# ପୂର୍ଣ୍ଣଚନ୍ଦ୍ର

# ଓଡ଼ିଆ ଭାଷାକୋଷ

( ସମ୍ପୂର୍ଣ୍ଣ )

ସପ୍ତମ (ଭାନୁଗଙ୍ଗା) ଖଣ୍ଡ (ବ୍ୟଞ୍ଜନ ବର୍ଣ୍ଣ ସ—ହ)

ସଂଗ୍ରାହକ—ରାୟ ବାହାଦୁର୍ ଗୋପାଳଚନ୍ଦ୍ର ପ୍ରହରାଜ, ବି. ଏଲ୍.,
ସାହିତ୍ୟଭୂଷଣ, (କୈସର୍-ଇ-ହିନ୍ଦ୍), ଆଡ୍‌ଭୋକେଟ୍, କଟକ ।

ଅମୂଲ୍ୟ ସହକର୍ମିଣୀ ଓ ପ୍ରକାଶିକା—ଶ୍ରୀମତୀ ପୀତାମ୍ବରୀ ଦେବୀ, ଭାଷାକୋଷ ଲେନ୍, କଟକ ।

# PŪRṆṆACHANDRA

# ORḌIĀ BHĀSHĀKOSHA.

( A lexicon of the Oriya language )

**Volume VII—(The last two letters—Sa & Ha)**

*Compiler*—**Rai Bahadur G. C. Praharaj, B. L.,**
*Sahitya bhushana (A. R. U.), Kaiser-I-Hind,*
*Advocate, Patna High Court, Cuttack, B. N. Ry. Orissa, (India).*

*Principal Colleague and Publisher*—**Srimati Pitambari Debi**

Printed by P. Kar,
THE UTKALA SAHITYA PRESS,
CUTTACK.
1940.

**The August Dedicatee of the 7th Volume of the Oriya Lexicon.**
**His Excellency The Right Hon'ble Marquis of Linlithgow,**
**Viceroy and Governor General of India.**



ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ସପ୍ତମ ଖଣ୍ଡର ଉତ୍ସର୍ଗ ପତ୍ର ଗ୍ରହୀତା

**ମହାମାନ୍ୟବର ଲର୍ଡ଼୍ ଲିନ୍‌ଲିଥ୍‌ଗୋ, ଭାରତର ଗଭର୍ଣ୍ଣର୍ ଜେନେରାଲ୍ ଓ ଭାଇସ୍‌ରୟ୍ ।**

To

His Excellency, The Right Honourable

# THE MARQUIS OF LINLITHGOW, P.C., K.T., G.M.S.I., G.M.I.E.

**VICEROY & GOVERNOR GENERAL OF INDIA,**

whose keen personal solicitude for the welfare and progress of His Majesty's Indian subjects, expressed in multifarious ways, even before His Excellency assumed the reins of Viceroyalty, supplemented by the most unselfish labour of love of

**HER EXCELLENCY, THE MARCHIONESS OF LINLITHGOW**

in redressing and retarding the progress of tuberculosis in India,

has made Their Excellencies dear to the Princes and the people of India and has marked His Excellency's rule as one of the very few golden periods in the history of Modern India, and

whose sincere and spontaneous appreciation of the mother-tongue of 15 millions of His Majesty's most loyal and law abiding Oriya subjects has prompted His Excellency to make liberal personal contribution towards the completion of this national monument, and but for whose generosity and persona interest it would not have been possible for the stranded poor compiler to bring the labours of 27 years of his humble life to successful termination and put the coping stone on this National Temple of Learing,

**The Seventh (and the last) volume**

**of**

# PŪRNNACHANDRA

# ORDĪĀ BHĀSHĀKOSHA

**(Quadrilingual dictionary of the Oriya language) is,**

with His Excellency's most gracious permission,

**DEDICATED**

as an humble mark of affectionate regard, by one who is proud to count His Excellency and Her Excellency as the pre-eminent Patrons of the Oriya Lexicon, and who subscribes himself to be His Majesty's most humble and loyal subject and Their Excellencies' humble admirer.

Bhāshākoshāsrama,
Bhashakosha Lane,
CUTTACK. (ORISSA)
*September, 1940.*

**G. C. Praharaj,**
*Compiler*

ଶ୍ରୀ ଶ୍ରୀ ଶ୍ରୀ ସମ୍ରାଟ୍-ପ୍ରତିନିଧିଙ୍କ ଶ୍ରୀଛାମୁରେ

# ସମର୍ପଣପତ୍ର

ଭାରତସାମ୍ରାଜ୍ୟର ଶାସନଦଣ୍ଡ ଗ୍ରହଣ କରିବା ପୂର୍ବରୁ ଓ ପରେ ସମ୍ରାଟଙ୍କ ଭାରତୀୟ ପ୍ରଜାପୁଞ୍ଜଙ୍କ ଅହରହଃ ମଙ୍ଗଳ ଓ ଉନ୍ନତି-ବିଧାନାର୍ଥ ଯାହାଙ୍କ ବ୍ୟକ୍ତିଗତ ଉଦ୍ୟମ ବହୁକ୍ଷେତ୍ରରେ ପ୍ରକଟିତ ଓ ପ୍ରମାଣିତ ହୋଇଅଛି, ରାଜଯକ୍ଷ୍ମାରୂପୀ ରାକ୍ଷସର କରାଳକବଳରୁ ଭାରତବାସୀଙ୍କୁ ଧଣ୍ଡ ଯୋଡ଼ାଇ ରଖିବାପାଇଁ ଯାହାଙ୍କ ମହିଷୀ **ମହାମାନନୀୟା ମାର୍ସିଅନେସ୍ ଅଫ୍ (ଲେଡୀ) ଲିନ୍‌ଲିଥ୍‌ଗୋଙ୍କ** ନିଃସ୍ୱାର୍ଥ ସେବାବ୍ରତ ଭାରତର ଆବାଳବୃଦ୍ଧବନିତାଙ୍କୁ ଚିରକାଳ କୃତଜ୍ଞତାପାଶରେ ଆବଦ୍ଧ କରି ରଖିବ, ଭାରତର ରାଜନ୍ୟମଣ୍ଡଳଙ୍କ ଓ କୋଟି କୋଟି ପ୍ରଜାଙ୍କ ପରମକଲ୍ୟାଣକାମୀ ରୂପେ ଯାହାଙ୍କ ଶାସନକାଳ ଆଧୁନିକ ଭାରତର ଇତିହାସରେ ବିଶିଷ୍ଟ ସ୍ୱର୍ଣ୍ଣଯୁଗ ମଧ୍ୟରେ ପରିଗଣିତ ହେବ, ଅବହମାନକାଳରୁ ରାଜଭକ୍ତ ଓ ଶାନ୍ତିପ୍ରିୟ ଦେଢକୋଟି ଓଡ଼ିଆଙ୍କ ମାତୃଭାଷା ଉପରେ ଯାହାଙ୍କର ସ୍ୱତଃ ପ୍ରଣୋଦିତ ଅନୁରାଗ-ବାରି ବର୍ଷି ନ ଥିଲେ ଓ ଯାହାଙ୍କ ବ୍ୟକ୍ତିଗତ ହିତୈଷଣା ଓ ଉତ୍ସାହ ପ୍ରାପ୍ତ ହୋଇ ନ ଥିଲେ ପ୍ରାଚୀନ ଓଡ଼ିଆ ଭାଷାର ଏହି ସାରସ୍ୱତ ମନ୍ଦିର-ଶିଖରରେ କାଳଚକ୍ର ବସି ନେତ ଉଡ଼ି ପାରି ନ ଥାନ୍ତା ଓ ଏ ନଗଣ୍ୟ ଜୀବନର ସତେଇଶ ବର୍ଷବ୍ୟାପୀ ବ୍ରତର ସଫଳ ଉଦ୍‌ଯାପନ ହୋଇ ପାରି ନ ଥାନ୍ତା

ଓ

ଯାହାଙ୍କୁ ଓ ଯାହାଙ୍କ ସହଧର୍ମିଣୀଙ୍କୁ ମାତୃଭାଷାର ଶୀର୍ଷସ୍ଥାନୀୟ ପୃଷ୍ଠପୋଷକଯୁଗଳରୂପେ ଲାଭ କରି ଆଜି ମୁଁ କୃତାର୍ଥ ହୋଇଅଛି, ସେହି **ଶ୍ରୀ ଶ୍ରୀ ଶ୍ରୀ ଭାରତ ସମ୍ରାଟଙ୍କ ପ୍ରତିନିଧି, ଭାଇସ୍‌ରୟ୍ ଓ ଭାରତର ଗଭର୍ଣ୍ଣର୍ ଜେନେରଲ୍, ଉଦାରହୃଦୟ ମହାମାନ୍ୟବର ମାର୍କୁଇସ୍ ଅଫ୍ ଲିନ୍‌ଲିଥ୍‌ଗୋ, ପି. ସି., କେ. ଟି., ଜି. ଏମ୍. ଏସ୍. ଆଇ., ଜି. ଏମ୍. ଆଇ. ଇ.** ଙ୍କ ସାନୁଗ୍ରହ ଅନୁମତିକ୍ରମେ **ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ଅନ୍ତିମ (ସପ୍ତମ) ଖଣ୍ଡ** ତାଙ୍କ ଶ୍ରୀକରକମଳରେ ଗଭୀର ରାଜଭକ୍ତି ଓ ପ୍ରେମସହକାରେ ଉତ୍ସୃଷ୍ଟ ଓ ସମର୍ପିତ ହେଲା ।

ଭାଷାକୋଷାଶ୍ରମ, ଭାଷାକୋଷ ଲେନ୍,
କଟକ, ଓଡ଼ିଶା
ସନ ୧୯୪୦ ସାଲ, ସେପ୍ଟେମ୍ବର ମାସ

ନିବେଦକ
ଜଣେ ନଗଣ୍ୟ ବିନୀତ ରାଜଭକ୍ତ ଓ ଭାଇସ୍‌ରୟ୍ ଦମ୍ପତିଙ୍କ କରୁଣାମୁଗ୍ଧ
**ଗୋପାଳଚନ୍ଦ୍ର ପ୍ରହରାଜ**

**The Illustrious Patroness of the 7th Volume of the Oriya Bhashakosha.**
**Her Excellency, Marchioness Linlithgow.**



ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ସପ୍ତମ ଖଣ୍ଡର ଅଭିଭାବିକା

**ବଡ଼ଲାଟ-ମହିଷୀ ମହାମାନନୀୟା ଶ୍ରୀମତୀ ଲେଡୀ ଲିନ୍‌ଲିଥ୍‌ଗୋ ।**

"ଓଁ ଅସତୋ ମା ସଦ୍‌ଗମୟ
ଓଁ ତମସୋ ମା ଜ୍ୟୋତିର୍ଗମୟ
ଓଁ ମୃତ୍ୟୋର୍ମାମୃତଂ ଗମୟ ।"

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ସପ୍ତମ (ଭାନୁଗଙ୍ଗ) ଖଣ୍ଡର

# ଅବତରଣିକା

'କ୍ଳେଶଃ ଫଳେନ ହି ପୁନର୍ନବତାଂ ବିଧତ୍ତେ'—କାଳିଦାସ ।

---

## ଶ୍ରମ ସମାପ୍ତି

ପରମ କାରୁଣିକ ପରମେଶ୍ୱରଙ୍କର ଅପାର କରୁଣାରୁ ଓ ଗୁରୁଦେବଙ୍କ ଆଶୀର୍ବାଦରୁ ୬୭ବର୍ଷ ପୂର୍ବେ (୧୯୧୩ ସାଲରେ) ମୁଁ ଯହିଁର କଳ୍ପନା କରି ଅନ୍ୟୂନ ୨୧ବର୍ଷ ପୂର୍ବେ (୧୯୧୯ ସାଲରେ) ଯହିଁର ପାଣ୍ଡୁଲିପିର ସଙ୍କଳନ ଆରମ୍ଭ କରିଥିଲି, ଓଡ଼ିଆ ଭାଷାର ସେହି ଶବ୍ଦାର୍ଥିକ ଅଭିଧାନ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ଆଜି ପୂର୍ଣ୍ଣ ହେଲା ।

୧୯୨୭ ସାଲରେ ପାଣ୍ଡୁଲିପିମାନଙ୍କ ଚଠା ଲେଖା ସରିବା ପରେ ବିଶେଷଜ୍ଞମାନଙ୍କଦ୍ୱାରା ଅଟକଳ କରାଯାଇଥିଲା ଯେ, ମୁଦ୍ରିତ ଗ୍ରନ୍ଥ ୩୬୦୦ ପୃଷ୍ଠା ଅଧିକାର କରିବ ଓ ଦୁଇଖଣ୍ଡରେ ସମାପ୍ତ ହେବ ଏବଂ ଏଥିର ସମ୍ମାର୍ଜନ ଓ ମୁଦ୍ରଣାଦିର ବ୍ୟୟ ପ୍ରାୟ ଷାଠିଏ ହଜାର ଟଙ୍କା ଲାଗିବ । ଓଡ଼ିଶା ବିଭାଗର ତଦାନୀନ୍ତନ କମିସନର୍, ବର୍ତ୍ତମାନ ନବପ୍ରତିଷ୍ଠିତ ଓଡ଼ିଶା ପ୍ରଦେଶର ଗଭର୍ଣ୍ଣର୍ ମାନ୍ୟବର ସର୍ ଜନ୍ ହବାକ୍‌ଙ୍କ ସୁପାରିସ୍ ଅନୁସାରେ ବିହାର ଓଡ଼ିଶା ଗଭର୍ଣ୍ଣମେଣ୍ଟ ଉକ୍ତ ବ୍ୟୟର ଅର୍ଦ୍ଧେକ ବହନ କରିବାକୁ ପ୍ରତିଶ୍ରୁତ ହେଲେ । ବିହାର ଓଡ଼ିଶା ଶିକ୍ଷାବିଭାଗର ତଦାନୀନ୍ତନ ଡେପୁଟି ଡାଇରେକ୍ଟର୍ ଓ ବର୍ତ୍ତମାନ ଓଡ଼ିଶା ପ୍ରଦେଶର ଶିକ୍ଷା ବିଭାଗର ଡାଇରେକ୍ଟର୍, ମୋ ସୋଦରକଳ୍ପ ଶ୍ରୀଯୁକ୍ତ ଶ୍ୟାମଚରଣ ତ୍ରିପାଠୀ ଆଇ. ଇ. ଏସ୍‌ଙ୍କ ପ୍ରସ୍ତାବ କ୍ରମେ ମୟୂରଭଞ୍ଜାଧୀଶ୍ୱର ମହାରାଜ ସର୍ ପ୍ରତାପଚନ୍ଦ୍ର ଭଞ୍ଜ ଦେଓ କେ. ସି. ଆଇ. ଇ ମୁଦ୍ରଣାଦି ପାଇଁ ଆଠ ହଜାର ଟଙ୍କା ସାହାଯ୍ୟ କରିବାକୁ ପ୍ରତିଶ୍ରୁତ ହୋଇ ଏ ଗ୍ରନ୍ଥର ମୁଦ୍ରଣାରମ୍ଭର ପଥ ସୁଗମ କଲେ । ମହାରାଜଙ୍କ ସୂଚନାକ୍ରମେ ତାଙ୍କ ସ୍ୱର୍ଗତ ଜ୍ୟେଷ୍ଠ ଭ୍ରାତା ପୁଣ୍ୟଶ୍ଳୋକ ମହାରାଜ ପୂର୍ଣ୍ଣଚନ୍ଦ୍ରଙ୍କ ନାମ ଏ ଗ୍ରନ୍ଥର ନାମରେ ସଂଯୋଜିତ ହେଲା ।

ଏ ଗ୍ରନ୍ଥର ମୁଦ୍ରଣ କର୍ମର ଅଗ୍ରସର ହେଉଥିବା ଅବସ୍ଥାରେ ଦେଖାଗଲା ଯେ, ଏ ଗ୍ରନ୍ଥର କଳେବର ପ୍ରଥମ କଳ୍ପିତ କଳେବର ଅପେକ୍ଷା ବେଶି ହେବ । ପରିଶେଷରେ ସମଗ୍ର ଗ୍ରନ୍ଥ ୯୫୦୦ ପୃଷ୍ଠା ଅଧିକାର କରି ୭ଖଣ୍ଡରେ ସମାପ୍ତ ହେଲା ଓ ଏଥିର ସମ୍ମାର୍ଜନ ଓ ମୁଦ୍ରଣାଦି ବ୍ୟୟ ପାଇଁ ସପାଦ ଲକ୍ଷେ ଟଙ୍କା ଲାଗିଲା । ବ୍ୟୟ ବୃଦ୍ଧି ହେବା ବିଷୟ ମହାରାଜ ପ୍ରତାପଚନ୍ଦ୍ରଙ୍କ କର୍ଣ୍ଣ ଗୋଚର ହେବାରୁ ସେ ୧୯୩୬ ସାଲରେ ଆଉ ପାଞ୍ଚ ହଜାର ଟଙ୍କା ସାହାଯ୍ୟ କଲେ । ବର୍ତ୍ତମାନ ମଧ୍ୟ ମହାରାଜଙ୍କଠାରୁ ଆଉ କିଛି ସାହାଯ୍ୟ ମିଳିବାର ଆଶା ଅଛି । ବିହାର ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କର ଓ ମହାରାଜ ପ୍ରତାପଚନ୍ଦ୍ରଙ୍କ ସାହାଯ୍ୟ ଛଡ଼ା ପାଟ୍‌ଣା ବିଶ୍ୱବିଦ୍ୟାଳୟ, ଜଳ୍ପୁରର ମହାରାଜା, ରାଜା ଆଦି ଭାଷାନୁରାଗୀ ଅନ୍ୟ ଯେଉଁ ଦାତାମାନଙ୍କ ଅର୍ଥ-ସାହାଯ୍ୟରେ ପୂର୍ବବର୍ତ୍ତୀଖଣ୍ଡମାନ ପ୍ରକାଶିତ ହୋଇଅଛି, ସେମାନଙ୍କ ବିଷୟ ତତ୍ତତ୍‌ଖଣ୍ଡର ଅବତରଣିକାରେ କୃତଜ୍ଞତା ସହକାରେ ଜ୍ଞାପିତ ହୋଇଅଛି ।

ଯେଉଁମାନେ ଏ ସପ୍ତମଖଣ୍ଡର ପ୍ରକାଶବ୍ୟୟ ନିର୍ବାହାର୍ଥ ଅର୍ଥ ସାହାଯ୍ୟ କରିଅଛନ୍ତି ସେମାନଙ୍କର ନାମ ଯଥାସ୍ଥାନରେ ବିବୃତ ହେବ ।

## ଗ୍ରନ୍ଥର ଭିନ୍ନ ଭିନ୍ନ ଖଣ୍ଡମାନଙ୍କର ଉତ୍ସର୍ଗ ପତ୍ର ଗ୍ରହୀତା ଓ ଅଭିଭାବକଗଣ

୧୩ବର୍ଷ ତଳେ ଓଡ଼ିଶା ବିଭାଗର କମିସନର୍ ଥିବାବେଳେ ମାନ୍ୟବର ସର୍ ଜନ୍ ହବାକ୍ ଏମ୍. ଏ., କେ. ସି. ଏସ୍. ଆଇ., ଆଇ. ସି. ଏସ୍. ଏହି ଜାତୀୟ ସ୍ମୃତିମନ୍ଦିରର ଶୁଭ ଦେଇଥିଲେ । ତଦ୍ପରେ ତାଙ୍କ ପଦବୃଦ୍ଧି ସଙ୍ଗେ ସଙ୍ଗେ ଏଥିର ମୂଳଦୁଆ ପଡ଼ିବା, ଦୁଆରି ଦୁଆ କାନ୍ଥ ଉଠିବା, ଲହଡ଼ି ମୁଦ ହେବା, ଛାତ ପଡ଼ିବା ଓ ଦଧିନଉତି ବସିବା କ୍ଷେତ୍ରରେ ତାଙ୍କ ସ୍ଥାପତ୍ୟ ନିଯୋଜିତ ହେଲା ଓ ଶେଷରେ ନବପ୍ରତିଷ୍ଠିତ ଓଡ଼ିଶା ପ୍ରଦେଶର ପ୍ରଥମ ଗଭର୍ଣ୍ଣର୍ ରୂପେ ତାଙ୍କର ଉଦ୍ୟମ ଫଳରେ ଏ ମନ୍ଦିରରେ ନୀଳଚକ୍ର ବସିଲା । ବର୍ତ୍ତମାନ ସପ୍ତମଖଣ୍ଡର ପ୍ରକାଶ ରୂପ ମନ୍ଦିର ପ୍ରତିଷ୍ଠାରେ ସେ ଓ ତାଙ୍କ ସହଧର୍ମିଣୀ ପରମ ପରିତୋଷ ଲଭୁଅଛନ୍ତି । ତାଙ୍କ ପରି ଅମୃତ-ହସ୍ତୀ ସ୍ଥପତି ମିଳି ନ ଥିଲେ ଏ ସାରସ୍ୱତ ମନ୍ଦିର 'ଲଣ୍ଡା ଦେଉଳ' ହୋଇ ଓଡ଼ିଶାରେ ପ୍ରବଚନର ବିଷୟ ହୋଇ ରହିଥାଆନ୍ତା । ତାଙ୍କ ନାମରେ ପ୍ରଥମ ଖଣ୍ଡ ଉତ୍ସୃଷ୍ଟ ହୋଇଅଛି ।

**ପ୍ରଥମଖଣ୍ଡ**—( ସନ ୧୯୩୧ ସାଲରେ ପ୍ରକାଶିତ )

ଉତ୍ସର୍ଗପତ୍ର ଗ୍ରହୀତା—ମାନ୍ୟବର ସର୍ ଜନ୍ ହବାକ୍ ।

ଅଭିଭାବକ—ବିହାର ଓଡ଼ିଶାର ତଦାନୀନ୍ତନ ଗଭର୍ଣ୍ଣର୍ ମାନ୍ୟବର ସର୍. ଏଚ୍. ଷ୍ଟିଫେନ୍‌ସନ୍, କେ. ସି. ଏସ୍. ଆଇ., ଆଇ. ସି. ଏସ୍ ।

**ଦ୍ୱିତୀୟଖଣ୍ଡ**—(ସନ.୧୯୩୨ ସାଲରେ ପ୍ରକାଶିତ)

ଉତ୍ସର୍ଗପତ୍ରଗ୍ରହୀତା—କଟକର ଭୂତପୂର୍ବ ମାଜିଷ୍ଟ୍ରେଟ୍ ଓ କଲେକ୍ଟର୍ ଓ ପରେ ବିହାର ପ୍ରଦେଶର ଉଚ୍ଚ ରାଜକର୍ମଚାରୀ ଶ୍ରୀଯୁକ୍ତ ଏଚ୍. ଏଫ୍. ଲେକ୍, ସି. ଆଇ. ଇ., ଆଇ. ସି. ଏସ୍

ଅଭିଭାବକ—ବିହାର ଓଡ଼ିଶାର ତଦାନୀନ୍ତନ ଗଭର୍ଣ୍ଣର୍ ମାନ୍ୟବର ସର୍ ଜେମ୍ସ୍ ଡାଭିଡ୍ ସିଫ୍ଟନ୍, କେ. ସି. ଏସ୍. ଆଇ, କେ. ସି. ଆଇ. ଇ., ଆଇ. ସି. ଏସ୍ ।

**ତୃତୀୟ ଖଣ୍ଡ**—(ସନ ୧୯୩୩ ସାଲରେ ପ୍ରକାଶିତ)

ଉତ୍ସର୍ଗପତ୍ରଗ୍ରହୀତା—ବୌଦ୍ଧ ରାଜ୍ୟାଧୀଶ୍ୱର ରାଜା ଶ୍ରୀ ନାରାୟଣ ପ୍ରସାଦ ଦେବ;

ଅଭିଭାବକ—ରାଜାସାହେବ ସ୍ୱୟଂ

**ଚତୁର୍ଥ ଖଣ୍ଡ**—(ସନ ୧୯୩୪ ସାଲରେ ପ୍ରକାଶିତ)

ଉତ୍ସର୍ଗପତ୍ରଗ୍ରହୀତା—ଜୟପୁର ରାଜ୍ୟର ଅଧୀଶ୍ୱର ସାହିତ୍ୟ-ସମ୍ରାଟ୍ ମହାରାଜ ଶ୍ରୀ ବିକ୍ରମଦେବ ବର୍ମା, ଡି. ଲିଟ୍ ।

ଅଭିଭାବକ—ଭାରତର ପୂର୍ବ ଗଡ଼ଜାତପୁଞ୍ଜ (Eastern States Agency)ର ଗଭର୍ଣ୍ଣର୍ ଜେନେରେଲ୍‌ଙ୍କର ତଦାନୀନ୍ତନ ଏଜେଣ୍ଟ୍ (Agent to the Governor General) ଶ୍ରୀଯୁକ୍ତ ଇ. ସି. ଗିବ୍‌ସନ୍, ସି ଆଇ. ଇ, ଆଇ, ସି. ଏସ୍ ।

**ପଞ୍ଚମ ଖଣ୍ଡ**—(ସନ ୧୯୩୬ ସାଲରେ ପ୍ରକାଶିତ)

ଉତ୍ସର୍ଗପତ୍ରଗ୍ରହୀତା—ପାରଳାଖେମୁଣ୍ଡି ରାଜ୍ୟର ଅଧୀଶ୍ୱର ମହାରାଜ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ।

ଅଭିଭାବକ—ଜୟପୁରାଧୀଶ୍ୱର ସାହିତ୍ୟସମ୍ରାଟ୍ ମହାରାଜ ଶ୍ରୀ ବିକ୍ରମଦେବ ବର୍ମା, ଡି. ଲିଟ୍ ।

**ଷଷ୍ଠ ଖଣ୍ଡ**—(ସନ ୧୯୩୭ ସାଲରେ ପ୍ରକାଶିତ)

ଉତ୍ସର୍ଗପତ୍ରଗ୍ରହୀତା—ପାଟଣା ରାଜ୍ୟାଧୀଶ୍ୱର ମହାରାଜ ଶ୍ରୀ ରାଜେନ୍ଦ୍ରନାରାୟଣ ସିଂହ ଦେଓ ।

ଅଭିଭାବକ—ସ୍ୱୟଂ ମହାରାଜ ।

**ସପ୍ତମ ଖଣ୍ଡ**—(ସନ ୧୯୪୦ ସାଲରେ ପ୍ରକାଶିତ)

ଉତ୍ସର୍ଗପତ୍ର ଗ୍ରହୀତା—ପ୍ରବଳପ୍ରତାପ ଶ୍ରୀ ଶ୍ରୀ ଶ୍ରୀ ଭାରତ ସମ୍ରାଟଙ୍କ ଭାଇସ୍‌ରୟ୍ ଓ ଭାରତର ଗଭର୍ଣ୍ଣର୍ ଜେନେରାଲ୍ ମହାମାନ୍ୟବର ମାର୍କ୍ୱିସ୍ ଅଫ୍ ଲିନ୍‌ଲିଥ୍‌ଗୋ ।

ଅଭିଭାବକା—ଭାଇସ୍‌ରୟ୍-ମହିଷୀ ଉଦାରଚରିତା, ଭାରତ-ସେବାବ୍ରତା ମହାମାନ୍ୟା ମାର୍ସିଅନେସ୍ (ଲେଡୀ) ଲିନ୍‌ଲିଥ୍‌ଗୋ ।

## କ୍ରମିକ ଖଣ୍ଡମାନଙ୍କ ବିଷୟ ।

ପ୍ରଥମ ଖଣ୍ଡରେ—ସମସ୍ତ ସ୍ୱରବର୍ଣ୍ଣାଦ୍ୟ ଶବ୍ଦମାନ ।

ଦ୍ୱିତୀୟ ଖଣ୍ଡରେ—କ ଠାରୁ ଙ ବ୍ୟଞ୍ଜନବର୍ଣ୍ଣାଦ୍ୟ ଶବ୍ଦମାନ ।

ତୃତୀୟ ଖଣ୍ଡରେ—ଚ ଠାରୁ ଥ ବର୍ଣ୍ଣାଦ୍ୟ ଶବ୍ଦମାନ ।

ଚତୁର୍ଥ ଖଣ୍ଡରେ—ଦ ଠାରୁ ପ ବର୍ଣ୍ଣାଦ୍ୟ ଶବ୍ଦମାନ ।

ପଞ୍ଚମ ଖଣ୍ଡରେ—ଫ ଠାରୁ ମ ବର୍ଣ୍ଣାଦ୍ୟ ଶବ୍ଦମାନ ।

ଷଷ୍ଠ ଖଣ୍ଡରେ—ଯ ଠାରୁ ଷ ବର୍ଣ୍ଣାଦ୍ୟ ଶବ୍ଦମାନ ଓ

ସପ୍ତମ ଖଣ୍ଡରେ—ବର୍ଣ୍ଣମାଳାର ଶେଷରେ ଥିବା ସ ଓ ହ ବର୍ଣ୍ଣାଦ୍ୟ ଶବ୍ଦମାନ ।

ସାଧାରଣତଃ ବାଳଶିକ୍ଷାର୍ଥୀମାନେ ହ ଅକ୍ଷର ପରେ ଅକ୍ଷର କ୍ଷ ସଙ୍ଗେ ପରିଚିତ ହୁଅନ୍ତି । କିନ୍ତୁ କ୍ଷ ଅକ୍ଷର କ ବର୍ଣ୍ଣସଂଯୁକ୍ତ ଗୋଟିଏ ଯୁକ୍ତାକ୍ଷର (କ+ଷ) ଥିବାରୁ ଧ୍ୱନିବିଜ୍ଞାନ ଦୃଷ୍ଟିରେ ଏ ଅକ୍ଷରର ସ୍ଥାନ କ ବର୍ଣ୍ଣ ପରେ ହେବା ଉଚିତ । ଏହି ଦୃଷ୍ଟିରେ କେତେକ ବଙ୍ଗଳା ଓ ସଂସ୍କୃତ ଅଭିଧାନ କ୍ଷ ଅକ୍ଷରାଦ୍ୟ ଶବ୍ଦମାନଙ୍କୁ 'ହ' ପରେ ନ ଦେଇ 'କ' ଅକ୍ଷର ପରେ ସ୍ଥାନ ଦେଇ ଅଛନ୍ତି । ଏହି ଭାଷାକୋଷରେ ମଧ୍ୟ 'କ୍ଷ' ବର୍ଣ୍ଣାଦ୍ୟ ଶବ୍ଦମାନ କ ଅକ୍ଷରାଦ୍ୟ ଶବ୍ଦମାନଙ୍କ ପରେ ସ୍ୱତନ୍ତ୍ର ଭାବରେ ଦ୍ୱିତୀୟ ଖଣ୍ଡରେ ୧୮୫୩ ପୃଷ୍ଠାଠାରୁ ୧୮୮୦ ପୃଷ୍ଠା ପର୍ଯ୍ୟନ୍ତ ସନ୍ନିବେଶିତ ହୋଇଅଛି ।

## ସମଗ୍ର ଭାଷାକୋଷରେ ସନ୍ନିବେଶିତ ଶବ୍ଦ ଓ ବାକ୍ୟମାନଙ୍କ ସଂଖ୍ୟା

ପୂର୍ବୋକ୍ତ ୬ ଖଣ୍ଡ ଗ୍ରନ୍ଥରେ ସନ୍ନିବେଶିତ ଶବ୍ଦ ଓ ବାକ୍ୟାଂଶ-ମାନଙ୍କ ସଂଖ୍ୟା ପ୍ରାୟ ଏକ ଲକ୍ଷ ଷାଠିଏ ହଜାର । ସପ୍ତମ ଖଣ୍ଡରେ ସନ୍ନିବେଶିତ ଶବ୍ଦାଦିର ସଂଖ୍ୟା ପ୍ରାୟ ପଚିଶି ହଜାର । ଅତଏବ ସମଗ୍ର ଭାଷାକୋଷରେ ଏକ ଲକ୍ଷ ପଞ୍ଚାଅଶି ହଜାର (୧,୮୫,୦୦୦) ଶବ୍ଦ ସ୍ଥାନ ପାଇଅଛି ।

ମୋ ସଂଗୃହୀତ ଶବ୍ଦମାନଙ୍କର ଅକ୍ଷରକ୍ରମରେ ମୁଦ୍ରଣ ପରେ କାଳ-କ୍ରମେ ଉତ୍ତୃତ ଅକ୍ଷରାଦ୍ୟ ପ୍ରାୟ ୫ହଜାର ଦେଶାଂଶ ପ୍ରଚଳିତ, ବ୍ୟାବହାରିକ, ଗ୍ରାମ୍ୟ ଓ ବୈଜ୍ଞାନିକ ଶବ୍ଦ ମୋ ହସ୍ତଗତ ହୋଇଅଛି ଓ ସେହି ସେହି ଅକ୍ଷରାଦ୍ୟ ଶବ୍ଦମାନଙ୍କ ମୁଦ୍ରଣ ସମାପ୍ତ ହୋଇଥିବାରୁ ସେମାନ ଭାଷା-କୋଷରେ ସ୍ଥାନ ପାଇ ପାରି ନାହିଁ । ସେ ଶବ୍ଦମାନଙ୍କୁ ମୁଁ ଅକ୍ଷରକ୍ରମରେ ସଜ୍ଜିତ କରି ଲେଖାଇ ରଖିଅଛି । ମୋ ସହକର୍ମୀଗଣ ଇତି ମଧ୍ୟରେ ଉତ୍କଳର ଜୀବିତ ଓ ମୃତ ୪୦୧୫୦ ଜଣ ବିଶିଷ୍ଟ ବ୍ୟକ୍ତିଙ୍କ ସଂକ୍ଷିପ୍ତ ଜୀବନ-ଚରିତ ମଧ୍ୟ ସଂଗ୍ରହ କରି ଅଛନ୍ତି । ବିଜ୍ଞାନଚର୍ଚ୍ଚାର କ୍ରମାଧିକ୍ୟ ଫଳରେ ସବୁ ଭାଷାରେ ନିରନ୍ତର ଗୁଡ଼ିଏ ନୂଆ ଶବ୍ଦ ପ୍ରବେଶ କରୁଅଛି । ମୁଁ ଦୃଢ଼ତା ସହକାରେ କହି ପାରେ ଯେ, ଯେବେ ବଙ୍ଗ, ବିହାର, ମାନ୍ଦ୍ରାଜ, ମଧ୍ୟ-ପ୍ରଦେଶ ଓ ଓଡ଼ିଆ ଗଡ଼ଜାତ ମାନଙ୍କରେ ଥିବା ଉତ୍କଳଭାଷୀ ଅଞ୍ଚଳର ଶବ୍ଦ ବିଚାରି ଖୋଜା ଯିବ, ତେବେ ଅନ୍ତତଃ ଆଉ ଦଶ ହଜାର ପ୍ରାଦେଶିକ, ଦେଶାଂଶ ପ୍ରଚଳିତ ଗ୍ରାମ୍ୟ, ପ୍ରାଚୀନ, ବୈଜ୍ଞାନିକ ଓ ବ୍ୟାବହାରିକ ଶବ୍ଦ ସଂଗୃହୀତ ହୋଇ ପାରିବ ।

ଉଦାହରଣ ସ୍ୱରୂପ ଦେଖାଯାଉ ଯେ, ମୁଁ ୬।୭ ମାସ ପୂର୍ବେ ଭାଷାକୋଷ ପାଇଁ ଅର୍ଥ ସଂଗ୍ରହାର୍ଥ କଟକ ଜିଲ୍ଲାର ଆଳି ରାଜ୍ୟକୁ ଯାଇଥିଲି । ପୂର୍ବେ ସେ ରାଜ୍ୟ ଜାହାଜ ନିର୍ମାଣ, ପୋତ ଚାଳନ ଓ ସାମୁଦ୍ରିକ ବାଣିଜ୍ୟର ଗୋଟିଏ କେନ୍ଦ୍ର ଥିଲା । ସେ ସମୟରେ ବ୍ୟବହୃତ ବହୁ ଶତ ଶବ୍ଦ ବର୍ତ୍ତମାନ ଲୁପ୍ତପ୍ରାୟ । ଭାଷାନୁରାଗୀ ଆଳି ରାଜ୍ୟାଧୀଶ୍ୱର ମୋତେ ଜାହାଜ ଓ ନୌଚାଳନ ସମ୍ପର୍କୀୟ ୫୦ଟି ଶବ୍ଦ ଦେଲେ; ସେ ଶବ୍ଦମାନ ଭାଷାକୋଷରେ ନାହିଁ । ସେ କହିଲେ ଯେ, ଜାହାଜ ନିର୍ମାଣ, ଜାହାଜ-ଚାଳନ, ନୌକାଚାଳନ, ଜାଲ ଓ ମାଛଧରା ସମ୍ପର୍କରେ ଓ ପ୍ରାଚୀନ କାଳରେ ଉତ୍କଳ ପାଇକ ସେନାମାନଙ୍କ ବ୍ୟବହୃତ ଓ ଯୁଦ୍ଧ ସମ୍ପର୍କୀୟ ସହସ୍ରାଧିକ ଶବ୍ଦ ଅର୍ଥ ସହିତ ସେ ଦେଇ ପାରିବେ । ଏ ଶବ୍ଦଗୁଡ଼ିକ ଲିପିବଦ୍ଧ ହୋଇ ନ ରହିଲେ ଆମ ଭାଷାରୁ ଏ ଗୁଡ଼ିକର ଅସ୍ତିତ୍ୱ ଲୁପ୍ତ ହେବ । ମୁଁ ଅନୁମାନ କରୁଅଛି ଯେ, ପରିଶ୍ରମ, ଅନ୍ୱେଷଣ, ନିଷ୍ଠା ଓ ଅଧ୍ୟବସାୟ ସହକାରେ ଗୁଡ଼ିଏ କର୍ମଠ ଓ କଷ୍ଟସହିଷ୍ଣୁ କର୍ମୀ ଲାଗି ଗଲେ ସେମାନେ ଯେତେ ଶବ୍ଦ ସଂଗ୍ରହ କରିବେ ଓ ମୋ ଦ୍ୱାରା ସଂଗୃହୀତ ଯେଉଁ ନୂତନ ଶବ୍ଦମାନ ଭାଷାକୋଷରେ ସ୍ଥାନ ପାଇ ନାହିଁ, ସେମାନଙ୍କ ସଂଖ୍ୟା ଅନ୍ୟୂନ ୧୫ ହଜାର ହେବ । ଭାଷାକୋଷରେ ନିହିତ ୧ ଲକ୍ଷ ୮୫ ହଜାର ଶବ୍ଦ ସଙ୍ଗେ ସେ ଶବ୍ଦମାନ ମିଶିଲେ ଓଡ଼ିଆ ଭାଷାରେ ଶବ୍ଦ ସଂଖ୍ୟା ଦୁଇଲକ୍ଷ ହେବ ଓ ଆମ ମାତୃଭାଷା, କେବଳ ଭାରତର ନାହିଁ କି, ପୃଥିବୀର ଅନ୍ୟ ଉନ୍ନତ ଭାଷାମାନଙ୍କ ସଙ୍ଗେ

**The Layer of the Foundation of the Bhashakosha,**
**His Excellency Sir John Austen Hubback, M. A., K. C. S. I., I. C. S.**
**THE FIRST GOVERNOR OF ORISSA.**



ଏହି ସାରସ୍ୱତ ମନ୍ଦିରର ମୂଳଭିତ୍ତିର ପ୍ରତିଷ୍ଠାତା
ମାନ୍ୟବର ସର୍ ଜନ୍ ଅଷ୍ଟେନ୍ ହବାକ୍, ଓଡ଼ିଶାର ପ୍ରଥମ ଗଭର୍ଣ୍ଣର୍ ।

ଶବ୍ଦବିଭବରେ ପଶି ପକାଇ ପାରିବ । ପ୍ରଭୁ ଯେବେ ଏ ସୁଦିନ ମୋତେ ବା ମୋ ଅପେକ୍ଷା କର୍ମଠ ଓ କମାଯୁବାନ୍ କର୍ମିଗଣଙ୍କୁ ଦେବେ ଓ ତାହାଙ୍କର ପ୍ରକାଶାର୍ଥ ଅର୍ଥ ପୋଷକତା ମିଳିବ, ତେବେ ଏ ଭାଷାକୋଷର ପରିଶିଷ୍ଟ ଖଣ୍ଡରେ ଏ ବର୍ଦ୍ଧମାନ ସ୍ଥାନ ପାଇବ ।

## ଭାଷାକୋଷର କ୍ରମିକ ଖଣ୍ଡମାନଙ୍କ ତୁଳନାରେ ସପ୍ତମ ଖଣ୍ଡର ପ୍ରକାଶରେ ଅତ୍ୟଧିକ ବିଳମ୍ବ

ଏ ଗ୍ରନ୍ଥର ପୂର୍ବବର୍ତ୍ତୀ ଖଣ୍ଡମାନ ନିମ୍ନଲିଖିତ ସମୟ କ୍ରମେ ମୁଦ୍ରିତ ଓ ପ୍ରକାଶିତ ହୋଇଅଛି :—

ପ୍ରଥମ ଖଣ୍ଡ – ସନ ୧୯୩୧ ସାଲ ସେପ୍‌ଟେମ୍ବର୍ ମାସ,
ଦ୍ୱିତୀୟ ଖଣ୍ଡ—୧୯୩୨ ଅଗଷ୍ଟ୍ ମାସ,
ତୃତୀୟ ଖଣ୍ଡ—୧୯୩୩ ମେଁ,
ଚତୁର୍ଥ ଖଣ୍ଡ—୧୯୩୪ ଜୁନ୍,
ପଞ୍ଚମ ଖଣ୍ଡ—୧୯୩୬ ମାର୍ଚ୍ଚ୍,
ଷଷ୍ଠ ଖଣ୍ଡ—୧୯୩୭ ଜୁନ୍ ।

ଏଥିରୁ ଦେଖାଯିବ ଯେ, କେବଳ ପଞ୍ଚମ ଖଣ୍ଡ ଛଡ଼ା ଅନ୍ୟ ସବୁ ଖଣ୍ଡ ବର୍ଷେ ଲେଖାଏଁ ବ୍ୟବଧାନରେ ପ୍ରକାଶିତ ହୋଇଥିଲା । କିନ୍ତୁ ଏହି ଅନ୍ତିମ ଖଣ୍ଡର ପ୍ରକାଶ ପାଇଁ (୧୯୪୦ ସାଲ ସେପ୍‌ଟେମ୍ବର ମାସ) ତିନି ବର୍ଷରୁ ଅଧିକକାଳ କଟିଗଲା ।

ଷଷ୍ଠ ଖଣ୍ଡର ପ୍ରକାଶ ପରେ ଉତ୍କଳ ପ୍ରବଳ ନଦୀବନ୍ୟାକ୍ରାନ୍ତ ହେଲା; ସେହି ବନ୍ୟା ଯୋଗୁଁ ମୋର ମଧ ବହୁତର କ୍ଷତି ଘଟିଲା । ସେ କ୍ଷତିରୁ ଉଦ୍ଧାର ପାଇବା ବେଳକୁ ୨୦ ବର୍ଷ ହେଲା ଏ ଗ୍ରନ୍ଥ ସଂକଳନରେ ଓ ପ୍ରକାଶରେ ମୋ ସହକର୍ମିଣୀ ଓ ମୁଁ ପୀଡ଼ିତ ହେଲୁଁ; ତହିଁରୁ ମୁକ୍ତି ଲଭିବାକୁ ୨।୩ ମାସ ଅତିବାହିତ ହେଲା । ତତ୍ପରେ ଶାସନତନ୍ତ୍ରର ପରିବର୍ତ୍ତନ ଫଳରେ ଓ କଂଗ୍ରେସ ସରକାରଙ୍କ ଦ୍ୱାରା ପ୍ରଜାସତ୍ତ୍ୱ, ମହାଜନି ଦେବୋତ୍ତର ଆଦି ଆଇନ୍‌ର ପ୍ରଣୀତ, ପ୍ରସ୍ତୁତ ଓ ପ୍ରବର୍ତ୍ତିତ ହେବା ଫଳରେ ଓ ଗଡ଼ଜାତ ଓ ଜମିଦାରୀ ରାଜ୍ୟମାନଙ୍କରେ 'ପ୍ରଜା-ମଣ୍ଡଳ' ଓ, 'କୃଷକ ସଂଘ' ଆନ୍ଦୋଳନ ଫଳରେ ଭାଷାକୋଷର ଭାବୀ ପୋଷଣାହାସମାନଙ୍କ ଦାତୃତ୍ୱ ସମଧିକ ଭାବରେ ପ୍ରତିହତ ହେଲା; ଏଥି ପୂର୍ବରେ ଉତ୍କଳର ଧନୀକମଣ୍ଡଳର ଦାନ ସ୍ରୋତ ଯେଉଁ ବେଗରେ ଗତି କରୁଥିଲା, ସେ ବେଗ ମନ୍ଥର ହୋଇଗଲା । ତତ୍ପରେ ଗତ ସୁଦୀର୍ଘ ପୃଥିବୀବ୍ୟାପୀ ମହାଯୁଦ୍ଧର ଘନଘଟା ହେତୁ ଭାରତର ରାଜନୈତିକ, ବୈଷୟିକ ଓ ବ୍ୟାବସାୟିକ ବାୟୁମଣ୍ଡଳ କୁହେଳିକାମୟ ଓ ଧୂଳି ସମାଚ୍ଛନ୍ନ ହୋଇଗଲା; ଶେଷରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଲେ ।

ଉତ୍କଳର ମୋଗଲବନ୍ଦିର ଓ ଗଡ଼ଜାତର ଏହି ଉତ୍ତାଳ ତରଙ୍ଗାକୁଳ, ଅତଳ ସମୁଦ୍ରରେ ମୋ ଭଲଆ ଅସ୍ଥିରପାଦ (ଅଥରପା) ବୁଢ଼ା କାନ୍ଧରେ ସପ୍ତମଖଣ୍ଡରୂପ ଦଦରା ଡଙ୍ଗାରେ ଉଠେଇ ବୁଡେଇ ହେଲା; ଦଦରା ଡଙ୍ଗା କୂଳରେ ଆସି ଲାଗିବା ପୂର୍ବରୁ ଗଣ୍ଡ ଦରିଆରେ ବୁଡ଼ିଯିବାକୁ ବସିଥିଲା ।

ଏହି ସମୟରେ ଶ୍ରୀକୃଷ୍ଣଙ୍କ କର୍ଣ୍ଣଧାରତ୍ୱରେ ଦଦରା ଡଙ୍ଗାରେ ଯମୁନା ପାର ହେବାକୁ ବସିଥିବା ଗୋପୀମାନଙ୍କ ଉଚ୍ଚାରିତ ଶ୍ଳୋକ ମୋ ମନରେ ପଡ଼ୁଥାଏ—

ଜୀର୍ଣ୍ଣା ତରୀ ସରିଦତୀବ ଗଭୀରନୀରା
ବାଲାବୟଂ ସକଳମିତ୍ଥମନର୍ଥ ହେତୁଃ
ବିଶ୍ୱାସ ବୀଜମିଦ ମସ୍ତି କୃଶୋଦରୀଣାଂ
ଯନ୍ମାଧବ ! ତ୍ୱମସି ସଂପ୍ରତି କର୍ଣ୍ଣଧାରଃ ।

(ଅର୍ଥାତ୍—ଆମେ ଗୋପୀମାନେ ବସିଛୁଁ ଦଦରା ଡଙ୍ଗାରେ, ଯମୁନା ନଈ ଅତି ଗଭୀର, ଡଙ୍ଗାରେ ଚଢ଼ିଛୁଁ ସବୁ ଅନର୍ଥର ଓ ଅସ୍ଥିରତାର ମୂର୍ତ୍ତି ଆମେ ଗଉଡୁଣୀଯାକ; ଏସବୁ ହୋଇ ସୁଦ୍ଧା ଆମ ମନରେ 'ବିଶ୍ୱାସ' ବୀଜ ବୁଣା ହୋଇଛି; କାରଣ, ଆପଣ ସ୍ୱୟଂ ଶ୍ରୀକୃଷ୍ଣ ଥିବା ଆମର ମଙ୍ଗୁଆଳ । ଅତଏବ ଆମ ଦଦରା ଡଙ୍ଗା ବୁଡ଼ିଯିବ ନାହିଁ ।)

ଯାହାଙ୍କ କର୍ଣ୍ଣଧାରତ୍ୱରେ ଦଦରା ଡଙ୍ଗା ୬ ସମୁଦ୍ର ପାର ହୋଇ ସପ୍ତମ ସମୁଦ୍ରରେ ଆସି ପଡ଼ିଲା, ସେହି ମାନ୍ୟବର ସର୍ ଜନ୍ ହବାକ୍‌ଙ୍କ ଭଳି ଦୃଢ଼ମୁଷ୍ଟି କର୍ଣ୍ଣଧାର (ମଙ୍ଗୁଆଳ) ଏ ଡଙ୍ଗାର ସୁକାନ ଧରିଥାଆନ୍ତି, ବୁଢ଼ା ପାହାଡ଼ନ୍ୟୁ ଓ ବାଡ଼ବାନଳବେଷ୍ଟିତ ସପ୍ତମ ସମୁଦ୍ରରେ ଆସି ଡଙ୍ଗା ପଡ଼ିଲାବେଳକୁ ଭାରତ ଶାସନପୋତର ଅଧ୍ୟକ୍ଷ, ନୀତିବିଶାରଦ, ସାହିତ୍ୟାନୁରାଗୀ, ଗୁଣଗ୍ରାହୀ ବଡ଼ଲାଟ ମହାମାନ୍ୟବର ମାର୍କ୍ୱିସ୍ ଅଫ୍ ଲିନ୍‌ଲିଥ୍‌ଗୋ ଜହ୍ନୁଆଳ ମିଳିଗଲେ; ଗଙ୍ଗବଂଶର ଅଭିଭାବିକା ବାମଣ୍ଡା ରାଜ ପିତାମହୀ ରାଣୀ ଶ୍ରୀମତୀ ଉମଙ୍ଗଧରି ପ୍ରିୟାଦେବୀ ଓ ବାମଣ୍ଡାଧୀଶ୍ୱର ରାଜା ଭାନୁଗଙ୍ଗ ତ୍ରିଭୁବନ ଦେବ ଡଙ୍ଗାର ଅଣ୍ଟାଳ (ପାଲ) ଧରିଲେ ଓ ଡଙ୍ଗା ଆସି 'ବିଷମ'ଜନ୍ଦୁର କୂଳରେ ଲାଗିବା ପୂର୍ବରୁ ନୟାଗଡ଼ର ଅଧୀଶ୍ୱର ରାଜା ଶ୍ରୀ କୃଷ୍ଣଚନ୍ଦ୍ରସିଂହ ମାନଧାତା ହାତ ଧରି ଡଙ୍ଗା ଉପରେ ଠିଆ ହେଲେ । ଏମାନଙ୍କ ଲଘୁହସ୍ତତା, କ୍ଷିପ୍ର ହସ୍ତତା, ଦୀର୍ଘହସ୍ତତା, ସିଦ୍ଧହସ୍ତତା, ଅମୃତହସ୍ତତା ଓ ପରିଶେଷରେ ମୁକ୍ତହସ୍ତତା ଡଙ୍ଗାକୁ ଆଣି ମଜଲିମୁଣ୍ଡ ଘାଟରେ ଲଗାଇ ଦେଲା । ନାନା କାରଣରୁ ଯେଉଁ ଦାନ ସ୍ରୋତର ଗତି ଶିଥିଳ ହୋଇଥିଲା ତାହା ପୁଣି ଦାତାମାନଙ୍କ କୃପାରୁ ପୂର୍ବର ବେଗ ଧାରଣ କଲା ।

## ସପ୍ତମଖଣ୍ଡର ଉତ୍ସର୍ଗପତ୍ର ଗ୍ରହିତା (Dedicatee) ଓ ଅଭିଭାବିକା (Patroness) ଙ୍କ କରୁଣା ଲାଭ :—

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ପ୍ରତିଷ୍ଠାର ସ୍ମାରକ ଓ ଓଡ଼ିଆ ଜାତିର ରାଜଭକ୍ତିର ନିଦର୍ଶନରୂପେ ମହାମହିମ ଭାରତ ସମ୍ରାଟଙ୍କ ମହନୀୟ ନାମରେ ଏ ଗ୍ରନ୍ଥର ଅନ୍ତିମଖଣ୍ଡ ଉତ୍ସର୍ଗ କରିବି ବୋଲି ମୁଁ ୧୯୩୩ ସାଲରେ କଳ୍ପନା କରିଥିଲି ( ତୃତୀୟ ଖଣ୍ଡର ଅବତରଣିକାରେ ମୋର ଏ ମଧୁର ସ୍ୱପ୍ନ କଥା ଉଲ୍ଲେଖ ହୋଇଅଛି ) । ଏ ଗ୍ରନ୍ଥର ଜଣେ ବଶିଷ୍ଟ ଶୁଭକାମୀ ପାଟଣା ହାଇକୋର୍ଟର ଚିଫ୍ ଜଷ୍ଟିସ୍ ସ୍ୱର୍ଗତ ସର୍ କୋର୍ଟ୍ନି ଟେରେଲ୍ ବିଲାତ ଯାଇ ଭାରତ ସମ୍ରାଟଙ୍କ ରାଜଦରବାରରୁ ଏ ବିଷୟର ତତ୍ତ୍ୱ ଅନୁସନ୍ଧାନ କରି ମୋତେ ଜଣାଇଲେ ଯେ, ପୂର୍ବବର୍ତ୍ତୀ ଖଣ୍ଡମାନ ସମ୍ରାଟଙ୍କ ଅପେକ୍ଷା ନ୍ୟୂନ ପଦାଧିଷ୍ଠିତ ବ୍ୟକ୍ତିମାନଙ୍କ ନାମରେ ଉତ୍ସୃଷ୍ଟ ହୋଇଥିବାରୁ ଅନ୍ତିମଖଣ୍ଡ ସମ୍ରାଟଙ୍କ ନାମରେ ଉତ୍ସୃଷ୍ଟହେବା ପ୍ରସ୍ତାବ ଗୃହୀତ ହେବାର ଆଶା ସୁଦୂରପରାହତ । ଏହା ଅବଗତ ହୋଇ ବାମନର ଚନ୍ଦ୍ରକୁ ଧରିବା ଆଶା ପରି ମୁଁ ଏ ଆଶାରେ ଅଗତ୍ୟା ଜଳାଞ୍ଜଳି ଦେଲି । (ଚତୁର୍ଥ ଖଣ୍ଡର ଅବତରଣିକାରେ ଏ ବିଷୟର ଉଲ୍ଲେଖ ଅଛି ।)

ଷଷ୍ଠଖଣ୍ଡ ପାଟଣାରାଜ୍ୟାଧୀଶ୍ୱର ମହାରାଜ ଶ୍ରୀ ରାଜେନ୍ଦ୍ରନାରାୟଣସିଂହ ଦେବଙ୍କୁ ଉତ୍ସୃଷ୍ଟ ହୋଇଥିଲା । ଉକ୍ତ ଖଣ୍ଡର ମୁଦ୍ରଣ ୧୯୩୭ ଜୁନ୍ ମାସରେ ସମାପ୍ତ ହେଲା ଓ ଜୁଲାଇ ମାସ ସୁଦ୍ଧା ସେହି ଖଣ୍ଡର ବନ୍ଧାଇ ଆଦି ସମାପ୍ତ

ହେଲା । ଉତ୍ସର୍ଗପତ୍ରପ୍ରଣେତାଙ୍କ ହସ୍ତରେ ଅର୍ପିତ ନ ହେଲେ ଉତ୍ସୃଷ୍ଟ ପୁସ୍ତକର ସାଧାରଣରେ ପ୍ରଚାର ରୀତିବିଗର୍ହିତ ଅଟେ । ଅତଏବ ମୁଁ ପାଟଣା ରାଜ୍ୟକୁ ଯାଇ ମହାରାଜଙ୍କ ହସ୍ତରେ ପୁସ୍ତକ ଅର୍ପଣ କରିବା ସ୍ଥିର କଲି; କିନ୍ତୁ ବୁଝିଲି ଯେ, ମହାରାଜ ସିମଲା ଶୈଳାବାସରେ ଗ୍ରୀଷ୍ମଋତୁ ଯାପନ କରୁଅଛନ୍ତି ଓ ତାଙ୍କର ରାଜଧାନୀକୁ ଫେରିଆସିବାକୁ ଅନ୍ତତଃ ୨ ମାସ ବିଳମ୍ବ ହେବ । ଅଗତ୍ୟା ମୁଁ ସିମଲା ଯିବା ସ୍ଥିର କଲି । ଏହି ସମୟରେ ମହାମାନ୍ୟ ଭାଇସ୍‌ରୟ୍‌ (ବଡ଼ଲାଟ)ଙ୍କୁ ଏକସାର ଭାଷାକୋଷ ସିମଲାଠାରେ ଭେଟି ଦେବାର କଳ୍ପନା ମୋ ମନରେ ଉଦିତ ହେଲା । ମୁଁ ଯାଇ ମୋ କଳ୍ପନାକୁ ଭାଷାକୋଷର ଅଜନ୍ମ ଆଶ୍ରୟଦାତା ସର୍ ଜନ୍ ହବାକ୍‌ଙ୍କ ଛାମୁରେ ଉପସ୍ଥାପିତ କଲି । ସେତେବେଳକୁ ମୋର ସିମଲା ଯିବାକୁ ଦୁଇ ଦିନ ମାତ୍ର ଥାଏ ଓ ସେ ସମୟରେ ଭାଇସ୍‌ରୟ୍‌ ସିମଲାରେ ନ ଥାନ୍ତି । ସର୍ ଜନ୍‌ଙ୍କ ପରାମର୍ଶ କ୍ରମେ ମୁଁ ବଡ଼ଲାଟଙ୍କ ଦର୍ଶନ ପ୍ରାର୍ଥନା କରି ତାଙ୍କ ସାମରିକ ସେକ୍ରେଟେରୀଙ୍କଠାକୁ ପତ୍ର ଦେଲି । ସୌଭାଗ୍ୟର ବିଷୟ ଯେ, ମୁଁ ଯାଇ ସିମଲାରେ ପହଞ୍ଚିବା ବେଳକୁ ଭାଇସ୍‌ରୟ୍‌ ସିମଲାକୁ ବାହୁଡ଼ି ଆସିଲେ ଓ ୧୦।୮।୧୯୩୭ ତାରିଖ ଦିନ ନିର୍ଦ୍ଧାରିତ ସମୟରେ ବଡ଼ଲାଟଙ୍କ ଭବ୍ୟପ୍ରାସାଦରେ ମୋ ସଙ୍ଗେ ତାଙ୍କର ଭେଟହେବା ପାଇଁ ଆଦେଶ ଦେଲେ । ନିର୍ଦ୍ଧାରିତ ସମୟରେ ଭାଷାକୋଷର ପ୍ରକାଶିତ ଛଅଖଣ୍ଡ ପୁସ୍ତକ ନେଇ ବଡ଼ଲାଟଙ୍କ ଭବନରେ ପହଞ୍ଚି ତାଙ୍କ ଶ୍ରୀହସ୍ତରେ ସେମାନ ଅର୍ପଣ କଲି । ସେ ସେମାନ ଅତି ଆଗ୍ରହ, ଅନୁଗ୍ରହ ଓ ସ୍ନେହ ସହକାରେ ଗ୍ରହଣ କଲେ ଓ ମୋତେ ତାଙ୍କ ସନ୍ନିଧିରେ ବସାଇ ମୋଠାରୁ ଓଡ଼ିଆ ଭାଷା, ଓଡ଼ିଆ ସାହିତ୍ୟ, ଓଡ଼ିଶାର ଇତିହାସ, ଭାଷାକୋଷ ସଂକଳନର ବିସ୍ତୃତ ବିବରଣ, ଅର୍ଥ ଓ କର୍ମ ସାହାଯ୍ୟ ଓ ବିଶିଷ୍ଟ ସାହାଯ୍ୟକାରୀମାନଙ୍କ ବିବରଣ ମନୋଯୋଗ ସହକାରେ ଶ୍ରବଣ କଲେ । ପ୍ରସଙ୍ଗକ୍ରମେ ଓଡ଼ିଆ ଭାଷାର ଶବ୍ଦବିଭବ, ଅର୍ଥବିଭବ, ଛନ୍ଦୋବିଭବ, ପ୍ରାଚୀନତା ଏବଂ ଭାଷାକୋଷରେ ସନ୍ନିବେଶିତ ଗୋଟିକେତେ ଶବ୍ଦର ଓ କ୍ରିୟାର ଅର୍ଥ ଓ ଟୀକା ମୁଁ ତାଙ୍କୁ ଶୁଣାଇଲି । ସେ ସ୍ୱୟଂ ପୁସ୍ତକର ଖଣ୍ଡମାନଙ୍କ ପୃଷ୍ଠାମାନ ଲେଉଟାଇ ତହିଁରେ ଯେଉଁମାନଙ୍କ ପ୍ରତିକୃତିମାନ ମୁଦ୍ରିତ ହୋଇଅଛି, ସେମାନଙ୍କ ସାହାଯ୍ୟର ପରିମାଣ ଓ ପ୍ରକୃତି ମୋଠାରୁ ଶୁଣିଲେ । ଏ ସମସ୍ତ ଅବଗତ ହୋଇ ସେ ପରମ ପରିତୋଷ ଜ୍ଞାପନ କଲେ । ସେ ମହୋଦୟଙ୍କ ପ୍ରଶ୍ନର ଉତ୍ତରରେ ମୁଁ ନିବେଦନ କଲି—"ଅନ୍ତିମଖଣ୍ଡ ଆପଣଙ୍କ ନାମରେ ଉତ୍ସର୍ଗ କରିବାକୁ ଆପଣଙ୍କ ଅନୁମତି ପ୍ରାର୍ଥନା ( ବାମନର ଚନ୍ଦ୍ରକୁ ଧରିବା କାମନା ନ୍ୟାୟ ) ଗୃହୀତ ହେବ ନାହିଁ ବୋଲି ମୋର ଆଶଙ୍କା ହେବାରୁ ସେଥିପାଇଁ ଆପଣଙ୍କ ସାନୁଗ୍ରହ ଅନୁମତି ପ୍ରାର୍ଥନା କରିବାକୁ ମୁଁ ଭରସି ପାରୁନାହିଁ ।" ଏହା ଶୁଣିବା ମାତ୍ରେ ସେ କହିଲେ—"ପକ୍ଷାନ୍ତରରେ ଏପରି ବିଶିଷ୍ଟ ଗ୍ରନ୍ଥ ସଙ୍ଗେ ମୋ ନାମ ସଂଶ୍ଳିଷ୍ଟ ହେଲେ ମୁଁ ପରମାନନ୍ଦିତ ହେବି । ମୋ ନାମରେ ଏ ବିସ୍ମୟୋତ୍ପାଦକ ଗ୍ରନ୍ଥର ଅନ୍ତିମଖଣ୍ଡ ଉତ୍ସୃଷ୍ଟ ହେବା ନିମନ୍ତେ ମୁଁ ପ୍ରସନ୍ନ ହୃଦୟରେ ଅନୁମତି ପ୍ରଦାନ କରୁଅଛି ।"

ମୋର ଚିର ପୋଷିତ ଓ ଏକଦା ବିଫଳୀ-ଭୂତ ଆଶାର ଏବମ୍ଭୂତ ଅଚିନ୍ତିତପୂର୍ବ ସଫଳତା ଦେଖି ମୁଁ ଏପରି ଦିଗ୍‌ବିଦିଗ୍‌ଜ୍ଞାନଶୂନ୍ୟ ହୋଇଗଲି ଯେ, ଭାଇସରୟଙ୍କ ଶ୍ରୀମୁଖରୁ ଏହା ଶୁଣିବାମାତ୍ରେ ମୁଁ ଆସନ ପରିତ୍ୟାଗ କରି ତାଙ୍କ ସମ୍ମୁଖରେ ଆନନ୍ଦରେ ହସ୍ତୋତ୍ତୋଳନପୂର୍ବକ ନୃତ୍ୟକଲି ଓ ତାଙ୍କ ସନ୍ନିଧିକୁ ଅଗ୍ରସର ହୋଇ ତାଙ୍କ ଶ୍ରୀଅଙ୍ଗରେ କର ସ୍ପର୍ଶ କରି କହିଲି:—

"ମହାମହିମ ଭାରତ ସମ୍ରାଟଙ୍କ ମହାମାନ୍ୟ ପ୍ରତିନିଧିଙ୍କ ଦ୍ୱାରା ଦେଢ଼ କୋଟି ରାଜଭକ୍ତ ଓ ଶାନ୍ତିପ୍ରିୟ ଓଡ଼ିଆ ପ୍ରଜାଙ୍କ ଜାତୀୟ ସାରସ୍ୱତ ମନ୍ଦିରର ଅଭିଭାବକତ୍ୱସ୍ୱୀକାର ଓଡ଼ିଶାର ଇତିହାସରେ ଚିରକାଳ ଜାଜ୍ୱଲ୍ୟମାନ ହୋଇ ରହିବ । ଭଗବାନ୍ ସମ୍ରାଟଙ୍କର ତଥା ତାଙ୍କ ଭାଇସ୍‌ରୟଙ୍କ ମଙ୍ଗଳ ସାଧନ କରନ୍ତୁ । ମୋ ରାଜଭକ୍ତି ସମ୍ରାଟପ୍ରତିନିଧିଙ୍କ ଜରିଆରେ ସମ୍ରାଟଙ୍କୁ ଜ୍ଞାପନ କରୁଅଛି" । ଏହା ଶୁଣି ଭାଇସ୍‌ରୟ୍ ସସ୍ମିତବଦନରେ ପରମପରିତୋଷ ପ୍ରକାଶ କଲେ ।

ଆଗାମୀ ବର୍ଷେ ଦୁଇ ବର୍ଷରେ ସେ ଓଡ଼ିଶା ଦର୍ଶନ କରିବାକୁ କାମନା କରୁଅଛନ୍ତି ବୋଲି ମୋତେ କହି, ଭାଇସ୍‌ରୟ୍ ପ୍ରସନ୍ନ ହୃଦୟରେ ମୋତେ ସ୍ନେହାଭିବାଦନ କରି ବିଦାୟ ଦେଲେ । ତାଙ୍କଠାରୁ ବିଦାୟ ଗ୍ରହଣ କରି ଉକ୍ତ ବଡ଼ଲାଟଭବନରେ ଭାଇସରୟଙ୍କ ପ୍ରାଇଭେଟ ସେକ୍ରେଟେରୀ ଶ୍ରୀଯୁକ୍ତ ଜେ. ଜି. ଲେଥ୍‌ୱେଟ୍, ସି. ଆଇ. ଇ, ଆଇ. ସି. ଏସ୍‌ଙ୍କୁ ଭେଟିଲି ଓ ତାଙ୍କଠାରୁ ଅବଗତ ହେଲି ଯେ, ଟେଲିଫୋନ୍ ଯୋଗେ ସରଜନ୍ ହବାକ୍ ମୋ ସମ୍ବନ୍ଧେ ଓ ଭାଷାକୋଷ ସମ୍ବନ୍ଧେ ଜ୍ଞାତବ୍ୟ ବିଷୟ ମୋ ଭେଟ ପୂର୍ବରୁ ଭାଇସ୍‌ରୟଙ୍କ କର୍ଣ୍ଣଗୋଚର କରାଇଥିଲେ ।

୧୯୩୭ ଡିସେମ୍ବର ମାସରେ ମୋର ଚିକିତ୍ସାର୍ଥ କଲିକତାରେ ରହୁଥିବା ସମୟରେ ଭାଇସ୍‌ରୟ୍‌ଦମ୍ପତି ମୋଠାକୁ ପତ୍ର କଲେ । ଭାଇସରୟ୍-ମହିଷୀ ଭାରତରେ ସର୍ବଗ୍ରାସୀ ରାଜଯକ୍ଷ୍ମା ରୋଗର ନିରାକରଣ ନିମନ୍ତେ ଯେଉଁ ନିଷ୍ଠା, ନିଃସ୍ୱାର୍ଥପରତା ଓ ତ୍ୟାଗ ଦେଖାଇଅଛନ୍ତି, ତାହା ଭାରତ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ; ଅତଏବ ଓଡ଼ିଆଜାତିର କୃତଜ୍ଞତାପ୍ରକାଶର ଚିହ୍ନରୂପେ ତାଙ୍କୁ ଭାଷାକୋଷ ସପ୍ତମଖଣ୍ଡର ଅଭିଭାବିକା ରୂପେ ବରଣ କରିବାକୁ ସେ ସମୟରେ ମୁଁ ଅନୁମତି ପ୍ରାର୍ଥନା କଲି । ତହିଁର ଉତ୍ତରରେ ସଙ୍ଗେ ସଙ୍ଗେ ତାଙ୍କର ସାନୁଗ୍ରହ ଅନୁମତି ପ୍ରାପ୍ତ ହେଲି ।

ମହାମାନ୍ୟ ଭାଇସ୍‌ରୟ୍ ସପ୍ତମଖଣ୍ଡ ପ୍ରକାଶର ବ୍ୟୟନିର୍ବାହାର୍ଥ ତିନିଥର ବିଶିଷ୍ଟ ଅର୍ଥ ସାହାଯ୍ୟ ମଧ୍ୟ କରିଅଛନ୍ତି ।

ଓଡ଼ିଆଭାଷାର ଏ ସାରସ୍ୱତ ମନ୍ଦିର ସଙ୍ଗେ ଭାରତର ମହାମାନ୍ୟବର ଭାଇସ୍‌ରୟ୍-ଦମ୍ପତିଙ୍କ ନାମ ସଂଯୋଜିତ ହେବା ଓଡ଼ିଆ ଜାତି ପକ୍ଷରେ ପରମ ଗୌରବର ବିଷୟ । ଏଥିପାଇଁ ଏ ସମ୍ପର୍କସ୍ଥାପନର ବିସ୍ତୃତ ବିବରଣ ଲିପିବଦ୍ଧ ନ କରି ସମ୍ଭାଳ ହୋଇ ରହି ପାରିଲି ନାହିଁ ।

## ଏହି ଅନ୍ତିମଖଣ୍ଡର ସହାୟକଗଣ

ଏହି ଅନ୍ତିମଖଣ୍ଡର ପ୍ରକାଶରେ ଅଭାବନୀୟ ଅସୁବିଧା, ଅଭାବ ଓ ଦୁଇବର୍ଷରୁ ଅଧିକ ବିଳମ୍ବ ଘଟିବାରୁ ମତେ ଏକାଧିକଥର ପ୍ରତିଶ୍ରୁତି ଦାତା, ଭିକ୍ଷା ସାହାଯ୍ୟକାରୀ ଓ ପୃଷ୍ଠପୋଷକମାନଙ୍କ ନିକଟକୁ ଯିବାପାଇଁ ନାନା ସ୍ଥାନ ପରିଭ୍ରମଣ କରିବାକୁ ହେଲା ଓ କେତେକ ସ୍ଥାନକୁ ମଧ୍ୟ ଏକାଧିକଥର ଯିବାକୁ ହେଲା; କେତେକ ସ୍ଥାନରୁ ସଫଳକାମ ଓ କେତେକ ସ୍ଥାନରୁ ବିଫଳକାମ ହୋଇ ଫେରିଲି । ଯୁଦ୍ଧ ଯୋଗୁଁ କାଗଜର ମୂଲ୍ୟ, ଆର୍ଟ୍ ପେପର୍‌ର ମୂଲ୍ୟ, ବ୍ଲକ ତିଆରିର ମୂଲ୍ୟ, ବହିବନ୍ଧା ଉପକରଣମାନଙ୍କ ମୂଲ୍ୟର ଅତ୍ୟଧିକ ବୃଦ୍ଧି ହୋଇଯିବାରୁ ଏ ଖଣ୍ଡପାଇଁ ପୂର୍ବଖଣ୍ଡମାନଙ୍କ ବ୍ୟୟର ପ୍ରାୟ ଦେଢ଼ଗୁଣ ବ୍ୟୟ କରିବାକୁ ପଡ଼ିଲା ।

ନିମ୍ନଲିଖିତ ବଦାନ୍ୟବର୍ଗଙ୍କ ଅର୍ଥସାହାଯ୍ୟ ନ ପାଇଥିଲେ ଏ ଗ୍ରନ୍ଥର ପ୍ରକାଶ ବର୍ତ୍ତମାନ ମଧ୍ୟ ହୋଇପାରି ନ ଥାନ୍ତା ।

The constant well-wishers of the Lexicon
His Excellency Sir John Austen Hubback and Lady Hubback.



ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ଆମୂଳଚୂଳ ହିତକାମିଯୁଗଳ
ଓଡ଼ିଶାର ପ୍ରଥମ ଗଭର୍ଣ୍ଣର୍ ସର୍ ଜନ୍ ହବାକ୍ ଓ ଲେଡୀ ହବାକ୍ ।

ମହା ମାନ୍ୟବର ମାର୍କୁଇସ୍ ଅଫ୍ ଲିନ୍‌ଲିଥ୍‌ଗୋ ଭାରତର ଭାଇସ୍‌ରୟ ଓ ଗଭର୍ଣ୍ଣର୍ ଜେନେରାଲ୍, ମାନ୍ୟବର ସର୍ ଜନ୍ ହବାର୍ଟ୍, ଓଡ଼ିଶାର ଗଭର୍ଣ୍ଣର୍, ଓଡ଼ିଶା ଗଭର୍ଣ୍ଣମେଣ୍ଟ, ବାମଣ୍ଡା ରାଜପିତାମହୀ ଶ୍ରୀ ଶ୍ରୀମତୀ ଡମରୁଧର-ପ୍ରିୟାଦେବୀ ଓ ବାମଣ୍ଡାଧୀଶ୍ୱର ରାଜା ଭାନୁଗଙ୍ଗ ଦେବ, ରାଜା ଶ୍ରୀ କୃଷ୍ଣଚନ୍ଦ୍ର ସିଂହ ମାନଧାତା ନୟାଗଡ଼ ଅଧୀଶ୍ୱର, କେନ୍ଦୁଝର ଅଧୀଶ୍ୱର ରାଜା ଶ୍ରୀ ବଳଭଦ୍ର ନାରାୟଣଭଞ୍ଜ ଦେବ, ସରାଇକଳା ଅଧୀଶ୍ୱର ରାଜା ଶ୍ରୀ ଆଦିତ୍ୟପ୍ରତାପ ସିଂହଦେବ, ଆଠମଲ୍ଲିକ ଅଧୀଶ୍ୱର ରାଜା ଶ୍ରୀ କିଶୋରଚନ୍ଦ୍ର ଦେବ; ଖଲ୍ଲିକୋଟ, ଆଠଗଡ଼ ଓ ବରୁଆର ଅଧିପତି ରାଜା ବାହାଦୁର ଶ୍ରୀ ରାମଚନ୍ଦ୍ର ମର୍ଦ୍ଦରାଜ ଦେବ, ତାଳଚେରର ଅଧୀଶ୍ୱର ରାଜା ଶ୍ରୀ କିଶୋରଚନ୍ଦ୍ର ବୀରବର ହରିଚନ୍ଦନ, ଖଡ଼ିଆଳର ଯୁବରାଜ ଶ୍ରୀ ଅନୁପସିଂହ ଦେବ, ଖଡ଼ିଆଳର ଲାଲ ସାହେବ ଶ୍ରୀ ଶିବନାରାୟଣ ଦେବଙ୍କ ସହଧର୍ମିଣୀ ଶ୍ରୀମତୀ ବୈଦେହୀକୁମାରୀ ଦେବୀ, ଆଠଗଡ଼ ଅଧୀଶ୍ୱର ରାଜା ଶ୍ରୀ ରାଧାନାଥ ଦେବବର୍ମା, ବଣାଇ ଅଧୀଶ୍ୱର ରାଜା ଶ୍ରୀ ଧରଣୀଧର ଇନ୍ଦ୍ରଦେଓ ଦେବ, ଶ୍ରୀ ମାହେଶ୍ୱରୀ ପ୍ରସାଦ ଦେବ (ଲାଞ୍ଜିଗଡ଼), ଶ୍ରୀ ଶ୍ରୀ ବ୍ରଜସୁନ୍ଦର ଦେବ ରାଜା ସାହେବ ଅଳ, ଦଶପଲ୍ଲାଧୀଶ୍ୱର ରାଜା ଶ୍ରୀ କିଶୋରଚନ୍ଦ୍ର ଦେଓଭଞ୍ଜ, ଅଧିକାରୀ ବୃନ୍ଦାବନ ଦାସ ଗୋସ୍ୱାମୀ ଓଡ଼ିଆ ମଠ ପୁରୀ, ବାଲେଶ୍ୱର ଲକ୍ଷ୍ମୀ ଇଷ୍ଟେଟ୍ ଜମିଦାର ଶ୍ରୀ ଚଉଧୁରୀ ମୃତ୍ୟୁଞ୍ଜୟ ନାରାୟଣ ପ୍ରହରାଜ ମାନ୍ଧାତା, ଗୋରଖପୁର ଗୀତା ପ୍ରେସର ସ୍ୱତ୍ୱାଧିକାରୀ ଶ୍ରୀ ଜୟଦୟାଲ ଜୀ ଗୋଏଙ୍କା, କଟକର ଜମିଦାର ଶ୍ରୀଯୁକ୍ତ ମୋତିଲାଲ ପଣ୍ଡିତ ବି. ଏ., ଯାଜପୁର ଜମିଦାର ରାୟ ସାହେବ ଚୌଧୁରୀ ନୃସିଂହଚରଣ ମହାପାତ୍ର, ରେଭେନ୍ସା କଲେଜର ପ୍ରୋଫେସର୍ ଶ୍ରୀ ବିପିନବିହାରୀ ରାୟ, ତାଳଚେରର ପଟ୍ଟାଏତ ଶ୍ରୀ ପ୍ରମୋଦଚନ୍ଦ୍ର ଦେବ, ରଣପୁରାଧୀଶ୍ୱର ରାଜା ଶ୍ରୀ ବୀରବର କୃଷ୍ଣଚନ୍ଦ୍ର ସିଂହ ବଜ୍ରଧର ନରେନ୍ଦ୍ର ମହାପାତ୍ର, ବାଲେଶ୍ୱରର ମହାରାଜ କୁମାର ରାୟ ବାହାଦୁର ମନ୍ମଥନାଥ ଦେବ, ଦ୍ୱାରଭଙ୍ଗା ଜିଲ୍ଲାର ଲହେରିଆ ସରାଇର ପୁସ୍ତକ ଭଣ୍ଡାରର ସ୍ୱତ୍ୱାଧିକାରୀ ପଣ୍ଡିତ ଶ୍ରୀ ରାମଲୋଚନ ଶରଣ, ପୁରୀ ଜିଲ୍ଲାର ରାହାଙ୍ଗ ପ୍ରଗଣାର ଶ୍ରୀ ବାବୁ ଜଗନ୍ନାଥ ଶତପଥୀ, ଶ୍ରୀ ବାବୁ ସତ୍ୟବାଦୀ ଓ ଥାନା ସାକ୍ଷିଗୋପାଳ, ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦେବ ରାଜସାହେବ ସୁରଙ୍ଗୀ, ଶ୍ରୀଯୁକ୍ତ ଜଗନ୍ନାଥ ରାଜମଣି ରାଜଦେବ ରାଜା ସାହେବ ମଞ୍ଜୁଷା, ସ୍ୱର୍ଗତ ରାୟ ବାହାଦୁର ଭୂୟାଁ ଭାସ୍କରଚନ୍ଦ୍ର ମହାପାତ୍ରଙ୍କ ସହଧର୍ମିଣୀ ଶ୍ରୀମତୀ ସୁନୀତି-କୁମାରୀ ଦେବୀ, କଟକର ମହାଜନ ରାୟ ସାହେବ ଗିରିଧାରୀଲାଲ ମୋଡ଼ା ।

ନିମ୍ନଲିଖିତ ଦାତାମାନେ ଭାଷାକୋଷର ପୂର୍ବବର୍ତ୍ତୀ ଖଣ୍ଡମାନଙ୍କ ପ୍ରକାଶାର୍ଥ ପ୍ରତିଶ୍ରୁତ ଅର୍ଥ ଇତି ମଧ୍ୟରେ ପୂର୍ଣ୍ଣରୂପେ ବା ଆଂଶିକ ପ୍ରଦାନ କରିଅଛନ୍ତି ।

ପାଟଣା ଅଧୀଶ୍ୱର ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହ ଦେବ, ପାଲ୍‌ଲହଡ଼ା ଅଧୀଶ୍ୱର ରାଜା ଶ୍ରୀ ଶରଚ୍ଚନ୍ଦ୍ର ମୁନିପାଲ, ସ୍ୱର୍ଗତ ରାଜା ଲାଲ ରାଜେନ୍ଦ୍ର ସିଂହଙ୍କ ପୁତ୍ର ଶ୍ରୀ ଶ୍ରୀ ଲାଲ ସଦାନନ୍ଦ ସିଂହ (ରାଜା ବୋଡ଼ାସମ୍ବର), ପାଟଣାର ଲାଲ ରଘୁରାଜ ସିଂହ ଦେଓ, ସମ୍ବଲପୁରର ରାୟସାହେବ ସଙ୍କର୍ଷଣ ଗଡ଼ତିଆ, ପାଟଣା ଷ୍ଟେଟର କଣ୍ଟ୍ରାକ୍ଟର ଉମାଶଙ୍କର ଦାସ, ପାଟଣା ଷ୍ଟେଟର ଖଣ୍ଡପତି ଶ୍ରୀ ଅଚ୍ୟୁତାନନ୍ଦ ପଣ୍ଡା ଭକ୍ତିବିନୋଦ, ଶ୍ରୀ ମହନ୍ତ ଗଦାଧର ରାମାନୁଜ ଦାସ ପୁରୀ।

## ଭାଷାକୋଷ ସପ୍ତମଖଣ୍ଡର ସମ୍ମାର୍ଜନ ଓ ପ୍ରକାଶାର୍ଥ ନିମ୍ନଲିଖିତ କର୍ମୀମାନଙ୍କଠାରୁ ମୁଁ ସାହାଯ୍ୟ ପାଇଅଛି :—

ଶ୍ରୀମତୀ ସୀତାମ୍ବରୀ ଦେବୀ ୧୯୧୯ ସାଲଠାରୁ ଅଦ୍ୟ ପର୍ଯ୍ୟନ୍ତ ଗତ ୬୧ ବର୍ଷ ହେଲା ଅକୁଣ୍ଠିତ ଭାବରେ ଭାଷାକୋଷର ସଙ୍କଳନ, ସାଫ କରିବା, ସମ୍ମାର୍ଜନ, ପ୍ରୁଫ୍ ସଂଶୋଧନ ବିଷୟରେ ମୋତେ ସାହାଯ୍ୟ କରିଅଛନ୍ତି । ତାଙ୍କର ସାହଚର୍ଯ୍ୟ, ଉତ୍ସାହ ଓ ସାହାଯ୍ୟ ପାଇ ନ ଥିଲେ ଏକାଦିକ୍ରମେ ଏତେ ଦୀର୍ଘକାଳ ପରିଶ୍ରମ ପାଇଁ ମୋ ଧୈର୍ଯ୍ୟଚ୍ୟୁତି ଘଟିଥାଆନ୍ତା ।

ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥ, ପୂର୍ବତନ ହେଡ୍‌ପଣ୍ଡିତ, ରେଭେନ୍‌ସା କଲେଜିଏଟ୍ ସ୍କୁଲ, କଟକ (ସମ୍ମାର୍ଜନ)

ଶ୍ରୀ ସତୀନ୍ଦ୍ରନାରାୟଣ ରାୟ ଏମ୍. ଏ., ବି. ଏଲ୍. ଆଡ୍‌ଭୋକେଟ୍, ଜମିଦାର, ଲକ୍ଷଣନାଥ (ବଙ୍ଗଳା ପ୍ରତିଶବ୍ଦ ଯୋଜନ)

ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ର ଏମ୍. ଏ., ବି. ଏଲ୍ ଓକିଲ, କଟକ (ସମ୍ମାର୍ଜନ ଓ ପ୍ରୁଫ୍‌ସଂଶୋଧନ) ।

ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକ, ବି. ଏ., ବି. ଏଲ୍ (ସାଫ ଲେଖା, ସନ୍ଦର୍ଭ ଲେଖା)

ଶ୍ରୀ ପଣ୍ଡିତ ସୁରେଶଚନ୍ଦ୍ର ଝା କାବ୍ୟସ୍ମୃତିତୀର୍ଥ, ବ୍ୟାକରଣଶାସ୍ତ୍ରୀ, ବିଶାରଦ, ଶିକ୍ଷକ ମାର୍କସ୍ ବୈଶ୍ୟବିଦ୍ୟାଳୟ, କଟକ (ହିନ୍ଦୀ ପ୍ରତିଶବ୍ଦ ଯୋଜନ)

ପଣ୍ଡିତ ଶ୍ରୀ ତ୍ରିପୁରାନାରାୟଣ ଠାକୁର, ହେଡ୍‌ପଣ୍ଡିତ, ମାର୍କସ୍ ବୈଶ୍ୟ-ବିଦ୍ୟାଳୟ, କଟକ (ହିନ୍ଦୀ ପ୍ରତିଶବ୍ଦ ଯୋଜନ)

ଶ୍ରୀ କୃଷ୍ଣଚନ୍ଦ୍ର କର, ରାଇଟର୍, ଓଡ଼ିଶା ଗଭର୍ଣ୍ଣମେଣ୍ଟ ପ୍ରେସ୍ (ସାଫ ଲେଖା)

ଶ୍ରୀ ପଣ୍ଡିତ ଭୁବନେଶ୍ୱର ମିଶ୍ର, ଅମ୍ବିକା ପ୍ରେସ ପୁସ୍ତକ ଭଣ୍ଡାର, କଟକ (ସାଫ ଲେଖା)

ଶ୍ରୀ କୁଳମଣି କର, ମାନେଜର, ଉତ୍କଳ ସାହିତ୍ୟ ପ୍ରେସ, କଟକ (ପ୍ରୁଫ ସଂଶୋଧନ)

ଶ୍ରୀ ସାମନ୍ତ ନରସିଂହ ମହାପାତ୍ର, ଶିକ୍ଷକ, ପ୍ୟାରୀମୋହନ ଏକାଡେମୀ, କଟକ (ସାଫ ଲେଖା)

ଶ୍ରୀ ଜଗନ୍ନାଥ ତ୍ରିପାଠୀ ବି. ଏ. ବି. ଟି, ପୂର୍ବତନ ହେଡ୍ ମାଷ୍ଟର, କଟକ ଟ୍ରେନିଂସ୍କୁଲ (ସମ୍ମାର୍ଜନ ଓ ସନ୍ଦର୍ଭ)

ମୋ ବାଲ୍ୟବନ୍ଧୁ ଓ ଯୌବନସହଚର ଓ ବାର୍ଦ୍ଧକ୍ୟସୁହୃତ୍ ଶ୍ରୀ ଶଶିଭୂଷଣ ରାୟ, କାଳୀଗଳି, କଟକ, (ପ୍ରାଦେଶିକ ଶବ୍ଦ)

ଶ୍ରୀ ପଣ୍ଡିତ ସତ୍ୟକିଙ୍କର ମୁଖର୍ଜୀ, ଶିକ୍ଷକ, ପ୍ୟାରୀମୋହନ ଏକାଡେମୀ (ବଙ୍ଗଳା ପ୍ରତିଶବ୍ଦ)

ଶ୍ରୀ ଲାଲସାହେବ ଶିବନାରାୟଣ ଦେବ, ଖଡ଼ିଆଳ (ପ୍ରାଦେଶିକ ଶବ୍ଦ)

ଶ୍ରୀ ତ୍ରିଲୋଚନ ପଟ୍ଟନାୟକ, ସମ୍ପାଦକ, ପାଟଣାଷ୍ଟେଟ୍ (ପ୍ରାଦେଶିକ ଶବ୍ଦ)

ଶ୍ରୀ ବିଶ୍ୱକେଶନ ବହିଦାର, ସମ୍ପାଦକ, ସମ୍ବଲପୁର (ପ୍ରାଦେଶିକ ଶବ୍ଦ)

ଶ୍ରୀ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, କଟକ (ପ୍ରାଦେଶିକ ଶବ୍ଦ ଓ ସନ୍ଦର୍ଭ)

ଶ୍ରୀ ଦୁର୍ଗାଚରଣ ରାୟ ବି. ଏ. ସଦର ସବ୍‌ଡିଭିଜନ୍ ଅଫିସର୍, ପାଟଣାଷ୍ଟେଟ (ପ୍ରାଦେଶିକ ଶବ୍ଦ)

ଶ୍ରୀମତୀ ସୁମତି ଦେବୀ, ଶ୍ରୀ ଦୁର୍ଗାଚରଣ ରାୟଙ୍କ ସହଧର୍ମିଣୀ (ପ୍ରାଦେଶିକ ଓ ଗ୍ରାମ୍ୟଶବ୍ଦ)

ରାୟସାହେବ ବାମଦେବ ମିଶ୍ର ବି. ଏ. ଦେବାନ, ଆଠମଲ୍ଲିକ ଷ୍ଟେଟ୍ (ପ୍ରାଦେଶିକ ଶବ୍ଦ, ପୃଷ୍ଠପୋଷକ ଓ ଗ୍ରାହକ ସଂଗ୍ରହ)

ମୋର ଓ ଶ୍ରୀମତୀ ପିତାମ୍ବରୀଙ୍କର ଅଶେଷ ସ୍ନେହବର୍ଦ୍ଧିତ ପାଳିତ ପୁତ୍ର ଶ୍ରୀମାନ୍ ଜଗବନ୍ଧୁ ପ୍ରହରାଜ (ସେ ନଅ ବର୍ଷ ବୟସ୍କ ହେଲେ ସୁଦ୍ଧା କ୍ରୀଡ଼ାଭୂମିରେ, କ୍ଲବ୍‌ରେ, କ୍ଲାସ୍‌ରେ, ବିଦ୍ୟାଳୟର ଉଦ୍ୟାନରେ ଓ ଧୂଳି ଖେଳରେ, ଯେଉଁଠାରେ ଗୋଟିଏ ନୂଆ ଶବ୍ଦ ଶୁଣେ ତାହା କାଳେ ତା 'ବାବା'ଙ୍କ ଭାଷାକୋଷରେ ସ୍ଥାନ ପାଇ ନ ଥିବ, ଏହା ଭାବି ଆସି ମୋତେ କହେ ଓ ଭାଷାକୋଷରେ ସେ ଶବ୍ଦ ଅଛି ବୋଲି ମୁଁ ଦେଖାଇ ନ ଦେବା ପର୍ଯ୍ୟନ୍ତ ସେ ନିବର୍ତ୍ତେ ନାହିଁ, ଯେଉଁ ଶବ୍ଦ ଭାଷାକୋଷରେ ସ୍ଥାନ ପାଇ ନ ଥାଏ ତାହା ମୁଁ ଟିପିରଖେଁ । ତା ଉଦ୍ୟମ ଫଳରେ ମୁଁ ଅନ୍ୟୂନ ୨୦।୩୦ଟି ଶିଶୁରଞ୍ଜନ ପଦ ଯୋଗକରି ପାରିଅଛି । କିଂବଦନ୍ତୀ ବର୍ଣ୍ଣିତ ଗୁଣ୍ଡୁଚିମୂଷାର ପାଣିରେ ବୁଡ଼ି ବାଲିରେ ଗଡ଼ି ଶ୍ରୀରାମଚନ୍ଦ୍ରଙ୍କ ସେତୁବନ୍ଧ ଉପରେ ଆସି ଦେହରୁ ବାଲି ଝାଡ଼ି ହୋଇ ସାହାଯ୍ୟ କଲାଭଳି ବାବା ଜଗବନ୍ଧୁର ଭାଷାକୋଷ ପ୍ରତି ସାହାଯ୍ୟଦାନ ବିଷୟରେ ଯେଉଁ ଆନ୍ତରିକତା ମୁଁ ଲକ୍ଷ କରିଅଛି ତାହା ମୋର ପରମାଦରର ବସ୍ତୁ ।)

ଶ୍ରୀ ଜଗନ୍ନାଥ ରାଉ, ସିଭିଲ୍‌କୋର୍ଟ୍ କମିସନର୍ ଜଜକୋର୍ଟ, କଟକ (ଶବ୍ଦ ସଂଗ୍ରହ)

ଶ୍ରୀ ଧନେଶ୍ୱର ଶତପଥୀ, ସାରସ୍ୱତ ପ୍ରେସ, କଟକ (ଶବ୍ଦ ସଂଗ୍ରହ)

ଶ୍ରୀ ନାରାୟଣ ସାଠିଆ ବି. ଏ., ସିନିଅର୍ ଶିକ୍ଷକ୍, ଓଡ଼ିଶା ଗଭର୍ଣ୍ଣମେଣ୍ଟ ପ୍ରେସ (ଶବ୍ଦ ସଂଗ୍ରହ)

ମୋ କନିଷ୍ଠଭ୍ରାତା ଶ୍ରୀମାନ୍ କୃଷ୍ଣକୃଷ୍ଣ ପ୍ରହରାଜ ବି.ଏ. (ଗ୍ରାମ୍ୟ ଶବ୍ଦ ସଂଗ୍ରହ)

ଶ୍ରୀମତୀ ଅପର୍ଣ୍ଣା ଦେବୀ ନାୟିକା, ପୁରୀ (ନାରୀ ସମାଜ ପ୍ରଚଳିତ ଓ ଗ୍ରାମ୍ୟ ଶବ୍ଦ ସଂଗ୍ରହ)

ଶ୍ରୀ ପ୍ରଶାନ୍ତିତ ଖଣ୍ଡୁଆଳ, ସମ୍ବଲପୁର (ପ୍ରାଦେଶିକ ଶବ୍ଦ ସଂଗ୍ରହ)

ଶ୍ରୀ ନନ୍ଦକିଶୋର ପଟେଲ, ଲଇଡ଼ା, ସମ୍ବଲପୁର (ସମ୍ବଲପୁରୀ ଓ ଲରିଆ ଶବ୍ଦ ସଂଗ୍ରହ)

ଶ୍ରୀ ଚୂଡ଼ାମଣି ନାୟକ, ଗାଙ୍ଗପୁର (ପ୍ରାଦେଶିକ ଶବ୍ଦ ସଂଗ୍ରହ)

ଶ୍ରୀ ଗୋପୀନାଥ ବେହେରା, ଶିକ୍ଷକ, ସମ୍ବଲପୁର (ପ୍ରାଦେଶିକ ଶବ୍ଦସଂଗ୍ରହ)

ଶ୍ରୀ ପ୍ରହ୍ଲାଦ ବିଶି, ବୌଦ୍ଧ ଷ୍ଟେଟ୍ (ପ୍ରାଦେଶିକ ଶବ୍ଦ ସଂଗ୍ରହ)

ଶ୍ରୀଯୁକ୍ତ ସି. ଆର୍, ବାର୍ଟର୍ସ୍ ଏମ୍. ବି. ଇ., ଓଡ଼ିଶା ଗଭର୍ଣ୍ଣମେଣ୍ଟ ପ୍ରେସର ସୁପରିଣ୍ଟେଣ୍ଡେଣ୍ଟ୍ (ଏ ଖଣ୍ଡରେ ପ୍ରଦତ୍ତ ଚିତ୍ରମାନଙ୍କ ବ୍ଲକ୍ ଛପାଇ ଓ ଚିତ୍ରମାନଙ୍କ ମୁଦ୍ରଣ ଓ ବହି ବନ୍ଧାଇ ଉପକରଣ ସଂଗ୍ରହ ବିଷୟରେ ମୂଲ୍ୟବାନ୍ ପରାମର୍ଶ) ।

ସ୍ୱର୍ଗତ ମହାନନ୍ଦ କରଙ୍କ ସହଧର୍ମିଣୀ ଶ୍ରୀମତୀ ବିମଳା କର, ଉତ୍କଳସାହିତ୍ୟ ପ୍ରେସ, (ମୁଦ୍ରଣର ତତ୍ତ୍ୱାବଧାରଣ)

ଶ୍ରୀ ପୂର୍ଣ୍ଣାନନ୍ଦ କର, ଉତ୍କଳ ସାହିତ୍ୟ ପ୍ରେସ, (ଏ ଖଣ୍ଡର ମୁଦ୍ରଣ)

ମଜ୍ଜର୍ ଖାଁ, ହେଡ୍ କମ୍ପୋଜିଟର୍, ଉତ୍କଳ ସାହିତ୍ୟ ପ୍ରେସ୍ (ଏ ଗ୍ରନ୍ଥର କମ୍ପୋଜ୍ ଓ ମୁଦ୍ରଣ)

ଏସ୍ ଛଅଭିଲା, ଫଟୋଗ୍ରାଫର୍, ପ୍ରୋପ୍ରାଇଟର୍, ଫଟୋ ହାଉସ୍, ଚୌଧୁରୀ ବଜାର କଟକ (ଏ ଖଣ୍ଡରେ ଓ ପୂର୍ବବର୍ତ୍ତୀ ଖଣ୍ଡମାନଙ୍କରେ ପ୍ରକାଶିତ ଚିତ୍ରମାନଙ୍କର ଫଟୋ ଗ୍ରହଣକାରୀ ।)

ଶ୍ରୀ ବାଳକୃଷ୍ଣ କର ବି. ଏ., ପ୍ରୋପ୍ରାଇଟର୍, ସାରସ୍ୱତ ପ୍ରେସ୍ (କଟକରେ ଫଟୋମାନଙ୍କର ହାଫ୍‌ଟୋନ୍ ବ୍ଲକ୍‌ମାନ ଛପାଇ କରିବା ବିଷୟରେ ଏହାଙ୍କ ନବୋଦ୍ୟମ ଯୋଗୁଁ ଏ ଖଣ୍ଡରେ ପ୍ରକାଶିତ ଚିତ୍ରମାନଙ୍କ ବ୍ଲକ ପ୍ରସ୍ତୁତ ହୋଇ ପାରିଅଛି । ପୂର୍ବେ ବ୍ଲକମାନ କଲିକତାରେ ଅଧିକତର ବ୍ୟୟରେ ଛପାଇ କରାଇବାକୁ ପଡ଼ୁଥିଲା) ।

ଆଜମ ଅଲି ଖାଁ ଦପ୍ତରୀ, ସର୍କିଟ୍ ହୋଷ୍ଟ, କଟକ (ଏ ଗ୍ରନ୍ଥର ଦ୍ୱିତୀୟଖଣ୍ଡଠାରୁ ସପ୍ତମଖଣ୍ଡର ପୁସ୍ତକମାନଙ୍କ ବନ୍ଧାଇ ଏହାଙ୍କ ତତ୍ତ୍ୱାବଧାରଣରେ ହୋଇଅଛି ।)

ଶ୍ରୀ ରାମଚନ୍ଦ୍ର ଦାସ, ବ୍ଲକ୍ ମେକର୍, କଟକ (ଏ ଖଣ୍ଡର ଅନ୍ୟ କେତେକ ଚିତ୍ର ଓ ପୃଷ୍ଠାଙ୍କିତ ନାମାଦିର ବ୍ଲକ୍ ପ୍ରସ୍ତୁତକାରୀ ।)

ଶ୍ରୀଯୁକ୍ତ ରଙ୍ଗଲାଲ ମୋଦି ଏମ୍. ଏଲ୍. ଏ., ନୟାସଡ଼କ୍ କଟକଙ୍କଠାରୁ ଭାଷାକୋଷର କାଗଜ କ୍ରୀତ ହୋଇଅଛି ।

ମୋର ବାଲ୍ୟକାଳର ସହପାଠୀ ଦେବାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ର ଏ ଅବତରଣିକାର ସମାର୍ଜନରେ ବିଶେଷ ସାହାଯ୍ୟ କରିଅଛନ୍ତି ।

ଓଡ଼ିଶା ଗଭର୍ଣ୍ଣରଙ୍କ ଆଡ୍‌ଭାଇସର ଶ୍ରୀଯୁକ୍ତ ଇ. ସି. ଆନ୍‌ସୋର୍, ସି. ଆଇ. ଇ., ଆଇ. ସି. ଏସ୍. ସଦୟ ହୋଇ ଏ ଖଣ୍ଡର ଇଂରେଜି ଅବତରଣିକାର ଭାଷାକୁ ସମ୍ମାର୍ଜନ କରି ଦେଇଅଛନ୍ତି ।

## ସପ୍ତମ ଖଣ୍ଡରେ ନିମ୍ନଲିଖିତ ବ୍ୟକ୍ତିମାନଙ୍କ ସନ୍ଦର୍ଭମାନ ପ୍ରକାଶିତ ହୋଇଛି :—

ସାହିତ୍ୟସମ୍ରାଟ୍ ମହାରାଜ ଶ୍ରୀ ବିକ୍ରମଦେବ ବର୍ମା, ଡି.ଲିଟ୍, ଜୟପୁର

ଶ୍ରୀ ବାଇକୋଳ ମହାପାତ୍ର ଜ୍ୟୋତିଷବିଶାରଦ—ଖଲ୍ଲିକୋଟ

ଅଧ୍ୟାପକ ଶ୍ରୀ ବିପିନବିହାରୀ ରାୟ ଏମ୍. ଏ. ରେଭେନ୍‌ସା କଲେଜ, କଟକ

ଶ୍ରୀ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ—କଟକ

ଶ୍ରୀ ନିତ୍ୟାନନ୍ଦଚରଣ ପଟ୍ଟନାୟକ ବିଏ., ବିଏଲ୍—କଟକ

ଶ୍ରୀ ପଣ୍ଡିତ ବଳଭଦ୍ର ଧୀର—ମଧୁପୁର

ଶ୍ରୀ ମନମୋହନ ଘୋଷ, ଉକିଲ—କଟକ

ଶ୍ରୀ ଜଗନ୍ନାଥ ତ୍ରିପାଠୀ ବି. ଏ, ବି. ଟି,—କଟକ

ଶ୍ରୀ ଜଗବନ୍ଧୁ ସିଂହ ଏମ୍. ଏଲ୍. ଏ., ଓକିଲ—ପୁରୀ

ଶ୍ରୀ ଚନ୍ଦ୍ରଶେଖର ଦାସ, କବି—ଯାଜପୁର

ବ୍ରହ୍ମଅବଧୂତ ବିଶ୍ୱନାଥ ବାବା—ସତ୍ୟମହିମା ଧର୍ମପ୍ରଚାରକ

ଡାକ୍ତର ଶ୍ରୀ ନଟବର ମହାନ୍ତି—ପ୍ରିନ୍‌ସିପାଲ୍, ଉତ୍କଳ ହୋମିଓପାଥିକ୍ କଲେଜ, କଟକ

ଡାକ୍ତର ଶ୍ରୀ କୈଳାଶଚନ୍ଦ୍ର ରାଉ—କଟକ

ମହାମହୋପଦେଶକ ଶ୍ରୀ ସୁନ୍ଦରାନନ୍ଦ 'ବିଦ୍ୟାବିନୋଦ,' ବି, ଏ,—ସଚ୍ଚିଦାନନ୍ଦମଠ, କଟକ

ଶ୍ରୀ ବଂଶୀଧର ମହାନ୍ତି, ଅଫିସ୍ ସୁପରିଣ୍ଟେଣ୍ଡେଣ୍ଟ୍—କେନ୍ଦୁଝର ଷ୍ଟେଟ୍

ଶ୍ରୀ କେଦାରନାଥ ମହାପାତ୍ର ବି.ଏ, ଡିପ୍ ଏଡ୍—ଭୁବନେଶ୍ୱର

ପଣ୍ଡିତ ଶ୍ରୀ ରାମଚନ୍ଦ୍ର ମିଶ୍ର କାବ୍ୟତୀର୍ଥ—ରାମକୃଷ୍ଣ ଟୋଲ, ପୁରୀ

ଶ୍ରୀମାନ୍ ଯୋଗେନ୍ଦ୍ରଚନ୍ଦ୍ର ଦାସ—କଟକ

ଶ୍ରୀମାନ ପ୍ରଫୁଲ୍ଲ ଚରଣ ପଟ୍ଟନାୟକ—ସବ୍‌ରେଜିଷ୍ଟ୍ରାର, ଓଡ଼ିଶା

## ସମଗ୍ର ଗ୍ରନ୍ଥର ସାହାଯ୍ୟକାରିବୃନ୍ଦ

ପାଣ୍ଡୁଲିପି ଲେଖାର ଆରମ୍ଭଠାରୁ ସପ୍ତମ ଖଣ୍ଡର ପରିସମାପ୍ତି ପର୍ଯ୍ୟନ୍ତ ଯେଉଁମାନେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ, ମୁଖ୍ୟ ଓ ଗୌଣ ଭାବରେ, କାର୍ଯ୍ୟତଃ ଓ ବାକ୍ୟତଃ ସାହାଯ୍ୟ କରିଅଛନ୍ତି, ସେମାନଙ୍କ ନାମ

Rja Sri Bhanuganga Tribhubana Deb,
The promising Young Ruler of the Bamra State.
( See page 8571 to 8574 of this Volume ).



ବାମଣ୍ଡା ରାଜ୍ୟାଧୀଶ୍ୱର ରାଜା ଶ୍ରୀ ଭାନୁଗଙ୍ଗ ତ୍ରିଭୁବନ ଦେବ ।
(ଏହାଙ୍କ ପ୍ରଶସ୍ତି ଏହି ସପ୍ତମ ଖଣ୍ଡର ୮୫୭୧ ପୃଷ୍ଠାଠାରୁ ୮୫୭୪ ପୃଷ୍ଠାରେ ବର୍ଣ୍ଣିତ ହୋଇଅଛି) ।

କୃତଜ୍ଞତା ସହକାରେ ଏ ଗ୍ରନ୍ଥର ଭିନ୍ନ ଭିନ୍ନ ପୂର୍ବବର୍ତ୍ତୀ ଖଣ୍ଡମାନଙ୍କରେ ଓ ଏହି ଅନ୍ତିମ ଖଣ୍ଡରେ ଉଲ୍ଲିଖିତ ହୋଇଅଛି । ସେଥିରୁ ଦେଖାଯିବ ଯେ, ସମାଜରେ, ଧର୍ମ ବିଶ୍ୱାସରେ, ରାଜନୀତି କ୍ଷେତ୍ରରେ, ଧର୍ମାଧିକରଣରେ ପରସ୍ପର ବିଦ୍ୱେଷ ତର୍କବାଦୀ ସାହିତ୍ୟାନୁରାଗୀ ଆବାଳବୃଦ୍ଧବନିତା ସେମାନଙ୍କର ଅନ୍ୟାନ୍ୟ କ୍ଷେତ୍ରରେ ଥିବା ପରସ୍ପର ଭେଦଭାବ ଓ ପାର୍ଥକ୍ୟ ଭୁଲି ଯାଇ ଏ ସାରସ୍ୱତ ମନ୍ଦିରନିର୍ମାଣରେ ଯଥାଶକ୍ତି ସହଯୋଗ କରିଅଛନ୍ତି । ଏତେ ଲୋକଙ୍କ ଉଦ୍ୟମ ନିୟୋଜିତ ହୋଇ ନ ଥିଲେ ମୋ ପରି ଅକିଞ୍ଚନ, ଅଶକ୍ତ, ଅନଭିଜ୍ଞ ଓ ନିଃସମ୍ବଳ ବ୍ୟକ୍ତି ଏ ଦୁରୂହ କର୍ମ ସମାପନରେ ସମର୍ଥ ହୋଇ ନ ଥାନ୍ତା ।

ଏ ଯଜ୍ଞର ସଂକଳ୍ପବାକ୍ୟ ବୋଲା ହେବା ବେଳେ ମହାତ୍ମା ଗାନ୍ଧି ପୁରୋଧା ହୋଇଥିଲେ; ଯଜ୍ଞାନ୍ତରେ ଅବଭୃଥ ସ୍ନାନ ବେଳକୁ ସମ୍ରାଟପ୍ରତିନିଧି ଭାଇସ୍‌ରୟ ପୌରୋହିତ୍ୟ ଗ୍ରହଣ କଲେ ।

ଉତ୍କଳମଣି ମହାତ୍ମା ଗୋପବନ୍ଧୁ ଏଥିର ସ୍ୱସ୍ତିବାଚନ କରିଥିଲେ, ଓଡ଼ିଶା ପ୍ରଦେଶର ଗଭର୍ଣ୍ଣର୍ ଏଥିର ଶାନ୍ତିବାଚନ କଲେ । କଂଗ୍ରେସ ସରକାର ସପ୍ତମ ଖଣ୍ଡର ଲହଡ଼ ବସାଇଥିଲେ, ବେକଂଗ୍ରେସୀ ସରକାର ଏଥିର ଲହଡ଼ି ମୁଦି କଲେ । ମହାମହିମ ସର୍ ଜନ୍ ହବାକ୍ ଓଡ଼ିଶା ବିଭାଗର କମିସନର୍ ରୂପେ ଏ ସାରସ୍ୱତ ମନ୍ଦିରର ଶୁଭ ଦେଇଥିଲେ । ସେହି ସ୍ଥପତି-ରତ୍ନ ଆଜି ଏଥି ଉପରେ ନୀଳଚକ୍ର ବସାଇଲେ । ପ୍ରଥମ ଖଣ୍ଡର ଉତ୍ସର୍ଗପତ୍ର-ଗ୍ରହୀତା ହୋଇଥିଲେ ଓଡ଼ିଶାର ଭାବୀ ଗଭର୍ଣ୍ଣର୍, ଶେଷ ଖଣ୍ଡର ଉତ୍ସର୍ଗପତ୍ର-ଗ୍ରହୀତା ହେଲେ ଭାରତସମ୍ରାଟଙ୍କ ପ୍ରତିନିଧି ଗଭର୍ଣ୍ଣର୍ ଜେନେରାଲ୍ । ମଞ୍ଜି ବୁଣିଲେ ବିହାର-ଓଡ଼ିଶା ସରକାର, ଫସଲ ଅମଳ କଲେ ଓଡ଼ିଶା ସରକାର ।

ବିହାର ଓଡ଼ିଶା ସରକାର ଏ ଗ୍ରନ୍ଥର ତଳ ବୋଇଲେ, ଉତ୍କଳର ଏକତମ ପ୍ରସିଦ୍ଧ ରାଜବଂଶୀୟ ସ୍ୱର୍ଗତ କଳାହାଣ୍ଡି ଅଧୀଶ୍ୱର ରୁଅ ତଳରେ ପାଣି ଛିଞ୍ଚିଲେ, ଅନ୍ୟତମ ପ୍ରସିଦ୍ଧ ରାଜବଂଶୀୟ ମୟୂରଭଞ୍ଜାଧୀଶ୍ୱର ଗଛ ମୂଳର ମଳାରେ ମାଠିଅରୁ ପାଣି ଦେଲେ ଓ ଏ ଗଛକୁ ତାଙ୍କ ସ୍ୱର୍ଗତ ଜ୍ୟେଷ୍ଠ ଭ୍ରାତା (ପୂର୍ଣ୍ଣଚନ୍ଦ୍ର)ଙ୍କ ନାମ ଦିଆଇଲେ । ଗଡ଼ଜାତର ଓ ମୋଗଲବନ୍ଦିର ସାହିତ୍ୟାନୁରାଗୀ ରମା-ବରପୁତ୍ରକନ୍ୟାମାନେ କ୍ଷେତରେ ସିଆର କାଟି ଗଛ ମୂଳକୁ ପାଣି ମଡ଼ାଇଲେ । ଏମାନଙ୍କ ଚେଷ୍ଟାରେ ଗଛଟି ତାଜା ହେଲା ଓ କ୍ରମେ କ୍ରମେ ଗଛରୁ ସାତଟି କୁଆଁ (ସାତ ଭଲ୍ୟୁମ୍) ବାହାରିଲା । ଏହି ଗଛ ବଢ଼ିଯାଇ ଫୁଲ ଫଳ ଧରିବା ବେଳକୁ ଓଡ଼ିଶା ସରକାର ଓ ଉତ୍କଳର ଅନ୍ୟତମ ଦୁଇଟି ପ୍ରସିଦ୍ଧ ରାଜବଂଶ (ବାମଣ୍ଡା ଓ ନୟାଗଡ଼) ଶେଷରେ ପାଣି ବୁହାଇ ସପୁଷ୍ପଫଳ ବୃକ୍ଷର ଶୋଭା ସମ୍ପାଦନ କଲେ । ଏମାନଙ୍କ ସମ୍ମିଳିତ ଚେଷ୍ଟାଦ୍ୱାରା ବର୍ଦ୍ଧିତ ଏହି ସାରସ୍ୱତ ବୃକ୍ଷର ଫଳ ଓ ପୁଷ୍ପ ଦେଢ଼ କୋଟି ଓଡ଼ିଆ ପୁଅ ଝିଅ ଭୋଗ କରନ୍ତୁ ।

## ଏ ଗ୍ରନ୍ଥର ପ୍ରଧାନ ପୃଷ୍ଠପୋଷକଗଣ

ପୃଷ୍ଠପୋଷକମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ସମ୍ମାନାସ୍ପଦ ଭାରତ ସମ୍ରାଟଙ୍କ ପ୍ରତିନିଧି ମହାମାନ୍ୟ ଭାଇସ୍‌ରୟ ଓ ମାନନୀୟା ଭାଇସ୍‌ରୟ-ମହିଷୀଙ୍କ କଥା ପୂର୍ବରୁ ଉଲ୍ଲିଖିତ ହୋଇଅଛି ।

ଏ ଗ୍ରନ୍ଥର ପାଣ୍ଡୁଲିପିର ସମାପ୍ତିଠାରୁ ଆଜି ପର୍ଯ୍ୟନ୍ତ ଏ ସାର୍ଦ୍ଧ ୧୩ ବର୍ଷକାଳ ଏ ଭାଷାକୋଷ ଓ ଏଥିର ସଂଗ୍ରାହକ ଯାହାଙ୍କ କରୁଣା, ସ୍ନେହ, ସହଯୋଗ ଓ ସମର୍ଥନ ପାଇଁ ଅସିଅଛି, ସେହି ମାନ୍ୟବର ସର୍ ଜନ୍ ଅଷ୍ଟେନ୍ ହବାକ୍, ଏମ୍. ଏ., କେ. ସି. ଏସ୍. ଆଇ., ଆଇ. ସି. ଏସ୍. ନବ-ପ୍ରତିଷ୍ଠିତ ଓଡ଼ିଶା ପ୍ରଦେଶର ପ୍ରଥମ ଗଭର୍ଣ୍ଣର୍‌ଙ୍କଠାରେ ମୁଁ ଓ ମୋ ଜାତି ଋଣୀ ଅଛୁଁ । ଭାଷାକୋଷର ମୁଁ ଜନ୍ମଦାତା ଅଟେଁ, କିନ୍ତୁ ତାହା ଆଜକୁ ୧୩ ବର୍ଷ ହେଲା ତାଙ୍କ ଅହର୍ନିଶ ଯତ୍ନରେ ଲାଳିତ ପାଳିତ ହୋଇ ଆସିଅଛି । ତାଙ୍କ ପରି ପାଳକ ପିତାଙ୍କୁ ପାଇ ନ ଥିଲେ ଭାଷାକୋଷ ରୂପ ଶିଶୁର ଆଜି ମୁଣ୍ଡକୁ ହାତ ପାଇ ନ ଥାନ୍ତା । ସେ ତେର ବର୍ଷ ପୂର୍ବେ ଓଡ଼ିଶା ବିଭାଗର କମିସନର୍ ଥିଲେ । ଦୈବଗତ୍ୟା କଟକର ତଦାନୀନ୍ତନ କଲେକ୍ଟର୍ ଓ ମାଜିଷ୍ଟ୍ରେଟ୍ ଶ୍ରୀଯୁକ୍ତ ଏନ୍. ଏଫ୍. ପେକ୍, ସି. ଆଇ. ଇ, ଆଇ. ସି. ଏସ୍‌ଙ୍କ (ଯେ ଓଡ଼ିଶା ପ୍ରଦେଶର ପ୍ରତିଷ୍ଠା ପରେ ବିହାର ଗଭର୍ଣ୍ଣମେଣ୍ଟଙ୍କର ଜଣେ ଉଚ୍ଚ କର୍ମଚାରୀ ହେଲେ, ତାଙ୍କ) ଦୃଷ୍ଟି ଏ ପାଣ୍ଡୁଲିପିମାନଙ୍କ ଉପରେ ପଡ଼ିଲା । ପେକ୍ ସାହେବ ଏଥିରେ ମୁଗ୍ଧ ହୋଇ ଶ୍ରୀଯୁକ୍ତ ହବାକ୍ ସାହେବଙ୍କ ଦୃଷ୍ଟି ଏଥିପ୍ରତି ଆକର୍ଷଣ କଲେ । ଏଥି ପୂର୍ବରୁ ଓଡ଼ିଆ ଭାଷା ସମ୍ବନ୍ଧେ ହବାକ୍ ସାହେବଙ୍କର ସମୁଚିତ ଧାରଣା ନ ଥିଲା । ପେକ୍ ସାହେବଙ୍କ ସୁପାରିସ୍‌କୁ ଏଡ଼ି ନ ପାରି ସେ ତାଙ୍କ ସଙ୍ଗେ ଭାଷାକୋଷା-ଶ୍ରମରେ ପାଦ ପକାଇଲେ ଓ ତାଙ୍କ ଗହଣରେ ଆସିଥିବା ଓଡ଼ିଆ ଭାଷା-ବିଶାରଦ ସ୍ୱର୍ଗତ ହେଣ୍ଡରସନ୍ ସାହେବଙ୍କ ଦ୍ୱାରା ପାଣ୍ଡୁଲିପିର ଏକାଧିକ ଅଂଶ ପାଠ କରାଇଲେ । ଦୈବ ଯୋଗକୁ ହେଣ୍ଡରସନ୍ ସାହେବ ପାଣ୍ଡୁଲିପିର ଯେଉଁ ଯେଉଁ ଅଂଶ ପାଠ କଲେ ସେଥିରେ ନିୟୋଜିତ ଗବେଷଣା, ଅଧ୍ୟୟନ ଓ ଅଧ୍ୟବସାୟର ପ୍ରମାଣ ସ୍ପଷ୍ଟ ରୂପେ ରହିଥିଲା । ହବାକ୍ ସାହେବ ଏ ମାନ ଦେଖି ଏପରି ତୁଷ୍ଟ ହେଲେ ଯେ, ଏ ପାଣ୍ଡୁଲିପିର ସମ୍ମାର୍ଜନ, ମୁଦ୍ରଣ ଓ ମୁଦ୍ରିତ ଗ୍ରନ୍ଥର ତଦାକଳିତ ବ୍ୟୟର ଅର୍ଦ୍ଧେକ ସାହାଯ୍ୟଦେବା ନିମନ୍ତେ ସେ ବିହାର ଓଡ଼ିଶା ସରକାରଙ୍କୁ ଦୃଢ଼ ରୂପେ ସୁପାରିସ କଲେ । ତତ୍ପରେ ରାଜକର୍ମରେ ତାଙ୍କର ଅନ୍ୟତ୍ର ବଦଳି ହେବାରୁ ତାଙ୍କ ସ୍ଥାନରେ ନିଯୁକ୍ତ ପେକ୍ ସାହେବ ଓଡ଼ିଶାର କମିସନର୍ ରୂପେ ହବାକ୍ ସାହେବଙ୍କ ସୁପାରିସକୁ ଦୃଢ଼ତର କଲେ । ଏଥିର ଫଳରେ ପାଣ୍ଡୁଲିପିମାନଙ୍କ ସମ୍ମାର୍ଜନ ଓ ମୁଦ୍ରଣ ନିମନ୍ତେ ସେ ସମୟରେ ଅଟକଳ କରାଯାଇଥିବା ବ୍ୟୟ (ପ୍ରାୟ ୪୦ ହଜାର ଟଙ୍କା)ର ଅଧେ ବିହାର ଓଡ଼ିଶା ସରକାର୍ ପ୍ରଦାନ କଲେ । ଶ୍ରୀ ହବାକ ସାହେବ ମହୋଦୟ ଓଡ଼ିଶାର କମିସନର୍ ଗାଦି ଛାଡ଼ିବା ପରେ ବାଙ୍କିଙ୍ଗ୍ ଏନକ୍ୱାୟାରି କମିଟିର ସଭାପତି, ଭାବୀ ଓଡ଼ିଶାପ୍ରଦେଶର ଶାସନ ସମ୍ପର୍କୀୟ କମିଟିର ସଭାପତି, ବିହାର ଓଡ଼ିଶା ପ୍ରଦେଶର ଶାସନସଭାର ସଦସ୍ୟ ଓ ସହକାରୀ ସଭାପତି କାର୍ଯ୍ୟ କଲେ । ସେ ସମୟରେ କଟକରେ, ରାଞ୍ଚିରେ ଓ ପାଟଣାରେ ତାଙ୍କ ସଙ୍ଗେ ମୋର ଏକାଧିକ ଥର ଭେଟ ହୋଇଥିଲା । ମୋତେ ଭେଟିଲାକ୍ଷଣି ସେ ପ୍ରଥମେ ପଚାରୁଥିଲେ-ଭାଷାକୋଷର ମୁଦ୍ରଣ କର୍ମ କେତେଦୂର ଅଗ୍ରସର ହେଲା ? ସେଥିପାଇଁ କଅଣ ଅଧିକା ସାହାଯ୍ୟ ଲୋଡ଼ା ? ଏମନ୍ତ କି, ତାଙ୍କ ବନ୍ଧୁ ଏକାଧିକ ପୋଲିଟିକାଲ୍ ଏଜେଣ୍ଟ୍, ଗଭର୍ଣ୍ଣର୍ ଜେନେରାଲଙ୍କ ଏଜେଣ୍ଟ୍ ଓ ରେସିଡେଣ୍ଟଙ୍କଠାକୁ ମୋ ହାତରେ ପରିଚୟ ପତ୍ର ଦେଇ ଅର୍ଥ ସଂସ୍ଥାନ ବିଷୟରେ ମୋତେ ବୁଦ୍ଧି ବତାଇବାକୁ ସାହେବ ମହୋଦୟ ସ୍ୱତଃପ୍ରବୃତ୍ତ ହୋଇ ସେମାନଙ୍କଠାକୁ ମୋତେ ପଠାଇଥିଲେ । ଓଡ଼ିଶାର ଗଭର୍ଣ୍ଣର୍ ହୋଇ ଆସିବା ପୂର୍ବରୁ ସେ ବିଲାତ ଯାଇଥିଲେ ଓ ସେଠାରେ ପ୍ରାଚ୍ୟ ବିଦ୍ୟାଧ୍ୟୟନ ବିଦ୍ୟାଳୟ(College of Oriental studies) ର ପୁସ୍ତକାଗାରରେ ଭାଷାକୋଷର ପ୍ରକାଶିତ ଖଣ୍ଡମାନ ଦେଖି ପରମାନନ୍ଦିତ ହେଲେ । ଯେଉଁ ଦିନ ସେ ନବପ୍ରତିଷ୍ଠିତ ଓଡ଼ିଶା ପ୍ରଦେଶର ଲାଟ ଗାଦି ଅଧିକାର କଲେ, ତହିଁ

ବାର୍ଷି ଦିନ (୨।୮।୧୯୩୬ରେ) ଭାଷାକୋଷର ଶୁଭକାମନା କରି ନିଜହାତରୁ କିଛି ଅର୍ଥସାହାଯ୍ୟ ମଧ୍ୟ ପଠାଇଥିଲେ । ଓଡ଼ିଶାର ଗଭର୍ଣ୍ଣର ହେବା ପରେ ସରକାରଙ୍କ ହାତରେ ଯେତେ ପ୍ରକାର ପାଣ୍ଠି ଅଛି, ସବୁପ୍ରକାର ପାଣ୍ଠିରୁ ଭାଷାକୋଷପାଇଁ ସାହାଯ୍ୟ ଦିଆଯିବାର ମୂଳରେ ତାଙ୍କ ଶୁଭକାମନା ଓ ପ୍ରେରଣା ବିଦ୍ୟମାନ । ମୋତେ କୈସର୍-ଇ-ହିନ୍ଦ୍ ପଦକ ଓ ରାୟ ବାହାଦୁର ଉପାଧି ମିଳିବାର ମୂଳରେ ମାନ୍ୟବର ହବାକ୍ ସାହେବଙ୍କ ପ୍ରେରଣା ବିଦ୍ୟମାନ ଥିଲା ।

ସପ୍ତମ ଖଣ୍ଡର ପ୍ରକାଶ ପୂର୍ବରୁ ୧୯୩୭ ସାଲ ଜାନୁଆରି ମାସରେ ନବ ବର୍ଷରେ ମୋତେ ଯେଉଁ ଉପାଧି ମିଳିଥିଲା, ତହିଁର ସନନ୍ଦ ଓ ପଦକ ଦିଆଯିବାପାଇଁ ୧୯୩୮ ସାଲ ଜାନୁଆରି ମାସ ତା୨୦ରିଖରେ କଟକରେ ଯେଉଁ ଦରବାର ହୋଇଥିଲା, ସେହି ଦରବାରରେ ମାନ୍ୟବର ମହୋଦୟ ଯେଉଁ ଇଂରାଜୀ ଅଭିଭାଷଣ ଶୁଣାଇ ମୋତେ ଉକ୍ତ ପଦକର ସନନ୍ଦ ଓ ପଦକ ଅର୍ପଣ କରିଥିଲେ, ତହିଁରେ ପଦେ ପଦେ ମୋ ପ୍ରତି ତାଙ୍କର କରୁଣା ଉଛୁଳି ପଡ଼ିଅଛି । ତହିଁର ଅନୁବାଦ ଯଥାସ୍ଥାନରେ ସନ୍ନିବେଶିତ ହେଲା । ସର୍ ଜନ୍ ହବାକଙ୍କ ସହଧର୍ମିଣୀ ଲେଡ଼ୀ ହବାକ୍ ମଧ୍ୟ ଭାଷାକୋଷର "ପୋଷିଆଁ ମାଆ" ଙ୍କ ସ୍ଥାନ ଗତ ୧୩ ବର୍ଷ ହେଲା ଅଧିକାର କରିଅଛନ୍ତି । ହବାକ୍ ଦମ୍ପତିଙ୍କ ଲାଳନ ପାଳନରେ ଏ ଅସହାୟ ଶିଶୁ କେତେ ବାଧାବିଘ୍ନ ଓ ଅରିଷ୍ଟମାନ ଏଡ଼ି ବଞ୍ଚିଅଛି । ଲେଡ଼ୀ ହବାକ୍ ମୋ ସହକର୍ମିଣୀ ଶ୍ରୀମତୀ ପୀତାମ୍ବରୀ ଦେବୀଙ୍କୁ ଦର୍ଶନ ଦେଇ ଏ ଗ୍ରନ୍ଥର ସହକର୍ମିଣୀତା ଓ ଅଧ୍ୟବସାୟ ଯୋଗୁ ତାଙ୍କୁ ଭୂରିଭୂରି ପ୍ରଶଂସା କରି ଉତ୍ସାହିତ କରିଅଛନ୍ତି । ଏ ଗ୍ରନ୍ଥର ପରିସମାପ୍ତି ପରେ ମାନ୍ୟବର ସର୍ ଜନ୍ ହବାକ୍, ଶ୍ରୀମତୀ ପୀତାମ୍ବରୀଙ୍କୁ ତାଙ୍କ ସହଯୋଗ ପାଇଁ ଧନ୍ୟବାଦ ପ୍ରଦାନ କରିଅଛନ୍ତି ।

ତ୍ରିବାଙ୍କୋଡ଼ ମହାରାଜ ଶ୍ରୀ ଶ୍ରୀ ଶ୍ରୀ ସର୍ ବଳରାମ ବର୍ମା ଡି.ଲିଟ୍ ଓ ମହାରାଜଙ୍କ ମାତା ମହାରାଣୀ ଶ୍ରୀ ଶ୍ରୀ ଶ୍ରୀମତୀ ସେଥୁ ପାର୍ବତୀବାଈ, ଏ ଦୁଇ ଜଣଙ୍କର ବିଦ୍ୱତ୍ତା, ଗୁଣଗ୍ରାହକତା ଜଗଦ୍ବିଖ୍ୟାତ ଅଟେ । ମହାରାଜଙ୍କ ଦ୍ୱାରା ନିଜରାଜ୍ୟର ହିନ୍ଦୁମନ୍ଦିରମାନଙ୍କରେ ହରିଜନ ମାନଙ୍କର ଅବାଧ ପ୍ରବେଶଲାଗି ଯେଉଁ ଶ୍ରୁତିଚାଳ (ଅର୍ଡିନାନ୍ସ୍) ପ୍ରଚୁରିତ ହେଲା, ତାହା ନବ୍ୟ ଭାରତର ଇତିହାସରେ ଚିରକାଳ ଜାଜ୍ୱଲ୍ୟମାନ ହୋଇ ରହିବ । ବିଶାଖାପାଟଣାଠାରେ ୧୯୩୭ ଡିସେମ୍ବର ମାସରେ ଗୋଟିଏ ସାହିତ୍ୟ ସମ୍ମେଳନରେ ଜୟପୁରାଧୀଶ୍ୱର ସାହିତ୍ୟସମ୍ରାଟ୍ ମହାରାଜ ବିକ୍ରମଦେବ ବର୍ମା, ଡି.ଲିଟ୍ ମୋତେ ଏମାନଙ୍କ ସଙ୍ଗେ ପରିଚିତ କରାଇଥିଲେ । କିଛିଦିନ ପରେ ମହାରାଜଙ୍କଠାକୁ ମୁଁ ଏକ ସାର ଗ୍ରନ୍ଥ ଉପହାର ପଠାଇଲି ଓ ମହାରାଜ ତାହା ଗ୍ରହଣ କଲେ ଓ ଭାଷାକୋଷର ବିଶିଷ୍ଟ ପୃଷ୍ଠପୋଷକ ମାନଙ୍କ ପ୍ରତିକୃତିମାନଙ୍କ ସହିତ ସେ ଦୁହିଁଙ୍କ ଫଟୋ ସପ୍ତମ ଖଣ୍ଡରେ ପ୍ରକାଶିତ ହେବା ନିମନ୍ତେ ମୋ ନିକଟକୁ ପ୍ରେରଣ କଲେ । ଓଡ଼ିଆ ଭାଷା ସେମାନଙ୍କ ମାତୃଭାଷା ନ ହେଲେ ମଧ୍ୟ ସେମାନେ ଓଡ଼ିଆ ଭାଷାକୋଷର ପୃଷ୍ଠପୋଷକତା ସ୍ୱୀକାର କରି ଆମ ମାତୃଭାଷା ପ୍ରତି ଯେଉଁ ମମତା ଦେଖାଇ ଅଛନ୍ତି, ତହିଁପାଇଁ ଓଡ଼ିଆ ଜାତି ସେମାନଙ୍କ ଠାରେ ଚିରକାଳ ଋଣୀ ରହିବ ।

ପାଟଣାଧୀଶ୍ୱର ମହାରାଜ ରାଜେନ୍ଦ୍ରନାରାୟଣ ସିଂହଦେବ ।

ମୟୂରଭଞ୍ଜାଧୀଶ୍ୱର ମହାରାଜ ସର୍ ପ୍ରତାପଚନ୍ଦ୍ର ଭଞ୍ଜଦେବ, କେ. ସି. ଆଇ. ଇ ।

ବୌଦ୍ଧ ରାଜ୍ୟାଧୀଶ୍ୱର ରାଜା ଶ୍ରୀ ନାରାୟଣ ପ୍ରସାଦ ଦେବ ।

ପାରଳାଧୀଶ୍ୱର ମହାରାଜ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ।

ପାଟଣା ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ ।

କଂଗ୍ରେସ ମନ୍ତ୍ରୀମଣ୍ଡଳ ପରିଚାଳିତ ଓଡ଼ିଶା ଗଭର୍ଣ୍ଣମେଣ୍ଟ ।

ଏମାନଙ୍କ ଓ ଅନ୍ୟମାନଙ୍କ ବିଶିଷ୍ଟ ସାହାଯ୍ୟ ପୂର୍ବବର୍ତ୍ତୀ ଖଣ୍ଡମାନଙ୍କ ଅବତରଣିକାରେ କୃତଜ୍ଞତାସହକାରେ କୀର୍ତ୍ତିତ ହୋଇଅଛି । ଏ ଖଣ୍ଡର ଅର୍ଥ-ସହାୟକମାନଙ୍କ ନାମ ମଧ୍ୟ ଏଥିମଧ୍ୟରେ ଲିପିବଦ୍ଧ ହୋଇଅଛି ।

ଓଡ଼ିଶା ଗଭର୍ଣ୍ଣରଙ୍କ ସଂକାରୀ ପରାମର୍ଶଦାତା ଶ୍ରୀଯୁକ୍ତ ଇ. ସି. ଆନ୍‌ସୋର୍ଜ, ସି ଆଇ.ଇ., ଆଇ. ସି. ଏସ୍ ୧୩ବର୍ଷ ପୂର୍ବେ ବିହାର ଓଡ଼ିଶା ସରକାରଙ୍କ ଶିକ୍ଷା-ସେକ୍ରେଟେରୀ ଥିଲେ । ସେ ସମୟରେ ଏ ଗ୍ରନ୍ଥ ପାଇଁ ସରକାରୀ ଅର୍ଥ ସାହାଯ୍ୟ ଦିଆଯିବା ସମ୍ବନ୍ଧରେ ତାଙ୍କ ଉଦ୍ୟମ ନିୟୋଜିତ ହୋଇଥିଲା ଓ ବର୍ତ୍ତମାନ ଏ ସାତଖଣ୍ଡ ଗ୍ରନ୍ଥରତ୍ନରେ ଦାଧିନୀକୃତ କରିବାଲା ବେଳେ ଓଡ଼ିଶା ସରକାରଙ୍କଠାରୁ ୮୦ ସାର ଗ୍ରନ୍ଥର ଅଗ୍ରୀମ ମୂଲ୍ୟପ୍ରାପ୍ତି ମୂଳରେ ତାଙ୍କ ଉଦ୍ୟମ ନିହିତ ହେଲା ।

ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ନିଜସ୍ୱ ନିଗଗରସ୍ଥ ଅନ୍ଧ୍ର ରିସର୍ଚ୍ଚ ୟୁନିଭର୍ସିଟୀ (ବିଶ୍ୱଭାରତୀ)ଙ୍କ ଦ୍ୱାରା ୧୯୨୬ ସାଲରେ କବିସମ୍ରାଟ୍ ଉପାଧି ଅର୍ପିତ ହୋଇଥିଲା । ଉକ୍ତ ପୁନର୍ବାଧିଷ୍ଠୀର ସଦସ୍ୟରୂପେ ମୁଁ ସେହି ଉତ୍ସବ ଉପଲକ୍ଷରେ କବିସମ୍ରାଟଙ୍କୁ ଏକସାର ଭାଷାକୋଷ ଉପହାର ଦେଇଥିଲି । ସେ ସମ୍ବନ୍ଧେ ଯେଉଁ ପ୍ରଶଂସା ପତ୍ର ସେ ମୋ ନିକଟକୁ ସ୍ୱତଃପ୍ରବୃତ୍ତ ହୋଇ ପଠାଇ ଅଛନ୍ତି ତାହା ଆମଭାଷାର ଗୌରବର ବସ୍ତୁ ହୋଇ ରହିବ ।

ଜୟପୁରାଧୀଶ୍ୱର ସାହିତ୍ୟ ସମ୍ରାଟ୍ ମହାରାଜ ବିକ୍ରମଦେବ ବର୍ମାଙ୍କଠାରେ ମୁଁ ଯେଉଁ ଋଣରେ ଋଣୀ, ସେ ଋଣର ହିସାବ ଏପରି ଛନ୍ଦଣି ମନ୍ଦଣି ହୋଇ ମୋତେ ଜାବୁଡ଼ି ଧରିଛି ଯେ, ଇହ ଜନ୍ମରେ ସେଥିରୁ ମୁକୁଳିବାର ଶକ୍ତି ମୋର ନାହିଁ । ଜୟପୁର ସିଂହାସନର ଅଧିକାରୀ ହେବାର ବହୁ ପୂର୍ବରୁ, ଆଜକୁ ୪୦ ବର୍ଷ ହେବ, ମୁଁ ମହାରାଜଙ୍କ ବନ୍ଧୁତା ଲାଭ କରିଅଛି । ସେ ସମୟରେ ଓ ବର୍ତ୍ତମାନ ଯେଉଁ ଓଡ଼ିଆ ଅଞ୍ଚଳମାନ ମାନ୍ଦ୍ରାଜ ପ୍ରଦେଶର ସୀମାଭୁକ୍ତ ଥିଲା ଓ ଅଛି, ସେ ଅଞ୍ଚଳରେ ଓଡ଼ିଆ ଜାତୀୟତା ଓ ଜାଗରଣକୁ ଜୀଆଇ କରି ମହାରାଜ ରଖି ଅଛନ୍ତି । ଓଡ଼ିଆ ସାହିତ୍ୟର ସେ ନିଷ୍ଠାପର ସାଧକ ଓ ଅନୁରାଗୀ ଓ ବହୁ ଓଡ଼ିଆ, ତେଲଗୁ ଓ ସଂସ୍କୃତ ଗ୍ରନ୍ଥର ଗ୍ରନ୍ଥକାର ଅଟନ୍ତି । ଜୟପୁର ରାଜ୍ୟ ଓଡ଼ିଶା ପ୍ରଦେଶଭୁକ୍ତ ହେବା ମହାରାଜାଙ୍କ ପ୍ରେରଣା, ପ୍ରବେଚନା ଓ ଉଦ୍ୟମର ଅନ୍ୟତମ ଫଳ ଅଟେ । ଭାଷାକୋଷର ପାଣ୍ଡୁଲିପିମାନଙ୍କ ପ୍ରତି ବିହାର ଓଡ଼ିଶା ସରକାରଙ୍କ ଦୃଷ୍ଟି ମହାରାଜ ପ୍ରଥମେ ଆକର୍ଷଣ କରିଥିଲେ । ମହାରାଜ ଆସନ ଅଳଙ୍କୃତ କରି ସେ ଭାଷାକୋଷକୁ ମୁକ୍ତହସ୍ତ ହୋଇ ଅର୍ଥସାହାଯ୍ୟ କଲେ । ଅର୍ଥସାହାଯ୍ୟ ଛଡ଼ା ଜୟପୁର ଓ ବିଶାଖାପାଟଣା ଅଞ୍ଚଳ ପ୍ରଚଳିତ ବହୁଶତ ଓଡ଼ିଆ ଶବ୍ଦ ମହାରାଜ ଏ ଭାଷାକୋଷକୁ ଯୋଗାଇ ଅଛନ୍ତି ଓ ଭାଷାକୋଷ ପାଇଁ ସ୍ୱୟଂ ସନ୍ଦର୍ଭ ଲେଖିଅଛନ୍ତି । ତାଙ୍କ ନେତୃତ୍ୱରେ ଅନୁଷ୍ଠିତ ଅନ୍ଧ୍ର ରିସର୍ଚ୍ଚ ବିଶ୍ୱଭାରତୀଙ୍କ-ଠାରୁ ମୋର ପ୍ରଥମେ 'ସାହିତ୍ୟବିଶାରଦ' ଓ ପରେ 'ସାହିତ୍ୟଭୂଷଣ' ଉପାଧି ପ୍ରାପ୍ତି ମୂଳରେ ମହାରାଜଙ୍କ ସୂଚନା ବିଦ୍ୟମାନ ।

୧୯୩୭ ଡିସେମ୍ବରରେ ତ୍ରିବାଙ୍କୋଡ଼ ମହାରାଜ ଓ ମହାରାଣୀ ସେଥୁ ପାର୍ବତୀ ବାଈଙ୍କୁ ଭେଟିବାପାଇଁ ମହାରାଜ ବିଶାଖାପାଟଣାଠାରେ ଯେଉଁ

**Raja Sri Bhanuganga Tribhubana Deb, Ruler, Bamra State**
**(Of the Bamra House, which has contributed most**
**liberally to the 7th Volume of the Bhashakosha).**



ଭାଷାକୋଷ ସପ୍ତମ ଖଣ୍ଡର ପ୍ରଧାନ ପୃଷ୍ଠପୋଷକ
ବାମଣ୍ଡା ରାଜବଂଶର ଉଦୟମାନ ଭାସ୍କର ରାଜା ଶ୍ରୀ ଭାନୁଗଙ୍ଗ ତ୍ରିଭୁବନଦେବ

ସାହିତ୍ୟସମ୍ମିଳନ କରାଇଥିଲେ । ସେଥିରୁ ମୋତେ ନିମନ୍ତ୍ରଣ କରି ମୋତେ ନେଇ ତ୍ରିବାଙ୍କୋଡ଼ ମହାରାଜ ଓ ମହାରାଣୀଙ୍କ ସଙ୍ଗେ ପରିଚିତ କରାଇବା ଫଳରେ ଭାଷାକୋଷ ସେ ଦୁହିଁଙ୍କ ଅଭିଭାବକତ୍ୱ ଲାଭ କରିବାକୁ ସମର୍ଥ ହୋଇଅଛି । ଆମେରିକା ଯୁକ୍ତରାଜ୍ୟରୁ ଭାଇସ୍‌ରୟ୍‌ଙ୍କ ନିକଟକୁ ସମାଗତ ରାଜଦୂତ ବିଦ୍ୟାନୁରାଗୀ କବି, ଗ୍ରନ୍ଥକାର ମହାପଣ୍ଡିତ ଡକ୍ଟର ମାନ୍ୟବର ଶ୍ରୀଯୁକ୍ତ ପୋଷ୍ଟ ହ୍ୱିଲର୍ ଓ ତାଙ୍କ କବି ଗ୍ରନ୍ଥକର୍ତ୍ତ୍ରୀ ସହଧର୍ମିଣୀଙ୍କ ସଙ୍ଗେ ବିଜୟନଗରଠାରେ ଅନୁଷ୍ଠିତ ଆନ୍ଧ୍ର ରିସର୍ଚ୍ ବିଶ୍ୱଭାରତୀର ବିଗତ ମହୋତ୍ସବରେ ମହାରାଜ ମୋତେ ଓ ଭାଷାକୋଷକୁ ପରିଚିତ କରାଇଅଛନ୍ତି । ବ୍ୟକ୍ତିଗତ ଭାବରେ ମୁଁ ମହାରାଜଙ୍କ ସ୍ନେହବନ୍ଧନରେ ବନ୍ଧା । ଭାଷାକୋଷର ଚତୁର୍ଥ ଖଣ୍ଡ ମହାରାଜଙ୍କ ନାମରେ ଉତ୍ସର୍ଗ କରିବାପାଇଁ ମହାରାଜଙ୍କଠାରୁ ଅନୁମତି ପାଇ ଓ ପଞ୍ଚମ ଖଣ୍ଡରେ ତାଙ୍କୁ ଅଭିଭାବକରୂପେ ବରଣ କରି ଓ ଏ ଗ୍ରନ୍ଥର ଏକାଧିକ ଖଣ୍ଡରେ ତାଙ୍କର ଓ ମହାରାଜକୁମାରଙ୍କ ପ୍ରତିକୃତି ମୁଦ୍ରିତ କରି ମୁଁ ତାଙ୍କ ଋଣରୁ କଥଞ୍ଚିତ୍ ମୁକ୍ତିଲାଭ କରିବାକୁ କ୍ଷୀଣ ଚେଷ୍ଟା କରିଅଛି ମାତ୍ର ।

କାମଣ୍ଡା ଗଙ୍ଗବଂଶର ଭାରତପ୍ରଥିତଯଶା ପୁଣ୍ୟଶ୍ଳୋକ ସ୍ୱର୍ଗତ ସର୍ ବାସୁଦେବ ସୁଡ଼ଳଦେବ କେ. ସି. ଆଇ. ଇ ଙ୍କ ପୁତ୍ରବଧୂ ଓ ସ୍ୱନାମଧନ୍ୟ ସ୍ୱର୍ଗତ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କ ସହକର୍ମିଣୀ ଓ ସହଧର୍ମିଣୀ ଏବଂ ବର୍ତ୍ତମାନ ରାଜା ଶ୍ରୀମାନ୍ ଭାନୁଗଙ୍ଗ ତ୍ରିଭୁବନ ଦେବଙ୍କ ପିତାମହୀ ରାଣୀ ଶ୍ରୀମତୀ ଚନ୍ଦ୍ରଧରପ୍ରିୟା ଦେବୀଙ୍କର ବିଶିଷ୍ଟ ଅର୍ଥସାହାଯ୍ୟ ସଙ୍ଗେ ମିଳିତ ରାଜା ଭାନୁଗଙ୍ଗଙ୍କ ଅର୍ଥସାହାଯ୍ୟ ମିଳି ନ ଥିଲେ ଏ ସାରସ୍ୱତ ମନ୍ଦିର ଅଧୁରା 'ଲଣ୍ଡା ଦେଉଳ' ହୋଇ ରହିଥାଆନ୍ତା । ଉତ୍କଳର ରାଜବଂଶରେ ଏତାଦୃଶୀ ବିଦୁଷୀ, ବର୍ଷୀୟସୀ, କର୍ମକୁଶଳା, ଦାନପୂତହସ୍ତା, ଗୁଣଗ୍ରାହୀ ରାଜମହିଳା ମୋ ଦୃଷ୍ଟିରେ ପଡ଼ି ନାହାନ୍ତି । ତାଙ୍କ ଦାନର ବିଶେଷତ୍ୱ ଏହି କି, ନାନା ଅନିବାର୍ଯ୍ୟ ଅସୁବିଧା ଓ ଅସୁସ୍ଥତା ବଶତଃ ପ୍ରତିଶ୍ରୁତ ଅର୍ଥ ପ୍ରେରଣରେ ବିଳମ୍ବ ଘଟିଲେ ସେ ପ୍ରତିଗ୍ରହୀତାଙ୍କଠାରେ ବିଳମ୍ବପାଇଁ କୃତାଞ୍ଜଳି ହୋଇ କ୍ଷମାଭିକ୍ଷା କରନ୍ତି । ସପ୍ତମଖଣ୍ଡ ପାଇଁ ପ୍ରଦତ୍ତ ଅର୍ଥସାହାଯ୍ୟ ମଧ୍ୟରେ କାମଣ୍ଡା ରାଜବଂଶର ଦାନ ସର୍ବାଧିକ ଅଟେ ।

ଅଠମଲ୍ଲିକ ଅଧୀଶ୍ୱର ରାଜା ଶ୍ରୀ କିଶୋରଚନ୍ଦ୍ର ଦେବଙ୍କର ଏ ଗ୍ରନ୍ଥ ଓ ଗ୍ରନ୍ଥସଂଗ୍ରାହକ ପ୍ରତି କରୁଣା ଅନିର୍ବଚନୀୟ । ଆଜକୁ ୯ ବର୍ଷ ପୂର୍ବେ ପ୍ରଥମଖଣ୍ଡର ପ୍ରକାଶପରେ ମୋତେ କଟକଠାରେ ତାଙ୍କର ପ୍ରଥମେ ଦେଖା ମିଳିଥିଲା । ସେ ପ୍ରଥମଖଣ୍ଡ ଦେଖି ଯେଉଁ ଉତ୍ସାହ ଓ ଆଶାମୟ ପତ୍ର ଲେଖିଥିଲେ, ସେ ବିଷୟ ମୁଁ ଦ୍ୱିତୀୟଖଣ୍ଡର ଅବତରଣିକାରେ ବର୍ଣ୍ଣନା କରିଅଛି । କିଛିଦିନ ପରେ ସେ ତାଙ୍କ ଅର୍ଥ ସାହାଯ୍ୟ ପଠାଇଥିଲେ ଓ ପ୍ରାୟ ପ୍ରତିଖଣ୍ଡ ପାଇଁ ରାଜାସାହେବଙ୍କଠାରୁ ଭାଷାକୋଷ ସାହାଯ୍ୟ ପାଇ ଆସିଅଛି । ସର୍ବସୁଦ୍ଧା ଅଠମଲ୍ଲିକ ରାଜକୋଷରୁ ଭାଷାକୋଷକୁ ଯାହା ମିଳିଅଛି ତାହା ଅନ୍ୟ ରାଜାମାନଙ୍କ ଆୟ ତୁଳନାରେ ଅଧିକ ଅଟେ ।

ପାଟଣା ରାଜ୍ୟର ଉଦୟମାନ ନରପତି ମହାରାଜ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେବଙ୍କ ବଦାନ୍ୟତା, ଗୁଣଗ୍ରାହକତା, ସାହିତ୍ୟାନୁରାଗ ଅନନ୍ୟସାଧାରଣ । ତାଙ୍କ ସୌଜନ୍ୟ, ଆଶ୍ରିତ ବାତ୍ସଲ୍ୟ, ପ୍ରଜାଙ୍କ ପ୍ରତି ପୁତ୍ରବତ୍ ସ୍ନେହ ଓ ଶାସନକୁଶଳତା ଏକାଧିକ ଥର ମୁଁ ଅନୁଭବ କରି ପରମାନନ୍ଦ ଲାଭ କରିଅଛି ।

ଖଡ଼ିଆଳର ରାଜପିତୃବ୍ୟ ଶ୍ରୀଯୁକ୍ତ ଲାଲ ସାହେବ ଶ୍ରୀ ଶିବନାରାୟଣ ଦେବଙ୍କ ସଙ୍ଗେ ମୋର ପୂର୍ବେ ଆଳାପ ନ ଥିଲା । ମୁଁ କାମଣ୍ଡା-କଳାହାଣ୍ଡି ମଙ୍ଗଳକୃତ୍ୟ ଉପଲକ୍ଷରେ ଭବାନୀପାଟଣା ଯାଇଥିଲି । ସେ ମଧ୍ୟ ସେଠାକୁ ଆସିଥିଲେ । ଏକାଧିକ ଥର ମୋ ଡେରାକୁ ଆସି ସେ ମୋତେ ବାରମ୍ବାର ଅନୁରୋଧ କଲେ—"ଭାଷାକୋଷର ଜଣେ ସହକର୍ମୀ ହେବାର ନିଯୁକ୍ତିପତ୍ର ମୋତେ ମିଳୁ ।" ମୁଁ କୌତୂହଳପରବଶ ହୋଇ ତାଙ୍କ ଅନୁରୋଧ ରକ୍ଷା କରି ତାଙ୍କୁ ଖଣ୍ଡିଏ ନିଯୁକ୍ତିପତ୍ର ଲେଖିଦେଲି । ଦେଖିଲି ଯେ, ୩।୪ ଦିନ ମଧ୍ୟରେ ବିବାହାର୍ଥ ସମାଗତ ଏକାଧିକ ରାଜାଙ୍କଠାରୁ ୩।୪ ହଜାର ଟଙ୍କାପାଇଁ ପ୍ରତିଶ୍ରୁତି ପତ୍ର ସେ ଆଣି ମୋତେ ଅର୍ପଣ କଲେ ଓ ଏକାଧିକ ରାଜବଂଶରୁ ସାହାଯ୍ୟ ମିଳିବାର ପଥ ସୁଗମ କରିଦେଲେ । ତତ୍ପରେ ସେଠାରୁ ଫେରିଯାଇ ଖଡ଼ିଆଳ ଅଞ୍ଚଳ ପ୍ରଚଳିତ ସହସ୍ରାଧିକ ପ୍ରାଦେଶିକ ଶବ୍ଦ ଅର୍ଥ ସହିତ ସେ ମୋତେ ଯୋଗାଇଲେ ଏବଂ କିଛିଦିନ ପରେ ଭାଷାକୋଷର ଅର୍ଥସଙ୍କଟ କଥା ଶୁଣି ଏକାଧିକ ରାଜଦ୍ୱାରରେ ସ୍ୱୟଂ ଉପସ୍ଥିତ ହୋଇ ଭାଷାକୋଷ ପାଇଁ ଅର୍ଥ ଭିକ୍ଷା କଲେ ଓ ଭବାନୀପାଟଣାଠାରେ ତାଙ୍କୁ ପ୍ରତିଶ୍ରୁତି ଦେଇଥିବା ଦାତାମାନଙ୍କଠାରୁ ପ୍ରତିଶ୍ରୁତ ଅର୍ଥ ମୋ ହସ୍ତଗତ ହେବାପର୍ଯ୍ୟନ୍ତ ସେ ନିଶ୍ଚିନ୍ତ ହୋଇ ନ ଥିଲେ । ଏତିକରେ ସନ୍ତୁଷ୍ଟ ନ ହୋଇ ସେ ନିଜେ ମଧ୍ୟ ବିଶିଷ୍ଟ ଅର୍ଥ ସାହାଯ୍ୟ କଲେ ଓ ତାଙ୍କ ଭ୍ରାତୃଷ୍ପୁତ୍ର ଖଡ଼ିଆଳ ଅଧୀଶ୍ୱର ଲାଲ ଆର୍ତ୍ତତ୍ରାଣ ଦେବ, ଏମ୍. ଏଲ୍. ଏ ଓ ଯୁବରାଜ ଶ୍ରୀମାନ ଅନୂପସିଂହ ଦେବଙ୍କଠାରୁ ବିଶିଷ୍ଟ ଅର୍ଥ ସାହାଯ୍ୟ ମିଳିବାର ପଥ ସୁଗମ କଲେ । ଶ୍ରୀମାନ ଲାଲ ସାହେବଙ୍କ ସହଧର୍ମିଣୀ ଶ୍ରୀମତୀ ବୈଦେହୀକୁମାରୀ ଦେବୀ ମୋତେ ତାଙ୍କ ମାତୃସ୍ନେହର ଅଧିକାରୀ କଲେ ଓ ଭାଷାକୋଷ ନିମନ୍ତେ ଅନେକ ଗୁଡ଼ିଏ ପ୍ରାଦେଶିକ ଶବ୍ଦ ଓ ସ୍ୱୟଂ ପୁଣି ବିଶିଷ୍ଟ ଅର୍ଥସାହାଯ୍ୟ କଲେ । ଜଣେ ନିଃସ୍ୱ ମୁସଲମାନ ଗ୍ରାହକ ମୌଲବୀ ଶେଖ୍ ଅବ୍‌ଦୁଲ୍ ରସିଦ୍ [illegible]ଙ୍କର ମାଦ୍ରାଜା ସୁଲତାନିଆ ବିଦ୍ୟାଳୟର ସ୍ୱଳ୍ପବେତନଭୋଗୀ ଶିକ୍ଷକ ଥାଇ ମଧ୍ୟ ନିଜର ସ୍ୱଳ୍ପ ମାସିକ ୧୬ ଟଙ୍କା ବେତନରୁ ମାସକୁ ଦୁଇଟଙ୍କା ଲେଖାଏଁ ଦେବାକୁ ଅଙ୍ଗୀକାର କରି ମୋତେ ବହୁ ଅନୁସରଣ କରିବାରୁ ମୁଁ ତାଙ୍କୁ ସମଗ୍ର ଭାଷାକୋଷ ସ୍ୱଳ୍ପ ଟଙ୍କା ମୂଲ୍ୟରେ ଦେବି ବୋଲି ସ୍ୱୀକାର କଲି । ଏହି ନିଃସ୍ୱ ଗ୍ରାହକଙ୍କ ଭାଷାକୋଷପ୍ରୀତିରେ ମୁଗ୍ଧ ହୋଇ ତାଙ୍କ ବିଷୟ ପଞ୍ଚମଖଣ୍ଡର ଅବତରଣିକାର 'ଜ' ପୃଷ୍ଠାରେ ମୁଁ ଉଲ୍ଲେଖ କରିଥିଲି । ମାତୃକଳ୍ପା ଶ୍ରୀମତୀ ବୈଦେହୀକୁମାରୀ ଦେବୀ ତାହା ପାଠକରି ମୋ ନିକଟକୁ ଏକସାର ଭାଷାକୋଷର ତଦାନୀନ୍ତନ ମୂଲ୍ୟ ୧୩୨ ଟଙ୍କା ପଠାଇଦେଲେ ଓ ମୋତେ ଜଣାଇଲେ,—"ଉକ୍ତ ଗ୍ରାହକଙ୍କ ନିଃସ୍ୱତା ଓ ଭାଷାନୁରାଗ ଦେଖି ମୁଁ ଯତ୍ପରୋନାସ୍ତି ଆନନ୍ଦ ଲାଭ କରୁଅଛି । ଏ ଟଙ୍କାତକ ଦେବାକୁ ତାଙ୍କୁ ବଡ଼ କଷ୍ଟ ଭୋଗ କରିବାକୁ ପଡ଼ିଥିବ । ତାଙ୍କ ନିର୍ଦ୍ଧନତା ଯୋଗୁ ଭାଷାକୋଷ ସଂଗ୍ରାହକଙ୍କର କଅଣ ହାନି ହେବ ? ଆପଣ ତାଙ୍କ ନିକଟରେ ମୋ ନାମ ପ୍ରକାଶ କରିବେ ନାହିଁ ଓ ଆଜି ପର୍ଯ୍ୟନ୍ତ ଭାଷାକୋଷର ମୂଲ୍ୟ ପାଇଁ ସେ ଯେତେ ଟଙ୍କା ଦେଇ ଅଛନ୍ତି ତା ମୋ ପ୍ରେରିତ ଟଙ୍କାରୁ ତାଙ୍କୁ ଫେରାଇ ଦେବେ ଏବଂ ବାକି ଟଙ୍କା ଆପଣ ତାଙ୍କୁ ଦେଇଥିବା ଏକସାର ଗ୍ରନ୍ଥର ପୂର୍ଣ୍ଣ ମୂଲ୍ୟରୂପେ ଗ୍ରହଣ କରିବେ ।" ଉକ୍ତ ଗ୍ରାହକଙ୍କୁ ଡକାଇ ମୁଁ ତାଙ୍କ ପ୍ରଦତ୍ତ ଟଙ୍କାତକ ତାଙ୍କୁ ଲେଉଟାଇ ଦେଲି ଓ ଉପକାରିଣୀଙ୍କ ନାମ ପ୍ରକାଶ କରିବାକୁ ତାଙ୍କର ଅନୁମତି ନ ଥିବାରୁ ମୁଁ ତାଙ୍କ ନାମ ପ୍ରକାଶ କଲି ନାହିଁ । ଲାଲସାହେବ-ଦମ୍ପତି ଭାଷାକୋଷପ୍ରତି ଯେଉଁ ବାତ୍ସଲ୍ୟ ପ୍ରଦର୍ଶନ କରି ଅଛନ୍ତି ତହିଁର ପଟାନ୍ତର ନାହିଁ । ଏ ପ୍ରସଙ୍ଗରେ ତାଙ୍କ ନାମ ପ୍ରକାଶ କରିବାକୁ ତାଙ୍କର ଅନୁମତି ନଥିଲେ ସୁଦ୍ଧା ସେ ଦମ୍ପତିଙ୍କ ଆଦର୍ଶ ସହୃଦୟତା ଓ ଭାଷାନୁରାଗ ଉତ୍କଳ ସାହିତ୍ୟର ଇତିହାସରେ ସର୍ବଥା ଉଲ୍ଲେଖ-

ଯୋଗ୍ୟ ବୋଲି ଧର୍ମିଷ୍ଠ ଜ୍ଞାନୀଙ୍କର ମ ମାନ୍ୟାଙ୍କର ବ୍ୟତିକ୍ରମ କରିଅଛି; ଅନ୍ତଃକରଣରେ ବାତ୍ସଲ୍ୟମୟୀ ମାତା ମୋ ତ୍ରୁଟି ମାର୍ଜନା କରିବେ ।

ଖଣ୍ଡପଡ଼ା ଅଧୀଶ୍ୱର ଶ୍ରୀ ଲଲିତ ଅନଙ୍ଗ ଦେବ ଏମ୍. ଏଲ୍. ଏ. ତୃତୀୟ ଖଣ୍ଡର ମୁଦ୍ରଣାର୍ଥ ବରିଷ୍ଠ ଅର୍ଥ ସାହାଯ୍ୟ କରିଥିଲେ ଓ ତାଙ୍କ ଯୁବରାଜଙ୍କର ଭାଷାକୋଷ ପ୍ରତି ଅନୁରାଗ ଦର୍ଶନ କରି ସପ୍ତମ ଖଣ୍ଡର ବ୍ୟୟ ନିର୍ବାହାର୍ଥ ଯୁବରାଜ ଶ୍ରୀ ଅନୂପ ସିଂହଦେବଙ୍କ ନାମରେ ସ୍ୱତଃପ୍ରବୃତ୍ତ ହୋଇ ପୁଣି ଅର୍ଥ ସାହାଯ୍ୟ କରିଅଛନ୍ତି ।

କେନ୍ଦୁଝର ଅଧୀଶ୍ୱର ରାଜା ଶ୍ରୀ ବଳଭଦ୍ର ନାରାୟଣ ଭଞ୍ଜ ଦେବ ଭାଷାକୋଷର ପ୍ରଥମ ଖଣ୍ଡ ଓ ଦ୍ୱିତୀୟ ଖଣ୍ଡ ପାଇଁ ଦୁଇଥର ଅର୍ଥ ସାହାଯ୍ୟ କରିଥିଲେ । ଅନ୍ତିମ ଖଣ୍ଡ ପାଇଁ ସେ ପୁଣି ବରିଷ୍ଠ ଅର୍ଥ ସାହାଯ୍ୟ କରିଅଛନ୍ତି ।

ଦାନ ବିଷୟରେ ଯେଉଁ ତତ୍ପରତା ମୁଁ ନୟାଗଡ଼ ରାଜ୍ୟାଧୀଶ୍ୱର ରାଜା ଶ୍ରୀ କୃଷ୍ଣଚନ୍ଦ୍ର ସିଂହ ମାନ୍ଧାତାଙ୍କଠାରେ ଅନୁଭବ କଲି, ଏ ଅନୁଭୂତି ଅନ୍ୟତ୍ର ମୋ ଭାଗ୍ୟରେ ଘଟି ନଥିଲା । ରାଜା ସାହେବଙ୍କ ସଙ୍ଗେ ମୋର ପୂର୍ବରୁ ଆଳାପ ନ ଥିଲା । ତାଙ୍କ ଦେବାନ୍ କର୍ମପ୍ରବୀଣ ଶ୍ରୀଯୁକ୍ତ ଜନାର୍ଦ୍ଦନ ନନ୍ଦ ବି. ଏ ମହାଶୟଙ୍କୁ ଭାଷାକୋଷର ସପ୍ତମଖଣ୍ଡର ମଙ୍ଗଳ ମୁଣ୍ଡରେ ପଡ଼ିଥିବା ପାଇଁ ଅନୁଭୂତ ଅଭାବ ବିଷୟ ଜଣାଇଲି । ସେ ରାଜା ସାହେବଙ୍କୁ ଜଣାଇ ମୋ ସଙ୍ଗେ ରାଜଧାନୀରେ ତାଙ୍କର ଭେଟ ହେବାର ବ୍ୟବସ୍ଥା କରିଦେଲେ । ମୁଁ ରାଜା ସାହେବଙ୍କ ସଙ୍ଗେ ଦେଖା କରି

'ବସ୍ତ୍ରଯଜ୍ଞତୁ ବା ନ ବା ନାରେନ୍ଦ୍ରୋ
ଯଦି କାଂକ୍ଷି କବିଭାବତୀଂଶ୍ରୁତେ ।'

(ରାଜା ମୋ କଥା ଥରେ କାନରେ ଶୁଣନ୍ତୁ, ତେଣିକି ତାଙ୍କଠାରୁ ଧନ ନ ବାହାରିଲେ ସେଥିପାଇଁ ମୁଁ ସିନା ଦୋଷୀ ହେବି; କାରଣ, ମୁଁ ତାଙ୍କ ଦାନର ଉପଯୁକ୍ତ ପାତ୍ର ଅଟେ ବୋଲି ତାଙ୍କ ମନରେ ମୁଁ ଧାରଣା ଜନ୍ମାଇ ନ ପାରିଲି ବୋଲି ସିନା ସେ ଧନ ନ ଦେଲେ) ଏହି ଶ୍ଳୋକାଂଶଟି ଆବୃତ୍ତି କଲି । ରାଜା ସାହେବଙ୍କ ନାରିକେଳଶସ୍ୟକୋମଳ ହୃଦୟ ମୌନରୂପ ସଢେଇ ଦ୍ୱାରା ଆବୃତ । ସେ ସଢେଇକୁ ନିବାରଣ କରିବାରେ ସମର୍ଥ ହେବାରୁ ମୁଁ ସୁମଧୁର ନାରିକେଳ ଗର୍ଭଗତ ମଧୁର ଶସ୍ୟ ଓ ସୁମଧୁର ଜଳ ପାନ କରି ପରିତୃପ୍ତ ହେଲି । ରାଜା ସାହେବ ମୋଠାରୁ ସପ୍ତମଖଣ୍ଡର ଉପସ୍ଥିତ ପରିସ୍ଥିତି ବିଷୟ ଶୁଣିଲେ । ମୋର ଅତି କେତେ ମୁଦ୍ରା ଲୋଡ଼ାଥିବା କଥା ଜଣାଇବାରୁ ସେ ତତ୍‌କ୍ଷଣାତ୍ ଲୋଡ଼ା ଧନ ଦେବାକୁ ଦେବାନ ସାହେବଙ୍କୁ ସୂଚନା ଦେଲେ ଓ ଦେବାନ୍ ସାହେବ ସଙ୍ଗେ ସଙ୍ଗେ ଉକ୍ତ ଧନ ମୋତେ ଦେଲେ । ଦାନ ବିଷୟରେ ଏପରି ତତ୍ପରତା ଏଥିପୂର୍ବେ ମୋର ଅନୁଭବ ହୋଇ ନଥିଲା । ଏ ସହୃଦୟତା ଦେଖି ମୁଁ ମୁଗ୍ଧ ହୋଇଅଛି ।

ରୋମକ ସମ୍ରାଟ୍ ଜୁଲିଅସ୍ ସୀଜର୍ ଅଫ୍ରିକା ଯାଇ ସେ ରାଜ୍ୟ ଜୟ କରି ସେଠାରୁ ଫେରିଆସି କହିଥିଲେ 'ଭେନି, ଭିଡ଼ି, ଭିସି' (ଲାଟିନ)— ମୁଁ ଗଲି, ମୁଁ ଦେଖିଲି, ମୁଁ ଜିଣିଲି । ମୋର ନୟାଗଡ଼ ଅନୁଭୂତି ସେହିପରି ହେଲା । 'ମୁଁ ନୟାଗଡ଼ ଗଲି, ରାଜା ସାହେବଙ୍କୁ ଭେଟିଲି, ଅଭାବ ଜଣାଇଲି, ଟଙ୍କା କାନରେ ବାନ୍ଧିଲି, ଆଶ୍ରମକୁ ବାହୁଡ଼ିଲି ।'

ନିମ୍ନଲିଖିତ ବନ୍ଧୁମାନେ ସବୁପ୍ରକାର କଳ୍ପନୀୟ ଉପାୟରେ ମୋତେ ସାହାଯ୍ୟ କରିଅଛନ୍ତି । କିଏ ପ୍ରଥମ ଖଣ୍ଡ ଆରମ୍ଭରୁ ଆଜିପର୍ଯ୍ୟନ୍ତ, କିଏ ପାଣ୍ଡୁଲିପି ସମାପ୍ତି ଠାରୁ ଆଜି ପର୍ଯ୍ୟନ୍ତ, କିଏ ଶବ୍ଦ ଯୋଗାଇ, କିଏ ଧନାଗମନର ଉପାୟ ବତାଇ ଓ ନିଜେ କରି, କିଏ ଭାଷାକୋଷ ପ୍ରତି ପୃଷ୍ଠପୋଷକ, ଅର୍ଥସହାୟକ, ଅଭିଭାବକ, ଗ୍ରାହକ ଆଦିଙ୍କ ଦୃଷ୍ଟି ଆକର୍ଷଣ କରି, କିଏ ଭାଷାକୋଷର ଓ ଏହାର ସଂଗ୍ରାହକର ପକ୍ଷ ସମର୍ଥନ କରି, କିଏ ପ୍ରଚାର କରି, କିଏ ମଙ୍ଗଳକାମନା କରି, କିଏ ସାହାଯ୍ୟ-ଦାତାମାନଙ୍କ ପାଖେ ଅନୁରୋଧ କରି, କିଏ କଳକଳ କରି, ସବୁଉପାୟରେ ଭାଷାକୋଷର ମଙ୍ଗଳ କାମନା ଓ ମଙ୍ଗଳ କାର୍ଯ୍ୟ କରିଅଛନ୍ତି ।

ସେମାନଙ୍କ ପ୍ରସଙ୍ଗରେ ପ୍ରଥମେ ଅଠମଲ୍ଲିକ ରାଜାଙ୍କ ଦେବାନ୍, ସୋଦର ପ୍ରତିମ ରାୟ ସାହେବ ବାମଦେବ ମିଶ୍ର ବି. ଏ. ଙ୍କ ନାମ ଉଲ୍ଲେଖ ଯୋଗ୍ୟ ବୋଲି ମନେକରୁଅଛି । ଅଭିଧାନଗତ 'କାୟମନୋବାକ୍ୟ' ପ୍ରୟୋଗ ପୂର୍ବକ ଭାଷାକୋଷର ହିତସାଧନ ମୁଁ ତାଙ୍କଠାରେ ଅନୁଭବ କରିଅଛି । ଭାଷାକୋଷର ସାଫଲ୍ୟ ଓ ପ୍ରତିଷ୍ଠା ନିମନ୍ତେ ସେ କାୟମନୋ ସହ ଉଦ୍ୟମ ଓ କାର୍ଯ୍ୟ କରିଅଛନ୍ତି । ପ୍ରଥମ ଖଣ୍ଡର ପ୍ରକାଶ ପରେ ତାଙ୍କ ସଙ୍ଗେ ମୋର ଦେଖାହେଲା । ସେହି ଦିନଠାରୁ ସେ ଯେତେ ଯେତେ କ୍ଷେତ୍ରରେ ଓ ଦେଶବିଦେଶରେ ପର୍ଯ୍ୟଟନ କରିଅଛନ୍ତି, ସର୍ବତ୍ର ଭାଷାକୋଷର ପୂର୍ତ୍ତି ଓ ପ୍ରଚାର ପାଇଁ ଅଧ୍ୟବସାୟ ସହକାରେ ନିଷ୍ଠାପର ଯତ୍ନ କରିଅଛନ୍ତି । ଯାଜପୁର ଓ ଗଞ୍ଜାମର ପ୍ରଚଳିତ ପ୍ରାଦେଶିକ ଶବ୍ଦ ସଂଗ୍ରହ, ଭାଷାକୋଷପାଇଁ ଅର୍ଥସହାୟକ, ଗ୍ରାହକ ଓ ଅର୍ଥ ସଂଗ୍ରହ, ଭାଷାକୋଷ ପ୍ରତି ଗଡ଼ଜାତସମୂହର ରେସିଡେଣ୍ଟ, ପୋଲିଟିକାଲ୍ ଏଜେଣ୍ଟ, ରାଜା, ମହାରାଜାଆଦିଙ୍କ ଦୃଷ୍ଟି ଆକର୍ଷଣବ୍ରତ ତାଙ୍କ ଦୈନନ୍ଦିନ ଅବଶ୍ୟକର୍ତ୍ତବ୍ୟରୂପେ ସେ ଗ୍ରହଣ କରିଅଛନ୍ତି । ଭାଷାକୋଷ ଶତ ଶତ ଭକ୍ତଙ୍କ ନିଷ୍ଠାପର ସେବା ଓ ସାହାଯ୍ୟ ଉପରେ ପ୍ରତିଷ୍ଠିତ ହୋଇଅଛି; କିନ୍ତୁ ତାଙ୍କ ସାହାଯ୍ୟ ଅତୁଳନୀୟ ।

ଭାଷାକୋଷ ପାଇଁ ବିହାର ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କ ମଞ୍ଜୁରି ଅର୍ଥ ବିଷୟ ପ୍ରାଦେଶିକ ସଭାରେ ଉପସ୍ଥାପିତ ହେବାବେଳେ ମୋର ଆବାଲ୍ୟ ବନ୍ଧୁ ଦେବାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ର ଏ ଗ୍ରନ୍ଥ ପାଇଁ ଗଭର୍ଣ୍ଣମେଣ୍ଟଙ୍କ ଠାରୁ ସାହାଯ୍ୟ ଅବଶ୍ୟ ଦେୟ ବୋଲି ଅନୁରୋଧ କରିଥିଲେ ।

ରାୟ ବାହାଦୁର ଲକ୍ଷ୍ମୀଧର ମହାନ୍ତି ଏ ଗ୍ରନ୍ଥର ଜଣେ ପ୍ରଧାନ ଭକ୍ତ । ଭାଷାକୋଷର ଅର୍ଥସଙ୍କଟ ଉପସ୍ଥିତ ହେବାକ୍ଷଣି ମୁଁ ତାଙ୍କ ଦ୍ୱାରସ୍ଥ ହୋଇ ଥାଏ । ତାଙ୍କ ଦ୍ୱାର ମୋ ପାଇଁ ସବୁବେଳେ ଉଦୁଆ ।

ସୁଲେଖକ, ଜନ ସେବକ ଡାକ୍ତର ରାଧାଚରଣ ପଣ୍ଡା ଭାଷାକୋଷର ପାଣ୍ଡୁଲିପିମାନ ଦେଖି ଆଜକୁ ୧୨।୧୩ ବର୍ଷ ପୂର୍ବେ ଭାଷାକୋଷର ମୂଲ୍ୟ ପାଇଁ କହୁନା ଟ ୫୧ ମୋତେ ଦେଇଗଲେ । ସେ ସମୟରେ ଭାଷାକୋଷର ମୁଦ୍ରଣ ଓ ପ୍ରକାଶର ଆଶା ନ ଥିଲା । କିନ୍ତୁ ସେ ମତେ ମୁଖାଁରେ ଓ ପତ୍ର ଦ୍ୱାରା ଲେଖିଲେ 'ଆପଣଙ୍କ ଭାଷାକୋଷ' ରୂପ ଜାତୀୟ ଗ୍ରନ୍ଥ ଅପ୍ରକାଶିତ ହୋଇ ରହିବ ନାହିଁ ।'

ପୁରୀର ରାଜା ଶ୍ରୀ ଶ୍ରୀ ଶ୍ରୀ ରାମଚନ୍ଦ୍ର ଦେବ ଓଡ଼ିଶା ଗଜପତି ମହାରାଜ ତାଙ୍କ ମାତା ବାମଣ୍ଡା ରାଜପିତାମହୀଙ୍କ ଦୃଷ୍ଟି ଭାଷାକୋଷ ପ୍ରତି ଆକର୍ଷଣ କରିଥିଲେ ।

ସରାଇକେଲା ଟିକାଏତ ଶ୍ରୀ ନୃପେନ୍ଦ୍ରନାରାୟଣ ସିଂହଦେବ ବି. ଏ. ବି. ଏଲ୍; ଶ୍ରୀମତୀ ସରଳା ଦେବୀ ଏମ୍. ଏଲ୍. ଏ.; ଶ୍ରୀମତୀ ଅପର୍ଣ୍ଣା ଦେବୀ, ନାୟିକା; ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ବି. ଏଲ୍. ଏମ୍.ଏଲ୍. ଏ, ଓଡ଼ିଶାର ଭୂତପୂର୍ବ ମନ୍ତ୍ରୀ; ବିହାର ଓଡ଼ିଶା ଶିକ୍ଷା ବିଭାଗର ପୂର୍ବତନ ଡାଇରେକ୍ଟର ଶ୍ରୀଯୁକ୍ତ ଜି.ଇ ଫକସ୍ ସି.ଆଇ.ଇ, ଆଇ.ସି.ଏସ୍; ଓଡ଼ିଶାର ଭୂତପୂର୍ବ କମିଶନର୍ ଶ୍ରୀ ସି. ଏଲ୍. ଫିଲିପ୍ ସି. ଆଇ. ଇ, ଆଇ. ସି. ଏ.;

The Late Raja Satchidananda
Tribhubana Deb of Bamra.



ସ୍ୱର୍ଗତ ବାମଣ୍ଡାଧୀଶ୍ୱର ରାଜା ଶ୍ରୀ ସଚ୍ଚିଦାନନ୍ଦ
ତ୍ରିଭୁବନ ଦେବ

Raja Sri Sri Sri Ramachandra Deb
Gajapati of Utkal



ଉତ୍କଳର ଗଜପତି ରାଜା ଶ୍ରୀ ଶ୍ରୀ ଶ୍ରୀ ରାମଚନ୍ଦ୍ର ଦେବ

The Late Raja Sri Basudeb
Sudhala Dev, K. C. I E., Bamra



ସ୍ୱର୍ଗତ ରାଜା ସର୍ ବାସୁଦେବ ସୁଢଳଦେବ,
କେ. ସି. ଆଇ. ଇ., ବାମଣ୍ଡା

The Late Raja
Dibyasankar Sudhal Deb, Bamra



ସ୍ୱର୍ଗତ ବାମଣ୍ଡାଧୀଶ୍ୱର
ରାଜା ଶ୍ରୀ ଦିବ୍ୟଶଙ୍କର ସୁଢ଼ଳଦେବ

Sriman Pradipta Ganga Deb,
Jubaraj Saheb, Bamra



ବାମଣ୍ଡା ଯୁବରାଜ ଶ୍ରୀମାନ୍ ପ୍ରଦୀପ୍ତ ଗଙ୍ଗ ଦେବ

ଓଡ଼ିଶା ଶିକ୍ଷାବିଭାଗର ପୂର୍ବତନ ଡାଇରେକ୍ଟର୍ ମିଷ୍ଟର୍ ଏଚ୍. ଡାମ୍ପିୟର୍, ସି. ଆଇ. ଇ, ଏସ୍ ଓ, ଆଇ. ଇ. ଏସ୍, ଓଡ଼ିଶା ଶିକ୍ଷାବିଭାଗର ବର୍ତ୍ତମାନ ଡାଇରେକ୍ଟର୍ ଶ୍ରୀ ଶ୍ୟାମଚରଣ ତ୍ରିପାଠୀ ଆଇ. ଇ. ଏସ୍; ରାୟବାହାଦୁର ମୋତିଲାଲ୍ ଦାସ ଏମ. ଏ, ଶ୍ରୀଯୁକ୍ତ କ୍ଷୀରୋଦଚନ୍ଦ୍ର ନିୟୋଗୀ ମୟୂରଭଞ୍ଜର ଭୂତପୂର୍ବ ଦେୱାନ୍ ଓ ବର୍ତ୍ତମାନ ପରାମର୍ଶଦାତା; ଶ୍ରୀଯୁକ୍ତ ରାୟବାହାଦୁର ଅରୁଣକୁମାର ଘୋଷ ଅବସରପ୍ରାପ୍ତ ଜିଲ୍ଲା କଲେକ୍ଟର ଓ ବର୍ତ୍ତମାନ ବାମଣ୍ଡା ଷ୍ଟେଟର ଦେୱାନ, ଶ୍ରୀ ପ୍ରାଣକୃଷ୍ଣ ପଢ଼ିଆରୀ ଏମ. ଏ. ରେଭେନ୍ସା କଲେଜର ପ୍ରିନ୍ସିପାଲ; ରାୟବାହାଦୁର ଲକ୍ଷ୍ମୀଧର ମହାନ୍ତି ଆଡ୍‌ଭୋକେଟ; ରାୟବାହାଦୁର ଚକ୍ରପାଣି ଆଚାର୍ଯ୍ୟ, ଏମ୍. ଏ. ବି.ଏଲ; ରାୟ ବାହାଦୁର ଉମାଚରଣ ଦାସ, ରାୟସାହେବ ପ୍ରକାଶଚରଣ ପଟ୍ଟନାୟକ କଟକ; କେନ୍ଦୁଝରର ଶ୍ରେଷ୍ଠରାୟ ଶ୍ରୀ ଲକ୍ଷ୍ମୀନାରାୟଣ ଭଞ୍ଜଦେଓ, ରାୟସାହେବ ବିଶ୍ୱମ୍ଭର ମିଶ୍ର; ରାୟସାହେବ ମନ୍ମଥନାଥ ବସୁ ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ; ରାୟସାହେବ ସୋମନାଥ ମହାପାତ୍ର; ରାୟସାହେବ ପ୍ରଭାତରଞ୍ଜନ ଦତ୍ତ, ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କ ସେକ୍ରେଟେରିଏଟ୍‌ର ହେଡ୍ ଆସିଷ୍ଟାଣ୍ଟ; ରାୟସାହେବ ସେଠ ଗିରିଧାରି ଲାଲ ମୋଦି, କଟକ; ଶ୍ରୀ ହରେକୃଷ୍ଣ ମହତାବ ଅଲ୍ ଇଣ୍ଡିଆ କଂଗ୍ରେସ ୱାର୍କିଙ୍ଗ୍ କମିଟିର ପ୍ରଥମ ଓଡ଼ିଆ ସଦସ୍ୟ; ପାଲଲହଡ଼ାର ଦେୱାନ ଶ୍ରୀଯୁକ୍ତ ଧ୍ରୁବପ୍ରସାଦ ଦେବ; ବାମଣ୍ଡା ଷ୍ଟେଟର ଏସ. ଡି. ଓ ଶ୍ରୀ ଅଦ୍ୱୈତଚରଣ ମହାନ୍ତି; ବାମଣ୍ଡା ଷ୍ଟେଟର ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ନିତ୍ୟାନନ୍ଦ ସାହୁ; ଓଡ଼ିଶା ଗଭର୍ଣ୍ଣମେଣ୍ଟ ହୋମ୍ ଡିପାର୍ଟମେଣ୍ଟର ହେଡ୍ ଆସିଷ୍ଟାଣ୍ଟ ମିଷ୍ଟର୍ ଇ, ଜି. ସାମୁଏଲ; ଓଡ଼ିଶା ସରକାରଙ୍କ ସେକ୍ରେଟେରି ମିଷ୍ଟର ଆର. ପି. ୱାର୍ଡ ଆଇ. ସି. ଏସ. କଟକର ଭୂତପୂର୍ବ କଲେକ୍ଟର; ନୟାଗଡ଼ ଷ୍ଟେଟର ଦେୱାନ ଶ୍ରୀଯୁକ୍ତ ଜନାର୍ଦ୍ଦନ ନନ୍ଦ; ନୟାଗଡ଼ର ଦେବୋତ୍ତର ମାନେଜର ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଲାଲ; ନୟାଗଡ଼ର ଟ୍ରେଜେରୀ ଅଫିସର ଶ୍ରୀଯୁକ୍ତ ଅକ୍ଷୟ କୁମାର ଘୋଷ, ମୋର ଆବାଲ୍ୟ ବନ୍ଧୁ ଶ୍ରୀ ଶଶିଭୂଷଣ ରାୟ; ଖଲ୍ଲିକୋଟ, ଆଠଗଡ଼ ଓ ଢରୁଳ ରାଜ୍ୟର ଦେୱାନ୍ ଶ୍ରୀ ଜଗମୋହନ ପଟ୍ଟନାୟକ; ତାଳଚେରର ଅଧୀଶଙ୍କ ସେକ୍ରେଟେରି ଶ୍ରୀ ଜଗନ୍ମୋହନ ମିଶ୍ର; କେନ୍ଦୁଝରର ଅଫିସ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀ ବଂଶୀଧର ମହାନ୍ତି; ଗଞ୍ଜାମର ଶ୍ରୀଯୁକ୍ତ ଲାଲମୋହନ ପଟ୍ଟନାୟକ ବି. ଏଲ. ଓକିଲ, ଶ୍ରୀ ଯଦୁମଣି ମଙ୍ଗରାଜ ଏମ. ଏଲ. ଏ; କଟକ ମିଉନିସିପାଲିଟିର ଚେୟାରମ୍ୟାନ୍ ଶ୍ରୀମାନ୍ ଭାଗୀରଥୀ ମହାପାତ୍ର ଏମ୍. ଏ. ବି. ଏଲ୍; ଅରୁଣୋଦୟ ପ୍ରେସର ମାନେଜର ଚଉଧୁରୀ ମଧୁସୂଦନ ମହାପାତ୍ର; ସାକ୍ଷିଗୋପାଳ ଇଉନିଅନ୍ ବୋର୍ଡ଼ ଭାଇସ୍ ପ୍ରେସିଡେଣ୍ଟ ଶ୍ରୀ ମଦନମୋହନ ମିଶ୍ର, ନବ ଓଡ଼ିଶାର ଓ ଦୈନିକ ଆଶାର ସମ୍ପାଦକ ଶ୍ରୀ ଶଶିଭୂଷଣ ରଥ; ଦେଶକଥାର ସମ୍ପାଦକ ଲାଲା ନଗେନ୍ଦ୍ରକୁମାର ରାୟ; ବ୍ରହ୍ମପୁର ଓଡ଼ିଆ ପତ୍ରିକାର ସମ୍ପାଦକ ଶ୍ରୀମାନ୍ ଆନନ୍ଦ ଆଚାର୍ଯ୍ୟ; ସରାଇକଳାର ରାଜକର୍ମଚାରୀ ଶ୍ରୀମାନ୍ ଶ୍ୟାମାପଦ ଷଡ଼ଙ୍ଗୀ; ଜନ୍ମଭୂମିର ପଣ୍ଡିତ ଶ୍ରୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ; କଟକ ପବ୍ଲିସିଙ୍ଗ୍ ହାଉସ୍‌ର ସ୍ୱତ୍ୱାଧିକାରୀ ଶ୍ରୀମାନ୍ ଉମାଚରଣ ମହାନ୍ତି; ଅଳି ଇଷ୍ଟେଟର ମାନେଜର୍ ଶ୍ରୀ ଗୋବିନ୍ଦ ପ୍ରସାଦ ସିଂହ; ଆଠଗଡ଼ର ଶ୍ରୀ ଶ୍ରୀନାଥ ସାମନ୍ତ; ଶ୍ରୀ ଦୀନବନ୍ଧୁ ରଥ; ଶ୍ରୀ ବାଳକୃଷ୍ଣ ମହାନ୍ତି; ଗଞ୍ଜାମ ବ୍ରହ୍ମପୁରର ଇନ୍‌କମ୍‌ଟାକ୍ସ ଅଫିସର୍ ଶ୍ରୀ ଏନାମୁର୍ ରହେମାନ୍ ସାହେବ; ଦ୍ୱାରଭଙ୍ଗା ପୁସ୍ତକ ଭଣ୍ଡାରର ସ୍ୱତ୍ୱାଧିକାରୀ ପଣ୍ଡିତ ଶ୍ରୀ ତ୍ରିଲୋଚନ ଶରଣ; ଉକ୍ତ ଭଣ୍ଡାରର ସହକାରୀ ମାନେଜର ଶ୍ରୀ ରାମେଶ୍ୱର ଝା; କଟକ ଫକସ୍ ବୈଶ୍ୟ ବିଦ୍ୟାଳୟର ଶିକ୍ଷକ ପଣ୍ଡିତ ସୁରେଶଚନ୍ଦ୍ର ଝା କାବ୍ୟ-ତୀର୍ଥ ବ୍ୟାକରଣ ଶାସ୍ତ୍ରୀ ହିନ୍ଦୀବିଶାରଦ; ଉକ୍ତ ବିଦ୍ୟାଳୟର ହେଡ୍ ପଣ୍ଡିତ ଲକ୍ଷ୍ମୀନାରାୟଣ ଠାକୁର ହିନ୍ଦୀ ବିଶାରଦ; ଇମ୍ପିରିଆଲ୍ ବ୍ୟାଙ୍କ୍ କଟକ ଶାଖାର ଟ୍ରେଜରର୍ ଶ୍ରୀଯୁକ୍ତ ରୂପନାରାୟଣ ଉପାଧ୍ୟାୟ; ବୌଦ୍ଧ ଓ ଖଣ୍ଡପଡ଼ାର ପୂର୍ବତନ ଦେୱାନ ଶ୍ରୀ ବଟକୃଷ୍ଣ ମହାନ୍ତି, ବି.ଏ; ଶ୍ରୀ ଭୁବନାନନ୍ଦ ଦାସ, ଏମ୍. ଏଲ୍. ଏ. (ସେଣ୍ଟ୍ରାଲ); ଶ୍ରୀକୃତସ୍ୱାମିପଦମଣ୍ଡିତ ଶ୍ରୀମାନ୍ ବଚଣାନନ୍ଦ ଦାସ, ଆଡ୍‌ଭୋକେଟ୍, ସୁଦର୍ଶନ ପତ୍ରିକାର ସମ୍ପାଦକ ପଣ୍ଡିତ ଶ୍ରୀ ପରୀକ୍ଷିତ ଦାଶ; କଟକ ଜଜ୍‌କୋର୍ଟ ସିରସ୍ତାଦାର ଶ୍ରୀ ନିତ୍ୟାନନ୍ଦ ମିଶ୍ର; ହେଡ୍‌କ୍ଲର୍କ ଶ୍ରୀ ଦଣ୍ଡନାଥ ମିଶ୍ର, କଟକ ସ୍କୁଲ ସମୂହର ଡିଷ୍ଟ୍ରିକ୍ଟ ଇନ୍‌ସପେକ୍ଟର୍ ଶ୍ରୀ ପଦ୍ମଚରଣ ପଟ୍ଟନାୟକ ଏମ୍. ଏ. ବି.ଟି, ବୋଡ଼ାସମ୍ବରର ଦେୱାନ ଶ୍ରୀଯୁକ୍ତ ଅନିରୁଦ୍ଧ ମିଶ୍ର, ଏମ.ଏ, ବି.ଏଲ; ପଣ୍ଡିତ ଶ୍ରୀ ନୀଳକଣ୍ଠ ଦାଶ ଏମ. ଏଲ. ଏ (ସେଣ୍ଟ୍ରାଲ) ଓଡ଼ିଶା ଗଡ଼ଜାତ ସମୂହର ପୂର୍ବତନ ପୋଲିଟିକାଲ ଏଜେଣ୍ଟ ମାଜର୍ ଡବଲ୍ୟୁ ଏଫ୍ ହେବ; ଓଡ଼ିଶା ଗଡ଼ଜାତ ସମୂହର ବର୍ତ୍ତମାନ ପୋଲିଟିକାଲ୍ ଏଜେଣ୍ଟ ଏଲ୍. ସି. ଏଲ ଗ୍ରିଫିଥ୍ ଆଇ. ସି. ଏସ୍; ଡାକ୍ତର ରାଧାଚରଣ ପଣ୍ଡା; ବିଜୟନଗର ଆନ୍ଧ୍ର ରିସର୍ଚ୍ଚ ବିଶ୍ୱଭାରତୀର ଆଚାର୍ଯ୍ୟ ଡକ୍ଟର ବି. ଶେଷଗିରି ରାଓ ଏମ. ଏ.; ଭାରତ ସେବକ ସମିତିର ସଦସ୍ୟ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏମ. ଏ; ସମ୍ବଲପୁରର ପଣ୍ଡିତ ଶ୍ରୀ ଲକ୍ଷ୍ମୀନାରାୟଣ ମିଶ୍ର; ଶ୍ରୀ ବଣ୍ଟକ୍‌ସେନ ବହିଦାର; ଶ୍ରୀଯଜ୍ଞାଜିତ ଖଣ୍ଡୁଆଲ; ଗାଙ୍ଗପୁରର ଶ୍ରୀ ଚୂଡ଼ାମଣି ନାୟକ; ବୌଦ୍ଧର ଶ୍ରୀମାନ୍ ପ୍ରହ୍ଲାଦ ବଣି; ଲଇଡାର ପଣ୍ଡିତ ଶ୍ରୀ ଗୋପୀନାଥ ବେହେରା ଓ ନନ୍ଦକିଶୋର ପଟେଲ; ପାଟଣା ଷ୍ଟେଟର ସଦର ଏସ. ଡି. ଓ. ଶ୍ରୀ ଦୁର୍ଗାଚରଣ ଦାସ ବି. ଏ. ଓ ରାଜସ୍ୱ ବିଭାଗ କର୍ମଚାରୀ ସର୍ଦ୍ଦାର ଅମର ସିଂହ, ରାୟପୁର ରାଜକୁମାର କଲେଜର ପ୍ରିନ୍ସପାଲ ମିଷ୍ଟର ଟି. ଏଲ୍. ଏଚ ସ୍ମିଥ୍ ପିଅର୍ସ୍ ଓ ସହକାରୀ ପ୍ରିନ୍ସପାଲ୍ ମିଷ୍ଟର୍ ଫର୍ବିସ୍, ଉକ୍ତ କଲେଜର ପ୍ରୋଫେସର୍ ଶ୍ରୀ ଅଜିତକୁମାର ଦାସ ବି.ଏ; ଶ୍ରୀଯୁକ୍ତ ଗଜେନ୍ଦ୍ରପ୍ରସାଦ ଦାସ ଆଡ଼ଭୋକେଟ, ପାଟଣା; ଶ୍ରୀ ତ୍ରିଲୋଚନ ପଟ୍ଟନାୟକ ସାମ୍ବାଦିକ, ପାଟଣାଷ୍ଟେଟ; କଟକର ଶ୍ରୀମାନ୍ ପୂର୍ଣ୍ଣଚନ୍ଦ୍ର ଘୋଷ; ସମ୍ବଲପୁର ଜିଲ୍ଲା-ସ୍କୁଲର ହେଡମାଷ୍ଟର ଶ୍ରୀମାନ୍ କୃଷ୍ଣଚନ୍ଦ୍ର ସେନଗୁପ୍ତ ଏମ୍. ଏ. ବି. ଇଡ଼; ଡେପୁଟି କଲେକ୍ଟର ଶ୍ରୀଯୁକ୍ତ ସତୀଶଚନ୍ଦ୍ର ଘୋଷ; ରେଭେନ୍ସା କଲେଜର ପ୍ରୋଫେସର ରାୟସାହେବ ଆର୍ତ୍ତବଲ୍ଲଭ ମହାନ୍ତି, ପ୍ରୋଫେସର ବିପିନବିହାରୀ ରାୟ; ବେଙ୍ଗଲ ନାଗପୁର ରେଲର ଟି. ଟି. ଆଇ. ଶ୍ରୀ ପଦ୍ମନାଭ ମିଶ୍ର, ବୈଦ୍ୟରତ୍ନ ଶ୍ରୀ ବାଲୁକେଶ୍ୱର ଆଚାର୍ଯ୍ୟ; ଶ୍ରୀ ପଣ୍ଡିତ ରତ୍ନାକର ଗର୍ଗବଡୁ; ଭୁବନେଶ୍ୱରର ଶ୍ରୀ ଲକ୍ଷ୍ମୀଧର ଗର୍ଗବଡୁ ପ୍ରୋପ୍ରାଇଟର ରାଧାରମଣ ପ୍ରେସ ଓ ପୁସ୍ତକାଳୟ; ଡାକ୍ତର କୈଳାଶଚନ୍ଦ୍ର ରାଓ; ବୈଦ୍ୟରାଜ ଶ୍ରୀ ଦୟାନିଧି ମିଶ୍ର; କଟକର ଭୂତପୂର୍ବ ଜେଲର ଶ୍ରୀ ସତ୍ୟବାଦୀ ପ୍ରଧାନ; କଟକ ଜେଲର ଡାକ୍ତର ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ; କଳିଙ୍ଗ ବ୍ୟାୟାମ ବିଦ୍ୟାଳୟର ଉଦ୍‌ଯୋକ୍ତା ଶ୍ରୀ ପଦ୍ମଚରଣ ରାୟ; ଓଡ଼ିଶା ଗଭର୍ଣ୍ଣମେଣ୍ଟ ପ୍ରେସର ହେଡ୍ ରିଡର ଶ୍ରୀ ନାରାୟଣ ପାଠିଆ ବି.ଏ.; ରିଡର୍ ଶ୍ରୀ କୃଷ୍ଣଚନ୍ଦ୍ର କର; ଜଜକୋର୍ଟର ସିଭିଲକୋର୍ଟ କମିସନର ଶ୍ରୀ ଜଗନ୍ନାଥ ରାଓ; ସାରସ୍ୱତ ପ୍ରେସର କର୍ମଚାରୀ ଶ୍ରୀ ଧନେଶ୍ୱର ଶତପଥୀ।

ସପ୍ତମ ଖଣ୍ଡରେ ନିମ୍ନଲିଖିତ ବ୍ୟକ୍ତିମାନଙ୍କ ସନ୍ଦର୍ଭମାନ ପ୍ରକାଶିତ ହୋଇଅଛି :—

ସାହିତ୍ୟସମ୍ରାଟ୍ ମହାରାଜ ଶ୍ରୀ ବିକ୍ରମଦେବ ବର୍ମା; ଅଧ୍ୟାପକ ଶ୍ରୀ ବିପିନ-ବିହାରୀ ରାୟ ଏମ୍. ଏ.; ପଣ୍ଡିତ ଶ୍ରୀ ଲୂଳମଣି ଦାଶ କାବ୍ୟତୀର୍ଥ ; ଶ୍ରୀ ଜଗନ୍ନାଥ ତ୍ରିପାଠୀ ବି.ଏ., ଧ. ଟି., ଯାଜପୁରର କବି ଶ୍ରୀ ଚନ୍ଦ୍ରଶେଖର ଦାସ; ମହିମାମହିମାଧର୍ମର ପ୍ରଚାରକ ବ୍ରହ୍ମଅବଧୂତ ବିଶ୍ୱନାଥ ବାବା, ଶ୍ରୀ ଶଶିଭୂଷଣ ରାୟ; କେନ୍ଦୁଝରର ଶ୍ରୀ ବଂଶୀଧର ମହାନ୍ତି; ପୁରୀ ରାମକୃଷ୍ଣଟୋଲର ଅଧ୍ୟାପକ ପଣ୍ଡିତ ଶ୍ରୀ ରାମଚନ୍ଦ୍ର ମିଶ୍ର ନ୍ୟାୟରତ୍ନ; ଭୁବନେଶ୍ୱରର ଶ୍ରୀ କେଦାରନାଥ ମହାପାତ୍ର ବି.ଏ., ଡିପ୍,ଏଡ଼; କଟକର ଶ୍ରୀ ଯୋଗେନ୍ଦ୍ରଚନ୍ଦ୍ର ଦାସ, ଜ୍ୟୋତିଷାଚାର୍ଯ୍ୟ ଶ୍ରୀ ବାଇକୋଳ ମହାପାତ୍ର ଜ୍ୟୋତିଷଭୂଷଣ:ରତ୍ନ; କଟକର ଶ୍ରୀ କାଳୀଚରଣ ପଟ୍ଟନାୟକ, ଶ୍ରୀ ବଳ୍ଲଭଚରଣ ପଟ୍ଟନାୟକ ବି.ଏ., ବି. ଏଲ୍.; ଡାକ୍ତର ଶ୍ରୀ କୈଳାଶଚନ୍ଦ୍ର ରାଓ; ମଧୁପୁରର ପଟ୍ଟାଏତ ଶ୍ରୀ ବଳଭଦ୍ର ଧୀର, ଶ୍ରୀ ଜଗବନ୍ଧୁ ସିଂହ ଏମ୍. ଏଲ୍. ଏ, କଟକ ସଚ୍ଚିଦାନନ୍ଦମଠର ମହାମହୋପଦେଶକ ଶ୍ରୀ ସ୍ୱରୂପାନନ୍ଦ ବିଦ୍ୟାବିନୋଦ ବି.ଏ; ଶ୍ରୀ ମନୋମୋହନ ଘୋଷ ବି. ଏଲ୍. ଉକିଲ କଟକ; ଶ୍ରୀ ପ୍ରଫୁଲ୍ଲଚରଣ ପଟ୍ଟନାୟକ, ସବ୍‌ଡେପୁଟି ... ।

ନିମ୍ନଲିଖିତ ବ୍ୟକ୍ତିମାନେ ଭାଷାକୋଷାଶ୍ରମରେ ଓ ଅନ୍ୟତ୍ର ଭାଷାକୋଷର ପ୍ରକାଶିତ ଖଣ୍ଡମାନ ପରିଦର୍ଶନ କରିଅଛନ୍ତି—

ପାଟଣା ହାଇକୋର୍ଟର ଜଜ୍ ମାନ୍ୟବର ଏସ୍. ପି. ବର୍ମା

କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଶ୍ରୀ ପ୍ରିୟରଞ୍ଜନ ସେନ କାବ୍ୟତୀର୍ଥ ଏମ୍. ଏ., ପି. ଆର୍. ଏସ୍.

ପାଟଣାଧୀଶ୍ୱର ମହାରାଜ ରାଜେନ୍ଦ୍ରନାରାୟଣ ସିଂହ ଦେବ ଓ ତାଙ୍କ ଗହଣରେ ସମାଗତ ଢେଙ୍କାନାଳ ଅଧୀଶ୍ୱର ରାଜା ଶଙ୍କରପ୍ରତାପ ମହେନ୍ଦ୍ର ବାହାଦୂର

ବଡ଼ଖେମିଣ୍ଡିର ରାଜା ଶ୍ରୀ ରାମଚନ୍ଦ୍ର ଗଜପତି ଦେବ ଏମ୍. ଏଲ୍. ଏ.

ଖଡ଼ିଆଳର ରାଜା ଲାଲ ଆର୍ତ୍ତତ୍ରାଣ ଦେବ ଏମ୍. ଏଲ୍. ଏ,

ଓଡ଼ିଶା ସ୍ୱାସ୍ଥ୍ୟବିଭାଗର ଡାଇରେକ୍ଟର କର୍ଣ୍ଣେଲ୍ ଭର୍ଗୀକ୍

ଜିଲ୍ଲା ମାଜିଷ୍ଟ୍ରେଟ ଓ କଲେକ୍ଟର ରାୟସାହେବ ମନ୍ମଥନାଥ ବସୁ

ବ୍ରହ୍ମବିଦ୍ୟା ସମାଜର ସହକାରୀ ସଭାପତି ଶ୍ରୀଯୁକ୍ତ ହୀରେନ୍ଦ୍ରନାଥ ଦତ୍ତ ବେଦାନ୍ତରତ୍ନ ଏମ୍., ଏ., ବି.ଏଲ୍, ପି. ଆର୍. ଏସ୍.

ବ୍ରହ୍ମବିଦ୍ୟା ସମାଜ ଭାରତୀୟ ଶାଖାର ସମ୍ପାଦକ ଶ୍ରୀଯୁକ୍ତ ଜି. ଏନ୍. ଗୋଖଲେ

ଶ୍ରୀଯୁକ୍ତ ରାଧାକାନ୍ତ ଶରଣ, ସହକାରୀ ଇନ୍‌କମ୍‌ଟାକ୍ସ କମିଶନର୍, ପାଟଣା

ଶ୍ରୀ ବିଶ୍ୱନାଥ ଦାସ, ଓଡ଼ିଶାର ପୂର୍ବତନ ପ୍ରଧାନ ମନ୍ତ୍ରୀ

ଓଡ଼ିଶା ଗଭର୍ଣ୍ଣମେଣ୍ଟ ପ୍ରେସର ସୁପରିଣ୍ଟେଣ୍ଡେଣ୍ଟ ମିଷ୍ଟର୍ ସି. ଆର୍. ବାର୍ଣ୍ଣୱାଲ ଏମ୍. ବି. ଇ.

## ଭାଷାକୋଷର ତଥା ସଂଗ୍ରାହକର ସମ୍ମାନଲାଭ ଓ ପ୍ରଶଂସା

ଦଶମଖଣ୍ଡର ପ୍ରକାଶ ପୂର୍ବରୁ ମୋତେ ରାୟ ସାହେବ ଉପାଧି ଭାଇସରୟଙ୍କ ଦ୍ୱାରା ଅର୍ପିତ ହୋଇଥିଲା, ତହିଁର ସନନ୍ଦ ଓ ପଦକ ମୋତେ ଅର୍ପଣ କରିବା ଉପଲକ୍ଷରେ କଟକରେ ୨୦।୧।୧୯୩୮ ରେ ଯେଉଁ ପ୍ରାଦେଶିକ ଦରବାର ଅନୁଷ୍ଠିତ ହୋଇଥିଲା, ସେଥିରେ ମୋତେ ସମ୍ମାନ ଅର୍ପଣ କରି ଓଡ଼ିଶାର ଗଭର୍ଣ୍ଣର ମାନ୍ୟବର ସର୍‌ଜନ୍ ହବାର୍ଡ଼ ଏମ୍. ଏ. କେ. ସି. ଏସ୍. ଆଇ.; ଆଇ. ସି. ଏସ୍., ନିମ୍ନଲିଖିତ ମର୍ମରେ ଇଂରାଜୀରେ ଅଭିବାଦନ କରିଥିଲେ—

ରାୟବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜ !

"ଆମ୍ଭେ ବିଶ୍ୱସ୍ତ ହୃଦୟରେ ଏହି ଆଶା ପୋଷଣ କରୁଅଛୁଁ ଯେ ଚିରସ୍ମରଣୀୟ କୀର୍ତ୍ତିସ୍ୱରୂପୀ ଭାଷାକୋଷର ସମାପ୍ତି କରି ଆରମ୍ଭିତ ଯୋଜନାର ଉଦ୍‌ଯାପନମୂଳକ ଆପଣ ଯଶଃଶ୍ରୀମଣ୍ଡିତ ହେବେ। ଏହି ଅସାମାନ୍ୟ ସଙ୍କଳନ ଯୋଗୁଁ ଆପଣ ଉତ୍କଳର ଚତୁଃସୀମା ଅତିକ୍ରମ କରି ବହୁ ଦୂର-ଦେଶର ବିଦ୍ୱତ୍‌ମଣ୍ଡଳୀରେ ସୁଖ୍ୟାତି ଅର୍ଜନ କରିଅଛନ୍ତି । ଆପଣ ଭାଷାତତ୍ତ୍ୱାଲୋଚକରେ ବିଶିଷ୍ଟରୂପେ ସହାୟତା କରିଅଛନ୍ତି ଓ ଓଡ଼ିଆ ଜାତୀୟ କୃଷ୍ଟିର ପୁନଃପ୍ରବର୍ତ୍ତନର ପଥକୁ ସୁଗମ କରିଅଛନ୍ତି । ଏ କର୍ମରେ ଆପଣ ଯେଉଁ ତେଜସ୍ୱିତା, ଉତ୍ସାହ ଓ ପ୍ରତିଭା ନିୟୋଜିତ କରି ଉତ୍କଳର ନାମକୁ ଉଜ୍ଜ୍ୱଳତର କରିଅଛନ୍ତି, ତାହା ସୁପରିଚିତ ଓ ସମ୍ମାନିତ ହେବା ସମୀଚୀନ ହୋଇଅଛି ।

"ଯାହାଙ୍କ ସଙ୍ଗେ ବାରବର୍ଷ ପୂର୍ବେ ଆମ୍ଭର ବନ୍ଧୁତାର ସୂତ୍ରପାତ ହୋଇଥିଲା ଓ ଯାହାଙ୍କ ବନ୍ଧୁତାକୁ ଆମ୍ଭେ ତଦବଧି ମୂଲ୍ୟବାନ୍ ଜ୍ଞାନ କରି ଆସିଅଛୁଁ, ଆଜି ତାହାଙ୍କୁ ରାୟ ବାହାଦୁର ପଦବୀସୂଚକ ପଦକ ଅର୍ପଣ କରି ଆମ୍ଭେ ପରମାନନ୍ଦ ଅନୁଭବ କରୁଅଛୁଁ ।"

ଭାଷାକୋଷର ପ୍ରଥମ ଖଣ୍ଡର ପ୍ରକାଶ ହେବା ସମୟରୁ ଯେଉଁ କତିପୟ ବନ୍ଧୁ ଭାଷାକୋଷ ପ୍ରତି ତଥା ତହିଁର ଅକିଞ୍ଚନ ସଂଗ୍ରାହକ ପ୍ରତି ଅନୁରାଗ ପ୍ରଦର୍ଶନ କରିଅଛନ୍ତି ସେମାନଙ୍କୁ ଲକ୍ଷ୍ୟ କରି ସମ୍ବଲପୁରର କୃଷ୍ଣାପର କଂଗ୍ରେସ କର୍ମୀ ପଣ୍ଡିତ ଶ୍ରୀ ଲକ୍ଷ୍ମୀନାରାୟଣ ମିଶ୍ର 'ଉତ୍କଳ ସାହିତ୍ୟ ପତ୍ରିକାର ୪୧ଶ ଖଣ୍ଡ, ୩ୟ ସଂଖ୍ୟା (୧୩୪୪ ଆଷାଢ଼)ରେ ନିମ୍ନଲିଖିତ କବିତାଟି ପ୍ରକାଶ କରିଅଛନ୍ତି :—

## ଓଡ଼ିଆ ଭାଷାକୋଷ

"ଭାଷାକୋଷ ଭାରତର ଭାରତୀର କୋଷ,
ହୁଅ ମୌନ, ହେ ନିନ୍ଦକ ! ନ ଦେଖାଅ ଦୋଷ ।
କର ପ୍ରଣିପାତ ଧୀରେ ତପସ୍ୱି ଚରଣେ
ସାଧନା ଯାହାର ବାଣୀ କଭିବେପ୍ରନେ,
ବାର୍ଦ୍ଧକ୍ୟେ ଦେଖାଏ ସ୍ଥିର ଯୌବନର ତେଜ,
ନ ମାନେ ନୈରାଶ୍ୟ, ଭେଳ କଳତାର ଶେଜ—
ଯାଥାର୍ଥ୍ୟର ରଙ୍ଗଭୂମି କରେ ବିମଣ୍ଡନ
କରିବାକୁ ଉତ୍କଳର ଘାଳତା ଖଣ୍ଡନ,

ଯେଉଁ ମହାରଥୀ ପିନ୍ଧେ ପ୍ରମତ୍ତର ସାଜ,
ବୋଲାଏ ଅଜେୟ, ପୂର୍ଣ୍ଣ, ବୃଦ୍ଧ ପ୍ରହରାଜ,
ଶତ କୃତି ହେବ ତାଇ ବିଲୁପ୍ତ କ୍ରମଶେ,
ଐତିହ୍ୟର ଦାବାନଳେ ନ୍ୟାୟ ପରବେଶେ ।
ରହିବ "ଗୋପାଳ" ଭାଷାକୋଷର ଜନକ,
ବିଶ୍ୱବକ୍ଷେ ଉତ୍କଳର ଅସ୍ତିତ୍ୱ ରକ୍ଷକ ।
ନୋହି ଅକୃତଜ୍ଞ, ଅହେ ଉତ୍କଳ ସନ୍ତାନ !
ବକ୍ଷପରେ ରଖି ହସ୍ତ କର ପ୍ରଣିଧାନ—

One of the Leading Financial supporters of this volume,
Raja Sri Krushna Chandra Singh Mandhata, Ruler, Nayagarh State



ସପ୍ତମଖଣ୍ଡର ବିଶିଷ୍ଟ ଅର୍ଥସାହାଯ୍ୟକାରୀ ନୟାଗଡ଼ ରାଜ୍ୟାଧୀଶ୍ୱର
ଦାନଶୀଳ ଶ୍ରୀ ରାଜା କୃଷ୍ଣଚନ୍ଦ୍ର ସିଂହ ମାନଧାତା ।

ଶୁଣିବ ବିବେକ ବାଣୀ :—"ଯେ ମହାସ୍ଥପତି
ସ୍ଥାପିଅଛନ୍ତି ଶବ୍ଦସୌଧେ ଏ ମହା ଖ୍ୟାତି,
ବ୍ୟାକୁଳ ପରାଣେ ତାଙ୍କ ଶବ୍ଦ ସିନ୍ଧୁ ସବେ
ବାଷ୍ପାକୁଳ ନୟନେ ଦେଖି ବାଣୀ ସ୍ୱନଗବେ
ଜଣାଇଛନ୍ତି ଯୁକ୍ତକରେ—'ଏ ମହା ସମ୍ଭାର
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ କର ଅଧିକାର,
ହେ ମୋର ସ୍ୱଦେଶବାସୀ ଓଡ଼ିଆ ସୋଦରେ !'
ସୌଧସ୍ଥିତା ସିଦ୍ଧିଦାତ୍ରୀ ମୂର୍ତ୍ତିର ପାଦରେ
ନ କର ବନ୍ଦନା, ଯଦି ଅଲୋଚନା ଛଳେ
ପଡ଼ିବ ହେ ଈର୍ଷାପ୍ରସୂ ନରକ ଅନଳେ,
ଅତଶାନ୍ତ ହେବ ତାହା; ଜାତୀୟ ଜୀବନ
ଉତ୍କଳର ବରବପୁ କରି ନିଷ୍ପାସନ,
ଧାଇଁବ ବିପଥେ ନାଶେ ନିୟତି ଇଙ୍ଗିତେ;
ସହିବନ୍ତି ଏ ଦୁର୍ଦ୍ଦଶା ଅନଙ୍ଗି ଅହିତେ ?
ପକ୍ଷାନ୍ତରେ, କୃତଜ୍ଞତା ପୂରିତ ଅନ୍ତରେ,
ଦେବ ଯଦି ନ୍ୟାଯ୍ୟ ପ୍ରାପ୍ୟ ଯୁଗଯୁଗାନ୍ତରେ
ଅଦମ୍ୟ ଉଦ୍ୟୋଗମୟ ଏହି ପ୍ରହରାଜେ,
ଦେଖ, ପ୍ରିୟ ଶ୍ରେଷ୍ଠି ସହ ସର୍ବ ନରରାଜେ,
ସର୍ବଗୋଷ୍ଠୀ ଉପଗୋଷ୍ଠୀ ସର୍ବଶ୍ରେଣୀ ମିଶି,
ମିଶାଇ କଣ୍ଠର ସଙ୍ଗେ କଣ୍ଠ ଦିବାନିଶି
ଗାଅ ଯଦି ଭାଷାଛଳେ ରାଷ୍ଟ୍ରନମିତାର
ନିର୍ମଳ ବିଜୟଗାଥା, ଶକ୍ତି ଦୁର୍ନିବାର,
ଲଭିବ ହେ ପ୍ରାଣପ୍ରିୟ ! ଉତ୍କଳ ସୁନ୍ଦର,
ହୋଇବ ଭାରତବକ୍ଷେ ମହା ଧୁରନ୍ଧର ।
ଗଙ୍ଗାଠାରୁ ଗୋଦାବରୀ ଛଣିବାର ଯଶ
କୋଣାର୍କର ଶିଳ୍ପକୀର୍ତ୍ତି ଉଦାର ସରସ,—
ବାସ୍ତବ ସ୍ୱଭାବେ କର ପ୍ରଭାବ ପ୍ରସାର
ଉଡ଼ାଇବ ବୈଜୟନ୍ତୀ ଓଡ଼ିଆଜାତିର ।
ଛତିଶର ଅପୂଜନ ବିନାଶର ହେତୁ,
ପ୍ରତିଭାର ସପୂଜନ ମିଳନର ସେତୁ ।
ହେ ଉତ୍କଳବାସୀ ! ଏକା ଭାଷାକୋଷ ବଳେ
ବଜାଅ ବିଜୟଭେରୀ ଏ ତପନ ତଳେ—
ଭାରତେ, ପାଶ୍ଚାତ୍ୟେ ଅବା ସୁଦୂର ପ୍ରାନ୍ତରେ,
ଗିରିଶିରେ, ସିନ୍ଧୁପରେ, କାନନେ, ପ୍ରାଚୀରେ,
ଶତାବ୍ଦୀର ଶ୍ରେଷ୍ଠକୃତ୍ୟ କର ପ୍ରଦର୍ଶନ,
କରି ଯନ୍ତ୍ରତାର ତୁଚ୍ଛ ସଙ୍କୋଚ ବର୍ଜନ,"
ବୋଲ—ଭାଷାକୋଷ ଜୟ ! ଜୟ ! ପ୍ରହରାଜ !
ମରମୂର୍ଦ୍ଧର ତୁମ୍ଭେ ମୂର୍ଚ୍ଛାହୀନ ଆଜ ।
ମିଳନେ ମିଳାଇ ଏକା ସାଫଲ୍ୟ ନିର୍ମଳ
ବାଣୀହିଁ ମିଳନମନ୍ତ୍ରୀ, ବିଶ୍ୱର ସମ୍ବଳ !
ବାଣୀର ମନ୍ଦିରେ ରଚି ଦିବ୍ୟ ଭାଷାକୋଷ,
ଲଭିଅଛ ପ୍ରହରାଜ ବାଣୀ ପରିତୋଷ,
ଅନନ୍ତ କଲ୍ୟାଣ; ଆଉ ନାହିଁ ଭୟ ତାର—
ପାପ ପୁଣ୍ୟ ନେଇ ସେ ଯେ ଲଭିବ ନିସ୍ତାର !"

କବିସମ୍ରାଟ୍ ରବୀନ୍ଦ୍ରନାଥ ଠାକୁର ତାଙ୍କ ସେକ୍ରେଟେରୀଙ୍କ ଦ୍ୱାରା ମୋ ନିକଟକୁ ନିମ୍ନଲିଖିତ ମର୍ମରେ ଇଂରାଜୀ ପତ୍ର ଲେଖି ଅଛନ୍ତି—

ଉତ୍ତରାୟଣ
୨୦।୭।୧୯୩୮

"ବିଶ୍ୱଭାରତୀର ଗବେଷଣା ବିଭାଗର କର୍ମରେ ବିଶ୍ୱକୋଷାତ୍ମକ ଅଭିଧାନ—ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ଅତୀବ ଉପକାରୀ ଅଭିଜ୍ଞାନ ଗ୍ରନ୍ଥବୋଲି ଅନୁଭୂତ ହୋଇଅଛି । ଏଥିର ସଂଗ୍ରାହକ ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ଓ ତାଙ୍କ ସହକର୍ମିଗଣ ସେମାନଙ୍କର ଏହି ଉତ୍କୃଷ୍ଟ କର୍ମପାଇଁ ଆମ୍ଭମାନଙ୍କର ଆନ୍ତରିକ ଧନ୍ୟବାଦର ପାତ୍ର ଅଟନ୍ତି ।"

(ସ୍ୱାକ୍ଷର) ରବୀନ୍ଦ୍ରନାଥ ଠାକୁର

କଟକ ମ୍ୟୁନିସିପାଲିଟି ସରକାରଙ୍କ ସାକ୍ଷାତ୍ ତତ୍ତ୍ୱାବଧାନରେ ଥିବା ସମୟରେ ତହିଁର ପରିଚାଳକ ରାଜକର୍ମଚାରୀ ରାୟସାହେବ ସୋମନାଥ ମହାପାତ୍ରଙ୍କ ସୂଚନାକ୍ରମେ କଟକର ମାଜିଷ୍ଟ୍ରେଟ୍ ଆର୍. ପି. ୱାର୍ଡ୍ ସାହେବ (ବର୍ତ୍ତମାନ ଓଡ଼ିଶା ସରକାରଙ୍କ ସେକ୍ରେଟେରୀ) ଭାଷାକୋଷାଶ୍ରମ ଯେଉଁ ଗଳିରେ ଅବସ୍ଥିତ ହେଇ ମୁଦିତ ନର୍ମାଲ୍ ସ୍କୁଲ୍ ଗଳିକୁ "ଭାଷାକୋଷ ଲେନ୍" ନାମକରଣ କରି ଯାଇ ଅଛନ୍ତି ।

ସାହିତ୍ୟ ସମ୍ରାଟ୍ ମହାରାଜ ଡକ୍ଟର ବିକ୍ରମଦେବ ବର୍ମାଙ୍କ ଅଧିନାୟକତ୍ୱରେ ପ୍ରତିଷ୍ଠିତ ବିଜୟନଗରସ୍ଥ ଆନ୍ଧ୍ର ରିସର୍ଚ୍ଚ୍ ୟୁନିଭର୍ସିଟୀ ଗବେଷଣା ବିଶ୍ୱ ଭାରତୀ) ସପ୍ତମଖଣ୍ଡର ପ୍ରକାଶ ପୂର୍ବେ ଏ ଗ୍ରନ୍ଥର ସଂଗ୍ରାହକଙ୍କୁ "ସାହିତ୍ୟ ବିଶାରଦ" ଉପାଧିରେ ମଣ୍ଡିତ କରିଥିଲେ । ଇତି ମଧ୍ୟରେ ଆମେରିକା ଯୁକ୍ତରାଜ୍ୟ ପକ୍ଷରୁ ଭାରତର ଭାଇସ୍‌ରୟଙ୍କ ନିକଟରୁ ସମାଗତ ରାଜଦୂତ ଡକ୍ଟର୍ ପୋଷ୍ଟ୍ ହ୍ୱିଲର୍ ଏମ. ଏ ଙ୍କ ସଭାପତିତ୍ୱରେ ସମାହୃତ ଉକ୍ତ ବିଶ୍ୱ ଭାରତୀର ଗତ ସାମ୍ବତ୍ସରିକ ଉତ୍ସବରେ ୧୦।୩।୪୦ ତାରିଖରେ 'ସାହିତ୍ୟ ବିଶାରଦ' ଉପାଧିର ଉର୍ଦ୍ଧ୍ୱତନ 'ସାହିତ୍ୟ ଭୂଷଣ' ଉପାଧି ମୋତେ ଅର୍ପିତ ହୋଇଅଛି ।

ମୋ ଲିଖିତ 'ଓଡ଼ିଆ ଭାଷା ଓ ଭାଷାକୋଷ' ନାମ୍ନୀ ଇଂରାଜୀ ପୁସ୍ତିକା ଉକ୍ତ ବିଶ୍ୱଭାରତୀ ପକ୍ଷରୁ ମୁଦ୍ରିତ ଓ ପ୍ରକାଶିତ ହୋଇ ଇଉରୋପ, ଆସିଆ ଓ ଆମେରିକା ଆଦିର ବିଦ୍ୱଜ୍ଜନମଣ୍ଡଳୀଙ୍କଠାରୁ ପ୍ରେରିତ ହୋଇଅଛି ।

ରାୟପୁର ରାଜକୁମାର କଲେଜର ଅଧ୍ୟକ୍ଷ ଶ୍ରୀଯୁକ୍ତ ସ୍ମିଥ୍ ପିଅର୍ସ ଓ ଶ୍ରୀଯୁକ୍ତ ଫର୍ବିସ୍ ତତ୍ରତ୍ୟ ରାଜକୁମାରମାନଙ୍କୁ ଓଡ଼ିଆ ଭାଷା, ସାହିତ୍ୟ ଓ ଇତିହାସ ବିଷୟକ ବକ୍ତୃତା ଶୁଣାଇବା ପାଇଁ ମୋତେ ସାଗ୍ରହ ନିମନ୍ତ୍ରଣ କରି ଓ ସୁବିଧା ଦେଇ କୃତାର୍ଥ କରିଅଛନ୍ତି ।

ବ୍ରହ୍ମବିଦ୍ୟା ସମାଜ (Theosophical Socie'y)ର କାଶୀରେ ପ୍ରତିଷ୍ଠିତ ଭାରତୀୟ ଶାଖାପକ୍ଷରୁ ପ୍ରକାଶିତ ମାସିକ ପତ୍ରିକା ଭାରତୀୟ ବ୍ରହ୍ମ-ବିଦ୍ୟା (The Indian Theosophist)ର ୧୯୩୯ ସାଲର ମାର୍ଚ୍ଚ ମାସର ସଂଖ୍ୟାରେ ଉକ୍ତ ଶାଖାର ତଥା ପତ୍ରିକାର ସମ୍ପାଦକ ଶ୍ରୀଯୁକ୍ତ ଡି. ଏନ୍. ଗୋଖଲେ ଭାଷାକୋଷ ବିଷୟରେ ନିମ୍ନଲିଖିତ ମର୍ମରେ ସମ୍ପାଦକୀୟ ଲେଖା ପ୍ରକାଶ କରିଅଛନ୍ତି ।

"ଆନ୍ତର୍ଜାତିକ ସଂସଦ୍‌ରେ ଓଡ଼ିଶାର ନିଜର ଉପଯୁକ୍ତ ଆସନ ପାଇବାକୁ ବିଳମ୍ବ ଅଛି ବୋଲି ଲୁହା ଯାଉଥିଲେ ମଧ୍ୟ, ଭାଷା ବିଷୟରେ ଓଡ଼ିଶା ଆପଣା ଘରକୁ ସଜାଡ଼ିଲାଣି । ଏକମାତ୍ର ଲକ୍ଷ୍ୟସାଧନରେ ଦୃଢ଼ବ୍ରତ ଜଣେ ମାତ୍ର ବ୍ୟକ୍ତିଙ୍କ ଅଦମ୍ୟ ପରିଶ୍ରମ ଦ୍ୱାରା ସଙ୍କଳିତ, ସାତଖଣ୍ଡରେ ସମାପ୍ତ ପ୍ରାୟ ଅଠହଜାର ପୃଷ୍ଠାବ୍ୟାପୀ ଗୋଟିଏ ବିରାଟ ଅଭିଧାନର ଅଧିକାରୀ ହୋଇ

ଓଡ଼ିଆ ଜାତି ଗର୍ବ ଅନୁଭବ କରୁଅଛି। ଏଥି ମଧ୍ୟରୁ ୬ଖଣ୍ଡ ପ୍ରକାଶିତ ହେଲାଣି ଓ ସପ୍ତମ ଖଣ୍ଡ ବର୍ତ୍ତମାନ ଯନ୍ତ୍ରସ୍ଥ। ଏପର୍ଯ୍ୟନ୍ତ (ପ୍ରକାଶିତ ୬ଖଣ୍ଡରେ) ୧ଲକ୍ଷ ୫୧ ହଜାର ଶବ୍ଦ ସ୍ଥାନ ପାଇଛି ଓ ସପ୍ତମ ଖଣ୍ଡର ସମାପ୍ତି ବେଳକୁ ସଂଗୃହୀତ ଶବ୍ଦମାନଙ୍କ ସଂଖ୍ୟା ୧ଲକ୍ଷ ୮୪ ହଜାର ହେବ। ଏ ଅଭିଧାନରେ ଥିବା ପ୍ରତ୍ୟେକ ମୂଳ ଶବ୍ଦ ତଳେ ତାହାର ଉଚ୍ଚାରଣ ଇଂରାଜୀ ଅକ୍ଷର (transliteration)ରେ ଦିଆଯାଇଅଛି ଏବଂ ଶବ୍ଦମାନଙ୍କ ଓଡ଼ିଆ, ଇଂରାଜି, ହିନ୍ଦି, ବଙ୍ଗଳା, ମରହଟ୍ଟୀ ପ୍ରତିଶବ୍ଦ ଓ ଅର୍ଥ ଦିଆଯାଇଅଛି। ଆବଶ୍ୟକ ସ୍ଥଳରେ ପ୍ରାମାଣିକ ବଚନମାନ ଉଦ୍ଧୃତ ହୋଇଅଛି ଓ ଟୀକା notes) ମଧ୍ୟ ଦିଆଯାଇଅଛି। ଏହା ଅତ୍ୟନ୍ତ ପରିଶ୍ରମସାଧ୍ୟ କର୍ମ। କେବଳ ତାଙ୍କର 'ଅଶିକ୍ଷିତା' ଶ୍ୟାଳିକା ଶ୍ରୀମତୀ ପୀତାମ୍ବରୀ ଦେବୀଙ୍କ ଛଡ଼ା ଅନ୍ୟ କାହାର ସାହାଯ୍ୟ ନ ନେଇ ପ୍ରହରାଜେ ଏକା ଏ ଗ୍ରନ୍ଥର ମୌଳିକ ପାଣ୍ଡୁଲିପି ସଂକଳନ କରିଅଛନ୍ତି। ଶ୍ରୀମତୀ ପୀତାମ୍ବରୀ ଦେବୀ ଗାଆଁଗଣ୍ଡାର ଅଶିକ୍ଷିତ ବ୍ୟକ୍ତିମାନଙ୍କଠାରୁ ଶତ ଶତ ଗାଉଁଲି ଶବ୍ଦ ଉକ୍ତ ପାଣ୍ଡୁଲିପି ପାଇଁ ସଂଗ୍ରହ କରି ଆଣି ଅଛନ୍ତି। ପାଣ୍ଡୁଲିପିର ଖଠା ପ୍ରସ୍ତୁତ କରିବାକୁ ୧୪ ବର୍ଷ ଲାଗିଲା। ତହୁଁ ପରେ କେତେକ ପଣ୍ଡିତଙ୍କ ଦ୍ୱାରା ପାଣ୍ଡୁଲିପିର ତନ୍ନତନ୍ନ ସମ୍ମାର୍ଜନ କର୍ମ ସମାହିତ ହେଲା ଏବଂ ୧୯୩୧ ସାଲରେ ଗ୍ରନ୍ଥପ୍ରକାଶର ଆରମ୍ଭ ହେଲା। ସଂଗ୍ରାହକଙ୍କୁ ମୂଲ୍ୟହୀନ ହେବ ବୋଲି ତାଙ୍କ ନାମ ମୁଁ ପହିଲେ ଉଲ୍ଲେଖ ନ କରି ଶେଷକୁ ରଖିଲି। ଭାଷାକୋଷରେ ତାଙ୍କ ନାମ ମୁଦ୍ରିତ ହୋଇଅଛି। ଇହ ଜୀବନରେ ତାଙ୍କ ନାମ ଗୋପାଳଚନ୍ଦ୍ର ପ୍ରହରାଜ ବୋଲି ସେ କହନ୍ତି। ଏ ନାମର ପୂର୍ବେ 'ରାୟବାହାଦୁର' ପଦବୀ ଓ ଶେଷରେ 'ସାହିତ୍ୟ ବିଶାରଦ' ପଦବୀଟିଏ ଜୋଡ଼ା ହୋଇଛି। ସେ ଯେଉଁ ଗଳିରେ ରହନ୍ତି ସେ ଗଳିର ନାମ ହୋଇଛି 'ଭାଷାକୋଷ ଲେନ୍'। ଏ ସମସ୍ତ କର୍ମରେ—ଅର୍ଥ ଖର୍ଚ୍ଚ କଥା ଗାଧୋଇ ଯାଉ—ଏତେ ପରିଶ୍ରମ କରିବାକୁ ପଡ଼ିଛି ଯେ, ମୁଁ ବିସ୍ମିତ ହୋଇ ନିଜକୁ ପଚାରୁଛି "ସେ ଏ କାମରେ ଆଦୌ ହାତ ପୂରାଇଲେ କିଆଁ?" ମୁଁ ଏ ପ୍ରଶ୍ନର ଏହିମାତ୍ର ଉତ୍ତର କଳ୍ପନା କରୁଛି:—ବୋଧ ହୁଏ ଆଗ ଜନ୍ମରେ ସେ ଜଣେ ବୈୟା-କରଣିକ ଥାଇ ତାଙ୍କ ମାତୃଭାଷା ଓଡ଼ିଆର ଅବସ୍ଥା ଅନୁଭବ କରି ଦୁଃଖିତ ହୋଇଥିଲେ, କିମ୍ବା ବହୁଶତ ବର୍ଷ ପୂର୍ବେ ସେ କୌଣସି ଜନ୍ମରେ ଜଣେ ରାଜ୍ୟବିଜୟୀ ବୀର ଥାଇ ଓଡ଼ିଆ ଭାଷାର ଗ୍ରନ୍ଥରାଜି ନଷ୍ଟ କରି ଦେଇଥିଲେ ଓ ଏହି ଜନ୍ମରେ ତତ୍କୃତ ଋଣ ପରିଶୋଧ କରୁଅଛନ୍ତି। ଯାହାହେଉ ମୁଁ ଏତିକି ଜାଣୁଛି ଯେ, ମୁଁ ଏପରି କର୍ମ ଆରମ୍ଭ କରି ନ ଥାନ୍ତି କିମ୍ବା ଏହାକୁ ସମାପ୍ତ କରି ପାରି ନ ଥାନ୍ତି। କାହାଣୀରେ ଶୁଣିଥିଲି ଯେ, ଥଣ୍ଟରେ ଥଣ୍ଟେ ଲେଖାଏଁ ପାଣି ନେଇ ନେଇ ସମୁଦ୍ରକୁ ଶୁଖାଇବା ପାଇଁ ଟିକି ଚଢେଇ-ଟିଏ ଚେଷ୍ଟା କରିଥିଲା। ପ୍ରହରାଜଙ୍କ ପରିଶ୍ରମ ଦେଖି ମୋର ସେହି ଚଢେଇ କଥା ମନେ ପଡୁଛି।

ଯେବେ କସ୍ମିନ୍‌କାଳେ ମୁଁ ଧୈର୍ଯ୍ୟ ଦେବତାଙ୍କୁ ପ୍ରତିଷ୍ଠିତ କରିବା ପାଇଁ ଗୋଟିଏ ମନ୍ଦିର ତୋଳାଇବି ତେବେ ସେହି ମନ୍ଦିରରେ ଧୈର୍ଯ୍ୟ-ଦେବତାରୂପେ ରାୟବାହାଦୁରଙ୍କ ମୂର୍ତ୍ତିକୁ ପ୍ରତିଷ୍ଠା କରିବହିଁ କରିବି।

ଏହା ମଧ୍ୟ ଉଲ୍ଲେଖ ଯୋଗ୍ୟ ଯେ, ଓଡ଼ିଆ ଭାଷାର ପିତା ଓ ତାଙ୍କ ଶ୍ୟାଳିକା ୪ ମାସ ତଳେ ଥିଅଜଅଫିକାଲ୍ ସୋସାଇଟି (ବ୍ରହ୍ମବିଦ୍ୟା ସମାଜ)ରେ ଯୋଗ ଦେଇଛନ୍ତି।"

ବ୍ରହ୍ମବିଦ୍ୟା ପତ୍ରିକା, ୧୯୩୯ ମାର୍ଚ୍ଚ

ବୋମ୍ବାଇର ଇଣ୍ଡିଅନ୍ ପି.ଇ.ଏନ୍ P. E. N. ନାମକ ଇଂରାଜୀ ସାହିତ୍ୟିକ ପତ୍ରିକାର ୨ୟ ଖଣ୍ଡ ୬ଷ୍ଠ ସଂଖ୍ୟାରେ ଭାଷାକୋଷର ପ୍ରଶଂସାମୂଳକ ବର୍ଣ୍ଣନା କରାଯାଇଥିଲା।

କବିବର ଶ୍ରୀ ଚିନ୍ତାମଣି ମହାନ୍ତି 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ' ଶୀର୍ଷକ ନିମ୍ନଲିଖିତ ପଦ୍ୟ ତାଙ୍କ ଗ୍ରନ୍ଥାବଳୀରେ ୨ୟ ଖଣ୍ଡର ୧୫୨୫ ପୃଷ୍ଠାରେ ପ୍ରକାଶ କରିଅଛନ୍ତି। ଉକ୍ତ ଖଣ୍ଡର ୧୪୧୦ ପୃଷ୍ଠାରେ ଉତ୍କଳ ମିଳନ କାବ୍ୟରେ ଓ ତୃତୀୟ ଖଣ୍ଡର ଜୟପୁର ଶୀର୍ଷକ ଲେଖାରେ ୨୦୨ ପୃଷ୍ଠାରେ ଓ ଲାଞ୍ଜୀଗଡ଼ ଭ୍ରମଣକବିତାର ୨୪୭ ପୃଷ୍ଠାରେ ମଧ୍ୟ ଭାଷାକୋଷର ଉଲ୍ଲେଖ କରିଅଛନ୍ତି।

## ପୂର୍ଣ୍ଣଚନ୍ଦ୍ର ଭାଷାକୋଷ

ବହି ବକ୍ଷେ ବେନିଲକ୍ଷ ଶବ୍ଦ ସୁସମ୍ପଦ
ପୂର୍ଣ୍ଣଚନ୍ଦ୍ର ଭାଷାକୋଷ, ଶବ୍ଦ ଯକ୍ଷପତି,
ବାସନ୍ତୀ ପୂର୍ଣ୍ଣିମା ନିଶା ପୂର୍ଣ୍ଣଚନ୍ଦ୍ର ପ୍ରାୟ
ଉତ୍କଳ-ସାହିତ୍ୟ-ନଭ କରେ ଆଲୋକିତ।
ଉତ୍କଳୀୟ ଶବ୍ଦ-ବୃନ୍ତେ ଫୁଟିଛି ବିବିଧ
ପୁଷ୍ପ, ବଙ୍ଗ ହିନ୍ଦୀ ପୁଣି ସମୃଦ୍ଧ ଇଂରାଜୀ,
ଫୁଟେ ଯଥା କାବ୍ୟବୃନ୍ତେ ରସ, ଭାବ, ଅର୍ଥ;
ଚହଟେ ସୌରଭ ତାର ଦିଗ ଦିଗନ୍ତରେ,
ଆଘ୍ରାଣି ତା' ପ୍ରବୁଦ୍ଧ ମୁଗ୍ଧ ପାଶ୍ଚାତ୍ୟ ମଣ୍ଡଳ,—
(ସମୁନ୍ନତ ଶୁଭ୍ରାଦର୍ଶେ ଶିକ୍ଷା ସଭ୍ୟତାରେ)
ସମାପ୍ତ ସେ ସପ୍ତଖଣ୍ଡେ, ସପ୍ତସିନ୍ଧୁ ସମ
ବିରାଟ ବିଶାଳକାୟ, ବହିଛି ଉଦରେ
ବିବିଧ ରତନ-ମୁକ୍ତା ମାଣିକ୍ୟ ପ୍ରବାଳ,
ମହାର୍ହ ବିଭବ ତାହା ଦିବ୍ୟ ଜ୍ୟୋତିର୍ମୟ।
ଦେବଭୂମି ଏ ଉତ୍କଳ, ସୁତୀର୍ଥ ମାଳିନୀ
ହେଲେ ପଛେ ହୀନା, ମାତ୍ର ଗୁଣେ ଗରୀୟସୀ;
ତାର ସାରସ୍ୱତ ଶକ୍ତି, ସୂକ୍ଷ୍ମ ପ୍ରତିଭାର
ମାନଦଣ୍ଡ—"ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ଗ୍ରନ୍ଥ।"
ଦେଖି ବିଶ୍ୱଭାରତୀଙ୍କ ମହା ଦରବାରେ
ଲଭିଛି ଉତ୍କଳ ଭାଷା ଗୌରବ ଆସନ,
ନିରେଖି ଏ ଦୃଶ୍ୟ, ଗର୍ବେ ସ୍ଫୀତବକ୍ଷ ଆଜି
ଉତ୍କଳ କୋବିଦକୁଳ, ଉଲ୍ଲାସେ ଅଧୀର।
ଉଠୁଅଛି ଧନ୍ୟବାଦ ଭାଷାକୋଷ ନାମେ
ଜୟଧ୍ୱନି ସହ, ତାର ପୁଣ୍ୟ ପ୍ରତିଧ୍ୱନି
ମିଶି ସେ ଧ୍ୱନିରେ, କରେ ପୂରିତ ତାହାକୁ,
ଅମର ଦୁନ୍ଦୁଭି ବାଜେ ଉତ୍କଳ-ତ୍ରିଦିବେ।
ପ୍ରହରାଜ ତପାଧିକ ହେ ଗୋପାଳଚନ୍ଦ୍ର !
କର୍ମଯୋଗୀ ତୁମ୍ଭେ, ଚିର କର୍ମ ଉପାସକ,
ପଞ୍ଚବିଂଶ ବର୍ଷବ୍ୟାପୀ ତୀବ୍ର ଯୋଗବଳେ
ସୃଜିଲ ଯେ ସୁବିରାଟ ଶବ୍ଦ-ହିମାଳୟ,



The late Maharaja Purnnacandra Bhanj Deo



Maharaja Sir Pratap Chandra Bhanj Deo, K.C.I.E.
Ruler, Mayurbhanj State

ହେଲ ତାର ଭୁଜଂଗୁଙ୍ଗ ବନ୍ଧୁଦ୍ୱୟୁ ଜନେ
ନମିବେ ସମ୍ମୁଖେ ତାକୁ ଯୋଡ଼ି ବେନିକର ।
ରଚିଗଲ ତୁମ୍ଭେ ନିଜେ ସ୍ମୃତିସ୍ତମ୍ଭ ତବ
ରହିଲା ତୁମ୍ଭର ମୂର୍ତ୍ତି ତୁମ୍ଭ କର୍ମ ମଧ୍ୟେ,
ନେନଧାସ୍ରି ରୂପମୂର୍ତ୍ତି ନେତ୍ର ମଧ୍ୟେ ଯଥା;
ତୁମ୍ଭର ଏ ଗ୍ରନ୍ଥ-ସ୍ତୂପ ରଖିବ ତୁମ୍ଭଙ୍କୁ
ଯୁଗେ ଯୁଗେ କୃତିବର ! କହଣ ଅମର ।
ଉତ୍କଳର ଭବିଷ୍ୟତ ବଂଶଧରଗଣ
ନମିଶି ସୁବର୍ଣ୍ଣେ ତବ ସୌମ୍ୟ ଦେବମୂର୍ତ୍ତି,
ପୂଜିବେ ଭକ୍ତିରେ ସ୍ଥାପି ସ୍ୱକର୍ଣ୍ଣି ଦେଉଳେ ।
ନ ଶୁହିଁ ଶରୀରେ, ପ୍ରାଣେ, ଯାହାଙ୍କ ସକାଶେ
କଲ ତୁମ୍ଭେ ଆୟୁ କ୍ଷୟ, ସେ କୃତଜ୍ଞ ଜନେ
ବୁଝିବେ ତୁମ୍ଭର ମୂଲ୍ୟ, ମହତ୍ତ୍ୱ ନିଶ୍ଚୟ ।
ତୁମ୍ଭର ଅଦ୍ଭୁତ ଧୈର୍ଯ୍ୟ, ଅସୀମ ସାହସ,
ତ୍ୟାଗ, ଦାନ, ସହିଷ୍ଣୁତା, ସଙ୍କଳ୍ପଦୃଢ଼ତା,
ଏ ଆଦି ବଶିଷ୍ଟ ଶୁଭ ସୁଗୁଣ ନିଚୟେ
କରଣ ଆଦର୍ଶ, ଧରି ଉଚ୍ଚଲକ୍ଷ୍ୟ ତବ
ହେବେ ସବେ କର୍ମଯୋଗେ ନିରତ ସତତ,
ଢାଳିବେ ପଦ୍ମରେ ତବ ଭକ୍ତି ପୁଷ୍ପାଞ୍ଜଳି
ବରେଣ୍ୟ ଅମର ଜ୍ଞାନେ, ଅର୍ପିବେ ଆରତି
ଜାଳି ଶ୍ରଦ୍ଧା ଦୀପାବଳୀ ପ୍ରୀତି-ଜ୍ୟୋତିର୍ମୟ;
ଅମର ଯାହାର କୀର୍ତ୍ତି ସେହି ତ ଅମର ।
ମାହେନ୍ଦ୍ର ମୁହୂର୍ତ୍ତେ ଦେଖି ଉତ୍କଳ ଭାରତୀ
ତୁମ୍ଭ ଭଳି ପୁତ୍ରରତ୍ନ ଲଭିଥିଲେ, ଅଙ୍କେ,
ଉତ୍ଫୁଲ୍ଲ ମାତୃମୁଖ ତୁମ୍ଭେ ନିଜଗୁଣେ ।
ଧରିଥିଲ ଶୁଭକ୍ଷଣେ ହେ ଭାରତୀଶିଷ୍ୟ !
ମାତୃପୂଜା ବ୍ରତ, ତାହା ନିର୍ବାହ ନିମନ୍ତେ
ବଳି ଦେଇ ବାସଗୃହ, କି ଅଦ୍ଭୁତ ତ୍ୟାଗ !
ମାତୃପୂଜା ସହ କଲ ତ୍ୟାଗପୂଜା ଦେବ !
ଏହା ବିନା ବଶେଷତ୍ୱ ଉଚ୍ଚ ଆଦର୍ଶର ।
ସାରସ୍ୱତ ପ୍ରତିଭାରେ ମୁଗ୍ଧ ହୋଇ ତବ
ରାଜରାଜେଶ୍ୱର—ମହାମହିମାଭୂଷଣ,
ଅର୍ପିଲେ ତୁମ୍ଭଙ୍କୁ ଉଚ୍ଚ ଗୌରବ ଉପାଧି—
ରାୟ ବାହାଦୁର, ରହି ଜନ୍ମିତ କାଞ୍ଚନେ;
ଆବର ପିନ୍ଧାଇ ଦେଲେ ମସ୍ତକେ ତୁମ୍ଭର
ଆର୍ତ୍ତ-ଭାରତୀ-ତୀର୍ଥର ବରେଣ୍ୟ ପଣ୍ଡିତେ
ସାହିତ୍ୟ ବିଶାରଦାଖ୍ୟ ଉପାଧି ମୁକୁଟ;
ବୁଝନ୍ତି ଗୁଣିକେ ବିନା ଗୁଣର ଗୌରବ ।
ହେ ମହାସାଧକ ! କୀର୍ତ୍ତି କି ବର୍ଣ୍ଣିବ ତବ ?
ସ୍ମରି ତବ ସୁକଠୋର ଅଖଣ୍ଡ ତପସ୍ୟା
ନତ ହୁଏ ସ୍ୱତଃ ଶିର ପାଦମୂଳେ ତବ,
ଘେନ ମୋର କୃତଜ୍ଞତା, ଭକ୍ତ୍ୟଭିନନ୍ଦନ ।

ଭଦ୍ରକ
୧୯୩୭ ସାଲ } ଶ୍ରୀ ଚିନ୍ତାମଣି ମହାନ୍ତି

ମୋ ସୋଦରକଳ୍ପ ବାଲ୍ୟବନ୍ଧୁ, ଯୌବନ ସହଚର, ବାର୍ଦ୍ଧକ୍ୟ-ସୁହୃତ୍, ଉତ୍କଳ ସାହିତ୍ୟ ସମାଜର ଅନ୍ତତଃ ୨୬ବର୍ଷ ହେଲା ଅବୈତନିକ ସମ୍ପାଦକ ଓ ଅର୍ଥ ସଂଗ୍ରାହକ, ଆବାଲ୍ୟ ସାହିତ୍ୟସେବାବ୍ରତୀ, ଗ୍ରନ୍ଥକାର ଓ ସୁଲେଖକ ଶ୍ରୀ ଭାଇ ଶଶିଭୂଷଣ ରାୟ ସରସ୍ୱତୀଙ୍କ ସେବାରେ ନିଯୁକ୍ତଥାଇ କଟକର 'ଶ୍ରୀରାମଚନ୍ଦ୍ର ଭବନ' ଠାରୁ ଧବଳେଶ୍ୱର ଦ୍ୱୀପସ୍ଥ 'ଜାଭୃତନାଳୟ', ପର୍ଯ୍ୟନ୍ତ ସାପ୍ତାହିକ ଧାଁ ଧପଡ଼ରେ ଲାଗିଥାଅନ୍ତି । ଆଜକୁ ୫୬ବର୍ଷ ହେଲା ଦୁହିଁଙ୍କି ଦୁହେଁ ସଂସାରରେ, ସମାଜରେ, ସାହିତ୍ୟ କ୍ଷେତ୍ରରେ, ରାଜନୀତି-କ୍ଷେତ୍ରରେ, ଶିକ୍ଷାକ୍ଷେତ୍ରରେ କେତେ ଧକାମଧକା ଚୋଟମାଡ଼ ସହିଛୁଁ ଓ ରାଜଦରବାରଠାରୁ ମୂଳିଆଙ୍କ କୁଡ଼ିଆ ପର୍ଯ୍ୟନ୍ତ ଗସ୍ତ କରିଛୁଁ । 'କଳସଠା' ଛପିବାରୁ କଟକରେ ଥିବାଯାକେ ଦୁହିଁଙ୍କର ଦିନରେ ଅନ୍ତତଃ ଥରେ ଭେଟ ହେବାପାଇଁ ଦୁହେଁ ଚୁକ୍ତିରେ ପରସ୍ପର ବନ୍ଧା । ମୁଁ ତାଙ୍କ 'ବାଣୀପ୍ରତନ୍ତ୍ର' ପାଇଁ ଉପକରଣ ଯୋଗାଉଛି; ସେ ମୋ ଭାଷାକୋଷପାଇଁ ଉପାଦାନ ଯୋଗାଉଛନ୍ତି; ଭାଷାକୋଷପାଇଁ ସାହାଯ୍ୟଦାତାମାନଙ୍କ ପାଖେ ମୋ ସଙ୍ଗେ ଓ ଏକୁଟିଆ ଅନେକ ଓ କେତେ ଥର ଚଳ, ଛଳ, ଝଳ ଓ କଳ, ବହୁ ଦୁଃଖ ଅଙ୍ଗେ ନିଭେଇ ଅଛନ୍ତି । ଏ ସବୁର ଅବତାରଣାର ଉଦ୍ଦେଶ୍ୟ ଏହିକି, ତାଙ୍କ ଆଦେଶ ଅଦଳ କରିବା ତାକତ୍ ମୋର ନାହିଁ । ତାଙ୍କ ଅନୁଗ୍ରହାତିଶଯ୍ୟ, ଆଗ୍ରହାତିଶଯ୍ୟ, ବିଗ୍ରହାତିଶଯ୍ୟ, ନିଗ୍ରହାତିଶଯ୍ୟ ଓ ଦୁରାଗ୍ରହାତିଶଯ୍ୟରୁ ଏଡ଼ି ନପାରି (Mutual Admiration Society) ପରସ୍ପର ପ୍ରଶସ୍ତି-ଗାୟକସଙ୍ଘର ସଭ୍ୟରୂପେ ତାଙ୍କ ପ୍ରଦତ୍ତ ନିମ୍ନଲିଖିତ ସାର୍ଟିଫିକେଟ୍ ଏଠାରେ ଲିପିବଦ୍ଧ କଲି । ଯାହାଙ୍କର ମନ ହେବ ସେ ପଢ଼ିବେ, ନଇଲେ ଉଦ୍ଧୃତ ଚିହ୍ନାଙ୍କିତ ଅଂଶକୁ ଛାଡ଼ିଯିବେ ।

## "ଭାଷାକୋଷକାର

"ସଂସାରରେ ମନୁଷ୍ୟର ଅନେକ ଦଗ ଥାଏ, ସଂସାରକୁ ଅନେକ ଆଡ଼େ ବ୍ୟାପୃତ ରହିବାକୁ ହୁଏ, ଅନେକ କାର୍ଯ୍ୟ କରିବାକୁ ହୁଏ; କିନ୍ତୁ ପ୍ରହରାଜଙ୍କର ଯେବେ କୌଣସି ଦଗ ଥାଏ, ଯେବେ ସେ ସମସ୍ତ ଜୀବନରେ କିଛି ଆରାଧନା କରିଥାଅନ୍ତି, ତେବେ ତାହା ଏକମାତ୍ର ଜ୍ଞାନ । ସଂସାରରେ ମୋହର ଯେଉଁ ସମସ୍ତ ବ୍ୟକ୍ତିଙ୍କ ସହିତ ପରିଚୟ ହୋଇଅଛି ସେମାନଙ୍କ ମଧ୍ୟରୁ ଜଣଙ୍କୁ ପ୍ରହରାଜଙ୍କ ଭଳି ଜ୍ଞାନର ଅନନ୍ୟନିଷ୍ଠ ସେବକ ଦେଖି ନାହିଁ । ଉତ୍ସାହସମ୍ପନ୍ନ ଯୁବକର କ୍ଳାନ୍ତି ଅଛି, କିନ୍ତୁ ଶାସ୍ତ୍ରଚିନ୍ତାର କିମ୍ବା ସଂସାରର ଯେ କୌଣସି ଜ୍ଞାନଚର୍ଚ୍ଚାରେ ପ୍ରହରାଜଙ୍କର କେବେ କ୍ଳାନ୍ତି ଦେଖିପାରିଛି ବୋଲି ମୋହର ସ୍ମରଣ ହେଉ ନାହିଁ ।

ତାଙ୍କର ଚିନ୍ତାଶକ୍ତି ଦର୍ଶନରେ ବିସ୍ମିତ ଓ ଅବାକ୍ ହେବାକୁ ହୁଏ । ମୁଁ ଦେଖିଅଛି, ଶାସ୍ତ୍ରର ସାହାଯ୍ୟ ଗ୍ରହଣ ନ କରି ସୁଦ୍ଧା ସେ କେବଳ ନିଜର ଚିନ୍ତା ପ୍ରଭାବରେ କୋଣସି ସିଦ୍ଧାନ୍ତରେ ଉପସ୍ଥିତ ହୋଇ ଦୃଢ଼ତା ସହକାରେ କହୁଅଛନ୍ତି — ଏହା ଏହିପରି ହେବ ।

ପ୍ରହରାଜେ ଯେ ଗଣି ଗଣି ଗ୍ରନ୍ଥ ଅଧ୍ୟୟନ କରନ୍ତି ତାହା ନୁହେ; ସେ ଅଳ୍ପ ଅଧ୍ୟୟନ କରନ୍ତି, ମାତ୍ର ଚିନ୍ତା କରନ୍ତି ଅତ୍ୟନ୍ତ ଅଧିକ । କେତେଗୁଡ଼ିଏ ମାତ୍ର ଶବ୍ଦ ଅଯୁକ୍ତି କରି ସେ ସନ୍ତୁଷ୍ଟ ରହିବା ଲୋକ ନୁହନ୍ତି। ସେ ଯାହା ଧରିବେ ତାକୁ ଭାଙ୍ଗି ଗୁଣ୍ଡା କରି ତାହାର ଅନ୍ତଃସ୍ଥଳରେ କିମ୍ବା ମର୍ମସ୍ଥଳରେ ପ୍ରବେଶ ନ କରି ବିଶ୍ରାନ୍ତ ହେବେ ନାହିଁ । ଅସଲ ଖାଣ୍ଟି ଦ୍ରବ୍ୟ ଖୋଜି ବାହାର କରିବାହିଁ ତାଙ୍କର ଖିଆଲ ।

ତାଙ୍କ ହୃଦୟ କୌଣସି ସାମ୍ପ୍ରଦାୟିକ ସଂସ୍କାରରେ କଳୁଷିତ ନୁହେଁ । ପକ୍ଷପାତିତା ତାହାଙ୍କୁ ସତ୍ୟ ପଥରେ ଅନ୍ଧ କରି ଦେଇ ନାହିଁ । ସେ ନିଜର କୁ ଦେଖନ୍ତି, ମାତ୍ର ଅନ୍ୟର ସୁ ଦେଖନ୍ତି । ମୁଁ ଦେଖିଅଛି, ସେ କୌଣସି ସମ୍ପ୍ରଦାୟର, କୌଣସି ଅନୁଷ୍ଠାନର ବହିର୍ଭାଗ ନ ଦେଖି ଅନ୍ତର୍ଭାଗରେ ପ୍ରବିଷ୍ଟ ହୋଇ ତାହାର ତତ୍ତ୍ୱ ବୁଝିବାକୁ ଚେଷ୍ଟା କରନ୍ତି ।

ତାଙ୍କର ସରଳତା ପଞ୍ଚମ ବର୍ଷୀୟ ଶିଶୁ ଭଳି, ମୁଁ ଏହା ଦେଖିଅଛି ଓ ମୁଗ୍ଧ ହୋଇଅଛି । ତାହାଙ୍କ ଆହାର ବ୍ୟବହାର ସମସ୍ତହିଁ ପ୍ରୟୋଜନାନୁସାରେ । ପ୍ରଚଳିତ ପ୍ରଥା ବୋଲି ତାହାଙ୍କ ନିକଟରେ କିଛିହିଁ ନାହିଁ । ଯେତେଟିକି ପ୍ରୟୋଜନ, ସେ ସେତିକି କରିବେ; ଆହାର ବିହାର ବସନ ପରିଚ୍ଛଦ ପ୍ରଭୃତି ସର୍ବତ୍ରହିଁ ତାହାଙ୍କର ଏହି ନିୟମ ଅବ୍ୟାହତ ଭାବରେ ଚାଲିଅଛି । ପ୍ରୟୋଜନର ଅତିରିକ୍ତ ସେ କିଛିହିଁ କରନ୍ତି ନାହିଁ ।

କୌଣସି ଲେଖାରେ ଶବ୍ଦପ୍ରୟୋଗ ସମ୍ବନ୍ଧରେ ତାହାଙ୍କୁ ଏକ ନିୟମରେ ପରିଚାଳିତ ହେବା ଦେଖାଯାଏ । ହୃଦୟର ଭାବ ଯଥାଯଥ ରୂପେ ସୁବ୍ୟକ୍ତ ହୋଇପାରେ, ଏ ଭଳି ଶବ୍ଦ ପ୍ରୟୋଗରେ ତାହାଙ୍କ ଭଳି ନିପୁଣ ଲେଖକ ମୁଁ ବୋଧହୁଏ ଦେଖି ନାହିଁ । ଗୋଟିଏ ଗୋଟିଏ କ୍ଷୁଦ୍ର କ୍ଷୁଦ୍ର ବାକ୍ୟରେ ଭାବସମ୍ପଦ କି ଭଳି ସୁନ୍ଦରରୂପେ ପ୍ରକାଶିତ ହୁଏ, ଯେଉଁମାନେ ତାହାଙ୍କ ଲେଖା ପଢ଼ିଅଛନ୍ତି ସେମାନେ ଜାଣନ୍ତି । ଭାଷାକୁ ପରିପୁଷ୍ଟ କରିବା ସକାଶେ ତାହାଙ୍କର ଏହିପରି ଅନୁରାଗ । ନୂତନ ନୂତନ ଭାବର ପ୍ରକାଶ ସକାଶେ ନବ ନବ ଶବ୍ଦ ଉଦ୍ଭାବନରେ ସୁଦ୍ଧା ତାହାଙ୍କ ବିଚିତ୍ର ଶକ୍ତିର ପରିଚୟ ମିଳେ । ତାହାଙ୍କ ଉତ୍କଳକାହାଣୀ, ବୁଢ଼ାଆର ହାଲଚାଲ, ବାଇମାହାନ୍ତି ପାଞ୍ଜି, ଆମଘରର ହାଲଚାଲ, ନନାଙ୍କ ବସ୍ତାନି, ଭାଗବତ ଟୁଙ୍ଗୀରେ ସନ୍ଧ୍ୟା, ଜେଜେବାପାଙ୍କ କାହାଣୀ ପ୍ରଭୃତି ରଚନାବଳୀରେ ଏଥିର ବିଶିଷ୍ଟ ପରିଚୟ ରହିଅଛି ।

ପ୍ରହରାଜଙ୍କ ରଚନାପ୍ରଣାଳୀର ମୂଳ କେଉଁଠାରେ ଏବଂ ତାହାଙ୍କର ଅନ୍ୟଠାରେ ବୈଶିଷ୍ଟ୍ୟ କଅଣ ? ଏ ପ୍ରଶ୍ନର ଉତ୍ତର ଗୋଟିଏ କଥାରେ ଦିଆଯାଇ ପାରେ । Sir Walter Scot ଙ୍କ ପରି ସେ Wizard of Orissa—ଓଡ଼ିଶାର ଅପୂର୍ବ ଯାଦୁକର । ସେ ସୌନ୍ଦର୍ଯ୍ୟର ଉପାସକ । ସେ ତାଙ୍କ ରଚନାରେ ପ୍ରାୟ ସବୁ ରସର ଅବତାରଣା କରିଅଛନ୍ତି; କିନ୍ତୁ ସର୍ବତ୍ର ତାହାଙ୍କ ଦୃଷ୍ଟି ଯାହା ସୁନ୍ଦର ଓ ଶୋଭନ କିମ୍ବା ମନୋରମ ତାହା ଉପରେ ନିବଦ୍ଧ ରହିଥାଏ । ଜୀବନରହସ୍ୟର ବ୍ୟାଖ୍ୟା ସେ ଯାହା କରିଅଛନ୍ତି ତହିଁରେ ଦୁଃଖ କଷ୍ଟର ଦାଗ ଫୁଟି ଉଠେ ନାହିଁ । ସଂସାରର ଆଚାର ବ୍ୟବହାର ଦେଖି ସେ ବିରକ୍ତ ଓ ବିଷଣ୍ଣ ନ ହୋଇ ମନୁଷ୍ୟଜୀବନର ଅତି ହୀନ କଦର୍ଯ୍ୟ ଓ ଅବନତ ଅଂଶରୁ ସୌନ୍ଦର୍ଯ୍ୟ ଚୟନ କରିଅଛନ୍ତି । ଅତ୍ୟାଚାର, ଅବିଚାର, ଅନାଚାର ପ୍ରଭୃତି ଏ ଜାତିକୁ କେତେ ଶତାବ୍ଦୀ ହେଲା ଜର୍ଜରିତ କରିଅଛି । ସାମାଜିକ କୁପ୍ରଥା ଜାତିର ମେରୁଦଣ୍ଡକୁ ଦୁର୍ବଳ କରିଅଛି । ସ୍ୱାର୍ଥପରତା, ଭୀରୁତା, କାପୁରୁଷତା, ସଙ୍କୀର୍ଣ୍ଣତା ଓ ଅଜ୍ଞତା ପ୍ରଭୃତି ଏ ସବୁରେ ସ୍ପଷ୍ଟ ହୋଇଅଛି । ଏ ସମସ୍ତ ମଧ୍ୟରେ ଥାଇ ସୁଦ୍ଧା ପ୍ରହରାଜେ ଉତ୍କଳର ଅତୀତର ଓ ବର୍ତ୍ତମାନର ଅନ୍ତରରେ ସୌନ୍ଦର୍ଯ୍ୟର ଖଣି ସଞ୍ଚିତ ଅଛି, କେବଳ ଏ ଭଳି ଅନୁସନ୍ଧାନରେ ଓ ଇଙ୍ଗିତରେ ତାହାଙ୍କ ରଚନାବଳୀ ପୂର୍ଣ୍ଣ କରିଅଛନ୍ତି; ଏହିଭଳି ସରସତା ଓ ପ୍ରୀତିମୂଳରେ ତାହାଙ୍କର ତୀବ୍ର ସ୍ୱଦେଶାନୁରାଗହିଁ କାରଣରୂପେ ବିଦ୍ୟମାନ । ଉତ୍କଳୀୟଙ୍କ ମନରେ ପୌରୁଷର ଅଭିମାନ ଜାଗ୍ରତ କରିବାକୁ ପ୍ରହରାଜେ ଅଗ୍ରଣୀ । ଏ କାଳରେ ଦେଶକୁ ପୂର୍ଣ୍ଣାଙ୍ଗ ରୂପେ ଜାଣିବା ସକାଶେ ଚାରିଆଡ଼େ ଗୋଟିଏ ଆଗ୍ରହ ଦେଖା ଯାଉଅଛି ଓ ଦୁଃଖ ଦୈନ୍ୟ ଜଡ଼ତା ଓ ଦୌର୍ବଲ୍ୟ ଦୂର କରି ପ୍ରକୃତ ସଂସ୍କାର କରିବା ସକାଶେ କିମ୍ବା ଜାତିକୁ ଉନ୍ନତ କରିବା ସକାଶେ ବାସନା ଦୃଷ୍ଟ ହେଉଅଛି । ପ୍ରହରାଜଙ୍କ ଯୌବନ କାଳରେ ଏହା ଅସମ୍ଭବ ହୋଇଥିଲା । କିନ୍ତୁ ଆଜି ଯେ ଏହା ସମ୍ଭାବ୍ୟ ମଧ୍ୟରେ ଆସିଅଛି, ଏଥିପାଇଁ ପ୍ରହରାଜେ କୃତଜ୍ଞତାର ଅଧିକାରୀ ।

ପ୍ରହରାଜଙ୍କ ପ୍ରତିପାଦ୍ୟ ବିଷୟ ଓ ଭାବରାଶି ଦେଖି, ତାହାଙ୍କ ରଚନାଗୁଡ଼ିକର ଶିକ୍ଷା ଯେଣି ମତଦ୍ୱୈଧ ଥାଇପାରେ, କିନ୍ତୁ ତାହାଙ୍କର ଭାଷା ଓ ରୀତି ବିଷୟରେ ସହୃଦୟ ସମାଜରେ ଐକମତ୍ୟ ଅବଶ୍ୟମ୍ଭାବୀ । ଏ ଭାଷାର ତୁଳନା ନାହିଁ, କିମ୍ବା ଏ ରୀତିର ଦ୍ୱିତୀୟ ନାହିଁ । ସମ୍ରାଟଙ୍କ ନାମାଙ୍କିତ ରଜତଖଣ୍ଡ ଭଳି ଉତ୍କଳ ସାହିତ୍ୟ ରାଜ୍ୟରେ ଏହି ରୀତିହିଁ ଚଳିବ । ଅନ୍ୟ ସମସ୍ତ ମୁଦ୍ରା ଭେଣ୍ଡି—ହୁଏତ ହେଲେ କିମ୍ବା ଓଜନରେ ଭାରି ଏବଂ ଅବାଜରେ ବୋଦକା । ରଚନାର ପ୍ରଧାନ ଗୁଣ ଏବଂ ପ୍ରଥମ ପ୍ରୟୋଜନ, ସରଳତା ଓ ସ୍ପଷ୍ଟତା । ଯେଉଁ ରଚନା ଆବାଲବୃଦ୍ଧବନିତା ସମସ୍ତେ ବୁଝି ପାରନ୍ତି ଏବଂ ପଢ଼ିବା ମାତ୍ରେ ଯାହାର ଅର୍ଥ ବୁଝାଯାଏ, ଅର୍ଥଗୌରବ ଥିଲେ ତାହା ସିନା ସର୍ବୋତ୍କୃଷ୍ଟ ରଚନା ।

ପ୍ରହରାଜଙ୍କ ଭାଷା ପାଠକଙ୍କୁ ଆତଙ୍କରେ କଣ୍ଟକିତ କରେ, ଭକ୍ତିରେ ଉଚ୍ଛ୍ୱସିତ କରେ; କେବେ ଅବା ଚନ୍ଦ୍ରକୋଜ୍ଜ୍ୱଳ ବାସନ୍ତୀ ନିଶୀଥରେ କୋକିଳର କୁହୁରବ ଭଳି ହୃଦୟକୁ ନବୀନ ସୁଖସ୍ୱପ୍ନରେ ବିହ୍ୱଳ କରି ପକାଏ, କେବେ ଅବା ସକଳବନ୍ଧନ ବିହୀନ ଜୀବନ୍ମୁକ୍ତ ବୈରାଗୀଙ୍କ ଉଦାସୀନ ବାଣୀ ଭଳି ଗୃହହରା କରି ଅମ୍ଭମାନଙ୍କ ପ୍ରାଣକୁ ପରପାରର ପଥିକ ଭଳି ଉପେକ୍ଷାର ମନ୍ତ୍ରରେ ମୁଗ୍ଧ କରିଦିଏ । ଏ ଭାଷାବଳରେ ସକଳ ସୁଖର ଆଧାର, ଶାନ୍ତିର ତୀର୍ଥ କ୍ଷେତ୍ର ଉତ୍କଳର ଗୃହସ୍ଥ ମନ୍ଦିର ଚକ୍ଷୁ ସମକ୍ଷରେ ଭାସି ଉଠିଥାଏ । ପରନ୍ତୁ ସରଳତା ଓ ସ୍ପଷ୍ଟତା ଗୁଣରୁ ଅତି ଜଟିଳ ପ୍ରତିପାଦ୍ୟ ବିଷୟକୁ ମଧ୍ୟ ସରସ ଓ ହୃଦୟଗ୍ରାହୀ କରିଅଛି—ଏହି ଭାଷା । ଆଧୁନିକ ରୀତିସମସ୍ତରେ ନୂତନତ୍ୱ କିମ୍ବା ବୈଚିତ୍ର୍ୟ ଥାଇପାରେ; କିନ୍ତୁ ସାର୍ବଜନୀନ ଉପାଦେୟତ୍ୱ ନ ଥାଏ; ଏଭଳି ପ୍ରସନ୍ନତା କିମ୍ବା ଏଭଳି ଅପ୍ରତିହତ ପରିସ୍ଫୁରଣ ନ ଥାଏ । ପଦପ୍ରୟୋଗରେ ଯେ ଗୋଟିଏ ଅନୁପାତ ରକ୍ଷା କର୍ତ୍ତବ୍ୟ—ଗୋଟିଏ ସୁଷମାର ଅନୁପାତ ଲକ୍ଷ୍ୟ କରିବା ଉଚିତ, ପ୍ରହରାଜଙ୍କ ରୀତି ତାହାର ଅଦ୍ୱିତୀୟ ନିଦର୍ଶନ । ସେ ମାତ୍ରା, ସେ ସୁଷମା-ରକ୍ଷାର ନିୟମ ସୂତ୍ରାକାରରେ ନିବଦ୍ଧ କରିବା କଠିନ ।

ପ୍ରହରାଜଙ୍କ ପ୍ରତିଭା ପୁସ୍ତକବର୍ଣ୍ଣିତ ପୁରୁଭୁଜ ଭଳି ଅସଂଖ୍ୟ ବାହୁ ପ୍ରସାରିତ କରି 'ଭାଷାକୋଷରେ' ଅମ୍ଭମାନଙ୍କ ଚିନ୍ତାର ଯାବତୀୟ ଅଙ୍ଗକୁ ଆକ୍ରମଣ କରିବାକୁ ଉଦ୍ୟତ ହୋଇଅଛି ।

ଯେଉଁ ଉତ୍କଳଗୌରବ ପ୍ରକାଣ୍ଡ ଭାଷାକୋଷର ପବିତ୍ରୋଜ୍ଜ୍ୱଳ ରଶ୍ମି ପ୍ରଭାବରେ ସାହିତ୍ୟ ଗଗନ ସମୁଜ୍ଜ୍ୱଳ, ତାହାର ପରିଚୟ ଅନାବଶ୍ୟକ । ସାହିତ୍ୟର ମୃତସଞ୍ଜୀବନୀ ସୁଧାଧାରା ବ୍ୟତୀତ ଯେଉଁ ଜାତି ସଞ୍ଜୀବିତ,

Sincere wellwisher of the work
E. C. Ansorge Esq, C. I E., I. C S.
Advisor to H E the Governor of Orissa



ଏ ଗ୍ରନ୍ଥର ବଶିଷ୍ଟ ହିତକାମୀ, ଓଡ଼ିଶାର ମାନ୍ୟବର ଗଭର୍ଣ୍ଣରଙ୍କ ଆଡ୍‌ଭାଇସର୍
ଶ୍ରୀଯୁକ୍ତ ଇ ସି· ଆନ୍‌ସୋର୍ଜ, ସି. ଆଇ. ଇ., ଆଇ. ସି. ଏସ୍·

ଉଦ୍ଦୀପନା ଓ ଦେଶାତ୍ମବୋଧରେ ଅନୁପ୍ରାଣିତ ହୋଇ ନପାରେ—ଜାତୀୟ ଜୀବନ ସଂଗଠନର ଶ୍ରେଷ୍ଠ ଉପାଦାନ—ଗୌରବବର୍ଦ୍ଧନ—ମନୀଷା ଓ ପ୍ରତିଭାର ଦାନ ସ୍ୱରୂପ ଏହି ଭାଷାକୋଷକୁ ଯୁଗେ ଯୁଗେ ସ୍ୱଦେଶ ଓ ସ୍ୱଧର୍ମନିଷ୍ଠମାନେ ଉଦ୍‌ବୋଧିତ ହୋଇ ସେ ଜାତି ନିଜକୁ ଧନ୍ୟ ଓ କୃତାର୍ଥ ଜ୍ଞାନ କରୁଥିବ ।

ଓଡ଼ିଆ ଭାଷାରେ ଗୋଟିଏ ମହତ୍ ବାକ୍ୟ ଅଛି "ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ ।" ଏହି ଭାଷାକୋଷରେ କଅଣ ନାହିଁ ? ଗ୍ରନ୍ଥକାରଙ୍କର ବିଗତ ୨୭ ବର୍ଷ ବ୍ୟାପୀ ପ୍ରଚଣ୍ଡ ପରିଶ୍ରମ, ଅଭୂତପୂର୍ବ ନିଷ୍ଠା, ଉଦ୍ଦୀପନାପୂର୍ଣ୍ଣ ଏକାଗ୍ରତା, ଅସାଧାରଣ କ୍ଷମତା ଏବଂ ଧୈର୍ଯ୍ୟର ଐକାନ୍ତିକ ନିଷ୍ଠାଶୀଳତା ଏଡ଼େ ବଡ଼ ପ୍ରକାଣ୍ଡ ଗ୍ରନ୍ଥକୁ ସାଫଲ୍ୟମଣ୍ଡିତ କରିଅଛି, ଏଥିରେ ସନ୍ଦେହ ନାହିଁ । ସବୁଥିରେ ହିଁ ତାହାଙ୍କର ଅସାମାନ୍ୟ କୃତିତ୍ୱ ଦେଖି ସମସ୍ତେ ବିସ୍ମୟ ଅନୁଭବ କରନ୍ତି । ବଡଲାଟଙ୍କ ଦରବାରରେ ଯାହାଙ୍କର ସମ୍ମାନ, ତାହାଙ୍କ ଠାରେ ଅତି କ୍ଷୁଦ୍ର ଓ ନୀଚ ସ୍ତରର ହରିଜନ ସୁଲଭ କାର୍ଯ୍ୟରେ ଦକ୍ଷତା ଦେଖି କିଏ ବିସ୍ମିତ ତଥା ପୁଲକିତ ନ ହେବ ?

ବଙ୍ଗ ଦେଶରେ ଗୋଟିଏ କଥା ଅଛି "ଯୋତା ସିଲାଇଠାରୁ ଚଣ୍ଡୀପାଠ ପର୍ଯ୍ୟନ୍ତ ।" ପ୍ରହରାଜଙ୍କର ଦୈନନ୍ଦିନ କାର୍ଯ୍ୟପ୍ରଣାଳୀ ଦେଖିଲେ କେଉଁ କଥାରେ ସେ ଦକ୍ଷ ନୁହନ୍ତି, ଏହା ବୁଝି ହେବନାହିଁ । ମୁଗ ଭଜା ଚକିରେ ରଗଡ଼ି କୁଲାରେ ପାଛୁଡ଼ି ଡାଲି ବାହିବା, ବାସନ ମାଜିବା, ଅଳ୍ପ ବସ୍ତ୍ରର ବଡ଼ ଭଳି କାର୍ଯ୍ୟ କରିବା, ପାନ ଭାଙ୍ଗିବାଠାରୁ ଘର ଝାଡୁ ପରିଷ୍କାର କରିବା, କୁକୁରର ବିଷ୍ଠା ସ୍ୱହସ୍ତରେ ଉଠାଇନେବା, ନିଜର ତଥା ଅପରର ପୁସ୍ତକ ଉଠାଇବା, ଗୋବରରେ ଘସି ପାରିବା ପ୍ରଭୃତି କାର୍ଯ୍ୟରେ ସେ ସବୁବେଳେ ସିଦ୍ଧହସ୍ତ । ଏପରି ବ୍ରାହ୍ମଣୋଚିତ କର୍ମ କର୍ମୀଙ୍କର ସେ ଧୁରନ୍ଧର । ଶିବ, ବିଷ୍ଣୁ, କାଳୀ, ଦୁର୍ଗା, ଗଣେଶ, ସୂର୍ଯ୍ୟଙ୍କର ପୂଜାର ଓ ହୋମର ଉପଯୁକ୍ତ ବ୍ୟବସ୍ଥା ଓ ମନ୍ତ୍ରସମୂହ ତାହାଙ୍କର ଏକପ୍ରକାର କଣ୍ଠସ୍ଥ କହିଲେ ଅତ୍ୟୁକ୍ତି ହେବ ନାହିଁ । ଗୃହସ୍ଥାଶ୍ରମର ସାନଠାରୁ ବଡ଼ କାର୍ଯ୍ୟରେ ଅସାମାନ୍ୟ ପ୍ରତିଭାଶାଳୀ ହେଲେହେଁ ତାହାଙ୍କର ହୃଦୟ ମାନବିକତା ଓ ପ୍ରେମପ୍ରବଣତାରେ ପରିପୂର୍ଣ୍ଣ । ମାନବର ଭ୍ରାତୃତ୍ୱ ତାହାଙ୍କ ନିକଟରେ କେବଳ ଗୋଟିଏ ମୁଖୋଚ୍ଚାରିତ ବାକ୍ୟ ନୁହେଁ—ସଜୀବ ଓ ସତ୍ୟ ଆଦର୍ଶ ରୂପେ ବିଦ୍ୟମାନ । ଧନୀ, ନିର୍ଦ୍ଧନ, ଉଚ୍ଚ, ନୀଚ, ସକଳ ଅବସ୍ଥାର ଲୋକଙ୍କ ସହିତ ସେ ସମାନ ଭାବରେ ମିଶି ସୁଖୀଙ୍କ ସୁଖରେ ସୁଖୀ ହୋଇ ଓ ଦୁଃଖୀଙ୍କ ଦୁଃଖରେ ନୟନ ଅଶ୍ରୁସିକ୍ତ କରି ନିଜର ମହତ୍ ହୃଦୟର ପରିଚୟ ଦେବା ଦ୍ୱାରା ସମସ୍ତଙ୍କୁ ମୁଗ୍ଧ କରିଥାଆନ୍ତି ।

ସେ ଧନୀ ହେବା ସକାଶେ କେବେହେଁ ଆକାଂକ୍ଷା କରି ନାହାନ୍ତି । ତାହାଙ୍କ ମତରେ ଅର୍ଥସଞ୍ଚୟ କିମ୍ବା ବ୍ୟବସାୟ ବାଣିଜ୍ୟରେ କୃତକାର୍ଯ୍ୟତା ମନୁଷ୍ୟ ଶକ୍ତିର ସତ୍ୟ କିମ୍ବା ପ୍ରକୃତ ପରିଚୟ ନୁହେଁ । ପୃଥିବୀରେ ମୁଦ୍ରା ନାମକ ଦ୍ରବ୍ୟକୁ ସେ ପରମାରାଧ୍ୟ ବସ୍ତୁ ବୋଲି ମନେ କରନ୍ତି ନାହିଁ । କେବଳ ଗ୍ରାସାଚ୍ଛାଦନ ସକାଶେ ଓ ପରୋପକାର ପାଇଁ ପ୍ରୟୋଜନୀୟ ଅର୍ଥରେ ସେ ସର୍ବଦା ସନ୍ତୁଷ୍ଟ । ପରୋପକାର ସକାଶେ ତାହାଙ୍କର ଯତ୍‌ସାମାନ୍ୟ ଆୟରୁ ସେ ଅକାତର ବ୍ୟୟ କରିବାକୁ କଦାପି କୁଣ୍ଠିତ ନୁହନ୍ତି । ଏହା ତାହାଙ୍କର ପ୍ରାତ୍ୟହିକ କାର୍ଯ୍ୟପ୍ରଣାଳୀ ।

ତାହାଙ୍କର ସମୁଜ୍ଜ୍ୱଳ ମଧୁର ଓ ସର୍ବଚିତ୍ତରଞ୍ଜନ ମୂର୍ତ୍ତି ସର୍ବଦା ମୋ ନେତ୍ର ପଥରେ ପ୍ରତିଭାତ । ତାହାଙ୍କର ପ୍ରଶସ୍ତ ଲଲାଟ, ଅସାଧାରଣ ଜ୍ୟୋତିର୍ମୟ ଆକର୍ଣ୍ଣବିଶ୍ରାନ୍ତ ନୟନଦ୍ୱୟ ଏବଂ ହାସ୍ୟବିକଶିତ ସ୍ଥୂଳ ଓଷ୍ଠାଧର ମୁଖମଣ୍ଡଳର ଶୋଭା ବର୍ଦ୍ଧନ କରୁଅଛି । ତାହାଙ୍କର ଓଷ୍ଠାଧରବିନିର୍ଗତ ମଧୁମୟ ବାକ୍ୟ ସତତ ଅସାଧାରଣ ଶକ୍ତିର ଓ ପ୍ରତ୍ୟୁତ୍ପନ୍ନମତିତ୍ୱର ପରିଚୟ ଦେଇଥାଏ । ସଂସାରଚିନ୍ତା ତାହାଙ୍କର ନିର୍ମଳ ଅନ୍ତଃକରଣରେ କେବେ ଉତ୍କଣ୍ଠାର ସ୍ଥାନ ଗ୍ରହଣ କରେ ନାହିଁ । କୌଣସି ପ୍ରକାର ସାଂସାରିକ ତାପ ତାହାଙ୍କୁ କେବେ ବିଚଳିତ କରିବା ମୁଁ ଲକ୍ଷ କରିନାହିଁ । ସେ ସର୍ବଦା ହିଁ ଆନନ୍ଦମୟ, ସବୁବେଳେ ସମସ୍ତଙ୍କର ଆନନ୍ଦବର୍ଦ୍ଧକ ଓ ଚିତ୍ତାକର୍ଷକ ରୂପେ ବିବେଚିତ । ତାହାଙ୍କର ଭାବବ୍ୟଞ୍ଜକ ମୁଖଶ୍ରୀ ଉଚ୍ଚବଂଶଜାତ, ଧୀମାନ୍ ଓ ଆତ୍ମନିର୍ଭରଶୀଳ ମନୁଷ୍ୟପୁଙ୍ଗବ ଭଳି । ତାହାଙ୍କ ଦେହ ଓ ମୁଖମଣ୍ଡଳରେ ବାର୍ଦ୍ଧକ୍ୟର ଚିହ୍ନ ସୁସ୍ପଷ୍ଟ ଭାବରେ ମୁଦ୍ରିତ ହେଲେହେଁ ଯୁବଜନସୁଲଭ କାର୍ଯ୍ୟ କରିବାର ଶକ୍ତି, ସରସପଣ ଓ ଉତ୍ସାହ ବହୁଳ ପରିମାଣରେ ତାଙ୍କ ଠାରେ ଅଦ୍ୟ ପ୍ରକାଶ କରିଅଛି ।"

ତାଳଚେରର ସ୍ୱନାମଧନ୍ୟ (ବାର୍ଦ୍ଧକ୍ୟରେ ମଧ୍ୟ କିଶୋରସୁଲଭ କର୍ମଠତାମୟ) ରାଜା ଶ୍ରୀ କିଶୋରଚନ୍ଦ୍ର ହରିଚନ୍ଦନ ଜଗଦେବ ଆଜିକୁ ୧୩ ବର୍ଷ ତଳେ ପାଣ୍ଡୁଲିପିମାନଙ୍କ ପାଇଁ ଯେଉଁ ମୁଦ୍ରିତ ଇସ୍ତାହାର ଉତ୍କଳର ସାହିତ୍ୟାନୁରାଗୀ ଲକ୍ଷ୍ମୀକୁମାରମାନଙ୍କଠାରୁ ପ୍ରେରିତ ହୋଇଥିଲା ତହିଁରେ ପ୍ରଥମେ ସ୍ୱାକ୍ଷର କରିଥିଲେ । ଉତ୍କଳ ସାହିତ୍ୟ ସମାଜର ୧୯୩୯ରେ ହେବା ବାର୍ଷିକ ଉତ୍ସବର ସଭାପତିଙ୍କ ଅଭିଭାଷଣରେ ସେ ଭାଷାକୋଷର ଉଲ୍ଲେଖ କରିଥିଲେ ।

୧୯୫୦ ସାଲର ଉତ୍କଳ ସାହିତ୍ୟ ସମାଜର ବାର୍ଷିକ ଉତ୍ସବର ପୁରୋଧା କଲିକତା ବିଶ୍ୱବିଦ୍ୟାଳୟର ଅଗ୍ରଣୀ ଅଧ୍ୟାପକ ଶ୍ରୀ ପ୍ରିୟରଞ୍ଜନ ସେନ ଏମ୍. ଏ., ପି. ଆର୍. ଏସ୍. କାବ୍ୟତୀର୍ଥ ତାଙ୍କ ଅଭିଭାଷଣରେ ଭାଷାକୋଷ ଉପରେ ତାଙ୍କର ପ୍ରଶଂସା ଓ ଶୁଭକାମନା ନିମ୍ନଲିଖିତ ଭାଷାରେ ଅର୍ପଣ କରିଥିଲେ ।

"ବର୍ତ୍ତମାନ ଯୁଗରେ ଆପଣମାନଙ୍କର ଗୌରବ କରିବାର ବିଷୟ ମୋର ଶ୍ରଦ୍ଧାସ୍ପଦ ବନ୍ଧୁ ଆପଣମାନଙ୍କ ସଭାପତି ଭାଷାଚାର୍ଯ୍ୟ ରାୟବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜଙ୍କର ବହୁବର୍ଷ ଅକ୍ଲାନ୍ତ ପରିଶ୍ରମପ୍ରସୂତ ଭାଷାକୋଷ ଗ୍ରନ୍ଥ । ବାଇମହାନ୍ତି ପାଞ୍ଜି ଓ ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ଏହାଙ୍କଠାରେ ଏକାଧାରେ ଦେଖାଇଛି ପରିହାସରସିକତା ଓ ଶାବ୍ଦିକଙ୍କ ପାଣ୍ଡିତ୍ୟ । ଏହାଙ୍କ ସମ୍ବନ୍ଧରେ କହିବାକୁ ଗଲେ ଆମ ବଙ୍ଗର ଶ୍ରୀ ରାଜଶେଖର ବସୁଙ୍କ କଥା ମନେ ପଡ଼େ, ଯାହାଙ୍କ ଗଡ୍ଡଳିକା ଓ ଚଳନ୍ତିକା ଏହି ଦୁଇଟି ଧାରାକୁ ପୁଷ୍ଟ ରଖିଅଛି । ସେ ଏକାକୀଳରେ ଏକୁଟିଆ ହେଲେ ସୁଦ୍ଧା ଏହି ବୃହତ୍ ଅଭିଧାନ ରଚନା କରି ଓଡ଼ିଶାର ଶବ୍ଦସମ୍ପଦକୁ ସୁପୁଷ୍ଟ କଲେ । ଏହା ମଧ୍ୟ ସେ ଦେଖାଇ ଅଛନ୍ତି ଯେ, ଓଡ଼ିଶାରେ ଦେବୀ ଭାରତୀଙ୍କ ସନ୍ତାନଗଣଙ୍କ ଦ୍ୱାରା ଅସାଧ୍ୟସାଧନରେ ସିଦ୍ଧି ସମ୍ଭବ ହୋଇପାରେ । ଏହାଙ୍କର ସାଧନା ବର୍ତ୍ତମାନ ଭାରତ ଭାରତୀଙ୍କ ପୂଜା ବେଦୀମୂଳେ ବହୁମୂଲ୍ୟ ଉପାୟନ ବୋଲି ମୁଁ ମନେ କରେଁ ।"

## ଏ ଗ୍ରନ୍ଥର ଆଶୀର୍ବାଦକଗଣ

ଭୁବନେଶ୍ୱରରେ ବ୍ରହ୍ମଚର୍ଯ୍ୟାଶ୍ରମର ଉଦ୍‌ଯୋକ୍ତା, ପୁରୀ ଓ ଭୁବନେଶ୍ୱରସ୍ଥ ଶଙ୍କରାନନ୍ଦ ମଠାଧୀଶ ପୂଜ୍ୟପାଦ ଜଗଦ୍‌ଗୁରୁ ସ୍ୱାମୀ ଶ୍ରୀ ସଚ୍ଚିଦାନନ୍ଦ ସରସ୍ୱତୀ ସର୍ବଦା ଭାଷାକୋଷର ପୂର୍ତ୍ତି ପାଇଁ ଦେବାରାଧନାକୁ ଆପଣାର ଦୈନନ୍ଦିନ ବ୍ରତ କରିଅଛନ୍ତି ।

ସତ୍ୟମହିମାଧର୍ମର ପ୍ରବର୍ତ୍ତକ ବ୍ରହ୍ମ ଅବଧୂତ ଶ୍ରୀ ବିଶ୍ୱନାଥ ବାବା ଓ ରାଜାଙ୍କ ପ୍ରାସାଦଠାରୁ କନ୍ଧ ଓ ସଉରା ପଲ୍ଲୀ ପର୍ଯ୍ୟନ୍ତ ସର୍ବତ୍ର ଗଡ଼ଜାତରେ ସୁପରିଚିତ ବାୟାବାବା ଓ ପାଗଳାବାବାମାନେ ଭାଷାକୋଷାଶ୍ରମରେ ପାଦ ପକାଇ ଶୁଭାଶୀର୍ବାଦ କରି ଅଛନ୍ତି ।

ପୁରୀ ଇମାର ମଠର ମହନ୍ତ ମହାରାଜ ଶ୍ରୀ ଗଦାଧର ରାମାନୁଜଦାସ କୈଶର-ଇ-ହିନ୍ଦ୍ ।

ଜ୍ୟୋତିଷାଚାର୍ଯ୍ୟ ପଣ୍ଡିତ ଶ୍ରୀ ବିକ୍ରମାଦିତ୍ୟ ତ୍ରିପାଠୀ, କୈଳାଶଘୋଷ ଷ୍ଟ୍ରୀଟ୍, କଟକ ।

ଖଲ୍ଲିକୋଟର ଜ୍ୟୋତିଷାଚାର୍ଯ୍ୟ ଶ୍ରୀ ବାଇକେଳ ମହାପାତ୍ର ଜ୍ୟୋତିଷ ବିଶାରଦ ।

ପୁରୀ ବୀରବଳଭଦ୍ର ପୁରର ପଣ୍ଡିତ ଶ୍ରୀ ଜଗନ୍ନାଥ ରଥ ଜ୍ୟୋତିଷରତ୍ନ ।

## ଏ ଗ୍ରନ୍ଥର ସ୍ୱର୍ଗବାସୀ ଆଶୀର୍ବାଦକଗଣ

ମୋ ପିତୃଦେବ ସ୍ୱର୍ଗତ ନରସିଂହ ପ୍ରହରାଜ ।

ପିତୃବ୍ୟ ସ୍ୱର୍ଗତ ମଧୁସୂଦନ ଦାସ ସି. ଆଇ. ଇ. ଙ୍କ ଠାରେ ମୋର ଋଣିତ୍ୱ ପ୍ରଥମଖଣ୍ଡର ଅବତରଣିକାରେ ବର୍ଣ୍ଣିତ ହୋଇଅଛି ।

ସାହିତ୍ୟ ସେବା କ୍ଷେତ୍ରରେ ମୋ ଗୁରୁ ସ୍ୱର୍ଗତ ଶ୍ରୀ ବିଶ୍ୱନାଥ କର, ଉତ୍କଳ ସାହିତ୍ୟ ପ୍ରେସର ସ୍ୱତ୍ୱାଧିକାରୀ ଓ ଉତ୍କଳ ସାହିତ୍ୟ ପତ୍ରିକାର ସମ୍ପାଦକ ।

ସ୍ୱର୍ଗତ ପ୍ରାଚ୍ୟବିଦ୍ୟାମହାର୍ଣ୍ଣବ ନଗେନ୍ଦ୍ରନାଥ ବସୁ, ବଙ୍ଗଳା ଓ ହିନ୍ଦୀ ବିଶ୍ୱକୋଷର ସଂଗ୍ରାହକ ।

ମୋ ପିତୃସ୍ଥାନୀୟ ଯାଜପୁରର ସ୍ୱର୍ଗତ ପଣ୍ଡିତ ନୀଳମଣି ମିଶ୍ର ( ଏହାଙ୍କ ପୁତ୍ର ରାୟ ସାହେବ ବାମଦେବ ଭାଷାକୋଷର ପରମ ଭକ୍ତ ଓ ରାୟ ସାହେବ ବିଶ୍ୱମ୍ଭର ଓ ନିତ୍ୟାନନ୍ଦ ଏଥିର ହିତକାମୀ ଅଟନ୍ତି )

ସମାଜ ପତ୍ରିକାର ପ୍ରତିଷ୍ଠାତା ମୋର ଆଯୌବନ ବନ୍ଧୁ ସ୍ୱର୍ଗତ ଉତ୍କଳମଣି ଗୋପବନ୍ଧୁ ଦାସ ୧୭ । ୮ । ୧୯୨୭ ତାରିଖର ସମାଜରେ 'ପୂର୍ତ୍ତିମାଦକ ସମ୍ପୂର୍ଣ୍ଣ' ଶୀର୍ଷକ ସମ୍ପାଦକୀୟ ସନ୍ଦର୍ଭରେ ଭାଷାକୋଷର ପାଣ୍ଡୁଲିପିମାନଙ୍କ ଲେଖାର ସମାପ୍ତି ଘୋଷଣା କରି ପାଣ୍ଡୁଲିପିମାନଙ୍କର ସମ୍ମାର୍ଜ୍ଜନାନ୍ତେ ମୁଦ୍ରିତ ଓ ପ୍ରକାଶିତ ହେବାପାଇଁ ଭଗବାନଙ୍କ କରୁଣା ଓ ଧନୀମାନଙ୍କ ଅର୍ଥ ସାହାଯ୍ୟ ଭିକ୍ଷା କରିଥିଲେ । ଅଜି ୧୩ ବର୍ଷ ପରେ ସେ ସ୍ୱର୍ଗରେ ଥାଇ ଏ ଗ୍ରନ୍ଥର ସମାପ୍ତି ଦେଖି ଅବଶ୍ୟ ସୁଖୀ ହୋଇ ଅଛନ୍ତି ।

ମୋ ଧର୍ମଭ୍ରାତା କାଲେଶ୍ୱର ଇଡ଼ଦା ପ୍ରହରାଜ ଇଷ୍ଟେଟର ଜମିଦାର ସ୍ୱର୍ଗତ ଚୌଧୁରୀ ବମନାରାୟଣ ପ୍ରହରାଜ ମାନଧାତାଙ୍କର ଏପରି ଅଭିଧାନ ଗ୍ରନ୍ଥ ପ୍ରକାଶପାଇଁ ବ୍ୟାକୁଳତା ବିଷୟ ପୂର୍ବଖଣ୍ଡରେ ବର୍ଣ୍ଣିତ ହୋଇଅଛି । ତାଙ୍କ ପୁତ୍ର ଚୌଧୁରୀ ମୃତ୍ୟୁଞ୍ଜୟ ନାରାୟଣ ପ୍ରହରାଜ ମାନଧାତା ଏ ଗ୍ରନ୍ଥର ଜଣେ ଅର୍ଥସହାୟକ ।

## ଏ ଗ୍ରନ୍ଥର ସ୍ୱର୍ଗତ ଶୁଭକାମୀଗଣ

ଉତ୍କଳ ସାହିତ୍ୟ ପ୍ରେସ୍‌ର ସ୍ୱତ୍ୱାଧିକାରୀ ତଥା ଉତ୍କଳସାହିତ୍ୟ ପତ୍ରିକାର ସମ୍ପାଦକ ସ୍ୱର୍ଗତ ମହାନନ୍ଦ କର ।

ପାଟଣା ହାଇକୋର୍ଟର ସ୍ୱର୍ଗତ ପ୍ରଧାନ ବିଚାରପତି ସର୍ କୋର୍ଟ୍‌ନୀ ଟେରେଲ୍ ।

ଏ ଗ୍ରନ୍ଥର ଜଣେ ନିଷ୍ଠାପର ସହକର୍ମୀ ବାମଣ୍ଡା ରାଜ୍ୟର ଷ୍ଟେଟ୍ ଜଜ୍ ସ୍ୱର୍ଗତ ଅମରବଲ୍ଲଭ ଦେ, ଏମ୍. ଏ, ବି. ଏଲ୍. ।

ଓଡ଼ିଶାର ପୂର୍ବତନ କଲେକ୍ଟର-ମାଜିଷ୍ଟ୍ରେଟ୍ ଓ ବର୍ତ୍ତମାନ ଓଡ଼ିଶା ସରକାରଙ୍କର ଜନୈକ ସେକ୍ରେଟରୀ ଆର୍. ପି. ୱାର୍ଡ୍ ସାହେବଙ୍କ ସ୍ୱର୍ଗତା ସହଧର୍ମିଣୀ ଶ୍ରୀମତୀ କାଥେଲିନ୍ ୱାର୍ଡ୍ ।

ମୋ ସହଧର୍ମିଣୀ ଶ୍ରୀମତୀ ପୀତାମ୍ବରୀ ଦେବୀଙ୍କ ଧର୍ମଭ୍ରାତା ଓ ଏ ଭାଷାକୋଷର ମଙ୍ଗଳକାମୀ ସ୍ୱର୍ଗତ ରାୟବାହାଦୁର ଭୂୟାଁ ଭାସ୍କରଚନ୍ଦ୍ର ମହାପାତ୍ର, ଜମିଦାର, ଭଦ୍ରକ, ( ଏହାଙ୍କୁ ସ୍ମରଣୀୟ କରିବା ପାଇଁ ଏହାଙ୍କ ସହଧର୍ମିଣୀ ଶ୍ରୀମତୀ ସୁନୀତି କୁମାରୀ ଦେବୀ ଏଖଣ୍ଡ ପାଇଁ ଅର୍ଥ ସାହାଯ୍ୟ କରିଅଛନ୍ତି । )

ବୋଡ଼ାସମ୍ବରର ସ୍ୱର୍ଗତ ରାଜା ଶ୍ରୀ ଲାଲ ରାଜେନ୍ଦ୍ର ସିଂହ (ଏହାଙ୍କ ପ୍ରତିଶ୍ରୁତ ଅର୍ଥରୁ ଯେଉଁ ଧନ ବାକି ରହିଥିଲା ତାହା ତାଙ୍କ ସୁଯୋଗ୍ୟ ପୁତ୍ର ଲାଲ ସଦାନନ୍ଦ ସିଂହ ମହୋଦୟ ପିତୃ ସତ୍ୟ ପାଳନ କରି ପ୍ରେରଣ କରିଅଛନ୍ତି । )

ଭାଷାକୋଷାଶ୍ରମ
ଭାଷାକୋଷ ଲେନ୍
ପୋ: ଚାନ୍ଦନୀଚୌକ, କଟକ
୧୯୪୦, ସେପ୍ଟେମ୍ବର

## ଏ ଗ୍ରନ୍ଥର ପ୍ରଚାର

ଏ ଗ୍ରନ୍ଥ ଓଡ଼ିଶା ବାହାରେ ଭାରତରେ, [illegible], [illegible] ଓ ଅନେକ ସ୍ଥାନରେ ପ୍ରଚାରିତ ହୋଇଅଛି । ଗ୍ରନ୍ଥ ସମାପ୍ତ ପରେ ଏହା ସମସ୍ତ ଜଗତରେ ବହୁଳ ଭାବରେ ପ୍ରଚାରିତ ହେବ ବୋଲି ମୁଁ ଆଶା କରୁଅଛି ।

## ଗ୍ରନ୍ଥରେ ଲକ୍ଷିତ ତ୍ରୁଟି ଓ ଭ୍ରମପ୍ରମାଦ

ଏ ଗ୍ରନ୍ଥର ଅସମ୍ପୂର୍ଣ୍ଣତା ଓ ଏଥିରେ ପରିଲକ୍ଷିତ ତ୍ରୁଟି, ଭ୍ରମ ଓ ପ୍ରମାଦାଦି ମୁଁ ଏ ଗ୍ରନ୍ଥର ପ୍ରଥମଖଣ୍ଡରେ ସ୍ୱୀକାର କରିଅଛି । ମୋ ଭଳି ଶକ୍ତିହୀନ, ବଳହୀନ, ଜ୍ଞାନହୀନ ଜଣେ ବ୍ୟକ୍ତିର ଚେଷ୍ଟାରେ ସଙ୍କଳିତ ଏ ବିରାଟ ଗ୍ରନ୍ଥରେ ବହୁ ଭ୍ରମ, ପ୍ରମାଦ, ତ୍ରୁଟି ରହିଅଛି । ମୁଁ ଯେତେକଗୁଡ଼ିଏ ସହକର୍ମୀଙ୍କ ସାହାଯ୍ୟ ଲାଭ କରିଛି, ଏ ଗ୍ରନ୍ଥରେ ପରିଲକ୍ଷିତ ଉତ୍କର୍ଷ ଲାଗି ସେମାନେ ଧନ୍ୟବାଦାର୍ହ । କିନ୍ତୁ ଏଥିରେ ପରିଲକ୍ଷିତ ତ୍ରୁଟିମାନଙ୍କପାଇଁ ମୁଁ ଏକା ଦାୟୀ । ଈଶ୍ୱର କରନ୍ତୁ, ମୋ ଅପେକ୍ଷା ଶକ୍ତିଶାଳୀ, ଜ୍ଞାନୀ, ବଳଶାଳୀ, ଧନବାନ୍ ଉତ୍କଳମାତାଙ୍କ କର୍ମିସନ୍ତାନଙ୍କ ଚେଷ୍ଟାରେ ଏ ଗ୍ରନ୍ଥର ପରିଶିଷ୍ଟ ଖଣ୍ଡ ପ୍ରକାଶିତ ହେଉ ।

ମୁଁ ଏତିକି ମାତ୍ର ଆଶା କରେଁ ଯେ, ପ୍ରଭୁ ଯେବେ ମୋତେ ଶକ୍ତି, ଅର୍ଥ ଓ ବଳ ଦିଅନ୍ତି ତାହାହେଲେ ମୋଦ୍ୱାରା ସଂଗୃହୀତ ବହୁ ସହସ୍ର ଶବ୍ଦ ଓ ପରେ ନାନା ଅଞ୍ଚଳରୁ ସଂଗୃହୀତ ହେବା ଶବ୍ଦମାନ ଯାହା ଏ ଗ୍ରନ୍ଥରେ ସ୍ଥାନ ପାଇ ପାରିନାହିଁ ସେଗୁଡ଼ିକ ଓ ମୋ ସହକର୍ମିଗଣଙ୍କଦ୍ୱାରା ଇତିମଧ୍ୟରେ ବହୁ ପରିଶ୍ରମରେ ସଂଗୃହୀତ ଶତାଧିକ ଜୀବିତ ଓ ସ୍ୱର୍ଗତ ବିଶିଷ୍ଟ ଉତ୍କଳୀୟମାନଙ୍କ ଜୀବନଚରିତମାନ ପରିଶିଷ୍ଟ ଖଣ୍ଡରେ ପ୍ରକାଶିତ ହେବ ଓ ତହିଁରେ ଭାଷାକୋଷରେ ପରିଲକ୍ଷିତ ଭ୍ରମମାନଙ୍କ ସଂଶୋଧନ ତାଲିକା ମଧ୍ୟ ସନ୍ନିବେଶିତ କରିବି ।

## ପୁସ୍ତକର ମୂଲ୍ୟ

କନାରେ ଓ ଚମଡ଼ାରେ ବନ୍ଧା ହୋଇଥିବା ସମଗ୍ର ସାତଖଣ୍ଡ ଗ୍ରନ୍ଥର ଏକଦା ଦେୟ ନଗଦ ମୂଲ୍ୟ ଦେଢ଼ଶତ ଟଙ୍କା, ମୋଟା କାଗଜ ବୋର୍ଡ଼୍‌ରେ ବନ୍ଧା ଏକ ସାରଗ୍ରନ୍ଥର ମୂଲ୍ୟ ଏକ ଶହ ତିରିଶ ଟଙ୍କା ଓ ଅବନ୍ଧା ଏକ ସାରର ମୂଲ୍ୟ ଟ ୧୨୦ ୲ । ଯେ କେବଳ ଖଣ୍ଡେ ପୁସ୍ତକ କିଣିବେ ତାଙ୍କୁ ଖଣ୍ଡେ ବନ୍ଧା ବହି ପାଇ ଟ ୨୫ ୲ ଓ କାଗଜ ବୋର୍ଡ଼୍ ବନ୍ଧା ବହି ପାଇଁ ଟ ୨୦ ୲ ଓ ଅବନ୍ଧା ବହି ପାଇଁ ଟ ୧୫ ୲ ଦେବାକୁ ହେବ ।

ପରିଶେଷରେ ଯେଉଁ କରୁଣାମୟ ପରମେଶ୍ୱର ଓ ଗୁରୁଦେବଙ୍କ ଦୟାରୁ ଓ ଧନପତିମାନଙ୍କ ଅର୍ଥ ସାହାଯ୍ୟ ଓ ସହକର୍ମୀମାନଙ୍କ ସହାୟତାରୁ ମୁଁ ଏ ଦୁରୂହ କର୍ମର ପରିସମାପ୍ତି କଲି, ସେ ସମସ୍ତଙ୍କ ପ୍ରଣତିପୁରଃସର କୃତଜ୍ଞତା ଜଣାଉଅଛି ।

ଓଁ ନମୋ ବିଶ୍ୱଗୁରବେ ।
ସର୍ବେ ବୈ ସୁଖିନଃ ସନ୍ତୁ
ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ନ କଶ୍ଚିଦ୍ଦୁଃଖଭାଗ୍ ଭବେତ୍ ।

ବର୍ତ୍ତମାନ ଯେଉଁ ସର୍ବଗ୍ରାସୀ ସମରାନଳରେ ପୃଥିବୀ ଦଗ୍ଧ ହେଉଅଛି ସେଥିରୁ ଇଂରାଜ ସାମ୍ରାଜ୍ୟ ଓ ଭାରତ ଜୟ ଓ ସମ୍ମାନ ସହ ମୁକ୍ତିଲାଭ କରୁ ଓ ଓଡ଼ିଆଜାତି ଅନ୍ତର୍ଜାତିକ ସମ୍ମେଳନରେ ସ୍ୱୀୟ ନ୍ୟାଯ୍ୟ ସ୍ଥାନ ଅଧିକାର କରୁ । ଇତି ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ !!!

ଗୋପାଳଚନ୍ଦ୍ର ପ୍ରହରାଜ

An illustrious wellwisher of the Lexicon, Her Highness
Sri Sri Sri Maharanee Sethu Parvati Bai, D. Litt, Travancore



ଭାଷାକୋଷର ବଶିଷ୍ଠା ହିତକାମିନୀ
ମାନନୀୟା ଶ୍ରୀ ଶ୍ରୀ ଶ୍ରୀମତୀ ମହାରାଣୀ ସେଥୁ ପାର୍ବତୀ ବାଈ, ଡ. ଲିଟ୍, ତ୍ରିବାଙ୍କୋଡ ।

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ସଙ୍କଳନରେ ବ୍ୟବହୃତ ଅଭିଧାନ ଗ୍ରନ୍ଥ ଓ ଗ୍ରନ୍ଥକାରମାନଙ୍କର ନାମ ଓ ସାଙ୍କେତିକ

M. W.—ମନିଅର୍ ୱିଲିଅମ୍ସଙ୍କ କୃତ ସଂସ୍କୃତ-ଇଂରାଜୀ ଶବ୍ଦକୋଷ ।

କୀର୍ତ୍ତିକାର (Kirtikar)—ଡାକ୍ତର କୀର୍ତ୍ତିକାରଙ୍କର 'Indian plants' (ଭାରତୀୟ ଉଦ୍ଭିଦ) ନାମକ ଇଂରାଜୀ ଗ୍ରନ୍ଥ ।

ଆପ୍ତେ (Apte)—ପ୍ରୋଫେସର୍ ଆପ୍ତେଙ୍କର Practical Sanscrit-English Dictionary (ସଂସ୍କୃତ-ଇଂରାଜୀ ଅଭିଧାନ) ।

ବିମ୍ସ୍ (Beames)—Beames Comparative Grammar of four Indo-Aryan languages, (ବିମ୍ସ ସାହେବଙ୍କ ସଙ୍କଳିତ ଚାରି ଭାଷାର ବ୍ୟାକରଣ ।)

ଚାମ୍ବର୍ସ୍ (Chambers)—Chambers's Twentieth Century English Dictionary.

ପ୍ରୋଥେରୋ (Prothero)—A Short Primer of Indian History by Mr. M. Prothero.

Haines—ହାଏନ୍ସ୍ ସାହେବଙ୍କ Botany of Bihar and Orissa (ବିହାର-ଓଡ଼ିଶାର ଉଦ୍ଭିଦ୍‌ତତ୍ତ୍ୱ) ।

Howells—ପାଦ୍ରୀ ହାଓ୍ୱେଲ୍ସ୍ ସାହେବଙ୍କ ଅପ୍ରକାଶିତ ଓଡ଼ିଆ-ଇଂରାଜୀ ଅଭିଧାନର ପାଣ୍ଡୁଲିପି ।

Fallon—ଡାକ୍ତର୍ ଫାଲନ୍‌ଙ୍କର ହିନ୍ଦୁସ୍ଥାନୀ-ଇଂରାଜୀ ଶବ୍ଦକୋଷ ।

Sir George Greierson—Linguistic Survey of India (ଗ୍ରୀୟରସନ୍‌ଙ୍କ ଭାରତର ଭାଷାତତ୍ତ୍ୱ) ।

Grundy—ପାଦ୍ରୀ ଗ୍ରଣ୍ଡି ସାହେବଙ୍କର ଓଡ଼ିଆ-ଇଂରାଜୀ ଶବ୍ଦକୋଷ ।

Sutton—ପାଦ୍ରୀ ସଟନ୍‌ଙ୍କ ସଂକଳିତ ଓଡ଼ିଆ ଅଭିଧାନ ।

ଗୋପୀନାଥ ନନ୍ଦ—ଗୋପୀନାଥ ନନ୍ଦଙ୍କ ଓଡ଼ିଆ 'ଶବ୍ଦତତ୍ତ୍ୱବୋଧ ଅଭିଧାନ' ।

ବୈଜ୍ଞାନିକ ପରିଭାଷା—ବଙ୍ଗୀୟ ବିଜ୍ଞାନ ପରିଷଦ୍ ସଂକଳିତ ଇଂରାଜୀ-ବଙ୍ଗଳା କୋଷ ଗ୍ରନ୍ଥ ।

ଜଗନ୍ନାଥ ରାଓ—ଉତ୍କଳ ଅଭିଧାନ ।

ରାମନାରାୟଣ ଲାଲ—ଇଂରାଜୀ-ହିନ୍ଦି ଶବ୍ଦକୋଷ—The Student's practical English-Hindi Dictionary.

ଜ୍ଞାନେନ୍ଦ୍ର—ଜ୍ଞାନେନ୍ଦ୍ରମୋହନ ଦାସଙ୍କ ବଙ୍ଗଳା ଭାଷାର ଅଭିଧାନ ।

ବିଶ୍ୱକୋଷ—ପ୍ରାଚ୍ୟ ବିଦ୍ୟାମହାର୍ଣ୍ଣବ ନଗେନ୍ଦ୍ରନାଥ ବସୁଙ୍କ ପ୍ରଣୀତ ବଙ୍ଗଳା ବିଶ୍ୱକୋଷ, ପ୍ରଥମ ସଂସ୍କରଣ ।

ରସଚକ୍ର—ଅଧୁନାଲୁପ୍ତ ମାସିକ ଓଡ଼ିଆ ପତ୍ରିକା ।

ଯୋଗେଶଚନ୍ଦ୍ର—ରାୟ ବାହାଦୁର ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧିଙ୍କ ସଙ୍କଳିତ 'ବଙ୍ଗଳା ଶବ୍ଦକୋଷ' ।

ପ୍ରକୃତିବାଦ—ଶ୍ରୀଯୁକ୍ତ ରାମକମଲ ବିଦ୍ୟାଲଙ୍କାରଙ୍କ ପ୍ରଣୀତ ସଚିତ୍ର ବଙ୍ଗଳା 'ପ୍ରକୃତିବାଦ ଅଭିଧାନ' ।

ମାଡାମ୍ ବ୍ଲାଭାଟସ୍କି—ବ୍ରହ୍ମବିଦ୍ୟା ( ଥିଅଜଫି ) ବିଷୟକ ଇଂରାଜୀ ଗ୍ରନ୍ଥ ।

ହିନ୍ଦି ଶବ୍ଦସାଗର—କାଶୀ ନାଗରୀ ପ୍ରଚାରିଣୀ ସଭାଙ୍କ ପ୍ରକାଶିତ 'ହିନ୍ଦୀ ଶବ୍ଦସାଗର' ବା ହିନ୍ଦୀ ଭାଷାର ବୃହତ୍ ଶବ୍ଦକୋଷ ।

ସୁବଲଚନ୍ଦ୍ର—ସୁବଲଚନ୍ଦ୍ର ମିତ୍ରଙ୍କ ସରଳ ବଙ୍ଗଳା ଅଭିଧାନ ।

ଗାଙ୍ଗୁଲି—The Student's Bengali and English Dictionary (ବି. ଗାଙ୍ଗୁଲିଙ୍କ ବଙ୍ଗଳା-ଇଂରାଜୀ ଅଭିଧାନ) ।

ଦ୍ରବ୍ୟଗୁଣ—କବିରାଜ ଦେବେନ୍ଦ୍ରନାଥ ଓ ଉପେନ୍ଦ୍ରନାଥ ସେନ୍‌ଗୁପ୍ତଙ୍କ ବଙ୍ଗଳା 'ଦ୍ରବ୍ୟଗୁଣ' ।

ମତ୍ସ୍ୟପୁରାଣ

ସମର୍ଥକୋଷ—ରାଜା ରାଧାକାନ୍ତ ଦେବଙ୍କ ଦ୍ୱାରା ପ୍ରକାଶିତ 'ସମର୍ଥକୋଷ' ଅଭିଧାନ ।

ବ୍ରହ୍ମବୈବର୍ତ୍ତ ପୁରାଣ

ସ୍କୁଲପାଠ୍ୟ ଇତିହାସ—ପ୍ରୋଥେରୋ ସାହେବଙ୍କ ସଙ୍କଳିତ ଇଂରାଜୀ ଭାରତ ଇତିହାସ ।

ପ୍ରାଚୀନ ଉତ୍କଳ—ଶ୍ରୀ ଜଗବନ୍ଧୁ ସିଂହଙ୍କ ସଂକଳିତ ପ୍ରାଚୀନ ଉତ୍କଳ ।

ସାହିତ୍ୟ ଦର୍ପଣ—ବିଶ୍ୱନାଥ କବିରାଜଙ୍କ ସଂକଳିତ ।

ଶବ୍ଦକଳ୍ପଦ୍ରୁମ—ବଙ୍ଗାକ୍ଷରରେ ମୁଦ୍ରିତ ରାଜା ରାଧାକାନ୍ତ ଦେବଙ୍କ ସଂସ୍କୃତ ଅଭିଧାନ ।

ରସ ମଞ୍ଜରୀ

ଶଙ୍କର ଦିଗ୍‌ବିଜୟ—ସଂସ୍କୃତ ମୂଳ ଗ୍ରନ୍ଥରୁ ଶ୍ରୀ ଶଙ୍କର ସଚ୍ଚିଦାନନ୍ଦ ସରସ୍ୱତୀ ସ୍ୱାମୀଙ୍କ ଓଡ଼ିଆ ପଦ୍ୟାନୁବାଦ ।

ରତିମଞ୍ଜରୀ

ଚଳନ୍ତିକା—ଶ୍ରୀଯୁକ୍ତ ରାଜଶେଖର ବସୁଙ୍କ କୃତ ବଙ୍ଗ ଭାଷାର ସଂକ୍ଷିପ୍ତ ଅଭିଧାନ ।

ରୁଦ୍ର ଯାମଳ

ବର୍ତ୍ତମାନ ସମାଜର ଇତିବୃତ୍ତ—ବାବୁ ଭାଗବତଚନ୍ଦ୍ର ଦାସ ମେଦିନୀପୁରଙ୍କ ସଂକଳିତ ବଙ୍ଗଳା ଗ୍ରନ୍ଥ ।

ବରାହ ପୁରାଣ

ବିରାଟ ନଗର ଓ ସୁବର୍ଣ୍ଣରେଖା—ସ୍ୱର୍ଗୀୟ ପଣ୍ଡିତ ଚନ୍ଦ୍ରନାରାୟଣ ଷଡ଼ଙ୍ଗୀଙ୍କ ରଚିତ ଗ୍ରନ୍ଥ ।

ବସନ୍ତରାଜ ଶାକୁନ ଗ୍ରନ୍ଥ

ସମାଜ ସଂସ୍କାର—ଶ୍ରୀ ପ୍ରାଣକୃଷ୍ଣ ଦାସ ଓଡ଼ିଆଙ୍କ ସଂକଳିତ ଗ୍ରନ୍ଥ ।

ବାଳଗଙ୍ଗାଧର ତିଲକ—ଭଗବଦ୍‌ଗୀତା ମାହାତ୍ମ୍ୟ ।

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ବ୍ୟବହୃତ ଶିଷ୍ଟ ପ୍ରୟୋଗମାନଙ୍କ ଗ୍ରନ୍ଥକାରମାନଙ୍କ ନାମ ଓ ସାଙ୍କେତିକ ଚିହ୍ନ

( ଦ୍ରଷ୍ଟବ୍ୟ—ଗ୍ରନ୍ଥମାନଙ୍କ ନାମ ଯଥାସ୍ଥାନରେ ଦିଆ ଯାଇଅଛି )

ଅଗସ୍ତ୍ୟ ସଂହିତା

ଅଚ୍ୟୁତ, ଅଚ୍ୟୁତାନନ୍ଦ—କଟକ ଜିଲ୍ଲାର ନେମାଲ ଗାଦିର ମହନ୍ତ ସ୍ୱର୍ଗୀୟ ଅଚ୍ୟୁତାନନ୍ଦ ଦାସ ।

ଅଜୟଚନ୍ଦ୍ର—ସ୍ୱର୍ଗୀୟ ରାୟ ବାହାଦୁର ଅଜୟଚନ୍ଦ୍ର ଦାସ ।

ଅଭିମନ୍ୟୁ—ପ୍ରାଚୀନ କବି ଅଭିମନ୍ୟୁ ସାମନ୍ତସିଂହାର ।

ଅରୁଣୋଦୟ ପ୍ରେସଙ୍କ ସଙ୍କଳିତ ଓଡ଼ିଆ ପଞ୍ଜିକା

ଅଲଙ୍କାର ତରଙ୍ଗିଣୀ—ପଣ୍ଡିତ ଚୂଳମଣି ଦାଶଙ୍କ ସଂକଳିତ ଅଲଙ୍କାର ଗ୍ରନ୍ଥ ।

ଆଶା—ଶ୍ରୀ ଶଶିଭୂଷଣ ରଥଙ୍କ ସମ୍ପାଦିତ ସାପ୍ତାହିକ ଓ ଦୈନିକ ପତ୍ରିକା ।

ଉତ୍କଳ-ସାହିତ୍ୟ—ସ୍ୱର୍ଗୀୟ ବିଶ୍ୱନାଥ କରଙ୍କ ପ୍ରତିଷ୍ଠିତ ମାସିକ ପତ୍ରିକା ।

ଓଡ଼ିଆ—ଆନନ୍ଦ ଆଗ୍ରୱାଲଙ୍କ ସମ୍ପାଦିତ ସାପ୍ତାହିକ ପତ୍ରିକା ।

କବିସୂର୍ଯ୍ୟ—ପ୍ରାଚୀନ କବି କବିସୂର୍ଯ୍ୟ ବଳଦେବ ରଥ ।

କାଳିକା ପୁରାଣ ।

କୁନ୍ତଳା, କୁନ୍ତଳାକୁମାରୀ—ଶ୍ରୀମତୀ କୁନ୍ତଳାକୁମାରୀ ଦେବୀ ।

କୁଳମଣି—ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥ ।

କୃପାସିନ୍ଧୁ—ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ର ।

କୃଷ୍ଣସିଂହ—ଧରାକୋଟ ପ୍ରାଚୀନ ରାଜା ।

କୃଷ୍ଣଚନ୍ଦ୍ର କବି ।

ଗଙ୍ଗାଧର—ସ୍ୱର୍ଗୀୟ କବି ଗଙ୍ଗାଧର ମେହେର ।

ଗଡ଼ଜାତବାସିନୀ—ତାଳଚେରରୁ ପ୍ରକାଶିତ ସାପ୍ତାହିକ ପତ୍ରିକା ।

ଗୋପବନ୍ଧୁ—ସ୍ୱର୍ଗୀୟ ଗୋପବନ୍ଧୁ ଦାସଙ୍କ ରଚିତ ଧର୍ମପଦ କବିତା ।

ଗୋପାଳକୃଷ୍ଣ—ଗଞ୍ଜାମର ପ୍ରାଚୀନ କବି ।

ଗୋଲୋକ—ଅଲ୍ପଦିନହେଲା ପ୍ରକାଶିତ କାବ୍ୟ ଇନ୍ଦୁରେଖାର କବି ।

ଚନ୍ଦ୍ରଶେଖର ମିଶ୍ର

ଚକଟି—ରାଜାସାହେବ, ଚକଟି ।

ଚନ୍ଦ୍ରମଣି—ଶ୍ରୀଯୁକ୍ତ ଚନ୍ଦ୍ରମଣି ଆଚାର୍ଯ୍ୟ ।

ଶ୍ରୀ ଜଗନ୍ନାଥ ତ୍ରିପାଠୀ ବି. ଏ. ବି. ଟି

ଚନ୍ଦ୍ରମଣି (କବି)—କବିବର ଚନ୍ଦ୍ରମଣି ମହାନ୍ତି ।

ଜଗନ୍ନାଥ ଦାସ—ଓଡ଼ିଆ ଭାଗବତକାର ଭକ୍ତକବି ଜଗନ୍ନାଥ ଦାସ ।

ଜଗବନ୍ଧୁ—ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ ।

ତାରିଣୀ—ସ୍ୱର୍ଗୀୟ ତାରିଣୀଚରଣ ରଥ ।

ତୁଳସୀ-ବିକ୍ରମ—ଜୟପୁରର ମହାରାଜ ବିକ୍ରମଦେବଙ୍କ କୃତ ତୁଳସୀ ଦାସଙ୍କ ହିନ୍ଦୀ ରାମାୟଣ ଅଯୋଧ୍ୟାକାଣ୍ଡର ପଦ୍ୟାନୁବାଦ ।

ଦାଶରଥି—ପ୍ରାଚୀନ କବି ଦାଶରଥି ଦାସ ।

ଦୀନକୃଷ୍ଣ—ଭକ୍ତକବି ଦୀନକୃଷ୍ଣ ଦାସ ।

ଦୈନିକ ଆଶା—ବ୍ରହ୍ମପୁରରୁ ପ୍ରକାଶିତ ଦୈନିକ ପତ୍ରିକା ।

ନନ୍ଦକିଶୋର—ସ୍ୱର୍ଗୀୟ କବି ନନ୍ଦକିଶୋର ବଳ ।

ନବଭାରତ—ଶ୍ରୀଯୁକ୍ତ ନୀଳକଣ୍ଠ ଦାସଙ୍କ ପ୍ରତିଷ୍ଠିତ ଓଡ଼ିଆ ମାସିକ ପତ୍ରିକା ।

ନବୀନ—ଶ୍ରୀ କୃପାସିନ୍ଧୁ ପଟ୍ଟନାୟକଙ୍କ ସମ୍ପାଦିତ ସାପ୍ତାହିକ ପତ୍ରିକା ।

ନାରାୟଣ—କବି ନାରାୟଣ ଦାସ (ହରିବଂଶ) ।

ନୀଳକଣ୍ଠ—ନୀଳକଣ୍ଠ ଦାଶ (ପିଲାଙ୍କ ରାମାୟଣ ଓ କୋଣାର୍କେ) ।

ନୀଳମଣି—ସ୍ୱର୍ଗୀୟ ପଣ୍ଡିତ ନୀଳମଣି ମିଶ୍ର ।

ପଞ୍ଚାମୃତ—କଟକ ଟ୍ରେଡ଼ିଙ୍ଗ୍ କମ୍ପାନୀଙ୍କ ପ୍ରକାଶିତ ଶିଶୁ ପତ୍ରିକା ।

ପୀତାମ୍ବର—କବି ପୀତାମ୍ବର ଦାସ (ନୃସିଂହ ପୁରାଣ) ।

ପୀତାମ୍ବରୀ—ଶ୍ରୀମତୀ ପୀତାମ୍ବରୀ ଦେବୀ ।

ପ୍ରତାପ—ପ୍ରାଚୀ ସମିତି ପ୍ରକାଶିତ ଶଶିସେଣା ।

ପ୍ରାଚୀ—କଟକ ପ୍ରାଚୀସମିତି ପ୍ରକାଶିତ ଗ୍ରନ୍ଥମାଳା ।

ପ୍ୟାରୀମୋହନ—ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ (ଇତିହାସ) ।

ଫକୀର, ଫକୀରମୋହନ—ସ୍ୱର୍ଗୀୟ ଫକୀରମୋହନ ସେନାପତି ।

ବଳରାମ—ପ୍ରାଚୀନ କବି ବଳରାମ ଦାସ (ରାମାୟଣ) ।

ବାଳକୃଷ୍ଣ ପଟ୍ଟନାୟକ—ଅକାଳ କେଇଲି, ଫୁଲ ବଉଳବେଣୀ ଇତ୍ୟାଦି ।

ବି. କେ. ପୁ.—ବିଷ୍ଣୁ କେଶରୀ ପୁରାଣ ।

ବିକ୍ରମ ଦେବ—ସାହିତ୍ୟ ସମ୍ରାଟ୍ ମହାରାଜ ବିକ୍ରମଦେବ ବର୍ମା

ବାଇକୋଳ—ବାଇକୋଳ ମହାପାତ୍ର ଜ୍ୟୋତିଷ ବିଶାରଦ (ଜ୍ୟୋତିଃସାର ସଂଗ୍ରହ)

ବିଜୟଚନ୍ଦ୍ର—ପ୍ରଫେସର ବିଜୟଚନ୍ଦ୍ର ମଜୁମଦାର ।

ବିନାୟକ—ପଣ୍ଡିତ ଶ୍ରୀ ବିନାୟକ ମିଶ୍ର ।

ବିଶ୍ୱନାଥ—ପ୍ରାଚୀନ କବି ବିଶ୍ୱନାଥ ଖୁଣ୍ଟିଆ (ବିଚିତ୍ରରାମାୟଣ)

ବିଶ୍ୱନାଥ ବାବା—ମହିମା ଧର୍ମ ପ୍ରତିପାଦକ ଅଦ୍ୱଗ୍ରନ୍ଥର ରଚୟିତା ମହିମା ଧର୍ମ ପ୍ରଚାରକ ଅବଧୂତ ବିଶ୍ୱନାଥ ବାବା ।

ବିଷ୍ଣୁ କେଶରୀ ପୁରାଣ—ପ୍ରାଚୀ ଗ୍ରନ୍ଥମାଳା ।

ବ୍ରଜନାଥ—ବ୍ରଜନାଥ ବଡ଼ଜେନାଙ୍କ ପ୍ରଣୀତ ସମରତରଙ୍ଗ ।

ଭକ୍ତଦାସ, ଭକ୍ତଚରଣ—ପ୍ରାଚୀନ କବି ଭକ୍ତଚରଣ ଦାସ ।

ଭଞ୍ଜ—କବି ଉପେନ୍ଦ୍ର ଭଞ୍ଜ ।

ଭୀମଭୋଇ—ନିରାକାର ଭଜନାଦିର ରଚୟିତା ଅନ୍ଧକବି ଭୀମ ।

ଭୀମ—ଭୀମ ଧୀବର (କପଟପାଶା) ।

ଭକାରୀଚରଣ—ରାୟ ବାହାଦୁର ଶ୍ରୀ ଭକାରୀଚରଣ ପଟ୍ଟନାୟକ ।

ଭୂପତି—କବି ଭୂପତି ପ୍ରଣୀତ ପ୍ରାଚୀ ଗ୍ରନ୍ଥମାଳାର ପ୍ରେମପଞ୍ଚାମୃତ ।

ମଦନମୋହନ—ଶ୍ରୀଯୁକ୍ତ ମଦନମୋହନ ପଟ୍ଟନାୟକ (ତୀର୍ଥଦର୍ଶନ)

ମହାଦେବ—ପ୍ରାଚୀନ କବି ମହାଦେବ ଦାସ (ମାର୍କଣ୍ଡେୟ ପୁରାଣ)

ମଧୁସୂଦନ—ଭକ୍ତକବି ସ୍ୱର୍ଗୀୟ ମଧୁସୂଦନ ରାଓ ।

ଯଶୋବନ୍ତ—ପ୍ରାଚୀନ କବି ଯଶୋବନ୍ତ ସିଂହ । (ପ୍ରେମଭକ୍ତି ବ୍ରହ୍ମଗୀତା)

ରାଜକିଶୋର—ଡାକ୍ତର ଶ୍ରୀ ରାଜକିଶୋର ନନ୍ଦ ।

ରାଜକିଶୋର ଦାସଙ୍କ ଓଡ଼ିଆ ଭାଗବତ ।

ରାଧାନାଥ—କବିବର ସ୍ୱର୍ଗୀୟ ରାଧାନାଥ ରାୟ ।

ରାଧାମୋହନ—ଚିକିଟିର ରାଜା ରାଧାମୋହନ ରାଜେନ୍ଦ୍ର ଦେବ ।

ରାଧାଚରଣ—ଡାକ୍ତର ରାଧାଚରଣ ପଣ୍ଡା ।

ରାମଦାସ—ପ୍ରାଚୀନ କବି ରାମଦାସ (ଦାର୍ଢ୍ୟତା ଭକ୍ତି) ।

ରାମଶଙ୍କର—ସ୍ୱର୍ଗୀୟ ରାୟ ବାହାଦୁର ରାମଶଙ୍କର ରାୟ ।

ଶଶିଭୂଷଣ—ଶ୍ରୀ ଶଶିଭୂଷଣ ରାୟ ।

ଶିଶୁଶଙ୍କର—ପ୍ରାଚୀନ କବି ଶିଶୁଶଙ୍କର (ଉଷା ଅଭିଳାଷ) ।

ସତ୍ୟ ସମାଚାର—କଟକରୁ ପାତବର୍ଷ କାଳ ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର ।

ସମାଜ—କଟକରୁ ପ୍ରକାଶିତ ଦୈନିକ ସମ୍ବାଦ ପତ୍ର ।

ସହକାର—ଶ୍ରୀ ବାଳକୃଷ୍ଣ କରଙ୍କ ସମ୍ପାଦିତ ମାସିକ ପତ୍ର ।

ସାରଳା—ପ୍ରାଚୀନ କବି ସାରଳା ଦାସ ।

ସୁଚଳ ଦେବ—ବାମଣ୍ଡାର ସ୍ୱର୍ଗୀୟ ରାଜା ସର୍ ବାସୁଦେବ ସୁଚଳ ଦେବ K. C. I. E.

ସୋନପୁର—ସୋନପୁରର ସ୍ୱର୍ଗୀୟ ମହାରାଜା ସର ବୀରମିତ୍ରୋଦୟ ସିଂହଦେବ ଧର୍ମନିଧି, ଜ୍ଞାନ ଗୁଣାକର, K. C. I. E

ଷ୍ଟେଟ୍ସମାନ୍—କଲିକତାରେ ପ୍ରକାଶିତ ଦୈନିକ ଇଂରାଜୀ ପତ୍ରିକା

ହରେକୃଷ୍ଣ—କବିରାଜ ହରେକୃଷ୍ଣ ମିଶ୍ର ।

ହି. ଶ—କାଶୀନାଗରୀପ୍ରଚାରିଣୀ ସଭା ସଙ୍କଳିତ ହିନ୍ଦୀ ଶବ୍ଦସାଗର ।

ହଣ୍ଟର ସାହେବଙ୍କ—ଭାରତର ଇତିହାସ ।

An illustrious wellwisher of the Lexicon, His Highness, Maharaja
Sri Sri Sir Bala Rama Varma, D. Litt, G. C. I. E., Ruler, Travancore State.



ଭାଷାକୋଷର ବଶିଷ୍ଟ ହିତକାମୀ
ମହାମାନ୍ୟବର ଶ୍ରୀ ଶ୍ରୀ ଶ୍ରୀ ମହାରାଜ ସର୍ ବଲରାମ ବର୍ମା ଡି. ଲିଟ୍, ତ୍ରିବାଙ୍କୋଡ଼ ଅଧୀଶ୍ୱର ।

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ସପ୍ତମ ଖଣ୍ଡରେ ଥିବା କେତେକ ଶବ୍ଦ ବିଷୟରେ ସନ୍ଦର୍ଭଲେଖକଗଣଙ୍କ ନାମ ।

ଶ୍ରୀ କେଦାରନାଥ ମହାପାତ୍ର, ବି. ଏ., ଡି. ଏଡ.—ଭୁବନେଶ୍ୱର
ଶ୍ରୀ ଚନ୍ଦ୍ରଶେଖର ଦାସ — ଯାଜପୁର
ଶ୍ରୀ ଜଗବନ୍ଧୁ ସିଂହ, ଉକିଲ—ପୁରୀ
ଶ୍ରୀ ନାରାୟଣ ପ୍ରସାଦ ଷାଠିଆ, ବି. ଏ—କଟକ
ଶ୍ରୀ ମହାଶୟ ବଳଭଦ୍ର ଧୀର—ମଧୁପୁର
ଶ୍ରୀ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ—କଟକ
ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ପଟ୍ଟନାୟକ—ହବ୍‌ରେକଷ୍ଟର୍
ଶ୍ରୀ ବଂଶୀଧର ମହାନ୍ତି—କେନ୍ଦୁଝର
ପଣ୍ଡିତ ଶ୍ରୀ ରାମଚନ୍ଦ୍ର ମିଶ୍ର—ପୁରୀ
ଶ୍ରୀ ଯୋଗେନ୍ଦ୍ରନାଥ ଦାସ—କଟକ
ଶ୍ରୀ ବାଇକୋଳ ମହାପାତ୍ର ଜ୍ୟୋତିଷ ବିଶାରଦ—ଖଲ୍ଲିକୋଟ
ଶ୍ରୀ ବିପିନବିହାରୀ ରାୟ, ପ୍ରୋଫେସର୍—କଟକ
ଶ୍ରୀ ମନମୋହନ ଘୋଷ, ଉକିଲ—କଟକ
ଶ୍ରୀ ରାଧାଚରଣ ପଣ୍ଡା, ଡାକ୍ତର—କଟକ ଓ ପୁରୀ
ଶ୍ରୀ ସାହିତ୍ୟ ସମ୍ରାଟ୍ ମହାରାଜ ବିକ୍ରମଦେବବର୍ମା ଡି-ଲିଟ୍—ଜୟପୁର
ଶ୍ରୀ ସୁନ୍ଦରାନନ୍ଦ ବିଦ୍ୟାବିନୋଦ ମହାମହୋପଦେଶକ, ବି. ଏ. ସଚ୍ଚିଦାନନ୍ଦମଠ—କଟକ
ପଣ୍ଡିତ କୁଳମଣି ଦାଶ—କଟକ
ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏମ୍. ଏ—କଟକ
ବ୍ରହ୍ମ ଅବଧୂତ ବିଶ୍ୱନାଥ ବାବା
ଡାକ୍ତର କଟିବର ମହାନ୍ତି—କଟକ
ଜଗନ୍ନାଥ ତ୍ରିପାଠୀ, ବି. ଏ. ବିଟି.
ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକ ବି. ଏଲ

## ଓଡ଼ିଆ ଶବ୍ଦମାନଙ୍କ ଉଚ୍ଚାରଣକୁ ଇଂରାଜୀ ଅକ୍ଷରରେ ଅକ୍ଷରାନ୍ତରୀକରଣରେ ବ୍ୟବହୃତ ବର୍ଣ୍ଣମାନଙ୍କର ପରିଚୟ

## LETTERS & SOUNDS USED IN THE ENGLISH TRANSSLITERATION OF THE ORIYA-WORDS IN THIS WORK.

| ଓଡ଼ିଆ ଅକ୍ଷର | Capital | Small | ଓଡ଼ିଆ ଅକ୍ଷର | Capital | Small |
|---|---|---|---|---|---|
| ଅ | A | a | ଟ | Ṭ | ṭ |
| ଆ | Ā | ā | ଠ | Ṭh | ṭh |
| ଇ | I | i | ଡ | Ḍ | ḍ |
| ଈ | Ī | ī | ଡ଼ | — | rḍ |
| ଉ | U | u | ଢ | Ḍh | ḍh |
| ଊ | Ū | ū | ଢ଼ | — | rḍh |
| ଋ | Ṛu | ru | ଣ | Ṇ | ṇ |
| ୠ | Ṛū | ṛū | ତ | T | t |
| ଌ | Lu | lu | ଥ | Th | th |
| ଏ | E | e | ଦ | D | d |
| ଐ | Ai | ai | ଧ | Dh | dh |
| ଓ | O | o | ନ | N | n |
| ଔ | Au | au | ପ | P | p |
| ଂ (ଅନୁସ୍ୱାର) | — | ṁ | ଫ | Ph | ph |
| ଃ (ବିସର୍ଗ) | — | ḥ | ବ | B | b |
| ଁ (ଚନ୍ଦ୍ରବିନ୍ଦୁ) | — | ñ | ଭ | Bh | bh |
| କ | K | k | ମ | M | m |
| ଖ | Kh | kh | ଯ | J̄ | j̄ |
| କ୍ଷ | Ksh | ksh | ୟ | Y | y |
| ଗ | G | g | ର | R | r |
| ଘ | Gh | gh | ଲ | L | l |
| ଙ | Ṅ | ṅ | ଳ | L̤ | l̤ |
| ଚ | Ch | ch | ଅନ୍ତ୍ୟ ବ ବା ୱ | W | w |
| ଛ | Chh | chh | ଶ | Ś | ś |
| ଜ | J | j | ଷ | Sh | sh |
| ଝ | Jh | jh | ସ | S | s |
| ଞ | N̄ | n̄ | ହ | H | h |

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ବ୍ୟବହୃତ ସାଙ୍କେତିକ ଅକ୍ଷର ଓ ଚିହ୍ନମାନଙ୍କ ପରିଚୟ ।

ଅ=ଅବ୍ୟୟ ।
ଅଦାଲତ=ଅଦାଲତଅଦରେ ବ୍ୟବହୃତ ଶବ୍ଦ ।
+ଅଧିକରଣ=ଅଧିକରଣ ବାଚ୍ୟରେ ପ୍ରତ୍ୟୟ ।
ଅନ୍ୟରୂପ=ଉପର୍ଯ୍ୟୁକ୍ତ ଶବ୍ଦର ଭିନ୍ନରୂପ ।
+ଅପାଦାନ=ଅପାଦାନ ବାଚ୍ୟରେ ପ୍ରତ୍ୟୟ ।
ଅଶୁଦ୍ଧ=କଥାବାର୍ତ୍ତାରେ ବା ଲେଖାରେ ବ୍ୟବହୃତ ଅଶୁଦ୍ଧ ଶବ୍ଦ ବା ଉଚ୍ଚାରଣ ।
ଆ=ଆରବୀ ଭାଷା ।
ଆଇନ୍=ଆଇନ୍ ବା ସ୍ମୃତିଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।
ଇଂ=ଇଂରାଜୀ ଭାଷା ।

ଇତର=ଇତରଜନ ବ୍ୟବହୃତ ଶବ୍ଦ ବା ଭାଷା ।
ଇଟା(ଲି)=ଇଟା(ଲି)ଲୀୟ ଭାଷା ।
ଇତ୍ୟାଦି=ପୂର୍ବବର୍ତ୍ତୀ ଶବ୍ଦ ଓ ସେହି ଶବ୍ଦ ସଙ୍ଗେ ବ୍ୟବହୃତ ବା ସେହିଜାତୀୟ ଅନ୍ୟ ଶବ୍ଦମାନ ।
ଉ, ଉର୍ଦ୍ଦୁ=ଉର୍ଦ୍ଦୁ ଭାଷା ।
ଏକାର୍ଥକ ସହଚର=ପୂର୍ବ ଶବ୍ଦ ସଙ୍ଗେ ଏକାର୍ଥରେ ବା ସମାନାର୍ଥରେ ବ୍ୟବହୃତ ଶବ୍ଦ ବା ଶବ୍ଦାଂଶ ।
ଓ=ଓଡ଼ିଆ ଭାଷା ।
କଚେରିଆ=କଚେରି ଓ ଜମିଦାରୀ ଓ ମହାଜନୀ ହିସାବ ଆଦିରେ ଓ ଅଶିକ୍ଷିତ ଦଲିଲ ଲେଖାଳିଙ୍କ ଦ୍ୱାରା ବ୍ୟବହୃତ ଶବ୍ଦ ବା ଭାଷା ।
କନ୍ଧ, କୁଇ=କନ୍ଧମାନଙ୍କ ବ୍ୟବହୃତ ଭାଷା ।
+କରଣ=କରଣ ବାଚ୍ୟରେ ପ୍ରତ୍ୟୟ ।
+କର୍ତ୍ତୃ=କର୍ତ୍ତୃ ବାଚ୍ୟରେ ପ୍ରତ୍ୟୟ ।
+କର୍ମ=କର୍ମ ବାଚ୍ୟରେ ପ୍ରତ୍ୟୟ ।
କର୍ମଧା=କର୍ମଧାରୟ ସମାସ ।
କୋଙ୍କ=କୋଙ୍କଣ ଭାଷା ।
କ୍ରି=କ୍ରିୟାପଦ ।
କ୍ରି. ବିଣ=କ୍ରିୟାବିଶେଷଣ ।
ଖ୍ରୀ=ଖ୍ରୀଷ୍ଟାବ୍ଦ ।
ଖ୍ରୀ. ପୂ=ଖ୍ରୀଷ୍ଟଙ୍କ ଜନ୍ମର ପୂର୍ବାବ୍ଦ ।
ଗଣିତ=ଗଣିତ ଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।
ଗାଳି=ଇତରଜନଙ୍କ ମଧ୍ୟରେ ଗାଳିରେ ବ୍ୟବହୃତ ଶବ୍ଦ ବା ବାକ୍ୟ ।
ଗୁ=ଗୁଜରାଟୀ ଭାଷା ।
ଗ୍ରା, ଗ୍ରାମ୍ୟ=ଗ୍ରାମ୍ୟ ବ୍ୟବହାର; ମାର୍ଜିତ ସାହିତ୍ୟରେ ପରିହାର୍ଯ୍ୟ ଶବ୍ଦ ।
ଗ୍ରୀ, ଗ୍ରୀକ୍=ଗ୍ରୀକ୍ ଭାଷା ।
ଜର୍ମାନ୍=ଜର୍ମାନ୍ ଭାଷା ।
ଜ୍ୟୋତିଷ=ଫଳିତ ଓ ଗଣିତଜ୍ୟୋତିଃଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।
ତତ୍=ତତ୍ପୁରୁଷ ସମାସ ।
ତା=ତାମିଲ ଭାଷା ।
ତୁର୍କୀ=ତୁରସ୍କଦେଶୀୟ ଭାଷା ।
ତୁଳ=ଆଲୋଚିତ ବିଷୟକୁ ବା ଶବ୍ଦକୁ ପରବର୍ତ୍ତୀ ବିଷୟ ବା ଶବ୍ଦ ସଙ୍ଗେ ତୁଳନା କର ।
ତେ=ତେଲଗୁ ଭାଷା ।
ଦର୍ଶନ=ଦର୍ଶନ ଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।
ଦେ=ଦେଶଜ ଶବ୍ଦ ।
ଦେଖ=ଏ ଭାଷାକୋଷରେ ଶବ୍ଦକ୍ରମରେ ପୂର୍ବବର୍ତ୍ତୀ ଶବ୍ଦକୁ ଯଥାସ୍ଥାନରେ ଖୋଜ ।
ଦ୍ର=ଦ୍ରଷ୍ଟବ୍ୟ ।
ଦ୍ରା=ଦ୍ରାବିଡ଼ ଭାଷା ।
ଧା, ଧାତୁ=ସଂସ୍କୃତ ଧାତୁ ।
ଧ୍ୱନ୍ୟନୁକରଣ=ଧ୍ୱନିଅନୁକରଣରେ କଥିତ ବା ଉଚ୍ଚାରିତ ବା ଅର୍ଥସୂଚନାକାରୀ ଶବ୍ଦ
ଧ୍ୱନ୍ୟନୁକାରୀ ସହଚର=ପୂର୍ବ ଶବ୍ଦର ଧ୍ୱନି ବିଶିଷ୍ଟ ସହଚର ଶବ୍ଦ ବା ଶବ୍ଦାଂଶ ।
ନଞ୍ ତତ୍=ନଞ୍ ତତ୍ପୁରୁଷ ସମାସ ।
ନପୁଂ=ନପୁଂସକ ଲିଙ୍ଗ ।
ନାଟକ, ନାଟକୀୟ=ନାଟକରେ ବ୍ୟବହୃତ ଭାଷା ବା ଶବ୍ଦ ।
ନାମ=ସ୍ଥାନବିଶେଷର ବା ବ୍ୟକ୍ତିବିଶେଷଙ୍କ ନାମ ।
ନିରର୍ଥକ ସହଚର=ପୂର୍ବ ଶବ୍ଦ ସଙ୍ଗେ ବ୍ୟବହୃତ ଅର୍ଥହୀନ ସହଚର ଶବ୍ଦ
ନୋଟ୍=ଆଲୋଚିତ ଶବ୍ଦ ବିଷୟରେ ଟୀକା ।
ନ୍ୟାୟ=୧. ନ୍ୟାୟଶାସ୍ତ୍ର; ୨. ଦେଶପ୍ରଚଳିତ ନ୍ୟାୟ ବା ଉକ୍ତି ଯାହା ଉଦାହରଣ ଦିଆଯିବା ପ୍ରାମାଣିକ ଉକ୍ତି

ପଦ୍ୟ=କେବଳ ପଦ୍ୟରେ ବ୍ୟବହୃତ ଆକାର ।
ପର୍ତ୍ତୁ(ର୍ଗୁ)=ପର୍ତ୍ତୁ(ର୍ଗୁ)ଗୀଜ୍ ଭାଷା ।
ପା=ପାଲି ଭାଷା ।
ପୁଂ=ପୁଂଲିଙ୍ଗ ।
ପ୍ରା=ପ୍ରାକୃତ ଭାଷା ।
ପ୍ରାଚୀନ=ପ୍ରାଚୀନ ଓଡ଼ିଆ ଗ୍ରନ୍ଥମାନଙ୍କରେ ବ୍ୟବହୃତ ପଦ ।
ଫା=ଫାରସୀ ବା ପାରସ୍ୟ ଦେଶ ପ୍ରଚଳିତ ଭାଷା ।
ବ=ବଚନ (୧ବ=ଏକବଚନ, ୨ବ=ଦ୍ୱିବଚନ; ବହୁ ବ=ବହୁବଚନ ।)
ବ=ବଙ୍ଗଳା ଭାଷା ।
ବି=ବିଶେଷ୍ୟ ପଦ ।
ବିଜ୍ଞାନ ପରିଭାଷା=ବିଜ୍ଞାନରେ ବ୍ୟବହୃତ ପାରିଭାଷିକ ଶବ୍ଦ ।
ବିଣ=ବିଶେଷଣ ପଦ ।
ବିଣର ବିଣ=ବିଶେଷଣର ବିଶେଷଣ ।
ବିପରୀତ=ପୂର୍ବୋକ୍ତ ଶବ୍ଦର ବିପରୀତାର୍ଥବୋଧକ ଶବ୍ଦ ।
ବୈଦେ=ବୈଦେଶିକ ଭାଷା(ଯଥା—ଇଂରାଜୀ, ଆରବୀ, ଫାରସୀ, ଫ୍ରେଞ୍ଚ, ଜର୍ମାନ୍ )ରୁ ଆନୀତ ବା ଗୃହୀତ ଶବ୍ଦ ।
ବୈଦ୍ୟକ=ବୈଦ୍ୟକ ଗ୍ରନ୍ଥ ବା ଆୟୁର୍ବେଦରେ ବ୍ୟବହୃତ ଶବ୍ଦ ।
ଭତରା, ଭତ୍ରୀ, ଭତ୍ରଡ=ବସ୍ତର ରାଜ୍ୟର ଉତ୍ତରପୂର୍ବ କୋଣରେ କୋରାପୁଟ ଜିଲ୍ଲାର କୃଷିଜୀବୀ ଲୋକଙ୍କ କଥିତ ଭାଷା ।
+ଭାବ=୧. ଭାବାର୍ଥରେ ପ୍ରତ୍ୟୟ ।
୨. ଭାବ ବାଚ୍ୟରେ ପ୍ରତ୍ୟୟ ।
ଭିନ୍ନାର୍ଥକ ବା ବିପରୀତାର୍ଥ ସହଚର=ପୂର୍ବ ଶବ୍ଦ ସଙ୍ଗେ ପୃଥକ୍ ବା ବିପରୀତ ଅର୍ଥରେ ବ୍ୟବହୃତ ଶବ୍ଦ ବା ଶବ୍ଦାଂଶ ।
ମ=ମରହଟ୍ଟୀ ଭାଷା ।
ମ. ପ. ଲୋ=ମଧ୍ୟପଦଲୋପୀ କର୍ମଧାରୟ ।
ଯଥା=ପୂର୍ବୋକ୍ତ ଶବ୍ଦର, ଅର୍ଥର ବା ପ୍ରୟୋଗର ଉଦାହରଣ ।
ଲକ୍ଷଣାର୍ଥ=ଉକ୍ତ ଶବ୍ଦର ଆରୋପିତ ଅର୍ଥ ।
ଲରିଆ=ସମ୍ବଲପୁର ଓ ଛତିଶଗଡ଼ ଅଞ୍ଚଳରେ ବ୍ୟବହୃତ ଉପଭାଷା
ଶିଶୁବଚନ, ଶିଶୁଗୀତ, ଶିଶୁରଞ୍ଜନ=ଶିଶୁମାନଙ୍କ ମନୋରଞ୍ଜନାର୍ଥ କୁହାଯିବା ବା ଶିଶୁମାନଙ୍କ ଉଚ୍ଚାରିତ ବଚନ ବା ପଦ ।
ସଂ=ସଂସ୍କୃତ ଭାଷା ।
ସଙ୍ଗୀତ, ପ୍ରାଚୀନ ସଙ୍ଗୀତ=ପ୍ରାଚୀନ ଓଡ଼ିଆ ସଙ୍ଗୀତ ।
+ସଜ୍ଞାର୍ଥ=ସଜ୍ଞାର୍ଥ ପ୍ରତ୍ୟୟ ।
+ସମ୍ବନ୍ଧାର୍ଥ ପ୍ରତ୍ୟୟ ।
ସର୍ବ=ସର୍ବନାମ ପଦ ।
ସହଚର=ମୂଳ ଶବ୍ଦର ସହଚର ଶବ୍ଦରୂପେ ତାହାଁ ସଙ୍ଗେ ବା ପରେ ବ୍ୟବହୃତ ଶବ୍ଦ ।
ସାନ୍ତାଲ=ସାନ୍ତାଲମାନଙ୍କ କଥିତ ଭାଷା ।
ସ୍ତ୍ରୀ=ସ୍ତ୍ରୀଲିଙ୍ଗ ।
+ସ୍ୱାର୍ଥେ=ଶବ୍ଦର ମୌଳିକ ଅର୍ଥରେ ଯୁକ୍ତ ପ୍ରତ୍ୟୟ ।
ହି=ହିନ୍ଦୀ ବା ହିନ୍ଦୁସ୍ଥାନୀ ଭାଷା ।
ହେବ୍ରୁ=ହେବ୍ରୁ ଭାଷା ।

| | |
|---|---|
| ୧ବ=ଏକବଚନ । | ୫ମୀ=ପଞ୍ଚମୀ ବିଭକ୍ତି । |
| ୧ମ=ପ୍ରଥମ । | ୬ଷ୍ଠୀ=ଷଷ୍ଠୀ ବିଭକ୍ତି । |
| ୧ମା=ପ୍ରଥମା ବିଭକ୍ତି । | ୭ମୀ=ସପ୍ତମୀ ବିଭକ୍ତି । |
| ୨ବ=ଦ୍ୱିବଚନ । | ବହୁବ=ବହୁବଚନ । |
| ୨ୟ=ଦ୍ୱିତୀୟ । | +(ଯୁକ୍ତ)=ପରସ୍ପର ଯୁକ୍ତ ଶବ୍ଦ ବା ଧାତୁପ୍ରତ୍ୟୟର ଯୁକ୍ତ ହେବା ଚିହ୍ନ । |
| ୨ୟା=ଦ୍ୱିତୀୟା ବିଭକ୍ତି । | =(ସମାନ)=ଧାତୁ ପ୍ରତ୍ୟୟ ବା ପଦ ମିଶି ନିଷ୍ପନ୍ନ ଶବ୍ଦ । |
| ୩ୟ=ତୃତୀୟ । | —ଡାସ୍=ଦୁଇଟି ଶବ୍ଦ ମଧ୍ୟରେ ବା ଶବ୍ଦ ଓ ଅର୍ଥ ମଧ୍ୟରେ ବା ଦୁଇ ଭାବ ମଧ୍ୟରେ |
| ୩ୟା=ତୃତୀୟା ବିଭକ୍ତି । | |

ଇ ର୍ଥ=ଇତ୍ୟର୍ଥ—etcetera Etc.
୪ର୍ଥୀ=ଚତୁର୍ଥୀ ବିଭକ୍ତି । Law= Legal term
?—ପ୍ରଶ୍ନସୂଚକ ଚିହ୍ନ; !—ସମ୍ବୋଧନ ବା ବିସ୍ମୟସୂଚକ ଚିହ୍ନ

Raja Sri Aditya Pratap Singh Deo, Sereaikela



ଷଡ଼େଇକଳାଧୀଶ୍ୱର ରାଜା ଶ୍ରୀ ଆଦିତ୍ୟପ୍ରତାପ ସିଂହ ଦେଓ

Tikayet Sri Nrupendra Narayan Singh Deo, B.A., B L
Seraikela.



ଟିକାଏତ ଶ୍ରୀ ନୃପେନ୍ଦ୍ରନାରାୟଣ ସିଂହ ଦେଓ ବି.ଏ., ବି. ଏଲ୍.
ଷଡେଇକଳା

Raja Sri Balabhadra Narayan Bhanj Deo, Keonjhar



କେନ୍ଦୁଝରାଧୀଶ୍ୱର ରାଜା ଶ୍ରୀ ବଳଭଦ୍ରନାରାୟଣ ଭଞ୍ଜ ଦେଓ

Chhotrai Laksminarayan Bhanj Deo, Keonjhar.



ଛୋଟରାୟ ଶ୍ରୀ ଲକ୍ଷ୍ମୀନାରାୟଣ ଭଞ୍ଜ ଦେଓ, କେନ୍ଦୁଝର

ସଂକାଶ—ସଂ. ବଣ.—( ସମ୍+କାଶ ଧାତୁ=ସାଦୃଶ୍ୟ ପାଇବା+ Samkāsa କର୍ତ୍ତି, ଅ) ୧ । (ଶବ୍ଦର ପରବର୍ତ୍ତୀ ହେଲେ) (ସଙ୍କାଶ—ଅନ୍ୟରୂପ) ତୁଲ୍ୟ; ସଦୃଶ (ଯଥା—ପ୍ରଳୟସଂକାଶ, (ସଂକାଶା—ସ୍ତ୍ରୀ) ଚନ୍ଦ୍ରେନ୍ଦୁସଂକାଶ)—1. Equal to; similar to. ୨ । ସମାନ ବର୍ଣ୍ଣ ବା କାନ୍ତି ବିଶିଷ୍ଟ—2. Of a like colour or lustre; resemb

[ଉ—ସେହି ପ୍ରଳୟସଂକାଶ ଭୟଙ୍କର ଦିବସରେ ଯେଉଁ- ସବୁ ଘଟନାମାନ ଘଟିଥିଲା, ମଧୁସୂଦନ. ଲିସବନଭୂମିକମ୍ପ] ୩। ସମୀପବର୍ତ୍ତୀ; ନିକଟବର୍ତ୍ତୀ—3. Near; adjacent.

ସଂକିଲ—ସଂ.ବ. (ସମ୍+କିଲ୍ ଧାତୁ=ଶୁକ୍ଳବର୍ଣ୍ଣ ହେବା+କର୍ତ୍ତି. Samkila ଅ) ୧ । ଦହଣୋଲ୍କା; ଅଗ୍ନିପିଣ୍ଡ—1. Fire-ball. ୨ । ମଶାଲ—2. Torch. ୩ । ଜ୍ୱଳନ୍ତ ଅଗ୍ନି— 3. Burning fire; flame.

ସଙ୍କୀର୍ଣ୍ଣ—ସଂ ବଣ (ସମ୍+କୃ ଧାତୁ+କର୍ମ.ତ) ୧ । ଅପ୍ରସର; ଅପ୍ରଶସ୍ତ— Samkirnna 1. Narrow; strait. ୨ । କ୍ଷୁଦ୍ର; ସୀମାବଦ୍ଧ; (ସଙ୍କୀର୍ଣ୍ଣ—ଅନ୍ୟରୂପ) ସରୁ; ଛୋଟ—2. Limited; small. [ସଙ୍କୀର୍ଣ୍ଣା—ସ୍ତ୍ରୀ] ୩ । ସଙ୍କୁଚିତ—3. Contracted. ୪ । ଉଦାରତାଶୂନ୍ୟ; ଅନୁଦାର (ହୃଦୟ, ମତ)—4. Not liberal; narrow (view). ୫ । ନିବିଡ଼; ଘନ— 5. Dense. ୬ । ଜନତାପୂର୍ଣ୍ଣ; ବହୁ ଲୋକ ସମାକୀର୍ଣ୍ଣ— 6. Crowded. ୭ । ସମାକୀର୍ଣ୍ଣ; ପରିବ୍ୟାପ୍ତ— 7. Overspread; diffused; pervaded; spread over. ୮ । ଗୋଳିଆ ମେଳିଆ; ବିକ୍ଷିପ୍ତ— 8. Confused. ୯ । ନାନାବସ୍ତୁ ମିଳିତ—9. Mixed together. ୧୦ । ଅପବିତ୍ର—10. Impure. ୧୧ । ନାନା ଜାତିର ମିଶ୍ରଣରେ ଜାତ—11. Hybrid; of mixed blood. ୧୨ । ବୈଷମ୍ୟର ବିଜାତୀୟ (ବସ୍ତୁ କଣ୍ଡୁ)—12. Heterogenous. ୧୩ । ସଂକଟମୟ— 13. Dangerous, full of dangers. ସଂ ବି— ୧ । ବର୍ଣ୍ଣସଂକର ଜାତି—1. Mixed caste. ୨ । (ସଂଗୀତ) ମିଶ୍ର ରାଗ—2. A mixed tune. ୩। ସଂକଟ- 3. Straits; difficulties.

ସଙ୍କୀର୍ଣ୍ଣ କଣ୍ଠ—ସଂ. ବ (କର୍ମଧା)—ସଂକୁଚିତ କଣ୍ଠ—Contracted Samkirnna kantha throat. ବିଣ. ପୁଂ—(ବହୁବ୍ରୀହି) ସଂକୁଚିତ କଣ୍ଠ ବିଶିଷ୍ଟ—Having a contracted throat.

[ସଂକୀର୍ଣ୍ଣକଣ୍ଠୀ, ସଂକୀର୍ଣ୍ଣକଣ୍ଠା—ସ୍ତ୍ରୀ]

ସଙ୍କୀର୍ଣ୍ଣ ଗ୍ରୀବ—ସଂ. ବିଣ. ପୁଂ (ବହୁବ୍ରୀହି; ସଂକୀର୍ଣ୍ଣ+ଗ୍ରୀବା)—ଯାହାର Samkirnna griba ବେକ ସରୁ; ସରୁବେକା; ( ସଂକୀର୍ଣ୍ଣ ଗ୍ରୀବା—ସ୍ତ୍ରୀ ) ବଣିବେକା—Having a narrow neck.

ସଙ୍କୀର୍ଣ୍ଣ ଗ୍ରୀବା—ସଂ. ବ (କର୍ମଧା)—ସରୁ ବେକ—Narrow neck. Samkirnna gribā ସଂ. ବିଣ. ସ୍ତ୍ରୀ (ବହୁବ୍ରୀହି)—ସଂକୀର୍ଣ୍ଣ- ଗ୍ରୀବର ସ୍ତ୍ରୀଲିଙ୍ଗ—Feminine of Samkirnna-griba.

ସଙ୍କୀର୍ଣ୍ଣ ଚିତ୍ତ—ସଂ. ବ(କର୍ମଧା)—ନୀଚ ହୃଦୟ, ନୀଚ ମନ—A mean Samkirnna chitta mind. ସଂ. ବିଣ—ସଂକୀର୍ଣ୍ଣମନାଃ [ ସଂକୀର୍ଣ୍ଣଚିତ୍ତା—ସ୍ତ୍ରୀ ] (ଦେଖ)—Samkirnnamanāh. (See)

ସଂକୀର୍ଣ୍ଣ ଚେତା—ଦେ. ବିଣ (ସଂ. ସଂକୀର୍ଣ୍ଣ ଚେତାଃ)—ସଂକୀର୍ଣ୍ଣଚେତାଃ Samkirnna chetā ( ଦେଖ )—Samkirnna chetah संकीर्णचेता সংকীর্ণচেতা (See)

ସଂକୀର୍ଣ୍ଣ ଚେତାଃ—ସଂ. ବିଣ ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ସଂକୀର୍ଣ୍ଣ+ଚେତସ୍; Samkirnna chetah ୧ମା. ୧ବ)-ସଂକୀର୍ଣ୍ଣମନାଃ (ଦେଖ)— Samkirnnamanāh. (See)

ସଂକୀର୍ଣ୍ଣ ଜାତି—ସଂ. ବ (କର୍ମଧା)—ବର୍ଣ୍ଣସଂକର ଜାତି— Samkirnna jāti Mixed caste.

ସଂକୀର୍ଣ୍ଣତା(ତ୍ୱ)—ସଂ. ବ ( ସଂକୀର୍ଣ୍ଣ+ଭାବାର୍ଥେ. ତା, ତ୍ୱ )— Samkirnnatā(twa) ୧। ଅପ୍ରସରତା—1. Narrowness. ୨ । (ମନର) ଅନୁଦାରତା—2. Want of liberality (of mind); narrowness (of mind). ୩ । ସାଂକର୍ଯ୍ୟ—3. The state of being of mixed blood. ୪ । ଭିଡ଼; ଜନତା—4. Crowd; state of being crowded.

ସଂକୀର୍ଣ୍ଣ ଦେହ—ସଂ. ବ (କର୍ମଧା)—୧ । ସଂକୁଚିତ ଶରୀର— Samkirnna deha 1. Contracted body. ୨ । କ୍ଷୁଦ୍ର ଦେହ—2. Small body. ବିଣ. ପୁଂ— ୧ । (ବହୁବ୍ରୀହି) କ୍ଷୁଦ୍ର ଦେହ ବିଶିଷ୍ଟ— 1. Small-bodied. ୨ । ସଂକୁଚିତକାୟ; ଯାହାର ଶରୀର ସଂକୁଚିତ ହୋଇଅଛି—2. With contracted body.

ସଂକୀର୍ଣ୍ଣାଙ୍ଗ, ସଂକୀର୍ଣ୍ଣକାୟ, ସଂକୀର୍ଣ୍ଣବିଗ୍ରହ } ଅନ୍ୟରୂପ
ସଂକୀର୍ଣ୍ଣଦେହା, ସଂକୀର୍ଣ୍ଣାଙ୍ଗୀ, ସଂକୀର୍ଣ୍ଣକାୟା, ସଂକୀର୍ଣ୍ଣବିଗ୍ରହା } ସ୍ତ୍ରୀ

ସଙ୍କୀର୍ଣ୍ଣ ନୀତି—ସଂ. ବ (କର୍ମଧା)—୧ । ଅନୁଦାର ନୀତି—1. Illiberal or narrow policy or principle. ୨ । ନୀଚ ନୀତି—2. Mean policy. Samkirnna niti

ସଙ୍କୀର୍ଣ୍ଣ ପଥ—ସଂ. ବ (କର୍ମଧା)—ସରୁ ବାଟ— Samkirnna patha Narrow path.

ସଙ୍କୀର୍ଣ୍ଣ ମତ—ସଂ. ବ (କର୍ମଧା)—ଅନୁଦାର ମତ— Samkirnna mata Illiberal view.

ସଙ୍କୀର୍ଣ୍ଣ ମନ—ସଂ. ବ (କର୍ମଧା)—ଅନୁଦାର ମନ— Samkirnna mana Narrow mind.

ସଂକୀର୍ଣ୍ଣ ମନା—ଦେ. ବିଣ (ସଂ. ସଂକୀର୍ଣ୍ଣମନାଃ)—ସଂକୀର୍ଣ୍ଣମନାଃ (ଦେଖ) Samkirnna manā Samkirnnamanāh. (See) संकीर्णमना সংকীর্ণমনা

ସଂକୀର୍ଣ୍ଣ ମନାଃ—ସଂ. ବିଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ସଂକୀର୍ଣ୍ଣ+ମନସ୍; Samkirnna manāh ୧ମା. ୧ବ)—୧ । ନୀଚମନାଃ— 1. Mean-minded. ୨। କ୍ଷୁଦ୍ର ଚେତାଃ; ଅନୁଦାରମନାଃ; ଯାହାର ମନ ଉଦାରଭାବାପନ୍ନ ନୁହେଁ—2. Narrow-minded. ୩ । ସ୍ୱାର୍ଥପର—3. Selfish.

ସଙ୍କୀର୍ଣ୍ଣ ମୁଖ—ସଂ. ବ (କର୍ମଧା)—୧ । ସରୁ ମୁହଁ—1. Narrow
Saṁkirṇṇa mukha mouth. ୨ । ସଙ୍କୁଚିତ ମୁହଁ;
କୁଞ୍ଚିତ ମୁହଁ—2. Contracted mouth. ସ. ଵଣ—
(ବହୁବ୍ରୀହି)—୧। ସରୁ ମୁହାଁ; କୁଞ୍ଚ ମୁହାଁ—1. Narrow-
(ସଙ୍କୀର୍ଣ୍ଣମୁଖୀ—ସ୍ତ୍ରୀ) mouthed. ୨ । ଅପ୍ରଶସ୍ତ ଦ୍ୱାର ଵଶିଷ୍ଟ—
2. Having a narrow outlet.

ସଂକୀର୍ଣ୍ଣ ଯୋନ—ସଂ. ବ. (କର୍ମଧା)—ନୀଚ ଜାତି - Low caste.
Saṁkirṇṇa joni ଵଣ. ( ବହୁବ୍ରୀହି )—ନୀଚଜାତ; ନୀଚ
ଜାତୀୟ—Of low class; low born.

ସଂକୀର୍ଣ୍ଣ ହୃଦୟ—ସଂ. ବ. ଓ ଵଣ (କର୍ମଧା ଓ ବହୁବ୍ରୀହି)—ସଂକୀର୍ଣ୍ଣଚିତ୍ତ
Samkirṇṇa hrudaya ( ଦେଖ )—Saṁkirṇṇa
(ସଂକୀର୍ଣ୍ଣହୃଦୟା—ସ୍ତ୍ରୀ) chitta (See).

ସଂକୀର୍ଣ୍ଣାତ୍ମା—ସଂ.ବ. ଓ ଵଣ (କର୍ମଧା ଓ ବହୁବ୍ରୀହି)--ସଂକୀର୍ଣ୍ଣଚିତ୍ତ(ଦେଖ)
Saṁkirṇṇātmā Saṁkirṇṇachitta (See).

ସଂକୀର୍ଣ୍ଣାୟତନ—ସଂ. ବ ( କର୍ମଧା ) - କ୍ଷୁଦ୍ର ସ୍ଥାନ—1. Small
Saṁkirṇṇāyatana space or area. ସଂ ଵଣ
(ବହୁବ୍ରୀହି)—୧ । ଅପ୍ରଶସ୍ତ ଆକାର ଵଶିଷ୍ଟ—1. Of
small or limited area. ୨ । ସଂକୁଚିତ—
2. Contracted. ୩ । ଅପ୍ରଶସ୍ତ—3 Narrow.

ସଂକୀର୍ଣ୍ଣାବସ୍ଥ—ସଂ. ଵଣ (ବହୁବ୍ରୀହି; ସଂକୀର୍ଣ୍ଣ+ଅବସ୍ଥା)—୧ । ସଂକୁଚିତ
Saṁkirṇṇābastha ଅବସ୍ଥାଯୁକ୍ତ—1. Of contracted
state. ୨ । ହୀନଦଶା ପ୍ରାପ୍ତ; ହୀନାବସ୍ଥାଯୁକ୍ତ—
2. Of low or mean condition.

ସଂକୀର୍ଣ୍ଣାବସ୍ଥା—ସଂ. ବ. (କର୍ମଧା)—୧ । ହୀନଦଶା—1. Low or
Saṁkirṇṇābasthā mean condition. ୨ । ସଂକୁଚିତ
ଅବସ୍ଥା—2. Contracted state. ୩ । ଅପ୍ରଶସ୍ତ
ଅବସ୍ଥା—3. Narrow state.

ସଂକୀର୍ଣ୍ଣାୟମାନ—ସଂ. ଵଣ ( ସଂକୀର୍ଣ୍ଣ+ଅଭୂତ ତଦ୍ଭାବେ ଯ=
Saṁkirṇṇāyamāna ସଂକୀର୍ଣ୍ଣାୟ ନାମଧାତୁ+କର୍ତ୍ତୃ ଅନ)—
କ୍ରମଶଃ ସଂକୀର୍ଣ୍ଣ ହେଉଥିବା—Gradually narrow-
(ସଂକୀର୍ଣ୍ଣାୟମାନା—ସ୍ତ୍ରୀ) ing.

ସଂକୀର୍ଣ୍ଣୀକରଣ—ସଂ. ବ—ସଂକରୀକରଣ; ଗ୍ରାମ୍ୟ ଓ ଅରଣ୍ୟ ପଶୁବଧ—
Saṁkirṇṇikaraṇa ଜନିତ ପାପ—Sin of killing
wild and domestic animals.

ସଂକୀର୍ତ୍ତନ (ନା)—ସଂ.ବ (ସମ୍+କୃତ୍ ଧାତୁ+ଭାବ ଅନ+ସ୍ତ୍ରୀ ଆ)—
Saṁkirttana(nā) ୧ । ଦେବତାଙ୍କ ନାମୋଚ୍ଚାରଣ ପୂର୍ବକ
ସ୍ତୁତିଗାନ; ସମ୍ୟକ୍ ପ୍ରକାରରେ ଦେବତାଙ୍କ ନାମ
ଉଚ୍ଚାରଣ ପୂର୍ବକ ଗାନ—1. Songs sung in
[ସଙ୍କୀର୍ତ୍ତନ (ନା)—ଅନ୍ୟରୂପ] praise of God or Deities;
chanting of hymns or psalms. ୨ । ଗୁଣାନୁ-
କଥନ; ପ୍ରଶଂସା କରିବା—2. Praising; eulogi-
sing. ୩ । ବର୍ଣ୍ଣନା—3. Describing. ୪ ।
ଉଚ୍ଚାରଣ—4. Uttering. ଦେ. ବ—ରାଧା,
ସଂକୀର୍ତ୍ତନ, କୀର୍ତ୍ତନ, ସଙ୍କୀର୍ତ୍ତନ କୃଷ୍ଣ ଓ ଶ୍ରୀ ଚୈତନ୍ୟଙ୍କ ସମ୍ବନ୍ଧୀୟ
ଖୋଳ କରତାଳ ଓ ବାଦ୍ୟାଦି ସହିତ ଗୀତ ଗାନ—
Songs in praise of Radha, Krushṇa
and Chaitanya sung in accompani-
ment of music. [ଦ୍ର—ଭଗବାନ ଓ ଦେବତାଙ୍କ
ନାମସଂକୀର୍ତ୍ତନର ମାହାତ୍ମ୍ୟ ଭଗବତ, ଆଦି ପୁରାଣ,
କୃଷ୍ଣଲୀଳା ପୁରାଣାଦିରେ ବର୍ଣ୍ଣିତ ହୋଇଅଛି; କିନ୍ତୁ
ଶ୍ରୀ ଚୈତନ୍ୟ ଦେବଙ୍କ ସମୟରୁ ଖୋଳ କରତାଳ ସହିତ
ବହୁ ଲୋକଙ୍କର ସମ୍ମିଳିତ ଗାନ ଓ ବିଶେଷତଃ ଶ୍ରୀରାଧା-
କୃଷ୍ଣ ସମ୍ବନ୍ଧୀୟ ଗାନ ବା ସଂକୀର୍ତ୍ତନ ଓ ବୈଷ୍ଣବମାନଙ୍କର
ବିଶେଷ ଆଦର ଲଭିଅଛି । ଚୈତନ୍ୟଦେବ ପ୍ରମୁଖ କହିଲେ
ଯେ, କଳିଯୁଗରେ ଏକମାତ୍ର ସଂକୀର୍ତ୍ତନ ହିଁ ମୁକ୍ତିଲାଭର
ମନୁଷ୍ୟର ଏକମାତ୍ର ଅବଲମ୍ବନ । ବୃହନ୍ନାରଦୀୟ ନାମ ଯଥା—
"ହରେର୍ନାମ ହରେର୍ନାମ ହରେର୍ନାମୈବ କେବଳଂ
କଲୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା ।"
ଯେଉଁଠାରେ ନାମ ସଂକୀର୍ତ୍ତନ ହୁଏ, ତାହା ସ୍ଥାନତମ
ତୀର୍ଥ ଓ ସଂକୀର୍ତ୍ତନକାରୀ ଲୋକଙ୍କ ପାଦରଜ
ଯେଉଁଠାରେ ପଡ଼େ, ସେ ସ୍ଥାନ ପବିତ୍ର ହୁଏ ।
ଏହି କୀର୍ତ୍ତନଧ୍ୱନିରେ ପାପ ସବୁ ଗଙ୍ଗା ଛାଡ଼ି ପଳାନ୍ତି ଏବଂ
ସଂକୀର୍ତ୍ତନ ଦ୍ୱାରା ଶ୍ରୋତା ଓ ଗାୟକଙ୍କର ଉପର ଓ ତଳର
ସାତ ପୁରୁଷ ଉଦ୍ଧାର ପାଆନ୍ତି । ଶାସ୍ତ୍ରରେ ମଧ୍ୟ ଅଛି ଯେ,
ସତ୍ୟଯୁଗରେ ତୀର୍ଥ, ତ୍ରେତାରେ ଯଜ୍ଞ, ଦ୍ୱାପରରେ ଦାନ ଓ
କଳିରେ ନାମ ସଂକୀର୍ତ୍ତନହିଁ ଯୁଗଧର୍ମ । ପୁଣି କଥିତ ଅଛି
ଯେ, ଦାନ, ବ୍ରତ, ତପସ୍ୟା, ଯଜ୍ଞ, ଏ ସମସ୍ତ ଅପେକ୍ଷା
ସଂକୀର୍ତ୍ତନ ଅଧିକତର ଫଳପ୍ରଦ ଓ ମୁକ୍ତିପ୍ରଦ ଅଟେ ଏବଂ
ସଂକୀର୍ତ୍ତନ-ବିରହିତ ଦାନାଦି କାର୍ଯ୍ୟ ନିଷ୍ଫଳ ହୁଏ ।
ଶ୍ରୀ ଚୈତନ୍ୟ ଦେବ ପ୍ରଧାନତଃ ଦୁଇଗୋଟି ପଦକୁ ଘୋଷି
ଖୋଳ କରତାଳ ସାହାଯ୍ୟରେ ବହୁ ସହଚରଙ୍କ
ସମଭିବ୍ୟାହାରରେ ସଂକୀର୍ତ୍ତନ କରୁଥିଲେ । ପଦମାନ
ଯଥା—

୧ । ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ
ହରେ ରାମ ହରେ ରାମ ରାମ ରାମ ହରେ ହରେ ।

୨ । କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ ହେ
କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ ହେ
କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ ପାହି ମାଂ
କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ କୃଷ୍ଣ ରକ୍ଷ ମାଂ ।

୩ । କୃଷ୍ଣ କେଶବ କୃଷ୍ଣ କେଶବ କୃଷ୍ଣ କେଶବ ପାହି ମାଂ
ରାମ ରାଘବ ରାମ ରାଘବ ରାମ ରାଘବ ରକ୍ଷ ମାଂ ।

ଭାଗବତବର୍ଣ୍ଣିତ ଶ୍ରୀକୃଷ୍ଣ ଓ ରାଧାଙ୍କର ରାସ ଲୀଳା
ଲୀଳା ଓ ଚରିତକୁ ମଧ୍ୟ ଶ୍ରୀଚୈତନ୍ୟଦେବ ସମୟ-
ସମୟରେ ଗାନ କରୁଥିଲେ । ପରେ ଚୈତନ୍ୟଙ୍କ ଭକ୍ତ-
ମାନେ ଓ ବିଶେଷତଃ ସ୍ୱର୍ଗୀୟ ଶ୍ରୀ ରାଧାରମଣ ଚରଣ ଦାସ

"(ଭଜ) କଣ୍ଠାଇ ଗଉର ରାଧେ ଶ୍ୟାମ
(ଜପ) ହରେ କୃଷ୍ଣ ହରେ ରାମ"

ଏହି ପଦକୁ ସଂକୀର୍ତ୍ତନ କଲେ ଏବଂ ଏହାହିଁ ବର୍ତ୍ତମାନ କେତେ ବୈଷ୍ଣବଙ୍କର ସଂକୀର୍ତ୍ତିତ ପ୍ରଧାନ ପଦ। ସଂକୀର୍ତ୍ତନରେ ଶ୍ରୀଚୈତନ୍ୟ ଦେବଙ୍କ ଜୀବନଚରିତ ମଧ୍ୟ ଗୀତ ହୁଏ ।

ଚୈତନ୍ୟ ଦେବ ପୁରୀରେ ବହୁକାଳ ଅବସ୍ଥିତି କରି ଉତ୍କଳରେ ବୈଷ୍ଣବଧର୍ମର ବିଶିଷ୍ଟ ପ୍ରଚାରକ ହୋଇଥିଲେ । ଓଡ଼ିଶାରେ କେବଳ ପୁରୀର ଶାସନୀ ବ୍ରାହ୍ମଣମାନଙ୍କ ଛଡ଼ା ଅନ୍ୟ ସବୁ ଜାତି ଶ୍ରୀଚୈତନ୍ୟ ଦେବଙ୍କ ପ୍ରବର୍ତ୍ତିତ ସଂକୀର୍ତ୍ତନକୁ ଗ୍ରହଣ କରିଅଛନ୍ତି ଏବଂ ଉତ୍କଳର ଗ୍ରାମେ ଗ୍ରାମେ ବଙ୍ଗଳା ଭାଷାର ସଂକୀର୍ତ୍ତନ (ବଙ୍ଗ ଭାଷା ଜାଣି ନ ଥିବା ଅଶିକ୍ଷିତ ଓଡ଼ିଆଙ୍କ ମୁହଁରେ ବିକୃତ ରୂପ ଧାରଣ କରି ସୁଦ୍ଧା) ଏପର୍ଯ୍ୟନ୍ତ ଖୋଳ କରତାଳ ସାହାଯ୍ୟରେ ଗୀତ ହେଉଅଛି । ଶ୍ରୀକୃଷ୍ଣ ଲୀଳା ଓ ଶ୍ରୀଚୈତନ୍ୟ ଲୀଳା ଏହି ସଂକୀର୍ତ୍ତନମାନଙ୍କ ବିଷୟ । ଦୋଳ ଦଶହରା ଆଦି ଜାନି ଯାତ୍ରାରେ, ଦେବତାମାନଙ୍କ ଶୋଭାଯାତ୍ରାରେ ଓ ଦେବ ମେଳନରେ ଏକାଧିକ ସଂକୀର୍ତ୍ତନ ମଣ୍ଡଳ ଖୋଳ କରତାଳ ସହିତ ସଂକୀର୍ତ୍ତନ କରନ୍ତି ଏବଂ ଚୈତନ୍ୟଦେବଙ୍କ ଅମଳରୁ ଅଦ୍ୟପର୍ଯ୍ୟନ୍ତ ପୁରୀରେ ଜଗନ୍ନାଥଙ୍କ ରଥଯାତ୍ରା ଉପଲକ୍ଷରେ ଟଣା ହେଉଥିବା ରଥମାନଙ୍କ ଆଗରେ ଉତ୍କଳୀୟ ଓ ବଙ୍ଗୀୟ ସଂକୀର୍ତ୍ତନମଣ୍ଡଳୀମାନେ ସଂକୀର୍ତ୍ତନ କରି କରି ଅଗ୍ରସର ହେଉଥାଆନ୍ତି । ଓଡ଼ିଶାରେ ସଂକୀର୍ତ୍ତନ ବଙ୍ଗୀୟ କୀର୍ତ୍ତନର ମାଧୁରୀ ହରାଇ ପ୍ରାୟ ହାତେ ବ୍ୟାସବିଶିଷ୍ଟ ଝାଞ୍ଜ ଓ ଦୁଇ ହାତ ଲମ୍ବର ମୃଦଙ୍ଗବାଦନଧ୍ୱନି ମିଶ୍ରିତ ହୋଇ ଅତି କର୍କଶ ହୋଇଅଛି । ଯେଉଁଠାରେ ଶିକ୍ଷିତ ଦଳ ବଙ୍ଗୀୟ ସଂକୀର୍ତ୍ତନର ବାଦ୍ୟ (ଛୋଟ ମୃଦଙ୍ଗ ଓ ଛୋଟ ଝାଞ୍ଜ ବା କୁବୁଜି) ସାହାଯ୍ୟରେ ସଂକୀର୍ତ୍ତନ କରିବାକୁ ଶିଖି-ଅଛନ୍ତି, ତାହା ଶ୍ରୁତିମଧୁର; ନଚେତ୍ ଉତ୍କଳର ମଫସଲରେ ସଂକୀର୍ତ୍ତନର ଅର୍ଥ ୨।୩ଟି ମୃଦଙ୍ଗର କର୍ଦ୍ଦମା ବାଡ଼ିଆ ଓ ୧୦।୧୨ ଯୋଡ଼ା ଝାଞ୍ଜର ଘୋର ଝଣ୍ଟାକାର ସଦୃଶ ନାଦ । ଏହି ମାଡ଼ର ଦାଉରେ ଅନେକ ସମୟରେ ମୃଦଙ୍ଗମାନ ଫାଟିଯାଏ, ଝାଞ୍ଜମାନ ଦଦରା ହୁଏ ଓ ବଜାଳିଙ୍କ କଣ୍ଠର ଦର୍ଦ୍ଦୁର ନିନାଦରେ ପାଏ ବାଠଯାକେ ଲୋକେ ଅସ୍ଥିର ହୋଇଉଠନ୍ତି । ଓଡ଼ିଶାର ସଂକୀର୍ତ୍ତନରେ ଝାଞ୍ଜ ମୃଦଙ୍ଗ ବଜା ହୁଏ ନାହିଁ, ବାଡ଼ିଆ ହୁଏ । ଓଡ଼ିଶାରେ ଠାକୁରମାନଙ୍କର ଓ ସଂକୀର୍ତ୍ତନମଣ୍ଡଳୀମାନଙ୍କର 'ମେଳନ'ରେ ଉତ୍ତମ ଉତ୍ତମ ଗାୟକଙ୍କ ଗୀତର ମାଧୁରୀ ପରୀକ୍ଷା କରା ଯାଏ ନାହିଁ, କିନ୍ତୁ ମୃଦଙ୍ଗର ବୋଲଚାଳ ଡାକ ଓ ମୃଦଙ୍ଗ ଏବଂ ଝାଞ୍ଜ ବାଡ଼ିଅରେ କେଉଁ ପକ୍ଷ ଅନ୍ୟ ପକ୍ଷଙ୍କୁ ହଟିଗଲେ, ଏହାହିଁ ପରୀକ୍ଷା କରାଯାଏ ।

ସଂକୀର୍ତ୍ତନରେ ବ୍ୟବହୃତ ମୃଦଙ୍ଗକୁ 'ଖୋଳ' ଓ ଝାଞ୍ଜକୁ 'କରତାଳ' କୁହାଯାଏ । ସଂକୀର୍ତ୍ତନ ଶେଷରେ ଖୋଳ କରତାଳକୁ ଭୋଗ ଓ ନୂତନ ବସ୍ତ୍ର ଅର୍ପିତ ହୋଇ ପୂଜା କରାଯାଏ ।]

**ସଂକୀର୍ତ୍ତନ ଆଖ(ଖେ)ଡ଼ା**—ଦେ. ବି: ୧ । ସଂକୀର୍ତ୍ତନ ଶିକ୍ଷା କରିବାର ଗୃହ Saṁkīrttana ākha(khe)ṛḍā —1 A room where କୀର୍ତ୍তনের আখড়া Saṁkīrttana is taught. [ଦ୍ର— **संकीर्तनआखड़ा** ଉତ୍କଳରେ ପ୍ରାୟ ପ୍ରତ୍ୟେକ ଗ୍ରାମରେ (ଶାସନୀ ବ୍ରାହ୍ମଣ-ପ୍ରଧାନ ଗ୍ରାମ ବ୍ୟତୀତ) ସଂକୀର୍ତ୍ତନ ଅଖଡ଼ା ପାଇଁ ଗୋଟିଏ ସ୍ୱତନ୍ତ୍ର ଗୃହ ଥାଏ । ଯେଉଁ ଗ୍ରାମରେ 'ଭାଗବତ-ଟୁଙ୍ଗୀ' ଥାଏ, ସେହି ଟୁଙ୍ଗୀ ମଧ୍ୟ 'ସଙ୍କୀର୍ତ୍ତନ ଅଖଡ଼ା' ରୂପେ ବ୍ୟବହୃତ ହୁଏ । ଏହି ଅଖଡ଼ା ଘର ଗ୍ରାମବାସୀଙ୍କର ସାଧାରଣ ଗୃହ ଓ ଏଥିରେ ଗ୍ରାମବାସୀମାନେ ପ୍ରତିଦିନ ସନ୍ଧ୍ୟା ସମୟରେ ଏକତ୍ର ହୋଇ ସଂକୀର୍ତ୍ତନ ଅଭ୍ୟାସ କରନ୍ତି ଏବଂ ଏହି ଘରେ ଗ୍ରାମବାସୀମାନଙ୍କର ଖୋଳ କରତାଳମାନ ରଖାଯାଏ । ଗ୍ରାମବାସୀମାନେ ସଂକୀର୍ତ୍ତନ ଶିଖିବା ପାଇଁ ଚାନ୍ଦା ଉଠାଇ 'ଗୁରୁ' ରଖନ୍ତି । ] ୨ । ସଂକୀର୍ତ୍ତନକାରୀ ଦଳ—2. A company of Saṁkīrttana chanters.

**ସଙ୍କୀର୍ତ୍ତନ ଗୁରୁ**—ଦେ. ବି—ସଂକୀର୍ତ୍ତନର ଗୀତ ଓ ବାଦ୍ୟ ଶିଖାଇବା Saṁkīrttana guru ନିମନ୍ତେ ନିଯୁକ୍ତ ଶିକ୍ଷକ— କୀର୍ত্তনের গুরু A teacher who teaches songs and **संकीर्तनगुरु** music relating to Saṁkīrttana.

**ସଂକୀର୍ତ୍ତନ ମଣ୍ଡଳ[ଳି]**—ଦେ. ବି—୧ । ସଂକୀର୍ତ୍ତନକାରୀ ଦଳ ବା Saṁkīrttana maṇḍala[li] ପକ୍ଷ—1. A band or କୀর্তনের দল choir of persons who perform Saṁ- **संकीर्तन मण्डली** kīrttana, (some singing, some striking the drums and other cymbals). ୨ । ମେଳନ ଆଦି ଉପଲକ୍ଷରେ ବହୁ ସ୍ଥାନରୁ ଆସି ଏକ ସ୍ଥାନରେ ଉପସ୍ଥିତ ବହୁ ସଂକୀର୍ତ୍ତନ ଦଳ—2. A number of Saṁkīrttana parties assembled at a particular place on a particular occasion.

**ସଂକୀର୍ତ୍ତନ ମେଳନ(ଣ)**—ଦେ. ବି—ପ୍ରତିଯୋଗିତା ପାଇଁ ବା ବିଶେଷ Saṁkīrttana melana(ṇ) ଉପଲକ୍ଷରେ କୌଣସି ସ୍ଥାନରେ କୀর্তনমেলা ଏକାଧିକ ସଂକୀର୍ତ୍ତନ ଦଳଙ୍କର ସମ୍ମେଳନ— **संकीर्तनमेला** A gathering of more than one (ସଂକୀର୍ତ୍ତନ ମେଳ[ଳା]—ଅନ୍ୟରୂପ) party of Saṁkīr-ttana chanters at a particular place for competition or on some special occasion.

**ସଂକୀର୍ତ୍ତନିଆ(ଆଁ)**—ଦେ ବି—ସଂକୀର୍ତ୍ତନକାରୀ ଦଳର ବ୍ୟକ୍ତି— Saṁkīrttaniā(āṅ) A member of a choir of সংকীর্তনিয়া, কীর্তনীয়া, সংকীর্তনে Saṁkīrttana-chanters. **संकीर्तनिया**

ସଂକୀର୍ତ୍ତିତ—ସଂ. ବଣ ( ସମ୍+କୃତ୍ ଧାତୁ+କର୍ମ. ତ )—
Samkirttita ୧ । ସମ୍ୟକ୍ ବା ଉଚ୍ଚୈଃସ୍ୱରରେ ଉଚ୍ଚାରିତ—
(ସଂକୀର୍ତ୍ତିତା—ସ୍ତ୍ରୀ) 1. Uttered loudly. ୨ । ସଂସ୍ତୁତ—
2. Solicited. ୩ । ପ୍ରଶଂସିତ - 3. Praised; eulogised. ୪। ବର୍ଣ୍ଣିତ— 4. Described.

ସଂକୁଚ୍(ଚେ)ଇବା—ଦେ (ପଦ୍ୟ) କ୍ରି—ସଂକୁଚିବାର ଣିଜନ୍ତରୂପ—
Samkucha(che)iba Causative of Samkuchiba.
সংবুচান सुकुच करवाना

ସଂକୁଚିତ—ସଂ. ବଣ ( ସମ୍+କୁଚ୍ ଧାତୁ=ଗୋଟାଇ ନେବା; ଗୁଡ଼ାଇ
Samkuchita ନେବା+କର୍ମ. ତ)—୧ । ସଂକୀର୍ଣ୍ଣ;ଯେଉଁ ବସ୍ତୁର
(ସଙ୍କୁଚିତ—ଅନ୍ୟରୂପ) ପଦାର୍ଥକୁ ଗୋଟାଇ ଦିଆ ଯାଇଥାଏ—
(ସଂକୁଚିତା—ସ୍ତ୍ରୀ) 1. Contracted. ୨ । ମୁଦ୍ରିତ; ନିମୀଳିତ—2. Closed. ୩ । ଗୁଡ଼ିଆ ହୋଇଥିବା—
3. Wound up. ୪ । ଅପ୍ରସାରିତ – 4. Not spread out or expanded. ୫। କୁଣ୍ଠିତ; ସଂକୋଚ ପ୍ରାପ୍ତ—5. Hesitating. ୬ । ସଂକ୍ଷିପ୍ତ—6. Abridged. ୭ । କୁଞ୍ଚି କୁଞ୍ଚି ହୋଇଥିବା—7. Shrivelled up; wrinkled.

ସଂକୁଚିତ କରିବା—ଦେ. କ୍ର (ସ. ସଙ୍କୁଚିତ)—୧। ଚାପିବା – 1.To
Samkuchita kariba contract. ୨ । ସଙ୍କୁଚିତ କରିବା
সংকুচিত করা —2.To shorten. [ଉ—ସିନ୍ଧୁଗର୍ଭେ ପ୍ରବେଶିଲେ
सुकुचाना ସଂକୋଚ ସ୍ୱକାୟ—ରାଧାନାଥ. ମହାଯାତ୍ରା]

ସଂକୁଚିବା—ଦେ. କ୍ରି ( ସଂ. ସଂକୁଚିତ )—୧ । ସଂକୁଚିତ ହେବା—
Samkuchiba 1. To be contracted. ୧ । ଲଜ୍ଜାରେ
সংকুচিত হওয়া ଜଡ଼ ହେବା—2. To be overtaken
सुकुचना with modesty or bashfulness. [ଉ—
ଶ୍ରୀମତୀ ସଂକୁଚିଲେ ଲଜ୍ଜାଭରେ—କବିସୂର୍ଯ୍ୟ. ସଙ୍ଗୀତ । ]

ସଂକୁଟନ—ସଂ. ବ ( ସମ୍+କୁଟ୍ ଧାତୁ=କୁଟିଳତା ପ୍ରକାଶ କରିବା+
Samkutana ଭାବ. ଅନ )—ମୃତ୍ୟୁ—Death.
( ସଂକୁଣ୍ଠନ—ଅନ୍ୟରୂପ )

ସଂକୁଡ଼ି—ଦେ. ବ—ସଙ୍କୁଡ଼ି ( ଦେଖ )
Samkurdi Sankurdi ( See )

ସଂକୁନ—ଦେ. ବ—ସଙ୍କୁନ (ଦେଖ)—
Sankuna Samkuna (See)

ସଂକୁ(ଖୁ)ରି —ଗ୍ରା. ବ. ଓ ବଣ—(ଅଶୁଦ୍ଧ; ଇତର ବ୍ୟବହୃତ)—
Samku(khu)ri ସଂଖୁଡ଼ି (ଦେଖ)--Samkhurdi (See)

ସଂକୁଳ—ସଂ. ବଣ (ସମ୍=ଏକତ୍ର+କୁଲ୍ ଧାତୁ=ବ୍ୟାପ୍ତି କରିବା
Samkula +କର୍ତ୍ତୃ. ଅ) ୧ । ବ୍ୟାପ୍ତ; ସମାକୀର୍ଣ୍ଣ; ପୂର୍ଣ୍ଣ;
(ସଙ୍କୁଳ—ଅନ୍ୟରୂପ) ବହୁଳ—1. Full of; surrounded
(ସଂକୁଳା—ସ୍ତ୍ରୀ) by; overspread with. ୨ । ଯୁକ୍ତ;
ଏକତ୍ର ବିଦ୍ୟମାନ; ମିଶ୍ରିତ—2. Mixed up; united; compounded. ୩ । ଗୋଳମାଳ ପୂର୍ଣ୍ଣ—
3. Tumultuous. [ଉ—ସେହି କାଳେ ସଂକୁଳ ହୋଇଲା ସମର, ମସମର ହୋଇ ବହୁତ ମଲେ ନର । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ] ୪ । ସଂକୀର୍ଣ୍ଣ—4. Narrow; close. ୫ । ବହୁଲୋକସମାକୀର୍ଣ୍ଣ—
5. Crowded. ବ—୧ । ଦ୍ୱନ୍ଦ୍ୱ; ଯୁଦ୍ଧ—1. Contest; fight; affray. ୨ । ଜନତା—
2. Crowd. ୩ । ପରସ୍ପରର ବିରୁଦ୍ଧ ବାକ୍ୟାଳାପ; କଳି—3. Altercation; quarrel. ୪ । ବହୁ ଲୋକଙ୍କ ସ୍ୱରଜନିତ ଗୋଳମାଳ—4. Hubbub; tumult. [ ଦ୍ର—ସାଧାରଣତଃ ଅନ୍ୟ ଶବ୍ଦ ସଙ୍ଗେ ସଂକୁଳ ଶବ୍ଦ ମିଶି ସମାସ ହୁଏ; ଯଥା—ଶ୍ୱାପଦସଂକୁଳ; ବିପତ୍ତିସଂକୁଳ, ସଂକଟସଂକୁଳ ଇତ୍ୟାଦି ।]

ସଂକୁଳନ—ସ. ବ—ସଙ୍କୁଳନ (ଦେଖ)
Samkulana Sankulana (See)

ସଂକୁଳ ଯୁଦ୍ଧ—ସ. ବ (କର୍ମଧା)—ଗୋଳମାଳିଆ ବା ଅବ୍ୟବସ୍ଥିତ ଯୁଦ୍ଧ—
Samkula juddha Confused fight; guerilla warfare.

ସଂକୁଳା—ଦେ. ବ ଓ ବଣ—ସଙ୍କୁଳା (ଦେଖ)
Samkula Sankula. (See)

ସଂକୁଳାନ (ଇତ୍ୟାଦି)—ଦେ. ବ ଓ ବଣ—ସଙ୍କୁଳାନ ଇତ୍ୟାଦି (ଦେଖ)
Samkulana (etc) Sankulana etc. (See)

ସଂକୁଳିଆ—ଦେ. ବ—ସଙ୍କୁଳିଆ (ଦେଖ)
Samkulia Sankulia. (See)

ସଂକୁଳିତ—ସଂ. ବଣ ( ସମ୍+କୁଲ୍ ଧାତୁ+କର୍ମ. ତ)—ଏକତ୍ରୀଭୂତ;
Samkulita ସଂଗୃହୀତ—Collected; gathered up.

ସଂକୁଳିବା—ଦେ. କ୍ରି—ସଙ୍କୁଳିବା (ଦେଖ)
Samkuliba Sankuliba. (See)

ସଂକେ(ଖେ)ଇବା—ପ୍ରାଦେ. (ବାଲେଶ୍ୱର) କ୍ରି—ସଙ୍କେ(ଙ୍ଖେ)ଇବା
Samke(khe)iba (ଦେଖ)—Sanke(nkhe)iba. (See)

ସଂକେତ —ସଂ. ବ (ସମ୍=ସଂକ୍ଷେପ+କିତ୍ ଧାତୁ=କହିବା+ଭାବ.
Samketa ଅ)—୧ । ସଂକ୍ଷେପରେ ଅଭିପ୍ରାୟ ପ୍ରକାଶ କରିବାର ଚେଷ୍ଟା; ଇସାରା; ଇଙ୍ଗିତ—1. Indication; hint.
୨ । ନେତ୍ର ବକ୍ତ୍ର ହସ୍ତାଦି ଦ୍ୱାରା ମନୋଭାବବ୍ୟଞ୍ଜକ ଚେଷ୍ଟାବିଶେଷ—2. An endeavour to express thoughts by the movement of the eyes, face and hands; gesture. ୩ । (+କରଣ.ଅ)
(ସଙ୍କେତ—ଅନ୍ୟରୂପ) କୌଣସି ବସ୍ତୁ ବା ବିଷୟ ଜ୍ଞାପକ ଚିହ୍ନ—3. Indication; sign; signal; symbol. ୪ । ଶବ୍ଦର ଅର୍ଥବୋଧକ ଶକ୍ତି—4.The power of a word to convey a meaning. ୫ । ଠାର; ଅନେକଗୁଡ଼ିଏ ବିଷୟକୁ ବା ବାକ୍ୟକୁ ବା ଅନେକାକ୍ଷରଯୁକ୍ତ ଶବ୍ଦକୁ ଅଳ୍ପରେ ପ୍ରକାଶ କରିବାର ଚିହ୍ନ—5. A symbolical sign; cypher. ୬ । (+ଅଧିକରଣ. ଅ) ନାୟକ ନାୟିକାଙ୍କର ନିର୍ଦ୍ଦିଷ୍ଟ ମିଳନ ସ୍ଥାନ—6. A place of meeting

of lovers; a trysting place. ୭ । ବୋଧ—7. Understanding. ୮ । ସନ୍ଧାନ; ଅନୁମାନ—8. Guess. ୯ । ସୂତ୍ର—9. A clue. ୧୦ । ବ୍ୟାକରଣାଦିର ସୂତ୍ର—10. Aphorism; axiom; maxim. ୧୧ । ଗୁପ୍ତ ସ୍ଥାନ—11. A place of assignment; a place of appointment; a secret place. ୧୨ । ନିୟମ—12. Rule; regulation. [ବି—ସାଧାରଣତଃ କଥାବାର୍ତ୍ତା ଦ୍ୱାରା ଲୋକେ ଅନ୍ୟ ଲୋକଠାରେ ଯେଉଁ ପର ମନୋଗତ ଭାବ ପ୍ରକାଶ କରନ୍ତି, ତାହା ଅପେକ୍ଷା ସୂକ୍ଷ୍ମତର ଭାବରେ କିମ୍ବା ମସ୍ତକ ସଞ୍ଚାଳନ, ନେତ୍ର ଚାଳନ, କର ଓ ମୁଖଭଙ୍ଗୀ, ହସ୍ତଭଙ୍ଗୀ ଦ୍ୱାରା ଭାବ ପ୍ରକାଶକୁ ସଂକେତ ବୋଲାଯାଏ । ଯାହା ବେଶୀ ବାକ୍ୟରେ ପ୍ରକାଶିତ ହୁଏ, ତାହାକୁ ଅଳ୍ପ ବାକ୍ୟ ଦ୍ୱାରା ପ୍ରକାଶ କରିବା ମଧ୍ୟ ସଂକେତ । ଯାହା ସାଧାରଣବୋଧ ବାକ୍ୟରେ ପ୍ରକାଶିତ ହୁଏ, ତାକୁ ଅନ୍ୟ ପ୍ରକାରରେ ପ୍ରକାଶ କରିବା ମଧ୍ୟ ସଂକେତ ।]

**ସଂକେତ କରିବା**—ଦେ. କ୍ରି—୧ । ଇସାରା ଦ୍ୱାରା ମନର ଭାବ ପ୍ରକାଶ Samketa karibā କରିବା—1. To express one's সংকেত করা mind by guestures or signs. ୨ । संकेत करना ଠାରିବା—2. To beckon.

**ସଂକେତକାରୀ**—ସଂ. ବିଣ. ପୁଂ—ଯେ ଇସାରା କରେ—Giving Samketakārī hints; beckoning; making gestures. (ସଂକେତକାରିଣୀ—ସ୍ତ୍ରୀ)

**ସଂକେତ ଦେବା**—ଦେ. କ୍ରି—୧ । ପ୍ରେରକଙ୍କ ଚିହ୍ନିବାର କୌଣସି ଚିହ୍ନ Samketa debā ଦୂତ ଦ୍ୱାରା ଅନ୍ୟ ବ୍ୟକ୍ତିଙ୍କ ନିକଟକୁ সংকেতদেওয়া ପଠାଇବା—1. To give a token of संकेत देना identification to a messenger. ୨ । ନାୟକ ନାୟିକାଙ୍କ ସଂକେତ ସ୍ଥଳ ନିରୂପଣ କରିବା—2. To appoint or assign a place of meeting between lovers. ( ଉ—କେ ଯିବ ପରି, ଅସ ଅସ, ପ୍ରାଣସଙ୍ଗିନୀ ! ଦେଇଛନ୍ତି ସଂକେତ ସେ, ମୁରଲୀଧର । ସଂଗୀତ ।)

**ସଂକେତଜ୍ଞ**—ସଂ. ବିଣ. ପୁଂ—ଯେ ସଂକେତ ବା ଠାର ଜାଣେ—Samketajña Conversant with signs or cyphers. (ସଂକେତଜ୍ଞା—ସ୍ତ୍ରୀ; ସଂକେତଜ୍ଞତା—ବି)

**ସଂକେତ ଜ୍ଞାପକ**—ସଂ. ବିଣ (ସଂକେତ+ଜ୍ଞା. ଧାତୁ ଣିଚ=ଜ୍ଞପି. ଧାତୁ+ Samketa jñāpaka କର୍ତ୍ତ୍ରି. ଅକ)—ସାଙ୍କେତିକ—(ସଂକେତଜ୍ଞାପିକା—ସ୍ତ୍ରୀ) Symbolical; suggestive. [ସଂକେତଜ୍ଞାପନ—ବି]

**ସଂକେତ ଧ୍ୱନି**—ସଂ. ବି (ମ. ପ. ଲୋ)—ସଂକେତସୂଚକ ଧ୍ୱନି—Samketa dhwani A symbolical sound.

**ସଂକେତ ପାଇବା**—ଦେ. କ୍ରି—ଅନ୍ୟ ବ୍ୟକ୍ତିଠାରୁ ଇସାରା ପାଇବା—Samketa pāibā To get a hint or sign from সংকেত পাওয়া संकेत पाना another.

**ସଂକେତ ବାକ୍ୟ**—ସଂ. ବି (ମ. ପ. ଲୋ)—୧ । ଠାର କଥା—1. Samketa bākya Cypher words. ୨ । ସାଂକେତିକ ବାକ୍ୟ—2. Symbolical expression.

**ସଂକେତ ସ୍ଥଳ(ସ୍ଥାନ)**—ସଂ. ବି—ଯେଉଁ ସ୍ଥାନରେ ଦୁଇ ବା ତତୋଽଧିକ Samketa sthala(sthāna) ବ୍ୟକ୍ତି ଗୁପ୍ତ ଭାବରେ ମିଳିତ ହେବା ପାଇଁ ପୂର୍ବରୁ ସ୍ଥିର କରାଯାଇଥାଏ—Place of assignment; a secret place of meeting by appointment; rendezvous.

**ସଂକେତାଗ୍ନି**—ସଂ. ବି (ମ. ପ. ଲୋ)—କୌଣସି ସ୍ଥଳର ବା ବିଷୟର Samketāgni ଅଭିଜ୍ଞସୂଚନା କରିବାପାଇଁ ପ୍ରଜ୍ୱଳିତ ଅଗ୍ନି—Beacon.

**ସଂକେତାଲୋକ**—ସଂ. ବି (ମ. ପ. ଲୋ)—ସଂକେତଜ୍ଞାପକ ଆଲୋକ—Samketāloka Beacon light; signal given by means of showing different lights.

**ସଂକେତିତ**—ସଂ. ବିଣ (ସଂକେତ+ଯୁକ୍ତାର୍ଥେ. ଇତ)—୧ । କୃତ-Samketita ସଂକେତ—1. Having made gestures or signs. ୨ । ସଂକେତ ଦ୍ୱାରା ପ୍ରକାଶିତ—2. Hinted; expressed by signs. ୩ । ଅଭିଧା-ଶକ୍ତି ଦ୍ୱାରା ବୋଧିତ—3. Suggested; understood by suggestion.

**ସଂକୋଚ**—ସଂ. ବି. (ସମ୍+କୁଚ୍ ଧାତୁ=କୁଞ୍ଚିତ ହେବା+ଭାବ. ଅ)—Samkocha ୧ । ବସ୍ତୁତ ପଦାର୍ଥର କ୍ଷୀଣୀଭାବ ବା ବକ୍ରତ୍ୱ (ସଙ୍କୋଚ—ଅନ୍ୟରୂପ) ଅଲ୍ପୀଭାବ—1. Contraction. ୨ । ସଂକ୍ଷେପ—2. Abridgement. ୩ । କୁଣ୍ଠା; କୌଣସି କାର୍ଯ୍ୟ କରିବାକୁ କୁଣ୍ଠିତ ବା ପଶ୍ଚାତ୍ପଦ ହେବାର ମାନସିକ ଅବସ୍ଥା; ଜଡ଼ୀଭାବ—3. Hesitation. ୪ । ଲଜ୍ଜାଶୀଳତା; ଲଜ୍ଜା—4. Shyness; modesty; sensitiveness. ୫ । ବଡ଼ ପଦାର୍ଥ ଗୁଡ଼େଇ ଗାଡ଼େଇ ହୋଇ କିମ୍ବା କୁଞ୍ଚିତ ହୋଇ ଛୋଟ ଆକାର ଧାରଣ କରିବା ଅବସ୍ଥା—5. Becoming crisp or wrinkled; shrivelling; wrinkling. ୬ । ବହୁ ବାକ୍ୟଯୁକ୍ତ ପଦକୁ ଅଳ୍ପ ପଦରେ ପ୍ରକାଶ କରିବା—6. Expressing a big sentence by a smaller one; expressing much in a smaller compass. ୭ । ଅପ୍ରସ୍ଫୁଟନ; ମୁକୁଳି ମୁଦ ହୋଇଯିବା ବା ବୁଜି ହୋଇଯିବା—7. Closing up; the state of not being expanded or blown. ୮ । ବନ୍ଧନ—8. Binding. ୯ । (ବୈଦ୍ୟକ) କୁଙ୍କୁମ; କାଶ୍ମୀର—9. Saffron. ୧୦ । ମତ୍ସ୍ୟ ବିଶେଷ; ଶାଙ୍କୁଚ ମାଛ—10. Ray fish;

(Raia Sankar). ୧୧ । ରୋଧ—11. Obstruction; prevention. ଦେ.ବିଣ—୧ । ସଙ୍କୁଚିତ—1. Contracted. ୨ । ମୁଦ୍ରିତ—2. Closed. [ଉ—ସେ କାଳ ଆଗମନ ଦେଖି, ସଂକୋଚ ହଲେ ନେତ୍ର ଅଣି ।—ଜଗନ୍ନାଥ. ଭାଗବତ] (ସଙ୍କୁଚିତ, ସଂକୋଚ୍ୟ, ସଂକୋଚକ—ବିଣ) (ପ୍ରସାର—ବିପରୀତ)

ସଂକୋଚକ—ସଂ.ବିଣ. ପୁଂ (ସମ୍+କୁଚ୍ ଧାତୁ=କୁଞ୍ଚିବା+କର୍ତ୍ତୃ.ଅକ)—Samkochaka ଯାହା ସଙ୍କୁଚିତ କରାଏ—Contracting; causing contraction. (ପ୍ରସାରକ—ବିପରୀତ) (ସଂକୋଚିକା—ସ୍ତ୍ରୀ)

ସଂକୋଚ କରିବା—ଦେ. କ୍ରି—୧ । (କୌଣସି କାର୍ଯ୍ୟ କରିବାକୁ) Samkocha kariba କୁଣ୍ଠିତ ବା ପଶ୍ଚାତ୍ପଦ ହେବା—সংকোচকরা संकोच करना 1. To hesitate (to do anything). ୨ । (କୌଣସି କାର୍ଯ୍ୟ କରିବାକୁ) ଲଜ୍ଜ କରିବା—2. To feel shy (of a matter).

ସଂକୋଚ ତ୍ୱକ୍—ସଂ. ବି. (ଅଧୁନିକ ଚିକିତ୍ସାଶାସ୍ତ୍ରର ପରିଭାଷା) Samkocha twak ୧ । ଶରୀରର ଯେଉଁ ଅଂଶର ଚର୍ମ ମୁଦିତ ହୋଇଯାଏ (ଯଥା—ଗୁହ୍ୟ ଦ୍ୱାରର, ଓଠର ଇତ୍ୟାଦି)—1. Skin which contracts; Paniculus Carnosus. ୨ । କୁଞ୍ଚିତ ଚର୍ମ—2. Wrinkled skin.

ସଂକୋଚନ—ସଂ. ବି. (ସମ୍+କୁଚ୍ ଧାତୁ ଣିଚ=କୁଚି ଧାତୁ=କୁଞ୍ଚିତ ହେବା)+ଭାବ. ଅନ)—୧ । ସଂକୁଚିତ Samkochana କରିବା; ସଙ୍କୋଚକରଣ—1. Act of (ପ୍ରସାରଣ—ବିପରୀତ) contracting. ୨ । ଚିପି ଛୋଟ କରିବା—2. Compressing. ୩ । ମୁଦ୍ରଣ; ମୁଦ୍ରିତ କରିବା—3. Act of closing up.

ସଂକୋଚନୀ—ସଂ. ବି. ସ୍ତ୍ରୀ (ସମ୍+କୁଚଧାତୁ ଣିଚ=କୁଚିଧାତୁ+କର୍ତ୍ତୃ-ଅନ+ଈ)—(ବୈଦ୍ୟକ)—ଲଜ୍ଜାଳୁ ଲତା; Samkochani ଲଜକୁଳୀ ଲତା—The mimosa creeper; Mimosa Pudica.

ସଂକୋଚନୀୟ—ସଂ. ବିଣ (ସମ୍+କୁଚ୍ ଧାତୁ+କର୍ମ ଅନୀୟ)—Samkochaniya ସଂକୋଚ୍ୟ (ଦେଖ)—Samkochya (See).

ସଂକୋଚ ପିଶୁନ—ସଂ. ବି. (ଭାବପ୍ରକାଶ) କୁଙ୍କୁମ; ଜାଫରାନ୍—Samkocha pisuna Saffron.

ସଂକୋଚ ବୋଧ କରିବା—ଦେ. କ୍ରି.—୧ । କୌଣସି କାର୍ଯ୍ୟ କରିବାକୁ Samkocha bodha kariba କୁଣ୍ଠା ବୋଧ କରିବା—1. সংকোচ বোধকরা To feel hesitation for doing संकोच मालूम करना some thing. ୨ । ଲଜ୍ଜା ବୋଧ କରିବା; ଲଜଲଜ ହେବା—2. To feel shy.

ସଂକୋଚ୍ୟ(ଚେ)ଇବା—ଦେ. କ୍ରି—ସଂକୋଚିବାର ଣିଜନ୍ତ ରୂପ—Samkocha(che)iba Causative of Samkochiba. সংকুচিত করান [ଉ—ଏ ଅଙ୍ଗେ ଉତ୍ପତ୍ତି ତନୁ ସଂକୋଚୁଇ । संकोच करवाना କୃଷ୍ଣସିଂହ, ମହାଭାରତ ବନ]

ସଂକୋଚିବା—ଦେ. କ୍ରି (ସ. ସଂକୁଚିତ)—ଲଜ୍ଜିତ ହେବା—To be Samkochiba ashamed; to feel delicate. সংকুচিত হওয়া [ଉ—ପଶୁପ-ମହେନ୍ଦ୍ର-ନନ୍ଦନ-ଭ୍ରାତା-ରସୁଁ ରାଧା संकोच करना ସଂକୋଚିଲେ । କବିସୂର୍ଯ୍ୟ—ସଙ୍ଗୀତ]

ସଂକୋଚି ହେବା—ଦେ. କ୍ରି.—(ସଂ. ସଂକୁଚିତ) ଲଜ୍ଜାରେ ସଂକୁଚିତ Samkochi heba ହେବା—To shrink in shame. সংকুচিত হওয়া संकोचित होना

ସଂକୋଚୀ—ସଂ.ବିଣ.ପୁଂ (ସଂକୋଚ+ଇନ୍; ୧ମା.୧ବ.) ୧ । ସଂକୋଚ Samkochi ଯୁକ୍ତ; ସଂକୁଚିତ—1. Contracted. ୨ । (ସଂକୋଚିନୀ—ସ୍ତ୍ରୀ, ପ୍ରସାରୀ—ବିପରୀତ) ଜଡ଼ୀଭୂତ; କୁଣ୍ଠିତ—2. Hesitating. ୩ । ଲଜକୁଳା—3. Shy; modest.

ସଂକୋଚ୍ୟ—ସଂ ବିଣ. (ସମ୍+କୁଚ୍ ଧାତୁ+କର୍ମ ଯ)—ସଂକୋଚନ Samkochya କରିବାର ଯୋଗ୍ୟ; ଯାହାକୁ ଚିପିକରି ଛୋଟ (ସଂକୋଚ୍ୟା—ସ୍ତ୍ରୀ) କରାଯାଇପାରେ; ସଂକୁଚିତ ହେବାର ଯୋଗ୍ୟ—Fit to be compressed; compressible; capable of being contracted.

ସଂକୋଚ୍ୟତା—ସଂ ବି. (ବିଜ୍ଞାନ ପରିଭାଷା)—ଜଡ଼ ପଦାର୍ଥର ଗୁଣବିଶେଷ; Samkochyata ଯେଉଁ ଗୁଣ ଥିବାରୁ କେତେକ ଜଡ଼ ପଦାର୍ଥକୁ ଚିପିଦେଲେ ତାହା ଛୋଟ ହୋଇଯାଏ—(Physics) Compressibility of some solid things.

ସଂକ୍ରନ୍ଦନ—ସଂ.ବି.—୧ । (ସମ୍=ସମ୍ୟକ୍+କ୍ରନ୍ଦନ)—ଅତ୍ୟନ୍ତ କ୍ରନ୍ଦନ; Samkrandana କାନ୍ଦୁଣା; ଅତିରୋଦନ—1. Lamentation; excessive weeping; (ସଙ୍କ୍ରନ୍ଦନ—ଅନ୍ୟରୂପ) bewailing.—୨ । (ସମ୍+କ୍ରନ୍ଦ୍ ଧାତୁ ଣିଚ୍, କ୍ରନ୍ଦି-ଧାତୁ=କନ୍ଦାଇବା+କର୍ତ୍ତୃଅନ; ଯେ ଶତ୍ରୁକୁ କନ୍ଦାନ୍ତି) ଦେବରାଜ; ଇନ୍ଦ୍ର—2. Indra; the king of Hindu Gods.

ସଂକ୍ରମ—ସଂ. ବି. (ସମ୍+କ୍ରମ୍ ଧାତୁ=ଗମନ କରିବା+ଭାବ ଅ) ୧ । Samkrama ସଂଚ୍ରର; ଗମନ—1. Act of going; (ସଙ୍କ୍ରମ—ଅନ୍ୟରୂପ) walking. ୨ । ପର୍ଯ୍ୟଟନ—2. Travelling. [ସଂକ୍ରାମକ, ସଂକ୍ରାନ୍ତ, ସଂକ୍ର(କ୍ରା)ମିତ—ବିଣ] ୩ । ଗତି—3. Motion; movement. ୪ । ଏକ ସ୍ଥାନରୁ ସ୍ଥାନାନ୍ତରକୁ ଗମନ—4. Act of moving from one place to another. ୫ । (ଜ୍ୟୋତିଷ) ଗ୍ରହମାନଙ୍କର ଏକ ରାଶିରୁ ଅନ୍ୟ ରାଶିକୁ ଗତି—5. (Astrology) The passing of a planet from one zodiacal sign to another. ୬ । (ଜ୍ୟୋତିଷ) ରବି ସଂକ୍ରମଣ; ସଂକ୍ରାନ୍ତି; ସୂର୍ଯ୍ୟଙ୍କର

ରାଶ୍ୟନ୍ତର ପ୍ରବେଶ—6. (Astrology) The passage of the sun from one sign to another. ୭ । ପ୍ରତିହତ ଗତି; ବାଧାପ୍ରାପ୍ତ ଗତି—7 Obstructed motion. ୮ । ଅତିକ୍ରମ; ବାଟଦେଇ ଯିବା—8. Passing by. ୯ । ପାରହେବା; ଉପର ଦେଇ ଯିବା—9. Crossing over. ୧୦ । ସମସାମୟିକତା; ଏକ ସମୟରେ ଦୁଇଟି ଘଟନା ଘଟିବା—10. Concurrence; the state of being contemporaneous. ୧୧ । ପ୍ରାପ୍ତି—11. Receipt; gain; acquisition. ୧୨ । (+କରଣ ଅ) ଦୁର୍ଗସଂଚର; ପ୍ରବେଶ କରିବାର ପୋଲ—12. A bridge leading to a fort. ୧୩ । ସଙ୍ଘ; ସେତୁ; ପୋଲ—13. Bridge. ୧୪ । ସୋପାନ—14. Steps. ୧୫ । (+ଭାବ ଅ) (ରୋଗର) ଏକ ବ୍ୟକ୍ତିଠାରୁ ଅନ୍ୟ ବ୍ୟକ୍ତିକୁ ଅକ୍ରମଣ କରିବା—15. Infection of desease (from one person to another) ୧୬ । କାର୍ଯ୍ୟସାଧନର ଉପାୟ—16. Resources; means adopted to attain some end. ୧୭। ପ୍ରତିବିମ୍ବନ; ପ୍ରତିବିମ୍ବପାତ—17. State of being reflected; (on water or glass etc).

ସଂକ୍ରମଣ—ସଂ.ବି (ସମ+କ୍ରମ ଧାତୁ+ଭାବ. ଅନ)—ସଂକ୍ରମ (ଦେଖ)—
Samkramana — Sāmkrama (See)
(ଉ—ଅସୁନଶେଷ ଭୁଲ ସଂକ୍ରମଣ ଦାନ, ସେ ଦାନ ଦେଇଛୁ ତା ଫଳ ଅକଳନ—କୃଷ୍ଣସିଂହ ମହାଭାରତ ବନ ।)

ସଂକ୍ରମ ସ୍ୱର—ସଂ.ବି—(ସ୍ୱରୋଦୟ ଶାସ୍ତ୍ର) ଏକସମୟରେ ପୂର୍ଣ୍ଣଭାବରେ
Samkrama swara — ଉଭୟ ନାକପୁଡ଼ାରେ ବହୁଥିବା ଚନ୍ଦ୍ରସ୍ୱର ଓ ସୂର୍ଯ୍ୟସ୍ୱର—The two kinds of breaths blowing at one and the same time through both the nostrils (ଉ—ଦୁଇ ସ୍ୱର ପୂର୍ଣ୍ଣାନ୍ତରେ ବହୁଥାଇ ଯେବେ, ଦୁଇ ପକ୍ଷ ଉପୁଜଇ ଜାଣ ଭୁ ଗୋ ଏବେ । ଏହାକୁ ସଂକ୍ରମ ସ୍ୱର କହୁ ଗୋ ଭବାନି ! × × ପ୍ରାଚୀ. ଶିବସ୍ୱରୋଦୟ ।)

ସଂକ୍ରମିତ—ସଂ. ବିଣ (ସମ୍+କ୍ରମ ଧାତୁ ଣିଚ୍=କ୍ରମି ଧାତୁ+କର୍ମ କ୍ତ)-
Samkramita ୧ । ପ୍ରବେଶିତ—1. Caused to enter into. ୨ । ଭର୍ତ୍ତି କରାଯାଇଥିବା—2. Thrust into. ୩ । ନିବେଶିତ—3. Engaged in; devoted to. ୪ । ସ୍ଥାନାନ୍ତର ଗମିତ; ସ୍ଥାନାନ୍ତରିତ—4. Removed; transfered from one place to another. ୫ । ପ୍ରତିବିମ୍ବିତ—5. Reflected.

ସଙ୍କ୍ରମିତ, ସଙ୍କାମିତ, ସଙ୍କ୍ରାମିତ } ଅନ୍ୟରୂପ

ସଂକ୍ରମିବା—ଦେ. କ୍ରି (ପଦ୍ୟ)—ବ୍ୟାପ୍ତହେବା; ବ୍ୟାପିବା—
Samkramibā — To spread; to pervade.
ସংক্রমা ফैলনা (ଉ—ବହିବ ସଂକ୍ରମି ଏ ଧରାପୃଷ୍ଠ—ମଧୁସୂଦନ କବିତାବଳି ।)

ସଂକ୍ରା(କ୍ରି,କ୍ରୁ)—ଗ୍ରା. ବି. ପୁଂ—ସଂକର୍ଷଣର ଡାକ ନାମ—
Samkrā(kri,kru) — A name for calling Samkarshana.

ସଂକ୍ରାଇବା—ପ୍ରାଦେ. (ସମ୍ବଲପୁର) କ୍ରି—(ସଂ. ସଂକୁଚନ)—ସଂକୁଚିତ
Samkrāibā — କରିବା; ଜାକିବା—To contract.
[ଯଥା—ଧୂତି ସଂକ୍ରାଇ ପାଏନେ ପଣ=ଅର୍ଥାତ୍ (ସଙ୍କ୍ରାଇବା, ସଙ୍କାଇବା—ଅନ୍ୟରୂପ) ଲୁଗାକୁ ଜାକ ପାଣିରେ ପଶ ।]

ସଂକ୍ରାନ୍ତ—ସଂ. ବିଣ (ସମ+କ୍ରମ୍ ଧାତୁ+କର୍ତ୍ତ୍ରି କ୍ତ)—୧ ।
Samkrānta — ସଂକ୍ରାନ୍ତୀୟ; ସଂପର୍କୀୟ—(ଯଥା—ରାଜ୍ୟ-
(ସଂକ୍ରାନ୍ତା—ସ୍ତ୍ରୀ) — ସଂକ୍ରାନ୍ତ ବିଷୟ, ଧନସଂକ୍ରାନ୍ତ ବିବାଦ, ଯୁଦ୍ଧସଂକ୍ରାନ୍ତ ପ୍ରବାଦ)—1. Relating to; appertaining to; concerning (any matter). ୨ । ସଂକ୍ରାନ୍ତିଯୁକ୍ତ (ମାସ)—2. (month) Having a samkrānti related to it. [ଦ୍ର—ବର୍ଷର ଅନ୍ୟ ସମସ୍ତ ସୌରମାସ ସଂକ୍ରାନ୍ତ ଅଟେ । କିନ୍ତୁ ଅଧିମାସ ବା ମଳମାସ ସଙ୍କ୍ରାନ୍ତ ନୁହେ । ଅର୍ଥାତ୍ 'ଅଧିମାସ'ରେ ସଙ୍କ୍ରାନ୍ତି ନ ଥାଏ ।] ୩ । ପ୍ରାପ୍ତ—3. Attained; received. ୪ । (ହିନ୍ଦୁ ସ୍ମୃତି) କ୍ରମାଗତ (ଧନାଦି); କୌଣସି ବ୍ୟକ୍ତି ଜରିଆରେ ପ୍ରାପ୍ତ ହୋଇଥିବା—4. (Hindu law) (Property) Coming through some person; received through; inherited through.

ସଂକ୍ରାନ୍ତି—ସଂ. ବି (ସମ୍+କ୍ରମ୍ ଧାତୁ=ଗମନ କରିବା+ଭାବ କ୍ତି)
Samkrānti ୧ । ସଂକ୍ରମଣ—1. Advance. ୨ । (ଜ୍ୟୋତିଷାର୍ଥ) ସୂର୍ଯ୍ୟଙ୍କର ଏକ ରାଶିରୁ ଅନ୍ୟ ରାଶିକୁ ଗମନ; ରବି ସଂକ୍ରମଣ—2. The transition of the sun from one sign of the zodiac to another. ୩ । ବିସ୍ତାର—3. Extension. ୪ । ବ୍ୟାପ୍ତି—4. Overspreading; pervading; diffision. ୫ । କାଳର ସୂକ୍ଷ୍ମଅଂଶ ବିଶେଷ, ଯେଉଁ ସମୟରେ ସୂର୍ଯ୍ୟ ଏକ ରାଶିରୁ ଅନ୍ୟ ରାଶିକୁ ଗତିକରେ—5. The minutest division of time at which the sun passes from one sign of zodiac to another. ୬ । ପ୍ରତିବିମ୍ବନ—6. Reflection. ୭ । ଅବସ୍ଥାନ୍ତର ପ୍ରାପ୍ତି—7. Change of condition; attainment of a different condition. ୮ । ପ୍ରତିକରଣ; ଭଣ; ବାହନା—8. Feigning; imposition. ୯ । ରବି ସଂକ୍ରମଣ ଦିବସ—9. The day of the transition of the sun from one sign to another. [ଦ୍ର—ସଂକ୍ରାନ୍ତି ଦିବସକୁ ବଙ୍ଗ ଦେଶରେ ପ୍ରଚଳିତ ପୂର୍ବବର୍ତ୍ତୀ ସୌର ମାସର ଶେଷ ଦିନ ବୋଲି ଗଣନା

କରନ୍ତି; କିନ୍ତୁ ଉତ୍କଳରେ ସଂକ୍ରାନ୍ତିକୁ ପରବର୍ତ୍ତୀ ସୌର ମାସର ପ୍ରଥମ ଦିନ ବୋଲି ଗଣନା କରନ୍ତି; ଯଥା— ଓଡ଼ିଆ ପାଞ୍ଜିରେ ୧୩୩୩ ସାଲର କକଡ଼ା (ସୌର ଶ୍ରାବଣ) ମାସର ପ୍ରଥମ ଦିନ ଏବଂ ବଙ୍ଗଳା ପାଞ୍ଜିରେ ୧୩୩୩ ସାଲର ମିଥୁନ (ସୌର ଆଷାଢ଼) ମାସର ୩୧ଶ ଦିନ ଦକ୍ଷିଣାୟନ ସଂକ୍ରାନ୍ତି ବୋଲି ଲେଖାଅଛି । ସଂକ୍ରାନ୍ତିର ପରଦିନ ଠାରୁ ବଙ୍ଗ ଦେଶରେ ପରବର୍ତ୍ତୀ ସୌର ମାସର ପ୍ରଥମ ଦିନ ଆରମ୍ଭ ହୁଏ । ଅର୍ଥାତ୍ ଉତ୍କଳର ଯାହା 'ମାସାନ୍ତ' ଦିବସ, ତାହା ବଙ୍ଗ ଦେଶରେ ସଂକ୍ରାନ୍ତି ବୋଲିଯାଏ । କିନ୍ତୁ ବିଚାର କରିବାକୁ ଗଲେ ବଙ୍ଗୀୟ ଗଣନାଶୈଳୀ ଠିକ୍ ନୁହେଁ ବୋଲି ଦେଖାଯିବ । କାରଣ, ସଂକ୍ରାନ୍ତିର ନାମକରଣ ପରବର୍ତ୍ତୀ ମାସର ନାମ ଅନୁସାରେ କରାଯାଏ; ଯଥା—ଧନୁ ସଂକ୍ରାନ୍ତି, ମକର ସଂକ୍ରାନ୍ତି । ଓଡ଼ିଆରେ ଧନୁସଂକ୍ରାନ୍ତି ଧନୁ ମାସର ପ୍ରଥମ ଦିନ; କିନ୍ତୁ ବଙ୍ଗଳାରେ ଏହା ବିଛା ମାସର ଶେଷ ଦିନ ବୋଲି ଧରାଯାଏ ।

ଧନୁ (ପୌଷ), ମିଥୁନ (ଆଷାଢ଼), କନ୍ୟା (ଆଶ୍ୱିନ) ଓ ମୀନ (ଚୈତ୍ର) ସଂକ୍ରାନ୍ତିକୁ 'ଷଡ଼ଶୀତି' ସଂକ୍ରାନ୍ତି ବୋଲିଯାଏ । ବୃଷ (ଜ୍ୟେଷ୍ଠ), ବୃଶ୍ଚିକ (ମାର୍ଗଶିର), ସିଂହ (ଭାଦ୍ର) ଓ କୁମ୍ଭ (ଫଗୁଣ) ସଂକ୍ରାନ୍ତିକୁ 'ବିଷ୍ଣୁପଦୀ' ସଂକ୍ରାନ୍ତି ବୋଲିଯାଏ । ମକର (ମାଘ) ସଂକ୍ରାନ୍ତିକୁ 'ଉତ୍ତରାୟଣ' ଓ କକଡ଼ା (ଶ୍ରାବଣ) ସଂକ୍ରାନ୍ତିକୁ 'ଦକ୍ଷିଣାୟନ' ସଂକ୍ରାନ୍ତି ବୋଲିଯାଏ ।

ମେଷ (ବୈଶାଖ) ସଂକ୍ରାନ୍ତିକୁ 'ମହା ବିଷୁବ' ସଂକ୍ରାନ୍ତି ଓ ତୁଳା (କାର୍ତ୍ତିକ) ସଂକ୍ରାନ୍ତିକୁ 'ଜଳବିଷୁବ' ସଂକ୍ରାନ୍ତି ବୋଲିଯାଏ ।

ଭିନ୍ନ ଭିନ୍ନ ନକ୍ଷତ୍ରରେ ସୂର୍ଯ୍ୟଙ୍କ ସଂକ୍ରମଣ ଘଟିବା ଯୋଗୁଁ ସଂକ୍ରାନ୍ତିମାନଙ୍କୁ ୭ ଭାଗରେ ବିଭକ୍ତ କରାଯାଇ ଅଛି; ଯଥା—୧ । ମନ୍ଦା, ୨ । ମନ୍ଦାକିନୀ, ୩ । ଧ୍ୱାଂକ୍ଷୀ, ୪ । ଘୋରା, ୫ । ମହୋଦରୀ, ୬ । ରାକ୍ଷସୀ, ୭ । ମିଶ୍ରିତା ।

ରବିସଂକ୍ରମଣ ସମୟ ଅତ୍ୟନ୍ତ ପୁଣ୍ୟକାଳ । ଏହି ସମୟରେ ସର୍ବୌଷଧିମିଶ୍ରିତ ଜଳରେ ସ୍ନାନ କରି ହୋମ ଦାନାଦି ଓ ବିଷ୍ଣୁମନ୍ତ୍ର ଜପ କରିବାଦ୍ୱାରା ପୁଣ୍ୟ ସଞ୍ଚୟ ହୁଏ; ୧ ତ୍ରୁଟିର ସହସ୍ର ଭାଗରୁ ଏକ ଭାଗ କାଳ ରବିସଂକ୍ରମଣ ସମୟ (୧ ନିମିଷର ବା ୧ ଲବର ଅର୍ଦ୍ଧେକ=୧ ତ୍ରୁଟି); ସଂକ୍ରାନ୍ତିଦିନ ସ୍ତ୍ରୀ, ତୈଳ ଓ ଆମିଷାଦି ବର୍ଜନୀୟ । ସଂକ୍ରାନ୍ତିକୁ ନିରଂଶ ଦିବସ ବୋଲିଯାଏ । ସେଥିପାଇଁ ଏ ଦିନ ଯାତ୍ରାଦି ଶୁଭକର୍ମ ନିଷିଦ୍ଧ । ସଂକ୍ରାନ୍ତି ଦିନ ସାୟଂସନ୍ଧ୍ୟା ନିଷିଦ୍ଧ । ଶୁକ୍ଳପକ୍ଷ ସପ୍ତମୀ ଦିନ ସଂକ୍ରାନ୍ତି ହେଲେ ତାହାର ନାମ 'ମହାଜୟା' ହୁଏ । ଉକ୍ତ ଦିନ ସୂର୍ଯ୍ୟପୂଜା ଓ ଦାନାଦି ପୁଣ୍ୟପ୍ରଦ ।

କେଉଁ ସଂକ୍ରାନ୍ତିରେ କି କି ପୂଜା ବା କାର୍ଯ୍ୟ ଅନୁଷ୍ଠିତ ହୁଏ, ତାହା ନିମ୍ନରେ ଦିଆଗଲା । ଯଥା—

୧ । ଚୈତ୍ରର ଷଡ଼ଶୀତି ସଂକ୍ରାନ୍ତି—ଏ ଦିନ ଘଣ୍ଟାକର୍ଣ୍ଣ ପୂଜା ହୁଏ ।

୨ । ବୈଶାଖର ମହାବିଷୁବ ସଂକ୍ରାନ୍ତି—ଏହାର ଅନ୍ୟ ନାମ ପଣାସଂକ୍ରାନ୍ତି । ଏଥିରେ ବ୍ରାହ୍ମଣଙ୍କୁ ପଣା, ବାରିପାତ୍ର, ଘଟ, ଛତୁଆ, ବ୍ୟଜନ, ଛତ୍ର ଓ ପାଦୁକା ଦିଆଯାଏ । ଏ ଦିନ ସୂର୍ଯ୍ୟ ବିଷୁବ ରେଖାକୁ ପାର ହୋଇ ଉତ୍ତର ଅଞ୍ଚଳକୁ ଅର୍ଥାତ୍ କର୍କଟ କ୍ରାନ୍ତି ଅଞ୍ଚଳକୁ ଗତି କରନ୍ତି । ଏହି ଦିନ ମସୁର ଓ ନିମ୍ବପତ୍ର ଖାଇଲେ କର୍ଣ୍ଣକପାଳ ସର୍ପ ଓ ବିଷଭୟ ନ ଥାଏ ।

୩ । ଜ୍ୟେଷ୍ଠର ବିଷ୍ଣୁପଦୀ ସଂକ୍ରାନ୍ତି—

୪ । ଆଷାଢ଼ର ଷଡ଼ଶୀତି ସଂକ୍ରାନ୍ତି ବା ରଜ ସଂକ୍ରାନ୍ତି—ଏ ଦିନ ଜଗନ୍ନାଥଙ୍କ ଯାତ୍ରା ଉତ୍ସବ ହୁଏ । ମାସାନ୍ତ-ଠାରୁ ସଂକ୍ରାନ୍ତି ପରଦିନ ଯାଏ ପୃଥିବୀ ୩ ଦିନ ପର୍ଯ୍ୟନ୍ତ ରଜସ୍ୱଳା ରହେ; ଏଣୁ ଏହି ସମୟରେ କୃଷିକର୍ମ ଓ ଭୂମିଖନନାଦି ନିଷିଦ୍ଧ । ଏସମୟରେ ସ୍ତ୍ରୀଲୋକମାନେ ପିଷ୍ଟକାଦି ଭକ୍ଷଣ କରି କ୍ରୀଡ଼ାଦି ଉତ୍ସବରେ ମାତନ୍ତି । ରଜରେ ସ୍ତ୍ରୀ ଓ ବାଳକ ବାଳିକାଙ୍କ ଦୋଳି ଖେଳ ସମଗ୍ର ଉତ୍କଳରେ ପ୍ରସିଦ୍ଧ ।

୫ । ଶ୍ରାବଣ ମାସର ଦକ୍ଷିଣାୟନ ସଂକ୍ରାନ୍ତି—ଏ ଦିନ ସୂର୍ଯ୍ୟ କର୍କଟ କ୍ରାନ୍ତିରୁ ବିଷୁବ ରେଖା ଆଡ଼କୁ ଗତି କରନ୍ତି । ଏହି ଦିନଠାରୁ ୩ ଦିନ ପର୍ଯ୍ୟନ୍ତ ନଦୀମାନେ ରଜସ୍ୱଳା ହୁଅନ୍ତି ।

୬ । ଭାଦ୍ର ମାସର ବିଷ୍ଣୁପଦୀ ସଂକ୍ରାନ୍ତି—

୭ । ଆଶ୍ୱିନର ଷଡ଼ଶୀତି ସଂକ୍ରାନ୍ତି ବା କନ୍ୟା ସଂକ୍ରାନ୍ତି—ଏ ଦିନ କେବଳ ଦେବପୂଜାର ବର୍ଷାରମ୍ଭ ।

୮ । କାର୍ତ୍ତିକର ଜଳବିଷୁବ ସଂକ୍ରାନ୍ତି—ଏହାର ଅନ୍ୟ ନାମ ଗର୍ଭଣା ସଂକ୍ରାନ୍ତି । ଏ ଦିନ ଗର୍ଭଣା ଡାଳ ବା କାଠିକୁ ପୂଜା କରି ଧାନ କ୍ଷେତରେ ପୋତିବାକୁ ହୁଏ । ସୂର୍ଯ୍ୟ ବିଷୁବ ରେଖାକୁ ଛାଡ଼ି ଏହିଦିନ ଦକ୍ଷିଣ ଅଞ୍ଚଳକୁ ଅର୍ଥାତ୍ ମକର ସଂକ୍ରାନ୍ତି ଅଞ୍ଚଳକୁ ଗତି ଆରମ୍ଭ କରନ୍ତି ।

୯ । ମାର୍ଗଶିରର ବିଷ୍ଣୁପଦୀ ସଂକ୍ରାନ୍ତି—

୧୦ । ପୌଷ ମାସର ଷଡ଼ଶୀତି ସଂକ୍ରାନ୍ତି ବା ଧନୁ ସଂକ୍ରାନ୍ତି—ଏ ଦିନ ଦେବତାଙ୍କୁ ଧନୁମୁଆଁ ଭୋଗ ହୁଏ ଏବଂ ଜଗନ୍ନାଥଙ୍କର ପହିଲି ଭୋଗ ଆରମ୍ଭ ହୁଏ ।

୧୧ । ମାଘ ମାସର ଉତ୍ତରାୟଣ ସଂକ୍ରାନ୍ତି—ଏହି ଦିନ ସୂର୍ଯ୍ୟ ମକର କ୍ରାନ୍ତିରୁ ଉତ୍ତର ଦିଗକୁ ଫେରନ୍ତି । ଦେବତାଙ୍କୁ ମକର ଚାଉଳ ଓ ତିଲୁଅ ଖଜା ଭୋଗ ହୁଏ । ଏହାକୁ ତିଲୁଅ ସଂକ୍ରାନ୍ତି ମଧ୍ୟ କୁହାଯାଏ । ଏ ଦିନ ବାସ୍ତୁପୂଜା କରାଯାଏ ଏବଂ ଜଗନ୍ନାଥଙ୍କ ଓ ଲିଙ୍ଗରାଜଙ୍କ ଯାତ୍ରା ହୁଏ ।

୧୨ । ଫଗୁଣର ବିଷ୍ଣୁପଦୀ ସଂକ୍ରାନ୍ତି—

ସଂକ୍ରାନ୍ତିମାନଙ୍କରେ ଆଚରଣୀୟ ନାନାପ୍ରକାର କର୍ମାନୁଷ୍ଠାନ ବିଷୟ ପୁରାଣରେ ଉଲ୍ଲିଖିତ ଅଛି । ଯଥା—

୧ । କାର୍ତ୍ତିକେୟ ବ୍ରତ (ସ୍କନ୍ଦପୁରାଣ)—ମାର୍ଗଶିର ମାସ ସଂକ୍ରାନ୍ତିରେ ସ୍ତ୍ରୀମାନେ ପୁତ୍ରଲାଭାର୍ଥ ସନ୍ଧ୍ୟାଠାରୁ ୪ ପ୍ରହର ମଧ୍ୟରେ ୪ ଥର ସ୍ନାନ କରି କାର୍ତ୍ତିକେୟ ପୂଜା-ପୂର୍ବକ କାର୍ତ୍ତିକେୟ ବ୍ରତ କରନ୍ତି ।

୨ । ଜଳ ସଂକ୍ରାନ୍ତି ବ୍ରତ (ଭବିଷ୍ୟ ପୁରାଣ)—ବିଷୁବ ସଂକ୍ରାନ୍ତିରୁ ଆରମ୍ଭ କରି ଏକ ବର୍ଷ ପର୍ଯ୍ୟନ୍ତ ପ୍ରତି ସଂକ୍ରାନ୍ତିରେ ବ୍ରାହ୍ମଣଙ୍କୁ ଜଳପୂର୍ଣ୍ଣ ଘଟ ଦାନ କରାଯାଏ ।

୩ । ଧାନ ସଂକ୍ରାନ୍ତି ବ୍ରତ (ସ୍କନ୍ଦ ପୁରାଣ)—ବିଷୁବ ସଂକ୍ରାନ୍ତିଠାରୁ ଏକ ବର୍ଷ ପର୍ଯ୍ୟନ୍ତ ପ୍ରତି ମାସରେ ବ୍ରାହ୍ମଣଙ୍କୁ ନିର୍ଦ୍ଦିଷ୍ଟ ଦ୍ରବ୍ୟ ଦାନ କରାଯାଏ ।

୪ । ଦଧି ସଂକ୍ରାନ୍ତି ବ୍ରତ (ଭବିଷ୍ୟ ପୁରାଣ)—ଉତ୍ତରାୟଣ ସଂକ୍ରାନ୍ତିଠାରୁ ଆରମ୍ଭ କରି ଏକ ବର୍ଷ ଦଧି ଓ ଭୋଜ୍ୟ ଦାନ କରାଯାଏ ।

୫ । ଅନ୍ନ ସଂକ୍ରାନ୍ତି ବ୍ରତ (ଭବିଷ୍ୟ ପୁରାଣ)—ମହାବିଷୁବ ସଂକ୍ରାନ୍ତିଠାରୁ ୧ ବର୍ଷ ପର୍ଯ୍ୟନ୍ତ ଅନ୍ନଦାନ କରାଯାଏ ।

୬ । ଫଳସଂକ୍ରାନ୍ତି ବ୍ରତ (ଭବିଷ୍ୟ ପୁରାଣ) ମହାବିଷୁବ ସଂକ୍ରାନ୍ତିଠାରୁ ଏକ ବର୍ଷ ପର୍ଯ୍ୟନ୍ତ ପ୍ରତି ସଂକ୍ରାନ୍ତିରେ ନିର୍ଦ୍ଦିଷ୍ଟ ଫଳ ଦାନ କରାଯାଏ ।

୭ । ମଙ୍ଗଳ ସଂକ୍ରାନ୍ତି ବ୍ରତ—ମଙ୍ଗଳବାର ଦିନ ସଂକ୍ରାନ୍ତି ପଡିଲେ ମଙ୍ଗଳ ଚଣ୍ଡୀଙ୍କର ପୂଜା କରାଯାଏ ।

୮ । ଯମପୁଷ୍କରିଣୀ ବ୍ରତ (ଭବିଷ୍ୟ ପୁରାଣ)—ସ୍ତ୍ରୀମାନେ କୌଣସି ସଂକ୍ରାନ୍ତିଠାରୁ ଆରମ୍ଭ କରି ପ୍ରତି ସଂକ୍ରାନ୍ତିରେ ୪ ବର୍ଷ ପର୍ଯ୍ୟନ୍ତ ଯମପୂଜା ଓ ଦାନ କରନ୍ତି ।

୯ । ଧର୍ମଘଟ ବ୍ରତ—ବୈଶାଖ ସଂକ୍ରାନ୍ତିଠାରୁ ଜ୍ୟେଷ୍ଠ ସଂକ୍ରାନ୍ତି ପର୍ଯ୍ୟନ୍ତ ଏକ ମାସ ଲେଖାଏଁ ୪ ବର୍ଷ ଜଳପୂର୍ଣ୍ଣ ଘଟ ବ୍ରାହ୍ମଣଙ୍କୁ ଦାନ କରାଯାଏ । ଏହା ଛଡ଼ା ମହାବିଷୁବ ସଂକ୍ରାନ୍ତିରେ ବିଷ୍ଣୁ, ଇଷ୍ଟଦେବତା ଓ ପିତୃମାନଙ୍କ ଉଦ୍ଦେଶ୍ୟରେ ଜଳପୂର୍ଣ୍ଣ ଘଟ ଉତ୍ସର୍ଗ କରିବାକୁ ହୁଏ ।]

**ସଂକ୍ରାନ୍ତି ଚକ୍ର**—ସଂ. ବି. (ଫଳିତ ଜ୍ୟୋତିଷ)—ପ୍ରତ୍ୟେକ ମନୁଷ୍ୟର Samkrānti chakra ଶୁଭାଶୁଭ ଜ୍ଞାପକ ନକ୍ଷତ୍ରାଙ୍କିତ (ସଂକ୍ରାନ୍ତି ପୁରୁଷ—ଅନ୍ୟରୂପ) ନରାକାର ଚକ୍ର—(Astrology) A figure of man, in the different limbs of which the 27 asterisms are placed and from which the good or evil of persons born under particular asterisms (during the coming month) is predicted. [ଦ୍ର—ସଂକ୍ରାନ୍ତି ଚକ୍ରକୁ ଗୋଟିଏ ମନୁଷ୍ୟ ରୂପରେ ଲେଖି ଉକ୍ତ ମନୁଷ୍ୟର ମସ୍ତକ, ମୁଖ, ହୃଦୟ, ଦକ୍ଷିଣ ଓ ବାମହସ୍ତ, ଦକ୍ଷିଣ ଓ ବାମ ପାଦ, ଦକ୍ଷିଣ ଓ ବାମ ନେତ୍ର ଏବଂ ଗୁହ୍ୟ ସ୍ଥାନମାନଙ୍କରେ ନିର୍ଦ୍ଦିଷ୍ଟ ନକ୍ଷତ୍ରମାନ ଲେଖିବାକୁ ହୁଏ । ଉକ୍ତ ବିଭିନ୍ନ ନକ୍ଷତ୍ରମାନଙ୍କର ଉକ୍ତ ପୁରୁଷର ବିଭିନ୍ନ ଅଙ୍ଗରେ ଅବସ୍ଥିତଦ୍ୱାରା ଫଳିତ ଜ୍ୟୋତିଃଶାସ୍ତ୍ରୋକ୍ତ ଶୁଭାଶୁଭ ଫଳ ଜଣାଯାଏ । କୌଣସି ମନୁଷ୍ୟର ଜନ୍ମ ନକ୍ଷତ୍ର ଉକ୍ତ ଚକ୍ରର ଯେଉଁ ଅଙ୍ଗରେ ଥାଏ, ସେହି ମନୁଷ୍ୟର ତଦ୍ରୂପ ନିର୍ଦ୍ଦିଷ୍ଟ ଶୁଭାଶୁଭ ଫଳ ଲାଭ ହୁଏ । ସୂର୍ଯ୍ୟ ଯେଉଁ ନକ୍ଷତ୍ରରେ ଚଳନ୍ତି, ତତ୍ପରବର୍ତ୍ତୀ ନକ୍ଷତ୍ର-ଠାରୁ ଆରମ୍ଭ କରି ୨୭ ନକ୍ଷତ୍ରଙ୍କୁ ଉକ୍ତ ପୁରୁଷର ଯଥା-କ୍ରମେ ମସ୍ତକାଦିରେ ଲେଖି ଫଳ ଜାଣିବାକୁ ହୁଏ । ମହାବିଷୁବ, ଜଳ ବିଷୁବ, ଉତ୍ତରାୟଣ, ଦକ୍ଷିଣାୟନ, ବିଷ୍ଣୁପଦୀ ଓ ଷଡଶୀତି ସଂକ୍ରାନ୍ତିରେ ନକ୍ଷତ୍ରମାନଙ୍କୁ ଉକ୍ତ ପୁରୁଷର ଭିନ୍ନଭିନ୍ନ ଅଙ୍ଗରେ ସନ୍ନିବେଶିତ କରାଯାଏ । ଉଦାହରଣ ସ୍ୱରୂପ—ମହାବିଷୁବ ସଂକ୍ରାନ୍ତିରେ ରବି 'ଅଶ୍ୱିନୀ' (୧ନକ୍ଷତ୍ର)କୁ ଚଳିଲେ । ଅତଏବ ଉକ୍ତ ପୁରୁଷର ମସ୍ତକରେ ୭ଟି ନକ୍ଷତ୍ର (୨।୩।୪।୫।୬।୭।୮), ମୁଖରେ ୩ଟି (୯।୧୦।୧୧), ହୃଦୟରେ ୫ଟି (୧୨।୧୩।୧୪।୧୫।୧୬), ଦକ୍ଷିଣ ହସ୍ତରେ ୩ଟି (୧୭।୧୮।୧୯), ବାମ ହସ୍ତରେ ୩ଟି (୨୦।୨୧।୨୨), ଦକ୍ଷିଣ ପାଦରେ ୩ଟି (୨୩।୨୪।୨୫) ବାମ ପାଦରେ ୩ଟି (୨୬।୨୭।୧) ଲେଖି ଜ୍ୟୋତିଃଶାସ୍ତ୍ର-ମତେ ଫଳ ଜାଣିବାକୁ ହେବ; ଯଥା—ମସ୍ତକେ ରାଜପୂଜା, ମୁଖେ ପଟୁତା, ହୃଦୟେ ଧନଲାଭ, ଦକ୍ଷିଣହସ୍ତେ ଅର୍ଥପ୍ରାପ୍ତି, ବାମ ହସ୍ତେ ଦୁଃଖ, ଦକ୍ଷିଣ ପାଦେ ସୁଖ, ବାମ ପଦେ ଭ୍ରମଣ ।]

**ସଂକ୍ରାନ୍ତି ଚଳନ**—ସଂ. ବି—ମନୁଷ୍ୟର ଜାତକର ଗ୍ରହ ଓ ନକ୍ଷତ୍ରାନୁସାରେ Samkrānti chalana ସୂର୍ଯ୍ୟଙ୍କର ଶୁଭ ବା ଅଶୁଭଜନକ ସଂକ୍ରମଣ (ଏହା ସଂକ୍ରାନ୍ତିଚକ୍ର ଗଣନାରୁ ଧରା ପଡେ)—(ସଂକ୍ରାନ୍ତି ଚଳନା—ଦେଶଜରୂପ) Auspicious or inauspicious transition of the sun (as far as a person is concerned). [ଦ୍ର—ସଂକ୍ରାନ୍ତି ଚଳନ ଅଶୁଭ ହେଲେ, ଅର୍ଥାତ୍ ସଂକ୍ରାନ୍ତିଚକ୍ରରେ ନିଜ ଜନ୍ମ ନକ୍ଷତ୍ରର ଅବସ୍ଥାନର ଫଳ ଜ୍ୟୋତିଃଶାସ୍ତ୍ର ଅନୁସାରେ ଅଶୁଭସୂଚକ ହେଲେ ଧୁସ୍ତୁର ବୀଜମିଶ୍ରିତ ସର୍ବୌଷଧି ଜଳରେ ସ୍ନାନ, ବିଷ୍ଣୁମନ୍ତ୍ର ଜପ ଓ ହୋମଦାନାଦି କଲେ ଅଶୁଭ ଫଳ କଟିଯାଏ ।]

**ସଂକ୍ରାମ**—ସଂ. ବି (ସମ୍ + କ୍ରମ୍ ଧାତୁ + ଭାବ. ଅ)—ସଂକ୍ରମ (ଦେଖ) Samkrāma Samkrama. (See) (ସଙ୍କ୍ରାମ—ଅନ୍ୟରୂପ)

**ସଂକ୍ରାମକ**—ସଂ. ବିଣ (ସମ୍ + କ୍ରମ୍ ଧାତୁ = ଗମନ କରିବା + କର୍ତ୍ତୃ. Samkrāmaka ଅକ)—୧ । ବ୍ୟାପକ—1. Spreading. ୨ । ସଂଚାରକ—2. Diffused; pervading. ୩ । (ସଂକ୍ରାମିକା—ସ୍ତ୍ରୀ) ସଂକ୍ରମଶୀଳ; ଗତିଶୀଳ—3. Full of transition; transitory. ୪ । ଏକ ସ୍ଥାନରେ ପ୍ରବେଶକାରକ ଓ ଅନ୍ୟ (ରୋଗ)—4. Contagious; infectious (disease).

ସଂକ୍ରାମକତା(ତ୍ୱ)—ସଂ. ବ—ରୋଗର ସଂକ୍ରାମକ ଗୁଣ; ଯେଉଁ ଗୁଣଦ୍ୱାରା Samkrāmakatā(twa) ରୋଗ ଏକ ବ୍ୟକ୍ତିଠାରୁ ବ୍ୟକ୍ତ୍ୟନ୍ତରକୁ ଯାଏ—Contagiousness of a disease.

ସଂକ୍ରାମକ ରୋଗ(ବ୍ୟାଧି)—ସଂ. ବ— ଛୁଆଁ ରୋଗ; ଯେଉଁ ରୋଗ Samkrāmaka roga(byādhi) ରୋଗୀର ସଂସର୍ଗଦ୍ୱାରା ବ୍ୟକ୍ତ୍ୟନ୍ତରକୁ ସଂକ୍ରମଣ କରେ—Infectious or contagious disease.

ସଂକ୍ରାମଣ - ଦେ. ବ (ସଂ. ସଂକ୍ରମ ବା ସଂକ୍ରମଣ)—ସଂକ୍ରମ (ଦେଖ) Samkrāmana Samkrama (See)

ସଂକ୍ରାମିକ - ଦେ. ବଣ (ସଂ. ସାଂକ୍ରାମିକ)—ସାଂକ୍ରାମିକ (ଦେଖ) Samkrāmika Sāmkrāmika (See)

ସଂକ୍ରାମିତ - ସଂ. ବଣ (ସମ୍ + କ୍ରମ୍. ଧାତୁ, ଣିଚ+କର୍ତ୍ତୃ. ତ)—Samkrāmita ସଂକ୍ରମିତ (ଦେଖ)—Samkramita. (ସଂକ୍ରାମିତା—ସ୍ତ୍ରୀ) (See)

ସଂକ୍ରାମିତା(ତ୍ୱ)—ସଂ. ବ (ସଂକ୍ରାମିନ୍+ତା, ତ୍ୱ)—ସଂକ୍ରାମକତା Samkrāmitā(twa) (ଦେଖ)—Samkrāmakatā. (See)

ସଂକ୍ରୀତନ—ଗ୍ରା. ବ (ଅଶୁଦ୍ଧ)—ସଂକୀର୍ତ୍ତନ (ଦେଖ) Samkritana Samkīrttana. (See)

ସଂକ୍ଳେଦ—ସଂ. ବ (ସମ୍+କ୍ଳିଦ୍. ଧାତୁ=ଓଦା ହେବା+ଭାବ. ଅ)—ଆର୍ଦ୍ରତା—Dampness. Samkleda (ସଂକ୍ଳେଦ—ଅନ୍ୟରୂପ)

ସଂକ୍ଷୟ—ସଂ. ବ (ସମ୍+କ୍ଷି. ଧାତୁ+ଭାବ. ଅ)-୧। ବିନାଶ; ଧ୍ୱଂସ—Samkshaya 1. Ruin; destruction. ୨। ପ୍ରଳୟ—[ସଙ୍କ୍ଷୟ—ଅନ୍ୟରୂପ] 2. Dissolution ୩। ସମୂଳବିନାଶ—3. Eradication.

ସଂକ୍ଷିପ୍ତ—ସଂ. ବଣ (ସମ୍=ଏକତ୍ର+କ୍ଷିପ୍. ଧାତୁ=କ୍ଷେପଣ Samkshipta କରିବା+କର୍ମ. ତ)—୧ ଇତସ୍ତତଃ ବିକ୍ଷିପ୍ତ; [ସଙ୍କ୍ଷିପ୍ତ—ଅନ୍ୟରୂପ] ବିକ୍ଷିପ୍ତ—1. Thrown about; (ସଂକ୍ଷିପ୍ତା—ସ୍ତ୍ରୀ) scattered. ୨ । ସଂକୁଚିତ—2. Con-[ସଂକ୍ଷେପ—ବି] tracted. ୩ । ଅଳ୍ପୀକୃତ—3. Concise; condensed; abridged; compressed. ୪ । ସଂଚିତ—4. Gathered; stored up. ୫ । ସଂକଳିତ; ଏକତ୍ରୀକୃତ—5. Accumulated; compiled. ୬ । ପରିତ୍ୟକ୍ତ—6. Abandoned; relinquished; deserted. ୭ । ଗୃହୀତ—7. Received; obtained. ୮ । ଅଟକ ହୋଇଯାଇ-ଥିବା; ବାଧାପ୍ରାପ୍ତ—8. Obstructed; hindered.

ସଂକ୍ଷିପ୍ତ ସାର—ସଂ. ବଣ (ବହୁବ୍ରୀହି; ସଂକ୍ଷିପ୍ତ ହୋଇଅଛି ସାର Samkshipta sāra ଯହିଁରେ ବା ଯାହାର )—ଯାହାର ସାରାଂଶ ସଂକ୍ଷିପ୍ତ କରାଯାଇଅଛି—Having the parts abridged or condensed. ବ—କ୍ରମ-ଦୀଶ୍ୱରଙ୍କ ଦ୍ୱାରା ରଚିତ ସଂସ୍କୃତ ବ୍ୟାକରଣ ଗ୍ରନ୍ଥ ବିଶେଷ—The title of a Sanskrit Grammar by Kramadiswara.

ସଂକ୍ଷିପ୍ତତର ପତ୍ର - ସଂ. ବଣ (ସଂକ୍ଷିପ୍ତ=ସଂକ୍ଷିପ୍ତ ଅପେକ୍ଷା+ Samkshiptatarapatra ସଂକ୍ଷିପ୍ତ) - ଅତି ସଂକ୍ଷିପ୍ତ—Very much abridged or concise.

ସଂକ୍ଷୀୟମାଣ ସଂ. ବଣ (ସମ୍+କ୍ଷି. ଧାତୁ= କ୍ଷୟ ପାଇବା+କର୍ମ. Samkshiyamāna ଆନ)—କ୍ଷୟ ପ୍ରାପ୍ତ ହେଉଥିବା; ଯାହା କ୍ଷୟ [ସଙ୍କ୍ଷୀୟମାଣ—ଅନ୍ୟରୂପ] ହେଉଅଛି—Decaying. [ସଂକ୍ଷୀୟମାଣା—ସ୍ତ୍ରୀ]

ସଂକ୍ଷୁବ୍ଧ - ସଂ. ବଣ (ସମ୍+କ୍ଷୁଭ୍. ଧାତୁ+କର୍ତ୍ତୃ. ତ)—୧। ସଂଚାଳିତ—Samkshubdha 1. Caused to move. ୨। ଉତ୍ତେଜିତ—[ସଙ୍କ୍ଷୁବ୍ଧ—ଅନ୍ୟରୂପ] 2. Agitated. ୩ । ଅଶାନ୍ତ—[ସଂକ୍ଷୁବ୍ଧା—ସ୍ତ୍ରୀ] 3. Troubled.

ସଂକ୍ଷେପ —ସଂ. ବ (ସମ୍+କ୍ଷିପ୍ ଧାତୁ=ଫୋପାଡ଼ିବା+ଭାବ. ଅ)—Samkshepa ୧ । ସଂକୋଚ—1 Contraction. ୨। [ସଙ୍କ୍ଷେପ—ଅନ୍ୟରୂପ] ଅଳ୍ପୀକରଣ—2. Abridgement; condensing. ୩ । ସଂକ୍ଷିପ୍ତ ବର୍ଣ୍ଣନ—3. Condensed description. ୪ । ଚୁମ୍ବକ—4. Abstract; compendium. ଦେ. ବଣ—ସଂକ୍ଷିପ୍ତ—Concise

ସଂକ୍ଷେପକ —ସଂ. ବଣ (ସମ୍+କ୍ଷିପ୍ ଧାତୁ+କର୍ତ୍ତୃ. ଅକ)—ସଂକୋଚକ Samkshepaka —Contracting; condensing. ବ—(ସଂକ୍ଷେପିକା—ସ୍ତ୍ରୀ) ଯେ କୌଣସି ବିଷୟକୁ ସଂକ୍ଷିପ୍ତ କରେ—One who abridges.

ସଂକ୍ଷେପଣ—ସଂ. ବ. ( ସମ୍+କ୍ଷିପ୍ ଧାତୁ+ଭାବ. ଅନ )—ସଂକ୍ଷିପ୍ତ Samkshepana କରଣ; ଚୁମ୍ବକ କରିବା—Abridging; (ସଂକ୍ଷିପ୍ତ—ବଣ) condensing.

ସଂକ୍ଷେପତଃ—ସଂ. କ୍ରି. ବଣ—( ସଂକ୍ଷେପ+ତସ୍ )—ସଂକ୍ଷିପ୍ତ Samkshepatah ଭାବରେ—In a condensed manner; concisely.

ସଂକ୍ଷେପିବା—ଦେ· (ପଦ୍ୟ) କ୍ରି—ସଂକ୍ଷିପ୍ତ କରିବା— To condense; Samkshepibā to make concise. (ଉ—ଗୁରୁଙ୍କ ଅଗେ সংক্ষেপ কবা ଜଣାଇଲେ । ସଂକ୍ଷେପି ସମସ୍ତ କହିଲେ - ଜଗନ୍ନାଥ. संक्षेप करना ଭାଗବତ । )

ସଂକ୍ଷୋଭ—ସଂ. ବ ( ସମ୍+କ୍ଷୁଭ୍. ଧାତୁ=କ୍ଷୁବ୍ଧହେବା+ଭାବ. ଅ)—Samkshobha ୧ । ଚାଞ୍ଚଲ୍ୟ—1. Disturbance; fickleness. ୨। ଅସ୍ଥିରତା—2. Restlessness; instability. ୩ । ମନଶ୍ଚାଞ୍ଚଲ୍ୟ—3. Caprice; (ସଂକ୍ଷୋଭ—ଅନ୍ୟରୂପ) unsteadiness; mental agita-(ସଂକ୍ଷୁବ୍ଧ, ସଂକ୍ଷୋଭିତ—ବଣ) tion. ୪। ଧର୍ଷଣ—4. The daring of a person to combat. ୫। ମନସ୍ତାପ; ଅତି କ୍ଷୋଭ- 5. Mental affliction; perturba-

tion ୬। ଗର୍ବ—6. Arrogance; egotism. ୭। ଭୟଚକିତତା—7. The state of being alarmed.

ସଂଖ ( ଇତ୍ୟାଦି )—ଦେ. ବି—ସଙ୍ଖ ଇତ୍ୟାଦି ( ଦେଖ )
Samkha (etc) Sankha etc ( See )

ସଂଖଡ଼ା—ଗ୍ରାଦେ ( କଟକ ) ବି ଓ ବିଣ—ସଙ୍ଖଡ଼ା ( ଦେଖ )
Samkharda Sankharda ( See )

ସଂଖଳନା—ଦେ. ବି—ସଙ୍ଖଳନା ( ଦେଖ )
Samkhalana Sankhalana ( See )

ସଂଖଳା—ଦେ. ବି—ସଙ୍ଖଳା ( ଦେଖ )
Samkhala Sankhala ( See )

ସଂଖା ( ଇତ୍ୟାଦି )—ଦେ. ବି—ସଙ୍ଖା ଇତ୍ୟାଦି ( ଦେଖ )
Samkha ( etc ) Sankhā etc ( See )

ସଂଖାମୁଠା—ଦେ. ବି—ସଙ୍ଖାମୁଠା ( ଦେଖ )
Samkhamutha Sankhāmuthā ( See )

ସଂଖାଳି—ଦେ. ବି—ସଙ୍ଖାଳି ( ଦେଖ )
Samkhali Sankhāli ( See )

ସଂଖୁଆ—ଦେ. ବି—ସଙ୍ଖୁଆ ( ଦେଖ )
Samkhuā Sankhuā ( See )

ସଂଖୁଡ଼ି ( ଇତ୍ୟାଦି )—ଦେ. ବି—ସଙ୍ଖୁଡ଼ି ଇତ୍ୟାଦି ( ଦେଖ )
Samkhurdi (etc) Sankhurdi etc ( See )

ସଂଖୁରି—ଗ୍ରା. ବି ଓ ବିଣ—ସଙ୍ଖୁରି ( ଦେଖ )
Samkhuri Sankhuri ( See )

ସଂଖୁ(ଖୋ)ଳା—ଦେ. ବି—ସଙ୍ଖୁଳା ( ଦେଖ )
Samkhu(kho)lā Sankhulā ( See )

ସଂଖ୍ୟ—ସଂ. ବି (ସମ୍+ଖ୍ୟା ଧାତୁ=ପରସ୍ପର ନାମୋଚ୍ଚାରଣ କରିବା+ ଅଧିକରଣ. ଅ)—ଯୁଦ୍ଧ, ସଂଗ୍ରାମ—Battle; fight; contest.
Samkhya
( ସଙ୍ଖ୍ୟ—ଅନ୍ୟରୂପ )

ସଂଖ୍ୟକ—ସଂ. ବିଣ—(ସଂଖ୍ୟା ଶବ୍ଦ ବହୁବ୍ରୀହି ସମାସରେ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ 'କ' ଯୁକ୍ତ ହେଲେ ସଂଖ୍ୟ ଆକାର ଧାରଣ କରେ, ଯଥା—ବହୁ ସଂଖ୍ୟକ, ଅଳ୍ପ ସଂଖ୍ୟକ )— ୧ । ସଂଖ୍ୟାଯୁକ୍ତ—1. Numbered; numbering. ୨ । ଗଣିତ; ଗଣା ଯାଇଥିବା—2. Counted; numbered. ୩ । ଗଣନୀୟ—3 Countable; which can be counted.
Samkhyaka

ସଂଖ୍ୟା—ସଂ. ବି ( ସମ୍+ଖ୍ୟା ଧାତୁ=ଗଣିବା, କହିବା+ଭାବ. ଅ+ ସ୍ତ୍ରୀ. ଆ )—୧ । ସୁମାରି; ଗଣନା; ଗଣତି—1. Counting; calculation; reckoning. ( ଉ—ଭୋଳାନାଥ ତୋହର ମହିମା । ସଂଖ୍ୟାରେ କେ କରିବ ସୀମା—ଜଗନ୍ନାଥ. ଭାଗବତ ।) ୨ । ବିଚାର—2. Consideration; deliberation. ୩ । ( ଗଣିତ ) ସଙ୍ଖ୍ୟା; ଅଙ୍କ ( ୧, ୨, ୩, ୪ ଆଦି )—3. ( arithmetic ) Number; notation. ୪ । ଗଣନାଦ୍ୱାରା ଜଣାଯିବା ରାଶି ବା ପରିମାଣ—4. A number arrived at after counting. ୫ । କୌଣସି ବିଷୟର ତଦନ୍ତ—5. Investigation. [ ଦ୍ର—ଏକ ସଂଖ୍ୟାଠାରୁ କ୍ରମଶଃ ଦଶଗୁଣ ବୃଦ୍ଧି ହୋଇଥିବା ସଂଖ୍ୟାମାନଙ୍କର ନାମ ସମ୍ବନ୍ଧରେ ବ୍ରହ୍ମାଣ୍ଡପୁରାଣର ଗୋଟିଏ ଶ୍ଲୋକ ମନେ ରଖିଲେ ଦଶଗୁଣୋତ୍ତର ସଂଖ୍ୟାମାନଙ୍କ ନାମ ଓ ଗଣନାରେ ବିଶେଷ ସୁବିଧା ହୁଏ । ଯଥା—
Samkhyā
( ସଂଖ୍ୟାତ—ବିଣ )

ଏକଂ ଦଶଂ ଶତଂ ଚୈବ ସହସ୍ରମୟୁତଂ ତଥା
ଲକ୍ଷଂ ଚ ନିୟୁତଂ ଚୈବ କୋଟିରର୍ବୁଦମେବ ଚ ।
ବୃନ୍ଦଃ ଖର୍ବୋ ନିଖର୍ବଶ୍ଚ ଶଙ୍ଖ ପଦ୍ମୌ ଚ ସାଗରଃ
ଅନ୍ତ୍ୟଂ ମଧ୍ୟଂ ପରାର୍ଦ୍ଧଂ ଚ ଦଶବୃଦ୍ଧ୍ୟା ଯଥୋତ୍ତରମ୍ ।

ଏକରେ ଗୋଟିଏ ଶୂନ୍ୟ ଯୋଗ କଲେ ୧୦ ( ଦଶ ), ଦୁଇଟି ଶୂନ୍ୟଦେଲେ ୧୦୦ ( ଶତ ବା ଶହ ), ତିନୋଟି ଶୂନ୍ୟଦେଲେ ୧୦୦୦ ( ସହସ୍ର ବା ହଜାର ) ହେବ । ଏହିପରି ୧୭ଟି ଶୂନ୍ୟରେ ୧୦୦୦୦୦୦୦୦୦୦୦୦୦୦୦୦୦ ( ଏକ ପରାର୍ଦ୍ଧ ) ହୁଏ । କେହି କେହି ପରାର୍ଦ୍ଧ ପରେ କ୍ରମେ ଦଶଗୁଣୋତ୍ତର ଅକ୍ଷୌହିଣୀ, ବକ୍ଷୌହିଣୀ, କାଳ, ମହାକାଳ ଓ କାଟି ଗଣନା କରନ୍ତି ଏବଂ କାଟିଠାରୁ ସଂଖ୍ୟା ହଦ୍ ବୋଲି କହନ୍ତି ।] ଦେ. ବିଣ (ସଂ. ସଂଖ୍ୟ, ସଂଖ୍ୟକ)— ସଂଖ୍ୟାଯୁକ୍ତ—Numbered;. ( ଉ—ସହସ୍ର ସଂଖ୍ୟା ମୋର ପ୍ରାୟେ । ବାଞ୍ଛାରୁ କରନ୍ତି ଉଦୟେ— ଭୂପତି. ପ୍ରେମପଞ୍ଚାମୃତ ।) [ ଦ୍ର—ସାଧାରଣ ଲୋକେ ଅସଂଖ୍ୟ, ବହୁସଂଖ୍ୟକ ଆଦି ସ୍ଥାନରେ 'ଅସଂଖ୍ୟା', 'ବହୁ ସଂଖ୍ୟା', 'ଶତ ସଂଖ୍ୟକ', ସହସ୍ର ସଂଖ୍ୟକ ସ୍ଥାନରେ 'ଶହ ସଂଖ୍ୟା', 'ହଜାର ସଂଖ୍ୟା' ଏବଂ ଏହିପରି 'ଲକ୍ଷ ସଂଖ୍ୟା', 'କୋଟି ସଂଖ୍ୟା' ଓ 'ଖର୍ବ ସଂଖ୍ୟା' ଶବ୍ଦମାନ ବ୍ୟବହାର କରନ୍ତି ।] ଦେ. ବି—(ଯୁବକ ରାଧାଶ୍ୟାମଙ୍କ ପ୍ରବର୍ତ୍ତିତ ଡ୍ରିଲ୍ ସମ୍ବନ୍ଧୀୟ ଆଦେଶ ବଚନବିଶେଷ) ଜଣଜଣଙ୍କର ସଂଖ୍ୟା ଗଣନାକର—An order of Drill—'Number'.

ସଂଖ୍ୟା କରିବା—ଦେ. କ୍ରି ( ସଂ. ସମ୍+ଖ୍ୟା ଧାତୁ )—ଗଣତି କରିବା; ଗଣିବା; ସୁମାରି କରିବା— সংখ্যা করা संख्या करना To count; to reckon.
Samkhyā karibā

ସଂଖ୍ୟା-ଚାର୍-ଗଣ୍—ଦେ. ବି—ଯୁବକ ରାଧାଶ୍ୟାମଙ୍କ ପ୍ରବର୍ତ୍ତିତ ଡ୍ରିଲ୍ ସମ୍ବନ୍ଧୀୟ ଆଦେଶ ବଚନ— A term of drill; By fours in number
Samkhyā-chār-gan

ସଂଖ୍ୟାତ—ସଂ. ବିଣ (ସମ୍+ଖ୍ୟା ଧାତୁ+କର୍ମ ତ)—୧ । କୃତସଂଖ୍ୟ; ଗଣିତ—1. C[illegible]ed. ୨ । ବିଚାରିତ—2. Considered. ୩ । ବିଖ୍ୟାତ; ପ୍ରସିଦ୍ଧ—3. Celebrated; famous.
Samkhyāta
( ସଂଖ୍ୟାତା—ସ୍ତ୍ରୀ )

ସଂଖ୍ୟା ଦ୍ୱିଗୁଣ-ଗଣ୍—ଦେ. ବି—ସୈନିକ ବ୍ୟାୟାମରେ ଯୁଗ୍ମସଂଖ୍ୟା ଗଣନାର ଶୁଦ୍ଧ-
Saṁkhyā-dui-gaṇ ସମ୍ବନ୍ଧୀୟ ଆଦେଶ ବଚନ—
A term of drill "By twos—number"

ସଂଖ୍ୟାନ—ସଂ. ବି (ସମ୍+ଖ୍ୟା ଧାତୁ+ଭାବ ଅନ)—୧ । ଗଣନା;
Saṁkhyāna ଗଣିତ କରିବା—1. Counting. ୨ ।
(ସଙ୍ଖ୍ୟାନ—ଅନ୍ୟରୂପ) ସଂଖ୍ୟା—2. Number.

ସଂଖ୍ୟାପନ(ନା)—ସଂ. ବି (ସମ୍+ଖ୍ୟା ଧାତୁ ଣିଚ୍, ଖ୍ୟାପି ଧାତୁ+
Saṁkhyāpana(nā) ଭାବ ଅନ;+ସ୍ତ୍ରୀ ଆ)—
[ସଙ୍ଖ୍ୟାପନ(ନା)—ଅନ୍ୟରୂପ] ୧ । ସଂଖ୍ୟା ନିର୍ଦ୍ଧାରଣ—
1. Ascertainment of the number.
୨ । ନିର୍ଦ୍ଧାରଣ; ପ୍ରମାଣୀକରଣ—2. Ascertainment, attestation.

ସଂଖ୍ୟାବାନ୍—ସଂ. ବି. ପୁଂ (ସଂଖ୍ୟା=ବୁଦ୍ଧିବୃତ୍ତି+ଅସ୍ତି ଅର୍ଥରେ
Saṁkhyābān ବତ୍, ୧ମା ୧ବ)—୧ । ପଣ୍ଡିତ—
[ସଂଖ୍ୟାବତୀ—ସ୍ତ୍ରୀ] 1. A learned man. ୨ । ପ୍ରାଜ୍ଞ
ବ୍ୟକ୍ତି—2. A wise man. ବିଣ. ତ୍ରି—୧ । ପ୍ରାଜ୍ଞ—
1. Wise. ୨ । ବିଦ୍ୱାନ୍—2. Learned.

ସଂଖ୍ୟାବିଦ୍—ସଂ. ବି. ପୁଂ (ସଂଖ୍ୟା+ବିଦ୍ ଧାତୁ=ଜାଣିବା+କର୍ତ୍ତ୍ତୃ
Saṁkhyābid କ୍ୱିପ୍; ସଂଖ୍ୟାବିଦ୍ ଶବ୍ଦ ୧ମା ୧ବ)—
[ସଂଖ୍ୟାବିଦ—ଦେଶଜରୂପ] ୧ । ଅଙ୍କ ବିଦ୍ୟାରେ ପାରଙ୍ଗମ
ବ୍ୟକ୍ତି—1. Arithmetician; mathematician.
୨ । ପଣ୍ଡିତ—2. Learned man.

ସଂଖ୍ୟା ବିଦ୍ୟା(ବିଜ୍ଞାନ,ଶାସ୍ତ୍ର)—ସଂ. ବି—ଅଙ୍କ ଶାସ୍ତ୍ର; ଗଣିତ ଶାସ୍ତ୍ର—
Saṁkhyā bidyā(bijñāna,śāstra) Arithmetic; mathematics; the science of numbers.

ସଂଖ୍ୟାବେତ୍ତା—ସଂ. ବିଣ. ପୁଂ (ସଂଖ୍ୟା+ବିଦ ଧାତୁ+କର୍ତ୍ତୃ ତୃ;
Saṁkhyā bettā ସଂଖ୍ୟାବେତ୍ତୃ ଶବ୍ଦ, ୧ମା ୧ବ)—
(ସଂଖ୍ୟାବେତ୍ତ୍ରୀ—ସ୍ତ୍ରୀ) ସଂଖ୍ୟାବାନ୍ (ଦେଖ)—Saṁkhyābān (See)

ସଂଖ୍ୟାଲଘିଷ୍ଠ ସଂପ୍ରଦାୟ—ସଂ. ବି—(ଆଧୁନିକ ପ୍ରୟୋଗ) ଦେଶରେ
Saṁkhyā laghishṭha sampradāya ଯେଉଁ
( ସଂଖ୍ୟାଗରିଷ୍ଠ ସଂପ୍ରଦାୟ—ବିପରୀତ ) ସଂପ୍ରଦାୟର ସଂଖ୍ୟା
ଅନ୍ୟ ସଂପ୍ରଦାୟମାନଙ୍କ ସଂଖ୍ୟା ଅପେକ୍ଷା କମ୍—
Minority community of a country.

ସଂଖ୍ୟେୟ—ସଂ. ବିଣ (ସମ୍+ଖ୍ୟା ଧାତୁ+କର୍ମ ଯ)—୧ । ଗଣନୀୟ;
Saṁkhyeya ଗଣ୍ୟ—Countable; which can
(ସଂଖ୍ୟେୟା—ସ୍ତ୍ରୀ) be counted. ୨ । ସଂଖ୍ୟାଯୋଗ୍ୟ—
2. Numerable; calculable.

ସଂଗ (ଇତ୍ୟାଦି)—ସଂ. ବି—ସଙ୍ଗ ଇତ୍ୟାଦି (ଦେଖ)
Saṁga (etc) Saṅga etc (See)

ସଂଗଡ—ଦେ. ବିଣ.—ସଙ୍ଗଡ [ଦେଖ]
Saṁgarḍa Saṅgarḍa (See)

ସଂଗଡିବା—ଦେ କ୍ରି—ସଙ୍ଗଡିବା [ଦେଖ]
Saṁgarḍibā Saṅgarḍibā (See)

ସଂଗଣିକା—ସଂ. ବି (ସମ୍+ଗଣ୍ ଧାତୁ=ଗଣନା କରିବା+କରଣ
Saṁgaṇikā ଇକ+ସ୍ତ୍ରୀ ଆ)—ଅନୁପମ କଥୋପକଥନ—
[ସଙ୍ଗଣିକା—ଅନ୍ୟରୂପ] Unparalleled conversation.

ସଂଗତ—ସଂ. ବିଣ (ସମ୍+ଗମ୍ ଧାତୁ+କର୍ତ୍ତୃ କ୍ତ) ୧ । ଉପଯୁକ୍ତ;
Saṁgata ସମୁଚିତ; ଉଚିତ—1. Suitable; fit;
[ସଙ୍ଗତ—ଅନ୍ୟରୂପ] proper. ୨ । ଯଥାର୍ଥ—2. Adequ-
( ସଙ୍ଗତା—ସ୍ତ୍ରୀ ) ate; appropriate. ୩ । ଯୁକ୍ତିଯୁକ୍ତ;
ଯୌକ୍ତିକ—3. Reasonable. ୪ । ସମ୍ମିଳିତ;
ମିଳିତ—4. United. [ଯଥା—ଦିନେ ଯଦି ସେ ବାଞ୍ଛିତ
ମୋର ସୁତ, ମୋ ପାଶରେ ଅଇଲେ ହୋଇବେ ସଂଗତ ।
କୃଷ୍ଣସିଂହ. ମହାଭାରତ. ଆଦ ।] ୫ । ସଂଯୁକ୍ତ—
5. Joined; attached. ୬ । ସମ୍ବଦ୍ଧ; ସମ୍ବନ୍ଧ-
ଯୁକ୍ତ—6. Connected; related. ୭ । ସାକ୍ଷାତ୍-
କୃତ—7. Interviewed; met with. ୮ । ମିତ୍ର
ବା ସହଚରରୂପେ ମିଳିତ—8. Associated or
met as friends. ୯ । ସଂଚିତ; ଏକତ୍ରୀକୃତ—
9. Collected; accumulated. ୧୦ । ସହବାସ
ବା ସଙ୍ଗମ ଦ୍ୱାରା ପରସ୍ପର ସଙ୍ଗେ ମିଳିତ—10 Joined
to each other in coition. [ଯଥା—ଲୁଚିକେ ହେବା
ସଙ୍ଗତ ମୁଁ ହେବି ମଗ୍ନଚିତ, ମଦେନ୍ଦ୍ର ଚିତ୍ତରେ । କବିସୂର୍ଯ୍ୟ.
ସଂଗୀତ ।] ୧୧ । ଦୃଷ୍ଟ—11. Seen; viewed. ବି—
(ଭାବ. କ୍ତ)—୧ । ମିତ୍ରତା—1. Friendship, ୨ ।
ସୌହାର୍ଦ୍ଦ—2. Close friendship, intimacy.
୩ । ମିଳନ—3. Junction. ୪ । ସଂଯୋଗ—
4. Conjunction. ୫ । ସହଚରତ୍ୱ—5. Compa-
nionship. [ଯଥା—ଲୁଗ୍ରୀ ମଧ୍ୟ ତାହାଙ୍କ ସଙ୍ଗତରେ
ଗଲେ । କୃଷ୍ଣସିଂହ. ମହାଭାରତ. ଆଦ ।] ୬ । (ଜ୍ୟୋତିଷ)
ଗ୍ରହମାନଙ୍କର ସମସୂତ୍ରରେ ଅବସ୍ଥାନ ବା ମିଳନ—
6. ( astrology ) The conjunction of planets; a position of planets in parallel lines. ୭ । (ସଂଗୀତ) ଗୀତ, ବାଦ୍ୟ, ସ୍ୱର
ଓ ତାଳର ମିଳନ—7. ( Music ) Harmony produced by the combination of song, music, tunes and symphony. ଦେ. ବି—
ସଂଗତ ୧ । ଶିଖମାନଙ୍କର ଧର୍ମଚର୍ଚ୍ଚାର୍ଥ ବୈଠକ ବା ବନ୍ଧୁ
ସଂଗତ ସମ୍ମେଳନ—1. A religious meeting of the
Sikhs. [ଯଥା—ବ୍ରାହ୍ମମାନଙ୍କର ସାପ୍ତାହିକ ବା
ପାକ୍ଷିକ ଧର୍ମପ୍ରସଙ୍ଗାଲୋଚନାର୍ଥ ବନ୍ଧୁସମ୍ମେଳନକୁ ମଧ୍ୟ
ସଙ୍ଗତ ବୋଲାଯାଏ ।] ପ୍ରାଦେ. (ଯାଜପୁର)· ବି—ଭିନ୍ନ
ଭିନ୍ନ ସ୍ଥାନର କୌଣସି ଧର୍ମାବଲମ୍ବୀ ଲୋକମାନଙ୍କର
ଉପାସ୍ୟ ଶାସ୍ତ୍ରାଲୋଚନାର୍ଥ ଅଭୂତ ସଭା—A meeting

convened for discussion of religious topics amongst people hailing from different localities and professing a particular religion.

**ସଂଗତ କରିବା**—ଦେ. କ୍ରି—୧। ଗୀତ ସଙ୍ଗେ ଗୀତକୁ ମିଳାଇ ତାଳ Saṁgata karibā ଅନୁସାରେ ବାଜା ବଜାଇବା—1. To সংগত কৰা keep time with a song by music.(e. g सं'गत करना by beating a drum) ୨। ଏକଜ ବସି ଧର୍ମ ସଂବନ୍ଧରେ ଆଲୋଚନା କରିବା—2. To discuss religious matters in company.

**ସଂଗତ କାରଣ**—ଦେ. ବି—ସମୀଚୀନ ହେତୁ—Saṁgata kāraṇa Reasonable cause or ground. সংগতকারণ पूरा कारण

**ସଂଗତ ସଭା**—ଦେ. ବି ଧର୍ମଚର୍ଚ୍ଚା। କମନ୍ତେ କେତେଗୁଡ଼ିଏ ବ୍ୟକ୍ତିଙ୍କ Saṁgata sabhā ସମ୍ମେଳନ—A religious gathering. সংগত সভা सं'गत सभा

**ସଂଗତି**—ସଂ. ବି (ସମ୍+ଗମ୍ ଧାତୁ+ଭାବ. ତି)—୧। ମିଳନ—Saṁgati 1. Union; meeting; junction. ( ଉ—(ସଙ୍ଗତି—ଅନ୍ୟରୂପ) ବୋଲନ୍ତେ କୁମ୍ଭ ଶୁଣ ଜାହ୍ନବୀ କ ମୋ ଅଦ୍ଭୁତ କେମନ୍ତେ ବାନର ସଂଗତି। ଉଞ୍ଜ. ବୈଦେହୀଶ ବିଳାସ।) ୨। ମିଶ୍ରଣ—2. Mixing up; mixture. ୩। ସହବାସ; ସଙ୍ଗରେ ଚଳ ପ୍ରଚଳନ ହେବା; ଉଠବସ—3. Society; intercourse. [ ଉ—ଅବା ଶ୍ୟାମ ସଙ୍ଗତି ଲଭି ସୁଭଗ୍ୟବଶ ମଣ୍ଡଳେ ଶୋଭାଇବ ଛନ୍ଦକ ଗୋ। କବିସୂର୍ଯ୍ୟ. ସଂଗୀତ. । ] ୪। ସାହଚର୍ଯ୍ୟ—4. Association; companionship. ୫। ସଂଗମ—5. Co-habitation; contact. ୬। ସଂଯୋଗ; ରତି; ମୈଥୁନ—6. Coition; sexual intercourse. [ ଉ—ବେଶ୍ୟା ସଂଗତି ପାଇଲେ ରସିକ ପୁଂସ, ବଳାଇ ବ ସ୍ୱପ୍ନାଦ୍ୟାରେ ତାର ମାନସ। ଉଞ୍ଜ ବୈଦେହୀଶବିଳାସ । ] ୭। ଯୋଗ୍ୟତା; କ୍ଷମତା—7. Competence; fitness. ୮। ସଂଚୟ—8. Storing up. ୯। ଜ୍ଞାନ—9. Knowledge. ୧୦। ବୋଧ—10. Understanding. ୧୧। ବୈଷୟିକ ସ୍ୱାଚ୍ଛନ୍ଦ୍ୟ; ସଂସ୍ଥାନ—11. A person's means or competence; easy worldly circumstances. ୧୨। ଉପଯୋଗିତା—12. Appropriateness; applicability. ୧୩। ଯୋଗାଡ଼—13. Collection of materials; preparation. ୧୪। ସଂବନ୍ଧ—14. Relationship; connection. ୧୫। ପୂର୍ବାପର ସଂବନ୍ଧ-15. Correlation. ୧୬। ଔଚିତ୍ୟ—16. Propriety. ୧୭। ସାମଞ୍ଜସ୍ୟ—17. Consistency; congruity. ୧୮। ଅବସର; ସୁଯୋଗ—18. Opportunity. ୧୯। (ନ୍ୟାୟଶାସ୍ତ୍ର) ଅନନ୍ତର ବକ୍ତବ୍ୟତ୍ୱ—19. (Logic) Sequence in conversation or argument. ୨୦। (ନ୍ୟାୟଶାସ୍ତ୍ର) କଥାର ପ୍ରସଙ୍ଗ—20. ( Logic ) Connection of a topic; course of talk; logical sequence of a discourse or subjet. ଦେ. ବି—সংগীত (ସଂ. ସଂଗୀତ)—୧। ସଂଗୀତ—1 Song. ୨। ବାଦ୍ୟାଦି ସହ ସଙ୍ଗୀତ ଗାନ—2. Singing of songs accompanied with music. ୩। ସଙ୍ଗୀ—3. Companion. [ଉ—ଶେ ଉଲେ ଏକଲୁସ ହୋଇ, ସଙ୍ଗେ ସଙ୍ଗତ ନ ହିଁ କେହୁ। —ଜଗନ୍ନାଥ. ଭାଗବତ]

**ସଂଗତି କରିବା**—ଦେ. କ୍ରି.—୧। ସଙ୍ଗରେ ବାସ କରିବା—1. To Saṁgati karibā live with. ୨। ସହବାସ କରିବା সহবাসকৰা 2. To cohabit to.

**ସଂଗତିପନ୍ନ**—ସ. ବିଣ. ପୁଂ (ଅନ୍ୟ ତତ୍; ସଂଗତି+ପନ୍ନ=ଯୁକ୍ତ)—Saṁgatipanna ୧। ସାଂସାରିକ ସ୍ୱଚ୍ଛନ୍ଦ ଅବସ୍ଥାଯୁକ୍ତ—(ସଂଗତିସଂପନ୍ନ, ସଂଗତିଶାଳୀ—ଅନ୍ୟରୂପ) 1. Well-to-do (ସଂଗତିପନ୍ନା, ସଂଗତିସଂପନ୍ନା, ସଂଗତିଶାଳିନୀ—ସ୍ତ୍ରୀ) (man) of (ସଂଗତିସଂପନ୍ନତା, ସଂଗତିଶାଳିତା—ବି) easy circumstances. ୨। ଧନୀ—2. Affluent; rich.

**ସଂଗତିବିହୀନ**—ସଂ. ବିଣ. ପୁ (ଅନ୍ୟ ତତ୍)—ଧନହୀନ; ସମ୍ବଳ-Saṁgati bihīna ହୀନ—Very poor; of straitened circumstances of poor means. (ସଂଗତିହୀନ, ସଂଗତିଶୂନ୍ୟ, ସଂଗତିରହିତ—ଅନ୍ୟରୂପ)
ସଂଗତିବିହୀନା, ସଂଗତିହୀନା, ସଂଗତିଶୂନ୍ୟା, ସଂଗତିରହିତା }—ସ୍ତ୍ରୀ
(ସଂଗତିବିହୀନତା, ସଂଗତିହୀନତା, ସଂଗତିଶୂନ୍ୟତା, ସଂଗତିରହିତତ୍ୱ }—ବି)

**ସଂଗତି ସାଧକ**—ସଂ. ବିଣ. ପୁଂ.—ଯାହା ସଂଗତି ବା ସୁଯୋଗ ଘଟାଏ—Saṁgati sādhaka Causing or bringing out (ସଂଗତିସାଧିକା—ସ୍ତ୍ରୀ) (ସଂଗତିସାଧନ—ବି) 'Saṁgati'.

**ସଂଗତେ**—ଦେ. କ୍ରି. ବିଣ. ଓ ଅ.—ସଙ୍ଗତେ (ଦେଖ)—Saṁgate Saṅgate (See)

**ସଂଗବ**—ସଂ. ବି.—ସଙ୍ଗବ (ଦେଖ)—Saṁgaba Saṅgaba (See)

**ସଂଗମ(ଇତ୍ୟାଦି)**—ସଂ. ବି.—ସଙ୍ଗମ ଇତ୍ୟାଦି (ଦେଖ)—Saṁgama(etc) Saṅgama etc (See)

**ସଂଗର**—ସଂ. ବି—ସଙ୍ଗର (ଦେଖ)—Saṁgara Saṅgara (See)

**ସଂଗା(ଇତ୍ୟାଦି)**—ଦେ. ବି.—ସଙ୍ଗା ଇତ୍ୟାଦି (ଦେଖ)—Saṁgā(etc) Saṅgā etc. (See)

ସଂଗା(ଗେ, ଗୋ)ଇବା — ଦେ. କ୍ରି — ସଙ୍ଗାଇବା (ଦେଖ) —
Samgā(ge, go)ibā Saṅgāibā (See)

ସଂଗାର୍ଡି — ଦେ. ବି — ସଙ୍ଗାର୍ଡି (ଦେଖ) —
Samgārḍi Saṅgārḍi (See)

ସଂଗାତ(ଇତ୍ୟାଦି) — ଦେ. ବି — ସଙ୍ଗାତ ଇତ୍ୟାଦି (ଦେଖ) —
Samgāta(etc) Saṅgāta etc (See)

ସଂଗାତୁଣୀ — ଦେ. ବି. ସ୍ତ୍ରୀ. — ସଙ୍ଗାତୁଣୀ (ଦେଖ) —
Samgātuṇi Saṅgātuṇi (See)

ସଂଗିତ(ତା) — ସଂ. ଓ ଦେ. ବି. ପୁଂ — ସଙ୍ଗିତ(ତା) (ଦେଖ) —
Samgita(tā) Saṅgita(tā) (See)

ସଂଗିନ୍ (ଇତ୍ୟାଦି) — ବୈଦେ. ବି. ଓ ବଣ — ସଙ୍ଗିନ୍ ଇତ୍ୟାଦି (ଦେଖ)
Samgin(etc) Saṅgin etc (See)

ସଂଗିଣୀ — ସଂ. ବି. ସ୍ତ୍ରୀ — ସଙ୍ଗିଣୀ (ଦେଖ) —
Samgini Saṅgini (See)

ସଂଗିବା — ଦେ. କ୍ରି — ସଙ୍ଗିବା (ଦେଖ) —
Samgibā Saṅgibā (See)

ସଂଗିରମାଣ — ସଂ. ବଣ. ପୁଂ — ସଙ୍ଗିରମାଣ (ଦେଖ) —
Samgirmāṇa Saṅgiramāṇa (See)

ସଂଗୀ — ସଂ. ବି. ପୁଂ — ସଙ୍ଗୀ (ଦେଖ) —
Samgi Saṅgi (See)

ସଂଗୀତ — ସଂ. ବିଣ — (ସମ୍ = ସମ୍ୟକ୍ + ଗୈ ଧାତୁ + କର୍ମ ତ) ୧ । Samgita ନୃତ୍ୟ ବାଦ୍ୟ ସହକାରେ ଗୀତ—1. Sung in accompaniment with dance and music. ୨ । ସମ୍ୟକ୍ ପ୍ରକାରେ ଗୀତ—2. Sung in chorus; well sung (song). ସଂ. ବି.— (+ଭାବ ତ) ୧ । ବହୁମିଳିତ ଗାନ—1. Chorus; choral song. ୨ । ତୌର୍ଯ୍ୟତ୍ରିକ; ପ୍ରେକ୍ଷାର୍ଥ ନୃତ୍ୟ ଗୀତ ଓ ବାଦ୍ୟ—2. Concert; music consisting of dancing, singing and playing on musical instruments. (ଦ୍ର—ହିନ୍ଦୁମାନଙ୍କ ଦେବାରାଧନରେ ସଂଗୀତ ଗୋଟିଏ ପ୍ରଧାନ ଉପକରଣ ବା ଅଙ୍ଗ । ଦେବତାମାନଙ୍କ ସମ୍ମୁଖରେ ନୃତ୍ୟଗୀତ ବାଦ୍ୟଯୁକ୍ତ ସଂଗୀତ କରାଯାଏ । ଦେବସ୍ଥାନବିଶେଷରେ ଏଥିପାଇଁ ଦେବଦାସୀ ଓ ନର୍ତ୍ତକୀମାନେ ମଧ୍ୟ ରହନ୍ତି । "ଗୀତଂ ବାଦ୍ୟଂ ତଥା ନୃତ୍ୟଂ ତ୍ରୟଂ ସଂଗୀତମୁଚ୍ୟତେ" —ସଂଗୀତ ରତ୍ନାକର । ଗୀତ, ବାଦ୍ୟ ଓ ନୃତ୍ୟ ଏହି ତିନୋଟିର ସମାହାରକୁ ସଂଗୀତ ବୋଲଯାଏ ।]

୩ । ତାଳ, ଲୟ, ଶ୍ରୁତି ସମନ୍ୱିତ ସରସ ହୃଦୟଗ୍ରାହୀ ରଚନା—3. Enchanting song sung in complete accordance of time,tune,metric and other accompaniments. ଦେ. ବି.—୧ । ଗୀତ—1. Song. ୨ । ଆଦିରସଯୁକ୍ତ ଓ ରାଧାକୃଷ୍ଣ ଲୀଳା ବା ନାୟକ ନାୟିକା ସମ୍ପର୍କିତ ଗୀତ—2.Love song; song depicting the adventures of love between Krushṇa and Rādhikā. [ଦ୍ର—(୧) ଅଧୁନାତନ ଓଡ଼ିଶାରୁ ପ୍ରାଚୀନ (classical) ଓଡ଼ିଆ ସଙ୍ଗୀତର ଚର୍ଚ୍ଚା ଏକପ୍ରକାର ଉଠିଯିବାର ଉପକ୍ରମ ହୋଇଅଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଶିକ୍ଷିତ ଉତ୍କଳୀୟମାନେ ବଙ୍ଗୀୟ, ହିନ୍ଦୁସ୍ଥାନୀ ଓ ଓ ପାରସୀ ସଂଗୀତର ଅନୁକରଣରେ ସଂଗୀତ ରଚନା ଓ ଗାନ କରୁଥିବା ଦେଖାଯାଏ । ଉପେନ୍ଦ୍ର, ବନମାଳୀ, ଗୋପାଳକୃଷ୍ଣ, କବିସୂର୍ଯ୍ୟ ପ୍ରଭୃତି ଉତ୍କଳର ପ୍ରାଚୀନ କବିମାନଙ୍କର ସଂଗୀତମାନ ଅତିରସାତ୍ମକ ଥିଲେହେଁ ତହିଁର ରାଗରାଗିଣୀମାନଙ୍କର ବଶିଷ୍ଟତା ଓ ବୈଚିତ୍ର୍ୟ ଅଛି । ପ୍ରାଚୀନ ଓଡ଼ିଆ ସଂଗୀତର ଚର୍ଚ୍ଚା କେବଳ ପୁରୀ ଓ ଗଞ୍ଜାମ ଜିଲ୍ଲାରେ ଆବଦ୍ଧ ଥିବାରୁ ପ୍ରାଚୀନ ଓଡ଼ିଆ ସଂଗୀତକୁ 'ଦକ୍ଷିଣୀ' ସଂଗୀତ ନାମ ଦିଆ ଯାଇଅଛି । ଓଡ଼ିଶୀ ସଂଗୀତ ଚର୍ଚ୍ଚା ପାଇଁ ମଫସଲରେ ସ୍ଥାନେ ସ୍ଥାନେ 'ସଂଗୀତ ଅଖଡ଼ା' ଓ 'ଗୋଟିପୁଅ' ନାଚୁଆ ଦଳ ଥିଲେ । ଗୋଟିପୁଅ ପ୍ରଥା କ୍ରମଶଃ କମିବା ସଙ୍ଗେ ସଙ୍ଗେ ଓଡ଼ିଶୀ ସଂଗୀତର ଚର୍ଚ୍ଚା ଓଡ଼ିଶାରୁ ଲୋପ ପାଉଅଛି ବୋଲିବାକୁ ହେବ । ଓଡ଼ିଶୀ ସଂଗୀତରେ ପାରଦର୍ଶିତା ଲାଭ କରିବା ପାଇଁ ଯେତେ ସାଧନା ଓ ତାଳଜ୍ଞାନ ଦରକାର, ବଙ୍ଗୀୟ ଓ ହିନ୍ଦୁସ୍ଥାନୀ ଗୀତ ବୋଲିବା ପାଇଁ ସେତେ ପରିଶ୍ରମ ଲୋଡ଼ା ହେଉ ନ ଥିବାରୁ ଅଧୁନାତନ ଶିକ୍ଷିତମାନେ ଓଡ଼ିଶୀ ସଂଗୀତ ପ୍ରତି ଯଥେଷ୍ଟ ମନୋଯୋଗ ଦେଉ ନ ଥିବା ଦେଖାଯାଏ ।

ସଂଗୀତ ମୁହଁଦ୍ୱାରା ବୋଲଯାଏ, ତାଳ ବାଦ୍ୟଦ୍ୱାରା ସୂଚିତ ହୁଏ ଓ ନୃତ୍ୟ ହସ୍ତପଦାଦିଦ୍ୱାରା ସଂପନ୍ନ ହୁଏ । ସଂଗୀତଜ୍ଞବ୍ୟକ୍ତି ନୃତ୍ୟବାଦ୍ୟରେ ପାରଦର୍ଶୀ ହୋଇ ନ ଯାଆନ୍ତି; କିନ୍ତୁ ତାଳ ଓ ବାଦ୍ୟରେ ପାରଦର୍ଶୀ ନ ହେଲେ ସଂଗୀତ ବିଦ୍ୟାରେ ପାରଙ୍ଗମ ହେବା ଅସମ୍ଭବ ।]

[ଦ୍ର—୨ । ସାମବେଦାଦିଦଂ ଗୀତଂ ସଂଜଗ୍ରାହ ପିତାମହଃ ।
—ସଂଗୀତରତ୍ନାକର ।
ଗୀତଂ ବାଦ୍ୟଂ ନର୍ତ୍ତନଂ ଚ ତ୍ରୟଂ ସଂଗୀତମୁଚ୍ୟତେ ।
—ସଙ୍ଗୀତ ଦର୍ପଣ ।
ସ୍ୱରଃ ସ୍ୱରଶ୍ଚ ତାଳଶ୍ଚ ତ୍ରିଭିଃ ସଂଗୀତମୁଚ୍ୟତେ ।
—ଗାନଭାସ୍କର ।

ସଂଗୀତ ବେଦର ଗୋଟିଏ ପ୍ରଧାନ ଅଙ୍ଗ କହିଲେ ଚଳେ । କାରଣ ସଂଗୀତ ଓ ତାଳ ନ ଜାଣିଲେ ବେଦ ପାଠ ସୁଷ୍ଠୁ ଭାବରେ ହୋଇ ପାରେ ନାହିଁ । ଅଜ୍ଞ ସଂଗୀତର ଅଙ୍ଗମାନଙ୍କ ବ୍ୟତୀତ ଜଗତର କୌଣସି ପ୍ରାଣୀ ଗତି ଶୁଦ୍ଧ କରି ପାରେ ନାହିଁ । ଆମ୍ଭ ଏହି ଦେଶରେ ଜୀବନର ପ୍ରତି ମୁହୂର୍ତ୍ତରେ ଲୋକ ସଂଗୀତର ଅପେକ୍ଷା କରନ୍ତି । ଦେବପୂଜାର ସ୍ତୋତ୍ର ଏବଂ ଆରତି ମଧ୍ୟ

ସଂଗୀତକୁ ଅପେକ୍ଷା କରେ । ପୂର୍ବକାଳରେ ରାଜାମାନଙ୍କର ଗୋଟିଏ ଗୋଟିଏ ନୌବତ୍‌ଖାନା ଥିଲା । ପ୍ରହରାନ୍ତରରେ ନୌବତ୍ ବାଜିଲେ ଲୋକେ ସମୟ ଜାଣି ପାରୁଥିଲେ । ଏହିପରି ମଧ୍ୟ ଏପରି ଅନେକ ଯନ୍ତ୍ର ଅଛି, ଯାହାର ବାଦନ ମାତ୍ରେ ଲୋକଙ୍କ ହୃଦୟରେ ବିଭିନ୍ନ ଭାବର ଉଦ୍ରେକ ହୁଏ ।(ଯଥା—ଶଙ୍ଖ, ଭେରୀ, କାହାଳୀ, ନାଗରା, କେନ୍ଦରା ଇତ୍ୟାଦି ।)

ସାମାଜିକ ବ୍ୟାପାର ବ୍ୟବହାରରେ ତଥା ଦୈନନ୍ଦିନ ଜୀବନରେ ସଙ୍ଗୀତ ହିନ୍ଦୁମାନଙ୍କର ଦୈନିକ କର୍ମ ଥିଲା । କେବଳ ଏତିକି ନୁହେଁ, ସଙ୍ଗୀତର ପ୍ରଭାବ ଲୋକର ହାବଭାବରେ, ବିଶେଷତଃ ଲଳନାମାନଙ୍କ ଗତି ଭଙ୍ଗୀ ପ୍ରଭୃତିରେ ମଧ୍ୟ ଦେଖା ଯାଉଥିଲା । ପୂର୍ବେ ଆବାଳବୃଦ୍ଧବନିତା ସମସ୍ତେ ଏହାର ଚର୍ଚ୍ଚା କରୁଥିଲେ ଏବଂ ରାଜାଧିରାଜଙ୍କଠାରୁ ଆରମ୍ଭ କରି କୁଟୀରବାସୀ କୃଷକ ପର୍ଯ୍ୟନ୍ତ ସମସ୍ତେ ଏହି ସଙ୍ଗୀତର ସମାଦର କରୁଥିଲେ ଓ ତାହାର ପ୍ରଭାବରେ ମୁଗ୍ଧ ଓ ଚକିତ ହେଉଥିଲେ ।

ସଙ୍ଗୀତ ନାଟ୍ୟକଳାରେ ଅତି ସମ୍ମୋହନରୂପେ ପ୍ରକାଶ ପାଏ । ଜଣାଯାଏ ଏହା ନାଟ୍ୟକାରର ସ୍ୱଭାବ-ସିଦ୍ଧ ଦୈବଦତ୍ତ ଗୁଣ । ଏହା ସର୍ବବାଦୀସମ୍ମତରୂପେ ସ୍ୱୀକୃତ ହୋଇଅଛି ଯେ, ସଂଗୀତ ମାନବହୃଦୟରେ ନୂତନ ଚୈତନ୍ୟ ଉତ୍ପାଦନ କରି ପାରେ । ଶିକ୍ଷିତ ଲୋକମାନଙ୍କ ଦ୍ୱାରା ମଧ୍ୟ ବର୍ତ୍ତମାନ ସିଦ୍ଧାନ୍ତ ହୋଇଅଛି ଯେ, ଏକାଗ୍ରତା ଓ ସଂଯମ ଦ୍ୱାରା ମାନସିକ ବ୍ୟାଧି ତଥା ଶ୍ୱାସୋଚ୍ଛ୍ୱାସ କ୍ରିୟା ଦ୍ୱାରା ଶାରୀରିକ ବ୍ୟାଧି ଦୂର କରିବାକୁ ହେଲେ ସଙ୍ଗୀତ ବିଶେଷ ଆବଶ୍ୟକ ।

ନାଦେନ ବ୍ୟଜ୍ୟତେ ବର୍ଣ୍ଣଃ ପଦଂ ବର୍ଣ୍ଣାତ୍ ପଦାଦ୍ବଚଃ
ବଚସୋ ବ୍ୟବହାରୋଽୟଂ ନାଦାଧୀନମତୋ ଜଗତ୍ ।

ଏହି ଶ୍ଳୋକରୁ ଜଗତ୍ ଯେ ନାଦାତ୍ମକ, ଏହା ସ୍ପଷ୍ଟ ପ୍ରମାଣିତ ହୁଏ । ଏହି ନାଦ ପୁଣି ଦୁଇ ପ୍ରକାର—ଆହତ ଓ ଅନାହତ । ସଂଗୀତ ଯୋଗଠାରୁ କୌଣସି ଅଂଶରେ ନ୍ୟୂନ ନୁହେଁ । ଯୋଗ ନୀରସ—ଏହା ସରସ; ତାହା କଷ୍ଟସାଧ୍ୟ—ଏହା ସୁସାଧ୍ୟ ।

Heard melodies are sweet,
But those unheard are sweeter—
Shelley.

ପୂର୍ବକାଳରେ ଏହି ସଂଗୀତ ଦ୍ୱାରା ବୃଷ୍ଟି, ଅଗ୍ନି ଇତ୍ୟାଦି ଉତ୍ପାଦିତ ହେଉଥିଲା । ଏହା ଅସମ୍ଭବ ବିଷୟ ନୁହେଁ; କାରଣ, ସଂଗୀତର ଯେପରି ଅଲୌକିକ ଶକ୍ତି ଅଛି । କେଳାର ସ୍ୱରର ଶ୍ରବଣରେ ବର୍ତ୍ତମାନ ମଧ୍ୟ ବିଷଧର ସର୍ପ ଗର୍ତ୍ତରୁ ବାହାରି ଆସି ସୁମଧୁର ସଂଗୀତ ଧ୍ୱନିରେ ମୋହିତ ହୋଇ ସ୍ଥିର ହୋଇ ରହେ ।

ସ୍ୱର ପଦାରଥ ଦେଇ ହେ ନାଦବନ୍ଧୁ ସୁଖଦାନ
ପଶୁ ଶିଶୁ ମୃଗଙ୍କୁ ବି ଜନ୍ତୁ ବଶ ଜାଳେ ସଦାପ୍ରମାନ ।
ଛନ୍ଦବଚନ ।

[ ଏଥିର ମର୍ମ - ନାଦବ୍ରହ୍ମ ପଶୁ, ଶିଶୁ, ମୃଗ ଓ ଜୀବଜନ୍ତୁଙ୍କୁ ସୁଖ ଦିଏ ଓ ବଶୀଭୂତ କରେ ।]

ସଂଗୀତୋପଯୋଗୀ ନାଦ ତିନି ସ୍ଥାନରୁ, ଅର୍ଥାତ୍ ହୃଦୟରୁ, କଣ୍ଠରୁ ଓ ଶିରରୁ ବାହାରିଥାଏ । ତାହାକୁ ଉଦାରା, ମୁଦାରା ଓ ତାରା ବୋଲି କୁହାଯାଏ ।

ଯେଉଁ ନାଦ ସଂଗୀତରେ ଉପଯୋଗୀ ହୋଇପାରେ ଓ ଶୁଣା ଯାଇପାରେ, ତାହାକୁ ଶ୍ରୁତି କହନ୍ତି । "ଶ୍ରୂୟତେ ଇତି ଶ୍ରୁତି ।" ସ୍ୱରରେ ଯେପରି 'ମଧୁରତା' ଓ 'ରାଗୋତ୍ପତ୍ତି' ଏ ଦୁଇ ଅଙ୍ଗ ପ୍ରଧାନ, ଶ୍ରୁତିରେ ମଧ୍ୟ ସେହିପରି 'ଗୀତୋପଯୋଗିତ୍ୱ' ଓ 'ଅଭିଜ୍ଞେୟତ୍ୱ' ଏହି ଦୁଇ ଅଙ୍ଗ ଆବଶ୍ୟକ ହୋଇଥାଏ । ତାହା ନ ହେଲେ ରାଗର ପୃଥକୀକରଣ କରାଯାଇ ପାରେ ନାହିଁ । ଶ୍ରୁତି ଅସଂଖ୍ୟ; କିନ୍ତୁ ସଂଗୀତରେ ଶ୍ରୁତିର ଦ୍ୱାବିଂଶତି ମାତ୍ର ବ୍ୟବହାର ଦେଖାଯାଏ । ତାହା ଗୋଟିଏ 'ସପ୍ତକ'ରେ ଅର୍ଥାତ୍ 'ସା-ରି-ଗ-ମ-ପ-ଧ-ନି'ରେ ଥାଏ; ଯଥା—

ଚତୁଶ୍ଚତୁଶ୍ଚତୁଶ୍ଚୈବ ଷଡ୍‌ଜ ମଧ୍ୟମ ପଞ୍ଚମାଃ
ଦ୍ୱେ ଦ୍ୱେ ନିଷାଦଗାନ୍ଧାରୌ ତ୍ରିସ୍ତ୍ରିଋଷଭ ଧୈବତୌ ।

ସେହି ଶ୍ରୁତିମାନଙ୍କ ମଧ୍ୟରୁ ସ୍ୱରର ଉତ୍ପତ୍ତି ହୋଇଥାଏ । ଯଥା—'ସ୍ୱୟଂ ଯୋ ରାଜତେ ନାଦଃ ସ ସ୍ୱରଃ ପରିକୀର୍ତ୍ତିତଃ ।' ଏହି ସ୍ୱର ସବୁ ମଧ୍ୟ ରସାଦିରେ ବ୍ୟବହୃତ ହୋଇଥାଏ ।

'ସ-ରି' ବୀରେଽଦ୍ଭୁତେ ରୌଦ୍ରେ
'ଧୋ' ବୀଭତ୍ସ ଭୟାନକେ
କାର୍ଯ୍ୟୌ 'ଗ-ନି' ତୁ କରୁଣେ
ହାସ୍ୟ ଶୃଙ୍ଗାରୟୋ 'ର୍ମ-ପୌ' ।

ସେହି ସ୍ୱରମାନଙ୍କ ମଧ୍ୟରେ ସା ଓ ପ ସ୍ୱର ସ୍ଥାୟୀ ବା ଅଚଳ ଏବଂ ଅନ୍ୟଗୁଡ଼ିକ ଚଳ ବା ବିକୃତ ହୁଅନ୍ତି । ଏହାକୁ ସଂଗୀତଶାସ୍ତ୍ରରେ କୋମଳ, ତୀବ୍ର ଆଖ୍ୟା ଦିଆଯାଏ; ଯଥା—'ରେ କୋମଳ; ପ କୋମଳ ।'

ସ୍ୱର ସବୁ କ୍ରମରେ ଉଚ୍ଚ ସ୍ୱରକୁ ଗତି କଲେ ଆରୋହ ଓ ନିମ୍ନସ୍ୱରକୁ ଫେରି ଆସିଲେ ଅବରୋହ ନାମରେ କଥିତ ହୁଏ ।

ଶୁଦ୍ଧ ଓ ବିକୃତ ଭେଦରେ ଦ୍ୱାଦଶ ଗୋଟି ସ୍ୱର ଅଛି । ସେହି ସ୍ୱରର ଭିନ୍ନ ଭିନ୍ନ ସମନ୍ୱୟରେ ବହୁ ରାଗାଦିର ମେଳ ରଚନା ହୋଇଥାଏ । ଯେଉଁ ସ୍ୱର ରଚନା ମନୋମୋହକାରୀ ଓ ଚିତ୍ତରଞ୍ଜକ ହୋଇପାରେ, ତାହାର ନାମ ରାଗ । ଏହି ରାଗ ପୁଣି ମାର୍ଗ ଓ ଦେଶୀ ଭେଦରେ ଦୁଇ ପ୍ରକାର । ଯାହା ଭରତାଦି ଗାନ କରିଥିଲେ ତାହା ମାର୍ଗ ଓ ଯାହା ଦେଶଭେଦରେ ଦେଶବାସୀଙ୍କ ରୁଚି ଅନୁଯାୟୀ ଗୀତ ହୁଏ, ତାହା ଦେଶୀ ।

ଦେଶେ ଦେଶେ ଜନାନାଂ ଯଦ୍ରୁଚ୍ୟା ହୃଦୟରଞ୍ଜନଂ
ଗାନଂ ଚ ବାଦନଂ ନୃତ୍ୟଂ ତଦ୍ଦେଶୀତ୍ୟଭିଧୀୟତେ ।
—ସଙ୍ଗୀତରତ୍ନାକର ।

ଏହି ରାଗମାନଙ୍କୁ ମଧ୍ୟ ତିନି ପ୍ରକାରରେ ବିଭାଗୀକରଣ କରାଯାଏ । "ଶୁଦ୍ଧାଚ୍ଛାୟାଲଗାଃ ପ୍ରୋକ୍ତାଃ ସଂକୀର୍ଣ୍ଣାଶ୍ଚ ତଥୈବଚ ।" ଯାହାକୁ ଶାସ୍ତ୍ରୋକ୍ତ ରୀତିରେ ଗାନ କରି ମନୋରଞ୍ଜନ କରାଯାଏ, ତାହା 'ଶୁଦ୍ଧ' । ଶୁଦ୍ଧ ରାଗ ସହିତ ସାମାନ୍ୟ ପରିବର୍ତ୍ତନରେ ଯାହା ଗାନ କରାଯାଏ, ତାହା 'ଛାୟାଲଗ' ଏବଂ ଶୁଦ୍ଧ ଓ ଛାୟାଲଗ ମିଶ୍ରଣରେ ଯାହା ଗାନ କରାଯାଏ, ତାହା 'ସଂକୀର୍ଣ୍ଣ ।'

ରାଗ ଛଅଗୋଟି । କେତେକଙ୍କ ମତରେ —
ଶ୍ରୀରାଗୋଽଥ ବସନ୍ତଶ୍ଚ ଭୈରବଃ ପଞ୍ଚମସ୍ତଥା
ମେଘ ରାଗୋ ବୃହନ୍ନାଟଃ ଷଡେତେ ପୁରୁଷାହ୍ୱୟାଃ ।
ଅନ୍ୟ କେତେକଙ୍କ ମତରେ —
ଭୈରବଃ କୌଶିକଶ୍ଚୈବ ହିନ୍ଦୋଲୋ ଦୀପକସ୍ତଥା
ଶ୍ରୀରାଗୋ ମେଘରାଗଶ୍ଚ ଷଡେତେ ପୁରୁଷାହ୍ୱୟାଃ ।

ପୁଣି ପ୍ରତ୍ୟେକ ରାଗର କାହାର କାହାର ମତରେ ପାଞ୍ଚ ଓ ଅନ୍ୟ କାହାର କାହାର ମତରେ ଛଅ ରାଗିଣୀ ଥିବା ବର୍ଣ୍ଣିତ ଅଛି ।

ରାଗରାଗଣୀ ଗାନ କରିବାକୁ ଗଲେ ଯେଉଁ ଯେଉଁ ରାଗରାଗିଣୀରେ ଯେଉଁ ଯେଉଁ ସ୍ୱର ଓ ଶ୍ରୁତି ବ୍ୟବହାର କରିବାର ନିୟମ ଅଛି, ତାହା ବ୍ୟତୀତ ଅନ୍ୟ ସ୍ୱର ବ୍ୟବହାର କରିବାକୁ ହେବ ନାହିଁ । ଋତୁ ଓ ସମୟ ଅନୁଯାୟୀ ଗାନ କରିବ । ୫ ସ୍ୱର ବିଶିଷ୍ଟ ଔଡ଼ବ, ୬ ସ୍ୱର ବିଶିଷ୍ଟ ଷାଡ଼ବ ଓ ୭ ସ୍ୱର ବିଶିଷ୍ଟ ସଂପୂର୍ଣ୍ଣ ଆଦି ଭେଦରେ ରାଗର ଯେଉଁ 'ଜାତି' ଅଛି, ସେ ବିଷୟରେ ପୂର୍ଣ୍ଣ ଜ୍ଞାନ ହେବା ଆବଶ୍ୟକ । ରାଗରାଗିଣୀରେ ବାଦୀ, ସଂବାଦୀ ପ୍ରୟୋଗ କରି ରାଗର ସ୍ୱରୂପ ନଷ୍ଟ ନ କରିବାର ଜ୍ଞାନ ମଧ୍ୟ ଥିବା ଦରକାର । ଗ୍ରହନ୍ୟାସର ଜ୍ଞାନ ମଧ୍ୟ ଆବଶ୍ୟକ । 'ଗ୍ରାମ' ସଙ୍ଗୀତର ଗୋଟିଏ ମହତ୍ତ୍ୱପୂର୍ଣ୍ଣ ବିଷୟ । ଏ ବିଷୟରେ ମଧ୍ୟ ଅନୁଭବ ଥିବା ଉଚିତ । ମନୁଷ୍ୟର ପୋଷାକ ପରିଚ୍ଛଦ ପରି ରାଗରାଗିଣୀର ଭୂଷଣ ହେଉଛି ମୂର୍ଚ୍ଛନା, ତାନ, ଗମକ ଆଦି । ଏଣୁ ଏହି ଅଲଙ୍କାରଗୁଡ଼ିକ ପ୍ରୟୋଗ କରିବାରେ କୁଶଳତା ଅର୍ଜନ କରିବା ଦରକାର । ଗୀତରେ କେବଳ ବିନ୍ୟସ୍ତ ପଦ ଉତ୍ତମ ହେଲେ ଚଳିବ ନାହିଁ । ସେଥିରେ ସମୟ ଓ ଋତୁ ଆଦିର ରସ ଓ ଭାବ ଥିବା ଆବଶ୍ୟକ । ଏହି ସବୁ ପ୍ରତି ଧ୍ୟାନ ରଖି ରାଗ ଓ ରାଗିଣୀର ଭାବ ଓ ରସ ଅନୁସାରେ ଲୟ ଓ ତାଳ ଅନୁସାରେ ଗାନ ଓ ବାଦନ କରିବା ଉଚିତ ।

ଗାୟନ୍ ସୁଭଦ୍ରାଣି ରଥାଙ୍ଗ ପାଣେ
ର୍ଜନ୍ମାନି କର୍ମାଣି ଚ ଯାନି ଲୋକେ,
ଗୀତାନି ନାମାନି ତଦର୍ଥକାନି
ଗାୟନ୍ ବିଲଜ୍ଜୋ ବିଚରେଦସଙ୍ଗଃ ।

ଓଡ଼ିଆରେ ଛାନ୍ଦ, ଚଉପଦୀ ଓ ଚମ୍ପୂ ଇତ୍ୟାଦି ରୂପରେ ସଙ୍ଗୀତ ପ୍ରକାଶିତ ହୋଇଅଛି । ଯେଉଁ ରାଗାଳି ଅନିର୍ଦ୍ଦେଶ୍ୟ ମାତ୍ରାରେ ପ୍ରକାଶ କରାଯାଏ, ତାହା ଛାନ୍ଦ । ଏହି ଶବ୍ଦ ଛନ୍ଦଃ ଶବ୍ଦର ଅପଭ୍ରଂଶ ହୋଇ ଥିବାରୁ ତାହା କୌଣସି ନା କୌଣସି ତାଳରେ ଅନୁଚ୍ଛିନ୍ନ । ତାହା ଚଉପଦୀ ପରି ତାନ ବା ମୂର୍ଚ୍ଛନାରେ ସେତେବେଶି ଅଳଂକୃତ ନୁହେ । ତାହାକୁ ଧୀରେ ଧୀରେ ସ୍ୱରବିନ୍ୟାସ କରି ଗାନ କଲେ ସେହି ସେହି ରାଗର ଆଭାସ ମିଳିବ ।

ହିନ୍ଦୁସ୍ଥାନ ( ଉତ୍ତର ପଶ୍ଚିମ ଭାରତ ) ଅଞ୍ଚଳର ଚଉପଦୀ ଧ୍ରୁପଦ ବା ଚୌତାଳ ଗୀତ ପଦରେ ଶୋଭିତ । ତାହାର ପଦମାନଙ୍କରେ ମଧ୍ୟ ଭିନ୍ନ ଭିନ୍ନ ନାମ ଅଛି । ଯଥା :— ୧ ସ୍ଥାୟୀ ୨ ଅନ୍ତରା, ୩ ସଞ୍ଚାରୀ, ୪ ଆଭୋଗ । ଅଜି ମଧ୍ୟ ସେଗୁଡ଼ିକ ସେହି ସେହି ରାଗକୁ ପ୍ରକାଶ କରି ଚମତ୍କାର ଭାବରେ ଗୀତ ହୋଇଥାଏ । ମାତ୍ର ଓଡ଼ିଆ ଚଉପଦୀ ସେପରି ନୁହେ । ଏଥିରେ କେବଳ ସ୍ଥାୟୀ ଓ ଅନ୍ତରା ଥାଏ । କିନ୍ତୁ କୌଣସି କୌଣସି ଚଉପଦୀ ଗୀତପଦ ଛାଡ଼ିକି, ସାତ ଆଠ ପଦରେ ମଧ୍ୟ ଶୋଭିତ ହୋଇଥାଏ ।

ରାଗ ସମ୍ବନ୍ଧରେ ଦେଖିବାକୁ ଗଲେ ଉତ୍କଳର ସଙ୍ଗୀତ ଭଣ୍ଡାର କମ୍ ବିଭବଶାଳୀ ନୁହେ ।
ଏ ଘନ ସଖି, ଗୁହଁ, ବସନ୍ତ ଏ କାଳେ......
ଏ ଘୋର ବରଷାକାଳ......
ମୋ କଳାମାଣିକରେ.....
ସର ସିକନ୍ତ ଜୀବନେ ଲୋଶେ......
ଫାଟି ପଡିବାର ନିକୁଞ୍ଜସଞ୍ଚାର......

ଏହା ବ୍ୟତୀତ ଉତ୍କଳୀୟ ସଙ୍ଗୀତରେ ଅନ୍ୟାନ୍ୟ ଦେଶର ସଙ୍ଗୀତ ପରି ତାଳ ଫେରନ୍ତା ହୁଏ, ଅର୍ଥାତ୍ ଗୋଟିଏ ଗୀତରେ ପଦଗୁଡ଼ିକ ବିଭିନ୍ନ ତାଳରେ ବାଦିତ ହୋଇ ପୁନର୍ବାର ସେହି ପୂର୍ବ ତାଳରେ ଆସି ମିଳିଯାଏ । ଯଥା—
"ଭଲେ ଅଜ ତୋ ଗ୍ରୀତି ରେ, ପଙ୍କଜନୟନା !"
'ଚତୁରଙ୍ଗ'ରେ ଗୀତ, ସ୍ୱର, ମୃଦଙ୍ଗାଦିର ଶବ୍ଦ ଓ ଆଳାପର ଶବ୍ଦ ଶୋଭିତ । ଆମ ଓଡ଼ିଶାରେ ମଧ୍ୟ ଏପରି ଗାନର ଅଭାବ ନାହିଁ । ଯଥା—
'ନାଚେ ନାଗରବର ନାଗରୀ ସଙ୍ଗେ ।'
ଏହିପରି ରସ ଓ କାଳାଦି ସମ୍ବନ୍ଧରେ ନାନା ପ୍ରକାରର ଗୀତ ଅଛି । କିନ୍ତୁ ସେ ସବୁ ଆଦିରସାତ୍ମକ ବୋଲି ଆଧୁନିକ ଶିକ୍ଷିତମାନଙ୍କ ସମାଜରେ ଆଦୃତ ହେଉ ନାହିଁ । ଆଦିରସର ଆବିର୍ଭାବ ନ ହେଲେ ଅନ୍ୟାନ୍ୟ ରସର ପ୍ରସ୍ଫୁଟନ ହେବ ନାହିଁ —ଏହା ଭାବ ବୋଧହୁଏ ପୂର୍ବ-କାଳୀନ ଲୋକେ ସେହି ରସକୁ ପ୍ରଥମ ସ୍ଥାନ ଦେଇଥିଲେ ।
'ଚମ୍ପୂ' ଗଦ୍ୟପଦ୍ୟାତ୍ମକ ସଂସ୍କୃତ କାବ୍ୟବିଶେଷ । ଉତ୍କଳରେ ଚମ୍ପୂ ମଧ୍ୟ ଏହି ରୀତିରେ ଲିଖିତ । ଏଥିରେ

କେତେକ ଚତୁପଦୀ ଅଛି ଏବଂ ସମ୍ପୂର୍ଣ୍ଣଭାଷାର ମଧ୍ୟ କେତେକ ଗଦ୍ୟ ଅଛି ।

'ବାଦ୍ୟ'—ତା, ଧତ୍, ଥୂନ୍, ନା, ଏହିପରି କେତେକ ଶବ୍ଦ ସଂଯୋଗରେ 'ବାଦ୍ୟ' ଅର୍ଥାତ୍ ପଖାଉଜ ବା ତବଲାଦି ଯନ୍ତ୍ରରେ ବାଦନ କରିବାକୁ ହୁଏ ଏବଂ ଯେଉଁ ଯେଉଁ ତାଳରେ ଗାନ ହୋଇଥାଏ, ତହିଁ ସଙ୍ଗରେ ବାଦନକୁ ମିଳାଇବାକୁ ହୁଏ । ଉତ୍କଳରେ ମଧ୍ୟ ଅନ୍ୟାନ୍ୟ ଦେଶର ତାଳ ପରି ଝିପିତା, ଝୁଲ, ଝମ୍ପା, ଅଠତାଳ ପ୍ରଭୃତି ଅଛି ।

'ନୃତ୍ୟ'—ନୃତ୍ୟ ବାଦ୍ୟର ଅନୁଗତ । ବାଦ୍ୟରେ ତା, ଧତ୍, ଥୁନ୍ ଓ ନା ନାମକ ଯେଉଁ ଗୁଡ଼ିଏ ପ୍ରଧାନ 'ବୋଲ' ଅଛି, ସେହି ଗୁଡ଼ିକ ଶବ୍ଦ ନୃତ୍ୟରେ ବ୍ୟବହୃତ ହୋଇଥାଏ ।

ସବିଳାସୋଙ୍ଗବିକ୍ଷେପୋ ନୃତ୍ୟମିତ୍ୟୁଚ୍ୟତେ ବୁଧୈଃ
— ଭରତ ସଙ୍ଗୀତ ।

ଗେୟାଦୁତ୍କୃଷ୍ୟତେ ବାଦ୍ୟଂ
ବାଦ୍ୟାଦୁତ୍କୃଷ୍ୟତେ ଲୟଃ,
ଲୟାଶ୍ରିତଂ ସମାଲମ୍ବ୍ୟ
ତତୋ ନୃତ୍ୟଂ ପ୍ରବର୍ତ୍ତତେ—
ସଙ୍ଗୀତ ଦର୍ପଣ ।

ପ୍ରଥମରେ ନର୍ତ୍ତକ ଉଭୟ ପାଦତଳକୁ ସମଭାବରେ ରଖି ଦକ୍ଷିଣ ପାଦ ଅପେକ୍ଷା ବାମ ପାଦକୁ ଅର୍ଦ୍ଧ ହସ୍ତ ଦୂରରେ ରଖି ଠିଆ ହେବେ, ପରେ ଦକ୍ଷିଣ ପାଦକୁ ବାମ ପାଦର ବୃଦ୍ଧାଙ୍ଗୁଷ୍ଠର ସମସୂତ୍ର ପର୍ଯ୍ୟନ୍ତ ନେଇ ସେହି ପଦର ବୃଦ୍ଧାଙ୍ଗୁଷ୍ଠ ଦ୍ୱାରା କୋମଳ ଅଘାତ କଲେ 'ତା', ପୁଣି ସେହି ପାଦକୁ ପୂର୍ବ ସ୍ଥାନକୁ ଆଣି ଗୁଲ୍ଫ ସାହାଯ୍ୟରେ ଅଘାତ କଲେ 'ଧତ୍' ଏବଂ ବାମ ପାଦର ଗୁଲ୍ଫ ଭୂତଳ ସହିତ ସଂଲଗ୍ନ ରଖି ସେହି ପାଦର ପୂର୍ବାର୍ଦ୍ଧଦ୍ୱାରା ଦୁଇଥର ଅଘାତ କଲେ 'ଥୂନ୍' ଓ 'ନା' ଶବ୍ଦ ବାହାରିବ । ଏହି ଶବ୍ଦ ବାହାର କରିବାବେଳେ ସମାନ ମାତ୍ରା ରଖିବା ଉଚିତ । ଅତି ମଧ୍ୟ ଅନ୍ୟାନ୍ୟ ତାଳ ସହିତ ମାତ୍ରାର ହ୍ରସ୍ୱ, ଦୀର୍ଘ, ପ୍ଲୁତ ଇତ୍ୟାଦି ଭେଦରେ ସେହି ଶବ୍ଦକୁ ସଜାଇ ପାରିଲେ ନୃତ୍ୟ କରାଯାଇ ପାରିବ ଏବଂ ତତ୍ସଙ୍ଗେ ହାବ, ଭାବ, କଟାକ୍ଷ ଓ ନାନାପ୍ରକାର 'ମୁଦ୍ରା' ସହିତ ଯଥା ନିୟମରେ ପଦବିକ୍ଷେପ କରି ପାରିଲେ ଅସଂଖ୍ୟ ନୃତ୍ୟର ସର୍ଜ୍ଜନ ହୋଇ ପାରିବ । ଅଭିନୟ ଯଥା—

ଉତ୍ଫୁଲ୍ଲାନନନେତ୍ରଂ ଚ
ଗଣ୍ଡେ କିଞ୍ଚିତ୍ପ୍ରସିତେ ରଥ,
କଂଚିତ୍କୁଞ୍ଚିତଦନ୍ତଂ ଚ
ହସିତଂ ତଦ୍ଵିଧୀୟତେ ।
ଅକୁଞ୍ଚିତାକ୍ଷିଗଣ୍ଡଂ ଯତ୍
ସ୍ୱନଂ ଚ ମଧୁରଂ ତଥା,
କାଳାଗତଂ ସାସ୍ୟ ରାଗଂ
ତଦ୍‌ବୈ ବିହସିତଂ ଭବେତ୍ ।

ଏହିପରି ଅନେକ ପ୍ରକାର ହାବ ଭାବର ଅଭିନୟ ଅଛି । ତାହା ହସ୍ତ ଓ ମୁଖଦ୍ୱାରା ଦେଖାଇ ନୃତ୍ୟ କରାଯାଏ ।

ସଙ୍ଗୀତ ସାହିତ୍ୟ ରସାନଭିଜ୍ଞଃ
ସାକ୍ଷାତ୍ ପଶୁଃ ପୁଚ୍ଛବିଷାଣହୀନଃ,
ତରତ୍ୟସୌ କିନ୍ତୁ ତୃଣଂ ନ ଭୁଂକ୍ତେ
ସଚ୍ଚ ପଶୂନାମପି ଭାଗ୍ୟମେତତ୍ଃ ।

The man that has no music in himself nor is not moved with concord of sweet sounds is fit for treason—
Shakespeare.

(ସନ୍ଦର୍ଭ ଲେଖକ—ମଧୁପୁର ପଟ୍ଟାୟିତ ଶ୍ରୀ ବଳଭଦ୍ର ଧୀର)

[ ବ୍ର-( ୩ )—ବୀଣାପାଣୀଙ୍କର ଅପାର କରୁଣା ବଳରୁ ପ୍ରାଚୀନ ଭାରତ କଳାବିଦ୍ୟାରେ ଅଗାଧ ପାଣ୍ଡିତ୍ୟ ଲାଭ କରିଥିଲା । କଳାବିଦ୍ୟା ୬୪ ପ୍ରକାର । ଶାସ୍ତ୍ର କହେ କଳାବିଦ୍ୟା ଶିକ୍ଷା କଲେ ରାଜା ଅମରଶକ୍ତି ଲାଭ କରନ୍ତି । "ସକଳ କଳା ପାରଂଗତୋଽମର ଶକ୍ତିମାନ୍ ରାଜା ।" ଶୈବତନ୍ତ୍ରରେ ୬୪ କଳାବିଦ୍ୟା ବିଷୟ ବିଶେଷଭାବରେ ଲେଖା ଅଛି । ଶ୍ରୀମଦ୍ଭାଗବତ ଟୀକାକାରର ଶ୍ରୀଧର ସ୍ୱାମୀ ସେହି ୬୪ କଳାର ପରିଚୟ ଦେଇଛନ୍ତି । ତହିଁ ମଧ୍ୟରେ ଗୀତ, ବାଦ୍ୟ, ନୃତ୍ୟ ଓ ନାଟ୍ୟ ଅଛି ।

କାଳିଦାସ କହିଅଛନ୍ତି —

"ସଙ୍ଗୀତ ସାହିତ୍ୟ ରସାନଭିଜ୍ଞଃ
ସାକ୍ଷାତ୍ ପଶୁଃ ପୁଚ୍ଛବିଷାଣହୀନଃ
ତରତ୍ୟସୌ କିନ୍ତୁ ତୃଣଂ ନ ଭୁଙ୍କ୍ତେ
ସଚ୍ଚ ପଶୂନାମପି ଭାଗ୍ୟମେତତ୍ ।"

ସଙ୍ଗୀତ ସାହିତ୍ୟ ଯେ ନ ଜାଣେ ସେ ସାକ୍ଷାତ୍ ପଶୁ—ବରଂ ପଶୁଠାରୁ ଅତିହିଁ ହୀନ । ପଶୁମାନେ ସଙ୍ଗୀତ ଗାଇ ନ ଜାଣିଲେ ମଧ୍ୟ ସଙ୍ଗୀତ ସ୍ୱର ଶୁଣି ତଦ୍ଦ୍ୱାରା ଆକୃଷ୍ଟ ହୁଅନ୍ତି । ପଦ୍ମତୋଳା ଗୀତ ଶୁଣିଲେ ସର୍ପ ମୋହିତ ହୁଏ । ଶିଶୁମାନେ ଗୀତ ଶୁଣି ମୋହିତ ହୁଅନ୍ତି । ନଦୀର କଳକଳ ନାଦରେ ସଙ୍ଗୀତ ଅଛି । ପବନ ବହିବାରେ ସଙ୍ଗୀତ ଅଛି । ସଙ୍ଗୀତ ନାହିଁ କେଉଁଠି ? ଏ ଚରାଚର ଜଗତରେ ବ୍ରହ୍ମ ସର୍ବତ୍ର ଅଛନ୍ତି । ନାଦକୁ ବ୍ରହ୍ମ ବୋଲି ମଧ୍ୟ କୁହାଯାଏ । ନାଦ ବ୍ରହ୍ମ ସର୍ବତ୍ର ବିଦ୍ୟମାନ । ସେହି ନାଦକୁ ତାଳ ସ୍ୱର ସହିତ ଗାଇଲେ ସଙ୍ଗୀତ ହୁଏ । ଯନ୍ତ୍ର ସାହାଯ୍ୟରେ ଏହି ନାଦବ୍ରହ୍ମ ନାନା ମୂର୍ତ୍ତି ଧାରଣ କରେ । ମାନବର କଣ୍ଠ ପ୍ରଧାନ ଯନ୍ତ୍ର ଏବଂ ମାନବ ନିଜ ବୁଦ୍ଧି-ବଳରେ ନାନା ପ୍ରକାର ବାଦ୍ୟ ଯନ୍ତ୍ର ଆବିଷ୍କାର କରି ସେହି ଯନ୍ତ୍ରମାନଙ୍କ ସାହାଯ୍ୟରେ ନାଦକୁ ନିୟନ୍ତ୍ରିତ କରିଅଛି । ସଙ୍ଗୀତର ବିଭିନ୍ନ ମୂର୍ତ୍ତି ରାଗ ରାଗିଣୀ ନାମରେ ପରିଚିତ ।

ସଙ୍ଗୀତ ମାନବର ସ୍ୱାଭାବିକ । ପ୍ରତ୍ୟେକ ମାନବ ଭିତରେ ଅଳ୍ପ ବା ଅଧିକରେ ସଙ୍ଗୀତପ୍ରିୟତା । ସମ୍ପଦ, ବିପଦ, ଦୁଃଖ ଓ ଆନନ୍ଦରେ, ପରିଶ୍ରମ କଲାବେଳେ, ଶାନ୍ତିରେ ବସିଲାବେଳେ ସଙ୍ଗୀତ ସ୍ୱତଃ ମନକୁ ଆନନ୍ଦ ଦିଏ । ସେହି ସଙ୍ଗୀତର ରାଗ ରାଗିଣୀ ଭାରତର ନାନା ପ୍ରଦେଶରେ ନାନା ଆକାର ପ୍ରକାର ଧାରଣ କରିଅଛି । ସଙ୍ଗୀତ ବିଷୟରେ ନାନା ଗ୍ରନ୍ଥ ମଧ୍ୟ ଲେଖାଯାଇ ଅଛି ।

ସଙ୍ଗୀତର ପ୍ରଥମ ନିଦର୍ଶନ ବେଦ । ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତ ସ୍ୱର ସଂଯୋଗରେ ସାମଗାନ ଗୀତ ହେଉଥିଲା । ସାମ ଶବ୍ଦର ଅର୍ଥ ଗୀତ । ଶବର ସ୍ୱାମୀ ତାଙ୍କ ମୀମାଂସା-ଦର୍ଶନରେ ଲେଖିଅଛନ୍ତି —

"ସାମ ଶବ୍ଦ ବାଚ୍ୟସ୍ୟ ଗାନସ୍ୟ ସ୍ୱରୂପ ମୃଗାଦ୍ୟରେଷୁ, କ୍ରୁଷ୍ଟାଦଭିଃ ସପ୍ତଭିଃ ସ୍ୱରୈଃ ଅନ୍ତରବିକାରାଦିଲକ୍ଷଣୈଃ ସମ୍ପାଦ୍ୟତେ । କ୍ରୁଷ୍ଟଃ ପ୍ରଥମଃ, ଦ୍ୱିତୀୟଃ, ତୃତୀୟଃ, ଚତୁର୍ଥଃ, ପଞ୍ଚମଃ, ଷଷ୍ଠଶ୍ଚରତ୍ୟେତେ ସପ୍ତ ସ୍ୱରାଃ" । ପୁରାଣରୁ ଦେଖାଯାଏ ଯେ "ଋଗ୍‌ଭିଃ ପାଠ୍ୟ ମଦଦ୍‌ଭ୍ୟଗୀତଂ ସାମଭ୍ୟଃ ସମପଦ୍ୟତ ଯଜୁର୍ଭ୍ୟୋଽଭିନୟା ଜାତା କାସଶ୍ଚାଥର୍ବଣ ସ୍ମୃତା ।" ବେଦଗାନ ସମୟରୁ ସା, ରି, ଗା, ମା ପ୍ରଭୃତି ସପ୍ତ ସ୍ୱରର ପ୍ରବର୍ତ୍ତନ ହୋଇଅଛି । ସାମ ବେଦର ଗୋଟିଏ ଉପବେଦ ଥିଲା । ସେହି ଉପବେଦର ନାମ ଗାନ୍ଧର୍ବ ବେଦ । ଏହି ଗାନ୍ଧର୍ବ ବେଦରେ ଗୀତ ବାଦ୍ୟ ନୃତ୍ୟ ପ୍ରଭୃତି ବିଷୟ ବର୍ଣ୍ଣିତ ହୋଇଥିଲା । ଏହି ଉପବେଦ ଲୁପ୍ତପ୍ରାୟ । ଭରତ ମୁନି ଏହି ବେଦର ପ୍ରବର୍ତ୍ତକ ଥିଲେ । ସେହି ଗାନ୍ଧର୍ବ ବେଦର ମତ ପରବର୍ତ୍ତୀ ସଙ୍ଗୀତଶାସ୍ତ୍ରମାନଙ୍କରେ ପ୍ରତିଫଳିତ ହୋଇ-ଅଛି । ମହର୍ଷି ବାଲ୍ମୀକିଙ୍କ ସମୟରେ ମହାମୁନି ଭରତ ସଙ୍ଗୀତ ବିଦ୍ୟାର ପ୍ରଧାନ ଅଧ୍ୟାପକ ଥିଲେ । ତାଙ୍କ ସମୟରେ ନାଟ୍ୟାଭିନୟ ଉତ୍କର୍ଷ ଲାଭ କରିଥିଲା । ଗାନ୍ଧର୍ବ ବେଦପ୍ରଣେତା ଭରତ ମୁନି ଏକବ୍ୟକ୍ତି କି ବହୁ ବ୍ୟକ୍ତି ସେକଥା ନିଶ୍ଚୟ ରୂପେ କୁହାଯାଇ ପାରିବ ନାହିଁ । ନୃତ୍ୟ ବାଦ୍ୟ-ଗୀତ-ନାଟ୍ୟାଭିନୟ ପ୍ରଭୃତି ସଂଗୀତଶାସ୍ତ୍ରର ଅନ୍ତର୍ଗତ । "ଗୀତ ବାଦ୍ୟନୃତ୍ୟାନାଂ ତ୍ରୟଂ ସଂଗୀତ ମୁଚ୍ୟତେ । ଗୀତଂ ବାଦ୍ୟଂ ନର୍ତ୍ତନଞ୍ଚ ତ୍ରୟଂ ସଂଗୀତ ମୁଚ୍ୟତେ" । ଏ ତିନି ବିଷୟ ମଧ୍ୟରେ କଣ୍ଠସଂଗୀତ ପ୍ରଧାନ, ସୁତରାଂ ସଂଗୀତ ଶବ୍ଦ ସାଧାରଣତଃ କଣ୍ଠସଂଗୀତକୁ ବୁଝାଏ । ସଂଗୀତ ବିଶାରଦମାନେ ସଂଗୀତକୁ ସାଧାରଣତଃ ଦୁଇ ଭାଗରେ ବିଭକ୍ତ କରିଛନ୍ତି ଯଥା.— କଣ୍ଠ ସଂଗୀତ ଓ ଯନ୍ତ୍ର ସଂଗୀତ । ଶାସ୍ତ୍ରାନୁସାରେ ନାଦହିଁ ସଂଗୀତର ମୂଳ । ଏକାଧିକ ବସ୍ତୁର ସଂଘର୍ଷରେ ଆକାଶରୁ ନାଦର ଉତ୍ପତ୍ତି ହୁଏ । ନାଦ ଦୁଇପ୍ରକାର.-ଧ୍ୱନ୍ୟାତ୍ମକ ଓ ବର୍ଣ୍ଣାତ୍ମକ । ଦୁଇଟି ବସ୍ତୁର ଘାତ ପ୍ରତିଘାତରେ ଯେଉଁ ନାଦ ବାହାରେ ତାହା ଧ୍ୱନ୍ୟାତ୍ମକ । ମନୁଷ୍ୟାଦିଙ୍କ କଣ୍ଠ ଓ ତାଳୁର ଘାତ ପ୍ରତିଘାତରେ ଯେଉଁ ସ୍ୱର ଜନ୍ମେ ତାହା ବର୍ଣ୍ଣାତ୍ମକ । ସୋମେଶ୍ୱର, ଭରତ, ହନୁମାନ୍ ଓ କଲ୍ଲିନାଥ, ଏମାନେ ପୁରାକାଳର ସଙ୍ଗୀତବିଶାରଦ ଥିଲେ । ସଙ୍ଗୀତ ଶାସ୍ତ୍ର ସମ୍ବନ୍ଧରେ ଏମାନଙ୍କର ଚାରି ପ୍ରକାର ମତ ପ୍ରଚଳିତ ଥିଲା । ସେକାଳରେ ସଙ୍ଗୀତଶାସ୍ତ୍ର ସାଧାରଣତଃ ୭ଭାଗରେ ବିଭକ୍ତ ହୋଇଥିଲା । (୧) ସ୍ୱରାଧ୍ୟାୟ (୨) ରାଗାଧ୍ୟାୟ (୩) ନୃତ୍ୟାଧ୍ୟାୟ (୪) ତାଳାଧ୍ୟାୟ (୫) ଭାବାଧ୍ୟାୟ (୬) କୋକାଧ୍ୟାୟ (୭) ହସ୍ତାଧ୍ୟାୟ । ସେ ସବୁ ପ୍ରାଚୀନ ଗ୍ରନ୍ଥ ଆଉ ମିଳୁନାହିଁ, ସୁତରାଂ କି ପ୍ରଣାଳୀରେ ସେ କାଳରେ ସଙ୍ଗୀତ ତତ୍ତ୍ୱ ଆଲୋଚିତ ହେଉଥିଲା, ତାହା ଜଣା ପଡୁନାହିଁ । ଏ ସବୁ ଗ୍ରନ୍ଥପରେ ସଙ୍ଗୀତ ବିଦ୍ୟା ଶିକ୍ଷା ଦେବା ପାଇଁ ଅସଂଖ୍ୟ ଗ୍ରନ୍ଥ ସଂସ୍କୃତ ଭାଷାରେ ରଚିତ ହୋଇଥିଲା । ତହିଁ ମଧ୍ୟରୁ ଅଧିକାଂଶ ଗ୍ରନ୍ଥର ନାମ ସୁଦ୍ଧା ଲୋପ ହୋଇ ସାରିଲାଣି । ଆଜ ଯେଉଁ କେତେଖଣ୍ଡ ଗ୍ରନ୍ଥର ପରିଚୟ ମିଳୁଛି ତାହା ନିମ୍ନରେ ଦିଆଗଲା—

| ଗ୍ରନ୍ଥକାର | ଗ୍ରନ୍ଥ |
|---|---|
| ଶୁଭଙ୍କର | ସଙ୍ଗୀତ ଦାମୋଦର |
| ବୀର ନାରାୟଣ | ସଙ୍ଗୀତ ନାରାୟଣ |
| ହରି ଭଟ୍ଟ | ସଙ୍ଗୀତ ସାର<br>ସଙ୍ଗୀତାର୍ଣ୍ଣବ<br>ସଙ୍ଗୀତ ରତ୍ନାବଳୀ |
| ଶ୍ରୀଲ୍ୟନ | ରାଗ ସର୍ବସ୍ୱ ସାର |
| ଅନନ୍ତ ଭଟ୍ଟ | ତାଣ୍ଡବ ରତ୍ନେଶ୍ୱର<br>ଗୀତ ସିଦ୍ଧାନ୍ତ ଭାସ୍କର |
| ବିଶ୍ୱାବସୁ | ଧ୍ରୁବ ମଞ୍ଜରୀ<br>ରାଗାର୍ଣ୍ଣବ |
| ଶାର୍ଙ୍ଗଦେବ | ସଙ୍ଗୀତ ରତ୍ନାକର |
| ସିଂହ ଭୂପାଳ | ସଙ୍ଗୀତ ଦର୍ପଣ<br>ରାଗ ମାଳିକା |
| ହରି ନାରାୟଣ | ସଙ୍ଗୀତ ସାର<br>ନାରଦ ସମ୍ବାଦ<br>ନାରଦ ପୁରୀ<br>ରତ୍ନମାଳା<br>ସଙ୍ଗୀତ କୌସ୍ତୁଭ |
| ଦାମୋଦର | ସଙ୍ଗୀତ ଦର୍ପଣ |
| ଅବହନ | ସଙ୍ଗୀତ ପାରିଜାତ |

ଏ ସବୁ ଗ୍ରନ୍ଥ ମଧ୍ୟରୁ ସଙ୍ଗୀତ ଦାମୋଦର ଓ ସଙ୍ଗୀତ ଦର୍ପଣ ଗ୍ରନ୍ଥ ଦ୍ୱୟର ଉଲ୍ଲେଖ ନାନା ସ୍ଥଳରେ ଦେଖାଯାଏ । ସଙ୍ଗୀତ ପ୍ରତି ଅନୁରକ୍ତି ଜନ୍ମେ କାହିଁକି ? ସଙ୍ଗୀତବିଶାରଦ-ମାନେ ଏଥିର ସାତ ଗୋଟି କାରଣ ଦେଇଛନ୍ତି—

ଶାରୀରଂ ନାଦ ସମ୍ଭୂତଃ ସ୍ଥାନାନି ଶ୍ରୁତୟୋ ସ୍ତଥା
ତତଃ ଶୁଦ୍ଧାଃ ସ୍ୱରାଃ ସପ୍ତ ବିକୃତାଃ ଦ୍ୱାଦଶାପ୍ୟମୀ
ବାଦ୍ୟାଦି ଭେଦା ଶ୍ଚତ୍ୱାରେ ରାଗୋତ୍ପାଦନ ହେତବଃ ॥

(୧) ଶରୀର ସଞ୍ଚାଳନ, (୨) ନାଦସମ୍ଭୂତ, (୩) ସ୍ଥାନ ବା ତାଳ ଶ୍ରବଣ, (୪) ଶ୍ରୁତି, (୫) ଶୁଦ୍ଧ ସପ୍ତସ୍ୱର, (୬) ବିକୃତ ଦ୍ୱାଦଶ ସ୍ୱର, (୭) ବାଦ୍ୟାଦି ଚତୁର୍ବିଧ ଭେଦ ସଙ୍ଗୀତ

ଅନୁସରଗୋପୃତ୍ତିର କାରଣ । ଶୁଦ୍ଧ ୭ସ୍ୱର ଯଥା—ଷଡ଼୍ଜ, ଋଷଭ,ଗାନ୍ଧାର,ମଧ୍ୟମ, ପଞ୍ଚମ, ଧୈବତ, ନିଷାଦ । ଏହି ସପ୍ତ ସ୍ୱରକୁ ରାଗ ରାଗିଣୀର ମୂଳ ସା, ରି, ଗା, ମା, ପା, ଧା,ନି-ରୂପେ ଗ୍ରହଣ କରାଯାଇଅଛି । ଏହି ସପ୍ତ ସ୍ୱରର କେଉଁଠାରୁ ଉତ୍ପତ୍ତି ହୋଇଅଛି ? ସାତ ପ୍ରକାର ଜନ୍ତୁଙ୍କ କଣ୍ଠ ସ୍ୱର ଏହି ସପ୍ତ ସ୍ୱରର ମୂଳୋତ୍ପତ୍ତି । କେଉଁ ଜନ୍ତୁର କଣ୍ଠ ସ୍ୱରରୁ କେଉଁ ସ୍ୱର ନିଆଯାଇଛି, ଏ ବିଷୟରେ ମତାନ୍ତର ଅଛି । କିନ୍ତୁ ସାଧାରଣତଃ ମୟୂର, ବୃଷ, ଅଜ, କ୍ରୌଞ୍ଚ, କୋକିଳ, କୁଞ୍ଜର, ଅଶ୍ୱ, ଏହି ସାତ ଜନ୍ତୁଙ୍କ ସ୍ୱରରୁ ଯଥାକ୍ରମେ ସା ରି ଗା ମା ପା ଧା ନି ସ୍ୱର ନିଆ ଯାଇଅଛି ବୋଲି ଜଣାଯାଏ ।

ଉକ୍ତ ପ୍ରକାର ସାତ ସ୍ୱରର ନାନା ପ୍ରକାର ସଂଯୋଗ ଦ୍ୱାରା ପ୍ରଧାନତଃ ୬ ରାଗ ଓ ୩୬ ରାଗିଣୀ ଓ ତହିଁରୁ ଅସଂଖ୍ୟ ଉପରାଗ ଓ ଉପରାଗିଣୀର ଉତ୍ପତ୍ତି । ସଂଗୀତ-ଦାମୋଦର ଗ୍ରନ୍ଥରୁ ଜଣାଯାଏ ଯେ—ଶ୍ରୀକୃଷ୍ଣଙ୍କ ନିକଟରେ ଗୋପୀମାନେ ୧୬ ସହସ୍ର ରାଗର ଆଳାପ କରିଥିଲେ ।

ଗୋପୀଭିଃ ଗୀତ ମାରବ୍ଧ ମେକୈକଂ କୃଷ୍ଣ ସନ୍ନିଧୌ
ତେନ ଜାତାନି ରାଗାଣାଂ ସହସ୍ରାଣି ତୁ ଷୋଡ଼ଶଃ ॥

ପ୍ରଧାନ ୬ ରାଗ—(୧) ଭୈରବ, (୨) କୌଶିକ, (୩) ହିନ୍ଦୋଳ, (୪) ଦୀପକ, (୫) ଶ୍ରୀରାଗ, (୬) ମେଘ । ଏହି ରାଗମାନଙ୍କ ନାମ ସମ୍ବନ୍ଧରେ ନାନା ପ୍ରକାର ମତଭେଦ ଦେଖାଯାଏ । ଭିନ୍ନ ଭିନ୍ନ ପ୍ରଦେଶରେ ରାଗମାନଙ୍କର ଭିନ୍ନ ଭିନ୍ନ ନାମ ମଧ୍ୟ ଦେଖାଯାଏ । ରାଜପୁତାନାରେ କୌଶିକ ରାଗର ନାମ ମାଲକୋଷ । ସୋମେଶ୍ୱର ଓ କଲ୍ଲିନାଥଙ୍କ ମତରେ ୬ ରାଗର ନାମ—ଶ୍ରୀରାଗ, ବସନ୍ତ, ପଞ୍ଚମ, ଭୈରବ ମେଘ ଓ ନଟ ନାରାୟଣ । ନାରଦସଂହିତାରେ ୬ ରାଗର ନାମ - ମାଳବ ମଲ୍ଲାର, ଶ୍ରୀ, ବସନ୍ତ, ହିନ୍ଦୋଳ ଓ କର୍ଣ୍ଣାଟ । ପୂର୍ବେ ଯେଉଁ ସାତ ସ୍ୱରର କଥା କୁହାଯାଇଅଛି ସେହି ସାତ ସ୍ୱରର ଯୋଜନାର ପରିବର୍ତ୍ତନ ଅନୁସାରେ ଗୋଟିଏ ଗୋଟିଏ ରାଗର ଉତ୍ପତ୍ତି ହୁଏ । ନିମ୍ନଲିଖିତ ଉଦାହରଣରୁ ପାଠକ ନିମ୍ନଲିଖିତ ରାଗମାନଙ୍କ ସ୍ୱର-ଯୋଜନା ବିଷୟ ଅବଗତ ହେବେ—

ଶ୍ରୀରାଗ—ସା ରେ ଗା ମା ପା ଧା ନି ସା ରେ ।
ଭୈରବ—ଧା ନି ସା ଗା ମା ଧା ।
ପଞ୍ଚମ—ସା ରେ ଗା ମା ଧା ନି ସା ।
ମେଘ—ଧା ନି ସା ରେ ଗା ମା ପା ଧା ।
ନଟ ନାରାୟଣ—ସା ରେ ଗା ମା ପା ଧା ନି ସା ।

ଏହି ୬ ରାଗର ୩୬ଟି ରାଗିଣୀ ଅଛି । ପ୍ରତ୍ୟେକ ରାଗର ୬ ଗୋଟି ଆଶ୍ରିତା ରାଗିଣୀ । ଉଦାହରଣ ସ୍ୱରୂପ ଗୋଟିଏ ଦୁଇଟି ରାଗର ଆଶ୍ରିତ ରାଗିଣୀ ନିମ୍ନରେ ଦିଆଗଲା ।

ଶ୍ରୀରାଗର ରାଗିଣୀଗଣ—ମାଳଶ୍ରୀ, ତ୍ରିବେଣୀ, ଗୌରୀ, କେଦାରୀ, ମଧୁମାଧବୀ, ପାହାଡ଼ୀ; ବସନ୍ତ ରାଗର—ଦେଶୀ, ଦେବଗିରି, ବରାଟୀ, ତୋଡ଼ିକା, ଲଳିତା, ହିନ୍ଦୋଳୀ; ଭୈରବୀ ରାଗର—ଭୈରବୀ, ଗୁର୍ଜ୍ଜରୀ, ରାମକିରୀ, ଗୁଣକିରୀ, ବଙ୍ଗାଳୀ, ସୈନ୍ଧବୀ ଇତ୍ୟାଦି ।

ଏହି ରାଗ ରାଗିଣୀଙ୍କ ପୁତ୍ର, ବଧୂ, କନ୍ୟା, ସଖା, ସହଚରରୂପେ କଳ୍ପିତ ଅସଂଖ୍ୟ ଉପରାଗିଣୀ ଅଛି । କେଉଁ ରସ ପ୍ରକାଶ କରିବା ପାଇଁ କେଉଁ ସ୍ୱର ଆବଶ୍ୟକ ତାହା ମଧ୍ୟ ସଙ୍ଗୀତ ଶାସ୍ତ୍ରରେ ନିର୍ଦ୍ଦିଷ୍ଟ ଅଛି ।

'ସ-ରୀ' ବୀରେଽଦ୍ଭୁତେ ରୌଦ୍ରେ 'ଧୋ' ବୀଭତ୍ସେ
ଭୟାନକେ
କାର୍ଯ୍ୟେ 'ଗନୀ'ତୁ କରୁଣେ ହାସ୍ୟ ଶୃଙ୍ଗାରୟୋ
'ମପୌ' ॥

ସଙ୍ଗୀତର କେତେଗୁଡ଼ିଏ ଅଙ୍ଗ ଅଛି—ମୂର୍ଚ୍ଛନା, ତାନ, ତାଳ, ମାନ, ଗମକ । ଏ ସବୁ ଦ୍ୱାରା ରାଗ ରାଗିଣୀର ସ୍ୱରୂପତତ୍ତ୍ୱ ନିର୍ଦ୍ଦିଷ୍ଟ ହୁଏ । କେଉଁ ରାଗ କେତେବେଳେ ବୋଲି ହେବା ଉଚିତ ତାହା ମଧ୍ୟ ନିର୍ଦ୍ଦିଷ୍ଟ ଅଛି । ଭାରତ-ବର୍ଷରେ ସଙ୍ଗୀତବିଦ୍ୟା ଏତେ ଉନ୍ନତି ଲାଭ କରିଥିଲା ଯେ—ରାଗରାଗିଣୀର ଶକ୍ତିଦ୍ୱାରା ପ୍ରକୃତି ପରିବର୍ତ୍ତିତ ହୋଇ ପାରୁଥିଲା । ସଂଗୀତର ଅସୀମ ଶକ୍ତି । ସଂଗୀତର ମୋହିନୀ ଶକ୍ତି ଅଛି । ସଙ୍ଗୀତ ଶାସ୍ତ୍ରରୁ ଦେଖାଯାଏ ଯେ, ଦୀପକ ରାଗ ଠିକ୍ ନିୟମାନୁସାରେ ଆଳାପ କରାଯିବା ଦ୍ୱାରା ନିର୍ବାପିତ ଦୀପ ଶିଖାରେ ଅନଳ ସଞ୍ଚାରିତ ହେଉଥିଲା, ଏବଂ ସଙ୍ଗୀତ ଆଳାପନକାରୀ ସେହି ଅଗ୍ନିରେ ଦଗ୍ଧ ହୋଇ ଯାଉଥିଲା । ମେଘ ମଲ୍ଲାର ରାଗ ଆଳାପ ଦ୍ୱାରା ଅନାବୃଷ୍ଟି ସମୟରେ ମେଘ ସଞ୍ଚାର ହେଉଥିଲା ଏବଂ ବାରିବର୍ଷଣ ହେଉଥିଲା । ଭୈରବ ରାଗର ଆଳାପ କରାଗଲେ ଉଷାର ଆବିର୍ଭାବ ହେଉଥିଲା ଓ ମୃଦୁ ମେଘ ଓ ଗନ୍ଧବାହୀ ବାୟୁର ସଞ୍ଚାର ହେଉଥିଲା ଓ ବିହଙ୍ଗମ କଳରବ ଏବଂ ପ୍ରଭାତୀ ସ୍ୱପ୍ନସ୍ପର୍ଶ ଦ୍ୱାରା ପ୍ରାଣ ନାଚି ଉଠୁଥିଲା । ହିନ୍ଦୋଳ ରାଗର ଆଳାପ ଦ୍ୱାରା ନବବସନ୍ତର ସମାଗମ ହୋଇ ନବ ମୁକୁଳିତ କୁସୁମ ସୌରଭରେ ଦିଗ୍ ବିଦିଗ୍ ଆମୋଦିତ ହୋଇ ଉଠୁଥିଲା । ଶ୍ରୀରାଗ ଆଳାପ କଲେ ପ୍ରଦୋଷ କାଳର ସମାଗମ ଅନୁଭୂତ ହେଉଥିଲା ଏବଂ ପଶ୍ଚିମାକାଶରେ ଅସ୍ତଗାମୀ ସୂର୍ଯ୍ୟର ରକ୍ତିମ ବିଭା ବିକଶିତ ହେଉଥିଲା । ମାଳବ ରାଗର ଆଳାପ କରାଗଲେ ପ୍ରାଣରେ ଅଭିନବ ଉତ୍ତେଜନା ଜାଗ୍ରତ ହୋଇ ଉଠୁଥିଲା । କାର୍ଯ୍ୟକାରିଣୀ ଶକ୍ତି ଅନୁସାରେ ରାଗର ନାମ-କରଣ କରାଯାଇଅଛି । ବେହାଗ ରାଗ ଆଳାପ କରାଗଲେ ପ୍ରାଣରେ ଉଦାସୀନତା ଆସେ ଏବଂ ଅସ୍ୱସ୍ତି ଉପସ୍ଥିତ ହୁଏ । ରାଗରାଗିଣୀର ଆଳାପ ଲାଗି ନିର୍ଦ୍ଦିଷ୍ଟ ବ୍ୟବସ୍ଥା ଅଛି । ପ୍ରାତଃକାଳଠାରୁ ଦିନ ପ୍ରହରକ ପର୍ଯ୍ୟନ୍ତ ଭୈରବ, ମେଘ, ବସନ୍ତ, ପଞ୍ଚମ ପ୍ରଭୃତି ରାଗ ଏବଂ ଭୈରବୀ, ଭୂପାଳୀ, ଧନାଶ୍ରୀ, ମଲ୍ଲାରୀ ପ୍ରଭୃତି ରାଗିଣୀ ଆଳାପ କରାଯାଏ । ଦ୍ୱିପ୍ରହର ସମୟରେ ଗୁର୍ଜ୍ଜରୀ, ଗୁଣକିରି ଏବଂ ଭୈରବୀ ଆଳାପ କରାଯାଏ । ତୃତୀୟ ପ୍ରହର ମଧ୍ୟରେ ବେରାଡ଼ୀ, ତୋଡ଼ି, କାମୋଦୀ ପ୍ରଭୃତି ଗାଇବାର

ବିଧି ଅଛି । ଏ ସମ୍ବନ୍ଧରେ ସଙ୍ଗୀତଜ୍ଞମାନଙ୍କ ମଧ୍ୟରେ ନାନା ପ୍ରକାର ମତ ଭେଦ ଅଛି । କେବଳ ଏତିକି ନୁହେଁ, କେଉଁ ଋତୁରେ କେଉଁ ରାଗ ଆଳାପ କରାଯାଏ ତାହା ମଧ୍ୟ ସଙ୍ଗୀତ ଶାସ୍ତ୍ର ନିର୍ଦ୍ଦେଶ କରି ଦେଇଅଛି । ୬ ଋତୁରେ ୬ ରାଗ—ପ୍ରତ୍ୟେକ ଋତୁରେ ଗୋଟିଏ ଗୋଟିଏ ରାଗ ଆଳାପ କରିବା ବିଧେୟ । ବସନ୍ତ ଋତୁରେ ସପତ୍ନୀକ ବସନ୍ତ ରାଗ, ଗ୍ରୀଷ୍ମ ଋତୁରେ ସପତ୍ନୀକ ଭୈରବ ଇତ୍ୟାଦି । ଭିନ୍ନ ଭିନ୍ନ ରାଗର ଭିନ୍ନ ଭିନ୍ନ ଅଧିଷ୍ଠାତୃ ଦେବଦେବୀ କଳ୍ପିତ ହୋଇ ଅଛନ୍ତି । ନିର୍ଦ୍ଦିଷ୍ଟ ସମୟରେ ନିର୍ଦ୍ଦିଷ୍ଟ ରାଗରାଗିଣୀର ଅଧିଷ୍ଠାତୃ ଦେବଦେବୀଙ୍କ ଧ୍ୟାନରେ ତନ୍ମୟ ହୋଇ ସେହି ରାଗ ରାଗିଣୀମାନ ଆଳାପ କଲେ ତାହାର ପ୍ରଭାବ ସାକ୍ଷାତ୍ ଦେଖାଯାଏ । କେଉଁ ସ୍ୱରର କିଏ ଅଧିଷ୍ଠାତୃ ଦେବ, ତାହାଁର ପରିଚୟ ନିମ୍ନରେ ଦିଆଗଲା । ସା—ଅଗ୍ନି, ରେ—ବ୍ରହ୍ମା, ଗା—ସରସ୍ୱତୀ, ମା—ମହାଦେବ, ପା—ଲକ୍ଷ୍ମୀ, ଧା—ଗଣେଶ, ନି—ସୂର୍ଯ୍ୟ ।

ମୋଗଲ ସମ୍ରାଟ ଅକବରଙ୍କ ଦରବାରରେ ତାନସେନ ସଙ୍ଗୀତର ଅଲୌକିକ ଶକ୍ତି ପ୍ରଦର୍ଶନ କରି ପାରିଥିଲେ । ତାନସେନଙ୍କ ଗୁରୁ ହରିଦାସ ସ୍ୱାମୀ । ସେ ସଂସାର ତ୍ୟାଗୀ ସନ୍ନ୍ୟାସୀ ଥିଲେ । ସଂଗୀତ ସାଧନା ବଳରେ ନିର୍ବାଣ ଲାଭ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ତାନସେନ ଦିନେ ତାଙ୍କୁ ଅକବରଙ୍କ ଦରବାରକୁ ନେଇ ଯାଇ ଥିଲେ । ହରିଦାସ ସଭାରେ ଗୋଟିଏ ଦୁଇଟି ରାଗ ରାଗିଣୀ ଆଳାପ କରି ଦର୍ଶକମାନଙ୍କୁ ଦେବମୂର୍ତ୍ତି ଦେଖାଇ ଦେଇଥିଲେ । ବାଦସାହା ସଂଗୀତର ଶକ୍ତି ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ । ସମ୍ରାଟ ଏଥିର କାରଣ ଅନୁସନ୍ଧାନ କରିବାରୁ ହରିଦାସ କହିଲେ ଯେ, ବିଜ୍ଞାନ ସମ୍ମତ ପ୍ରଣାଳୀରେ ରାଗ ରାଗିଣୀ ଆଳାପ କରାଗଲେ ଅଧିଷ୍ଠାତୃ ଦେବତାମାନେ ସ୍ୱରୂପ ପରିଗ୍ରହ କରି ଆବିର୍ଭୂତ ହୁଅନ୍ତି । ତାନସେନ ନିଜେ ମଧ୍ୟ ସଂଗୀତ ବିଶାରଦ ଥିଲେ । ଦୀପକ ରାଗ ଆଳାପ କରି ସେ ଅଗ୍ନି ଜଳି ଉଠିବା ଦେଖାଇଥିବାର ଏବଂ ମେଘମଲ୍ଲାର ରାଗ ଆଳାପ କରି ବୃଷ୍ଟି କରାଇ ଥିବାର ପ୍ରବାଦ ଅଛି । ତାନସେନ ଗୋୟାଲିଅରର ଗୌଡ଼ୀୟ ବ୍ରାହ୍ମଣ ବଂଶରେ ଜନ୍ମ ଗ୍ରହଣ କରିଥିଲେ (୧୫୫୮ ଖ୍ରୀ); ତାଙ୍କର ମୌଳିକ ନାମ ଥିଲା ରାମତନୁ ପାଣ୍ଡେ । ୧୮ ବର୍ଷ ବୟସ ବେଳେ ଜଣେ ମୁସଲମାନ ଯୁବତୀଙ୍କ ପ୍ରେମରେ ପଡ଼ି ସେ ମୁସଲମାନ ଧର୍ମ ଗ୍ରହଣ କରିଥିଲେ । ସେ ସଂଗୀତ ବିଦ୍ୟାରେ ବିଶେଷ ପାରଦର୍ଶିତା ଲାଭ କରିଥିଲେ । ଅକବର ତାଙ୍କଠାରୁ ସଂଗୀତ ଶୁଣି ମୁଗ୍ଧ ହୋଇଥିଲେ ଏବଂ ତାଙ୍କୁ ତାନସେନ ଉପାଧି ଦେଇଥିଲେ । ଶାସ୍ତ୍ରରେ ନିର୍ଦ୍ଦିଷ୍ଟ ହୋଇଅଛି ଯେ, ସଂଗୀତ ମୁକ୍ତିର ଗୋଟିଏ ପ୍ରଧାନ ସୋପାନ ।

"ଜପାତ୍ କୋଟୀ ଗୁଣଂ ଧ୍ୟାନଂ ଧ୍ୟାନାତ୍ କୋଟୀ ଗୁଣଂ ଲୟଃ
ଲୟାତ୍ କୋଟୀ ଗୁଣଂ ଗାନଂ ଗାନାତ୍ ପରତରଂ ନହି"

ପୁନଶ୍ଚ—

"ପୃଷ୍ଠଂ ଚତୁର୍ଣ୍ଣାଂ ବେଦାନାଂ ସାରମାକୃଷ୍ୟ ପଦ୍ମଭୂଃ ।
ଇମଂତୁ ପଞ୍ଚମଂ ବେଦଂ ସଂଗୀତାଖ୍ୟ ମକଳ୍ପୟତ୍"

ଭଗବାନ ନିଜେ କହି ଅଛନ୍ତି—

"ନାହଂ ତିଷ୍ଠାମି ବୈକୁଣ୍ଠେ ଯୋଗିନାଂ ହୃଦୟେ ନ ଚ
ମଦ୍ଭକ୍ତାଃ ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ ।"

ଦେବାଧିଦେବ ମହାଦେବ ପ୍ରଥମେ ସଙ୍ଗୀତ ଶାସ୍ତ୍ର ପ୍ରଚାର କରିଥିଲେ । ସେହି ମହାଯୋଗୀ ଯେଉଁ ଭଗବନ୍ମହିମା କୀର୍ତ୍ତନ କରୁଥିଲେ ତାହାହିଁ ମୌଳିକ ସଙ୍ଗୀତ । ବ୍ରହ୍ମା ମହାଦେବଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଦେବଲୋକରେ ଦୁର୍ଗା, ସରସ୍ୱତୀ, ନାଗଲୋକରେ ବାସୁକୀ, ଗନ୍ଧର୍ବ ଲୋକରେ ଚଳାନାଗ, ସାରଦଳ, ତୁମ୍ବୁରୁ, କୋହଳ, ହାହା, ହୁହୁ, ଋଷିଲୋକରେ ନାରଦ, ଭରତ, କଶ୍ୟପ, ରାକ୍ଷସଙ୍କ ମଧ୍ୟରେ ରାବଣ, କପି ମଧ୍ୟରେ ହନୁମାନ, ମାନବ ମଧ୍ୟରେ ଅର୍ଜ୍ଜୁନ ସଙ୍ଗୀତ ଶାସ୍ତ୍ର ପ୍ରଚାର କରିଥିଲେ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ସଂଗୀତ ଭାରତର ଅତି ପ୍ରାଚୀନ କାଳର ସମ୍ପତ୍ତି । ଅମରାବତୀରେ ଅମର ସଦନରେ ଅପ୍ସରାମାନେ ନୃତ୍ୟ ଗୀତ କରୁଥିବା କଥାତ ଅଜ୍ଞାତ କାହାଣୀ । ବାଲ୍ମୀକି ରାମାୟଣ ଗାଇଥିଲେ । ଲବ କୁଶ ଅଯୋଧ୍ୟାରେ ସେହି ରାମାୟଣ ଗାଇଥିଲେ । ବୃନ୍ଦାବନରେ ଗୋପାଙ୍ଗନାମାନେ କୃଷ୍ଣ ଲୀଳା କୀର୍ତ୍ତନ କରିଥିଲେ । ପ୍ରତି ଯୁଗରେ ସଙ୍ଗୀତ ପ୍ରତିଷ୍ଠା ଲାଭ କରି ମୁସଲମାନଙ୍କର ଏବଂ ଆଲେକ୍‌ଜାଣ୍ଡରଙ୍କ ଭାରତାଗମନ ପରେ ନାନା ରାଜକୀୟ ଘାତ ପ୍ରତିଘାତ ପାଇ ସଙ୍ଗୀତ ବିଦ୍ୟା ଅବନତି ପ୍ରାପ୍ତ ହୋଇଥିଲା । ମୁସଲମାନମାନଙ୍କ ଶାସନ ଭାରତରେ ସୁଶୃଙ୍ଖଳ ହେବାପରେ ଆଉ ଥରେ ସଂଗୀତ ବିଦ୍ୟାର ଉନ୍ନତି ପାଇଁ ଚେଷ୍ଟା କରା ଯାଇଥିଲା । ଗିୟାସୁଦ୍ଦିନ୍-ତୋଗ୍ଲକ୍‌ଙ୍କ ରାଜତ୍ୱ ସମୟରେ ଗୋପାଳ ନାୟକ ସଂଗୀତ ବିଦ୍ୟାରେ ପ୍ରସିଦ୍ଧି ଲାଭ କରିଥିଲେ ।

ସକଳ ଦେଶର ସକଳ ମନୁଷ୍ୟ ସମାଜରେ ଗୀତ ବାଦ୍ୟ ନୃତ୍ୟ ଅନାଦି କାଳରୁ ପ୍ରଚଳିତ ଅଛି । ସଭ୍ୟ, ଅସଭ୍ୟ ସକଳ ସମାଜ ମଧ୍ୟରେ ନୃତ୍ୟ ଗୀତର ପ୍ରଚଳନ ଅଛି । ଯେଉଁ ସମାଜ ଯେତେ ଉନ୍ନତ ସେ ସମାଜର ନୃତ୍ୟାଦି ସେତେଦୂର ବିଜ୍ଞାନସମ୍ମତ । ଭାରତରେ ସଂଗୀତ ବିଦ୍ୟା ଏପରି ବୈଜ୍ଞାନିକ ଭିତ୍ତି ଉପରେ ପ୍ରତିଷ୍ଠିତ ଯେ, ତହିଁର ଯେଉଁ ଶେଷ ସ୍ମୃତି ଅଛି ତାହା ସହିତ ପୃଥିବୀର ଅନେକ ସଭ୍ୟ ଜାତିର ସଂଗୀତ ସମକକ୍ଷ ହୋଇ ପାରିବ ନାହିଁ । ସର୍ ୱିଲିୟମ୍ ଜୋନସ୍ ସାହେବ ହିନ୍ଦୁମାନଙ୍କ ସଂଗୀତ ସହିତ ଇଉରୋପର ସଂଗୀତ ବିଦ୍ୟାର ତୁଳନା କରି କହିଛନ୍ତି ଯେ, ହିନ୍ଦୁମାନଙ୍କ ସଂଗୀତବିଜ୍ଞାନ ଅଧିକତର ଶୃଙ୍ଖଳାବଦ୍ଧ । ସେ ପୁନଶ୍ଚ କହିଛନ୍ତି ଯେ, ହିନ୍ଦୁମାନଙ୍କ ଆବିଷ୍କୃତ ସା ରି ଗା ମା ପା ଧା ନି ସପ୍ତସ୍ୱରର ଆଦର୍ଶରେ ପ୍ରଥମେ ପାରସ୍ୟରେ, ପରେ ଆରବରେ ଏବଂ ପରିଶେଷରେ ଇଉରୋପରେ ସ୍ୱରଗ୍ରାମର ପ୍ରବର୍ତ୍ତନ ହୋଇ

ଅଛି । ସର୍ ୱିଲିୟମ୍ ହେକ୍‌ର ଏବଂ ଅଧ୍ୟାପକ ହେବାର୍ ବହୁ ଆଲୋଚନା ପରେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ଏକାଦଶ ଶତାବ୍ଦୀ ପ୍ରାରମ୍ଭରେ ଇଟାଲିର ଟସ୍କାନି ପ୍ରଦେଶରେ ଗଇଡୋ ଅରେଜୋ ଇଉରୋପରେ ସ୍ୱରସାହିତ୍ୟର ପ୍ରଚଳନ ଆରମ୍ଭ କଲେ । ଐତିହାସିକ ଷ୍ଟ୍ରାବୋ ବହୁକାଳ ପୂର୍ବେ ଲେଖିଥିଲେଯେ, ଗ୍ରୀସ୍ ଦେଶ ଭାରତରୁ ସଂଗୀତ ବିଜ୍ଞାନର ଅଧିକାଂଶ ତତ୍ତ୍ୱ ଗ୍ରହଣ କରିଥିଲା । କ୍ୟାପ୍ଟେନ୍ ସାହେବ ପ୍ରାଚୀନ କାଳମାନଙ୍କ ସଂଗୀତ ବିଦ୍ୟା ବିଷୟରେ ଏକ ପୁସ୍ତକ ଲେଖି ଅଛନ୍ତି । ସେ ପୁସ୍ତକରେ ଭାରତର ରାଗ ରାଗିଣୀର ଶକ୍ତି ବିଷୟ ଆଲୋଚନା କରିଛନ୍ତି । ସେହି ପ୍ରସଙ୍ଗରେ ସେ ଗୟାସୁଦ୍ଦିନ୍ ତୋଗଲକଙ୍କ ରାଜତ୍ୱ କାଳର ଗୋପାଳ ନାୟକଙ୍କର ସଂଗୀତ ବିଦ୍ୟାରେ ଅଦ୍ଭୁତ ପାଣ୍ଡିତ୍ୟ ବିଷୟ ଉଲ୍ଲେଖ କରିଛନ୍ତି । ପ୍ରବାଦ ଅଛି, ଗୋପାଳ ଯମୁନା-ଜଳରେ ଅକଣ୍ଠ ବୁଡ଼ି ଦୀପକରାଗ ଆଲାପ କରିଥିଲେ, ତଥାପି ସେହି ରାଗର ଫଳରେ ଜାତ ଅଗ୍ନି ଦ୍ୱାରା ତାଙ୍କ ଶରୀର ଦଗ୍ଧ ହୋଇ ଯାଇଥିଲା । ଉକ୍ତ ପୁସ୍ତକରେ ଉଲ୍ଲେଖ ଅଛି, ତାନ୍‌ସେନ୍ ଦିନେ ଦ୍ୱିପ୍ରହର ବେଳେ ଶ୍ରୀରାଗ ଆଲାପ କରିଥିଲେ ଏବଂ ଯେତେ ଦୂର ପର୍ଯ୍ୟନ୍ତ ସେ ରାଗ ଶୁଣା ଯାଉଥିଲା ସେତେଦୂର ପର୍ଯ୍ୟନ୍ତ ଆକାଶ ଅନ୍ଧକାରାଚ୍ଛନ୍ନ ହୋଇଥିଲା । ପ୍ରବାଦ ଅଛି, ସମ୍ରାଟ ଅକବର ଅନ୍ୟ ଏକ ସଂଗୀତଜ୍ଞ ବୈଜୁଙ୍କ ପରାମର୍ଶ ଅନୁସାରେ ତାନ୍‌ସେନ୍‌ଙ୍କୁ ଦୀପକ ରାଗ ଆଲାପ କରିବାକୁ ଆଦେଶ ଦେଇଥିଲେ । ତାନ୍‌ସେନଙ୍କୁ ଦୀପକ ରାଗର ପ୍ରଭାବରୁ ବଞ୍ଚାଇବା ପାଇଁ ବୈଜୁ ମେଘମଲ୍ଲାର ରାଗ ଆଳାପ କରିବେ ବୋଲି ସ୍ଥିର ହେଲା । ତାନ୍‌ସେନ୍ ଦୀପକ ରାଗ ଆଲାପ କରି ପୋଡ଼ିଗଲେ, ମାତ୍ର ବୈଜୁଙ୍କ ମନରେ ତାନ୍‌ସେନ୍‌ଙ୍କ ପ୍ରତି ଈର୍ଷାଭାବ ଥିବାରୁ ସେ ମେଘମଲ୍ଲାର ରାଗକୁ ପୂର୍ଣ୍ଣ ମାତ୍ରାରେ ଗାଇଲେ ନାହିଁ, ଅତଏବ ତାନ୍‌ସେନଙ୍କୁ ରକ୍ଷା କରିବା ପାଇଁ ସେ ସମୟରେ ମେଘ ବର୍ଷା ହୋଇ ପାରିଲା ନାହିଁ । ସମ୍ରାଟ୍ ଏ ଘଟଣା ଦେଖି ବଡ଼ କ୍ଷୁବ୍ଧ ହୋଇ-ଥିଲେ । ଏ କଥାମାନ ଆଜି ସ୍ୱପ୍ନ ପରି ଜଣା ଯାଇ ପାରେ କିମ୍ବା କବି କଳ୍ପନା ବା ଗାଲ ଗଳ୍ପ ବୋଲି ଲୋକେ ଭାବି ପାରନ୍ତି, ମାତ୍ର ଭାରତ ଯେ ଦିନେ ସଂଗୀତ ଆଲୋଚନାରେ ଜଗତରେ ଶୀର୍ଷସ୍ଥାନ ଅଧିକାର କରିଥିଲା ଏହା ଅସ୍ୱୀକାର କରି ହେବ ନାହିଁ ।

ପୂର୍ବେ କୁହା ଯାଇଅଛି, ସଂଗୀତ ଦୁଇ ପ୍ରକାର । କଣ୍ଠ ସଂଗୀତ ବିଷୟ ଉପରେ ସଂକ୍ଷେପରେ କୁହା ଯାଇଅଛି, ଯନ୍ତ୍ର ସଂଗୀତ ଚାରି ଶ୍ରେଣୀରେ ବିଭକ୍ତ । ଯନ୍ତ୍ର ସଂଗୀତର ଅପର ନାମ ବାଦ୍ୟ ।

ବଂଶ୍ୟାଦିକନ୍ତୁ ଶୁଷିରଂ କାଂସ୍ୟ ତାଳାଦିକଂ ଘନଂ,
ତତଃ ବୀଣାଦିକଂ ବାଦ୍ୟମାନଦ୍ଧଂ ମୁରଜାଦିକମ୍ ।

ଯେଉଁ ଯନ୍ତ୍ରରେ ଛିଦ୍ର ଅଛି ତାକୁ ଶୁଷିର କହନ୍ତି, ଯଥା—ଶିଙ୍ଗା, ଶଙ୍ଖ ମୁରଲୀ; ଘନଯନ୍ତ୍ର—ମନ୍ଦିରା, କରତାଳ, ଘଣ୍ଟା, ଘଣ୍ଟି; ତନ୍ତ୍ର ବା ତାର ସଂଯୁକ୍ତ ଯନ୍ତ୍ର ବୀଣା, ସାରଙ୍ଗୀ, ସୀତାର, ତାନପୁରା ଚର୍ମରେ ମୁହଁବନ୍ଧା ( ଆନଦ୍ଧ ) ବାଦ୍ୟ —ଢକ୍କା, ଢୋଲ, ତବଲା, ପଖାଉଜ, ମୃଦଙ୍ଗ । ପୁରୁଷମାନଙ୍କ ନୃତ୍ୟକୁ ତାଣ୍ଡବ ଓ ସ୍ତ୍ରୀମାନଙ୍କ ନୃତ୍ୟକୁ ଲାସ୍ୟ କୋହାଯାଏ ।

ତାଣ୍ଡବ ଦୁଇ ପ୍ରକାର—ଝୁରତ ଓ ଯୌବତ । ପୁରାଣମାନଙ୍କରୁ ଜଣାଯାଏ, ତ୍ରିପୁରାସୁର ବଧ ପରେ ଦେବତାମାନେ ଆନନ୍ଦରେ ନୃତ୍ୟ କଲେ । ସେତେବେଳେ ବ୍ରହ୍ମା ମୃତ୍ତିକାଦ୍ୱାରା ମୃଦଙ୍ଗ ପ୍ରସ୍ତୁତ କରିଥିଲେ । ମୃଦଙ୍ଗର ମାଟି ଖୋଳ ପୋଡ଼ା ହୁଏ ଓ ସେ ଖୋଳ ଉପରେ ଚମତ୍କାର ସରୁ ପଟିମାନ ଗୁନ୍ଥା ହୁଏ । ତାହାର ବର୍ଣ୍ଣ ନାଲି ଦେଖାଯାଏ । ଏହା ସେହି ତ୍ରିପୁରାସୁର ବଧର ସ୍ମୃତିଚିହ୍ନ ବୋଲି ଅନୁମିତ ହୁଏ । ମୃଦଙ୍ଗ ନାନାପ୍ରକାର ଅଛି । ଦେବଲୋକରେ ଅପ୍‌ସରାମାନଙ୍କ ନୃତ୍ୟ ଗୀତ ବିଷୟ ପୁରାଣବିଦିତ । ରାମାୟଣରେ ରାବଣର ନୃତ୍ୟଶାଳାରେ ନର୍ତ୍ତକୀମାନଙ୍କ ନୃତ୍ୟ ଗୀତ ବିଷୟ ବର୍ଣ୍ଣିତ ଅଛି । ଭାଗବତରେ ନୃତ୍ୟ ବିଷୟ ମଧ୍ୟ ବର୍ଣ୍ଣିତ ହୋଇଅଛି । ରାସମଞ୍ଚରେ ଗୋପୀମାନେ ନୃତ୍ୟ କରିଥିଲେ । ଅର୍ଜୁନ ପ୍ରସିଦ୍ଧ ନର୍ତ୍ତକ ଓ ନୃତ୍ୟାଚାର୍ଯ୍ୟ ଥିଲେ । ପାଣ୍ଡବମାନଙ୍କ ଅଜ୍ଞାତବାସ ବେଳେ ସେ ବିରାଟ ରାଜକନ୍ୟାଙ୍କୁ ନୃତ୍ୟ ଗୀତ ବାଦ୍ୟ ଶିକ୍ଷା ଦେଇଥିଲେ । ଗୀତ, ବାଦ୍ୟ, ନୃତ୍ୟ ମାନଙ୍କର ଜନ୍ମରୁ ସହଚର । ତାଣ୍ଡବର ଓ ଲାସ୍ୟର ନାନା ଉପଭାଗ ଅଛି । ତାହାର ବିସ୍ତୃତ ବର୍ଣ୍ଣନା ସଂଗୀତ ଦାମୋ-ଦର ଆଦି ଗ୍ରନ୍ଥରେ ବର୍ଣ୍ଣିତ ଅଛି; କେଉଁ ନୃତ୍ୟରେ କିପରି ଅଙ୍ଗଭଙ୍ଗୀ ଓ ଶରୀର ଚାଳନା ଆବଶ୍ୟକ ତାହା ବିଶଦଭାବରେ ବର୍ଣ୍ଣିତ ଅଛି । ପ୍ରାଚୀନ ଭାରତରେ ନାଟ୍ୟା-ଭିନୟର ଉତ୍କର୍ଷ ପାଶ୍ଚାତ୍ୟ ପଣ୍ଡିତ ଜୋନସ୍ ସାହେବ ପ୍ରଭୃତି ସ୍ୱୀକାର କରିଅଛନ୍ତି । କାଳର ଘାତ ପ୍ରତିଘାତରେ ଅତି ପ୍ରାଚୀନ ଭାରତୀୟ ନାଟକଗ୍ରନ୍ଥମାନ ଲୁପ୍ତ ହୋଇ ଯାଇଅଛି । କେବଳ ପରବର୍ତ୍ତୀ କାଳର କାଳିଦାସ, ଭବ-ଭୂତି, ବିଶାଖାଦତ୍ତ, ଶୂଦ୍ରକ ପ୍ରଭୃତି କବିମାନଙ୍କ ରଚିତ କେତେ ଖଣ୍ଡ ନାଟକ ଦେଖିବାକୁ ମିଳୁଅଛି । ଗୌତମ ବୁଦ୍ଧଙ୍କ ସମୟରେ ନାଟକାଭିନୟ ସାଧାରଣ କଥା ଥିଲା । ମୌଦ୍‌ଗଲ୍ୟାୟନ, କାତ୍ୟାୟନ, ଉପତିସ୍ୟ ପ୍ରଭୃତି ବୁଦ୍ଧ-ଦେବଙ୍କ ଶିଷ୍ୟମାନେ ନାଟକାଭିନୟ କରୁଥିଲେ ।

ଭାରତରେ ସଂଗୀତ ସାହିତ୍ୟ ବିଶେଷ ଉତ୍କର୍ଷ ଲାଭ କରିଥିଲା । ଉତ୍କଳ ମଧ୍ୟ ସଂଗୀତ ଚର୍ଚ୍ଚାରେ ପଶ୍ଚାତ୍‌ପଦ ନ ଥିଲା । ଉତ୍କଳର ଅଧିକାଂଶ ପ୍ରାଚୀନ ସାହିତ୍ୟ ପଦ୍ୟରେ ଲେଖା ହୋଇଅଛି । ପଦ୍ୟସାହିତ୍ୟର ବହୁଳତା ଉତ୍କଳରେ ସଂଗୀତ ବିଦ୍ୟାର ଉତ୍କର୍ଷତା ପ୍ରମାଣ କରୁଅଛି । ଉତ୍କଳର ସଂଗୀତରେ ସ୍ୱାତନ୍ତ୍ର୍ୟ ଥିଲା । ଓଡ଼ିଶୀ ସଂଗୀତ ଅନ୍ୟାନ୍ୟ

ପ୍ରାଦେଶିକ ସଙ୍ଗୀତଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଓଡ଼ିଶାର ଛନ୍ଦ ଲେଖା ପରି ଲେଖା ଅନ୍ୟତ୍ର ବିରଳ । ସଙ୍ଗୀତ ଓଡ଼ିଶାରେ ନାନା ଆକାର ପ୍ରକାରରେ ଦେଖାଯାଏ । ଶଗଡ଼ିଆ ଗୀତ, ହାଣ୍ଡିଭୁଲ ଗୀତ, ଘା ବୁଢ଼ା ଗୀତ, ନଉକା ଖେଳ ଗୀତ, ଚଢ଼େଇଘୋଡ଼ା ଗୀତ, ଘାଟୁଆ ଗୀତ, ପୁଞ୍ଜି ଖେଳ ଗୀତ, ଶିଶୁରଞ୍ଜନ ଓ ଶିଶୁକ୍ରୀଡ଼ା ଗୀତଠାରୁ ଆରମ୍ଭ କରି ଚଉପଦୀ, ଚଉତିଶା, ଭଜନ, ଜଣାଣ, ଛାନ୍ଦ, ସଙ୍ଗୀତ ପ୍ରଭୃତି ନାନା ସ୍ୱରର ଓ ନାନା ଛନ୍ଦର ସଙ୍ଗୀତର ଆଲୋଚନା ଉତ୍କଳରେ ହୋଇଥିଲା—ସନ୍ଦର୍ଭ ଲେଖକ—ଶ୍ରୀ ଜଗବନ୍ଧୁ ସିଂହ; ଉତ୍କଳ ସାହିତ୍ୟ—୪ର୍ଥ ଭାଗ ୪ର୍ଥ ସଂଖ୍ୟାରୁ ସଙ୍କଳିତ । ]

ସଂଗୀତ ଅଖଡ଼ା—ଦେ· ବି—ଗୀତ ଓ ବାଦ୍ୟ ସହିତ ନୃତ୍ୟ କରିବା Samgita ākhardā ପାଇଁ ଗଠିତ ଦଳ—A company গানের দল formed of singers, musicians and गानकी मण्डली dancers. [ ଦ୍ର—ବଙ୍ଗଦେଶରେ ସଙ୍ଗୀତ ଅଖଡ଼ା ଅନୁଷ୍ଠାନ ନାହିଁ ବୋଲି କହିଲେ ଚଳେ । ଦକ୍ଷିଣ ଓଡ଼ିଶାରେ ଓ ଓଡ଼ିଆ ଅଞ୍ଚଳମାନଙ୍କରେ ନର୍ତ୍ତକୀମାନେ ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରାଚୀନ ଓଡ଼ିଆ ସଙ୍ଗୀତ ଗାଇ ନୃତ୍ୟ କରନ୍ତି । ଦକ୍ଷିଣରେ ଆଜି ସୁଦ୍ଧା ଓଡ଼ିଆ ସଙ୍ଗୀତ ବିଦ୍ୟାର ଚର୍ଚ୍ଚା ଲୁପ୍ତ ନାହିଁ । ଉତ୍କଳର କଟକ ଓ ପୁରୀ ଜିଲ୍ଲାରେ, ବିଶେଷତଃ ପୁରୀ ଜିଲ୍ଲାରେ ଓଡ଼ିଆ ସଙ୍ଗୀତ ଓ ନୃତ୍ୟବାଦ୍ୟାଦି ପାଇଁ ନାଟୁଆ ପିଲା ବା 'ଗୋଟିପୁଅ'ଙ୍କ ଦଳମାନ ଥିଲା; କିନ୍ତୁ ତାହା ବର୍ତ୍ତମାନ କମି ଯାଉଅଛି । ଏଥିରେ ଗୋଟିଏ ପିଲା ନାଚେ ଓ ସଙ୍ଗୀତ ଗାନକରେ; ଅଉ ଦୁଇ ତିନିଟି ଲୋକ ଭିନ୍ନ ଭିନ୍ନ ବାଦ୍ୟ ଯନ୍ତ୍ର ( ଯଥା—ଗିନି, ପଖୋଜ ବା ଡ୍ରମ୍ ତବଲା, ବେହେଲା ) ବଜାନ୍ତି ଓ ତା ସଙ୍ଗେ ଗୀତ ବୋଲନ୍ତି ବା ନର୍ତ୍ତକର ଗୀତ ପଦମାନଙ୍କରେ ପୁନରାବୃତ୍ତି କରନ୍ତି । ଏହିପରି ଚାରି ପାଞ୍ଚୋଟି ଲୋକ ସମନ୍ୱିତ ଅଖଡ଼ାକୁ 'ସଙ୍ଗୀତ ଅଖଡ଼ା' ବୋଲାଯାଏ । ]

ସଂଗୀତ କରିବା—ଦେ· କ୍ରି—୧ । ନୃତ୍ୟବାଦ୍ୟାଦି ସହ ସଙ୍ଗୀତ Samgita karibā ବୋଲିବା—1. To sing songs to সংগীত করা the accompaniment of music and संगीत करना dance. ୨ । ସଙ୍ଗୀତ ରଚନା କରିବା—2. To compose songs.

[ସଂଗୀ]ତ କଳା (ବିଦ୍ୟା)—ସଂ. ବି—ସଙ୍ଗୀତ ଗାନରୂପ ବିଶିଷ୍ଟ ବିଦ୍ୟା— Samgita kalā(bidyā) The art of singing; the musical art.

ସଂଗୀତ ଗୁରୁ—ସଂ· ବି—ସଙ୍ଗୀତ ବିଦ୍ୟାର ଶିକ୍ଷକ; ସଙ୍ଗୀତାଚାର୍ଯ୍ୟ— Samgita guru Music master; teacher of Sangita.

ସଂଗୀତ ଚର୍ଚ୍ଚା—ସ. ବି—ସଙ୍ଗୀତ ବିଦ୍ୟାର ଆଲୋଚନା— Samgita charchchā Cultivation of vocal music.

ସଂଗୀତଜ୍ଞ—ସ. ବି. ପୁଂ—ସଙ୍ଗୀତବିଶାରଦ; ଯେ ସଙ୍ଗୀତ ବିଦ୍ୟାରେ Samgitajña ପାରଙ୍ଗମ—Proficient or versed in ( ସ୍ତ୍ରୀ ଲିଙ୍ଗ—ଜ୍ଞା ) music and song.

ସଂଗୀତ ତରଙ୍ଗ—ସଂ· ବି—ସଙ୍ଗୀତ ଲହରୀ ( ଦେଖ ) Samgita taranga Samgita lahari (See)

ସଙ୍ଗୀତ ତାନ—ସଂ· ବି ( ୬ଷ୍ଠୀ ତତ୍ )—ସଙ୍ଗୀତ ପ୍ରବାହ ( ଦେଖ ) Samgita tāna Samgita prabaha ( See )

ସଂଗୀତ ତାଳ—ସ. ବି ( ୬ଷ୍ଠୀ ତତ୍ )—ସଙ୍ଗୀତର କାଳ ବା ସମୟ Samgita tāḷa ଜ୍ଞାପକ ସ୍ୱର—The measure of a song.

ସଂଗୀତ ଦର୍ପଣ—ସ. ବି—ମୋଗଲ ସମ୍ରାଟ ଜାହାଙ୍ଗୀରଙ୍କ ରାଜତ୍ୱ Samgita darpana କାଳରେ (ଖ୍ରୀଷ୍ଟ ସପ୍ତଦଶ ଶତାବ୍ଦୀର ଆଦ୍ୟ ପାଦରେ) ଓଡ଼ିଆ ଦାମୋଦର ମିଶ୍ରଙ୍କ ରଚିତ ସଙ୍ଗୀତ ବିଷୟକ ସଂସ୍କୃତ ଗ୍ରନ୍ଥବିଶେଷ—(ମୟୂରଭଞ୍ଜ କାଗଜ ୧୯୩୭ ଜୁଲାଇ ସଂଖ୍ୟା)—Title of a Sanscrit treatise on Hindu music.

ସଂଗୀତ ଦାମୋଦର—ସଂ· ବି—ହିନ୍ଦୁ ସଙ୍ଗୀତ ବିଷୟକ ଶୁଭଙ୍କରଙ୍କ Samgita dāmodara ରଚିତ ଗ୍ରନ୍ଥ—Title of a treatise on Hindu music by Subhankara.

ସଂଗୀତ ଧ୍ୱନି—ସ. ବି—( ୬ଷ୍ଠୀ ତତ୍ )—ସଙ୍ଗୀତର ଶବ୍ଦ—The Samgita dhwani sound of vocal music or singing.

ସଂଗୀତ ନିର୍ଣ୍ଣୟ—ସ. ବି.—ବୀରନାରାୟଣ ବିରଚିତ ହିନ୍ଦୁ ସଙ୍ଗୀତ ଗ୍ରନ୍ଥ Samgita nirṇṇaya ବିଶେଷ—Title of a book on Hindu music, composed by Bira-nārāyaṇa

ସଂଗୀତ ପିଲା—ଦେ· ବି.—ଗୋଟିପୁଅ; ନୃତ୍ୟସହ ସଂଗୀତ ଗାଇବା Samgita pilā ବାଳକ—A dancing boy singing নাটুয়া ছোকরা नटुआ and dancing to music. [ ଦ୍ର—ଉତ୍କଳରେ ବାଳକମାନଙ୍କୁ ସ୍ତ୍ରୀ ବେଶରେ ସଜ୍ଜିତ କରି ନାଚ ଓ ଗୀତ ଶିଖାନ୍ତି । ନାଚ ଦୁଇ ପ୍ରକାର ହୁଏ, ଯଥା—ସଙ୍ଗୀତ ଓ ଲୀଳା । ମହାଭାରତ (ଭାରତଲୀଳା), ରାମାୟଣ (ରାମଲୀଳା) ଓ ଭାଗବତ (କୃଷ୍ଣଲୀଳା)ର ବିଶେଷ ବିଶେଷ ଘଟଣାକୁ ଅବଲମ୍ବନ କରି ଯେଉଁ ନାଚ ଓ ଗୀତ ହୁଏ ତାହାକୁ ଲୀଳାନାଚ ବୋଲାଯାଏ । ଏଥିରେ ବାଳକମାନେ ଶ୍ରୀକୃଷ୍ଣ, ବଳରାମ, ରାଧିକା ଆଦିଙ୍କ ବେଶ ପିନ୍ଧି ତତ୍ତତ୍ ବିଷୟକ ଗୀତ ବୋଲନ୍ତି ଓ ବୟଃସ୍ଥ ମନୁଷ୍ୟମାନେ ପୁରାଣୋକ୍ତ ଋଷି, ରାଜା, ମନ୍ତ୍ରୀ, ଦ୍ୱାରୀ ଆଦିଙ୍କ ବେଶ ବା ସୁଆଙ୍ଗ ସାଜି ନାଚନ୍ତି । 'ଲୀଳା' ପାଇଁ ଯେଉଁ ଦଳ ଗଠିତ ହୁଏ, ସେଥିରେ ପୁରାଣୋକ୍ତ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ ସୁଆଙ୍ଗ ସାଜିବା ପାଇଁ ୧୦।୧୫ ଜଣ ଲୋକ ଓ ଏକାଧିକ ନାଟୁଆପିଲା ଲୋଡ଼ା ହୁଅନ୍ତି ।

କିନ୍ତୁ 'ସଂଗୀତ' କରିବା ପାଇଁ ସ୍ତ୍ରୀ ବେଶଧାରୀ ଗୋଟିଏ ମାତ୍ର ବାଳକ ଓ ତା ସଙ୍ଗେ ଗୁଆ ଧରିବାକୁ ଓ ବାଜା ବଜାଇବାକୁ ୩ରୁ ୩।୪ଟି ବୟସ୍କ ମନୁଷ୍ୟ ଲୋଡ଼ା ହୁଅନ୍ତି। 'ସଂଗୀତ-ଆଖଡ଼ା'ରେ ନାଚିବା ପିଲା ଗୋଟିଏ ମାତ୍ର ଥିବାରୁ ତାକୁ 'ଗୋଟିପୋ' ବା 'ଗୋଟିପୁଅ' ବୋଲାଯାଏ। ଏହି ଗୋଟିପୁଅମାନେ ମୁହଁରେ ସଂଗୀତ ବୋଲି ନେତ୍ର ବକ୍ଷାଦର ଭଙ୍ଗୀ, ଇଙ୍ଗିତ, ହସ୍ତଦ୍ୱାର ଅବଲମ୍ବ ବା ପାରିଜା'ସଂକେତ) କରି ଉକ୍ତ ଗୀତର ଅର୍ଥକୁ ଠାରଦ୍ୱାରା ବୁଝାଇଥାଆନ୍ତି। ଉକ୍ତ ସଂଗୀତମାନ ଅଧିକାଂଶ ସ୍ଥଳରେ ଆଦିରସାଶ୍ରିତ ବା ରାଧାକୃଷ୍ଣ ଲୀଳାଶ୍ରିତ। ଗୋଟିପୁଅ ମୁହଁରେ ଗୀତ ବୋଲୁଥାଏ ଓ ସଙ୍ଗେ ସଙ୍ଗେ ଉକ୍ତ ଗୀତର ଅର୍ଥ ଓ ଭାବପର୍ଯ୍ୟ ଯଥୋପଯୁକ୍ତ ଅଙ୍ଗଭଙ୍ଗୀ ଓ ଅବଲମ୍ବ ଦ୍ୱାରା ପ୍ରକାଶ କରୁଥାଏ ଓ ସଙ୍ଗୀତ ବୋଲି ବନ୍ଦ ହେବା ଅବସରରେ ନାନା ଅଙ୍ଗ ଚାଳନ-ବିଶିଷ୍ଟ ଆୟାସସାଧ୍ୟ ନୃତ୍ୟ କରୁଥାଏ। ଗୋଟିପୁଅଙ୍କୁ ଗୀତ, ନୃତ୍ୟ ଓ ପାରିଜା ଶିଖାଇବା ପାଇଁ ଯେଉଁ ଗୁରୁ ରହନ୍ତି, ସେମାନେ ମଧ୍ୟ ଗୀତାର୍ଥ ଓ ସଂକେତରେ ପଣ୍ଡିତ ଅଟନ୍ତି। କାରଣ, ପ୍ରାଚୀନ ଓଡ଼ିଆ ସଂଗୀତମାନ ବୁଝିବାକୁ ହେଲେ ସଂସ୍କୃତରେ ଜ୍ଞାନଥିବା ଆବଶ୍ୟକ।

ଗୋଟିପୁଅଙ୍କ ନୃତ୍ୟ ସଙ୍ଗେ ସଙ୍ଗେ 'ଆଉ ଗୋଟିଏ ନୃତ୍ୟର ପ୍ରଥା ଚଳୁଥିଲା। ଗୋଟିପୁଅମାନେ 'ବନ୍ଧ' ଲଗାଉଥିଲେ। ଏ 'ବନ୍ଧ'ର ସୂଚନାର୍ଥ ଷୋଡ଼ଶ ପ୍ରକାର 'ରତିବନ୍ଧ'। ଏ ଗୁଡ଼ିକ ମଧ୍ୟରୁ ଅଧିକାଂଶ ଅତି ଦୁଃସାଧ୍ୟ ଓ ଏଥିଦ୍ୱାରା ଉକ୍ତ ବାଳକମାନଙ୍କର ଅବୟବ ବିରଳ ଆକାର ଧାରଣ କରେ। ଏହି ବନ୍ଧମାନ ଏପରି ଚମତ୍କାର ଯେ, ନ ଦେଖିଥିବା ବ୍ୟକ୍ତି କଦାପି ବିଶ୍ୱାସ କରି ପାରିବେ ନାହିଁ ଯେ, ବାଳକମାନଙ୍କର କୋମଳ ଅଙ୍ଗ ଏତେଦୂର ନମନୀୟ ହୋଇପାରେ। ଏହା ଦେଖି ଦର୍ଶକମାନେ ସୁଖ ଭୋଗ କରନ୍ତି ସତ୍ୟ, କିନ୍ତୁ ଉକ୍ତ ବାଳକଟିର ଅବୟବ କ୍ଳିଷ୍ଟ ହୋଇ ଯିବା ଫଳରେ ସେ ବିଶେଷ କଷ୍ଟ ଓ ଶ୍ରମ ଅନୁଭବ କରୁଥାଏ। ଗୋଟିପୁଅମାନଙ୍କୁ 'ବନ୍ଧ' ଲଗାଇ ଶିଖାଇବାର ରୀତି କ୍ରମଶଃ ଓଡ଼ିଶାରୁ ଲୁପ୍ତ ହେଉଅଛି ଓ ସର୍କସ୍ ଦଳର ଅନେକେତ୍ବରେ ଏ 'ବନ୍ଧ'ମାନ ଦେଖାଉଅଛନ୍ତି।

ସଂଗୀତ ପ୍ରବାହ—ସଂ. ବି.—( ଷଷ୍ଠୀତତ୍ )—ସଂଗୀତର ସ୍ରୋତ; ଅବିରତ
Samgīta prabāha ବୋଲାଯିବା ସଂଗୀତ—Flow of musical singing.

ସଂଗୀତ ପ୍ରିୟ—ସଂ.ବିଣ.ପୁଂ—(ବହୁବ୍ରୀହି; ସଂଗୀତ ଅଟେ ପ୍ରିୟ ଯାହାର)
Samgīta priya ସଂଗୀତାନୁରାଗୀ—Fond of vocal music; philo-musical.

(ସଂଗୀତପ୍ରିୟା—ସ୍ତ୍ରୀ, ସଂଗୀତ ପ୍ରିୟତା—ବି)

ସଂଗୀତବିଦ—ସଂ: ବିଣ. ପୁ.—('ସଂଗୀତ+ବିଦ୍ ଧାତୁ+କର୍ତ୍ତୃବି,ପ୍;
Samgītabid ସଙ୍ଗୀତବିଦ୍; ୧ମା. ୧ବ.) ସଂଗୀତଜ୍ଞ—
(ସଂଗୀତବେତ୍ତା—ଅନ୍ୟରୂପ) Versed in music & songs.

ସଂଗୀତ ବିଦ୍ୟା—ସଂ. ବି.—ସଂଗୀତ ବିଷୟକ ଅଭିଜ୍ଞତା ବା କଳା—
Samgīta bidyā The art of singing with music; the art of vocal music.

ସଂଗୀତ ବିଶାରଦ—ସ. ବିଣ. ପୁ.—(ସମୀତତ୍) ସଂଗୀତ ବିଦ୍ୟାରେ
Samgīta bisārada ପାରଙ୍ଗମ—Versed in the art of singing.
(ସଂଗୀତ ବିଶାରଦା—ସ୍ତ୍ରୀ)

ସଂଗୀତ ରଚକ(ରଚୟିତା)—ସ. ବିଣ ଓ ବି. ପୁ —ଯେ ସଂଗୀତ ରଚନା
Samgīta rachaka(rachayitā) କରେ; ସଂଗୀତର କବି—The composer of a song.
(ସଂଗୀତ ରଚକା, ସଂଗୀତରଚୟିତ୍ରୀ—ସ୍ତ୍ରୀ)

ସଂଗୀତ ରଚନ(ନା)—ସଂ. ବି—(ଷଷ୍ଠୀତତ୍)—ସଂଗୀତ ଯୋଡ଼ିବା—
Samgīta rachana(nā) Composition of songs.

ସଂଗୀତ ରତ୍ନାକର—ସ ବି—ଶାର୍ଙ୍ଗଦେବଙ୍କ ବିରଚିତ ହିନ୍ଦୁ ସଂଗୀତ-
Samgīta ratnākara ଗ୍ରନ୍ଥ ବିଶେଷ—The title of a work on Hindu songs by Sārangadeba.

ସଂଗୀତ ରତ୍ନାବଳୀ ସ. ବି.—ହରିଭଟ୍ଟ ବିରଚିତ ହିନ୍ଦୁ ସଂଗୀତ ଗ୍ରନ୍ଥ-
Samgīta ratnābalī ବିଶେଷ—The title of a work on Hindu songs by Hari Bhatta.

ସଂଗୀତରତ୍ନ—ଦେ. ବି.—(ସ. ସଂଗୀତ ରତ୍ନ)--ସଂଗୀତଜ୍ଞ ବ୍ୟକ୍ତିଙ୍କୁ ପଦତ୍ତ
Samgītaratna ସମ୍ମାନସୂଚକ ଉପାଧି ବିଶେଷ—A title bestowed on expert singers by Rājās.
[ସଂଗୀତରତ୍ନ ବର୍ଯ୍ୟ—ଅନ୍ୟରୂପ]

ସଂଗୀତ ରାଗ—ସଂ. ବି. (ଷଷ୍ଠୀତତ୍)—ସଂଗୀତର ରାଗ ଓ ରାଗିଣୀ—
Samgīta rāga The tune of a song.
[ଦ୍ର—ରାଗ ରାଗିଣୀ ତଳେ ଟୀକା ଦେଖ]
(ସଂଗୀତ ରାଗିଣୀ—ଅନ୍ୟରୂପ) Rāga rāgiṇī (See)

ସଂଗୀତ ରାଗମାଳିକା—ସ.ବି.—ହରିଭଟ୍ଟ ବିରଚିତ ହିନ୍ଦୁ ସଂଗୀତବିଷୟକ
Samgīta rāgamālikā ଗ୍ରନ୍ଥ ବିଶେଷ—The title of a work on Hindu songs by Hari Bhatta

ସଂଗୀତ ଲହରୀ ତରଙ୍ଗ)—ସ. ବି. (ଷଷ୍ଠୀତତ୍)—ସଂଗୀତର ପ୍ରବାହ;
Samgīta laharī(taranga) ଲହରୀ ପରି ଉପର୍ଯ୍ୟୁପରି ଧାରାବାହିକରୂପେ ଉଠୁଥିବା ସଂଗୀତର ଉଚ୍ଛ୍ୱାସ— Continuous flow of songs accompanied with music.

ସଂଗୀତ ଶାସ୍ତ୍ର—ସଂ. ବି—୧। ସଂଗୀତ ବିଷୟକ ଗ୍ରନ୍ଥ; ଯେଉଁ ଶାସ୍ତ୍ରରେ
Samgīta Sāstra ଗାନ,ବାଦ୍ୟ ଓ ନୃତ୍ୟର ପ୍ରକରଣମାନ ସମ୍ୟକ୍ ରୂପେ ଆଲୋଚିତ ହୋଇଥାଏ—1. The science of music. ୨। ନୃତ୍ୟ ଗୀତବାଦ୍ୟର ଶାସ୍ତ୍ର—2. The science dealing with dancing, singing and music. [ଦ୍ର—ଏହା ଉଚିତଙ୍କ ନାମାନୁସାରେ ବହୁବିଧ। ଯଥା—ସୋମେଶ୍ୱର, ଭରତ, ହନୁମାନ ଓ କଲ୍ଲିନାଥ। ଏମାନଙ୍କର ନାମାନୁସାରେ ମତଭେଦ ରହିଅଛି। ସଂଗୀତ ଶାସ୍ତ୍ର ୭ ଅଧ୍ୟାୟରେ ବିଭକ୍ତ।

ଯଥା—୧ । ସ୍ୱରାଧ୍ୟାୟ । ୨ । ରାଗାଧ୍ୟାୟ । ୩ । ତାଳାଧ୍ୟାୟ । ୪ । ନୃତ୍ୟାଧ୍ୟାୟ । ୫ । ଭାବାଧ୍ୟାୟ । ୬ । କୋକାଧ୍ୟାୟ । ୭ । ହସ୍ତାଧ୍ୟାୟ ।]

**ସଂଗୀତସାର**—ସଂ. ବ—ହରିଭଟ୍ଟ ବିରଚିତ ହିନ୍ଦୁ ସଙ୍ଗୀତ ବିଷୟକ Samgitasāra ଗ୍ରନ୍ଥବିଶେଷ—A work on Hindu songs by Hari bhattu. [ବି—ଓଡ଼ିଆରେ ବହୁ ଲେଖକଗଣଙ୍କ ଜନପ୍ରିୟ ସଂଗୀତ ସଂକଳନ କରି 'ସଙ୍ଗୀତ ସାର' ନାମକ ପୁସ୍ତକ ପ୍ରକାଶ କରୁ ଅଛନ୍ତି । ଏ ଶ୍ରେଣୀର କେତେକ ପୁସ୍ତକର ନାମ ଶୁଣିଲେ ହସ ମାଡ଼େ ଯଥା—ସଙ୍ଗୀତ ରସଗୋଲ୍ଲା, ସଙ୍ଗୀତ ଛେନାଗୁଡ଼, ସଙ୍ଗୀତ ପରିଜ୍ଞ ବଦଳ ।]

**ସଂଗୀତ ସାଗର**—ସଂ.ବ. (ରୂପକ)—ସାଗର ସଙ୍ଗେ ତୁଳନୀୟ ଅପରିମେୟ Samgita sāgara ସଂଗୀତ—Music or song compared to the sea in its vastness. ଦେ. ବ.—ସ୍ୱର୍ଗୀୟ ଦାମୋଦର ପଟ୍ଟନାୟକଙ୍କ ସଙ୍କଳିତ ୬ ଖଣ୍ଡ ଓଡ଼ିଆ ପ୍ରାଚୀନ ସଂଗୀତ ସଂଗ୍ରହ ପୁସ୍ତକ—Six books containing a collection of well-known Oriya songs compiled by the late Dāmodara Paṭṭanāyaka.

**ସଂଗୀତ ସୁଧାକର**—ସଂ. ବ—ସିଂହଭୂପାଳ ବିରଚିତ ହିନ୍ଦୁ ସଂଗୀତ Samgita sudhākara ବିଷୟକ ଗ୍ରନ୍ଥ—The title of a work on Hindu songs by Simha Bhupāla.

**ସଂଗୀତାଚାର୍ଯ୍ୟ**—ସଂ. ବ (୬ଷ୍ଠୀ ତତ୍)—ସଂଗୀତ ଶିକ୍ଷକ—Samgitāchārjya Music master; professor of music.

**ସଂଗୀତାନୁରାଗ**—ସଂ. ବ (୭ମୀ ତତ୍)—ସଂଗୀତ ବିଷୟରେ ଶ୍ରଦ୍ଧା—Samgitanurāga Love for vocal music.

**ସଂଗୀତାନୁରାଗୀ**—ସଂ. ବଣ. ପୁଂ (୭ମୀ ତତ୍)—ସଂଗୀତ ଶାସ୍ତ୍ର ବା Samgitānurāgi ସଂଗୀତ ବିଦ୍ୟା ପ୍ରତି ଶ୍ରଦ୍ଧାଯୁକ୍ତ—Fond (ସଂଗୀତ ନୁରାଗିଣୀ—ସ୍ତ୍ରୀ) of or attached to vocal music; philo-musical.

**ସଂଗୀତି**—ସଂ. ବ (ସମ୍+ଗୈ. ଧାତୁ+ଭାବ. ତି)—୧ । ସଂଗୀତ Samgiti (ଦେଖ)—1. Samgita. (See) ୨ । ଆଳାପ; (ସଙ୍ଗୀତି—ଅନ୍ୟରୂପ) କଥୋପକଥନ—2. Conversation; discourse. ୩ । ତନ୍ତ୍ରର ଶାଖା ବିଶେଷ—3. A branch of the Tantras.

**ସଂଗୀର୍ଣ୍ଣ**—ସଂ. ବଣ. (ସମ୍+ଗୃ. ଧାତୁ=ପ୍ରତିଜ୍ଞା କରିବା+କର୍ମ. ତ)—Samgirnna ପ୍ରତିଜ୍ଞାତ; ଅଙ୍ଗୀକୃତ—Promised. (ସଙ୍ଗୀର୍ଣ୍ଣ—ଅନ୍ୟରୂପ)

**ସଂଗୁପ୍ତ**—ସଂ. ବଣ—(ସମ୍+ଗୁପ୍. ଧାତୁ=ଲୁଚାଇବା+କର୍ମ. ତ)—Samgupta ୧ । ଲୁକ୍କାୟିତ—1. Concealed; hidden. (ସଙ୍ଗୁପ୍ତ—ଅନ୍ୟରୂପ) ୨ । ସୁରକ୍ଷିତ—2. Well protected; carefully guarded; watched well.

**ସଂଗୁପ୍ତି**—ସଂ. ବ (ସମ୍+ଗୁପ୍. ଧାତୁ+ଭାବ. ତି)—୧ । ସଂଗୋପନ Samgupti (ଦେଖ)—1. Samgopana. (See) ୨ । ଲୁଚିବା ଅବସ୍ଥା—2. The state of being hidden.

**ସଂଗୂଢ଼**—ସଂ. ବଣ (ସମ୍+ଗୁହ୍. ଧାତୁ=ଲୁଚାଇବା+କର୍ମ ତ)—Samgūḍha ୧ । ସଂଗୁପ୍ତ (ଦେଖ)—1. Samgupta. (See) (ସଙ୍ଗୂଢ଼—ଅନ୍ୟରୂପ) ୨ । ଉତ୍ତମରୂପେ ଆଚ୍ଛାଦିତ; ସଂବୃତ—2. Well covered. ୩ । ରାଶୀକୃତ—3. Heaped up; piled up. ୪ । ସଙ୍କଳିତ—4. Collected; compiled.

**ସଂଗୃହୀତ**—ସଂ. ବଣ (ସମ୍+ଗୃହୀତ)—୧ । ଆହୃତ; ଏକତ୍ରୀକୃତ—Samgṛuhita 1. Collected; gathered up. ୨ । (ସଙ୍ଗୃହୀତ—ଅନ୍ୟରୂପ) ସଙ୍କଳିତ—2. Compiled.

**ସଂଗେ** (ଇତ୍ୟାଦି—ଦେ. କ୍ରି. ବଣ—ସଙ୍ଗେ ଇତ୍ୟାଦି (ଦେଖ) Samge (etc) Samge etc. (See)

**ସଂଗେଇ ଦେବା**—ପ୍ରାଦେ. (ଜୟପୁର) କ୍ରି—ସଙ୍ଗେଇ ଦେବା (ଦେଖ) Samgei debā Samgei debā. (See)

**ସଂଗେଣ**—ଦେ. କ୍ରି. ବଣ (ପଦ୍ୟ)—ସଙ୍ଗେଣ (ଦେଖ) Samgena Samgena. (See)

**ସଂଗେ ସଂଗ**—ପ୍ରାଦେ. ଅ (ଉତ୍ତର ଭାଷା)—ସଙ୍ଗେ ସଙ୍ଗ (ଦେଖ) Samge samg Sange sang. (See)

**ସଂଗୋପକ**—ସ. ବଣ. ପୁଂ (ସମ୍+ଗୁପ୍. ଧାତୁ+କର୍ତ୍ତୃ. ଅକ)—Samgopaka ୧ । ସଂଗୋପନକାରୀ—1. Concealing; (ସଙ୍ଗୋପକ—ଅନ୍ୟରୂପ) hiding. ୨ । ରକ୍ଷାକାରୀ—[ସଂଗୋପିକା—ସ୍ତ୍ରୀ] 2. Guarding; protecting.

**ସଂଗୋପନ**—ସଂ. ବ (ସମ୍+ଗୋପନ)—୧ । ସମ୍ୟକ୍‌ରୂପେ Samgopana ଲୁଚାଇବା—1. Careful concealment. ୨ । ସମ୍ୟକ୍ ରକ୍ଷଣ—2. Guarding; protecting.

**ସଂଗ୍ରହ**—ସଂ. ବ (ସମ୍=ସମ୍ୟକ୍, ଏକତ୍ର, ସମୂହ+ଗ୍ରହ୍. ଧାତୁ= Samgraha ଗ୍ରହଣ କରିବା+ଭାବ. ଅ)—୧ । ଇତସ୍ତ (ସଙ୍ଗ୍ରହ—ଅନ୍ୟରୂପ) ଦ୍ରବ୍ୟମାନଙ୍କର ଏକତ୍ରୀକରଣ—[ସଂଗୃହୀତ—ବଣ] 1. Gathering of things scattered about. ୨ । ଗୋଟାଇବା; ଆହରଣ—2. Collecting. ୩ । ସଂକଳନ—3. Compiling; blending; addition. ୪ । ତୋଳିବା; ଚୟନ—4. Plucking. ୫ । ସଂକ୍ଷେପ—5. Abridgement; condensing. ୬ । ସଂଚୟ—6. Storing. ୭ । ସମୁଚ୍ଚୟ; ରାଶୀକରଣ; ଗଦା କରିବା—7. Heaping up; piling up. ୮ । ଉଚ୍ଚତା—8. Height. ୯ । ମହୋଦ୍ୟମ—9. A great endeavour. ୧୦ । ଆଲିଙ୍ଗନ—10. Embrace. ୧୧ । ମୁଷ୍ଟିବନ୍ଧ—11. Closing of the fistclenching of the fist. ୧୨ । ନାନା ଗ୍ରନ୍ଥରୁ ବିଷୟମାନ ଉଦ୍ଧାର

କରି ଏକ ଗ୍ରନ୍ଥରେ ସନ୍ନିବେଶିତ କରିବା—12. Compilation; compiling of passages or articles from different sources and putting them at one place. ୧୩ । (+ଅଧିକରଣ. ଅନ) ବ୍ୟାକରଣ ଗ୍ରନ୍ଥବିଶେଷ—13. Title of a Sanscrit grammatical compilation. ୧୪ । ଗ୍ରହଣ—14. Acceptance. [ଉ—ତେଣୁ କରି ତାଙ୍କୁ ଅମ୍ଭେ ସଂଗ୍ରହ କଲୁଁ; ଏବେ ଜନ ମୁଖେ ଅପବାଦ ପାଇଲୁଁ । କୃଷ୍ଣନାଥ. ବଡଜ ରାମାୟଣ ।]

ସଂଗ୍ରହ କରିବା—ଦେ. କ୍ରି—୧ । ଏକତ୍ର କରିବା—1. To collect; to gather. ୨ । ସଂକଳନ କରିବା—2. To compile.
Samgraha kariba
সংগ্রহ করা **संग्रह करना**

ସଂଗ୍ରହକାରୀ(ରି)—ସଂ. ବିଣ. ପୁଂ (ସଂଗ୍ରହ+କୃ. ଧାତୁ+କର୍ତ୍ତୃ. ଇନ୍, ୧ମା. ୧ବ; +କର୍ତ୍ତୃ. ଅ)—ଯେ ଗୋଟାଏ ବା ଏକତ୍ର କରେ—Gathering; collecting. ବି—ଏକତ୍ର କରିବା ବ୍ୟକ୍ତି; ସଂକଳୟିତା—Compiler; collector; gatherer.
Samgrahakāri(ra)
(ସଂଗ୍ରହକାରିଣୀ—ସ୍ତ୍ରୀ)

ସଂଗ୍ରହ ଗ୍ରନ୍ଥ—ସଂ. ବି (ସଂଗ୍ରହପୂର୍ଣ୍ଣ ଗ୍ରନ୍ଥ; ମ. ପ. ଲୋ)—ଯେଉଁ ପୁସ୍ତକରେ ନାନା ସ୍ଥାନରୁ ସଂଗୃହୀତ ବିଷୟମାନ ଥାଏ—Compendium; compilation.
Samgraha grantha

ସଂଗ୍ରହଣ—ସଂ. ବି (ସମ୍+ଗ୍ରହ୍. ଧାତୁ+ଭାବ. ଅନ)—୧ । ସଂଗ୍ରହ (ଦେଖ)—1. Samgraha. (See) ୨ । ସଂଗ୍ରହ କରିବା କାର୍ଯ୍ୟ—2. The act of collecting or compiling.
Samgrahaṇa

ସଂଗ୍ରହଣୀ—ସ. ବି (ସମ୍+ଗ୍ରହ ଧାତୁ+କରଣ ଅନ+ସ୍ତ୍ରୀ ଈ) ୧ । ଗ୍ରହଣୀ ରୋଗ—1. Chronic dysentery. ୨ । ଭୟଙ୍କର ବା ବହୁକାଳସ୍ଥାୟୀ ଉଦରାମୟ; ଅତିସାର—2. An acute form of diarrhoea; chronic diarrhoea. ୩ । ସଂଗ୍ରହ (ଦେଖ)—3. Samgraha (See)
Samgrahaṇi
(ସଙ୍ଗ୍ରହଣୀ—ଅନ୍ୟରୂପ)

ସଂଗ୍ରହାଧ୍ୟାୟ—ସଂ. ବି—ଗ୍ରନ୍ଥର କେଉଁ କେଉଁ ଅଧ୍ୟାୟରେ କି କି ବିଷୟ ଓ କେତେ ଶ୍ଳୋକ ଅଛି, ଗ୍ରନ୍ଥ ମୂଳରେ ଯେଉଁ ଅଧ୍ୟାୟରେ ଏହା ଏକତ୍ର ସୂଚିତ ହୋଇଥାଏ—The index chapter of a book; the chapter of a book dealing with the contents of the successive chapters.
Samgrahādhyāya

ସଂଗ୍ରହିବା—ଦେ. କ୍ରି (ପଦ୍ୟ)—ସଂଗ୍ରହ କରିବା—To collect [ଉ—କୃଷ୍ଣ ପ୍ରେମ ପାଇବାରେ ସଂଗ୍ରହିଲି ସିନା ରହୁ ବୋଲି ଶକ୍ତି ।—ଚନ୍ତାମଣି. ବିଦଗ୍ଧମାଧବ]
Samgrahibā
সংগ্রহকরা **संग्रहकरना**

ସଂଗ୍ରହିତା—ସ. ବିଣ. ପୁଂ (ସମ୍+ଗ୍ରହ ଧାତୁ+କର୍ତ୍ତୃ ତୃ ୧ମା ୧ବ)—ସଂଗ୍ରହକାରୀ—Collecting; compiling. ବି—ସଂଗ୍ରହକାରୀ ବ୍ୟକ୍ତି—Collector; compiler.
Samgrahitā
(ସଂଗ୍ରହିତ୍ରୀ—ସ୍ତ୍ରୀ)

ସଂଗ୍ରାମ—ସ. ବି—(ସମ୍+ଗ୍ରାମ୍. ଧାତୁ=ଯୁଦ୍ଧ କରିବା+ଭାବ ଅ)—ସମର; ଯୁଦ୍ଧ; ଆହବ—Fight; battle; contest; war.
Samgrāma
(ସଙ୍ଗ୍ରାମ—ଅନ୍ୟରୂପ)

ସଂଗ୍ରାମ କ୍ଷେତ୍ର—ସ. ବି (୬ଷ୍ଠୀ ତତ୍)—ଯୁଦ୍ଧକ୍ଷେତ୍ର—Field of battle.
Samgrāma kshetra

ସଂଗ୍ରାମ ପଟହ—ସଂ. ବି (ସଂଗ୍ରାମରେ ବାଦିତ ପଟହ; ମଧ୍ୟପଦଲୋପୀ) ରଣଢକ୍କା; ରଣବାଦ୍ୟ—Battle-drum.
Samgrāma paṭaha

ସଂଗ୍ରାମ ପ୍ରିୟ—ସଂ. ବିଣ. ପୁଂ (ବହୁବ୍ରୀହି)—ଯୁଦ୍ଧପ୍ରିୟ—War-like; fond of fighting; martial.
Samgrāma priya
(ସଂଗ୍ରାମପ୍ରିୟା—ସ୍ତ୍ରୀ) (ସଂଗ୍ରାମପ୍ରିୟତା—ବି)

ସଂଗ୍ରାମ ସିଂହ—ଦେ. ବି (ନାମ) ରାଜପୁତାନା ଅନ୍ତର୍ଗତ ଚିତୋରର ସୁପ୍ରସିଦ୍ଧ ରାଣା (ରାଜା)—Name of a famous king of Chitor in Rājputānā.
Samgrāma simha
(ରାଣା ସଂଗ୍ରାମ ସିଂହ - ଅନ୍ୟରୂପ)
সংগ্রামসিংহ **संग्रामसिंह**

[ଉ—ପ୍ରଥମେ ଚିତୋର ରାଜା ରାଣା ସଂଗ୍ରାମ ସିଂହ ଭାରତର ପଠାଣ ସମ୍ରାଟ ଇବ୍ରାହିମ ଲୋଦିଙ୍କ ଅତ୍ୟାଚାରରେ ବିରକ୍ତ ହୋଇ ବିଦ୍ରୋହୀ ହେଲେ ଏବଂ ଇବ୍ରାହିମ୍‌ଙ୍କ ସଙ୍ଗେ ଯୁଦ୍ଧ କରିବା ପାଇଁ ସଂଗ୍ରାମ ସିଂହ କାବୁଲର ରାଜା ବାବରଙ୍କୁ ଆହ୍ୱାନ ପୂର୍ବକ ତାହାଙ୍କ ସଙ୍ଗେ ମିଶି ପ୍ରଥମ ପାଣିପଥ ଯୁଦ୍ଧ (୧୫୨୬ ସାଲରେ) କରି ଇବ୍ରାହିମ ଲୋଦିଙ୍କୁ ପରାସ୍ତ କଲେ । କିନ୍ତୁ ବାବର ଏ ଯୁଦ୍ଧ ପରେ ନିଜ ରାଜଧାନୀ କାବୁଲକୁ ଫେରି ନ ଯାଇ ଭାରତରେ ରହି ଦିଲ୍ଲୀଠାରେ ରାଜଧାନୀ କରି ମୋଗଲ ସାମ୍ରାଜ୍ୟର ମୂଳଭିତ୍ତି ସ୍ଥାପନ କଲେ । ଫଳରେ ଭାରତ ସମ୍ରାଜ୍ୟ ଗୋଟିଏ ସ୍ଥାନବଳ ମୁସଲମାନ ରାଜବଂଶ (ଲୋଦୀ)ଙ୍କ ହାତରୁ ଯାଇ ପ୍ରବଳତର ଅନ୍ୟ ଏକ ମୁସଲମାନ ରାଜବଂଶ (ମୋଗଲ)ଙ୍କ କରାୟତ୍ତ ହେଲା । ପରେ ସଂଗ୍ରାମ ସିଂହ ବାବରଙ୍କର ଭାରତରେ ସାମ୍ରାଜ୍ୟ ପ୍ରତିଷ୍ଠା ରୂପ ଗୂଢ଼ ଉଦ୍ଦେଶ୍ୟ ବୁଝି ପାରି ଅନେକ ମୁସଲମାନ ରାଜାଙ୍କ ସଙ୍ଗେ ଯୋଗ ଦେଇ ବାବରଙ୍କୁ ଦିଲ୍ଲୀରୁ ତଡ଼ିବା ପାଇଁ ତାଙ୍କ ସଙ୍ଗେ ଯୁଦ୍ଧ କଲେ । କିନ୍ତୁ ଶିକ୍ରୀ ନାମକ ରଣକ୍ଷେତ୍ରରେ (୧୫୨୭ ସାଲରେ) ନିଜେ ପରାଜିତ ହୋଇ ପରବର୍ଷ ମୃତ ହେଲେ ।

ଗୁଜୁରାଟର ସୁଲତାନ ବାହାଦୁର ଶାହା ୧୫୩୪ ସାଲରେ ଚିତୋର ଦୁର୍ଗ ଆକ୍ରମଣ କରିବାରୁ ସଂଗ୍ରାମସିଂହଙ୍କ ବିଧବା ରାଣୀ 'କର୍ଣ୍ଣବତୀ' ବାବରଙ୍କ ପୁତ୍ର ସମ୍ରାଟ ହୁମାୟୁନଙ୍କ ନିକଟକୁ (ରାଜପୁତ ଜାତୀୟ ସ୍ତ୍ରୀଲୋକଙ୍କ ପ୍ରଥାନୁମୋଦିତ) ରାକ୍ଷୀ ପଠାଇ ବାହାଦୁର ସାହିଙ୍କ

ସଙ୍ଗେ ଯୁଦ୍ଧ କରିବାକୁ ହୁମାୟୁନଙ୍କୁ ନିମନ୍ତ୍ରଣ କଲେ; କିନ୍ତୁ ହୁମାୟୁନ ଠିକ୍ ବେଳରେ ସୈନ୍ୟସହ ନ ପହଞ୍ଚିବାରୁ ବାହାଦୁର ସାହା ଚିତୋର ଦୁର୍ଗକୁ ଅଧିକାର କଲେ । ମାତ୍ର ୧୫୩୭ ସାଲରେ ହୁମାୟୁନ ବାହାଦୁର ସାହାଙ୍କୁ ପରାସ୍ତ କରି ଚିତୋର ଦୁର୍ଗ ଅଧିକାର କଲେ ।]

ସଂଗ୍ରାହ - ସଂ. ବି (ସମ୍+ଗ୍ରହ ଧାତୁ+ଭାବ ଅ) ୧ । ସଂଗ୍ରହ Samgrāha (ଦେଖ)—1. Samgraha (See) ୨ । (ସଙ୍ଗ୍ରାହ—ଅନ୍ୟରୂପ) (+କରଣ ଅ) ଅସ୍ତ୍ରାଦିର ମୁଠା—2. The handle of a weapon. ୩ । ମୁଷ୍ଟ ଫଳକର ମୁଷ୍ଟି; ଢାଲର ମୁଠା—3. The handle of a shield. ୪ । ମୁଷ୍ଟିଦ୍ୱାରା ବନ୍ଧନ—4. Binding with the fist. ୫ । ମୁଷ୍ଟି—5. Fist.

ସଂଗ୍ରାହକ - ସଂ. ବିଣ. ପୁଂ (ସମ୍+ଗ୍ରହ ଧାତୁ+କର୍ତ୍ତୃ ଅକ) — ସଂଗ୍ରହ-Samgrāhaka କାରୀ; ସଂଗ୍ରହୀତା—Collecting; compi (ସଙ୍ଗ୍ରାହକ —ଅନ୍ୟରୂପ) ling. ବି—୧ । ଯେ ସଂଗ୍ରହ କରେ (ସଂଗ୍ରାହିକା—ସ୍ତ୍ରୀ) 1. Collector. ୨ । ସଂକଳନକାରୀ — 2. Compiler.

ସଂଗ୍ରାହୀ - ସଂ. ବିଣ. ପୁଂ—(ସମ୍+ଗ୍ରହ ଧାତୁ+କର୍ତ୍ତୃ ଇନ୍; ୧ମା. Samgrāhī ୧ବ.)—ସଂଗ୍ରାହକ (ଦେଖ)—Samgrāhaka (ସଙ୍ଗ୍ରାହୀ—ଅନ୍ୟରୂପ) (See) ବି—(ବୈଦ୍ୟକ) କୂଟଜ ବା (ସଂଗ୍ରାହିଣୀ—ସ୍ତ୍ରୀ) ପିତାକୋରୁଆ ଗଛ—Wrightia Anti-Dysenterica (plant). [ଦ୍ର—ଏହା ସଂଗ୍ରହଣୀ ରୋଗର ପ୍ରଧାନ ଔଷଧ ଥିବାରୁ ଏହାର ଏପରି ନାମ ହୋଇଅଛି ।]

ସଂଘ—ସଂ ବି—(ସମ୍+ହନ୍ ଧାତୁ—ବଧ କରିବା, ସଂଶ୍ଳିଷ୍ଟ ହେବା+ Samgha କର୍ମ. ଅ) ୧ । ସମୂହ; ରାଶି; ଗଦା—1. Collec- (ସଙ୍ଘ; ସଙ୍ଗ୍ଘ—ଅନ୍ୟରୂପ) tion; heap. ୨ । ସମିତି; ସଭା; ସମାଜ—2. An association. ୩ । ଜନତା; ଲୋକଗହଳ; ଗହଳ—3. Crowd ୪ । ସଜାତୀୟ ଓ ବିଜାତୀୟ ବହୁ ମନୁଷ୍ୟ ବା ଜନ୍ତୁମାନଙ୍କର ମିଳିତ ଗଣ—4. A company of men or animals (of the same and different class). ୫ । ଭିକ୍ଷୁ ଓ ଭିକ୍ଷୁଣୀମାନଙ୍କ ସମାଜ—5. The society of Buddhist monks and nuns. ୬ । ଦଳ; ପଲ; ଯୂଥ; ବୃନ୍ଦ; ଦଳ—6. Flock; multitude. ୭ । ବୌଦ୍ଧମାନଙ୍କର ସମାଜ ବା ଦଳ; ବୌଦ୍ଧ ସଂପ୍ରଦାୟ—7. The aggregate of all the Buddhists; the whole sect of the Buddhists. ୮ । ବୌଦ୍ଧ ଧର୍ମର ତ୍ରିରତ୍ନ ମଧ୍ୟରୁ ଏକତମ (ଅନ୍ୟ ଦୁଇଟି—ଧର୍ମ ଓ ବୁଦ୍ଧ)—8. One of the 3 gems or Trinity of the Buddhist religion.

ସଂଘଚାରୀ—ସଂ.ବି.ପୁଂ—(ସଂଘ+ଚର ଧାତୁ+କର୍ତ୍ତୃ ଇନ୍; ୧ମା. ୧ବ.) Samghachārī —ଯେ ଦଳବଦ୍ଧ ହୋଇ ବିଚରଣ କରନ୍ତି—Moving in flocks; gregarious. (ସଂଘଚାରିଣୀ—ସ୍ତ୍ରୀ) ବି.—ମତ୍ସ୍ୟ—Fish.

ସଂଘଜୀବୀ—ସଂ ବି. (ସଂଘ=ଦଳ, ଜନତା+ଜୀବନ୍=ଯେ ଜୀବିକା Samghajībī ନିର୍ବାହ କରେ,୧ମା. ୧ବ.)—୧ । ମୂଲିଆ; ଖାଟିଖିଆ; —1. A day labourer. ୨ । କୁଲି; ବୋଝିଆ —2. A common carrier; cooly.

ସଂଘଟ—ଦେ. ବି. —ଓଡ଼ିଶାମାନଙ୍କର ବିବାହାଦିରେ ଗୁଡ଼ଚାଉଳ, ଡାଲି, Samghaṭa ପରିବା ଆଦି ମିଶି ସିଝାଯାଇ ପ୍ରସ୍ତୁତ ହୋଇଥିବା ଏକ ଖେଚୁଡ଼ି ପରି ଖାଦ୍ୟବିଶେଷ, ଯାହା ସେମାନଙ୍କର ଜାତିଆଣ ଭୋଜିରେ ନିମନ୍ତ୍ରିତ ଜାତିଭାଇମାନଙ୍କ ପତ୍ରରେ ଦିଆଯାଏ—A hotchpot prepared on the occasion of caste dinner amongst the Orda chashas of Orissa. ବିଣ—ଯଥେଷ୍ଟ; ଯଥେଷ୍ଟ ବସ୍ତୁ ପର୍ଯ୍ୟାପ୍ତ—Sufficient; enough. ସଂ. ବି.—

ସଂଘଟ, ସଙ୍ଘଟ୍ଟ, ସଂଘଟନ(ନା), ସଙ୍ଘଟନ(ନା), ସଂଘଟ୍ଟନ(ନା) —ଅନ୍ୟରୂପ

(ସମ୍+ଘଟ୍ ଧାତୁ=ଚେଷ୍ଟା କରିବା +ଭାବ. ଅ) ୧ । ମେଳନ; ସଂଯୋଜନ— 1. Meeting; coming together; joining together. ୨ । ମିଶ୍ରଣ —2. Combination. ୩ । ଗଠନ— 3 Formation. ୪ । ଘଟଣା—4. Event. ୫ । ଘଟିବା—5. Happening. ୬ । ବିବରଣ; ବୃତ୍ତାନ୍ତ—6. Description. [ଭି—ତାହାର ସଂଘଟନ ଯେତେ, ବୁଝାଇ କହ ମୋ ଅଗ୍ରତେ । ଜଗନ୍ନାଥ—ଭାଗବତ ।]

ସଂଘଟା(ଟ୍ଟା)—ସଂ. ବି—(ସଂଘଟ+ଆ)—ଲତା; ବଲ୍ଲୀ—Samghaṭā(ṭṭā) Creeper. [ସଙ୍ଘ(ଙ୍ଘ)ଟା(ଟ୍ଟା)—ଅନ୍ୟରୂପ]

ସଂଘଟିତ—ସଂ. ବିଣ—(ସମ୍+ଘଟ ଧାତୁ+କର୍ମ. ତ) ୧ । ସଂଯୋଜିତ-Samghaṭita 1. Joined together; united; [ସଙ୍ଘ(ଙ୍ଘ)ଟିତ—ଅନ୍ୟରୂପ] connected. ୨ । ନିର୍ମିତ—2. Built. ୩ । ଘଟିଥିବା—3. Happened; taken place.

ସଂଘଟ୍ଟ—ସଂ. ବି. (ସମ୍+ଘଟ୍ଟ ଧାତୁ=ଘର୍ଷଣ କରିବା+ଭାବ ଅ) ୧ । Samghaṭṭa ସଂଘର୍ଷ—1. Adherence; cohesion.

ସଙ୍ଘଟ୍ଟ, ସଙ୍ଘଟ୍ଟ, ସଂଘଟ୍ଟନ(ନା), ସଙ୍ଘ(ଙ୍ଘ)ଟନ(ନା) —ଅନ୍ୟରୂପ (ସଂଘଟ୍ଟିତ—ବିଣ)

୨ । ପରସ୍ପର ଘର୍ଷଣ—2. Rubbing together; friction. ୩ । ଘୋଟିବା; ମର୍ଦ୍ଦନ—3. Act of rubbing or pounding. ୪ । ପରସ୍ପର ଆଘାତ ଲାଗିବା—4. Clashing together; collision. ୫ । ବାଦବିବାଦ—5. Conflict; encounter. ୬ । ମିଳନ; ସଂଯୋଜନ— 6. Meeting; joining. ୭ । ଆଲିଙ୍ଗନ—7. Embracing. ୮ । ନିକଟ ସଂପର୍କ—8. Close contact.

୯। ଗ୍ଳନ—9. Causing to move, moving, ୧୦। ମାଲମାନଙ୍କର କୁସ୍ତିକାଳୀନ ପଞ୍ଜା ପଜାପଜି ବା ବାହା ଉନାଉଡ—10. Intertwining of two wrestlers in a bout of wrestling. ୧୧। ହାତାହାତି; ଭେଟାଭେଟି—11. Encounter.

ସଂଘଡ୍ଡ(ଢ଼)—ଦେ. ବଣ—ସଙ୍ଘଡ୍ଡ (ଦେଖ)
Samghard (rdha) Sanghardа (See)

ସଂଘ ତଳ—ସଂ ବ - (ବହୁବ୍ରୀହି)—ଯୁକ୍ତ କରତଳଦ୍ୱୟ; ଅଞ୍ଜଳି;
Sangha tala ଅଞ୍ଜଳି ବନ୍ଧନ—The two hands with the open palms brought together.
(ସଙ୍ଘତଳ—ଅନ୍ୟରୂପ) ସଂ. ବଣ ପୁ.—କୃତାଞ୍ଜଳି; ଅଞ୍ଜଳି
(ସଂଘତଳା—ସ୍ତ୍ରୀ) କରଥିବା (ବ୍ୟକ୍ତି)—(a person) With folded palms.

ସଂଘନ—ସଂ. ବଣ—(ସମ୍+ଘନ)—ଦୁର୍ଭେଦ୍ୟ
Samghana Impervious; impenetrable.

ସଂଘମିତ୍ରା—ଦେ. ବ—(ନାମ)—ଅଶୋକଙ୍କ କନ୍ୟାର ନାମ—Name
Samghamitrā of the daughter of king Asoka.
সংঘমিত্রা संघमित्रा [ଦ୍ର—ସଂଘମିତ୍ରା ଓ ତାହାଙ୍କ ଭାଇ ମହେନ୍ଦ୍ର ବୌଦ୍ଧଧର୍ମ ପ୍ରଚାର କରିବା ପାଇଁ ଅଶୋକଙ୍କ କର୍ତ୍ତୃକ ସିଂହଳକୁ ପ୍ରେରିତ ହୋଇଥିଲେ ।]

ସଂଘର୍ଷ—ସଂ. ବ—(ସମ୍+ଘୃଷ ଧାତୁ=ଘଷିବା+ଭାବ. ଅ)—୧। ପର-
Samgharsha ସ୍ପର ପରସ୍ପରକୁ ଯୁଦ୍ଧାର୍ଥ ସ୍ପର୍ଦ୍ଧା ସହିତ ଆହ୍ୱାନ—Mutual defiance; mutual challenge. ୨। ବାଜି ରଖିବା—2. Laying a wager. ୩। ପରସ୍ପର ଘର୍ଷଣ—3. Rubbing together; friction. ୪। ମର୍ଦ୍ଦନ, ଘୋଟିବା—4 Pounding; pestling. ୫। ଧୀରେ ଧୀରେ ଗମନ—5 Going gently; gliding ୬। ଧୀରେ ଧୀରେ ବହିବା (ପାଣି, ପବନ)—6. Gentle flowing of water, or blowing of wind. ୭। ଡଙ୍ଗା ବୋହିବା—7. The steering of a ship; the plying of a boat. ୮। ପ୍ରତିଦ୍ୱନ୍ଦ୍ୱିତା—Rivalry; emulation (Apte). ୯। ଈର୍ଷା—9. Jealousy; envy (Apte). ୧୦। ଯୁଦ୍ଧ, ଦ୍ୱନ୍ଦ—10. Contest; fighting; duel.

ସଂଘର୍ଷଣ—ସଂ. ବ—(ସମ୍+ଘୃଷଧାତୁ+ଭାବ.ଅନ)—ସଂଘର୍ଷ (ଦେଖ)
Samgharshana Samgharsha (See)
(ସଙ୍ଘର୍ଷଣ—ଅନ୍ୟରୂପ)

ସଂଘଶଃ—ସଂ. କ୍ର. ବଣ—(ସଂଘ+ଶସ୍) ୧। ଦଳେ ଦଳେ—1. In
Samghaśaḥ crowds; in multitudes; ୨। ବହୁଶଃ 2. Much; in great numbers.

ସଂଘସ—ସଂ. ବ.—( ସମ୍+ଘସ୍ଧାତୁ=ଖାଇବା+ଭାବଅ )—୧।
Samghasa ଭୋଜନ—1. Eating; taking meals. ୨। (+କର୍ମଅ) ଭୋଜ୍ୟ ଦ୍ରବ୍ୟ—2. Meal; eatables.

ସଂଘା(ଇତ୍ୟାଦି)—ଦେ. ବ ଓ ବଣ—ସଙ୍ଘା ଇତ୍ୟାଦି (ଦେଖ)
Samghā etc Sanghā etc (See)

ସଂଘା(ଘେ,ଘୋ)ଇବା—ଦେ. କ୍ରି—ସଙ୍ଘାଇବା (ଦେଖ)
Samghā (ghe,gho) ibā Sanghāibā (See)

ସଂଘାଟିକା—ସଂ ବ.—(ସମ୍+ଘଟ୍ଧାତୁ=ମିଳିତ ହେବା+କର୍ତ୍ତୃଅକ
Samghāṭikā +ଆ) ୧। ଯୋଡ଼ା; ଯୁଗ୍ମ—1 Pair
(ସଙ୍ଘାଟିକା—ଅନ୍ୟରୂପ) couple. ୨। ଘ୍ରାଣ—2. Scent; smell. ୩। କୁଟ୍ଟଣୀ; କୁଟ୍ଟିଣୀ—3 A panderess; a procuress. ୪। ଜଳ କଣ୍ଟକ; ସିଂଘଡ଼ା—4. Water.

ସଂଘାଡ଼ି—ଦେ. ବ—ସଙ୍ଘାଡ଼ି (ଦେଖ)
Samghārdi Sanghārdi (See)

ସଂଘାଡ଼ିବା—ଦେ. କ୍ରି—ସଙ୍ଘାଡ଼ିବା (ଦେଖ)
Samghārdibā Sanghārdibā (See)

ସଂଘାଣକ—ସଂ. ବ—ସିଂଘାଣି—
Samghāṇaka The mucous of the nose (Apte.)

ସଂଘାତ—ସଂ. ବ—(ସମ୍+ହନ୍ ଧାତୁ+ଭାବ. ଅ)—୧। ଆଘାତ—
Samghāta 1. Strike; blow. ୨। ହତ୍ୟା; ବଧ—2. Killing; slaughter. ୩। କଠିନତା; ଘନତ୍ୱ—3. Solidity; density; thickness; compactness. ୪। ସମୂହ—4. Collection; multitude; assemblage. ୫। ଦଳ—5. Crowd. ୬। କଠିନ ସଂଯୋଗ; ଜମାଟ ବାନ୍ଧିବା—6. Crystallisation; coagulation; combination. ୭। ପରସ୍ପର ସଙ୍ଗେ ମିଳନ; ସମ୍ମିଳନ—7. Union; combination ( Apte ). ୮। ( +କର୍ତ୍ତୃ. ଅ ) କଫ—8. Phlegm. ୯। ( +ଅଧିକରଣ. ଅ ) ନରକବିଶେଷ—9. Name of a part of the hell. ୧୦। ନାଟକାଭିନୟରେ ଗତିବିଶେଷ ବା ଏକପ୍ରକାର ଚାଲି—10. A kind of walking (in dramatic performance). ଗ୍ରା. ବ—ସଙ୍ଗାତ; ମିତ୍ର—A dear friend. [ ଉ—ବାଣୀ ବୋଇଲି ଶୁଣ ସଙ୍ଘାତ, କଷ୍ଟେ ନାଶିଲେ ମୋହର କାନ୍ତ—ଭକ୍ତଚରଣ ମଥୁରାମଙ୍ଗଳ । ] ଦେ. ବଣ—ମୃତ—Dead. [ ଉ—କାଳେ ସେ ଦେଖନ୍ତି ସଂଘାତ କାଳଦଣ୍ଡେ । ଅବଶ୍ୟ ହୁଅନ୍ତି ସଘାତ—ଯାନକୃଷ୍ଣ. ରସକଲ୍ଲୋଳ । ]

ସଂଘାତ କଠିନ—ସଂ. ବଣ—କଠିନ ସଂଯୋଗ ଯୋଗୁଁ ଘନ—
Samghāta kaṭhina Solid; hard like a solid.

ସଂଘାତ ପତ୍ରିକା—ସଂ. ବ ( ବୈଦ୍ୟକ )—ଶତପୁଷ୍ପା; ଶଲୁପ—
Samghāta patrikā Dill seed ( plant ).

ସଂଘାତ ବଳ—ଦେ. ବ ( ପଦାର୍ଥବିଜ୍ଞାନର ପାରିଭାଷିକ ଶବ୍ଦ )—ଏକ
Samghāta bala ବସ୍ତୁ ପ୍ରତି ଭିନ୍ନ ଭିନ୍ନ ଦିଗରୁ ଦୁଇଁବା
সংঘাত বল ତତୋଽଧିକ ବଳ ପ୍ରୟୋଗ କରାଗଲେ, ସେହି ଉଭୟ

**सं'घात बल** ବଳର ଫଳସ୍ୱରୂପ ଉତ୍ପନ୍ନ ନୂତନ ବଳ—(physics) The resultant of two or more forces acting on a thing at one point.

ସଂଘାତ୍ତ—ଦେ ବଣ ଓ ବ—ଘାତକ—Murderous; murderer
Samghāti [ଭ୍‌—ବ୍ରଜବଣ୍ଣ ସ୍ୱଘେ ବଳସେ କୁଳଗେ ଗେରଙ୍ଗା ସଂଘାତ୍ତ
घाती **सं'घात करनेवाला** ହୋଇଲ୍ଲ—ଭଞ୍ଜ. ବୈଦେଶ୍ଚଣଠଳାସ ।]

ସଂଘାର - ଗ୍ରା· ବ ( ସଂ. ସଂହାରର ଅଶୁଦ୍ଧ ଉଚ୍ଚାରଣ )—ସଂହାର
Samghāra ( ଦେଖ )—Samhāra ( See )

ସଂଘାରାମ—ସଂ· ବ (ସଂଘ+ଅରାମ; ୬ଷ୍ଠୀ ତତ୍‌)- ବୌଦ୍ଧ ସନ୍ନ୍ୟାସୀ-
Samghārāma ମାନଙ୍କର ମଠ—The math of Buddhist mendicants

ସଂଘାରିବା—ଗ୍ରା. ( ପଦ୍ୟ ) କ୍ରି ( ସଂ· ସଂହାର )—ସଂହାରିବା
Samghāribā ( ଦେଖ )—Samhāribā ( See )
সংহার করা **सं'हार करना** [ ଭ୍—ଅଇର ସଂଘାର ଉଭୁର ବାଳୀ—ପ୍ରଭାପ. ଶଶିସେଣା । ]

ସଂଘିବା—ଦେ. କ୍ରି—ସଙ୍ଘିବା ( ଦେଖ )
Samghibā Sanghibā ( See )

ସଂଘୁଷିତ—ସଂ. ବଣ ( ସମ୍+ଘୁଷ୍ ଧାତୁ=ଘୋଷଣା କରିବା+କର୍ମ
Samghushita ତ )—୧ । ସମ୍ୟକ୍‌ରୂପେ ପ୍ରଚାରିତ ବା ଉଦ୍‌-ଘୋଷିତ—1. Very widely proclaimed; published broadcast. ୨ । ଶବ୍ଦିତ—2 Sounded; resounded. ସଂ. ବ—୧ । (+ଭାବ ତ ) ଶବ୍ଦ—1. Sound. ୨ । ଘୋଷଣା—2. Proclamation.

ସଂଘୁଷ୍ଟ—ସଂ· ବଣ ( ସମ୍+ଘୁଷ୍ ଧାତୁ+କର୍ମ· ତ )—ସଂଘୁଷିତ
Samghushta (ଦେଖ)—Samghushita ( See )

ସଂଘୃଷ୍ଟ—ସଂ. ବଣ ( ସମ୍+ଘୃଷ୍ ଧାତୁ=ଘଷିବା+କର୍ମ. ତ )—
Samghrushta ୧ । ସମ୍ୟକ୍‌ରୂପେ ମର୍ଦ୍ଦିତ—1. Well rubbed; well pounded. ୨ । ଚକ୍କଣ ହୋଇ ବଟା ଯାଇଥିବା—2. Well bruised; reduced to a fine paste.

ସଂଘେନି—ଗ୍ରା. ଅ—ସଙ୍ଘେନି ( ଦେଖ )
Samgheni Sangheni ( See )

ସଂଚ—ସଂ· ବ—ସଞ୍ଚ ( ଦେଖ )
Samcha Sancha ( See )

ସଂଚ ଘଂଚ—ଦେ. ବଣ ( ସହଚର )—ସଞ୍ଚ ଘଞ୍ଚ ( ଦେଖ )
Samcha ghamcha Sancha ghancha (See)

ସଂଚତ୍—ସଂ. ବଣ—ସଞ୍ଚତ୍ ( ଦେଖ )
Samchat Sanceat (See)

ସଂଚନ—ଦେ· ବ (ପ୍ରାଚୀନ ପଦ୍ୟ)—ସଞ୍ଚନ ( ଦେଖ )
Samchana Sanchana ( See )

ସଂଚପ—ଦେ. ବ ଓ ବଣ—ସଞ୍ଚପ ( ଦେଖ )
Samchapa Sanchapa (See)

ସଂଚପି କହିବା—ଦେ· କ୍ରି—ସଞ୍ଚପି କହିବା ( ଦେଖ )
Samchapi kahibā Sanchapi kahibā (See)

ସଂଚପିବା—ଦେ. କ୍ରି—ସଞ୍ଚପିବା ( ଦେଖ )
Samchapibā Sanchapibā (See)

ସଂଚୟ (ଇତ୍ୟାଦି)—ସଂ· ବ—ସଞ୍ଚୟ ଇତ୍ୟାଦି ( ଦେଖ )
Samchaya (etc) Sanchaya etc (See)

ସଂଚୟନ—ସଂ. ବ—ସଞ୍ଚୟନ ( ଦେଖ )
Samchayana Sanchayana (See)

ସଂଚୟନୀୟ—ସଂ. ବଣ—ସଞ୍ଚୟନୀୟ ( ଦେଖ )
Samchayaniya Sanchayaniya (see)

ସଂଚୟୀ—ସଂ. ବଣ. ପୁଂ—ସଞ୍ଚୟୀ ( ଦେଖ )
Samchayi (ସଂଚୟିନୀ—ସ୍ତ୍ରୀ) Sanchayi ( See )

ସଂଚର - ସଂ. ବ - ସଞ୍ଚର ( ଦେଖ )
Samchara [ ସଞ୍ଚରଣ—ଅନ୍ୟରୂପ ] Sanchara (See)

ସଂଚରା(ରେ)ଇବା—ଦେ. କ୍ରି—ସଞ୍ଚରାଇବା ( ଦେଖ )
Samcharā(re)ibā Sancharāibā (See)

ସଂଚରିତ—ସଂ. ବଣ—ସଞ୍ଚରିତ ( ଦେଖ )
Samcharita Sancharita (See)

ସଂଚରିବା—ଦେ. କ୍ରି—ସଞ୍ଚରିବା ( ଦେଖ )
Samcharibā Sancharibā (See)

ସଂଚରିଷ୍ଣୁ—ସଂ. ବଣ—ସଞ୍ଚରିଷ୍ଣୁ ( ଦେଖ )
Samcharishnu Sancharishnu (See)

ସଂଚଳନ—ସଂ· ବ—ସଞ୍ଚଳନ ( ଦେଖ )
Samchalana Sanchalana (See)

ସଂଚା—ସଂ. ବ ଓ ବଣ—ସଞ୍ଚା ( ଦେଖ )
Samchā Sanchā (See)

ସଂଚା(ଚେ)ଇବା—ଦେ. କ୍ରି—ସଞ୍ଚାଇବା ( ଦେଖ )
Samchā(che)ibā Sanchāibā (See)

ସଂଚାଣ—ଦେ ବ ଓ ବଣ—ସଞ୍ଚାଣ ( ଦେଖ )
Samchāna Sanchāna (See)

ସଂଚାଣି—ଦେ. ବ ଓ ବଣ—ସଞ୍ଚାଣି ( ଦେଖ )
Samchāni Sanchāni (See)

ସଂଚାଣୀ—ଦେ. ବ. ସ୍ତ୍ରୀ—ସଞ୍ଚାଣୀ ( ଦେଖ )
Samchāni Sanchāni (See)

ସଂଚାନ—ସଂ. ବ—ସଞ୍ଚାନ ( ଦେଖ )
Samchāna Sanchāna (See)

ସଂଚାଯ୍ୟ—ସଂ. ବ—ସଞ୍ଚାଯ୍ୟ ( ଦେଖ )
Samchājya Sanchājya (See)

ସଂଚାର (ଇତ୍ୟାଦି)—ସଂ. ବ—ସଞ୍ଚାର ଇତ୍ୟାଦି ( ଦେଖ )
Samchāra Sanchāra ( See )

ସଂଚାରକ—ସଂ. ବଣ. ପୁଂ—ସଞ୍ଚାରକ ( ଦେଖ )
Samchāraka Sanchāraka (See)

ସଂଚାରଣ - ସଂ· ବ—ସଞ୍ଚାରଣ ( ଦେଖ )
Samchārana Sanchārana (See)

ସଂଗ୍ରହିକା—ସଂ. ବି—ସଞ୍ଚାରିକା ( ଦେଖ )
Samcharika — Sañcharika (See)

ସଂଗ୍ରହିଣୀ—ସଂ. ବି ଓ ବିଣ—ସଞ୍ଚାରିଣୀ ( ଦେଖ )
Samcharini — Sañcharini (See)

ସଂଗ୍ରହିତ ସଂ. ବିଣ—ସଞ୍ଚାରିତ ( ଦେଖ )
Samcharita — Sañcharita (See)

ସଂଗ୍ରହିବା—ଦେ. କି—ସଞ୍ଚାରିବା ( ଦେଖ )
Samcharibā — Sañcharibā (See)

ସଂଗ୍ରହୀ ( ଇତ୍ୟାଦି ) ସଂ. ବି ଓ ବିଣ—ସଞ୍ଚାରୀ ଇତ୍ୟାଦି (ଦେଖ)
Samchari (etc) (ସଂଗ୍ରହିଣୀ—ସ୍ତ୍ରୀ) Sañchari etc (See)

ସଂଗ୍ରହ୍ୟ - ସଂ. ବିଣ—ସଞ୍ଚାର୍ଯ୍ୟ ( ଦେଖ )
Samcharjya — Sañcharjya (See)

ସଂଗ୍ରଳନ ସଂ. ବି—ସଞ୍ଚାଳନ (ଦେଖ)
Samchalana (ସଂଗ୍ରଳିତ—ବିଣ) Sañchalana. (See)

ସଂଗ୍ରଳୀ—ସଂ. ବି ଓ ବିଣ. ପୁଂ—ସଞ୍ଚାଳୀ (ଦେଖ)
Samchali (ସଂଗ୍ରଳିନୀ—ସ୍ତ୍ରୀ) Sañchali (See)

ସଂଚିଆ—ଦେ. ବିଣ. ପୁଂ—ସଞ୍ଚିଆ (ଦେଖ)
Samchiā (ସଂଚେଇ—ସ୍ତ୍ରୀ) Sañchiā. ( See )

ସଂଚିତ ମାରିବା—ଗ୍ରାଦେ (ସମ୍ବଲପୁର) କି—ସଞ୍ଚିତ୍ ମାରିବା (ଦେଖ)
Samchit māribā — Sañchit māribā. (See)

ସଂଚିତ (ଇତ୍ୟାଦି)—ସଂ. ବିଣ—ସଞ୍ଚିତ ଇତ୍ୟାଦି (ଦେଖ)
Samchita (etc) — Sañchita etc. (See)

ସଂଚିତ୍ର। ସଂ. ବି—ସଞ୍ଚିତ୍ର। (ଦେଖ)
Samchitrā — Sañchitrā. (See)

ସଂଚିନ୍ତିତ—ସଂ. ବିଣ—ସଞ୍ଚିନ୍ତିତ (ଦେଖ)
Samchintita — Sañchintita. (See)

ସଂଚିବା ଦେ. କି—ସଞ୍ଚିବା (ଦେଖ)
Samchibā — Sañchibā. (See

ସଂଚିଲା (ଇତ୍ୟାଦି)—ଦେ. ବିଣ—ସଞ୍ଚିଲା ଇତ୍ୟାଦି (ଦେଖ)
Samchilā (etc) — Sañchilā etc. (See)

ସଂଚୂର୍ଣ୍ଣନ—ସଂ. ବି—ସଞ୍ଚୂର୍ଣ୍ଣନ (ଦେଖ)
Samchūrṇṇana — Sañchūrṇṇana (See)
[ସଂଚୂର୍ଣ୍ଣିତ—ବିଣ]

ସଂଚେତବ୍ୟ—ସଂ. ବିଣ—ସଞ୍ଚେତବ୍ୟ (ଦେଖ)
Samchetabya — Sañchetabya (See)
[ସଚେତବ୍ୟ - ଅନ୍ୟରୂପ]

ସଂଜ (ଇତ୍ୟାଦି)—ସଂ. ଓ ଦେ. ବି—ସଞ୍ଜ ଇତ୍ୟାଦି (ଦେଖ)
Samja (etc) — Sañja etc. (See)

ସଂଜନ—ସଂ. ବି—ସଞ୍ଜନ (ଦେଖ)
Samjana — Sañjana. (See)

ସଂଜବନ—ସ ବି—ସଞ୍ଜବନ (ଦେଖ)—
Samjabana — Sañjabana (See)

ସଂଜବ(ମ)ନୀ ପୁର(ରୀ)(ଇତ୍ୟାଦି)—ଦେ.ବି—ସଞ୍ଜବନୀ ପୁର (ଇତ୍ୟାଦି)
Samjaba(ma)ni pura (ri) (etc) (ଦେଖ)-Sañjabani pura etc (See)

ସଂଜୟ—ସଂ. ବି (ନାମ)—ସଞ୍ଜୟ (ଦେଖ)—
Samjaya — Sañjaya (See)

ସଂଜା (ଇତ୍ୟାଦି)—ସଂ ଓ ଦେ. ବି—ସଞ୍ଜା ଇତ୍ୟାଦି (ଦେଖ)
Samjā (etc) — Sañjā etc (See)

ସଂଜାଇ—ଦେ ବି.ସ୍ତ୍ରୀ—ସଞ୍ଜାଇ (ଦେଖ)—
Samjāi — Sañjāi (See)

ସଂଜାତ ସଂ. ବିଣ.—ସଞ୍ଜାତ (ଦେଖ)—
Samjāta — Sañjāta (See)

ସଂଜାତି—ଦେ. ବିଣ—ସଞ୍ଜାତି (ଦେଖ)—
Samjāti — Sañjati (See)

ସଂଜାପ(ବ)—ବୈଦେ. ବି—ସଞ୍ଜାପ (ଦେଖ) —
Samjāpa(ba) — Sañjāpa (See)

ସଂଜିଆ—ଗ୍ରାଂ ବି.—ସଞ୍ଜିଆ (ଦେଖ)
Samjiā — Sañjiā (See)

ସଂଜିଶୀର୍ଷା - ସଂ. ବି—ସଞ୍ଜିଶୀର୍ଷା (ଦେଖ)—
Samjibirshā — Sañjibirshā (See)

ସଂଜିଶୀର୍ଷୁ—ସଂ. ବିଣ—ସଞ୍ଜିଶୀର୍ଷୁ (ଦେଖ)—Sañjibirshu (See)
Samjibirshu

ସଂଜୀବନ—ସଂ. ବି—ସଞ୍ଜୀବନ (ଦେଖ)
Samjibana — Sañjibana (See)

ସଂଜୀବନୀ(ଇତ୍ୟାଦି)—ଦେ. ବିଣ.—ସଞ୍ଜୀବନୀ ଇତ୍ୟାଦି (ଦେଖ)
Samjibani (etc) — Sañjibani etc (See)

ସଂଜୁଆ—ଦେ. ବିଣ.—ସଞ୍ଜୁଆ ଦେଖ
Samjuā — Sañjuā (See)

ସଂଜୁ(ଜୋ)ଗ(ଟ, ତ)—ଦେ. ବି—ସଞ୍ଜୁଗ ଦେଖ—
Samju(jo)g(ṭ, t) — Sañjug (See)

ସଂଜ୍ଞ—ସଂ. ବିଣ. ପୁଂ—(ଅନ୍ୟ ଶବ୍ଦ ପରେ ସମାସରେ 'ସଂଜ୍ଞା' ଶବ୍ଦ
Samjña ଅକାରାନ୍ତ ହୋଇ 'ସଂଜ୍ଞ' ହୁଏ )—
[ସଞ୍ଜ୍ଞ, ସଂଜ୍ଞକ—ଅନ୍ୟରୂପ] ୧ । ସଂଜ୍ଞାଯୁକ୍ତ—1. Having
[ ସଂଜ୍ଞା, ସଂଜ୍ଞକା—ସ୍ତ୍ରୀ ] the definition of; styled as.
୨ । ଉପାଧିଯୁକ୍ତ—2. Having the title of.
୩ । ଗୁଳଗୁଳିବେଳେ ଯାହାର ହୁଇ ଆଣ୍ଠୁ ପରସ୍ପର ସାଙ୍ଗେ
ବାଜେ—3. Knock-kneed. (Apte) ୪ । ଅମୁକ
ନାମରେ ନାମିତ—4. Named; called. (Apte).
ସଂ. ବି—ଏକ ପ୍ରକାର ହଳଦିଆ ସୁଗନ୍ଧ କାଠ—
A yellow fragrant wood. (Apte)

ସଂଜ୍ଞପନ—ସଂ. ବି (ସମ୍ + ଜ୍ଞା. ଧାତୁ, ଣିଚ୍=ଜ୍ଞପି. ଧାତୁ=
Samjñapana ଜଣାଇବା + ଭାବ. ଅନ) —୧ । ମାରଣ;
ସଞ୍ଜ୍ଞପନ, ସଂଜ୍ଞପ୍ତି, ସଞ୍ଜ୍ଞପ୍ତି —ଅନ୍ୟରୂପ
ବଧ—1. Slaughter; killing. ୨ । ଜ୍ଞାପନ—2. Notifying; proclamation.

ସଂଜ୍ଞା—ସଂ. ବି (ସମ୍ + ଜ୍ଞା. ଧାତୁ + କରଣ. ଅ + ସ୍ତ୍ରୀ. ଆ; ଯାହାଦ୍ୱାରା
Samjñā ବସ୍ତୁ ଆଦି ଜଣାଯାଏ)—୧ । ଅଭିଧା; ଆଖ୍ୟା—
[ସଞ୍ଜ୍ଞା—ଅନ୍ୟରୂପ] 1. Appellation. ୨ । ନାମ—

2. Name; designation. ୩। [ବସ୍ତୁର ବା ପ୍ରାଣୀର] ବଶିଷ୍ଟତାବୋଧକ ଶବ୍ଦ—3. Technical name; a term denoting a particular thing or animal. ୪। ଉପାଧି—4. Title. ୫। ଜ୍ଞାନ—5. Knowledge; sensation; intelligence. ୬। ଚେତନା; ଚୈତନ୍ୟ—6. Consciousness; animation; sense-perception. ୭। ବୁଦ୍ଧି—7. Intellect. ୮। ସଂକେତ; ହସ୍ତାଦି ଦ୍ୱାରା ଅର୍ଥ-ସୂଚନା—8 A sign; a significant sign; gesture. ୯। [ବ୍ୟାକରଣ] ବଶେଷ୍ୟ ପଦ- 9 (grammar] A noun. ୧୦। (ବ୍ୟାକରଣ) -ବଶିଷ୍ଟ ଅର୍ଥ ବୋଧକ ବଶେଷ୍ୟ ବା ନାମ;ବ୍ୟକ୍ତି ବା ସ୍ଥାନବଶେଷର ନାମ—10. (grammar) Name or noun having a special meaning; proper name (Apte). ୧୧। (ବ୍ୟାକରଣ) ପ୍ରତ୍ୟୟର ବ୍ୟାକରଣଗତ ନାମ—11. (grammar) A technical name for an affix (Apte). ୧୨। ବେଦମାତା ଗାୟତ୍ରୀ ଦେବୀ; ଗାୟତ୍ରୀ ମନ୍ତ୍ର—12 The mystic formula 'Gāyatri' said to be the mother of the Bedas. ୧୩। ସୂର୍ଯ୍ୟପତ୍ନୀ (ସୂର୍ଯ୍ୟଙ୍କ ଅନ୍ୟ ପତ୍ନୀଙ୍କ ନାମ ଛାୟା)—13. Name of one of the two wives of the Sun-god [ଦ୍ର—ସଂଜ୍ଞା ବିଶ୍ୱକର୍ମାଙ୍କ କନ୍ୟା। ସୂର୍ଯ୍ୟ ଦେବ ଏହାଙ୍କ ପାଣି ଗ୍ରହଣ କରିଥିଲେ। କଥିତ ଅଛି ଯେ, ଏ ସୂର୍ଯ୍ୟଙ୍କର ପ୍ରଖର ତେଜ ସହିବାକୁ ଅସମର୍ଥ ହୋଇ ଅପଣା ତୁଲ୍ୟାକୃତି ଛାୟା ନାମ୍ନୀ ଏକ ରମଣୀଙ୍କୁ ସୃଷ୍ଟି କରି ତାଙ୍କ ସୂର୍ଯ୍ୟଙ୍କ ନିକଟରେ ରଖିଦେଇ ନିଜେ ଗୋପନରେ ପିତାଳୟକୁ ପ୍ରସ୍ଥାନ କଲେ। ଏହି ଛାୟାଙ୍କ ଗର୍ଭରେ ଶନି ଗ୍ରହଙ୍କର ଜନ୍ମ ହେଲା। ପରେ ବିଶ୍ୱକର୍ମା ଏହା ଅବଗତ ହୋଇ ତାଙ୍କୁ ଭର୍ତ୍ସନା କରିବାରୁ ସେ ଅଭିମାନରେ ପିତୃଗୃହ ପରିତ୍ୟାଗ କରି ଉତ୍ତର କୁରୁବର୍ଷ ଦେଶରେ ଅଶ୍ୱିନୀ (ଘୋଟକୀ) ରୂପ ଗ୍ରହଣ କରି ବିଚରଣ କଲେ। ଅନନ୍ତର ସୂର୍ଯ୍ୟଦେବ ତପୋବଳରେ ଏହା ଜାଣିପାରି ନିଜେ ଅଶ୍ୱରୂପ ଧାରଣ-ପୂର୍ବକ ସେହି ସ୍ଥାନରେ ଯାଇ ଅଶ୍ୱିନୀରୂପଧାରିଣୀ ସଂଜ୍ଞାଙ୍କ ସଙ୍ଗେ ମିଳିତ ହେଲେ ଏବଂ ସେଠାରେ ତାଙ୍କ ଔରସରେ ସଂଜ୍ଞାଙ୍କ ଗର୍ଭରୁ ଯମଜ ପୁତ୍ର ଅଶ୍ୱିନୀ-କୁମାର ଦ୍ୱୟ ଜାତ ହେଲେ। ଅଶ୍ୱିନୀରୂପ ଧାରଣ କରିବା ପୂର୍ବରୁ ସଂଜ୍ଞାଙ୍କ ଗର୍ଭରେ ସୂର୍ଯ୍ୟଙ୍କ ଔରସରେ ବୈବସ୍ୱତ ମନୁ, ଯମ ଓ ଯମୁନାଙ୍କର ଜନ୍ମ ହୋଇଥିଲା।] ଦେ. ବ— ୧। ବଂଶୋପାଧି—1. Family-title. ୨। ବଜ୍ଞାନ, ଶେଳ୍ପତତ୍ତ୍ୱାଦରେ ବ୍ୟବହୃତ ଶବ୍ଦମାନଙ୍କର ସ୍ୱରୂପ ବର୍ଣ୍ଣନା—2. The definition of technical and scientific terms.

ସଂଜ୍ଞା (margin: সংজ্ঞা / संज्ञा)

ସଂଜ୍ଞାନ—ସଂ. ବି (ସମ୍+ଜ୍ଞା ଧାତୁ+ଭାବ. ଅନ)—୧। ଜ୍ଞାନ—Samjnāna 1. Knowledge; sensation. ୨। ଚେତନା—(ସଞ୍ଜ୍ଞାନ—ଅନ୍ୟରୂପ) 2. Consciousness. ୩। ସଂକେତ—3. Sign; gesture.

ସଂଜ୍ଞାପନ —ସଂ.ବି (ସମ୍+ଜ୍ଞା.ଧାତୁ ଣିଚ ଜ୍ଞପି ଧାତୁ=ଜଣାଇବା+ଭାବ. ଅନ)—ଜ୍ଞାପନ; ଜଣାଇବା—Notifying; Samjnāpana (ସଞ୍ଜ୍ଞାପନ—ଅନ୍ୟରୂପ) the making of a thing [ସଂଜ୍ଞାପିତ, ସଂଜ୍ଞାପନୀୟ, ସଂଜ୍ଞାପ୍ୟ—ବିଣ] known.

ସଂଜ୍ଞା ବିଘାତୀ - ସଂ. ବି (ସଂଜ୍ଞା+ବି+ହନ୍ ଧାତୁ+କର୍ତ୍ତୃ. ଇନ୍; Samjnā bighāti ୧ମା. ୧ବ)—ଯାହା ଚୈତନ୍ୟ ଲୋପ [ସଂଜ୍ଞାବିଘାତିନୀ—ସ୍ତ୍ରୀ] କରେ—Causing loss of consciousness.

ସଂଜ୍ଞା ବିପର୍ଯ୍ୟ(ର୍ଯ୍ୟ)ୟ—ସଂ. ବି (୬ଷ୍ଠୀ ତତ୍)—ଚେତନାର ନାଶ—Samjnā biparjya(rja)ya Loss of consciousness (Apte)

ସଂଜ୍ଞା ଲବ୍ଧ—ସଂ. ବିଣ. ପୁଂ—ଲବ୍ଧସଂଜ୍ଞ; ଲବ୍ଧଚେତନ—Samjnā labdha One who has regained [ସଂଜ୍ଞାଲବ୍ଧା—ସ୍ତ୍ରୀ] consciousness.

ସଂଜ୍ଞା ଲାଭ—ସଂ. ବି (୬ଷ୍ଠୀ ତତ୍)—ଚେତନା ଲାଭ - Samjnā lābha Regaining of consciousness.

ସଂଜ୍ଞା ଲୋପ—ସଂ. ବି (୬ଷ୍ଠୀ ତତ୍)—ଚେତନା ଲୁପ୍ତହେବା; ବେହୋସ Samjnā lopa ହେବା ଅବସ୍ଥା—Loss of consciousness; becoming senseless.

ସଂଜ୍ଞା ଶୂନ୍ୟ—ସଂ. ବିଣ. ପୁଂ (୩ୟା ତତ୍)—ଅଚେତନ—Un-Samjnā sūnya conscious; devoid of sense. [ସଂଜ୍ଞାହୀନ—ଅନ୍ୟରୂପ] (ସଂଜ୍ଞାଶୂନ୍ୟା, ସଂଜ୍ଞାହୀନା—ସ୍ତ୍ରୀ)

ସଂଜ୍ଞା ସୁତ ସଂ. ବି—୧। ଯମ—1. The God of death. ୨। Samjnā suta ବୈବସ୍ୱତ ମନୁ—2. Baibaswata Manu. ୩। ଅଶ୍ୱିନୀକୁମାର ଦ୍ୱୟ—3. The twin Aswini-kumars. ୪। ଶନିଗ୍ରହ (ପ୍ରକୃତିବାଦ)—4. The planet- Saturn.

ସଂଜ୍ଞା ସୁତା—ସଂ. ବି—ଯମୁନା (ନଦୀ)—Samjnāsutā The river Jamunā.

ସଂଜ୍ଞିତ—ସଂ.ବିଣ. ପୁଂ— (ସଂଜ୍ଞା+ସଂଜାତ.ଅର୍ଥରେ.ଇତ)—ସଂଜ୍ଞାରେ Samjnita ବା ନାମରେ ଅଭିହିତ—Named as; known (ସଂଜ୍ଞିତା—ସ୍ତ୍ରୀ) as; called. [ଯଥା—କର୍ମସଂଜ୍ଞିତ=ଯହାକୁ [ସଞ୍ଜ୍ଞିତ—ଅନ୍ୟରୂପ] ଲୋକେ 'କର୍ମ' ନାମରେ ଡାକନ୍ତି।] [ଦ୍ର—ଏହି ଶବ୍ଦ କେବଳ ଅନ୍ୟ ନାମ ବା ବଶେଷ୍ୟ ସହିତ ସମାସରେ ଯୁକ୍ତ ହୁଏ, ଯଥା ଗୋପାଳସଂଜ୍ଞିତ।]

ସଂଜ୍ଞୁ—ସଂ. ବିଣ (ବହୁବ୍ରୀହି; ସମ୍=ମିଳିତ+ଜାନୁ; ଜାନୁ ସ୍ଥଳରେ Samjnu 'ଜ୍ଞୁ' ଆଦେଶ; ମିଳିତ ହୋଇଅଛି ଜାନୁଦ୍ୱୟ (ସଞ୍ଜ୍ଞୁ—ଅନ୍ୟରୂପ) ଯାହାର)—୧। ଯାହାର ଦୁଇଟି ଯାନୁ ଅଣ୍ଟୁ ପରସ୍ପର ସହିତ ମିଳି ଯାଇଅଛି—1. (a person)

Having the two knees joined together. ୨ । ଚାଲିଲାବେଳେ ଯାହାର ଦୁଇ ଆଣ୍ଠୁ ପରସ୍ପର ସଙ୍ଗେ ବାଜେ—2. Knock-kneed. (Apte)

ସଂଜ୍ୱର—ସଂ. ବି—ସଞ୍ଜ୍ୱର (ଦେଖ)—Sanjwara. (See)
Samjwara (ସଞ୍ଜ୍ୱର—ଅନ୍ୟରୂପ)

ସଂଜ୍ୟା—ଗ୍ରା. ବି—ସଞ୍ଜ୍ୟା (ଦେଖ)—Sanjyā. (See)
Samjyā (ସଞ୍ଜ୍ୟା—ଅନ୍ୟରୂପ)

ସଂଟା(ଟେ)ଇବା—ସଣ୍ଟାଇବା (ଦେଖ)
Samtā(te)ibā Santāiba (See)

ସଂଠ ଗ୍ରାଦେ. (ପଠମହଲ) ବିଣ—ସଣ୍ଠ (ଦେଖ)
Samtha Santha (See)

ସଂଠା(ଣ୍ଠା) ଦେ. ବି ଓ ବିଣ—ସଣ୍ଠଣ (ଦେଖ)—Santhana.
Samthana(nā) (ସଂଠଣା—ଅନ୍ୟରୂପ) (See)

ସଂଡ—ସଂ. ବି—ଷଣ୍ଡ (ଦେଖ)—Sanda. (See)
Samda (ଷଣ୍ଡ—ଅନ୍ୟରୂପ)

ସଂଡା(ଡେ)ଇବା—ଦେ. କ୍ରି—ଦଣ୍ଡେଇବା (ଦେଖ)
Samda(de)ibā Sandeibā (See)

ସଂଡାଶ(ଶି)—ବୈଦେ. ବି—ସଣ୍ଡାଶ (ଦେଖ)
Samdās(si) Sandās (See)

ସଂଡାଶି—ଦେ. ବି—ସଣ୍ଡାଶି (ଦେଖ)
Samdāsi Sandāsi. (See)

ସଂଡିଶ—ସଂ. ବି—ସଣ୍ଡିଶ (ଦେଖ)—Sandisa. (See)
Samdisa (ଷଣ୍ଡିଶ—ଅନ୍ୟରୂପ)

ସଂଡୀନ—ସଂ. ବି ଓ ବିଣ—ସଣ୍ଡୀନ (ଦେଖ)—Sandīna. (See)
Samdīna (ସଞ୍ଜୀନ—ଅନ୍ୟରୂପ)

ସଂଡୁଆଶି—ଦେ. ବି—ସଣ୍ଡୁଆଶି (ଦେଖ)
Samduāsi Sanduāsi. (See)

ସଂଡୁଆସ—ପ୍ରାଦେ. (ଉତ୍ତର ବାଲେଶ୍ୱର) ବି—ସଣ୍ଡୁଆସ (ଦେଖ)
Samduāsa Sanduāsa. (See)

ସଂଡେ (ଇତ୍ୟାଦ)—ବୈଦେ. ବି—ସଣ୍ଡେ ଇତ୍ୟାଦ (ଦେଖ)
Samde (etc) Sande etc. (See)

ସଂଢିଆ—ଦେ. ବି—ସଣ୍ଢିଅ (ଦେଖ)—Sandhiā. (See)
Samdhiā [ସଂଢିଅଲ—ଅନ୍ୟରୂପ]

ସଂତ(ଇତ୍ୟାଦ)—ସ. ଓ ଦେ-ବି—ସନ୍ତ ଇତ୍ୟାଦ (ଦେଖ)
Samta (etc) Santa etc (See)

ସଂତକ(ଇତ୍ୟାଦ)—ଦେ. ବି—ସନ୍ତକ ଇତ୍ୟାଦ (ଦେଖ)
Samtaka(etc) Santaka etc (See)

ସଂତତ(ଇତ୍ୟାଦ)—ସ. ବିଣ ଓ କ୍ରି. ବିଣ—ସନ୍ତତ ଇତ୍ୟାଦ (ଦେଖ)
Samtata (etc) Santata etc (See)

ସଂତତି—ସଂ. ଓ ଦେ. ବି—ସନ୍ତତି (ଦେଖ)
Samtati Santati (See)

ସଂତତେ—ଦେ. ଅ—ସନ୍ତତେ (ଦେଖ)
Samtate Santate (See)

ସଂତପତ(ନ୍ତ, ନ୍ଥ)—ଗ୍ରା. ବିଣ—ସନ୍ତପତ (ଦେଖ)
Samtapata (nta, ntha) Santapata (See)

ସଂତପତି—ଦେ. ବି—ସନ୍ତପତି (ଦେଖ)
Samtapati Santapati (See)

ସଂତପ୍ତ—ସଂ. ବିଣ ପୁଂ—ସନ୍ତପ୍ତ (ଦେଖ) Santapta (See)
Samtapta (ସନ୍ତପ୍ତା—ସ୍ତ୍ରୀ; ସନ୍ତପ୍ତି, ସନ୍ତାପ—ବି)

ସଂତମସ ସଂ. ବି—ସନ୍ତମସ (ଦେଖ)
Samtamasa Santamasa (See)

ସଂତରଣ (ଇତ୍ୟାଦ)—ସଂ. ବି—ସନ୍ତରଣ ଇତ୍ୟାଦ (ଦେଖ)
Samtarana (etc) Santarana etc (See)

ସଂତର ପଂତର—ଦେ. ବିଣ—ସନ୍ତର ପନ୍ତର (ଦେଖ)
Samtara pamtara Santara pantara (See)

ସଂତରା(ଇତ୍ୟାଦ) ଦେ. ବି—ସନ୍ତରା ଇତ୍ୟାଦ (ଦେଖ)
Samtarā (etc) Santarā etc (See)

ସଂତରିବା—ଦେ. କ୍ରି (ପଦ୍ୟ)—ସନ୍ତରିବା (ଦେଖ)—
Samtaribā Santaribā (See)

ସଂତର୍ପଣ(ଇତ୍ୟାଦ)—ସଂ. ବି—ସନ୍ତର୍ପଣ ଇତ୍ୟାଦ (ଦେଖ)—
Samtarpana (etc) Santarpana etc (See)

ସଂତସଂତିଆ—ଦେ: ବିଣ—ସନ୍ତ ସନ୍ତିଅ (ଦେଖ)—
Samtasamtiā Santasantiā (See)

ସଂତା—ଦେ. ବିଣ ଓ ବି—ସନ୍ତା (ଦେଖ)—
Samtā Santā (See

ସଂତା(ତେ)ଇବା—ଦେ: କ୍ରି—ସନ୍ତାଇବା (ଦେଖ)—
Samtā(te)ibā Santāibā (See)

ସଂତା(ତେ)ଇ ହେବା—ଦେ. କ୍ରି—ସନ୍ତାଇ ହେବା (ଦେଖ)—
Samtā(te)i hebā Santāi hebā (See)

ସଂତାନ(ଇତ୍ୟାଦ)—ସଂ. ବି—ସନ୍ତାନ ଇତ୍ୟାଦ (ଦେଖ)—
Samtāna (etc) Santāna etc (See)

ସଂତାନକ—ସଂ: ବି—ସନ୍ତାନକ (ଦେଖ)—
Samtānaka Santānaka (See)

ସଂତାନକା—ସଂ: ବି—ସନ୍ତାନକା (ଦେଖ)—
Samtānikā Santānikā (See)

ସଂତାନିତ—ସ: ବିଣ. ପୁଂ—ସନ୍ତାନିତ (ଦେଖ)
Samtānita (ସନ୍ତାନିତା—ସ୍ତ୍ରୀ) Santānita (See)

ସଂତାନି ପଂତାନି(ଇତ୍ୟାଦ) ଦେ: ବି—ସନ୍ତାନି ପନ୍ତାନି ଇତ୍ୟାଦ(ଦେଖ)
Samtāni pamtāni(etc) Santāni pantāni etc(See)

ସଂତାପ (ଇତ୍ୟାଦ)—ସଂ; ବି—ସନ୍ତାପ ଇତ୍ୟାଦ (ଦେଖ)
Samtāpa (etc) Santāpa etc (See)

ସଂତାପନ—ସଂ. ବି—ସନ୍ତାପନ (ଦେଖ)—
Samtāpana Santāpana (See)

ସଂତାପନୀୟ—ସଂ. ବିଣ—ସନ୍ତାପନୀୟ (ଦେଖ)—
Samtāpaniya Santāpaniya (See)

ସଂତାପିତ—ସଂ. ବିଣ—ସନ୍ତାପିତ (ଦେଖ)
Samtāpita Santāpita (See)

ସଂତାପି ହେବା—ଦେ: କ୍ରି—ସନ୍ତାପି ହେବା (ଦେଖ)—
Samtāpi hebā Santāpi hebā (See)

ସଂତାପୀ—ସଂ. ବିଣ—ସନ୍ତାପୀ (ଦେଖ)—
Samtāpi (ସନ୍ତାପିନୀ—ସ୍ତ୍ରୀ) Santāpi (See)

ସଂତି—ସଂ. ବ—ସନ୍ତି (ଦେଖ)—
Samti Santi (See)

ସଂତିଆ ଦେ. ବଣ: ପୁଂ—ସନ୍ତିଆ (ଦେଖ)—
Samtiā (ସନ୍ତେଇ—ସ୍ତ୍ରୀ) Santiā (See)

ସଂତୁ(ତୋ)ଳା—ଦେ. ବ ସନ୍ତୁଳା (ଦେଖ)—
Samtu(to)lā Santulā (See)

ସଂତୁଳା(ଳେ)ଇବା—ଦେ. କ୍ରି—ସନ୍ତୁଳାଇବା (ଦେଖ)—
Samtulā (le) ibā Santulāibā (See)

ସଂତୁଳିବା—ଦେ. କ୍ରି—ସନ୍ତୁଳିବା (ଦେଖ)
Samtulibā Santulibā (See)

ସଂତୁଳି ହେବା—ଦେ: କ୍ରି—ସନ୍ତୁଳି ହେବା (ଦେଖ)—
Samtuli hebā Santuli heba (See)

ସଂତୁଷ୍ଟ(ଇତ୍ୟାଦ)—ସଂ. ବଣ, ପୁଂ—ସନ୍ତୁଷ୍ଟ ଇତ୍ୟାଦ (ଦେଖ)—
Samtushta (etc) (ସଂତୁଷ୍ଟା—ସ୍ତ୍ରୀ) Santushta etc (See)

ସଂତୁଷ୍ଟି (ଇତ୍ୟାଦ)—ସଂ. ବ—ସନ୍ତୁଷ୍ଟି ଇତ୍ୟାଦ (ଦେଖ)—
Samtushti (etc) Santushti etc (See)

ସଂତୋଳନ—ସଂ: ବ—ସନ୍ତୋଳନ (ଦେଖ)—
Samtolana Santolana (See)

ସଂତୋଷ(ଇତ୍ୟାଦ)—ସଂ ବ—ସନ୍ତୋଷ ଇତ୍ୟାଦ (ଦେଖ)—
Samtosha (etc) Santosha etc (See)

ସଂତୋଷଣୀୟ—ସଂ: ବଣ.—ସନ୍ତୋଷଣୀୟ (ଦେଖ)—
Samtoshaniya Santoshaniya (See)

ସଂତୋଷିବା—ଦେ. କ୍ରି (ପଦ୍ୟ)—ସନ୍ତୋଷିବା (ଦେଖ)—
Samtoshibā santoshibā (See)

ସଂତୋଷୀ—ସଂ: ବଣ. ପୁଂ· ସନ୍ତୋଷୀ (ଦେଖ)—
Samtoshi (ସନ୍ତୋଷିଣୀ—ସ୍ତ୍ରୀ) Santoshi (See)

ସଂତ୍ରସ୍ତ—ସଂ· ବଣ. ପୁଂ—ସନ୍ତ୍ରସ୍ତ (ଦେଖ)—
Samtrasta (ସନ୍ତ୍ରସ୍ତା—ସ୍ତ୍ରୀ) Santraasta (See)

ସଂତ୍ରା—ଦେ: ବ: ଓ ବଣ—ସନ୍ତ୍ରା (ଦେଖ)—
Samtrā Santrā (See)

ସଂତ୍ରାସ—ସଂ: ବ—ସନ୍ତ୍ରାସ (ଦେଖ)—
Samtrāsa Santrāsa (See)

ସଂତ୍ରାସିତ—ସଂ. ବଣ. ପୁଂ—ସନ୍ତ୍ରାସିତ (ଦେଖ)
Samtrāsita (ସଂତ୍ରାସିତା—ସ୍ତ୍ରୀ) Santrāsita (See)

ସଂଥ(ଇତ୍ୟାଦ)—ଦେ ବ·—ସନ୍ଥ (ଇତ୍ୟାଦ)
Samtha (etc) Santha etc (see)

ସଂଥା—ଦେ: ବ—ସନ୍ଥା (ଦେଖ)—
Samthā Santhā (See)

ସଂଦ—ବୈଦେ· ବ—ସନ୍ଦ (ଦେଖ)
Samda Sanda (See)

ସଂଦଂଶ (ଇତ୍ୟାଦ)—ସଂ. ବ—ସନ୍ଦଂଶ ଇତ୍ୟାଦ (ଦେଖ)
Samdamśa (etc) Sandamśa etc. (See)

ସଂଦରସ୍—ବୈଦେ· ବ—ସନ୍ଦରସ୍ (ଦେଖ)
Samdaraś Sandaras (See)

ସଂଦର୍ଭ—ସଂ. ବ—ସନ୍ଦର୍ଭ (ଦେଖ)
Samdarbha Sandarbha (See)

ସଂଦର୍ଶନ—ସଂ. ବ—ସନ୍ଦର୍ଶନ (ଦେଖ)
Samdarśana Sandaraśana (See)

ସଂଦଷ୍ଟ (ଇତ୍ୟାଦ)—ସଂ. ବଣ—ସନ୍ଦଷ୍ଟ ଇତ୍ୟାଦ (ଦେଖ)
Samdashta (etc). Sandashta etc. (See)

ସଂଦାଡ଼—ପ୍ରାଦେ. (ବାଲେଶ୍ୱର) ବ—ସନ୍ଦାଡ଼ (ଦେଖ)
Samdārda Sandārda (See)

ସଂଦାନ—ସଂ. ବ—ସନ୍ଦାନ (ଦେଖ)
Samdāna (ସଂଦାନ—ବଣ) Sandāna (See)

ସଂଦାନିତ—ସଂ. ବଣ—ସନ୍ଦାନିତ (ଦେଖ)
Samdānita Sandānita (See)

ସଂଦାନିନୀ—ସଂ. ବ—ସନ୍ଦାନିନୀ (ଦେଖ)
Samdānini Sandānini (See)

ସଂଦାବ—ସଂ. ବ—ସନ୍ଦାବ (ଦେଖ)
Samdāba Sandāba (See)

ସଂଦି—ଗ୍ରା. ବ—ସନ୍ଦି (ଦେଖ)
Samdi Sandi (See)

ସଂଦିଆ (ଇତ୍ୟାଦ)—ଗ୍ରା. ବ—ସନ୍ଦିଆ ଇତ୍ୟାଦ (ଦେଖ)
Samdia (etc.) Sandhiā etc. (See)

ସଂଦିଆସି—ଗ୍ରା· ବ—ସନ୍ଦିଆସି (ଦେଖ)
Samdiāsi Sandiāsi (See)

ସଂଦିଗ୍ଧ (ଇତ୍ୟାଦ)—ସଂ. ବ—ସନ୍ଦିଗ୍ଧ ଇତ୍ୟାଦ (ଦେଖ)
Samdigdha (etc)· (ସଂଦିଗ୍ଧା—ସ୍ତ୍ରୀ) · Sandigdha etc. (See)

ସଂଦିଗ୍ଧତା—ସଂ. ବ—ସନ୍ଦିଗ୍ଧତା (ଦେଖ)
Samdigdhatā Sandigdhatā (See)

ସଂଦିତ—ସଂ. ବଣ—ସନ୍ଦିତ (ଦେଖ)
Samdita Sandita (See)

ସଂଦିଶା—ଗ୍ରା. ବ—ସନ୍ଦିଶା (ଦେଖ)
Samdiśā Sandiśā (See)

ସଂଦିଷ୍ଟ (ଇତ୍ୟାଦ)—ସଂ. ବଣ. ପୁଂ—ସନ୍ଦିଷ୍ଟ ଇତ୍ୟାଦ (ଦେଖ)
Samdishta (etc) Sandishta etc. (See)

ସଂଦିହାନ—ସଂ· ବଣ. ପୁଂ—ସନ୍ଦିହାନ (ଦେଖ)
Samdihāna (ସନ୍ଦିହାନା—ସ୍ତ୍ରୀ) Sandihāna (see)

ସଂଦୀ—ସଂ. ବ. ସ୍ତ୍ରୀ—ସନ୍ଦୀ (ଦେଖ)
Samdi Sandi (See)

ସଂଦୀପ୍ୟ—ସଂ. ବ. (ବୈଦ୍ୟକ)—ସନ୍ଦୀପ୍ୟ (ଦେଖ)
Samdipya Sandipya (See)

ସଂଦୃବ୍ଧ—ସଂ· ବଣ—ସନ୍ଦୃବ୍ଧ (ଦେଖ)
Samdrubdha Sandrubdha (See)

ସଂଦେ—ପ୍ରାଦେ. (ବାଲେଶ୍ୱର) ବ—ସନ୍ଦେ (ଦେଖ)
Samde Sande (See)

ସଂଦେଶ (ଇତ୍ୟାଦ)—ସଂ. ବ—ସନ୍ଦେଶ ଇତ୍ୟାଦ (ଦେଖ)
Samdeśa (etc) Sandeśa etc. (See)

ସଂଦେହ (ଇତ୍ୟାଦ)—ସଂ. ବ—ସନ୍ଦେହ ଇତ୍ୟାଦ ( ଦେଖ )
S mdeha (etc.) Sandeha etc. ( see )
ସଂଦେହୀ—ସଂ ଓ ଦେ ବ ଓ ଵଣ—ସନ୍ଦେହୀ ( ଦେଖ )
Samdehi Sandehi ( see )
ସଂଦୋହ —ସଂ. ବ—ସନ୍ଦୋହ ( ଦେଖ )
Samdoha Sandoha ( see )
ସଂଦ୍ରାବ—ସଂ ଓ ଦେ. ବ—ସନ୍ଦ୍ରାବ ( ଦେଖ )
Samdraba Sandrāba ( see )
ସଂଧା (ଇତ୍ୟାଦ)—ସଂ. ବ. ଦେ. ବ ଓ ଵଣ—ସନ୍ଧା ଇତ୍ୟାଦ(ଦେଖ)
Samdhā (etc). Sandhā etc. ( see )
ସଂଧା(ଧେ)ଇବା—ଦେ. ନି—ସନ୍ଧାଇବା ( ଦେଖ )
Samdhā(dhe)ibā Sandhāibā ( see )
ସଂଧାତବ୍ୟ—ସଂ. ଵଣ—ସନ୍ଧାତବ୍ୟ ( ଦେଖ )
Samdhātabya Sandhātabya ( see )
ସଂଧାନ (ଇତ୍ୟାଦ)—ସଂ. ବ—ସନ୍ଧାନ ଇତ୍ୟାଦ ( ଦେଖ )
Samdhāna etc. Sandhāna etc, ( see )
ସଂଧାନ—ଦେ. ବ ଓ ଵଣ—ସନ୍ଧାନ (ଦେଖ)
Samdhān Sandhān ( see)
(ସଂଧାନଅ—ଅନ୍ୟ ଵଣ ରୂପ)
ସଂଧାନକା—ସଂ. ବ—ସନ୍ଧାନକା ( ଦେଖ )
Samdhānikā Sandhānikā ( See )
ସଂଧାନତ - ସଂ. ଣେ—ସନ୍ଧାନତ ( ଦେଖ )
Samdhānita Sandhānita ( see )
ସଂଧାନୀ - ସଂ. ଵଣ. ପୁଂ—ସନ୍ଧାନୀ ( ଦେଖ )
Samdhāni (ସଂଧାନୀ—ସ୍ତ୍ରୀ) Sandhāni ( See )
ସଂଧି (ଇତ୍ୟାଦ)—ସଂ. ଓ ଦେ. ବ—ସନ୍ଧି ଇତ୍ୟାଦ ( ଦେଖ )
Samdhi (etc). Sandhi etc. ( see)
ସଂଧିଆ (ଇତ୍ୟାଦ)—ଦେ ଓ ଗ୍ରା ବ—ସନ୍ଧିଆ ଇତ୍ୟାଦ ( ଦେଖ )
Samdhiā (etc) Sandhiā etc. ( see )
ସଂଧିଆସୀ - ଗ୍ରା. ବ—ସନ୍ଧିଆସୀ ( ଦେଖ
Samdhiāsi Sandhiāsi ( see )
ସଂଧିକା—ସଂ. ବ—ସନ୍ଧିକା ( ଦେଖ )
Samdhika Sandhika ( see )
ସଂଧିକ—ସଂ ବ—ସନ୍ଧିକ ( ଦେଖ
Samdhikā Sandhikā ( see )
ସଂଧିଜ—ସଂ. ଵଣ—ସନ୍ଧିଜ ( ଦେଖ )
Samdhija Sandhija ( see )
ସଂଧିତ୍ସା - ସଂ.ବ—ସନ୍ଧିତ୍ସା ( ଦେଖ )
Samdhitsā Sandhitsā ( see )
ସଂଧିତ୍ସୁ—ସଂ ଵଣ—ସନ୍ଧିତ୍ସୁ ( ଦେଖ )
Samdhitsu Sandhitsu ( see )
ସଂଧିତ - ସଂ. ଵଣ—ସନ୍ଧିତ ( ଦେଖ )
Samdhita Sandhita ( see )
ସଂଧିନୀ—ସଂ. ବ. ସ୍ତ୍ରୀ—ସନ୍ଧିନୀ ( ଦେଖ )
Samdhini Sandhini ( see )

ସଂଧିବା—ଦେ. କି—ସନ୍ଧିବା ( ଦେଖ )
Samdhibā Sandhibā ( see )
ସଂଧିଲା—ସ. ବ—ସନ୍ଧିଲା ( ଦେଖ )
Samdhilā Sandhilā ( see )
ସଂଧୁକ୍ଷଣ—ସ. ବ—ସନ୍ଧୁକ୍ଷଣ ( ଦେଖ )
Samdhukshaṇa Sandhukshaṇa (see)
ସଂଧୁକ୍ଷିତ—ସ. ବ—ସନ୍ଧୁକ୍ଷିତ ( ଦେଖ )
Samdhukshita Sandhukshita ( see )
ସଂଧେଅ - ଗ୍ରା. ବ ( ଅଶୁଦ୍ଧ ଉଚ୍ଚାରଣ )—ସନ୍ଧେଅ ( ଦେଖ )
Samdhea Sandhea ( see )
ସଂଧେୟ—ସଂ. ଵଣ—ସନ୍ଧେୟ ( ଦେଖ )
Samdheya Sandheya ( see )
ସଂଧ୍ୟା ( ଇତ୍ୟାଦ )—ସଂ. ବ—ସନ୍ଧ୍ୟା ଇତ୍ୟାଦ ( ଦେଖ )
Samdhyā ( etc ) Sandhyā etc ( see)
ସଂନତ—ସଂ. ଵଣ—ସନ୍ନତ ( ଦେଖ )
Samnata Sannata ( see )
ସଂନତି—ସଂ. ବ—ସନ୍ନତି ( ଦେଖ )
Samnati Sannati ( see )
ସଂନଦ୍ଧ ସଂ. ଵଣ. ପୁଂ—ସନ୍ନଦ୍ଧ ( ଦେଖ )
Samnaddha Sannaddha ( see )
ସଂନମନ—ସଂ. ବ—ସନ୍ନମନ ( ଦେଖ )
Samnamana Sannamana ( see )
ସଂନୟ—ସଂ. ବ—ସନ୍ନୟ ( ଦେଖ )
Samnaya Sannaya ( see )
ସଂନହନ—ସଂ. ବ—ସନ୍ନହନ ( ଦେଖ )
Samnahana Sannahana ( see )
ସଂନାହ—ସଂ. ବ—ସନ୍ନାହ ( ଦେଖ )
Samnāha Sannāha ( see )

ସଂନାହ୍ୟ—ସଂ. ଵଣ. ଓ ବ—ସନ୍ନାହ୍ୟ ( ଦେଖ )
Samnāhya Sannāhya ( see)
ସଂନିକଟ—ସଂ. ଵଣ—ସନ୍ନିକଟ ( ଦେଖ )
Samnikaṭa Sannikaṭa ( see)
ସଂନିକର୍ଷ—ସଂ. ବ—ସନ୍ନିକର୍ଷ ( ଦେଖ )
Samnikarsha Sannikarsha ( see)
ସଂନିକର୍ଷଣ—ସଂ. ବ—ସନ୍ନିକର୍ଷଣ ( ଦେଖ )
Samnikarshaṇa Sannikarshaṇa ( see )
ସଂନିକୃଷ୍ଟ—ସଂ. ଵଣ—ସନ୍ନିକୃଷ୍ଟ ( ଦେଖ )
Samnikrushṭa Sannikrushṭa ( see )
ସଂନିଧ—ସଂ. ବ—ସନ୍ନିଧ ( ଦେଖ )
Samnidha Sannidha ( see )
ସଂନିଧାନ—ସଂ. ବ—ସନ୍ନିଧାନ ( ଦେଖ )
Samnidhāna Sannidhāna ( see )
ସଂନିଧାପନ(ନା)—ସଂ. ବ—ସନ୍ନିଧାପନ ( ଦେଖ )
Samnidhāpana(nā) Sannidhāpana ( see )

ସଂନ୍ଧାପନୀ ମୁଦ୍ରା—ସଂ. ବି—ସନ୍ଧାପନୀ ମୁଦ୍ରା ( ଦେଖ )
Samnidhapanī mudrā Sannidhapanī mudrā ( see )

ସଂନ୍ଧି ( ଇତ୍ୟାଦି )—ସଂ. ବି—ସନ୍ନିଧି ଇତ୍ୟାଦି ( ଦେଖ )
Samnidhi (etc) Sannidhi etc ( see )

ସଂନ୍ପତନ—ସଂ. ବି—ସନ୍ନିପତନ ( ଦେଖ )
Samnipatana Sannipatana ( see )

ସଂନ୍ପତିତ—ସଂ. ବିଣ—ସନ୍ନିପତିତ ( ଦେଖ )
Samnipatita Sannipatita ( see )

ସଂନ୍ପାତ (ଇତ୍ୟାଦି)—ସଂ. ବି—ସନ୍ନିପାତ ଇତ୍ୟାଦି ( ଦେଖ )
Samnipāta (etc) Sannipāta etc ( see )

ସଂନ୍ପାତନ—ସଂ. ବି—ସନ୍ନିପାତନ (ଦେଖ)
Samnipātana Sannipātana ( see )

ସଂନ୍ବଦ୍ଧ—ସଂ. ବିଣ—ସନ୍ନିବଦ୍ଧ ( ଦେଖ )
Samnibaddha Sannibaddha ( see )

ସଂନ୍ବନ୍ଧ—ସଂ. ବି—ସନ୍ନିବନ୍ଧ ( ଦେଖ )
Samnibandha Sannibandha ( see )

ସଂନ୍ବନ୍ଧନ—ସଂ. ବି—ସନ୍ନିବନ୍ଧନ ( ଦେଖ
Samnibandhana Sannibandhana ( see )

ସଂନ୍ବିଷ୍ଟ—ସଂ. ବିଣ—ସନ୍ନିବିଷ୍ଟ ( ଦେଖ )
Samnibishta Sannibishta ( see )

ସଂନ୍ବୃତ୍ତ—ସଂ. ବିଣ—ସନ୍ନିବୃତ୍ତ ଦେଖ )
Samnibrutta Sannibrutta ( see )

ସଂନ୍ବୃତ୍ତି—ସଂ. ବି—ସନ୍ନିବୃତ୍ତି ( ଦେଖ )
Samnibrutti Sannibrutti ( see )

ସଂନ୍ବେଶ ସଂ. ବି—ସନ୍ନିବେଶ ( ଦେଖ )
Samnibesa (ସନ୍ନିବିଷ୍ଟ—ବିଣ) Sannibesa ( see )

ସଂନ୍ଭ—ସଂ. ବିଣ—ସନ୍ନିଭ ( ଦେଖ )
Samnibha Sannibha ( see )

ସଂନ୍ହିତ—ସଂ. ବିଣ—ସନ୍ନିହିତ ( ଦେଖ )
Samnihita Sannihita ( see )

ସଂନ୍ୟସ୍ତ—ସଂ. ବିଣ—ସନ୍ନ୍ୟସ୍ତ ( ଦେଖ )
Samnyasta Sannyasta ( see )

ସଂନ୍ୟାସ (ଇତ୍ୟାଦି)—ସଂ. ବି—ସନ୍ନ୍ୟାସ ଇତ୍ୟାଦି (ଦେଖ )
Samnyāsa(etc) Sannyāsa etc (see)

ସଂନ୍ୟାସନ—ସଂ. ବି—ସନ୍ନ୍ୟାସନ ( ଦେଖ )
Samnyāsana Sannyāsana ( see )

ସଂନ୍ୟାସିନୀ—ସଂ. ବିଣ. ଓ ବି. ସ୍ତ୍ରୀ.—ସନ୍ନ୍ୟାସିନୀ ( ଦେଖ )
Samnyāsinī Sannyāsinī ( see )

ସଂନ୍ୟାସୀ—ସଂ. ଓ ଦେ. ବିଣ ଓ ବି ପୁଂ—ସନ୍ନ୍ୟାସୀ ( ଦେଖ )
Samnyāsī Sannyāsī ( see )

ସଂପତ୍ [ ଇତ୍ୟାଦି ]—ଦେ. ବି—ସମ୍ପତ୍ ଇତ୍ୟାଦି ( ଦେଖ )
Sampat [etc] Sampat etc ( see )

ସଂପତ—ଗ୍ରା. ବି—ସମ୍ପତ୍ତି ( ଦେଖ )
Sampati Sampatti ( see )

ସଂପତ୍ତି [ ଇତ୍ୟାଦି ]—ସଂ. ବି—ସମ୍ପତ୍ତି ଇତ୍ୟାଦି ( ଦେଖ )
Sampatti [ etc ] Sampatti etc ( see )

ସଂପତ୍ତି(ତ୍ତି)ଆ—ଦେ. ବିଣ—ସମ୍ପତ୍ତିଆ ( ଦେଖ )
Sampatti(ti)ā Sampattiā ( see )

ସଂପଦ୍ ( ଇତ୍ୟାଦି )—ସଂ. ବି—ସମ୍ପଦ୍ ଇତ୍ୟାଦି ( ଦେଖ )
Sampad ( etc Sampad etc ( see )

ସଂପଦ—ଦେ. ବି—ସମ୍ପଦ ( ଦେଖ );
Sampada Sampada ( see )

ସଂପଧି ଗ୍ରା. ବି ( ପ୍ରାଚୀନ ପଦ୍ୟ )—ସମ୍ପଧି ( ଦେଖ )
Sampadhi Sampadhi ( see )

ସଂପନ୍ନ—ସଂ. ବିଣ—ସମ୍ପନ୍ନ ( ଦେଖ )
Sampanna Sampanna ( see )

ସଂପରାୟ—ସଂ ବି—ସମ୍ପରାୟ ( ଦେଖ )
Samparāya Samparāya ( see )

ସଂପରାୟ[ୟି]କ—ସଂ. ବି—ସମ୍ପରାୟକ ( ଦେଖ )
Samparāy[yi]ka Samparāyaka ( see )

ସଂପରିଗ୍ରହ—ସଂ ବି—ସମ୍ପରିଗ୍ରହ ( ଦେଖ )
Samparigraha Samparigraha ( see )

ସଂପର୍କ [ ଇତ୍ୟାଦି ]—ସଂ. ବି—ସମ୍ପର୍କ ଇତ୍ୟାଦି ( ଦେଖ )
Samparka [ etc ] Samparka etc ( see )

ସଂପର୍କୀ—ସଂ. ବିଣ. ପୁଂ—ସମ୍ପର୍କୀ ( ଦେଖ )
Samparkī (ସମ୍ପର୍କିଣୀ—ସ୍ତ୍ରୀ) Samparkī ( see )

ସଂପର୍କୀୟ—ସଂ. ବିଣ. ପୁଂ—ସମ୍ପର୍କୀୟ ଦେଖ )
Samparkīya Samparkīya ( see )

ସଂପର୍ଦ—ଗ୍ରା. ବି ( ସଂ. ସଂପ୍ରଦାୟ )—ସମ୍ପର୍ଦା ( ଦେଖ )
Samparda Samparda ( see )

ସଂପର୍ଦାନ—ଗ୍ରା. ବି ( ସଂ. ସଂପ୍ରଦାନ )—ସମ୍ପର୍ଦାନ ( ଦେଖ )
Sampardāna Sampardāna ( see )

ସଂପା[ଇତ୍ୟାଦି]—ସଂ.ବି. ଓ ଦେ.ବି ଓ ବିଣ—ସମ୍ପା ଇତ୍ୟାଦି (ଦେଖ)
Sampā [etc] Sampā etc (see)

ସଂପା[ପେ]ଇବା—ଦେ. କି—ସମ୍ପାଇବା ( ଦେଖ )
Sampā[pe]ibā Sampāibā ( see )

ସଂପାକ ସଂ. ବିଣ ପୁଂ—ସମ୍ପାକ ଦେଖ )—Sampāka (see)
Sampāka ଦେ ବି ( ସଂ. ସୁପାକ )—ଭଲ ରନ୍ଧଣା—
Nice cooking. [ ଭ ସକଳ ଘରବା ଏକଠାରେ ସିଝାଇଲେ । ନଳ ବିଧି ସକଳରେ ସଂପାକ କରିଲେ—ପ୍ରାଚୀ, ନଳଚରିତ । ]

ସଂପାଗ—ଦେ. ବି—ପାକ; ରୋଷେଇ—Cooking. ( ଭ—ଚଣ
Sampāga ଫଗୀର ଚଳଇ ବାଳୀ । କହଇ ସଂପାଗ ମନ ହୁଅଇ
पाक रसोई —ପ୍ରତାପ. ଶଶିସେଣ । )

ସପାଗୀ—ଦେ ବିଣ—ଯେ ନିଜର ଖାଦ୍ୟ ଦ୍ରବ୍ୟ ନିଜ ହାତରେ
Sampāgi ପ୍ରସ୍ତୁତ କରେ—One who cooks his
ଯେ ସ୍ୱୟଂ ପାକକରେ स्वयंपाकी food own with his own hands.

ସଂପାଟ—ସଂ. ବି.—ସମ୍ପାଟ (ଦେଖ)
S m pāta Sampāta (see)

ସଂପାତ (ଇତ୍ୟାଦି)—ସଂ. ବି—ସମ୍ପାତ ଇତ୍ୟାଦି (ଦେଖ)
S m pāta (etc) S mpāta etc (see)

ସଂପାତି—ସଂ. ବି (ନାମ)—ସମ୍ପାତି (ଦେଖ)
S mpāti Sampāti (see)

ସଂପାତିକ—ସଂ. ବି—ସମ୍ପାତିକ (ଦେଖ)
S mpātika Sampātika (see)

ସଂପାଦ (ଇତ୍ୟାଦି)—ଗ୍ରା. ବି (ସଂ. ସମ୍ପାଦ)—ସମ୍ପାଦ ଇତ୍ୟାଦି (ଦେଖ)
S mpāda (etc) Sampāda etc (see)

ସଂପାଦକ—ସଂ. ବିଣ ଓ ବି. ପୁଂ—ସମ୍ପାଦକ (ଦେଖ)
Sampādaka (ସଂପାଦିକା ସ୍ତ୍ରୀ) Sampādaka (see)

ସଂପାଦକତା (ତ୍ୱ)—ସଂ. ବି—ସମ୍ପାଦକତା (ଦେଖ)
S mpādakatā (twa) S mpādakatā (see)

ସଂପାଦକୀୟ (ଇତ୍ୟାଦି)—ସଂ. ବିଣ—ସମ୍ପାଦକୀୟ ଇତ୍ୟାଦି (ଦେଖ)
S mpādakīya (etc) Sampada īya etc (see)

ସଂପାଦନ ଇତ୍ୟାଦି—ସଂ. ବି—ସମ୍ପାଦନ ଇତ୍ୟାଦି (ଦେଖ)
S mpādana (etc) Sampādana etc (see)

ସଂପାଦନୀୟ—ସଂ. ବିଣ—ସମ୍ପାଦନୀୟ (ଦେଖ)
S mpādanīya S mpadanīya (see)

ସଂପାଦୟିତା—ସଂ. ବିଣ. ପୁଂ—ସମ୍ପାଦୟିତା (ଦେଖ)
S mpādayitā Sampādayitā (see)
[ସଂପାଦୟିତ୍ରୀ ସ୍ତ୍ରୀ]

ସଂପାଦି (ଧାତୁ)—ସଂ—ସମ୍ପାଦି ଧାତୁ (ଦେଖ)
S mpādi (root) Sampādi root (see)

ସଂପାଦିତ—ସଂ. ବିଣ—ସମ୍ପାଦିତ (ଦେଖ)
S mpādita Sampādita (see)

ସଂପାଦିବା—ଦେ. କ୍ରି—ସମ୍ପାଦିବା (ଦେଖ)
S mpādibā Sampādibā (see)

ସଂପାଦ୍ୟ—ସଂ. ବିଣ ଓ ବି—ସମ୍ପାଦ୍ୟ (ଦେଖ)
S mpādya Sampādya (see)

ସଂପି ଦେବା—ଦେ. କ୍ରି—ସମ୍ପି ଦେବା (ଦେଖ)
S mpi debā S mpi debā (see)

ସଂପିବା—ଦେ. କ୍ରି—ସମ୍ପିବା (ଦେଖ)
Sampibā Sampibā (see)

ସଂପୀ—ଦେ. ବିଣ. ସ୍ତ୍ରୀ—ସମ୍ପୀ (ଦେଖ)
S mpī (ସଂପେଇ—ଅପଭ୍ରଂଶ) Sampī (see)

ସଂପୀଡ଼୍ (ଧାତୁ)—ସଂ—ସମ୍ପୀଡ଼୍ (ଧାତୁ) (ଦେଖ)
S mpīrd (root) Sampīrd root (see)

ସଂପୀଡ଼—ସଂ. ବି—ସମ୍ପୀଡ଼ (ଦେଖ)
S m īrd (ସଂପୀଡ଼ନ—ଅନୁରୂପ) Sampsrda (see)

ସଂପୀଡ଼ନୀୟ—ସଂ. ବିଣ—ସମ୍ପୀଡ଼ନୀୟ (ଦେଖ)
S m īrdaniya Sampīrdaniya (see)

ସଂପୀଡ଼ିତ—ସଂ. ବିଣ—ସମ୍ପୀଡ଼ିତ (ଦେଖ)
Sampīrdita Sampīrdita (se)

ସଂପୀଡ୍ୟମାନ—ସଂ. ବିଣ—ସମ୍ପୀଡ୍ୟମାନ (ଦେଖ)
Sampīdyamāna Sampīdyamāna (see)

ସଂପୀତି—ସଂ. ବି—ସମ୍ପୀତି (ଦେଖ)
Sampīti Sampīti (see)

ସଂପୁଟ (ଇତ୍ୟାଦି)—ସଂ. ବି ଓ ବିଣ—ସମ୍ପୁଟ ଇତ୍ୟାଦି (ଦେଖ)
S mputa (etc). S mputa etc. (see)

ସଂପୁଟକ—ସଂ. ବି—ସମ୍ପୁଟକ (ଦେଖ)
S mpūtaka Sampūtaka (see)

ସଂପୁଟିତ—ସଂ. ବିଣ—ସମ୍ପୁଟିତ (ଦେଖ)
S mpūtita Sampūtita. (see)

ସଂପୁନ୍ନ (ନ୍ୟ)—ଗ୍ରା. ବିଣ. (ସଂ. ସମ୍ପୂର୍ଣ୍ଣ)—ସମ୍ପୁନ୍ନ (ଦେଖ)
S mpunna(nya) S mpunna (see)

ସଂପୂର୍ଣ୍ଣ (ଇତ୍ୟାଦି)—ସଂ. ବିଣ—ସମ୍ପୂର୍ଣ୍ଣ ଇତ୍ୟାଦି (ଦେଖ)
S mpūrnna (etc) S mpūrnna etc. (see)

ସଂପୂର୍ଣ୍ଣତୟା—ସଂ. କ୍ରି. ବିଣ—ସମ୍ପୂର୍ଣ୍ଣତୟା (ଦେଖ)
S mpūrnnatayā S mpūrnnatayā. (see)

ସଂପୂର୍ଣ୍ଣତର (ମ)—ସଂ. ବିଣ—ସମ୍ପୂର୍ଣ୍ଣତର (ଦେଖ)
S m ūrnnatara(ma) S mpūrnnatara. (see)

ସଂପୂର୍ଣ୍ଣତା [ତ୍ୱ]—ସଂ. ବି—ସମ୍ପୂର୍ଣ୍ଣତ (ଦେଖ)
S m ūrnnatā[twa] S mpūrnnatā. (see)

ସଂପୂର୍ଣ୍ଣା—ସଂ. ବିଣ ଓ ବି ସ୍ତ୍ରୀ—ସମ୍ପୂର୍ଣ୍ଣା (ଦେଖ)
S mpūrnnā Sampūrnnā. (see)

ସଂପୃକ୍ତ—ସଂ. ବିଣ—ସମ୍ପୃକ୍ତ (ଦେଖ)
S mprukta Samprukta. (see)

ସଂପେଇ ଦେବା—ପ୍ରାଦେ. (ସାଙ୍କେତିକ) କ୍ରି—ସମ୍ପେଇ ଦେବା (ଦେଖ)
S mpei debā S mpei debā. (see)

ସଂପେଇବା—ଦେ. କ୍ରି—ସମ୍ପେଇବା (ଦେଖ)
S mpeibā S mpeibā. (see)

ସଂପୋଡ଼—ଦେ. ବି—ସମ୍ପୋଡ଼ (ଦେଖ)
S mporda Samporda. (See)

ସଂପୋଡ଼େ—ଦେ. କ୍ରି. ବିଣ—ସମ୍ପୋଡ଼େ (ଦେଖ)
S m orde S mporde. (see)

ସଂପୋଷ୍ୟ—ସଂ. ବିଣ—ସମ୍ପୋଷ୍ୟ (ଦେଖ)
S m oshyn Samposhyn. (see)

ସଂପ୍ରତି—ସଂ. ଅ—ସମ୍ପ୍ରତି (ଦେଖ)
S mprati Samprati. (see)

ସଂପ୍ରତିପତ୍ତି—ସଂ. ବି—ସମ୍ପ୍ରତିପତ୍ତି (ଦେଖ)
S mpratipatti S mpratipatti. (see)

ସଂପ୍ରତିରୋଧ—ସଂ. ବି—ସଂପ୍ରତିରୋଧ (ଦେଖ)
S mpratirodha Sampratirodha. (see)
(ସଂପ୍ରତିରୁଦ୍ଧ, ସଂପ୍ରତିରୋଧିତ—ବିଣ)

ସଂପ୍ରତିରୋଧକ—ସଂ. ବିଣ ଓ ବି. ପୁଂ—ସମ୍ପ୍ରତିରୋଧକ (ଦେଖ)
S mpratiradhaka Sampratirodhaka. (see)

ସଂପ୍ରଣୀତ—ସଂ. ବିଣ—ସମ୍ପ୍ରଣୀତ (ଦେଖ)
Sampratīta Sampratīta (see)

ସଂପ୍ରତୀତ—ସଂ. ବ—ସମ୍ପ୍ରତୀତ (ଦେଖ)
Sampratiti Sampratiti (see)
ସଂପ୍ରଦା—ଗ୍ରା. ବ—ସମ୍ପ୍ରଦା (ଦେଖ)
Samprada Sampradā (see)
ସଂପ୍ରଦାତା—ସଂ ବଣ ଓ ବ. ପୁଂ—ସମ୍ପ୍ରଦାତା (ଦେଖ)
Sampradātā [ସଂପ୍ରଦାତ୍ରୀ—ସ୍ତ୍ରୀ] Sampradātā (see)
ସଂପ୍ରଦାନ—ସଂ. ବ—ସମ୍ପ୍ରଦାନ (ଦେଖ)
Sampradāna (ସଂପ୍ରଦତ୍ତ—ବଣ) Sampradāna (see)
ସଂପ୍ରଦାନୀୟ—ସଂ. ବଣ—ସମ୍ପ୍ରଦାନୀୟ (ଦେଖ)
Sampradāniya Sampradāniya (see)
ସଂପ୍ରଦାୟ (ଇତ୍ୟାଦ)—ସମ୍ପ୍ରଦାୟ ଇତ୍ୟାଦ (ଦେଖ)
Sampradāya (etc) Sampradāya etc (see)
ସଂପ୍ରଧାରଣ(ଣା)—ସଂ. ବ—ସମ୍ପ୍ରଧାରଣ (ଦେଖ)
Sampradhāraṇ-[nā] Sampradhāraṇa (see)
ସଂପ୍ରପଦ—ସଂ. ବ—ସମ୍ପ୍ରପଦ (ଦେଖ)
Samprapada Samprapada (see)
ସଂପ୍ରଯୁକ୍ତ—ସଂ. ବଣ - ସମ୍ପ୍ରଯୁକ୍ତ (ଦେଖ)
Samprajukta Samprajukta (see)
[ସଂପ୍ରଯୋଜିତ-ମିଳିତ କ୍ରିୟାନ୍ୱିତ—ବଣ]
ସଂପ୍ରଯୋ(ୟୋ)ଗ—ସଂ. ବ. ପୁଂ—ସମ୍ପ୍ରଯୋଗ (ଦେଖ)
Samprajo(yo)ga Samprajyoga (see)
ସଂପ୍ରଯୋ(ୟୋ)ଗୀ—ସଂ. ବଣ—ସମ୍ପ୍ରଯୋଗ (ଦେଖ)
Samprajo(yo)gi Samprajogi (see)
ସଂପ୍ରଯୋ(ୟୋ)ଜକ—ସଂ. ବଣ. ପୁଂ—ସମ୍ପ୍ରଯୋଜକ (ଦେଖ)
Samprajo(yo)jaka samprajojaka (see)
[ସଂପ୍ରଯୋ(ୟୋ)ଜିକା—ସ୍ତ୍ରୀ]
ସଂପ୍ରଯୋ(ୟୋ)ଜନ(ନା)—ସଂ. ବ—ସମ୍ପ୍ରଯୋଜନ (ଦେଖ)
Samprajo(yo)jana(nā) Samprajojana (see)
ସଂପ୍ରସାଦ—ସଂ. ବ—ସମ୍ପ୍ରସାଦ (ଦେଖ)
Samprasāda Samprasāda (see)
ସଂପ୍ରସାରଣ—ସଂ. ବ—ସମ୍ପ୍ରସାରଣ (ଦେଖ)
Samprasāraṇa Samprasāraṇa (see)
[ସଂପ୍ରସାରିତ—ବଣ]
ସଂପ୍ରସ୍ଥିତ—ସଂ. ବଣ—ସମ୍ପ୍ରସ୍ଥିତ (ଦେଖ)
Samprsthita [ସଂପ୍ରସ୍ଥାନ—ବ] Samprasthita (see)
ସଂପ୍ରହାର—ସଂ. ବ—ସମ୍ପ୍ରହାର (ଦେଖ)
Samprahāra (ସଂପ୍ରହୃତ—ବଣ) Samprahāra (see)
ସଂପ୍ରାପତ—ଦେ. ବଣ—ସମ୍ପ୍ରାପତ (ଦେଖ)
Samprāpata Samprāpata (see)
ସଂପ୍ରାପ୍ତ—ସଂ ବଣ—ସମ୍ପ୍ରାପ୍ତ (ଦେଖ)
Samprāpta (ସଂପ୍ରାପ୍ତି—ବ) Samprāpta (see)
ସଂପ୍ରୀତ—ସଂ. ବଣ—ସମ୍ପ୍ରୀତ ଦେଖ
Samprita (ସଂପ୍ରୀତି—ବ) Samprita (see)
ସଂପ୍ରୈଷ—ସଂ. ବ—ସମ୍ପ୍ରୈଷ (ଦେଖ)
Sampraisha Sampraisha (see)

ସଂପ୍ଲବ—ସଂ. ବ—ସମ୍ପ୍ଲବ (ଦେଖ)
Samplaba (ସଂପ୍ଲୁତ, ସଂପ୍ଲାବିତ—ବଣ) Samplaba (see)
ସଂଫାଲ—ସଂ. ବ—ସମ୍ଫାଲ (ଦେଖ)
Samphāla Samphāla (see)
ସଂଫୁଲ୍ଲ—ସଂ. ବଣ—ସମ୍ଫୁଲ୍ଲ (ଦେଖ)
Samphulla Samphulla (see)
ସଂବ (ଧାତୁ)—ସମ୍ବ (ଧାତୁ) (ଦେଖ)
Samb root Samb root (see)
ସଂବ ସଂ. ବ—ସମ୍ବ (ଦେଖ)
Samba Samb (see)
ସଂବଚ୍ଛର—ଗ୍ରା. ବ (ସଂ. ସଂବତ୍ସରର ଅଶୁଦ୍ଧ ଉଚ୍ଚାରଣ)—ସମ୍ବତ୍ସର
Sambachhara (ଦେଖ)—Sambatsara (see)
ସଂବତ୍—ସଂ. ବ—ସମ୍ବତ୍ (ଦେଖ)
Sambat Sambat (see)
ସଂବତ୍ସର - ସଂ. ବ—ସମ୍ବତ୍ସର (ଦେଖ)
Sambatsara Sambatsara (see)
ସଂବଦନ—ସଂ. ବ—ସମ୍ବଦନ (ଦେଖ)
Sambadana Sambadana (see)
ସଂବଦ୍ଧ—ସଂ. ବଣ—ସମ୍ବଦ୍ଧ ( ଦେଖ )
Sambaddha Sambaddha (see)
ସଂବନନ—ସଂ. ବ—ସମ୍ବନନ ( ଦେଖ )
Sambanana Sambanana (see)
ସଂବନ୍ଧ (ଇତ୍ୟାଦ)—ସଂ. ବ—ସମ୍ବନ୍ଧ ଇତ୍ୟାଦ ( ଦେଖ )
Sambandha (etc.) Sambandha etc. (see)
ସଂବନ୍ଧା ସଂବନ୍ଧୀ—ଦେ. ବ—ସମ୍ବନ୍ଧା ସମ୍ବନ୍ଧୀ ( ଦେଖ )
Sambandhā sambandhi
Sambandhā sambandhi (see)
ସଂବନ୍ଧିନୀ—ସଂ. ବ ଓ ବଣ: ସ୍ତ୍ରୀ—ସମ୍ବନ୍ଧିନୀ ( ଦେଖ )
Sambandhini Sambandhini (see)
ସଂବନ୍ଧୀ—ସଂ. ବଣ. ଓ ବ, ପୁଂ—ସମ୍ବନ୍ଧୀ ( ଦେଖ )
Sambandhi Sambandhi (see)
ସଂବନ୍ଧୀୟ ସଂ. ବଣ—ସମ୍ବନ୍ଧୀୟ ( ଦେଖ )
Sambandhiya Sambandhiya (see)
ସଂବର (ଇତ୍ୟାଦ)—ସଂ. ବ—ସମ୍ବର ଇତ୍ୟାଦ (ଦେଖ)
Sambara (etc) Sambara etc (see)
ସଂବରଣ (ଇତ୍ୟାଦ)—ସଂ. ବ.—ସମ୍ବରଣ ଇତ୍ୟାଦ (ଦେଖ)
Sambaraṇa (etc) Sambaraṇa etc (see)
ସମ୍ବରି(ଇତ୍ୟାଦି)—ଦେ. ବଣ. (ସଂ.ସାମ୍ବରୀ)—ସମ୍ବରୀ ଇତ୍ୟାଦି (ଦେଖ)
Sambari (etc) Sambari etc (see)
ସଂବରିତ ସଂ ବଣ.—ସମ୍ବରିତ (ଦେଖ )
Sambarita Sambarita (see)
ସଂବରିବା—ଦେ. କ୍ରି—(ସଂ. ସଂବରଣ)—ସମ୍ବରିବା (ଦେଖ)
Sambaribā Sambaribā (see)
ସଂବରୀ—ସଂ. ବ. (ବୈଦ୍ୟକ)—ସମ୍ବରୀ (ଦେଖ)
Sambari Sambari (see)

ସଂବର୍ତ୍ତ—ସଂ. ବି—ସମ୍ବର୍ତ୍ତ (ଦେଖ)
Sambartta Sambartta (See)
ସଂବର୍ତ୍ତକ—ସଂ. ବି—ସମ୍ବର୍ତ୍ତକ (ଦେଖ)
Sambarttaka Sambarttaka (See)
ସଂବର୍ତ୍ତକୀ—ସଂ. ବି—ସମ୍ବର୍ତ୍ତକୀ (ଦେଖ)
Sambarttakī Sambarttakī (See)
ସଂବର୍ତ୍ତି—ସଂ. ବି—ସମ୍ବର୍ତ୍ତି (ଦେଖ)
Sambartti (ସଂବର୍ତ୍ତିକା—ଅନ୍ୟରୂପ) Sambartti (See)
ସଂବର୍ଦ୍ଧକ—ସଂ. ବିଣ. ପୁଂ—ସମ୍ବର୍ଦ୍ଧକ (ଦେଖ)
Sambarddhaka Sambarddhaka (See)
(ସଂବର୍ଦ୍ଧିକା—ସ୍ତ୍ରୀ)
ସଂବର୍ଦ୍ଧନ(ନା)—ସଂ. ବି—ସମ୍ବର୍ଦ୍ଧନ (ଦେଖ)
Sambardhhana(nā) Sambarddhana (See)
ସଂବର୍ଦ୍ଧିତ (ଇତ୍ୟାଦି)—ସଂ. ବିଣ—ସମ୍ବର୍ଦ୍ଧିତ ଇତ୍ୟାଦି (ଦେଖ)
Sambarddhita (etc) Sambardhita etc. (See)
ସଂବର୍ମି(ର୍ମ୍ମି)ତ—ସଂ. ବିଣ—ସମ୍ବର୍ମ୍ମିତ (ଦେଖ)
Sambarmi(rmmi)ta Sambarmmita (See)
ସଂବଳ (ଇତ୍ୟାଦି)—ସଂ. ବି—ସମ୍ବଳ ଇତ୍ୟାଦି (ଦେଖ)
Sambaḷa (etc) Sambaḷa etc. (See)
ସଂବଳା (ଇତ୍ୟାଦି)—ଦେ. ବି ଓ ବିଣ—ସମ୍ବଳା ଇତ୍ୟାଦି (ଦେଖ)
Sambaḷā (etc) Sambaḷā etc. (See)
ସଂବଲ୍ଲ—ଦେ. ବି (ନାମ)—ସମ୍ବଲ୍ଲ (ଦେଖ)
Sambalā Sambalā (See)
[ସଂବଲ୍ଲ(ଲେ)ଇ, ସବଲେଶ୍ବରୀ—ଅନ୍ୟରୂପ]
ସଂବଲ୍ଲ(ଲେ)ଈ ଗଣ୍ଡ—ଦେ. ବି—ସମ୍ବଲ୍ଲଈ ଗଣ୍ଡ (ଦେଖ)
Sambalā(le)ī ganda Sambalāī ganda (See)
ସଂବଳିତ—ସଂ. ବିଣ—ସମ୍ବଳିତ (ଦେଖ)
Smabaḷita Sambaḷita (See)
ସଂବସଥ—ସଂ. ବି—ସମ୍ବସଥ (ଦେଖ)
Smabasatha Sambasatha (See)
ସଂବହ—ସଂ.ବି. (ବୈଦିକ)—ସମ୍ବହ (ଦେଖ)
Sambaha Sambaha (See)
ସଂବହିକା—ସଂ. ବି—ସମ୍ବହିକା (ଦେଖ)
Sambahikā Sambahikā (See)
ସଂବା(ବେ)ଇବା—ଦେ. କ୍ରି—ସମ୍ବାଇବା (ଦେଖ)
Sambā(be)ibā Sambāibā (See)
ସଂବାକୃତ—ସଂ. ବି ଓ ବିଣ—ସମ୍ବାକୃତ (ଦେଖ)—Sambākṛuta
Sambākṛuta (ଶଂବାକୃତ—ଅନ୍ୟରୂପ) (See)
ସଂବାଦ(ଇତ୍ୟାଦି)—ସଂ. ବି—ସମ୍ବାଦ ଇତ୍ୟାଦି (ଦେଖ)
Sambāda (etc) Sambāda etc. (See)
ସଂବାଦୀ—ସଂ. ବିଣ. ପୁଂ—ସମ୍ବାଦୀ (ଦେଖ)
Sambādī [ସଂବାଦିନୀ—ସ୍ତ୍ରୀ] Sambādī (See)
ସଂବାଧ—ସଂ. ବି—ସମ୍ବାଧ (ଦେଖ)
Sambādha Sambādha (See)

ସଂବାଧନ—ସଂ. ବି—ସମ୍ବାଧନ (ଦେଖ)
Sambādhana (ସଂବାଧିତ—ବିଣ) Sambādhana (See)
ସଂ(ସଁ)ବାର—ଗ୍ରା. ବି—ସମ୍ବାର (ଦେଖ)
Sam(sañ)bāra Sambāra (See)
ସଂ(ସଁ)ବାରିଆ - ଗ୍ରା. ବିଣ ଓ ବି. ପୁଂ—ସମ୍ବାରିଆ (ଦେଖ)
Sam(sañ)bāriā [ସଂ(ସଁ)ବାରିଆଣୀ—ସ୍ତ୍ରୀ] Sambāriā (See)
ସଂବାଳ—ଦେ. ବି ଓ ବିଣ—ସମ୍ବାଳ (ଦେଖ)
Sambāḷa Sambāḷa (See)
ସଂ(ସଁ)ବାଳି(ଳୁ)ଆ—ଦେ. ବି—ସମ୍ବାଳିଆ (ଦେଖ)
Sam(sañ)bāḷi(ḷu)ā Sambāḷiā (See)
ସଂବାଳିବା—ଦେ. କ୍ରି—ସମ୍ବାଳିବା (ଦେଖ)
Sambāḷibā Sambāḷibā (See)
ସଂବାସ—ସଂ. ବି—ସମ୍ବାସ (ଦେଖ)
Sambāsa Sambāsa (See)
ସଂବାହ—ସ. ବି—ସମ୍ବାହ (ଦେଖ)
Sambāha Sambāha (See)
ସଂବାହକ—ସଂ. ବି. ଓ ବିଣ. ପୁଂ—ସମ୍ବାହକ (ଦେଖ)
Sambāhaka (ସଂବାହିକା—ସ୍ତ୍ରୀ) Sambāhaka (See)
ସଂବାହନ—ସଂ. ବି—ସମ୍ବାହନ (ଦେଖ)
Sambāhana Sambāhana (See)
ସଂବାହିତ—ସଂ. ବିଣ—ସମ୍ବାହିତ (ଦେଖ)
Sambāhita Sambāhita (See)
ସଂବିଗ୍ନ—ସଂ. ବିଣ—ସମ୍ବିଗ୍ନ (ଦେଖ)
Sambigna Sambigna (See)
ସଂବିତ୍—ସଂ. ବି—ସମ୍ବିତ୍ (ଦେଖ)
Sambit Sambit (See)
ସଂବିତ୍ତି—ସଂ. ବି—ସମ୍ବିତ୍ତି (ଦେଖ)
Sambitti Sambitti (See)
ସଂବିଦ୍ବ୍ୟତିକ୍ରମ—ସଂ. ବି—ସମ୍ବିଦ୍ ବ୍ୟତିକ୍ରମ (ଦେଖ)
Sambid-byatikrama Sambid-byatikrama (See)
ସଂବିଦା(ଇତ୍ୟାଦି)—ସଂ. ବି—ସମ୍ବିଦା ଇତ୍ୟାଦି (ଦେଖ)
Sambidā(etc) Sambidā etc. (See)
ସଂବିଦିତ—ସଂ. ବିଣ—ସମ୍ବିଦିତ (ଦେଖ)
Sambidita Sambidita (See)
ସଂବିଧା—ସଂ. ବି—ସମ୍ବିଧା (ଦେଖ)
Sambidhā (ସଂବିଧାନ—ଅନ୍ୟରୂପ) Sambidhā (See)
ସଂବିଭକ୍ତ—ସଂ: ବିଣ—ସମ୍ବିଭକ୍ତ (ଦେଖ)
Sambibhakta (ସଂବିଭାଗ—ବି) Sambibhakta (See)
ସଂବିଷ୍ଟ—ସଂ. ବିଣ—ସମ୍ବିଷ୍ଟ (ଦେଖ)
Sambishṭa (ସଂବେଶ—ବି) Sambishṭa (See)
ସଂବୀକ୍ଷଣ—ସଂ ବି.—ସମ୍ବୀକ୍ଷଣ (ଦେଖ)
Sambīkshaṇa (ସଂବୀକ୍ଷିତ—ବିଣ) Sambīkshaṇa (See)
ସଂବୀତ—ସଂ. ବିଣ—ସମ୍ବୀତ (ଦେଖ)
Sambīta Sambīta (See)

ସଂବୁଦ୍ଧ—ସଂ. ବଣ—ସମ୍ବୁଦ୍ଧ (ଦେଖ)
Sambuddha Sambuddha (See)

ସମ୍ବୁଦ୍ଧି—ସ. ବ—ସମ୍ବୁଦ୍ଧି (ଦେଖ)
Sambuddhi Sambuddhi (See)

ସମ୍ବୃତ—ସ. ବଣ—ସମ୍ବୃତ (ଦେଖ)
Sambr̥uta Sambr̥uta (See)

ସମ୍ବୃତି—ସ ବ—ସମ୍ବୃତି (ଦେଖ)
Sambr̥uti ambr̥uti (See)

ସମ୍ବୃତ୍ତ—ସ. ବଣ—ସ ୃତ୍ତ (ଦେଖ)
Sambr̥utta Sambr̥utta (See)

ସଂବୃତ୍ତି—ସ. ବ—ସମ୍ବୃତ୍ତି (ଦେଖ)
Sambr̥utti Sambr̥utti (See)

ସଂବେଗ—ସ. ବ—ସମ୍ବେଗ (ଦେଖ)
Sambega Sambega (See)

ସଂବେଦ—ସ. ବ—ସମ୍ବେଦ (ଦେଖ)
Sambeda Sambeda (See)

ସଂବେଦନ(ନା)—ସ. ବ—ସମ୍ବେଦନ (ଦେଖ)
Sambedana(nā) Sambedana (See)

ସଂବେଦ୍ୟ—ସ. ବଣ—ସମ୍ବେଦ୍ୟ (ଦେଖ)
Sambedya Sambedya (See)

ସଂବେଶ—ସ. ବ—ସମ୍ବେଶ (ଦେଖ)
Sambeśa Sambeśa (See)

ସଂବେଶନ—ସ. ବ—ସମ୍ବେଶନ (ଦେଖ)
S-mbeśana Sambeśana (See)

ସଂବୋଧ—ସ. ବ—ସମ୍ବୋଧ (ଦେଖ)
Sambodha Sambodha (See)

ସଂବୋଧନ (ଇତ୍ୟାଦି)—ସ. ବ—ସମ୍ବୋଧନ ଇତ୍ୟାଦି (ଦେଖ)
Sambodhana (etc) Sambodhana etc. (See)
[ସମ୍ବୋଧିତ—ବଣ]

ସଂବୋଧିବା—ଦେ. କି. (ପଦ୍ୟ)—ସମ୍ବୋଧିବା (ଦେଖ)
Sambodhibā Sambodhibā (See)

ସଂବ୍ୟାନ—ସ. ବ—ସମ୍ବ୍ୟାନ (ଦେଖ)
Sambyāna Sambyāna (See)

ସଂଭବ (ଇତ୍ୟାଦି)—ସ. ବ—ସମ୍ଭବ ଇତ୍ୟାଦି (ଦେଖ)
Sambhaba (etc) Sambhaba etc. (See)

ସଂଭବତଃ—ସଂ. ଅ—ସମ୍ଭବତଃ (ଦେଖ)
Sambhabatah Sambhabatah (See)

ସଂଭବିବା—ଦେ. କି. (ପଦ୍ୟ)—ସମ୍ଭବିବା (ଦେଖ)
Sambhabibā Sambhabibā (See)

ସଂଭବୀ—ଦେ. ବଣ—ସମ୍ଭବୀ (ଦେଖ)
S mbhabi Sambhabī (See)

ସଂଭବ୍ୟ—ସଂ. ବଣ—ସମ୍ଭବ୍ୟ (ଦେଖ)
Sambhabya Sambhabya (See)

ସଂଭର(ବ)—ଦେ. ବ—ସମ୍ଭର (ଦେଖ)
Sambhara(rba) Sambhara (See)
[ସଂଭରବ—ଅନ୍ୟରୂପ]

ସଂଭରବେ—ଦେ କ୍ର. ବଣ—ସମ୍ଭରବେ (ଦେଖ)
Sambharabe Sambharabe (See)

ସଂଭରିବା—ଦେ. କି—ସମ୍ଭରିବା (ଦେଖ)
Sambharibā Sambharibā (See)

ସଂଭଳ—ସଂ. ବ (ନାମ)—ସମ୍ଭଳ (ଦେଖ)
Sambhaḷa Sambhaḷa (See)

ସଂଭଳା (ଇତ୍ୟାଦି)—ଦେ. ବ—ସମ୍ଭଳା ଇତ୍ୟାଦି (ଦେଖ)
Sambhaḷ (etc) Sambhaḷā etc. (See)

ସଂଭଳୀ—ସ. ବ ସ୍ତ୍ରୀ—ସମ୍ଭଳୀ (ଦେଖ)
Sambhaḷī Sambaḷī (See)

ସଂଭା(ଭେ)ଇବା—ଦେ. କି—ସମ୍ଭାଇବା (ଦେଖ)
Sambhā(bhe)ibā Sambhāibā (See)

ସଂଭାବନ—ସ. ବ—ସମ୍ଭାବନ (ଦେଖ)
Sambhābana Sambhābana (See)

ସଂଭାବନା (ଇତ୍ୟାଦି)—ସ. ବ—ସମ୍ଭାବନା ଇତ୍ୟାଦି (ଦେଖ)
Sambhābanā (etc) Sambhābanā etc (See)

ସଂଭାବନୀୟ—ସ. ବଣ—ସମ୍ଭାବନୀୟ (ଦେଖ)
Sambhābanīya Sambhābanīya (See)

ସଂଭାବିତ—ସ. ଓ ଦେ. ବଣ—ସମ୍ଭାବିତ (ଦେଖ)
Sambhābita Sambhābita (See)

ସଂଭାବ୍ୟ—ସ. ବଣ—ସମ୍ଭାବ୍ୟ (ଦେଖ,—Sambhābya (See)
Sambhābya (ସଂଭାବନୀୟ—ଅନ୍ୟରୂପ)

ସଂଭାର—ସଂ. ବ—ସମ୍ଭାର (ଦେଖ)
Sambhāra Sambhāra (See)

ସଂଭାରେ—ଦେ. କି. ବଣ—ସମ୍ଭାରେ (ଦେଖ)
Sambhāre Sambhāre (See)

ସଂଭାଳ (ଇତ୍ୟାଦି)—ଦେ. ବଣ—ସମ୍ଭାଳ ଇତ୍ୟାଦି (ଦେଖ)
Sambhāḷa (etc) Sambhāḷa etc (See)

ସଂଭାଳନ୍ତା—ଦେ. ବଣ—ସମ୍ଭାଳନ୍ତା (ଦେଖ)
Sambhāḷantā Sambhāḷantā (See)

ସଂଭାଳିଆ—ଗ୍ରା. ବଣ ଓ ବ—ସମ୍ଭାଳିଆ (ଦେଖ)
Sambhāḷiā Sambhāḷiā (See)

ସଂଭାଳି ନେବା—ଦେ. କି—ସମ୍ଭାଳି ନେବା (ଦେଖ)
Sambhāḷi nebā Sambhḷi nebā (See)

ସଂଭାଳିବ—ଦେ. କି—ସମ୍ଭାଳିବା (ଦେଖ)
Sambhāḷibā Sambāhāḷibā (See)

ସଂଭାଳି ଯି(ହେ)ବା—ଦେ. କି—ସମ୍ଭାଳି ଯିବା (ଦେଖ)
Sambhāḷi ji(he)bā Sambhāḷi jibā (See)

ସଂଭାଳୁଆ—ଗ୍ରା. ବ—ଶୁଆଁବାଳି (ଦେଖ)
Sambhāḷuā Suāñbāḷi (See)

ସଂଭାଷ(ଷା)—ସଂ. ବ—ସମ୍ଭାଷ (ଦେଖ)
Sambhāsha(shā) Sambhāsha (See)

ସଂଭାଷଣ(ଣା)—ସଂ. ବ—ସମ୍ଭାଷଣ (ଦେଖ)
Sambhāshaṇa(ṇā) Sambhāshaṇa (See)

ସଂଭାଷଣା ଦେବା—ଦେ. କ୍ରି—ସମ୍ଭାଷଣା ଦେବା (ଦେଖ)
Sambhāshanā deba Sambhāsanā debā (See)

ସଂଭାଷିବା ଦେ. କ୍ରି (ପଦ୍ୟ)—ସମ୍ଭାଷିବା (ଦେଖ)
Sambhāshibā Sambhāshibā (See)

ସଂଭାଷୀ—ସଂ. ବଣ. ପୁଂ—ସମ୍ଭାଷୀ (ଦେଖ)
Sambhāshī (ସଂଭାଷିଣୀ – ସ୍ତ୍ରୀ) Sambhāshī (See)

ସଂଭିନ୍ନ –ସ. ବଣ—ସମ୍ଭିନ୍ନ (ଦେଖ)
Sambhinna Sambhinna (See)

ସଂଭୁ—ସଂ.ବଣ—ସମ୍ଭୁ (ଦେଖ)
Sambhu Sambhu (See)

ସଂଭୁକ୍ତ—ସଂ. ବଣ—ସମ୍ଭୁକ୍ତ (ଦେଖ)
Sambhukta Sambhukta (See)

ସଂଭୂତ (ଇତ୍ୟାଦ)—ସଂ. ବଣ—ସମ୍ଭୂତ ଇତ୍ୟାଦ (ଦେଖ)
Sambhūta(etc) Sambhūta etc (See)

ସଂଭୂତି—ସଂ. ବ—ସମ୍ଭୂତି (ଦେଖ)
Sambhūti Sambhūti (See)

ସଂଭୂୟ—ସଂ. ଅ—ସମ୍ଭୂୟ (ଦେଖ)
Sambhūya Sambhūya (See)

ସଂଭୂୟକାରୀ – ସଂ. ବଣ. ପୁଂ—ସମ୍ଭୂୟକାରୀ (ଦେଖ)
Sambhūyakārī(ସଂଭୂୟକାରିଣୀ – ସ୍ତ୍ରୀ) Sambhūyakārī(See)

ସଂଭୂୟ ସଂଧାନ—ସଂ, ବଂ—ସମ୍ଭୂୟ ସନ୍ଧାନ (ଦେଖ)
Sambhūya samdhāna Sambhūya sandhāna (See)

ସଂଭୂୟ ସମୁତ୍ଥାନ—ସଂ.ବ—ସମ୍ଭୂୟ ସମୁତ୍ଥାନ (ଦେଖ)
Sambhūya samutthāna
(ସଂଭୂୟସମୁତ୍ଥିତ—ବଣ) Sambhūya samutthāna (See)

ସଂଭୃତ—ସଂ. ବଣ—ସମ୍ଭୃତ (ଦେଖ)
Sambhṛuta Sambhṛuta (See)

ସଂଭୃତି—ସଂ. ବ—ସମ୍ଭୃତି (ଦେଖ)
Sambhṛuti Sambhṛuti (See)

ସଂଭେଦ – ସଂ. ବ—ସମ୍ଭେଦ (ଦେଖ)
Sambheda (ସଂଭିନ୍ନ—ବଣ) Sambheda (See)

ସଂଭୋଗ (ଇତ୍ୟାଦ)—ସଂ. ବ—ସମ୍ଭୋଗ ଇତ୍ୟାଦ (ଦେଖ)
Sambhoga (etc) Sambhoga etc. (See)

ସଂଭୋଗୀ – ସ. ବଣ. ପୁଂ – ସମ୍ଭୋଗୀ (ଦେଖ)
Sambhogī (ସଂଭୋଗିନୀ—ସ୍ତ୍ରୀ) Sambhogī (See)

ସଂଭ୍ରମ (ଇତ୍ୟାଦ)—ସଂ. ବ—ସମ୍ଭ୍ରମ ଇତ୍ୟାଦ (ଦେଖ)
Sambhrama (etc) Sambhrama etc. (See)

ସଂଭ୍ରାନ୍ତ (ଇତ୍ୟାଦ)—ସଂ. ବଣ—ସମ୍ଭ୍ରାନ୍ତ ଇତ୍ୟାଦ (ଦେଖ)
Sambhrānta (etc) Sambhrānta etc. (See)

ସଂମତ (ଇତ୍ୟାଦ)—ସଂ. ବଣ—ସମ୍ମତ ଇତ୍ୟାଦ (ଦେଖ)
Sammata (etc) Sammata etc. (See)

ସଂମତି (ଇତ୍ୟାଦ)—ସଂ. ବଣ – ସମ୍ମତି ଇତ୍ୟାଦ (ଦେଖ)
Sammati (etc) Sammati etc. (See

ସଂମଦ—ସଂ. ବଣ—ସମ୍ମଦ (ଦେଖ)
Sammada Sammada (See)

ସଂମର୍ଦ୍ଦ(ର୍ଦ୍ଦ)—ସଂ. ବ—ସମ୍ମର୍ଦ୍ଦ (ଦେଖ)
Sammarda(rdda) Sammarda (See)

ସଂମାତୁର—ସଂ. ବ. ପୁଂ—ସମ୍ମାତୁର (ଦେଖ)
Sammātura Sammātura (See)

ସଂମାଦ—ସଂ. ବ—ସମ୍ମାଦ (ଦେଖ)
Sammāda Sammāda (See)

ସଂମାନ (ଇତ୍ୟାଦ)—ସ. ବ—ସମ୍ମାନ ଇତ୍ୟାଦ (ଦେଖ)
Sammāna (etc) Sammāna etc. (See)

ସଂମାନନ(ନା)—ସଂ. ବ—ସମ୍ମାନନ (ଦେଖ)
Sammānana(nā) Sammānana (See)

ସଂମାନନୀୟ—ସଂ. ବଣ. ପୁଂ—ସମ୍ମାନନୀୟ (ଦେଖ)
Sammānanīya Sammānanīya (See)

ସଂମାନିତ – ସଂ. ବଣ—ସମ୍ମାନିତ (ଦେଖ)
Sammānita Sammanita (See)

ସଂମାର୍ଜ(ର୍ଜ୍ଜ)କ—ସ. ବଣ. ପୁଂ · ସମ୍ମାର୍ଜକ (ଦେଖ)
Sammārja(rjja)ka Sammārjaka (See)
[ସଂମାର୍ଜି(ର୍ଜ୍ଜି)କା—ସ୍ତ୍ରୀ]

ସଂମାର୍ଜ(ର୍ଜ୍ଜ)ନ(ନା)—ସଂ. ବ—ସମ୍ମାର୍ଜନ (ଦେଖ)
Sammārja(rjja)na(nā) Sammārjjana (See)
[ସଂମାର୍ଜି(ର୍ଜ୍ଜି)ତ, ସଂମାର୍ଜ(ର୍ଜ୍ଜ)ନୀୟ—ବଣ]

ସଂମାର୍ଜ(ର୍ଜ୍ଜ)ନୀ—ସଂ. ବ—ସମ୍ମାର୍ଜନୀ (ଦେଖ)
Sammārja(rjja)nī Sammārjanī (See)

ସଂମିତ – ସଂ. ବଣ—ସମ୍ମିତ (ଦେଖ)
Sammita Sammita (See)

ସଂମିଳନ(ନୀ) (ଇତ୍ୟାଦ)—ସଂ. ବ—ସମ୍ମିଳନ ଇତ୍ୟାଦ (ଦେଖ)
Sammilana(ni) (etc) Samilana etc. (See)

ସଂମିଳିତ (ଇତ୍ୟାଦ) – ସଂ. ବଣ – ସମ୍ମିଳିତ ଇତ୍ୟାଦ (ଦେଖ)
Sammilita (etc) Sammilita etc. (See)

ସଂମିଶ୍ର – ସଂ. ବଣ—ସମ୍ମିଶ୍ର (ଦେଖ)
Sammisra Sammisra (See)

ସଂମିଶ୍ରଣ—ସଂ. ବ—ସମ୍ମିଶ୍ରଣ (ଦେଖ)
Sammisrana Sammisrana (See)

ସଂମୁଖ (ଇତ୍ୟାଦ)—ସଂ. ବ – ସମ୍ମୁଖ ଇତ୍ୟାଦ (ଦେଖ)
Sammukha (etc) Sammukha etc. (See)

ସଂମୁଖୀନ (ଇତ୍ୟାଦ)—ସଂ. ବଣ—ସମ୍ମୁଖୀନ ଇତ୍ୟାଦ (ଦେଖ)
Sammukhīna (etc) Sammukhīna (See)

ସଂମୁଗ୍ଧ—ସଂ. ବଣ ପୁଂ—ସମ୍ମୁଗ୍ଧ (ଦେଖ)
Sammugdha (ସଂମୁଗ୍ଧା—ସ୍ତ୍ରୀ) Sammugdha (See)

ସଂମୂଢ—ସଂ. ବଣ—ସମ୍ମୂଢ (ଦେଖ)
Sammūrdha (ସଂମୋହ—ବ) Sammūrdha (See)

ସଂମୂର୍ଚ୍ଛଦ—ସ. ବ. (ବୈଦ୍ୟକ)—ସମ୍ମୂର୍ଚ୍ଛଦ (ଦେଖ)
Sammūrchchhada Sammūrchchhada (See)

ସଂମୂର୍ଚ୍ଛନ(ନା) (ଇତ୍ୟାଦ)—ସଂ. ବ—ସମ୍ମୂର୍ଚ୍ଛନ ଇତ୍ୟାଦ (ଦେଖ)
Sammūrchchhana(nā) (etc) Sammūrchchhana etc. (See)
(ସଂମୂର୍ଚ୍ଛିତ—ବଣ)

ସଂମୂଳ—ଦେ. ବଣ—ସମ୍ମୂଳ (ଦେଖ)
Sammūla Sammūla (See)

ସଂମୃଷ୍ଟ—ସଂ ବଣ—ସମ୍ମୃଷ୍ଟ (ଦେଖ)
Sammrushta Sammrushta (See)

ସଂମେଳନ(ଣୀ)—ସଂ. ବି.—ସମ୍ମେଳନ (ଦେଖ)
Sammelana(ni) Sammelana (See)

ସଂମୋଦ—ସଂ. ବି.—ସମ୍ମୋଦ (ଦେଖ)
Sammoda Sammoda (See)

ସଂମୋହ—ସଂ. ବି.—ସମ୍ମୋହ (ଦେଖ)
Sammoha Sammoha (See)
[ସଂମୁଗ୍ଧ, ସଂମୋହିତ—ବଣ]

ସଂମୋହନ—ସଂ ବି—ସମ୍ମୋହନ (ଦେଖ)
Sammohana Sammohana (See)

ସଂଯ—ସଂ. ବି—(ସମ୍ = ଏକତ୍ରେ + ଯମ୍ ଧାତୁ = ନିବୃତ୍ତି ହେବା + Samja କର୍ତ୍ତି. ଅ; ମ. ଲୋପ)—ପ୍ରାଣୀର ଦେହମଧ୍ୟସ୍ଥ ଯଥାବତ ଅବସ୍ଥିତ ସମୁଦାୟ ଅସ୍ଥି କଙ୍କାଳ—Skeleton.

ସଂଯତ୍—ସଂ. ବି—(ସମ୍ + ଯମ୍ ଧାତୁ + ଅଧି. କ୍ୱିପ୍)—୧ । ସଂଗ୍ରାମ; Samjat ଯୁଦ୍ଧ—Battle; fight. ୨ । ସଂଶୟ—Doubt.

ସଂଯତ୍—ଦେ. ବି—(ସୁବକ ବ୍ୟାୟାମର ପ୍ରବର୍ତ୍ତିତ ଡ୍ରିଲ୍ ସମ୍ବନ୍ଧୀୟ Sam-jat ଆଦେଶ ବଚନ)—ଧୀରସ୍ଥିର ଭାବରେ ଡୁଇ ହାତକୁ ସଂଯତ **चौकसी** ଲମ୍ବାଇ ଠିଆ ହୁଅ—Attention! (as used in drill).

ସଂଯତ—ସଂ. ବଣ. ପୁଂ—(ସମ୍ + ଯମ୍ ଧାତୁ + କର୍ମ ତ) ୧ । ବଦ୍ଧ—Samjata 1. Bound. ୨ । ଅବରୁଦ୍ଧ—2. Confined.
(ସଂଯତା—ସ୍ତ୍ରୀ) ୩ । ନିବୃତ୍ତ; ରୁଦ୍ଧ; କୃତସଂଯମ—3. Re-
(ସଂଯମ, ସଂଯାମ, ସଂଯମନ—ବି) strained; checked.
୪ । ଯେ ଇନ୍ଦ୍ରିୟାଦିକୁ ବଶ କରିଅଛି; ଜିତେନ୍ଦ୍ରିୟ—4. Self-controlled. ୫ । ନିୟମିତ; ନିଯନ୍ତ୍ରିତ—5. Controlled; regulated; moderated. ୬ । ବଶୀଭୂତ—6. Kept under control; over-powered. ୭ । ତୃପ୍ତ—7. Statiated.

ସଂଯତ ଚିତ୍ତ—ସଂ. ବଣ. ପୁ—(ବହୁବ୍ରୀହି, ସଂଯତ ଚିତ୍ତ ଯାହାର)—Samjata chitta. ସଂଯତାତ୍ମା (ଦେଖ)—Samjatātmā
(ସଂଯତ ଚିତ୍ତବୃତ୍ତି, ସଂଯତଚେତାଃ—ଅନ୍ୟରୂପ) (See)
[ସଂଯତ ଚିତ୍ତା, ସଂଯତ ଚିତ୍ତବୃତ୍ତି, ସଂଯତଚେତାଃ—ସ୍ତ୍ରୀ]

ସଂଯତ ବ୍ରତ—ସଂ. ବଣ. ପୁଂ(ବହୁବ୍ରୀହି)—କୃତସଂଯମ; ନିୟମନିଷ୍ଠ—Samjata brata One who has taken the vow of self control; practising self-restraint.
(ସଂଯତ ବ୍ରତା—ସ୍ତ୍ରୀ)

ସଂଯତାଚାର—ସଂ. ବଣ. ପୁ—(ବହୁବ୍ରୀହି)—ମିତାଚାର—Samjatāchāra Moderate in conduct.
[ସଂଯତାଚାରା—ସ୍ତ୍ରୀ]

ସଂଯତାହାର—ସଂ ବଣ. ପୁ—(ବହୁବ୍ରୀହି)—ପରିମିତାହାର—Samjatāhāra Moderate in food; abstemious in food.
(ସଂଯତାହାରା—ସ୍ତ୍ରୀ)

ସଂଯତାତ୍ମା—ସଂ. ବଣ. ପୁ ଓ ସ୍ତ୍ରୀ—(ବହୁବ୍ରୀହି, ସଂଯତ ହୋଇଅଛି Samjatātmā ଆତ୍ମା ଯାହାଦ୍ୱାରା; ୧ମା. ୧ବ)—ଜିତମନା ଯେ ଆପଣାର ଇନ୍ଦ୍ରିୟମାନଙ୍କୁ ଓ ମନକୁ ବଶୀଭୂତ କରିଅଛି—Self-controlled; one who has subdued his passions.

ସଂଯତେନ୍ଦ୍ରିୟ—ସଂ ବଣ. ପୁଂ—(ବହୁବ୍ରୀହି; ସଂଯତ ହୋଇଅଛି ଇନ୍ଦ୍ରିୟ Samjatendriya ଯାହାଦ୍ୱାରା)—ଯେ ଆପଣାର ଇନ୍ଦ୍ରିୟମାନଙ୍କୁ
(ସଂଯତେନ୍ଦ୍ରିୟା—ସ୍ତ୍ରୀ) ବଶୀଭୂତ କରିଅଛି—One who has subdued or controlled his organs of sense.
(ସଂଯତେନ୍ଦ୍ରିୟତା—ବି)

ସଂଯଦ୍‌ବର—ସଂ ବି. ପୁଂ—(ସଂଯତ୍ = ସଂଗ୍ରାମ + ବର = ଶ୍ରେଷ୍ଠ; ୭ମୀ Samjad-bara ତତ୍)—ରାଜା; ନୃପ—King.

ସଂଯନ୍ତା—ସଂ. ବଣ. ପୁଂ—(ସମ୍ + ଯମ୍ ଧାତୁ + କର୍ତ୍ତି. ତୃ, ୧ମା. ୧ବ.)—Samjantā ସଂଯମକାରୀ; ନିୟନ୍ତା—Controlling;
(ସଂଯନ୍ତ୍ରୀ - ସ୍ତ୍ରୀ) regulating.

ସଂଯ(ଯା)ମ—ସଂ. ବି. (ସମ୍ + ଯମ ଧାତୁ + ଭାବ. ଅ)—୧ । ବନ୍ଧନ—Samja(jā)ma 1. Binding; confinement; im-
(ସଂଯମନ—ଅନ୍ୟରୂପ) prisonment. ୨ । ନିୟମ; ବ୍ରତପାଳନ—2. Observance of a religious vow or fast. ୩ । ନିରୋଧ; ରୋଧ—3. Restraint. ୪ । ଇନ୍ଦ୍ରିୟ ନିରୋଧ; ଇନ୍ଦ୍ରିୟ ନିଗ୍ରହ—4. Self-control; subduing one's passions. ୫ । ବ୍ରତାଦିର ପୂର୍ବ ଦିନ ହବିଷ୍ୟ ଭୋଜନ ଓ ଇନ୍ଦ୍ରିୟ ନିଗ୍ରାହାଦି ରୂପ ବିଧି; ଏକବାର—5. Moderation in diet etc. observed on the day previous to the day of fasting. ୬ । ସମାଧି ଯୋଗ; ଧ୍ୟାନ—6. Deep meditation or abstraction; contemplation of the Infinite Supreme Being. ୭ । (+କର୍ମ ଅ) ଚତୁଃଶାଳ ଗୃହ; ଚଉକମରା ଘର—7. Four houses built continuously round a square or courtyard. ୮ । (+କର୍ତ୍ତି. ଅ) ଯମଦେବ—8. The God of death. ଦେ. ବି—ଗାଢ଼ ଆଲିଙ୍ଗନ—
आलिंगन
गोद Tight embrace.
[ଭି—ହୃଦୟ ସଂଯମେ ପୟୋଧର ଉପରେ ପୀଡ଼, ମଦନ ରସ ସ୍ୱଭାବେ ଭୁଜେ ଭୁଜ ଭିଡ଼ । ପ୍ରାଚୀ. ରସକଲ୍ଲୋଳ ।]

ସଂଯମନୀ—ସଂ. ବି. (ସମ୍ + ଯମ୍ ଧାତୁ + ଅଧି. ଅନ + ସ୍ତ୍ରୀ. ଈ)—Samjamanī ଯମପୁରୀ—The abode of the God of
(ସଂଯମନୀପୁର—ଅନ୍ୟରୂପ) death. [ଭି—ସ୍ୱଯେ ଧନ ରାଜନ ସ୍ୱାମସେନ ଘେନି, ସୁଖେ ଯାଇ କରି ବସିବେ ସଂଯମନୀ । କୃଷ୍ଣସିଂହ. ମହାଭାରତ. ବନ ।]

**ସଂଯମମଣିପୁର ଦେଖା(ଖୋ)ଇବା**—ଦେ. କ୍ରି—ମାରି ପକାଇବା—
Samjamanipura dekhā(khe)ibā To kill.
ଯମପুର দেখান **यमपुर दिखलाना**

**ସଂଯମମଣିପୁର ଦେଖିବା**—ଦେ. କ୍ରି—ଯମପୁରକୁ ଯିବା; ମରିବା—
Samjamanipura dekhibā To die; (lit.) to go
ଯମপুর দেখা **यमपुर देखना** to the abode of death.

**ସଂଯମମଣିପୁରକୁ ପଠା(ଠେ)ଇବା**—ଦେ. କ୍ରି—ମାରି ଦେବା; ହତ୍ୟା
Samjamanipuraku pathā(the)iba କରିବା—To
(ସଂଯମମଣିପୁରକୁ ପେଷିବା—ଅନ୍ୟରୂପ) kill.
ଯমপুর পাঠান **यमपुर पहुँचाना**

**ସଂଯମିତ**—ସଂ. ବିଣ. ( ସମ୍+ଯମ୍ ଧାତୁ ଣିଚ=ଯମି ଧାତୁ+
Samjamita କର୍ମ. ତ)—୧ । ଦମିତ—1. Restrained;
controlled. ୨ । ରୁଦ୍ଧ—2. Bound; checked.
୩ । ନିୟମିତ—3. Regulated. ୪ । କୃତ ସଂଯମ—
4. Self-controlled.

**ସଂଯମିବା**—ଦେ. କ୍ରି. (ସଦ୍ୟ)—ସଂଯତ କରିବା—To restrain;
Samjamiba to check; to regulate. [ ଉ—ଧ୍ୟାନ
সংযত করা ଧାରଣା ବୃତ୍ତି ସଙ୍ଗେ, ସଂଯମି ଶବ୍ଦ ସାବଧାନେ ।
**संयत करना** ଜଗନ୍ନାଥ. ଭାଗବତ ।]

**ସଂଯମୀ**—ସଂ. ବିଣ. ପୁଂ (ସଂଯମ+ଅସ୍ତ୍ୟର୍ଥରେ ଇନ୍; ୧ମା. ୧ବ)—
Samjami ୧ । ଇନ୍ଦ୍ରିୟ ସଂଯମ ଯୁକ୍ତ—1. Having the
(ସଂଯମିନୀ—ସ୍ତ୍ରୀ) passions under control. ୨ । ଯୋଗ-
ରତ, ସମାଧିରତ—2. Engaged in abstract
meditation. ସଂ. ବି. ପୁଂ—୧ । ମୁନି; ଯୋଗୀ—
1. A sage. ୨ । ଜିତେନ୍ଦ୍ରିୟ ବ୍ୟକ୍ତି—2. A person who has the passions and senses
under control.

**ସଂଯାତ୍ରା**—ସଂ. ବି(ସମ୍+ଯା.ଧାତୁ=ଯିବା+ଭାବ.ତ୍ର+ଅ)—୧ । ସଂଯାନ
Samjātrā (ଦେଖ)—1. Samjāna. (See) ୨ । ଅନୁଯାତ୍ରା;
ବହୁ ଲୋକଙ୍କର ଏକତ୍ର ଗମନ—2. A travelling
of many persons together. ୩ । ଜଳପଥରେ
ଦଳବଦ୍ଧ ହୋଇ ଗମନ—3. Starting of many
persons together in a voyage. ୪ । ଏକ
ଦ୍ୱୀପରୁ ଦ୍ୱୀପାନ୍ତରକୁ ଗମନ—4. A voyage or
sailing from one island to another;
transportation.

**ସଂଯାତ୍ରିକ**—ସଂ. ବିଣ ( ସମ୍+ଯା. ଧାତୁ=ଯିବା+ତ୍ର+ଇକ )—ଏକ
Samjātrika ସଙ୍ଗରେ ଯିବା ଯାତ୍ରିଗଣ—Pilgrims
(ସଂଯାତ୍ରିକା—ସ୍ତ୍ରୀ) travelling together.

**ସଂଯାନ**—ସଂ. ବି ( ସମ୍+ଯା. ଧାତୁ=ଯିବା+ଭାବ. ଅନ )—
Samjāna ୧ । ସମ୍ୟକ୍ ଗମନ ( ଯଥା—ଶୋଭାଯାତ୍ରା )—1. A
special starting (e. g. a procession) ୨। ବହୁ
ଲୋକଙ୍କର ଏକତ୍ର ଗମନ; ସହଯାତ୍ରା—2. Travelling in a body; a pilgrimage in
company. ୩ । (+କର୍ତ୍ତୃ.ଅନ) ସୂଚୀ—3. A needle.
୪ । ଛାଞ୍ଚ—4. A mould ୫ । (+କର୍ମ.ଅନ) ସମ୍ମେଳନ
—5 A conference; an association.

**ସଂଯାବ**—ସଂ. ବି (ସମ୍+ଯୁ. ଧାତୁ=ମିଶ୍ରିତ କରିବା+କର୍ମ. ଅ)—
Samjāba ଘୃତ, କ୍ଷୀର, ଗୁଡ଼ ଆଦି ଦ୍ୱାରା ପକ୍ୱ ଗୋଧୂମଚୂର୍ଣ୍ଣର
(ଅନ୍ୟ ସଂ ନାମ ମଣ୍ଡକ) ପିଠା; ଏକ ପ୍ରକାର ଖାଦ୍ୟ, ମିଷ୍ଟପିଷ୍ଟକ
ବିଶେଷ; ପୁରକାକାର ପିଠା ବା ନାନମାନ—A sort of
sweet wheaten cake or sandwich. [ବି—
ଭାବ ପ୍ରକାଶରେ ଏଥିର ପାକକ୍ରିୟା ସମ୍ବନ୍ଧରେ ଏହିପରି
ଲେଖା ଅଛି :—
କୋରା ନଡ଼ିଆରେ କପୂର, ଲବଙ୍ଗ, ଅଳାଇଚ ଗୁଣ୍ଡ
ଆଦି ମିଶାଇ ତାହାକୁ ଠିକଣି କରି ଘିଅରେ ଭୃଥାଇ 'ପୁର'
ପ୍ରସ୍ତୁତ କରିବ । ତା ପରେ ଘିଅର ମୟାନ ଦେଇ ମଇଦାର
ରୁଟି ତିଆରି କରି ତହିଁ ମଧ୍ୟରେ ଏହି ପୁରକୁ ଭର୍ତ୍ତି କରି
ଦୃଢ଼ ଭାବରେ ମୁଦିବ । ତା ପରେ ତାହାକୁ ପ୍ରଚୁର ଘିଅରେ
ପାକ କରିବ । ଏହା ମଣ୍ଡକ (ମଣ୍ଡା) ଅଟେ ।
ଏହା ମଧୁରରସ, ଶୀତବୀର୍ଯ୍ୟ, ଗୁରୁପାକ, ପୁଷ୍ଟିକର,
ବଳକାରକ, ଶୁକ୍ରବର୍ଦ୍ଧକ ଓ କଫଜନକ ।]

**ସଂଯାମ**—ସଂ. ବି (ସମ୍+ଯମ୍: ଧାତୁ+ଭାବ. ଅ)—ସଂଯମ (ଦେଖ)
Samjāma Samjāma. (See)

**ସଂଯୁକ୍**—ସଂ. ବିଣ. ପୁଂ ଓ ସ୍ତ୍ରୀ (ସମ୍+ଯୁଜ୍. ଧାତୁ=ଯୁକ୍ତ ହେବା+
Samjuk କର୍ତ୍ତୃ. କ୍ୱିପ୍; ସଂଯୁଜ୍ ଶବ୍ଦ ୧ମା. ୧ବ)—୧ । ଗୁଣ-
ବାନ୍—1. Full of good qualities; possessed of good qualities. ୨ । ମିତ୍ରବତ୍ସଳ—2. Fond
of friends. ୩ । ସଂଯୁକ୍ତ—3. Conjoined;
joined with. ସଂ. ବି—ଜାମାତା—Son-in-law.

**ସଂଯୁକ୍ତ**—ସଂ. ବିଣ. ପୁଂ (ସମ୍+ଯୁଜ୍. ଧାତୁ=ଯୁକ୍ତ ହେବା+କର୍ମ-
Samjukta ତ)—୧ । ସଂଯୋଗ ବିଶିଷ୍ଟ—1. Connected
( ସଂଯୁକ୍ତା—ସ୍ତ୍ରୀ ) with. ୨ । ସମ୍ମିଳିତ—2. Joined
[ସଂଯୋଗ—ବି] together. ୩ । ସଂଲଗ୍ନ; ସଂଶ୍ଳିଷ୍ଟ—
3. Attached to

**ସଂଯୁକ୍ତା**—ଦେ. ବି. ସ୍ତ୍ରୀ(ନାମ)—କାନ୍ୟକୁବ୍ଜର ଅଧିପତି ରାଠୋରବଂଶୀୟ
Samjuktā ରାଜା ଜୟଚନ୍ଦ୍ରଙ୍କ କନ୍ୟା ଏବଂ ଦିଲ୍ଲୀ ଓ ଆଜମୀରର
সংযুক্তা ଅଧିପତି ଚୌହାନବଂଶୀୟ ପୃଥ୍ୱୀରାଜଙ୍କ ମହିଷୀ—Name
**संयुक्ता** of the queen of king Pruthwirāja of
Delhi. [ବି—ସଂଯୁକ୍ତା ଅଶେଷ ରୂପଲାବଣ୍ୟ ଓ ଗୁଣରେ
ଭୂଷିତା ଥିଲେ; ଦିଲ୍ଲୀର ଓ ଆଜମୀରର ଚୌହାନବଂଶୀୟ
ନରପତି ପୃଥ୍ୱୀରାଜ ମଧ୍ୟ ଅସାଧାରଣ ବୀର ଥିଲେ । ଉଭୟେ
ଉଭୟଙ୍କର ଯଶୋରାଶି ଶ୍ରବଣ କରି ପରସ୍ପରଙ୍କ ପ୍ରତି ଅନୁରକ୍ତ
ହୋଇଥିଲେ । କିନ୍ତୁ ଜୟଚନ୍ଦ୍ର ଓ ପୃଥ୍ୱୀରାଜଙ୍କ ମଧ୍ୟରେ
ବିଶେଷ ଶତ୍ରୁତା ଥିବାରୁ ଜୟଚନ୍ଦ୍ର ସଂଯୁକ୍ତାଙ୍କୁ
ପୃଥ୍ୱୀରାଜଙ୍କ ହସ୍ତରେ ସମର୍ପଣ ନ କରି କନ୍ୟାର ସ୍ୱୟମ୍ବର
ପାଇଁ ପ୍ରସ୍ତୁତ ହେଲେ । ତେବେ ୧୧୯୦ ଖ୍ରୀ: ଅ: ରେ

ଟୋଟିଏ ରାଜସୂୟ ଯଜ୍ଞ ଅନୁଷ୍ଠାନ କରି ସେହି ଅନୁଷ୍ଠାନରେ ଯଜ୍ଞକୁ ନିମନ୍ତ୍ରିତ ରାଜାମାନଙ୍କର ଗୋଡ଼ ଧୋଇଦେବା ପାଇଁ ବହିର୍ଦ୍ୱାରରେ ଦ୍ୱାରୀରୂପେ ରହିବାକୁ ପୃଥ୍ୱୀରାଜଙ୍କୁ ନିମନ୍ତ୍ରଣ କଲେ । ପୃଥ୍ୱୀରାଜ ଏହି ଅପମାନସୂଚକ ନିମନ୍ତ୍ରଣକୁ ଘୃଣାସହକାରେ ପ୍ରତ୍ୟାଖ୍ୟାନ କଲେ । ଏହି ଯଜ୍ଞ ଉପଲକ୍ଷରେ ନିମନ୍ତ୍ରିତ ରାଜାମାନଙ୍କୁ ଘେନି ଜୟଚନ୍ଦ୍ର ସଂଯୁକ୍ତାଙ୍କ ସ୍ୱୟମ୍ବର ସଭା କଲେ ଏବଂ ପୃଥ୍ୱୀରାଜ ଆସି ନ ଥିବାରୁ ଜୟଚନ୍ଦ୍ର ପୃଥ୍ୱୀରାଜଙ୍କୁ ଅନ୍ୟ ରାଜାଙ୍କ ଚକ୍ଷୁରେ ଗ୍ଳାନ ଓ ଅପମାନିତ କରିବା ପାଇଁ ତାଙ୍କର ଗୋଟିଏ ବିକୃତ ମାଟିର ପ୍ରତିମା ନିର୍ମାଣ କରି ଉକ୍ତ ପ୍ରତିମାକୁ ଦ୍ୱାରୀରୂପେ ବହିର୍ଦ୍ୱାରରେ ସ୍ଥାପନ କଲେ ।

ଏଣେ ପୃଥ୍ୱୀରାଜ ସଂଯୁକ୍ତାଙ୍କ ସ୍ୱୟମ୍ବର ସଭା ଦେଖିବା ପାଇଁ ଗୁଡ଼ିଏ ସୈନ୍ୟ ସହ କାନ୍ୟକୁବ୍‌ଜକୁ ଆସି ସୈନ୍ୟମାନଙ୍କୁ କିଛି ଦୂରରେ ଲୁଚାଇ ରଖି ଅପେ ପ୍ରଚ୍ଛନ୍ନ ବେଶରେ ସ୍ୱୟମ୍ବର ମଣ୍ଡପ ନିକଟରେ ରହିଥାଆନ୍ତି । ଏହି ସମୟରେ ପୂର୍ବରୁ ପୃଥ୍ୱୀରାଜଙ୍କଠାରେ ଅର୍ପିତଚିତ୍ତା ସଂଯୁକ୍ତା ସ୍ୱୟମ୍ବର ସଭାକୁ ଆସି ସେଠାରେ ପୃଥ୍ୱୀରାଜଙ୍କୁ ନ ଦେଖି ଦ୍ୱାର ନିକଟକୁ ଯାଇ ସେଠାରେ ସ୍ଥାପିତ ପୃଥ୍ୱୀରାଜଙ୍କ ପ୍ରତିମାର ଗଳାରେ ବରଣମାଳା ଅର୍ପଣ କଲେ । ଏହି ଘଟଣା ଦେଖି ପୃ ରାଜ ଲୁଚିଥିବା ସ୍ଥାନରୁ ବାହାରି ପଡ଼ି ସଂଯୁକ୍ତାଙ୍କୁ ନିଜର ପଛଆଡ଼େ ଅଶ୍ୱପୃଷ୍ଠରେ ବସାଇ ଘୋଡ଼ା ଦଉଡ଼ାଇ ଚାଲିଗଲେ । ଜୟଚନ୍ଦ୍ର ଏଥିରେ କ୍ରୋଧାନ୍ଧ ହୋଇ ସଦଳବଳ ପୃଥ୍ୱୀରାଜଙ୍କ ପଶ୍ଚାଦ୍ଧାବନ କଲେ । କିନ୍ତୁ ପୃଥ୍ୱୀରାଜ ଓ ତାଙ୍କର ସେନାଦ୍ୱାରା ବାଟରେ ଜୟଚନ୍ଦ୍ର ବାରମ୍ବାର ପରାସ୍ତ ହୋଇ ୬ ଦିନ ପରେ ନିଜ ରାଜଧାନୀ ଦିଲ୍ଲୀରେ ପହଞ୍ଚିଲେ । ଜୟଚନ୍ଦ୍ର ନିଜେ ପୃଥ୍ୱୀରାଜଙ୍କୁ ଜିଣି ନ ପାରି କାବୁଲରୁ ମହମ୍ମଦ ଘୋରୀଙ୍କୁ ଦିଲ୍ଲୀ ଆକ୍ରମଣ କରିବାକୁ ନିମନ୍ତ୍ରଣ କଲେ ଓ ମହମ୍ମଦ ଘୋରୀ ଏହି ସୁଯୋଗ ଦେଖି ଭାରତ ଆକ୍ରମଣ କଲେ । ଏହାହିଁ ଭାରତବର୍ଷରେ ଯବନାଧିକାରର ପ୍ରଥମ ସୂତ୍ରପାତ । ପ୍ରଥମ ଯୁଦ୍ଧରେ ଥିରୋରୀ ବା ଥାନେଶ୍ୱର ନାମକ ଯୁଦ୍ଧକ୍ଷେତ୍ରରେ ମହମ୍ମଦ ଘୋରୀ ପୃଥ୍ୱୀରାଜଙ୍କ ସଙ୍ଗେ ଯୁଦ୍ଧ କରି ତହିଁରେ ଆହତ ଓ ପରାଜିତ ହୋଇ ପଳାଇଗଲେ (୧୧୯୧) ସାଲ । କିନ୍ତୁ ସେ ଭାରତ ତ୍ୟାଗ ନ କରି ଲାହୋରରେ ରହି ଦ୍ୱିତୀୟଥର ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ ଓ ୧୧୯୩ ସାଲରେ ପୁଣି ଦିଲ୍ଲୀ ଆକ୍ରମଣ କରି ପୂର୍ବୋକ୍ତ ଯୁଦ୍ଧକ୍ଷେତ୍ରରେ ଯୁଦ୍ଧ କଲେ । ଏହି ଯୁଦ୍ଧରେ ଦୈବକ୍ରମେ ପୃଥ୍ୱୀରାଜ ନିହତ ହେଲେ ଓ ହିନ୍ଦୁଙ୍କର ରାଜ୍ୟଲକ୍ଷ୍ମୀ ବସ୍ତୁତଃ ଭାରତକୁ ତ୍ୟାଗ କଲେ । ପୃଥ୍ୱୀରାଜ ହତ ହୁଅନ୍ତେ ସଂଯୁକ୍ତା ପ୍ରଜ୍ୱଳିତ ହୁତାଶନରେ ଝାସ ଦେଇ ପ୍ରାଣତ୍ୟାଗ କଲେ । ୧୧୯୪ରେ ମହମ୍ମଦ ଘୋରୀ ଜୟଚନ୍ଦ୍ରଙ୍କୁ ଚନ୍ଦ୍ରୱାର ଯୁଦ୍ଧକ୍ଷେତ୍ରରେ ପରାଜିତ କଲେ ଓ କାନ୍ୟକୁବ୍‌ଜ ଅଧିକାର କଲେ—ପ୍ରୋଥେରୋ ସାହେବଙ୍କ ସ୍କୁଲ ପାଠ୍ୟ ଭାରତ ଇତିହାସ । ]

ସଂଯୁଗ—ସଂ. ବି ( ସମ୍+ଯୁଜ୍ ଧାତୁ+ଅଧି. ଅ )—୧ । ଯୁଦ୍ଧ; Samjuga ସଂଗ୍ରାମ—1. Fight; battle. ୨ । (+ଭାବ. ଅ) ସଂଯୋଗ ( ଦେଖ )—2. Samjoga ( See ) ୩ । ଯୋଗାଡ଼ ଯନ୍ତ୍ର—3. Preparation.

ସଂଯୁଗ ଗୋଷ୍ପଦ—ସଂ. ବି ( ଗୋଷ୍ପଦ ବା ଗୋରୁର ଖୋଜ ବିଷୟରେ Samjuga goshpada ସଂଯୁଗ ବା ଯୁଦ୍ଧ; ଷଢ଼ୀତତ୍ପୁ )—ସାମାନ୍ୟ ବିଷୟ ଘେନି ବାଦ ବିବାଦ—A quarrel or contest over a trifling matter; tempest in a tea-pot.

ସଂଯୁତ—ସଂ. ବିଣ ( ସମ୍+ଯୁଜ୍ ଧାତୁ+କର୍ମ. ତ )—ସଂଯୁକ୍ତ Samjuta ଦେଖ )—Samjukta ( See ) ( ସଂଯୁତା—ସ୍ତ୍ରୀ )

ସଂଯୋଗ—ସଂ ବି (ସମ୍+ଯୁଜ୍ ଧାତୁ+ଭାବ ଅ)—୧ । ସମ୍ମେଳନ; Samjoga ମିଳିତ ହେବା; ପରସ୍ପର ସହିତ ମିଳନ—Meeting; [ବିଯୋ(ୟୋ)ଗ—ବିପରୀତ] union; association; conjunction. ୨ । (ନ୍ୟାୟଦର୍ଶନ) ଦୂରସ୍ଥ ବା ଅପ୍ରାପ୍ତ ବସ୍ତୁଦ୍ୱୟର ପରସ୍ପର ପ୍ରାପ୍ତି ବା ଯୋଗ—2. (Nyāya-Philosophy) The junction of two things which were hereto separated. [ଦ୍ର—ନ୍ୟାୟ ଦର୍ଶନ ମତରେ ଏହା ଅପ୍ରାପ୍ତ ବସ୍ତୁଦ୍ୱୟର ପ୍ରାପ୍ତିରୂପ ସମ୍ବନ୍ଧ । ଏହା ତ୍ରିବିଧ; ଯଥା.—୧ । ଏକ କର୍ମଜନ୍ୟ (ଯେଉଁଠାରେ ଦୁଇଙ୍କ ମଧ୍ୟରୁ ଏକ ବସ୍ତୁ ଅନ୍ୟ ବସ୍ତୁର ନିକଟକୁ ଆସେ; ଯଥା—ପର୍ବତରେ ପକ୍ଷୀସଂଯୋଗ ।) ୨ । ଉଭୟ କର୍ମଜନ୍ୟ ( ଯେଉଁଠାରେ ଉଭୟ ବସ୍ତୁ ପରସ୍ପର ନିକଟକୁ ଆସନ୍ତି; ଯଥା—ପଶୁଦ୍ୱୟସଂଯୋଗ ।) ୩ । କର୍ମଜନ୍ୟ ସଂଯୋଗ ( ଯେଉଁଠାରେ କୌଣସି କର୍ମଯୋଗୁ ଏକ ବସ୍ତୁରେ ଅନ୍ୟ ପଦାର୍ଥର ସଂଯୋଗ ଘଟେ; ଯଥା—ଅଙ୍ଗୁଳିଦ୍ୱାରା ବୀଣାରେ ଶବ୍ଦସଂଯୋଗ । ) ] ୩ । ସଂଘଟ୍ଟନ— . Cohesion. ୪ । ମିଶ୍ରଣ—4. Mixing up. ୫ । (ଗଣିତ) ଏକାଧିକ ରାଶିକୁ ଯୋଗ କରିବା; ମିଶାଣ—5. (arithmetic) Addition of numbers. ୬ । ସମ୍ପର୍କ—6. Connection; contact. ୭ । ସଙ୍ଗମ; ମୈଥୁନ—7. Copulation. ୮ । ଅଳଙ୍କାର ବା ଆଭରଣାଦିର ଏକସାଜ 8. A set (of ornaments or dress) (Apte). ୯ । ପରସ୍ପରଙ୍କ ସାଧାରଣ ଉଦ୍ଦେଶ୍ୟ ସାଧନାର୍ଥ ଦୁଇରାଜାଙ୍କ ମଧ୍ୟରେ ସଖ୍ୟ ସ୍ଥାପନ—9. Alliance between two kings or powers for a common object (Apte) ୧୦ । (ଜ୍ୟୋତିଷ) ଦୁଇ ଜ୍ୟୋତିଷ୍କଙ୍କ ମିଳନ—10. (Astronomy) The conjunction of two

heavenly bodies (Apte) ୧୧ । (ବ୍ୟାକରଣ) ସ୍ୱରବର୍ଣ୍ଣ ସଙ୍ଗେ ମିଳି ଉଚ୍ଚାରିତ ବ୍ୟଞ୍ଜନବର୍ଣ୍ଣ (ଯଥା—'ଅ' ସ୍ୱରବର୍ଣ୍ଣ ସଙ୍ଗେ ମିଳି ଉଚ୍ଚାରିତ କ)—11 (Grammar) A conjunct consonant (Apte) ୧୨ । ଶିବ—12. Śiba (Apte). ଦେ. ବି.—

সুযোগ **सं'योग** ୧ । ସୁଯୋଗ—1. Good opportunity ୨ । ଦୈବଯୋଗ—2. Luck; chance. [ଉ—ସଂଯୋଗେ ଅସିଥିଲେ ମୁକ୍ତି, ପ୍ରଶନ କଲ ନୃପମଣି । —ଭୂପତି. ପ୍ରେମପଞ୍ଚାମୃତ] ୩ । ବିଧାନ; ଘଟନ—3. Ordainment; decree [ଉ—ବିଧି ଏହାକୁ ସଂଯୋଗ କରିଅଛି ତୁମ୍ଭର ଭୋଗ ନିମନ୍ତେ—ବିଶ୍ୱନାଥ:—ବଚନ ସ୍ୱାୟୁଣ । ] ଦେ. ବିଣ.—ସଂଯୁକ୍ତ—Joined; attached. [ଉ—ସନ୍ଧାଣ ସର୍ବଏ ଭୁବେଁ ହୋଇବେ ସଂଯୋଗ ।—ଗ୍ରାମ୍ୟ ବୃନ୍ଦାବନଗୀତା ] ]

**ସଂଯୋଗ କାରକ**—ସଂ. ବିଣ—(ସଂଯୋଗ+କୃ ଧାତୁ+କର୍ତ୍ତି ଅକ) Samjoga kāraka ଯାହା ଦୁଇ ବସ୍ତୁକୁ ବା ଦୁଇ ବ୍ୟକ୍ତିଙ୍କୁ ମିଳିତ କରାଏ—Causing union (of two things or two persons )

(ସଂଯୋଗକାରି—ଅନ୍ୟରୂପ)

(ସଂଯୋଗକାରିକା; ସଂଯୋଗକାରିଣୀ—ସ୍ତ୍ରୀ)

**ସଂଯୋଗ ବିଯୋଗ**—ସଂ. ବି (ବିପରୀତାର୍ଥକ ସହଚର) ୧ । ମିଳନ Samjoga bijoga ଓ ବିଚ୍ଛେଦ—1. Meeting and separation. ୨ । (ଗଣିତ) ରାଶିମାନଙ୍କ ମିଶାଣ ଓ ଫେଡ଼ାଣ—2. (Methematics) Addition and subtraction. ୩ । (ବିଜ୍ଞାନ) ଦୁଇଟି ବସ୍ତୁର ମିଶ୍ରଣ ଓ ପୃଥକ୍କରଣ—3. (science) Synthesis and analysis

**ସଂଯୋଗ ବିରୁଦ୍ଧ**—ସଂ. ବିଣ.—(ବୈଦ୍ୟକ)—ଯେଉଁ ଖାଦ୍ୟଦ୍ରବ୍ୟାଦି Samjoga biruddha ପରସ୍ପର ସହିତ ସଂଯୁକ୍ତ ବା ମିଳିତ ବା ଭକ୍ଷିତ ହେଲେ ବ୍ୟବହାରକାରୀର ରୋଗ ଘଟାଏ ଅବା ବିଷପରି ଫଳ ଜାତ କରେ—( articles) Which cause sickness or become poisonous when mixed up or used or taken together. [ଉ—ଗୋରସ ଓ ଅମିଷ, ତୈଳ ଓ ଘୃତ, ମଧୁ ଓ ଘୃତ, ପଇତାପାଣି ଓ କର୍ପୂର, ଗୁଡ଼ ଓ କୋଚିଲା, ତାମ୍ରପାତ୍ର ଓ ଅମ୍ଳ ପଦାର୍ଥ ଏମାନ ସଂଯୋଗ ବିରୁଦ୍ଧ ବସ୍ତୁ ଅଟେ ।]

**ସଂଯୋଗ ସାଧକ**—ସଂ. ବିଣ. ପୁଂ—ଯେ ସଂଯୋଗ ବା ମିଳନ ଘଟାଏ—Samjoga sādhaka Causing or bringing about union. (ସଂଯୋଗ ସାଧିକା—ସ୍ତ୍ରୀ)

**ସଂଯୋଗ ସାଧନ**—ସଂ. ବି. (୬ଷ୍ଠୀ ତତ୍)—ଦୁଇ ପୃଥକ୍ ବସ୍ତୁକୁ ବା Samjoga sādhana ବ୍ୟକ୍ତିଙ୍କୁ ପରସ୍ପର ସହିତ ମିଳାଇବା କାର୍ଯ୍ୟ—The act of uniting two persons or things.

**ସଂଯୋଗାତ୍ମକ**—ସଂ. ବିଣ. ପୁଂ (ବହୁବ୍ରୀହି; ସଂଯୋଗ+ଆତ୍ମନ୍+କ)—Samjogātmaka ସଂଯୋଗ ବା ମିଳନକୁ ଯହିଁର ପ୍ରତିପାଦ୍ୟ (ସଂଯୋଗାତ୍ମିକା—ସ୍ତ୍ରୀ) ବିଷୟ—Aiming at union; dealing with Union.

**ସଂଯୋଗାନ୍ତ**—ସଂ. ବିଣ. ପୁଂ. (ବହୁବ୍ରୀହି; ସଂଯୋଗ=ମିଳନ ଅଟେ Samjogānta ଅନ୍ତ ଯାହାର)—ଯେଉଁ ନାଟକର ବା (ସଂଯୋଗାନ୍ତା—ସ୍ତ୍ରୀ) ଉପନ୍ୟାସାଦିର ଶେଷରେ ପ୍ରଧାନ ବ୍ୟକ୍ତି- (ବିଯୋଗାନ୍ତ -- ବିପରୀତ) ମାନଙ୍କର ବା ନାୟକ ନାୟିକାଙ୍କର ମିଳନ ହୁଏ—(A drama or story or moral or poem or plot) Ending with union; concluding with the union of the hero and heroine or of the characters. [ଉ—ସଂଯୋଗାନ୍ତ ନାଟକ, ସଂଯୋଗାନ୍ତ ଉପନ୍ୟାସ; ସଂଯୋଗାନ୍ତ ପଦ୍ୟ; ସଂଯୋଗାନ୍ତ ଗଳ୍ପ ।]

**ସଂଯୋଗାନ୍ତ ନାଟକ**—ସଂ. ବି—ଯେଉଁ ନାଟକର ଶେଷରେ ନାଟକୀୟ Samjogānta nāṭaka ବ୍ୟକ୍ତିଗଣଙ୍କର ମିଳନ ଘଟେ—(ବିଯୋଗାନ୍ତ ନାଟକ—ବିପରୀତ) A drama which ends in the union of the hero and heroine or of its characters.

**ସଂଯୋଗିବା**—ଦେ କ୍ରି. (ପଦ୍ୟ) —୧ । ସଂଯୁକ୍ତ କରିବା; ଲଗାଇବା—Samjogibā 1. To connect; to attach. সংযোগ করা ୨ । ବ୍ୟବସ୍ଥା କରିବା—2. To arrange. **संयोग करना** [ଉ—ଚଡ଼ା ସଂଯୋଗି ବେଗବନ୍ତେ, ସେ ବନେ ବର୍ଜନେ ଏକାନ୍ତେ । ଜଗନ୍ନାଥ. ଭାଗବତ ।]

**ସଂଯୋଗୀ**—ସଂ. ବିଣ ପୁଂ (ସଂଯୋଗ+ଅସ୍ତି ଅର୍ଥରେ, ଇନ୍ ୧ମା. ୧ବ) Samjogi —୧ । ସଂଯୋଗକାରକ—1. Joining; uniting. (ସଂଯୋଗିନୀ—ସ୍ତ୍ରୀ) ୨ । ସଂଯୋଗ ବିଶିଷ୍ଟ; ସଂଯୋଜିତ—(ବିଯୋଗୀ—ବିପରୀତ) 2. Connected; united; conjoined.

**ସଂଯୋଗେ**—ଦେ କ୍ରି. ବିଣ—୧ । ଯୋଗେଁ; ଯୋଗୁଁ—1. For. Samjoge ୨ । କାରଣରୁ—2. On account of; owing যোগে to. [ଉ—ଔଷଧ ଯେତେ ନ ରୁଚଇ, ବାନ୍ଧି **हेतुसे** ସଂଯୋଗେ କଲେ ଖାଇ । ଭୂପତି. ପ୍ରେମପଞ୍ଚାମୃତ ।] ୩ । ସଂଯୋଗର କାରଣରୁ—3. As a result of union.

**ସଂଯୋଜକ**—ସଂ. ବିଣ. ପୁଂ (ସମ୍+ଯୁଜ୍ ଧାତୁ, ଣିଚ୍+କର୍ତ୍ତି. ଅକ)—Samjojaka ସଂଯୋଗକାରକ; ଯେ ମିଳନ ଘଟାଏ—(ସଂଯୋଜିକା—ସ୍ତ୍ରୀ) Uniting; causing union. (ବିଯୋଜକ—ବିପରୀତ)

**ସଂଯୋଜନ**—ସଂ. ବି (ସମ୍+ଯୁଜ୍ ଧାତୁ=ଯୋଗ କରିବା+ଣିଚ୍. Samjojana ଅନ)—୧ । ସଂଯୋଗକରଣ; ଏକତ୍ରୀକରଣ; (ବିଯୋଜନ—ବିପରୀତ) ମିଶ୍ରଣ—1. Mixing up; uniting.

୨ । ମୈଥୁନ—2. Copulation; sexual union. ୩ । ସହବାସ କରାଇବା; ଜୋଡି ଖୁଆଇବା—3. Causing or bringing about cohabitation; the act of bringing a male animal and a female animal together for breeding. ୪ । ଯୋଚିବା କର୍ମ—4. Act of yoking. ୫ । ଯୋଗିବା—5. Attaching.

**ସଂଯୋଜନା**—ସଂ. ବି (ସଂଯୋଜନ+ଆ)—୧ । ସଂଯୋଜନ (ଦେଖ) Samjojanā 1. Samjojana (See) ୨ । ଅୟୋଜନ—(ସଂଯୋଜିତ—ବିଣ) 2. Preparation.

**ସଂଯୋଜିତ**—ସଂ. ବିଣ. (ସମ୍+ଯୁଜ ଧାତୁ ଣିଚ୍=ଯୋଜି ଧାତୁ=Samjojita ଯୋଗ କରାଇବା+କର୍ମ. ତ)—୧ । ସଂମେଳିତ; ମିଶ୍ରୀକୃତ—1. Compounded; united; mixed up; joined together. ୨ । ଏକ ପଦାର୍ଥରୁ ବିୟୋଗ କରାଯାଇ ଅନ୍ୟ ପଦାର୍ଥରେ ଯୋଗ କରି ଯାଇଥିବା—2. Caused to be joined with a thing after having been dissociated from another. ୩ । ସହବାସାର୍ଥ ଏକତ୍ରୀକୃତ—3. Brought together for the purpose of cohabitation or breeding. ୪ । ଯୋଚା ଯାଇଥିବା—4. Yoked to. ୫ । ଯୋଗା ଯାଇଥିବା—5. Supplied.

**ସଂରକ୍ତ**—ସଂ. ବିଣ ( ସମ୍+ରଂଜ୍ ଧାତୁ+କର୍ମ. ତ )—୧ । ରଙ୍ଗା Samrakta ଯାଇଥିବା—1. Coloured; dyed. ୨ । ଟୋଫା ନାଲି; ଗାଢ଼ ରକ୍ତ—2. Bright red; scarlet. ୩ । ଭାବୋଦ୍ରେକିତ—3. Fired with passion; impassioned ( Apte ). ୪ । ଅତି କ୍ରୁଦ୍ଧ; କ୍ରୋଧରେ ଜଳୁଥିବା—4. Inflamed with anger ( Apte ). ୫ । ମୋହିତ—5. Enamoured; charmed (Apte). ୬ । ( +କର୍ତ୍ତୃ.ତ ) ସୁନ୍ଦର; ମନୋହର—6. Charming; beautiful (Apte).

**ସଂରକ୍ଷ**—ସଂ. ବି. ( ସମ୍+ରକ୍ଷ୍ ଧାତୁ=ରକ୍ଷା କରିବା+ଭାବ. ଅ Samraksha —୧ । ( ବିପଦାଦିରୁ, ବିନାଶରୁ ବା ଧ୍ୱଂସରୁ ) (ସଂରକ୍ଷିତ—ବିଣ) ରକ୍ଷା କରିବା—1. Act of saving or protecting; conservating ୨ । ତତ୍ତ୍ୱାବଧାରଣ—2. Superintendence; supervision. ୩ । ଯତ୍ନପୂର୍ବକ ସମ୍ପାଦିବା—3.Preservation;care. ୪ । ପୁରାତନ ରୀତିମାନ ଅକ୍ଷୁଣ୍ଣ ରଖିବା—4. Conservatism; preserving of the old customs. ୫ । ଜଗା ରଖା; ରକ୍ଷିବାର ଭାର ଗ୍ରହଣ—5. Custody; charge (Apte).

**ସଂରକ୍ଷକ**—ସଂ. ବିଣ ଓ ବି. ପୁଂ. (ସମ୍+ରକ୍ଷ୍ ଧାତୁ=ରକ୍ଷା କରିବା+ Samrakshaka କର୍ତ୍ତୃ. ଅକ)—ଯେ ରକ୍ଷା କରେ; ରକ୍ଷାକାରୀ—(ସଂରକ୍ଷିକା—ସ୍ତ୍ରୀ) Protector.

**ସଂରକ୍ଷଣ**—ସଂ. ବି. (ସମ୍+ରକ୍ଷ ଧାତୁ+ଭାବ.ଅନ)—ସଂରକ୍ଷ (ଦେଖ) Samrakshaṇa Samraksha ( See )

**ସଂରକ୍ଷଣ ନୀତି**—ସଂ. ବି. ( ଆଧୁନିକ ପ୍ରୟୋଗ )—୧ । ପ୍ରାଚୀନ ରାଜ-Samrakshaṇa niti ନୀତିକ ଓ ସାମାଜିକ ପ୍ରଥାମାନ ଲୁପ୍ତ ନ କରି ତାହା ବଜାୟ ରଖିବାର ପକ୍ଷତି—1. Conservatism (in politics and society). ୨ । ଯେଉଁ ନୀତି ସାହାଯ୍ୟରେ ବାଣିଜ୍ୟାଦି ଦ୍ୱାରା ଦେଶର ସ୍ୱାର୍ଥ ରକ୍ଷା କରାଯାଏ—2. Protection of the interests of a country in trade matters.

**ସଂରକ୍ଷଣ ନୀତିକ** (ବ୍ୟକ୍ତି, ଦଳ ବା ସଂପ୍ରଦାୟ)—ସଂ. ବିଣ. (ଆଧୁନିକ Samrakshaṇa nitika ପ୍ରୟୋଗ)—ଯେଉଁମାନେ ସଂରକ୍ଷଣ ନୀତିର ପକ୍ଷପାତୀ—Conservative in politics; protectionist in trade.

**ସଂରବ୍ଧ**—ସଂ. ବିଣ. (ସମ୍+ରଭ୍ ଧାତୁ=ଶବ୍ଦ କରିବା; କ୍ରୋଧ Samrabdha କରିବା+କର୍ତ୍ତୃ. ତ)—୧ । କ୍ରୁଦ୍ଧ; ସଂକ୍ରୁଦ୍ଧ; (ସଂରମ୍ଭ—ବି) କ୍ରୋଧାଭିଭୂତ—1 Enraged; impassioned; inflamed with anger ୨ । ବିଶେଷ ଶବ୍ଦ ବିଶିଷ୍ଟ—2. Tumultuous ୩ । ବ୍ୟାକୁଳ—3. Excited; irritated; agitated. ୪ । (+କର୍ମ. ତ)—ଉତ୍ସାହିତ (ପ୍ରକୃତିବାଦ)—4. Encouraged. ୫ । ବର୍ଦ୍ଧିତ; ବୃଦ୍ଧି ପ୍ରାପ୍ତ—5. Augmented (Apte). ୬ । ଫୁଲି ଯାଇଥିବା—6. Swelled (Apte). ୭ । ଅଭିଭୂତ—7. Overwhelmed. ୮ । ହାତାହାତି; ଲଗାଲଗି; ପରସ୍ପର ସଂଯୁକ୍ତ—8. Closely joined; hand in hand (Apte).

**ସଂରମ୍ଭ**—ସଂ. ବି. (ସମ୍+ରଭ୍ ଧାତୁ=ଶବ୍ଦ କରିବା, ରାଗିବା+ Samrambha ଭାବ. ଅ)—୧ । କ୍ରୋଧ; ରାଗ—1. Anger; (ସଂରଂଭ—ଅନ୍ୟରୂପ) fury; wrath; rage. ୨ । ଅକ୍ରୋଶ-2. Resentment. ୩ । ଛାତି କୁଟି କାନ୍ଦିବା; କାନ୍ଦୁଣା—3. Lamentation; wailing. ୪ । ଗର୍ବ; ଅହଂକାର—4 Pride; arrogance; hauteur. ୫ । ମନର ଅବେଗ; ବିଷୟ ବିଶେଷରେ ସ୍ଥାୟୀ ଉଦ୍‌ବେଗ—5. Enduring eagerness or attachment for a particular object. ୬ । ସଂଭ୍ରମ—6. Honour; respect. ୭ । ବେଗ—7. Force; velocity. ୮ । ଅହବ ; ସଂଗ୍ରାମ; ଯୁଦ୍ଧ—8. Fight; battle; conflict. ୯ । (ଯାତ୍ରାଯାତ୍ରା ଅଦି) ବିଶେଷ ଘଟଣାଦି ଉପଲକ୍ଷରେ ହେବା ମେଳା—9. A pompous or tumultuous crowd; a crowd collected on a particular occasion. ୧୦ । ଗୋଳମାଳ; ଗୋଳା—10. Tumult; noise; hubbub. ୧୧ । ଅଡ଼ମ୍ବର; ଅଡ଼ମ୍ବର—11. Ado; show. ୧୨ । ଦଙ୍ଗା ହେଙ୍ଗାମ—12. Turbulence (Apte). ୧୩ ।

ଲାଳସା—13. Hankering; ardent desire; (Apte). ୧୪ । ଉଦ୍‌ବେଗ—14. Eagerness; anxiety (Apte). ୧୫ । ମନର ବ୍ୟାକୁଳତା ବା ଅସ୍ଥିରତା—15. Agitation; excitement; flurry ( Apte ). ୧୬ । ଉତ୍ତାପ ସହ ଫୁଲା—16. Swelling with heat and inflammation ( Apte ). ୧୭ । ଉତ୍ସାହ—17. Energy; zeal ( Apte ).

**ସଂରମ୍ଭୀ**—ସଂ. ବଣ. ପୁଂ ( ସଂରମ୍ଭ+ଅସ୍ତି ଅର୍ଥରେ ଇନ୍; ୧ମା. ୧ବ )—Saṁrambhī (ସଂରମ୍ଭିଣୀ—ସ୍ତ୍ରୀ) ୧ । ଅତି କ୍ରୁଦ୍ଧ—1. Wrathful. ୨ । ବେଗବାନ୍—2. Full of force. ୩ । ଗୋଳମାଳଯୁକ୍ତ—3. Tumultuous; noisy. ୪ । ବ୍ୟାକୁଳ—4. Excited; agitated. ୫ । ଗର୍ବୀ—5. Proud; arrogant ( Apte ).

**ସଂରାଧନ(ନା)**—ସଂ. ବ ( ସମ୍+ରାଧ୍ ଧାତୁ=ପୂଜା କରିବା+ଭାବ. ଅନ; +ଆ )—Saṁrādhana(nā) (ସଂରାଧିତ, ସଂରାଧକ—ବି) ୧ । ଆରାଧନା; ବିଶେଷ ଜାକଜମକ ସହିତ ଅନୁଷ୍ଠିତ ପୂଜା—1. Worship accompanied with pomp. ୨ । ଆରାଧନାଦ୍ୱାରା ସନ୍ତୋଷବିଧାନ—2. Propitiation; conciliation ( Apte ). ୩ । ସମାଧାନ—3. Accomplishment. ୪ । ଗଭୀର ଧ୍ୟାନ—4. Deep meditation ( Apte )

**ସଂରାବ**—ସଂ. ବି ( ସମ୍+ରୁ ଧାତୁ=ଶବ୍ଦ କରିବା+ଭାବ. ଅ )—Saṁrāba ୧ । ଆରବ; ଉଚ୍ଚ ଶବ୍ଦ—1. High sound; clamour. ୨ । ହୋପା; ଗୋଳମାଳ—2. Noise; tumult; uproar.

**ସଂରାବୀ**—ସଂ. ବଣ. ପୁଂ ( ସମ୍+ରୁ ଧାତୁ=ଶବ୍ଦ କରିବା+କର୍ତ୍ତୃ. ଇନ୍ )—Saṁrābī (ସଂରାବିଣୀ—ସ୍ତ୍ରୀ) ୧ । ଶବ୍ଦବିଶିଷ୍ଟ—1. Resounding ୨ । ଶବ୍ଦକାରକ—2. Sonorous. ୩ । ଗୋଳମାଳକାରୀ—3. Noisy; tumultuous.

**ସଂରିହାଣ**—ସଂ. ବଣ. ପୁଂ ( ସମ୍+ଲିହ୍ ଧାତୁ+କର୍ତ୍ତୃ. ଅନ )—Saṁrihāṇa (ସଂରିହାଣା—ସ୍ତ୍ରୀ) ସ୍ନେହରେ ଚାଟୁଥିବା ( ଯେଉଁପରି ବାଛୁରୀକୁ ଗାଈ; ମୃଗିଣୀକୁ ମୃଗ )—Affectionately licking ( as a cow licking her calf ( Apte .

**ସଂରୁଗ୍ଣ**—ସଂ. ବଣ (ସମ୍+ରୁଜ୍ ଧାତୁ+କର୍ମ. ତ )—ଚୂର୍ଣ୍ଣବିଚୂର୍ଣ୍ଣିତ, Saṁrugṇa ଖଣ୍ଡବିଖଣ୍ଡିତ—Shattered; broken to pieces ( Apte ).

**ସଂରୁଦ୍ଧ**—ସଂ. ବଣ ( ସମ୍+ରୁଧ୍ ଧାତୁ=ରୋଧ କରିବା+କର୍ମ. ତ )—Saṁruddha (ସଂରୁଦ୍ଧା—ସ୍ତ୍ରୀ) (ସଂରୋଧକ—ବି) ୧ । ବଦ୍ଧ—1. Bound. ୨ । ଅବରୁଦ୍ଧ—2. Beseigend; blockaded. ୩ । ନିରୁଦ୍ଧ—3. Obstructed; restrained. ୪ । କାରାରୁଦ୍ଧ—4. Imprisoned; confined; shut up. ୫ । ବାଧାପ୍ରାପ୍ତ—5. Checked; impeded ( Apte ). ୬ । ପରିପୂରିତ—6. Blocked up; filled up ( Apte ). ୭ । ଆଚ୍ଛାଦିତ; ଆବୃତ—7. Covered over; concealed ( Apte ). ୮ । ପ୍ରତ୍ୟାଖ୍ୟାତ; ନିଷିଦ୍ଧ—8. Refused; withheld ( Apte ).

**ସଂରୂଢ଼**—ସଂ. ବଣ. ପୁଂ ( ସମ୍+ରୁହ୍ ଧାତୁ=ଉତ୍ପନ୍ନ ହେବା; ଚଢ଼ିବା Saṁrūḍha +କର୍ତ୍ତୃ. ତ )—୧ । ଆରୂଢ଼—1. Mounted. (ସଂରୂଢ଼ା—ସ୍ତ୍ରୀ) ୨ । ଅଙ୍କୁରିତ; ଗଜା ମାରିଥିବା—2. Sprouted; germinated; budded. ୩ । ଜାତ—3. Born. ୪ । ପ୍ରବୃଦ୍ଧ—4. Well-grown; well developed. ୫ । ପୂରି ଯାଇଥିବା ( ବ୍ରଣାଦି )—5. Cicatriced; healed ( sore ) ( Apte ). ୬ । ଏକତ୍ର ବର୍ଦ୍ଧିତ—6. Grown together ( Apte ). ୭ । ଦୃଢ଼ରୂପେ ସଂଲଗ୍ନ ବା ଚେରେଇ ଥିବା—7. Firmly grown; striking root ( Apte ). ୮ । ସାହସୀ—8. Bold ( Apte ). ୯ । ଆସ୍ଥାବିଶିଷ୍ଟ—9. Confident ( Apte ).

**ସଂରୋଧ**—ସଂ. ବି ( ସମ୍+ରୁଧ୍ ଧାତୁ=ଅଟକାଇବା+ଭାବ. ଅ )—Saṁrodha ୧ । ରୋଧନ; ନିରୋଧ; ପ୍ରତିବନ୍ଧ; ପ୍ରତିରୋଧ—1. Obstruction; hindrance. ୨ । ଅଟକ; ନିବାରଣ—2. Restraint; prevention. ୩ । ବନ୍ଧନ—3. Binding down. ୪ । ଶତ୍ରୁଦ୍ୱାରା ନଗରାଦି ବେଷ୍ଟନ—4. Seige; blockade. ୫ । କାରାରୋଧ—5. Confinement. ୬ । ନିକ୍ଷେପ—6. Throwing ( Apte ). ୭ । ( +କରଣ. ଅ ) ବେଡ଼ି; ବନ୍ଧନ ସାଧନ—7. Bond; fetters (Apte). ୮ । ପ୍ରତିରୋଧକରଣ—8. Stopping.

**ସଂରୋଧକ**—ସଂ. ବଣ. ପୁଂ ( ସମ୍+ରୁଧ୍ ଧାତୁ=ଅଟକାଇବା+କର୍ତ୍ତୃ. Saṁrodhaka ଅକ )—ସଂରୋଧକାରୀ—Confining, ( ସଂରୋଧିକା—ସ୍ତ୍ରୀ ) restraining; preventing.

**ସଂରୋଧନ**—ସଂ. ବି (ସମ୍+ରୁଧ୍ ଧାତୁ+ଭାବ. ଅନ)—ଅଟକାଇବା; Saṁrodhana ସଂରୁଦ୍ଧ କରିବା—Act of restraining (ସଂରୁଦ୍ଧ, ସଂରୋଧ, ସଂରୋଧକାରୀ—ବଣ) or confining or binding or preventing etc.

**ସଂରୋହ**—ସଂ. ବି ( ସମ୍+ରୁହ୍ ଧାତୁ=ଉତ୍ପନ୍ନ ହେବା+କର୍ତ୍ତୃ. Saṁroha ଅ )—୧ । ଅଙ୍କୁର; ଗଜା—1. Germ; sprout; seed-bud. ୨ । ( +ଭାବ. ଅ ) ଜନ୍ମ; ଉତ୍ପତ୍ତି—2. Birth; production.

**ସଂଲକ୍ଷଣ**—ସଂ. ବି ( ସମ୍+ଲକ୍ଷ୍ ଧାତୁ+ଭାବ. ଅନ )—ବିଶେଷ Saṁlakshaṇa ଭାବରେ ଚିହ୍ନିତକରଣ—Characterising; marking; distinguishing ( Apte ).

**ସଂଲଗ୍ନ**—ସଂ. ବିଣ ( ସମ୍ + ଲଗ୍ ଧାତୁ=ଲାଗିଯିବା + କର୍ତ୍ତ୍ରି. ତ )—
Samlagna ୧ । ସଂଯୁକ୍ତ—1. Attached to; connec-
(ସଂଲଗ୍ନା—ସ୍ତ୍ରୀ) ted with. ୨ । ନିକଟରେ ଅବସ୍ଥିତ—
2. Contiguous to. ୩ । ଏକୀଭୂତ; ମିଳିତ—
3. Brought into; mixed up. ୪ । ଏକତ୍ର ଲାଗି ଯାଇଥିବା—4. Stuck together; adhering to. ୫ । ପରସ୍ପର ଅଘାତ ପ୍ରତ୍ୟାଘାତ କରୁଥିବା—
5. Come to close contact ( Apte ). ୬ । ମାଡ଼ ମରାମରି ହେଉଥିବା—
6. Come to blows ( Apte ).

**ସଂଲଗ୍ନିକ**—ଦେ. ବିଣ (ସଂ. ସଂଲଗ୍ନ)—୧ । ବନ୍ଧୁତା ଦ୍ୱାରା ସମ୍ବନ୍ଧଯୁକ୍ତ
Samlagnika (ବ୍ୟକ୍ତି)—1. (A person) Related to
ଭାୟାଦ another. ୨ । ସଗୋତ୍ର—2. An agnate;
**सं'बधिक** kindred. (ଉ—ସେ ମୋର ସଂଲଗ୍ନିକ ପୁରୁଷ ଅଟନ୍ତି ।)

**ସଂଲୟ**—ସଂ. ବି (ସମ୍ + ଲୀ ଧାତୁ=ତରଳି ଯିବା, ମିଶିଯିବା +
Samlaya ଭାବ. ଅ)—୧ । ନିଦ୍ରା—1 Sleep. ୨। ପ୍ରଳୟ—
(ସଂଲୟନ—ଅନ୍ୟରୂପ) 2. Dissolution of Nature; universal destruction. ୩ । ବିଲୟ; ବିନାଶ—
3. Destruction; ruin.

**ସଂଲାପ**—ସଂ. ବି ( ସମ୍ + ଲପ୍ ଧାତୁ=କହିବା + ଭାବ. ଅ )—
Samlāpa ୧ । ପରସ୍ପର ଭାଷଣ; କଥାଭାଷା କଥୋପକଥନ—
[ସଂଲାପନ(ନା)—ଅନ୍ୟରୂପ] 1. Conversation; dis-
(ସଂଲାପିତ—ବିଣ) course. ୨ । ଅନ୍ୟୋନ୍ୟ ପ୍ରୀତିଭାଷଣ; ବିରୋଧରହିତ କଥୋପକଥନ; ପରସ୍ପର ସୁଖଦୁଃଖ ହେବା—2. Friendly conversation; pleasant discourse. ୩ । ଦୁଇ ଜଣଙ୍କର ବିଶ୍ରମ୍ଭାଲାପ; ଗୁପ୍ତ ସମ୍ଭାଷଣ—3. Confidential talk; secret conversation. ୪ । ଉକ୍ତି ପ୍ରତ୍ୟୁକ୍ତି—
4. Dialogue.

**ସଂଲୀନ**—ସଂ. ବିଣ (ସମ୍ + ଲୀ ଧାତୁ=ତରଳିବା + କର୍ତ୍ତ୍ରି. ତ)—
Samlīna ୧ । ସଂଯୋଜିତ—1 Joined together.
୨ । ଲାଗିଯାଇଥିବା—2. Clung; adhered to. (Apte). ୩। ଲୁକ୍କାୟିତ—3. Hidden; concealed. (Apte). ୪ । ସଂକୁଚିତ—4. Contracted; shrunk. ୫ । ଭୂମିରେ ଲେସଟି ଯିବା—5. Cowering down.

**ସଂଲୋଡ଼ନ**—ସଂ. ବି (ସମ୍ + ଲୁଡ଼୍ ଧାତୁ ଣିଚ୍, ଲୋଡ଼୍ ଧାତୁ=
Samlordana ଘାଣ୍ଟିବା + ଭାବ. ଅନ )—ଘଣ୍ଟା ଚକଟା—
Disturbing. ( Apte). ଗୋଳାଇବା—Confusing. (Apte)

**ସଂଶଏ(ୟେ)**—ଗ୍ରା. (ପ୍ରାଚୀନ ପଦ୍ୟ) ବି—ସଂଶୟ ( ଦେଖ )—
Samśae(ye) Samśaya (See) [ଉ—ଦାନପୁଣ୍ୟ କରିବାରୁ ନ ଥିବ ସଂଶଏ । ପ୍ରାଚୀ. ବୃହତ୍କରୁଣ ଗୀତା ।]

**ସଂଶପ୍ତକ**—ସଂ. ବି. ପୁଂ (ସମ୍ + ଶପ୍=ଶପଥ କରିଥିବା, ପ୍ରତିଜ୍ଞା
Samśaptaka କରିଥିବା + କ; ପୂର୍ବରୁ ଶପଥ କରିଥିବାଯୋଗୁଁ ଯେ ସଂଗ୍ରାମରୁ ଅପରାଙ୍ମୁଖ ବା ଅପଳାୟମାନ ଅଟେ)—
୧ । ଯେଉଁ ଯୋଦ୍ଧା ଯୁଦ୍ଧଭୂମିରୁ ପଳାଇବ ନାହିଁ ବୋଲି ଶପଥ କରିଥାଏ—1. A warrior who has vowed not to desert the battle-field. ୨ । (ନାମ) ନାରାୟଣୀ ସେନା ବିଶେଷ—2. Name of an invincible army of Bishnu (which is bound by vow not to flee from the battle-field.) ୩ । ବଛା ବଛା ପ୍ରଧାନ ଯୋଦ୍ଧା (ଯେଉଁମାନେ ଯୁଦ୍ଧ ଭୂମିରେ ଜୟୀ ବା ନିହତ ହେବା ନିମନ୍ତେ ଦୃଢ଼ପ୍ରତିଜ୍ଞ)—3 'Forlorn-hope'; picked or chosen soldiers (those who have vowed to win or die.) ୪ । ଯୁଦ୍ଧଭୂମିରୁ ପଳାଇବାକୁ ଉଦ୍ୟତ ଯୋଦ୍ଧାଙ୍କୁ ପଳାଇବାକୁ ଛାଡ଼ି ନଦେବା ପାଇଁ ରଖାଯାଇଥିବା ଯୋଦ୍ଧା—4. A warrior kept in the battle-field to prevent the flight of others. (Apte). ୫ । ସହଯୋଦ୍ଧା—5. A brother in arms. (Apte). ୬। ଅନ୍ୟକୁ ହତ୍ୟା କରିବାପାଇଁ ଶପଥ କରିଥିବା ଷଡ଼ଯନ୍ତ୍ରକାରୀ ବ୍ୟକ୍ତି—6. A conspirator who has taken an oath to kill another. (Apte).

**ସଂଶବ୍ଦ**—ସଂ. ବି (ସମ୍ + ଶବ୍ଦ)—ଉଲ୍ଲେଖ—
Samśabda Mention; reference. (Apte)

**ସଂଶବ୍ଦନ**—ସଂ. ବି ( ସମ୍ + ଶବ୍ଦ ଧାତୁ + ଭାବ. ଅନ )—
Samśabdana ୧ । ପ୍ରଶଂସା କରିବା—1. Praising. ୨ । ଶବ୍ଦ ଉତ୍ପାଦନ—2. Making a sound. ୩ । ବଡ଼ ପାଟି କରି ଡାକିବା—3. Calling out to. (Apte) ୪ । ଉଲ୍ଲେଖକରଣ—4. Refering to. ( Apte ).

**ସଂଶୟ**—ସଂ. ବି (ସମ୍ + ଶୀ ଧାତୁ=ଶୋଇବା; ସନ୍ଦେହ କରିବା +
Samśaya ଭାବ. ଅ )—୧ । ସନ୍ଦେହ; ସନ୍ଦେହାତ୍ମକ ଜ୍ଞାନ—1. Doubt; hesitation; suspicion. ୨ । ବିଷମ ସମସ୍ୟା; ହଁ କି ନାଁ, ଏହିପରି ଦୋଛାଇ; ଧୋକା—2. Dilemma. ୩ । ଦୋଦୋ ପାଞ୍ଚ; ଦ୍ୱୈଧୀଭାବ—3. Feeling of uncertainty; scepticism; irresolution. ୪ । ବିପଦ—4. Danger; risk. (Apte). ୫ । ସମ୍ଭବତା—5. Possibility. (Apte). ୬ । (ନ୍ୟାୟଦର୍ଶନ) ଏକଧର୍ମିକ ବିରୁଦ୍ଧ ଭାବାଭାବ ପ୍ରକାରକ ଜ୍ଞାନ; ସଂଶୟ—6. (Nyaya philosophy) Indecision.

**ସଂଶୟ କରିବା**—ଦେ. କ୍ରି—୧ । ସନ୍ଦେହ କରିବା—1. To
Samśaya kariba doubt. ୨ । ଦୋ ଦୋ ପାଞ୍ଚ ହେବା—
संशय करना **संशयकरनौ, शक करना** 2. To hesitate.

ସଂଶୟ ଗ୍ରସ୍ତ—ସଂ. ବଣ. ପୁଂ (୭ମୀ ତତ୍)—ସଂଶୟାକୁଳ (ଦେଖ)
Saṁśaya grasta Saṁśayākula. (See)
(ସଂଶୟଗ୍ରସ୍ତା—ସ୍ତ୍ରୀ)

ସଂଶୟଚ୍ଛେଦ—ସଂ. ବ (୬ଷ୍ଠୀ ତତ୍; ସଂଶୟ+ଛେଦ; ଝ ଯୋଗୁଁ ଛ)—ସନ୍ଦେହର ବମୋଚନ—
Saṁśayachchheda
(ସଂଶୟଚ୍ଛେଦନ—ଅନ୍ୟରୂପ) Removal of doubt; the
[ସଂଶୟଚ୍ଛେଦକ—ବଣ] solution of a doubt.

ସଂଶୟଚ୍ଛେତ୍ତା—ସଂ. ବଣ. ପୁଂ (ଉପପଦ; ସଂଶୟକୁ ଛେଦନ କରେ
Saṁśayachchhettā ଯେ, ସଂଶୟ+ଛିଦ୍ ଧାତୁ+କର୍ତ୍ତୃ.
(ସଂଶୟଚ୍ଛେତ୍ତା - ଅନ୍ୟରୂପ) ତୃ; ସଂଶୟଚ୍ଛେତ୍ତୃ, ୧ମା. ୧ବ)—
ସଂଶୟଚ୍ଛେତ୍ତ୍ରୀ } ସ୍ତ୍ରୀ ସନ୍ଦେହ-ନାଶ-କାରୀ—Dispelling
ସଂଶୟଚ୍ଛେଦିନୀ } doubt; clearing all doubt
(ଉ—ଆପଣ ତ ସଂଶୟଚ୍ଛେତ୍ତା ଏ ଜଗତେ, ମୋହର ସଂଶୟକୁ ନାଶ ତ କରନ୍ତେ । କୃଷ୍ଣସିଂହ. ମହାଭାରତ. ସ୍ତ୍ରୀ ।)

ସଂଶୟ ଜନକ—ସଂ. ବଣ (ସଂଶୟ+ଜନ ଧାତୁ+କର୍ତ୍ତୃ. ଅକ)—
Saṁśaya janaka ସନ୍ଦେହଉତ୍ପାଦକ—Creating suspicion; raising doubt in the mind

ସଂଶୟ ଜନିତ—ସଂ. ବଣ—ସନ୍ଦେହରୁ ଉତ୍ପନ୍ନ—Resulting from
Saṁśaya janita doubt or suspicion.
( ସଂଶୟଜନ୍ୟ—ଅନ୍ୟରୂପ )

ସଂଶୟ ଜ୍ଞାନ—ସଂ. ବ—୧ । ସନ୍ଦେହବୋଧ; ମନରେ ସନ୍ଦେହ ପୋଷଣ
Saṁśaya jnāna —Entertainment of a doubt or suspicion in the mind. ୨ । ଦୁଇ ବସ୍ତୁ ମଧ୍ୟରୁ କୌଣସି ଗୋଟିଏ ହେବାରୂପ ସନ୍ଦେହ—2. The state of mind in which either of two alternatives has the appearance of truth when weighed in it. [ଦ୍ର—ଗୋଟିଏ ବସ୍ତୁକୁ ବସ୍ତୁ ବୋଲି ଜାଣିବାକୁ 'ବସ୍ତୁ-ଜ୍ଞାନ', ରଜ୍ଜୁକୁ ସର୍ପ ବୋଲି ବୁଝିବାକୁ 'ଭ୍ରମଜ୍ଞାନ' ଏବଂ ରଜ୍ଜୁକୁ ଦେଖି ଏହା ରଜ୍ଜୁ କି ସର୍ପ, ଏପରି ସନ୍ଦେହରେ ପଡିବାକୁ ହେଲେ ତାକୁ 'ସଂଶୟ-ଜ୍ଞାନ' କହନ୍ତି । ]

ସଂଶୟ ଦୋଳା—ସଂ. ବ (ରୂପକ କର୍ମଧାରୟ)—ସଂଶୟରୂପ ଦୋଳା—
Saṁśaya dolā Hesitation or doubt compared to a swing or pendulum.

ସଂଶୟ ମୂଳକ—ସଂ. ବଣ ( ବହୁବ୍ରୀହି )—ସନ୍ଦେହାତ୍ମକ—
Saṁśaya mūlaka Originating from doubt.

ସଂଶୟ ସାଗର—ସଂ. ବ ( ରୂପକ )—ସଂଶୟରୂପ ସମୁଦ୍ର—Doubt
Saṁśaya sāgara compared to the billowy sea.

ସଂଶୟସ୍ଥ—ସଂ. ବଣ. ପୁଂ—ସନ୍ଦେହଯୁକ୍ତ; ସଂଶୟାପନ୍ନ; ସନ୍ଦିହାନ—
Saṁśayastha Doubtful; hesitating ( Apte )
( ସଂଶୟସ୍ଥା—ସ୍ତ୍ରୀ )

ସଂଶୟାକୁଳ—ସଂ. ବଣ. ପୁଂ ( ୩ୟା ତତ୍ )—ସନ୍ଦିଗ୍ଧ; ଯାହା
Saṁśayākula ସନ୍ଦେହଦ୍ୱାରା ଅଭିଭୂତ—Doubtful; (mind) distracted by doubt.
( ସଂଶୟାକୁଳିତ, ସଂଶୟାକ୍ରାନ୍ତ, ସଂଶୟାପନ୍ନ—ଅନ୍ୟରୂପ )
(ସଂଶୟାକୁଳା, ସଂଶୟାକୁଳିତା, ସଂଶୟାକ୍ରାନ୍ତା, ସଂଶୟାପନ୍ନା—ସ୍ତ୍ରୀ)

ସଂଶୟାତ୍ମା—ସଂ.ବଣ.ପୁଂ ଓ ସ୍ତ୍ରୀ (ବହୁବ୍ରୀହି, ସଂଶୟାତ୍ମନ୍, ୧ମା.୧ବ)—
Saṁśayātmā ସନ୍ଦିହାନ—Of a hesitating nature; of a suspicious nature; sceptic. ସଂ. ବ—ସନ୍ଦେହପୂର୍ଣ୍ଣ ଆତ୍ମା, ସନ୍ଦେହଯୁକ୍ତ ମନ—
Doubtful mind.

ସଂଶୟାନ—ସଂ. ବଣ. ପୁଂ. (ସମ୍+ଶୀ ଧାତୁ=ସନ୍ଦେହ କରିବା+
Saṁśayāna କର୍ତ୍ତୃ. ଆନ)—ସଂଶୟାଳୁ ( ଦେଖ )—
(ସଂଶୟାନା—ସ୍ତ୍ରୀ) Saṁśayālu ( See )

ସଂଶୟାନ୍ୱିତ—ସଂ. ବଣ. ପୁଂ ( ୩ୟା ତତ୍ )—୧ । ସଂଶୟଯୁକ୍ତ;
Saṁśayānwita ସନ୍ଦେହପୂର୍ଣ୍ଣ—1. Doubtful. ୨ ।
(ସଂଶୟାନ୍ୱିତା—ସ୍ତ୍ରୀ) କିଂକର୍ତ୍ତବ୍ୟବିମୂଢ଼—2. Irresolute.

ସଂଶୟାଳୁ—ସଂ. ବଣ. ପୁଂ ଓ ସ୍ତ୍ରୀ. (ସମ୍+ଶୀ ଧାତୁ+କର୍ତ୍ତୃ. ଆଳୁ;
Saṁśayālu ଶୀଳାର୍ଥେ )—ସନ୍ଦେହଶୀଳ; ସନ୍ଦିହାନ; ସନ୍ଦେଗ୍ଧି-—Suspicious; hesitating.

ସଂଶୟିତ—ସଂ. ବ. (ସମ୍+ଶୀ ଧାତୁ+କର୍ତ୍ତୃ. ତ)—୧ । ସନ୍ଦେହା-
Saṁśayita କୁଳ—1. Doubtful. ୨ । ଅନିଶ୍ଚିତ—2. Uncertain. ୩ । ବିପଦଗ୍ରସ୍ତ—3. Supposed to be in peril or danger; endangered (Apte). ୪ । (+କର୍ମ. ତ)—ଯେଉଁ ବିଷୟରେ ସନ୍ଦେହ କରା ଯାଉଅଛି—4. Doubted; questioned (Apte).

ସଂଶୟିତା—ସଂ. ବଣ. ପୁଂ (ସମ୍+ଶୀ ଧାତୁ=ସନ୍ଦେହ କରିବା+
Saṁśayitā କର୍ତ୍ତୃ. ତୃ; ୧ମା. ୧ବ)—ସନ୍ଦିହାନ—Doubt-
(ସଂଶୟିତ୍ରୀ—ସ୍ତ୍ରୀ) ing; hesitating.

ସଂଶୟୋପେତ—ସଂ. ବଣ. ପୁଂ ( ବହୁବ୍ରୀହି )—ସଂଶୟାପନ୍ନ—
Saṁśayopeta Doubting; hesitating
(ସଂଶୟୋପେତା—ସ୍ତ୍ରୀ)

ସଂଶରଣ—ସଂ.ବ. (ସମ୍+ଶୃ ଧାତୁ=ହିଂସା କରିବା+ଭାବ. ଅନ)—
Saṁśaraṇa ଯୁଦ୍ଧୋପକ୍ରମ; ଯୁଦ୍ଧାରମ୍ଭ—Beginning of hostilities; commencement of battle.

ସଂଶିତ—ସଂ. ବଣ. ପୁଂ (ସମ୍+ଶୋ ଧାତୁ=ନାଶ କରିବା; କର୍ଣ୍ଣସୁ କରିବା+କର୍ମ. ତ)—୧ । କର୍ଣ୍ଣୀତ; କଳ୍ପିତ;
Saṁśita
(ସଂଶିତା—ସ୍ତ୍ରୀ) ନିଶ୍ଚିତ; ନିରୂପିତ—1. Ascertained, settled; fixed; decided; determined. ୨ । ସୂଚିତ—2. Hinted; indicated; attended to. ୩ । ସମ୍ପୂର୍ଣ୍ଣ—3. Completed; finished. ୪ । ନିର୍ବାହିତ; ସଂପାଦିତ—4. Accomplished; effected. ୫ । ସମ୍ୟକ୍ ଶାଣିତ; ତୀକ୍ଷ୍ଣୀକୃତ—5. Whetted; sharpened. ୬ । ନିଶ୍ଚାଳ[illegible]

ବ୍ରତ ପାଳନରେ ସଂପୂର୍ଣ୍ଣ ରୂପେ ଯତ୍ନବାନ୍—6. Careful or resolved to duly perform a religious vow. ୭ । ସମାପ୍ତ—7. Completed. ୮ । ତୀକ୍ଷ୍ଣ—8. Sharp (Apte).

**ସଂଶିତ ବ୍ରତ**—ସଂ. ବଣ. ପୁଂ (ବହୁବ୍ରୀହି; ସଂଶିତ ହୋଇଅଛି ବ୍ରତ **Samśita brata** ଯାହାର ବା ସଂଶିତ ଅଛେ ବ୍ରତରେ ଯେ)—(ସଂଶିତବ୍ରତା—ସ୍ତ୍ରୀ) ୧ । ବ୍ରତନିଷ୍ଠ; ଯଥା ନିୟମରେ ବ୍ରତ-ଅନୁଷ୍ଠାନକାରୀ—1. Performing religious vows regularly and properly; regular in the performance of religious vows. ୨ । ଯେ ବ୍ରତ ପାଳନ କରି ସାରିଅଛି—2. One who has fulfilled his vow.

**ସଂଶିତାତ୍ମା**—ସଂ.ବଣ.ପୁଂ. (ବହୁବ୍ରୀହି; ସଂଶିତ+ଅତ୍ମନ୍; ୧ମା.୧ବ)-**Samśitātmā** ଯାହାର ମନ ଉତ୍ତମରୂପେ ସଂଯତ ଓ ପରିପକ୍ୱ ହୋଇଅଛି—One whose mind is thoroughly matured and disciplined (Apte).

**ସଂଶୀତି**—ସଂ. ବି. (ସମ୍+ଶୀ ଧାତୁ+ଭାବ. ତି)—ସଂଶୟ; ସନ୍ଦେହ—**Samśiti** Doubt (Apte).

**ସଂଶୁଦ୍ଧ**—ସଂ. ବଣ. ପୁଂ (ସମ୍+ଶୁଧ୍ ଧାତୁ+କର୍ମ. ତ)—୧ । ସମ୍ପୂର୍ଣ୍ଣ-**Samśuddha** ରୂପେ ପବିତ୍ରୀକୃତ—1. Completely (ସଂଶୁଦ୍ଧା—ସ୍ତ୍ରୀ) purified. ୨ । ପରିଶୋଧିତ; ସମ୍ମାର୍ଜ୍ଜିତ—2. Polished; refined ୩ । ପ୍ରାୟଶ୍ଚିତ୍ତଦ୍ୱାରା ଅପଗତପାପ—3. Expiated. ୪ । ଅପରାଧ ବା ଅଭିଯୋଗରୁ ମୁକ୍ତ—4. Accquitted (of a charges) ୫ । ଦାୟିତ୍ୱରୁ ବା ଋଣରୁ ନିଷ୍କୃତିପ୍ରାପ୍ତ—5. Freed or released of a debt or liability. ୭ । ସମ୍ପୂର୍ଣ୍ଣ ରୂପେ ପରିଷ୍କୃତ—7. Thoroughly cleansed.

**ସଂଶୁଦ୍ଧି**—ସଂ. ବି ( ସମ୍+ଶୁଦ୍ଧି )—୧ । ମାର୍ଜ୍ଜନ; ସମ୍ୟକ୍ ଶୋଧନ—**Samśuddhi** 1. Thorough cleansing or scouring; (ସଂଶୁଦ୍ଧ—ବଣ) complete purification. ୨ । ସମ୍ୟକ୍ ଶୁଦ୍ଧି—2. Purity; cleanness. ୩ । ସ୍ନାନାଦି ଦ୍ୱାରା ଦେହ ମାର୍ଜ୍ଜନ—3. Cleansing of the body by ablution. ୪ । ସଂଶୋଧନ; ସୁଧାର—4. Correction; rectification. ୫ । ଋଣ-ପରିଶୋଧ—5. Aquittance of debt. ୬ । ଅପରାଧରୁ ବା ଅଭିଯୋଗରୁ ମୁକ୍ତିଲାଭ—6. Acquittance from a charge.

**ସଂଶୋଧକ**—ସଂ. ବଣ. ପୁଂ ( ସମ୍+ଶୁଧ୍ ଧାତୁ=ଶୋଧନ କରିବା **Samśodhaka** +କର୍ତ୍ତୃ. ଅକ )—୧ । ପରିଷ୍କାରକ—(ସଂଶୋଧିକା—ସ୍ତ୍ରୀ) 1. Purifying; cleansing. ୨ । ସଂଶୋଧନକାରୀ—2. Correcting; reforming. ସଂ. ବି. ପୁଂ—୧ । ସଂଶୋଧନ କର୍ତ୍ତା—1. Purifier, cleanser. ୨ । ସଂସ୍କାରକ—2. Reformer.

**ସଂଶୋଧନ**—ସଂ: ବି ( ସମ୍+ଶୁଧ୍ ଧାତୁ=ପରିଷ୍କାର କରିବା+ଭାବ. **Samśodhana** ଅନ )—୧ । ପରିଷ୍କରଣ; ମଳମାର୍ଜ୍ଜନ—(ସଂଶୋଧିତ, ସଂଶୁଦ୍ଧ—ବଣ) 1. Cleansing; purifying. ୨ । ଭ୍ରମାଦି ଶୋଧନ; ଭ୍ରାନ୍ତି ଦୂରୀକରଣ—2. Correcting; rectification. ୩ । ସଂସ୍କାର କରିବା—3. Reformation.

**ସଂଶ୍ୱତ୍**—ସଂ. ବି—୧ । ଇନ୍ଦ୍ରଜାଲ—1. Trick; jugglery **Samśwat** (Apte). ୨ । ମାୟା—2. Illusion (Apte) ୩ । ଐନ୍ଦ୍ରଜାଲିକ; ଯାଦୁକର—3. A juggler ( Apte ).

**ସଂଶ୍ୟାନ**—ସଂ. ବଣ—୧ । ସଙ୍କୁଚିତ—1. Contracted; shrunk **Samśyāna** ( Apte ). ୨ । ଘନୀଭୂତ—2. Frozen; congealed ( Apte ). ୩ । ଗୁଡ଼ାଇ ହୋଇଥିବା—3. Rolled up ( Apte ). ୪ । ମୃତ ହୋଇ ଯାଇ-ଥିବା—4. Collapsed ( Apte )

**ସଂଶ୍ରଦ୍ଧ**—ଦେ. ବି—୧ । ଅତ୍ୟନ୍ତ ସ୍ନେହ—1. Excessive love. **Samśraddha** ୨ । ଆଦର—2 Fondness. [ ହି—ମୁଁ आदर पाकर ଯେ ସଂଶ୍ରଦ୍ଧରୁ ଧରୁ ପଚୁଁକ ବଶରୁ ଗୁରୁଜାନ୍ତୁ ଗଲ ମୋ କୋଡ଼ରୁ ଡରୁ—ଭଞ୍ଜ. ପ୍ରେମସୁଧାନିଧି । ]

**ସଂଶ୍ର (ସ୍ର, ଶ୍ରା, ସ୍ରା)ବ**—ସଂ. ବି ( ସମ୍+ଶ୍ରୁ ଧାତୁ=ଅଙ୍ଗୀକାର, **Samśra (sra, śrā, srā)ba** କରିବା, ଗମନ କରିବା, ଶୁଣିବା ଇତ୍ୟାଦି+ଭାବ. ଅ )—୧ । ସମ୍ପର୍କ—1. Connection; relationship. ୨ । ସମ୍ବନ୍ଧ—2. Relation. ୩ । ପ୍ରତିଜ୍ଞା—3. Promise. ୪ । ଅଙ୍ଗୀକାର—4. Agreement; engagement. ୫ । ସଙ୍ଗମ; ମିଳନ—5. Meeting, union. ୬ । ମନୋଯୋଗପୂର୍ବକ ଶ୍ରବଣ—6. Hearing attentively ( Apte ).

**ସଂଶ୍ରବଣ**—ସଂ. ବି ( ସମ୍+ଶ୍ରୁ ଧାତୁ+ଅନ )—୧ । ( +କରଣ. **Samśrabaṇa** ଅନ ) କାନ—1. The ear ( Apte ). ୨ । ( +ଭାବ. ଅନ ) ଶୁଣିବା—2. Hearing ( Apte ).

**ସଂଶ୍ରୟ**—ସଂ. ବି ( ସମ୍+ଶ୍ରି ଧାତୁ=ସେବା କରିବା, ପାଇବା, **Samśraya** ଅବଲମ୍ବନ କରିବା+କର୍ମ. ଅ )—୧ । ଅବଲମ୍ବନ; ଆଶ୍ରୟସ୍ଥଳ—1. Refuse; asylum, resort. ୨ । ( +ଭାବ. ଅ ) ପ୍ରାପ୍ତି—2. Acquisition. ୩ । ବ୍ୟାପ୍ତି—3. Overspreading; pervading. ୪ । ( +କର୍ମ. ଅ ) କାରଣ—4. Cause; reason. ୫ । ବାସସ୍ଥାନ; ଗୃହ—5. A resting or dwelling place (Apte). ୬ । (+ଭାବ. ଅ) ରକ୍ଷା; ଆଶ୍ରୟ—6. Protection; shelter (Apte). ୭ ।

( ରାଜନୀତି ) ରାଜ୍ୟରକ୍ଷାର୍ଥ ରାଜାଙ୍କର ପାଳନୀୟ ୬ଟି ଗୁଣରୁ ଏକ, ଅନ୍ୟ ରାଜାଙ୍କ ସଙ୍ଗେ ସମ୍ପର୍କ ସ୍ଥାପନ—7. (Politics) A proper course of action; an expedient to be used by a king in foreign politics (Apte). [ଦ୍ର—ରାଜ୍ୟରକ୍ଷା ପାଇଁ ରାଜାଙ୍କ ପାଳନୀୟ ୬ଟି ଗୁଣ ବା ଉପାୟ ଯଥା—ସନ୍ଧି, ବିଗ୍ରହ, ଯାନ, ଆସନ, ସଂଶ୍ରୟ ଓ ଦ୍ୱୈଧ।] ସ. ବିଣ. (ଅନ୍ୟ ଶବ୍ଦ ପରେ ସମାସରେ ଲାଗେ)—୧। ଅମୁକ ସଙ୍ଗେ ବାସ କରୁଥିବା (ଯଥା—ସ୍ୱଭକୁଳୈକସଂଶ୍ରୟ)—1. Dwelling or residing with. ୨। ଅମୁକ ସଙ୍ଗେ ସଂଯୁକ୍ତ ବା ସମ୍ବନ୍ଧ—2. Pertaining to. (ଯଥା—ନୌସଂଶ୍ରୟ) ୩। (ଅନ୍ୟ ଶବ୍ଦ ସଙ୍ଗେ ସମାସରେ ଯୁକ୍ତ, ଯଥା—ବୀର ସଂଶ୍ରୟ) ବନ୍ଧୁତା ବା ଆଶ୍ରୟ ଲୋଡ଼ୁଥିବା—3 Forming or seeking alliance with; seeking protection or shelter of (Apte).

ସଂଶ୍ରିତ—ସଂ. ବିଣ. ପୁଂ (ସମ୍+ଶ୍ରି ଧାତୁ+କର୍ତ୍ତ୍ରି. ତ)—୧। ଆଶ୍ରିତ; Samśrita ଶରଣାପନ୍ନ—1. Taking shelter under; (ସଂଶ୍ରିତା—ସ୍ତ୍ରୀ) gone to for refuge (Apte). ୨। ସଂଯୁକ୍ତ—2 United; joined; attached (Apte). ୩। ଅଶ୍ରୟ ପ୍ରାପ୍ତ—3. Supported; sheltered (Apte). ବି—୧। ଆଶ୍ରିତ ବ୍ୟକ୍ତି—1. A dependant (Apte). ୨। ଅନୁଚର—2. Follower; servant (Apte).

ସଂଶ୍ରୁତ—ସଂ. ବିଣ (ସମ୍+ଶ୍ରୁ ଧାତୁ=ଶ୍ରବଣ କରିବା ଇତ୍ୟାଦି+କର୍ମ. Samśruta ତ)—୧। ପ୍ରତିଶ୍ରୁତ; ପ୍ରତିଜ୍ଞାତ—1. Promised; agreed to. ୨। ଉତ୍ତମ ରୂପେ ଶ୍ରୁତ—2. Well-heard (Apte).

ସଂଶ୍ଳିଷ୍ଟ—ସଂ. ବିଣ (ସମ୍+ଶ୍ଳିଷ୍ ଧାତୁ=ଆଲିଙ୍ଗନ କରିବା+କର୍ମ; Samślishta ତ)—୧। ଆଲିଙ୍ଗିତ—1. Embraced clasped; pressed together. ୨। ମିଳିତ—2. United with; joined. ୩। ସଂଯୁକ୍ତ; ସଂପର୍କଯୁକ୍ତ—3. Connected with; related to. ୪। ନିକଟବର୍ତ୍ତୀ; ସନ୍ନିହିତ—4. Contiguous; adjacent, adjoining; lying close to. ୫। (ଅମୁକ ବିଷୟ ବା ଗୁଣ ଦ୍ୱାରା) ଯୁକ୍ତ—5.Having been furnished with, endowed with (Apte).

ସଂଶ୍ଳେଷ—ସଂ. ବି. (ସମ୍+ଶ୍ଳିଷ୍ ଧାତୁ=ଆଲିଙ୍ଗନ କରିବା+ଭାବ. Samślesha ଅ)—୧। ଆଲିଙ୍ଗନ—1. Embrace. ୨। ମିଳନ—2. Union, association. ୩। ସମ୍ପର୍କ—3. Connection; relation. ୪। ଲାଗିଯିବା; ଗାଢ଼ ସଂଯୋଗ—4. Contact.

ସଂଶ୍ଳେଷଣ—ସଂ. ବି. (ସମ୍+ଶ୍ଳିଷ୍ ଧାତୁ+ଭାବ. ଅନ)—୧। ଆଲିଙ୍ଗନ Samśleshana କରିବା—1. Embracing. ୨। ପରସ୍ପର ସଙ୍ଗେ ଚିପିବା—2. Pressing together. ୩। (+କରଣ. ଅନ) ବନ୍ଧନସାଧନ; ଯାହା ଦ୍ୱାରା ଏକାଧିକ ବସ୍ତୁକୁ ଏକତ୍ର ବନ୍ଧାଯାଏ—3. Means of binding together (Apte). ୪। ସମ୍ପର୍କ—4. Connection. ୫। ବାନ୍ଧୁଣି—5. Bond; tie (Apte).

ସଂସକାର—ଗ୍ରା. ବି. (ତଦ୍ଭବ) (ସଂ. ସଂସ୍କାର)—ସଂସ୍କାର (ଦେଖ) Samsakāra Samskāra (See) [ଦ୍ର—ଠାକ ଖଣ୍ଡିଏ ସଂସକାର କଲ। ପ୍ରଭାତ. ଶର୍ଶୀରେଖା।]

ସଂସକୃତ—ଗ୍ରା. ବି. (ସଂ. ସଂସ୍କୃତ)—ସଂସ୍କୃତ ଭାଷା—The Samsakruta Sanskrit language. [ଦ୍ର—ଯେବେ ନ ସଂସ୍କୃତ **सं संस्कृत** ଥାଇ କୃଷ୍ଣରସ ସେ ସଂସକୃତେ କାର୍ଯ୍ୟ କସ ? ଭୂପତି. ପ୍ରେମ ପଞ୍ଚାମୃତ।]

ସଂସକ୍ତ—ସଂ. ବିଣ. (ସମ୍+ସନଜ୍ ଧାତୁ=ଆସକ୍ତ ହେବା+କର୍ତ୍ତ୍ରି. Samsakta ତ)—୧। ସଂଲଗ୍ନ; ଲାଗି ଯାଇଥିବା—1. Attached to, adhered; stuck together. ୨। ସନ୍ନିକଟବର୍ତ୍ତୀ—2. Adjoining; contiguous, near. ୩। ସଂସୃଷ୍ଟ; ସମ୍ପୃକ୍ତ; ଅନ୍ୟବସ୍ତୁର ସଙ୍ଗେ ମିଳିତ—3. Combined with; united to; joined or linked together. ୪। ଆସକ୍ତ—4 Devoted to; enamoured of. ୫। ସମନ୍ତାତ୍ ବିସ୍ତୃତ—5. Spread on all sides. ୬। ଗୋଳେଇ ହୋଇ ମିଶି ଯାଇଥିବା—6. Blended, mingled; confused (Apte). ୭। (ଅମୁକ) ବିଶିଷ୍ଟ; ଯୁକ୍ତ—7. Having; endowed with; possessed of (Apte). ୮। ନିରୁଦ୍ଧ—8. Restrained (Apte). ୯। ଅମୁକ କାର୍ଯ୍ୟପାଇଁ କୃତସଂକଳ୍ପ—9. Intent on; bent on (Apte). ୧୦। ବଦ୍ଧ; ବନ୍ଧା ହୋଇଥିବା—10. Fastened (Apte).

ସଂସକ୍ତି—ସଂ. ବି. (ସମ୍+ସନଜ୍ ଧାତୁ+ଭାବ. ତି)—୧। ନିକଟSamsakti ବର୍ତ୍ତିତା—1. Contiguity; proximity. ୨। ଘନିଷ୍ଠମିଳନ—2. Close association, union. ୩। (ବିଜ୍ଞାନ) ପଦାର୍ଥର ଗୁଣବିଶେଷ; ଯେଉଁ ଗୁଣ ଦ୍ୱାରା ପଦାର୍ଥ ମଧ୍ୟସ୍ଥ ପରସ୍ପର ନିକଟବର୍ତ୍ତୀ ପରମାଣୁଗୁଡ଼ିକ ପରସ୍ପର ସହିତ ମିଳିତ ହୁଏ—3. Chemical affinity. ୪। ଲାଗିଯିବା ଅବସ୍ଥା—4. Close adherence. ୫। ସହବାସ—5. Intercourse. ୬। ଘନିଷ୍ଠତା—6. Intimacy; intimate acquaintance (Apte). ୭। ଏକତ୍ର ବନ୍ଧନ—7. Tying; fastening together (Apte). ୮। କୌଣସି ବିଷୟ ପ୍ରତି ଲିପ୍ତ ହେବା ଅବସ୍ଥା; ଏକାନ୍ତ ଆସକ୍ତି—7. Devotion; addiction to any thing.

ସଂଶକ୍ତ ମନାଃ—ସଂ. ବଣ. ପୁଂ ଓ ସ୍ତ୍ରୀ. (ବହୁବ୍ରୀହି; ସଂଶକ୍ତ+ମନସ୍;
Saṁśakta manāḥ ସମା. ୧ବ)—କୌଣସି କର୍ମ କରିବାକୁ ସ୍ଥିର ସଂକଳ୍ପ କରିଥିବା—With the mind fixed or attached (to a particular object (Apte).

ସଂଶକ୍ତ ଯୁଗ—ସଂ. ବଣ. (ବହୁବ୍ରୀହି; ସଂଶକ୍ତ ହୋଇଅଛି ଯୁଗ
Saṁsakta juga ଯାହାଠାରେ)—ଯୁଆଳରେ ଯୋଗୁ ଯାଇଥିବା—Yoked; harnessed (Apte).

ସଂସଦ୍—ସଂ. ବି.—(ସମ୍+ସଦ୍ ଧାତୁ=ଗମନ କରିବା+ଅଧିକରଣ.
Saṁsad କ୍ୱିପ୍) ୧। ସଭା; ସମାଜ; ଏକତ୍ର ବସିବା—1 Association; assembly; meeting; congregation; society. ୨। ଧର୍ମାଧିକରଣ; ବିଚାରାଳୟ—2. A court of justice (Apte).

ସଂସର—ଦେ. ବି—ସମସର (ଦେଖ)—
Saṁsara Samasara (See)

ସଂସରଣ—ସଂ. ବି (ସମ୍+ସୃ ଧାତୁ=ଗମନ କରିବା+ଭାବ. ଅନ)
Saṁsaraṇa ୧। ବିନା ବାଧାରେ ସୈନ୍ୟଙ୍କର ଗମନ ବା ଯାତ୍ରା—1. Unobstructed march of a band of soldiers; unresisted march of troops. ୨। ଗମନ—2. Going; proceeding. ୩। ସଂସାର; ସାଂସାରିକ ବିଷୟ—3. The worldly concerns. ୪। ସମ୍ପତ୍ତି—4. A person's worldly circumstances or means. ୫। (+ଅଧି ଅନ) ପ୍ରଧାନ ପଥ; ବଡ଼ ରାସ୍ତା; ରାଜଦାଣ୍ଡ—5. Main road, high-way. ୬। ସଂସାରରେ ଜନ୍ମ ଓ ପୁନର୍ଜନ୍ମ—6. Birth and rebirth (Apte) ୭। ଯୁଦ୍ଧର ଆରମ୍ଭ—7. The commencement of battle (Apte). ୮। ନଗରର ଫାଟକ ନିକଟରେ ଥିବା ପଥିକଙ୍କ ବିଶ୍ରାମ ସ୍ଥାନ—8. A resting place for travellers near the gates of a city (Apte)

ସଂ(ସାଁ)ସରା—ପ୍ରାଦେ. (ସାଳଘର) ବଣ.—ସବୁବେଳେ ସଁ ସଁ ହେଉଥିବା
Saṁ(sāñ)sarā (ବଳଦ)—(A bullock) Which is always breathing with a hissing sound. [ଭି—ସରସ୍ ବଳଦ]

ସଂସର୍ଗ—ସଂ. ବି (ସମ୍+ସୃଜ ଧାତୁ=ସୃଷ୍ଟି କରିବା, ସହବାସ କରିବା+
Samsarga ଭାବ. ଅ) ୧। ସମ୍ପର୍କ; ସମ୍ବନ୍ଧ—1. Connection; relationship. ୨। କୌଣସି ବ୍ୟକ୍ତି ସଙ୍ଗେ ଘନିଷ୍ଠ ଭାବରେ ବସବାସ କରିବା—2. Keeping company with anybody; familiar intercourse; familiarity. ୩। ଏକତ୍ର ବାସ; ଏକତ୍ର ଅବସ୍ଥାନ—3. Association; living together; co-existence. ୪। ମୈଥୁନ; ଅଭିଗମନ; ସହବାସ—4. Sexual intercourse; cohabitation; copulation. ୫। ସଙ୍ଗ—5. Company. ୬। ପରସ୍ପର ସଙ୍ଗେ ମିଶ୍ରଣ; ମିଳନ—6. Commixure, junction; union (Apte). ୭। ସାହଚର୍ଯ୍ୟ—7. Association (Apte). ୮। ନୈକଟ୍ୟ—8. Proximity (Apte). ୯। ସ୍ପର୍ଶ—9. Contact, touch (Apte)
(ସଂସୃଷ୍ଟ—ବଣ)

ସଂସର୍ଗଜ—ସ.ବ. (ସଂସର୍ଗ+ଜନ୍ ଧାତୁ+କର୍ତ୍ତୃ.ଅ)—ସଂସର୍ଗରୁ ଜାତ—
Saṁsargaja Due to or resulting from relationship or contact.
(ସଂସର୍ଗଜା—ସ୍ତ୍ରୀ)

ସଂସର୍ଗଜା ଦୋଷଗୁଣା ଭବନ୍ତି—ସଂ. ପ୍ରବଚନ—ମନୁଷ୍ୟର ଦୋଷ ବା
Saṁsargajā doshā guṇā bhabanti ଗୁଣ ସଂସର୍ଗରୁ ଘଟେ—A man becomes good or bad as a result of the company he keeps.

ସଂସର୍ଗ ଦୋଷ—ସଂ. ବି. (ଷଷ୍ଠୀ ତତ୍) ୧। ଦୋଷଯୁକ୍ତ ସଂସର୍ଗ
Saṁsarga dosha ମନ୍ଦ ସଂସର୍ଗ—1. Bad company, evil association. ୨। ସଂସର୍ଗର ଦୋଷ—2. The fault of intercourse. ୩। (ପ୍ର. ପ. ଲୋ) ସଂସର୍ଗଜନିତ ଦୋଷ—3. Evil consequences resulting from (bad) association; the fault resulting from keeping company with bad people.

ସଂସର୍ଗ ଲିପ୍ସା—ସଂ. ବି. (ଷଷ୍ଠୀ ତତ୍)—ସହବାସ ପାଇଁ ଇଚ୍ଛା—
Saṁsarga lipsā Hankering or desire for
(ସଂସର୍ଗ ଲିପ୍ସୁ—ବଣ) association or sexual intercourse.

ସଂସର୍ଗାଭାବ—ସଂ. ବ (ଷଷ୍ଠୀ ତତ୍, ସଂସର୍ଗ+ଅଭାବ) ୧।
Saṁsargābhāba ସଂସର୍ଗର ଅଭାବ—1. Want of familiar intercourse. ୨। (ନ୍ୟାୟ ଦର୍ଶନ) ତ୍ରିବିଧ ଅଭାବ [ଯଥା—ପ୍ରାଗଭାବ (antecedent non-existence), ପ୍ରଧ୍ୱଂସାଭାବ (Emergent non-existence) ଓ ଅତ୍ୟନ୍ତାଭାବ (=absolute non-existence)] 2. (Nyāya philosophy) Three kinds of want of connection or non existence (i.e. 2 kinds of relative non-existence and one kind of absolute non-existence.)

ସଂସର୍ଗୀ—ସଂ. ବି. ପୁଂ (ସଂସର୍ଗ+ଅସ୍ତି ଅର୍ଥରେ ଇନ୍, କିମ୍ବା ସମ୍
Saṁsargī ସୃଜ୍ ଧାତୁ+କର୍ତ୍ତୃ. ଇନ୍ ଶୀଳାର୍ଥେ)—୧। ସମ୍ବନ୍ଧୀ
(ସଂସର୍ଗିଣୀ—ସ୍ତ୍ରୀ) 1. Relative to; intimate with. ୨। ସହବାସକାରୀ—2. Associating or cohabiting. ୩। ସଂଯୁକ୍ତ—3. United; associated with. (Apte). ୪। (ଅମୁକର) ସଙ୍ଗେ ସଂସର୍ଗକାରୀ—4 Keeping

company with; familiar. ସ. ବି. ପୁଂ— ୧ । ସଙ୍ଗୀ; ସହଚର—1. Companion. ୨ । ସହଯୋଗୀ; ସହକର୍ମୀ—2. An associate

**ସଂସର୍ଜନ**—ସଂ. ବି (ସମ୍ + ସୃଜ୍ ଧାତୁ + ଭାବ. ଅନ)—୧ । ଏକତ୍ର ମିଶାଇବା—1. Commingling (Apte). ୨ । ତ୍ୟାଗକରଣ—2 Leaving; abandoning (Apte). ୩ । ଉତ୍ସର୍ଗକରଣ—3. Voiding; discharging. (Apte).
Saṁsarjana

**ସଂସର୍ପ**—ସଂ. ବି (ସମ୍ + ସୃପ୍ ଧାତୁ=ଗମନ କରିବା + ଭାବ. ଅ)— ୧ । ସମ୍ୟକ୍ ପ୍ରକାରେ ଗମନ—1. Particular kind of going. ୨ । ସର୍ପବତ୍ ଗତି—2. Serpentine motion; movement like a snake. ୩ । ପ୍ରସାରଣ; ବିସ୍ତାର—3. Spreading; extending; diffusion. ୪ । ଧୀରଗମନ; ଗୁରୁଣ୍ଡି କରି ଯିବା—4. Creeping along; gliding, gentle motion. (Apte). ୫ । (+ ଅଧିକରଣ.ଅ) କ୍ଷୟ ମାସ ଥିବା ବର୍ଷର ମଳମାସ—5 The intercalary month accruing in a year in which there occurs a Kshyaya māsa. (Apte)
Saṁsarpa
(ସଂସର୍ପୀ—ବିଣ. ପୁଂ)

**ସଂସର୍ପଣ**—ସଂ. ବି (ସମ୍ + ସୃପ୍ ଧାତୁ + ଭାବ. ଅନ)— ୧ । ଗୁରୁଣ୍ଡି ଯିବା—1. Creeping along. ୨ । ଅପ୍ରତ୍ୟାଶିତ ଆକ୍ରମଣ—2. Surprise; unexpected attack; rally. (Apte).
Saṁsarpaṇa

**ସଂସର୍ପୀ**—ସଂ. ବିଣ. ପୁଂ (ସମ୍ + ସୃପ୍ ଧାତୁ + କର୍ତ୍ତୃ. ଇନ୍; ୧ମା. ୧ ବ)—୧। ଗୁରୁଣ୍ଡି କରି ଯାଉଥିବା—1. Creeping. ୨ । ଧୀର ଗତି କରୁଥିବା—2. Moving slowly. ୩ । ବକ୍ରଗତି କରୁଥିବା—3. Winding. (Apte)
Saṁsarpī
(ସଂସର୍ପିଣୀ—ସ୍ତ୍ରୀ)

**ସଂସାଦ୍**—ସଂ. ବି (ସମ୍ + ସଦ୍ ଧାତୁ + ଅଧି କ୍ୱିପ୍)—ସଂସଦ୍ (ଦେଖ) Saṁsad. (See)
Saṁsād

**ସଂସାଧନ**—ସଂ. (ସମ୍ + ସାଧ୍ ଧାତୁ + ଭାବ. ଅନ)—୧ । ସମାଧାନ; ସମ୍ପାଦନ—1. Accomplishment, completion. ୨ । ପ୍ରାପ୍ତି—2. Obtaining; getting; acquisition. ୩ । ବ୍ୟବସ୍ଥା—3. Settlement arrangement. ୪ । ବଧ; ମାରଣ —4. Killing. ୫ । ନିର୍ବାପନ —5. Extinguishing.
Saṁsādhana
(ସଂସାଧିତ—ବିଣ)

**ସଂସାର**—ସଂ. ବି (ସମ୍ + ସୃ ଧାତୁ=ଗମନ କରିବା + ଅଧି. ଅ; ଯେଉଁଠାରେ ପ୍ରାଣିଗଣ ଗମନାଗମନ କରନ୍ତି)— ୧ । ଜଗତ୍; ପୃଥିବୀ; ମରଲୋକ; ମର୍ତ୍ତ୍ୟଲୋକ; ଇହଲୋକ— 1. The world; the earth; the creation; the mortal world; course of worldly existence; earthly existence. ୨ । ମାୟାପୂରିତ ଜଗତ୍—2. The world which is full of illusion. ୩ । ଅବିଦ୍ୟାବନ୍ଧନ; ମାୟାବନ୍ଧନ— 3. Fascination of the world; the worldly ties. ୪ । ମାୟାଜନ୍ୟ ବ୍ୟସନ—4. Idealism; the state of being addicted to delusive pursuits. ୫ । ସାଂସାରିକ ବିଷୟ— 5. Worldy affairs; worldy concern. ୬ । ସ୍ତ୍ରୀ ପୁତ୍ର କନ୍ୟା ସମ୍ବଳିତ ପରିବାର—6. One's family (consisting of wife, children etc.) ୭ । ଗାର୍ହସ୍ଥ୍ୟ; ଘରକରଣା—7. One's house-hold; eking out one's existence with family. ୮ । ଜନସମାଜ—8. Human society; the mankind.[ଉ—ସଂସାର ଭିତରେ ଉତ୍ତମ, ସାଧୁଙ୍କ ଭିତରେ ଜନମ । କମଳଲୋଚନ. ଚଉତିଶା ।) ୯ । ପୁନର୍ଜନ୍ମ; ବାରମ୍ବାର ମୃତ୍ୟୁପରେ ଜନ୍ମାନ୍ତର— 9. Transmigration; metempsychosis; succession of births. (Apte).
Saṁsāra

ଦେ. ବି—ସ୍ତ୍ରୀ—Wife. [ ଯଥା—ଯୌବନ ବୟସରେ ଗୃହଭଗ୍ନ ହେଲେ ମନୁଷ୍ୟକୁ ପୁଣି ଦ୍ୱିତୀୟ ସଂସାରର ଯୋଗାଡ କରିବାକୁ ପଡ଼େ ।]
সংসাৰ संसार

[ କୁ—ସଂସ୍କୃତରେ ମଧ୍ୟ ବଚନ ଅଛି—"ଗୃହିଣୀ ଗୃହମୁଚ୍ୟତେ" ଅର୍ଥାତ୍ ଗୃହିଣୀଙ୍କ ପୋଗୁଁ ହିଁ ଗୃହ; ତେଣୁ ଗୃହିଣୀଙ୍କୁ ଗୃହ ବୋଲି କହିଲେ ଚଳେ । ଏହି ଅନୁକରଣରେ ମଧ୍ୟ ଆମ ଭାଷାରେ ଆପଣା ସ୍ତ୍ରୀଙ୍କୁ ଲୋକ 'ଘରେ', 'ଘରଅଡେ', 'ଗିହ୍ଲଏ', 'ପରିବାର' ଆଦି ଆଖ୍ୟା ଦେଇ କଥାଭାଷା କରନ୍ତି ଏବଂ ରାଜାମାନେ 'ଭିଅସ' (ଅନ୍ତଃପୁର) ବୋଲି କହନ୍ତି ।]

**ସଂସାର କରିବା**—ଦେ. କ୍ରି—ସଂସାରୀ ହେବା; ସ୍ତ୍ରୀପୁତ୍ରାଦିଙ୍କ ସହିତ ଘରକରଣା କରିବା, ଗାର୍ହସ୍ଥ୍ୟ ଅବଲମ୍ବନ କରିବା—1. To be a householder, to lead a family life (with one's wife and children); to be a man of the world ୨ । ଜନ ସମାଜରେ ଚଳିବା— 2. To live and move in the society. ୩ । ବିବାହ କରିବା—3. To marry.
Saṁsāra karibā
সংসাৰকৰা संसार करना

**ସଂସାର କାନନ**—ସଂ. ବି (ରୂପକ କର୍ମଧା)—ଅରଣ୍ୟ ପରି ଅଗମ୍ୟ ଓ ଆପଦ୍‌ସଙ୍କୁଳ ସଂସାର—The world compared to a forest (which is impassable and beset with dangers,)
Saṁsāra kānana

**ସଂସାର କାମନା(ବାସନା)**—ସଂ. ବି. (୬ଷ୍ଠୀ ତତ୍)—୧ । ପାର୍ଥିବ ଭୋଗବାସନା—1. The desire for the enjoyment of the world
Saṁsāra kāmanā (bāsanā)

୨ । ସାଂସାରିକ ବାସନା; ବିଷୟ ବାସନା—2. Worldly desire.

ସଂସାର କାମୀ—ସଂ. ବିଣ. ପୁଂ—ସଂସାରିକ ଭୋଗବାସନା ପାଇଁ Samsāra kāmi ଲାଳାୟିତ; ସଂସାରିକ ଭୋଗେଚ୍ଛୁ—(ସଂସାର କାମିନୀ—ସ୍ତ୍ରୀ) Desirous of worldly enjoyment.

ସଂସାର କାରା—ସଂ.ବି. (ରୂପକ କର୍ମଧା)—ଜେଲଖାନା ସଙ୍ଗେ Samsāra kārā ତୁଳିତ ସଂସାର—The world compared to a prison or dunge on (as a man of the world is sorrounded with the fetters of illusions, delusions and unrealities.)

ସଂସାର କୂପ—ସଂ. ବି. (ରୂପକ କର୍ମଧା)—(ଲୋକେ କୂଅରେ Samsāra kūpa ପଡିବା ଲୋକପରି ସଂସାରରେ ଲୋକେ ବିପଦ ଓ କଷ୍ଟପାଇ ହୋଇ ଥିବାରୁ)—ସଂସାର ରୂପ କୂପ—The world compared to a well.

ସଂସାର(ରା) ଗମନ—ସଂ. ବି. (୭ମୀତତ୍) ମୃତ୍ୟୁ ପରେ ପୁନର୍ଜନ୍ମ—Samsāra(rā) gamana Re-birth after death(Apte)

ସଂସାର ଗୁରୁ—ସଂ. ବି. (୬ଷ୍ଠୀତତ୍)—୧ । ପରମେଶ୍ୱର—1. Samsāra guru God; (lit) the preceptor of the world. ୨ । କାମଦେବ; କନ୍ଦର୍ପ—2. Cupid. lust personified. [ଉ—ପୁରୁଷ ତୁଲେ କି ଶୋଭନ୍ତି ସଂସାରଗୁରୁ-ସମର-ପ୍ରାଙ୍ଗଣେ—କବିସୂର୍ଯ୍ୟ. ସଙ୍ଗୀତ ।] ୩ । ସମଗ୍ର ଜନ-ସମାଜର ଗୁରୁ ବା ଶିକ୍ଷାଦାତା, ସମସ୍ତ ଜନସମାଜର ଗୁରୁସ୍ଥାନୀୟ ବ୍ୟକ୍ତି; ଜଗଦ୍‌ଗୁରୁ—3.World-teacher. ୪ । ସମଗ୍ର ଜଗତର ପୂଜ୍ୟ ବ୍ୟକ୍ତି—4. A personage revered by the whole mankind.

ସଂସାର ଚକ୍ର—ସଂ. ବି (ରୂପକ କର୍ମଧାରୟ)—୧ । ସୁଖଦୁଃଖକ୍ରମେ Samsāra chakra ଚକ୍ର ପରି ଘୂରୁଥିବା ସଂସାର—1. The world or worldly existence compared to a revolving wheel. ୨ । ବାରମ୍ବାର ଜନ୍ମ ଓ ମରଣ—2; Succession of births and deaths of a living being (Apte);

ସଂସାରଜ୍ଞ—ସଂ. ବିଣ. ପୁଂ (ସଂସାର+ଜ୍ଞା ଧାତୁ=ଜାଣିବା+କର୍ତ୍ତୃ. Samsārajña ଅ)—୧ । ସଂସାର ବିଷୟରେ ଅଭିଜ୍ଞ ବା (ସଂସାରଜ୍ଞା—ସ୍ତ୍ରୀ) ଅନୁଭବୀ—1. A person having worldly knowledge or experience. ୨ । ସଂସାରର ଢଙ୍ଗଢାଙ୍ଗ ଯେ ଜାଣିକରି ଚଳେ—2. Worldly (man); worldly-wise.

ସଂସାର ଜ୍ଞାନ—ସଂ.ବି(୬ଷ୍ଠୀ ବା ୭ମୀ ତତ୍)—ସଂସାର ସମ୍ବନ୍ଧରେ ଜ୍ଞାନ Samsāra jñāna ବା ଅଭିଜ୍ଞତା—Worldly knowledge or experienc; worldly wisdom; expediency.

ସଂସାର ତରଙ୍ଗ—ସଂ. ବି (ରୂପକ କର୍ମଧା)—ଚଞ୍ଚଳତା ଅର୍ଥାତ୍ Samsāra taranga ଅସ୍ଥିରତା ଯୋଗୁ ତରଙ୍ଗ ସଙ୍ଗେ ତୁଳନା କରି ଯାଉଥିବା ସଂସାର—The worldd compared to waves.

ସଂସାର ତାଡନା—ସଂ. ବି (ରୂପକ କର୍ମଧା)—ସଂସାରି ଲୋକଦ୍ୱାରା Samsāra tārdanā ଅନୁଭୂତ କଷ୍ଟ—The buffetings of the world, the sorrows or tribulations of the world.
ସଂସାର ଦୁଃଖ } ଅନ୍ୟରୂପ
ସଂସାର ଯନ୍ତ୍ରଣା
ସଂସାର ଯାତନା
(ସଂସାର ତାଡିତ—ବିଣ)

ସଂସାର ତୃଷ୍ଣା—ସଂ. ବି—ସାଂସାରିକ ଭୋଗବିଳାସ ପାଇଁ ଅତ୍ୟଧିକ Samsāra trushnā ବାସନା—Inordinate desire for enjoyment of worldly pleasures

ସଂସାର ଧର୍ମ—ସଂ. ବି (ସଂସାରରେ ବାସ କରିବା ବ୍ୟକ୍ତିର କରଣୀୟ Samsāra dharma ଧର୍ମ)—୧ । ଗୃହସ୍ଥର କର୍ତ୍ତବ୍ୟକର୍ମ—1. The duties of a householder. ୨ । ସଂସାରୀ ବ୍ୟକ୍ତିର ଗୁଣ ବା ଅବସ୍ଥା; ଗାର୍ହସ୍ଥ୍ୟ—2. The state or qualities required of a man of the world.

ସଂସାର ପଥ (ମାର୍ଗ)—ସଂ. ବି—୧ । (ମ. ଷ. ଲେ.) (ସଂସାରକୁ Samsāra patha (mārga) ଅବିବାର ପଥ)—ମାତୃଯୋନି (ସଂସାର ମାର୍ଗ—ଅନ୍ୟରୂପ) (ଯେଉଁ ପଥରେ ଜୀବ ପୃଥିବୀରେ ଭୂମିଷ୍ଠ ହୁଏ)—1. The mother's generative organ. ୨ । (ରୂପକ କର୍ମଧା) ସଂସାର ଯାତ୍ରା-ପଥ ବା ମାର୍ଗ ସଙ୍ଗେ ତୁଳିତ ସଂସାର ବା ଇହଜଗତ—2. The world compared to a road; worldly existence. ୩ । ଇହଜଗତର ଘଟଣା-ଚକ୍ର—3. The course of worldly affairs (Apte).

ସଂସାର ପ୍ରାନ୍ତର—ସଂ. ବି (ରୂପକ କର୍ମଧା)—ବିସ୍ତୀର୍ଣ୍ଣ ପଡ଼ିଆ ସଙ୍ଗେ Samsāra prāntara ତୁଳିତ ସଂସାର—The world compared to a vast waste or wilderness. [ଦ୍ର—ଏହିପରି ସଂସାରାରଣ୍ୟ ହୁଏ ।]

ସଂସାର ବନ୍ଧନ—ସଂ. ବି (୬ଷ୍ଠୀ ତତ୍)—୧ । ସଂସାରୀ ବ୍ୟକ୍ତିକୁ Samsāra bandhana ଛନ୍ଦିଥିବା ମାୟା; ମାୟାବନ୍ଧନ—1. The worldly bond or ties. ୨ । ସଂସାରର ଆକର୍ଷଣ—2. The attraction of the world

ସଂସାର ବାସ—ସଂ ବି—୧ । ସଂସାରରେ ଜନ୍ମଗ୍ରହଣ କରି ବଞ୍ଚିବା—Samsāra bāsa 1. Worldly life or existence. (ସଂସାରବାସୀ—ବିଣ) ୨ । ପରିବାର ଓ ବିଷୟ ସମ୍ପତ୍ତି ଅଧି ସେବିକ ଘରକରଣା କରିବା—2. Worldliness; the life of a worldly person.

ସଂସାର ବିତୃଷ୍ଣା—ସଂ. ବି (୭ମୀ ତତ୍; ସାଂସାରିକ ବିଷୟ ପ୍ରତି Samsāra bitrushnā ବୈରାଗ୍ୟ; ସଂସାରର ଭୋଗବିଳାସ

ସଂସାର ବୈରାଗ, ସଂସାର ବିରକ୍ତି, ସଂସାର ବୈରାଗ୍ୟ } ଅନ୍ୟରୂପ — ବା ମାୟାମମତା ପ୍ରତି ଔଦାସୀନ୍ୟ— Disregard for worldly concerns.

ସଂସାର ବିତୃଷ୍ଣ; ସଂସାର ବିରାଗୀ, ସଂସାର ବୈରାଗୀ } ପୁଂ. ବିଣ

**ସଂସାର ଭିତରେ ଘର କରିବା**—ଦେ. କ୍ରି— ସଂସାର କରିବା ୧ ଓ ୨ (ଦେଖ)—
**Samsāra bhitare ghara karibā** — Samsāra karibā 1 and 2 ( See )

সংসারে ঘব কবা, সংসাবে চলা
**संसारमें घर करना**

ସଂସାରେ ଚଳିବା
ସଂସାରେ ଘର କରିବା } ଅନ୍ୟରୂପ

[ ଉ—ଅଖ ବୁଲୁଥିଲେ ଚକ ଚଳୁଥାଏ ଗଡ଼ୁ ପଡ଼ୁଥାଏ ପହି, ସଂସାର ଭିତରେ ଘର କରୁଥିଲେ ପଥର ପଡ଼ିଲେ ସହି— ପ୍ରବଚନ । ]

**ସଂସାର ମରୁ**—ସଂ. ବି ( ରୂପକ କର୍ମଧା )—ବିଗତ୍ରବିସ୍ତୃତ ବିପତ୍-ସଙ୍କୁଳ ବିଶାଳ ମରୁଭୂମି ସହିତ ତୁଳିତ ସଂସାର—The world compared to a vast desert.
**Samsāra maru**

**ସଂସାର ମୋକ୍ଷ (ମୋକ୍ଷଣ)**—ସଂ. ବି ( ୫ମୀ ତତ୍ )—୧ । ସଂସାରରୁ ମୁକ୍ତି—1. Emancipation from worldly life. ୨ । ପୁନର୍ଜନ୍ମରୁ ମୁକ୍ତି—2. Emancipation from future re-births.
**Samsāra moksha (mokshaṇa)**

**ସଂସାର ଯାତ୍ରା**—ସଂ. ବି—୧ । ( ରୂପକ କର୍ମଧା ) ଯାତ୍ରା ବା ଭ୍ରମଣ ସଙ୍ଗେ ତୁଳିତ ସଂସାର—1. The worldly existence compared to a journey. ୨ । ( ୬ଷ୍ଠୀ ତତ୍ ) ଜୀବନଯାତ୍ରା—2. Livelihood.
**Samsāra jātrā**

**ସଂସାର ଲୀଳା**—ସଂ. ବି ( ରୂପକ କର୍ମଧାରୟ )—୧ । ଖେଳ ସଙ୍ଗେ ତୁଳିତ ସଂସାର—1. The world compared to a pastime or game. ୨ । ( ୬ଷ୍ଠୀ ତତ୍ ) ଜୀବଲୀଳା; ସଂସାରରେ ଜାତ ହୋଇ ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ମନୁଷ୍ୟର କରିବା କାର୍ଯ୍ୟ ଓ ଅନୁଭବମାନ—2 Existence in this world. ୩ । ସଂସାରୀ ଲୋକର ଖେଳ କୌତୁକ ଓ ଭୋଗ ବିଳାସ—3. The enjoyment of the world; worldly-pleasures or pastimes. ୪ । ଜୀବନଯାତ୍ରା; ଅପଣାକୁ ଓ ପୋଷ୍ୟବର୍ଗଙ୍କୁ ପୋଷିବାରୂପ କ୍ରିୟା—4. Livelihood. ୫ । ଜୀବନଧାରଣ; ବଞ୍ଚିବା—5. Living; being alive.
**Samsāra līlā**

**ସଂସାର ଲୀଳା ସାଙ୍ଗ ହେବା**—ଦେ. କ୍ରି—ମରିବା; ମୃତ୍ୟୁ; ମରଣ—Dying; death.
**Samsāra līlā sānga hebā**

সংসার লীলা সাঙ্গ হওয়া **संसार लीला शेष होना**

ସଂସାର ଲୀଳା ଶେଷ ହେବା
ସଂସାର ଲୀଳା ସମାପ୍ତ ହେବା } ଅନ୍ୟରୂପ

**ସଂସାର ସମୁଦ୍ର (ସାଗର)**—ସଂ. ବି ( ରୂପକ କର୍ମଧାରୟ )—ସମୁଦ୍ର ପରି ବିସ୍ତୀର୍ଣ୍ଣ, ଅକୂଳ, ଗମ୍ଭୀର ଓ ତରଙ୍ଗାକୁଳ ସଂସାର—The world compared to the billowy, deep and wide ocean.
**Samsāra samudra (sāgara)**
( ସଂସାରାର୍ଣ୍ଣବ—ଅନ୍ୟରୂପ )

**ସଂସାର ସୁଖ**—ସଂ. ବି ( ୬ଷ୍ଠୀ ତତ୍ )—୧ । ପାର୍ଥିବ ସୁଖ—1, Worldly happiness. ୨ । ସଂସାରୀ ବ୍ୟକ୍ତି, ( ଇନ୍ଦ୍ରିୟାଦିର ତୃପ୍ତି ଯୋଗୁଁ ) ଯେଉଁ ସୁଖ ଭୋଗ କରେ—2. The pleasure or happiness of the senses ( enjoyed by a worldly person )
**Samsāra sukha**

**ସଂସାର ସେବା**—ସଂ. ବି ( ୬ଷ୍ଠୀ ତତ୍ )—ଜଗତର ଜୀବମାନଙ୍କ ଉପକାର—Service to the beings on earth. [ ଉ—ଐକ୍ୟ ମନ୍ତ୍ର ଗାଥା ନେବା ଗୋ, ଜାତିବର୍ଣ୍ଣଧର୍ମଭେଦ ଭାବ ଭୁଲି ଧରିବା ସଂସାର ସେବା ଗୋ—ବାଳକୃଷ୍ଣ. ଗୁରୁଳିବଙ୍ଗଳତା । ]
**Samsāra sebā**

**ସଂସାର ସ୍ରୋତଃ**—ସଂ. ବି ( ରୂପକ କର୍ମଧା; ସଂସାରର ମାୟା ସଂସାରୀ ବ୍ୟକ୍ତିକୁ ପାପ ଅଦ ଅଡକୁ ଟାଣି ନେଉଥିବାରୁ) —ସ୍ରୋତ ସଙ୍ଗେ ତୁଳିତ ସଂସାର—The world compared to a current.
**Samsāra srotah**
( ସଂସାର ସ୍ରୋତ—ଦେଶଜରୂପ )

**ସଂସାର ହାଟ**—ଦେ. ବି ( ସଂ. ସଂସାର+ହଟ୍ଟ )—ହାଟରୂପେ କଳ୍ପିତ ସଂସାର—The world compared to a market. [ ଉ—ଓଲାଅ ଜୀବନ ବାଟ ଗୋ, ସତ୍ୟର ଛାଞ୍ଚୁଣି ଧରଣ ହାତରେ ଛିଡିବା ସଂସାର ହାଟ ଗୋ—ବାଳକୃଷ୍ଣ. ଫୁଲ ବଉଳବେଣୀ । ]
**Samsāra hāṭa**

**ସଂସାର ହେତୁ**—ସଂ. ବି—ମାୟା; ସଂସାରରେ ଜନ୍ମଗ୍ରହଣର କାରଣ ବା ଅବିଦ୍ୟା—Illusion; delusion. [ ଉ—ମୁଁ ଯେତେ କହିଲି ବିଶ୍ୱାସେ, ଏଣେ ସଂସାର-ହେତୁ ନାଶେ—ଜଗନ୍ନାଥ. ଭାଗବତ । ]
**Samsāra hetu**

**ସଂସାରାନୁରକ୍ତ**—ସଂ. ବିଣ ପୁଂ (୭ମୀ ତତ୍ )—ସାଂସାରାସକ୍ତ (ଦେଖ)—Sāmsārāsakta ( See )
**Samsārānurakta**
( ସଂସାରାନୁରାଗୀ—ଅନ୍ୟରୂପ ) ( ସଂସାର ବିରକ୍ତ—ବିପରୀତ )
( ସଂସାରାନୁରକ୍ତା—ସ୍ତ୍ରୀ )

**ସଂସାରାନୁରକ୍ତି**—ସଂ. ବି ( ୭ମୀ ତତ୍ )—ସଂସାରାସକ୍ତି ( ଦେଖ )—Samsārāsakti ( See )
**Samsārānurakti**

**ସଂସାରାରଣ୍ୟ**—ସଂ. ବି (ରୂପକ କର୍ମଧା)—ସଂସାର କାନନ (ଦେଖ)—Samsāra kānana ( See )
**Samsārāraṇya**

**ସଂସାରାଶ୍ରମ**—ସଂ. ବି ( ରୂପକ )—୧ । ସାଂସାରିକ ଅବସ୍ଥିତି—1. Worldly existence. ୨ । ଗୃହୀର ଅବସ୍ଥା; ଗୃହସ୍ଥାଶ୍ରମ—2. The living or state of a householder or worldly man.
**Samsārāśrama**

ସଂସାରାସକ୍ତ—ସଂ. ବିଣ. ପୁଂ. ( ୭ମୀ ତତ୍; ସଂସାର+ଆସକ୍ତ= Saṁsārāsakta ଅନୁରକ୍ତ )—୧ । ଯେ ସାଂସାରିକ ବିଷୟରେ (ସଂସାରାନାସକ୍ତ, ସଂସାରବିରକ୍ତ—ବିପରୀତ) ଗାଢ଼ରୂପେ ମଜ୍ଜିଥାଏ—(ସଂସାରାସକ୍ତା—ସ୍ତ୍ରୀ) 1. Engrossed in worldly concerns. ୨ । ସାଂସାରିକ ବିଷୟ ପ୍ରତି ଅନୁରାଗୀ—2. Addicted to worldly affairs.

ସଂସାରାସକ୍ତ ଚିତ୍ତ—ସଂ. ବିଣ. ପୁଂ ( ୭ମୀ ତତ୍ ଓ ବହୁବ୍ରୀହି )—Saṁsārāsakta chitta ଯାହାର ଚିତ୍ତ ସଂସାର ପ୍ରତି ଅନୁରକ୍ତ—Having the mind engrossed with worldly concerns.

ସଂସାରାସକ୍ତ ଚେତାଃ, ସଂସାରାସକ୍ତ ମନାଃ, ସଂସାରାସକ୍ତ ହୃଦୟ } ଅନ୍ୟରୂପ

ସଂସାରାସକ୍ତ ଚିତ୍ତା, ସଂସାରାସକ୍ତ ଚେତାଃ, ସଂସାରାସକ୍ତମନାଃ, ସଂସାରାସକ୍ତ ହୃଦୟା } —ସ୍ତ୍ରୀ

ସଂସାରାସକ୍ତି—ସଂ. ବି (୭ମୀ ତତ୍; ସଂସାର+ଆସକ୍ତି)—ସାଂସାରିକ Saṁsārāsakti ବିଷୟ ବା ଭୋଗାଦି ପ୍ରତି ଆସକ୍ତି ବା ଅନୁରକ୍ତି—Being addicted to or engrossed with worldly concerns

ସଂସାରି—ଦେ. ବିଣ (ସଂ. ସଂସାରୀ)—ସାଂସାରିକ—Worldly. Saṁsāri ଦେ. ବି—ସଂସାରୀ (ଦେଖ)—Saṁsārī. (See)
সংসারী संसारी

ସଂସାରିକ(କା)—ଦେ. ବିଣ (ସଂ. ସାଂସାରିକ)—ସାଂସାରିକ ( ଦେଖ ) Saṁsārika(kā) Sāṁsārika (See) ଦେ. ବି—ଗୃହସ୍ଥ ব্যক্তি—A house-holder. ( ଭ—ସଂସାରିକା ଘରେ ଛୁଇ କସ ଅଛି ଅଛି । ପୀତାମ୍ବର ନୃସିଂହ ପୁରାଣ ।)
সাংসারিক संसारिक

ସଂସାରିକ(କା) ଧର୍ମ—ଦେ. ବି. (ସଂ. ସାଂସାରିକ ଧର୍ମ)—ଗୃହସ୍ଥ ଧର୍ମ; Saṁsārika(kā) dharma ଗାର୍ହସ୍ଥ୍ୟ—Worldliness; the duty of a house-holder (ଭ—ସଂସାରିକା ଧର୍ମ କେବେ ନ ଛାଡନ୍ତି ମୁନି । ପୀତାମ୍ବର. ନୃସିଂହ ପୁରାଣ ।)
সংসার ধর্ম, সাংসারিক ধর্ম संसारिका धर्म

ସଂସାରିକା ମତ—ଦେ. ବି. ( ସଂ. ସାଂସାରିକ ମତ )—୧ । ଲୋକ-Saṁsārikā mata ସମାଜରେ ଚଳୁଥିବା ମତ—1. Opinion of the human society. ୨ । ସାମାଜିକ ମତ—2. Worldly intents and purposes; opinion of the society in which a person moves and lives.
সংসারের মত, সাংসারিক মত संसारिका मत

ସଂସାରୀ—ସଂ. ବି. ପୁଂ. (ସଂସାର+ଅସ୍ତି ଅର୍ଥରେ ଇନ୍; ୧ମା. ୧ବ)—Saṁsārī ୧ । ବିଷୟୀ ଲୋକ—1. A man of business. (ସଂସାରିଣୀ—ସ୍ତ୍ରୀ) ୨ । ଗୃହସ୍ଥ ବ୍ୟକ୍ତି—2. A householder. ୩ । ସଂସାରାସକ୍ତ ବ୍ୟକ୍ତି—3. A worldly man; a man of the world. ୪ । ପ୍ରାଣୀ; ଚେତନାବିଶିଷ୍ଟ ଜୀବ—4. A sentient being; creature (Apte). ୫ । ଜୀବାତ୍ମା—5. The embodied spirit; the individual soul. ସଂ. ବିଣ. ପୁଂ—୧ । ସଂସାରରେ ବାସ କରୁଥିବା—1 Living in the world. ୨ । ସଂସାରାସକ୍ତ (ଦେଖ)—2 Saṁsārāsakta (See) ୩ । ଜଗତସ୍ଥ—3. Of the world. ୪ । ସଂସାର ସମ୍ବନ୍ଧୀୟ; ସାଂସାରିକ—4. Worldly; mundane.

ସଂସାରୀ ପାନୁ—ପ୍ରାଦେ (ଗଞ୍ଜାମ) ବି—ଇନ୍‌କମ୍ ଟିକସ; ଆୟ ଉପରେ Saṁsāri pānu ସରକାର ନେଉଥିବା ଟିକସ-Income tax.

ସଂସିକ୍ତ—ସଂ. ବିଣ. (ସମ୍+ସିଚ୍ ଧାତୁ+ଓଦା କରିବା+କର୍ମ. ତ)—Saṁsikta ୧ । ସମ୍ପୂର୍ଣ୍ଣ ରୂପେ ବା ସମ୍ୟକ୍ ରୂପେ ଆର୍ଦ୍ର—(ସଂସିକ୍ତା—ସ୍ତ୍ରୀ) 1, Completely moistened or wet. (ସଂସେକ—ବି) ୨ । ଓଦା ସରସର—2. Very damp. ୩ । ସିକ୍ତ; ଯହିଁରେ ପାଣି ଛିଞ୍ଚା ଯାଇଥାଏ ବା ମଡ଼ା ଯାଇଥାଏ—3. Sprinkled; watered.

ସଂସିଦ୍ଧ—ସଂ. ବିଣ. ( ସମ୍+ସିଧ୍ ଧାତୁ+କର୍ତ୍ତୃ. ତ )—୧ । ସମ୍ପୂର୍ଣ୍ଣ-Saṁsiddha ରୂପେ ସିଦ୍ଧ—1. Well boiled; fully boiled. ୨ । ସମ୍ୟକ୍ ନିଷ୍ପନ୍ନ; ସୁସଂପନ୍ନ; ସୁସମାହିତ—2. Well accomplished. ୩ । ସମ୍ପୂର୍ଣ୍ଣରୂପେ ସିଦ୍ଧି-ପ୍ରାପ୍ତ—3. One who has attained unqualified success; perfected. ୪ । ସ୍ୱଭାବସିଦ୍ଧ—4. Natural; accomplished or perfected by nature. ସଂ. ବି—ସିଦ୍ଧି ପ୍ରାପ୍ତ ବ୍ୟକ୍ତି—A man who has attained moral perfection by practices during several cycles of existence [ଦ୍ର—ଭଗବଦ୍ ଗୀତା ଆଦି ଶାସ୍ତ୍ରରେ ଅଛି ଯେ, ଯୋଗଭ୍ରଷ୍ଟ ମହାପୁରୁଷ କିଞ୍ଚିତ କର୍ମଫଳରେ ପର ଜନ୍ମରେ ଶୁଚି ଓ ଶ୍ରୀମାନ୍ ବ୍ୟକ୍ତିମାନଙ୍କ ପରିବାରରେ ଜନ୍ମ ଗ୍ରହଣ କରନ୍ତି ଏବଂ ପୂର୍ବ ଜନ୍ମରୁ ଅଧା ବା ଖଣ୍ଡିଆ ହୋଇ ଥିବା ଯୋଗକୁ ସେହି ଅଧା ଜାଗାରୁ ସାଧନା କରନ୍ତି । ଏହିପରି କରି କରି ବହୁକାଳର ଯୋଗ ସାଧନା ବଳରେ ଉକ୍ତ ବ୍ୟକ୍ତି ସଂସିଦ୍ଧି ଲାଭ କରି ପରଗତି ବା ମୋକ୍ଷ ପ୍ରାପ୍ତ ହୋଇ ଆଉ ସଂସାରକୁ ଫେରି ଆସନ୍ତି ନାହିଁ, ଅର୍ଥାତ୍ ସାଯୁଜ୍ୟ ପ୍ରାପ୍ତ ହୋଇ ପୁନର୍ଜନ୍ମ ରୂପ ସଂସାର ବନ୍ଧନରୁ ଚିରକାଳ ପାଇଁ ମୁକ୍ତିଲାଭ କରନ୍ତି ।]

ସଂସିଦ୍ଧି—ସଂ. ବି. ( ସମ୍=ସମ୍ୟକ୍+ସିଧ୍ ଧାତୁ+ଭାବ. ତି )—Saṁsiddhi ୧ । ସ୍ୱଭାବ; ପ୍ରକୃତି—1. Nature; natural quality. ୨ । ସ୍ୱାଭାବିକ ବା ପ୍ରାକୃତିକ ଅବସ୍ଥା—2. Natural state or condition. ୩ । ସମାପ୍ତି—3. Completion; accomplishment. ୪ । ସିଦ୍ଧି—4. Perfection; success. ୫ । ନିଷ୍ପତ୍ତି—5. Final decision. ୬ । ମତ୍ତ ସ୍ତ୍ରୀ—6. An inebriate woman. ୭ । ମୋକ୍ଷ; ପରମୁକ୍ତି—7. The final

liberation of the soul from the material body; beatitude.

ସଂସୃତି — ସଂ. ବି. ( ସମ୍ + ସୃ ଧାତୁ = ଗମନ କରିବା + ତି )— Samsruti ୧ । ( + ଅଧିକରଣ. ତି ) ସଂସାର—1. The (ସଂସୃତ—ବିଣ) world; worldly condition; worldliness. ୨ । (+ଭାବ. ତି) ପ୍ରବାହ; ସ୍ରୋତ—2. Current; flow. ୩ । ସହଗମନ—3 Going together or with; accompanying. ୪ । ସତୀଙ୍କର ସ୍ୱାମୀଙ୍କ ସଙ୍ଗେ ମରଣ—4. The voluntary dying of a Hindu woman with the death of the husband; the practice of Suttee; self-immolation of Hindu wives on the death of their husbands.

ସଂସୃଷ୍ଟ—ସଂ. ବିଣ. (ସମ୍ + ସୃଜ୍ ଧାତୁ + କର୍ତ୍ତି. ତ)—୧ । ସଂଯୁକ୍ତ; Samsrushta ସଂସର୍ଗବିଶିଷ୍ଟ—1. Connected or joined to. ୨ । ମିଳିତ; ମିଶ୍ରିତ—2. Combined; mixed with. ୩ । କୃତସହବାସ; ରମିତ—3. Cohabited by. ୪ । କୃତସଂସର୍ଗ—4. Having had relationship ସଂ. ବି. (+ଭାବ ତ) ସମ୍ପର୍କ—Connection; relation.

ସଂସୃଷ୍ଟି—ସଂ. ବି. (ସମ୍ + ସୃଜ୍ ଧାତୁ + ଭାବ. ତି)—୧ । ସହବାସ—Samsrushti 1. Intercourse; cohabitation. ୨ । ସାହଚର୍ଯ୍ୟ—2. Companionship; association. ୩ । ମିଳନ—3. Junction. ୪। ସଂସ୍ରବ—4. Connection; relationship. ୫ । ଏକତ୍ର ମିଶ୍ରଣ—5. Amalgamation. ୬ । ଏକାଳବାସ; ଏକାଳବର୍ତ୍ତିତା—6. Coparcenery; jointness in property. ୭ । କାବ୍ୟାଳଙ୍କାର ବିଶେଷ; କାବ୍ୟର ସ୍ଥାନବିଶେଷରେ ବା ଅଂଶବିଶେଷରେ ଏକାଧିକ ଅଳଂକାରର ଏକତ୍ର ସମାବେଶ—7. (A figure of speech which is an) Indication of the mixture of several figures of speech in any part of a literary composition [ଦ୍ର—ଯେଉଁଠାରେ ଏକାଧିକ ଅଳଂକାର ଏକ ବାକ୍ୟରେ ପରସ୍ପର ନିରପେକ୍ଷ ଭାବରେ ରହନ୍ତି, ସେଠାରେ ସଂସୃଷ୍ଟି ଅଳଂକାର ହୁଏ; ଯଥା—

ସୁମୁଖୀ-ଚନ୍ଦ୍ରମା- ମୁଖ ଦେଖି ମୁଗ୍ଧ
ମାନସ ଏସନ ପାଇଁ,
ବିଶ୍ୱବାନ୍ଧୁ ସାର ବୋଲି ଅବା ମାର
ଡାଳଅଛି ପ୍ରେମ-ଛନ୍ଦେ । ରୂଳମଣି. ଅଳଙ୍କାରତରଙ୍ଗିଣୀରେ ଉଦ୍ଧୃତ ସଦାନାଥ—ଯଯାତିକେଶରୀ । ]

ସଂସୃଷ୍ଟୀ—ସଂ.ବିଣ. ପୁଂ (ସଂସୃଷ୍ଟ + ଅସ୍ତ୍ୟର୍ଥରେ ଇନ୍, ୧ମା ୧ବ)—୧ । Samsrushti ଏକତ୍ର ସହବାସକାରୀ—1. Living together; (ସଂସୃଷ୍ଟିନୀ—ସ୍ତ୍ରୀ) cohabiting. ୨ । ଏକାଳବର୍ତ୍ତୀ—2 Joint in food. ୩ । ବିଭାଗାନନ୍ତର ପୁନର୍ମିଳିତ; ଯେଉଁ ଅଂଶୀଦାର ଥରେ ଭିନ୍ନ ହେଲା ପରେ ପୁଣି ଏକାଳବର୍ତ୍ତୀ ହୁଅନ୍ତି—3. Reunited after separation (with one's coparceners or relatives or cosharers.)

ସଂସେକ—ସଂ. ବି (ସମ୍ + ସିଚ୍ ଧାତୁ + ଭାବ. ଅ)—୧। ପାଣି ସିଞ୍ଚିବା—Samseka 1. Sprinkling. (Apte) ୨ । ପାଣି ମଡ଼ାଇବା—2. Watering. (Apte).

ସଂସ୍କରଣ—ସଂ. ବି (ସମ୍ + କୃ. ଧାତୁ + ଭାବ ଅନ; ସ ଆଗମ)—Samskarana ୧ । ସଂସ୍କାର; ସଂସ୍କାର କ୍ରିୟା; ପବିତ୍ରୀକରଣ—1. Purification; reformation. ୨ । ଜୀର୍ଣ୍ଣ ଦ୍ରବ୍ୟର ମରାମତି—2 Repair. ଦେ. ବି—୧ । ଛପା ସংস্করণ ସଂସ୍କରଣ ପୁସ୍ତକର ପ୍ରକାଶ—1. Editing of a printed book. ୨ । କୌଣସି ପୁସ୍ତକର ମୁଦ୍ରଣର ଥର—2. The edition of a book.

ସଂସ୍କର୍ତ୍ତା—ସଂ. ବିଣ. ପୁଂ (ସମ୍ + କୃ. ଧାତୁ + କର୍ତ୍ତି. ତୃ; ସ ଆଗମ)—Samskartta ୧। ସଂସ୍କାରକାରୀ—1. Reforming; refin- (ସଂସ୍କର୍ତ୍ତ୍ରୀ—ସ୍ତ୍ରୀ) ing. ୨ । ପବିତ୍ରକାରୀ—2 Purifying. ୩ । ପାଚକ; ଜୀର୍ଣ୍ଣକର—3. Digestive. ୪ । ମରାମତିକାରୀ—4. Repairing. ସଂ. ବି. ପୁଂ—୧ । ସଂସ୍କାରକାରୀ ବ୍ୟକ୍ତି—1. Reformer; refiner. ୨ । ପବିତ୍ର କରିବା ବ୍ୟକ୍ତି—2. Purifier. ୩। ପାଚକ; ପୂଜାହାରୀ—3. A cook. ୪ । ଯେ ମରାମତି କରେ—4. A repairer.

ସଂସ୍କାର—ସଂ. ବି ( ସମ୍ + କୃ ଧାତୁ + ଭାବ. ଅ; ସ ଆଗମ )—Samskāra ୧ । ନିର୍ମଳୀକରଣ—1. Purifying; refining. ୨ । ପରିଷ୍କରଣ—2. Cleansing. ୩ । ମରାମତି; ଜୀର୍ଣ୍ଣୋଦ୍ଧାର—3. Repair. ୪ । ପ୍ରସ୍ତୁତୀକରଣ—4. Preparation. ୫ । ଶୁଦ୍ଧି—5. Purity. ୬ । ଶୋଧନ; ଶୁଦ୍ଧିକ୍ରିୟା—6. Purification; rectifying. ୭ । ମାର୍ଜ୍ଜନ; ମାଜିବା—7. Polishing; rubbing; scouring. ୮ । ଭୂଷିତ କରିବା; ଅଳଂକରଣ—8. Embellishment; adorning. ୯ । ଭ୍ରମ ସଂଶୋଧନ—9. Correcting o rectification of mistakes. ୧୦। ବ୍ୟାକରଣଗତ ଶୁଦ୍ଧତା—10.Grammatical correction;grammatical correctness. ୧୧ । ରନ୍ଧନ—11. Cooking; dressing. ୧୨। ସିଦ୍ଧ କରିବା;ସିଝାଇବା—12. Boiling.୧୩। ଶାସ୍ତ୍ରାଭ୍ୟାସଜନ୍ୟ ବ୍ୟୁତ୍ପତ୍ତି;ଶିକ୍ଷା—13. Proficiency due; to study or learning; refinement; education. ୧୪ । ବ୍ୟାକରଣ ଶାସ୍ତ୍ରରେ

ବ୍ୟୁତ୍ପତ୍ତି—14. Proficiency in grammar. ୧୫। ବେଗ—15. Velocity. ୧୬ । ଦ୍ରବ୍ୟର ସ୍ଥିତି-ସ୍ଥାପକତା—16. Elasticity. ୧୭ । ଧାରଣା—17. Impression. ୧୮। ସିଦ୍ଧାନ୍ତ; ବଦ୍ଧମୂଳ ବିଶ୍ୱାସ—18. A fixed idea; 'Ide fixe'. ୧୯। ପୂର୍ବ ଜନ୍ମ-ସମ୍ବନ୍ଧୀୟ ଜ୍ଞାନ; ପୂର୍ବ ଜନ୍ମର ବାସନାଜନିତ କର୍ମ; ଜନ୍ମା-ନ୍ତରୀଣ ଜ୍ଞାନ; ପ୍ରାକ୍ତନ କର୍ମ—19. Subconscious recollection of the events and actions of one's past birth; instinct or idea or impression left on the mind about one's previous birth (before the present life.) ୨୦ । (ଦର୍ଶନଶାସ୍ତ୍ର) ସ୍ମୃତିହେତୁକ ମନୋବୃତ୍ତି; ଗୁଣ ବିଶେଷ (ପ୍ରକୃତିବାଦ)—20. (Hindu philosophy) Mental faculty due to memory. [ ଦ୍ର—ଏହା ତ୍ରିବିଧ:—ବେଗାଖ୍ୟ ସଂସ୍କାର, ସ୍ଥିତିସ୍ଥାପକ ସଂସ୍କାର ଓ ଭାବନାଖ୍ୟ ସଂସ୍କାର ।] ୨୧ । (ବିଜ୍ଞାନ ପରିଭାଷା)—ପ୍ରାଣୀର ସହଜ ପ୍ରବୃତ୍ତି; ସ୍ୱାଭାବିକ ଜ୍ଞାନ; ସହଜ ବାସନା; ଜୀବ ଜନ୍ମ ଲଭିବା ସଙ୍ଗେ ସଙ୍ଗେ ତା ମନରେ ଜାତ ହେବା କେତେକ ଧାରଣା (ଯଥା—ମାତୃ ସ୍ତନ୍ୟପାନ)—21. Instinct; animal instinct. ୨୨ । ମନ୍ତ୍ରପାଠ ଦ୍ୱାରା ଦ୍ରବ୍ୟାଦି ଶୋଧନ—22. Purifying an article by uttering mystic formula. ୨୩ । ପ୍ରୋକ୍ଷଣ; ଅଭିମନ୍ତ୍ରିତ ଜଳସେଚନ—23. Sprinkling with hallowed or consecrated water. ୨୪ । ଦ୍ୱିଜାତିମାନଙ୍କର ଦେହଶୁଦ୍ଧି ବିଧାୟକ ଦଶବିଧ କର୍ମ; ଦଶ କର୍ମ; ଦ୍ୱିଜାତିଙ୍କର ଜାତକର୍ମାଦି ଦଶବିଧ ଅନୁଷ୍ଠାନ—24. The specific religious ceremonies or purificatory rites which consecrate the body of a Hindu belonging to the three higher or twice born castes. [ ଦ୍ର—ଦ୍ୱିଜାତିଙ୍କର ଦଶ କର୍ମ ବା ଦଶବିଧ ସଂସ୍କାର; ଯଥା—

୧ । ଗର୍ଭାଧାନ ( ସାଧାରଣ କଥାବାର୍ତ୍ତାରେ ପୁନର୍ବିବାହ; ଅଶୀର୍ବାଦ ଘର; ଦୁଦ୍ୱାରିତ ଘର); ସ୍ତ୍ରୀ ଋତୁମତୀ ହେବା ପରେ ସ୍ୱାମୀର ପ୍ରଥମ ସହବାସ ଉପଲକ୍ଷରେ ଅନୁଷ୍ଠିତ କର୍ମ ।

୨ । ପୁଂସବନ—ଗର୍ଭର ତୃତୀୟ ମାସ ଆରମ୍ଭରେ ଗର୍ଭସ୍ଥ ସନ୍ତାନର ମଙ୍ଗଳ ଉଦ୍ଦେଶ୍ୟରେ ଅନୁଷ୍ଠିତ କର୍ମ ।

୩ । ସୀମନ୍ତୋନ୍ନୟନ; (ସାଧାରଣ କଥାରେ ସାଧଖିଆ ବା ଚଉଦଖିଆ )—ଗର୍ଭିଣୀର ୪ର୍ଥ, ୬ଷ୍ଠ ବା ୮ମ ମାସରେ କର୍ତ୍ତବ୍ୟ କର୍ମବିଶେଷ । ଏଥିରେ ଗର୍ଭିଣୀର ସୀମନ୍ତ ବା କପୋଳ ଉପରର କେଶକୁ ଉପରକୁ ଟେକିବାକୁ ହୁଏ । )

୪ । ଜାତକର୍ମ—ସନ୍ତାନର ଜନ୍ମ ପରେ କର୍ତ୍ତବ୍ୟ କର୍ମ ବିଶେଷ ।

୫ । ନାମକରଣ—ଜନ୍ମର ପ୍ରଥମ ବା ଦ୍ୱିତୀୟ ମାସରେ ସନ୍ତାନର ନାମ ଦେବା ଉପଲକ୍ଷରେ ଅନୁଷ୍ଠିତ କର୍ମ-ବିଶେଷ ।

୬ । ନିଷ୍କ୍ରମଣ—୪ର୍ଥ ମାସରେ ସନ୍ତାନର ଗୃହର ବାହାରକୁ ବାହାରିବା ଉପଲକ୍ଷରେ ଅନୁଷ୍ଠେୟ କର୍ମ ।

୭ । ଅନ୍ନପ୍ରାଶନ; (ଶିରଉଠା)—ଜନ୍ମର ୬ମାସ ପରେ ସନ୍ତାନକୁ ପ୍ରଥମେ ଭାତ ଛୁଆଁଇବା ଉପଲକ୍ଷରେ ଅନୁଷ୍ଠେୟ କର୍ମ । (ଏଥିରେ ସାଧାରଣତଃ ଶିଶୁର ପାଟିରେ ଖିରି ଟିକେ ଠୋଇ ଦିଆ ହୋଇଥାଏ; କାରଣ ସେତେବେଳେ ତାର ଭାତ ଖାଇ ହଜମ କରିବାର ଶକ୍ତି ଆସି ନ ଥାଏ । )

୮ । ଚୂଡ଼ାକରଣ ବା କର୍ଣ୍ଣବେଧ; (ସାଧାରଣ କଥାରେ କାନଫୋଡ଼ା ବା ବିଦ୍ୟାରମ୍ଭ); ସନ୍ତାନର ତୃତୀୟ ବର୍ଷ ପୂର୍ତ୍ତି ମାନ ଶୁଭଦିନରେ ପ୍ରଥମ କ୍ଷୌରକର୍ମ, ବିଦ୍ୟାରମ୍ଭ ଓ କାନ-ଫୋଡ଼ା କର୍ମ ।

୯ । ଉପନୟନ ବା ବ୍ରତ—୭ ଠାରୁ ୧୬ ବର୍ଷ ବୟସ ମଧ୍ୟରେ ଯଜ୍ଞୋପବୀତ ଧାରଣରୂପ ଅନୁଷ୍ଠାନ । (ପୂର୍ବେ ବାଳକମାନେ ଉପନୟନ ପରେ ବିଦ୍ୟାଶିକ୍ଷା ପାଇଁ ଗୁରୁଗୃହକୁ ଯାଉଥିଲେ । ଏବେ ତାର ଅତି କ୍ଷୀଣସ୍ମୃତି ମାତ୍ର ଅଛି । )

୧୦ । ସମାବର୍ତ୍ତନ ବା ବିବାହ—ଗୁରୁଗୃହରେ ବେଦାଧ୍ୟୟନ ଶେଷ କରିବା ପରେ ବ୍ରହ୍ମଚର୍ଯ୍ୟାଶ୍ରମ ତ୍ୟାଗ କରି ବାଳକର ଗୃହସ୍ଥାଶ୍ରମରେ ପ୍ରବେଶ କରିବା ପାଇଁ ଅନୁଷ୍ଠେୟ କର୍ମ ।

କୌଣସି କୌଣସି ଶାସ୍ତ୍ରରେ 'ବିବାହ' ଦଶବିଧ ସଂସ୍କାରର ଅନ୍ତର୍ଗତ ବୋଲି ଉଲ୍ଲିଖିତ ଅଛି । ଉକ୍ତ ଶାସ୍ତ୍ରକାରମାନେ 'ନିଷ୍କ୍ରମଣ'କୁ ସଂସ୍କାର ମଧ୍ୟରେ ଗ୍ରହଣ କରି ନାହାନ୍ତି । ଅଧିକନ୍ତୁ ମଧ୍ୟ କେହି କେହି 'ବିବାହ' 'ନିଷ୍କ୍ରମଣ' ଓ 'କେଶାନ୍ତ' ସହିତ ସଂସ୍କାର ୧୨ ପ୍ରକାର ବୋଲି କହନ୍ତି; କୌଣସି କୌଣସି ଶାସ୍ତ୍ରରେ ଦ୍ୱିଜାତିଙ୍କର ସଂସ୍କାରର ସଂଖ୍ୟା ୧୬ ବୋଲି ଯାଇଅଛି ।

ପୂର୍ବେ ଦ୍ୱିଜାତି ବାଳକମାନଙ୍କର ଯଥାକାଳରେ ଉପର୍ଯ୍ୟୁକ୍ତ ଅନୁଷ୍ଠାନମାନ ସମ୍ପାଦିତ ହେଉଥିଲା । ଅଧୁନା ଅଧିକାଂଶ ଦ୍ୱିଜାତି ଏଥିମଧ୍ୟରୁ ଅନେକଗୁଡ଼ିଏ ସଂସ୍କାର ଯଥାସମୟରେ ନ କରି ଉପନୟନକାଳରେ ପ୍ରଥମୋକ୍ତ ୧୫ଟି କର୍ମକୁ ଉପନୟନର ଏମିତି ଅଭିନୟ ପରି ନାମମାତ୍ର ସମ୍ପାଦନ କରନ୍ତି ।

ଶାସ୍ତ୍ରରେ ଅଛି—"ଜନ୍ମନା ଜାୟତେ ଶୂଦ୍ରଃ,
ସଂସ୍କାରାଦ୍ଦ୍ୱିଜ ଉଚ୍ୟତେ;
ବେଦାଭ୍ୟାସାଦ୍ ଭବେଦ୍ ବିପ୍ରୋ,
ବ୍ରହ୍ମ ଜାନାତି ବ୍ରାହ୍ମଣଃ ।"

ଜନ୍ମବେଳେ ଦ୍ୱିଜକୁଳଜାତ ବାଳକ ଶୂଦ୍ର ହୋଇଥାଏ ଓ ସଂସ୍କାରଦ୍ୱାରା ଦ୍ୱିଜପଦବାଚ୍ୟ ହୁଏ । କିନ୍ତୁ ଜନ୍ମ ପୂର୍ବରୁ କେତେଗୋଟି ସଂସ୍କାର ହେବାର ବିଧି ଥିବା ସ୍ଥଳେ ଏହି ଶ୍ଳୋକଟି ଆକ୍ଷରିକ ଅର୍ଥରେ ବ୍ୟବହୃତ ହୋଇଥିବା ପରି

ଅନୁମିତ ହୁଏ ନାହିଁ ।] ୨୫ । ସଂସ୍କ୍ରିୟା; ମୃତବ୍ୟକ୍ତିର ଶବଦାହ ଓ ମରଣାଶୌଚ ସଂପୃକ୍ତ ଶୁଦ୍ଧିକ୍ରିୟା—25. Obsequial rites. (Apte) ଦେ. ବି—୧। ଶବଦାହ
সংস্কার
संस्कार
সংস্কৃত
संस्कार
କ୍ରିୟା—1. Cremation. ୨ । ସଂସ୍କୃତ ଭାଷା—2. The Sanskrit language. (ଉ—ବେଦ ପୁରାଣ ଆଦି ଯେତେ, ସଂସ୍କାର ପ୍ରାକୃତ ସହିତେ । ଜଗନ୍ନାଥ॰ ଭାଗବତ ।) ଦେ ବିଣ (ପ୍ରାଚୀନ ପଦ୍ୟ)—(ସଂ ସଂସ୍କୃତ) ପବିତ୍ର; ଶୁଦ୍ଧ—Purified. (ଉ—ଶୁଣି ଅର୍ଜୁନ ଶିରେ କର ଦେଇ, ଚରଣେ ପଡ଼ିଲ ସଂସ୍କାର ହୋଇ । ପ୍ରାଚୀ. ପରଚେ ଗୀତା ।)

**ସଂସ୍କାରକ**— ସ. ବିଣ ଓ ବି. ପୁଂ (ସମ୍+କୃ ଧାତୁ+କର୍ତ୍ତ୍ରି. ଅକ)—୧ । Saṁskāraka ସଂସ୍କର୍ତ୍ତା; ଯେ ସଂସ୍କାର କରେ—1. One (ସଂସ୍କାରିକା—ସ୍ତ୍ରୀ) who performs or initiates reforms; reformer. ୨ । ପାଚକ—2. A cook. ୩ । ଯେ ମରାମତି କରେ—3. Repairer. ୪ । ଯେ ପରିଷ୍କାର କରେ—4. Cleaner. ୫ । ଯେ ଶୋଧନ କରେ—5. Purifier; refiner.

**ସଂସ୍କାର କରିବା**—ଦେ. କ୍ରି—୧ । ବଘାରିବା—1. To flavour Saṁskāra kariba water-boiled curry by ফোড়নদেওয়া **বঘারনো** frying it with spices in oil or ghee. [ଉ—ଘରେ ଏଥିରେ ଘିଅ ଲବଣ ସଂଯୋଗ କରି ସଂସ୍କାର କରିବ—ଦ୍ରବ୍ୟଗୁଣ କଳ୍ପଦ୍ରୁମ] ୨ । ଶୁଦ୍ଧ ବା ପବିତ୍ର କରିବା—2. To purify. ୩ । ମରାମତି କରିବା—3. To repair.

**ସଂସ୍କାରଜ**—ସଂ. ବିଣ. (ସଂସ୍କାର+ଜନ ଧାତୁ+କର୍ତ୍ତ୍ରି. ଅ)—ସଂସ୍କାର Saṁskāraja ଦ୍ୱାରା ଘଟିତ ବା ଉତ୍ପନ୍ନ—Due to or pro- (ସଂସ୍କାରଜନିତ, ସଂସ୍କାରଜନ୍ୟ—ଅନ୍ୟରୂପ) ...y reforms; resulting from reforms.

**ସଂସ୍କାର ଜନକ**—ସଂ ବିଣ.—୧ । ସଂସ୍କାରର ଉତ୍ପାଦକ—1. Caus- Saṁskāra janaka ing or producing recollection of one's past existence. ୨ । ଶୁଦ୍ଧି- ଜନକ—2. Purifying; producing purity.

**ସଂସ୍କାର ପୂତ**—ସଂ. ବିଣ. ପୁଂ,—(୩ୟା ତତ୍)—ସଂସ୍କାର ଦ୍ୱାରା Saṁskāra pūta ପବିତ୍ରୀକୃତ—Purified by purifi- (ସଂସ୍କାରପୂତା—ସ୍ତ୍ରୀ) catory rites or refinement.

**ସଂସ୍କାର ବର୍ଜିତ(ରହିତ)**—ସଂ. ବିଣ. ପୁଂ. (୩ୟା ତତ୍)—ଦଶ ସଂସ୍କାର Saṁskāra barjita (rahita) ହୀନ; ଉପନୟନାଦି ସଂସ୍କାର (ସଂସ୍କାରବର୍ଜିତା—ସ୍ତ୍ରୀ) ବିହୀନ (ଅର୍ଥାତ୍ ଶୂଦ୍ର; ଯେ ଦ୍ୱିଜାତି ନୁହେ)—One who has not undergone the purificatory rites.

**ସଂସ୍କାର ବିହୀନ(ହୀନ)**—ସ. ବିଣ. ପୁଂ. (୩ୟା ତତ୍)—ବ୍ରାତ୍ୟ; ଯେଉଁ Saṁskāra bihīna(hīna) ଦ୍ୱିଜାତି ଦ୍ୱିଜାତିବିହିତ ସଂସ୍କାରରୁ (ସଂସ୍କାର ବିହୀନା—ସ୍ତ୍ରୀ) ବର୍ଜିତ କରିଥିବା ହେତୁରୁ ପତିତ ହୋଇ ଥାଏ— A person of a twice born caste) Who has lost his purity by giving up the purificatory ceremonies. [ଦ୍ର—ଯେଉଁ ବ୍ରାହ୍ମଣ ୧୦ ବର୍ଷ ବା ୫ ବର୍ଷ କାଳ ବ୍ରାହ୍ମଣର କର୍ତ୍ତବ୍ୟ କର୍ମ ତ୍ୟାଗ କରେ ଓ ୧୬ ବର୍ଷ ପର୍ଯ୍ୟନ୍ତ ବ୍ରତ ହୁଏ ନାହିଁ, ତାହାର ସାବିତ୍ରୀ ପତନ ବା ସଂସ୍କାରହୀନତା ଘଟେ; ସଂସ୍କାରବିହୀନ ଦ୍ୱିଜାତିକୁ ବ୍ରାତ୍ୟ ବୋଲାଯାଏ ।]

**ସଂସ୍କୃତ**—ସ. ବିଣ. ପୁଂ ( ସମ୍+କୃ ଧାତୁ+କର୍ମ. ତ; ସ ଆଗମ )— Saṁskṛuta ୧ । ପରିଶୋଧିତ; ପରିଶୁଦ୍ଧ– 1. Purified; (ସଂସ୍କୃତା—ସ୍ତ୍ରୀ) rectified. ୨ । ସଂସାଧିତ; ସଂଧିତ; କଳ୍ପିତ— 2. Accomplished. ୩ । ଶୁଦ୍ଧୀକୃତ; ପବିତ୍ରୀକୃତ— 3. Consecrated; hallowed. ୪ । ସଜ୍ଜିତ; ଭୂଷିତ; ଅଳଂକୃତ— . Decorated; embellished; furnished; adorned. ୫ । ପରିଷ୍କୃତ—5. Cleansed. ୬ । ପରିମାର୍ଜିତ; ମାର୍ଜିତ—6. Polished; scoured; refined. ୭ । ସିଦ୍ଧ—7. Boiled. ୮ । ପକ୍ୱ—8. Ripened. ୯ । ମନ୍ତ୍ରପୂତ—9. Consecrated by means of mystic incantations. ୧୦ । ଦୋଷଶୂନ୍ୟ ବା ଭ୍ରାନ୍ତିଶୂନ୍ୟ କରାଯାଇ ଥିବା—10. Corrected; rectified. ୧୧। ନିର୍ଦ୍ଦୋଷୀକୃତ—11. Perfected; made faultless. ୧୨ । ସାଧୁ; ବ୍ୟାକରଣସିଦ୍ଧ (ଶବ୍ଦ)—12. (word) Formed by following correct grammatical rules; grammatical. ୧୩ । ଯତ୍ନକରୁଥିବା ପ୍ରସ୍ତୁତ— 13. Carefully prepared with a view to produce a purified article. ୧୪ । ରନ୍ଧା ଯାଇଥିବା—14. Cooked; dressed. ୧୫ । ଉତ୍କୃଷ୍ଟ; ଶ୍ରେଷ୍ଠ—15. Best; excellent. ୧୬ । ଯେଉଁ ଦ୍ୱିଜାତି ବ୍ୟକ୍ତିର ଶାସ୍ତ୍ରବିହିତ ସଂସ୍କାରମାନ କରାଯାଇଅଛି— 16. (a person of a twice born caste) Who has undergone due purificatory rites. ୧୭ । ଗୃହସ୍ଥାଶ୍ରମରେ ପ୍ରବିଷ୍ଟ; ବିବାହିତ— 17. Initiated with worldly life; married (Apte) ସଂ. ବି—୧ । ଦେବ ଭାଷା; ଭାରତୀୟ (ପ୍ରାକୃତ—ବିପରୀତ) ଆର୍ଯ୍ୟମାନଙ୍କ ବ୍ୟବହୃତ ବିଶୁଦ୍ଧ ଭାଷା— 1. The Sanskric language; the language used by the Aryans of ancient India, (which is a refined and highly polished language). [ଦ୍ର—ସଂସ୍କୃତ ଭାଷାକୁ ଅନୁଶୀଳନ କରି କେତେକ ଆଧୁନିକ ୟୁରୋପୀୟ ପଣ୍ଡିତ ମତ ବ୍ୟକ୍ତ କରି ଅଛନ୍ତି ଯେ, ଏକ କାଳରେ ସଂସ୍କୃତ ଭାଷାହିଁ ପୃଥିବୀର ଏକମାତ୍ର ଭାଷା ଥିଲା । ଏହା ଗ୍ରୀକ୍ ଓ ଲାଟିନ୍ ଆଦି ଭାଷା ଅପେକ୍ଷା ପୁଷ୍ଟିତଯୁକ୍ତିସଂପନ୍ନ, ଅଧିକତର ଭାବଦ୍ୟୋତକ, ଶବ୍ଦପ୍ରଚୁର ଓ ସୌନ୍ଦର୍ଯ୍ୟଶାଳୀ ଅଟେ ।]

ସଖା ଭାବ —ଦେ· ବି—ସଖିଭାବ (ଦେଖ)
Sakhā bhāba Sakhibhāba. (See)

ସଖାଳ (ଇତ୍ୟାଦି) —ଦେ· ବି— ସକାଳ ଇତ୍ୟାଦି (ଦେଖ)
Sakhāḷa (etc) Sakāḷa etc (See)
(ଉ—ସେ ଦ୍ୱାଦଶୀ ଦିନ ବଡ଼ ସଖାଳେ ଭୁଞ୍ଜା ବାସନ ମାଜେ । ପଶ୍ଚିରମୋହନ· ଛମାଣ ଆଠଗୁଣ ।)

ସଖାଳୁ(ଳୁଂ)—ଦେ· କ୍ରି· ବିଣ - ସକାଳୁ (ଦେଖ)
Sakhāḷu(ḷuṅ) Sakāḷu. (See)

ସଖାଳୁଆ (ଇତ୍ୟାଦି)—ଦେ· ବି. ଓ ବିଣ—ସଖାଳୁଆ ଇତ୍ୟାଦି (ଦେଖ)
S khāḷuā (etc) Sakhāḷuā etc. (See)

ସଖାଳେ - ଦେ. କ୍ରି. ବିଣ—ସକାଳେ (ଦେଖ)
Sakhāḷe Sakāḷe (See)

ସଖା ସୋଦର—ଦେ. ବି—ବନ୍ଧୁ କୁଟୁମ୍ବ—Friends and
Sakhā sodara relatives. ( ଉ—ସଖା ସୋଦର ମୋର
ସଖା ସୋଦର ନାହିଁ, ମୁ ଏକା ଥିବି ଏକା ହୋଇ ? ପ୍ରାଚୀ· କବି·ଙ୍କ
ମାଇବନ୍ଧୁ ମାଦ୍ୱାସ୍ୱ ।]

ସଖି —ସ· ବି ପୁଂ (ଶବ୍ଦ) (ସ=ସମାନ+ଖ୍ୟା.ଧାତୁ=କହିବା+କର୍ମ ଇ;
Sakhi ଯାହାକୁ ଲୋକେ ସମାନ ବୋଲି କହନ୍ତି; ଏହି ଶବ୍ଦର
ପ୍ରଥମା ବିଭକ୍ତି ଯୁକ୍ତ ପଦ 'ସଖା' ବାକ୍ୟରେ ବ୍ୟବହୃତ
ହୁଏ)—ବୟସ୍ୟ; ମିତ୍ର; ବନ୍ଧୁ; ସହଚର; ସୁହୃଦ୍—
Companion; bosom friend. ( ଉ—ଏ
କାହାରେ ତୁମର ସଖି ଚକ୍ରପାଣି । କୃଷ୍ଣସିଂହ. ମହାଭାରତ
ଉଦ୍‌ଯୋଗ ।) ସ. ବି. ସ୍ତ୍ରୀ—(ସଖୀ ଶବ୍ଦର ସ୍ତ୍ରୀ ସମ୍ବୋଧନ)
(ସଖେ—ପୁଂ) ସଖୀ ପ୍ରତି ସମ୍ବୋଧନ—Oh friend ! ( add-
ressed to a female friend). ଦେ. ବି—
(ସଖୀ—ଅନ୍ୟରୂପ) (ସଂ. ସଖୀ)—୧ । କୁଣ୍ଢେଇ; ପୁତ୍ତଳିକା;
ପୁତୁଲ ପିତୁଳ—1· An image; doll; puppet. ୨ । ସଖୀ
କନିୟାପୁତରୀ ବା ପିତୁଳା ପରି ସୁନ୍ଦରୀ ବାଳିକା—2. A very
ପରୀ beautiful girl ଦେ. ବିଣ—(ଦ. ସଖୀ) ସଖୀ ବା
ସଖୋ ପିତୁଳା ପରି ସୁନ୍ଦରୀ (ବାଳିକା)—Very beautiful
(girl). ବୈଦେ. ବିଣ—ସକି (ଦେଖ)—Saki.(See)
ପ୍ରାଦେ ( ଯାଜପୁର ) ବି—ବନ୍ଧୁ; ସଙ୍ଗ ସୁଖ—
Friend.

ସଖିଜନ—ସ. ବି—ବନ୍ଧୁବ୍ୟକ୍ତି; ମିତ୍ରବ୍ୟକ୍ତି—
Sakhijana A friend.
(ସଖୀଜନ ?—ସ୍ତ୍ରୀ)

ସଖିତା(ତ୍ୱ)—ସଂ. ବି (ସଖି+ଭାବ. ତା, ତ୍ୱ)—ମିତ୍ରତା; ସୌହାର୍ଦ୍ଦ୍ୟ;
Sakhitā(twa) ସଖ୍ୟ—Close friendship.

ସଖିନାଟ—ଦେ. ବି—କେଳାମାନେ ପିତୁଳା ପଛରେ ଘୋଡ଼ାବାଳ
Sakhināṭa ଲଗେଇ ସେହି ଘୋଡ଼ାବାଳକୁ ଟାଣିକରି
ପୁତୁଲ୍ ବାଜି, ପୁତୁଲ ନାଚ ପିତୁଳାମାନଙ୍କୁ ନଚାଇ ଅଭିନୟ କରିବା
ପୁତଗୀ ନାଚ ଖେଳ; କଣ୍ଢେଇ ନାଟ—A puppet dance
in which puppets are made to dance by
pulling the attached horse-hair from
behind.

ସଖୀ— ସଂ. ବି. ସ୍ତ୍ରୀ—(ସଖି ଶବ୍ଦର ସ୍ତ୍ରୀଲିଙ୍ଗ; ସଖି+ସ୍ତ୍ରୀ· ଈ)—
Sakhī ୧ । ବୟସ୍ୟା—1. A female companion.
୨ । ସ୍ତ୍ରୀଲୋକର ସ୍ତ୍ରୀ ସହଚରୀ—
2. A lady's maid or companion.

ସଖୀ ନାଟ—ପ୍ରାଦେ (ଗଞ୍ଜାମ) ବି—ସ୍ତ୍ରୀ ବେଶରେ ସଜ୍ଜିତ ନାଟୁଆପିଲାଙ୍କ
Sakhī nāṭa ନାଚ—Dancing of boys in the garb
of girls.

ସଖୀ ପିଲା—ଦେ. ବି—ରାମଲୀଳା, ଭାରତଲୀଳା, କୃଷ୍ଣଲୀଳା ଆଦିରେ
Sakhī pilā ଯେଉଁ ବାଳକ ସଖୀ ବା ସ୍ତ୍ରୀବେଶରେ ନାଚେ—
ଯେ ସଖୀ ସାଜେ The boy who takes female part
সখী বালক in country dance.
(ସଖୀ ପୁଅ—ଅନ୍ୟରୂପ)

ସଖୀ ଭାବ—ଦେ ବି (ବୈଷ୍ଣବ ସମ୍ପ୍ରଦାୟ ବ୍ୟବହୃତ ଶବ୍ଦ)—ବୟସ୍ୟ
Sakhī bhāba ଭାବ; ଶ୍ରୀକୃଷ୍ଣଙ୍କ ପ୍ରତି ବୟସ୍ୟା ବା ସହଚରୀର ଭାବ—
ସଖୀ ଭାବ The state of being a bosom friend; the
সখী ভাব condition of thinking one's self as the
'Sakhā' or 'Sakhī' of Sri Krushna. [ଦ୍ର—
ଶ୍ରୀଚୈତନ୍ୟଦେବ ଏହି 'ସଖୀ ଭାବ'ରେ ଓ ବିଶେଷତଃ
'ସହଚରୀ'ରୂପେ ଶ୍ରୀକୃଷ୍ଣଙ୍କ ଭକ୍ତି କଲେ କୃଷ୍ଣପ୍ରାପ୍ତି ହୁଏ
ବୋଲି ପ୍ରଚାର କଲେ; ଅର୍ଥାତ୍ ଶ୍ରୀକୃଷ୍ଣଙ୍କୁ ତାଙ୍କର ସଖାମାନେ
(ସୁଦାମା, ସୁବଳ ପ୍ରଭୃତି) ଓ ସଖୀମାନେ (ରାଧିକା, ଲଳିତା,
ବିଶାଖା ଆଦି) ଯେଉଁ ମଧୁରତାପୂର୍ଣ୍ଣ ସଖ୍ୟ ଭାବରେ ଭକ୍ତି
କରୁଥିଲେ, ସେହିପରି ମାଧୁର୍ଯ୍ୟପୂର୍ଣ୍ଣ ଭକ୍ତି କଲେ ଭଗବତ୍-
ପ୍ରାପ୍ତି ହୁଏ ।]

ସଖୁର୍ଡି—ଦେ. ବି ଓ ବିଣ—ସଙ୍ଖୁର୍ଡି (ଦେଖ)
Sakhurḍi Saṅkhurḍi. (See)

ସଖେ—ସଂ. ପୁଂ (ସଖି ଶବ୍ଦର ପୁଂଲିଙ୍ଗ ସମ୍ବୋଧନ)—ହେ ସଖେ ! ହେ
Sakhe ମିତ୍ର !—Oh friend! (addressed to a male
(ସଖି—ସ୍ତ୍ରୀ) friend.)

ସଖ୍ୟ - ସଂ. ବି (ସଖି+ଭାବ· ଯ) —୧ । ମୈତ୍ରୀ; ସୌହାର୍ଦ୍ଦ—
Sakhya 1. Close friendship. ୨ । ଘନିଷ୍ଠତା—
2. Intimacy.
[ଦ୍ର—ଏହାକୁ କେହି କେହି ଅଶୁଦ୍ଧ ଆକାରରେ 'ସଖ୍ୟତା
ଲେଖୁଥିବା ଦେଖାଯାଏ]

ସଖ୍ୟ ଭାବ—ସଂ. ବି—ବନ୍ଧୁଗତ ଅନୁରାଗ—
Sakhya bhāba Friendly attachment.

ସଖ୍ୟ ସ୍ଥାପନ—ସଂ. ବି (ଷଷ୍ଠୀ ତତ୍)—କୌଣସି ବ୍ୟକ୍ତିଙ୍କ ସଙ୍ଗେ ବନ୍ଧୁତା
Sakhya sthāpana ବା ଘନିଷ୍ଠତା କରିବାର ଉପାୟ-
କରଣ—Establishment of close friend-
ship with a person.

ସଗ—ଦେ. ବିଣ—ସଗା (ଦେଖ)
Saga Sagā (See)

ସଗଣ—ସଂ. ବିଣ ( ବହୁବ୍ରୀହି; ସ=ସହିତ+ଗଣ=ଅନୁଚର; ଅପଣା
Sagana ଜାତୀୟ ବନ୍ଧୁ ବା ବ୍ୟକ୍ତି)—୧ । ସାନୁଚର—
1. Accompanied with one's retinue; attended by one's followers. ୨ । ସଦଳ; ଅପଣା ଦଳୀୟ ବା ଜାତୀୟ ବନ୍ଧୁମାନଙ୍କ ବା ବ୍ୟକ୍ତିମାନଙ୍କ ସହିତ—2. Accompanied with the members of one's own class. ୩ । (ସ= ସମାନ ଅଛେ ଗଣ ଯାହାର;) ଅପଣା ଜାତୀୟ, ଏକ-ଜାତୀୟ—3. Of the same class. ସଂ ବ ଯେଉଁ ତିନୋଟି ବର୍ଣ୍ଣ ଛନ୍ଦରେ ବ୍ୟବହୃତ ହୋଇଥାଏ—The three letters that are used in a metrical composition. [ଦ୍ର—ଏହି ତିନୋଟି ବର୍ଣ୍ଣ ମଧ୍ୟରୁ ପ୍ରଥମ ଦୁଇ ବର୍ଣ୍ଣ ଲଘୁ ଓ ଶେଷ ବର୍ଣ୍ଣଟି ଗୁରୁ ।] ଦେ. କ୍ରି. ବିଣ-
ସଗଣେ ସଦଳବଳ ହୋଇ—In company with one's
ଗଣ ସହିତ attendants and companions. [ଉ—ସଗଣେ ବସିଲେ ସୁନ୍ଦର ରଥେ । ମଧୁସୂଦନ, କବିତାବଳୀ]
(ସଗଣେ—ଅନ୍ୟ କ୍ରି. ବିଶରୂପ)

ସଗନ୍ଧ—ସଂ. ବିଣ. ( ବହୁବ୍ରୀହି; ସ=ସହିତ+ଗନ୍ଧ )—୧ । ଗନ୍ଧଯୁକ୍ତ;
Sagandha ସୁବାସିତ—1 Scented; smelling; perfumed; fragrant. ୨ । ଗର୍ବଯୁକ୍ତ—2. Proud; arrogant. ୩ । ଏକ ବଂଶଜାତ—3 Born of the same family; kindred. ଦେ. ବି—ଜ୍ଞାତି; କୁଟୁମ୍ବ—Kinsman; kin.

ସଗର—ସଂ. ବି. (ବହୁବ୍ରୀହି; ସ=ସହିତ+ଗର=ଗରଳ; ବିଷ)—
Sagara ବିଷଯୁକ୍ତ; ବିଷାକ୍ତ—Mixed with poison. ସଂ. ବି. ପୁଂ. (ନାମ) ( ସ=ସହିତ+ଗର=ବିଷ ବିଷ ସହିତ ମାତୃ ଗର୍ଭରୁ ଜନ୍ମି ଥିବାରୁ)—ସୂର୍ଯ୍ୟବଂଶୀୟ ନରପତି ବିଶେଷ—Name of a king of the Solar dynasty of ancient India. (ଉ—ଗରଳ ସଙ୍ଗେ ଜନ୍ମ ଯେଣୁ, ସଗର ନାମ ହେଲୁ ତେଣୁ । ଜଗନ୍ନାଥ. ଭାଗବତ ।) [ଦ୍ର—ଏ ସୂର୍ଯ୍ୟବଂଶୀୟ 'ବାହୁକ' ନାମକ ନରପତିଙ୍କ ପୁତ୍ର । ସଗରଙ୍କ ପିତା ବାହୁକ ହୃତରାଜ୍ୟ ଓ ହୃତସର୍ବସ୍ୱ ହୋଇ ବନକୁ ପ୍ରସ୍ଥାନ କଲେ ଓ ସେହି ବନରେ ତାଙ୍କର ମୃତ୍ୟୁ ହେଲା । ଏହି ସମୟରେ ଏହାଙ୍କ ରାଣୀ ଯାଦବୀ ଗର୍ଭବତୀ ହୋଇଥିଲେ । ଯାଦବୀଙ୍କୁ ତାଙ୍କ ସପତ୍ନୀ ଖାଦ୍ୟଦ୍ରବ୍ୟ ସଙ୍ଗେ ଗରଳ ଖାଇବାକୁ ଦେଲେ, ତଥାପି ତାଙ୍କର ଗର୍ଭପାତ ହେଲା ନାହିଁ ଏବଂ ଯଥା—କାଳରେ ଔର୍ବ୍ବ ମୁନିଙ୍କ ଅଶ୍ରମରେ ତାଙ୍କ ଗର୍ଭରୁ 'ସଗର' ଜାତ ହେଲେ ଓ ତାଙ୍କ ସଙ୍ଗେ ସଙ୍ଗେ ଯାଦବୀଙ୍କୁ ତାଙ୍କ ସପତ୍ନୀ ଦେଇଥିବା ଗରଳ ମଧ୍ୟ ଗର୍ଭରୁ ପଡ଼ିଲା । ବିଷ ସହିତ ମାତୃଗର୍ଭରୁ ଜନ୍ମ ହୋଇଥିବାରୁ ଏହାଙ୍କର ଏପରି ନାମ ହେଲା ।

ସଗର ଉକ୍ତ ଔର୍ବ ମୁନିଙ୍କ ଅଶ୍ରମରେ ବଢ଼ି ବୟଃପ୍ରାପ୍ତ ହୋଇ ହୃତ ପୈତୃକ ରାଜ୍ୟକୁ ପୁନରୁଦ୍ଧାର କରି ଧର୍ମ-ପାଳନ-ପୂର୍ବକ ପୁତ୍ରନିର୍ବିଶେଷରେ ପ୍ରଜାଙ୍କୁ ପାଳନ କଲେ । ଏହାଙ୍କର ଏକ ରାଣୀ 'ଶୈବ୍ୟାଙ୍କ' ଗର୍ଭରୁ 'ଅସମଞ୍ଜ' ନାମକ ଏକ ପୁତ୍ର ଓ ଏକ କନ୍ୟା ଜନ୍ମ ହେଲେ । ସଗରଙ୍କ ଅନ୍ୟତମା ରାଣୀ 'ବୈଦର୍ଭୀ'ଙ୍କ ଗର୍ଭରୁ ଗୋଟିଏ ମାଂସପିଣ୍ଡ ଜାତ ହେଲା ଓ ସେହି ମାଂସପିଣ୍ଡରୁ ଷାଠିଏ ହଜାର ପୁତ୍ର ବାହାରିଲେ । ସଗର ୯୯ଟି ଅଶ୍ୱମେଧ ଯଜ୍ଞ ସମ୍ପନ୍ନ କରି ଇନ୍ଦ୍ରତ୍ୱ ଲାଭ କରିବା ପାଇଁ ଶତତମ ଅଶ୍ୱମେଧ ଯଜ୍ଞ ଆରମ୍ଭ କଲେ । ଇନ୍ଦ୍ର ଏଥିରେ ଭୀତ ହୋଇ ଉକ୍ତ ଅଶ୍ୱକୁ ନେଇ ପାତାଳରେ କପିଳ ମୁନିଙ୍କ ଅଶ୍ରମରେ ବାନ୍ଧି ରଖିଲେ । ଅଶ୍ୱ ହଜିବା ଦେଖି ସଗରଙ୍କର ଷାଠିଏ ହଜାର ପୁଅ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଧୁଣ୍ଡି ପକାଇଲେ ଏବଂ ଭୂପୃଷ୍ଠକୁ ଏପରି ଖୋଳି ପକାଇଲେ ଯେ, ଉକ୍ତ ଗର୍ତ୍ତର ଖାତ 'ସାଗର' ବା ସମୁଦ୍ରରେ ପରିଣତ ହେଲା । (ସଗର ରାଜାଙ୍କ ପୁତ୍ରମାନଙ୍କ ଦ୍ୱାରା ଖୋଳା ହୋଇଥିବାରୁ ସମୁଦ୍ରର ନାମ 'ସାଗର' ହେଲା ।) ସଗରଙ୍କ ପୁତ୍ରମାନେ ଭୂପୃଷ୍ଠ ଖୋଳି ଖୋଳି ପାତାଳରେ ପଶି କପିଳ ମୁନିଙ୍କ ଅଶ୍ରମରେ ଯଜ୍ଞୀୟ ଅଶ୍ୱକୁ ଦେଖି କପିଳ ମୁନିଙ୍କୁ ଉକ୍ତ ଅଶ୍ୱର ଅପହର୍ତ୍ତା ବୋଲି ବିଚାରି ମୁନିଙ୍କ ପ୍ରତି କଟୁବାକ୍ୟ ପ୍ରୟୋଗ କରି ତାଙ୍କୁ ଦଣ୍ଡ ଦେବାକୁ ଉଦ୍ୟତ ହୁଅନ୍ତେ କପିଳଙ୍କ ଅଭିଶାପରେ ଏ ୬୦ ହଜାର ଯାକ ପୁଅ ପୋଡ଼ି ଭସ୍ମ ହୋଇଗଲେ । ଅତଃପର ସଗରଙ୍କ ପୌତ୍ର ଅଂଶୁମାନ୍ ପାତାଳକୁ ଗମନପୂର୍ବକ ତପସ୍ୟା ଓ ସ୍ତୁତି ଦ୍ୱାରା ମୁନିଙ୍କୁ ତୁଷ୍ଟ କରାଇ ଉକ୍ତ ଅଶ୍ୱକୁ ଅଣି ପିତାମହଙ୍କ ଆରବ୍ଧ ଯଜ୍ଞକୁ ଶେଷ କରାଇଲେ । ଉତ୍ତରକାଳରେ ଏହି ସୂର୍ଯ୍ୟବଂଶର ବଂଶଧର 'ଭଗୀରଥ' ସ୍ୱର୍ଗରୁ ଗଙ୍ଗାଙ୍କୁ ମର୍ତ୍ତ୍ୟକୁ ଆଣି (ଏଥିପାଇଁ ଗଙ୍ଗାଙ୍କର ଅନ୍ୟ ନାମ 'ଭାଗୀରଥୀ' ହୋଇ ଅଛି ।) ଗଙ୍ଗାଙ୍କୁ ବାଟ ଦେଖାଇ ଦେଖାଇ କପିଳ ମୁନିଙ୍କ ଅଶ୍ରମ ବାଟେ ନେଇ ସମୁଦ୍ରରେ ଚଳାଇଲେ ଓ କପିଳ ମୁନିଙ୍କ ଅଶ୍ରମରେ ସଗରଙ୍କ ୬୦ ହଜାର ପୁତ୍ରଙ୍କ ଭସ୍ମ ଗଙ୍ଗା-ଜଳ ଦ୍ୱାରା ପ୍ଲାବିତ ହେବାରୁ ସେମାନେ ଉଦ୍ଧାର ପାଇଲେ । ଅଦ୍ୟାବଧି ଗଙ୍ଗାର ସମୁଦ୍ର ସଙ୍ଗେ ମିଳିତ ହୋଇଥିବା ମୁହାଣ (ଗଙ୍ଗାସାଗର ସଙ୍ଗମ) ହିନ୍ଦୁମାନଙ୍କର ମହାତୀର୍ଥରୂପେ ପରିଗଣିତ ହେଉଅଛି ଓ ସେଠାରେ ପ୍ରତିବର୍ଷ ମକରସଂକ୍ରାନ୍ତି ସମୟରେ ସହସ୍ର ସହସ୍ର ହିନ୍ଦୁ ସ୍ନାନ କରନ୍ତି । ଏହାଛଡ଼ା ସେଠାରେ ଗୋଟିଏ ବଡ଼ ମେଳା ମଧ୍ୟ ହୁଏ ।]

ସଗର୍ବ—ସଂ. ବିଣ. ପୁଂ. ( ସ+ଗର୍ବ; ବହୁବ୍ରୀହି ) ୧ । ଗର୍ବିତ
Sagarba (ବ୍ୟକ୍ତି)—1. Proud; arrogant. ୨ ।
(ସଗର୍ବା—ସ୍ତ୍ରୀ) ଗର୍ବପୂର୍ଣ୍ଣ (ବାକ୍ୟ ବା ବ୍ୟବହାର)—2. (word or act) Full of arrogance.

ସଗର୍ବ(ର୍ବେ)—ଦେ. କ୍ରି. ବିଣ ( ସଂ. ସଗର୍ବଂ )—ଗର୍ବ ସହକାରେ;
Sagarba(rbe) ଗର୍ବିତଭାବରେ—Proudly; arrogant
ସଗର୍ବେ ସଗର୍ବ ly; with arrogance. [ଯଥା—ମୁଁ

(ସଗର୍ବରେ—ଅନ୍ୟରୂପ) ସଗର୍ବରେ କହୁଥାରେ ଯେ, ମୋ ସାଥିରେ କାହ୍ନଲଙ୍କ ଚନ୍ଦ୍ର ଅଛନ୍ତି । )

ସଗର୍ଭ—ସଂ. ବଣ. ପୁଂ (ବହୁବ୍ରୀହି, ସ=ସହିତ+ଗର୍ଭ=ଉଦର) Sagarbha ୧ । ଅଭ୍ୟନ୍ତରରେ କ୍ଷୁଦ୍ରପତ୍ରାଦି ଯୁକ୍ତ (କୁଶ ଦୁର୍ବାଦି)—(ସଗର୍ଭା—ସ୍ତ୍ରୀ) (a blade of Kusa grass) Enclosing a small leaf within it ୨ । ଗର୍ଭଯୁକ୍ତ; ଉଦରଯୁକ୍ତ—2. Having a garbha i. e. belly; bellied; having an uterus. ସଂ. ବି. ପୁଂ (ବହୁବ୍ରୀହି, ସ=ସମାନ+ଗର୍ଭ=ମାତୃଗର୍ଭ, ଯେ ଏକ ମାତୃଗର୍ଭରୁ ଜାତ) ଭାଇ; ସହୋଦର—One's full brother; uterine brother.

ସଗର୍ଭା—ସଂ. ବଣ. ସ୍ତ୍ରୀ (ସଗର୍ଭ+ଆ) ଗର୍ଭବତୀ—Pregnant; Sagarbhā big with child. ସଂ. ବି. ସ୍ତ୍ରୀ—ସହୋଦରା; ଏକମାତାଙ୍କ ଗର୍ଭଜାତ କନ୍ୟା; ଅପଣାର ଭଉଣୀ—One's full sister or uterine sister.

ସଗର୍ଭ୍ୟ—ସଂ. ବି ଓ ବଣ ପୁଂ. (ସଗର୍ଭ+ଯ)—ସଗର୍ଭ (ଦେଖ)—Sagarbhya Sagarbha (See) (ସଗର୍ଭ୍ୟା—ସ୍ତ୍ରୀ)

ସଗର୍ଭ୍ୟା—ସଂ. ବି ଓ ବଣ. ସ୍ତ୍ରୀ—(ସଗର୍ଭ+ଯ+ସ୍ତ୍ରୀ ଆ)—ସଗର୍ଭା Sagarbhyā (ଦେଖ)—Sagarbhā (See)

ସଗା—ଦେ. ବଣ [ ସଂ. ସଗାତ୍ର ( ସ=ସହିତ ବା ସଂଲଗ୍ନ+ଗାତ୍ର=ଦେହ); କୋଡ଼ି ଅଥବା ବେଣ୍ଟ, କୋଡ଼ିର ଗାତ୍ର ବା ଦେହର ସଂଲଗ୍ନ ହେଉଥିବାରୁ ]—ଯେଉଁ କୋଡ଼ିର ବା କାଙ୍କର ମୂଳର କଣା ( ଯହିଁ ଭିତରେ ବେଣ୍ଟ ପଶେ ) ଏପରି ହୋଇଥାଏ ଯେ, ତହିଁରେ ପୂରାଯିବା ବେଣ୍ଟଟି କୋଡ଼ିର ମୁହଁ ପାଖକୁ ଲାଗିଯାଏ—( the eye of a spade ) Constructed in such a manner that the handle which is passed through it comes very close to its blade or body.
Sagā
ନୀଚୁମୁଖୋ
ସେବ
ଝୁଳ } ବିପରୀତ
ଝୁଳା }

ସଗା(ଗେ)ଇବା—ଦେ. କି—( କୋଡ଼ିର ମୂଳର କଣାକୁ ) ସଗା କରିବା; କୋଡ଼ିର ମୂଳର କଣାକୁ ଏପରି ଭାବରେ ତିଆର କରିବା, ଯେପରିକି କୋଡ଼ିର ବେଣ୍ଟ କୋଡ଼ିର ମୁହଁଆକୁ ଲାଗିଗଲା ପରି ହୋଇ ରହେ—To shape the eye of a spade in such a manner that the handle passed through it will be very near ( making an acute angle with ) the blade.
Sagā(ge)ibā
ନୀଚୁମୁଖୋ କରନା
ସେବ କରନା
ଝୁଳାଇବା }
ଝୁଳ କରିବା } ବିପରୀତ
ଝୁଲେଇବା }

ସଗୁଣ—ସଂ. ବଣ ( ବହୁବ୍ରୀହି, ସ=ସହ+ଗୁଣ )—୧ । ଗୁଣଯୁକ୍ତ—Saguṇa 1. Possessed of attributes. ୨ । ଉତ୍ତମ (ନିର୍ଗୁଣ—ବିପରୀତ) ଗୁଣଯୁକ୍ତ—2. Possessed of good attributes or qualities. ୩ । ସତ୍ତ୍ୱ, ରଜଃ ଓ ତମଃ ଆଦି ଗୁଣବିଶିଷ୍ଟ—3. Possessing the three worldly attributes ( ସତ୍ତ୍ୱ—good, ରଜଃ—indifferent, ତମଃ—bad). ୪ । ସାଂସାରିକ—4. Worldly. ୫ । ଗୁଣ ବା ଦଉଡ଼ି ଲାଗିଥିବା (ଧନୁ); ଯେଉଁ ଧନୁରେ ଗୁଣ ଚଢ଼ିଥାଏ—5. Stringed ( bow ). ୬ । ସାକାର; ଶରୀରୀ—6. Corporeal; having a form.

ସଗୁଣା—ସଂ. ବି—ଭକ୍ତିବିଶେଷ—A kind of devotion. [ଉ—Saguṇā ସର୍ବନ୍ତ ଦେଖଇ ସମାନ, ସାତ୍ତ୍ୱିକ ଭକ୍ତି ତାକୁ ଜାଣ । ଏହି ପ୍ରକାରେ ନବ ନବ, ସଗୁଣା ଏକାଅଶୀ ଭାବ—ଜଗନ୍ନାଥ; ଭାଗବତ । ] [ ଦ୍ର—ସାତ୍ତ୍ୱିକ, ରାଜସ ଓ ତାମସ, ଏହି ତ୍ରିବିଧ ଭକ୍ତିଯୋଗ ମଧ୍ୟରେ ମୃଦୁ, ମଧ୍ୟ ଓ ଉତ୍ତମ ଭେଦରେ ନଅ ପ୍ରକାର ଭେଦ ଅଛି । ଏହି ନଅ ପ୍ରକାର ମଧ୍ୟରେ ପ୍ରତ୍ୟେକର ଶ୍ରବଣ କୀର୍ତ୍ତନାଦି ଭେଦରେ ନବଧା ଭେଦ ଥିବାରୁ ସଗୁଣା ଭକ୍ତି ଏକାଅଶୀ ପ୍ରକାର ଅଟେ । ]

ସଗୁଣୋପାସନା—ସଂ. ବି ( ସଗୁଣ+ଉପାସନା; କର୍ମଧାରୟ )—୧ । Saguṇopāsanā ଈଶ୍ୱରଙ୍କୁ ସଗୁଣ ବା ଶରୀରୀ କଳ୍ପନାରେ ଆରାଧନା—1. Worshipping God as manifesting Himself in a visible body having attributes, human and divine. ୨ । ସାକାର ଉପାସନା—2. Image-worship; idolatry; worship of God considered as possessed of different attributes and assuming different bodies. [ ଦ୍ର—ସୃଷ୍ଟିକର୍ତ୍ତା ରୂପରେ 'ବ୍ରହ୍ମା', ପାଳନକର୍ତ୍ତାରୂପରେ 'ବିଷ୍ଣୁ' ଓ ସଂହାରକ ରୂପରେ 'ଶିବ'—ଈଶ୍ୱରଙ୍କ ଏହିପରି କଳ୍ପନାପୂର୍ବକ ଆରାଧନା କରିବା ସଗୁଣୋପାସନାର ବିଧି । ]

ସଗୋତ୍ର—ସଂ. ବଣ. ପୁଂ ( ବହୁବ୍ରୀହି; ସ=ସମାନ; ଏକ+ଗୋତ୍ର—ବଂଶ ଯାହାର)—୧ । ଏକ ଗୋତ୍ରରୁ ଜାତ—Sagotra (ସଗୋତ୍ରା—ସ୍ତ୍ରୀ) 1. Born of the same clan. ୨ । (ଅସଗୋତ୍ର—ବିପରୀତ) ଏକ ବଂଶୀୟ—2. Of the same kin; kindred. ସଂ. ବି—୧ । କୁଳ; ବଂଶ—1. Lineage; pedigree; family. ୨ । ଜ୍ଞାତି; କୁଟୁମ୍ବ—2. Kinsman; kindred; kinsfolk ୩ । ଯେଉଁ ବ୍ୟକ୍ତିର ଗୋତ୍ର ଅନ୍ୟ ବ୍ୟକ୍ତିର ଗୋତ୍ର ଏକ ( ଅର୍ଥାତ୍ ଯେଉଁ ଦୁଇ ଜଣଙ୍କର କୁଳପ୍ରବର୍ତ୍ତକ ମୂଳ ଜଣେ; ଅର୍ଥାତ୍ ଯେଉଁମାନେ ଜଣେ ଗୋତ୍ରପ୍ରବର୍ତ୍ତକ ମୁନିଙ୍କ ବଂଶଧର ଅଟନ୍ତି )—3. Persons descended from one and the same progenitor ( sage ). [ ଦ୍ର—ସଗୋତ୍ରଙ୍କ ମଧ୍ୟରେ ବିବାହ ନିଷିଦ୍ଧ । ଯେଉଁ ବର ବା କନ୍ୟା ଅପଣାର ଜନ୍ମ ଅପଣା ମାତାମହଙ୍କ ସଗୋତ୍ର, ତାକୁ ବିବାହ କରିବା ନିଷିଦ୍ଧ । ]

ସଗୋତ୍ର ବିବାହ—ସଂ. ବି ( ତତ୍ )—ସଗୋତ୍ର ବ୍ୟକ୍ତିଙ୍କୁ ବିବାହ
Sagotra bibāha କରିବା—Marriage with an agnate or kinsfolk. [ ଦ୍ର—ଏହା ହିନ୍ଦୁ ସ୍ମୃତି ଅନୁସାରେ ନିଷିଦ୍ଧ ଓ ନିନ୍ଦ୍ୟ । ]

ସଗୋତ୍ର ସପିଣ୍ଡ—ସଂ. ବି ( ସ୍ମୃତି )—ଯେଉଁ ସଗୋତ୍ରମାନଙ୍କ ସଙ୍ଗେ
Sagotra sapinda କୌଣସି ବ୍ୟକ୍ତିର ପିଣ୍ଡଦାନଦ୍ୱାରା ସମ୍ବନ୍ଧ ଅଛି—Persons of the same kin connected with a person by the offering of funeral cakes ( ଦ୍ର—ଜୀବିତ ବ୍ୟକ୍ତି ଆପଣାର ପିତାଙ୍କୁ, ପିତାମହଙ୍କ ଓ ପ୍ରପିତାମହଙ୍କୁ ପିଣ୍ଡଦାନ କରେ ଏବଂ ମୃତ ବ୍ୟକ୍ତି ଆପଣାର ପୁତ୍ର, ପୌତ୍ର ଓ ପ୍ରପୌତ୍ରଙ୍କଠାରୁ 'ପିଣ୍ଡ' ପାଏ । ଏପରି ସ୍ଥଳରେ ନିଜର ଉପରସ୍ଥ ୩ ପୁରୁଷ ଓ ତଳର ୩ ପୁରୁଷ ମୋର ସଗୋତ୍ର ସପିଣ୍ଡ ଅଟନ୍ତି ।
ଯେଉଁମାନେ ଆପଣା ଗୋତ୍ରର ନୁହନ୍ତି, ଅଥଚ ମୋଠାରୁ ପିଣ୍ଡ ପାଆନ୍ତି ଓ ମୋତେ ପିଣ୍ଡ ଦେବେ, ସେମାନେ ମୋର ଅସଗୋତ୍ର ସପିଣ୍ଡ ଅଟନ୍ତି । ଯଥା—ମାତାମହ, ପ୍ରମାତାମହ ଓ ବୃଦ୍ଧ ପ୍ରମାତାମହ ଏବଂ ଦୌହିତ୍ର, ଦୌହିତ୍ରପୁତ୍ର ଓ ଦୌହିତ୍ରପୌତ୍ର । ଆପଣା ଗୋତ୍ରର ଯେଉଁ ବ୍ୟକ୍ତିମାନଙ୍କ ସଙ୍ଗେ ମୋର ପିଣ୍ଡସମ୍ପର୍କ ନାହିଁ, ସେମାନେ ମୋର ଅସପିଣ୍ଡ ସଗୋତ୍ର ଅଟନ୍ତି । ଯଥା—ପ୍ରପିତାମହଙ୍କ ଊର୍ଦ୍ଧ୍ୱତନ ପୂର୍ବପୁରୁଷଗଣ ଓ ପ୍ରପୌତ୍ରର ଅଧସ୍ତନ ପୁରୁଷଗଣ ।]

ସଗୋତ୍ରା—ସଂ. ବିଣ ଓ ବି. ସ୍ତ୍ରୀ (ସଗୋତ୍ର+ସ୍ତ୍ରୀ. ଆ)—'ସଗୋତ୍ର'ର
Sagotrā ସ୍ତ୍ରୀଲିଙ୍ଗ—Feminine form of 'Sagotra'.

ସଗୋତ୍ରୀ—ଦେ. ବିଣ ଓ ବି (ସ. ସଗୋତ୍ର)—ସଗୋତ୍ର (ଦେଖ)
Sagotri Sagotra. (See)
সগোত্র(ত্রী) सगोत्री (ସଅଁ ଗୋତ୍ରୀ—ଅନ୍ୟରୂପ)

ସଗ୍ଧି—ସ. ବି--[ସ=ସହ+ଜଗ୍ଧି=ଅଦ ଧାତୁ=ଭୋଜନ କରିବା+
Sagdhi ଭାବ. ତି]—୧ । ସହ ଭୋଜନ; ଏକତ୍ର ଭୋଜନ—1. Dining together; taking meals together; act of eating together. ୨ । ଅନ୍ୟ ବ୍ୟକ୍ତି ସଙ୍ଗେ ଏକ ପଂକ୍ତିରେ ଭୋଜନ—2. Act of dining with others in the same row in caste feast.

ସଘନ—ସଂ. ବିଣ (ସ=ସହିତ+ଘନ=ନୃତ୍ୟ ବିଶେଷ; ବହୁବ୍ରୀହି)—
Saghana ନୃତ୍ୟଶୀଳ—Dancing. ଦେ. କ୍ରି. ବିଣ
সঘন, ঘনঘন (ପଦ୍ୟ) (ସ. ଘନର ଅଶୁଦ୍ଧ ପ୍ରୟୋଗ)—ଘନଘନ;
बारंबार ବାରମ୍ବାର—Repeatedly; over and over.
ঘন ଦେ. ବିଣ (ପଦ୍ୟ) (ସ. 'ଘନ'ର ଅଶୁଦ୍ଧ ପ୍ରୟୋଗ)—ଘନ—
घन Dense. (ଉ—ବନ ସଘନେ ସନ୍ଧେ ତହିଁ, ସେ ନିଜ ଶରୀର ସୁମରି । ଭୂପତି. ପ୍ରେମ ପଞ୍ଚାମୃତ ।)

ସଙ୍କଟ (ଇତ୍ୟାଦି)—ସଂ. ବିଣ—ସଙ୍କଟ ଇତ୍ୟାଦି (ଦେଖ)
Saṅkaṭa (etc) Saṁkaṭa etc. (See)

ସଙ୍କଟା—ସଂ. ବି. ସ୍ତ୍ରୀ—ସଂକଟା (ଦେଖ)
Saṅkaṭā Saṁkaṭā. (See)

ସଙ୍କଟା(ଟେ)ଇ (ଇତ୍ୟାଦି)—ଦେ. ବି. ସ୍ତ୍ରୀ—ସଂକଟା(ଟେ)ଇ ଇତ୍ୟାଦି
Saṅkaṭā(ṭe)ī (etc) (ଦେଖ)—Saṁkaṭā(ṭe)ī etc. (See).

ସଙ୍କଟାକ୍ଷ—ସଂ. ବି—ସଂକଟାକ୍ଷ (ଦେଖ)
Saṅkaṭāksha Saṁkaṭāksha. (See)

ସଙ୍କଥନ—ସଂ. ବି—ସଂକଥନ (ଦେଖ)
Saṅkathana Saṁkathana. (See)
(ସଂକଥା—ଅନ୍ୟରୂପ)

ସଙ୍କର—ସଂ. ବି—ସଂକର (ଦେଖ)
Saṅkara Saṁkara. (See)

ସଙ୍କରା (ଇତ୍ୟାଦି)—ଦେ. ବି- ସଂକରା ଇତ୍ୟାଦି (ଦେଖ)
Saṅkarā (etc) Saṁkarā etc. (See)

ସଙ୍କରାନୁଭୂତି --ସଂ. ବି—ସଂକରାନୁଭୂତି (ଦେଖ)
Saṅkarānubhūti Saṁkarānubhūti. (See)

ସଙ୍କରାନ୍ତି—ଗ୍ରା. ବି (ପଦ୍ୟ)—ସଂକରାନ୍ତି (ଦେଖ)
Saṅkarānti Saṁkarānti. (See)

ସଙ୍କରୀ—ସଂ. ବି. ସ୍ତ୍ରୀ—ସଂକରୀ (ଦେଖ)
Saṅkarī Saṁkarī. (See)

ସଙ୍କରୀକରଣ—ସଂ. ବି—ସଂକରୀକରଣ (ଦେଖ)
Saṅkarīkaraṇa Saṁkarīkaraṇa. (See)

ସଙ୍କରୁ—ଦେ. ବି—ସଂକରୁ (ଦେଖ)
Saṅkaru Saṁkaru. (See)

ସଙ୍କର୍ଷଣ—ସଂ. ବି—ସଂକର୍ଷଣ (ଦେଖ)
Saṅkarshaṇa Saṁkarshaṇa. (See)

ସଙ୍କଳ—ସଂ. ବି—ସଂକଳ (ଦେଖ)
Saṅkaḷa Saṁkaḷa. (See)

ସଙ୍କଳପ—ଗ୍ରା. (ପଦ୍ୟ) ବି—ସଂକଳପ (ଦେଖ)
Saṅkaḷapa Saṁkaḷapa. (See)

ସଙ୍କଳୟିତା—ସଂ. ବିଣ. ପୁଂ—ସଂକଳୟିତା (ଦେଖ)
Saṅkaḷayitā Saṁkaḷayitā (See)

ସଙ୍କଳିତ—ସଂ. ବିଣ—ସଂକଳିତ (ଦେଖ)
Saṅkaḷita Saṁkaḷita. (See)

ସଙ୍କଳ୍ପ (ଇତ୍ୟାଦି)—ସଂ. ବି—ସଂକଳ୍ପ ଇତ୍ୟାଦି (ଦେଖ)
Saṅkaḷpa (etc) Saṁkaḷpa etc (See)

ସଙ୍କଳ୍ପିତ (ଇତ୍ୟାଦି)—ସଂ. ବିଣ—ସଂକଳ୍ପିତ ଇତ୍ୟାଦି (ଦେଖ)
Saṅkaḷpita (etc) Saṁkaḷpita etc. (See)

ସଙ୍କସୁକ—ସ. ବିଣ—ସଂକସୁକ ( ଦେଖ )
Saṅkasuka Saṁkasuka ( See )

ସଙ୍କାର—ସ. ବି—ସଂକାର ( ଦେଖ )
Saṅkāra Saṁkāra ( See )

ସଙ୍କାରୀ—ସ. ବି. ସ୍ତ୍ରୀ—ସଂକାରୀ ( ଦେଖ )
Saṅkārī Saṁkārī ( See )

ସଙ୍କାଶ – ସଂ. ବଣ—ସଂକାଶ ( ଦେଖ )
Saṅkāsa Saṁkāsa ( See )

ସଙ୍କିଳ—ସଂ. ଣ—ସଂକିଳ ( ଦେଖ )
Saṅkiḷa Saṁkiḷa ( See )

ସଙ୍କୀର୍ଣ୍ଣ ( ଇତ୍ୟାଦି )—ସଂ. ବଣ—ସଂକୀର୍ଣ୍ଣ ଇତ୍ୟାଦି ( ଦେଖ )
Saṅkīrṇṇa ( etc ) Saṁkīrṇṇa etc ( See )

ସଙ୍କୀର୍ତ୍ତନ(ନା) (ଇତ୍ୟାଦି)—ସ. ବ—ସଂକୀର୍ତ୍ତନ(ନା) ଇତ୍ୟାଦି (ଦେଖ)
Saṅkīrttana(nā) ( etc ) Saṁkīrttana(nā) etc ( See )

ସଙ୍କୀର୍ତ୍ତିତ—ସଂ. ବଣ—ସଂକୀର୍ତ୍ତିତ (ଦେଖ)
Saṅkīrttita Saṁkīrttita. (See)

ସଙ୍କୁଚା(ଚେ)ଇବା—ଦେ. କ୍ରି—ସଂକୁଚା(ଚେ)ଇବା (ଦେଖ)
Saṅkuchā(che)ibā Saṁkuchā(che)ibā. (See)

ସଙ୍କୁଚିତ (ଇତ୍ୟାଦି)—ସ. ବଣ—ସଂକୁଚିତ ଇତ୍ୟାଦି (ଦେଖ)
Saṁkuchita (etc) Saṁkuchita etc. (See)

ସଙ୍କୁଚିବା—ଦେ. କ୍ରି—ସଂକୁଚିବା (ଦେଖ)
Saṅkuchibā Saṁkuchibā. (See)

ସଙ୍କୁଟନ—ସଂ. ବ—ସଂକୁଟନ (ଦେଖ)
Saṅkuṭana Saṁkuṭana. (See)

ସଙ୍କୁଡ଼ି(ଇତ୍ୟାଦି)—ଦେ. ବ ଓ ବଣ—ସଙ୍ଖୁଡ଼ି ଇତ୍ୟାଦି (ଦେଖ)
Saṅkurḍi(etc) Saṁkhurḍi. etc (See)

ସଙ୍କୁନ—ଦେ.ବ (ସଂ ଶକୁନ)-ସଂକେତ—To ken; sign. (ଉ—
Saṅkuna ଟିକିଏ ସଙ୍କୁନ ଦେଇ ସବୁ କଥା ଅମ୍ଭମାନଙ୍କଠାରୁ ଶୁଣିଯାଅ । ଫକୀରମୋହନ. ଛମାଣ ଆଠଗୁଣ ।)

ସଙ୍କୁରି—ଗ୍ରା. ବ ଓ ବଣ—ସଂକୁରି (ଦେଖ)
Saṅkuri Saṁkuri. (See)

ସଙ୍କୁଳ (ଇତ୍ୟାଦି)—ସଂ. ବଣ—ସଂକୁଳ ଇତ୍ୟାଦି (ଦେଖ)
Saṅkuḷa (etc) Saṁkuḷa etc (See)

ସଙ୍କୁଳନ—ସଂ. ବ—(ସମ୍ + କୁଳ୍ ଧାତୁ = ଏକତ୍ର କରିବା + ଭାବ. Saṅkuḷana ଅନ)—୧ । ଏକତ୍ରୀକରଣ—1. Gathering; heaping up. ୨ । ସଂଗ୍ରହ କରିବା; ଯୋଗାଡ଼ କରିବା—2. Act of getting up many things together.

ସଙ୍କୁଳା—ଦେ. ବ ଓ ବଣ—ସଙ୍ଖୁଳା (ଦେଖ)
Saṅkuḷā Saṁkhuḷā. (See)

ସଙ୍କୁଳାନ—ଦେ. ବ (ସଂ. ସମ୍ + କୁଳ. ଧାତୁ = ଏକତ୍ର କରିବା)—
Saṅkuḷāna ପର୍ଯ୍ୟାପ୍ତି—Sufficiency. ବଣ ୧ । ପର୍ଯ୍ୟାପ୍ତ—
सङ्कुलान 1. Sufficient. ୨ । ଯଥେଷ୍ଟ—2. Enough.
यथेष्ट [ଅକୁଳାନ—ବିପରୀତ]

ସଙ୍କୁଳାନ ହେବା—ଦେ. କ୍ରି—୧ । କୁଳାଇବା; ପର୍ଯ୍ୟାପ୍ତ ହେବା;
Saṅkuḷāna hebā କାର୍ଯ୍ୟକୁ ପାଇବା—1. To suffice.
सङ्कुलान हवना ୨ । ଯଥେଷ୍ଟ ହେବା—
यथेष्टहोना 2. To be enough.

ସଙ୍କୁଳିଆ(ୟା)—ଦେ. ବ—ସଂଖୁଳିଆ(ୟା) (ଦେଖ)
Saṅkuḷiā(yā) Saṁkhuḷiā(yā). (See)

ସଙ୍କୁଳିତ—ସଂ. ବଣ—ସଂକୁଳିତ (ଦେଖ)
Saṅkuḷita Saṁkuḷita. (See)

ସଙ୍କୁଳିବା—ଦେ. କ୍ରି—ସଙ୍ଖୁଳିବା (ଦେଖ)
Saṅkuḷibā Saṁkhuḷibā. (See)

ସଙ୍କେ(ଙ୍ଖେ)ଇବା—ପ୍ରାଦେ (ବାଲେଶ୍ୱର) କ୍ରି—ଧାନ କୁଟାଯିବା ସମୟରେ
Saṅke(ṅkhe)ibā କୁଟା ହେଉଥିବା ଧାନର ସବୁ ଅଂଶ ଉପରେ ସେଂକୁବ ଦେଓ୍ୱା ତିଳିକିର ପାହାର ସମାନ ଭାବରେ ପଡ଼ିବା ଲାଗି ମଝିରେ ମଝିରେ ହାତରେ ବା ଲମ୍ବା ଯଷ୍ଟି ସାହାଯ୍ୟରେ ଧାନକୁ ଓଲଟାଇ ଦେବା—To turn upside down the contents of the pit with the help of the palm or a rod while paddy is being husked.

ସଙ୍କେତ (ଇତ୍ୟାଦି)—ସଂ. ବ—ସଂକେତ ଇତ୍ୟାଦି (ଦେଖ)
Saṅketa (etc) Saṁketa etc. (See)

ସଙ୍କୋଚ (ଇତ୍ୟାଦି)—ସଙ୍କୋଚ ଇତ୍ୟାଦି (ଦେଖ)
Saṅkocha (etc) Saṁkocha etc. (See)

ସଙ୍କୋଚନ—ସଂ. ବ—ସଂକୋଚନ (ଦେଖ)
Saṅkochana Saṁkochana. (See)

ସଙ୍କୋଚନୀ—ସଂ. ବ—ସଂକୋଚନୀ (ଦେଖ)
Saṅkochanī Saṁkochanī. (See)

ସଙ୍କୋଚନୀୟ—ସଂ. ବଣ—ସଂକୋଚନୀୟ (ଦେଖ)
Saṅkochanīya Saṁkochanīya. (See)

ସଙ୍କୋଚା(ଚେ)ଇବା—ଦେ କ୍ରି—ସଙ୍କୋଚାଇବା ( ଦେଖ )
Saṅkochā(che)ibā Saṁkochāibā ( See )

ସଙ୍କୋଚିବା—ଦେ. କ୍ରି—ସଙ୍କୋଚିବା ( ଦେଖ )
Saṅkochibā Saṁkochibā ( See )

ସଙ୍କୋଚି ହେବା—ଦେ. କ୍ରି—ସଙ୍କୋଚ ହେବା ( ଦେଖ )
Saṅkochi hebā Saṁkochi hebā ( See )

ସଙ୍କୋଚୀ – ସ. ବଣ – ସଂକୋଚୀ ( ଦେଖ )
Saṅkochī Saṁkochī (See )

ସଙ୍କୋଚ୍ୟ (ଇତ୍ୟାଦି )—ସ ବଣ—ସଂକୋଚ୍ୟ ଇତ୍ୟାଦି ( ଦେଖ )
Saṅkochya (etc) Saṁkochya etc ( See )

ସଙ୍କ୍ରନ୍ଦନ—ସଂ. ବ—ସଂକ୍ରନ୍ଦନ ( ଦେଖ )
Saṅkrandana Saṁkrandana (See )

ସଙ୍କ୍ରମ (ଇତ୍ୟାଦି)—ସଂ. ବ—ସଂକ୍ରମ ଇତ୍ୟାଦି ( ଦେଖ )
Saṅkrama (etc) Saṁkrama etc ( See )

ସଙ୍କ୍ରମିତ—ସଂ. ବଣ—ସଂକ୍ରମିତ ( ଦେଖ )
Saṅkramita Saṁkramita ( See )

ସଙ୍କ୍ରମିବା—ଦେ. କ୍ରି— ସଂକ୍ରମିବା ( ଦେଖ )
Saṅkramibā Saṁkramibā ( See )

ସଙ୍କ୍ରା(କ୍ରି, କ୍ରୁ)—ଦେ. କ୍ରି—ସଂକ୍ରା ( ଦେଖ )
Saṅkrā(ṅkri, ṅkru) Saṁkrā ( See )

ସଙ୍କ୍ରା(କ୍ରେ)ଇବା—ଦେ. କ୍ରି—ସଂକ୍ରାଇବା ( ଦେଖ )
Saṅkrā(ṅkre)ibā Saṁkrāibā ( See )

ସଙ୍କ୍ରାନ୍ତ—ସଂ. ବଣ—ସଂକ୍ରାନ୍ତ ( ଦେଖ )
Sankrānta Samkrānta ( See )

ସଙ୍କ୍ରାନ୍ତି (ଇତ୍ୟାଦି)—ସଂ. ବ—ସଂକ୍ରାନ୍ତି ଇତ୍ୟାଦି ( ଦେଖ )
Sankrānti (etc) Samkrānti etc ( See )

ସଙ୍କ୍ରାମ—ସଂ. ବ – ସଂକ୍ରାମ ( ଦେଖ )
Sankrāma Samkrāma ( See )

ସଙ୍କ୍ରାମକ (ଇତ୍ୟାଦି) —ସଂ. ବଣ —ସଂକ୍ରାମକ ଇତ୍ୟାଦି ( ଦେଖ )
Sankrāmaka (etc) Samkrāmaka etc ( See )

ସଙ୍କ୍ରାମଣ—ସଂ. ବ—ସଂକ୍ରାମଣ ( ଦେଖ )
Sankrāmaṇa Samkrāmaṇa ( See )

ସଙ୍କ୍ରାମିକ—ଦେ. ବଣ – ସଂକ୍ରାମିକ ( ଦେଖ )
Sankrāmika Samkrāmika ( See )

ସଙ୍କ୍ରାମିତ—ସଂ. ବଣ – ସଂକ୍ରାମିତ ( ଦେଖ )
Sankrāmita Samkrāmita ( See )

ସଙ୍କ୍ରାମିତା(ତ୍ୱ) —ସଂ. ବ—ସଂକ୍ରାମିତା ( ଦେଖ )
Sankrāmita(twa) Samkrāmita ( See )

ସଙ୍କ୍ରି(କ୍ରୀ)ତନ—ଗ୍ରା. ବ (ଅଶୁଦ୍ଧ)—ସଂକ୍ରି(କ୍ରୀ)ତନ ( ଦେଖ )
Sankri(nkri)tana Samkri(kri)tana ( See )

ସଙ୍କ୍ଲେଦ—ସଂ. ବ—ସଂକ୍ଲେଦ ( ଦେଖ )
Sankḷeda Samkḷeda ( See )

ସଙ୍କ୍ଷୟ—ସଂ. ବ—ସଂକ୍ଷୟ ( ଦେଖ )
Sankshaya Samkshaya ( See )

ସଙ୍କ୍ଷିପ୍ତ (ଇତ୍ୟାଦି)—ସଂ. ବଣ—ସଂକ୍ଷିପ୍ତ ଇତ୍ୟାଦି ( ଦେଖ )
Sankshipta (etc) Samkshipta etc ( See )

ସଙ୍କ୍ଷୀୟମାଣ – ସଂ. ବଣ—ସଂକ୍ଷୀୟମାଣ ( ଦେଖ )
Sankshiyamāṇa Samkshiyamāṇa ( See )

ସଙ୍କ୍ଷୁବ୍ଧ—ସଂ. ବଣ—ସଂକ୍ଷୁବ୍ଧ ( ଦେଖ )
Sankshubdha Samkshubdha ( See )

ସଙ୍କ୍ଷେପ (ଇତ୍ୟାଦି)—ସଂ. ବ—ସଂକ୍ଷେପ ଇତ୍ୟାଦି ( ଦେଖ )
Sankshepa (etc) Samkshepa etc ( See )

ସଙ୍କ୍ଷେପକ—ସଂ. ବଣ—ସଂକ୍ଷେପକ ( ଦେଖ )
Sankshepaka Samkshepaka ( See)

ସଙ୍କ୍ଷେପଣ—ସଂ. ବ—ସଂକ୍ଷେପଣ ( ଦେଖ )
Sankshepaṇa Samkshepaṇa ( See )

ସଙ୍କ୍ଷେପିବା—ଦେ. କ୍ରି—ସଂକ୍ଷେପିବା ( ଦେଖ )
Sankshepibā Samkshepibā ( See )

ସଙ୍କ୍ଷୋଭ—ସଂ. ବ—ସଂକ୍ଷୋଭ ( ଦେଖ )
Sankshobha Samkshobha ( See )

ସଙ୍ଖ —ଦେ. ବ ( ସଂ. ସଂକ୍ରମ )—ପୋଲ; ସେତୁ—
Sankha সাঁকো पुल Bridge.

ସଙ୍ଖଡା—ଗ୍ରାଦେ. ବ ( କଟୁର ) —ଭୁକ୍ତାବଶିଷ୍ଟ ଦ୍ରବ୍ୟ; ସଙ୍ଖୁଡ଼ି—
Sankhardā 1. Food left after being par taken of by somebody. ବଣ—ସଙ୍ଖୁଡ଼ି ଖାଦ୍ୟ; ଉଚ୍ଛିଷ୍ଟ ଖାଦ୍ୟ—( articles of food ) Left on the plate after taking meal in it.

ସଙ୍ଖ ପୋଲ—ଦେ. ବ ( ସଂ. ସଂକ୍ରମଣ )—ପୋଲ —
Sankha pola সাঁকোপুল पुल Bridge.

ସଙ୍ଖଳନା—ଦେ. ବ—ସଙ୍ଖୋଳା; କୁଶଳ ପ୍ରଶ୍ନ—Accosting; personal enquiry as to how a person is doing.
Sankhaḷanā তত্ত্ব লওয়া [ ଉ—ମୋହ ପର କହୁଛ
कुशल प्रश्न ମୁନ ତାଙ୍କଠାରୁ, ଅସୁଅଛନ୍ତି ସଙ୍ଖଳନା କରିବାକୁ—
କୃଷ୍ଣସିଂହ. ମହାଭାରତ. ବନ । ]

ସଙ୍ଖଳା – ଦେ. ବ – ଶଙ୍ଖୁଳା ( ଦେଖ )—Sankhuḷā ( See )
Sankhaḷā [ ଉ—ତାଠାରେ ଏହା କହି କରିବା ସଙ୍ଖଳା—
তত্ত্ব कुशलप्रश्न କୃଷ୍ଣସିଂହ. ମହାଭାରତ. ସଭା । ]

ସଙ୍ଖା ( ଇତ୍ୟାଦି )—ଦେ. ବ—( ସଂ. ଶଙ୍ଖ; ପୂର୍ବେ ଏହା ଶଙ୍ଖରେ
Sankhā (etc) ତିଆରି ହେଉଥିବାରୁ ) - ଶଙ୍ଖା ଇତ୍ୟାଦି
( ଦେଖ )—Śankhā etc ( See )

ସଙ୍ଖା ମୁଠା—ଗ୍ରାଦେ. ( ଚିଲିକାଅଞ୍ଚଳ ) ବ—ଚିଲିକାରେ ମିଳିବା
Sankhā muṭhā ଏକପ୍ରକାର ଚିଙ୍ଗୁଡ଼ି—A kind of shrimp found in the Chilka lake.

ସଙ୍ଖାଳି(ଳୀ)—ଦେ ବ—୧ । ଧନ ରତ୍ନ—1. Riches and gems.
Sankhāḷi(ḷi) [ ଉ—ଘରେ ଯାହା ସଙ୍ଖାଳିମାନ ରଖିଥିଲେ—
অর্থ চিলেব নিধি କୃଷ୍ଣସିଂହ. ମହାଭାରତ. ବନ । ] ୨ । ଧନ-
लाल ରତ୍ନ ପରି ପ୍ରିୟ ବସ୍ତୁ—2. One's beloved or prized article. [ ଉ—କମିଷକରେ ଜ୍ୱାଳା, ଜନ୍ମାଏ କଣି ହାଲାହଳକୁ ଯେ ସଙ୍ଖାଳି ମହାକାଳେ—କବିସୂର୍ଯ୍ୟ. ଚମ୍ପୂ । ] ୩ । ଧନରତ୍ନ ପରି ମନୁଷ୍ୟର ପ୍ରିୟତମ ବ୍ୟକ୍ତି; ଜୀବନସର୍ବସ୍ୱ—3. One's dearest person. [ ଉ—ସଙ୍ଖାଳି ହରିଲ ପ୍ରାଣରଙ୍କ ହେବ—ରାଧାନାଥ । ] [ ଦ୍ର—ଆପଣାର ପ୍ରିୟତମ ବ୍ୟକ୍ତିକୁ ଧନରତ୍ନ ନାମରେ ସମ୍ବୋଧନ କରାଯାଏ । ଯଥା—ଧନ, ରତନ, ମାଣିକ, ମଣି । ଏହି ସ୍ଥଳରେ ମଧ୍ୟ ସଙ୍ଖାଳି ପ୍ରୟୋଗ କରାଯାଏ । ଯଥା—ନ ବହିର ଗୋପ-ସଙ୍ଖାଳି ଏ ପାପ ଗହନରେ କହି ଦିନ—କବିସୂର୍ଯ୍ୟ. ଜଶୋଧରଚନ୍ଦ୍ରାନନଚମ୍ପୂ, ଢ ଗୀତ । ଏଠାରେ 'ଗୋପ-ସଙ୍ଖାଳି'ର ଅର୍ଥ ଗୋପବାସୀଙ୍କର ଜୀବନସର୍ବସ୍ୱ ବା ପ୍ରିୟତମ
সম্বল रखा धन ବ୍ୟକ୍ତି ।] ୪ । ପାଣ୍ଠି; ସଞ୍ଚିତ ଧନ—4. A hoard.
পুঁজি ୫ । ବାଣିଜ୍ୟାଦିରେ ମୂଳ ଧନ; ମୂଳ ପଣ୍ଠି—5. The
पूँजी capital or stock in trade. ୬ । [ ମନୁଷ୍ୟ
ভরসা ସଞ୍ଚିତ ଧନଦ୍ୱାରା ଭବିଷ୍ୟତରେ ଆପଣାର ଜୀବନ ରକ୍ଷା
आसरा କରିବାକୁ ଆଶା କଲା ଭଳି, ମନୁଷ୍ୟ ( ପିତା ମାତା ) ଯାହା (ପୁତ୍ର) ଦ୍ୱାରା ଭବିଷ୍ୟତରେ ପୋଷିତ ହେବା ପାଇଁ ପୂର୍ଣ୍ଣ ଆଶା ରଖିଥାଏ; ] ଏକମାତ୍ର ଭରସାର ସ୍ଥାନ—6. One by whom a person hopes to be maintained in future; one in whom another's future hopes are centred. [ ଉ—ଧୋବା ମଉଳ, ସଙ୍ଖାଳି କରନ୍ତି ଭିଆଁ ହଳକ—ଭଗ । ]

ସଙ୍ଖୁଆ—ଦେ; ବି—ନଦୀ ବା ପୋଖରୀ ଆଦିରୁ ପାଣି ବୋହିଯିବା ପାଇଁ
Sankhua ନିର୍ମିତ ପୋଲ; କ୍ଷୁଦ୍ର ସେତୁ—Small bridge
শাঁকো with sluices underneath to drain
छोटा पुल water from a river or pond.

ସଙ୍ଖୁଡ଼ି ଦେ· ବି ( ସ. ସଙ୍କର, ସଙ୍କାର=ସମ୍ମାର୍ଜନୀକ୍ଷିପ୍ତ ଧୂଳି,
Sankhurdi ଅବର୍ଜନା; କିମ୍ବା ସମ୍+କୃ ଧାତୁ=ପାକ କରିବା,
সাঁকড়ি ସିଦ୍ଧ କରିବା ଅର୍ଥ ଯୁକ୍ତ 'ସସ୍କାର' ଶବ୍ଦଜାତ, କିମ୍ବା
सकरा; सकरि; सखरी ସ. ସଂସ୍କାର )—୧ । ଜଳପକ୍ୱ ଖାଦ୍ୟ
ଅସଙ୍ଖୁଡ଼ି, ନିସଙ୍ଖୁଡ଼ି, ଅମୃଣିଆ ବିପରୀତ ( ଭାତ, ଡାଲି, ତିଅଣ, ଜଳପକ୍ୱ ପିଠା ପ୍ରଭୃତି )—1. Any food boiled in water ( i. e. rice, curry etc ).
୨ । ଉଚ୍ଛିଷ୍ଟ ଖାଦ୍ୟ—2. Rice and curry which has already been partaken of and left on the dish. ବିଣ—୧ । ରନ୍ଧା ହୋଇଥିବା ( ଅନ୍ନ ବ୍ୟଞ୍ଜନାଦି )—1. Boiled ( rice, curry etc ). ୨ । ସଙ୍ଖୁଡ଼ି ରଖା ଯାଇଥିବା ( ବାସନ )—2. ( a pot ) In which rice etc, have been kept, after taking of the meal. [ ଦ୍ର—ସାଧାରଣତଃ ଜଳରେ ସିଦ୍ଧ ଖାଦ୍ୟକୁ ସଙ୍ଖୁଡ଼ି ଓ ଜଳରେ ସିଦ୍ଧ ନ ହୋଇ ଘୃତାଦିରେ ପକ୍ୱ ହୋଇଥିବା ଖାଦ୍ୟକୁ ନିସଙ୍ଖୁଡ଼ି ବୋଲଯାଏ । ଉଦାହରଣସ୍ୱରୂପ ଭାତ, ଡାଲି, ତିଅଣ, ମଣ୍ଡା, ଏଣ୍ଡୁରି, ଚକୁଳି, ଗୁଡ଼ଲକ୍ଷୀର ଆଦି ସଙ୍ଖୁଡ଼ି; ଏବଂ ମିଠେଇ, କାକରା, ଅରିସା, ଗହମ-କ୍ଷୀର, ଚୂଡ଼ା, ଭୁଜା, ଲିଆଗୁଡ଼ା, ଗହମ ତିଅରି ଘୃତପକ୍ୱ ପିଠା ପ୍ରଭୃତି ଜଳଶୀଅ ସାମଗ୍ରୀ ନିସଙ୍ଖୁଡ଼ି । ସଙ୍ଖୁଡ଼ି ଜିନିଷକୁ ଅନ୍ୟ ଲୋକ ବା ଶୂଦ୍ରାଦି ଛୁଇଁ ଦେଲେ ତାହା ମାରି ହୋଇଯାଏ; କିନ୍ତୁ ନିସଙ୍ଖୁଡ଼ି ପଦାର୍ଥରେ ସ୍ପର୍ଶ ଦୋଷ ଲଗେ ନାହିଁ । ଏ ସଙ୍ଖୁଡ଼ି ନିସଙ୍ଖୁଡ଼ିର କାରଣ ସମ୍ବନ୍ଧରେ କେତେଗୁଡ଼ିଏ ବିଚିତ୍ର ଦେଶାଚାର ମଧ୍ୟ ଚଳେ । ଯଥା—ଭଜା କିମ୍ବା ତରକାରୀ ଲୁଣ ପଡ଼ି ରନ୍ଧା ହୋଇଥିଲେ ତାହା ସଙ୍ଖୁଡ଼ି ( ସ. ସଂସ୍କାର ) ହୋଇଥାଏ, ଲୁଣ ନ ପଡ଼ିଲେ ତାହା ନିସଙ୍ଖୁଡ଼ି ଥାଏ । ଗୁଡ଼ଜଳର ଓ ଛେନାର ପିଠା ସଙ୍ଖୁଡ଼ିରେ ଗଣ୍ୟ ହୁଏ; କିନ୍ତୁ ଗହମ ଅଟାର ପିଠା ଓ ଲୁଚି ନିସଙ୍ଖୁଡ଼ି ଅଟେ । ସଙ୍ଖୁଡ଼ି ପଦାର୍ଥକୁ ଖାଇବା ପୂର୍ବରୁ ବ୍ରାହ୍ମଣ ଚଳୁ କରେ; କିନ୍ତୁ ନିସଙ୍ଖୁଡ଼ି ଖାଦ୍ୟ ପାଇଁ ଚଳୁର ଆବଶ୍ୟକତା ପଡ଼େ ନାହିଁ । ସଙ୍ଖୁଡ଼ି ହେଉ ବା ନିସଙ୍ଖୁଡ଼ି ହେଉ, କୌଣସି ଖାଦ୍ୟକୁ ଜଣେ ବ୍ୟକ୍ତି ପ୍ରଥମେ ଖାଇଲେ ଅବଶିଷ୍ଟ ଖାଦ୍ୟ ଅଇଁଠା ( ଉଚ୍ଛିଷ୍ଟ ) ହୁଏ । କିନ୍ତୁ ସଙ୍ଖୁଡ଼ି ପଦାର୍ଥ ଅଇଁଠା ହେବାର ନିୟମ ବଡ଼ କଡ଼ା । ନିସଙ୍ଖୁଡ଼ି ପଦାର୍ଥ ଅଇଁଠା ହେବା ସମ୍ବନ୍ଧରେ ସେତେ କଡ଼ା ନିୟମ ନାହିଁ । ]

ସଙ୍ଖୁଡ଼ି ଉଠା(ଠେ)ଇବା—ଦେ· କ୍ରି—ଭୂମିରେ ପଡ଼ିଥିବା ଅନ୍ନ ଆଦିର
Sankhurdi utha(the)iba କଣାକୁ ଓ ସଙ୍ଖୁଡ଼ି ବାସନ ଆଦିକୁ
সাঁকড়ি ওঠান ଭୂମିରୁ ଉଠାଇନେବା—To remove utensils
सखरी उठाना or clear the ground where food has been eaten.

ସଙ୍ଖୁଡ଼ି କରିବା—ଦେ. କ୍ରି—୧ । କୌଣସି ପାତ୍ରରେ ସଙ୍ଖୁଡ଼ି ଜିନିଷ
Sankhurdi kariba ( ଅନ୍ନ ପ୍ରଭୃତି ) ଲଗାଇବା—1. To
সঁকড়ি করা,সকড়ি করা touch any utensil with eaten
सखरी करना food etc. ୨ । ପାତ୍ରସ୍ଥ ଅନ୍ନାଦିରୁ ଅଂଶମାତ୍ର ଖାଇବା ଯୋଗୁଁ ଅନ୍ନାଦିକୁ ଅଇଁଠା ବା ଉଚ୍ଛିଷ୍ଟ କରିବା—2. To pollute rice etc by partaking of a part of it from the same pot.

ସଙ୍ଖୁଡ଼ି ଚିଜ ( ଜିନିଷ, ପଦାର୍ଥ, ଦରବ )—ଦେ. ବି—ଜଳପକ୍ୱ ଅନ୍ନ
Sankhurdi chija(jinisa, padartha, daraba) ବ୍ୟଞ୍ଜନ
সকড়ি জিনিষ ଓ ପିଷ୍ଟକାଦି—Rice, curry and cakes
सखरी चिज boiled in water.

ସଙ୍ଖୁଡ଼ି ଧୋଇବା—ଦେ. କ୍ରି—ସଙ୍ଖୁଡ଼ି ବାସନକୁ ଜଳଦ୍ୱାରା ସଫା
Sankhurdi dho-iba କରିବା—To wash utensils
সঁকড়ি ধুয়া soiled with particles of eaten
सखरी धोना rice etc.

ସଙ୍ଖୁଡ଼ି ପକା(କେ)ଇବା—ଦେ.କ୍ରି—୧। ଭୂମିରେ ସଙ୍ଖୁଡ଼ି ଚିଜ ବିଞ୍ଚିବା--
Sankhurdi paka(ke)iba 1.To strew particles
সাঁকড়ি ফেলা of partaken rice etc. on the ground
सखरी फेंकना ୨ । ସଙ୍ଖୁଡ଼ି ବାସନକୁ ନ ଉଠାଇ ସେହି ସ୍ଥାନରେ ଛାଡ଼ିଦେବା--2. To leave unwashed utensils at the place of meal.

ସଙ୍ଖୁଡ଼ି ପଡ଼ିବା ( ପଡ଼ି ରହିବା )—ଦେ. ବି—ସଙ୍ଖୁଡ଼ି ହୋଇଥିବା
Sankhurdi pardiba (pardi rahiba ) କୌଣସି ସ୍ଥାନ
সাঁকড়ি পড়া ବା ବାସନ ପରିଷ୍କୃତ ନ ହୋଇ ପୂର୍ବ ସ୍ଥାନରେ
सखरी रखाहुआ ରହିଥିବା—The utensils and place used in eating rice etc. being left unclean-sed or unswept.

ସଙ୍ଖୁଡ଼ି ପ୍ରସାଦ (ଭୋଗ)—ଦେ. ବି—ଅବଡ଼ା ବା ଅନ୍ନ ତିଅଣ ପ୍ରସାଦ;
Sankhurdi prasada (bhoga) ଦେବତାଙ୍କୁ ନିବେଦିତ ଅନ୍ନ
স কড়ি ভোগ ବ୍ୟଞ୍ଜନାଦି—Rice, curry etc. offered
सखरी प्रसाद to a Deity.
[ଦ୍ର—ଜଗନ୍ନାଥଙ୍କ ଅବଡ଼ା (ଅନ୍ନ ତିଅଣ)ରେ ସଙ୍ଖୁଡ଼ି ଦୋଷ ଲଗେ ନାହିଁ । ଅନ୍ୟ ଦେବତାଙ୍କ ଭୋଗ ସଙ୍ଖୁଡ଼ି ହୁଏ ।]

ସଙ୍ଖୁଡ଼ି ବରତନ(ବାସନ)—ଦେ. ବି—ଯେଉଁ ବାସନରେ ସଙ୍ଖୁଡ଼ି
Sankhurdi baratana(basana) ଜିନିଷ ଲଗିଥାଏ—
শঁকড়ি বাসন Utensils containing served rice etc,
सखरी बरतन (ଦ୍ର—ଏହିସବୁ ସଙ୍ଖୁଡ଼ିପଟର ହୁଏ ।)

ସଙ୍ଖୁଡ଼ି ଲଗା(ଗେ)ଇବା—ଦେ. କ୍ରି—ସଙ୍ଖୁଡ଼ି ହୋଇଥିବାର ସ୍ଥାନରେ
Sankhurdi laga(ge)iba ପାଣି ଓ ଗୋବର ଲଗାଇ ତାହା
সকড়ি লাগান ପରିଷ୍କାର କରିବା—To wash a place
सखरी साफ करना clean of the particles of rice etc. strewn there.

ସଙ୍ଖୁଡ଼ି ହେବା—ଦେ. କ୍ରି—ଅପେ ଅନ୍ନ ଆଦକୁ ଛୁଇଁବା—
Sańkhurdi hebā To touch rice etc.
सँकडि हुअवा [ଦ୍ର—ଭାତ ଆଦକୁ ଛୁଇଁଲେ ବା ହାଣ୍ଡିରୁ ବାଢ଼ିଲେ
सखरी होना ବା ଅନ୍ୟ ବ୍ୟକ୍ତିକୁ ପରିବେଷଣ କଲେ ଛୁଇଁବା ବ୍ୟକ୍ତିର ହାତ ସଙ୍ଖୁଡ଼ି ହୁଏ; କିନ୍ତୁ ସଙ୍ଖୁଡ଼ି ପଦାର୍ଥକୁ ଖାଇଲେ ଉକ୍ତ ପଦାର୍ଥ ଅଇଁଠା ବା ଉଚ୍ଛିଷ୍ଟ ହୁଏ ଏବଂ ଉକ୍ତ ମନୁଷ୍ୟର ହାତ ମଧ୍ୟ ଅଇଁଠା ହେଲା ବୋଲି କୁହାଯାଏ । କୌଣସି ବ୍ୟକ୍ତି ଭାତ ଖାଇ ବସି ଭଲ ନ ଖାଇଲେ କିମ୍ବା ସାମାନ୍ୟ ମାତ୍ର ଆହାର କଲେ ଲୋକେ କହୁଥାଆନ୍ତି—'ସେ ଖାଲି ସଙ୍ଖୁଡ଼ି ହେଲା ମାତ୍ର'—ଅର୍ଥାତ୍ ସେ ସଙ୍ଖୁଡ଼ି ହୋଇ ଉଠିଲା, ଅଇଁଠା ହେଲା ନାହିଁ ଅର୍ଥାତ୍ ଖାଇଲା ନାହିଁ ।]

ସଙ୍ଖୁରି—ଗ୍ରା. ବ ଓ ବଣ. ( ଗଡ଼ଜାତର ଉଚ୍ଚାରଣ ) (ସ. ସଙ୍କର, Sankhuri ସଙ୍କାର)—ସଙ୍ଖୁଡ଼ି ( ଦେଖ )—Sańkhurdi
सँकड़ी सखरी ( See ) [ଦ୍ର—ଏ ଶବ୍ଦ ପ୍ରାୟଶଃ ଗଡ଼ଜାତମାନଙ୍କ ଲୋକମାନଙ୍କ ଦ୍ୱାରା ବ୍ୟବହୃତ ହୁଏ, ଏବଂ 'ସଙ୍ଖୁଡ଼ି' ଶବ୍ଦର ଅଶୁଦ୍ଧ ଆକାର; କିନ୍ତୁ ଦେଖିବାକୁ ଗଲେ ଏହା 'ସଙ୍ଖୁଡ଼ି' ଅପେକ୍ଷା ମୂଳ ସଂସ୍କୃତ ଶବ୍ଦର ନିକଟତର ଅପଭ୍ରଂଶ । ବଙ୍ଗ ଦେଶରେ ଅର୍ଥାତ୍ ଉତ୍ତର ପଶ୍ଚିମ ଓ ଦକ୍ଷିଣ ବଙ୍ଗରେ 'ସକଡ଼ି' ଓ ଢାକା ଓ ପୂର୍ବ ବଙ୍ଗରେ 'ସକର' ପ୍ରୟୋଗ ହୁଏ; ହିନ୍ଦୀରେ ମଧ୍ୟ ସଖରୀ ବୋଲାଯାଏ ।]

ସଙ୍ଖୁ(ଙ୍ଖୋ)ଲା—ଦେ. ବ—ସଙ୍ଖୁଳା ( ଦେଖ )
Sankhu(ṅkho)lā Sańkhuḷā ( See )
[ଦ୍ର—ସଙ୍ଖୁଳା ଯିବା ସମୟରେ 'ଶଙ୍ଖ' ବାଜିବା ପ୍ରଥା ଏ ଦେଶର ପ୍ରାଚୀନ ରୀତି ଥିଲା । ତେଣୁ ଓଡ଼ିଆ ଭାଷାରେ 'ସଙ୍ଖୁଳା' ଶବ୍ଦ ସାଧାରଣତଃ 'ସ' ଲିଖିତ ହେଉଥିଲେହେଁ ଏହି କାରଣରୁ ଉକ୍ତ ଶବ୍ଦ ଓ ତତ୍ସମ୍ବନ୍ଧୀୟ ଅନ୍ୟାନ୍ୟ ଦେଶଜ ଶବ୍ଦ 'ଶ' ଅକ୍ଷରରେ ପ୍ରଚଳିତ ହୋଇଅଛି ।]

ସଙ୍ଖ୍ୟ—ସ. ବ ଓ ବଣ—ସଂଖ୍ୟ ( ଦେଖ )
Sańkhya Saṁkhya ( See )

ସଙ୍ଖ୍ୟକ—ସ. ବଣ—ସଙ୍ଖ୍ୟକ ( ଦେଖ )
Sańkhyaka Saṁkyaka ( See )

ସଙ୍ଖ୍ୟା (ଇତ୍ୟାଦ)—ସ. ବ—ସଙ୍ଖ୍ୟା ଇତ୍ୟାଦ ( ଦେଖ )
Sańkhyā (etc) Saṁkhyā etc. ( See )

ସଙ୍ଖ୍ୟାତ—ସ. ବଣ—ସଙ୍ଖ୍ୟାତ ( ଦେଖ )
Sańkhyāta Saṁkhyāta ( See )

ସଙ୍ଖ୍ୟାନ—ସ. ବ—ସଙ୍ଖ୍ୟାନ ( ଦେଖ )
Sankhyāna Saṁkhyāna ( See )

ସଙ୍ଖ୍ୟାପନ—ସ. ବ—ସଂଖ୍ୟାପନ ( ଦେଖ )
Sańkhyāpana Saṁkhyāpana ( See )

ସଙ୍ଖ୍ୟେୟ—ସଂ. ବଣ—ସଂଖ୍ୟେୟ ( ଦେଖ )
Sańkhyeya Saṁkhyeya ( See )

ସଙ୍ଗ୍‌ତି—ପ୍ରାଦେ. (ସମ୍ବଲପୁର)ବ—ସାଥି; ସାହଚର୍ଯ୍ୟ—Companion-
Sańg-ti ship. [ଭ—ଭୁସଙ୍ଗତର ସଙ୍ଗ ହେଲେ ଲୁହାର ଘଣ୍ଟି ବାଜେ; ସୁସଙ୍ଗତର ସଙ୍ଗ ହେଲେ ସୁନାର ଘଣ୍ଟି ବାଜେ—ଢଗ ।]

ସଙ୍ଗ—ସଂ. ବ ( ସନ୍ଜ୍ ଧାତୁ=ଆସକ୍ତ ହେବା+ଭାବ. ଅ )—
Sańga ୧ । ସଂସ୍ରବ; ସଂସର୍ଗ—1. Association; society. ୨ । ସହବାସ—2. Living together; intercourse. ୩ । ମିଳନ—3. Meeting together; union. ୪ । ସଂଯୋଗ—4. Connection. ୫ । ଆସକ୍ତି; ଅନୁରାଗ—5. Attachment; love; affection; devotion. ୬ । ବିଷୟାନୁରାଗ—6. Attachment for worldly affairs. ୭ । ସଂପର୍କ; ସଂବନ୍ଧ—7. Relationship. ୮ । ସାହଚର୍ଯ୍ୟ; ସହଯୋଗ—8. Co-operation. ୯ । ସଙ୍ଗମ; ମୈଥୁନ—9. Cohabitation; sexual intercourse. ୧୦ । ଦୁଇ ନଦୀ କିମ୍ବା ନଦୀ ଓ ସମୁଦ୍ରର ମିଳନ ସ୍ଥାନ—10. Junction of two rivers or junction of a river with the sea. ୧୧ । ମିତ୍ରତା; ବନ୍ଧୁତା—11. Friendship ୧୨। ପ୍ରତିବନ୍ଧ—12. Obstruction. ଦେ. ବ. (ସଂ. ସଙ୍ଗୀ)—
संगी ୧ । ସଙ୍ଗୀ; ସାଙ୍ଗ; ସହଚର—1. Companion; an
সঙ্গী associate. [ଭ—ଗୁରୁବେଶାର ମୁହିଁ ଅନ୍ତରଙ୍ଗ, ଚଉପଦୀ ଗୀତ ରଚନା ସଙ୍ଗ । କବିସୂର୍ଯ୍ୟ. କବିତା ।] ୨ । ସାହଚର୍ଯ୍ୟ—2 Companionship; company. [ଭ—ଏବେ ତୁମ୍ଭ ସଙ୍ଗ ପାଇଲି ମୁକୁନ୍ଦର । କୃଷ୍ଣସିଂହ. ମହାଭାରତ. ବନ ।] ୩ । ରାଜପୁତ ବୀରବର ରାଣା ସଙ୍ଗ୍ରାମସିଂହ—3. Rāṇā Saṁgrāma Siṁha, the
संग Rajput warrior. [ଦ୍ର—ଏହି ବୀର ପୁରୁଷ ମୋଗଲ
সঙ্গ ସମ୍ରାଟ୍ ବାବରଙ୍କ ସହିତ ଯୁଦ୍ଧ କରିଥିଲେ ।] ଦେ. ବଣ—
आसक्त ଆସକ୍ତ—Devoted; attached. [ଭ—ସେ କର୍ମ
আসক্ত ଫଳେ ନୋହୁ ସଙ୍ଗ, ଦର୍ପଣେ ଯେସନ୍ତେ ଛାୟା ଅଙ୍ଗ । ଜଗନ୍ନାଥ. ଭାଗବତ ।]

ସଙ୍ଗ କରିବା—ଦେ. କ୍ରି—ସଙ୍ଗମ କରିବା; ସହବାସ କରିବା—
Sańga karibā To cohabit; to have sexual
संगम करना, संग करना intercourse. [ଭ—ରକ୍ଷିଷ୍ଣୁ ସଙ୍ଗେ
সংগম করা ସଙ୍ଗ କରି, ଗର୍ଭ ହୋଇଲା ତାର ନାରୀ । ଜଗନ୍ନାଥ. ଭାଗବତ ।]

ସଙ୍ଗ ଚ୍ୟୁତ—ସଂ. ବଣ. ( ୫ମୀ ତତ୍ )—ସଙ୍ଗ ଛଡ଼ା ( ଦେଖ )
Sańga chyuta Sańga chardā ( See )
(ସଙ୍ଗଚ୍ୟୁତି—ଅନ୍ୟରୂପ) (ସଙ୍ଗଚ୍ୟୁତ—ବ)(ସଙ୍ଗ ଚ୍ୟୁତା—ସ୍ତ୍ରୀ.ବଣ)

ସଙ୍ଗ ଛଡ଼ା—ଦେ. ବଣ—୧ । ସଂସ୍ରବ ଶୂନ୍ୟ—1. Devoid of
Sańga chhardā association or company; dis-
সঙ্গছাড়া sociated from society. ୨ । ଯେଉଁ ବ୍ୟକ୍ତି
संग रहित ସହଚରମାନଙ୍କଠାରୁ ପୃଥକ୍ ହୋଇ ପଡ଼ିଥାଏ; ସଙ୍ଗ-

ଭ୍ରଷ୍ଟ—2. One who has been separated from his companions. ୩ । ସେ ଦଳ ଛଡ଼ା ହୋଇ ପଡ଼ିଥାଏ—3. Straggling. ୪ । ଯାହାକୁ ସଙ୍ଗୀମାନେ ଏକଘରକିଆ କରିଥାନ୍ତି—4. Ostracised; excommunicated.

ସଙ୍ଗ ଛାଡ଼ିବା—ଦେ. କି—କୌଣସି ବ୍ୟକ୍ତିର ସାହଚର୍ଯ୍ୟ ତ୍ୟାଗ କରିବା—Sanga chhardiba To give up the company of a person.
সঙ্গছাড়া सँगछोड़ना

ସଙ୍ଗ(ଙ୍ଘ)ଡ଼—ଦେ. ବଣ (ସଂ. ସଂଘଟ୍ଟିତ=ଘୋଟା ହୋଇଥିବା; Sanga(ngha)rda ମିଶ୍ରିତ)—୧ । ଭଲ ଭଲ ସିଝିବା ସୁସିଦ୍ଧ ମିଲାହୁଆ ସୁସିଦ୍ଧ ହୋଇ ଏକଠି ମିଶି ଯାଇଥିବା (ବ୍ୟଞ୍ଜନ)—1. (Curry) In which the component vegetables or materials have been well boiled and become mixed up with one another. ୨ । (ସଂ—সুবিধাজনক, মনের মতন ସଂଯତ) ସୁବିଧାଜନକ—সুবিধাবালা 2. Convenient; congenial. ୩ । গুছান संभालाहुआ ଠିକଣା; ସୁବିନ୍ୟସ୍ତ—3. Well arranged; well set. ୪ । संयत [ଅସଙ୍ଗଡ଼(ଘାଡ଼ି)—ବିପରୀତ] ସଂଯତ—4. Restrained.

ସଙ୍ଗ(ଙ୍ଗା,ଙ୍ଘା)ଡ଼ିବା—ଗ୍ରାଦେ. କି. (ଜାହାଜଅ ଭୁଷା) ବାନ୍ଧିବା—Sanga(nga,ngha)rdiba To tie together.
বাঁধা बाँधना [ଭ୍ର—ଜାଲିଜିମାନେ ଗୁରଗଣ୍ଡ ପାଗଡ଼ [ସଙ୍ଗଡ ପକା(କେ)ଇବା—ଅନ୍ୟରୂପ] ଥିମିଛ ଘୋଘାଡ଼ୁ ଦେଇଅଛନ୍ତି, ଭୁଇକମାନେ ଦୁଇ ଜାହାଜକୁ ସଙ୍ଗଡ଼ ପକାଇଲେ । —ଫକୀରମୋହନ. ଗଳ୍ପସ୍ବଳ୍ପ ]

ସଙ୍ଗଣିକା—ସଂ. ବଣ—ସଂଗଣିକା (ଦେଖ)—Sanganika Samganika (See)

ସଙ୍ଗତ(ଇତ୍ୟାଦି)—ସଂ. ବଣ—ସଂଗତ ଇତ୍ୟାଦି (ଦେଖ)—Sangata (etc) Samgata etc (See)

ସଙ୍ଗତି(ଇତ୍ୟାଦି)—ସଂ. ବ ସଂଗତି ଇତ୍ୟାଦି (ଦେଖ)—Sangati (etc) Samgati etc (See)

ସଙ୍ଗତେ—ଦେ. (ପଦ୍ୟ)ବି.ବଣ—ସଙ୍ଗେ (ଦେଖ)—Sangate Sange (See)
সঙ্গে संगमे [ଭ୍ର—ବାପାଙ୍କ ସଙ୍ଗତେ ତ ଅସିଥିଲ ସେହୁ । କୃଷ୍ଣସିଂହ. ମହାଭାରତ. ବନ.
মত ঐসা । ଦେ. ଅ—ପରି; ସଦୃଶ—Like. [ଭ୍ର—ବୋଲନ୍ତି ସେ ଜଗତେ ଷଡ଼ିପୁ ଏ ସଙ୍ଗତେ ଗତେ ନ ଥିଲ ହୋଇ ଧନ୍ୟ ସେ ।
—ଉଞ୍ଜ. ବୈଦେହୀଶବିଳାସ ]

ସଙ୍ଗ ଦୋଷ—ସଂ. ବ—୧ । ମନ୍ଦବ୍ୟକ୍ତି ସଙ୍ଗେ ସଂସର୍ଗ—1. Association with bad people. ୨ । ସଂସର୍ଗ ଦୋଷ—2. Defective or sinful association. ୩ । ଅସତ୍ ସଙ୍ଗ—3. Keeping bad company. ୩ । ଅସତ୍ ସଙ୍ଗଜନିତ ମନ୍ଦ ଫଳ—4. Evils due to evil association. ୪ । ଅପବିତ୍ର ବା ଅଶୁଦ୍ଧ ବସ୍ତୁର ବା ବ୍ୟକ୍ତିର ସହବାସ ଜନିତ ଦୋଷ; ସଂସ୍ପର୍ଶ ଦୋଷ—5. Fault due to contact with bad things or persons. ୬ । ସାଂସାରିକ ଅସକ୍ତି ଜନିତ ଦୋଷ—6. Evils due to association with worldly concerns.

ସଙ୍ଗବ—ସଂ. ବ—(ସମ୍+ଗୋ+ଅ; ଯେଉଁ ସମୟରେ ଗୋ ଦୋହନ Sangaba ସଙ୍ଗତ ହୁଏ)—ପ୍ରାତଃକାଳୀନ ପ୍ରଥମ ତିନି ମୁହୂର୍ତ୍ତ—The first three moments of the morning. [ଦ୍ର—ସନ୍ଧ୍ୟା ପୂର୍ବର ତିନି ମୁହୂର୍ତ୍ତକୁ ସାୟାହ୍ନ ବେଳା ବୋଲାଯାଏ ।]

ସଙ୍ଗ ଭଙ୍ଗ—ସଂ. ବ.—୧ । ସଙ୍ଗୀ ବା ସଙ୍ଗୀଗଣ ବିଚ୍ଛେଦ—1. Sanga bhanga Separation of a person from company. ୨ । ମେଳନର ଭଙ୍ଗ—2. Breaking up of any association.

ସଙ୍ଗମ—ସଂ. ବ (ସମ୍+ଗମ ଧାତୁ+ଭାବ. ଅ)—୧। ଏକାଧିକ ନଦୀର Sangama ବା ନଦୀର ଓ ସମୁଦ୍ରର ମିଳନ ସ୍ଥାନ(ଯଥା—ଗଙ୍ଗା ଯମୁନା ସଙ୍ଗମ)—1. The junction of rivers or of a river with the sea; the mouth of a river. ୨ । ରତି; ମୈଥୁନ—2. Copulation; cohabitation; coition; sexual union. ୩ । ସାହଚର୍ଯ୍ୟ—3. Association. ୪ । ସ୍ତ୍ରୀ ପୁରୁଷଙ୍କର ମିଥୁନୀଭାବ—4. Conjunction of a male with a female; meeting of lovers. [ଦ୍ର—ଶାସ୍ତ୍ରମତରେ ସଙ୍ଗମ ତିନିବିଧ—(୧) ପୁରୁଷର ସ୍ତ୍ରୀ ସଙ୍ଗେ କଟାକ୍ଷ, ଭୂଷଣ, ଓ ହାସ୍ୟ, (୨) ଗନ୍ଧ, ମାଲ୍ୟ, ଧୂପ, ଭୂଷଣ ଓ ବସ୍ତ୍ରାଦି ପ୍ରେରଣ ଏବଂ ଅନ୍ନପାନାଦି ଦ୍ୱାରା ପ୍ରଲୋଭନ (୩) ନିର୍ଜ୍ଜନରେ ଉଭୟଙ୍କର ପରସ୍ପର ସମାଶ୍ଳେଷ ଓ କେଶାକେଶି ଗ୍ରହ । ] ୫ । ସମ୍ଭୋଗ—5. Enjoyment.

ସଙ୍ଗମ ଋତୁ—ସଂ. ବ—ଯେଉଁ ଋତୁରେ ଜୀବମାନେ ମୈଥୁନ କରନ୍ତି—Sangama rutu Paring season.

ସଙ୍ଗମ କରିବା—ଦେ. ବ—ସମ୍ଭୋଗ କରିବା—To copulate.
Sangama kariba সংগম করা संगम करना

ସଙ୍ଗମକାରୀ—ସଂ. ବଣ. ପୁଂ—ଯେ ମୈଥୁନ କରେ; ମୈଥୁନକାରୀ—Sangamakari Copulating.
( ସଙ୍ଗମକାରିଣୀ—ସ୍ତ୍ରୀ )

ସଙ୍ଗମ କାଳ—ସଂ. ବ—ମୈଥୁନର ସମୟ—Sangama kala Time of copulation.

ସଙ୍ଗମ ରହିତ—ସଂ. ବଣ (ଅନ୍ୟ ତତ୍)—୧ । ସଙ୍ଗରହିତ ( ଦେଖ )—Sangama rahita 1. Sangarahita (See). ୨ । ମୈଥୁନ ଶୂନ—2. Having no sexual union.

ସଙ୍ଗମ ଲିପ୍‌ସା—ସଂ. ବି. (୭ମୀ ତତ୍) —ସହବାସ କାମନା—
Sangama lipsā A desire to copulate.

ସଙ୍ଗ ମେଳ—ଦେ. ବି—ବହୁ ବ୍ୟକ୍ତିଙ୍କର ସଙ୍ଗ ବା ମେଳ—
Sanga mela Company of many persons.
পাঁচ জনের সঙ্গ संग मेल

ସଙ୍ଗର—ସଂ. ବି. (ସମ୍+ଗୃ ଧାତୁ=ଯୁଦ୍ଧ କରିବା ଇତ୍ୟାଦି+ଅଧି.
Sangara ଅ) —୧ । ଯୁଦ୍ଧ—1. Fight; contest; war.
(ସଙ୍ଗୀର୍ଣ୍ଣ—ବିଣ) [ଭ—ବୃଷ୍ଟି ଗଦା ମୁଦ୍ଗର, ଭଲ୍ଲ ଶୂଳ ସଙ୍ଗର, ନଗ ନଗର ଘାତ ସେ । ଭଞ୍ଜ· ବୈଦେହୀଶବିଳାସ ।] ୨ । ଅବାସ—2. Residence. ୩ । ବିପଦ; ଆପଦ—3. Calamity· misfortune. ୪ । ସଂପଦ—4 Prosperity; good fortune. ୫ । (+କର୍ମି, ଅ) ଅଙ୍ଗୀକାର; ପ୍ରତିଜ୍ଞା—5· Promise; solemn declaration. ୬ । ଜ୍ଞାନ—6. Knowledge. ୭ । ବିଷ—7. Poison. ୮ । କ୍ରୟ ବିକ୍ରୟ ନିର୍ଦ୍ଧାରଣ—8. Completion of a sale transaction. ୯ । ପ୍ରଶ୍ନ—9. Question. ୧୦ । ନିୟମ—10. Rule. ୧୧ । (···+ଭାବ. ଅ) କର୍ମକରଣ—11. Performance; doing. ୧୨ । ଯୁଦ୍ଧ କରିବା-12. Fighting. ୧୩ । (ବୈଦ୍ୟକ) ଶମୀ ବୃକ୍ଷ—13. Acacia Suma tree. ୧୪ । ଶମୀ ବୃକ୍ଷର ଫଳ—14. Fruits of the Acacia Suma tree

সঙ্গে সাথ ଦେ.କ୍ରି.ବିଣ. (ପଦ୍ୟ)—ସଙ୍ଗରେ—In the company.

ସଙ୍ଗ ରହିତ—ସଂ. ବିଣ. ପୁଂ (୩ୟା ତତ୍)—୧ । ସାଂସାରିକ ସଂପର୍କ-
Sanga rahita ଶୂନ୍ୟ—1. Free from worldly concern. ୨ । ଏକାକୀ—2. Lonely; solitary. ୩ । ଆସକ୍ତିରହିତ—3. Free from any attachment.
ସଙ୍ଗଶୂନ୍ୟ, ସଙ୍ଗ ହୀନ, ସଙ୍ଗ ବିରହିତ } ଅନ୍ୟରୂପ

ସଙ୍ଗରେ—ଦେ. କ୍ରି. ବିଣ—ସଙ୍ଗେ (ଦେଖ)
Sangare Sange (See)

ସଙ୍ଗ(ଙ୍ଗୀ) ସାଥୀ—ଦେ.ବି. (ଏକାର୍ଥ ସହଚର)—ସଙ୍ଗୀ ଓ ସହଚର—
Sanga(ngi) sāthi Companions.
সংগ(গী)সাথি संगी साथी

ସଙ୍ଗ ସୋହ(ହୋ)ବତ୍(ତ)—ଦେ. ବି—୧ । ସଙ୍ଗୀମାନଙ୍କ ଅନୁରୋଧ—
Sanga soha(ho)bat(ta) 1, Request of one's companions. ୨ । ସଙ୍ଗୀମାନଙ୍କ ସଙ୍ଗ—2. Company of friends. [ଭ—ଲୋକେ ସଙ୍ଗ ସୋହବତରେ ପଡ଼ି ମଦପିଅା ଅଭ୍ୟାସ କରନ୍ତି ।] ୩ । ସଙ୍ଗୀମାନଙ୍କ ମୁଁ ହଲଜ୍ଜା—3. Sensibility for not wounding the feelings of one's friends.
সঙ্গীদের কথা संग सोहबत

ସଙ୍ଗା(ଘା)—ଦେ. ବି. (ସଜ୍ଜ୍ ଧାତୁ=ସଂଲଗ୍ନ ହେବା)—୧ । ଘୃଳ
Sangā(nghā) ଉଳେ ଓ ଚାଳ ଉପରେ ବାଉଁଶ ପଟାଳି ପକାଇ ରଖିବା ନିମନ୍ତେ କରାଯିବା ଭିତ୍ତି—1. A scaffolding made of bamboos inside the triangular thatch. [ଭ—ବରଷାରେ କାଳ ଲାଗି ହେଲୁଁ ହରବର, ସଙ୍ଗାରେ ଥିଲା ସେ ତାକୁ ଦେଖିଲି ମାଇଟ, ସବୁପାକ ଜାଳନ୍ତୁ ଲାଗ ଦେଲ ଭୁତ । ଘକାସା. କଟକବାଜସ୍ତ ।] ୨ । (ସଂ. ସଙ୍ଗମ) ସଙ୍ଗିବା; ପଶୁମାନଙ୍କର ମୈଥୁନ—2. Copulation of beasts (i.e. a bull—copulating with a cow) ପ୍ରାଦେ. (ସିଂହଭୂମ) ବି—୧ । ଘରର ଉପ—1. The cross-beam of a thatched house. ୨ । (ଭୂଲ, ହୂ. ସଗାଇ)—(ବାଲେଶ୍ବର, ଧଳଭୂମ, ମେଦିନୀପୁର) ବି—ଶୂଦ୍ରମାନଙ୍କ 'ଚୁଡ଼ାଗୁଣ' ବିବାହ ପ୍ରଥା—2. Widow marriage amongst the Śūdras. ଦେ. ବିଣ. ପୁଂ—୧ । ଶକଟ ବହନକାରୀ—1. A bullock which draws carts. ୨ । (ପୁଂ ଓ ସ୍ତ୍ରୀ) ଯେଉଁ ପଶୁ ମୈଥୁନ କରି ଅଛି; କୃତସଙ୍ଗମ—2 (a beast) Which has already copul ted.
মাচান, সাঙা मचान
জোড় লাগা, পাল पशु संगम
(ଅସଙ୍ଗା—ବିପରୀତ)

ସଙ୍ଗାଇ ଦେବା—ପ୍ରାଦେ. (ପାଟଣା) କ୍ରି—ଥୋଇ ଦେବା—
Sangāi debā To place; to put.

ସଙ୍ଗାଇବା—ପ୍ରାଦେ. (ପାଟଣା) କ୍ରି (ସ. ସଂଗ୍ରହ)—ରଖିବା—
sangāibā To keep.

ସଙ୍ଗା(ଙ୍ଗେ, ଙ୍ଗୋ)ଇବା—ଦେ. କ୍ରି—ସଙ୍ଘାଇବା (ଦେଖ)
Sangā(nge, ngo)ibā Sanghāibā (See)

ସଙ୍ଗା ଗାଈ—ଦେ. ବି—ଯେଉଁ ଗାଈ ବୃଷ-ସଂଗମ ପାଇଅଛି—
Sangā gāi A cow which has been co-habited or crossed by a bull.
পালধবান গাঈ ब्याही हुई गाय

ସଙ୍ଗାଡ଼ି—ଦେ· ବି—ସଙ୍ଘାଡ଼ି (ଦେଖ)
Sangārdi Sanghārdi (See)

ସଙ୍ଗାଡ଼ିବା—ଦେ. ବି—ସଙ୍ଘାଡ଼ିବା (ଦେଖ)
Sangārdibā Sanghārdibā (See)

ସଙ୍ଗାତ—ଦେ. ବି ପୁଂ ଓ ସ୍ତ୍ରୀ. (ସଂ. ସଙ୍ଗ=ସାହଚର୍ଯ୍ୟ; ସଙ୍ଗତ=
Sangāta ମିତ୍ରତା; ସଂଘାତ=ମିଳନ; ଜମ୍ଭା ସମଗାଳ=ଯେ ଦୁହେଁ ପରସ୍ପରର ଗାନ୍ଦକୁ ଅସହର ବୋଲି ବସୁରନ୍ତି ନାହିଁ)—୧ । ପରସ୍ପରର ସଙ୍ଗେ ଘନିଷ୍ଠ ବନ୍ଧୁତା ଦ୍ୱାରା ଧର୍ମତଃ ଆବଦ୍ଧ ବ୍ୟକ୍ତି—1. A person connected with another; a close friend-by the establishment of a solemn friend ship; a sort of god-relationship or relationship of warm friends; god-brother. ୨ । ଘନିଷ୍ଠ ବନ୍ଧୁ; ମିତ୍ର; ସୁହୃଦ୍—2. A very close and intimate friend. [ଦ୍ର—ଲକ୍ଷିତ୍ବ, ରକ୍ତସଂପର୍କ ବା ବିବାହ ସୂତ୍ରରେ ସଂବନ୍ଧଯୁକ୍ତ ହୋଇ ନ ଥିବା ବ୍ୟକ୍ତିମାନେ ଧର୍ମକୁ ଇଷ୍ଟ ଦେବତାଙ୍କ
সাাঁসেঙাত मित्र
(ସଙ୍ଗାତୁଣୀ—ସ୍ତ୍ରୀ)

ବା ମହାପ୍ରସାଦକୁ କିମ୍ବା ତୁଳସୀ ଆଦି ପବିତ୍ର ବସ୍ତୁକୁ ସାକ୍ଷୀ ରଖି ପରସ୍ପର ମଧ୍ୟରେ ନାନାପ୍ରକାର ମିତ୍ରତା ସ୍ଥାପନ କରନ୍ତି । ତହିଁମଧ୍ୟରୁ 'ସଙ୍ଗାତ' ମିତ୍ରତା ଏକତମ । ଯେଉଁ ଦୁଇ ଜଣଙ୍କର ନାମ ଏକ, ସେମାନେ ପରସ୍ପର ସଙ୍ଗେ 'ମିତ' ବସନ୍ତି । ଏହାଛଡ଼ା ସଖୀ, ସଙ୍ଗାତ ଆଦି ମଧ୍ୟ ବସନ୍ତି । ଆମ ଦେଶରେ 'ସଙ୍ଗାତ' ବସିବାଟା ଅନ୍ୟାନ୍ୟ ମିତ୍ରତା ସ୍ଥାପନ ଅପେକ୍ଷା ବେଶି ।

ସାଧାରଣତଃ ବାଲ୍ୟକାଳରେ ଦୁଇ ଜଣଙ୍କ ମଧ୍ୟରେ (ଦୁଇ ଜଣ ବାଳକଙ୍କ ମଧ୍ୟରେ କିମ୍ବା ଦୁଇ ଜଣ ବାଳିକାଙ୍କ ମଧ୍ୟରେ) 'ସଙ୍ଗାତ' ମିତ୍ରତାର ସୂତ୍ରପାତ କରାଯାଏ ।

ପୂର୍ଣ୍ଣି ବଉଳ ଅମାବାସ୍ୟାଦିନ ବଉଳ, ଅଶୋକାଷ୍ଟମୀ ଦିନ ଓଁଶକା କଢ଼ି, କୁମାରପୂର୍ଣ୍ଣିମା ଦିନ ଚନ୍ଦ୍ରନୈବେଦ୍ୟ ଗୁଡ଼, ଗଙ୍ଗାଜଳ, ଗୋଦାବରୀଜଳ, ତୁଳସୀ, ପଦ୍ମଲ ଭୋଗ ପ୍ରସାଦ, ଅଭଡ଼ା, ସରପୁଳି, ମହାପ୍ରସାଦ ପରସ୍ପର ଛୁଅଁଖୋଇ ହୋଇ ଦୁଇ ବ୍ୟକ୍ତି ଯଥାକ୍ରମେ ବଉଳ, ଓଁଶକା, ଗୁଡ଼, ଗଙ୍ଗାଜଳ, ଗୋଦାବରୀ, ତୁଳସୀ, ପଦ୍ମଲଭୋଗ, ଅଭଡ଼ା, ସରପୁଳି, ମହାପ୍ରସାଦ ବସନ୍ତି ।

ଆଜି କାଲି ଲୋକେ ମହୁଲ, ଗୁଳଚୁଡ଼ି, ଫୁଲ, ଗୋଲାପ ଆଦି ମଧ୍ୟ ବଦଳାଇ ହୋଇ ସେହି ନାମରେ ପରସ୍ପରକୁ ଡକାଡକି ହେବା ଦେଖାଯାଏ ।

ସଙ୍ଗାତ ବସିଥିବା ସ୍ତ୍ରୀ ଓ ପୁରୁଷମାନେ ପରସ୍ପରକୁ ସଙ୍ଗାତ, ସମ୍ବୋଧନ କରନ୍ତି; କିନ୍ତୁ ସଙ୍ଗାତଙ୍କ ସ୍ତ୍ରୀଙ୍କୁ 'ସଙ୍ଗାତୁଣୀ' ବୋଲି ଡକାଯାଏ, ମଧ୍ୟ ଉଲ୍ଲେଖ କରାଯାଏ ।

ସଙ୍ଗାତ ବସିବା ବନ୍ଧୁମାନଙ୍କ ମଧ୍ୟରେ ବିବାହ ଆଦି ଉତ୍ସବରେ ବେଭାର ନିମନ୍ତ୍ରଣ ଆଦି ଚଳେ । ମୋ ସଙ୍ଗାତଙ୍କ ପୁଅ ମୋର ପୁତୁରା ଅଟେ ଏବଂ ମୋତେ ମୋ ସଙ୍ଗାତଙ୍କ ପୁଅ 'ମଉସା' ବୋଲି ଡାକିବ । 'ସଙ୍ଗାତ' ଆଦି ବସିଥିବା ବନ୍ଧୁମାନେ ପରସ୍ପରର ନାମ ଧରି ଡକାଡକି ହୁଅନ୍ତି ନାହିଁ ।] ପ୍ରାଦେ (ବାମଣ୍ଡା) ବି—କୌଣସି ପୁରୁଷର ଆପଣା ଶାଳୀକି ସମ୍ବୋଧନ କରିବାବେଳେ ବ୍ୟବହୃତ ଡାକ— A term used by a male in addressing his wife's younger sister.

ସଙ୍ଗାତ ବସିବା—ଦେ. କ୍ରି—(ଦୁଇ ଜଣ) ପରସ୍ପର ମଧ୍ୟରେ ମହାପ୍ରସାଦ Saṅgāta basibā ବଦଳାଇ ହୋଇ 'ସଙ୍ଗାତ' 'ମିତ୍ରତା' সাঙ্গাত পাতান ସ୍ଥାପନ କରିବା—To open a solemn god- मित होना, दोस्तहोना। relationship between each other.

ସଙ୍ଗାତ ବାପା—ପ୍ରାଦେ (ଗଡଜାତ) ବି—ଆପଣା ସଙ୍ଗାତଙ୍କ ପିତା— Saṅgāta bāpā Father of one's god-friend. সাঙ্গাতের বাবা [ ଦ୍ର—ଓଡ଼ିଶାରେ ଏହାଙ୍କୁ 'ମଉସା' ବୋଲି मित बाप ଡାକନ୍ତି ।]

ସଙ୍ଗାତ ବେଭାର—ଦେ. ବି—ଦୁଇ ସଙ୍ଗାତଙ୍କ ମଧ୍ୟରେ ବଦଳାଇ Saṅgāta bebhāra ହେବା ବେଭାର ବା ଉପଢୌକନ— সাঙ্গাত তত্ত্ব Gifts or presents exchanged between दोस्ती व्यवहार two god-friends.

ସଙ୍ଗାତ ମଇତ୍ର—ଦେ. ବି (ଏକାର୍ଥକ ସହଚର)—ମହାପ୍ରସାଦ ବନ୍ଧୁତା— Saṅgāta maitra সাংগাত মিতা दोस्ती मैत्री Sworn (ସଙ୍ଗାତ ମିତ—ଅନ୍ୟରୂପ) friendship

ସଙ୍ଗାତ ମର୍ଯ୍ୟାଦା—ଦେ. ବି—ବିବାହାଦି ଉପଲକ୍ଷରେ ନିମନ୍ତ୍ରିତ Saṅgāta marjyādā ସଙ୍ଗାତଙ୍କୁ ଦିଆଯିବା ବସ୍ତ୍ରୋପହାର— সাংগাতের মান(মর্য্যাদা) Present of cloth made to दोस्तकि मान मर्यादा a god-friend on festive occasions.

ସଙ୍ଗାତୁଣୀ—ଦେ. ବି. ସ୍ତ୍ରୀ—୧ । ସଙ୍ଗାତଙ୍କ ସ୍ତ୍ରୀ—1. The wife of Saṅgātuṇī one's god-friend. [ ଦ୍ର—ସ୍ତ୍ରୀ ସଙ୍ଗାତଙ୍କ সাঙ্গাতী, সাঙ্গাৎনী ସ୍ୱାମୀଙ୍କୁ ମଧ୍ୟ 'ସଙ୍ଗାତ' ବୋଲଯାଏ । ] संघातिनी ୨ । ପ୍ରେୟସୀ—2. A beloved lady.

ସଙ୍ଗା ବଳଦ—ଦେ. ବି (ସଂ. ସଙ୍ଗ+ବଳୀବର୍ଦ୍ଦ)—ଶଗଡ଼ଟଣା Saṅgā balada ବଳଦ—A draft bullock; a যোতা বলদ गाड़ीबैल bullock drawing the cart.

ସଙ୍ଗିତ—ଦେ. ବି. ପୁଂ (ସ. ସଙ୍ଗ)—ସହଗୃହୀ; ଏକ ସଙ୍ଗରେ Saṅgita ବିଚରଣକାରୀ—Travelling or moving সঙ্গী संगी together. (ଉ—ଅସଙ୍ଗରେ ସଙ୍ଗୀତ(ତା), (ସଙ୍ଗିତା—ସ୍ତ୍ରୀ) ଅସଙ୍ଗରେ ସଙ୍ଗ କଲେ କାଠଖଣ୍ଡ ଲମ୍ବିତ(ତା)—ରଗ ।)

ସଙ୍ଗିନ୍(ନି)—ବୈଦେ, ବି (ଫା. ସଙ୍ଗୀନ୍)—ବନ୍ଧୁକର ଅଗରେ Saṅgin(ni) ନଳର ପାର୍ଶ୍ୱରେ ଗୁଞ୍ଜା ହୋଇଥିବା ମୁନିଆଁ সঙ্গীন ବର୍ଚ୍ଛପରି ଅସ୍ତ୍ର (ଏଥିରେ ଭୁସାଯାଏ); ବନ୍ଧୁକ ସଲଗ୍ନ संगीन ଛୋରୀ—Bayonet. (ଉ—ବାସ୍ତଲ୍ୟେ ନ ବାନ୍ଧି ପ୍ରଜାଙ୍କର ଗଳା, ବିଦେଶୀ-ସଙ୍ଗିନେ କଲ ତାଙ୍କୁ ଖୁନ—ରାଧାନାଥ. ଦରବାର ।) ବୈଦେ. ବିଣ (ଫା. ସଙ୍ଗୀନ୍ = ପଥରରେ ତିଆରି, ତେଣୁ ଦୃଢ଼)—୧ । ଗୁରୁତର— সঙ্গীন 1. Serious. (ଉ—ସଙ୍ଗିନ୍ ମକଦ୍ଦମା ।) ୨ । ଖରୁ संगीन ଭୁରା—2. Heavy; weighty. ( ଉ—ସଙ୍ଗିନ ବୋଝ ।) ୩ । ଅତି କଠୋର—3. Very hard. (ଉ—ସଙ୍ଗିନ୍ ସଜା ।) ୪ । କଷ୍ଟ ସାଧ୍ୟ—4. Difficult. (ଉ—ସଙ୍ଗିନ୍ କାମ ।) ୫ । ଦାୟିତ୍ୱପୂର୍ଣ୍ଣ— 5. Full of responsibility. ( ଉ—ସଙ୍ଗିନ୍ ଗୁରୁଭାର ।) ୬ । ଅସାଧାରଣ—6. Extraordinary. (ଉ—ସଙ୍ଗିନ୍ ଘଟନା ।) ୭ । ମୋଟ ଓ ମଜବୁତ— 7. Coarse and strong. (ଉ—ସଙ୍ଗିନ୍ ଲୁଗା ।) ୮ । ଖୁବ୍ ମଜବୁତ; ସୁଦୃଢ଼—8. Very strong. (ଉ—ସଙ୍ଗିନ୍ ମୂଳଦୁଆ ।)

ସଙ୍ଗିନ୍ ଅବସ୍ଥା—ଦେ. ବି—ଅତି ସାଙ୍ଘାତିକ ବା ଗୁରୁତର ଅବସ୍ଥା— Saṅgin abasthā Very fatal or serious সঙ্গীন অবস্থা संगीन अवस्था condition.

ସଙ୍ଗିନ୍ କାର୍ଯ୍ୟ(କାମ) —ଦେ. ବ—ଅତି କଷ୍ଟରେ ସାଧ୍ୟ କାର୍ଯ୍ୟ—
Sangin kārjya(kāma) An uphill work.
সঙ্গীন কাজ संगीन काम

ସଙ୍ଗିନ୍ ଧାରୀ —ଦେ. ବଣ. ପୁଂ (ଫା. ସଙ୍ଗିନ୍+ସଂ. ଧାରିନ୍)—
Sangindhārī ବନ୍ଧୁକର ଛୋର ଧରିଥିବା (ସୈନିକ)—
(ସଙ୍ଗିନ୍ ଧାରିଣୀ—ସ୍ତ୍ରୀ) Armed with bayonets.
সঙ্গীনধারী संगीनधारी

ସଙ୍ଗିନ୍ ବେଳ(ଳା)—ଦେ. ବ—ଭାରି ବିପଦ ଆଶଙ୍କା କରାଯାଉଥିବା
Sangin bela(lā) ସମୟ—Critical moment.
সঙ্কট সময় विपद् समय

ସଙ୍ଗିନ୍ ମକଦ୍ଦମା(ମାମଲା) —ବୈଦେ. ବ (ଫା. ସଙ୍ଗୀନ୍+ମୁକଦ୍ଦମା;
Sangin makaddamā( māmalā ) ମୁଆମିଲ୍)—ଗୁରୁତର
(ସଙ୍ଗିନ୍ କେସ୍—ଅନ୍ୟରୂପ) ମକଦ୍ଦମା—Serious case. (ଉ—
সঙ্গীন মকদ্দমা, সঙ্গীন মামলা ...ଏବଂ ମାମଲାଭାରି ସଙ୍ଗିନ୍ ଥିବା
संगीन मुकद्दमा ଲକ୍ଷାକ । ଫକୀରମୋହନ. ଛମାଣ ଆଠଗୁଣ୍ଠ ।)

ସଙ୍ଗିନୀ—ସଂ. ବ. ସ୍ତ୍ରୀ (ସଙ୍ଗିନ୍+ସ୍ତ୍ରୀ. ଈ)—୧ । ସଙ୍ଗୀର ସ୍ତ୍ରୀଲିଙ୍ଗ—
Sangini 1. Feminine of 'Sangi'. ( ଉ—ତୁହରି
(ସଙ୍ଗୀ—ପୁଂ) କେବଳ ମୁହିଁ ସଂପଦ-ସଙ୍ଗିନୀ ପାଣ୍ଡବର । ରାଧାନାଥ.
ମହାଯାତ୍ରା ।] ୨ । ବୟସ୍ୟା; ସହଚରୀ—2. A female
companion. (ଉ—କନାଦରେ ପ୍ରାଣସଙ୍ଗିନୀ । ଶୁଭୁଛି
କଳୁଙ୍କବନେ । ସଙ୍ଗୀତ ।)

ସଙ୍ଗିବା—ଦେ. କ୍ରି (ସଂ. ସଙ୍ଗ)—ସଙ୍ଘିବା (ଦେଖ)
Sangibā Sanghibā. (See)

ସଙ୍ଗୀରମାଣ—ସଂ. ବଣ. ପୁଂ (ସମ୍+ଗୃ. ଧାତୁ=ପ୍ରତିଜ୍ଞା କରିବା+
Sangiramāna କର୍ତ୍ତୃ. ଅନ) ପ୍ରତିଜ୍ଞାକାରୀ—Promising.
(ସଙ୍ଗିରମାଣା—ସ୍ତ୍ରୀ)

ସଙ୍ଗୀ—ସଂ. ବ. ପୁଂ (ସଙ୍ଗ+ଅସ୍ତ୍ୟର୍ଥରେ. ଇନ୍; ୧ମା. ୧ବ)—
Sanagi ୧ । ସହଚର; ବୟସ୍ୟ; ସଙ୍ଗାତ—1. Companion.
(ସଙ୍ଗିନୀ—ସ୍ତ୍ରୀ) ୨ । କର୍ମସଙ୍ଗୀ; ଯେଉଁମାନେ ଏକ ସଙ୍ଗରେ
କାର୍ଯ୍ୟ କରନ୍ତି—2.Fellow-worker. ୩। ପଢ଼ାସଙ୍ଗୀ;
ଶିକ୍ଷା ସହଚର—3. Class-friend; fellow
student. ୪ । ଖେଳସଙ୍ଗ; କ୍ରୀଡ଼ା ସହଚର—
4. Play-mate; play-fellow. ସଂ. ବଣ—
୧ । ସମଭିବ୍ୟାହାରୀ; ସଙ୍ଗବିଶିଷ୍ଟ—1. Accompanying; having the companionship of. ୨ ।
ଆସକ୍ତ—2. Devoted to; attached to. ୩ ।
କୌଣସି ବସ୍ତୁରେ ଆସକ୍ତ—3. Attached to anything.

ସଙ୍ଗୀତ (ଇତ୍ୟାଦି)—ସଂ. ବଣ ଓ ବ—ସଂଗୀତ ଇତ୍ୟାଦି (ଦେଖ)
Sangita (etc) Samgita etc. (See)

ସଙ୍ଗୀତି—ସଂ. ବ—ସଂଗୀତି (ଦେଖ)
Sangiti Samgiti. (See)

ସଙ୍ଗୀର୍ଣ୍ଣ—ସଂ. ବଣ—ସଂଗୀର୍ଣ୍ଣ (ଦେଖ)
Sangirnna Samgirnna. (See)

ସଙ୍ଗୁପ୍ତ—ସଂ. ବଣ—ସଂଗୁପ୍ତ (ଦେଖ)
Sangupta Samgupta. (See)

ସଙ୍ଗୁପ୍ତି—ସଂ. ବ—ସଂଗୁପ୍ତି (ଦେଖ)
Sangupti Samgupti. (See)

ସଙ୍ଗୂଢ଼—ସଂ ବଣ—ସଂଗୂଢ଼ (ଦେଖ)
Sangūrdha Samgūrdha. (See)

ସଙ୍ଗୃହୀତ—ସଂ. ବଣ—ସଂଗୃହୀତ (ଦେଖ)
Sangrubita Samgrubita. (See)

ସଙ୍ଗେ—ଦେ. କ୍ରି: ବଣ. (ସଂ. ସଙ୍ଗ)—୧ । ସହ; ସହିତ; ସଙ୍ଗରେ—
Sange 1. With; along with. [ଉ—ଶ୍ରୀମ ଭୁଶାସନ
সঙ্গে ସଙ୍ଗେ ଗଦା ଯୁଦ୍ଧ କଲେ ।] ୨ । ମିଳିତ ହୋଇ;
साथमें ମିଶ୍ରିତ ହୋଇ—2. Together with; mixed
with. [ଉ—କଫ ହେଲେ ପିପ୍ପଳି ଗୁଣ୍ଡା ସଙ୍ଗେ ମଧୁ
ଖାଇବା ] ୩ । ସମଭିବ୍ୟାହାରରେ—3. In the
company of. [ଉ—ମୁଁ ରାଜାଙ୍କ ସଙ୍ଗେ ଯିବି ।]

ସଙ୍ଗେଇ ଦେବା—ପ୍ରାଦେ. ( ସମ୍ବଲପୁର ) କ୍ରି—କୌଣସି ପଦାର୍ଥକୁ
Sangei debā ଯତ୍ନରେ ରଖିବା; ସାଇତିବା—To keep
a thing carefully.

ସଙ୍ଗେ କରି—ଦେ. ଅ—ସଙ୍ଗରେ ନେଇ—Taking one into
Sange kari company. [ଉ—ମିତ୍ର ବସିଲ ତା ଅବୋଉ,
সঙ্গে করে, সঙ্গে নিযে ମୃତ୍ୟୁ ଦେବତା ସଙ୍ଗେ କରି । ଜଗନ୍ନାଥ.
साथ करके ଭାଗବତ ।]

ସଙ୍ଗେଣ—ଦେ. କ୍ରି. ବଣ. (ପଦ୍ୟ)—ସଙ୍ଗେ ( ଦେଖ )—Sange
Sangena ( See ) [ଉ—ମାତା କହନ୍ତେ ବିଭୂଷଣ । ପୁତ୍ର ଯେ
ମାତାଙ୍କ ସଙ୍ଗେଣ । ଯାଚୀ. ପ୍ରେମଭକ୍ତି ବ୍ରହ୍ମଗୀତା ।]

ସଙ୍ଗେ ସଙ୍ଗ—ପ୍ରାଦେ. ଅ. (ଉତ୍ତର ଭାଗ)—ସାଙ୍ଗେ ସାଙ୍ଗେ (ଦେଖ)
Sange sang With; along with.

ସଙ୍ଗେ ସଙ୍ଗେ—ଦେ. ଅ—ସାଙ୍ଗେ ସାଙ୍ଗେ ( ଦେଖ )
Sange sange Sānge sānge ( See )

ସଙ୍ଗୋପକ—ସଂ. ବଣ. ପୁଂ—ସଂଗୋପକ ( ଦେଖ )
Sangopaka Samgopaka ( See )

ସଙ୍ଗୋପନ—ସଂ. ବ—ସଂଗୋପନ ( ଦେଖ )
Sangopana Samgopana ( See )

ସଙ୍ଗ୍ରହ (ଇତ୍ୟାଦି)—ସଂ. ବ—ସଂଗ୍ରହ ଇତ୍ୟାଦି ( ଦେଖ )
Sangraha (etc) Samgraha etc. ( See )

ସଙ୍ଗ୍ରହଣ—ସଂ. ବ—ସଂଗ୍ରହଣ ( ଦେଖ )
Sangrahana Samgrahana ( See )

ସଙ୍ଗ୍ରହଣୀ—ସଂ. ବ—ସଂଗ୍ରହଣୀ ( ଦେଖ )
Sangrahani Samgrahani ( See )

ସଙ୍ଗ୍ରହିବା—ଦେ. କ୍ରି. (ପଦ୍ୟ)—ସଂଗ୍ରହିବା ( ଦେଖ )
Sangrahibā সংগ্রহ Samgrahibā ( See )

ସଙ୍ଗ୍ରାହିତା—ସଂ ବଣ. ପୁଂ—ସଂଗ୍ରାହିତା ( ଦେଖ )
Sangrahitā Samgrahitā ( See )

ସଙ୍ଗ୍ରାମ (ଇତ୍ୟାଦି)—ସ. ବି—ସଂଗ୍ରାମ ଇତ୍ୟାଦି ( ଦେଖ )
Sangrāma (etc) Samgrāma etc (See)

ସଙ୍ଗ୍ରହ—ସ. ବି—ସଂଗ୍ରହ ( ଦେଖ )
Sangrāha Samgrāha ( See )

ସଙ୍ଗ୍ରାହକ—ସ. ବିଣ. ପୁଂ—ସଂଗ୍ରାହକ ( ଦେଖ )
Sangrāhaka (ସଙ୍ଗ୍ରାହିକା—ସ୍ତ୍ରୀ) Samgrāhaka ( See )

ସଙ୍ଗ୍ରାହୀ—ସଂ. ବିଣ. ପୁଂ—ସଂଗ୍ରାହୀ ( ଦେଖ )
Sangrāhī (ସଙ୍ଗ୍ରାହିଣୀ—ସ୍ତ୍ରୀ) Samgrāhī ( See )

ସଙ୍ଘ (ଇତ୍ୟାଦି)—ସଂ. ବି—ସଂଘ ଇତ୍ୟାଦି ( ଦେଖ )
Sangha (etc) Samgha etc. ( See )

ସଙ୍ଘଟ—ଦେ ଓ ସଂ. ବି—ସଂଘଟ ( ଦେଖ )
Sanghaṭa Samghaṭa ( See )

ସଙ୍ଘଟା—ସଂ. ବି—ସଂଘଟା ( ଦେଖ )
Sanghaṭā Samghaṭā ( See )

ସଙ୍ଘଟିକା—ସଂ. ବି—ସଂଘଟିକା ( ଦେଖ )
Sanghaṭikā Samghaṭikā ( See )

ସଙ୍ଘଟିତ—ସଂ. ବିଣ—ସଂଘଟିତ ( ଦେଖ )
Sanghaṭita Samghaṭita ( See )

ସଙ୍ଘଟ୍ଟ—ସଂ. ବି—ସଂଘଟ୍ଟ ( ଦେଖ )
Sanghaṭṭa Samghaṭṭa ( See )

ସଙ୍ଘର୍ଡ଼—ଦେ. ବିଣ—ସଂଘର୍ଡ଼ ( ଦେଖ )
Sangharḍa Sangharḍa ( See )
(ଅସଙ୍ଘର୍ଡ଼—ବିପରୀତ)

ସଙ୍ଘନ—ସଂ. ବିଣ—ସଂଘନ ( ଦେଖ )
Sanghana Samghana ( See )

ସଙ୍ଘର୍ଷ—ସଂ. ବି—ସଂଘର୍ଷ ( ଦେଖ )
Sangharsha Samgharsha ( See )

ସଙ୍ଘସ—ସଂ. ବି—ସଂଘସ ( ଦେଖ )
Sanghasa Samghasa ( See )

ସଙ୍ଘା—ଦେ. ବି—୧ । (ସଂ. ସନ୍ଜ୍ ଧାତୁ=ସଂଲଗ୍ନ ହେବାରୁ ଉତ୍ପନ୍ନ Sanghā 'ସଙ୍ଘ' ଶବ୍ଦ; କାରଣ ସଙ୍ଘାରେ ଏକ ସଙ୍ଗେ ଅନେକ मँगा, मँचा ଗୁଡ଼ିଏ ବାଉଁଶ ପଡ଼ଥାଏ; କିମ୍ବା ସଂ. ସଙ୍ଘ=ସମୂହ मचान କାରଣ ଅନେକ ବାଉଁଶ ପକାଇ ସଙ୍ଘା ତିଆରି କରାଯାଏ)—ଘର ଘରର ତ୍ରିକୋଣାକାର ଛାଞ୍ଚର ତଳେ ଓ ପରସ୍ପର ବିପରୀତ କାନ୍ଥମାନଙ୍କ ଉପରେ ଗୁଡ଼ିଏ ବାଉଁଶକୁ ଲଗାଲଗି କରି ଅଡ଼ବାଗରେ ପକାଇ ତିଆରି କରାଯିବା ଖଟ—1. A scaffolding or staging consisting of bamboos put below the triangular portion of the thatch and plaited together, on the tops of opposite walls crosswise and used to store fuel etc. [ଦ୍ର—ଏହି ସଙ୍ଘାରେ ଶୁଖିଲା ନଡ଼ିଆ ରଖି ଦେଲେ ଅନେକ ଦିନ ବାଦ୍ ନଡ଼ିଆମାନଙ୍କରୁ ପାଣି ମରିଯାଇ ଉକ୍ତ ନଡ଼ିଆମାନ 'ଝୁଣ୍ଟୁ' ହୋଇଯାଏ । ରୁଷାଳ ଘରେ ଓ ଗୁଆଲ ଘରେ ସଙ୍ଘା ତିଆରି କରାଯାଏ । କାରଣ ସେଥିରେ ରଖାଯିବା ଜାଳ କାଠ ଓ ଘାସ ଆଦି ଉକ୍ତ ଗୃହ ମଧ୍ୟରୁ ଚୁଲିରୁ ଓ ନିଆଁରୁ ଉଠିବା ଧୂଆଁ ଦ୍ୱାରା ଶୀଘ୍ର ଶୁଖିଯାଏ । ] ୨ । ଗଛରୁ ତୋଳାଯିବା ନଡ଼ିଆମାନଙ୍କୁ ଶୁଖାଇବା ଉଦ୍ଦେଶ୍ୟରେ ଧାଡ଼ି ଧାଡ଼ି ହୋଇ ପୋତାଇଥିବା ବାଉଁଶ—2. Rows of single bamboos erected on the floor, to खूँटी which pairs of whole cocoanuts are attached (one pair over the other) so as to cause the newly plucked cocoanuts to become dry. [ଦ୍ର—ଗଛରୁ ତୋଳା ଯାଇଥିବା ନଡ଼ିଆ ସବୁକୁ ଗେଣ୍ଡା ଲାଗିଥିବା ଅବସ୍ଥାରେ ଅର୍ଥାତ ଉକ୍ତ ଗେଣ୍ଡାରୁ ଟିକିଏ ଲେଖାଏଁ ଛେଲି ବା ଲସିକୁ କାଢ଼ି ଦୁଇଟି ନଡ଼ିଆର ଲସିକୁ ଗଣ୍ଠି ପକାଇ ଉକ୍ତ ନଡ଼ିଆ ଦୁଇଟିକୁ ପରସ୍ପର ସହିତ ସଂଲଗ୍ନ କରାଯାଏ । ଏହି କାର୍ଯ୍ୟକୁ 'ଗିଣ୍ଠୋଳିବା' କହନ୍ତି । ଏହିପରି ସିନ୍ଧା ହୋଇଥିବା ନଡ଼ିଆର ଯୋଡ଼ମାନଙ୍କୁ ଭୂମିରେ ପୋତା ହୋଇଥିବା ବାଉଁଶ (ସଙ୍ଘା) ଦେହରେ ଉପର୍ଯ୍ୟୁପରି ଛନ୍ଦ ରଖାଯାଏ । ଏପରି ରଖିବା ଦ୍ୱାରା ନଡ଼ିଆ ସବୁ ଶୁଖିବାକୁ ଅଳ୍ପସମୟ ଲାଗେ ।] ୩ (ସ. ସଂଗମ)—पाल धरा ସଙ୍ଘିବା; ଗାଈ ସହିତ ବୃଷର ସଂଗମ—3. Cohabitation of a bull with a cow. सांग ଦେ. ବିଣ—୧ । (ସ.ସଙ୍ଗ; ଶଗଡ଼ ସଙ୍ଗେ ବଳଦ ସଂଯୋଜିତ ହେଉଥିବାରୁ) जोता —ଶଗଡ଼ବାହୀ ( ବଳଦ )—1. Drawing a cart शकटवाही (bull). ୨ । ସ୍ତ୍ରୀ (ସଂ.ସଙ୍ଗମ) ବୃଷ ସହିତ ସହବାସ पाल धवान କରିଥିବା ଗାଈ-2. Having been cohabited सँढियाई हुई by a bull (cow). ୩ । ପୁଂ. (ସଂ. ସଙ୍ଗମ) ଗାଈ (ଅସଙ୍ଘା—ବିପରୀତ) ସଙ୍ଗେ ସହବାସ କରିଥିବା(ବୃଷ)-3. Having cohabited with a cow (bull). ଗ୍ରାଦେ—୧ । (ସମ୍ବଲପୁର) କାନ୍ଥକୁଳି—1. Wall-niche. ୨ । (ସିଂହଭୂମ) ସଙ୍ଗା (ଦେଖ)—2. Sangā (See) ୩ । (ସମ୍ବଲପୁର) ଜିନିଷ ରଖିବା ପାଇଁ କାନ୍ଥରେ ମରା ଯାଇଥିବା ପଟା—3. A wooden plate attached to a wall and used as bracket.

ସଙ୍ଘା(ଙ୍ଘେ, ଙ୍ଘୋ)ଇବା—ଦେ. କ୍ରି—୧ । 'ସଙ୍ଘିବା' କ୍ରିୟାର ଣିଜନ୍ତ Sanghā(nghe, ngho)ibā ରୂପ—1. The causa- पाल धरान tive form of 'Sanghibā'. ୨ । ଗାଈକୁ ବୃଷ सँढियाना ସଙ୍ଗେ ସଙ୍ଗମ କରାଇବା—2. To cause a cow मेलान to be cohabited by a bull ୩ । (ସଂ. ସନଜ୍ संयोग कराना ଧାତୁ) ସଂଯୋଜିତ କରାଇବା—3. To cause to be joined. ୪ । ମିଳାଇବା; ମିଳିତ କରାଇବା—4. To cause to meet.

ସଙ୍ଘା କାଠ—ଗ୍ରାଦେ. (ସିଂହଭୂମ) ବି—ଛାତ ତଳେ ଥିବା ଘରର Sanghā kāṭha ପ୍ରଧାନ ମୋଟ କାଠ; ଭରା—Beam of a house over which perpendicular props are erected to heald up the thatch.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଌ | ଠ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯୁ | ଉଅ | ହ୍ମ |
| ୨ | ଈ | ଊ | ଋ | ଲୁ | ଯେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ | ଇଅ | ଙ୍କ | ନ୍ମ |

ସଙ୍ଘାଡ଼ି—ଦେ. ବ ( ସଂ. ସଙ୍ଘଟିକା, ପ୍ରା· ସଙ୍ଘାଡ଼ି=ଯୋଡ଼ା )—୧ । ଯଜ୍ଞୋପବୀତ ତିଆର କରିବା ପାଇଁ ମୂଣ୍ଡାକଟା ହୋଇ ମୋଡ଼ା ହୋଇଥିବା ପଇତା ସୂତାର ଦୁଇପଟ ବା ଦୁଇଟି ମୋଡ଼ା—
Sanghārḍi
যোড়া, জুড়ী
जोड़ा
1, Two rolls of thread twisted for being prepared into a Brahman's sacred thread. [ଦ୍ର—ଜୀବତ୍‌ପିତୃକ ବ୍ରାହ୍ମଣମାନେ ଏକ ସଙ୍ଘାଡ଼ି ବା ଦୁଇ ପଟ ପଇତାସୂତାଦ୍ୱାରା ଛଅଖିଅ ଉପବୀତ ତିଆର କରି ପିନ୍ଧନ୍ତି । ଯେଉଁମାନେ ଶ୍ରାଦ୍ଧ ତର୍ପଣାଦି କରନ୍ତି ଓ ମୃତପିତୃକ, ସେମାନେ ଦେଢ଼ ସଙ୍ଘାଡ଼ି ବା ତିନି ପଟ ପଇତାସୂତାରେ ନଅ ଖିଅ ଉପବୀତ ତିଆର କରି ପିନ୍ଧନ୍ତି । ଏହି ନଅ ଖିଅ ମଧ୍ୟରୁ ଛଅ ଖିଅ ଉପବୀତ ଓ ଅନ୍ୟ ତିନି ଖିଅ ଉତ୍ତରୀୟରୂପେ କଳ୍ପିତ ହୁଏ ।] ୨ । (ସଂ·ସଙ୍ଘଟ,ସଙ୍ଘଟନ-ମିଶ୍ରଣ, ଯୋଜନ) ଏକାଥରକେ ଚିତାଗ୍ନିରେ ମୁହାଁଯିବା କାଷ୍ଠଖଣ୍ଡମାନ—2. A quantity of fuel which is sufficient to maintain the cremation fire at a time. ୩ । (ସଂ, ସଙ୍ଘଟିକା=ଯୁଗ୍ମ, ଯୋଡ଼ା) ମଞ୍ଜି ଶୁଖୁଆର ବା ମାଛମଞ୍ଜିର ଦୁଇଟି ନୋଳା—3 A pair of fish-roes; two tubes of fish spawn. [ଦ୍ର—ମାଛର ମଞ୍ଜିଟି ଦୁଇ ଫାଳଥାଏ, ଅର୍ଥାତ୍ ଦୁଇଟି ନୋଳାଯୁକ୍ତ । ଏହି ନୋଳାଦ୍ୱୟକୁ 'ସଙ୍ଘାଡ଼ି' କୁହାଯାଏ । ପ୍ରତ୍ୟେକ ନୋଳା ଗୋଟିଏ ସୂକ୍ଷ୍ମ ଚର୍ମାବରଣ ମଧ୍ୟରେ ଥାଏ ଏବଂ ଦୁଇଟିଯାକ ନୋଳା ଏକ ସ୍ଥାନରେ ପରସ୍ପର ସହିତ ସୂକ୍ଷ୍ମଚର୍ମାବରଣ ଦ୍ୱାରା ସଂଲଗ୍ନ ହୋଇ ଥାଏ । ସେହି ସଂଯୋଜକ ଚର୍ମାବରଣକୁ ଛିଣ୍ଡାଇ ଦେଲେ ତାହା ପୃଥକ୍ ହୋଇ ସ୍ୱତନ୍ତ୍ର ଦୁଇଟି ନୋଳା ହୁଏ ।]
তাড়া
যোড়া

ସଙ୍ଘାଡ଼ିବା—ଦେ. କ୍ରି. (ସଂ. ସଙ୍ଘଟ)—୧ । ବହୁ ପଦାର୍ଥକୁ ବା ବହୁ ଉପାଦାନକୁ ଏକତ୍ର ମିଶ୍ରିତ କରିବା—1. To mix up many materials. ୨ । ତିଅଣରେ ପଡ଼ିଥିବା ଭିନ୍ନ ଭିନ୍ନ ପ୍ରକାରର ପରିବା ଆଦି ସିଝିଗଲା ପରେ ତାହାକୁ ଗୋଳାଇ ବା ଘାଣ୍ଟି ମିଶାଇ ଦେବା; ତିଅଣକୁ ଘୋଟିବା ବା ଘୋଟିବା—2. To reduce the boiling curry into a consistent mixture by agitating the boiled ingredients. ୩ । ନବପ୍ରସୂତା ଗାଈ ନିଜ ବାଛୁରିକୁ ନ ଆଦରିଲେ ବା ସୁରୁଖୁରୁରେ ଦୁଧ ଦୁହାଁଇ ନ ଦେଲେ, କିମ୍ବା ଗାଈର ବାଛୁରି ମରିଗଲେ ତାଠାରୁ ଦୁଧ ଦୁହିଁବା ପାଇଁ ତା ନିଜର ବାଛୁରି ପରି ଅନ୍ୟ ଗାଈର ବାଛୁରିକୁ ଅଥବା ବାଛୁରିର ଗୋଟିଏ ମୂର୍ତ୍ତି କରି ତାକୁ ଗାଈ ଆଗରେ ଠିଆ କରାଇ ସେହି ନକଲି ବାଛୁରି ଦେଖାଇବେ ମଧ୍ୟ, ଲୁଣ ଆଦି ଲେହନୀୟ ପଦାର୍ଥ ଲଗାଇ ଗାଈକୁ ଚଟାଇ ଓ ଚୁଚୁକାର ମାରି ଗାଈକୁ ଆଉଁସିବା, କୋମଳ ବଚନ କହିବା ଓ ଏତଦ୍ଭିନ୍ନ ଅନ୍ୟ ଉପାୟ ପ୍ରୟୋଗ କରିବା; ଗାଈକୁ ସୁଧାରିବା—3. To employ various means to a milch-cow which is not allowing herself to be milked, in order that she can be easily milked. ୪ । ଦୁଇଟି ଗୋରୁଙ୍କୁ ପଘାରେ ପରସ୍ପର ସହିତ ଛନ୍ଦି ଜଙ୍ଗଲରେ ବା ପଡ଼ିଆରେ ଚରିବା ପାଇଁ ଛାଡ଼ି ଦେବା—4. To tie two cattle together and leave them for grazing in jungle or field.
Sanghārḍibā
মিশাইএ দেওয়া, মেশান
मिलाना
সুধারান
संघाना
যোড়াবাঁধা
जोड़ना

ସଙ୍ଘାତ (ଇତ୍ୟାଦି)—ସଂ. ବି—ସଂଘାତ ଇତ୍ୟାଦି (ଦେଖ)
Sanghāta (etc) Samghāta etc. (See)

ସଙ୍ଘାତି—ଦେ. ବିଣ—ସଂଘାତି (ଦେଖ)
Sanghāti Samghāti, (See)

ସଙ୍ଘାର—ଦେ. ବି—ସଂଘାର (ଦେଖ)
Sanghāra Samghāra. (See)

ସଙ୍ଘାରିବା—ଦେ. କ୍ରି—ସଂଘାରିବା (ଦେଖ)
Sanghāribā Samghāribā. (See)

ସଙ୍ଘିବା—ଦେ. କ୍ରି (ସଂ. ସଙ୍ଗ, ସଙ୍ଗମ=ମୈଥୁନ)—(ବୃଷ) ଗାଈକୁ ମୈଥୁନ କରିବା—(a bull) To copulate with a cow. [ଦ୍ର—ଗାଈର ଋତୁକାଳ ହେଲେ ଗାଈ 'ବତର ପଡ଼ିଛି' ବୋଲି କହନ୍ତି । ବତର ପଡ଼ିବା ଗାଈକୁ ଷଣ୍ଢ ସଙ୍ଗମ କଲେ ଉକ୍ତ ଗାଈ 'ବଏ ଗଲା' (ବଂ. ପାଲ ନିଲ) ବୋଲି କହନ୍ତି । ଗାଈ ଥରେ ବଏ ଯିବା ପରେ ଗର୍ଭବତୀ ନ ହେଲେ ଗାଈ 'ଲେଉଟାଇଲା' ବୋଲି କହନ୍ତି ।]
Sanghibā
পালদেওয়া
नाँघना

ସଙ୍ଘୁଷିତ—ସଂ. ବିଣ—ସଂଘୁଷିତ (ଦେଖ)
Sanghushita Samghushita. (See)

ସଙ୍ଘୃଷ୍ଟ—ସଂ. ବିଣ—ସଂଘୃଷ୍ଟ (ଦେଖ)
Sanghushṭa Samghṛushṭa. (See)

ସଙ୍ଘୃଷ୍ଟ—ସଂ. ବିଣ—ସଂଘୃଷ୍ଟ (ଦେଖ)
Sanghṛushṭa Samghṛushṭa. (See)

ସଙ୍ଘେନିବା—ଗ୍ରା· କ୍ରି—ସଙ୍ଗେ ଘେନିବା ବା ନେବା—To take with; to be accompanied by.
Sanghenibā
সঙ্গে লওয়া
साथमे लेना

ସଚ୍ (ଧାତୁ)—ସଂ—୧ । ସମ୍ବନ୍ଧ କରିବା—1. To form connection. ୨ । ଅନୁଗ୍ରହ କରିବା—2. To please; to oblige.
Sach (root)

ସଚକିତ—ସଂ. ବିଣ ( ସ=ସହିତ+ଚକିତ=ଭୟ, ଉଦ୍‌ବେଗ; ବହୁବ୍ରୀହି )—୧ । ତ୍ରସ୍ତ; ଅସ୍ଥିର; ଚକିତ—1. Startled; frightened. ୨ । ସାବଧାନ; ଜାଗ୍ରତ—2. Vigilant. ୩ । ଭୀରୁ—3. Timid.
Sachakita

ସାଧାରଣ ଲେକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ'ଖୋଜିବେ; 'ମୂଢ଼' ନ ମିଳିଲେ 'ମୂଢ'ଖୋଜିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବ୍‌ଧ' ନ ପାଇଲେ 'ଅଲବ୍ଧ' ଦେଖିବେ

**ସଚକିତ ନୟନ**—ସଂ. ବିଣ. ପୁଂ (ସହାର୍ଥ ବହୁବ୍ରୀହି; କର୍ମଧାରୟ; ସ+ Sachakita nayana ଚକିତନୟନ; ଅମ୍ବା ସଚକିତ+ ( ସଚକିତ ଦୃଷ୍ଟି—ଅନ୍ୟରୂପ ) ନୟନ; ସହାର୍ଥ ବହୁବ୍ରୀହି ବା [ସଚକିତ ନୟନା, ସଚକିତ ଦୃଷ୍ଟି—ସ୍ତ୍ରୀ ] ବହୁବ୍ରୀହି )—ସଭୟ ଦୃଷ୍ଟି; ଯାହାର ନୟନ ଭୟଯୁକ୍ତ ହୋଇଥାଏ— Having a frightened look.

**ସଚଞ୍ଚଳ**—ସଂ. ବିଣ (ସହାର୍ଥ ବହୁବ୍ରୀହି; ସ=ସହିତ+ଚଞ୍ଚଳ= Sachañchala ବାୟୁ )—ବାୟୁଯୁକ୍ତ; ପବନଯୁକ୍ତ—Airy; windy. ଦେ. ବିଣ. (ସଂ. 'ଚଞ୍ଚଳ'ର ଅଶୁଦ୍ଧ ପ୍ରୟୋଗ) —ଚଞ୍ଚଳ— Restless.

**ସଚଟ୍(ଟ)**—ଦେ. ବିଣ—ସଚୋଟ (ଦେଖ) Sachat(ta) Sachota. (See)

**ସଚରାଚର**—ସଂ. ବିଣ (ସହାର୍ଥ ବହୁବ୍ରୀହି; ସ=ସହିତ+ଚରାଚର= Sacharāchara ସ୍ଥାବରଜଙ୍ଗମ )—ସ୍ଥାବରଜଙ୍ଗମ ସହିତ ବର୍ତ୍ତମାନ; ସ୍ଥାବର ଓ ଜଙ୍ଗମଯୁକ୍ତ (ପୃଥିବୀ)—(the world) Comprising all the moveable and the immoveable things. ଦେ. ବିଣ— ୧ । ସମସ୍ତ; ସମଗ୍ର—1. All. ୨ । ଜଗତରେ ସର୍ବତ୍ର ଦେଖାଯିବା—2. Universal. ଦେ. ବି— ୧ । ବିଶ୍ୱସୃଷ୍ଟି; ବ୍ରହ୍ମାଣ୍ଡ—1. The Creation; the Universe. ୨ । ସୃଷ୍ଟ ସମସ୍ତ ପଦାର୍ଥ; ସ୍ଥାବର ଓ ଜଙ୍ଗମ ବସ୍ତୁସମୂହ—2. All created things, moving and lifeless. [ଉ—ସଚରାଚର କହେ ଯହିଁ, ସେ ବସ୍ତୁ ପ୍ରଥମା ଯେ ହୋଇ—ଜଗନ୍ନାଥ. ଭାଗବତ । ] ଦେ. କ୍ରି. ବିଣ—୧ । ସାଧାରଣତଃ—1. Ordinarily; commonly ୨ । ଏହି ପୃଥିବୀରେ—2. In this world. ୩ । ଏହି ସୃଷ୍ଟିରେ—3. In the creation. ( ଯଥା—ସଚରାଚରେ ଏହା ଦେଖାଯାଏ ଯେ, ବୃଦ୍ଧ ପିତାମାତାଙ୍କୁ ବୟଃପ୍ରାପ୍ତ ଯୋଗ୍ୟ ସନ୍ତାନ ପାଳନ କରନ୍ତି । )

सचराचर
सचराचर

**ସଚଳ**—ସଂ. ବିଣ ( ସ=ସହ+ଚଳ=ଗତିଶୀଳତା, ଗୃହଲୀ; ସହାର୍ଥ Sachala ବହୁବ୍ରୀହି )—ଚଳନଶୀଳ; ଗତିଶୀଳ—Moving (ଅଚଳ—ବିପରୀତ) सचल ଦେ. ବିଣ—ସଙ୍ଗତିସମ୍ପନ୍ନ (ଅବସ୍ଥା)— सङ्गतिपुरजा, संपन्न Well-to-do. ( ଉ—ତାଙ୍କର ବର୍ତ୍ତମାନ ଅବସ୍ଥା ବେଶ୍ ସଚଳ । )

**ସଚଳ ଜାତି**—ଦେ. ବି—ପାଣିଚୁଆଁ ଜାତି; ଉଚ୍ଚ ଜାତି— Sachala jāti जलचल जाति सचल जाति High caste.

**ସଚ ଲବଣ**—ଦେ. ବି (ସଂ. ସୌବର୍ଚ୍ଚଳ ଲବଣ)—ପଞ୍ଚ ଲବଣ ମଧ୍ୟରୁ Sacha labaṇa ଏକପ୍ରକାର—Sochal salt; Una- (ସଂ. ପର୍ଯ୍ୟାୟ—ରୁଚକ,ଅକ୍ଷ,ପାକ୍ୟ) qua Sodium chloride. सचल नून, सचल लवन सांचर जवण ଫା. ନମକ୍‌ସିୟା ଅ. ମଲହୁଲ୍ ଯଙ୍କାକ୍ ସଚଲୁଣ, ସଚଳ ଲବଣ, ସଚଳ ଲୁଣ } ଅନ୍ୟରୂପ [ଦ୍ର—ଏହି ଲୁଣ ଖଳକ ଅଟେ । ଏହା କଟୁ ଓ ଲବଣରସଯୁକ୍ତ, ଉଷ୍ଣବୀର୍ଯ୍ୟ, ଲଘୁପାକ, ଅଗ୍ନିବର୍ଦ୍ଧକ, ହର୍ଷଦାୟକ, ରୁଚିକର, ଭେଦକ, ପାଚକ, ସ୍ନିଗ୍ଧ, ବାୟୁନାଶକ, କଣ୍ଠର ପିତ୍ତକର ଓ ଉଦ୍‌ଗାର ଶୁଦ୍ଧିକାରକ । ଏହା ବିବନ୍ଧ, ଅନାହ, ଶୂଳ, ଗୁଳ୍ମ, କୃମି, ଊର୍ଦ୍ଧ୍ୱବାୟୁ ଓ ଅମ ଦୋଷରେ ଉପକାରୀ । ]

**ସଚ୍ଚା (ଇତ୍ୟାଦି)**—ଦେ. ବି ଓ ବିଣ—ସଚ୍ଚା ଇତ୍ୟାଦି ( ଦେଖ ) Sachā (etc) Sachchā etc ( See )

**ସଚ୍ଚା(ଚେ)ଇ**—ଦେ. ବି—ସଚ୍ଚାଇ ( ଦେଖ ) Sachā(che)i Sachchāi ( See )

**ସଚ୍ଚା(ଚେ)ଈ**—ଦେ. ବିଣ. ସ୍ତ୍ରୀ—ସଚ୍ଚାଈ ( ଦେଖ ) Sachā(che)ī Sachchāī ( See )

**ସଚି(ଚୀ)**—ସଂ.ବି.ସ୍ତ୍ରୀ (ସଚ୍ ଧାତୁ=ଅଧ୍ୟାସିତ କରିବା+କର୍ମ. ଇ, ଈ; Sachi(chī) ଯାହାଙ୍କୁ ଇନ୍ଦ୍ର ଅଧ୍ୟାସିତ କରନ୍ତି; ଶଚି ବା ଶଚୀର ବିକଳ୍ପ ରୂପ )—ଶଚୀ ଇତ୍ୟାଦି ( ଦେଖ ) Sachī etc ( See )

**ସଚିନ୍ତ**—ସଂ. ବିଣ. ପୁଂ ( ସହାର୍ଥ ବହୁବ୍ରୀହି, ସ=ସହ+ଚିନ୍ତା )— Sachinta ଚିନ୍ତାଯୁକ୍ତ; ଭାବନାଯୁକ୍ତ— Anxious; full of ( ସଚିନ୍ତା—ସ୍ତ୍ରୀ ) cares.

**ସଚିନ୍ତିତ**—ଗ୍ରା ବିଣ (ସଂ. ସଚିନ୍ତର ଅଶୁଦ୍ଧ ପ୍ରୟୋଗ)—ସଚିନ୍ତ (ଦେଖ) Sachintita Sachinta (See)

**ସଚିବ**—ସଂ.ବି. ପୁଂ (ସଚ୍ ଧାତୁ=ସେବନ କରିବା+କର୍ତ୍ତି. ଇବ)—୧ । Sachiba ମନ୍ତ୍ରୀ; ଅମାତ୍ୟ—1. Minister. ୨ । ସହାୟ— 2. Help. ୩ । ସାହାଯ୍ୟକାରୀ ବ୍ୟକ୍ତି—3. An assistant; a secretary. ୪ । ( ବୈଦ୍ୟକ ) କୃଷ୍ଣଧତୁରକ; କଳାଧାତୁରି—4. The black species of Dhtura plant.

**ସଚିବାମୟ**—ସଂ.. ବି (ଅଧୁନିକ ପ୍ରୟୋଗ )—ବିସର୍ପ ରୋଗ; ଘାଅ ବା Sachibāmaya ବ୍ରଣ ଅବର ବିସର୍ପିବା—Erysipelas.

**ସଚିଲ୍ଲିକ**—ସଂ. ବିଣ. ପୁଂ ( ସ=ସହିତ+ଚିଲ୍ଲିକ=କ୍ଲିନ୍ନ ଚକ୍ଷୁ; Sachillaka ବହୁବ୍ରୀହି)—୧ । କ୍ଲିନ୍ନଚକ୍ଷୁବିଶିଷ୍ଟ—1. Having (ସଚିଲ୍ଲିକା—ସ୍ତ୍ରୀ) moistened or bleared eyes. ୨। ଚିଲ୍ଲ-ଅକ୍ଷିଅ—2. Having the pupils of the eyes greenish.

**ସଚୀ**—ସଂ. ବି—ସଚି ( ଦେଖ )—Sachi ( See ) ଦେ. ବି. ଓ Sachī ବିଣ. ସ୍ତ୍ରୀ—ସଚ୍ଚୀ ( ଦେଖ)—Sachchī ( See ) (ସଗୁ—ପୁଂ. ବିଣ) ଦେ. ବି. ସ୍ତ୍ରୀ (ନାମ) —ଶ୍ରୀ ଚୈତନ୍ୟଦେବଙ୍କ (ସଚୀ ଦେବୀ—ଅନ୍ୟରୂପ) ମାତା—Name of the mother

ସଚୀ **सची** of Sri Chaitanya. ଦେ ବି. ପୁଂ— ଶଚୀନ୍ଦ୍ରନାଥର ଡାକ ନାମ—Nickname of Sachīndranātha. ସଂ. ବି. ସ୍ତ୍ରୀ—ଶଚୀ (ଦେଖ) Sachī (See)

ସଚୀ ନନ୍ଦନ—ଦେ. ବି—ଶ୍ରୀ ଚୈତନ୍ୟ ଦେବ—Sri Chaitanya Sachī nandana সচী নন্দন **सची नन्दन**

ସଚୀନ୍ଦ୍ର—ସଂ. ବି—୧ । (ଷଷ୍ଠୀ ତତ୍ପୁ)—ଇନ୍ଦ୍ର—1. Indra. ୨ । Sachīndra (ଦ୍ୱନ୍ଦ୍ୱ)—ଶଚୀ ଓ ଇନ୍ଦ୍ର—2. Sachī and সচীন্দ্র **सचीन्द्र** Indra. ଦେ. ବି. ପୁଂ—ପୁରୁଷଙ୍କ ନାମ—(ସଚୀନ୍ଦ୍ରକୁମାର, ସଚୀନ୍ଦ୍ରନାଥ—ଅନ୍ୟରୂପ) A name given to males. ଗ୍ରା. ବିଶ—ଛଚିନ୍ଦ୍ର (ଦେଖ) Chhachindra (See)

ସଚ୍ଛଇ—ଦେ. ବି—ସଚ୍ଛେଇ (ଦେଖ)— Sachei Sachchei (See)

ସଚେଇ ହ(ହେ)ବା—ଦେ. କ୍ରି—ସଚ୍ଛେଇ ହବା (ଦେଖ) Sachei ha(he)bā Sachchei habā (See)

ସଚେଇ—ଦେ. ବି ଓ ବିଶ. ସ୍ତ୍ରୀ—ସଚ୍ଛେଇ (ଦେଖ) Sachei Sachchei (See)

ସଚେତ(ତ୍, ତା)—ଦେ. ବିଶ (ସ. ସଚେତନ)—୧ । ଚେତ୍ ଥିବା; Sachet(ta, tā) ଅନିଦ୍ରିତ; ଜାଗ୍ରତ—1. Watching. ୨ । সচেত **सचेत** ଚେତାଳ; ସାବଧାନ; ବୁଝିଥିବା—2. Watchful; vigilant. ୩ । ସଜ୍ଞାନ—3. Conscious. ୪ । [ଅଚେତ୍(ତ, ତା)—ଅନ୍ୟରୂପ] ପୁନଃ ଚେତନାପ୍ରାପ୍ତ—4. Brought back into sense. [ଯଥା—ମୂର୍ଚ୍ଛା ହୋଇଲେ ଜାତ ସଚେତ, ଜ.ମୁଦନ୍ତ ପୁନଃ ସେ ସ୍ମୃତି କରନ୍ତ—ଉଜ୍ଞ. ବୈଦେହୀଶବିଳାସ । ]

ସଚେତ(ତ) ନିଦ—ଦେ. ବି—୧ । ଯହିଁ ସହଜ୍ରେ; ଯେଉଁ ନିଦରେ Sachet(ta) nida ମନୁଷ୍ୟ ବା ଜୀବ ବୁଝିଥାଇ ଥାଏ, ଅର୍ଥାତ୍ সচেত নিদ্রা ଟିକିଏ ଶବ୍ଦ ଶୁଣିଲେ ଜାଗ୍ରତ ହୁଏ—1. Watch- **सचेत निंद** ful or waking sleep. [ଉ—ବୃତ୍ତିର (ଅଚେତ୍ ନିଦ—ବିପରୀତ) ମାନଙ୍କର ସଚେତ ନିଦ; ଜଣେ ଜଣେ ମନୁଷ୍ୟଙ୍କର ସଚେତ ନିଦ ଓ ଜଣଜଣଙ୍କର ଅଚେତା ବା ଗାଢ଼ ନିଦ।] ୨ । ସ୍ୱଳ୍ପ ନିଦ୍ରା; ଯାହା ଗାଢ଼ ନିଦ୍ରା ନୁହେଁ —2. Light sleep; nap.

ସଚେତନ—ସଂ. ବି. ପୁଂ (ସ=ସହ+ଚେତନ; ସହାର୍ଥ ବହୁବ୍ରୀହି)— Sachetana ୧ । ଚୈତନ୍ୟଯୁକ୍ତ—1. Sentient. ୨ । (ସଚେତନା—ସ୍ତ୍ରୀ) ସଜୀବ; ଜୀବନ୍ତ—2. Living; animate. (ଅଚେତନ—ବିପରୀତ) ୩ । ବୁଝିଥିବା; ସତର୍କ— 3. Watchful; vigilant.

ସଚେତନ ଜୀବ (ପ୍ରାଣୀ)—ସଂ. ବି (କର୍ମଧା)—ସଜୀବ ପ୍ରାଣୀ— Sachetana jība (prāṇī) Living being; sentient being.

ସଚେତନ ଦୃଷ୍ଟି—ସଂ. ବି (କର୍ମଧା)—୧ । ତୀକ୍ଷ୍ଣଦୃଷ୍ଟି—1. Sharp Sachetana drushṭi look. ୨ । ସତର୍କ ଦୃଷ୍ଟି— 2. Watchful eyes. ସ. ବିଶ (ବହୁବ୍ରୀହି)—୧ । ତୀକ୍ଷ୍ଣଦୃଷ୍ଟିଶକ୍ତି ବିଶିଷ୍ଟ—1. Having sharp eye-sight. ୨ । ସତର୍କ ଦୃଷ୍ଟିବିଶିଷ୍ଟ—2. Having watchful or vigilant eyes.

ସଚେଲ—ସ. ବିଶ. ପୁଂ (ସ=ସହିତ+ଚେଲ=ବସ୍ତ୍ର; ସହାର୍ଥ Sachela ବହୁବ୍ରୀହି)—ପରିହିତବସ୍ତ୍ର; ସବସ୍ତ୍ର—Wearing (ସଚେଳକ—ଅନ୍ୟରୂପ) cloth; with clothes on (ସଚେଳା—ସ୍ତ୍ରୀ) [ଯଥା—ଚାନାଳଙ୍କୁ ସର୍ପଙ୍କୁ ଓ ଶବ୍ଦାହକଙ୍କୁ ଛୁଇଁଲେ ଦେଖିଲେ ସଚେଲ ସ୍ନାନ କରିବା ଶାସ୍ତ୍ରର ବିଧାନ ଅଛି । ]

ସଚେଳ ସ୍ନାନ—ସ. ବି—ସବସ୍ତ୍ର ସ୍ନାନ; ଲୁଗା ପିନ୍ଧି ଗାଧୋଇବା— Sachela snāna Taking a bath with clothes on.

ସଚେଷ୍ଟ—ସ. ବିଶ. ପୁଂ (ସ=ସହିତ+ଚେଷ୍ଟା; ସହାର୍ଥ ବହୁବ୍ରୀହି) — sacheshṭa ୧ । ଚେଷ୍ଟାଯୁକ୍ତ; ଚେଷ୍ଟାନ୍ୱିତ—1. Exerting; (ସଚେଷ୍ଟା—ସ୍ତ୍ରୀ) endeavouring; striving. ୨ । ଉଦ୍‌ଯୋଗୀ—2. Energetic. ସ. ବି—ଅମ୍ବ; ଅମ୍ବ— Mango.

ସଚ୍ଚୋଟ(ଟ)—ଦେ. ବିଶ. ପୁଂ ଓ ସ୍ତ୍ରୀ (ସଂ. ସତ୍)—୧ । ସାଧୁ; ସତ୍— Sachot(ṭa) 1. Honest. ୨ । ପ୍ରଭୁଭକ୍ତ—2. Dutiful; সাচ্চা, সাঁচা loyal. ୩ । (ସଂ. ସତ୍ୟ) (ପୁଂ) ସତ୍ୟବାଦୀ— **सच्चा** 3. Truthful. ୪ । (ସ୍ତ୍ରୀ) ସତୀ—4. (a wife) Faithful to the husband; chaste. ଦେ. ବି—ସଚ୍ଚୋଟତ୍ୱ—Honesty.

ସଚ୍ଚୋଟ ଦେଖା(ଖେ)ଇ ହ(ହେ)ବା—ଦେ. କ୍ରି—ସଚ୍ଚୋଟପଣ ଦେଖାଇ- Sachoṭ dekhā(khe)i ha(he)bā ହେବା—To simul- স(সা)চ্চা দেখান ate honesty or truthfulness. **सच्चा दिखलाना**

ସଚ୍ଚୋଟ ପଣ—ଦେ. ବି—୧ । ସାଧୁତା—1. Honesty ୨ । ସତ୍ୟ Sachoṭ paṇa ବାଦିତା—2. Truthfulness. সাচ্চা পনা, সাঁচ্চা পানা **सच्चा पन** (ସଚୋଟ ପଣିଆ—ଅନ୍ୟରୂପ)

ସଚ୍ଚୋଟ ପଣ ଦେଖା(ଖେ)ଇ ହେବା—ଦେ. କ୍ରି—ସଚ୍ଚୋଟ ଦେଖାଇହେବା Sachoṭ paṇa dekhā(khe)i hebā (ଦେଖ)—Sochoṭ dekhāi hebā (See)

ସଚ୍ଚୋଟି—ଦେ. ବି—ସଚ୍ଚୋଟ ପଣ (ଦେଖ)— Sachoṭi Sachoṭ paṇa (See) (ସଚ୍ଚୋଟିଆ—ବିଶ)

ସଚ୍ଚଟ (ଇତ୍ୟାଦି)—ଦେ. ବି ଓ ବିଶ. ପୁଂ ଓ ସ୍ତ୍ରୀ (ସଂ. ସତ୍)— Sachchaṭ (etc) ସଚ୍ଚୋଟ ଇତ୍ୟାଦି (ଦେଖ) Sachoṭ etc (See)

ସଚ୍ଚଟିଆ—ଦେ. ବିଶ. ପୁଂ ଓ ସ୍ତ୍ରୀ—ସଚ୍ଚୋଟ (ଦେଖ) Sachchaṭiā Sachoṭ (See)

ସଚ୍ଚଟିଆ ପଣ—ଦେ. ବି—ସଚ୍ଚୋଟ ପଣ (ଦେଖ) Sachchaṭiā paṇa Sachoṭ paṇa (See) [ସଚ୍ଚିଆ ପଣିଆ, ସଚ୍ଚଟ ପଣ, ସଚ୍ଚଟ ପଣିଆ—ଅନ୍ୟରୂପ ]

ସଚ୍ଚା—ଦେ. ବଣ. ପୁଂ ( ହୃଦୀୟ ଅନୁକୂଳ )—୧ । ସଚ୍ଚୋଟ୍ (ଦେଖ) Sachchā 1. Sachot ( See ) ୨ । ( ସଂ. ସତ୍ୟ ) ଅସଲ; ଖାଣ୍ଟି; ଅକୃତ୍ରିମ; ଅବମିଶ୍ର; ପ୍ରକୃତ—1. Genuine; pure; unadulterated; unmixed; real
ସାଚ୍চা, স'চা
सच्चा
[ସଚ୍ଚେଇ, ସଚ୍ଚୀ—ସ୍ତ୍ରୀ] ( article ). ଦେ. ବ—ସଚ୍ଚାପଣ—[ ଲୁପ୍ତ—ଵ୍ୟବହୃତ ] Honesty; truthfulness.

ସଚ୍ଚାଇ ( ଇତ୍ୟାଦି )—ଦେ· ବ—ସଚ୍ଚେଇ ଇତ୍ୟାଦି ( ଦେଖ ) Sachchāi (etc) Sachchei etc ( See )

ସଚ୍ଚାଈ—ଦେ. ବଣ. ସ୍ତ୍ରୀ—ସଚ୍ଚାର ସ୍ତ୍ରୀଲିଙ୍ଗ ( ଦେଖ ) Sachchāi (ସଚ୍ଚା—ପୁଂ) Feminine of Sachchā (See)

ସଚ୍ଚା ଜରି—ଦେ. ବ ( ସଂ. ସତ୍ୟ+ଫା. ଜରି )—ଅସଲ ସୁନାରୁ Sachchā jari ବା ରୂପାରୁ କର୍ମିତ ଜରି—Lace of pure
স[সাঁ]চ্চা জরি
असली जरी
gold or silver.
[ ଲୁପ୍ତ ଜରି—ବ୍ୟବହୃତ ]

ସଚ୍ଚା ଦେଖା[ଖେ]ଇ ହୁ[ହେ]ବା—ଦେ. କ୍ରି—ସଚ୍ଚୋଟ୍ ଦେଖାଇ Sachchā dekhā[khe]i ha[he]bā ହେବା ( ଦେଖ )—
সাচ্চা দেখান
सच्चा दिखलाना
Sachot dekhāi hebā ( See )

ସଚ୍ଚା ପଣ—ଦେ. ବ—ସଚ୍ଚୋଟ୍ ପଣ [ ଦେଖ ]—Sachot pana Sachchā pana [ See ]
সাচ্চাপন(না)
सच्चापन
[ ସଚ୍ଚା ପଣିଆ, ସଚ୍ଚାଗିରି—ଅନ୍ୟରୂପ ]

ସଚ୍ଚାପଣ ଦେଖା[ଖେ]ଇ ହୁ[ହେ]ବା—ଦେ. କ୍ରି—( ମକାର୍ଥ )—Sachchāpana dekhā[khe]i ha(he)bā ୧ । ଲୋକଙ୍କୁ ଦେଖାଇବା ପାଇଁ ନିଜର ସାଧୁତାର ବା ସତ୍ୟବାଦିତାର ବାହାନା କରିବା—
সাচ্চাপানা দেখান
सच्चापन दिखलाना
1. To feign honesty or truthfulness; to affect honesty or truthfulness. ୨ । ନିଜର ସତ୍ୟବାଦିତା, ସାଧୁତା ବା ସଚ୍ଚରିତ୍ର ବିଷୟରେ ଲୋକସମାଜରେ ଆସ୍ଫାଳନ କରିବା—2. To brag or boast of one's honesty, chastity or truthfulness.

ସଚ୍ଚା ମାଲ—ଦେ. ବ—ଶୁଦ୍ଧ ପଦାର୍ଥ ଓ ବସ୍ତୁର ପଦାର୍ଥ; ଉତ୍ତମ ବସ୍ତୁ; Sachchā māla ଖାଣ୍ଟି ଜିନିଷ; ଅସଲ ଚିଜ—
স(সা)চ্চা মাল
असली माल
Genuine article.

ସଚ୍ଚାରା—ସଂ. ବ ( ବୈଦ୍ୟକ )—ହରିଦ୍ରା; ହଳଦୀ—Sachchārā Turmeric.

ସଚ୍ଚିତ୍—ସଂ. ବ ( ସତ୍+ଚିତ୍; ଯେ ସତ୍=ନିତ୍ୟ ଓ ଚିତ୍=Sachchit ଜ୍ଞାନମୟ ଅଟନ୍ତି )—ପରଂବ୍ରହ୍ମ; ବ୍ରହ୍ମ—The Divine Essence or the Universal Soul.

ସଚ୍ଚିଦ ଆନନ୍ଦ—ଗ୍ରା. ବ (ପଦ୍ୟ) (ସଂ. ସଚ୍ଚିଦାନନ୍ଦର ଅଶୁଦ୍ଧ ପ୍ରୟୋଗ) Sachchida ānanda —ସଚ୍ଚିଦାନନ୍ଦ ( ଦେଖ )
সচ্চিদ্ আনন্দ
सच्चिद आनन्द
Sachchidānanda ( See )
[ ଯଥା—ଚୌଦିଗେ ସଚ୍ଚିଦ ଆନନ୍ଦ, ସ୍ଵରୂପ ଅଟନ୍ତି ଗୋବିନ୍ଦ—ପ୍ରାଚୀ. ପୂର୍ଣ୍ଣତମ ଚନ୍ଦ୍ରୋଦୟ । ]

ସଚ୍ଚିଦାନନ୍ଦ—ସଂ. ବ ( ସତ୍+ଚିତ୍+ଆନନ୍ଦ; ଯେ ସତ୍=ନିତ୍ୟ Sachchidānanda ଚିତ୍=ଜ୍ଞାନମୟ ଓ ଆନନ୍ଦ=ଆନନ୍ଦମୟ ଅଟନ୍ତି )—୧ । ବ୍ରହ୍ମ—1. The Divine Essence or the Universal Soul. ୨ । ବିଷ୍ଣୁ—2. Bishnu. ୩ । ପରମେଶ୍ୱର—3. God. ଦେ. ବ. ପୁଂ—ଲୋକଙ୍କ ନାମ—A name given to males.

ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ—ଦେ. ବ ( ନାମ )—ବାମଣ୍ଡାର ସ୍ୱନାମ-Sachidānanda tribhubana deba ଧନ୍ୟ ସ୍ୱର୍ଗତ ରାଜା—Name of late illusrious Raja of Bamra State of Orissa.

[ ଦ୍ର—ସଚ୍ଚିଦାନନ୍ଦତ୍ରିଭୁବନ ଦେବ—ବାମଣ୍ଡା ରାଜ୍ୟର ସ୍ୱର୍ଗୀୟ ଅଧିଶ୍ୱର । ଜନ୍ମ—ଖ୍ରୀ।୧୮୭୨; ଲୋକାନ୍ତର—୧୧।୩।୧୯୧୬ ।

ଗଙ୍ଗବଂଶ ସମ୍ଭୂତ ଉତ୍କଳୀୟ ଦେଶୀୟ ରାଜାଗଣଙ୍କ ଅଗ୍ରଣୀ ଗଙ୍ଗବଂଶ ଭାସ୍କର ଲୋକୋତ୍ତର ପ୍ରତିଭାଶାଳୀ ବାମଣ୍ଡାଧିପ ପ୍ରଥିତଯଶା ସର୍ ବାସୁଦେବ ସୁଢଳଦେବଙ୍କର ଯୋଗ୍ୟ ଜ୍ୟେଷ୍ଠାତ୍ମଜ ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କ ପବିତ୍ର ନାମ ଉତ୍କଳର ପ୍ରତି ପଲ୍ଲୀରେ ଗୃହେ ଗୃହେ ସାଦରିତ । ପିତୃପାଦଙ୍କ ଅନୁସରଣ କରି ବାମଣ୍ଡାର ନରପତି ରୂପେ ଉତ୍କଳରେ ସେ ଯେଉଁ ମହାଦର୍ଶ ପ୍ରତିଷ୍ଠା କରିଯାଇ ଅଛନ୍ତି, ତାହାର ପଶ୍ଚାନ୍ତର ଉତ୍କଳରେ କାହିଁକି, ଭାରତରେ ସୁଦ୍ଧା ବିରଳ । ଏକାଧାରରେ ସୁଶାସକ, ସୁକବି, ସୁଲେଖକ, ସୁବକ୍ତା, ବୈଜ୍ଞାନିକ, ଯୋଦ୍ଧା, ମୃଗୟୁ, ଚିତ୍ରକର, ସଙ୍ଗୀତଜ୍ଞ ଓ ବେଦାଧ୍ୟାୟୀ ହେବା ସହସ୍ରେକେ ହଜାରକେ ଜଣେ ଜଣେ ନରପତିଙ୍କ ଭାଗ୍ୟରେ ଘଟିଥାଏ । ଅଳ୍ପ ଦିନ ପୂର୍ବେ ସେ ଉତ୍କଳକୋଳରୁ ବିଦାୟ ନେଇ ଦିବ୍ୟଧାମକୁ ଗଲେଣି ଅଛନ୍ତି ସତ୍ୟ, ମାତ୍ର ତାହାଙ୍କ ଗୁଣାବଳୀର ଦିବ୍ୟସୌରଭ ପୂର୍ବ ପରି ଉତ୍କଳର ଗଗନ-ପବନକୁ ସୁଳୋଭିତ କରି ରହିଅଛି ପ୍ରସଙ୍ଗରୁ ପ୍ରକାଶ ଜାତ ହୋଇ ଧ୍ୱାନ୍ତ ନାଶ କଲାପରି ପୁଣ୍ୟାତ୍ମା ସ୍ୱର୍ଗୀୟ ସଚ୍ଚିଦାନନ୍ଦ ସର୍ ବାସୁଦେବଙ୍କଠାରୁ ଜାତ ହୋଇ ଉତ୍କଳ ଖଣ୍ଡକୁ ତାଙ୍କର ଗାର୍ହସ୍ଥ୍ୟରେ ଧବଳିତ କରିଥିଲେ ଏବଂ ବାମଣ୍ଡାର ଭାଗ୍ୟାକାଶ ତାଙ୍କୁ ପୂର୍ଣ୍ଣିମା-ସୁଧାକର ରୂପେ ଲାଭ କରି ଧନ୍ୟ ହୋଇଥିଲା ।

ରାଜା ସର୍ ବାସୁଦେବ ସୁଢଳଦେବଙ୍କ ପଟ୍ଟମହିଷୀ କଳାହାଣ୍ଡି ମହାରାଜକୁମାରୀ ସତୀ ସାଧ୍ୱୀ ସ୍ୱର୍ଗତା ଗିରିରାଜକୁମାରୀଙ୍କ ଗର୍ଭରେ ୧୮୭୨ ଖ୍ରୀଷ୍ଟାବ୍ଦ ମେ ମାସ ୩ ତାରିଖ ଦିନ ସଚ୍ଚିଦାନନ୍ଦଙ୍କର ଆବିର୍ଭାବ ହୋଇଥିଲା । ସଚ୍ଚିଦାନନ୍ଦ ଦୁଇଟି ମାତ୍ର ବର୍ଷ ମାତୃସ୍ନେହ ଭୋଗ କରିଥିଲେ, କାରଣ ଦାରୁଣ ନିୟତିର ନିର୍ମ୍ମମ ବ୍ୟବସ୍ଥାରେ ତାହାଙ୍କ ମାତା ନିଖିଳ ଗୁଣବତୀ ଗିରିରାଜ-କୁମାରୀ ବାମଣ୍ଡା ରାଜାନ୍ତଃପୁରକୁ ଘୋର ତମସାଚ୍ଛନ୍ନ କରି ଏବଂ ଅନୁରାଗୀ ପତିଙ୍କ ହୃଦୟକୁ ଶତଧା ଭଗ୍ନ କରି ସ୍ୱର୍ଗାରୋହଣ କଲେ । ତେଣୁ ସଚ୍ଚିଦାନନ୍ଦ ଅଶୈଶବ ମାତୃସ୍ଥାନ ଓ ମାତୃ-

ବାତ୍ସଲ୍ୟରୁ ବଞ୍ଚିତ । ତାଙ୍କ ସ୍ନେହମୟୀ ପିତାମହୀ ମାତାଙ୍କ ସ୍ଥାନ ଅଧିକାର କରି ସଚ୍ଚିଦାନନ୍ଦଙ୍କୁ ଲାଳନପାଳନ କରିଥିଲେ ସିନା ମାତୃବିୟୋଗଜନିତ ଶୋକର ମୁର୍ମୁରଦାହ ସଚ୍ଚିଦାନନ୍ଦଙ୍କ ଶିଶୁ-ହୃଦୟକୁ ଆମରଣ ଦଗ୍ଧ କରିଥିଲା । ନିଜର ସ୍ନେହମୟୀ କନିଷ୍ଠା କନ୍ୟା ମନ୍ଦାକିନୀଙ୍କୁ 'ମା', 'ମା' ବୋଲି ସମ୍ବୋଧନ କରି ସେ କଥଞ୍ଚିତ୍ ଶାନ୍ତିଲାଭ କରୁଥିଲେ, କିନ୍ତୁ ନିଦାରୁଣ ବିଧାତା ଏ ଜେମାଙ୍କୁ ମଧ୍ୟ ଶୈଶବାବସ୍ଥାରେ ସଚ୍ଚିଦାନନ୍ଦଙ୍କ କୋଳରୁ ମୃତ୍ୟୁର କରାଳ ହସ୍ତଦ୍ୱାରା ଅପସାରିତ କରି ନେଇଗଲେ ।

"ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ"ର ଉତ୍ସର୍ଗ ପତ୍ରରେ ସ୍ୱର୍ଗତା ଜନନୀଙ୍କୁ ଉଦ୍ଦେଶ୍ୟ କରି କବି ସଚ୍ଚିଦାନନ୍ଦ ଯାହା ଲେଖି-ଯାଇଅଛନ୍ତି ତହିଁରେ ତାଙ୍କ ଜନନୀପ୍ରୀତି ଉଦ୍‌ବେଳ ହୋଇ ଆତ୍ମପ୍ରକାଶ କରିଅଛି ।

"ମା ! ନାହିଁ ମୋର ମନେ, ପୁଣି ଜାଣି ନାହିଁ ତୋତେ
'ମା' —ବୋଲି ଦୁର୍ଲ୍ଲଭ ସଦା ମୋହର ଭାଗ୍ୟରେ
'ମା', ଏମନ୍ତେ ହଳାହଳ ଏ ଅମିୟ ବାଣୀ;
ତୋଷିବାକୁ ଦୁଃଖମୟ ଜୀବନ ମୋହର
ଡାକୁଥିଲି ତବ ନାମେ, ସ୍ନେହେ 'ମା' 'ମା' ବୋଲି ।
ଈଶ୍ୱର ହୃଦୟେ ହାୟ ଶାନ୍ତି ସ୍ୱରୂପିଣୀ
ମନୋଜ୍ଞା କୋଡ଼ଲାଳିତା ତନୟାକୁ ମୋର ।
+ + +
"ମଙ୍ଗଳର ଅକାଳରେ ସେ ଗରୁ-ପରଶେ
ପରାଣତୋଷିଣୀ ରମ୍ୟା କୁସୁମକଳିକା
ଅଧିଷ୍ଠିତା ଆଜ ସେହି ତବ ବାମକୋଡ଼େ
ପାଳି ରଖ ଅନ ତବ ତନୟ ପାଇଁକି ।"

ସଚ୍ଚିଦାନନ୍ଦଙ୍କ ଜନ୍ମପତ୍ରିକାରେ ଗ୍ରହମାନଙ୍କ ସମୁଚ୍ଚ ଅବସ୍ଥାନ ଦେଖି ଜ୍ୟୋତିଷୀମାନେ କହୁଥିଲେ ଯେ, ସେ ଜଣେ ବିଶ୍ରୁତକୀର୍ତ୍ତି ନରପତି ହେବେ ଏବଂ ମେଧାବତା ଓ ପାଣ୍ଡିତ୍ୟରେ ନୃପତିଜଗତରେ ଅଦ୍ୱିତୀୟ ସ୍ଥାନ ଅଧିକାର କରିବେ । ଯଥା-କାଳରେ ସେମାନଙ୍କର ଉକ୍ତ ବାଣୀ ସଫଳ ହୋଇଥିଲା ।

କୁମାରଙ୍କ ବ୍ରତୋପନୟନ ପରେ ରାଜା ସର୍ ସୁଦଳ ଦେବ ଗୃହଶିକ୍ଷକ ନିଯୁକ୍ତ କରି ସଚ୍ଚିଦାନନ୍ଦଙ୍କର ବାଲ୍ୟଶିକ୍ଷା ଆରମ୍ଭ କରାଇଲେ । ମେଦିନୀପୁର ନିବାସୀ ୰ ଈଶ୍ୱରଚନ୍ଦ୍ର ମିଶ୍ର ସଚ୍ଚିଦାନନ୍ଦଙ୍କର ଆଦ୍ୟ ଶିକ୍ଷକ ଥିଲେ । ଶିକ୍ଷାସମାପ୍ତି ପରେ ସୁଦ୍ଧା ସଚ୍ଚିଦାନନ୍ଦଙ୍କର ସେ ମହାଶୟଙ୍କ ପ୍ରତି ଅଚଳା ଭକ୍ତି ରହିଥିଲା । ସଚ୍ଚିଦାନନ୍ଦ ତାଙ୍କୁ ଆମରଣ ଟ ୩୦୯ ଲେଖାଏଁ ପେନ୍‌ସନ୍ ଦେଉଥିଲେ ଏବଂ ତାଙ୍କ ବିଧବା ପତ୍ନୀ ମଧ୍ୟ ଏପର୍ଯ୍ୟନ୍ତ ସଚ୍ଚିଦାନନ୍ଦଙ୍କ ପ୍ରଦତ୍ତ ବୃତ୍ତିରେ ପ୍ରତିପାଳିତା ହୋଇ ବାମଣ୍ଡାରେ ଅବସ୍ଥାନ କରୁଅଛନ୍ତି । ଶ୍ରୀଯୁକ୍ତ ଈଶ୍ୱରଚନ୍ଦ୍ର ମିଶ୍ରଙ୍କ ପରେ କଟକ ଜିଲ୍ଲା ବାଙ୍କୀ ସୁବର୍ଣ୍ଣପୁରବାସୀ ବାବୁ ଜଗନ୍ନାଥ ପଟ୍ଟନାୟକ, ବାଲେଶ୍ୱର ନିବାସୀ ବାବୁ ଭୋଳାନାଥ ସାମନ୍ତରାୟ ଏବଂ ବଙ୍ଗଦେଶର ବାବୁ ବିମଳାଲ ମିଶ୍ର, ବାବୁ ଦୈଶଚନ୍ଦ୍ର ଘୋଷ, ବାବୁ ବିଜୟଚନ୍ଦ୍ର ମଜୁମଦାର, ବାବୁ ଗୋପା ଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟ, ବାବୁ ରେବତୀମୋହନ ଦାସ ଏମ୍. ଏ ଓ ଢେଙ୍କାନାଳର ବାବୁ ଗଣେଶ୍ୱର ପଟ୍ଟନାୟକ ବି. ଏ. ସଚ୍ଚିଦାନନ୍ଦଙ୍କର ଗୃହଶିକ୍ଷକ ରୂପେ ନିଯୁକ୍ତ ହୋଇଥିଲେ ।

ଯୁବରାଜଙ୍କୁ ପ୍ରଜାପୁତ୍ରମାନଙ୍କ ସହିତ ଏକ ବିଦ୍ୟାଳୟରେ ଶିକ୍ଷାଦେବା ସର୍ ବାସୁଦେବଙ୍କର ନୀତି ଥିଲା । ଭବିଷ୍ୟତର ରାଜା ଓ ଭବିଷ୍ୟତର ପ୍ରଜା ପରସ୍ପର ସହିତ ଆଗରୁ ମିଶିବାର ଅବକାଶ ପାଇଲେ ପରିଚୟ, ସହଯୋଗ ଓ ସହାନୁଭୂତିର ସୁଯୋଗ ମିଳିବ, ଏହି ଉଦ୍ଦେଶ୍ୟ ରଖି ସର୍ ବାସୁଦେବ ସଚ୍ଚିଦାନନ୍ଦ-ଙ୍କର ଦେବଗଡ଼ ରାଜକୁମାର ହାଇ ସ୍କୁଲରେ ନାମ ଲେଖାଇ ଦେଲେ । ସେତେବେଳକୁ ବାମଣ୍ଡାରେ ପ୍ରଜାସାଧାରଣଙ୍କ ମଧ୍ୟରେ ଉଚ୍ଚ ଶିକ୍ଷାପ୍ରତି ଆଦୌ ଆଦର ଲକ୍ଷିତ ହେଉ ନ ଥିଲା । ଯୁବରାଜ ସଚ୍ଚିଦାନନ୍ଦ ସ୍କୁଲରେ ପଢୁଅଛନ୍ତି ଓ ସ୍କୁଲରେ ପଢ଼ିଲେ ପିଲାଙ୍କୁ ତାଙ୍କ ସାହଚର୍ଯ୍ୟ ମିଳିବ, ଏହି ଆଶାରେ ଅଭିଭାବକମାନେ ଉଚ୍ଚ ଶିକ୍ଷା ଲାଭ ନିମନ୍ତେ ନିଜର ପିଲାମାନଙ୍କୁ ସ୍କୁଲକୁ ପଠାଇଲେ ଏବଂ ଦିନକୁ ଦିନ ରାଜକୁମାର ହାଇ ସ୍କୁଲର ଛାତ୍ର ସଂଖ୍ୟା ବଢ଼ିଲା । ପାଠଦଶାରେ ସଚ୍ଚିଦାନନ୍ଦ ନିଜର ସୌଜନ୍ୟମୟ ବିନୀତ ବ୍ୟବହାର ଦ୍ୱାରା ସହାଧ୍ୟାୟୀମାନଙ୍କୁ ମୁଗ୍ଧ କରିଥିଲେ ଓ ତାଙ୍କ ଯୁବରାଜ ପଦବୀକୁ ଭୁଲି ତାଙ୍କୁ ଜଣେ ସାଧାରଣ ସହାଧ୍ୟାୟୀ ବୋଲି ଜ୍ଞାନ କରିବାକୁ ସେମାନଙ୍କୁ ପ୍ରବର୍ତ୍ତାଇ ଥିଲେ । ସାଧାରଣ ବ୍ୟକ୍ତି ପରି ସେ ସହାଧ୍ୟାୟୀମାନଙ୍କ ସହିତ ନିର୍ଦ୍ଦୋଷ ଆମୋଦ ପ୍ରମୋଦରେ ବ୍ୟାପୃତ ରହୁଥିଲେ । ତାଙ୍କ ସହାଧ୍ୟାୟୀମାନଙ୍କ ମଧ୍ୟରୁ ଯେଉଁମାନେ ଜୀବିତ ଅଛନ୍ତି ସେମାନେ ଆଜି ସୁଦ୍ଧା ସେମାନଙ୍କ ଜୀବନର ସେହି ସୁଦିନର ସ୍ମୃତିକୁ ଦୀର୍ଘ ନିଃଶ୍ୱାସ ପକାଇ ସ୍ମରଣ କରିଥାଆନ୍ତି । ରାଜକୁମାର ହାଇ ସ୍କୁଲର ସାପ୍ତାହିକ ସାହିତ୍ୟାଲୋଚନା ସଭା ଛାତ୍ର ସଚ୍ଚିଦାନନ୍ଦଙ୍କର ସୃଷ୍ଟି ଏବଂ ତାହା ଆଜି ସୁଦ୍ଧା ବିଦ୍ୟମାନ । ଏହି ସଭା ନିମନ୍ତେ ସନ୍ଦର୍ଭଲେଖା ଅଭ୍ୟାସ କରିବା ଦ୍ୱାରା ଦେବଗଡ଼ରେ ବହୁ ସାହିତ୍ୟ ସେବକଙ୍କ ସାହିତ୍ୟ ଜୀବନର ମୂଳଭିତ୍ତି ପଡ଼ି ପାରିଥିଲା ଓ ବାମଣ୍ଡା ରାଜଧାନୀ 'ବୁଧହଂସ କେଳିସର' ରୂପେ ଉତ୍କଳ ଖଣ୍ଡରେ ନିଜର ଟେକକୁ ଅକ୍ଷୁଣ୍ଣ ରଖିଥିଲା । ସଚ୍ଚିଦାନନ୍ଦ ଭବିଷ୍ୟତରେ ଯେ ଜଣେ ସାହିତ୍ୟରଥୀ ହେବେ, ଏଥିର ସୂଚନା ମଧ୍ୟ ଏହି ଆଲୋଚନା ସଭା ପାଇଁ ଉଦ୍ଦିଷ୍ଟ ତାଙ୍କ ପ୍ରବନ୍ଧାବଳୀ ଓ ପଦ୍ୟାବଳୀରୁ ମିଳିଥିଲା ।

୧୮୯୦ ଖ୍ରୀଷ୍ଟାବ୍ଦରେ ମିଡ଼ିଲ୍ ଇଂଲିଶ୍ ପରୀକ୍ଷା ଦେଇ ସଚ୍ଚିଦାନନ୍ଦ ଦେଶାଟନପ୍ରେମିକ ପିତାଙ୍କ ନିର୍ଦ୍ଦେଶରେ ଭାରତ ଭ୍ରମଣରେ ବହିର୍ଗତ ହେଲେ । ଭ୍ରମଣରୁ ଫେରିଆସି ସେ "ସମ୍ବଲପୁର ହିତୈଷିଣୀ"ରେ 'ବମ୍ବେଇ ଭ୍ରମଣ ବୃତ୍ତାନ୍ତ' ନାମରେ ଗୋଟିଏ ସନ୍ଦର୍ଭ ପ୍ରକାଶ କରିଥିଲେ । ଅଳ୍ପ ବୟସରେ ଲିଖିତ ଉକ୍ତ ପ୍ରବନ୍ଧରୁ ସଚ୍ଚିଦାନନ୍ଦଙ୍କ ଭବିଷ୍ୟତ୍ ଜୀବନର ସୂଚନା ମିଳିଥିଲା । ତାଙ୍କ 'ବହୁତୋମୁଖୀ' ପ୍ରତିଭା ବାଲ୍ୟକାଳରୁ ସୁଦ୍ଧା ତାଙ୍କୁ ପାରିପାର୍ଶ୍ୱିକ ଘଟଣାବଳୀ ଓ ଦୃଶ୍ୟା-ବଳୀକୁ ପୁଙ୍ଖାନୁପୁଙ୍ଖ ରୂପେ ପର୍ଯ୍ୟବେକ୍ଷଣ କରିବାକୁ ପ୍ରେରଣା ପ୍ରଦାନ କରିଥିଲା । ଛାତ୍ରଜୀବନରେ ତାଙ୍କ କବିତା ପ୍ରତିଭା-ବୃକ୍ଷର ଅଙ୍କୁରୋଦ୍‌ଗମ ହୋଇଥିଲା ।

ବିଦ୍ୟାଳୟଗତ ଶିକ୍ଷା ଛଡ଼ା ସର୍ ବାସୁଦେବ ଇଂରାଜୀ, ସଂସ୍କୃତ ଓ ଓଡ଼ିଆ ଭାଷାରେ ସଚ୍ଚିଦାନନ୍ଦଙ୍କର ସବିଶେଷ ବ୍ୟୁତ୍ପତ୍ତି ଲାଭ ନିମନ୍ତେ ଯଥୋଚିତ ବ୍ୟବସ୍ଥା କରିଥିଲେ । ଏ ସବୁ ଭାଷାରେ ସେହି ଯୁଗର ଶ୍ରେଷ୍ଠ କୃତବିଦ୍ୟ ମନୀଷୀମାନେ ସଚ୍ଚିଦାନନ୍ଦଙ୍କ ଗୃହଶିକ୍ଷକ ପଦରେ ନିର୍ବାଚିତ ହୋଇଥିଲେ । ରାଜକୁମାରଙ୍କ ସାହିତ୍ୟଶିକ୍ଷା ଛଡ଼ା ବିଜ୍ଞାନଶିକ୍ଷା ନିମନ୍ତେ ମଧ୍ୟ ସର୍ ବାସୁଦେବଙ୍କ ଦ୍ୱାରା ନାନା ବ୍ୟବସ୍ଥା କରି ଯାଇଥିଲା । ବିଜ୍ଞାନ ଶିକ୍ଷାର ଆବଶ୍ୟକ ବହୁମୂଲ୍ୟ ଉପକରଣ 'ବିଜ୍ଞାନାଗାର' ନାମକ ଗୃହରେ ସଜ୍ଜିତ ହୋଇ ରଖା ହୋଇଥିଲା ଓ ବେତନପ୍ରାପ୍ତ ଜଣେ ଶିକ୍ଷକଙ୍କ ଛଡ଼ା କଟକ ରେଭେନ୍‌ସା କଲେଜର ତତ୍କାଳୀନ ବିଜ୍ଞାନାଧ୍ୟାପକ ରାୟବାହାଦୁର ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି ଏମ୍. ଏ. ରାଜା ବାସୁଦେବଙ୍କ ନିମନ୍ତ୍ରଣ ରକ୍ଷା କରି ବାମଣ୍ଡାରେ କେତେକାଳ ଅବସ୍ଥାନ ପୂର୍ବକ ସଚ୍ଚିଦାନନ୍ଦଙ୍କ ବିଜ୍ଞାନଚର୍ଚ୍ଚାରେ ସହାୟତା କରୁଥିଲେ ।

ସଙ୍ଗୀତ, ଚିତ୍ରାଙ୍କନ ପ୍ରଭୃତି ଲଳିତ କଳା ମଧ୍ୟ ସଚ୍ଚିଦାନନ୍ଦ ଅବହିତ ଚିତ୍ତରେ ଅଭ୍ୟାସ କରୁଥିଲେ । ତାଙ୍କର ସଙ୍ଗୀତଜ୍ଞାନ ବିକାଶନରେ ତାଙ୍କୁ ବହୁତ ସହାୟତା କରିଥିଲା । କଲିକତାର ତତ୍କାଳୀନ ବିଖ୍ୟାତ ସଙ୍ଗୀତ ସମାଜ ସଚ୍ଚିଦାନନ୍ଦଙ୍କୁ ଅନାରେରି ସଭ୍ୟ ପଦରେ ବରଣ ପୂର୍ବକ ତାଙ୍କ ଠାରୁ ଟ ୫୦୦୦ ଦାନ ଗ୍ରହଣ କରି ନିଜର ଆର୍ଥିକ ଅବସ୍ଥାର ଉନ୍ନତି ବିଧାନ କରିଥିଲେ । ସଚ୍ଚିଦାନନ୍ଦଙ୍କ ହସ୍ତାଙ୍କିତ ନାନା ଚିତ୍ର ଉତ୍କଳୀୟ ଓ ବଙ୍ଗୀୟ ମାସିକ ପତ୍ରିକାମାନଙ୍କରେ ମୁଦ୍ରିତ ହୋଇଥିଲା ଓ ବଙ୍ଗଳାର ବିଖ୍ୟାତ ଚିତ୍ରକର ଓ. ସି. ଗାଙ୍ଗୁଲି ପ୍ରଭୃତି ସୁଧୀବର୍ଗ ସଚ୍ଚିଦାନନ୍ଦଙ୍କ ଚିତ୍ରକଳା ପ୍ରତିଭାରେ ମୁଗ୍ଧ ହୋଇ ତାଙ୍କ ସହିତ ବନ୍ଧୁତା ସ୍ଥାପନ କରିଥିଲେ ।

ଏ ସବୁ ଛଡ଼ା କ୍ଷତ୍ରିୟୋଚିତ ଅସ୍ତ୍ରଶସ୍ତ୍ରବିଦ୍ୟାରେ ମଧ୍ୟ ସଚ୍ଚିଦାନନ୍ଦ ଅସାମାନ୍ୟ ନିପୁଣତା ଅର୍ଜନ କରିଥିଲେ । ଅବ୍ୟର୍ଥସନ୍ଧାନୀ ମୃଗୟୁ ରୂପେ ତାଙ୍କର ଯଥେଷ୍ଟ ଖ୍ୟାତି ଥିଲା ଓ "ଅଖେଟ" ବାମଣ୍ଡାର ହିଂସ୍ର ଶ୍ୱାପଦବର୍ଗଙ୍କ ଉପଦ୍ରବ ସଚ୍ଚିଦାନନ୍ଦଙ୍କ ମାରଣତତ୍ପରତା ଯୋଗୁଁ ବାମଣ୍ଡାରାଜ୍ୟବାସିଗଣ ଏକାବେଳକେ ବିସ୍ମୃତ ହୋଇ ଯାଇଥିଲେ । ୧୮୯୯ ଖ୍ରୀଷ୍ଟାବ୍ଦରେ କଲିକତାର ରୟାଲ୍ ଏସିଆଟିକ୍ ସୋସାଇଟି ତାଙ୍କ ଜ୍ଞାନଗରିମାର ପରିଚୟ ପାଇ ତାଙ୍କୁ ସଭ୍ୟ ପଦରେ ବରଣ କରିଥିଲେ ।

ଦେବଗଡ଼ରେ ସାହିତ୍ୟ ଆଲୋଚନା ନିମନ୍ତେ 'ଆଲୋଚନା ସଭା' ନାମରେ ଯେଉଁ ସମିତି ସଂସ୍ଥାପିତ ହୋଇଥିଲା ସେହି ସମିତିପକ୍ଷରୁ ଟୀକାଏତ ସଚ୍ଚିଦାନନ୍ଦଙ୍କ ଆର୍ଥାନୁକୂଲ୍ୟରେ "ଆଲୋଚନା" ନାମକ ପତ୍ରିକା ପ୍ରକାଶିତ ହେଉଥିଲା । ଏ ପତ୍ରିକାରେ ନାନାବିଧ ବିଷୟରେ ସ୍ୱରଚିତ ପ୍ରବନ୍ଧମାନ ପ୍ରକାଶ କରି ଯୁବକ ସଚ୍ଚିଦାନନ୍ଦ ତାଙ୍କ ପ୍ରତିଭାମୟ ଭବିଷ୍ୟତ ସାହିତ୍ୟିକ ଜୀବନର ସୂଚନା ପ୍ରଦାନ କରିଥିଲେ । ସଚ୍ଚିଦାନନ୍ଦ ଯେ ଜଣେ ପ୍ରତିଭାଶାଳୀ କବି ହେବେ ଏହା ମଧ୍ୟ "ଆଲୋଚନା"ରେ ପ୍ରକାଶିତ ତାଙ୍କ ପଦ୍ୟାବଳୀରୁ ସ୍ପଷ୍ଟ ସୂଚିତ ହେଉଥିଲା ।

ସଚ୍ଚିଦାନନ୍ଦଙ୍କ ଷୋଡ଼ଶବର୍ଷ ବୟଃକ୍ରମ ବେଳେ ସର୍ ବାସୁଦେବ ତାଙ୍କର ଶୁଭ ବିବାହପାଇଁ ଆୟୋଜନ କଲେ । କାଶୀପୁର ରାଜପରିବାର ଅଭିଜାତ୍ୟରେ ଓଡ଼ିଶା ରାଜପରିବାରମାନଙ୍କ ମଧ୍ୟରେ ସମ୍ମାନ ସ୍ଥାନର ଅଧିକାରୀ । ସେ ରାଜପରିବାରର କେମାନଙ୍କ ପାଣିଗ୍ରହଣ ଉତ୍କଳର ରାଜନ୍ୟ ମହଲରେ ଶ୍ଳାଘ୍ୟ ବୋଲି ବିବେଚିତ । ସେ ସମୟରେ କାଶୀପୁରର ମହାରାଜା ବୈଦ୍ୟନାଥସିଂହ ଦେବ ସିଂହାସନାରୋହଣ କରିଥିଲେ ଓ ରାଜ୍ୟଶାସନଭାର ତାଙ୍କର ସୁଯୋଗ୍ୟା ବୁଦ୍ଧିମତୀ ରାଣୀ ମୁକ୍ତକୁମାରୀ ଦେବୀ ଗ୍ରହଣ କରିଥିଲେ । ସୂର୍ଯ୍ୟକୁମାରୀଙ୍କ ଜ୍ୟେଷ୍ଠା କେମା ରୂପୈଶ୍ୱର୍ଯ୍ୟଶାଳିନୀ ଅତୀବ ଗୁଣବତୀ ଜମ୍ବୁଧର ପ୍ରିୟା ଦେବୀ ସଚ୍ଚିଦାନନ୍ଦଙ୍କ ସହଧର୍ମିଣୀରୂପେ ସର୍ ବାସୁଦେବଙ୍କଦ୍ୱାରା ମନୋନୀତା ହେଲେ ଏବଂ ୧୮୮୯ ଖ୍ରୀଷ୍ଟାବ୍ଦରେ ମହାସମାରୋହରେ ସଚ୍ଚିଦାନନ୍ଦଙ୍କ ଶୁଭବିବାହୋତ୍ସବ କାଶୀପୁରଠାରେ ଅନୁଷ୍ଠିତ ହେଲା । ଏ ବିବାହୋତ୍ସବକୁ ଉତ୍କଳର ବହୁଗୁଣୀ ଓ ସୁଧୀ ଦେବଗଡ଼କୁ ନିମନ୍ତ୍ରିତ ହୋଇ ଉପଯୁକ୍ତ ପୁରସ୍କାରାଦିଦ୍ୱାରା ସମ୍ମାନିତ ହୋଇଥିଲେ ଏବଂ ସେ ସ୍ମୃତି ଅଦ୍ୟ ସୁଦ୍ଧା ଅନେକଙ୍କ ହୃଦୟପଟରୁ ଅପସାରିତ ହୋଇ ନାହିଁ ।

ସଚ୍ଚିଦାନନ୍ଦ ଆଦର୍ଶ ଯୁବରାଜ, ଆଦର୍ଶପୁତ୍ର ଓ ଆଦର୍ଶ ଭ୍ରାତାରୂପେ ବାମଣ୍ଡା ରାଜପରିବାରକୁ ନିଜର ଦୃଷ୍ଟାନ୍ତଦ୍ୱାରା ପ୍ରଭାବିତ କରୁଥିଲେ । କଳାହାଣ୍ଡିର କେମା (ସର୍ ବାସୁଦେବଙ୍କ ପ୍ରଥମା ପତ୍ନୀ)ଙ୍କ ବିୟୋଗ ପରେ ସେ ଆଉ ତିନି ଜଣ ରାଜକୁମାରୀଙ୍କ ପାଣିଗ୍ରହଣ କରିଥିଲେ ଓ ସେମାନଙ୍କ ଗର୍ଭରୁ ଆଠ ଜଣ କୁମାର ଓ ତିନି କୁମାରୀ ଭୂମିଷ୍ଠ ହୋଇଥିଲେ । ବିମାତାମାନଙ୍କ ପ୍ରତି ସଚ୍ଚିଦାନନ୍ଦଙ୍କ ଭକ୍ତି ମାତୃଭକ୍ତିଠାରୁ କୌଣସି ଅଂଶରେ ନ୍ୟୂନ ନ ଥିଲା । ବୈମାତ୍ରେୟ ଭ୍ରାତା ଓ ଭଗିନୀମାନେ ତାଙ୍କଠାରୁ ସୋଦରୋଚିତ ବାତ୍ସଲ୍ୟ ଲାଭ କରି କୃତାର୍ଥ ହେଉଥିଲେ ଏବଂ ଅଯୋଧ୍ୟାର ପ୍ରଜାବର୍ଗ ଯୁବରାଜ ରାମଚନ୍ଦ୍ରଙ୍କ ପ୍ରତି ଅନୁରକ୍ତ ଥିଲା ପରି ବାମଣ୍ଡାର ପ୍ରକୃତିବର୍ଗ ସେମାନଙ୍କ ଭାବୀ ଭାଗ୍ୟବିଧାତାଙ୍କ ପ୍ରତି ଅନୁରକ୍ତ ହୋଇ ପଡ଼ିଥିଲେ । ଦୂରଦ୍ରଷ୍ଟା ବିଚକ୍ଷଣ ସର୍ ବାସୁଦେବ ଟୀକାଏତ ସଚ୍ଚିଦାନନ୍ଦଙ୍କୁ ରାଜ୍ୟଶାସନର ବିପୁଳ ବିଭାଗ ପରିଚାଳନ କରିବା ଭାର ଅର୍ପଣ କରି ନିଜେ କେବଳ ଅପିଲ୍ ବୁଝିବା ଭାର ଗ୍ରହଣପୂର୍ବକ ଯୁବରାଜଙ୍କ ଭବିଷ୍ୟତ ରାଜଜୀବନ ଗଠନର ସୂତ୍ରପାତ କରି ଦେଇଥିଲେ ଏବଂ ସର୍ ବାସୁଦେବଙ୍କ ତିରୋଧାନ ବେଳକୁ ରାଜ୍ୟଶାସନର ମହାଦାୟିତ୍ୱ ଗ୍ରହଣ କରିବାପାଇଁ ସଚ୍ଚିଦାନନ୍ଦ ପୂର୍ଣ୍ଣ ଯୋଗ୍ୟତା ଅର୍ଜନ କରି ପାରିଥିଲେ । ୧୮୯୧ ଖ୍ରୀଷ୍ଟାବ୍ଦରେ ସଚ୍ଚିଦାନନ୍ଦଙ୍କର ଜ୍ୟେଷ୍ଠାତ୍ମଜ କୁଳପାବନ ଦିବ୍ୟଶଙ୍କରଙ୍କର ଜନ୍ମ ହୋଇଥିଲା । ସର୍ ବାସୁଦେବ ବାମଣ୍ଡା ରାଜ୍ୟର ଭବି-

ଉତ୍ତରାଧିକାରୀ ଏହି ପୌତ୍ରଙ୍କ ଆବିର୍ଭାବରେ ମହାପ୍ରସନ୍ନ ହୋଇ ତୃପ୍ତି ଲାଭ କରି ଏହି ମହୋତ୍ସବ ଉପଲକ୍ଷରେ ଅଜସ୍ର ଧନ ବିତରଣ କରିଥିଲେ । ୧୮୯୬ ଅବ୍ଦରେ ବାମଣ୍ଡାର ବର୍ତ୍ତମାନ ରାଜପିତୃବ୍ୟ ଶ୍ରୀମାନ୍ ହୃଦୟନାଥ ଦେବ ଜନ୍ମଗ୍ରହଣ କରିଥିଲେ ଓ ଦୁଇ ବର୍ଷ ପରେ ପୁତ୍ରର ବର୍ତ୍ତମାନ ଗଡ଼ଜାତ ମହାରାଜା ଲାଲମୋହନ ମୋହନ ଦେବ ଜନ୍ମ ପରିଗ୍ରହ କଲେ । ତତ୍ପରେ ସୁତ ତରଙ୍ଗିଣୀ (ବର୍ତ୍ତମାନ କଳାହାଣ୍ଡୀ ରାଜ୍ୟର ସୌଭାଗ୍ୟବତୀ ମହାରାଣୀ) ଏବଂ ୧୯୦୪ ଅବ୍ଦରେ ସର୍ବ କନିଷ୍ଠା ଜେମା ମନୋରମାଙ୍କର ଜନ୍ମ । ଏହି ଜେମା ମନୋରମାଙ୍କୁ ମା ମା ବୋଲି ଡାକି ସଚ୍ଚିଦାନନ୍ଦ ମାତୃ ଆବାହନ ସୁଖ ଲାଭ କରୁଥିଲେ, କିନ୍ତୁ ଏ ଅକାଳରେ ସ୍ୱର୍ଗାରୋହଣ କଲେ ।

୧୯।୧୧।୧୯୦୩ ତାରିଖ ଦିନ ବାମଣ୍ଡା ତଥା ସମଗ୍ର ଉତ୍କଳଖଣ୍ଡକୁ ଶୋକତମସାଚ୍ଛନ୍ନ କରି ଦେଇ ରାଜର୍ଷି ସର ବାସୁଦେବ ଯୋଗିଜନେଷ୍ଟ ପରଲୋକକୁ ପ୍ରୟାଣ କଲେ । ପ୍ରୟାଣର ଅର୍ଦ୍ଧଘଣ୍ଟିକା ପୂର୍ବରୁ ସେ ସଚ୍ଚିଦାନନ୍ଦଙ୍କୁ ନିକଟକୁ ଡାକି ଶେଷ ଆଶିଷ ପ୍ରଦାନ ପୂର୍ବକ କହିଲେ, "ଟୀକାଏତ ବାବୁ ! ଅମ୍ଭେ ଚାଲିଲୁଁ । ତୁମ୍ଭେ ଅକ୍ଷୁଣ୍ଣଭାବରେ ରାଜ୍ୟ ପାଳନ କରି ଯଶସ୍ୱୀ ହୁଅ । ଚଉଦିଗକୁ ଲକ୍ଷ୍ୟ ରଖି ହିତାହିତ ବିବେଚନା ସହିତ ରାଜକାର୍ଯ୍ୟ ପରିଚାଳନା କଲେ ତୁମ୍ଭର କୌଣସି ଅସୁବିଧା ହେବ ନାହିଁ । ଯେଉଁ ମାର୍ଗରେ ଗତି କଲେ ସର୍ବାଙ୍ଗୀନ କଲ୍ୟାଣ ସାଧିତ ହେବ, ଅମ୍ଭ ସଙ୍ଗେ ଏକଯୋଗରେ ରାଜକାର୍ଯ୍ୟରେ ସହାୟତା କରି ତୁମ୍ଭର ସେ ଜ୍ଞାନ ମଧ୍ୟ ଯଥେଷ୍ଟ ଜନ୍ମିଅଛି ।"

ପିତୃଭକ୍ତ ସଚ୍ଚିଦାନନ୍ଦ ରାଜର୍ଷିତୁଲ୍ୟ ଜନକଙ୍କ ତିରୋଧାନରେ ପ୍ରଥମେ ଶୋକରେ ମୁହ୍ୟମାନ ହୋଇ ପଡ଼ିଲେ । ପରେ କର୍ତ୍ତବ୍ୟବୋଧର ତାଡ଼ନାରେ ଧୈର୍ଯ୍ୟଧାରଣ କରି ରାଜ୍ୟଶାସନର ତନ୍ତ୍ରରେ ଆପଣାକୁ ନିୟୋଜିତ କଲେ । ୭।୧୨।୧୯୦୩ ଦିନ ପିତାଙ୍କ ଅନ୍ତ୍ୟେଷ୍ଟି କ୍ରିୟା ସମାପନ କରି ସ୍ୱର୍ଗତ ଜନକଙ୍କ ଆଶୀର୍ବାଣୀକୁ ସମସ୍ତ ମଙ୍ଗଳର ବିଧାନ ଭାବି ସେହି ଦିନ ସେ ନିଜ ଅଭିଷେକୋତ୍ସବର ଆୟୋଜନ କଲେ ଏବଂ ମହାସମାରୋହରେ ଏ ଉତ୍ସବ ଅନୁଷ୍ଠିତ ହେଲା ।

୭।୧୨।୧୯୦୩ ଠାରୁ ସଚ୍ଚିଦାନନ୍ଦଙ୍କ ରାଜଜୀବନର ପ୍ରାରମ୍ଭ । ଏହି ଦିନଠାରୁ ୧୯୮୮ ବର୍ଗମାଇଲ ପରିମିତ ବାମଣ୍ଡା ରାଜ୍ୟର ଶାସନଭାର ପ୍ରତ୍ୟକ୍ଷଭାବରେ ତାଙ୍କ ଉପରେ ନ୍ୟସ୍ତ ହେଲା । ବାମଣ୍ଡାର ଲୋକେ ନବଯୁଗର ଅବତାରଣା ନିମନ୍ତେ ସଚ୍ଚିଦାନନ୍ଦଙ୍କ ଆଡ଼କୁ ସତୃଷ୍ଣନୟନରେ ଅନାଇଁ ରହିଲେ ।

ଶାସନଭାର ଗ୍ରହଣ କଲା ପରେ ସଚ୍ଚିଦାନନ୍ଦଙ୍କୁ କେତେକ ଗୋଟି ପାରିବାରିକ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ନିର୍ବାହ କରିବାକୁ ପଡ଼ିଥିଲା । ତନ୍ମଧ୍ୟରେ ଅଷ୍ଟମା ଭଗ୍ନୀଙ୍କର ଓ ଭଣିଜୀଙ୍କ ବିବାହ ଓ ଟୀକାଏତ ଦିବ୍ୟଶଙ୍କରଙ୍କ ବ୍ରତୋପନୟନ ସର୍ବପ୍ରଧାନ । ଏ ସବୁ କାର୍ଯ୍ୟ ସଚ୍ଚିଦାନନ୍ଦ ବାମଣ୍ଡା ରାଜପରିବାରର ଚିରନ୍ତନ ଆଡ଼ମ୍ବର ସହିତ ସମ୍ପାଦନ କରିଥିଲେ ଓ ବିବାହିତା ଜେମାମାନଙ୍କୁ ଅକୁଣ୍ଠିତ ଚିତ୍ତରେ ଅଜସ୍ର ଯୌତୁକ ପ୍ରଦାନ କରିଥିଲେ ।

ଟୀକାଏତଙ୍କ ବ୍ରତୋପନୟନ ଉତ୍ସବରେ ସଚ୍ଚିଦାନନ୍ଦ ପୂର୍ବକାଳୀନ ଗତାନୁଗତିକତା ପରିହାର କରିଥିଲେ ଓ ଏ ଉତ୍ସବର ଆଦର୍ଶକୁ ନିମ୍ନଲିଖିତ ପ୍ରକାରେ ଧାର୍ଯ୍ୟ କରିଥିଲେ ।

"ବାହ୍ୟ ଆଡ଼ମ୍ବର ଓ ଚାକଚକ୍ୟ ଦେଖାଇ ଅଜସ୍ର ଅର୍ଥ ବ୍ୟୟ କରିବା ଭଲ ନୁହେଁ । ଏପରି ଭାବରେ ଏ ଉତ୍ସବ ସମାଧା କରିବାକୁ ହେବ, ଯାହା ସାଧାରଣଙ୍କ ଦ୍ରଷ୍ଟବ୍ୟ ଓ ତୃପ୍ତିଦାୟକ ହେବ ଓ ତହିଁରେ ଦେଶର ଶିକ୍ଷାପ୍ରଦ ବିଷୟ ନିହିତ ଥିବ ।"

ଉପନୟନ ଉତ୍ସବର କର୍ମନିର୍ଘଣ୍ଟର ଚିଠା ମଧ୍ୟ ସଚ୍ଚିଦାନନ୍ଦ ସ୍ୱହସ୍ତରେ ପ୍ରସ୍ତୁତ କରିଥିଲେ ।

ରାଜା ସଚ୍ଚିଦାନନ୍ଦ ଏହି ବ୍ରତୋପନୟନ ଉତ୍ସବକୁ ଯେଉଁ କେତୋଟି ବିଶିଷ୍ଟତାରେ ମଣ୍ଡିତ କରିଥିଲେ, ତନ୍ମଧ୍ୟରେ ଉତ୍କଳର ବିଭିନ୍ନ ନରପତିମାନଙ୍କ ନିକଟକୁ ନିଜେ ଯାଇ ସେମାନଙ୍କୁ ନିମନ୍ତ୍ରଣ କରି ଆଣି ଦେବଗଡ଼ରେ ଏକତ୍ର କରିବା ସର୍ବପ୍ରଧାନ । ପୂର୍ବେ ଓଡ଼ିଶାର ରାଜାମାନେ ନିଜ ନିଜର ପ୍ରାଧାନ୍ୟ ଓ ଆଭିଜାତ୍ୟରେ ବାଧା ପଡ଼ିବା ଭୟରେ ଅନ୍ୟ ରାଜାଙ୍କ ରାଜଧାନୀକୁ ଯାଇ ଆତିଥ୍ୟ ଗ୍ରହଣ କରୁ ନ ଥିଲେ । ଯାତାୟାତର ପଥ ମଧ୍ୟ ସେତେବେଳେ ସୁଗମ ନ ଥିଲା; କିନ୍ତୁ ରାଜା ସଚ୍ଚିଦାନନ୍ଦ ଏ ସବୁକୁ ଭ୍ରୂକ୍ଷେପ ନ କରି ବାମଣ୍ଡା ରାଜଧାନୀରେ ଏ ଉତ୍ସବ ଉପଲକ୍ଷରେ ଯେଉଁ ରାଜନ୍ୟ ସମ୍ମେଳନୀ ଘଟାଇଲେ, ତାହା ବହୁକାଳ ହେଲା ଉତ୍କଳରେ ଅଶ୍ରୁତପୂର୍ବ ଓ ଅଦୃଷ୍ଟପୂର୍ବ ଥିଲା । ଉତ୍ସବର କର୍ତ୍ତାରୂପେ ରାଜା ସଚ୍ଚିଦାନନ୍ଦ ପ୍ରତ୍ୟେକ ରାଜଧାନୀକୁ ନିଜେ ଗମନପୂର୍ବକ ରାଜାମାନଙ୍କୁ ଯଥାବିଧି ନିମନ୍ତ୍ରଣ ଦେଇ ଆସିଥିଲେ । ବିଭିନ୍ନ ରାଜଧାନୀରେ ଓ ପଥ ମଧ୍ୟରେ ପ୍ରଧାନ ପ୍ରଧାନ ନଗରମାନଙ୍କରେ ରାଜା ସଚ୍ଚିଦାନନ୍ଦଙ୍କୁ ଅଭିନନ୍ଦନ କରିବା ପାଇଁ ଯେଉଁ ଆୟୋଜନ ସବୁ ହୋଇଥିଲା, ତହିଁରୁ ବାମଣ୍ଡା ରାଜପରିବାର ଓ ତହିଁର ଚନ୍ଦ୍ରମାସ୍ୱରୂପ ଏହି ସଚ୍ଚିଦାନନ୍ଦଙ୍କୁ ସମଗ୍ର ଉତ୍କଳ କିପରି ଆଗ୍ରହଯୁକ୍ତ ନେତ୍ରରେ ଚାହିଁ ରହିଥିଲା, ଏହା ସ୍ପଷ୍ଟୀକୃତ ହେଉଥିଲା । ଏ ଉତ୍ସବସଂକ୍ରାନ୍ତ ରାଜଦରବାର, ପଣ୍ଡିତ ସଭା, ମହୋତ୍ସବ ଓ ଅକାତର ଧନ ବିତରଣ ଆଦି ଯେଉଁମାନେ ସ୍ୱଚକ୍ଷୁରେ ଦେଖି ଅଛନ୍ତି, ସେମାନେ ଶତମୁଖରେ ସଚ୍ଚିଦାନନ୍ଦଙ୍କ ବିଶାଳ କଳ୍ପନା ଓ ପ୍ରଶସ୍ତ ହୃଦୟବତ୍ତାର ପ୍ରଶଂସା କରି ଥାଆନ୍ତି । 'ବ୍ରତୋତ୍ସବ' ନାମକ ବୃହତ୍ ପୁସ୍ତକରେ ଶ୍ରୀଯୁକ୍ତ ଦୀନବନ୍ଧୁ ପ୍ରଧାନ ଯେଉଁ ଘଟଣାବଳୀ ଉଲ୍ଲେଖ କରିଅଛନ୍ତି, ସେ ସବୁ ଯେ କୌଣସି ରାଜପରିବାର ପକ୍ଷରେ ପ୍ରଶଂସନୀୟ ବୋଲିବାକୁ ହେବ । ଏହି ଉତ୍ସବରେ ନାନା ଗତାନୁଗତିକତା ମୂଳରେ କୁଠାରାଘାତ କରି ରାଜା ସଚ୍ଚିଦାନନ୍ଦ ତାଙ୍କ କଳ୍ପନାର ପ୍ରଗତିଶୀଳତାର ଯଥେଷ୍ଟ

ପରିଚୟ ପ୍ରଦାନ କରିଥିଲେ ଓ ବାମଣ୍ଡାରେ ନବଯୁଗର ପ୍ରତିଷ୍ଠା ଏହି ବ୍ରତୋପନୟନଠାରୁ ଆରବ୍ଧ ହୋଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବାମଣ୍ଡାରୁ ଅଜ୍ଞାନାନ୍ଧକାର ବିଦୂରିତ କରିବା ପାଇଁ ସଚ୍ଚିଦାନନ୍ଦ ୧୨୪ ଗୋଟି ପ୍ରାଥମିକ ବିଦ୍ୟାଳୟ ନୂଆ କରି ବସାଇଥିଲେ ଓ ଗୌନ୍ତିଆମାନଙ୍କ ଜ୍ୟେଷ୍ଠପୁତ୍ରମାନଙ୍କ ପକ୍ଷରେ ଉଚ୍ଚ ଶିକ୍ଷା ବାଧ୍ୟତାମୂଳକ କରି ଦେଇଥିଲେ । ସେ ଶିକ୍ଷକମାନଙ୍କୁ ତାଲିମ କରିବା ପାଇଁ 'ପ୍ରାଞ୍ଚ ସ୍କୁଲ୍' ନାମରେ ଗୋଟିଏ ଟ୍ରେନିଂ ସ୍କୁଲ ବସାଇଥିଲେ । ମଫସଲରେ ଶିକ୍ଷକମାନଙ୍କ ଜୀବନକୁ ଅଭାବର କବଳରୁ ରକ୍ଷା କରିବା ନିମନ୍ତେ ସେ ସେମାନଙ୍କ ବେତନର ହାର ବଢାଇ ଦେଇଥିଲେ । କ୍ଷତ୍ରିୟ ବାଳକମାନଙ୍କୁ କ୍ଷତ୍ରିୟୋଚିତ ଶିକ୍ଷା ଦେବାର ମଧ୍ୟ ସେ ବିହିତ ବ୍ୟବସ୍ଥା କରିଥିଲେ । ରାଜ୍ୟର ଆଦିମ ଅଧିବାସୀମାନଙ୍କ ଶିକ୍ଷା ପାଇଁ ମଧ୍ୟ ସେ ବୃତ୍ତି ଆଦି ଖଞ୍ଜି ସେମାନଙ୍କୁ ପାଠ-ସରଞ୍ଜାମମାନ ମାଗଣା ଯୋଗାଇ ଦେଉଥିଲେ । ସ୍ୱର୍ଗତା ରାଜକୁମାରୀ ମନ୍ଦାକିନୀଙ୍କ ସ୍ମୃତିରକ୍ଷା କଳ୍ପେ ସେ ଦେବଗଡ଼ରେ 'ମନ୍ଦାକିନୀ ବାଳିକା ବିଦ୍ୟାଳୟ' ସ୍ଥାପନ କରିଥିଲେ ।

ବିଶ୍ୱବିଦ୍ୟାଳୟଙ୍କ ନିର୍ଦ୍ଦେଶମତେ ସେ ରାଜକୁମାର ହାଇ ସ୍କୁଲର ଘରକୁ ଲାହୋର ଇସ୍‌ଲାମିଆ କଲେଜ୍‌ଘରର ଆଦର୍ଶରେ ପୁନର୍ଗଠନ କରାଇ ଦେଇଥିଲେ । ଯୁବରାଜ ଦିବ୍ୟ-ଶଙ୍କର ଏହି ସ୍କୁଲରୁ ମାଟ୍ରିକୁଲେସନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ସଚ୍ଚିଦାନନ୍ଦଙ୍କ ରାଜତ୍ୱକାଳରେ ବାମଣ୍ଡା ରାଜ୍ୟର ରାଜପଥ ସବୁ ଉନ୍ନତ ଧରଣରେ ପ୍ରସ୍ତୁତ କରା ଯାଇଥିଲା ।

ମଡ଼ାଲୀ ନଦୀ ଉପରେ ଯେଉଁ ପୋଲ ତିଆରି କରା ହୋଇଥିଲା ଏକା ତହିଁରେ ଦଶ ହଜାର ଟଙ୍କା ବ୍ୟୟ ହୋଇଥିଲା ।

ସଚ୍ଚିଦାନନ୍ଦଙ୍କ ସହଧର୍ମିଣୀ ରାଣୀ ଡମରୁଧରପ୍ରିୟା ଚିରକାଳ କୃଷକମାନଙ୍କର ଅକୃତ୍ରିମ ବନ୍ଧୁ । ଜଳସେଚନର ବ୍ୟବସ୍ଥା ନିମନ୍ତେ ସେ ସ୍ୱୀୟ ସ୍ତ୍ରୀଧନରୁ ବହୁଧନ ବ୍ୟୟ କରି ବାରକୁଟ ଅଞ୍ଚଳରେ ୩୦ ମାଇଲ୍ ଲମ୍ବ ଗୋଟିଏ କେନାଲ୍ ଖୋଳାଇ ପ୍ରାୟ ୧୦୦ ବର୍ଗମାଇଲ ଭୂମି ଉପରେ ଜଳ ସେଚିତ ହେବାର ବ୍ୟବସ୍ଥା କରିଅଛନ୍ତି । ସ୍ୱୀୟ ସହଧର୍ମିଣୀଙ୍କ ପ୍ରସ୍ତାବ ଓ ବ୍ୟୟରେ ଓ ବହୁ ବ୍ୟୟସାଧ୍ୟ କୁଲ୍ୟା ହୋଇଥିବାରୁ ରାଣୀଙ୍କ ନାମ ଅନୁସାରେ ଉକ୍ତ କେନାଲକୁ ରାଜା ସଚ୍ଚିଦାନନ୍ଦ "ଡମରୁଧରପ୍ରିୟା କେନାଲ୍" ( D. P. Canal ) ନାମ ଦେଇଥିଲେ । ଏହି କୁଲ୍ୟାଦ୍ୱାରା ୧୦୦ ବର୍ଗମାଇଲ ଭୂମିର ଜଳକଷ୍ଟ ଦୂର ହୋଇଥିବାରୁ ରାଣୀ ଡମରୁଧରପ୍ରିୟାଙ୍କର ଓ ସଚ୍ଚିଦାନନ୍ଦଙ୍କ ପୁଣ୍ୟସ୍ମୃତି ବାମଣ୍ଡାର ପ୍ରଜାମଣ୍ଡଳଙ୍କ ହୃଦୟରେ ଚିରକାଳ ଜାଗି ରହିବ । ରାଣୀ ମହୋଦୟାଙ୍କ ଚରିତରେ ଏଥିର ବିସ୍ତୃତ ଆଲୋଚନା କରାଯିବ ।

ରାଜା ସଚ୍ଚିଦାନନ୍ଦ ଅନେକ ଖମାର ନିର୍ମିତ କରାଇଥିଲେ ଏବଂ ଲୁଗାବୁଣାକଳ ଓ ତେଲ ତିଆରି କଳ ବାମଣ୍ଡାରେ ଅବସ୍ଥାପିତ କରିଥିଲେ । ଏ କାରଖାନାର ଆଖୁପେଡ଼ାକଳରେ ପ୍ରଜାମାନେ ବିନା ଖର୍ଚ୍ଚରେ ନିଜ ନିଜର ଆଖୁ ପେଡ଼ି ନେଇ ପାରୁଥିଲେ । ବଙ୍ଗ ସରକାର ବାମଣ୍ଡା ନରେଶଙ୍କର ଏ ସବୁ କାର୍ଯ୍ୟକଳାପରେ ସନ୍ତୁଷ୍ଟ ହୋଇ ତାଙ୍କୁ ଅଜସ୍ର ପ୍ରଶଂସା କରିଥିଲେ ।

ସଚ୍ଚିଦାନନ୍ଦ ଓଡ଼ିଶାକୁ ସର୍ବପ୍ରଥମେ ବିଦ୍ୟୁତ୍ ଆଲୋକ ଆଣିଥିଲେ ଓ ବାମଣ୍ଡାରେ ବିଦ୍ୟୁତ୍‌ଚାଳିତ ପ୍ରେସ୍ ବସାଇଥିଲେ ।

ପ୍ରଧାନପାଟ ପ୍ରପାତରୁ ଦେବଗଡ଼କୁ ଜଳ ଆଣିବା ଯନ୍ତ୍ରର ଉଦ୍ଭାବନ, ପ୍ରଧାନପାଟ ପର୍ବତର ସାନୁଦେଶରେ 'ବସନ୍ତ ନିବାସ' ନାମକ ଉପଭୋଗ୍ୟ ରାଜପ୍ରାସାଦ ବା ବିଶ୍ରାମାଗାର ନିର୍ମାଣ କର୍ମ ମଧ୍ୟ ସଚ୍ଚିଦାନନ୍ଦଙ୍କ ଜୀବନର ବର୍ଣ୍ଣନୀୟ ଘଟନା ଅଟେ । 'ବସନ୍ତ ନିବାସ'ର ଉତ୍ତର ଦକ୍ଷିଣ ଉଭୟ ଅଂଶରେ ଗୀତ ଓ ପ୍ରକୃତି-ପୂଜା ବିଷୟରେ ଗୋଟିଏ ଲେଖାଏଁ ଶ୍ୱେତ ମର୍ମର ପ୍ରସ୍ତରରେ ଖୋଦିତ ହୋଇ ମଗ୍ନ ହୋଇଅଛି । ବସନ୍ତ ନିବାସର ଲୁହା ରେଲିଙ୍ଗ୍‌ଦ୍ୱାରା ସୁରକ୍ଷିତ ବାରଣ୍ଡାରେ ବସିଲେ, ତତ୍‌ସନ୍ନିହିତ ଘୋରବନର ପଶୁମାନଙ୍କ ସ୍ୱଚ୍ଛନ୍ଦ ବିଚରଣ ଦର୍ଶକର ଉପଭୋଗ୍ୟ ହୋଇଥାଏ ।

ନବୀନ ସଭ୍ୟତାର ନବଆଲୋକ ଆଣି ଯେଉଁମାନେ ଓଡ଼ିଶାର ମୁଖ ଉଜ୍ଜ୍ୱଳ କରିଅଛନ୍ତି, ବାମଣ୍ଡା ଅବନୀର ଆଦର୍ଶ ନରପତି ପୁଣ୍ୟଶ୍ଳୋକ ସର୍ ବାସୁଦେବ ଓ ସଚ୍ଚିଦାନନ୍ଦ ସେମାନଙ୍କ ନେତୃସ୍ଥାନୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏ ଦୁହିଁଙ୍କର ପୃଷ୍ଠପୋଷକତାରେ ଉତ୍କଳରେ ନବଯୁଗର କେତେ ଅନୁଷ୍ଠାନ ଓ ସୁଧୀ ବ୍ୟକ୍ତି ଯେ ପୁଷ୍ଟ ଓ ଉତ୍ସାହିତ ହୋଇଅଛନ୍ତି, ତାହାର କଳନା ନାହିଁ । ଏ ଦୁହେଁ ନବଯୁଗର ମାର୍ତ୍ତଣ୍ଡ ଓ ସୁଧାକରରୂପେ ଉତ୍କଳର ଧ୍ୱାନ୍ତ ନାଶ କରି ଉତ୍କଳକୁ ପ୍ରଗତିପଥର ପଥିକ କରାଇଅଛନ୍ତି । ଏ ପୁଣ୍ୟଶ୍ଳୋକ ନରପତିଦ୍ୱୟ ଉତ୍କଳର ପ୍ରତି ଗୃହରେ ପ୍ରାତଃସ୍ମରଣୀୟ ହୋଇଅଛନ୍ତି ।

ସନ ୧୯୧୬ ମସିହାରେ ସଚ୍ଚିଦାନନ୍ଦ ତାଙ୍କ ପାଟଜେମା ସ୍ୱର୍ଣ୍ଣତରଙ୍ଗିଣୀ ଦେବୀଙ୍କୁ କଳାହାଣ୍ଡିର ମହାରାଜ ବ୍ରଜମୋହନ ଦେବଙ୍କ ହସ୍ତରେ ଅର୍ପଣ କରିଥିଲେ । ଏହି ବିବାହ ଉପଲକ୍ଷରେ ଉତ୍କଳଖଣ୍ଡର ଓ ବଙ୍ଗ-ବିହାର, ବାରାଣସୀ ଆଦିର ଶତ ଶତ ଗୁଣୀ ଓ ପଣ୍ଡିତ ଦେବଗଡ଼କୁ ନିମନ୍ତ୍ରିତ ହୋଇ ଆସିଥିଲେ । ବିବାହର ସମାରୋହ, ଅତିଥିମାନଙ୍କ ଚର୍ଚ୍ଚା ଓ ଆଦର, ରାଜ୍ୟର ପ୍ରଜାମାନଙ୍କୁ ଓ ଦରିଦ୍ର, ଅନ୍ଧ, ଖଞ୍ଜ ଓ ଗ୍ରହଣାର୍ଥୀମାନଙ୍କୁ ଭୂରି-ଭୋଜନ ଦେବା, ବ୍ୟାୟାମ, କ୍ରୀଡ଼ା, ଆତସବାଜି, ରାଜ୍ୟର ଭିନ୍ନ ଭିନ୍ନ ଅଞ୍ଚଳରେ ଥିବା ବିଭିନ୍ନ ଅନୁଷ୍ଠାନ (ଯଥା—ଖମାର, କେନାଲ୍, ଆଖୁକଳ, ଧାନକଳ, ସ୍ଲିପର୍ କରତ ହେବା କାରଖାନା, ଉଦ୍ୟାନ ଆଦି)ମାନଙ୍କର ସମାଗତ ଅତିଥିମାନଙ୍କ ଦ୍ୱାରା ପରିଦର୍ଶନ, ସମାଗତ ଅତିଥିମାନଙ୍କୁ ବାମଣ୍ଡା ଷ୍ଟେସନ୍‌ରୁ ୬୦ ମାଇଲ୍ ବାଟ ଦେବଗଡ଼କୁ ଆଣିବା ଓ ସେଠାରୁ ଫେରାଇ ପଠାଇବା ଓ ଜାମାତାଙ୍କୁ ଅଗଣିତ ଯାନବାହନାଦି ଯୌତୁକ ଦାନ ଆଦିର ଯେଉଁ ବ୍ୟବସ୍ଥା ସଚ୍ଚିଦାନନ୍ଦ କରିଥିଲେ, ସେପରି ବ୍ୟବସ୍ଥା ତଦବଧି ଉତ୍କଳର ଅନ୍ୟ କୌଣସି ଉତ୍ସବରେ ଦେଖାଯାଇ ନାହିଁ । ଓଡ଼ିଶାରୁ ରାମଶଙ୍କର, ସୁଦାମଚରଣ,

ବୈଦ୍ୟନାଥ କର, ଶଶିଭୂଷଣ, ଫକୀରମୋହନ ଓ ଏ ଗ୍ରନ୍ଥର ସମ୍ପାଦକ ସେହି ଉପଲକ୍ଷରେ ନିମନ୍ତ୍ରିତ ହୋଇଥିଲେ । ସେହି ସମୟରେ ଦେବଗଡ଼ରେ ଗୋଟିଏ ସାଧାରଣ ସଭା କରି ରାଜା ସଚ୍ଚିଦାନନ୍ଦ ଫକୀରମୋହନଙ୍କୁ 'ସରସ୍ୱତୀ' ଉପାଧିରେ ମଣ୍ଡିତ କରିଥିଲେ ।

ଦୁଃଖର ବିଷୟ ଏହି ଯେ, ଏହାପରେ କେତେକ ଦିନ ପରେ ସଚ୍ଚିଦାନନ୍ଦ ମର୍ତ୍ତ୍ୟଧାମ ତ୍ୟାଗ କଲେ ।

ସଚ୍ଚିଦାନନ୍ଦଙ୍କ ବହୁତୋମୁଖୀ ପ୍ରତିଭା ବର୍ଣ୍ଣନ କରି ତତ୍କାଳୀନ ଗୁଣୋପାସକ ଶ୍ରୀଯୁକ୍ତ ଶଶିଭୂଷଣ ରାୟ "ନବଜୀବନ" ପତ୍ରିକା (୧୦।୯।୩୫)ରେ ଯାହା ପ୍ରକାଶ କରିଥିଲେ ତାହା ଏଠାରେ ଉଦ୍ଧୃତ ହେଲା—

"୧୯୦୩ ସାଲରେ ୯ ରାଜା ସର୍ ବାସୁଦେବଙ୍କ ତତ୍ତ୍ୱାବଧାନ ଉତ୍ତାରୁ ୭ ସଚ୍ଚିଦାନନ୍ଦ ବାମଣ୍ଡାର ଶାସନ ଓ ପାଳନ ଭାର ଗ୍ରହଣ କଲେ । ଯୁବରାଜ ଅବସ୍ଥାରେ ଏ ମହୋଦୟ ସାହିତ୍ୟ ଓ ବିଜ୍ଞାନର ପ୍ରଭୂତ ଆଲୋଚନା କରିଥିଲେ । ଓଡ଼ିଶାରେ ସର୍ବପ୍ରଥମ Kinematograph (ଚାକ୍ଷୁଷ ଚଳଚ୍ଚିତ୍ର), ସର୍ବପ୍ରଥମ ରଞ୍ଜନରଶ୍ମି (X'ray), ସର୍ବପ୍ରଥମ ବୈଦ୍ୟୁତିକ ଆଲୋକ (Electric light) ଏହାଙ୍କ କର୍ତ୍ତୃକ ଆନୀତ ହୋଇଥିଲା । ୧୮୯୯ ମସିହାରେ ଯୁବରାଜ ସଚ୍ଚିଦାନନ୍ଦଙ୍କଦ୍ୱାରା ଟେଲିଫୋନ୍ ଯନ୍ତ୍ର ସର୍ବପ୍ରଥମରେ ଯେତେବେଳେ ବାମଣ୍ଡାରେ ବସିଲା ସେତେବେଳେ ଭାରତର ସୁପ୍ରସିଦ୍ଧ ସମ୍ବାଦପତ୍ର ଷ୍ଟେଟ୍ସମ୍ୟାନ୍ "Statesman" ଘୋଷଣା କରିଥିଲା, "The longest telephone in India"; ଅର୍ଥାତ୍, ବାମଣ୍ଡାର ଗୋବିନ୍ଦପୁରଠାରୁ ବାରକୋଟ ପର୍ଯ୍ୟନ୍ତ ୮୦ ମାଇଲ ଦୀର୍ଘତାବିଶିଷ୍ଟ ଟେଲିଫୋନ୍ ସେ ସମୟରେ ଭାରତରେ କୁତ୍ରାପି ବସି ନଥିଲା । ସଚ୍ଚିଦାନନ୍ଦଙ୍କ ସହିତ ଲେଖକର ପ୍ରଗାଢ଼ ଘନିଷ୍ଠତା ଓ ଆତ୍ମୀୟତା ଏହାଙ୍କ ତତ୍ତ୍ୱାବଧାନ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଭାବରେ ଥିଲା । ଲେଖକ ଇଂରେଜୀ ଅଭିଧାନରେ Many—sidedness (ବହୁତୋମୁଖତା) ଶବ୍ଦ ଦେଖିଅଛି; ମାତ୍ର ଏ ଶବ୍ଦର ପ୍ରକୃତାର୍ଥ ସଚ୍ଚିଦାନନ୍ଦଙ୍କ ଜୀବନରେ ପୂର୍ଣ୍ଣଭାବରେହିଁ ଦେଖିଥିଲା । ଦୂରରୁ ଯେଉଁମାନେ ରାଜା ବାମଣ୍ଡାର ଅଧୀଶ୍ୱରରୂପେ ସଚ୍ଚିଦାନନ୍ଦଙ୍କ ଗୁଣ ଶୁଣି ଥିଲେ, ସେମାନଙ୍କ ମଧ୍ୟରୁ କେହି କେହି ପ୍ରଚଳିତ ପ୍ରବାଦ ଅନୁରୂପ ଭାବିଥିବେ,—'ନାମ୍ ବଡ଼ା, ଦର୍ଶନ୍ (କାମ୍) ଥୋଡ଼ା'। ମାତ୍ର ତାହାଙ୍କ ସଙ୍ଗେ ଘନିଷ୍ଠତା ହୋଇଗଲେ ପ୍ରତ୍ୟେକ ଲୋକ ବୁଝୁଥିଲେ, "ନାମ୍ ଥୋଡ଼ା, କାମ୍ ବଡ଼ା" । ଲେଖକ ତାହାଙ୍କ ସହିତ ସବୁବେଳେ ଘନିଷ୍ଠତାସୂତ୍ରରେ ଆବଦ୍ଧ ହୋଇ ତାହାଙ୍କୁ ତନ୍ତ୍ରୀ, କୁମ୍ଭାର, ଚିତ୍ରକାର, କମାର, ମାଳୀ, ଜ୍ୟୋତିଷୀ, ସ୍ଥପତି, ବଢ଼େଇ, କୃଷକ, ଶିକାରୀ ଓ ଭୃତ୍ୟ ରୂପରେ ଅନେକ ଥର ଦେଖିଥିଲା; ଘୋଡ଼ା, ହାତୀର ପରୀକ୍ଷକ ଏବଂ ରତ୍ନାଳଙ୍କାର ଓ ବସ୍ତ୍ର ପରୀକ୍ଷକରୂପେ କେତେ ଥର ଦେଖିଅଛି, ଚିକିତ୍ସକ, ଦାର୍ଶନିକ, ବୈଦାନ୍ତିକ, ନୈୟାୟିକ ଓ କବିରୂପେ ଦେଖି ପୁଣି ପରମୁହୂର୍ତ୍ତରେ ନବ୍ୟ ଫେସନ୍‌ର ଭୃତ୍ୟବକ ଓ ସଂରକ୍ଷକ ରୂପରେ ମଧ୍ୟ ଦେଖିଛି । ସେ ବାମଣ୍ଡାର ଶାସକ ଓ ରକ୍ଷକ ହୋଇ ସର୍ବପ୍ରଥମ ବୈଜ୍ଞାନିକରୂପରେ ବାମଣ୍ଡାର ଇଞ୍ଜିନିୟର, ଫଟୋଗ୍ରାଫର, ଇଞ୍ଜିନ୍ ଡ୍ରାଇଭର, ଟେଲିଫୋନ୍ ଅପରେଟର୍ ପ୍ରଭୃତି କର୍ମ କରୁଥିଲେ । ଯନ୍ତ୍ର ସାହାଯ୍ୟରେ ପ୍ରଜାମାନଙ୍କୁ ବୃଷ୍ଟି ଓ ବାତ୍ୟା ପ୍ରଭୃତିର ପୂର୍ବସଙ୍କେତ ଜଣାଇ ସେମାନଙ୍କର କୃଷି-କାର୍ଯ୍ୟରେ ସହାୟତା କରିବା ତାହାଙ୍କର ସବୁବେଳେ ଅଭ୍ୟାସ ରହିଥିଲା । ତାହାଙ୍କ ପ୍ରଣୀତ ବୃଷ୍ଟିବିଜ୍ଞାନ ନାମକ ପୁସ୍ତକ ବୃଷ୍ଟି ସମ୍ବନ୍ଧୀୟ ପ୍ରଗାଢ଼ ଅଭିଜ୍ଞତାରେ ପରିପୂର୍ଣ୍ଣ ।

ପ୍ରତ୍ୟେକ ଶ୍ରେଣୀର ବିଭିନ୍ନ ବ୍ୟକ୍ତିଙ୍କ ସହିତ ସେମାନଙ୍କ ବ୍ୟବସାୟ ସମ୍ବନ୍ଧୀୟ ଅଭିଜ୍ଞତାପୂର୍ଣ୍ଣ କଥାବାର୍ତ୍ତା ଲେଖକ କେବଳ ରାଜା ସଚ୍ଚିଦାନନ୍ଦଙ୍କ ଜୀବନରେହିଁ ଦେଖିଥିଲା । ଜଣେ ସାପ ଖେଳାଇବାକୁ ଗଲେ ସର୍ପର ପ୍ରତ୍ୟେକ ବିଶେଷତ୍ୱ ସମ୍ବନ୍ଧରେ ସେ କଥାବାର୍ତ୍ତା କରୁଥିଲେ, ଅଥଚ ଜଣେ ତାର୍କିକ ପଣ୍ଡିତ ଗଲେ ତାହାଙ୍କ ତର୍କ ଓ ଯୁକ୍ତିକୁ ସେ ପ୍ରସିଦ୍ଧ ପ୍ରସିଦ୍ଧ ପୁସ୍ତକରୁ ଉଦାହରଣ ଉଲ୍ଲେଖ କରି ଖଣ୍ଡନ କରୁଥିଲେ । ସବୁ ବିଷୟରେ ଏଭଳି ଅସାଧାରଣ ଅଭିଜ୍ଞତା ଲେଖକ ବୋଧହୁଏ ଅନ୍ୟ କାହାରି ନିକଟରେ ଦେଖି ନାହିଁ ।"

ମସ୍ତିଷ୍କର ଏସବୁ ଗୁଣ ସହିତ ହୃଦୟର ଦୟା, ଦାକ୍ଷିଣ୍ୟ, ମହତ୍ତ୍ୱାଦି ନାନାଗୁଣରେ ସଚ୍ଚିଦାନନ୍ଦ ବିଭୂଷିତ ଥିଲେ । ସ୍ୱଦେଶର ଓ ବିଦେଶର ବହୁ ବହୁ ପଣ୍ଡିତ ଓ ଗୁଣୀ ତାଙ୍କର ଅନନ୍ୟସାଧାରଣ ଆତ୍ମୀୟତା ଓ ସାରଲ୍ୟମଣ୍ଡିତ ସୌଜନ୍ୟରେ ମୁଗ୍ଧ ହୋଇ ବହୁମୁଖରେ ତାଙ୍କର ପ୍ରଶଂସା କରି-ଯାଇଅଛନ୍ତି । ତାଙ୍କର ପ୍ରଜାପ୍ରୀତି ଅନନ୍ୟସୁଲଭ । ସେ ପୂର୍ବ-ପ୍ରଚଳିତ ଅନେକ କର ଉଠାଇ ଦେଇଥିଲେ ଓ ଦୁର୍ଭିକ୍ଷ ସମୟରେ ନାଗପୁର ଅଞ୍ଚଳରୁ ଟଙ୍କାକୁ ୮ସେର ଭାଉରେ ଗହମ କିଣି ଆଣି ବାମଣ୍ଡା ରାଜ୍ୟରେ ୧୬।୧୪ ସେର ଭାଉରେ ବିକ୍ରି କରାଇ ଥିଲେ ।

ବାମଣ୍ଡା ଷ୍ଟେସନଠାରୁ ଦେବଗଡ଼ ପର୍ଯ୍ୟନ୍ତ ସର୍ ବାସୁଦେବ ସୁଢ଼ଳଦେବଙ୍କଦ୍ୱାରା ୬୪ ମାଇଲ୍ ଲମ୍ବ ଯେଉଁ ଗାଡ଼ିରାସ୍ତା ହୋଇଥିଲା ତାହାକୁ ମଟର୍ ଚଳିବା ଉପଯୋଗୀ କରି ପକ୍କା ଓ ବେଶୀ ଚଉଡ଼ା କରିବାରେ ରାଜା ସଚ୍ଚିଦାନନ୍ଦ ଅକାତର ଭାବରେ ବହୁ ସହସ୍ର ଟଙ୍କା ବ୍ୟୟ କରିଥିଲେ ।

ବାମଣ୍ଡା ଜେଲ୍‌ରେ ଉତ୍କୃଷ୍ଟ ଦରି, ଆସନ ଓ ବସ୍ତ୍ର ବୁଣା ହେବାର ବ୍ୟବସ୍ଥା ମଧ୍ୟ ସେ କରିଥିଲେ ।

୧୯୦୮।୯ ରେ ରାଜ୍ୟରେ ଦୁର୍ଭିକ୍ଷ ପଡ଼ିବାରୁ ସଚ୍ଚିଦାନନ୍ଦ ୩୦ ହଜାର ଟଙ୍କାର ଧାନ ବିଦେଶରୁ କିଣି ଆଣି ଶସ୍ତା ଦରରେ ପ୍ରଜାମାନଙ୍କୁ ବିକ୍ରି କରାଇ ଥିଲେ ଏବଂ ଉପରେ ସର୍ବତ୍ର ଶସ୍ୟ-ଗୋଲାମାନ କରାଇ ପ୍ରଜାମାନଙ୍କୁ ଭବିଷ୍ୟତ୍ ଦୁର୍ଭିକ୍ଷ ଦାଉରୁ ରକ୍ଷା କରିଥିଲେ ।

ବହୁ ସହସ୍ର ଟଙ୍କା ବ୍ୟୟରେ ଦେବଗଡ଼ରେ ଦରବାର ମନ୍ଦିର, ବଡ଼ ବଡ଼ ନଦୀ ଉପରେ ସ୍ଥିର ଗୋଟି ସାର୍ଦ୍ଧ ପୋଲ

ଓ ୨୭୦ ଫୁଟ୍ ଲମ୍ବ ଓ ୧୬ ଫୁଟ୍ ଚଉଡ଼ା ଗୋଟିଏ ଝୁଲା ପୋଲ ମଧ୍ୟ ତିଆରି ହୋଇଥିଲା । ହସ୍ତଚାଳିତ ଛାପାଖାନା ଓ ବିଦ୍ୟୁତ୍ ପରିଚାଳିତ ମୁଦ୍ରାଯନ୍ତ୍ର ମଧ୍ୟ ପ୍ରତିଷ୍ଠିତ ହୋଇଥିଲା ।

ଡ଼. ପି. କେନାଲ୍ ରାଣୀ ଉମରୁଧର ପ୍ରିୟାଙ୍କ କୀର୍ତ୍ତି ଅଟେ । ଏହାଛଡ଼ା ୨୦୦୦ ଏକର୍ ଭୂମିରେ ଜଳସେଚନପାଇଁ ରାଜା ସଚ୍ଚିଦାନନ୍ଦ ପାର୍ବତ୍ୟ ନଦୀମାନ ବନ୍ଧାଇ ଜଳାଶୟ ଓ କୁଆମାନ ଖୋଳାଇଥିଲେ ।

ମାଛଚାଷ ଲାଗି ମାଛ ବଢ଼ାଇ ବ୍ୟବସାୟ କରିବା ପାଇଁ ସେ ଗୋଟିଏ ବଡ଼ ଜଳାଶୟ ଖୋଳାଇଥିଲେ । ଟାଇଲ୍ ତିଆରି କାରଖାନା, ମହୁ ତିଆରି ବ୍ୟବସ୍ଥା, ଲୁଗାକଳ, ଚିନିକଳ, ଇତ୍ୟାଦି ଖମାର ଆଦି ବହୁ ମଙ୍ଗଳମୟ କର୍ମ ଏହାଙ୍କଦ୍ୱାରା ପ୍ରତିଷ୍ଠିତ ହୋଇଥିଲା ।

ଜାଲେ ପ୍ରଜାମାନଙ୍କ ଗୃହପାଳିତ ପଶୁମାନଙ୍କୁ ନୀଚଜାତୀୟ ଚମଡ଼ା ଲୋଭୀମାନେ ମାରି ପକାଇବେ, ଏହି ଆଶଙ୍କାରେ ସେ ତାଙ୍କ ରାଜ୍ୟର ଚମଡ଼ା ଠିକା ବନ୍ଦ କରାଇ ଲକ୍ଷାଧିକ ଟଙ୍କାର ଆୟ ପ୍ରତି ମାୟା ତ୍ୟାଗ କରିଥିଲେ । ଗୋଟି ଗୋଟି କରି ତାଙ୍କର ମହାମାନବୀୟତାବ୍ୟଞ୍ଜକ ଗୁଣାବଳୀ ବର୍ଣ୍ଣନା କଲେ ସେ ବର୍ଣ୍ଣନାରେ ଏକାଧିକ ପ୍ରକାଣ୍ଡ ପୁସ୍ତକ ପୂର୍ଣ୍ଣ ହୋଇଯିବ ।

୧୯୦୮ ମସିହାରେ ରାଜା ସଚ୍ଚିଦାନନ୍ଦ ଭାଇସ୍‌ରୟ (ବଡ଼ଲାଟ) ଲର୍ଡ଼ ହାର୍ଡ଼ିଞ୍ଜ୍‌ଙ୍କର କଟକ ଆଗମନୋପଲକ୍ଷରେ ହୋଇଥିବା ଦରବାରକୁ ଆସିଥିଲେ । ସେ ସମୟରେ ଅର୍ଥାଭାବରୁ ମ୍ରିୟମାଣ କଟକର ଉତ୍କଳ-ସାହିତ୍ୟସମାଜକୁ ଦୃଢ଼ ଆର୍ଥିକ ଭିତ୍ତି ଉପରେ ପ୍ରତିଷ୍ଠିତ କରିବାପାଇଁ ସମବେତ ରାଜନ୍ୟବର୍ଗଙ୍କର ଯେଉଁ ସଭା ହୋଇଥିଲା ସେଥିରେ ଉକ୍ତ ସମାଜର ସ୍ଥାୟୀ ପାଣ୍ଠିରୁ ରାଜା ସଚ୍ଚିଦାନନ୍ଦ ଟ ୩୩୩୩୮ ଦାନ କରିଥିଲେ ।

କିନ୍ତୁ ଏସବୁ କୀର୍ତ୍ତି ଛଡ଼ା ସଚ୍ଚିଦାନନ୍ଦ ଯେଉଁ ଅକ୍ଷର-ସମ୍ପଦ କୀର୍ତ୍ତିରେ ଉତ୍କଳ-ଭାରତୀଙ୍କ ମନ୍ଦିରକୁ ସଜ୍ଜିତ କରିଯାଇ-ଅଛନ୍ତି ସେ ସବୁ ତାଙ୍କର ନାମକୁ କାଳର ସର୍ବଗ୍ରାସୀ ମୁଖରୁ ରକ୍ଷା କରିବ । ବାମଣ୍ଡା ରାଜପରିବାରରେ ସାରସ୍ୱତ ପ୍ରତିଭା ଅଖଣ୍ଡ ରାଜତ୍ୱ ମଧ୍ୟରେ ସୁଦ୍ଧା ସାରଦା ସପତ୍ନୀସୁଲଭ ବୈର ପରିତ୍ୟାଗ କରି ସର୍ବଦା ବିରାଜିତା । ରାଜା ସଚ୍ଚିଦାନନ୍ଦ ରାଜାଧୀଶ୍ୱର ଅପେକ୍ଷା କବି ରୂପରେ ବୋଧହୁଏ ଅଧିକତର ବଡ଼ । ତାଙ୍କର ପ୍ରତ୍ୟେକ କାବ୍ୟ ଉତ୍କଳ ଭାରତୀଙ୍କ ଗଳାର ଗୋଟିଏ ଗୋଟିଏ ଅମୂଲ୍ୟ ହାର । ତାଙ୍କ "କାଦମ୍ବିନୀ" କାବ୍ୟ, "ବୈଦିକ ପ୍ରକୃତି" କାବ୍ୟ, "ବୀରଗାଥା" କାବ୍ୟ, "ପ୍ରକୃତିଖଣ୍ଡ" କାବ୍ୟ, "ଚକ୍ର" କାବ୍ୟ, "ଭୀଷ୍ମ" ଓ "ମାୟାଶବରୀ" କାବ୍ୟ, ଏ ପ୍ରତ୍ୟେକେ ଉତ୍କଳ-ସାହିତ୍ୟଭଣ୍ଡାରର ଗୋଟିଏ ଗୋଟିଏ ଉଜ୍ଜ୍ୱଳ ରତ୍ନ । "ଯୌବନକାନନ", "ତ୍ରିଦଶବିଜୟ", "ଆବାହନ", ଏ କେତେକ ଖଣ୍ଡି ଖଣ୍ଡକାବ୍ୟ ଓ କବିତାଗ୍ରନ୍ଥ ମଧ୍ୟ ଅତୁଳ୍ୟ ସାରସ୍ୱତ—ସୁଷମାରେ ମଣ୍ଡିତ । ତାଙ୍କ ରଚିତ "ବୃଷ୍ଟିବନ୍ଧନ" ଗଭୀର ବିଜ୍ଞାନବେତ୍ତାରୂପେ ତାଙ୍କୁ ସ୍ମରଣୀୟ କରି ରଖିବ । ତାଙ୍କ ରଚିତ "ଅଲଙ୍କାର ସାର" ଅଦ୍ୟ ପର୍ଯ୍ୟନ୍ତ ଉତ୍କଳର ଉଚ୍ଚ ଶ୍ରେଣୀମାନଙ୍କରେ ପାଠ୍ୟପୁସ୍ତକରୂପେ ବ୍ୟବହୃତ ।

ତାଙ୍କ ରଚିତ "ବୀରଗାଥା" ନାମକ କାବ୍ୟ ତାଙ୍କ ପରଲୋକ ପ୍ରାପ୍ତି ପରେ ତାଙ୍କ ଦ୍ୱିତୀୟ କୁମାର ଶ୍ରୀ ହୃଦୟନାଥ ଦେବଙ୍କଦ୍ୱାରା ପ୍ରକାଶିତ । ଏଥିରୁ ତାଙ୍କର ଭାରତ ଇତିହାସର ଗଭୀର ଅଧ୍ୟୟନର ପ୍ରକୃଷ୍ଟ ପରିଚୟ ମିଳେ । ଭାରତର ବଡ଼ଲାଟ ଲର୍ଡ଼ ହାର୍ଡ଼ିଞ୍ଜ୍‌ଙ୍କ କଟକ ଦର୍ଶନ ଓ ଦରବାର ଉପଲକ୍ଷରେ ୧୯୧୨ ମସିହାରେ ରଚିତ "ଆବାହନ" କବିତାରେ ସେ ବାମଣ୍ଡା ରାଜବଂଶର ଇତିହାସର ଉଲ୍ଲେଖ କରିଅଛନ୍ତି । ଏସବୁ ଗ୍ରନ୍ଥର ପ୍ରକୃତ ସାରସ୍ୱତ ମୂଲ୍ୟ ଯାହା, ତାହା ଅପେକ୍ଷା ଏସବୁ ଅଧିକତର ମୂଲ୍ୟବିଶିଷ୍ଟ, କାରଣ ଏସବୁ ଜଣେ କରିତ—ଶାସନକାର୍ଯ୍ୟ-ବ୍ୟାପୃତ, କର୍ମଠ, ପ୍ରଜାପ୍ରାଣ ନରପତିଙ୍କର ଅବସରହୀନ ଜୀବନର କୃତି । ସଚ୍ଚିଦାନନ୍ଦ ଉତ୍କଳକୁ ଯେଉଁ ରାଜାଦର୍ଶ ଦେଇଯାଇ ଅଛନ୍ତି ତାହା ଅପେକ୍ଷା ତାଙ୍କ କବିତାଦର୍ଶ ବହୁଗୁଣରେ ଉଚ୍ଚ । ତାଙ୍କ କବିତାରାଜି ତାଙ୍କ ଅଗାଧ ପାଣ୍ଡିତ୍ୟ ଓ ଶବ୍ଦଯୋଜନା ପାଟବର ପ୍ରକୃଷ୍ଟ ପରିଚାୟକ । ଅନ୍ୟାନ୍ୟ କାବ୍ୟ-କବିତା କଥା ଛାଡ଼ି ଦେଲେ ତାଙ୍କ "ସୁନ୍ଦରୀ ଚୌତିଶା" ରୂପ କ୍ଷୁଦ୍ର ଗୀତିକାରେ ଯେଉଁ ପ୍ରସାଦଗୁଣ ଲକ୍ଷିତ ହୁଏ ତାହା ଆଧୁନିକ ସାହିତ୍ୟରେ କ୍ୱଚିତ୍ ଦୃଷ୍ଟ ହୋଇଥାଏ । ବାମଣ୍ଡାରୁ "ରୁଦ୍ରହଂସ କେଳିସର" କରି ପିତାପୁତ୍ର ଦୁହେଁ ସାରସ୍ୱତ ଆରାଧନାର ଯେଉଁ ଅଭିନବ ଆୟୋଜନ କରିଥିଲେ ତାହାର ଚିରସ୍ଥାୟୀ ସ୍ମାରକରୂପେ ସଚ୍ଚିଦାନନ୍ଦଙ୍କ କାବ୍ୟ-କବିତାବଳୀ ଉତ୍କଳରେ ସମ୍ମାନିତ ହେଉଥିବ । ସଚ୍ଚିଦାନନ୍ଦଙ୍କ ମୃଣ୍ମୟ ଶରୀର ଶ୍ମଶାନ ଗ୍ରାସ କରିଅଛି, ତାଙ୍କର ଅନ୍ୟାନ୍ୟ ନଶ୍ୱର କୀର୍ତ୍ତି ସମୟଗତିରେ ଅବଶ୍ୟ କାଳକବଳିତ ହୋଇ ପଡ଼ିବ, କିନ୍ତୁ ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ କାଳକୀଟ ଦଶନକୁ ପରାଭୂତ କରି ସଗର୍ବ ଦଣ୍ଡାୟମାନ ରହିବ । ମରଣ ପରେ ଉତ୍କଳର ବାଣୀସେବକମାନଙ୍କଠାରୁ ସଚ୍ଚିଦାନନ୍ଦ ଆଜି ଯେଉଁ ପୂଜା ଲାଭ କରିବାର ଅଧିକାରୀ ହୋଇଅଛନ୍ତି ଓ ଉତ୍କଳର ବାଣୀସେବକଙ୍କଠାରୁ ତାଙ୍କର ସ୍ୱର୍ଗତ ଆତ୍ମା ଯେଉଁ ନୈବେଦ୍ୟ ଲାଭ କରୁଅଛି ତାହା ତାଙ୍କର ସାକ୍ଷାତ୍ ପ୍ରେରଣା-ରୂପିଣୀ ଦେବୀକଳ୍ପା ସହଧର୍ମିଣୀ ଶ୍ରୀମତୀ ଉମରୁଧର ପ୍ରିୟା ପାଟମହାଦେବୀ ସ୍ୱଚକ୍ଷୁରେ ଦେଖି ଯାଇଅଛନ୍ତି । ଏ ପୂଜାର ଅନ୍ତ ନାହିଁ । ଅନନ୍ତକାଳ ପରି ଏ ପୂଜା ମଧ୍ୟ ଅନ୍ତହୀନ ।

ପୂର୍ବରୁ କଥିତ ହୋଇଅଛି ଯେ, ସଚ୍ଚିଦାନନ୍ଦ ଓଡ଼ିଶାର ପ୍ରଧାନ ସାହିତ୍ୟ ପୀଠ "ଉତ୍କଳ ସାହିତ୍ୟସମାଜ"କୁ ଓଡ଼ିଶାର ରାଜନ୍ୟମାନଙ୍କ ମଧ୍ୟରୁ ସର୍ବପ୍ରଥମେ ଟ ୩୩୩୩୮ ଦାନ କରିଥିଲେ । କହିବା ବାହୁଲ୍ୟ ଯେ "ଉତ୍କଳ ସାହିତ୍ୟ-ସମାଜ"ର ବର୍ତ୍ତମାନ ରୂପ ତାଙ୍କରି ବିରାଟ କଳ୍ପନାରୁ ଉଦ୍‌ଭୂତ ।

ସଚ୍ଚିଦାନନ୍ଦ ୧୯୧୨ ମସିହା ମାର୍ଚ୍ଚ ମାସ ୧୧ ତାରିଖ ଦିନ କଲିକତାରେ ନଶ୍ୱର ଦେହ ତ୍ୟାଗ କରି ଦିବ୍ୟଧାମକୁ ପ୍ରୟାଣ କରିଥିଲେ । ତାଙ୍କ ମରଣରେ ଉତ୍କଳ ଯାକତର ହୋଇ ପଡ଼ିଲା ଓ ଦେଶବ୍ୟାପୀ ଶୋକର ପ୍ରବଳ ବାତ୍ୟା ବହି-ଗଲା । ତାଙ୍କ ମରଣ ଉପଲକ୍ଷରେ ରାଧାନାଥ, ମଧୁସୂଦନ ଓ

ଚିନ୍ତାମଣି ଆଦିଙ୍କଦ୍ୱାରା ରଚିତ ଶୋକଗୀତିକାମାନଙ୍କରୁ ଦେଖାଯାଏ ଯେ, ସଚ୍ଚିଦାନନ୍ଦ ଏକାଧାରରେ ରାଜନୀତିଜ୍ଞ, ସାହିତ୍ୟିକ କବି, ବୈଜ୍ଞାନିକ, ଭାଷାତତ୍ତ୍ୱଜ୍ଞ ମହାପଣ୍ଡିତରୂପେ ଉତ୍କଳମାତାଙ୍କ ସନ୍ତାନ ସନ୍ତତିଙ୍କ ହୃଦୟରେ ଭକ୍ତିପୂତ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲେ ଓ ଓଡ଼ିଆ ଜାତି ବଞ୍ଚିଥିବା ପର୍ଯ୍ୟନ୍ତ ସେ ସ୍ଥାନ ଅଧିକାର କରିଥିବେ ।

— — — —

## ରାଜ୍ଞୀ ଶ୍ରୀମତୀ ଡମରୁଧରପ୍ରିୟା ଦେବୀ

ରାଜା ସଚ୍ଚିଦାନନ୍ଦଙ୍କ ଜୀବନ ଚରିତରେ ତାଙ୍କ ସହଧର୍ମିଣୀ ରାଣୀ ଶ୍ରୀମତୀ ଡମରୁଧରପ୍ରିୟା ଦେବୀଙ୍କ ଉଲ୍ଲେଖ ନ ରହିଲେ ଉକ୍ତ ଜୀବନ ଚରିତ ଅପୂର୍ଣ୍ଣାଙ୍ଗ ହେବ ।

ପୂର୍ବେ ରାଜା ସଚ୍ଚିଦାନନ୍ଦଙ୍କ ପ୍ରସଙ୍ଗକ୍ରମେ ରାଣୀ ଶ୍ରୀମତୀ ଡମରୁଧରପ୍ରିୟାଙ୍କ ନାମ ଉଲ୍ଲେଖ ହୋଇଅଛି ।

କଳାହାଣ୍ଡି ରାଜ୍ୟର ଅନ୍ତର୍ଗତ କାଶୀପୁରର ରାଜା ବୈଦ୍ୟନାଥ ସିଂହ ଦେବଙ୍କ ସ୍ୱର୍ଗାରୋହଣ ସମୟରେ ତଦୀୟ ରାଜକୁମାର ଜଗତପ୍ରତାପ ସିଂହ ଅପ୍ରାପ୍ତବୟସ୍କ ହୋଇଥିବାରୁ ତାଙ୍କ ରାଣୀ ଶ୍ରୀମତୀ ସୂର୍ଯ୍ୟମଣି ଦେବୀ ସ୍ୱୟଂ ରାଜକାର୍ଯ୍ୟ ପରିଚାଳନାର ଭାର ଗ୍ରହଣ କରିଥିଲେ । ତାଙ୍କର ରାଜକାର୍ଯ୍ୟ ପରିଚାଳନାରେ ତୀକ୍ଷ୍ଣ ବୁଦ୍ଧି, ଅତିଥି ଅଭ୍ୟାଗତ ସେବା, ପ୍ରଜାଙ୍କୁ ପୁତ୍ର ନିର୍ବିଶେଷରେ ପାଳନ, ଧର୍ମପ୍ରାଣତା, ମାତୃଭୂମି ଓ ମାତୃଭାଷା ପ୍ରତି ଅନୁରାଗ, ଦରିଦ୍ରପରାୟଣତା, ସାଧୁସନ୍ଥମାନଙ୍କ ସେବା ଓ ଦୁଃସ୍ଥ ବ୍ୟକ୍ତିଙ୍କ ଦୁଃଖାପନୋଦନ ଆଦିର ଯଶଃସୌରଭ ଉତ୍କଳର ସର୍ବତ୍ର ପ୍ରସାରିତ ହୋଇଥିଲା ଓ ତତ୍କାଳୀନ ରାଜନ୍ୟବର୍ଗ ରାଣୀ ସୂର୍ଯ୍ୟମଣିଙ୍କୁ ସମ୍ମାନ ଓ ଭକ୍ତି କରୁଥିଲେ । ରାଜା ସର୍ ବାସୁଦେବ ସୁଡ଼ଳ ଦେବ କାଶୀପୁରର ସ୍ୱର୍ଗତ ରାଜା ବୈଦ୍ୟନାଥ ସିଂହଙ୍କ ଜ୍ୟେଷ୍ଠା କନ୍ୟା ଶ୍ରୀମତୀ ଡମରୁଧରପ୍ରିୟା ଜେମାମଣିଙ୍କ ଅଶେଷ ସୁଗୁଣ ଓ ଶିକ୍ଷା ଆଦିର ସମ୍ବାଦ ପାଇ ବାମଣ୍ଡାର ଭାବୀ ଅଧୀଶ୍ୱର ଟିକାଏତ ସଚ୍ଚିଦାନନ୍ଦଙ୍କ ପାଇଁ ତାଙ୍କୁ ନିଜର ପୁତ୍ରବଧୂରୂପେ ବରଣ କରିବା ସ୍ଥିର କଲେ ଓ ଏ ବିବାହ ପ୍ରସଙ୍ଗର ସ୍ଥିରୀକରଣ ପାଇଁ ବିଶ୍ୱାସୀ 'ଭଲଲୋକ' କାଶୀପୁରର ବିଧବା ରାଣୀଙ୍କ ନିକଟକୁ ପଠାଇ ଏ ବିବାହ ପ୍ରସଙ୍ଗ ସ୍ଥିର କଲେ ଏବଂ କୁମାରଙ୍କ ସହିତ ସ୍ୱୟଂ କାଶୀପୁର ରାଜଧାନୀରେ ଉପସ୍ଥିତ ହୋଇ ସେହିଠାରେ ୧୮୮୧ ସାଲରେ [ ଟିକାଏତଙ୍କୁ ୧୭ ବର୍ଷ ବୟସ ହୋଇଥିବା ସମୟରେ ] ସପ୍ତାହାଧିକ କାଳ ଅବସ୍ଥାନ କରି ଟିକାଏତଙ୍କ ମଙ୍ଗଳକୃତ୍ୟ ସମାପନ କରାଇ ବିବାହାନ୍ତେ ଆତ୍ମୀୟ ସ୍ୱଜନ, ବରବଧୂ, ଯୌତୁକ ସମ୍ଭାର ସହ ମହାସମାରୋହସହକାରେ ଦେବଗଡ଼କୁ ପ୍ରତ୍ୟାବର୍ତ୍ତନ କଲେ ଓ ଦେବଗଡ଼ରେ ମଧ୍ୟ ଯୁବରାଜଙ୍କ ବିବାହର ପରବର୍ତ୍ତୀ ଉତ୍ସବମାନ ମହାସମାରୋହ ଓ ବହୁ ବ୍ୟୟ ସହକାରେ ସମ୍ପାଦନ କଲେ । କାଶୀପୁରର ରାଜକୁମାରୀ ତିନି ଜଣଙ୍କ ମଧ୍ୟରୁ ଜ୍ୟେଷ୍ଠା ପ୍ରଥମେ ବାମଣ୍ଡାର ଯୁବରାଣୀ, ତତ୍ପରେ ପଟ୍ଟମହିଷୀ, ତତ୍ପରେ ରାଜମାତା ଓ ବର୍ତ୍ତମାନ ରାଜପିତାମହୀରୂପେ ବିରାଜିତା । ଦ୍ୱିତୀୟା ରାଜକୁମାରୀ ଗାଙ୍ଗପୁରର ଯୁବରାଣୀ ହେଲେ । ତାଙ୍କର ପୁତ୍ର ଗାଙ୍ଗପୁରର ସ୍ୱର୍ଗତ ଭବାନୀଶଙ୍କର ଶେଖରଙ୍କ ଜନ୍ମର ତୃତୀୟ ଦିବସରେ ସେ ସୂତିକା ରୋଗରେ ସ୍ୱର୍ଗତା ହୋଇଥିଲେ । ତୃତୀୟ ରାଜକୁମାରୀ ସୋନପୁରର ଯୁବରାଣୀ, ପରେ ମହାରାଣୀ ଓ ବର୍ତ୍ତମାନ ମହାରାଜ-ଜନନୀରୂପେ ବିରାଜିତା ।

ଯୁବରାଣୀ ଓ ଯୁବରାଜରୂପେ ଦାମ୍ପତ୍ୟ ଜୀବନର ସୁଖ ଉପଭୋଗ କରୁଥିଲେହେଁ ରାଜନୀତିଜ୍ଞ ସର୍ ବାସୁଦେବଙ୍କ ବ୍ୟକ୍ତିଗତ ତତ୍ତ୍ୱାବଧାନରେ ଯୁବରାଜ ସଚ୍ଚିଦାନନ୍ଦ ରାଜ୍ୟଶାସନ କର୍ମରେ ତାଲିମ୍ ହେଲେ ଓ ପୁତ୍ରବଧୂ ଶ୍ରୀମତୀ ଯୁବରାଣୀ, ଓଡ଼ିଆ, ବଙ୍ଗଳା, ଇଂରାଜୀ, ହିନ୍ଦୀଭାଷାରେ ବହୁ ପ୍ରବୀଣତା ଓ ପାଣ୍ଡିତ୍ୟ ଲାଭ କଲେ । ରାଜା ସର୍ ବାସୁଦେବ କ୍ରମେ କ୍ରମେ ରାଜ୍ୟଶାସନର ସମୁଦାୟ ଭାର ଟିକାଏତଙ୍କ ଉପରେ ଅର୍ପଣ କରି କେବଳ ଅପିଲ୍ ଅଦାଲତର କାର୍ଯ୍ୟ ଆପଣା ହାତରେ ରଖିଥିଲେ । ଏଥିପାଇଁ ସଚ୍ଚିଦାନନ୍ଦ ଯୁବରାଜ ଥାଇ ସୁଦ୍ଧା ରାଜକର୍ମରେ, ରାଜଦରବାରରେ ଓ ଧର୍ମାଧିକରଣରେ ବହୁକାଳ ବ୍ୟାପୃତ ରହୁଥିଲେ । ସେହି ସମୟରେ ଯୁବରାଣୀ ଚିତ୍ରକଳା, ସଙ୍ଗୀତ ଓ ସାହିତ୍ୟର ଚର୍ଚ୍ଚାରେ ବ୍ୟାପୃତା ରହୁଥିଲେ ।

ସଚ୍ଚିଦାନନ୍ଦ ସାକ୍ଷାତ୍ ସରସ୍ୱତୀସ୍ୱରୂପା ଡମରୁଧରପ୍ରିୟାଙ୍କୁ ପାଇବାରୁ ଦୁହିଁଙ୍କ ଜୀବନ ସାହିତ୍ୟ ସେବା ଓ ସରସ୍ୱତୀଙ୍କ ଆରାଧନାରେ ପରିଣତ ହେଲା । ସତେ ଯେପରି ପ୍ରଭୁ ଏ ରାଜଦମ୍ପତିଙ୍କ ବିବାହ ବନ୍ଧନଦ୍ୱାରା ଭବିଷ୍ୟତ ମିଳନର ସୂଚନା କରି ଦୁହିଁଙ୍କୁ ଏକା ଛାଞ୍ଚରେ ଗଢ଼ିଥିଲେ ।

୧୧ ବର୍ଷକାଳ ଯୌବରାଜ୍ୟ ଭୋଗ କରିବା ପରେ ସର୍ ବାସୁଦେବଙ୍କ ସ୍ୱର୍ଗପ୍ରାପ୍ତି ଯୋଗୁଁ ରାଜ୍ୟଶାସନର ସମସ୍ତ ଭାର ୧୯୦୩ ସାଲରେ ସଚ୍ଚିଦାନନ୍ଦଙ୍କ ଉପରେ ପଡ଼ିଲା ଏବଂ ରାଜଦମ୍ପତି ଏକାଙ୍ଗ ହୋଇ ଲକ୍ଷ୍ମୀସେବା ( ରାଜ୍ୟଶାସନ ) ଓ ସରସ୍ୱତୀ ସେବା ( ମାତୃଭାଷା ଓ ସାହିତ୍ୟାଲୋଚନା )ରେ ଜୀବନକୁ ଧନ୍ୟ ଓ ମଧୁମୟ କଲେ । ରାଜ୍ୟଶାସନର ପରିସ୍ଥିତିର ବହନ କରିବାରୂପ ଦୁର୍ବହ ଭାର ରାଜ୍ଞୀ ଶ୍ରୀମତୀ ଡମରୁଧରପ୍ରିୟାଙ୍କ ସହଚର୍ଯ୍ୟ, ସହକର୍ମିତା, ସହଧର୍ମିଣୀତ୍ୱ ଓ ପରାମର୍ଶ ଯୋଗୁଁ ରାଜା ସଚ୍ଚିଦାନନ୍ଦ ଅକୁତୋଭୟରେ ବହନ କରିବାକୁ ସମର୍ଥ ହୋଇଥିଲେ । ଏ ଭାର ବହନ କରି ସୁଦ୍ଧା ରାଜଦମ୍ପତି ଅବସର ସମୟରେ ଏକତ୍ର ବାଣୀ ଆରାଧନା କରୁଥିଲେ । ରାଜା ସଚ୍ଚିଦାନନ୍ଦଙ୍କ ରଚିତ ଗ୍ରନ୍ଥମାନଙ୍କ ପାଣ୍ଡୁଲିପିମାନ ପ୍ରଥମେ ରାଜ୍ଞୀଙ୍କଦ୍ୱାରା ସମାଲୋଚିତ ଓ ସମର୍ଥିତ ହେବା ପରେ ସେମାନ ମୁଦ୍ରାଯନ୍ତ୍ର ସାହାଯ୍ୟରେ ଲୋକଲୋଚନଗୋଚର ହେଉଥିଲା । ରାଜା ସଚ୍ଚିଦାନନ୍ଦଙ୍କର କ ବିଜ୍ଞାନ, ଖ ଚିତ୍ରକଳା, ଗ କବିତା ଘ ସଙ୍ଗୀତ, ଙ ବାଦ୍ୟ, ଚ ବୈଦିକ ଅଧ୍ୟୟନ, ଛ ସଂସ୍କୃତ ସାହିତ୍ୟ, ଜ ବ୍ୟାକରଣଶାସ୍ତ୍ର, ଝ ଅଳଙ୍କାରଶାସ୍ତ୍ର, ସବୁ ଦିଗରେ ବହୁତୋମୁଖୀ ପ୍ରତିଭାର ଫଳସ୍ୱରୂପ ତାଙ୍କ ଲେଖନୀରୁ ନିଃସୃତ ସନ୍ଦର୍ଭ ଓ କବିତାମାନଙ୍କ ସମାଲୋଚନା ପାଇଁ ଗଭୀର ପାଣ୍ଡିତ୍ୟ ଲୋଡ଼ା । ଏଥିରୁ ରାଜ୍ଞୀ ଡମରୁଧରପ୍ରିୟାଙ୍କ ବିଦ୍ୱତ୍ତା ସହଜେ ଅନୁମିତ

ଦେବ । ଏପରି ବିଦୁଷୀ, ସର୍ବଗୁଣସମ୍ପନ୍ନା, ସୁଧୀ ସହଧର୍ମିଣୀଙ୍କୁ ଲାଭ କରି କେବଳ ବାମଣ୍ଡା ନରପତି ସଚ୍ଚିଦାନନ୍ଦ ଧନ୍ୟ ହୋଇ ନ ଥିଲେ, ବାମଣ୍ଡା ରାଜ୍ୟ ଓ ରାଜ୍ୟର ପ୍ରକୃତିପୁଞ୍ଜ ମଧ୍ୟ କୃତାର୍ଥ ହୋଇଅଛନ୍ତି । ରାଜ୍ୟଶାସନରେ ଓ ସାହିତ୍ୟଚର୍ଚ୍ଚା ବିଷୟରେ ରାଜା ସଚ୍ଚିଦାନନ୍ଦଙ୍କ ଦକ୍ଷିଣହସ୍ତରୂପେ କର୍ମ କରି ରାଣୀ ମହୋଦୟା ସନ୍ତୁଷ୍ଟା ରହୁ ନ ଥିଲେ; ତାଙ୍କ ବ୍ୟକ୍ତିଗତ ବ୍ୟୟ ପାଇଁ ରାଜକୋଷରୁ ତାଙ୍କୁ ଯେଉଁ ଧନ ମିଳୁଥିଲା ଓ ତାଙ୍କ ପାଇଁ ଖଞ୍ଜାଥିବା ବୃତ୍ତିରୁ ଯାହା ଲାଭ ମିଳୁଥିଲା, ତହିଁରୁ ଅଧିକାଂଶ ଧନ ଗରିବ ପ୍ରଜାଙ୍କୁ ସାହାଯ୍ୟ ଦେବା, ଜଙ୍ଗଲ ଅଞ୍ଚଳରେ କୂପ, ତଡ଼ାଗାଦି ଖୋଳାଇ ଦେବା, କନ୍ୟାଦାୟଗ୍ରସ୍ତ ବ୍ୟକ୍ତିଙ୍କୁ କନ୍ୟାଦାୟରୁ ମୁକ୍ତ କରିବା, ଅକୃତୋପନୟନ ବାଳକଙ୍କ ଉପନୟନ ବ୍ୟୟ ନିର୍ବାହ, ମରୁଡ଼ି, ବନ୍ୟା, ଗୃହଦାହ ଆଦିରେ କ୍ଲିଷ୍ଟ ପ୍ରଜାମାନଙ୍କୁ ସାହାଯ୍ୟ ଦାନ ଓ ନେକନେକ ସ୍ଥାନରେ ଦେବମନ୍ଦିର ପ୍ରତିଷ୍ଠାରେ ବ୍ୟୟ ହେଉଥିଲା ଓ ଏ ବ୍ୟୟର ଅଧିକାଂଶ ରାଜା ସଚ୍ଚିଦାନନ୍ଦଙ୍କ କାନରେ ମଧ୍ୟ ପଡୁ ନ ଥିଲା । ଇଂରାଜୀରେ ଗୋଟିଏ ଉପଦେଶ ଅଛି, "Let not your left hand know what your right hand bestoweth" ଅର୍ଥାତ୍, ତୁମ୍ଭ ଡାହାଣ ହାତରେ ପ୍ରଦତ୍ତ ଦାନର ବିଷୟ ତୁମ୍ଭ ବାମହାତ ସୁଦ୍ଧା ନ ଜାଣୁ—ଏ ଉପଦେଶ ରାଣୀ ଡମରୁଧରପ୍ରିୟାଙ୍କ ଜୀବନରେ ଅକ୍ଷରେ ଅକ୍ଷରେ ପ୍ରତିପାଳିତ ହୋଇଅଛି ।

ସାର୍ ବାସୁଦେବ ସୁଢଳଦେବଙ୍କ ଅମଳରୁ ରାଜକୁମାରୀମାନଙ୍କର ବିଦ୍ୟାଶିକ୍ଷା, ସାହିତ୍ୟଚର୍ଚ୍ଚା, ସଙ୍ଗୀତ, କଳା ଅଙ୍ଗଶୈଳନାଦିର ଶିକ୍ଷାପାଇଁ ବିଦ୍ୟାଳୟ ରାଜନହରରେ ପ୍ରତିଷ୍ଠିତ ହୋଇଥିଲା । ତହିଁର ଫଳରେ ବାମଣ୍ଡାର ରାଜକୁମାରୀମାନଙ୍କ ପରି ସୁଶିକ୍ଷିତା ଓ ସରସ୍ୱତୀସେବିକା ଉତ୍କଳଖଣ୍ଡରେ ଅନ୍ୟତ୍ର ବିରଳ । ରାଜକୁମାରୀମାନଙ୍କ ଶିକ୍ଷାର ଭାର ଉପଯୁକ୍ତ ଶିକ୍ଷୟିତ୍ରୀମାନଙ୍କଠାରେ ନ୍ୟସ୍ତ ଥିଲା । ରାଜକୁମାରମାନଙ୍କ ଶିକ୍ଷା ପାଇଁ ରାଜନହରର ବହିର୍ଦେଶରେ ପ୍ରତିଷ୍ଠିତ ବିଦ୍ୟାଳୟର ନିୟନ୍ତା (ସୁପରିଣ୍ଟେଣ୍ଡେଣ୍ଟ) ଥିଲେ ଯୁବରାଜ ଓ ପରେ ରାଜା ସଚ୍ଚିଦାନନ୍ଦ । ରାଜକୁମାରୀମାନଙ୍କ ଶିକ୍ଷାପାଇଁ ରାଜନହରର ମଧ୍ୟରେ ପ୍ରତିଷ୍ଠିତ ବିଦ୍ୟାଳୟର ନିୟନ୍ତ୍ରୀ ଥିଲେ ଯୁବରାଣୀ ଓ ପରେ ରାଣୀ ଶ୍ରୀମତୀ ଡମରୁଧରପ୍ରିୟା ଦେବୀ । ଏଥିରୁ ମହାଦେବୀଙ୍କ ବିଦ୍ୟବତ୍ତାର ଓ ନେତ୍ରୀତ୍ୱର ଆଭାସ ମିଳିବ ।

ରାଜା ସଚ୍ଚିଦାନନ୍ଦ ଓ ରାଣୀ ଡମରୁଧରପ୍ରିୟାଙ୍କ କୋଡ଼ରେ ପ୍ରଭୁ ତିନିଗୋଟି ସୁକୁମାର ଓ ଦୁଇଗୋଟି ସୁକୁମାରୀଙ୍କୁ ଦେଇଥିଲେ । ଜ୍ୟେଷ୍ଠପୁତ୍ର ବାମଣ୍ଡାର ସ୍ୱର୍ଗତ ରାଜା ଦିବ୍ୟଶଙ୍କର, ତତ୍କନିଷ୍ଠ ବଡ଼କୁମାର ଶ୍ରୀ ହୃଦୟନାଥ ଦେବ ଓ ତତ୍କନିଷ୍ଠ କୁମାର ଶ୍ରୀ ଲଲି ମୋହିନୀମୋହନ ଦେବ (ଯେ ବର୍ତ୍ତମାନ ସ୍ୱର୍ଗତ ପୁରୀ ରାଜା ମୁକୁନ୍ଦ ଦେବଙ୍କ ଦତ୍ତକ ସନ୍ତାନରୂପେ ଉତ୍କଳର ଠାକୁର ଶ୍ରୀ ଗଜପତି ଗଡ଼ଜାତେଶ୍ୱର, ନବକୋଟି କର୍ଣ୍ଣାଟ କଳବର୍ଗେଶ୍ୱର, ବୀରାଧିବୀରବର ପ୍ରତାପ ଶ୍ରୀ ଗଜପତି ମହାରାଜାଙ୍କ ଯୋଗ୍ୟ ଦାୟାଦରୂପେ ପୁରୀର ରାଜଗାଦିକୁ ରାଜା ଶ୍ରୀ ଶ୍ରୀ ଶ୍ରୀ ରାମଚନ୍ଦ୍ର ଦେବ ନାମରେ ଶୋଭିତ ଓ ମହିମାନ୍ୱିତ କରୁଅଛନ୍ତି). ସଚ୍ଚିଦାନନ୍ଦ ରାଜଦମ୍ପତିଙ୍କ କୁମାରୀ ଜ୍ୟେଷ୍ଠା ହେମାମଣି ଶ୍ରୀମତୀ ସୁରତରଙ୍ଗିଣୀ ଦେବୀଙ୍କୁ ରାଜଦମ୍ପତି କଳାହାଣ୍ଡିର ମହାରାଜ ଶ୍ରୀ ବ୍ରଜମୋହନ ଦେବଙ୍କ ହସ୍ତରେ ଅର୍ପଣ କରି ଯାଇଅଛନ୍ତି ଓ ଅଛ ମହାରାଣୀ ଶ୍ରୀମତୀ ସୁରତରଙ୍ଗିଣୀ ୨ଟି ରାଜକୁମାର ଓ ୩ ଗୋଟି ରାଜକୁମାରୀଙ୍କୁ ଲାଭ କରି ରାଜକୁମାରୀମାନଙ୍କ ବିବାହକ୍ରିୟା ସମାହିତ କରିଅଛନ୍ତି । ସଚ୍ଚିଦାନନ୍ଦଙ୍କ କନିଷ୍ଠା ରାଜକୁମାରୀ ମନ୍ଦାକିନୀ ବାଲ୍ୟକାଳରେ ଇହଲୀଳା ସାଙ୍ଗ କରିଥିଲେ ।

ବାମଣ୍ଡା ରାଜ୍ୟର ସହସ୍ର ସହସ୍ର ଏକର୍ ଜଙ୍ଗଲ ଜମିରେ ଜଳ ମଡ଼ାଇବାପାଇଁ ବାରକୋଟ ସବ୍‌ଡିଭିଜନ୍‌ରେ ୩୦ ମାଇଲ୍ ଲମ୍ବ କେନାଲ୍ ଓ ଆନିକଟ୍ (ସେତୁ)ର ନିର୍ମାଣ ଓ ଉଦ୍‌ଘାଟନ କର୍ମ ରାଜା ସଚ୍ଚିଦାନନ୍ଦଙ୍କ ରାଜତ୍ୱର ଗୋଟିଏ ବିଶିଷ୍ଟ ଉଲ୍ଲେଖଯୋଗ୍ୟ ଘଟଣା ଅଟେ । ଏହି କେନାଲ୍ ବିଷୟ ରାଜା ସଚ୍ଚିଦାନନ୍ଦଙ୍କ ଜୀବନଚରିତରେ ଲେଖା ହୋଇଅଛି । ଏହି କେନାଲ୍ ଖୋଲା ହେବାଦ୍ୱାରା ବାମଣ୍ଡା ରାଜ୍ୟର ପ୍ରାୟ ୧୦୦ ବର୍ଗ ମାଇଲ୍ ବ୍ୟାପୀ ଅଞ୍ଚଳର ସହସ୍ର ସହସ୍ର ଏକର୍ ଜମି ଅବାଦ ହୋଇ ପାରିଅଛି ଓ ସହସ୍ର ସହସ୍ର ପ୍ରଜା ଅନାବୃଷ୍ଟି 'ମରୁଡ଼ି' ଜନିତ ଶସ୍ୟହାନିରୁ ରକ୍ଷା ପାଇ ମୁକ୍ତକଣ୍ଠରେ ଅହର୍ନିଶ ସଚ୍ଚିଦାନନ୍ଦ ରାଜଦମ୍ପତିଙ୍କର ଯଶୋଗାନ କରୁଅଛନ୍ତି । ଏ କେନାଲର କଳ୍ପନା ରାଣୀ ଶ୍ରୀମତୀ ଡମରୁଧରପ୍ରିୟା ଦେବୀଙ୍କ ଦ୍ୱାରା ହୋଇଥିଲା ଓ ଏହି ପରିକଳ୍ପନା ରାଜା ସଚ୍ଚିଦାନନ୍ଦଙ୍କଦ୍ୱାରା ଅନୁମୋଦିତ ହେବାରୁ ରାଣୀ ଡମରୁଧରପ୍ରିୟା ନିଜର ସ୍ତ୍ରୀଧନରୁ ବହୁ ଅର୍ଥ ଏହି କେନାଲ୍ ଖନନ କର୍ମରେ ବ୍ୟୟ କରିଥିଲେ । ଉକ୍ତ କେନାଲ୍ ଖନନ ଓ ଆନିକଟ୍ ନିର୍ମାଣ କର୍ମ ସଙ୍ଗେ ଷ୍ଟେଟ୍‌ର କିଛି ସମ୍ପର୍କ ନ ଥିଲା । ରାଣୀ ମହୋଦୟା ସେଥିପାଇଁ ସ୍ୱତନ୍ତ୍ର ଇଞ୍ଜିନିଅର୍, କର୍ମଚାରୀ ଓ ମୂଲିଆ ନିଯୁକ୍ତ କରି ସେମାନଙ୍କର ସମସ୍ତ ବ୍ୟୟ ନିଜେ ବହନ କରୁଥିଲେ । ଏଥିପାଇଁ ରାଜା ସଚ୍ଚିଦାନନ୍ଦ ଉକ୍ତ କେନାଲ୍‌ର ରାଣୀ ଡମରୁଧରପ୍ରିୟାଙ୍କୁ ସ୍ୱତ୍ୱବତୀରୂପେ ସ୍ୱୀକାର କରିଥିଲେ ଓ ଉକ୍ତ କେନାଲର ଜଳସେଚନ ଯୋଗୁଁ ଉର୍ବର ହୋଇଥିବା ଜମିରୁ ଉତ୍ପନ୍ନ ଆୟ ରାଣୀ ଡମରୁଧରପ୍ରିୟା ଭୋଗ କରି ଆସୁଅଛନ୍ତି ଓ ତାଙ୍କ ନାମ ଅନୁସାରେ ଉକ୍ତ କେନାଲର ନାମ ଡମରୁଧରପ୍ରିୟା କେନାଲ୍ D. P. Canal ହୋଇଅଛି । ଏହି କାର୍ଯ୍ୟରୁ ରାଣୀ ସାହେବାଙ୍କ ବ୍ୟାବହାରିକ ମନୋବୃତ୍ତି (Business mentality)ର ପ୍ରାଖର୍ଯ୍ୟ ଓ ଉଜ୍ଜ୍ୱଳ ଦୂରଦୃଷ୍ଟିର ସ୍ପଷ୍ଟ ପ୍ରମାଣ ମିଳୁଅଛି । ସ୍ୱନାମଧନ୍ୟା ଉକ୍ତ ରାଣୀ ସାହେବା (ଯେ ସ୍ୱର୍ଗତ ରାଜା ଦିବ୍ୟଶଙ୍କରଙ୍କ ରାଜତ୍ୱ କାଳରେ ରାଜମାତା ଓ ରାଜା ଭାନୁଗଙ୍ଗଙ୍କ ରାଜତ୍ୱକାଳରେ ରାଜପିତାମହୀ ବା ରାଜ ଜେଜେମାତାରୂପେ ସର୍ବତ୍ର ପ୍ରଖ୍ୟାତା ହୋଇଅଛନ୍ତି) ଉକ୍ତ କେନାଲର ଭବିଷ୍ୟତ୍ ସୁରକ୍ଷା, ସଂସ୍କାର, ପରିଚାଳନ, ସ୍ୱତ୍ୱାଧିକାର ଓ ଆୟଭୋଗର ବ୍ୟବସ୍ଥା ମଧ୍ୟ କରିଅଛନ୍ତି ।

ତାଙ୍କର ଜ୍ୟେଷ୍ଠ କୁମାର [ ଅଧୁନା ସ୍ୱର୍ଗତ ] ବାମଣ୍ଡା ନରପତି ରାଜା ଦିବ୍ୟଶଙ୍କରଙ୍କ ପାଇଁ ରାଣୀ ଜନନୀ ଥାଇ ତାଙ୍କର ଅନ୍ୟ ଦୁଇ କୁମାର, ପଟାଏତ ( ବର୍ତ୍ତମାନ ସିନିଅର୍ ବଡ଼ କୁମାର ) ଶ୍ରୀ ହୃଦୟନାଥ ଦେବ ଓ ଲାଲ୍ ଶ୍ରୀ ମୋହିନୀମୋହନ ଦେବ ( ବର୍ତ୍ତମାନ ପୁରୀର ଗଜପତି ମହାରାଜ ଶ୍ରୀ ରାମଚନ୍ଦ୍ର ଦେବ ) ଓ ସେମାନଙ୍କ ଦାୟାଦମାନେ ଏ କେନାଲ୍‌ର ସୁରକ୍ଷା ଓ ମରାମତି ଆଦି କରି ଷ୍ଟେଟର କର୍ତ୍ତୃପକ୍ଷଙ୍କୁ କେନାଲ୍‌ଦ୍ୱାରା ସେଚିତ ସୀମାନିର୍ଦ୍ଦିଷ୍ଟ ଜମି ପାଇଁ ନିମ୍ନଲିଖିତ ରୂପେ ନିର୍ଦ୍ଧାରିତ ରାଜସ୍ୱ ଦେଉଥିବେ ଓ କେନାଲ୍ ସେଚିତ ଭୂମିର ଉତ୍ପନ୍ନ ଓ ଆୟ ଯାବଚ୍ଚନ୍ଦ୍ରାର୍କ ଭୋଗ କରିବେ, ଏହି ମର୍ମରେ ରାଣୀ ଡମରୁଧରପ୍ରିୟା ଦେବୀ ଗୋଟିଏ ୱିଲ୍ (Will) ସମ୍ପାଦନ କରିଅଛନ୍ତି; ଓ ଉକ୍ତ ୱିଲ୍ ସ୍ୱର୍ଗତ ସଚ୍ଚିଦାନନ୍ଦ ଦେବଙ୍କ ରାଜତ୍ୱ ସମୟରେ ଷ୍ଟେଟ୍‌ର କର୍ତ୍ତୃପକ୍ଷଙ୍କ ଦ୍ୱାରା ଅନୁମୋଦିତ ଓ ସ୍ୱୀକୃତ ହୋଇଅଛି । ଏହି କେନାଲର ରକ୍ଷଣାବେକ୍ଷଣ ଓ ସ୍ୱତ୍ୱାଧିକାର ବିଷୟରେ ଭବିଷ୍ୟତରେ ଷ୍ଟେଟ୍ କର୍ତ୍ତୃପକ୍ଷଙ୍କୁ କୌଣସି ବିଷମ ସମସ୍ୟାର ସମ୍ମୁଖୀନ ହେବାକୁ ନ ପଡ଼ିବ, ତହିଁର ମଧ୍ୟ ସୁବ୍ୟବସ୍ଥା ହୋଇଅଛି, ଓ ଅଦ୍ୟପର୍ଯ୍ୟନ୍ତ ଷ୍ଟେଟ୍ କର୍ତ୍ତୃପକ୍ଷ ଏହି ବ୍ୟବସ୍ଥାକୁ ଅନୁମୋଦନ ଓ ପାଳନ କରି ଆସୁଅଛନ୍ତି ।

ଏହି ବ୍ୟବସ୍ଥା ଅନୁସାରେ ଶ୍ରୀମତୀ ରାଣୀ ଡମରୁଧରପ୍ରିୟା ଦେବୀ ଉକ୍ତ କେନାଲର ଭୋଗଦଖଲସ୍ୱତ୍ୱାଧିକାରିଣୀ ଅଟନ୍ତି ଓ ତାଙ୍କ ସମ୍ପାଦିତ ଦଲିଲର ସର୍ତ୍ତ ଅନୁସାରେ ତାଙ୍କ ଅନ୍ତେ ତାଙ୍କର ଉକ୍ତ କୁମାର ଦ୍ୱୟ ଏବଂ ସେମାନଙ୍କ ଉତ୍ତରାଧିକାରୀମାନେ ସ୍ୱତ୍ୱାଧିକାରୀ ହେବେ । ବର୍ତ୍ତମାନ ରାଣୀ ଡମରୁଧରପ୍ରିୟା ଓ ତାଙ୍କ ଅନ୍ତେ ତାଙ୍କ ଉକ୍ତ କୁମାରଦ୍ୱୟ ଓ ସେମାନଙ୍କ ଉତ୍ତରାଧିକାରୀଗଣ କେନାଲ୍ ଖୋଲା ହେବା ଆରମ୍ଭ କାଳରୁ ଏକଶତ ବର୍ଷ ଉକ୍ତ କେନାଲକୁ ଓ କେନାଲ୍‌ଦ୍ୱାରା ଉପକୃତ ଭୂଖଣ୍ଡକୁ ନିଷ୍କରରୂପେ ଭୋଗ କରିବେ ଓ ଏକଶତ ବର୍ଷ ପରେ ଷ୍ଟେଟକୁ ତନ୍ନିମିତ୍ତ ନିର୍ଦ୍ଧାରିତ ରାଜସ୍ୱ ଦେବେ ।

ଏହି କେନାଲ୍ ଓ ଆନିକଟ୍ (ଜଳଭଣ୍ଡାର ଓ ସେତୁ)ର ରଚନା କର୍ମ ସମାପନାନ୍ତେ ରାଜା ସଚ୍ଚିଦାନନ୍ଦ ଏବଂ ତଦୁପଲକ୍ଷେ ନିମନ୍ତ୍ରିତ ରାଜ୍ୟର ଓ ବାହାରର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ଉପସ୍ଥିତିରେ ଓଡ଼ିଶା ଗଡ଼ଜାତ ସମୂହର ତଦାନୀନ୍ତନ ପୋଲିଟିକାଲ୍ ଏଜେଣ୍ଟ ଶ୍ରୀଯୁକ୍ତ କବ୍‌ଡେନ୍ ରାମ୍‌ସେ, ସି.ଆଇ.ଇ, ଆଇ. ସି. ଏସ୍. ମହୋଦୟ କେନାଲ୍‌ର ଉଦ୍ଘାଟନ କଲେ । ତଦୁପଲକ୍ଷେ ସାହେବ ମହୋଦୟ ଏ କେନାଲ୍‌ର ପରିକଳ୍ପନା, ତହିଁର ବ୍ୟୟନିର୍ବାହ, ସୁରକ୍ଷା ଓ ଭବିଷ୍ୟତ୍ ସ୍ୱତ୍ୱାଧିକାରର ସୁବ୍ୟବସ୍ଥା କରିଥିବା ଯୋଗୁଁ ଶ୍ରୀମତୀ ରାଣୀଙ୍କ ଭୂୟୋଦର୍ଶନ, ବ୍ୟବସାୟାତ୍ମକ ପରିକଳ୍ପନା, ସ୍ଥାପତ୍ୟ ଜ୍ଞାନ, ଜନହିତ କାମନା, ଦୂରଦୃଷ୍ଟି ଆଦି ଅସାଧାରଣ ଗୁଣମାନଙ୍କର ଭୂୟସୀ ପ୍ରଶଂସା କରିଥିଲେ । ଏହି ଡ. ପି. କେନାଲ୍‌ଦ୍ୱାରା ବାମଣ୍ଡା ରାଜ୍ୟର ୧୦୦ ବର୍ଗମାଇଲ୍ ଅଞ୍ଚଳ ଚିରକାଳ ପାଇଁ ଅନାବୃଷ୍ଟି ଜନିତ ଶସ୍ୟହାନି (ମରୁଡ଼ି)ରୁ ରକ୍ଷା ପାଇବ ଓ ଏହି ପଦ୍ଧତିର ଅନୁସରଣ କରାଯାଇ ଷ୍ଟେଟ୍‌ର ଅନ୍ୟାନ୍ୟ ଅଞ୍ଚଳମାନଙ୍କରେ କୁଲ୍ୟାମାନ ଷ୍ଟେଟ୍‌ଦ୍ୱାରା ଖୋଦିତ ହେଲେ ସମଗ୍ର ରାଜ୍ୟ ହିଁ ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ହୋଇ ହସି ଉଠିବ ଓ ଷ୍ଟେଟ୍‌ବାସୀ ସହସ୍ର ସହସ୍ର ପ୍ରଜା ଅନ୍ନାଭାବ ଜର୍ଜରିତ ହେବେ ନାହିଁ, ଯେଉଁ ବିଦୁଷୀ ମହାମନା ରାଣୀ ଏପରି ଉଚ୍ଚ ଆଦର୍ଶ ରାଜ୍ୟରେ ପ୍ରତିଷ୍ଠିତ କରିଅଛନ୍ତି ସେ ସ୍ୱନାମକୁ ( ଡମରୁଧରପ୍ରିୟା ଅର୍ଥାତ୍ ଅନ୍ନପୂର୍ଣ୍ଣା ନାମକୁ) ସାର୍ଥକ କରିଅଛନ୍ତି, ଏହା ମୁକ୍ତ କଣ୍ଠରେ ସ୍ୱୀକାର୍ଯ୍ୟ । ଦୈବଦୁର୍ବିପାକରୁ ରାଣୀଙ୍କୁ, ପୁନଶ୍ଚ ବିଶେଷରେ ପାଳିତ ଲକ୍ଷାଧିକ ପ୍ରଜାଙ୍କୁ ଓ ରାଜପରିବାରକୁ ଗଭୀର ଶୋକାର୍ଣ୍ଣବରେ ଭସାଇ ରାଜା ସଚ୍ଚିଦାନନ୍ଦ ଦେବ ୧୯୧୬ ସାଲରେ ୪୪ ବର୍ଷ ମାତ୍ର ବୟସରେ ସତ୍ୟଧାମକୁ ବିଜେ କଲେ ।

ସଚ୍ଚିଦାନନ୍ଦଙ୍କ ଅନ୍ତେ ଯୁବରାଜ ଦିବ୍ୟଶଙ୍କର ସୁଚଳଦେବ ପିତୃଦେବଙ୍କ ସିଂହାସନାରୋହଣ କଲେ । ଦାରୁଣ ବିହି ତାଙ୍କୁ ୪ ବର୍ଷ ମାତ୍ର ରାଜତ୍ୱ ପରେ ୨୯ ବର୍ଷ ବୟସରେ ୧୯୨୦ ସାଲରେ ଇହ ସଂସାରରୁ ନେଇଗଲା; ଏବଂ ସେ ସମୟରେ ଦିବ୍ୟଶଙ୍କରଙ୍କ ଯୁବରାଜ ଭାନୁଗଙ୍ଗ ନାବାଳକ ଥିବାରୁ ଷ୍ଟେଟ୍ ଦୀର୍ଘ ୧୫ ବର୍ଷକାଳ ସରକାରଙ୍କ ସାକ୍ଷାତ୍ ତତ୍ତ୍ୱାବଧାନରେ ରହିଲା । ରାଜା ଭାନୁଗଙ୍ଗ ନାବାଳକ ଅବସ୍ଥାରେ ଉପଯୁକ୍ତ ଶିକ୍ଷା ଦୀକ୍ଷା ଲାଭକରି ସାବାଳକ ହେବାରୁ ୧୯୩୫ସାଲ୍ ଅଦ୍ୟରେ ରାଜା ଭାନୁଗଙ୍ଗ ତ୍ରିଭୁବନ ଦେବ ରୂପେ ସରକାରଙ୍କଠାରୁ ନିଜ ପୈତୃକ ରାଜ୍ୟର ଶାସନଭାର ଗ୍ରହଣ କରିଅଛନ୍ତି । ରାଜା ସଚ୍ଚିଦାନନ୍ଦ ଯେଉଁପରି ସ୍ୱୀୟ ପିତୃପଦାଙ୍କ ଅନୁସରଣ କରି ରାଜ୍ୟର ସର୍ବାଙ୍ଗୀନ ଉନ୍ନତିରେ ମନ ପ୍ରାଣ ଢାଳି ଦେଇଥିଲେ ଓ ସ୍ୱର୍ଗତ ରାଜା ଦିବ୍ୟଶଙ୍କର ମଧ୍ୟ ପିତୃ ପିତାମହଙ୍କ ପଦାଙ୍କ ଅନୁସରଣ କରି ରାଜ୍ୟର ସମ୍ୟକ୍ ଚତୁର୍ଦ୍ଦିଗ ଉନ୍ନତିରେ ଲାଗିଥିଲେ, ବର୍ତ୍ତମାନ ରାଜା ଭାନୁଗଙ୍ଗ ତ୍ରିଭୁବନ ଦେବ ମଧ୍ୟ ପିତୃପିତାମହଙ୍କ ପଦାଙ୍କ ଅନୁସରଣ ଓ ଅନୁକରଣ କରି ନିଜ ରାଜ୍ୟର, ରାଜପରିବାରଙ୍କର, ପ୍ରଜାଗଣଙ୍କର, ମାତୃଭୂମିର, ମାତୃଭାଷାର, ଓଡ଼ିଆ ସାହିତ୍ୟର ଓ ଓଡ଼ିଆ ଜାତିର ଉନ୍ନତି ପାଇଁ ସର୍ବଦା ଚେଷ୍ଟା କରୁଅଛନ୍ତି ଓ 'ତୁଳସୀ ଦୁଇ ପତ୍ରରୁ ବାସିବା' ଭଳି ଏହି ସ୍ୱଳ୍ପ ୫ ବର୍ଷ ମଧ୍ୟରେ ଭାନୁଗଙ୍ଗ ସ୍ୱଦେଶବତ୍ସଳତା, ସମ୍ରାଟ୍ ଭକ୍ତି, ସ୍ୱଜାତି ପ୍ରୀତି, ମାତୃଭାଷାର ମଙ୍ଗଳ କାମନା, ସାହିତ୍ୟାନୁରାଗ ହୃଦୟବତ୍ତା, ପ୍ରଜା ପ୍ରୀତି, ସରସ୍ୱତୀ ସେବା ଓ ଦାତୃତ୍ୱର ଯେଉଁ ସୂଚନା ଦେଇଅଛନ୍ତି, ଆଶା କରାଯାଏ ଯେ, ସେ ଅଚିରେ ନୃପତି ମଣ୍ଡଳରେ ଆଦର୍ଶ ନରପତି ଶ୍ରେଣୀରେ ଗୋଟିଏ ଅସାଧାରଣ ଓ ଉଚ୍ଚ ସ୍ଥାନର ଅଧିକାରୀ ହେବେ ଓ ଦୟାପର ଏବଂ ଗୁଣଗ୍ରାହୀ ଭାରତ ସମ୍ରାଟଙ୍କ ଦ୍ୱାରା ଉପଯୁକ୍ତ ରୂପେ ସମାଦୃତ ଓ ସମ୍ମାନିତ ହେବେ ।

ରାଜା ସଚ୍ଚିଦାନନ୍ଦଙ୍କ ଲୋକାନ୍ତର ପରେ ରାଜାନ୍ତଃପୁରର ପୂର୍ଣ୍ଣ ପରିଚାଳନାର ଦାୟିତ୍ୱ ରାଣୀ ଡମରୁଧରପ୍ରିୟାଙ୍କ ଉପରେ ପଡ଼ିଲା । କିଛିଦିନ ପରେ ପୁଣି ଦିବ୍ୟଶଙ୍କରଙ୍କ ଲୋକାନ୍ତରଦ୍ୱାରା ଦିବ୍ୟଶଙ୍କରଙ୍କର ଅଳ୍ପବୟସ୍କା, ବୈଧବ୍ୟକ୍ଲିଷ୍ଟ

ରାଣୀ କନକମଞ୍ଜରୀଙ୍କୁ ସାନ୍ତ୍ୱନା ଦେବା ଛଡ଼ା ରାଜାନ୍ତଃପୁରର ଓ ରାଜପରିବାରଙ୍କ ନିକଟକୁ ଦେବଗଡ଼କୁ ସମାଗତ ଅତିଥିମାନଙ୍କ ପରିଚର୍ଯ୍ୟାର ଭାର ମଧ୍ୟ ତାଙ୍କ ଉପରେ ପଡ଼ିଲା । ପୂର୍ବେ ରାଜା ସର୍ ବାସୁଦେବଙ୍କ ଓ ସଚ୍ଚିଦାନନ୍ଦଙ୍କ ରାଜତ୍ୱରେ ବାମଣ୍ଡାର ଧନ-ଭଣ୍ଡାରର ଦ୍ୱାର ଉତ୍କଳର ଓ ବଙ୍ଗଦେଶ ଆଦିର ପଣ୍ଡିତ, ବ୍ରାହ୍ମଣ, ଦୁଃସ୍ଥ ଓ ଆତୁର ବ୍ୟକ୍ତିମାନଙ୍କ ପାଇଁ ସବୁବେଳେ ଉନ୍ମୁକ୍ତ ରହିଥିଲା । ବାମଣ୍ଡା ରାଜଦ୍ୱାରରୁ କୌଣସି ପ୍ରାର୍ଥୀ ପୂର୍ଣ୍ଣମନୋରଥ ନ ହୋଇ ଫେରୁ ନ ଥିଲେ । ରାଜା ଦିବ୍ୟଶଙ୍କରଙ୍କର ୪ ବର୍ଷ ବ୍ୟାପୀ ରାଜତ୍ୱରେ ମଧ୍ୟ ବାମଣ୍ଡାର ରାଜଭଣ୍ଡାରରୁ ଦାନସ୍ରୋତ ତାଙ୍କ ପିତୃପିତାମହଙ୍କ ଅମଳ ପରି ବହୁଥିଲା । ଷ୍ଟେଟ୍‌ର କୋର୍ଟ୍‌ଅଫ୍‌ୱାର୍ଡ଼ସ୍‌ଙ୍କ ପରିଚାଳନକୁ ଆସିବା ସମୟରେ ଏ ସ୍ରୋତର ଗତି ମନ୍ଦ ହେଲା । ଏହା ଦେଖି ରାଣୀ ଡମରୁଧରପ୍ରିୟାଙ୍କ ସତତ ଦାନପୂତ ମନରେ ଆଘାତ ଲାଗିଲା । ସେ କୋର୍ଟ୍‌ଅଫ୍‌ୱାର୍ଡ଼ସ୍‌ଙ୍କୁ ବାରମ୍ବାର ଜଣାଇ ଖଇରାତ୍ ଓ ସାହାଯ୍ୟଦାନ ପାଇଁ ରାଜକୋଷରୁ ଅର୍ଥସଂସ୍ଥାନର ବ୍ୟବସ୍ଥା କରାଇଥିଲେ ଓ ଯେଉଁଠାରେ କୋର୍ଟ୍‌ଅଫ୍‌ୱାର୍ଡ଼ସ୍‌ଙ୍କ ପ୍ରଦତ୍ତ ସାହାଯ୍ୟ ବାମଣ୍ଡା ରାଜବଂଶର ପ୍ରତିଷ୍ଠା ଓ ସୁନାମ ତୁଳନାରେ ଯଥେଷ୍ଟ ବୋଲି ସେ ବିବେଚନା କରୁ ନ ଥିଲେ, ସେ ସ୍ଥଳରେ ସେ ନିଜର ବ୍ୟକ୍ତିଗତ ବ୍ୟୟ ନିମନ୍ତେ କୋର୍ଟ୍‌ଅଫ୍‌ୱାର୍ଡ଼ସ୍‌ଙ୍କ ଦ୍ୱାରା ଖଞ୍ଜା ଧନରୁ ଆପଣା ଖାଦ୍ୟବସ୍ତ୍ରବାବଦରୁ ଧନ କାଟି ସେ ଦାନ ବା ସାହାଯ୍ୟର ପୂର୍ଣ୍ଣାଙ୍ଗ କରୁଥିଲେ । ଏପରି କି, ନିଜର ବ୍ୟକ୍ତିଗତ ସୌଖ୍ୟ ଓ ବ୍ୟବହାର୍ଯ୍ୟ ବସ୍ତ୍ରାଦି ପାଇଁ ଖଞ୍ଜା ଥିବା ଧନକୁ ଉକ୍ତ କାର୍ଯ୍ୟରେ ବ୍ୟୟ ନ କରି ପଣ୍ଡିତ ଓ ଦୁଃସ୍ଥମାନଙ୍କ ସହାୟରେ ତାହା ପ୍ରସନ୍ନାନ୍ତଃକରଣରେ ବିନିଯୋଜିତ କରୁଥିଲେ ଓ ଯେଉଁ ସ୍ଥାନରେ ଜଳର ଅଭାବ ଥିବା କଥା ତାଙ୍କ କାନରେ ପଡ଼ୁଥିଲା ସେଠାରେ କୂପ, ତଡ଼ାଗାଦି ନିଜ ବ୍ୟୟରେ କରି ଦେଉଥିଲେ । ସାଧାରଣତଃ ଦେଖାଯାଏ ଯେ, ରାଜାଙ୍କ ମୃତ୍ୟୁ ପରେ ଓ ନାବାଳଗ ରାଜାଙ୍କ ରାଜ୍ୟପ୍ରାପ୍ତି ପୂର୍ବରୁ କୋର୍ଟ୍‌ଅଫ୍-ୱାର୍ଡ଼ସ୍‌ଙ୍କ ଅମଳରେ ପାରିବାରିକ ଅନେକ କଥା ପାଇଁ କୋର୍ଟ୍‌ଅଫ୍ ୱାର୍ଡ଼ସ୍‌ଙ୍କ, ନିଯୁକ୍ତ ସୁପରିଣ୍ଟେଣ୍ଡେଣ୍ଟ ଓ ରାଜପରିବାରଙ୍କ ମଧ୍ୟରେ ମତଭେଦ ଓ ବିବାଦ ଘନତା ଓ ଜଟିଳତା ଧାରଣ କରେ; କିନ୍ତୁ ରାଣୀ ଡମରୁଧର-ପ୍ରିୟାଙ୍କ ଦୂରଦୃଷ୍ଟି, କର୍ମକୁଶଳତା ଓ ସରକାରଙ୍କ ସଙ୍ଗେ ଅଳ କରିବାରେ ନୈପୁଣ୍ୟ ଓ କୌଶଳ ଯୋଗୁଁ ବାମଣ୍ଡା ରାଜବଂଶର ଦାତୃତ୍ୱଯଶଃ କୋର୍ଟ୍‌ଅଫ୍‌ୱାର୍ଡ଼ସ୍‌ଙ୍କ ଅମଳରେ କଳଙ୍କିତ ହୋଇ ପାରି ନ ଥିଲା । ଶ୍ୱଶ୍ରୂଙ୍କ ଆଦର୍ଶ, ଆଶ୍ରୟ ଓ ଆଚରଣରେ ପ୍ରଭାବିତ ହୋଇ ବଧୂ [ଦିବ୍ୟଶଙ୍କରଙ୍କ ରାଣୀ ଶ୍ରୀମତୀ କନକମଞ୍ଜରୀ ଦେବୀ ବର୍ତ୍ତମାନ ରାଜମାତା] ମଧ୍ୟ ଦୟା ଦାକ୍ଷିଣ୍ୟାଦି ସମସ୍ତ ଗୁଣରେ ବିଭୂଷିତା ହୋଇଅଛନ୍ତି । ସଚ୍ଚିଦାନନ୍ଦଙ୍କ ନାମକୁ ସ୍ମରଣୀୟ କରିବା ପାଇଁ ରାଜା ଦିବ୍ୟଶଙ୍କର ଦେବଗଡ଼ରେ ଯେଉଁ 'ସଚ୍ଚିଦାନନ୍ଦ ଲାଇବ୍ରେରୀ' ସ୍ଥାପନ କରିଥିଲେ, ତହିଁର ମୂଳରେ ରାଜମାତା ଡମରୁଧରପ୍ରିୟାଙ୍କ ପ୍ରେରଣା ବିଦ୍ୟମାନ ଥିଲା । ଦିବ୍ୟଶଙ୍କରଙ୍କ ଦେହତ୍ୟାଗ ପରେ ଉକ୍ତ ଲାଇବ୍ରେରୀର ପୁଷ୍ଟି ଓ ଉନ୍ନତି ପାଇ ରାଜପିତାମହୀ [ଡମରୁଧରପ୍ରିୟା] ଓ ରାଜମାତା [କନକମଞ୍ଜରୀ] ସର୍ବଦା ସଦୟ ଦୃଷ୍ଟି ରଖି ଅଛନ୍ତି । ଏପରି ବଧୂନୁରାଗିଣୀ ଶ୍ୱଶ୍ରୂ ଓ ଶ୍ୱଶ୍ରୂଙ୍କ ପ୍ରତି ପ୍ରେମଭକ୍ତିମୟୀ ବଧୂ, ରାଜସଂସାର କଥା ଛାଡ଼ନ୍ତୁ, ସମାଜରେ ଅନ୍ୟତ୍ର ମଧ୍ୟ ଦୁର୍ଲ୍ଲଭ । ପ୍ରତ୍ୟେକ ପ୍ରତ୍ୟେକଙ୍କୁ ସବୁ ବିଷୟରେ ପରାମର୍ଶ କରି କର୍ମ କରନ୍ତି । ଶ୍ରୀମତୀ ଡମରୁଧରପ୍ରିୟା ମହାଦେବୀ ଓ ଶ୍ରୀମତୀ କନକମଞ୍ଜରୀ ମହାଦେବୀଙ୍କ ବିଦ୍ୟାନୁରାଗ, ମାତୃଭାଷାନୁରାଗ ଓ ସାହିତ୍ୟାନୁରାଗ ଫଳରେ ବହୁ ପଣ୍ଡିତ, ଲେଖକ ଓ ଗ୍ରନ୍ଥକାର ଅର୍ଥସାହାଯ୍ୟ ପାଇ ଅଛନ୍ତି ଓ ଅନେକ ଦୁଃସ୍ଥ ଲେଖକ ସେମାନଙ୍କ ଗ୍ରନ୍ଥମାନ ମୁଦ୍ରିତ କରିପାରିଅଛନ୍ତି । କୋର୍ଟ୍‌ଅଫ୍‌ୱାର୍ଡ଼ସ୍ ଅମଳରେ ବାମଣ୍ଡା ରାଜବଂଶର ଚିରନ୍ତନ ଦାତୃତ୍ୱର ଯଶଃସୌରଭରାଶି ଅକ୍ଷୁଣ୍ଣ ହୋଇ ଦେବଗଡ଼କୁ ସମାଗତ କୌଣସି ପ୍ରାର୍ଥୀ ଶୂନ୍ୟହସ୍ତରେ ବାହୁଡ଼ି ଯିବେ, ଏକଥା ରାଜମାତା ଓ ରାଜପିତାମହୀ ଉଭୟଙ୍କୁ ଅସହ୍ୟ ହେଉଥିଲା ଓ କୋର୍ଟ୍‌ଅଫ୍‌ୱାର୍ଡ଼ସ୍‌ଙ୍କ ଅମଳରେ ବିମୁଖ ହୋଇ ଫେରୁଥିବା କୌଣସି ଅନୁସରଣାର୍ଥୀଙ୍କ ସମ୍ବାଦ ଏହି ଦୁଇ ଦେବୀଙ୍କ କାନରେ ପଡ଼ିବା ମାତ୍ରେ ଅନ୍ତଃପୁରରୁ ତାଙ୍କ ପାଇଁ ଯଥୋଚିତ ବିଦାୟ, ବାଟଖରଚ ଓ ସିଧାସଖା ଅନତି ବିଳମ୍ବେ ପ୍ରେରିତ ହେଉଥିଲା ।

ଭଗବାନଙ୍କ ଅପାର କରୁଣାରୁ ରାଜପିତାମହୀ ଡମରୁଧର-ପ୍ରିୟା ପୁତ୍ର, ପୁତ୍ରୀ, ଜାମାତା, ବଧୂ, ପୁତ୍ରବଧୂ, ପୌତ୍ର, ପୌତ୍ରୀ, ପ୍ରପୌତ୍ର, ପ୍ରପୌତ୍ରୀ, ଦୌହିତ୍ର, ଦୌହିତ୍ରୀ ଆଦିଙ୍କଦ୍ୱାରା ପରିବେଷ୍ଟିତା ହୋଇ ସେମାନଙ୍କୁ ଲାଳନ ପାଳନ କରି ରାଜବାଟିର ପୁଣ୍ୟଶ୍ରୀ ବର୍ଦ୍ଧନ କରୁଅଛନ୍ତି । ରାଜା ଦିବ୍ୟଶଙ୍କର ଓ ରାଜା ଭାନୁଗଙ୍ଗ ରାଜକୀୟ ଓ ରାଜନୈତିକ ବିଷୟରେ ମଧ୍ୟ ମାତାଙ୍କର ଓ ପିତାମହୀଙ୍କ ପରାମର୍ଶ ନେଉଥିଲେ ଓ ନେଉଅଛନ୍ତି ।

ବର୍ତ୍ତମାନ ରାଜପିତାମହୀ ପଞ୍ଚସ୍ତରି ବର୍ଷ ବୟସରେ ନିଜର ଦୈନନ୍ଦିନ ଜୀବନକୁ ଯେଉଁପରି କର୍ମମୟ ଓ ଆଲସ୍ୟହୀନ କରି-ଅଛନ୍ତି, ତାହା ଶୁଣିଲେ ତାଙ୍କ ପ୍ରତି ଭକ୍ତି ଓ ବିସ୍ମୟ ଯୁଗପତ୍ ମନରେ ଉଦିତ ହୁଏ ।

ପ୍ରତିଦିନ ବ୍ରାହ୍ମ ମୁହୂର୍ତ୍ତର ବହୁ ପୂର୍ବରୁ, ଅର୍ଥାତ୍ ଭୋର୍ ୩ଟା ସମୟରେ ଶଯ୍ୟାତ୍ୟାଗ କରି ରାତି ୧୦ଟା ବେଳେ ସେ ପୁଣି ଶଯ୍ୟା ଆଶ୍ରୟ କରନ୍ତି । ଶଯ୍ୟାତ୍ୟାଗ କରି ରାଜପରିବାରର ଆବାଳବୃଦ୍ଧବନିତା ଓ ଦାସଦାସୀ ପରିଜନ ଓ ପୋଷ୍ୟବର୍ଗଙ୍କ ସ୍ୱାସ୍ଥ୍ୟ ଓ କୁଶଳ ସ୍ୱୟଂ ପରିଦର୍ଶନ କରି ରୁଗ୍ଣବ୍ୟକ୍ତିଙ୍କ ପାଇଁ ଚିକିତ୍ସା, ଔଷଧ ଓ ପଥ୍ୟାଦିର ବ୍ୟବସ୍ଥା କରି ନିଜର ଦୈନନ୍ଦିନ ଶୌଚାଦି ସମାପନାନ୍ତେ ସ୍ନାନ କରି ସେ ଦେବାରାଧନରେ ନିଯୁକ୍ତା ହୁଅନ୍ତି ; ତତ୍‌ପରେ ରାଜକୀୟ ପାକଶାଳାରେ ସମସ୍ତଙ୍କ ପାଇଁ ଭିନ୍ନ ଭିନ୍ନ ପ୍ରକାରର ଖାଦ୍ୟ ଓ ରୋଗୀମାନଙ୍କ ପାଇଁ ପଥ୍ୟାଦି ପ୍ରସ୍ତୁତ କରାଯିବାର ବ୍ୟବସ୍ଥା କରି, ଗୃହପାଳିତ ପଶୁପକ୍ଷୀ ଓ ଗୋମହିଷାଦିଙ୍କ ତତ୍ତ୍ୱ ନିଅନ୍ତି । ତତ୍‌ପରେ ରାଜଦ୍ୱାରକୁ ସମାଗତ ଅତିଥି, ଅଭ୍ୟାଗତ, ସାଧୁ, ସନ୍ଥ, ପଣ୍ଡିତ ଓ ବନ୍ଧୁମାନଙ୍କ ସମ୍ବାଦ ଓ ତର୍ଜ୍ଜମା ବୁଝନ୍ତି ଓ ସେମାନଙ୍କ ପାଇଁ ସିଧା, ସଖା,

ବସ୍ତ୍ର, ଅଗୁରୁ, କାଠବାଛ ଆଦି ପଠାନ୍ତି; ତତ୍ପରେ ରାଜପରିବାରର ସମସ୍ତ ବ୍ୟକ୍ତିଙ୍କର ଭୋଜନ କିସମର ତାଲିକା ନିଜେ କରନ୍ତି ଏବଂ ରାଜବାଟୀର ଭିତରେ ଏବଂ ବାହାରେ ସମସ୍ତଙ୍କର ଭୋଜନାଦିର ସମାପ୍ତ ପରେ 'ଦିବସସ୍ୟାଷ୍ଟମେଭାଗେ' ବେଳ ଗଡ଼ିଲା ବେଳକୁ ହବିଷ୍ୟାନ୍ନ ପ୍ରଭୁଙ୍କୁ ନିବେଦନ କରି ଜୀବନ-ମାତ୍ର-ଧାରଣୋପଯୋଗୀ ମାତ୍ରାରେ ସେବା କରନ୍ତି । ତତ୍ପରେ ତାଙ୍କ ନିକଟକୁ ଆସିଥିବା ପତ୍ର ଆଦି ପାଠ କରି ସ୍ୱହସ୍ତରେ ପତ୍ରମାନଙ୍କ ଉତ୍ତର ଲେଖନ୍ତି ଓ ସମ୍ବାଦପତ୍ର ପତ୍ରିକା ଆଦି ପାଠ କରନ୍ତି । ଅପରାହ୍ନରେ ପୁଣି ରାଜପରିବାରର ବ୍ୟକ୍ତି ଓ ରାଜାତିଥି ଓ ଅଭ୍ୟାଗତ ଓ ସମାଗତ ବନ୍ଧୁବାନ୍ଧବମାନଙ୍କ ଚର୍ଚ୍ଚା ବୁଝି ଓ ସେମାନଙ୍କ ରାତ୍ରଭୋଜନ ପାଇଁ ବ୍ୟବସ୍ଥା କରି ସାହିତ୍ୟାଲୋଚନା କରନ୍ତି; ଓଡ଼ିଆ, ଇଂରାଜୀ, ବଙ୍ଗଳା, ହିନ୍ଦି ଆଦି ଭାଷାରେ ବହୁ ଉପାଦେୟ ଗ୍ରନ୍ଥ, ପୁରାଣ, ଶାସ୍ତ୍ର, ବିଜ୍ଞାନ, ଚିତ୍ରକଳା, ଚିକିତ୍ସା, ଗୋପାଳନ, ସଙ୍ଗୀତବିଦ୍ୟା ଆଦିର ଚର୍ଚ୍ଚା କରନ୍ତି; ସନ୍ଧ୍ୟା ପୂର୍ବରୁ ରାଜପାଳିତ ହସ୍ତୀ, ଅଶ୍ୱ, ଗୋମହିଷାଦିଙ୍କ ଭୋଜନ କଥା ରାଜବାଟିର ଦ୍ୱିତଳରେ ନିଜେ ବସି ସ୍ୱଚକ୍ଷୁରେ ଦେଖନ୍ତି; ସନ୍ଧ୍ୟାବେଳେ ଦେବାରାଧନ, ପୁରାଣ ଶ୍ରବଣ, ନାମ-କୀର୍ତ୍ତନରେ କେତେକ ସମୟ ବ୍ୟୟ କରନ୍ତି । ତତ୍ପରେ ରାଜ୍ୟ-ଶାସନ ଓ ପ୍ରଜାମାନଙ୍କ ମଙ୍ଗଳ ସମ୍ବନ୍ଧେ ସମ୍ବାଦମାନ ସ୍ୱପୁତ୍ର-ପୌତ୍ରାଦିଙ୍କଠାରୁ କ୍ଷମତା ଭାରପ୍ରାପ୍ତ ଉଚ୍ଚପଦସ୍ଥ କର୍ମଚାରୀଙ୍କଠାରୁ ବୁଝି ଆବଶ୍ୟକ ସ୍ଥଳରେ ସେମାନଙ୍କୁ ଯଥୋଚିତ ଉପଦେଶ ମଧ୍ୟ ଦିଅନ୍ତି; ତତ୍ପରେ ରାଜବାଟୀର ରୋଗୀମାନଙ୍କ ଚିକିତ୍ସା, ସେବା ଓ ପଥ୍ୟ ଆଦି ଓ ରାଜପରିବାରର ଆବାଳବୃଦ୍ଧବନିତାଙ୍କର ରାତ୍ରିଭୋଜନ ବିଷୟ ବୁଝନ୍ତି ଓ ସିଂହଦ୍ୱାରରେ ଉପସ୍ଥିତ ଖାଦ୍ୟାର୍ଥୀ ଅଭ୍ୟାଗତଙ୍କ ଚର୍ଚ୍ଚା ବୁଝନ୍ତି । କଥିତ ଅଛି, କାଶୀରେ ମା ଅନ୍ନପୂର୍ଣ୍ଣାଙ୍କ କରାମତରୁ ରାତିରେ କେହି ଜଣେ ଉପବାସୀ ରହନ୍ତି ନାହିଁ । ସେହିପରି ବାମଣ୍ଡାର ଅନ୍ନପୂର୍ଣ୍ଣାରୂପିଣୀ ରାଜପିତାମହୀଙ୍କ ତୀକ୍ଷ୍ଣ ଦୃଷ୍ଟି ଫଳରେ ରାଜବାଟୀର ଚତୁଃସୀମାରେ ଓ ସିଂହଦ୍ୱାରକୁ ସମାଗତ କୌଣସି ବ୍ୟକ୍ତି ଉପବାସୀ ରହନ୍ତି ନାହିଁ ।

ସମସ୍ତଙ୍କ କାର୍ଯ୍ୟ ବୁଝା ହେବା ପରେ ରାତ୍ରି ୧୦ଟା ବେଳେ ରାଜପିତାମହୀ ବିଶ୍ରାମାର୍ଥ ନିଦ୍ରାଦେବୀଙ୍କ ଆଶ୍ରୟ ଗ୍ରହଣ କରନ୍ତି । ଏକାଧାରରେ ରାଜମାତୃତ୍ୱ, ରାଜକାର୍ଯ୍ୟାଧ୍ୟକ୍ଷା, ପରାମର୍ଶ-ଦାତ୍ରୀ, ଧାତ୍ରୀ, ଭିଷକ୍, ଅନ୍ତଃପୁର ପରିଚାଳିକା, ପ୍ରଜାପାଳିକା, ବାଣୀଅଧିକା ଆଦିଙ୍କ କର୍ମ ଜଣେ ମହିଳାଙ୍କଦ୍ୱାରା ସନ୍ତୋଷ-ଜନକରୂପେ ସମାହିତ ହେବାର ଉଦାହରଣ, ଏକା ଉତ୍କଳରେ କାହିଁକି, ଭାରତରେ ବିରଳ । ତାଙ୍କ ପରି ଆଦର୍ଶ ଚରିତ୍ରା, ଗୁଣବତୀ, ବୁଦ୍ଧିମତୀ, ବିଦୁଷୀ, ବିଦ୍ୟାନୁରାଗିଣୀ, ଦାତ୍ରୀ, କର୍ମଠା ଜେଜେମାତାଙ୍କୁ ପାଇ ରାଜା ଭାନୁଗଙ୍ଗ ଭାଗ୍ୟବାନ୍ ହୋଇ-ଅଛନ୍ତି । ତାଙ୍କ ପରି ଶାଶୁଙ୍କୁ ପାଇ ରାଜମାତା ସୁଖ ଓ ଶାନ୍ତି ଲାଭ କରୁଅଛନ୍ତି । ଭୀଷ୍ମ ଯେଉଁପରି ରାଜ୍ୟର ସମସ୍ତଙ୍କର ପିତାମହ ଥିଲେ, ଡମରୁଧରପ୍ରିୟା ସେହିପରି ବାମଣ୍ଡା ରାଜ୍ୟର ଆବାଳ-ବୃଦ୍ଧବନିତାଙ୍କ 'ଜେଜେମାତା' ରୂପେ ଓ ରାଜ୍ୟର ବିଜୟଶ୍ରୀରୂପେ ବାମଣ୍ଡାର ଅନ୍ତଃପୁରକୁ ସ୍ୱୀୟ ଅସାଧାରଣ ଗୁଣରାଶିର ଗରିମାରେ ଓ ଔଜ୍ଜ୍ୱଲ୍ୟରେ ଉଦ୍ଭାସିତ କରିଅଛନ୍ତି । ଏ ସନ୍ଦର୍ଭର ଲେଖକ ସପ୍ତାହାଧିକକାଳ ଏକାଧିକ ଥର ବାମଣ୍ଡା ରାଜବଂଶର ତଥା ଜେଜେମାତାଙ୍କ ଆତିଥ୍ୟ ଓ ଦାତୃତ୍ୱ ଲାଭ କରି ତାଙ୍କର ଦୈନିକ କାର୍ଯ୍ୟନିର୍ଘଣ୍ଟକୁ ଲକ୍ଷ୍ୟ କରିବାର ସୁବିଧା ପାଇଅଛି । ଆଳସ୍ୟ, କ୍ଲାନ୍ତି, ଅବସାଦ, ଏ ଶବ୍ଦମାନ ଡମରୁଧରପ୍ରିୟାଙ୍କ ଅଭିଧାନରେ ନାହିଁ । ତାଙ୍କ ଆଦର୍ଶରେ ଅନୁପ୍ରାଣିତା ପୁତ୍ରବଧୂ ( ରାଜମାତା ) ଓ ପୌତ୍ରବଧୂ ( ରାଣୀସାହେବା ) ଆଦର୍ଶ ରମଣୀ ହୋଇଅଛନ୍ତି; ଏହା ସ୍ୱତଃସିଦ୍ଧ ।

ସନ୍ଦର୍ଭ ଲେଖକ
ଏ ଗ୍ରନ୍ଥର
ସଂଗ୍ରାହକ ।

**ସଚ୍ଚିଦାନନ୍ଦ ମଠ**—ଶ୍ରୀଚୈତନ୍ୟ ଦେବଙ୍କ ନିଜଜନ ବସ୍ତ୍ରପାଦ ଶ୍ରୀମତ୍
Sachchidānanda maṭha ସଚ୍ଚିଦାନନ୍ଦ ଭକ୍ତିବିନୋଦ ଠାକୁରଙ୍କ ନାମାନୁସାରେ ଶ୍ରୀଚୈତନ୍ୟପଦାଙ୍କିତ ଭୂମି କଟକରେ ଖ୍ରୀଷ୍ଟାବ୍ଦ ୧୯୨୬ ସାଲ ୧୧ ତାରିଖ ଜୁଲାଇ ଦିବସ ଶ୍ରୀଗୌଡ଼ୀୟମଠାଚାର୍ଯ୍ୟ ଶ୍ରୀଲ ଭକ୍ତିସିଦ୍ଧାନ୍ତ ସରସ୍ୱତୀ ଗୋସ୍ୱାମୀ ଠାକୁର ଏହି ମଠ ସ୍ଥାପନ କରିଥିଲେ। ଏହି ମଠ ଶ୍ରୀଧାମ ମାୟାପୁର ନବଦ୍ୱୀପ ଶ୍ରୀଚୈତନ୍ୟ ମଠର ଗୋଟିଏ ଶାଖାମଠ ଓ ଶ୍ରୀ ବିଶ୍ୱବୈଷ୍ଣବ ରାଜସଭାର ସଭ୍ୟବୃନ୍ଦଙ୍କଦ୍ୱାରା ପରିଚାଳିତ। ଶ୍ରୀମତ୍ ସଚ୍ଚିଦାନନ୍ଦ ଭକ୍ତିବିନୋଦ ଠାକୁର ୧୮୫୮ ସାଲରେ କଟକକୁ ଆଗମନ କରି ସ୍ଥାନୀୟ ଶିକ୍ଷିତ ସମାଜରେ ଶ୍ରୀଚୈତନ୍ୟମହାପ୍ରଭୁଙ୍କର କଥା କୀର୍ତ୍ତନ କରିଥିଲେ। କିଛି ଦିନ ପରେ ଭଦ୍ରକରେ ଅବସ୍ଥାନ କାଳରେ "ମଠସ୍ ଅଫ୍ ଓରିଶ୍ଶା" (Maths of Orissa) ନାମକ ପୁସ୍ତକ ଲେଖିଲେ। ଇଂରାଜୀ ୧୮୭୯ ସାଲରେ ପୁଣି ଠାକୁର କଟକ ଓ ପୁରୀରେ ଅବସ୍ଥାନ କରି ଶ୍ରୀଜଗନ୍ନାଥ ମନ୍ଦିରର ଅଧ୍ୟକ୍ଷତା, ଅଭକ୍ତ ମତବାଦନିରାସ ଓ ଭାଗବତ ସଂସତ୍ ସ୍ଥାପନ କରି ଶୁଦ୍ଧଭକ୍ତିର କଥା ପ୍ରଚାର କରିଥିଲେ। ଭକ୍ତିବିନୋଦ ଧାରାରେ ସଚ୍ଚିଦାନନ୍ଦ ସେବାର କଥା ପ୍ରଚାର କରିବା ପାଇଁ ଶ୍ରୀଗୌଡ଼ୀୟମଠାଚାର୍ଯ୍ୟ ଓଡ଼ିଶାର ରାଜଧାନୀ କଟକ ନଗରରେ ଏହି ମଠ ସ୍ଥାପନ କରି ଯାଇଅଛନ୍ତି।

ପ୍ରଥମେ କାଠଯୋଡ଼ୀନଦୀତୀରସ୍ଥ ଗଣେଶଘାଟରେ, ତତ୍ପରେ ହରିହରଘାଟରେ ମଠାଳୟ ପ୍ରତିଷ୍ଠିତ ହୋଇଥିଲା। ଏହିଠାରେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ବିଗ୍ରହ ସ୍ଥାପିତ ହୋଇଥିଲେ। ସେହିଠାରୁ ମଠାଳୟ ଓଡ଼ିଆବଜାରକୁ ସ୍ଥାନାନ୍ତରିତ ହେବାରୁ ସଚ୍ଚିଦାନନ୍ଦ ମଠରେ ୨୬ ଜୁନ ୧୯୨୮ ସାଲରେ ଶ୍ରୀ ଶ୍ରୀ ବିନୋଦରମଣ ଜୀଉଙ୍କ ବିଗ୍ରହ ପ୍ରତିଷ୍ଠିତ ହେଲେ। ଏହି ସମୟରେ ଶ୍ରୀଯୁକ୍ତ ଚିନ୍ତାମଣି ନାୟକ ନାମକ ଜଣେ ବ୍ୟକ୍ତି ନିଜ ଗୃହରେ ଅଷ୍ଟପ୍ରହର ଛଡ଼ାକୀର୍ତ୍ତନର ନିମନ୍ତ୍ରଣ କରିବା ଉଦ୍ଦେଶ୍ୟରେ ଓଡ଼ିଆବଜାର ସଚ୍ଚିଦାନନ୍ଦ ମଠକୁ ଆସି ଶ୍ରୀଗୌଡ଼ୀୟମଠାଚାର୍ଯ୍ୟଙ୍କର ଅନୁଗତ ତଦାନୀନ୍ତନ ମଠରକ୍ଷକଙ୍କ ନିକଟରେ ଛଡ଼ାକୀର୍ତ୍ତନର ସିଦ୍ଧାନ୍ତ ବିରୋଧ ଓ ରସାଭାସ ଦୋଷର କଥା ସଦ୍ୟୁକ୍ତି ଓ ଶାସ୍ତ୍ରବାକ୍ୟ ଓ ମହାଜନବାକ୍ୟର ପ୍ରମାଣ ସହିତ ଶ୍ରବଣ କରିଥିଲେ। ଚିନ୍ତାମଣି ବାବୁ ଦିନେ ସ୍ୱପ୍ନରେ ଦେଖିଲେ ଯେ, ସଚ୍ଚିଦାନନ୍ଦ ମଠର ଶ୍ରୀଗୌରବିନୋଦରମଣ ଜୀଉ ତାଙ୍କ ଘରେ ଉପସ୍ଥିତ ହୋଇଛନ୍ତି। ଏହି ସ୍ୱପ୍ନ ଦେଖି ସେ ତାଙ୍କ ନାରିକେଳ ଉଦ୍ୟାନସ୍ଥିତ ପୁଷ୍କରିଣୀ ସହ ଏକ ଏକର ଜମି ସଚ୍ଚିଦାନନ୍ଦ ମଠ ନାମରେ ସମର୍ପଣ କରିବାକୁ କୃତସଂକଳ୍ପ ହେଲେ। ପରେ କଟକର ସ୍ୱର୍ଗଗତ ରାଜକୃଷ୍ଣ ସରକାରଙ୍କର ଭକ୍ତିମତୀ ସହଧର୍ମିଣୀ ଶ୍ରୀଯୁକ୍ତା ବିନୋଦିନୀ ଦାସୀ ଏହି ଜମିରେ ଗୋଟିଏ ନୂତନ ମନ୍ଦିର ନିର୍ମାଣ କରାଇ ଦେଇଅଛନ୍ତି। ରସୁଲକୁଣ୍ଡାର ଭକ୍ତିମାନ୍ ବ୍ୟବସାୟୀ ଶ୍ରୀଯୁକ୍ତ ରାଜଗୋପାଳ ସୁବୁଦ୍ଧି ଉକ୍ତ ମଠ ସଂଲଗ୍ନ ଭକ୍ତସଂଘାରାମ ନିର୍ମାଣ ବ୍ୟୟ ବହନ କରିଅଛନ୍ତି।

ସଚ୍ଚିଦାନନ୍ଦ ମଠରୁ ଶ୍ରୀଗୌଡ଼ୀୟମଠାଚାର୍ଯ୍ୟଙ୍କର ଆଦେଶରେ ଉତ୍କଳ ଭାଷାରେ ଭକ୍ତିଗ୍ରନ୍ଥସମୂହ ମୁଦ୍ରିତ ଓ ପ୍ରଚାରିତ ହେଉଅଛି। ହରିନାମ ଚିନ୍ତାମଣି, ଗୀତାବଳୀ, ଶରଣାଗତି ଓ କଲ୍ୟାଣ କଳ୍ପତରୁ ପ୍ରଭୃତି ଗ୍ରନ୍ଥ ପରମାର୍ଥ ସାହିତ୍ୟର ଏକ ଅବଦାନ। ୧୮ ମଇ, ୧୯୩୨ ସାଲରୁ ଏହି ମଠରୁ "ପରମାର୍ଥୀ" ନାମକ ପାକ୍ଷିକ ପତ୍ର ପ୍ରକାଶିତ ହେଉଅଛି। ଗଞ୍ଜାମ ବ୍ରହ୍ମପୁରର ପ୍ରସିଦ୍ଧ କବିରାଜ ଶ୍ରୀ ମଧୁସୂଦନ ଶର୍ମା ମହୋଦୟ 'ପରମାର୍ଥୀ' ଓ ପରମାର୍ଥ-ସାହିତ୍ୟ ପ୍ରଚାର ପାଇଁ ଗୋଟିଏ ମୁଦ୍ରାଯନ୍ତ୍ର ଦାନ କରିଅଛନ୍ତି। ଏହି 'ପରମାର୍ଥୀ ପ୍ରିଣ୍ଟିଂ ୱାର୍କସ' ସଚ୍ଚିଦାନନ୍ଦ ମଠର ଭକ୍ତିସାହିତ୍ୟ ମୁଦ୍ରଣ ଓ ପ୍ରଚାରାଳୟ ଅଟେ। ବାହୁଡ଼ା ଦଶମୀଠାରୁ ଏହି ମଠରେ ଏକପକ୍ଷବ୍ୟାପୀ ବାର୍ଷିକ ହରିକୀର୍ତ୍ତନ-ମହାମହୋତ୍ସବ ଅନୁଷ୍ଠିତ ହୋଇଥାଏ। ପ୍ରତ୍ୟହ ପଲ୍ଲୀରେ ପଲ୍ଲୀରେ ଶୁଦ୍ଧ ହରିକଥା ପ୍ରଚାର ଓ ପ୍ରତ୍ୟହ ଶ୍ରୀଚୈତନ୍ୟ ଭାଗବତ, ଶ୍ରୀଗୀତା ଓ ଶ୍ରୀଚୈତନ୍ୟଚରିତାମୃତ ପାଠ ଓ ବ୍ୟାଖ୍ୟା ହୋଇଥାଏ। ସମୟ ସମୟରେ ଶ୍ରୀଗୌଡ଼ୀୟ ମଠାଚାର୍ଯ୍ୟ ଏଠାକୁ ଆଗମନ କରି କଟକବାସୀ ସଜ୍ଜନବୃନ୍ଦଙ୍କ ନିକଟରେ ହରିକଥାମୃତ ବିତରଣ କରିଥାଆନ୍ତି। କଟକ ରେଭେନ୍‌ସା କଲେଜର ପ୍ରବୀଣ ଅଧ୍ୟାପକ ଅଧ୍ୟକ୍ଷ ଶ୍ରୀଯୁକ୍ତ ନିଶିକାନ୍ତ ସାନ୍ୟାଲ, ଏମ୍. ଏ. ଭକ୍ତିସୁଧାକର, ଭକ୍ତିଶାସ୍ତ୍ରୀ ମହୋଦୟ ବର୍ତ୍ତମାନ ଶ୍ରୀ ସଚ୍ଚିଦାନନ୍ଦ ମଠର ମଠରକ୍ଷକ।

( ଲେଖକ—ମହାମହୋପଦେଶକ ଶ୍ରୀ ସୁନ୍ଦରାନନ୍ଦ ବିଦ୍ୟାବିନୋଦ ବି. ଏ. )।

**ସଚ୍ଚିଦାନନ୍ଦ ସରସ୍ୱତୀ ସ୍ୱାମୀ**—ଓଡ଼ିଶା ଗଡ଼ଜାତ ରାଜ୍ୟ ମଧ୍ୟରୁ ନୟାଗଡ଼
Sachhidānanda Saraswati swāmi ରାଜ୍ୟସ୍ଥ ନିଜଗଡ଼ ଇଥଗଡ଼ା ସାସ୍ତ୍ରୀ ପରିହାଟ (ଭଟ୍ଟ ମିଶ୍ର) ଉଚ୍ଚ ବୈଦିକ ବ୍ରାହ୍ମଣକୁଳରେ ସନ ୧୩୧୧ ସାଲ ମେଷ ୧୩ ଦିନ ବୈଶାଖ ଶୁକ୍ଳ ନବମୀ ତିଥିରେ ଏ ଜନ୍ମଗ୍ରହଣ କରିଥିଲେ।

ଏହାଙ୍କ ପୂର୍ବପୁରୁଷମାନଙ୍କର ଆଦ୍ୟ ବାସସ୍ଥାନ ପୁରୀ ଜିଲ୍ଲାର ଗିରିହାଙ୍ଗ ପ୍ରଗଣାର ବୀରନରସିଂହପୁର ଶାସନର ପ୍ରଥମ ଶ୍ରେଣୀରେ ଥିଲା।

ଏହାଙ୍କ ପିତା ସ୍ୱର୍ଗୀୟ ବାଇଧର ମିଶ୍ର ଓ ମାତା ସ୍ୱର୍ଗୀୟା ଅପ୍ସରା ଦେବୀ।

ମାତା ଅପ୍ସରା ଦେବୀ ସ୍ୱର୍ଗତ ୬ କବିସୂର୍ଯ୍ୟ ବଳଦେବ ରଥଙ୍କ ନାତୁଣୀ ଥିଲେ, ଅର୍ଥାତ୍ ବଳଦେବ ରଥଙ୍କ ପୁତ୍ର ବିଶ୍ୱନାଥ ରଥଙ୍କର କନ୍ୟା।

ସଚ୍ଚିଦାନନ୍ଦଙ୍କର ବାଲ୍ୟାବସ୍ଥାରେ ପିତୃବିୟୋଗ ଘଟିବାରୁ ବିଧବା ମାତା ଏହାଙ୍କୁ ପ୍ରତିପାଳନ କରିଥିଲେ, ଏବଂ ସଂସ୍କୃତ, ପ୍ରାକୃତ, ଜ୍ୟୋତିଷ, ଆୟୁର୍ବେଦ, ତନ୍ତ୍ର

ମାଷ୍ଟ, ଘରୁଭିତରେ ମାତାଙ୍କର ଜ୍ଞାନ ଥିବାରୁ ଏହାଙ୍କ ବାଲ୍ୟଶିକ୍ଷା ମାତାଙ୍କ ଦ୍ୱାରା ହୋଇପାରିଥିଲା । ଏ ପରେ ନୟାଗଡ଼ ମାଇନର୍ ସ୍କୁଲରେ ଓ ସଂସ୍କୃତ ଟୋଲରେ ଅଧ୍ୟୟନ କରିଥିଲେ ।

ନୟାଗଡ ରାଜାଙ୍କ ଅନୁଗ୍ରହରୁ ଏହାଙ୍କ ପରିବାର ସ୍ୱଚ୍ଛନ୍ଦରେ ଚଳି ପାରୁ ଥିଲେ। ମାତ୍ର ସ୍ୱର୍ଗତ ନୟାଗଡ଼ ରାଜା ଓ ରାଣୀଙ୍କର ବିୟୋଗ ଘଟିବା ସମୟରୁ ସଚ୍ଚିଦାନନ୍ଦଙ୍କର ମାତା ଓ ଜ୍ୟେଷ୍ଠ ଭାଇଙ୍କର ବିୟୋଗ ଘଟିବାରୁ ଏ ଅଗତ୍ୟା ଉକ୍ତ ରାଜ୍ୟ ଛାଡ଼ି ପୁରୁଷୋତ୍ତମ କ୍ଷେତ୍ରରେ ଆସି ପ୍ରଥମେ ବେଦକର୍ମକାଣ୍ଡ ବିଦ୍ୟାଳୟରେ କିଛିକାଳ ଅଧ୍ୟୟନ କରି ତଦନନ୍ତର ପୁରୀ ନରସିଂହଦାସ ମଠସ୍ଥ ଟୋଲରେ ପଣ୍ଡିତ ରାମଚନ୍ଦ୍ର ମହାପାତ୍ର ବ୍ୟାକରଣତୀର୍ଥ ମହାଶୟଙ୍କ ପାଖରେ ସଂସ୍କୃତ ବ୍ୟାକରଣ ଓ ସାହିତ୍ୟର ମଧ୍ୟମା ପରୀକ୍ଷା ପାଇଁ ପଢ଼ୁଥିଲେ ।

ଇତ୍ୟବସରରେ ଦୈବୀପ୍ରେରଣା (ପ୍ରାରବ୍ଧକର୍ମ) ବଶତଃ ପୁରୀ ଶଙ୍କରାନନ୍ଦ ମଠର ମଠାଧୀଶ ୬ ଶିବାନନ୍ଦ ସରସ୍ୱତୀ ସ୍ୱାମୀଙ୍କଠାରୁ ସନ୍ନ୍ୟାସଦୀକ୍ଷା ୧୬।୭।୨୪ ତାରିଖରେ ୨୦ ବର୍ଷ ବୟସରେ ଗ୍ରହଣ କରିଥିଲେ ଏବଂ ଗୁରୁପାଦ ଏହାଙ୍କୁ ଉତ୍ତରାଧିକାରୀ ସୂତ୍ରରେ ମନୋନୀତ କରି, "ସଚ୍ଚିଦାନନ୍ଦ ସରସ୍ୱତୀ" ନାମ ଦେଇ ଏହାଙ୍କ ନାମରେ ଉଇଲ୍ ରେଜିଷ୍ଟରୀ କରି ଦେଇଥିଲେ ।

ଗୁରୁ ଶିବାନନ୍ଦଙ୍କର ୪।୧।୨୭ରେ ନାରାୟଣ ପ୍ରାପ୍ତି ହେବାରୁ ସମ୍ପାଦିତ ଉଇଲ୍‌ନାମାରେ କାଉନ୍‌ସ ସୂତ୍ରରେ ଏ ଶଙ୍କରାନନ୍ଦ ମଠରେ ମଠାଧୀଶତ୍ୱ ପ୍ରାପ୍ତ ହେଲେ ।

କିନ୍ତୁ ଅହରହଃ ମଠପରିଚାଳନରୂପ ବୈଷୟିକ ବ୍ୟାପାରରେ ଲିପ୍ତ ରହିବାରେ ସନ୍ନ୍ୟାସୋଚିତ ଧର୍ମ କର୍ମରେ ବାଧା ପଡ଼ିବାରୁ ଗୁରୁଭାଇ ବାଲ ବ୍ରହ୍ମାନନ୍ଦ ସରସ୍ୱତୀଙ୍କ ନାମରେ ୧।୪।୩୧ ତାରିଖରେ ଏକ କ୍ଷମତାପତ୍ର ରେଜିଷ୍ଟରୀ କରି ତାଙ୍କୁ ମଠ ପରିଚାଳନା ଭାର ଦେଇ ଏ ବିଷୟ ଚର୍ଚ୍ଚାରୁ କ୍ଷାନ୍ତ ହୋଇ ତୀର୍ଥ ପର୍ଯ୍ୟଟନ କରିବା ସଙ୍ଗେ ସଙ୍ଗେ ସମସ୍ତ ଉତ୍କଳ ଦେଶ ଭ୍ରମଣ କରି ଧର୍ମପ୍ରଚାର କରୁ-ଅଛନ୍ତି ଏବଂ ଉତ୍କଳ ଦେଶରେ ଭୁବନେଶ୍ୱରଠାରେ ପ୍ରାଚୀନ ଖଣ୍ଡରେ ଗୋଟିଏ ଗୁରୁକୁଳ ବ୍ରହ୍ମଚର୍ଯ୍ୟାଶ୍ରମ ସ୍ଥାପନ କରିବାକୁ ପ୍ରୟାସ କରୁଅଛନ୍ତି ।

ଷୋଡ଼ଶ ସର୍ଗବିଶିଷ୍ଟ ସଂସ୍କୃତ ଶଙ୍କରଦିଗ୍‌ବିଜୟ ଛନ୍ଦକୁ ଉତ୍କଳଭାଷାରେ ପଦ୍ୟାନୁବାଦ କରି ଅନୂଦିତ ଛନ୍ଦକୁ ଦୁଇଭାଗରେ ବିଭକ୍ତ କରି ସ୍ୱାମୀଜୀ ତହିଁର ପ୍ରଥମଭାଗ ପ୍ରକାଶ କରିଅଛନ୍ତି ଏବଂ "ଭାଷାଜ୍ୟୋତିଷ" ନାମରେ ଗୋଟିଏ ସରଳ ସୁବୋଧ ଜ୍ୟୋତିଷ ଗ୍ରନ୍ଥ ଓଡ଼ିଆରେ ସଂକଳନ କରିଅଛନ୍ତି । ଏହାଛଡ଼ା ଧର୍ମଶିକ୍ଷା, ନୀତିଶିକ୍ଷା ପ୍ରଭୃତି ବିଷୟରେ ଅନେକଗୁଡ଼ିଏ ଶ୍ରେଷ୍ଠ ଶ୍ରେଷ୍ଠ ଉପାଦେୟ ପୁସ୍ତକ ଲେଖିଅଛନ୍ତି ଓ ଏପୁସ୍ତକମାନ ପ୍ରକାଶିତ କରି ଉତ୍କଳବାସୀଙ୍କୁ ବିତରଣ କରିବେ ବୋଲି ସଂକଳ୍ପ କରିଅଛନ୍ତି । ତାଙ୍କର ବର୍ତ୍ତମାନ (୧୯୩୮ ସାଲରେ) ବୟସ ୩୪ ବର୍ଷ ଅଟେ । ଏ ଦୀକ୍ଷା ଗ୍ରହଣ କରିବା ପୂର୍ବରୁ ବିବାହ କରି ନ ଥିଲେ । ଉତ୍କଳର ସ୍ଥାନେ ସ୍ଥାନେ ଭ୍ରମଣ କରି ଲୋକଙ୍କୁ ଧର୍ମଶିକ୍ଷା ଦେବା ଓ ସ୍ଥାନେ ସ୍ଥାନେ ବ୍ରହ୍ମଚର୍ଯ୍ୟପାଳନାର୍ଥ ବିଦ୍ୟାଳୟମାନ ସ୍ଥାପନ କରିବାପାଇଁ ଲୋକଙ୍କୁ ପ୍ରବର୍ତ୍ତାଇବା ଏହାଙ୍କ ଜୀବନର ବ୍ରତ ହୋଇଅଛି । ଏ ନିରଭିମାନ, ନିରାଡ଼ମ୍ବର ଓ ବିନୀତ। ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ନିର୍ବିଘ୍ନ ସମାପ୍ତି ପାଇଁ ପ୍ରତିଦିନ ଈଶ୍ୱରଙ୍କଠାରେ ପ୍ରାର୍ଥନା କରିବା ଓ ଭୁବନେଶ୍ୱରଠାରେ ଗୁରୁକୁଳ ବ୍ରହ୍ମଚର୍ଯ୍ୟବିଦ୍ୟାଳୟ ସ୍ଥାପନ କରିବା ଏହାଙ୍କ ପବିତ୍ର ଜୀବନର ବ୍ରତ ହୋଇଅଛି । ହିନ୍ଦୁ ଧର୍ମଶାସ୍ତ୍ରରେ ଏହାଙ୍କର ଗଭୀର ପ୍ରବେଶ ଅଛି ଓ ଏହାଙ୍କ ବାଗ୍ମିତା ସହସ୍ର ସହସ୍ର ଲୋକଙ୍କୁ ମୁଗ୍ଧ କରିଅଛି । ଭାଷାକୋଷର ଅହରହଃ ମଙ୍ଗଳକାମୀରୂପେ ଏହାଙ୍କ ପ୍ରତିକୃତି ଭାଷାକୋଷରେ ସ୍ଥାନ ପାଇଅଛି ।] (ସନ୍ଦର୍ଭଲେଖକ—ବିଚ୍ଛନ୍ଦଚରଣ ପଟ୍ଟନାୟକ) ।

ସଚ୍ଚିନ୍ତା—ସଂ. ବି (କର୍ମଧା; ସତ୍+ଚିନ୍ତା)—ଧର୍ମ ସମ୍ବନ୍ଧୀୟ ବା ଶୁଭଙ୍କର ଚିନ୍ତା—Good or pious thoughts.
Sachchintā

ସଚ୍ଚୀ—ଦେ. ବିଣ. ସ୍ତ୍ରୀ (ସଂ. ସତ୍ୟ)—୧ । ସାଧ୍ୱୀ; ସତୀ—1. Chaste (woman). ୨ । ସାଧୁତାଯୁକ୍ତା—2. Honest (woman). ୩ । ସତ୍ୟବାଦିନୀ—3. Truthful (woman). ଦେ. ବି—ସଚ୍ଚୋଟ୍ ପଣ (ଦେଖ)—Sachoṭ paṇa (See).
Sachchī
সা(সঁা)চ্চা
सच्ची
(ସଚ୍ଚା—ପୁଂ. ବିଣ)

ସଚ୍ଚୀ ପଣ—ଦେ. ବି (ସ୍ତ୍ରୀ ସମ୍ବନ୍ଧରେ ବ୍ୟବହୃତ)—୧ । ସତୀତ୍ୱ—1. Chastity. ୨ । ସାଧୁତା—2. Honesty. ୩ । ସତ୍ୟବାଦିତା—3. Truthfulness.
Sachchī paṇa
সাচ্চাপনা
सच्चापन
(ସଚ୍ଚୀ ପଣିଆ, ସଚ୍ଚେଇ ପଣ, ସଚ୍ଚେଇ ପଣିଆ—ଅନ୍ୟରୂପ)।

ସଚ୍ଚେଇ—ଦେ. ବି—୧ । ସତୀତ୍ୱ—1. Chastity. ୨ । ସାଧୁତା—2. Honesty. ୩ । ସତ୍ୟବାଦିତା—3. Truthfulness.
Sachchei সা(সঁা)চ্চাই सच्चाई

ଦେ. ବିଣ· ସ୍ତ୍ରୀ—ସଚ୍ଚୀ (ଦେଖ)—Sachchi (See)

ସଚ୍ଚେଇ ହେବା—ଦେ. କ୍ରି—ସଚ୍ଚାପଣ ଦେଖାଇ ହେବା—To make a show of honesty.
Sachchei hebā
সা(সঁা)চ্চাই হওয়া सच्चाई दिखलाना

ସଚ୍ଚୋଟ (ଇତ୍ୟାଦି)—ଦେ· ବି ଓ ବିଣ—ସଚ୍ଚୋଟ ଇତ୍ୟାଦି (ଦେଖ)
Sachchoṭa (etc) Sachoṭa etc (See)

ସଚ୍ଚୋଟି—ଦେ· ବି—ସଚ୍ଚୋଟି (ଦେଖ)
Sachchoṭi (ସଚ୍ଚୋଟିଆ—ବିଣ) Sachoṭi (See)

ସଚ୍ଛ—ଗ୍ରା. ବି (ସଂ. ସ୍ୱଚ୍ଛ)—ମନର ସ୍ୱଚ୍ଛତା—Purity of mind.
Sachchha ଗ୍ରା· ବିଣ—ସ୍ୱଚ୍ଛ; କଲ୍ମନା ବା ଅସନ୍ତୋଷରହିତ—Free from discontent or hesitation.
স্বচ্ছ स्वच्छ

ସଚ୍ଛ(ଛ)ନ୍ଦ—ଗ୍ରା. ବିଣ (ସଂ. ସ୍ୱଚ୍ଛନ୍ଦ)—ସ୍ୱଚ୍ଛନ୍ଦ—Unrestrained; contented; happy. ଗ୍ରା· ବି—୧। ସ୍ୱଚ୍ଛନ୍ଦତା—1. Ease ୨। ସୁଖ;ସନ୍ତୋଷ—
Sachchha(chha)nda
স্বচ্ছন্দ स्वच्छन्द

2. Happiness; contentment. ଗ୍ରା• କ୍ରି.
ବିଣ—୧ । ସ୍ୱଚ୍ଛନ୍ଦତା ସହକାରେ—1. Happily; with
ease. ୨ । ସ୍ୱଇଚ୍ଛାରେ—2. Voluntarily
୩ । ସହଜରେ—3. Easily.

ସଚ୍ଛ(ଛ)ଳ—ଦେ• ବି ଣ ( ସ. ସଚ୍ଛୀଳ=ଶୀଳଯୁକ୍ତ, ଦାତା, ବା ସ
Sachchha(chh)la ସଚଳ; ବା ସଂ. ଶସ୍ୟଳ )—୧ । ସଙ୍ଗତି-
सच्छल चलता पुरजा संपन्न ସଂପନ୍ନ ( ଅବସ୍ଥା )—
(ଅସଚ୍ଛଳ—ବିପରୀତ) 1. Well-to-do (condition).
(ବ୍ୟବହାର—ସଚ୍ଛଳଅବସ୍ଥା) ୨ । ସମ୍ବଳ ବିଶିଷ୍ଟ ବା ଧନୀ—
2. Rich; affluent. (ଉ—ସଚ୍ଛଳ ଲୋକ) ।
[ ଦ୍ର-ଭଲ ଭଲ ଲେଖକଙ୍କ ଲେଖାରେ ମଧ୍ୟ ଏ ଶବ୍ଦର ବ୍ୟବହାର
ଦେଖାଯାଏ ]

ସଚ୍ଛ (ଛ)ଳତା—ଦେ• ବି—୧ । ସଙ୍ଗତିସମ୍ପନ୍ନ ଅବସ୍ଥା—
Sachchha(chha)latā 1. Ease; well-to-do condi-
सच्छलता संपन्नता tion. ୨ । ସମ୍ପଦ; ଧନବାନ୍
(ଅସଚ୍ଛଳତା—ବିପରୀତ) ଅବସ୍ଥା—2. Affluence; rich or
affluent circumstances. ୩ । ଅର୍ଥସଙ୍ଗତି;
ଅର୍ଥପ୍ରାଚୁର୍ଯ୍ୟ—3. Sufficience in money
matters.

ସଚ୍ଛାତ୍ର—ସ.ବି (କର୍ମଧା; ସତ୍ +ଛାତ୍ର)-ଭକ୍ତିମାନ୍, ଆଜ୍ଞାକାରୀ, କର୍ତ୍ତବ୍ୟପରାୟଣ
Sachchhātra ଓ ସଦାଚରଣଯୁକ୍ତ ଶିଷ୍ୟ—A dutiful
(ସଚ୍ଛିଷ୍ୟ—ଅନ୍ୟରୂପ) student or disciple.
(ସଦ୍‌ଗୁରୁ—ବିପରୀତ)

ସଚ୍ଛିଦ୍ର—ସଂ. ବିଣ (ସ+ଛିଦ୍ର; ସନ୍ଧି ଯୋଗୁ ଦ୍ୱିତ୍ୱ)—ଛିଦ୍ରଯୁକ୍ତ—
Sachchhidra Having holes; perforated;

ସଜ୍‌ଜ୍ଞାନ—ସଂ• ବି (ସତ୍ +ଜ୍ଞାନ)—ଧର୍ମ ବା ଈଶ୍ୱରସମ୍ବନ୍ଧୀୟ ଜ୍ଞାନ;
Saj-jñāna ପାରମାର୍ଥିକ ଜ୍ଞାନ—Philosophical know-
(ସଜ୍‌ଜ୍ଞାନୀ—ବିଣ) ledge; spiritual knowledge.
[ଦ୍ର—ଓଡ଼ିଆରେ ଉଚ୍ଚାରଣଦୋଷରୁ 'ଜ୍ଞାନ' ଶବ୍ଦଟି
'ଗ୍ୟାନ'ରୂପେ ଉଚ୍ଚାରିତ ହେଉଥିବାରୁ ଅନେକେ
ଭ୍ରମରେ 'ସତ୍ +ଜ୍ଞାନ'କୁ ସନ୍ଧି କରି 'ଗ' ପରେ ଥିବାରୁ
'ତ୍' ସ୍ଥାନରେ ବର୍ଗର ତୃତୀୟ ବର୍ଣ୍ଣ "ଦ୍"କରି 'ସଦ୍‌ଜ୍ଞାନ' ଶବ୍ଦ
କଳ୍ପନା କରନ୍ତି । କିନ୍ତୁ ପାଣିନିଙ୍କର ୮।୪।୪୦ "ସ୍ତୋଃଶ୍ଚୁ-
ନାଶ୍ଚୁଃ" ସୂତ୍ରାନୁସାରେ ସନ୍ଧିରେ 'ସତ୍ +ଜ୍ଞାନ'ର 'ସତ୍'
ସ୍ଥାନରେ 'ସଜ୍' ହୋଇ ଶବ୍ଦଟି 'ସଜ୍‌ଜ୍ଞାନ' ହେବ । ଏହିପରି
ତତ୍ +ଜ୍ଞାନ='ତଜ୍‌ଜ୍ଞାନ', ଏତତ୍ +ଜ୍ଞାନ='ଏତଜ୍‌
ଜ୍ଞାନ' ଇତ୍ୟାଦି ହୁଏ । ]

ସଜ—ଦେ. ବି ( ସଂ. ସଜ୍ଜା )—୧ । ଶିଳ୍ପୀର ଶିଳ୍ପଯନ୍ତ୍ର ; କାରିଗରର
Saja ଯନ୍ତ୍ରଚୟ—1. Apparatus or implements
साज औज़ार of an artisan. [ଦ୍ର—ଚଷାର ହଳ,
ଲଙ୍ଗଳ-ଲହୁଡ଼ା ଆଦି; ଭଣ୍ଡାରିର ଖୁର, ନହୁଣୀ ଆଦି;
ବଣିଆର ସୁନାରୁପାସମ୍ବନ୍ଧୀୟ ହତିଆର; ବଢ଼େଇର ହତିଆର,
ଟିଅଳର ଖଜୁରିଗଛକଟା କଟୁରି, ଦଉଡ଼ା ଆଦି; କମାରର
ହତିଆର; ଧୋବାର କୁଣ୍ଡି ଓ ଚମାରର ଚାଳ ଗଛ କଟା
କଟୁରି ଓ ଦଉଡ଼ାକୁ ସଜ କହନ୍ତି । ] ୨ । (ସଂ. ସଜ୍ଜା ବା
साज सजा ସାଧନ ) ବ୍ୟବସାୟୀର ବ୍ୟବସାୟ ପାଇଁ
ଦରକାରୀ ସଜ୍ଜା ବା ସାଧନ—2. The fittings or
equipments of a trader. [ଦ୍ର—ଦୋକାନୀର
ସେର, ତରାଜୁ, ମାଣ ଆଦି; ଗଉଡ଼ୁଣୀର ଦୁଧ ହାଣ୍ଡି,
ଦହି ହାଣ୍ଡି, ଟୋକେଇ, ପାଥି ଆଦି; ଗଉଡ଼ଙ୍କ ଶିକା,
ବାହୁଙ୍ଗୀ, ନଡ଼ିଆ ଆଦି ଓ ତେଲିର ତେଲ ଘଡ଼ି, ମାପପାତ୍ର
ଆଦିକୁ ସଜ କୁହାଯାଏ ] ୩ । (ଗଉଡ଼ୁଣୀ, ତେଲି ଆଦିଙ୍କ)
ପସରା—3. The basket or tray in which
commodities are hawked. [ଦ୍ର—ଜୀବିକା-
ନିର୍ବାହାର୍ଥ କାରିଗର, ବେପାରୀ, ମୂଲିଆ ଆଦି ଯେଉଁ
ଯେଉଁ ଯନ୍ତ୍ର, ପାତ୍ର, ମାପପାତ୍ରାଦି ବ୍ୟବହାର କରନ୍ତି,
ତାକୁ ସଜ ବୋଲିଯାଏ । ଦଶହରା ଆଦି ଭିନ୍ନ ଭିନ୍ନ ଉତ୍ସବ
ଉପଲକ୍ଷରେ ପ୍ରତ୍ୟେକ କାରିଗର ତାହାର ସଜକୁ ପୂଜା
କରେ । ଗଉଡ଼ ଗଉଡ଼ୁଣୀମାନେ ଦୋଳପୂର୍ଣ୍ଣିମା ସମୟରେ
ତାଙ୍କ ସଜକୁ ପୂଜା କରନ୍ତି । ଫଳତଃ ପ୍ରତ୍ୟେକ ପ୍ରକାରର
କାର୍ଯ୍ୟ, ଶିଳ୍ପ, ବ୍ୟବସାୟ, ଓ ଗୃହ ଆଦିର ଆବଶ୍ୟକ ସଜ୍ଜା,
ସମ୍ଭାର, ସାଧନ, ଉପକରଣ, ଉପାଦାନ, ଯନ୍ତ୍ର,
ଅସ୍ତ୍ର, ପରିଚ୍ଛଦ, ଅଳଂକାର, ବେଶ, ପାତ୍ରାଦିକୁ 'ସଜ'
ବୋଲିଯାଏ ।] ୪ । (ସଂ• ସଜ୍ଜ ) ଗୃହର ଉପକରଣ—
साज सामग्री 4. Domestic furniture.
୫ । ଗୃହର ବାସନ ବର୍ତ୍ତନ—5. Domestic tusenils.
औज़ार ୬ । ପଥୁରିଆଙ୍କର ପଥର ହାଣିବା ନିହାଣ—
सेट चेट 6. Stone-cutter's chisel. ୭ । ପୁସ୍ତକ,
ଅଳଂକାର ଓ ଯନ୍ତ୍ର ଆଦିର ଏକ ସେଟ୍ ବା ଏକ ସାର—
7. One set (of books, instruments,
सुविधा सुभीता ornaments). ୮ । (ସଂ. ସହଜ)
ସୁବିଧା—8. Convenience. ୯ । ସୁଯୋଗ; ଦାଉ;
साज साज 9. Opportunity. ୧୦ । (ସଂ.
ସଜ୍ଜ) ଘୋଡ଼ାର ବ୍ୟବହାରାର୍ଥ ସଜ୍ଜିତ କରିବାର
ପଦାର୍ଥଚୟ; ଅଶ୍ୱ ସଜ୍ଜା (ଯଥା—ଜିନ୍, ଗୃଦଳାମା,
ଖଗୁରୁ)—10. Harness for a horse;
the trappings and saddle etc.
of a horse. ୧୧ । ଅଳଂକାରଚୟ; ଭୂଷଣ—
11. Ornaments. ୧୨ । ସଜ୍ଜା—12. Equip-
ments; trappings. [ଉ—ପ୍ରଚଣ୍ଡ ଶୋଣିତାକ୍ତ
ଅଙ୍ଗେ ଭିଡ଼ି ସଜ—କୃଷ୍ଣସିଂହ ମହାଭାରତ. ବନ । ]
साज टटका ୧୩ । ( ସଂ. ସଦ୍ୟ )—ସଜ ଲୁଗା;
( ବାସି—ବିପରୀତ ) ସଜ କରୁ ହୋଇଥିବା ଲୁଗା—
शास तारकुन 13. A cloth which has been
washed by the washerman and re-
turned to the owner on the same dya

when it is given to him for washing ୧୪ । ( ସଂ. ଶସ୍ୟ )—କଞ୍ଚା ତାଳ ମଧ୍ୟରେ ଥିବା କୋମଳ ପଦାର୍ଥ; ତାଳସଜ—14. The soft kernel inside the unripe palm-fruit.

ସହଜ ୧୫ । (ସ. ସହଜ) ସହଜ ବିଷୟ—15. An easy
ସହଜ matter. ୧୬ । ଅବସ୍ଥା—16. Condition;
ଅবস্থা state. [ଉ—ଅପଣ ସେଉଁ ସଜେ ଅଛନ୍ତି, ସେହି
হালত ସଜେ ଅଯୋଧ୍ୟାକୁ ଫେରି ଯିବାକୁ ହେବ । କାଳକଣ୍ଠ ସିଂହଙ୍କ ରାମାୟଣ ।] ଦେ· ବିଣ (ସ. ସଜ୍ଜ=ସଜ୍ଜିତ)—
সজ্জিত ୧ । ସଜ୍ଜିତ—1. Furnished; equipped. [ଉ—
सज्जित ରାଜଅଙ୍କ ପାଇ ରାଜପୁତ୍ରଗଣ ସେହିକ୍ଷଣି ହେଲେ ସଜ । ରାଧାନାଥ. ପାର୍ବତୀ । ] ୨ । ଅଳଙ୍କୃତ—2. Decorated. ✱ । କୌଣସି କାର୍ଯ୍ୟ କରିବାକୁ ଉଦ୍ୟତ ବା
তৈয়ার
तैयार ପ୍ରସ୍ତୁତ; ସଜ୍ଜିତ; ନିୟୋଜିତ—3. Ready or prepared to do a thing. ( ଉ—ଯେବେ ପାଇଥାଏ ଘଇତା ଭୂତ, ସଜ ହୋଇଥାଏ ବାପ ଘରକୁ । ଢଗ ।) ୪ ।(ସ. ସଦ୍ୟଃ)ତାଟକା—4. Fresh. (ଯଥା—
সাজ
टटका ସଜ ଫୁଲ, ସଜ ଗୋବର, ସଜ ଦହି; ସଜ ପଖାଳ, ସଜ ମଣ୍ଡା, ସଜ ଜଳପା, ସଜ କିଆ ।) [ଉ—ତଥାପି ସେ ସଜ-ସରୋଜ-ବଦନ ଶୋକେ ହୋଇଅଛି ଫିକା । ରାଧାନାଥ. ପାର୍ବତୀ ।] ✱ । ଏକାଦିନକେ ଧୋବ କରି ଯାଇଥିବା (ବସ୍ତ୍ର)—5. (cloth) Washed, cleansed and returned to the owner in the course of one day ( ଯଥା— ସଜ ଲୁଗା ।) ୬ । (ସ. ସହଜ) ସହଜ; ସୁସାଧ୍ୟ;
সহজ
सहज ସୁବୋଧ—6. Easy. (ଉ—ସଜକାଠି; ସଜପାଠ ।) ୭ । ସୁବିଧାଜନକ—7. Convenient. ୮ । ସୁଯୋଗ
সুবিধাজনক ଯୁକ୍ତ—8. Opportune. ୯ । ଉପଯୋଗୀ—
उपयोगी 9. Suitable.

ସଜ ଅସଜ—ଦେ. ବି (ବିପରୀତାର୍ଥକ ସହଚର)—୧ । ସୁବିଧା ଓ
Saja asaja ଅସୁବିଧା—1. Convenience and in-
সুবিধা অসুবিধা convenience. ୨ । ସୁଯୋଗ ଓ ଦୁର୍ଯୋଗ;
सुविधा असुविधा ଶଙ୍କ ଓ ଅଶଙ୍କ—2. Opportunities and want of opportunities. ଦେ· ବିଣ—
সুবিধাজনক ୧ । ସୁବିଧାଜନକ ଓ ଅସୁବିଧାଜନକ (କାର୍ଯ୍ୟ ବା
सुविधाजनक ସମୟ ବା ଘଟନା)—1. Convenient and inconvenient (things); opportune and inopportune (times). ୨ । ସହଜ ଓ କଷ୍ଟ—2. Easy and difficult.

ସଜ ଉଠା(ଠେ)ଇବା—ଦେ. କ୍ରି—ଦଶହରା ସମୟରେ ଧୋବା
Saja uṭhā(ṭhe)ibā ଭଣ୍ଡାରି ଆଦି ପୂଜା କରିବା ପାଇଁ
(ସଜ ବସାଇବା—ବିପରୀତ) ବସାଇଥିବା ନିଜ ନିଜର ଯନ୍ତ୍ରାଦିକୁ
সাজউ(ও)ঠান ଦଶହରା ବାସିଦିନ ପୂଜା ସରି ପରେ ପୂଜାପୀଠରୁ
औजार उठाना ଉଠାଇବା—To remove the implements (of barbers and washermen etc) from the place of worship after Dasaharā.

[ଦ୍ର—ଦଶହରା ବାସିଦିନ ଧୋବା ଭଣ୍ଡାରିମାନେ ସଜ ଉଠାଇ ପ୍ରଥମେ ସଜର 'ଅନୁକୂଳ' କରନ୍ତି ଅର୍ଥାତ୍ ସଜ ଦ୍ୱାରା ପ୍ରଥମେ କାମ କରନ୍ତି;ଓ ସେହି ଦିନର ଫଳ ବା ଆୟ ଅନୁସାରେ ବର୍ଷକର ସୁଖଦୁଃଖ ବା ଲାଭାଲାଭର କଳ୍ପନା କରନ୍ତି । ]

ସଜ ଉଠିବା—ଦେ· କ୍ରି—ପୂଜା ହେବା ପାଇଁ ଦଶହରା ସମୟରେ
Saja uṭhibā ସ୍ଥାପିତ ହୋଇଥିବା ବଢେଇ, କମାର ଆଦିଙ୍କ
(ସଜ ବସିବା—ବିପରୀତ) ଯନ୍ତ୍ରାଦିଙ୍କୁ ପୂଜା ପରେ ପୂଜା ସ୍ଥାନରୁ
সাজউঠা ଉଠାଯିବାରୂପ କର୍ମ—The ceremony of taking
औजारका उठना out the instruments from the place of worship.

ସଜ ଉଣ୍ଡିବା—ଦେ· କ୍ରି—ଖଞ୍ଜ ଉଣ୍ଡିବା; କୌଣସି କାର୍ଯ୍ୟ କରିବା
Saja uṇḍibā ପାଇଁ ଉପଯୁକ୍ତ ସୁଯୋଗ ଅନ୍ୱେଷଣ କରିବା—
(ସଜ ଖୋଜିବା—ଅନ୍ୟରୂପ) To be on the look-out
সুবিধাখোঁজা for an opportunity.
सुयोग देखना

ସଜ କଚ୍ଚା—ଦେ. ବି—ଲୁଗାକୁ ଏକ ଦିନ ମଧ୍ୟରେ କାମ ଚଳିବା ଭଳି
Saja kachā ସଫା କରିକାଚିବା; ଲୁଗାକୁ ସଜ ଧୋବ କରିବା—
সাজ কাচা The washing of cloth in a day;
टटका धुलाई ordinary washig of cloth (in contra-
(ବାସିକଚ୍ଚା—ବିପରୀତ) distinction with that which is cleansed with more care and iron).

সাজধোয়া ଦେ. ବିଣ—ସଜ ଧୋବ; ସଜ କଚ୍ଚା ଯାଇଥିବା
टटका धोआहुआ (ଲୁଗା)—(cloth) Washed in the course of one day. [ ଦ୍ର—ମଇଳା ଲୁଗା ଯେଉଁ ଦିନ ଧୋବାକୁ କାଚିବା ନିମନ୍ତେ ଦିଆଯାଏ, ସେହିଦିନ ଧୋବା ଉକ୍ତ ଲୁଗାକୁ କ୍ଷାର (କଦଳୀ ବାସୁଙ୍ଗାର ପାଉଁଶରୁ ଉତ୍ପାଦିତ କ୍ଷାର)ରେ ସିଝାଇ କାମ ଚଳିବାଭଳି ସାମାନ୍ୟ ମାତ୍ରାରେ ପରିଷ୍କାର କରି ସେହି ଦିନ ଆଣି ବସ୍ତ୍ରସ୍ୱାମୀଙ୍କ ଫେରାଇ ଦେବା ଘଟିଲେ 'ସଜକଚ୍ଚା' ବୋଲାଯାଏ । ଏଥିରେ ଲୁଗା ସାମାନ୍ୟ ପରିଷ୍କୃତ ବା 'ସଜଧୋବ' ହୁଏ ।

ଯେଉଁ ଲୁଗାକୁ ବିଶେଷ ଯତ୍ନ ସହିତ ସାବୁନପାଣି ଦେଇ ସିଝାଇ (ଭୁଟି କରି)ଉତ୍ତମରୂପେ କାଚିକରି ସଫା କରି ସେଥିରେ ଭିତର ମଣ୍ଡ ଓ ନେଳ ଆଦି ଲେପି ରଙ୍ଗ କରି ଇସ୍ତ୍ରି କରାଯାଏ, ତାକୁ 'ବାସି କଚ୍ଚା' କହନ୍ତି । ଲୁଗାକୁ 'ବାସି ଧୋବ' କରିବା ପାଇଁ ଏକ ଦିନରୁ ଟିକେବେଶି କାଳ ଲାଗେ । ବାସିଧୋବ ଲୁଗା ସଜଧୋବ ଲୁଗାଠାରୁ ବେଶି ପରିଷ୍କୃତ ଓ ଶୁଭ୍ରତର ହୁଏ ।]

ସଜ କଚ୍ଛ(ଚେ)ଇବା—ଦେ· କ୍ରି—ଅପଣା ଲୁଗାକୁ ଧୋବାଦ୍ୱାରା ସଜ Saja kachā(che)ibā ଧୋବ କରାଇବା—To have সাজ কাচান one's clothes washed in the ordinary टटका धुलाना manner in one day. (ବାସି କଚାଇବା—ବିପରୀତ)

ସଜ କରିବା—ଦେ. କ୍ରି—୧ । ସଜ କାଚିବା (ଦେଖ)—1. Saja Saja karibā kāchibā. (See) ୨ । ସଜ୍ଜିତ କରିବା— সাজকরা 2. To equip; to furnish. (ଉ—ତୁନାକୁ ପୁଷ୍ପ सजाना ଶେଯ ଦେଲେ, ସ୍ୱହସ୍ତେ କୃଷ୍ଣ ସଜ କଲେ । କୁପଣ. সাজিএ দেওযা ପ୍ରେମପଞ୍ଚାମୃତ ।] ୩ । ଅଳଙ୍କାର ଓ ବସ୍ତ୍ରାଦିଦ୍ୱାରା ବେଶ କରିବା—3. To equip with dress and ঠীককরা ornaments. ୪ । ମରାମତ କରିବା—4. To set मरम्मत करना right; to repair. ୫ । ଅଭିପ୍ରେତ କାର୍ଯ୍ୟ তৈয়ার করা ପାଇଁ ପ୍ରସ୍ତୁତ କରିବା—5. To keep or set तैयार करना anything ready. ୬ । ଇତସ୍ତତଃ ହୋଇଥିବା সজিয়ে বাখা ପଦାର୍ଥକୁ ଯଥାସ୍ଥାନରେ ରଖିବା—6. To place सजाना an article in its proper place out of a medley; to put in proper order. (ଉ—ଇଲମ ଅବ କୁଷା ସଜ କର । କବିସୂର୍ଯ୍ୟ. ବଳୋଗୋବିନ୍ଦ; ଲ· ଗୀତ ।)

ସଜ କାଚିବା—ଦେ· କ୍ରି—ଲୁଗାକୁ ସଜ ଧୋବ କରିବା, ଅର୍ଥାତ୍ Saja kāchibā ସାଧାରଣଭାବରେ ଏକା ଦିନକେ କାଚି সাজ কাচা टटका धोना ପରିଷ୍କାର କରିବା—To ( ବାସି କାଚିବା—ବିପରୀତ ) wash a cloth in the ordinary manner in the course of one day.

ସଜ କ୍ରିୟା—ଦେ.ବି (ସଂ.ସଦ୍ୟଃ କ୍ରିୟା)—ମୃତ ବ୍ୟକ୍ତିର ମୃତ୍ୟୁ ଦିବସଠାରୁ Saja kriyā ଦଶ ଦିନ ପର୍ଯ୍ୟନ୍ତ ପ୍ରତିଦିନ କରାଯିବା ପ୍ରେତକର୍ମ— সদ্যক্রিয়া सद्यप्रेतकर्म Funeral rites commenced to be performed from the day of death for ten days. [ଦ୍ର—ଅକ୍ଷମ ଓ ନିର୍ଧନ ବ୍ୟକ୍ତିମାନେ ଅସୁବିଧା ଓ ଧନାଭାବରୁ ମୃତବ୍ୟକ୍ତିଙ୍କର ମୃତ୍ୟୁ ଦିବସରୁ ୧୦ ଦିନଯାକେ ପ୍ରତିଦିନ ଶାସ୍ତ୍ରବିହିତ ଅନ୍ତ୍ୟେଷ୍ଟି-କ୍ରିୟାମାନ କରି ନ ପାରି ୪ର୍ଥ, ୭ମ ବା ୯ମ ଦିନଠାରୁ ଆରମ୍ଭ କରନ୍ତି ଏହାକୁ 'ବାସିକ୍ରିୟା' ବୋଲଯାଏ ।

ସଜ ଗ(ଗା, ଗେ, ଗୋ)ଜ—ଦେ. ବି. ଓ ବିଣ—ସଜବାଜ (ଦେଖ) Saja ga(gā, ge, go)ja Sajabāja ( See ) সাজ গোজ

ସଜ ଗୋବର—ଦେ· ବି ( ସଂ· ସଦ୍ୟଃ+ଗୋମୟ )—ସଦ୍ୟୋଜାତ Saja gobara ଗୋମୟ—Recently discharged সাজ গোবর cowdung. [ ଉ—କୃଷି ପଣେ, ଉର୍ଦ୍ଧ୍ୱ ନ टटका गोबर ବଣେ, ଉତ୍ତର ମେଘ ଦକ୍ଷିଣେ ପଣେ, ସଜ ଗୋବରରେ ଅଂଶେଇ ବସେ, ତେବେ ଜାଣ ସୁଖା । ବର୍ଷେ ବରଷେ—କୃଷି ବଚନ । ]

ସଜ ଘାଅ—ଦେ, ବି—ସଦ୍ୟୋଜାତ କ୍ଷତ—A new or fresh Saja ghā-a ଟାଟକା ঘা टटका घाव wound.

ସଜଡ଼ା—ଦେ· ବି (ସ.ସଜ୍ଜା)—୧ । ସଜାଡ଼ିବା କ୍ରିୟା—1. The act Sajardā of setting right. ୨ । ମରାମତ କରିବା— সাজান, সাজভান 2. Act of repairing. ୩ । ସଜ୍ଜିତ सजावट, मरम्मत କରିବା—3. Act of equipping. সাবা, সাবান ଦେ. ବିଣ—୧ । ମରାମତ ହୋଇଥିବା— मरम्मत किया हुआ 1. Repaired. ୨ । ସଜ୍ଜିତ ହୋଇ সাজা सजाया हुआ ଥିବା—2. Equipped. ୩ । କର୍ତ୍ତୋଶୀ-କୃତ; ସୁସଜ୍ଜିତ—3. Set right; well-arranged. [ଉ—ସଜଡ଼ା ହୋଇ କଳେ ଖଡ୍ଗକୁ ଦୋଷଡ଼ା--କୃଷ୍ଣସିଂହ. ମହାଭାରତ. ବନ । ]

ସଜଡ଼ା(ଡ଼େ)ଇବା—ଦେ. କ୍ରି ( ସଜାଡ଼ିବା କ୍ରିୟାର ଣିଜନ୍ତ ରୂପ )— Sajardā(rde)ibā ୧ । (ସଜାଡ଼ିବାର ଣିଜନ୍ତ ରୂପ—1. Cau_ সাজান, সাবান sative of Sajārdibā. ୨ । ଅନ୍ୟଦ୍ୱାରା बनाना ଭଙ୍ଗା ଜିନିଷ ମରାମତ କରାଇବା—2. To get a broken article repaired by another. [ ଉ—ଦେଇ ମୁଁ ଧନ ଧନୁର ବଣରେ ଗୃହଗାର ସଜାଇବି—ଭଞ୍ଜ. ପ୍ରେମସୁଧାନିଧି । ] ୩ । ସଜ୍ଜିତ କରାଇବା—3. To arrange; to put in order. [ ଉ—ବର୍ଦ୍ଧକୀ ଡକାଇ ସଜଡ଼ାଇ ଦିଅ ନାବ—ଭଞ୍ଜ· ବୈଦେହୀଶବିଳାସ । ]

ସଜଡ଼ି ସଜଡ଼ି—ଦେ, ବି—୧ । ମରାମତି—1. Act of Sajardā sajardi repairing. ୨। ସଜ୍ଜିତ କରିବା କର୍ମ— सजाना उजाना 2. Act of setting right or equipping.

ସଜଡ଼ା ହେବା—ଦେ, କ୍ରି—୧ । ମରାମତ ହେବା—1. To be Sajardā hebā repaired. ୨ । ସଜ୍ଜିତ ହେବା— সাবান सजावट होना 2. To be arranged.

ସଜ ତୋର(ଡ଼ା)ଣି—ଦେ· ବି ( ସ· ସଦ୍ୟଃ+ତୋୟାନ୍ନ )— Saja torā(rdā)ni ସଜ ପଖାଳର ତୋରାଣି—The water সাজ আমানি of freshly watered cooked rice. टटका भातका पानी [ବାସି ତୋର(ଡ଼ା)ଣି, ଅମ୍ବିଳ ତୋର(ଡ଼ା)ଣି—ବିପରୀତ ]

ସଜ ଦଇ(ହି)—ଦେ. ବି—ସଦ୍ୟୋମଥିତ ଦଧି—Fresh whey. Saja dai(hi) সাজ দই टटका दही

(ମତେ) ସଜ ଦେଖା ପଡ଼ିବା—ଦେ· କ୍ରି—ସୁବିଧାଜନକ ବୋଧ ହେବା; Saja dekhā pardibā କୌଣସି ବିଷୟରେ ବା କାର୍ଯ୍ୟରେ সহজ বা সোজা দেখাযাওয়া ସୁବିଧା ବା ସୁଯୋଗ ଜଣାଯିବା— सहज मालूम होना To appear or seem convenient or opportune. (ସଜ ଦେଖାଯିବା—ଅନ୍ୟରୂପ)

ସଜ ଧୋବ—ଦେ, ବି—୧ । ସଜ କଚ୍ଛ ପାଇ ପରିଷ୍କୃତ ହୋଇଥିବା Saja dhoba ବସ୍ତ୍ର—1. Cloth washed in a day সাজ কাচা in the ordinary process. ୨ । ସଜ କଚ୍ଛ

टटका धुलाइ (ଦେଖ)—2. Saja kachā (See) ଦେ.
(ବାସି ଧୋବ—ଅନ୍ୟରୂପ) ବଣ—ଏକଦିନେ ପରିଷ୍କୃତ (ବସ୍ତ୍ର)—(cloth) Washed in a day.

ସଜନା—ଦେ. ବ—ଶଜନା (ଦେଖ)
Sajanā Śajanā (See)

ସଜନା ପତୁରିଆ—ପ୍ରାଦେ (ଗଡ଼ଜାତ) ବ—ଚକୁଣ୍ଡା (ଦେଖ)
Sajanā paturiā Chakundā (See)

ସଜନା ପତୁରିଆ ଟିଣିଆ—ପ୍ରାଦେ (ଗଡ଼ଜାତ) ବ—ବଡ଼ ବକଳା
Sajanā paturiā ṭiniā (ଦେଖ)—Barḍa bakalā (See)

ସଜେନିତ—ଦେ. ବଣ (ସ. ସଜନିତ)—ସଂଜାତ—Born. [ଦ୍ର—
Sajanita ସଜନୀର ଗୁହି ରଚ ସଜ । ସଜନୀତ ଚନ୍ଦ୍ରେ ମାନସଜ—
संजात पैदा ଭଞ୍ଜ. ପ୍ରେମସୁଧାନିଧି । ]

ସଜନୀ—ଦେ. ବ. ସ୍ତ୍ରୀ (ସଂ. ସଜନ, ସ୍ୱଜନ=ଆତ୍ମୀୟ)—୧ । ବୟସ୍ୟା;
Sajanī ସହଚରୀ; ସଙ୍ଗିନୀ; ସଖୀ—1. A female companion. ୨ । ମିତ୍ରସ୍ଥାନୀୟା ସ୍ତ୍ରୀ—2. A female friend. ୩ । ପ୍ରଣୟିନୀ; ପ୍ରେମିକା—3. A man's beloved woman; lady-love; one's sweet-heart (lady). ୪ । ସ୍ତ୍ରୀ; ଗୃହିଣୀ—4. Wife. ୫ । ନାରୀ—5. Woman. [ଦ୍ର—ସ୍ତ୍ରୀମାନେ ସହଚରୀଙ୍କୁ ଏବଂ ପୁରୁଷମାନେ ସ୍ତ୍ରୀଙ୍କୁ ଓ ପ୍ରେମିକାଙ୍କୁ, ବିଶେଷତଃ ଗୀତରେ, 'ସଜନୀ' ବୋଲି ସମ୍ବୋଧନ କରନ୍ତି । ଯଥା—ଯେତେ କାଳ ଥିଲୁ ଘଡ଼ିରେ ଦିଅ । ସୁନ୍ଦର ଦିଶୁଥିଲୁ ସଜନୀ ଦିନ—ଚଗ । ]
सजनी
सजनी

ସଜ ନୁଗା—ଗ୍ରା. ବ (ଅଶୁଦ୍ଧ)—ସଜ ଲୁଗା (ଦେଖ)
Saja nugā Saja lugā (See)

ସଜ ପକା(କେ)ଇବା—ଦେ. କ୍ରି—ସଜ ଧୋବ କରିବା ପାଇଁ ଧୋବାକୁ
Saja pakā(ke)ibā ମଇଲା ଲୁଗା ଦେବା—To give
साज देना soiled cloth to the washerman for
टटका धोनेको देना cleansing by ordinary process and returning it the very day.

ସଜ ପଖଳା—ଦେ. ବଣ—ଅଳ୍ପ ରନ୍ଧା ହୋଇ ପାଣି ମିଶା ଯାଇଥିବା
Saja pakhalā (ଭାତ)—(boiled rice) Freshly
साज पान्ता टटका पखाला हुआ mixed with water.

ସଜ ପଖାଳ—ଦେ. ବ (ସଂ. ସଦ୍ୟଃ+ପ୍ରକ୍ଷାଳନ)—ରନ୍ଧା ଯାଇଥିବା
Saja pakhāla ଭାତରେ ପାଣି ସାଙ୍ଗେ ସାଙ୍ଗେ ମିଶାଯାଇ
साज पान्ताभात ଥିବା ପଖାଳ—Moistened rice pre-
टटका पखाल pared by mixing water with fresh boiled rice and which in only one day old. [ଦ୍ର—ତତଲ ଭାତରେ ପାଣି ମିଶାଇଲେ 'ପଖାଳ' ହୁଏ । ଅଳ୍ପ ତତଲା ହୋଇଥିବା ଭାତକୁ 'ସଜପଖାଳ' କହନ୍ତି । ସଜପଖାଳ ଏକ ଦିନରୁ ବେଶି ରହିଗଲେ ତାକୁ 'ବାସିପଖାଳ' ବା 'ଅମ୍ବିଳ ପଖାଳ' କହନ୍ତି । ବାସି ପଖାଳର ସ୍ୱାଦ ଖଟା ହୁଏ ଓ ତହିଁର ତୋରାଣି ମଧ ଖଟା ଲାଗେ । ବାସି ତୋରାଣି ବହୁ ଦିନ ରହିଲେ ତାହା କାଞ୍ଜି ପାଣି ହୁଏ । କାଞ୍ଜି ପାଣିରେ ମୂଳା ଆଦି ଦେଇ ସିଝାଇଲେ ତାହା କାଞ୍ଜି ହୁଏ । ]

ସଜ ପଡି(ଡ଼ି)ବା—ଦେ. କ୍ରି—୧ । ସୁବିଧା ହେବା—1. Being
Saja pati(ḍi)bā convenient. ୨ । ଖଞ୍ଜ ପଡିବା; ସୁଯୋଗ
সুবিধা হওয়া, ফাঁক মিলা ଘଟିବା—2. Happening of
सुविधा होना an opportunity.

ସଜ ଫୁଲ—ଦେ. ବ (ସଂ. ସଦ୍ୟଃ+ପୁଷ୍ପ)—୧ । ସଦ୍ୟଃ ପ୍ରସ୍ଫୁଟିତ
Saja phula ପୁଷ୍ପ—1. Newly blown flower. ୨ । ଅଳ୍ପ
টাটকা ফুল ଛିଣ୍ଡା ଯାଇଥିବା ଫୁଲ—2. Freshly plucked
टटका फुल flower. (ଦ୍ର—ସଜ ଫୁଲ ବାସି ହେଲେ ନାହିଁ
(ବାସି ଫୁଲ—ବିପରୀତ) ମଙ୍ଗାରେ । ଗୀତ ।)

ସଜ ବସା(ସେ)ଇବା—ଦେ. କ୍ରି—ଦଶହରା, ଶ୍ରୀପଞ୍ଚମୀ, ଦୋଳପୂର୍ଣ୍ଣିମା
Saja basā(se)ibā ଆଦି ଉତ୍ସବରେ ନିଜ ନିଜର ଜୀବିକା-
साज बसान ସାଧନ ଦ୍ରବ୍ୟ ଓ ଯନ୍ତ୍ରାଦି (ଯଥା—କ୍ଷତ୍ରିୟ, ଖଣ୍ଡାୟତ
औज़ार बैठना ଓ ଶିଳ୍ପୀମାନେ ଦୁର୍ଗାପୂଜାରେ ନିଜ ନିଜର
(ସଜ ଉଠାଇବା—ବିପରୀତ) ଅସ୍ତ୍ରାଦି; ମସୀଜୀବୀମାନେ ଶ୍ରୀପଞ୍ଚମୀ ଓ ଗଣେଶଚତୁର୍ଥୀ ଦିନ ଦୁଆତ, କଲମ ଆଦି; ଗଉଡ଼ମାନେ ଦୋଳପୂର୍ଣ୍ଣିମା ଦିନ ଶିଙ୍ଗା, ବାଡ଼ଙ୍ଗୀ, ଦଧି ଦୁଗ୍ଧ ଭାଣ୍ଡମାନ ପୂଜା କରିବା ପାଇଁ) ପୂଜା-ପୀଠ ଉପରେ ସ୍ଥାପନ କରିବା—To place one's professional implements for being worshipped on special festivals.

ସଜ ବସିବା—ଦେ. କ୍ରି—ଶିଳ୍ପୀ ଆଦିଙ୍କ ଯନ୍ତ୍ର ଓ ଉପକରଣାଦି
Saja basibā ଯଥୋପଯୁକ୍ତ ଉତ୍ସବ ଉପଲକ୍ଷରେ ପୀଠ ଉପରେ
साज बसा ପୂଜାର୍ଥ ସ୍ଥାପିତ ହେବା—The placing of the
औज़ार बैठना implements of artisans on a plat-
(ସଜ ଉଠିବା—ବିପରୀତ) form for worshipping on particular festival days.

ସଜବାଜ—ଦେ. ବଣ—୧ । କୌଣସି କାର୍ଯ୍ୟ ପାଇଁ ବେଶ ହୋଇ
Sajabāja ପ୍ରସ୍ତୁତ ହୋଇଥିବା; ସୁସଜ୍ଜିତ—1. Fully
साजगोज हओया equipped for any work. (ଦ୍ର—
सजधजा ବାଜାବାଲା ଆଜ ବରଯାତ୍ରୀଏ ସଜବାଜ ହେଉଁ ହେଉଁ ............ପାଇଲେ ନି । ବାହାର ଗସ୍ତର ବଳରେ ଦାଖଲ—ଫକୀରମୋହନ. ଗଳ୍ପସ୍ୱଳ୍ପ ।) ୨ । ଅଳଙ୍କାରାଦି ଦ୍ୱାରା ସୁସଜ୍ଜିତ—2. Fully adorned. (ଦ୍ର—ଏହା କହି ଝିଅକୁ ସଜବାଜ କରି, ଗାଈବଳଦ ସମର୍ପଣ କଲେ ହାତ ଧରି । କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।) ଦେ. ବ—
साजगोज (ସହଚର)—୧ । ସାଜସଜ୍ଜା—1. Equipments.
सजधज साज ୨ । କାର୍ଯ୍ୟସାଧନ ଯନ୍ତ୍ରାଦି—2. Imple-
औज़ार ments. ୩ । ଅଲଙ୍କାର ଦ୍ୱାରା ସଜ୍ଜା—3. Decora-
साजा tion. ପ୍ରାଦେ (ଯାଜପୁର) ବ—ରଜର ପୂର୍ବ ଦିନ—
सजधज The day before the 'Raja' festival.

ସଜ ବାସି—ଦେ· ଵଣ—୧ । ସଦ୍ୟଃ ଓ ପର୍ଯ୍ୟୁଷିତ (ବସ୍ତୁ ଅଦ)—
Saja bāsi 1. Fresh and stale (article). ୨ । ଏକ
টাটকাবাসি, সাজবাসি ବାସିଧୋବ କରାଯାଇଥିବା (ଲୁଗା)—(Cloth) Which has been washed in a day.
टटकाबासि ଦେ. ବ—ସଜ ଧୋବ କରାଯାଇଥିବା ଓ ବାସିଧୋବ କରାଯାଇଥିବା ଲୁଗାମାନ—Clothes some of which have been washed by ordinary process and others by the extraordinary process, including ironing.

ସଜ ବିଛଣା—ଦେ· ବ (ସଂ. ସଦ୍ୟ+ବିସ୍ତରଣ)—ଅଳ୍ପ ପଡ଼ିଥିବା
Saja bichhanā ଶଯ୍ୟା—Freshly spread bed.
(ସଜ ଶେଯ, ସଜ ଶେଯ୍ୟା—ଅନ୍ୟରୂପ) (ବାସି ବିଛଣା—ବିପରୀତ)
সাজ বিছানা टटकाबिछौना

ସଜ ମଡ଼ା—ଦେ. ବ—୧ । ସଦ୍ୟୋମୃତ ଜୀବର ଶବ—1. The
Saja mardā carcass of a recently dead
সাজমড়া animal. ୨ । ସଦ୍ୟୋମୃତ ବ୍ୟକ୍ତିର ଶବ—2. The
टटका मुर्दा corpse of a recently deceased person.
(ବାସିମଡ଼ା—ବିପରୀତ) ୩ । ମୃତ୍ୟୁର ଅଳ୍ପେ ପରେ ଦାହାର୍ଥ ଶ୍ମଶାନକୁ ନୀତ ଶବ—3. Dead body taken to the cremation ground immediately after death. [ ଦ୍ର—ଯେଉଁ ଶବକୁ ମରିବାକ୍ଷଣ ଶ୍ମଶାନକୁ ନିଆ ନ ଯାଏ, ତାକୁ 'ବାସିମଡ଼ା' କହନ୍ତି ।]

ସଜ ମାଉଁସ—ଦେ. ବ (ସଂ. ସଦ୍ୟଃ+ମାଂସ)—ସଦ୍ୟୋମୃତ ଜୀବର
Saja māuṅsa ମାଂସ (ଯାହା ସଢ଼ିଯାଇ ନ ଥାଏ)—
সাজমাংস टटकामांस Fresh meat.

ସଜ ମାଉଁସରେ ଅଂଶେଇ ପକା(କେ)ଇବା—(ନ୍ୟାୟ) ଦେ. କି—
Saja māuṅsare aṁsei pakā(ke)ibā (ଲକ୍ଷଣାର୍ଥ)—
टटका मांसमे कीडा लगाना ନିର୍ଦ୍ଦୋଷ ବା ନିଷ୍କଳଙ୍କ ବ୍ୟକ୍ତି ଠାରେ କଳଙ୍କାରୋପ କରିବା—(figurative) To defame a really innocent person.
ସଜ ମାଉଁସରେ ଅଂଶେଇ ବସା(ସେ)ଇବା }
ସଜ ମାଉଁସରେ ପୋକ ପକା(କେ)ଇବା } ଅନ୍ୟରୂପ
ସଜ ମାଉଁସରେ ପୋକ ବସା(ସେ)ଇବା }
[ଦ୍ର—ସଦ୍ୟୋମୃତ ପ୍ରାଣୀର ମାଂସ ବାସି ହେଲେ ବା ଏକାଧିକ ଦିନ ଯାଏ ରହିଲେ ତାହା ସଢ଼ିଯାଏ ଓ ତହିଁରେ ଅଂଶେଇ ବା ପୋକ ପଡ଼ନ୍ତି; ସଜ ମାଂସରେ ପୋକ ପଡ଼ନ୍ତି ନାହିଁ । ଏଠାରେ ସ୍ଥଳରେ ସଜ ମାଂସରେ ପୋକ ପକାଇବାର ଲକ୍ଷଣାର୍ଥ=ଅଦୂଷିତ ପଦାର୍ଥକୁ ଦୂଷିତ ପଦାର୍ଥ ପରି କରିବା, ଅର୍ଥାତ୍ ନିର୍ଦ୍ଦୋଷ ବା ନିଷ୍କଳଙ୍କ ବ୍ୟକ୍ତିଠାରେ କଳଙ୍କ ଆରୋପ କରିବା ବା ନିର୍ଦ୍ଦୋଷ ବ୍ୟକ୍ତିଠାରେ କଳଙ୍କ ଲଗାଇବା ।]

ସଜମ୍ବାଳ—ସ. ଵଣ (ସ=ସହ+ଜମ୍ବାଳ=ପଙ୍କ; ସହାର୍ଥ ବହୁବ୍ରୀହି)-
Sajambāḷa ପଙ୍କିଳ—Muddy.

ସଜରସ—ଦେ. ବ (ସଂ. ସର୍ଜରସ)—ସର୍ଜରସ; ଝୁଣା—Resin.
Sajarasa (ଦ୍ର—ଘୃତ ଛଣ ସଜରସ ଅଗ୍ନିରେ ଢାଳ ନା-
ধূনা धूना ଲକ୍ଷ୍ମୀଚରଣ ମଧୁସୂଦନ ।)

ସଜଳ—ସ. ଵଣ. ପୁଂ (ସ=ସହିତ+ଜଳ, ସହାର୍ଥ ବହୁବ୍ରୀହି)—୧ ।
Sajaḷa ଜଳଯୁକ୍ତ—1. Watery. ୨ । ଜଳ ପୂର୍ଣ୍ଣ—
(ସଜଳା—ସ୍ତ୍ରୀ) 2. Full of water; brimming with water. ୩ । ଆର୍ଦ୍ର—3. Moist; wet.

ସଜଳ ନୟନ—ସ. ବ (କର୍ମଧା)—୧ । ଲୋତକାର୍ଦ୍ର ନେତ୍ର—
Sajaḷa nayana 1. Eyes wet with tear.
ସଜଳନେତ୍ର } ଅନ୍ୟରୂପ ୨ । ଲୋତକପୂର୍ଣ୍ଣ ଚକ୍ଷୁ—
ସଜଳଲୋଚନ } 2. Tearful eyes.
ସ. ଵଣ. ପୁଂ (ବହୁବ୍ରୀହି)—ଅଶ୍ରୁପୂର୍ଣ୍ଣ ନେତ୍ରଯୁକ୍ତ (ବ୍ୟକ୍ତି)—(a person) With tearful eyes.
ସଜଳନୟନା }
ସଜଳନେତ୍ରା } —ସ୍ତ୍ରୀ
ସଜଳଲୋଚନା }

ସଜଳସ—ଦେ. ବ (ସ. ସର୍ଜ୍ଜରସ)—ସର୍ଜରସ; ଝୁଣା—
Sajaḷasa Resin used as incense.
ধুনা धूना

ସଜଳସ୍ଥଳ—ସ. ଵଣ (ସ=ସହିତ+ଜଳସ୍ଥଳ, ସହାର୍ଥ ବହୁବ୍ରୀହି)—
Sajaḷasthaḷa ଜଳଭାଗ ଓ ସ୍ଥଳଭାଗ ସମନ୍ୱିତ (ପୃଥିବୀ)—(the world) Consisting of the land and water.
সমুদায় পৃথিবী ଦେ. ବ—ସମୁଦାୟ ପୃଥିବୀ—1. The
जलस्थल whole world including land and water

ସଜ ଲାଗିବା—ଦେ. କି—୧ । ସୁବିଧାଜନକ ବୋଧ ହେବା—
Saja lāgibā 1. To seem convenient.
সহজ বা সেজা লাগা ୨ । ସହଜ ବୋଧ ହେବା—
उपयोगी होना ठिक होना 2. To seem easy.
୩ । ଉପଯୋଗୀ ବୋଧ ହେବା—3. To seem suitable; to suit.

ସଜ ଲୁଗା—ଦେ. ବ—ସଜ ଧୁଆ ଲୁଗା—Cloth washed in
Saja lugā the course of one day only.
সাজ কাপড় टटका धोया हुआ कपडा

ସଜ ଶଉଚ—ଗ୍ରା. ବ—(ସ. ସଦ୍ୟଃ ଶୌଚ)—ସଦ୍ୟଃ ଶୌଚ; ସଦ୍ୟଃ
Saja saucha ସ୍ନାନାଦି ଦ୍ୱାରା ଅଶୌଚରୁ ମୁକ୍ତିଲାଭ କରିବା
( ସଜ ଶୌଚ—ଅନ୍ୟରୂପ ) ଅବସ୍ଥା—Purification
সদ্যশৌচ सद्यशौच attained or performed just after the happening of an impurity in some cases (as ordained by the Śāstras).

ସଜ ସାଜ—ଦେ. ବ. (ସଂ. ସଜ୍ଜା)—ସାଜସଜ୍ଜା—
Saja sāja সাজসজ্জা सजधज Equipments

ସଜ ହ(ହେ)ବା—ଦେ· କି (ସଂ. ସଜ୍ଜିତ)—୧ । ସଜ୍ଜିତ ହେବା—
Saja ha (he) bā 1. To be fitted up. ୨
সজা तैयार होना ୨ । କୌଣସି କାର୍ଯ୍ୟ କରିବାକୁ ପ୍ରସ୍ତୁତ ହେବା.
2. To get ready for any work
(ଦ୍ର—ସଜ ହୋଇ ସୈନ୍ୟ ସରଦାର ଅବା ଆସେ—
କବିସୂର୍ଯ୍ୟ ବଳଦେବରଥଙ୍କ ଚମ୍ପୂ ।)
সাজা सजाधजा होना ୩ । ବେଶଭୂଷାଦିଦ୍ୱାରା ଅଳଙ୍କୃତ

ହେବା—3. To be adorned or dressed up. (ଉ—ସଜ ହେଲେ ସେହିଷଣି ଆରଣ୍ୟକ ବେଶେ—
সহজ হওয়া ସୁବିଧାଜନକ होना ରାଧାନାଥ. ମହାଯାତ୍ରା ।)
୪ । ସୁବିଧାଜନକ ହେବା—4 To suit

ସଜା—ଦେ. ବି (ସଂ. ସଜ୍ଜା)— ସଜ୍ଜିତକରଣ—Decoration; ornamentation. ଦେ°ଦେ° ବି—୧ । ବନ୍ଦୀ—
Sajā
সাজন सजावट 1. Imprisonment; jail.
(ସଜାଏ—ଅନ୍ୟରୂପ) ୨ । (ଫା. ସଜାଏ) ଦଣ୍ଡ; ଶାସ୍ତି—
সাজা सजा 2. Punishment. (ଉ—ଖଣ୍ଡି ଗୁଡ଼ ଦେଖି, ହାତ ବାନ୍ଧି ନେଲି,ନ ହେଲେ ଭୋଗିବ କଠିଣ ସଜା—ଉଦାସୀଚରଣ. ଗୀତଲହରୀ ।) ଦେ. ବିଣ—
সাজা सजावट ୧ । ସଜ୍ଜିତ—1 Furnished.
୨ । ମିଥ୍ୟା ପ୍ରମାଣ ଦ୍ୱାରା ରଚିତ (ମକଦ୍ଦମା)—
2.Fabricated; got up (case). ପ୍ରାଦେ(ବାଲେଶ୍ୱର) ବି—ବସା ଦହି କରିବା ନିମନ୍ତେ ଅଉଟା ଦୁଧରେ ମିଶାଇ ବଥାଯିବା ମହି—The whey which is added to boiled milk to turn the latter into curd.

ସଜା(ଜେ)ଇବା—ଦେ. କ୍ରି (ସଂ. ଣିଜନ୍ତ ସସ୍ଜ୍ ଧାତୁ ବା ସଜ୍ ଧାତୁ)—
Sajā(je)ibā ୧ । ସଜ୍ଜିତ କରିବା—1. To furnish.
সাজান सजाना (ଉ—ବନେ ଉପବନେ ତରୁ ଲତା ଭାଳେ ସଜାଇ ଯତନେ ଅତି—ମଧୁସୂଦନ ଛନ୍ଦମାଳା ।)
୨ । ସୁସଜ୍ଜିତ କରିବା—2. To furnish well. (ଉ—ବହୁତ ବଚନମାନଙ୍କୁ କହନ୍ତେ ସୁଗ୍ରୀବ ସୈନ୍ୟ ସଜାଇ—ଉଞ୍ଜ ବୈଦେହୀଶବିଳାସ) ୩ । ଅନ୍ୟ ବ୍ୟକ୍ତିକୁ ବେଶ କରିବା—3. To decorate or adorn a person. ୪ । ମକଦ୍ଦମାର ପ୍ରମାଣାଦି ଉପଯୁକ୍ତରୂପେ ସଜ୍ଜିତ କରିବା; ମିଛ ମକଦ୍ଦମା ରଚନ କରିବା—4. To fabricate a case; to get up a case falsely.

ସଜାଇବା ମକଦ(ଦ୍ଦ)ମା—ଦେ. ବି—ମିଥ୍ୟା ଓ ରଚିତ ମକଦ୍ଦମା—
Sajāibā makada(dda)mā A got-up case.
সাজান মকদ্দমা झूठा मुकदमा (ସଜାଇବା ମାମଲ—ଅନ୍ୟରୂପ)

ସଜାଉ—ଦେ. ବି (ସଂ. ସଜ୍ଜା) ବାଦ୍ୟବିଶେଷ; ଢୋଲ—A sort of
Sajāu musical instrument; drum. (ଉ—
ঢোল ढोल ବାଜିଲା ସଜାଉ ଅରୁ ଝମକ ନିଷାଣ—ସାରଳା. ମହାଭାରତ. ସଭା ।)

ସଜା(ସଜାଏ) ଖଟିବା—ଦେ. କ୍ରି.—୧ । ଦଣ୍ଡ ଭୋଗ କରିବା—1.
Sajā(Sajāe) khatibā To undergo a sentence
সাজাখাটা of punishment. ୨ । ଜେଲ ଭୋଗିବା—
सजा काटना 2. To undergo imprisonment. [ସଜା (ସଜାଏ) ଖଟିବା (ଭୋଗ କରିବା, ଭୋଗିବା)—ଅନ୍ୟରୂପ]

ସଜାଗ—ଦେ. ବିଣ. (ସଂ. ଜାଗ୍ରତ; ସ=ସହଶବ୍ଦ+ଜାଗ=ଜାଗରଣ
Sajāga ଶବ୍ଦ)—ଜାଗ୍ରତ; ସଚେତ (ବ୍ୟକ୍ତି ବା ଦୃଷ୍ଟି)
সজাগ सचेत Watchful; vigilant.

ସଜାଗ ନିଦ—ଦେ. ବି. (ଅଶୁଦ୍ଧ)—ସଚେତ ନିଦ—Waking
Sajāga nida sleep; wakeful sleep.
সজাগঘুম सचेत निंद्

ସଜାଡ଼—ଦେ. ବିଣ. (ସଂ. ସଜ୍ଜିତ) ୧ । ସୁସଜ୍ଜିତ—1. Ship-
Sajārda shape; well equipped. ୨ । ସୁବିଧା-
সুসজ্জিত ଜନକ—2. Convenient. ୩ । ଆରୋଗ୍ୟ ପ୍ରାପ୍ତ-
सजायाहुआ 3. Recovered. ୪ । ଜୀର୍ଣ୍ଣସଂସ୍କୃତ—4. Repaired. ୫ । ପୁନଃବସ୍ଥା ପ୍ରାପ୍ତ—5. Renovated. ଦେ. ବି.—(ସଂ. ସଜ୍ଜା) ୧ । ସଜ୍ଜିତ ଅବସ୍ଥା—
সাজাবস্থা 1. Equipped or furnished condition.
सजावट ୨ । ଜୀର୍ଣ୍ଣ ସଂସ୍କୃତ ଅବସ୍ଥା—2. Repaired condi-
সারা, সারন, মেরামত) tion; renovated condition.
मरम्मत ୩ । ରୁଗ୍ଣ ଦେହର ଆରୋଗ୍ୟ; ରୋଗ ମୁକ୍ତ ପୂର୍ବକ-
সারা, সুস্থহওয়া ଶରୀରର ପୂର୍ବାବସ୍ଥା ପ୍ରାପ୍ତି; ଆରୋଗ୍ୟ—3.
नीरोग Convalescence; recovery from an illness; regaining of one's previous health. [ଉ—୩ ଦିନ ଉପବାସ ରହିବାରୁ ମୋ ଦେହ ସଜାଡ଼କୁ ଆସିନି ।] ୪ । ସ୍ୱଜା, ବିଶିଷ୍ଟ ବ୍ୟକ୍ତି,
ডালা, ডালি ଅତିଥି ଆଦିଙ୍କ ନିକଟକୁ ଉପହାର ସ୍ୱରୂପ ପ୍ରେରିତ
रसद ଖାଦ୍ୟ ଦ୍ରବ୍ୟ ସମ୍ଭାର; ଡାଲି; ସଞ୍ଜା—4. A present of food to a guest (consisting of many varieties) [ଦ୍ର—ବିଶିଷ୍ଟ ଯାତ୍ରୀମାନଙ୍କୁ ପୁରୀର ଓ ଭୁବନେଶ୍ୱରର ପଣ୍ଡାମାନେ ଅନ୍ନ, ଡାଲି, ପିଠା ମହାପ୍ରସାଦର 'ସଜାଡ଼' ଦିଅନ୍ତି ।] [ଦ୍ର—ବିଶିଷ୍ଟ ବ୍ୟକ୍ତିଙ୍କୁ ଦିଆଯିବା କଞ୍ଚା ପରିବା, ଚାଉଳ, ଡାଲି ଆଦି ଉପହାର ସମ୍ଭାରକୁ 'ସଞ୍ଜା' ବା 'ସିଧା' ବା 'ଡାଲି' ବୋଲିଯାଏ । ଜଳଖିଆ, ମହାପ୍ରସାଦ, ମିଷ୍ଟାନ୍ନ, ପକ୍ୱାନ୍ନ ଆଦି ସଦ୍ୟୋଭୋକ୍ତବ୍ୟ ଉପହାରକୁ 'ସଜାଡ଼' ବୋଲିଯାଏ ।]
୫ । ଯଥାଯୋଗ୍ୟ
সাজ सजावट ସଜ୍ଜା—5. Proper or suitable equipment. ୬ । ଯତ୍ନ—6. Care. ୭ । ପରିଷ୍କୃତ ଓ ପରିଚ୍ଛନ୍ନ ଅବସ୍ଥା—7. Neat and clean condition. ୮ । ଉପଯୁକ୍ତ ବା ସୁବିଧାଯୁକ୍ତ ଅବସ୍ଥା—
8. Proper or convenient state.

ସଜାଡ଼ କରିବା—ଦେ. କ୍ରି—ସଜାଡ଼ିବା (ଦେଖ)—
Sajārda karibā Sajārdibā (See).

(ଦେହ) ସଜାଡ଼କୁ ଆସିବା—ଦେ. କ୍ରି.—(ରୁଗ୍ଣ ଶରୀର) ଆରୋଗ୍ୟ-
Sajārdaku āsibā ଲାଭ ପୂର୍ବକ ସ୍ୱାସ୍ଥ୍ୟାବସ୍ଥା ପ୍ରାପ୍ତ ହେବା—
সেরে যাওয়া, সারিয়া যাওয়া To recover one's strength
नीरोग होना and health after illness.

ସଜାଡ଼ିଆ—ଦେ. ବିଣ. (ସଂ. ସଜ୍ଜିତ)—୧ । ସୁସଜ୍ଜିତ—1. Well-
Sajārdiā equipped. ୨ । ଜୀର୍ଣ୍ଣ ସଂସ୍କୃତ—2—
সাজান सजायाहुआ Repaired. ୩ । ପୂର୍ବ ସ୍ୱାସ୍ଥ୍ୟ
(ବିଗାଡ଼ିଆ—ବିପରୀତ) ପ୍ରାପ୍ତ; ଆରୋଗ୍ୟ ପ୍ରାପ୍ତ—3. Recovered; convalescent. ଦେ.ବି. ସୁବିଧାଜନକ—4. Con-

venient. ୪ । କୌଣସି କାର୍ଯ୍ୟ ବା ଯନ୍ତ୍ରକୁ ଯେ ସଜାଡ଼େ—Repairer; one who sets things right.

**ସଜାଡ଼ିବା**—ଦେ· କି. (ସଂ. ସଜ୍ଜ ଧାତୁ)—୧ । ସଜ୍ଜିତ କରିବା—1. To furnish. ୨ । ସୁସଜ୍ଜିତ କରିବା—2. To equip; to fit up.
Sajārdibā
সাজান सजाना, बनाना
(ବଗାଡ଼ିବା—ବିପରୀତ) [ଉ—ଅଣିଥିଲୁ ଖୁଲ କେତେ କଥା, (ସଜଡ଼ାଇବା—ଣିଜନ୍ତ ରୂପ) ଧନପୁଷ୍ପ ସୁନଗରୀ ଅଛି ଯତନେ ସଜାଡ଼ିରେ । କବିସୂର୍ଯ୍ୟ. ସଙ୍ଗୀତ । ] ୩ । ନିର୍ମାଣ କରିବା—3. To build. ( ଉ—ଶୂନ୍ୟ ଗଗନେ ସଜାଡ଼ି ନିବାସ, ଲଢ଼ୁକୁ ଖାଲି ବାଆରେ—ଉକାଣ୍ଡ-ଚରଣ. ଗୀତଳହରୀ । ] ୪ । ସର୍ଜ୍ଜନା କରିବା—4. To create. (ଉ—ନାଭିରୁ ଉପରକୁ ବଳେ ବୃକ୍ଷ କରି, ସଜାଡ଼ିଛନ୍ତି ଭୂମ୍ବ କାୟା କି ସୁନ୍ଦର । କୃଷ୍ଣସିଂହ. ମହାଭାରତ. ବନ ।) ୫ । ମରାମତ କରିବା; ସୁବ୍ୟବସ୍ଥିତ କରିବା—5. To repair. ୬ । ବିଶୃଙ୍ଖଳ ବସ୍ତୁକୁ ସୁଶୃଙ୍ଖଳ କରିବା—6 To set right. ୭ । ସୁବିନ୍ୟସ୍ତ କରିବା; ଯଥାସ୍ଥାନାବସ୍ଥିତ ବା ଯଥାବସ୍ଥାବସ୍ଥିତ କରିବା—7. To arrange well. ୮ । ରୁଗ୍ଣ ଶରୀରକୁ ରୋଗମୁକ୍ତ କରିବା—8. To cure (a person of illness). ୯ । ପରିଷ୍କୃତ ପରିଚ୍ଛନ୍ନ କରିବା—9. To make neat and clean. ୧୦ । ଘିଞ୍ଚି ଯାଇଥିବା ବାଳ, ଲୁଗା ପଟା ଆଦିକୁ ସୁବିନ୍ୟସ୍ତ କରିବା—10. To re-arrange the hair or dress which has been out of order. ୧୧ । ଅସୁବିଧାଗ୍ରସ୍ତ ବିଷୟକୁ ସୁବିଧାଜନକ କରିବା—11. To set matters right. ୧୨ । ଯତ୍ନପୂର୍ବକ କୌଣସି କାର୍ଯ୍ୟ କରିବା—12. To do a thing with care.
বনানা
সাবা, সাবান
सजाना

**ସଜାତି**—ସଂ. ବିଣ. ( ସ=ସହ+ଜାତି )—ସମଶ୍ରେଣୀସ୍ଥ—Belonging to the same class or caste. ସଂ. ବି—ଏକ ଜାତୀୟ ସ୍ତ୍ରୀ ପୁରୁଷଙ୍କ ସନ୍ତାନ—Offspring of parents belonging to the same species or caste. ଦେ· ବିଣ—(ସ. ସଜାତୀୟ)[୨] ୧ । ସଜାତୀୟ (ଦେଖ)—1. Sajātiya (See) ୨ । ସ୍ୱଜାତୀୟ; ଅପଣାର ଜାତୀୟ—2. Belonging to one's own class or genus or species or caste or nationality.
Sajāti
[ସଜାତିଆ—ଅନ୍ୟରୂପ]
সজাতীয় सजाति

**ସଜାତୀୟ**—ସଂ· ବିଣ· (ସ=ସହିତ+ଜାତୀୟ)—୧ । ଏକ ଜାତୀୟ—1. Of the same class or species or caste. ୨ । ସମାନ ଜାତୀୟ—2. Of similar class or caste or species. ୩ । ସବର୍ଣ୍ଣ—Of the same caste. ୪ । ଏକବିଧ—4. Of the same kind. ୫ । ଏକଧର୍ମାକ୍ରାନ୍ତ—5. Of the same religion or attribute. ୬ । ସଦୃଶ; ତୁଲ୍ୟ—6. Similar; like.
Sajātiya
(ସଜାତୀୟା—ସ୍ତ୍ରୀ)

**ସଜା ଦିଆଇବା**—ଦେ· କି—ଅନ୍ୟ ବ୍ୟକ୍ତିଦ୍ୱାରା ଦଣ୍ଡିତ ହେବାର ଉପାୟ କରିବା—To cause to be punished.
Sajā diāibā
সাজা দেওয়ান सजा दिलाना
(ସଜାଏ ଦିଆଇବା—ଅନ୍ୟରୂପ)

**ସଜା ଦେବା**—ଦେ. କି—୧ । ଦଣ୍ଡ ଦେବା—1. To inflict punishment. ୨ । ଦଣ୍ଡାଦେଶ କରିବା—To sentence a man to punishment; to convict a person.
Sajā debā
সাজাদেওয়া सजा देना
( ସଜାଏ ଦେବା—ଅନ୍ୟରୂପ )

**ସଜା ପାଇବା**—ଦେ. କି—୧ । ଦଣ୍ଡିତ ହେବା—1. To be punished ୨ । ଦଣ୍ଡାଜ୍ଞା ପ୍ରାପ୍ତ ହେବା—2. To be convicted.
Sajā pāibā
সাজাপাওয়া सजा पाना
(ସଜାଏ ପାଇବା—ଅନ୍ୟରୂପ)

**ସଜାରି**—ପ୍ରାଦେ. (କିନ୍ଦୁଭୂମି) ବି.—ସାଝିଦାର; ଭାଗୁଆଳି—A partner.
Sajāri

**ସଜାରି ଚାଷ**—ପ୍ରାଦେ (କିନ୍ଦୁଭୂମି) ବି·—ଦୁଇ ଜଣଙ୍କ ସାଝରେ କରିଥିବା ଚାଷ—Joint cultivation.
Sajāri chāsha

**ସଜାରୁ**—ଦେ. ବି (ଫ. ଶଲ୍ଲକୀ, ଛେଦାର)—ଝିଙ୍କ—Porcupine [ଦ୍ର—କେହି କେହି 'ଶଜାରୁ' ମଧ୍ୟ ଲେଖନ୍ତି]
Sajāru
সজারু साही

**ସଜା ହୁକୁମ**—ଦେ. ବି—୧ । ଦଣ୍ଡାଜ୍ଞା—1. Sentence of punishment. ୨ । ଜେଲ ଯିବାର ହୁକୁମ—2. Sentence of imprisonment.
Sajā hukum
সাজা হুকুম, সাজার হুকুম सजाहुक्म
(ସଜାଏ ହୁକୁମ—ଅନ୍ୟରୂପ)

**ସଜିଆ**—ଦେ. ବିଣ ୧ । (ଫ. ସକ୍ତା)—ସୁବିଧାଜନକ—1. Convenient ୨ । (ସ. ସହଜ) ସହଜ—2. Easy.
Sajiā
সোজা सहज
(ଅସଜିଆ—ବିପରୀତ)

**ସଜିଲ (ଲ,ଲି)**—ଦେ. ବିଣ (ଫ. ସଜ୍ଜିତ)—୧ । ସୁସଜ୍ଜିତ—1. Well equipped; ship-shape; nicely arranged. ୨ । ପ୍ରସ୍ତୁତ; ଉଦ୍ୟତ—2. Prepared; ready. ୩ । ଅଯୋଜିତ—3. Arranged. ୪ । ସୁବିଧାଜନକ—4. Convenient. ୫ । ସଂଗୃହୀତ—5. Gathered; collected. ୬ । ସୁଯୋଗଯୁକ୍ତ—6. Opportune. ଦେ. ବି—୧ । ସୁବିଧା; ସଜ—1. Convenience. ୨ । ସୁଯୋଗ—2. Opportunity. ୩ । ସୁସଜ୍ଜିତ ଅବସ୍ଥା—3. Well-equipped condition. ୪ । ସଜ୍ଜାନ; ବନ୍ଦୋବସ୍ତ—4. Arrangement. ୫ । ଯୋଗାଡ଼—5. Preparation. ୬ । ଉପକରଣର ସଂଗ୍ରହ—6. Gathering of materials.
Sajil(la,li)
সাজা तैयार
সোজা सुविधा

ସଜିଲ୍ (ଲି) କରିବା—ଦେ. କ୍ରି—୧ । ସୁସଜ୍ଜିତ କରିବା—1. To
Sajil(li) karibā equip; to fit up; to arrange
সাজান well. ୨ । ଆବଶ୍ୟକ ଧନ, ଉପକରଣାଦି ସଂଗ୍ରହ ବା
सुविधा करना ଆୟୋଜନ କରିବା—2. To get or
collect the requisite funds or materials. ୩ । ସୁବିଧା କରିବା; ବନ୍ଦୋବସ୍ତ କରିବା—3. To arrange. ୪ । ପ୍ରସ୍ତୁତ କରିବା; ଯୋଗାଡ଼ କରିବା—4. To prepare; to make preparations.

ସଜିଲ୍ (ଲି) ପଡ଼ିବା—ଦେ. କ୍ରି—ସଜ ପଡ଼ିବା (ଦେଖ)
Sajil(li) paṭibā Saja paṭibā. (See)
সজিল হওয়া सुविधा होना

ସଜିଲ୍ (ଲି) ସାତ୍(ତି)—ଦେ. ବି ଓ ବିଣ (ସହଚର)—ସଜିଲ୍ (ଦେଖ)
Sajil(li) sāt(ti) Sajil. (See)

ସଜିଲ୍ (ଲି) ହେବା—ଦେ. କ୍ରି—୧ । (ଧନ ଆଦି) ଆୟୋଜିତ
Sajil(li) hebā ହେବା—1. To be got up. [ଯଥା—
যোগাড় হওয়া ମକଦ୍ଦମା ଖରଚ ପାଇଁ ଟଙ୍କା ସଜିଲ ହେଲା ନାହିଁ ।]
सुविधा होना ୨ । ବନ୍ଦୋବସ୍ତ ହେବା—2. To be arranged. (ଯଥା—ମକଦ୍ଦମା ଚଳିବାର ଜିଲ ନ ହେଲେ ଆମର ସର୍ବନାଶ ହେବ ।) ୩ । କୌଣସି କାର୍ଯ୍ୟ କରିବାକୁ ପ୍ରସ୍ତୁତ ବା ଉଦ୍ୟତ ହେବା—3. To make preparations or arrangements to do a thing; to get ready; to be ready to do a thing. (ଯଥା—ମୁଁ ତୀର୍ଥଯାତ୍ରା କରିବାକୁ ସଜିଲ ହେଉଅଛି ।) ୪ । ସୁବିଧାଜନକ ହେବା—4. To be convenient. (ଯଥା—ମତେ ଏଠାରେ ଚଳିବାକୁ ସଜିଲ ହେଉ ନାହିଁ ।)

ସଜିଲ୍ ସାଜ(ଜି)ଲ୍—ଦେ.ବି—( ଦ୍ୱିରର୍ଥକ ସହଚର ) ବନ୍ଦୋବସ୍ତ;
Sajil sāja(ji)l ଯୋଗାଡ଼—Arrangement. (ଉ—କରେ
যোগাড়যন্ত্র ପଦେ ! ତୁ ଏବୁ ସଜିଲସାଜିଲ କରି ଯାଉଛୁଣି ?—
सुविधा ଉଡ଼ାପାଦରଣ, ପୌରୁଷ )

ସଜିଲତ୍—ଦେ. ବି ଓ ବିଣ—ସଜିଲ୍ (ଦେଖ)
Sajilāt Sajil (See)

ସଜୀବ—ସଂ. ବିଣ (ସ=ସହ+ଜୀବ=ଜୀବନ; ସହାର୍ଥ ବହୁବ୍ରୀହି)—
Sajība ୧ । ଜୀବିତ; ସଚେତନ; ଯାହାର ଜୀବନ ଅଛି—
(ନିର୍ଜୀବ—ବିପରୀତ) 1. Alive; living; animated; sentient. ୨ । ( ଲକ୍ଷଣାର୍ଥ ) ତାଜା; ସତେଜ—2. Vigorous.

ସଜୀବତା(ତ୍ୱ)—ସଂ. ବି—୧ । ସଚେତନତ୍ୱ—1. Animation.
Sajībatā(twa) ୨ । ତେଜସ୍ୱୀ ଭାବ—2. Vigorousness. ୩ । ତେଜ—3. Vigour.

ସଜୁଆଣି କଦଳୀ—ଦେ. ବି—ଯେଉଁ କଦଳୀ ଅତି କଷି ନୁହେଁ କଞ୍ଚା
Sajuāṇi kadaḷi ଅତି ପାଚିଲା ନୁହେଁ—Plantain
अजोह केला which is neither very mature nor very raw.

ସଜୁନା—ପ୍ରାଦେ (ଉତ୍ତର ବାଲେଶ୍ୱର) ବି—ଶଜନା (ଦେଖ)
Sajanā Śajunā. (See)

ସଜୁଷ୍—ସଂ. ବିଣ (ସ=ସହ+ଜୁଷ୍ ଧାତୁ=ସେବା କରିବା+
Sajush କର୍ତ୍ତୃ. କ୍ୱିପ୍)—୧ । ପ୍ରୀତିଯୁକ୍ତ—1. Loving; cheerful. ୨ । ସେବାକାରୀ—2. Tending; serving. ୩ । ଏକତ୍ର ସେବାକାରୀ—3. Serving together. ସଂ. ବି—ତାପସ—A sage.

ସଜୁ(ଜ୍ୱା)ସ୍—ସଂ. ଅ (ସହ+ଜୁଷ୍ ଧାତୁ=ତୁଷ୍ଟ ହେବା+କର୍ତ୍ତୃ.
Saju(jwa)s କ୍ୱିପ୍)—ସହ; ସହିତ—With; along
(ସଜୁଃ, ସଜ୍ୱଃ—ଅନ୍ୟରୂପ) with. [ଦ୍ର—ଓଡ଼ିଆରେ ଏ ଶବ୍ଦର ବ୍ୟବହାର ନାହିଁ ।]

ସଜେ—ଦେ. ବି ଓ ବିଣ—ଏକ ପ୍ରସ୍ଥମାତ୍ର—
Saje One set; one set of.
এক সেট एक सेट

ସଜେଇବା—ଦେ. କ୍ରି—ସଜାଇବା (ଦେଖ)
Sajeibā Sajāibā. (See)

ସଜୋର—ଦେ. ବିଣ (ସ=ସହ ଶବ୍ଦର+ଫା. ଜୋର୍=ବଳ)—
Sajor ବହୁବ୍ରୀ—Strong; forcible. ଦେ. କ୍ରି. ବିଣ—
জোরাল ୧ । ବଳପୂର୍ବକ—1. Strongly; forcibly.
बलवान, जोरदार ୨ । ଜୋର କରି—2. With force;
সজোরে जोरसे] violently.
( ସଜୋରେ—ଅନ୍ୟରୂପ )

ସଜ୍ଜ—ସଂ. ବିଣ (ସସଜ୍ ଧାତୁ=ସଜ୍ଜିତ ହେବା+କର୍ତ୍ତୃ. ଅ)—
Sajja ୧ । ସଜ୍ଜିତ; ସଜା ହୋଇଥିବା—1. Equipped; furnished; fitted up. ୨ । ଭୂଷିତ—2. Adorned. ୩ । ପ୍ରସ୍ତୁତ—3. Prepared; got ready. ୪ । ଉଦ୍ୟତ—4. Ready. ୫ । ସନ୍ନଦ୍ଧ; ସାଞ୍ଜୁ ପିନ୍ଧିଥିବା—5. Armed; armoured; accoutred. ୬ । ପ୍ରାକାରଦ୍ୱାରା ସୁରକ୍ଷିତ—6. Well protected by walls (a town, a fort). ୭ । ଯେ ବେଶଭୂଷା ପରିଧାନ କରିଥାଏ—7. Dressed; accoutred.

ସଜ୍ଜକ୍ରମ—ସଂ. ବିଣ (ସଜ୍ଜ+କ୍ରମ)—ପ୍ରସ୍ତୁତ; ସଜ୍ଜିତ—
Sajjakrama Equipped; arranged.

ସଜ୍ଜନ—ସଂ. ବିଣ (କର୍ମଧାରୟ; ସତ୍=ସାଧୁ+ଜନ)—୧ । ସତ୍; ସାଧୁ;
Sajjana ସୁଜନ—1. Good; virtuous. ୨ । ସଚ୍ଚରିତ୍ର—2. Of good character or morals. ୩ । ସୁଜାତ; ସତ୍କୁଳୋଦ୍ଭବ—3. Of noble family; respectable, noble. ସଂ. ବି—୧ । ସାଧୁବ୍ୟକ୍ତି—1. A good man. ୨ । ସଚ୍ଚରିତ୍ର ବ୍ୟକ୍ତି—2. A man of good moral character. ୩ । (ସସଜ୍ ଧାତୁ+ଭାବ. ଅନ)—ସଜ୍ଜନା (ଦେଖ)—
Sajjanā (See)

ସଜ୍ଜନା—ସଂ. ବି (ସସଜ୍ ଧାତୁ + ଭାବ. ଅନ + ସ୍ତ୍ରୀ. ଆ)—୧ । ସଜ୍ଜନ;
Sajjanā ସଜ୍ଜୀକରଣ—1. Act of fitting up; equipping. ୨ । ସାଜସଜ୍ଜା—2. Equipage; trappings. ୩ । ରକ୍ଷୀ ସୈନ୍ୟଙ୍କ ଅବସ୍ଥିତି ସ୍ଥାନ—3. A resting place for guards; a sentries' post. ୪ । ଚୌକି; ଥାନା; ଘାଟି; ଘାଟୀ—4. Out-post; military out-post. ୫ । ଉପଦ୍ରବଜନକ ସ୍ଥାନମାନଙ୍କରେ ପ୍ରହରୀବନ୍ଦୋବସ୍ତ—5. Act of putting guards at places or points of danger. ୬ । ଘାଟ—6. Landing place; wharf. ୭ । ବନ୍ଦର—7. Port; quay. ୮ । ଯୁଦ୍ଧ ପାଇଁ ସୈନ୍ୟ ସ୍ଥାପନ—8. Battle array; cohort. ୯ । ସାଜ; ବେଶ; ପୋଷାକ—9. Dress; accoutrements. ୧୦ । ଘରର ଅସବାବପତ୍ର—10. Furniture. ୧୧ । ଅଳଙ୍କରଣ—11. Adorning; decorating. ୧୨ । ଆୟୋଜନ; ବନ୍ଦୋବସ୍ତ—12. Arrangement; settlement; preparation. ୧୩ । ବେଶ କରିବା—13. Adorning; decorating. ୧୪ । ଘୋଡ଼ାକୁ ସଜାଇବା—14. Harnessing a horse. ୧୫ । ହାତୀକୁ ସଜାଇବା—15. Act of fitting up an elephant.

ସଜ୍ଜନିତ—ସଂ. ବିଣ (ସତ୍ + ଜନ୍ ଧାତୁ ଣିଜନ୍ତ ଜନି ଧାତୁ + କର୍ମ. ତ)-
Sajjanita ୧ । ଉତ୍ତମକୁଳେ ବା ଭାବରେ ପ୍ରସୂତ—1. Well born. ୨ । ସାଧୁତାଜନିତ—2. Due to honesty. ( ଉ—ବହୁତନ୍ତୁ ଦେଖିଲି ସଜ୍ଜନିତ ଏହୁ ଯେ—ଉଜ୍ଞ. ବୈଦେହୀଶବିଳାସ ।)

ସଜ୍ଜା—ସଂ. ବି (ସସଜ୍ ଧାତୁ + ଭାବ. ଅ + ଆ)—୧ । ସାଜ; ବେଶଭୂଷା;
Sajjā ପୋଷାକ—1. Accoutrements; dress; ornaments. ୨ । ସନ୍ନାହ; ସାଞ୍ଜୁ—2. Arms; armour; coat of mail. ୩ । ଆୟୋଜନ—3. Preparation; arrangement. ୪ । ସଜ୍ଜୀକୃତ ଅବସ୍ଥା—4. Equipped state.

ସଜ୍ଜା ଗୃହ—ସଂ. ବି—ନଉଁକନର୍ତ୍ତକୀମାନଙ୍କ ବେଶ ହେବାର ଗୃହ—
Sajjā gruha Green-room; dressing room.

ସଜ୍ଜିତ—ସଂ. ବିଣ. ପୁଂ (ସସଜ୍ ଧାତୁ + କର୍ତ୍ତୃ. ତ ବା ସଜ୍ଜା + ଇତ)—
Sajjita ୧ । ସଜ୍ଜୀକୃତ—1. Furnished; equipped. ୨ । ଭୂଷିତ—2. Adorned; decorated. ୩ । ବେଶପରିହିତ—3. Dressed. ୪ । ବର୍ମିତ—4. Armed. ୫ । ସନ୍ନଦ୍ଧ—5. Accoutred. ୬ । ଆୟୋଜିତ—6. Arranged. ୭ । ଉଦ୍ୟତ—7. Ready; prepared. ୮ । ଉଦ୍‌ଯୁକ୍ତ—8. Prepared for action; set ready for use.
(ସଜ୍ଜିତା—ସ୍ତ୍ରୀ)

ସଜ୍ଜୀକୃତ—ସଂ. ବିଣ ପୁଂ (ସଜ୍ଜା + ଅଭୂତ ତଦ୍ଭାବେ ଚ୍ୱି + କୃତ)—ଯେ
Sajjīkruta ପ୍ରଥମେ ଅସଜ୍ଜିତ ଥାଇ ପରେ ସଜ୍ଜିତ ହୁଏ—
[ସଜ୍ଜୀକୃତା—ସ୍ତ୍ରୀ] (ସଜ୍ଜୀକରଣ—ବି) Adorned; fitted up.

ସଜ୍ଜୀଭୂତ—ସଂ. ବିଣ ( ସଜ୍ଜା + ଅଭୂତ ତଦ୍ଭାବେ ଚ୍ୱି + ଭୂତ)—
Sajjībhūta ପୂର୍ବେ ସଜ୍ଜିତ ନ ଥାଇ ବର୍ତ୍ତମାନ କାଳେ ଯେ ସଜ୍ଜିତ ହୋଇଥାଏ—Having dressed up; wearing dress; arranged presently.

ସଜ୍ୱର—ସଂ. ବିଣ. ପୁଂ (ସ=ସହିତ + ଜ୍ୱର; ସହାର୍ଥ ବହୁବ୍ରୀହି)—
Sajwara ଜ୍ୱରଯୁକ୍ତ—Feverish; suffering from fever
(ସଜ୍ୱରା—ସ୍ତ୍ରୀ)

ସଜ୍ୟ—ସଂ. ବିଣ (ସ=ସହିତ + ଜ୍ୟା; ସହାର୍ଥ ବହୁବ୍ରୀହି)—ଆରୋପିତ
Sajya ମୌର୍ବୀକ; ଜ୍ୟାଯୁକ୍ତ—Furnished with a bow-string.
(ସଜ୍ୟା—ସ୍ତ୍ରୀ)

ସଞ୍ଜା—ଦେ. ବି (ସଂ. ସ୍ୱାମୀ)—ସାଇଁ; ସ୍ୱାମୀ; ପ୍ରଭୁ—
Sañjā Master; lord.

ସଞ୍ଚ—ସଂ. ବି (ସମ୍ + ଚି ଧାତୁ = ଏକତ୍ର କରିବା + ଅଧି ଅ)—ପୋଥି
Sañcha ବା ପୁସ୍ତକ ଲେଖିବା ପାଇଁ ପ୍ରସ୍ତୁତ ପତ୍ରପୁଞ୍ଜ; ପୋଥିର ଛଞ୍ଚ—A collection of palm leaves cut and moulded ready for being written on to be used as a palm leaf manuscript.

सञ्च दाग ଦେ. ବି—୧ । ( ସଂ. ସଞ୍ଚ ) ଦାଗ; ସଞ୍ଚା; ଚିହ୍ନ—1. Mark left on a thing. [ ଉ—ଦଶନ ସଞ୍ଚ ଗଣ୍ଡସ୍ଥଳେ—ଭୂପତି. ପ୍ରେମପଞ୍ଚାମୃତ । ] ୨ । ଗ୍ରନ୍ଥି; ଗଣ୍ଠି—2. Knot. ୩ । ( ସଂ. ସଜ୍ଜା ) ଶୋଭା;
खुब सुरती, सुडौल ସୌନ୍ଦର୍ଯ୍ୟ—3. Beauty. ୪ । ସୁଡ଼ଳତା—
सुन्दर 4. Symmetry. ଦେ. ବିଣ—୧ । ସୁନ୍ଦର; ଶୋଭା-
खुब सुरत, सुडौल ସମ୍ପନ୍ନ—1. Beautiful. [ ଉ—ସେହି ବନର ଗଛମାନେ ଅଛି ଭଲ । ହୋଇଅଛନ୍ତି ଫୁଲ ଫଳେ ସଞ୍ଚ—କୃଷ୍ଣସିଂହ. ମହାଭାରତ. ବନ । ] ୨ । ସୁଢ଼ଳ; ସୁଠାମ—2. Symmetrical. [ ଉ—କେବଣ ସଞ୍ଚଅଧରକୁ ଧର ଧାଇଁଛି ବେଗେ—ଉତ୍କଳଚରଣ. ମଧୁଗ୍ରାମଙ୍ଗଳ । ]

ସଞ୍ଚ ଘଞ୍ଚ—ଦେ. ବିଣ ( ଯୁଗ୍ମ ଶବ୍ଦତର )—ସାନ୍ଦ୍ରଭାବରେ ସ୍ଥୂଳ; ସୁନ୍ଦର
Sañcha ghañcha ଓ ଘନ—Densely thick; beauti-
थलथले ful and dense. [ ଉ—ବନରେ ଅଛନ୍ତି ସଞ୍ଚ ଘଞ୍ଚ
सान्द्र, घन ସୁନ ଜନ ଲଭନ୍ତି—ରାଧାନାଥ. ଚିଲ୍କା ]

ସଞ୍ଚତ—ସଂ. ବିଣ ( ସମ୍ + ଚ ଧାତୁ + କର୍ତ୍ତୃ. ଅନ୍ )—୧ । ପ୍ରତାରକ;
Sañchat ବଞ୍ଚକ—1. Deceitful. ୨ । ଠକ—2. Cheating.
( ସଞ୍ଚତୀ—ସ୍ତ୍ରୀ )

ସଞ୍ଚନ—ଗ୍ରା. ବି ( ପ୍ରାଚୀନ ପଦ୍ୟ ) ( ସଂ. ସଞ୍ଚୟନ )—ସଞ୍ଚୟ (ଦେଖ)
Sañchana Sanchaya ( See ) [ ଉ—ଧନ ସଞ୍ଚନେ ମନ ଦୃଢ଼ । ଗର୍ବିତା ପଣ ତାର ବଢ଼—ପ୍ରାଚୀ. କାର୍ତ୍ତିକ-ମାହାତ୍ମ୍ୟ । ]

ସଞ୍ଚପ—ଗ୍ରା. ବ (ସ. ସଂକ୍ଷେପ)—ସଂକ୍ଷେପ (ଦେଖ)—Saṁkshepa (See)
Sañchapa ଦେ. ବଣ—ସଂକ୍ଷିପ୍ତ (ଦେଖ) Saṁkshipta (See)

ସଞ୍ଚପି କହିବା—ଦେ. କି (ସଂ. ସଂକ୍ଷେପ)—ସଂକ୍ଷେପରେ କହିବା—
Sañchapi kahiba To speak concisely.
সংক্ষেপে বলা संक्षेपमे कहना

ସଞ୍ଚପିବା—ଦେ. କି—୧। (ସଂ. ସଂକ୍ଷେପ)—ସଂକ୍ଷେପ କରିବା—
Sañchapiba সংক্ষেপ করা संक्षेप करना 1. To abridge.
জমান संचय करना ୨। (ସଂ. ସଞ୍ଚୟ) ସଞ୍ଚୟ କରିବା—
2. To store. ୩। ସଂଗ୍ରହ କରିବା—3. To gather. ୪। ରାଶୀକୃତ କରିବା; ଗଦା କରିବା—
4. To heap up; to amass.

ସଞ୍ଚୟ—ସଂ. ବ (ସମ୍+ଚି ଧାତୁ=ଏକତ୍ର କରିବା+ଭାବ. ଅ)—
Sañchaya ୧। ସମୂହ—1. Multitude. ୨। ସଂଗ୍ରହ—
2. Collection. ୩। ସଂଗୃହୀତ ବସ୍ତୁଚୟର ରାଶୀକରଣ—3. Heaping of collected things.
୪। ରାଶି; ଗଦା—4. Heap; accumulation. ୫।
ରାଶୀକୃତ ଧନ—5. Hoard; stored wealth. ୬।
ଜମା; ପାଣ୍ଠି—6. Stock; store.

ସଞ୍ଚୟ କରିବା—ଦେ. କି—୧। ସଂଗ୍ରହ କରି ସ୍ଥାୟୀ କରିବା—
Sañchaya kariba 1. To collect and store.
সঞ্চয়করা, জমান ୨। ଧନ ଜମା କରିବା—2. To hoard wealth.
संचय करना

ସଞ୍ଚୟ କାରୀ—ସ. ବଣ. ପୁଂ (ସଞ୍ଚୟ+କୃ ଧାତୁ+କର୍ତ୍ତୃ. ଇନ୍) ଯେ
Sañchaya kārī ଜମା କରେ—Hoarding, storing up.
(ସଞ୍ଚୟକାରିଣୀ—ସ୍ତ୍ରୀ)

ସଞ୍ଚୟ ଗୃହ—ସ: ବ (୬ଷ୍ଠୀ ତତ୍) ସଞ୍ଚୟ ବସ୍ତୁ ରଖିବାର ଘର;
Sañchaya gṛuha ଭଣ୍ଡାର—Stock room.

ସଞ୍ଚୟନ—ସ. ବ (ସମ୍+ଚି ଧାତୁ+ଭାବ. ଅନ)—୧। ସଂଗ୍ରହ-
Sañchayana କରିବା—1. Act of collecting; collection. ୨। ରାଶୀକରଣ—2. Act of storing up; heeping up.

ସଞ୍ଚୟ ନିରତ—ସ: ବଣ. ପୁଂ (୭ମୀ ତତ) ଯେ ସବୁଦା ସଞ୍ଚୟ
Sañchaya nirata କରିବାରେ ଲାଗିଥାଏ—Engaged
(ସଞ୍ଚୟରତ—ଅନ୍ୟରୂପ) in storing up or hoarding.
ସଞ୍ଚୟନିରତା, ସଞ୍ଚୟରତା—ସ୍ତ୍ରୀ)

ସଞ୍ଚୟନୀୟ—ସଂ ବଣ (ସମ୍+ଚି ଧାତୁ+କର୍ମ. ଅନୀୟ) ସଞ୍ଚିତ
Sañchanīya ହେବାର ଯୋଗ୍ୟ—Capable of being stored; fit to be hoarded.

ସଞ୍ଚୟଶୀଳ—ସ. ବଣ. ପୁଂ (ବହୁବ୍ରୀହି) ସଞ୍ଚୟୀ; ଯେ ସବୁଦା
Sañchayasīḷa ସଞ୍ଚୟ କରେ; ସଞ୍ଚୟ କରିବାରେ ଅଭ୍ୟସ୍ତ—
(ସଞ୍ଚୟଶୀଳା—ସ୍ତ୍ରୀ) Habituated to storing up;
(ସଞ୍ଚୟଶୀଳତା—ବ) Having a tendency to hoard.

ସଞ୍ଚୟାକାଙ୍କ୍ଷା—ସଂ. ବ (୬ଷ୍ଠୀ ବା ୭ମୀ ତତ) ସଞ୍ଚୟ କରିବାର
Sañchayākānkshā ଇଚ୍ଛା—Desire to store up.
[ସଞ୍ଚୟାଭିଲାଷ—ଅନ୍ୟରୂପ]
[ସଞ୍ଚୟାକାଙ୍କ୍ଷୀ, ସଞ୍ଚୟାଭିଲାଷୀ—ବଣ. ପୁଂ]

ସଞ୍ଚୟାଗାର—ସଂ ବ (୬ଷ୍ଠୀତତ୍) ଭଣ୍ଡାର ଘର; ଗୋଦାମଘର—
Sañchayāgāra Store room; godown.

ସଞ୍ଚୟାର୍ଥୀ—ସଂ. ବଣ. ପୁଂ (ଉପପଦ ତତ୍, ସଞ୍ଚୟ+ଅର୍ଥ୍ ଧାତୁ=
Sañchayārthī ଅଭିଳାଷ କରିବା=କର୍ତ୍ତୃ. ଇନ୍) ସଞ୍ଚୟ
[ସଞ୍ଚୟାର୍ଥିନୀ—ସ୍ତ୍ରୀ] କରିବା ପାଇଁ ଅଭିଳାଷୀ—Desirous of hoarding up.

ସଞ୍ଚୟୀ—ସଂ. ବଣ. ପୁଂ (ସମ୍+ଚି ଧାତୁ+କର୍ତ୍ତୃ. ଇନ୍, ୧ମା ୧ବ)
Sañchayī ଯେ ସଞ୍ଚୟ କରେ—Storing; hoading.
ସଞ୍ଚୟିନୀ—ସ୍ତ୍ରୀ)

ସଞ୍ଚର—ସଂ. ବ (ସମ୍+ଚର୍ ଧାତୁ+ଭାବ. ଅ)—୧। ଚଳନ;
Sañchara ଗମନ—1. Moving, motion. ୨।
(ସଞ୍ଚଳନ—ଅନ୍ୟରୂପ) ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଗମନ—
2. Moving from one place to another.
୩। ସ୍ପନ୍ଦନ—3. Vibration. ୪। କମ୍ପନ—4. Trembling; quaking. ୫। (+କରଣ. ଅ); ଶଙ୍କୁ;
ସେତୁ; ପୋଲ୍—5. Bridge. ୬। ଅମ୍ବୁପଥ—6. An opening or passage for water. ୭। (+
ଅଧିକରଣ. ଅ) ପଥ—7. Way. ୮। (ଅଧିକରଣ. ଅ)
ଶରୀର, ଦେହ—8. Body.

ସଞ୍ଚର(ରେ)ଇବା—ଦେ. କି (ସଂ. ସମ୍+ଚର୍ ଧାତୁ)—୧। ସଞ୍ଚରିବା
Sañcharā(re)ibā କ୍ରିୟାର ଣିଜନ୍ତ ରୂପ—1. Causa-
সঞ্চারিতকরা चालित करवाना tive form of Sañcharibā. ୨। ଗୁଳିତ କରିବା—2. To cause
to move. [ଉ—ତୁମ୍ଭେ ଯେ ଆକାଶରେ ସଞ୍ଚରାଅ ଘନ।
—କୃଷ୍ଣସିଂହ. ମହାଭାରତ. ଅଦ]

ସଞ୍ଚରିତ—ସଂ. ବଣ (ସମ୍+ଚର୍ ଧାତୁ+କର୍ତ୍ତୃ. ତ)—୧। ପ୍ରସ୍ଥିତ-
Sañcharita 1. Gone away. ୨। ପ୍ରଚଳିତ—
2. Moving; Current. ୩। ଗତ—3. Gone; past.

ସଞ୍ଚରିବା—ଦେ. କି (ସମ୍+ଚର୍ ଧାତୁ)—୧। ଗତି କରିବା; ଗତି-
Sañcharibā ବିଶିଷ୍ଟ ହେବା—To move. [ଉ—ଯହିଁ
চালিত হওয়া चलना ମନ କରେ ତହିଁ ବ ଯାଇପାରେ, ସଞ୍ଚରୁ
ଥାଏ ସେ କେବଳ ଆକାଶରେ। କୃଷ୍ଣସିଂହ, ମହାଭାରତ.
ସଭା।] ୨। ବିଚରଣ କରିବା—2. To move to and fro. ୩। ପାଦଗତ କରିବା; ଭ୍ରମଣ କରିବା—
3. To walk. [ଉ—କବରେଶ 'ସଞ୍ଚରିବା ନ ସହିବ, ଭରି ଶରକେ ଯେବେ ଅରୋହିବ।—କବିସୂର୍ଯ୍ୟ: ସଂଗୀତ]
রোমাঞ্চ হওয়া रोमांच होना ୪। (ରୋମ) ଟାଙ୍କୁରିବା—4. To stand on end (said of the hairs).

ଜାତହওয়া বৈদা হোনা (ଉ—ସାପଫୁଲ ପର ଶ୍ରେମ ସଞ୍ଚରିଲା ଅପସରେ । —ସଙ୍ଗୀତ) ୫ । (ଦେହରେ) ସଞ୍ଚାରିତ ହେବା; ଜାତ ହେବା; ଉପୁଜିବା—5. To pervade; to prevail; to be produced. (ଉ—ବ୍ୟାଧି ଅଇପ ହୋଇ ସଞ୍ଚରଇ, ହେଲା ମାନବେ ସଗ୍ରଣେ ମାରଇ ।—ଭକ୍ତଚରଣ. ମଥୁରାମଙ୍ଗଳ) ୬ । ଅତଯାତ ହେବା—6 To frequent. (ଉ—ଏ ଅସ୍ଥା ବର୍ମବନ୍ଧ ହୋଇ, ନାନାଦି ଘଟେ ସଞ୍ଚରଇ ।—ଭୂପତି. ପ୍ରେମ ପଞ୍ଚାମୃତ) ।

যাতায়াতকরা
আনাজানাকরনা

ସଞ୍ଚରିଷ୍ଣୁ—ସଂ. ବିଣ—(ସମ୍+ଚର ଧାତୁ+ଶୀଳାର୍ଥେ କର୍ତ୍ତି ଇଷ୍ଣୁ)—Sañcharishṇu ସଞ୍ଚରଣଶୀଳ; ଗତିଶୀଳ; ଭ୍ରମଣକାରୀ—Moving; walking; having a tendency to move.

ସଞ୍ଚଳନ—ସଂ ବି— (ସମ୍+ଚଳ ଧାତୁ+ଭାବ ଅନ)—Sañchalana ୧ । କମ୍ପନ—1 Trembling; shaking; quivering. ୨। ଦୋଳନ—2. Oscillation. ୩ । ପ୍ରଚଳନ—3. Currency; prevalence. ୪ । ଗତି କରିବା; ଚଳିବା—4. Moving; motion. [ ଦ୍ର—ସଞ୍ଚଳନ=ନିଜେ ଚଳିବା; ସଞ୍ଚାଳନ=ଅନ୍ୟଦ୍ୱାରା ଚାଳିତ ଗତି । ] (ସଞ୍ଚଳିତ—ବିଣ)

ସଞ୍ଚା—ସଂ. ବି—ସଞ୍ଚ (ଦେଖ)—Sañcha (See) ଦେ. ବି—Sañchā ୧ । ଚିହ୍ନ; ଅଳଙ୍କାରର ଚାପରେ ଦେହରେ ରହି ଯାଇଥିବା ଦାଗ—1. Marks left on the body by the pressure of ornaments (ଉ—ଅଲଙ୍କାର ଚୁଡ଼ି ସଞ୍ଚା ଦେହରେ ବସେ । ପ୍ରାଚୀ. ଗିରୁଣଙ୍କର ଲୁଣା ଅଭିଳାଷ ।) ୨ । ଶୋଭା; ସୌନ୍ଦର୍ଯ୍ୟ—2. Beauty; grace. ୩ । ରକ୍ତାଦିର ଛିଟ ବା ଦାଗ; ଛିଟା—3. Stain or spots (of blood etc) on a thing. (ଉ—ଛିଦ୍ରରେ ପଲଙ୍କ ଲୁହର ସଞ୍ଚା; ଚକଚିକ ଧୂଷ ପର୍ଯ୍ୟନ୍ତେ ସଞ୍ଚା—ଉଜ. ବୈଦେହୀଶବିଳାସ) । ୪ । (ସଂ. ସଞ୍ଚୟ) ସାମଗ୍ରୀ; ଉପକରଣ—4. Materials. ୫ । ଅଗନ୍ତୁକ, ଅତିଥି ଓ ବଶିଷ୍ଟ ବ୍ୟକ୍ତିମାନଙ୍କୁ ଖାଦ୍ୟପାକାର୍ଥ ପଠାଯିବା ଗୁଡ଼ିଲ, ଡାଲି, ପରିବା ଆଦି ସାମଗ୍ରୀ; ସିଧା; ଖାଦ୍ୟସମ୍ଭାର—5. Victuals presented to guests; materials for cooking meal sent to guests who cook their own food. (ଉ—ଅନ୍ନ ଦେବ ଯେବେ, ମଶୋଦ୍ଧ ସଞ୍ଚା ଦିଅବାକୁ ଭେବେ—ପ୍ରାଚୀ. ପ୍ରତାପ ଶଶିରେଖା ।) ୬ । ସଞ୍ଚୟ; ସମଷ୍ଟି—6. Collection. ୭ । ଏକତ୍ରୀକରଣ; ଗଦା—7. Heaping up. ୮ । ବନ୍ଦୋବସ୍ତ; ବ୍ୟବସ୍ଥାନ—8. Arrangement. [ ଉ—ଭୂ ଯଙ୍କ ସଞ୍ଚା ବେଗେ କର, ଯେମନ୍ତେ କଣିରୁ ଅମର । ଜଗନ୍ନାଥ. ଭାଗବତ ।] ଦେ. ବିଣ—୧ । ଦୃଢ଼; କଠିନ—1. Hard. ୨ । (ସଂ. ସଞ୍ଚୟୀ ) ପୁଂ—ସଞ୍ଚୟଶୀଳ—2. Storing; hoarding. ୩ । କୃପଣ—3. Miserly. (ସଞ୍ଚୀ, ସଞ୍ଚେଇ—ସ୍ତ୍ରୀ)

দাগ দাগ
শোভা শোভা
ছিটা দাগ
সামগ্রী রসদ
সংগ্রহ সংগ্রহ
কঠিন, শক্ত দৃঢ়
সঞ্চয়ী সংচয়ী

ସଞ୍ଚା(ଞ୍ଚେ)ଇବା—ଦେ. କ୍ରି—ସଞ୍ଚାଇବା କ୍ରିୟାର ଣିଜନ୍ତ ରୂପ—Sañchā(ñche)ibā Causative form of Sañchibā.
সঞ্চয় করান সংচয় করবানা

ସଞ୍ଚାଣ—ଦେ. ବି. ( ସଂ. ସଞ୍ଚୟନ )—୧ । ସଞ୍ଚୟ କରିବା କର୍ମ—Sañchāṇa 1. Act of storing or hoarding. ୨ । (ସଂ. ସଞ୍ଚାନ) —ଶ୍ୟେନ ପକ୍ଷୀ—2. Hawk.
সঞ্চয় করান

[ ଦ୍ର—ଫିଟି ଭୂଟି ଯାଉଛୁ କାଖଲ, ସଞ୍ଚାଣର ଚଞ୍ଚୁପୁଟ ଗଲ । କବିସୂର୍ଯ୍ୟ. ସଙ୍ଗୀତ ।] ଦେ. ବିଣ. (ସଂ. ସଞ୍ଚୟୀ) (ସଞ୍ଚାଣିଆ—ଅନ୍ୟ ବିଣ. ରୂପ) ସଞ୍ଚୟକାରୀ (ବ୍ୟକ୍ତି); ଯେଉଁ ବ୍ୟକ୍ତି (ସଞ୍ଚାଣୀ—ସ୍ତ୍ରୀ) ଧନ ବା ପଦାର୍ଥମାନ ଭବିଷ୍ୟତ ପାଇଁ ସଞ୍ଚୟ କରି ରଖେ—1. Habitually hoarding or storing riches or articles for future use.
সংচয় সংচান সঞ্চয়কারী সংচয় করনেবালা

ସଞ୍ଚାଣି—ଦେ. ବି. (ସଂ. ସଞ୍ଚୟନ)—ସଞ୍ଚୟ ( ଦେଖ ) Sañchāṇi Sañchaya ( See ) ଦେ. ବିଣ—୧ । ସଞ୍ଚିତ—1. Stored. ୨ । ନିର୍ଦ୍ଧାରିତ—2. Settled; fixed. ୩ । ବ୍ୟବସ୍ଥିତ—3 Arranged.
সঞ্চিত সংচিত

ସଞ୍ଚାଣୀ—ଦେ. ବିଣ ଓ ବି. ସ୍ତ୍ରୀ—ସଞ୍ଚୟକାରିଣୀ ସ୍ତ୍ରୀ—A woman given to hoarding. (ସଞ୍ଚା, ସଞ୍ଚାଣ, ସଞ୍ଚାଣିଆ—ପୁଂ. ବିଣ) (ସଞ୍ଚାଣେଇ—ଅନ୍ୟରୂପ)
Sañchāṇi সঞ্চয়কারিণী সংচয় করনেবালী

ସଞ୍ଚାନ—ସଂ. ବି. (ସମ୍+ଚ ଧାତୁ=ଛିଣ୍ଡାଇବା+କର୍ତ୍ତି. ଅନ)—Sañchāna ଶ୍ୟେନ ପକ୍ଷୀ; ଚିଲାଣ—Hawk.

ସଞ୍ଚାଯ୍ୟ—ସଂ. ବି. (ସମ୍+ଚି ଧାତୁ+କର୍ମ. ଯ)—ଯଜ୍ଞ ବିଶେଷ—Sañchājya A sort of vedic sacrifice.

ସଞ୍ଚାର—ସଂ. ବି. ( ସମ୍+ଚର ଧାତୁ+ଭାବ. ଅ )—୧ । ଗମନ; ଗତି—1. Moving; motion. [ଉ—ନାନା ବର୍ଣ୍ଣ ହୋଇଣ କରଣ ଭ୍ରମର, ଭିନ୍ନ ଲୋକ ଯା'କରେ କରନ୍ତି ସଞ୍ଚାର । କୃଷ୍ଣସିଂହ. ମହାଭାରତ. ଅବ ।] ୨ । (+କରଣ. ଅ) —ସଞ୍ଚର; ପୋଲ; ସେତୁ—2. A bridge. ୩ । ( +ଅଧିକରଣ. ଅ )—ପଥ—3. Way; passage; road. ୪ । (+ଭାବ. ଅ) ସଂକ୍ରମଣ; ଗ୍ରହମାନଙ୍କର ରାଶ୍ୟନ୍ତରକୁ ଗମନ—4. Transition of a planet from one zodiacal sign to another. ୫ । ବୃଦ୍ଧି—5. Increase; growth. ୬ । ବିସ୍ତାର—6. Expansion; diffusion; cir-

culation. ୭ । କଷ୍ଟଗତ—7. Difficult predicament. ୮ । କଷ୍ଟ; ଦୁଃଖ;ବିପଦ—8. Trouble; calamity. ୯ । ପଥପ୍ରଦର୍ଶନ—9. Leading the way. ୧୦ । ଉତ୍ତେଜନ—10. Exciting; urging; instigating. ୧୧। ଚାଳନ;ଚଳାଇବା କର୍ମ—11. Causing to move. ୧୨ ।(+କରଣ.ଅ; ଏଥିର ଅଲୋକ ସାହାଯ୍ୟରେ ସର୍ପ ଅନ୍ଧକାରରେ ଗତି କରିପାରେ) ସର୍ପମଣି—12. A gem on the hood of a venomous serpent. ୧୩। (+ଭାବ ଅନ) ସଂକ୍ରମଣ; ସଂକ୍ରାମକ ରୋଗାକ୍ରାନ୍ତ ରୋଗୀର ଦେହରୁ ଦେହାନ୍ତରକୁ ରୋଗର ଅକ୍ରମଣ—13. Infection; communication by contagion. ଦେ. ବି—୧ । ଛାଉଣୀ; ପଦାର୍ଥ ଉପରେ ମଡ଼ାଯିବା ଯନ୍ତ୍ର—1. Covering; plating.

ଛାଉନୀ, ଢାକା ଛାବନୀ [ ଦ୍ର—ବହୁମାନଙ୍କରେ ସୁନା ଦଣ୍ଡ. ସଞ୍ଚାର । ପ୍ରାଚୀ. ବୃନ୍ଦୁକରୂପଣ. ଗୀତା । ] ୨ । ବାଦ୍ୟର ଅଦ୍ୟ ତାନ—2. The introductory tunes

ସଂଚାର of a musical instrument.

[ଦ୍ର—ମୃଦଙ୍ଗ ବାଜୁଛି ଅଦ୍ୟ ସଞ୍ଚାରକୁ ଫେରି । କୃଷ୍ଣସିଂହ ମହାଭାରତ ।]

ସଞ୍ଚାରକ—ସଂ. ବି, ପୁଂ. (ସମ୍+ଚର ଧାତୁ ଣିଜନ୍ତ ଗୃହ ଧାତୁ+ Sañchāraka କର୍ତ୍ତୃ.ଅକ)—୧ । ବିସ୍ତାରକ—1. Spread- (ସଞ୍ଚାରିକା—ସ୍ତ୍ରୀ) ing. ୨ । ସଂକ୍ରାମକ—2. Contagious; infectious. ୩। ଚାଳକ; ଯାହା ଅନ୍ୟକୁ ଗତି କରାଏ—3. Moving; causing motion. ୪ । ପଥ ପ୍ରଦର୍ଶକ—4. Leading the way; guiding.

ସଞ୍ଚାର ଜୀବୀ—ସଂ. ବଣ. ପୁଂ. (ସଞ୍ଚାର=ବିପଦ; ଦୁଃଖ+ଜୀବ୍ ଧାତୁ Sañchāra jībī +କର୍ତ୍ତୃ. ଇନ୍; ୧ମା. ୧ବ)— (ସଞ୍ଚାର ଜୀବିନୀ—ସ୍ତ୍ରୀ) ୧ । ଶରଣାପନ୍ନ—1. Having taken shelter or refuge under. ୨ । ଦୁଃଖ ଶାନ୍ତ; ଦୁରବସ୍ଥାଗ୍ରସ୍ତ—2. Fallen into misfortune or danger.

ସଞ୍ଚାରଣ—ସଂ. ବି. (ସମ୍+ଚର୍ ଧାତୁ+ଭାବ. ଅନ)—୧ । ସଞ୍ଚାର Sañchāraṇa କ୍ରିୟା—1. Act of moving. ୨ । ସଞ୍ଚାର (ଦେଖ)—2. Sañchāra ( See )

ସଞ୍ଚାର ଫଳ—ସଂ.ବି. (ଫଳିତ ଜ୍ୟୋତିଷ)—ଗ୍ରହମାନଙ୍କର ସଞ୍ଚାର ଜନିତ Sañchāra phala ଶୁଭାଶୁଭ ଫଳ—Good or bad results happening (to persons born under different zodiacal signs or to the world) as the result of the transition of different planets from one sign to another.

[ଦ୍ର—ରବି ସଞ୍ଚାର ଫଳ 'ସଂକ୍ରାନ୍ତି ଚକ୍ର' ଭଳେ ଦେଖ ।]

ସଞ୍ଚାରିକା—ସଂ. ବି. ସ୍ତ୍ରୀ. (ସମ୍+ଚର୍ ଧାତୁ+କର୍ତ୍ତୃ. ଅକ+ସ୍ତ୍ରୀ.ଆ)- Sañchārikā ୧ । ଯୁଗ୍ମ; ଯୋଡ଼ା—1. A pair; couple. (ସଞ୍ଚାରକ—ପୁଂ) ୨ । ଦୂତୀ—2. A procuress. ୩ । ଘ୍ରାଣ—3. Scent; smell. ୪ । ବାୟୁ—4. The air; atmosphere. ସଂ. ବଣ. ସ୍ତ୍ରୀ—ସଞ୍ଚାରକର ସ୍ତ୍ରୀଲିଙ୍ଗ—Feminine of Sanchāraka.

ସଞ୍ଚାରିଣୀ—ସଂ. ବି. (ବୈଦ୍ୟକ)—ହଂସପଦୀ ନାମକ ଅମ୍ବୁଜ ଗୁଳ୍ମ— Sañchāriṇī A kind of fern; Maiden-hair fern. (ସଞ୍ଚାରୀ—ପୁଂ.ବଣ) [ଦ୍ର—ଏହା ବର୍ଷା ଦିନେ ଓଦା ପାଚେରି ଅଦି ଉପରେ ମାଡ଼େ ।] ସଂ. ବଣ. ସ୍ତ୍ରୀ—ସଞ୍ଚାରୀର ସ୍ତ୍ରୀଲିଙ୍ଗ—Feminine of Sañchārī.

ସଞ୍ଚାରିତ—ସଂ.ବଣ. ପୁଂ (ସମ୍+ଚରଧାତୁ ଣିଜନ୍ତ ଗୃହଧାତୁ+କର୍ମ.ତ)- Sañchārita ୧ । ଇତସ୍ତତଃ ଚାଳିତ—Caused to move to and fro. ୨ । କମ୍ପିତ; ଦୋଳାୟିତ— (ସଞ୍ଚାରିତା—ସ୍ତ୍ରୀ) Rocked.

ସଞ୍ଚାରିବା—ଦେ. କ୍ରି—( ସଂ ସଞ୍ଚାର )—ସଞ୍ଚାରିତ କରିବା; ବିସ୍ତାର Sañchāribā କରିବା—To diffuse; to spread. ସଂଚାରକବା ଫୈଲାନା (ଦ୍ର—ଶମନ ଏ ମହାଅଗ୍ନି ଅମୃତ ସଞ୍ଚାରି । ମଧୁସୂଦନ. କବିତାବଳୀ)

ସଞ୍ଚାରିଭାବ—ସଂ. ବି—(କର୍ମଧା; ଦ୍ର—ସମସ୍ତପଦ ହେଲେ ସଞ୍ଚାରିଭାବ ଓ Sañchāribhāba ପୃଥକ୍ ପଦଦ୍ୱୟ ହେଲେ ସଞ୍ଚାରୀ ଭାବ ହୁଏ)— ସଞ୍ଚାରୀ ଭାବ (ଦେଖ)—Sanchāribhāba (See)

ସଞ୍ଚାରୀ—ସ. ବଣ. ପୁଂ—(ସମ୍+ଚରଧାତୁ+କର୍ତ୍ତୃ. ଇନ୍; ୧ମା ୧ବ) Sañchārī ୧ । ସଞ୍ଚରଣଶୀଳ—1. Walking. ୨ । ଗତିଶୀଳ (ସଞ୍ଚାରିଣୀ—ସ୍ତ୍ରୀ) 2. Moving. ୩ । ଅସ୍ଥାୟୀ; ପରିବର୍ତ୍ତନଶୀଳ—3. Temporary; passing; fleeting; subject to change. ୪ । ବିସ୍ତାରଣଶୀଳ—4. Expanding. ୫ । ଅଗନ୍ତୁକ (ଵୈଦ୍ୟକୋଷ)—5. Adventitious; casual. ସ. ବି—୧ । ସଞ୍ଚାରୀ ଭାବ (ଦେଖ) Sañchārī bhāba (See). ୨ । ବାୟୁ—2. Air ୩ । ଧୂପ—3. Incense. ୪ । (ସଙ୍ଗୀତ) ଗୀତ ବା ରାଗ ଅଲାପର ଚାରି ପାଦ ମଧ୍ୟରୁ ତୃତୀୟ ପାଦ [ଦ୍ର—ପ୍ରତି ଶ୍ଳୋକରେ, ସଙ୍ଗୀତରେ ବା ଛନ୍ଦରେ ଯେପରି ୪ ଗୋଟି ଚରଣ ଥାଏ, ସେହିପରି ଅଲାପରେ ମଧ୍ୟ ଚାରିଗୋଟି ଚରଣ କଳ୍ପିତ ଅଛି; ପ୍ରଥମ ଚରଣର ନାମ ଅସ୍ଥାୟୀ, ଦ୍ୱିତୀୟ ଚରଣର ନାମ ଅନ୍ତରା, ତୃତୀୟ ଚରଣର ନାମ ସଞ୍ଚାରୀ ଓ ଚତୁର୍ଥ ଚରଣର ନାମ ଅଭୋଗ ।] 4. The third of the four parts of a song

ଦୂତୀ ସଂଚାରିକା or musical air. ଦେ. ବି. ସ୍ତ୍ରୀ- ଦୂତୀ—A female go-between. ଦେ. ବଣ, ପୁଂ-

ସଞ୍ଚରଣକାରୀ ସଂଚାରୀ ସଞ୍ଚରଣକାରୀ—Moving;

walking to and fro. (ଉ—ଜନ୍ମ ସୂର୍ଯ୍ୟଭଳଙ୍କୁ ଲଳନ୍ତ ସଞ୍ଚାରୀ—କୃଷ୍ଣସିଂହ ମହାଭାରତ, ବଣ୍ଟ ।)

ସଞ୍ଚାରୀ ଭାବ—ସଂ ବ [ବି—ସମାସ ହେଲେ ଏ ଦୁଇ ପଦ ମିଶି 'ସଞ୍ଚାରୀ-
Sanchari bhāba ଭାବ' ଆକାର ଧାରଣ କରେ ।] ୧ । କାବ୍ୟାଦବର୍ଣ୍ଣିତ ରସମାନଙ୍କର ନିର୍ବେଦ, ଆବେଗ ଆଦ ଅସ୍ଥାୟୀ ବ୍ୟଭିଚାରୀ ଭାବ—Some fleeting mental conditions resulting from sentiments ( in literature ). [ ବି—ସ୍ଥାୟୀଭାବ, ସାତ୍ତ୍ୱିକଭାବ ଓ ସଞ୍ଚାରୀ ଭାବ ଭେଦରେ ଭାବ ଅନେକ ପ୍ରକାରର; ନାନାପ୍ରକାର ସମ୍ପର୍କେ ଶୃଙ୍ଗାରାଦ ରସକୁ ସୂଚିତ କରେ ବୋଲି ତାହାକୁ ଭାବ ବୋଲାଯାଏ । ଯେଉଁସ୍ଥଳରେ ଏହି ଭାବ ନାନା ବିଷୟରେ ସଞ୍ଚାରଶୀଳ ହୁଏ, ସେଠାରେ ସଞ୍ଚାରୀ ଭାବ ହୁଏ । ଶୃଙ୍ଗାରାଦ ରସରେ ସ୍ଥାୟୀ ଭାବ, ସାତ୍ତ୍ୱିକଭାବ ଓ ସଞ୍ଚାରୀ ଭାବ ଅଛି । ବାତ୍ସଲ୍ୟ-ରସରେ ଅନିଷ୍ଟ ଶଙ୍କା, ହର୍ଷ ଓ ଗର୍ବାଦ ସଞ୍ଚାରୀ ଭାବ । ଧୀର ରସରେ ଧୃତି, ମତି, ଗର୍ବ, ସ୍ମୃତି, ତର୍କ, ରୋମାଞ୍ଚ ସଞ୍ଚାରୀ ଭାବ ଅଟନ୍ତି । ଏହିସବୁ ସଞ୍ଚାରୀ ଭାବଦ୍ୱାରା ସ୍ଥାୟୀ ଭାବର ପୁଷ୍ଟି ହୁଏ—ବଙ୍ଗଳା ଶବ୍ଦକୋଷ । 'ବ୍ୟଭିଚାରୀ ଭାବ' ଦେଖ—]

ସଞ୍ଚାରୀୟ—ସଂ. ବଣ.— ( ସମ୍ + ଚର୍ ଧାତୁ + କର୍ମ. ଯ )—
Sanchāriya ସଂକ୍ରମଣୀୟ—Communicable by contact; contagious; infectious.

ସଞ୍ଚାଳନ—ସଂ. ବ (ସମ୍ + ଚଲ ଧାତୁ + ଭାବ, ଅନ)—୧ । ସଂକ୍ରମଣ-
Sanchālana 1. Traversing. ୨ । ଚାଳନ; ( ସଞ୍ଚାଳିତ, ସଞ୍ଚାଳକ, ସଞ୍ଚାଳୀ—ବଣ ) ଚଳାଇବା—2. Causing to move. ୩ । ଇତସ୍ତତଃ ଚାଳନ; ଦୋଳାଇବା—3. Causing to move to and fro; rocking.

ସଞ୍ଚାଳୀ—ସଂ. ବ ( ସମ୍ + ଚଲ୍ ଧାତୁ + କର୍ତ୍ତୃ. ଅ + ସ୍ତ୍ରୀ ଈ )—
Sanchāli ଗୁଞ୍ଜା; କାଇଞ୍ଚ—The black-tipped red seed of Abrus Precatorius. (ସଞ୍ଚାଳିନୀ—ସ୍ତ୍ରୀ.ବଣ) ସଂ. ବଣ ପୁଂ—ଯାହା ଇତସ୍ତତଃ ଚାଳିତ କରେ Rocking; causing to move.

ସଞ୍ଚିଆ—ଦେ. ବଣ. ପୁଂ ( ସଂ. ସଞ୍ଚୟୀ )—୧ । ସଞ୍ଚୟଶୀଳ—
Sanchiā 1. Hoarding. ୨ । କୃପଣ—2. Miserly. (ସଞ୍ଚୀ, ସଞ୍ଚେଇ—ସ୍ତ୍ରୀ) সঞ্চয়শীল संचयशील

ସଞ୍ଚିକୀ(ଚୀ)ଷୁ—ସଂ. ବଣ (ସମ୍ + ଚୀ ଧାତୁ + ଇଚ୍ଛାର୍ଥେ ସନ୍ + କର୍ତ୍ତୃ.
Sanchiki(chi)shu ଉ )—ସଞ୍ଚୟ କରିବାକୁ ଇଚ୍ଛୁକ—[ ସଞ୍ଚିକୀ(ଚୀ)ଷା—ବ ] Wishing to hoard up or heap up.

ସଞ୍ଚିକ୍ଷିପ୍ସୁ—ସ. ବଣ (ସମ୍ + କ୍ଷିପ୍ ଧାତୁ + ଇଚ୍ଛାର୍ଥେ ସନ୍ + କର୍ତ୍ତୃ ଉ)-
Sanchikshipsu ସଂକ୍ଷେପ କରିବାକୁ ଅଭିଳାଷୀ—(ସଞ୍ଚିକ୍ଷିପ୍ସା—ବ) Desirous of abridging.

ସଞ୍ଚିତ୍—ପ୍ରାଦେ. ( ସମ୍ବଲପୁର ) ବ—ଚୂନ୍ ଚିତ୍; ମାରଚିତ—
Sanchit Somersault. ( ବୀରକାହାଳି—ସଞ୍ଚିତ୍ ମାରିବା )

ସଞ୍ଚିତ—ସଂ, ବଣ ( ସମ୍ + ଚି ଧାତୁ + କର୍ମ. ତ )—୧ । ସଂଗୃହୀତ—
Sanchita 1. Collected. ୨ । ରାଶୀକୃତ; ଏକତ୍ରୀକୃତ—2. Heaped up; hoarded; accumulated.
সঞ্চিত ଦେ. ବଣ—୧ । ଅବସ୍ଥାପିତ—1. Placed; stationed.
संचित [ ଉ—ପ୍ରଜାଙ୍କ ଲଜ ପରୀକ୍ଷାର୍ଥେ । ମଧ୍ୟେ ସଞ୍ଚିତ ହୋଇ ମୋହିତେ—ଜଗନ୍ନାଥ ଭାଗବତ ।] ୨ । ପାଳିତ—
পালিত 2. Nurtured. [ ଉ—ଦୁଃଖେ ସଞ୍ଚିତ ଦାସ ସୁତ—
पालित ଜଗନ୍ନାଥ ଭାଗବତ ।] ୩ । ସୃଷ୍ଟ—3. Created.
সৃষ্ট [ ଉ—ବ୍ରହ୍ମା-ସଞ୍ଚିତ ସୃଷ୍ଟି ମଧ୍ୟେ । ବ୍ରାହ୍ମଣେ ବସନ୍ତି
पैदा हुआ ଅନନ୍ତେ—ଜଗନ୍ନାଥ ଭାଗବତ । ]

ସଞ୍ଚିତ ଧନ—ସ. ବ ( କର୍ମଧାରୟ )—ଜମା କରାଯାଇଥିବା ଧନ—
Sanchita dhana Hoarded wealth. ସ. ବଣ. ପୁଂ ( ବହୁବ୍ରୀହି )—ଯେଉଁ ବ୍ୟକ୍ତି ଧନ ସଞ୍ଚୟ କରିଅଛି—(ସଂଚିତଧନା—ସ୍ତ୍ରୀ) Having hoarded wealth.

ସଞ୍ଚିତି—ସଂ. ବ ( ସମ୍ + ଚି ଧାତୁ + ଭାବ ତି )—୧ । ସ୍ତରେ ସ୍ତରେ
Sanchiti ସଜାଇବା ( ଶବ୍ଦକୋଷ )—1. Arrangement in layers. ୨ । ଗ୍ରନ୍ଥନ ( ଶବ୍ଦକୋଷ ) ଗୁନ୍ଥା—2. Stringing together.

ସଞ୍ଚିତ୍ରା—ସଂ. ବ—ମୂଷିକକର୍ଣ୍ଣୀ ନାମକ ଶାକବିଶେଷ; ମୂଷାକାନ—
Sanchitrā Salvinia Cucllata ( plant ).

ସଞ୍ଚିନ୍ତିତ—ସଂ. ବଣ ( ସମ୍ + ଚିନ୍ତ ଧାତୁ + କର୍ତ୍ତୃ. ତ )—ସମ୍ୟକ୍
Sanchintita ଚିନ୍ତାଯୁକ୍ତ—Vary anxious. [ ଉ—ଭରତ ମହାଭାଗବତ । ଉଷବ୍ରେ ହୋଇ ସଞ୍ଚିନ୍ତିତ—ଜଗନ୍ନାଥ ଭାଗବତ । ] (ସଞ୍ଚିନ୍ତିତା—ସ୍ତ୍ରୀ) ୨ । ( + କର୍ମ ତ ) ସମ୍ୟକ୍ ଚିନ୍ତିତ—2. Well thought of.

ସଞ୍ଚିନ୍ତ୍ୟ—ସଂ. ବଣ ( ସମ୍ + ଚିନ୍ତ୍ ଧାତୁ + କର୍ମ. ଯ )—ସମ୍ୟକ୍-
Sanchintya ରୂପେ ଚିନ୍ତନୀୟ—Deserving to be ( ସଞ୍ଚିନ୍ତନୀୟ—ଅନ୍ୟରୂପ ) thought of carefully.

ସଞ୍ଚିବା—ଦେ, କ୍ରି (ସମ୍ + ଚି ଧାତୁ) ୧ । ସଞ୍ଚୟ କରିବା—1 To
Sanchibā store up; to hoard. ୨ । ରକ୍ଷାକରିବା-
সঞ্চয়করা संचयकरना 2. To guard; to protect.
পালনকরা पालनकरना ୩ । ଯତ୍ନ ସହିତ ସାଇତିବା; ସମ୍ଭାଳିବା; ରଖିବା—3. To store up with care. ୪ । ପାଳିବା; ପୋଷିବା—4. To maintain. ୫ । ନିର୍ମାଣକରିବା-5. To build. (ଉ—ସେ ହୁଦ ଅଗ୍ର ମାସୁ
নির্মাণকরা निर्माणकरना ବଳେ, ଦୃଷ୍ଟି ସଞ୍ଚିଲେ ଏ ଶୟନେ—ଜଗନ୍ନାଥ, ଭାଗବତ) ୬ । ଦୃଷ୍ଟି କରିବା—6. To
নির্ধারণকরা सिद्धांतकरना create. ( ଉ—ଭୁଜଙ୍ଗ କ୍ଷିଣାଙ୍କ ବହୁ ସଞ୍ଚିଥା—ସ୍ତ୍ରୀ ଉଦନ୍ତେ ଶୀଳା ) ୭ । ପ୍ରବୃତ୍ତ

ଲ୍ଲବ୍ଧ ଭିଣ କରିବା—7. To preordain. (ଦ୍ର—
ଅବଶ୍ଯବାধা ସংঘটনা ଜନ୍ମ ସଞ୍ଚଇ ପ୍ରଜାପତି, ବାଳୁତ ଲୀ
ଯେତେ ଗଲ।—ଜଗନ୍ନାଥ ଭାଗବତ ) ୮। ସ୍ମରଣରେ
ରଖିବା—8. To cherish in memory. (ଦ୍ର—
ସେ ରସାଳୁରେ ସ୍ୱେଦ କାରରେ ·
ସ୍ନେହ ଭିତ୍ତରେ ସଞ୍ଚେ।—ଭଞ୍ଜ, ପ୍ରେମସୁଧାନିଧି।)

ସଞ୍ଚିଲା—ଦେ· ଣ (ସ, ସଞ୍ଚିତ)—୧। ସଞ୍ଚିତ—1. Hoarded;
Sañchilā gathered up. ୨। ସୃଷ୍ଟ—2. Created. (ଦ୍ର-
সঞ্চিত संचित ଔଷଧି ବନସ୍ତି ଯେତେ, ତାଇ ସଞ୍ଚିଲ
ଏ ଜଗତେ।—ଜଗନ୍ନାଥ ଭାଗବତ)।

ସଞ୍ଚିଲା ଜନ—ଦେ, ବି—ପାଳିତ ବ୍ୟକ୍ତି—A person who has
Sañchilā jana been maintained or brought
পালিতব্যক্তি আশ্রিতলোক up by another. (ଦ୍ର—ଗୁରୁଙ୍କ
पालितव्यक्ति କାଳରୁ ସଞ୍ଚିଲା ଜନ ହେ।--ବିଶ୍ୱନାଥ· ବିଚିତ୍ର ରାମାୟଣ)

ସଞ୍ଚିଲା ଧନ—ଦେ, ବି—ସଞ୍ଚିତ ସମ୍ପତ୍ତି—
Sañchilā dhana Hoarded wealth hoard.
সঞ্চিত ধন संचितधन

ସଞ୍ଚୂର୍ଣ୍ଣନ—ସ, ବି—(ସମ୍+ଚୂର୍ଣ୍ଣଧାତୁ+ଭାବ ଅନ)—୧। ଉତ୍ତମ ରୂପେ
Sañchūrṇṇana ଚୂରିବା—1. Pulverising (Apte) ୨।
କାଟିବା; ମଳିବା—Crushing; bruising. (Apte)
(ସଞ୍ଚୂର୍ଣ୍ଣିତ—ଣ)

ସଞ୍ଚେତବ୍ୟ—ସଂ. ଣ. ( ସମ୍+ଚି ଧାତୁ+କର୍ମ. ତବ୍ୟ )—
Sañchetabya ୧। ସଞ୍ଚୟ କରିବାର ଯୋଗ୍ୟ; ସଞ୍ଚିତ
ସଞ୍ଚେୟ } ଅନ୍ୟରୂପ ହେବାର ଯୋଗ୍ୟ—1. Fit to be
ସଞ୍ଚୟନୀୟ } stored. ୨। ସଂଗ୍ରାହ୍ୟ—2. Collectable; fit to be collected or gathered.

ସଞ୍ଚୋଦନ—ସଂ. ବି. (ସମ୍+ଚୋଦ୍ ଧାତୁ+ଭାବ. ଅନ)—ପ୍ରେରଣ
Sañchodana (ଶବ୍ଦକୋଷ)—Sending; deputing.
(ସଞ୍ଚୋଦିତ, ସଞ୍ଚୋଦନୀୟ—ଣ)

ସଞ୍ଜ୍ (ଧାତୁ)—ସଂ. (ସନ୍ଜ୍ ଧାତୁ)—ଆସକ୍ତ ହେବା—To be attached to; to stick to.
Sañj (root)·

ସଞ୍ଜ(ଝ)—ସଂ. ବି. (ସମ୍=ସମାନ ରୂପେ+ଜନ୍ ଧାତୁ=ସୃଷ୍ଟି କରିବା
Sañja (Ñjha) +କରଣ. ଅ; ଯାହାଙ୍କ ଦ୍ୱାରା ସମସ୍ତ ଜୀବ
ସମାନ ରୂପେ ସୃଷ୍ଟ ହୋଇ ଅଛନ୍ତି)—୧। ବ୍ରହ୍ମା—
1. Brahmā. ୨। ଶିବ; ମହାଦେବ—2. Śiba.
ଦେ. ବି. (ସଂ. ·ସନ୍ଧ୍ୟା; ପ୍ରା. ସଂଝା)—୧। ସନ୍ଧ୍ୟା;
সাঁজ(ঝ) · ସାୟଂକାଳ—1. Evening; nightfall. [ଦ୍ର—
साँझ · ଲକ୍ଷ୍ମୀ ଫୁଲର ଅଇ(ୟୁ)ଷ ପାଅ, ସଞ୍ଜେ ଫୁଟି ସକାଳେ
ଯାଅ।·ଅଜ୍ଞାତ ବାକ୍ୟ ଓ ବ୍ୟଙ୍ଗୋକ୍ତି।] ୨। ସନ୍ଧ୍ୟା-
କାଳରେ ଦେବତାଙ୍କ ଉଦ୍ଦେଶ୍ୟରେ ବଳାଯିବା ବତୀ;
ସଞ୍ଜବତୀ—2. A wick lighted and set in the
সাঁজে(ঝে)র evening and dedicated to a Deity. ଦେ,
साँझका ଣ—ସନ୍ଧ୍ୟାକାଳୀନ—Pertaining to or
happening in the evening. [ଦ୍ର—ସଞ୍ଜ
କୁମୁଦ ସମ ହାସ ବଳାସ। କବିସୂର୍ଯ୍ୟ. ସଙ୍ଗୀତ।]

ସଞ୍ଜ ଆଳ(ର)ତି—ଦେ. ବି. ( ସ. ସନ୍ଧ୍ୟା+ଆରାତ୍ରିକ )—ସନ୍ଧ୍ୟା
Sañja āla(ra)ti ସମୟରେ ଦେବତାଙ୍କ ସମ୍ମୁଖରେ ପ୍ରଜ୍ୱଳନ୍-
সাঁজ(ঝ) আরতি ବର୍ତ୍ତିକା ସଂଯୁକ୍ତ କରି କରଯିବା ଆରାତ୍ରିକ—
साँझ आरती The ceremony of waving lighted
wicks before idols in the evening.

ସଞ୍ଜ କରିବା—ଦେ, ବି—ସଞ୍ଜ ବୁଡ଼ାଇବା ( ଦେଖ )
Sañja karibā Sañja buḍāibā ( See )

ସଞ୍ଜ ଘଣ୍ଟ(ଣ୍ଟା,ଣ୍ଟି)—ଦେ,ବି (ସ. ସନ୍ଧ୍ୟା+ଘଣ୍ଟା)—ସନ୍ଧ୍ୟାଘଣ୍ଟା; ସନ୍ଧ୍ୟା
Sañja ghanṭa(nṭā, nṭi) ଆରତି ସମୟରେ ଠାକୁରଙ୍କ
সাঁঝঘণ্টা साँझकाघंटा ନିକଟରେ ବଜାଯିବା ଘଣ୍ଟା—Gongs
sounded in the evening when lights are
waved before Idols.

ସଞ୍ଜ ଦୀପ—ଦେ. ବି (ସଂ. ସନ୍ଧ୍ୟା ଦୀପ)—ସନ୍ଧ୍ୟା ଦୀପ (ଦେଖ)—
Sañja dīpa Sandhyā dīpa (See)
সাঁজপ্রদীপ दियाबती, साँजबती

ସଞ୍ଜ ଦେବା—ଦେ. କ୍ରି—ସନ୍ଧ୍ୟାବେଳେ ଦେବତାଙ୍କ ଉଦ୍ଦେଶ୍ୟରେ
Sañja debā ଜଳନ୍ତା ବତୀ ବସାଇବା—To set a
সন্ধ্যাদেওয়া साँजदेना lighted wick in the
evening by offering it to the Deity.
(ଦ୍ର—ପ୍ରତିଦିନ ସନ୍ଧ୍ୟାବେଳେ ଗୋଟିଏ ବଳନ୍ତା ଜାଳ୍ ଅଣି
ଠାକୁରାଣୀ ସ୍ଥାନରେ ସଞ୍ଜ ଦିଏ—ଫକୀରମୋହନ· ଛ ମାଣ
ଆଠଗୁଣ।) [ ଦ୍ର—ସନ୍ଧ୍ୟାବେଳେ ଦେବାଳୟରେ,
ତୁଳସୀଚଉରା ମୂଳେ, ବଡ଼ଙ୍କ ଘରେ, ହନୁଙ୍କ ଦାଣ୍ଡ
ଦୁଆରେ ଓ ଗୃହର ପ୍ରତ୍ୟେକ ପ୍ରକୋଷ୍ଠରେ, ବିଶେଷତଃ
ଭଣ୍ଡାରଘରେ ଗୋଟିଏ ଲେଖାଏଁ ସଞ୍ଜବତୀ ଦେବତାଙ୍କ
ଉଦ୍ଦେଶ୍ୟରେ ଜଳାଯାଏ।]

ସଞ୍ଜ ଧୂପ—ଦେ· ବି (ସଂ ସନ୍ଧ୍ୟା+ଧୂପ)—ସନ୍ଧ୍ୟାଧୂପ; ସନ୍ଧ୍ୟା ପରେ
Sañja dhūpa ଦେବତାଙ୍କ ନିକଟରେ ଅର୍ପିତ ଭୋଗ ଓ
সাংঝধূপ साँझधूप ପୂଜା, ଧୂପ ପ୍ରଭୃତି—Worship
and offerings of food and incouse to
an Idol after evening; evening service
of an Idol.

ସଞ୍ଜଧୂପ ବେଶ—ଦେ, ବି (ସଂ ସନ୍ଧ୍ୟା+ଧୂପ+ବେଶ)—ସନ୍ଧ୍ୟାଧୂପ
Sañja dhūpa besa ବେଳେ ଦେବମୂର୍ତ୍ତିଙ୍କୁ ପିନ୍ଧା-
সাঁঝ ধূপের বেশ साँझधूपकावेश ଦେଶ ପିନ୍ଧାଯାଏ—
The dress put on an Idol for the evening service.

ସଞ୍ଜନ—ସଂ ବି (ସନ୍ଜ୍ ଧାତୁ=ଆସକ୍ତ ହେବା+ଭାବ ଅନ)—୧।
Sañjana ବନ୍ଧନ—1. Confining; binding.
୨। ସଙ୍ଘଟନ—2. Occurrence; meetin -

ସଞ୍ଜ ବତି—ଦେ. ବ (ସଂ ସନ୍ଧ୍ୟା + ବର୍ତ୍ତି)—ସନ୍ଧ୍ୟାବତି (ଦେଖ)—
Sañja bati Sandhyā bati (See)
সাঁঝবাতী সেঁজতি সেঁজুতি दियाबती, साँजबती
(ସଞ୍ଜବଳିତା—ଅନ୍ୟରୂପ)

ସଞ୍ଜବତି ଲଗିବା—ଦେ. ବ—୧ । ସନ୍ଧ୍ୟା ସମୟରେ ଦେବତା-
Sañja bati lāgibā ମନ୍ଦିରରେ, ଗୃହରେ ବା ତୁଳସୀ-
সাঁঝবাতীলাগা दियाबती जलाना ଚଉରା ମୂଳେ
[ସଞ୍ଜବତିଲଗା(ଗେ)ଇବା—ବିଯୁକ୍ତରୂପ] ଜଳନ୍ତା ବତି ଜଳାଯିବା—1
Offering of lighted wicks in the evening in temples and houses before idols.
୨ । ସନ୍ଧ୍ୟା ବୁଡ଼ିବା ବେଳ; ସନ୍ଧ୍ୟା—2. Lamplight; nightfall.

ସଞ୍ଜବ ମ)ନ—ସଂ ବ (ସମ୍ + ଜୁ ଧାତୁ = ଗମନ କରିବା + ଅଧିକରଣ
Sañjaba(ma)na ଅନ)—ଚଉଶାଳ; ପରସ୍ପରାଭିମୁଖୀ ଗୃହ-
ଚତୁଷ୍ଟୟ—A suite of four houses facing one another built on the four sides of a quadrangle.

ସଞ୍ଜବ(ମ)ନୀ ପୁର(ରୀ)—ଦେ. ବ ( ସଂ ସଞ୍ଜୀବନୀ )—ଯମପୁରୀ—
Sañjaba(ma)ni pura(ri) The abode of the
সঞ্জীবনীপুর संजमनी God of death.

ସଞ୍ଜବନୀପୁର ପଠା(ଠେ)ଇବା—ଦେ. କ୍ରି—ଯମପୁରକୁ ପଠାଇବା;
Sañjabanipura pathā(the)ibā ମୃତ୍ୟୁମୁଖକୁ ପଠାଇବା;
যমপুরেপাঠান संजमनीपुरभेजना ବଧ କରିବା—
To kill (a being)
(ଉ—କେଉଁ ମୃଗମାନଙ୍କୁ ପ୍ରହାର ଶଲ୍ଲବର, ପଠିଅଇ
ଦେଲେ ସେ ସଞ୍ଜମନୀପୁର—କୃଷ୍ଣସିଂହ ମହାଭାରତ
(ସଞ୍ଜବନୀପୁରକୁ ପଠିଅଇବା—ଅନ୍ୟରୂପ) ଆଦି ।)

ସଞ୍ଜ ବସା(ସେ)ଇବା—ଦେ. କ୍ରି—ସଞ୍ଜ ଦେବା; ସନ୍ଧ୍ୟାବତୀକୁ ତାଳ
Sañja basā(se)ibā ଦେବମୂର୍ତ୍ତିଙ୍କ ସମ୍ମୁଖରେ,
সন্ধ্যাদেওয়া साँझबतीदेना ତୁଳସୀମୂଳେ ବା ଦାଣ୍ଡ ଦୁଆରରେ
ରଖିବା—To set lighted wicks before Idols or Tulsi plants in the evening.
[ଦ୍ର—ସଞ୍ଜବତି ଦେବତାଙ୍କ ଆଗରେ ବସାଇବା ବେଳେ ସ୍ତ୍ରୀଲୋକମାନେ ଧର୍ମଦେବତାଙ୍କୁ ତାଙ୍କ ମିତ୍ର ଓ ପ୍ରିୟ ବ୍ୟକ୍ତି-ମାନଙ୍କର ମଙ୍ଗଳକାମନା କରନ୍ତି ଏବଂ ଶତ୍ରୁ ଓ ଅପକାରୀ-ମାନଙ୍କ ନାମ ଉଚ୍ଚାରଣ କରି ସେମାନେ ଧର୍ମଦେବତାଙ୍କ ଦ୍ୱାରା ଦଣ୍ଡିତ ହେବାପାଇଁ ପ୍ରାର୍ଥନା କରନ୍ତି । ଅତଏବ "ସେ ଅମୁକ ନାଆଁରେ ସଞ୍ଜ ବା ସଞ୍ଜବତି ବସାଉଛି"ର ଅର୍ଥ—ସେ ଅମୁକର ଅଶୁଭ ପ୍ରାର୍ଥନା କରୁଛି । ଏହିପରି ମଧ୍ୟ ସକାଳେ ସ୍ନାନ କଲାବେଳେ ମାଇପେ 'ଧର୍ମଦେବତାଙ୍କୁ'ତାଙ୍କ ପାଣି ଅଞ୍ଜୁଳା ଟେକନ୍ତି ବା ଦଅନ୍ତି ଏବଂ ସେଥିରେ ମଧ୍ୟ ଶତ୍ରୁର ଅମଙ୍ଗଳ ପ୍ରାର୍ଥନା କରନ୍ତି । ଏଥିପାଇଁ "ଅମୁକ ନାଆଁରେ ପାଣି ଟେକିବା, ପାଣିଅଞ୍ଜୁଳା ଟେକିବା, ପାଣି ଅଞ୍ଜୁଳ ଦେବା" ମଧ୍ୟ ଅମୁକଶତ୍ରୁର ଅମଙ୍ଗଳକାମନା କରିବା ଏହି ଅର୍ଥରେ ବ୍ୟବହୃତ ହୁଏ । ]

ସଞ୍ଜ ବୁଡ଼(ବେଳ)—ଦେ. ବ (ସଂ. ସନ୍ଧ୍ୟା + ବେଳା)—ବେଳବୁଡ଼;
Sañja burda(bela) ସନ୍ଧ୍ୟାବେଳ—Nightfall; sunset.
সাংজবেলা সন্ধ্যাবেলা साँझसमय ( ଦ୍ର—ସଞ୍ଜବେଳରୁ କଞ୍ଜ
( ସଞ୍ଜ ବୁଡ଼ିବାବେଳ—ଅନ୍ୟରୂପ ) ଫୁଟିବାଯାଏ—କବିସୂର୍ଯ୍ୟ) ।

ସଞ୍ଜ ବୁଡ଼ା(ଡ଼େ)ଇବା ଦେ. ବ.—୧ । ସନ୍ଧ୍ୟା ହେବାର ପରବର୍ତ୍ତୀ
Sañja burdā(rde)ibā କାଳଯାଏ କୌଣସି କାର୍ଯ୍ୟ
সন্ধ্যা বাহান করিবা—1. To do any work till after
साँझकरना evening. ୨ । ସନ୍ଧ୍ୟାକାଳ ଅତିବାହିତ କରି କାର୍ଯ୍ୟ କରିବା ବା ବିଳମ୍ବ କରିବା—2 To delay a work till after evening. ୩ । ସନ୍ଧ୍ୟାବତୀକୁ ତେଲରେ ବା ଘିଅରେ ବୁଡ଼ାଇବା—To immerse the wick to be lighted in the evening, in oil or ghee.

ସଞ୍ଜ ବୁଡ଼ିବା—ଦେ. ବ.—୧ । ସନ୍ଧ୍ୟାବେଳ ହେବା— The
Sañja burdibā coming of the evening; night-
সন্ধ্যা হওয়া fall. ୨ । ସନ୍ଧ୍ୟାକାଳ ଅତୀତ ହେବା—
संध्याबीतना 2. It being past evening.

ସଞ୍ଜୟ— ସଂ. ବ. ନାମ—ଅନ୍ଧ ରାଜା ଧୃତରାଷ୍ଟ୍ରଙ୍କ ମନ୍ତ୍ରୀ— Name
Sañjaya of the minister of the blind King Dhrutarāshtra, who narrated the story of the great battle of Kurukshetra in all its details to Dhrutarāshtra.
[ଦ୍ର—କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ବିବାଦ ଓ ଯୁଦ୍ଧ ନ ଘଟିବା ପାଇଁ ସଞ୍ଜୟ ବହୁ ଚେଷ୍ଟା କରି ବିଫଳ-ମନୋରଥ ହୋଇଥିଲେ । ବ୍ୟାସଦେବଙ୍କ କୃପାରୁ ସେ ଦିବ୍ୟ ଚକ୍ଷୁ ଲଭି କରି ମହାଭାରତ ଯୁଦ୍ଧର ଦୈନନ୍ଦିନ ବିବରଣ ଯଥାଯଥ ଭାବରେ ଧୃତରାଷ୍ଟ୍ରଙ୍କ ନିକଟରେ ବର୍ଣ୍ଣନା କରୁଥିଲେ ଏବଂ ଶ୍ରୀକୃଷ୍ଣାର୍ଜ୍ଜୁନ ସମ୍ବାଦ (ଭଗବଦ୍-ଗୀତା) ଧୃତରାଷ୍ଟ୍ରଙ୍କୁ କହିଥିଲେ । କୁରୁ ସୈନ୍ୟ ଧ୍ୱଂସ ହେବା ପରେ ସାତ୍ୟକୀ ସଞ୍ଜୟଙ୍କୁ ନିଧନ କରିବାକୁ ଉଦ୍ୟତ ହେବାରୁ ବ୍ୟାସଦେବ ତାଙ୍କ ପ୍ରାଣରକ୍ଷା କଲେ । ଯୁଦ୍ଧାନ୍ତେ ସେ ଧୃତରାଷ୍ଟ୍ରଙ୍କ ସହିତ ୧୫ ବର୍ଷ ପାଣ୍ଡବମାନଙ୍କ ଆଶ୍ରୟରେ ରହି ଶେଷରେ ଧୃତରାଷ୍ଟ୍ରଙ୍କ ସଙ୍ଗେ ବାନପ୍ରସ୍ଥ କରିଥିଲେ । ଧୃତରାଷ୍ଟ୍ର ଦାବାନଳରେ ଦଗ୍ଧ ହେବାରୁ ସଞ୍ଜୟ ହିମାଳୟକୁ ଯାଇ ତପସ୍ୟାଚରଣ ପୂର୍ବକ ଅବଶିଷ୍ଟ ଜୀବନ ଯାପନ କଲେ । ]

ସଞ୍ଜ ଲଗା (ଗେ) ଇବା—ଦେ କ୍ରି.—ସନ୍ଧ୍ୟା ହେବା ପରେ ସଞ୍ଜଦୀପ
Sañja lagā(ge)ibā ଜାଳିବା—To light the evening
সন্ধ্যা দেওয়া साँझबती जलाना lamp after nightfall.

ସଞ୍ଜ ଲାଗିବା—ଦେ. ବି-ସନ୍ଧ୍ୟା ବୁଡ଼ିବା ଘରେ ଘରେ ଦୀପ ଜାଳିବା (ବେଳ)—
Sañja lāgibā Lamplight; the lighting of the
सन्ध्यावेला साँझबतीजलना evening lamp after dusk.

ସଞ୍ଜ ସକାଳ—ଦେ. ବି—ସନ୍ଧ୍ୟା ଓ ପ୍ରାତଃକାଳ—
Sañja sakāla Morning and evening; day-
साँझसकाल, सन्ध्यासकाल साँझसुबह break and dusk.

ସଞ୍ଜ ସକାଳ(ରେ)—ଦେ. କ୍ରି. ବିଣ—ପ୍ରତିଦିନ ସକାଳେ ଓ
Sañja sakāla(re) ସନ୍ଧ୍ୟାବେଳେ—In the morning
साँझसकाले साँझसुबहमे and evening daily.

ସଞ୍ଜା—ସଂ. ବି—(ସଞ୍ଜ ଧାତୁ=ଆସକ୍ତ ହେବା+କର୍ତ୍ତୃ.ଅ+ସ୍ତ୍ରୀ.ଆ)—
Sañjā ଛାଗୀ;ମାଈ ଛେଳି (ବିକାଣ୍ଡ ଶେଷ)—A she-goat.
साँजा ଦେ.ବି—(ସଂ.ସଂଜ୍ଞା=ପ୍ରତିଜ୍ଞା, ସ୍ୱୀକାର; ଯାହା ପ୍ରତିଜ୍ଞାତ ବା
मनखप ସ୍ୱୀକୃତ ହୋଇଥାଏ; ଚୁକ୍ତି)—୧ । ଜମିର ନଗଦ ଖଜଣା ପରିବର୍ତ୍ତିରେ ଦୃଷୀର ଜମିଦାରକୁ ଶସ୍ୟର ନିର୍ଦ୍ଧାରିତ ପରିମାଣ ଦେବା ପାଇଁ ଜମିଦାରସଙ୍ଗେ ପୂର୍ବରୁ କରୁଥିବା ଚୁକ୍ତି—1. Contract for payment of rent in kind fixed beforehand (i.e. before the crop is harvested) and payable to the landlord by the cultivator in lieu of cash rent. ୨ । ସଞ୍ଜା ପ୍ରଥା ଦ୍ୱାରା ନିର୍ଦ୍ଧାରିତ ଶସ୍ୟାଂଶରୂପ କର—2. Stipulated produce-rent settled or previously fixed; rent-in-kind paid by the cultivator to the landlord. [ଦ୍ର—ନଗଦ ଖଜଣା ପରିବର୍ତ୍ତିରେ ପ୍ରଜାର ଜମିଦାରକୁ ଶସ୍ୟର ଅଂଶ ଦେବା ପ୍ରଥାକୁ 'ଭାଗ' ଦେବା ପ୍ରଥା ବୋଲାଯାଏ । ଏହା ଦୁଇ ପ୍ରକାର—୧ । ଧୂଳିଭାଗ, ୨ । ସଞ୍ଜା ଭାଗ । ଧୂଳିଭାଗକୁ ଲୋକେ ସାଧାରଣତଃ 'ଭାଗ' ଓ ସଞ୍ଜାଭାଗକୁ 'ସଞ୍ଜା' ବୋଲି କହନ୍ତି । ଉଭୟ ପ୍ରଥାର ମୂଳରେ ଭୂମିରୁ ଉତ୍ପନ୍ନ ଶସ୍ୟର ଅଂଶ (ଭାଗ) ଜମିଦାରଙ୍କୁ ଦିଆ ଯିବା କଥା ବର୍ତ୍ତମାନ । 'ଭାଗ'ରେ ଜମିରୁ ଶସ୍ୟାଦି ଯେତେ ଉତ୍ପନ୍ନ ହେଲା, ଶସ୍ୟ ଅମଳ ହୋଇ ଦେଖାଗଲା ପରେ ତହିଁର ଅର୍ଦ୍ଧେକ ଅଂଶ କୃଷକର (ଚଷା ଭାଗ ବା କୃଷୀଭାଗ) ଓ ଅପରାର୍ଦ୍ଧ ଜମିଦାରଙ୍କର (ରଜାଭାଗ ବା ରାଜଭାଗ) ବୋଲି ସ୍ଥିର ହୁଏ । କିନ୍ତୁ 'ସଞ୍ଜା' ରେ ଭୂମିରୁ ଅମଳ ହେବା ପୂର୍ବରୁ ତହିଁର ଉତ୍ପନ୍ନ ଶସ୍ୟର ଅର୍ଦ୍ଧେକ ପରିମାଣ ଅଟକଳ ବା ଅନୁମାନ କରାଯାଏ । ସଞ୍ଜା ପ୍ରଥା 'ଚୁକ୍ତି' ବା ରଜା ପ୍ରଜା ମଧ୍ୟରେ 'ଚୁକ୍ତି' ଉପରେ ନିର୍ଭର କରେ; ଅର୍ଥାତ୍ ପ୍ରଜା ଚାଷ କରୁଥିବା ଜମିରୁ ଅନ୍ଦାଜ ଏତେ ଧାନ ଅମଦାନି ହେବ, ଏହା ଧାନ କଟା ହେବା ପୂର୍ବରୁ ଅଟକଳ ବା ଅନ୍ଦାଜ ଦ୍ୱାରା ସ୍ଥିରୀକୃତ ହୁଏ ଏବଂ ଉକ୍ତ ପରିମିତ ଧାନ ଜମିଦାରଙ୍କୁ ପ୍ରଜା ଦେବା କମଟିକୁ ପୂର୍ବରୁ ଅଙ୍ଗୀକାର (ସଞ୍ଜା) ବା ଚୁକ୍ତି କରେ । ଏଥିରୁ ଦେଖାଯିବ ଯେ 'ଭାଗ ପ୍ରଥା' ଜମିର ପ୍ରକୃତ ଉତ୍ପାଦନ ଉପରେ ଓ 'ସଞ୍ଜା ପ୍ରଥା' ଅନୁମାନିକ ଉତ୍ପାଦନ ଅନୁସାରେ ରଜା ପ୍ରଜା ମଧ୍ୟରେ ହେବା ଚୁକ୍ତି ଉପରେ ନିର୍ଭର କରେ । 'ଭାଗ' ପ୍ରଥାରେ ଜମିରୁ ମିଳିବା ଧାନରୁ ଅଧେ ଜମିଦାର ନିଅନ୍ତି ଓ ଅଧେ ପ୍ରଜା ନିଅନ୍ତି; 'ଧୂଳିଭାଗ' ପ୍ରଥାରେ ଜମିରୁ ଯେତେ ଯେତେ ପଦାର୍ଥ (ଧାନ, ନଡ଼ା, କୁଟା, ଏପରିକି 'ଧୂଳି' ସୁଦ୍ଧା) ମିଳେ, ତହିଁରୁ ଅଧେ ଜମିଦାର ତାହାଙ୍କର ପ୍ରାପ୍ୟ 'ରାଜଭାଗ' ନିଅନ୍ତି ଓ ଅନ୍ୟ ଅର୍ଦ୍ଧକ ପ୍ରଜା ତାର 'ଚଷାଭାଗ' ପାଆନ୍ତି । ଭାଗ ବା ଧୂଳିଭାଗରେ ରଜା ପ୍ରଜା ଉଭୟେ ଥାଇ ଧାନ କଟା ହୁଏ, ଅଟବା ଧାନଫଳା ଓ ନଡ଼ାଯାକ ଗଣତି କରି ପ୍ରଜା ଅଧେ ଧାନଫଳା ଓ ନଡ଼ା ନିଅନ୍ତି ଏବଂ ଜମିଦାର ଅନ୍ୟ ଅର୍ଦ୍ଧକ ନିଅନ୍ତି; କିମ୍ବା ସବୁ ଧାନ ଓ ନଡ଼ା ଏକା ଜାଗା (ଜମିଦାରଙ୍କ ଖଳା ବା ଉଭୟଙ୍କର ଖଳା କିମ୍ବା ଉଭୟଙ୍କ ମନୋନୀତ କୌଣସି 'ଭଲ ଲୋକ'ଙ୍କ ଖଳା)କୁ ନିଆଯାଇ ସେଠାରେ ବେଙ୍ଗଳା ପଡ଼େ ଏବଂ ବେଙ୍ଗଳା ପରେ ଯାହା ଯାହା ମିଳେ (ଧାନ, ଅଗାଡ଼ି, ତଷୁ, କୁଟା) ସେ ସବୁଥିରୁ ଜମିଦାର ଅଧେ ଓ ପ୍ରଜା ଅଧେ ନିଅନ୍ତି । ଏହାକୁ 'ଧୂଳିଭାଗ' ବୋଲାଯାଏ । ସଞ୍ଜାର ନାନା ପ୍ରକାର ମଧ୍ୟ ପ୍ରଚଳିତ ଅଛି । ଯଥା—୧ । ସାଧାରଣ ସଞ୍ଜା, ୨ । ମୁକରରୀ ସଞ୍ଜା, ୩ । ଦେଖାମଣା ସଞ୍ଜା ।

୧ । ସାଧାରଣ ସଞ୍ଜା—ଜମିଦାର ପ୍ରଜାକୁ ଜମି ପଟା ଦେଇ ବେଳେ ଜମିଦାର ଓ ପ୍ରଜା ଉଭୟେ ଅନୁମାନ ଦ୍ୱାରା ସ୍ଥିର କରନ୍ତି ଯେ, ଏ ଜମିରେ ଏତେ ଧାନ ଫଳିବ; ସେହି ଅନୁମାନ ଉପରେ ନିର୍ଭର କରି ଶସ୍ୟର ଉକ୍ତ ଅନୁମାନିକ ପରିମାଣରୁ ଅଧେ ଜମିଦାରଙ୍କୁ ଦେବା ପାଇଁ ପ୍ରଜା ଚୁକ୍ତି କରନ୍ତି । ପ୍ରଜାଙ୍କ କର୍ମରୁ ଯେବେ ଉକ୍ତ ଜମିରେ ଅନୁମିତ ପରିମାଣରୁ ଅଧିକ ଶସ୍ୟ ଫଳେ, ତାହା ହେଲେ ଚୁକ୍ତି ହୋଇଥିବା ପରିମାଣରୁ ଅଧିକ ଶସ୍ୟ ଜମିଦାର ପ୍ରଜାଠାରୁ ଦାବି କରି ପାରନ୍ତି ନାହିଁ; ପୂର୍ବରୁ ଯେତିକି 'ସଞ୍ଜା' ନିର୍ଦ୍ଧାରିତ ହୋଇଥାଏ, ଜମିଦାର ସେତିକି ମାତ୍ର ଶସ୍ୟ ପାଆନ୍ତି । ଅତି ଯାହା ବେଶୀ ଫଳେ ଓ ନଡ଼ା ପ୍ରଭୃତି ଯାହା ହୁଏ, ସେ ସମସ୍ତ ପ୍ରଜା ନିଅନ୍ତି । ପୁଣି ଯଦି ପ୍ରଜାଙ୍କ ଦୁର୍ଭାଗ୍ୟରୁ ଉକ୍ତ ଜମିରୁ ଅନୁମିତ 'ସଞ୍ଜା' ଅପେକ୍ଷା କମ୍ ଶସ୍ୟ ମିଳେ, ତେବେ ପ୍ରଜା ନିଜ ଉଚ୍ଚରେ ପୂର୍ବରୁ ଚୁକ୍ତି କରିଥିବା ପରିମାଣର 'ସଞ୍ଜା' ଧାନ ଜମିଦାରଙ୍କୁ ଦେବାକୁ ବାଧ୍ୟ ହୁଅନ୍ତି । ଯେବେ ଧୋଇ ବା ମରୁଡ଼ି ଯୋଗୁଁ ଫସଲ ଲୋକସାନ ହୋଇଯାଏ କିମ୍ବା କିଛି ନ ଫଳେ, ଅଥବା ପ୍ରଜା ଉକ୍ତ ଜମିକୁ ପଡ଼ିଆ ପକାନ୍ତି, ତେବେ ସୁଦ୍ଧା ପ୍ରଜା ନିର୍ଦ୍ଧାରିତ 'ସଞ୍ଜା' ଜମିଦାରଙ୍କୁ ଦେବାକୁ ବାଧ୍ୟ । ସାଧାରଣ 'ସଞ୍ଜା'ରେ ଧୋଇ, ମରୁଡ଼ି, ପଡ଼ିଆ, ଉଠିଆ, ଲୋକସାନ ଆଦିର ଉଜର ଆପତ୍ତି ନାହିଁ ।

୨ । ମୁକରରୀ ସଞ୍ଜା ବା ଚିରସ୍ଥାୟୀ ସଞ୍ଜା—ଏ ସଞ୍ଜାର ପରିମାଣ ଅବଶ୍ୟ ଅନୁମାନିକ ଉତ୍ପନ୍ନ ଶସ୍ୟର ଅଧେ

ବୋଲି କସୋଟ କରାଯାଏ; କିନ୍ତୁ ଏହା ଜମିଦାର ଓ ପ୍ରଜା ମଧ୍ୟରେ ଚିରସ୍ଥାୟୀ ରୂପେ ନିର୍ଦ୍ଧାରିତ ହୋଇଥାଏ । ଉକ୍ତ ପରିମାଣର 'ସଞ୍ଜା' ପ୍ରଜା ପୁରୁଷାନୁକ୍ରମେ ଜମିଦାରଙ୍କୁ ଦିଅନ୍ତି । ଏଥିରେ ମଧ୍ୟ ଧୋଇ, ମରୁଡି ଲୋକସାନ ଅଧିକ ଓଜର ପ୍ରଜା କରି ନ ପାରେ ।

୩ । ଦେଖାମଣା ସଞ୍ଜା ବା କୁତ ସଞ୍ଜା—ଏହା ପ୍ରତି ବର୍ଷ ପ୍ରତି ଫସଲର ପରିମାଣ ଅନୁସାରେ କମ୍ ବେଶୀ ହୁଏ । ଜମିରେ ପାଚିଲା ଫସଲ ମହଜୁଦ ଥିଲା ବେଳେ ଜମିଦାର ଓ ପ୍ରଜା ଉଭୟେ କେତେଜଣ ଭଲଲୋକଙ୍କୁ ସଙ୍ଗରେ ନେଇ ଜମି ଉପରକୁ ଯାଆନ୍ତି ଏବଂ ସେଠାରେ ମହଜୁଦ ଥିବା ଫସଲକୁ ବା ଛେଲିକୁ 'ଦେଖାମଣା' କରନ୍ତି, ଅର୍ଥାତ୍ ଅନୁମାନ କରନ୍ତି ଯେ, ଉକ୍ତ ଫସଲ ଅମଳ ହେଲେ ପ୍ରଜାଙ୍କୁ ଏତେ ପରିମିତ ଶସ୍ୟ ମିଳିବ । ଏହି ଅନୁମାନ କରିବାକୁ 'କୁତ' କରିବା ବା କୁତିବା (ଗଞ୍ଜାମରେ ଗୁତ୍ତା ବା ଗୁତ୍ତ) କହନ୍ତି । ଏହି ଅନୁମିତ ଉତ୍ପନ୍ନ ଦ୍ରବ୍ୟରୁ ଅଧେ ଜମିଦାରଙ୍କୁ ଦେବା ପାଇଁ ପ୍ରଜା ସେହିଠାରେ 'ମଣନ୍ତି' ଅର୍ଥାତ୍ ଅଙ୍ଗୀକାର କରନ୍ତି । ଜମିଦାର ଓ ପ୍ରଜା ଉଭୟେ ଜମିର ଫସଲକୁ ଦେଖିବା ପରେ ଜମିଦାରଙ୍କ ପ୍ରାପ୍ୟକୁ ପ୍ରଜା ମଣିବାରୁ (ଅଙ୍ଗୀକାର କରିବାରୁ) ଏ ସଞ୍ଜାର ନାମ 'ଦେଖାମଣା' । ତାପରେ ଫସଲ କଟା ହେବାବେଳେ ଜମିକୁ ଆସିବା ଜମିଦାରଙ୍କର ଆବଶ୍ୟକ ହୁଏ ନାହିଁ । ପ୍ରଜା ଫସଲ କାଟି ଅମଳ କରନ୍ତି ଏବଂ 'ଦେଖାମଣା' ହୋଇଥିବା ପରିମାଣରୁ ପ୍ରଜାଙ୍କୁ ବେଶୀ ମିଳୁ ବା କମ୍ ମିଳୁ, ସେ ଜମିଦାରଙ୍କୁ ପୂର୍ବ ସ୍ୱୀକୃତ 'ଦେଖାମଣା ସଞ୍ଜା' ଦେବାକୁ ବାଧ୍ୟ ଅଟନ୍ତି । ଏହି ଦେଖାମଣା ସଞ୍ଜାର ପରିମାଣ ଧୋଇ ମରୁଡ଼ି ଆଦି ଅନୁଯାୟୀ ଫସଲର ଅବସ୍ଥା ଉପରେ ନିର୍ଭର କରେ ।

ଜମିରେ ଆବାଦ କରାଯିବା ନାନାବିଧ ଶସ୍ୟ (ଧାନ, ମୁଗ, ବିରି, କୋଳଥ, ମାଣ୍ଡିଆ, ଚଣା) ସମ୍ବନ୍ଧରେ ମଧ୍ୟ ସଞ୍ଜା ନିର୍ଦ୍ଧାରିତ ହୁଏ । କିନ୍ତୁ 'ମୁକରରି ସଞ୍ଜା'ରେ ଓ 'ସାଧାରଣ ସଞ୍ଜାରେ' ଯାହା ପୂର୍ବରୁ ନିର୍ଦ୍ଧାରିତ ବା ଲିପିବଦ୍ଧ ହୋଇଥିବ, ପ୍ରଜା ତଦପେକ୍ଷା ବେଶୀ ପାଇଲେ କିମ୍ବା ତହିଁରୁ ଅଧିକ ପ୍ରକାରର ଫସଲ ସେ ଜମିରେ ଆବାଦ କଲେ ଜମିଦାର ମୁକରରି ଜମାରୁ ବେଶୀ ପ୍ରଜାଠାରୁ ଦାବି କରି ପାରନ୍ତି ନାହିଁ ।

ଗଞ୍ଜାମର ଜମିଦାର (ଅର୍ଥାତ୍ ରାଜା ଉପାଧିଧାରୀ) ମାନେ ପ୍ରଜାଙ୍କଠାରୁ ଏହି 'ଗୁତ୍ତ' ପ୍ରଥାରେ ଫସଲରୁ ଅଧେ ନିଅନ୍ତି ଏବଂ ଅନେକ ସ୍ଥଳରେ ବହୁ ଗ୍ରାମରୁ ଏହି 'ସଞ୍ଜା' ଆଦାୟ କରିବାର ଅଧିକାରକୁ ଜମିଦାରମାନେ ଜଣେ ତୃତୀୟ ବ୍ୟକ୍ତିଙ୍କୁ 'ଗୁତ୍ତ' ଦିଅନ୍ତି; ଅର୍ଥାତ୍ ଉକ୍ତ ତୃତୀୟ ବ୍ୟକ୍ତି ଜମିଦାରଙ୍କୁ ନିର୍ଦ୍ଧାରିତ ନଗଦ ଟଙ୍କା ଅଗରୁହି ଦେଇ ପରେ ସରଜମିନ୍‌ରେ ପ୍ରଜାଙ୍କଠାରୁ 'ଦେଖାମଣା ସଞ୍ଜା' ଆଦାୟ କରି ନିଅନ୍ତି । ଓଡ଼ିଶାର ଜମିଦାରୀମାନଙ୍କରେ ଜମିଦାର ବା ପ୍ରଜା କଲେକ୍ଟର କିମ୍ବା ବନ୍ଦୋବସ୍ତ ହାକିମଙ୍କ ପାଖେ ଦରଖାସ୍ତ କଲେ ହାକିମ 'ସଞ୍ଜା' ବା 'ଭାଗ' ପରିବର୍ତ୍ତରେ ଉକ୍ତ ଜମି ଉପରେ 'ନଗଦ ଖଜଣା' ଧାର୍ଯ୍ୟ କରି ଦିଅନ୍ତି । କେବଳ କେତେକ ଶ୍ରେଣୀର ଅନନ୍ୟୋପାୟ ଜମିଦାର-ମାନଙ୍କ (ଯେଉଁ ଦେବତା-ଜମିଦାରଙ୍କ 'ଭୋଗ' ବସ୍ତୁ, ଯଥା, ଖଇ, ଛତୁଆ, ଚୁଡ଼ା, ଖିରି ଆଦି ଜମିରୁ ଉତ୍ପନ୍ନ ଶସ୍ୟରୁ ପ୍ରସ୍ତୁତ ହୁଏ, ବିଧବା ଜମିଦାର, ନାବାଳଗ ଜମିଦାର, ବ୍ରାହ୍ମଣ, କ୍ଷତ୍ରିୟ ଓ କରଣ ଜାତୀୟ ଜମିଦାର, ଯେଉଁମାନେ ନିଜେ ସାମାଜିକ ପ୍ରଥା ଅନୁସାରେ ହଳ ଧରି ନିଜେ ଭୂମି ଚଷି ପାରିବେ ନାହିଁ—ଏହିମାନଙ୍କ) ଅଧୀନ ରଇଅତି ଜମିର 'ସଞ୍ଜା' 'ନଗଦ ଖଜଣା'ରେ ବଦଳା ଯାଇ ପାରିବ ନାହିଁ । (୧୯୧୩ ସାଲର ୨ ଆଇନ ଓଡ଼ିଶା ପ୍ରଜାସତ୍ତ୍ୱ ଆଇନର ୪୭ ଦଫା) । ଯେବେ 'ସଞ୍ଜା' ବା 'ଧୂଳିଭାଗ' ନିର୍ଣ୍ଣୟ କରିବାକୁ ଜମିଦାର ବା ପ୍ରଜା ଜମି ଉପରକୁ ନ ଆସନ୍ତି ଓ ଏଣେ ପାଚିଲା ଫସଲ ଉଜୁଡି ଯିବାର ଆଶଙ୍କା ଥାଏ, କିମ୍ବା ଜମିଦାର ଓ ପ୍ରଜାଙ୍କ ମଧ୍ୟରେ ଫସଲ ନେବା ବିଷୟରେ ବିବାଦ ବା କଳହ ହେବାର ଆଶଙ୍କା ଥାଏ, ତେବେ ଏଥିଯୋଗୁଁ ଅସନ୍ତୁଷ୍ଟ ପକ୍ଷ (ରଇତ ବା ଜମିଦାର) କଲେକ୍ଟରଙ୍କ ପାଖେ ଦରଖାସ୍ତ ଦେଲେ କିମ୍ବା ଏଥିର ସମ୍ବାଦ କଲେକ୍ଟରଙ୍କୁ ମିଳିଲେ କଲେକ୍ଟର ଜଣେ ସରକାରୀ ବ୍ୟକ୍ତି (କାନୁନ୍‌ଗୋଇ, ନାଜର ପିଆଦା ବା ପୁଲିସ କର୍ମଚାରୀ)ଙ୍କୁ ସରଜମିନ୍‌କୁ ପଠାଇ ଶସ୍ୟକୁ କୁତ କରାଇ ଦିଅନ୍ତି, କିମ୍ବା କଟାଇ ଅମଳ କରାଇ ଉପସ୍ଥିତ ପକ୍ଷର ପ୍ରାପ୍ୟ ଶସ୍ୟାଂଶ ତାକୁ ଦିଆଇ ଦିଅନ୍ତି ଓ ଅନୁପସ୍ଥିତ ପକ୍ଷର ପ୍ରାପ୍ୟ ଫସଲକୁ ଭଲଲୋକଙ୍କ ଜିମାରେ ରଖାଇ ଦେଇ ଆସନ୍ତି; ଅଥବା ଉଜୁଡି ଯିବା ପଦାର୍ଥ ହେଲେ ତାକୁ ପ୍ରକାଶ୍ୟ ନିଲାମ ଦ୍ୱାରା ଜମି ଉପରେ ବା ନିକଟ-ବର୍ତ୍ତୀ ହାଟରେ ବିକି ଦେଇ ତହିଁରୁ ମିଳିବା ନଗଦ ଟଙ୍କା ଆଣି ସରକାରୀ ଖଜଣା ଖାନାରେ ଡିପୋଜିଟ୍ କରି ଦିଅନ୍ତି । ଅନୁପସ୍ଥିତ ପକ୍ଷ କଚେରୀରେ ହାଜର ହୋଇ ଦରଖାସ୍ତ କଲେ ଉକ୍ତ ଜମା ଥିବା ଶସ୍ୟ ବା ଟଙ୍କା ତାକୁ ମିଳେ ଓ ସେ ଭବିଷ୍ୟତରେ ଉକ୍ତ ଫସଲ, ସଞ୍ଜା ବା ଭାଗ ଅପର ପକ୍ଷଙ୍କ ଠାରୁ ଦାବି କରି ପାରେ ନାହିଁ । (୧୯୧୩ ସାଲର ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନର ୭୯ ଦଫା )

ଭାଗ ଓ ସଞ୍ଜା ସମ୍ବନ୍ଧେ ଏ ସନ୍ଦର୍ଭ ଲେଖା ହେବା ପରେ ନୂଆ ଓଡ଼ିଶା ପ୍ରଦେଶ ପାଇଁ ଅଧିକ ସଂଖ୍ୟକ କଂଗ୍ରେସୀ ମେମ୍ବରଙ୍କ ଦ୍ୱାରା ପ୍ରଭାବିତ ଓଡ଼ିଶା ବ୍ୟବସ୍ଥାପକ ସଭା ନୂଆ ପ୍ରଜାସ୍ୱତ୍ୱ ଆଇନ ୧୯୩୭-୩୮ ରେ ପେଶ ଓ ପାସ୍ କରି ଅଛନ୍ତି । ଏଥିରେ ପ୍ରଜାମାନଙ୍କଠାରୁ ଜମିଦାରଙ୍କ [illegible] ଫସଲର ଅର୍ଦ୍ଧାଂଶ ପାଇବା ପରିବର୍ତ୍ତେ ନଗଦ ଖଜଣା ଧାର୍ଯ୍ୟ ହେବା ପାଇଁ ମଧ୍ୟ [illegible] କରା ଯାଇଅଛି ।]

**ସଞ୍ଜାଇ**—ଦେ. ବି. ସ୍ତ୍ରୀ. (ସ. ସନ୍ଧ୍ୟା ଦେବୀ)—ସନ୍ଧ୍ୟାଦେବୀ; ଦେବତା ରୂପେ କଳ୍ପିତ ସନ୍ଧ୍ୟା—The evening personified as a Deity. [ଭି—ବିଶ୍ୱେଶ୍ୱରୀ, ସୁରେଶ୍ୱରୀ, ସଞ୍ଜାଇ, ସାରଳା । ପୀତାମ୍ବର. ନୃସିଂହପୁରାଣ ।] [ଦ୍ର—ସଞ୍ଜବତୀ ବସାଇଲା ବେଳେ ସ୍ତ୍ରୀ ଲୋକମାନେ ଏହୁ ଦେବତାଙ୍କୁ ଡାକନ୍ତି ଓ କୌଣସିଠାରେ ଏ ସ୍ତ୍ରୀଲୋକ 'ଗ୍ରାମ ଦେବତା' ରୂପେ ମଧ୍ୟ ପ୍ରତିଷ୍ଠିତା ।]
Sanjāi
সন্ধ্যা দেবী, সন্ধ্যা বাণী
संध्या देवी

**ସଞ୍ଜା କବୁଲିୟ(ଥି)ତ**—ଦେ. ବି—ସଞ୍ଜା ଜମି ପାଇଁ ଜମିଦାରଙ୍କୁ ପ୍ରଜାଙ୍କ ଲେଖି ଦେବା ଚୁକ୍ତିପତ୍ର—A written agreement executed by a royat in favour of the landlord for payment of rent-in-kind.
Sanjā kabulıya(a)ta
সাঁজা কবুলিয়ত
मनखप कबूलियत

**ସଞ୍ଜା କରିବା**—ଦେ. କ୍ରି—୧ । ଉପଜ ଜମିର ସଞ୍ଜା ଖଜଣା ଦେବା ପାଇଁ ଜମିଦାର ସଙ୍ଗେ (ପ୍ରଜା) ଚୁକ୍ତି କରିବା 1. To contract with the landlord to pay the estimated rent-in-kind. ୨ । ସଞ୍ଜା ଖଜଣା ଦେବାର ଚୁକ୍ତି କରି ଜମିଦାରଙ୍କଠାରୁ (ପ୍ରଜା) ପଟ୍ଟା ନେବା—2. To take lease of a Sanjā-rent-paying holding. ୩ । ସଞ୍ଜା ଖଜଣା ଦେବାର ସର୍ତ୍ତରେ ଜମିଦାରଙ୍କ ଠାରୁ ଉପଜ ଜମି ପଟ୍ଟା ନେଇ ଚାଷ କରିବା; ସଞ୍ଜା ଧରିବା—3. To hold or cultivate a holding on Sanjā-rent. ୪ । ସଞ୍ଜା ଦେଖିବା ( ଦେଖ ) 4. Sanjā dekhibā ( See )
Sanjā karibā
সাঁজা করা
मनखप लिखदेना

**ସଞ୍ଜା ଖଜଣା**—ଦେ. ବି—ଜମିରେ ଫସଲ ଉତ୍ପାଦନ କରି ଉପଜ ଜମିଦାରଙ୍କୁ ନଗଦ ଖଜଣା ନ ଦେଇ ଜମିଦାରଙ୍କ ସହିତ ପୂର୍ବ ନିର୍ଦ୍ଧାରିତ ସର୍ତ୍ତ ଅନୁଯାୟୀ ଫସଲର ଯେଉଁ ଅର୍ଦ୍ଧାଂଶ ତାଙ୍କୁ ଦିଅନ୍ତି—Rent-in-kind payable to the landlord by a tenant on the estimated value of a portion ( generally half ) of the crop.
Sanjā khajaṇā
সাঁজা খাজনা
मनखप

**ସଞ୍ଜା ଚଷିବା**—ଦେ. କ୍ରି—ସଞ୍ଜା ଧରିବା—To hold land on the Sanjā system.
Sanjā chashibā
সাঁজা চাষ করা
मनखप जोतना

**ସଞ୍ଜା ଚା(ଚା)ଷ**—ଦେ. ବି—୧ । ଜମିଦାରଙ୍କୁ ସଞ୍ଜା ଖଜଣା ଦେବା ସର୍ତ୍ତରେ କରାଯିବା କୃଷି—1. Cultivation of land on Sanjā rent. ୨ । ସଞ୍ଜା ଜମି ( ଦେଖ )—2. Sanjā jami ( See )
Sanjā chā(tā)sha
সাঁজা চাষ
मनखप चास

**ସଞ୍ଜା ଜମି**—ଦେ. ବି—ପ୍ରଜା ଯେଉଁ ଉପଜ ଜମି ପାଇଁ ଜମିଦାରଙ୍କୁ ନଗଦ ଖଜଣା ପରିବର୍ତ୍ତରେ ସଞ୍ଜା ଦିଅନ୍ତି—A holding for which Sanjā (rent-in-kind) is payable by the cultivator.
Sanjā jami
সাঁজা জমি
मनखप जमीन

**ସଞ୍ଜାତ**—ସଂ. ବଣ. ପୁଂ ( ସମ୍+ଜନ୍ ଧାତୁ+କର୍ତ୍ତ୍ରି. ତ )—୧ । ଜାତ; ଉତ୍ପନ୍ନ—1. Born; produced. ୨ । ପ୍ରାପ୍ତ ( ବିଶ୍ୱକୋଷ )—2. Got; attained.
Sanjāta
(ସଞ୍ଜାତା—ସ୍ତ୍ରୀ)

**ସଞ୍ଜାତ**—ଗ୍ରା. ବଣ ( ସ. ସ୍ୱଜାତୀୟ; ସଜାତୀୟ )—୧ । ସ୍ୱଜାତୀୟ; ନିଜ ଜାତୀୟ ( ବ୍ୟକ୍ତି )—1. Belonging to one's own caste. ୨ । ସମଜାତୀୟ ବ୍ୟକ୍ତି—2. Belonging to the same caste.
Sanjāta
স্বজাতি
सजाती

**ସଞ୍ଜା ଦେବା**—ଦେ. କ୍ରି—୧ । ସଞ୍ଜା ଲଗାଇବା; ଉପଜ ଜମିକୁ ସଞ୍ଜା ଖଜଣାରେ ପ୍ରଜାଙ୍କୁ ବିଲି କରିବା ବା ପଟ୍ଟା ଦେବା—1. To let out a holding to a cultivator on Sanjā-rent. ୨ । ସଞ୍ଜା ଧାନ ଜମିଦାରଙ୍କୁ ଅଦାୟ ଦେବା—2. To pay the fixed rent-in-kind to the landlord.
Sanjā debā
সাঁজা দেওয়া,
সাঁজা বিলি করা
मनखप देना

**ସଞ୍ଜା ଧରିବା**—ଦେ. କ୍ରି—ଜମିଦାରଙ୍କଠାରୁ କୌଣସି ଜମିକୁ ସଞ୍ଜା ଖଜଣା ଦେବାକୁ ଚୁକ୍ତି କରି ଚାଷ କରିବା—To hold a land on Sanjā rent. ( ସଞ୍ଜାରେ ଧରିବା—ଅନ୍ୟରୂପ )
Sanjā dharibā
সাঁজায় ধরা
मनखप करना

**ସଞ୍ଜା ଧାନ**—ଦେ. ବି—ସଞ୍ଜା ଖଜଣାରୂପେ ଜମିଦାରଙ୍କୁ ଦେୟ ଧାନ—Paddy payable to the landlord by the cultivator as Sanjā or rent fixed in kind. [ ଦ—ଏହିପରି ସଞ୍ଜା ମୁଗ, ସଞ୍ଜା ମାଣ୍ଡିଆ, ସଞ୍ଜା ଜୋଳଅ; ସଞ୍ଜା ବିରି ଆଦି ହୁଏ । ]
Sanjā dhāna
সাঁজা ধান
मनखप धान

**ସଞ୍ଜାପ(ବ)**—ବୈଦେ. ବି ( ଫା. ସଞ୍ଜାଫ୍ )—୧ । କୁର୍ତ୍ତା, ରେଜେଇ ଆଦିର ଧଡ଼ରେ ସିଲାଇ କରାଯିବା କନାର ସରୁ ଧଟ ବା ଧଡ଼—1. Thin border sewn to a garment or quilt. ୨ । ପୋଷାକ ଭିତରେ ଦିଆଯିବା ପତଳା ଲୁଗା; ଅସ୍ତର—2. Lining put below a dress.
Sanjāpa(ba)
সঞ্জাব
संजाफ

**ସଞ୍ଜା ପଟା(ଟ୍ଟା)**—ଦେ. ବି—ପ୍ରଜାଙ୍କୁ ସଞ୍ଜା ସର୍ତ୍ତରେ ଜମି ବିଲି କରିବା ଉପଲକ୍ଷରେ ଜମିଦାରଙ୍କର ପ୍ରଜାଙ୍କୁ ଲେଖି ଦେବା ପଟ୍ଟା—A written lease granted to a royat on a fixed rent-in-kind by the landlord.
Sanjā paṭā(ṭṭā)
সাঁজা পাটা
मनखप पटा

**ସଞ୍ଜା ପ୍ରଜା**—ଦେ. ବି—ସଞ୍ଜା ରଇତ ( ଦେଖ )
Sanjā prajā Sanjā raita ( See )

**ସଞ୍ଜା ବିଲ**—ଦେ. ବି—ସଞ୍ଜା ଜମି ( ଦେଖ )—
Sanjā bila Sanjā jami ( See )
( ସଞ୍ଜା ଭୂମି, ସଞ୍ଜା ଜୋତ, ସଞ୍ଜା କ୍ଷେତ—ଅନ୍ୟରୂପ )

**ସଞ୍ଜା ବିଲି**—ଦେ. ବି—ପ୍ରଜାଙ୍କୁ ଉପଜ ଜମି ସଞ୍ଜା ସର୍ତ୍ତରେ ଲଗାଇବା ବା ଦେବା—The leasing out of land to a royat on a fixed rent-in-kind.
Sanjā bili
সাঁজা বিলি
मनखप लगाव

ସଞ୍ଜା ବଲ କ(ଧ)ରିବା—ଦେ· କ୍ରି—ଜମିକୁ ସଞ୍ଜା ସର୍ତ୍ତରେ ଗ୍ରହଣ କରିବାକୁ ଜମିଦାରଙ୍କଠାରୁ ନେବା—
Sanjā bila ka(dha)ribā
ସାଁଜାୟ ଜମି ଲওয়া
ମନଖପ ଲେନା
To take on lease a royati land on fixed rent in kind.

ସଞ୍ଜା ଭାଗ—ଦେ. ବ—୧ । ଜମିଦାରଙ୍କ ପ୍ରାପ୍ୟ ସଞ୍ଜାରୂପ ଜମିରୁ ଉତ୍ପନ୍ନ ଶସ୍ୟର ଅଂଶ—1. The portion of the produce of a holding payable to the landlord or rent in kind.
Sanjā bhāga
সাঁজা ভাগ
ମନଖପ ହିସ୍ସା
୨ । ସଞ୍ଜା ଖଜଣା ଓ ଧୂଳଭାଗ ଖଜଣା—2. Fixed produce rent and half the actual produce payable as rent.

ସଞ୍ଜା ରଇ(ଏ, ୟ)ତ—ଦେ· ବ—ଜମିଦାରଙ୍କଠାରୁ ସଞ୍ଜା ଖଜଣାରେ ଜମି ଗ୍ରହଣ କରୁଥିବା ପ୍ରଜା—A royat or tenant holding land from a landlord on a stipulated rent in kind.
Sanjā rai(e, ya)ta
সাঁজা রয়ত
ମନଖପ ରୈୟତ

ସଞ୍ଜା ରଇ(ଏ, ୟ)ତି—ଦେ· ବଣ—ସଞ୍ଜା ରଇତ ସମ୍ବନ୍ଧୀୟ—Relating to a tenant paying stipulated rent in kind. ଦେ. ବ—ଜମିକୁ ସଞ୍ଜାରେ ଧରିବାର ଉପରେ ସ୍ୱତ୍ତ୍ୱ—The right of occupancy accruing to a tenant holding land on stipulated rent in kind.
Sanjā rai(e, ya)ti
সাঁজা রায়তি
ମନଖପ ରୈୟତୀ

ସଞ୍ଜା ଲଗା(ଗେ)ଇବା—ଦେ· କ୍ରି—ସଞ୍ଜା ବଲି କରିବା (ଦେଖ)
Sanjā laga(ge)ibā Sanjā bili karibā (See)
সাঁজা বিলি করা ମନଖପ ଲଗାନା

ସଞ୍ଜିଅ—ଗ୍ରା· ବ (ସ. ସନ୍ଧ୍ୟା)—୧ । ସଞ୍ଜ; ସନ୍ଧ୍ୟା—1. Evening; nightfall.
Sanjia সাঁঝ साँझ
সেংজতী ୨ । ସଞ୍ଜବତୀ; ସଞ୍ଜଦୀପ; ସନ୍ଧ୍ୟାଦୀପ—2. Wick lighted in the house or before a Deity in the evening.
साँझबत्ति

ସଞ୍ଜିଘୃକ୍ଷୁ—ସ. ବଣ (ସମ୍+ଗ୍ରହ ଧାତୁ+ଇଚ୍ଛାର୍ଥେ ସନ୍+ଉ)—
Sanjighrukshu ଗ୍ରହଣ କରିବାକୁ ଇଚ୍ଛୁକ—
(ସଞ୍ଜିଘୃକ୍ଷା—ବ) Desirous of accepting.

ସଞ୍ଜିହୀର୍ଷା—ସ ବ. (ସମ୍+ହୃ ଧାତୁ ସନନ୍ତ=ଜିହୀର୍ଷ ଧାତୁ=
Sanjihirshā ସଂହାର କରିବାକୁ ଇଚ୍ଛା କରିବା+ଭାବ. ଅ+ଆ)—ସଂହାର କରିବାର ଇଚ୍ଛା—Desire to slaughter.

ସଞ୍ଜିହୀର୍ଷୁ—ସ. ଣେ. (ସମ୍+ହୃ ଧାତୁ ସନନ୍ତ=ଜିହୀର୍ଷ ଧାତୁ+
Sanjihirshu କର୍ତ୍ତୃ. ଉ)—ସଂହାର କରିବାକୁ ଇଚ୍ଛୁକ—
Desirous of destroying or killing.

ସଞ୍ଜୀବ—ସ. ବଣ (ସମ୍+ଜୀବ ଧାତୁ+କର୍ତ୍ତୃ. ଅ)—ପୁନର୍ଜୀବନ-
Sanjība ଦାନକାରୀ (ବିଶ୍ୱକୋଷ)—Restoring to life.
ସ. ବ. (+ଭାବ. ଅ)—୧ । ପୁନର୍ଜୀବନଦାନ (ବିଶ୍ୱକୋଷ)—1. Restoration to life. ୨ । ନରକ ବିଶେଷ (ବୌଦ୍ଧ ମତେ)—2. Name of a hell according to the Buddhists.

ସଞ୍ଜୀବକ—ସ. ବିଣ. ପୁଂ (ସମ୍+ଜୀବ ଧାତୁ ଣିଚ୍+କର୍ତ୍ତୃ. ଅକ)—
Sanjibaka ଜୀବନଦାନକାରୀ; ଯେ ମୃତ ବ୍ୟକ୍ତିକୁ ବଞ୍ଚାଇ
(ସଞ୍ଜୀବ—ଅନ୍ୟରୂପ) ପାରେ—Restoring the dead to life.
(ସଞ୍ଜୀବିକା, ସଞ୍ଜୀବକା—ସ୍ତ୍ରୀ)

ସଞ୍ଜୀବ କରଣୀ—ଦେ. ବ—ସଞ୍ଜୀବନୀ (ଦେଖ)
Sanjiba karanī Sanjibani (See)
[ଉ—ତାଙ୍କୁ ବ ପ୍ରକାରେ ଥିବ ଆଉଁଛ, କହଁ ସଞ୍ଜୀବ କରଣୀ ପିଅଇ। କବିସ ର୍ଯ. ଉତ୍ତରମଞ୍ଜରୀ।]

ସଞ୍ଜୀବନ—ସ. ବ. (ସମ୍+ଜୀବ୍ ଧାତୁ ଣିଚ୍+ଭାବ ଅନ)—
Sanjibana ୧। ଜୀଆଁଇବା; ଜୀବିତ କରାଇବା—1. Animating; reviving of life. ୨ । ଜୀବ ଦାନ କରିବା; ଜୀବନୀ ଶକ୍ତି ଦେବା—2. Infusing vitality. ୩ । ସମ୍ୟକ୍ ପ୍ରକାରେ ପ୍ରାଣ ଧାରଣ (ବିଶ୍ୱକୋଷ)—3. Living excellently. ୪ । ୨୧ ନରକ ମଧ୍ୟରୁ ଏକତମ (ମନୁ ୪।୮୯)—4. One of the 21 hells according to Manu. ସ. ବଣ. ପୁଂ (+କର୍ତ୍ତୃ ଅନ)—୧ । ଯାହା ଜୀଆଁଏ ବା ଜୀବିତ କରାଏ;
(ସଞ୍ଜୀବନୀ—ସ୍ତ୍ରୀ) ଜୀବନକାରୀ—1. Animating; reviving; infusing vitality. ୨ । ମୃତ ବ୍ୟକ୍ତିକୁ ଯାହା; ପୁଣି ଜୀଆଁଏ—2. Restoring life to the dead; resusciation.

ସଞ୍ଜୀବନୀ—ସ. ବ. ସ୍ତ୍ରୀ (ସଞ୍ଜୀବନ+ସ୍ତ୍ରୀ. ଈ)—୧ । ମୃତ ବ୍ୟକ୍ତିକୁ
Sanjībani ଜୀଆଁଇବାର ଦ୍ରବ୍ୟ ବା ଔଷଧ—1. Anything which restores the dead to life. ୨। ଯେଉଁ ବିଦ୍ୟାବଳରେ ମୃତପ୍ରାଣୀ ବଞ୍ଚି ଉଠେ—2. The art or lore by which the dead is restored to life. (ଉ—ସଞ୍ଜୀବନୀ ବିଦ୍ୟାବଳରେ ଶୁକ୍ର ମୁନି, ଜୀବନ ଦାନ ତାଙ୍କୁ ଦିଅନ୍ତି ପୁଣି । କୃଷ୍ଣସିଂହ· ମହା-ଭାରତ· ଆଦ ।)

ସଞ୍ଜୀବନୀ ପୁର(ରୀ)—ସ· ବ—ଯମପୁର; ଯମାଳୟ—The abode
Sanjibani pura(ri) of the God of death.
(ଉ—ଶୂଳୀ ଯେ ମହା-ଶିଶୂଳ ପେଶିଲ ଉଠନ୍ତେ, ଦୁର୍ବାର୍ଣ୍ଣ ବି ପୁରନ୍ତେ ସଞ୍ଜୀବନୀ ପୁରେ । ଚନ୍ଦ୍ରାମଣି. ବିଦମାଦର୍ଶ ।)

ସଞ୍ଜୀବନୀ ସୁଧା—ସ. ବ (କର୍ମଧା)—ମୃତ ମନୁଷ୍ୟକୁ ଜୀଆଁଇ ଦେବା
Sanjībani sudhā ଅମୃତ—Elixir of life.

ସଞ୍ଜୀବୟିଷୁ—ସ. ବଣ (ସମ୍+ଜୀବ ଧାତୁ· ଣିଚ୍, ଜୀବ ଧାତୁ+
Sanjībayishu ଇଚ୍ଛାର୍ଥେ. ସନ୍+ଉ)—ଅନ୍ୟକୁ ଜୀଆଁଇବାକୁ
(ସଞ୍ଜୀବୟିଷା—ବ) ଇଚ୍ଛୁକ—Desirous to restore another's life.

**ସଞ୍ଜୀବିଷୁ**—ସ. ବଣ (ସମ୍ + ଜୀବ୍. ଧାତୁ + ଇଚ୍ଛାର୍ଥେ. ସନ୍ + ଉ)—
Sañjibishu ଜୀବେ ଜୀଇଁବାକୁ ଇଚ୍ଛୁକ—Desirous to live.
(ସଞ୍ଜୀବିଷା—ସ୍ତ୍ରୀ)

**ସଞ୍ଜୁଅ**—ଦେ. ବଣ (ସଂ. ସାନ୍ଧ୍ୟ)—୧ । ସନ୍ଧ୍ୟାକାଳ ସମ୍ବନ୍ଧୀୟ—
Sañjua 1. Relating to evening. ୨ । ସନ୍ଧ୍ୟାବେଳେ
ସେଁଝୋ, ସାଁଝେବ ଘଟିବା; ସନ୍ଧ୍ୟାକାଳୀନ—2. Happening
साँझका at dusk. ଦେ. ବ—ସଞ୍ଜ (ଦେଖ)—Sañja.
(See)

**ସଞ୍ଜୁ(ଞ୍ଜୋ)ଗ(ତ୍,ତ୍)**—ଦେ. ବ (ସ. ସଂଯୋଗ)—୧ । ଆୟୋଜନ
Sañju(ñjo)g(t,t) ବ୍ୟବସ୍ଥା—1. Arrangement. ୨ ।
सञ्जुग ଉପକରଣାଦି ପ୍ରସ୍ତୁତ ରଖିବା -2. Collection of
उद्योग materials; keeping the materials ready.
सञ्जुग ଦେ. ବଣ (ସ.ସଂଯୁକ୍ତ)—୧ । ଆୟୋଜିତ—1.Arranged.
उद्योगकिया हुआ ୨ । ଉପକରଣାଦି ପ୍ରସ୍ତୁତ ଥିବା—
2. With the materials collected and
kept ready.

**ସଞ୍ଜ୍ୱର**—ସ. ବ (ସମ୍ + ଜ୍ୱର)—୧ । ସନ୍ତାପ—1. Great heat.
Sañjwara ୨ । ବିଶେଷ ଜ୍ୱର—2. High fever.

ସଞ୍ଜ୍ୱରକାନ୍ } ପୁ. } ବଣ
ସଞ୍ଜ୍ୱରୀ }
ସଞ୍ଜ୍ୱରବତୀ } ସ୍ତ୍ରୀ }
ସଞ୍ଜ୍ୱରିଣୀ }

**ସଞ୍ଜ୍ୟା(ଞ୍ଝ୍ୟା)**—ଗ୍ରା. ବ (ସ. ସନ୍ଧ୍ୟା)—ସଞ୍ଜ (ଦେଖ)
Sañjyā(ñjhyā) Sañja. (See)

**ସଟ** (ଧାତୁ)—ସ—୧ । ଅଂଶ କରିବା—1.To divide into
Saṭ (root) parts ୨ । ଖଣ୍ଡିତ ହେବା—2. To be cut
or riven. ୩ । ଅବୟବ ବା ଅଙ୍ଗ ହେବା—3. To
be a part or limb of.

**ସଟ୍‌କଲା**—ପ୍ରାଦେ (ସମ୍ବଲପୁର) କି. ବଣ—ଶୀଘ୍ର—Soon.
Saṭ-kalā

**ସ(ସା)ଟ୍‌କିନା(ନି)**—ଦେ. ଅ (ଧ୍ୱନ୍ୟନୁକରଣ)—୧ । ହଠାତ୍ ରବ
Sa(sā)ṭ-kinā(ni) ଉତ୍ପାଦନପୂର୍ବକ—1. Suddenly, by
सट करे, सटान emitting a cracking sound. ୨ ।
सटसे ହଠାତ୍—2. Suddenly. ୩ । ଚଞ୍ଚଳ—3. Shortly;
(ସଟ୍‌କ[ଧା]ତୁ, ସଟ୍ କର—ଅନ୍ୟରୂପ) soon.

**ସଟ୍‌ଚାଳିଶ(ଶି)**—ଦେ. ବ ଓ ବଣ—ସତଚାଳିଶ (ଦେଖ)
Saṭ-chālisa(si) Satachālisa. (See)

**ସଟ୍‌ତିରିଶ(ଶି)**—ଦେ. ବ ଓ ବଣ—ସଇଁତିରିଶ (ଦେଖ)
Saṭ-tirisa(si) Saiñtrisa. (See)

**ସଟ(ଟା)**—ସଂ. ବି (ସଟ୍. ଧାତୁ—ଅବୟବ ହେବା + କର୍ତ୍ତି. ଅ,ଆ)—
Saṭa(ṭā) ୧ । ସିଂହ ଓ ଅଶ୍ୱାଦିଙ୍କ ବେକ ଉପରର କେଶର—
1. The manes on the neck of lion or
horse. ୨ । ଋଷିଙ୍କ ଜଟା—2. Matted hair of
sages. ୩ । ବରଗଛର ଓହୋଳ—3. The aerial
roots of banian tree. ୪ । ଶିଖା—4.Flame.
୫ । ଚୂଳ; ଶିଖା—5. Crest; a tuft of hair on
the crown. ୬ । ପର୍ବତ ଶୃଙ୍ଗ—6. Mountain-peak. ୭ । ଶିଖା; ବୈଷ୍ଣବମାନେ ବା ବ୍ରାହ୍ମଣମାନେ ମୁଣ୍ଡ
ଉପରେ ରଖିଥିବା ଚୁଟି ବା ଚରଚ—7. Pigtail
grown on the head.

**ସଟର୍‌ସେଁ**—ଦେ. ବ (ଧ୍ୱନ୍ୟନୁକରଣ)—ଡୋର ବନ୍ଧାଯାଇ ସେଁ ସେଁ
Saṭar-señ ଶବ୍ଦ କରୁଥିବା କାଠର ଏକପ୍ରକାର କଳ ବା
ଖେଳନା—A wooden contrivance or
plaything tied with a string and
producing a simmering sound.

**ସଟେରା**—ଦେ. ବ—ପୁରୀର ସାହିଯାତରେ ଏରା ପକ୍ଷୀର ପର ଓ ମାଳ
Saṭarā ପିନ୍ଧି ନାଗାଙ୍କ ସଙ୍ଗେ ବାହାରିବା ସନ୍ନ୍ୟାସୀ-
सं. जोगिया, सरेरा ମାନଙ୍କ ସଦୃଶ ନାଟକ-
ପଞ୍ଜୀବେଶଧାରୀ ବ୍ୟକ୍ତି—A person wearing the
feather of the Era bird and beads and
accompanying the Nāgās in the
pantomines (sāijāta) of Puri town.
[ଦ୍ର—ଏମାନେ ହିନ୍ଦୀ ଭାଷାରେ ଗୀତ ଗାଆନ୍ତି । ବର୍ତ୍ତମାନ
ଅଞ୍ଚଳରେ ଡୋଲଯାତ୍ରା ସମୟରେ ଏହିପରି ବେଶଧାରଣ
କରି ଯାହାରେ ବାହାର ଗୀତ ବୋଲିବା ବ୍ୟକ୍ତିଙ୍କୁ 'ସଟ୍ରେ'
ବା 'ଘୋଟିଶ୍ୱ' କହନ୍ତି ।]

**ସଟାଙ୍କ**—ସ. ବ (ସଟ, ସଟା=କେଶର ଅଟେ ଅଙ୍କ = ଚିହ୍ନ
Saṭānka ଯାହାର; ବହୁବ୍ରୀହି)—ସିଂହ; କେଶରୀ—
Lion.

**ସଟାଙ୍କ(ଙ୍ଗ୍)କିନା(ନି)**—ଦେ. କି. ବଣ(ଧ୍ୱନ୍ୟନୁକରଣ)—୧ । ହଠାତ୍—
Saṭānk(ṅg)kinā(ri) 1. Suddenly; abruptly.
(ସଟାଂକିନା—ଅନ୍ୟରୂପ) ୨ । ସିଧା ହୋଇ ଲମ୍ବଭାବରେ—
सटान् सटसे 2. In straight and long
manner; straightaway; straight-forwardly

**ସଟାଟୋପ**—ଦେ. ବ—ପଟାଟୋପ (ଦେଖ)
Saṭaṭop Paṭāṭop (See).

**ସଟାବଟା**—ଦେ. ବଣ—ଅସୁନ୍ଦର ଭାବରେ ବା ଯେନତେନ ପ୍ରକାରେ
Saṭābaṭā କରାଯାଇଥିବା (କର୍ମ)—(Act) Done clumsily anyhow. ଦେ. ବ—ଭଣ୍ଡାଭଣ୍ଡି—Inveigling.

**ସଟାମ**—ପ୍ରାଦେ (ଇରଥ) ବ—ପୁରୁଣା ଗାଡ଼ି—An office jaun
Saṭām (carriage).

**ସଟାଳି**—ସ. ବ (ସଟା + ଅସ୍ତ୍ୟର୍ଥେ ଅଳ)—ସିଂହ (ଶବ୍ଦକୋଷ)—
Saṭāḷa Lion.

**ସଟି(ଟୀ)**—ସ. ବ—ଶଠୀ (ଦେଖ)—
Saṭi(ṭi) Saṭi (See).
(ଧଟିକା—ଅନ୍ୟରୂପ)

ସଟୀକ—ସଂ. ବି (ସ=ସହ+ଟୀକା; ସହାର୍ଥ ବହୁବ୍ରୀହି )—୧ । Satīka ଟୀକାଯୁକ୍ତ—1. Annotated. ୨ । ମନ୍ତବ୍ୟଯୁକ୍ତ—2. Joined with or furnished with remarks or notes.

ସଟେନ୍—ପ୍ରାଦେ (ଲକ୍ଷ୍ମୀ) କ୍ରି—ଖାଉଁ ଖାଉଁ କାଶିବା—Saten Coughing during meal.

ସଟ୍ (ଧାତୁ)—ସଂ—୧ । ବଧକରିବା—1. To kill. ୨। କ୍ଷତିସାଧନକରିବା Satt(root) 2. To injure.

ସଟ୍ଟକ—ସଂ. ବି ( ସଟ୍ ଧାତୁ=ଖଣ୍ଡିତକରିବା+କର୍ମ.ଅକ )—ପ୍ରାକୃତ Sattaka ଭାଷାରେ ରଚିତ ନାଟକବିଶେଷ—A sort of drama in 'Prākruta' or ancient vulgar language of India[ ଦ୍ର—ଏଥିରେ ପ୍ରବେଶକ ଓ ବିଷ୍କମ୍ଭକ ନ ଥାଏ ଓ ବହୁ ପ୍ରାକୃତ ଶବ୍ଦ ଥାଏ । ଏଥିରେ ପ୍ରଚୁର ପରିମାଣରେ ଅଦ୍ଭୁତ ରସ ବର୍ଣ୍ଣିତ ହୁଏ । ଏଥିର ଅଙ୍କମାନ ଯବନିକା ନାମରେ ଖ୍ୟାତ—ବିଶ୍ୱକୋଷ ।]

ସଟ୍ଟା—ଦେ. ବି—ଅଗରୁଁ ସଉଦା କରିବାରୂପ ଜୁଆଖେଳ—Sattā (सट्टा) Speculation on advance contract.

ସଠ୍ (ଧାତୁ)—ସଂ—ଠକିବା—Sath(root) To cheat; to deceive.

ସଠ (ଇତ୍ୟାଦି)—ଦେ. ବି ଓ ବିଣ—ଶଠ ଇତ୍ୟାଦି (ଦେଖ) Satha (etc) Śatha etc. (See)

ସଠା (ଇତ୍ୟାଦି)—ଦେ. ବି—୧ । ଷଠା ଇତ୍ୟାଦି (ଦେଖ)—Sathā (etc) 1. Shatha etc. (See) ୨ । ଶଠା ଇତ୍ୟାଦି (ଦେଖ)—2. Śathā etc. (See)

ସଠା(ଠେ)ଇବା—ଦେ. କ୍ରି—ଭଣ୍ଡାଇବା—Sathā(the)ibā To inveigle.

ସଠାସଏ(ହେ)—ଦେ. ବି ଓ ବିଣ—ଏକଶତ ଷାଠିଏ—Sathāsae(he) One hundred and sixty.

ସଠାସଠି—ଦେ. ବି—ଭଣ୍ଡାଭଣ୍ଡି; ଭଣ୍ଡାଇବା କର୍ମ—Sathāsathi Inveigling.

ସଠିକ—ଦେ. ବିଣ—୧ । ( ସଂ. ସଟୀକ )—ସଟୀକ (ଦେଖ)—Sathika 1. Satika (See). ୨ । ( ହିଂ. सठीक ଥ୍ରଗ ଧାତୁକ ଦେଶଜ 'ଠିକ୍' ଶବ୍ଦର ଅଶୁଦ୍ଧ सठीक ठिक ପ୍ରୟୋଗ )—ଠିକ୍; ସୁନିର୍ଦ୍ଦିଷ୍ଟ—( ବେଠିକ୍—ବିପରୀତ )2.Certain ୩ । ଅଭ୍ରାନ୍ତ—3. Correct. [ ଦ୍ର—ଅନେକ ଲୋକଙ୍କ ସ୍ୱରଚନା ଓଡ଼ିଆ ଲେଖକଙ୍କ ଲେଖାରେ ଏ ଅଶୁଦ୍ଧ ପ୍ରୟୋଗ ବହୁଳ ଦୃଷ୍ଟିଗୋଚର ହୁଏ ।]

ସଠିକ ଖବର(ସମ୍ବାଦ)—ଦେ. ବି. (ଠିକ୍ ଶବ୍ଦର ଅଶୁଦ୍ଧ ପ୍ରୟୋଗ)—Sathika khabara(sambāda) ୧ । ସତ୍ୟମୂଳକ ସମ୍ବାଦ—सठीक खबर ठिक खबर 1. Correct or true news. ୨ । ସବିଶେଷ ବୃତ୍ତାନ୍ତ—2. Detailed news.

ସଠୀ—ସଂ. ବି—ଶଠୀ (ଦେଖ)—Sathī Satī (See).

ଦେ. ବି—ଷଠୀ ଇତ୍ୟାଦି (ଦେଖ)—Shathī etc. (See)

ସଡ୍‌କିନା(ନି)—ଦେ. ଅ—ସଡ୍‌କିନା (ଦେଖ) - Sat-kinā (See) Sard-kinā(ni) [ଦ୍ର—ବ୍ୟବହାରରେ ସଟ୍ ଓ ସଡ୍ ଶବ୍ଦ ମଧ୍ୟରେ ସଡ୍ଡାକ୍‌କନା(କି), ସଡ୍ଡାଡ୍‌କନା(କି) } —ଅନ୍ୟରୂପ ସାମାନ୍ୟ ମଡାକ୍, ସଡ୍‌ସଡ୍ ପାର୍ଥକ୍ୟ ଅଛି । କୋଉଠିରେ ଶୁଦ୍ଧ ବସି ହୋଇ ବସିଥିବା ଠିକିଟ ସଟ୍‌କିନ ବାହାରେ; କିନ୍ତୁ ଫୁଟୁଲା ଠିକିଟ ସଡ୍‌କିନ ବାହାରେ ।]

ସଡ୍‌କି-ପଲମ—ପ୍ରାଦେ ( ଯାଜପୁର ) ବି—ଚକୁଳିପିଠା ଓ ରୁଟି ଆଦି Sard-ki palama କରିବାପାଇଁ ମାଟିର ଚଟକା କେତେଲି—Flat earthen frying pan used in preparing pancake or chakuli and bread roll.

ସଡ଼ (ଢ) ଇତ୍ୟାଦି—ଦେ. ବିଣ—ଶଡ଼(ଢ) ଇତ୍ୟାଦି (ଦେଖ)—Sarda(rdha)etc Śarda(rdha) etc (See).

ସଡ଼ (ଇତ୍ୟାଦି)—ଦେ ବି ଓ ବିଣ—ଷଡ଼ ଇତ୍ୟାଦି (ଦେଖ) Srda (etc) Sharda etc. (See)

ସଡ଼କ -ଦେ. ବି ( ହିଂ. सडक; ସରଣୀ )—୧ । ରାଜଦାଣ୍ଡ—Srdaka 1. Highway. ୨ । ରାସ୍ତା—सडक रास्ता सड़क 2. Road. ୩ । ବନା ହୋଇଥିବା ବା ନିର୍ମିତ ରାସ୍ତା—3. A constructed road. [ ଦ୍ର—ଏ ଶବ୍ଦର ପରେ ଅନ୍ୟ ଶବ୍ଦ ବ୍ୟବହୃତ ହୋଇ ଯେଉଁସବୁ ଶବ୍ଦ ଗଠିତ ହୁଏ ସେହିସବୁ ଯୁକ୍ତ ଶବ୍ଦ ମାନଙ୍କପାଇଁ ରାସ୍ତା ତଳେ ଦେଖ ।]

ସଡ଼କ ଦାଣ୍ଡ(ଣ୍ଡି)—ଦେ. ବି (ଏକାର୍ଥକ ସଙ୍କରର)—୧ । ଲମ୍ବା ସଡ଼କ-Sardaka dānda(ndi) 1. A long road. ( ସଡ଼କ ରାସ୍ତା—ଅନ୍ୟରୂପ ) ୨ । ସଡ଼କ; ରାଜଦାଣ୍ଡ—2. A road; highway.

ସଡ଼କା (ଙ୍ଗ,ଙ୍ଗା)—ଦେ. ବିଣ. ଓ ବି—ଶଡ଼କା (ଙ୍ଗ,ଙ୍ଗା) (ଦେଖ)—Srdakā(ṅga,ṅgā) Ś rd kā (ṅga, ṅgā) (See)

ସଡ଼ ବ(ବେ)ବାଲ(ଲି)—ବୈଦେ. ବି ( ଫା. ସର୍‌ଦିୱାଲ୍ )—Sardi di(de)bāla(li) ସଟ୍ ଦିଉଥିଲ (ଦେଖ) (ସଡ଼ ଦେଉଥିଲ[ଲି]—ଅନ୍ୟରୂପ) Sar-diubāla (See)

ସଡ଼ପ—ଦେ. ବି—୧ । ( ସଂ. ସରପ ) ସଡ଼କ—1. Road. ୨ । S rdapa ( ସଂ. ଉତ୍ତାଫଳ=ତାଳଗଛ ) ସାଗୁ ବା ଗୁଅଗଛ सलप, गोलसाग ଜାତୀୟ ଏକପ୍ରକାର ଗଛ—2. A sort of palm tree;Uaryota Curens. [ ଦ୍ର—ଏହା ଗୁଅ ଗଛ ଭଳି; କିନ୍ତୁ ଏଥିର ଡାଳ ନ ଥାଏ ଗଛ ଅତି ମୋଟା । ଏଥିର ମଞ୍ଜ ମଧ୍ୟରେ ଶସ୍ୟ [illegible] ମାତ୍ର ପରି ବଡ଼ା କୋଳମାନ ଲମ୍ବ ଲମ୍ବ ହୋଇ [illegible] ଫଳେ ଓ ଏହି ଗଛର କେଉଁରୁ [illegible] ତୋଳିବା ଭଳି ଶୁଖିଲ ବାହୁ [illegible] ପଳ

ଓ ମଞ୍ଜି ଏକ । ଫଳ ଶୁଖିଗଲେ କଳା ଦେଖାଯାଏ । ଏବ ତାହାକୁ ଗୁଆକାତିରେ କାଟିଲେ ଚକ୍ଚକ ବର୍ଣ୍ଣ ଓ ସ୍ୱାଦ ଅବକଳ ଗୁଆ ପରି ଲାଗେ । ପରୀକ୍ଷା କରି ଦେଖାଯାଇଅଛି ଯେ,ଏଥିକୁ ଗୁଆକୁ କାଟି ପାନ ସଙ୍ଗେ ସାଧାରଣ ଗୁଆ ପରି ଖିଆ ଯାଇ ପାରେ । ଏହା ଏ ଦେଶର ଗଛ ନୁହେଁ; କିନ୍ତୁ ଶୋଭା ସମ୍ପାଦନ ପାଇଁ ସହର ଓ ବଡ଼-ଲୋକମାନେ ଏ ଗଛକୁ ଆଣି ବଗିଚାରେ ଓ ବାଟର ଦୁଇ ପାଖରେ ଲଗାନ୍ତି । ଏ ଗଛସବୁ ବଡ଼ ହୋଇଗଲେ ମନୋରମ ଦେଖାଯାଏ । ଏହା ଅବକଳ ସାଗୁ ଗଛ ପରି ଓ ସାଗୁ ଗଛର ଅନ୍ତରୁ ଯେଉଁ ପରି ସାଗୁଦାନା ପ୍ରସ୍ତୁତ ହୁଏ, ଏହାର ଅନ୍ତରୁ ମଧ୍ୟ ସେହିପରି ଏକପ୍ରକାର ଦାନା ପ୍ରସ୍ତୁତ କରାଯାଏ ।

ଅଧୁନା ଏହିପ୍ରକାର ଗଛକୁ 'ସରଳ' ବୋଲି କହନ୍ତି । ଓଡ଼ିଶା ଗଡ଼ଜାତର ଜଙ୍ଗଲରେ ଅନେକ ସଡ଼ପ ଗଛ ଦେଖାଯାଏ । ଗରିବ ଲୋକେ ଏହାର ମଞ୍ଜିରୁ ପାକୁଅ (ଅଟା) ବାହାର କରି ପିଠା ଓ କ୍ଷିରି କରି ଖାଆନ୍ତି । କିନ୍ତୁ ଏହା ସାଗୁ ପରି ଲଘୁପାକ ନ ହୋଇ ଗୁରୁପାକ ଅଟେ ।]

**ସଡ଼ପ କୋଳି(ଗୁଆ)**—ଦେ. ବି—ସଡ଼ପ ଗଛରୁ ଉତ୍ପନ୍ନ କଳା ଫଳ
Sar̲d̲apa koli(guā) ଫଳ—Nut-like fruit of
ସଜପକୁଲ ସୁପାଛିଯକୁଲ the Sar̲d̲apa tree. (ସଡ଼ପ
माड़काफल, ତଳେ ନୋଟ୍ ଦେଖ)

**ସଡ଼ସଡ଼**—ଦେ. ଅ (ଧ୍ୱନ୍ୟନୁକରଣ)—୧ । ପାଣିଆ ଖାଦ୍ୟକୁ କମ୍ପା Sar̲d̲asar̲d̲a ଜଳମିଶ୍ରିତ ଖାଦ୍ୟ (ଯଥା ଡାଲି, ପଖାଳ ଭାତ) କୁ
ସପାସପ ସଢ଼ସଢ଼ ଢାଗୁରି ଖାଇବାର ଶବ୍ଦ—1. The chuckling sound produced by eating
ସଡ଼ସଡ଼ चड़चड़ watery food. ୨ । (ସଂ. ସଟ୍ ଧାତୁ= ଭେଦ କରିବା, ଅବସନ୍ନ ହେବା) ବ୍ରଣ ହେବା ସ୍ଥାନରେ (ଦେହ ଫୋଡ଼ ହେବା ବା ଫାଟି ପଡ଼ିବା ପରି) ବେଦନାର ଅନୁଭୂତି; ସର୍ ସର୍—2. An uneasy and aching sensation felt at the part of the limb where there is a big sore or boil
ସଡ଼ସଡ଼ चटपट or ulcer. ୩ । ପୂର୍ବେ ଅନୁଭବ ବା ଉପଭୋଗ କରିଥିବା ସୁଖପ୍ରଦ ବସ୍ତୁକୁ ଦେଖିଲେ ପୁଣି ତାହା ଭୋଗ କରିବାର ଲାଳସା ବା ମନର ଗଲ୍ ବା କଣ୍ଡୁ—3. A hankering after or itching for a thing which has once been enjoyed with pleasure; mental itching. ୪ ।
ସଡ଼ସଡ଼ सड़सड़ ନଳୀଅଭ୍ୟନ୍ତରରେ ନାକୁଆ ବା ଢ଼ିଲା ଜଳୀୟ ଢ଼ିଲା ହୋଇ ଯିବା ଆସିବା କରିବାର ଅବସ୍ଥା—4. The state of a loose or slimy thing
ସଡ଼ସଡ଼ सरसर passing up and down a hole.

୫ । ସଲ୍‌ସଲ୍; ଗଲ୍‌ଗଲ୍; ଦେହରେ କୌଣସି ହାଲୁକା ବସ୍ତୁ ଘୁଞ୍ଚିବା ବେଳର ଅନୁଭୂତି; ଗଲ୍—5. A creeping sensation felt in the body when a light thing passes over the skin. ୬ । କୁତକୁତ ଅନୁଭୂତି; ସଲ୍ ସଲ୍—6. Tickling or tingling sensation in the body. ୭ । ସର୍ ସର୍ (ଦେଖ)—7. Sar-sar (See)

**ସଡ଼ସଡ଼ ହେବା**—ଦେ. କ୍ରି—(ଘାଅ ବା ବଥ) ଅତିଶୟ ବଥାଇବା ହେତୁ Sar̲d̲a sar̲d̲a hebā ବେଦନା ହେବା—To ache with
सडसडकरा चड़चड़ाना pain (said of a sore or boil).

**ସଡ଼ସଡ଼ି**—ଦେ. ବିଣ—୧ । ଜଳଯୁକ୍ତ—1. Watery ୨। ଢ଼ିଲା—
Sar̲d̲asar̲d̲i 2. Slack. ୩ । ନାକୁଆ—3. Slippery;
সেঁতসেতে गीला sli ny. ୪ । ନରମ—4. Soft. ୫ ।
ঢিলা ढ़िला ଶୁଷ୍କ; ଶୁଖ—5. Dry. ୬ । କର୍ଦ୍ଦମମୟ—
কাদাময় लारवाला 6. Clayey, muddy.
নরম कोमल नीरस नीरस ভ্যাটভেটে, ভডূভড়ে कीचड़वाला
(ସଡ଼ସଡ଼ିଆ—ଅନ୍ୟ ବିଣ ରୂପ)

**ସଡ଼ା(ଢ଼ା)** (ଇତ୍ୟାଦି)—ଦେ. ବିଣ—ଶଢ଼ା ଇତ୍ୟାଦି (ଦେଖ)
Sar̲d̲ā(r̲d̲hā) (etc) Sar̲d̲ā etc. (See)

**ସଡ଼ା(ଢ଼ା, ଡ଼େ, ଢ଼େ)ଇ** (ଇତ୍ୟାଦି)—ଦେ. ବି—ଶଡାଇ ଇତ୍ୟାଦି
Sar̲d̲ā (r̲d̲hā, r̲d̲e, r̲d̲he)i (etc) (ଦେଖ)—Sar̲d̲hāi etc. (See)

**ସଡ଼ା(ଡ଼େ)ଇବା**—ଦେ. କ୍ରି—ଶଡ଼ାଇବା (ଦେଖ)
Sar̲d̲a(r̲d̲e)ibā Sar̲d̲aibā (See)

**ସ: ଡ: ଓ:**—ବୈଦେ. ବି ( ଇଂ. ଏସ୍. ଡ଼ି. ଓ. ର ସାଙ୍କେତିକ )—
Sa: di: o: ସବ୍‌ଡିଭିଜନାଲ୍ ଅଫିସରର ସଂକ୍ଷିପ୍ତ ଆକାର—
এস্, ডি. ও. S. D. O; Sub-divisional Officer.
एस. डि. ओ.

**ସଡ଼ି(ଢ଼ି)ଙ୍ଗ(ଙ୍ଗା, ଙ୍ଗି)**—ଦେ. ବି—ଶଡ଼ିଙ୍ଗ(ଙ୍ଗା) (ଦେଖ)
Sar̲d̲i(r̲d̲hi)ṅga(ṅgā, ṅgi) Sar̲d̲iṅga(ṅgā) (See)

**ସ: ଡି: ମା:**—ବୈଦେ. ବି ( ଇଂ. ଏସ୍. ଡ଼ି. ଏମ୍.ର ସାଙ୍କେତିକ )—
Sa: di: mā: ସବ୍‌ଡିଭିଜନାଲ୍ ମାଜିଷ୍ଟ୍ରେଟ୍‌ର ସଂକ୍ଷିପ୍ତ ଆକାର—
এস. ডি. এম Abbreviation for Sub-divisional
एस डि. एम् Magistrate.

**ସଡ଼ି(ଢ଼ି)ବା**—ଦେ. କ୍ରି—୧ । ଶଡ଼ିବା ( ଦେଖ )—1. Sar̲d̲ibā
Sar̲d̲i(r̲d̲hi)bā (See). ୨ । (ଲକ୍ଷଣାର୍ଥ) କୌଣସି ପୁରୁଷାର୍ଥକ ବା କର୍ମଠ ପଣକୁ କାମରେ ନ ଲଗାଇ ଅଳସୁଆରେ ବା ଜନାନ୍ତରାଳରେ ଜୀବନ ଯାପନକୁ ବୃଥା ନଷ୍ଟ କରିବା—(figurative) To rot; to while away one's time without doing work; to idle away one's life by keeping oneself away from public field of action.

[ଉ—ଘରର କୋଣେ କ ସଡ଼ ଗୋ ! ଅର୍ଣ୍ଣି ଜାଣାଙ୍କର ଚରିତ ପଢ଼ିଣ ନଜ ଜାଲକକୁ ଗତ ଗୋ । ବାଲକୃଷ୍ଣ ଫୁଲ ବହୁଲବେଣୀ ।]

ସଡ଼ୁ(ଢ଼ୁ)—ଦେ. ବ [ ସଂ ସବୋଢା (ସ=ସମାନ+ବୋଢା= Sardu(rdhu) ବବାହକର୍ତ୍ତା); ଅଥବା ଶ୍ୟାଲୀବୋଢ଼ୁ (ଶ୍ୟାଲୀ ভায়(য়ে)বাভাই =ଶାଳୀ+ବୋଢ଼ୁ=ବବାହକର୍ତ୍ତ' [Beames] साढू —(ପୁରୁଷ ପକ୍ଷରେ) ନଜ ସ୍ତ୍ରୀଙ୍କ ଭଉଣୀଙ୍କ ସ୍ୱାମୀ— One's wife's sister's husband.

[ଦ୍ର—ପୁରୁଷ ପକ୍ଷରେ ନଜ ସ୍ତ୍ରୀଙ୍କ ଭଉଣୀ (ପୁରୁଷର ଶାଳୀ ବା ଦେଢ଼ଶାଶୁ )ଙ୍କୁ ବବାହ କରଥିବା ବ୍ୟକ୍ତି ସେହି ପୁରୁଷର 'ସଢ଼ୁ' ଅଟନ୍ତି ।

ସ୍ତ୍ରୀ ପକ୍ଷରେ ନଜ ସ୍ୱାମୀଙ୍କ ଭଉଣୀ (ନଣନ୍ଦ)ଙ୍କୁ ବବାହ କରଥିବା ବ୍ୟକ୍ତି 'ନଣନ୍ଦେଇ' ଅଟନ୍ତି ।

ବଡ଼ ସଢ଼ୁଙ୍କ ସ୍ତ୍ରୀ ଅପଣାର 'ଦେଢ଼ଶାଶୁ' ଓ ସାନ ସଢ଼ୁଙ୍କ ସ୍ତ୍ରୀ ଅପଣାର 'ଶାଳୀ' ଅଟନ୍ତି ।]

ସଣ—ସଂ. ବ ('ଶଣ' ଶବ୍ଦର ବକଳ୍ପ ରୂପ; ରାୟମୁକୁଟ କୃତ ଅମର Sana ଟୀକା)—ଶଣ (ଦେଖ)—Śana (See)

ସଣ ପଟ—ଦେ. ବ. ( ସ. ଶଣ+ପାଟ )—ଶଣପଟ; ଶଣ— Sana pata Flex of Sana hemp; hemp; hem- शण् सनपटुआ pen fibres.

ସଣ ଭ(ସ)ଣ—ଦେ. ଅ (ସଂ. ସ୍ୱନ୍ ଧାତୁ=ଶବ୍ଦ କରବା)— Sana bha(sa)na ୧ । (ଧ୍ୱନ୍ୟର୍ଥକ) ସାଲୁ ସାଲୁ; ଭଣଭଣ; शण शण, ভ্যাণ্ ভ্যাণ্ ଖାଦ୍ୟାଦକୁ ମାଛି ଗୁଡ଼ାଏ ବା ଯୋକମାନେ भनभन ବେଢ଼ିବା ଅବସ୍ଥା; ଘାଅରେ କୃମି ବେଢ଼ିବା ଅବସ୍ଥା; ମୁଣ୍ଡରେ ଉକୁଣୀ ସାଲୁ ସାଲୁ ହେବା ଅବସ୍ଥା— 1. The state of (food etc) being infested with fleas, maggots etc. ୨ । କୌଣସି ସ୍ଥାନରେ ପଙ୍କ ବା ବଷ୍ଠା ଆଦ ପୂରବା ଅବସ୍ଥା— 2. The state of a place being strewn with mud, nightsoil or filth. ୩ । ପଚୁ କଳସ ଓ ମଇଳା ଆଦ ଦୁର୍ଗନ୍ଧ ହେବା ଯୋଗୁଁ କୌଣସି ପଦାର୍ଥ ବା ସ୍ଥାନ ଗନ୍ଧାଇବା ଅବସ୍ଥା—3. The state of a place being full of putrid and foul smell. [ଉ—ରଙ୍କା ପୁଅ ଯାଉ ମୁଷା ମାଛି ଭଣଭଣ, ବଲେଇ ଗୁହ ସଣସଣ, ଗୋଟାଏ ସରେ କବାଟ କଲ ମୁହଁ ମାଡ଼ ଶୋଇଲ—କାହାଣୀ] ଦେ. ବଣ— [ସଣ ଭ(ସ)ଣିଆ—ଅନ୍ୟ ବଣ ରୂପ] ୧ । ମଛିକା, ବଷ୍ଠା,ଯୋକ, ମଇଳା शण् शणे ଆଦ ଦ୍ୱାରା ପୂର୍ଣ୍ଣ (ସ୍ଥାନ)—1. (a place) Full of filth, maggots, nightsoil etc.; Filthy (place). ୨ । ପୂତ ଗନ୍ଧମୟ ସ୍ଥାନ— 2. (place) Full of putrid and foul smell.

ସଣର୍ ମଣର୍—ପ୍ରାଦେ. (ଗଡ଼ଜାତ) ବଣ—ସାଲୁ ସାଲୁ (ଦେଖ) Sanar manar Sālu sālu ( See )

ସଣ ସୂତ୍ର—ସ. ବ—ଶଣ ସୂତ୍ର ( ଦେଖ ) Sana sūtra Śana sūtra ( See )

ସଣ୍ଟା—ଦେ. ବ—ସାଣ୍ଟିବା କର୍ମ; ସାଣ୍ଟିବା ( ଦେଖ ) Santā • The act of Sāntibā ( See )

ফেনি দেওয়া, ঘুঁটে দেওয়া ଦେ. ବଣ—ଫେଣ୍ଟା ହୋଇଥିବା— घोटा हुआ Mixed up thoroughly.

ସଣ୍ଟା(ଣ୍ଟେ)ଇବା—ଦେ. କ୍ରି—୧ । ଶଣ୍ଡାଇବା ( ଦେଖ )— Santā(nte)iba 1. Sandāibā (See) ୨ । ସାଣ୍ଟିବା (ଦେଖ)—2. Sāntibā ( See ) ୩ । ସାଣ୍ଟିବାର ଣିଜନ୍ତ ରୂପ—3. Causative of Sāntibā (See)

ସଣ୍ଠ—ପ୍ରାଦେ. (ଧଡ଼ଗଡ଼ିଆ) ବଣ—କୃପଣ— Santha Niggardly.

ସଣ୍ଠଣ(ଣା)—ଦେ. ବ ( ସ. ସଂସ୍ଥାନ )—୧ । ଉତ୍ତମ ଗୁଲଚଳଣ— Santhana(nā) 1. Good conduct or deportment. (ସଣ୍ଠଣା—ଅନ୍ୟରୂପ) ୨ । ମର୍ଯ୍ୟାଦା—2. Respect; eti- চালচলন quette. ୩ । ସୁସଜ୍ଜିତ ଅବସ୍ଥା—3. Well- सुचाली arranged condition. ୪। ସୁବ୍ୟବସ୍ଥିତ ଅବସ୍ଥା- 4. Well regulated or equipped condition. ୫ । ପରପାଟୀ; ପାରପାଟ୍ୟ—5. The condition of being methodical. ୬ । ସୂକ୍ଷ୍ମକଳା— 6. Fine arts. ୭ । କାରୁକାର୍ଯ୍ୟ—7. Fine [ଅସଣ୍ଠଣ(ଣା), ଅସଣ୍ଠୁଣା—ବପରୀତ] work. ୮ । କଳାବଦ୍ୟା-ସାଧନଜନତ କର୍ମ (ଯଥା—ଚତ୍ର ଅଙ୍କିବା, ମୁରୁଜ ଦେବା ଇତ୍ୟାଦ)—8. Acts done as a result of one's proficiency in fine arts (e.g. painting, drawing ). ଦେ. ବଣ—୧ । সাজান গুছান ସୁବ୍ୟବସ୍ଥିତ—1. Orderly; methodical; सुचालीवाला properly arranged. ୨ । ସୁନ୍ଦର— 2. Elegant. ୩ । ମର୍ଯ୍ୟାଦାଯୁକ୍ତ—3 Respect- (ସଣ୍ଠଣୀ, ସଣ୍ଠୁଣୀ—ସ୍ତ୍ରୀ) able. ୪ । ଭଦ୍ର ସମାଜୋଚତ ମର୍ଯ୍ୟାଦା-ସମ୍ପନ୍ନ—4. Well-behaved; conforming to the etiquette of polished society. ୫ । ଯେଉଁ ବ୍ୟକ୍ତି ପରପାଟୀରୂପେ ବେଶ ଆଦ ପିନ୍ଧେ ବା ବସେ— 5. One who is elegant in the mode of dressing or sitting.

ସଣ୍ଡ—ସ. ବ (ସନ୍ ଧାତୁ=ସେବା କରବା+କର୍ତ୍ତି. ଡ ଶଣ୍ଡ ଓ ଷଣ୍ଡର Sanda ବକଳ୍ପରୂପ—ଅମର ଟୀକା )—ଶଣ୍ଡ ( ଦେଖ ) Śanda ( See )

ସଣ୍ଡା(ଣ୍ଡେ)ଇବା—ଦେ. କ୍ରି—ସନ୍ଧାଇବା ( ଦେଖ ) Sandā(nde)ibā Sandhāibā ( See )

ସଣ୍ଡାସ—ବୈଦେ. ବ ( ଫା. ସଣ୍ଡାସ୍ )—ପକ୍କା ଏକମହଲ ପାଇ-Sandās ଖାନା—A pucca ground-privy. [ଦ୍ର— সাঁড়াশি ଏଥିରେ ମନୁଷ୍ୟ ଯାଇ ଯେଉଁ ବସିବା ବେଳେ ଦୁଇ संडास ଗୋଡ଼ ରଖିବା ସ୍ଥାନରେ ଦୁଇଖଣ୍ଡି ଇଟା ବା ପଥର ପଡ଼ି ରହିଥିବ ତଳେ ତୃଳଜାମ ବା ପକ୍କା କୂଅ ଥାଇପାରେ । ]

ସଣ୍ଡାଶି—ଦେ. ବି ( ସଂ. ସଣ୍ଡିଶ; ସନ୍ଦଂଶ )—ସଣ୍ଡୁଆଶି ( ଦେଖ )
Sandāsi ସାଁଡାଶି Sanduāsi ( See )

ସଣ୍ଡିଶ—ସଂ. ବି—ସନ୍ଦଂଶ; ସଣ୍ଡୁଆଶି—
Sandisa Pincers; pair of tongs.

ସଣ୍ଡୀନ—ସଂ. ବି ( ସମ୍=ସଙ୍ଗତ+ଡୀ ଧାତୁ=ଉଡ଼ିବା+ଭାବ.କ୍ତ)—
Sandina ପକ୍ଷୀମାନଙ୍କର ଉଡ଼ିବାର ପ୍ରକାରବିଶେଷ; ପକ୍ଷୀମାନଙ୍କର ଉଡ଼ି କରି ବୃକ୍ଷାଦିରେ ପତନ—A kind of bird's flight consisting of alighting on trees. [ ଦ୍ର—ପକ୍ଷୀମାନଙ୍କର ବସିବା ସ୍ଥାନରୁ ଉଡ଼ିବାକୁ ଉଦ୍ୟମର ନାମ ଡୀନ, ପ୍ରଥମେ ଉଡ଼ିବା କ୍ରିୟାର ନାମ 'ପ୍ରଡୀନ', ଆକାଶକୁ ଉଠିବା କ୍ରିୟାର ନାମ 'ଉଡ୍ଡୀନ' ଓ ଉଡ଼ି କରି ବୃକ୍ଷାଦିରେ ପତନ କ୍ରିୟାର ନାମ 'ସଣ୍ଡୀନ'—ବିଶ୍ୱକୋଷ. ଭରତ । ] ସଂ. ବିଣ. ପୁଂ—ଶୂନ୍ୟରୁ ବୃକ୍ଷାଦିରେ ବସିବା ଉଦ୍ଦେଶ୍ୟରେ ଉଡ଼ୁଥିବା (ପକ୍ଷୀ)—(bird) Flying from one place to a tree.

ସଣ୍ଡୁଆଶି—ଦେ, ବି ( ସଂ. ସନ୍ଦଂଶ; ସଣ୍ଡିଶ )—ବଣିଆ ଓ କମାର-
Sanduāsi ମାନଙ୍କର ଦ୍ୱିବାହୁକ ଯନ୍ତ୍ରବିଶେଷ (ଯାହାଦ୍ୱାରା;
ସାଁଡାଶି କୌଣସି ଦ୍ରବ୍ୟକୁ ଚାପିରେ କାମୁଡ଼ିଲା ପରି ଧରିହୁଏ
सँडसी ପାରେ—A pair of pincers or tongs; pincers. [ ଦ୍ର—ଚମୁଟାର ଅଗ୍ର ଦୁଇଟି ସିଧା; ମାତ୍ର ସଣ୍ଡୁଆଶିର ଅଗ୍ର ବଙ୍କା । ]

ସଣ୍ଡୁଆସ—ପ୍ରାଦେ· ( ଉତ୍ତର ବାଲେଶ୍ୱର ) ବି—ଖୁଲ ଘରରେ ବଥା ।
Sanduāsa ଥିବା ବତା ବାଡ଼ର କାମଡ଼ା—The pairs of split bamboos which keep the sloping rafters of a thatched roof in position.

ସଣ୍ଡେ—ବୈଦେ. ବି (ଇଂ· ସନ୍‌ଡେ )—ରବିବାର—
Sande সণ্ডে सण्डे Sunday.

ସଣ୍ଡେ ଇସ୍କୁଲ୍—ବୈଦେ. ବି ( ଇଂ. ସନ୍‌ଡେ ସ୍କୁଲ୍ )—ପାଦ୍ରୀମାନଙ୍କ
Sande iskul ଦ୍ୱାରା ଖ୍ରୀଷ୍ଟଧର୍ମ ଶିକ୍ଷାର୍ଥ ସ୍ଥାପିତ ରବିବାରର
সণ্ডে স্কুল सण्डे स्कूल ବିଦ୍ୟାଳୟ—Sunday school.
( ସଣ୍ଡେ ସ୍କୁଲ୍—ଅନ୍ୟରୂପ )

ସଣ୍ଢିଆ—ଦେ. ବି ( ସଂ. ସନ୍ଧି ଶଳାକ )—ଶଗଡ ଚକର ପହିରେ
Sandhiā ଥିବା ପୁଟିଖଣ୍ଡମାନଙ୍କୁ ପରସ୍ପର ସହିତ ଯୋଡ଼ି ଯୋଡ଼
ଯୋଡ଼ା କୀଲ ଦୃଢ଼ଭାବରେ ସଂଲଗ୍ନ କରାଇବାର ଘର ବା ସନ୍ଧିର
( ସଣ୍ଢିଅ ଶଳା—ଅନ୍ୟରୂପ ) ଭିତରେ ବଥାଯିବା କାଠର ଶୀଳ—Wooden pins wedged in between the tennons and mortices of the pieces ( arcs ) of the rim of a cart. [ ଦ୍ର—ଏହି ଶୀଳମାନଙ୍କ ଯୋଗୁ ପୁଟିଖଣ୍ଡମାନ ପରସ୍ପର ସହିତ ଦୃଢ଼-ସଂଲଗ୍ନ ହୁଏ । ]

ସତ୍—ସଂ. ବିଣ—[ ଅସ୍ ଧାତୁ=ହେବା+କର୍ତ୍ତୃ· ଅତ୍ ( ଶତୃ ); ସତ୍
Sat ଶବ୍ଦ ପୁଂ, ୧ମା· ୧ବ.]—ସନ୍ ଓ ସ୍ତ୍ରୀ—ସତୀ; କ୍ଲୀବ.
(ସତୀ—ସ୍ତ୍ରୀ) ସତ୍ )—୧ । ବିଦ୍ୟମାନ; ବର୍ତ୍ତମାନ—1. Exis-
( ଅସତ୍—ବିପରୀତ ) ting; existent. ୨ । ସତ୍ୟ—2. True. ୩ । ପ୍ରକୃତ—3. Actual; real. ୪ । ସାଧୁ—4. Honest; righteous. ୫ । ଉତ୍ତମ—5. Good. ୬ । ଉତ୍କୃଷ୍ଟ—6. Excellent. ୭ । ପ୍ରଶସ୍ତ—7. Wide. ୮ । ଧୀର—8. Patient. ୯ । ସୁନ୍ଦର; ଶୋଭନ—9. Beautiful. ୧୦ । ଚିର-ସ୍ଥାୟୀ—10. Permanent. ୧୧ । ମାନନୀୟ; ପୂଜ୍ୟ—11. Venerable; honourable. ୧୨ । ଜ୍ଞାନୀ; ବିଦ୍ୱାନ୍—12. Wise; learned. ବି—ବ୍ରହ୍ମ—God; the Divine Essence. [ ଦ୍ର—ସଂସ୍କୃତରେ 'ସତ୍' ଶବ୍ଦର ପୁଂଲିଙ୍ଗ ୧ମା. ଏକ ବଚନରେ 'ସନ୍' ଓ କ୍ଲୀବଲିଙ୍ଗରେ 'ସତ୍' ଓ ସ୍ତ୍ରୀଲିଙ୍ଗରେ 'ସତୀ' ହୁଏ । ଅନ୍ୟପଦ ସଙ୍ଗେ ସମାସ ବା ସନ୍ଧି ହେଲେ 'ସତ୍' ରୂପ ରହେ, କିନ୍ତୁ ପୁଂଲିଙ୍ଗରେ ଏକାକୀ ବ୍ୟବହାର ହେଲେ ସଂସ୍କୃତରେ ସନ୍ ଓ ଭାଷାରେ ସତ୍ ବ୍ୟବହାର ହୁଏ । ଯଥା—ସେ ଅଛି ସତ୍ ଲୋକ । ସତ୍ ଶବ୍ଦ ଦର୍ଶନଶାସ୍ତ୍ରର ଗୋଟିଏ ପାରିଭାଷିକ ଶବ୍ଦ । ଯାହା କାଳ୍ୟ ବିଦ୍ୟମାନ, ଯାହାର କ୍ଷୟ ବା ପରିବର୍ତ୍ତନ ଘଟେ ନାହିଁ ତାହା ସତ୍ । ଏହି ଶବ୍ଦ ଇଂରାଜିରେ Being ବା Reality ଅର୍ଥସୂଚକ; ଅର୍ଥାତ୍ ଯାହା ଅସ୍ତିତ୍ୱବାଚକ ( Existential ), ଯାହା ପ୍ରତି ନାସ୍ତିତ୍ୱ ଅର୍ଥ କଦାପି ଆରୋପ କରାଯାଇ ନ ପାରେ । ଶଙ୍କର-ବେଦାନ୍ତରେ ବ୍ରହ୍ମ ଏକା ସତ୍, ଅନ୍ୟ ସମସ୍ତ ଅସତ୍ । ସଂସାର ପରିବର୍ତ୍ତନଶୀଳ ଏବଂ ଯାହା ପରିବର୍ତ୍ତନଶୀଳ ତାହା ଅସତ୍ ( Non-being ) । 'ଓଁ ତତ୍ ସତ୍'ରେ 'ସତ୍' ଶବ୍ଦ ଏହି ଅର୍ଥରେ ବ୍ୟବହୃତ । ଏତଦ୍‌ବ୍ୟତୀତ 'ସତ୍'ର ଅନ୍ୟ ଗୋଟିଏ ଅର୍ଥ ମଧ୍ୟ ଅଛି । ଏହି ଅର୍ଥରେ ସତ୍ ଉତ୍ତମତାସୂଚକ (=The good) । 'ସାତ୍ତ୍ୱିକ' ଶବ୍ଦର ଉତ୍ପାଦକ 'ସତ୍' ଏହି ଅର୍ଥବୋଧକ । ସାଧାରଣ ଭାଷାରେ ଏହି ଅର୍ଥର ପ୍ରୟୋଗ ବିଶେଷଭାବରେ ଦୃଷ୍ଟ ହୁଏ । ଯଥା—ସତ୍ ଓ ଅସତ୍ ଲୋକ । ଭଗବାନ୍ ସଚ୍ଚିଦାନନ୍ଦ; ଏବଂ ସଚ୍ଚିଦାନନ୍ଦ ଶବ୍ଦରେ ସତ୍ ଶବ୍ଦ ଉଭୟ ଅର୍ଥରେ ନିଆଯାଇ ପାରେ । ସତ୍ (=all good) ଚିତ୍ ( all knowing ), ଆନନ୍ଦ ( all happy ) ଅଥବା ଭଗବାନ୍ ସତ୍ ( = being ), କାରଣ ସେ ନିତ୍ୟ, ଅନ୍ୟ ସମସ୍ତ ଅନିତ୍ୟ ଅତଏବ ଅସତ୍—ସନ୍ଦର୍ଭ ଲେଖକ ପ୍ରୋଫେସର୍ ହରିହର ଦାସ ଏମ୍. ଏ. । ]

ସତ୍କଥକ—ସଂ. ବିଣ. ପୁଂ (କର୍ମଧା)—ସଦ୍‌ବକ୍ତା—Eloquent;
Sat-kathaka fluent. ବି—ଯେ ଭଲ ବକ୍ତୃତା କରି ପାରନ୍ତି—A fluent or eloquent speaker.

ସତ୍କଥା—ସଂ·ବି (କର୍ମଧା)—୧। ଭଲ କଥା—1. Good words.
Sat kathā ୨ । ଧର୍ମଚର୍ଚ୍ଚା—2. Religious discussion.

ସତ୍କଦମ୍ବ—ସଂ. ବି—କେଳିକଦମ୍ବ; ଗିରିକଦମ୍ବ; କୁରୁମ ଗଛ—
Sat-kadamba Neuclea Cordifolia ( tree ).

ସତ୍ କବି—ସଂ. ବି(କର୍ମଧା)—ଶ୍ରେଷ୍ଠ ବା ଉତ୍ତମ କବି—
Sat-kabi An eminent or good poet.

ସତ୍ କର୍ତ୍ତବ୍ୟ—ସଂ.ବିଣ ପୁଂ.(ସତ୍+କୃ ଧାତୁ+କର୍ମ. ଯ)—ସତ୍କୃତ
Sat-karttabya ହେବାର ଯୋଗ୍ୟ—
(ସତ୍କର୍ତ୍ତବ୍ୟା—ସ୍ତ୍ରୀ) Fit to be tended or entertained.

ସତ୍ କର୍ତ୍ତା—ସଂ.ବିଣ. ପୁଂ—୧ । ସତ୍କର୍ମକର୍ତ୍ତା—1. Doing good
Sat kartta works. ୨ । ସତ୍କାରକାରୀ—2. Enter-
(ସତ୍କର୍ତ୍ତ୍ରୀ—ସ୍ତ୍ରୀ) taining (guests). ବି. ପୁଂ—ବିଷ୍ଣୁ
( ବିଷ୍ଣୁ ନାମୋକ୍ତ )—An epithet of Bishnu.

ସତ୍ କର୍ମ—ସଂ.ବି—୧। ବେଦବିହିତ କର୍ମ-1.Ceremonies or acts
Sat-karma prescribed by the Vedas. [ ବୃ—
ପ୍ରଶସ୍ତ କର୍ମ ପ୍ରତି ସତ୍ ଶବ୍ଦପ୍ରୟୋଗ କରାଯାଏ । ସଦ୍ଭାବ
ଓ ସାଧୁଭାବରେ ସତ୍ ଶବ୍ଦ ପ୍ରଯୁକ୍ତ ହୁଏ । ଯଜ୍ଞ, ତପସ୍ୟା
ଓ ଦାନ ସମ୍ବନ୍ଧୀୟ କର୍ମକୁ ସତ୍କର୍ମ ବୋଲାଯାଏ ।
ଅଶ୍ରଦ୍ଧାରେ ଯାହା ହୁତ, ଦତ୍ତ, ତପ୍ତ, ଓ କୃତ ହୁଏ ତାହାକୁ
ଅସତ୍ ବୋଲାଯାଏ--ଭଗବଦ୍ଗୀତା—୧୭ଅଧ୍ୟାୟ;୨୬-୨୮
ଶ୍ଳୋକ । ] ୨ । ସାଧୁ କାର୍ଯ୍ୟ; ଉତ୍ତମ କାର୍ଯ୍ୟ—
2. Good acts. ୩ । ପୁଣ୍ୟଜନକ କାର୍ଯ୍ୟ—3. Pious
act ; virtuous act. ୪ । ଧର୍ମ କାର୍ଯ୍ୟ—
4. Religious act. ୫ । ପରୋପକାର—
5.Charitable acts;good service rendered to others.

ସତ୍କାବ୍ୟ——ସଂ.ବି ( କର୍ମଧା )—ଯେଉଁ କାବ୍ୟ ଅଦୋଷଗୁଣ-
Sat-kābya ବିଶିଷ୍ଟ ଅଳଙ୍କାରଦ୍ୱାରା ଅଳଂକୃତ ଓ
ରସଯୁକ୍ତ (ବିଶ୍ୱକୋଷ)—An excellent literary production.

ସତ୍ କାଞ୍ଚନାର—ସଂ.ବି—ରକ୍ତ କଞ୍ଚନ ଗଛ—The red-flowered
Sat kānchanāra species of Kānchana tree.

ସତ୍କାଣ୍ଡ—ସଂ. ବି—୧ । ଚିଲପକ୍ଷୀ—1. Indian kite. ୨ ।
Sat-kāṇḍa ଶ୍ୟେନ; ଛଞ୍ଚାଣ (ବିଶ୍ୱକୋଷ)—2. Hawk.

ସତ୍କାର—ସଂ. ବି (ସତ୍+କୃ ଧାତୁ+ଭାବ. ଅ)—୧ । ସମାଦର;
Sat-kāra ପରିଚର୍ଯ୍ୟା—1. Showing respect;tending;
( ସତ୍କୃତ—ଅନ୍ୟରୂପ ) attending; respectful or
reverential treatment; welcome, entertainment. ୨ । ପୁରସ୍କାର—2. Reward. ୩ ।
ପୂଜା—3. Worship. ୪ । ଶବସଂସ୍କାର; ଶବ-
ଦାହାଦି କର୍ମ—4. The act of burning or
ସତ୍କୃତ-ବିଣ disposing of the dead body; funerals; obsequies.

ସତ୍କାର କରିବା—ଦେ. କ୍ରି—୧ । ଶବ ଦାହ କରିବା—
Sat-kāra kariba 1.To burn a dead body.
সত কাব কবা সৎকার করা

୨ । କୌଣସି ବ୍ୟକ୍ତିଙ୍କୁ ସାଦର ପରିଚର୍ଯ୍ୟା କରିବା—
2. To welcome or entertain a person.

ସତ୍କାରଣ—ସଂ. ବି ( କର୍ମଧା )—ବିଦ୍ୟମାନ କାରଣ—Existing
Satkāraṇa cause. ସଂ. ବିଣ (ବହୁବ୍ରୀହି)—ଯାହାର କାରଣ
ବିଦ୍ୟମାନ—Whose cause is in existence.

ସତ୍କାର୍ଯ୍ୟ—ସଂ. ବି (କର୍ମଧା)—ସତ୍କର୍ମ (ଦେଖ)—Satkarma
Sat-kārjya (See) ସଂ. ବିଣ ପୁଂ—(ସତ୍+କୃ ଧାତୁ
+କର୍ମ ଯ )—ସତ୍କର୍ତ୍ତବ୍ୟ ( ଦେଖ )—Sat-
(ସତ୍କାର୍ଯ୍ୟା—ସ୍ତ୍ରୀ. ବିଣ) karttabya (See)

ସତ୍କାର୍ଯ୍ୟ ବାଦ—ସଂ.ବି—ସାଂଖ୍ୟଦର୍ଶନ ମତରେ ଏ ଜଗତ୍ ସତ୍କାରଣ
Sat-kārjya bāda ବା ସତ୍ ପଦାର୍ଥରୁ ଉତ୍ପନ୍ନ ହୋଇଅଛି,
ଏହିରୂପ ମତବାଦ—(Sāmkhya Philosophy )
The theory that the universe has
been created out of some existing matter.

ସତ୍କୁଳ—ସଂ. ବି (କର୍ମଧା)—ସଦ୍ବଂଶ; ଉଚ୍ଚ ବଂଶ—
Sat-kula Noble family, respectable family.

ସତ୍କୁଳଜ—ସଂ. ବିଣ. ପୁଂ—ସଦ୍ବଂଶଜାତ—Born of a
Sat-kulaja high or noble family, respectable.
ସତ୍କୁଳଜାତ
ସତ୍କୁଳପ୍ରସୂତ } —ଅନ୍ୟରୂପ
ସତ୍କୁଳୀନ
(ସତ୍କୁଳଜା, ସତ୍କୁଳଜାତା, ସତ୍କୁଳପ୍ରସୂତା, ସତ୍କୁଳୀନା—ସ୍ତ୍ରୀ)

ସତ୍କୃତ—ସଂ. ବିଣ ( ସତ୍+କୃ ଧାତୁ+କର୍ମ. ତ )—୧
Sat-kruta ସମ୍ମାନିତ; ସମାଦୃତ—1. Respected;
( ସତ୍କୃତା—ସ୍ତ୍ରୀ ) honoured; hospitably.
entertained. ୨ । ପୁରସ୍କୃତ—2 Rewarded. ୩ । ପୂଜିତ—3. Worshipped; revered.
ବି ( ବିଷ୍ଣୁନାମୋକ୍ତ ) ବିଷ୍ଣୁ—An epithet of Bishṇu.

ସତ୍କୃତି—ସଂ. ବି (ସତ୍+କୃ ଧାତୁ+ଭାବ.ତି)—ସତ୍କାର (ଦେଖ)
Sat-kṛuti Sat-kāra (See)

ସତ୍କ୍ରିୟ—ସଂ. ବିଣ. ପୁଂ ( ବହୁବ୍ରୀହି; ସତ୍+କ୍ରିୟା )—୧ ।
Sat-kriya ସତ୍କର୍ମକାରୀ—1. Doing good or
(ସତ୍କ୍ରିୟା—ସ୍ତ୍ରୀ) pious acts. ୨ । ଧାର୍ମିକ—
2. Virtuous; pious.

ସତ୍କ୍ରିୟା—ସଂ. ବି (କର୍ମଧା; ସତ୍+କ୍ରିୟା)—୧ । ସତ୍କର୍ମ (ଦେଖ)
Sat-kriyā 1. Sat-karma (See) ୨ । ସତ୍କାର
(ଦେଖ)—2. Satkāra (See) [ ଉ—ଲୋକ
ଦେଖାଇ କରନ୍ତେ ଯୋଗ୍ୟତା, ସତ୍କ୍ରିୟାରୁପ୍ତ ଏ
ରୂପକଲ୍ପଲତା—ରାଧାନାଥ, ଚନ୍ଦ୍ରିକା । ] ସଂ. ବିଣ
ସ୍ତ୍ରୀ—ସତ୍କ୍ରିୟାର ସ୍ତ୍ରୀଲିଙ୍ଗ—Feminine of Sat-kriya.

**ସତ୍ ଚାକର**—ଦେ. ବି—୧ । ନିମକହଲାଲ ଭୃତ୍ୟ—1. A servant
Sat-chākara true to his salt. ୨। ଯେଉଁ ଚାକର
বিশ্বাসী চাকর नमकहलाल नौकर ସ୍ୱାମୀଙ୍କ ଧନାଦି ଚୋରି କରେ ନାହିଁ—2. Honest servant.

**ସତ୍ ନାରଣ**—ଗ୍ରା. ବି—ସତ୍ୟନାରାୟଣ (ଦେଖ)
Sat-nārana Satyanārāyana (See)
(ସତ୍ ନାରାୟଣ—ଅନ୍ୟରୂପ)

**ସତ୍ ପତ୍ର**—ସଂ. ବି—ପଦ୍ମର ନବଦଳ (ଶବ୍ଦଚନ୍ଦ୍ରିକା)—
Sat-patra The new petals of a lotus.

**ସତ୍‌ପଥ**—ସଂ. ବି—୧ । ସୁପଥ; ସୁରାସ୍ତା; ସନ୍ମାର୍ଗ; ଉତ୍ତମ ମାର୍ଗ—
Sat-patha 1. A good road. ୨। ସଦାଚରଣ—2. Good or virtuous practice or conduct.

**ସତ୍(ତ)ପଥୀ(ସ୍ତୀ)**—ଗ୍ରା. ବି (ସଂ. ଶତପଥୀ)—ବ୍ରାହ୍ମଣମାନଙ୍କର
Sat-(ta)pathī(stī) ବଂଶୋପାଧିବିଶେଷ—A family-title of Brāhmans.

**ସତ୍ ପରାମର୍ଶ**—ସଂ. ବି(କର୍ମଧା)—ଉତ୍ତମ ବା ମଙ୍ଗଳମୟ ବା ସମୟୋ-
Sat-parāmarsa ପଯୋଗୀ ପରାମର୍ଶ—Good counsel; beneficial or opportune advice.

**ସତ୍ ପଶୁ**—ସଂ. ବି—ଯଜ୍ଞୀୟ ପଶୁ; ଯଜ୍ଞ ବଳି—
Sat-pasu A victim for a Vedic sacrifice.

**ସତ୍ ପାତ୍ର**—ସଂ. ବି (କର୍ମଧା; ସତ୍+ପାତ୍ର)—୧ । ଦାନଗ୍ରହଣ
Sat-pātra କରିବାର ଉପଯୁକ୍ତ ବ୍ୟକ୍ତି—1. A person deserving of charity or gift. ୨ । (କନ୍ୟାକୁ) ବିବାହ କରିବାର ଉପଯୁକ୍ତ ବ୍ୟକ୍ତି—2. A person deserving to be given a bride. ୩। ଶୁଦ୍ଧ ପାତ୍ର—3. A holy or pure pot or receptacle. ୪ । ସଚ୍ଛିଷ୍ୟ—4. A good and dutiful disciple.

**ସତ୍ ପିତା**—ସଂ. ବି (କର୍ମଧା; ସତ୍+ପିତା)—ପୁତ୍ର ପ୍ରତି ଦୟାଳୁ
Sat-pitā ଓ ଉତ୍ତମ ବ୍ୟବହାରକାରୀ ପିତା—A good and kind father.

**ସତ୍ ପିର୍**—ଗ୍ରା. ବି—୧ । ସତ୍ୟପିର (ଦେଖ)—1. Satyapira
Sat-pir (See) ୨ । (ପୁଂ) ଲୋକଙ୍କ ଦିଆଯିବା ନାମ—2. A name given to males.

**ସତ୍ ପୁତ୍ର**—ସଂ. ବି (କର୍ମଧା; ସତ୍+ପୁତ୍ର)—ସୁପୁତ୍ର—
Sat-putra A good and dutiful son.
(ସତ୍ ପୁତ୍ରୀ—ସ୍ତ୍ରୀ)

**ସତ୍ ପ୍ରତିଗ୍ରହ**—ସଂ. ବି (କର୍ମଧା)—ସାଧୁଜନଙ୍କଠାରୁ ଦ୍ରବ୍ୟର ଗ୍ରହଣ—
Sat-pratigraha Acceptance of gifts from a good person.

**ସତ୍ ପ୍ରତିଜ୍ଞା**—ସଂ. ବି (କର୍ମଧା)—ସତ୍ କାର୍ଯ୍ୟ କରିବାପାଇଁ ସଂକଳ୍ପ—
Sat-pratijñā Vow to do a good act.

**ସତ୍ ପ୍ରତିପକ୍ଷ**—ସଂ. ବି (କର୍ମଧା)—୧ । ତୁଲ୍ୟ ପ୍ରତିଯୋଗୀ—1. A
Sat-pratipaksha suitable rival. ୨। (ନ୍ୟାୟଶାସ୍ତ୍ର) ସାଧାରଣ ବ୍ୟାପ୍ତିବିଶିଷ୍ଟ ପକ୍ଷ; ପ୍ରକୃତ ବା ଯୁକ୍ତିଯୁକ୍ତ କାରଣ ଉପରେ ସ୍ଥାପିତ ଅନୁମାନ—2. (Logic) A guess based on reasoning; reasonable proposition

**ସତ୍ ପ୍ରସଙ୍ଗ**—ସଂ.ବି(କର୍ମଧା)—ଉତ୍ତମ ବା ଧର୍ମବିଷୟକ କଥାବାର୍ତ୍ତା—
Sat-prasanga Religious topic or discussion.

**ସତ୍ ଫଳ**—ସଂ. ବି (କର୍ମଧା; ସତ୍+ଫଳ)—୧ । ସୁଫଳ—
Sat-phala 1. Good result. ୨। (ବହୁବ୍ରୀହି; ବୈଦ୍ୟକ) ଡାଳିମ୍ବବୃକ୍ଷ—2. Pomegranet tree.

**ସତ୍ ବ୍ୟକ୍ତି**—ଦେ. ବି (ସମସ୍ତ ପଦ ହେଲେ ସଦ୍ବ୍ୟକ୍ତି ହେବ)—
Sat-byakti ୧ । ସଚ୍ଚରିତ୍ର ବ୍ୟକ୍ତି; ସାଧୁବ୍ୟକ୍ତି—1. Good
(ସତ୍ ମନୁଷ୍ୟ, ସତ୍ ଲୋକ—ଅନ୍ୟରୂପ) man. ୨ । ଯେ
সাধুলোক सद्‌व्यक्ति ଉତ୍କୋଚ ଆଦି ନିଏ ନାହିଁ—2. Honest.

**ସତ୍(ତ)ରଙ୍ଗ(ଙ୍କି,ଞ୍ଜ,ଞ୍ଜି)**—ଦେ. ବି—ସତରଞ୍ଜ (ଦେଖ)
Sat(ta)ranga(ṅki)ñj,ñji Sataranga (See)

**ସତ୍ ସଂକଳ୍ପ**—ସଂ. ବି—ସତ୍ ପ୍ରତିଜ୍ଞା—Promise or determi-
Sat samkalpa nation to do good; good resolution.
(ସତ୍‌ସଙ୍କଳ୍ପ—ଅନ୍ୟରୂପ)

**ସତ୍ ସଂସର୍ଗ**—ସଂ. ବି—ସାଧୁ ବ୍ୟକ୍ତିଙ୍କ ସହବାସ—
Sat samsarga Mixing with good people.
(ସତ୍ ସଂସର୍ଗ—ବିଣ)

**ସତ୍ ସଙ୍ଗ**—ସଂ. ବି—୧ । ସାଧୁସଙ୍ଗ; ସଜ୍ଜନ ସହବାସ; ଉତ୍ତମ ବ୍ୟକ୍ତିର
Sat-sanga ସଙ୍ଗ—1. Mixing in good company. ୨ । ଧର୍ମ ଚର୍ଚ୍ଚା କରିବା ବ୍ୟକ୍ତିମାନଙ୍କର ସହବାସ—2. Passing time with pious and religiously-minded persons. ୩ । ଅନେକ ଲୋକ ମିଳିତ ହୋଇ ପାରମାର୍ଥିକ ବିଷୟ ଚର୍ଚ୍ଚା କରିବା—3. Discussion on religious subjects in
সৎসঙ্গ Company. ଦେ. ବି—ଅଣାକାର ଓ ଅଲେଖ ଅବ
सत्‌संग ବିଷୟରେ ପାଞ୍ଚ ଜଣ ବସି ଚର୍ଚ୍ଚା କରିବା ସଭା—A meeting where people assemble and talk about a popular form of religion.
[ଦ୍ର—ସଙ୍ଗ ତଳେ ନୋଟ ଦେଖ ।]

**ସତ୍ ସଙ୍ଗୀ**—ସଂ. ବିଣ. ପୁଂ—୧ । ଯେଉଁ ବ୍ୟକ୍ତି ସତ୍ ସଙ୍ଗ କରେ—
Sat-saṅgi 1 One who does 'Sat saṅga'. ୨।ସଚ୍ଚରିତ୍ର
(ସତ୍ ସଙ୍ଗିନୀ—ସ୍ତ୍ରୀଲିଙ୍ଗ) ସହଚର—2. A good and
সৎসঙ্গী सत संगी virtuous companion.

**ସତ୍ ସାର**—ସଂ. ବି (ବହୁବ୍ରୀହି)—ଉତ୍ତମ ସାରଯୁକ୍ତ—Having
Sat-sāra good essence or pith. ବି—୧ । ବୃକ୍ଷ ବିଶେଷ—1. Name of a tree. ୨ । ଚିତ୍ରକାରୁ

(ଦେଖ)—2. Chitāpāru. (See) ୩ । କବି—3. Poet. ୪ । ଚିତ୍ରକର—4. A painter; an artist.

**ସତ୍ ସାହସ**—ଦେ· ବି ( କର୍ମଧା )—୧ । ସତ୍କାର୍ଯ୍ୟ କରିବା ବିଷୟରେ ନିର୍ଭୀକତା—1. Courage to do good things. ୨ । ସତ୍ୟ କହିବା ବିଷୟରେ ନିର୍ଭୀକତା—2. Courage of one's convictions; courage to. speak out truth or one's feelings.
Sat-sāhasa
সৎসাহস
सत् साहस

**ସତ୍ ସେବା**—ସଂ. ବି.—(ଷଷ୍ଠୀ ତତ୍)—ସାଧୁଜନ ପ୍ରଭୃତିଙ୍କ ସେବା—Serving under a good person; attending on a good man.
Sat sebā

**ସତ**—ଦେ· ବି. (ସଂ—ସତ୍ୟ)—୧ । ସତ୍ୟ; ଶପଥ; ପ୍ରତିଜ୍ଞା—1. Promise; truth. (ଉ—ଆପଣା ପ୍ରତିଜ୍ଞା ରଖିବି, (ମିତ୍ର—ବିପଦାତ) ତୁମ୍ଭର ସତ ଛଡ଼ାଇବି । ଭୂପତି. ପ୍ରେମ ପଞ୍ଚାମୃତ ।) ୨ । ସତ୍ୟକଥା—2. Truth. ୩ । ବିଶ୍ୱାସ; ଅସ୍ଥା—3. Faith ୪ । ସତ୍ୟଯୁଗ—4. The Golden Age of truth; the millenium ୫ । ସତ୍ତ୍ୱଗୁଣ (ଦେଖ)—5. Sattwa guṇa. (See) ବିଣ—୧ । ସତ୍; ସାଧୁ—1. Honest. (ଉ—ଅମ୍ଭର ମନ ଯେବେ ସତ, ଯାଇଛି ଗୋବିନ୍ଦ ସଙ୍ଗତ । ଭୂପତି ପ୍ରେମପଞ୍ଚାମୃତ ।) ୨ । ସତ୍ୟବାଦୀ—2. Truthful. ୩ । ଯାହା ମିଥ୍ୟା ନୁହେଁ; ପ୍ରକୃତ—3. True. (ଉ—ତରଙ୍ଗ ସୂତ୍ର ଯୋଗ ସତ ସ୍ୱରୂପା । ଉଞ୍ଜ. ବୈଦେହୀଶ-ବିଳାସ । ) ୪ । ପ୍ରତିଜ୍ଞାପାଳକ—4 True to promise. ୫ । ବିଶ୍ୱାସୀ—5. Faithful. ଦେ· ଅ—ସିନା ( ନିଶ୍ଚୟାର୍ଥକ ); ନିଶ୍ଚେ—Certainly. (ଉ—ପଣ୍ଡିତ ହୋଇ ଦୂରରେ ଥିଲେ ତେତେ ଭକତ ଥିବାର ସତ । କବିସୂର୍ଯ୍ୟ. ବିଶୋଷି ଭମ୍, ଫ. ଗୀତ ।) [ ଦ୍—ଏ କଥା ଯେତେ ସତ ତେତେ (ତୁମକୁ) ମିତ୍ର—ଦେ. ବାକ୍ୟ—
Sata
সত্য
सत्य
সৎ
सत्, सच्चा

କୌଣସି ଅସମ୍ଭବ ବା ଅବିଶ୍ୱସନୀୟ ଘଟନାକୁ ସ୍ୱଚକ୍ଷୁରେ ଦେଖିଥିବା ବ୍ୟକ୍ତି ଅନ୍ୟ ବ୍ୟକ୍ତିମାନଙ୍କ ଆଗରେ ବର୍ଣ୍ଣନା କଲାବେଳେ କହିବା ବାକ୍ୟ; ଅର୍ଥାତ୍ ଏହା ମୁଁ ଦେଖିଛି ବୋଲି ମୁଁ ଏ କଥା ସତ୍ୟ ବୋଲି ଜାଣିଛି, କିନ୍ତୁ ତୁମ୍ଭେମାନେ ଏହା ଦେଖି ନାହିଁ ବୋଲି ଏହାକୁ ସତ୍ୟ ମଣିବ ନାହିଁ ।]

**ସତ ଉପୁଜିବା**—ଦେ. ବି—ପୃଥିବୀରେ ସତ୍ୟଯୁଗ ଆବିର୍ଭୂତ ହେବା—The appearance or dawning of the millenium or the Golden Age in the world. [ଉ—ତରକି ଥିବୁ ତେଏବକୁ, ଚଉଦ ପନର ଦେହ ନ ରହିବେ, ସତ ଉପୁଜିବ ସତରକୁ । ମାଳିକା ପ୍ରବଚନ । ]
Sata upujibā
সত্য উপজাত হওয়া
सत् युगका आगमन

**ସତ କଥା**—ଦେ. ବି. (ସଂ. ସତ୍ୟ+କଥା)—୧ । ସତ୍ୟ ବାକ୍ୟ—1. True words. ୨ । ପ୍ରକୃତ ଘଟନା; ପ୍ରକୃତ ବିଷୟ—2. Actual fact.
Sata kathā
সত্যি কথা
सच्चि बात

**ସତ କରିବା**—ଦେ· କ୍ରି—୧ । କୌଣସି ବାକ୍ୟରେ ବା କଥାରେ ବିଶ୍ୱାସ ବିମ୍ବା ଆସ୍ଥା ସ୍ଥାପନ କରିବା; ସତ ମଣିବା—1. To believe a thing to be true. [ଉ—ବାହୁକ ଶୁଣିଣ ବୋଇଲେ ଏହା ମୁହିଁ, ନ ଗଣିଲେ କେବେ ସତ କରିବ ନାହିଁ । କୃଷ୍ଣସିଂହ. ମହାଭାରତ. ବନ ।] ୨ । ସତ୍ୟ କରିବା; ଧର୍ମତଃ ପ୍ରତିଜ୍ଞା କରିବା—2 To promise or vow to do a thing solemnly.
Sata karibā
বিশ্বাস করা
सच मानना
সত্যি করা
सत् करना

**ସତ୍ୟ କହିବା**—ଦେ. କ୍ରି—ସତ୍ୟ କଥା କହିବା—To speak the truth. [ଉ—ଶପଥ ଶତ ଅଛି କହିବଟି ସତ । କବିସୂର୍ଯ୍ୟ, ବିଶୋଷିଭମ୍. ଶ ଗୀତ ।]
Satya kahibā
সত্যি বলা
सच कहना

**ସତ କହିଲା**—ଦେ. ବାକ୍ୟ—କୌଣସି ବ୍ୟକ୍ତି ଛିଙ୍କିଲା ବେଳେ ନିକଟସ୍ଥ ବ୍ୟକ୍ତିଙ୍କର ଉଚ୍ଚାରିତ ପଦ; ସତ୍ୟଂଜୀବ—An expression uttered by person present when another person sneezes.
Sata kahilā
সত্যি সত্যি
सत जीव

**ସତକା(କୁ) ସତ**—ଦେ· କ୍ରି ବିଣ—ପ୍ରକୃତରେ; ବାସ୍ତବରେ—Actually; truly. [ଉ—ସତକୁ ସତ ରାବଣ ଯାହା କହିଥିଲା ସେଇୟା ହେଲା । ଗୋଳକଣ୍ଠ ଦାଶ ପିଲାଙ୍କ ରାମାୟଣ ।]
Satakā(ku) sata
সত্যি সত্যি
सचका सच

**ସତ ଘଣ୍ଟା ବାଜିଲା**—ଦେ· ବାକ୍ୟ—ଲୋକେ ବସି କଥାବାର୍ତ୍ତା ହେଉଥିବା ବେଳେ କୌଣସି ପ୍ରସଙ୍ଗ ବା କଥା କୌଣସି ଲୋକ ମୁହଁରୁ ବାହାରି ପଡ଼ିବା ବେଳେ ଯେବେ ନିକଟରେ ଘଣ୍ଟା ବା ଘଣ୍ଟାର ଧ୍ୱନି ଶୁଣାଯାଏ ତେବେ ଲୋକେ ଏହା କହି ଥାଆନ୍ତି; ଅର୍ଥାତ୍, ଏ କଥାର ସତ୍ୟତା ସମ୍ବନ୍ଧେ 'ଘଣ୍ଟା ବାଜିବା' ସାକ୍ଷ୍ୟ ଦେଉଅଛି—An expression meaning 'The truth of my saying is testified to by the sounding of the bell at this moment'.
Sata ghaṇṭā bājilā
সত্য ঘণ্টা বাজল
सचका घण्टा बजा

**ସତ ଚାଳିଶ(ଶି)**—ଦେ· ବି ଓ ବିଣ ( ସଂ. ସପ୍ତ ଚତ୍ୱାରିଂଶତ୍ )—ଚାଳିଶରୁ ଅଧିକ ସାତ; ୪୭—Fortyseven.
Sata chālisa(si)
সাতচল্লিশ
सैंतालिस

**ସତତ**—ସଂ. ବିଣ—ସନ୍ତତ; ନିରନ୍ତର—Constant; uninterrupted. କ୍ରି. ବିଣ (ସମ୍ ଉପସର୍ଗ+ତନ୍ ଧାତୁ=ବିସ୍ତାର କରିବା+ତ)—୧। ସର୍ବଦା—1. Always. ୨ । ନିରନ୍ତର—2. Incessantly.
Satata

**ସତତ ଜ୍ୱର**—ସଂ. ବି—ସନ୍ତତ ଜ୍ୱର ( ଦେଖ ) Santata jwara ( See)
Satata jwara

**ସତ ତିରିଶ**—ଦେ. ବ (ସଂ. ସପ୍ତ ତ୍ରିଂଶତ୍)—ତିରିଶରୁ ଅଧିକ ସାତ, Sata tirisa ୩୭—Thirty seven. [ଭୂ—ସତ ତିରିଶେ ସାଇଁ ତ୍ରିଶ ଜଣେ ଜାଣ, ଶରଣାଗତ ପାଳ ଗୁଣ । ପ୍ରାଚୀ. सैंतिस ମୁଣ୍ଡଭମ. ଚନ୍ଦ୍ରୋଦୟ ।]

**ସତତ୍ତ୍ୱ**—ସଂ. ବି. (ସ=ସମାନ+ତତ୍ତ୍ୱ=ପ୍ରକୃତି)—ପ୍ରକୃତି; ସ୍ୱଭାବ—Satattwa Nature; tendency; natural temperament.

**ସତନ୍ତର**—ପ୍ରାଦେ· (ଲରିଅ) ବଣ—ସ୍ୱତନ୍ତ୍ର—Satantara Separate.

**ସତପଥି(ଥୀ, ସ୍ତି, ସ୍ଥି)**—ସ୍ତ୍ରୀ. ବ—ସତ୍ପଥୀ (ଦେଖ) Satapati(thi, sti, sthi) Sat-pathi (See)

**ସତନାମି**—ଦେ. ବି—ଛତିଶଗଡ଼ର ଚମାର ଜାତୀୟଲୋକଙ୍କ କଥିତ Sata nami ଛତିଶଗଡ଼ି ବା ଲରିଅ ଭାଷାର ରୂପାନ୍ତର—সতনামী Chhatisgari or Laria language सतनामी spoken by the 'Chamāra's in Chhatisgarh.

**ସତ ଫଳା(ଳେ)ଇ କହିବା**—ଦେ. କ୍ରି—କହିବା କଥା ସତ୍ୟ ବୋଲି Sata phala(le)i kahiba ଲୋକଙ୍କ ବିଶ୍ୱାସ କରାଇ সত্য ফলিয়ে বলা କହିବା—To speak a thing, so as सचके जैसा कहना to make people believe it to be true.

**ସତ ଫଳା(ଳେ)ଇବା**—ଦେ. କ୍ରି—୧ । ମିଛ କଥାକୁ ସତ୍ୟ ବୋଲି Sata phala(le)iba ବିଶ୍ୱାସ କରାଇ କଥା କହିବା—সত্য ফলান 1. To depict a false or untune सचके जैसा कहना matter as if it were true. ୨ । ଅପଣାର କଥାକୁ ସତ୍ୟ ରୂପେ ପ୍ରମାଣିତ କରାଇବା—2. To prove one's words to be true; to substantiate one's sayings.

**(ମୋର) ସତ ବଳା(ଳେ)ଇବା**—ଦେ.ବି—କୌଣସି ବିଷୟର ସତ୍ୟତା Sata bala(le)iba ଉପରେ ବିଶ୍ୱାସ ସ୍ଥାପନ—1. Belief in (ସତ ବଳିବା—ଅନ୍ୟରୂପ) the truth of a thing. ୨ । সত্য বুঝা (କୌଣସି ବ୍ୟକ୍ତିଠାରେ) ଆସ୍ଥା ସ୍ଥାପିତ ହେବା—2. सच समझना Having confidence on a person. ୩ । সত্য নির্ভর করা କୌଣସି କାର୍ଯ୍ୟ କରିବାକୁ ସାହସ ହେବା—3. सच स्थापित होना Having the boldness to do a সাহস হওয়া thing; venturing to do a thing. हिम्मत होना (ଯଥା—ଉଡ଼ଥିଲି ପିଲିଟାକୁ ସାତ ସମୁଦ୍ର ଲଙ୍ଘା ପାରକୁ मन लागा ପଠାଇବାକୁ ମୋର ସତ ବଳୁ ନାହିଁ ।) ୪ । ମନ इच्छा होना ହେବା; ଇଚ୍ଛା ଜାତ ହେବା—4. Desire to do a thing. [ଭୂ—ଏ ସତ୍ତ ତୋର ନ ଥିଲା ଗୋ । ପ୍ରୋଷିଥିବା ପକ୍ଷୀ ମାରିବାକୁ ଟୋର ସତ କେମନ୍ତେ ବଳିଲା ଗୋ—ଉପ. ଲବଣ୍ୟବତୀ ।]

**ସତ ମଣିବା**—ଦେ. କ୍ରି—ସତ୍ୟ ବୋଲି ବିଶ୍ୱାସ କରିବା—To believe a thing to be true. Sata maniba সত্য বুঝা सच समझना

**ସତମସ**—ଦେ. ବଣ (ସଂ, ସ+ତମସ୍)—୧ । ଅନ୍ଧକାରଯୁକ୍ତ—Satamasa 1. Dark. ୨ । ରାହୁଗ୍ରହଯୁକ୍ତ—2. Overআঁধারে ঢাকা shadowed by the planet Rahu. सान्धकार [ଭୂ—ସତ ମଙ୍ଗଳ ସେ ଯେଉଁ ଉପ୍ରଙ୍କେ, ସତମସ ଚନ୍ଦ୍ରରେ ବସିଲେ । ଉପ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।]

**ସତ ମିଛ**—ଦେ.ବଣ (ସହଚର ଶବ୍ଦ; ସଂ. ସତ୍ୟ, ମିଥ୍ୟା)—୧ । ସତ୍ୟ Sata michha ଓ ମିଥ୍ୟା—2. True and false. সত্যিমিথ্যা ୨ । ପ୍ରକୃତ ଓ ଅପ୍ରକୃତ—2. Real and unreal. सच्चाझूटा ବି—୧ । ସତ କଥା ଓ ମିଥ୍ୟା କଥା—2. Truth সত্যি মিথ্যা and falsehood. ୨ । ପ୍ରକୃତ ବିଷୟ ଓ ଅପ୍ରକୃତ सचझूठ ବିଷୟ—2. Real matter and unreal matter.

**ସତ ମିଛ ଲଗା(ଗେ)ଇ କହିବା**—ଦେ· କ୍ରି—ଚୁଗୁଲି କରିବା; Sata michha laga(ge)i kahiba କୌଣସି ବ୍ୟକ୍ତି ନାମରେ চুগুলি কাটা କେତେକ ସତ୍ୟ ଓ କେତେକ ମିଥ୍ୟା କଥା चुगुली खाना ମିଶାଇ ଅନ୍ୟ ଆଗେ କହିବା—To backbite a person.

**ସତ ଯତ**—ଦେ. ବଣ—ଯତ ସତ (ଦେଖ)—Jata sata (See) Sata jata [ଭୂ—ସତ ଯତ ପ୍ରାଣୀମାନେ ଜଳରେ ବହନ—ପ୍ରାଚୀ. ଶ୍ରୀଗୁରୁଭକ୍ତିଗୀତା ।]

**ସତର**—ଦେ. ବ ଓ ବଣ (ସଂ. ସପ୍ତଦଶ)—ଦଶରୁ ଅଧିକ ସାତ Satara ସଂଖ୍ୟା; ୧୭—Seventeen. ବଣ—ବହୁ ସଂଖ୍ୟକ—সতের सतरह Many.

**ସତର ଉତର ଶହେ**—ଦେ. ବି—ଏକଶତ ସତର; ୧୧୭—One Satara utara sahe hundred and seventeen; একশ সতের एकसौ सतरह 117.

**ସତର ଉତର ଦୁଇ ଶହ**—ଦେ. ବି—ଦୁଇଶ ସତର; ୨୧୭—Satara utara dui saha Two hundred and দুশ সতের seventeen; 217. [ଦ୍ର—ଏହିପରି ସତର दोसौ सतरह ଉତର ତିନି ଶହ, ଚାରି ଶହ ଆଦି ହୋଇ ପାରେ ।]

**ସତରକ**—ଦେ. ବଣ (ସଂ. ସତର୍କ)—ସତର୍କ (ଦେଖ)—Satarka Sataraka (See) ଦେ. ବ (ସଂ. ସପ୍ତଦଶ)—ସତର সতেরর ঘর ଘର ପଣିକିଆର ୧୦ ଖଣ୍ଡ—Arithmetical सतरहकी पट्टी tables from 17×1 to 17×10.

**ସତର କଥାରେ ସତୀ ଭୂଲେ**—ଦେ. (ପ୍ରବଚନ)—୧ । ସ୍ୱାମୀଙ୍କ ପ୍ରତି Satara kathare sati bhule ଭକ୍ତିମତୀ ସ୍ତ୍ରୀ ଲୋକମୁଖରୁ ସ୍ୱାମୀଙ୍କ ସମ୍ବନ୍ଧରେ (ସତର) ନାନା ଦୁର୍ନାମ ଶୁଣିଲେ ତାଙ୍କ ସ୍ଥିର ମନ ମଧ୍ୟ ଭୁଲିଯାଏ ବା ସ୍ୱାମୀଙ୍କ ପ୍ରତି ବିମୁଖ ହୁଏ—1. Even a devoted woman becomes prejudiced against her husband on hearing many bad reports against her husband. ୨ । ସ୍ୱାମୀଙ୍କ ପ୍ରତି ଏକାନ୍ତ ଅନୁରକ୍ତା ସ୍ତ୍ରୀକୁ ସତର (ଅର୍ଥାତ୍ ନାନା ପ୍ରକାରେ ବା ବହୁବାର) ପ୍ରଲୋଭନଯୁକ୍ତ କଥା କହିଲେ

ସେ ମଧ୍ୟ ସଙ୍ଗାବ୍ୟରୁ ବିଚଳିତା ହୁଏ—2. Even a chaste woman is led astray from the path of virtne by many honeyed and tempting words.

**ସତରଙ୍ଗ(ଙ୍ଗି, ଞ୍ଜ, ଞ୍ଜି)**—ବୈଦେ. ବି ( ଅ. ଶତ୍ରଞ୍ଜୀ )—ଚତୁ-
Sataranga(ṅgi, ñja. ñji) ରଙ୍ଗ ପାଲି ଘର ଘର ଘର
সতরঞ্জি **सतरंजी** ହୋଇ ବୁଣା ହୋଇଥିବା ମୋଟା ସୂତାର
( ସତର[ରେ]ଙ୍ଗି—ଅନ୍ୟରୂପ ) ବିଛଣା; ଦରି—Durry; a carpet made of cotton thread. ଦେ. ବି
সতরঞ্জ (ସ.ଚତୁରଙ୍ଗ)—(ଏହି ଶବ୍ଦରୁ ଆ. ଓ ଫା, ସାଦ୍‌ରଞ୍ଜ୍ ଶେଳ
**सतरंज सतरंज** ଉତ୍ପନ୍ନ ହୋଇଅଛି; ଅରବୀ ଭାଷାରେ ସତ୍—
୧୦୦ ଲୋକଙ୍କୁ ଯେ ରଞ୍ଜେ ବା ଆନନ୍ଦିତ କରାଏ ( ରାଜା ରାଧାକାନ୍ତଦେବଙ୍କ ଶବ୍ଦାର୍ଥକୋଷ)—ଚତୁରଙ୍ଗ ବା ନ୍ୟାୟବଳ ଖେଳ—The game of chess. [ ଦ୍ର—ସତରଞ୍ଜି ଖେଳରେ ଉଭୟ ପକ୍ଷରେ ଚତୁରଙ୍ଗ ସେନା ( ହସ୍ତୀ, ଅଶ୍ୱ, ରଥ ଓ ପଦାତି )ଙ୍କୁ ନେଇ ମନ୍ତ୍ରୀ ଓ ରାଜା, ଦୁଇ ଜଣଙ୍କ ମଧ୍ୟରେ ଯୁଦ୍ଧର ଅନୁକରଣରେ ଖେଳ ହୁଏ । ଏହି ଖେଳରେ ୬୪ଟି ଘର ବା କୋଠି କଟା ହୋଇଥିବ ପାଲି ବା ପଟା ( chess board ) ଉପରେ ରାଜା ମନ୍ତ୍ରୀ ଓ ଚତୁରଙ୍ଗବଳରୂପ ଗୋଟିମାନଙ୍କୁ ଦୁଇ ଜଣ ଖେଳାଳି ଚାଳନ କରି ଖେଳନ୍ତି । ପ୍ରତି ଖେଳାଳିଙ୍କ ଗୋଟିର ରଙ୍ଗ ଭିନ୍ନ ଭିନ୍ନ କରାଯାଇଥାଏ । ପ୍ରତି ପକ୍ଷରେ ଜଣେ ରାଜା ଓ ତାହାଙ୍କ ବଳ, ଯଥା—ଜଣେ ମନ୍ତ୍ରୀ ( ଫା, ଦାବା, ଇଂ. Queen ), ଦୁଇଟି ହାତୀ, (ଫା. ଫିଲ୍, ଇଂ. Bishop), ଦୁଇଟି ଅଶ୍ୱ (ଫା· ଘୋଡ଼ା, ଇଂ Knight). ଦୁଇଟି ରଥ ବା ନୌକା ( ଫା· କସ୍ତି ବା ରୋଖ୍, ଇଂ, Rook or castle) ଏବଂ ଅଠଜଣ ପଦାତି (ଫା. ବଡ଼ିୟା, ଇଂ. Pawn ), ଏପରି ପ୍ରତି ପକ୍ଷରେ ୧୬ଟି ଗୋଟିରେ ଖେଳାଯାଏ । ବିପକ୍ଷ ଦଳର ଆକ୍ରମଣରୁ ରାଜାଙ୍କୁ ରକ୍ଷିବା ପାଇଁ ସ୍ୱପକ୍ଷର ବଳମାନଙ୍କୁ ଚଳାଇବାକୁ ହୁଏ । ଅପର ପକ୍ଷ ରାଜାଙ୍କୁ ଆକ୍ରମଣ କରନ୍ତି । ପଦାତିମାନେ ସାମନାରେ ଗୋଟିଏ ଘର ମାତ୍ର ଅଗ୍ରସର ହେବେ । ଅନ୍ୟ ବଳ-ମାନଙ୍କର ବିଭିନ୍ନ ଗତି ନିର୍ଦ୍ଦିଷ୍ଟ । ମନ୍ତ୍ରୀର ଗତି ଅବାରିତ । 'ବଳ'ମାନେ ବିପକ୍ଷର ବଳଦ୍ୱାରା ପରାଜିତ ହେଲେ ରାଜା କ୍ରମଶଃ 'କ୍ଷୀଣବଳ' ହୁଅନ୍ତି ଏବଂ ବିପକ୍ଷ ବଳ ଉକ୍ତ ଦୁର୍ବଳ ରାଜାଙ୍କୁ ଆକ୍ରମଣ କରନ୍ତି । ଏହିରୂପ ଆକ୍ରମଣକୁ 'କିସ୍ତି' ବୋଲିଯାଏ । କିସ୍ତି ହେଲାକ୍ଷଣି ରାଜାଙ୍କୁ ବିପକ୍ଷ ବଳର ଆକ୍ରମଣରୁ ଘୁଞ୍ଚାଇନେବାକୁ ହୁଏ । କିନ୍ତୁ ଦୁର୍ବଳ ରାଜାଙ୍କୁ ଯେତେବେଳେ ଅପର ପକ୍ଷର ବଳ ଏପରି ଘେରି ଯାଆନ୍ତି ଯେ, ରାଜାଙ୍କୁ ଆଉ ଘୁଞ୍ଚିବାକୁ ଘର ନ ଥାଏ, ତେବେ ରାଜା 'ବନ୍ଦୀ' ହୁଅନ୍ତି । ଏହାକୁ 'କିସ୍ତିମାତ୍' ବୋଲିଯାଏ । ତାହାହେଲେ ବିପକ୍ଷ ପକ୍ଷର ଖେଳାଳି ଜିତନ୍ତି । ରାଜା ଆତ୍ମରକ୍ଷା ପାଇଁ ହାତୀର ଗୃହକଡ଼ରେ ବୁଲିଲେ 'ଫୁଲ୍‌ଚୀ' ( ବା ଗଜଚକ୍ର ) ଓ ପଦାତିର ଗୃହ ପାଖରେ ବୁଲିଲେ ଚତୁରଙ୍ଗ ( ବା ଚତୁର ) ଓ ଅଶ୍ୱର ଗୃହପାଖେ ବୁଲିଲେ 'ଅଶ୍ୱଚକ୍ର' ( ଅଶ୍ୱଚକ୍ର ) ହାର୍ ହୁଏ । ଏ ଖେଳରେ ବିଶେଷ ମସ୍ତିଷ୍କ ଚାଳନା ଦରକାର ହୁଏ ଓ ଏଥିରେ ମାତିବା ଲୋକେ ବାହ୍ୟଜ୍ଞାନଶୂନ୍ୟ ହୁଅନ୍ତି । ଏ ଖେଳର ଉତ୍ପତ୍ତି ଭାରତରେ ହୋଇଥିଲା । ଭାରତରୁ ପାରସ୍ୟ ଓ ପାରସ୍ୟରୁ ଇଉରୋପକୁ ପ୍ରଚରିତ ହୋଇ ଏହା ପାଶ୍ଚାତ୍ୟ ସଭ୍ୟ ସମାଜର ପ୍ରଧାନ ମସ୍ତିଷ୍କଚାଳନାଯୁକ୍ତ ଖେଳରେ ପରିଣତ ହୋଇଅଛି । ଏହାକୁ ନ୍ୟାୟବଳ ଖେଳ ବୋଲିଯାଏ । ଏ ଖେଳର ମାଦକତା ବା ବ୍ୟସନ ସମ୍ବନ୍ଧରେ ଆମ ଓଡ଼ିଆରେ ଗୋଟିଏ ପ୍ରବଚନ ଅଛି—ଜୁଆ, ଫକଡ଼ା,ପାଶାରଙ୍ଗ, ପଶା, ନ୍ୟାୟବଳ, ବେଶ୍ୟା ସଙ୍ଗ । ଏ ଷଡ଼ୁରସେ ଯେଉଁ ବୁଝ ଥାଏ, ଲୋକେ ମଳ ଚାକର ଖାଏ । ]

**ସତରଙ୍ଗ(ଙ୍ଗି, ଞ୍ଜ, ଞ୍ଜି ) ପକା(କେ)ଇବା**—ଦେ. କ୍ରି—ଭୂମିରେ ସତ-
Sataranga(ṅgi, ñja, ñji) pakā(ke)ibā ରଞ୍ଜ ବସ୍ତୃତ
সতরঞ্জি পাতা, সতরঞ্জি বিছান କରିବା—To spread a
**सतरंजी बिछाना** durry on the ground.
(ସତରଙ୍ଗ ପାରିବା, ସତରଙ୍ଗ ବିଛ[ଛେ]ଇବା—ଅନ୍ୟରୂପ)

**ସତରଞ୍ଜ ଗୁଡ଼ି**—ପ୍ରଦେ· ( ବାଲେଶ୍ୱର ) ବି—ନାନା ରଙ୍ଗର ଅନେକ
Sataranja guḍi ଖଣ୍ଡ କାଗଜ ଯୋଡ଼ି ଯେଉଁ ଗୁଡ଼ି ତିଆର ହୋଇଥାଏ—A kite which is made of pieces of paper of varions colours. [ ଦ୍ର—ଏହା ଦେଖିବାକୁ ସତରଞ୍ଜି ପରି ହୋଇଥିବାରୁ ଏପରି ନାମ ହୋଇଅଛି । ]

**ସତର ପନ୍ଦର**—ଦେ. ବିଣ—୧ । ବହୁ ସଂଖ୍ୟକ—1. A many.
Satara pandara ୨ । ଅନିର୍ଦ୍ଦିଷ୍ଟ ସଂଖ୍ୟକ—2. Of un-
সাত পাঁচ ascertained number. ୩ । ଅନିଶ୍ଚିତ—
**अगड़म बगड़म** 3. Uncertain. ବି—୧ । ଅନିଶ୍ଚିତତା; ଅନିର୍ଦ୍ଦେଶ—
1. Uncertainty ୨ । ସନ୍ଦେହ—2. Doubt.

**ସତର ପନ୍ଦର କରିବା**—ଦେ. କ୍ରି—୧ । ମନରେ କୌଣସି କଥା ସ୍ଥିର
Satara pandara karibā କରି ନ ପାରିବା; ସନ୍ଦେହ
সাত পাঁচ ভাবা କରିବା—1. To be in doubt. ୨ । ଧନ୍ଦି
**उधेड़बुन करना** ହେବା—2. To be in dilemma.

**ସତର ଫଳା**—ଦେ. ବିଣ—ଓଡ଼ିଆର ଯେଉଁ ବ୍ୟଞ୍ଜନବର୍ଣ୍ଣମାନଙ୍କର
Satara phalā ଫଳକ ବା 'ଫଳା'ମାନ ଅନ୍ୟ ବ୍ୟଞ୍ଜନବର୍ଣ୍ଣ ସଙ୍ଗେ
ফলা ମିଶି ଯୁକ୍ତାକ୍ଷର ହୁଏ, ସେହି ଫଳକ ଚିହ୍ନିତ ଅକ୍ଷରମାନ—
**युक्ताक्षर** The signs representing the consonants while forming dipthongs with other consonants. [ଦ୍ର—ଯେଉଁ ବ୍ୟଞ୍ଜନ ଅକ୍ଷରମାନ ଅନ୍ୟ ବ୍ୟଞ୍ଜନବର୍ଣ୍ଣ ସଙ୍ଗେ ଯୁକ୍ତ ହେଲେ ସଂଯୁକ୍ତ ବର୍ଣ୍ଣରେ ମୂଳଅକ୍ଷର ରହେ ତାକୁ ଫଳା ବୋଲିଯାଏ ନାହିଁ, ଯଥା—
କ+ଧ=କ୍ଧ, କ+ସ=କ୍ସ, ଗ+ଡ=ଗ୍ଡ; ବ୍ୟଞ୍ଜନ

ବର୍ଣ୍ଣରେ ଯୁକ୍ତ ହେବା ସ୍ୱରବର୍ଣ୍ଣର ଚିହ୍ନମାନଙ୍କୁ 'ମାତ୍ରା' ବୋଲଯାଏ । (ଯଥା—କ+ଆ=କା; ଖ+ଇ=ଖି) । ଦ୍ୱିତ୍ୱ ବ୍ୟଞ୍ଜନକୁ ଫଳା ବୋଲଯାଏ ନାହିଁ । ଯଥା— ଚ୍ଚ, ଚ୍ଛ, ଜ୍ଜ, ଜ୍ଝ, ଟ୍ଟ, ଠ୍ଠ, ଡ୍ଡ, ଢ୍ଢ, ତ୍ତ, ଥ୍ଥ, ଦ୍ଦ, ଧ୍ଧ, ବ୍ବ, ଲ୍ଲ । ଅନୁନାସିକ ବର୍ଣ୍ଣ ସଙ୍ଗେ ସେହି ବର୍ଗର ବ୍ୟଞ୍ଜନବର୍ଣ୍ଣ ଯୁକ୍ତ ହେଲେ ତାହାକୁ ମଧ୍ୟ ଫଳା ବୋଲଯାଏ ନାହିଁ । (ଯଥା— ଙ+କ=ଙ୍କ ବା ଙ୍କ, ଙ+ଖ=ଙ୍ଖ ବା ଙ୍ଖ, ଙ+ଗ =ଙ୍ଗ ବା ଙ୍ଗ, ଙ+ଘ=ଙ୍ଘ ବା ଙ୍ଘ, ଞ+ଚ=ଞ୍ଚ, ଞ+ ଛ=ଞ୍ଛ, ଞ+ଜ=ଞ୍ଜ, ଞ+ଝ=ଞ୍ଝ, ଣ+ଟ=ଣ୍ଟ, ଣ+ଠ=ଣ୍ଠ, ଣ+ଡ=ଣ୍ଡ, ଣ+ଢ=ଣ୍ଢ, ନ+ଦ= ନ୍ଦ, ନ+ଧ=ନ୍ଧ, ମ+ପ=ମ୍ପ, ମ+ଫ=ମ୍ଫ)

ନିମ୍ନଲିଖିତ ୧୭ଟି ଫଳା ଓଡ଼ିଆ ବର୍ଣ୍ଣ ପରିଚୟରେ ପିଲାମାନେ ଶିଖନ୍ତି—

୧ । କ ଫଳା= ୍କ ଯଥା—ଲ୍କ, ସ୍କ ।
୨ । ଟ ଫଳା= ୍ଟ, ଯଥା—ଷ୍ଟ, ଷ୍ଟ ।
୩ । (କ) ତ ଫଳା (ବର୍ଣ୍ଣର ପରେ) = ୍ତ, ଯଥା— କ୍ତ, ତ୍ତ, ପ୍ତ, ପ୍ତ, ସ୍ତ ।
(ଖ) (ବର୍ଣ୍ଣର ପୂର୍ବେ) ତ ଫଳା= ୍ତ ଯଥା= ତ୍କ, ତ୍ସ ।
୪ । ଥ ଫଳା= ୍ଥ, ଯଥା =ନ୍ଥ, ସ୍ଥ ।
୫ । ନ ଫଳା= ୍ନ, ଯଥା—କ୍ନ, ତ୍ନ, ଜ୍ନ, ସ୍ନ ।
୬ । ବ ଫଳା= ୍ୱ, ଯଥା=କ୍ୱ, ଜ୍ୱ, ତ୍ୱ, ଦ୍ୱ, ନ୍ୱ ।

[ଦ୍ର—ମ ଓ ବ ଅକ୍ଷର ଛଡ଼ା ଅନ୍ୟ ଅକ୍ଷର ସଙ୍ଗେ 'ବ' ଫଳା ଯୁକ୍ତ ହେଲେ ଉକ୍ତ 'ବ' ଫଳା ଅବର୍ଗ୍ୟ ୱରୂପେ ଉଚ୍ଚାରିତ ହୁଏ । 'ମ'ରେ 'ବ' ଫଳା ଯୁକ୍ତ ହେଲେ ଉକ୍ତ ଫଳା 'ବର୍ଗ୍ୟ ବ' ଓ 'ଅବର୍ଗ୍ୟ ୱ'ରୂପେ ଉଚ୍ଚାରିତ ହୁଏ, ଯଥା—୧ । ଅମ୍ବର (ବର୍ଗ୍ୟ ବ ଉଚ୍ଚାରଣ), ୨ । ତମ୍ୱୋହରଣ (ଅବର୍ଗ୍ୟ ୱ ଉଚ୍ଚାରଣ); 'ବ'ରେ 'ବ'ଫଳା ଯୁକ୍ତ ହେଲେ ମଧ୍ୟ ଦୁଇ ପ୍ରକାରେ ଉଚ୍ଚାରିତ ହୁଏ,ଯଥା— ୧ । ସଦ୍ବଳ (ବର୍ଗ୍ୟ ବ ଉଚ୍ଚାରଣ) ଓ ୨ । ଅଦ୍ୱୈତ (ଅବର୍ଗ୍ୟ ୱ ଉଚ୍ଚାରଣ )

୭ । ମ ଫଳା= ୍ମ, ଯଥା—କ୍ମ, ଙ୍ମ, ଣ୍ମ, ଦ୍ମ, ଧ୍ମ, ଲ୍ମ, ମ୍ମ ।
୮ । ଯ ଫଳା= ୍ୟ, ଯଥା—କ୍ୟ, ଖ୍ୟ, ଗ୍ୟ, ଚ୍ୟ, ଜ୍ୟ ।
୯ । ର ଫଳା (ବର୍ଣ୍ଣର ପରେ) = ୍ର ଯଥା—କ୍ର, ଖ୍ର, ଗ୍ର ।
୧୦ । ର ଫଳା (ବର୍ଣ୍ଣର ପୂର୍ବେ)= ର୍, ଯଥା—ର୍କ, ର୍ଖ, ର୍ଗ ।

[ଦ୍ର—ବର୍ଣ୍ଣର ପୂର୍ବେ ର ଯୁକ୍ତ ହେଲେ ଉକ୍ତ ବର୍ଣ୍ଣ ବିକଳ୍ପେ ଦ୍ୱିତ୍ୱ ହୁଏ । ଯଥା—ର୍ଚ୍ଚ, ର୍ଜ୍ଜ, ର୍ତ୍ତ, ର୍ଦ୍ଦ, ର୍ଦ୍ଧ ।]

୧୧ । ଲ ଫଳା= ୍ଲ ଯଥା—କ୍ଲ, ଖ୍ଲ, ଗ୍ଲ, ପ୍ଲ
ଲ ଫଳା= ୍ଲ ଯଥା—ସ୍ଲ, ଲ୍ଲ
୧୨ । ରେଫ୍+ନ ଫଳା ଯଥା— ର୍କ୍ନ
୧୩ । ରେଫ୍+ଯ ଫଳା ଯଥା—ର୍କ୍ୟ
୧୪ । ରେଫ୍+ମ ଫଳା ଯଥା—ର୍କ୍ମ
୧୫ । ରେଫ୍+ବ ଫଳା ଯଥା—ର୍କ୍ୱ
୧୬ । ରେଫ୍—ର ଫଳା ଯଥା—ର୍କ୍ର
୧୭ । ରେଫ୍+ଲ ଫଳା ଯଥା—ର୍କ୍ଲ

ଅତଏବ ଦେଖାଯାଏ ଯେ, ସତର ଫଳାର ଫର୍ଦ୍ଦ ଶ୍ୟା- କରଣ କୌଣସି ନିୟମ ଅନୁସାରେ ଚଳ ନାହିଁ; ସୁତରାଂ ଫଳା ଓ ଯୁକ୍ତାକ୍ଷର ନ ଶିଖିଲେ ଯୁକ୍ତବର୍ଣ୍ଣର ଜ୍ଞାନ ସମ୍ପୂର୍ଣ୍ଣ ହୁଏ ନାହିଁ । ଏଥିପାଇଁ ଗୃହଶାଳ ପାଠୁଆମାନେ ଯୁକ୍ତାକ୍ଷର ବିଷୟରେ ଅନେକ ଯାଗାରେ ଝୁଣ୍ଟନ୍ତି । ଋ ଓ ଌ ସ୍ୱରବର୍ଣ୍ଣ ହେଲେ ସୁଦ୍ଧା ବ୍ୟଞ୍ଜନ ବର୍ଣ୍ଣ ସହିତ ମିଶିଲେ ତାକୁ କେତେ ଲୋକ ଫଳା କହନ୍ତି । ବଙ୍ଗଳାରେ ଦଶଟି ଫଳା ଯଥା—ଯ, ର, ଲ, ବ, ଣ, ନ, ମ, ଋ, ଌ, ଝ ।]

**ସତରେ**—ଦେ. କି ବିଣ—୧ । ପ୍ରକୃତରେ—1. Actually.
Satare ୨ । ବିଶ୍ୱାସପୂର୍ବକ—2. With confidence.
ସତ୍ୟି **बास्तवमे**

**ସତର୍କ**—ସଂ. ବିଣ. ପୁଂ (ବହୁବ୍ରୀହି; ସ=ସହିତ+ତର୍କ=ଯୁକ୍ତି ଦ୍ୱାରା ବିଚାରଣା )—୧ । ବିବେଚକ; ତର୍କକାରୀ—
Satarka
(ସତର୍କା—ସ୍ତ୍ରୀ) 1. Reasoning; reasonable. ୨ ।
(ସତର୍କତା—ବି) ସାବଧାନ; ହୁସିଆର; ଜାଗରୂକ—
2. Watchful; careful; guarded; vigilant, cautious. ୩ । ଯେ ଆଗ ପଛ ତର୍କଣା କରି କାମ କରେ—3. Acting after due deliberation; sagacious. ୪ । ଯତ୍ନଶୀଳ—4. Diligent; strenuous. ୫ । ମନୋଯୋଗଶୀଳ—5. Attentive.

**ସତର୍କ କରିବା**—ଦେ. କି—କୌଣସି ବ୍ୟକ୍ତିକୁ ଆସନ୍ନ ବିପଦାଦି ବିଷୟରେ ଆଗରୁ ସାବଧାନ କରି ଦେବା ବା ଚେତାଇ ଦେବା—To warn a person about an impending danger; to caution a person.
Satarka karibā
সতর্ক করা **सतर्क करना**

**ସତର୍କତା**—ସଂ. ବି (ସତର୍କ+ଭାବ. ତା)—ସାବଧାନତା; ହୁସିଆରି—
Satarkatā Sagacity; watchfulness.

**ସତର୍କତାବଲମ୍ବନ**—ସଂ. ବି (୬ଷ୍ଠୀ ତତ୍; ସତର୍କତା+ଅବଲମ୍ବନ)—ସତର୍କତାର ଆଶ୍ରୟ ନେବା—
Satarkatābalambana
Having recourse to due deliberation or sagacity.

**ସତର୍କ ହେବା**—ଦେ. କି—ସାବଧାନ ହେବା—
Satarka hebā To be careful or vigilant.
সতর্ক হওয়া **सतर्क होना**

**ସତଳ**—ଦେ. ବିଣ (ସଂ. ସମତଳ)—ସମତଳ; ଚଉରସ—
Satal̤a Level; levelled.
সমতল **समतल**

**ସତ ଷଠା ଶଏ(ହେ)**—ଦେ. ବ ଓ ବଣ ( ସଂ.ସପ୍ତଷଷ୍ଟ୍ୟୁତ୍ତରଶତ )—Sata shaṭhā śae(he) ଏକଶ ସତଷଠି; ୧୬୭—One hundred sixty seven; 167. [ଦ୍ର—ଏହିପରି ସତଷଠା ଦୁଇଶହ ହୁଏ=୨୬୭ ।]
এক সাতষটি
एकसौ सरसठ

**ସତଷଠୀ**—ଦେ. ବ ଓ ବଣ ( ସଂ. ସପ୍ତଷଷ୍ଟି )—ଷାଠିଏରୁ ଅଧିକା Satashaṭhī ସାତ; ୬୭— Sixty seven; 67.
সাতষটি
सरसठ

**ସତସତିଆ**—ଦେ. ବ—ଝିଟିପିଟି—The house lizard. [ଦ୍ର— Satasatiā କୌଣସି କଥାପ୍ରସଙ୍ଗ ଚାଲୁଥିବା ବେଳେ ଝିଟିପିଟି ରାବକଲେ ଲୋକେ କହନ୍ତି 'ସତ ସତିଆ ବା ସତିଆ ଡାକଲଣି, ଏ କଥା ନିଶ୍ଚେ ସତ ହେବ ।']
টিকিটিকি
छिपकली

**ସତସା**—ସଂ. ବ—ଏକ ପ୍ରକାର ନାଗବଲ୍ଲୀ ବା ପାନ— Satasā A kind of betel.

**ସତସ୍ତ(ସ୍ତୁ)ରି**—ଦେ. ବ ଓ ବଣ ( ସଂ. ସପ୍ତ ସପ୍ତତି )—ସାତ ଅଧିକ S·tasta(stu)ri ସତୁରି; ୭୭—Seventy seven; 77.
সাতাত্তর
सतहत्तर

**ସତସ୍ତୁରା ଶଏ(ହେ)**—ଦେ ବ ଓ ବଣ ( ସଂ. ସପ୍ତସପ୍ତତ୍ୟୁତ୍ତରଶତ )— Satasturā śae(he) ଏକଶ ସତସ୍ତରି; ୧୭୭—One hundred seventy seven; 177.
একশ সাতাত্তর
एकसौ सतहत्तर [ଦ୍ର—ଏହିପରି ସତସ୍ତୁରା ଦୁଇଶହ=୨୭୭ ହୁଏ]

**ସତ ହୁ(ହେ)ବା**—ଦେ. କି—କୌଣସି ବ୍ୟକ୍ତିର ବର୍ଣ୍ଣିତ ବିଷୟ ବା Sata ha(he)bā ବାକ୍ୟ କାର୍ଯ୍ୟତଃ ସତ୍ୟ ବୋଲି ଦେଖାଯିବା; (କହିବା କଥା) ସତରେ ସତରେ ଘଟିବା— To come to pass; to actually happen. (ସତ ଫଳିବା—ଅନ୍ୟରୂପ) (ଯଥା—ତୁମ୍ଭ ଆଶୀର୍ବାଦ ସତ ହେଉ ।)
সত্য হওয়া
सतय होना

**ସତା**—ଦେ. ବ—୧ । ସନ୍ତା (ଦେଖ)—1. Santā (See) ୨ । Satā (ସଂ. ସତ୍ତ୍ୱ) ସାର; ବଳ; ପରାକ୍ରମ—2. Strength. ୩ । ସାମର୍ଥ୍ୟ—3. Power. ୪ । ସତ୍ତ୍ୱ—4. Existence; presence.
সত্ত্বা
सार, सत्ता

**ସତାଅଶି**—ଦେ. ବ ଓ ବଣ ( ସଂଖ୍ୟାବାଚକ ) ( ସଂ. ସପ୍ତାଶୀତି )— S·tā-aśi ସତାଶି; ସାତ ଅଧିକ ଅଶି; ୮୭—Eighty-seven; 87. (ସତାଶି—ଅନ୍ୟରୂପ)
সাতাশি
सतासी

**ସତାଅଶିଆ ଶଏ(ହେ)**—ଦେ. ବ ଓ ବଣ—ଏକଶ ସତାଅଶି; ୧୮୭— Satā-aśiā śae(he) One hundred eightyseven; 187. [ଦ୍ର—ଏହିପରି ସତାଅଶିଆ ଦୁଇଶହ =୨୮୭ ହୁଏ ।]
একশ সাতাশি
एकसौ सतासी

**ସତା(ତେ)ଇ ପତା(ତେ)ଇବା**—ଦେ. କି (ସକର୍ମକ) (ସଂ. ସନ୍ତପ୍ତ)— Satā(te)i patā(te)ibā ସନ୍ତାଇବା ୨ ( ଦେଖ ) [ସତା(ତେ)ଇ ପତା(ତେ)ଇ ହେବା—ଅକର୍ମକରୂପ] Santāibā [ସତା(ତେ)ଇ ପତା(ତେ)ଇ ମାରିବା—ଅନ୍ୟରୂପ] 2 (See)
কষ্ট দেওয়া
सन्ताप देना

**ସତା(ତେ)ଇବା**—ଦେ. କି—ସନ୍ତାଇବା ( ଦେଖ ) Satā(te)ibā Santāibā ( See )

**ସତା(ତେ)ଇଶ(ଶି)**—ଦେ. ବ ଓ ବଣ ( ସଂଖ୍ୟା; ସଂ. ସପ୍ତବିଂଶ; Satā(te)iśa(śi) ସପ୍ତବିଂଶତି )—ସପ୍ତବିଂଶତି; ସାତ ଅଧିକ କୋଡ଼ିଏ—Twentyseven; 27.
সাতাশ, সাতাইশ
सताइस [ଉ— ସତାଇଶି କନ୍ୟା ପାଇଲେ କଳାକର— କୃଷ୍ଣସିଂହ. ମହାଭାରତ. ଆଦି । ]

**ସତାଇଶ(ଶି) ନକ୍ଷତ୍ର**—ଦେ. ବ—ଜ୍ୟୋତିଷଶାସ୍ତ୍ରୋକ୍ତ ସପ୍ତବିଂଶ Satāiś(śi) nakshatra ନକ୍ଷତ୍ର—The 27 asterisms or groups of stars taken as the bases of calculation of time and the motions of the planets and of the sun in Hindu astrology. [ଦ୍ର—ଏମାନଙ୍କର ନାମ ଯଥା—(୧) ଅଶ୍ୱିନୀ, (୨) ଭରଣୀ ବା ଦ୍ୱିକା, (୩) କୃତ୍ତିକା, (୪) ରୋହିଣୀ, (୫) ମୃଗଶିରଃ ବା ମୃଗଶିର, (୬) ଆର୍ଦ୍ରା, (୭) ପୁନର୍ବସୁ, (୮) ପୁଷ୍ୟ ବା ପୁଷ୍ୟା, (୯) ଅଶ୍ଳେଷା, (୧୦) ମଘା, (୧୧) ପୂର୍ବଫାଲ୍‌ଗୁନୀ, (୧୨) ଉତ୍ତରଫାଲ୍‌ଗୁନୀ, (୧୩) ହସ୍ତା, (୧୪) ଚିତ୍ରା, (୧୫) ସ୍ୱାତି, (୧୬) ବିଶାଖା, (୧୭) ଅନୁରାଧା, (୧୮) ଜ୍ୟେଷ୍ଠା, (୧୯) ମୂଳା, (୨୦) ପୂର୍ବାଷାଢ଼ା, (୨୧) ଉତ୍ତରାଷାଢ଼ା, (୨୨) ଶ୍ରବଣା, (୨୩) ଧନିଷ୍ଠା, (୨୪) ଶତଭିଷା, (୨୫) ପୂର୍ବଭାଦ୍ରପଦ, (୨୬) ଉତ୍ତର ଭାଦ୍ରପଦ, (୨୭) ରେବତୀ ।
সাতাশ নক্ষত্র
सताइस नक्षत्र

କେହି କେହି ଜ୍ୟୋତିର୍ବିଦ୍ ଏହି ୨୭ ନକ୍ଷତ୍ର ସଙ୍ଗେ 'ଅଭିଜିତ୍' (Vega) ନାମକ ନକ୍ଷତ୍ରକୁ ମିଶାଇ ୨୮ ନକ୍ଷତ୍ର ଗଣନା କରନ୍ତି । ଉତ୍ତରାଷାଢ଼ାର ଶେଷ ୧୫ ଦଣ୍ଡ ଓ ଶ୍ରବଣାର ପ୍ରଥମ ୪ ଦଣ୍ଡକୁ ଅଭିଜିତ୍ ନକ୍ଷତ୍ର କହନ୍ତି—ଜ୍ଞାନେନ୍ଦ୍ର । ]

**ସତା(ତେ)ଇଶ(ଶି) ପୁରୁଷ**—ଦେ· ବ—କୌଣସି ବ୍ୟକ୍ତିର ଊର୍ଦ୍ଧ୍ୱତନ Satā(te)iśa(śi) purusha ଓ ଅଧସ୍ତନ ବହୁପୁରୁଷ— Many generations of a man's progenitors and successors. ( ଯଥା—ଏ କଥା ତ ଆମ ସତାଇଶ ପୁରୁଷରେ ଦେଖା ନ ଥିଲା । )
চৌদ পুরুষ
सताइस पुरुष

**ସତା(ତେ)ଇଶ(ଶି) ଯୋଗ**—ଦେ. ବ—ଜ୍ୟୋତିଷୋକ୍ତ ସପ୍ତବିଂଶ ଶୁଭ- Satā(te)iśa(śi) joga ଶୁଭ ଯୋଗମାନ—The 27 astrological conjunction. [ଦ୍ର— ୨୭ ଯୋଗ ଯଥା—୧ ବିଷ୍କୁମ୍ଭ, ୨ ପ୍ରୀତି, ୩ ଆୟୁଷ୍ମାନ୍, ୪ ସୌଭାଗ୍ୟ, ୫ ଶୋଭନ, ୬ ଅତିଗଣ୍ଡ, ୭ ସୁକର୍ମା, ୮ ଧୃତି, ୯ ଶୂଳ, ୧୦ ଗଣ୍ଡ, ୧୧ ବୃଦ୍ଧି, ୧୨ ଧ୍ରୁବ, ୧୩ ବ୍ୟାଘାତ, ୧୪ ହର୍ଷଣ, ୧୫ ବଜ୍ର, ୧୬ ଅସୃକ୍, ୧୭ ବ୍ୟତିପାତ, ୧୮ ବରୀୟାନ୍, ୧୯ ପରିଘ, ୨୦ ଶିବ, ୨୧ ସାଧ୍ୟ, ୨୨ ସିଦ୍ଧି, ୨୩ ଶୁଭ, ୨୪ ଶୁକ୍ଳ, ୨୫ ବ୍ରହ୍ମ, ୨୬ ଇନ୍ଦ୍ର, ୨୭ ବୈଧୃତି । ]
সাতাশ যোগ
सताइस योग

**ସତା(ତେ)ଇଶ(ଶି) ହଜାରି**—ଦେ. ବଣ—ଅତି ଧନୀ ( [illegible] ); Satā(te)iśa(śi) hajāri ( ଯେ ନଗଦ ୨୭ ହଜାର ଟଙ୍କା ଗଣି ଦେଇ ପାରେ )—Very rich ( man ).
সাতাশ হাজারি

ଲାଖପତୀ ବ—୧ । ଅତି ଧନୀ ବ୍ୟକ୍ତି—1. A very rich man. ୨ । ପୁରୀ ରାଜାଙ୍କ ମାରଫତଦାରରେ ଥିବା ଜଗନ୍ନାଥ ମହାପ୍ରଭୁଙ୍କ ସେବା ପାଇଁ ଶଙ୍କା ପୁରୀଜିଲ୍ଲାରେ ଅବସ୍ଥିତ ଜମିଦାରୀ—2. Name of a Zamindary or estate in the Puri district which has been endowed for the worship of the Deity Jagannath of Puri. [ ଦ୍ର—ଏହାର ଆୟ ୨୭ ହଜାର ଟଙ୍କା ଥିବା ବିଷୟ ପୂର୍ବେ କଥୋଚ କରାଯାଇଥିବାରୁ ଏହି ନାମ ହୋଇଅଛି । ଏହାକୁ ପୂର୍ବେ ଇଂରାଜ ଗଭର୍ଣ୍ଣମେଣ୍ଟ ନିଜେ ହସ୍ତମୁଦ ବା ଖାସ୍ ତହସିଲ୍ ଅଧୀନ କରି ଏଥିର ଖଜଣା ଆଦାୟ କରି ପୁରୀର ରାଜାଙ୍କୁ ଜଗନ୍ନାଥଙ୍କ ସେବା ଖରଚ ପାଇଁ ୨୭ ହଜାର ଟଙ୍କା ନଗଦ ଦେଉଥିଲେ । କିନ୍ତୁ ପରେ ଏ ଜମିଦାରିକୁ ରାଜାଙ୍କୁ ଛାଡି ଦେଲେ ଓ ବର୍ତ୍ତମାନ ଏ ଜମିଦାରି ମାହାଲକୁ ପୁରୀ ରାଜା ନିଜେ ଭୋଗୁଅଛନ୍ତି । ଏହି ଜମିଦାରିର ଗୋଟିଏ ବିଶେଷତ୍ୱ ଏହି ଯେ, ଏଥିର କେତେକ ଜମିର ଖଜଣାକୁ ରଇତ ଓ ମଧ୍ୟସତ୍ୱାଧିକାରୀମାନେ ବାଣ୍ଟି କରି ପୁରୀ ରାଜାଙ୍କୁ ଦିଅନ୍ତି ଓ କେତେକ ଅଂଶ ବାହାରେ ଜମିଦାରର ଜମିଦାର ପାଇକପଡ଼ା ଷ୍ଟେଟ୍‌ର ମାଲିକଙ୍କୁ ଦିଅନ୍ତି । ଖଜଣାର ଯେଉଁ ଅଂଶକୁ ରଇତ ପୁରୀ ରାଜାଙ୍କୁ ଦିଏ ତାକୁ 'ସତେଇଶି ହଜାରି' ଜମା କୋହାଯାଏ । ]

ସତା(ତେ)ଇଶ(ଶି) ହଜାରିଆ—ଦେ. ବଣ—୧ । ଧନୀ ( ବ୍ୟକ୍ତି )—
Satā(te)isa(si) hajāriā 1. Very rich. ୨ । ଯାହାର
साताश हजारि ଅନେକ ହଜାର ଟଙ୍କା ସଞ୍ଚିତ ଅଛି—2. Having a rich hoard or cash.
लाखपती

ସତା(ତେ)ଇଶ(ଶି) ହଜାରି ମାହାଲ୍—ଦେ. ବ—ସତାଇଶ ହଜାରି
Satā(te)isa(si) hajāri māhāl ୨ ( ଦେଖ )—
Satāisa hajāri 2 ( See )

ସତା(ତେ)ଇଶ ଶଏ(ଅ, ହ, ହେ)—ଦେ. ବ ଓ ବଣ ( ସଂଖ୍ୟାବାଚକ,
Satā(te)isā sae(a, ha, he) ସ. ସପ୍ତବିଂଶତି+ଶତ )—
एकश सताशि ଏକ ଶହରୁ ସତାଇଶ ଅଧିକ ସଂଖ୍ୟା—
एकसौ सातासी One hundred twenty seven.
( ସତା[ତେ]ଇଶିଅ ଶଏ[ଅ,ହ,ହେ]—ଅନ୍ୟରୂପ ) [ଦ୍ର—ଏହାଦ୍ୱାରା ସତା(ତେ)ଇଶ ଭୁଲ ଅର୍ଥ (୨୨୭) ହୁଏ । ]

ସତାଁ—ଦେ. କ୍ରି. ବଣ—ସପ୍ତ ଗୁଣିତ ବା ସାତଦ୍ୱାରା ଗୁଣିତ ହେଲେ—
Satā̃ Multiplied by seven. [ ଦ୍ର—ଏହା ପଣି-
साता सताँ କିଆର ସପ୍ତମ ଘରା ଅଟେ । ଯଥା—୧୨ ସତାଁ ୮୪ ପଣ ୪ କାହାଣ ଗୁର ପଣ । ]

ସତା(ତାଁ)ଣ(ନ, ନ୍ନ, ଲ, ଲ୍ଲ)ବେ—ଦେ. ବ. ଓ ବଣ ( ସଂଖ୍ୟାବାଚକ;
Satā(tā̃)ṇa(na, nna, la, lla)be ସ. ସପ୍ତନବତି )—
सातानवई सं'तानवे ସାତ ଅଧିକ ନବେ; ୯୭—Ninety-
[ସତା(ତାଁ)ଣୋ(ନୋ, ଲୋ, ଲୋ)ଇ—ଅନ୍ୟରୂପ] seven; 97.

ସତା(ତାଁ)ଣ(ନ, ନ୍ନ, ଲ)ଅ ଶଏ(ହେ)—ଦେ. ବ. ଓ ବଣ ( ସଂଖ୍ୟା-
Satā(tā̃)ṇu(nu, nnu, lu)ā sae(he) ବାଚକ )—
एकश सातानवई ଏକ ଶତ ସତାନବେ; ୧୯୭—One hundred
एकसौ सं'तानवे ninety-seven; 197.
ସତାନ(ଲ)ଉଅ ଶଏ(ହେ)
ସତାନ(ଲ)ବା ଶଏ(ହେ) } ଅନ୍ୟରୂପ

ସତାନ—ଦେ. ବ. ଓ ବଣ ( ସଂଖ୍ୟାବାଚକ )—ସତାବନ; ୫୭—
Satāna सतान सतावन Fifty seven; 57.
[ ଦ୍ର—ସତାନ ଗୁଣେ ବେଣ୍ଡ଼ଧର; କୋଟିବ୍ରହ୍ମାଣ୍ଡ କଲେବର—ପ୍ରାଚୀ. ପୁରୁଷୋତ୍ତମ ଚନ୍ଦ୍ରୋଦୟ । ]

ସତାନନ୍ଦ—ସ. ବ (ନାମ)—ଗୌତମ ମୁନିଙ୍କ ପୁତ୍ର ଓ ଜନକ ରାଜାଙ୍କ
Satānanda ପୁରୋହିତ—Name of the son of
(ଶତାନନ୍ଦ—ଅନ୍ୟରୂପ) Sage Gautama and priest of king Janaka.

ସତାନ(ନ୍ନ,ଲ,ଲ୍ଲ)ବେ ପୁରୁଷ—ଦେ ବ—କୌଣସି ବ୍ୟକ୍ତିର ଉର୍ଦ୍ଧ୍ୱତନ
Satāna(nna,la,lla)be purusha ଓ ଅଧସ୍ତନ ଅସଂଖ୍ୟ
सातानबवई पुरुष पुरुष—Countless generations of
सं'तानवे पुरुस a person's progenitors and descendants.

ସତାନି ପତାନି—ଦେ. ବ—ସତାଇଶ ପୁରୁଷ (ଦେଖ)
Satāni patāni Satāisa purusha. (See)

ସତାନି ପତାନି ଉଝାଳିବା—ଦେ. କ୍ରି—କୌଣସି ବ୍ୟକ୍ତିର ଉର୍ଦ୍ଧ୍ୱତନ
Satāni patāni ujhāliba ଓ ଅଧସ୍ତନ ବହୁ ପୁରୁଷଙ୍କ ଲକ୍ଷ୍ୟ କରି ଗାଳି ଦେବା—To abuse a person by alluding to innumerable generations of his progenitors and descendants.

ସତାନି ପତାନି ଶୋଧିବା
ସତାନି ପତାନି ଶ୍ରାଦ୍ଧ କରିବା
ସତାନି ପତାନି ଧରି ଉଝାଳିବା
ସତାନି ପତାନି ଧରି ଶୋଧିବା
ସତାନି ପତାନି ଧରି ଶ୍ରାଦ୍ଧ କରିବା
ସତାନି ପତାନି ଲଗା(ଗେ)ଇ ଉଝାଳିବା
ସତାନି ପତାନି ଲଗା(ଗେ)ଇ ଶୋଧିବା
ସତାନି ପତାନି ଲଗା(ଗେ)ଇ ଶ୍ରାଦ୍ଧ କରିବା } ଅନ୍ୟରୂପ

चउद पुरुष उद्धार करा
सतानवे पुरुस उखेलना

ସତାବନ—ଦେ. ବ ଓ ବଣ (ସଂଖ୍ୟାବାଚକ)—(ସଂଖ୍ୟା; ସ. ସପ୍ତ
Satābana ପଞ୍ଚାଶତ୍)—ସପ୍ତପଞ୍ଚାଶତ୍; ସାତ ଅଧିକ ପଚାଶ; ୫୭—
सातान्न सतावन Fifty seven; 57.

ସତାବନ ପୁରୁଷ—ଦେ. ବ—ସତାଇଶ ପୁରୁଷ (ଦେଖ)
Satābana purusha Satāisa purusha. (See)

ସତାବନାଶଏ(ହେ)—ଦେ. ବ ଓ ବଣ—( ସଂଖ୍ୟା; ସ. ସପ୍ତ-
Satābanāsae(he) ପଞ୍ଚାଶଦୁତ୍ତର ଶତ)—ଏକଶ ସତାବନ;
एकशसातान्न ୧୫୭—One hundred fifty-seven;
एकसौसतावन 157.

ସତାର୍—ବୈଦେ. ବ (ଫା)—୧ । ଅପେକ୍ଷା କରିବା—1. Waiting.
Satār ୨ । କାଳ ବିଳମ୍ବ—2. Deferring; postponement.
सबुरकरा सबूर

ସତାର୍ କରିବା—ଦେ· କ୍ରି—୧ । କେତେକ ସମୟ ପାଇଁ ଅପେକ୍ଷା
Satār karibā କରିବା—1. To wait for some time.
সবুরকরা ୨ । କୌଣସି କାର୍ଯ୍ୟରେ ବିଳମ୍ବ ସହ୍ୟ କରିବା;
सबूर करना ସମ୍ଭାଳିବା—2. To brook delay; to acquiesce in a matter being delayed for some time. ୩ । ସମୟ ଦେବା; ମହଲତ ଦେବା—3. To grant time; to adjourn; to grant adjournment.

ସତାର ମଦାର୍—ବୈଦେ. ବି (ଫା· ସବୂର ଶବ୍ଦ)—ସବୁ ସମ୍ଭାଳିବା;
Satār madār କାଳ ବିଳମ୍ବ—Waiting: deferring
সামলে সবুরকরে of a matter to some future time.
सबूरउबूर [ବ୍ର—'ସତାର'ର ଅର୍ଥ କାଳ ବିଳମ୍ବ ପାଇଁ ଅପେକ୍ଷା ଓ 'ମଦାର'ର ଅର୍ଥ କୌଣସି କାର୍ଯ୍ୟସାଧନାର୍ଥ ଅନ୍ୟ ବ୍ୟକ୍ତି ଉପରେ ଭାର ଦେବା । ଉଭୟ କାର୍ଯ୍ୟରେ ଫଳତଃ କାର୍ଯ୍ୟସାଧନରେ ବିଳମ୍ବ ଘଟେ । ]

ସତାର ମଦାର୍ କରିବା—ଦେ. କ୍ରି—୧ । କୌଣସି କାର୍ଯ୍ୟସାଧନାର୍ଥ
Satār madār karibā କାଳ ବିଳମ୍ବକୁ ସମ୍ଭାଳିବା ବା
ମହଲତ ଦେବା—1. To brook delay; to
সামলেসবুর করে কবা grant postponement. ୨ । କୌଣସି
सबूर उबूर करना କାର୍ଯ୍ୟସାଧନ ପାଇଁ ମହଲତ ବା ସମୟ ନେବା—2. To take time; to get time by praying for postponement.

ସତାର—ସଂ. ବିଣ (ବହୁବ୍ରୀହି)—୧ । (ସ+ତାରା) ତାରା ସହିତ
Satāra ବିଦ୍ୟମାନ ବା ଯୁକ୍ତ—1. Having or furnished with stars ୨ । (ସ+ତାର) ସତନ୍ତ୍ର (ବିଶ୍ୱକୋଷ)—
2. Furnished with strings.

ସତାରିଆ—ଦେ. ବିଣ—୧ । ଯେଉଁ ବ୍ୟକ୍ତି କାଳ ବିଳମ୍ବକୁ ସହ୍ୟ କରେ
Satāriā ବା ସମ୍ଭାଳେ—1. Brooking delay.
সবুরকরা सबूरकरनेवाला ୨ । ଧୈର୍ଯ୍ୟଶୀଳ—
2 Patient.

ସତାରିବା—ଦେ. କ୍ରି—ସବୁର କରିବା; କାଳ ବିଳମ୍ବ ସହିବା; ଅପେକ୍ଷା
Satāribā କରିବା—To wait; to brook delay.
সবুর কবা सबूर करना

ସତା(ତାଁ)ଲବେ—ଗ୍ରା. ବି ଓ ବିଣ (ସଂଖ୍ୟାବାଚକ)—ସତାନବେ
Satā(tān)labe (ଦେଖ)—Satānabe. (See)
[ସତା(ତାଁ)ଲୋ(ଲେ)ଇ—ଅନ୍ୟରୂପ]

ସତାସମ—ଦେ. ବି—ସତ୍ତା—Existence. [ଉ—ଜନମାନ । ସତାସମ
Satāsama କହିବେ ନାହିଁ । ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।]
(ସତା ସମ୍ବନ୍ଧି—ଅନ୍ୟରୂପ)

ସତି—ସଂ. ବି (ସନ୍. ଧାତୁ=ଦାନ କରିବା+ଭାବ. ତି; ନ ଲୋପ)—
Sati ୧ । ଦାନ—1. Gift. ୨ । (ଷୋ. ଧାତୁ=ନାଶ କରିବା+ଭାବ. ତି; କଣ୍ଠାଦି) ଅବସାନ; ବିନାଶ—
2. Decline; extinction; end.

ସତିଅ (ଇତ୍ୟାଦି)—ଗ୍ରା. ବି ଓ ବିଣ—ସତ୍ୟ ଇତ୍ୟାଦି (ଦେଖ)
Satiā Satya etc. (See)

ସତିଆ—ଦେ. ବିଣ. ପୁଂ (ସଂ. ସତ୍ୟବାଦୀ)—ସତ୍ୟବାଦୀ—Ttruth-
Satiā ful (person). (ଉ—ସତିଅ ପୁରୁଷ ମୁଣ୍ଡରେ ଜଟ, ଦୁଅ (ସତୀ, ସତେଇ—ସ୍ତ୍ରୀ) ଦୁଇ ଧଏ ଲହଟ । ଠଗ ।) ବି—
सत्यवादी ୧ । ସତ୍ୟବାଦୀର ଡାକ ନାମ—1. Name for
सचबोलनेवाला calling 'Satyabādi'. ୨ । ଟିକିଟିକି; ଗୃହ
টিকিটিকি ଗୋଧିକା; ପଲ୍ଲୀ—2. The common house-
छिपकली lizard. [ବ୍ର—ହିନ୍ଦୁଶାସ୍ତ୍ର ମତରେ ଟିକିଟିକି ମନୁଷ୍ୟ ଉପରେ ଅଙ୍ଗବିଶେଷରେ ଖସି ପଡ଼ିଲେ କିମ୍ବା ମନୁଷ୍ୟ ଅବସ୍ଥାନ କରୁଥିବା ସ୍ଥାନର ଭିନ୍ନ ଭିନ୍ନ ଦିଗରେ ଟିକ୍ ଟିକ୍ ଶବ୍ଦ କଲେ, ତହିଁରୁ ଭବିଷ୍ୟତ୍ ଶୁଭାଶୁଭ ଫଳ ଜଣାପଡ଼େ । ଏଥିପାଇଁ ପକ୍ଷୀ ସତ କହେ ବୋଲି ଏହାର ନାମ 'ସତିଅ' । କଥାବାର୍ତ୍ତା ହେଉଥିବେଳେ ଜଣେ ବ୍ୟକ୍ତି କୌଣସି ପ୍ରସଙ୍ଗ କହୁଥିବା ସମୟରେ ଯେବେ ଟିକିଟିକି ଟିକ୍ ଟିକ୍ ଶବ୍ଦ କରେ, ତେବେ ଉକ୍ତ ପ୍ରସଙ୍ଗ ସତ୍ୟଥିବାର ସୂଚିତ ହୁଏ ବୋଲି ଲୋକେ ବିଶ୍ୱାସ କରି ସେହି ସମୟରେ କହନ୍ତି 'ସତିଅ ସତ କହିଲା' ।]

ସତିଅ ଆମ୍ବ(ମ୍ବା)—ଦେ. ବି ( ସ. ସତ୍ୟାମ୍ର )—ସତ୍ୟ ଅମ୍ବ (ଦେଖ)
Satiā āmba(mbā) Satya āmba ( See )
( ସତ ଅମ୍ବା—ଅନ୍ୟରୂପ )

ସତିଆନାଶ (ଇତ୍ୟାଦି)—ଗ୍ରା. ବି—ସତ୍ୟାନାଶ ଇତ୍ୟାଦି ( ଦେଖ )
Satiānāsa (etc) Satyānāsa etc ( See )

ସତିଆନାଶିଆ—ଗ୍ରା· ବିଣ. ପୁଂ—ସତ୍ୟାନାଶିଆ ( ଦେଖ )—
Satiānāsiā Satyānāsiā ( See )
( ସତିଅନାଶୀ—ସ୍ତ୍ରୀ )

ସତିଅ ପୁରୁଷ—ଦେ· ବି ( ସ. ସତ୍ୟବାଦୀ ପୁରୁଷ )—୧ । ସତ୍ୟବାଦୀ
Satiā purusha ବ୍ୟକ୍ତି—1. A truthful person.
সাচ্চা লোক ୨ । ସତ୍ୟଯୁଗର ପୁରୁଷ ପରି ନିଷ୍କପଟ ଓ ଧାର୍ମିକ
सच्चा आदमी ପୁରୁଷ—2. A truthful and upright man ( like a person of the Golden Age).
୩ । ( ବ୍ୟଙ୍ଗ୍ୟ ) ମିଥ୍ୟାବାଦୀ ବ୍ୟକ୍ତି—3. A liar.
୪ । ( ବ୍ୟଙ୍ଗ୍ୟ ) କପଟାଚାରୀ ବ୍ୟକ୍ତି—
4. A hypocrite.

ସତିଅ ସତ କହିଲା—ଦେ. ବାକ୍ୟ—( କୌଣସି ଗୃହରେ କଥାପ୍ରସଙ୍ଗ
Satiā sata kahilā ଚାଲୁଥିବା ସମୟରେ ଗୃହର କୌଣସି
টিকিটিকি পাড়ল ଅଂଶରେ ଟିକିଟିକି ବୋବାଇବାର ଶବ୍ଦ ଶୁଣାଗଲେ କଥିତ ବିଷୟ ସତ୍ୟ ବୋଲି କହି ଏ ବାକ୍ୟ ଉଚ୍ଚାରଣ କରାଯାଏ; ଏଥିର ତାତ୍ପର୍ଯ୍ୟ—) ମୋ ବାକ୍ୟର ସତ୍ୟତା ଏହି 'ସତିଅ'ର ଅର୍ଥାତ୍ ଟିକିଟିକିର ରବଦ୍ୱାରା ପ୍ରମାଣିତ ହେଉଅଛି —( A sentence exclaimed by a speaker in asserting the truth of his statement when the ticking of a lizard is heard while he is making a statement;. It

means—) The truth of my statement is borne out by the ticking of the truthful animal, i. e. the lizard.

**ସତିକ(କା, କେ)ଈ**—ଦେ. ବି. ସ୍ତ୍ରୀ (ସ. ସତ୍ୟବାଦିନୀ)—୧ । ସତ୍ୟ-ବାଦିନୀ ;—1. A truthful woman.
Satika(kā, ke)ī
ସତ୍যবাদিনী স্ত্রী
सच्चीस्त्री
(ସତିକା—ଅନ୍ୟରୂପ)
୨ । (ସ. ସତୀ) ସତୀ; ସାଧ୍ବୀ ସ୍ତ୍ରୀ—2. A chaste woman. [ ଉ—ସତ୍ତିକଈ ପୁରସ୍ତୁମ ଗଲ । ଯାହ ଦଣ୍ଡହ ଦଣ୍ଡହ ମଲ— ଛଗ । ]

**ସତିକାପଣ**—ଦେ. ବି—ସତୀପଣ (ଦେଖ)—Satīpana (See Satikāpana সতীপানা
[ ସତିକାପଣିଆ, ସତିକ(କା, କେ)ଈପଣ—ଅନ୍ୟରୂପ ]

**ସ(ସଁ)ତିରିଶ(ଶି)**—ଦେ. ବି ଓ ବିଣ (ସଂଖ୍ୟାବାଚକ; ସ. ସପ୍ତତ୍ରିଂଶତ୍) Sa(sañ)tirisa(śi) —ସପ୍ତତ୍ରିଂଶତ୍; ତିରିଶରୁ ଅଧିକା ସାତ— সাঁইত্রিশ सैंतिस Thirty seven; 37.
[ ସଁତିରିଶ(ଶି), ସଂଇତ୍ରିଶ(ଶି), ସନ୍ତିଶ(ଶି)—ଅନ୍ୟରୂପ ]

**ସ(ସଁ)ତିରିଶାଏ(ହେ)**—ଦେ. ବି. ଓ ବିଣ (ସଂଖ୍ୟାବାଚକ; ସ. ସପ୍ତ-Sa(sañ)tirisāsae(he) ତ୍ରିଂଶୋତ୍ତରଶତ)—ଏକଶ ସତତିରିଶ; একশ সাঁইত্রিশ ୧୩୭—One hundred thirty seven; एकसौ सैंतिस 137. (ଯଥା—ଏତୁପର ସତିରିଶା ତୁଇଶନ୍ତୁ = ୨୩୭ ହୁଏ ।)
ସଁତିରିଶାଏ(ହେ), ସନ୍ତିରିଶାଏ(ହେ), ସଁତିଶାଏ(ହେ), ସନ୍ତିଶାଏ(ହେ) } ଅନ୍ୟରୂପ

**ସତୀ**—ସ. ବିଣ. ସ୍ତ୍ରୀ—[ ଅସ୍ ଧାତୁ + କର୍ତ୍ତି. ଅତ୍ (ଶତୃ) + ସ୍ତ୍ରୀ. ଈ; ସତ୍ ଶବ୍ଦର ପୁଂଲିଙ୍ଗ ସନ୍; ସ୍ତ୍ରୀଲିଙ୍ଗ ସତୀ ]—
Sati
୧ । ବିଦ୍ୟମାନା—1. Existent (female).
୨ । ସତ୍ସ୍ୱଭାବା; ଉତ୍ତମା; ସଚ୍ଚରିତ୍ରା—2. Good (woman); virtuous. ୩ । ସାଧ୍ବୀ; ପତିବ୍ରତା—3. Chaste (woman). ବି—[ ସୋ ଧାତୁ = ନାଶ କରିବା + କର୍ତ୍ତି. ଅତ୍ (ଶତୃ) + ଈ; ଯାହାକୁ ଦର୍ଶନ କରିବା ମାତ୍ରେ ପାପ ନାଶ ହୁଏ ]—୧ । ଯେଉଁ ସ୍ତ୍ରୀ ସ୍ୱାମୀଙ୍କ ସଙ୍ଗେ ଚିତାନଳରେ ନିଜ ଦେହକୁ ଦାହ କରେ; ସ୍ୱାମୀଙ୍କ ସହମୃତା ସ୍ତ୍ରୀ—1. A woman who burns herself on her husband's funeral pyre. [ବି—ଇଂରେଜ ଗଭର୍ଣ୍ଣମେଣ୍ଟ ହିନ୍ଦୁମାନଙ୍କ ସତୀଦାହ ପ୍ରଥା ଉଠାଇ ଦେବା କାଳରୁ ଯେଉଁ ସ୍ତ୍ରୀମାନେ ସ୍ୱାମୀଙ୍କ ମୃତ୍ୟୁ ପୂର୍ବରୁ ମରନ୍ତି କିମ୍ବା ସ୍ୱାମୀଙ୍କ ମୃତ୍ୟୁର ଅବ୍ୟବହିତ ପରେ ଆତ୍ମହତ୍ୟା କରନ୍ତି ତାଙ୍କୁ ସାଧାରଣତଃ ସ୍ତ୍ରୀମାନେ ସତୀ ବୋଲି କହନ୍ତି । ]
୨ । ସାଧ୍ବୀ ସ୍ତ୍ରୀ; ପତିଗତପ୍ରାଣା ସ୍ତ୍ରୀ; ପତିବ୍ରତା ସ୍ତ୍ରୀ—2. A chaste woman; a woman devoted to the loving service of her husband; a woman who has consecrated or offered her body and soul to her husband (even unto death). ୩ । ଦାନ—3. Gift. ୪ । ଅବସାନ—4. Extinction; end. ୫ । ସୌରାଷ୍ଟ୍ର ମୃତ୍ତିକା—5. A kind of coloured earth. ୬ । ଚତୁରକ୍ଷର ସଂସ୍କୃତ ଛନ୍ଦୋବିଶେଷ—6. Name of a Sanskrit metre of 4 syllables. ୭ । (ନାମ) ସାବିତ୍ରୀ (ସତ୍ୟବାନଙ୍କ ସ୍ତ୍ରୀ)—7. Sābitrī; the wife of Satyabān. ୮ । (ନାମ) ଉମା; ପାର୍ବତୀ; ଦୁର୍ଗା; ଦକ୍ଷକନ୍ୟା; ମହାଦେବଙ୍କ ପତ୍ନୀ—8. The daughter of Daksha and wife of Siba. [ ବି—ଏ ଦକ୍ଷପ୍ରଜାପତିଙ୍କ କନ୍ୟା ଥାଇ ମହାଦେବଙ୍କ ବିବାହ କରିଥିଲେ; କିନ୍ତୁ ମହାଦେବ ପ୍ରଣାମାଦି ଦ୍ୱାରା ଦକ୍ଷଙ୍କୁ ସମ୍ମାନ ପ୍ରଦର୍ଶନ ନ କରିବାରୁ ଦକ୍ଷ ତାଙ୍କ ଉପରେ ବିରକ୍ତ ହୋଇ ତାଙ୍କୁ ଅପମାନ ଦେବା ପାଇଁ ଏକ ଯଜ୍ଞ ଆରମ୍ଭ କଲେ; ସେହି ଯଜ୍ଞକୁ ଦକ୍ଷ ତ୍ରିଲୋକର ଅନ୍ୟ ସମସ୍ତଙ୍କୁ ନିମନ୍ତ୍ରଣ କଲେ, ମାତ୍ର ଶିବଙ୍କୁ ନିମନ୍ତ୍ରଣ କଲେ ନାହିଁ । ନିମନ୍ତ୍ରଣ କରିବାର ଭାର ନାରଦ ମୁନିଙ୍କ ଉପରେ ଥିଲା । ସେ ଗୋପନରେ କୈଳାସକୁ ଯାଇ ଏ ଯଜ୍ଞର ସମ୍ବାଦ ସତୀଙ୍କୁ ଦେଲେ । ସତୀ ଅନିମନ୍ତ୍ରିତା ହୋଇ ମଧ୍ୟ ପିତୃଯଜ୍ଞ ଦେଖିବାକୁ ଯାଇ ପିତୃଗୃହରେ ଦକ୍ଷଙ୍କ ମୁଖରୁ ସ୍ୱାମୀଙ୍କ ନିନ୍ଦା ଶୁଣି ତାହା ସହି ନ ପାରି ଯଜ୍ଞକୁଣ୍ଡରେ ଝାସ ଦେଇ ପ୍ରାଣତ୍ୟାଗ କଲେ । ସତୀଙ୍କ ସଙ୍ଗେ ଯାଇଥିବା ନନ୍ଦୀ ସତୀଙ୍କ ମୃତ୍ୟୁସମ୍ବାଦ ନେଇ କୈଳାସରେ ପହଞ୍ଚିବାରୁ ମହାଦେବ ସତୀଙ୍କ ବିୟୋଗବାର୍ତ୍ତା ଶୁଣି କ୍ରୋଧ ଓ କ୍ଷୋଭରେ ଉନ୍ମତ୍ତ ହୋଇ ସ୍ୱୀୟ ଜଟା ଛେଦନ ପୂର୍ବକ ତହିଁରୁ ବୀରଭଦ୍ର ନାମକ ଭୈରବକୁ ସୃଷ୍ଟି କରି ସ୍ୱଗଣ ସମଭିବ୍ୟାହାରରେ ଦକ୍ଷଗୃହରେ ପହଞ୍ଚିଲେ । ଶିବାନୁଚର-ମାନେ ନାନା ଅତ୍ୟାଚାର କରି ଦକ୍ଷଯଜ୍ଞକୁ ନଷ୍ଟ କଲେ ଓ ଦକ୍ଷଙ୍କୁ ବଧ କଲେ । ପରେ ବ୍ରହ୍ମାଙ୍କ ଅନୁରୋଧରେ ଦକ୍ଷଙ୍କ ଗଣ୍ଡିରେ ଛିନ୍ନ ମସ୍ତକ ପରିବର୍ତ୍ତେ ଗୋଟିଏ ଛାଗ ମୁଣ୍ଡ ଯୋଜନା କରି ମହାଦେବ ଦକ୍ଷଙ୍କୁ ଜୀଆଁଇଲେ । ମହାଦେବ ସତୀଙ୍କ ମୃତ ଦେହକୁ ତ୍ରିଶୂଳ ଉପରେ ଧାରଣ କରି ବ୍ରହ୍ମାଣ୍ଡଯାକ ବୁଲିଲେ । ଏହା ଦେଖି ବିଷ୍ଣୁ ସୁଦର୍ଶନ ଚକ୍ର ପେଷି ଉକ୍ତ ସତୀଙ୍କ ଶବକୁ ଖଣ୍ଡଖଣ୍ଡ କଲେ ଓ ଉକ୍ତ ଶବର ଭିନ୍ନ ଭିନ୍ନ ଅଙ୍ଗ ଯେଉଁ ଯେଉଁଠାରେ ପଡ଼ିଲା, ସେହି ସେହି ସ୍ଥାନମାନ ଗୋଟିଏ ଲେଖାଏଁ ପୀଠ ଓ ଉପପୀଠରେ ପରିଣତ ହେଲା । ଉକ୍ତ ପୀଠମାନ ହିନ୍ଦୁ-ମାନଙ୍କର ମହାତୀର୍ଥ ରୂପେ ଅଦ୍ୟାବଧି ଭାରତର ଭିନ୍ନ ଭିନ୍ନ ସ୍ଥାନରେ ବିରାଜିତ ଅଛି । (ପୀଠ ତଳେ ନୋଟ୍ ଦେଖ ।) ଅତଃପର ସତୀ ପରଜନ୍ମରେ ହିମାଳୟଙ୍କ ସ୍ତ୍ରୀ ମେନକାଙ୍କ ଗର୍ଭରୁ ପାର୍ବତୀ ରୂପରେ ଜନ୍ମ ଗ୍ରହଣ କରି କଠୋର ତପଃ-ସାଧନ ପୂର୍ବକ ପୁଣି ଶିବଙ୍କୁ ସ୍ୱାମୀ ରୂପେ ପାଇଲେ ।] ଦେ. ବିଣ—ସତ୍ୟବାଦିନୀ (ସ୍ତ୍ରୀ)—Truthful সতী (woman). ବି—୧ । ଯେଉଁ ସ୍ତ୍ରୀ ସ୍ୱାମୀଙ୍କ ମୃତ୍ୟୁ सती पूର୍ବରୁ ମୃତା ହୁଅନ୍ତି—1. A woman who

predeceases her husband. ୨ । ସତ୍ୟବାଦନୀ ସ୍ତ୍ରୀ —2. A truthful woman.

**ସତୀ ଖଡ଼ୁ**—ଦେ. ବି—ମୃତ ସ୍ୱାମୀଙ୍କ ସଙ୍ଗେ ସହମୃତା ହୋଇଥିବା ସ୍ତ୍ରୀଙ୍କ
Sati khardu ହସ୍ତର ବଳୟ ( ଓ ଆଜ ତାଙ୍କ ସତୀଦାହ ପ୍ରଥା
सती ननायँ, सतीबाला ଉଠି ଯିବାରୁ ସ୍ୱାମୀ ଥାଉଁ ଥାଉଁ ଯେଉଁ
सतीकी अँगेठी ସ୍ତ୍ରୀ ମୃତା ହୁଅନ୍ତି ତାଙ୍କ ହାତର ଖଡ଼ୁ)—The wristlet of a woman who predeceases or dies with her husband. [ଦ୍ର—ଏହାକୁ ସଧବା ସ୍ତ୍ରୀମାନେ ସଗର୍ବ କର ଆଦର ସହିତ ପିନ୍ଧନ୍ତି ।]

**ସତୀ ଚଉରା**—ଦେ. ବି. ( ସଂ. ସତୀ ଓ ଚତ୍ୱର ) —୧ । ସହମୃତା
Sati chaura ସ୍ତ୍ରୀଙ୍କ ସମାଧି ମନ୍ଦିର; ସତୀଙ୍କ ଚିତାଭସ୍ମ ଉପରେ
सती समाधि ନିର୍ମିତ ଚତ୍ୱର ବା ମଣ୍ଡପ—1. A platform
सती चौरा raised in her honour, on the ashes of a woman who died with her husband. ୨ । କଟକ ସହରର ପଶ୍ଚିମ ପ୍ରାନ୍ତସ୍ଥ କାଠଯୋଡ଼ୀ ନଦୀ କୂଳର ଶ୍ମଶାନର ନାମ (ସମ୍ଭବତଃ ଏଠାରେ କୌଣସି ପ୍ରସିଦ୍ଧା ସତୀ ସ୍ତ୍ରୀଙ୍କର ମଣ୍ଡପ ଥିଲା)—2. Name of a cremation ground on the bank of the Kathajordi river just to the west of the town of Cuttack. [ ଦ୍ର—ଏହିଠାରେ କବିବର ରାଧାନାଥ, ଭକ୍ତକବି ମଧୁସୂଦନ, ବିଶ୍ୱନାଥ କର, ଗୋଳମଣି ବଦ୍ୟାରତ୍ନ, ମୃତ୍ୟୁଞ୍ଜୟ ରଥ, ଅର୍ତ୍ତତ୍ରାଣ ଶତପଥୀଙ୍କ ଶ୍ମଶାନସ୍ଥ ଚିତା ଉପରେ ସମାଧି ମନ୍ଦିରମାନ ନିର୍ମିତ ହୋଇଅଛି ଓ ଏହି ଶ୍ମଶାନରେ ଆଉ କେତେଗୁଡ଼ିଏ ପ୍ରାଚୀନ ଓ ନୂତନ ସମାଧି-ଚଉରା ବିଦ୍ୟମାନ ।]

**ସତୀ ଡେଙ୍ଗୁରା**—ଦେ. ବି—ସତୀ ନାଗରା (ଦେଖ)
Sati dengura Sati nagara. (See)

**ସତୀତ୍ୱ(ତା)**—ସଂ. ବି (ସତୀ+ଭାବ. ତ୍ୱ, ତା)—ସତୀ ସ୍ତ୍ରୀଙ୍କ ଧର୍ମ;
Satitwa(ta) ପାତିବ୍ରତ୍ୟ; ପରପୁରୁଷସଂସର୍ଗଶୂନ୍ୟତା—Chastity; female purity.

**ସତୀତ୍ୱ ଧର୍ମ**—ସଂ. ବି (ରୂପକ; ସତୀତ୍ୱ+ଧର୍ମ)-ପାତିବ୍ରତ୍ୟରୂପ ବ୍ରତ—
Satitwa dharma The vow of chastity observed by a woman.

**ସତୀତ୍ୱ ନାଶ (ଭଙ୍ଗ)**—ସଂ. ବି—ସ୍ତ୍ରୀର ସତୀତ୍ୱ ନଷ୍ଟ କରିବା; ପରପୁରୁଷ
Satitwa nasa (bhanga) ଦ୍ୱାରା ସତୀସ୍ତ୍ରୀର ରମଣ—The violation of the chastity of a woman; ravishment or rape of a chaste woman.

**ସତୀତ୍ୱ ରକ୍ଷା (ପାଳନ)**—ସଂ. ବି—୧ । ପାତିବ୍ରତ୍ୟ ଧର୍ମ ପାଳନ—
Satitwa raksha (palana) 1. The observance of chastity by a woman. ୨ । ସତୀ ସ୍ତ୍ରୀର ସତୀତ୍ୱ ନାଶ କରିବା ବ୍ୟକ୍ତିର ଆକ୍ରମଣରୁ ସତୀକୁ ରକ୍ଷା କରିବା—2. Saving a chaste woman from ravishment.

**ସତୀ ଦାହ**—ସଂ. ବି—ମୃତ ସ୍ୱାମୀଙ୍କ ଶବ ସଙ୍ଗେ ଚିତାଗ୍ନିରେ ସତୀର
Sati daha ଜୀବନୋତ୍ସର୍ଗ; ସହମରଣ; ଅନୁମରଣ—The voluntary immolation or burning of the wife on the funeral pyr of the husband. [ ଦ୍ର—ଅତି ପ୍ରାଚୀନକାଳରୁ ଭାରତୀୟ ହିନ୍ଦୁରମଣୀ ପତିଙ୍କ ଚିତାନଳରେ ଆରୋହଣପୂର୍ବକ ମୃତା ( ସହମୃତା ) ହେଉଥିଲେ, କିମ୍ବା ଦୂରରେ ମୃତ ପତିଙ୍କ ଶବ ନ ମିଳିଲେ ପତିଙ୍କ ମୃତ୍ୟୁ ପରେ ଚିତାରୋହଣପୂର୍ବକ ମୃତା ( ଅନୁମୃତା ) ହେଉଥିଲେ । ମୋଗଲ ସମ୍ରାଟ୍ ସତୀଦାହ ବିରୁଦ୍ଧରେ ଉପେଯାଜ୍ଞା ପ୍ରଚାର କରିଥିଲେ, କିନ୍ତୁ ଉକ୍ତ ପ୍ରଥା ଛଡ଼ାଇ ଦେଇ ପାରି ନ ଥିଲେ । ଇଂରାଜ ରାଜତ୍ୱରେ ଭାରତର ବଡ଼ଲାଟ ଲର୍ଡ୍ ୱିଲିୟାମ୍ ବେଣ୍ଟିକ୍ ବଙ୍ଗୀୟ ସମାଜସଂସ୍କାରକ ରାଜା ରାମମୋହନ ରାୟଙ୍କ ସାହାଯ୍ୟରେ ( ଅନେକ ରକ୍ଷଣଶୀଳ ହିନ୍ଦୁଙ୍କ ଆପତ୍ତି ସତ୍ତ୍ୱେ) ଏ ପ୍ରଥା ରହିତ କରି ୧୮୨୯ ସାଲରେ ଗୋଟିଏ ଆଇନ୍ ପ୍ରଣୟନ କଲେ ଓ ତହିଁରେ ଏପରି ବିଧାନ କଲେ ଯେ, ଯେଉଁ ବ୍ୟକ୍ତିମାନେ ସତୀଦାହ କାର୍ଯ୍ୟରେ ସାହାଯ୍ୟ କରିବେ ସେମାନେ ନରହତ୍ୟା ଅପରାଧରେ ଦଣ୍ଡିତ ହେବେ । ସେହି ସମୟରୁ ଭାରତରୁ ସତୀଦାହ ପ୍ରଥା ଉଠି ଯାଇଅଛି ।

ସତୀଦାହ ଦୁଇ ପ୍ରକାର—

୧ । ସହମରଣ—ପତିଙ୍କ ମୃତ୍ୟୁ ସଙ୍ଗେ ସ୍ତ୍ରୀ ପତିଙ୍କ ଚିତାରେ ଆରୋହଣ କରି ପତିଙ୍କ ଶବକୁ ଆଲିଙ୍ଗନ କରି ଚିତାନଳରେ ଦଗ୍ଧ ହେଉଥିଲେ ।

୨ । ଅନୁମରଣ—ପତିଙ୍କର ଦୂରଦେଶରେ ମୃତ୍ୟୁ ହେଲେ ବା ପତିଙ୍କ ଶବ ନ ମିଳିଲେ କିମ୍ବା ପତିଙ୍କ ମୃତ୍ୟୁ କାଳରେ ସ୍ତ୍ରୀ ଗର୍ଭବତୀ ଥିଲେ (ଗର୍ଭରୁ ମୁକ୍ତା ହେଲେ) ସ୍ୱାମୀଙ୍କ ମୃତ୍ୟୁ ପରେ ସ୍ୱାମୀଙ୍କର ବ୍ୟବହୃତ କୌଣସି ବସ୍ତୁକୁ ବା ପଳାଶପତ୍ରାଦି ରଚିତ ସ୍ୱାମୀଙ୍କ କଳ୍ପିତ ମୂର୍ତ୍ତିକୁ ସଙ୍ଗକରୂପେ ଧାରଣ କରି ସଧବା ସ୍ୱତନ୍ତ୍ର ଚିତାରେ ଆରୋହଣ କରୁଥିଲେ ।]

**ସତୀ ଧର୍ମ**—ସଂ. ବି—ସତୀତ୍ୱ (ଦେଖ)
Sati dharma Satitwa. (See)

**ସତୀ ଧର୍ଷଣ**—ସଂ. ବି (୬ଷ୍ଠୀ ତତ୍)—ସତୀର ସତୀତ୍ୱ ନଷ୍ଟ କରିବା—
Sati dharshana Outraging the chastity of a woman.

**ସତୀନ**—ସଂ. ବି (ବୈଦ୍ୟକ)—୧ । କଳାୟ; ମଟର—1. Pea;
Satina field pea; Pisum Sativum. [ ଦ୍ର—ଏହା ଅନ୍ୟ ସଂ. ନାମ—କଳାୟ, ମଧୁର, କଷାୟରସ, ମଧୁର ବିପାକ, ବର୍ତ୍ତୁଳ, ହରେଣୁ । ଭୁକ୍ଷ, ଶୀତବୀର୍ଯ୍ୟ, ବାୟୁବର୍ଦ୍ଧକ, ଅମ୍ଳ-
मटर
केराव, मटर
ଦୋଷନାଶକ, ପିତ୍ତ, ଦାହ ଓ କଫ ନିବାରକ ।] ୨ । (ସତୀ+ସଂ. ଧାତୁ+ଅ; କ) ସତୀଲ ( ଦେଖ )—
ତେ. ଯେଦରକ୍ତ 2. Satila. (See)
(ସତୀନକ—ଅନ୍ୟରୂପ)

**ସତୀ ନାଗରା**—ଦେ. ବି—ପୂର୍ବେ ସହମୃତା ବା ଅନୁମୃତା ହେବାକୁ
Sati nagara ଶ୍ମଶାନକୁ ଯାତ୍ରା କରୁଥିବା ସତୀ ସ୍ତ୍ରୀଙ୍କ ଯାତ୍ରା
सतीडंका, सतीनागरा ସମୟରେ ବଜା ଯାଉଥିବା ନାଗରା; ...
सतीनगारा ବର୍ତ୍ତମାନ ସତୀଦାହ ପ୍ରଥା ରହିତ ହେବାରୁ ସ୍ୱାମୀ ଥାଉଁ ଥାଉଁ ମୃତା ସ୍ତ୍ରୀଙ୍କ ଶବ ଦାହାର୍ଥ ଶ୍ମଶାନକୁ ନିଆ ହେବା ବେଳେ ଶବଯାତ୍ରୀ ସଙ୍ଗେ ବାଜିବା ବାଦ୍ୟ—

Drum accompanying the corpse of a wife who predeceases her husband and of a woman who jumped with the funeral pyre of her husband (when this custom had not been prevented by law.)

ସତୀନାଥ—ସଂ ବ (ଷଷ୍ଠୀ ତତ୍)—ମହାଦେବ; ଶିବ—Siba. ଦେ. Sati nātha ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—A name সতীনাথ सतीनाथ given to males. (ସତୀନ୍—ଅନ୍ୟରୂପ)

ସତୀପଣ—ଦେ. ବ—୧ । ସତୀତ୍ୱ—1. Chastity. ୨ । ସତୀତ୍ୱର Satīpaṇa ବଡ଼ାଇ—2 Boasting about one's (ସତୀପଣିଆ—ଅନ୍ୟରୂପ) chastity. ୩ । (ସ୍ତ୍ରୀ ଲୋକର) সতীপণা ସତ୍ୟବାଦିତା—3. Truthfulness of a सतीपणा woman). ୪ । (ସ୍ତ୍ରୀ ଲୋକର) ସାଧୁତା—4. Honesty (of a woman).

ସତୀ ପୀଠ—ସଂ. ବ (ନାମ)—୧ । ବିରଜା କ୍ଷେତ୍ର; ଯାଜପୁରର ଏକ Sati pīṭha ନାମ—1. A name of Jajapura (which is one of the places where parts of the body of Sati fell). [ ଦ୍ର—କଥିତ ଅଛି—ମହାଦେବଙ୍କ ସ୍ତ୍ରୀ ସତୀଙ୍କ ଶବ ସୁଦର୍ଶନ ଚକ୍ର ଦ୍ୱାରା ୫୧ ଖଣ୍ଡ ହୋଇ, ଭାରତବର୍ଷର ବହୁନ ସ୍ଥାନମାନଙ୍କରେ ପଡ଼ିଥିଲା । ଯେଉଁ ଖଣ୍ଡ ଚମ୍ପକ ବନରେ ପଡ଼ିଥିଲା ତାହା 'ବିରଜା' ନାମରେ ବିଦିତ ଓ ସେ ସ୍ଥାନ ସତୀପୀଠ ବା ବିରଜାକ୍ଷେତ୍ର ନାମରେ ପ୍ରସିଦ୍ଧି ଲାଭ କରିଥିଲା ।

ଶୈବ ପୁରାଣମତରେ—ଯାଜପୁର କାଳୀଙ୍କର ଏକ ପୀଠ । ଶିବଙ୍କ ସ୍ତ୍ରୀ ସତୀଙ୍କ ମୃତ୍ୟୁରେ ଶିବ ବାତୁଳ ହୋଇ ପୃଥିବୀର ଗୃହଅଙ୍ଗେ ବୁଲିଲେ । ତାଙ୍କର ବାତୁଳତା ନାଶ କରିବା ପାଇଁ ବିଷ୍ଣୁ ନିଜର ସୁଦର୍ଶନ ଚକ୍ରରେ ଛିନ୍ନ ଶବକୁ ୫୧ ଖଣ୍ଡ କଲେ । ଯେଉଁ ସବୁ ସ୍ଥାନରେ ଏହା ଖଣ୍ଡ ଖଣ୍ଡ ହୋଇ ପଡ଼ିଲା, ସେ ସବୁ ସ୍ଥାନ ସତୀପୀଠ ନାମରେ ପରିଚିତ ହେଲା । ବିରଜା ନାମରେ ସତୀଙ୍କର ଗୋଟିଏ ମନ୍ଦିର ଯାଜପୁରରେ ଅଛି । ଯେଉଁ ସ୍ଥାନରେ ଏ ମନ୍ଦିର ବିଦ୍ୟମାନ, ସେଠାରେ ସତୀଙ୍କର ଶବରୁ ଖଣ୍ଡେ ପଡ଼ିଥିଲା ବୋଲି କଥିତ । ଲେଖକ—ଚନ୍ଦ୍ରଶେଖର ଦାସ ।]

୨ । ଯେଉଁ ଯେଉଁ ସ୍ଥାନରେ ସତୀଙ୍କ ଶବର ଅଂଶମାନ ପଡ଼ିଥିଲା (ପୀଠ ଉଲେ ଟୀକା ଦେଖ)—2. Places where parts of the corpse of Sati fell. (See note under Pīṭha)

ସତୀ ଯିବା—ଦେ. କ୍ରି (ବର୍ତ୍ତମାନ ଏ ପ୍ରଥା ରହିତ)—ସ୍ୱାମୀଙ୍କ ସହ-Sati jibā ମୃତା ହେବା—To commit suicide on the সতীতেযাওয়া, সতীহওয়া cremation pyre of the सती होना husband. (ସତୀରେ ଯିବା, ସତୀ ହେବା—ଅନ୍ୟରୂପ)

ସତୀର୍ଥ(ର୍ଥ୍ୟ)—ସଂ. ବ (ସ=ସମାନ+ତୀର୍ଥ=ଗୁରୁ ଯାହାର; ସତୀର୍ଥ=Satīrtha(rthya) ସମାନ ଗୁରୁ;+ବାର୍ଥେ. ଯ)—ସମକାଳରେ ଏକ ଗୁରୁଙ୍କ ନିକଟରେ ଅଧ୍ୟୟନ କରୁଥିବା ଶିଷ୍ୟ; ସହାଧ୍ୟାୟୀ; ସହପାଠୀ—Fellow student; a fellow disciple; a co-disciple under the same preceptor.

ସତୀଲ—ସଂ. ବ (ସତୀ=ସାଧ୍ୱୀ+ଲା ଧାତୁ=ଧାରଣ କରିବା+କର୍ତ୍ତୃ. ଅ; Satīla ଯାହା ସାଧ୍ୱୀ କୁଳବଧୂମାନଙ୍କୁ ଧାରଣ (ସତୀଲକ—ଅନ୍ୟରୂପ) କରେ)—୧ । ବଂଶ; କୁଳ—1. Family; race. ୨ । (ସ=ସମାନ+ତିଲ=ଶସ୍ୟ; ଶସ୍ୟପର କୃଷ୍ଣବର୍ଣ୍ଣ) ମାଷ; ବିରି—2. Kidney bean; Phasolus Radiatus. ୩ । ମଟର; କଲାୟ—Pea; field pea; Pisum Sativum.

ସତୀ ଲକ୍ଷ୍ମୀ—ଦେ. ବ. ସ୍ତ୍ରୀ (ସଂ. ସତୀ, ଲକ୍ଷ୍ମୀ; ସ୍ତ୍ରୀମାନଙ୍କ ପ୍ରତି Sati lakshmi ଅଶୀର୍ବଚନ)—ଲକ୍ଷ୍ମୀଙ୍କ ପରି ସତୀ ଓ ଗୁଣବତୀ সতীলক্ষ্মী ସଧବା ସ୍ତ୍ରୀ—A chaste and good woman सतीलक्ष्मी (whose husband is alive); a paragon among wives.

ସତୀଲା(ଲି)—ସଂ. ବ (ସତୀଲ+ଆ)—କ୍ଲିପୃଷ୍ଠୀ; ଖେସାରି; ତଣା—Satīlā(li) A species of kidney bean; Lathyrus Sativus.

ସତୀଶ—ସଂ. ବ (ସତୀ=ପାର୍ବତୀ+ଈଶ=ସ୍ୱାମୀ; ୬ଷ୍ଠୀ ତତ୍)—Satīśa ମହାଦେବ; ଶିବ—Siba. ଦେ. ବି. ପୁଂ—ଲୋକଙ୍କ ନାମ—A name given to males.

ସତୀ ସାଧବୀ—ଦେ. ବି. ସ୍ତ୍ରୀ (ଏକାର୍ଥକ ସହଚର;ଅଶୀର୍ବାଦ (ସତୀ ସ୍ତ୍ରୀ—Sati sādhabī A chaste woman; a paragon সতীসাধ্বী सतीसाधवी among women. (ସତୀ ସାଧ୍ୱୀ—ଅନ୍ୟରୂପ)

ସତୀ ସାବିତ୍ରୀ—ଦେ. ବ (ଅଶୀର୍ବାଦ)—ସାବିତ୍ରୀଙ୍କ ପରି ସତୀ—Sati Sabitri A woman as chaste as Sābitrī; a সতী সাবিত্রী सतीसाविवी paragon among women.

ସତୁଆ—ଦେ. ବଣ. ପୁଂ—ସତ୍ୟବାଦୀ—Truthful. [ଜ—କନ୍ୟାକୁ Satuā ଯେତେବେଳେ ଦେଖିବୁ, ବୁଝିବୁ ଅଛି ସତୁଆ କ ମିଛୁଆ । সাচ্চা सच्चा ଫକୀରମୋହନ. ଗଳ୍ପସ୍ୱଳ୍ପ ।] (ସତେ[ତୋ]ଇ—ସ୍ତ୍ରୀ) [ମିଛୁଆ—ବିପରୀତ]

ସତୁରଶଏ(ହେ)—ଦେ. ବ ଓ ବଣ (ସଂଖ୍ୟା; ସଂ. ସପ୍ତତ୍ୟୁତ୍ତର ଶତ)—Saturāśae(he) ଏକ ଶହ ସତୁରି; ୧୭୦—One hundred একশ সত্তর and seventy; 170. (ଯଥା—୧୭ ଦଶାଁ ସତୁରି. एकसौ सत्तर ଶହେ ପଣ ଦଶ କାହାଣ ଦଶ ପଣ—ପଣକିଆ ।) [ଦ୍ର—ଏହିଅର୍ଥ ସତୁରି ଦୁଇଶ=୨୭୦ ।]

ସତୁରି—ଦେ. ବଣ. ଓ ବ (ସଂଖ୍ୟା; ସଂ. ସପ୍ତତି; ପ୍ରା. ସତ୍ତରି)—ସପ୍ତତି; Saturi ୭×୧୦; ୭୦ ସଂଖ୍ୟାରୁ ଅଧିକ ୧୦; ୭୦—সত্তর सत्तर Seventy; 70.

ସତୁଲ—ପ୍ରାଦେ (ସିଂହଭୂମି) ବ. (କଟକ ଅଞ୍ଚଳରେ ଅତୁଲ)—ହସ୍ତ-Satula ଭୂଷଣ ଖଡ଼ୁ; ଦାନ୍ତଥିବା ହାତ ଖଡ଼ୁ—Toothed wristlet.

ସତୁଷ—ସଂ. ବଣ (ସହାର୍ଥେ; ବହୁବ୍ରୀହି; ସ=ସହିତ+ତୁଷ)—ତୁଷ-Satusha ଯୁକ୍ତ (ଶସ୍ୟ)—(grain) Chaffed; having chaff. ବ—ଧାନ୍ୟ—Paddy.

**ସତୃଟ୍**—ସଂ. ବିଣ. ପୁଂ (ସ+ତୃଷ୍; ସତୃଷ୍ ଶବ୍ଦ ୧ମା. ୧ବ)—ସତୃଷ୍ଣ; Satrut (ସତୃଷା—ସ୍ତ୍ରୀ) ତୃଷିତ—Thirsty.

**ସତୃଷ୍ଣ**—ସଂ. ବିଣ (ସ+ତୃଷ୍ଣା; ସହାର୍ଥ ବହୁବ୍ରୀହି)—୧। ତୃଷାଯୁକ୍ତ; Satrushna ପିପାସୁ—1. Thirsty. ୨। ସଲୋଭ— (ସତୃଷ୍ଣା—ସ୍ତ୍ରୀ) 2. Full of hankering. ୩। ସାଗ୍ରହ; ଅତ୍ୟନ୍ତ ଆଗ୍ରହଯୁକ୍ତ (ଦୃଷ୍ଟି)—3. Very eager(look).

**ସତୃଷ୍ଣ ଦୃଷ୍ଟି**—ସଂ. ବି (କର୍ମଧା; ସତୃଷ୍ଣ+ଦୃଷ୍ଟି)—୧। ସାଗ୍ରହ Satrushna drushti ନୟନ—1. Eager eyes; (ସତୃଷ୍ଣ ନୟନ—ଅନ୍ୟରୂପ) wistful eyes. ୨। ଲାଳସାଯୁକ୍ତ ଦୃଷ୍ଟି—2. Hankering look; hungering look. ସଂ. ବିଣ (ବହୁବ୍ରୀହି) ସାଗ୍ରହ ଦୃଷ୍ଟିଯୁକ୍ତ—With wistful look.

**ସତେ**—ଦେ. ଅ—୧। ସତରେ; ସତ୍ୟରେ; ପ୍ରକୃତରେ—Sate 1. Truly; actually. (ଉ—ଦେଖ ଗୀରଣ ସତେ, କି (ସତେକି, ସତେରେ, ସତେ ସତେ—ଅନ୍ୟରୂପ) ପଦାର୍ଥ କହ ସ୍ଥିତି **सच** ପଣ୍ଡିତେ ମତେ। କବିସୂର୍ଯ୍ୟ. କବିତା।) ୨। (କାମନା ଓ ପ୍ରଶ୍ନାର୍ଥକ) ପ୍ରକୃତରେ ବା ଫଳତଃ ଏହାକି ଘଟିବ ?—2. (conjunction) Will it so happen ?; will it come to pass ? ୩। (ପ୍ରଶ୍ନାର୍ଥକ) ଏହା କି ସତ୍ୟ ? ଭଲା ?—3. (Interjection) Pray ! Is it true ? (ଉ—ତେଣିକି ଲଙ୍ଘିନ ସତେ, ଗୃହର ଶତ୍ରୁର ମତେ, ତହିଁକାହିଁ ପଶୁଛନ୍ତି କହ। କବିସୂର୍ଯ୍ୟ. 'କଣୋସ୍ମି ତେ୍ନ୍ୟ ତ ଗୀତ।) ୪। (ବିସ୍ମୟାର୍ଥକ) ପ୍ରକୃତରେ; ବାସ୍ତବରେ—5. Actually; in fact. (ଉ—ଫୁଲ୍ଲ ମଲ୍ଲୀହାସେରେ। ସତେ ଲୁ ବ ସାହସୀରେ। କବିସୂର୍ଯ୍ୟ. ସଙ୍ଗୀତ।) ୬। ଫଳତଃ—6. In the long run. (ଉ—ସତେ ସତେ ସେହି ବାଣୀ ହୋଇଲା ସଫଳ। ମଧୁସୂଦନ, ବାଲ୍ୟରାମାୟଣ।)

**ସତେଇ ହେ(ହ)ବା**—ଦେ. କ୍ରି—୧। ଭଲେଇ ହେବା; ଆପଣାର ସାଧୁତା Satei he(ha)ba ଦେଖାଇ ହେବା ବା କହି ହେବା—1. To साचा हुआ show off one's honesty; to boast of **सच्चा होना** one's honesty. ୨। ନିଜର ନିଷ୍କଳଙ୍କତ୍ୱ ସଦାରେ କହି ବୁଲିବା—2. To boast that one has no blemishes or secrets to be ashamed of. ୩। ଆପଣାର ସତୀତ୍ୱ ଦେଖାଇ ହେବା—3. To boast of one's chastity. (ଉ—ସତୀ ଲୋ ! ସତେଇ ହଉଛୁ କେତେ ! ତୋହୋ ଘର କଥା ଅଣ୍ଟରେ ତୁରେଇ, ସତେଇ ହଉଛୁ ମତେ !—ଢଗ।)

**ସତେଜ**—ଦେ. ବିଣ (ସ+ତେଜଃ=ସତେଜସ୍ ୧ମା. ୧ବ; Sateja ସତେଜାଃ)—୧। ପ୍ରବଳ; ତେଜସ୍ୱୀ)—1. Vigor- सतेज ous; energetic; sharp. ୨। ଶକ୍ତିଶାଳୀ; **तेजो** ବଳବାନ୍—2. Strong. ୩। ସଜୀବ—3. Healthy; lively; hale. ୪। ହୃଷ୍ଟପୁଷ୍ଟ—4. Well-developed; hale and hearty.

**ସତେଜାଃ**—ସଂ. ବିଣ (ସ+ତେଜଃ=ସତେଜସ୍. ୧ମା. ୧ବ)—ସତେଜ Satejah (ଦେଖ)—Sateja (See)

**ସତେର**—ଦେ. ବି—ଭୁଷ (ଝଞ୍ଜିପ୍ରସାର ଭୁଷାଦି କୁଟା)—Satera Chaff of grains.

**ସତ୍କଥନ**—ସଂ. ବି ଓ ବିଣ—ସତ୍‌କଥନ (ଦେଖ)—Sat-kathana Satkathana (See) [ ଦ୍ର—ସତ୍ ଶବ୍ଦର ତ୍+କ (କ୍) ଆଦି ଯୁକ୍ତାକ୍ଷର ବିଶିଷ୍ଟ ଶବ୍ଦମାନଙ୍କ ପାଇଁ ସତ୍ ତଳେ ଦିଆ ଯାଇଥିବା ଶବ୍ଦମାନ ଦେଖ। ]

**ସତ୍ତ**—ଦେ. ବି. ଓ ବିଣ (ସଂ. ସତ୍ୟ)—ସତ୍ୟ (ଦେଖ)—Satta Satya (See) ବିଣ (ସଂ. ସତ୍)—ସତ୍ (ଦେଖ) Sat (See)

**ସତ୍ତମ**—ସଂ. ବିଣ (ସତ୍=ଉତ୍ତମ+ଅତିଶୟାର୍ଥେ ତମ)—୧। ଅତି Sattama ଉତ୍ତମ; ସର୍ବୋତ୍ତମ; ଉତ୍କୃଷ୍ଟ—1. Best; very (ସତ୍ତମା—ସ୍ତ୍ରୀ) good. ୨। ପୂଜ୍ୟତମ—2. Most venerable. [ ଦ୍ର—ଏହା ବିଶେଷ୍ୟ ପରେ ଯୁକ୍ତ ହୁଏ; ଯଥା—ଦ୍ୱିଜସତ୍ତମ, ନୃପସତ୍ତମ, ନାରୀସତ୍ତମା। ]

**ସତ୍ତା**—ସଂ. ବି (ସତ୍+ଭାବେ. ତା)—୧। ବିଦ୍ୟମାନତା; ସ୍ଥିତି—Satta 1. Presence; existence; being. ୨। ଉତ୍ପତ୍ତି—2. Birth; origin; production. ୩। ସାଧୁତା—3. Honesty. ୪। ଉତ୍କର୍ଷ—4. Excellence. [ ଦ୍ର—ଏହା ଦର୍ଶନଶାସ୍ତ୍ରର ପାରିଭାଷିକ ଶବ୍ଦ। ଯାହା ପଦାର୍ଥର ସାର ବିଷୟ, ଯାହା ପଦାର୍ଥର ପଦାର୍ଥତ୍ୱ ନିର୍ଦ୍ଦେଶକ, ତାହା ହିଁ ଉକ୍ତ ପଦାର୍ଥର ସତ୍ତା। ସତ୍ (ବା ସ୍ଥିତିବିଶିଷ୍ଟ) ପଦାର୍ଥ ମାତ୍ରେ ସତ୍ତାବିଶିଷ୍ଟ ଏବଂ ଏକ ପଦାର୍ଥର ସତ୍ତା ଅନ୍ୟ ପଦାର୍ଥର ସତ୍ତାଠାରୁ ଭିନ୍ନ। ବେଦାନ୍ତ ମତରେ ବ୍ରହ୍ମ ଏକା ବ୍ରହ୍ମାଣ୍ଡର ସତ୍ତା। ଜୀବାତ୍ମା (Human Soul) ଏବଂ ପରମାତ୍ମା (World Soul) ଏକ ସତ୍ତାବିଶିଷ୍ଟ। ଜାଗତିକ ପରିବର୍ତ୍ତନ ମାୟା ଅଟେ। ଯଦି ମାୟାବାଦ ସ୍ୱୀକୃତ ନ ହୁଏ, ଅର୍ଥାତ୍ ସାଂସାରିକ ପରିବର୍ତ୍ତନର ସତ୍ୟତା ଗୃହୀତ ହୁଏ, ତେବେ ମଧ୍ୟ ସତ୍ତାର ଏକତ୍ୱ ସଂସ୍ଥିତ ରହେ। ଏହି ଅର୍ଥରେ ସାରା ଜାଗତିକ ପରିବର୍ତ୍ତନ (evolution) ଏକ ସତ୍ତାର ବିକାଶ =ଭେଦ ମାତ୍ର। ସାଂଖ୍ୟ ମତରେ ଜଗତ୍ ପ୍ରକୃତି (=body) ଏବଂ ପୁରୁଷ (=soul), ଏହିରୂପ ଦୁଇ ସତ୍ତାଯୁକ୍ତ। ବୈଶେଷିକ ଦର୍ଶନରେ ଜଗତ୍ ପରମାଣୁରୁ ସୃଷ୍ଟ। ପରମାଣୁ ଅନେକ ଏବଂ ବିଭିନ୍ନ। ଏଣୁ ସତ୍ତା ଅନେକ ଏକ ପଦାର୍ଥ ଅନ୍ୟଠାରୁ ଭିନ୍ନ—ସନ୍ଦର୍ଭ ଲେଖକ. ପ୍ରୋଫେସର ବିପିନବିହାରୀ ରାୟ, ଏମ୍. ଏ.। ] ଦେ. ବି—ଚିହ୍ନ ପତ୍ତା; ଚିହ୍ନ—Trace; indication. (ଯଥା—**चिह्न** ସେ ମୋତେ ଅମୁକ ବିଷୟର ସତ୍ତା ଦେଖାଇଲା ନାହିଁ।)

**ସତ୍ତେ**—ସ୍ଥା. ଅବ୍ୟୟ (ବଙ୍ଗଳାରୁ ଅନୁକୃତ. ସଂ.ସତ୍ତ୍ୱ ଶବ୍ଦୋତ୍ପନ୍ନ ସତ୍ତ୍ୱେ)—Satte କୌଣସି ବିଷୟର ଉପସ୍ଥିତି ଥାଇ ମଧ୍ୟ—सत्वे **सत्वे** (conjunction) In spite of; in the (ସତ୍ତ୍ୱେ—ଅନ୍ୟରୂପ) face of; notwithstanding.

**ସତ୍ତ୍ୱ**—ସଂ. ବି (ସତ୍+ଭାବ. ତ୍ୱ)—୧। ବିଦ୍ୟମାନତା—Sattwa 1. Presence. ୨। ସ୍ଥିତି—2. Existence; being. ୩। ଚେତନ ପଦାର୍ଥ—3. Sentient being. ୪। ଜୀବ; ପ୍ରାଣୀ; ଜନ୍ତୁ—4. Animal. ୫। ସତ୍ତ୍ୱଗୁଣ; ସୃଷ୍ଟିର ପ୍ରକୃତିର ତିନି ଗୁଣ ମଧ୍ୟରୁ

ପ୍ରଧାନ ବା ଉତ୍ତମ ବା ଶ୍ରେଷ୍ଠ ଗୁଣ—5. Moral goodness; the best of the 3 qualities in the material Nature; the aggregate of moral good qualities. [ ଦ୍ର—ଏହି ଗୁଣରୁ ସତ୍ୟ, ଧର୍ମ, ଦୟା, ସରଳତ୍ୱ, ପ୍ରେମ, ନ୍ୟାୟ, ପରୋପକାର, ପବିତ୍ରତା, ଈଶ୍ୱର ଭକ୍ତି ଆଦି ଭାବ ଜନ୍ମେ ।
ମହାଭାରତ ମତରେ ସତ୍ତ୍ୱଗୁଣର ଧର୍ମ ୭ ଗୋଟି; ଯଥା—ପ୍ରସାଦ, ହର୍ଷ, ପ୍ରୀତି, ଅସନ୍ଦେହ, ଧୃତି ଓ ସ୍ମୃତି । ] ୬ । ଦ୍ରବ୍ୟ; ପଦାର୍ଥ—6. Article; thing. ୭ । ମନଃ; ଅନ୍ତଃକରଣ; ଚିତ୍ତ—7. Mind; the intellectual faculty of mind; intelligence; sensation; feeling. ୮ । ସ୍ୱଭାବ; ପ୍ରକୃତି—8. Nature; disposition; natural propensities. ୯ । ବ୍ୟବସାୟ; ବ୍ୟବହାର—9. Trade; business. ୧୦ । ସ୍ୱାଭାବିକ ଅବସ୍ଥା—10. Natural condition. ୧୧ । ବଳ; ଶକ୍ତି; କ୍ଷମତା—11. Strength; power; ୧୨ । ପରାକ୍ରମ—12. Force; might. ୧୩ । ଧୈର୍ଯ୍ୟ—13. Patience; coolness. ୧୪ । ତେଜଃ—14. Vigour; energy. ୧୫ । ଉତ୍ସାହ—15. Eagerness; exertion. ୧୬ । ଧନ—16. Wealth. ୧୭ । ଜୀବନ; ପ୍ରାଣ—17. Life; vitality. ୧୮ । ଜୀବନଧାରଣ—18. State of living; livelihood. ୧୯ । ଜୀବନକାଳ; ଆୟୁଃ—19. Life-time. ୨୦ । ଚୈତନ୍ୟ—20. Consciousness; sensation. ୨୧ । ଆତ୍ମା—21. Spirit; soul. ୨୨ । ସାହସ—22. Courage; boldness. ୨୩ । ନିର୍ଯ୍ୟାସ; ରସ—23 Juice; fluid. ୨୪ । ସାର—24. Essence. ୨୫ । ରସ; ମନୋଗତ ଭାବ—25. Sentiment; passion. ୨୬ । କୁବେର—26. The God of wealth. ୨୭ । ପିଶାଚାଦି—27. Aerial beings; demigods. ଦେ.ବି (ଜଡବାଚ୍ୟ) (ସଂ.ସ୍ୱତ୍ୱ)—ସମ୍ପତ୍ତିରେ ସ୍ୱାମୀର ଅଧିକାର; ସ୍ୱାମିତ୍ୱ; ସ୍ୱତ୍ୱ—Proprietory right over a thing; ownership.

ସ୍ୱତ୍ୱ
ହକ

**ସତ୍ତ୍ୱ ଗୁଣ**—ସଂ. ବି—ସତ୍ତ୍ୱ ୫ (ଦେଖ)—Sattwa 5 (See)
Sattwa guṇa [ଦ୍ର—ସତ୍ତ୍ୱ, ରଜଃ ଓ ତମଃ—ଏହି ତିନିଗୋଟି ପ୍ରକୃତିର ଗୁଣ; ଜୀବାତ୍ମା ଏହି ଗୁଣତ୍ରୟ ଦ୍ୱାରା ସଂସାରରେ ଆବଦ୍ଧ ହୁଏ । ଏହି ସତ୍ତ୍ୱଗୁଣ ନିର୍ମଳ, ପ୍ରକାଶକ ଓ ଅନାମୟ; ଏହା ମନୁଷ୍ୟକୁ ସର୍ବଦା ସୁଖରେ ଓ ଜ୍ଞାନରେ ଆବଦ୍ଧ କରି ରଖେ । ଯେଉଁ ପଦାର୍ଥ ଦ୍ୱାରା ପରମାୟୁ, ସତ୍ତ୍ୱ, ବଳ, ଆରୋଗ୍ୟ, ସୁଖ ଓ ପ୍ରୀତି ବଢ଼େ ଓ ଯାହା ରସମୟ, ହୃଦୟଗ୍ରାହୀ, ସ୍ଥିର ଓ ସ୍ନିଗ୍ଧ ଖାଦ୍ୟପଦାର୍ଥ, ତାହା ସାତ୍ତ୍ୱିକ ପ୍ରକୃତିବିଶିଷ୍ଟ ଲୋକର ପ୍ରିୟ ]

**ସତ୍ତ୍ୱବାନ୍**—ସଂ. ବିଣ. ପୁଂ—(ସତ୍ତ୍ୱ+ଅସ୍ତି ଅର୍ଥରେ ବତ୍; ୧ମା ୧ବ)—
Sattwabān ୧ । ସତ୍ତ୍ୱଗୁଣ ବିଶିଷ୍ଟ—1. Possessing moral goodness. ୨ । ସ୍ଥାୟୀ—2. Permanent. ୩ । ସ୍ୱାଭାବିକ—3. Natural.
(ସତ୍ତ୍ୱବତୀ—ସ୍ତ୍ରୀ)
୪ । ଧାର୍ମିକ—4. Virtuous; pious. ୫ । ନିଷ୍ପାପ—5. Sinless. ଦେ ବିଣ (ଜଡବାଚ୍ୟ)—ସତ୍ତ୍ୱବାନ୍ (ଦେଖ)—Satwabān (See).

**ସତ୍ତ୍ୱସ୍ଥ**—ସଂ. ବିଣ—( ସତ୍ତ୍ୱ+ସ୍ଥା ଧାତୁ+କର୍ତ୍ତୃ ଅ )—ସତ୍ତ୍ୱଗୁଣ ପ୍ରଧାନ
Sattwastha (ବ୍ୟକ୍ତି)—( a person ) In whom moral virtues predominate.
(ସତ୍ତ୍ୱସ୍ଥା—ସ୍ତ୍ରୀ)

**ସତ୍ତ୍ୱେ**—ଦେ. ଅ— (ସଂ. ସତ୍ ଶବ୍ଦର ୭ମୀ ବିଭକ୍ତି ସତି)—ଥାଇ ମଧ୍ୟ;
Sattwe ଅବସ୍ଥିତ ଥିଲେ ମଧ୍ୟ; ହେଲେ ମଧ୍ୟ; ବା; ହେଲେହେଁ—
ସତ୍ତ୍ୱେ; ସତ୍ୱେ (ଅମୂଳକ) ବିଦ୍ୟମାନତା ଥାଇ ମଧ୍ୟ —Even though; even if; inspite of; in the presence of. [ଯଥା—ଶକ୍ତିସତ୍ତ୍ୱେ କ୍ଷମାଗୁଣ ପରକାଶି—(ସତ୍ତ୍ୱେଓ—ଅନ୍ୟରୂପ) ରାଧାନାଥ—ମହାଯାତ୍ରା ଶକ୍ତୋତ୍ସାହ]

**ସତ୍ତ୍ର(ତ୍ର)**—ସଂ. ବି—(ସଦ୍ ଧାତୁ=ଗମନ କରିବା+ଅଧିକରଣ. ତ୍ର)—
Sattra(tra) ୧ । ଯଜ୍ଞ—1. Vedic sacrifice or offering of oblations to the Deities through fire. ୨ । ସତତ ଅନ୍ନପାନାଦି ଦାନ—2. Act of free and constant distribution of food and drink. ୩ । ସଦାବ୍ରତ; ଛତ୍ରଖିଆ; ସଦା ଦାନ—3. Charity; act of giving gifts continuously. ୪ । ବନ; ଅରଣ୍ୟ—4. Forest. ୫ । ଗୃହ—5. House; abode; residence. ୬ । ଧନ —6. Riches. ୭ । ଆଚ୍ଛାଦନ—7. Covering. ୮ । କୌତୁକ; ଛଳ—8. Deceit; fraud; cheating. ୯ । ସରୋବର—9. Tank; pond. ୧୦ । ( ବିଷ୍ଣୁସହସ୍ର ନାମ ) ବିଷ୍ଣୁଙ୍କର ଏକନାମ—10. A name of Bishṇu. ୧୧ । ଯେଉଁଠାରେ ଅନ୍ନପାନାଦି ଲୋକଙ୍କୁ ବିତରଣ କରାଯାଉ ଥାଏ—11. A place where food or drink or both is distributed free. [ ଦ୍ର—ଏହି ସତ୍ର ଶବ୍ଦ ଅପଭ୍ରଷ୍ଟ ହୋଇ ଓଡ଼ିଆରେ ଛତ୍ର ବା ଛତରରେ ପରିଣତ ହୋଇଅଛି । ଜଳଛତ୍ର=ଜଳଦାନ ଓ ଜଳଦାନ ଦିଆଯିବାର ସ୍ଥାନ; ଅନ୍ନଛତ୍ର=ଅନ୍ନ ଦିଆଯିବାର ସ୍ଥାନ ।]

**ସତ୍ତ୍ରଶାଳା**—ସଂ. ବି—୧ । ଯଜ୍ଞଶାଳା—1. A room or shed
Sattra śālā where vedic sacrifice is performed. ୨ । ଅନ୍ନ ଦାତାଙ୍କର ଗୃହ; ଯେଉଁ ଗୃହରେ ଅନ୍ନଦାନାଦି ଦିଆଯାଏ—2. A house where food is freely distributed; a free kitchen.

**ସତ୍ତ୍ରା(ତ୍ରା)ଜିତ୍**—ସଂ.ବି. (ନାମ)(ସତ୍ତ୍ର+ଅ+ଜି.ଧାତୁ+କର୍ତ୍ତୃ.କ୍ୱିପ୍)—
Sattrā(trā)jit ଶ୍ରୀକୃଷ୍ଣଙ୍କ ଶ୍ୱଶୁର; ଶ୍ରୀକୃଷ୍ଣଙ୍କ ଅଷ୍ଟ ମହିଷୀଙ୍କ ମଧ୍ୟରୁ ଏକତମା ସତ୍ୟଭାମାଙ୍କ ପିତା—Name of a father-in-law of Srikrushṇa. [ଦ୍ର—ସୂର୍ଯ୍ୟଦେବ ସନ୍ତୁଷ୍ଟ ହୋଇ ଏହାଙ୍କୁ 'ସ୍ୟମନ୍ତକ' ମଣି ଦାନ କରିଥିଲେ । ଏ ପୁଣି ନିଜ ସହୋଦର ପ୍ରସେନଜିତଙ୍କୁ ଏହା ଦେଇଥିଲେ; ପ୍ରସେନଜିତ୍ ମୃଗୟାରେ ସିଂହ କର୍ତ୍ତୃକ ହତ ହେବାରୁ, ଏହାକୁ ଜାମ୍ବବାନ୍ ପାଇଥିଲେ । ଜାମ୍ବବାନ୍‌ଙ୍କୁ ପରାଜିତ କରି ଶ୍ରୀକୃଷ୍ଣ ପୁଣି ଏ ମଣିକୁ ଆଣି

ସତ୍ରାଜିତ୍‌ଙ୍କୁ ଦେଲେ । ଅକ୍ରୂରଙ୍କ ପ୍ରରୋଚନାରେ ଶତଧନ୍ୱା ସତ୍ରାଜିତ୍‌ଙ୍କୁ ବଧ କରି ଏ ମଣିକୁ ହରଣ କଲେ ।]

ସତ୍ରାନ୍ନ—ସଂ. ବି—(ମ. ପ. ଲୋ; ସତ୍ର+ଅନ୍ନ)—ସତ୍ରରେ ପ୍ରଦତ୍ତ
Sattrānna ଅନ୍ନ; ଅନ୍ନସତ୍ରରେ କ୍ଷୁଧିତ ବ୍ୟକ୍ତିମାନଙ୍କୁ ଦଆଯିବା ପକ୍ୱାନ୍ନ—Boiled rice distributed to the famished people who come to a public free kitchen.

ସତ୍ରାନ୍ନଭୋଜୀ—ସ. ବି ଓ ବିଣ. ପୁଂ—ଛତ୍ରଖିଆ; ଯେଉଁ ବ୍ୟକ୍ତି ଅନ୍ନ-
Sattrānnabhoji ଛତ୍ରରେ ଖାଇଥାନ୍ତି ଦଆଯିବା ଅନ୍ନ ଖାଏ—
(ସତ୍ରାନ୍ନଭୋଜିନୀ—ସ୍ତ୍ରୀ) A person partaking of
(ସତ୍ରାନ୍ନଭୁକ୍—ଅନ୍ୟରୂପ) boiled rice distributed free in a public kitchen.

ସତ୍ରି—ସ.ବି.(ସଦ୍ ଧାତୁ=ଗମନ କରିବା; ହିଂସା କରିବା+କର୍ତ୍ତି ତ୍ରି)-
Sattri ୧ । ମେଷ, ମେଣ୍ଢା—1. Sheep. ୨ । ହସ୍ତୀ—2. Elephant. ଭିଣ—ଜୟଶୀଳ—Conquering; victorious.

ସତ୍ରୀ—ସଂ. ବିଣ. ପୁଂ—(ସତ୍ର+ଇନ୍; ୧ମା ୧ ବ)—ଯାଗଶୀଳ—
Sattrī Habitually performing vedic sacrifices. ବି. ୧ । ସଦାଗୃହସ୍ଥ ଗୃହସ୍ଥ—1. A dutiful or pious householder. ୨ । ଦୂତ—2. An ambassador.

ସତ୍ପଥ—ସଂ.ବି—ସତ୍ ପଥ (ଦେଖ)—Sat-patha (See)
Satpatha [ଦ୍ର—ସତ୍ ଶବ୍ଦ ପୂର୍ବକ ତ+ପ (ପ୍ର) ଅବ ଯୁକ୍ତାକ୍ଷର ବିଶିଷ୍ଟ ଶବ୍ଦମାନଙ୍କ ପାଇଁ ସତ୍ ଶବ୍ଦ ପରେ ଦଆଯାଇ ଥିବା ଶବ୍ଦ ମାନ ଦେଖ ।]

ସତ୍ୱ—ସଂ. ବି—(ସତ୍+ଭାବେ. ତ୍ୱ; ତ ଲୋପ)—ସତ୍ତ୍ୱ (ଦେଖ)—
Satwa Sattwa (See). ଦେ.ବି. (ସଂ.ସ୍ୱତ୍ୱ) (କଚେରିଆ) ବସ୍ତୁରେ ବା ସମ୍ପତ୍ତିରେ ସ୍ୱାମିତ୍ୱ; ଅଧିକାର; ସ୍ୱତ୍ୱ—Right and title; ownership; interest; proprietory right. [ଦ୍ର—ଅମ୍ଭମାନଙ୍କ ଦେଶରେ ଭୂସମ୍ପତ୍ତିରେ ଭିନ୍ନ ଭିନ୍ନ ପ୍ରକାର ସତ୍ୱର ନାମ ପ୍ରଚଳିତ ଅଛି ଯଥା—ଅସ୍ଥାୟୀସତ୍ୱ, ଖରିଦାସତ୍ୱ, ଚିରସ୍ଥାୟୀ ସତ୍ୱ, ଜୀବନ ସତ୍ୱ, ଦଖଲ(ସ୍ଥିତିବାନ)ସତ୍ୱ, କବ୍ଜେ ସତ୍ୱ, ବିରୁଦ୍ଧ ସତ୍ୱ, ପ୍ରଜା (ରଇତି) ସତ୍ୱ, ଭୂସତ୍ୱ, ମଉରସୀ ସତ୍ୱ, ମଧ୍ୟ ସତ୍ୱ, ଲାଖରାଜ ସତ୍ୱ, ସିକମି ସତ୍ୱ, ଜମିଦାରି ସତ୍ୱ, ମକଦମି ସତ୍ୱ, ବାହେଲ ସତ୍ୱ ଇତ୍ୟାଦି ।]

ସତ୍ୱ ଉଚ୍ଛେଦ—ଦେ. ବି. (କଚେରିଆ)—ସ୍ୱତ୍ୱର ଲୋପ—
Satwa uchchheda Extinction of title.
सत्व उछेद सत्व लोप, हक मारना

ସତ୍ୱ ଉଦ୍ଭବ—ଦେ. ବି. (କଚେରିଆ)—ଖରିଦ ବା ବହୁକାଳ ଦଖଲ
Satwa udbhaba ବା ଉତ୍ତରାଧିକାରିତ୍ୱ ବା ଦାନଗ୍ରହଣ
सत्व उद्भव କରିଥିବା ବ୍ୟକ୍ତିର ଭୂମି ସମ୍ପତ୍ତିରେ ସ୍ୱତ୍ୱର ଉତ୍ପତ୍ତି—
सत्व उद्भव, हकप्राप्त Accrual of title to land by purchase or long possession or inheritance or gift.

ସତ୍ୱ ଦଖଲ—ଦେ. ବି.—(କଚେରିଆ; ସତ୍ତଚର ଶବ୍ଦ)—କୌଣସି
Satwa dakhala ବ୍ୟକ୍ତିର ସ୍ୱତ୍ୱ ଓ ଭୂମି ସମ୍ପତ୍ତିର ଭୋଗ
सत्व दखल Title and possession in a property.
सत्व दखल हक दखल

ସତ୍ୱ ଦାବୀ—ଦେ. ବି. (କଚେରିଆ)—ସମ୍ପତ୍ତିରେ ସ୍ୱାମିତ୍ୱ ବା ଅଧିକାର
Satwa dābī ପାଇବାପାଇଁ ଦାବୀ—Claim of title to a
सत्वदावि सत्व दावी, हक दावी property.

ସତ୍ୱ ଦାୟୀ—ଦେ. ବି. (କଚେରିଆ)—ସମ୍ପତ୍ତିରେ ଯାହାର ସ୍ୱତ୍ୱ ବା
Satwa dāyī ସ୍ୱାମିତ୍ୱ ଅଛି; ସ୍ୱତ୍ୱବାନ୍ (ବ୍ୟକ୍ତି)—(A person)
स्वत्ववान् Having title or interest in a property.
सत्वदायी, हकदार

ସତ୍ୱ ପ୍ରଚାର—ଦେ. ବି. (କଚେରିଆ)—କୌଣସି ସମ୍ପତ୍ତିରେ ବାହାର
Satwa prachāra ସ୍ୱାମିତ୍ୱ ଥିବା ବିଷୟ ଅଦାଲତଦ୍ୱାରା
सत्वप्रचार ଘୋଷଣା—Judicial declaration of one's
सत्व घोषणा, हकको डिक्री title to a property.

ସତ୍ୱ ବାନ୍—ବିଣ.—ସତ୍ତ୍ୱବାନ୍ (ଦେଖ)
Satwabān Sattwabān (See)
सत्ववान् ଦେ. ବିଣ (କଚେରିଆ; ସଂ ସ୍ୱତ୍ୱବାନ୍)—ଯାହାର ସମ୍ପତ୍ତିରେ
सत्ववान्, हकदार ସ୍ୱତ୍ୱ ବା ସ୍ୱାମିତ୍ୱ ଥାଏ; ହକଦାର—
Having title to any property.

ସତ୍ୱ ବୁଡ଼ା(ଡେ)ଇବା—ଦେ. କି. (କଚେରିଆ)—ଅନ୍ୟ ବ୍ୟକ୍ତିର
Satwa burdā (rde) ibā ସ୍ୱତ୍ୱକୁ ବା ସ୍ୱାମିତ୍ୱକୁ ଯବରଦସ୍ତି
सत्व डुबान ଅଧିକାର ଦ୍ୱାରା ଲୋପ କରିବା—To extinguish
सत्व मिटाना, हक मारना a person's title by forcible possession.

[ସତ୍ୱ ବୁଡ଼ିବା (ବୁଡ଼ିଯିବା)—ବିଶେଷ୍ୟରୂପ] [ଦ୍ର—କେତେ କାଳ ଅନ୍ୟର ସମ୍ପତ୍ତିକୁ ବଳପୂର୍ବକ ଅଧିକାର କଲେ ସମ୍ପତ୍ତିସ୍ୱାମୀଙ୍କର ଭୂମି ସମ୍ପତ୍ତିରେ ସତ୍ୱ ବୁଡ଼ିଯାଏ ବା ସତ୍ୱଲୋପ ହୁଏ, ତାହା ତମାଦି ଅଇନରେ ନିର୍ଦ୍ଦିଷ୍ଟ ହୋଇଅଛି ।]

ସତ୍ୱର—ସ. କି. ବି—(ବହୁବ୍ରୀହି) (ସ=ସହିତ+ତ୍ୱର)—
Satwara ଅବିଳମ୍ବେ; ଶୀଘ୍ର—Soon; speedily; hastily. ବିଣ—ଶୀଘ୍ର; ତ୍ୱରିତ; ଅବିଳମ୍ବ—Speedy; hasty.

ସତ୍ୱର ଗତି—ସ. ବି.—ସ.ବି. (କର୍ମଧା; ସତ୍ୱର+ଗତି) ଶୀଘ୍ର ଗମନ—
Satwara gati Speedy movement. ବିଣ (ବହୁବ୍ରୀହି) ତ୍ୱରିତ ଗତି ବିଶିଷ୍ଟ—Moving speedily.

ସତ୍ୱରତା(ତ୍ୱ)—ସ ବି—(ସତ୍ୱର+ଭାବେ. ତା)—ଶୀଘ୍ରତା—
Satwaratā (twa) Swiftness; speediness; quickness.

ସତ୍ୱ ଲାଭ—ଦେ. ବି. (କଚେରିଆ)—୧ । ସତ୍ୱ ଉଦ୍ଭବ (ଦେଖ)
Satwa lābha Satwa udbhaba (See). ୨। ସମ୍ପତ୍ତିରେ
सत्वलाभ ଜନ୍ମିଥିବା ସବୁ ପ୍ରକାରର ସ୍ୱତ୍ୱ—2. All rights
सत्वलाभ, हकलाभ which have accrued in a property. (ଦ୍ର—କବଲରେ ଲେଖାଯାଏ—ଏ ସମ୍ପତ୍ତି ଓ ଉହିଁର ସମସ୍ତ ସତ୍ୱଲାଭ ସହିତକୁ ମୁଁ କାଲୋଚିତ ମୂଲ୍ୟ ପ୍ରମାଣେ ଆପଣଙ୍କ ହସ୍ତେ ବିକି କଲି ) ।

ସତ୍ୱ ଲୋପ—ଦେ. ବି. (କଚେରିଆ)—ଖରିଦ ବା ବହୁକାଳ ଅପେକ୍ଷା
Satwa lopa କୌଣସି ସମ୍ପତ୍ତି ଦଖଲରେ ଅନ୍ୟ ଦ୍ୱାରା ସମ୍ପତ୍ତିରେ
सत्वलोप ସମ୍ପତ୍ତିସ୍ୱାମୀର ଥିବା ସ୍ୱାମିତ୍ୱର ନାଶ—Extinction

सत्वलोप, हकक्कालोप of one's title to a property by sale or long dispossession.

ସତ୍ତ୍ୱ ସାବ୍ୟସ୍ତ—ଦେ. ବ. (କଚେରିଅ)—ସମ୍ପତ୍ତିରେ କୌଣସି ବ୍ୟକ୍ତିର-
Satwa sābyasta ସ୍ୱତ୍ୱ ଥିବା ସମ୍ବନ୍ଧେ ଅଦାଲତଙ୍କ ଦ୍ୱାରା
सत्वसाव्यस्त ବିଚାରପୂର୍ବକ ନିର୍ଦ୍ଧାରଣ—Declaration or
सत्व निर्द्धारण establishment of one's title to a property by a court of justice.

ସତ୍ତ୍ୱସାବ୍ୟସ୍ତ ମକଦ୍ଦମା—ଦେ. ବ (କଚେରିଅ)—କୌଣସି ସମ୍ପତ୍ତିରେ
Satwasābyasta makaddamā କାହାର ସ୍ୱାମିତ୍ୱ ଥିବା
सत्वसाव्यस्त मोकद्दमा ବିଷୟ ନିର୍ଦ୍ଧାରଣ କରିବା ପାଇଁ କରାଯିବା
सत्वनिर्द्धारण मुकद्दमा ମକଦ୍ଦମା—Suit for establishment and declaration of one's title to a property.

ସତ୍ତ୍ୱ ହାନି—ଦେ. ବ (କଚେରିଅ)—୧ । ସ୍ୱତ୍ୱ ସମ୍ବନ୍ଧେ କ୍ଷତି—1. Loss
Satwa hāni of one's title. ୨ । ସ୍ୱତ୍ୱ ସମ୍ବନ୍ଧେ ବାଧା—
सत्वहानि सत्वहानि, हकनुकसान 2. Detriment to one's title.

ସତ୍ତ୍ୱାସତ୍ତ୍ୱ—ଦେ. ବ (କଚେରିଅ)—ସ୍ୱତ୍ୱ ସମ୍ବନ୍ଧୀୟ ବିଷୟ; ବାଦୀ ଓ
Satwāsatwa ପ୍ରତିବାଦୀ ଦୁଇ ଜଣଙ୍କ ମଧ୍ୟରୁ କାହାର ଦାବୀକୃତ
सत्वासत्व ସମ୍ପତ୍ତିରେ ସତ୍ତ୍ୱ ଅଛି ଓ କାହାର ନାହିଁ, ଏହି ବିଷୟ—
सत्वासत्व, हकवेहक Title of one party and want of title of the other party in a disputed property, the subject matter of a title suit.

ସତ୍ତ୍ୱାସତ୍ତ୍ୱ ମକଦ୍ଦମା—ଦେ. ବ (କଚେରିଅ)—ଯେଉଁ ମକଦ୍ଦମାରେ
Satwāsatwa makaddamā ସମ୍ପତ୍ତି (ବିଶେଷତଃ
सत्वासत्व मोकद्दमा ଭୂସମ୍ପତ୍ତି)ରେ ବାଦୀ ପ୍ରତିବାଦୀ ଉଭୟଙ୍କ ମଧ୍ୟରୁ
सत्वासत्व मुकद्दमा, हकवेहक मुकद्दमा କାହାର ସତ୍ତ୍ୱ ଅଛି କାହାର ନାହିଁ, ଏହି ପ୍ରଶ୍ନର ମୀମାଂସା କରାଯାଏ—Title suit.

ସତ୍ୟ—ସ. ବଣ (ସତ୍+ଯ)—୧ । ପ୍ରକୃତ; ଯଥାର୍ଥ—
Satya 1. Actual. ୨ । ଯାହା ଭ୍ରମାତ୍ମକ ନୁହେଁ; ଠିକ୍—2. Right. ୩ । ଯାହା ମିଥ୍ୟା ନୁହେ—3. True. ୪ । ନିତ୍ୟ; ଅବିନାଶୀ—4. Permanent; indestructible. ୫ । ନିଃସନ୍ଦେହ; ନିଶ୍ଚିତ—5. Certain; sure. କ୍ରି. ବଣ (ସଂ, ସତ୍ୟଂ)—୧ । ଯଥାର୍ଥରେ—1. Really. ୨ । ପ୍ରକୃତରେ—2. Actually. ୩ । ନିଶ୍ଚେ—3. Certainly; verily. ବି—୧ । ନିତ୍ୟତା; ଅନଶ୍ୱରତା—1. Permanence; indestructibility. ୨ । ଯାଥାର୍ଥ୍ୟ—2. Reality. ୩ । ଯଥାର୍ଥ କଥନ; ଅମିଥ୍ୟା; ପ୍ରକୃତ ଘଟନାର ବର୍ଣ୍ଣନା—3. Speaking what is true; truth. ୪ । ପବିତ୍ରତା—4. Purity. ୫ । ପୁଣ୍ୟ—5. Virtue. ୬ । ଯଥାର୍ଥ ଜ୍ଞାନ—6. True knowledge. ୭ । ବିଜ୍ଞାନ—7. Science; scientific knowledge. ୮ । ସିଦ୍ଧାନ୍ତ—8. Conclusion; resolution. ୯ । ବୈଜ୍ଞାନିକ ବା ପ୍ରାକୃତିକ ଅପରିବର୍ତ୍ତନୀୟ ନିୟମ—9. Natural or scientific rules or maxims or truths; axiomatic truths; scientific maxims. ୧୦ । ଧର୍ମତଃ ପ୍ରତିଜ୍ଞା; ଶପଥ—10. Vow; solemn declaration. [ଦ୍ର—ହିନ୍ଦୁଶାସ୍ତ୍ର ମତରେ ସତ୍ୟ କହିବାଠାରୁ ଓ ସତ୍ୟପାଳନ ବା ପ୍ରତିଜ୍ଞାପାଳନଠାରୁ ବଳି ଅନ୍ୟ ଧର୍ମ ସଂସାରରେ ନାହିଁ । ଶାସ୍ତ୍ରରେ ଅଛି, ସତ୍ୟଠାରୁ ବଳି ଧର୍ମ ନାହିଁ, ମିଥ୍ୟା ବା ଅନୃତଠାରୁ ବଳି ପାତକ ନାହିଁ; ଜ୍ଞାନଠାରୁ ବଳି ବନ୍ଧୁ ନାହିଁ, ମନ୍ତ୍ରଦାତାଙ୍କଠାରୁ ବଳି ଗୁରୁ ନାହାନ୍ତି; ଯେ ସତ୍ୟ କହେ ଓ ସତ୍ୟ ପାଳନ କରେ ସେ ସମସ୍ତ ଧର୍ମକାର୍ଯ୍ୟର ଫଳ ପାଏ; ସତ୍ୟ ଯୋଗୁଁ ଏ ସୃଷ୍ଟି ଚଳୁଅଛି । ସତ୍ୟରକ୍ଷା ବା ପ୍ରତିଜ୍ଞା ପାଳନରେ ମନୁଷ୍ୟର ପ୍ରାଣାନ୍ତେ ମଧ୍ୟ ହେଉ; ଯେ ମିଥ୍ୟା କହେ ଓ ପ୍ରତିଜ୍ଞା ଭଙ୍ଗ କରେ ତାଠାରୁ ବଳି ପାତକୀ ଏ ବ୍ରହ୍ମାଣ୍ଡରେ ନାହିଁ; ମହାପୁରୁଷମାନେ ପ୍ରାଣାନ୍ତେ ସୁଦ୍ଧା ମିଥ୍ୟା କହନ୍ତି ନାହିଁ କିମ୍ବା ସତ୍ୟ (ପ୍ରତିଜ୍ଞା) ଲଙ୍ଘନ୍ତି ନାହିଁ ।] ୧୧ । ସତ୍ୟଯୁଗ; କୃତଯୁଗ; ସୃଷ୍ଟିର ଚତୁର୍ଯୁଗ ମଧ୍ୟରୁ ପ୍ରଥମ ଯୁଗ—11. The first of the four ages of the creation according to the Hindu mythology. [ଦ୍ର—ଏହାର କାଳ ୧୦ କୋଟି ୭ ଲକ୍ଷ ୨୮ ହଜାର ବର୍ଷ, ମତାନ୍ତରରେ ୧୭ ଲକ୍ଷ ୨୮ ହଜାର ବର୍ଷ ।

ସୃଷ୍ଟି ଆରମ୍ଭେ ସତ୍ୟଯୁଗ ଆରମ୍ଭ ହୁଏ । ତପରେ ତ୍ରେତା, ଦ୍ୱାପର ଓ କଳିଯୁଗ ଭୋଗ ହେଲାପରେ ପୁଣି ସତ୍ୟଯୁଗ ଆରମ୍ଭ ହୁଏ । ବୈଶାଖ ଶୁକ୍ଳ ଅକ୍ଷୟ ତୃତୀୟା ଦିନ ସତ୍ୟଯୁଗର ଉତ୍ପତ୍ତି । ଏଯୁଗର ପରିମାଣ ୧୭ ଲକ୍ଷ ୨୮ ହଜାର ବର୍ଷ; ମନୁଷ୍ୟମାନଙ୍କ ପରମାୟୁ ଲକ୍ଷେ ବର୍ଷ; ମନୁଷ୍ୟ ଉଚ୍ଚରେ ୨୧ ହାତ ବଢ଼ନ୍ତି; ମଜ୍ଜାଗତ ପ୍ରାଣ; ଇଚ୍ଛାମୃତ୍ୟୁ; ବ୍ୟବହାରପାତ୍ର ସୁବର୍ଣ୍ଣ; ସାମବେଦର ଅଧିକାର; ତୀର୍ଥନାମ ପୁଷ୍କର; ଲୋକେ ସତ୍ୟଧର୍ମରତ ଓ ତୀର୍ଥାଶ୍ରୟ । ସତ୍ୟଯୁଗରେ ୭ଜଣ ଚକ୍ରବର୍ତ୍ତୀ ରାଜତ୍ୱ କରିଥିଲେ—ବଳି; ବେଣୁ, ମାନ୍ଧାତା, ପୁରୁରବାଃ, ଧୁନ୍ଧୁମାର, କାର୍ତ୍ତବୀର୍ଯ୍ୟାର୍ଜୁନ, ତାରକବ୍ରହ୍ମନାମ—ନାରାୟଣପରାବେଦାଃ ନାରାୟଣ ପରାକ୍ଷରାଃ । ନାରାୟଣ ପରାମୁକ୍ତି ର୍ନାରାୟଣ ପରା ଗତିଃ । ପଞ୍ଜିକୋଦ୍ଧୃତ ବଚନ ।)

୧୨ । ସତ୍ୟଲୋକ; ସପ୍ତଲୋକର ବା ସପ୍ତ ଭୁବନର ଉଚ୍ଚତମ ଲୋକ—12. The highest of the 7 upper worlds of the Hindu mythology. [ଦ୍ର—ଏହି ଲୋକରେ ବିଷ୍ଣୁ ଓ ବ୍ରହ୍ମା ବାସ କରନ୍ତି । ଯେଉଁମାନେ ମୃତ୍ୟୁପରେ ନିଜ ନିଜର ପୁଣ୍ୟଫଳରେ ସତ୍ୟଲୋକରେ ପହଞ୍ଚନ୍ତି ସେମାନେ ଆଉ ସଂସାରରେ ପୁନର୍ଜନ୍ମ ଲାଭ କରନ୍ତି

ନାହିଁ ।] ୧୩ । (ସତ୍ତ୍ୱସ୍ୱ ନାମ) ବିଷ୍ଣୁ—13. A name of Bishṇu. ୧୪ । (ଶଙ୍କରକୃତ ନାମ) ଶ୍ରୀରାମଚନ୍ଦ୍ର—14. A name of Rāmachandra. ୧୫ । (ସ୍ୱାଦୁଗର୍ଭଣ୍ଡ) ଅଶ୍ୱତ୍ଥ ବୃକ୍ଷ—15. The religious fig tree. ୧୬ । ନାନ୍ଦୀମୁଖ ଶ୍ରାଦ୍ଧରେ ଅର୍ଚ୍ଚିତ ଦେବତା—16. The Deity invoked in the Nāndimukha Srāddha. ବେ. ବି.—ତଥ୍ୟ; ଦର୍ଶନ ବା ଦର୍ଶନାଦି

ସତ୍ୟ सत्य ଶାସ୍ତ୍ରମତରେ ଅପରିବର୍ତ୍ତନୀୟ ବିଷୟ; ସ୍ୱତଃସିଦ୍ଧ, ସ୍ୱାର୍ଥ— Scientific; philosophical or religious truths; axioms; axiomatic truths.

ସତ୍ୟ(ତ୍ୟା) ଅମ୍ବ(ମ୍ବା)—ବେ. ବି—(ସ ସତ୍ୟ ଓ ଅମ୍ବ)—ନାଗେଶ୍ୱର ବର୍ଗର ସୁଠାମ ଶ୍ୟାମଳ ଗଛ; ବିଶେଷ—Garcina Xanthochymus (a tree). [ବି—ଏ ଗଛ ତମାଳ ଗଛ ପରି ଘନଶ୍ୟାମଳ ଓ ସ୍ଥୂଳସ୍କନ୍ଧ ଗଛ । ଏଥିର ଫଳ ନେଙ୍ଗଡା ଅମ୍ବ ବା ବେଲ ଫଳ ପରି ଗୋଲ୍ । କଞ୍ଚା ଫଳ ଖଟା; ଫଳ ପାଚିଲେ ଈଷତ୍ ମିଠା ଓ ଖଟା ଲାଗେ ଓ ହଳଦିଆ ବା ନାରଙ୍ଗୀ ବର୍ଣ୍ଣ ବା ପାଚିଲା ଅମ୍ବର ବର୍ଣ୍ଣ ଧରେ । ପତ୍ର ଗୁଡ଼ିକ ଅମ୍ବ ପତ୍ରଠାରୁ ବଡ଼, କିନ୍ତୁ ମୋଟା ଓ ଚିକ୍କଣ । ଫୁଲ ଧଳା ଓ ସୁଗନ୍ଧ । ବସନ୍ତ କାଳରେ ଫୁଲ ଫୁଟେ । ବର୍ଷା ଓ ଶରତ୍ କାଳରେ ଫଳ ପାଚେ । ପାଚିଲା ଫଳକୁ ଗରିବ ଲୋକେ ଖାଆନ୍ତି ଏବଂ ଅମ୍ଳ ତରକାରି କରନ୍ତି । କଞ୍ଚା ଫଳକୁ କେହି କେହି କାଟି ଅଚାର କରନ୍ତି । ଫଳ ଭିତରେ ଗୁଡ଼ାଏ ଖୋସା ବା ଚକୁଡ଼ା ଥାଏ ଓ ବକୁଳ ମଞ୍ଜିଠାରୁ ବଡ ଓ କଳା କଳା ଅନେକଗୁଡ଼ାଏ ଲମ୍ବା ମଞ୍ଜି ଥାଏ । ଏହାର ଡାଳମାନ ଘନ ଓ ପତ୍ରମାନ ମଧ୍ୟ ଘନସନ୍ନିବିଷ୍ଟ । ଓଡ଼ିଶାର ସ୍ଥାନେ ସ୍ଥାନେ ଓ ଗଡ଼ଜାତରେ ଏ ଗଛ ମିଳିଥାଏ । ଚଟ୍ଟଗ୍ରାମ, ଆସାମ, ବ୍ରହ୍ମଦେଶ ଓ ଦାକ୍ଷିଣାତ୍ୟରେ ଏ ଗଛ ହୁଏ ।

[ସତ୍ୟାମ୍ବ(ମ୍ବା)—ଅନ୍ୟରୂପ]
ସଂ. ବନାମ୍ର, ରକ୍ତାମ୍ର, ସୁରକ୍ତକ
दाम्पल
दम्पल
ମ, ଛାଡ଼ୀ ଅମ୍ବା
ତେ. ଜରମାଚ୍ଚ

Satya (tyā)āmba(mbā)

ଏହାର ଅପକ୍ୱ ଫଳ ଅମ୍ଳ, ଧାରକ, ବାୟୁନାଶକ, ଉଷ୍ଣବୀର୍ଯ୍ୟ, ଗୁରୁ ଓ ପିତ୍ତ ବର୍ଦ୍ଧକ । ଏହାର ପକ୍ୱ ଫଳ—ପାଚକ, ରୁଚିଜନକ, ଲଘୁ, ଉଷ୍ଣବୀର୍ଯ୍ୟ, କଫ ଓ ବାୟୁନାଶକ ।

ଏହାର ବୀଜର ତୈଳ ତିକ୍ତ, ଅମ୍ଳ—ମଧୁର, ପାଚକ, ରୁଚିକାରକ, ବଳକର, ସାରକ; କୃମି, କୁଷ୍ଠ ଓ ବ୍ରଣ ରୋଗରେ ଉପକାରକ ।] ୨ । କୁସୁମ ୨ (ଦେଖ ) 2. Kusuma 2. ( See )

ସତ୍ୟଂକାର—ସଂ. ବି—ସତ୍ୟଙ୍କାର ( ଦେଖ )
Satyaṁkāra Satyaṅkāra ( See )

ସତ୍ୟକ—ସଂ. ବି (ସତ୍ୟ+କ)—ସତ୍ୟଙ୍କାର ( ଦେଖ )
Satyaka Satyaṅkāra ( See )

ସତ୍ୟ କଥନ—ସଂ. ବି (୬ଷ୍ଠୀ ତତ୍)—ସତ କହିବା—
Satya kathana Speaking of truth.

ସତ୍ୟକଥା—ଦେ. ବି—ଅମିଥ୍ୟା; ପ୍ରକୃତ ଘଟଣାର ବିବୃତି—
Satya kathā Truthful speech.
সত্যি কথা सच्चि बात

ସତ୍ୟ କରଣ—ସଂ. ବି—୧ । ସତ୍ୟଙ୍କାର ( ଦେଖ )—1. Satyaṅkāra ( See ) ୨ । କୌଣସି କାର୍ଯ୍ୟ କରିବା ପାଇଁ ପ୍ରତିଜ୍ଞା କରିବା—2. A resolution to do something. ୩ । ଶପଥ; ଧର୍ମତଃ ପ୍ରତିଜ୍ଞା—3. Vow; promise on oath.
Satya karaṇa

ସତ୍ୟ କରିବା—ଦେ. କ୍ରି—କୌଣସି କାର୍ଯ୍ୟ କରିବା ପାଇଁ ଧର୍ମତଃ ପ୍ରତିଜ୍ଞା କରିବା—To take a solemn vow to do some thing.
Satya karibā
সত্য করা सत्य करना

ସତ୍ୟ କହିବା—ଦେ. କ୍ରି—ସତ୍ୟ ବାକ୍ୟ କହିବା—
Satya kahibā To speak the truth.
সত্য বলা सच कहना

ସତ୍ୟକାର—ସଂ. ବି—ସତ୍ୟଙ୍କାର ( ଦେଖ )
Satyakāra Satyaṅkāra ( See )
(ସତ୍ୟ କ୍ରିୟା—ଅନ୍ୟରୂପ)

ସତ୍ୟ କିଙ୍କର—ସଂ. ବି ଓ ବିଣ (୬ଷ୍ଠୀ ତତ୍;ସତ୍ୟ+କିଙ୍କର)—ସତ୍ୟର ଦାସ; ସତ୍ୟବ୍ରତପରାୟଣ—A servant of truth; practising truthfulness.
Satya kiṅkara

ସତ୍ୟକୁ ଆସିବା—ଦେ. କ୍ରି—ସତ୍ୟ ରୂପେ ଘଟିବା—
Satyaku āsibā To come to be true.
সত্য হওয়া सच होना

ସତ୍ୟଙ୍କାର—ସଂ. ବି (ସତ୍ୟଂ+କୃ ଧାତୁ+ଭାବ. ଅ)—୧ । କୌଣସି ଦ୍ରବ୍ୟ କ୍ରୟ କରିବା ପାଇଁ ଅଙ୍ଗୀକାର—1. The conclusion or ratification of a bargain; agreement or promise to purchase a thing. ୨ । ଚୁକ୍ତିଶର୍ତ୍ତିତ କାର୍ଯ୍ୟର ଅବଶ୍ୟକର୍ତ୍ତବ୍ୟ ସାଧନ ନିମନ୍ତେ ପର ହସ୍ତରେ ସ୍ଥାପ୍ୟମାନ ବସ୍ତୁ ବା ବ୍ୟକ୍ତି (ପ୍ରତିଭୂବାଦ)—2. Any person or thing given as security for the performance of an act.
Satyaṅkāra

ସତ୍ୟଙ୍କାର କୃତ—ସଂ. ବି—କୌଣସି ଦ୍ରବ୍ୟ କିଣିବା ନିମନ୍ତେ ସ୍ଥିର ହୋଇଥିବା ଦର ବିକ୍ରେତାକୁ ଅଗ୍ରୀମ ଦିଆ ଯିବା ଧନ; ବଇନା—Advance made towards the settled consideration-money for the purchase of an article.
Satyaṅkāra kṛuta

ସତ୍ୟ ଛଡ଼ା—ଦେ. ବିଣ—ମିଥ୍ୟାବାଦୀ—Liar. [ଉ—ଅହେ ନୃପ ନୋହୁଣ ତୁମ୍ଭେ ସତ୍ୟଛଡ଼ା, ସାହଲିତ କାର୍ଯ୍ୟ, ଦିଅ ଅମ୍ଭର ଘୋଡ଼ା । ନୃସିଂହ.ମହାଭାରତ.ବନ]
Satya chhaḍā
সত্যছাড়া
सच छोड़ा

ସତ୍ୟ ଜଳ୍ପନ—ସଂ. ବି (୬ଷ୍ଠୀ ତତ୍)—ସତ୍ୟକଥନ; ସତ୍ୟ କହିବା—
Satya jalpana Speaking of truth.

**ସତ୍ୟତପାଃ**—ସଂ. ବି. ପୁ—( ସତ୍ୟ+ତପସ୍, ୧ମା ୧ବ )—
Satya tapāh ମୁନି ବିଶେଷ — Name of a sage. [ବି—ଏ ପ୍ରଥମେ ବ୍ୟାଧ ଥିଲେ, ପରେ ତପସ୍ୟା ଦ୍ୱାରା ଦୁର୍ବାସାଙ୍କ ବରରେ ଏହି ନାମଧାରୀ ସର୍ବଶାସ୍ତ୍ରଜ୍ଞ ମୁନି ହୋଇଥିଲେ । (ବରାହ ପୁରାଣ ସତ୍ୟତପାଃ-ଉପାଖ୍ୟାନାଧ୍ୟାୟ)]

**ସତ୍ୟ ଦେବ**—ସଂ ବି—ସତ୍ୟ ନାରାୟଣ (ଦେଖ)
Satya deba Satya nārāyana (see)

**ସତ୍ୟଧର୍ମ**—ସଂ. ବି. ( ରୂପକ )—ପ୍ରତିଜ୍ଞା ପାଳନରୂପ ଧର୍ମ; ସତ୍ୟବ୍ରତ-
Satya dharma The vow of keeping one's promise.

**ସତ୍ୟଧର୍ମ ପରାୟଣ**—ସଂ. ବିଣ. ପୁଂ—ସତ୍ୟବ୍ରତପାଳନତତ୍ପର—
Satyadharma parayāna Always true to one's promise.
(ସତ୍ୟ ଧର୍ମ ପରାୟଣା—ସ୍ତ୍ରୀ)
(ସତ୍ୟଧର୍ମପରାୟଣତା—ବି)

**ସତ୍ୟ ଧୃତି**—ସଂ. ବି.—ମୁନି ବିଶେଷ—Name of a sage.
Satya dhruti [ବି—ଏ ଗୌତମଙ୍କ ଔରସରେ ଅହଲ୍ୟାଙ୍କ ଗର୍ଭରୁ ଜାତ ହୋଇ ବେଦବିଦ୍ୟା ପାରଙ୍ଗମ ହୋଇଥିଲେ]

**ସତ୍ୟ ନାରାୟଣ**—ସଂ. ବି—ବିଷ୍ଣୁ ବା ନାରାୟଣ—Bishnu.
Satya nārāyana [ବି—ବାଞ୍ଛାସିଦ୍ଧି କାମନାରେ ଏହାଙ୍କ ପୂଜାପଦ୍ଧତି ଓ ବ୍ରତ ଓ ସେହି ବ୍ରତର ବିଧାନ ଓ ଫଳଲାଭ ସମ୍ବନ୍ଧେ ଉପଦେଶ ସ୍କନ୍ଦପୁରାଣ ରେବା ଖଣ୍ଡରେ ସତ୍ୟ ନାରାୟଣ କଥା ନାମକ ୪ ଗୋଟି ଅଧ୍ୟାୟରେ ଅଛି । ଏହା ଭବିଷ୍ୟ ପୁରାଣୋକ୍ତ ବୋଲି କେହି କେହି କହନ୍ତି । ଭଗବାନ୍ ନାରଦଙ୍କୁ ଏହା କହିଥିଲେ; ନାରଦ ଶୁକଙ୍କୁ କହିଥିଲେ ଓ ଶୁକ ନୈମିଷାରଣ୍ୟରେ ଶୌନକାଦିଙ୍କୁ କହିଥିଲେ । ଭାରତରେ ମୁସଲମାନ୍ ରାଜତ୍ୱକାଳରେ ଏହି ସତ୍ୟନାରାୟଣ ବା ବିଷ୍ଣୁଙ୍କୁ ହିନ୍ଦୁମାନେ 'ସତ୍ୟପୀର' ନାମ ଦେଇ ମୁସଲମାନ ପ୍ରତିବେଶୀମାନଙ୍କ ନିକଟରେ ହିନ୍ଦୁ ଧର୍ମର ସାର୍ବଭୌମିକତା ଦେଖାଇଅଛନ୍ତି ।

ପୁରାଣରେ ଲିଖିତ ଅଛି, ସତ୍ୟନାରାୟଣ ବୃଦ୍ଧ ବ୍ରାହ୍ମଣ ବେଶରେ କଥାବର୍ଣ୍ଣିତ ଜଣେ ବ୍ରାହ୍ମଣଙ୍କୁ ଦେଖା ଦେଇଥିଲେ । ହିନ୍ଦୁମାନେ ଉକ୍ତ ବୃଦ୍ଧ ବ୍ରାହ୍ମଣ ବେଶଧାରୀ ସତ୍ୟନାରାୟଣଙ୍କୁ ବୁଢ଼ା ଶ୍ମଶ୍ରୁଧାରୀ ଫକୀର ରୂପରେ ଓ ପୁରାଣ କଥିତ ଏକାକୃତ ପକ୍ୱ ରମ୍ଭାଫଳ, ଘୃତ, ଦୁଗ୍ଧ, ଶର୍କରା ଓ ଗୋଧୂମ ଚୂର୍ଣ୍ଣ ବା ଶାଳୀ ତଣ୍ଡୁଳ ଚୂର୍ଣ୍ଣ ବା 'ଅମୃତକୁଣ୍ଡ'କୁ ମୁସଲମାନଙ୍କ ଶିର୍ନ୍ନି ରୂପରେ ଓ ସତ୍ୟନାରାୟଣଙ୍କ ପୂଜାକୁ ସତ୍ୟପୀରଙ୍କ ପାଲି ରୂପରେ ନାମକରଣ କରି ପୁରାଣ ବର୍ଣ୍ଣିତ ୪ ଗୋଟି କାହାଣୀର ଅଙ୍ଗ ବୃଦ୍ଧି କରି ୧୬ ଗୋଟି ଗଳ୍ପ ବା ୧୬ ପାଲିରେ ପରିଣତ କରିଅଛନ୍ତି । ଏ ସବୁ ନାମକରଣ ମୁହେଁ ମୁହେଁ ହୁଏ, କିନ୍ତୁ ଉକ୍ତ ସତ୍ୟପୀରଙ୍କ ପାଲି ଗୀତ ବୋଲିବା ପୂର୍ବରୁ ପୁରାଣୋକ୍ତ ବିଧିରେ ପଞ୍ଚଦେବତା (ଗଣେଶ, ଶିବ, ଦୁର୍ଗା, ସୂର୍ଯ୍ୟ ଓ ବିଷ୍ଣୁ)ଙ୍କର ଓ ନବଗ୍ରହଙ୍କର ଓ ଦଶ ଦିଗପାଳାଦିଙ୍କର ଅର୍ଚ୍ଚନା କରି "ଧ୍ୟାୟେତ୍ ସତ୍ୟଂଗୁଣାତୀତଂ ଗୁଣ ତ୍ରୟସମନ୍ୱିତଂ, ଲୋକନାଥଂ ତ୍ରିଲୋକେଶଂ ପୀତାମ୍ବରଧରଂ ହରିଂ, ଇନ୍ଦୀବରଦଳଶ୍ୟାମଂ ଶଙ୍ଖଚକ୍ରଗଦାଧରଂ, ସତ୍ୟଦେବଂ ଚତୁର୍ବାହୁଂ ଶ୍ରୀବତ୍ସପଦଭୂଷିତଂ, ଗୋବିନ୍ଦଂ, ଗୋକୁଳାନନ୍ଦଂ ଜଗତଃ ପିତରଂ ଗୁରୁମ୍" ଧ୍ୟାନ ଦ୍ୱାରା ଓ 'ଶ୍ରୀମତ୍ ସତ୍ୟନାରାୟଣ ଗୋବିନ୍ଦାୟ ନମଃ' ମନ୍ତ୍ରଦ୍ୱାରା ଉକ୍ତ ନୈବେଦ୍ୟକୁ ଉତ୍ସର୍ଗ କରନ୍ତି ଓ "ଅଚ୍ୟୁତଂ ପଣ୍ଡରୀକାକ୍ଷଂ ନୃସିଂହଂ ଦୈତ୍ୟସୂଦନଂ, ହୃଷିକେଶଂ ଜଗନ୍ନାଥଂ ବାଗୀଶଂ ବରଦାୟକଂ, ଗୁଣତ୍ରୟଂଗୁଣାତୀତଂ ଗୋବିନ୍ଦଂ ଗରୁଡଧ୍ୱଜଂ, ଜନାର୍ଦ୍ଦନଂ ଜନାନନ୍ଦଂ ଜାନକୀ ବଲ୍ଲଭଂ ହରିଂ, ପ୍ରଣମାମି ସଦା ସତ୍ୟନାରାୟଣଂ ସତତଃପରଂ" ଏହି ସ୍ତବ ଦ୍ୱାରା ପୂଜା ଶେଷ କରି ତତ୍ପରେ ବୁଢ଼ା ଫକୀରଙ୍କ କରାମତ୍ ବର୍ଣ୍ଣନାତ୍ମକ ୧୬ ଗୋଟି ବଙ୍ଗଳା ପଦ୍ୟରେ ରଚିତ ଗଳ୍ପ ମଧ୍ୟରୁ ଗୋଟିଏ ଗଳ୍ପ ବା ପାଲି ବୋଲନ୍ତି । ଭାରତର ଅନ୍ୟ ଅଞ୍ଚଳର ହିନ୍ଦୁମାନେ ପୁରାଣୋକ୍ତ ବିଧିରେ ମଧ୍ୟ ସତ୍ୟନାରାୟଣ ପୂଜା କରନ୍ତି; ଉତ୍କଳରେ ଓ ବଙ୍ଗରେ ତାହାହିଁ ହୁଏ; କିନ୍ତୁ ସତ୍ୟପୀରଙ୍କ ପାଲି ଉତ୍କଳ ଓ ବଙ୍ଗ ଛଡ଼ା ଅନ୍ୟତ୍ର ଦେଖାଯାଏ ନାହିଁ ।

ସ୍କନ୍ଦ ପୁରାଣରେ ଲେଖାଅଛି ଯେ, କଳିଯୁଗରେ ନାରାୟଣଙ୍କୁ 'ସତ୍ୟନାରାୟଣ' ରୂପେ ପୂଜା କରି ବ୍ରତ ପାଳିବାହିଁ ଶ୍ରେୟସ୍କର ଓ ଏତଦ୍ୱାରା ବାଞ୍ଛାସିଦ୍ଧି, ଦାରିଦ୍ର୍ୟନାଶ, ପୁତ୍ର କନ୍ୟା ଲାଭ, ନଷ୍ଟଧନ ପ୍ରାପ୍ତି, ପୁଣ୍ୟଲାଭ, ଜୟଲାଭ, ଶ୍ରୀଲାଭ, କାରାରୁ, ପୀଡ଼ାରୁ ଓ ବନ୍ଧନାଦିରୁ ମୁକ୍ତିଲାଭ ହୁଏ ଏବଂ ମରଣାନ୍ତେ ସତ୍ୟ ଲୋକ ବା ସ୍ୱର୍ଗପ୍ରାପ୍ତି ହୁଏ ।]

**ସତ୍ୟନାରାୟଣ କଥା**—ସଂ. ବି—୧ । ସ୍କନ୍ଦପୁରାଣ ରେବାଖଣ୍ଡର ୪ଟି
Satyanārāyana kathā ଅଧ୍ୟାୟରେ ବର୍ଣ୍ଣିତ 'ସତ୍ୟନାରାୟଣ' ବ୍ରତ ଓ ପୂଜା ଏବଂ ଉକ୍ତ ବ୍ରତାଚାରୀ ବ୍ୟକ୍ତିଙ୍କ ବିବରଣୀ ବା ଗଳ୍ପ—1. The story (four in number) of the effect of worshipping the Deity Satyanārāyana as narrated in the Purānas. [ବି—ସ୍କନ୍ଦ ପୁରାଣରେ ଲିଖିତ କଥ୍ନୋକ୍ତ କଥା ତା ଗଳ୍ପକୁ ସତ୍ୟ ନାରାୟଣଙ୍କ ପୂଜା ଶେଷରେ ଶ୍ରବଣ କରି ବନ୍ଧୁ ବାନ୍ଧବ କୁଟୁମ୍ବ ପରିବାରଙ୍କ ସଙ୍ଗେ ପ୍ରାସାଦ ଭକ୍ଷଣ କଲେ ପୁଣ୍ୟଲାଭ ହୁଏ ଓ ମନୋବାଞ୍ଛାର ସିଦ୍ଧି ହୁଏ ।

୧ । କାଶୀପୁରରେ ଗୋଟିଏ ଦରିଦ୍ର ଭିକ୍ଷୁକ ବ୍ରାହ୍ମଣ ଅତି କଷ୍ଟରେ ଦିନ ଯାପନ କରୁଥିଲେ । ଦିନେ ସତ୍ୟନାରାୟଣ ଦେବ ବୃଦ୍ଧ ବ୍ରାହ୍ମଣ ବେଶ ଧାରଣ କରି ଉକ୍ତ ବ୍ରାହ୍ମଣଙ୍କୁ ଦେଖା ଦେଇ ସତ୍ୟନାରାୟଣ ପୂଜା ଓ ବ୍ରତ କରିବା ପାଇଁ ତାଙ୍କୁ ପରାମର୍ଶ ଦେଇ ଅନ୍ତର୍ଦ୍ଧାନ ହେଲେ । ବ୍ରାହ୍ମଣ ତହିଁ ଆରଦିନ ସକାଳୁ ଉଠି ଭିକ୍ଷା କରିବାକୁ ଗଲେ;

ଓ ପ୍ରଭୁଙ୍କ ଦୟାରୁ ସେ ଦିନ ପ୍ରଚୁର ଧନ ଭିକ୍ଷା ପାଇ ଉକ୍ତ ବ୍ରତ ଆଚରଣ କରି ପ୍ରତି ମାସରେ ସତ୍ୟନାରାୟଣ ପୂଜା କଲେ । ଏଥିର ଫଳରେ ତାହାଙ୍କର ଦାରିଦ୍ର୍ୟ ନାଶ ହୋଇ ସେ ସର୍ବସମ୍ପତ୍ତିସମନ୍ୱିତ ଓ ସର୍ବପାପମୁକ୍ତ ହୋଇ ଦେହାନ୍ତେ ମୋକ୍ଷ ଲାଭ କଲେ । (ରେବାଖଣ୍ଡ; ସତ୍ୟନାରାୟଣ-ବ୍ରତ—ନାମକ—ପ୍ରଥମ ଅଧ୍ୟାୟ ।)

୨ । ଉକ୍ତ ବ୍ରାହ୍ମଣ ଆଉ ଦିନେ ଉକ୍ତ ବ୍ରତ ଉତ୍ସବ କରୁଥିବା ସମୟରେ ତାଙ୍କ ଘରେ 'କାଷ୍ଠକେତୁ' ନାମକ ଜଣେ କାଠୁରିଆ ଅତି କ୍ଷୁଧାର୍ତ୍ତ ଓ ତୃଷାର୍ତ୍ତ ହୋଇ ଆସି ପହଞ୍ଚି ସେଠାରେ ଜଳପାନ ଓ ପ୍ରସାଦ ସେବନ ପୂର୍ବକ ଏ ବ୍ରତର ବିଧାନ ଓ ଫଳ ବ୍ରାହ୍ମଣଠାରୁ ଶୁଣି କାଠ ବିକିବାକୁ ଗଲା ଓ ସେ ଦିନ କାଠ ବିକି କରି ବହୁ ଧନ ପ୍ରାପ୍ତ ହୋଇ ବଜାରରୁ ପାଚିଲା କଦଳୀ, ଘିଅ, ଦୁଧ, ଗୁଡ଼ ଓ ଗହମ ଅଟା କିଣି ଆଣି 'ଅମୃତ କୁଣ୍ଡ' କରି ସତ୍ୟନାରାୟଣଙ୍କୁ ପୂଜା କଲା ଓ ବନ୍ଧୁ ବାନ୍ଧବମାନଙ୍କୁ ଡାକି ବ୍ରତ ଓ ଉତ୍ସବ କଲା । ଏଥିର ଫଳରେ କାଠୁରିଆ ଧନପୁତ୍ର ସମନ୍ୱିତ ହୋଇ ଦେହାନ୍ତେ 'ସତ୍ୟପୁର'କୁ ଗଲା । (୨ୟ ଅଧ୍ୟାୟ)

୩ । ଉଲ୍କାମୁଖ ନାମରେ ଜଣେ ବଳବାନ୍ ରାଜା ଥିଲେ ଓ ସେ ତାଙ୍କ ଭାର୍ଯ୍ୟା ସହିତ ସତ୍ୟନାରାୟଣ ବ୍ରତ ଆଚରଣ କରୁଥିଲେ । ସେଠାରେ ଜଣେ ନିଃସନ୍ତାନ ବଣିକ ଉପସ୍ଥିତ ହୋଇ ରାଜାଙ୍କଠାରୁ ଶୁଣିଲା ଯେ, ଏ ବ୍ରତ କଲେ ସନ୍ତାନ ଲାଭ ହୁଏ । ସାଧବ ନିଜ ଘରକୁ ଫେରି ଯାଇ ନିଜର ସ୍ତ୍ରୀ ଲୀଳାବତୀକୁ ଏ କଥା କହି ପ୍ରତିଜ୍ଞା କଲା,—ମୋର ସନ୍ତାନ ଲାଭ ହେଲେ ମୁଁ ଏ ବ୍ରତ କରିବି । ସତକୁ ସତ କିଛିଦିନ ପରେ ସାଧବର କଳାବତୀନାମ୍ନୀ ଗୋଟିଏ କନ୍ୟା ଜାତ ହେଲା । କିଛିଦିନ ପରେ ଲୀଳାବତୀ ସାଧବକୁ ପ୍ରତିଜ୍ଞାତ ବ୍ରତ କରିବାକୁ କହିବାରୁ ସାଧବ କହିଲା,—ଏ କନ୍ୟାର ବିବାହ ସମୟରେ ବ୍ରତ କରିବି । ଏହା କହି ବର ଖୋଜାଇ କାଞ୍ଚନ ନଗରବାସୀ ଗୋଟିଏ ସୁନ୍ଦର ଯୁବା ସଙ୍ଗେ କନ୍ୟାର ବିବାହ ଦେଲା, କିନ୍ତୁ ଦୈବ ଯୋଗୁଁ ସାଧବ ଏ ବ୍ରତ କଥା ଭୁଲିଗଲା । ତତ୍ପରେ ଜାମାତା ସହିତ ସିନ୍ଧୁ ତୀରସ୍ଥ ରତ୍ନସାର ପୁରକୁ ଯାଇ ସେଠାରେ ବାଣିଜ୍ୟ କରି ପୁର ନିର୍ମାଣ କରି ରହିଲା । ସାଧବ ବ୍ରତ ନ କରିବାରୁ ସତ୍ୟନାରାୟଣ କୁପିତ ହୋଇ ତାକୁ ଅଭିଶାପ ଦେଲେ,—ତୋର ମହାଦୁଃଖ ଉପସ୍ଥିତ ହେଉ । ଦିନେ ଜଣେ ଚୋର ସେ ଦେଶର ରାଜା ଚନ୍ଦ୍ରକେତୁଙ୍କ ଘରୁ ଚୋରି କରି ଧନ ନେଇ ପଳାଇ ଯାଉ ଯାଉ ରାଜଦୂତମାନଙ୍କୁ ଦେଖି ଭୟରେ ଧନଯାକ ସାଧବର ଘରେ ପକାଇ ଦେଇଗଲା । ରାଜଦୂତମାନେ ସାଧବ ଘରେ ହୃତଧନକୁ ଦେଖି ସାଧବକୁ ଓ ତାହାର ଜାମାତାକୁ ଚୋର ବୋଲି ସ୍ଥିର କରି ରାଜାଙ୍କ ନିକଟକୁ ନେଲେ ଓ ରାଜାଜ୍ଞାରେ ସେ ଦୁହିଁଙ୍କୁ କାରାବଦ୍ଧ କଲେ ଓ ରାଜା ସାଧବର ସମସ୍ତ ଧନ ହରଣ କଲେ । ଏଣେ ସାଧବର ନିଜ ଗ୍ରାମରେ ଥିବା ସ୍ତ୍ରୀ ଓ କନ୍ୟାଙ୍କ ନିକଟରୁ ମଧ୍ୟ ଚୋରମାନେ ସମସ୍ତ ଧନ ଅପହରଣ କଲେ ଓ ସେମାନେ ଶେଷକୁ ରୋଗାର୍ତ୍ତ ହୋଇ ଭିକ୍ଷା କଲେ । ଦିନେ ସାଧବକନ୍ୟା ଜଣେ ବ୍ରାହ୍ମଣ ଘରକୁ ଯାଇ ସେଠାରେ ବ୍ରତ ହେଉଥିବା ଦେଖି ମାଆଙ୍କୁ ଆସି କହିବାରୁ ମାତା ଓ କନ୍ୟା ଦୁହେଁ ଉକ୍ତ ବ୍ରତ କରି, ସାଧବ ଓ ଜାମାତା ଫେରି ଆସନ୍ତୁ ବୋଲି ସତ୍ୟନାରାୟଣଙ୍କୁ ପ୍ରାର୍ଥନା କଲେ । ସତ୍ୟନାରାୟଣ ଏଥିରେ ସନ୍ତୁଷ୍ଟ ହୋଇ ଚନ୍ଦ୍ରକେତୁ ରାଜାଙ୍କୁ ସ୍ୱପ୍ନରେ ଦେଖାଦେଇ, ସାଧବ ଓ ଜାମାତା ନିର୍ଦ୍ଦୋଷୀ ଅଟନ୍ତି ବୋଲି ଆଦେଶ ଦେବାରୁ ରାଜା ତହିଁ ଆରଦିନ ସକାଳୁ ସାଧବକୁ ଓ ଜାମାତାଙ୍କୁ ବନ୍ଧନରୁ ମୁକ୍ତ କରି ତାଙ୍କୁ ଦ୍ୱିଗୁଣ ଧନ ଦେଇ ତାଙ୍କ ଦେଶକୁ ବିଦାୟ କଲେ । ଏମାନେ ନୌକାରେ ଧନ ରତ୍ନ ବୋଝାଇ କରି ଘରକୁ ଆସୁ ଆସୁ ବାଟରେ ସତ୍ୟନାରାୟଣ ପ୍ରଭୁ ବୃଦ୍ଧ ଦଣ୍ଡୀ ବେଶରେ ଦେଖାଦେଇ ସାଧବକୁ ପଚାରିଲେ;—ଏ ଡଙ୍ଗାରେ କଅଣ ଅଛି ? ସାଧବ ଲୋଭପରବଶ ହୋଇ କହିଲା,—ହେ ଦଣ୍ଡି ! ତୁମ୍ଭେ ମୋ ଡଙ୍ଗାର ଧନରତ୍ନ ନେବାକୁ ଲୋଭ କରି ମତେ ପଚାରୁଛ; ଏ ଡଙ୍ଗାରେ ଧନରତ୍ନ କିଛି ନାହିଁ, କେବଳ ଗୁଡ଼ାଏ ଲତାପତ୍ର ଅଛି । ଏହା ଶୁଣି ଦଣ୍ଡୀ କହିଲେ—ତଥାସ୍ତୁ । ସତକୁ ସତ ସାଧବ ଯାଇ ଡଙ୍ଗା ଦେଖିଲାବେଳକୁ ଧନରତ୍ନ କୁଆଡ଼େ ଉଭେଇ ଯାଇଅଛି ଓ ଡଙ୍ଗାଟି ଯାକ ଲତା ପତ୍ରରେ ପୂର୍ଣ୍ଣ ହୋଇଅଛି । ସାଧବ ଏହା ଦେଖି କାନ୍ଦି ବୋବାଇ ଅସ୍ଥିର ହେଲା । ଜାମାତା ସାଧବକୁ କହିଲା,—ତୁମ୍ଭେ ସେ ଦଣ୍ଡୀଙ୍କୁ ଅପମାନିତ କରିବାରୁ ତାଙ୍କ ଶାପରେ ଏପରି ହେଲା; ଚାଲ ତାଙ୍କର ଶରଣାପନ୍ନ ହେବା । ଏହା କହି ଦୁହେଁ ଯାଇ ଦଣ୍ଡୀଙ୍କଠାରେ ଶରଣ ପଶିବାରୁ ଦଣ୍ଡୀ କହିଲେ,—ତୁ ସତ୍ୟନାରାୟଣ ବ୍ରତ କରିବା ପ୍ରତିଜ୍ଞା ଭଙ୍ଗ କରିବାରୁ ଦୁଃଖ ପାଉଛୁ । ସାଧବ ପ୍ରତିଜ୍ଞା କଲା ଯେ, ଘରକୁ ଯାଇ ବ୍ରତ କରିବ । ଦଣ୍ଡୀରୂପଧାରୀ ଜନାର୍ଦ୍ଦନ ତାହା ଶୁଣି ସନ୍ତୁଷ୍ଟ ହେଲେ ଓ ସାଧବ ଯାଇ ଦେଖିଲାବେଳକୁ ନୌକା ପୂର୍ବପରି ଧନରତ୍ନ ଭରି ହୋଇଅଛି । ସାଧବ ଓ ଜାମାତା ଆପଣା ଗ୍ରାମ ନିକଟରୁ ଖଣ୍ଡ ଦୂରରୁ ତାଙ୍କ ଆସିବା ଖବର ସ୍ତ୍ରୀ ଓ କନ୍ୟାଙ୍କ ନିକଟକୁ ପଠାଇବାରୁ ସ୍ତ୍ରୀ ସତ୍ୟନାରାୟଣଙ୍କ ପୂଜାକରି ପ୍ରସାଦ ସେବା କରି ସ୍ୱାମୀଙ୍କ ନିକଟକୁ ଆସିଲା । କିନ୍ତୁ ତାହାର କନ୍ୟା ନିଜର ପତିଙ୍କୁ ଦେଖିବା ଲୋଭରେ ସତ୍ୟନାରାୟଣଙ୍କ ପ୍ରସାଦ ଭୋଜନ ନ କରି ନିଜ ପତିଙ୍କ ନିକଟକୁ ଆସିଲାବେଳକୁ ସତ୍ୟନାରାୟଣ ମାୟା କରି ନୌକାକୁ ଓ ତାର ସ୍ୱାମୀକୁ ପାଣିରେ ବୁଡ଼ାଇ ଦେଲେ । ସାଧବ ଓ ତାର ସ୍ତ୍ରୀ ଏହା ଦେଖି ଅବାକ୍ ହେଲେ । କନ୍ୟା କାନ୍ଦି କାନ୍ଦି ଅନୁମୃତା ହେବାକୁ ବସିଲା । ସାଧବ ସତ୍ୟନାରାୟଣଙ୍କୁ ପ୍ରାର୍ଥନା କରିବାରୁ ସତ୍ୟନାରାୟଣ ବୃଦ୍ଧବ୍ରାହ୍ମଣ ବେଶରେ ଦେଖା ଦେଇ କହିଲେ,—ତୋ କନ୍ୟା ମୋ ପ୍ରସାଦକୁ ଲଙ୍ଘନ କରି ସ୍ୱାମି-ଦର୍ଶନାର୍ଥ ଆସିବାରୁ ତାକୁ ଏ ଦଣ୍ଡ ହୋଇଅଛି; ସେ ଘରକୁ ଯାଇ ମୋ ପ୍ରସାଦକୁ ଖାଇ

ପୁଣି ଅସିଲେ ତା ପତିକୁ ପାଇବ । ତଦନୁସାରେ କନ୍ୟା ଘରକୁ ଫେରଯାଇ ଝଟେରେ ଛାଡ଼ି ଆସିଥିବା ପ୍ରସାଦକୁ ଖାଇ ଫେର ଆସି ଦେଖେ ଯେ, ନଷ୍ଟସ୍ୱାମୀ ଓ ନଷ୍ଟନୌକା ମିଳି ଅଛନ୍ତି । ସମସ୍ତେ ଆନନ୍ଦରେ ଘରକୁ ଗଲେ । ସାଧବ ସତ୍ୟନାରାୟଣ ପୂଜା କଲା ଓ ପୂର୍ଣ୍ଣିମିରେ ଓ ସଂକ୍ରାନ୍ତିରେ ଯଥାବିଧି ଏ ବ୍ରତ କର ଇହଲୋକରେ ସୁଖଭୋଗ କର ଦେହାନ୍ତେ ସତ୍ୟଲୋକକୁ ଗଲା (୩ୟ ଅଧ୍ୟାୟ) ।

୪ । ତୁଙ୍ଗଧ୍ୱଜ ନାମକ ଜଣେ ରାଜା ଥିଲେ, ସେ ମୃଗୟାରୁ ଫେରିଲାବେଳେ ବାଟରେ ଦେଖିଲେ ଯେ, ଗୁଡ଼ିଏ ଗୋପାଳ ସବାନ୍ଧବ ସତ୍ୟନାରାୟଣ ପୂଜା କରୁଅଛନ୍ତି । ରାଜା ଗର୍ବରେ ହାତୀରୁ ଓହ୍ଲାଇଲେ ନାହିଁ ଓ ଗୋପଗଣମାନେ ରାଜାଙ୍କୁ ସତ୍ୟନାରାୟଣଙ୍କ ପ୍ରସାଦ ଯାଚବାରୁ ରଜା ତାହାକୁ ଲଙ୍ଘନ କର ଗୃହ ଆସିଲେ । ଏଥିପାଇଁ ପ୍ରଭୁ ସତ୍ୟନାରାୟଣ ରାଜାଙ୍କ ଉପରେ କୁପିତ ହେବାରୁ ରାଜାଙ୍କର ଶତ ପୁତ୍ର ମଲେ ଓ ଧନ ସମ୍ପତ୍ତି ସମୁଦାୟ ନଷ୍ଟ ହେଲା । ରାଜା ଏହା ଦେଖି ପୁଣି ସେହି ଗୋପାଳମାନଙ୍କ ନିକଟକୁ ଯାଇ ତାଙ୍କ ପୂଜାରେ ଯୋଗ ଦେଇ ତାଙ୍କଠାରୁ ପ୍ରସାଦ ଖାଇ ଫେରି ଆସି ନିଜେ ସତ୍ୟନାରାୟଣ ବ୍ରତ କଲେ ଓ ନଷ୍ଟପୁତ୍ର ଓ ଧନାଦି ପୁନଃପ୍ରାପ୍ତ ହୋଇ ପରକାଳରେ ସତ୍ୟଲୋକ ପ୍ରାପ୍ତ ହେଲେ (୪ର୍ଥ ଅଧ୍ୟାୟ) ।

ସତ୍ୟନାରାୟଣଙ୍କ ପୂଜା କର ବନ୍ଧୁବାନ୍ଧବମାନଙ୍କ ସହିତ ଏ କଥା ଶୁଣି ପ୍ରସାଦ ସେବନ କଲେ ଇହକାଳରେ ଧନ, ସମ୍ପତ୍ତି, ସନ୍ତାନଲାଭ, ଶତ୍ରୁନାଶ, ଜୟ, ବାଞ୍ଛିତଫଳସିଦ୍ଧି ଓ ପରକାଳରେ ମୋକ୍ଷଲାଭ ଓ ବିଷ୍ଣୁଲୋକ ବା ସତ୍ୟଲୋକ ପ୍ରାପ୍ତ ହୁଏ ବୋଲି ସ୍କନ୍ଦ ପୁରାଣରେ ଉକ୍ତ ଅଛି ।]

୨ । ବଙ୍ଗ ଦେଶରେ ଏ ଯୁଗରେ ଭାରତ ଏବଂ ବଙ୍ଗ-ଦେଶରୁ ଓଡ଼ିଶାକୁ ଆଗତ ଦରଖଣ୍ଡିଆ ବଙ୍ଗୋତ୍କଳ ଭାଷାରେ ବଙ୍ଗ ଭୂଷାନନ୍ଦଙ୍କ ଓଡ଼ିଆକବିତାର ପୋଥି ଧର ବୋଲସିବା (ପୋଥିପୂଜା) ଓ ନୃତ୍ୟଗୀତାଦି ସହିତ ବୋଲସିବା (ଠିଆପୂଜା) ପଦ୍ୟାତ୍ମକ ୧୬ଟି ଗଳ୍ପ ବା ପାଲା—2. The stories of the effect of worshipping 'Satyapira' as depicted in Bengalee rhymes and also sung in Oriya (in Bengalee mixed with Oriya language). (The stories are 16 in number). [ଦ୍ର—ଅଧୁନିକ ବଙ୍ଗୀୟମାନେ ସତ୍ୟ-ନାରାୟଣ ବ୍ରତର ୪ ଗୋଟି କଥା ସ୍ଥାନରେ ୧୬ ଗୋଟି କଥା ସୃଷ୍ଟି କରଅଛନ୍ତି । ସେହି ୧୬ ଟି କଥା ମଧ୍ୟରୁ କେବଳ ୪ ଗୋଟି କଥା ପୁରାଣରେ ଅଛି, ଅନ୍ୟ ୧୨ ଗୋଟି ନାହିଁ । ସେମାନଙ୍କର ନାମ ନିମ୍ନରେ ଦିଆଗଲା । ଏସବୁ କବିକର୍ତ୍ତାଙ୍କ କପୋଳକଳ୍ପିତ ରଚନା; ଏବଂ ପୀର, କୋରାନ, ଦରଗା, ବାଦସାହା ଆଦି କେତେକ ଫାରସୀ ଶବ୍ଦର ପ୍ରୟୋଗ ଏ ସବୁ କଥାରେ ଅଛି । ଏହାଙ୍କ ଦେଖାଦେଖି ବଙ୍ଗଳାରେ ଭୃଗୁରାମ ନାମକ ଜଣେ କବି ଓ ଓଡ଼ିଶାର କେତେକ ବ୍ୟକ୍ତି ବଙ୍ଗଳା ଛନ୍ଦରେ ମଧ୍ୟ ପାଲା ରଚନା କରଅଛନ୍ତି । ସାଧାରଣତଃ କବିକର୍ତ୍ତାଙ୍କ ରଚିତ ନିମ୍ନଲିଖିତ ୧୬ଟି ଗଳ୍ପାତ୍ମକ ପଦ୍ୟକୁ ଷୋଳ ପାଲା ବୋଲିଯାଏ । ଯଥା—

୧ । ଜନ୍ମପାଲା—ଏକ ବାଦଶାହକନ୍ୟାଙ୍କ ଗର୍ଭରେ ସତ୍ୟପୀରଙ୍କର, ଅବତାର । ମୃତ ବାଳକର ପୁନର୍ଜୀବନଲାଭ ।

୨ । ପଦ୍ମଲୋଚନ ପାଲା—ପଦ୍ମଲୋଚନ ନାମକ ଏକ ଅପୁତ୍ରକ ରାଜାଙ୍କର ସତ୍ୟନାରାୟଣଙ୍କ କୃପାରୁ ପୁତ୍ର-ଲାଭ ।

୩ । ମର୍ଦ୍ଦଗାଜି ଜନ୍ମ ପାଲା—ଅଭିମନ୍ୟୁ ସୁତ ଅପୁତ୍ରକ ପରୀକ୍ଷିତ ରାଜାଙ୍କର ଫକୀରବେଶଧାରୀ ସତ୍ୟପୀରଙ୍କ କୃପାରୁ ପୁତ୍ରଲାଭ ।

୪ । ମର୍ଦ୍ଦଗାଜି ବିଭା ପାଲା—ଗଜେନ୍ଦ୍ର ନାମକ ରାଜାଙ୍କର ଏକ ମାତ୍ର ପୁତ୍ର ମର୍ଦ୍ଦଗାଜିର ବିଦେଶ ଗମନ ଓ ବିବାହ ।

୫ । ବିଦ୍ୟାଧର ପାଲା—ବୈରିବ ଦେଶର ନୃସିଂହ-ରାଜାଙ୍କ ଗଳ୍ପ ।

୬ । ମଦନସୁନ୍ଦର ପାଲା—ରତ୍ନାକର ନାମକ ରାଜାଙ୍କର ଓ ଦୁଇଟି ବଣିକ ସାନନ୍ଦ ଓ ବିନୋଦଙ୍କ ସାନ ଭାଇ ମଦନ ସୁନ୍ଦରର ଗଳ୍ପ ।

୭ । ସଦାନନ୍ଦ ସୌଦାଗର ପାଲା ବା ଧନୀ ସୌଦାଗର ପାଲା—ଉକ୍ତ ମଦନ ସୁନ୍ଦରର ଗଳ୍ପ ।

୮ । ଶ୍ୱେତ ବସନ୍ତ ପାଲା—ଶାଳଧ୍ୱଜ ରାଜାଙ୍କ ପୁତ୍ର ଶ୍ୱେତ ବସନ୍ତର ଗଳ୍ପ ବା ଫାସିଅର ବା ମନୋହର ଫାସିଅର ପାଲା—ଏକ ଡକାଇତ ହସ୍ତରୁ ରାଜପୁତ୍ରର ପ୍ରାଣରକ୍ଷା ।

୯ । ଶଙ୍କର ଗୁଡ଼ିଆ ପାଲା—କାଞ୍ଚନପୁର ବାସୀ ଶଙ୍କର ନାମକ ଜଣେ ନାସ୍ତିକ ଗୁଡ଼ିଆର ଓ ତାହାର ଛଅ ପୁତ୍ରଙ୍କର ଗଳ୍ପ ।

୧୦ । ଦୁର୍ଜ୍ଜନସିଂହ ପାଲା ବା ଚନ୍ଦ୍ରାଙ୍କର ପାଲା—ଅମ୍ବିକା ନଗରର ଦୁର୍ଜନ ନାମକ ନାସ୍ତିକ ରାଜାଙ୍କର ଗଳ୍ପ ।

୧୧ । ହାରାଗୃହ ପାଲା—ମାଣିକା ସହରର ଅପୁତ୍ରକ ରାଜା ସନାତନର ଗଳ୍ପ ।

୧୨ । ହର ଅର୍ଜ୍ଜୁନ ପାଲା—ସନାତନ ନାମକ ଜଣେ ଅପୁତ୍ରକ ରାଜା ଓ ତାଙ୍କର ଦୁଇରାଣୀଙ୍କ ଗଳ୍ପ । ମୃତ କୁମାରର ପୁନର୍ଜୀବନ ଲାଭ ବା ଜଗତାରି ପାଲା ।

୧୩ । କାଠୁରିଆ ପାଲା—ସତ୍ୟ ନାରାୟଣ ପୂଜକ ଗୋଟିଏ ଗରିବ ବ୍ରାହ୍ମଣ. କୃଷ୍ଣଦାସର ପୂଜା ଦେଖି ଜଣେ କାଠୁରିଆର ଭକ୍ତିବ୍ରତ ପାଳନ ଓ ଧନଲାଭ ।]

୧୪ । ଲକ୍ଷ୍ମଣକୁମର ପାଲା—ବନାସୁର ଦେଶର ଶିଳପ ରାଜାଙ୍କ ଗଳ୍ପ ।

୧୫ । ଅଭିମନ୍ୟୁ ପାଲି ବା ଚନ୍ଦ୍ରାଙ୍କିତ ପାଲି— ବୀରସିଂହ ନାମକ ଜଣେ ରାଜାଙ୍କ ଗଳ୍ପ ।

୧୬ । ସ୍ୱର୍ଣ୍ଣରେଖଣ ପାଲି —ବରୁଣ ସହରର ରାଜା ପଦ୍ମଲୋଚନଙ୍କ ଗଳ୍ପ । (ଏଥିରେ କବିକର୍ଣ୍ଣ ବିରଚିତ ୧୬ଟି ପାଲିର ନାମ ଦିଆଯାଇ ଅଛି ।)]

**ସତ୍ୟନାରାୟଣ ପାଲ**—ଦେ. ବି. (ସଂ. ସତ୍ୟନାରାୟଣ ଓ ପାଲ, Satyanārāyaṇa pāla ଓଡ଼ିଆ ପାଲ, পালা; ପାଲି ଶବ୍ଦ সত্যনারায়ণপালা ବଙ୍ଗଳାରୁ ଆଗତ) —

**সত্যনারায়ণ পূজা** ସତ୍ୟନାରାୟଣଙ୍କ ମାହାତ୍ମ୍ୟ ବର୍ଣ୍ଣନାପୂର୍ବକ ୧୬ ଗୋଟି ପାଲି ବା ଗଳ୍ପକୁ ଗୀତ ଦ୍ୱାରା କୀର୍ତ୍ତନ— The chanting of the doings of the Deity Satyanārāyana in 16 poems.

[ଦ୍ର—ଓଡ଼ିଶାରେ ବୋଲି ଯାଉଥିବା 'ପାଲି' ମାନ 'କବିକର୍ଣ୍ଣ' ବିରଚିତ ବଙ୍ଗଳା ପାଞ୍ଚାଳି ଛନ୍ଦରେ ରଚିତ ବଙ୍ଗଳା ଗୀତର ବିକୃତି ମାତ୍ର । ସଂ. ପାଳ, ଓ. ପାଳି ବଂ. ପାଲ ଶବ୍ଦର ଅର୍ଥ ପର୍ଯ୍ୟାୟ ବା କ୍ରମ । ପାଲିଶବ୍ଦ ବଙ୍ଗଳା ଭାଷାରୁ ଆଗତ । ଜଣେ 'ଗାୟକ' ଗୀତ ବୋଲନ୍ତି ଓ ତାଙ୍କ ସଙ୍ଗେ ଆଉ ଜଣେ ବାଦ୍ୟ ବଜାନ୍ତି ଓ କେତେ ଗୁଡ଼ିଏ ଲୋକ ପାଳି ଧରନ୍ତି ବୋଲି ଏହାର ନାମ ପାଲି ହୋଇଅଛି । 'ଗାୟକ' ଗୀତ ବୋଲନ୍ତି 'ବାୟକ' ମୃଦଙ୍ଗ ବଜାନ୍ତି । ଗାୟକ ଏକୁଟିଆ ଗୀତ ବୋଲି ଥକି ଗଲେ ତାଙ୍କୁ ସାହାଯ୍ୟ କରିବାକୁ କିମ୍ବା ଗୀତର ପ୍ରସଙ୍ଗରେ କଥୋପକଥନସ୍ଥଳରେଗାୟକଙ୍କୁ ଉତ୍ତର ଦେବାକୁ ଗାୟକଙ୍କ ସଙ୍ଗେ 'ଶିରି ପାଳିଆ' ବା 'ଡାହାଣ ପାଳିଆ' ବା 'ଶ୍ରୀ ପାଳିଆ' ଥାଆନ୍ତି । ଗାୟକଙ୍କ ଡାହାଣ ହାତରେ 'ମନ୍ଦିରା' ବା ଗିନି ବନ୍ଧା ହୋଇଥାଏ ଓ କାଖରେ ଚାମର ମୁଠା ଥାଏ । ଶ୍ରୀପାଳିଆ ଝାଞ୍ଜ ଧରିଥାଆନ୍ତି । କିନ୍ତୁ ଗାୟକ ଗୀତ ବୋଲିବା ବେଳେ ଶ୍ରୀପାଳିଆ ଝାଞ୍ଜ ବଜାନ୍ତି ନାହିଁ । ପାଳିଆମାନେ ପାଳି ଧରିବା ବେଳେ ଶ୍ରୀପାଳିଆ ଅନ୍ୟ ପାଳିଆମାନଙ୍କ ସହିତ ଝାଞ୍ଜ ବଜାନ୍ତି ଓ ବାୟକ ଗାୟକଙ୍କ ସଙ୍ଗେ ଓ ପାଳିଆଙ୍କ ସଙ୍ଗେ ମୃଦଙ୍ଗ ବଜାନ୍ତି ।

ଗୋଟିଏ ପାଲିଦଳ ଦୁଇଟି ପଙ୍କ୍ତିରେ ବିଭକ୍ତ । ଗାୟକଙ୍କ ବୋଲିବା ଗୀତର ପାଳି ଧରିବାକୁ ୨ ଜଣ 'ପାଳିଆ' ଥାଆନ୍ତି । ଗାୟକଙ୍କ ଗୀତର ଶେଷାଂଶ ବା ଘୁଅ ବା ଘୋଷାକୁ ଏମାନେ ବୋଲନ୍ତି ଓ ଝାଞ୍ଜ ବଜାନ୍ତି ।

ପାଲିବାଲାମାନେ ନାନାପ୍ରକାର ବେଶରେ (ଅର୍ଥାତ୍ ମୁଣ୍ଡରେ ପଗଡ଼ି, ଦେହରେ ଚପ୍‌କନ୍ ପରି ବଡ଼ ଲୁଗା। ଅଣ୍ଟାରେ ଘାଗରା ଓ ଗୋଡ଼ରେ ବଳା ବା ଘାଙ୍ଗୁର ପିନ୍ଧି) ନାଚନ୍ତି ।

ପୁସ୍ତକ ସାହାଯ୍ୟରେ ଯେଉଁ ପାଲି ବୋଲଯାଏ ଓ ପୂଜା କରାଯାଏ ତାକୁ ପୋଥିପାଲି ବା ପୋଥିପୂଜା ବୋଲଯାଏ ।

ପୁସ୍ତକର ବିନା ସାହାଯ୍ୟରେ ଗାୟକ ଓ ନର୍ତ୍ତକମାନେ ବାଜା ବଜାଇ ଯାହାକୁ ବୋଲି ଅଭିନୟ କରନ୍ତି ତାକୁ ଠିଅପୂଜା ବା ଠିଅପାଲି ବୋଲଯାଏ ।

ଏକ ଦଳ ପାଲିବାଲା ପାଲି ଅଭିନୟ କଲେ ତାକୁ 'ଗୋଟିକିଆ ପାଲି' କହନ୍ତି ।

ଦୁଇଦଳ ପ୍ରତିଦ୍ୱନ୍ଦୀ ହୋଇ ପାଲି ଅଭିନୟ କଲେ ତାକୁ 'ଜୋଡ଼ି ଲ ପାଲି' ବା 'ଜୋଡ଼ି ଲ ପୂଜା' କହନ୍ତି । ଏକାଧିକ ଦଳ ପ୍ରତିଦ୍ୱନ୍ଦ୍ୱୀ ହୋଇ ପାଲି କଲେ ତାକୁ 'ବାଦୀ ପାଲି' ବା 'ଲଢ଼େଇ ପାଲି' ବୋଲଯାଏ ।

ପାଲି ଅଭିନୟକାରୀମାନଙ୍କ ମଧ୍ୟରେ ଜଣେ 'ଗାୟକ', ଜଣେ 'ବାୟକ', ଜଣେ 'ଶିରିପାଳିଆ' ଓ ଦୁଇ ବା ୩ ଜଣ 'ପାଳିଆ' ଥାଆନ୍ତି ।

କବିକର୍ଣ୍ଣଙ୍କ ରଚିତ 'ପାଲି'ମାନଙ୍କ ଭାଷା ବଙ୍ଗଳା ଓ ଉକ୍ତ ଭାଷାରେ ଫାରସୀ ଶବ୍ଦର ବହୁଳତା (ଯଥା—ବାଦସା, ଉଜିର, ଜାଲିମ୍, ମୋଲକାତ, ସଲାମ୍, ହକିକତ, ଦିଲଖୋସ ଓ ହାସିଲ ଇତ୍ୟାଦି ଶବ୍ଦ) ଦେଖାଯାଏ ଓ ବେଳେ ବେଳେ ଫାରସୀ ଭାଷାର ବାକ୍ୟ ମଧ୍ୟ ଦେଖାଯାଏ । କବିକର୍ଣ୍ଣଙ୍କ ବିରଚିତ ବଙ୍ଗଳା ପାଲି ବଙ୍ଗଳା ଓ ଉର୍ଦ୍ଦୁ ଭାଷାର 'ଖେଚୁଡ଼ି'; ତାହା ପୁଣି ବଙ୍ଗଳା ଅନଭିଜ୍ଞ ଓଡ଼ିଆଙ୍କ ମୁଖରେ ବଙ୍ଗଳା, ଉର୍ଦ୍ଦୁ ଓ ଓଡ଼ିଆ ମିଶା 'ପଲଙ୍କ' ହୁଏ । ତହିଁରୁ କେତେଗୁଡ଼ିଏ ଧାଡ଼ିର ଉଦାହରଣ ନିମ୍ନରେ ଦିଆଗଲା—

ଶୁନ ସବେ ବିବାଦରେ ପୀରେର କାଲାମ୍
ନିୟତ ହାସଲ୍ ହୁଏ, ଫତେ ହୁଏ କାମ୍ ।
ଇୟାର୍ ପିୟାର୍ ଭାଇ ସକଲେ ଶୁନତ
ଯେଉଁ ରୂପେ ଶ୍ୱେତ ବସନ୍ତ ପାଲା ହକିକତ ।
ହରି ହରି ବୋଲ ଦିଅ ସବୁ ସଭାଜନ
ବିପତ୍ତି ପଡ଼ିଲେ ରକ୍ଷେ ସତ୍ୟ ନାରାୟଣ ।

× × ×

ଯାର ଘରେ ହୁଏ ପୂଜା ସାହେବେର ନାମ୍
ବଢ଼ାଏ ଦୌଲତ ତାର ଫତେ କରେ କାମ୍ ।
ଶ୍ରୀ କବି କର୍ଣ୍ଣେତେ ଗାଏ ନାରାୟନେର ପାୟ୍
ହରି ହରି ବୋଲ ସବେ ପାଲା ହଇଲ ସାୟ୍ ।

ସାଧାରଣତଃ 'ପାଲି ଗୀତ' ପ୍ରତ୍ୟେକ ୧୪ଅକ୍ଷର ଯୁକ୍ତ ଦୁଇଟି ଧାଡ଼ିରେ ରଚିତ, କିନ୍ତୁ ମଝିରେ ମଝିରେ ଏକଘେୟିଆ (monotony) ଭାଙ୍ଗିବା ପାଇଁ—

'ରଜନୀର ଅବଶେଷେ ଗ୍ରାମେର ଭିତରେ ପଶେ
ଚନ୍ଦ୍ରହାସ ରାଜାର କୁମାର'

୮ ଅକ୍ଷରିଆ ୨ ପାଦ ଓ ୧୦ ଅକ୍ଷରିଆ ଏକପାଦ ଯୁକ୍ତ 'ତ୍ରିପଦୀ' ଛନ୍ଦ ସମ୍ବଳିତ ଗୀତ ମଧ୍ୟ ବୋଲଯାଏ ।

ଗଳ୍ପର ପ୍ରସଙ୍ଗ ଓ ଅବସର କ୍ରମେ ପାଲିବାଲାମାନେ ଏଥିରେ ଯମକ, ଅନୁପ୍ରାସ, ବ୍ୟାଘ୍ରଚିତ୍ର, ମେଷ ଯୁଦ୍ଧ, ଅବନା ଆଦି ଶବ୍ଦ କସରତ୍ ପୂର୍ଣ୍ଣ ପ୍ରାଚୀନ ଓ ନବ୍ୟ ସଙ୍ଗୀତ, ଚଉପଦୀ, ଡାହକା, ଭଜନ, ବନ୍ଦନା ଆଦି ଲଗାଇ 'ପାଲିକୁ' ଲମ୍ବ କରନ୍ତି ଓ କୃତିତ୍ୱରେ ଗାୟକଙ୍କର ଅବଧାନ, ଅଳଙ୍କାର, ନାଟକୀୟତା, ଚମକ ଆଦିରେ

ଅସାଧାରଣ ପାଣ୍ଡିତ୍ୟ ଦେଖାଯାଏ ଓ କେତେକଙ୍କଠାରେ ଅଶୁଦ୍ଧବର୍ତ୍ତ ମଧ୍ୟ ଲକ୍ଷିତ ହୁଏ । ]

**ସତ୍ୟନାରାୟଣ** ପୂଜା—ଦେ. ବି—୧ । ସ୍କନ୍ଦ ପୁରାଣାନ୍ତର୍ଗତ ରେବା **Satyanārāyaṇa pūjā** ଖଣ୍ଡର ୪ର୍ଥ ଅଧ୍ୟାୟରେ ବର୍ଣ୍ଣିତ **सत्यनारायण पूजा**, ସତ୍ୟନାରାୟଣ ବା ସତ୍ୟଦେବ ବା ବିଷ୍ଣୁଙ୍କର **सत्यनारायण पूजा** ପୂଜା—1. The worship of Satyanārāyaṇa or Bishṇu according to the instructions given in the Skandapurāṇa. [ ଦ୍ର—ଏଥିରେ ପାଚିଲା କଦଳୀକୁ ସମପରିମିତ ବା କଞ୍ଚା ଦୁଧ, ଘିଅ ଓ ଗୁଡ ବା ଚିନି ସଙ୍ଗେ ଚକଟି ତହିଁରେ ଗହମ ଚୂନା ବା ଚାଉଳ ଚୂନା ମିଶାଇ ଓ ମସଲାଗୁଣ୍ଡ ଦେଇ ପ୍ରସ୍ତୁତ କରାଯିବା 'ଚକଟା' ବା 'କଦଳୀ ଚକଟା' ବା ଅମୃତକୁଣ୍ଡ ଭୋଗ ଦିଆଯାଏ । ଗୋଟିଏ ପୀଠ ଉପରେ ଆସନ ପକାଇ ଶାସ୍ତ୍ର ବିଧିମତେ ସ୍ୱସ୍ତିବାଚନ ଓ ସଙ୍କଳ୍ପ ଓ ଆବାହନାଦିପୂର୍ବକ ସେଥିର ଚାରି କୋଣରେ କଳ୍ପିତ ଚାରି ଦେବତା ( ଗଣେଶ, ଶିବ, ଦୁର୍ଗା ଓ ସୂର୍ଯ୍ୟ)ଙ୍କୁ ସ୍ଥାପନକରି କେନ୍ଦ୍ରରେ 'ସତ୍ୟନାରାୟଣ'ଙ୍କୁ ( ଶାଳଗ୍ରାମଶିଳା ରଖି କିମ୍ବା ପୁଷ୍ପାଦି ସ୍ଥାପନ କରି ବିଷ୍ଣୁଙ୍କୁ କଳ୍ପନା କରି ) ଅର୍ଚ୍ଚନା କରି ଉକ୍ତ କଦଳୀ ଚକଟାକୁ ବିଷ୍ଣୁ ମନ୍ତ୍ରରେ ନୈବେଦ୍ୟ କରାଯାଏ । ତତ୍ପରେ ଆପଣାର ଗ୍ରାମବାସୀ ଓ ବନ୍ଧୁ କୁଟୁମ୍ବଙ୍କୁ ନିମନ୍ତ୍ରଣ କରି ପୁରାଣୋକ୍ତ ସତ୍ୟନାରାୟଣଙ୍କ କଥା ଶୁଣାଇବାକୁ ହୁଏ; ନାରାୟଣଙ୍କ ସ୍ତବ ପାଠ କରି ମନୋବାଞ୍ଛା ସିଦ୍ଧ୍ୟର୍ଥ ପ୍ରାର୍ଥନା କରାଯାଏ ଓ ପୂଜକଙ୍କୁ ଦକ୍ଷିଣାଦ୍ୱାରା ସନ୍ତୁଷ୍ଟ କରି ନିମନ୍ତ୍ରିତ ବ୍ୟକ୍ତିମାନଙ୍କ ସଙ୍ଗେ ଓ ସ୍ୱପରିବାରର ବ୍ୟକ୍ତିମାନଙ୍କ ସଙ୍ଗେ ଉକ୍ତ ପ୍ରସାଦ ସେବା କରିବାକୁ ହୁଏ । ପୋଥି ଧରି ଉକ୍ତ 'କଥା' ବୋଲାଗଲେ ତାକୁ ପୋଥିପୂଜା ବୋଲାଯାଏ । ପଞ୍ଚଦେବତା ସ୍ଥାପିତ ହୋଇଥିବା ପୀଠର ବା ପୀଡାର ଚାରି କୋଣରେ ୪ଖଣ୍ଡି ମୟୂରଚନ୍ଦ୍ରିକାଯୁକ୍ତ 'କାଣ୍ଡସର'ର କାଣ୍ଡ ପୋତା ଯାଇ ତା ଉପରେ ଫୁଲର ବା ଲୁଗାର ଚାନ୍ଦୁଆ ଟଣା ଯାଏ । ଏହାହିଁ ପୁରାଣୋକ୍ତ ସତ୍ୟନାରାୟଣ ପୂଜା ପଦ୍ଧତି । ଉକ୍ତ ପୁରାଣରେ ଏହି ବ୍ରତର ନିୟମ ଓ ପାଳନ ବିଧି ମଧ୍ୟ ଲେଖାଅଛି, ଯଥା—'ନିଶାମୁଖରେ ଅର୍ଥାତ୍ ସନ୍ଧ୍ୟାବେଳେ ଏ ପୂଜା କରିବ । କଦଳୀ ଚକଟାକୁ ନିବେଦନ କରି ବ୍ରାହ୍ମଣଙ୍କୁ ଦକ୍ଷିଣା ଦେଇ, ବନ୍ଧୁବାନ୍ଧବଙ୍କ ସହିତ ସତ୍ୟନାରାୟଣ କଥା ଶୁଣି ଉକ୍ତ ପ୍ରସାଦ ସମସ୍ତେ ସେବନ କରିବେ; ତପରେ 'ନୃତ୍ୟଗୀତାଦି' କରିବେ । ଏହି ନୃତ୍ୟଗୀତାଦିରୁ, ଅଧୁନିକ 'ଠିଆପାଲା'ର ସୂତ୍ରପାତ ହୋଇଥିବା ବୋଧ ହୁଏ । ଅଧୁନିକ 'ପାଲା'ରେ ପୁରୋହିତ ପୁରାଣୋକ୍ତ ବିଧିରେ ପୂଜା କରି ସାରିବା ପରେ ଲୋକ ମୁଖରେ 'ପୂଜା' ନାମରେ ଅଖ୍ୟାତ 'ସତ୍ୟପୀର ପାଲା' ପୁସ୍ତକର ସାହାଯ୍ୟରେ (ପୋଥିପୂଜା) ଗୀତ ବୋଲାଯାଏ ବା ନାଚ, ଗୀତ ଓ ବାଦ୍ୟ ଦ୍ୱାରା (ଠିଆପୂଜା) ଅଭିନୀତ ହୁଏ । ] ୨ । ବଙ୍ଗଦେଶରୁ ଉତ୍କଳକୁ ଆନୀତ 'କବିକଣ୍ଠ' ରଚିତ ବଙ୍ଗଳା ଭାଷାର ପାଞ୍ଚାଳୀ ଛନ୍ଦର ( ୧୪ ଅକ୍ଷରିଆ ) ( ଯଥା—

ଶୁନ ଶୁନ ସର୍ବଜନ କରି ନିବେଦନ
କାଟୁରିୟା ପାଲା ଆମି କରିବ ଗାୟନ)

୧୬ ଗୋଟି ଭିନ୍ନ ଭିନ୍ନ ଗଳ୍ପ ବର୍ଣ୍ଣନାତ୍ମକ ୧୬ଟି ପୃଥକ୍ ନାମରେ ଅଖ୍ୟାତ ପାଲା ମଧ୍ୟରୁ ନିର୍ଦ୍ଧାରିତ ଗୋଟିଏ ଚରିତର ଗୀତକୁ ପୁସ୍ତକ ସାହାଯ୍ୟରେ କିମ୍ବା ନୃତ୍ୟବାଦ୍ୟାଦି ସାହାଯ୍ୟରେ ବୋଲାଯିବାରୂପ କ୍ରିୟା—2. The performance of dancing and singing (accompanied with drum and cymbals by a party of choristers) in chorus, of one of the 16 stories relating to the prowess of the Deity Satyanārāyaṇas. [ଦ୍ର—ପୁରାଣୋକ୍ତ 'ସତ୍ୟନାରାୟଣ ପୂଜା' ଭାରତର ଉତ୍ତର ପଶ୍ଚିମାଞ୍ଚଳ, ମଧ୍ୟପ୍ରଦେଶ, ଗୁଜରାଟ୍, ବମ୍ବେ ଓ ଦାକ୍ଷିଣାତ୍ୟରେ ଅନୁଷ୍ଠିତ ହୁଏ । କିନ୍ତୁ ସତ୍ୟନାରାୟଣ ପାଲା କେବଳ ବଙ୍ଗଦେଶରେ ଓ ବଙ୍ଗଦେଶରୁ ଅଣାଯାଇ ଓଡ଼ିଶାରେ ଦେଖାଯାଏ । ସ୍କନ୍ଦ ପୁରାଣରେ ଥିବା ୪ଟି ଉପାଖ୍ୟାନ ଛଡ଼ା ଅନ୍ୟ କେତେଗୁଡ଼ିଏ ଗଳ୍ପକୁ ମିଶାଇ ବଙ୍ଗର 'କବିକଣ୍ଠ' ୧୪ ଅକ୍ଷରିଆ ଛନ୍ଦ (ଯେଉଁ ଛନ୍ଦରେ ଓଡ଼ିଆ ନୃସିଂହ ପୁରାଣ, ଶାରଳା ମହାଭାରତ ଆଦି ରଚିତ ତହିଁ)ରେ ୧୬ଟି ପଦ୍ୟ ରଚନା କରିଥିଲେ । ସେହି ଗୁଡ଼ିକର ପ୍ରତ୍ୟେକର ଗୋଟିଏ ଗୋଟିଏ ନାମ ଅଛି । ଲୋକେ ମନୋବାଞ୍ଛା ସିଦ୍ଧ ହେବାର କାମନା କରି 'ପୂଜା' କରନ୍ତି, କିମ୍ବା ମନୋବାଞ୍ଛା ସିଦ୍ଧ ହେଲେ ୧ଥର ବା ୪ଥର ବା ୮ ଥର ବା ୧୬ ଥର ପୂଜା କରିବେ ବୋଲି ଯଚନ୍ତି ବା ମନାସନ୍ତି । ଏହି ପୂଜାରେ ଦେଖାଯାଏ ଯେ, ପ୍ରତିବେଶୀ ମୁସଲମାନମାନଙ୍କ ହିନ୍ଦୁଧର୍ମାବଲମ୍ବୀଙ୍କର ମୁସଲମାନଙ୍କ ଧର୍ମ ପ୍ରତି ଅସ୍ଥା ଥିବା ବିଷୟ ଦେଖାଇବା ପାଇଁ 'ସତ୍ୟନାରାୟଣ'ଙ୍କୁ 'ସତ୍ୟପୀର', ପୂଜାକୁ 'ପାଲା', 'ନୈବେଦ୍ୟ'କୁ 'ଶିରଣୀ' ରୂପେ ଅଖ୍ୟାତ କରାଯାଇଅଛି । ସତ୍ୟପୀରଙ୍କୁ ମୁସଲମାନଙ୍କ ଭାଷାରେ 'ସଜ୍ଆସେର୍ ଶିରଣୀ', 'ସଜ୍ଆମହଣ ଶିରନୀ', 'ସଜ୍ଆସହ କେଲ୍' ଯଟାଯାଏ । ପୁରାଣବର୍ଣ୍ଣିତ 'ଅମୃତକୁଣ୍ଡ ବା କଦଳୀଚକଟାକୁ' 'କଣୀ ଶିରନୀ' ନାମ ଦେଇ ମୁସଲମାନଙ୍କ ପ୍ରିୟ ଗହମ ଅଟାର ରୁଟି ଓ ମିଠାଇକୁ 'ଫକୀଶିରନୀ' ନାମ ଦେଇ 'ସତ୍ୟପୀର'ଙ୍କଠାରେ ପୂଜା କରାଯାଏ । ପୁରାଣରେ ସତ୍ୟନାରାୟଣ ଦେବ 'ବୃଦ୍ଧବ୍ରାହ୍ମଣ' ବା ବୃଦ୍ଧଦଣ୍ଡୀ ବେଶରେ ମନୁଷ୍ୟମାନଙ୍କୁ ଦେଖା ଦେଇଥିଲେ । କବିକଣ୍ଠ ରଚିତ ପାଲାରେ ସତ୍ୟନାରାୟଣ ଦେବ 'ବୁଢ଼ା ଫକୀର' ବେଶରେ ଦେଖା ଦେଇଥିବା ବର୍ଣ୍ଣିତ ଅଛି । ପୀଢ଼ା ଉପରେ ଆବାହନ କରି ସ୍ଥାପିତ ହୋଇଥିବା ପଞ୍ଚଦେବତାଙ୍କ ମଧ୍ୟରୁ କେନ୍ଦ୍ରସ୍ଥ ସତ୍ୟନାରାୟଣ ବା ସତ୍ୟପୀରଙ୍କ

ନିମନ୍ତେ ଅଉପେତ ନୈବେଦ୍ୟ ଗୋଟିଏ ବଡ଼ ପାତ୍ରରେ ରଖାଯାଇଥାଏ ଓ ଅନ୍ୟ ୪ ଦେବତାଙ୍କ ପ୍ରତ୍ୟେକଙ୍କ ନିକଟରେ ପାନ, ଗୁଆ ସହିତ ସାମାନ୍ୟ ପରିମାଣରେ ନୈବେଦ୍ୟ ବା ଗୋଟିଏ କଦଳୀ ପୃଥକ୍ ପୃଥକ୍ ରଖାଯାଏ। ଉକ୍ତ ନୈବେଦ୍ୟକୁ 'ମୁକାମ୍' ବା 'ମୁକା' ବା 'ମୋକାମ୍' କହନ୍ତି । (ଫା, ମକାନ୍=ବାସସ୍ଥାନ)

ଶାସ୍ତ୍ରୋକ୍ତ ବିଧିଦ୍ୱାରା ସତ୍ୟନାରାୟଣଙ୍କ ପୂଜା ଶେଷ କରି ବଙ୍ଗଳାଭାଷାରେ ରଚିତ 'ପୂଜା' ବା ପାଲାଗୀତ ଆରମ୍ଭ କରାଯାଏ ।

ସତ୍ୟନାରାୟଣଙ୍କ ପୂଜାବିଧି ସ୍କନ୍ଦ ପୁରାଣରେ ଅଛି ଓ ସତ୍ୟନାରାୟଣ କଥାଶ୍ରବଣ ଓ ନୃତ୍ୟଗୀତାଦି କରିବା କଥା ଉଲ୍ଲେଖ ଅଛି; କିନ୍ତୁ ଅଧୁନା ଅଚଳିତ 'ପାଲା'ର କଥାମାନ ପୁରାଣରେ ମିଳେ ନାହିଁ । ଏହି ପୂଜାକୁ ଯେ କୌଣସି ଦିନ 'ନିଶାମୁଖ'ରେ ଅର୍ଥାତ୍ ରାତ୍ରିର ପ୍ରଥମ ପ୍ରହରରେ କରିବାର ବିଧି ଅଛି । ସତ୍ୟନାରାୟଣ ଦେବଙ୍କୁ ନୈବେଦ୍ୟ ଅର୍ପଣ କରାଇ, ପୂଜକଙ୍କୁ ଦକ୍ଷିଣା ଦେଇ, ବନ୍ଧୁବାନ୍ଧବମାନଙ୍କୁ ନିମନ୍ତ୍ରଣ କରି ସତ୍ୟନାରାୟଣଙ୍କ କଥା ଶୁଣି, ସେମାନଙ୍କ ସଙ୍ଗେ ( ସମପାଦ ପକ୍ୱରମ୍ଭା, ଦୁଧ, ଘୃତ, ଶର୍କରା ଓ ଗୋଧୂମଚୂର୍ଣ୍ଣ—ଅଭାବେ ଶାଳି ତଣ୍ଡୁଳଚୂର୍ଣ୍ଣ ମିଶ୍ରଣଦ୍ୱାରା ପ୍ରସ୍ତୁତ ଓ ସତ୍ୟନାରାୟଣଙ୍କୁ ନିବେଦିତ) ଉକ୍ତ ପ୍ରସାଦ ସେବନ କରି ନୃତ୍ୟଗୀତାଦି କରିବ । ଏହା କଲେ ବାଞ୍ଛାସିଦ୍ଧି ହୁଏ । କଳିଯୁଗରେ ଏହା ଛଡ଼ା ମୋକ୍ଷଲାଭର ପ୍ରକୃଷ୍ଟତର ଉପାୟ ନାହିଁ । ଆମ ଦେଶରେ ସାଧାରଣତଃ ଶିରୁଣି ଏକୋଇଶିଅଙ୍କୁ 'ସତ୍ୟନାରାୟଣ ପୂଜା' କରାଯାଏ । ଅକ୍ଷମ ବ୍ୟକ୍ତି ସୋଥି ପୂଜା କରେ ଓ କ୍ଷମ ବ୍ୟକ୍ତି 'ଠିଆଁ ପୂଜା', 'ଜାଙ୍ଗିଲି ପୂଜା' 'ବାଘାପୂଜା' ଆଦି କରନ୍ତି । ଯେଉଁମାନେ ଏକାଧିକ ପୂଜା ଯାଚି ଥାଆନ୍ତି, ସେମାନେ ପ୍ରତି ବର୍ଷର ସିଲିର ଜନ୍ମଦିନ ଗୋଟିଏ ଲେଖାଏଁ ପୂଜା କରି ମାନସିକ ଅନୁସାରେ ୪, ୮ ବା ୧୬ ଥାଳ ଶେଷ କରନ୍ତି । ]

**ସତ୍ୟନାରାୟଣ** ବ୍ରତ—ସଂ. ବି—ମନୋବାଞ୍ଛାସିଦ୍ଧି ହେବା ପାଇ
**Satyanārāyana brata** ଅନୁଷ୍ଠିତ ସତ୍ୟନାରାୟଣଙ୍କ ପୂଜା କିମ୍ବା ବାଞ୍ଛାସିଦ୍ଧି ହେଲେ ସତ୍ୟନାରାୟଣ ପୂଜା କରିବା ପାଇଁ ମନୁଷ୍ୟ ଯେଉଁ ସଙ୍କଳ୍ପ ( ମାନସିକ ) କରିଥାଏ, ବାଞ୍ଛାସିଦ୍ଧି ଉତ୍ତାରେ ଉକ୍ତ ପୂଜା କରିବା ଓ ବନ୍ଧୁ କୁଟୁମ୍ବ ସହିତ ସତ୍ୟନାରାୟଣ କଥା ଶୁଣିବା ଓ ପ୍ରସାଦ ସେବନ କରିବାରୂପ ବ୍ରତ—The vow or promise for the worship of Satyanārāyaṇa and the carrying out of the same vow. [ସ୍କ— ସ୍କନ୍ଦ ପୁରାଣରେ ଲେଖାଅଛି ଯେ, ଯେ କୌଣସି ଦିନ ଓ ବିଶେଷତଃ ସଂକ୍ରାନ୍ତି, ପୂର୍ଣ୍ଣମୀ ଆଦି ପୁଣ୍ୟ ଦିବସରେ 'ନିଶାମୁଖ'ରେ ବା ରାତ୍ରିର ପ୍ରଥମ ପ୍ରହରରେ ଏ ପୂଜା କରିବ ଏବଂ କଳିଯୁଗରେ ଯେଉଁ ବ୍ୟକ୍ତି ଏ ବ୍ରତ କରିବ, ତାହାର ସର୍ବ ବାଧା ପ୍ରଶମନ, ସର୍ବ କାମ ସିଦ୍ଧି, ଇହଲୋକରେ ବିଭବ ଓ ପରଲୋକରେ ବୈକୁଣ୍ଠ ପ୍ରାପ୍ତି ହେବ । ବଚନ ଯଥା—

ଧନଧାନ୍ୟାଦିକଂ ତସ୍ୟ ଭବେତ୍ ସତ୍ୟ ପ୍ରସାଦତଃ,
ଦରିଦ୍ରୋ ଲଭତେ ବିତ୍ତଂ ବଦ୍ଧୋମୁଚ୍ୟେତ ବନ୍ଧନାତ୍ ।
ଭୀତୋଭୟାତ୍ ପ୍ରମୁଚ୍ୟେତ ସତ୍ୟମେତନ୍ନସଂଶୟଃ
ଈପ୍ସିତଂଚ ଫଳଂ ଭୁକ୍ତ୍ୱା ଚାନ୍ତେ ସତ୍ୟପୁରଂ ବ୍ରଜେତ୍ ।
ଓ
ଏବଂ କୃତେ ମନୁଷ୍ୟାଣାଂ ବାଞ୍ଛାସିଦ୍ଧି ଭବେତ୍ ଧ୍ରୁବ
ବିଶେଷତଃ କଳିଯୁଗେ ନାନ୍ୟୋପାୟୋଽସ୍ତି ଭୂତଳେ —
ସ୍କନ୍ଦପୁରାଣ ରେବାଖଣ୍ଡ, ୪ର୍ଥ ଓ ୧୨ ଅଧ୍ୟାୟ । ]

**ସତ୍ୟନାଶ**—ଦେ. ବି—ସତ୍ୟାନାଶ ( ଦେଖ )
**Satyanāsa** Satyānāsa ( See)

**ସତ୍ୟନିଷ୍ଠ**—ସଂ. ବିଣ. ପୁଂ ( ବହୁବ୍ରୀହି; ସତ୍ୟ+ନିଷ୍ଠା; ସତ୍ୟରେ ନିଷ୍ଠା **Satyanishṭha** ଯାହାର )—୧ । ସତ୍ୟବାଦୀ; ଯେ ସର୍ବଦା (ସତ୍ୟନିଷ୍ଠା—ସ୍ତ୍ରୀ) ସତ୍ୟ କହିବାକୁ ଦୃଢ଼ ବ୍ରତ କରିଥାଏ— (ସତ୍ୟନିଷ୍ଠତା—ବି) 1. Resolved to speak the truth. ୨ । ସତ୍ୟ ବା ପ୍ରତିଜ୍ଞା ପାଳନ କରିବାକୁ ଦୃଢ଼ବ୍ରତ— 2. Resolved to keep one's vow or solemn promise. ୩ । ସତ୍ୟାନୁରାଗୀ—3. Attached to truth; devoted to the cause of truth.

**ସତ୍ୟ ନିଷ୍ଠା**—ସଂ.ବିଣ. ସ୍ତ୍ରୀ (ସତ୍ୟନିଷ୍ଠ+ଆ)—ସତ୍ୟନିଷ୍ଠର ସ୍ତ୍ରୀଲିଙ୍ଗ— **Satya nishṭhā** The feminine of Satyanishṭha. ବି. ( ୭ମୀ ତତ୍; ସତ୍ୟରେ ନିଷ୍ଠା )—ସତ୍ୟରେ ବା ସତ୍ୟ ବିଷୟରେ ନିଷ୍ଠା—Rigidity or constancy in the observance of Satya ( truth or one's solemn vow).

**ସତ୍ୟ ପରାୟଣ**—ସଂ. ବିଣ. ପୁଂ ( ବହୁବ୍ରୀହି; କର୍ମଧା. ସତ୍ୟ+ପର+ **Satya parāyaṇa** ଅୟନ )—ସତ୍ୟନିଷ୍ଠ ( ଦେଖ )— ( ସତ୍ୟପରାୟଣା—ସ୍ତ୍ରୀ ) Satyanishṭha ( See ) ( ସତ୍ୟପରାୟଣତା—ବି )

**ସତ୍ୟପାଠ**—ଦେ. ବି ( କଚରିଅ )—ସତ୍ୟ ପ୍ରତିଜ୍ଞା ୩ ( ଦେଖ )
**Satyapāṭha** Satya pratijnā 3 ( See )

**ସତ୍ୟ ପାଳନ**—ସଂ. ବି ( ୬ଷ୍ଠୀ ତତ୍ )—ପ୍ରତିଜ୍ଞାପାଳନ; ସତ୍ୟରକ୍ଷା —
**Satya pālana** Carrying out of one's vows. ( ସତ୍ୟପାଳକ, ସତ୍ୟପାଳୟିତା—ବିଣ. ପୁଂ) ( ସତ୍ୟପାଳନା—ଦେ. ରୂପ )

**ସତ୍ୟ ପାଳିବା**—ଦେ. କ୍ରି—ସତ୍ୟ ବା ଧର୍ମତଃ କରାଯାଇଥିବା ଅଙ୍ଗୀ- **Satya pālibā** କାରକୁ କାର୍ଯ୍ୟରେ ପରିଣତ କରିବା— সত্য পালা।[সতর পালনা To carry out one's vow; to keep one's promise.

**ସତ୍ୟପୀର**—ଦେ. ବି—୧ । ସତ୍ୟନାରାୟଣ (ଦେଖ )—1. Satya-
**Satyapira** nārāyaṇa ( See ). ୨ । (ପୁଂ) ଲୋକଙ୍କୁ সত্যপীর ଦିଆଯିବା ନାମ—A name given to (ସତ ପୀର ଗୋସ [ବେଁ]ଇଁ—ଅନ୍ୟରୂପ) males.

**ସତ୍ୟପୁର**—ସଂ. ବି—ସତ୍ୟଲୋକ ( ଦେଖ )
Satyapura Satyaloka ( See )

**ସତ୍ୟପ୍ରତିଜ୍ଞ**—ସଂ. ବିଣ. ପୁଂ (ବହୁବ୍ରୀହି; ସତ୍ୟ+ପ୍ରତିଜ୍ଞା; ସତ୍ୟ ଅଟେ Satyapratijña ପ୍ରତିଜ୍ଞା ଯାହାର )—୧ । ଯେ ପ୍ରତିଜ୍ଞାପାଳନ (ସତ୍ୟପ୍ରତିଜ୍ଞା—ସ୍ତ୍ରୀ) ବିଷୟରେ ଅଟଳ—1. Rigid or unalterable in the keeping of one's promise. ୨ । ଦୃଢ଼ପ୍ରତିଜ୍ଞ—2. Resolute.

**ସତ୍ୟ ପ୍ରତିଜ୍ଞା**—ସଂ ବିଂ. ସ୍ତ୍ରୀ (ସତ୍ୟ ପ୍ରତିଜ୍ଞ+ସ୍ତ୍ରୀ, ଆ)—ସତ୍ୟପ୍ରତିଜ୍ଞର Satyapratijñā ସ୍ତ୍ରୀଲିଙ୍ଗ—The feminine of Satyapratijña. ଦେ. ବି ( କଚିତଥ )—୧ । ଶପଥ; ମୁଁ ଯାହା କହୁଛି ଏହା ସତ ବୋଲି ଶପଥ କରିବା; ହଲପ—1. Swearing to the truth of one's statement; statement on oath. ୨ । ଏଫିଡେଭିଟ୍; ସ୍ୱକୃତିପତ୍ର; ଲିଖିତ ଦଲିଲରେ ଲେଖାଥିବା ବିଷୟ ସତ ଥିବା ବିଷୟରେ ଲେଖକର ଶପଥ—2. Affidavit; sworn testimony. ୩ । ମକଦ୍ଦମାରେ ପକ୍ଷମାନେ ( ଅର୍ଥାତ୍ ବାଦୀ ତାହାର ଆରଜିର ଶେଷରେ, ପ୍ରତିବାଦୀ ତାହାର ଜବାବର ଶେଷରେ ଓ ଦରଖାସ୍ତକାରୀ ତାହାର ଦରଖାସ୍ତର ଶେଷରେ) କଚେରିରେ ଦାଖଲ କରିବା ଆରଜି ଆଦର ପ୍ରାନ୍ତରେ ଲେଖିବା ଧର୍ମତଃ ଶପଥ ବାକ୍ୟ; ସତ୍ୟପାଠ—3. Verification at the end of a plaint or a written statement or of a petition filed in court.

ଦ୍ର—ଆଇନ୍ ଅନୁସାରେ ନିମ୍ନଲିଖିତ ଆକାରରେ ସତ୍ୟପ୍ରତିଜ୍ଞା ବା ସତ୍ୟପାଠ ଲେଖାଯାଏ—

ଆମ୍ଭେ ଅମୁକ ଅଙ୍କ ଅମୁକ ତାରିଖରେ ଅମୁକ ମୁକାମରେ ଉପସ୍ଥିତ ହୋଇ ଧର୍ମତଃ ପ୍ରତିଜ୍ଞା କରୁଅଛୁଁ କି, ଏଥି ଲିଖିତ ଅମୁକ ଅମୁକ ଦଫାର ବିଷୟମାନ ଆମ୍ଭ ଜ୍ଞାନମତେ ସତ୍ୟ ଅଟେ ଓ ଅମୁକ ଅମୁକ ଦଫାର ବିଷୟମାନ ଆମ୍ଭର ବିଶ୍ୱାସମତେ ସତ୍ୟ ଅଟେ ।

ବଶିଷ୍ଠରୂପେ କ୍ଷମତାପ୍ରାପ୍ତ ନ ହେଲେ କୌଣସି ଦାରପରଦାଜ ବା ଏଜେଣ୍ଟ୍ ସ୍ୱାମୀ ( Principal )ଙ୍କ ପକ୍ଷରୁ ସତ୍ୟପ୍ରତିଜ୍ଞାରେ ଦସ୍ତଖତ୍ କରି ପାରନ୍ତି ନାହିଁ । ]

**ସତ୍ୟପ୍ରସନ୍ନ ସିଂହ**—ଦେ. ବି (ନାମ)—ସ୍ୱର୍ଗତ ମାନ୍ୟବର ଲର୍ଡ Satyaprasanna simha ଏସ୍. ପି, ସିଂହ ବା ଲର୍ଡ ସିନ୍‌ହା—The late Lord S. P. Sinha of Raipur. [ଦ୍ର—ଏ ବଙ୍ଗ ପ୍ରଦେଶରେ ବୀରଭୂମି ଜିଲ୍ଲାର ରାଏପୁର ଗ୍ରାମରେ କାୟସ୍ଥ ବଂଶରେ ୧୮୬୩ ସାଲରେ ଜନ୍ମଗ୍ରହଣ କରି ଏଫ୍. ଏ. ପାଶ୍ କରି ବିଲାତ ଯାଇ ସେଠାରେ ଲିନ୍‌କଲ୍‌ନ୍‌ସ୍ ଇନ୍ ( Lincoln's Inn ) ନାମକ ବାରିଷ୍ଟରୀ ଶିକ୍ଷାଭବନରୁ ୧୮୮୬ ରେ ବାରିଷ୍ଟରୀ ପାଶ୍ କରି କଲିକତା ହାଇକୋର୍ଟରେ ବାରିଷ୍ଟର ବ୍ୟବସାୟ କଲେ, ଓ ୧୯୦୪ ସାଲରେ ହାଇକୋର୍ଟରେ ପ୍ରଥମ Standing Council (ସରକାରୀ ପରାମର୍ଶଦାତା) ଓ ତତ୍ପରେ Advocate General (ପ୍ରାଦେଶିକ ସରକାରଙ୍କ ପ୍ରଧାନତମ ବାରିଷ୍ଟର) କାର୍ଯ୍ୟରେ ନିଯୁକ୍ତ ହୋଇ ୧୯୦୭ ସାଲରେ ବଡ଼ଲାଟଙ୍କ ଶାସନ ସଭା (Executive Council) ର (Law member) ଆଇନ୍ ସଚିବ ରୂପେ ନିଯୁକ୍ତ ହେଲେ । ଭାରତୀୟମାନଙ୍କ ମଧ୍ୟରେ ଏ ପ୍ରଥମେ ଏହି ଉଚ୍ଚ ପଦ ଲାଭ କରିଥିଲେ । ତତ୍ପରେ ବିଲାତର ପାର୍ଲିଅମେଣ୍ଟ୍ ସଭାରେ ଭାରତର ସହକାରୀ ସଚିବ (Under Secretary) ରୂପେ କାର୍ଯ୍ୟ କରି ସେଠାରେ ସମ୍ରାଟଙ୍କଠାରୁ ( Lord sinha of Raipur) ଲର୍ଡ ଉପାଧି ପାଇ ଭାରତକୁ ଆସି ବିହାର ଓଡ଼ିଶାର ଲାଟ୍ (Governor) ହେଲେ । ଏ ଉଚ୍ଚୋଚ୍ଚ ପଦବୀ ମଧ୍ୟ ଭାରତବାସୀଙ୍କ ମଧ୍ୟରୁ ଏ ପ୍ରଥମ ପାଇଥିଲେ ଓ ଅଦ୍ୟାବଧି ଅନ୍ୟ କେହି ଭାରତୀୟ ଏ ଲର୍ଡ ପଦବୀ ପାଇ ନାହାନ୍ତି । ତତ୍ପରେ ଶାରୀରିକ ଅସୁସ୍ଥତା କାରଣରୁ ଲାଟ ପଦରୁ ଅବସର ନେଇ କେତେକ ଦିନ ବଙ୍ଗଦେଶରେ ଓ କେତେକ ଦିନ ବିଲାତରେ ଏ ରହିଥିଲେ । ଏ ବାରିଷ୍ଟରୀ କରିବା ସମୟରେ ଭାରତର ଜାତୀୟ ମହାସଭା କଂଗ୍ରେସ (Indian National Congress) ର ସଭାପତି ରୂପେ ଭାରତବାସୀଙ୍କୁ ରାଜକୀୟ ଓ ସାମରିକ ବିଭାଗର ଉଚ୍ଚ ପଦରେ ନିଯୁକ୍ତ କରିବା ପାଇଁ ମତ ପ୍ରକାଶ କରିଥିଲେ । ଏ ମଧ୍ୟ ଇଉରୋପର ଅନ୍ତର୍ଜାତୀୟ ସଙ୍ଘ (League of Nations) ରେ ଭାରତୀୟ ଜନସାଧାରଣ (The people of India) ଙ୍କର ପ୍ରତିନିଧି ରୂପେ ବଡ଼ଲାଟଙ୍କ ଦ୍ୱାରା ପ୍ରେରିତ ହୋଇଥିଲେ । ଲର୍ଡ ମର୍ଲି ଓ ମିଣ୍ଟୋଙ୍କ ଅମଳରେ ଭାରତକୁ ଯେଉଁ ଶାସନ-ସଂସ୍କାରମାନ ବିଲାତ ପାର୍ଲିଅମେଣ୍ଟ୍ ପ୍ରଦାନ କରିଥିଲେ, ତତ୍ସମ୍ବନ୍ଧେ ଏ ବହୁତ ଅଧ୍ୟୋଜନ କରିଥିଲେ ଓ ଉକ୍ତ ସଂସ୍କାର ସମ୍ବନ୍ଧୀୟ ଆଇନକୁ ବିଲାତର ପାର୍ଲିଅମେଣ୍ଟର ଲର୍ଡସଭା (House of Lords) ରେ ଏ ପେଶ୍ କରିଥିଲେ । ପାର୍ଲିଅମେଣ୍ଟର ଲର୍ଡସଭା (House of Lords) ର ସଭ୍ୟ ରୂପେ ଏହାଙ୍କୁ ସମ୍ରାଟ ଗ୍ରହଣ କରିଥିଲେ ।

ତତ୍ପରେ ଏ ବିଲାତର ପ୍ରିଭିକାଉନ୍ସିଲ୍ ବା ଉଚ୍ଚତମ ବିଚାରାଳୟର ବିଚାରପତି ରୂପେ ସମ୍ରାଟଙ୍କଦ୍ୱାରା ନିଯୁକ୍ତ ହୋଇଥିଲେ ।

ଏହାଙ୍କର ଭାଇ ମେଜର୍ ଏନ୍. ପି. ସିନ୍‌ହା ବିଲାତରୁ ଚିକିତ୍ସା ବିଭାଗୀୟ ଉଚ୍ଚ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସିଭିଲ୍ ସର୍ଜନ୍ (Civil Surgeon) ବା ଡାକ୍ତର ସାହେବ କାର୍ଯ୍ୟ କରି ଅବସର ଗ୍ରହଣ କରିଅଛନ୍ତି । ଏହାଙ୍କ ପୁତ୍ର ଲର୍ଡ ସିଂହ ଉପାଧି ପାଇଅଛନ୍ତି ।] ,

**ସତ୍ୟପ୍ରସାଦ ସର୍ବାଧିକାରୀ**—ଦେ. ବି. (ନାମ)—ବଙ୍ଗ ଦେଶର ଜଣେ Satyaprasāda Sarbādhikārī ସୁନାମପ୍ରସିଦ୍ଧ ସ୍ୱର୍ଗୀୟ ବ୍ୟକ୍ତି Name of a late celebrated Bengalee doctor. [ଦ୍ର—ଏ ହୁଗୁଳି ଜିଲ୍ଲାରେ ୧୮୪୮ ରେ ଜନ୍ମଗ୍ରହଣ କରିଥିଲେ । ଏ କଲିକତା ମେଡ଼ିକାଲ୍ କଲେଜରୁ ପାଶ୍ କରି କଲିକତାରେ ଡାକ୍ତରି କରୁଥିଲେ । ଏ କଲିକତାର ସୁପ୍ରସିଦ୍ଧ ସଙ୍ଘର ମେମ୍ବର ନିର୍ବାଚିତ ହୋଇ—ପୃଥିବୀ ବିଖ୍ୟାତ ଫ୍ରୀ ମାସନ୍ (Free mason) ନାମକ ସାର୍ବଜନୀନ ଉଦାର ଧର୍ମ ସମ୍ପ୍ରଦାୟରେ କୋଟିଏ ଉଚ୍ଚପଦ (Part-assistant Grand Director of Ceremonies of England) ଲାଭ କରିଥିଲେ । ଅନ୍ୟ ଭାରତବାସୀଙ୍କ ଭାଗ୍ୟରେ ଏ ସାମ୍ପ୍ରଦାୟିକ ଉଚ୍ଚ ପଦବୀ ଅଦ୍ୟାବଧି ଘଟିନାହିଁ ।]

**ସତ୍ୟପ୍ରାଣ**—ସଂ. ବିଣ. ପୁଂ—(ବହୁବ୍ରୀହି, ସତ୍ୟ ଅଟେ ପ୍ରାଣ ଯାହାଙ୍କର)—Satyaprāṇa ସତ୍ୟୈକନିଷ୍ଠ; ଯେ ସତ୍ୟ କହିବା ଓ ସତ୍ୟ (ସତ୍ୟପ୍ରାଣା—ସ୍ତ୍ରୀ) ପାଳନ କରିବା ପାଇଁ ଜୀବନକୁ ଉତ୍ସର୍ଗ କରିଅଛନ୍ତି—A person whose life is dedicated to the pursuit of truth and to the performance of his vows.

**ସତ୍ୟପ୍ରିୟ**—ସଂ. ବିଣ. ପୁଂ—(ବହୁବ୍ରୀହି; ସତ୍ୟ ଅଟେ ପ୍ରିୟ ଯାହାର)—Satyapriya ୧ । ସତ୍ୟବାଦୀ—1. Truthful. ୨ । (ସତ୍ୟପ୍ରିୟା—ସ୍ତ୍ରୀ) ସତ୍ୟାନୁରାଗୀ—2. Attached to (ସତ୍ୟପ୍ରିୟତା—ବି) truth.

**ସତ୍ୟଫଳ**—ସଂ. ବି—ବିଲ୍ୱ ବୃକ୍ଷ; ଶ୍ରୀଫଳ—The Bael tree; Satyaphala Aegle Marmelos.

**ସତ୍ୟବକ୍ତା**—ସଂ. ବିଣ. ପୁଂ—ସତ୍ୟବାଦୀ—Satyabaktā Truthful. (ସତ୍ୟବକ୍ତ୍ରୀ—ସ୍ତ୍ରୀ) (ସତ୍ୟବକତା—ଦେ· ରୂପ)

**ସତ୍ୟ ବଚନ**—ସଂ. ବି (କର୍ମଧା)—ସତ୍ୟକଥା—Satya bachana True words.

**ସତ୍ୟବଚାଃ**—ସଂ. ବିଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ସତ୍ୟ + ବଚସ୍; ସତ୍ୟ Satyabachāḥ ଅଟେ ବଚସ୍ = ବାକ୍ୟ ଯାହାର)—(ସତ୍ୟବାକ୍—ଅନ୍ୟରୂପ) ସତ୍ୟବାଦୀ—Truthful. ବି—ଋଷି; ମୁନି—A sage; hermit.

**ସତ୍ୟବତୀ**—ସଂ. ବିଣ. ସ୍ତ୍ରୀ ( ସତ୍ୟବତ୍ + ସ୍ତ୍ରୀ. ଈ; ସତ୍ୟବତ୍ ଶବ୍ଦର Satyabatī ସ୍ତ୍ରୀ ଲିଙ୍ଗ)—ସତ୍ୟବାଦିନୀ—The feminine of satyabat; Truthful (woman). ବି. ସ୍ତ୍ରୀ—୧ । ବ୍ୟାସ ଜନନୀ; ଶାନ୍ତନୁଙ୍କର ଦ୍ୱିତୀୟା ପତ୍ନୀ—1. Name of the 2nd wife of 'Śāntanu' and mother of sage 'Byāsa'.

[ଦ୍ର—ବ୍ୟାସଜନନୀଙ୍କର ବାଲ୍ୟ ନାମ ମତ୍ସ୍ୟଗନ୍ଧା । ଏ ବସୁରାଜଙ୍କ ଔରସରେ ମତ୍ସ୍ୟରୂପା ଅଦ୍ରିକା ନାମ୍ନୀ ଅପ୍ସରାଙ୍କ ଗର୍ଭରୁ ଜନ୍ମିଥିଲେ । ମତ୍ସ୍ୟର ଗର୍ଭରୁ ଜନ୍ମିଥିବାରୁ ଏହାଙ୍କ ଦେହରେ ମତ୍ସ୍ୟଗନ୍ଧ ଥିଲା । (ସେଥିପାଇଁ ଏହାଙ୍କ ନାମ ମତ୍ସ୍ୟଗନ୍ଧା) । ଜନ୍ମ ପରେ ବସୁରାଜ ଏହାଙ୍କୁ ଲାଳନପାଳନାର୍ଥେ ଦାସରାଜ (କୈବର୍ତ୍ତ)ଙ୍କୁ ଅର୍ପଣ କରିଥିଲେ । ଏ ବୟଃପ୍ରାପ୍ତା ହେବାରୁ ଦାସରାଜ ଏହାଙ୍କୁ ଯମୁନା ନଦୀ ଘାଟରେ ଡଙ୍ଗା ଚଳାଇବାର କର୍ମରେ ରଖିଲେ । ଏହି ଅବସ୍ଥାରେ ଦିନେ ପରାଶର ମୁନି ଯମୁନା ନଦୀ ପାର ହେବା ସମୟରେ ଏହାଙ୍କ ରୂପରେ ମୁଗ୍ଧ ହୋଇ ସଙ୍ଗମ ଲାଳସାରେ ଯୋଗ ମହିମାବଳରେ ଏହାଙ୍କ ଦେହରୁ ମତ୍ସ୍ୟଗନ୍ଧ ଦୂରୀଭୂତ କରି ଏହାଙ୍କ ଦେହକୁ ପଦ୍ମଗନ୍ଧମୟ କଲେ । ପରାଶରଙ୍କ ଔରସରେ ଏହାଙ୍କ ଗର୍ଭରୁ ବ୍ୟାସଦେବ ଜନ୍ମ ହୋଇଥିଲେ । ଏହା ସତ୍ୟବତୀଙ୍କ ଜୀବନର ପ୍ରଥମ ଅଧ୍ୟାୟ ।

କେତେ ଦିନ ପରେ ଗଙ୍ଗା ଦେବୀଙ୍କ ସ୍ୱାମୀ ଓ ଦେବବ୍ରତ (ପରବର୍ତ୍ତୀ ନାମ ଭୀଷ୍ମ)ଙ୍କ ପିତା ଶାନ୍ତନୁରାଜ ସତ୍ୟବତୀଙ୍କ ଦେହର ପଦ୍ମଗନ୍ଧ ଦ୍ୱାରା ଆକୃଷ୍ଟ ହୋଇ ଏହାଙ୍କୁ ବିବାହ କରିବା ପାଇଁ ପ୍ରସ୍ତାବ କରି ଦାସରାଜଙ୍କ ନିକଟରେ ଉପସ୍ଥିତ ହେବାରୁ ଦାସରାଜ ଶାନ୍ତନୁଙ୍କୁ କହିଲେ—ଆପଣ ଯେବେ ଆପଣଙ୍କ ଔରସରେ ଏହି କନ୍ୟା ଗର୍ଭରୁ ଜାତ ସନ୍ତାନକୁ ଆପଣଙ୍କ ଅନ୍ତେ ସିଂହାସନର ଅଧିକାରୀ କରିବାକୁ ସତ୍ୟ କରିବେ ତେବେ ଏ କନ୍ୟାକୁ ଆପଣଙ୍କ ହସ୍ତରେ ଅର୍ପଣ କରିବି; କିନ୍ତୁ ପ୍ରଥମା ପତ୍ନୀ ଗଙ୍ଗାଙ୍କ ଗର୍ଭଜାତ 'ଦେବବ୍ରତ' ଥାଉଁ ଥାଉଁ ଶାନ୍ତନୁ ଏପରି ପ୍ରତିଜ୍ଞା କରିବାକୁ ଅସମର୍ଥ ହୋଇ ବିରସ ହୃଦୟରେ ରାଜ୍ୟକୁ ଫେରି ଆସିଲେ । ଏଣେ ପିତୃଭକ୍ତ ଦେବବ୍ରତ ପିତାଙ୍କ ମନୋଦୁଃଖର କାରଣ ଅନୁସନ୍ଧାନ ଦ୍ୱାରା ଜାଣି ପାରି ସ୍ୱୟଂ ଦାସରାଜଙ୍କ ନିକଟରେ ଉପସ୍ଥିତ ହୋଇ ଏହିପରି ପ୍ରତିଜ୍ଞା କଲେ ଯେ, ଦାସରାଜଙ୍କ ଅଭିଳାଷ ପୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ସେ ପିତାଙ୍କ ମୃତ୍ୟୁ ପରେ ନିଜେ ପିତୃ ସିଂହାସନ ଅଧିକାର ନ କରି ସତ୍ୟବତୀଙ୍କ ପୁତ୍ରମାନଙ୍କୁ ଉକ୍ତ ସିଂହାସନରେ ବସାଇବେ ଓ ସ୍ୱୟଂ ଚିରକୁମାର ରହିବେ । ଦେବବ୍ରତ ଏହି 'ଭୀଷ୍ମ ପ୍ରତିଜ୍ଞା' କରି ତାହା ପାଳନ କରିଥିବାରୁ ତଦବଧି ତାଙ୍କ ନାମ ଭୀଷ୍ମ ହେଲା । ଦାସରାଜ ଏ ପ୍ରତିଜ୍ଞା ଶୁଣି ସତ୍ୟବତୀଙ୍କୁ ଭୀଷ୍ମଙ୍କ ହସ୍ତରେ ପ୍ରଦାନ କଲେ ଓ ଭୀଷ୍ମ ସତ୍ୟବତୀଙ୍କୁ ଆଣି ପିତୃଦେବଙ୍କ ଚରଣରେ ଅର୍ପଣ କଲେ । କାଳକ୍ରମେ ସତ୍ୟବତୀଙ୍କ ଗର୍ଭରୁ ଶାନ୍ତନୁଙ୍କ ଔରସରେ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ନାମକ ଦୁଇଟି ପୁତ୍ର ଜନ୍ମ ହେଲେ । ଶାନ୍ତନୁଙ୍କ ଅନ୍ତେ ଭୀଷ୍ମ ଚିତ୍ରାଙ୍ଗଦଙ୍କୁ ରାଜପଦରେ ବସାଇଲେ, କିନ୍ତୁ ଚିତ୍ରାଙ୍ଗଦ ଅଳ୍ପଦିନ ପରେ ନିଃସନ୍ତାନ ହୋଇ ମୃତ ହେବାରୁ ଭୀଷ୍ମ ତାଙ୍କ କନିଷ୍ଠ ବିଚିତ୍ରବୀର୍ଯ୍ୟଙ୍କୁ ରାଜା କଲେ । ପରେ କାଶୀରାଜାଙ୍କ କନ୍ୟା ଅମ୍ବାଳିକାଙ୍କୁ ଓ ଅମ୍ବିକାଙ୍କୁ ସ୍ୱୟମ୍ବର ସଭାରୁ ହରଣ କରି ଆଣି ବିଚିତ୍ରବୀର୍ଯ୍ୟଙ୍କୁ ବିବାହ ଦେଲେ । ଦୈବଗତ୍ୟା ବିଚିତ୍ରବୀର୍ଯ୍ୟ ମଧ୍ୟ ନିଃସନ୍ତାନ ହୋଇ ମୃତ ହେଲେ । ଆପଣାର କୁଳ ଲୋପ ହେବା ଦେଖି ସତ୍ୟବତୀ ଅତି ଦୁଃଖିତା ହୋଇ ଭୀଷ୍ମଙ୍କ ପରାମର୍ଶରେ ସ୍ୱୀୟ କାନୀନ ପୁତ୍ର

ବ୍ୟାସ ଦେବଙ୍କୁ ନିମନ୍ତ୍ରଣ କରି ତାଙ୍କ ସାହାଯ୍ୟରେ କିୟୋଗ ବିଧି ଦ୍ୱାରା ମୃତ ବିଚିତ୍ରବୀର୍ଯ୍ୟଙ୍କ କ୍ଷେତ୍ରରେ (ଅମ୍ବିକା ଓ ଅମ୍ବାଳିକାଙ୍କ ଗର୍ଭରେ) ଧୃତରାଷ୍ଟ୍ର ଓ ପାଣ୍ଡୁ ନାମକ କୁମାର-ଦ୍ୱୟଙ୍କୁ ଉତ୍ପାଦିତ କରାଇ ଶାନ୍ତନୁଙ୍କ କୁଳ ରକ୍ଷା କଲେ । ପୌତ୍ରଦ୍ୱୟ ବୟଃପ୍ରାପ୍ତ ହେବା ପର୍ଯ୍ୟନ୍ତ ସତ୍ୟବତୀ ଭୀଷ୍ମଙ୍କ ଆଶ୍ରୟରେ ରହିଥିଲେ । ଧୃତରାଷ୍ଟ୍ର ବଡ ପୁଅ ଥିଲେହେଁ ଜନ୍ମାନ୍ଧ ଥିବାରୁ କନିଷ୍ଠ ପାଣ୍ଡୁ ରାଜା ହେଲେ, କିନ୍ତୁ ଦୈବ-ଗତ୍ୟା 'ଅକାଳକାଣ୍ଡ' କଥାଲେ ବାଜିବାରୁ ପାଣ୍ଡୁ ଅଳ୍ପ ବୟସରେ ମୃତ ହେଲେ । ପାଣ୍ଡୁଙ୍କ ମୃତ୍ୟୁ ପରେ ସତ୍ୟବତୀ ପୁତ୍ରବଧୂ ଦ୍ୱୟଙ୍କ ସହ ବନବାସ ଆଶ୍ରୟ କରି ତପଶ୍ଚରଣରେ ନିୟୁକ୍ତା ହୋଇ ଦେହ ତ୍ୟାଗ କଲେ ।] ୨ । ନାରଦ ମୁନିଙ୍କ ପତ୍ନୀ—2. Name of the wife of sage 'Nārada'. ୩ । ବିଶ୍ୱାମିତ୍ରଙ୍କ ଭଉଣୀ; ରୁଚୀକ ଋଷିଙ୍କ ପତ୍ନୀ ଓ ଶୁନଃଶେଫ ଋଷିଙ୍କ ମାତା—3. The sister of 'Biswāmitra' and wife of sage 'Ruchika'. [ଦ୍ର—ତପୋବଳରେ ଏ ଦେହାନ୍ତେ ସଶରୀର ସ୍ୱର୍ଗାରୋହଣ କରିବା ପରେ ପୃଥିବୀର ହିତ କାମନାରେ ସ୍ରୋତସ୍ୱତୀ ରୂପେ ହିମାଳୟରୁ ପ୍ରବାହିତ ହୋଇ 'କୌଶିକୀ' ନାମ ଧାରଣ କଲେ । କୌଶିକୀ ହିମାଳୟରୁ ପ୍ରବାହିତ ହେଉଥିବା ବିହାର ପ୍ରଦେଶାନ୍ତର୍ଗତ ନଦୀବିଶେଷ । ଏହା ଭାଗଲପୁରର କିଛି ଦୂର ତଳେ ପୂର୍ବରେ ଗଙ୍ଗା ନଦୀ ସଙ୍ଗେ ମିଶି ଅଛି ।]

**ସତ୍ୟବତୀ ସୁତ**—ସଂ. ବି. ପୁଂ (ଷଷ୍ଠୀ ତତ୍)—ବ୍ୟାସ ଦେବ—
Satyabatī suta The sage Byāsa.

**ସତ୍ୟବନ୍ତ**—ଦେ. ବିଣ. (ସଂ. ସତ୍ୟବତ୍ ଶବ୍ଦର ୧ମା ବିଭକ୍ତି, ବହୁ
Satyabanta ବଚନରେ ଅକାର 'ସତ୍ୟବନ୍ତଃ' )—
[ସତ୍ୟବନ୍ତା(ନ୍ତୀ)—ସ୍ତ୍ରୀ] ୧ । ସତ୍ୟବାଦୀ—1. Truthful.
ସତ୍ୟବନ୍ତ ୨ । ଯେ ସତ୍ୟ ପାଳନ କରେ—2. True to one's
सत्यवादी promise or vow. [ଉ—ଭରତ ବଂଶେ ହେଲେ ଏପରି ନୃପତି, ସତ୍ୟବନ୍ତ ଯେ ମହାରଥ ସେ
सत्यवान् ଅଟନ୍ତି । କୃଷ୍ଣସିଂ. ମହାଭାରତ ଆଦି ।] ବି. ପୁଂ—
सत्यवान ସତ୍ୟବାନ; ସାବିତ୍ରୀଙ୍କ ସ୍ୱାମୀ—Satyabān; the husband of 'Sābitrī.' [ଉ—ଏ ରୂପେ ବଇଷ ସମ୍ପୂର୍ଣ୍ଣେ ସତ୍ୟବନ୍ତ, ଦେହରେ କାଳ ଅଛି ହୋଇ ଉପଗତ । କୃଷ୍ଣସିଂ. ମହାଭାରତ. ବନ ।]

**ସତ୍ୟବନ୍ତା**—ଦେ. ବିଣ ପୁଂ. ଓ ସ୍ତ୍ରୀ—ସତ୍ୟବନ୍ତ ( ଦେଖ )
Satyabantā Satyabanta ( See )

**ସତ୍ୟବାକ**—ସଂ. ବିଣ. ପୁଂ (ବହୁବ୍ରୀହି; ସତ୍ୟ ଅଟେ ବାକ୍ ଯାହାର)—
Satyabāk ସତ୍ୟବାଦୀ—Truthful. ବି—୧। ମୁନି; ଋଷି—
(ସତ୍ୟବାଗୀ—ସ୍ତ୍ରୀ) 1. Sage. ୨ । କାକ୍ରୁଷ; କାକ—
(ସତ୍ୟବାକ—ଦେ. ରୂପ) 2. Crow.

**ସତ୍ୟବାଦୀ**—ସଂ. ବିଣ (ସତ୍ୟବାଦିନ୍ ଶବ୍ଦ; ସତ୍ୟ+ବଦ୍. ଧାତୁ+
Satyabādī କର୍ତ୍ତି. ଇନ୍ )—ସତ୍ୟଭାଷୀ; ଯେ ସତ୍ୟ କହେ—
(ସତ୍ୟବାଦିନୀ—ସ୍ତ୍ରୀ) Truthful; speaking the truth
सत्यवादी ବି—୧ । ମୁନି—1. Sage. ୨ । କାକ୍ରୁଷ; କାକ—
सत्यवादी 2. Crow. ଦେ. ବି. ପୁଂ—୧ । ଲୋକଙ୍କୁ ଦିଆଯିବା ନାମ—1. A name given to males. ୨ । ପୁରୀ ଜିଲ୍ଲା ଅନ୍ତର୍ଗତ ପ୍ରଧାନ ପ୍ରଗଣାର ସୁପ୍ରସିଦ୍ଧ ଗ୍ରାମ—2. Name of a village in Puri district. [ଦ୍ର—ଏହା ପୁରୀଠାରୁ କଟକ ଅଭିମୁଖୀ ଅସିଥିବା ଜଗନ୍ନାଥ ସଡ଼କର ନିକଟରେ ପୁରୀଠାରୁ ୧୦ ମାଇଲ ଦୂରବର୍ତ୍ତୀ ଜୟପୁର ନାମକ ଗ୍ରାମର ଅଧମାଇଲ ପଶ୍ଚିମରେ ଅବସ୍ଥିତ । ଏଠାରେ ଶ୍ରୀ ଗୋପୀନାଥ ବା ସାକ୍ଷୀଗୋପାଳ ନାମକ ଶ୍ରୀକୃଷ୍ଣବିଗ୍ରହଙ୍କ ମନ୍ଦିର ଅଛି । ଏଥିପାଇଁ ଏ ସ୍ଥାନର ନାମ ମଧ୍ୟ ସାକ୍ଷୀଗୋପାଳ ହୋଇଅଛି ଓ ଏହି ଗ୍ରାମର ପ୍ରସିଦ୍ଧି ଯୋଗୁଁ ଜୟପୁର ମୌଜାରେ ଅବସ୍ଥିତ ଡାକ୍ତରଖାନା, ଡାକଘର, ଥାନା ଆଦି ପ୍ରବର୍ତ୍ତରୁ ସତ୍ୟବାଦୀ ଶବ୍ଦ ଲଗାଇ କୁହାଯାଏ । ଏଠାରେ ଦେବତା 'ସାକ୍ଷୀଗୋପାଳ'ଙ୍କୁ 'ସତ୍ୟବାଦୀ ଗୋପୀନାଥ' ଓ 'ଗୋପାଳଜୀଉ' ବା 'ଗୋପାଳଜୀ' ବୋଲି ଲୋକେ ଡାକନ୍ତି । ଏହି ବିଗ୍ରହଙ୍କୁ ପୁରୁଷୋତ୍ତମଦେବ କାଞ୍ଚିବିଜୟ କରି ସେଠାରୁ ଅଣି କଟକରେ ରଖିଥିଲେ ଓ ଶ୍ରୀ ଚୈତନ୍ୟଦେବ ଏହାଙ୍କୁ କଟକଠାରେ ଦେଖିଥିଲେ । ତତ୍ପରେ କେତେକ ଦିନ ଏ ବିଗ୍ରହ ପୁରୀଜିଲ୍ଲାର ରଥିପୁର ଓ କଣ୍ଟଲବାଇରେ ରଖାଯାଇଥିଲେ ଓ ସେଠାରେ ମଧ୍ୟ ଏ ପର୍ଯ୍ୟନ୍ତ ଉକ୍ତ ଠାକୁରଙ୍କର ଭୁକ୍ତା ଓ ଭଙ୍ଗା ଦେଉଳମାନ ଅଛି । ଏହାଙ୍କର ବର୍ତ୍ତମାନ ମନ୍ଦିର ସତ୍ୟବାଦୀଠାରେ ଏକ ପ୍ରକାଣ୍ଡ (୯ ବାଟି ୯ ମାଣ ୯ ଗୁଣ୍ଠ ୯ ବିଶ୍ୱା ଜମିରେ ଥିବା) ବକୁଳ ଉପବନ ମଧ୍ୟରେ ଅନ୍ତକୁ ଅନ୍ଦାଜ ୧୫୦ ବର୍ଷ ହେବ ନିର୍ମିତ ହୋଇଅଛି । ପୂର୍ବେ ଏ ମନ୍ଦିରର ଚତୁଃପାର୍ଶ୍ୱରେ ଗୃହ ଓ ବସତି ଆଦି ନ ଥିଲା । ପରନ୍ତୁ, ଏହାଙ୍କ ସେବକମାନଙ୍କ ବସତି ଦେଉଳଠାରୁ ଅଧମାଇଲ୍ ଦୂରରେ ଅବସ୍ଥିତ । ଏ ଦେବତାଙ୍କ ସେବା ନିମନ୍ତେ ଓ ସେବକଙ୍କ ଜୀବିକା ନିମନ୍ତେ ଓଡ଼ିଶାର ରାଜାମାନେ ଅନେକ ଭୂସମ୍ପତ୍ତି ଖଞ୍ଜି ଯାଇଅଛନ୍ତି ଓ ପୂର୍ବେ ଏହାର ତତ୍ତ୍ୱାବଧାରଣର ଭାର ଜଣେ ରାଜ-ବଂଶଧର (ରାଏ ସାହେବ)ଙ୍କ ଉପରେ ଥିଲା, କିନ୍ତୁ ସେ ମନ୍ଦିରର କାର୍ଯ୍ୟରେ ବିଶୃଙ୍ଖଳା ଦେଖାଇବାରୁ ଇଂରେଜ ଗଭର୍ଣ୍ଣମେଣ୍ଟ ଏ ମନ୍ଦିରର ପରିଚାଳନାର୍ଥ ୧୮୬୩ ସାଲର ୨୦ ଆଇନ ଅନୁସାରେ ପ୍ରଥମେ ୩ ଜଣ ଓ ବର୍ତ୍ତମାନ ୫ ଜଣ ମେମ୍ବର ସମ୍ବଳିତ ଗୋଟିଏ ପରିଚାଳନ କମିଟି (Endowment Committee or Temple Committee) ମୁକରର କରିଅଛନ୍ତି । ବର୍ତ୍ତମାନ ଉକ୍ତ ଦେବ ସମ୍ପତ୍ତିର ବାର୍ଷିକ ଆୟ ପ୍ରାୟ ୨୦ ହଜାର ଟଙ୍କା ।

ବର୍ତ୍ତମାନ ଏ ଦେଉଳର ଚାରିପାଖେ ଅନେକଗୁଡ଼ିଏ ଘର, ଦୋକାନ, ବଜାର, ମନ୍ଦିରଅଫିସ୍, ଧର୍ମଶାଳା, ନିର୍ମିତ ହେବାରୁ ସ୍ଥାନଟି ବସତିପୂର୍ଣ୍ଣ ଓ ଜନତାମୟ

ହୋଇଅଛି । ଦେଉଳର ପଶ୍ଚିମ ପାଖେ ବଉଳ ତୋଟା ମଧ୍ୟରେ କେତେଗୁଡ଼ିଏ ଦେଶକର୍ମୀ ଉଚ୍ଚଶିକ୍ଷିତ ବ୍ୟକ୍ତି ୧୫ ବର୍ଷ କାଳ ସରକାରୀ ସାହାଯ୍ୟକୁ ଅପେକ୍ଷା ନ କରି ଗୋଟିଏ ଆଦର୍ଶ ବିଦ୍ୟାଳୟ ସ୍ଥାପନ କରି ସୁଖ୍ୟାତି ସହିତ ତାହା ପରିଚାଳନ କରିଥିଲେ, କିନ୍ତୁ ଦୁର୍ଭାଗ୍ୟର ବିଷୟ ଯେ ଭାରତର ନନ୍-କୋ-ଅପରେସନ୍‌ର ତେଜଲାଗି ଏ ବିଦ୍ୟାଳୟଟି ବିଚ୍ଛଦନ ପାଇଁ ଜାତୀୟ ବିଦ୍ୟାଳୟରେ ପରିଣତ ହୋଇ ପରେ ଧ୍ୱଂସ ପ୍ରାୟ ହୋଇ ଯାଇଥିଲା; କିନ୍ତୁ ପରେ କେତେକ ଭଦ୍ର ବ୍ୟକ୍ତିଙ୍କ ଯତ୍ନରେ ଏବେ ଗୋଟିଏ ସରକାରୀ ସାହାଯ୍ୟପ୍ରାପ୍ତ ହାଇ ସ୍କୁଲରେ ଏହା ପରିଣତ ହୋଇଅଛି ।

ଏହି ସ୍ଥାନଟି ପୁରୀ ଜିଲ୍ଲାବାସୀ ସ୍ୱର୍ଗୀୟ ଗୋପବନ୍ଧୁ ଦାଶ, ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାଶ, ଆଚାର୍ଯ୍ୟ ହରିହର ଦାଶ, ପଣ୍ଡିତ ଗୋଦାବରୀଶ ମିଶ୍ର ଆଦି ଦେଶକର୍ମୀମାନଙ୍କର ଜାତୀୟ କର୍ମସାଧନାର କେନ୍ଦ୍ରସ୍ଥଳୀ ଥିଲା ଓ ଏଠାରେ ଗୋପବନ୍ଧୁଙ୍କ ପ୍ରବର୍ତ୍ତିତ ସାପ୍ତାହିକ, ପରେ ଦୈନିକ, ସମ୍ବାଦପତ୍ର 'ସମାଜ'ର ଜନ୍ମ । ସ୍ଥାନଟି ପୁରୀ ଜିଲ୍ଲାର ବିହାଙ୍ଗ ବ୍ରାହ୍ମଣ ଶାସନମାନଙ୍କର ପ୍ରାୟ କେନ୍ଦ୍ରସ୍ଥଳରେ ଅବସ୍ଥିତ ।

ଏହାର ସନ୍ନିକଟବର୍ତ୍ତୀ ଶ୍ରୀରାମଚନ୍ଦ୍ରପୁର ଶାସନରେ ଅନେକ ଉଚ୍ଚଶିକ୍ଷିତ ବ୍ୟକ୍ତିଙ୍କର ବାସ ଓ ଗୋପାଳପୁର ପାଟଣାରେ ଏ ଅଞ୍ଚଳର ପ୍ରସିଦ୍ଧ ଚଢେଇବାଲିଆ ମହାଜନ 'ଓଝା'ବଂଶର ଓ ନିକଟସ୍ଥ ଜୟପୁର ଗ୍ରାମରେ ସ୍ଥାନୀୟ ଅନ୍ୟ ମହାଜନ 'ଶତପଥୀ'ବଂଶଙ୍କ ବାସସ୍ଥାନ ଅଛି । ସତ୍ୟବାଦୀରେ ଗୋଟିଏ ଦାତବ୍ୟ ଚିକିତ୍ସାଳୟ, ଥାନା, ପୋଷ୍ଟ ଓ ଟେଲିଗ୍ରାଫ୍ ଅଫିସ, ଡାକବଙ୍ଗଳା, ବେଙ୍ଗଲ ନାଗପୁର ରେଲୱେର ପୁରୀ ଶାଖାର ଗୋଟିଏ ଷ୍ଟେସନ, ଇଉନିୟନ୍ କମିଟି, କେତେ ମାରୁଆଡ଼ି ଓ ମେମନ୍ ମହାଜନଙ୍କ ଗୋଦାମ ଓ ରହାଙ୍ଗର ଜମିଦାର ପାଇକପଡ଼ା ଷ୍ଟେଟ୍‌ର 'ଲାଲବାବୁ'ଙ୍କ କଚେରି ଓ ଗୋଟିଏ ସୁରମ୍ୟ ଧର୍ମଶାଳା ଅଛି । ଏହା ମଧ୍ୟ ନଡ଼ିଆ ବ୍ୟବସାୟର ଗୋଟିଏ ପ୍ରଧାନ କେନ୍ଦ୍ରସ୍ଥଳ ଓ ପ୍ରତିବର୍ଷ ଏଠାରୁ ନଡ଼ିଆ-ମହାଜନମାନେ ବହୁ ଲକ୍ଷ ଟଙ୍କାର ନଡ଼ିଆ ବିଭିନ୍ନ ଦେଶକୁ ରେଲଦ୍ୱାରା ପଠାନ୍ତି ।

**ସତ୍ୟବାଦୀ କମି(ମେ)ଟି**—ଦେ. ବି—ସତ୍ୟବାଦୀ ମନ୍ଦିର ପରିଚାଳନାର୍ଥ ଜିଲ୍ଲାଜଜଙ୍କ ଦ୍ୱାରା ୧୮୬୩ ସାଲର ୨୦ ଆଇନ ଅନୁସାରେ ନିଯୁକ୍ତ (ବର୍ତ୍ତମାନ ୫ ଜଣ ମେମ୍ବର ସମ୍ବଳିତ) ସମିତି—The Sākhigopāl Endowment Committee appointed by the District Judge under Act 20 of 1863. [ଦ୍ର—ସତ୍ୟବାଦୀଠାରେ ଇଉନିୟନ୍ କମିଟି, ଡାକ୍ତରଖାନା କମିଟି ଆଦି ଅନ୍ୟ କମିଟିମାନ ଥିଲେ ସୁଦ୍ଧା, 'ମନ୍ଦିର କମିଟି' ପ୍ରସିଦ୍ଧ ଥିବାରୁ ସତ୍ୟବାଦୀ କମିଟି କହିଲେ ସାଧାରଣତଃ ସତ୍ୟବାଦୀ ମନ୍ଦିର କମିଟି ବୋଲି ଲୋକେ ବୁଝନ୍ତି ।]

Satyabādi kami(me)ṭi

ସତ୍ୟବାଦୀ ମନ୍ଦିର କମି(ମେ)ଟି, ସତ୍ୟବାଦୀ ଟେମ୍ପଲ କମି(ମେ)ଟି } ଅନ୍ୟରୂପ

**ସତ୍ୟବାଦୀ ଗୋପୀନାଥ**—ଦେ. ବି.—ସତ୍ୟବାଦୀରେ ବିରାଜିତ 'ସାକ୍ଷୀ-ଗୋପାଳ' ବା 'ଗୋପାଳଜୀ' ନାମକ ଶ୍ରୀକୃଷ୍ଣଙ୍କ ବିଗ୍ରହ—The Deity Gopīnātha at Sākhigopāl.

Satyabādi gopīnātha

ସତ୍ୟବାଦୀ ଗୋପୀନାଥ ଜୀଉ(ଜୀ), ସତ୍ୟବାଦୀ ଗୋପୀନାଥ ଦେବ } ଅନ୍ୟରୂପ

साक्षीगोपाल **सत्यवादी गोपीनाथ**

(ଦ୍ର—ଏ କଳାମୁଗୁନି ପଥରରେ ନିର୍ମିତ ମନୁଷ୍ୟପ୍ରମାଣ ମୂର୍ତ୍ତି ଅଟନ୍ତି । ଏହାଙ୍କ ବାମ ପାର୍ଶ୍ୱରେ ସମକୋଣ ସୃଷ୍ଟି କରି ପିତ୍ତଳପ୍ରଧାନ ଧାତୁମୟ ରାଧିକା ବା ଠାକୁରାଣୀ ମୂର୍ତ୍ତି ବିରାଜିତା । କିମ୍ବଦନ୍ତୀ ଅଛି ଯେ, ଏ ମୂର୍ତ୍ତି ପ୍ରଥମେ ବୃନ୍ଦାବନରେ ଥିଲେ । ସେଠାକୁ ଦାକ୍ଷିଣାତ୍ୟର ଗୋଟିଏ ବୃଦ୍ଧ ବ୍ରାହ୍ମଣ ଓ ଗୋଟିଏ ଯୁବକ ତୀର୍ଥ କରିବାକୁ ଯାଇଥିଲେ । ସେମାନେ ଏହି ମୂର୍ତ୍ତିଙ୍କୁ ମନ୍ଦିରରେ ଦର୍ଶନ କରୁଥିବାବେଳେ ବୃଦ୍ଧ ବ୍ରାହ୍ମଣ ଆପଣା କନ୍ୟାକୁ ଯୁବକଙ୍କୁ ବିବାହ ଦେବାପାଇଁ 'ସତ୍ୟ' କରିଥିଲେ । ଏହି ଅଙ୍ଗୀକାରକୁ କେବଳ ଗୋପୀନାଥ ମୂର୍ତ୍ତିଙ୍କ ଛଡ଼ା ଅନ୍ୟ କେହି ଶୁଣି ନ ଥିଲେ । କାଳକ୍ରମେ ବ୍ରାହ୍ମଣଦ୍ୱୟ ସ୍ୱଦେଶକୁ ଫେରି ଆସିବାପରେ କେତେକ କାରଣରୁ ବୃଦ୍ଧ ଆପଣାର ସତ୍ୟ ରକ୍ଷା ନ କରିବାରୁ ଯୁବକ ପଞ୍ଚାଏତଙ୍କ ନିକଟରେ ଫେରାଦ ହେଲେ; ପଞ୍ଚାଏତ ଯୁବକଙ୍କୁ ସାକ୍ଷୀ ତଲବ କଲେ । ଯୁବକଙ୍କର ଅନ୍ୟ କେହି ସାକ୍ଷୀ ନ ଥିବାରୁ ବୃନ୍ଦାବନର ଗୋପୀନାଥ ମୂର୍ତ୍ତି ତାହାଙ୍କ ସାକ୍ଷୀଥିବା କଥା କହି ଓ ଦୃଢ଼ ବିଶ୍ୱାସରେ ପ୍ରଣୋଦିତ ହୋଇ ତାଙ୍କୁ ବୃନ୍ଦାବନରୁ ଏଠାକୁ ସଶରୀରରେ ଆଣିବାପାଇଁ ଯୁବକ ବୃନ୍ଦାବନ ଗଲେ ।

ଦେବମୂର୍ତ୍ତିଙ୍କୁ ସ୍ୱଗ୍ରାମକୁ ଆଣିବା ପାଇଁ ଯୁବକ ଅନାହାରରେ ମନ୍ଦିରରେ ଅଧା ପଡ଼ି ଯେତେବେଳେ ମୃତପ୍ରାୟ ହୋଇ ଗଲେ, ସେତେବେଳେ ଶ୍ରୀଗୋପାଳ ଆଉ ସହି ନ ପାରି କହିଲେ,—ମୁଁ ତୋ ପାଇଁ ସାକ୍ଷ୍ୟ ଦେବାକୁ ତୋ ପଛେ ପଛେ ତୋ ଗ୍ରାମକୁ ଯିବି; ତୁ ଆଗେ ଆଗେ ଯାଉଥିବୁ ଓ ମୋ ଝୁମୁକି କଟାଉର ଝୁମୁଝୁମୁ ଶବ୍ଦ ତୋ କାନକୁ ଶୁଭୁଥିବ । ସେହି ଶବ୍ଦରୁ ତୁ ଠଉରାଉଥିବୁ ଯେ, ମୁଁ ତୋ ପଛେ ପଛେ ଯାଉଅଛି; ତୁ ବାଟରେ ପଛ ଆଡ଼କୁ ଫେରି ଯଦି ଚାହିଁବୁ, ତେବେ ମୁଁ ସେହି ସ୍ଥାନରେ ପାଷାଣ ପାଲଟି ଯାଇ ଅଚଳ ହୋଇଯିବି । ଯୁବକଙ୍କୁ ଗୋପୀନାଥ ଏତେ ପ୍ରକାର ସାବଧାନ କରାଇଥିଲେହେଁ ସେ ଆସୁ ଆସୁ କାବେରୀ ନଦୀ ବାଲିରେ ଗୋପୀନାଥଙ୍କ ଝୁମୁକି କଟାଉ ବାଲିରେ ପୋତି ହୋଇ ଯାଇ ଝୁମଝୁମ ଶବ୍ଦ ନ ଶୁଭିବାରୁ ଧୈର୍ଯ୍ୟ ଧରି ନ ପାରି ଯୁବକ ପଛ ଆଡ଼କୁ ମୁହଁ ବୁଲାଇ ଚାହିଁ ଦେଲେ । ଦେଖିଲେବେଳକୁ ସେହିଠାରେ ଶ୍ରୀଗୋପୀନାଥ ସତକୁସତ ପାଷାଣମୟ ଅଚଳ ବିଗ୍ରହ ପାଲଟି ଗଲେ ଓ ଆଉ ସେହି ସ୍ଥାନରୁ ଟଳିଲେ

ନାହିଁ । ଯୁବକ ଏହା ଦେଖି ନିଜର ଭାଗ୍ୟକୁ ନିନ୍ଦା କରି ରହିଲେ । ଶ୍ରୀଗୋପୀନାଥ ଦେବ ବ୍ରାହ୍ମଣ ଯୁବକ ପାଇଁ ସାକ୍ଷ୍ୟ ଦେବାକୁ ବୃନ୍ଦାବନରୁ ଆସିଥିବାରୁ ତଦବଧି ତାଙ୍କ ନାମ 'ସାକ୍ଷୀଗୋପାଳ' ବା 'ସାକ୍ଷୀ ଗୋପୀନାଥ' ହେଲା । ଏ ବିଗ୍ରହ ପୂର୍ବେ କାଞ୍ଚି ରାଜ୍ୟରେ ଥିଲେ, ପରେ କାଞ୍ଚି ବିଜୟ ସମୟରେ କାଞ୍ଚିରୁ ରାଜା ପୁରୁଷୋତ୍ତମଦେବଙ୍କ ଦ୍ୱାରା କଟକକୁ, ସେଠାରୁ ଖୋରଧାର ରଥିପୁରକୁ, ପରେ କଣ୍ଟିଲକାଇକୁ ସ୍ଥାନାନ୍ତରିତ ହୋଇ ବାବା ବ୍ରହ୍ମଗିରିଙ୍କ ଦ୍ୱାରା ଆନୀତ ହୋଇ ବର୍ତ୍ତମାନ ପୁରୀଜିଲ୍ଲା, ବ୍ରହ୍ମଗିରି ପ୍ରଗଣା, ସତ୍ୟବାଦୀ ମଉଜା 'ଫୁଲ ଅଲସା' ବଉଳ ତୋଟାରେ ପ୍ରତିଷ୍ଠିତ ହୋଇ ପୂଜା ପାଉଅଛନ୍ତି । ଏଠାରେ ପ୍ରତିଷ୍ଠିତ ଗୋପୀନାଥ 'ସତ୍ୟବାଦୀ' ଥିବାରୁ ଏ ସ୍ଥାନର ନାମ 'ସତ୍ୟବାଦୀ' ହୋଇଅଛି । ଏହାଙ୍କ ମନ୍ଦିର ପୁରାତନ ନୁହେଁ । ଏହାକୁ ପ୍ରାୟ ୧୦୦ ବର୍ଷ ହେଲା ବାବା ବ୍ରହ୍ମଗିରି ନିର୍ମାଣ କରାଇଥିଲେ । ଏହାର ଗୃହ ପାଖରେ ୯ ବାଟି ୯ ମାଣ ୯ ଗୁଣ୍ଠ ଓ ୯ ବିଶ୍ୱା ପରିମିତ ଗୋଟିଏ ବକୁଳବନ (ବଉଳ ତୋଟା) ଅଛି । ଏ ତୋଟାଟି ବଉଳ ଓ କୁରୁଅନା ଗଛରେ ପରିପୂର୍ଣ୍ଣ । ଏହି ତୋଟା ମଧ୍ୟରେ ଗୋପୀନାଥଙ୍କ ବେଢ଼ାର ପଶ୍ଚିମ ପଟ ପଡ଼ିରେ 'ସତ୍ୟବାଦୀ ସ୍କୁଲ୍' ପ୍ରତିଷ୍ଠିତ ହୋଇ-ଅଛି । ଏ ବିଗ୍ରହ ମୂଳରୁ ପଥରରେ ତିଆରି, କିନ୍ତୁ ଏହାଙ୍କ ନିକଟରେ ସ୍ଥାପିତ ଶ୍ରୀରାଧିକାଙ୍କ ବିଗ୍ରହ ଧାତୁ ନିର୍ମିତ । କଥିତ ଅଛି ଯେ, ଏ ବିଗ୍ରହ କେତେକ ଦିନ ଏଠାରେ ଏକାକୀ ରହିବାପରେ ନିଶାଯୋଗେ ମନୁଷ୍ୟ ରୂପଧରି ଗୋଟିଏ ଅସାଧାରଣ ରୂପବତୀ ବ୍ରାହ୍ମଣ-ସେବକ-ବାଳିକା ନିକଟକୁ ଯିବା ଆସିବା କଲେ । ଉକ୍ତ ବ୍ରାହ୍ମଣ କନ୍ୟା ନିକଟକୁ କୌଣସି ପୁରୁଷ ନିଶାଯୋଗେ ଯିବା ଆସିବା କରୁଥିବାକଥା ରାଷ୍ଟ୍ର ହେବାରୁ ଓ ସକାଳୁ କନ୍ୟାର ଶେଯରେ ଶ୍ରୀଜୀଉଙ୍କ ପରିହିତ ଫୁଲ ମାଳ ଓ ବଂଶୀ ପଡ଼ିଥିବା ଦେଖାଯିବାରୁ, ଗୋପୀନାଥଦେବ ସ୍ୱପ୍ନରେ ତତ୍‌କାଳୀନ ରାଜ-ବିବ୍ଦରଙ୍କୁ ଦେଖାଦେଇ ତାଙ୍କ ନିକଟରେ ରାଧାଙ୍କର ବିଗ୍ରହ ନ ଥିବାରୁ ଏପରି ଲୀଳା ଘଟିଥିବା ବିଷୟ ନିଜେ ସ୍ୱପ୍ନାଦେଶ କଲେ । ରାଧାଙ୍କର ଧାତୁମୟୀ ପ୍ରତିମା, ନିର୍ମିତ ହୋଇ ଗୋପୀନାଥଙ୍କ ବିଗ୍ରହର ବାମ ପାର୍ଶ୍ୱରେ ପ୍ରତିଷ୍ଠିତ ହେଲେ, ଏବଂ ଏହି ଧାତୁ ପ୍ରତିମାଙ୍କଠାରେ ମନ୍ତ୍ରଦ୍ୱାରା ଜୀବନ୍ୟାସ କରାଯିବା ମୁହୂର୍ତ୍ତରେ ପୂର୍ବୋକ୍ତ ବ୍ରାହ୍ମଣ କନ୍ୟାଟି ସ୍ୱତଃ ଦେହତ୍ୟାଗ କଲେ ।

କଥିତ ଅଛି ଯେ, ଏହି 'ଫୁଲଅଲସା' ନାମକ ବକୁଳବନ ରାଧାକୃଷ୍ଣଙ୍କର ଲୀଳାଭୂମି ଥିବାରୁ ରାତିରେ ଏହି ସୀମା ମଧ୍ୟରେ କୌଣସି ଜୀବପ୍ରାଣୀଙ୍କୁ ରଖାଯାଉ ନ ଥିଲା । ଏମନ୍ତ କି, ରାତିରେ ଏହି ତୋଟା ମଧ୍ୟରେ ବାନର ଓ ପକ୍ଷୀଆଦି ରହିବେ ନାହିଁ ବୋଲି ସନ୍ଧ୍ୟାବେଳେ ସେମାନଙ୍କୁ ଏହି ତୋଟାରୁ ହୁରୁଡ଼ାଇ ତଡ଼ିଦେବା ପାଇଁ ଚାକିରିଆ ଲୋକ (ଗୃଜର) ଥିଲେ । ବର୍ତ୍ତମାନ ଏହି ତୋଟା ମଧ୍ୟରେ ଦୋକାନ, ବଜାର, ସ୍କୁଲ, ଅଫିସ ଆଦି ନିର୍ମିତ ହୋଇଅଛି ।

ଏ ଦେବତାଙ୍କ ନିକଟରେ କୌଣସି ସଙ୍କୁଡ଼ି-ଭୋଗ (ଅନ୍ନ ବ୍ୟଞ୍ଜନ ) ଲାଗେ ନାହିଁ; ଖଇ, ଖଇଚୂନା, ଗହମ ଚୂନାରେ ତିଆରି କାକରା, ଚୂଡ଼ା ପଖାଳ, ଡାଲମା, ସରପୁଳି, ସର, ଲବଣୀ, ଦୁଧ, କଦଳୀ ଆଦି ଭୋଗ କରାଯାଏ । କେବଳ କାକୁଡ଼ି, କଦଳୀ ଓ ଦେଶୀ ଆଳୁର ଭଜା ଏଥି ସଙ୍ଗେ ଭୋଗ ଲାଗେ ।

**ସତ୍ୟବାନ୍**—ସଂ.ବିଶେ. ପୁଂ.—(ସତ୍ୟ+ଅସ୍ତି ଅର୍ଥରେ ବତ୍, ସତ୍ୟବତ୍) Satyabān ୧ । ସତ୍ୟଶିରାପୂର୍ଣ; ସତ୍ୟବାଦୀ—1. Truthful. (ସତ୍ୟବତୀ—ସ୍ତ୍ରୀ) ୨ । ସତ୍ୟବ୍ରତ—2. Determined to carry out a vow or solemn promise. ୩ । ସତ୍ୟଯୁକ୍ତ; ସତ୍ୟ ଉପରେ ପ୍ରତିଷ୍ଠିତ—3. Based on truth. ବି—୧ । ମୁନି ବିଶେଷ—Name of a sage ୨ । ଶାଲ୍ୱ ଦେଶର ଦ୍ୟୁମତ୍‌ସେନ ରାଜାଙ୍କର ପୁତ୍ର, ନୃପ ବିଶେଷ; ସାବିତ୍ରୀଙ୍କ ସ୍ୱାମୀ—2. Name of a king, husband of Sābitri.

[ଦ୍ର—ଶାଲ୍ୱଦେଶର ରାଜା ଦ୍ୟୁମତ୍‌ସେନଙ୍କ ଔରସରେ ତତ୍‌ପତ୍ନୀ ଶୈବ୍ୟାଙ୍କ ଗର୍ଭରୁ ଏ ଜନ୍ମଗ୍ରହଣ କରିଥିଲେ । ଦୈବଦୁର୍ବିପାକରୁ ସତ୍ୟବାନଙ୍କ ଶୈଶବାବସ୍ଥାରେ ଦ୍ୟୁମତ୍‌ସେନ ଅନ୍ଧ ହୋଇଗଲେ ଓ ଭ୍ରଷ୍ଟରାଜ୍ୟ ହୋଇ ପତ୍ନୀ ଓ ପୁତ୍ରଙ୍କ ସହିତ ବନବାସୀ ହେଲେ । ସତ୍ୟବାନ୍ ବନରେ ଫଳମୂଳ ଖାଇ ମୁନିବୃତ୍ତି ଅବଲମ୍ବନ କରି ଭକ୍ତିସହକାରେ ପିତାମାତାଙ୍କର ସେବା କରୁଥାଆନ୍ତି । ଏକଦା ଅଶ୍ୱପତି ରାଜାଙ୍କ ଦୁହିତା 'ସାବିତ୍ରୀ' ପିତାଦେଶରେ ସ୍ୱୀୟ ମନୋମତ ପତି ଅନ୍ୱେଷଣାର୍ଥେ ଭ୍ରମଣ କରୁ କରୁ ଏହି ବନରେ ଆସି ପହଞ୍ଚି ସତ୍ୟବାନଙ୍କ ଅସୀମ ପିତୃଭକ୍ତି ଓ ଧର୍ମପରାୟଣତା ଓ ରୂପରେ ମୁଗ୍ଧା ହୋଇ ଐଶ୍ୱର୍ଯ୍ୟଭୋଗଲାଳସା ତ୍ୟାଗ କରି ଏହାଙ୍କ ସଙ୍ଗରେ ବନରେ ମୁନିବୃତ୍ତି ଓ ଦାରିଦ୍ର୍ୟକୁ ଚିରସହଚର କରି ଜୀବନଯାପନ କରିବା ପାଇଁ ସଂକଳ୍ପ କରି ଏହାଙ୍କୁ ପତିରୂପେ ବରଣ କଲେ । ଉଭୟ ପକ୍ଷଙ୍କ ପିତାମାତାଙ୍କ ଅନୁମତିକ୍ରମେ ଏ ଦୁହିଙ୍କର ବିବାହ ହେଲା । ଦୈବ ନିର୍ବନ୍ଧରେ ସତ୍ୟବାନ୍ ସାବିତ୍ରୀଙ୍କ ସଙ୍ଗେ ବନରୁ କାଷ୍ଠ ଆହରଣ କରିବାକୁ ଯାଇଥିବା ସମୟରେ ମୃତ୍ୟୁମୁଖରେ ପତିତ ହୁଅନ୍ତେ, ସାବିତ୍ରୀ ନିଜ ସ୍ୱାମୀଙ୍କ ମୃତଦେହକୁ କୋଳରେ ରଖି ସେହିଠାରେ ବସିରହିଲେ । ଯମଦୂତ-ମାନେ ସତ୍ୟବାନଙ୍କ ଶବକୁ ନେବାପାଇଁ ଆସିଲାରୁ ସାବିତ୍ରୀ ଉକ୍ତ ଶବକୁ ଛାଡ଼ି ଦେଲେ ନାହିଁ । ସେମାନେ ଯାଇ ଏ ବିଷୟ ଯମଙ୍କୁ କହିବାରୁ ଯମ ନିଜେ ଆସି ସେଠାରେ ପହଞ୍ଚିଲେ । ସାବିତ୍ରୀ ଯମଙ୍କୁ ସ୍ତବ କରି ମୃତପତିଙ୍କ ପ୍ରାଣ ଭିକ୍ଷା କଲେ । ଯମରାଜ ଏହାଙ୍କ ପତିଭକ୍ତି ଓ ସ୍ତବରେ ତୁଷ୍ଟ ହୋଇ ଏହାଙ୍କ ପତିଙ୍କୁ ପୁନରୁଜ୍ଜୀବିତ କଲେ ଓ ତତ୍‌ପରେ ଯମଙ୍କ ବରଦ୍ୱାରା ଏହାଙ୍କ ଶ୍ୱଶୁରଙ୍କ ନଷ୍ଟ ଚକ୍ଷୁ

ଓ ଝୁତ ସତ୍ୟ ପୁନଃପ୍ରାପ୍ତ ହେଲ । ସାବତ୍ରୀ ସତ୍ୟବାନଙ୍କ ସହତ ସୁଖରେ ବାସ କର ଅପତ୍ୟାଦ ଲଭ କର ବହୁ ବର୍ଷ ସୁଖରେ କଟାଇ ପ୍ରାଣତ୍ୟାଗ କଲେ ।

ସାବତ୍ରୀ ସାଧ୍ୱୀ ନାରୀଙ୍କର ଆଦର୍ଶ; ତେଣୁ ଅଦ୍ୟାବଧି ଏ ଦେଶର ସଧବା ସ୍ତ୍ରୀମାନେ ସାବତ୍ରୀଙ୍କ ପରିସାଧ୍ୱୀ ହେବେ ବୋଲି ସାବତ୍ରୀ ଅମାବାସ୍ୟା ଦନ ନସ୍ୱହାର ରହ ସାବତ୍ରୀ-ବ୍ରତ ପାଳନ କରନ୍ତ ।]

ଦେ. ବ. (ପୁଂ) ଲୋକଙ୍କୁ ଦଆଯିବା ନାମ

A name given to males.

**ସତ୍ୟବ୍ରତ**—ସଂ. ବଣ. ପୁଂ—(ବହୁବ୍ରୀହ; ସତ୍ୟ ଅଟେ ବ୍ରତ ଯାହାର) Satyabrata ସତ୍ୟନିଷ୍ଠ( ଦେଖ )—Satyanistha (See) (ସତ୍ୟବ୍ରତା—ସ୍ତ୍ରୀ) ବ—୧ । ଭୀଷ୍ମଙ୍କର ନାମାନ୍ତର—1 A name of a Bhīshma. ୨ । ସୂର୍ଯ୍ୟବଂଶୀୟ ଜଣେ ରାଜା—2. Name of a king of the Solar dynasty. ଦେ. ବ. ପୁଂ—ଲୋକଙ୍କ ନାମ—A name given to males.

**ସତ୍ୟ ଭଙ୍ଗ**—ସଂ. ବ (ଷଷ୍ଠୀତତ୍)—ପ୍ରତଜ୍ଞାଭଙ୍ଗ; ଅଙ୍ଗୀକାର ଅନୁସାରେ Satya bhanga କାର୍ଯ୍ୟ ନ କରବା—Breach of faith; breach of promise.

**ସତ୍ୟଭାମା**—ସଂ ବ୍ର. ସ୍ତ୍ରୀ—( ସତ୍ୟ+ଭାମ=ସୁନ୍ଦର+ଆ )—ସତ୍ରାଜିତ୍ Satyabhāmā ରାଜାଙ୍କର କନ୍ୟା; ଶ୍ରୀକୃଷ୍ଣଙ୍କର ୮ ଜଣ ମହଷୀଙ୍କ ମଧ୍ୟରୁ ଏକତମା—Name of one of the eight Ranees of Srikrushna and daughter of king Satrājit. [ବ୍ର—ଏହାଙ୍କ ଅନୁରୋଧ ପୂରଣ କରବା ପାଇଁ ଶ୍ରୀକୃଷ୍ଣ ଇନ୍ଦ୍ରଙ୍କ ସହତ ଯୁଦ୍ଧ କର ସ୍ୱର୍ଗରୁ ଇନ୍ଦ୍ରଙ୍କ ନନ୍ଦନକାନନରୁ ପାରଜାତ ବୃକ୍ଷକୁ ଆଣି ଏହାଙ୍କୁ ଉପହାର ଦେଇଥିଲେ । ଏ ପୁଣ୍ୟକ ବ୍ରତ ଅନୁଷ୍ଠାନ କର ଶ୍ରୀକୃଷ୍ଣଙ୍କୁ ପାରଜାତ ବୃକ୍ଷରେ ବନ୍ଧନ କରଥିଲେ । ଏହାଙ୍କ ଗର୍ଭରେ ଶ୍ରୀକୃଷ୍ଣଙ୍କ ଔରସରେ ଭାନୁଆଦ ଦାଶପୁତ୍ର ଜାତ ହୋଇଥିଲେ । ଯଦୁବଂଶ ଧ୍ୱଂସ ଓ ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ପରେ ଯଦୁବଂଶୀୟା ଅନ୍ୟ ମହଳାମାନଙ୍କ ସଙ୍ଗେ ଅର୍ଜୁନ ଏହାଙ୍କୁ ଦ୍ୱାରକାରୁ ହସ୍ତିନାପୁରକୁ ନେଇ ଯାଇଥିଲେ । ପରେ ଏ ବନବାସିନୀ ହୋଇ ତପସ୍ୟାରେ ଜୀବନର ଶେଷ ଅଂଶ ଅତବାହତ କଲେ ।

ଶ୍ରୀକୃଷ୍ଣଙ୍କ ଅଷ୍ଟ ପଟ୍ଟମହଷୀଙ୍କ ନାମ ଯଥା—୧ । ରୁକ୍ମିଣୀ, ୨ । ସତ୍ୟଭାମା; ୩ । କାଳନ୍ଦୀ, ୪ । ଜାମ୍ବବତୀ, ୫ । ମିତ୍ରବନ୍ଦା, ୬ । ନାଗ୍ନଜିତୀ, ୭ ଭଦ୍ରା; ୮ । ସୁଲକ୍ଷଣା]

**ସତ୍ୟଭାରତ**—ସଂ. ବ (ବହୁବ୍ରୀହ; ସତ୍ୟ+ଭାରତ=ମହାଭାରତ)—Satyabhārata ମହାଭାରତ ପ୍ରଣେତା ବେଦବ୍ୟାସ--Name of Byāsa; the author of the Mahābhārata.

**ସତ୍ୟ ଭାଷଣ**—ସଂ. ବ. (ଷଷ୍ଠୀ ତତ୍)—ସତ କହବା; ସତ୍ୟ କଥନ—Satya bhāshaṇa Speaking of truth; truthfulness.

**ସତ୍ୟଭାଷୀ**—ସଂ. ବଣ. ପୁଂ (ସତ୍ୟଭାଷଣ ଶବ୍ଦ; ସତ୍ୟ+ଭାଷ୍ ଧାତୁ—Satya bhāshī କହବା+ଇଣ୍. ଇନ୍)—ସତ୍ୟବାଦୀ—(ସତ୍ୟଭାଷିଣୀ—ସ୍ତ୍ରୀ) Truthful; speaking the truth. [ସତ୍ୟଭାଷିତା—ବ]

**ସତ୍ୟଭ୍ରଷ୍ଟ**—ସଂ. ବଣ. ପୁଂ (ପଞ୍ଚମୀ ତତ୍; ସତ୍ୟ+ଭ୍ରଷ୍ଟ)—ଯେ ସତ୍ୟ Satya bhrashṭa ଲଙ୍ଘନ କରଅଛ—One who has (ସତ୍ୟଭ୍ରଷ୍ଟା—ସ୍ତ୍ରୀ) plighted his truth.

**ସତ୍ୟମ୍**—ସଂ. ଅ (ସତ୍+ଯମ୍)—୧ । ସ୍ୱୀକାରାର୍ଥ ହଁ—1. Yes; I Satyam agree. ୨ । ପ୍ରତଜ୍ଞାସୂଚକ ହଁ—2. Yes; I (ସତ୍ୟଂ—ଅନ୍ୟରୂପ) promise. ୩ । ପ୍ରଶ୍ନାର୍ଥ-ସତେ; ଏହା କ ସତ୍ୟ—3. Is it so ? Is it true ? ବ—ସତ୍ୟ ଲୋକ (ଦେଖ)—Satyaloka. (See)

**ସତ୍ୟମୂଳକ**—ସଂ. ବ (ବହୁବ୍ରୀହ; ସତ୍ୟ+ମୂଳ+କ, ସତ୍ୟ ଅଛ Satyamūlaka ମୂଳରେ ଯାହାର)—ସତ୍ୟ ଉପରେ ପ୍ରତଷ୍ଠିତ—Based on truth.

**ସତ୍ୟଯୁଗ**—ସଂ. ବ—କୃତଯୁଗ; ସୃଷ୍ଟିର ୪ଟି ଯୁଗ ମଧ୍ୟରୁ ପ୍ରଥମ ଯୁଗ—Satya juga The first of the 4 ages or cycles of the creation according to the Hindu mythology. [ବ୍ର—ଏ ଯୁଗର ପରମାଣ ୧୭ ଲକ୍ଷ ୨୮ ହଜାର ବର୍ଷ । ମତାନ୍ତରରେ ୧ କୋଟି ୭ ଲକ୍ଷ ୨୮ ହଜାର ବର୍ଷ । ସୃଷ୍ଟିର ପ୍ରଥମେ ସତ୍ୟଯୁଗ, ତତ୍ପରେ ତ୍ରେତା, ଦ୍ୱାପର ଓ ଶେଷରେ କଳଯୁଗ, ଏହ କ୍ରମ ଅନୁସାରେ ଯୁଗମାନ ହୁଏ । ବୈଶାଖ ଶୁକ୍ଳପକ୍ଷ ତୃତୀୟା (ଅକ୍ଷୟ ତୃତୀୟା) ଦନ ସତ୍ୟଯୁଗର ଉତ୍ପତ୍ତି ଏହ ଯୁଗରେ ମତ୍ସ୍ୟ, କୂର୍ମ, ବରାହ ଓ ନୃସିଂହ ଏହ ୪ ଗୋଟି ଅବତାର; କୁରୁକ୍ଷେତ୍ର ତୀର୍ଥ; ମନୁଷ୍ୟମାନେ ସତ୍ୟପରାୟଣ ଓ ମଜ୍ଜାଗତ ପ୍ରାଣ, ରୋଗଶୂନ୍ୟ, ଇଚ୍ଛାମୃତ୍ୟୁ; ଉଚ୍ଚରେ ୨୧ ହାତ ବଢନ୍ତ । ପରମାୟୁ ୧ ଲକ୍ଷ ବର୍ଷ । ସତ୍ୟ ଯୁଗରେ ବଳ, ବେଣ, ମାନ୍ଧାତା, ପୁରୂରବାଃ, ଧୁନ୍ଧୁମାର, କାର୍ତ୍ତିବୀର୍ଯ୍ୟ ଏହ ୬ଜଣ ଚକ୍ରବର୍ତ୍ତୀ ରାଜା ଥିଲେ ।

ସତ୍ୟଯୁଗର ତାରକ ବ୍ରହ୍ମ ନାମ—

ନାରାୟଣ ପରାବେଦାଃ, ନାରାୟଣ ପରାକ୍ଷରାଃ

ନାରାୟଣ ପରା ମୁକ୍ତିଃ, ନାରାୟଣ ପରା ଗତିଃ"

ଏହ ଯୁଗରେ ଧର୍ମ ଚତୁଷ୍ପାଦ । ଦେବତାମାନେ ପୃଥିବୀରେ ସର୍ବଦା ବିଚରଣ କର ଲୋକଙ୍କୁ ସଦ୍ୟଃଫଳ ଦେଉ ଥିଲେ । ବସୁମତୀ ସର୍ବଶସ୍ୟପ୍ରଦା ଓ ଫୁଲ୍ଲପୁଷ୍ପଜଳାବୃତ ଥିଲ ।]

**ସତ୍ୟ ଯୌବନ**—ସଂ. ବ. ପୁ (ସତ୍ୟ=ଚରସ୍ଥାୟୀ ଅଟେ ଯୌବନ Satya Jaubana ଯାହାର; ଯେ ଚର ଯୁବା)—ବଦ୍ୟାଧର; (ସତ୍ୟ ଯୌବନା—ସ୍ତ୍ରୀ) ଦେବଯୋନ ବଶେଷ—A class of demigods (literally, of unfading youth).

**ସତ୍ୟ ରକ୍ଷା**—ସଂ. ବ. (ଷଷ୍ଠୀ ତତ୍)—ସତ୍ୟ ପାଳନ (ଦେଖ) Satya rakshā Satya pālana ( See )

**ସତ୍ୟର ଦାସ**—ଦେ. ବି ଓ ବିଣ—୧ । ଯେ ସତ୍ୟ ପାଇଁ ସର୍ବସ୍ୱ ତ୍ୟାଗ କରି ପାରେ—1. A servant of truth; a person who is ready to sacrifice everything for truth or for keeping his vow. ୨ । ସତ୍ୟନିଷ୍ଠ (ବ୍ୟକ୍ତି)—2. One who has dedicated his life to the service of truth. ୩ । ସତ୍ୟପ୍ରତିଜ୍ଞ—3. True to one's vows.
Satvara dāsa
সত্যের দাস
सतरका दास
(ସତ୍ୟଦାସ, ସତ୍ୟକଙ୍କର—ଇ. ରୂପ)

**ସତ୍ୟ ଲଙ୍ଘନ**—ସ. ବି. (୬ଷ୍ଠୀ ତତ୍)—ସତ୍ୟ ଭଙ୍ଗ (ଦେଖ) Satya bhaṅga (See)
Satya laṁghana

**ସତ୍ୟ ଲଙ୍ଘିବା**—ଦେ. କି—ସତ୍ୟ ଭଙ୍ଗ କରିବା; ପ୍ରତିଜ୍ଞା ପାଳନ ନ କରିବା—To break one's promise; to plight one's truth.
Satya laṁghibā
সত্য লংঘন কৰা
सतर कांघना

**ସତ୍ୟ ଲୋକ**—ସ. ବି (କର୍ମଧା; ସତ୍ୟ=ଅବିନଶ୍ୱର ଅଟେ ଯେଉଁ ଲୋକ =ଭୁବନ)—ସପ୍ତଲୋକାନ୍ତର୍ଗତ ଉଚ୍ଚତମ ଲୋକ; ବ୍ରହ୍ମଲୋକ; ବିଷ୍ଣୁଲୋକ—The highest of the 7 worlds according to the Hindu mythology. [ଦ୍ର—ସପ୍ତଲୋକ; ଯଥା—ଭୂଃ; ଭୁବଃ, ସ୍ୱଃ, ମହଃ, ଜନଃ, ତପଃ, ସତ୍ୟମ୍ । ଏହି ସତ୍ୟଲୋକରେ ବ୍ରହ୍ମା ଓ ବିଷ୍ଣୁ ବାସ କରନ୍ତି । ଏହି ଲୋକକୁ ଦେହାନ୍ତେ ବିଷ୍ଣୁଭକ୍ତ, ସତ୍ୟବ୍ରତ ବ୍ୟକ୍ତିମାନେ ଯାଆନ୍ତି । ଏଠାକୁ ଗଲେ ଆଉ ମନୁଷ୍ୟ ପୃଥିବୀରେ ଜନ୍ମଗ୍ରହଣ କରନ୍ତି ନାହିଁ ।]
Satya loka

**ସତ୍ୟ ସଙ୍ଗର**—ସ. ବିଣ. ପୁଂ. (ସତ୍ୟ+ସମ୍+ଗୃ ଧାତୁ=ଗ୍ରାସ କରିବା+କର୍ତ୍ତୃ. ଅ)—ସତ୍ୟପ୍ରତିଜ୍ଞ—True to one's vows. ବି—କୁବେର—The God of wealth.
Satya saṅgara
(ସତ୍ୟସଙ୍ଗରା—ସ୍ତ୍ରୀ)

**ସତ୍ୟସଜ୍ଜା**—ସ. ବି ସ୍ତ୍ରୀ(ସତ୍ୟ+ସଜ୍ଜା; ସ୍ତ୍ରୀ.ଅ; ସତ୍ୟ ଅଟେ ସଜ୍ଜା ଯାହାର)—ପାଣ୍ଡବ ମହର୍ଷୀ; ଦ୍ରୌପଦୀ—The consort of the five Pāṇḍaba brothers.
Satya sajjā

**ସତ୍ୟ ସତ୍ୟ ସତ୍ୟ**—ଦେ. ଅ—କୌଣସି ପ୍ରତିଜ୍ଞାକୁ ପାଳନ କରିବା ପାଇଁ ଧର୍ମତଃ ପ୍ରତିଜ୍ଞାପୂର୍ବକ 'ସତ୍ୟ' ଶବ୍ଦର ୩ଥର ଉଚ୍ଚାରଣ—(Interjection) Repetition of the word Satya to emphasise a person's vowing to act up to his promise, by saying—'I vow', 'I vow', 'I vow'; 'I vow thrice'.
Satya satya satya
সত্যি সত্যি সত্যি
सतर सतर सतर

**ସତ୍ୟସନ୍ଧ**—ସ. ବିଣ. ପୁଂ (ବହୁବ୍ରୀହି; ସତ୍ୟ+ସନ୍ଧା=ପ୍ରତିଜ୍ଞା ଯାହାର)—୧ । ସତ୍ୟ ପ୍ରତିଜ୍ଞ; ସତ୍ୟ ପାଳନ କରିବା ନିମନ୍ତେ ଦୃଢ଼ପରିକର—1. One who has determined to keep his vows; true to one's vows. ୨ । ସଫଳ ପ୍ରତିଜ୍ଞ—2. One who has carried out his vow. ବି. ପୁଂ—୧ । ଭରତ—1. Bharata. ୨ । (ପିତୃ ସତ୍ୟ ପାଳନ କରିଥିବାରୁ) ରାମଚନ୍ଦ୍ର—2. An epithet of Rāmachandra. ୩ । ରାଜା ପରୀକ୍ଷିତଙ୍କ ପୁତ୍ର ଜନମେଜୟ—3. Janamejaya; a king of the Lunar dynasty. [ଦ୍ର—ପିତୃହନ୍ତା ତକ୍ଷକ ନାଗର ବଂଶ ଲୋପ କରିବା ପାଇଁ ଏହାଙ୍କ ପିତାଙ୍କ କରିଥିବା ସତ୍ୟକୁ ଏ ପାଳନ କରିଥିଲେ ।]
Satyasandha
(ସତ୍ୟସନ୍ଧା—ସ୍ତ୍ରୀ)

**ସତ୍ୟା**—ସ. ବିଣ. ସ୍ତ୍ରୀ (ସତ୍ୟ+ସ୍ତ୍ରୀ: ଆ)—ସତ୍ୟର ସ୍ତ୍ରୀ ଲିଙ୍ଗ—The feminine of Satya. ବି. ସ୍ତ୍ରୀ—୧ । ସତ୍ୟବତୀ; ବ୍ୟାସ ଜନନୀ—1. A name of the mother of Byāsa ୨ । ସତ୍ୟଭାମା (ଦେଖ)—2. Satyabhāmā (See). ୩ । ରାମଜାୟା ସୀତା—3. Sitā, the wife of Rāmachandra. ୪ । ଦୁର୍ଗା—4. Goddess Durgā.
Satyā

**ସତ୍ୟାମ୍ବ(ମ୍ବା)**—ଦେ. ବି—ସତ୍ୟଆମ୍ବ (ଦେଖ)—Satya āmba (See)
Satyā āmba(mbā)

**ସତ୍ୟାକୃତି**—ସ. ବି (ସତ୍ୟ+ଆ+କୃ ଧାତୁ+ଭାବ ତି)—ସତ୍ୟଙ୍କାର (ଦେଖ)—Satyaṅkāra (See)
Satyākṛuti

**ସତ୍ୟାଗ୍ନି**—ସ: ବି—(ସତ୍ୟ=ଚିରସ୍ଥାୟୀ ଅଟେ ଅଗ୍ନି=ଯଜ୍ଞାଗ୍ନି ଯାହାଙ୍କର)—ଅଗସ୍ତ୍ୟ ମୁନି—Sage Agastya.
Satyāgni

**ସତ୍ୟାଗ୍ରହ**—ସ. ବି—ସତ୍ୟପ୍ରତି ଆଗ୍ରହ; ସତ୍ୟନିଷ୍ଠା; ସତ୍ୟାନୁରାଗ—Attachment to the truth. ଦେ: ବି—ହିଂସାଶୂନ୍ୟ ଓ ଶାନ୍ତ ହୋଇ ମିଥ୍ୟା ସଙ୍ଗେ ଯୁଦ୍ଧ କରିବା ରୀତି; ମହାତ୍ମା ଗାନ୍ଧିଙ୍କ ପ୍ରଚାରିତ କର୍ମରୀତି—The line of conduct preached by Mahātmā Gāndhi; unrevengeful or peaceful passive resistence to untruth; the doctrine of passive resistence or non-co-operation preached by Mahātmā Gāndhi. [ଦ୍ର—ଯାହାକୁ ସତ୍ୟ ବୋଲି ଜାଣିବ ତାହା ଅବଲମ୍ବନ କରିବା ପାଇଁ କୌଣସି କଷ୍ଟ ବା ନିର୍ଯ୍ୟାତନାକୁ ଡରିବ ନାହିଁ । ଏମନ୍ତ କି, ସତ୍ୟର ପଥ ଅବଲମ୍ବନ କରିବା ପାଇଁ ନିଜ ପ୍ରାଣକୁ ସୁଦ୍ଧା ଉତ୍ସର୍ଗ କରିବ ଓ ଏପରି କରିବା ସଙ୍ଗେ ସଙ୍ଗେ ମନରୁ ଓ କାର୍ଯ୍ୟରୁ ସବୁ ପ୍ରକାରର ହିଂସାଭାବ ପରିତ୍ୟାଗ କରିବ ଓ ଅସତ୍ୟ ପଥର ବ୍ୟକ୍ତିକୁ କୌଣସି ପ୍ରକାରେ ସାହାଯ୍ୟ କରିବ ନାହିଁ ଓ ପ୍ରାଣାନ୍ତେ ଅନ୍ୟାୟ ଆଦେଶ ପାଳନ କରିବ ନାହିଁ । ଏହି ରୀତି ପାଳନ କରିବା ବ୍ୟକ୍ତିମାନଙ୍କ ପାଇଁ ଅହମଦାବାଦ ଉପକଣ୍ଠରେ ସାବରମତୀରେ ମହାତ୍ମା ଗୋଟିଏ ଆଶ୍ରମ ସ୍ଥାପନ କରିଥିଲେ ।]
Satyāgraha
সত্যাগ্রহ
सतयाग्रह

**ସତ୍ୟାଗ୍ରହୀ**—ଦେ. ବି ଓ ବିଣ—ଯେଉଁମାନେ ମହାତ୍ମା ଗାନ୍ଧିଙ୍କ ପ୍ରଚାରିତ ସତ୍ୟାଗ୍ରହ ବ୍ରତ ଅବଲମ୍ବନ କରିଅଛନ୍ତି—The followers of the
Satyāgrahī
সত্যাগ্রহী
सत्याग्रही

doctrine of Satyāgraha preached by Mahātmā Gāndhi. ଦେ. ବି—ସତ୍ୟାଗ୍ରହୀ ସେନା (ଦେଖ)—Satyāgrahi senā (See)

**ସତ୍ୟାଗ୍ରହୀ ସେନା**—ଦେ. ବି—ମହାତ୍ମା ଗାନ୍ଧିଙ୍କ ଦ୍ୱାରା ଗଠିତ ରାଜନୀତିକ ଦଳ—The political party formed by Mahātmā Gāndhi. Satyāgrahi senā सत्याग्रहीसेना सत्याग्रहीसेना [ଦ୍ର—୧୯୩୦ ସାଲର ଏପ୍ରିଲ୍ ଓ ମଇ ମାସରେ ଏମାନେ ଆଇନ ଅମାନ୍ୟ କରିବା ପାଇଁ ପ୍ରଥମେ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ଲୁଣମରା ଆରମ୍ଭ କରିଥିଲେ ।]

**ସତ୍ୟାଚରଣ**—ସଂ. ବି (୭ମୀ ତତ୍—) —୧ । ସତ କହିବା; ସତ୍ୟବାଦିତା—1. Truthfulness. ୨ । (ସତ୍ୟାଗ୍ରହ—ଅନ୍ୟରୂପ) ସତ୍ୟପାଳନ—2. Carrying out of one's promise. Satyācharaṇa (ସତ୍ୟାଗ୍ରହ—ବିଶ. ପୁଂ)

**ସତ୍ୟନାଶ**—ଦେ. ବି—(ସଂ: ସତ୍ୟ ଓ ନାଶ)—୧ । ସର୍ବନାଶ—1. Utter ruin or destruction. ୨ । ସତ୍ୟଭଙ୍ଗ—2. Breach of faith. Satyānaśa सर्व्वनाश सब्बनाश सत्यानाश

**ସତ୍ୟାନାଶ କରିବା**—ଦେ. କି—୧ । ସର୍ବନାଶ ଘଟାଇବା—1. To cause utter ruin; to bring about destruction. ୨ । କୌଣସି ବିଷୟ ନଷ୍ଟ କରିବା—2. To spoil a thing. ୩ । ସତ୍ୟଭଙ୍ଗ କରିବା—3. To break one's vow. Satyānāśa karibā सर्व्वनाशकवा सब्बनाशकवा सतयानाशकरना

**ସତ୍ୟାନାଶିଆ**—ଦେ. ବିଶ. ପୁଂ (ଗାଳି)—୧ । ଯେ ସର୍ବନାଶ ଘଟାଏ—1. One who causes ruin; one who brings about destruction. ୨ । ନାଶକାରୀ—2. One who spoils any thing. ୩ । ସତ୍ୟଭଙ୍ଗକାରୀ—3. One who breaks his vow or promise. Satyānāśiā (ସତ୍ୟାନାଶୀ—ସ୍ତ୍ରୀ) सबनेशे सबनेशे सतयानाशी

**ସତ୍ୟାନୁରାଗ**—ସଂ. ବି (୭ମୀ ତତ୍; ସତ୍ୟ+ଅନୁରାଗ; ସତ୍ୟରେ ଅନୁରାଗ)—ସତ୍ୟନିଷ୍ଠା (ଦେଖ)—Satyanisthā (See) Satyānurāga (ସତ୍ୟାନୁରକ୍ତ, ସତ୍ୟାନୁରାଗୀ—ବିଶ)

**ସତ୍ୟାନୁସନ୍ଧାନ**—ସଂ ବି (୬ଷ୍ଠୀ ତତ୍; ସତ୍ୟ+ଅନୁସନ୍ଧାନ)—ସତ କଥାକୁ ବା ପ୍ରକୃତ ତଥ୍ୟକୁ ଖୋଜିବା—Search after truth. Satyānusandhāna (ସତ୍ୟାନ୍ୱେଷଣ—ଅନ୍ୟରୂପ) (ସତ୍ୟାନୁସନ୍ଧାୟୀ; ସତ୍ୟାନ୍ୱେଷୀ—ବିଶ)

**ସତ୍ୟାନୁସନ୍ଧିତ୍ସା**—ସଂ: ବି—(ସତ୍ୟ+ଅନୁସନ୍ଧିତ୍ସା)—ସତ୍ୟ ବା ତଥ୍ୟ ଅନୁସନ୍ଧାନ କରିବା ପାଇଁ ଇଚ୍ଛା—A desire to seek after the truth. Satyānusandhitsā (ସତ୍ୟାନୁସନ୍ଧିତ୍ସୁ—ବିଶ)

**ସତ୍ୟାନୃତ**—ସଂ. ବିଶ —(ବିପରୀତାର୍ଥ ସହଚର ଶବ୍ଦ)—୧ । ସତ୍ୟ ଓ ମିଥ୍ୟା—1. True and false. ୨ । ସତ୍ୟ ଓ ମିଥ୍ୟା ମିଶ୍ରିତ—2. Partly true and partly false. ବି—୧ । ସତ ଓ ମିଛ କଥା—1 Truth and falsehood; mixture of truth and falsehood. ୨ । (ଲକ୍ଷଣା; ସତ୍ୟ ଓ ଅନୃତ ଅଛି ଯହିଁରେ)—ବାଣିଜ୍ୟ; ବ୍ୟବସାୟ—2. Trade; commerce [ଦ୍ର—ଏଥିରେ ସତ୍ୟର ଓ ମିଥ୍ୟାର ଆଶ୍ରୟ ନିଆ ନ ଗଲେ ଏହା ଭଲ ପାରେ ନାହିଁ ।] Satyānruta

**ସତ୍ୟାପନ(ନା)**—ସଂ. ବି—(ସତ୍ୟ+ଣି=ସତ୍ୟାପି ନାମ ଧାତୁ+ଭାବ ଅନ; +ଆ)—ସତ୍ୟଙ୍କାର (ଦେଖ)—Satyankāra (See) Satyāpana(nā)

**ସତ୍ୟାର୍ଥ ପ୍ରକାଶ**—ଦେ. ବି (ନାମ)—ସ୍ୱର୍ଗୀୟ ସ୍ୱାମୀ ଦୟାନନ୍ଦଙ୍କ ପ୍ରଣୀତ ସ୍ୱନାମଖ୍ୟାତ ଗ୍ରନ୍ଥ—The title of a treatise composed by Swāmi Dayānanda. [ଦ୍ର—ଏଥିରେ ବେଦୋକ୍ତ ସୂକ୍ତ ଓ ମନ୍ତ୍ରମାନଙ୍କର କେତେକ ବ୍ୟାଖ୍ୟା ଦିଆଯାଇ ଅଛି ।] Satyārtha prakāśa सत्यार्थ प्रकाश सत्यार्थ प्रकाश

**ସତ୍ୟାଶ୍ରିତ**—ସଂ. ବିଶ (ସତ୍ୟ+ଆଶ୍ରିତ)—ସତ୍ୟ ଯାହାକୁ ଆଶ୍ରୟ କରିଅଛି; ସତ୍ୟମୂଳକ—Based on truth. (ଯଥା—ସତ୍ୟାଶ୍ରିତ ଘଟନା, ସତ୍ୟାଶ୍ରିତ ବର୍ଣ୍ଣନ ।) Satyāśrita

**ସତ୍ୟାସତ୍ୟ**—ସଂ. ବି (ସହଚର ଶବ୍ଦ; ଦ୍ୱନ୍ଦ୍ୱ; ସତ୍ୟ ଓ ଅସତ୍ୟ)—୧ । ସତ୍ୟ ଓ ମିଥ୍ୟା—1. Truth and falsehood. ୨ । କୌଣସି ବିଷୟ ସତ୍ୟ ଅଟେ କି ନାଁ, ଏହି ବିଷୟ—2. The truth or otherwise of any matter. [ଦ୍ର—ଗୋଟିଏ ବିଷୟ ଲୋକମୁଖରୁ ଶୁଣିଲେ ତହିଁର ସତ୍ୟାସତ୍ୟ ନିରୂପଣ ନ କରି ଶୁଣା କଥା ଉପରେ କାର୍ଯ୍ୟ କରିବା ମୂର୍ଖତା ଅଟେ ।] Satyāsatya

**ସତ୍ୟେନ୍ଦ୍ରନାଥ ଠାକୁର**—ଦେ, ବି (ନାମ)—କଲିକତା ଯୋଡ଼ାସାଙ୍କୋର ବିଖ୍ୟାତ ଠାକୁର ବଂଶୀୟ ଜମିଦାର ସ୍ୱର୍ଗୀୟ ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ ସ୍ୱର୍ଗତ ଦ୍ୱିତୀୟ ପୁତ୍ର—The 2nd son of Maharshi Debendranāth Tagore; who was the first Indian who passed the I. C. S. examination in England and was District Magistrate and Sessions Judge in the Bombay Presidency; and was the author of some Bengalee hymns. [ଦ୍ର—ଏ ବିଲାତକୁ ଯାଇ ସେଠାରେ 'ସିଭିଲ୍ ସର୍ଭିସ୍' ପରୀକ୍ଷାରେ ପାଶ୍ କରି ବୋମ୍ବାଇ ପ୍ରଦେଶରେ ଜିଲା ମାଜିଷ୍ଟ୍ରେଟ୍ ଓ ସେସନ୍ସ ଜଜ୍ ହୋଇଥିଲେ । ଭାରତୀୟମାନଙ୍କ ମଧ୍ୟରେ ଏ ପ୍ରଥମ "ସିଭିଲିଅନ୍" ଥିଲେ । ଏ ବଙ୍ଗୀୟ ସାହିତ୍ୟାନୁରାଗୀ ଥିଲେ ଓ ଅନେକଗୁଡ଼ିଏ ସୁଲଳିତ ବଙ୍ଗଳା ଭଜନ ରଚନା କରିଥିଲେ ।] Satyendranātha ṭhākura

**ସତ୍ୟୋଦ୍ୟ**—ସ. ବଣ. ପୁଂ ( ସତ୍ୟ+ବଦ୍ ଧାତୁ=କହିବା+କର୍ତ୍ତୃ. ଯ )—ସତ୍ୟବାଦୀ—Truthful.
Satyodya
( ସତ୍ୟୋଦ୍ୟା—ସ୍ତ୍ରୀ )

**ସତ୍ର**—ସ. ବି—ସତ୍ତ୍ର ( ଦେଖ )—Sattra ( See )
Satra

**ସତରଙ୍ଗ(ଙ୍ଗି, ଞ୍ଜ, ଞ୍ଜି)**—ଦେ. ବି—ସତରଙ୍ଗ ( ଦେଖ )—Sataranga ( See )
Satranga(ngi, nja, nji)
( ସତ୍ରା[ରି,ରେ]ଙ୍ଗ[ଞ୍ଜି]—ଅନ୍ୟରୂପ )

**ସତ୍ର ସମାପତ୍ତି**—ଦେ. ବି ( ସ. ସତ୍ର ସମାପ୍ତି )—ହିନ୍ଦୁମାନଙ୍କର ତୀର୍ଥ-ବିଶେଷ—Name of a place of Hindu pilgrimage. [ ଦ୍ର—ସତ୍ର ସମାପତ୍ତି ସ୍ଥାନକୁ ନେଇ ଦୁଇ, ଯାର ଦେଖିଅଛ ପାତକ ଭାର ନାହିଁ (ସତ୍ରସମାପ୍ତି—ସଂ. ରୂପ)—କୃଷ୍ଣସିଂହ. ମହାଭାରତ. ବନ। ]
Satra samāpati

**ସତ୍ରା**—ସ. ଅ—୧ । ସହିତ—1. With. ୨ । ସଙ୍ଗେ; ସମ-ଭିବ୍ୟାହାରରେ—2. Along with; together with.
Satrā
(ଦ୍ର—ଏ ଶବ୍ଦର ବ୍ୟବହାର ଓଡ଼ିଆରେ ନାହିଁ ।)

**ସତ୍ରାଜିତ୍**—ସ. ବି—ସତ୍ତ୍ରାଜିତ୍ (ଦେଖ)—Sattrājit ( See )
Satrājit ( ସତ୍ରାଜିତ—ଦେ. ରୂପ )

**ସତ୍ରାନ୍ନ**—ସ. ବି ( ମ. ଅ. ଲେ. )—ସତ୍ତ୍ରାନ୍ନ ( ଦେଖ )
Satrānna
Sattrānna ( See )

**ସତ୍ରିଜାତକ**—ସ. ବି ( ବୈଦ୍ୟକ; ସ=ସହିତ+ତ୍ରିଜାତକ=ଡାଳ-ଚିନି, ଅଳାଇଚ ଓ ତେଜପତ୍ର )—ମାଂସ ତର-କାରୀବିଶେଷ—A kind of meat-curry. [ଦ୍ର—ମାଂସକୁ ବହୁପରିମିତ ଘୃତରେ ଭାଜିବା ଅବସ୍ଥାରେ ତହିଁ ଉପରେ ମୁହୁର୍ମୁହୁ ପାଣି ଛିଞ୍ଚିଥିବ ଓ ତହିଁରେ ଖାସ ଅବ ମସଲାର ଗୁଣ୍ଡା ଛିଞ୍ଚିଥିବ । ଏପରି ଭାବରେ ସନ୍ତୁଳା ହୋଇଥିବା ଶୁଖିଲ ମାଂସକୁ "ପରିଶୁଷ୍କ" କହନ୍ତି । ଏହିପରି ଶୁଷ୍କ ମାଂସକୁ ଘୃତ ଓ ଦଧିରେ ବଘାର ତ୍ରିଜାତକ (ଡାଲଚିନି, ଅଳାଇଚ ଓ ତେଜପତ୍ର ) ମିଶାଇ ଛଅର କରିପିବା ତରକାରୀର ନାମ ସତ୍ରିଜାତକ—ଶବ୍ଦଚନ୍ଦ୍ରିକା ।]
Satrijātaka

**ସତ୍ରୀ**—ସ. ବଣ. ଓ ବି—ସତ୍ତ୍ରୀ ( ଦେଖ )
Satrī
Sattrī ( See )

**ସତ୍ସଂସର୍ଗ**—ସ. ବି—ସତ୍‌ସଂସର୍ଗ (ଦେଖ)—Sat-samsarga (See)
Satsamsarga [ଦ୍ର—ସତ୍ ଶବ୍ଦପୂର୍ବକ ତ+ସ(ସ୍ର) ଅବ ଯୁକ୍ତାକ୍ଷର ବିଶିଷ୍ଟ ଶବ୍ଦମାନ ସତ୍ ଶବ୍ଦ ଯୁକ୍ତ ଶବ୍ଦମାନଙ୍କ ପରେ ଦେଖ ।]

**ସଦ୍ (ଧାତୁ)**—ସ—୧ । ଗମନ କରିବା—1. To go. ୨ । ଭ୍ରମଣ କରିବା—2. To walk. ୩ । ଗତି କରିବା—3. To move. ୪ । ଲଭିବା; ପ୍ରାପ୍ତ ହେବା —4. To get; to acquire.
Sad ( root )

**ସଦ୍‌ଗତି**—ସଂ. ବି ( ସତ୍+ଗତି; କର୍ମଧା )—୧ । ଉତ୍ତମ ଗତି—1. Good motion. ୨ । ମନ୍ଦ ଅବସ୍ଥାରୁ ଉତ୍ତମ ଅବସ୍ଥା ପ୍ରାପ୍ତି—2. Attainment of a better condition. ୩ । ଉତ୍ତମ ଅବସ୍ଥା-ଲାଭ—3. Attainment of a good condition. ୪ । ସଦ୍‌ବ୍ୟବହାର—4. Good behaviour; good treatment. ୫ । ଉତ୍ତମ ପରିଣାମ; ସୁଖମୟ ପରିଣାମ—5. Good result; good and happy end. ୬ । ମୁକ୍ତି—6. Liberation; emancipation. ୭ । ମୋକ୍ଷ; କଲ୍ୟାଣ—7. Final beatitude. ୮ । ସଚ୍ଚରିତ୍ର—8. Good conduct. ୯ । ମୃତ୍ୟୁ ପରେ ମୃତ ବ୍ୟକ୍ତିର ଆତ୍ମାର ମୋକ୍ଷଲାଭ—9. The emancipation of the soul from matter after death.
Sad-gati
(ସଦ୍‌ଗତି—ଅନ୍ୟରୂପ)

**ସଦ୍‌ଗନ୍ଧ**—ସଂ. ବି ( କର୍ମଧା; ସତ୍+ଗନ୍ଧ )—ଉତ୍ତମ ବା ମନୋମୋହ-କର ଗନ୍ଧ; ସୁଗନ୍ଧ—Good smell; sweet odour.
Sad-gandha
(ସଦ୍‌ଗନ୍ଧ—ଅନ୍ୟରୂପ)

**ସଦ୍‌ଗୁଣ**—ସଂ. ବି ( କର୍ମଧା; ସତ୍+ଗୁଣ )—ସୁଗୁଣ; ଉତ୍ତମଗୁଣ—Good quality; noble quality. ବଣ. ପୁଂ ( ବହୁବ୍ରୀହି )—ଉତ୍ତମଗୁଣବିଶିଷ୍ଟ—Good; having good qualities; noble.
Sad-guna
(ସଦ୍‌ଗୁଣ—ଅନ୍ୟରୂପ)
(ସଦ୍‌ଗୁଣା—ସ୍ତ୍ରୀ. ବଣ)

**ସଦ୍‌ଗୁରୁ**—ସଂ. ବି ( କର୍ମଧା; ସତ୍+ଗୁରୁ )—ଉପଯୁକ୍ତ ବା ଯୋଗ୍ୟ ବା ଜ୍ଞାନୀ ଗୁରୁ—A good or wise preceptor; a fit or capable teacher.
Sad-guru
(ସଦ୍‌ଗୁରୁ—ଅନ୍ୟରୂପ)

**ସଦ୍‌ଗୁରୁ ବୋଧଗମ୍ୟ**—ସଂ. ବଣ ( କର୍ମଧା; ସତ୍+ଗୁରୁ; ଷଷ୍ଠୀ ତତ୍; ସଦ୍‌ଗୁରୁଙ୍କଦ୍ୱାରା ବୋଧଗମ୍ୟ )—ଯେଉଁ ବିଷୟ ସଦ୍‌ଗୁରୁଙ୍କ ସାହାଯ୍ୟରେ ବୁଝିବାକୁ ଶିଷ୍ୟ ସମ ହୁଏ—( a subject ) Capable of being clearly explained by a fit preceptor.
Sad-guru bodhagamya

**ସଦ୍‌ଗୃହ**—ସ. ବି.—( କର୍ମଧା; ସତ୍+ଗୃହ )—ଉତ୍ତମ ଘର—A good or excellent house.
Sad-gruha
(ସଦ୍‌ଗୃହ—ଅନ୍ୟରୂପ)

**ସଦ୍‌ଗୋପ**—ଦେ. ବି—୧ । ଧଳଭୂମିର ଓଡ଼ିଆ ଗୋପ ବା ଗଉଡ଼-ମାନଙ୍କ ଜାତିର ଶାଖା ବିଶେଷ—1. A sub caste amongst the cowherds of Dhalbhum. [ ଦ୍ର—ଏମାନେ ଓଡ଼ିଶାର ଶୁଦ୍ରମାନଙ୍କ ପରି ମୁଣ୍ଡକାଣ୍ଟୀଚରେ ୧୦ ଦିନରେ ଶୁଦ୍ଧି ହୁଅନ୍ତି । ଏମାନଙ୍କର କୁଳପୁରୋହିତ ଓଡ଼ିଆ ବ୍ରାହ୍ମଣ ।] ୨ । ବଙ୍ଗଦେଶର ଶୁଦ୍ର ବା ବୈଶ୍ୟ ଜାତି ବିଶେଷ—2. A caste of Sudras or Baisyas in Bengal.
Sad-gopa
(ସଦ୍‌ଗୋପ—ଅନ୍ୟରୂପ)
সদ্গোপ
সদ্গোপ

**ସଦ୍‌ଗ୍ରାମ**—ସ. ବି ( କର୍ମଧା; ସତ୍+ଗ୍ରାମ )—ସଦ୍‌ବ୍ୟକ୍ତି ବା ଉଚ୍ଚ-ଜାତୀୟ ବ୍ୟକ୍ତି ବା ଭଦ୍ର ବ୍ୟକ୍ତିମାନଙ୍କ ଅଧ୍ୟୁଷିତ ଗ୍ରାମ—A village inhabited by good or high-caste people.
Sad-grāma
(ସଦ୍‌ଗ୍ରାମ—ଅନ୍ୟରୂପ)

**ସଦ୍ ଜ୍ଞାନ**—ଦେ. ବି—ସଜ୍ ଜ୍ଞାନ (ଦେଖ)—Saj-jnāna (See) [ଦ୍ର—ସଂସ୍କୃତ ନିୟମାନୁସାରେ 'ସତ୍+ଜ୍ଞାନ' ସନ୍ଧି ହେଲେ 'ସଜ୍ ଜ୍ଞାନ' ହୁଏ, ତେଣୁ 'ସଦ୍
Sad-jnāna
(ସଦ୍ ଜ୍ଞାନ—ବଣ)

ଜ୍ଞାନ' ବ୍ୟାକରଣ ମତରେ ଅଶୁଦ୍ଧ । 'ସଜ୍‌ଜ୍ଞାନ' ଦେଖ ।]

ସଦ୍‌ବଂଶ—ସଂ. ବି (କର୍ମଧା)—ଉତ୍ତମ ବା ଉଚ୍ଚ କୁଳ; ସତ୍କୁଳ—
Sad-bamsa Noble family; high family.
(ସଦ୍‌ବଂଶଜ, ସଦ୍‌ବଂଶୀୟ—ବିଣ) (ସଦ୍ବଂଶ—ଅନ୍ୟରୂପ)

ସଦ୍‌ବକ୍ତା—ସଂ. ବି ଓ ବିଣ. ପୁଂ (କର୍ମଧା)—ସୁବକ୍ତା; ବାଗ୍ମୀ—
Sad-bakta Eloquent speaker.
(ସଦ୍ବକ୍ତା—ଅନ୍ୟରୂପ) (ସଦ୍‌ବକ୍ତ୍ରୀ—ସ୍ତ୍ରୀଲିଙ୍ଗ)

ସଦ୍‌ବନ୍ଧୁ—ସଂ. ବି ( କର୍ମଧା; ସତ୍‌+ବନ୍ଧୁ )—୧ । ସନ୍ମିତ୍ର; ଉତ୍ତମ
Sad-bandhu ବନ୍ଧୁ—1. A good friend. ୨ । ଉପକାରୀ
( ସଦ୍ବନ୍ଧୁ—ଅନ୍ୟରୂପ ) ବା ପ୍ରକୃତ ବନ୍ଧୁ—2. A real friend.

ସଦ୍‌ବସଥ—ସଂ. ବି—( ସତ୍‌+ବସ୍‌ ଧାତୁ+ଅଧିକରଣ· ଅଥ )—
Sad-basatha (ସଦ୍ବସଥ—ଅନ୍ୟରୂପ ) ଗ୍ରାମ—Village.

ସଦ୍‌ବିଚାର—ସଂ. ବି ( କର୍ମଧା; ସତ୍‌+ବିଚାର )—ସୁବିଚାର; ନ୍ୟାଯ୍ୟ-
Sad-bichāra ବିଚାର—Good judgment; just con-
(ସଦ୍ବିଚାର—ଅନ୍ୟରୂପ ) sideration; equitable adju-
(ଅସଦ୍‌ବିଚାର—ବିପରୀତ) dication.
(ସଦ୍‌ବିଚାରକ—ବିଣ. ପୁଂ)

ସଦ୍‌ବିଦ୍ୟା—ସଂ. ବି (କର୍ମଧା)—୧ । ଉତ୍ତମ ବିଦ୍ୟା—1. A good
Sad-bidyā learning. ୨ । ଯେଉଁ ବିଦ୍ୟା ବା ବିଜ୍ଞାନ ଦ୍ୱାରା
( ସଦ୍ବିଦ୍ୟା—ଅନ୍ୟରୂପ ) ଜଗତର ଉପକାର ହୁଏ—2. A science which benefits society. ୩ । ପାରମାର୍ଥିକ ବିଦ୍ୟା—3. Metaphysical learning.

ସଦ୍‌ବିବେକ—ସଂ. ବି—୧ । ଉତ୍ତମ ବିବେକ—1. A pure or
Sad-bibeka good conscience. ୨ । ସଦ୍‌ବିବେଚନ
( ସଦ୍ବିବେକ—ଅନ୍ୟରୂପ ) (ଦେଖ)—2. Sad-bibechana
(ସଦ୍ବିବେକୀ—ବିଣ. ପୁଂ) (See)

ସଦ୍‌ବିବେଚନ(ନା)—ସଂ. ବି—୧। ସୁବିବେଚନା; ଉତ୍ତମ ବିବେଚନା—
Sad-bibechana(nā) 1. Good or just considera-
(ସଦ୍ବିବେଚନା—ଅନ୍ୟରୂପ) tion. ୨ । ଭଲ ମନ୍ଦ ବାଛିବା
(ସଦ୍‌ବିବେଚକ—ବିଣ, ପୁଂ) ବିଷୟରେ ନିପୁଣତା—2. Proper discrimination

ସଦ୍‌ବୃତ୍ତ—ସଂ. ବି (କର୍ମଧା; ସତ୍‌+ବୃତ୍ତ)—୧ । ସତ୍‌ବ୍ୟବହାର--
Sad-brutta 1. Good behaviour. ୨ । ସଚ୍ଚରିତ୍ର—
(ଅସଦ୍‌ବୃତ୍ତ—ବିପରୀତ) 2. Good conduct. ବିଣ. (ସତ୍‌
(ସଦ୍ବୃତ୍ତ—ଅନ୍ୟରୂପ) ଅଟେ ବୃତ୍ତ=ବ୍ୟବହାର ଯାହାର; ବହୁବ୍ରୀହି)
—୧ । ସଚ୍ଚରିତ୍ର ବିଶିଷ୍ଟ—1. Of good conduct.
୨ । ସମ୍ପୂର୍ଣ୍ଣ ରୂପେ ଗୋଲ; ସୁଗୋଲ—2. Well-rounded; fully circular.

ସଦ୍‌ବୃତ୍ତି—ସଂ. ବି ( କର୍ମଧା; ସତ୍‌+ବୃତ୍ତି )—୧ । ସଦ୍ବ୍ୟବହାର—
Sad-brutti 1. Good conduct. ୨ । ଉତ୍ତମ ଜୀବିକା—
(ଅସଦ୍‌ବୃତ୍ତି—ବିପରୀତ) 2. Noble profession or
( ସଦ୍ବୃତ୍ତି—ଅନ୍ୟରୂପ ) livelihood; honest business.
୩ । ଶାସ୍ତ୍ରୀୟ ଗ୍ରନ୍ଥ ବିଶେଷ—3. A very good commentary. ୪ । ଉତ୍ତମ ଚରିତ; ଉତ୍ତମ ଲୋକମାନଙ୍କ ସମ୍ବନ୍ଧେ ବିବରଣ—4. A commentary containing descriptions of good people.

ସଦ୍‌ବୃତ୍ତି ଭାକ୍—ସଂ. ବିଣ. ପୁଂ (ସଦ୍‌ବୃତ୍ତି+ଭଜ୍‌ ଧାତୁ=ପାଇବା+
Sad-brutti bhāk କ୍ୱିପ୍, କର୍ତ୍ତୃ; ସଦ୍‌ବୃତ୍ତିଭାଜ୍‌ ଶବ୍ଦ; ୧ମା.
(ସଦ୍ବୃତ୍ତି ଭାକ୍—ଅନ୍ୟରୂପ) ୧ବ )—୧ । ସଦ୍‌ବୃତ୍ତି ବିଶିଷ୍ଟ—
2. Of good conduct. ୨ । ଉତ୍ତମ ଜୀବିକା ଅବଲମ୍ବନକାରୀ—2. Pursuing a noble or honest profession.

ସଦ୍‌ବ୍ୟବହାର—ସଂ. ବି (କର୍ମଧା)—୧ । ସମୁଚିତ ବ୍ୟବହାର—
Sad-byabahāra 1. Good or proper use.
( ସଦ୍ବ୍ୟବହାର—ଅନ୍ୟରୂପ ) ୨ । ଉତ୍ତମ ବ୍ୟବହାର—
2. Good treatment. ୩ । ଉତ୍ତମ ଆଚରଣ—
3. Good conduct. ୪। ପ୍ରଶଂସ୍ୟ କାରବାର ବା ଜୀବିକା
4. A noble profession; a laudable or honest business.

ସଦ୍‌ବ୍ୟୟ—ସଂ. ବି. (କର୍ମଧା; ସତ୍‌+ବ୍ୟୟ)—ସତ୍‌କାର୍ଯ୍ୟରେ ବ୍ୟୟ
Sad-byaya —Expenses incurred for good pur-
(ଅସଦ୍‌ବ୍ୟୟ—ବିପରୀତ) (ସଦ୍ବ୍ୟୟ—ଅନ୍ୟରୂପ) poses.

ସଦ୍‌ବ୍ୟାଖ୍ୟାନ—ସଂ. ବି—୧ । ଉତ୍ତମ ରୂପେ ବ୍ୟାଖ୍ୟାକରଣ—
Sad-byākhyāna 1. Good and clear explanation.
( ସଦ୍ବ୍ୟାଖ୍ୟାନ—ଅନ୍ୟରୂପ ) ୨ । ସଚ୍ଚରିତ୍ର ବ୍ୟକ୍ତିମାନଙ୍କ ବିବରଣ—2. Description of good people.

ସଦ୍‌ଭାବ—ସଂ. ବି ( କର୍ମଧା; ସତ୍‌+ଭାବ )—୧ । ପ୍ରଣୟ; ବନ୍ଧୁତା;
Sad-bhāba ଘନିଷ୍ଠତା—1. Good feeling (between
(ଅସଦ୍‌ଭାବ—ବିପରୀତ) persons); friendship; good terms (between 2 persons); intimacy.
୨ । ଭଲ ମନୋଭାବ—2. Good disposition. ୩ । ସାଧୁତା—3. Honesty; uprightness. ୪ । ଶିଷ୍ଟତା; ଭଦ୍ରତା—4. Gentlemanliness; civility; courtesy. ୫ । ସତ୍ତା; ସ୍ଥିତି—
(ଅଭାବ—ବିପରୀତ) 5. Existence; being. ୬ ।
ସଦ୍‌ବୃତ୍ତ (ଦେଖ)—6. Sad-brutta (See) ୭ ।
(ସଦ୍ଭାବ—ଅନ୍ୟରୂପ) ସଦ୍‌ବୃତ୍ତି (ଦେଖ)—7. Sad-brutti (See)

ସଦ୍‌ଭୂତ—ସଂ. ବିଣ—(ସତ୍‌+ଭୂତ)—୧ । ସତ୍ୟ—1. True.
Sadbhūta ୨ । ଯଥାର୍ଥ—2. Real
(ଅସଦ୍‌ଭୂତ—ବିପରୀତ) (ସଦ୍ଭୂତ, ସଦ୍ଭୂତ—ଅନ୍ୟରୂପ)

ସଦ—ସଂ. ବି (ସଦ୍‌ ଧାତୁ=ଯିବା+ଭାବ. ଅ)—୧ । ଲାଭ—
Sada 1. Profit; acquisition. ୨ । (+କର୍ମ. ଅ)—
କ୍ଷେତ୍ରଫଳ—2. Area. ଦେ. ବିଣ—(ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ; ସଂସ୍କୃତ ସତ୍ ଶବ୍ଦରୁ .ଅନ୍ୟ ଶବ୍ଦ ସଙ୍ଗେ

ସନ୍ଧ ଦ୍ୱାର ଉତ୍ପନ୍ନ ସଦ୍‌ର ଅଶୁଦ୍ଧ ଉଚ୍ଚାରଣ (ଯଥା—ସଦାଶୟ)—ଉତ୍ତମ; ସାଧୁ—Good; noble. (ଉ—ସଦ ଅସଦ ପରେ ସ୍ଥିତ । ଜଗନ୍ନାଥ. ଭାଗବତ ।) ବ—ସଧ ୩ (ଦେଖ)—Sadha 3. (See)

**ସଦଂଶ**—ସଂ. ବଣ (ବହୁବ୍ରୀହି; ସ=ସହିତ+ଦଂଶ=ଦାନ୍ତ)—Sadamsa ଦନ୍ତଯୁକ୍ତ—Having teeth; toothed. ବ—୧ । ସଣ୍ଡୁଆସି—1. A pair of tongs. ୨ । (କର୍ମଧା; ସତ୍+ଅଂଶ) ଉତ୍ତମଭାଗ—1. A good portion.

**ସଦଂଶକ**—ସଂ. ବଣ (ସ=ସହିତ+ଦଂଶ=ଦାନ୍ତ+କ)—ଦନ୍ତଯୁକ୍ତ—Sadamsaka Having tooth; toothed. ବ—୧ । କଙ୍କଡ଼ା—1. Crab. ୨ । ସଣ୍ଡୁଆସି—2. Tong

**ସଦଂଶ ବଦନ**—ସଂ. ବ (ବହୁବ୍ରୀହି; ସଦଂଶ=ଦନ୍ତଯୁକ୍ତ ବଦନ Sadamsa badana ଯାହାର)—(ଏହାର ମୁହଁ ସଣ୍ଡୁଆସିପରି ଲମ୍ବ ଓ ବଙ୍କା ଥିବାରୁ)—କଙ୍କ ପକ୍ଷୀ; ବଗିଅଳାକ—Crane; heron.

**ସଦଃ**—ସଂ. ବ (ସ୍ତ୍ରୀ ଓ କ୍ଲୀ)—(ସଦସ୍ ଶବ୍ଦ; ସଦ୍ ଧାତୁ=ଗମନ Sadah କରିବା+ଅଧିକରଣ. ଅସ୍; ଯେଉଁଠାକୁ ଅନେକ ଲୋକ ଯାଆନ୍ତି)—ସମିତି; ସଭା; ପରିଷଦ୍—Meeting; association; committee; assembly.

**ସଦଗତି**—ଦେ. (ପଦ୍ୟ) ବ. (ସଂ. ସଦ୍‌ଗତି)—ସଦ୍ ଗତି (ଦେଖ)—Sadagati Sad-gati. (See) (ଉ—ଲଭବତ ନୋହେ ସଦଗତି, ଯଜ୍ଞାଦ କର୍ମେ ନ ତରନ୍ତି । ଜଗନ୍ନାଥ, ଭାଗବତ ।)

**ସଦଜ୍ଞାନ**—ଗ୍ରା. (ପଦ୍ୟ) ବ—(ସଂ. ସଜ୍ଜ୍ଞାନ)—ସଜ୍ଜ୍ଞାନ (ଦେଖ)—Sadajnana Saj-jnana. (See)

**ସଦଜ୍ଞାନୀ**—ଗ୍ରା. ବଣ—ସଜ୍ଜ୍ଞାନ ବିଶିଷ୍ଟ; ପାରମାର୍ଥିକ ଜ୍ଞାନବିଶିଷ୍ଟ—Sadajnani Having spiritual wisdom; versed in metaphysics or philosophy.
सदज्ञानी সদজ্ঞানী

**ସଦନ**—ସଂ. ବ (ସଦ୍. ଧାତୁ=ଯିବା+ଅଧିକରଣ କିମ୍ବା କର୍ମ ଅନ; Sadana ଯେଉଁ ସ୍ଥାନକୁ ଲୋକେ ବାସ କରିବାକୁ ଯାଆନ୍ତି)—୧ । ଘର; ଗୃହ; ଆଳୟ; ବାସସ୍ଥାନ—1. House; residence; abode. ୨ । (+କର୍ତ୍ତୃ. ଅନ) ଜଳ—2. Water. ୩ । (+ଭାବ.ଅନ) ମନୋଦୁଃଖ;ବିଷାଦ—3. Sorrow; grief; dejection.

**ସଦନୁଷ୍ଠାନ**—ସଂ. ବ (କର୍ମଧା; ସତ୍+ଅନୁଷ୍ଠାନ)—୧ । ସତ୍କାର୍ଯ୍ୟ—Sadanushthana 1. Good work. ୨ । ଲୋକହିତକର (ସଦନୁଷ୍ଠାତା—କର୍ତ୍ତୃ. ବଣ) କାର୍ଯ୍ୟ ବା ଅନୁଷ୍ଠାନ—2. A [ସଦନୁଷ୍ଠିତ—କର୍ମ. ବଣ] work or establishment of public utility; a public institution.

**ସଦନ୍ତଃକରଣ**—ସଂ.ବ (କର୍ମଧା)—ସାଧୁ ଚିତ୍ତ—Pious or good Sadantahkarana heart. ବଣ. ପୁଂ (ବହୁବ୍ରୀହି)—ସାଧୁ (ସଦନ୍ତଃକରଣା—ସ୍ତ୍ରୀ) ହୃଦୟଯୁକ୍ତ—Having a good heart.

**ସଦୟ**—ସଂ. ବଣ (ବହୁବ୍ରୀହି; ସ=ସହିତ+ଦୟା; ଦୟା ସହିତ Sadaya ବର୍ତ୍ତମାନ)—୧ । ଦୟାମୟ; ଦୟାଳୁ; ଦୟାଶୀଳ; (ସଦୟା—ସ୍ତ୍ରୀ) କୃପାଳୁ—1. Kind; merciful. ୨ । ପରର [କିନ୍ତୁ ସଦୟ—ବିପରୀତ] ଦୁଃଖରେ କାତର—2. Compassionate; sympathetic. ୩ । ଦୟାଯୁକ୍ତ—3. Full of kindness. ବ—(ସତ୍=ଉତ୍ତମ+ଅୟ=ବିଧାନ)—ଶୁଭକର ବିଧି—A good or beneficial rule.

**ସଦୟତା**—ସଂ. ବ (ସଦୟ+ଭାବ. ତା)—ଦୟାଶୀଳତା—Sadayata Mercifulness.

**ସଦୟପ୍ରକୃତି**—ସଂ. ବ (କର୍ମ. ଧା)—ଦୟାଳୁ ସ୍ୱଭାବ—Sadaya prakruti Kind nature. ବଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି)—ସଦୟ ପ୍ରକୃତିକ (ଦେଖ) Sadaya prakrutika

**ସଦୟ ପ୍ରକୃତିକ**—ସଂ. ବଣ. ପୁଂ—(କର୍ମଧା)—ଦୟାଳୁ ସ୍ୱଭାବ ବିଶିଷ୍ଟ Sadaya prakrutika (ବ୍ୟକ୍ତି)—Compassionate; (ସଦୟ ପ୍ରକୃତିକା—ସ୍ତ୍ରୀ) of kind or merciful nature.

**ସଦୟ ବ୍ୟବହାର**—ସଂ. ବ.—(କର୍ମଧା)—ଦୟାଯୁକ୍ତ ବ୍ୟବହାର—Sadaya byabahara Kind or sympathetic treatment.

**ସଦୟ ଭାବ**—ସଂ. ବ.—(କର୍ମଧା) ୧ । କୃପାଳୁ ଅବସ୍ଥା—Sadaya bhaba 1. Merciful condition. ୨ । ଦୟାଯୁକ୍ତ ବ୍ୟବହାର—2. Kind treatment.

**ସଦୟ ହୃଦୟ**—ସଂ. ବ.—(କର୍ମଧା)—ଦୟାମୟ ଚିତ୍ତ—Kind Sadaya hrudaya heart. ବଣ. ପୁଂ—(ବହୁବ୍ରୀହି) ଯାହାର (ସଦୟ ହୃଦୟା—ସ୍ତ୍ରୀ) ହୃଦୟ ଦୟାପୂର୍ଣ୍ଣ ଅଟେ—Of a kind heart; kind-hearted.

**ସଦୟେ**—ଗ୍ରା. ବଣ—(ପଦ୍ୟ) ସଦୟ (ଦେଖ) Sadaya (see) Sadaye [ଉ—ବଧୂ ମହେଶ୍ୱର ବଳ ତ ତୁହଇ ସେ ମୁକୁଟ ବନ୍ଧ ଦୟା ପ୍ରାୟେ, ବସୁଧା ପରେ କନ୍ୟା ଧନ୍ୟ ସେ ତୁଟେ ମୋଠାରେ ଦୟା ପ୍ରଭୁ ସଦୟେ । ଭଞ୍ଜ ବୈଦେହୀଶବିଳାସ ] ବ—ଦୟା—Kindness [ଉ—ଲୋଭଇ ମଧୁକର ପ୍ରାୟେ, ଭେମୁନ କରିବା ସଦୟେ । ଜଗନ୍ନାଥ ଭାଗବତ ।]

**ସଦର**—ବୈଦେ. ବଣ—(ଅ. ସଦର୍)—୧ । ପ୍ରଧାନ; ଶ୍ରେଷ୍ଠ—Sadara 1. Chief. ୨ । ପ୍ରକାଶ୍ୟ; ବ୍ୟକ୍ତ; ଯାହା ଗୁପ୍ତ ନୁହେଁ; ଯାହା ସମସ୍ତଙ୍କ ଦୃଷ୍ଟିରେ ପଡ଼େ—2. Public; patent; that which is visible to the public. ୩ । ରାଜ୍ୟଶାସନ ସମ୍ପର୍କରେ କେନ୍ଦ୍ରସ୍ଥାନୀୟ ରାଜଧାନୀ ସମ୍ବନ୍ଧୀୟ; ଶାସନକେନ୍ଦ୍ରିକ; ରାଜଧାନୀରେ ଅବସ୍ଥିତ—3. Central (in respect of the administration of a country); relating to the capital or head quarters of a country; situated at the capital. ୪ । ବହିଃସ୍ଥ—4. Outward; outer; external. ୫ । ଘରର ବାଣ୍ଡଅଡ଼େ ଅବସ୍ଥିତ—5. Situated on the
सदर সদর

outside or exterior of a residence

ସ. ବଣ. (ବହୁବ୍ରୀହି; ସ + ଦର = ଭୟ)—ଭୟଯୁକ୍ତ [ଦ୍ରି· ସଦ ହସ ନବ ବଳଷ କର, ଅମ୍ଭ ମଧ ଭରଣ ସଦର । ଭକ୍ତ ପ୍ରେମସୁଧାନିଧି ।] ବୈଦେ· ବ—୧। ଜିଲ୍ଲାର, ଉପଖଣ୍ଡର ବା ପ୍ରଦେଶର ରାଜକାର୍ଯ୍ୟ ପରିଚାଳନାର କେନ୍ଦ୍ର (ମଫସଲ—ବିପରୀତ) ସ୍ଥାନ—1. Administrative headquarters of a District or Division or (ମଫସଲ—ବିପରୀତ) Province. ୨। ରାଜଧାନୀ—2. Capital. ୩। ଘରର ବାହ୍ୟ ପାଖ—3. Exterior of a residence. ୪। ପିନ୍ଧା ଲୁଗାର ବା (ମଫସଲ—ବିପରୀତ) ପୋଷାକର ଯେଉଁ ଭାଗ ବାହାରକୁ ଥାଏ; (ଅନ୍ଦର—ବିପରୀତ) ଲୁଗାର ଅଗ ପାଖ—4. The outer side or exterior of a cloth or dress. ୫। ସହର—5. A town [ଦ୍ର—ଏହି ଶବ୍ଦ ଇଂରାଜି ଭାଷାରେ ମଧ୍ୟ ବ୍ୟବହୃତ ହେଉଛି—Sadar)

ସଦର ଅନ୍ଦର—ବୈଦେ· ବ—(ଅ; ଦ୍ୱନ୍ଦ୍ୱାର୍ଥ ସମାସ)—୧। ଗୃହର Sadara andara ବାହ୍ୟପାଖ ଓ ସ୍ତ୍ରୀଲୋକମାନଙ୍କ ରହିବା সদরঅন্দর **सदरअन्दर** ପାଖ—1. The outer and inner apartments of a house. ୨। କୌଣସି ବସ୍ତୁର ବାହାର ପାଖ ଓ ଭିତର ପାଖ—2. Outside and inside of a thing.

ସଦର ଅଫିସ୍—ବୈଦେ. ବ—(ଅ ସଦର୍ ଓ ଇଂ ଅଫିସ) ସଦର Sadara aphis ମହକୁମାର କାର୍ଯ୍ୟାଳୟ—The office সদরআফিস **सदरआफिस** at the head quarters.

ସଦର ଅଫିସର୍—ବୈଦେ. ବ—(ଅ ସଦର ଓ ଇଂ ଅଫିସର୍)—Sadara aphisar ସଦର ହାକିମ; ସଦର ମହକୁମାର ଉଚ୍ଚ- সদরআফিসর **सदरआफिसार** କର୍ମଚାରୀ—An officer at the headquarters.

ସଦର ଅ(ଆ)ମଲା—ବୈଦେ. ବ—(ଅ: ସଦର୍ ଓ ଫା. ଅମଲ)—Sadara a(ā)malā ଜମିଦାରଙ୍କ ସଦର କଚେରୀରେ ବା সদরআমলা **सदरअमला** ଜିଲ୍ଲାର ସଦର କଚେରୀରେ ନିଯୁକ୍ତ ଅମଲା ବା କର୍ମଚାରୀ—The ministerial officer at the headquarter.

ସଦର ଅମୀନ—ବୈଦେ. ବ—(ଅ. ସଦର୍ ଓ ଫା. ଅମୀନ୍)—Sadara amina ୧। ଜମି ମାପ କରିବାପାଇଁ ନିଯୁକ୍ତ ଅମୀନ- সদর আমীন,**सदर अमीन** ମାନଙ୍କ ମଧ୍ୟରେ ପ୍ରଧାନ ଅମୀନ—1. The head surveyor. ୨। ଜମିଦାରଙ୍କ ସଦର କଚେରୀରେ ଥିବା ଅମୀନ—2. The surveyor who works at the headquarters of a Zamindar. ୩। ମୋଗଲ ଅମଳରେ ଦେବାନି ମକଦ୍ଦମା ବୁଝିବା କାମରେ ନିଯୁକ୍ତ ବିଚାରପତି (ବର୍ତ୍ତମାନ ମୁନସଫ)—The civil judges who were exercising the jurisdiction (under the Moghal government), now vested in the Munsifs.

ସଦର ଅମିନ ଆଲା (ଲ୍ଲା)—ବୈଦେ· ବ—(ଫା.)—ମୋଗଲ Sadara amina ālā(llā) ବାଦସାହାଙ୍କ ଅମଳରେ ଜିଲ୍ଲାର সদর আমিন আলা ସଦର ମହକୁମାରେ ନିଯୁକ୍ତ ଭୂମିସଂକ୍ରାନ୍ତ **सदर अमीन आल्ला** ବିଚାର ବିଭାଗର ପ୍ରଧାନ ହାକିମ—The Chief Revenue Judge of a District under the Moghals.

ସଦର ଆଲା (ଲ୍ଲା)—ବୈଦେ. ବ—(ଅ. ସଦର ଓ ଫା· ଆଲା)—Sadara ālā (llā) ଜିଲ୍ଲାର ସଦରରେ ବା କେନ୍ଦ୍ରରେ ନିଯୁକ୍ତ সদর আলা,**सदर आला** ଦେବାନୀ ବିଚାରର ସର୍ବୋଚ୍ଚ ହାକିମ—[ସଦରଆଲ (ଲ୍ଲା)- ·ଅପଭ୍ରଂଶ] The highest Civil Judge at the District headquarters under the Moghals.

(ଦ୍ର—ବଙ୍ଗ, ବହାର, ଓଡ଼ିଶାର 'ଦେବାନୀ'କୁ ଇଂରାଜମାନେ ମୋଗଲ ସମ୍ରାଟଙ୍କଠାରୁ ପ୍ରଥମେ ଇଜାରା ନେବା ସମୟରେ ଏ ରାଜ୍ୟର ଖଜଣା ଅସୁଲର ଭାରପ୍ରାପ୍ତ କର୍ମଚାରୀଙ୍କୁ ଇଂରେଜମାନେ ନିଯୁକ୍ତ କରୁଥିଲେ । ଉକ୍ତ କର୍ମଚାରୀଙ୍କ ନାମ 'କଲେକ୍ଟର୍' ବା ତହସିଲଦାର ଥିଲା । ବର୍ତ୍ତମାନର 'କଲେକ୍ଟର୍'ମାନେ ସେହି ତହସିଲଦାରମାନଙ୍କ ସ୍ଥଳାଭିଷିକ୍ତ ଅଟନ୍ତି । ସେମାନେ ଖଜଣା ଅସୁଲ କରୁଥିଲେ ଓ ଖଜଣା (ମାଲ୍ = Revenue) ସଂକ୍ରାନ୍ତ ବିଷୟମାନ କଲେକ୍ଟରମାନେ ବୁଝୁଥିଲେ । ସେ ସମୟରେ ମୋଗଲ ବାଦସାହାଙ୍କ ନିଯୁକ୍ତ ବିଚାରକମାନେ ଦେବାନୀ (Civil) ଓ ଫଉଜଦାରୀ (Criminal) ମକଦ୍ଦମା ବୁଝୁଥିଲେ । ମଫସଲରେ ସ୍ଥାନେ ସ୍ଥାନେ ଯେଉଁ ବିଚାରକମାନେ ରହୁଥିଲେ ସେମାନଙ୍କୁ 'କାଜି', ସହରର ଛୋଟ ହାକିମଙ୍କୁ ସଦର ଅମିନ୍ ଓ ଜିଲ୍ଲାର ସଦରରେ ଯେଉଁ ପ୍ରଧାନ ବିଚାରପତି ରହୁଥିଲେ ତାଙ୍କୁ ସଦର ଆଲା କୋଲଯାଉଥିଲା ଓ ସର୍ବୋପରି କଲିକତାରେ ସଦର ଦେବାନୀ ଅଦାଲତ ଥିଲା । କ୍ରମଶଃ ବଙ୍ଗବହାର ଓଡ଼ିଶାର ଅନ୍ୟାନ୍ୟ ଶାସନ ଓ ବିଚାର ବିଭାଗକୁ ଇଂରେଜମାନେ ହସ୍ତଗତ କରି ନେବାବେଳେ ବିଚାରକମାନଙ୍କର ପୂର୍ବ ଉପାଧି ରଖିଥିଲେ ଓ ପରେ ସେ ବିଚାରକମାନଙ୍କର ଉପାଧି ପରିବର୍ତ୍ତନ କଲେ । ସାବକର ସଦର ଅମୀନମାନେ ବର୍ତ୍ତମାନ ମୁନସଫ; ସାବକର 'ସଦର ଆଲା'ମାନେ ବର୍ତ୍ତମାନ 'ସବଜଜ୍' ଅଟନ୍ତି ଓ ସାବକର ସଦର 'ଦେବାନୀ ଅଦାଲତ' ବର୍ତ୍ତମାନ 'ହାଇକୋର୍ଟ' ଅଟେ । ସାବକର 'କାଜି' (village Munsiff) ପ୍ରଥା ବର୍ତ୍ତମାନ ବଙ୍ଗ ବହାର ଓଡ଼ିଶାରୁ ଉଠିଯାଇଅଛି ।]

ସଦର ଇ(ଏ)ଲାକା—ବୈଦେ. ବ (ଅ. ସଦର ଓ ଫା. ଏଲକା)—Sadara i(e)lākā ଜିଲ୍ଲାର ରାଜଧାନୀର ନିକଟବର୍ତ୍ତୀ ବା ସଂଲଗ୍ନ সদর ইলাকা ଅଞ୍ଚଳ—Part of the country ad- **सदर इलाका** joining the capital of a district.

**ସଦର କଚି(ଚେ)ରୀ**—ବୈଦେ. ବି ( ଅ. ସଦର ଓ ଫା· କଚହରୀ )—
Sadara kachi(che)ri ସଦର ଅଫିସ୍; ସଦର ମଫସ୍ସଲରେ
সদব কাচাবী ଥିବା ରାଜକୀୟ କାର୍ଯ୍ୟାଳୟ—The court or
**सदर कचहरी** office at the headquarters.

**ସଦର କାନ(ନୁ)ଗୋଇ**—ବୈଦେ. ବି—( ଅ. ସଦର ଓ ଫା·
Sadar kāna(nu)goi କାନୁନ୍‌ଗୋ)—ଜିଲ୍ଲାର ସଦରରେ ବା
ସଦର କାନୁନ୍‌ଗୋ } —ଅନ୍ୟରୂପ ରାଜଧାନୀରେ ନିଯୁକ୍ତ ପ୍ରଧାନ
ସଦର କାନୁନ୍‌ଗୋଇ } କାନୁନଗୋ—Sudder
সদব কানুনগো **सदर कानून गो** Kanungo.
[ବି—ଓଡ଼ିଶାର ଭୂରାଜସ୍ୱ ଓ ଭୂମି ସମ୍ବନ୍ଧେ ସମ୍ବାଦ ସଂଗ୍ରହ ଓ କେତେକ ପ୍ରୟୋଜନୀୟ ତଥ୍ୟ ସଂଗ୍ରହ, ଫସଲ ନିରୀକ୍ଷଣ ଆଦି କାର୍ଯ୍ୟ କରିବା ପାଇଁ ମୋଗଲ ବାଦ-ସାହାଙ୍କ ଅମଳରେ ଜାଗିରୀଦାର ପଦ ଧାରୀମାନେ ନିଯୁକ୍ତ ଥିଲେ। କ୍ରମଶଃ ଇଂରାଜଙ୍କ ଅମଳରେ ଓଡ଼ିଶାରେ ପ୍ରତ୍ୟେକ ପ୍ରଗନାରେ ଜଣେ ଲେଖାଏଁ କାନୁନଗୋ ନିଯୁକ୍ତ ହେଲେ ଓ ପଦ ଆଦି ପ୍ରଥା ରହିତ ହେଲା। ବର୍ତ୍ତମାନ କାନୁନଗୋ-ମାନଙ୍କ ସଂଖ୍ୟା କମିଅଛି ଓ ଏକାଧିକ ପ୍ରଗନା ଜଣେ ଜଣେ କାନୁନଗୋଙ୍କ ତତ୍ତ୍ୱାବଧାନରେ ଅଛି। ପ୍ରତ୍ୟେକ କାନୁନଗୋଙ୍କ ଅଧୀନ ଇଲାକାକୁ 'ଚକଲା' ବୋଲାଯାଏ ଓ ମଫସଲର କାନଗୋଇମାନଙ୍କୁ 'ଚକଲା କାନଗୋଇ' ବୋଲାଯାଏ। ସେମାନଙ୍କ କାଗଜ ପତ୍ର ଓ କାର୍ଯ୍ୟ ଓ ରିପୋର୍ଟମାନ ତନଖି କରି କଲେକ୍ଟର ସାହେବଙ୍କ ନିକଟ ତାହା ପେଶ କରିବା ନିମନ୍ତେ ସଦର ମଫସ୍ସଲରେ ଯେଉଁ କାନୁନଗୋ ଥାଆନ୍ତି ତାଙ୍କୁ ସଦର କାନୁଗୋଇ ବୋଲାଯାଏ।]

**ସଦର ଗୁ(ଗୋ)ମାସ୍ତା**—ବୈଦେ· ବି—(ଅ ସଦର ଓ ଫା ଗୋମସ୍ତା)
Sadara gu (go) māstā ୧। ଜମିଦାରଙ୍କ ବାସସ୍ଥାନରେ
সদরগোমাস্তা ବା ରାଜଧାନୀରେ ନିଯୁକ୍ତ ଗୁମାସ୍ତା ବା ମୋହରିର—
**सदर गुमाश्ता** 1. The clerk at the suddar or head-quarters. ୨। ପ୍ରଧାନ ଗୁମାସ୍ତା—2 Head-mohorir [ବି—ଏହିପରି ସଦର ତହସିଲଦାର, ସଦର ମୋହରିର, ସଦର ପିଅନ, ଆଦି ଶବ୍ଦ ବ୍ୟବହୃତ ହୁଏ।]

**ସଦର ଜମା**—ବୈ. ଦେ.—(ଅ ସଦର ଓ ଫା. ଜମାହ୍)—ଜମିଦାର
Sadara jamā ଗଭର୍ଣ୍ଣମେଣ୍ଟଙ୍କୁ ଯାହା ରାଜସ୍ୱ ଦିଅନ୍ତି—
সদর জমা The revenue payable by the Zamindar
**सदर जमा** to the Government.
[ବି—ପୂର୍ବେ ମୋଗଲ ଓ ମରହଟ୍ଟା ଅମଳରେ ପ୍ରଜାମାନଙ୍କଠାରୁ ଖଜଣା ଅଦାୟ କରିବା ପାଇଁ ଯେଉଁମାନେ ନିଯୁକ୍ତ ହୋଇଥିଲେ ସେମାନେ ପ୍ରଜାଙ୍କଠାରୁ ଅଦାୟ କରିବା ଖଜଣାରୁ ସରକାରଙ୍କ ଦ୍ୱାରା ନିର୍ଦ୍ଧାରିତ ପାରି-ଶ୍ରମିକ କାଟି ରଖି ବାକି ଧନ ରାଜସ୍ୱରୂପେ ସରକାରଙ୍କ-ଠାରେ ଦାଖଲ କରୁଥିଲେ। ସେତେବେଳେ ଜମିଦାରମାନେ କେବଳ ମାତ୍ର ତହସିଲଦାର ବା ପ୍ରଜାଙ୍କଠାରୁ ଖଜଣା ଅସୁଲ କରିବା କର୍ମଚାରୀ ମାତ୍ର ଥିଲେ ଓ ସରକାର ଆପଣା ଇଚ୍ଛା ଅନୁସାରେ ସେମାନଙ୍କୁ ମୁକରର ଓ ବରଖାସ୍ତ କରି ପାରୁଥିଲେ। ଇଂରାଜମାନେ ଓଡ଼ିଶା ଅଧିକାର କରିବା ପରେ ଯେଉଁମାନେ ସାବିକ ସରକାରଙ୍କ ଅଧୀନ ତହସିଲଦାର ଥିଲେ ସେମାନଙ୍କୁ 'ଜମିଦାର' ବୋଲି ସ୍ୱୀକାର କରି ସେହିମାନଙ୍କୁ ଯେ ଯାହାର ଅସୁଲ ଇଲାକାର 'ମାଲିକ' କଲେ। ପ୍ରଜାମାନଙ୍କଠାରୁ ଜମିଦାରମାନେ ଯେଉଁ ଖଜଣା ଅଦାୟ କରିବେ, ତାହା ପାଇଁ ଜମିଦାର-ମାନଙ୍କ ସଙ୍ଗେ ବନ୍ଦୋବସ୍ତ (Settlement) କରାଗଲା। ଉକ୍ତ ମଫସଲଜମାରୁ ଜମିଦାର ତାଙ୍କ ପାରିଶ୍ରମିକ ବା 'ମାଲିକାନା' ଶତକଡ଼ା ଟ ୩୫୯ ଠାରୁ ଟ ୫୦୯ ପର୍ଯ୍ୟନ୍ତ କାଟି ରଖି ବାକି ଟଙ୍କା ଗଭର୍ଣ୍ଣମେଣ୍ଟଙ୍କୁ ବର୍ଷିକି ବର୍ଷ ଯାହା ଦେବେ ବୋଲି ସ୍ଥିର କରି କବୁଲିୟତ ଲେଖି ଦେଲେ ଉକ୍ତ ଦେୟର ନାମ 'ସଦରଜମା' ବା 'ମାଲଗୁଜାରି' ଅଟେ। କାଳକ୍ରମେ ଗଭର୍ଣ୍ଣମେଣ୍ଟ ଥରକୁଥର ରାଜସ୍ୱ ବନ୍ଦୋବସ୍ତ(Revenue Settlement)କରି ଜମିଦାରର ଜମିମାନଙ୍କ ପାଇଁ ପ୍ରଜାଙ୍କଠାରୁ କେତେ ଖଜଣା ଅଦାୟ ହେବ, ତାହା ତଦନ୍ତ କରି ସେଥିରୁ ଜମିଦାରଙ୍କ ପ୍ରାପ୍ୟ ମାଲିକାନା କାଟି ବାକି ଗଭର୍ଣ୍ଣମେଣ୍ଟଙ୍କୁ ଦେୟ 'ସଦର ଜମା' ପ୍ରତିବର୍ଷ ଯେଉଁଦିନେ କିସ୍ତି ମୁତାବକ ଗଭର୍ଣ୍ଣମେଣ୍ଟଙ୍କ ଠାରେ ଦାଖଲ କରିବା ନିମନ୍ତେ ଜମିଦାରମାନଙ୍କଠାରୁ ପ୍ରତି ସେଟଲମେଣ୍ଟ ଶେଷରେ କବୁଲିୟତ୍ ଲେଖାଇ ନେଇଅଛନ୍ତି। କବୁଲିଅତରେ ଯେଉଁ ଶର୍ତ୍ତମାନ ଥାଏ ତାହା ଜମିଦାର ପାଳନ କରିବାକୁ ବାଧ୍ୟ ଅଟନ୍ତି; ତାହା ପାଳନ ନ କଲେ ଜମିଦାରଙ୍କ ଠାରୁ ସରକାର ଉକ୍ତ ଜମିଦାରି ଛଡ଼ାଇ ନେବେ।]

**ସଦର ଥାନା**—ଦେ. ବି—ଜିଲ୍ଲାର ରାଜଧାନୀର ବା ସଦରର ସଂଲଗ୍ନ
Sadara thānā ଅଞ୍ଚଳର ଶାନ୍ତିରକ୍ଷା, ଅପରାଧପ୍ରତିରୋଧ ଆଦିପାଇଁ
সদর থানা ନିଯୁକ୍ତ ପୁଲିସ କର୍ମଚାରୀମାନେ ଯେଉଁ ସ୍ଥାନରେ ରହନ୍ତି—
**सदर थाना** The Police station having jurisdiction over the tract of country adjoining the district headquarters.

**ସଦର ଦର(ରୋ)ଜା**—ବୈଦେ. ବି (ଅ. ସଦର ଓ ଦରୱାଜା)—
Sadara dara(ro)jā ଘରର ଦାଣ୍ଡ ପାଖରେ ଥିବାର ଦ୍ୱାର;
(ସଦର ଦୁଆର—ଅନ୍ୟରୂପ) ଯେଉଁ ଦ୍ୱାର ବାଟେ ସଦରରୁ ବା
সদর দবজা ଦାଣ୍ଡରୁ ଲୋକେ ଘର ଭିତରକୁ ଯାଆନ୍ତି—
**सदर दरवाज़ा** The main door or entrance of a house.

**ସଦର ଦି(ଦେ)ବାନି ଅଦାଲତ**—ବୈଦେ. ବି ( ଅ. ସଦର+ଫା·
Sadara di(de)bāni adalata ଦେୱାନୀ+ଅଦାଲତ )—
ସଦର ଦେଉଅନି ଅଦାଲତ } ଅନ୍ୟରୂପ— ଇଂରେଜମାନେ ପ୍ରଥମେ
ସଦର ଦେୱାନି ଅଦାଲତ } ବଙ୍ଗ ବିହାର ଓଡ଼ିଶାର
সদপদেওয়ানি আদালত ରାଜସ୍ୱର ଇଜାରା ( ଦେୱାନୀ) ମୋଗଲ
**सदर दिवानी अदालत** ବାଦସାହାଙ୍କଠାରୁ ନେବା ସମୟରେ କଲିକତାରେ ସ୍ଥାପିତ ହୋଇଥିବା ଦେୱାନି ମକଦ୍ଦମାମାନଙ୍କ

ବିଗ୍ରହାର୍ଥେ ସର୍ବୋଚ୍ଚ ଅଦାଲତ (ପରେ ଯାହା କଲିକତା ହାଇକୋର୍ଟରେ ପରିଣତ ହେଲା)—The name of the former highest civil court in Bengal, Bihar and Orissa, which has now been replaced by the Calcutta High Court.

**ସଦର ପିଟିକା** -ଦେ. ବି (ଅ. ସଦର + ସଂ ପୃଷ୍ଠକ)—ତାଳପତ୍ର Sadara piṭhikā ପାଞ୍ଜିଖାତାର ସର୍ବ ଶୀର୍ଷ ବା ଉପରର ପତ୍ର— सदर पिठिका The outermost leaf of a bundle of **सदर पिठिका** palm-leaf manuscript account book (which is the front cover of the book).

**ସଦର ଫି(ଫେ)ରସ୍ତ**—ବୈଦେ. ବି (ଅ. ସଦର ଓ ଫା. ଫିହରସ୍ତ୍)— Sadara phi(phe)rasta କୌଣସି ଖାତାର ଅଗ୍ରରେ ଥିବା सदरफिरिस्ति ସୂଚିପତ୍ର; ଖାତା ମଧ୍ୟରେ ଲେଖାଥିବା ବିଷୟର ସୂଚୀ- **सदर फिरिस्त** ପତ୍ର, ଯାହା ଖାତାର ଅଗ୍ରରେ ସଂଯୁକ୍ତ ହୋଇଥାଏ— The index attached at the beginning to a book; the table of contents of a book attached to it.

**ସଦର ବୋର୍ଡ୍(ଡ୍)** — ବୈଦେ. ବି (ଅ. ସଦର ଓ ଇଂ. ବୋର୍ଡ୍)— Sadara bord(rd) ପ୍ରଦେଶର ରାଜଧାନୀରେ ପ୍ରତିଷ୍ଠିତ ରାଜସ୍ୱ सदरबोर्ड ସମ୍ବନ୍ଧୀୟ ବିଷୟମାନଙ୍କର ସର୍ବପ୍ରଧାନ ବିଚାରକ ସମିତି— **सदरबोर्ड** The Board of Revenue in the capital (ସଦର ବୋରଡ଼[ଡ଼ି]—ଗ୍ରାମ୍ୟ ରୂପ) of a Province.

**ସଦର ମଫ(ଫ)ସଲ**—ବୈଦେ. ବି (ଅ. ସଦର + ଅ. ମୁଫସ୍‌ସଲ; Sadara mapa(pha)sala ବିପରୀତାର୍ଥକ ସଦରର )— सदर मफस्सल ୧ । ଜିଲ୍ଲାର ରାଜଧାନୀ ଓ ମଫସଲ; ସହର ଓ **सदर मुफस्सल** ଦେଶ—1. The town and the country; the headquarters and the interior of a District. ୨ । ଲୁଗାର ବା ପୋଷାକର ବାହାର ପାଖ ଓ ଭିତର ପାଖ—2. The outside and inside of a garment or cloth.

**ସଦର ମହକୁମା**—ବୈଦେ. ବି (ଅ ସଦର ଓ ଫା. ମହକମା) — Sadara mahakumā ୧ । ଜିଲ୍ଲାର ରାଜଧାନୀସ୍ଥ ରାଜକୀୟ सदर महकुमा ବିଚାରାଳୟ ଓ କାର୍ଯ୍ୟାଳୟ ଆଦି ସରକାରୀ **सदर मुहकमा** ଅନୁଷ୍ଠାନମାନ—1. The offices and courts in the headquarters of a District ୨ । ଜିଲ୍ଲାର ରାଜଧାନୀ—2. The headquarters of a District. ୩ । ସଦର ସବ୍‌ଡିଭିଜନ୍; ଯେଉଁ ସବ୍‌ଡିଭିଜନରେ ଜିଲ୍ଲାର ରାଜଧାନୀ ଅବସ୍ଥିତ—3. The Sudder Subdivision of a District; the Headquarters Subdivision of a District.

**ସଦର ମାଲଗୁଜାର୍**--ପ୍ରାଦେ·(ସମ୍ବଲପୁର) ବୈଦେ·ବି-ଲମ୍ବରଦାର(ଦେଖ) Sadara mālagujār Lambaradār ( See ) (ସଦର ମାଲଗୁଜାର୍‌ଦାର୍—ଅନ୍ୟରୂପ)

**ସଦର ମାଲଗୁଜାରୀ**—ପ୍ରାଦେ. (ସମ୍ବଲପୁର) ବି—ସଦର ଜମା (ଦେଖ) Sadara mālagujārī Sadara jamā (See)

**ସଦର ଲୋକାଲ୍ ବୋର୍ଡ୍(ଡ୍)** — ବୈଦେ.ବି — (ଅ· ସଦର ଓ ଇଂ Sadara lokāl bord (bord) ଲୋକାଲବୋର୍ଡ୍ )—ଜିଲ୍ଲାର सदर लोकाल बोर्ड ସଦର ସବ୍‌ଡିଭିଜନ୍ ଇଲାକାର ସ୍ୱାୟତ୍ତଶାସନ **सदर लोकाल बोर्ड** ବିଭାଗର ପରିଚାଳନଭାରପ୍ରାପ୍ତ ସ୍ଥାନୀୟ ସମିତି—The Local Board at the head-quarters of a District. [ଦ୍ର-ସ୍ଥାନୀୟ ସ୍ୱାୟତ୍ତ ଶାସନ (Local self-Government) ଅଧିନ ଅନୁସାରେ ସହରମାନଙ୍କର ସ୍ୱାସ୍ଥ୍ୟ, ପ୍ରାଥମିକ ଶିକ୍ଷା, ରାସ୍ତା ଆଦିର କାର୍ଯ୍ୟ ତୁଟିବା ନିମନ୍ତେ ସରକାର 'ମିଉନିସିପାଲିଟି' (Municipality) ସୃଷ୍ଟି କରିଅଛନ୍ତି ଓ ମଫସଲର ଉକ୍ତ କାର୍ଯ୍ୟମାନ ତୁଟିବା ପାଇଁ ଡିଷ୍ଟ୍ରିକ୍ଟବୋର୍ଡ (District Board) ସୃଷ୍ଟି କରିଅଛନ୍ତି । ଗୋଟିଏ ଜିଲ୍ଲାର ମଫସଲର ସ୍ୱାୟତ୍ତଶାସନ ବିଭାଗର ପରିଚାଳନ ଡିଷ୍ଟ୍ରିକ୍ଟ ବୋର୍ଡ୍ ଉପରେ ନ୍ୟସ୍ତ ଥାଏ । ଗୋଟିଏ ଜିଲ୍ଲା ଏକାଧିକ ସବ୍‌ଡିଭି-ଜନ୍‌ରେ ବିଭକ୍ତ । ଜିଲ୍ଲାବୋର୍ଡର ଅଧୀନତାରେ ପ୍ରତ୍ୟେକ ସବ୍‌ଡିଭିଜନ୍‌ର ସ୍ୱାୟତ୍ତ ଶାସନ ସମ୍ବନ୍ଧୀୟ ବିଷୟମାନଙ୍କ ପରିଚାଳନ ଭାର ଲୋକାଲ୍ ବୋର୍ଡ୍ (Local Board) ଉପରେ ନ୍ୟସ୍ତ ହୋଇଥାଏ । ଜିଲ୍ଲାର ସଦର ସବ୍‌ଡିଭିଜନର ଭାରପ୍ରାପ୍ତ ଲୋକାଲ୍ ବୋର୍ଡକୁ ସଦର ଲୋକାଲ୍‌ବୋର୍ଡ୍ କୁହାଯାଏ ।]

**ସଦର ସବ୍‌ଡିଭି(ବି)ଜନ୍**—ବୈଦେ· ବି—( ଅ. ସଦର୍ ଓ ଇଂ, Sadara sab-dibhi(bijan ସବ୍‌ଡିଭିଜନ୍ ) — ଜିଲ୍ଲାର सदर सबडिविजन, **सदर सबड्विजन** ରାଜଧାନୀ ଯେଉଁ ସବ୍-ଡିଭିଜନର ଅନ୍ତର୍ଗତ— The Sub-division of a District which is directly administered by the authorities stationed at the head-quarters of the District.

**ସଦର ସବ୍‌ରେଜି(ଜେ)ଷ୍ଟ୍ରରି ଅଫିସ୍ (କଚିରି)**—ବୈଦେ.ବି (ଅ· ସଦର; Sadara sab-reji(je)shṭari aphis (kachiri) ଇଂ.ରେଜିଷ୍ଟ୍ରୀ सदर सबरेजिष्टोरी अफिस + ଇଂ. ଅଫିସ୍ ; ଫା. କଚହରୀ)— **सदर सबरेजिस्टरी अफिस** ଜିଲ୍ଲାର ରାଜଧାନୀରେ ସ୍ଥାପିତ ଯେଉଁ କଚେରୀରେ ଦଲିଲ-ପାଠ ରେଜିଷ୍ଟ୍ରର କରାଯାଏ—Sadar Subregistration Office.
ସଦର ସବ୍‌ରେଜିଷ୍ଟ୍ରେସନ ଅଫିସ୍, ସଦର ରେଜି(ଜେ)ଷ୍ଟ୍ରର ଖାନା } ଅନ୍ୟରୂପ

**ସଦର ସବ୍‌ରେଜିଷ୍ଟ୍ର(ଷ୍ଟ, ଷ୍ଟ୍ରା)ର୍**—ବୈଦେ. ବି ( ଅ. ସଦର ଓ ଇଂ. Sadra sab- rejishṭra(shṭa, shṭrā)r ସବ୍‌ରେଜିଷ୍ଟ୍ରାର୍ ) सदर सबरेजिष्टार —ଜିଲ୍ଲାର ରାଜଧାନୀରେ ଯେଉଁ କର୍ମଚାରୀ **सदर सबरजिस्टार** ଦଲିଲମାନ ରେଜିଷ୍ଟର କରନ୍ତି—The Subregistrar of deeds stationed at the headquarters of a District; the District Subregistrar. [ଦ୍ର—ଜିଲ୍ଲାର ରାଜଧାନୀରେ ଯେଉଁ ଉଚ୍ଚ ପାହ୍ୟାର କର୍ମଚାରୀ ଜିଲ୍ଲାର ସମସ୍ତ ସବ୍-

ରେଜିଷ୍ଟ୍ରୀ ଅଫିସର କାର୍ଯ୍ୟ ତଦାରଖ କରିବା ପାଇଁ ଓ ସବୁ ସବ୍‌ରେଜିଷ୍ଟ୍ରାରମାନଙ୍କ ଆଦେଶ ବିରୁଦ୍ଧରେ ଅପିଲ୍ ଶୁଣିବା ନିମନ୍ତେ ନିଯୁକ୍ତ ହୁଅନ୍ତି ତାଙ୍କୁ ଡିଷ୍ଟ୍ରିକ୍ଟ ରେଜିଷ୍ଟ୍ରାର୍ (District Registrar) କୁହାଯାଏ ।]

**ସଦର୍ ସବ୍‌ରେଜିଷ୍ଟ୍ରୀ**—ବୈଦେ· ବି ( ଅ ସଦର ଓ ଇଂ· Sadara sabrejistri ରେଜିଷ୍ଟ୍ରେସନ]—ଜିଲ୍ଲାର ସଦର (ସଦରସବ୍‌ରେଜିଷ୍ଟ୍ରର—ଅନ୍ୟରୂପ) ଥାନାରେ ଥିବା ଦଲିଲମାନ সদবসবরেজিস্তরি ରେଜିଷ୍ଟ୍ରର କରିବା କଚେରୀ—The Registration office at the head- **सद्रसबरेजिष्टरी** quarters a district.

**ସଦର ସର(ର)ବରାକାର**—ଦେ· ବି (ପ୍ରାଚୀନ)—ଉକ୍ତ ଦେଶ ଗ୍ରାମରୁ Sadara sar(ra)barākāra ରାଜସ୍ୱ ଆଦାୟ କରୁଥିବା সদবতহসিলদাব ମଫସଲର ସରବରାକାରମାନଙ୍କଠାରୁ ରାଜସ୍ୱ **सद्रतहसिलदार** ଆଦାୟ କରି କଲେକ୍ଟରମାନଙ୍କ ନିକଟରେ (ସଦର ସର୍ବରାକାର—ଅନ୍ୟରୂପ) ଦାଖଲ କରୁଥିବା ରାଜସ୍ୱ କର୍ମଚାରୀ—The Revenue Officer who used to collect the sums realised by Moffassal Sarbarakars and remit it to the Sadar Treasury.

**ସଦର ସିରସ୍ତା**—ଦ୍ୱିଦେ· ବି (ଅ· ସଦର ଓ ପା· ସେରସ୍ତା)- Sadara sirastā ଜମିଦାରଙ୍କ ସଦର କଚେରିର କାର୍ଯ୍ୟାଳୟ সদবসেবেস্তা **सद्रसिरस्ता** ଓ କାଗଜପତ୍ର—The office and accounts kept at the headquarters of a Zamindar.

**ସଦର ହାକିମ**—ବୈଦେ·ବି—ରାଜଧାନୀର ସଦର ଅଫିସରେ ନିଯୁକ୍ତ ସର୍ବ- Sadara hākima ପ୍ରଧାନ ହାକିମ—The Officer of সদরহাকিম **सद्रहाकिम** Head of any department stationed at the headquarters or the capital.

**ସଦରି**—ଦେ· ବଣ—ସଦର ବା ରାଜଧାନୀ ସମ୍ବନ୍ଧୀୟ—Relating Sadari to the headquarters. (ସଦରିଆ—ଅନ୍ୟରୂପ) সদরিআ **सद्रका**

**ସଦରି କୋରୁଆ**—ଦେ· ବି—ମଧ୍ୟପ୍ରଦେଶର ଯାଶପୁରର କୋରୁଆ Sadari koruā ଜାତିର କଥିତ ଛତିଶଗଡ଼ି ଓ ଲରିଆ ଭାଷାର ରୂପାନ୍ତର—A form of Chhatisigarḍi or Loriā language spoken by Koruās in Jāspur in C. P.

**ସଦରି କୋଲ(ହ୍ଲ)**—ଦ୍ୱିଦେ·ବି—ବାମଣ୍ଡାର କୋଲ୍ହ ଜାତୀୟ ଲୋକଙ୍କ କଥିତ Sadari kola(hla) ମଗାହି ଭାଷାର ରୂପାନ୍ତର—A form of Eastern Magāhi dialect spoken by the Kolhas in the Bamra State of the Eastern States Agency.

**ସଦର୍ଜନ**—ସଂ· ବି—(କର୍ମଧା ସତ୍+ଅର୍ଜନ)—ସଦୁପାୟ ଦ୍ୱାରା Sadarjana ଧନାର୍ଜନ—Honest acquisition or earning

**ସଦର୍ଜିତ**—ସଂ· ବଣ—(ସତ୍+ଅର୍ଜିତ)—ସଦୁପାୟ ଦ୍ୱାରା ଅର୍ଜିତ—Sadarjita Honestly acquired or earned.

**ସଦର୍ପ**—ସଂ· ବଣ—(ସହାର୍ଥ ବହୁବ୍ରୀହି ସ=ସହିତ+ଦର୍ପ)—Sadarpa ଅହଙ୍କାର ଯୁକ୍ତ—Arrogant; full of pride.

**ସଦର୍ପରେ**—ଦେ· କ୍ରି· ବଣ (ସଂ· ସଦର୍ପଂ)—ଦର୍ପ ଅହଙ୍କାରେ—Sadarpare Arrogantly; with pride. (ସଦର୍ପେ—ଅନ୍ୟରୂପ) সদর্পে **सदर्पमे**

**ସଦଳ**—ସଂ·ବଣ—(ସହାର୍ଥ ବହୁବ୍ରୀହି ସ=ସହିତ+ଦଳ)—୧। ପତ୍ରଯୁକ୍ତ Sadaḷa —1. With leaves attached to it. ୨। ପାଖୁଡ଼ାଯୁକ୍ତ—2. With petals attached. ୩। ଆପଣାର ଗୋଷ୍ଠୀ ସହିତ—3. Accompanied with one's party or retinue.

**ସଦଳବଳ**—ସଂ· ବଣ—( ସ=ସହିତ+ଦଳବଳ—ଆପଣାର ଦଳ- Sadaḷabaḷa ବଳ ସହିତ—Accompanied with one's party and retinue.

**ସଦଳସ**—ଦେ· ବି—(ସଂ· ସର୍ଜରସ)—ଝୁଣା—Sadaḷasa Resin. ধুনা **धूपधूना**

**ସଦଶିଷ୍ୟ**—ଦେ· ବି—(ପ୍ରାଚୀନ ପଦ୍ୟ)—( ସଂ· ସତ୍+ଶିଷ୍ୟ )—Sadaśishya ସୁଶିଷ୍ୟ—Honest disciple. [ଉ—সংশিষ্য **सद्शिष्य** ସଦଗୁରୁ ମିଳିଲେ ଯେ ସଦଶିଷ୍ୟ ପାଇ —ପ୍ରାଚୀ. ଶ୍ରୀ ଗୁରୁଭକ୍ତି ଗୀତା ।]

**ସଦସଜ୍‌ଜ୍ଞାନ**—ସଂ· ବି—ସଦସତ୍ ବିବେକ (ଦେଖ)—Sadasaj-jñāna Sadasat-bibeka (See) (ସଦସଜ୍‌ଜ୍ଞ—ବଣ) (ସଦସଦ୍‌ଜ୍ଞାନ—ଦେ· ରୂପ)

**ସଦସତ**—ସଂ· ବଣ (ବିପରୀତ ସଦଚର; ସତ୍+ଅସତ୍)—୧। ସତ୍ Sadasat ଓ ଅସତ୍; ଭଲ ଓ ମନ୍ଦ—1. Good and bad. সতঅসত **सदसत** ୨। (ବେଦାନ୍ତ) ସ୍ଥୂଳ ଓ ସୂକ୍ଷ୍ମ (ବସ୍ତୁ)—2. (Vedānta) Material and etherial. [ଉ—ଯେଣୁ ଏ ସଦସତ୍ ରୂପ ପ୍ରାଣୀଙ୍କ ହୃଦରେ କଲ୍ପିତ ।—ଜଗନ୍ନାଥ ଭାଗବତ ] ବି—ଭଲ କଥା ଓ ମନ୍ଦକଥା—Good and bad things; thingsgood and bad.

**ସଦସଦ୍ ବିଚାର**—ସଂ· ବି (ସଦସତ୍+ବିଚାର; ତତ୍ପୁ)—ଉତ୍ତମ ଓ ମନ୍ଦ Sadasad-bichāra ବିଷୟର ବିଚାର; କଏ ଉତ୍ତମ କଏ ମନ୍ଦ (ସଦସଦ୍ ବିଚାରକ—ବଣ) ଏଥିର ବିଚାର—Discrimination between good and evil.

**ସଦସଦ୍ ବିବେକ**—ସଂ. ବି. ( ସଦସତ୍+ବିବେକ )—ସଦସତ୍ ଜ୍ଞାନ; Sadasad-bibeka ଭଲ ଭଲ କଥା ମନ୍ଦ ଏ ସମ୍ବନ୍ଧେ ଜ୍ଞାନ—(ସଦସଦ୍ ବିବେକୀ—ବିଣ. ପୁଂ) Knowledge about or discrimination between good and evil; power of discrimination between good and evil.

**ସଦସଦ୍ ବିବେଚନା**—ସଂ. ବି ( ସଦସତ୍+ବିବେଚନା )—ସଦସତ୍ Sadasad-bibechanā ବିବେକ; ଉତ୍ତମ ଓ ମନ୍ଦ ମଧ୍ୟରେ ପ୍ରଭେଦ (ସଦସଦ୍ ବିବେଚକ—ବିଣ. ପୁଂ) ସମ୍ବନ୍ଧେ ବିଚାର ବା ସିଦ୍ଧାନ୍ତ—Ascertaining what is good and what is evil; discriminating the good from the evil.

**ସଦସ୍**—ସଂ. ବି—୧ । ସଦଃ ( ଦେଖ )—1. Sadaḥ ( See ) Sadas ୨ । ସଭା—2. Assembly.

**ସଦସ୍ୟ**—ସଂ. ବିଣ ( ସଦସ୍=ସଭା+ସମ୍ବନ୍ଧାର୍ଥେ. ଯ )—୧ । ସଭା Sadasya ସମ୍ବନ୍ଧୀୟ—1. Relating to an assembly. ୨ । ସାମାଜିକ—2. Social. ସଂ.ବି ପୁଂ (ସଦସ୍+ସାଧୁ ବା କୁଶଳ ଅର୍ଥରେ ଯ)—୧ । ସଭାସଦ; ସଭାର ସଭ୍ୟ—1. Member of an assembly or association. ୨ । ଯଜ୍ଞାଦି ସ୍ଥଳରେ ବିଧିଦର୍ଶୀ ବ୍ୟକ୍ତି; ଯଜ୍ଞସ୍ଥଳରେ ଉପସ୍ଥିତ ଯେଉଁ ବ୍ୟକ୍ତି ଯଜ୍ଞାଦି ଅନୁଷ୍ଠାନ କରୁଥିବା ପୁରୋହିତମାନଙ୍କର ଭ୍ରମାଦି ସଂଶୋଧନ କରନ୍ତି—(ସଦସ୍ୟା—ସ୍ତ୍ରୀ) 2. A person whose duty is to point out the mistakes, if any, committed by persons performing Vedic sacrifices.

[ବି—ପ୍ରତ୍ୟେକ ଯଜ୍ଞାନୁଷ୍ଠାନରେ ଯେତେଗୁଡ଼ାଏ ପୁରୋହିତ ବା ଯାଜକ ନିଯୁକ୍ତ ହୁଅନ୍ତି, ତାଙ୍କ ମଧ୍ୟରୁ ସଦସ୍ୟ ଏକତମ, ଏହାଙ୍କ ନାମାନ୍ତର 'ପ୍ରଶ୍ନବକ୍ତା' । 'କେଷ୍ଟି' ହୋମାଦି କରିବେ, ପୁରୋହିତ ବା 'ବ୍ରହ୍ମା' ତାଙ୍କୁ ମନ୍ତ୍ରାଦି କହାଇ ଦେଉଥିବେ ଓ ସାହାଯ୍ୟ କରୁଥିବେ; ଅନ୍ୟ ଜଣେ 'ବ୍ୟକ୍ତି' ସୂତ୍ରଧାରୂପୀ ବା 'ଛନ୍ଦଧାରକ' ପୋଥି ଧରି ପୁରୋହିତଙ୍କୁ ସାହାଯ୍ୟ କରୁଥିବେ । ଅନ୍ୟ ଜଣେ ବ୍ୟକ୍ତି ପ୍ରଶ୍ନବକ୍ତା ବା 'ସଦସ୍ୟ' ଦେଖୁଥିବେ ଯେ, ବେଦୋକ୍ତ ବିଧି କେଉଁଠାରେ ନ୍ୟୂନାଧିକ ହେଲା, କେଉଁଠାରେ ବ୍ରହ୍ମା ଓ ଛନ୍ଦଧାରକ କଅଣ ଭୁଲ ଗଲେ ।] ଦେ. ବି—ବ୍ରାହ୍ମଣମାନଙ୍କ ବଂଶୋପାଧି ବିଶେଷ—A family-title of Brāhmaṇas. [ବି—ଫଳତଃ ଦେଖାଯାଏ ଯେ, ଯେଉଁମାନଙ୍କ କୌଣସି ପୂର୍ବପୁରୁଷ ପୂର୍ବେ ଯଜ୍ଞରେ 'ସଦସ୍ୟ' ରୂପେ ବରିତ ହୋଇ ସେହି ଉପାଧି ପାଇଥିଲେ, ତାଙ୍କର ବଂଶଧରମାନେ ସେହି ସଦସ୍ୟ ଉପାଧି ଆପଣା ନାମ ସଙ୍ଗେ ଅଦ୍ୟାବଧି ରଖିଅଛନ୍ତି; ମାତ୍ର ଦୁଃଖର କଥା, ଏମାନଙ୍କ ମଧ୍ୟରୁ ଅନେକଙ୍କ ପକ୍ଷରେ 'ସଦସ୍ୟ'ର ଅର୍ଥ ଜାଣିବା ଅତି ଦୁରୂହବ୍ୟାପାର ହୋଇଅଛି ।]

**ସଦା**—ସଂ. ଅ—(ସର୍ବ+କାଳାର୍ଥେ. ଦା)—୧ । ସର୍ବଦା; ସବୁବେଳେ—Sadā 1. Always. ୨ । ଅବିଶ୍ରାନ୍ତ ରୂପେ—2. Conti-(ସଦାଇ—ଅନ୍ୟରୂପ) nually. ୩ । ଚିରକାଳ ସକାଶେ—ସଦା सदा 3. Perpetually; in perpetuity. ଦେ. ବି—୧ । ( ପୁଂ ) ସଦାନନ୍ଦ ଓ ସଦାଶିବର ଅନାଦରାର୍ଥକ ଡାକନାମ 1. Name for calling Sadānanda and Sadāsiba in familiarity. ୨ । ସଧା ( ଦେଖ )—2. Sadhā (See) ପ୍ରାଦେ. (ଲହଥ) ବିଣ—ଧଳା—White.

**ସଦା କାଳ**—ଦେ. ବି—୧ । ସବୁ ସମୟ—1. All time. ୨ । Sadā kāla ଚିରକାଳ—2. Perpetuity. ଦେ. ଅ. (ସଦାକାଳେ—ଅନ୍ୟ କ୍ର. ବିଣ. ରୂପ) ବିଣ—୧ । ନିତ୍ୟ; ସର୍ବଦା ସଦାକାଲ हमेशा —1. Always. ୨ । ଚିରକାଳ—ପାଇଁ 2. Perpetually.

**ସଦା ଗତି**—ସଂ. ବିଣ (ସଦା=ସର୍ବଦା+ଗତି ଯାହାର; ବହୁବ୍ରୀହି)—Sadā gati ସର୍ବଦା ଗତିଶୀଳ—Perpetually moving; ସଦାଗତି सदागति always moving. ସଂ. ବି—୧ । ବାୟୁ; ପବନ—1. Air. ୨ । ସୂର୍ଯ୍ୟ—2. Sun. ୩ । ଆତ୍ମା—3. The soul; the spirit. ୪ (ଅବ୍ୟୟୀଭାବ) ମୁକ୍ତି—4. Freedom. ୫। ମୋକ୍ଷ—5. Final beatitude. ୬ । (ବହୁବ୍ରୀହି) ପରମେଶ୍ୱର—6. God. ଦେ. ବି—ଅବିଶ୍ରାନ୍ତ ଗମନ—Continual motion. [ଉ—ବଚନ କୋକିଳ ସଦାଗତି ମେଳ ହୋଇ । ଭଞ୍ଜ. ବୈଦେହୀଶବିଳାସ ।] ଦେ. ବିଣ—ମୁକ୍ତି ବହନକାରୀ—Carrying or causing liberation or final beatitude. [ଉ—ବହେ ଅଗତି, କହେ ଯହିଁରେ ସଦାଗତି । ଭଞ୍ଜ. ବୈଦେହୀଶବିଳାସ ।]

**ସଦାଗର**—ବୈଦେ. ବି (ଫା. ସୌଦାଗର୍)—ବଣିକ; ସଉଦାଗର—Sadāgara Trader; merchant. ସଦାଗର सौदागर

**ସଦାଗରି**—ବୈ ଦେ. ବି (ଫା. ସୌଦାଗରୀ)—ସଉଦାଗରି; ବାଣିଜ୍ୟ; Sadāgari ବେପାର—Business of a merchant; ସଦାଗରି सौदागरी trade; commerce. ବୈଦେ. ବିଣ—ବାଣିଜ୍ୟ ସମ୍ବନ୍ଧୀୟ—Relating to trade.

**ସଦାଚରଣ**—ସଂ. ବି ( କର୍ମଧା; ସତ୍+ଆଚରଣ )—୧ । ସାଧୁ Sadācharaṇa ବ୍ୟବହାର; ଉତ୍ତମ ଚାଲିଚଳନ—1. Good (ଅସଦାଚରଣ—ବିପରୀତ) conduct. ୨ । ଶାନ୍ତ ଓ ଶିଷ୍ଟ ବ୍ୟବହାର—2. Gentle conduct; good behaviour.

**ସଦାଚରଣ ଜାମିନ୍(ନି)**—ଦେ. ବି ( ସଂ. ସଦାଚରଣ+ଫା. ଜାମିନ୍ ) Sadācharaṇa jāmin(ni) (ଡଚର୍ଥ)—ଭବିଷ୍ୟରେ କାହା ସଦାଚରଣ ଜାମିନ ପ୍ରତି ଅତ୍ୟାଚାର ନ କରି ଶାନ୍ତ ଓ ଶିଷ୍ଟ ଭାବରେ सदाचरण जामीन ଚଳିବା ପାଇଁ ଦୁଷ୍ଟ ଓ ଅପରାଧୀ ବ୍ୟକ୍ତିଠାରୁ

ମାଜିଷ୍ଟ୍ରେଟ୍ ଯେଉଁ ଜାମିନ୍ ଗ୍ରହଣ କରନ୍ତି—Bail or security taken by a magistrate from a wicked person to be of good behaviour.

**ସଦାଚରଣ ମୁ(ମୋ)ଚ୍ଛଲିକା**—ଦେ.ବି (ଢଚଳିଅ; ସଂ. ସଦାଚରଣ + ଫା. ମୁଚଲ୍‌କା)—ଦୁଷ୍ଟ ବ୍ୟକ୍ତି ବା ଅପରାଧୀ ଭବିଷ୍ୟତରେ ଦୁଷ୍କାର୍ଯ୍ୟ କରିବ ନାହିଁ ବୋଲି ମାଜିଷ୍ଟ୍ରେଟଙ୍କୁ ଦେଇ ଯେଉଁ ଏକରାରନାମା ଲେଖି ଦିଏ—An agreement or recognisance bond executed by a wicked person before a magistrate to be of good behaviour in future.
Sadācharaṇa mu(mo)chālikā
सदाचरण मुचलिका
सदाचरण मुचालिका

**ସଦାଚାର**—ସଂ. ବି ( କର୍ମଧା. ସତ୍=ସାଧୁ+ଆଚାର )—୧ । ସାଧୁ ବ୍ୟବହାର—1. Good conduct. ୨ । ଶାସ୍ତ୍ରବିହିତ ବିଧି ବା ରୀତି—2. Approved usage. ୩ । ଶାସ୍ତ୍ରବିହିତ ଆଚାର—3. Conduct approved or enjoined by the scriptures. ୪ । ଧର୍ମାନୁମୋଦିତ ଆଚରଣ—4. Virtuous course of action. ୫ । ସାଧୁ ବ୍ୟକ୍ତିଙ୍କ ଓ ମହାପୁରୁଷମାନଙ୍କ ଅନୁଷ୍ଠିତ ଆଚରଣ—5. The conduct or course of action of good and great men. [ଦ୍ର—ମନୁସଂହିତାରେ ଅଛି ଯେ, ସରସ୍ୱତୀ ଓ ଦୃଷଦ୍‌ବତୀ ନାମକ ଦେବନଦୀଦ୍ୱୟର ମଧ୍ୟବର୍ତ୍ତୀ ଦେବନିର୍ମିତ ଦେଶକୁ 'ବ୍ରହ୍ମାବର୍ତ୍ତ' ବୋଲିଯାଏ; ସେହି ଦେଶରେ ଭିନ୍ନ ଭିନ୍ନ ବର୍ଣ୍ଣମାନଙ୍କର ପାରମ୍ପର୍ଯ୍ୟକ୍ରମାଗତ ଆଚାରକୁ 'ସଦାଚାର' ବୋଲିଯାଏ । ସତ୍ ଅର୍ଥାତ୍ ସାଧୁବ୍ୟକ୍ତିମାନଙ୍କ ଆଚରଣକୁ ସଦାଚାର ବୋଲିଯାଏ । "ମହାଜନୋ ଯେନ ଗତଃ ସ ପନ୍ଥାଃ"; ମହାଜନମାନେ ଯେଉଁ କାର୍ଯ୍ୟମାନ କରି ଯାଇଅଛନ୍ତି, ସେହି ଅନୁସାରେ କରାଯିବା ଆଚରଣକୁ ସଦାଚାର କହନ୍ତି । ଆଗମ, ପୁରାଣ ଓ ସଂହିତାରେ ରାଜାଙ୍କର କର୍ତ୍ତବ୍ୟ ସଦାଚାର, ଗୃହସ୍ଥର କର୍ତ୍ତବ୍ୟ ସଦାଚାର ଆଦି ବର୍ଣ୍ଣିତ ଅଛି । ଯଥା—ବେଦାଧ୍ୟୟନ, ହୋମ, ପୂଜା, ଶ୍ରାଦ୍ଧ, ବୈଶ୍ୱଦେବ, ବଳିଦାନ, ସ୍ନାନ, ଦନ୍ତଧାବନ, ଶାରଦୀୟା ଦୁର୍ଗାପୂଜା, ପୁଷ୍ୟାଭିଷେକ, ଶ୍ରୀପଞ୍ଚମୀ ପୂଜା, ମୃତବ୍ୟକ୍ତିର ଧନରେ ଉତ୍ତରାଧିକାରିତ୍ୱ, ନିତ୍ୟକର୍ମ, ବ୍ରତ, ପର୍ବ, ଦଶବିଧ ସଂସ୍କାର, ଶୌଚାଶୌଚ, ଖାଦ୍ୟାଖାଦ୍ୟ, ସ୍ପୃଶ୍ୟାସ୍ପୃଶ୍ୟ, ଅନ୍ତ୍ୟେଷ୍ଟିକ୍ରିୟା, ବର୍ଣ୍ଣାଶ୍ରମଧର୍ମ, କର୍ତ୍ତବ୍ୟାକର୍ତ୍ତବ୍ୟ ଇତ୍ୟାଦି । ମନୁସଂହିତା, କାଳିକାପୁରାଣ—୮୭, ୮୯ ଅଧ୍ୟାୟ, ବାମନପୁରାଣ ୧୪ଶ ଅଧ୍ୟାୟ, ପଦ୍ମପୁରାଣ ସ୍ୱର୍ଗଖଣ୍ଡ, ବିଷ୍ଣୁପୁରାଣର ୧୧ଶ ଅଧ୍ୟାୟ, ମାର୍କଣ୍ଡେୟ ପୁରାଣର ସଦାଚାର ନାମକ ଅଧ୍ୟାୟରେ ସଦାଚାର ବିଶେଷରୂପେ ବର୍ଣ୍ଣିତ ହୋଇଅଛି । ]
Sadāchāra
(ଅସଦାଚାର—ବିପରୀତ)

**ସଦାଚାର ନିରତ**—ସଂ. ବିଂ, ପୁଂ ( ୭ମୀ ତତ୍ )—ଯେ ସର୍ବଦା ସଦାଚାରରେ ରତ ହୋଇଥାଏ—Pursuing a virtuous course of action.
Sadāchāra nirata

ସଦାଚାର ରତ; ସଦାଚାର ନିଷ୍ଠ, ସଦାଚାର ପରାୟଣ, ସଦାଚାର ଶୀଳ } ଅନ୍ୟରୂପ
ସଦାଚାର ରତା, ସଦାଚାର ନିରତା, ସଦାଚାରନିଷ୍ଠା, ସଦାଚାର ପରାୟଣା, ସଦାଚାର ଶୀଳା } ସ୍ତ୍ରୀ

**ସଦାଚାର ନିଷ୍ଠା**—ସଂ. ବିଣ. ସ୍ତ୍ରୀ ( ସଦାଚାରନିଷ୍ଠ + ଆ )—ସଦାଚାରନିଷ୍ଠର ସ୍ତ୍ରୀଲିଙ୍ଗ—The feminine form of Sadāchāra nishṭha ସଂ ବି (ସଦାଚାର + ନିଷ୍ଠା; ୭ମୀ ତତ୍ )—ସଦାଚାର ପ୍ରତି ଅତ୍ୟାସକ୍ତି—Reverence or respect for approved course of conduct.
Sadāchāra nishṭhā

**ସଦାଚାର ବାନ୍**—ସଂ. ବିଣ ପୁଂ ( ସଦାଚାର + ଅସ୍ତି ଅର୍ଥରେ ବତ୍; ୧ମା. ୧ବ )—ସଦାଚାରୀ ( ଦେଖ ) Sadāchārī ( See )
Sadāchāra bān
(ସଦାଚାରବତୀ—ସ୍ତ୍ରୀ)

**ସଦାଚାର ବିଗର୍ହିତ**—ସଂ. ବିଣ ( ୩ୟା ତତ୍ )—ସଦାଚାରର ପ୍ରତିକୂଳ ( କାର୍ଯ୍ୟ )—Opposed to approved usage.
Sadāchāra bigarhita
(ସଦାଚାର ବିରୁଦ୍ଧ—ଅନ୍ୟରୂପ)

**ସଦାଚାର ବିହିତ**—ସଂ. ବିଣ ( ୩ୟା ତତ୍ )—ସଦାଚାର ଅନୁସାରେ କୃତ—Conformable to approved usage or conduct.
Sadāchāra bihita
(ସଦାଚାର ସଙ୍ଗତ, ସଦାଚାର ସମ୍ମତ—ଅନ୍ୟରୂପ)

**ସଦାଚାର ବିହୀନ**—ସଂ. ବିଣ. ପୁଂ ( ୩ୟା ତତ୍ )—ଯେ ସଦାଚାର ପାଳନ କରେ ନାହିଁ—Devoid of virtuous actions.
Sadāchāra bihīna
( ସଦାଚାର ବିହୀନତା—ବି )
( ସଦାଚାର ରହିତ, ସଦାଚାର ହୀନ—ଅନ୍ୟରୂପ )
( ସଦାଚାର ବିହୀନା, ସଦାଚାର ରହିତା, ସଦାଚାର ହୀନା—ସ୍ତ୍ରୀ )

**ସଦାଚାର ଭ୍ରଷ୍ଟ**—ସଂ. ବିଣ. ପୁଂ ( ୫ମୀ ତତ୍ )—ସଦାଚାରରୁ ସ୍ଖଳିତ; ଯେଉଁ ବ୍ୟକ୍ତି ସଦାଚରଣ ତ୍ୟାଗ କରିଅଛି—One who has deviated from virtuous line of conduct.
Sadāchāra bhrashṭa
( ସଦାଚାର ଭ୍ରଷ୍ଟା—ସ୍ତ୍ରୀ )

**ସଦାଚାରୀ**—ସଂ. ବିଣ. ପୁଂ ( ସଦାଚାର + ଅସ୍ତି ଅର୍ଥରେ ଇନ୍; ୧ମା. ୧ବ )—ଯେ ସଦାଚାର ବା ସାଧୁ ଆଚରଣ କରେ—Practising or following a virtuous course of action.
Sadāchārī
(ସଦାଚାରିଣୀ—ସ୍ତ୍ରୀ)

**ସଦା ଜଏ(ୟେ)**—ଗ୍ରା. ବିଣ—ସର୍ବଦା ଜୟଯୁକ୍ତ—Always victorious. ଦେ. ବି ଓ ଅ.—ସର୍ବଦା ଜୟ—Constant victory. [ ଦ୍ର—କେତେକ ପ୍ରାଚୀନ ପୋଥିର ଆଦ୍ୟରେ ଲେଖକମାନେ ଶୁଭକାମନା କରି ଏ ବାକ୍ୟ ଲେଖିଥିବା ଦେଖାଯାଏ । ]
Sadā jae(ye)
सदा जय सदा जय

**ସଦା ଜୟ**—ଦେ. ବି ( ନାମ )—ପ୍ରାଚୀନ ଓଡ଼ିଆ କବି ବିଶେଷ—The name of an ancient Oriya poet. [ ଦ୍ର—ଏହି କବି ସାରଳା ସ୍ତୁତି, ମଙ୍ଗଳା ସ୍ତୁତି ଓ ବିମଳାସ୍ତୁତି ଲେଖିଥିଲେ—ଚାରଣୀ. ଉତ୍କଳ ସାହିତ୍ୟର ଇତିହାସ । ]
Sadā jaya
सदा जय सदा जय

ସଦାତନ—ସଂ. ବିଣ. ପୁଂ (ସଦା+ଘଟିବା ବା ହେବା ଅର୍ଥରେ ତନ)—
Sadātana ୧ । ଚିରସ୍ଥାୟୀ; ନିତ୍ୟ; ସନାତନ—1. Perma-
(ସଦାତନା—ସ୍ତ୍ରୀ) nent; perpetual; eternal. ୨ । ଅବି-
ଶ୍ରାନ୍ତ—2. Continual; incessant. ସଂ. ବି—
ବିଷ୍ଣୁଙ୍କର ଏକ ନାମ—An epithet of Bishṇu.

ସଦା ତୋୟା—ସଂ. ବି. ସ୍ତ୍ରୀ ( ସଦାତୋୟ+ସ୍ତ୍ରୀ. ଆ )—୧ । ରାସ୍ନା
Sadā toyā ( ଦେଖ )—1. Rāsnā ( See ). ୨ । ସଦା
ନୀରା (ଦେଖ)—2. Sadā nirā ( See )

ସଦାତ୍ମା—ସଂ. ବିଣ. ପୁଂ ( ବହୁବ୍ରୀହି; ସତ୍ ଅଟେ ଆତ୍ମନ୍=ଆତ୍ମା
Sadātmā ଯାହାର; ୧ମା. ୧ବ )—ସାଧୁ; ସଦନ୍ତଃକରଣ—
Having a good or noble heart.

ସଦା ଦାନ—ସଂ. ବି ( ବହୁବ୍ରୀହି; ସଦା=ସର୍ବଦା+ଦାନ=ମଦବାରି
Sadā dāna ବହେ ଯାହାଠାରୁ )—୧ । ମତ୍ତହସ୍ତୀ—1. An
infuriated elephant; an elephant in
his ruts. ୨ । ଐରାବତ ହସ୍ତୀ—2. Indra's
elephant. ୩ । ଗଣେଶ—3. The elephant-
headed son of Śiba. ୪ (ଅବ୍ୟୟୀଭାବ; ସଦା+
ଦାନ ) ସଦାବ୍ରତ; ଖଇରାତ—4. Charity; dis-
tribution of alms.

ସଦା ଦିନ(ନେ)—ଦେ. କ୍ରି. ବିଣ—୧ । ସବୁଦିନେ—1. Every
Sadā dina(ne) day. ୨ । ସବୁ ସମୟରେ—2. Al-
সব দিন ways. [ ଉ—ଭକ୍ତ ମୋ ଜୀବନ ଭକ୍ତ ଠାବର,
सबरोज ଭକ୍ତ ହୃଦରେ ସଦା ଦିନେ ଘର—ପ୍ରାଚୀ. ପରଚେଗୀତା ]

ସଦାନନ୍ଦ—ସଂ. ବିଣ. ପୁଂ ( ସଦା=ସର୍ବଦା+ଆନନ୍ଦ ଯାହାର;
Sadānanda ବହୁବ୍ରୀହି )—ନିତ୍ୟ ହର୍ଷଯୁକ୍ତ—Always
(ସଦାନନ୍ଦା—ସ୍ତ୍ରୀ) merry; perpetually joyful. ସଂ.
ବି—୧ । ବିଷ୍ଣୁ—1. Lord Bishṇu. ୨ । ଶିବ;
ମହାଦେବ—2. Lord Śiba. ୩ । ବ୍ରହ୍ମ; ପରମାତ୍ମା
—3. The Divine Soul pervading the
সদানন্দ Universe. ଦେ. ବି. ପୁଂ—ଲୋକଙ୍କ ନାମ—
सदानन्द A name of males.

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା—ଦେ. ବି ( ନାମ )—୧୮ଶ ଶତାବ୍ଦୀର
Sadānanda kabisūrjya brahmā ଶେଷ ଭାଗର ଗଡ-
ଜାତ ନୟାଗଡ଼ର ଜଣେ ବ୍ରାହ୍ମଣ ବୈଷ୍ଣବ କବି—
A Brahmaṇa and Baishṇaba poet of
Nayāgarda state of 18th century A. D.
[ ଦ୍ର—ଏ 'ନାମଚିନ୍ତାମଣି', 'ପ୍ରେମପଞ୍ଚାମୃତ' ଓ
'ପ୍ରେମଲହରୀ' ପ୍ରଭୃତି ଗ୍ରନ୍ଥର ପ୍ରଣେତା—ଜଗବନ୍ଧୁ. ପ୍ରାଚୀନ
କ । ]

ସଦାନନ୍ଦ ସଉଦାଗର—ଦେ. ବି. (ନାମ)—ସତ୍ୟପୀର ପାଲାରେ ବର୍ଣ୍ଣିତ
Sadānanda saudāgara ସଉଦାଗରର ବା ବଣିକ୍ ପୁତ୍ରର
(ସଦାନନ୍ଦ ସୌଦାଗର—ଅନ୍ୟରୂପ) ନାମ—Name of a
সদানন্দ সৌদাগর trader mentioned in one of
सदानन्द सौदागर the 'Satya Pīra Pālā' songs.

ସଦାନନ୍ଦ ହୃଦୟ—ସଂ. ବିଣ. ପୁଂ (ବହୁବ୍ରୀହି; ସଦାନନ୍ଦ ଅଟେ ହୃଦୟ
Sadānanda hṛudaya ଯାହାର)—ସର୍ବଦା ଆନନ୍ଦମୟ;
(ସଦାନନ୍ଦ ହୃଦୟା—ସ୍ତ୍ରୀ) ସବୁବେଳେ ପ୍ରଫୁଲ୍ଲ ଚିତ୍ତ—Always
joyful; always merry.

ସଦାନର୍ତ୍ତ—ସଂ. ବି ( ସଦା=ସବୁବେଳେ+ନର୍ତ୍ତ=ନର୍ତ୍ତକ )—
Sadānartta ଖଞ୍ଜନପକ୍ଷୀ; କଜ୍ଜଳପାଖି ଚଢ଼େଇ—The
blue wagtail (bird) ସଂ. ବିଣ. ପୁଂ—ସର୍ବଦା
(ସଦାନର୍ତ୍ତା—ସ୍ତ୍ରୀ) ନୃତ୍ୟକାରୀ—Constantly dancing.

ସଦାନୀରା—ସଂ. ବି ( ବହୁବ୍ରୀହି; ସଦା=ସର୍ବଦା+ନୀର=ଜଳ
Sadānirā ଯହିଁରେ )—ବଙ୍ଗ ଦେଶର କରତୋୟା ନଦୀ;
( ସଦାନୀରବହା—ଅନ୍ୟରୂପ ) କରତୋୟା ( ଦେଖ )—
Karatoyā. (See) [ଦ୍ର—ପୁରାଣ ମତରେ ସବୁ ନଦୀ
ଶ୍ରାବଣ ମାସରେ ରଜସ୍ୱଳା ହୁଅନ୍ତି; କିନ୍ତୁ ଏ ନଦୀ ରଜସ୍ୱଳା
ହୁଏ ନାହିଁ ।]

ସଦାନୁଗତ—ସଂ. ବିଣ. ପୁଂ—ସର୍ବଦା ଅଧୀନ (ବ୍ୟକ୍ତି)—
Sadānugata Always subservient (person).
(ସଦାନୁଗତା—ସ୍ତ୍ରୀ) (ସଦାନୁଗତ୍ୟ—ବି)

ସଦାପୁଷ୍ପ—ସଂ. ବି (ବହୁବ୍ରୀହି; ସଦା=ସବୁ ଋତୁରେ ପୁଷ୍ପ ଫୁଟେ
Sadāpushpa ଯାହାର; ସର୍ବଦା ପୁଷ୍ପଯୁକ୍ତ)—୧ । ନାରିକେଳ
ବୃକ୍ଷ; ନଡ଼ିଆଗଛ—1. Cocoanut tree. ୨ । ଧଳା
ଅର୍କ ଗଛ—2. The white variety of
Calotropis Gigantea plant. ସଂ. ବିଣ. ପୁଂ—
(ସଦାପୁଷ୍ପା—ସ୍ତ୍ରୀ) ସର୍ବଦା ପୁଷ୍ପଯୁକ୍ତ (ବୃକ୍ଷଲତାଦି); ସବୁ ଋତୁରେ
ଯହିଁର ଫୁଲ ଫୁଟେ—Flowering in all the
seasons of the year.

ସଦାପୁଷ୍ପୀ—ସଂ. ବି (ସଦା ପୁଷ୍ପ+ଙୀଷ୍. ଇନ୍; ୧ମା. ୧ବ)—ରକ୍ତାର୍କ
Sadāpushpi ବୃକ୍ଷ; ନାଲି ଅରଖ ଗଛ (ରତ୍ନମାଳା)—
The red variety of Calotropis Gigantea
plant.

ସଦାପ୍ରଭୁ—ଦେ. ବି (ଖ୍ରୀଷ୍ଟିୟାନ୍ ଧର୍ମପ୍ରଚାରକମାନଙ୍କ ବାଇବଲ୍
Sadāprabhu ଅନୁବାଦ ଅବଧିରେ ବ୍ୟବହୃତ ଶବ୍ଦ )—
সদাপ্রভু सदाप्रभु ପରମେଶ୍ୱର; ସନାତନ ପ୍ରଭୁ—The
Eternal God.

ସଦା ପ୍ରସୂନ—ସଂ. ବିଣ (ବୈଦ୍ୟକ)—(ବହୁବ୍ରୀହି, ସଦା=ସର୍ବଦା+
Sadā prasūna ପ୍ରସୂନ=ପୁଷ୍ପ ଯାହାର)—ସର୍ବଦା ପୁଷ୍ପଯୁକ୍ତ
(ସଦାପ୍ରସୂନା—ସ୍ତ୍ରୀ) (ବୃକ୍ଷ)—Always flowering. ସଂ. ବି—
୧ । ରୋହିତକ ବୃକ୍ଷ; ରୁଅମ ଗଛ—1. A timber
tree; Indian redwood. ୨ । ଅର୍କ ଗଛ—
2. Calotropis Gigantea. ୩ । କୁନ୍ଦ ଫୁଲ (ଗଛ
ବିଶେଷ)—3. A flowering shrub; Jasminum
Multiflorum.

**ସଦାଫଳ**—ସଂ. ବିଣ. ପୁ (ବହୁବ୍ରୀହି; ସଦା=ସବୁ ଋତୁରେ ଫଳ ହୁଏ ଯାହାର)—ସବୁ ଋତୁରେ ଫଳ ଧରିବା (ଗଛ)—(Tree) Bearing fruit in all seasons.
Sadāphala
(ସଦାଫଳା—ସ୍ତ୍ରୀ)
ସଂ. ବି—୧ । ନାରିକେଳ; ନଡ଼ିଆ (ମେଦିନୀ)—1. Cocoanut. ୨ । ଉଦୁମ୍ବର (ମେଦିନୀ)—2. Fig. ୩ । ବିଲ୍ୱ; ବେଲ (ଜଟାଧର)—3. Marmalos fruit and tree.

**ସଦାଫଳା**—ସଂ. ବି (ସଦାଫଳ+ଆ)—୧ । ନିଃସନ୍ତୁଷ୍ଟ; ଏକ ପ୍ରକାର ବାଇଗଣ, ନାଇଜର ବାଇଗଣ—A variety of brinjal; Solanum Melonga—variety Esculents, [ଏହି ବାଇଗଣ ଲମ୍ବା, ବଙ୍କା ଓ ନାଲି ରଙ୍ଗର ଏବଂ ସବୁ ଋତୁରେ ଫଳେ । ଏହି ବାଇଗଣଗଛ ତ୍ରିଦୋଷଘ୍ନ, ରକ୍ତ ପିତ୍ତ ପ୍ରସାଦକ; କଣ୍ଠ କଣ୍ଡୁ ଦୂର କରେ ।—ଭାବପ୍ରକାଶ] ୨ । ବୃହତୀ; ଭେଣ୍ଡି ବାଇଗଣ—2. Solanum Indicum. ୩ । ଏକ ପ୍ରକାର ଫୁଲ—3. A kind of flower.
Sadā phalā
ଅନ୍ୟ ସଂସ୍କୃତ ନାମ—1.
ଲୁଲୀ, ଲୁଲ୍ୟା,
ସୁସ୍ୱାଦୁଫଳିକା
ସଦା ବେଗୁନ, କୁଲୀ ବେଗୁନ
ଢ଼ାକୋ ବେଗୁନ, শিং বাবেগুন
लम्बा बैंगन
फगुनियाँ

[ଦ୍ର—ଏହା ନାଲି, ଧଳା ଓ କଳା ଭେଦରେ ତିନି ପ୍ରକାର । ବୈଦ୍ୟକମତରେ ଏହା ରୁଚିକାରକ ଏବଂ କଫ, କାଶ ଓ ତ୍ରିଦୋଷର ନାଶକ ।]
ଅନ୍ୟ ସଂସ୍କୃତ ନାମ—ସାନ୍ଧ୍ୟକୁସୁମା, ସନ୍ଧ୍ୟାକାଳୀ, ନିଶାନ୍ତ୍ୟକୁସୁମା, ବାଣ୍ଡୀ, ସୁକୁମାର, ସନ୍ଧିଜା

**ସଦାବର୍ତ୍ତ**—ଦେ. ବି. (ସଂ. ସଦାବ୍ରତ)—୧ । ସର୍ବଦା ଦାନ—1. Constant bestowal of gifts. ୨ । ଅନ୍ନସତ୍ର—2. Giving of doles; charitable distribution of rice etc. ୩ । କଙ୍ଗାଲୀ, ଉଦାସୀ ଓ ବୈରାଗୀମାନଙ୍କୁ ଆଶ୍ରୟ, ଭୋଜନ ଓ ଦାନ ଦେବାରୂପ ପୁଣ୍ୟ କର୍ମ—3. Pious act of giving shelter, food and alms to the poor, the beggars and mendicants; charities.
Sadābartta
সদাব্রত, सदावर्त

**ସଦାବର୍ତ୍ତ (ର୍ତ୍ତି) ଦେବା**—ଦେ. କ୍ରି.—ଲୋକଙ୍କୁ ଅନ୍ନସତ୍ର ଦେବା—To distribute food, shelter, money and alms; charitably.
Sadābartta(rtti)debā
সদাব্রত করা
सदावर्त देना

**ସଦାବର୍ତ୍ତ (ର୍ତ୍ତି) ମଠ**—ଦେ. ବି—ଅନ୍ନସତ୍ର ମଠ; ଯେଉଁ ମଠରେ ସମାଗତ ଅତିଥି ଓ ବୈରାଗୀମାନଙ୍କୁ ଆଶ୍ରୟ ଓ ଭୋଜନାଦି ଦେବା ନିମନ୍ତେ ସମ୍ପତ୍ତି ରହିଥାଏ—Charitable endowments.
Sadābartta(rtti)matha
সদাব্রতীমঠ; सदावर्त मठ

**ସଦାବର୍ତ୍ତ (ର୍ତ୍ତି) ସମ୍ପତ୍ତି**—ଦେ.ବି.—ଯେଉଁ ସମ୍ପତ୍ତିର ଆୟ ଅଭ୍ୟାଗତମାନଙ୍କ ଭୋଗାର୍ଥେ ରଖାଯାଇଥାଏ—Property endowed for charitable purposes; [ସଦାବ୍ରତ(ତ୍ତ) ସମ୍ପତ୍ତି—ଅନ୍ୟରୂପ] charitable endowment.
Sadābartta(rtti) sampatti
সদাব্রত সম্পত্তি,ধর্মবাতি সম্পত্তি
सदावर्त सम्पति

**ସଦାବର୍ତ୍ତି**—ଦେ. ବି.—ସର୍ବଦା କଙ୍ଗାଳୀ, ଯୋଗୀ, ଉଦାସୀ ଓ ବୈରାଗୀମାନଙ୍କୁ ଅନ୍ନସତ୍ର ଦେବାରୂପ ଧର୍ମକର୍ମ—Pious act of giving shelter, food and alms to the poor and beggars and mendicants. ଦେ. ବିଣ.—ସଦାବ୍ରତ ସମ୍ବନ୍ଧୀୟ—Relating to charities; charitable.
Sadābartti
সদাব্রতী
सदावर्त
সদাব্রতী, सदावर्ती

**ସଦାବର୍ତ୍ତିଆ**—ଦେ. ବିଣ.—୧ । ସଦାବର୍ତ୍ତ ସମ୍ବନ୍ଧୀୟ—1. Relating to charities. ୨ । ଅନ୍ନସତ୍ରଭୋଜୀ; ଯେଉଁମାନେ ଅନ୍ୟଠାରୁ ଆଶ୍ରୟ, ଖାଦ୍ୟ ଓ ଭିକ୍ଷା ଗ୍ରହଣ କରନ୍ତି—2. Living on the charitable gifts from others.
Sadābarttia সদাব্রতী; सदावर्ती
সদাব্রতগ্রাহী, सदावर्तलेनेवाला

**ସଦା ବି(ବେ)ହାରୀ**—ଦେ. ବି. (ସଂ. ସଦା+ବିହାରୀ; ଏହା ସବୁ ଋତୁରେ ଫୁଟେ)—ଅଇଁସିକାଢ ଫୁଲ ଓ ଟଗର ଫୁଲ—Myrtle; periwinkle. Vinca Minor; Vinca Alba and Vinca Rosea. [ଦ୍ର—(ସଂସ୍କୃତ ନାମ—ଫିରଙ୍ଗୀଟଗର) ଏହି ଗୁଳ୍ମ ଦେଢ଼ ହାତ ପର୍ଯ୍ୟନ୍ତ ଉଚ୍ଚ ହୁଏ । ଏହାର ଫୁଲ ଧଳା ଓ ଫିକା ନାଲି ଭେଦରେ ଦୁଇ ଜାତିର ଦେଖାଯାଏ । ଏହି ଗଛରୁ ଅନେକଗୁଡ଼ିଏ ଶାଖା ବାହାରେ । ସବୁ ଋତୁରେ ଏଥିରେ ଫୁଲ ଫୁଟେ । ପ୍ରତି ଫୁଲରୁ ଦୁଇଟି ଲେଖାଏଁ କଢ଼ି ହୁଏ । ପ୍ରତି ଫୁଲରେ ଗୋଟିଏ ଲେଖାଏଁ ପାଖୁଡ଼ା ଥାଏ । ଏହି ଫୁଲର କୌଣସି ଗନ୍ଧ ନାହିଁ ।]
Sadā bi(behāri)
ফিকা টগর, সদাইসুখী
सदाबहार
ଫା—ଗୁଲ୍-ଇ-ଫରଙ୍ଗ

**ସଦା ବେଳ**—ଦେ. ବି. (ଅଶୁଦ୍ଧ ପ୍ରୟୋଗ)—ସବୁ କାଳ; ସଦାକାଳ—All time.
Sadā bela সর্ব্বদা हमेशा

**ସଦାବେଳେ**—ଦେ. କ୍ରି. ବିଣ—ସର୍ବଦା; ସବୁ ସମୟରେ—Always; at all times. [ଦ୍ର—ଶୁଦ୍ଧରୂପ ସଦାବେଳେ ଥିବ । ପ୍ରାଚୀ. ଶ୍ରୀଗୁରୁଭକ୍ତି ଗୀତା ।]
Sadābele
সর্ব্বদাই हमेशा ହୋଇ କରି

**ସଦାବ୍ରତ**—ସଂ. ବି (ସଦା=ସର୍ବଦା+ବ୍ରତ=ପୁଣ୍ୟକାର୍ଯ୍ୟ)—୧ । ଅନ୍ନସତ୍ର—1. Charitable distribution of cooked rice to the needy. ୨ । ସଦାବର୍ତ୍ତ; ସଦାଦାନ; ଅନ୍ନସତ୍ର—2. Charitable distribution of rice and food and alms and giving shelter.
Sadābrata

**ସଦାବ୍ରତ**—ଦେ. ବି. ଓ ବିଣ—ସଦାବର୍ତ୍ତି (ଦେଖ)
Sadābrati Sadābartti. (See)

**ସଦାବ୍ରତିଆ**—ଦେ. ବିଣ—ସଦାବର୍ତ୍ତିଆ (ଦେଖ)
Sadābratiā Sadābarttiā (See)

**ସଦାଭଦ୍ରା**—ସଂ. ବି—ଗମ୍ଭାରି ଗଛ (ଶବ୍ଦ ରତ୍ନମାଳା) (ଦେଖ)
Sadābhadrā Gambhāri (tree), (See)

**ସଦାଭବ**—ସଂ. ବଣ (ସଦା+ଭୂ ଧାତୁ=ହେବା+କର୍ତ୍ତୃ ଅ)—
Sadābhaba ସଦାତନ (ଦେଖ)—Sadātana. (See)
(ସଦାଭବା—ସ୍ତ୍ରୀ)

**ସଦାମୁନି**—ସଂ. ବ—ଯେଉଁ ଗୃହସ୍ଥ ସର୍ବଦା ମୁନିବୃତ୍ତି ଅବଲମ୍ବନ କରନ୍ତି
Sadāmuni (ଅର୍ଥାତ୍ ମଦ୍ୟ ଓ ଆମିଷାଦି ଭକ୍ଷଣ ନ କରି, ବ୍ରହ୍ମଚର୍ଯ୍ୟ
(ସଦାଯୋଗୀ—ଅନ୍ୟରୂପ) ଅବଲମ୍ବନ କରନ୍ତି)—A householder who practises abstinence in food, drink and sexual matters; a householder practising continence.

**ସଦା ଯୋଗୀ**—ସଂ. ବ—୧। ବିଷ୍ଣୁ (ହିକାଣ୍ଡ ଶେଷ)—
Sadā jogī 1. An epithet of Bishṇu.
୨। ସଦା ମୁନି (ଦେଖ)—2. Sadāmuni (See)

**ସଦାର**—ସଂ. ବଣ. ପୁଂ (ସହାର୍ଥ ବହୁବ୍ରୀହି; ସ+ଦାର=ପତ୍ନୀ)—
Sadāra ୧। ସପତ୍ନୀକ—1. Accompanied with or joined by one's wife. ୨। ଯାହାର ସ୍ତ୍ରୀ ଜୀବିତା—
2. Having one's wife living.

**ସଦାଲାପ**—ସଂ. ବ (କର୍ମଧା; ସତ୍+ଆଲାପ)—୧। ଉତ୍ତମ ବା ଭଦ୍ର
Sadālāpa କଥାବାର୍ତ୍ତା—1. Polite talk; friendly
(ସଦାଲାପୀ—ବଣ ପୁଂ) conversation. ୨। ସତ୍‌କଥା (ଦେଖ)—
(ସଦାଲାପିନୀ—ବଣ. ସ୍ତ୍ରୀ) 2. Sat-kathā. (See)

**ସଦାଶଙ୍କିତ**—ସଂ. ବଣ, ପୁ—ନିତ୍ୟ ଶଙ୍କାଯୁକ୍ତ—
Sadā śankita Always apprehensive.
[ ସଦା ଶଙ୍କିତା—ସ୍ତ୍ରୀ ]

**ସଦାଶୟ**—ସଂ. ବଣ. ପୁଂ (ବହୁବ୍ରୀହି; ସତ୍ ଅଟେ ଆଶୟ=ଚିତ୍ତ
Sadāśaya ଯାହାର)—ମହାଶୟ; ସହୃଦୟ; ଉଦାରଚେତାଃ—
(ସଦାଶୟା—ସ୍ତ୍ରୀ) Magnanimous; noble-minded;
[ସଦାଶୟତା—ବ] high-minded.

**ସଦାଶିବ**—ସଂ. ବ (ସଦା=ସର୍ବଦା+ଶିବ=ଶୁଭଦ)—ମହାଦେବ;
Sadāśiba ଶିବ—Śiba. ଦେ. ବ. ପୁଂ—ଲୋକଙ୍କ ନାମ—
सदाशिव سداشیو A name of males.

**ସଦାଶିବ ବିଦ୍ୟାଭୂଷଣ**—ଦେ. ବ (ନାମ)—ଗଞ୍ଜାମ ବ୍ରହ୍ମପୁରବାସୀ
Sadāśiba bidyābhūshaṇa ସ୍ୱର୍ଗୀୟ ଉତ୍କଳୀୟ ବ୍ରାହ୍ମଣ
ପଣ୍ଡିତ—A late Oriya Brahmin Pandit of Berhampur of Ganjam district.
[ବି—୧୮୬୨ ଖ୍ରୀଷ୍ଟାବ୍ଦରେ ଏହାଙ୍କର ଜନ୍ମ ଏବଂ ୧୯୩୦ ଖ୍ରୀଷ୍ଟାବ୍ଦରେ ପରଲୋକପ୍ରାପ୍ତି। ଏ ମାମୁଘରେ ବ୍ରହ୍ମପୁରଠାରେ ଜନ୍ମଗ୍ରହଣ କରି ମାମୁଙ୍କର ପୋଷ୍ୟପୁତ୍ର ହୋଇଥିଲେ। ଏହାଙ୍କ ଜନ୍ମଦାତା ପିତା ନାରାୟଣ ମିଶ୍ର ଅନ୍ଧ୍ର ପ୍ରଦେଶର ପାଲକୋଣ୍ଡା ରାଜ୍ୟବାସୀ ଥିଲେ। ଏହାଙ୍କ ମାତା ଅନ୍ନପୂର୍ଣ୍ଣା ସଂସ୍କୃତ, ଓଡ଼ିଆ ଓ ତେଲଗୁ ଭାଷାରେ ସୁପଣ୍ଡିତା ଥିଲେ। ଏହାଙ୍କ ପାଳକ ପିତା (ମାତୁଳ) ଚନ୍ଦ୍ରଶେଖର ସୂର୍ଯ୍ୟପୁରୁ ଚିକିଟି ରାଜାଙ୍କ ସଭାପଣ୍ଡିତ ଥିଲେ। ବ୍ରହ୍ମପୁର ନର୍ମାଲ୍ ସ୍କୁଲରେ ଏକ ବର୍ଷ ଅଧ୍ୟୟନ କରି ନିମ୍ନ ୪ର୍ଥ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହେବାପରେ ଏହାଙ୍କ ସ୍କୁଲ ଶିକ୍ଷା ସାଙ୍ଗ ହୋଇଥିଲା; କିନ୍ତୁ ଘରେ ବହୁ ଶାସ୍ତ୍ରାନୁଶୀଳନ କରି ଏ କାବ୍ୟ, ନାଟକ, ସଙ୍ଗୀତ, ବ୍ୟାକରଣ ଆଦିରେ ପାଣ୍ଡିତ୍ୟ ଲାଭ କରିଥିଲେ। ଉତ୍କଳ ଭାଷା, ଉତ୍କଳ ସାହିତ୍ୟ ଓ ଉତ୍କଳୀୟ ସଙ୍ଗୀତ ଚର୍ଚ୍ଚାରେ ଆପଣାକୁ ନିୟୋଜିତ କରି ତାହାଙ୍କର ଗ୍ରନ୍ଥାଦିକ ଓଡ଼ିଶା ସଙ୍ଗେ ଗଞ୍ଜାମର ମିଶ୍ରଣ ସମ୍ବନ୍ଧେ ଏ ସବିଶେଷ ଚେଷ୍ଟା କରିଥିଲେ। ଏ ଗଞ୍ଜାମସ୍ଥ ଚିକିଟି ରାଜ୍ୟର ରାଜା ରାଧାମୋହନ ରାଜେନ୍ଦ୍ର ଦେବଙ୍କ ସଭାପଣ୍ଡିତ ଥାଇ ତାଙ୍କୁ ଅନେକଗୁଡ଼ିଏ ଓଡ଼ିଆ ନାଟକ ରଚନାରେ ଖୁବ୍ ସହାୟତା କରିଥିଲେ। ଏ ଇଂରାଜୀ, ବଙ୍ଗଳା, ହିନ୍ଦୀ, ତେଲଗୁ, ମରହଟ୍ଟୀ, ଗୁଜରାଟୀ, ତାମିଲ ପ୍ରଭୃତି ଭାଷାଭିଜ୍ଞ ଥିଲେ। ତେଲଗୁ, ଓଡ଼ିଆ, ବଙ୍ଗଳା, ସଂସ୍କୃତ ଓ ହିନ୍ଦୀରେ ଏ ଅତି ସୁନ୍ଦରରୂପେ ବକ୍ତୃତା କରି ପାରୁଥିଲେ। ସଦାଶିବଙ୍କର ଜ୍ଞାନପିପାସା ଅତି ପ୍ରବଳ ଥିଲା। ଏ ବଙ୍ଗ, ବିହାର, ଓଡ଼ିଶା, ମାନ୍ଦ୍ରାଜ, ବମ୍ବେଇ ଆଦି ବିଭିନ୍ନ ଅଞ୍ଚଳ ପୁନଃ ପୁନଃ ପର୍ଯ୍ୟଟନ କରି ନିଜର ଜ୍ଞାନଭଣ୍ଡାର ବଢ଼ାଇଥିଲେ। ରଙ୍ଗମଞ୍ଚ ଓ ରଙ୍ଗଭୂମି ତାଙ୍କର ସବୁଠାରୁ ଅଧିକ ପ୍ରିୟସ୍ଥଳ ଥିଲା। ଏ ତେଲଗୁରେ ଓ ସଂସ୍କୃତରେ ଗୁଡ଼ିଏ ସଙ୍ଗୀତ ଓ ନାଟକ ରଚନା କରିଥିଲେ। ବାଲ୍ୟକାଳରୁ ଏହାଙ୍କର ନାଟକ ଅଭିନୟ ଦିଗରେ ସ୍ପୃହା ଥିଲା। ଯୌବନ ବୟସରେ ଏ ବ୍ରହ୍ମପୁରରେ ଗୋଟିଏ ଓଡ଼ିଆ ନାଟକଦଳ ଗଠନ କରିଥିଲେ। ବର୍ତ୍ତମାନ ବ୍ରହ୍ମପୁରରୁ ପ୍ରକାଶିତ 'ଓଡ଼ିଆ' ନାମକ ସାପ୍ତାହିକ ସମ୍ବାଦପତ୍ରର ସମ୍ପାଦକ ପଣ୍ଡିତ ଅନନ୍ତ ଅଗ୍ରଯୀ ଏହାଙ୍କ ଭ୍ରାତୃଷ୍ପୁତ୍ର ଅଟନ୍ତି।]

**ସଦାଶିବ ମିଶ୍ର**—ଦେ. ବ—(ନାମ)—ପୁରୀ ଜିଲ୍ଲାର ଜଣେ ସ୍ୱର୍ଗୀୟ
Sadāśiba misra କୁଳୀନ ବ୍ରାହ୍ମଣ ପଣ୍ଡିତ—Late Pandit Sadāśiba Misra, Brahmin Pandit of Puri district. [ବି—ଓଡ଼ିଶାରେ, ବିଶେଷତଃ ରକ୍ଷଣଶୀଳ ବ୍ରାହ୍ମଣମାନଙ୍କ ମଧ୍ୟରେ ଇଂରାଜୀ ଶିକ୍ଷା ପ୍ରଚଳନ କରାଇବା ପାଇଁ ଏ ବିଶେଷ ଯତ୍ନ କରି ଜିଲ୍ଲାର କର୍ତ୍ତୃପକ୍ଷମାନଙ୍କୁ ସବିଶେଷ ସାହାଯ୍ୟ କରିଥିଲେ। ଏହାଙ୍କ ଚେଷ୍ଟାରେ ପୁରୀଜିଲ୍ଲାର ବ୍ରାହ୍ମଣମାନେ ଅଧିକ ଶିକ୍ଷା ପ୍ରତି ଅଗ୍ରହାନ୍ୱିତ ହୋଇଥିଲେ।]

**ସଦାଶିବ ମିଶ୍ର କାବ୍ୟକଣ୍ଠ (ମହାମହୋପାଧ୍ୟାୟ)**—ଦେ. ବ (ନାମ)-
Sadāśiba misra kābyakaṇṭha (mahāmahopādhyāya) ଓଡ଼ିଶାର ସଂସ୍କାରକାମୀ ଜଣେ ପ୍ରସିଦ୍ଧ ସ୍ୱର୍ଗୀୟ ବ୍ରାହ୍ମଣ ପଣ୍ଡିତ—The late famous Brahmin Pandit of Orissa. [ବି—ଏ ପୁରୀ ସହରରୁ ପାଞ୍ଚ ମାଇଲ୍ ଦୂରବର୍ତ୍ତୀ ଶାସନ ଦାମୋଦରପୁରରେ ୧୮୬୨ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ ଏବଂ ୭୩ ବର୍ଷ ବୟସରେ ତା ୧୬-୧୨-୧୯୩୫ ରେ

ଉତ୍ତରଲୀଳା ସାଙ୍ଗ କଲେ । ଏ ବାଲ୍ୟକାଳରେ ଗ୍ରାମର ପ୍ରାଇମେରୀ ବିଦ୍ୟାଳୟରେ ପଢିସାରି ପୁରୀ ସଂସ୍କୃତ ସ୍କୁଲରେ ଉପାଧି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ୧୮୮୫ ଖ୍ରୀଷ୍ଟାବ୍ଦରେ ଶିକ୍ଷାବିଭାଗର ଅଧୀନତାରେ ସରକାରୀ ଚାକିରୀ ଗ୍ରହଣ କରି ପୁରୀ ଜିଲ୍ଲାସ୍କୁଲର ହେଡ୍ ପଣ୍ଡିତ କାର୍ଯ୍ୟରେ ରହିଲେ। ଏହି କାର୍ଯ୍ୟରେ ଦୀର୍ଘ ୩୪ ବର୍ଷ କାଳ ରହି ଏ ଖୁବ୍ ସୁନାମ ଅର୍ଜନ କରିଥିଲେ। ୧୯୦୯ ରେ ଏ ଗବର୍ଣ୍ଣମେଣ୍ଟଙ୍କ ଦ୍ୱାରା 'ମହାମହୋପାଧ୍ୟାୟ' ଉପାଧିରେ ଭୂଷିତ ହୋଇଥିଲେ । ଏହାଛଡ଼ା ଭାରତ ଧର୍ମମହାମଣ୍ଡଳ ଆଦି ସଭା ତାଙ୍କୁ 'ମନ୍ତ୍ରୋପଦେଶକ', 'ବିଦ୍ୟାଭୂଷଣ' ଓ 'ଉତ୍କଳ ଭୂଷଣ' ଉପାଧିମାନ ଦେଇଥିଲେ ।

ଏ ଉତ୍କଳରେ ଶିକ୍ଷା ବିସ୍ତାର ଓ ବ୍ରାହ୍ମଣସମାଜର ଉନ୍ନତି ପାଇଁ ନାନା ଦେଶହିତକର ଅନୁଷ୍ଠାନରେ ଉଦ୍ୟୋଗୀ ରୂପେ ନିଜର ବହୁ ସମୟ ବିନିଯୋଗ କରିଥିଲେ । ଉତ୍କଳ ବ୍ରାହ୍ମଣ ସମିତି, ପୁରୀ ମୁକ୍ତି ମଣ୍ଡପ ପଣ୍ଡିତ ସଭା, ପୁରୀର କର୍ମକାଣ୍ଡ ବେଦ-ବିଦ୍ୟାଳୟ ଓ ଚନ୍ଦ୍ରଶେଖର ହାଇ. ଏହାଙ୍କ ପ୍ରତିଷ୍ଠାନମାନଙ୍କ ମଧ୍ୟରେ ପ୍ରଧାନ । ଏ ନିଜ ଗ୍ରାମରେ ଗୋଟିଏ ମାଇନର୍ ସ୍କୁଲ ବସାଇଥିଲେ । ଏହା ଛଡ଼ା ଏ ପୁରୀ ମୁକ୍ତିମଣ୍ଡପ ପଣ୍ଡିତ ସଭାର ସଭାପତି, ବଙ୍ଗଳା ଅସିଆଟିକ୍ ସୋସାଇଟିର ସଦସ୍ୟ, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ସଦସ୍ୟ, ବିହାର ଓଡ଼ିଶା ସଂସ୍କୃତ କାଉନ୍ସିଲ୍‌ର ମେମ୍ବର, ପାଟଣା ବିଶ୍ୱବିଦ୍ୟାଳୟର ସିନେଟ୍‌ର ମେମ୍ବର, ମଥୁରାର ବ୍ରଜମଣ୍ଡଳର ସଂସ୍କୃତ ବିଶ୍ୱବିଦ୍ୟାଳୟର ଚାନ୍ସେଲର୍ ଏବଂ ପାଟଣା ଓ ବଙ୍ଗଳା ବିଶ୍ୱବିଦ୍ୟାଳୟମାନଙ୍କର ସଂସ୍କୃତ ପରୀକ୍ଷକ ଥିଲେ । ଏ ସଂସ୍କୃତ ଶିକ୍ଷା ସମ୍ବନ୍ଧୀୟ ଭାରତୀୟ ଅଧିକାଂଶ ଅନୁଷ୍ଠାନ ଓ ସଭା ସମିତିମାନଙ୍କ ସଙ୍ଗେ ସଂପୃକ୍ତ ଥିଲେ । ଏହାଙ୍କ ସମୟରେହିଁ ମୁକ୍ତିମଣ୍ଡପ ପଣ୍ଡିତ ସଭା ତରଫରୁ ବିହାରର ଲାଟ୍ ସାର୍ ଏଡ୍‌ୱାର୍ଡ଼ ଗେଟ୍, କେ. ଏସ୍. ମାକ୍‌ଡୋନାଲ୍‌ଡ, ସୋନପୁରର ସ୍ୱର୍ଗତ ମହାରାଜ ଆଦିଙ୍କୁ ସମ୍ମାନସୂଚକ ଉପାଧିମାନ ପ୍ରଦତ୍ତ ହୋଇଥିଲା ।

ଏ ଉତ୍କଳପ୍ରଚଳିତ ସ୍ମୃତି ଶାସ୍ତ୍ରମାନଙ୍କରୁ ସାର ସଂଗ୍ରହ କରି 'କଲ୍ୟାପଦ୍ଧର୍ମ ସର୍ବସ୍ୱ' ନାମକ ଗୋଟିଏ ପ୍ରକାଣ୍ଡ ସଂସ୍କୃତ ଗ୍ରନ୍ଥ ରଚନା କରିଥିଲେ । ଏହା ଛଡ଼ା ପୁରୁଷୋତ୍ତମ କ୍ଷେତ୍ର ତତ୍ତ୍ୱ, ଭାରତୀୟ ଆର୍ଯ୍ୟ ଦର୍ଶନ, ଜଗନ୍ନାଥ ମନ୍ଦିର, ବ୍ୟାକରଣାନୁଶୀଳନୀ, ମହାଷ୍ଟମୀ ବ୍ୟବସ୍ଥା ଆଦି ଗ୍ରନ୍ଥମାନ ମଧ୍ୟ ଏହାଙ୍କ ରଚନା ।

ସୋନପୁରର ସ୍ୱର୍ଗୀୟ ମହାରାଜ ସାର ବୀରମିତ୍ରୋଦୟ ସିଂହ ଦେବ ଧର୍ମନିଧି ଜ୍ଞାନଗୁଣାକର K. C. I. E. ଙ୍କ ଅର୍ଥ ସାହାଯ୍ୟରେ ଏ କେତେ ଖଣ୍ଡ ସଂସ୍କୃତ ଗ୍ରନ୍ଥର ମୁଦ୍ରଣ କରାଇଥିଲେ ।

ଏ ସର୍ବଦା ଦେଶର ସାଧାରଣ କାର୍ଯ୍ୟରେ ପରିଶ୍ରମ କରୁଥିଲେ ଏବଂ ନିଜେ ଜଣେ ନୈଷ୍ଠିକ ବ୍ରାହ୍ମଣ ଥାଇ ମଧ୍ୟ ହିନ୍ଦୁ ସମାଜରେ ସମୟୋଚିତ ସଂସ୍କାରର ପକ୍ଷପାତୀ ଥିଲେ । ଏ ଇଂରାଜୀ ପଢି ନ ଥିଲେ; କିନ୍ତୁ ଆଧୁନିକ ସମାଜରେ ପ୍ରବର୍ତ୍ତିତବ୍ୟ ବିଧବାବିବାହ, ସମୁଦ୍ର-ଯାତ୍ରା ଆଦି ସମ୍ବନ୍ଧରେ ଏହାଙ୍କ ମତ ମରହଟ୍ଟୀ ରକ୍ଷଣଶୀଳ ପଣ୍ଡିତମାନଙ୍କ ମତ ଅପେକ୍ଷା ଉଦାରତର ଥିଲା । ଧର୍ମ, ସାହିତ୍ୟ ଓ ସମାଜ ସମ୍ବନ୍ଧୀୟ ଏହାଙ୍କର ବହୁ ପ୍ରବନ୍ଧ ସାମୟିକ ପତ୍ରପତ୍ରିକାମାନଙ୍କରେ ପ୍ରକାଶିତ ହୋଇଥିଲା । ସରକାର ଭୁବନେଶ୍ୱର ମନ୍ଦିର ମରାମତି କାର୍ଯ୍ୟର ଭାର ଗ୍ରହଣ କରିବା ପୂର୍ବରୁ ଏ ସାଧାରଣ ଚନ୍ଦାଦ୍ୱାରା ଉକ୍ତ ମନ୍ଦିରର ମରାମତି କାର୍ଯ୍ୟର ସୂତ୍ରପାତ କରିଥିଲେ । ଏହିରୂପେ ତାଙ୍କର ସମଗ୍ରଜୀବନ ସାମାଜିକ ନାନା କର୍ମଜାଳରେ ସତତ ବିଜଡ଼ିତ ଥିଲା । ପୁରୀରେ ଏହାଙ୍କ ବିୟୋଗଜନିତ ଅଭାବ ଗତ ୧୦ ବର୍ଷ ମଧ୍ୟରେ ପୂର୍ଣ୍ଣ ହୋଇ ପାରି ନାହିଁ ।]

ସଦାଶ୍ରିତ—ସଂ. ବିଣ. ପୁଂ (ସତ୍+ଆଶ୍ରିତ)—୧ । ଯେ ସାଧୁ ବ୍ୟକ୍ତିଙ୍କ
Sadāśrita ଆଶ୍ରୟ ଗ୍ରହଣ କରି ଅଛନ୍ତି—1. One who has
(ସଦାଶ୍ରିତା—ସ୍ତ୍ରୀ) taken shelter under a good man.
୨ । (ସଦା+ଆଶ୍ରିତ) (କୌଣସି ବ୍ୟକ୍ତିଙ୍କର) ସର୍ବଦା ଆଶ୍ରୟାଧୀନ—2. Always dependent on.

ସଦା ସର୍ବଦା—ଦେ. କ୍ରି. ବିଣ (ଏକାର୍ଥ ସହଚର)—୧ । ସଦା; ସର୍ବଦା;
Sadā sarbadā ସବୁ ବେଳେ—1. Always. ୨ । ନିରନ୍ତର
সদাসর্বদা सदासर्वदा —2. Constantly.

ସଦିଚ୍ଛା—ସଂ. ବି (କର୍ମଧା)—ସାଧୁ ଇଚ୍ଛା; ସାଧୁ ସଂକଳ୍ପ—A good
Sadichchhā wish; honest desire.

ସଦୁକ୍ତ—ସଂ. ବିଣ ( ସତ୍+ଉକ୍ତ )—୧ । ଉତ୍ତମ ରୂପେ କଥିତ—
Sadukta 1. Well spoken. ୨ । ଉପଯୁକ୍ତ ରୂପେ ଉକ୍ତ —2. Properly or rightly said.

ସଦୁକ୍ତି—ସଂ. ବି. (କର୍ମଧା) -୧ । ସାଧୁକ୍ତି—1 Good saying.
Sadukti ୨ । ମହାପୁରୁଷମାନଙ୍କ ବଚନ—2. Sayings of great men.

ସଦୁତ୍ତର—ସଂ. ବି (ସତ୍+ଉତ୍ତର) (କର୍ମଧା)—୧ । ଉତ୍ତମ ଉତ୍ତର—
Saduttara 1. Good reply. ୨ । ଉପଯୁକ୍ତ ଉତ୍ତର— 2. Proper reply; fit answer.

ସଦୁଦ୍ଦେଶ୍ୟ—ସଂ. ବି. (କର୍ମଧା; ସତ୍+ଉଦ୍ଦେଶ୍ୟ)—1. Honest
Saduddeśya intention. ୨ । ମହତ୍ ଅଭିପ୍ରାୟ— 2. Noble aim.

ସଦୁପଦେଶ—ସଂ. ବି ( କର୍ମଧା; ସତ୍+ଉପଦେଶ )—୧ । ଉତ୍ତମ
Sadupadeśa ଉପଦେଶ—1. Good advice or instruction. ୨ । ମଙ୍ଗଳକର ପରାମର୍ଶ—2. Salutary
(ସଦୁପଦେଶକ—ବିଣ. ପୁ.) advice.

ସଦୁପଦେଶ ଗର୍ଭ—ସଂ, ବିଣ (ବହୁବ୍ରୀହି; ସଦୁପଦେଶ ଅଛି ଗର୍ଭରେ
Sadupadeśa garbha ଯାହାର )—ସଦୁପଦେଶ ପୂର୍ଣ୍ଣ
(ସଦୁପଦେଶ ଗର୍ଭିଣୀ—ଅନ୍ୟରୂପ) ( ବାକ୍ୟ )—Full of salutary advice.

ସଦୁପାୟ—ସଂ. ବି (କର୍ମଧା)—୧ । ସତ୍ ଉପାୟ; ଉତ୍ତମ ଉପାୟ—
Sadupāya 1. Good means. ୨ । ଉପଯୁକ୍ତ ଉପାୟ - 2. Proper means.

· ସଦୃକ୍—ସଂ. ବିଣ. ପୁଂ (ସ=ସମାନ, ଅନୁରୂପ+ଦୃଶ୍ ଧାତୁ= Sadṛuk ଦେଖିବା+କର୍ମ. କ୍ୱିପ୍; ସଦୃଶ୍ ଶବ୍ଦର ୧ମା ୧ବ)—(ସଦୃଶୀ—ସ୍ତ୍ରୀ) ୧ । ସଦୃଶ; ତୁଲ୍ୟ; ଅନୁରୂପ—1. Similar. ୨ । ଉପଯୁକ୍ତ; ଯୋଗ୍ୟ—2. Fit; fitting.

ସଦୃକ୍ଷ—ସଂ. ବିଣ. ପୁଂ (ସ=ସମାନ+ଦୃଶ୍ ଧାତୁ+କର୍ମ. ସକ୍)—Sadṛuksha ସମାନ; ତୁଲ୍ୟ—Similar to; resembling [ସଦୃକ୍ଷା, ସଦୃକ୍ଷୀ—ସ୍ତ୍ରୀ]

ସଦୃଶ୍—ସଂ. ବିଣ (ସ+ଦୃଶ୍ ଧାତୁ+କର୍ମ. କ୍ୱିପ୍)—ସଦୃକ୍ (ଦେଖ) Sadṛus Sadṛuk. (See)

ସଦୃଶ—ସଂ. ବିଣ. ପୁଂ (ସ=ସମାନ+ଦୃଶ୍ ଧାତୁ+କର୍ମ. ଅ)—Sadṛusa ୧ । ସମାନ; ତୁଲ୍ୟ—1. Equal to; similar (ସଦୃଶୀ—ସ୍ତ୍ରୀ) to, same as, resembling. ୨ । ଉପଯୁକ୍ତ; [ସାଦୃଶ୍ୟ, ସଦୃଶତା—ବି] ଯୋଗ୍ୟ—2. Fit, befitting; fitting. ଦେ. ଅ.—ପରି—Like.

ସଦୃଶ ବ୍ୟବସ୍ଥା—ଦେ· ବି (ଅଧୁନିକ ପ୍ରୟୋଗ)—ହୋମିଓପାଥି Sadṛusa byabasthā ଚିକିତ୍ସା—Homeopathy; सदृशव्यवस्था the system of Homoeopathic होमियोपैथिक चिकित्सा treatment. [ବି—ଏହି ଚିକିତ୍ସା-ନୀତିର ବ୍ୟବସ୍ଥା ଏହି କି, ଯେଉଁ ଦ୍ରବ୍ୟ ସେବନ କଲେ କୌଣସି ରୋଗ ବା ରୋଗର ଲକ୍ଷଣ ଉତ୍ପନ୍ନ ହୁଏ, ପୁଣି ସେହି ଦ୍ରବ୍ୟର ଅଲ୍ପମାତ୍ରା ପ୍ରୟୋଗ ଦ୍ୱାରା ସେହି ରୋଗର ନିରାକରଣ ହୁଏ ।]

· ସଦୃଶା—ଗ୍ରା. ବିଣ (ପ୍ରାଚୀନ ପଦ୍ୟ)—ସଦୃଶ (ଦେଖ)—Sadṛusā Sadṛusa (See)
[ଉ—ଉଭସି ସିବାକୁ ନାହିଁ ଉଭସା,
ଖଣ୍ଡାଧାର ବାଟ ସେହି ସଦୃଶା ।
—ପ୍ରାଚୀ. ପରଚେ ଗୀତା]

· ସଦୃଶି—ଗ୍ରା· ଅ (ପ୍ରାଚୀନ ପଦ୍ୟ)—ପରି; ସଦୃଶ—Alike; Sadṛusi सदृश सदृश resembling.
[ଉ—ବଭୀଷଣ ଲୁମ୍ଭକର୍ଣ୍ଣ ମନ୍ଦର ନ ନାଶି,
ବଡ ମାର୍କଣ୍ଡେୟ କଛ ପ୍ରଳୟ ସଦୃଶି ।
—ଉଞ୍ଜ, ବୈଦେହୀଶବିଳାସ]

· ସଦୃଷ୍ଟାନ୍ତବାଦୀ—ସଂ. ବିଣ. ପୁଂ—ଉପଯୁକ୍ତ ଦୃଷ୍ଟାନ୍ତ ଦର୍ଶାଇବାକୁ ସକ୍ଷମ—Sadṛustānta bādi Able to cite similer instances or similes in speech. ସଂ. ବି. ପୁଂ—ଯେଉଁ ବ୍ୟକ୍ତି କଥାବାର୍ତ୍ତାରେ ଉପଯୁକ୍ତ ଦୃଷ୍ଟାନ୍ତ ବ୍ୟବହାର କରନ୍ତି—A person who uses similes or similar instances in ordinary conversation.

· ସଦେଇ—ଦେ.ବି.ପୁଂ—(ନାମ)—ସଦାନନ୍ଦ ବା ସଦାଶିବର ଅଦରାର୍ଥକ Sadei ଡାକନାମ—Name for calling Sadānanda सदाई सदानन्द or Sadāsiba.

ସଦେଶ—ସଂ. ବିଣ. (ବହୁବ୍ରୀହି; ସ=ସମାନ+ଦେଶ)—୧ । ଏକ Sadesa ଦେଶସ୍ଥ—1. Of the same country. ୨ । ସମାନ ଦେଶୀୟ—2. Of a similar tract of country. ୩ । (ସ=ସହିତ+ଦେଶ) ସମୀପସ୍ଥ; ନିକଟବର୍ତ୍ତୀ—3. Contiguous; adjoining.

ସଦେଶଜ—ସଂ· ବିଣ (ସଦେଶ+ଜନ୍ ଧାତୁ+କର୍ତ୍ତି ଅ)—ଏକ Sadesaja ଦେଶଜାତ—Born or produced in the same country.

ସଦ୍ଧନ—ସଂ. ବି (ସତ୍+ଧନ; ସଦୁପାୟାର୍ଜ୍ଜିତ ଧନ; ମଧ୍ୟପଦଲୋପୀ)-Saddhana ସଦୁପାୟରେ ଅର୍ଜିତ ଧନ—Wealth earned honestly; honestly acquired wealth.

ସଦ୍ଧର୍ମ—ସଂ· ବି (କର୍ମଧା; ସତ୍+ଧର୍ମ)—୧ । ଶ୍ରେଷ୍ଠ ଧର୍ମ—1. Saddharma An eminent religion. ୨ । ଉତ୍ତମ କର୍ମାନୁଷ୍ଠାନ—2. A good observance. ୩ । ବୌଦ୍ଧ ଧର୍ମ—3. The Buddhistic religion; Buddhism. [ବି—ବୌଦ୍ଧ ଶାସ୍ତ୍ରୋକ୍ତ ତ୍ରିରତ୍ନ (ଯଥା, ବୁଦ୍ଧ, ସଙ୍ଘ ଓ ଧର୍ମ) ମଧ୍ୟରେ ଧର୍ମ ଏକତମ ଅଟେ ।]

ସଦ୍ଧର୍ମ ବିଶାରଦ—ସଂ· ବିଣ. ପୁଂ (କର୍ମଧା, ୭ମୀ ତତ୍)—ବୌଦ୍ଧ-Saddharma bisārada ଧର୍ମରେ ପାରଦର୍ଶୀ—Versed (ସଦ୍ଧର୍ମ ବିଶାରଦା—ସ୍ତ୍ରୀ) in Buddhism. ସଂ. ବି—ବୌଦ୍ଧ ସନ୍ନ୍ୟାସୀଙ୍କର ଉପାଧି ବିଶେଷ—One of the titles of Buddhist saints.

ସଦ୍ଧେତୁ—ସଂ· ବି (ସତ୍+ହେତୁ)—(ନ୍ୟାୟଶାସ୍ତ୍ର)—ହେତ୍ୱାଭାସ Saddhetu ଦୋଷ ରହିତ ପ୍ରତିଜ୍ଞା—(Logic) A proposition to be proved in which the attribute is inherent.

ସଦ୍ଦ୍ୱୀପ—ସଂ. ବିଣ. ପୁଂ (ସ=ସହିତ+ଦ୍ୱୀପ)—ଦ୍ୱୀପ ସମନ୍ୱିତ—Sadwipa Comprising or including the (ସଦ୍ଦ୍ୱୀପା—ସ୍ତ୍ରୀ) islands; together with the islands. (ଯଥା—ସଦ୍ଦ୍ୱୀପ ଭାରତବର୍ଷ; ସଦ୍ଦ୍ୱୀପା ବସୁନ୍ଧରା)

ସଦ୍ମ—ସଂ. ବି· କ୍ଳୀ (ସଦ୍ ଧାତୁ=ଗମନ କରିବା+ଅଧିକରଣ ମନ୍; Sadma ସଦ୍ମନ୍ ଶବ୍ଦର ୧ମା. ୧ବ; ମନୁଷ୍ୟମାନେ ବିଶ୍ରାମାର୍ଥ ଯେଉଁଠାକୁ ଗମନ କରନ୍ତି)—୧ । ନିକେତନ; ଗୃହ; ଘର—1. House; home. ୨ । ବାସଗୃହ—2. Residence; abode. ୩ । ଭଦ୍ରାସନ; ପୈତୃକ ବାସଗୃହ—3. Residential house; one's ancestral house; ୪ । (+କର୍ତ୍ତି ମନ୍; ଯାହା ଗତି କରେ) ଜଳ—4. Water.

ସଦ୍ୟ—ଦେ. ବିଣ (ସଂ. ସଦ୍ୟଃ)—ସଜ; ତଟକା—Fresh. ଦେ· ଅ: Sadya ସଦ୍ୟଃ (ଦେଖ)—Sadyah (See) ... सद्य सद्य ତତ୍କ୍ଷଣାତ୍ (ଶବ୍ଦକୋଷ)—1. Immediately. ୨ । ଅଳ୍ପକ୍ଷଣ ପୂର୍ବେ—2. Recently; freshyl ୩ । ନୂତନଭାବରେ—3. Newly.

ସଦ୍ୟ ଉଦ୍ଧୃତ—ସଂ.ବିଣ (ସଦ୍ୟଃ+ଉଦ୍ଧୃତ; ସନ୍ଧିଦ୍ୱାରା ବିସର୍ଗର ଲୋପ)—Sadyauddhruta ସଦ୍ୟଃସମୁଦ୍ଧୃତ (ଦେଖ)—Sadyah-samuddhruta (See)

ସଦ୍ୟଃ—ସଂ. ଅ [ସ=ସମାନ+ଦ୍ୟସ୍ (ଦିବା ଶବ୍ଦ); ସମେ ଦିବସେ Sadyah =ସେହି ଦିନ; ଏକା ଦିନରେ]—୧। ସଦ୍ୟ; ତତ୍କ୍ଷଣେ; ସେହିକ୍ଷଣି; ତତ୍କାଳେ—1. Immediately; at once. ୨। ସେହି ମୁହୂର୍ତ୍ତରେ—2. At that moment. ୩। ବର୍ତ୍ତମାନ ସମୟରେ—3. At the present moment. ୪। ଉପସ୍ଥିତ ଦିବସରେ—4. On the very day; the same day. [ଦ୍ର—ଏଥିର ଓଡ଼ିଆ ଅପଭ୍ରଂଶ 'ସଜ'।]

ସଦ୍ୟଃକୃତ—ସଂ. ବିଣ—୧। ଅଳ୍ପକ୍ଷଣ ପୂର୍ବେ କରି ଯାଇଥିବା—Sadyahkruta 1. Recently done. ୨। ତତ୍କ୍ଷଣାତ (ସଦ୍ୟଃକୃତ—ଅନ୍ୟରୂପ, ଶବ୍ଦକୋଷ) —2. Done immediately. ସଂ. ବି—୧। ଅଭିଧା—1. Appellation. ୨। ସଂଜ୍ଞା—2. Definition. ୩। ନାମ—3. Name.

ସଦ୍ୟଃକ୍ରିୟ—ସଂ. ବିଣ. ପୁଂ (ସଦ୍ୟଃ+କ୍ରିୟା ଯାହାର; ବହୁବ୍ରୀହି)—Sadyahkriya ଯେ ତତ୍କ୍ଷଣାତ୍ କାର୍ଯ୍ୟ କରେ—Prompt (ସଦ୍ୟଃ କ୍ରିୟା—ସ୍ତ୍ରୀ) in doing a work; prompt in (ସଦ୍ୟଃ କ୍ରିୟତା—ବି) action.

ସଦ୍ୟଃ କ୍ରିୟା—ସଂ. ବି—ମୃତ ବ୍ୟକ୍ତିର ମରିବା ଦିନଠାରୁ ଆରମ୍ଭ କରି Sadyah kriyā କରାଯିବା ଅନ୍ତ୍ୟେଷ୍ଟି କ୍ରିୟା; ସଜ କ୍ରିୟା—Funeral ceremonies commenced from the very day of death. ସଂ. ବିଣ. ସ୍ତ୍ରୀ—ସଦ୍ୟଃକ୍ରିୟର ସ୍ତ୍ରୀ ଲିଙ୍ଗ—Feminine of Sadyahkriya.

ସଦ୍ୟଃ କ୍ଷତ—ସଂ.ବିଣ—ଯାହା ତତ୍କ୍ଷଣାତ କ୍ଷତ ହୋଇଅଛି(ଶବ୍ଦକୋଷ) Sadyah kshata —Freshly wounded.

ସଦ୍ୟଃ ପକ୍ୱ—ସଂ. ବିଣ—୧। ଅଳ୍ପକ୍ଷଣ ପୂର୍ବେ ପାଚିଥିବା—Sadyah pakwa 1. Recently ripened. ୨। ଅଳ୍ପକ୍ଷଣ ପୂର୍ବେ ରାନ୍ଧି ହୋଇଥିବା—2. Freshly cooked or dressed.

ସଦ୍ୟଃ ପ୍ରସୂତ— ସଂ.ବିଣ.ପୁଂ—ଅତି ଅଳ୍ପକାଳ ହେଲା ଜାତ(ସନ୍ତାନ)—Sadyah prasūta Newly born (baby). (ସଦ୍ୟଃ ପ୍ରସୂତା—ସ୍ତ୍ରୀ)

ସଦ୍ୟଃ ପ୍ରସୂତି—ସଂ. ବିଣ ଓ ବି. ସ୍ତ୍ରୀ—ଯେଉଁ ସ୍ତ୍ରୀ ବର୍ତ୍ତମାନ ଅର୍ଥାତ୍ Sadyah prasūti କ୍ଷଣମାତ୍ର ପୂର୍ବେ ପ୍ରସବ କରିଅଛି—A woman who has been recently delivered of a child.

ସଦ୍ୟଃ ପ୍ରାଣକର—ସଂ. ବିଣ—ତତ୍କ୍ଷଣାତ୍, ଅର୍ଥାତ୍ ସେବନ ମାତ୍ରେ Sadyah prānakara ବଳକାରକ—Immediately infusing strength or vigour or vitality. [ଦ୍ର—ସଦ୍ୟୋମାଂସଂ, ନବାନ୍ନଂ ଚ, ବାଳା ସ୍ତ୍ରୀ, କ୍ଷୀର ଭୋଜନଂ ଘୃତମୁଷ୍ଣୋଦକଂଚୈବ ସଦ୍ୟଃ ପ୍ରାଣକରାଣି ଷଟ୍—(ସଦ୍ୟଃ ପ୍ରାଣକରୀ—ସ୍ତ୍ରୀ) ଚାଣକ୍ୟ।]

ସଦ୍ୟଃ ପ୍ରାଣହର—ସଂ. ବି. ପୁଂ—୧। ତତ୍କ୍ଷଣାତ୍ ପ୍ରାଣନାଶକ—Sadyah pranahāra 1. Causing instant death. ୨। ସେବନ ମାତ୍ରେ ବଳ ଓ ଆୟୁଃକ୍ଷୟକର—2. Immediately causing loss of strength and vitality. [ଦ୍ର—ଶୁଷ୍କଂ ମାଂସଂ ସ୍ତ୍ରିୟୋବୃଦ୍ଧାଃ ବାଳାର୍କସ୍ତରୁଣଂ ଦଧି, ପ୍ରଭାତେ ମୈଥୁନଂ ନିଦ୍ରା ସଦ୍ୟଃ-ପ୍ରାଣହରାଣି ଷଟ୍—ଚାଣକ୍ୟ।]
(ସଦ୍ୟଃପ୍ରାଣ ହାରୀ, ସଦ୍ୟଃପ୍ରାଣାପହାରୀ, ସଦ୍ୟଃପ୍ରାଣହାରକ, ସଦ୍ୟଃପ୍ରାଣାପହାରକ—ଅନ୍ୟରୂପ)
(ସଦ୍ୟଃପ୍ରାଣହରା, ସଦ୍ୟଃପ୍ରାଣହାରିଣୀ, ସଦ୍ୟଃପ୍ରାଣାପହାରିଣୀ ସଦ୍ୟଃପ୍ରାଣହାରିକା, ସଦ୍ୟଃପ୍ରାଣାପହାରିକା—ସ୍ତ୍ରୀ)

ସଦ୍ୟଃ ଶୁଦ୍ଧି—ସଂ. ବି—ସଦ୍ୟଃ ଶୌଚ (ଦେଖ) Sadyah suddhi Sadyah saucha (See)

ସଦ୍ୟଃ ଶୋଥା—ସଂ. ବି (ସଦ୍ୟଃ+ଶୋଥସ୍=ଫୁଲା; ୧ମା. ୧ବ; Sadyah sothā ଯାହା ତତ୍କ୍ଷଣାତ୍ ଦେହକୁ ଫୁଲାଇ ଦିଏ)—ବାଇଡଙ୍କ; କପିକଚ୍ଛୁ (ଶବ୍ଦ ଚନ୍ଦ୍ରିକା)—Cowhage; cowage; Mucura Pruriens.

ସଦ୍ୟଃ ଶୌଚ—ସଂ. ବି—ତତ୍କ୍ଷଣାତ୍ ଶୁଦ୍ଧି; ଅଶୁଦ୍ଧ ହେବାର ପର Sadyas saucha କ୍ଷଣରେ ଶୁଦ୍ଧ ହେବା—Purification immediately after the attainment of impurity. [ଦ୍ର—ଯଦି ମୃତ ହେଲେ ବା ବାଳକ ଦେଶାନ୍ତରରେ ମୃତ ହେଲେ ତନିକଟସ୍ଥ ବ୍ୟକ୍ତିମାନେ ସ୍ନାନ ଦ୍ୱାରା ସଦ୍ୟଃ ଶୌଚ ହେବେ—ଗରୁଡ଼ ପୁରାଣ, ୧୦୭ ଅଧ୍ୟାୟ।] ବି. ବିଣ—ଯାହାର ଶୁଦ୍ଧି ଲାଭ କରିବା ପାଇଁ ବିଳମ୍ବ ଘଟେ ନାହିଁ; ଯେ ଅଶୁଚ ହେବା ମାତ୍ରକେ ଶୁଦ୍ଧିଲାଭ କରେ—One who becomes purified immediately after he becomes impure. [ଦ୍ର—ଶିଳ୍ପୀ, କାରୁ (ଅର୍ଥାତ୍ ସୂପକାରାଦି), ବୈଦ୍ୟ, ଦାସୀ, ଦାସ, ଭୃତ୍ୟ, ଅଗ୍ନିମାନ୍, ଶ୍ରୋତ୍ରିୟ, ନାପିତ, ରାଜା, ଏମାନେ ସଦ୍ୟଃଶୌଚ ଅଟନ୍ତି । ଏମାନେ ଅଶୁଚ ହେବା ମାତ୍ରେ ସ୍ନାନାଦି ଦ୍ୱାରା ଶୁଦ୍ଧିଲାଭ କରନ୍ତି—ଗରୁଡ଼ ପୁରାଣ. ୧୦୭ ଅଧ୍ୟାୟ।
ବିବାହ, ଯଜ୍ଞ ଓ ଯଜ୍ଞ ଆରମ୍ଭ କରିଥିବା ବ୍ୟକ୍ତିମାନେ, ବ୍ରତଧାରୀ ବ୍ୟକ୍ତିମାନେ, ହୋମାରମ୍ଭକାରୀ ବ୍ୟକ୍ତିମାନେ ସଦ୍ୟଃଶୌଚ ଅଟନ୍ତି—ବିଷ୍ଣୁ ପୁରାଣ।
ଦୁର୍ଭିକ୍ଷ, ରାଷ୍ଟ୍ରବିପ୍ଳବ, ଅପଘାତ ଦ୍ୱାରା ବହୁ ଲୋକଙ୍କ ମୃତ୍ୟୁ ଘଟିବା କାଳରେ ଲୋକେ ସଦ୍ୟଃଶୌଚ ହୁଅନ୍ତି—କୂର୍ମ ପୁରାଣ।
ଅସ୍ମମାନଙ୍କ ଦେଶରେ ମଧ୍ୟ ଦେଖାଯାଏ ଯେ, ରାଜାଙ୍କ ମୃତ୍ୟୁ ଘଟିବା ପରେ ଉତ୍ତରାଧିକାରୀ ସଦ୍ୟଃଶୌଚ ବ୍ୟକ୍ତି

ବବେଚତ ହୋଇ ସ୍ନାନାଦେଶେକ ଅବ କର୍ମ କରନ୍ତି । ମୃତ ସ୍ତ୍ରୀଙ୍କ ପାଇଁ ପୂର୍ବରୁ ନିଯୁକ୍ତ 'ପୁଅ ବ୍ରାହ୍ମଣ' ଅଶୌଚ ଓ ଶ୍ରାଦ୍ଧାଦ ପାଳନ କରନ୍ତି ।]

ସଦ୍ୟଃ ସମୁଦ୍ଧୃତ—ସଂ ବଣ—ଯାହା ଅଳ୍ପକ୍ଷଣ ହେଲା ଉଦ୍ଧୃତ ହୋଇଅଛି Sadyah samuddhruta —Which has been taken up or extracted recently.

ସଦ୍ୟଃ ସମୁଦ୍ଧୃତ ନବନୀତ—ସଂ ବ—ତଟକା ଲହୁଣୀ—Fresh butter. Sadyaḥ samuddhṛuta nabanita [ ବୃ—ବୈଦ୍ୟକ ମତରେ ଏହା ମଧୁରରସ, ଧାରକ, ଶୀତସ୍ପର୍ଶ, ଲଘୁ ଓ ମେଧାଜନକ । ତକାଂଶ ସଂଯୁକ୍ତ ଥିଲେ ଏହା କଷ୍ଟିତ୍ କଷାୟାମ୍ଳ ରସ ଅଟେ । ]

ସଦ୍ୟଃ ସ୍ନାତ—ସଂ ବଣ. ପୁଂ—ତତ୍କ୍ଷଣାତ୍ ସ୍ନାନ କରିଥିବା (ବ୍ୟକ୍ତି)— Sadyaḥ snāta Having bathed immediately; (ସଦ୍ୟଃ ସ୍ନାତା—ସ୍ତ୍ରୀ) recently washed.

ସଦ୍ୟଃ ସ୍ନାନ—ସଂ. ବ—ତତ୍କ୍ଷଣାତ୍ ସ୍ନାନ—Taking a bath Sadyah snāna immediately. [ ବୃ—ମୃତ ବ୍ୟକ୍ତିଙ୍କ ବନ୍ଧୁ ଓ ସଗୋତ୍ରମାନେ ସଦ୍ୟଃସ୍ନାନଦ୍ୱାରା ଶୁଦ୍ଧି ଲାଭ କରନ୍ତି । ]

ସଦ୍ୟଃ ସ୍ନାୟୀ—ସଂ. ବଣ. ପୁଂ—ଯେ ସଦ୍ୟ ସ୍ନାନ କରିଅଛନ୍ତି— Sadyaḥ snāyī One who has taken a bath ( ସଦ୍ୟଃ ସ୍ନାୟିନୀ—ସ୍ତ୍ରୀ ) recently; just bathed.

ସଦ୍ୟ କ୍ରିୟା—ଦେ, ବ ( ସଂ ସଦ୍ୟଃ କ୍ରିୟା )—ସଦ୍ୟଃ କ୍ରିୟା (ଦେଖ) Sadya kriyā Sadyaḥ kriyā ( See )

ସଦ୍ୟ କ୍ରିୟା ଧରିବା—ଦେ· କ୍ରି—ମୃତ ବ୍ୟକ୍ତିଙ୍କ ମରିବା ଦିବସଠାରୁ Sadya kriyā dharibā ଆରମ୍ଭ କରି ମୃତାହ କ୍ରିୟା କରିବା— सद्य क्रिया धरा To perform the funeral cere- सद्य प्रेतकर्म करना monies beginning from the day of a person's death.

ସଦ୍ୟ ଗର୍ଭ—ଦେ. ବ—ସହବାସ ସଙ୍ଗେ ସଙ୍ଗେ ଗର୍ଭାଧାନ—Concep- Sadya garbha tion taking place immediately सद्यगर्भ after the 1st coition. [ ଉ—ସଦ୍ୟଗର୍ଭ सद्यगर्भ ହୋଇଲେ ଅଟେ ସୁନ୍ଦର, ଯେରୂପେ ସଦ୍ୟଗର୍ଭ ହେବ ତାହାଙ୍କର—କୃଷ୍ଣସିଂହ· ମହାଭାରତ, ଅଦ । ]

ସଦ୍ୟ ପାତ(ତୀ)—ଦେ. ବଣ ( ସ. ସଦ୍ୟଃ ପତିତ )—ତତ୍କ୍ଷଣାତ୍ Sadya pāti(tī) ପଡ଼ିଥିବା—Having fallen imme- सद्यपडा diately; which has been just shed. सद्य गिरा हुआ, [ ଉ— ସଦ୍ୟପାତୀ ରକ୍ତ ପାଟଳ-ମଦର ପ୍ରେତ- तटका गिरा हुआ ଭୂଜ ସନ୍ତର୍ପଣ—ରାଧାନାଥ. ପାର୍ବତୀ । ]

ସଦ୍ୟ ପୁଷ୍ପ—ଦେ. ବ ( ସ. ସଦ୍ୟଃ+ପୁଷ୍ପ )—ସଜ ଫୁଲ—Fresh Sadya pushpa सद्यपुष्प तटका फूल flower.

ସଦ୍ୟ ମୁକ୍ତି—ଦେ. ବ ( ସ· ସଦ୍ୟୋମୁକ୍ତି )—ସଦ୍ୟୋମୁକ୍ତି ( ଦେଖ ) Sadya mukti Sadyo mukti ( See ) [ ଉ—ଯେ ସଦ୍ୟମୁକ୍ତି କାମ୍ୟମୁକ୍ତି, ସ୍ୱରୂପସିଦ୍ଧି ବେନି ଗତି— ଜଗନ୍ନାଥ. ଭାଗବତ । ]

ସଦ୍ୟ ଶୌଚ—ଦେ. ବ (ସଂ ସଦ୍ୟଃ ଶୌଚ)—ସଦ୍ୟଃ ଶୌଚ (ଦେଖ) Sadya śaucha Sadyah śaucha ( See )

ସଦ୍ୟସ୍କ—ସଂ. ବଣ. ପୁଂ ( ସଦ୍ୟସ୍+କ )—୧ । ସଦ୍ୟୋଜାତ— Sadyaska 1. Recently born. ୨ । ନୂତନ— (ସଦ୍ୟସ୍କା—ସ୍ତ୍ରୀ) 2. New. ୩ । ତଟକା—3. Fresh.

ସଦ୍ୟୋ ଗୋମୟ—ସଂ· ବ ( ସଦ୍ୟଃ+ଗୋମୟ )—ସଜ ଗୋବର— Sadyo gomaya Recently discharged cowdung.

ସଦ୍ୟୋ ଜାଗରିତ—ସଂ. ବଣ ( ସଦ୍ୟଃ+ଜାଗରିତ )—ଯେ ବର୍ତ୍ତମାନ Sadyo jāgarita ନିଦରୁ ଉଠିଅଛି—Freshly awaken (ସଦ୍ୟୋଜାଗ୍ରତ୍—ଅନ୍ୟରୂପ) from sleep.

ସଦ୍ୟୋ ଜାତ—ସଂ. ବଣ. ପୁଂ ( ସଦ୍ୟଃ+ଜାତ )—୧ । ବର୍ତ୍ତମାନ Sadyo jāta ଜନ୍ମ ହୋଇଥିବା—1. Recently born. (ସଦ୍ୟୋଜ—ଅନ୍ୟରୂପ) ୨ । ନବୋତ୍ପନ୍ନ—2. Newly pro- ( ସଦ୍ୟୋଜାତା, ସଦ୍ୟୋଜା—ସ୍ତ୍ରୀ ) duced. ସଂ. ବୃ—୧ । କଅଁଳା ବାଛୁରୀ; ତର୍ଣ୍ଣକ—1. A newly born calf. ୨ । ଶିବଙ୍କ ମୂର୍ତ୍ତିବିଶେଷ—2. One of the incarnations of Mahādeba. [ ବୃ— ଶିବପୂଜା ବିଧିରେ ଶିବସ୍ନାନ ମନ୍ତ୍ର, ଯଥା—"ଓଁ ସଦ୍ୟୋ- ଜାତାୟ ନମଃ ।"]

ସଦ୍ୟୋ ଦୁଗ୍ଧ—ସଂ· ବ ( ସଦ୍ୟଃ+ଦୁଗ୍ଧ )—ତଟକା ଦୁଧ; ଅଳ୍ପକ୍ଷଣ ମାତ୍ର Sadyo dugdha ପୂର୍ବେ ଦୁହାଁ ଯାଇଥିବା ଦୁଗ୍ଧ— Fresh milk.

ସଦ୍ୟୋ ବିଚ୍ୟୁତ—ସଂ. ବଣ ( ସଦ୍ୟଃ+ବିଚ୍ୟୁତ )—ତତ୍କ୍ଷଣାତ୍ Sadyo bichyuta ପତିତ—Recently fallen. (ସଦ୍ୟଶ୍ଚ୍ୟୁତ—ଅନ୍ୟରୂପ) (ସଦ୍ୟୋବିଚ୍ୟୁତି, ସଦ୍ୟାଶ୍ଚ୍ୟୁତି—ବ)

ସଦ୍ୟୋ ବୃଷ୍ଟି—ସଂ. ବ ( ସଦ୍ୟଃ+ବୃଷ୍ଟି )—ତତ୍କ୍ଷଣାତ୍ ବର୍ଷିବା; Sadyo brushṭi ତଟକା ଅସାର—Fresh shower of (ସଦ୍ୟୋବର୍ଷ, ସଦ୍ୟୋଭିବର୍ଷ—ଅନ୍ୟରୂପ) rain.

ସଦ୍ୟୋ ବ୍ରଣ—ସଂ. ବ ( ସଦ୍ୟଃ+ବ୍ରଣ )—( ବୈଦ୍ୟକ ) ନୂଆ Sadyo braṇa ଘାଆ—Fresh wound.

ସଦ୍ୟୋ ଭାବୀ—ସଂ. ବ ( ସଦ୍ୟଃ+ଭାବୀ )—ସଦ୍ୟୋଜାତ ବତ୍ସ; Sadyo bhābī କଅଁଳା ବାଛୁରୀ; ତର୍ଣ୍ଣକ ( ଶବ୍ଦଚନ୍ଦ୍ରିକା )— A newly born calf; a very young calf.

ସଦ୍ୟୋ ମନ୍ୟୁ—ସଂ. ବ ( ସଦ୍ୟଃ+ମନ୍ୟୁ )—ସାଙ୍ଗେ ସାଙ୍ଗେ ଜାତ Sadyo manyu ହେବା କ୍ରୋଧ—Anger which rises immediately or on sudden provocation. ସଂ. ବଣ—ଯାହା ସାଙ୍ଗେ ସାଙ୍ଗେ କ୍ରୋଧ ଜାତ କରାଏ— That which produces anger at sight; provocative of anger.

ସଦ୍ୟୋ ମରଣ—ସଂ. ବ ( ସଦ୍ୟଃ+ମରଣ )—୧ । ଅଳ୍ପକ୍ଷଣ ପୂର୍ବେ Sadyo maraṇa ଘଟିଥିବା ମୃତ୍ୟୁ—1. Recently (ସଦ୍ୟୋ ମୃତ୍ୟୁ—ଅନ୍ୟରୂପ; occurred death. ୨ । ଅଦ- (ସଦ୍ୟୋମୃତ—ବଣ) ଘାତ ମୃତ୍ୟୁ—2. Death by accident.

ସଦ୍ୟୋ ମାଂସ—ସଂ. ବି ( ସଦ୍ୟଃ+ମାଂସ )—ଅପର୍ଯ୍ୟୁଷିତ ମାଂସ; ସଜ
Sadyo māmsa ମାଉଁସ; ଟାଟକା ମାଉଁସ—Fresh meat.

ସଦ୍ୟୋ ମୁକ୍ତି—ସଂ. ବି ( ସଦ୍ୟଃ+ମୁକ୍ତି )—ସଙ୍ଗେ ସଙ୍ଗେ ମୁକ୍ତ
Sadyo mukti ହୋଇବା—Immediate delivery;recent
(ସଦ୍ୟୋମୁକ୍ତ—ବିଣ) release.

ସଦ୍ୟୋ ମୃତ—ସଂ. ବିଣ. ( ସଦ୍ୟଃ+ମୃତ )—୧ । ଯେ ଅଳ୍ପକ୍ଷଣ ହେଲି
Sadyo mruta ମରିଅଛି—1 Recently dead.
( ସଦ୍ୟୋ ମୃତା—ସ୍ତ୍ରୀ) ୨ । ହଠାତ୍ ବା ଅପଘାତ ମୃତ—
2. Suddenly dead

ସଦ୍ୟୋହତ—ସଂ. ବିଣ. ପୁଂ ( ସଦ୍ୟଃ+ହତ )—ଯେ ଅଳ୍ପକ୍ଷଣ
Sadyohata ହେଲି ହତ ହୋଇଅଛି—Recently killed
(ସଦ୍ୟୋହତା—ସ୍ତ୍ରୀ) (animal). ସଂ. ବି. ପୁଂ—ଅଳ୍ପକ୍ଷଣ ହେଲି ହତ ହୋଇଥିବା ଜୀବ—A recently killed animal.

ସଦ୍ୟୋହତ ମାଂସ—ସଂ. ବି ( ୬ଷ୍ଠୀ ତତ୍ )—ସଦ୍ୟୋହତ ଜୀବର
Sadyohata māmsa ମାଂସ;ସଜ ମାଉଁସ—The flesh of a recently killed animal; fresh meat.
[ ଦ୍ର—ବୈଦ୍ୟଶାସ୍ତ୍ର ଅନୁସାରେ ସଦ୍ୟୋହତ ଜୀବର ମାଂସ ବ୍ୟାଧିନାଶକ, ବୟଃସ୍ଥାପକ, ପୁଷ୍ଟିକାରକ ଓ ରୁଚିକର । ]

ସଦ୍ରୁ—ସ. ବିଣ (ସଦ୍ ଧାତୁ=ଗମନ କରିବା+ଶୀଳାର୍ଥେ କ୍ରୁ.
Sadru ରୁ)—୧ । ଗମନଶୀଳ; ଗତିବିଶିଷ୍ଟ—1. Moving; going. ୨ । ଅବସନ୍ନ—2. Pulled down; tired. ୩ । ଅବସ୍ଥିତ—3. Situated.

ସଦ୍ରୂପ—ସ. ବି (କର୍ମଧା; ସତ୍+ରୂପ)—ସୁନ୍ଦର ରୂପ—
Sadrūpa A good form or shape; beautiful form.

ସଧ—ଦେ. ବି (ସ. ଶ୍ରଦ୍ଧା)—୧ । କୌଣସି ବିଷୟ ପ୍ରତି ଆକାଙ୍କ୍ଷା;
Sadha ଇଚ୍ଛା—1 Desire for anything
ସାଧ ( ଉ—ନ ଭଜ ଚକ୍ରାୟୁଧ, ଉଚିତ ବୋଲି ସଧ,
ସାଧ ଭଲି ସଂସାର ଅନୁସାରିଲୁ ରେ । କବିସୂର୍ଯ୍ୟ. ସଙ୍ଗୀତ ।]
୨ । ଲାଳସା; ଆଗ୍ରହ—2. Relish; hankering. (ଉ—ବାଳକୁ ଅଶ୍ରୁ କଲେ ବଡ଼ ଅଛି ସଧ । କୃଷ୍ଣସିଂହ. ମହାଭାରତ. ସଭା ।) ୩ । କାର୍ଯ୍ୟସାଧନାର୍ଥ ଉପାୟ—3. Expedients; means. ୪ । ସାଧ (ଦେଖ)—4. Sādha. (See) (ଉ—ଅଛି ପାପ ସଂଗୀତ ବିଦ୍ୟା-ସଧରେ ଚିତ୍ତ, ନ ଦେବ ବୋଲି କଲି ସଂକଳପ । କବିସୂର୍ଯ୍ୟ. ସଂଗୀତ ।) ୫ । (ସଂ, ଶ୍ରଦ୍ଧା ବା ସ୍ୱାଦ) ସ୍ୱାଦ; ଗର୍ଭିଣୀ-ମାନଙ୍କ ଦୋହଦ ବାସନା—5. Desire of a pregnant woman for certain foods. ୬ । ମାୟା; ମମତା; ସ୍ନେହ; ଶ୍ରଦ୍ଧା—6. Love; affection; attachment. (ଉ—ବେହୁରୁଯେ ଅଛୁ ଯତ୍ତଏ ଭୂମେ ଯୁବ, ଦଳେ ଛତ ଦେବ ମୁଁ ପୁତ୍ରଣରୁ ସଧ । କୃଷ୍ଣସିଂହ. ମହାଭାରତ. ବିରାଟ ।) ୭ । ଗର୍ଭିଣୀର ଦୋହଦ ଯୋଗୁଁ ଅଭିଲଷିତ ଖାଦ୍ୟ—7. Particular article of food hankered after by a pregnant woman.

ସଧ (ଇତ୍ୟାଦି)—ଦେ. ବି—ଶାଧ ଇତ୍ୟାଦି (ଦେଖ)
Sadha (etc) Śādha etc. (See)

ସଧନ—ସଂ. ବିଣ. ପୁଂ (ସହାର୍ଥ ବହୁବ୍ରୀହି; ସ+ଧନ)—ଧନଶାଳୀ;
Sadhana ଧନବାନ୍—Rich; wealthy.
(ସଧନା—ସ୍ତ୍ରୀ) [ନିର୍ଦ୍ଧନ—ବିପରୀତ]

ସଧବା—ସଂ. ବିଣ. ସ୍ତ୍ରୀ (ସ=ସହିତ+ଧବ: ସହାର୍ଥ ବହୁବ୍ରୀହି)—
Sadhabā ସଭର୍ତ୍ତୃକା; ପତିବତୀ, ଜୀବତ୍-ସ୍ୱାମିକା; ଅହ୍ୟ;
(ବିଧବା—ବିପରୀତ) ଅହୁଅ (ସ୍ତ୍ରୀ)—(A woman) Having her husband living.

ସଧର୍ମ(ର୍ମ୍ମ)—ସଂ. ବି (କର୍ମଧା)—୧ । ତୁଲ୍ୟ ଧର୍ମ—1. Same
Sadharma(rmma) religion. ୨। ସମାନ ଗୁଣ—2.Same quality.

ସଧର୍ମଚାରିଣୀ—ସଂ. ବି. ସ୍ତ୍ରୀ (ସ=ସହ+ଧର୍ମଚାରିଣୀ; ଯେ ପତିଙ୍କ
Sadharmchāriṇi ସଙ୍ଗେ ଧର୍ମାଚରଣ କରନ୍ତି)—ସହଧର୍ମିଣୀ; ଧର୍ମ ପତ୍ନୀ—One's lawfully wedded wife.

ସଧର୍ମ(ର୍ମ୍ମ)ଣୀ—ସଂ. ବିଣ ଓ ବି. ସ୍ତ୍ରୀ—ସଧର୍ମିଣୀ (ଦେଖ)
Sadharma(rmma)ṇi Sadharmiṇi. (See)

ସଧର୍ମା(ର୍ମ୍ମା)—ସଂ. ବିଣ. ପୁଂ (ବହୁବ୍ରୀହି; ସ=ସମାନ ଅଛେ ଧର୍ମ ନ୍=
Sadharmā(rmmā) ଧର୍ମ ଯାହାର; ୧ମା. ୧ବ)—୧ । ଏକ
(ସଧର୍ମିଣୀ—ସ୍ତ୍ରୀ) ଧର୍ମାକ୍ରାନ୍ତ—1. Of the same religion.
[ବିଧର୍ମୀ—ବିପରୀତ] ୨ । ଏକ ଧର୍ମାବଲମ୍ବୀ—2. Professing the same religion. ୩। ଏକ ସ୍ୱଭାବିକ ଗୁଣଯୁକ୍ତ—3. Possessing the same attribute or quality. ୪ । ଏକରୂପ; ସଦୃଶ; ତୁଲ୍ୟ—4. Similar

ସଧର୍ମି(ର୍ମ୍ମି)ଣୀ—ସଂ. ବିଣ. ସ୍ତ୍ରୀ (ସଧର୍ମିନ୍+ସ୍ତ୍ରୀ. ଈ)—ଏକ ଧର୍ମାକ୍ରାନ୍ତ;
Sadharmi(rmmi)ṇi ସଧର୍ମା ଓ ସଧର୍ମୀର ସ୍ତ୍ରୀଲିଙ୍ଗ—
(ସଧର୍ମା, ସଧର୍ମୀ—ପୁଂ) Feminine of Sadharmā and Sadharmi. ସ. ବି. ସ୍ତ୍ରୀ—ଧର୍ମପତ୍ନୀ; ଭାର୍ଯ୍ୟା—One's better half; one's wedded wife.

ସଧର୍ମୀ(ର୍ମ୍ମୀ)—ସଂ. ବି. ପୁଂ ( ସଧର୍ମ+ଇନ୍; ୧ମା. ୧ବ. )—ସଧର୍ମା
Sadharmi(rmmi) (ଦେଖ)—Sadharmā. (See)
(ସଧର୍ମିଣୀ—ସ୍ତ୍ରୀ) [ବିଧର୍ମୀ—ବିପରୀତ]

ସଧଲିଆ—ପ୍ରାଦେ (ଲିଆ) ବିଣ (ସଂ.ଶ୍ରଦ୍ଧାଳୁ)—ଇଚ୍ଛୁକ—
Sadhalia Desirous.

ସଧା—ଦେ. ବି—( ସଂ. ସାଧ୍ ଧାତୁ )—୧ । ସାଧନ (ଦେଖ)—
Sadhā Sādhana.(See) ୨ । ବହୁ ଲୋକଙ୍କଠାରୁ ଧନ
ସାଧା ସାଧନା ଆଦିର ସଂଗ୍ରହ—2. Act of collecting money etc. from many persons; collection; realisation. ୩ । ସମସ୍ୟା ସାଧନ—3. Working up of a problem.

**ସଧା(ଧେ)ଇବା**—ଦେ. କ୍ରି (ସଂ. ଣିଜନ୍ତ ସାଧ୍ ଧାତୁ ବା ସାଧି ଧାତୁ)
Sadhā(dhe)ibā ·ସାଧିତ କରାଇବା; ସାଧିବା କ୍ରିୟାର ଣିଜନ୍ତ
ସାଧାନ **साधन कराना** ରୂପ—The causative form of the verb Sādhibā. [ଦ୍ର—ସଧାଇବାର ବିଭିନ୍ନ ଅର୍ଥ ଜାଣିବା ପାଇଁ 'ସାଧିବା' ଶବ୍ଦର ବିଭିନ୍ନ ଅର୍ଥ ଦେଖ ।]

**ସଧି**—ସଂ. ବି (ସ=ସହ+ଧା ଧାତୁ=ଧାରଣ କରିବା+କର୍ତ୍ତୃ. ଇ)
Sadhi —ଅନଳ; ଅଗ୍ନି; **ଋଷ**—Fire.

**ସଧିଃ**—ସଂ. ବି (ସହ୍ ଧାତୁ=ସହିବା+କର୍ତ୍ତୃ. ଇସ୍; ୧ମା ୧ବ)—
Sadhih ଷଣ୍ଢ; ବୃଷ—Bull.

**ସଧୀର**—ଦେ. ବିଣ (ସଂ. ସଧୈର୍ଯ୍ୟ)—ଧୈର୍ଯ୍ୟଶୀଳ—
Sadhira ଧୀର **सधीर** Patient.

**ସଧୀରେ**—ଦେ. କ୍ରି ବିଣ (ପଦ୍ୟ)—୧ । ଧୈର୍ଯ୍ୟ ସହକାରେ—
Sadhire 1. Patiently. ୨ । ଅସ୍ତେ ଅସ୍ତେ; ଧୀରେ
ଧୀବେଧୀବେ **धीरे धीरे** ଧୀରେ—2. Slowly.

**ସଧେ**—ଦେ. କ୍ରି ବିଣ(ପଦ୍ୟ)—ଶ୍ରଦ୍ଧାଭରେ; ଶ୍ରଦ୍ଧାରେ—Lovingly;
Sadhe affectionately. [ଉ—କର୍ମୀକର୍ମେ ଘଞ୍ଚ ଭକ୍ତ ସାଧେ, ଶ୍ରଦ୍ଧାସ୍ **श्रद्धामें** ପ୍ରକାଶଇ ସଧେ । ପ୍ରାଚୀ. ଶିବସ୍ୱରୋଦୟ]

**ସଧୈର୍ଯ୍ୟ(ର୍ଯ୍ୟେ)**—ଦେ. କ୍ରି. ବିଣ—(ସଂ ସଧୈର୍ଯ୍ୟ) ୧ । ଧୀରତା
Sadhairjya (rjye) ସହକାରେ—1. Slowly. ୨ । ଧୈର୍ଯ୍ୟ
ସଧୈର୍ଯ୍ୟ **सधैर्य** ସହକାରେ—2. Patiently.

**ସଧ୍ରମ୍**—ପ୍ରାଦେ (ଲରିଆ) ବିଣ—ସତ୍ୟବାନ୍—
Sadhram Truthful.

**ସଧ୍ରୀଚୀ**—ସଂ. ବି. ସ୍ତ୍ରୀ—(ସଧ୍ର୍ୟଚ୍+ସ୍ତ୍ରୀ. ଈ; ସଧ୍ର୍ୟଚ୍ ଶବ୍ଦର ସ୍ତ୍ରୀ ଲିଙ୍ଗ)
Sadhrichi ସହଚରୀ; ସଙ୍ଗିନୀ—A female companion.
(ସଧ୍ର୍ୟଙ୍—ପୁଂ)

**ସଧ୍ର୍ୟଙ୍**—ସଂ ବି, ପୁଂ—(ସ=ସହ+ଅନ୍ଚ୍ ଧାତୁ=ଗମନ କରିବା+
Sadhryan କର୍ତ୍ତୃ. କ୍ୱିପ୍; କଣାଭନ ସଧ୍ର୍ୟଚ୍ ଶବ୍ଦ—୧ମା. ୧ବ;
(ସଧ୍ରୀଚୀ—ସ୍ତ୍ରୀ) ଯେ ସବୁବେଳେ ସଙ୍ଗେ ସଙ୍ଗେ ଗମନ କରେ)—
୧। ସହଚର; ସଙ୍ଗୀ—1. Companion; associate; mate. ୨ । ସହାୟ; ସାହାଯ୍ୟକାରୀ—2. Assistant.

**ସନ୍**—ଦେ. ଅ· (ଧ୍ୱନ୍ୟନୁକରଣ)—୧ । ପବନ ଜୋରରେ ବୋହିବାର
San ଶବ୍ଦ; ବାୟୁ ସଞ୍ଚାଳନ ଶବ୍ଦ—1.The sound of brisk
(ସନ୍‌ସନ୍—ଅନ୍ୟରୂପ) blowing of wind. ୨ । ଶରର ବା
ସନ୍, ସନ୍‌ସନ **सनसन** ତୀରର ମୁହୁର୍ମୁହୁଃ ନିକ୍ଷିପ୍ତ ହେବାର ଶବ୍ଦ—2.The sound of arrows being discharged in quick succession. ୩ । ଦ୍ରୁତ ଗମନଜନିତ ଶବ୍ଦ—3. Sound of quick motion. ପ୍ରାଦେ. (ଲରିଆ) ବି—ସ୍ୱର୍ଣ୍ଣ; ସୁନା—Gold. ପ୍ରାଦେ (ସମ୍ବଲପୁର) ବି—ସନ (ଦେଖ) Sana (See)

**ସନ୍( ଧାତୁ )**—ସଂ.—୧ । ଦାନ କରିବା—1. To give; to
San (root) bestow. ୨ । ସେବା କରିବା—2. To tend; to serve. ୩ । ପୂଜା କରିବା—3. To worship.

**ସନ୍ (ପ୍ରତ୍ୟୟ)**—ସଂ—ଇଚ୍ଛାର୍ଥେ ଧାତୁର ପରେ ଲାଗିବା ପ୍ରତ୍ୟୟ—A
San (inflexion) suffix added to verbs meaning,-wishing to do an act. [ଦ୍ର—ଏହି ପ୍ରତ୍ୟୟ ଯୁକ୍ତ ହେବା ପରେ ଧାତୁକୁ 'ସନନ୍ତ' ଧାତୁ ବୋଲାଯାଏ । ସନନ୍ତ ହେଲେ ମୂଳ ଧାତୁର ଅଦ୍ୟାକ୍ଷର ପ୍ରାୟଶଃ ଦ୍ୱିତ୍ୱ-ପ୍ରାପ୍ତ ହୁଏ । ଯଥା—
କୃଧାତୁ=କରିବା+ସନ୍=ଚିକୀର୍ଷ୍ ଧାତୁ=କରିବାକୁ ଇଚ୍ଛା କରିବା, ପାଧାତୁ=ପିଇବା+ସନ୍=ପିପାସ୍ ଧାତୁ =ପିଇବାକୁ ଇଚ୍ଛା କରିବା, ଜ୍ଞାଧାତୁ=ଜାଣିବା+ସନ୍ =ଜିଜ୍ଞାସ୍ ଧାତୁ=ଜାଣିବାକୁ ଇଚ୍ଛା କରିବା । ଏହି ଧାତୁରେ ଭାବ ବାଚ୍ୟରେ 'ଅ' ପ୍ରତ୍ୟୟ ଲଗେଲ ନିଷ୍ପନ୍ନ ପଦ ପ୍ରାୟଶଃ ଆକାରାନ୍ତ ହୁଏ । ଯଥା—ଚିକୀର୍ଷା=କରିବା ଇଚ୍ଛା; ପିପାସା=ପିଇବା ଇଚ୍ଛା; ଜିଜ୍ଞାସା=ଜାଣିବା ଇଚ୍ଛା; ସନନ୍ତ ଧାତୁରେ 'ଉ' ପ୍ରତ୍ୟୟ ହେଲେ ଉକାରାନ୍ତ ବିଶେଷଣ ଶବ୍ଦ ହୁଏ । ଯଥା—ଚିକୀର୍ଷୁ=କରିବାକୁ ଇଚ୍ଛୁକ, ପିପାସୁ=ପିଇବାକୁ ଇଚ୍ଛୁକ, ଜିଜ୍ଞାସୁ=ଜାଣିବାକୁ ଇଚ୍ଛୁକ ।]

**ସନ୍ବ (ଧାତୁ)**—ସଂ—୧ । ଗମନ କରିବା—1. To go.
Sanba (root) ୨ । ଗତି କରିବା—2. To move.

**ସନ୍ ବରସନ୍**—ବୈଦେ. କ୍ରି. ବିଣ—ସନ ବରସନ ( ଦେଖ )
San barasan Sana barasana ( See )

**ସନ**—ସଂ. ବି. ( ସନ୍ ଧାତୁ=ସେବା କରିବା+କରଣ. ଅ )—
Sana ୧ । ହସ୍ତିକର୍ଣ୍ଣାସ୍ଫାଳନ; ହାତୀର କାନ ହଲାଇବା—1. The fanning or waving of the ears by an elephant. ୨ । ଘଣ୍ଟା ପାଟଲୀ ବୃକ୍ଷ—2. A tree; Sohebra Swieteniodes (tree).
ସନାତନ **सन** ଦେ. ବି. (ପୁଂ) -ସନାତନର ଡାକ ନାମ—Name for calling Sanātana. ଗ୍ରା. ବି. (ପଦ୍ୟ)-ସ୍ୱନ; ଶବ୍ଦ—Voice. [ଉ—କମ୍ବୁ ସନ ଘନ, ମଧୁ ଲୁବ୍ଧ ଅଳି କୁସୁମ ବନ । ପ୍ରାଚୀ. ପ୍ରତାପ—ଶଶିସେଣା]

**ସନ**—ବୈଦେ. ବି ( ଅ. ସନ୍ )—୧ । ସାଲ; ବର୍ଷ; ଅବ୍ଦ—
Sana 1. Year. [ଦ୍ର—ଯଯାତିକେଶରୀଙ୍କ ରାଜତ୍ୱକାଳରୁ
ସନ୍] ଉତ୍କଳରେ ଏକ ସନ ପ୍ରଚଳିତ ହୋଇ ଆସୁଅଛି । ଭାଦ୍ର
**सन** ମାସ ଶୁକ୍ଳ ଦ୍ୱାଦଶୀ ଦିନଠାରୁ ଏହି ସନର ବର୍ଷାରମ୍ଭ । ସେଦିନ ସମଗ୍ର ଉତ୍କଳରେ 'ସୁନିଆଁ' ନାମରେ ଖ୍ୟାତ—କୃପାସିନ୍ଧୁ. ଉତ୍କଳ ଇତିହାସ ।
ଦେଶୀୟ ଅବ୍ଦ ଗଣନା ଓ ଇଂରାଜୀ ଅବ୍ଦ ଗଣନା ମତେ କୌଣସି ସଂଖ୍ୟକ ଅବ୍ଦ ପୂର୍ବରେ 'ସନ' ଶବ୍ଦ ଲେଖାଯାଏ, ଏବଂ ସାଧାରଣତଃ ସବୁ ପ୍ରକାରର ଅବ୍ଦ ପରେ 'ସାଲ' ଶବ୍ଦ ଓ ଇଂରାଜୀ ଅବ୍ଦ ପରେ 'ମସିହା' ଲେଖାଯାଏ । ଯଥା—(ଦେଶୀୟ) ସନ ୧୩୩୬ ସାଲ, ସନ ୧୯୨୬ ସାଲ ବା ସନ ୧୯୨୬ ମସିହା, (ଇଂରାଜୀ) ସନ ୧୯୩୮ ମସିହା । କରଣ ଓ ମୋହରିରମାନେ ଏହି 'ସନ' ଓ 'ସାଲ' ଶବ୍ଦକୁ ଯଥାକ୍ରମେ 'ସ୍ନ' ଓ 'ସ୍ଲ' ରୂପରେ ଲେଖନ୍ତି । ଯଥା—ସ୍ନ ୧୩୩୩ ସ୍ଲ=ସନ ୧୩୩୩ ସାଲ୍ । ]

୨ । ମୁଦ୍ରା ଉପରେ ଛପା ଥିବା ବର୍ଷର ସଂଖ୍ୟା ।
2. The number of the year stamped on a coin.

[ଦ୍ର—ସନ ଗଣନା ସମ୍ବନ୍ଧରେ ନାନା ଦେଶରେ ନାନା ପ୍ରକାରର ରୀତି ଓ ଭାରତର ବିଭିନ୍ନ ଅଞ୍ଚଳରେ ମଧ୍ୟ ବିଭିନ୍ନ ପ୍ରଥା ପ୍ରଚଳିତ ଥିବା ଦେଖାଯାଏ । ଯଥା— ଯେଉଁଦିନ ୧-୯-୧୯୩୭, ସେଦିନ ସଂବତ ୧୯୯୪, ଶକାବ୍ଦ ୧୮୫୯, ହିଜ୍‌ରୀସାଲ ୧୩୪୬, ଉତ୍କଳାବ୍ଦ ୧୩୪୪, ବଙ୍ଗାବ୍ଦ ୧୩୪୪, ଫସଲି ୧୩୪୪]

୧ । ସଂବତ୍ ବା ବିକ୍ରମାବ୍ଦ—କାଳକ୍ରମରେ ଦେଖିବାକୁ ଗଲେ ସଂବତ୍ ବା ବିକ୍ରମାବ୍ଦ ଭାରତରେ ଅଧୁନା ପ୍ରଚଳିତ ସବୁ ସନମାନଙ୍କ ମଧ୍ୟରେ ପୁରାତନ । ଏହା ଖ୍ରୀଷ୍ଟ ପୂର୍ବ ୫୭ ବର୍ଷଠାରୁ ଆରମ୍ଭ ହୋଇଥିଲା । ଏ ଅବ୍ଦ ପ୍ରଥମେ ମାଳବ ଦେଶରେ ଚଳୁଥିଲା । ବିକ୍ରମାଦିତ୍ୟ (ମତାନ୍ତରରେ କନିଷ୍କ) ଶକ ବା ହୁଣମାନଙ୍କୁ ପରାସ୍ତ କରି ଭାରତରେ ରାଜ୍ୟ ବିସ୍ତାର କରିବା ସମୟରେ ଏହି ଅବ୍ଦକୁ ରାଜ୍ୟରେ ଚଳାଇଲେ । ('ବିକ୍ରମାଦିତ୍ୟ' ତଳେ ନୋଟ୍ ଦେଖ); ଏହି ଅବ୍ଦକୁ ମାରବାଡ଼ୀ ଓ ପଣ୍ଡିତମାନେ ବ୍ୟବହାର କରନ୍ତି । ଏହା ପ୍ରତି ବର୍ଷ ଚୈତ୍ର ଶୁକ୍ଳପକ୍ଷ (ଶୁଦି) ପ୍ରତିପଦ ଦିନ ଆରମ୍ଭ ହୋଇ ପରବର୍ତ୍ତୀ ଚୈତ୍ର କୃଷ୍ଣପକ୍ଷ (ବଦି) ଅମାବାସ୍ୟା ଦିନ ଶେଷ ହୁଏ । ଏହି ବର୍ଷର ମାସମାନ ଗୌଣଚାନ୍ଦ୍ରମାନ ଅନୁସାରେ ଗଣା ହୁଏ । ମାରବାଡ଼ୀମାନେ ଏହି ଅନୁସାରେ ସନ ଗଣନା କରନ୍ତି; କିନ୍ତୁ ରାମନବମୀ (ଚୈତ୍ର ଶୁକ୍ଳ ନବମୀ) ଦିନ ସେମାନଙ୍କର ଖାତା ଆରମ୍ଭ କରନ୍ତି । ସୌରମାନ ବର୍ଷ ଗଣନା ସଙ୍ଗେ ଏହାକୁ ସମାନ କରିବାକୁ ଏଥିରେ ମଳ ମାସ ଗଣନା କରାଯାଏ । ଏ ବର୍ଷର ଦିନ ସଂଖ୍ୟା ୩୬୦ ଦିନ ।

୨ । ଇଂରେଜୀ ସନ ବା ଖ୍ରୀଷ୍ଟିଆନ୍ ସନ ବା ଖ୍ରୀଷ୍ଟାବ୍ଦ— ଯିଶୁଖ୍ରୀଷ୍ଟଙ୍କ ଜନ୍ମଠାରୁ ଏହା ଗଣା ହୋଇ ଆସୁଅଛି । ପାଶ୍ଚାତ୍ୟ ସଭ୍ୟ ଜଗତରେ ସର୍ବତ୍ର ଏହି ଅବ୍ଦ ଚଳୁଅଛି । ଏହା ଡିସେମ୍ବର ମାସ ୩୧ ତାରିଖରେ ଶେଷ ହୁଏ ଓ ଜାନୁଆରି ମାସ ପହିଲାରେ ଆରମ୍ଭ ହୁଏ । ଏ ବର୍ଷର ଦିନ ସଂଖ୍ୟା ୩୬୫ ଦିନ । ସୌର ବର୍ଷର ଦିନ ସଂଖ୍ୟା ୩୬୫¼ ଦିନ । ସୌର ବର୍ଷ ସଙ୍ଗେ ଏହାକୁ ସମାନ କରିବାପାଇଁ ପ୍ରତି ଚାରି ବର୍ଷରେ ପଡ଼ିବା ଗୋଟିଏ ଲେଖାଏଁ ଲିପ୍ ଇଅର୍ (Leap year) ବର୍ଷରେ ଫେବ୍ରୁଆରୀ ମାସଟି ୨୮ ଦିନିଆଁ ନ ହୋଇ ୨୯ ଦିନିଆଁ ହୁଏ । ସେହି ବର୍ଷଟିର ଦିନ ସଂଖ୍ୟା ୩୬୬ ଦିନ ହୁଏ । ଏ ଇଂରାଜୀ ସନ ସୌର ଗଣନାକ୍ରମେ ଗୃହୀତ ହୁଏ, ଅର୍ଥାତ୍ ଏହା ସୌର ବର୍ଷ । ଅତଏବ ପ୍ରତି ବର୍ଷ ୫ ଦିନ ୧୦ ଦଣ୍ଡ ୩୧ ପଳ ୩୧ ବିପଳ ୨୪ ଅନୁପଳ ଶକାବ୍ଦରେ ଯୋଗ କଲେ ନାକ୍ଷତ୍ର ବର୍ଷ ହୁଏ । ଏହି ଅବ୍ଦଦ୍ୱାରା ଦଶା ଗଣନା କରିବାକୁ ହୁଏ ବୋଲି ବରାହାଚାର୍ଯ୍ୟ ଲେଖିଅଛନ୍ତି ।

୩ । ଶକାବ୍ଦ ବା ଶାଳିବାହନାବ୍ଦ— ଶକ ବା ସିଦିଅନ୍ (Scythian) ମାନେ ଭାରତରେ ରାଜତ୍ୱ କରିବା ସମୟରେ ଶକରାଜା ଶାଳିବାହନଙ୍କ ରାଜତ୍ୱ କାଳରୁ ଏହି ସନ ଗଣନାର ଆରମ୍ଭ ହୋଇଥିଲା । ଏହା ଖ୍ରୀଷ୍ଟାବ୍ଦଠାରୁ ୭୮ ବର୍ଷ କମ୍, ଅର୍ଥାତ୍ ଖ୍ରୀଷ୍ଟାବ୍ଦ ୭୮ ମସିହାରେ ଏହା ଆରମ୍ଭ ହୋଇଥିଲା । ବର୍ତ୍ତମାନ ମଧ୍ୟ ଭାରତରେ ଏହା ଚଳୁଅଛି । ଶକାବ୍ଦ ମହାବିଷୁବ ସଂକ୍ରାନ୍ତି (ପଣା ସଂକ୍ରାନ୍ତି) ଦିନ ଆରମ୍ଭ ହୁଏ ।

୪ । ହିଜ୍‌ରୀସାଲ— ଏହା ମୋଗଲ ବାଦସାହା ଅକବରଙ୍କ ଦ୍ୱାରା ଭାରତରେ ଚଳିଥିଲା ଏବଂ ଏବେ ମଧ୍ୟ ମୁସଲ୍‌ମାନମାନଙ୍କ ଗଣନାରେ ଚଳୁଅଛି । ଅକବର ବାଦସାହା ହିଜ୍‌ରୀ ୯୬୩ ସାଲ=୧୪୭୮ ଶକାବ୍ଦରେ ଏହା ପ୍ରବର୍ତ୍ତିତ କରିଥିଲେ । ସେ ସମୟରେ ଯେଉଁ ହିଜରୀ ସନ (୯୬୩) ହୋଇଥିଲା, ସେହି ସନର ସଂଖ୍ୟାଗଣନାରୁ ଆରମ୍ଭ କରି ସୌର ଗଣନାକ୍ରମେ ଏ ସନ ଗଣା ହୋଇ ଆସୁଅଛି ଏବଂ ଭିନ୍ନ ଭିନ୍ନ ଦେଶରେ ଚାନ୍ଦ୍ର ଓ ସୌର ଗଣନାକ୍ରମେ ଚଳୁଅଛି ।

ହିଜରୀ ସନ ଚାନ୍ଦ୍ରମାନ ଗଣନାକ୍ରମେ ହେଉଥିବାରୁ ତାହାର ବର୍ଷକ=୩୫୪ ଦିନ ଓ ତାହା ହିନ୍ଦୁମାନଙ୍କ ସୌରମାନ ବର୍ଷଠାରୁ ୧୧ ଦିନ କମ୍ ।

୫ । ଉତ୍କଳାବ୍ଦ ବା ଓଡ଼ିଆ ସନ— ଏହା ହିଜ୍‌ରୀସାଲ; କିନ୍ତୁ ଏହା କନ୍ୟା (ଆଶ୍ୱିନ) ମାସରେ ଆରମ୍ଭ ହୁଏ । ଭାଦ୍ର ଶୁକ୍ଳ ଦ୍ୱାଦଶୀ (ସୁନିଆଁ) ଦିନ ଏହାର ଆରମ୍ଭ ହୁଏ, ଅର୍ଥାତ୍, ତାହାର ପୂର୍ବରୁ ପଡ଼ିଥିବା ସୌର ଆଶ୍ୱିନ ମାସର ପୂର୍ବବର୍ତ୍ତୀ ଦିବସମାନ ଯଦି ୧୩୪୪ ସାଲ ହୋଇଥିବ, ତେବେ ତତ୍‌ପରବର୍ତ୍ତୀ ସୌର ଆଶ୍ୱିନର ଦିନମାନ ୧୩୪୫ ସାଲରେ ଶୁମାର ହେବ । ଉଦାହରଣ ସ୍ୱରୂପ ଦେଖାଯାଉ ଯେ ୧୯୩୭ ଖ୍ରୀଷ୍ଟାବ୍ଦରେ ଭାଦ୍ର ଶୁକ୍ଳ ଦ୍ୱାଦଶୀ ସୌର ଆଶ୍ୱିନର ୩ ଦିନ ସୁନିଆଁ । ସେହି ଆଶ୍ୱିନ ବା କନ୍ୟା ମାସର ୪ ଦିନଠାରୁ ୧୩୪୫ ସାଲ ଆରମ୍ଭ ହେଲା ଏବଂ ତାହାର ପୂର୍ବଦିନ କନ୍ୟା ୩ ଦିନ ୧୩୪୪ ସନରେ ଗଣନା ହେଲା ଓ କନ୍ୟା ୪ ଦିନ ୧୩୪୫ ସନରେ ଗଣନା ହେଲା । ପୁରୀ ରାଜାଙ୍କର ନୂତନ ଅଙ୍କ ମଧ୍ୟ ସେହି ଦିନଠାରୁ ଗଣାଯାଏ ।

କିନ୍ତୁ ଦେବତାମାନଙ୍କ ପୂଜାରେ କନ୍ୟା ସଂକ୍ରାନ୍ତିଠାରୁ ନୂଆ ସନ ଗଣାଯାଏ । ଓଡ଼ିଶାରେ ପ୍ରଚଳିତ ସନକୁ ମଧ୍ୟ ଫସଲି ବା ବିଲାୟତି ବର୍ଷ ବୋଲାଯାଏ । (କିନ୍ତୁ ଜ୍ୟୋତିଷ ମତରେ ସୂର୍ଯ୍ୟଦେବଙ୍କର ବାର୍ଷିକ ଗତି ଓ ମନୁଷ୍ୟମାନଙ୍କର ପରମାୟୁ ବତ୍ସର ସୌର ଚୈତ୍ର ୩୦ ଦିନ ଶେଷ ହୋଇ ପଣାସଂକ୍ରାନ୍ତିଠାରୁ ନୂତନ ବର୍ଷ ଆରମ୍ଭ ହୁଏ ।

ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ ଅନୁସାରେ ବର୍ଷ ଗଣନା ମଧ୍ୟ ସୌର ବୈଶାଖ ୧ ଦିନଠାରୁ ଆରମ୍ଭ ହୋଇଥାଏ ।

୬ । ବଙ୍ଗାବ୍ଦ ବା ବଙ୍ଗୀୟ ସନ—ଏହା ମଧ୍ୟ ଅକବର ବାଦ୍‌ଶାହାଙ୍କ ପ୍ରବର୍ତ୍ତିତ ସନ । ଏହି ସନ ଓ ଚଟ୍ଟଗ୍ରାମରେ ପ୍ରଚଳିତ "ମଗୀ"ସନ ସୌରମାନ ଗଣନାରେ ସ୍ଥାପିତ ହୁଏ । କିନ୍ତୁ ଏହା ମହାବିଷୁବ ସଂକ୍ରାନ୍ତିଠାରୁ ଆରମ୍ଭ ନ ହୋଇ ତହିଁର ପରଦିନଠାରୁ ବୈଶାଖ ୧ ବୋଲି ଗଣାଯାଏ । ଓଡ଼ିଆ ସନରେ ସଂକ୍ରାନ୍ତି ସୌର ମାସର ୧ ଦିନ; କିନ୍ତୁ ବଙ୍ଗଳା ସନରେ ସଂକ୍ରାନ୍ତି ପୂର୍ବବର୍ତ୍ତୀ ସୌରମାସର ଶେଷ ଦିନ ଅଟେ ।

ଉଦାହରଣ ସ୍ୱରୂପ—ଖ୍ରୀ ୧୯୨୬ ସାଲର ୧୩ ତାରିଖ ଅପ୍ରେଲ ମହାବିଷୁବ ସଂକ୍ରାନ୍ତି ଓଡ଼ିଶାରେ ୧୩୩୩ ସାଲର ବୈଶାଖ ୧ ଦିନ (କାରଣ ଓଡ଼ିଶାରେ ୧୩୩୩ ସନ ଗତ କନ୍ୟା ବା ସୌର ଆଶ୍ୱିନରୁ ଆରମ୍ଭ ହୋଇଥିଲା), କିନ୍ତୁ ଉକ୍ତ ଖ୍ରୀ ୧୯୨୬ର ୧୩ ଅପ୍ରେଲ ବଙ୍ଗଳାରେ ୧୩୩୨ ସାଲର ଚୈତ୍ର ୩୦ ଦିନ ଅଟେ । ତହିଁର ପରଦିନ ବଙ୍ଗାବ୍ଦର ଆରମ୍ଭ ଅର୍ଥାତ୍ ଖ୍ରୀ ୧୯୨୬ ସାଲ୍ ୧୪ ଅପ୍ରେଲ=ନୂତନ ବଙ୍ଗାବ୍ଦ ୧୩୩୩ର ବୈଶାଖ ୧ ଦିନ ହେଲା । ଏଥିରୁ ଦେଖାଯିବ ଯେ, ଓଡ଼ିଶାରେ ଅଶ୍ୱିନ [ସୁନିଆଁ]ଠାରୁ ଯେଉଁ ନୂଆ ସନ ଆରମ୍ଭ ହୋଇଥାଏ, ବଙ୍ଗଦେଶରେ ସେହି ନୂଆ ସନ ଛଅ ମାସ ପରେ ମହାବିଷୁବ ସଂକ୍ରାନ୍ତିର ପରଦିନଠାରୁ ଆରମ୍ଭ ହୁଏ । ଓଡ଼ିଶାରେ ସୁନିଆ ଦିନ ନବ ବର୍ଷାରମ୍ଭ, ବଙ୍ଗଦେଶରେ ମହାବିଷୁବ ସଂକ୍ରାନ୍ତି ବାସିଦିନ ନବ ବର୍ଷାରମ୍ଭ । ଖ୍ରୀଷ୍ଟାବ୍ଦ ୧୯୨୬ ସାଲ ସୁନିଆଁର ପୂର୍ବଦିନ [୧୮-୯-୨୬] ଓଡ଼ିଆ ୧୩୩୩ ସାଲର ଶେଷ ଦିନ, କିନ୍ତୁ ତତ୍‌ପରବର୍ତ୍ତୀ ବିଷୁବ ସଂକ୍ରାନ୍ତି [୧୩-୪-୨୭] ବଙ୍ଗଳା ୧୩୩୩ ସାଲର ଶେଷ ଦିନ ହୋଇଥିଲା ।

୭ । ଫସଲି ସନ ବା ଅମଲୀ ସନ—ଫସଲ ଅମଦାନୀ ବା ଶସ୍ୟକର୍ତ୍ତନ [ବା ଅମଲ] ଅନୁସାରେ ଏହି ବର୍ଷର ଗଣନା ହୁଏ । ବଙ୍ଗଦେଶରେ ମହାବିଷୁବ ସଂକ୍ରାନ୍ତିର ପରବର୍ତ୍ତୀ ଦିନଠାରୁ, ଓଡ଼ିଶାରେ ଭାଦ୍ର ଶୁକ୍ଲ ଦ୍ୱାଦଶୀ (ସୁନିଆଁ) ଠାରୁ ଓ ଉତ୍ତରଭାରତରେ ୧ ଶୁକ୍ଳ ଆଶ୍ୱିନଠାରୁ ଫସଲି ସନ ଗଣାଯାଏ । ଦେଖିବାକୁ ଗଲେ ଭିନ୍ନ ଭିନ୍ନ ଦେଶରେ ଭିନ୍ନ ଭିନ୍ନ ପ୍ରକାରରେ ଫସଲ ସନର ଗଣନା ହୁଏ ।

୮ । ବିଲାୟତୀ ସନ—ଯେଉଁ ଫସଲି ସନ ୧ ସୌର ଆଶ୍ୱିନ (କନ୍ୟା)ରୁ ଆରମ୍ଭ ହୁଏ, ତାହାର ନାମ ବିଲାୟତୀ ସନ । ଓଡ଼ିଶାରେ ଦେବପୂଜା ଆଦି ବିଲାୟତୀ ସନ ଗଣନା-କ୍ରମେ ଧରାଯାଏ । ଏହାର ସଂଖ୍ୟା ଗଣନା ସମ୍ରାଟ ଆକବରଙ୍କ ପ୍ରବର୍ତ୍ତିତ ସନ ଅନୁସାରେ ହୁଏ ।

କିନ୍ତୁ ଉତ୍ତର ଭାରତରେ ଫସଲି ସନ ଆଶ୍ୱିନ କୃଷ୍ଣ ପ୍ରତିପଦଠାରୁ ଆରମ୍ଭ ହୁଏ ।

୯ । ହିଜିରୀ ସନ ବା ମୁସଲମାନୀ ସନ ବା ମହମ୍ମଦୀୟ ସନ—ମହମ୍ମଦ ଶତ୍ରୁମାନଙ୍କ ଅତ୍ୟାଚାରରେ ମକ୍କାଠାରୁ ମଦିନାକୁ ଯାତ୍ରା କରିବା ଦିନ (ଖ୍ରୀ, ୬୨୨ ଜୁଲାଇ ୧୦ ତାରିଖ) ଠାରୁ ଏହି ସନ ଗଣନା ଆରମ୍ଭ ହୋଇଥିଲା । ଏହି ସନ ଚାନ୍ଦ୍ରମାନ ବର୍ଷ । ୧୨ ଚନ୍ଦ୍ରୋଦୟରେ ଏକ ବର୍ଷ=୩୫୪ ଦିନ ।

ଅମାବାସ୍ୟା ପରେ ପ୍ରଥମେ ଯେଉଁ ଦିନ ସନ୍ଧ୍ୟାବେଳେ ଦ୍ୱିତୀୟାର ଚନ୍ଦ୍ର ଦେଖାଯାଆନ୍ତି, ସେହି ଦିନର ପର ଦିନଠାରୁ ମାସର ଗଣନା ଆରମ୍ଭ ହୋଇ ତତ୍ପରବର୍ତ୍ତୀ ଦ୍ୱିତୀୟାର ଚନ୍ଦ୍ର ଦର୍ଶନ ପର୍ଯ୍ୟନ୍ତ ଏକ ମାସ ହୁଏ ।

ବଙ୍ଗାବ୍ଦ ଓ ଖ୍ରୀଷ୍ଟାବ୍ଦର ସୌର ଗଣନା କ୍ରମେ ୧ ବର୍ଷ =୩୬୫ ଦିନ । ଭାରତରେ ଚାନ୍ଦ୍ରମାନ ଗଣନା ଅନୁସାରେ ଯେଉଁ ବର୍ଷ ଗଣତି ହୁଏ, ସେଥିରେ ପ୍ରତି ଚାନ୍ଦ୍ରବର୍ଷ ସୌରବର୍ଷଠାରୁ ୧୧ଦିନ କମ୍ ହେବାରୁ ୩ବର୍ଷ ଅନ୍ତରରେ ଗୋଟିଏ ଲେଖାଏଁ ମଳ ମାସ ବା ଅଧିମାସ ପୂରାଇ ଚାନ୍ଦ୍ର ବର୍ଷ ସଙ୍ଗେ ସୌର ବର୍ଷର ମେଳ କରାଯାଏ, ଓ ସେହି ହେତୁ ଏ ଦୁଇପ୍ରକାର ଗଣନାରେ ଋତୁର ସମତା ରକ୍ଷା କରାଯାଏ । କିନ୍ତୁ ହିଜିରୀ ସନ ଚାନ୍ଦ୍ରବର୍ଷ ଥିବାରୁ ସେହି ଗଣନା ଅନୁସାରେ ସୌର ବର୍ଷ ଅପେକ୍ଷା ହିଜିରୀ ସନର ଯେଉଁ ୧୧ ଦିନ ପ୍ରତି ବର୍ଷ କମ୍ ହୁଏ, ତାହା ପୂରଣ କରା ନ ଯିବାରୁ ହିଜିରୀ ସନର ମାସମାନ ପ୍ରତିବର୍ଷ ଏକ ଋତୁରେ ପଡ଼େ ନାହିଁ; ସେଥିଯୋଗୁଁ ମୁସଲମାନଙ୍କ ପର୍ବମାନ ଭିନ୍ନ ଭିନ୍ନ ଋତୁରେ ପଡ଼େ । ଯଥା--ଥରେ ଖରାଦିନେ ମହରମ୍ ପଡ଼େ; ୨।୩ ବର୍ଷ ବାଦ ତାହା ବର୍ଷାଦିନେ ପଡ଼େ; ଫେର୍ ୨।୩ ବର୍ଷ ବାଦ ତାହା ଶରତ୍ କାଳରେ, ପରେ ଶୀତକାଳରେ, ପୁଣି କେତେବର୍ଷ ପରେ ବସନ୍ତ କାଳରେ ପଡ଼େ ।

ଅତଏବ ମଧ୍ୟ ଦେଖାଯାଏ ଯେ, ଅକବର ବାଦସାହା ତାଙ୍କ ରାଜତ୍ୱର ଆରମ୍ଭ ଅର୍ଥାତ୍ ୧୫୫୬ ଖ୍ରୀଷ୍ଟାବ୍ଦରେ =ଶକାବ୍ଦ ୧୪୭୮ରେ ଚଳୁଥିବା ହିଜିରୀ ୯୬୩ ସନକୁ ଭାରତରେ ସମାନ ସଂଖ୍ୟକ ସନ ୯୬୩ ବୋଲି ପ୍ରଥମେ ଚଳାଇଥିଲେ । ସେହି ଦିନଠାରୁ ୧।୧।୩୭ ପର୍ଯ୍ୟନ୍ତ ହିନ୍ଦୁଙ୍କ ଗଣନାକ୍ରମେ ୧୩୪୫ ହୋଇଥିଲା । କିନ୍ତୁ ହିଜିରୀ ସନ ହିନ୍ଦୁମାନଙ୍କ ସନଠାରୁ ପ୍ରତିବର୍ଷ ୧୧ ଦିନ କମ୍ ଥିବାରୁ ସେଦିନ ହିଜିରୀ ୧୩୫୬ ସନ=ଶକାବ୍ଦ ୧୮୫୯ =୧୯୩୭ ଖ୍ରୀଷ୍ଟାବ୍ଦରେ=ଓଡ଼ିଆ ସନ ବା ଦିଲ୍ଲୀଶ୍ୱରାବ୍ଦ ୧୩୪୪=ବିକ୍ରମାବ୍ଦ ୧୯୯୪ ହେଲା । ଅର୍ଥାତ୍, ଅକବର ବାଦସାହାଙ୍କ ରାଜତ୍ୱ ଆରମ୍ଭ (୧୫୫୬ ଖ୍ରୀଷ୍ଟାବ୍ଦଠାରୁ ହିନ୍ଦୁ ଓ ଖ୍ରୀଷ୍ଟାନ୍ ଗଣନା କ୍ରମେ ୩୮୧ ବର୍ଷ ଗତ ହୋଇଅଛି; କିନ୍ତୁ ମୁସଲମାନୀ ଗଣନାକ୍ରମେ ୩୯୩ ବର୍ଷ ଗତ ହୋଇଅଛି; ଅନ୍ୟ କଥାରେ କହିବାକୁ ଗଲେ, ହିନ୍ଦୁ ଓ ଖ୍ରୀଷ୍ଟାନଙ୍କ ଗଣନାକ୍ରମେ ୩୮୧ ବର୍ଷ=ହିଜିରୀ ଗଣନାକ୍ରମେ ୩୯୩

ବର୍ଷ, ଅର୍ଥାତ୍ ହିନ୍ଦୁଙ୍କର ୩୧ ବର୍ଷ=ହିଜ୍‌ରା ୩୨ ବର୍ଷ; କାରଣ, ମୁସଲମାନ୍ ବର୍ଷ ପ୍ରତିବର୍ଷ ହିନ୍ଦୁ ଓ ଖ୍ରୀଷ୍ଟାନ୍ ଗଣନା ଅନୁସାରେ ୧୧ ଦିନ ଲେଖାଏଁ କମି ହେବାରୁ ପ୍ରତି ୩୧ ବର୍ଷରେ ୩୬୫ ଦିନ ଲେଖାଏଁ କମିଯାଇଛି ।

ହିଜ୍‌ରା ସନର ପ୍ରଥମ ମାସ ମହରମ ଓ ଶେଷମାସ ଜେଲ୍ ହିଜ୍ଜ ଅଟେ ।

୧୦ । ପୁରୀ ଗଜପତିରାଜାଙ୍କ ଅଙ୍କ—ପୁରୀର ରାଜାମାନେ "ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବ କୋଟି କର୍ଣ୍ଣାଟ କଲବର୍ଗେଶ୍ୱର" ଥିବା ସମୟରୁ ପ୍ରତି ରାଜାଙ୍କ ରାଜତ୍ୱର ଆରମ୍ଭରୁ ଏହି ଅଙ୍କ ଗଣନା କରାଯାଏ । ପୁରୀର ରାଜାମାନେ ବର୍ତ୍ତମାନ ସ୍ୱାଧୀନ ରାଜତ୍ୱ କରୁନାହାନ୍ତି । ଇଂରାଜ ଗଭର୍ଣ୍ଣମେଣ୍ଟ ପୁରୀର ପ୍ରତ୍ୟେକ ରାଜାଙ୍କୁ ବ୍ୟକ୍ତିଗତ ଭାବରେ 'ରାଜା' ଉପାଧି ଦିଅନ୍ତି । କିନ୍ତୁ ଉତ୍କଳବାସୀମାନେ ତାଙ୍କୁ 'ପୁରୀରାଜା' 'ଗଜପତି ମହାରାଜା' ବା 'ଠାକୁର ରଜା' ବୋଲି କହନ୍ତି ।

ଏହି ଅଙ୍କ ପ୍ରତିବର୍ଷ ସୁନିଆଁ (ଭାଦ୍ର ଶୁକ୍ଳ ଦ୍ୱାଦଶୀ) ଠାରୁ ଗଣନା କରାଯାଏ; କିନ୍ତୁ ଏହାର ମାସର ଓ ଦିନର ଗଣନା ସୌରଗଣନା ଅଟେ । ଯଥା—

ଶୁଣି, ଭାଦ୍ର ମାସ=ସୌର ସିଂହ ମାସ
ଆଶ୍ୱିନ=କନ୍ୟା
କାର୍ତ୍ତିକ=ତୁଳ

ଏହି ସନର ବିଶେଷତ୍ୱ ଏହି ଯେ, ସୌର କନ୍ୟା ମାସର ଯେଉଁ ଦିବସ (ଭାଦ୍ର ଶୁକ୍ଳ ଦ୍ୱାଦଶୀ) ସୁନିଆଁ ପଡ଼ିବ, ସେହି ଦିନ ସେହି ତାରିଖ ଧରିବାକୁ ହେବ । ତତ୍ପୂର୍ବଦିନ ପୂର୍ବବର୍ତ୍ତୀ ଅଙ୍କର ପୂର୍ବ ତାରିଖ ଧରାଯାଏ । ଯଥା—ଖ୍ରୀ: ୧୯୨୬ର ସୁନିଆଁ (୧୯।୯।୧୯୨୬) ସୌର ଆଶ୍ୱିନ ବା କନ୍ୟା ମାସର ୪ ଦିନ ହୋଇଥିଲା ଏବଂ ସେହିଦିନଠାରୁ ପୁରୀର ନୂତନ (ବର୍ତ୍ତମାନ) ରାଜା ରାମଚନ୍ଦ୍ର ଦେବଙ୍କର ରାଜତ୍ୱର ୧ମ ବର୍ଷ ଅର୍ଥାତ ୩ ଅଙ୍କ ବୋଲାଗଲା ଓ ହିନ୍ଦୁମାନଙ୍କ ବହୀଖାତାର ୧୩୩୪ ସନ ମଧ୍ୟ ସେହିଦିନ ଆରମ୍ଭ ହେଲା ।

ତହିଁର ପୂର୍ବଦିନ (୧୮।୯।୧୯୨୬ରେ) ଲେଖା ଯାଉଥିଲା ୧୩୩୩ ସାଲ, ମୁକୁନ୍ଦଦେବଙ୍କ ୫୫ ଅଙ୍କ କନ୍ୟା (ଆଶ୍ୱିନ) ୩ ଦିନ ଓ ସେଦିନ (୧୯।୯।୧୯୨୬ରେ) ଲେଖାଗଲା ୧୩୩୪ ସାଲ ରାମଚନ୍ଦ୍ର ଦେବଙ୍କ ( ରାଜତ୍ୱର ପ୍ରଥମ ବର୍ଷ ବା ) ୩ ଅଙ୍କ କନ୍ୟା ୪ ଦିନ ।

ଏହି ଅଙ୍କର ଗଣନାରେ ଆଉ ଗୋଟିଏ ବିଶେଷତ୍ୱ ଏହି ଯେ, ନୂଆ ରାଜାଙ୍କ ରାଜତ୍ୱର ୧ମ ବର୍ଷ ୩ ଅଙ୍କ ବୋଲି ଗଣାଯାଏ । ତତ୍ପରେ ୬, ୧୬, ୨୬, ୩୬, ୪୬, ୫୬ ଇତ୍ୟାଦି ସଂଖ୍ୟା ଗଣନା କରାଯାଏ ନାହିଁ, ଅର୍ଥାତ୍ ୫ ଅଙ୍କ ପରେ ୭ଅଙ୍କ,୧୫ ଅଙ୍କ ପରେ ୧୭ ଅଙ୍କ, ୨୫ ଅଙ୍କ ପରେ ୨୭ ଅଙ୍କ ଗଣା ହୁଏ । ୧୦ଅଙ୍କ ଗଣାଯାଏ; କିନ୍ତୁ ୨୦, ୩୦,୪୦,୫୦,୬୦ ଆଦି ୧୦ର ଗୁଣିତକ ଅଙ୍କମାନଙ୍କ ସଂଖ୍ୟା ଗଣାଯାଏ ନାହିଁ; ଅର୍ଥାତ୍ ୧୯ ପରେ ୨୧ ଅଙ୍କ, ୨୯ ପରେ ୩୧ ଅଙ୍କ ଗଣାଯାଏ । ଉଦାହରଣ ସ୍ୱରୂପ ଦେଖାଯାଉ ଯେ, ୧୯୨୬ ସନ ସୁନିଆଁ ପୂର୍ବେ ସ୍ୱର୍ଗୀୟ ମୁକୁନ୍ଦଦେବ ମହାରାଜାଙ୍କର ୫୫ ଅଙ୍କ ହୋଇଥିଲା । ମୁକୁନ୍ଦଦେବ ବଞ୍ଚି ଥିଲେ ଏ ସୁନିଆ ପରେ ମୁକୁନ୍ଦଦେବଙ୍କର (୫୬ ଅଙ୍କ ନ ହୋଇ) ୫୭ ଅଙ୍କ ହୋଇଥାନ୍ତା; କିନ୍ତୁ ମୁକୁନ୍ଦଦେବ ସୁନିଆଁ ପୂର୍ବରୁ ମୃତ ହେବାରୁ ରାମଚନ୍ଦ୍ରଦେବ ରାଜା ହେଲେ । ସୁନିଆଁ ପୂର୍ବର ସନ ଆରମ୍ଭଠାରୁ ମୁକୁନ୍ଦଦେବଙ୍କର ୫୫ ଅଙ୍କ ଚାଲୁଥିଲା । ଏଥିମଧ୍ୟରେ ମୁକୁନ୍ଦଦେବ ସ୍ୱର୍ଗପ୍ରାପ୍ତ ହେଲେ ଓ ରାମଚନ୍ଦ୍ରଦେବ ରାଜା ହେଲେ ମଧ୍ୟ ସୁନିଆଁ ପର୍ଯ୍ୟନ୍ତ ସ୍ୱର୍ଗୀୟ ମୁକୁନ୍ଦଦେବଙ୍କର ୫୫ ଅଙ୍କ ଚାଲିଲା ଓ ସୁନିଆଁ ପରେ ନୂଆ ରାଜା (ରାମଚନ୍ଦ୍ରଦେବ)ଙ୍କ ରାଜତ୍ୱର ପ୍ରଥମ ବର୍ଷ ଅର୍ଥାତ୍ ରାମଚନ୍ଦ୍ରଦେବଙ୍କ ୩ ଅଙ୍କ ବୋଲି ଗଣାଗଲା । ନୂଆ ରାଜାଙ୍କର ୨ ଅଙ୍କ ଗଣାଗଲା ନାହିଁ ।

ପୁରୀ ରାଜାଙ୍କର ବଂଶାନୁଗତ ନାମକରଣରେ ମଧ୍ୟ ବିଶେଷତ୍ୱ ଅଛି । ଯଥା—ପୁରୀର ଗଜପତି ରାଜାମାନେ ଯଥାକ୍ରମେ ରାମଚନ୍ଦ୍ର ଦେବ, ବୀରକେଶରୀ ଦେବ, ଦିବ୍ୟସିଂହ ଦେବ ଓ ମୁକୁନ୍ଦଦେବ ଏହି ନାମ ଗୁଡ଼ିକ ମାତ୍ର ଗ୍ରହଣ କରନ୍ତି । ଏହି ୪ଟି ନାମ ପର୍ଯ୍ୟାୟକ୍ରମେ ରାଜାମାନଙ୍କୁ ପ୍ରଦତ୍ତ ହୋଇ ଆସୁଅଛି ।]

**ସନ ଆଖର(ରି)**—ବୈଦେ. ବି ( ଫାଁ. ସନ୍ ଓ ଆଖୀର୍ )—ବର୍ଷର ଶେଷ—The end of a year.
Sana ākhara(ri)
सन् आखिर सन आखिर (ସନ ଆଖିର—ଅପଭ୍ରଂଶ)

**ସନ ଆଦ୍ୟ**—ଦେ. ବି (ଫା. ସନ ଓ ସଂ. ଆଦ୍ୟ)—ବର୍ଷର ଆରମ୍ଭ—The beginning of a year.
Sana ādya
सन आरम्भ सन आरम्भ

**ସନକ**—ସଂ. ବି (ନାମ) (ସନ୍, ଧାତୁ=ସେବା କରିବା+କର୍ତ୍ତୃ-ଅକ)—ଜଣେକ ମୁନି; ବ୍ରହ୍ମାଙ୍କର ୭ଟି ମାନସ ପୁତ୍ର ମଧ୍ୟରୁ ଏକତମ; ବୈଶ୍ୱଦେବ ଓ ଶ୍ରାଦ୍ଧାଦିରେ ଯେଉଁ 'ସପ୍ତଦିବ୍ୟ ମନୁଷ୍ୟ'ଙ୍କୁ ତର୍ପଣ କରାଯାଏ, ସେମାନଙ୍କ ମଧ୍ୟରୁ ଏକତମ—Name of a progenitor of mankind. [ଦ୍ର—
Sanaka
ସପ୍ତ ମନୁଷ୍ୟଙ୍କ ନାମ, ଯଥା—୧ ସନକ, ୨ ସନାତନ, ୩ କପିଳ, ୪ ବୋଢ଼ୁ, ୫ ଆସୁରୀ, ୬ ପଞ୍ଚଶିଖ ଓ ୭ ସନନ୍ଦ । ପୁରାଣ ମତରେ ଏମାନେ ମନୁଷ୍ୟମାନଙ୍କର ପୂର୍ବପୁରୁଷ ଓ ଜନଲୋକବାସୀ ଅଟନ୍ତି । ମତାନ୍ତରରେ ବ୍ରହ୍ମାଙ୍କର ୪ଗୋଟି ମାନସପୁତ୍ର ମଧ୍ୟରୁ ସନକ ଏକତମ—୪ ପୁତ୍ରଙ୍କ ନାମ; ଯଥା—ସନକ, ସନନ୍ଦ, ସନାତନ ଓ ସନତ୍କୁମାର; ଏମାନେ ବ୍ରହ୍ମାଙ୍କ ଆଦେଶ ଅନୁସାରେ ମନୁଷ୍ୟମାନଙ୍କୁ ସୃଷ୍ଟି କଲେ (ଭାଗବତ ତୃତୀୟ ସ୍କନ୍ଧ ୧୨ ଅଧ୍ୟାୟ) । ଶ୍ରାଦ୍ଧ ହୋଇ ଅର୍ଥାତ୍ ପଇତାକୁ ମାଳି ପରି ବେକରେ ଲମ୍ବାଇ ଉତ୍ତରମୁଖ ହୋଇ ଏହି ସପ୍ତ ଦିବ୍ୟମନୁଷ୍ୟମାନଙ୍କୁ ତଣ୍ଡୁଳୋଦକରେ ତର୍ପଣ କରିବାକୁ ହୁଏ ।]

**ସନକ୍ଷତ୍ର**—ଗ୍ରା. ବି ( ସଂ. ସ୍ୱଜନକ୍ଷତ୍ର )—ମନୁଷ୍ୟର ଜନ୍ମଦିନର ନକ୍ଷତ୍ର ଯେଉଁ ଦିବସରେ ପଡ଼େ—One's birthday.
Sanakshatra
सनक्षत्र वर्षगाँठ

**ସନତ୍**—ସଂ. ବ ( ସନ୍ ଧାତୁ=ଦାନ କରିବା+କର୍ତ୍ତୃ. ଅତ୍ )—
Sanat ବ୍ରହ୍ମା—Brahmā. ସଂ. ଅ—ସଦା; ସର୍ବଦା—
Always; for ever.

**ସନତ୍ କୁମାର**—ସଂ.ବ (ନାମ) (ସନତ୍=ବ୍ରହ୍ମାଙ୍କର+କୁମାର=ପୁତ୍ର)
Sanat kumāra —ଋଷି ବିଶେଷ; ବ୍ରହ୍ମାଙ୍କର ମାନସ ପୁତ୍ର-
ସଂ. ବେ ଧାତକ, ଧାତୃପୁତ୍ର, ବେଧାସୁ] ବିଶେଷ—Name of a
sage. [ବି—ଏହାଙ୍କର ନାମ ମହାଭାରତର ହରିବଂଶରେ
ମିଳେ। ଏ ମହାତପାଃ ଓ ପରମଧାର୍ମିକ ଥିଲେ। ଏଥିଯୋଗୁ
ଋଷିମାନେ ଏହାଙ୍କୁ ଶ୍ରଦ୍ଧା ଓ ବିଶ୍ୱାସ କରୁଥିଲେ। ରାଜର୍ଷି
ବୈଶ୍ୟଙ୍କ ଅଶ୍ୱମେଧ ଯଜ୍ଞ କାଳରେ ଗୌତମ ଓ ଅତ୍ରିଙ୍କ
ମଧ୍ୟରେ ବିତଣ୍ଡା ଉପସ୍ଥିତ ହେବାରୁ ତହିଁର ମୀମାଂସା ନିମନ୍ତେ
ଉଭୟ ପକ୍ଷ ଏହାଙ୍କୁ ମଧ୍ୟସ୍ଥ ମାନିବାରୁ ଏ ଉକ୍ତ ବିବାଦକୁ
ନିଷ୍ପତ୍ତି କରିଥିଲେ।

ଧର୍ମଦେବଙ୍କ ଭାର୍ଯ୍ୟା ଅହିଂସାଙ୍କଠାରୁ ୪ଟି ପୁତ୍ର ଜାତ
ହୋଇଥିଲେ ଓ ପରେ ଏମାନଙ୍କୁ ବ୍ରହ୍ମା ଦତ୍ତକ ପୁତ୍ରରୂପେ
ଗ୍ରହଣ କରି ପ୍ରଜାସୃଷ୍ଟି କରାଇଲେ। ଏମାନଙ୍କ ନାମ
ଯଥାକ୍ରମେ ସନତ୍କୁମାର, ସନାତନ, ସନକ ଓ ସନନ୍ଦ
ବା ସନନ୍ଦନ। ଧର୍ମଙ୍କ ଔରସରେ ଅହିଂସାଙ୍କ ଗର୍ଭରେ
ଜନ୍ମ ହୋଇଥିବା ଆଉ ୪ ଗୋଟି ପୁତ୍ରଙ୍କ ନାମ, ଯଥା—
କପିଳ, ବୋଢୁ, ଅସୁରି ଓ ପଞ୍ଚଶିଖ। ଏହି ୮ ଜଣଙ୍କ
ମଧ୍ୟରୁ ସନତ୍କୁମାରଙ୍କ ଛଡ଼ା ଅନ୍ୟ ୭ ଜଣଙ୍କୁ 'ସପ୍ତ
ମନୁଷ୍ୟ' ନାମରେ ଶ୍ରାଦ୍ଧ, ବୈଶ୍ୱଦେବ ଓ ତର୍ପଣରେ ଜଳ
ଓ ତିଳୋଦକାଦି ଦିଆଯାଏ। ଏମାନଙ୍କ ଆଖ୍ୟାନ
ମହାଭାରତୀୟ ହରିବଂଶ, ବାମନ ପୁରାଣ ୫୭।୫୮ ଅଧ୍ୟାୟ,
ବ୍ରହ୍ମବୈବର୍ତ୍ତ ପୁରାଣ, କୃଷ୍ଣଜନ୍ମଖଣ୍ଡ ୧୨୯ ଅଧ୍ୟାୟରେ
ବର୍ଣ୍ଣିତ ଅଛି।] ୨। ଜିନ ବା ଜୈନଙ୍କ ମତରେ ଦ୍ୱାଦଶ
ସାର୍ବଭୌମମାନଙ୍କ ମଧ୍ୟରୁ ଏକତମ—2. One of the
12 famous universal saints according
to the Jainas.

**ସନନ୍ଦ**—ଦେଂବ. (ସଂ.ସନନ୍ଦ)—ସନନ୍ଦ ନାମକ ଋଷି; ସପ୍ତମନୁଷ୍ୟମାନଙ୍କ
Sanada ମଧ୍ୟରୁ ଏକତମ—Sage Sananda.
सनन्द सनंद ବୈଦେ. ବ—ସନନ୍ଦ (ଦେଖ)
Sananda (See)

**ସନନ୍ଦ**—ସଂ. ବିଣ. ପୁଂ (ସ=ସହିତ+ନନ୍ଦ=ଆନନ୍ଦ)—ଆନନ୍ଦଯୁକ୍ତ
Sananda —Joyous; merry. ସଂ. ବ. (ନାମ)—
(ସନନ୍ଦା—ସ୍ତ୍ରୀ) ବ୍ରହ୍ମାଙ୍କର ମାନସ ପୁତ୍ର ବିଶେଷ; ଋଷି ବିଶେଷ—
Name of a sage. [ବି—ସନତ୍ କୁମାର ତଳେ
ନୋଟ୍ ଦେଖ।] ବୈଦେ. ବ.—(ଅ.)—କୌଣସି
सनद सनद सनद् ବ୍ୟକ୍ତିଙ୍କୁ ଭୂମି, ବୃତ୍ତି, ପଦ ବା ଉପାଧି ଆଦି
ଦିଆଗଲେ ତହିଁର ନିଦର୍ଶନ ସ୍ୱରୂପ ତାଙ୍କୁ ରାଜାଙ୍କଠାରୁ
ମିଳିବା ପରୱାନା; ରାଜାଦେଶ ପତ୍ର; ରାଜାଙ୍କର ସ୍ୱାକ୍ଷର ଓ
ମୋହର-ଯୁକ୍ତ ଆଦେଶ ପତ୍ର; ଅନୁଶାସନ—Firman; a
grant; a written order signed and
sealed by a king; mandate of appointment.
[ଢି—ଜମି ଭୋଗ ଦଖଲ କରିବା ନିମନ୍ତେ
ନବାବଙ୍କ ସୁବାଦାର ତମ୍ବାପାଟିଆ ସନଦ ଦେଇଅଛନ୍ତି।
ଫକୀର ମୋହନ, ଛଅ ମାଣ ଅଠ ଗୁଣ୍ଠ]
[ବି—ଏ ଶବ୍ଦ ଇଂରାଜୀରେ ମଧ୍ୟ 'Sanad' ବୋଲି
ବ୍ୟବହୃତ ହୁଏ।

**ସନନ୍ଦନ**—ସଂ. ବ. ( ସ+ନନ୍ଦନ=ଆନନ୍ଦ )—ବ୍ରହ୍ମାଙ୍କର ଏକତମ
Sanandana ମାନସ ପୁତ୍ର; ସନନ୍ଦଙ୍କର ନାମାନ୍ତର—
Another name of sage Sananda.

**ସନ୍ ପଟ**—ପ୍ରାଦେ (ପାଟଣା) ବ—ଛଣପଟ—
San-pat Sun-hemp; Crotolaria Juncea.

**ସନ ବରସନ**—ବୈଦେଂ କ୍ରି. ବିଣ (ଅ. ସନ୍=ବର୍ଷ ଓ ବର୍ ସନ୍=
Sana barasana ବର୍ଷରେ)—ପ୍ରତିବର୍ଷ; ପ୍ରତି ସନ—Every
ପ୍ରତିବଚ୍ଛର ফিবচ্ছর हरसन year; annually.

**ସନମତ**—ଗ୍ରା. ବିଣ (ସଂ. ସମ୍ମତ)—ସମ୍ମତ (ଦେଖ)—
Sanamata Sammata (See) [ବି—ବଧୂସନମତ ପୃଥିବୀ
सनमत सहमत ହବା ପାର୍ଥିବ ଏହି—ଭଞ୍ଜ. ବୈଦେହୀଶ
सम्मति सम्मति ବିଳାସ] ଗ୍ରା. ବି—ସମ୍ମତି (ଦେଖ)—
Sammati (See) [ଢି—ଏ କଥା ଶୁଣି ଦ୍ୱିଜ
ସନମତ କଲେ। କୃଷ୍ଣସିଂହ.ମହାଭାରତ. ବନ]

**ସନମତ(ତି) କରିବା**—ଦେ. କ୍ରି—ସମ୍ମତ ହେବା; ରାଜିହେବା—To
Sanamata(ti) kariba agree; to consent.
सनमत हवना सहमत करना [ଢି—ନୃପ ତାହା ଶୁଣି
କହନ୍ତେ ସନମତି, ସେନାପତି କଲେ ତାହାଙ୍କୁ ପୁରୁହୁତ।
କୃଷ୍ଣସିଂହ, ମହାଭାରତ. ବନ]

**ସନମତି**—ଗ୍ରା. ବ—(ସଂ. ସମ୍ମତି)—୧। ସମ୍ମତି- (ଦେଖ)—
Sanamati 1. Sammati (See) [ଢି—ସେ କଥାକୁ
सम्मति सम्मति ସନମତି ସେ କଲେ। କୃଷ୍ଣସିଂହ, ମହାଭାରତ,
ଆଦି] ୨। କରଣ ସମାଜରେ ମହାପ୍ରସାଦ ନିର୍ବନ୍ଧ ପରେ
କନ୍ୟାଘରୁ ବରଘରକୁ ସିଦ୍ଧକାର(ସ୍ୱୀକାର)ଚେକିଜିର
ପଠାଗଲା ପରେ ବରଘରୁ କନ୍ୟାଘରକୁ କନ୍ୟାର
ବ୍ୟବହାର୍ଯ୍ୟ ପାଟଶାଢ଼ୀ, ଅଳଙ୍କାର ଓ ବାସନ ଆଦି ଯାହା
ଭେଟିରୂପେ ପଠାଯାଏ—2. Formal present of
cloth, ornaments etc for the use of the
bridegroom sent on receipt of the
presents from the bride's party after
formal betrothal. [ବି—ମହାପ୍ରସାଦ ନିର୍ବନ୍ଧ
ପରେ ଏହା କନ୍ୟା ପକ୍ଷରୁ ସାମାଜିକ ଅଙ୍ଗୀକାରସୂଚକ
ସ୍ୱୀକୃତ ଅଟେ।]

**ସନମାନ**—ଗ୍ରା. ବ.—(ସଂ ସମ୍ମାନ)—ସମ୍ମାନ—
Sanamāna Respect.
सनमान सम्मान [ଢି—ଏ ରୂପେ ସନମାନ କରି, ତା ପଛେ
କାଢିବା ଶରୀର। କୃଷ୍ଣ.ପ୍ରେମ ପଞ୍ଚାମୃତ]

**ସନମୁଖ**—ଗ୍ରା. ବି.—ସମ୍ମୁଖ (ଦେଖ)
Sanamukha Sammukha (See)

**ସନ ମୁଣ୍ଡ**—ଦେ. ବି.—ସନର ଅନ୍ତ; ବର୍ଷର ଶେଷ ଭାଗ—
Sana munda Year's end; the end of the year.
বছরের শেষ सनआखिर

**ସନ ମୁଣ୍ଡେ**—ଦେ. କି. ବିଣ—ବର୍ଷ ଶେଷରେ—
Sana munde At the end of the year.
বছরের শেষে सनशेषमें

**ସନ ମୂଳ**—ଦେ. ବି—ବର୍ଷର ଆରମ୍ଭ—
Sana mūla Beginning of the year.
সন আরম্ভ सन आरम्भ

**ସନ ମୂଳେ**—ଦେ. କି. ବିଣ—ବର୍ଷର ଆଦ୍ୟରେ—
Sana mūle At the beginning of the year.
সনমুলে, সনারম্ভে सन आरम्भमें

**ସନଲ**—ଦେ. ବି (ବଣିଆ ଶବ୍ଦ)—ମଠାଣଙ୍କ ବାହା ଘରେ ବର ତରଫରୁ
Sanalā କନ୍ୟାକୁ ଦଅଯିବା ଏକପ୍ରକାର ସୁନା କଣ୍ଠି—
A sort of gold necklace given to the bridegroom's party during the marriage amongst the Mahomedans.

**ସନ ସନ**—ଦେ. ଅ ( ଧ୍ୱନ୍ୟନୁକରଣ ) ( ବଙ୍ଗଳାରୁ ଅନୁକୃତ )—
Sana sana ୧ । ଅସ୍ତ୍ର ଶସ୍ତ୍ରର ସନସନ୍ କାର ଶବ୍ଦ; ଝଣଝଣ—
সনসন 1. The rattling or clicking sound
सनसन produced by the active of weapons use.
୨ । ପବନ ଅଧ ବହିବାର ଶବ୍ଦ; ସାଇଁ ସାଇଁ—
2. Noise produced by the blowing of wind.

**ସନ ସୂତ୍ର**—ସଂ. ବି (ଷଷ୍ଠୀ ତତ୍)—ଦୁଇଟି ଶିଅ ଶଣସୂତ୍ର ଦ୍ୱାରା
Sana sūtra ଗଠିତ ପଇତା; ଶଣସୂତ୍ର—The sacred thread (consisting of 2 strings of the sun-hemp fibre worn by Kshyatriyas.
[ବି—ଏହା କ୍ଷତ୍ରିୟମାନଙ୍କ ପଇତା]

**ସନ ହାଲ୍**—ବୈଦେ. ବି (ଫା. ସନ୍+ହାଲ୍)—ଚଳନ୍ତି ସନ; ଏହି
Sana hāl ବର୍ଷ—Current year. ଦେ. ବିଣ—
সনহাল हालकासन ଚଳନ୍ତି ସନ ସମ୍ବନ୍ଧୀୟ—Relating (ବହେୟା, ଖାତକ—ବ୍ୟବହୃତ) to the current year.
[ଯଥା—ଏ ପ୍ରଜା ଉପରେ ଖଜଣା ସନହାଲ୍ ବାକି ୫ ୬୦ ଓ ସାବକ ବାକି ୫ ୪୨ ହେଉଅଛି ।]

**ସନା**—ସଂ. ଅ—୧ । ନିତ୍ୟ; ସର୍ବଦା—1. Always; constant-
Sanā ly; constant. ୨ । ସର୍ବକାଳେ—2. At all times. ୩ । ଚିରକାଳ—3. Eternally. ୪ । ସୃଷ୍ଟିର ଆଦ୍ୟରୁ—4. From time eternal.
ଦେ. ବି—(ଅନାଦରସୂଚକ) ସନାତନର ଡାକନାମ—
[ବି—ସନାତନର ସନା, ସନଆ-ଅନାଦରସୂଚକ ରୂପ ସନାଇ, ସନ, ସନୁ, ସନେଇ—ଆଦରସୂଚକ ରୂପ ଅଟେ ।]

ପ୍ରାଦେ (ଗାଁଙ୍ଗଣା ଜଳାକ ଅଞ୍ଚଳର ପ୍ରଚଳିତ ଭାଷା) ବି—
ସୁନା—Gold.

**ସନାଏତ୍**—ପ୍ରାଦେ (ସମ୍ବଲପୁର) ବି.—ଆପତ୍ତି—
Sanāet Objection.

**ସନାକୁରୁ**—ଦେ. ବି—କାଠ ବେଣ୍ଟରେ ବନ୍ଧା ଲୁହାର ଅଙ୍କୁଶି ଲାଗି-
Sanākuru ଥିବା ଅଗ୍ନିହଳ ଯନ୍ତ୍ର—An iron hook with a wooden handle used by bell metal workers to poke the fire of the oven; iron poker. [ବି—ଏହାଦ୍ୱାରା ଅଗ୍ନି-ଶାଳର କୁଅଁକୁ ବାରମ୍ବାର ଉଖାରିବାକୁ ହୁଏ ।]

**ସନାକ୍ତ**—ବୈଦେ. ବି (ଫା. ସନାଖତ୍) (ଜନରବ)—ଅଭିଜ୍ଞାନ;
Sanākta ଚିହ୍ନିବା; ଚିହ୍ନୋଟ—Identification.
সনাক্ত सनाक्त

**ସନାକ୍ତ କରିବା**—ଦେ. କ୍ରି. (ଜନରବ) କୌଣସି ବ୍ୟକ୍ତିକୁ ବା ବସ୍ତୁକୁ
Sanākta kariba ଚିହ୍ନିବା; ଚିହ୍ନୋଟ କରିବା—To
সনাক্ত করা सनाक्त करना identify a thing or a person. [ବି—ସେହି ଲୁଗ ଉକ୍ତ ଅଣି ଶାଗଥର ଥିବାରୁ ଗୋବର୍ଦ୍ଧନ ଚୋର ସନାକ୍ତ କଲା । ଫକୀରମୋହନ.
ଛଅମାଣ ଅଠଗୁଣ୍ଠ ]

**ସନା(ନ୍ନା)ଟ ମାରିବା**—ପ୍ରାଦେ.(ବାଲେଶ୍ୱର)କି—ସନାଟି ଆସିବା(ଦେଖ)
Sanā(nnā)ṭa māribā Sanāṭi āsibā (See)
(ସନା(ନ୍ନା)ଟ ଯିବା—ଅନ୍ୟରୂପ) [ବି—ଗାଁ ଗାଉଣି ଘରେ ଦେହ ପଛିତ କେତେବେଳେ ମାଛ ଶୁଖି ଜୋରରେ ସନାଟ ମାରନ୍ତି ।]

**ସନାଟି ଆସିବା**—ପ୍ରାଦେ. (ବାଲେଶ୍ୱର) କି—୧ । ଅତି କ୍ଷିପ୍ର ଗତିରେ
Sanāṭi āsibā ଧାଇଁ ଆସିବା—To come with a very quick pace. [ଯଥା—ତା କୁକୁର ମୋ ଆଡ଼କୁ ସନାଟି ଆସିଲା] ୨ । ଖୁବ୍ ଜୋରରେ ଗତି କରିବା—2. To move very briskly.

**ସନାତ୍**—ସଂ. ଅ—ନିତ୍ୟ—Eternal. ସଂ. ବି—(ବିଷ୍ଣୁଙ୍କ ସହସ୍ର
Sanāt ନାମୋକ୍ତ) ବିଷ୍ଣୁଙ୍କର ନାମ—A name of Bishṇu.

**ସନାତନ**—ସଂ. ବିଣ (ସନା=ସଦା+ଭବାର୍ଥେ ତନ)—୧ । ସଦା-
Sanātana ତନ; ନିତ୍ୟ; ଚିରସ୍ଥାୟୀ—1. Eternal; pre-
(ସନାତନୀ—ସ୍ତ୍ରୀ) petual; ever existing; incessant. ୨ । ସ୍ଥିରଶୀଳ—2. Unmoving; unchangeable. ୩ । ସୃଷ୍ଟିର ଆଦ୍ୟରୁ ଚଳି ଆସୁଥିବା 3. Current from time immemorial.
ସଂ. ବି. ପୁଂ—୧ । ବ୍ରହ୍ମାଙ୍କର ମାନସ ପୁତ୍ରବିଶେଷ—1. Name of one of the adopted sons of Brahmā. (ବି—ସନତ୍ କୁମାର ଶବ୍ଦ ଦେଖ) ଦେ. ବି—୧ । ସନାତନ ଗୋସ୍ୱାମୀ (ଦେଖ) 1. Sanātana Goswāmi (See) ୨ । (ପୁଂ)
সনাতন सनातन ଲୋକଙ୍କ ନାମ—2. A name given to males.

**ସନାତନ ଗୋସ୍ବାମୀ**—ଦେ. ବି—(ନାମ) ଶ୍ରୀ ଚୈତନ୍ୟ ଦେବଙ୍କ
Sanātana goswāmi ସମସାମୟିକ ସାଧୁଶୀଳ ବୈଷ୍ଣବ ଭକ୍ତ
Name of a very devout Vaishnab, contemporary of Chaitanya (ବି—
ଏହାଙ୍କ ଜନ୍ମ ଖ୍ରୀ ୧୪୮୮ ଓ ମୃତ୍ୟୁ ଖ୍ରୀ ୧୫୫୮ । ଏହାଙ୍କର ଗୃହସ୍ଥାଶ୍ରମରେ ନାମ ଥିଲା 'ଅମର' ଓ ବଙ୍ଗର ମୁସଲମାନ ରାଜା ହୁସେନ୍ ସାହାଙ୍କ ପ୍ରଦତ୍ତ ନାମ 'ସାକର ମଲ୍ଲିକ'; ଏହାଙ୍କ ଭାଇଙ୍କ ନାମ ରୂପ ଗୋସ୍ବାମୀ । ଏ ଦୁଇ ଭାଇ ମୁସଲମାନ ରାଜାଙ୍କ ଅଧୀନ ଚାକିରି କରୁଥିଲେ; କିନ୍ତୁ ରୂପ ଧର୍ମସାଧନାର୍ଥ ଗୃହ ତ୍ୟାଗ କରି ବୈଷ୍ଣବ ଦୀକ୍ଷା ଗ୍ରହଣ କରି 'ରୂପ ଗୋସ୍ବାମୀ' ନାମ ଧାରଣ କରି ବୃନ୍ଦାବନ ଠାକେ ତୀର୍ଥବାସ କଲେ ଓ ସନାତନ ରାଜକର୍ମଚାରୀ ଓ ସଂସାରୀ ହୋଇ ରହିଲେ । ସନାତନ ଏପରି ସଂସାରୀ ହୋଇଗଲେ ଯେ, ତାଙ୍କର ସଂସାର କର୍ମରେ ଧର୍ମାଧର୍ମ ଜ୍ଞାନ ରହିଲା ନାହିଁ । ଏହାଙ୍କ ଘରକୁ ଲାଗିକରି ଗୋଟିଏ ଗରିବ ବ୍ରାହ୍ମଣର ପୈତୃକ ଘରବାଡ଼ିକୁ ଅପଣାର ଘରବାଡ଼ି ସାମିଲ୍ କରିବାକୁ ଏ କୃତସଂକଳ୍ପ ହୋଇ ବ୍ରାହ୍ମଣ ଉପରେ ନାନା ଅତ୍ୟାଚାର କରିବାରୁ ବ୍ରାହ୍ମଣ ବୃନ୍ଦାବନକୁ ଯାଇ ରୂପ ଗୋସ୍ବାମୀଙ୍କ ଶରଣାପନ୍ନ ହେଲା । ରୂପ ଗୋସ୍ବାମୀ ଉକ୍ତ ବ୍ରାହ୍ମଣ ହାତରେ ଖଣ୍ଡିଏ କାଗଜରେ "ଯ—ସ୍ତ, ର—ଲ; ଗ—ଦଂ; ନ—ସ୍ଥ" ଏହି ୮ଟି ଅକ୍ଷରକୁ ୪ ଟି ଧାଡ଼ିରେ ଲେଖି ସନାତନଙ୍କ ନିକଟକୁ ପଠାଇ ଦେଲେ । ସନାତନ ମଧ୍ୟ ରୂପଙ୍କ ପରି ଜଣେ ସଂସ୍କୃତରେ ମହାପଣ୍ଡିତ ଥିଲେ । ସେ ଏହି ୮ ଗୋଟି ଅକ୍ଷରବିନ୍ୟାସ୍ତ ଲମ୍ବ ଲିଖିତ ଶ୍ଲୋକଟି କଳନା କରି ଭ୍ରାତାଙ୍କ ପ୍ରେରିତ ୮ଟି ଅକ୍ଷରର ମର୍ମ ବୁଝିନେଲେ ଯଥା—
"ଯଦୁପତେଃ କ୍ବଗତା ମଥୁରାପୁରୀ, ରଘୁପତେଃ କ୍ବ ଗତୋତ୍ତରକୋଶଲା; ଇତି ବିଚିନ୍ତ୍ୟ କୁରୁଷ୍ବ ମନଃ ସ୍ଥିରଂ, ନ ସଦିଦଂ ଜଗଦିତ୍ୟବଧାରୟ ।" ଅର୍ଥାତ୍ ଯଦୁପତିଙ୍କର ମଥୁରାପୁରୀ ଓ ରଘୁପତିଙ୍କର ଅଯୋଧ୍ୟା ରାଜ୍ୟ କୁଆଡ଼େ ଲୋପ ପାଇଗଲାଣି । ଏହି କଥାକୁ ଭାବି ମନକୁ ସ୍ଥିର କରି ଓ ଏ ସଂସାର ଅସତ୍ ବା ନଶ୍ବର ବୋଲି ଅବଧାରଣ କର ।

ଶ୍ଳୋକର ମର୍ମାର୍ଥ ବୁଝି ସନାତନଙ୍କର ଚୈତନ୍ୟୋଦୟ ହେଲା ଓ ସେ ଗୃହତ୍ୟାଗ କରିବାକୁ କୃତସଂକଳ୍ପ ହୋଇ ରାଜକାର୍ଯ୍ୟରେ ମନ ନ ଦେଇ ଘରେ ବସି ଧର୍ମଚିନ୍ତା କଲେ । ରାଜା ଏଥିଯୋଗୁଁ ତାଙ୍କୁ କାରାରୁଦ୍ଧ କଲେ । କିଛିକାଳ ପରେ ସେ କାରାରକ୍ଷୀଙ୍କୁ ଉତ୍କୋଚ ଦେଇ କାରାଗୃହରୁ ପଳାଇ ଚୈତନ୍ୟଙ୍କ ନିକଟରେ ଉପସ୍ଥିତ ହୋଇ ତାଙ୍କଠାରୁ ଦୀକ୍ଷା ଗ୍ରହଣ କରି ବୃନ୍ଦାବନକୁ ଗଲେ ଓ ସେଠାରେ ଭାଇଙ୍କ ସଙ୍ଗେ ବାସ କଲେ । ଏ ଦୁଇ ଭାଇ ଅନେକ ବୈଷ୍ଣବ ଗ୍ରନ୍ଥ ଲେଖି ଯାଇଅଛନ୍ତି ।
ରୂପ ଗୋସ୍ବାମୀଙ୍କର ମତାନୁସାରେ ଏହାଙ୍କ କୃତ ହଂସଦୂତ ନାମକ କାବ୍ୟ ସଂସ୍କୃତ ସାହିତ୍ୟ ଜଗତରେ ସୁପରିଚିତ ।

**ସନାତନ ତମ**—ସଂ. ବି—ବିଷ୍ଣୁଙ୍କର ନାମ ବିଶେଷ (ବିଷ୍ଣୁ ସହସ୍ର-
Sanātana tama ନାମୋକ୍ତ)—Bishṇu.
ସଂ. ବିଣ—(ସନାତନ+ତ)—ପ୍ରାଚୀନତମ—Oldest.

**ସନାତନ ଧର୍ମ**—ସଂ. ବି—ପ୍ରାଚୀନ ଋଷିମାନଙ୍କ ସମୟରୁ ଚଳି ଆସୁଥିବା
Sanātana dharma ହିନ୍ଦୁ ଧର୍ମ (ଯାହା ସୃଷ୍ଟି ଆଦ୍ୟରୁ ପୃଥିବୀରେ ଚଳୁଅଛି ବୋଲି ହିନ୍ଦୁମାନେ ବିଶ୍ବାସ କରନ୍ତି)—The Hindu religion (which is believed by the Hindus to have been current since the creation)

**ସନାତନ ଧର୍ମ ସଭା**—ସଂ. ବି—କାଶୀ ନଗରରେ ପ୍ରତିଷ୍ଠିତ ପୁରାତନ
Sanātana dharma sabhā ହିନ୍ଦୁ ମହାସଭା—An association of the Hindus long established in Benares.

**ସନାତନୀ**—ସଂ. ବିଣ. ସ୍ତ୍ରୀ—ସନାତନର ସ୍ତ୍ରୀ ଲିଙ୍ଗ—Feminine of
Sanātani Sanātana. ସଂ. ବି. ସ୍ତ୍ରୀ—୧ । ଦୁର୍ଗା—1. Goddess Durgā. ୨ । ଲକ୍ଷ୍ମୀ—2. The Goddess of wealth. ୩ । ସରସ୍ବତୀ—3. The Goddess of learning.

**ସନାଥ**—ସଂ. ବିଣ (ବହୁର୍ଥ ବହୁବ୍ରୀହି; ସ+ନାଥ)—୧ । ଯାହାର ନାଥ
Sanātha ବା ପ୍ରଭୁ ବା ସ୍ବାମୀ ଅଛନ୍ତି—1. Having an
(ସନାଥା—ସ୍ତ୍ରୀ) owner or lord or master.
(ଅନାଥ—ବିପରୀତ) ୨ । (ଅନ୍ୟ ଶବ୍ଦ ସଙ୍ଗେ ସମାସରେ) ସହିତ; ଯୁକ୍ତ—2. Connected with; accompanied by; joined with.

**ସନାଥା**—ସଂ. ବିଣ. ସ୍ତ୍ରୀ (ସ=ସହିତ ବର୍ତ୍ତମାନ+ନାଥ=ଭର୍ତ୍ତା+ସ୍ତ୍ରୀ.
Sanāthā ଆ)—ସଧବା; ସଉଭାଗ୍ୟବତୀ—(a woman)
(ଅନାଥା—ବିପରୀତ) Having her husband living.

**ସନାଭି**—ସଂ. ବି (ସ=ସହିତ+ନାଭି)—ସପ୍ତ ପୁରୁଷାନ୍ତର୍ଗତ ସପିଣ୍ଡ;
Sanābhi ଜ୍ଞାତି; ସପିଣ୍ଡ (ଦେଖ)—Agnate (within 7 degrees). ସଂ. ବିଣ—୧ । ସ୍ନେହଯୁକ୍ତ—1. Affectionate. ୨ । ସଦୃଶ—2. Similar.

**ସନାମକ**—ସଂ. ବିଣ (ସ=ସମାନ+ନାମ+କ)—ସମାନ ନାମଯୁକ୍ତ—
Sanāmaka Having the same name.
(ସନାମିକା—ସ୍ତ୍ରୀ) ସଂ. ବି (ବୈଦ୍ୟକ)—ଶୋଭାଞ୍ଜନ; ସଜନା ଗଛ—A tree; Indian horse radish tree; the Moringa tree.

**ସନା ମନା**—ଗ୍ରା. ବି (ସଂ. ସମ୍ମାନ)—ସମ୍ମାନ; ମର୍ଯ୍ୟାଦା—
Sanā manā Honour; respect.
সম্মান सनमान ଗ୍ରା. ବିଣ—ସମ୍ମାନିତ—Honoured.
সম্মানিত

**ସନାମନା କରିବା**—ଗ୍ରା. କ୍ରି—ସମ୍ମାନିତ କରିବା—To honour;
Sanā manā karibā to show respect; to render
সম্মানিত করা सनमान करना homage.

**ସନାରମ୍ଭ**—ଗ୍ରାଦେ. (ଚାଳଚେର) ବ—ବର୍ଷର ଆରମ୍ଭ—
Sanārambha The beginning of the year.
[ଦ୍ର—ଏହା ଦଶହରା ଦିନଠାରୁ ଆରମ୍ଭ ହୁଏ ।]

**ସନାସି**—ଗ୍ରାଦେ. (ଲଉଅ) ବ—(ସଂ. ସନ୍ଦଂଶ) ଚିମୁଟା—
Sanāsi A pair of tongs.
(ସହନା—ଅନ୍ୟରୂପ)

**ସନି(ଣି)**—ସଂ. ବ ( ସନ୍ ଧାତୁ+ଭାବ. ଇ )—୧ । ପୂଜା—
Sani(ni) 1. Worship. ୨ । ଦାନ—2. Charitable (ସନ୍ତୁ,ସନେଇ—ନାମର ଅନ୍ୟରୂପ) gift. ୩ । ପ୍ରାର୍ଥନା—3. Solicitation. ୪ । ଅନ୍ୱେଷଣା; (ସନିଅ,ସନୁଅ,ସନା—ଅନାଦରାର୍ଥକ) ଗୁରୁ ଓ ପୁରୋହିତାଦିଙ୍କୁ ପୁଷ୍ପାଦି ପ୍ରଦାନପୂର୍ବକ ସତ୍କାର କରି କୌଣସି କାର୍ଯ୍ୟରେ ନିୟୋଜନ (ଯଥା—ହେ ଗୁରୋ ! ଆପଣ ମତେ ବିଦ୍ୟା ଦାନ କରନ୍ତୁ)—4. Formal solicitation made to a priest or preceptor to show certain favour to a person. ୫ । ଦିକ୍; ଦିଗ—5. A quarter of the earth. ୬ । ପ୍ରଦେଶ; ଅଞ୍ଚଳ—6. Province; tract of country.
ଦେ. ବ (ଅଦରାର୍ଥକ)—ସନାତନର ଡାକନାମ—Name for calling Sanātana.

**ସନିତ**—ସଂ. ବଣ ( ସନ୍ ଧାତୁ+କର୍ମ. ତ )—୧ । ପ୍ରତିପନ୍ନ—
Sanita 1. Accomplished; demonstrated.
୨ । ସୁଖ୍ୟାତିଯୁକ୍ତ—2. Famous; celebrated.

**ସନିଧ(ଧି,ଧ୍ୟ)**—ଗ୍ରା. ବ (ସଂ. ସନ୍ନିଧି)—ସନ୍ନିଧି; ନିକଟ; ସମୀପ—
Sanidha(dhi,dhya) Nearness; propinquity.
[ଦ୍ର—ଦେଖିଣ ବଇଦ୍ୟ, ଲକ୍ଷ୍ମଣ ସନିଧ, ବେନି ନାଶା ସାନ୍ନିଧ सन्निध ପୃଡ଼ା ତୋଳି ଦେଲେ ହବ୍ୟ ନାସ; ଫୁଙ୍କିଲା ସେ ଘାସ, ମୃତ ହେଲ ବୁଦ୍ଧଗୁଳି । ବିଶ୍ୱନାଥ· ବଚିତ୍ର ରାମାୟଣ ।]

**ସନିଧା(ଧ୍ୟା)ନ**—ଗ୍ରା. ବ (ସଂ. ସନ୍ନିଧାନ)—ସନ୍ନିଧାନ; ନିକଟ—
Sanidhā(dhyā)na Nearness; propinquity.
ସନିଧାନ [ଦ୍ର—ତାହାଙ୍କୁ ମୋର ସନିଧାନ, ଅଛି ନ ଦେବ, सन्निधान କହାଚନ । ପ୍ରାଚୀ, କର୍ଣ୍ଣସମାଲୋଚ୍ୟ ।]

**ସନିଧେ(ଧ୍ୟେ)**—ଗ୍ରା· ଅ (ସଂ. ସନ୍ନିଧି)—ଠାକୁ; ନିକଟକୁ—
Sanidhe(dhye) To; near to.
ସନ୍ନିଧେ सन्निधमें

**ସନିପାତ**—ଗ୍ରା· ବ (ସଂ. ସନ୍ନିପାତ)—ଜ୍ୱରର ବିଦୋଷଜ ବିକାର—
Sanipāta Collapse or crisis in fever.
ସନିପାତ सन्निपात

**ସନିର୍ବନ୍ଧ**—ସଂ. ବଣ (ସହାର୍ଥ ବହୁବ୍ରୀହି; ସ=ସହିତ+ନିର୍ବନ୍ଧ= Sanirbandha ବିଶେଷ ଜିଗର )—ଖୁବ୍ ଜିଗର ସହିତ କରାଯିବା ( ଅନୁରୋଧ )—Very importune (request).

**ସନିଷ୍ଠୀ(ଷ୍ଠେ)ବ**—ସଂ. ବ (କ୍ଲୀ)—(ସହାର୍ଥ ବହୁବ୍ରୀହି; ସ=ସହିତ+ Sanishthi(shthe)ba ନିଷ୍ଠୀବ, ନିଷ୍ଠେବ=ଛେପ)—ଅସ୍ପଷ୍ଟ; ନିଷ୍ଠୀବନଯୁକ୍ତ ବାକ୍ୟ ( ମୁହଁରୁ ଛେପକଣା ବାହାରୁଥିବା ଅବସ୍ଥାରେ କହାଯିବା କଥା )—Words uttered while spitting.

**ସନୀ**—ସଂ. ବ ( ସନ୍ ଧାତୁ+କରଣ. ଈ )—ହସ୍ତୀକର୍ଣ୍ଣଚାଳନ—
Sanī The fanning of the ears by an elephant.

**ସନୀଡ଼**—ସଂ. ବଣ (ସହାର୍ଥ ବହୁବ୍ରୀହି; ସ=ସହିତ+ନୀଡ଼=ପକ୍ଷୀର
Sanīrda ବସା )—୧ । ନୀଡ଼ ଯୁକ୍ତ—1. Joined with the nest. ୨ । ନିକଟବର୍ତ୍ତୀ; ସମୀପସ୍ଥ—2. Near; adjacent. ୩ । ତୁଲ୍ୟ; ସମାନ—3. Equal; similar.

**ସନେ**—ଦେ. ଅ—(ସଂ ସନାଥ; ବଙ୍ଗଳାରୁ ଅନୁକୃତ)—୧ । ସଙ୍ଗେ
Sane 1. —With. ୨ । ସମଭିବ୍ୟାହାରରେ—2. Along.
ସନେ साथमें with; together with. [ଦ୍ର—ସ୍ୱର୍ଗେ ଅମର ପୁରେ ଥାଇ ଦେବତାଙ୍କ ସନେ । ଉତ୍କଳ ସାହିତ୍ୟରେ ପ୍ରକାଶିତ ଅଧିକାଂଶ କବିତା ]

**ସନେଇ**—ଦେ·ବ (ନାମ)—୧ । କଟକ ଜିଲ୍ଲାର ବାଙ୍କୀର ପୁରାତନ ସ୍ୱର୍ଗତ
Sanei ଚୋର—1. A notorious thief ( now dead ) ସନାଈ of the name, resident of Bānki in the सनाइ district of Cuttack. ୨ । ସନାତନର ଅଦରାର୍ଥକ ଡାକନାମ—2. A name for calling Sanātana

**ସନେଟ୍**—ବୈଦେ· ବ ( ଇଂ )—ଚତୁର୍ଦ୍ଦଶ ଅକ୍ଷର ବିଶିଷ୍ଟ ଚତୁର୍ଦ୍ଦଶ
Sanet ପଦ ବା ପଂକ୍ତିଯୁକ୍ତ କବିତା—Sonnet. [ ଦ୍ର—
ସନେଟ सनेट ଏ ହୀ ଇଂରାଜୀ ସାହିତ୍ୟରେ ପ୍ରଥମେ ମିଲ୍‌ଟନ୍ କବି ଲେଖିଥିଲେ ଓ କ୍ରମଶଃ ଏହା ବଙ୍ଗ ଓ ଉତ୍କଳର କବିମାନେ ଲେଖୁଅଛନ୍ତି । ]

**ସନ୍ତ**—ସଂ·ବ—ସହିତଳ; ଯୁକ୍ତତଳ; ଦୁଇ କରତଳ ଯୋଡ଼ା ହୋଇଥିବା
Santa ଅବସ୍ଥା—Folded palms. ଦେ. ବ ( ସଂ. ସତ୍
ସନ୍ତ संत ଶବ୍ଦର ପୁଂଲିଙ୍ଗ ପ୍ରଥମା ବିଭକ୍ତି ବହୁବଚନ 'ସନ୍ତଃ'; ଗ୍ରା. ସନ୍ଥ )—୧ । ସନ୍ଥ; ଅଭ୍ୟାସ ବା ଅଧ୍ୟୟନ କରିବା ପାଇଁ ଗୁରୁଙ୍କଠାରୁ ଶିଷ୍ୟର ନେବା ନୂଆ ପାଠ—1. New lesson taken from a teacher for preparation. ୨ । ସାଧୁ ବ୍ୟକ୍ତି; ସତ୍‌ପୁରୁଷ; ସଚ୍ଚରିତ୍ର ବ୍ୟକ୍ତି—2. An honest man; a good person. ୩ । ଧାର୍ମିକ ଓ ପୁଣ୍ୟଶୀଳ ବ୍ୟକ୍ତି—3. A pious person; a religiously minded person. ୪ । ସାଧାରଣ ସାଧୁ; ବୈରାଗୀ; ବାବାଜୀ—4. An anchorite; a recluse. [ଦ୍ର—ହିନ୍ଦୀ, ବଙ୍ଗଳା, ହିନ୍ଦୀ, ମରହଟ୍ଟୀ ଓ ଆସାମୀ ଭାଷାରେ ଏହି ଶବ୍ଦ ପୂର୍ବୋକ୍ତ ଅର୍ଥମାନଙ୍କରେ ବ୍ୟବହୃତ ହୁଏ ।] ୫ । ( ପୁଂ ) ଲୋକଙ୍କ ନାମ—5. A name given to males.

**ସନ୍ତକ**—ଦେ. ବ—୧ । ନିଦର୍ଶକ ଦ୍ରବ୍ୟ; ସୂଚକ ଚିହ୍ନ—1. A thing
Santaka or sign which indicates some other ସନ୍ତ(ନ୍ତୋ)କ thing. [ ଦ୍ର—ଦୂତ ଅନ୍ତକ ଘରେ, ତହିଁ ସନ୍ତକ

निशान କାଟିଲେ ଭେଟିଲେ ରସିକ—ଭଞ୍ଜ. ବୈଦେହୀଶ-ବିଳାସ । ] ୨ । ଅଭିଜ୍ଞାନ; ଯାହାଦ୍ୱାରା କୌଣସି ବସ୍ତୁର ବା ବ୍ୟକ୍ତିର ବିଶିଷ୍ଟତା ସମ୍ବନ୍ଧେ ଜ୍ଞାନ ଜନ୍ମେ—2. A token. ୩ । ସ୍ମାରକ ବସ୍ତୁ—3. A memento. [ ଉ—ସନ୍ତକ କରିଣ ମଣି ମସ୍ତକେଁ ଦେଲେ—ବିଶ୍ୱନାଥ. ବିଚିତ୍ର ରାମାୟଣ ।] ୪ । ଅକ୍ଷର ଲେଖି ଜାଣି ନ ଥିବା ବା ସ୍ୱାକ୍ଷର କରି ଜାଣି ନ ଥିବା ବ୍ୟକ୍ତିଙ୍କର କୌଣସି ଦଲିଲ ସମ୍ପାଦନ କରିବାର ନିଦର୍ଶନସ୍ୱରୂପ ଉକ୍ତ ଦଲିଲରେ ଦଲିଲ ସମ୍ପାଦନକାରୀଙ୍କଦ୍ୱାରା ଅଙ୍କିତ ଚିହ୍ନ—4. A mark put or drawn by an illiterate person on a document to indicate that he has executed the document. ୫ । ଜାତି ବା ବ୍ୟକ୍ତି-ବିଶେଷର ବିଶେଷତ୍ୱଜ୍ଞାପକ ଚିହ୍ନ—5. The special mark by which the individuality of a particular individual, nation or caste is recognized. ୬ । ଦସ୍ତଖତ୍; ସହି; ସ୍ୱାକ୍ଷର—6. Signature. [ ଉ—ଏ ବାଡ଼ି ସନ୍ତକ ଗୋବିନ୍ଦ ଜେନାର ସହି—ଫକୀରମୋହନ. ଛମାଣ ଆଠ ଗୁଣ୍ଠ ।] [ଦ୍ର—ଲେଖି ନ ଜାଣିବା ବ୍ୟକ୍ତିଙ୍କର କୌଣସି ଦଲିଲ ସମ୍ପାଦନ କରିବା ବା ଦଲିଲରେ ସାକ୍ଷୀ ପଡ଼ିବା ଆବଶ୍ୟକ ହେଲେ ସେ ନିଜର ନାମ ଦସ୍ତଖତ୍ କରି ଜାଣି ନ ଥିବାରୁ ସେ ଉକ୍ତ ଦଲିଲରେ ଆପଣାର ବିଶେଷତ୍ୱ-ଜ୍ଞାପକ ଗୋଟିଏ ଚିହ୍ନ କାଟି ଦିଅନ୍ତି, କିମ୍ବା ଦଲିଲ ଯେଉଁ କଲମରେ ଲେଖା ହୋଇଥାଏ ସେହି କଲମକୁ ଛୁଇଁ ଦିଅନ୍ତି ଏବଂ ଦଲିଲର ସମ୍ପାଦନକାରୀଙ୍କ ଅଙ୍କିତ ଚିହ୍ନ ତଳେ, କିମ୍ବା ଚିହ୍ନ ଅଙ୍କି ନଥିଲେ ନବିସିନ୍ଦା (ଲେଖକ) ନିଜେ ସମ୍ପାଦନକାରୀଙ୍କ ପାଇଁ ସମ୍ପାଦନକାରୀଙ୍କ ସନ୍ତକ-ଚିହ୍ନଟି ଦଲିଲରେ ଅଙ୍କି ଦିଅନ୍ତି ଓ ତହିଁ ତଳେ ଲେଖନ୍ତି—"ଏ ଅମୁକ ସନ୍ତକ ଶ୍ରୀ ଅମୁକଙ୍କର ସହି, ବକଲମ ବା । ର । ନବିସିନ୍ଦା ।"

ସାଧାରଣତଃ ସଧବା ବ୍ରାହ୍ମଣୀ ସ୍ତ୍ରୀମାନଙ୍କର ସନ୍ତକ 'ହାତ ମୁଦି' ଓ ବିଧବା ବ୍ରାହ୍ମଣୀମାନଙ୍କର ସନ୍ତକ 'ତୁଳସୀ ମାଳୀ' ଅଟେ । ବିଭିନ୍ନ ଜାତୀୟ ବ୍ୟକ୍ତିଙ୍କର ସନ୍ତକ ଭିନ୍ନ ଭିନ୍ନ। ଯଥା—

ଗଉଡ଼ଙ୍କର ସନ୍ତକ ନଉଡ଼ି,

କରଣଙ୍କର ଲେଖନ,

ବ୍ରାହ୍ମଣଙ୍କର କୁଶକଟି,

ବଢ଼େଇଙ୍କର ମୁଗୁର

ତେଲୀଙ୍କର ମଇ

ଗୁଡ଼ିଆଙ୍କର ଚଟୁ

ଖଣ୍ଡାଏତଙ୍କର ଖଣ୍ଡା



କ୍ଷତ୍ରିୟଙ୍କର ଧନୁ



ମଲ୍ଲାଳୟିକଙ୍କର କଟାରି



ବଣିଆଙ୍କର ନିକିତି



ଭଣ୍ଡାରିଙ୍କର ନହରୁଣୀ



କମାରଙ୍କର କୁରି



କେଉଟଙ୍କର ସଡ଼ଙ୍ଗ



ପ୍ରତ୍ୟେକ ରାଜବଂଶର ମଧ୍ୟ ଭିନ୍ନ ଭିନ୍ନ ସନ୍ତକ ଅଛି, ଯଥା—ମୟୂରଭଞ୍ଜ ରାଜବଂଶର—ମୟୂର, ଢେଙ୍କାନାଳ ରାଜ-ବଂଶର—ମାଛ, ପାରଳଦ୍ୱାଦ ରାଜବଂଶର—ଶଙ୍ଖ, ପୁରୀଗଜପତି ରାଜବଂଶର—ସୁଦର୍ଶନଚକ୍ର, ବୌଦ୍ଧ ରାଜବଂଶର—ମୟୂର, ବାମଣ୍ଡା ରାଜବଂଶର—ଶଙ୍ଖ ।

ଏହିପରି ପ୍ରାଚୀନ ଓ ଆଧୁନିକ ସଭ୍ୟ ଜଗତର ରାଜା ଓ ରାଜ୍ୟମାନଙ୍କର ମଧ୍ୟ ବିଶେଷ ବିଶେଷ ସନ୍ତକ ଅଛି । ଯଥା—ଇଂରେଜଙ୍କର ସିଂହ ( Lion ), ରୁଷିଆର ଭାଲୁ ( Bear ),ମିଶର ଓ ତୁରସ୍କର ଖଣ୍ଡଚନ୍ଦ୍ର (Crescent), ଆମେରିକା ଯୁକ୍ତରାଜ୍ୟର ଇଗଲ୍ ( Eagle ), ଚୀନ୍‌ର ସାପ ( Dragon ); ବସ୍ତୁତଃ ଯେଉଁ ରାଜାଙ୍କର ବା ରାଜ୍ୟର ଯାହା ପ୍ରଧାନ ଅବଲମ୍ବନ ବା ଜୀବିକା ବା ପୂଜ୍ୟ ବସ୍ତୁ ଅଟେ, ତାହାଙ୍କର ସେହି ପଦାର୍ଥ ସନ୍ତକରୂପେ ଲେଖାଯାଏ ।

୭ । ପୂର୍ବକାଳରେ ନିଜ ଭାର୍ଯ୍ୟାଙ୍କଠାରୁ ଦୂରପ୍ରବାସରେ ମୃତ ବ୍ୟକ୍ତିଙ୍କ ସ୍ତ୍ରୀ ଉକ୍ତ ବ୍ୟକ୍ତିଙ୍କର ସ୍ମାରକରୂପେ ଯେଉଁ ମୂର୍ତ୍ତିକୁ ବା ବସ୍ତୁକୁ ମୃତ ସ୍ୱାମୀଙ୍କ ଶବରୂପରେ କଳ୍ପନା କରି ତାକୁ ଆଲିଙ୍ଗନ କରି ଚିତାଗ୍ନିରେ ଝାସ ଦେଉଥିଲେ—7. An image or memento of a deceased husband which was embraced by the wife while consigning herself to the funeral pyre, on learning of the death of her husband in a far off country when the custom of self-imolation of Hindu women was in vogue.

[ଦ୍ର—ପୂର୍ବେ ବିଦେଶରେ ମରିଯିବା ବ୍ୟକ୍ତିଙ୍କର ସ୍ତ୍ରୀ ସ୍ୱାମୀଙ୍କ ଶବର ଅଭାବରେ ତାଙ୍କର ଗୋଟିଏ ସନ୍ତକ ( ତାଙ୍କର ଗୋଟିଏ କଳ୍ପିତ ମୂର୍ତ୍ତି ବା ଜୀବିତାବସ୍ଥାରେ ବ୍ୟବହୃତ ଦ୍ରବ୍ୟ, ଯଥା—କଠାଉ, ଲୁଗା, ଯଷ୍ଟି ) ଧରି ଚିତାଗ୍ନିରେ ଝାସ ଦେଉଥିଲେ । ଏହାକୁ 'ସନ୍ତକ ଧରି ସତୀ ହେବା' ବୋଲି ଯାଉଥିଲା ।]

ସନ୍ତକ କରିବା—ଦେ. କ୍ରି—୧ । ଦଲିଲରେ ନିଜର ନାମ ଦସ୍ତଖତ କରିବା; ସ୍ୱାକ୍ଷର କରିବା—1. To sign one's name in a document. ୨ । ସନ୍ତକ କାଟିବା ( ଦେଖ )—2. Santaka katiba ( See )
Santaka kariba
सन्तक करा निशान करना

**ସନ୍ତକ କାଟିବା**—ଦେ. କ୍ରି—୧ । (ଅକ୍ଷର ନାମ ଲେଖି ଜାଣି ନ Santaka kātibā ଥିବା ବ୍ୟକ୍ତି) କୌଣସି ଦଲିଲରେ ଆପଣାର सन्तक काटना 'ସନ୍ତକ'କୁ ଅଙ୍କିତ କରିବା—1. To put one's निषान करना, mark on a document (in the case निशान लगाना of an illiterate (person). ୨ । ଲେଖକର ବ୍ୟକ୍ତି କଲମକୁ କେବଳ ଛୁଇଁ ଦେଲା ପରେ (ଲେଖିଥିବା) ଦଲିଲସମ୍ପାଦନକାରୀଙ୍କ ସନ୍ତକକୁ ଦଲିଲରେ ଲେଖିବା—2. (The deed-writer) To put an illiterate person's mark on a document.

**ସନ୍ତକ ଧରି ସତୀ ହେବା**—ଦେ. କ୍ରି—ବିଦେଶରେ ମୃତ ହୋଇଥିବା Santaka dhari sati hebā ସ୍ୱାମୀଙ୍କର ଶବଦଶାରେ सन्तक धरे सती हुअना ବ୍ୟବହୃତ କୌଣସି ଦ୍ରବ୍ୟକୁ କମ୍ବା ପଲାଶ निशान लेकर सती होना ପତ୍ରାଦିରେ ନିର୍ମିତ ମୂର୍ତ୍ତିକୁ ଆଲିଙ୍ଗନ କରି (ବିଧବା) ଚିତାନଳରେ ଝାସ ଦେବା ବା ଅନୁମୃତ ହେବା-To immolate one's self by jumping into the funeral pyre of her husband by embracing any article which her late husband was using or his effigy (said of a widow following her husband who died abroad and whose dead body could not be available to the widow, when the practice of self immolation of widows was in vogue.)

**ସନ୍ତ ଖରଚ**—ପ୍ରାଦେ. (ଗଞ୍ଜାମ) ବି. (ଗଞ୍ଜାମୀ ଓଡ଼ିଆ ମହାଜନମାନଙ୍କ Santa kharacha ବ୍ୟବହୃତ)—ମହାଜନଙ୍କର ବା ଦୋକାନୀଙ୍କର ଭୋଜନ ବସାଖରଚ ଓ ବ୍ୟକ୍ତିଗତ ଖରଚ—Private expenses and fooding expenses incurred by a trader or shop-keeper.

**ସନ୍ତତ**—ସଂ. ବିଣ (ସମ୍+ତନ୍ ଧାତୁ=ବିସ୍ତୃତ ହେବା+କର୍ତ୍ତି.ତ)— Santata ୧ । ବିସ୍ତୃତ; ପରିବ୍ୟାପ୍ତ—1. Diffused; extended. ୨ । ସତତ; ନିୟତ; ନିରନ୍ତର—2. Constant. ୩ । ଅବିରତ—3. Continuous; incessant. ୪ । ବହୁଳ—4. Excessive. ୫ । ଅନାଦି; ଅନନ୍ତ—5. Eternal. ୬ । ଚିରନ୍ତନ—6. Perpetual. କ୍ରି. सतत ବିଣ—୧ । ସର୍ବଦା—1. Constantly; always. सतत ୨ । ଅବିରତ; ଅବିଶ୍ରାନ୍ତରୂପେ—2. Uninterruptedly. ୩ । ଚିରନ୍ତନରୂପେ—3. Perpetually; eternally.

**ସନ୍ତତ ଜ୍ୱର**—ସଂ. ବି—ସତତ ଜ୍ୱର; ଏକପ୍ରକାର ଭୟଙ୍କର ଜ୍ୱର; Santata jwara ବିଷମଜ୍ୱର ବିଶେଷ—A kind of remittent fever; a kind of typhoid fever. [ଦ୍ର—ଏହି ଜ୍ୱର ଏକାଦିକ୍ରମେ ୭ଦିନ, ୧୦ ଦିନ, ୧୨ ଦିନ, ୨୧ ଦିନ, ଏକମାସ, ଦୁଇ ମାସ ପର୍ଯ୍ୟନ୍ତ ନିୟତ ଶରୀରରେ ରହେ ।]

**ସନ୍ତତି**—ସଂ. ବି (ସମ୍+ତନ୍ ଧାତୁ=ବିସ୍ତୃତ ହେବା+କରଣ. ତି= Santati ଯାହାଙ୍କ ଦ୍ୱାରା ବଂଶ ବିସ୍ତୃତ ହୁଏ)—୧ । ଅପତ୍ୟ; ସନ୍ତାନ; ପୁତ୍ରକନ୍ୟା—1. Offspring; progeny; child; son and daughter; issue. ୨ । (+ଭାବ. ତି) ବ୍ୟାପ୍ତି—2. Profusion; expansion; extension. ୩ । (+କର୍ତ୍ତି. ତି) ଧାରା ବଂଶ; ଗୋତ୍ର—2. Lineage; posterity; family. ୪ । ପଙ୍କ୍ତି; ଶ୍ରେଣୀ—4. Line. ୫ । ପାରମ୍ପର୍ଯ୍ୟ—5. Continuity; succession. ୬ । ଧାରା—6. System; custom; usage. ଦେ ବି. ସ୍ତ୍ରୀ—କନ୍ୟା; ଝିଅ— सन्तति Daughter. [ଦ୍ର—ସାତ ପାଞ୍ଚ ଉପରେ ଅଧୁଷ୍ଠାତ୍ରୀ, सं'तति ତୁମ୍ଭେ ଖଣ୍ଡୁକ ରାଜାଙ୍କ ସନ୍ତତି । ପ୍ରାଚୀ. ଉଦ୍ଧବଯମଞ୍ଜରୀ ]

**ସନ୍ତତେ**—ଦେ. କ୍ରି. ବିଣ (ସଂ ସନ୍ତତା—ସର୍ବଦା; ସବୁବେଳେ— Santate always; everyday. (ଦ୍ର—ଯେଣୁ କରି ମୀନ- हामेशा କେତନ ଦ୍ୟମନ କୋମଳ କର-କମଳରେ କରନ୍ତି ସନ୍ତତେ हमेशा ଯତନ । ସାନକୃଷ୍ଣ ଜଗମୋହନ ।)

**ସନ୍ତପତ(ନ୍ତ, ନ୍ଥ)**—ଗ୍ରା. ବିଣ (ସଂ. ସନ୍ତପ୍ତ)—ସନ୍ତପ୍ତ (ଦେଖ)— Santapata(nta,ntha) 1. Santapta. (See) ୨ । କ୍ଲିଷ୍ଟ; सन्तपत, व्यतिव्यस्त ଦୁଃଖିତ—2. Afflicted; sorry. (ଦ୍ର - सं'तपत କୁତ୍ସମୀ ଜନ ମନ ପରାଏ ଦବସ ହୁଏ ସନ୍ତପନ୍ତ । ସାନକୃଷ୍ଣ. (ସନ୍ତପତ[ନ୍ତ,ନ୍ଥ]ଅ—ଅତ୍ୟନ୍ତରୂପ) ଜଗମୋହନ ।) ୩ । ବ୍ୟତି- ବ୍ୟସ୍ତ—3. Very much troubled; pestered; harassed. (ଦ୍ର—ଘରକୁ କେବେ ନ ଜାଣ ସନ୍ତପନ୍ତ । କୃଷ୍ଣସିଂହ. ମହାଭାରତ. ଆଦି ।)

**ସନ୍ତପତି(ନ୍ତି)**—ଗ୍ରା. ବି (ସଂ. ସନ୍ତାପ, ସନ୍ତପ୍ତି)—ସନ୍ତାପ; କ୍ଲେଶ; Santapati(nti) ଦୁଃଖ)—Grief; sorrow; affliction. सन्ताप (ଦ୍ର—ପୂର୍ବକାଳେ ବୈବ୍ୟ ନାମରେ ନୃପତି, ଥାଇଥିଲେ, सं'ताप ପୁତ୍ରଶୋକରେ ସନ୍ତପତି । କୃଷ୍ଣସିଂହ. ମହାଭାରତ. ଆଦି ।) ୨ । ପରଦ୍ୱାରା ଉତ୍ପୀଡ଼ନ—2. Harassment oppression.

**ସନ୍ତପ୍ତ**—ସଂ. ବିଣ. ପୁଂ (ସମ୍+ତପ୍ ଧାତୁ=କଷ୍ଟ ହେବା+କର୍ତ୍ତି. Santapta ତ)—୧ । ସନ୍ତାପଯୁକ୍ତ; ଦୁଃଖିତ; କ୍ଲିଷ୍ଟ— (ସନ୍ତପ୍ତା—ସ୍ତ୍ରୀ) 1. Distressed; grieved; afflicted. ୨ । ତାତିଲା; ଉତ୍ତପ୍ତ—2. Heated. ୩ । ଦଗ୍ଧ— 3. Scorched. ୪ । ପରିଶ୍ରାନ୍ତ; ପଥଶ୍ରମରେ କ୍ଲାନ୍ତ— 4. Fatigued with travel. ୫ । ଜ୍ୱରକାନ୍ତ— 5. Feverish; suffering from fever. ୬ । ଜ୍ୱଳନ୍ତ—6. Burnt; burning. ୭ । ଅଗ୍ନିଦ୍ୱାରା ବିଶୁଦ୍ଧ—7. Purified by fire.

**ସନ୍ତମସ**—ସଂ. ବି (ସମ୍=ସମ୍ୟକ୍+ତମସ୍=ଅନ୍ଧକାର+ଅ)— Santamasa ୧ । ନିବିଡ଼ ଅନ୍ଧକାର—1. Dense darkness; utter darkness. ୨ । (ଲକ୍ଷଣାର୍ଥ) ଅଜ୍ଞାନ; ମୋହ ବା ମହାମାୟା ରୂପ ଅନ୍ଧକାର; ମୋହାନ୍ଧକାର;

ମହାମୋହ—2. (figurative) Spiritual stupefaction (compared to darkness).

ସନ୍ତ ମହନ୍ତ—ଦେ. ବି. (ସହଚର) (ବହୁବଚନ)—ବୈରାଗୀ ଓ ମହନ୍ତ; ବାବାଙ୍କ ବୈଷ୍ଣବ; ସାଧୁସନ୍ଥ—Anchorites and abbots.
Santa mahanta
ସନ୍ତ ମହନ୍ତ ସଂତ महंथ

ସନ୍ତରଣ—ସଂ. ବି (ସମ୍=ସମ୍ୟକ୍+ତୃ ଧାତୁ=ପାରହେବା+ଭାବ. ଅନ)—୧ । ପହଁରିବା; ପାଣିରେ ନିଜର ଦେହକୁ ଭସାଇ ଗତି କରିବା—1. Swimming. ୨ । ନଦୀ ଆଦିକୁ ପାରିହେବା—2. Crossing of a river.
Santaraṇ

ସନ୍ତରଣକାରୀ—ସଂ.ବିଣ. ପୁଂ—(ସନ୍ତରଣ କାରିନ୍, ୧ମା. ୧ବ.)—ଯେ ପହଁରେ—Swimming.
Santaraṇa kāri
(ସନ୍ତରଣକାରିଣୀ—ସ୍ତ୍ରୀ)

ସନ୍ତରଣ କୁଶଳ—ସଂ.ବିଣ.ପୁଂ—(୭ମୀତତ୍ପୁରୁଷ)—ସନ୍ତରଣ ବିଷୟରେ ଦକ୍ଷ; ପହଁରିବା ବିଷୟରେ ପଟୁ—(ସନ୍ତରଣ ନିପୁଣ, ସନ୍ତରଣ ପଟୁ—ଅନ୍ୟରୂପ) Expert in swimming.
Santaraṇa kuśala
(ସନ୍ତରଣ ନିପୁଣା, ସନ୍ତରଣ କୁଶଳା—ସ୍ତ୍ରୀ)
(ସନ୍ତରଣ କୁଶଳତା, ସନ୍ତରଣ ପଟୁତା, ସନ୍ତରଣ ନିପୁଣତା—ବି)

ସନ୍ତରଣ କୌଶଳ—ସଂ. ବି (୭ମୀତତ୍ପୁରୁଷ)—ପହଁରିବାର କୌଶଳ—The art of swimming.
Santaraṇa kauśala
(ସନ୍ତରଣ ନୈପୁଣ୍ୟ—ଅନ୍ୟରୂପ)

ସନ୍ତର ପନ୍ତର—ଗ୍ରା. ବିଣ.—ସନ୍ତପନ୍ତ (ଦେଖ)
Santara pantara Santapanta (See)

ସନ୍ତରା—ଦେ. ବି—୧ । (ସଂ. ସଂସ୍ତର) ଏକପ୍ରକାର ମାଂସଳ ତୃଣ—1. Elephant grass; Typha; a sort of aquatic reed grass used in weaving mats; Rambana. [ଦ୍ର—ଗାଳ ମ—ମୋଥୀତୃଣ ଅସାମ—ଇକରା
Santarā
ସଂ ଏରକା, ଗୁନ୍ଦ୍ରମୂଳା, ଶିବ, ଶରା, ଗୁନ୍ଦ୍ରା
সাঁতবা, হোগলা गोंद, पतर
ବଇଁଶେତ ବଙ୍କର ଲଛି ହୁଅନ୍ତି ଘଞ୍ଚ ସନ୍ତରା । ରାଧାନାଥ. ଯଯାତିକେଶରୀ].

[ଦ୍ର—ଏହା ଜଳ ଓ ନଦୀ ପ୍ରଭୃତିର ଧାରରେ ଓ ଜଳାଭୂମିରେ ଜନ୍ମେ । ଏହାର କାଣ୍ଡ ପତ୍ର ଓ ୪।୬ ଫୁଟ ପର୍ଯ୍ୟନ୍ତ ଲମ୍ବରେ ବଢ଼େ । ଏହାକୁ କାଟିଆଣି ଫଡ଼ା ଫଡା କରି ଖରା ଶୁଖାଇ ଲୋକେ ବଡ଼ଭୂରେ ଛନ୍ଦି ମଶିଣା ଓ ହେଂସ ବୁଣନ୍ତି । ଏହାର ଗଡ଼ଜାତ ନାମ ତେଲଙ୍ଗା ବା ଡେଲେଙ୍ଗା ।

ଏହା ଦୁଇ ପ୍ରକାର । ଏକ ପ୍ରକାରର କାଣ୍ଡ ତିନି-କୋଣିଆ (କାଣ୍ଡ କାଣ୍ଡିଆ) ଓ ପତ୍ର ସରୁ (Typha Elephantina) । ଅନ୍ୟ ପ୍ରକାରର କାଣ୍ଡ ଅର୍ଦ୍ଧଗୋଲ (ସନ୍ତରା) ଓ ପତ୍ର ଚେପ୍ଟା (Typha Augustata) । ଗ୍ରାଉଁକାରଙ୍କ ମତରେ ଏଥିର ସଂସ୍କୃତ ନାମ ଏରକା, ବଙ୍ଗଳା ନାମ ହୋଗ୍ଲେ, ହିନ୍ଦୀ ନାମ ପଟେର୍ ଓ ଇଂରେଜି ନାମ Rambana ।

ବୈଦ୍ୟଶାସ୍ତ୍ର ଅନୁସାରେ ଏହା ଶୀତବୀର୍ଯ୍ୟ, ଶୁକ୍ରଜନକ, ଚକ୍ଷୁର୍ହିତକର ଓ ବାୟୁ ପ୍ରକୋପକ । ଏହା ମୂତ୍ରକୃଚ୍ଛ୍ର, ଅଶ୍ମରୀ, ଦାହ, ପିତ୍ତ ଓ ରକ୍ତଦୋଷରେ ଉପକାରକ । ଆମ ଦେଶରେ ଦେଖୁହାଁ, ସନ୍ତରା, କାଣ୍ଡକାଣ୍ଡିଆ ଓ କୁଶରେ ହେଁସ ବୁଣା ଯାଏ; ସନ୍ତରାରେ ବୁଣାହେବା ମଶିଣାକୁ ପଟୁଡ଼ି ମଶିଣା ବୋଲିଯାଏ ।

କଥିତ ଅଛି ଯେ, ଶ୍ରୀକୃଷ୍ଣଙ୍କର ଦେହତ୍ୟାଗ ପରେ ଯଦୁ-ବଂଶୀୟମାନେ ସନ୍ତରା ବଣରେ ହଣାହଣି ହୋଇ ମଲେ । କଲିକତାର ଉପକଣ୍ଠସ୍ଥ ଜଳାଭୂମିରେ ଅନେକ ସନ୍ତରା ଗଛ ଅଛି । ଏହି ସନ୍ତରାରୁ ପଟୁଡ଼ି ମଶିଣା ବୁଣାଯାଏ । କଲିକତା ନିକଟରେ "ସାନ୍ତରା ଗାଛି" ବୋଲି ଗୋଟିଏ ଗ୍ରାମ ଓ ରେଲ ଷ୍ଟେସନ ଅଛି । ଓଡ଼ିଆରେ ପଦ୍ୟ ଗୋଟିଏ ଢଗ ଅଛି—"ଘଇତା ଅଯୋଗ୍ୟ ପଣେ, ମାଇପ ଶୁଏ ସନ୍ତରା ବଣେ ।" ସନ୍ତରା ଗଛ ପାଣିକୂଳରେ ଆର୍ଦ୍ର ଭୂମିରେ ଜନ୍ମେ ଓ ସନ୍ତରା ବଣରେ ଅନେକ ପାଣିଧଣ୍ଡ ସାପ ରହନ୍ତି । ଏଥିପାଇଁ ଢଗ ବୋଲନ୍ତି—'ସନ୍ତରା ବଣରେ ଧଣ୍ଡ' ପଦ ଏଠାରେ କହନ୍ତି ଲୋକ ଅଛନ୍ତି । ] ୨ । (ସଂ. ଛତ୍ର) ଏକ ଜାତୀୟ ତୃଣ—2. Andropagen Hoenanthus. [ଦ୍ର—ବୈଦ୍ୟଶାସ୍ତ୍ରୋକ୍ତ 'ଭୂସ୍ତୃଣ'ର ଅନ୍ୟ ସଂସ୍କୃତ ନାମ 'ଛତ୍ର'ର ଅପଭ୍ରଂଶ 'ସନ୍ତରା' ଅଟେ । ଏହାର ଅନ୍ୟ ସଂସ୍କୃତ ନାମମାନ, ଯଥା—ଭୂସ୍ତୃଣ, ଗୁହ୍ୟବୀଜ, ଭୂତୀକ, ସୁଗନ୍ଧ, ଜମ୍ବୁକପ୍ରିୟ ଓ ମାଲାତୃଣ । ଏହା କଟୁତିକ୍ତ ରସ ଓ ବାତ, ସନ୍ତାପ, ରକ୍ତଦୋଷ, କଫଦୋଷ ଓ ଭୂତ ଦୋଷର ନାଶକ ଏବଂ ବିରେଚକ ଅଟେ । ] ଦେ. ବିଣ. ପୁଂ—୧ । (ସଂ. ସିକ୍ତ) ସନ୍ତସନ୍ତିଆ; ଓଦା (ଭୂମି)—Wet; moist; damp (soil) ୨ । ଅପରିଷ୍କୃତ(ସ୍ଥାନ)—2. Unclean (place). ୩ । ଅମାର୍ଜିତ ଶରୀରଯୁକ୍ତ (ବ୍ୟକ୍ତି)—3. Having the body uncleansed ପ୍ରାଦେ. (ଗଡ଼ଜାତ) ବି—ଏକ ପ୍ରକାର କମଳା ଲେମ୍ବୁ—A kind of orange.
সেঁতসেঁতে गीला
(ସନ୍ତରୀ—ସ୍ତ୍ରୀ)
নোংরা गन्दा

ସନ୍ତରା ବଣ—ଦେ. ବି—୧ । ଅନେକ ସନ୍ତରାଗଛ ଜନ୍ମିଥିବା ଜଳାଭୂମି-1. A damp place overgrown with Santarā reed plants. ୨। ଅପରିଷ୍କୃତ ସ୍ଥାନ—2. An untidy or unclean or unswept place. [ଢ—ଘଇତା ଅଯୋଗ୍ୟ ପଣେ, ମାଇପ ଶୁଏ ସନ୍ତରା ବଣେ । ଢଗ]
Santarā baṇa
হোগলা বন गोंदका वन

ସନ୍ତରା ମଶିଣା—ଦେ. ବି.—ପଟୁଡ଼ି ମଶିଣା; ସନ୍ତରା ଦ୍ୱାରା ବୁଣା ହୋଇଥିବା ହେଁସ—A mat woven with Santarā reeds.
Santarā maśiṇā
হোগলা চটাই गोंदरी

ସନ୍ତରିବା—ଦେ. କ୍ରି. (ଅକ)—(ସଂ. ସନ୍ତରଣ)—ସନ୍ତରଣ କରିବା; ପହଁରିବା—To swim.
Santaribā
সাঁৎরান, সাঁতারকাটা तैरना [ଦ୍ର—ନରକାସୁ ଶୋଷି-ସମୁଦ୍-ଜଳେ, ସନ୍ତରନ୍ତି ମୀନ ସମ ବହଳେ । ମଧୁସୂଦନ—ଛନ୍ଦମାଳା ।]

ସନ୍ତର୍ପଣ—ସଂ. ବି (ସମ୍+ତୃପ୍ ଧାତୁ, ଣିଚ୍+ଭାବ. ଅନ)—୧ । ତୃପ୍ତ କରିବା; ତୃପ୍ତିଦାନ—1. Satisfying; gratifying. ୨ । (+ବର୍ତ୍ତି. ଅର୍ଥ) ଦ୍ରାକ୍ଷାଦିଯୁକ୍ତ ତୃପ୍ତିଜନକ
Santarpaṇa

ବିଶ୍ବ ଲଡ଼ୁବିଶେଷ-2. A sweetmeat made of grapes. (ସନ୍ତର୍ପିତ—ଭଣ) ୩ । ତୃପ୍ତି—3. Gratification; satisfaction. ସଂ. ବିଣ—୧ । (+କର୍ତ୍ତୃ. ଅନ) ପ୍ରୀତିଜନକ; ଆନନ୍ଦଜନକ—1. Pleasing. ୨ । ତୃପ୍ତିଜନକ—2. Gratifying. ଦେ. ବି—୧ । (ଲକ୍ଷ ଣାର୍ଥ) ସାବଧାନତା ଅବଲମ୍ବନ; ସତର୍କତା ଅବଲମ୍ବନ—1. Taking care; being careful. ୨ । ଯତ୍ନ—2. Care. ପ୍ରାଦେ. (ଗଞ୍ଜାମ) ବିଣ—ସାବଧାନ, ଜାଗ୍ରତ୍—Careful; watchful.
সন্তর্পন
सावधानता, हुसिआर

ସନ୍ତର୍ପଣ ସହକାରେ—ଦେ. କ୍ରି. ବିଣ—୧ । ଅତି ସାବଧାନତା Santarpaṇa sahakāre ଅବଲମ୍ବନପୂର୍ବକ—1. Carefully; cautiously. ୨ । ଅତ୍ୟନ୍ତ କୋମଳତା ଓ ଯତ୍ନପୂର୍ବକ—2. With tender care. (ସନ୍ତର୍ପଣରେ—ଅନ୍ୟରୂପ) ୩ । ଅତ୍ୟନ୍ତ ପ୍ରୀତିଜନକ ଭାବରେ—3. Very pleasingly.
সন্তর্পণে
सन्तर्पणसे

ସନ୍ତସନ୍ତିଆ—ଦେ: ବିଣ (ସଂ. ସିକ୍ତ)—ଆର୍ଦ୍ର, ଓଦା; ଜଳସିକ୍ତ—Moist; damp.
Santasantiā
সেঁতসেঁতিয়া, সেঁতসেঁতে, সেঁতা गीला

ସନ୍ତା—ଦେ. ବିଣ. (ସ. ସିକ୍ତ)—ଜଳାର୍ଦ୍ର; ଓଦା—Moist. ଦେ.ବି ସନ୍ଥା (ଦେଖ)—Santhā (See)
Santā
সেঁতা गीला

ସନ୍ତା(ନ୍ତେ)ଇବା—ଦେ. କ୍ରି—୧ । (ସ. ସିକ୍ତ) (ଭୂମି) ଜଳାର୍ଦ୍ର ହେବା—1. To be damp; to be full of moisture. ୨ । (ସ. ସନ୍ତାପନ) କୌଣସି ବ୍ୟକ୍ତିକୁ ସନ୍ତାପିତ କରିବା ବା କ୍ଲିଷ୍ଟ କରିବା; କ୍ଲେଶ ଦେବା—2. To cause suffering to a person; to afflict or harass a person.
Santā(nte)ibā
সাঁতান সেঁতান
गीलाहोना
সন্তাপদেওয়া
सन्तापदेना

ସନ୍ତା(ନ୍ତେ)ଇ ମାରିବା—ଦେ. କ୍ରି—ଅତ୍ୟନ୍ତ ପୀଡ଼ା ଦେବା—To give too much pain; to harass much. [ଭି—ସେ ଦେଶଯାକ ସନ୍ତେଇ ମାରୁଅଛି; ହଜାର ହଜାର ଲୋକଙ୍କ ଅସ୍ଥି ଚାକୁଛି । ଫକୀରମୋହନ ଗଳ୍ପସ୍ୱଳ୍ପ ]
Santā (nte)i māribā
সেঁতিযেমাবা
सन्तापदेना

ସନ୍ତା(ନ୍ତେ)ଇ ହେବା—(ସଂ ସନ୍ତାପିତ) ସନ୍ତାପିତ ହେବା—To suffer; to be afflicted.
Santā(nte)i hebā
সন্তাপিত হওয়া सन्तापित होना

ସନ୍ତାନ—ସଂ. ବି (ସମ୍+ତନ୍ ଧାତୁ=ବିସ୍ତୃତ ହେବା+କରଣ ଅ) ୧ । ସନ୍ତତି (ଦେଖ)—1. Santati (See) ୨ । ବଂଶଧର—2. Descendant. ୩ । (+ଭାବ ଅ) ବିସ୍ତାର—3. Diffusion; spreading. ୪ । (+କର୍ମ ଅ) ପ୍ରବନ୍ଧ—4. A connected narrative; essay. ୫। ମୁଷଳ ଧାର ବର୍ଷାର ଟୋପାମାନ—5. Large-drops of rain in a very heavy shower. ୬। (+ଭାବ ଅ) ଅବିଚ୍ଛେଦ ପ୍ରବାହ—6. A continuous stream or current. ୭। (+କର୍ତ୍ତୃ ଅ) ଦେବତରୁବିଶେଷ—7. A sort of mythical tree of the heaven. ଦେ. ବି (ପ୍ରାଂ)—ପୁତ୍ର; ପୁଅ—Son.
Santāna

ସନ୍ତାନକ—ସଂ ବି—(ସନ୍ତାନ+ସ୍ୱାର୍ଥେକ)—୧ । କଳ୍ପବୃକ୍ଷ; ଦେବତରୁ ବିଶେଷ—1. Name of a mythical tree of the Hindus' heaven. ୨ । ସନ୍ତାନ (ଦେଖ)—2. Santāna (See) ସଂ. ବିଣ—ବିସ୍ତୃତ, ବ୍ୟାପନଶୀଳ—Extensive; diffusive.
Santānaka

ସନ୍ତାନ କାମନା—ସ. ବି—(୪ର୍ଥୀ ତତ୍)—ଅପତ୍ୟ ଲାଭ କରିବାର ଇଚ୍ଛା—Desire to have issue.
Santāna kāmanā

ସନ୍ତାନ କାମୀ—ସ. ବିଣ. ପୁଂ (ସନ୍ତାନକାମିନ୍; ୧ମା ୧ବ)—ଯେ ଅପତ୍ୟ ଲାଭ କରିବା ପାଇଁ କାମନା କରେ; ସନ୍ତାନଲାଭ କରିବା ପାଇଁ ଯେ ଇଚ୍ଛା କରେ—Desirous to have off-springs.
Santāna kāmi
(ସନ୍ତାନକାମିନୀ—ସ୍ତ୍ରୀ)

ସନ୍ତାନ ଗୋପାଳ ମନ୍ତ୍ର—ସଂ. ବି—ସନ୍ତାନ ଲାଭ କାମନାରେ ଜପ କରିବା ମନ୍ତ୍ର ବିଶେଷ—A mystic formula to be repeatedly recited by a person desirous of issue [ଦ୍ର—ଏହି ଉଦ୍ଦେଶ୍ୟରେ ସନ୍ତାନ ଗଣପତି ମନ୍ତ୍ର ମଧ୍ୟ ଜପ କରାଯାଏ ।]
Santāna gopāla mantra

ସନ୍ତାନ ଚର୍ଯ୍ୟା—ସ. ବି (୬ଷ୍ଠୀତତ୍)—ସନ୍ତାନ ପାଳନ (ଦେଖ)—Santān pālana (See)
Santāna charjyā

ସନ୍ତାନ ଜନକ—ସଂ. ବିଣ.ପୁଂ (ସନ୍ତାନ+ଜନ ଧାତୁ+କର୍ତ୍ତୃ ଅକ)—ସନ୍ତାନୋତ୍ପାଦକ (ଦେଖ)—Santānotpādaka (See) ସ. ବି. ପୁଂ—ସନ୍ତାନର ପିତା—Father of issues.
Santāna janaka
(ସନ୍ତାନଜନନୀ—ସ୍ତ୍ରୀ)

ସନ୍ତାନ ପରମ୍ପରା—ସ. ବି (୬ଷ୍ଠୀତତ୍)—ସନ୍ତାନାଦି କ୍ରମ; ସନ୍ତାନଙ୍କ ସନ୍ତାନ, ତାଙ୍କର ସନ୍ତାନ, ଏହିପରି ପର୍ଯ୍ୟାୟ—Successive generations of descendants.
Santāna parmparā

ସନ୍ତାନ ପାଦପ—ସଂ. ବି—ସନ୍ତାନ ୭ (ଦେଖ)—Santāna 7 (See) [ଭି—ସନ୍ତାନ ପାଦପ ମୂଳରେ, ମଣି କର୍ମିତ ବେଦୀ ଥରେ—ପ୍ରାଚୀ.ପୂର୍ଣ୍ଣଚନ୍ଦ୍ର ଓଡ଼ିଆ]
Santāna pādapa

ସନ୍ତାନ ପାଳନ—ସଂ. ବି (୬ଷ୍ଠୀ ତତ୍)—ଅପତ୍ୟାଦିଙ୍କ ଲାଳନପାଳନ—Care of children; bringing up to children.
Santāna pālana

ସନ୍ତାନ ପ୍ରସବ—ସଂ. ବି (୬ଷ୍ଠୀ ତତ୍)—ଅପତ୍ୟ ଜନ୍ମ କରିବା—Bringing forth or begetting of children.
Santāna prasaba

ସନ୍ତାନବାନ୍—ସଂ. ବିଣ: ପୁଂ (ସନ୍ତାନ+ଅସ୍ତି ଅର୍ଥରେ ବତ୍) ସନ୍ତାନବତ୍, ୧ମା. ୧ବ)—ଯାହାର ଅପତ୍ୟ ଥାଏ—Having issues.
Santānabān
(ସନ୍ତାନବତୀ—ସ୍ତ୍ରୀ)(ସନ୍ତାନବତ୍—କ୍ଳୀ)
(ସନ୍ତାନଧାରୀ, ସନ୍ତାନବାରୀ, ସନ୍ତାନରହିତ—ବିପରୀତ)

ସନ୍ତାନ ସନ୍ତତି—ସଂ. ବ (ଏକାର୍ଥକ ସହଚର) (ବହୁବ୍ରୀହି)—୧। Santāna santati ପୁତ୍ରକନ୍ୟାଗଣ; ଅପତ୍ୟମାନେ—Offsprings male and female; a number of children. ୨। ସନ୍ତାନ ପରମ୍ପରା—2. Successive generations of offsprings; successive descendants.

ସନ୍ତାନହୀନ—ସଂ. ବିଣ. ପୁଂ (ବହୁ ତତ୍)—ଯାହାର ଅପତ୍ୟ ନାହିଁ; Santānahīna ଅପତ୍ୟରହିତ—Issueless; childless. (ସନ୍ତାନହୀନତା—ବ) (ସନ୍ତାନହୀନା-ସ୍ତ୍ରୀ)

ସନ୍ତାନିକ—ସଂ. ବ,—(ସନ୍ତାନ+ଇକ)—ସନ୍ତାନବିଶିଷ୍ଟ—Santānika Having issues

ସନ୍ତାନିକା—ସଂ. ବ ( ସନ୍ତାନ+କ+ସ୍ତ୍ରୀ. ଆ; ଯାହା ଦୁଗ୍ଧ ଉପରେ Santānikā ବିସ୍ତୃତ ହୁଏ )—୧। ଦୁଧର ସର—1. Cream of milk. ଗୁ—ଏହା ଗୁରୁପାକ, ଶୀତବୀର୍ଯ୍ୟ, ରକ୍ତଶକ୍ତିବର୍ଦ୍ଧକ, ରକ୍ତପିତ୍ତନାଶକ, ବାତଘ୍ନ, ତୃପ୍ତିକର, ପୁଷ୍ଟିକର, ସ୍ନିଗ୍ଧ, କଫଜନକ, ବଳକର ଓ ଶୁକ୍ରଜନକ ଅଟେ। ] ୨। ଛୁରିର ଧାର—2. The edge of a knife. ୩। ଫେନ—3. Froth; foam. ୪। ଲୁତାତନ୍ତୁ; ମାକଡ଼ସା ଜାଲ—4. Spider's web; cobweb.

ସନ୍ତାନିତ—ସଂ. ବିଣ (ସମ୍+ତନ୍ ଧାତୁ; ଣିଚ୍+ତ ବା ସନ୍ତାନ+ Santānita ଯୁକ୍ତାର୍ଥେ ଇତ୍)—ବିସ୍ତାରିତ କରାଯାଇଥିବା—Made to expand.

ସନ୍ତାନି ପନ୍ତାନି—ଗ୍ରା. ବ (ସଂ. ସନ୍ତାନ ସନ୍ତତି)—ସନ୍ତାନ ସନ୍ତତି (ଦେଖ) Santāni pantāni Santāna santati ( See )

ସନ୍ତାନି ପନ୍ତାନି ଧରି ଶୋଧିବା—ଗ୍ରା. କି—କୌଣସି ବ୍ୟକ୍ତିର ସନ୍ତାନ Santāni pantāni dhari śodhibā ସନ୍ତତିଙ୍କୁ ଲକ୍ଷ୍ୟ କରି ছেলে পিলে নাম ধরে গালি দেওয়া ଗାଳି ଦେବା—To abuse बाल बच्चेको गाली देना a person by calling ( ସନ୍ତାନି ପନ୍ତାନି ଶୋଧିବା—ଅନ୍ୟରୂପ ) names to his or her children.

ସନ୍ତାନୋଚିତ—ସଂ.ବିଣ(୬ଷ୍ଠୀତତ୍)—ପୁତ୍ର କନ୍ୟାଙ୍କର କରିବା ଉପଯୁକ୍ତ—Santānochita Befitting or becoming a child

ସନ୍ତାନୋତ୍ପାଦକ—ସଂ. ବିଣ. ପୁଂ (୬ଷ୍ଠୀ ତତ୍; ସନ୍ତାନ+ଉତ୍ପାଦକ)—Santānotpādaka ଯାହା ସନ୍ତାନ ଜନ୍ମାଏ—Causing (ସନ୍ତାନୋତ୍ପାଦିକା—ସ୍ତ୍ରୀ) production of children; (ସନ୍ତାନୋତ୍ପାଦକତା—ବ) produtive; generative of issues.

ସନ୍ତାନୋତ୍ପାଦିକା ଶକ୍ତି—ସଂ. ବ—ପୁରୁଷ ଓ ସ୍ତ୍ରୀଙ୍କର ସନ୍ତାନ Santānotpādikā śakti ଜନ୍ମାଇବାର କ୍ଷମତା—Productive or generative power in a male or female.

ସନ୍ତାନୋତ୍ପାଦୀ—ସଂ. ବିଣ. ପୁଂ ( ସନ୍ତାନ+ଉତ୍+ପଦ୍ ଧାତୁ Santānotpādī +କର୍ତ୍ତୃ. ଣିନ୍; ୧ମା ୧ବ )—( ସନ୍ତାନୋତ୍ପାଦିନୀ—ସ୍ତ୍ରୀ ) ଯେ ସନ୍ତାନ ଜନ୍ମ କରେ; ସନ୍ତାନଜନନକାରୀ—Producing or bringing forth (ସନ୍ତାନୋତ୍ପାଦିତା—ବ) children.

ସନ୍ତାପ—ସଂ. ବ ( ସମ୍+ତପ ଧାତୁ+ଭାବ. ଅ )—୧। ଉତ୍ତାପ—santāpa 1. Heat. ୨। ଜ୍ୱରଜନିତ ଶରୀରର ତାପ—Fever. (ସନ୍ତପ୍ତ—ବିଣ) —2. heat. ୩। ମନୋଦୁଃଖ; ମନସ୍ତାପ; ମର୍ମପୀଡ଼ା 3. Sorrow; grief; anguish; woe. ୪। ପରିତାପ; ଅନୁଦ୍‌ବେଗ; ପଶ୍ଚାତ୍ତାପ, ଅନୁତାପ—4. Regret; repentance. ୫। ଦେହସ୍ଥ ରିପୁ—5. The passions. ୬। ଶତ୍ରୁ—6. Enemy. ଦେ. ବ সন্তাপ ( ଲକ୍ଷଣାର୍ଥ )—କନ୍ଦନ ଓ ଦୁଃଖପୂର୍ଣ୍ଣ ବାକ୍ୟଦ୍ୱାରା ମନର सन्ताप ବେଦନା ପ୍ରକାଶ—( figurative ) Giving vent to one's grief.

ସନ୍ତାପ କର—ସଂ. ବଣ ( ସନ୍ତାପ+କୃ ଧାତୁ+କର୍ତ୍ତୃ. ଅ )—ଦୁଃଖଜନକ—Santāpa kara Producing grief or sorrow. ( ସନ୍ତାପଜନକ—ଅନ୍ୟରୂପ )

ସନ୍ତାପ କରିବା—ଦେ. କି—ଦୁଃଖ ପ୍ରକାଶ କରିବା—To give Santāpa karibā vent to one's grief. সন্তাপ করা सन्ताप करना

ସନ୍ତାପ କ୍ଲିଷ୍ଟ—ସଂ. ବିଣ. ପୁଂ ( ୩ୟା ତତ୍ )—ମର୍ମପୀଡ଼ା ଯୋଗୁ Santāpa klishṭa କାତର—Afflicted with grief. ( ସନ୍ତାପକ୍ଲିଷ୍ଟା—ସ୍ତ୍ରୀ )

ସନ୍ତାପନ—ସଂ. ବ ( ସମ୍+ତପ୍ ଧାତୁ ଣିଜନ୍ତ=ତାପି ଧାତୁ+ଭାବ Santāpana ଅନ )—୧। ସନ୍ତାପ ଦାନ; କ୍ଲେଶ ଦେବା—1. Afflicting; giving pain. ୨। ବସ୍ତୁକୁ ଉତ୍ତାପ ଦେବା—2. Transmitting heat to a a body. ୩। ( +କର୍ତ୍ତୃ. ଅନ ) କାମଦେବଙ୍କର ପଞ୍ଚଶର ମଧ୍ୟରୁ ଏକତମ ( ଯାହା ଅଭିପ୍ରାର୍ଥ ପ୍ରେମିକର ମନରେ ସନ୍ତାପ ଜନ୍ମାଏ)—3. Name of one of the five arrows of Cupid [( which is said to infact pain on a disappointed lover ). ସଂ. (ସନ୍ତାପନୀ—ସ୍ତ୍ରୀ) ବିଣ. ପୁଂ ( କର୍ତ୍ତୃ )—୧। ସନ୍ତାପଜନକ, ଦୁଃଖଜନକ—1. Producing grief; afflicting. ୨। ଯାହା ଉତ୍ତପ୍ତ କରେ—2. Heating

ସନ୍ତାପ ନାଶ—ସଂ. ବ ( ୬ଷ୍ଠୀ ତତ୍ )—ଦୁଃଖର ଲୋପ; ଦୁଃଖର Santāpa nāśa ଦୂରୀଭୂତ—Removal of grief or sorrow.

ସନ୍ତାପନୀୟ—ସଂ. ବିଣ. ପୁଂ ( ସମ୍+ତପ ଧାତୁ ଣିଚ+କର୍ମ. Santāpanīya ଅନୀୟ)—ଯାହା ସନ୍ତାପିତ ହେବାର ଯୋଗ୍ୟ—(ସନ୍ତାପନୀୟା—ସ୍ତ୍ରୀ) Capable of being distressed or afflicted or heated.

ସନ୍ତାପାଗ୍ନି—ସଂ. ବ (ରୂପକ କର୍ମଧାରୟ)-ଅଗ୍ନି ପରି ଦାହକ ମନସ୍ତାପ—Santāpāgni, Sorrow compared to fire; burning grief. (ସନ୍ତାପବହ୍ନି, ସନ୍ତାପାନଳ—ଅନ୍ୟରୂପ)

**ସନ୍ତାପିତ**—ସ. ବିଣ. (ସନ୍ତାପ+ସଞ୍ଜାତ ଅର୍ଥରେ ଇତ)—୧ । ଦୁଃଖିତ; Santāpita ସନ୍ତାପଯୁକ୍ତ—1. Afflicted; distressed; pained. ୨ । ତାପ ପ୍ରାପ୍ତ; ଅନ୍ୟ ଦ୍ୱାରା ଉତ୍ତପ୍ତିତ—2. Heated; scorched. ୩ । ଉତ୍ତେଜିତ—3. Excited.

**ସନ୍ତାପି ହେବା**—ଦେ. କ୍ରି.—୧ । ମନୋଦୁଃଖ ପ୍ରକାଶ କରିବା—Santāpi hebā 1. To give vent to one's grief. সন্তাপকরা; सन्तापित होना ୨ । ଅନୁତାପ କରିବା—2. To repent; to express regret. [ଉ—ବ୍ରାହ୍ମଣଙ୍କ ଅବଜ୍ଞା କରଣ କାତାପି । ଯମପୁରରେ ବସିଲ ହୋଇଣ ସନ୍ତାପି ।—କୃଷ୍ଣସିଂ. ମହାଭାରତ. ବନ]

**ସନ୍ତାପୀ**—ସ. ବିଣ. ପୁଂ—୧ । (ସନ୍ତାପ+ଅସ୍ତ୍ୟ ଅର୍ଥରେ ଇନ୍; ୧ମା. Santāpī ୧ବ. )—୧ । ସନ୍ତାପଯୁକ୍ତ—1.Grieving; (ସନ୍ତାପିନୀ—ସ୍ତ୍ରୀ) afflicted. ୨। (ସମ+ତପ ଧାତୁ ଣିଚ୍+କର୍ତ୍ତରି ଇନ୍; ୧ମା. ୧ବ)—ଯେ ଅନ୍ୟକୁ ସନ୍ତାପିତ କରେ—Afflicting.

**ସନ୍ତାର**—ସଂ, ବି—୧ ।(ସମ୍+ତୃ ଧାତୁ+ଭାବ ଅ) ସନ୍ତରଣ—Santāra 1. Swimming. ୨ । (ସମ+ତୃ ଧାତୁ ଣିଚ୍)+ଭାବ ଅ) ନଦୀଆଦିକୁ ପାର କରାଇବା—2.Ferrying accross.

**ସନ୍ତି**—ସ. ବି.—(ସନ୍ ଧାତୁ+ଭାବ. ତି)—୧ । ଦାନ; ବିତରଣ—Santi 1. Distribution; bestowal of gift. ୨ । ଅବସାନ; ଶେଷ—2. Decline; extinction; close.

**ସନ୍ତିଆ**—ଦେ. ବିଣ—୧ । (ସ. ସିକ୍ତ) ସନ୍ତସନ୍ତିଆ; ଓଦା; ଆର୍ଦ୍ର—Santiā 1. Wet; damp. ୨ । (ସଂ. ସନ୍ତି=ଅବସାନ) সেঁতা, সেঁৎসেঁতে, गीला ଅପରିଷ୍କୃତ ଶରୀର ଯୁକ୍ତ—নোংরা, गंदा 2. Having unclean body. ୩ । ରୋଗ সেঁতা, রোগা, दुबला ଯୋଗୁଁ ଶୀର୍ଣ୍ଣକାୟ—3. Emaciated (ସନ୍ତେଇ—ସ୍ତ୍ରୀ) through disease. ୪ । ନିର୍ବଳ ଓ ଅକର୍ମଣ୍ୟ—4. Weak and worthless; impotent; unable to work. [ଉ—ପଇତା ପଛକେ ସନ୍ତିଆ ହେଉ, ଲୁଗା ହେବ ଉହୁଁରିଆ ।—ଢଗ ] ଦେ. ବି—ଦୁର୍ବଳ ଓ ଅକ୍ଷମ ବ୍ୟକ୍ତି—A weak and worthless person. [ଉ—ଚଢେଇ ସନ୍ତିଆ, ମାରଇ ନାହିଁ; ସୁଖେ ହେଉଥାଏ କରି କରି ।—ଢଗ ]

**ସନ୍ତୁଳା**—ଦେ. ବି.—(ସଂ ସନ୍ତୋଳନ)—୧ । ସାମାନ୍ୟ ଘୃତ ତୈଳ Santulā ଦ୍ୱାରା ଅର୍ଦ୍ଧଭର୍ଜିତ କରାଯାଇ ଅଳ୍ପ ଜଳ ଦ୍ୱାରା ସିଦ୍ଧ চড় চড়ি, सादातरकारी ନିର୍ଜଳ ବ୍ୟଞ୍ଜନ;ଚୁଡ଼ଚୁଡ଼ା—1. Curry slightly fried with oil and then boiled with a little water; waterless curry. (ଯଥା—ବାଇଗଣ ସନ୍ତୁଳା) ୨ । (ଲକ୍ଷଣାର୍ଥ) ବିବ୍ରତ ହେବା; ବ୍ୟତିବ୍ୟସ୍ତ ହେବା—2. (Figurative) Being afflicted or pained; extreme botheration; harassment. ଦେ. ବିଣ—ଅଳ୍ପ ତୈଳ ଦ୍ୱାରା ଭର୍ଜିତ ଓ ପରେ ସାମାନ୍ୟ ଜଳ ଦ୍ୱାରା ସିଦ୍ଧ ଓ ଶୁଷ୍କୀକୃତ—Fried with a little oil. (ଯଥା—ସନ୍ତୁଳାମାଛ) ।

**ସନ୍ତୁଳା(ଳେ)ଇବା**—ଦେ. କ୍ରି—ସନ୍ତୁଳିବା କ୍ରିୟାର ଣିଜନ୍ତ ରୂପ—Santulā(le)ibā The causative form of চড়চড়ি করান भूनावाना Santuliba.

**ସନ୍ତୁଳିବା**—ଦେ. କ୍ରି (ସଂ. ସନ୍ତୋଳନ)—୧ । କଞ୍ଚା ପରିବା ବା ମାଛ Santulibā ପ୍ରଭୃତିକୁ ସାମାନ୍ୟ ଘିଅରେ ବା ତେଲରେ ଭାଜିବା চড়চড়ি করা, সঁাতলান ପରେ କଞ୍ଚର ଜଳ ମିଶାଇ ଜମ୍ଭା ଭଜ୍ୟ ଦ୍ରବ୍ୟରୁ तलाना ବାହାରିବା ଜଳ ଛଡ଼ା ଉହିଁରେ ଅନ୍ୟ ଜଳ ଯୋଗ ନ କରି ତାହାକୁ ନିର୍ଜଳ କରି ସିଦ୍ଧ କରି ତରକାରୀ ପ୍ରସ୍ତୁତ କରିବା—1. To fry vegetable or fish with a little ghee or oil and then let it boil with a little or no water added to it. [ବି—ମାଛ ଓ ମାଂସକୁ ରାନ୍ଧିବା ପୂର୍ବରୁ ପ୍ରଥମେ ସନ୍ତୁଳିବାକୁ ହୁଏ । ତାହା ସନ୍ତୁଳା ହୋଇ ସାରିଲା ପରେ ସେଥିରେ କେବଳ ପାଣି ବା ମସଲାପାଣି ମିଶାଇ ତାକୁ ସିଦ୍ଧ କରି ମାଛ ବା ମାଂସର ଝୋଳ ବା ତିଅଣ ରନ୍ଧାଯାଏ । ନଚେତ୍ ସନ୍ତୁଳା ମାଛ ମାଂସକୁ ବଣ୍ଟିଦେଇ ପରେ ତାହାଦ୍ୱାରା ତିଅଣ କରାଯାଏ । ଖରଡ଼ିବା ପଦାର୍ଥକୁ ସାମାନ୍ୟ ଘୃତ ବା ତୈଳଦ୍ୱାରା କଡ଼ାଇ ଉପରେ ଥିବା ପାକ ମଧ୍ୟରେ ତଡ଼ୁ ଦ୍ୱାରା ଘାଣ୍ଟି ତାହାକୁ ଅର୍ଦ୍ଧସିଦ୍ଧ ଓ ଶୁଷ୍କ ଅବସ୍ଥାରେ କଡ଼ାଇରୁ ଓହ୍ଲାଯାଏ; (ଯଥା—ଶାଗ ଖରଡ଼ା) । ସନ୍ତୁଳିବା ପଦାର୍ଥକୁ ପ୍ରଥମେ ଖରଡ଼ି ସାରିବା ପରେ ଉହିଁରେ ସାମାନ୍ୟ ଜଳ ଯୋଗକରି ଉତ୍ତମ ରୂପେ ସିଝାଇ ତାହା ସାମାନ୍ୟ ଜଳଯୁକ୍ତ ଥିବା ଅବସ୍ଥାରେ ତାକୁ ଚୁଲିଉପରୁ ଓହ୍ଲାଇ ନେବାକୁ ହୁଏ; (ଯଥା—ବଡ଼ି ସନ୍ତୁଳା, ମାଛ ସନ୍ତୁଳା, ବାଇଗଣ ସନ୍ତୁଳା) । ଭାଜିବା ପଦାର୍ଥକୁ ବହୁତ ପରିମିତ ଘିଅରେ ବା ତେଲରେ ସିଦ୍ଧକରି ତାହା ସମ୍ପୂର୍ଣ୍ଣରୂପେ ନିର୍ଜଳ ହେବା ପର୍ଯ୍ୟନ୍ତ ନିଆଁ ଉପରେ ବସାଯାଏ ।] ୨ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ ଅତ୍ୟନ୍ତ କଷ୍ଟ ଦେବା—2 (Figurative) To afflict or give much pain to a person; to barass. ପ୍ରାଦେ. (ସିଂହଭୂମି) କ୍ରି—ବଘାରିବା (ଦେଖ)—Baghāribā (See).

**ସନ୍ତୁଳି ହେବା**—ଦେ. କ୍ରି (ଲକ୍ଷଣାର୍ଥ)—୧ । ଦୁଃଖରେ କ୍ଲିଷ୍ଟ ହେବା—Santuli hebā 1. To be affiicated with pain. ভাজাভাজা হওয়া [ଉ—ସଂସାରର ଜ୍ୱାଳାରେ ମୁଁ ସନ୍ତୁଳି ହୋଇ कष्ट पाना ଗଲିଣି ।] ୨ । ଅତ୍ୟଧିକ ଗ୍ରୀଷ୍ମ ଯୋଗୁଁ ବ୍ୟଥିତ ହେବା—2. To be afflicted with excessive heat. [ଯଥା—ଏ ବର୍ଷ ଖରା ଦିନରେ ଗ୍ରୀଷ୍ମଯୋଗୁଁ ଦିପହରେ ମୁଁ ଘର ଭିତରେ ଯୁବା ସନ୍ତୁଳି ହୋଇଯାଉଛି ।]

ସନ୍ତୁଷ୍ଟ—ସଂ. ବଣ. ପୁଂ (ସମ୍=ସମ୍ୟକ୍+ତୁଷ୍ ଧାତୁ=ତୃପ୍ତ ହେବା+ Santushṭa କର୍ତ୍ତୃ କ୍ତ)—୧ । ସନ୍ତୋଷଯୁକ୍ତ; ତୃପ୍ତ; ପ୍ରସନ୍ନ— (ସନ୍ତୁଷ୍ଟା—ସ୍ତ୍ରୀ) 1. Contented; gratified; satisfied; Pleased. (ଅସନ୍ତୁଷ୍ଟ—ବିପରୀତ) ୨ । ହୃଷ୍ଟ; ଅହ୍ଲାଦିତ—2. Overjoyed.

ସନ୍ତୁଷ୍ଟ କରିବା—ଦେ. କି—କୌଣସି ବ୍ୟକ୍ତିକୁ ତୃପ୍ତ କରାଇବା— Santushṭa kariba To please a person; to make সন্তুষ্ট করা सं'तुष्ट करना one satisfied or gratified. [ସନ୍ତୁଷ୍ଟ କରା(ରେ)ଇବା—ଅନ୍ୟରୂପ] [ଦ୍ର— 'ସନ୍ତୁଷ୍ଟ କରାଇବା' ଅର୍ଥରେ ଓଡ଼ିଆ ଭାଷାରେ 'ସନ୍ତୁଷ୍ଟ କରିବା' ପ୍ରୟୋଗ କେତେକ ସ୍ଥାନରେ ଦେଖାଯାଏ । ମାତ୍ର ତାହା ବ୍ୟାକରଣର ନିୟମାନୁସାରେ ଅଶିଦ୍ଧ; ସନ୍ତୁଷ୍ଟ କରାଇବା ଶବ୍ଦ ପ୍ରୟୋଗ ।]

ସନ୍ତୁଷ୍ଟ ଚିତ୍ତ—ସଂ. ବ ( କର୍ମଧାରୟ )—ତୁଷ୍ଟ ମନ—Contented Santushṭa chitta mind. ସଂ. ବଣ. ପୁଂ (ବହୁବ୍ରୀହି)— (ସନ୍ତୁଷ୍ଟ ଚିତ୍ତା—ସ୍ତ୍ରୀ) ତୃପ୍ତମନାଃ; ଯାହାର ମନସ୍ତୁଷ୍ଟି ହୋଇଅଛି— Inwardly pleased; gratified at heart.

ସନ୍ତୁଷ୍ଟ ଚେତା—ଦେ.ବଣ (ସଂ. ସନ୍ତୁଷ୍ଟଚେତାଃ)—ସନ୍ତୁଷ୍ଟ ଚେତାଃ (ଦେଖ) Santushṭa cheta Santushṭa chetah ( See )

ସନ୍ତୁଷ୍ଟ ଚେତାଃ—ସଂ. ବଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ସନ୍ତୁଷ୍ଟ ହୋଇଅଛି Santushṭa chetah ଚେତସ୍ ଯାହାର=ସନ୍ତୁଷ୍ଟ ଚେତସ୍; ୧ମା. ୧ବ)—ପ୍ରସନ୍ନମନାଃ—Gratified at heart; inwardly pleased.

ସନ୍ତୁଷ୍ଟ ମନ—ଦେ. ବ (କର୍ମଧାରୟ,ସନ୍ତୁଷ୍ଟ+ମନସ୍)—ଅନନ୍ଦିତ ମନ— Santushṭa mana Contented or satisfied mind. (ସନ୍ତୁଷ୍ଟ ମନଃ, ସନ୍ତୁଷ୍ଟ ମାନସ—ସଂସ୍କୃତ ଅନ୍ୟରୂପ) ଦେ. ବଣ. সন্তুষ্ট মন (ବହୁବ୍ରୀହି; ସଂ. ସନ୍ତୁଷ୍ଟ ମନାଃ)—ସନ୍ତୁଷ୍ଟମନାଃ (ଦେଖ) सं'तुष्ट मन Santushṭa manah ( See ) (ସନ୍ତୁଷ୍ଟ ମନା—ଅନ୍ୟ ବଣ ରୂପ)

ସନ୍ତୁଷ୍ଟ ମନାଃ—ସଂ. ବଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ସନ୍ତୁଷ୍ଟ+ମନସ୍ Santushṭa manah ଯାହାର;୧ମା. ୧ବ)—ସନ୍ତୁଷ୍ଟ ଚେତାଃ— ସନ୍ତୁଷ୍ଟ ମାନସ ପୁଂ } ଅନ୍ୟରୂପ Gratified at heart; in- ସନ୍ତୁଷ୍ଟ ମାନସା ସ୍ତ୍ରୀ } wardly pleased.

ସନ୍ତୁଷ୍ଟି—ସଂ. ବ ( ସମ୍=ସମ୍ୟକ୍+ତୁଷ୍ଟି=ତୃପ୍ତି )—୧ । ସମ୍ପୂର୍ଣ୍ଣ Santushṭi ପରିତୃପ୍ତି—1. Contentment. ୨ । ମନୋବୋଧ —2. Satisfaction; gratification.

ସନ୍ତୁଷ୍ଟି କର—ସଂ. ବଣ. ପୁଂ (ସନ୍ତୁଷ୍ଟି+କୃ ଧାତୁ+କର୍ତ୍ତୃ. ଅ)— Santushṭi kara ଯାହା ମନୁଷ୍ୟଙ୍କୁ ସନ୍ତୁଷ୍ଟ କରାଏ— ସନ୍ତୁଷ୍ଟି କରୀ } ସ୍ତ୍ରୀ Gratifying; satisfactory. ସନ୍ତୁଷ୍ଟି ପ୍ରଦା } (ସନ୍ତୁଷ୍ଟି ପ୍ରଦ—ଅନ୍ୟରୂପ)

ସନ୍ତୋଳନ—ସଂ. ବ. ( ସମ୍+ତୁଳ୍ ଧାତୁ+ଭାବ. ଅନ )—ସନ୍ତୁଳିବା Santolana କ୍ରିୟା—The act of frying any (ସନ୍ତୋଳିତ—ବଣ) kitchen vegetable etc. to a point when it becomes almost waterless. (ସନ୍ତୋଳା—ଦେ. ବ; ସନ୍ତୋଳିବା—ଦେ.କି).

ସନ୍ତୋଷ—ସଂ. ବ. (ସମ୍+ତୁଷ୍ ଧାତୁ+ଭାବ. ଅ)—୧ । ପରିତୋଷ; Santosha ତୃପ୍ତି—1. Satisfaction; gratification; সন্তুষ্টি contentment. ୨ । ଅହ୍ଲାଦ; ଆନନ୍ଦ—2. Joy; सं'तुष्ट, सन्तोष pleasure. ଗ୍ରା. ବଣ—ସନ୍ତୁଷ୍ଟ—Satisfied, gratified. [ଉ—ସନ୍ତୋଷ ହେଲି ମାଗ ଯେ ଅଛି ମନରେ । କୃଷ୍ଣସିଂହ. ମହାଭାରତ. ବନ ।]

ସନ୍ତୋଷ କର—ସଂ. ବଣ ( ସନ୍ତୋଷ+କୃ ଧାତୁ+କର୍ତ୍ତୃ. ଅ )— Santosha kara ତୃପ୍ତିକର; ଯାହା ଆନନ୍ଦ ଜନ୍ମାଏ— Gratifying; satisfying; pleasing; satisfactory. (ସନ୍ତୋଷ ଜନକ, ସନ୍ତୋଷ ପ୍ରଦ, ସନ୍ତୋଷ ପ୍ରଦାୟକ— ଅନ୍ୟରୂପ) (ସନ୍ତୋଷ କରୀ, ସନ୍ତୋଷ ଜନକା, ସନ୍ତୋଷ ପ୍ରଦା, ସନ୍ତୋଷ ପ୍ରଦାୟିକା—ସ୍ତ୍ରୀ)

ସନ୍ତୋଷ କରିବା—, ଗ୍ରା. କି—କୌଣସି ବ୍ୟକ୍ତିକୁ ସନ୍ତୁଷ୍ଟ କରାଇବା— Santosha kariba To please or gratify a person. সন্তোষ করা सं'तुष्ट करना

ସନ୍ତୋଷଣୀୟ—ସଂ. ବଣ ( ସମ୍+ତୁଷ୍. ଧାତୁ ଣିଚ=ତୋଷି. Santoshaniya ଧାତୁ+କର୍ମ. ଅନୀୟ)—୧ । ଯାହାଙ୍କୁ ସନ୍ତୁଷ୍ଟ କରାଇବା ଉଚିତ—1. Fit to be pleased or gratified. ୨ । ଯାହାଙ୍କୁ ସନ୍ତୁଷ୍ଟ କରାଯାଇ ପାରେ— 2. Capable of being gratified.

ସନ୍ତୋଷ ବର୍ଦ୍ଧନ—ସଂ. ବ (ସନ୍ତୋଷ+ବୃଧ୍. ଧାତୁ+ଭାବ. ଅନ)— Santosha bardhana ତୃପ୍ତି ବଢ଼ାଇବା; ସନ୍ତୋଷକୁ କ୍ରମଶଃ ଅଧିକତର କରାଇବା—Increasing or promoting satisfaction or pleasure. ସଂ. ବଣ (+କର୍ତ୍ତୃ. ଅନ)—ଯେ ସନ୍ତୋଷ ବର୍ଦ୍ଧନ କରାଏ—Promoting satisfaction; (ସନ୍ତୋଷବର୍ଦ୍ଧିକା—ଅନ୍ୟ ବଣରୂପ) conducive of pleasure.

ସନ୍ତୋଷ ବୃଦ୍ଧି—ସଂ. ବ (ଷଷ୍ଠୀ ତତ୍)—କ୍ରମଶଃ ତୃପ୍ତି ବଢ଼ିବା— Santosha bruddhi Promotion of pleasure.

ସନ୍ତୋଷ ହେବା—ଗ୍ରା. କି—ପରିତୃପ୍ତ ହେବା; ସନ୍ତୁଷ୍ଟ ହେବା— Santosha heba To be pleased; to be contented. সন্তোষ হওয়া सं'न्तुष्टहो

ସନ୍ତୋଷିବା—ଦେ. କି (ପଦ୍ୟ)—ସନ୍ତୁଷ୍ଟ କରାଇବା— Santoshiba To please; to satisfy; to gratify. সন্তোষ (সন্তুষ্টকরা) (ଉ—ପାଣରେ ସନ୍ତୋଷିଲ ରମଣୀ ମନ । सं'न्तुष्ट करना ରାଧାନାଥ. ମେଘଦୂତ ।)

ସନ୍ତୋଷୀ—ସଂ. ବଣ ପୁଂ—୧ । (ସମ୍+ତୁଷ୍. ଧାତୁ ଣିଚ+କର୍ତ୍ତୃ. Santoshi ଇନ୍; ୧ମା. ୧ବ)—ଅହ୍ଲାଦକର—1. Pleas- (ସନ୍ତୋଷିଣୀ—ସ୍ତ୍ରୀ) ing; gratifying. ୨ । (ସନ୍ତୋଷ+ ଅସ୍ତ୍ୟର୍ଥରେ ଇନ୍; ୧ମା. ୧ବ) ସନ୍ତୁଷ୍ଟ—2. Contented. ୩ । ସନ୍ତୁଷ୍ଟ ପ୍ରକୃତିକ—3. Contented by nature.

ସନ୍ତ୍ରସ୍ତ—ସଂ. ଵଣ. ପୁଂ (ସମ୍=ବିଶେଷ ଭାବରେ+ତ୍ରସ୍ ଧାତୁ+କର୍ତ୍ତୃ. ତ)—ଅତ୍ୟନ୍ତ ଭୀତ; ଭୀତ ଚକିତ—
Santrasta Terrified; very much afraid. [ଦ୍ର—ଅନ୍ୟଦ୍ୱାରା ଭୀତିପ୍ରାପ୍ତ ବ୍ୟକ୍ତି ସ୍ଥଳରେ ସନ୍ତ୍ରାସିତ ଶବ୍ଦ ବ୍ୟବହୃତ ହୁଏ।]

ସନ୍ତ୍ରା—ଗ୍ରା. ବି ଓ ବିଣ—ସନ୍ତରା (ଦେଖ)।
Santrā Santarā. (See)

ସନ୍ତ୍ରାସ—ସଂ. ବି (ସମ୍+ତ୍ରସ୍ ଧାତୁ+ଭାବ. ଅ)—ଅତ୍ୟନ୍ତ ଭୀତି—
Santrāsa Terror; much fright; great fear.

ସନ୍ତ୍ରାସିତ—ସଂ. ବିଣ ପୁଂ (ସମ୍+ତ୍ରସ୍ ଧାତୁ, ଣିଚ୍+କର୍ମ. ତ)—
Santrāsita ଅନ୍ୟ ଦ୍ୱାରା ଭୀତିପ୍ରାପ୍ତ—Frightened; terri-
(ସନ୍ତ୍ରାସିତା—ସ୍ତ୍ରୀ) fied. [ଦ୍ର—ସନ୍ତ୍ରସ୍ତ=ନିଜେ ଭୀତ; ସନ୍ତ୍ରାସିତ—ଅନ୍ୟଦ୍ୱାରା ଭୟପ୍ରାପ୍ତ।]

ସନ୍ତ୍ରୀ—ବୈଦେ. ବି (ଇଂ. ସେଣ୍ଟ୍ରୀ)—ପହରାବାଲା ସିପାହୀ—
Santri सन्त्री संत्री Sentry; sentinel.

ସନ୍ଥ—ଦେ. ବି. ପୁଂ (ସଂ. ସତ୍ ଶବ୍ଦର ପୁଂଲିଙ୍ଗ ପ୍ରଥମା ବିଭକ୍ତି ବହୁବଚନ ସନ୍ତଃ; ପ୍ରା. ସନ୍ତୁ)—୧। ସତ୍ପୁରୁଷ; ସଚ୍ଚରିତ୍ର ବ୍ୟକ୍ତି;
Santha
सन्त सन्त ସାଧୁ ବ୍ୟକ୍ତି—1. A good person. (ଉ—ପୁଚ୍ଛେ ଅଶେଷ ମୁକ୍ତ ସନ୍ଥେ, ମୋକ୍ଷ ହୋଇଲେ ଯେଉଁ ପଥେ। ଜଗନ୍ନାଥ. ଭାଗବତ।) ୨। ଧାର୍ମିକ ବ୍ୟକ୍ତି—2. A pious person. (ଉ—ଅଶାନ୍ତକୁ ଶାନ୍ତ ଯେ ଅସନ୍ଥକୁ ସନ୍ଥ, କରୁଥିବାରୁ ଦଣ୍ଡ ବୋଲନ୍ତି ଜଗତ। କୃଷ୍ଣସିଂହ. ମହାଭାରତ. ଶାନ୍ତି।) ୩। ମହାପୁରୁଷ—3. A great man. ୪। ସାଧାରଣ ବୈରାଗୀ; ବାବାଜି—4. A recluse; an anchorite. [ଦ୍ର—ଉପର୍ଯ୍ୟୁକ୍ତ ୪ ଅର୍ଥରେ ଏ ଶବ୍ଦର ସ୍ତ୍ରୀଲିଙ୍ଗ ଆକାର ଭାଷାରେ ବ୍ୟବହୃତ ହୁଏ ନାହିଁ।] ୫। ଅଭ୍ୟାସ ବା ଆୟତ୍ତ
नूतन पाठ ନିମନ୍ତେ ଗୁରୁଙ୍କଠାରୁ ଛାତ୍ରର ଗ୍ରହଣ କରିବା ନୂତନ
नया पाठ ପାଠ—5. New lesson imparted or set to a student by a teacher for preparing it. ( ଉ—ପ୍ରେମ-ଗୁରୁଠାରୁ ଶିଖିଲୁ ଯେ ଅପୂର୍ବ ସୁନ୍ଦର ଅଦ୍ୟ ସନ୍ଥ। ରାଧାନାଥ. ଯଯାତି।) [ଦ୍ର—ସଂ. ସନ୍ଥ=ଦୁଇ ହାତକୁ ଯୋଡିବା ଅବସ୍ଥା। ସମ୍ଭବତଃ ଛାତ୍ର ଗୁରୁଙ୍କଠାରୁ 'ସନ୍ଥ' ଗ୍ରହଣ କଲାବେଳେ ଦୁଇ ହାତ ଯୋଡି କରି ତାଙ୍କ ଆଗରେ ଅବନତଭାବ ହୋଇ ଠିଆ ହେବାର ରୀତିରୁ ଏହି ଶବ୍ଦର ଏହି ଅର୍ଥ ଆସିଅଛି।] ୬। (ପୁଂ) ଲୋକଙ୍କୁ ଦିଆଯିବା ନାମ—6. A name given
सन्त सन्त to males. ଦେ. ବିଣ—ସାଧୁଶୀଳ; ସଚ୍ଛୀଳ—Honest; noble; good (person). ( ଉ—ଦୁଷ୍ଟ ଦ୍ୱିଜ ଲକ୍ଷଣ ଯେ ସନ୍ଥଦ୍ୱିଜଙ୍କ, ଅଗେ ଏହା କହିଲି ନ ଲଭେ ଅନ୍ତକ। କୃଷ୍ଣସିଂହ. ମହାଭାରତ. ବନ।)

ସନ୍ଥ ଘେ(ଘି)ନିବା—ଦେ. କ୍ରି—ସନ୍ଥ ନେବା (ଦେଖ)
Santha ghe(ghi)nibā Santha nebā. (See)

ସନ୍ଥ ଜନ—ଦେ. ବି (ସଂ. ସତ୍+ଜନ)—ସାଧୁ ବ୍ୟକ୍ତି—A good
Santha jana person. (ଉ—ତେଣୁ ବୋଲାଇ ସନ୍ଥଜନ
सन्त जन सन्त आदमी ବଡ଼, ସନ୍ଥର ବନ୍ଧୁ ଯେତେ ସବୁ ଭୂତ ପ୍ରାଣୀ ଉତ୍କଳସ୍ୱୟମ୍ବର।)

ସନ୍ଥ ଦେବା—ଦେ. କ୍ରି—ଛାତ୍ରକୁ ଅଭ୍ୟାସ କରିବା ପାଇଁ (ଗୁରୁ) ନୂତନ
Santha debā ପାଠ ନ୍ୟସ୍ତ କରିବା—To set a new lesson
नूतन पाठ देना to a pupil to prepare it at
नया पाठ देना home.

ସନ୍ଥ ନେବା—ଦେ. କ୍ରି—(ଛାତ୍ର) ଗୁରୁଙ୍କଠାରୁ ନୂଆ ପାଠ ଗ୍ରହଣ
Santha nebā କରିବା—To take a new lesson
नूतन पाठ नेवा नया पाठ लेना from a teacher.

ସନ୍ଥ ପଇଠା(ଟେ)ଇବା—ଦେ. କ୍ରି—ଗୁରୁଙ୍କ ପ୍ରଦତ୍ତ ନୂଆ ପାଠକୁ
Santha paiṭā(ṭe)ibā ଆୟତ୍ତ ବା ମୁଖସ୍ଥ କରିବା—
नूतन पाठ मुखस्थ करा To get by heart or prepare a
नयापाठ याद करना new lesson.

ସନ୍ଥପଣ—ଦେ. ବି—୧। ସାଧୁତା—1. Nobility; goodness;
Santhapaṇa honesty. ୨। ଆଚରଣର ଧୀରତା; ଭଦ୍ରତା—
सन्तपना 2. Civility; gentleness of manners,
सन्तता nobility of character. ୩। ଭଦ୍ର ବ୍ୟବହାର—
(ସନ୍ଥପଣିଆ—ଅନ୍ୟରୂପ) 3. Gentlemanly conduct; civil manners.

ସନ୍ଥ ମହନ୍ତ—ଦେ. ବି (ସହଚର; ବହୁବଚନ)—ସାଧାରଣ ବୈରାଗୀ ଓ
Santha mahanta ମଠାଧିକାରୀ ବୈରାଗୀମାନେ—Ordinary
सन्त महान्त सन्त महन्थ anchorites and abbots.

ସନ୍ଥ ମେଳ(ଳା)—ଦେ. ବି-ସାଧୁ ବୈଷ୍ଣବମାନଙ୍କର ମିଳନମହୋତ୍ସବ—
Santha meḷa(ḷā) A gathering of anchorites.
सन्त सम्मेलन सन्त सम्मेलन (ସନ୍ଥମଉଛ-ଅନ୍ୟରୂପ)

ସନ୍ଥ ସାଧୁ—ଦେ. ବି ( ଏକାର୍ଥକ ସହଚର; ବହୁବଚନ )—ବାବାଜି-
Santha sādhu ବୈଷ୍ଣବଗଣ—Anchorites.
सन्त साधु साधु सन्त

ସନ୍ଥା—ଦେ.ବି—ଘାଆର ବା ପାଚିଥିବା ବଥର ମୁହଁ ଯୋଗରୁ ଭୁଙ୍କ ହୋଇ
Santhā ନ ଯିବ ଓ ତହିଁ ମଧ୍ୟରୁ ପୂଜ ବାଟେ ପୂଜ ଓ ପାଣି ଅଦ
पलिता ବାହାରିଯିବ, ଏଥିପାଇଁ ତା ମୁହଁରେ ଦିଆଯିବା କାଠି ବା
सलाई ସଳିତା—A probe or wick or plug thrust into the mouth of a sore or abcess, so that the purulent matter inside it will be drained out when the plug is taken out. [ଦ୍ର—ଏହାକୁ ଘାଆର ମୁହଁରୁ କାଢ଼ିଦେଲେ ସେହି ଛିଦ୍ରବାଟେ ପୂଜ ଅଦ ବୋହିଯାଏ।]

ସନ୍ଦ—ବୈଦେ. ବି (ଫା. ସନଦ୍)—ସନନ୍ଦ (ଦେଖ)
Sanda Sananda. (See)

ସନ୍ଦଂଶ—ବି (ସମ୍+ଦନ୍ଶ୍ ଧାତୁ=କାମୁଡ଼ିବା+କର୍ତ୍ତୃ. ଅ; ଯେ
Sandaṁśa ଅଛା କରି କୌଣସି ପଦାର୍ଥକୁ କାମୁଡ଼ି ଧରେ)—

୧ । ସଣ୍ଢ଼ଅଶି—1. A pair of tongs. ୨।ଚିମୁଟା—2. Pincers. ୩ । ଗୁଆକାଟି—3. Nut-cracker.

**ସନ୍ଦଂଶ ପ୍ରାପିତ ନ୍ୟାୟ**—ସଂ.ବ (ନ୍ୟାୟ) – ସଣ୍ଢ଼ଅଶିରେ ଦୁଇ ବାଜୁଦ୍ୱାରା Sandamśa prāpita nyāya ଦୃଢ଼ ବସ୍ତୁକୁ ଧରିବା ପରି ଦୁଇ ଅନ୍ତ ଭାବ୍ୟମରୂପେ ବା ଦୃଢ଼ ଭାବରେ ଧରା ହେବା ବସ୍ତୁ ବା ଦୁଇ ଦିଗରୁ ଅବାନ୍ତ ହୋଇଥିବା ବ୍ୟକ୍ତି ପକ୍ଷରେ—ଏହି ନ୍ୟାୟ ପ୍ରଯୁକ୍ତ ହୁଏ—A metaphorical expression or analogy used in the case of a person or thing tightly pressed from both sides, as by a vice, and thus being incapable of freeing himself or itself.

**ସନ୍ଦଂଶ ଯାତନା**—ସଂ. ବି-(ବହୁବ୍ରୀହି)--ହିନ୍ଦୁମାନଙ୍କର ନରକ ବିଶେଷ—Sadamśa jātanā Name of a part of the hell of the Hindu mythology. [ବି—ସଣ୍ଢ଼ଅଶି ଦ୍ୱାରା ଚିପିଲେ ମନୁଷ୍ୟର ଯେପରି କଷ୍ଟ ଅନୁଭୂତ ହୁଏ, ଏ ନରକରେ ପାପୀଙ୍କୁ ସେହିପରି ଯାତନା ଦିଆଯାଏ ବୋଲି ଏପରି ନାମ ହୋଇଅଛି ।]

**ସନ୍ଦରସ**—ଦେ. ବି.—(ପ. ସନ୍ଦ୍ରସ; ଇଂ. ସଣ୍ଡରାକ୍ )—ବୃକ୍ଷବିଶେଷର Sandarasa ଶୁଷ୍କ ନିର୍ଯ୍ୟାସ; ଏକ ପ୍ରକାର ଶାଳଗଛରୁ ଧୁନା; ଧୂନା ବାହାରିବା ଝୁଣା; ଧଳା ଝୁଣା—Gum sandaras; a kind of resin; the dried juice of Vateria India. [ବି—ଏହା ବାର୍ଣ୍ଣିସ୍ ପ୍ରସ୍ତୁତ କରିବାରେ ଲାଗେ ।]

**ସନ୍ଦର୍ଭ**—ସ. ବି. (ସମ୍=ସମ୍ୟକ୍+ଦୃଭ୍ ଧାତୁ=ସଙ୍ଗ୍ରହ କରିବା+ଭାବ. Sandarbha ଅ; ଶବ୍ଦ ଓ ଅର୍ଥ ସମ୍ୟକ୍‌ରୂପେ ସଗ୍ରଥିତ ହୋଇଥିବା ରଚନା)—୧ । ରଚନା; ପ୍ରବନ୍ଧ—1. An essay; a composition; a thesis. ୨ । ପରସ୍ପର ସହିତ ସମ୍ୟକ୍‌ରୂପେ ସମ୍ବଦ୍ଧ ରଚନା—2. A discourse in which the parts are well connected; a connected narrative. ୩ । ସଂଗ୍ରହ—3. Collection; compendium; compilation. ୪ । ସମ୍ବନ୍ଧ—4. Connection. ୫ । ଗ୍ରନ୍ଥନ—5. Arrangement. ୬ । (+କର୍ମ. ଅ) କୌଣସି ବିଷୟ ସମ୍ବନ୍ଧରେ ଗ୍ରନ୍ଥ ପୁସ୍ତକ—6. A treatise on a particular subject. ୭ । ବିସ୍ତାର—7. Expansion. ୮ । ରହସ୍ୟ; ଗୂଢ଼ାର୍ଥ—8. Secret or hidden meaning. (ସଂଦର୍ଭ—ଅନ୍ୟରୂପ)

**ସନ୍ଦର୍ଶନ**—ସଂ. ବି.—(ସମ୍+ଦୃଶ୍ ଧାତୁ+ଭାବ ଅନ)—୧ । ସମ୍ୟକ୍ Sandarsana ଦର୍ଶନ; ଅବଲୋକନ; ନିରୀକ୍ଷଣ—1. Observation; act of looking at a thing. ୨। ପରୀକ୍ଷା—2. Examination; scrutiny. ୩। ଦେଖିବା—3. Act of seeing. ୪ । ଜ୍ଞାନ—4. Knowledge; wisdom; idea. ୫ । ମୂର୍ତ୍ତି; ଆକୃତି—5. Form; shape; image. (ସଂଦର୍ଶନ—ଅନ୍ୟରୂପ)

**ସନ୍ଦଷ୍ଟ**—ସଂ. ବିଣ. (ସମ୍+ଦଂଶ୍ ଧାତୁ+କର୍ମ ତ)—୧ । ଖୁବ୍ ଜୋର Sandashta ଭାବରେ କାମୁଡ଼ା ହୋଇଥିବା—1. Severely bitten ୨ । ସଂଶ୍ଳିଷ୍ଟ—2. Brought into contact. ୩ । ଦୃଢ଼ରୂପେ ଲଗ୍ନ—3. Closely (ସଂଦଷ୍ଟ—ଅନ୍ୟରୂପ) joined with; made to adhere to.

**ସନ୍ଦଷ୍ଟୋଷ୍ଠ ପୁଟ**—ସଂ. ବିଣ. ପୁଂ. (ବହୁବ୍ରୀହି; ସନ୍ଦଷ୍ଟ ହୋଇଅଛି ନିଜର Sandashtostha puta ଓଷ୍ଠପୁଟ ଯାହା ଦ୍ୱାରା)—ଅତି (ସନ୍ଦଷ୍ଟୋଷ୍ଠ ପୁଟା—ସ୍ତ୍ରୀ) ଦୃଢ଼ ହୋଇ ଯେ ରାଗରେ ନିଜର ଓଠକୁ ଖୁବ୍ ଜୋର୍‌ରେ କାମୁଡ଼ି ଧରିଅଛି—One who has very firmly pressed his teeth on his own lips in a paroxysm of anger.

**ସନ୍ଦାର୍ଡ**—ଗ୍ରାଦେ. (ବାଲେଶ୍ୱର) ବି—କାଠର ମୋଟ ଠେଙ୍ଗା—Sandārda A thick cudgel of wood.

**ସନ୍ଦାନ**—ସଂ.ବି.—(ସମ୍+ଦୋ ଧାତୁ=ଛେଦନ କରିବା+ଭାବ.ଅନ)-Sandāna ୧ । ସମ୍ୟକ୍ ଛେଦନ—1.Cutting through; tearing asunder. ୨। ବନ୍ଧନ—2. Binding. ୩ । (+କର୍ମ ଅନ) ଶୃଙ୍ଖଳ—3 Chain. ୪ । ରଜ୍ଜୁ—4. Rope; chord. ୫ । ବନ୍ଧନ ସାଧନ ବସ୍ତୁ—5. Bond. ୬ । (ସମ୍+ଦାନ=ଗଜଗଣ୍ଡ ବାରି) ହସ୍ତୀର କପୋଳର ଊର୍ଦ୍ଧ୍ୱ ଦେଶ ଓ ଜାନୁଦ୍ୱୟର ଅଧୋଭାଗ, ଯେଉଁ ସ୍ଥାନରୁ ମଦ ଜଳ କ୍ଷରିତ ହୁଏ—6 The upper part of the brow and the lower part of the knees of an elephant from which a sweet-scented juice is exuded. (ସଂଦାନ—ଅନ୍ୟରୂପ)

**ସନ୍ଦାନିତ**—ସଂ. ବିଣ: (ସନ୍ଦାନ+ସଞ୍ଜାତାର୍ଥେ ଇତ୍)—୧ । ଶୃଙ୍ଖଳିତ—Sandānita 1. Enchained. ୨ । ବଦ୍ଧ—2 Bound. (ସଂଦାନିତ—ଅନ୍ୟରୂପ) ୩ । ଛିନ୍ନ—3. Torn.

**ସନ୍ଦାନିନୀ**—ସ. ବି. ସ୍ତ୍ରୀ (ସନ୍ଦାନ+ଇନ୍+ସ୍ତ୍ରୀ. ଈ; ଯେଉଁଠାରେ Sandāninī ଗୋରୁଙ୍କୁ ବନ୍ଧାଯାଏ)—ଗୋଶାଳା; ଗୁହାଳ ଘର—Cow-shed; a place where cattle are tied. (ସଂଦାନିନୀ—ଅନ୍ୟରୂପ)

**ସନ୍ଦାବ**—ସ. ବି ( ସମ୍+ଦୁ ଧାତୁ=ଗମନ କରିବା+ଭାବ. ଅ )—Sandāba ୧ । ପଳାୟନ—1. Fleeing. ୨ । ହଟିଯିବା—2. Retiring. (ସଂଦାବ—ଅନ୍ୟରୂପ)

**ସନ୍ଦି**—ଗ୍ରା. ବି (ସଂ. ସନ୍ଧି)—ସନ୍ଧି ( ଦେଖ ) Sandi Sandhi ( See )

**ସନ୍ଦିଆ** (ଇତ୍ୟାଦି)—ଗ୍ରା. ବି – ସନ୍ଧିଆ ଇତ୍ୟାଦି ( ଦେଖ ) Sandiā (etc) Sandhiā etc. ( See )

**ସନ୍ଦିଆସି**—ଗ୍ରା. ବି (ସଂ. ସନ୍ନ୍ୟାସୀ)—ସନ୍ନ୍ୟାସୀ ଦେଖ ) Sandiāsi Sannyāsi ( See )

**ସନ୍ଦିଗ୍ଧ**—ସଂ. ବିଣ. ପୁ. (ସମ୍+ଦିହ୍ ଧାତୁ=ସଂଶୟ କରିବା+କର୍ମ Sandigdha ତ)—ସନ୍ଦେହାତ୍ମକ; ସଂଶୟଯୁକ୍ତ—Suspicious; (ସଂଦିଗ୍ଧ—ଅନ୍ୟରୂପ) sceptic; doubtful.

**ସନ୍ଦିଗ୍ଧ ଚିତ୍ତ**—ସଂ. ବି (କର୍ମଧାରୟ) —ସଂଶୟଯୁକ୍ତ ମନ— Sandigdha chitta Suspicious mind. (ସନ୍ଦିଗ୍ଧ ମନାଃ—ଅନ୍ୟ ବିଣ ରୂପ) ସଂ. ବିଣ. ପୁଂ (ବହୁବ୍ରୀହି)— (ସନ୍ଦିଗ୍ଧ ଚିତ୍ତା—ସ୍ତ୍ରୀ) ସନ୍ଦିଗ୍ଧ ଚେତାଃ ( ଦେଖ ) Sandigdha chetāḥ ( See )

**ସନ୍ଦିଗ୍ଧ ଚେତାଃ**—ସଂ. ବିଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ସନ୍ଦିଗ୍ଧ+ଚେତସ୍; Sandigdha chetāḥ ୧ମା ୧ବ)—ଯାହାର ମନ ସଂଶୟ- [ସନ୍ଦିଗ୍ଧ ଚେତା—ଦେ. ରୂପ] ଯୁକ୍ତ ଅଟେ; ଯାହାର ମନରେ ସନ୍ଦେହ ଜାତ ହୋଇଅଛି—Of a suspicious mind; doubting.

**ସନ୍ଦିଗ୍ଧତା**—ସଂ. ବି (ସଂ. ସନ୍ଦିଗ୍ଧ+ଭାବେ ତା)—୧ । ସନ୍ଦେହଯୁକ୍ତତା; Sandigdhatā ସନ୍ଦିହାନତା—1. Doubtfulness; hesitativeness. ୨ । ଅଳଙ୍କାର ଶାସ୍ତ୍ରରେ ଶବ୍ଦଦୋଷ—ବିଶେଷ; ଶବ୍ଦର ପ୍ରୟୋଗ ଦ୍ୱାରା ଅର୍ଥର ଅବଗତିରେ ସନ୍ଦେହ ଜାତ ହେବା ଦୋଷ—2. A defect in composition consisting of the use of a word capable of conveying more that one sense.
[ଏଥିର ଉଦାହରଣ—
ଶୁଣ ଅହେ ବନ୍ଧୁଗଣ କଥାଇଁ ହରଷ ମନ
ଏହି ଦେଶ ସୁରାଳୟ କର ଗମନ
ତହିଁ ନିତ୍ୟ ସେବା କର ମନେ ପ୍ରଫୁଲ୍ଲ ଅଟରେ
ଏମେ ଅସକ୍ତ ବଢ଼ିବ ତୁମ୍ଭ ମନର ।
କୁଳମଣି ଅଳଙ୍କାର ତରଙ୍ଗିଣୀ ।]

**ସନ୍ଦିଗ୍ଧ ମନାଃ**—ସଂ. ବିଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି;ସନ୍ଦିଗ୍ଧ+ମନସ୍; ୧ମା. Sandigdha manāḥ ୧ବ)—ସନ୍ଦିଗ୍ଧ ଚେତାଃ ( ଦେଖ ) [ସନ୍ଦିଗ୍ଧ ମନା—ଦେଶଜ ରୂପ) Sandigdha chetāḥ (See)

**ସନ୍ଦିତ**—ସଂ. ବିଣ (ସମ୍+ଦୋ ଧାତୁ=ଛେଦନ କରିବା+କର୍ମ.ତ)- Sandita ସନ୍ଦାନିତ (ଦେଖ)—Sandānita (See)

**ସନ୍ଦିଶା**—ଗ୍ରାଂ ବି (ସଂ. ସନ୍ଦେଶ)—ଅଭିଳାଷ; ମନୋରଥ; ବାଞ୍ଛା— Sandiśā ଅଭିଳାଷ ସଦିଚ୍ଛା Desire; wish.

**ସନ୍ଦିଷ୍ଟ**—ସଂ. ବିଣ; ପୁଂ (ସମ୍+ଦିଶ୍ ଧାତୁ=ଆଦେଶ ଦେବା, Sandishta କହିବା+କର୍ମ ତ)—୧ । ଆଦିଷ୍ଟ; ଆଦେଶ ପ୍ରାପ୍ତ; (ସନ୍ଦିଷ୍ଟା—ସ୍ତ୍ରୀ.ବିଣ) ଆଜ୍ଞପ୍ତ —1. Commanded; ordered. ୨ । କଥିତ—2. Spoken; told. ସଂ. ବି (+ଭାବ.ତ) ୧ । ଆଦେଶ—1. Order; command. ୨ । ବାର୍ତ୍ତା; ସମ୍ବାଦ—2. News; information; intelligence. (ସନ୍ଦିଷ୍ଟ—ଅନ୍ୟରୂପ)

**ସନ୍ଦିଷ୍ଟାର୍ଥ**—ସଂ. ବିଣ. ପୁଂ (ବହୁବ୍ରୀହି; ସନ୍ଦିଷ୍ଟ=ଆଦିଷ୍ଟ ହୋଇଅଛି; Sandishtārtha ଅର୍ଥ=ପ୍ରୟୋଜନ ବା ଉଦ୍ଦେଶ୍ୟ ଯାହାର)- (ସନ୍ଦିଷ୍ଟାର୍ଥା—ସ୍ତ୍ରୀ) ବାର୍ତ୍ତାବହ; ଦୂତ—Messenger.

**ସନ୍ଦିହାନ**—ସଂ. ବିଣ. ପୁଂ (ସମ୍+ଦିହ୍ ଧାତୁ=ଲେପନ କରିବା, Sandihāna ସଂଶୟ କରିବା+କର୍ତ୍ତ୍ରି. ଆନ)—ସନ୍ଦେହାନ୍ୱିତ; (ସନ୍ଦିହାନା—ସ୍ତ୍ରୀ) ସଂଶୟଯୁକ୍ତ; ଯାହାର ମନରେ ସନ୍ଦେହ ଜାତ ହୋଇଅଛି—Suspicious; sceptic; doubtful.

**ସନ୍ଦୀ**—ସଂ. ବିଣ. ସ୍ତ୍ରୀ (ସମ୍+ଦୋ ଧାତୁ=ଛେଦନ କରିବା+କର୍ମ. Sandī ଅ+ସ୍ତ୍ରୀ. ଈ)—୧ । ଶଯ୍ୟା—1. Bed. ୨ । ଖଟ—2. Bedstead. ୩ । ଅସନ୍ଦୀ; ଚଉକି—3. A stool; a small chair. (ସନ୍ଧା—ଅନ୍ୟରୂପ)

**ସନ୍ଦୀପ୍ୟ**—ସଂ. ବି. -(ବୈଦ୍ୟକ)—ମୟୂରଶିଖା ଗୁଳ୍ମ; ମୟୂରଚୂଳିଆ Sandīpya ଗଛ—Name of a tree; Celesia (ସଂଗାପ୍ୟ—ଅନ୍ୟରୂପ) Cristata.

**ସଂନ୍ଦୃବ୍ଧ**—ସଂ. ବିଣ—(ସମ୍+ଦୃଭ୍ ଧାତୁ=ଗ୍ରନ୍ଥନ କରିବା+ Sandṛubdha କର୍ମ. ତ) ୧ । ଗ୍ରଥିତ—1. Sewn; orderly arranged. ୨ । ରଚିତ—2. Composed.

**ସନ୍ଦେ**—ପ୍ରାଦେ. (ବାଲେଶ୍ୱର) ବି—ସନ୍ଦେହ— Sande Doubt.

**ସନ୍ଦେଶ**—ସଂ. ବି. ( ସମ୍+ଦିଶ୍ ଧାତୁ=ଆଜ୍ଞା କରିବା+କର୍ମ ଅ ) Sandeśa ୧ । ସ୍ୱବାଦ; ବାର୍ତ୍ତା; ଖବର—1. News; intelligence. ୨ । ଅନ୍ୟର ନିକଟକୁ ପ୍ରେରିତ ସମ୍ବାଦ—2. Message. ୩ । ଆଜ୍ଞା; ଆଦେଶ—3. Order; command.
সন্দেশ
सन्देश
(ସନ୍ଦିଷ୍ଟ—ବିଣ) ଦେ. ବି.—୧ । (ସଂ. ସନ୍ଦେଶ =ବାର୍ତ୍ତା,ସଂବାଦ । ବନ୍ଧୁ ଘରକୁ କୁଶଳ ସଂବାଦବୁଝିବା ପାଇଁ ଯେଉଁ ଦୂତ ପଠାଯାଏ, ତା ହାତରେ ସନ୍ଦେଶ ବା ମିଷ୍ଟାନ୍ନ ପଠାଯିବା ବଙ୍ଗ ଦେଶୀୟ ପ୍ରଥାରୁ ଏହି ବ୍ୟବହାର ଆସିଅଛି । )—ଗୁଡ଼ରେ ବା ଚିନିରେ ପାଗ କରି ଯାଇଥିବା ନଡ଼ିଆ କୋରରେ ବା ଛେନାରେ ପ୍ରସ୍ତୁତ ମିଷ୍ଟାନ୍ନବିଶେଷ —1. A sweetmeat made of the scrapings of cocoanut or cheese fried with sugar. [ଦ୍ର—ବଙ୍ଗ ଦେଶରେ 'ତତ୍ତ୍ୱ' ପଠାଇବା ଉପଲକ୍ଷରେ ପୂର୍ବେ ନଡ଼ିଆ କୋର ଓ ଗୁଡ଼ରେ ତିଆରି ସନ୍ଦେଶ ପଠାଯାଉଥିଲା; ବର୍ତ୍ତମାନ ଦୁଧଛେନାରେ ତିଆରି ସନ୍ଦେଶ ନାମକ ମିଠେଇ ପଠାଯାଏ । ଓଡ଼ିଶାରେ 'ଶଙ୍ଖୁଳା' କୋରି ସଙ୍ଗେ ମୁଡ଼ିରେ, ଉଖୁଡ଼ାରେ ଓ ଚୁଡ଼ାରେ ତିଆରି ମୁଆଁ ଏବଂ ମନୋହରା ଆଦି ପଠାଯାଏ । ସନ୍ଦେଶର ମିଷ୍ଟାନ୍ନ ଅର୍ଥରେ ବ୍ୟବହାର ବଙ୍ଗ ଦେଶର ଅନୁକରଣରେ ଓଡ଼ିଶାରେ ଚଳିଅଛି ।] ୨ । ନିର୍ଜଳ ଦୁଧଛେନା ସଙ୍ଗେ ଚିନି ମିଶାଯାଇ କରେଇରେ ସନ୍ତୁଳା ହୋଇ ପ୍ରସ୍ତୁତ କରାଯିବା ମିଷ୍ଟାନ୍ନବିଶେଷ—2. A sweetmeat prepared by frying fresh cheese with sugar. [ଦ୍ର—ଗୃହ ପ୍ରୟୋଗ ପୂର୍ବକ ଦୁଧଛେନାରୁ ପାଣିପାକ ନିଗାଡ଼ି ଦିଆଇ ତହିଁରେ ଚିନି ମିଶାଇ ତାକୁ ଉତ୍ତମରୂପେ ଚାଟି କରେଇରେ ସନ୍ତୁଳିଲେ ସନ୍ଦେଶ ହୁଏ; ପୁଣି ଉକ୍ତ ସନ୍ଦେଶକୁ ନାନାପ୍ରକାର ଛାଞ୍ଚରେ ଢାଳି ନାନା ଆକୃତିର ସନ୍ଦେଶ ତିଆରି କରାଯାଏ । ଏହାଛଡ଼ା ନଡ଼ିଆ କୋରକୁ ଚିନିରେ ମିଶାଇ ସନ୍ତୋଳିଲେ ମଧ୍ୟ ତହିଁରୁ ସନ୍ଦେଶ ତିଆରି ହୁଏ । ବଙ୍ଗ ଦେଶରେ ଛାଞ୍ଚ ସାହାଯ୍ୟରେ ଆମ୍ବ ଆକାରରେ ପ୍ରସ୍ତୁତ ସନ୍ଦେଶକୁ 'ଆମ୍ବ ସନ୍ଦେଶ', ଉପରେ ବ୍ୟକ୍ତିନାମ ମୁଦ୍ରିତଥିବା ଚକାକୃତି ସନ୍ଦେଶକୁ

'ଗ୍ରମଗ୍ରଲା ସନ୍ଦେଶ', ଉପରେ ଚୋପି ଚୋପି ଶବ୍ଦ ବ୍ୟବହାର ହୁଅଇ କରୁଥିବା ସନ୍ଦେଶଙ୍କ'ଗୁପୋ କା ଢେକୋ ସନ୍ଦେଶ', ନଡ଼ିଅକୋରୁରେ ଛାଂଚ ସନ୍ଦେଶକୁ 'ନାରକେଲ ସନ୍ଦେଶ' ବୋଲାଯାଏ । ଓଡ଼ିଶାରେ ଛେନାର ସନ୍ଦେଶକୁ କଞ୍ଚା ଗୋଲ୍ଲା (କାଁଚାଗୋଲ୍ଲା) ବୋଲାଯାଏ । ଏହାଛଡ଼ା ବର୍ତ୍ତିକାକାର ସନ୍ଦେଶକୁ ବଙ୍ଗଳାରେ 'ଗୋଲ୍ଲା ବା ମୋଣ୍ଡା ବା ମଣ୍ଡା ସନ୍ଦେଶ', ଏବଂ ଟିକି ଟିକି ବାଟୁଳ ପରି କଲା ହୋଇଥିବା ସନ୍ଦେଶକୁ 'ମୁଣ୍ଡି ସନ୍ଦେଶ'ବୋଲାଯାଏ । ] ଗ୍ରା. (ପଦ୍ୟ) ବି —ସନ୍ଦେହ—Doubt. ( ଉ—ଏ କଥା କହ କ୍ୟାସ ଶିଷ, ଫିଟିବ ମନର ସନ୍ଦେଶ । —ପ୍ରାଚୀ• କାର୍ତ୍ତିକ-ମାହାତ୍ମ୍ୟ । )

**ସନ୍ଦେଶ ବହ** ସ. ବି. ପୁଂ—(ସନ୍ଦେଶ+ବହ୍ ଧାତୁ+କର୍ତ୍ତୃ. ଅ)— Sandeśa baha ବାର୍ତ୍ତାବହ; ଦୂତ; ହରକରା—Messenger; news-bearer. [ସନ୍ଦେଶବହ ଦ୍ୱାର—ଅନ୍ୟରୂପ] (ସନ୍ଦେଶବହା—ସ୍ତ୍ରୀ)

**ସନ୍ଦେହ**—ସଂ. ବି ( ସମ୍+ଦହ୍ ଧାତୁ=ଦ୍ୱୈଧ ଭାବ କରିବା+ଭାବ. Sandeha ଅ) ୧ । ସଂଶୟ; ଦ୍ୱୈଧଭାବ—1. Doubt; suspicion; suspense. ୨ । ଅର୍ଥାଲଙ୍କାର ବିଶେଷ—2. A figure of speech. [ଦ୍ର—ଉପମେୟ ଓ ଉପମାନର ପାର୍ଥକ୍ୟ କରୁଥିବାରେ ପ୍ରତିଭାମୂଳକ ବିସ୍ମୃତ କରାଗଲେ ସନ୍ଦେହ ଅଲଙ୍କାର ହୁଏ ।] କବିକଳ୍ପନାକୃତ ସଂଶୟକୁ ସନ୍ଦେହାଲଂକାର ବୋଲାଯାଏ । କୌଣସି ବସ୍ତୁକୁ ଦେଖି ତାକୁ ଏକାଧିକ ବସ୍ତୁ ମଧ୍ୟରୁ କାହା ସଙ୍ଗେ ତୁଳନା କରାଯିବ ଏବଂଭୂତ ସନ୍ଦେହ କବିଙ୍କ ମନରେ ଜାତ ହେବା ସ୍ଥଳରେ ସନ୍ଦେହାଲଂକାର ହୁଏ ।

ଏଥିର ଉଦାହରଣ—

ଲଭୁଛି କୁହୁଳି ମାର, ଅଛି ଫୁଲ ଧନୁଶର,
କୁହେ ସୁଧାକର, ତହିଁ କଳଙ୍କ ଅଛି;
ଅଉ ଦେବତାମାନଙ୍କୁ କପଁ ଅଣିବ ମନକୁ,
ମୋହବ ସୁକୃତ ଏ ପୁରୁଷ ହୋଇଛି
ମୋର ପୁଣି ସୁକୃତ କେତେ
ଏମନ୍ତ ଶୋଭା ଜାତ ହେବାରୁ ଜଗତେ ।
—ଭଞ୍ଜ. ଲାବଣ୍ୟବତୀ ।]

**ସନ୍ଦେହ କରିବା**—ଦେ. କି—କୌଣସି ବିଷୟରେ ମନରେ ଦ୍ୱିଧାଭାବ Sandeha kariba ପୋଷଣ କରିବା—To doubt; to suspect. ସନ୍ଦେହ କରା सन्देह करना

**ସନ୍ଦେହ ଜନକ**—ସଂ ବିଣ—ଯାହା ମନୁଷ୍ୟ ମନରେ ସଂଶୟ ଜାତ Sandeha janaka କରାଏ—Engendering doubt in one's mind; suspicious.

**ସନ୍ଦେହ ଦୋଳା**—ସଂ. ବି (ରୂପକ କର୍ମଧାରୟ) ଦୋଳା ସଙ୍ଗେ Sandeha dolā ଉପମିତ ସନ୍ଦେହ—Suspense; doubt compared to a swing

**ସନ୍ଦେହ ଭଞ୍ଜନ**—ସଂ. ବି. (ଷଷ୍ଠୀ ତତ୍) —ମନରୁ ସଂଶୟର ଦୂରୀ- Sandeha bhañjana କରଣ—Removal of a doubt.

**ସନ୍ଦେହ ସଙ୍କର**—ସଂ ବି—ଅର୍ଥାଲଙ୍କାର ବିଶେଷ— Sandeha saṅkara A kind of figure of speech. [ଦ୍ର—ଯେଉଁଠାରେ ଦୁଇଟି ଅଲଙ୍କାର ମଧ୍ୟରେ କେଉଁଟି ପ୍ରଯୋଜ୍ୟ ବୋଲି ସନ୍ଦେହ ହୁଏ, ସେଠାରେ "ସନ୍ଦେହ ସଙ୍କର" ଅଲଂକାର ହୁଏ; ଯଥା—"ମୁଖଚନ୍ଦ୍ର ଶୋଭା ପାଉଛି" । ଏହି ବାକ୍ୟରେ ଶୋଭା ପାଇବା ରୂପ ସାଧାରଣ ଧର୍ମ ମୁଖରେ ସମ୍ଭବପର,ପୁଣି ଚନ୍ଦ୍ରରେ ମଧ୍ୟ ସମ୍ଭବ ହେତୁ ଏହା 'ରୂପକ' ହୋଇପାରେ, ପୁଣି 'ଉପମା' ମଧ୍ୟ ହୋଇ ପାରେ । ଏହିପରି ସ୍ଥଳରେ 'ସନ୍ଦେହ ସଙ୍କର' ଅଲଙ୍କାର ହେଲା ବୋଲି ବୁଝାଯାଏ ।]

**ସନ୍ଦେହ ସଂକୁଳ**—ସଂ. ବିଣ (ତୃତୀୟା ତତ୍)—ସନ୍ଦେହପୂର୍ଣ୍ଣ; ସନ୍ଦେହ- Sandeha saṁkula ଜନକ—Doubtful; suspicious.

**ସନ୍ଦେହାକୁଳ**—ସଂ. ବିଣ. (ତୃତୀୟା ତତ୍)—ସଂଶୟଦ୍ୱାରା ପୀଡ଼ିତ; Sandehākula ସଂଶୟଗ୍ରସ୍ତ—Troubled with doubt [ସନ୍ଦେହାକୁଳିତ—ଅନ୍ୟରୂପ] (ସନ୍ଦେହାକୁଳା, ସନ୍ଦେହାକୁଳିତା—ସ୍ତ୍ରୀ)

**ସନ୍ଦେହାଲଂକାର**—ସଂ. ବି—ସନ୍ଦେହ ୨ (ଦେଖ) Sandehālamkāra Sandeha 2. (See)

**ସନ୍ଦେହୀ**—ସଂ.ବିଣ.ପୁ -(ସମ୍+ଦହ୍ ଧାତୁ+କର୍ତ୍ତୃ.ଇନ୍ ବା ସନ୍ଦେହ Sandehi +ଇନ୍ ୧ ମା. ୧ ବଚନ)—ସଂଶୟକାରୀ— ସନ୍ଦେହୀ Doubting; suspicious; sceptic. ଦେ ବିଣ. सन्देही (କଚରିଆ)—ଯାହାପ୍ରତି କୌଣସି ବିଷୟରେ ମନରେ ସନ୍ଦେହ ଜାତ ହୁଏ—Suspected. ( ଉ—ପୁଲିସ ସନ୍ଦେହୀ ଅସାମୀମାନଙ୍କ ଘର ତଲାସ କରି କେତେକ ଚୋରି ମାଲ ବରାମଦ କଲେ । )

**ସନ୍ଦେହୀ ଆସାମୀ**—ଦେ. ବି• (କଚରିଆ)—ଚୋରିଅବି ଅପରାଧ କରି- Sandehi āsāmi ଥିବା ବିଷୟରେ ଯାହାକୁ ସନ୍ଦେହ କରା ସନ୍ଦେହୀଆସାମୀ सन्देहीआसामी ଯାଇଥାଏ—A suspect.

**ସନ୍ଦୋହ**—ସ. ବି –(ସମ୍+ଦୁହ୍ ଧାତୁ=ଦୁହିଁବା+ଭାବ, ଅ)—୧ । Sandoha ସମ୍ୟକ୍ ଦୋହନ; ଉତ୍ତମ ରୂପେ ଦୁହିଁବା— 1. Milching well. ୨ । (+କର୍ମ. ଅ) ଯାହା ସମ୍ୟକ୍ ଦୋହନ କରା ହୋଇଅଛି—2. That which has been milched well. ୩ । ଦୁଗ୍ଧ—3. Milk. ୪ । ସମୂହ —4. Multitude; assemblage. ୫ । ରାଶି—5. Heap.

**ସନ୍ଦ୍ରାବ**—ସ. ବି. (ସମ୍+ଦ୍ରୁ ଧାତୁ=ବେଗରେ ଗମନ କରିବା+ Sandrāba ଭାବ. ଅ)—ବେଗରେ ଗମନ; ପଳାୟନ— Fleeing away; flight. [ଉ—ବଦ୍ଧକଲ୍ପ ମାନସ ଟେକି ବା ସ୍ତବକ ଶ୍ରେଣୀ, ବାଜୁଛି ତ ନୂପୁର ସନ୍ଦ୍ରାବ ଯୋଗାଇଣି । —ଭଞ୍ଜ. ବୈଦେହୀଶବିଳାସ]

**ସନ୍ଧ**—ପ୍ରାଦେ. (ଲକ୍ଷ୍ମୀ) ବି.—ସୁଗନ୍ଧ ବିଶେଷ—
Sandha A kind of scent.

**ସନ୍ଧା**—ସ. ବି (ସମ୍+ଧା ଧାତୁ=ଧାରଣ କରିବା+ଭାବ ଅ+ସ୍ତ୍ରୀ. ଆ)—୧ । ଅନୁସନ୍ଧାନ—1. Investigation; searching. ୨ । ପ୍ରତିଜ୍ଞା—2 Promise; vow. [ଦ୍ର—ଏହା ସମାସରେ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ପୁଂଲିଙ୍ଗରେ 'ସନ୍ଧ' ରୂପ ଧାରଣ କରେ । ଯଥା— 'ସତ୍ୟସନ୍ଧ'—ସ. ବିଣ—(ସତ୍ୟ=ଅଟଳ ଅଟେ ସନ୍ଧା= ପ୍ରତିଜ୍ଞା ଯାହାଙ୍କର; ବହୁବ୍ରୀହି) ପ୍ରତିଜ୍ଞା ପାଳନ କରିବା ବିଷୟରେ ଅଟଳ ।] ୩ । ସ୍ଥିତି—3. Staying; existence. ୪ । ସନ୍ଧି; ଯୋଡ଼—4. Space between two things; joint. ୫ । ମିଳନ—5. Meeting; mixing up; alliance; union. ୬ । ସନ୍ଧ୍ୟା—6. Evening. ଦେ ବି.—୧ । ସାନ୍ଧିବା;
Sandhā
চকটান মিলাব ଘାଣ୍ଟିବା—1. Intimately mixing up many things. ୨ ।ସନ୍ଧିସ୍ଥାନ—
ফাঁক, সংধি ফাঁক 2. Interstice; space between.

**ସନ୍ଧା(ନ୍ଧେ)ଇବା**—ଦେ' କ୍ରି.—୧ । ସାନ୍ଧିବା କ୍ରିୟାର ଣିଜନ୍ତ ରୂପ;ଅନ୍ୟ ଦ୍ୱାରା ସାନ୍ଧିବା କ୍ରିୟା କରାଇବା—
Sandhā(ndhe)ibā
চকটান সাঁতবানা 1. Causative form of
গজান কলান জকিরোলগানা 'Sāndhibā. ୨ । ସାରୁର ମଞ୍ଜିରୁ ବା ବହଳରୁ ଗଜା ବାହାରିବା ପାଇଁ ତାକୁ ଗୋଟିଏ ଗାତରେ ଏକାଠେଇଁ ପୋତିଦେବା—2. To put the arum seeds in a hole under the ground for sometime for causing them to sprout. [ଦ୍ର—ସାରୁ ମଞ୍ଜିରୁ ଗଜା ବାହାରିଲା ପରେ ତାହା କିଆରୀରେ ପୋତାଯାଏ ]

**ସନ୍ଧା ଘାଆ**—ପ୍ରାଦେ.(ଯାଜପୁର)ବି—ପାଣିରେ ବହୁତ ସମୟ ବୁଡ଼ି ହେବାରୁ ଅଙ୍ଗୁଳି ସନ୍ଧିରେ ହେବା ଘାଆ—
Sandhā ghāā Eczima between two fingers due to the palms or the feet being drenched too often in water.

**ସନ୍ଧାତବ୍ୟ**—ସ. ବିଣ (ସମ୍=ସମ୍ୟକ୍+ଧା ଧାତୁ=ଧାରଣ କରିବା
Sandhātabyā +କର୍ମ ତବ୍ୟ)—୧ । ଯାହା ସହିତ ସନ୍ଧି କରାଯିବା ଉଚିତ—1. (A person) Fit to be allied with; (a person) with whom an alliance should be formed. ୨ । ଯାହାକୁ ସନ୍ଧାନ କରିବା ଉଚିତ—2. Fit to be searched after.

**ସନ୍ଧାନ**—ସ. ବି.—(ସମ୍=ସମ୍ୟକ୍+ଧା ଧାତୁ=ଧାରଣ କରିବା+
Sandhāna ଭାବ ଅନ)—୧ । ଖୋଜିବା; ଅନ୍ୱେଷଣ; ଖୋଜ; ତଲାସ—1. Searching; enquiry. ୨ । ଚୋରି ଯାଇଥିବା ବା ହଜି ଯାଇଥିବା ବସ୍ତୁକୁ ଖୋଜିବା—2. Searching after a lost or stolen; thing ୩ । ମିଶ୍ରଣ; ଏକତ୍ରୀକରଣ—3. Mixing up. ୪ । ମିଳନ; ସଂଯୋଜନ; ଯୋଜନା—4. Joining. meeting; union; junction. ୫ । ସ୍ଥିତି—5. Staying; situation ୬ । ସନ୍ଧି; ଦୁଇ ବସ୍ତୁର ଯୋଗସ୍ଥାନ—6 Joint; juncture; confluence ୭ । ପାଳନ—7. Supporting; bringing up; cherishing; fostering. ୮ । ବାଣ ଯୋଜନା—ଧନୁରେ ଶର ଯୋଖିବା—8. Fixing or setting an arrow to the bow ୯ । ବନ୍ଧନ—9. Binding; bond. ୧୦ । ଅଭିଷବ; ମଦ୍ୟ ପ୍ରସ୍ତୁତ କରିବା ପାଇଁ ଆବଶ୍ୟକ ଦ୍ରବ୍ୟ ବା ଉପାଦାନ ଦ୍ୱର ଯୋଗ—10. Mixing up the materials for wine; fermentation. ୧୧ । ମଦ୍ୟ; ମଦ; ସୁରା—11. Wine; spirits. ୧୨ । କାଞ୍ଜି—12 Fermented or sour rice-gruel. ୧୩ । ସାଜ ସଜ୍ଜା; ସଜା—13. Equipments; accoutrements. ୧୪ । ମଦ୍ୟ ସନ୍ଧୀକରଣ—14. Act of distiling or fermenting spirituous liquor. ୧୫ । ଉପାୟ; କର୍ମକୌଶଳ—15. Expediency. ୧୬ । ଲକ୍ଷ୍ୟ—16. Aim. ଦେ. ବି.—୧ । ହଜିଥିବା ବା
সন্ধান পত চୋରି ଯାଇଥିବା ଦ୍ରବ୍ୟ କିମ୍ବା ଅପରାଧ ସମ୍ବନ୍ଧରେ ତଥ୍ୟ ବା ସମ୍ବାଦ; ସୂଚନା—1. Clue; information about a lost or stolen thing or
সন্ধান গৃহচ্ছিদ্র about an offence. ୨ । ଘରକାରର ଗୁପ୍ତ କଥା; ଗୃହଚ୍ଛିଦ୍ର—2. The mysteries or
সন্ধান সংধান secrets of a family. ଦେ. ବିଣ— ସଂଲଗ୍ନ; ସଂଯୋଜିତ—Attached.
[ଉ—କରି ସନ୍ଧାନ ପାଦ କରି
ତହିଁ ବସିଲେ ନରହରି ।
—ଜଗନ୍ନାଥ. ଭାଗବତ ]

**ସନ୍ଧାନ କରଣୀ**—ସଂ. ବି—ମହୌଷଧ ବିଶେଷ—Name of a
Sandhān karaṇī panacea.
[ଉ—ସନ୍ଧାନ କରଣୀ ଯେ ବିଶଲ୍ୟକରଣୀ
ମୃତ୍ୟୁ ସଞ୍ଜୀବନୀ ଯେ ଦ୍ରାବଣୀ କରଣୀ ।
—କୃଷ୍ଣସିଂହ. ମହାଭାରତ. ବନ ]

**ସନ୍ଧାନ କରିବା**—ଦେ କ୍ରି.—୧ । ଖୋଜିବା—1. To search
Sandhāna karibā after. ୨ । ତଲାସ କରିବା—2.
সন্ধান করা পতা লগানা To enquire into.

**ସନ୍ଧାନ ଦେବା**—ଦେ. କ୍ରି.—କୌଣସି ବିଷୟର ତଥ୍ୟ ଅନ୍ୟ ବ୍ୟକ୍ତିକୁ ଜଣାଇବା—To suggest or point
Sandhāna debā
সন্ধান দেওয়া পতা দেনা out the clue to a person.

**ସନ୍ଧାନ ନେବା**—ଦେ. କ୍ରି—କୌଣସି ବିଷୟ ସମ୍ବନ୍ଧରେ ଜ୍ଞାତବ୍ୟ Sandhāna nebā ସମ୍ବାଦ ବା ତଥ୍ୟ ଖୋଜିବା; ଅନୁସନ୍ଧାନରେ ସନ୍ଧାନ ଲଓଯା ହେବା—To be on the look-out for a पता लेना clue; to enquire into a matter; to make enquires into a matter.

**ସନ୍ଧାନ ପାଇବା**—ଦେ. କ୍ରି—ସୁରାକ୍ ପାଇବା; କୌଣସି ବିଷୟର ତଥ୍ୟ Sandhāna pāibā ବା ସମ୍ବାଦ ଅବଗତ ହେବା—To get सन्धान पाओया a clue to a matter; to find out a पता पाना clue.

**ସନ୍ଧାନ ବର୍ଗ**—ସଂ. ବି (ବୈଦ୍ୟକ)—ବୈଦ୍ୟଶାସ୍ତ୍ରୋକ୍ତ ନାନା ପ୍ରକାର Sandhāna barga ମଦ୍ୟ (ଯଥା—ମଦ୍ୟ, ଗୌଡ଼ୀ, ମାଧ୍ବୀ, ପୈଷ୍ଟୀ, କାଦମ୍ବରୀ, ମାଧୁକୀ, ମୈରେୟୀ, ମାର୍ଦ୍ଦୀକ, ସୁରା, ସୀଧୁ)—The different sorts of wine mentioned in the Hindu medical treatises.

**ସନ୍ଧାନ ମିଳିବା**—ଦେ. କ୍ରି—ଖୋଜା ଯାଉଥିବା କୌଣସି ବିଷୟର S ndhāna milibā ତଥ୍ୟ ଜଣା ପଡ଼ିବା—The clue to सन्धान मेला a matter being found out. पता मिलना

**ସନ୍ଧାନ ସୂତ୍ର**—ସଂ. ବି—ସୁରାକ୍; କୌଣସି ବିଷୟ ଖୋଜି କରି ପାଇବାର Sandhāna sūtra ଉପାୟ—The clue to find out [ସନ୍ଧାନ ସୂତ(ତ୍ର)ର—ଦେ. ରୂପ] a thing which one is searching for.

**ସନ୍ଧାନିକା**—ସଂ. ବି (ସନ୍ଧାନ+କ+ସ୍ତ୍ରୀ. ଆ)—ବିବିଧ ଫଳରୁ ପ୍ରସ୍ତୁତ Sandhānikā ଆଚାର—Pickles prepared from various fruits. [ବି—ସାଧାରଣତଃ ଏହା ଅମ୍ଳ ମଧୁର ରସ, ଶୀତବୀର୍ଯ୍ୟ, ପାଚକ, ରୁଚିକର ଓ କଫପିତ୍ତ-ବର୍ଦ୍ଧକ ଅଟେ ।]

**ସନ୍ଧାନିତ**—ସଂ. ବିଣ (ସନ୍ଧାନ+ସଞ୍ଜାତାର୍ଥେ ଇତ)—୧ । ସଂଶ୍ଲିଷ୍ଟ—Sandhānita 1. Mixed up. ୨ । ସମ୍ମିଳିତ—2. Joined together. ୩ । ଯାହାର ସନ୍ଧାନ ମିଳିଅଛି—3. Traced.

**ସନ୍ଧାନୀ**—ସଂ. ବିଣ. ପୁଂ (ସନ୍ଧାନ+ଅସ୍ତ୍ୟର୍ଥରେ ଇନ୍; ସ୍ତ୍ରୀ.°ନୀ)—Sandhānī ୧ । ଅନୁସନ୍ଧାନକାରୀ—1. Searching. ୨ । (ସନ୍ଧାନିନୀ—ସ୍ତ୍ରୀ) ଲକ୍ଷ୍ୟକାରୀ—2. Aiming ସଂ. ବି (ସମ୍+ଧା ଧାତୁ+ଭାବ. ଅନ+ସ୍ତ୍ରୀ. ଈ)—ସନ୍ଧାନ (ଦେଖ) Sandhāna (See) ଦେ. ବିଣ (ବହୁରୂପ)—୧। ସନ୍ଧାନ କରିବାରେ ସିଦ୍ଧହସ୍ତ—1 Expert or skilled in tracing; having detective capacity. ୨ । ଅପରାଧ ଅଦର ସନ୍ଧାନରେ ନିଯୁକ୍ତ—2. Detective; engaged in detecting crimes.

**ସନ୍ଧି**—ସଂ. ବି (ସମ୍+ଧା ଧାତୁ=ଧାରଣ କରିବା+ଭାବ. ଇ)—Sandhi ୧ । ସଂଯୋଗ; ମିଳନ—1. Meeting; union. ୨ । (+କର୍ମ. ଇ) ଦୁଇ ବସ୍ତୁ ମଧ୍ୟରେ ବ୍ୟବଧାନ; ଫାଙ୍କ—2. Space between two things; interstice. [ଉ—କର୍ଣ୍ଣ ଅଙ୍ଗୁଳ ଦୁଅନ୍ତେ ବନ୍ଧାବନ୍ଧ, ଆକାଶ ଦେଶେ କିଛି ନ ରହିଲା ସନ୍ଧି । କୃଷ୍ଣସିଂହ, ମହାଭାରତ, କର୍ଣ୍ଣ ।] ୩ । (+ଅଧି. ଇ) ମିଳନ ସ୍ଥାନ; ଯୋଡ଼; ଗଣ୍ଠି—3. Junction; joint. ୪ । (+ଭାବ. ଇ) ମୈତ୍ରୀକରଣ—4. Establishment of friendship. ୫ । (+କରଣ. ଇ) (ରାଜନୀତି) ଯୁଦ୍ଧ ପରେ ବିଜେତା ଓ ଅନ୍ୟଙ୍କ ମଧ୍ୟରେ ବ୍ୟବସ୍ଥା ପୂର୍ବକ ଐକ୍ୟ ସ୍ଥାପନ—(political) 5. Treaty; alliance set up between the rival parties after war. [ଉ—ବିଗ୍ରହେ ସନ୍ଧି ଯେ ନ ସମ୍ପାଦ । ଉପେ. ବୈଦେହୀଶବିଳାସ ।] [ବି—ବସ୍ତୁତନ୍ତ୍ରୀଙ୍କ କୃତ ହିତୋପଦେଶାଦି ଗ୍ରନ୍ଥରେ ୧୬ ପ୍ରକାର ସନ୍ଧିର ଉଲ୍ଲେଖ ଅଛି । ପରସ୍ପର ମଧ୍ୟରେ ଧନାଦି ଆଦାନ ପ୍ରଦାନ, ସୁତ କନ୍ୟାଦି ଆଦାନ ପ୍ରଦାନ, ଉପଯୁକ୍ତ ଶତ୍ରୁଙ୍କୁ ଶାସନ କରିବା ପାଇଁ ଅଙ୍ଗୀକାର, ପରସ୍ପରର ଉପକାର କରିବାର ଅଙ୍ଗୀକାର, ଧନ ପୁରଣ ପ୍ରଦାନ, ଅପରାର ସୈନ୍ୟ ଦ୍ୱାରା ମିତ୍ରର ରକ୍ଷାକରଣ, ବାର୍ଷିକ କରଦାନର ଅଙ୍ଗୀକାର, ରାଜ୍ୟାଂଶ ଦାନ ଇତ୍ୟାଦି ଉପାୟରେ ଦୁଇ ପକ୍ଷ ମଧ୍ୟରେ 'ସନ୍ଧି' କରାଯାଏ ।] ୬ । (+କର୍ତ୍ତି. ଇ) (ପୁରାଣ) ଏକ ଯୁଗର ଅବସାନ ଓ ଅନ୍ୟ ଯୁଗର ଆରମ୍ଭ ସ୍ଥଳ; ଦୁଇ ଯୁଗର ପରସ୍ପର ମିଳନ କାଳ—6. The meeting space between two ages; the period of time between two successive ages. ୭ । (ଶରୀର ବିଦ୍ୟା) ଦେହ ଗଣ୍ଠି; ଅସ୍ଥି ବା ଶିରା ଦ୍ୱୟର ମିଳନ ସ୍ଥଳ; ଗଣ୍ଠି—7 (Anatomy) The joints of the body. [ବି—ଜୀବ ଦେହରେ ୨୧୦ଟି ସନ୍ଧି ଅଛି । ତନ୍ମଧ୍ୟରେ ହାତ ଓ ଗୋଡ଼ରେ ୬୮, କୋଷ୍ଠରେ ୫୯, ଗ୍ରୀବାର ଊର୍ଦ୍ଧ୍ୱ ଭାଗରେ ୮୩ । ସନ୍ଧି ସମୂହ ଦୁଇ ଭାଗରେ ବିଭକ୍ତ; ଯଥା—ଚେଷ୍ଟାଶୀଳ ଓ ସ୍ଥିର । ଚେଷ୍ଟାଶୀଳ ସନ୍ଧି ଦ୍ୱାରା ଅଙ୍ଗମାନ ଚାଳିତ ହୁଏ । ସ୍ଥିର ସନ୍ଧିମାନ ଦେହର ଅନ୍ୟାନ୍ୟ ଅଂଶରେ ଥାଏ । ଆକୃତିଭେଦରେ ସନ୍ଧିମାନଙ୍କ ୮ ଗୋଟି ନାମ ଅଛି; ଯଥା—କୋର, ଉଦୂଖଳ, ସାମୁଦ୍ଗ, ପ୍ରତର, ତୁନ ସେବନୀ, କାକତୁଣ୍ଡ, ମଣ୍ଡଳ ଓ ଶଙ୍ଖାବର୍ତ୍ତ ।] ୮ । (+ଭାବ. ଇ) (ବ୍ୟାକରଣ) ସନ୍ନିକଟସ୍ଥ ଦୁଇଟି ବର୍ଣ୍ଣର ସଂଯୋଗଜାତ ବିକାର; ବର୍ଣ୍ଣଦ୍ୱୟର ସଂଯୋଗଜାତ ରୂପାନ୍ତର—(grammar) 8 The resultant letter formed by the blending of two letters (the last letter of a word and the first letter of the next word); conjunction of two letters.

[ବି—ବ୍ୟାକରଣରେ ସନ୍ଧି ୩ ପ୍ରକାର—ସ୍ୱରସନ୍ଧି, ବ୍ୟଞ୍ଜନ ସନ୍ଧି ଓ ବିସର୍ଗ ସନ୍ଧି । ସ୍ୱରବର୍ଣ୍ଣ ସହିତ ସ୍ୱରବର୍ଣ୍ଣ

ମିଳିତ ହେଲେ ସ୍ୱରସନ୍ଧି ହୁଏ, ବ୍ୟଞ୍ଜନ ବର୍ଣ୍ଣ ସଙ୍ଗେ ବ୍ୟଞ୍ଜନ ବର୍ଣ୍ଣ ବା ସ୍ୱରବର୍ଣ୍ଣ ମିଳିତ ହେଲେ ବ୍ୟଞ୍ଜନ ସନ୍ଧି ହୁଏ ଏବଂ ପ୍ରଥମ ପଦର ଶେଷରେ ଥିବା ବିସର୍ଗ ସଙ୍ଗେ ପର-ସ୍ଥିତ ବ୍ୟଞ୍ଜନ ବର୍ଣ୍ଣ ବା ସ୍ୱରବର୍ଣ୍ଣ ମିଳିତ ହେଲେ ବିସର୍ଗସନ୍ଧି ହୁଏ ।] ୯ । (+କର୍ତ୍ତି. ଇ)(ଅଳଂକାର ଶାସ୍ତ୍ର) ନାଟକାଂଶ ବିଶେଷ; ନାଟକର ଦୁଇଟି ଅଙ୍କ ବା ଗର୍ଭାଙ୍କ (ଦୃଶ୍ୟ) ମଧ୍ୟର ବ୍ୟବଧାନ—9. Part of a drama between two acts or scenes. ୧୦ । (+କରଣ ଇ) ସିନ୍ଧି ଗାତ; ଚୋର କରିବା ପାଇଁ ଚୋରମାନେ ଘର-ଭିତରକୁ ପ୍ରବେଶ କରିବା ପାଇଁ କାନ୍ଥରେ ଖୋଳିଥିବା ଗାତ—10. A hole bored into a house by house-breakers. ୧୧ । ସୁଡ଼ଙ୍ଗ; ସୁଡ଼ଙ୍ଗ—11. Tunnel. ୧୨ । ଗାତ; ଖୋଲ—12. Hole; breach. ୧୩ । ଖଣିଗାତ—13. Mine; excavation; pit. ୧୪ । ଦ୍ୱାର—14. Door; entrance. ୧୫ । (+କର୍ତ୍ତି. ଇ) ଭଗ; ଯୋନିଦ୍ୱାର—15. The vaginal orifice. ୧୬ । (+କରଣ. ଇ) ବିଶ୍ରାମ—16. Rest; repose; recess ୧୭ । ସନ୍ଧିପୂଜା (ଦେଖ)—17. Sandhi-pūjā. (See) ୧୮ । (+କରଣ. ଇ) ସାଧନ; କାର୍ଯ୍ୟ-ସାଧନାର୍ଥ ପ୍ରଯୋଜ୍ୟ ଉପାୟ—18. Means or instruments for the accomplishment of an act. ୧୯ । (+ଭାବ. ଇ) ସନ୍ଧାନ; ତତ୍ତ୍ୱ; ତଥ୍ୟ—19. Clue; information; the key to a matter. ୨୦ । (କର୍ମ. ଇ) ଗୁପ୍ତ କଥା; ରହସ୍ୟ—20. Secret; mystery. ୨୧ । ରୋଗର ଅତି ବିଷମ ଅବସ୍ଥା (ଯେଉଁ ଅବସ୍ଥା ପରେ ରୋଗ କ୍ରମଶଃ କମିଯାଏ କିମ୍ବା ମାରାତ୍ମକ ହୁଏ)—21. Crisis of a disease. ଦେ. ବି—୧ । (ସଂ. ସନ୍ଧିକ) ସନ୍ନିପାତ ବିଶେଷ; ଜ୍ୱର ଅବରେ ବାତ, ପିତ୍ତ ଓ କଫର ପ୍ରକୋପଜନିତ ଅବସ୍ଥା—1. Typhoid; state of collapse in fever, cholera etc. ୨ । (ସଦ୍ୟ) ଛନ୍ଦ; କପଟ—2. Conceit; diceit; hypocricy. (ଦୃ—ଏମନ୍ତ ବୋଲି ବିଚାରିଲ, ସନ୍ଧି ନ କରି ପଶୁରିଲ । ପ୍ରାଚୀ ଶ୍ରୀବଶ-ମାହାତ୍ମ୍ୟ ।) ୩ । ଅତି ସଂକୀର୍ଣ୍ଣ ଗଳି—3. Narrow lane. ୪ । କଥାର ଗୁପ୍ତ ମର୍ମ ବା ରହସ୍ୟ—4. The hidden purport or meaning of any speech. (ଦୃ—କହିବା ଏଥିର ସନ୍ଧି ଯେ ଏଥି ବ୍ୟବସ୍ଥା । ପ୍ରାଚୀ, ଶ୍ରୀଗୁଣ୍ଡିଚା ଗୀତା ।) ୫ । କଥା କହିବାର ଭଙ୍ଗୀ ବା କୌଶଳ—5. The mode of expressing a matter. (ଦୃ—କଥାର ଦୃଷ୍ଟି ଧାନ ଖାଏ ବୋଲୁଛୁ ବାଛି । ଚଗ ।)

সন্নিপাত
सन्निपात
छन्द
छल
সন্ধি
तंगगली
বহস্য, সন্ধি रहस्य
সন্ধি
ढंग कौशल

**ସନ୍ଧିଅ**—ଗ୍ରା. ବି—୧ । (ସଂ. ସନ୍ଧ୍ୟା) ସନ୍ଧ୍ୟା (ଦେଖ)—Sandhiā 1. Sandhyā. (See) ୨ । (ସଂ. ସନ୍ଧି) ସନ୍ଧି (ଦେଖ)—2. Sandhi. (See) ଦେ. ବି—୧ । ଶଗଡ଼ ଚକର ପରିଧିର ୨ ଖଣ୍ଡ ଅଂଶର ଯୋଡ଼ ଜାଗା—1. The joint between the two arcs of the rim of a cart-wheel; the tenon or mortise by which the arcs of a cart wheel are joined together. ଦେ. ବିଣ—(ସଂ. ସନ୍ଧି) ସନ୍ଧିବିଶିଷ୍ଟ—Having joints.

সন্ধি
संधि
সন্ধিযুক্ত संधियुक्त

**ସନ୍ଧିଅ ପ(ପୋ)ଚର୍‌**—ଦେ. ବି—ଶଗଡ଼ଚକର ପରିଧିରେ ଥିବା ଭିନ୍ନ ଭିନ୍ନ ବୃତ୍ତଖଣ୍ଡମାନଙ୍କୁ ମଜବୁତ କରିବା ପାଇଁ ବ୍ୟବହୃତ କିଲ ଓ ଖୋଲ—The tenon and mortise which secures the different arcs of a cart wheel; the holes and pins of the different pieces of the cart wheel.

Sandhiā pa(po)charā
সন্ধিখিল
संधिका कीला

**ସନ୍ଧିଅ ପ(ପୋ)ଚର୍‌ ମାରିବା**—ଦେ. କ୍ରି—୧ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟକୁ ଖୁବ୍ ମଜବୁତ କରି ସମ୍ପାଦନ କରିବା—1. To accomplish a work very strongly and securely. ୨ । ଶଗଡ଼ ଚକର ପରିଧିକୁ ଦୃଢ଼ କରିବା ପାଇଁ ଛିଦ୍ରରେ କିଲ ପ୍ରଭୃତି ମାରିବା—2. To make the rim of a cart wheel strong by securely putting the pins into the holes of the different arcs.

Sandhiā pa(po)charā māribā
সন্ধিখিল আঁটা
संधिमें कीला लगाना

**ସନ୍ଧିଅସୀ**—ଗ୍ରା. ବି (ସଂ. ସନ୍ନ୍ୟାସୀ)—ସନ୍ନ୍ୟାସୀ—An anchorite.

Sandhiāsi
সন্ন্যাসী, সন্নিসী संनियासी

**ସନ୍ଧିକ**—ସଂ. ବି (ସନ୍ଧି+ସ୍ୱାର୍ଥେ. କ)—ବୈଦ୍ୟଶାସ୍ତ୍ରୋକ୍ତ ତ୍ରୟୋଦଶ ସନ୍ନିପାତ ମଧ୍ୟରୁ ଏକତମ—One of the 13 kinds typhoid fever. [ଦ୍ର—ଏଥିରେ ରୋଗୀର ପରମାୟୁ ୭ଦିନ; କିନ୍ତୁ ଏହା ସାଧ୍ୟ ('ସନ୍ନିପାତ' ଶବ୍ଦର ଟିପ୍ପଣୀ ଦେଖ ।)]

Sandhika

**ସନ୍ଧି କଥା**—ଦେ. ବି (ସଂ. ସନ୍ଧି+କଥା)—୧ । ବିଷମ ସମସ୍ୟା—1. A dilemma. ୨ । ଗୁପ୍ତ କଥା; ରହସ୍ୟ—2. A secret; a mystery. ୩ । ଅଶଙ୍କିତ ଅବସ୍ଥା—3. A critical position.

Sandhi kathā
সন্ধি কথা
दुविधा
বহস্য रहस्य

**ସନ୍ଧିକର**—ସଂ. ବିଣ. ପୁଂ (ସନ୍ଧି+କୃ. ଧାତୁ+କର୍ତ୍ତି. ଅ)—ଯେଉଁ ବ୍ୟକ୍ତି ଦୁଇ ବିପକ୍ଷ ପକ୍ଷଙ୍କୁ ସନ୍ଧିଦ୍ୱାରା ମିଳିତ କରାଏ—(a person) Causing or bringing about alliance between two opposite parties.

Sandhi kara
( ସନ୍ଧିକରୀ—ସ୍ତ୍ରୀ )

**ସନ୍ଧି କରିବା**—ଦେ. କ୍ରି—ବିପକ୍ଷ ପକ୍ଷଙ୍କ ସଙ୍ଗେ ମୈତ୍ରୀ ସ୍ଥାପନ କରିବା—To enter into an alliance or to make a treaty with the enemy.

Sandhi karibā
সন্ধি করা
संधि करना

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଙ୍କ | ଞ୍ଚ | ଶ,ଷ | ଙ୍ଘ | ଇୟ | ଉଅ | ଙ୍ଗ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଙ୍ଗ | ଯ | ସ | ଗଁ | ଇଅ | ଵ | ନ |

**ସନ୍ଧିକା**—ସଂ. ବ (ସନ୍ଧି+ସ୍ୱାର୍ଥେ କ+ଅ)–ମଦ୍ୟ ସନ୍ଧାନ; ମଦର
Sandhikā ଉପାଦାନଗୁଡ଼ିକୁ ବଧ୍ୟପୂର୍ବକ ସଢ଼ାଇବା—Distillation; fermentation of the materials for distilling wine.

**ସନ୍ଧି କାଳ**–ଦେ. ବ ; (ସଂ. ସନ୍ଧି+କାଳ)—ପୂର୍ଣ୍ଣିମା ଓ ପ୍ରତିପଦର
Sandhi kāla ମଧ୍ୟବର୍ତ୍ତୀ ଗ୍ରହଣ କାଳ—The time of
ସନ୍ଧିକାଳ eclipse between the full moon and the
सं धि काल succeeding day. ( ଉ—ହାସ-ପାସୁଅ ପାନ କରିଦେଲ ସନ୍ଧିକାଳ ହୋଇ ମେଳ ଯେ । ଉଞ୍ଜ. କୋଟି ବ୍ରହ୍ମାଣ୍ଡସୁନ୍ଦରୀ । ) ସଂ. ବ–ସନ୍ଧିକ୍ଷଣ ( ଦେଖ )—Sandhikshaṇa. (See)

**ସନ୍ଧି କ୍ଷଣ**–ସଂ. ବ (୬ଷ୍ଠୀ ତତ୍)– ୧ । ସନ୍ଧି ସମୟ; ଦୁଇଟି କାଳର
Sandhi kshaṇa ବା ଦୁଇଟି ବିଷୟର ମିଳନ କାଳ—1. The period of transition between two periods or things. ୨ । ଆଶ୍ୱିନ ଓ ଚୈତ୍ର ଶୁକ୍ଳାଷ୍ଟମୀ ଓ ଶୁକ୍ଳନବମୀର ଯଥାକ୍ରମେ ଅନ୍ତିମ ଓ ପ୍ରଥମ ଦଣ୍ଡ ( ଯହିଁରେ ସନ୍ଧି ପୂଜା ହୁଏ )—2. The 2 daṇdas of the 8th and 9th days of the bright lunar fortnights of Āswina and Chaitra.

**ସନ୍ଧି ଗୁଳ୍ମ**—ସଂ. ବ. (ବୈଦ୍ୟକ)—ବନ୍ୟଗୁଳ୍ମ ବିଶେଷ—Name
Sandhi gulma of a plant; Laurus Lanceolaria

**ସନ୍ଧି ଚୋର**—ସଂ. ବ. (ବହୁବ୍ରୀହି ବା ମ. ପ. ଲୋ; ସନ୍ଧିକାରୀ ଚୋର)–
Sandhi chaura ଯେଉଁ ଚୋର ଘରେ ସିନ୍ଧି ଗାତ ଖୋଳି ଚୋରି କରେ—A house-breaker who enters into a house by boring a hole from out-side.

**ସନ୍ଧି ଚୌର୍ଯ୍ୟ**—ସଂ. ବ (ଷଷ୍ଠୀ ତତ୍)—ସିନ୍ଧିଗାତ ଖୋଳି ଘରେ ପଶି
Sandhi chaurjya ଯେଉଁ ଚୋରି କରାଯାଏ—Theft committed by boring a hole into a house.

**ସନ୍ଧି ଚ୍ୟୁତ**—ସଂ. ବଣ (୫ମୀ ତତ୍)—ହାଡ଼ଗଣ୍ଠିରୁ ଖସି ଯାଇଥିବା
Sandhi chyuta (ହାଡ଼)—Dislocated (bone)

**ସନ୍ଧି ଚ୍ୟୁତି**—ସଂ. ବ—(୫ମୀ ତତ୍)—ହାଡ଼ଗଣ୍ଠିରୁ ହାଡ଼ଖସିଯିବା—
Sandhi chyuti Dislocation of a bone from the joint.

**ସନ୍ଧିଜ**—ସଂ. ବ—( ସନ୍ଧି=ମଦ୍ୟସନ୍ଧାନ+ଜନ୍ ଧାତୁ=ଜନ୍ମିବା+
Sandhija କର୍ତ୍ତୃ. ଅ)—ବିକଳନଦ୍ୱାରା ଚୁଆଁ ହୋଇ ପ୍ରସ୍ତୁତ ହେବା ମଦ୍ୟ; ସୁରା—Distilled spirit; fermented liquor.

**ସନ୍ଧି ଜୀବକ**—ସଂ. ବଣ. ପୁଂ. (ସନ୍ଧି+ଜୀବ୍ ଧାତୁ=ବଞ୍ଚିବା+କର୍ତ୍ତୃ.
Sandhi jībaka ଅକ)—୧ । ଯେଉଁ ବ୍ୟକ୍ତି ଶଠତାଦ୍ୱାରା ଜୀବିକା ନିର୍ବାହ କରେ—1. Earning one's
(ସନ୍ଧିଜୀବିକା; ସନ୍ଧିଜୀବିନୀ—ସ୍ତ୍ରୀ) livelihood by pursuing
(ସନ୍ଧିଜୀବୀ—ଅନ୍ୟରୂପ) unfair means. ୨ । ସନ୍ଧି ଚୌର୍ଯ୍ୟ କରି ଯେ ଜୀବିକା ନିର୍ବାହ କରେ—2. Earning livelihood by housebreaking. ସଂ. ବିଣ. ପୁଂ—୧ । ସନ୍ଧିଚୋର—1. A regular housebreaker by boring holes. ୨ । କୁଟ୍ଟିନୀ; ଭଡୁଆ—2. A panderer; a bawd; a procurer.

**ସନ୍ଧି ଜୀବକ**—ସଂ. ବଣ ଓ ବ, ପୁଂ (ବହୁବ୍ରୀହି; ସନ୍ଧି ଅଟେ ଜୀବିକା
Sandhi jībika ଯାହାର)—ସନ୍ଧି ଜୀବକ (ଦେଖ)—Sandhi
(ସନ୍ଧିଜୀବିକା—ସ୍ତ୍ରୀ) jībaka (See)

**ସନ୍ଧିତ୍ସା**—ସଂ. ବ.—(ସମ୍+ଧା. ଧାତୁ+ଇଚ୍ଛାର୍ଥେ ସନ୍. ଅ+ସ୍ତ୍ରୀ.
Sandhit-sā ଆ)—ସନ୍ଧାନ କରିବାର ଇଚ୍ଛା—A desire
(ସନ୍ଧିତ୍ସା—ଅନ୍ୟରୂପ) to enquire; inquisitiveness.

**ସନ୍ଧିତ୍ସୁ**—ସଂ. ବଣ.—(ସମ୍+ଧା ଧାତୁ+ଇଚ୍ଛାର୍ଥେ ସନ୍+କର୍ତ୍ତୃ. ଉ)
Sandhit-su ସନ୍ଧାନ କରିବାକୁ ଇଚ୍ଛୁକ—Inquisitive;
(ସନ୍ଧିତ୍ସୁ-ଅନ୍ୟରୂପ) desirous of enquiry.

**ସନ୍ଧିତ**—ସଂ. ବଣ.–( ସନ୍ଧା+ସଞ୍ଜାର୍ଥେ ଇତ )—୧ । ମିଳିତ—1.
Sandhita United; joined together; mixed up. ୨ । (ବ୍ୟାକରଣ) ସନ୍ଧିଯୁକ୍ତ—2. (words) Combined into a composite word by the rules of 'Sandhi'. ୩ । ବନ୍ଧ—3. Bound down. ୪ । ପୁନର୍ମିଳିତ—4. Re-united ୫ । ସନ୍ଧି ଦ୍ୱାରା ଆବଦ୍ଧ—5. Bound by treaty.

**ସନ୍ଧିନୀ**—ସଂ. ବ. ସ୍ତ୍ରୀ. (ସନ୍ଧା=ମିଳନ+ଅସ୍ତି ଅର୍ଥରେ ଇନ୍+ସ୍ତ୍ରୀ. ଈ)
Sandhinī ୧ । ବୃଷ ଦ୍ୱାରା ଆକାନ୍ତା ଋତୁମତୀ ଗାଈ; ଯେଉଁ ଗାଈ ବଳଦ ପାଇଅଛି; କଣ୍ଠାତଟନୀ ଥିବା ଋତୁମତୀ ଗାଈ—1. A menstruated cow which has been copulated by a bull. ୨ । ଅକାଳରେ ଦୁଗ୍ଧଦାୟିନୀ ଗାଈ—2. A cow which is milked in wrong time without a calf. [ ଦ୍ର—ଏ ଗାଈର ଦୁଗ୍ଧ ଅସେବନୀୟ—ଯାଜ୍ଞବଳ୍କ୍ୟ ] ୩ । ସ୍ନେହ ଉଦ୍ଦୀପନାର ବିଚାର ବିଶେଷ—3. A kind of indication for exciting love. [ଉ—ସନ୍ଧିନୀ ସମ୍ବନ୍ଧିନୀ ଅହ୍ଲାଦିନୀ, ବିଚାର ତତ୍ତ୍ୱ ଗୁଣ ଅଛୁ ଘେନ । ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ]

**ସନ୍ଧି ପତ୍ର**—ସଂ. ବ.—(ମ. ପ. ଲୋ)—ଯେଉଁ ପତ୍ରରେ ବା ଲେଖାରେ
Sandhi patra ସନ୍ଧିକାରୀ ଉଭୟ ପକ୍ଷ ସ୍ୱାକ୍ଷର କରନ୍ତି—A document signed by the parties to a
(ସନ୍ଧିଲେଖ—ଅନ୍ୟରୂପ) treaty.

'ସାଧାରଣ ଲୋକେ ଅପଠ ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ'ଖୋଜିବେ; 'ମୂଢ଼' ନ ମିଳିଲେ 'ମୂଢ'ଖୋଜିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗର୍ଯ୍ୟ' ନ ପାଇଲେ'ଅଜ୍ଞ' ଦେଖିବେ,'ଅଲବଡ' ନ ପାଇଲେ 'ଅଳ୍‌ବଡ଼'ଦେଖିବେ

**ସନ୍ଧି ପୂଜା**—ସଂ.ବି (ମ.ପ.ଲେ) —ଆଶ୍ୱିନ ଓ ଚୈତ୍ର ଶୁକ୍ଳାଷ୍ଟମୀ ଓ ନବମୀ ତିଥି ଦ୍ୱୟର ସନ୍ଧିକ୍ଷଣରେ ଅନୁଷ୍ଠିତ ଦୁର୍ଗା ପୂଜା; ମହାଷ୍ଟମୀର ଶେଷ ଦଣ୍ଡ ଓ ମହାନବମୀର ଆଦ୍ୟ ଦଣ୍ଡର ମଧ୍ୟକାଳୀନ ଦୁର୍ଗା ପୂଜା-The worship of Goddess Durgā which is done during the transitory moment between the 8th and 9th days of the bright lunar fortnights in the months of Āswina and Chaitra. Sandhi pūjā

[ଦ୍ର—ଶାସ୍ତ୍ର ବିଧି ଅନୁସାରେ ଶାରଦୀୟା ଓ ବାସନ୍ତୀ ଦୁର୍ଗା ପୂଜାରେ ଏହି 'ସନ୍ଧି' କାଳହିଁ ଦେବୀଙ୍କୁ ଭଗବତୀ ଦେଖିବା ବିଷୟରେ ପ୍ରଶସ୍ତ; ଅଷ୍ଟମୀର ଶେଷ ଏକ ଦଣ୍ଡ ଓ ନବମୀର ପ୍ରଥମ ଏକ ଦଣ୍ଡ, ଏହି ଦୁଇ ଦଣ୍ଡ ସନ୍ଧିକାଳ; ଏହି କାଳରେ ସନ୍ଧି ପୂଜା କରାଯାଏ । ସପ୍ତମୀ ପୂଜାକୁ ପ୍ରଥମା ପୂଜା, ଅଷ୍ଟମୀ ପୂଜାକୁ ଦ୍ୱିତୀୟା ପୂଜା ଓ ଅଷ୍ଟମୀର ଶେଷ ଓ ନବମୀର ଆରମ୍ଭରେ କରାଯିବା ପୂଜାକୁ ତୃତୀୟା ପୂଜା ବା ସନ୍ଧି ପୂଜା କୁହାଯାଏ । ଅଷ୍ଟମୀ ଗତେ ନବମୀର ପ୍ରଥମ ଦଣ୍ଡରେ ବଳିଦାନ ପ୍ରଶସ୍ତ— ବିଶ୍ୱକୋଷ ।]

**ସନ୍ଧି ବଦ୍ଧ**—ସଂ. ବିଣ (ତୃତୀୟା ତତ୍)—ସନ୍ଧିସୂତ୍ରରେ ଆବଦ୍ଧ; ପରସ୍ପର ମଧ୍ୟରେ ସନ୍ଧି ବନ୍ଧନ ଦ୍ୱାରା ମିଳିତ—Allied with each other by a treaty; mutually allied. Sandhi baddha

**ସନ୍ଧି ବନ୍ଧ**—ସଂ. ବି ( ବୈଦ୍ୟକ )—୧ । ଭୂଇଁ ଚମ୍ପକ; ଭୂଇଁ ଚମ୍ପା (ଶବ୍ଦ ଚନ୍ଦ୍ରିକା)—1. A sort of flower; Koemferia Rotunda. ୨। ସନ୍ଧି ବନ୍ଧନ (ଦେଖ)—2. Sandhi bandhana (See) Sandhi bandha

**ସନ୍ଧି ବନ୍ଧନ**—ସଂ. ବି ( ତୃତୀୟା ତତ୍ )—୧ । ସନ୍ଧି ଦ୍ୱାରା ପରସ୍ପର ସହିତ ମିଳନ—1. Formation of alliance by a treaty. ୨ । (ଚିକିତ୍ସା) ଶିରା— 2. Vein; artery. [ଦ୍ର—ଏହି ଶିରା ଶରୀରର ସନ୍ଧି ସ୍ଥାନକୁ ବନ୍ଧନ କରି ରଖେ ।] Sandhi bandhana

**ସନ୍ଧିବା**—ଦେ. କ୍ରି (ସଂ. ସନ୍ଧାନ)—୧ । ସନ୍ଧାନ କରିବା; ଖୋଜିବା; ତଲାସିବା—1. To enquire; to search. ୨ । ଶକ୍ତି ରୂପକ ଅସ୍ତ୍ରର ସନ୍ଧାନ କରିବା—2. To aim the weapon Śakti at the target. [ଦ୍ର—ବୀର ସାତ୍ୟକିଙ୍କୁ ଶକ୍ତି ସନ୍ଧି । ଭଞ୍ଜ. ବୈଦେହୀଶବିଳାସ ।] ୩ । ଶର ସନ୍ଧାନ କରିବା; ଫିଙ୍ଗିବା ପାଇଁ ଶରକୁ ଧନୁରେ ଯୋଡିବା—3. To fit the arrow to the bow. [ଦ୍ର—ସନ୍ଧିଲେ ମାନେ ଛାଡ଼ିବ ଗୁଣ, କସ କରିବ ଯେ । ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।] ୪ । ସନ୍ଧିବା (ଦେଖ) 4. Sandhibā (See) ୫ । ସନ୍ଧାଇବା (ଦେଖ) 5. Sandhāibā (See) ୬ । ଯୋଜନା କରିବା; ପ୍ରୟୋଗ କରିବା—6. To attach. [ଦ୍ର—ଧନୁରେ କାଣ୍ଡ ସନ୍ଧି ବିନ୍ଧିଣ ଶିଖଣ୍ଡୀ । କୃଷ୍ଣସିଂହ. ମହାଭାରତ.ବନ ।] ୭ । ଯୋଡିବା—7. To join together. [ଦ୍ର—ଜରା ରାକ୍ଷସୀ ଯେଣୁ ସନ୍ଧି ତାକୁ ଥିଲା, ଏଥୁଁ ପୁତ୍ର ନାମ ଜରାସନ୍ଧ ହୋଇଲା । କୃଷ୍ଣସିଂହ. ମହାଭାରତ. ସଭା ।] Sandhibā

सन्धान करना; पता लगाना; शर सन्धान करना; अस्त्र संधान करना; जोड़ना

**ସନ୍ଧି ବାତ**—ସଂ. ବି (ସନ୍ଧି ସ୍ଥଳରେ ଜାତ ବାତ)—ଗଣ୍ଠିବାତ; ଦେହର ଗଣ୍ଠିରେ ଜନ୍ମିବା ବାତ ରୋଗ—Rheumatism of the joints. Sandhi bāta

**ସନ୍ଧି ବିଗ୍ରହ**—ସଂ. ବି (ବିପରୀତାର୍ଥକ ସହଚର; ଦ୍ୱନ୍ଦ୍ୱ)—ସନ୍ଧି ଓ ଯୁଦ୍ଧ—Peace and war. Sandhi bigraha

**ସନ୍ଧି ବିଗ୍ରହକ**—ସଂ. ବି (ସନ୍ଧିବିଗ୍ରହ+କ)—ସାନ୍ଧି ବିଗ୍ରହିକ; ରାଜ୍ୟର ସନ୍ଧି ଓ ଯୁଦ୍ଧ ସମ୍ବନ୍ଧେ ଯେଉଁ ସଚିବ ପରାମର୍ଶ ଦିଅନ୍ତି (ବିଶ୍ୱକୋଷ)—War-minister. Sandhi bigrahaka

**ସନ୍ଧି ବିଚ୍ଛେଦ**—ସଂ. ବି—୧ । ସନ୍ଧି ଭଙ୍ଗ (ଦେଖ)—1. Sandhi bhanga. (See) ୨ । (ବ୍ୟାକରଣ) ସନ୍ଧି ଦ୍ୱାରା ନିଷ୍ପନ୍ନ ପଦର ଭିନ୍ନ ଭିନ୍ନ ଅଂଶକୁ ପୃଥକ୍ କରିବା—2. (grammar) Taking to pieces the elements of a word formed by 'Sandhi' or grammatical combination, by separating its combined letters. Sandhi bichchheda

**ସନ୍ଧି ବିସନ୍ଧି**—ଦେ. ବି ( ନିରର୍ଥକ ସହଚର )—୧ । ବଡ଼ ଓ ଛୋଟ ସମସ୍ତ ସନ୍ଧି—1. All the joints, big and small. ୨ । ବାହାରର ଓ ଭିତରର ସମସ୍ତ ସ୍ଥାନ—2. All the spaces in and out. ୩ । ସାନ ବଡ଼ ସବୁ ଫାଙ୍କ—3. All the interstices, big and small. Sandhi bisandhi

सन्धि विसन्धि; रत्ती रत्ती

**ସନ୍ଧି ବେଳ**—ଦେ. ବି—୧ । ସଙ୍କଟ ସମୟ; ଅଶଙ୍କିତ ସମୟ; ବିଷମ ଅବସ୍ଥା—1. Critical time. ୨ । ସନ୍ଧି ବେଳା (ଦେଖ)—2. Sandhi belā (See) Sandhi bela

सन्धि काल; सांघातिक समय

**ସନ୍ଧି ବେଳା**—ସଂ. ବି—୧ । ଦିନ ଓ ରାତିର ମିଳନ କାଳ; ସନ୍ଧ୍ୟା—1. Evening. ୨ । ତିଥି ଦ୍ୱୟର ମିଳନ କାଳ—2. The meeting space between two lunar days. ୩। ସନ୍ଧି କ୍ଷଣ ୨ (ଦେଖ) 3. Sandhi kshaṇa 2 (See) Sandhi belā

ସନ୍ଧି ଭଙ୍ଗ—ସଂ. ବ (୬ଷ୍ଠୀ ତତ୍)—୧। ଦୁଇ ପକ୍ଷଙ୍କ ମଧ୍ୟରେ କରା ଯାଇ-
Sandhi bhanga ଥିବା ସନ୍ଧିର ଲଙ୍ଘନ-1. Disruption of an alliance. ୨। (ବୈଦ୍ୟକ) ସନ୍ଧି ଚ୍ୟୁତି; ଦେହର ଗଣ୍ଠି ଖସିଯିବା—2. Dislocation of a joint.

ସନ୍ଧି ରନ୍ଧ୍ରକା—ସଂ. ବ (ସନ୍ଧି+ରନ୍ଧ୍ର+କୈଧାତୁ+ଭାବ. ଅ; ସ୍ତ୍ରୀ. ଆ)—
Sandhi randhrakā ସୁରୁଙ୍ଗା; ସୁଡ଼ଙ୍ଗ—A mine; a tunnel.

ସନ୍ଧି ରାଗ—ସଂ.ବ. (ବହୁବ୍ରୀହି; ସନ୍ଧି=ସନ୍ଧ୍ୟାର ରାଗ ପରି ରାଗ ଯାହାର)
Sandhi rāga —ସିନ୍ଦୁର—Red lead.

ସନ୍ଧିଲା—ସଂ. ବ (ସନ୍ଧି+ଲା ଧାତୁ=ଗ୍ରହଣ କରିବା+କର୍ତ୍ତୃ. ଅ+ସ୍ତ୍ରୀ.
Sandhilā ଆ)—୧। ସୁଡ଼ଙ୍ଗ—1. A tunnel. ୨। ସିନ୍ଧି ଗାତ—2. A hole made by house-breakers. ୩। ନଦୀ—3. River. ୪। (+ଅଧି. ଅ) ମଦିରା—4. Wine; spirituous liquor.

ସନ୍ଧି ସର(ରେ)ତ୍—ଦେ. ବ—ସନ୍ଧିର ନିୟମମାନ—The condi-
Sandhi sara(re)t tions or terms of a treaty.
(ସନ୍ଧି ସର୍ତ୍ତ—ଅନ୍ୟରୂପ) সন্ধিসর্ত सन्धि सर्त्त

ସନ୍ଧି ସ୍ଥଳ—ସଂ. ବ—୧। ଗଣ୍ଠି ଜାଗା—1. Joint. ୨। ଯୋଡ଼-
Sandhi sthala ମୁହଁ—2. Juncture. ୩। ସଙ୍କଟ ଅବସ୍ଥା—2. Critical position. ୪। ଦୁଇ କାଳର ମିଳନ କାଳ—4. The juncture of two periods

ସନ୍ଧି ହାରକ—ସଂ. ବ (ଉପପଦ ତତ୍; ସନ୍ଧି=ସିନ୍ଧି ଗାତ ଦ୍ୱାରା ହରଣ
Sandhi hāraka କରେ ଯେ)—ସିନ୍ଧିଆ ଚୋର; ସନ୍ଧିଚୌର—A thief who commits house-breaking by boring a hole into the house.

ସନ୍ଧୁକ୍ଷଣ—ସଂ. ବ (ସମ୍+ଧୁକ୍ଷ ଧାତୁ=ପ୍ରାପ୍ତ କରିବା+ଭାବ. ଅନ)—
Sandhukshaṇa ୧। ଅଗ୍ନି ପ୍ରଜ୍ୱାଳନ; ନିଆଁକୁ ଜଳାଇବା—1. Kindling of a fire. ୨। ନିଆଁକୁ ତେଜିବା; ଉଦ୍ଦୀପନ; ଅଗ୍ନି ଉତ୍ତେଜନ—2. Trimming of a fire.

ସନ୍ଧୁକ୍ଷିତ—ସଂ. ବଣ (ସମ୍+ଧୁକ୍ଷ୍ ଧାତୁ=ଜଳାଇବା+କର୍ମ. ତ)
Sandhukshita ୧। ପ୍ରଜ୍ୱାଳିତ—1. Kindled. ୨। ତେଜା ଯାଇଥିବା; ଉତ୍ତେଜିତ—2. Trimmed (fire).

ସନ୍ଧେଅ—ଗ୍ରା. ବ (ଅଶୁଦ୍ଧ ଉଚ୍ଚାରଣ) (ସଂ. ସନ୍ଦେହ)—ସନ୍ଦେହ
Sandhea (ଦେଖ)—Sandeha (See)

ସନ୍ଧେୟ—ସଂ. ବଣ (ସମ୍+ଧା ଧାତୁ+କର୍ମ. ଯ)—୧। ସନ୍ଧି
Sandheya କରିବାର ଯୋଗ୍ୟ—1. Fit to be allied with. ୨। ଯାହା ଅନୁସନ୍ଧାନ କରିବାର ଯୋଗ୍ୟ—2. Fit to be enquired into. ୩। ଲକ୍ଷ କରିବାର ଉପଯୁକ୍ତ—3. Fit to be aimed at (a target).

ସନ୍ଧ୍ୟ—ସଂ. ବିଣ.—୧। ସନ୍ଧିଜାତ—1. Resulting from
Sandhya Sandhi. ୨। ସନ୍ଧି ସମ୍ବନ୍ଧୀୟ—2. Relating to Sandhi (See)

ସନ୍ଧ୍ୟା ବେଳା—ସଂ. ବ—ଉଷା ଓ ସନ୍ଧ୍ୟାକାଳ (ଶବ୍ଦକୋଷ)—
Sandhyā belā Dawn & dusk.

ସନ୍ଧ୍ୟର୍କ୍ଷ—ସଂ. ବ—(ସନ୍ଧି+ଋକ୍ଷ)—(ଜ୍ୟୋତିଷ) ଯେଉଁ ନକ୍ଷତ୍ରରେ
Sandhyarksha ଦୁଇଟି ରାଶିର ସନ୍ଧି ହୁଏ—(Astrono-
(ସନ୍ଧି ନକ୍ଷତ୍ର—ଅନ୍ୟରୂପ) my)—An asterism in which two zodiacal signs meet. [ଦ୍ର—କୃତ୍ତିକା ନକ୍ଷତ୍ରର ପ୍ରଥମପାଦ ମେଷରାଶି ଓ ଶେଷ ତିନ ପାଦ ବୃଷରାଶି। ଅତଏବ କୃତ୍ତିକା ନକ୍ଷତ୍ର ସନ୍ଧ୍ୟର୍କ୍ଷ ଅଟେ।]

ସନ୍ଧ୍ୟା—ସଂ. ବ.—(ସନ୍ଧି=ଦିବା ରାତ୍ରିର ମିଳନ+ଯ+ସ୍ତ୍ରୀ ଆ; ଅଥବା
Sandhyā ସମ୍+ଧ୍ୟୈ ଧାତୁ=ଧ୍ୟାନ କରିବା+ଅଧିକରଣ ଅ+ଆ; ଯେଉଁ ସମୟରେ ଦେବାରାଧନା କରାଯାଏ ତାହା ସମ୍+ଧା ଧାତୁ+କର୍ତ୍ତୃ ଯ+ଆ ଯାହା ମଙ୍ଗଳକୁ ଧାରଣ କରେ)—୧। ଦିବା ଓ ରାତ୍ରିର ସନ୍ଧିକାଳ; ଦିନ ଓ ରାତିର ମିଳନ ସମୟ—1 The space of time between the day and the night; twilight; nightfall; dusk. [ଦ୍ର—ସାଧାରଣତଃ ସନ୍ଧ୍ୟା ଦ୍ୱିବିଧ; ଯଥା—ପ୍ରାତଃସନ୍ଧ୍ୟା (କଳ୍କଳ୍ଭୋର, ପ୍ରତ୍ୟୁଷ) ଓ ସାୟଂସନ୍ଧ୍ୟା (ମୁହଁସଞ୍ଜ, ଗୋଧୂଳି)। କିନ୍ତୁ ଶାସ୍ତ୍ରାଦିରେ ସନ୍ଧ୍ୟା ତ୍ରିବିଧ, ଯଥା—୧। ପ୍ରାତଃସନ୍ଧ୍ୟା (ଉଷାର ପୂର୍ବବର୍ତ୍ତୀ କାଳ; ରାତିର ଶେଷ ଦଣ୍ଡ ଓ ଦିନର ପ୍ରଥମଦଣ୍ଡ)—
୨। ମଧ୍ୟାହ୍ନ ସନ୍ଧ୍ୟା (ଠିକ୍ ଦିନ ଦୁଇପ୍ରହର ବେଳ; ଯେତେବେଳେ ଆକାଶର ଠିକ୍ ମଧ୍ୟ ସ୍ଥଳରେ ସୂର୍ଯ୍ୟ ଥାଆନ୍ତି।)
୩। ସାୟଂସନ୍ଧ୍ୟା (ସୂର୍ଯ୍ୟାସ୍ତର ପରବର୍ତ୍ତୀ କାଳ; ଦିବସର ଶେଷଦଣ୍ଡ ଓ ରାତିର ପ୍ରଥମ ଦଣ୍ଡ।)
୨। ପ୍ରାତଃସନ୍ଧ୍ୟା ଓ ସାୟଂସନ୍ଧ୍ୟା ସମୟରେ କର୍ତ୍ତବ୍ୟ ଉପାସନାଦି; ସନ୍ଧ୍ୟାହ୍ନିକ; ସନ୍ଧ୍ୟାବନ୍ଦନା—2. Worship or other rituals performed at dawn and evening; the morning and evening meditations. [ଦ୍ର—ବ୍ରହ୍ମବୈବର୍ତ୍ତ ପୁରାଣର ପ୍ରକୃତିଖଣ୍ଡରେ ବର୍ଣ୍ଣିତ ଅଛି ଯେ, 'କାଳ'ର ୩ ଗୋଟି ସ୍ତ୍ରୀ; ଯଥା—ସନ୍ଧ୍ୟା, ରାତ୍ରି ଓ ଦିନ।

'ସନ୍ଧ୍ୟା'ର କାଳ ଦ୍ୱିନାଡ଼ିକା ଅର୍ଥାତ୍ ଦୁଇ ଦଣ୍ଡ ମାତ୍ର। ସୂର୍ଯ୍ୟୋଦୟ, ମଧ୍ୟାହ୍ନ ଓ ସୂର୍ଯ୍ୟାସ୍ତର ପୂର୍ବର ଏକ ଦଣ୍ଡ ଓ ପରର ଏକ ଦଣ୍ଡ କାଳ ସନ୍ଧ୍ୟା ଅଟେ। 'ସନ୍ଧ୍ୟା' କାଳରେ ଭୋଜନ, ଶୟନ, ସ୍ନାନ ଆଦି ନିଷିଦ୍ଧ। ତ୍ରିସନ୍ଧ୍ୟା (ଅର୍ଥାତ୍ ପ୍ରାତଃ, ମଧ୍ୟାହ୍ନ ଓ ସାୟଂକାଳ) ବ୍ରାହ୍ମଣମାନଙ୍କର ଉପାସନା କାଳ। ବ୍ରାହ୍ମଣ ପ୍ରତ୍ୟହ ନିୟମିତ ରୂପେ ସନ୍ଧ୍ୟା କଲେ ତାହାର ପୁଣ୍ୟ ବଢ଼େ ନାହିଁ, ଅଥଚ ସନ୍ଧ୍ୟା ନ କଲେ

ପାପ ହୁଏ । ସନ୍ଧ୍ୟା କଲେ ସମସ୍ତ ପାପ ନାଶ ହୁଏ । ଏହି ଉପାସନା ସ୍ୱ ସ୍ୱ ଗୃହ ବେଦ ଅନୁସାରେ ପୃଥକ୍ ପୃଥକ୍ ଏବଂ ପ୍ରତି ବେଦୀୟ ବ୍ରାହ୍ମଣ ଉକ୍ତ ବେଦୋକ୍ତ ବିଧିଦ୍ୱାରା ଉପାସନା କରନ୍ତି । ଏଥିରେ ଭଗବାନଙ୍କ ନାମ ସ୍ମରଣ, ଜଳଦ୍ୱାରା ମାର୍ଜନ, ଅଘୋ ଦେବତା, ସୂର୍ଯ୍ୟ ଦେବତା, ଇନ୍ଦ୍ରାଦି ସମସ୍ତ ଦେବମୂର୍ତ୍ତି ସବିତୃମଣ୍ଡଳ ମଧ୍ୟବର୍ତ୍ତୀ ପଦ୍ମାସନ ସନ୍ନିବିଷ୍ଟ ଶଙ୍ଖ-ଚକ୍ରଧାରୀ ନାରାୟଣଙ୍କ ଧ୍ୟାନ, ଉପାସନା ଆଦି ଥାଏ । ସ୍ଥୂଳତଃ ସନ୍ଧ୍ୟାର ପ୍ରଧାନ ଅଙ୍ଗ ୪ ଗୋଟି; ଯଥା—୧ । ଜଳଦ୍ୱାରା ମାର୍ଜନ, ୨ । ପ୍ରଣବ ଓ ପ୍ରାଣାୟାମ (ରେଚକ, ପୂରକ, କୁମ୍ଭକ), ୩ । ଗାୟତ୍ରୀ ଜପ ଓ ଧ୍ୟାନ ଏବଂ ୪ । ସୂର୍ଯ୍ୟୋପାସନା । ଏହି ସବୁର ଭିନ୍ନ ଭିନ୍ନ ମନ୍ତ୍ର ଅଛି । ଫଳତଃ ସନ୍ଧ୍ୟାରେ ସୂର୍ଯ୍ୟଦେବତା ଓ ସୂର୍ଯ୍ୟମଣ୍ଡଳ ମଧ୍ୟସ୍ଥ ବ୍ରହ୍ମା, ବିଷ୍ଣୁ, ଶିବଙ୍କର ଏବଂ ବାୟୁ, ଅଗ୍ନି, ଜଳ ଆଦି ଦେବତାଙ୍କର ଉପାସନା ଓ ପ୍ରାଣାୟାମ ବା ଶ୍ୱାସ-ବାୟୁର ସାଧନା କରାଯାଏ । ]

୩ । ପ୍ରାତଃସନ୍ଧ୍ୟା, ମଧ୍ୟାହ୍ନ ସନ୍ଧ୍ୟା ଓ ସାୟଂସନ୍ଧ୍ୟା କାଳରେ ଉପାସ୍ୟ ଦେବତା—3. The Deities worshipped at morning, noon and evening. [ଦ୍ର—ତ୍ରିସନ୍ଧ୍ୟାର ୩ ଟି ଉପାସ୍ୟ-ଦେବତା, ଯଥା—ପ୍ରାତଃସନ୍ଧ୍ୟାରେ 'ଗାୟତ୍ରୀ', ମଧ୍ୟାହ୍ନ ସନ୍ଧ୍ୟାରେ 'ସାବିତ୍ରୀ' ଓ ସାୟଂସନ୍ଧ୍ୟାରେ 'ସରସ୍ୱତୀ' । ଏହି ଗାୟତ୍ରୀ ଦେବମାତା ଅଟନ୍ତି । ଏହାଙ୍କୁ ଉପାସନା କଲେ ସମସ୍ତ ଦେବତାଙ୍କର ଉପାସନା ହୁଏ । ଏହି ତିନି ଦେବତାଙ୍କର ରୂପ ଓ ଧ୍ୟାନ ଭିନ୍ନ ଭିନ୍ନ । ଏମାନେ ସୂର୍ଯ୍ୟ-ମଣ୍ଡଳ ମଧ୍ୟସ୍ଥା । (୧) ଗାୟତ୍ରୀ ଦ୍ୱିଭୁଜା, ରକ୍ତବର୍ଣ୍ଣା, ହଂସ—ବାହନା, କୁମାରୀ ଓ ଅକ୍ଷମାଳା କମଣ୍ଡଳୁ ଧାରିଣୀ । (୨) ସାବିତ୍ରୀ ଚତୁର୍ଭୁଜା, ଶୁକ୍ଳବର୍ଣ୍ଣା, ଗରୁଡ଼ ବାହନା, ଯୁବତୀ ଓ ଶଙ୍ଖଚକ୍ର ଗଦାପଦ୍ମ ଧାରିଣୀ । (୩) ସରସ୍ୱତୀ ଦ୍ୱିଭୁଜା, କୃଷ୍ଣବର୍ଣ୍ଣା, ବୃଷ ବାହନା, ବୃଦ୍ଧା, ଡମରୁ ତ୍ରିଶୂଳ ଧାରିଣୀ । ଗାୟତ୍ରୀଙ୍କ ଅଧିପ ବ୍ରହ୍ମା, ସାବିତ୍ରୀଙ୍କ ଅଧିପ ବିଷ୍ଣୁ ଓ ସରସ୍ୱତୀଙ୍କ ଅଧିପ ମହାଦେବ ଅଟନ୍ତି ।] ୪ । ତ୍ରିସନ୍ଧ୍ୟାରେ ଉପାସ୍ୟ ଦେବତାଙ୍କ ଉଦ୍ଦେଶ୍ୟରେ ଜପାଯିବା ମନ୍ତ୍ର—4. The mystic incantations uttered respectively at dawn, noon and evening. [ଦ୍ର—ଏହି ଉପାସ୍ୟ ମନ୍ତ୍ର ରୂପୀ ଦେବତାଗଣଙ୍କୁ ମଧ୍ୟ ସନ୍ଧ୍ୟା ବୋଲାଯାଏ ।] ୫ । ଯୁଗସନ୍ଧି; ଦୁଇ ଯୁଗର ମିଳନ କାଳ; ସନ୍ଧ୍ୟାଂଶ—5. The meeting of two successive ages. [ଦ୍ର—କାହାର କାହାର ମତରେ ଯୁଗର ଆଦ୍ୟକୁ ସନ୍ଧ୍ୟା ଓ ଯୁଗର ଶେଷ କାଳକୁ ସନ୍ଧ୍ୟାଂଶ ବୋଲାଯାଏ ।] ୬ । କାଳ—6. Time. ୭ । କାଳ ଦେବତାଙ୍କର ତିନି ସ୍ତ୍ରୀ ମଧ୍ୟରୁ ଏକତମା—7. One of the three wives of time deified. ୮ । ଉପାସନା—8. Worship; prayer; ritual. ୯ । ଧ୍ୟାନ—9. Religious or spiritual meditation. ୧୦ । ପ୍ରତିଜ୍ଞା—10. Promise; vow; declaration. ୧୧ । ସୀମା—11. Boundary. ୧୨ । ନଦୀ ବିଶେଷ; ସନ୍ଧ୍ୟାଚଳରୁ ନିର୍ଗତା ନଦୀ—12. Name of a river. ୧୩ । ପୁଷ୍ପ ବିଶେଷ (ହେମପୁଷ୍ପ)—13. Name of a flower. ୧୪ । ପ୍ରତିଷ୍ଠା—14. Consecration; establisnment. ୧୫ । ଚିନ୍ତା—15. Contemplation. ୧୬ । ସମ୍ବନ୍ଧ—16. Connection. ୧୭ । ସନ୍ଧାନ (ଦେଖ)—17. Sandhāna. (See) ୧୮ । (ଲକ୍ଷଣାର୍ଥ) ଜୀବନର ଅବସାନ କାଳ; ମୃତ୍ୟୁର ପୂର୍ବ କାଳ—18. (figurative) The time before death; the time of impending death.

সাঁঝের দীপ ଦେ. ବି—୧ । ସନ୍ଧ୍ୟାଦୀପ (ଦେଖ)—
साँझ 1. Sandhyādipa. (See) ୨ । ସାୟଂକାଳ;
সাংঝ ଦିବାବସାନ—2. Evening; dusk. ପ୍ରାଦେ. (ଉତ୍ତର
साँझ ବାଲେଶ୍ୱର) ବି—ବିକାଳ; ଭୋଜନ ଥର—Time of meal. (ଉ—ତାଙ୍କ ଘରେ ମୁଁ ଦୁଇ ସନ୍ଧ୍ୟା ଖାଇଲି ।)

ସନ୍ଧ୍ୟା ଆହ୍ନିକ—ଦେ. ବି (ସଂ. ସନ୍ଧ୍ୟାହ୍ନିକ)—ସନ୍ଧ୍ୟାହ୍ନିକ (ଦେଖ)
Sandhyā āhnika Sandhyāhnika. (See)
সন্ধ্যাআহ্নিক सन्ध्याह्निक

ସନ୍ଧ୍ୟା ଆଳ(ର)ତି—ଦେ. ବି (ସଂ. ସନ୍ଧ୍ୟା+ଆରାତ୍ରିକ)—
Sandhyā āla(ra)ti ସାୟଂକାଳରେ ଦେବତାଙ୍କ ନିକଟରେ
সন্ধ্যা আরতি ପ୍ରଜ୍ୱଳିତ ବର୍ତ୍ତୀ ଦ୍ୱାରା ନୀରାଜନା—Evening
संध्या आरती service of a Deity accompanied by the waving of lighted wicks before It.

ସନ୍ଧ୍ୟାଂଶ—ସଂ. ବି—୧ । ଯୁଗସନ୍ଧି; ଦୁଇ ଯୁଗର ମଧ୍ୟବର୍ତ୍ତୀ କାଳ—
Sandhyāmsa 1. The transitory period between two Ages. ୨ । ଯୁଗର ଶେଷ କାଳ—2. The closing period of an Age. [ଦ୍ର—ପୁରାଣ ଅନୁସାରେ ସତ୍ୟଯୁଗର ସନ୍ଧ୍ୟାଂଶ ୪୦୦୦ ମାନୁଷ ବର୍ଷ, ତ୍ରେତା ଯୁଗର ୩୦୦୦ ବର୍ଷ, ଦ୍ୱାପରଯୁଗର ୨୦୦୦ ବର୍ଷ ଓ କଳିଯୁଗର ୧୦୦୦ ବର୍ଷ । ମନୁ ।] ୩ । ପ୍ରତ୍ୟେକ ଯୁଗର ପ୍ରଥମ ଓ ଶେଷାଂଶ (ବିଶ୍ୱକୋଷ)—3. The first and last part of every mythological Age. [ଦ୍ର—ଦୈବ ପରିମାଣରେ ୪ ହଜାର ବର୍ଷ ସତ୍ୟ ଯୁଗର କାଳ । ଏଥିର ପ୍ରଥମ ୪ଶତ ବର୍ଷ ସନ୍ଧ୍ୟା ଓ ଶେଷ ୪ଶତ ବର୍ଷ ସନ୍ଧ୍ୟାଂଶ; ତ୍ରେତା ଯୁଗର କାଳ ୩ ହଜାର ବର୍ଷ; ଏଥିର ପ୍ରଥମ ୩ଶତ ବର୍ଷ ସନ୍ଧ୍ୟା ଓ ଶେଷ ୩ ଶତ ବର୍ଷ ସନ୍ଧ୍ୟାଂଶ; ଦ୍ୱାପର ଯୁଗର କାଳ ୨ ହଜାର ବର୍ଷ; ତହିଁର ପ୍ରଥମ ୨୦୦ ବର୍ଷ ସନ୍ଧ୍ୟା ଓ ଶେଷ ୨୦୦ ବର୍ଷ ସନ୍ଧ୍ୟାଂଶ; କଳିଯୁଗର କାଳ ୧ ହଜାର ବର୍ଷ; ତହିଁରୁ

ପ୍ରଥମ ୧୦୦ ବର୍ଷ ସନ୍ଧ୍ୟା ଓ ଶେଷ ୧୦୦ ବର୍ଷ ସନ୍ଧ୍ୟାଂଶ ଶବ୍ଦକୋଷ; ମନୁ ୧।୬୯—୭୦।]

ସନ୍ଧ୍ୟା କରିବା—ଦେ· କ୍ରି—୧। ତ୍ରିସନ୍ଧ୍ୟାରେ ଅନୁଷ୍ଠେୟ ଉପାସନା
Sandhyā karibā କରିବା—1. To perform the
सन्ध्या करा rituals enjoined for the dawn and
संध्या करना noon and evening. ୨। ସନ୍ଧ୍ୟା ବୁଡାଇବା; କୌଣସି କାର୍ଯ୍ୟକୁ ସନ୍ଧ୍ୟା ପର୍ଯ୍ୟନ୍ତ ବିଳମ୍ବ କରିବା—2. To delay a work till nightfall.

ସନ୍ଧ୍ୟା କାଳ—ସଂ. ବି—୧। ସାୟଂକାଳ; ଦିବାବସାନ—1. Even-
Sandhyā kāla ing. ୨। ସନ୍ଧ୍ୟାହ୍ନିକ କରିବାର ସମୟ; ତ୍ରିସନ୍ଧ୍ୟା—2. The three periods of the day in which daily worship is enjoined to be performed.

ସନ୍ଧ୍ୟାକାଳୀନ—ସଂ. ବିଣ (ସନ୍ଧ୍ୟାକାଳ+ଭବାର୍ଥେ ଈନ)—ସନ୍ଧ୍ୟା
Sandhyākālīna କାଳରେ ଘଟିତ।—Happening in the evening.

ସନ୍ଧ୍ୟା କୃତ୍ୟ—ସଂ. ବି—ସନ୍ଧ୍ୟାହ୍ନିକ (ଦେଖ)
Sandhyā krutya Sandhyāhnika. (See)

ସନ୍ଧ୍ୟାଗମ—ସଂ. ବି (୬ଷ୍ଠୀ ତତ୍ପୁ)—ସନ୍ଧ୍ୟାର ପୂର୍ବବର୍ତ୍ତୀ କାଳ;
Sandhyāgama ସୂର୍ଯ୍ୟାସ୍ତର ପୂର୍ବବର୍ତ୍ତୀ ସମୟ—The time just before sunset.

ସନ୍ଧ୍ୟା ଗାୟତ୍ରୀ—ସଂ.ବି—ତ୍ରିସନ୍ଧ୍ୟାରେ ଉପାସ୍ୟ ଦେବତାତ୍ରୟ (ଗାୟତ୍ରୀ,
Sandhyā gāyatrī ସାବିତ୍ରୀ ଓ ସରସ୍ୱତୀ)—The three Deities worshipped respectively during morning, noon and evening in the course of the daily Sandhyā.

ସନ୍ଧ୍ୟା ଘଣ୍ଟ(ଣ୍ଟା)—ଦେ. ବି—ସନ୍ଧ୍ୟାବେଳେ ଦେବମନ୍ଦିରରେ ଆରତି
Sandhyā ghanta(ntā) ହେବା ସମୟରେ ବଜାହେବା
सन्ध्या घण्टा ଘଣ୍ଟା—Gongs sounded in temples
सन्ध्याघंटा during the evening service.

ସନ୍ଧ୍ୟାଚଳ—ସଂ. ବି—ପୁରାଣୋକ୍ତ ପର୍ବତ ବିଶେଷ—Name of a
Sandhyāchala mythological mountain. [ ଦ୍ର—
କାଳିକା ପୁରାଣର ୫୦ ଓ ୮୧ ଅଧ୍ୟାୟରେ ଏହି ପର୍ବତର ଓ ଏହି ପର୍ବତରୁ ନିର୍ଗତ କାନ୍ତା ବା ସନ୍ଧ୍ୟାନାମ୍ନୀ ନଦୀର ବିଷୟ ଲିଖିତ ଅଛି। ବଶିଷ୍ଠ ଏହିଠାରେ 'ସନ୍ଧ୍ୟା' କରିଥିଲେ ବୋଲି ଏଥିର ଏପରି ନାମ ହୋଇଅଛି। ଏହି ପର୍ବତ 'କାମରୂପ' (ଆସାମ) ଦେଶରେ ଥିବାର ଉଲ୍ଲେଖ ଅଛି। ଏହି ପର୍ବତରୁ ବାହାରିଥିବା 'ସନ୍ଧ୍ୟା' ନଦୀରେ ସ୍ନାନ କଲେ ମନୁଷ୍ୟ ଦୀର୍ଘାୟୁ ଓ ସ୍ୱର୍ଗଗାମୀ ହୁଏ। ]

ସନ୍ଧ୍ୟା ଦର୍ଶନ—ଦେ· ବି—ଆଷାଢ଼ ଶୁକ୍ଳା ନବମୀ ଦିନ ସନ୍ଧ୍ୟାବେଳେ
Sandhyā darsana ଗୁଣ୍ଡିଚା ଘରେ ଜଗନ୍ନାଥ ମହାପ୍ରଭୁଙ୍କ
সংধ্যা দর্শন ଦର୍ଶନ—Paying visit to Lord
संध्या दर्शन Jagannāth in the Gundichāghara in the evening of the ninth day of the bright lunar fortnight of Āsārdha. [ଦ୍ର—ସନ୍ଧ୍ୟା ଦର୍ଶନର ଅନ୍ୟ ନାମ ନବମୀ ଦର୍ଶନ।]

ସନ୍ଧ୍ୟା ଦୀପ—ସଂ. ବି—(ମ.ପ.ଲୋ; ସନ୍ଧ୍ୟାକାଳରେ ପ୍ରଜ୍ୱାଳିତ ଦୀପ)—
Sandhyā dīpa ସଞ୍ଜଦୀପ; ସାୟଂକାଳରେ ଗୃହରେ ବା ଦେବମନ୍ଦିରରେ ପ୍ରଜ୍ୱାଳିତ ପ୍ରଦୀପ—Lamp lighted in a house or temple at nightfall.

ସନ୍ଧ୍ୟା ଦେବା—ଦେ· କ୍ରି—ସନ୍ଧ୍ୟାବେଳେ ଘରେ ବା ଦେବମନ୍ଦିରରେ
Sandhyā debā ବା ତୁଳସୀଚଉରା ମୂଳେ ଆଲୋକ ଜାଳିବା
সংধ্যা দেওয়া —To light a lamp or wick in the
संध्या देना, सांझ देना house or temple or near the holy Basil plant in the evening.

ସନ୍ଧ୍ୟା ଧୂପ—ଦେ· ବି.—ସଞ୍ଜ ଧୂପ (ଦେଖ)—
Sandhyā dhūpa Sañja dhūpa (See)
সংধ্যা ধূপ सांझधूप

ସନ୍ଧ୍ୟାନାଟୀ—ସଂ ବି.—(ସନ୍ଧ୍ୟା+ନଟ୍ଧାତୁ+କର୍ତ୍ତି ଇନ୍; ୧ମା. ୧ବ.)
Sandhyā nāti ଶିବ; ମହାଦେବ (ଶବ୍ଦକୋଷ)—Siba.

ସନ୍ଧ୍ୟା ପହର—ଦେ. ବି—( ସଂ. ସନ୍ଧ୍ୟା+ପ୍ରହର )—ସାୟଂକାଳର
Sandhyā pahara ପରବର୍ତ୍ତୀ ପ୍ରହର; ରାତ୍ରିର ପ୍ରଥମପ୍ରହର—
সংধ্যা প্রহর संध्या पहर The first watch (3hours) of the night.

ସନ୍ଧ୍ୟା ପୁଷ୍ପୀ—ସଂ.ବି.—(ସନ୍ଧ୍ୟା+ପୁଷ୍ପ+ଈ)—ଜାଗ; ଜାଇଫୁଲ (ଗ୍ରନ୍ଥ
Sandhyā pushpī କର୍ଣ୍ଣିକା)—A kind of single-petalled jasmine; Jasminum Grandiflorum.

ସନ୍ଧ୍ୟା ବତି(ବଳିତା)—ଦେ. ବି.—( ସଂ. ସନ୍ଧ୍ୟା+ବର୍ତ୍ତି )—ସନ୍ଧ୍ୟା
Sandhyā bati (balitā) ବେଳେ ଗୃହରେ ବା ଦେବମନ୍ଦିରରେ ଜଳାଯିବା ବର୍ତ୍ତିକା—Wick
সংধ্যাবতী, সাঁঝেরবতী
सांझबती lighted in the house or before a Deity in the evening.

ସନ୍ଧ୍ୟା ବନ୍ଦନ(ନା)—ସ. ବି.—ତ୍ରିସନ୍ଧ୍ୟାରେ ଅନୁଷ୍ଠେୟ ଉପାସନାଦି—
Sandhyā bandana(nā) Worship or ritual enjoined to be daily performed during morn, moon and evening.

ସନ୍ଧ୍ୟା ବଳ—ସଂ ବି.--(ବହୁବ୍ରୀହି; ସନ୍ଧ୍ୟା=ସାୟଂକାଳ ଅଟେ ବଳ=
Sandhyā bala ଶକ୍ତି ଯାହାର)—ରାକ୍ଷସ; ନିଶାଚର (ତ୍ରିକାଣ୍ଡ ଶେଷ)—Demon.

ସନ୍ଧ୍ୟା ବଳି—ସଂ ବି.—ଶିବାଳୟସ୍ଥ ପାଷାଣମୃତ୍‌କାଷ୍ଠାଦି ନିର୍ମିତ ବୃଷ-
Sandhyā bali ପ୍ରତିମା (ହାରାବଳି)—The image of a bull (made of stone, earth or wood) kept in the temple of Siba.
(ସନ୍ଧ୍ୟାକାଳ—ଅନ୍ୟରୂପ).

ସନ୍ଧ୍ୟା ବୁଡ଼—ଦେ. ବି.—ସନ୍ଧ୍ୟାବେଳ (ଦେଖ)
Sandhyā burda Sandhyā bela (See)
সংধ্যাবেলা सन्ध्या

ସନ୍ଧ୍ୟା ବୁଡ଼ିବା—ଦେ. ବି.—ସୂର୍ଯ୍ୟାସ୍ତ ପରେ ଅନ୍ଧକାର ଘୋଟିବା—It
Sandhyā burdibā being sunset; nightfall; the
সংধ্যা হওয়া सन्ध्या होजाना sun being set and the earth being enveloped with darkness.

ସନ୍ଧ୍ୟା ବେଳ—ଦେ. ବି.—(ସଂ. ସନ୍ଧ୍ୟା+ବେଳା)—ସନ୍ଧ୍ୟା ସମୟ;
Sandhyā bela ସୂର୍ଯ୍ୟାସ୍ତର ପରବର୍ତ୍ତୀ କାଳ—Eventide;
সংধ্যা বেলা सन्ध्या समय evening; dusk.
(ସନ୍ଧ୍ୟାବେଳା—ସଂ. ରୂପ)

ସନ୍ଧ୍ୟାଭ୍ର—ସଂ. ବି—୧ । (ସନ୍ଧ୍ୟା କାଳରେ ଅଭ୍ର ପରି ଦେଖାଯିବା;
Sandhyābhra ବହୁବ୍ରୀହି; ସନ୍ଧ୍ୟା+ଅଭ୍ର)—ସୁବର୍ଣ୍ଣ ଗୈରିକ
(ଗାଢ଼ ହଳଦିଆ)—1. A sort of golden ochre.
୨ । (ଷଷ୍ଠୀ ତତ୍) ସନ୍ଧ୍ୟାକାଳୀନ ମେଘ (ବିଶ୍ୱକୋଷ)—
2. Evening cloud.

ସନ୍ଧ୍ୟାଭ୍ରମ—ସଂ. ବି.—ମେଘ ଘୋଡ଼ାଇବା ଯୋଗୁଁ ସନ୍ଧ୍ୟା ନ ହେଉଣୁ
Sandhyā bhrama ସନ୍ଧ୍ୟା ହେଲା ବୋଲି ମନରେ ଜନ୍ମିବା
ଭ୍ରମ—Mistaking daytime for evening owing to cloudy weather.

ସନ୍ଧ୍ୟାମଣି—ଦେ. ବି.—କୃଷ୍ଣକେଳି ଫୁଲ; ରକ୍ତ ବର୍ଣ୍ଣ ପୁଷ୍ପ ବିଶେଷ;
Sandhyā mani ରଙ୍ଗଣୀ ଫୁଲ—A sort of red flower
सन्ध्याफूल, कृष्णकलि Mirabiles Jalapa; marvel of
সংধ্যামণি, কৃষ্ণক(কে)লি Peru. [ବି—ଏହି ଫୁଲର ଅରବୀ
ନାମ ଗୁଲ୍-ଇ-ଅବାସୀ । ଧଳା, ନାଲି ଓ ହଳଦିଆ
ଭେଦରେ ଏହା ୩ ପ୍ରକାର; ଏହା ସନ୍ଧ୍ୟାବେଳେ
ଫୁଟେ ।]

ସନ୍ଧ୍ୟା ମୁଖ—ସଂ. ବି. (ଷଷ୍ଠୀ ତତ୍)—ସନ୍ଧ୍ୟାର ଆରମ୍ଭ ବେଳା —
Sandhyā mukha The beginning of the evening

ସନ୍ଧ୍ୟାମୁହାଁ—ଦେ. ବିଣ (ସଂ.ସନ୍ଧ୍ୟା+ମୁଖ) —ସନ୍ଧ୍ୟା ବା ସାୟଂକାଳରେ
Sandhyā muhāñ ଆସି ପହଞ୍ଚିବା (ବାକ୍ତ)—Reaching
সংধ্যামুখো a place at night fall. [ଯଥା—ମୁଁ ସନ୍ଧ୍ୟାମୁହାଁ
साँझमें आने ହୋଇ କଟକରେ ପହଞ୍ଚି ଗଲି ।]

ସନ୍ଧ୍ୟାର(ରା)ତ୍ରିକ—ସଂ ବି.—(ମ.ପ.ଲୋ)-ସନ୍ଧ୍ୟାକାଳୀନ ଆଳତି; ଦେବ-
Sandhyāra(rā)trika ମନ୍ଦିରମାନଙ୍କରେ ପ୍ରାତଃ ସନ୍ଧ୍ୟା ଓ ସାୟଂ
ସନ୍ଧ୍ୟାରେ କରାଯିବା ଆରତି—The ceremony of waving of lighted wicks before a Deity in the morning and evening.

ସନ୍ଧ୍ୟା ରାଗ—ସଂ. ବି. ୧ । (ବହୁବ୍ରୀହି;ସନ୍ଧ୍ୟା ପରି ରାଗ=ରଙ୍ଗ ଯାହାର)
Sandhyā rāga ସିନ୍ଦୂର (ଗାଢ଼ ଲୋହିତ)—1. Red lead; vermillion. ୨। ସକାଳେ ପୂର୍ବାକାଶରେ ସୂର୍ଯ୍ୟୋଦୟ
ପୂର୍ବରୁ ଓ ସନ୍ଧ୍ୟାବେଳେ ପଶ୍ଚିମାକାଶରେ ସୂର୍ଯ୍ୟାସ୍ତ ପରେ
ଦେଖାଯିବା ଅରୁଣିମା—2. The red colour in the eastern sky (before sun-rise) and in the western sky (after sun-set).

ସନ୍ଧ୍ୟାରାମ—ସଂ.ବି. (ବହୁବ୍ରୀ,ହି; ସନ୍ଧ୍ୟା+ଆରାମ;ସନ୍ଧ୍ୟାରେ ଆରାମ ଯାହାଙ୍କର)
Sandhyārāma ପ୍ରଜାପତି; ବ୍ରହ୍ମା (ଶବ୍ଦରତ୍ନାବଳୀ)—
Brahmā; the Creator.

ସନ୍ଧ୍ୟା ଶଙ୍ଖ—ଦେ. ବି:—ସନ୍ଧ୍ୟାବେଳେ ଯେଉଁ ଶଙ୍ଖ ବଜାଯାଏ—
Sandhyā sankha Conch-shell sounded
সন্ধ্যাশঙ্খ सन्ध्याशङ्ख in the evening.

ସନ୍ଧ୍ୟାଶଙ୍ଖଧ୍ୱନି—ସଂ. ବି—ସନ୍ଧ୍ୟାକାଳରେ ବଜାଯିବା ଶଙ୍ଖର ଧ୍ୱନି—
Sandhyā sankha dhwani The sound of conchshells sounded in the evening.
[ବି—ସନ୍ଧ୍ୟା କାଳରେ ଶଙ୍ଖ ବଜାଇଲେ ଅମଙ୍ଗଳ ନାଶ
ହୁଏ । ଯେତେଦୂର ପର୍ଯ୍ୟନ୍ତ ସେ ଶବ୍ଦ ଶୁଭେ ସେତେ-
ଦୂର ପର୍ଯ୍ୟନ୍ତ ଅଞ୍ଚଳରେ ଶୁଭ ହୁଏ ବୋଲି ଶାସ୍ତ୍ରରେ ଅଛି ।
—ବିଶ୍ୱକୋଷ]

ସନ୍ଧ୍ୟାହ୍ନିକ—ସଂ.ବି. (ସନ୍ଧ୍ୟା+ଆହ୍ନିକ)—ସନ୍ଧ୍ୟାବନ୍ଦନା; ତ୍ରିସନ୍ଧ୍ୟାରେ
Sandyāhnika ଅନୁଷ୍ଠେୟ ଉପାସନାଦି—Rituals and worship done in the morning, noon and evening.

ସନ୍ନ—ସଂ. ବିଣ. ପୁ (ସଦ୍ ଧାତୁ=ଗମନ କରିବା+କର୍ତ୍ତୃ ତ)—୧ ।
Sanna କ୍ଷୀଣ—1. Thin; wasted; worn out. emaciated. ୨ । ହୀନ; ରହିତ—2. Destitute of; bereft of; devoid of. ୩ । ଅବସନ୍ନ
3. Wearied; fatigued; ୪ । ଗତ—4. Gone.
(ସନ୍ନା-ସ୍ତ୍ରୀ) ୫ । ନଷ୍ଟ—5. Lost, exhausted; spoilt.
(ସ୍ୱାଦ—ବି) ୬ । ଜଡ଼ ଓ ସ୍ଥାବର—6. Immoveable. ୭ ।
ଭଗ୍ନୋତ୍ସାହ—7. Dispirited; dejected. ସଂ. ବି
ପିୟାଳ ବୃକ୍ଷ—Name of a tree; Buchanonia Latifolia.

ସନ୍ନକ—ସଂ. ବିଣ. ପୁ.—(ସନ୍ନ+ସ୍ୱାର୍ଥେ, କ)— ଖର୍ବ (ଭରତ)—
Sannaka (ସନ୍ନିକା—ସ୍ତ୍ରୀ) Dwarf.

ସନ୍ନକଦ୍ରୁ—ସଂ. ବି.=(ସନ୍ନକ=ଖର୍ବ+ଦ୍ରୁ=ବୃକ୍ଷ)—ପିୟାଳ ବୃକ୍ଷ
Sannakadru (ଅମର)—A tree; Buchanonia Latifolia.

ସନ୍ନତ —ସଂ. ବିଣ.—(ସମ୍=ସମ୍ୟକ୍+ନମ୍ ଧାତୁ+କର୍ତ୍ତୃ ତ)—୧ ।
Sannata ପ୍ରଣତ—1. Making obeisance; prostrate. ୨ । ଶବ୍ଦିତ; ଧ୍ୱନିତ—2. Sounded; resounded. ୩ । ବିନୀତ—3. Humbled;
[ବି—କଟକେ ନଇଁପଡ଼ିଥିବା=ସନ୍ନତ; ଅନ୍ୟଦ୍ୱାରା ନୁଆଁ
ଯାଇଥିବା=ସନ୍ନମିତ ।]

ସନ୍ନତି—ସଂ.ବି. ଧାତୁ(ସମ୍=ସମ୍ୟକ୍+ନମ୍ ଧାତୁ=ନଇଁବା+ଭାବ. ତି)
Sannati ୧ । ଅବନତ—1. Bending; prostration; lowliness. ୨ । ପ୍ରଣତି; ପ୍ରଣାମ—2.

Obeisance; low salutation. ୩ । ନମ୍ରତା; ନମ୍ରଭାବ—3. State of being bent. ୪। ବିନୟ—4. Humility; humbleness. ୫ । ଧ୍ୱନି—5. Sound; noise. ୬ । ହୋମ ବିଶେଷ—6. A form of offering oblations to fire.

**ସନ୍ନଦ୍ଧ**—ସଂ. ବି. ପୁଂ (ସମ୍=ସମ୍ୟକ୍+ନହ୍ ଧାତୁ=ବାନ୍ଧିବା+ Sannaddha କର୍ମି. ତ)—୧ । ସନ୍ନାହ ବିଶିଷ୍ଟ; ବର୍ମିତ, (ସନ୍ନଦ୍ଧା—ସ୍ତ୍ରୀ) ସାଞ୍ଜୁ ପିନ୍ଧିଥିବା; କବଚବଦ୍ଧ; କୃତସନ୍ନାହ—1. Accoutred; girt with armour. (ସନ୍ନାହ, ସନ୍ନହନ—ବି) ୨ । ସାଜସଜ୍ଜା ପରିହିତ—2. Equipped with fittings; harnessed. (ସନ୍ନଦ୍ଧବ୍ୟ, ସନ୍ନାହ୍ୟ—ବିଣ) ୩ । ଶସ୍ତ୍ରସଜ୍ଜିତ—3. Armed. ୪ । ପୋଷାକ ପିନ୍ଧିଥିବା—4. Dressed. ୫ । ବ୍ୟୂହିତ; ବ୍ୟୂହବିନ୍ୟାସ ଯୁକ୍ତ; ବ୍ୟୂଢ଼—5. Arranged in battle order; arrayed. ୬। ଶ୍ରେଣୀବଦ୍ଧ—6. Arranged; in row or lines ୭ । ବଦ୍ଧ,ସଂବଦ୍ଧ—7. Well bound; connected, confined. ୮ । ଉତ୍ପନ୍ନ—8. Born; produced. ୯ । ଆତତାୟି ବଧାର୍ଥ ଉଦ୍ୟତ—9. Ready to kill the enemy. ୧୦। ଯାହାର କାନ୍ଧରେ କବଚ ବା ତେଜୁଁରିଆ ବନ୍ଧା ହୋଇଅଛି—10. Wearing an amulet ୧୧ । ମନ୍ତ୍ରାଦି ସଂଯୁକ୍ତ; ମନ୍ତ୍ରାଦି ରକ୍ଷିତ; ଅଭିମନ୍ତ୍ରିତ—11. Consecrated with mystic formula or charms.

**ସନ୍ନ ଭାବ**—ସଂ. ବି.—୧ । ଅବସନ୍ନତା—1. Weariness. ୨ । Sanna bhāba ଭୀରୁତା (ବିଶ୍ୱକୋଷ)—2. Cowardice

**ସନ୍ନମନ**—ସଂ. ବି. (ସମ୍+ନମ୍ ଧାତୁ=ନଇଁବା+ଭାବ. ଅନ)—Sānnamana ତଳକୁ ନଇଁଇବା—Bending down; (ସନ୍ନମିତ—ବିଣ) causing to bend low; lowering.

**ସନ୍ନୟ**—ସଂ. ବି. (ସମ୍=ସମ୍ୟକ୍+ନୀ ଧାତୁ=ନେବା, ପାଇବା+ Sannaya କର୍ମି ଅ)—୧ । ସମୂହ—1. Multitude, assemblage. ୨ । ପଶ୍ଚାଦ୍ଭାଗସ୍ଥ ସୈନ୍ୟ—2. Rearguard; soldiers placed at the rear of an army.

**ସନ୍ନହନ**—ସଂ.ବି. (ସମ୍=ସମ୍ୟକ୍+ନହ୍ ଧାତୁ=ପିନ୍ଧିବା+ଭାବ·ଅନ) Sannahana —୧। ବର୍ମ ପରିଧାନ—1. Putting on an armour. ୨ । ଦେହରେ ଅସ୍ତ୍ର ବାନ୍ଧିବା;ଅସ୍ତ୍ର ବନ୍ଧନ—2. Putting on of arms or weapons; arming one's body with weapons. ୩ । ରଣ ସଜ୍ଜା—3. Battle array; preparation for battle. ୪ । ଉଦ୍ଯୋଗ—4. Readiness for action; exertion; attempt.

**ସନ୍ନା**—ଦେ. ବି. (ସଂ. ସନ୍ଦଂଶ)—ଛୋଟ ସଣ୍ଡାଶି; ଚିମୁଟା— Sannā ସନ୍ନା; ଚିମଟା Small pincers,

**ସନ୍ନାଦ**—ସଂ. ବି— (ସମ+ନଦଧାତୁ+ ଭାବ ଅ)—ଭୀଷଣ ଶବ୍ଦ Sannāda (ବିଶ୍ୱକୋଷ)—Fierce sound. (ସନ୍ନାଦିତ—ବିଣ)

**ସନ୍ନାମ**—ସଂ. ବି. ୧ । (ସମ୍+ନମ ଧାତୁ+ଭାବ ଅ)—ନମ୍ରତା Sannāma (ବିଶ୍ୱକୋଷ)·1.The state of being bent. ୨ । (ସତ୍+ନାମ)—ଉତ୍ତମ ନାମ—2. A good name

**ସନ୍ନାମା**—ସଂ.ବିଣ (ସତ୍+ନାମନ୍; ବହୁବ୍ରୀହି; ସନ୍ନାମନ୍; ୧ମା,୧ବ) Sannāmā ଉତ୍ତମ ନାମ ଯୁକ୍ତ—Having or bearing a good name.

**ସନ୍ନାହ**—ସଂ. ବି· (ସମ୍+ନହ୍ ଧାତୁ=ବାନ୍ଧିବା+କରଣ ବା କର୍ମ.ଅ) Sannāha —୧। କବଚ;ସାଞ୍ଜୁ; ବର୍ମ; ତନୁତ୍ର—1. Armour; coat of mail. ୨ । ପୋଷାକ; ପରିଚ୍ଛଦ—2. Dress. ୩ । ସାଜସଜ୍ଜା—3. Equipment; trappings. ୪। (+ଭାବ.ଅ) ଉଦ୍ଯୋଗ—4. Readiness for action.

**ସନ୍ନାହ୍ୟ**—ସଂ· ବିଣ· (ସନ୍ନାହ+ଯୋଗ୍ୟାର୍ଥେ ଯ)—୧ । ସନ୍ନଦ୍ଧ Sannāhya ହେବାର ଯୋଗ୍ୟ—1. Fit to be armed or equipped. ୨ । ବର୍ମିତ—2. Armed; accoutred. ସଂ. ବି—ଯୁଦ୍ଧରେ ବ୍ୟବହୃତ ହେବାର ଉପଯୁକ୍ତ ହସ୍ତୀ; ସମରୋଚିତ ଗଜ—An elephant fit for being employed in war

**ସନ୍ନିକଟ**—ସଂ.ବିଣ. (ସମ୍=ସମ୍ୟକ୍+ନିକଟ)—୧ । ଅତି ନିକଟ— Sannikaṭa 1. Very near. ୨ । ଲଗାଲଗି—2. Adjacent; adjoining each other ୩ । ଆସନ୍ନ—3 Impending.

**ସନ୍ନିକର୍ଷ**—ସଂ. ବି --(ସମ୍+ନି+କୃଷ୍ଧାତୁ=ଆକର୍ଷଣ କରିବା+ Sannikarsha ଭାବ. ଅ)—୧ । ସାନ୍ନିଧ୍ୟ; ନୈକଟ୍ୟ—Nearness; proximity; propinquity ୨ । (+କର୍ତ୍ତ୍ରି.ଅ) ଇନ୍ଦ୍ରିୟଗୋଚର ବିଷୟ—2. Matter; anything perceptible by the sense-organs. ୩ । (ନ୍ୟାୟ)ବିଷୟେନ୍ଦ୍ରିୟ ସମ୍ବନ୍ଧ—3. (Logic)The correlation or connection between matter and senses; preception of matter through the sense-organs[ନ୍ୟାୟ ଶାସ୍ତ୍ର ମତରେ ସନ୍ନିକର୍ଷ ବା ବିଷୟେନ୍ଦ୍ରିୟ ସମ୍ବନ୍ଧ ଦ୍ୱିବିଧ; ଯଥା—୧। ଲୌକିକ ସନ୍ନିକର୍ଷ, ୨ । ଅଲୌକିକ ସନ୍ନିକର୍ଷ; (୧) ଲୌକିକ ସନ୍ନିକର୍ଷ ୬ ପ୍ରକାରର—(କ) ଇନ୍ଦ୍ରିୟ ସଂଯୋଗ, (ଖ) ଇନ୍ଦ୍ରିୟ ସଂଯୋଗ ସମବାୟ, (ଗ) ଇନ୍ଦ୍ରିୟ ସଂଯୁକ୍ତ ସମବେତ ସମବାୟ, (ଘ) ଶ୍ରୋତ୍ରାଦି ସମବାୟ, (ଙ) ଶ୍ରୋତ୍ରାଦି ସମବେତ ସମବାୟ, (ଚ) ଇନ୍ଦ୍ରିୟାଦି ବିଶେଷଣତା । (୨) ଅଲୌକିକ ସନ୍ନିକର୍ଷ ତ୍ରିବିଧ—(କ) ସାମାନ୍ୟ ଲକ୍ଷଣ, (ଖ) ଜ୍ଞାନ ଲକ୍ଷଣ, (ଗ) ଯୋଗଜ ।] ୪(ନ୍ୟାୟ ଦର୍ଶନ)

ସାମାନ୍ୟ ଲକ୍ଷଣା, ଜ୍ଞାନ ଲକ୍ଷଣା ଓ ଯୋଗଜ, ଏହି ତ୍ରିବିଧ ଅଲୌକିକ ପ୍ରତ୍ୟକ୍ଷ ସାଧନ ଉପାୟ—3. (Logic) The three supernatural methods of perceiving objects.

**ସନ୍ନିକର୍ଷଣ**—ସଂ. ବି ( ସମ୍+ନି+କୃଷ୍ ଧାତୁ+ଭାବ. ଅନ )—
Sannikarshaṇa ୧ । ସନ୍ନିଧାନ—1. Nearness; vicinity ୨ । ସମ୍ବନ୍ଧ—2. Relation.

**ସନ୍ନିକୃଷ୍ଟ**—ସଂ. ବିଣ ( ସମ୍+ନି+କୃଷ୍ ଧାତୁ+କର୍ମ. ତ )—
Sannikrushṭa ସନ୍ନିହିତ; ଅତିଶୟ ନିକଟବର୍ତ୍ତୀ—Very near; adjoining; proximate.

**ସନ୍ନିଗ୍ରହ**—ସଂ. ବି (ସମ୍+ନିଗ୍ରହ)— ଗୁରୁ ଦଣ୍ଡ ଦାନ—
Sannigraha Severe punishment (ସନ୍ନିଗୃହୀତ—ବିଣ)

**ସନ୍ନିଧ**—ସଂ. ବି ( ସମ୍+ନି+ଧା ଧାତୁ+ଭାବ. ଅ )—ସନ୍ନିଧାନ
Sannidha ( ଦେଖ )—Sannidhāna ( See )
[ଉ—ଏକାତ୍ମ ସନ୍ନିଧରେ ସେ ସ୍ଥାନ ସେ ଅଛନ୍ତି । ପ୍ରାଚୀ. ସୁରୁଚନ୍ଦ୍ର. ଗୀତା ।]

**ସନ୍ନିଧାତା**—ସଂ. ବି ଓ ବିଣ. ପୁଂ (ସମ୍+ନି ଧାତୁ+କର୍ତ୍ତି. ତୃ; ସ୍ତ୍ରୀ.
Sannidhātā ନୀ)—କର୍ତ୍ତା (ମନ୍ତ୍ର)—Doer; performer.
(ସନ୍ନିଧାତ୍ରୀ—ସ୍ତ୍ରୀ)

**ସନ୍ନିଧାନ**—ସଂ. ବି (ସମ୍+ନି+ଧା. ଧାତୁ=ଧାରଣ କରିବା+
Sannidhāna ଭାବ. ଅନ)—୧ । ସାମୀପ୍ୟ; ନୈକଟ୍ୟ—1. Nearness. ୨ । ସମାଗମ; ଆବିର୍ଭାବ—2. Arrival; meeting; unfolding; appearance. ୩ । ସ୍ଥିତି—3. Staying; continuance. ୪ । (+ଅଧି. ଅନ) ଇନ୍ଦ୍ରିୟଗୋଚର ବିଷୟ—4. Things perceived by the senses. ୫। (କର୍ମ ଅନ)ଆଶ୍ରୟ —5. Shelter; refuge. ୬ । ଅବସ୍ଥାନ— 6. Situation.

**ସନ୍ନିଧାପନ**—ସଂ. ବି (ସମ୍+ନି+ଧା. ଧାତୁ, ଣିଚ୍=ଧାପି. ଧାତୁ
Sannidhāpana ଧରାଇବା+ଭାବ. ଅନ)—୧ । ସଂସ୍ଥାପନ—1. Act of placing. ୨ । ନିକଟରେ ରଖିବା; କୌଣସି ପଦାର୍ଥକୁ ନିକଟକୁ ଆଣି ଥୋଇବା—2. Act of placing a thing near another.

**ସନ୍ନିଧାପନୀ ମୁଦ୍ରା**—ସଂ. ବି—ଦେବପୂଜାରେ ବ୍ୟବହୃତ ମୁଦ୍ରା ବା
Sannidhāpanī mudrā ଅଙ୍ଗୁଳରଚନାବିଶେଷ—A certain posture of the fingers used in worshipping Deities. [ବି—ବାମ ହସ୍ତର ବୃଦ୍ଧାଙ୍ଗୁଳିକୁ ଡାହାଣ ହାତର ମୁଠାଦ୍ୱାରା ମୁଠାଇ ଧରି ଏହି ମୁଦ୍ରା ଦେଖାଇବାକୁ ହୁଏ ।]

**ସନ୍ନିଧି**—ସଂ. ବି (ସମ୍+ନି+ଧା ଧାତୁ+ଭାବ. ଇ)—୧ । ସାମୀପ୍ୟ,
Sannidhi ସନ୍ନିଧାନ—1. Nearness; vicinity; propinquity. ୨ । (ସତ୍+ନିଧି, କର୍ମଧା)—ଉତ୍ତମ ନିଧି; ସମ୍ପତ୍ତି; ସଂପଦ—2.Good jem; riches. [ଉ—(୧ ଓ ୨ ଅର୍ଥ) ଦେଖିରେ ହୋଇଲ୍ଲ,ପଦ୍ମ ଏ ସନ୍ନିଧି,ସନ୍ନିଧି ଗଣେ ପାବକ ଯେ । ଉଜ୍ଞ. ବୈଦେହୀଶବିଳାସ ।] ୩ । ଅବସ୍ଥାନ; ଅବସ୍ଥିତି—3. Staying; situation. ୪ । ଇନ୍ଦ୍ରିୟଗ୍ରାହ୍ୟ ବିଷୟ—4. A thing perceived by the senses.

**ସନ୍ନିଧିକୁ**—ଦେ. କ୍ରି. ବିଣ—ନିକଟକୁ; ପାଖକୁ—To. [ଉ—ଏ
Sannidhiku ଗଠାଉ ରାଜାଙ୍କ ସନ୍ନିଧିକୁ ପ୍ରେରିତ ହେବ ।]
(ସନ୍ନିଧେ, ସନ୍ନିଧିକୁ—ଅନ୍ୟରୂପ) सन्निधिते, सन्निधिके समीपमे

**ସନ୍ନିଧେ(ଧ୍ୟେ)**—ଦେ. କ୍ରି. ବିଣ—ନିକଟରେ—At. [ଉ—ଅପଣା
Sannidhe(dhye) ସନ୍ନିଧେ ବସାଇ । ଯଶୋବନ୍ତ. ପ୍ରେମଭକ୍ତି
(ସନ୍ନିଧି[ଧି]ରେ—ଅନ୍ୟରୂପ) ବ୍ରହ୍ମ ଗୀତା ।]
सन्निधिते समीपमें

**ସନ୍ନିନ(ନା)ଦ**—ସଂ. ବି (ସମ୍+ନିନଦ; ନିନାଦ)—୧ । ଘୋରରବ—
Sannina(nā)da 1. Fierce; sound. ୨ । ଉଚ୍ଚ ସ୍ୱର— 2. Loud sound.

**ସନ୍ନିପତନ**—ସଂ. ବି (ସମ୍+ନିପତନ)—ସନ୍ନିପାତ ( ଦେଖ )
Sannipatana Sannipāta ( See )

**ସନ୍ନିପତିତ**—ସଂ. ବିଣ (ସମ୍+ନିପତିତ)—୧। ସମ୍ୟକ୍ ରୂପେ ପତିତ—
Sannipatita 1. Fallen completely. ୨ । ଉପସ୍ଥିତ—2. Present. ୩ । ଆଗତ—3. Come; arrived. ୪ । ସମ୍ମିଳିତ; ଏକତ୍ର ମିଳିତ—4. Joined together; meeting together. ୫ । ମିଶ୍ରିତ—5. Mixed together;mixed up. ୬। ଅବତୀର୍ଣ୍ଣ—6. Arrived at; descended; alighted. ୭ । ମୃତ—7. Dead; deceased. ୮ । ଏକୀକୃତ— 8. Unified.

**ସନ୍ନିପାତ**—ସଂ. ବି. (ସମ୍+ନି+ପତ୍ ଧାତୁ+ଭାବ ଅ)—୧ ।
Sannipāta ସମ୍ୟକ୍ ରୂପେ ପତନ—1. Falling completely. ୨ । ବିନାଶ—2. Ruin; destruction. ୩ । ଅବତରଣ—3. Descent. ୪ । ଉପସ୍ଥିତି—4. Presence; arrival. ୫ । ସମୂହ; ସମଷ୍ଟି—5. Aggregate; multitude. [ଉ— ଗୁଣସନ୍ନିପାତ ମଧ୍ୟରେ ଗୋଟିଏ ମାତ୍ର ଦୋଷ ଲୁଚିଯାଏ । —କାଳିଦାସ ରଘୁବଂଶ] ୬ । ସମୂହର ମିଳନ—6. The conglomeration of a multitude. ୭ । (+ଅଧିକରଣ ଅ) ଯୁଦ୍ଧ; ସଂଗ୍ରାମ—7. War; battle. ୮ । ସନ୍ଧି; ବାତପିତ୍ତକଫର ପ୍ରକୋପଜନିତ ତ୍ରିଦୋଷଜ ବିକାର; ଜ୍ୱରରୋଗର ମାରାତ୍ମକ ଅବସ୍ଥା—8. State of collapse due to a morbid condition of the three humours of the body; fatal condition of fever. [ବି—ଏକ ସମୟରେ କଫବାତପିତ୍ତର

ପ୍ରକୋପ ଅଧିକ ହୋଇଗଲେ ରୋଗୀର ଆସନ୍ନମୃତ୍ୟୁ ଅବସ୍ଥା ଘଟେ । ଏହାକୁ ସନ୍ନିପାତ ବା 'ତ୍ରିଦୋଷ' ବୋଲଯାଏ ।

ବୈଦ୍ୟକ ଗ୍ରନ୍ଥ (ଯଥା—ହଂସରାଜ ପ୍ରଣୀତ ନିଦାନ ଗ୍ରନ୍ଥ) ଅନୁସାରେ ସନ୍ନିପାତ ୧୩ ପ୍ରକାରର । ଯଥା—ସନ୍ଧିକ, ଅନ୍ତକ, ରୁଗ୍‌ଦାହ, ଚିତ୍ତବିଭ୍ରମ, ଶୀତାଙ୍ଗ, ତନ୍ଦ୍ରିକ, କଣ୍ଠକୁବ୍ଜ, କର୍ଣ୍ଣିକ, ଭୁଗ୍ନନେତ୍ର, ରକ୍ତଷ୍ଠୀବୀ, ପ୍ରଳାପକ, ଜିହ୍ୱକ ଓ ଅଭିନ୍ୟାସ । ସନ୍ଧିକରେ ୭ ଦିନ, ଅନ୍ତକରେ ୧୦ ଦିନ, ରୁଗ୍‌ଦାହରେ ୨୦ ଦିନ, ଚିତ୍ତବିଭ୍ରମରେ ୨୪ ଦିନ, ଶୀତାଙ୍ଗରେ ୧୫ ଦିନ, ତନ୍ଦ୍ରିକରେ ୨୫ ଦିନ, କଣ୍ଠକୁବ୍ଜରେ ୧୩ ଦିନ, କର୍ଣ୍ଣିକରେ ୩ ମାସ, ଭୁଗ୍ନନେତ୍ରରେ ୮ ଦିନ, ରକ୍ତଷ୍ଠୀବୀରେ ୧୦ ଦିନ, ପ୍ରଳାପକରେ ୧୪ଦିନ, ଜିହ୍ୱକରେ ୧୬ଦିନ, ଅଭିନ୍ୟାସରେ ୧୬ ଦିନ ପରମାୟୁ । ଏଥି ମଧ୍ୟରୁ ସନ୍ଧିକ, ତନ୍ଦ୍ରିକ, କର୍ଣ୍ଣିକ, କଣ୍ଠକୁବ୍ଜ, ଜିହ୍ୱକ ଓ ଚିତ୍ତବିଭ୍ରମ ଏହି ୬ଟି ସାଧ୍ୟ ଓ ଅନ୍ୟ ୭ଟି ମାରକ ।

'ଭାବପ୍ରକାଶ' ରେ ଏହି ତ୍ରୟୋଦଶ ସନ୍ନିପାତକୁ ଏକୋଲ୍ୱଣ, ଦ୍ୱ୍ୟୁଲ୍ୱଣ ଓ ତ୍ର୍ୟୁଲ୍ୱଣ ଏହି ତିନି ଶ୍ରେଣୀରେ ବିଭକ୍ତ କରି ଯାଇଅଛି ।

ଗ୍ରନ୍ଥାନ୍ତର ମତରେ ବିଦ୍ଧାରକ, ଆଶୁକାରୀ, କମ୍ପନ, ବଭ୍ରୁ, ଶୀଘ୍ରକାରୀ, ଭଲ୍ଲୁ, ସପ୍ରମ, କୂଟପାକଲ, ସଂମୋହକ, ପାକଲ, ଯାମ୍ୟ, କ୍ରକଚ, କର୍କଟକ, ବୈଦାରିକାଭିଧ—ସନ୍ନିପାତ ଏହି ୧୪ ପ୍ରକାରର ।]

ସନ୍ନିପାତ ଜ୍ୱର—ସଂ. ବି. (ବୈଦ୍ୟକ)—ତ୍ରିଦୋଷଜ ଜ୍ୱର—Sannipāta jwara Typhoid fever; Typhus; (ସନ୍ନିପାତଜ ଜ୍ୱର; ସାନ୍ନିପାତିକଜ୍ୱର—ଅନ୍ୟରୂପ) fever accompanied with collapse. [ଦ୍ର—ଏହାକୁ ଚଳିତ କଥାରେ 'ଜ୍ୱର ବିକାର' ବା 'ଡନ୍ଧି' କହନ୍ତି । ଏହି ଜ୍ୱରରେ କ୍ଷଣେ କ୍ଷଣେ ଦାହ, ପୁଣି ପରକ୍ଷଣରେ ଶୀତ ଏବଂ ଅସ୍ଥି ଓ ସନ୍ଧିସମୂହରେ ବେଦନା ଅନୁଭବ ହୁଏ; ନେତ୍ରଦ୍ୱୟ ଅଶ୍ରୁପୂର୍ଣ୍ଣ, ଅବଳ, ରକ୍ତାଭ ଓ ବିସ୍ତାରିତ ବା ଭୁଗ୍ନିତ ହୁଏ; କର୍ଣ୍ଣରନ୍ଧ୍ରରେ ନାନା ପ୍ରକାରର ଶବ୍ଦ ଅନୁଭୂତ ହୁଏ; କଣ୍ଠନାଳି ମଧ୍ୟରେ ଧାନର ଶୁଙ୍ଘରେ ଫୋଡ଼ ଫୋଡ଼ ହେଲା ପରି ଜଣାଯାଏ; ଜିହ୍ୱା କୃଷ୍ଣବର୍ଣ୍ଣ, କର୍କଶ ଓ କଣ୍ଟକଯୁକ୍ତ ହୁଏ; ତନ୍ଦ୍ରା, ମୂର୍ଚ୍ଛା, ପ୍ରଳାପ, କାଶ, ଶ୍ୱାସ, ଅରୁଚି, ଭ୍ରମ, ତୃଷ୍ଣା ଓ ନିଦ୍ରାନାଶ ହୁଏ; ମଳ, ମୂତ୍ର ଓ ଘର୍ମର ରୋଧ ଏବଂ ଅତିସାର ଘଟେ; ମୁଖ, ନାସିକା, କର୍ଣ୍ଣ ଓ କଣ୍ଠ ମଧ୍ୟରେ କ୍ଷତ ହୁଏ ଏବଂ ଦେହରେ ଲାଲ ମାରିବା ପରି ଶୋଥ ଦେଖାଯାଏ । ଏହା ଛଡ଼ା ସନ୍ନିପାତ ଜ୍ୱରର କେତେଗୁଡ଼ିଏ ବିଶେଷ ଲକ୍ଷଣ ଦେଖାଯାଏ । ବକ୍ଷଃସ୍ଥଳରେ ବେଦନା ଓ ନିଃଶ୍ୱାସ ପ୍ରଶ୍ୱାସରେ କଷ୍ଟ ବୋଧହୁଏ; କଣ୍ଠ ଅତି ଶୁଖିଯାଏ; କ୍ଷୁଧା ବଢ଼ିବ ହୁଏ; କର୍ଣ୍ଣ ମଧ୍ୟରେ ନାନାପ୍ରକାର ଶବ୍ଦ ଅନୁଭୂତ ହୁଏ, କଣ୍ଠ ଶ୍ଳେଷ୍ମ (କଠିନ ଶ୍ଲେଷ୍ମ) ଲାଗି ଅଛି ବୋଲି ପରି ଅନୁଭୂତ ହୁଏ; ମୁହଁ ବାଟେ ସମସ୍ତ ସମୟରେ ରକ୍ତ ପଡ଼େ । ଏହାକୁ ଡାକ୍ତରମାନେ 'ନ୍ୟୁମୋନିଆ' (Pneumonia) କହନ୍ତି । ନ୍ୟୁମୋନିଆରେ ହୃଦୟ ମଧ୍ୟସ୍ଥ ଫୁସ୍‌ଫୁସ୍ ଦୂଷିତ ହୋଇ ଯାଏ । ସନ୍ନିପାତ ଜ୍ୱର କଷ୍ଟସାଧ୍ୟ । ୭, ୯, ୧୦, ୧୧, ୧୬, ୧୮, ୨୨ ବା ୨୪ ଦିନ ଏ ରୋଗର କାଳ । ଏହାପରେ ରୋଗୀ ଆରୋଗ୍ୟ ଲାଭ କରେ ବା ମୃତ ହୁଏ । ବାତ, ପିତ୍ତ, କଫ ଅତି କୁପିତ ହୋଇ ଜ୍ଞାନେନ୍ଦ୍ରିୟ ଓ ମନକୁ ବିକୃତ କଲେ ଏହି ଜ୍ୱରକୁ 'ଅଭିନ୍ୟାସ ଜ୍ୱର' କହନ୍ତି । ଏଥିରେ ରୋଗୀ ନିଶ୍ଚେଷ୍ଟ ହୁଏ ଏବଂ ରୋଗୀର ଶ୍ରବଣ, ଦର୍ଶନ, ସ୍ପର୍ଶନ, ସ୍ୱାଦନ ଓ ଘ୍ରାଣଶକ୍ତି ରହିତ ହୁଏ ଏବଂ ରୋଗୀ ଲୋକଙ୍କୁ ଚିହ୍ନିପାରେ ନାହିଁ; ସର୍ବଦା ମସ୍ତକ ସଞ୍ଚାଳନ କରି ଅସ୍ଥିର ହୁଏ । ବେଳେବେଳେ ସନ୍ନିପାତ ଜ୍ୱରରେ କାନମୂଳ, ବେକ ଓ ଗାଲପାଟି ଫୁଲି ବେଦନାଯୁକ୍ତ ହୁଏ । ଏହାକୁ "କର୍ଣ୍ଣମୂଳ ସନ୍ନିପାତ" ବୋଲଯାଏ । ଅଭିନ୍ୟାସ ଜ୍ୱର ସର୍ବଥା ଅସାଧ୍ୟ ।

ସନ୍ନିପାତ ଜ୍ୱର ସଙ୍ଗେ ଅତିସାର ଘଟିଲେ ତାହାକୁ ସନ୍ନିପାତଜ ଜ୍ୱରାତିସାର ବା Typhoid fever କହନ୍ତି । ସାଧାରଣ ଲୋକେ ଏହାକୁ "ବାଇଶିଦିନିଆ ଜ୍ୱର" କହନ୍ତି ।]

ସନ୍ନିପାତନ—ସଂ.ବି. (ସମ୍+ନି+ପତ୍ ଧାତୁ+ଭାବ ଅନ)—ସନ୍ନିପାତ Sannipātana (ଦେଖ)—Sannipāta (See)

ସନ୍ନିପାତ ମଲୁ(ରୋଗୀ)—ଦେ.ବି.—ସନ୍ନିପାତ ଦ୍ୱାରା ଆକ୍ରାନ୍ତ ରୋଗୀ—Sannipāta malu(rogī) A patient in a state of collapse. सन्निपातरोगी सन्निपातरोगी

ସନ୍ନିପାତୀ—ସଂ. ବିଣ. ପୁଂ (ସନ୍ନିପାତ+ଇନ୍; ୧ମା ୧ବ)—ସନ୍ନିପାତ Sannipāti ରୋଗଗ୍ରସ୍ତ—Suffering from pneumonia. (ସନ୍ନିପାତନୀ—ସ୍ତ୍ରୀ)

ସନ୍ନିବଦ୍ଧ—ସଂ. ବିଣ. (ସମ୍+ନି+ବନ୍ଧ୍ ଧାତୁ+କର୍ମ. କ୍ତ)—୧ । Sannibaddha ଦୃଢ଼ ଭାବରେ ବଦ୍ଧ; ସମ୍ୟକ୍ ବନ୍ଧନଯୁକ୍ତ—Securely or very tightly bound. ୨ । ଗ୍ରଥିତ—2. Strung together. ୩ । ଘନଭାବରେ ଶ୍ରେଣୀବଦ୍ଧ—3. Arranged in thick set rows; thickly set.

ସନ୍ନିବନ୍ଧ—ସଂ. ବି. (ସମ୍+ନି+ବନ୍ଧ୍ ଧାତୁ=ଏକାଠି କରିବା+ଭାବ. ଅ)—୧ । ସନ୍ନିବେଶ—1. Arrangemnet; setting. ୨ । ଦୃଢ଼ ବନ୍ଧନ—2. Tight binding. ୩ । ଗ୍ରନ୍ଥନ; ଗୁନ୍ଥା—3. Stringing up. ୪ । ପ୍ରବନ୍ଧ ରଚନା—4. Composition of an essay.

ସନ୍ନିବନ୍ଧନ—ସଂ. ବି. (ସମ୍+ନି+ବନ୍ଧ୍ ଧାତୁ+ଭାବ. ଅନ) ୧ । Sannibandhana ସଙ୍କଳନ—1. Compilation ୨ । ଗ୍ରଥନ—2. Stringing. ୩ । ଦୃଢ଼ ବନ୍ଧନ—3. Tight binding. ୪ । ରଚନା—4. Composi-

tion. ୫ । ଶୃଙ୍ଖଳା; ବିନ୍ୟାସ; ସୁଶୃଙ୍ଖଳ ବିନ୍ୟାସ—5. Orderly arrangement. ସଂ. ବିଣ.—(ବହୁବ୍ରୀହି; ସତ୍=ଉତ୍ତମ ହୋଇଅଛି ନିବନ୍ଧନ ଯାହାର) ୧ । ଉତ୍ତମ ଭାଷ୍ୟ ଟୀକାଯୁକ୍ତ—1. Excellently or profusely annotated. ୨ । ଉତ୍ତମ ପ୍ରୀତିଦାୟକଯୁକ୍ତ—2. Very pleasing.

ସନ୍ନିବପନ—ସଂ. ବି.—( ସମ୍+ନିବପନ )—ଉତ୍ତମରୂପେ ବୁଣିବା—Sannibapana Sowing well. (ସନ୍ନିବାପ—ଅନ୍ୟରୂପ)

ସନ୍ନିବାୟ—ସଂ. ବି.—୧ । ସମୁଦାୟ—1. Whole. ୨ । ସମଷ୍ଟି—Sannibāya (ଶବ୍ଦକୋଷ)—2. Collection; multitude.

ସନ୍ନିବିଷ୍ଟ—ସଂ ବିଣ. (ସମ୍+ନି+ବିଶ୍ ଧାତୁ=ପ୍ରବେଶ କରିବା+Sannibishṭa କର୍ତ୍ତି. କ୍ତ) ୧ । ଉପବିଷ୍ଟ; ସୁସ୍ଥାସୀନ—1. Seated. ୨ । ସମ୍ମୁଖରେ ଉପସ୍ଥିତ—2. Appearing before. ୩ । ନିକଟସ୍ଥ; ସମୀପ—3. Contiguous; adjoining. ୪ । ସମ୍ବନ୍ଧ—(ସନ୍ନିବେଶ—ବି) 4. Relating to; pertaining to.

ସନ୍ନିବୃତ୍ତ—ସଂ. ବିଣ. (ସମ୍+ନି+ବୃତ୍ ଧାତୁ=ନିବୃତ୍ତ ହେବା+Sannibṛutta କର୍ତ୍ତି. କ୍ତ) ୧ । ବିରତ—1. Ceased. ୨ । ନିବୃତ୍ତ—2. Desisted; stopped. ୩ । ଅପଗତ—(ସନ୍ନିବୃତ୍ତି, ସନ୍ନିବର୍ତ୍ତନ—ବି) 3. Departed. ୪। ପ୍ରତ୍ୟାଗତ—4. Returned.

ସନ୍ନିବୃତ୍ତି—ସଂ. ବି. (ସମ୍+ନି+ବୃତ୍ ଧାତୁ=ନିବୃତ୍ତ ହେବା+Sannibṛutti ଭାବ. କ୍ତି)—୧ । ବିରତି—1. Cessation. ୨ । ନିବୃତ୍ତି—2. Stoppage; relinquishment. ୩ । ଅପଗମ—3. Departure. ୪ । ପ୍ରତ୍ୟାଗମନ—4. Returning.

ସନ୍ନିବେଶ—ସଂ. ବି. (ସମ୍+ନି+ବିଶ୍ ଧାତୁ=ପ୍ରବେଶ କରିବା+Sannibeśa ଅଧିକରଣ ଅ)—୧। ଆଶ୍ରମ—1. Hermitage; a retreat. ୨ । ସ୍ଥାନ—2. Place; position. ୩ । ନୈକଟ୍ୟ—3. Nearness; propinquity. ୪ । ନଗରୀର ବହିଃସ୍ଥ ବିହାର ସ୍ଥାନ—4. A park or place of diversion or recreation outside a city. ୫ । ନଗରର ବହିଃସ୍ଥ ପ୍ରଦେଶ—(ସନ୍ନିବିଷ୍ଟ, ସନ୍ନିବେଶିତ—ବିଣ.) 5. Place outside a town; precincts of a town. ୬। (ସମ୍+ନି+ବିଶ୍ଧାତୁ ଣିଚ+ଭାବ ଅ) ଭିତରକୁ ପ୍ରବେଶ କରାଇବା—6. Act of thrusting inside. ୭ । (ସମ୍+ନି+ବିଶ ଧାତୁ+ଭାବ ଅ) ସମଷ୍ଟି—7. Total; aggegrate. ୮ । ସ୍ଥିତି—8. Continuance; permanence; staying. ୯ । ବିନ୍ୟାସ—9. Orderly arrangement. ୧୦ । ସ୍ଥାପନ—10 Establishment; placing. ୧୧ । ସଂଯୋଗ; ମିଳନ—11. Union; close contact; (ସନ୍ନିବେଶନ-ଅନ୍ୟରୂପ) ୧୨ । ରଚନ—12. Composing. ୧୩ । ବସାଇବା—13. Placing; setting up.

ସନ୍ନିଭ—ସଂ. ବିଣ. (ସମ୍+ନିଭ=ତୁଲ୍ୟ ବା ସମ୍+ନି+ଭା ଧାତୁ Sannibha —ସାଦୃଶ୍ୟ ପାଇବା+କର୍ତ୍ତି. ଅ)—ତୁଲ୍ୟ; ସଦୃଶ—Like; similar.

ସନ୍ନିରୁଦ୍ଧ—ସଂ. ବି (ସମ୍+ନି+ରୁଧ ଧାତୁ+କର୍ମ. କ୍ତ)—Sanniruddha ଉତ୍ତମ ରୂପେ କରୁଦ୍ଧ—(ସନ୍ନିରୋଦ୍ଧବ୍ୟ, ସନ୍ନିରୋଧସାଧ୍ୟ—ଅନ୍ୟ ବିଣ ଆକାର) Well (ସନ୍ନିରୋଧ, ସନ୍ନିରୋଧନ—ବି) obstructed or confined.

ସନ୍ନିରୁଦ୍ଧ ଗୁଦ—ସଂ. ବି (ବହୁବ୍ରୀହି)—ଦାରୁଣ କୋଷ୍ଠକାଠିନ୍ୟ ରୋଗ-Sanniruddha guda ବିଶେଷ—A kind of very painful constipation. [ବି—ମଳବେଗ ଧାରଣ ଦ୍ୱାରା କୁପିତ ଅପାନ ବାୟୁ ମଳବାହିନୀ ସ୍ରୋତକୁ ସଙ୍କୁଚିତ କରି ଗୁହ୍ୟଦ୍ୱାରକୁ ସୂକ୍ଷ୍ମ କରେ । ଏଥିପାଇଁ ଅତି କଷ୍ଟ ଓ ଯନ୍ତ୍ରଣା ସହକାରେ ମଳନିର୍ଗମ ହୁଏ । ଏଥିର ନିରାକରଣାର୍ଥ ବାତଘ୍ନ ତୈଳ ଦ୍ୱାରା ଅଭ୍ୟଙ୍ଗ ଓ ଘୃତ ତୈଳାକ୍ତ ମୃଷିତ ଲୌହ ନଳ ଗୁହ୍ୟରେ ପୁରାଇ ମଳ ନିଃସାରଣ କରାଯାଏ—ବୈଦ୍ୟକୋଷ ।]

ସନ୍ନିହିତ—ସଂ. ବିଣ (ସମ୍=ସମ୍ୟକ୍+ନି+ଧା ଧାତୁ+କର୍ମ. କ୍ତ)—Sannihita ୧ । ସନ୍ନିବେଶିତ, ସଂସ୍ଥାପିତ—1. Placed; (ସନ୍ନିଧାନ, ସନ୍ନିଧି—ବି) set up; ୨ । ସମୀପସ୍ଥ; ନିକଟବର୍ତ୍ତୀ—2. Adjoining; neighbouring. ୩ । ଦୃଢ଼ ରୂପେ ସ୍ଥାପିତ—3. Firmly set. ସଂ. ବି—(+ଭାବ. କ୍ତ) ସନ୍ନିଧାନ—Nearness.

ସନ୍ନ୍ୟ(ନ୍ୟ)—ଗ୍ରା. ବି (ସଂ. ସୈନ୍ୟ)—ସୈନ୍ୟ (ଦେଖ)—Sainya Sannya(nya) (See) [ଉ—ଗ୍ରାମରେ ପଶି, ସନ୍ନ୍ୟଙ୍କୁ ନାଶି, ସୈନ୍ୟ ସକଳ ମନୁଷ୍ୟ ମାରିଲି, ବଡ଼ ଭରସି । ପ୍ରତାପ, ଶଶିରେଖା ।]

ସନ୍ନ୍ୟସ୍ତ—ସଂ. ବିଣ (ସମ୍+ନି+ଅସ୍ ଧାତୁ=ତ୍ୟାଗ କରିବା+Sannyasta କର୍ମ. କ୍ତ)—୧ । ଗଚ୍ଛିତ; ସଂରକ୍ଷିତ—ସନ୍ନ୍ୟାସ, ସନ୍ନ୍ୟସନ } ବି 1. Deposited; kept for safe custody. ୨ । ସମର୍ପିତ—2. Entrusted; made over. ୩ । କ୍ଷିପ୍ତ—3. Thrown into. ୪ । ତ୍ୟକ୍ତ—4. Relinquished; renunciated.

ସନ୍ନ୍ୟାସ—ସଂ. ବି (ସମ୍+ନି+ଅସ୍ ଧାତୁ=ତ୍ୟାଗ କରିବା+Sannyāsa ଭାବ. ଅ)—୧ । ସଂସାର ବାସନା ତ୍ୟାଗ; ଭିକ୍ଷୁଧର୍ମ—1. Renunciation of worldly desires and pursuits; religious mendicancy. [ବି—ଭଗବାନଙ୍କଠାରେ ସମସ୍ତ କର୍ମର ନ୍ୟାସ ବା (ସନ୍ନ୍ୟସ୍ତ, ସନ୍ନ୍ୟାସୀ—ବିଣ) ସମର୍ପଣକୁ 'ସନ୍ନ୍ୟାସ' ବୋଲାଯାଏ ।] ୨ । କାମ୍ୟ କର୍ମ; କାମ୍ୟ କର୍ମ ପରିତ୍ୟାଗ—2. Renunciation of acts done with a definite aim. [ବି—ସକଳ କର୍ମଫଳ ତ୍ୟାଗକୁ ସନ୍ନ୍ୟାସ

ବୋଲଯାଏ । କାମ୍ୟକର୍ମ ପରିତ୍ୟାଗର ନାମ ସନ୍ନ୍ୟାସ; ସର୍ବବିଧ କର୍ମ ଫଳର ତ୍ୟାଗର ନାମ ତ୍ୟାଗ (ଗୀତା—୧୮।୨) । ସ୍ୱର୍ଗାଦି ଫଳଲାଭାର୍ଥ କାମନା ପୂର୍ବକ ଯେଉଁ କର୍ମ ଅନୁଷ୍ଠିତ ହୁଏ ତାହାକୁ କାମ୍ୟ କର୍ମ ଓ ସନ୍ଧ୍ୟା, ଉପାସନା, ନିତ୍ୟ ହୋମ, କର୍ତ୍ତବ୍ୟବୋଧରେ ତପସ୍ୟା ଓ ଦାନ ପ୍ରଭୃତିକୁ ନିତ୍ୟକର୍ମ ବୋଲଯାଏ । ସନ୍ନ୍ୟାସୀମାନେ କାମ୍ୟ-କର୍ମ ପରିତ୍ୟାଗ କରିବେ ବୋଲି ନିତ୍ୟକର୍ମ ପରିତ୍ୟାଗ କରିବେ ନାହିଁ; ଅନାସକ୍ତ ହୋଇ କର୍ତ୍ତବ୍ୟ ବୁଦ୍ଧିରେ ନିତ୍ୟ କର୍ମର ଅନୁଷ୍ଠାନ କରିବେ ।

କର୍ମ ସନ୍ନ୍ୟାସ (କର୍ମ ପରିତ୍ୟାଗ) ଓ କର୍ମ ଯୋଗ (ନିଷ୍କାମ ଭାବରେ ଜଗତର ଉପକାର ପାଇଁ କର୍ମାନୁଷ୍ଠାନ), ଏହି ଉଭୟ ବିଧ ଅନୁଷ୍ଠାନ ଦ୍ୱାରା ଆତ୍ମଜ୍ଞାନ ପ୍ରାପ୍ତ ହୋଇ ମାନବ ମୋକ୍ଷ ଲାଭ କରେ । କର୍ମ ସନ୍ନ୍ୟାସ ଓ କର୍ମ ଯୋଗ, ଏ ଉଭୟ ଆତ୍ମଜ୍ଞାନର ଦ୍ୱାର ସ୍ୱରୂପ ବୋଲି ଭଗବାନ୍ ଭଗବଦ୍‌ଗୀତାର ୫ମ ଅଧ୍ୟାୟରେ ପ୍ରତିପାଦନ କରିଅଛନ୍ତି ଓ ସଂସାରୀ ପକ୍ଷରେ କର୍ମ ସନ୍ନ୍ୟାସ (ସମସ୍ତ କର୍ମ ପରିତ୍ୟାଗ କରି କେବଳ ସର୍ବଦା ବ୍ରହ୍ମ ଚିନ୍ତନ) ଅପେକ୍ଷା କର୍ମ ଯୋଗ (କର୍ମର ଫଳର ଆଶା ନ ରଖି କର୍ତ୍ତବ୍ୟାନୁରୋଧରେ କର୍ମ କରଣ)କୁ ଶ୍ରେଷ୍ଠ ବୋଲି କହିଅଛନ୍ତି ।] ୩ । ହିନ୍ଦୁଙ୍କର ଚତୁର୍ଥ ଆଶ୍ରମ—3. The fourth stage of a Hindu's life. [ଦ୍ର—ବର୍ଣ୍ଣାଶ୍ରମ ଧର୍ମହିଁ ହିନ୍ଦୁ ଧର୍ମର ମୂଳ । ଉପନୟନ ପରେ ଗୁରୁଗୃହରେ ଅବସ୍ଥାନ ପୂର୍ବକ ଜୀବନର ଚତୁର୍ଥ ଭାଗ ବ୍ରହ୍ମଚର୍ଯ୍ୟାଶ୍ରମ, ତତ୍ପରେ ଗୁରୁଙ୍କ ଆଦେଶରେ ଜୀବନର ଏକ ଚତୁର୍ଥାଂଶ ଗୃହସ୍ଥାଶ୍ରମ, ତତ୍ପରେ ଗାର୍ହସ୍ଥ୍ୟକର୍ମ ଶେଷ, କେଶ ପକ୍ୱ ଓ ପୁତ୍ର ପୌତ୍ର ହେଲେ ଜୀବନର ଏକ ଚତୁର୍ଥାଂଶ ବାନପ୍ରସ୍ଥାଶ୍ରମ ଓ ତତ୍ପରେ ଜିତେନ୍ଦ୍ରିୟତ୍ୱ ଓ ବିଷୟବିତୃଷ୍ଣା ଲାଭ ହେଲେ ଜୀବନର ଅବଶିଷ୍ଟ ଚତୁର୍ଥାଂଶ ସନ୍ନ୍ୟାସାଶ୍ରମ ଅବଲମ୍ବନ ହିନ୍ଦୁର ପକ୍ଷରେ କର୍ତ୍ତବ୍ୟ ।] ୪ । ନିକ୍ଷେପ—4. Act of throwing. ୫ । ସମର୍ପଣ—5. Entrusting. ୬ । ଗଚ୍ଛିତ ରଖିବା—6. Act of depositing. ୭ । (+କର୍ମ. ଅ) ଗଚ୍ଛିତ ଧନ—7. Deposit; something deposited on trust. ୮ । ଦେହତ୍ୟାଗ; ହଠାତ୍ ମୃତ୍ୟୁ—8. Sudden death. ୯ । ସନ୍ନ୍ୟାସ ରୋଗ (ଦେଖ)—9. Sanngāsa roya (See). [ଦ୍ର—ଏହି ରୋଗ ହଠାତ୍ ଉପସ୍ଥିତ ହୋଇ ଚୈତନ୍ୟ ଲୋପ କରେ ଓ ହୃତ୍‌ପିଣ୍ଡର କ୍ରିୟା ବନ୍ଦ କରି କ୍ଷଣକାଳ ପରେ ମୃତ୍ୟୁ ଘଟାଏ, ଏହା ମୂର୍ଚ୍ଛା ରୋଗର ପ୍ରକାର ଭେଦ ।] ୧୦ । ତ୍ୟାଗ—10. Relinquishment. ୧୧ । ଜଟା-ମାଂସୀ—11. Indian spikenard. ୧୨ । ଶିବ-ପୂଜା ଉଦ୍ଦେଶ୍ୟରେ ମାନସିକୃତ ସନ୍ନ୍ୟାସବ୍ରତ ଅବଲମ୍ବନ ରୂପ ବ୍ରତ ବିଶେଷ (ବିଶ୍ୱକୋଷ)—12. A religious vow undertaken for the worship of Śiba. [ଦ୍ର—ଚୈତ୍ର ମାସ ଚଡ଼କ ପୂଜା (ମେଷ ସଂକ୍ରାନ୍ତି) ପୂର୍ବରୁ ଏ ବ୍ରତ କରାହୋଇ ସଂକ୍ରାନ୍ତି ଦିନ ଏହା ଉଦ୍‌ଯାପନ କରାଯାଏ । ବୃହଦ୍ଧର୍ମ ପୁରାଣ ଉତ୍ତର ଖଣ୍ଡ ୫ମ ଅଧ୍ୟାୟରେ ଏ ବ୍ରତର ବର୍ଣ୍ଣନ ଅଛି । ନୃତ୍ୟ ଗୀତାଦି ଦ୍ୱାରା ମହାଦେବଙ୍କ ଉଦ୍ଦେଶ୍ୟରେ ମହୋତ୍ସବ କରିବା ଆମ ଦେଶରେ ଏହି ବ୍ରତ ନୀଚ ଜାତୀୟ ବ୍ୟକ୍ତିମାନେ କରନ୍ତି । ଏ ସନ୍ନ୍ୟାସୀମାନଙ୍କୁ 'ପାଟୁଆ' ବୋଲଯାଏ । ଏମାନେ ଚୈତ୍ର ମାସସାରା ତ୍ରିସନ୍ଧ୍ୟା ସ୍ନାନ, ରାତ୍ରିରେ ହବିଷ୍ୟ ଭୋଜନ କରି ଅଳଙ୍କାର ଆଦି ପିନ୍ଧି ବାଦ୍ୟ ସାହାଯ୍ୟରେ ନୃତ୍ୟ ଗୀତ କରି ସଂକ୍ରାନ୍ତି ଦିନ ଉପବାସ ଓ ହୋମ କରି ଦେହକୁ ପୀଡ଼ା ଦେଇ ପିଠିକୁ ହୁକ ଲଗା କାଣ୍ଡାରେ ଫୋଡ଼ି ବାର୍ଦ୍ଧିସରେ ଟଙ୍ଗା ହୋଇ ଶୂନ୍ୟରେ ଘୂରି ଯାଆନ୍ତି । ଏ ବ୍ରତରେ ଶଙ୍ଖବାଦ୍ୟ ଓ ଶଙ୍ଖଜଳ ବ୍ୟବହାର ନିଷିଦ୍ଧ—ବିଶ୍ୱକୋଷ ।]

**ସନ୍ନ୍ୟାସ ଗ୍ରହଣ**—ସ. ବି (୬ଷ୍ଠୀ ତତ୍)—ଗୃହସ୍ଥ ଧର୍ମ ପରିତ୍ୟାଗପୂର୍ବକ Sannyāsa grahaṇa ସନ୍ନ୍ୟାସ ବ୍ରତ ଅବଲମ୍ବନ—Act of entering into the order of a recluse. [ଦ୍ର—କେହି କେହି ବ୍ରହ୍ମଚର୍ଯ୍ୟାଶ୍ରମରୁ, କେହି କେହି ଗୃହସ୍ଥାଶ୍ରମରୁ ଓ କେହି କେହି ବାନପ୍ରସ୍ଥାଶ୍ରମରୁ ସନ୍ନ୍ୟାସଗ୍ରହଣ କରନ୍ତି ।]

**ସନ୍ନ୍ୟାସ ଧର୍ମ**—ସଂ. ବି—ସଂସାରବାସନା ପରିତ୍ୟାଗପୂର୍ବକ ଯୋଗ Sannyāsa dharma ସାଧନାରୂପ ଧର୍ମ—The act of (ସନ୍ନ୍ୟାସବ୍ରତ—ଅନ୍ୟରୂପ) practising 'joga' or spiritual exercise after renouncing the world. [ଦ୍ର—ଭଗବଦ୍ ଗୀତାରେ ପଞ୍ଚମ ଅଧ୍ୟାୟରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ସନ୍ନ୍ୟାସଧର୍ମ ପାଳନ ଏବଂ ସନ୍ନ୍ୟାସୀର ଲକ୍ଷଣ ଓ ସାଧନ ସମ୍ବନ୍ଧରେ ଉପଦେଶ ଦେଇଅଛନ୍ତି ।]

**ସନ୍ନ୍ୟାସନ**—ସଂ. ବି (ସମ୍+ନି+ଅସ୍ ଧାତୁ+ଭାବ. ଅନ)—Sannyāsana ୧ । ସଂସାର ତ୍ୟାଗ କରିବା—1. Act of renouncing the world. ୨ । ଅନ୍ୟ ବ୍ୟକ୍ତି ନିକଟରେ ଧନାଦି ଗଚ୍ଛିତ ରଖିବା—2. Causing a thing or money to be deposited on trust. ୩ । ନିକ୍ଷେପ କରିବା—3. Act of throwing away. ୪ । ତ୍ୟଜନ—4. Relinquishment.

**ସନ୍ନ୍ୟାସ ରୋଗ**—ସ. ବି. (ବୈଦ୍ୟକ) ମାରାତ୍ମକ ମୂର୍ଚ୍ଛାରୋଗ ବିଶେଷ—Sannnyāsa roga Apopelxy; heart failure. [ଦ୍ର—ବାତାଦି ଦୋଷସମୂହ ଅତ୍ୟନ୍ତ କୁପିତ ହୋଇ ହୃତ୍‌ପିଣ୍ଡକୁ ଓ ମସ୍ତିଷ୍କକୁ ଆକ୍ରମଣ କରି ମନ ଓ ଇନ୍ଦ୍ରିୟ ସମୂହର କାର୍ଯ୍ୟକାରିତାକୁ ବିନଷ୍ଟ କରେ ଏବଂ ମନୁଷ୍ୟକୁ ମୂର୍ଚ୍ଛିତ କରେ । ଏହି ରୋଗ ଅତି ଭୟାନକ । ପୂର୍ବରୁ ରୋଗର ଲକ୍ଷଣ କିଛିମାତ୍ର ପ୍ରକାଶ ପାଏ ନାହିଁ ଓ ହଠାତ୍ ହୃତ୍‌ପିଣ୍ଡର କ୍ରିୟା ସ୍ଥଗିତ ହେବାରୁ ମୂର୍ଚ୍ଛା [illegible] ମୂର୍ଚ୍ଛା, ଭ୍ରମ ଓ ସନ୍ନ୍ୟାସ ରୋଗମାନ [illegible]

ରୋଗୀ ବସିଥାଏ ବା ଚାଲୁଥାଏ, ବା କାର୍ଯ୍ୟ କରୁଥାଏ, ହଠାତ୍ ତଳେ ପଡ଼ି ଅଚେତନ ହୁଏ ଓ କିଛିକ୍ଷଣ ପରେ ତାର ମୃତ୍ୟୁ ଘଟେ ।

ସନ୍ନ୍ୟାସ ରୋଗ ଜନିତ ମରଣ ଅନ୍ୟାନ୍ୟ ରୋଗ ଜନିତ ମରଣ ଅପେକ୍ଷା ଅତି ଅଳ୍ପ କଷ୍ଟପ୍ରଦ । ସନ୍ନ୍ୟାସୀ ଓ ଯୋଗୀମାନେ ଏହି ପ୍ରକାର ମୃତ୍ୟୁ କାମନା କରୁଥିବାରୁ ଏହାକୁ 'ସନ୍ନ୍ୟାସ' ରୋଗ ବୋଲାଯାଏ । ଏହି ରୋଗ ହଠାତ୍ ମସ୍ତିଷ୍କର ଓ ହୃତ୍‌ପିଣ୍ଡର କ୍ରିୟାକୁ ବନ୍ଦ କରିଦିଏ ।]

**ସନ୍ନ୍ୟାସାଶ୍ରମ**—ସଂ. ବି (ରୂପକ)—ହିନ୍ଦୁର ଚତୁର୍ଥ ଆଶ୍ରମ; ଭିକ୍ଷୁ ଧର୍ମ—
Sannyāsāśrama The 4th stage of the life of a Hindu house-holder.

**ସନ୍ନ୍ୟାସିନୀ**—ସ. ବିଣ. ସ୍ତ୍ରୀ (ସନ୍ନ୍ୟାସ+ଅସ୍ତି ଅର୍ଥେ ଇନ୍+ସ୍ତ୍ରୀ. ଈ)—
Sannyāsini ସନ୍ନ୍ୟାସଧର୍ମ ଗ୍ରହଣକାରିଣୀ; ସଂସାରବିରାଗିଣୀ—
(Female) Renouncing the world. ସ.ବି—
(ସନ୍ନ୍ୟାସୀ—ପୁଂ) ସନ୍ନ୍ୟାସାବଲମ୍ବିନୀ ନାରୀ; ସଂସାରତ୍ୟାଗିନୀ ନାରୀ—
A female recluse.

**ସନ୍ନ୍ୟାସୀ**—ସଂ. ବିଣ. ପୁଂ (ସମ୍+ନି+ଅସ୍ ଧାତୁ=ତ୍ୟାଗ କରିବା+
Sannyāsi କର୍ତ୍ତି. ଇନ୍; ୧ମା. ୧ବ)—ସଂସାରବିରାଗୀ; ସଂସାର ବିରକ୍ତ—Renouncing the world. ସଂ. ବି—
(ସନ୍ନ୍ୟାସିନୀ—ସ୍ତ୍ରୀ) ୧ । ସଂସାରବିରାଗୀ ବ୍ୟକ୍ତି; ଯେ ସଂସାର ଆଶ୍ରମ ଓ ବାନପ୍ରସ୍ଥ ଆଶ୍ରମ ତ୍ୟାଗ କରି ଭିକ୍ଷୁ ହୋଇଥାଆନ୍ତି—
1. A person who has renounced the world; a recluse. ୨ । ଭିକ୍ଷୁ—2. A religious mendicant. ୩ । ଯୋଗୀ—3. A person who is practising spiritual concentration.
[ଦ୍ର—୧ । ସନ୍ନ୍ୟାସ ବ୍ରତ ଅବଲମ୍ବନକାରୀ ବ୍ୟକ୍ତି ମୁଣ୍ଡିତ-କେଶ ଏବଂ ଗୈରିକ ବସନ, କୌପୀନ ଓ ଦଣ୍ଡ-କମଣ୍ଡଳୁଧାରୀ ହୋଇ ଜୀବନରକ୍ଷାର୍ଥ ଭିକ୍ଷାବୃତ୍ତି ଅବଲମ୍ବନ ପୂର୍ବକ ନିର୍ଜନରେ ଯୋଗ ସାଧନା କରନ୍ତି । ସେ ନିଜର କୃତ ସମସ୍ତ କର୍ମକୁ ଭଗବାନଙ୍କଠାରେ ସମର୍ପଣ କରନ୍ତି । ସୁଖ-ଦୁଃଖ, ନିନ୍ଦା-ସ୍ତୁତି, ଶୀତୋଷ୍ଣ, ମାନାପମାନ, ଓ ଶତ୍ରୁ-ମିତ୍ର ଦ୍ୱାରା ସେ ବିଚଳିତ ହୁଅନ୍ତି ନାହିଁ । ସେ ସମସ୍ତ ରିପୁଙ୍କୁ ଜୟ କରିଥାଆନ୍ତି ।

ସନ୍ନ୍ୟାସୀ ଶବ୍ଦର ପର୍ଯ୍ୟାୟ:—ପାରାଶରୀ, ମସ୍କରୀ, କର୍ମନ୍ଦୀ, ଶ୍ରମଣ, ଭିକ୍ଷୁ, ଯତି । ବିଷୟବିତୃଷ୍ଣ ହୋଇ ଗୃହତ୍ୟାଗ, ସଂସାର ତ୍ୟାଗ, ସମାଜ ତ୍ୟାଗ, ସଙ୍ଗତ୍ୟାଗ, ମସ୍ତକ ମୁଣ୍ଡନ, ଗୈରିକ କୌପୀନ ଓ ଦଣ୍ଡ କମଣ୍ଡଳୁ ଧାରଣ କରି ଭିକ୍ଷାବୃତ୍ତିଦ୍ୱାରା ଜୀବନଧାରଣ କରି ନିର୍ଜନ ପ୍ରଦେଶରେ ଅବସ୍ଥାନ ପୂର୍ବକ କେବଳ ପରଂବ୍ରହ୍ମଙ୍କ ଉପାସନାକାରୀଙ୍କୁ ସନ୍ନ୍ୟାସୀ ବୋଲାଯାଏ । ସନ୍ନ୍ୟାସୀଙ୍କର ସ୍ୱଜନ, ପରଜନ, ଲୋଷ୍ଟ୍ର ଓ କାଞ୍ଚନରେ ସମବୁଦ୍ଧି । ସେ ନିତ୍ୟ ପ୍ରବାସୀ ହେବେ ଓ ଚତୁର୍ମାସ୍ୟା ଛଡ଼ା ଅନ୍ୟ ସମୟରେ ଏକ ସ୍ଥାନରେ ଅଧିକ ଦିନ ରହିବେ ନାହିଁ; ବ୍ରାହ୍ମଣଗୃହରେ ଅନ୍ନ ଭୋଜନ କରିବେ । କାହାଠାରୁ କିଛି ପ୍ରାର୍ଥନା କରିବେ ନାହିଁ; କ୍ରୋଧ ମୋହ ଅହଙ୍କାରବିବର୍ଜିତ ହେବେ; ଅଯାଚିତଭାବେ ଯାହା ମିଳିବ ତାହା ଭୋଜନ କରିବେ, ସ୍ତ୍ରୀମାନଙ୍କ ମୁଖାବଲୋକନ ବା ନିକଟରେ ଅବସ୍ଥାନ କରିବେ ନାହିଁ । ସେ ମରଣ ବା ଜୀବନ ଅଭିଳାଷ କରିବେ ନାହିଁ, ଉପେକ୍ଷାଭାବେ ମୃତ୍ୟୁକାଳ ପାଇଁ ପ୍ରତୀକ୍ଷା କରିବେ । ଶତ୍ରୁ, ମିତ୍ର, ମାନ, ଅପମାନ, ଶୀତ, ଉଷ୍ଣ, ନିନ୍ଦା, ସ୍ତୁତିକୁ ସମଜ୍ଞାନ କରିବେ । ସେ ହିଂସାରୁ ଓ ସର୍ବପ୍ରକାର ଆସକ୍ତିରୁ ନିବୃତ୍ତ ହେବେ, ମୌନାବଲମ୍ବନ କରିବେ, ଜିତେନ୍ଦ୍ରିୟ ହେବେ । ଗୀତାରେ ଭଗବାନ୍ କହିଅଛନ୍ତି, ଯେ ଭଗବାନଙ୍କଠାରେ ସର୍ବକର୍ମାର୍ପଣ କରନ୍ତି ସେ ସନ୍ନ୍ୟାସୀ ।

ସ୍କନ୍ଦପୁରାଣରେ, କୂର୍ମପୁରାଣରେ ଓ ଅନ୍ୟାନ୍ୟ ପୁରାଣ-ମାନଙ୍କରେ ସନ୍ନ୍ୟାସୀମାନଙ୍କର ବହୁ ଶ୍ରେଣୀ ଓ ଉପଶ୍ରେଣୀ ବିଭାଗ ବର୍ଣ୍ଣିତ ହୋଇଅଛି । ସୂତସଂହିତାରେ ଶୈବ-ସନ୍ନ୍ୟାସୀ ଓ ଭାଗବତ ୧୧ଶ ସ୍କନ୍ଧ ଅଷ୍ଟାଦଶ ଅଧ୍ୟାୟରେ ବୈଷ୍ଣବ ସନ୍ନ୍ୟାସୀମାନଙ୍କ ବିଷୟ ଲେଖା ଅଛି । ସନ୍ନ୍ୟାସୀ-ମାନଙ୍କର ମଣ୍ଡଳୀ ଅଛି । ମଣ୍ଡଳୀର ଅଧ୍ୟକ୍ଷଙ୍କୁ ସ୍ୱାମୀ ବୋଲାଯାଏ । ବୃତ୍ତିଭେଦରେ ସନ୍ନ୍ୟାସୀଙ୍କର କୁଟୀଚକ, ବହୂଦକ, ହଂସ ଓ ପରମହଂସ ବିଭାଗ ଅଛି । ମହାନିର୍ବାଣତନ୍ତ୍ରରେ ତନ୍ତ୍ରମାର୍ଗୀୟ ନାନାଶ୍ରେଣୀର ସନ୍ନ୍ୟାସୀଙ୍କର ଉଲ୍ଲେଖ ଅଛି । ଏହାଛଡ଼ା ଭାରତରେ ନାନାମତାବଲମ୍ବୀ, ନାନାମାର୍ଗସ୍ଥ, ନାନାତନ୍ତ୍ର-ମନ୍ତ୍ରୋପାସକ, ନାନାସାଧନରତ ବହୁପ୍ରକାରର ସନ୍ନ୍ୟାସୀ ଦେଖାଯାଆନ୍ତି, ଯଥା :—ଯୋଗମାର୍ଗ, ନାଗାସନ୍ନ୍ୟାସୀ, ଅଲେଖିଆ, ଦଙ୍ଗଲୀ, ଅଘୋରୀ, ଊର୍ଦ୍ଧ୍ୱବାହୁ, ଆକାଶମୁଖୀ, ନଖୀ, ଠାଢ଼େଶ୍ୱରୀ, ଊର୍ଦ୍ଧ୍ୱମୁଖ, ପଞ୍ଚଧୂନୀ, ମୌନୀ, ଜଳଶାୟୀ, ଜଳାଧାରତପସ୍ୱୀ, କଡ଼ାଲିଙ୍ଗୀ, ଫଳାହାରୀ, ଦୁଗ୍ଧାହାରୀ, ଅଲୁଣ, ଅଓଘଡ଼, ଟିକରନାଥ, ସୁଖଡ଼ଙ୍ଗୀ, ଘରବାରୀ, ତ୍ୟାଗୀ, ଆତୁର, ମାନସ ସନ୍ନ୍ୟାସୀ, ଅନ୍ତଃସନ୍ନ୍ୟାସୀ, ଓ ସ୍ତ୍ରୀସନ୍ନ୍ୟାସୀନୀ ଭୈରବୀ । ବିଶ୍ୱକୋଷ ]

୨ । ଶ୍ରୀମତ୍ ଶଙ୍କରାଚାର୍ଯ୍ୟଙ୍କ ପ୍ରବର୍ତ୍ତିତ ଦଶନାମୀ ସନ୍ନ୍ୟାସୀମାନଙ୍କ ବ୍ୟବହାର ପାଇଁ ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ଭାରତର ଭିନ୍ନ ଭିନ୍ନ ସ୍ଥାନରେ ତାଙ୍କର ଚାରିଜଣ ଶିଷ୍ୟଙ୍କ ଅଧୀନ ଦଶଉପାଧିଧାରୀ ସନ୍ନ୍ୟାସୀଙ୍କ ପାଇଁ ଯଥାକ୍ରମେ ୪ଟି ମଠ ପ୍ରତିଷ୍ଠିତ ହୋଇଥିଲା ଯଥା—

| | |
|---|---|
| ୧ । ବିଶ୍ୱରୂପାଚାର୍ଯ୍ୟ (ସାରଦାମଠ, ଦ୍ୱାରକା) | ୧ । ତୀର୍ଥ ଉପାଧିଧାରୀ<br>୨ । ଆଶ୍ରମ |
| ୨ । ପଦ୍ମପାଦାଚାର୍ଯ୍ୟ (ଗୋବର୍ଦ୍ଧନ ମଠ, ପୁରୀ) | ୩ । ବନ<br>୪ । ଅରଣ୍ୟ |
| ୩ । ତୋଟକାଚାର୍ଯ୍ୟ (ଯୋଶୀ ମଠ, ବଦରିକା) | ୫ । ଗିରି<br>୬ । ପର୍ବତ<br>୭ । ସାଗର |
| ୪ । ପୃଥ୍ୱୀଧରାଚାର୍ଯ୍ୟ (ଶୃଙ୍ଗେରୀ ମଠ, ରାମେଶ୍ୱର) | ୮ । ସରସ୍ୱତୀ<br>୯ । ଭାରତୀ<br>୧୦ । ପୁରୀ |

୧ । ଗର୍ଥ ଉପାଧିଧାରୀ ସନ୍ନ୍ୟାସୀ—
ତ୍ରିବେଣୀ ସଙ୍ଗମେ ତୀର୍ଥେ ତତ୍ତ୍ୱମସ୍ୟାଦି ଲକ୍ଷଣେ
ସ୍ନାୟାତ୍ ତତ୍ତ୍ୱାର୍ଥ ଭାବେନ ତୀର୍ଥନାମା ସ ଉଚ୍ୟତେ ।
୨ । ଆଶ୍ରମ ଉପାଧିଧାରୀ ସନ୍ନ୍ୟାସୀ—
ଆଶ୍ରମଗ୍ରହଣେ ପ୍ରୌଢ଼ ଆଶା ପାଶ ବିବର୍ଜିତଃ
ଯାତାୟାତବିନିର୍ମୁକ୍ତ ଏଷ ଆଶ୍ରମ ଉଚ୍ୟତେ ।
୩ । ବନ ଉପାଧିଧାରୀ ସନ୍ନ୍ୟାସୀ—
ସୁରମ୍ୟେ ନିର୍ଝର ସ୍ଥାନେ ବନେ ବାସଂ କରୋତି ଯଃ
ଆଶାବନ୍ଧ ବିନିର୍ମୁକ୍ତୋ ବନ ନାମା ସ ଉଚ୍ୟତେ ।
୪ । ଅରଣ୍ୟ ଉପାଧିଧାରୀ ସନ୍ନ୍ୟାସୀ—
ଅରଣ୍ୟେ ସଂସ୍ଥିତୋ ନିତ୍ୟଂ ଆନନ୍ଦେ ନନ୍ଦନେ ବନେ
ତ୍ୟକ୍ତ୍ୱା ସର୍ବମିଦଂ ବିଶ୍ୱମରଣ୍ୟଃ ପରିକୀର୍ତ୍ତ୍ୟତେ ।
୫ । ଗିରି ଉପାଧିଧାରୀ ସନ୍ନ୍ୟାସୀ—
ବାସୋ ଗିରିବନେ ନିତ୍ୟଂ ଗୀତାଭ୍ୟାସେ ହି ତତ୍ପରଃ
ଗମ୍ଭୀରାଚଳବୁଦ୍ଧିଶ୍ଚ ଗିରିନାମା ସ ଉଚ୍ୟତେ ।
୬ । ପର୍ବତ ଉପାଧିଧାରୀ ସନ୍ନ୍ୟାସୀ—
ବସନ୍ ପର୍ବତମୂଲେଷୁ ପ୍ରୌଢ଼ଂ ଜ୍ଞାନଂ ବିଭର୍ତ୍ତି ଯଃ
ସାରାସାରଂ ବିଜାନାତି ପର୍ବତଃ ପରିକୀର୍ତ୍ତ୍ୟତେ ।
୭ । ସାଗର ଉପାଧିଧାରୀ ସନ୍ନ୍ୟାସୀ—
ତତ୍ତ୍ୱସାଗର ଗମ୍ଭୀରେ ଜ୍ଞାନରତ୍ନ ପରିଗ୍ରହଃ
ମର୍ଯ୍ୟାଦାଃ ନୈବ ଲଙ୍ଘେତ ସାଗରଃ ପରିକୀର୍ତ୍ତ୍ୟତେ ।
୮ । ସରସ୍ୱତୀ ଉପାଧିଧାରୀ ସନ୍ନ୍ୟାସୀ—
ସ୍ୱରଜ୍ଞାନରତୋ ନିତ୍ୟଂ ସ୍ୱରବାଦୀ କବୀଶ୍ୱରଃ
ସଂସାର ସାଗରାସାର ହନ୍ତାଽସୌ ହି ସରସ୍ୱତୀ ।
୯ । ଭାରତୀ ଉପାଧିଧାରୀ ସନ୍ନ୍ୟାସୀ—
ବିଦ୍ୟାଭାରେଣ ସଂପୂର୍ଣ୍ଣଃ ସର୍ବଭାରଂ ପରିତ୍ୟଜନ୍
ଦୁଃଖଭାରଂ ନ ଜାନାତି ଭାରତୀ ପରିକୀର୍ତ୍ତ୍ୟତେ ।
୧୦ । ପୁରୀ ଉପାଧିଧାରୀ ସନ୍ନ୍ୟାସୀ—
ଜ୍ଞାନତତ୍ତ୍ୱେନ ସମ୍ପୂର୍ଣ୍ଣଃ ପୂର୍ଣ୍ଣତତ୍ତ୍ୱ ପଦେ ସ୍ଥିତଃ
ପରଂବ୍ରହ୍ମରତୋ ନିତ୍ୟଂ ପୁରୀ ନାମା ସ ଉଚ୍ୟତେ ।
ଶାଣ୍ଡିଲ୍ୟ ଲକ୍ଷ୍ମୀନାରାୟଣ ସନ୍ଧୁ, ଏମ୍. ଏ. ଉଦ୍ଧୃତ ।]
୪ । ବୌଦ୍ଧ ଭିକ୍ଷୁ—4. A Buddhist recluse.
୫ । ବାରାଣସୀ ଅଞ୍ଚଳବାସୀ ଏକଜାତୀୟ ଗୃହସ୍ଥ—
5. A class of householders in Benares.
ଦେ. ବି.ପୁଂ—ଲୋକଙ୍କୁ ପ୍ରଦତ୍ତ ନାମ—A name given to males.

**ସନ୍ମତ**—ଗ୍ରା. ବି (ସଂ. ସମ୍ମତ)—୧ । ସମ୍ମତି; ସ୍ୱୀକାର —1. Agreement. (ଉ—ତୋ କନ୍ୟା ଶୁଭ କୋଟିଏ ଅଛି, ମୋର ସନ୍ମତ ସ୍ନେହ ଅଛି । ଯଶୋବନ୍ତ,'ପ୍ରେମଭକ୍ତିଗୀତା ।) ୨ । ସ୍ୱୀକୃତ; ଅଙ୍ଗୀକାର—2. Consent.
Sanmata
सम्मत **सम्मत**
ଗ୍ରା. ବିଣ ସମ୍ମତ—A greed

**ସନ୍ମତି**—ସଂ. ବି (କର୍ମଧା)— ଉତ୍ତମ ବୁଦ୍ଧି—Good intelligence.
Sanmati ଗ୍ରା.ବି ଓ ବିଣ—ସନ୍ମତ (ଦେଖ)—Sanmata(See)

**ସନ୍ମତେ**—ଗ୍ରା. କି. ବିଣ.—ସମ୍ମତିକ୍ରମେ—With consent. (ଉ—ସୁବ୍ରାହ୍ମଣମାନଙ୍କ ଉକତେ, ସାଧୁମାନଙ୍କର ସନ୍ମତେ । ପ୍ରାଚୀ. ପୁର୍ଣ୍ଣିମଣତଦ୍ୱୋଦ୍ୟ ।)
Sanmate
सम्मते **सम्मतिमे**

**ସନ୍ମାନ**—ଗ୍ରା. ବି. (ସଂ ସମ୍ମାନ)—ସମ୍ମାନ (ଦେଖ)—Sammāna, Sanmāna (See). [ଦ୍ର—ଉତ୍କଳର ପ୍ରାଚୀନ ଗ୍ରନ୍ଥମାନଙ୍କରେ ସମ୍ମାନ ଅର୍ଥରେ ସନ୍ମାନ ଶବ୍ଦର ପ୍ରୟୋଗ ଅଛି ।] ସ. ବି—୧ । (ଷଷ୍ଠୀତତ୍) ସଦ୍‌ବ୍ୟକ୍ତିଙ୍କ ପ୍ରଦର୍ଶିତ ମର୍ଯ୍ୟାଦା—1. Esteem or regard of the good. ୨ । (ସପ୍ତମୀତତ୍) ସଦ୍‌ବ୍ୟକ୍ତିଙ୍କୁ ପ୍ରଦର୍ଶିତ ସମ୍ମାନ—2. Respect or honour shown to the good people.
सम्मान **सनमान**

**ସନ୍ମାର୍ଗ**—ସ. ବି (ସତ୍=ଉତ୍ତମ+ମାର୍ଗ=ପନ୍ଥା; କର୍ମଧା)—
Sanmārga ୧ । (ଲକ୍ଷଣାର୍ଥ) ସତ୍‌ପନ୍ଥା; ସଦାଚାର—1. Good conduct. ୨ । ସଦୁପାୟ—2. Honest means. ୩ । ସାଧୁମାନଙ୍କର ଅବଲମ୍ବିତ ପନ୍ଥା—3. The ways of the virtuous.

**ସନ୍ମିତ୍ର**—ସ. ବି (କର୍ମଧା; ସତ୍=ଉତ୍ତମ+ମିତ୍ର)—୧ । ଉତ୍ତମ ବନ୍ଧୁ—1. A good friend. ୨ । ପ୍ରକୃତ ଉପକାରୀ ବନ୍ଧୁ—2. A real friend.
Sanmitra

**ସନ୍ମିଳନ**—ଗ୍ରା. ବି (ସ. ସମ୍ମିଳନ)—ସମ୍ମିଳନ (ଦେଖ)
Sanmilana Sammilana. (See)
सम्मिलन **सनमीलन** ସ. ବି. (ଷଷ୍ଠୀ ତତ୍) ସାଧୁମାନଙ୍କ ମିଳନ—A meeting of good people.

**ସନ୍ମିଳନୀ**—ଗ୍ରା. ବି (ସଂ. ସମ୍ମିଳନୀ)—ସମ୍ମିଳନୀ (ଦେଖ)
Sanmilani Sammilani. (See)
सम्मिलनी **सनमीलनी**

**ସନ୍ମୁଖ**—ଗ୍ରା. ବି (ସଂ. ସମ୍ମୁଖ)—ସମ୍ମୁଖ (ଦେଖ)
Sanmukha Sammukha. (See)
सम्मुख **सनमुख** ଗ୍ରା. ବିଣ. ସାମନାରେ ଥିବା—Frontal.

**ସପ୍**(ଧାତୁ)—ସଂ.—୧ । ଏକତ୍ର ହେବା—1. To be
Sap (root) gathered or collected together. ୨ । ସମ୍ୟକ୍ ଅବରୋଧ କରିବା—2. To beseige.

**ସପ୍(ପ)**—ଦେଶଜ. ବି (ଅ. ସପ୍; ସ. ଶପ୍ର=ଚର୍ମ ବିଶେଷ)—
Sap(pa) ଶପ (ଦେଖ)—Sapa. (See)
सप **सफ**

**ସପ୍(ପ)ଟା(ଟେ)ଇ ଧରିବା**—ଦେ. କି—ଜାବୁଡ଼ି କରି ଧରିବା—
Sap(pa)tā(te)i dharibā To hold tightly.
सापटेधना **चिकेटना**

**ସପ୍(ପ)ଟା(ଟେ)ଇବା**—ଦେ, କି (ସଂ. ସର୍ପ ବା ସଂ. ସମ୍+ପୁଟ୍—ଧାତୁ)—୧ । କୌଣସି ପଦାର୍ଥକୁ ଅନ୍ୟ ପଦାର୍ଥ ସଙ୍ଗେ ସଂଶ୍ଲେଷିତ କରିବା; ଲଗାଇବା; ଚିପଟ କରିଦେବା—1. To cause any thing to adhere to another thing. ୨ । ଜାବୁଡ଼ି ଧରିବା—2. To hold tightly. ୩ । ଗୁଡ଼େଇ ଦେବା—3. To entwine.
Sap(pa)ta(te)ibā
सापटाना **मिलाना**
सापटिये धरना **चिमटना**
सापटाना **लिपटना**

**ସପ୍(ପ)ଟା ସପ୍(ପ)ଟି କରିବା**—ପ୍ରାଦେ. (ଯାଜପୁର) କି—ସାଲୁସ Sap-(pa)ṭā sap-(pa)ṭi karibā ସାଲୁସି କରିବା; କହିଲ-କହିଲ କରିବା; ଫନ୍ଦାଫନ୍ଦି କରି ପ୍ରବର୍ତ୍ତାଇବା—To pursuade by coaxing; to cajole.

**ସପ୍(ପ)ଟିବା**—ଦେ. କି. (ସଂ. ସମ+ପୃଚ୍ ଧାତୁ ଜମା ସର୍ପ+ପୃଚ; Sap-(pa)ṭibā ସାପ ଗଛ ଅବା ଦେହରେ ଲଟି ରହି ଗୁଡେଇ [ସପ୍(ପ)ଟିଥିବା—ଅନ୍ୟରୂପ] ହୋଇଥିବା ପରି) ୧। କୌଣସି ବସ୍ତୁର ସାପଟ୍‌ ଦେହରେ ଲଗିକରି ଲଟିଥିବା—1. To closely ଜଡ଼ନା adhere or cling to a thing. ୨। ସଙ୍କୁଚିତ ହେବା ଗୁଟିୟେଯାଓୟା —2. To shrink. [ଉ—କଇଁଛ ଦେହରେ ସଙ୍କୁଚନା ହାତ ବଜାଇଲେ ତା ମୁଣ୍ଡ ସପଟି ଯାଏ।] ୩। (ଶିକାର ଗୁଟିୟେ ସୁଟିୟେ ଯାଓୟା କରିବାକୁ ଯିବା ବେଳେ ଶିକାରୀସପଟୁ) ସୁକୁଚନା ଲେଉଟେଇ ପଡ଼ିବା—3. To cringe; to crouch.

**ସପକ୍ଷ**—ସଂ. ବିଣ. (ସ=ସମାନ+ପକ୍ଷ=ଦଳ ଯାହାର; ବହୁବ୍ରୀହି) Sapaksha ୧। ଏକ ପକ୍ଷାବଲମ୍ବୀ—1. Belonging to (ବିପକ୍ଷ—ବିପରୀତ) the same side or party; (ସପକ୍ଷକ—ଅନ୍ୟରୂପ) partisan. ୨। ସାହାଯ୍ୟକାରୀ—2. Helping; assisting. ୩। ଅନୁକୂଳ—3. Favourable. ୪। ତୁଲ୍ୟ—4. Similar; equal. ୫। (ସହାର୍ଥ ବହୁବ୍ରୀହି) ପକ୍ଷ ବା ଡେଣାଯୁକ୍ତ 5. Winged.

**ସପକ୍ଷତା(ତ୍ୱ)**—ସଂ.ବି. (ସପକ୍ଷ+ଭାବେ.ତା,ତ୍ୱ)—୧। ସହାୟତା; ସାହାଯ୍ୟ Sapakshatā(twa) —1. Help; assistance. ୨। ଏକ (ବିପକ୍ଷତା—ବିପରୀତ) ପକ୍ଷାବଲମ୍ବନ—2. Act of joining the same party; partisanship. ୩। ପକ୍ଷ ବା ଡେଣାଯୁକ୍ତ ଅବସ୍ଥା—3. The state of being winged. ୪। ଅନୁଗ୍ରହ; ଅନୁକୂଲ୍ୟ—4. Favour.

**ସପଠ**—ଦେ.ବିଣ.—ପାଠୁଆ;ବିଦ୍ୱାନ୍—Learned; wise. [ଉ—Sapatha କେତେ ପଢ଼ିଅଛୁ କି ଭୁବନ ପାଠ, ଆହେ ରବି ତୁମ୍ଭେ ବିଦ୍ୱାନ୍, ବା ପଟାଗୁନା (ଲୋକ) ତ ବେଟେକ ସପଠ। —କୃଷ୍ଣସିଂହ ପଢ଼ୁୟା ମହାଭାରତ ବନ]

**ସପତ**—ଗ୍ରା. ବି ଓ ବିଣ (ପଦ୍ୟ)—(ସଂ ସପ୍ତ) ସପ୍ତ; ସାତ—Seven Sapata in number. [ଉ—ଜମ୍ବୁ କଣ୍ଠେ-ଥୋଇଲା ସପତ ସାତ ଅଦ୍ୟ ସ୍ୱର। —ଶିଶୁଶଙ୍କର ଉଷାଭିଳାଷ] ବି (ସଂ ଶପଥ) ସାତ ଶପଥ—Oath. [ଉ—ସପତଟି ମୋର ରଖ, ସହ ଏହୁ ଦିବ୍ୟି, ଥରରେ। —ଉପେନ୍ଦ୍ର ଶୋଭାବତୀ ଅମୃ. ସ ଗୀତ] ସପଥ

**ସପତ କରିବା**—ଦେ. କି—ଶପଥ କରିବା—Sapata karibā To take oath. ଦିବ୍ୟିକରା ସପଥ କରনা

**ସପତ ଜନମ**—ଗ୍ରା. ବି.—ସପ୍ତ ଜନ୍ମ (ଦେଖ) Sapata janama Sapta janma (See) (ସପତ ଜନ୍ମ—ଅନ୍ୟରୂପ) ସপ্তজন্ম সাতিজনম

**ସପତଣୀ**—ଦେ. ବି. ସ୍ତ୍ରୀ (ପଦ୍ୟ) (ସଂ.ସପତ୍ନୀ)—A co-wife; one Sapatanī of the wives of the same husband. ସतीन [ଉ—ସପତଣୀ ହିଂସା ମୋଠାରୁ ବୁଝିକରି, ଶ୍ରଦ୍ଧ ମୋ सौतिन ପରକି କହନ୍ତୁ ବୋଲେ ଧରି। —କୃଷ୍ଣସିଂହ ମହାଭାରତ ଶଲ୍ୟ]

**ସପତ ପାତାଳ**—ଗ୍ରା. ବି. (ପଦ୍ୟ)—ସପ୍ତ ପାତାଳ (ଦେଖ) Sapata pātāla Sapta pātāla (see) সপ্ত পাতাল सातपाताल

**ସପତ ପୁରୁଷ**—ଗ୍ରା. ବି. (ସଂ. ସପ୍ତ+ପୁରୁଷ)—ସପ୍ତପୁରୁଷ (ଦେଖ) Sapata purusha Sapta purusha (see) সাতপুরুষ सातपुरुष

**ସପତ ଫେଣା(ଣି)**—ଦେ. ବି. (ସଂ. ସପ୍ତ+ଫଣା, ଫଣୀ)—ସପ୍ତଫେଣି Sapata phenā (ṇi) ଗଛ—Cactus; Opuntia Dilleni. [ସପତ ଫେଣିଆ (ଅ) ଅନ୍ୟରୂପ] [ଦ୍ର—ଏହା ଏକ ফেণিমনসা ফণামনসা ପ୍ରକାର ନାଗଫେଣୀ ଆ ଗଛ। ନାଗଫେଣିଅର सपत फेनी ଶାଖା ଅଂଶଯୁକ୍ତ; କିନ୍ତୁ ସପତଫେଣିଅର ଶାଖା ଚେପ୍ଟା।] ଦେ. ବିଣ.—(ସଂ. ସପ୍ତଫଣୀ) ସପ୍ତଫେଣୀ; ସପ୍ତଫଣାଯୁକ୍ତ (ସର୍ପ)—Seven hooded (serpent).

**ସପତ ଭୁବନ**—ଗ୍ରା. ବି (ପଦ୍ୟ)—ସପ୍ତ ଭୁବନ (ଦେଖ) Sapata bhubana Sapta bhubana (See) সপ্ত ভুবন [ଦ୍ର—ଏହିପରି ସପତସିନ୍ଧୁ, ସପତ ସାଗର, ସପତ सात भुवन ଜନମ, ସପତ ଦ୍ୱୀପ ଆଦି ଶବ୍ଦ ବ୍ୟବହୃତ ହୁଏ।]

**ସପତମ**—ଗ୍ରା. ବିଣ (ପଦ୍ୟ) (ସଂ. ସପ୍ତମ)—ସପ୍ତମ (ଦେଖ) Sapatama Saptama (See) [ଉ—ସପତମ ଦିନ ହୋଇଲା ପରବେଶ। କୃଷ୍ଣସିଂହ. ମହାଭାରତ. ଆଦି।]

**ସପତମ ଶୀତଳ**—ଦେ. ବି—ମୃତାହର ସପ୍ତମ ଦିନ ଭାଇକୁଟୁମ୍ବଙ୍କୁ Sapatama sītala ଦିଆଯିବା ଜଳଖିଆ ଭୋଜନ—Light refreshment served to relatives and kinsmen on the 7th day of the funerals.

**ସପତମୀ**—ଗ୍ରା. ବିଣ (ସଂ. ସପ୍ତମୀ)—ସପ୍ତମୀ (ଦେଖ) Sapatami Saptamī (See)

**ସପତ ସୁ(ସ୍ୱ)ରୀ(ରା)**—ଦେ. ବିଣ (ସଂ. ସପ୍ତସ୍ୱର)—ସପ୍ତସ୍ୱରୀ; ସପ୍ତସ୍ୱର Sapata su(swa)ri(rā) ଯୁକ୍ତ (ବାଦ୍ୟ)—(musical সপ্তসুরা, instrument) Having seven tunes. सातसुरी ଦେ. ବି—ସପ୍ତସ୍ୱର ଯୁକ୍ତ ବାଜା—A musical instrument with seven tunes.

**ସପତା (ଇତ୍ୟାଦି)**—ଗ୍ରା. ବି (ସଂ. ସପ୍ତାହ)—ସପ୍ତା ଇତ୍ୟାଦି (ଦେଖ) Sapatā (etc) Saptā etc (See)

**ସପତ୍ନ**—ସଂ. ବି. ପୁଂ (ସପତ୍ନୀ+ତୁଲ୍ୟାର୍ଥେ. ଅ; ଅଥବା ସ=ସହ+ପତ୍ Sapatna ଧାତୁ=ପତନ କରିବା+କର୍ତ୍ତି. ନ; ଯାହା ବିରୁଦ୍ଧରେ (ସପତ୍ନ—ଅନ୍ୟରୂପ) ଅପଣାର ଦଳ ସହ ପତନ କରାଏ)—ଶତ୍ରୁ; ରିପୁ; ବୈରୀ—An enemy; adversary; antagonist. ସଂ. ବିଣ—ଶତ୍ରୁଭାବାପନ୍ନ—Inimical; antagonistic.

ସପତ୍ନଘ୍ନ—ସଂ. ବ ଓ ବଣ—ଶତ୍ରୁଧ୍ୱଂସକାରୀ—
Sapatnaghna Vanquisher of one's foes.
(ସପତ୍ନଜିତ୍, ସପତ୍ନ ଭୂଷଣ—ଅନ୍ୟରୂପ)

ସପତ୍ନାରି—ସଂ. ବ ( ସପତ୍ନ+ଅରି )—ଏକ ପ୍ରକାର କାଣ୍ଟିଆ; କଣ୍ଟା
Sapatnāri ବାଉଁଶ; ଚକ୍ରଳ ବାଉଁଶ—A species of
(ସହୋଦର—ଅନ୍ୟରୂପ) thorny bamboo; Bambosa
বেউড় বাংশ Arundanacia

ସପତ୍ନୀ—ବେ. ବ. ସ୍ତ୍ରୀ (ସ=ସମାନ+ପତି=ସ୍ୱାମୀ ଯାହାର; ବହୁବ୍ରୀହି)
Sapatnī —ସମାନପତିକା ସ୍ତ୍ରୀ; ସଉତୁଣୀ—Co-wife;
(ସପତ୍ନୀ—ଅନ୍ୟରୂପ) one married to a man who has got another wife.

ସପତ୍ନୀକ—ସ. ବଣ. ପୁଂ ( ସପତ୍ନୀ+କ )—୧ । ଯାହାର ଏକାଧିକ
Sapatnīka ବିବାହିତା ସ୍ତ୍ରୀ ଥାଆନ୍ତି—1. A person hav-
(ସପତ୍ନୀକ—ଅନ୍ୟରୂପ) ing more than one wife.
(ବିପତ୍ନୀକ—ବିପରୀତ). ୨ । (ସହାର୍ଥ ବହୁବ୍ରୀହି; ସ+ପତ୍ନୀ+କ)
ଯାହାର ସ୍ତ୍ରୀ ବଞ୍ଚିଥାଏ—2. A person having his wife living. ୩ । ସସ୍ତ୍ରୀକ; ସ୍ତ୍ରୀଙ୍କ ସମଭିବ୍ୟାହାରୀ—
3. Accompanied with one's wife.

ସପତ୍ନୀ ପୁତ୍ର—ସଂ. ବ. ପୁଂ (୬ଷ୍ଠୀ ତତ୍.)—ସଉତୁଣୀର ପୁଅ; ସପତ୍ନୀର
Sapatnī putra ପୁତ୍ର; ସାବତ ପୁଅ—The son of one's
(ସପତ୍ନୀ ତନୟ, ସପତ୍ନୀ ସୁତ—ଅନ୍ୟରୂପ) co-wife; stepson.

ସପତ୍ନୀ ପୁତ୍ରୀ—ସଂ. ବ. ସ୍ତ୍ରୀ—ସାବତ ଝିଅ; ସଉତୁଣୀଙ୍କ ଝିଅ—
Sapatnī putrī One's co wife's daughter;
(ସପତ୍ନୀ ତନୟା—ଅନ୍ୟରୂପ) step-daughter.

ସପତ୍ର—ସଂ. ବଣ ( ସ=ସହିତ+ପତ୍ର; ସହାର୍ଥ ବହୁବ୍ରୀହି )—
Sapatra ୧ । ପତ୍ରଯୁକ୍ତ—1. Leaved; leafy; hav-
(ସପତ୍ରକ—ଅନ୍ୟରୂପ) ing leaves. ୨ । ପକ୍ଷଯୁକ୍ତ—
2. Winged. ସଂ. ବ—ଶର; ବାଣ (ଶବ୍ଦକୋଷ)—
Arrow; dart.

ସପତ୍ର(ତ୍ରା)କୃତ—ସଂ. ବଣ (ସ=ସହିତ+ପତ୍ର=ବାଣର ପକ୍ଷ+କୃ
Sapatra(trā)kruta ଧାତୁ+କର୍ମ. କ୍ତ; ପକ୍ଷେ ଅ ଆଗମ)—
[ସପତ୍ର(ତ୍ରା)କୃତ—ବି] ୧ । ବାଣବିଦ୍ଧ; ଶରବିଦ୍ଧ (ମୃଗାଦି)—
1. (animal) Pierced with arrow or dart.
୨ । ଅତିଶୟ ଉତ୍ପୀଡ଼ିତ—2. Much oppressed; tortured; troubled; tormented.

ସପତ୍ରାକରଣ—ସଂ. ବ (ସ+ପତ୍ର=ବାଣର ପକ୍ଷ+କୃ ଧାତୁ+ଭାବ.
Sapatrākarana ଅନ)—୧ । ବାଣ ବା ଶର ଦ୍ୱାରା ବେଧନ—
(ସପତ୍ରାକୃତ—ଅନ୍ୟରୂପ) 1. Piercing with an arrow.
୨ । ଅତିଶୟ ପୀଡ଼ନ; ଉତ୍ପୀଡ଼ନ—2. Oppression, torturing; harassing; tormenting.

ସପଦି—ସଂ. ଅ (ସ=ସହ+ପଦ ଧାତୁ=ଗମନ କରିବା+କର୍ତ୍ତୃ. ଇ)—
Sapadi ୧ । ତତ୍‌କ୍ଷଣାତ୍; ସଙ୍ଗେ ସଙ୍ଗେ; ଏକାବେଳକେ—
1. Immediately; instantly; at once; simultaneously. ୨ । ଦ୍ରୁତ; ଶୀଘ୍ର—
2. Speedily; hastily.

ସପଦ୍ମ—ସଂ. ବ (ସହାର୍ଥ ବହୁବ୍ରୀହି)—ପଦ୍ମ ଭରିଷ୍ଠ—
Sapadma Full of lotus flowers.

ସପନ (ଇତ୍ୟାଦି)—ଗ୍ରା. ବ (ସଂ. ସ୍ୱପ୍ନ)—୧ । ସ୍ୱପ୍ନ ଇତ୍ୟାଦି (ଦେଖ)
Sapana (etc) 1. Swapna etc. ( See )
सपन ୨ । (ପୁଂ) ସ୍ୱପ୍ନେଶ୍ୱର ଡାକ ନାମ—2. (masculine)
স্বপন Name for calling Swapnaśwara.
[ସପନା(ନ), ସପନ(ନେ)ଶ(ଣ୍ଣ)ର—୨ୟ ଅର୍ଥରେ ଅନ୍ୟରୂପ]

ସପନ କଥା—ଗ୍ରା. ବ—୧ । ସ୍ୱପ୍ନରେ ଦେଖାଯିବା ବିଷୟ; ସ୍ୱପ୍ନଦୃଷ୍ଟ
Sapana kathā ବିଷୟ—1. A thing seen in dream.
सपन कथा [ଉ—ସପନ କଥା କି ସତ, ମଣିକାର ଉଚିତ—
सपनेकि बात ସଙ୍ଗୀତ ।] ୨ । କାଳ୍ପନିକ ବା ଅବାସ୍ତବ ବିଷୟ—
2. Imaginary thing. ୩ । ଆଶ୍ଚର୍ଯ୍ୟଜନକ ବିଷୟ
—3. Wonderful matter. ୪ । ଯେଉଁ କଥାର
ସତ୍ତା ନାହିଁ—4. Nonexistent thing.

ସପନ ଦୋଷ—ଗ୍ରା. ବ (ସଂ. ସ୍ୱପ୍ନଦୋଷ)—ସ୍ୱପ୍ନଦୋଷ (ଦେଖ)
Sapana dosha Swapna dosha (See)

ସପନା—ଦେ. ବ—୧ । ସ୍ୱପ୍ନେଶ୍ୱର ନାମକ ବ୍ୟକ୍ତିର ଅନାଦରସୂଚକ
Sapanā ଡାକ ନାମ—1. A name for calling Swapneśwara in contempt. ୨ । ସପନାଇବା;
ସ୍ୱପ୍ନରେ ଦେଖା ଦେବା—2. Appearing in dream.

ସପନା(ନେ)ଇବା—ଗ୍ରା. କ୍ରି. (ସଂ. ସ୍ୱପ୍ନ)—ସ୍ୱପ୍ନାଇବା (ଦେଖ)—
Sapanā(ne)ibā Swapnāibā (See)

ସପନାବତୀ—ଗ୍ରା. ବ.—ସ୍ୱପ୍ନ ସ୍ୱରୂପିଣୀ ଦେବୀ—The Goddess
Sapanābatī of dream; dream personified.
স্বপ্নদেবী स्वपनदेवी [ଉ—ଅଗୋ ତୁ ସପନାବତୀ ! ସପନ
ପାଡ଼ନା ପାଡ଼, ବଞ୍ଚାଇ ତୁ ନେତ୍ର ଗାଢ଼, ଜନମାନଙ୍କୁ ।
(ସଂଜ୍ୟସ୍ୱଳସା—ଅନ୍ୟରୂପ) —ପ୍ରାଚୀ. ରହସ୍ୟ ମଞ୍ଜରୀ]

ସପ ମଶିଣା—ଦେ. ବ—ସପ ଚଟେଇ; ଏକ ପ୍ରକାର ମସୃଣ ତୃଣଦ୍ୱାରା
Sapa masinā ବୁଣା ଯାଇଥିବା ମଶିଣା—A mat
सप्, सप्‌मॅंदूर সফচটাই made of a kind of
[ସପମଶୁଣି,ସପଚଟା(ଟେ)ଇ—ଅନ୍ୟରୂପ] slender reed. [କୃ—
ମେଦିନୀପୁର, କାନ୍ଥି ଓ ବାଲେଶ୍ୱରର ଜଳଭୂଖଣ୍ଡରେ
ମିଳିବା ଏକପ୍ରକାର ଜଳଜ ତୃଣର ଦଣ୍ଡରୁ ସପ ମଶିଣା
ବୁଣା ହୁଏ । ଏହାର କାଠି ସରୁ ସୁତାର ସରୁ ଦଉଡ଼ି
ବା ଯୋଡ଼ିଏ ସରୁ ଦଉଡ଼ି ଦ୍ୱାରା ବୁଣାଯାଏ । ବୁଣିବାର
ଦଉଡ଼ି ଗୋଟିଏ ହୋଇ ଖଞ୍ଜା ଯାଇଥିଲେ ଉକ୍ତ ସପ-
ମଶିଣାକୁ ଏକତାର, ଯୋଡ଼ି ହୋଇ ଦିଆ ଯାଇଥିଲେ
ଦୋତାର ଓ ପୁଞ୍ଜା ପୁଞ୍ଜା ହୋଇ ଦିଆ ଯାଇଥିଲେ ତାକୁ
ଚଉତାର ସପ ମଶିଣା କୁହାଯାଏ ।]

ସପର(ଧାତୁ)—ସ.—ପୂଜା କରିବା—
Sapara(root) To worship; to adore.

ସପର ସଲେଇ ହେବା—ଦେ. କ୍ରି.—ଅନୁରୋଧ ବିନା ଉପଦେଶ ଦେବା—
Sapara salei hebā To give advice gratis.
উপরে পড়ে উপদেশ দেওয়া बिना पूछे उपदेश देना

**ସପରିତୋଷ**—ସଂ. ବିଣ. (ସହାର୍ଥ ବହୁବ୍ରୀହି; ସ+ପରିତୋଷ)—
Saparitosha ପରିତୋଷ ସହିତ ବର୍ତ୍ତମାନ—With contentment or satisfaction; satisfied.

**ସପରିବାର**—ସଂ. ବିଣ. (ସ=ସହିତ+ପରିବାର; ସହାର୍ଥ ବହୁବ୍ରୀହି)
Saparibāra ୧ । ପରିଜନ ବର୍ଗ ସମନ୍ୱିତ—1. Having a family. ୨ । ସ୍ତ୍ରୀ ପୁତ୍ରାଦି ପରିବାର ସହିତ ବର୍ତ୍ତମାନ—2. Being accompanied with one's family members. ସଂ. କ୍ରି. ବିଣ.—ଆପଣାର ସ୍ତ୍ରୀ ପୁତ୍ରାଦି ପରିବାର ସହିତ (କୌଣସି କାର୍ଯ୍ୟ କରିବା)—Along with or accompanied by the members of one's family.
[ସପରିବାରେ, ସପରିବାରରେ—ଅନ୍ୟ କ୍ରି. ବିଣ. ରୂପ]

**ସପରିବାର ବିଦେଶ ବାସ**—ସଂ. ବି—ଆପଣାର ସ୍ତ୍ରୀ ପୁତ୍ରାଦିଙ୍କ ସଙ୍ଗେ
Saparibāra bidesa bāsa ଯେଉଁ ବିଦେଶରେ ବାସ କରିବା—Living abroad with one's family. [ଦ୍ର—ପୂର୍ବେ ଓଡ଼ିଆମାନଙ୍କ ସମାଜରେ ସପରିବାର ବିଦେଶ ବାସ କରି ଥିବା ଲୋକ କହୁଲେ ଚଳେ; ଏପରି କି, ସ୍ୱପରିବାର ବିଦେଶକୁ ଯିବା ବ୍ୟକ୍ତି ସମାଜଚ୍ୟୁତ ହେଉଥିଲେ ଓ ଏହିର ଫଳରେ ସମାଜଶାସନ ଯୋଗୁଁ ବାଧ୍ୟ ହୋଇ ବିଦେଶରେ ଏକାକୀ ରହିବା ବ୍ୟକ୍ତିମାନେ ଅବୈଧ ପରିବାରଙ୍କ ସୃଷ୍ଟି ଓ ପୁଷ୍ଟି ସାଧନ କରୁଥିଲେ । ବର୍ତ୍ତମାନ ମଧ୍ୟ ନିମ୍ନଶ୍ରେଣୀସ୍ଥ ଅଶିକ୍ଷିତ ବ୍ୟକ୍ତିମାନଙ୍କ ସମାଜରେ ସପରିବାର ବିଦେଶବାସ ଚଳି ନାହିଁ; କିନ୍ତୁ ପାଶ୍ଚାତ୍ୟ ଶିକ୍ଷାର ବିସ୍ତାର ସଙ୍ଗେ ସଙ୍ଗେ ଓଡ଼ିଆମାନେ ସପରିବାର ଭର୍ତ୍ତିସେବରେ ବାସ କରିବାକୁ ବେଶ ଆରମ୍ଭ କରିଅଛନ୍ତି ।]

**ସପରିଷତ୍କ**—ସଂ. ବିଣ ଓ କ୍ରି. ବିଣ (ସହାର୍ଥ ବହୁବ୍ରୀହି; ସ+
Saparishat-ka ପରିଷଦ୍+କ)—ସଦଳ—Accompanied by one's party

**ସପର୍ଯ୍ୟା**—ସଂ. ବି—(ସପର ଧାତୁ=ପୂଜା କରିବା+ଭାବ, ଯ+ଅ+
Saparjyā ଆ)—ପୂଜା (ଅମର)—Worship.

**ସପ(ପା)ସପ(ପା)**—ଦେ. ଅ. (ଧ୍ୱନ୍ୟନୁକରଣ)—୧ । ଜୋତା
Sapa(pā)sap(pa) ମାଡ଼ି ଚାଲିଲ ଶୁଣାଯିବାର ଶବ୍ଦ—
सप सप, सपासप फटफट 1. Sound of brisk walking with shoes on. ୨ । ଉପର୍ଯ୍ୟୁପରି ଦେହରେ ବେତାଘାତର ଶବ୍ଦ—2. Sound of repeated canings inflicted on a person.
सपासप सरसर ୩ । ଭାତରେ ଡାଲି ଗୋଳାଇ ଶୀଘ୍ର ଶୀଘ୍ର ମୁଣ୍ଡାମୁଣ୍ଡା ଖାଇବାର ଶବ୍ଦ—3. The sound of briskly eating handfuls of rice mixed with dal. ୪ । ଝଟ୍ପଟ୍; ଉପର୍ଯ୍ୟୁପରି ଓ ଶୀଘ୍ର ଶୀଘ୍ର—4. Repeatedly and hurriedly.

**ସପାଟ(ମ୍)**—ଦେ. କ୍ରି. ବିଣ.—ହଠାତ୍; ଝଟ୍—
Sapāt(m) Swiftly; at once.
हठात् धेकाधेक

**ସପାଦ**—ସଂ. ବିଣ. (ସ=ସହିତ+ପାଦ=ଚରଣ, ଚତୁର୍ଥଭାଗ)—
Sapāda ୧ । ଚରଣଯୁକ୍ତ—1. Footed; legged. ୨ । ଚତୁର୍ଥ ଭାଗ ସହିତ—2. With one fourth. ୩ । ସଓ୍ୱା—3. One and one fourth of.

**ସପାଦ ପୀଠ**—ସଂ. ବି.—(ସ=ସହିତ+ପାଦ ପୀଠ)—ପାଦପୀଠଯୁକ୍ତ
Sapāda pitha (ସିଂହାସନ)—Having a footstool attached to it.

**ସପାଦ ଶିରଣୀ**—ପ୍ରା. ଦେ. (ଫାରସୀ)ବି.—ସତ୍ୟନାରାୟଣ ପୂଜାରେ
Sapāda sirani ୧୦୦ ପାଚିଲା କଦଳୀ ସଙ୍ଗେ ଏକସେରର ଏକପାଅ ଘିଅ, ଏକସେର ଏକପାଅ ଦୁଧ, ଏକସେର ଏକପାଅ ଗହମଅଟା ମିଶାଯାଇ ତିଆରି କରାଯିବା ଭୋଗ—A preparation made by mixing 1¼ seers each of ghee, sugar, milk and wheaten flour with 100 ripe plantains and offered to Satyanārāyana.

**ସପାଦୁକ**—ସଂ. ବିଣ. ପୁଂ—(ସହାର୍ଥ ବହୁବ୍ରୀହି; ସ+ପାଦୁକା ଶବ୍ଦ)
Sapāduka ଜୋତା ବା କଠଉ ସହିତ—With shoes &
(ସପାଦୁକା—ସ୍ତ୍ରୀ) sandals on

**ସପିଣ୍ଡ**—ସଂ. ବିଣ. ପୁଂ. (ସ=ସମାନ ହୋଇଛି ପିଣ୍ଡ=ଶ୍ରାଦ୍ଧରେ
Sapinda ଦେୟ ଅନ୍ନ ଗୋଳକ ଯେଉଁମାନଙ୍କର; ବହୁବ୍ରୀହି)—
(ସପିଣ୍ଡା—ସ୍ତ୍ରୀ) ପିଣ୍ଡଦ୍ୱାରା ସଂବଦ୍ଧ—Related with one another by the funeral oblations and cakes. (ସଂ. ବି.—ସନାତ୍ନ; ମନୁଷ୍ୟର ଉପର ୩ ପୁରୁଷ (ପିତା, ପିତାମହ ଓ ପ୍ରପିତାମହ ଏବଂ ଏମାନଙ୍କ ସ୍ତ୍ରୀମାନେ), ତଳ ୩ ପୁରୁଷ (ପୁଅ, ନାତି ଓ ଅଣନାତି ଏବଂ ଏମାନଙ୍କ ସ୍ତ୍ରୀମାନେ) ଓ ନିଜେ, ଏପରି ୭ ପୁରୁଷ ଅନ୍ତର୍ଗତି ଜ୍ଞାତି; ପିଣ୍ଡଦ୍ୱାରା ସଂବଦ୍ଧ ଏକବଂଶୀୟ ବ୍ୟକ୍ତିଗଣ—Agnates of a person within 7 generations (related with each other on account of the offering of funeral cakes) [ଦ୍ର—ଯେଉଁମାନଙ୍କୁ ମୁଁ ପିଣ୍ଡ ଦିଏ (ଅର୍ଥାତ୍, ମୋ ପିତୃ ପିତାମହ ଓ ପ୍ରପିତାମହ ଏବଂ ସେମାନଙ୍କ ସ୍ତ୍ରୀମାନେ) ସେମାନେ ଓ ସେମାନଙ୍କୁ ଯେଉଁ ବଂଶଧରମାନେ (ଯଥା ମୋ ଭାଇ, ମୋ ପିତୃବ୍ୟ ଓ ପିତୃବ୍ୟଙ୍କ ପୁତ୍ର ଆଦି) ପିଣ୍ଡ ଦିଅନ୍ତି, ସେମାନେ ମୋର ସପିଣ୍ଡ; ଯେଉଁମାନେ ମୋତେ ପିଣ୍ଡ ଦେବେ (ଅର୍ଥାତ୍, ମୋ ପୁଅ, ନାତି ଓ ଅଣନାତି ଏବଂ ସେମାନଙ୍କ ସ୍ତ୍ରୀମାନେ), ସେମାନେ ପରସ୍ପର ସହିତ ବିବାହ ଓ ଦାୟାଦାଧିକାରରେ 'ସପିଣ୍ଡ'—ସଂପର୍କ ବୋଲି ବିବେଚିତ ହୁଅନ୍ତି; ଅର୍ଥାତ ମୃତ ବ୍ୟକ୍ତିର ସପିଣ୍ଡମାନେ ଦଶାହାଶୌଚ (ଅର୍ଥାତ୍ ୧୦ ଦିନ) ପାଳନ କରନ୍ତି । ସପିଣ୍ଡମାନଙ୍କ ମଧ୍ୟରେ ବିବାହ ନିଷିଦ୍ଧ । ମୃତ ବ୍ୟକ୍ତିର ଜୀବିତ ଥିବା

ନିକଟତମ ସପିଣ୍ଡ ତାହାର ତ୍ୟକ୍ତ ସଂପତ୍ତିରେ ଅଧିକାରୀ ହୁଏ ।

ସ୍ୱାମୀ ଯାହାଙ୍କର 'ସପିଣ୍ଡ' ଅଟନ୍ତି, ସ୍ତ୍ରୀ ମଧ୍ୟ ତାଙ୍କର 'ସପିଣ୍ଡ' ଅଟନ୍ତି ।

ଅପଣା ବଂଶର (ଉପର ୩ ପୁରୁଷ, ସ୍ୱୟଂ ଓ ତଳ ୩ ପୁରୁଷ) ୭ମ ପୁରୁଷ ପର୍ଯ୍ୟନ୍ତ ବ୍ୟକ୍ତି 'ସପିଣ୍ଡ', ୧୪ଶ ପୁରୁଷ ପର୍ଯ୍ୟନ୍ତ 'ସମାନୋଦକ' ଓ ତହିଁରୁ ଊର୍ଦ୍ଧ୍ୱ ବା ଅଧଃ 'ସଗୋତ୍ର' ଅଟନ୍ତି ।

ସପିଣ୍ଡ ୨ ପ୍ରକାରର; ଯଥା—ସଗୋତ୍ର ସପିଣ୍ଡ (ଅର୍ଥାତ ନିଜ ଗୋତ୍ରର ପିତୃ, ପିତାମହ, ପ୍ରପିତାମହ ଓ ପୁତ୍ର, ପୌତ୍ର ଓ ପ୍ରପୌତ୍ରାଦି) ଓ ଅସଗୋତ୍ର ସପିଣ୍ଡ (ଅର୍ଥାତ୍ ମାତାମହ, ପ୍ରମାତାମହ, ବୃଦ୍ଧ ଓ ପ୍ରମାତାମହ ଓ ଦୌହିତ୍ର, ଦୌହିତ୍ରପୁତ୍ର ଓ ଦୌହିତ୍ରପୌତ୍ରାଦି, ଯେଉଁମାନେ ମୋ ବଂଶଜ ନୁହନ୍ତି) ।

ଅଶୌଚ, ବିବାହ ଓ ଦାୟ ଭେଦରେ ସପିଣ୍ଡ ତ୍ରିବିଧ ॥ ଅଶୌଚ ବିଷୟେ ଉପରତନ ସପ୍ତମ ପୁରୁଷ ପର୍ଯ୍ୟନ୍ତ ସପିଣ୍ଡ ନାମରେ ଅଭିହିତ । ତିନି ପୁରୁଷ ପର୍ଯ୍ୟନ୍ତ ପିଣ୍ଡଭୋକ୍ତା ଓ ଚତୁର୍ଦ୍ଧ ୩ ପୁରୁଷ ପିଣ୍ଡର ଲେପଭୋକ୍ତା; ଏହି ୬ ପୁରୁଷ ଓ ସ୍ୱୟଂ ପିଣ୍ଡଦାତା—ଏପରି ସାତପୁରୁଷ ସପିଣ୍ଡ ଅଟନ୍ତି । ଏହା ପୁରୁଷମାନଙ୍କ ବିଷୟରେ ଜାଣେ । ସ୍ତ୍ରୀ ମାନଙ୍କ ପକ୍ଷରେ ବଶିଷ୍ଠ ବିଧାନ ଏହିକି, ଭର୍ତ୍ତାଙ୍କ ସପିଣ୍ଡ ବାଗ୍ଦତ୍ତା କନ୍ୟାର ସପିଣ୍ଡ ଅଟନ୍ତି । ଅଦତ୍ତ କନ୍ୟାର ପିତୃ, ପିତାମହ ଓ ପ୍ରପିତାମହ ସପିଣ୍ଡ; ତତୁର୍ଦ୍ଧ୍ୱ ପୁରୁଷଙ୍କ ସହିତ ଅଦତ୍ତକନ୍ୟାର ସପିଣ୍ଡତ୍ୱ ନାହିଁ । ସପିଣ୍ଡ ଜ୍ଞାତିଙ୍କ ମରଣରେ ବା ଜନ୍ମରେ ପୂର୍ଣ୍ଣ ଶୌଚ ପାଳିବାକୁ ହୁଏ । କିନ୍ତୁ କନ୍ୟାର ଜନ୍ମରେ ୩ ପୁରୁଷ ପର୍ଯ୍ୟନ୍ତ ପୂର୍ଣ୍ଣାଶୌଚ ହୁଏ; ତତୁର୍ଦ୍ଧ୍ୱ ପୁରୁଷଙ୍କର ତ୍ରିରାତ୍ର ଅଶୌଚ ହୁଏ । ବିବାହ ବିଷୟରେ ପିତା ଓ ପିତାଙ୍କ ପିତୃଷ୍ୱସୀ ପୁଅ ଭାଇଙ୍କ ଠାରୁ ସପ୍ତମ ପୁରୁଷ ପର୍ଯ୍ୟନ୍ତ ଓ ମାତାମହ ଓ ମାଉସୀ ପୁଅ ଭାଇଙ୍କ ଠାରୁ ପଞ୍ଚମ ପୁରୁଷ ପର୍ଯ୍ୟନ୍ତ ସପିଣ୍ଡ ଅଟନ୍ତି ॥ ବରର ଓ କନ୍ୟାର ପିତୃ ପକ୍ଷଠାରୁ ସପ୍ତମ ଓ ମାତୃ ପକ୍ଷଠାରୁ ପଞ୍ଚମ ପୁରୁଷ ବାଦ୍ ଦେଇ ବିବାହସ୍ଥିର କରିବା କର୍ତ୍ତବ୍ୟ । ଦାୟ ବିଷୟରେ ୩ ପୁରୁଷ ପର୍ଯ୍ୟନ୍ତ ସପିଣ୍ଡ, ଅର୍ଥାତ୍ ଦାୟ ବିଷୟରେ ପିତା, ପିତାମହ ଓ ପ୍ରପିତାମହ ଓ ସେମାନଙ୍କ ପୁତ୍ର, ପୌତ୍ର, ପ୍ରପୌତ୍ର ଓ ମାତାମହ, ପ୍ରମାତାମହ ଓ ବୃଦ୍ଧପ୍ରମାତାମହ ଓ ସେମାନଙ୍କ ପୁତ୍ର, ପୌତ୍ର, ପ୍ରପୌତ୍ର ସପିଣ୍ଡ ଅଟନ୍ତି—ବିଶ୍ୱକୋଷ]

**ସପିଣ୍ଡନ**—ସଂ. ବି (ସ+ପିଣ୍ଡ, ଧାତୁ+ଭାବ. ଅନ)—ସପିଣ୍ଡୀକରଣ—
Sapindana — The ritual of incorporating a deceased among the Sapindas of a person.

**ସପିଣ୍ଡା**—ସଂ. ବି ଓ ବିଣ. ସ୍ତ୍ରୀ—ସପିଣ୍ଡର ସ୍ତ୍ରୀଲିଙ୍ଗ—
Sapindā — Feminine of Sapinda.

**ସପିଣ୍ଡୀକରଣ**—ସଂ. ବି (ସପିଣ୍ଡ+ଅଭୂତ ତଦ୍ଭାବେ ଚ୍ୱି+କୃ ଧାତୁ+ଭାବ. ଅନ)—ମୃତାହରେ ମୃତ ବ୍ୟକ୍ତିର
Sapindīkarana — ପ୍ରେତ ଉଦ୍ଦେଶ୍ୟରେ ପ୍ରଦତ୍ତ ପିଣ୍ଡକୁ ପିତା, ପିତାମହ, ପ୍ରପିତାମହଙ୍କ ପିଣ୍ଡ ସଙ୍ଗେ ମିଶାଇବା ରୂପ କର୍ମ; ପିତୃପିଣ୍ଡ ସଙ୍ଗେ ପ୍ରେତପିଣ୍ଡର ମିଶ୍ରୀକରଣ—The ritual of admitting the deceased to the category of Sapinda and excluding the erstwhile eldest Sapinda from the category.

[ଦ୍ର—ଏହା ମୃତ୍ୟୁର ସଂବତ୍ସରାନ୍ତେ କର୍ତ୍ତବ୍ୟ । କୌଣସି ବ୍ୟକ୍ତିଙ୍କ ଜୀବିତ ଥିବା ସମୟରେ ସେ ତାହାଙ୍କ ଉପରସ୍ଥ ୩ ପୁରୁଷଙ୍କୁ ଅର୍ଥାତ୍, ପିତୃ, ପିତାମହ ଓ ପ୍ରପିତାମହଙ୍କୁ ପିଣ୍ଡଦାନ କରନ୍ତି; କିନ୍ତୁ ସେ ମରିଗଲେ ତାଙ୍କ ପୁଅ ନିଜର ଉପରସ୍ଥ ତିନି ପୁରୁଷଙ୍କୁ (ଅର୍ଥାତ, ମୃତ ବ୍ୟକ୍ତି, ଏବଂ ମୃତ ବ୍ୟକ୍ତିଙ୍କ ପିତା ଓ ପିତାମହ, ଏପରି ୩ ପୁରୁଷଙ୍କୁ ) ପିଣ୍ଡ ଦିଅନ୍ତି । ଏଥିଲାଗି ମୃତ ବ୍ୟକ୍ତିଙ୍କର ମରିବାର ଏକବର୍ଷ ପୂରିଲେ ମୃତ ବ୍ୟକ୍ତିଙ୍କ ଉପରସ୍ଥ ୩ ପୁରୁଷଙ୍କ ପାଇଁ ୩ ଗୋଟି ପିଣ୍ଡ ସ୍ଥାପିତ କରାଯାଏ ଓ ଉକ୍ତ ୩ ଗୋଟି ପିଣ୍ଡର ପାଖରେ ମୃତ ବ୍ୟକ୍ତିଙ୍କ ପ୍ରେତଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ପିଣ୍ଡ ରଖାଯାଏ । ତତ୍ପରେ ଉକ୍ତ ପ୍ରେତପିଣ୍ଡକୁ ୩ ଭାଗ କରି ପୂର୍ବର ୩ ପିଣ୍ଡରେ ମିଶାଇ ଦିଆଯାଏ ଓ ମୃତ ବ୍ୟକ୍ତିଙ୍କ ପ୍ରପିତାମହ 'ସପିଣ୍ଡ' ଶ୍ରେଣୀରୁ କଟିଯାଆନ୍ତି ଓ ମୃତ ବ୍ୟକ୍ତି (ଯେ କି ଏପର୍ଯ୍ୟନ୍ତ ପ୍ରେତ ଥିଲେ) 'ସପିଣ୍ଡ' ଶ୍ରେଣୀଭୁକ୍ତ ହୁଅନ୍ତି । ଏହି କ୍ରିୟାକୁ 'ସପିଣ୍ଡୀ କରଣ' ବୋଲଯାଏ । ଏହା ମୃତ୍ୟୁର ଏକ ବର୍ଷ ପୂରିଲେ କରାଯିବାର ବିଧି, କିନ୍ତୁ ସାଧାରଣତଃ ଲୋକେ ଏହାକୁ ଓ ବର୍ଷକ ମଧ୍ୟରେ କରାଯିବା ଅନ୍ୟ ଶ୍ରାଦ୍ଧମାନଙ୍କୁ ମୃତ୍ୟୁର ଦ୍ୱାଦଶଦିନ କରିନେଇ ଗୋଟାଏ ଦାୟିତ୍ୱରୁ ମୁକ୍ତ ହୋଇ ଯାଆନ୍ତି । ଏପରି କରିବା ପାଇଁ ମଧ୍ୟ ଶାସ୍ତ୍ର ବଚନ ଅଛି । ସପିଣ୍ଡୀକରଣ ପରେ ମୃତ ବ୍ୟକ୍ତିଙ୍କ ଆତ୍ମା ପ୍ରେତଦେହତ୍ୟାଗକରି 'ଭୋଗ-ଦେହ' ବା ପିତୃଲୋକରେ ଧାରଣ କରାଯିବା ଦେହ ଲାଭ କରନ୍ତି । ସପିଣ୍ଡୀ କରଣ ପୂର୍ବରୁ ମୃତ ବ୍ୟକ୍ତି 'ଅମୋକ୍ଷ-ପ୍ରେତ' ହୋଇ ରହି ଥାଆନ୍ତି ଓ ସପିଣ୍ଡୀକରଣ ପରେ 'ପିତୃତ୍ୱ' ଲାଭ କରନ୍ତି ।]

**ସପିଣ୍ଡୀକୃତ**—ସଂ. ବିଣ. ପୁଂ—ଯେଉଁ ମୃତବ୍ୟକ୍ତିଙ୍କର ସପିଣ୍ଡୀକରଣରୂପ
Sapindīkruta — କ୍ରିୟା କରା ଯାଇଅଛି—( a deceased ) (ସପିଣ୍ଡୀକୃତା—ସ୍ତ୍ରୀ) For whom the Sapindikarana rites have been performed, i. e. who has been admitted to the category of Sapinda by the Sapindīkarana ritual.

**ସପିନା**—ବୈଦେ. ବି (ଇଂ. ସପିନା)—ବିଚାରାଳୟରେ ହାଜର ହେବା
Sapinā — ପାଇଁ ପକ୍ଷ ବା ସାକ୍ଷୀଙ୍କ ପ୍ରତି କୋର୍ଟରୁ ଡାକିବା
ସପିନା ସବିନା — ସମନ୍—Subpoena; summons.

**ସପିବା**—ପ୍ରାଦେ. (ସମ୍ବଲପୁର) କ୍ରି. (ସଂ. ଶପ୍, ଧାତୁ)—୧ । ସର୍ଜିବା.
Sapibā ଗାଳି ଦେବା—1. To rebuke. ୨ । ଅଭିଶାପ ଦେବା—2. To curse.

**ସପୀତକ**—ସଂ. ବି (ସ+ପୀତ+କ) (ବୈଦ୍ୟକ)—୧ । ବବୁଲ;
Sapītaka ବବୁର ଗଛ—1. Acacia Arabica (tree). ୨ । ରାଜକୋଷାତକୀ; ଜହ୍ନି (ରାଜନିର୍ଘଣ୍ଟ)—2. A kind of Luffa fruit.

**ସପୀତି**—ସଂ ବି ( ସ=ସହ+ପୀତି=ପାନ )—ଏକାଧିକ ବ୍ୟକ୍ତିଙ୍କର
Sapīti ଏକତ୍ର (ମଦ୍ୟ ଓ ଜଳାଦି ଓ ଅଳକାଦି ସୁରା, କାଫି) (ସହପୀତି—ଅନ୍ୟରୂପ) ପାନ କ୍ରିୟା; ସହପାନ; ବନ୍ଧୁ ଓ ଅଗ୍ନିସ୍ଥଙ୍କ ସଙ୍ଗେ ବସି ଏକତ୍ର ପାନ କରିବା ରୂପ କ୍ରିୟା—The act of more than one person drinking together; drinking in company.

**ସପୀତିକା**—ସଂ. ବି ( ବୈଦ୍ୟକ )—ଜହ୍ନିଘୋଷା; ମହାକୋଶାତକୀ;
Sapītikā ମଧୁର ତରଡ଼ା (ରାଜ ନିର୍ଘଣ୍ଟ)—The Luffa Aegyptica (fruit).

**ସପୁତ୍ର**—ସଂ. ବିଣ. ପୁଂ (ସହାର୍ଥ ବହୁବ୍ରୀହି; ସ=ସହିତ+ପୁତ୍ର)—
Saputra ୧ । ପୁତ୍ର ସହିତ ବିଦ୍ୟମାନ; ପୁତ୍ର ବିଶିଷ୍ଟ—(ସପୁତ୍ରକ—ଅନ୍ୟରୂପ) 1. Having a son. ୨ । ଯାହା ସଙ୍ଗେ [ସପୁତ୍ରା, ସପୁତ୍ରିକା—ସ୍ତ୍ରୀ] ପୁତ୍ର ଥାଏ—2. Attended with (ଅପୁତ୍ରକ—ବିପରୀତ) or accompanied by one's son.

**ସ(ସୁ)ପୁର୍**—ପ୍ରାଦେ. (ସମ୍ବଲପୁର, ପାଟଣା, କୋରିଆ, ବାମଣ୍ଡା). ବିଣ—
Sa(su)pur ୧। ସରୁ; କ୍ଷୀଣ—1. Tender; fine. (ଦ୍ର—ସପୁରୁ ଲୁଗା, ସପୁର୍ ଗୁଞ୍ଜଲ୍ ।) ୨ । ଅଣଓସାରିଆ—2. Narrow. ୩ । ଅତିକ୍ଷୁଦ୍ର—3. Tiny.

**ସ(ସୁ)ପୁର୍ ଚକୁଲି**—ପ୍ରାଦେ (ବାମଣ୍ଡା) ବି—ସରୁ ଚକୁଳି—
Sa(su)pur chakuli Thin Chakuli cake.

**ସପୁରି**—ବୈଦେ. ବି [ଅ. ସଫର୍=ବିଦେଶ; ସଫରୀ=ବିଦେଶାଗତ
Sapuri (ଫଳ) ]—ଅମ୍ଳ ମଧୁର ରସଯୁକ୍ତ ଫଳ ବିଶେଷ—
আনারস आनानस Pineapple, Ananas Sativus. (ସମୁରି, ସପୁରି ପଣସ —ଅନ୍ୟରୂପ) [ଦ୍ର—ଆମେରିକାର ବ୍ରାଜିଲ୍ (ସଂ. ବହୁନେତ୍ର ଫଳ; ଅନଂକାଶ) ଦେଶରୁ ଏହା ପ୍ରଥମେ ଭାରତକୁ ଆସିଛି ଓ ବର୍ତ୍ତମାନ ସର୍ବତ୍ର କୃଷିଦ୍ୱାରା ଉତ୍ପାଦିତ ହେଉଅଛି । ଆସାମର ଓ ବ୍ରହ୍ମଦେଶର ଜଙ୍ଗଲରେ ଏହା ପ୍ରଚୁର ଜନ୍ମେ । ଏହା କଅଁଳାଗଛ ଗୁଳ୍ମ; ତହିଁର ଶାଖାଗ୍ରରୁ ବହୁ ପୁଷ୍ପ ଜାତ ହୋଇ ତହିଁରେ ଏହି ଫଳ ଧରେ । ଏହା ବିଦେଶୀୟ ପ୍ରାଚୀନ ଗଛ ନୁହେଁ । ଏହାର ବ୍ରାଜିଲ୍ ଦେଶୀୟ ନାମ 'ନନସ୍' (Nanas) । ପର୍ତ୍ତୁଗୀଜ୍ (ଯେଉଁମାନେ ପ୍ରଥମେ ଆମେରିକାକୁ ଯାଇଥିଲେ ସେମାନ)ଙ୍କ ଭାଷାର 'ଅନାନସ୍' (Ananas)=ପାଇନ୍ (Pine) ଗଛର ଫଳ ସହିତ ଏହି ଫଳର ସାଦୃଶ୍ୟ ଥିବାରୁ ଇଂରେଜମାନେ ଏହାକୁ ପାଇନ୍ ଅପଲ୍ (Pine apple) କହିଲେ । ବୈଦ୍ୟଶାସ୍ତ୍ର ଅନୁସାରେ ଏହା କୃମିଘ୍ନ, ମଧୁର ବଳକର, ବାତହର, ରୁଚ୍ୟ, ଶ୍ଳେଷ୍ମଳ, ତୃପ୍ତିପ୍ରଦ ଓ ଗୁରୁପାକ ଅଟେ । ଏହାର ରସ ଅମ୍ଳମଧୁର ଓ ଏହି ଫଳ ଉପରୁ ଚୋପା ଛଡାଇ, ତା ମଝିରେ ଥିବା ଟାଣୁଆ ଭାଗକୁ ବାଦ୍ ଦେଇ ଡେଙ୍ଗା ଡେଙ୍ଗା କରି କାଟି କଞ୍ଚା ଅବସ୍ଥାରେ ଅମ୍ବିଲ କରାଯାଏ ଓ ପାଚିଲା ଅବସ୍ଥାରେ ଖିଆଯାଏ । ଏଥିରେ ମୁରବ୍ବା ମଧ୍ୟ ହୁଏ । ସପୁରିରସକୁ ଲୋକେ ପାଚିଲା ଗାମୁଗ୍ଧରେ ମଡ଼ାନ୍ତି ଓ ସପୁରି କନ୍ଦାର ରସକୁ କୃମିରୋଗଗ୍ରସ୍ତ ଶିଶୁଙ୍କୁ ଖୁଆନ୍ତି ।]

**ସପୁରି ଆଖି**—ଦେ. ବି—ସପୁରି ଫଳର ଦେହ ଉପରେ ବା ଚୋପାରେ
Sapuri ākhi ଥିବା ଗୋଲାକାର ଚିହ୍ନମାନ—The eylets আনাবসের চোখ or circular marks on the skin of नसकी बिची the pineapple fruit.

**ସପୁରି କନ୍ଦା**—ଦେ.ବି—ସପୁରି ଗଛର ଦଣ୍ଡର ମୂଳରେ ପତ୍ରର ପାଖୁଡ଼ା-
Sapuri kandā ମାନଙ୍କ ଭିତରେ ଥିବା କୋମଳାଂଶ—
আনাবস গাছের মাঝ The soft kernal inside the आनानस कन्द stem of the pine apple plant near the root.
[ଦ୍ର—ଏହି କନ୍ଦାର ରସକୁ କୃମିରୋଗଯୁକ୍ତ ଶିଶୁଙ୍କୁ ଖୁଆଇଲେ କୃମି ନଷ୍ଟ ହୋଇଯାଆନ୍ତି ଏବଂ ଶିଶୁ ନୀରୋଗ ଓ ସବଳ ହୁଅନ୍ତି ।]

**ସପୁରି ମୁ(ମୋ)ରବା(ବ୍ବା)**—ଦେ. ବି—ସପୁରିର ଚୋପା ଛଡ଼ାଯାଇ
Sapuri mu(mo)rabā(bbā) ତହିଁର କୋମଳାଂଶକୁ ଚିନି আনাবস মোরবা ସହିତ ପାକ କରାଯାଇ ପ୍ରସ୍ତୁତ କରାଯିବା ମିଷ୍ଟାନ୍ନ—
आनानसका मोरब्बा Preserve or marmalade made from pineapple.

**ସପୁର୍ଣ୍ଣି (ର୍ଣି)ଆ**—ପ୍ରାଦେ, (ଗଡ଼ଜାତ) ବି—ଝଙ୍କାଳିଆ ବନ୍ୟଗୁଳ୍ମ-
Sapurṇṇi(rni)ā ବିଶେଷ—Heptapleurum Venulosum (plant)—(Haines Botany of Bihar and Orissa).

**ସପୁଷ୍ପ**—ସଂ. ବିଣ. ପୁଂ (ସ=ସହିତ+ପୁଷ୍ପ; ସହାର୍ଥ ବହୁବ୍ରୀହି)—
Sapushpa ପୁଷ୍ପଯୁକ୍ତ—Flowered; having flowers. (ସପୁଷ୍ପା—ସ୍ତ୍ରୀ)

**ସପେଟା**—ବୈଦେ. ବି ( ଇଂ. ସପୋଟା )—ବକୁଳାଦିବର୍ଗର ତରୁ-
Sapeṭā ବିଶେଷ ଓ ତହିଁର ସୁଖାଦ୍ୟ ଫଳ—Achras Sapota;
সপেটা सपेता sapodilla. [ଦ୍ର—ଏହି ଗଛ ବିଦେଶୀ; ଜାମେକାଦ୍ୱୀପରୁ ପୂର୍ବେ ଭାରତକୁ ଆସିତ ହୋଇ ଅଳକାଳି ଉଦ୍ୟାନରେ ଲଗି ଫଳ ଫଳୁଛି । ଏହାର ଫଳ କୁକୁଟ-ଡିମ୍ବାକୃତି ଓ ପାଚିଲେ ମାଂସଳ । ଏଥିମଧ୍ୟରେ ଚକୁଡ଼ା ଚକୁଡ଼ା ଈଷତ୍ ହରିଦ୍ ବର୍ଣ୍ଣ କୋମଳ ଶସ୍ୟ ମଧ୍ୟରେ ବଉଳକୋଳି ଠାରୁ ଲମ୍ବ କଳା ମଞ୍ଜିମାନ ଥାଏ । ଏ ଫଳର ଉପର ଚୋପା କଷ୍ୟବର୍ଣ୍ଣ । ପାଚିଗଲେ ଏଥିର ଚୋପା ଉପରେ ବିନ୍ଦୁ ବିନ୍ଦୁ ଚିହ୍ନ ଦେଖାଯାଏ । ଆମେରିକା ମେକ୍ସିକୋ

ଦେଶର ଭାଷାରେ ଏଥିର ନାମ କୋକିଟ ଜାପୋଟେ (Cochit-Zapote) ଓ ସ୍ପେନ୍ ଦେଶୀୟ ଭାଷାରେ ଜାପୋଟେ (Zapote) (କାରଣ ସ୍ପେନ୍ ଦେଶବାସୀମାନେ ପ୍ରଥମେ ଏ ଫଳକୁ ଅମେରିକାରେ ଦେଖିଥିଲେ) । ଏଥିର ଫଳକୁ ଇଂରାଜୀରେ ସପୋଟା (Sapota; the Sapotilla plum) କହନ୍ତି ।]

ସପ୍ତା(ପ୍ତେ)ଇବା—ଦେ କି—ସପ୍ଟାଇବା (ଦେଖ)
Saptā(pte)ibā Sap-ṭāibā. (See)

'ସପ୍ତିବା—ଦେ କି—ସପ୍ଟିବା (ଦେଖ)
Saptibā Sap-ṭibā. (See)

ସପ୍ତ—ସଂ. ବି (ସଂଖ୍ୟାବାଚକ; ବହୁବଚନ) (ସପ୍ ଧାତୁ=ଏକତ୍ର ହେବା+କର୍ମ ତନ୍; ସପ୍ତନ୍ ଶବ୍ଦ, ୧ମା,ବହୁବଚନ)—
Sapta ସାତ (ସଂଖ୍ୟା)—Seven. ସଂ. ବିଣ—ସାତସଂଖ୍ୟକ—Seven in number. [ଦ୍ର—ସପ୍ତ ସଂଖ୍ୟାର ବ୍ୟବହାର ଅନେକ ସ୍ଥଳରେ ଓ ଅନେକ ଗଣନାରେ ଦେଖାଯାଏ ଏବଂ ପ୍ରାଚୀନ କାଳମାନଙ୍କ ମଧ୍ୟରେ ଏହି ସଂଖ୍ୟା ଶୁଭସୂଚକ ବୋଲି ବିବେଚିତ ହେଉଥିଲା । ଏହି ଶବ୍ଦ ବହୁବଚନାନ୍ତ । ସପ୍ତବାଚକ ବା ସପ୍ତସଂଖ୍ୟକ ବସ୍ତୁସୂଚକ କେତେକ ଶବ୍ଦ:—ସାତ ଭୁବନ, ଧାତୁ, ଋଷି, ମନୁଷ୍ୟ, ଦ୍ୱୀପ, ସିନ୍ଧୁ, ବାର, ସୂର୍ଯ୍ୟାଶ୍ୱ, ସ୍ୱର, ରାଜାଙ୍ଗ, ଅଙ୍ଗ, ବ୍ରୀହି, ବହ୍ନି, ଶିଖା, ପର୍ବତ ।

ଅନ୍ୟାନ୍ୟ ଭାଷାରେ 'ସପ୍ତନ୍' ଶବ୍ଦର ସାଦୃଶ୍ୟ ଯଥା,—ସଂସ୍କୃତ ସପ୍ତ, ଇଂରେଜୀ—ସେଭେନ୍, ପାରସୀ—ହଫତ୍, ଗ୍ରୀକ୍—ହେପ୍ଟ, ଲାଟିନ—ସେପ୍ଟେମ୍, ଜର୍ମାନ୍—ସେପ୍ଟ, ଓଡ଼ିଆ ଓ ହିନ୍ଦୀ ଓ ବଙ୍ଗଳା—ସାତ ।]

ସପ୍ତକ—ସଂ. ବି. (ସପ୍ତନ+ସ୍ୱାର୍ଥେ କ)—୧ । ସପ୍ତ ସଂଖ୍ୟା—1. The
Saptaka number seven. ୨ । ସାତ ଗୋଟି ବସ୍ତୁର ଏକତ୍ର ମିଳନ—2.The aggregate of seven things; a group of seven things. ୩ । (ସଂଗୀତ) ସାତ ଗୋଟି ସ୍ୱରର ଏକତ୍ର ମିଳନ—3. The combination of the seven musical tunes. [ଦ୍ର—ସଂଗୀତର ୩ଟି ଗ୍ରାମ (ଯଥା—ଉଦାରା, ମୁଦାରା ଓ ତାରା) ରେ ଗୋଟିଏ ଲେଖାଏଁ ସପ୍ତକ ଅଛି । ଷଡ଼୍ଜ (ସା), ଋଷଭ (ରି), ଗାନ୍ଧାର (ଗା), ମଧ୍ୟମ (ମା), ପଞ୍ଚମ (ପା), ଧୈବତ (ଧା), ନିଷାଦ (ନି), ଏହି ୭ଟି ସ୍ୱରରେ ଗୋଟିଏ ସପ୍ତକ ହୁଏ । ଇଂରାଜୀରେ ସ୍ୱରଗ୍ରାମକୁ Octave (ଅଷ୍ଟକ) ବୋଲାଯାଏ । କାରଣ ମୁଦାରାର 'ସା' ଉଦାରାର ସାତସ୍ୱର ସଙ୍ଗେ ଓ ତାରାର 'ସା' ଉଦାରାର ୭ ସ୍ୱର ସଙ୍ଗେ ଗଣାଯାଇ ୮ ବିବେଚିତ ହୁଏ ।

ହିନ୍ଦୁ ସଂଗୀତର ୭ ଗୋଟି ମୌଳିକ ଧ୍ୱନି ଅଛି; ଯଥା, 'ସା, ରି, ଗା, ମା, ପା, ଧା, ନି' । ଏହି ସପ୍ତକ ପୁଣି ଗ୍ରାମଭେଦରେ ଉଚ୍ଚ, ମଧ୍ୟ, ନିମ୍ନ ଏହିପରି ତିନି ଭାଗରେ ବିଭକ୍ତ । (୧) ମୁଦାରା, (୨) ଉଦାରା ବା ମନ୍ଦ୍ର, (୩) ତାରା ।

ଏହି ସପ୍ତକ ମଧ୍ୟରେ ୫ ଗୋଟି ବିକୃତ ସ୍ୱର ଅଛି ଯଥା, ୨ ଓ ୩ ମଧ୍ୟରେ କୋମଳ ଋଷଭ(ରି), ୩ ଓ ୪ ମଧ୍ୟରେ କୋମଳ ଗାନ୍ଧାର (ଗା), ୪ ଓ ୫ ମଧ୍ୟରେ ତୀବ୍ର ମଧ୍ୟମ (ମା), ୬ ଓ ୭ ମଧ୍ୟରେ କୋମଳ ଧୈବତ (ଧା), ୭ ପରେ କୋମଳ ନିଷାଦ (ନି) । 'ସ୍ୱର' ତଳେ କୋଠ ଦେଖ ।]
ସଂ. ବିଣ—ସପ୍ତ ସଂଖ୍ୟକ—1. Numbering seven; consisting of seven. ୨ । ସପ୍ତମ; ସାତର ପୂରଣ; ସପ୍ତ ସ୍ଥାନୀୟ—2. Seventh.

ସପ୍ତକାଣ୍ଡ—ସଂ. ବି.—ରାମାୟଣ ଗ୍ରନ୍ଥର ୭ ଗୋଟି କାଣ୍ଡ ବା ବିଭାଗ—
Sapta kāṇḍa The seven books or parts of the Rāmāyāṇa.

ସପ୍ତକୀ—ସଂ. ବି. (ସପ୍ତକ=ସପ୍ତ ସଂଖ୍ୟକ+ଈ; ଯାହାର ୭ ଗୋଟି
Saptaki ସର ଥାଏ; କିମ୍ବା ସପ୍ ଧାତୁ=ଏକତ୍ର ହେବା+କର୍ତ୍ତୃ ତକ+ଈ; ଯାହା କଟିରେ ଏକତ୍ର ହୁଏ) ୧ । କାଞ୍ଚୀ; ଅଣ୍ଟାସୂତା; ମେଖଳା; (ଅମର)—1. Waist-chain; girdle. ୨ । ସାତ ସରିଆ ଗୋଠ—2 A seven-stringed waist-chain. ଦେ. ବି. ବୀଣା—Harp [ଭି—ସପ୍ତକୀ ନିନାଦ, ଶୁଣି ମୁଁ ଅନନ୍ଦ, ରସସାଗରେ ଭାସିବି ।—ଅଭିମନ୍ୟୁ, ବିଦଗ୍ଧ ଚିନ୍ତାମଣି]

ସପ୍ତକୋ(କ୍ରୋ)ଶୀ ଗଣ୍ଡ—ଦେ.ବି. ନାମ—(ସାତ କୋଶିଆ ଗଣ୍ଡ(ଦେଖ)
Sapta ko(kro)śi gaṇḍa Sāta kośiā gaṇḍa (see)

ସପ୍ତଗଙ୍ଗ—ସଂ. ବି. (ସମାହାର ଦ୍ୱିଗୁ)—(ସପ୍ତନ୍+ଗଙ୍ଗା)—ସାତ ଗୋଟି
Sapta gaṅga ନଦୀର ମିଳନ ସ୍ଥାନ—The junction of 7 rivers.

ସପ୍ତଗ୍ରନ୍ଥି ଶୁଣ୍ଡ—ସଂ.ବି. (ଜୀବବିଜ୍ଞାନ ପରିଭାଷା)—ଯେଉଁ ଜୀବମାନଙ୍କର
Sapta granthi śuṇḍa ଶୁଣ୍ଡଦ୍ୱୟର ଅଗରେ ୭ଟି ଲେଖାଏଁ ଗ୍ରନ୍ଥି ଥାଏ (ଯଥା—ବୁଣ୍ଟିକି) The chilopoda.

ସପ୍ତଗ୍ରାମ—ଦେ. ବି. (ନାମ) ସାତଗାଁ ନାମକ ବଙ୍ଗ ଦେଶର ପ୍ରାଚୀନ
Saptagrāma ବିଖ୍ୟାତ ଅଞ୍ଚଳ ଓ ତାହାର ରାଜଧାନୀ—Name of a province & its capital of ancient Bengal. (ଦ୍ର—ଏହି ସପ୍ତଗ୍ରାମନଗର ଅଧୁନାକ ହୁଗୁଳି ସହରର ଉତ୍ତର ପଶ୍ଚିମରେ ପ୍ରାୟ ୧୫ କୋଶ ଦୂରରେ ତ୍ରିବେଣୀ ତୀର୍ଥ ନିକଟରେ ବର୍ତ୍ତମାନ ବିଲୁପ୍ତ ସରସ୍ୱତୀ ନାମକ ନଦୀ ତୀରରେ ଅବସ୍ଥିତ ଥିଲା । ହିନ୍ଦୁ ରାଜତ୍ୱରେ ଏହା ସମୃଦ୍ଧିଶାଳୀ ନଗର ଥିଲା । ଖ୍ରୀଃ ତ୍ରୟୋଦଶ ଶତାବ୍ଦୀ ପରେ ବଙ୍ଗ ମୁସଲମାନଙ୍କ ଅଧିକୃତ ହେବା ପରେ ମଧ୍ୟ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଏହା ଗୋଟିଏ ପ୍ରଧାନ ଅନ୍ତର୍ଜାତିକ ବାଣିଜ୍ୟ କେନ୍ଦ୍ର ଓ ବନ୍ଦର ଥିଲା । ମୁସଲମାନ୍ ମାନେ ଅନେକ ହିନ୍ଦୁ ମନ୍ଦିରକୁ ଭାଙ୍ଗି ତହିଁ ଉପରେ ମସଜିଦମାନ ନିର୍ମାଣ କଲେ । ଷୋଡ଼ଶ ଶତାବ୍ଦୀ ପୂର୍ବର ବହୁ ୟୁରୋପୀୟ ପର୍ଯ୍ୟଟକଗଣ ଏ ନଗରର ବାଣିଜ୍ୟ ସମୃଦ୍ଧି ବର୍ଣ୍ଣନା କରିଅଛନ୍ତି । ଚୈତନ୍ୟଙ୍କ ଭକ୍ତ 'ଚଣ୍ଡୀ', ବୃନ୍ଦାବନଦାସଙ୍କ

ଚୈତନ୍ୟ ଭାଗବତ ଓ କୃଷ୍ଣରାମଙ୍କ ଷଷ୍ଠୀମଙ୍ଗଳରେ ସପ୍ତଗ୍ରାମର ସମୃଦ୍ଧି ବର୍ଣ୍ଣନା ହୋଇଅଛି । ମୁସଲମାନ ରାଜତ୍ୱରେ ଏହା ଗୋଟିଏ ରାଜସ୍ୱ ଆଦାୟ କେନ୍ଦ୍ର (ପ୍ରଗନା ବା ସରକାର) ଥିଲା ଓ ଏଠାରେ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଟାଙ୍କଶାଳା ଥିଲା । ସମ୍ରାଟ ଆକବରଙ୍କ ସମୟରେ ଏଥିର ଅଧଃପତନ ହେଲା । ସେ ପର୍ତ୍ତୁଗୀଜମାନଙ୍କୁ ହୁଗୁଳୀରେ ସହର ନିର୍ମାଣ କରିବାକୁ ଆଦେଶ ଦେବାରୁ ହୁଗୁଳୀ ସହର ନିର୍ମିତ ହେଲା ଓ ସପ୍ତଗ୍ରାମ ଜନଶୂନ୍ୟ ହେଲା—ବିଶ୍ୱକୋଷ ।]

**ସପ୍ତ ଚତ୍ୱାରିଂଶ**—ସଂ. ବିଣ (ସପ୍ତ ଚତ୍ୱାରିଂଶତ୍+ପୂରଣାର୍ଥେ ଅ)—Sapta chatwārimśa ୪୭ ସଂଖ୍ୟାର ପୂରଣ—Forty seventh.

**ସପ୍ତ ଚତ୍ୱାରିଂଶତ୍**—ସଂ. ବି (ସପ୍ତ ଅଧିକ ଚତ୍ୱାରିଂଶତ୍; ମଧ୍ୟପଦଲୋପୀ କର୍ମଧାରୟ)—ସତଚାଳିଶ; ୪୭ ସଂଖ୍ୟା—Forty seven; 47. ସଂ. ବିଣ—ସତଚାଳିଶ ସଂଖ୍ୟକ—Numbering fortyseven. Sapta chatwārimśat

**ସପ୍ତ ଚତ୍ୱାରିଂଶତ୍ତମ**—ସଂ. ବିଣ (ସପ୍ତ ଚତ୍ୱାରିଂଶତ୍+ପୂରଣାର୍ଥେ ତମ)—୪୭ ସଂଖ୍ୟାର ପୂରଣ—Forty seventh. Sapta chatwārimśattama

**ସପ୍ତଚ୍ଛଦ**—ସଂ. ବି (ବହୁବ୍ରୀହି; ସପ୍ତନ୍+ଛଦ=ପତ୍ର ଯାହାର; ସନ୍ଧି ଯୋଗେ 'ଚ୍ଛ'ର ଦ୍ୱିତ୍ୱ; ଏହାର ପ୍ରତି ଛାତିମ୍(ନ୍) ଛତୀବନ ପର୍ଣ୍ଣରେ ୭ଟି ଲେଖାଏଁ ପତ୍ର ଡାଳକୁ ବେଢ଼ିଥାଏ)—ସପ୍ତପର୍ଣ୍ଣ; ଛତିଅନା (ଗଛ)—Alstonia Scholaris tree. Saptachchadda

ଛତିନା ୧ (ଦେଖ)

ଅନ୍ୟ ସଂ ନାମ—ଗୁଚ୍ଛପୁଷ୍ପ, ଯୁଗପର୍ଣ୍ଣ, ମଣିଛଦ, ବୃହତ୍ତ୍ୱକ୍, ବହୁପର୍ଣ୍ଣୀ, ଶାଲ୍ମଳିପତ୍ରକ, ମଦାଢ଼, ଗନ୍ଧପର୍ଣ୍ଣ)

**ସପ୍ତ ଜନ୍ମ**—ସଂ ବି—ସାତ ଥର ଦେହ ଧାରଣ କରିବା—Seven births in the world. Sapta janma

**ସପ୍ତ ଜାଗର**—ଦେ· ବି—ସାତ ଦୀପ (ଦେଖ) Sapta jāgara Sāta dipa (See)

**ସପ୍ତ ଜିହ୍ୱ(ଜ୍ୱାଳ)**—ସଂ.ବି (ସପ୍ତନ୍=୭+ଜିହ୍ୱା, ଜ୍ୱାଳା=ଶିଖା ଯାହାର ବହୁବ୍ରୀହି)—ଅଗ୍ନି; ନିଆଁ—Fire. Sapta jihwa(jwāla) [ଦ୍ର—ଅଗ୍ନିର ୭ ଗୋଟି ଜିହ୍ୱାର ନାମ, ଯଥା—କାଳୀ, କରାଳୀ, ମନୋଜବା, ସୁଲୋହିତା, ସୁଧୂମ୍ରବର୍ଣ୍ଣା, ସ୍ଫୁଲିଙ୍ଗିନୀ ବା ଉଗ୍ରା, ବିଶ୍ୱରୁଚିଣୀ ବା ବିଶ୍ୱଜନା ବା ପ୍ରଦୀପ୍ତା । ମତାନ୍ତରରେ ସପ୍ତ ଜିହ୍ୱାର ନାମ, ଯଥା—ଆବହ, ପ୍ରବହ, ଉଦ୍‌ବହ, ସଂବହ, ବିବହ, ନିବହ, ପରିବହ । ଏହି ୭ ଗୋଟି ବାୟୁ ଅଗ୍ନିର ୭ ଗୋଟି ଜିହ୍ୱା ରୂପେ କଥିତ ।

କର୍ମ ବିଶେଷରେ ଏହି ସପ୍ତ ଜିହ୍ୱାଙ୍କର ନାମାନ୍ତର ମଧ୍ୟ ଅଛି, ଯଥା—(କ) ୧ ହିରଣ୍ୟା, ୨ କନକା, ୩ ରକ୍ତା, ୪ କୃଷ୍ଣା, ୫ ସୁପ୍ରଭା, ୬ ବହୁରୂପା, ୭ ଅତିରକ୍ତା । (ଖ) ୧ ଶ୍ୱେତ, ୨ ପୀତ, ୩ ରକ୍ତ, ୪ କୃଷ୍ଣ, ୫ ନୀଳ, ୬ ଧୂମ୍ର, ୭ ପାଟଳ ।]

**ସପ୍ତ ତନ୍ତୁ**—ସଂ. ବି (ବହୁବ୍ରୀହି; ସପ୍ତନ୍=ଅଗ୍ନିର ସପ୍ତ ଜିହ୍ୱା ବା ସପ୍ତ ଋଷି ପ୍ରାର୍ଥନା+ତନ୍ ଧାତୁ+ଅଧିକରଣ ତୁ; ଯହିଁରେ ଅଗ୍ନିର ସପ୍ତ ଜିହ୍ୱା ବିସ୍ତୃତ ହୁଏ)—ଯଜ୍ଞ; ଯାଗ; (ଅମର)—Vedic sacrifice. [ଦ୍ର—ଭୁ ଦେବ ସପ୍ତତନ୍ତୁ ହେତୁ, ତନୁର ହୋଇ ମୂଳତନ୍ତୁ । ଜଗନ୍ନାଥ. ଭାଗବତ ।] Sapta tantu

**ସପ୍ତ ତାଳ**—ସଂ.ବି—ଏକ ଧାଡ଼ିରେ ବା ଏକତ୍ର ସ୍ଥିତ ୭ ଗୋଟି ତାଳଗଛ—Seven palmyra trees standing together or in a row. [ଦ୍ର—ରାମଚନ୍ଦ୍ର ଏକ ଶର ଦ୍ୱାରା ସପ୍ତ (ସାତ) ତାଳଗଛ ଭେଦ କରିଥିଲେ ।] Sapta tāla

**ସପ୍ତତି**—ସଂ. ବି ଓ ବିଣ [ସଂଖ୍ୟାବାଚକ; ସପ୍ତଦଶ+ପରିମାଣାର୍ଥେ ତି (ନିପାତନ); ଯାହାର ପରିମାଣ ସାତ×୧୦]—୭୦; ସତୁରି—70; Seventy. Saptati

**ସପ୍ତତିତମ**—ସଂ. ବିଣ (ସପ୍ତତି+ପୂରଣାର୍ଥେ ତମ)—୭୦ର ପୂରଣ—Seventieth. Saptatitama

**ସପ୍ତ ତ୍ରିଂଶ**—ସଂ. ବିଣ (ସପ୍ତ ତ୍ରିଂଶତ୍+ପୂରଣାର୍ଥେ ଅ)—୩୭ ସଂଖ୍ୟାର ପୂରଣ—Thirtyseventh. Sapta trimśa

**ସପ୍ତ ତ୍ରିଂଶତ୍**—ସଂ. ବି (ସଂଖ୍ୟାବାଚକ; ସପ୍ତ ଅଧିକ ତ୍ରିଂଶତ୍)—୩୦ରୁ ସାତ ଅଧିକ ସଂଖ୍ୟା—Thirty-seven. ବିଣ—୩୭ ସଂଖ୍ୟକ—Numbering thirty seven. Sapta trimśat

**ସପ୍ତ ତ୍ରିଂଶତ**—ସଂ. ବିଣ (ସପ୍ତ ତ୍ରିଂଶତ୍+ପୂରଣାର୍ଥେ ଇ)—୩୭ ସଂଖ୍ୟାର ପୂରଣ—Thirty seventh. Sapta trimśati

**ସପ୍ତ ଦଶ**—ସଂ. ବି (ସପ୍ତ ଦଶନ୍ ଶବ୍ଦ; ବହୁବଚନ; ସପ୍ତନ୍+ଦଶନ୍; ସପ୍ତ ଅଧିକ ଦଶ; ମଧ୍ୟପଦଲୋପୀ କର୍ମଧାରୟ)—(ସପ୍ତ ଦଶତ—ଅନ୍ୟରୂପ) ୧୭; ସତର—Seventeen; 17. ସଂ. ବିଣ—୧ । ସତର ସଂଖ୍ୟକ—1. Numbering seventeen. ୨ । ସତର ସଂଖ୍ୟାର ପୂରଣ—2. Seventeenth. Sapta daśa

**ସପ୍ତ ଦଶମ**—ସଂ. ବିଣ—ସତର ସଂଖ୍ୟାର ପୂରଣ (ବିଶ୍ୱକୋଷ)—Seventeenth. Sapta daśama

**ସପ୍ତ ଦିବ୍ୟ ମନୁଷ୍ୟ**—ସଂ. ବି—ସପ୍ତ ମନୁଷ୍ୟ (ଦେଖ) Sapta dibya manushya Sapta manushya (See)

**ସପ୍ତ ଦୀଧିତି**—ସଂ. ବି (ସପ୍ତନ୍+ଦୀଧିତି=ରଶ୍ମି ଯାହାର; ବହୁବ୍ରୀହି)—ସପ୍ତଜିହ୍ୱ; (ତ୍ରିକାଣ୍ଡ ଶେଷ)—Fire. Sapta didhiti

**ସପ୍ତ ଦୀପ**—ସଂ. ବି—ସାତ ଦୀପ; ସାତ ଗୋଟି ମୁଖଯୁକ୍ତ ପ୍ରଦୀପ—A lamp with seven mouths. [ଦ୍ର—ଏହି ଦୀପରେ ୭ ଗୋଟି ବଳତା ଦିଆଯାଇ ଦେବତା ଓ ବର କନ୍ୟାଙ୍କୁ ବନ୍ଦାପନା କରାଯାଏ ।] Sapta dipa

**ସପ୍ତ ଦ୍ୱୀପ**—ସଂ. ବି (ଦ୍ୱିଗୁ)—ପୁରାଣୋକ୍ତ ପୃଥିବୀର ୭ ଗୋଟି ଦ୍ୱୀପ—The seven islands comprising the earth according to the Hindu mythology. Sapta dwipa

[ଉଃ—ସେ ରାଜାରଥଚକ୍ରେ କରି
ହୋଇଲା ଯେତେକ ବିସ୍ତାରି ।
ତେଣୁ ସପତଦ୍ୱୀପ ହୋଇ
ପୃଥିବୀ ସାତଭାଗ କଲା ।
ଶାକ ଶାଲ୍ମଳ ଜମ୍ବୁ ପ୍ଲକ୍ଷ
କୁଶ ପୁଷ୍କର ଆଉ କ୍ରୌଞ୍ଚ ।
ଜଗନ୍ନାଥ ଭାଗବତ ।]

ଦ୍ର—ପୁରାଣୋକ୍ତ ଏହି ୭ଟି ଦ୍ୱୀପର ନାମ, ଯଥା—ଜମ୍ବୁ, ପ୍ଲକ୍ଷ, ଶାଲ୍ମଳୀ, କୁଶ, କ୍ରୌଞ୍ଚ, ଶାକ ଓ ପୁଷ୍କର । ଏମାନେ ପୁରାଣୋକ୍ତ ସପ୍ତସମୁଦ୍ର ମଧ୍ୟରେ ଯଥାକ୍ରମେ ଅବସ୍ଥିତ ଓ ଏମାନଙ୍କର ରାଜା ମଧ୍ୟ ଯଥାକ୍ରମେ ୭ ଜଣ । ଭାରତବର୍ଷ ଜମ୍ବୁଦ୍ୱୀପ ଅନ୍ତର୍ଗତ । ପ୍ରତ୍ୟେକ ଦ୍ୱୀପରେ କେତେଗୁଡ଼ିଏ ବର୍ଷ ବା ଦେଶ ଅଛି । ଏହି ସପ୍ତଦ୍ୱୀପ ମେରୁ ପର୍ବତକୁ ବେଷ୍ଟନ କରି ଅବସ୍ଥିତ । ଏହି ସପ୍ତଦ୍ୱୀପର ମଧ୍ୟ ସ୍ଥଳରେ ଜମ୍ବୁଦ୍ୱୀପ ଅବସ୍ଥିତ ।

ଆମ୍ଭେମାନେ ବର୍ତ୍ତମାନ ଭୂଗୋଳରେ ଦ୍ୱୀପ ଅର୍ଥରେ ଯାହା ବୁଝୁଁ, ଏ ଦ୍ୱୀପମାନ ତାହା ନୁହେଁ । ସେହି ଭୂଖଣ୍ଡ ଚାରିଆଡ଼େ ଜଳବେଷ୍ଟିତ, ତାହା ଦ୍ୱୀପ ଅଟେ, ଏହାହିଁ ଭୌଗୋଳିକ ସଂଜ୍ଞା । କିନ୍ତୁ ହିନ୍ଦୁ ପୁରାଣୋକ୍ତ ଏ ଦ୍ୱୀପମାନ ଗୋଲାକାର ପାଣି ଓ ତାହାର ଦୁଇ ପାର୍ଶ୍ୱରେ ଜଳବେଷ୍ଟିତ ବଳୟ ବା ଅଙ୍ଗୁରୀୟକତୁଲ୍ୟ ଭୂଭାଗ (rings) ଅବସ୍ଥିତ ।

ମେରୁଗିରିକୁ ବେଢ଼ି ଗୋଟିଏ ସମୁଦ୍ର ବଳୟ ଓ ତାକୁ ବେଢ଼ି ଗୋଟିଏ ଦ୍ୱୀପ ବଳୟ; ତାକୁ ବେଢ଼ି ପୁଣି ଗୋଟିଏ ସମୁଦ୍ର ବଳୟ ଓ ତାକୁ ବେଢ଼ି ପୁଣି ଗୋଟିଏ ଦ୍ୱୀପ ବଳୟ—ଏହିପରି ମେରୁଗିରିକୁ କେନ୍ଦ୍ର କରି ୭ ଗୋଟି ସମୁଦ୍ର ଓ ୭ ଗୋଟି ଦ୍ୱୀପ ବଳୟାକାରରେ ବେଢ଼ିଥିବା ପୁରାଣରେ ଲେଖାଅଛି ।

(ସପ୍ତ ଦ୍ୱୀପା—ସ୍ତ୍ରୀ) ସଂ. ବିଣ ( ବହୁବ୍ରୀହି )—ସପ୍ତଦ୍ୱୀପ ବିଶିଷ୍ଟ—Consisting of 7 islands.

**ସପ୍ତ ଦ୍ୱୀପ ପତି**—ସଂ. ବି (ସପ୍ତନ୍‌+ଦ୍ୱୀପ+ପତି)—ପୁରାଣୋକ୍ତ ସପ୍ତ Sapta dwipa pati ଦ୍ୱୀପମାନଙ୍କର ପୁରାଣୋକ୍ତ ରାଜଗଣ—The seven mythological kings of the seven mythological islands. [ଦ୍ର—ଏହି ସପ୍ତ ଦ୍ୱୀପପତିଙ୍କର ନାମ, ଯଥାକ୍ରମେ ଅଗ୍ନୀଧ୍ର, ମେଧାତିଥି, ବପୁଷ୍ମାନ୍, ଜ୍ୟୋତିଷ୍ମାନ୍, ଦ୍ୟୁତିମାନ୍, ଭବ୍ୟ ଓ ସବନ ।]

**ସପ୍ତ ଦ୍ୱୀପା**—ସଂ. ବିଣ, ସ୍ତ୍ରୀ (ବହୁବ୍ରୀହି)—ସପ୍ତଦ୍ୱୀପ ବିଶିଷ୍ଟା—Sapta dwipā. Having seven islands.
ସଂ. ବି (ସପ୍ତଦ୍ୱୀପ ବିଶିଷ୍ଟା)—ପୃଥିବୀ; ଧରଣୀ—The earth.

**ସପ୍ତଧା**—ସଂ. କ୍ରି. ବିଣ (ସପ୍ତ+ପ୍ରକାରାର୍ଥେ ଧା)—୧। ସାତ ପ୍ରକାରରେ Saptadhā —1. In seven ways. ୨। ସାତ ଥର—2. Seven times. ୩। ସାତ ଦିଗରେ—3. In seven direcions. ୪। ସାତ ଅଂଶରେ—4. In seven parts.

**ସପ୍ତ ଧାତୁ**—ସଂ. ବି—ଶରୀରସ୍ଥ ସପ୍ତ ସଂଖ୍ୟକ ଧାତୁ ବା ସାର ବା Sapta dhātu ଉପାଦାନ—The seven ingredients of the body.

[ଉ—ହୃଦୟ ଅବୋଧରବା ଅଶେ
ଅସ୍ଥି ସଜାଇ ପୃଷ୍ଠଦେଶେ ।
ଅସ୍ଥି ଭିତରେ ମଜ୍ଜା କଲା
ଉପରେ ମେଦ ଘଅଇଲା ।
ତାର ଉପରେ ମାଂସ ଧରି
ରୁଧିର ଆବରଣ କରି ।
ତାର ଉପରେ ତ୍ୱକ ଚର୍ମ
ମଜ୍ଜାର ମଧ୍ୟେ ରହେ ବ୍ୟୋମ ।
ଏମନ୍ତେ କରି ସପ୍ତଧାତୁ
ସେ ଭୂମି ଜଳ ତେଜ ହେତୁ ।
ଜଗନ୍ନାଥ ଭାଗବତ ]

[ଦ୍ର—ରସ, ରକ୍ତ, ମାଂସ, ମେଦ, ଅସ୍ଥି, ମଜ୍ଜା ଓ ଶୁକ୍ର ଏହି ସପ୍ତଧାତୁ ଯୋଗୁଁ ଶରୀର ବଞ୍ଚି ରହେ । ଏମାନ ଶରୀରର ସ୍ଥୈର୍ଯ୍ୟପ୍ରଦ । ଏ ସପ୍ତଧାତୁ ଶରୀରକୁ ଧାରଣ କରନ୍ତି ବୋଲି ଏମାନଙ୍କ ନାମ ଧାତୁ । ଆହାରର ସାର ପ୍ରଥମେ ରସରେ, ରସ ରକ୍ତରେ, ରକ୍ତ ମାଂସରେ, ମାଂସ ମେଦରେ, ମେଦ ଅସ୍ଥିରେ, ଅସ୍ଥି ମଜ୍ଜାରେ ଓ ମଜ୍ଜା ଶୁକ୍ରରେ ପରିଣତ ହୁଏ । ଖାଦ୍ୟର ଅସାର ଅଂଶ ମଳ, ମୂତ୍ର, ଘର୍ମ ଆଦି ରୂପରେ ଦେହରୁ ବାହାରି ଯାଏ । ସପ୍ତଧାତୁର ଉପଚୟରେ ଶରୀରର ଉପଚୟ ଓ କ୍ଷୟରେ ଶରୀରର କ୍ଷୟ ହୁଏ ।]

**ସପ୍ତ ନବତ**—ସଂ. ବିଣ (ସପ୍ତ ନବତି+ପୂରଣାର୍ଥେ ଅ)—ସତାନବେ Sapta nabata ସଂଖ୍ୟାର ପୂରଣ—Ninetyseven.
(ସପ୍ତ ନବତି ତମ—ଅନ୍ୟରୂପ)

**ସପ୍ତ ନବତି**—ସଂ. ବି ଓ ବିଣ (ସଂଖ୍ୟାବାଚକ; ସପ୍ତନ୍‌+ଅଧିକାର୍ଥେ Sapta nabati ନବତି)—ନବେଠାରୁ ସାତ ଅଧିକ ସଂଖ୍ୟା—Ninety seventh.

**ସପ୍ତ ନବୟା**—ଦେ. ବିଣ ( ହି. ସପ୍ତନ୍‌+ନବ+ବୟଃ )—ଷୋଡ଼ଶ Sapta nabayā ବର୍ଷୀୟା; ଷୋଡ଼ଶୀ—Sixteenyear old ଷୋଡ଼ଶୀ (female). [ଉ—ସପ୍ତ ନବୟା ତୋଷିବି । ସୋଲହ ବର୍ଷକୀ ଅଭିମନ୍ୟୁ- ବିଦଗ୍ଧ ଚିନ୍ତାମଣି ।]

**ସପ୍ତ ନଳୀ**—ସଂ. ବି—ସାତ ନଳୀ; ପକ୍ଷୀ ଧରିବା ପାଇଁ ବେଳାକ Sapta nali ବ୍ୟବହୃତ ନଳ—Seven long hollow rods, the head of one fitting to the tail of the other, and used in catching birds.

**ସପ୍ତନାଡ଼ିକ**—ସଂ. ବିଣ. ପୁଂ (ସପ୍ତନ୍‌+ନାଡ଼ୀ ଯାହାର; ବହୁବ୍ରୀହି; Sapta nārdika ସପ୍ତନ୍‌+ନାଡ଼ୀ+କ)—୧। ସାତ ଗୋଟି (ସପ୍ତ ନାଡ଼ିକା—ସ୍ତ୍ରୀ) ନାଡ଼ୀଯୁକ୍ତ—1. Having seven stems or veins. ୨। (ଜ୍ୟୋତିଷ) ସପ୍ତନାଡ଼ୀ ଚକ୍ର ବିଶିଷ୍ଟ—2. Having the astrological figure of Sapta nārdi chakra.

**ସପ୍ତ ନାଡ଼ୀ ଚକ୍ର**—ସଂ.ବି (ଜ୍ୟୋତିଷ)—ବୃଷ୍ଟିଜ୍ଞାନାର୍ଥ ଗ୍ରହନକ୍ଷତ୍ରାଙ୍କିତ
Sapta nārdī chakra ସପ୍ତନାଡ଼ୀକ ସର୍ପାକୃତି ଚକ୍ର ବିଶେଷ—An astrological circle set up with planets and asterisms indicating the amount of rain which will fall on the earth.
[ଦ୍ର—ସର୍ପଆକାରରେ ୨୮ ନାଡ଼ୀ ଅଙ୍କନ କରି ତହିଁରେ ଜ୍ୟୋତିଷ ଶାସ୍ତ୍ରର ଉପଦେଶ ଅନୁସାରେ ଗ୍ରହନକ୍ଷତ୍ରାଦି ସଂସ୍ଥାପିତ କଲେ ସେହି ଗ୍ରହନକ୍ଷତ୍ରାଦିଙ୍କ ଅବସ୍ଥାନ ଅନୁସାରେ ଆଗାମୀ ବର୍ଷ ହେବା ବୃଷ୍ଟିର ପରିମାଣ ଓ କାଳ ଜଣା ପଡ଼େ । ପ୍ରତ୍ୟେକ ଲେଖାଏଁ ନକ୍ଷତ୍ରରେ ଗୋଟିଏ ନାଡ଼ୀ ହୁଏ । ସେ ନାଡ଼ୀମାନଙ୍କର ଭିନ୍ନ ଭିନ୍ନ ନାମ ଓ ଫଳ ଅଛି ।]

**ସପ୍ତନାମା**—ସଂ. ବି. (ବୈଦ୍ୟକ)—ଆଦିତ୍ୟ ଭକ୍ତା (ଶବ୍ଦକଳ୍ପଦ୍ରୁମ); ଅଣ
Saptanāmā ଯୋଉଁଥିଅ ଗୁଳ୍ମ; ବନ୍ୟ ଶାକ ବିଶେଷ—Cleome Viscosa (a plant).

**ସପ୍ତ ପଞ୍ଚାଶ**—ସଂ. ବିଣ (ସପ୍ତ ପଞ୍ଚାଶତ୍ + ପୂରଣାର୍ଥେ ଅ)—ସତାବନ
Sapta panchāsa ସଂଖ୍ୟାର ପୂରଣ—Fifty seventh.

**ସପ୍ତ ପଞ୍ଚାଶତ୍**—ସଂ.ବି ଓ ବିଣ (ସଂଖ୍ୟାବାଚକ; ସପ୍ତନ୍ ଅଧିକ ପଞ୍ଚାଶତ୍)
Sapta panchāsat ପଚାଶ ଅପେକ୍ଷା ଅଧିକ ସାତ ସଂଖ୍ୟା Fifty seven.

**ସପ୍ତପତ୍ର**—ସଂ. ବି. (ବହୁବ୍ରୀହି)—୧ । (ବୈଦ୍ୟକ) ମୁଦ୍ଗର ବୃକ୍ଷ;
Sapta patra (ଶବ୍ଦ କଳ୍ପଦ୍ରୁମ); ମୁଗୁର ମଲ୍ଲୀ ଗୁଳ୍ମ—1. A flowering plant; Double Jasmine. ୨ । ସୁଗନ୍ଧରାଜ ଗୁଳ୍ମ—2. A flowering plant; Gardenia Florida. ୩ । (ସପ୍ତନ୍ + ପତ୍ର ସାହାଯ; (ସପ୍ତପର୍ଣ୍ଣ—ଅନ୍ୟରୂପ) ବହୁବ୍ରୀହି) ସପ୍ତଚ୍ଛଦ (ଦେଖ)—3. Saptachhada (See).

**ସପ୍ତପଦ**—ସଂ. ବି—(ଦ୍ୱିଗୁ; ସପ୍ତନ୍ + ପଦ)—୧ । ସାତ ପାଦୁଣ୍ଡ;
Saptapada ସାତ ଥର ପଦ ବିକ୍ଷେପ—1. Seven steps. ୨। ବିବାହ କାଳରେ ବରକୁ ଦେୟ ସାତ ଗୋଟି ବସ୍ତୁ (ଶବ୍ଦକୋଷ)—2. Seven items of articles given to the bridegroom at marriage. ୩ । ଯେଉଁ ମନ୍ତ୍ରର ଆଦ୍ୟରେ 'ସପ୍ତପଦୀ' ଶବ୍ଦ ଉକ୍ତ ହୋଇଅଛି (ଶବ୍ଦ କୋଷ)—3. A mystic formula beginning with the word Saptapadī.

**ସପ୍ତ ପଦାର୍ଥ**—ସଂ. ବି. (ଦ୍ୱିଗୁ; ସପ୍ତନ୍ + ପଦାର୍ଥ)—(ନ୍ୟାୟ ଓ
Sapta padārtha ବୈଶେଷିକ ଦର୍ଶନ)-ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ, ବିଶେଷ, ସମବାୟ ଓ ଅଭାବ, ଦ୍ରବ୍ୟର ଏହି ୭ ଗୋଟି ବିଷୟ (ଶବ୍ଦକୋଷ)-(Nyāya & Baiseshika philosophy) The seven articles or attributes of matter.

**ସପ୍ତପଦୀ**—ସଂ. ବି.—ସ୍ତ୍ରୀ (ସମାହାର ଦ୍ୱିଗୁ; ସପ୍ତନ୍=୭+ପଦ=
Sapta padī ପଦକ୍ଷେପ + ସମାହାରାର୍ଥେ ଈ; ସପ୍ତ ପଦର ବା ସାତ ପାଦୁଣ୍ଡର ମିଳନ)-ବିବାହ କାଳରେ ବରକନ୍ୟାଙ୍କର ୭ଥର ଏକ ଏକ ମଣ୍ଡଳରେ ପାଦକ୍ଷେପ କରିଯିବା ରୂପ କ୍ରିୟା—The ceremony performed just after the rite of marriage when the bride steps on seven circles chalked on the ground beforehand and the bridegroom follows on her footsteps uttering mystic formulas. [ଦ୍ର—କନ୍ୟାସମ୍ପ୍ରଦାନ ପରେ ଓ ପାଣିଗ୍ରହଣ କର୍ମ ସରିଯିବା ପରେ ବିବାହବେଦୀରୁ ଉଠି ବର ପୁରୋହିତ ଦଗକୁ ଯାଇ କନ୍ୟାଙ୍କ ହାତ ଧରି, ଉଭୟେ ଗାର୍ହସ୍ଥ୍ୟ କର୍ତ୍ତବ୍ୟ ପାଳନ କରିବା ବିଷୟରେ ବନ୍ଧୁ (ପ୍ରଭୃତି) ଲୋକଙ୍କୁ ବାଟ ଦେଖାନ୍ତୁ, ଏହି ମର୍ମର ୭ ଗୋଟି ମନ୍ତ୍ର ଉଚ୍ଚାରଣ ପୂର୍ବକ ଭୂମିରେ ପୂର୍ବରୁ ପିଠଉରେ ବା ମୁରୁଜରେ ଅଙ୍କିତ ହୋଇଥିବା ୭ ଗୋଟି ମଣ୍ଡଳ ବାଟେ କନ୍ୟାକୁ ବାଟ କଢ଼ାଇନିଅନ୍ତି ଓ କନ୍ୟା ସେହି ମଣ୍ଡଳମାନଙ୍କରେ ଯଥାକ୍ରମେ ଗୋଡ଼ ପକାଇ କରି ଚାଲନ୍ତି । ତତ୍ପରେ କନ୍ୟା ପୁଣି ୭ ଗୋଟି ମନ୍ତ୍ର ଉଚ୍ଚାରଣ କରନ୍ତି ଓ କନ୍ୟା ଯେଉଁ ୭ ଗୋଟି ମଣ୍ଡଳରେ ପାଦ ପକାଇ ଯାଇଥାଆନ୍ତି, ବର ପୁଣି ସେହି ସାତ ଗୋଟି ମଣ୍ଡଳରେ ପାଦ ଦେଇ ତାଙ୍କ ଅନୁଗମନ କରି ଫେରି ଆସନ୍ତି । ଏହାକୁ 'ସପ୍ତପଦୀ ଗମନ' ବୋଲାଯାଏ । ]

**ସପ୍ତପଦୀ ଗମନ**—ସଂ.ବି—ବିବାହ ପରେ ମନ୍ତ୍ରୋଚ୍ଚାରଣ ପୂର୍ବକ ବରଙ୍କର
Saptapadī gamana ଓ କନ୍ୟାଙ୍କର ୭ଗୋଟି ମଣ୍ଡଳରେ ପାଦ ପକାଇ ଯିବାରୂପ କର୍ମ—The concluding ceremony of marriage consisting of the bride & the bridegroom walking seven steps together through seven circles drawn on the ground, chanting some mystic formulae.

**ସପ୍ତ ପରାକ**—ସଂ. ବି—୧ । ବାହ୍ୟ ବସ୍ତୁରୁ ପ୍ରବୃତ୍ତିକୁ ନିବୃତ୍ତ କରି ରଖିବା
Sapta parāka (ଶବ୍ଦକୋଷ)—1. Keeping the mind away from outer matters. ୨ । ଏକ ସପ୍ତାହ କାଳ ଉପବାସୀ ରହିବା (ଶବ୍ଦକୋଷ) 2. Fasting for a week continuously.

**ସପ୍ତ ପର୍ଣ୍ଣ**—ସଂ. ବି. (ବୈଦ୍ୟକ) ୧ ।—ଛତନା ୧ (ଦେଖ)—
Sapta parnna Astonia Scholaris (tree) (ସପ୍ତ ପର୍ଣ୍ଣକ, ସପ୍ତ ପଳାଶ — ପ୍ରଥମ ଅର୍ଥରେ ଅନ୍ୟରୂପ) (ପ୍ରଥମ ଅର୍ଥର ପର୍ଯ୍ୟାୟ—ବିଶାଳତ୍ୱକ୍, ଶାରଦ, ବିଷମଚ୍ଛଦ, ଶାଲ୍ମଳି, ଦେବ ବୃକ୍ଷ, ବାନଗନ୍ଧ, ଶିରୋରୁଜା, ଗ୍ରହନାଶ, ଗୁଚ୍ଛପର୍ଣ୍ଣୀ, ସୁବାଣୀ, ଛତ୍ରନାଶନ, ଶୁକ୍ତସପୁଷ୍ପ, ଗୁଚ୍ଛପୁଷ୍ପ, ଶତପର୍ଣ୍ଣ, ସୁପର୍ଣ୍ଣିକ, ବୃହତ୍ତ୍ୱକ୍ । (ବ) ଛତିମ, (ହି) ଛତିବନ, (ମ) ସାଚଶିନ୍ଦୀ, ଏଡ଼ାକୁଳ, ଅବଟାକୁ; (ତେ) ଛତିପନା, ଛତନା,

(ଡ) ଏଲେଲଗା । ଏହା ବ୍ରଣ, ଶ୍ଳେଷ୍ମା, ବାତ, କୁଷ୍ଠ, ରକ୍ତଦୋଷ ଓ କୃମିନାଶକ; ଗାଢ଼କ, ସ୍ୱାସ୍ଥ୍ୟ, ଶୂଳଘ୍ନ, ସ୍ତମ୍ଭ ଓ ବୃଷ୍ଯ—(ବୈଦ୍ୟକୋଷ) ୨ । ( ଏଥିରେ ଦ୍ରାକ୍ଷା, ଡାଳିମ୍ବ, ଖଜୁରି, ଶର୍କରା, ଲବଙ୍ଗଚୂର୍ଣ୍ଣ, ଘୃତ ଓ ମଧୁ, ଏହି ସାତଟି ଦ୍ରବ୍ୟ ମିଶା ଥିବାରୁ) ମିଷ୍ଟାନ୍ନ ବିଶେଷ; ଦ୍ରାକ୍ଷା, ଦାଡ଼ିମ୍ବ, ଖର୍ଜୁର, ଗୁଡ଼, ଘୃତ ଓ ମଧୁଦ୍ୱାରା ମିଶ୍ରିତ ଅମ୍ଳ ଉପରେ ଖଇ ଚୂନା ଛିଞ୍ଚା ହୋଇଥିବା ମିଷ୍ଟାନ୍ନ (ଶବ୍ଦ ଚନ୍ଦ୍ରିକା)—2. A sort of sweetmeat prepared from grape, pomegranate, date, mango, mixed with molases, ghee & honey and sprinkled ver with the powder of fried paddy.

**ସପ୍ତପର୍ଣ୍ଣୀ**—ସଂ. ବି. (ବୈଦ୍ୟକ)— ଲଜ୍ଜାଳୁ ଲତା; ଲାଜକୋଳି ଲତା
Sapta parnni (ରକ୍ତମାଳା, ରକ୍ତକର୍ଣ୍ଣୀ)—The Mimosa Pudica (creeper).

**ସପ୍ତ ପାତାଳ**—ସଂ. ବି—(ଦ୍ୱିଗୁ)—ସପ୍ତସଂଖ୍ୟକ ଅଧୋଭୁବନ—The
Sapta pātāla seven nether worlds according to Hindu mythology [ଦ୍ର—ଏହି ସପ୍ତ ପାତାଳର ନାମ, ଯଥା—ଅତଳ, ବିତଳ, ନିତଳ, ଗଭସ୍ତିମତ୍ ବା ତଳାତଳ, ମହାତଳ, ସୁତଳ ଓ ଅଗ୍ର ।
ମତାନ୍ତରରେ ଏହି ୭ଟିର ନାମ, ଯଥା—ଅତଳ, ବିତଳ, ସୁତଳ, ତଳାତଳ, ମହାତଳ, ରସାତଳ ଓ ପାତାଳ ।]

**ସପ୍ତପିତୃକାମାବାସ୍ୟା**—ସଂ ବି—ସାତପୁରୀ ଅମାବାସ୍ୟା; ଭାଦ୍ର ଅମାବାସ୍ୟା-
Saptapitrukāmābāsyā. The new moon of the month of Bhādra. [ଦ୍ର—ଏହି ଅମାବାସ୍ୟାରେ ଜଗନ୍ନାଥ ଅଦ୍ଧ ମହାପ୍ରଭୁଙ୍କ ନିକଟରେ ସାତ ପ୍ରକାର ପୁରଦ୍ୱାରା ପ୍ରସ୍ତୁତ ପିଠା ପୂଜା ହୁଏ ।]

**ସପ୍ତ ପୁତ୍ର**—ସଂ. ବି—(ଦ୍ୱିଗୁ)—ସାତଗୋଟି ସନ୍ତାନ—Seven sons.
Sapta putra ସଂ. ବିଣ ଓ ବି· ପୁଂ—୧ । (ବହୁବ୍ରୀହି) (ସପ୍ତପୁତ୍ରା—ସ୍ତ୍ରୀ) ଯାହାଙ୍କର ୭ଟି ପୁଅ ଅଛନ୍ତି—1. Father of seven sons. ୨ । ସଂ (ବହୁବ୍ରୀହି) ସପ୍ତଲୋକ ଯାହାଙ୍କ ପୁତ୍ର—2. Father of the seven worlds.

**ସପ୍ତ ପୁତ୍ରସୂ**—ସଂ. ବିଣ ଓ ବି. ସ୍ତ୍ରୀ.—(ସପ୍ତପୁତ୍ର+ସୂ ଧାତୁ+କର୍ତ୍ତୃ.
Sapta putrasū କ୍ୱିପ୍)—ସୁତପ୍ରସବା; ଯେଉଁ ସ୍ତ୍ରୀ ସାତ ଗୋଟି ପୁତ୍ର ଜନ୍ମ କରିଥାଆନ୍ତି—Mother of seven sons.

**ସପ୍ତ ପୁରୁଷ**—ସଂ. ବି—ମନୁଷ୍ୟର ଉପରର ଓ ତଳର, କିଂବା ଉପରକୁ,
Sapta purusha ତଳକୁ ଓ ନିଜକୁ ମିଶାଇ ଗଣାଯିବା ସାତଜଣ ବଂଶଧର—Seven generations (above and below) and either including or excluding himself.

**ସପ୍ତ ପ୍ରକୃତି**—ସଂ. ବି (ହିନ୍ଦୁ ଦର୍ଶନ)—ପଞ୍ଚଭୂତ, ମହତ୍ ତତ୍ତ୍ୱ ଓ
Sapta prakruti ଅହଂକାର—(Hindu philosophy)—The seven elements of nature e.g. the five elements, the Divine and the Human natures.

**ସପ୍ତ ଫ(ଫେ)ଣା(ଣୀ)**—ଦେ. ବି· (ସଂ. ସପ୍ତଫଣୀ, ଏହାର ଶାଖାମାନ
Sapta pha(phe)ṇā(ṇī) ସର୍ପର ଫଣା ସଦୃଶ)—୧ ।
[ସପ୍ତ ଫ(ଫେ)ଣିଆ(ଆଁ)—ଅନ୍ୟରୂପ] ନାଗଫେଣିଆ ଗଛ—
ଫେଣୀମନସା, ଫଣାମନସା 1. A species of cactus;
सपतफनी Apuntia Dillenii (plant) [ଦ୍ର—ସପ୍ତଫଣା ଏ ଦେଶୀୟ ଗଛ ନୁହେ । ପ୍ରାୟ ସାଢ଼େ ତିନିଶହ ବର୍ଷ ପୂର୍ବେ ରଙ୍ଗ ବ୍ୟବସାୟୀମାନେ ଏହାକୁ ଦକ୍ଷିଣ ଅମେରିକାରୁ ଆଣି ଏ ଦେଶରେ ଲଗାଇଥିଲେ । ଏକପ୍ରକାର ରଙ୍ଗ ଉତ୍ପାଦନ କରୁଥିବା କୀଟ (cochineal insect) ସପ୍ତଫଣା ଗଛରେ ଜନ୍ମନ୍ତି ବୋଲି ସେମାନଙ୍କର ବିଶ୍ୱାସ ଥିଲା । ଏହି କୋଚନିଏଲ୍ ରଙ୍ଗ ପ୍ରସ୍ତୁତ କରୁଥିବା ବ୍ୟବସାୟୀମାନେ ସପ୍ତଫଣାକୁ ଆମ ଦେଶକୁ ଆଣି ଦେଖିଲେ ଯେ, ଏ ଗଛରେ କୌଣସି ରଙ୍ଗ ଉତ୍ପାଦନକାରୀ କୀଟ ଜନ୍ମନ୍ତି ନାହିଁ । ଏହାର ଇଂରାଜୀ ନାମ ପ୍ରିକ୍‌ଲି ପିଅର୍ (Prickly Pear) । ଏହାର ଶାଖାଗ୍ର ନାଗସାପର ଫଣାପରି ଦେଖାଯାଉଥିବାରୁ ଲୋକେ ଏହାକୁ ନାଗଫଣା ବୋଲି କହି ଆସିଅଛନ୍ତି ।
ସପ୍ତଫଣା ଦୁଇପ୍ରକାର—କଣ୍ଟକଯୁକ୍ତ ଓ କଣ୍ଟକହୀନ । ଏହି ଗଛ ପାଇଁ ବେଶି ପାଣି ଲୋଡ଼ା ହୁଏ ନାହିଁ । ଶୁଖିଲା ଭୂଇଁରେ, ପାହାଡ଼ିଆ ଭୂମିରେ ଓ ବାଲିରେ ମଧ୍ୟ ଏହା ଗଜେଇ ପାରେ । ଏହାର ଫଣା ବା ଶାଖା ସବୁ ଏତେ ବହଳ ଯେ, ସୂର୍ଯ୍ୟକିରଣ ଏହାର ରସକୁ ଶୁଖାଇପାରେ ନାହିଁ । ଫଣାରେ ବହୁତ କଣ୍ଟା ଥିବାରୁ ପଶୁଆଦିଙ୍କ ଆକ୍ରମଣରୁ ଏହା ରକ୍ଷାପାଏ । ଏଗଛର ଚେର ମାଡ଼ି ଚେରରୁ ଗଛ ଉଠି ଅତି ଅଳ୍ପ ସମୟରେ ଏଥିର ଦୁର୍ଭେଦ୍ୟ ବଣ ହୋଇଯାଏ । ଏଗଛ ମାଡ଼ିବା ଯାଗାରେ ଅନ୍ୟ ଫସଲ ଉଧାଏ ନାହିଁ ।
ଭାରତର ତଥା ସପ୍ତଫଣାର ଆଦି ଜନ୍ମଭୂମି ଦକ୍ଷିଣ ଅମେରିକାର କୃଷକମାନେ ସପ୍ତଫଣା ଯୋଗୁଁ ବହୁତ ଯନ୍ତ୍ରଣାଗ୍ରସ୍ତ ହେଉଅଛନ୍ତି । ଏଣୁ ଏଥିର ବଣ ଲୋପ ପାଇଁ ଔଷଧ-ପ୍ରୟୋଗାଦି ବହୁ ଉପାୟ ପ୍ରୟୋଗର ଚେଷ୍ଟା ହୋଇଅଛି; କିନ୍ତୁ କାହିଁରେ କିଛି ଫଳ ଫଳିବା ଦେଖାଯାଇ ନ ଥିଲା ।
ବହୁ ଚେଷ୍ଟା ପରେ ଏବେ ସେହି ଦକ୍ଷିଣ ଅମେରିକାରୁ ଏକ ଜାତୀୟ କୀଟ ଏଦେଶକୁ ଅଣା ହୋଇଅଛି । ସପ୍ତଫେଣା ଗଛର ଡାଳରେ ଏ କୀଟକୁ ଛାଡ଼ିଦେଲେ ଏକୀଟମାନଙ୍କ ବଂଶ ବୃଦ୍ଧି ହୁଏ ଓ ସେହି କୀଟମାନଙ୍କ ଧଳାସ୍ତର ଏ ଗଛର ଦେହଯାକ ମାଡ଼ିଯାଏ ଓ ଗଛକୁ ମାରିପକାଏ । ଏ କୀଟମାନଙ୍କର ସପ୍ତଫଣା ଗଛକୁ ନାଶ କରିବାରେ ଅଦ୍ଭୁତ ଶକ୍ତି ଅଛି । ମାନ୍ଦ୍ରାଜର ଦକ୍ଷିଣ ଜିଲ୍ଲାମାନଙ୍କରେ, କୃଷ୍ଣା ଗୋଦାବରୀରେ ଓ ଯୁସରେ ଏହି କୀଟମାନଙ୍କ ସାହାଯ୍ୟରେ ସପ୍ତଫେଣାର ବଂଶ

ଧ୍ୱଂସ କରିବାର ଉପାୟ ଅବଲମ୍ବିତ ହୋଇଅଛି । ଏମାନଙ୍କୁ ସପ୍ତଫଣା ଗଛରେ ଅଣି ରଖିଦେଲେ ବଣ ବୃଦ୍ଧି ହୋଇ ଏମାନେ ଗଛର ଦେହଯାକ ମାଡ଼ିଯାଆନ୍ତି ଓ ଗଛର ଡାଳ ଓ ଗଣ୍ଡିମାନ ଏକ ସପ୍ତାହ ମଧ୍ୟରେ ଝାଉଁଳ, ମଉଳ ଶୁଖିଯାଏ । ଛଅ ମାସ ମଧ୍ୟରେ ବଗାଖୋସାଠଣାରେ ସପ୍ତଫଣା ବଣ ନିର୍ମୂଳ ହୋଇଥିବା ଦେଖାଯାଇଅଛି; ପୁରୀ ସହରର ଅନେକ ସ୍ଥାନରେ ସପ୍ତଫଣା ଗଛଯାକ ଏ ପୋକଙ୍କ ଯୋଗୁଁ ମରଯାଇଥିବା ମଧ୍ୟ ଦେଖାଯାଉଅଛି ।] ୨ । ସାତଫେଣୀ ୨ (ଦେଖ)— 2. Sātapheṇi 2. (See)

ସପ୍ତଫଣୀ—ସଂ ବଣ.—(ସପ୍ତ ଫଣା+ଇନ୍; ୧ମା· ୧ବ.)—ପୁରାଣୋକ୍ତ Sapta phaṇi ସାତଟି ଫଣାଯୁକ୍ତ (ସର୍ପ)—(Mythological serpent) Having seven hoods

ସପ୍ତ ବ୍ରାହ୍ମଣ—ସଂ ବ ୧ । (ସମାହାର ଦ୍ୱିଗୁ) ଏକସ୍ଥାନରେ ସାତଜଣ Sapta brāhmaṇa ବ୍ରାହ୍ମଣଙ୍କ ସମ୍ମିଳନ—1. Seven Brāhmaṇas assembled at one place. ୨ । (ଦ୍ୱିଗୁ) ସପ୍ତର୍ଷି (ଦେଖ)—2. Saptarshi (See).

ସପ୍ତଭଦ୍ର—ସଂ ବ (ବୈଦ୍ୟକ) (ବହୁବ୍ରୀହି; ସପ୍ତ=ସାତ+ଭଦ୍ର Sapta bhadra ଶୁଭକର)—ଶିରୀଷ ବୃକ୍ଷ (ଶବ୍ଦ ଚନ୍ଦ୍ରିକା)- Acaciā Lebbeo (tree).

ସପ୍ତ ଭୁବନ—ସଂ ବ (ସମାହାର ଦ୍ୱିଗୁ)—ସପ୍ତଲୋକ (ଦେଖ)— Sapta bhubana Saptaloka (See).

ସପ୍ତମ—ସଂ. ବଣ—(ସପ୍ତନ୍+ପୂରଣାର୍ଥେ ମ) ସାତସଂଖ୍ୟାର ପୂରକ— Saptama (ସପ୍ତମା ସପ୍ତମୀ—ସ୍ତ୍ରୀ) Seventh.

ସପ୍ତମ ଗୃହ (ସ୍ଥାନ)—ସଂ. ବ (ଜ୍ୟୋତିଷ)—ଜାତକରେ ଲଗ୍ନଠାରୁ Saptama gṛuha (sthāna) ୭ମ ଗୃହର ଅବସ୍ଥିତି; ଗଣିତରେ ଲଗ୍ନଠାରୁ ୭ମ ସ୍ଥାନ—(Astrology) The seventh room counted from one's natal sign; [ବ୍ର—ଜାତକର ଏହି ଗୃହ ଉକ୍ତ ବ୍ୟକ୍ତିଙ୍କ ଜାୟା ସ୍ଥାନ ଅଟେ । ଏହି ଗୃହରେ ଥିବା ଗ୍ରହର ପ୍ରକୃତି ଅନୁସାରେ ଉକ୍ତ ବ୍ୟକ୍ତିଙ୍କ ସ୍ୱାମୀଙ୍କର ବା ସ୍ତ୍ରୀଙ୍କର ଅବସ୍ଥା ସୂଚିତ ହୁଏ ।

ସପ୍ତ ମଙ୍ଗଳା—ଦେ· ବ.—(ସଂ. ସପ୍ତ+ମଙ୍ଗଳ)—ବିବାହର ସପ୍ତମ Sapta mangalā ଦିବସ ଓ ସେ ଦିନ କର୍ତ୍ତବ୍ୟ କର- ସାତମଙ୍ଗଳା ବିବାହକାଲସପ୍ତମଦିନ କନ୍ୟାଙ୍କ ବନ୍ଦାପନାଦ କର୍ମ- The 7th day of the marriage and the ceremonies performed on that day.

ସପ୍ତ ମନୁଷ୍ୟ—ସଂ ବ—ମନୁଷ୍ୟମାନଙ୍କର ପୁରାଣୋକ୍ତ ସାତଜଣ ଆଦ- Sapta manushya ପୁରୁଷ—Names of seven pro (ସପ୍ତମନୁଷ୍ୟଗଣ—ଅନ୍ୟରୂପ) genitors of mankind. [ବ୍ର—ଶ୍ରାଦ୍ଧ ଓ ତର୍ପଣାଦିରେ ଏହି ସପ୍ତ ଆଦିପୁରୁଷଙ୍କୁ ପିଣ୍ଡ ଓ ଜଳୋଦକାଦ ଦିଆଯାଏ । ଏମାନଙ୍କ ନାମ, ଯଥା—ସନକ, ସନନ୍ଦ, ସନାତନ, କପିଳ, ବୋଢ଼ୁ, ଆସୁରି ଓ ପଞ୍ଚଶିଖ । 'ସନକ ଓ ସନନ୍ଦ' ତଳେ ନୋଟ୍ ଦେଖ]

ସପ୍ତ ମରୀଚ(ମନ୍ତ୍ର)—ସଂ ବ (ବହୁବ୍ରୀହି)—ଅଗ୍ନି (ବିଶ୍ୱକୋଷ)— Sapta maricha(mantra) Fire.

ସପ୍ତ ମାତୃକା—ସଂ. ବ—(ଦ୍ୱିଗୁ) ତାନ୍ତ୍ରିକମାନଙ୍କର ସାତ ଦେବତା— Sapta mātṛukā A class of seven female Deities worshipped in Tantric rites. [ବ୍ର—ଏମାନଙ୍କର ନାମ, ଯଥା—ବ୍ରହ୍ମୀ, ମାହେଶ୍ୱରୀ, କୌମାରୀ, ବୈଷ୍ଣବୀ, ବାରାହୀ, ଇନ୍ଦ୍ରାଣୀ ଓ ଚାମୁଣ୍ଡା]

ସପ୍ତମାଧିପତି—ସଂ. ବ.—(ଜ୍ୟୋତିଷ) ଲଗ୍ନଠାରୁ ୭ମ ଗୃହରେ ଥିବା Saptamādhipati ଗ୍ରହ—The planet which presides in the seventh compartment counted from one's 'Lagna'.

ସପ୍ତମୀ—ସଂ. ବଣ. ସ୍ତ୍ରୀ—(ସପ୍ତମ+ଈ)—'ସପ୍ତମ' ଶବ୍ଦର ସ୍ତ୍ରୀଲିଙ୍ଗ— Saptamī Feminine of Saptama. ସଂ· ବ.— (ସପ୍ତମ—ପୁଂ) ୧ । ସପ୍ତମର ପୂରଣୀ ତିଥି; ପୂର୍ଣ୍ଣମାର ପରଦିନ (କୃଷ୍ଣ ପ୍ରତିପଦ) ଠାରୁ କିମ୍ବା ଅମାବାସ୍ୟାର ପରଦିନ (ଶୁକ୍ଳ ପ୍ରତିପଦ) ଠାରୁ ଗଣାଗଲେ ସପ୍ତମ ତିଥି—1. The seventh day of the dark or bright lunar fortnight of a month; the seventh day after the full moon or new moon. [ବ୍ର—କୃଷ୍ଣ ପକ୍ଷର ସପ୍ତମୀକୁ କୃଷ୍ଣା ସପ୍ତମୀ ଓ ଶୁକ୍ଳ ପକ୍ଷର ସପ୍ତମୀକୁ ଶୁକ୍ଳା ସପ୍ତମୀ ବୋଲିଯାଏ । ଭିନ୍ନ ଭିନ୍ନ ଶୁକ୍ଳ- ସପ୍ତମୀରେ ନାନା ବ୍ରତ ଆଚରଣ କରିବା ପାଇଁ ପୁରାଣରେ ଉପଦେଶ ଅଛି । ତନ୍ମଧ୍ୟରେ ନିମ୍ନ ସପ୍ତମୀମାନ ପ୍ରଧାନ । ସପ୍ତମୀ ସୂର୍ଯ୍ୟମୂର୍ତ୍ତି ପ୍ରକାଶିତ ତିଥି ଥିବାରୁ ସପ୍ତମୀମାନଙ୍କରେ ସୂର୍ଯ୍ୟପୂଜା ଓ ଉପବାସାଦି କରିବାର ବିଧି ଅଛି । ମତ୍ସ୍ୟ ପୁରାଣର ୭୪ ଅଧ୍ୟାୟଠାରୁ ୭୮ ଅଧ୍ୟାୟ ମଧ୍ୟରେ ଭିନ୍ନ ଭିନ୍ନ ସପ୍ତମୀର ନାମ ଓ ବ୍ରତବିଧି ଲେଖା ଅଛି । ଯଥା—୧ । କଲ୍ୟାଣସପ୍ତମୀ, ୨ । ବିଶୋକ ସପ୍ତମୀ, ୩ । ଶର୍କରା ସପ୍ତମୀ, ୪ । କମଳ ସପ୍ତମୀ, ୫ । ମନ୍ଦାର ସପ୍ତମୀ, ୬ । ଶୁଭ ସପ୍ତମୀ ।

ଏହାଛଡ଼ା ଅନ୍ୟାନ୍ୟ ପୁରାଣୋକ୍ତ ନିମ୍ନ ସପ୍ତମୀମାନ ମଧ୍ୟ ହିନ୍ଦୁମାନଙ୍କ ପର୍ବ ରୂପରେ ଗଣ୍ୟ ହୋଇ ଆସୁଅଛି । ଯଥା—

୧ । ଅଚଳେଶ୍ୱରୀ ସପ୍ତମୀ, ବା ମାକରୀ ସପ୍ତମୀ ବା ମାଘ ସପ୍ତମୀ ବା ରଥ ସପ୍ତମୀ ବା ଅରୁଣୋଦୟ ସପ୍ତମୀ ବା ଚନ୍ଦ୍ରଭାଗା ସପ୍ତମୀ ବା ମାଘୀ ସପ୍ତମୀ—

ଏହି ସପ୍ତମୀରେ ପ୍ରାତଃସ୍ନାନ, ଉପବାସ, ସୂର୍ଯ୍ୟପୂଜା ଓ ତୀର୍ଥସ୍ନାନ କରାଯାଏ । ଏହି ଦିନ ଭୁବନେଶ୍ୱର ନିକଟସ୍ଥ ଖଣ୍ଡଗିରିରେ ମେଳା ହୁଏ । ପୁଣି ପୁରୀଜିଲ୍ଲାର ସମୁଦ୍ରୋପ- କୂଳସ୍ଥ କୋଣାର୍କ ବା ଚନ୍ଦ୍ରଭାଗା ତୀର୍ଥରେ ଅରୁଣୋଦୟ ବେଳାରେ ସ୍ନାନ କରି ଉଦୟମାନ ସୂର୍ଯ୍ୟଙ୍କ ଦର୍ଶନ କଲେ ମହାପୁଣ୍ୟ ହୁଏ ବୋଲି ବହୁ ସହସ୍ର ନରନାରୀ ଚନ୍ଦ୍ରଭାଗା- ଠାରେ ମାଘ ସପ୍ତମୀ ଦିନ ସୂର୍ଯ୍ୟୋଦୟ ପୂର୍ବେ ଏକତ୍ର ହୁଅନ୍ତି ।

ମାଘସପ୍ତମୀଠାରୁ ଆରମ୍ଭ କରି ବର୍ଷେ ପର୍ଯ୍ୟନ୍ତ ୧୨ଟି ସପ୍ତମୀରେ (ମଳମାସର ସପ୍ତମୀକୁ ଛାଡି) ଉପବାସ, ପ୍ରାତଃସ୍ନାନ ଓ ସୂର୍ଯ୍ୟପୂଜା ଆଦି କରାଯିବା ବ୍ରତକୁ 'ଅରୋଗ୍ୟ ବ୍ରତ' ବୋଲାଯାଏ । ଏହି ବ୍ରତର ବିଧାନ ବରାହପୁରାଣ, ଭବିଷ୍ୟ ପୁରାଣ ଓ ବ୍ରହ୍ମବୈବର୍ତ୍ତ ପୁରାଣରେ ଅଛି । ଏହି ବ୍ରତରେ ଆଦିତ୍ୟଙ୍କୁ ବିଷ୍ଣୁ ରୂପରେ କଳ୍ପନା କରି ପୂଜା କରାଯାଏ ଏବଂ ଏ ବ୍ରତ କଲେ ମନୁଷ୍ୟ ସର୍ବପ୍ରକାର ରୋଗରୁ ମୁକ୍ତ ହୁଏ । ଏହି ସପ୍ତମୀରେ ସ୍ନାନଦାନାଦି ସୂର୍ଯ୍ୟ-ଗ୍ରହଣ କାଳରେ ଅନୁଷ୍ଠିତ ସ୍ନାନଦାନାଦି ତୁଲ୍ୟ ଫଳଯୁକ୍ତ ଅଟେ ।

ଏହି ବ୍ରତ ଏକପ୍ରକାର ତପଶ୍ଚରଣ । ଅର୍କ ଗଛର ଅଗ୍ର ବା ଅଙ୍କୁର, ଯବପରିମିତ ଗୋମୟ, ଶୋଭନ ମରିଚ, ଜଳ, ଅପକ୍ୱ କଦଳୀର କଣ ପରିମିତ ମଧ୍ୟଭାଗ, ଯବ-ପରିମିତ କୁଶମୂଳ ଭୋଜନ, ନକ୍ତବ୍ରତାଚରଣ, ମୟୂର ଡିମ୍ବପରି ଏକ ଗ୍ରାସ ମାତ୍ର ଭୋଜନ, ଅର୍ଦ୍ଧକୋଷ ପରିମିତ ଦୁଗ୍ଧପାନ, ସ୍ନାନାନ୍ତେ ବାୟୁଭୋଜନ, ପୌଷମାସରେ ଅତ୍ୟଳ୍ପ ଘୃତ ଭୋଜନ, ଏହିପରି ମାଘ ମାସରୁ ଆରମ୍ଭ କରି ଏକବର୍ଷ ପର୍ଯ୍ୟନ୍ତ ପ୍ରତି ସପ୍ତମୀରେ କରାଯାଏ । ପରେ ଭକ୍ତିପୂର୍ବକ ବ୍ରାହ୍ମଣଭୋଜନ କରାଇ ବ୍ରାହ୍ମଣଙ୍କୁ ଦକ୍ଷିଣା ଦେଇ ତତ୍ପରବର୍ତ୍ତୀ ଅଷ୍ଟମୀ ଦିନ ଏ ବ୍ରତର ପାରଣା କରାଯାଏ ( ବିଶ୍ୱକୋଷ ଉଦ୍ଧୃତ ତିଥିତତ୍ତ୍ୱ ) । ଏ ଦିନ ଭୁବନେଶ୍ୱର ଲିଙ୍ଗରାଜ ଦେବଙ୍କର ଚତୁର୍ଦ୍ଦଶ ଯାତ୍ରା ମଧ୍ୟରୁ ଗୋଟିଏ ଯାତ୍ରା ।

୨ । କୁକ୍କୁଟୀ ସପ୍ତମୀ ବା ଲଳିତା ସପ୍ତମୀ—

ଏହାକୁ ଭାଦ୍ର ଶୁକ୍ଳ ସପ୍ତମୀ ବା କୋକଟ ବ୍ରତ ମଧ୍ୟ ବୋଲାଯାଏ । ଏଥିରେ ପାର୍ବତୀଙ୍କୁ ଓ ମହାଦେବଙ୍କୁ ପୂଜା କରାଯାଏ । ଏଥିରେ ସ୍ତ୍ରୀଲୋକମାନେ ଗଣ୍ଠି ପଡ଼ିଥିବା 'ବ୍ରତ' ବାହୁରେ ପିନ୍ଧନ୍ତି । ସମ୍ଭବତଃ କୁକୁଡ଼ୀମାନଙ୍କ ପରି ବହୁ ସନ୍ତାନ ପ୍ରସବ କାମନାରେ ସ୍ତ୍ରୀଲୋକମାନେ ଏ ବ୍ରତ ଆଚରଣ କରନ୍ତି ବୋଲି ଏ ସପ୍ତମୀର ଏହି ନାମ ହୋଇଅଛି ।

୩ । ପୋଥିପୂଜାସପ୍ତମୀ ବା ନବ ପତ୍ରିକା ସପ୍ତମୀ ବା ମହାସପ୍ତମୀ—

ଏହା ଆଶ୍ୱିନ ଶୁକ୍ଳ ସପ୍ତମୀ ଅଟେ । ଏ ଦିନ ଦୁର୍ଗାଙ୍କର ଦିନାଦିନ କର୍ତ୍ତବ୍ୟ ପୂଜା ଆରମ୍ଭ ହୁଏ ଏବଂ ନବ ପତ୍ରିକା ପୂଜା ଓ ଅସ୍ତ୍ରଶସ୍ତ୍ର ପୁସ୍ତକାଦିର ପୂଜା ହୁଏ ।

୪ । ଜହ୍ନୁ ସପ୍ତମୀ—ଏହା ବୈଶାଖ ଶୁକ୍ଳ ସପ୍ତମୀ ଅଟେ । ଏ ଦିନ ଜାହ୍ନବୀ ବା ଗଙ୍ଗାଙ୍କ ପୂଜା ହୁଏ ।

୫ । ମିତ୍ର ସପ୍ତମୀ—ମାର୍ଗଶିର ମାସର ଶୁକ୍ଳ ସପ୍ତମୀ ଦିନ ଏହା ପଡ଼େ ।

୬ । ଚୈତ୍ର ସପ୍ତମୀ—ଏହା ଚୈତ୍ର ମାସର ଶୁକ୍ଳପକ୍ଷ ସପ୍ତମୀରେ ହୁଏ । ଏ ଦିନ ଦୁର୍ଗାଙ୍କର ବାସନ୍ତୀ ପୂଜା କରାଯାଏ ।

୭ । ବିଜୟା ସପ୍ତମୀ—କୌଣସି ମାସର ଶୁକ୍ଳପକ୍ଷ ସପ୍ତମୀ ତିଥି ରବିବାରରେ ପଡ଼ିଲେ, ସେହିଦିନ ବିଜୟା ସପ୍ତମୀ ହୁଏ । ଭବିଷ୍ୟ ପୁରାଣରେ ଏହି ସପ୍ତମୀର ବିଧାନ ଲିଖିତ ହୋଇଅଛି । ଏଦିନ ଶାଳିତଣ୍ଡୁଳର ସୁସଂସ୍କୃତ ଅନ୍ନ ରାନ୍ଧି ସୂର୍ଯ୍ୟଙ୍କୁ ଚରୁ ବା ନୈବେଦ୍ୟ ଦେବାକୁ ହୁଏ । ଉକ୍ତ ଅନ୍ନରେ ଯେତେଗୋଟି ତଣ୍ଡୁଳ ଥାଏ, ପୂଜକ ଦେହାନ୍ତେ ସେତେ ସହସ୍ର ବର୍ଷ ସୂର୍ଯ୍ୟଲୋକରେ ବାସ କରନ୍ତି । ]

୨ । (ବ୍ୟାକରଣ) ସପ୍ତମୀ ବିଭକ୍ତି; ଅଧିକରଣ କାରକର ବିଭକ୍ତି । ବିଶେଷ୍ୟ ଓ ସର୍ବନାମ ପଦର ଶେଷରେ ଯୁକ୍ତ ହେବା ବିଭକ୍ତି ବିଶେଷ— 2. (Grammar) The seventh case of nouns and pronouns. [ଦ୍ର—ସପ୍ତମୀ ବିଭକ୍ତିର ଚିହ୍ନ, —ରେ, ଠାରେ । ପୁଣି ଅକାରାନ୍ତ ଶବ୍ଦର ଶେଷାକ୍ଷରରେ ଏକାର ଯୋଗକରି ମଧ୍ୟ ଏହି ବିଭକ୍ତିଚିହ୍ନ ସ୍ଥଳେ ସ୍ଥଳେ ଦେଖାଇଦିଆଯାଏ; ଯଥା—ଘରେ (ଘରରେ) ଭାତ ନାହିଁ । ଆଜି କାଲି ଓଡ଼ିଆ କବିମାନେ ଅକାରାନ୍ତ ଶବ୍ଦ ଛଡ଼ା ଅନ୍ୟ ଶବ୍ଦକୁ ଅକାରାନ୍ତରୂପେ କଳ୍ପନା କରି ଏକାର ଯୋଗ କରି ସପ୍ତମୀ ବିଭକ୍ତିକୁ ଚିହ୍ନାଇଲେଣି; ଯଥା—ରାତିରେ, ସ୍କୁଲରେ ରାତେ । ଏପରି ବ୍ୟବହାର ଦୁଷ୍ୟ । ସପ୍ତମୀ ବିଭକ୍ତିର ପ୍ରୟୋଗ ଓଡ଼ିଆ ଭାଷାରେ ନାନା ସ୍ଥଳରେ ହୋଇଥାଏ । ଯଥା—

୧ । ବିଷୟାଧିକରଣରେ ସପ୍ତମୀ—ଖାଇବା(ବିଷୟ)ରେ ତାକୁ କେହି ବଳିବ ନାହିଁ ।

୨ । ସ୍ଥାନାଧିକରଣରେ ସପ୍ତମୀ—କଟକ(ସ୍ଥାନ)ରେ କଲେଜ ଅଛି ।

୩ । ନିର୍ଦ୍ଧାରଣାଧିକରଣରେ ସପ୍ତମୀ—ପଶୁମାନଙ୍କ ମଧ୍ୟ (ଶ୍ରେଣୀ)ରେ ସିଂହ ବଳବାନ୍ । ମନୁଷ୍ୟମାନଙ୍କରେ ରାଜା ଶ୍ରେଷ୍ଠ ।

୪ । କାଳାଧିକରଣରେ ସପ୍ତମୀ-ଖରାଦିନେ (ଗ୍ରୀଷ୍ମକାଳରେ) ଅମ୍ବ ପାଚେ ।

୫ । ପାରଙ୍ଗମ, ସାଧୁ, କୁଶଳ, ନିପୁଣ, ଉତ୍ସୁକ, ସାକ୍ଷୀ ପ୍ରଭୃତି ଶବ୍ଦର ପୂର୍ବରେ ଥିବା ବିଶେଷ୍ୟରେ ସପ୍ତମୀ— କାର୍ଯ୍ୟରେ ନିପୁଣ, ବିଦ୍ୟାରେ କୁଶଳ ।

୬ । ଭାବାଧିକରଣରେ ସପ୍ତମୀ—ସୂର୍ଯ୍ୟୋଦୟରେ (ସୂର୍ଯ୍ୟୋଦୟ ଭାବ ବା ଅବସ୍ଥା ଘଟିଲେ) ପଦ୍ମ ଫୁଟେ ।

୭ । ସମୀପାର୍ଥରେ ସପ୍ତମୀ—ଆଜି ମୋଠାରେ ପଇସାଟାଏ ସୁଦ୍ଧା ନାହିଁ ।

୮ । ହେତ୍ୱର୍ଥକ ଶବ୍ଦର ପରେ—କି କାରଣରେ (ବା ହେତୁରେ) ଆପଣ ମତେ ଡକାଇଲେ ? କି ଯୋଗେ ମତେ ଡାକିଲେ ?

୯ । ଦୂର ଓ ଅନ୍ତିକାର୍ଥ ଶବ୍ଦ ପରେ—ତାଙ୍କ ନିକଟରେ ବସ; ସେ ବହୁଦୂରରେ ଅଛନ୍ତି ।

୧୦ । ଆଧାରାର୍ଥରେ ସପ୍ତମୀ—ବାକ୍ସ(ଆଧାର)ରେ ଧନ ଅଛି; ପୋଖରୀରେ ମାଛ ଅଛି ।

୧୧ । ଏକଦେଶାର୍ଥ ବା ଏକକାଳାର୍ଥରେ ସପ୍ତମୀ— ନଈରେ (ନଈର ଏକ ଦେଶରେ) କମ୍ଭୀର ଅଛି; ବଣରେ

ବାଘ ଅଛି; ଦ୍ୱାପର(ଦ୍ୱାପରର ଏକ ସମୟରେ)ରେ କୃଷ୍ଣ ଜନ୍ମିଥିଲେ ।

୧୨ । କ୍ୟାପ୍ରାର୍ଥରେ ସପ୍ତମୀ—ବୁଧରେ (ବୁଧଯାକ ବ୍ୟାପି) ଶର୍କରା ଅଛି, ଜଳରେ ତୈଳ ଅଛି ।

**ସପ୍ତମୀଜ**—ସଂ. ବିଣ. ପୁଂ (ସପ୍ତମୀ+ଜନ୍. ଧାତୁ+କର୍ତ୍ତୃ. ଅ)—
**Saptamija** ଯେଉଁ ବ୍ୟକ୍ତି ସପ୍ତମୀ ତିଥିରେ ଜନ୍ମଗ୍ରହଣ କରିଛନ୍ତି—(ସପ୍ତମୀଜା—ସ୍ତ୍ରୀ) Born on the 7th day of the lunar fortnight. [ଦ୍ର—ଜ୍ୟୋତିଷ୍ପ୍ରଦୀପ ଗ୍ରନ୍ଥ ମତରେ ସପ୍ତମୀରେ ଜାତ ହେବା ବ୍ୟକ୍ତି କନ୍ୟାପ୍ରଜ, ବୈରିନାଶକ, ବିଶାଳନେତ୍ର, ଭଗ୍ୟାତ, ଦେବଦ୍ୱିଜପୂଜକ ଓ ପିତୃବତ୍ସଳ ହୁଅନ୍ତି ।]

**ସପ୍ତମୀ ତତ୍ପୁରୁଷ**—ସଂ.ବି—ତତ୍ପୁରୁଷ ସମାସବିଶେଷ; ଯେଉଁ ତତ୍ପୁରୁଷ
**Saptami tat-purusha** ସମାସରେ,ସପ୍ତମୀବିଭକ୍ତିର ଚିହ୍ନର ଲୋପ ହୁଏ—A compound word in which one of the component parts has the 7th case-ending. (ଯଥା—ରଣରେ ପଣ୍ଡିତ—ରଣପଣ୍ଡିତ
ଜଳରେ ମଗ୍ନ—ଜଳମଗ୍ନ
ବାକ୍ୟରେ ପଟୁ—ବାକ୍‌ପଟୁ
ସୁପାକରେ ନିପୁଣ—ସୁପାକନିପୁଣ) ।

**ସପ୍ତମୀ ପୂଜା**—ସଂ. ବି—୧ । ସପ୍ତମୀ ତିଥିରେ ଅନୁଷ୍ଠିତ ସୂର୍ଯ୍ୟ,
**Saptami pūjā** ଦୁର୍ଗା, ଶିବ ଓ ବିଷ୍ଣୁ ଆଦି ଦେବତାଙ୍କ ପୂଜା—1. The worship of certain Deities performable on the senventh days of lunar fortnight. ୨ । ଆଶ୍ୱିନ ଶୁକ୍ଳ ସପ୍ତମୀ ଦିନ ଆରମ୍ଭ ନବପତ୍ରିକା ଦୁର୍ଗାପୂଜା—2. The worship of the Goddess Durgā begun on the 7th day of the bright lunar fortnight of Āswina. ୩ । ଚୈତ୍ର ଶୁକ୍ଳ ସପ୍ତମୀ ଦିନ ଆରମ୍ଭ ବାସନ୍ତୀ ଦୁର୍ଗାପୂଜା—3. The worship of Durgā begun on the 7th day of the bright lunar fortnight of the month of Chaitra.

**ସପ୍ତମୀ ବିଭକ୍ତି**—ସଂ.ବି—(ବ୍ୟାକରଣ) ଅଧିକରଣ କାରକର ଚିହ୍ନ (ଏଥିର
**Saptami bibhakti** ଚିହ୍ନ;—ରେ,ଠାରେ,ମଧ୍ୟରେ,ଥିରେ,ଠାରେ ଆଦି)—(Grammar) The signs of the seventh case-ending. [ଦ୍ର—'ସପ୍ତମୀ' ଶବ୍ଦର, ଦ୍ୱିତୀୟ ଅର୍ଥ ତଳେ ଲୋଡ଼ି ଦେଖ ।]

**ସପ୍ତ ରକ୍ତ**—ସଂ. ବି—(ଦ୍ୱିଗୁ; ସପ୍ତନ୍+ରକ୍ତ=ରକ୍ତବର୍ଣ୍ଣ ଅବୟବ)—
**Sapta rakta** ଶରୀରର ରକ୍ତବର୍ଣ୍ଣ ବା ରକ୍ତାଭ ସାତ ଗୋଟି ଅବୟବ (ଯଥା—କରତଳ, ପାଦତଳ, ନେତ୍ରପ୍ରାନ୍ତ, ଜିହ୍ୱା, ତାଳୁ, ଓଷ୍ଠ ଓ ନଖ)—The seven reddish parts of the body (e. g. palms; soles, ends of the eyes, tongue, palate, lips and nails.

**ସପ୍ତ ରାତ୍ର**—ସଂ.ବି (ସମାହାର ଦ୍ୱିଗୁ)—ସପ୍ତାହ; ଲଗାଲଗି ସାତଦିନ ଓ
**Sapta rātra** ସାତରାତି ବ୍ୟାପୀ ସମୟ—A week.

**ସପ୍ତର୍ଷି**—ସଂ. ବି (ସପ୍ତନ୍+ଋଷି; ସମାହାର ଦ୍ୱିଗୁ)—ସାତ ଜଣ
**Saptarshi** ପ୍ରଧାନ ଋଷିଙ୍କ ସମୂହ । (ଯାହାଙ୍କ ଉଦ୍ଦେଶ୍ୟରେ ପିଣ୍ଡ ଦିଆଯାଏ ଓ ତର୍ପଣ କରାଯାଏ)—Seven of the famous sages. [ଦ୍ର—ନକ୍ଷତ୍ର ଶବ୍ଦ ତଳେ ଲୋଡ଼ି ଦେଖ) । ଏମାନଙ୍କ ନାମ ଯଥା—୧. ମରୀଚି, ୨. ଅତ୍ରି, ୩. ଅଙ୍ଗିରା, ୪. ପୁଲସ୍ତ୍ୟ, ୫. ପୁଲହ, ୬. କ୍ରତୁ ଓ ୭. ବଶିଷ୍ଠ । ଏମାନଙ୍କ ସ୍ତ୍ରୀମାନଙ୍କ ନାମ ଯଥାକ୍ରମେ—୧ ସମ୍ଭୂତି, ୨. ଅନସୂୟା, ୩. କ୍ଷମା, ୪. ପ୍ରୀତି, ୫. ସନ୍ନତି ୬. ଲଜ୍ଜା, ଓ ୭. ଅରୁନ୍ଧତୀ । ପଦ୍ମପୁରାଣ ସ୍ୱର୍ଗଖଣ୍ଡ ୧୧ଶ ଅଧ୍ୟାୟରେ ଲେଖାଅଛି ଯେ, ଏ ଋଷିମାନେ ଜଗତରେ ପ୍ରଜା ସୃଷ୍ଟିପାଇଁ ବିଧାତାଙ୍କ ଦ୍ୱାରା ନିଯୁକ୍ତ ହୋଇଥିଲେ । ଏମାନେ ବ୍ରହ୍ମାଙ୍କର ମାନସ-ପୁତ୍ର ଅଟନ୍ତି ଏମାନଙ୍କୁ ମଧ୍ୟ ସପ୍ତବ୍ରାହ୍ମଣ ବୋଲିଯାଏ । ଏମାନେ ଲୋକପିତା ଅଟନ୍ତି ଓ ଏମାନଙ୍କ ସ୍ତ୍ରୀମାନେ ଲୋକମାତା ଅଟନ୍ତି । ଏମାନଙ୍କ ତପସ୍ୟାଦ୍ୱାରା ତ୍ରିଭୁବନ ଥୟ ହୋଇ ରହିଅଛି । ଏମାନେ ସର୍ବଦା ତ୍ରିସନ୍ଧ୍ୟାରେ ଉପାସନା ଓ ଗାୟତ୍ରୀ ଜପ କରୁଅଛନ୍ତି ବୋଲି କଥିତ ।] ୨ । ସପ୍ତର୍ଷିମଣ୍ଡଳ (ଦେଖ)—2. Saptarshi maṇḍala. (See)

**ସପ୍ତର୍ଷି ମଣ୍ଡଳ**—ସଂ. ବି—ଉତ୍ତରାକାଶର ସୁପରିଚିତ ୭ଟି ନକ୍ଷତ୍ରର ପୁଞ୍ଜ—
**Saptarshi maṇḍala** The constellation of the Great Bear (Ursa Major) which rises & sets round the Polestar in the northen sky. [ଦ୍ର—ଏ ନକ୍ଷତ୍ରମାନଙ୍କ ସଂଖ୍ୟା ସାତ । ଉତ୍ତରାକାଶରେ ଧ୍ରୁବନକ୍ଷତ୍ରର ଚତୁଃପାର୍ଶ୍ୱରେ ବୁଲୁଥିବା ପରି ଏହି ନକ୍ଷତ୍ର ମଣ୍ଡଳ ଦେଖାଯାଏ । ଏହି ମଣ୍ଡଳର ଆକାର ଗୋଟିଏ ପୁଚ୍ଛଯୁକ୍ତ ଚତୁର୍ଭୁଜ ବା ଡୋରିଲଗା ଘୁଡ଼ିସଦୃଶ । ପୁରାଣ ମତରେ ଏହି ସାତ ଗୋଟି ନକ୍ଷତ୍ର ଯଥାକ୍ରମେ ମରୀଚି, ଅତ୍ରି ଆଦି ପୂର୍ବୋକ୍ତ ସାତ ଗୋଟି ଋଷି ଅଟନ୍ତି । ଏମାନଙ୍କର ଅବସ୍ଥିତି

ଏହିପରି ଅଟେ । ଏହି ନକ୍ଷତ୍ରପୁଞ୍ଜ ର ଚତୁର୍ଭୁଜର ବାମଭାଗର ବା ମୁଣ୍ଡଆଡର ଦୁଇଟି ନକ୍ଷତ୍ରକୁ ଯୋଗ କରିବା କଳ୍ପିତ ରେଖାକୁ ଆକାଶରେ ବଢ଼ାଇଲେ ତାହା ଧ୍ରୁବ ନକ୍ଷତ୍ରକୁ ପ୍ରାୟ ସ୍ପର୍ଶ କରେ । ଏହି ସପ୍ତର୍ଷି ଭିନ୍ନଭିନ୍ନ ଋତୁରେ ଭିନ୍ନ ଭିନ୍ନ ଅବସ୍ଥାନରେ ଧ୍ରୁବ ନକ୍ଷତ୍ରର ଚତୁଃପାର୍ଶ୍ୱରେ ବେଙ୍ଗଳା ବୁଲିବାପରି ଘାଣ୍ଟିଘାଣ୍ଟି ବୁଲୁଥାଆନ୍ତି । ଏଥିପାଇଁ କବିବର ରାଧାନାଥ ମହାଯାତ୍ରାରେ ବର୍ଣ୍ଣନା କରିଅଛନ୍ତି—"ମେରୁ କରେ ସପ୍ତର୍ଷିର ସୁବର୍ଣ୍ଣ ବେଙ୍ଗଳା" ।

ଏହିମାନଙ୍କୁ କାଳ୍ପନିକ ରେଖାମାନଙ୍କଦ୍ୱାରା ଯୋଗକଲେ ଏହା ଗୋଟିଏ କାଳ୍ପନିକ ଭଲ୍ଲୁକ ପରି ଦେଖାଯିବ ଓ ଏହି ନକ୍ଷତ୍ରମଣ୍ଡଳର କଳ୍ପିତ ଲାଙ୍ଗୁଡ଼ କଳ୍ପିତ ଭଲ୍ଲୁକର ଲାଙ୍ଗୁଡ଼ ହେବ। ଏଥିପାଇଁ ଲାଟିନ୍‌ରେ ଏହି ମଣ୍ଡଳକୁ ବୃହତ୍ ଋକ୍ଷପୁଞ୍ଜ (Ursa Major ବା The Great Bear) ବୋଲଯାଏ। ଏହି ନକ୍ଷତ୍ରପୁଞ୍ଜର କଳ୍ପିତ ଲାଙ୍ଗୁଡ଼ର ମଝି ନକ୍ଷତ୍ରଟି ବଶିଷ୍ଠ ନାମରେ ଅଭିହିତ। ଏହି ବଶିଷ୍ଠ ନକ୍ଷତ୍ର ପାଖରେ ଅଉ ଗୋଟିଏ କ୍ଷୁଦ୍ର ନକ୍ଷତ୍ର ଦେଖାଯାଏ; ତାହା ବଶିଷ୍ଠଙ୍କ ସ୍ତ୍ରୀ ଅରୁନ୍ଧତୀ। କଥିତ ଅଛି ଯେ, ଯେଉଁ ମନୁଷ୍ୟକୁ ଖାଲି ଆଖିରେ ଏହି ଅରୁନ୍ଧତୀ ନକ୍ଷତ୍ର ଦେଖା ନ ଯାଏ, ୬ ମାସ ମଧ୍ୟରେ ସେ ଲୋକର ମୃତ୍ୟୁ ଘଟେ। ମରୀଚ ଆଦି ସାତଟି ଋଷି ଏହି ନକ୍ଷତ୍ରପୁଞ୍ଜରୂପେ ଧ୍ରୁବମଣ୍ଡଳର (ଧ୍ରୁବଲୋକ) ନିମ୍ନରେ ଅବସ୍ଥିତ ବୋଲି ପୁରାଣରେ ଲିଖିତ ଅଛି।]

**ସପ୍ତଳା**—ସଂ. ବି. ସ୍ତ୍ରୀ— (ସପ୍ତନ୍ = ସାତ ଗୋଟି ପତ୍ର ବା ପାଖୁଡ଼ା + **Saptalā** ଲା ଧାତୁ = ଗ୍ରହଣ କରିବା + କର୍ତ୍ତ୍ରି ଅ + ଆ. ସ୍ତ୍ରୀ)— ୧। ନବମଲ୍ଲିକା ଫୁଲ; ନଅଳୀ ଫୁଲ—1. A sort of Jasmine; Jasminum Zambac. ୨। ଗୁଞ୍ଜା; କାଇଁଚ—2. A sort of black-tipped red or white seed enclosed in a pod; Abrus Precatorius. ୩। ଚର୍ମକଷା; ଦେଉଳଆ ସିଝୁ (ଗଛ) —3. Origanum Vulgaris (tree). ୪। ମାଂସରୋହିଣୀ ନାମକ ବୃକ୍ଷ—4. Red wood tree; Soymida Febrifuga.

**ସପ୍ତ ଲୋକ**—ସଂ. ବିଂ— (ସପ୍ତନ୍ + ଲୋକ; ସମାହାର ଦ୍ୱିଗୁ)—ହିନ୍ଦୁ **Sapta loka** ପୁରାଣୋକ୍ତ ୭ ଗୋଟି ଊର୍ଦ୍ଧ୍ୱ ଭୁବନ—The seven upper worlds according to the Hindu mythology. [ଦ୍ର—ଏହି ସପ୍ତଲୋକର ନାମ ଯଥାକ୍ରମେ—ଭୂଃ, ଭୁବଃ, ସ୍ୱଃ, ମହଃ, ଜନଃ, ତପଃ ଓ ସତ୍ୟମ୍। ପୃଥିବୀ (ଭୂଃ) ଓ ପୃଥିବୀ ଉପରେ ଥିବା ଅଉ ଛଅ ଗୋଟି କଳ୍ପିତ ଭୁବନ ସପ୍ତଲୋକ ନାମରେ ଅଭିହିତ।]

**ସପ୍ତ ଶତ**—ସଂ. ବି. ଓ ବିଣ— (ସଂଖ୍ୟାବାଚକ; ସପ୍ତନ୍ + ଶତ)— **Sapta śata** ସାତ ଶହ—Seven hundred. [ଦ୍ର—ଏହିପରି ସପ୍ତସହସ୍ର, ସପ୍ତଲକ୍ଷ, ସପ୍ତକୋଟି ଆଦି ଶବ୍ଦ ହୁଏ।]

**ସପ୍ତଶତିକା**—ସଂ. ବିଣ. ସ୍ତ୍ରୀ—(ସପ୍ତଶତ + ଇକ + ଆ)—ସପ୍ତଶତ ଶ୍ଳୋକ **Sapta śatikā** ବଶିଷ୍ଟ—(feminine) Having seven (ସପ୍ତଶତୀ—ଅନ୍ୟରୂପ) hundred slokas. ସଂ. ବିଂ—(ସାତ ଶହ ଶ୍ଳୋକଯୁକ୍ତ ଗ୍ରନ୍ଥ)—ମାର୍କଣ୍ଡେୟ ପୁରାଣାନ୍ତର୍ଗତ ଦେବୀମାହାତ୍ମ୍ୟ ବା ଚଣ୍ଡୀ ନାମକ ଗ୍ରନ୍ଥ—The book called Chaṇḍī which consists of 700 slokas ); [ଦ୍ର—ଏଥିରେ ଦୁର୍ଗାଙ୍କ ଦ୍ୱାରା ଭିନ୍ନ ଭିନ୍ନ ଅସୁରଙ୍କ ବଧ ଓ ତାହାଙ୍କର ଇତିହାସ ବର୍ଣ୍ଣିତ ହୋଇଅଛି। ଏଥିରେ ଅଧ୍ୟାୟରେ ୧ ଅଧ୍ୟାୟରେ ୧୦୪ ଶ୍ଳୋକ, ମଧ୍ୟଚରିତ ୩ ଅଧ୍ୟାୟରେ ୧୫୫ ଶ୍ଳୋକ ଓ ଉତ୍ତରଚରିତ ୯ଅଧ୍ୟାୟରେ ୪୪୧ଶ୍ଳୋକ ଅଛି। ମୋଟରେ ୩ ଚରିତରେ ୧୩ ଅଧ୍ୟାୟରେ ୭୦୦ ଶ୍ଳୋକ ଅଛି। ଭଗବଦ୍‌ଗୀତାକୁ ମଧ୍ୟ ସପ୍ତଶତୀ ବୋଲିଯାଇପାରେ, କାରଣ ଏଥିରେ ଶ୍ଳୋକ ସଂଖ୍ୟା ୭୦୦ (ଷଷ୍ଟକାଷ୍ଠ)। ଦେ. ବ.— ପୂର୍ବବଙ୍ଗ ଦେଶରେ ପୂର୍ବେ ବାସ କରୁଥିବା ସାତ ଶହ ବ୍ରାହ୍ମଣ ପରିବାରଙ୍କ ସମବାୟ—The aggregate of 700 families of Brāhmaṇas who were formerly living in Bengal.

**ସପ୍ତ ଶଯ୍ୟା**—ଦେ. ବି—(ସପ୍ତ ସଂଖ୍ୟକ ଶଯ୍ୟା ଯାହାର; ବହୁବ୍ରୀହି)— **Sapta śajjyā** ଢେଙ୍କାନାଳ ରାଜ୍ୟସ୍ଥିତ ସାତଗୋଟି ସ୍ତର ବା ଶ୍ରେଣୀ ବଶିଷ୍ଟ ପାହାଡ଼ର ନାମ—Name of a range of ସପ୍ତଶଯ୍ୟା सप्तशय्या seven layers of hills in the Dhenkanal State of Orissa. [ଭ୍ର—ସ୍ୱର-ଭୂପବାଦ ଧାମ ସପ୍ତଶଯ୍ୟା-ଶିଖରଶ୍ରୃଙ୍ଗ ଉଠିଲା—ରାଧାନାଥ ପାର୍ବତୀ]. [ଦ୍ର—ଏହି ପାହାଡ଼ରେ ଗୋଟିଏ ସ୍ୱାସ୍ଥ୍ୟକର ଝର ଅଛି ଓ ଏହା ଉପରେ ଥିବା ଜଙ୍ଗଲରେ ଲେମ୍ବୁ; ଡାଳିମ୍ବ, କଦଳୀ, କେଉଟ, ଧାନୁଆ ଲଙ୍କାମରିଚ ପ୍ରଭୃତି ଅନେକ ଗଛ ଅଛି। ସ୍ଥାନୀୟ ଲୋକେ ଏ ସବୁକୁ ଖାଦ୍ୟପାଇଁ ସଂଗ୍ରହ କରନ୍ତି। ଢେଙ୍କାନାଳ ଗଡ଼ଠାରୁ ସାତ ମାଇଲ୍ ଦୂରରେ ଦକ୍ଷିଣପୂର୍ବ କୋଣରେ ଏହି ପର୍ବତ ଅବସ୍ଥିତ।]

**ସପ୍ତଶଳାକ**—ସଂ. ବିଣ—(ସପ୍ତନ୍ + ଶଳାକା; ସପ୍ତଶଳାକା ଅଛି ଯହିଁରେ; **Sapta śalāka** ବହୁବ୍ରୀହି)—ସାତ ଗୋଟି ଶଳାକା ଯୁକ୍ତ— Having seven rods, pins or straight lines. ୨। ସପ୍ତଶଳାକ ଚକ୍ର (ଦେଖ)—2. Sapta-śalāka chakra (See)

**ସପ୍ତ ଶଳାକ ଚକ୍ର**—ସଂ. ବିଂ—(ସପ୍ତନ୍ + ଶଳାକା = ରେଖା; ସମାହାର **Sapta śalāka chakra** ଦ୍ୱିଗୁ ଓ କର୍ମଧା)—ଜ୍ୟୋତିଷ (ଫଳିତ) ମତରେ ବିବାହର ଶୁଭାଶୁଭ ଦିନ ଜାଣିବାର୍ଥ ଅଙ୍କିତ ତିର୍ଯ୍ୟଗୂର୍ଦ୍ଧ୍ୱ ସପ୍ତରେଖା ବିଶିଷ୍ଟ ଚକ୍ର ବିଶେଷ—An astrological figure consisting of seven lines crossing 7 other lines and drawn to ascertain an auspicious day for marriage. [ଦ୍ର—ସାତ ଗୋଟି ରେଖା କାଟି ତାକୁ ଆଉ ସାତ ଗୋଟି ରେଖା ଦ୍ୱାରା ଛେଦିବାକୁ ହୁଏ ଓ ଏହିପରି ତିଆରି ହୋଇଥିବା ୧୪ ରେଖାର ମୁଣ୍ଡରେ କୃତ୍ତିକା (ଆଦ୍ୟ) ନକ୍ଷତ୍ର ଠାରୁ ଆରମ୍ଭ କରି ତାହାର ଦକ୍ଷିଣକୁ ନକ୍ଷତ୍ରମାନ ସଂଖ୍ୟା କ୍ରମେ ବସାଇ ଦିବାକୁ ହୁଏ ଓ ୨୧ (ଉତ୍ତରାଷାଢ଼ା) ପରେ ୦ (ଶୂନ୍ୟ ଅର୍ଥାତ୍ ଅଭିଜିତ୍ ନାମକ ନକ୍ଷତ୍ର) ଲେଖି, ତାହାପରେ ୨୨ (ଶ୍ରବଣା) ନେଇ ୧୪ଟି ରେଖାର ୨୮ଟି ଅଗ୍ରଭାଗ ପୂରଣ କରାଯାଏ। ଯଥା, ୩।୪।୫।୬।୭।୮।୯।୧୦।୧୧।୧୨।୧୩।୧୪।୧୫।୧୬ ୧୭।୧୮।୧୯।୨୦।୨୧।୦।୨୨।୨୩।୨୪।୨୫।୨୬।୨୭।୧।୨।

ଯେଉଁ ନକ୍ଷତ୍ରରେ ବିବାହର ଦିନ ସ୍ଥିର ହୋଇଥିବ, ଏହି ଚକ୍ର ଅନୁସାରେ ସେହି ନକ୍ଷତ୍ରର ବିପରୀତ ସୂତ୍ରରେ ଅବସ୍ଥିତ ନକ୍ଷତ୍ର ପ୍ରଥମ ନକ୍ଷତ୍ରର ବେଧ ଅର୍ଥାତ୍ ପ୍ରତିକୂଳ ଅଟେ; ଉକ୍ତ ବିଦ୍ଧ ନକ୍ଷତ୍ରରେ ଯଦି ଚନ୍ଦ୍ର ବିନା ଅନ୍ୟ ଗ୍ରହ ସେ ଦିନ ଅବସ୍ଥାନ କରୁଥିବା ଦେଖାଯାଏ,ତେବେ ଏହା'ସପ୍ତଶଲାକ ବେଧ' ନାମକ ଦୋଷଯୁକ୍ତ ବୋଲି ବିବେଚିତ ହୁଏ ଓ ଏହି ନକ୍ଷତ୍ରଯୁକ୍ତ ତିଥିରେ ବିବାହ କଲେ କନ୍ୟା ବିଧବା ହୁଏ ।

(୩) କୃତ୍ତିକା ସହିତ ଶ୍ରବଣା (୨୨)ର ବେଧ ଅଟେ
(୪) ରୋହିଣୀ ,, ଅଭିଜିତ୍ (୦) ,,
(୫) ମୃଗଶିର ,, ଉତ୍ତରାଷାଢ଼ା (୨୧) ,,
(୬) ଆର୍ଦ୍ରା ,, ପୂର୍ବାଷାଢ଼ା (୨୦) ,,

**ସପ୍ତଶଲାକ ବେଧ**—ସଂ. ବି (ଜ୍ୟୋତିଷ)—ସପ୍ତଶଲାକ ଚକ୍ର ପାତକ
Saptaśalāka bedha ଦ୍ୱାରା ଗଣନା କରି ଗଲେ ବିବାହ ପାଇଁ ସ୍ଥିରୀକୃତ ତିଥିର ନକ୍ଷତ୍ରରେ ଘଟିବା ଅଶୁଭକର ଦୋଷ—The inauspicious condition of an asterism, found out by calculation by drawing the Saptaśalāka chakra. (ସପ୍ତଶଲାକ ଚକ୍ର ତଳେ ନୋଟ୍ ଦେଖ) ।

**ସପ୍ତ ଶାଳ**—ସଂ. ବି.—ରାମାୟଣ ବର୍ଣ୍ଣିତ ଏକତ୍ରାବସ୍ଥିତ ସାତଗୋଟି
Saptaśāla ଲେଙ୍ଗା ଓ ସିଧା ଶାଳଗଛ—Seven Śāla trees which grew together, as described in the Rāmāyaṇa and which were simultanneously pierced with one arrow by Rāmachandra.

**ସପ୍ତ ଶିର**—ସଂ. ବି (ସପ୍ତନ୍+ଶିର ଯାହାର; ବହୁବ୍ରୀହି, ।ଏହି ପତ୍ରରେ
Sapta śira ସାତ ଗୋଟି ଶିର ଥିବାରୁ)—ନାଗବଲ୍ଲୀ (ରାଜନିର୍ଘଣ୍ଟ)—The betel plant. ଦେ. ବି— ସଂ, ସପ୍ତଶିରସ୍—ସାତଟି ମସ୍ତକ ବିଶିଷ୍ଟ) ସହସ୍ରରାବଣର
सप्तशिरा ଜଣେ ମନ୍ତ୍ରୀ—Name of a minister of
सप्तशिरा Sahasrā Rābaṇa.

**ସପ୍ତ ଶୀର୍ଷ**—ସଂ. ବି ବହୁବ୍ରୀହି —କୃତ୍ତିକା ନକ୍ଷତ୍ର—
Sapta śirsha • The Kruttikā asterism.
[ଦ୍ର—କୃତ୍ତିକା ତାରା ଶ୍ରେଣି ମାନସରେ ଉଡ଼ି, ଆକାଶରେ ଯାଇ ରହିଲେ ବାସ କରି । ଅଜହିଁ ସପ୍ତଶୀର୍ଷ ନାମରେ ବ୍ୟକତ × × ×
କୃଷ୍ଣସିଂହ. ମହାଭାରତ, ବନ ।]

**ସପ୍ତ ଶୂନ୍ୟ**—ସ. ବି—ଜ୍ୟୋତିଷ ଗଣନା କ୍ରମେ ଗ୍ରହମାନଙ୍କର
Sapta śūnya ଅମଙ୍ଗଳସୂଚକ ଅବସ୍ଥାନ ବିଶେଷ—A very inauspicious conjunction of planets according to a particular astrological calculation. [ଦ୍ର—ଜ୍ୟୋତିଷ ଗଣନା କ୍ରମେ କୌଣସି ଜାତକରେ ଏ ପାତ, ସପ୍ତଶୂନ୍ୟ ଯୋଗ ଘଟିଲେ ଉକ୍ତ ବ୍ୟକ୍ତିଙ୍କର ମୃତ୍ୟୁ ଘଟିବାର ଆଶଙ୍କା ହୁଏ ।]

**ସପ୍ତଷଷ୍ଠ**—ସ.ବିଣ—(ସପ୍ତଷଷ୍ଟି+ପୂରଣାର୍ଥେ ଅ)—ସତଷଠୀର ପୂରଣ—
Saptashashtha Sixtyseventh.
(ସପ୍ତଷଷ୍ଟିତମ—ଅନ୍ୟରୂପ)

**ସପ୍ତଷଷ୍ଟି**—ସ. ବି ଓ ବିଣ—( ସଙ୍ଖ୍ୟାବାଚକ, ସପ୍ତ ଅଧିକ ଷଷ୍ଟି )—
Sapta shashṭhi ଷାଠିଏରୁ ସାତ ଅଧିକ—Sixty-seven.

**ସପ୍ତସପ୍ତକ**—ସ. ବି ଓ ବିଣ—(ସଂଖ୍ୟାବାଚକ; ସପ୍ତଗୁଣିତ ସପ୍ତ+କ)—
Saptasaptaka ଅଣଚାଶ (ବିଶ୍ୱକୋଷ)—Fortynine.

**ସପ୍ତସପ୍ତତି**—ସ. ବି ଓ ବିଣ—( ସଂଖ୍ୟାବାଚକ; ସପ୍ତ ଅଧିକ ସପ୍ତତି)-
Saptasaptati ୭୭; ସତସ୍ତରି—77; seventyseven.

**ସପ୍ତସପ୍ତତିତମ**—ସ. ବିଣ. (ସପ୍ତସପ୍ତତି+ପୂରଣାର୍ଥେ ତମ)—ସତସ୍ତରି
Saptasaptatitama ସ୍ଥାନୀୟ—Seventyseventh.

**ସପ୍ତସପ୍ତି**—ସଂ. ବି—(ସପ୍ତନ୍+ସପ୍ତି=ଘୋଡ଼ା ଅଛନ୍ତି ଯାହାଙ୍କ
Saptasapti ରଥରେ; ବହୁବ୍ରୀହି)—ସୂର୍ଯ୍ୟ; ସୂର୍ଯ୍ୟ (ହେମଚନ୍ଦ୍ର)—The sun (who, according to the Hindu mythology, has seven horses in his one-wheeled chariot).

**ସପ୍ତ ସମୁଦ୍ର**—ସ. ବି—( ସମାହାର ଦ୍ୱିଗୁ )—ସପ୍ତସିନ୍ଧୁ; ହିନ୍ଦୁ ପୁରାଣ
Sapta samudra ମତରେ ମେରୁଗିରିର ଚାରି ପାଖେ ଗୋଟିଏ ଲେଖାଏଁ ଦ୍ୱୀପକୁ ଯଥାକ୍ରମେ ଘେରିଥିବା ୭ ଗୋଟି ସମୁଦ୍ର—The seven concentric oceans or rings of fluids surrounding the Meru mountain and in turn surrounded by rings of seven concentric islands.
[ଦ୍ର—ଏହି ସପ୍ତ ସାଗରର ନାମ ଯଥା—ଲବଣ, ଇକ୍ଷୁ ବା ମଧୁ, ସୁରା, ଘୃତ, ଦଧି, କ୍ଷୀର ବା ଦୁଗ୍ଧ ଓ ଜଳ ସମୁଦ୍ର । ଏହି ସମୁଦ୍ରମାନ ମେରୁ ପର୍ବତକୁ କେନ୍ଦ୍ର କରି ଯଥାକ୍ରମେ ସପ୍ତ ଦ୍ୱୀପକୁ ବେଷ୍ଟନ କରିଅଛନ୍ତି । ଏଥିମଧ୍ୟରୁ କ୍ଷୀର ସାଗର ମଧ୍ୟସ୍ଥିତ ବୈକୁଣ୍ଠରେ ବିଷ୍ଣୁଙ୍କର ନିବାସ ।]

**ସପ୍ତ ସାଗର**—ସ. ବି—୧ । ମତ୍ସ୍ୟପୁରାଣୋକ୍ତ (୨୬୧ ଅଧ୍ୟାୟ) ମହାଦାନ
Saptasāgara ବିଶେଷ—1. Name of a kind of
[ସପ୍ତସାଗରକ (ଦାନ)—ଅନ୍ୟରୂପ] gift mentioned in the Matsya Purāṇa. [ଦ୍ର—ଏହି ଦାନ ସର୍ବପାପବିନାଶକ । ଗୋଟିଏ ପୁଣ୍ୟ ଦିବସ ନିର୍ବାଚନ କରି ବ୍ରାହ୍ମଣମାନଙ୍କୁ ନିମନ୍ତ୍ରଣ କରି ସ୍ୱର୍ଣ୍ଣରେ ପ୍ରାଦେଶ ବା ଏକବିଂଶତ୍ ପରିମିତ ୭ ପଲଠାରୁ ସହସ୍ର ପଲ ଓଜନରେ ୭ ଗୋଟି କୁଣ୍ଡ ରଚନା କରି ଉକ୍ତ କୁଣ୍ଡମାନଙ୍କୁ କୃଷ୍ଣାଜିନ ଓ ତିଳ ଉପରେ ରଖିବ । କୁଣ୍ଡମାନଙ୍କରେ ଯଥାକ୍ରମେ ଲବଣ, ଦୁଗ୍ଧ, ଘୃତ, ଗୁଡ଼ ବା ମଧୁ, ଦଧି, ଶର୍କରା ଓ ତୀର୍ଥବାରି ପୂର୍ଣ୍ଣ କରିବ ଏବଂ ଉକ୍ତ ପାତ୍ରମାନଙ୍କ ମଧ୍ୟରେ ଯଥାକ୍ରମେ ସ୍ୱର୍ଣ୍ଣ ନିର୍ମିତ ବ୍ରହ୍ମା, ବିଷ୍ଣୁ, ଶିବ, ସୂର୍ଯ୍ୟ, ଇନ୍ଦ୍ର, ଲକ୍ଷ୍ମୀ ଓ ପାର୍ବତୀଙ୍କର ପ୍ରତିମାମାନ ରଖି ଉକ୍ତ କୁଣ୍ଡ-

ମାନଙ୍କ ପୂରଅନ୍ତେ ଧାନ୍ୟ ଓ ରତ୍ନ ପୂର୍ଣ୍ଣ କରିବ। ତତ୍ପରେ ହୋମ କରି ସମୁଦ୍ର ଓ ସମୁଦ୍ରାଧିଷ୍ଠାତୃ ଦେବତାମାନଙ୍କ ନାମ ଉଚ୍ଚାରଣ ପୂର୍ବକ ମନ୍ତ୍ର ପାଠ କରି ଉକ୍ତ କୁଣ୍ଡମାନଙ୍କୁ ଯଥାକ୍ରମେ ଜଣେ ଜଣେ ବ୍ରାହ୍ମଣଙ୍କୁ ଦାନ କରିବ।'] ୨। ଶିବଲିଙ୍ଗ ବିଶେଷ (ପ୍ରକୃତିବାଦ)—2. Name of a phallic image of Śiba. ୩। ସପ୍ତସମୁଦ୍ର (ଦେଖ)— 3. Sapta Samudra (See)

ସପ୍ତ ସାମ—ସଂ. ବି— (ସପ୍ତନ୍+ସାମନ୍; ଦ୍ୱିଗୁ)—ରଥନ୍ତର, ବୃହତ୍, ସାମ, ବାମଦେବ୍ୟ, ବୈରୂପ, ଶାକ୍ୱର, ରୈବତ ଓ ଗୃଡ୍ରମଣ—ଏହି ସାତ ଗୋଟି ସାମ ବା ସାମବେଦୋକ୍ତ ଗୀତିମାନ ମନ୍ତ୍ର—The seven mystic incantations in the Sāma Beda.
Sapta sāma

ସପ୍ତ ସିନ୍ଧୁ—ସଂ ବି—(ସପ୍ତନ୍+ସିନ୍ଧୁ; ଦ୍ୱିଗୁ)—ସପ୍ତ ସମୁଦ୍ର, (ଦେଖ)
Sapta sindhu Sapta samudra (See)

ସପ୍ତ ସୁର—ଦେ. ବି.—ସପ୍ତସ୍ୱର (ଦେଖ)—
Sapta sura Saptaswara (See)
সপতস্বর सप्तस्वर

ସପ୍ତସୁ(ସୋ)ରି(ରି)—ଦେ. ବି.—(ସଂ. ସପ୍ତସ୍ୱରା) ୧। ସପ୍ତସ୍ୱର ବିଶିଷ୍ଟ ବାଜା—A musical instrument with seven tunes. ୨। ସପ୍ତସ୍ୱରା (ଦେଖ)—2. Saptaswarā (See)
Saptasu(so)ri(ri)
সপতসুবা सप्तस्वरा

ସପ୍ତସୂ—ସଂ. ବିଣ୍. ସ୍ତ୍ରୀ—(ସପ୍ତନ୍+ସୂ ଧାତୁ+କର୍ତ୍ତି. କ୍ୱିପ୍)—ସ୍ୱତବତ୍ସା; ସପ୍ତପୁତ୍ରପ୍ରସୂତା (ସ୍ତ୍ରୀ); ଯେଉଁ ସ୍ତ୍ରୀ ସାତଟି ପୁତ୍ର ଜନ୍ମ କରିଅଛନ୍ତି—A mother of seven sons.
Saptasū

ସପ୍ତ ସ୍ୱର—ସଂ. ବି—ହିନ୍ଦୁ ସଙ୍ଗୀତଶାସ୍ତ୍ରୋକ୍ତ ସାତ ଗୋଟି ସ୍ୱର—ସା, ରି, ଗା, ମା, ପା, ଧା, ନି—The seven notes in the Hindu musical gamut. [ଦ୍ର—ସ୍ୱର ଶବ୍ଦ ଦେଖ। ସଙ୍ଗୀତ ଶାସ୍ତ୍ରରେ ଲେଖାଅଛି ଯେ, ଏହି ସାତ ଗୋଟି ସ୍ୱର ଭିନ୍ନ ଭିନ୍ନ ଜନ୍ତୁଙ୍କ ସ୍ୱରରୁ ଗୃହୀତ ହୋଇଅଛି ଯଥା—
Saptaswara

ସା...ଷଡ଼ଜ...ମୟୂରର ...ଇଂ—C (Do).
ରି...ଋଷଭ...ବୃଷଭର...ଇଂ—D (Re).
ଗା...ଗାନ୍ଧାର...ଛାଗର...ଇଂ—E (Mi).
ମା...ମଧ୍ୟମ...କ୍ରୌଞ୍ଚର...ଇଂ—F (Fa).
ପା...ପଞ୍ଚମ...କୋକିଳର...ଇଂ—G (So).
ଧା...ଧୈବତ...ଘୋଟକର—ଇଂ—A (La).
ନି...ନିଷାଦ...ହସ୍ତୀର...ଇଂ—A (Ta).

ଏହି ସାତଗୋଟି ସ୍ୱରମିଶି ଗୋଟିଏ ଲେଖାଏଁ ସପ୍ତକ ହୁଏ। ସପ୍ତକ ତିନି ଗୋଟି। ଯଥା—
ଉଦାରା—ଚଢ଼ା ଗଳା ବା ଉଚ୍ଚୈଃସ୍ୱର; ମୁଦାରା—ସାଧାରଣ ଗଳା, ମନୁଷ୍ୟର ସ୍ୱର; ତାରା—କେଁ କେଁ ଶବ୍ଦ ବା ସ୍ତ୍ରୀ ଓ ଶିଶୁଙ୍କ ସ୍ୱର।

ଏହି ସାତ ଗୋଟି ସ୍ୱରର ପୁଣି କୋମଳ, ଅତି କୋମଳ, ତୀବ୍ର, (କଡ଼ା) ଓ ଅତି ତୀବ୍ର ପ୍ରଭୃତି ଭେଦ ଅଛି।]

ସପ୍ତସ୍ୱରା—ସଂ. ବି. (ସପ୍ତସ୍ୱର+ଅ)—୧। ତନ୍ତ୍ରୀ ବାଦ୍ୟଯନ୍ତ୍ରବିଶେଷ (ଏଥିରେ ସାତ ଗୋଟି ସ୍ୱର ଥାଏ)—1. A stringed instrument striking 7 tunes. ୨। ଜଳ ତରଙ୍ଗ ନାମକ ବାଦ୍ୟ ଯନ୍ତ୍ର [ଦ୍ର—ସାତ ଗୋଟି ପାତ୍ରରେ ଭିନ୍ନ ଭିନ୍ନ ପରିମାଣରେ ଜଳ ରଖି ଉକ୍ତ ପାତ୍ରକୁ ଖଣ୍ଡିଏ କାଠିଦ୍ୱାରା କ୍ରମାନୁସାରେ ବଜାଇ ସଙ୍ଗୀତର ସପ୍ତସ୍ୱର ଏଥିରୁ ଉତ୍ପାଦନ କରାଯାଏ।]—2. A musical instrument consisting of a set of seven cups containing different quantities of water and struck with a stick successively to produce the seven tunes of the gamut. ସଂ. ବିଣ. ସ୍ତ୍ରୀ—ସପ୍ତସ୍ୱର ବିଶିଷ୍ଟ—Striking 7 tunes. [ଉ—ଏକ ହସ୍ତେ ଗ୍ରନ୍ଥ; ଅନେ ବୀଣା ସପ୍ତସ୍ୱରା—ରାଧାନାଥ (ସପ୍ତସ୍ୱର—ଦେ ରୂପ) ମହାଯାତ୍ରା ]
Sapta swarā

ସପ୍ତ ସ୍ୱର୍ଗ—ଦେ.ବି.—ଭୂ, ଭୁବଃ, ସ୍ୱଃ, ମହଃ,ଜନଃ,ତପଃ ଓ ସତ୍ୟମ୍,—ଏହି ସପ୍ତଲୋକ—The seven heavens or upper worlds according to Hindu mythology.
Sapta swarga
সপ্তসগ' सप्तस्वर्ग

ସପ୍ତା—ଦେ. ବି.—୧ । (ସଂ. ସପ୍ତାହ)—ସପ୍ତାହ—1. A week. ୨। ସପ୍ତାହକାଳ ଅହୋରାତ୍ର ବୋଲାଯାଇ ଅଦ୍ୟନ୍ତ ଶେଷ ପର୍ଯ୍ୟନ୍ତ ଭାଗବତର ୧୨ ସ୍କନ୍ଧଯାକ ପାଠ କରିବା ରୂପ ଅନୁଷ୍ଠାନ—The reading out of the Oriya Bhāgabata in the course of 7 days & nights continuously. [ଦ୍ର—ଲୋକେ ମାନସିକ କରି କମ୍ବା ଗ୍ରାମରେ ମହାମାରୀ ଆଦି ଉପସ୍ଥିତ ହେଲେ ତନ୍ନିବାରଣ କାମନା କରି ଅହୋରାତ୍ର ୭ ଦିନ ଭାଗବତ ପାଠ କରନ୍ତି ବା 'ସପ୍ତା ବସାନ୍ତି'। ଏହା ଶେଷ ହେଲେ ପୂଜା ଓ ଉତ୍ସବ ଆଦି କରାଯାଏ। ଏ ସାତ ଦିନଯାକ ପଞ୍ଚାଏ ଲେଖାଏଁ ପାଠକ ପାଳକରି ଭାଗବତ ବୋଲୁଥାଆନ୍ତି। ପଞ୍ଚାଏ ବୋଲି ବୋଲି ଥକି ଗଲେ ଆଉ ପଞ୍ଚାଏ ବୋଲନ୍ତି।] ୩। (ସଂ ସପ୍ତମ)—ଶନିସପ୍ତା; ଶନିଗ୍ରହର ଲଗ୍ନଠାରୁ ୭ମ,୮ମ ଓ ୯ମ ରାଶିରେ ଥିବା ଅବସ୍ଥା—(ଏହା ଅତି ଅଶୁଭ ଫଳପ୍ରଦ)—3. (Astrology) The state of the planet Saturn being in its 7th, 8th and 9th places from a man's natal sign. ସଂ. ବିଣ—(ସପ୍ତ
Saptā
হপ্তা सप्ताह
ভাগবত সপ্তাহ भागवत सप्ताह

+ଥ)—୧। ସପ୍ତମ ଅଷ୍ଟମ ଓ ନବମର ପୂରଣ—1. The 7th, 8th and 9th. [ଯଥା—ଶନସପ୍ତ।]
୨। ସପ୍ତାହବ୍ୟାପୀ—2. Extending over a week. [ଯଥା—ସପ୍ତାହଭଗବତ]

**ସପ୍ତାଂଶୁ**—ସଂ. ବି.—୧। (ସପ୍ତନ୍+ଅଂଶୁ=କିରଣ ଯାହାର; ବହୁବ୍ରୀହି)—ଅଗ୍ନି; ସପ୍ତଜିହ୍ୱ—1. Fire. Saptamsu [ଦ୍ର—ଭୁଶଣ୍ଡି ହୋମରେ ଅଗ୍ନିଙ୍କର ଶ୍ୱେତ, ରକ୍ତ, ପୀତ, ନୀଳ, କୃଷ୍ଣ, ଧୂମ୍ର ଓ ପାଟଳ, ଏହି ସାତ ଗୋଟି ଅଂଶୁ ଉଦ୍ଦେଶ୍ୟରେ ଅହୁତି ଦିଆଯାଏ।] ୨। ଶନିଗ୍ରହ—2. The planet Saturn. ସଂ. ବିଣ—(ସପ୍ତାଂଶୁ ବା ଶନିଙ୍କର ଗୋଟିଏ କ୍ରୂର ନେତ୍ର ଥିବାରୁ)—କ୍ରୂର-ନେତ୍ର; ଯେଉଁ ବ୍ୟକ୍ତିର ଦୃଷ୍ଟି ଅଶୁଭ ଫଳପ୍ରଦ—A person having malignant eyes.

**ସପ୍ତାଂଶୁ ପୁଙ୍ଗବ**—ସଂ. ବି.—(ସପ୍ତାଂଶୁ+ପୁଙ୍ଗବ=ଶ୍ରେଷ୍ଠ) ଶନିଗ୍ରହ—The planet Saturn. Saptāmsu pungaba

**ସପ୍ତାଙ୍ଗ**—ସଂ. ବି.—(ସପ୍ତନ୍+ଅଙ୍ଗ; ସମାହାର ଦ୍ୱିଗୁ)—୧। ନୀତି-ଶାସ୍ତ୍ରୋକ୍ତ ରାଜ୍ୟର ସାତ ଗୋଟି ଅଙ୍ଗ—1. The seven components of a kingdom. Saptānga [ଯଥା—ସ୍ୱାମୀ, ଅମାତ୍ୟ, ସୁହୃତ୍, କୋଷ, ରାଷ୍ଟ୍ର, ଦୁର୍ଗ ଓ ବଳ, ମତାନ୍ତରରେ ରାଜା, ଅମାତ୍ୟ, ପୁର, ରାଷ୍ଟ୍ର, କୋଷ, ଦଣ୍ଡ ଓ ସୁହୃତ୍ (ମନୁ ୯-୨୯୪୨୯୬); ମତାନ୍ତରରେ ରାଜା, ଅମାତ୍ୟ, ପ୍ରଜା, ଦୁର୍ଗ, କୋଷାଗାର, ଚତୁରଙ୍ଗ ସୈନ୍ୟ, ମିତ୍ର (ଯାଜ୍ଞବଲ୍କ୍ୟ ୧—୩୫୨)] ୨। ଏକପ୍ରକାର ଯୋଗ ସାଧନ—2. A sort of spiritual exercise. ୩। (ଜ୍ୟୋତିଷ) କୌଣସି ଦିବସ ସମ୍ବନ୍ଧେ ଜ୍ଞାତବ୍ୟ ଜ୍ୟୋତିଷୋକ୍ତ ସାତ ଗୋଟି ବିଷୟ (ଯାହା ପଞ୍ଜିକାରେ ଉଲ୍ଲେଖ ହୋଇଥାଏ; ଯଥା—ତିଥି, ବାର, ନକ୍ଷତ୍ର, ରାଶି, ଯୋଗ, କରଣ ଓ ଲଗ୍ନାଂଶ)—3. The seven items or information which are calculated according to astrology in respect of every day. ୪। (ବହୁବ୍ରୀହି; ସପ୍ତଅଙ୍ଗ ବିଶିଷ୍ଟ)—ରାଜ୍ୟ—4. A kingdom.

**ସପ୍ତା ବଢ଼ା**—ଦେ. ବି—ସପ୍ତାହ ବ୍ୟାପୀ ଭଗବତ ପାଠ ରୂପ ଉତ୍ସବର ଶେଷ ବା ଉଦ୍‌ଯାପନ—The formal or ceremonial completion of the 'continuous reading of the Bhāgabata for a week. Saptā bardha (ସପ୍ତା ବର୍ଦ୍ଧା—ଅନ୍ୟରୂପ) ভাগবত সপ্তাহের উদযাপন भागवत सप्ताहका खतम

**ସପ୍ତା ବଢ଼ା(ଢ଼େ)ଇବା**—ଦେ. କ୍ରି—ସପ୍ତାହ ବ୍ୟାପୀ ଭଗବତ ପାଠରୂପ ଉତ୍ସବକୁ ଉଦ୍‌ଯାପନ କରିବା—To bring about the completion of the reading of the Bhāgabata for a week. Saptā bardhā(rdhe)ibā ভাগবত সপ্তাহের সমাপ্তি করা भागवत सप्ताहका खतम करना

**ସପ୍ତା ବସା(ସେ)ଇବା**—ଦେ. କ୍ରି—ସଙ୍କଳ୍ପ ପୂର୍ବକ ଏକ ସପ୍ତାହକାଳ ଅନବରତ ଭଗବତ ପାଠରୂପ ଅନୁଷ୍ଠାନର ସୂତ୍ରପାତ କରିବା—To begin the reading of the Bhāgabata constantly throughout of a week. Saptā basā(se)ibā ভাগবত সপ্তাহ বসান भागवत सप्ताह बैठाना

**ସପ୍ତା ବସିବା**—ଦେ. ବି—ସପ୍ତାହକାଳ ଅନବରତ ଭଗବତ ପାଠରୂପ ଅନୁଷ୍ଠାନର ଆରମ୍ଭ—The beginning of the reading of the Bhāgabata continuously for a week. Saptā basibā ভাগবত সপ্তাহ বসা भागवत सप्ताह बैठना

**ସପ୍ତା ଭଗବତ**—ଦେ. ବି (ସଂ ସପ୍ତାହ ଓ ଭଗବତ)—ଏକ ସପ୍ତାହକାଳ ଭଗବତ ପୁରାଣ ଅନବରତ ବୋଲିଯିବା ରୂପ ଉତ୍ସବ—The festival of reading the Bhāgabata constantly for a week. Saptā bhāgabata °সপ্তাহ ভাগবত सप्ताह भागवत

**ସପ୍ତା ମଇନା** (ମଜୁରି, ମୂଲ)—ଦେ. ବି.—କାରଖାନା ଆଦିରେ କାମ କରୁଥିବା ମୂଲିଆମାନଙ୍କୁ ସପ୍ତାହର ଶେଷ ଦିନ ଦିଆଯିବା ଉକ୍ତ ସପ୍ତାହର କର୍ମ ପାଇଁ ପ୍ରାପ୍ୟ ମଜୁରି—Weekly wages paid to day-labourers in a factory once in a week. Saptā mainā(majuri, mūla) সপ্তাহ মজুর सप्ताह मजूर

**ସପ୍ତାର୍ଚ୍ଚିଃ**—ସଂ. ବି (ସପ୍ତନ୍+ଅର୍ଚ୍ଚିସ୍=କିରଣ ଯାହାର; ବହୁବ୍ରୀହି)—୧। ସପ୍ତଜିହ୍ୱ; ଅଗ୍ନି—1. The fire. ୨। ସପ୍ତାଂଶୁ (ଦେଖ)—2. Saptāmsu (See) ୩। ଚିତ୍ରକ ବୃକ୍ଷ (ଶବ୍ଦକୋଷ)—3. The plumbago Zeylanica (tree). ସଂ. ବିଣ—କ୍ରୂର ଚକ୍ଷୁ ବିଶିଷ୍ଟ—Having malignant look. Saptārchchih

**ସପ୍ତାର୍ଣ୍ଣବ**—ସଂ. ବି (ସପ୍ତନ୍+ଅର୍ଣ୍ଣବ; ଦ୍ୱିଗୁ)—ସପ୍ତ ସମୁଦ୍ର (ଦେଖ) Sapta samudra (See) Saptārnnaba

**ସପ୍ତାଶ୍ୱ**—ସଂ. ବି (ସପ୍ତନ୍+ଅଶ୍ୱ=ଘୋଡ଼ା ଯାହାର; ବହୁବ୍ରୀହି)—୧। ସୂର୍ଯ୍ୟ—1. The sun. ୨। (ଦ୍ୱିଗୁ) ସାତଟା ଘୋଡ଼ା—2. Seven horses. ୩। ଗାୟତ୍ରୀ, ଉଷ୍ଣିକ୍, ଅନୁଷ୍ଟୁପ୍, ବୃହତୀ, ପଂକ୍ତି, ତ୍ରିଷ୍ଟୁପ୍, ଜଗତୀ—ଏହି ୭ଟି ବୈଦିକ ଛନ୍ଦ; (ପ୍ରକୃତିବାଦ)—3. Seven vedic metres. ସଂ. ବିଣ (ବହୁବ୍ରୀହି)—ସାତ ଗୋଟି ଅଶ୍ୱ ବିଶିଷ୍ଟ—Having seven horses. Saptāswa

**ସପ୍ତାଶ୍ୱ ବାହନ**—ସଂ. ବି (ସପ୍ତନ୍+ଅଶ୍ୱ+ବାହନ; ସପ୍ତ ଅଶ୍ୱ ଅଛନ୍ତି ବାହନ ଯାହାଙ୍କର; ବହୁବ୍ରୀହି)—ସୂର୍ଯ୍ୟ (ଶାସ୍ତ୍ର ପୁରାଣୋକ୍ତ ସୂର୍ଯ୍ୟସ୍ତବରେ ଥିବା ନାମ)—The sun. [ଦ୍ର—ପୁରାଣରେ ସୂର୍ଯ୍ୟଙ୍କ ଏକଚକ୍ର ରଥର ସାତ ଗୋଟି ଅଶ୍ୱ ଥିବା ବର୍ଣ୍ଣିତ ହୋଇଅଛି ଓ ଆଧୁନିକ ବୈଜ୍ଞାନିକମାନେ ସୂର୍ଯ୍ୟ କିରଣକୁ ବିଶ୍ଳେଷଣ କରି ଡହିଁରେ ସାତଗୋଟି ମୌଳିକ ରଶ୍ମି (Vybgior) ପାଇଅଛନ୍ତି।] Saptāswa bāhana

ସପ୍ତାଶ୍ର—ସଂ. ବି (ବହୁବ୍ରୀହି; ସପ୍ତନ୍+ଅଶ୍ର)—ସପ୍ତକୋଣ ବିଶିଷ୍ଟ—
Saptāśra Having seven angles; septangular.

ସପ୍ତାହ—ସଂ. ବି ( ସପ୍ତନ୍+ଅହନ୍=ଦିନ, ସମାହାର ଦ୍ୱିଗୁ )—
Saptāha ସପ୍ତଦିନ ବ୍ୟାପୀ କାଳ—A week; an aggregate of seven days.

ସପ୍ତି—ସଂ. ବି (ସପ୍ ଧାତୁ=ଏକତ୍ର ହେବା, ସମର୍ଥ ହେବା+କ୍ତି· ତି; Sapti ଯୁଦ୍ଧ କାଳରେ ଯୁଦ୍ଧ ଭୂମିରେ ଅଶ୍ୱ ଏକତ୍ର ବା ସମର୍ଥ ହେବା ଯୋଗୁଁ)—ଅଶ୍ୱ; ଘୋଡ଼ା—Horse.

ସପ୍ତିତା—ସଂ. ବି (ସପ୍ତି+ତା)—ବେଗଗାମିତ୍ୱ (ବିଶ୍ୱକୋଷ)—
Saptitā Fleetness.

ସପ୍ତୋତ୍ତର—ସଂ. ବିଣ (ସପ୍ତନ୍+ଉତ୍ତର; ସପ୍ତ ସଂଖ୍ୟା ଅଛି ଉତ୍ତରରେ
Saptottara ବା ଶେଷରେ ଯାହାର; ବହୁବ୍ରୀହି)—ସାତ-ଉତ୍ତର; ଯେଉଁ ରାଶିର ଶେଷରେ ୭ ସଂଖ୍ୟା ଅଛି—Having the digit 7 at the end.
(ଯଥା—ସପ୍ତୋତ୍ତର ଶତ=୧୦୭;
ସପ୍ତୋତ୍ତର ଦ୍ୱିଶତ=୨୦୭)

ସପ୍ନ(ଇତ୍ୟାଦି)—ଗ୍ରା· ବି (ସଂ. ସ୍ୱପ୍ନ)—ସ୍ୱପ୍ନ ଇତ୍ୟାଦି ( ଦେଖ )
Sapna(etc) Swapna etc ( See )

ସପ୍ନା—ଗ୍ରା. ବି (ଅନାଦରାର୍ଥକ)—ସ୍ୱପ୍ନେଶ୍ୱରର ଡାକ ନାମ—
Sapnā A name for calling Swapneśwara.
(ସପ୍ନି—ଆଦରାର୍ଥକ ରୂପ)

ସପ୍ନା(ପ୍ନେ)ଇବା—ଗ୍ରା. କି. (ସଂ. ସ୍ୱପ୍ନରୁ ଓଡ଼ିଆ ନାମ ଧାତୁ)—
Sapnā(pne)ibā ସପନାଇବା ( ଦେଖ )
Sapanāibā ( See )

ସପ୍ରକାରକ—ସଂ. ବିଣ (ସ+ପ୍ରକାର+କ)—ଭିନ୍ନ ଭିନ୍ନ ପ୍ରକାରବିଶିଷ୍ଟ
Saprakāraka —Of various sorts.

ସପ୍ରଜ—ସଂ. ବିଣ. ପୁଂ ( ସହାର୍ଥ ବହୁବ୍ରୀହି; ସ+ପ୍ରଜା )—୧ । ପ୍ରଜା
Sapraja ବିଶିଷ୍ଟ—1. Having subjects. ୨। ସନ୍ତତିବାନ୍
(ସପ୍ରଜା—ସ୍ତ୍ରୀ) —2. Having issues.

ସପ୍ରତିବନ୍ଧ—ସଂ. ବିଣ· ( ସ=ସହ+ପ୍ରତିବନ୍ଧ=ବାଧା)—ବାଧାଯୁକ୍ତ
Sapratibandha Attended with obstacles;
(ବିପରୀତ—ଅପ୍ରତିବନ୍ଧ) obstructive.

ସପ୍ରତିଭ—ସଂ. ବିଣ. ପୁଂ (ସ=ସହିତ+ପ୍ରତିଭା; ପ୍ରତିଭା ସହିତ
Sapratibha ବର୍ତ୍ତମାନ )—୧ । ଅସାଧାରଣ ବୁଦ୍ଧିସମ୍ପନ୍ନ—
(ସପ୍ରତିଭା—ସ୍ତ୍ରୀ) 1. Possessing extra-ordinary
(ଅପ୍ରତିଭ—ବିପରୀତ) genius. ୨ । ପ୍ରତିଭାବାନ୍; ମେଧାବୀ—
2. Acute; witty; intelligent. ୩ । ପ୍ରତ୍ୟୁତ୍ପନ୍ନ-ମତି—3. Ready-witted.

ସପ୍ରଭ—ସଂ. ବିଣ. ପୁଂ (ସହାର୍ଥ ବହୁବ୍ରୀହି; ସ+ପ୍ରଭା )—ପ୍ରଭା ବିଶିଷ୍ଟ
Saprabha Lustrous.
(ସପ୍ରଭା—ସ୍ତ୍ରୀ) [ସପ୍ରଭତା(ତ୍ୱ)—ବି]

ସପ୍ରଭାବ—ସଂ. ବିଣ· ପୁଂ (ସହାର୍ଥ ବହୁବ୍ରୀହି)—ପ୍ରଭାବ ବା ପରାକ୍ରମ
Saprabhāba ବିଶିଷ୍ଟ—Mighty.
( ସପ୍ରଭାବା—ସ୍ତ୍ରୀ )

ସପ୍ରମାଣ—ସଂ· ବିଣ (ସ=ସହିତ+ପ୍ରମାଣ)—୧ । ପ୍ରମାଣଯୁକ୍ତ—
Sapramāṇa 1. Attended with proof. ୨ ।
(ବିପରୀତ—ଅପ୍ରମାଣ) ପ୍ରମାଣିତ—2. Proved.

ସପ୍ରାଣ—ସଂ. ବିଣ. ପୁଂ ( ସହାର୍ଥ ବହୁବ୍ରୀହି; ସ+ପ୍ରାଣ )—
Saprāṇa ପ୍ରାଣବିଶିଷ୍ଟ; ଜୀବିତ—Living.
( ସପ୍ରାଣା—ସ୍ତ୍ରୀ )

ସପ୍ରୁଣିଆ—ପ୍ରାଦେ (କଟକ ଓ ଖୋର୍ଦ୍ଧା) ବି—ହଳଦିଆ ଫୁଲ ଥିବା ଗୁଳ୍ମ-
Sapruṇiā ବିଶେଷ—A bushy shrub; Heptapleurum Renulosum (Haines).

ସପ୍ଲା(ପ୍ଲେ)ଇ—ବୈଦେ. ବି. ପ୍ରାଦେ (ଗଞ୍ଜାମ)—(ଇଂ. ସପ୍ଲାଇ)—
Saplā(ple)i ଅଭ୍ୟାଗତଙ୍କ ଖାଦ୍ୟ ସାମଗ୍ରୀ ପାଇଁ ପଠାଯିବା ଅସିଦ୍ଧ ବସ୍ତୁଚୟ—ଡାଲି, ଚାଉଳ, ଘିଅ, ପରିବା ଓ ଗେଣ୍ଡ ସିଧା—
A supply of victuals sent to a guest.

ସଫ୍ତାଲୁ—ବୈଦେ· ବି (ଫା)—ଏକପ୍ରକାର ବିଦେଶୀୟ ଖାଦ୍ୟଫଳ
Saph-tālu ଓ ବୃକ୍ଷ; ପୀଚ୍ ଗଛ ଓ କୋଳି—Peach ( tree
সফতালু सफताल्‌ and fruit).

ସଫ—ଦେ. ବି—ସପ (ଦେଖ)—Sapa. (See) ସଂ. ବି (ନାମ)—
Sapha ବଶିଷ୍ଠ ଗୋତ୍ରୀୟ ଜଣେ ଅଷ୍ଟର୍ଷି (ବିଶ୍ୱକୋଷ)—
Name of a sage.

ସଫ ମଶିଣା—ଦେ. ବି—ସପ ମଶିଣା (ଦେଖ)
Sapha masiṇā Sapa masiṇā. (See)

ସଫର୍—ବୈଦେ ( ଅରବୀ )—ବି—୧ । ପର୍ଯ୍ୟଟନ; ଦେଶାନ୍ତରେ
Saphar ଭ୍ରମଣ—1. Travelling abroad; tour;
সফর journey. ୨ । ବିଦେଶବାସ—2. Sojourn· ୩ । ଜଳ
सफर ଯାତ୍ରା (ବିଶ୍ୱକୋଷ)—3· Voyage.

ସଫର—ସଂ. ବି—(ସ୍ଫୁର୍ ଧାତୁ+କ୍ତି· ଅ; ଯେ ଜଳରେ ସ୍ଫୁର୍ତ୍ତି
Saphara ପାଏ, ଅର୍ଥାତ୍ ପାର୍ଶ୍ୱ ଦ୍ୱାରା ଗତି କରେ)—(ଶଫର
(ଶଫର—ଅନ୍ୟରୂପ) ଅନ୍ୟରୂପ) ଶଫର (ଦେଖ)—Śaphara.
(See) (ଭରତକୃତ ଅମର ଟୀକା)

ସଫର କରିବା—ଦେ· କି—ଦେଶବିଦେଶ ଭ୍ରମଣ କରିବା—
Saphara karibā To travel abroad; to make a
সফৰ কৰা सफर करना journey.

ସଫର ଦଣ୍ଡି—ଦେ· ବି (ଜାହାଜୀ ଭାଷା)—ଜାହାଜର ପଶ୍ଚାଦ୍ ଭାଗରେ
Saphara daṇḍi ପତାକା ଉଡ଼ିବାର ସ୍ତମ୍ଭ—The hind flag-
मालुम काठ mast of a ship. [ ଉ—ତାହା ବାଦେ ଦଶିଲି
सफर दरी ଜାହାଜର କାତୁଡିଆ ବୁଢ଼ା, ଥାଉ ସଫରଦଣ୍ଡି ରହି ।
ଫକୀରମୋହନ. ଗଳ୍ପସ୍ୱଳ୍ପ । ]

ସଫରିଆ(ୟା)—ଦେ· ବିଣ—୧ । ଭ୍ରମଣକାରୀ—
Sapharia(yā) 1. Travelling; itinerant.
সফৰিআ मुसाफिर

ସଫରୀ—ସଂ. ବି—ଶଫରୀ (ଦେଖ) (ଭରତକୃତ ଅମର ଟୀକା)—
Saphari Śaphari. (See) ; ବୈଦେ· ବିଣ—ଭ୍ରମଣକାରୀର

सफरी ବ୍ୟବହାର୍ଯ୍ୟ—Fit for camp use. ( ଯଥା—ସଫରୀ
**सफरी** ଖଟ, ସଫରୀ ଚୌକି । )

**ସଫଳ**—ସଂ. ବଣ (ସ=ସହିତ+ଫଳ, ସହାର୍ଥ ବହୁବ୍ରୀହି; ଫଳ ସହିତ
Saphala ବର୍ତ୍ତମାନ )—୧ । ଫଳବାନ୍—1. Bearing
(ସଫଳା—ସ୍ତ୍ରୀ) fruit; fructified. ୨ । ଫଳ ବିଶିଷ୍ଟ—
[ ବିପରୀତ—ବିଫଳ, ନିଷ୍ଫଳ ] 2. Fruitful. ୩ । ଯେଉଁ
( ସଫଳତା[ତ୍ୱ], ସାଫଲ୍ୟ—ବି ) ଗଛରେ ଫଳ ଧରିଥାଏ—
3. Fruit-bearing (tree). ୪ । ଲାଭଜନକ—
4. Attended with profit; profitable. ୫ ।
ଫଳରେ ବା କାର୍ଯ୍ୟରେ ପରିଣତ—5. Realised. ୬ ।
ଅମୋଘ; ସୁସିଦ୍ଧ—6. Efficacious; effectual.
୭ । ଯହିଁରେ ଆଶାନୁରୂପ ଫଳ ମିଳେ—7. Attended
with the desired or hoped for result.
(ଉ—ସଫଳ ହୋଇଛି ତୁମ୍ଭର ଆଶା କି ସ୍ୱଜନ ?
କୃଷ୍ଣସିଂହ. ମହାଭାରତ. ସଭା ।)

**ସଫଳ କ୍ଲେଶ(କଷ୍ଟ)**—ସଂ. ବି ( ସଫଳ+କ୍ଲେଶ; କର୍ମଧା )—ଯେଉଁ
Saphala klesa(kashta) କ୍ଲେଶ ପାଇବା ଦ୍ୱାରା ଅଭୀପ୍ସିତ
ଫଳଲାଭ ହୁଏ—Pains attended with the
hoped for result; fruit-bearing pain.

**ସଫଳ ପରିଶ୍ରମ**—ସଂ. ବି (କର୍ମଧା)—ଫଳଯୁକ୍ତ ପରିଶ୍ରମ—
Saphala parisrama Fruitful labour.

**ସଫଳ ପ୍ରଯତ୍ନ**—ସଂ. ବି (କର୍ମଧା)—ଫଳଯୁକ୍ତ ଉଦ୍ୟମ—Fruitful
Saphala prajatna endeavour. ବଣ.ପୁଂ (ବହୁବ୍ରୀହି)—
(ସଫଳ ପ୍ରୟାସ, ସଫଳ ଯତ୍ନ, ସଫଳୋଦ୍ୟମ—ଅନ୍ୟରୂପ) ଯାହାର
ସଫଳ ପ୍ରଯତ୍ନା, ସଫଳ ପ୍ରୟାସା, ସଫଳଯତ୍ନା, ସଫଳୋଦ୍ୟମା } ସ୍ତ୍ରୀ. ବଣ ଯତ୍ନ ସଫଳ ହୋଇ
ଅଛି—Rewarded
with success for his endeavours.

**ସଫଳ ସ୍ୱପ୍ନ**—ସଂ ବି (କର୍ମଧା)—ଯେଉଁ ସ୍ୱପ୍ନ ଦୃଷ୍ଟ ଘଟନା ସତରେ
Saphala swapna ଘଟେ ବା ସଫଳ ହୁଏ—Realised
dream.
(ସଫଳ ସ୍ୱପ୍ନା—ସ୍ତ୍ରୀ) ସ. ବଣ ପୁଂ (ବହୁବ୍ରୀହି)—ଯାହାର ସ୍ୱପ୍ନଦୃଷ୍ଟ
ବିଷୟ ବାସ୍ତବ ଘଟନାରେ ପରିଣତ ହୋଇଛି—
Having one's dream realised.

**ସଫା**—ବୈଦେ. ବ.—(ଅ. ସାଫ୍)—୧ । ସୁସ୍ପଷ୍ଟ—1. Clear;
Saphā distinct. ୨ । ସରଳ; ନିଷ୍କପଟ—2. Frank;
साफ **साफ** guileless. ୩ । ପ୍ରକାଶ୍ୟ—3. Pub-
lic; apparent. ୪ । ନିର୍ଦ୍ଦୋଷ; ଦୋଷଶୂନ୍ୟ—
5. Faultless. ୬ । ଯହିଁରେ ଦାଗ ନାହିଁ—
6. Unstained. ବୈଦେ. ବ—ପରିଷ୍କୃତ ଲୁଗା ଓ
ପୋଷାକ—Neat and clean dress. [ଉ—
ସକାଳୁ ଗାଧୋଇ ଖଣ୍ଡିଏ ସଫା ପିନ୍ଧିଲେ ମନ ଖୁବ୍
ପ୍ରଫୁଲ୍ଲ ରହେ ।] ୧ । (ଅ. ସଫା) ପୃଷ୍ଠା—1.
Page. ୨ । (କର୍ମିବାସ୍ତ ସିରସ୍ତା) ଖାତାର ଯେଉଁ ପୃଷ୍ଠାରେ
ପୂର୍ବପୃଷ୍ଠାମାନଙ୍କ ଜମିଜମା ଅଙ୍କର ସମଷ୍ଟି ଲେଖା ଥାଏ—2.
The page of an account book in which
the total of the entries of previous
pages is entered. କି. ବଣ—୧ । ସୁସ୍ପଷ୍ଟ
ରୂପେ—1. Clearly; distinctly. [ଉ—ଏ
କଥାର ଅର୍ଥ ସଫା ବୁଝାଗଲା ନାହିଁ; ଫକୀର ମୋହନ;
ଛ ମାଣ ଅଠଗୁଣ୍ଠ] ୨ । ପ୍ରକାଶ୍ୟ ରୂପେ—2. Pub-
licly; apparently; palpably.

**ସଫାଇ**—ବୈଦେ. ବଣ (ଅ. ସାଫ୍)—୧ । ପରିଷ୍କୃତ—1. Cleans-
Saphāi ed. ୨ । ସୁସ୍ପଷ୍ଟୀକୃତ—2. Cleared; made
clear. ବ. (ଅ. ସଫାଇ) ୧ । ପରିଷ୍କୃତକରଣ—
1. Act of cleansing; clearance. ୨ । ଗ୍ରାମର
ବା ନଗରର ମଇଳାର ପରିଷ୍କରଣ—2. Conserva-
ncy or clearance of the dirts of a town
साफाई or village. ୩ । (ଜଡରଥ) ଅଭିଯୁକ୍ତ ବ୍ୟକ୍ତି ଅପଣାକୁ
**सफाई** ନିର୍ଦ୍ଦୋଷ ବୋଲି ଅଦାଲତଙ୍କ ନିକଟରେ ପ୍ରମାଣ ଦର୍ଶାଇବା
କର୍ମ—3. Defence of an accused person.
୪ । (ଜଡରଥ) ସଫାଇ ସାକ୍ଷୀ (ଦେଖ)—4. Saphāi
sākshī (See). ୫ । ସଫାଇ ନାଳ (ଦେଖ)—5.
Saphāi nāla (See). ୬ । ନିର୍ଦ୍ଦୋଷିତା—6. In-
nocence. ୭ । ସତ୍ୟତା; ବିଶ୍ୱାସିତା—7. Relia-
bility; trustworthiness. ୮ । ସରଳତା;
ନିଷ୍କପଟତା—8. Frankness.

**ସଫାଇ ଗାଡ଼ି**—ଦେ. ବ.—ଯେଉଁ ଗାଡ଼ିରେ ମିଉନିସିପାଲିଟିଶାସିତ
Saphāi gārdi ସହରର ବା ଗ୍ରାମର ମଇଳା ସ୍ଥାନାନ୍ତରିତ
साफाई गाड़ि ହୁଏ—Conservancy carts; carts
**सफाई गाड़ि** used for carrying away the sweep-
ings of a town or village.

**ସଫାଇ ଗୁଜାରିବା(ଦେବା)**—ବୈଦେ. କି.—( ଜଡରଥ )—ଅଭି-
Saphāi gujāribā(debā) ଯୁକ୍ତ ବ୍ୟକ୍ତି ନିଜର ନିର୍ଦ୍ଦୋଷିତା
साफाई देओया ପ୍ରମାଣାର୍ଥ ଅଦାଲତରେ ଯେତେକ ପ୍ରମାଣ ଉପସ୍ଥାପିତ
**सफाई देना** କରେ ବା—To adduce evidence in one's
defence in a court.

**ସଫାଇ ଗୁଜୁରିବା**—ବୈଦେ. କି. (ଜଡରଥ)—ଅଭିଯୁକ୍ତ ବ୍ୟକ୍ତି
Saphāi gujuribā ପକ୍ଷରୁ ସଫାଇ ସାକ୍ଷୀରୂପେ ଅଦାଲତରେ
साफाई देओया ସାକ୍ଷ୍ୟ ଦେବା—To give evidence in a
**सफाई देना** court as a defence witness.

**ସଫାଇ ଦେଖା(ଖେ)ଇବା**—ଦେ. କି—ନିଜର ନିର୍ଦ୍ଦୋଷିତା ନିଜ ମୁଖରେ
Saphāi dekhā(khe)ibā ନିଜେ ପ୍ରକାଶ କରିବା ବା କହି
[ସଫାଇ ଦେଖା(ଖା)ଇହ(ହେ)ବା—ଅନ୍ୟରୂପ] ହେବା—To
साफाई देखाना boast of one's own innocence.
**सफाई दिखाना**

**ସଫାଇ ଦେବା**—ଦେ. କି.— ୧ । ସଫାଇ ଗୁଜାରିବା (ଦେଖ)
Saphāi debā 1. Saphāi gujāribā (see).
साफाई देओया ୨ । ସଫାଇ ଗୁଜୁରିବା (ଦେଖ)
**सफाई देना** Saphāi gujuribā (see).

**ସଫାଇ ନାଳ**—ବୈଦେ. ବ.—( ଅ. ସଫାଇ ଓ ଇଂ. କେନାଲ, Saphāi nāla ଫ. ନାଲ )—ଯେଉଁ ନାଳ ବା ପୟଃପ୍ରଣାଳୀ ସାফাই নালা ଦ୍ୱାରା କୌଣସି ଅଞ୍ଚଳର ଜଳ ସବୁ ଖାଲ ଅଡ଼କୁ সাফাই কেনাল ବହିଯାଏ—The natural drain of a सफाई नहर country.

**ସଫାଇ ନେବା**—ଦେ. କ୍ରି. (ଢଉରଥ)—ଅଭିଯୁକ୍ତ ବ୍ୟକ୍ତି ପକ୍ଷରୁ ସଫାଇ Saphāi nebā ସାକ୍ଷୀ ଗ୍ରହଣ କରିବା—To take defen- সাফাই নেওয়া ce evidence from an accused. सफाई लेना

**ସଫାଇ ମାନିବା**—ଦେ. କ୍ରି. (ଢଉରଥ)—( ଅଭିଯୁକ୍ତ ବ୍ୟକ୍ତି) ଅପଣାର Saphāi mānibā ନିର୍ଦ୍ଦୋଷିତା ପ୍ରମାଣ କରିବା ପାଇଁ ସାକ୍ଷୀ- সাফাই মানা ମାନଙ୍କୁ ସମନ କରିବା ପାଇଁ କୋର୍ଟକୁ ଆବେଦନ सफाई मानना କରିବା—To cite defence witness in one's own defence (said of an accused person).

**ସଫାଇ ସାକ୍ଷ**—ଦେ. ବ. (ଢଉରଥ)—ଅଭିଯୁକ୍ତ ବ୍ୟକ୍ତିର ପକ୍ଷରେ ଉପ Saphāi sāksha ସ୍ଥାପିତ ମୌଖିକ ପ୍ରମାଣ—Oral evi- সাফাই সাক্ষ্য dence adduced for the defence. सफाई गवाह [ସଫାଇ ଗବ୍ହ (ହେ) ଇ—ଅନ୍ୟରୂପ]

**ସଫାଇ ସାକ୍ଷୀ(ଖୀ)**—ଦେ. ବ. (ଢଉରଥ)—ଅଭିଯୁକ୍ତ ବ୍ୟକ୍ତିର ସ୍ୱୀୟ Saphāi sākshī(khī) ନିର୍ଦ୍ଦୋଷିତା ପ୍ରମାଣାର୍ଥ ଅଦାଲତରେ সাফাইসাক্ষী ଉପସ୍ଥାପିତ ସାକ୍ଷୀ—Defence witness; witness सफाई गवाह cited in one's defence in a criminal (ସଫାଇ ଗୁହା—ଅନ୍ୟରୂପ) court.

**ସଫାଇ ସାହା(ହି,ହେ)ବ**—ପ୍ରାଦେ (ସମ୍ବଲପୁର) ବ—୧। ମ୍ୟୁନିସିପାଲିଟିର Saphāi sāhā(hi,he)ba ଚେୟରମ୍ୟାନ୍—The Chairman of a Municipality. ୨। ସଫା ରହିଲା କି ନାହିଁ, ଏ ବିଷୟ ପରିଦର୍ଶନ କରିବା ପାଇଁ ସହରରେ ମ୍ୟୁନିସିପାଲିଟି ଦ୍ୱାରା ନିଯୁକ୍ତ ପ୍ରଧାନ କର୍ମଚାରୀ—2. Conservancy Inspector of a Municipality.

**ସଫା କଥା**—ଦେ. ବ.—( ଅ. ସାଫ୍+ସ. କଥା )—୧। ସୁସ୍ପଷ୍ଟ କଥା—Saphā kathā 1. Clear or distinct speech. সাফ কথা ୨। ସରଳ ବା ନିଷ୍କପଟ କଥା साफ बात 2. Frank words.

**ସଫା କରିବା**—ଦେ. କ୍ରି.—୧। କୌଣସି ସ୍ଥାନକୁ ପରିଷ୍କୃତ କରିବା—Saphā karibā 1. To cleanse a place. সাফকরা ୨। ନିର୍ମଳ ବା ମଳଶୂନ୍ୟ କରିବା— साफ करना 2. To clear a place of its impurities or dirt.

**ସଫା କହିବା**—ଦେ. କ୍ରି—୧। ସୁସ୍ପଷ୍ଟ ରୂପେ କଥା କହିବା—Saphā kahibā 1.To speak clearly or distinct- সাফ বলা ly. ୨। ନିଷ୍କପଟ ଭାବରେ କଥା କହିବା— साफ बोलना 2. To speak frankly.

**ସଫା ଜବାବ**—ଦେ. ବ—୧। ସୁସ୍ପଷ୍ଟ ଉତ୍ତର—1. Clear Saphā jabāba reply. ୨। ନିଃସନ୍ଦେହ ଉତ୍ତର— সাফ জবাব 2. Definite response. ୩। ନିଷ୍କପଟ ଉତ୍ତର साफ जबाब —3. Frank reply.

**ସଫା ଝାଡ଼ା**—ଦେ. ବ—କୋଷ୍ଠ ଶୁଦ୍ଧି—Evacuation of the Saphā jhāṛā bowels; free motion of the সাফ্ বাহ্যি, সাফ্ দাস্ত साफ पैखाना bowels. (ସଫା ଦୋଖରା, ସଫା ବାହାରକୁ—ଅନ୍ୟରୂପ)

**ସଫା ଦି(ଦେ)ହ**—ଦେ. ବ—ପରିଷ୍କୃତ ଦେହ—Saphā di(de)ha Cleansed body. সাফ্ শরীর साफ शरीर

**ସଫା ପାଣି**—ଦେ. ବ—୧। ନିର୍ମଳ ଜଳ—1. Purified or Saphā pāni clear water; water cleared of সাফ্ জল its impurities. ୨। ସ୍ୱଚ୍ଛ ଜଳ— साफ पानी 2. Transparent water.

**ସଫା ଲୁଗା**—ଦେ. ବ—୧। ପରିଷ୍କୃତ ବସ୍ତ୍ର—Saphā lugā 1. Cleansed cloth. সাফ্ কাপড় साफ कपड़ा ୨। ମଳ ବା ଦାଗ ବର୍ଜିତ ଲୁଗା—2. Unstained cloth.

**ସଫା ସକାଳ**—ଦେ. ବ—ଫରଚ୍ଛ ସକାଳ; ଯେତେବେଳେ ଅନ୍ଧାର Saphā sakāla ଭାବାଳ୍ ସ୍ପଷ୍ଟ ଜଣାଯାଏ—Clear day- সাফ্ সকাল বেলা साफ सुबह break.

**ସଫା ସଫା**—ଦେ. କ୍ରି. ବଣ—୧। ସୁସ୍ପଷ୍ଟ ରୂପେ—Saphā saphā 1. Very clearly. ୨। ନିଷ୍କପଟ ଭାବରେ—2. Frankly. (ସଫାସଫି—ଅନ୍ୟରୂପ) সাফ্ সাফ্ साफ साफ

**ସଫା ସାବି(ବୀ)ତ**—ବୈଦେ. ବ (ଢଉରଥ) (ଫା. ସାଫ୍ ଓ ସାବୁତ୍—Saphā sābi(bī)ta ପ୍ରମାଣ)—ସୁସ୍ପଷ୍ଟ ପ୍ରମାଣ; ନିଃସନ୍ଦେହ [ସଫା ସାବୁତ(ଦ୍)—ଅନ୍ୟରୂପ] ପ୍ରମାଣ—Clear and un- সাফ্ সাবুত deniable proof. ବଣ—ସୁସ୍ପଷ୍ଟରୂପେ साफ साबित ପ୍ରମାଣିତ—Clearly proved; proved beyond doubt.

**ସଫା ସୁତ(ତୁ)ରା**—ବୈଦେ. ବଣ (ଫା. ସାଫ୍ ଓ ଉର୍ଦ୍ଦୁ ସୁଥ୍ରା)—Saphā suta(tu)rā ୧। ସୁପରିଷ୍କୃତ—1. Well cleaned; (ସଫାସୁତା—ଅନ୍ୟରୂପ) well swept (house) ୨। ସୁନିର୍ମଳ— সাফ্ সুফ, সাফসুত্রা साफसुथरा 2. Purified. ୩। ପରିଷ୍କୃତ ଓ ପରିଚ୍ଛନ୍ନ—3. Neat and clean.

**ସଫି**—ସ୍.ବ—ଏକପ୍ରକାର ବନବୃକ୍ଷ (ବଙ୍ଗ ଦେଶର ଉତ୍ତରପୂର୍ବ ପ୍ରାନ୍ତରେ Saphi ଜନ୍ମେ)—Myrica Integrifolia. (tree)

**ସଫିଆ(ୟା)ନା**—ବୈଦେ. ବ. ଫା (ଢଉରଥ)—ସାଫିଅନା (ଦେଖ) Saphia(yā)nā Sāphiānā. (See) সাফিয়ানা साफियाना

**ସଫିନା**—ବୈଦେ. ବ—ସପିନା (ଦେଖ)
Saphinā Sapinā. (See)

**ସଫୁର୍**—ପ୍ରାଦେ. (ସମ୍ବଲପୁର) ବିଣ—ସରୁ—Delicate; tender;
Saphur fine. (ଯଥା—ସୂତା, ଧାନ, ଗୁଣ୍ଡିଲ, ଧୋତି)

**ସଫେଇ(ଇତ୍ୟାଦି)**—ବୈଦେ.ବ (ଆ.ସଫାଇ)—ସଫାଇ ଇତ୍ୟାଦି (ଦେଖ)
Saphei (etc) সাফাই सफाई Saphāi etc (See)
ପ୍ରାଦେ· (କଲିକତାର ଯାତ୍ରୀ) ବିଣ—ସଫା; ପରିଷ୍କୃତ—
Clear; clean.

**ସଫେଦ୍(ଦ)**—ବୈଦେ. ବିଣ (ଫା· ସଫେଦ୍, ସୁଫେଦ୍)—
Saphed(da) ୧ । ଧଳା; ଶ୍ୱେତ; ଶୁକ୍ଳ—1. White. ୨ ।
সফেদ ଶୁଭ୍ର; ଉଜ୍ଜ୍ୱଳ—2. Bright. ବି—୧ । ଶୁକ୍ଳବର୍ଣ୍ଣ—
सफेद 1. White colour. ୨ । ଶୁକ୍ଳବର୍ଣ୍ଣ ଚୂର୍ଣ୍ଣ—
2. White powder. ୩ । ରଙ୍ଗ କରିବା କାମରେ ବ୍ୟବହୃତ ସୀସକରୁ ପ୍ରସ୍ତୁତ ଧଳାଚୂର୍ଣ୍ଣ ଓ ରଙ୍ଗ ବିଶେଷ—
3. A white powder used in painting; white lead.

**ସଫେ(ଫୈ)ଦ୍‌କୋ**—ବୈଦେ. ବି. ( ନାମ )—ଅଫଗାନିସ୍ଥାନର
Saphe(phai)d-ko ପର୍ବତମାଳା ବିଶେଷ—Name of a
( ସୁଫେଦ୍‌କୋ—ଅନ୍ୟରୂପ ) range of mountains in
সফেদকো Afganistan. [ଦ୍ର—ଏ ପର୍ବତ ଅଫଗାନିସ୍ଥାନର
सफेदको ରାଜଧାନୀ କାବୁଲ ଓ ଗଜନୀ ନଗରର ମଧ୍ୟବର୍ତ୍ତୀସ୍ଥାନରୁ ଉଠି ୭୫ ମାଇଲ୍ ପର୍ଯ୍ୟନ୍ତ ଲମ୍ବ ହୋଇ ସେଠାରୁ ଦୁଇ ଶାଖା ହୋଇଅଛି । ଗୋଟିଏ ଶାଖା ଖାଇବାର୍ ଗିରିସଙ୍କଟ ଅଭିମୁଖେ ଓ ଅନ୍ୟଟି କାବୁଲ ଓ ସିନ୍ଧୁ ନଦୀର ସଙ୍ଗମ ପର୍ଯ୍ୟନ୍ତ ବିସ୍ତୃତ । ଏହି ପର୍ବତରୁ ଅନେକଗୁଡ଼ିଏ ନଦୀ ବାହାରି ଅଛି । ଏ ପର୍ବତରେ ଅନେକଗୁଡ଼ିଏ ଶୃଙ୍ଗ ଓ ଗିରିସଙ୍କଟ ଅଛି । ସର୍ବୋଚ୍ଚ ସୀତାରାମ ଶୃଙ୍ଗ ସମୁଦ୍ରପୃଷ୍ଠରୁ ୧୬୬୨୨ ଫିଟ ଉଚ୍ଚ । ପର୍ବତର ଉତ୍ତରମ ପୃଷ୍ଠରେ ପାଇନ୍ ( ଦେବଦାରୁ ) ଓ ବାଦାମ ଆଦି ଅନେକ ବଡ଼ ଗଛ ଜନ୍ମେ । ଏହି ପର୍ବତର ପୃଷ୍ଠଦେଶରେ ଅସଂଖ୍ୟ ମେଉଆ ବଗିଚା ଅଛି । ଏହି ପର୍ବତରେ ଉତ୍ପନ୍ନ ଡାଳିମ୍ବ (ବେଦାନା), ଆଖରୋଟ୍; ପେସ୍ତା, ବାଦାମ, ଜଲପାଇ, ଖୋବାନି, ଅଙ୍ଗୁର, କିସ୍‌ମିସ୍, ଅଲୁବୋଖାରା ଆଦି ମେଉଆଫଳ ଭାରତକୁ ଆସି ବିକ୍ରି ହୁଏ । ଏ ପର୍ବତରେ ଅନେକ ଦୁର୍ଦ୍ଧର୍ଷ ଅଫଗାନ ଜାତି ବାସ କରନ୍ତି ଓ ବିଦେଶୀମାନଙ୍କ ଏ ଅଞ୍ଚଳକୁ ମାଡ଼ କରି ଏଥି ର କ୍ଷତିକର୍ତ୍ତା ବର୍ତ୍ତମାନ ସ୍ୱତନ୍ତ୍ର ରହିବା ବିଷୟରେ ଏ ଅଫଗାନମାନେ ସର୍ବଦାର ବାଧା ଦେଇ ଆସୁଅଛନ୍ତି—ବିଶ୍ୱକୋଷ ।]

**ସଫେଦା**—ବୈଦେ. ବିଣ ( ଫା. ସଫେଦା )—୧ । ଶୁକ୍ଳ; ଧଳା—
Saphedā 1. White. ୨ । ଶୁଭ୍ର; ଉଜ୍ଜ୍ୱଳ—2. Bright.
সফেদা ବି—୧ । ରଙ୍ଗ ପାଇଁ ବ୍ୟବହୃତ ଏକପ୍ରକାର ଧଳାରଙ୍ଗ—
सफेदा (ସୀସକରୁ ଉତ୍ପନ୍ନ)—1. A sort of white paint; white lead. ୨। ଲକ୍ଷ୍ନୌର ପ୍ରସିଦ୍ଧ ଧଳା ଖରଭୁଜ—2. A white species of melon of Lucknow. ୩ । ଲକ୍ଷ୍ନୌର ପ୍ରସିଦ୍ଧ ଧଳା ଆମ୍ବ—3. A white species of mango of Lucknow. ୪ । ରଙ୍ଗରେ ଓ ଔଷଧରେ ବ୍ୟବହୃତ ଦସ୍ତାଧାତୁର ଭସ୍ମ—4. Oxide of Zinc. ୫ । ଚାଉଳକୁ ପାଣିରେ ବତୁରାଇ ତାକୁ ଅଳ୍ପ ମାତ୍ର ଶୁଖାଇ ଚୂର୍ଣ୍ଣ କରି ପ୍ରସ୍ତୁତ ହୋଇଥିବା ଶୁକ୍ଳ ଗୁଣ୍ଡ—5. Powdered rice. [ଦ୍ର—ଏଥିରେ ପିଠା ଓ ଭଲିକ ଆଦି ତିଆରି ହୁଏ । ଏହିପରି ସିଂଘଡ଼ାର ଚୂନା ଓ ପାଳୁଅର ଚୂନାକୁ ମଧ୍ୟ ସଫେଦା କହନ୍ତି ।] ୬ । ଏକପ୍ରକାର ବିଦେଶାଗତ ସୁସ୍ୱାଦୁ ଫଳ ଓ ତାହାର ବୃକ୍ଷ (ବିଶ୍ୱକୋଷ); ସପେଟା ?—
6. A kind of sweet fruit and its tree; Achras Sapota ? [ଦ୍ର—ଏ ଗଛମାନ ଖୁବ୍ ବଡ଼େ ଓ ଏଥିର ଗଣ୍ଡିରୁ ଲକ୍ଷା ଜାତୀୟ ହୁଏ; କିନ୍ତୁ କାଠ ଖୁବ୍ ଭାର ସହ ନୁହେଁ (ବିଶ୍ୱକୋଷ) ।]

**ସଫେଦି**—ବୈଦେ. ବି·—(ଫା· ସଫେଦି) ୧ । ଶୁକ୍ଳୀକରଣ—1.
Saphedi Whitening. ୨ । ଘରର କାନ୍ଥ ଆଦିକୁ
সফেদী सफेदि ଚୂନ ଚୂନରେ ବା ଚକଖଡ଼ି ଗୋଳା ପାଣିରେ
ଧଳା କରିବା; ଧଉଳାଇବା—2. Whitewashing.

**ସଫେଦି କରିବା**—ଦେ. କି.—ଧଉଳାଇବା; ଶୁକ୍ଳ କରିବା—To
Saphedi karibā whiten; to whitewash.
সফেদিকরা सफेदिकरना

**ସଫେନ**—ସ.ବିଣ.—(ସହାର୍ଥ ବହୁବ୍ରୀହି;ସ=ସହିତ+ଫେନ)—ଫେଣ
Saphena ଯୁକ୍ତ—Frothy; foamy.

**ସବ୍(ବ)**—ବୈଦେ· ବିଣ.—[ଇଂ ଓ ଲାଟିନ୍ ସବ୍; ଅନ୍ୟ ଶବ୍ଦ
Sab(ba) ପୂର୍ବେ ବ୍ୟବହୃତ ଇଂରାଜୀ ଉପସର୍ଗ (ଏଥିର ଅର୍ଥ
সব सब ଅଧୀନ, ନିମ୍ନ)]—The prefix 'Sub' denoting under., subordinate. [ଦ୍ର—ଇଂରାଜୀ ଭାଷା ବ୍ୟବହୃତ ସବ (Sub) ଯୁକ୍ତ ଅଧିକାଂଶ ଶବ୍ଦ ତଦାକାରରେ କିମ୍ବା ବିକୃତଆକାରରେ ଓଡ଼ିଆ ଭାଷାରେ ବ୍ୟବହୃତ ହୁଏ । ତହିଁ ମଧ୍ୟରୁ କେତେଗୁଡ଼ିଏ ଶବ୍ଦ ଅକ୍ଷରକ୍ରମରେ କ୍ରମରେ ପ୍ରଦତ୍ତ ହେଲା ।] ସର୍ବନାମ—(ଫା ସବ୍; ସ. ସର୍ବ) ସବୁ
—All. (ଯଥା—ସବ୍ ଜାନତା ।)

**ସବ୍‌ଅ(ଆ)ଫି(ପି)ସ୍(ସି)**—ବୈଦେ. ବି. (ଇଂ. ସବ୍ ଅଫିସ୍)—୧ ।
Sab-a(ā)phi(pi)s(si) କୌଣସି କାର୍ଯ୍ୟାଳୟର ବା
সব অফিসে सबआफिस କଚେରିର ଅଧୀନ ବା ଅଧସ୍ତନ
କାର୍ଯ୍ୟାଳୟ—1. Sub-office; an office subordinate to a central office. ୨ । ମଫସଲରେ ଗ୍ରାମରେ ପ୍ରତିଷ୍ଠିତ ଛୋଟ ଡାକଘର—2. Sub Post-office.

**ସବ୍‌ଇଞ୍ଜିନିଅ(ୟ)ର୍**—ବୈଦେ. (ଇଂ) ବି.—ବଡ଼ ଇଞ୍ଜିନିଅରଙ୍କ ଅଧୀନ
Sab injinia(ya)r ଛୋଟ ଇଞ୍ଜିନିଅର୍—Sub-Engineer.
সাব ইঞ্জিনিয়ার सबइंजिनियर

ସବ୍‌ଇନ୍‌(ନି)ସ୍‌ପେକ୍‌ଟର୍‌—ବୈଦେ. (ଇଂ) ବ.—Sab in(ni)s-pektar ଇନ୍‌ସପେକ୍ଟରଙ୍କ ଅଧସ୍ତନ ପଦବର୍ଣ୍ଣିକ କର୍ମଚାରୀ—Sub-Inspector. [ଦ୍ର—ସ୍କୁଲ (School), ପୁଲିସ୍ (Police), ଲୁଣ (Salt), ଅବକାରୀ (Excise), ଇତ୍ୟାଦି ବିଭାଗର ଇନ୍‌ସ୍ପେକ୍ଟରଙ୍କ ଅଧସ୍ତନ କର୍ମଚାରୀଙ୍କ ଉପାଧି ପୂର୍ବରେ ସବ୍ ଶବ୍ଦ ଲଗାଇ ତତ୍ତତ୍ ବିଭାଗର ଅଧସ୍ତନ ହାକିମଙ୍କୁ ଡକାଯାଏ। ଯଥା ସବ୍‌ଇନ୍‌ସପେକ୍ଟର ଅଫ୍ ସ୍କୁଲ୍‌ସ, ସବ୍‌ଇନ୍‌ସପେକ୍ଟର ଅଫ୍ ପୋଲିସ, ସବ୍‌ଇନ୍‌ସ୍‌ପେକ୍‌ଟର ଅଫ ଏକ୍‌ସାଇଜ୍।]
ସବ୍‌ଇନ୍ସପେକ୍ଟର୍, ସବ୍‌ଇନ୍‌ସ୍‌(ସି)ପିଟର, ସବ୍‌ଇନ୍‌ସ(ସ୍ପି)ପେଟର, ସବ୍‌ଇନ୍‌ସପିଟର୍—ଅନ୍ୟରୂପ
साब इनस्पेक्टार साबइनसिपिटर

ସବ୍ ଓଭର୍ ସିଅ(ୟ)ର୍—ବୈଦେ. (ଇଂ) ବ.—ଓଭରସିଅରଙ୍କ ଅଧସ୍ତନ Sub obhar-sia(ya)r କର୍ମଚାରୀ—Sub-overseer. [ଦ୍ର—ସାଧାରଣତଃ ବାରକମିସ୍ତ୍ରୀ (P. W. D.) ବା ପୂର୍ତ୍ତ ବିଭାଗରେ ଏହି କର୍ମଚାରୀ ନିଯୁକ୍ତ ହୁଅନ୍ତି।]
साबओभरसिअर साबओभरसियर

ସବ୍ କମି(ମେ)ଟୀ—ବୈଦେ. (ଇଂ) ବ—କୌଣସି କମିଟିର ବା ସମିତିର Sab kami(me)ti ଅଧୀନ କ୍ଷୁଦ୍ର କମେଟି—Sub-committee. [ଦ୍ର—କୌଣସି ସମିତିଙ୍କ ଦ୍ୱାରା ଯେଉଁ ଯେଉଁ ବିଶେଷ ବିଶେଷ କାର୍ଯ୍ୟର ବିଚାର ବା ଆଲୋଚନା ବା ସମାଧାନ ପାଇଁ ସବ୍‌କମିଟି ନିଯୁକ୍ତ ହୁଅନ୍ତି, ସେହି ସେହି କାର୍ଯ୍ୟର ଇଂରାଜୀ ବା ଦେଶୀୟ ନାମ ପୂର୍ବେ ଯୁକ୍ତ ହୋଇ ଏ ଶବ୍ଦ ବ୍ୟବହୃତ ହୁଏ। ଯଥା—ଟେକ୍‌ସଟ୍ ବୁକ୍ ବା ପାଠ୍ୟ ପୁସ୍ତକ ସବ୍‌କମିଟି (Text Book Subcommittee ଡିଷ୍ଟ୍ରିକ୍ଟ ବୋର୍ଡ ବା ଲୋକାଲ୍ ବୋର୍ଡ ବା ମିଉନିସିପାଲିଟିଙ୍କ ଅଧୀନ ଏଡୁକେସନ୍ ବା ଶିକ୍ଷା ସବ୍‌କମିଟି (Education Subcommittee), ଫାଇନାନ୍‌ସ୍ ବା ଅର୍ଥ ସବ୍‌କମିଟି (Finance Subcommittee), ହେଲ୍‌ଥ୍ ବା ସ୍ୱାସ୍ଥ୍ୟ ସବ୍‌କମିଟି (Health Subcommittee; (ପବ୍ଲିକ୍ ୱାର୍କ୍‌ସ ବା ପୂର୍ତ୍ତ ବିଭାଗ ସବ୍‌କମିଟି (Public works Sub committee।]
सब कमिटी सबकमिटी

ସବ୍‌କଲେକ୍‌ଟର୍—ବୈଦେ. (ଇଂ) ବ.—କଲେକ୍‌ଟରଙ୍କ ଅଧୀନ କ୍ଷୁଦ୍ର Sab kalektar ହାକିମ—Sub-collector. [ଦ୍ର—ଏ ହାକିମ ଓଡ଼ିଶାର କେବଳ ଗଞ୍ଜାମ ଓ କୋରାପୁଟ ଜିଲ୍ଲାରେ ଅଛନ୍ତି।]
(ସବ୍ କଲେକ୍‌ଟର, ସବ୍ କଲ(ଲି)ଟର୍—ଅଶୁଦ୍ଧରୂପ)
सब कलेक्टर सब कलक्टर

ସବ୍ କୋଟ(ର୍ଟ)—ବୈଦେ. (ଇଂ) ବ—(ଗଞ୍ଜାମ)ବଡ଼ କୋର୍ଟର ବା Sab kot(rt) କଚେରୀର ଅଧୀନ କ୍ଷୁଦ୍ର ହାକିମଙ୍କ କଚେରୀ—(ସବ୍ କୋରଟ—ଅନ୍ୟରୂପ) Sub-court. [ଯଥା—ଜଜ୍‌ଙ୍କ ଅଧୀନ ସବ୍‌ଜଜଙ୍କ କୋର୍ଟ, ମାଜିଷ୍ଟ୍ରେଟଙ୍କ ଅଧୀନ ସବ୍‌ମାଜିଷ୍ଟ୍ରେଟଙ୍କ କୋର୍ଟ ଇତ୍ୟାଦି।]
सब् कोर्ट सब कोर्ट

ସବ୍ ଜଜ—ବୈଦେ(ଇଂ)ବ.—ଜଜ୍‌ଙ୍କ ଅଧସ୍ତନ ବିଚାରପତି—Sab jaj Sub-judge. [ସବ ଜଜ-ଅନ୍ୟରୂପ] सब् जज सब जज

ସବ୍‌ଜା—ବୈଦେ. ବଣ.—(ଫା)—ସବଜା (ଦେଖ)—Sabjā Sabajā (see)

ସବ୍‌ଜୀ—ବୈଦେ. ବ.—(ଫା)—ସବଜୀ (ଦେଖ) sab-jī Sabajī (see)

ସବ୍ ଜାନତା—ବୈଦେ(ଫା) ବ ଓ ବଣ—(ଭୂଲଜାନର—ସଂସବଜ୍ଞ)—Sab-jāntā (ବ୍ୟଙ୍ଗ୍ୟ) ଯେ ନିଜକୁ ସର୍ବଜ୍ଞ ବୋଲି ଗର୍ବ କରେ (ସବ୍‌ଜାନ୍ତା—ଅନ୍ୟରୂପ) (Ironical) A person who boasts that he is all-knowing; a quidnunc.
सब् जानता सब जानने वाला

ସବ୍ ଜେଲ୍—ବୈଦେ (ଇଂ) ବ—ଜିଲ୍ଲାର ସବ୍‌ଡଭିଜନରେ ଥିବା Sab-jel ଜେଲ୍ ଖାନା—Sub-jail. [ସବ୍ ଜ (ଜେ) ଇଲ୍—ଗଞ୍ଜାମୀରୂପ] सब् जेल सब जेल

ସବଡ଼(ଡେ, ଡ଼, ଡେ, ଡୋ)ପୁ(ପୋ)ଟି—ବୈଦେ. (ଇଂ)ବ—Sab di(de, di, de, do)pu(po)ti ଡେପୁଟିଙ୍କ ଅଧସ୍ତନ (ସବ୍‌ଡୁ ପ (ପ୍ର)ଟି ଅନ୍ୟରୂପ) ହାକିମ—Subdeputy. [ଦ୍ର—ଏମାନେ ଦୁଇ ଶ୍ରେଣୀର ଯଥା—ସବ ଡେପୁଟି କଲେକ୍‌ଟର ଓ ସବ୍ ଡେପୁଟି ମାଜିଷ୍ଟ୍ରେଟ।]
सब डेप्‌टि सब डिपुटि

ସବ୍ ଡ(ଡେ)ପୁ(ପୋ)ଟି କଲେକ୍ଟର୍—ବୈଦେ. (ଇଂ) ବ—ସ୍ୱକାର୍ଯ୍ୟ Sab di(de)pu(po)ti kalektar ସବ୍ଡେପୁଟି କଲେକ୍ଟରଙ୍କ ଅଧସ୍ତନ ହାକିମ—Sub Deputy-collector. [ସବ୍ ଡ(ଡୁ, ଡୋ)ପ(ପୁ, ପୋ)ଟି(ଟୀ)କ(କ)ଲ(ଲେ)ଟ(କ୍ଟ)ର—ଅନ୍ୟରୂପ]
सब्‌डेप्‌टि कलेक्टर्‌ सबडिपुटी कलक्टर

ସବ୍ ଡ(ଡେ)ପୁ(ପୋ)ଟି ମା(ମେ)ଜ(ଜେ)ଷ୍ଟ(ଷ୍ଟ୍ର)ର—ବୈଦେ. (ଇଂ) Sab di(de)pu(po)ti mā(me)ji(je)shta(shtra)r. ବ.—ଫଉଜଦାରୀ ବିଚାର ବିଭାଗୀୟ ଡେପୁଟି ମାଜିଷ୍ଟ୍ରେଟଙ୍କ ଅଧସ୍ତନ ହାକିମ—Subdeputy majistrate. [ସବ୍ ଡ(ଡୁ, ଡୋ)ପ(ପୁ, ପୋ)ଟି ମା(ମେ)ଜ(ଜେ)ଷ୍ଟ୍ରେଟ୍—ଅନ୍ୟରୂପ]
सब डेप्‌टि माजिस्ट्रेट सबडिपुटी मजिस्टर

ସବ୍ ଡଭି(ଭି)ଜନ—ବୈଦେ. ବ. (ଇଂ)—୧। ଜିଲ୍ଲାର ଅଧସ୍ତନ Sab dibhi(bi)jan ମହକୁମା—1. (administrative) Subdivision of a District. ୨। ବାରିକ ମିସ୍ତ୍ରୀ ବିଭାଗର ଡିଭିଜନ୍ ଅଧୀନ ବିଭାଗ—2. Subdivision under a P. W. D. Division. [ଦ୍ର—ସ୍ୱକାର୍ଯ୍ୟ ଶାସନାର୍ଥ ପ୍ରତ୍ୟେକ ଜିଲ୍ଲା ଅଧୀନ ଗୋଟିଏ ସବ୍ ଡିଭିଜନ୍ ଥାଏ ଓ ବାରିକ ମିସ୍ତ୍ରୀ (P. W. D.) ବିଭାଗର ପ୍ରତ୍ୟେକ ଡିଭିଜନ୍ ଅଧୀନ ୨ଯ ଗୋଟିଏ ସବ୍‌ଡିଭିଜନ ଥାଏ; ଜିଲ୍ଲାର [illegible]]
सब् डिभिजन् सबविडजिन

ଥାଏ ତାକୁ ସଦର ସବ୍‌ଡିଭିଜନ୍ ଓ ତହିଁର ଭାରପ୍ରାପ୍ତ ଅଧସ୍ତନ ହାକିମଙ୍କୁ ସଦର ସବ୍‌ଡିଭିଜନ୍ ବା (ସଦର ସବ୍‌ଡିଭିଜନାଲ୍) ମାଜିଷ୍ଟ୍ରେଟ୍ କୋଲଯାଏ ।]

ସବ୍ ଡିଭି(ବି)ଜନ୍ ଅ(ଆ)ଫି(ପି)ସ୍—ବୈଦେ· (ଇଂ) ବ—ସବଡିଭିଜନର Sab dibhi(bi)jan a(ā) phi(pi)s ସଦରଧାନୀରେ ଥିବା ସବ୍ ଡିଭିଜନ ଅଫିସ୍ ଥିବା ସରକାରୀ କାର୍ଯ୍ୟାଳୟ— सबडिभिजन औफिस Sub-Divisional Office. [ସବ୍ ଡିଭିଜନ(ନା)ଲ୍ ଅଫିସ୍—ଅନ୍ୟରୂପ]

ସବ୍ ଡିଭି(ବି)ଜନ୍ ଅ(ଆ)ଫି(ପି)ସ(ସା)ର୍—ବୈଦେ. (ଇଂ) ବ— Sab dibhi(bi)jan a(ā)phi(pi)sa(sā)r [ସବ୍ ଡିଭି(ବି)ଜନ(ନା)ଲ୍ ଅ(ଆ)ଫି(ପି)ସ(ସା)ର୍—ଅନ୍ୟରୂପ] সব্ ডিভিজন অফিসর্ ସବ୍‌ଡିଭିଜନର ଶାସନ କର୍ମ ପରିଚାଳନାର्थ सबडिभिजन औफिसर ଭାରପ୍ରାପ୍ତ ପ୍ରଧାନ ହାକିମ— Subdivisional Officer.

ସବ୍ ଡିଭି(ବି)ଜନ୍ ମା(ମେ)ଜି(ଜେ)ଷ୍ଟ(ଷ୍ଟ୍ରେ)ର୍(ଟ୍)— Sab dibhi(bi)jan mā(me)ji(je)shta(shtre) r(t) [ସବ୍ ଡିଭି(ବି)ଜ(ଜା)ନ(ନା)ଲ୍ ମା(ମେ)ଜି(ଜେ)ଷ୍ଟ(ଷ୍ଟ୍ରେ)ର(ଟ୍)— সব্ ডিভিজন মাজিষ্ট্রেট্ ଅନ୍ୟରୂପ] सबडिभिजन मजिस्टर ସବ୍‌ଡିଭିଜନର ଫଉଜଦାରୀ ବିଚାର ବିଭାଗ ଭାରପ୍ରାପ୍ତ ପ୍ରଧାନ କର୍ମଚାରୀ—Sub-divisional Magistrate.

ସବ୍ ଡିଷ୍ଟ୍ରିକ୍ଟ୍—ବୈଦେ· (ଇଂ) ବ—ଜିଲ୍ଲାର ଅଧସ୍ତନ ଶାସନ ବିଭାଗ; Sab dishtrikt ସବ୍‌ଡିଭିଜନ—Subdivision. সব্ ডিষ্ট্রিক্ট सब डिस्ट्रिक्ट

ସବ୍ ପୋଷ୍ଟ୍ ଅ(ଆ)ଫି(ପି)ସ୍—ବୈଦେ. (ଇଂ) ବ—ଜିଲ୍ଲାର ବଡ଼ Sab posht a(ā)phi(pi)s ଡାକଘରର ଅଧୀନ ଡାକ ଘର— সব্ পোষ্ট অফিস্ Sub Post office. सब पोस्ट आफिस [ଦ୍ର—ଜିଲ୍ଲାର ହେଡ୍ ପୋଷ୍ଟ ଅଫିସର ଅଧୀନଭାବରେ ସବ୍ ପୋଷ୍ଟ ଅଫିସ, ବ୍ରାଞ୍ଚ ପୋଷ୍ଟ ଅଫିସ, ଭିଲେଜ୍ ପୋଷ୍ଟ ଅଫିସ, ଏକସ୍‌ଟ୍ରା ଡିପାର୍ଟ୍‌ମେଣ୍ଟାଲ୍ ପୋଷ୍ଟ ଅଫିସ, ଏକସ୍‌ପେରିମେଣ୍ଟାଲ୍ ପୋଷ୍ଟ ଅଫିସ୍‌ମାନ ଥାଏ ।]

ସବ୍ ପୋଷ୍ଟ୍ ମାଷ୍ଟର୍—ବୈଦେ. (ଇଂ) ବ—ସବ୍ ପୋଷ୍ଟ ଅଫିସ୍‌ର Sab post māshtar ଭାରପ୍ରାପ୍ତ ଡାକ ବାବୁ—Sub Post- সব্ পোষ্ট মাষ্টর্ master; the master of a sub post सब पोस्ट मास्टर office.

ସବ୍ ପ୍ରୋଟେମ୍—ବୈଦେ· ବଣ. ଲାଟିନ୍ (ଜଡ଼ଭୂତ)—ସରକାରୀ ଚାକିରିର Sab protem ଏକ ପ୍ରକାର ଅସ୍ଥାୟୀ ବ୍ୟବସ୍ଥା— সব্ প্রোটেম্ सबप्रोटेम Sub pro tem.

ସବ୍ ପ୍ରୋପ୍ରାଇଟର୍—ବୈଦେ· ବ (ଜଡ଼ଭୂତ)—ଭୂମିର ସ୍ୱତ୍ୱବାନ୍ ବା Sab propraitar ମାଲିକ ବ୍ୟକ୍ତିଙ୍କ ଅଧସ୍ତନ ସ୍ୱତ୍ୱବାନ୍ ବ୍ୟକ୍ତି— সব্ প্রোপ্রাইটর सब प्रोप्राइटर A subproprietor.

ସବ୍‌ରତ୍—ବୈଦେ. ବ—ସବୁରତ୍ ( ଦେଖ ) Sab-rāt সবুর सबर Saburāt (See)

ସବ୍‌ରତ୍ କରିବା—ଦେ· କି—୧ । ଅପେକ୍ଷା କରିବା—1. To Sab-rāt karibā wait. ୨ । ସହ୍ୟ କରିବା—2. To সবুর করা bear. ୩ । ସମ୍ଭାଳି ନିବା—3. To forbear. सबर करना ୪ । ଧୈର୍ଯ୍ୟ ସହକାରେ ରହିବା—4. To remain patient and calm.

ସବରତି —ବୈଦେ. ବଣ—୧ । ସହନଶୀଳ—1. Forbearing. Sab rāti ୨ । ଧୈର୍ଯ୍ୟଶୀଳ—2. Patient. [ସବ୍ ରତିଅ (ଆ)—ଅନ୍ୟରୂପ] ୩ । ସୁସ୍ଥିରମନାଃ—3. Calm সবুর করা सबरका and quiet.

ସବ୍ ରେଜି(ଜେ)ଷ୍ଟ(ଷ୍ଟ୍ରା, ଷ୍ଟ୍ର, ଷ୍ଟ୍ରା)ର୍—ବୈଦେ(ଇଂ) ବ—ସବ୍ ରେଜିଷ୍ଟ୍ରାର Sab reji(je)shta(shtā, shtra, shtrā)r ଅଫିସର ହାକିମ् सबरजिष्टार Sub-registrar. সব রেজিষ্টার

ସବ୍‌ରେଜି(ଜେ)ଷ୍ଟ(ଷ୍ଟ୍ରି)ରି—ବୈଦେ. (ଇଂ) ବ—ବଡ଼ ରେଜିଷ୍ଟ୍ରେସନ Sab-reji(je)shta(shti ଅଫିସ୍‌ର ଅଧୀନ ରେଜିଷ୍ଟ୍ରେସନ ସବ୍ ରେଜେଷ୍ଟ୍ରି ସବ୍ ରେଜି(ଜେ)ଷ୍ଟ୍ରେସନ୍ ଅ(ଆ)ଫି(ପି)ସ୍ } ଅନ୍ୟରୂପ ଅଫିସ୍— সব রেজিষ্টরী सबरजिस्टरी Sub-registry; sub-registration office.

ସବ୍ ଲମ୍ବର ଦାର୍—ପ୍ରାଦେ. (ସମ୍ବଲପୁର) ବ—ମାହାଲର ନିମ୍ନ ସତ୍ତ୍ୱା- Sab lambar-dār ଧିକାରୀ ବ୍ୟକ୍ତିମାନଙ୍କ ଦ୍ୱାରା ନିର୍ବାଚିତ ପ୍ରତିନିଧି— A person appointed to represent the inferior proprietors of a village or estate. ( ସମ୍ବଲପୁର ମାନୁଆଲ୍, ୧୦୨୮ । )

ସବ୍‌ଲିଜ୍—ବୈଦେ· ବ (ଇଂ)—ପଟ୍ଟାଦ୍ୱାରା ଗୃହୀତ ଜୋତ ବା ଗୃହକୁ Sab-lij ଅନ୍ୟକୁ ପଟ୍ଟା ଦେବା ସତ୍ତ୍ୱ—Sublease. সবলীজ सबलोज

ସବ୍ ଲେଟ୍ କରିବା—ଦେ. କି ( ଇଂ. ସବ୍ ଲେଟ୍ )—୧ । ନିଜର Sab let karibā ରହିତ ବା ଅନ୍ୟ ଅଧସ୍ତନ ସ୍ୱତ୍ୱକୁ ଅନ୍ୟ সব লেট করা କାହାକୁ ପଟ୍ଟା ଦେବା —1. To sublet one's सबलेट करना tenancy holding or lease. ୨ । ଗୃହସ୍ୱାମୀଙ୍କଠାରୁ ଭଡ଼ାରେ ନେଇଥିବା ଗୃହ ଅଦକୁ ଅନ୍ୟ ବ୍ୟକ୍ତିକୁ ଭଡ଼ା ଦେବା—2. To sublet a house which one has taken from the owner on hire or rent.

ସବ୍‌ଲୁ(ଲୋ)ଟ୍—ଦେ. ବଣ ( ସ. ସବ୍ ଓ ଲୁଠ ଧାତୁ; ଯେ ସବୁ ମଜା Sab-lu(lo)t ଲୁଟି କରେ )—୧ । ଲମ୍ପଟ—1. Lecherous. লম্পট लम्पट ୨ । ମଉଜିଆ ( ବ୍ୟକ୍ତି )—2. A merry and sportive person.

ସବ୍‌ସିଡିଅରି ସନ୍ଧି—ଦେ. ବ—ଇଷ୍ଟ ଇଣ୍ଡିଆ କମ୍ପାନି ଏବଂ ଦେଶୀୟ Sab sidiāri sandhi ରାଜା ପରସ୍ପରକୁ ଯୁଦ୍ଧରେ ଓ ଶତ୍ରୁ- সবসিডিআরী সন্ধি ଠାରୁ ରକ୍ଷାରେ ସାହାଯ୍ୟ କରିବା ସର୍ତ୍ତରେ सबसिडिआरी सन्धि ହୋଇଥିବା ସନ୍ଧି—Sabsidiary

treaty between the East India Company and some of the Indian princes.

ସବ୍ ସେକ୍ସନ୍—ବୈଦେ· (ଇଂ) ବି—୧ । ଅଇନ୍ ଅବର ଶେକ୍ସନ୍ Sab seksan ବା ଧାରା ତଳେ ଥିବା ଉପବିଧି—1. Subসব সেক্সন section of a Law or Act or Rule. सब सेक्शन ୨ । କୌଣସି କର୍ମବିଭାଗର ଅଧୀନ ଉପବିଭାଗ—2. Subsection of a section of a department.

ସବ୍ ସ୍କ୍ରିପ୍ସନ୍—ବୈଦେ. (ଇଂ) ବି—ଚୂନ୍ଦା; ସାଧାରଣ କାର୍ଯ୍ୟ ପାଇଁ Sab skripsan ବହୁ ଲୋକଙ୍କଠାରୁ ଆଦାୟ ହେବା ଧନ—সব স্কিপ্‌সন सब स्क्रीप्शन Subscription.

ସବ—ସଂ. ବି (ସୁ ଧାତୁ=ପ୍ରସବ କରିବା+କର୍ମ. ଅ)—୧ । ଅପତ୍ୟ; Saba ସନ୍ତାନ (ମେଦିନୀ)—1. Child; son; offspring. ୨ । (+କର୍ତ୍ତୃ ଅ) ଜଳ (ଜଟାଧର)—2. Water. ୩ । ଯଜ୍ଞ (ଅମର)—3. Vedic sacrifice. ୪ । (+ଭାବ. ଅ) ପ୍ରସବ—4. The bringing forth of a child. ୫ । ସୁରା ସନ୍ଧାନ—5. Fermentation of liquor. ୬ । (+କର୍ମ·ଅ) ଚନ୍ଦ୍ର—6. The moon. ୭ । ସୂର୍ଯ୍ୟ—7. The sun. ୮ । ପୁଷ୍ପମଧୁ—8. The honey of flowers. ବୈଦେ. ବିଣ—ସବ୍ (ଦେଖ)—Sab (See)

ସବଂଶ—ସଂ. ବିଣ (ସହାର୍ଥ ବହୁବ୍ରୀହି; ସ=ସହିତ+ବଂଶ=କୁଳ)—Sabamśa ବଂଶ ସହିତ; ସପରିବାର—Attended with one's family.

ସବଂଶେ—ଦେ· କ୍ରି· ବିଣ (ସଂ. ସବଂଶ)—ବଂଶର ସମସ୍ତ ବ୍ୟକ୍ତିଙ୍କ ସହିତ-Sabamśe With all the members of the family সবংশে सवंश or race.

ସବଜ—ବୈଦେ. ବିଣ—ସବୁଜ (ଦେଖ) Sabaja Sabuja (See)

ସବଜା—ବୈଦେ. ବିଣ—ସବୁଜା (ଦେଖ) Sabajā Sabujā (See)

ସବଜାଣ—ଦେ. ବିଣ (ସଂ. ସର୍ବଜ୍ଞ)—ଯେ ସବୁ କଥା ଜାଣେ—Sabajāṇa All-knowing; omniscient. সবজান, সবজান্তা सब जाननेवाला, सबजानता (ସବଜାଣତା[ସ୍ତ୍ରୀ], ସବଜାନତା, ସବଜାନ୍ତା—ଅନ୍ୟରୂପ)

ସବଜି-ବୈଦେ· ବିଣ ଓ ବି—ସବୁଜ (ଦେଖ) Sabaji Sabuji (See)

ସବ(ବା)ର୍ଡ୍ଡି(ଡ଼ି)ନେଟ୍—ବୈଦେ· (ଇଂ) ବିଣ—ଅଧସ୍ତନ; ଅଧୀନ—Saba(bā)rdi(ṛdi)net Subordinate. সবাডিনেট सबाडिनेट

ସବ(ବା)ର୍ଡ୍ଡି(ଡ଼ି)ନେଟ୍ ଜଜ୍—ବୈଦେ. (ଇଂ) ବି—ଜଜ୍‌ଙ୍କ ଅଧସ୍ତନ Saba(bā)rdi(ṛdi)net jaj ଦେବାଣୀ ମକଦ୍ଦମାର ବିଚାରପତି; সবাডিনেট জজ ସବଜଜ୍—Subordinate judge. सबाडिनेट जज

ସବଥ—ଦେ· ବି (ସଂ. ଶପଥ)—ଶପଥ—Oath. [ଉ—ଚୋରି ଏ Sabata सौगंद ସବଥେ ଅଳୀକର ହେଲେ ଚୋରି ଏ ନ ଯେଲୁ ତୁମ୍ଭନ—କବିସୂର୍ଯ୍ୟ· ଙ୍ଗୀତ ।]

ସବତ୍ସ—ସଂ. ବିଣ, ପୁଂ (ସହାର୍ଥ ବହୁବ୍ରୀହି; ସ=ସହ+ବତ୍ସ=ବାଛୁରି; Sabatsa ଶିଶୁ)—ବତ୍ସ ସହିତ—Accompanied with (ସବତ୍ସା—ସ୍ତ୍ରୀ) calf or a young one.

ସବତ୍ସା ଗାଭୀ—ଦେ. ବି (ସଂ. ସବତ୍ସା+ଗବୀ)—ବାଛୁରି ସହିତ ଥିବା Sabatsā gābhī ଗାଈ—A cow accompanied [ସବତ୍ସା ଧେନୁ—ସଂ. ରୂପ] with the calf.

ସବତ୍ସା ଧେନୁ ଦାନ—ସଂ. ବି—ମହାପୁଣ୍ୟକର ଦାନବିଶେଷ; Sabatsā dhenu dāna ବ୍ରାହ୍ମଣଙ୍କୁ ବାଛୁରି ସହିତ ଦୁହାଁଳୀ ଗାଈ ଦାନ କରିବା—The gift of a milch cow with the calf to a Brāhmaṇa.

ସବନ—ସଂ. ବି (ସୁ ଧାତୁ—ପ୍ରସବ କରିବା; ଅଭିଷବ କରିବା+ଭାବ, Sabana ଅନ)—୧ । ପ୍ରସବ—1 Begetting; giving birth to; producing child. ୨ । [+ଅଧି· କରଣ. ଅ] ଯଜ୍ଞସ୍ନାନ [ଅମର]—2. Ablution after a vedic sacrifice. ୩ । ଅଧ୍ୱର; ଯଜ୍ଞ [ମେଦିନୀ]—3. Vedic sacrifice. ୪ । ସୋମ ପାନ [ଭରତ]—4. Drinking of the juice of the Soma creeper. ୫ । ସୋମରସ ସନ୍ଧାନ; ସୋମ କଣ୍ଡନ (ମେଦିନୀ)—5. The act of crushing the twigs and fermenting the juice pressed from the Soma creeper, Asclepias Acida. ୬ । ଚନ୍ଦ୍ର—6. Moon. ୭ । ପୁଷ୍କର ଦ୍ୱୀପର ପୌରାଣିକ ରାଜା—7. The mythological king of the island of Pushkara. ୮ । (+ଅଧି. ଅ) ଯନ୍ତ୍ର—8. Instrument. ୯ । (ନାମ) ଭୃଗୁଙ୍କର ଏକ ପୁତ୍ର—9. Name of a son of sage Bhṛugu. ୧୦ । (ନାମ) ସ୍ୱାୟମ୍ଭୁବ ମନୁଙ୍କର ଏକ ପୁତ୍ର—10. Name of a son of Swāyambhuba Manu. ୧୧ । ପ୍ରିୟବ୍ରତ ରାଜାଙ୍କର ଏକ ପୁତ୍ର—11. Name of a son of King Priyabrata. ୧୨ । ଅଗ୍ନିର ନାମାନ୍ତର (ବିଶ୍ୱକୋଷ)—12. A name of fire ସଂ. ବିଣ (ସହାର୍ଥ ବହୁବ୍ରୀହି)—ବନ ବିଶିଷ୍ଟ—Having forest or wood.

ସବନିକ—ସଂ. ବିଣ (ସବନ+ଇକ)—ଯଜ୍ଞରେ ସମ୍ବନ୍ଧୀୟ—Sabanika Relating to vedic sacrifice. (ସବନୀୟ—ଅନ୍ୟରୂପ)

ସବୟାଃ—ସଂ· ବିଣ (ସ=ସମାନ+ବୟସ୍; ସବୟସ୍ ୧ମା, ଏକ· Sabayāh ବହୁବ୍ରୀହି)—୧ । ସମ ବୟସ୍କ (ଅମର)—1. Of the same age. ବି—୨ । ସହଚର—2. Companion; mate. ୩ । (ସ୍ତ୍ରୀ) ସହଚରୀ; ବୟସ୍ୟା;

ସଖୀ; (ଢଠାଧର)—3. A female companion of a lady.

ସବର(ଇତ୍ୟାଦି)—ଗ୍ରା.ବି.ପୁଂ (ସଂ. ଶବର)--୧। ଶବର ଇତ୍ୟାଦି (ଦେଖ) Sabara (etc) 1. Sabara etc (See). ୨ । ସର୍ବେଶ୍ୱରଙ୍କ ଡାକନାମ-2. Name for calling Sarbeśwara. ୩ (ନାବିକଙ୍କ ଭାଷା) ନାହାଜରେ ବ୍ୟବହୃତ ପାଲ ବିଶେଷ —3. (Nautical) Name of one of the sails of a ship. [ଉ—ଡୋଲ ଉପରେ ସବର, ଗବର, ଗଭର ପଛକୁ କଲମି ଡୋଲ ଅଭ ବିରଗାମାନ ଟେକି ଦେଇ ଶେଷ ଗୁଡାଇ ଟେକ୍ କରି ରଖି ଦେଇଛନ୍ତି । ଫକୀରମୋହନ. ଗଳ୍ପସ୍ୱଳ୍ପ ।]

ସବର—ସଂ. ବି (ସୃ ଧାତୁ=ପ୍ରସବ କରିବା+କର୍ତ୍ତୃ. ଅର)—୧ । ଜଳ; Sabara ସଲିଳ (ତ୍ରିକାଣ୍ଡ ଶେଷ)—1. Water. ୨ । ଶିବ (ତ୍ରିକାଣ୍ଡ ଶେଷ)—2. Śiba.

ସବରଣୀ—ଗ୍ରା. ବି—ସବରୁଣୀ ( ଦେଖ ) Sabarani Sabaruni ( See )

ସବରା—ଦେ. ବିଣ—ଭରିଭର; ନଦୀର ପୂର୍ଣ୍ଣ ବଢ଼ି ହେବା (ଅବସ୍ଥା)— Sabarā Fully flooded (condition of a river). (ଯଥା—ଏଥର ବଢ଼ିରେ ନଦୀଟା ସବରା ହେଲାଣି ।)

ସବରାତ—ବୈଦେ: ବି—ସବୁରାତ ( ଦେଖ ) Sabarāt Saburāta ( See ) (ସବରାତି, ସବରାତଅ—ବିଣ)

ସବରି—ଦେ. ବି ଓ ବିଣ—ସାବରି ( ଦେଖ ) Sabari Sābari ( See ) (ସବରି ଚମଡ଼ା, ସବରି ଚମ—ଅନ୍ୟରୂପ).

ସବରୁଣୀ—ଗ୍ରା. ବି. ସ୍ତ୍ରୀ (ସଂ. ଶବରୀ)—ଶବରସ୍ତ୍ରୀ— Sabaruni A female of the śabara caste.

ସବର୍ଣ୍ଣ—ସଂ. ବିଣ. ( ସ=ସମାନ ଅଟେ ବର୍ଣ୍ଣ ଯାହାର; ବହୁବ୍ରୀହି )— Sabarnna ୧ । ସମବର୍ଣ୍ଣ; ଏକ ରଙ୍ଗ ବିଶିଷ୍ଟ—1. Of the (ସବର୍ଣ୍ଣା—ସ୍ତ୍ରୀ) same caste or colour. ୨ । ସଦୃଶ— (ଅସବର୍ଣ୍ଣ—ବିପରୀତ) 2. Similar. ୩ । (ବ୍ୟାକରଣ) ଏକ ସ୍ଥାନରୁ ଉଚ୍ଚାରିତ (ବର୍ଣ୍ଣ ବା ଅକ୍ଷରମାନ)—3. (letters) Uttered from the same place. ବି—୧। ସମାନ ଜାତି—1. Same caste or tribe. ୨ । ସଦୃଶ ରଙ୍ଗ—2. Same colour. ୩ । (ବ୍ୟାକରଣ) ଏକ ସ୍ଥାନ (ଯଥା—କଣ୍ଠ, ତାଳୁ, ଜିହ୍ୱା ମୂଳ, ମୂର୍ଦ୍ଧା ଇତ୍ୟାଦି) ରୁ ଉଚ୍ଚାରିତ ବର୍ଣ୍ଣ—( ଯଥା କଣ୍ଠ୍ୟବର୍ଣ୍ଣ, ତାଳବ୍ୟ-ବର୍ଣ୍ଣ ) 3. (grammar) Letters uttered from the same place.

ସବର୍ଣ୍ଣ ବିବାହ—ସଂ. ବି.—ସମଜାତୀୟ ପୁରୁଷ ଓ ସ୍ତ୍ରୀଙ୍କ ମଧ୍ୟରେ Sabarnna bibāha ବିବାହ—Marriage in the ( ବିପରୀତ—ଅସବର୍ଣ୍ଣ ବିବାହ ) same caste; marriage between persons of the same caste.

ସବର୍ଣ୍ଣା—ସଂ. ବିଣ. ସ୍ତ୍ରୀ—(ସବର୍ଣ୍ଣ+ଅ.ସ୍ତ୍ରୀ) —୧ । ସବର୍ଣ୍ଣର ସ୍ତ୍ରୀଲିଙ୍ଗ— Sabarnnā 1. Feminine form of Sabarnna. ବି ସ୍ତ୍ରୀ—୧ । ସୂର୍ଯ୍ୟଙ୍କ ପତ୍ନୀ, ଛାୟାଦେବୀ—1. One of the two wives of the Sun-god. (shade personified). ୨ । ସମାନଜାତୀୟା ସ୍ତ୍ରୀ—2. A woman of the same caste.

ସବର୍ଣ୍ଣିକରଣୀ — ଦେ. ବି. — ଅବ୍ୟର୍ଥ ମହୌଷଧ ବିଶେଷ— Sabarnnikarani A kind of never-failing महोषध महोषध medicine. [ ଉ—ଏବେ ଔଷଧ ମୃତ୍ୟୁ ସଞ୍ଜୀବନୀ । ବିଶଲ୍ୟକରଣୀକି ଘେନ । ସନ୍ଧାନକରଣୀ ଔଷଧ ଭିନ୍ନ । ଚତୁର୍ଥେ ସବର୍ଣ୍ଣିକରଣୀ ଘେନ । ବିଶ୍ୱନାଥ—ବିଚିତ୍ର ରାମାୟଣ ।]

ସବର୍ଯ୍ୟ—ସଂ. ବିଣ—୧ । ଶ୍ରେଷ୍ଠ ଗୁଣ ବିଶିଷ୍ଟ ( ବିଶ୍ୱକୋଷ )— Sabarjya 1. Having excellent quality— ( ସବର୍ଯ୍ୟା—ସ୍ତ୍ରୀ ) ୨ । ଶ୍ରେଷ୍ଠଧନବିଶିଷ୍ଟ ( ବିଶ୍ୱକୋଷ )— 2. Having much riches. ୩ । ବରଣୀୟ (ବିଶ୍ୱକୋଷ)—3. Excellent.

ସବଳ—ସଂ. ବିଣ. ପୁଂ—(ସହାର୍ଥ ବହୁବ୍ରୀହି; ସ=ସହିତ+ବଳ )— Sabala ୧ । ବଳବାନ୍, ସାମର୍ଥ୍ୟଯୁକ୍ତ—1. Powerful. (ସବଳା—ସ୍ତ୍ରୀ) ୨ । ସୈନ୍ୟଯୁକ୍ତ—2. Attended with an (ସବଳତା—ବି) army or force. ୩ । ଦଳବଳ ସହିତ— 3. Attended with one's party or retinue. ୪ । ବଳ ପ୍ରୟୋଗଯୁକ୍ତ—4. Forceful; forcible. ଗ୍ରା. ବିଣ—(ସଂ. ଶବଳ )—ନାନାବିଧ ବର୍ଣ୍ଣ ବିଶିଷ୍ଟ— Variegated. [ଉ—ମଦନ ମଦ ବିରଧନ-ଭିର । ସବଳ ଫରଳ ତରଳ ହାର ।—ଭଞ୍ଜ. ପ୍ରେମସୁଧାନିଧି ।]

ସବଳି—ସଂ. ବି. — ଅପରାହ୍ନ ( ହେମଚନ୍ଦ୍ର )—Afternoon. Sabali ସଂ. ବିଣ ( ସହାର୍ଥ ବହୁବ୍ରୀହି; ସ+ବଳି )—ବଳି ବିଶିଷ୍ଟ—Having Bali.

ସବଳେ—ଦେ. କ୍ରି. ବିଣ—୧ । ବଳପୂର୍ବକ; ଜୋର୍ ସହିତ— Sabale 1. Forcibly; with force. ୨ । ସୈନ୍ୟ सबले जोरसे ସହ—2. With force or army.

ସବସ୍ତ୍ର—ସଂ. ବିଣ.—(ସ=ସହ+ବସ୍ତ୍ର=ଲୁଗା)—୧ । ବସ୍ତ୍ର ସହିତ— Sabastra 1. With cloth. ୨ । ପରିହିତବସ୍ତ୍ର— (ସବସ୍ତ୍ରା—ସ୍ତ୍ରୀ) 2. Wearing clothes.

ସବହା—ସଂ. ବି—(ବୈଦ୍ୟକ) — ନିସୁତା; ତ୍ରିବୃତ୍ ( ଭରତ )— Sabahā A medicinal root; Ipomea Turpethum.

ସବହୁମାନ—ସଂ. କ୍ରି. ବିଣ—(ସ+ବହୁମାନ)—ବହୁମାନ ସହକାରେ; Sabahumāna ସମ୍ମାନ ସହକାରେ—With great respect or honour.

ସବା—ଦେ. ସର୍ବନାମ.—(ସଂ.ସର୍ବ)—୧ (ଏହା ଅନ୍ୟ ଶବ୍ଦ ପୂର୍ବେ ଲାଗେ) Sabā ସବୁ—1. All. ( ଯଥା—ସବାରିଅ, ସବାକାଳ )— सब,सबा, सब, सबसे ୨ । ସମସ୍ତଙ୍କ ମଧ୍ୟରେ—2. Amongst

all. (ଯଥା—ସବା ଆଗ, ସବା ବଡ଼) । ଦେ. ବିଣ.
সওয়া **सवा** (ସଂ• ସପାଦ) ସଉଅ (ଦେଖ)—Saua (See).

ସବା ଅଗ—ଦେ. ବିଣ.—(ସଂ• ସର୍ବାଗ୍ର)—୧ । ସର୍ବାଗ୍ର—1. First
Saba aga of all. ୨ । ସର୍ବାଗ୍ରେ ସ୍ଥିତ—2. Standing
সবার আগে, **सबसेआगे** in the front line. କ୍ରି. ବିଣ—
ସମସ୍ତଙ୍କ ଅଗରେ ବା ଅଗ୍ରରେ—First of all.
(ବିପରୀତ—ସବା ପଛ) ବି.—୧ ।ସର୍ବାଗ୍ରସ୍ଥାନ—1. Front or first position. [ଭ୍ର—ପ୍ରେମମାନୁ ସବା ଅଗେ ଭରା । କଷ୍ଟ ଭୁ ରହ ଗୋ ଏଠାରୁ ।—ଭୂପତି, ପ୍ରେମପଞ୍ଚାମୃତ] ୨ । ସମସ୍ତଙ୍କ ଅଗ — 2. Front rank of all persons.

ସବାଇ—ଦେ. ବି.—(ଦ୍ରା. ସଂ• ଶତପର୍ବିକା ଦମ୍ଭ ଶତଗ୍ରନ୍ଥି=
Sabai ଦୁର୍ବାଘାସ)—ଏକପ୍ରକାର ଘାସ; ବଳାଶୀ ଘାସ—
সবাই,বাবই, বাবুই ঘাস, Sabai grass; Ischaemum
**भाभर, बबई** Augustifolium; Pollinidium Augustifolium. [ଦ୍ର—ଏହା ଏକ ପ୍ରକାର ଦୀର୍ଘ ଅରଣ୍ୟ ତୃଣ । ଏହାର ପତ୍ର ଦୁଇ ହାତ ପର୍ଯ୍ୟନ୍ତ ଲମ୍ବ ହୁଏ । ଏହା ମଧ୍ୟ-ଭାରତ, ଓଡ଼ିଶା ଗଡ଼ଜାତ ଓ ଉତ୍ତରପଶ୍ଚିମ ଭାରତରେ ଶୁଷ୍କ ଦେଶରେ ଜନ୍ମେ । ଏହି ଘାସରୁ ବଳା ଗୁହ୍ ଶକ୍ତ ଦଉଡ଼ି କରନ୍ତି; ଏବେ ଏହି ଘାସରୁ କାଗଜ ପାଇଁ ମଣ୍ଡ (pulp) ତିଆରି ହେଉଅଛି ।]

ସବାଇ ଦଉଡ଼ା(ଡ଼ି)—ଦେ. ବି—ବଳାଶୀ ଦଉଡ଼ା—A rope
Sabai daurda(rdi) made of sabai grass.
বাবইদড়ী **बबईरस्सी**

ସବାକାଳେ—ଦେ.କ୍ରି.ବିଣ.—(ପ୍ରାଚୀନପଦ୍ୟ)—୧। ସବୁକାଳପାଇଁ—
Sabakale 1. For all time.
সবসময়ে **सब समय** [ଭ୍ର—କାନ୍ଥୁ ଅଛନ୍ତି ବୋଲେ, ମୋତେ ବାଣିଲେ ସବାକାଳେ—ଭୂପତି, ପ୍ରେମପଞ୍ଚାମୃତ ।] ୨ । ସର୍ବଦା—2. Always.

ସବାକ୍ରାନ୍ତ—ଦେ. ବିଣ—(ସଂ. ସମାକ୍ରାନ୍ତ ବା ସୀମାକ୍ରାନ୍ତ)—୧ । ନିର୍ଦ୍ଦିଷ୍ଟ
Sabakranta ସୀମାରେ ଅବସ୍ଥିତ ସମସ୍ତ ଭୂମି ସହିତ—1.
সবাক্রান্ত **समूचा** Consisting of all the lands within a boundary. ୨ । ଚତୁର୍ଦ୍ଦିଗରେ ନିର୍ଦ୍ଦିଷ୍ଟ ସୀମାବଦ୍ଧ—2. Being bounded on all sides by certain limits.

ସବାକ୍ରାନ୍ତ ଚକଡ଼ା—ଦେ. ବି—(ସଂ. ସୀମାକ୍ରାନ୍ତ ଓ ଚକ)—
Sabakranta chakarda କୌଣସି ନିର୍ଦ୍ଦିଷ୍ଟ ସୀମା ମଧ୍ୟସ୍ଥ
সবাক্রান্ত চাকড়া ସମୁଦାୟ ଜମି—All the lands com-
**समूचा चकला** prised within given boundaries on all sides. [ଦ୍ର—ଓଡ଼ିଶାର ରାଜାମାନେ ଦାନ୍ୟବୃକ୍ଷରୁ ନୈଷ୍ଠିକ ବ୍ରାହ୍ମଣମାନଙ୍କୁ ଅଣାଇ ପୁରୀ ଓ ଯାଜପୁରରେ ଶାସନ ଗ୍ରାମ ମାନ ବସାଇ ଉକ୍ତ ବ୍ରାହ୍ମଣମାନଙ୍କୁ ସନନ୍ଦଦ୍ୱାରା 'ସବାକ୍ରାନ୍ତ ଚକଡ଼ା' ଜମିର ବା ଚର୍କାରୂପେ ଦାନ କରୁଥିଲେ ।]

ସବା ଖଇଙ୍ଗା—ଦେ. ବି.—ଚିଲିକା ହ୍ରଦରେ ମିଳୁଥିବା ଏକପ୍ରକାର ବଡ଼ ମାଛ
Saba khainga —A class of big salt-water-fish (found in the Chilka lake).

ସବାଖାଈ—ଦେ. ବି. ସ୍ତ୍ରୀ—( ସଂ. ସର୍ବ+ ଖାଦକା )—୧ । ସବା-
Sabakhai ଖିଆର ସ୍ତ୍ରୀଲିଙ୍ଗ; ସବାଖିଆ କେଲାଜାତୀୟା ସ୍ତ୍ରୀ—
ସବାକ୍ସିଣୀ—ଅନ୍ୟରୂପ 1. A woman of the Sabakhia
(ସବାଖିଆ—ପୁଂ) gypsy caste. ୨ । (ସ୍ତ୍ରୀମାନଙ୍କୁ
সবখাকী(গী) ଦିଆଯିବା ଗାଳି ବିଶେଷ) ଯେଉଁ ସ୍ତ୍ରୀ ସମସ୍ତ ପଦାର୍ଥ
**सर्वभक्षी** ଖାଏ, ଅର୍ଥାତ୍ ଅଖାଦ୍ୟ ଖାଏ; ଯେ ନିଷିଦ୍ଧ ଓ ଘୃଣ୍ୟ ଦ୍ରବ୍ୟ ଖାଏ; ଅମେଧ୍ୟ ଭୋଜିନୀ—2. A term of abuse used to women (Literally; all—devouring ) Eating everything, even prohibited articles.)

ସବାଖିଆ(ଖିଆ)—ଦେ• ବିଣ• ପୁଂ—(ସଂ ସର୍ବ ଖାଦକ)—(ଘୃଣାର୍ଥକ)
Sabakhia(ya) ଯେ ସବୁ ପଦାର୍ଥ ଖାଏ; ଯାହାର ଖାଇବା
(ସବାଖାଈ—ସ୍ତ୍ରୀ) ବିଷୟରେ ମେଧ୍ୟାମେଧ୍ୟ ବିଚାର ନ ଥାଏ—
সবখেকো Eating everything; omnivorous;
**सर्वभक्षी** eating prohibited food. ବି.—କେଲା-
ମାନଙ୍କ ଶ୍ରେଣୀ ବିଶେଷ—A class of kelas or wandering tribe of gypsies. [ଦ୍ର—ଏମାନେ ସବୁ ପ୍ରକାରର ଜୀବ, ଯଥା ସାପ, ବେଙ୍ଗ, କୁମ୍ଭୀର, ବିଲୁଆ ଆଦି ଜନ୍ତୁଙ୍କ ମାଂସ ଖାଆନ୍ତି । ଏମାନେ ଯାଯାବର ଜାତି; ଏମାନେ ଅଛି କୁରୁ ଓ ଗ୍ରାମେ ଗ୍ରାମେ ବୁଲି ଆପଣା ଦେହକୁ ଛୁରୀ ଦ୍ୱାରା କାଟକରି ଦେହରୁ ରକ୍ତ ବୁହାଇ ଲୋକଙ୍କ ଦୟା ଓ ସହାନୁଭୂତି ଆକର୍ଷଣ କରନ୍ତି । ଫଳରେ ଲୋକେ ଏମାନଙ୍କୁ ଭିକ୍ଷା ଦେବାକୁ ବାଧ୍ୟ ହୁଅନ୍ତି ।]

ସବାଗିଳା—ଦେ. ବିଣ—ସର୍ବଗ୍ରାସୀ; ସବାଖିଆ—
Sabagila Omnivorous.
সবখেকো **सर्वभक्षी**

ସବାଢାଳେ—ଦେ• କ୍ରି. ବିଣ—ଏକବାରକେ
Sabadhale Once for all; all at once.
একেবারে **एकाएक**

ସବାଧ—ସଂ ବିଣ—( ସହାର୍ଥ ବହୁବ୍ରୀହି; ସ+ବାଧା )-୧ । ବାଧାଯୁକ୍ତ-
Sabadha 1. Having impedements. ୨ । ପୀଡ଼ାଯୁକ୍ତ-
(ଅବାଧ—ବିପରୀତ) 2. Diseased. ୩ । ନିଷେଧଯୁକ୍ତ –
(ଶବ୍ଦକୋଷ)—3. Having prohibiton.

ସବା ଧୋଇ—ଦେ. ବି.—(ସଂ ସର୍ବ+ଧୌତ) ୧ । ଅତିଶୟ ବୃଷ୍ଟି ହେତୁ
Saba dhoi ଶସ୍ୟ ସମୂଳେ ଧୋଇଯିବା—Complete
ধুইহাজা **बिलकुल दाहर** destruction of crops owing to excessive rain. [ ଭ୍ର—ଜଣିଲେଣ୍ଡ, ଦେବକୁ ୩୨ ଓ ୩୩ ଅଙ୍କରେ ସବାଧୋଇ, ବଭାସ ଓ ଦୁର୍ଭିକ୍ଷ ହୋଇଥିଲା ।—ଜଗବନ୍ଧୁ, ପ୍ରାଚୀନ କବିତା ।] ୨ । ବନ୍ୟାଦି ଯୋଗୁଁ ସମସ୍ତ ଜମିର ଫସଲର ଧ୍ୱଂସ—2. Complete

destruction of the crops of a place due to river flood.

ସବା ପଛ—ଦେ. କି. ବଣ—୧। ସମସ୍ତଙ୍କ ପଶ୍ଚାଦ୍‌ଭାଗରେ— 1. On the
Sabā pachha back side of all. ୨। ଅବଶେଷରେ;
ସବା ପଛରେ } କ୍ରି. ବଣ. } ସମସ୍ତଙ୍କ ଶେଷରେ—2. At last.
ସବା ପଛେ } ଅନ୍ୟରୂପ } [ ଉ—ସବା ପଛେ ଖାଇଲେ
ସବାବି ପି(ପେ)ଛୁନେ ପାଣ୍ଡବ ରାଜନ—କୃଷ୍ଣଚନ୍ଦ୍ର ମହାଭାରତ
सबसे पिछे ବନ] ୩। ସମସ୍ତଙ୍କ ପରେ—3. After all.

ସବା ବଡ଼—ଦେ. ବଣ.—(ସ. ସର୍ବ ଓ ପ୍ରା. ବଡ଼୍‌ଢ)—୧। ସମସ୍ତଙ୍କ-
Sabā barḍa ଠାରୁ ବଡ଼; ବୃହତ୍ତମ—1. Largest; biggest.
সবার বড় ୨। ସମସ୍ତଙ୍କଠାରୁ ଅଧିକବୟସ୍କ—2. Eldest;
सबसे बड़ा oldest.
[ସବାସାନ, ସବାଶେଷ—ଦ୍ରଷ୍ଟବ୍ୟ]।

ସବା ବାଳ—ଦେ. ବି.—(ସ. ସର୍ବ ଓ ବାଳ=କେଶ)—କ୍ଷୌର
Sabā bāla ନ ହେବାରୁ ମସ୍ତକରେ ଓ ମୁଖରେ ବଢ଼ିଥିବା
সব চুল କେଶ; ମସ୍ତକ ଓ ମୁଖରେ ବଢ଼ିଥିବା ସମସ୍ତ କେଶ—
सब बाल The hair of the whole head left as a result of not shaving the head; the whole head of hair.

ସବା ବାଳ ଛାଡ଼ିବା—ଦେ. କି.—କ୍ଷୌର ନ ହୋଇ ମସ୍ତକର ସମସ୍ତ
Sabā bāla chhāṛḍibā କେଶକୁ ବଢ଼ାଇବା—To let
ସବାବାଳ ବଢ଼ା(ଢ଼େ)ଇବା } ଅନ୍ୟରୂପ } the hair of the
ସବାବାଳ ରଖିବା } whole head grow
সবচুল রাখা as a result of not shaving any
सबबालछोड़ना part thereof.

ସବା ବାଲୁଆ—ଦେ. ବଣ. ପୁ—ଯେଉଁ ପୁରୁଷ କ୍ଷୌର ନ ହୋଇ
Sabā bāluā ମୁଣ୍ଡର କେଶ ଓ ଶ୍ମଶ୍ରୁ ଆଦିକୁ ବଢ଼ାଇଥାଏ—
সবচুল রাখা A person who has let the hair of
सबबाल रखने वाला the head and face grow long without shaving.

ସବା ମଝି—ଦେ. ବି.—(ସ. ସର୍ବ ମଧ୍ୟ)— ୧। ସମସ୍ତଙ୍କ ମଧ୍ୟ ଭାଗ—
Sabhā majhi 1. The middle of all. ୨। ସମସ୍ତଙ୍କ କେନ୍ଦ୍ର-
সবার মাঝ 2. The centre of all. ଦେ. ବଣ.—ସବାମଝିଆଁ
सबका बीच (ଦେଖ) Sabā majhiāñ See)
(ସବା ମଝିରେ—କ୍ରି. ବଣ ରୂପ) (ସବାମଝିଲି—ଅନ୍ୟରୂପ)

ସବା ମଝିଆଁ—ଦେ. ବଣ. (ସଂ ସର୍ବ ମଧ୍ୟସ୍ଥ)—୧। ସମସ୍ତଙ୍କର କେନ୍ଦ୍ରସ୍ଥ-
Sabā majhiāñ 1. Central. ୨। ସମସ୍ତଙ୍କର ମଧ୍ୟ ସ୍ଥଳରେ
সবার মাঝের ଅବସ୍ଥିତ—2. Middlemost. ୩। (ପୁଂ) ସବୁ
सबका बीचका ଭାଇ ଆଦିଙ୍କ ମଝିରେ ଜାତ—3. Middle-
(ସବା ମଝିଅଣୀ—ସ୍ତ୍ରୀ) most in point of age or seniority or birth.

ସବା ମରୁଡ଼ି—ଦେ. ବି.—ବୃଷ୍ଟି ଅଭାବରୁ କୌଣସି ଅଞ୍ଚଳର ସମସ୍ତ ଫସଲର
Sabā maruṛdi ପୂର୍ଣ୍ଣ ନଷ୍ଟି—Complete failure of crops in a place due to drought.

ସବା(ଆ)ର—ବୈଦେ. (ଫା) ବି.—(ଫା. ସବାର୍)—୧। ଅଶ୍ୱାରୋହୀ—
Sabā(wā)r 1 Rider.
সওয়ার ୨। ଅଶ୍ୱାରୋହୀ—
सवार 2. Horse-rider.

ସବାର ହେବା—ଦେ. କି.—୧। ଘୋଡ଼ା ପିଠିରେ ଆରୋହଣ କରିବା
Sabāra hebā 1 To ride on a horse. ୨। କୌଣସି
সওয়ার হওয়া ବ୍ୟକ୍ତି ଉପରେ ଚଢ଼ିବା—2. To ride on a
सवार होना person. ୩। (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିର ଗଳଗ୍ରହ
ହେବା—3. (figurative) To be a burden on a person ୪। (ଭୂତ ଆଦି ମନୁଷ୍ୟଠାରେ) ଅବଶ୍ୟ ହେବା; ମନୁଷ୍ୟର ଆତ୍ମାକୁ ଅଧିକାର କରିବା—4. To possess a person (said of a ghost or evil spirit.)

ସବାରାଶି—ଦେ. ବି.—୧। ପ୍ରତ୍ୟେକ କ୍ଷେତ୍ରକୁ ଖଣ୍ଡ ଖଣ୍ଡ କରି ମାପିବା
Sabārāsi ପ୍ରକାର—Mode of measuring each plot
কিতাওয়ারি of land. ବଣ ୧। କ୍ରମିକ—1. Serial. ୨।
किताबार क्रमिक ବଚାଓ୍ୱାର (ମାପ) 2. Measurement plot by plot.

ସବାରାଶି ଜରିପ (ପି, ବ, ବି)—ଦେ. ବି.—ପ୍ରତ୍ୟେକ କ୍ଷେତ୍ରକୁ କମା-
Sabā rāsi jarip (pi, b, bi) ନୁସାରେ ମାପିବା
(ସବାରାଶି ମାପ—ଅନ୍ୟରୂପ) Serial measurement of the
কেতাওয়াবি জরিপ plots of land; plot by plot
किताबारी जरिब measurement

ସବାରାଶି ଜରିପ(ପି, ବ, ବି) ଭଉଁରିଆ(ସ୍ୟା)—ଦେ. ବି—ଯେଉଁ
Sabārāsi jarip (pi, ba, bi) bhauñriā(yā) ଭଉଁରିଆରେ
( ସବାରାଶି ଭଉଁରିଆ(ସ୍ୟା)—ଅନ୍ୟରୂପ ) ପ୍ରତ୍ୟେକ କ୍ଷେତ୍ରର
কিতাওয়াবি জরিপের খতিয়ান ଦୈର୍ଘ୍ୟ ମାପର ପରିମାଣ,
किताबारी जरिब खतियान ବିବରଣ ଓ ନିଦର୍ଶନ ଲେଖାଥାଏ—
A fieldbook containing the particulars of measurement of land plot by plot.

ସବାରାଶି ମର୍ଦ୍ଦାଣ—ଦେ. ବି.—ସବାରାଶି ଜରିପ ଭଉଁରିଆରେ ଲେଖା-
Sabārāsi marḍāna ଥିବା ବିବରଣ ମୁତାବକ ପ୍ରତ୍ୟେକ
কিতাওয়াবি জরিপের খতিয়ান মিলান କ୍ଷେତ୍ରକୁ ଖଣ୍ଡ ଖଣ୍ଡ କରି
ମାପି ପ୍ରତାଲ କରିବା—Remeasuring and checking every plot of land according to the directions given in the plot-by-
माप पड़तालकरना measurement field book.

ସବାରି—ବୈଦେ. (ଫା) ବି. (ମୂଳ. ସଂ. ଶିବିକା ଓ ତେଲୁଗୁ—
Sabāri ସ୍ୱାରୀ )—୧। ପାଲିଙ୍କି; ଗଡ଼ଖଡ଼—1. A
(ସୁଆରୀ—ଅନ୍ୟରୂପ) palankeen; a palki. ୨। ଘୋଡ଼ା
সওয়ারি ବା ହାତୀ ଆଦିରେ ଚଢ଼ିବା—2. Riding on horse
सवारी or elephant. ୩। ଘୋଡ଼ା, ଗାଡ଼ି, ହାତୀ ଆଦିରେ
ଚଢ଼ିବାର ଥର—3. The using of a horse or carriage for riding once. (ଯଥା—ଏ ଘୋଡ଼ାର ଆଉ ଚଢ଼ୋଟି ସବାରି ହେଲା।) ବଣ—୧। ଚଢ଼ିବା ନିମନ୍ତେ

ବ୍ୟବହୃତ—1. Used for riding. ( ଯଥା—ସବାର ଘୋଡ଼ା, ରାଜାଙ୍କ ସବାର୍ ହାତୀ ।) ୨ । ଅରୋହଣ ଯୋଗ୍ୟ—2. Fit for riding. [ବ୍ର—କାଠରେ ଓ ବେତରେ ସବାର ଛଅର ହୁଏ ଏବଂ ଲୁହାରେ ଛଅର କେତୋଟି ଉପାଦାନ ମଧ୍ୟ ଏଥିପାଇଁ ଅବଶ୍ୟକ ହୁଏ । ସବାରର ଦୁଇ ପାଖରେ କବାଟ ଲଗିଥାଏ, ତାକୁ ଟାଣିକରି ମେଲା ଓ ବନ୍ଦ କରାଯାଏ । ସେ କବାଟମାନ ଖୋଳ ଚକମାନଙ୍କ ଉପରେ ଚଳେ । ଏଥିପାଇଁ ସବାରକୁ ମଧ୍ୟ ଖଡ଼ଖଡ଼ି ବୋଲାଯାଏ । ସବାରର ଭିନ୍ନ ଭିନ୍ନ ଅଂଶର ନାମ; ଯଥା—

[କ] ବାଉଁଶ—ସବାରର ଅଗରେ ଓ ପଛରେ ଲଗିଥିବା ଦଣ୍ଡଦ୍ୱୟ, ଯାହାକୁ ବେହେରାମାନେ କାନ୍ଧେଇ କରି ସବାର୍ ବୁହାନ୍ତି ।

[ଖ] କୁମ୍ଭ—ସବାରର ଅଗପାଖ ବାଉଁଶ (ସବାରର ଅଗ ବାଉଁଶର ଅଗରେ ଗୋଟିଏ କୁମ୍ଭାକାର ଅଳଙ୍କାର ଲଗିଥିବାରୁ)

[ଗ] ପିଙ୍ଗ, ଫିଙ୍ଗ—ସବାରର ପଛ ବାଉଁଶ ।

[ଘ] ପାହୁଅ ବା ପାହ୍ୟା—ସବାରର ତଳେ ଥିବା ଗୋଡ଼ ।

[ଙ] ଛତ—ସବାରର ଉପର ଆବରଣ ବା ଛାଦ ।

[ଚ] ତାନ—ସବାରର ବାଉଁଶରୁ ଯେଉଁ ଲୁହାର ଦଣ୍ଡମାନ ସବାରର ଦୁଇମୁଣ୍ଡରେ ତଳ ଓ ଉପରଅଡ଼ ସହିତ ଭିଡ଼ା ହୋଇଥାଏ ।

[ଛ] ବାଡ ବା ବାଡ଼ା—ସବାରର ପାର୍ଶ୍ୱଦେଶସ୍ଥ କାଷ୍ଠ ।

[ଜ] ଫରଦା ବା ଫର୍ମି—ସବାରର ପ୍ରକୋଷ୍ଠାକୃତ ଚତୁଷ୍କୋଣ ଅଂଶ ( ଅର୍ଥାତ୍ ଯହିଁର ଅଗରେ ଓ ପଛରେ ଦୁଇ ଗୋଟି ବାଉଁଶ ଯୋଖା ହୋଇଥାଏ । )

[ଝ] ତଳ ବା ତଳା—ସବାରର ଯେଉଁ ଅଂଶରେ ଅରୋହୀ ବସନ୍ତି ।

[ଞ] ଖଡ଼ଖଡ଼ି ବା କବାଟ—ସବାରର ପାର୍ଶ୍ୱସ୍ଥ ଅଂଶରେ ଲଗିଥିବା ଦ୍ୱାର (ଯାହାକୁ ଖୋଲି ଓ ବନ୍ଦ କରି ଯାଇପାରେ) ।]

**ସବାରିଆ(ୟା)**—ଦେ. ବଣ—ଯେଉଁ ଘୋଡ଼ା ସବାର ବା ଚଢ଼ିବା ପାଇଁ Sabāriā(yā) ବ୍ୟବହୃତ ହୁଏ—( Horse ) Used for riding.
ସଓୟାବିୟା ਸਬਾਰਿਕਾ

**ସବାର୍ କାନ୍ଧି(ନ୍ଧୁ)ଆ**—ଦେ, ବ—ସବାରର ବାଉଁଶକୁ କାନ୍ଧ ଉପରେ Sabāri kāndhi(ndhu) ବୁହାଇବା ବାହକଗଣ—Bearers carrying the poles of the palki on the shoulders. ଦେ. ବଣ—ଯେଉଁମାନେ ସବାରର ବାଉଁଶକୁ କାନ୍ଧଦ୍ୱାରା ବୁହାନ୍ତି—Bearing the pālki on their shoulders. (ଯଥା—ସବାରକାନ୍ଧିଆ ଗଉଡ଼ )
ସଓୟାବି ବେହାବା
सबारीढोलाई
सओयाबिओयाला
सबारीढोनेवाला

**ସବାର୍ ଗଉଡ଼(ବେହେରା)**—ଦେ. ବ—ସବାର୍ କାନ୍ଧେଇବା ବେହେରାଗଣ Sabāri gaurda(beherā) The—bearers of a pālki
ସଓୟାବି ବେହାବା [ବ୍ର—କେତେକ ଅଞ୍ଚଳରେ ଗଉଡ଼ମାନେ,କେତେକ
सबारि कहार ସ୍ଥଳରେ ବାଉରୀ, କେତେକ ସ୍ଥଳରେ କୋଲ୍ହ, କେତେକ ସ୍ଥଳରେ ସାନ୍ତାଳ ଆଦି ଅନାର୍ଯ୍ୟଜାତି ଓ କେତେକ ଅଞ୍ଚଳରେ ହାଡ଼ିମାନେ ସବାର୍ ବୁହନ୍ତି ।]

**ସବାର୍ ଗାଡ଼ି**—ଦେ. ବ—୧ । ଯେଉଁ ଗୁଡ଼ଚକିଆ ଗାଡ଼ି ଉପରେ Sabāri gārdi ସବାର୍ ପରି ଗୋଟିଏ ପ୍ରକୋଷ୍ଠ ଲୋକଙ୍କ ପାଲ୍‌କି ଗାଡି ବସିବା ପାଇଁ ସଂଯୁକ୍ତ ହୋଇଥାଏ—1. A four-
सबारी गाडी wheeled carriage on which is attached a frame like a palki; an office-jaun. ୨ । ଅରୋହୀଙ୍କ ବସିବା ପାଇଁ ସବାର ପରି ଆବୃତ ଅସନ ଯେଉଁ ବଳଦ ଗାଡ଼ିର ଦଣ୍ଡା ଉପରେ ଭିଡ଼ା ଯାଇଥାଏ—2. A cart on which is attached a sedan-chair-like contrivance.

**ସବାର୍ ଘୋଡ଼ା**—ଦେ. ବ—ଯେଉଁ ଘୋଡ଼ା ଚଢ଼ିବା ପାଇଁ ବ୍ୟବହୃତ Sabāri ghordā ହୁଏ—Riding horse. ( ଏହିପରି ସଓୟାବି ଘୋଡା ସବାର୍ ଓଟ, ସବାର୍ ହାତୀ ଆଦି ଶବ୍ଦ ବ୍ୟବହୃତ
सबारी घोडा ହୁଏ ।)

**ସବାର୍ ଡାକ**—ଦେ. ବ—୧ । ବହୁ ଦୂରରେ (ପ୍ରାୟ ପ୍ରତ୍ୟେକ ୧୦ Sabāri dāka ମାଇଲ ଅନ୍ତରରେ) କ୍ଲାନ୍ତ ବେହେରାମାନଙ୍କ ସବାରି ଡାକ ବଦଳରେ ପଞ୍ଝା ପଞ୍ଝା ନୂଆ ବେହେରାଙ୍କ ଦ୍ୱାରା
सबारी डाक ସବାରକୁ ବହୁଦୂର ବାଟକୁ ନେବାରୂପ ବ୍ୟବସ୍ଥା—1. Arrangement for carrying a pālki to a long distance by having it carried by fresh relays of bearers at fixed intervals (of 10 miles). ୨ । ସବାର୍ ବେହେରାମାନେ ସବାର୍ କାନ୍ଧେଇବା ସମୟରେ କ୍ଲାନ୍ତିନିବାରଣାର୍ଥ ବଡ଼ ପାଟି କରି ଡାକିବା ବାକ୍ୟମାନ—2. The hallooing of pālki-bearers while carrying the pālki.

[ବ୍ର—ସାଧାରଣତଃ ସବାରର ଅଗ ବାଉଁଶକୁ କାନ୍ଧେଇ ଥିବା ବେହେରାମାନେ ଚାଲିବାବେଳେ ଡାକ ଡାକ ଚାଲନ୍ତି । ପଛ ବାଉଁଶକୁ କାନ୍ଧେଇଥିବା ବେହେରାମାନଙ୍କୁ ସମ୍ମୁଖ ଦିଗ ଦେଖାଯାଏ ନାହିଁ, ଏଥିପାଇଁ ଅଗରେ କାନ୍ଧେଇଥିବା ବେହେରାମାନେ ସେମାନଙ୍କ ଡାକ ଡାକ ପଛ ବେହେରାମାନଙ୍କୁ ଉଚ୍ଚ ଉଚ୍ଚ ବାକ୍ୟ ଦ୍ୱାରା ରାସ୍ତା ସମ୍ବନ୍ଧେ ସାବଧାନ କରାଇ ଦିଅନ୍ତି । ଏହାଛଡ଼ା ବେହେରାମାନେ ଡାକ ଦ୍ୱାରା ନାନାପ୍ରକାରର ଗୀତ, ଡାକ ବଚନ ଓ ପ୍ରବଚନ ବୋଲନ୍ତି ଏବଂ ରସିକତା ମଧ୍ୟ କରନ୍ତି । ଏହି ଡାକ ନାନା ଛନ୍ଦରେ ବୋଲାଯାଏ । ଅଗରେ କାନ୍ଧେଇଥିବା ବେହେରାମାନଙ୍କ ମଧ୍ୟରୁ ଜଣେ ବା ଦୁଇଜଣ ଗୋଟିଏ 'ଡାକ' ଡାକନ୍ତି ଓ

ନିଃଶ୍ୱାସ ମାରିବାକୁ କ୍ଷଣକ ପାଇଁ ଭୁନି ହୁଅନ୍ତି । ଏହି ଅବସରରେ ଅନ୍ୟ ବେହେରା ଜଣେ ବା ଦୁଇଜଣ ସେହି ଡାକକୁ ମିଶାଇ ଡାକ ମାରନ୍ତି । ଅତଏବ ଡାକମାରିବା ବେହେରାମାନେ ଦୁଇଟି ଦଳରେ ବିଭକ୍ତ ହୁଅନ୍ତି । ଏକ ଦଳ ଡାକ ମାରି ଭୁନି ହେଲାବେଳେ ଆର ଦଳକ ଡାକ ମାରନ୍ତି ଓ ଦୂରରୁ ଏ ଦୁଇଦଳଙ୍କ ଡାକ ମିଶି ଗୋଟିଏ ଅବିଚ୍ଛିନ୍ନ ଶବ୍ଦଧାରା ପରି ଶୁଣାଯାଏ । ଏମାନଙ୍କ ଡାକ ସାଧାରଣତଃ ୪ ଅକ୍ଷରିଆ (ଯଥା—ଯାଉଥିଲି, ଦିଅଁ ପେଲି), ୫ ଅକ୍ଷରିଆ (ଯଥା—ହୁଁ ମେରା ଭାଇ, ଖବର ଖାଇ), ୬ ଅକ୍ଷରିଆ (ଯଥା—ହୁଁ ମେରା ଭାଇରେ, ଖବର ଖାଇରେ, ଅକାଶି ଲଗାରେ, ଅଗିଲା ଭାରିରେ), ଓ ୭ ଅକ୍ଷରିଆ (ଯଥା—ଡାହାଣକୁ ମୋଡ଼ରେ, ବାଆଁ ଛଡ଼ ଭାଇରେ, ଦଉଥିବୁ ଭାଇରେ) ଆଦି ଛନ୍ଦ ବିଶିଷ୍ଟ ହୋଇଥାଏ । କେତେକ ଅଞ୍ଚଳରେ "ଧେ ଧା ! ଧେ ଧେ ! ହେଁ ହେଁ ! ହେଁ ହାଁ !" ଇତ୍ୟାଦି ନିରର୍ଥକ ଡାକ ମଧ୍ୟ ବେହେରାମାନେ ଡାକନ୍ତି । ଅଗର ବେହେରାମାନେ 'ଡାକ' ଡାକନ୍ତି ଓ ପଛ ବେହେରାମାନେ ତାହା ଶୁଣି ସେହି ଡାକର ଅର୍ଥକୁ ବୁଝି କାର୍ଯ୍ୟ କରନ୍ତି ଏବଂ ଯେଉଁ ପଞ୍ଝାକ ବେହେରା କାନ୍ଧେଇବାରୁ ଅବସର ପାଇ ସବାରର ପଛରେ ଚାଲି ଥାଆନ୍ତି, ସେମାନେ କିଛି ସମୟ ପରେ ଅଗ ବେହେରାଙ୍କୁ ବା ପଛ ବେହେରାଙ୍କୁ ଛାଡନ୍ତି, ଅର୍ଥାତ୍ ତାଙ୍କୁ କାନ୍ଧେଇବା କାର୍ଯ୍ୟରୁ କିଛି ସମୟ ପାଇଁ ମୁକ୍ତ (Relief) ଦିଅନ୍ତି । ଏହି ସବାର୍ ଡାକରେ କେତେଗୁଡ଼ିଏ ବାକ୍ୟ ବିଶିଷ୍ଟ ଅର୍ଥରେ ବ୍ୟବହୃତ ହୁଏ । ତହିଁର କେତୋଟି ଉଦାହରଣ ନିମ୍ନରେ ଦିଆ ଯାଉଅଛି—

୧ । ଅକାଶି ଲଗାରେ—ସବାର ଯାଉଥିବା ବାଟର ମୁଣ୍ଡ ଉପରେ ଗଛର ଡାଳ ବା ଲତା ଓହଳି ଥିଲେ ଏହି ଡାକ ବ୍ୟବହୃତ ହୁଏ ।

୨ । ଖଡ଼ପା ଲଗାରେ—ବାଟରେ କଣ୍ଟା ପଡ଼ିଥିଲେ କିମ୍ବା କୌଣସି ବେହେରାର ଗୋଡ଼ରେ କଣ୍ଟା ଗଳିଗଲେ ଏହି ଡାକ ବ୍ୟବହୃତ ହୁଏ ।

୩ । ଗୋବର ଲଗାରେ—ବାଟରେ ଅଳ୍ପ କାଦୁଅ ଥିଲେ ଏହି ଡାକଟି ଡକାଯାଏ । କେତେକ ଅଞ୍ଚଳରେ ଏହି ଡାକଟି ଗୋବର୍ କାଳରେ, ଦେଇଛି ଖାଲରେ—ରୂପରେ ଶୁଣାଯାଏ ।

୪ । ଉଚ୍ଚଟି ଲଗାରେ—ବାଟରେ ଚହଟା କାଦୁଅ ଥିଲେ ଏହି ଡାକ ଡକାଯାଏ ।

୫ । ଠୋକର ଲଗାରେ—ବାଟରେ ଗଛର ଶିଅ ଅଦ ଝୁଣ୍ଟିବାର ଆଶଙ୍କା ଥିଲେ ଏହି ଡାକଟି ବ୍ୟବହୃତ ହୁଏ ।

୬ । ଅଗିଲା ଭାରିରେ—ସମ୍ମୁଖରେ ଅନ୍ୟ ସବାର୍ ବା ଲୋକ ଗହଳି ଯୋଗୁଁ ଶୀଘ୍ର ଚାଲିଯିବାର ସୁବିଧା ନଥିଲେ ଏହି ଡାକଟି ଡକାଯାଏ ।

୭ । କୋରେଇ ଗାଡ଼ରେ, କୁଲେଇ ମାଡ଼ରେ—ବାଟରେ ଗାତ ଥିଲେ ଟିକିଏ ବାଟ ଭାଙ୍ଗିକରି ଯିବାବେଳେ ଏହି ଡାକଟି ଡାକିବାକୁ ହୁଏ ।

୮ । ଡାହାଣ ଛଡ଼ରେ ବା ବାଆଁକୁ ଧରରେ—ବାଟରେ ଡାହାଣ ଅଡ଼େ ଗଛ ଆଦି ଥିଲେ ଡାକିବାକୁ ହୁଏ ।

୯ । ବାଆଁକୁ ଛଡ଼ରେ ବା ଡାହାଣେ ଧରରେ—ବାଟର ବାମଅଡ଼େ ଗଛ ଆଦି ଥିଲେ ଏପରି ଡାକ ଡକାଯାଏ ।

୧୦ । ବାଆଁ ଡାହାଣେ ରେ ବା ଡାଆଁ ବାଆଁଣେ ରେ—ବାଟର ଦୁଇ ପାଖେ ଗଛ ଆଦି ଥିଲେ ଏହି ଡାକଟି ବ୍ୟବହୃତ ହୁଏ ।

୧୧ । ଠିଆ ପହଣ୍ଡରେ ବା ଡିଆଁ ପହଣ୍ଡରେ—ବାଟରେ ନଳା ବା ନର୍ଦ୍ଦମା ବା ହିଡ଼ ଥିଲେ ତାକୁ ଡେଇଁ କରି ଯିବାବେଳେ ଏ ଡାକଟି ଦିଆଯାଏ ।

୧୨ । ଦୋସର ଡିଆଁରେ—ଥରେ ଡେଇଁ ସାରିଲା ପରେ ପୁଣି ଆଉ ଥରେ ନଳା ବା ହିଡ଼ ଆଦିକୁ ଡେଇଁବାକୁ ପଡ଼ିଲେ ଏହି ଡାକଟି ବ୍ୟବହୃତ ହୁଏ ।

୧୩ । କାନ୍ଧ ବଦଳରେ—ଆମ୍ଭେମାନେ କ୍ଳାନ୍ତ ହେଲୁଣି, ଚାଲୁଥିବା ବେହେରାମାନେ ଆସି ଆମ କାନ୍ଧରୁ ସବାର ନିଅନ୍ତୁ—ଏହି ଅର୍ଥ ପ୍ରକାଶ କରେ ।

୧୪ । ଲଙ୍ଗଳ ଡାଡ଼ାରେ—ଯିବା ବାଟରେ ବିଲରେ ଲଙ୍ଗଳ ଦ୍ୱାରା ତିଆରି ହୋଇ ଥିବା ବଡ଼ ବଡ଼ ମାଟି ମୁଣ୍ଡା ପଡ଼ିଥିଲେ ସାବଧାନ ହୋଇ ଚାଲିବାକୁ ଏହି ଡାକଟି ବ୍ୟବହୃତ ହୁଏ ।

୧୫ । ହାବୁଡ଼ା ଲଗାରେ—ଯିବା ବାଟର କଡ଼ରେ ଥୁଣ୍ଟା ଗଛ, ଖୁଣ୍ଟ ବା ହୁଙ୍କା ଅଛି; ତେଣୁ ସବାରର ପାହିଆ ତହିଁରେ ଲାଗିଯିବାର ଆଶଙ୍କା, ଏହି ଅର୍ଥ ପ୍ରକାଶ କରେ ।

୧୬ । ଅନ୍ଧାର ଲଗାରେ—ଅନ୍ଧକାର ଯୋଗୁଁ ବା ପାଣି ଯୋଗୁଁ ଗୋଡ଼ତଳର ଭୂମି ଆଖିକୁ ଦେଖାଯାଉ ନ ଥିଲେ ଏହି ଡାକଟି ବ୍ୟବହୃତ ହୁଏ ।

୧୭ । ଅଲପ ଅଛି, ଆଖି ମାରୁଛି, ସୂତା ଖିଅ ପରି ଲାଗି ରହିଛି—ଯେଉଁ ସ୍ଥାନକୁ ଯାଉଥାଇଁ, ତାହା ସନ୍ନିକଟବର୍ତ୍ତୀ ହେଲାଣି, ଆଉ ଅଧିକ ଦୂର ଯିବାକୁ ପଡ଼ିବ ନାହିଁ—ଏହି ଅର୍ଥ ପ୍ରକାଶ କରେ ।

୧୮ । କିଆ ଗୋହିର, ମାର୍ ମୁଣ୍ଡିଆ ଯାଉ ବାହାର—'ସବାର କିଆ ଗୋହିର ମଧ୍ୟରେ ଯାଉଅଛି, ବାଟ ସଂକୀର୍ଣ୍ଣ ଥିବାରୁ ଓ ଦୁଇ ଅଡ଼ର କିଆ ଗଛର ସଂଘର୍ଷ ଯୋଗୁଁ ଗତିରେ ବାଧା ହେବାରୁ ପଛ ବେହେରାମାନେ ସବାରକୁ ଜୋରରେ ପେଲି ଦିଅ—ଏହି ଅର୍ଥ ପ୍ରକାଶ କରେ ।

୧୯ । ମାଆ ଠାକୁରାଣୀ ହୋଇବେ ସାହା ଲେ—ବାଟ ପାଖରେ କୌଣସି ଗ୍ରାମ ଦେବତାଙ୍କ ଅସ୍ଥାନ ଦେଖା ଗଲେ ଏହି ଡାକଟି ବ୍ୟବହୃତ ହୁଏ ।

୨୦ । ଚଲିଛି ପାଇରେ—ରାସ୍ତା ଭଲ ଥିବାରୁ ଚାଲିବାକୁ ସୁବିଧା ହେଉଅଛି—ଏହି ଅର୍ଥ ପ୍ରକାଶ କରେ ।]

ସବାରି ପାଇକ(ସିପାଇ, ସିପାହି)—ଦେ· ବି—ସବାରି ପାଖେ ପାଖେ
Sabāri pāika(sipāi, sipāhi) ଅସ୍ତ୍ର ଶସ୍ତ୍ର ଧରି ଯିବା ପାଇଁ
সওয়াবী সিপাহী ନିଯୁକ୍ତ ପାଇକ ବା ପାଇକମାନେ—
सवारी सिपाही An armed guard or guards who accompany a palki while it carries a Raja or Ranee or an official.

ସବାରି ବଗି—ଦେ· ବି—ସବାରି ଗାଡ଼ି ୧ ( ଦେଖ )
Sabāri bagi Sabāri gārdi 1 ( See )

ସବାରି ବେହେରା—ଦେ. ବି—ସବାରିକୁ କାନ୍ଧ ଦ୍ୱାରା ବହୁଥିବା
Sabāri beherā ବେହେରା—Palki-bearers.
সওয়াবি বেহাবা [ଦ୍ର—ଉଚ୍ଚ ଭଳି ଅଞ୍ଚଳରେ ଭଦ୍ର ଘର
सवारि कहार ବ୍ୟକ୍ତିମାନେ ସବାରି କାନ୍ଧାନ୍ତି । ଓଡ଼ିଶାରେ କଟକ, ପୁରୀ ଜିଲ୍ଲାରେ ଗଉଡ଼ ଓ ବାଉରିମାନେ ସବାରି ବୁହାନ୍ତି । ବାଲେଶ୍ୱରର ଉତ୍ତରାଞ୍ଚଳରେ ପାଣ ଓ ମେହେରା ପୁରରେ ପାଣ ଓ ହାଡ଼ିମାନେ ସବାରି କାନ୍ଧାନ୍ତି । ପଶ୍ଚିମ ଓ ବଙ୍ଗାଳରେ କାହାରମାନେ, ଗଡଜାତ ଅଞ୍ଚଳରେ କନ୍ଧ, କୋଲ୍ଚ ଓ ସାନ୍ତାଳମାନେ ସବାରି କାନ୍ଧେଇବା ଦେଖାଯାଏ ।]

ସବାରି ଭିଡ଼ିବା—ଦେ· କ୍ରି-ବେହେରାମାନେ କାନ୍ଧେଇ ନେଇ ଚଲାଉଥିବା
Sabāri bhirdibā ସବାରିର ଗତିକୁ ବନ୍ଦ କରି ସବାରିକୁ
পাক্কী বাখা ଏକସ୍ଥାନରେ ରଖିବା—To stop a
सवारी रखना moving Pālki and set it down at a place.

ସବାରି ହାତୀ -ଦେ ବି. ପୁଂ—ଯେଉଁ ହାତୀ ରାଜାଙ୍କର ବା ଅନ୍ୟାନ୍ୟ
Sabāri hāti ବିଶିଷ୍ଟ ଲୋକଙ୍କ ଆରୋହଣାର୍ଥ ବ୍ୟବହୃତ ହୁଏ—
সওয়াবী হাতী An elephant which is used by a
सवारी हाथी Raja or high official for riding.
(ସୱାର ହାତୁଣୀ—ସ୍ତ୍ରୀ) [ଦ୍ର—କେତେକ ହାତୀ ଗୃହପାଳିତ ହେଲେ ତାଙ୍କ ପିଠି ଏପରି ଦୋହୋଲେ ଯେ, ସେଥିରେ ଆରୋହୀଙ୍କ ଶରୀର ଖୁବ୍ ଦୋହୋଲେ । ଏପରି ହାତୀର ଆରୋହଣ କ୍ଳାନ୍ତିପ୍ରଦ । ଗୋଟିଏ ଗୋଟିଏ ହାତୀ ଗୃହପାଳିତ ହେଲେ ସେମାନଙ୍କ ପିଠି ସାମାନ୍ୟ ଦୋହୋଲେ ଓ ସେମାନଙ୍କ ଉପରେ ଆରୋହଣ କରିବା ଅସ୍ୱସ୍ତିପ୍ରଦ ।]

ସବାରି ହେବା—ଦେ. କ୍ରି—ସବାର ହେବା (ଦେଖ)
Sabāri hebā Sabāra hebā (See)

ସବାରୀ—ପ୍ରାଦେ. (ଲକ୍ଷ୍ୟ) ବିଣ—ଭଜମାଲ
Sabārī Joint.

ସବା(ୱା)ଲ୍—ବୈଦେ. ବି.(କଚେରୀ)—(ଫା.ସ‌ୱାଲ୍)—୧। ପ୍ରଶ୍ନ—
Sabā(wā)l 1.Question. ୨। ମକଦ୍ଦମାରେ କୌଣସି ପକ୍ଷ ଅପର
সওয়াল ପକ୍ଷକୁ ଲେଖିକରି ପଚାରିବା ପ୍ରଶ୍ନ—2. Interrogatory
सवाल submitted to court by one party to be served on the opposite party in a case.

ସବାଲ୍ କରିବା—ଦେ. କ୍ରି (କଚେରୀ)—ପ୍ରଶ୍ନ କରିବା
Sabāl karibā To question.
(ସୱାଲ୍ ଦେବା—ଅନ୍ୟରୂପ)
সওয়াল করা सवाल करना

ସବାଲ୍ ଜବାବ୍—ବୈଦେ (ଫା.) ବି. (କଚେରୀ)—୧। ପ୍ରଶ୍ନୋତ୍ତର—
Sabāl jabāb 1. Question and reply. ୨। 
সওয়াল জবাব ମକଦ୍ଦମାରେ ଉଭୟ ପକ୍ଷରୁ ପ୍ରମାଣ ଦିଆଯିବା ପରେ
सवाल जबाब ଉଭୟ ପକ୍ଷର ଓକିଲଙ୍କ ବାଦାନୁବାଦ—2. The argument of the pleaders of both sides after evidence is taken.

ସବାଲ୍ ଫରଦ୍(ଫର୍ଦ)– ବୈଦେ(ଫା)ବି.(କଚେରୀ)—ଯେଉଁ କାଗଜରେ
Sabāl pharad(phardə) ପକ୍ଷମାନେ ଅପର ପକ୍ଷକୁ ପଚାରିବା
সওয়াল ফর্দ্দ ପ୍ରଶ୍ନମାନ ଲେଖାଥାଏ—A sheet containing
सवाल फरद the interrogatories put by one party to the other.

ସବାଲିଆ(ୟା)—ଦେ· ବିଣ ପୁଂ—ପ୍ରଶ୍ନକାରୀ
Sabālıā(yā) Questioning; interrogating.
সওয়ালকাবী सवाल करनेवाला
[ସବାଲି(ଲ୍ୟା)—ସ୍ତ୍ରୀ]

ସବା(ୱା) ଶଅ(ହ)—ଦେ.ବି ଓ ବିଣ(ଫଶ୍ୟାବାଚକ; ସପାଦ + ଶତ) —
Sabā(wā) sa-a(ha) ଏକ ଶତ ପଚିଶ—One hundred
সওয়াশত सवासौ twenty five.

ସବାସ -ସଂ. ବିଣ - (ସ=ସହିତ+ବାସ=ଗନ୍ଧ, ଗୃହ; ବହ୍ୱର୍ଥ
Sabāsa ବହୁବ୍ରୀହି)—୧ । ଗନ୍ଧଯୁକ୍ତ—1. Having smell; scented. ୨ । ଗୃହଯୁକ୍ତ—2. Having a habitation ୩ । ଗୃହସ୍ଥ—3. Having a household; householder. ଦେ· ବିଣ—(ସ୍ତ୍ରୀ, ସବାସା)—ସବାସା (ଦେଖ)—Sabāsā (See)

ସବାସା(ସାଃ)—ସଂ. ବିଣ·—(ସ=ସହିତ+ବାସସ୍=ବସ୍ତ୍ର; ସବାସସ୍
Sabāsā(sāh) ଶବ୍ଦର ୧ମା, ୧ବ·)—ସବସ୍ତ୍ର (ଦେଖ)—

ସବା ସାନ—ଦେ. ବିଣ—ସମସ୍ତଙ୍କ ମଧ୍ୟରେ ସାନ—Youngest or
Sabā sāna smallest of all. [ ଦ୍ର—ସୁଯୁଷ୍ଟିର ତ
সবাবছোট ସବାସାନ ତୁଳଭାଇ, ଯେଣୁ ଦ୍ରୋଣଠାରୁ ଅଣିଲେ
सबसेछोटा ବେଗେ ଧାଇଁ । —କୃଷ୍ଣସିଂହ ମହାଭାରତ । ଖିଲ୍ପ]

ସବାହ୍ୟାନ୍ତଃକରଣ—ସଂ· ବିଣ (ଦ୍ୱନ୍ଦ୍ୱ ଓ ସହାର୍ଥ ବହୁବ୍ରୀହି; ବାହ୍ୟ+
Sabāhyāntahkarana ଅନ୍ତଃକରଣ; ସ+ବାହ୍ୟାନ୍ତଃକରଣ)-
ଦେହ ଓ ଅନ୍ତଃକରଣ ସହିତ ବର୍ତ୍ତମାନ—With the body and mind.

ସବାହ୍ୟାଭ୍ୟନ୍ତର—ସଂ. ବିଣ ( ଦ୍ୱନ୍ଦ୍ୱ ଓ ସହାର୍ଥ ବହୁବ୍ରୀହି )—ବାହାର
Sabāhyābhyantara ଓ ଭିତରର ସହିତ—Including outside and inside.

ସବି—ଗ୍ରା. ସର୍ବନାମ—(ସଂ. ସର୍ବ)—ସର୍ବେ; ସବୁ—All.
Sabi সবই सब

ସବିଏ—ଦେ· ସର୍ବନାମ—( ବହୁବଚନ ସର୍ବେ )—୧ । ସମସ୍ତେ—
Sabie 1. All. ୨ । ପ୍ରତ୍ୟେକ ବ୍ୟକ୍ତି—2. Every one.

ସବିକଳ୍ପ—ସଂ. ବିଣ·— ( ସ=ସହିତ+ବିକଳ୍ପ )—[illegible]
Sabikalpa ସନ୍ଦିଗ୍ଧ—Sceptic. ବି—[illegible] (ବେଦାନ୍ତ)
(ସବିକଳ୍ପକ—ଅନ୍ୟରୂପ) ଜ୍ଞାତା ଓ ଜ୍ଞେୟର ଭେଦଜ୍ଞାନ—1.The

knowledge of the individual existence of the knower and the knowable. ୨ । (ନ୍ୟାୟ ଦର୍ଶନ) ବଶେଷଣ(ଗୁଣ)ଯୁକ୍ତ ବଶେଷ୍ୟ(ବସ୍ତୁ)ର ଜ୍ଞାନ —2.(Logic) Knowledge of a thing with its attribute. ୩ । (ଯୋଗଶାସ୍ତ୍ର) ସମାଧିବଶେଷ—(Joga) A kind of deep meditation. [ଦ୍ର—ସବକଳ୍ପ ଓ ନିର୍ବିକଳ୍ପ ଭେଦରେ ସମାଧି ଦୁଇ ପ୍ରକାର। ଯେଉଁ ସମାଧିରେ କୌଣସି ଗୋଟିଏ ଅବଲମ୍ବନ ଥାଏ ତାକୁ ସବକଳ୍ପ ବା ସଜ୍ଞାନ ସମାଧି କହନ୍ତି—ବିଶ୍ୱକୋଷ ।]

**ସବକାର—ସ.** ବଣ (ସହାର୍ଥ ବହୁବ୍ରୀହି)—୧ । ବକାରଯୁକ୍ତ—**Sabikāra** 1. Having transformation. (ସବକାରା—ସ୍ତ୍ରୀ) ୨ । ଚତ୍ତବକାର ବଶିଷ୍ଟ—2. Having change or agitation of mind.

**ସବକାସ(ଶ)—ସ.** ବଣ (ସହାର୍ଥ ବହୁବ୍ରୀହି; ସ+ବକାଶ)—**Sabikāsa(śa)** ୧ । ବକାଶ ପ୍ରାପ୍ତ; ପ୍ରସାରତ; ଅଙ୍କୁରତ—1. Expanded. ୨ । ପ୍ରଫୁଲ୍ଲ; ବକଶିତ—2. Full-blown.

**ସବଗ୍ରହ—ସ.** ବଣ (ସହାର୍ଥ ବହୁବ୍ରୀହି; ସ=ସହ+ବଗ୍ରହ=ଶରୀର)—**Sabigraha** ୧ । ମୂର୍ତ୍ତିମାନ୍; ଦେହ ବଶିଷ୍ଟ; ସଶରୀର—1. Embodied; corporeal. ୨ । ରୂପ ବଶିଷ୍ଟ—2. Having a form or shape. ୩ । ଦେବମୂର୍ତ୍ତି ସହ ବଦ୍ୟମାନ—3. Accompanied by the image of a Deity. ୪ । (ବ୍ୟାକରଣ) ସମାସଯୁକ୍ତ ବା ସମସ୍ତ (ପଦ)—4. (a word) Formed by compounding several words. ୫ । ଅର୍ଥବୋଧକ—5. Signifying a meaning. ୬ । ତାତ୍ପର୍ଯ୍ୟସୂଚକ—6. Indicative of a purport; denotative.

**ସବଙ୍କ—ଦେ.** ସର୍ବନାମ—ସମସ୍ତଙ୍କର—Of all. [ଦ୍ର—ଏକଡାର **Sabiṅka** ଛଡ଼ ଯାଉ ନାହିଁ ଦେଖା ବୃଥା ଅହଂକାର ସବଙ୍କର (ସବଙ୍କର—ଅନ୍ୟରୂପ) ସଖା—ଭାରଣୀଚରଣ. ଉଡିକୁଲ୍ୟା ।] ସବାର୍, ସବାକାବ ସବକା

**ସବଙ୍କି(ଙ୍କୁ)—ଦେ.** ସର୍ବନାମ—ସମସ୍ତଙ୍କୁ—To all. [ଦ୍ର—ଏଥକି **Sabiṅki(ṅku)** ସବଙ୍କି ପେଷିବ ଯମଯୁଷ, କହିବ ଅଛି ପୁଣି ସକଲକେ, ସବାଇକେ ଭୋରେ ବୋଲେ ଧର । କୃଷ୍ଣସିଂହ. ମହାଭାରତ. ବନ ।] ସବକୋ

**ସବଜ୍ଞାନ—ସ.** ବଣ (ସ=ସହ+ବଜ୍ଞାନ)—ବଜ୍ଞାନ ସହତ—**Sabijñāna** With science; with special knowledge.

**ସବଡ଼ାଲମ୍ବ—ସ.** ବ—ପରହାସ ବା କୌତୁକ ନାଟକ ଭେଦ (ଭରତ **Sabirḍālambha** ନାଟ୍ୟ ଶାସ୍ତ୍ର)—A kind of jestive dancing or acting.

**ସବତା—ସ.** ବଣ. ପୁଂ [ସୂ ଧାତୁ=(ସଂଶ୍ଳେକ) ପ୍ରସବ କରବା+କର୍ତ୍ତି **Sabitā** ତୃ, ସବତୃ ଶବ୍ଦ; ୧ମା. ୧ବ]—୧ । ଜନୟିତା—(ସବତ୍ରୀ—ସ୍ତ୍ରୀ) 1. Begetting; giving birth. ୨ । ସ୍ରଷ୍ଟା—2. Creating. ବ—୧ । ସୂର୍ଯ୍ୟ—1. The sun. ୨ । ଜଗତର ସ୍ରଷ୍ଟା; ଈଶ୍ୱର—2. God. [ଦ୍ର—ଋଗ୍ବେଦରେ ସବତାହିଁ ଆଦଦେବ ରୂପେ ଅର୍ଚ୍ଚତ; ବ୍ରାହ୍ମଣାଦ ବର୍ଣ୍ଣ ତ୍ରୟର ମୂଳ ଗାୟତ୍ରୀ ମନ୍ତ୍ରରେ ସବତାହିଁ ଉପାସିତ—(ବଶ୍ୱକୋଷ) । ଗାୟତ୍ରୀର ଧ୍ୟାନରେ ନାରାୟଣଙ୍କୁ ସବତୃମଣ୍ଡଳମଧ୍ୟବର୍ତ୍ତୀ ପଦ୍ମାସନସନ୍ନିବିଷ୍ଟ ରୂପେ କଳ୍ପନା କରାଯାଇଅଛି ।] ୩ । ଅର୍କ ବୃକ୍ଷ—3. A plant; Calotropis Gigantea.

**ସବତୃ—ସ.** ବଣ ଓ ବ (ଶବ୍ଦ)—ସବତା (ଦେଖ) **Sabitṛu** Sabitā (See)

**ସବତୃ ତନୟ—ସ.** ବ (୬ଷ୍ଠୀ ତତ୍)—ଶନି ଗ୍ରହ—**Sabitṛu tanaya** The planet Saturn. (ସବତୃ ପୁତ୍ର, ସବତୃ ସୁତ—ଅନ୍ୟରୂପ)

**ସବତୃ ଦୈବତ—ସ.** ବ (ସବତା ଅଟନ୍ତି ଦୈବତ=ଦେବତା, ଯେଉଁ **Sabitṛu daibata** ନକ୍ଷତ୍ରର; ବହୁବ୍ରୀହି)—ହସ୍ତା ନକ୍ଷତ୍ର—The 13th asterism.

**ସବତୃ ମଣ୍ଡଳ—ସ.** ବ (ସବତୃ+ମଣ୍ଡଳ; ୬ଷ୍ଠୀ ତତ୍)—ସୂର୍ଯ୍ୟ ମଣ୍ଡଳ. **Sabitṛu maṇḍala** The circumference or halo of the sun; the solar sphere; the orb of the sun.

**ସବତ୍ରିୟ—ସ.** ବଣ (ସବତୃ+ଇୟ)—ସୂର୍ଯ୍ୟ ସମ୍ବନ୍ଧୀୟ (ବଶ୍ୱକୋଷ)—**Sabitriya** Solar; relating to the sun.

**ସବତ୍ରୀ—ସ.**ବଣ.ସ୍ତ୍ରୀ (ସୂ ଧାତୁ+ତୃ+ସ୍ତ୍ରୀ·ଈ)—ଜନୟିତ୍ରୀ; ପ୍ରସୂତି—**Sabitrī** (female) Begetting; giving birth to. ବ. ସ୍ତ୍ରୀ—୧ । ଜନନୀ; ମାତା—1. Mother. ୨ । ଗାଈ—2. Cow.

**ସବଦ୍ୟ—ସ.** ବଣ. ପୁଂ (ସ=ସହତ+ବଦ୍ୟା; ସହାର୍ଥ ବହୁବ୍ରୀହି)—**Sabidya** ବଦ୍ୱାନ୍; କୃତବଦ୍ୟ—Learned; educated. (ସବଦ୍ୟା—ସ୍ତ୍ରୀ)

**ସବଧ—ସ.** ବଣ (ସ=ସମାନ ଅଟେ ବଧା=ପ୍ରକାର ଯାହାର; **Sabidha** ବହୁବ୍ରୀହି)—୧ । ସଦୃଶ—1. Similar. ୨ । ସମୀପ; ନକଟ—2. Contiguous; near.

**ସବଧାନ—ସ.** ବଣ (ସ=ସହତ+ବଧାନ; ବହୁବ୍ରୀହି)—ବଧିପୂର୍ବକ—**Sabidhāna** (ସବଧି—ଅନ୍ୟରୂପ) With all the formalities.

**ସବନୟ—ସ.** ବଣ (ସ=ସହ+ବନୟ; ବହୁବ୍ରୀହି)—ବନୀତ; ବନୟଯୁକ୍ତ—**Sabinaya** With modesty; modest; respectful. [ସବନତ—ଅନ୍ୟରୂପ] କି· ବଣ—ବନୟ ସହକାରେ (ସବନୀତ—ଅଶୁଦ୍ଧରୂପ) Modestly; respectfully.

**ସବନୟ ନବେଦନ—ସ.** ବ (କର୍ମଧା)—ବନୟ ସହକାରେ ଅନୁରୋଧ **Sabinaya nibedana** —Respectful request; (ସବନୟ ପ୍ରାର୍ଥନା—ଅନ୍ୟରୂପ) respectful solicitation.

ସବିନୟ ନିବେଦନ ମିଦଂ—ସ. ବାକ୍ୟ—ଚିଠି ଲେଖିବା ଆଦ୍ୟରେ
Sabinaya nibedana midaṁ ଶିରୋନାମାରେ ଲେଖାଯିବା ବାକ୍ୟ; ଏଥିର ଅର୍ଥ—"ଏହା ମୋର ସବିନୟ ନିବେଦନ ଅଟେ"—A phrase written at the beginning of a letter meaning "This is my respectful solicitation".

ସବିରାମ—ସଂ. ବିଣ (ସ=ସହିତ+ବିରାମ=ବିଚ୍ଛେଦ, ବିବୃତ୍ତି; Sabirāma ବହୁବ୍ରୀହି)—୧। ବିରାମଯୁକ୍ତ—1. Remittent; (ବିପରୀତ—ଅବିରାମ) intermittent. ୨। ବିଚ୍ଛେଦ ବିଶିଷ୍ଟ—2. Having separation or space.

ସବିରାମ ଜ୍ୱର—ସଂ. ବି (ବୈଦ୍ୟକ)—ଯେଉଁ ଜ୍ୱର ମଝିରେ ମଝିରେ Sabirāma jwara ଛାଡ଼ିଯାଏ ଓ ପୁଣି ଆକ୍ରମଣ କରେ—Remittent fever; intermittent fever.

ସବିଶେଷ—ସଂ. ବିଣ ( ସ=ସହ+ବିଶେଷ )—୧। ଅତ୍ୟନ୍ତ—Sabiśesha 1. Excessive. ୨। ବିସ୍ତାରିତ—2. Detailed. ୩। ବିଶେଷ ପ୍ରକାରର—3. Of a particular kind; special; particular.
କ୍ରି. ବିଣ—୧। ବିଶେଷ ରୂପେ—1. Particularly; specially. ୨। ବିସ୍ତାରିତ ବିବରଣ ସହ—2. In detail.

ସବିସ୍ତ(ସ୍ତା)ର—ସଂ. ବିଣ (ସ=ସହ+ ସ୍ତର=ବିସ୍ତୃତ; ବହୁବ୍ରୀହି)—Sabista(stā)ra ୧। ବିସ୍ତାରିତ—1. Detailed. ୨। ଅସଂକ୍ଷିପ୍ତ—2. Not very abridged. ୩। ବାହୁଲ୍ୟଯୁକ୍ତ—3. Exaggerated.

ସବିସ୍ତାରିତ—ଦେ. ବିଣ ( ଅଶୁଦ୍ଧ ପ୍ରୟୋଗ )—ସବିସ୍ତର ( ଦେଖ )
Sabistārita Sabistara ( See )
( ସବିସ୍ତୃତ—ଅନ୍ୟ ଅଶୁଦ୍ଧରୂପ )

ସବିସ୍ତୃତ—ସ. ବିଣ (ସହାର୍ଥ ବହୁବ୍ରୀହି; ସ=ସହ+ବିସ୍ତୃତ)—ସବିସ୍ତର; Sabistṛuti ବିସ୍ତୃତ ସହିତ; ବିସ୍ତାରିତ—Detailed; minute.

ସବିସ୍ମୟ—ସ. ବିଣ. ପୁଂ ( ସ=ସହ+ବିସ୍ମୟ; ବହୁବ୍ରୀହି )—୧। Sabismaya ଆଶ୍ଚର୍ଯ୍ୟ; ବିସ୍ମିତ—1. Wondering; astonished. ( ସବିସ୍ମୟା—ସ୍ତ୍ରୀ ) ୨। ବିସ୍ମୟ ସହକାରେ—2. With wonder or amazement. କ୍ରି. ବିଣ—ବିସ୍ମିତ ଭାବରେ—With wonder; in an astonished manner.

ସବିସ୍ମୟେ—ଦେ. କ୍ରି. ବିଣ ( ସ. ସବିସ୍ମୟଂ )—ବିସ୍ମିତ ହୋଇ—Sabismaye In an astonished manner; with astonishment.
সবিস্ময়ে सविस्मय

ସବିସ୍ମିତ—ଦେ. ବିଣ ( ଅଶୁଦ୍ଧ )—ସବିସ୍ମୟ ( ଦେଖ )
Sabismita Sabismaya ( See )

ସବିହେ(ହେଁ)—ଦେ. ସର୍ବନାମ—ସଭିଏ; ସମସ୍ତେ—All; one and Sabihe(heñ) all. [ ଉ—ଦେବ ଛାଡ଼ି ମୋର ସବିହେ ଅଇଲେ—ଶିଶୁଶଙ୍କର. ଉଷାଅଭିଳାଷ । ]
সবাই सबकोइ

ସବୀଜ—ସ. ବିଣ ( ସହାର୍ଥ ବହୁବ୍ରୀହି; ସ+ବୀଜ )—ବୀଜ ସହିତ Sabīja ବର୍ତ୍ତିମାନ—With the Bīja or seed.

ସବୀର୍ଯ୍ୟ—ସ. ବିଣ ( ସହାର୍ଥ ବହୁବ୍ରୀହି; ସ+ବୀର୍ଯ୍ୟ )—ବୀର୍ଯ୍ୟବିଶିଷ୍ଟ—Sabīrjya Having Bīrjya.

ସବୁ—ଦେ. ସର୍ବନାମ ( ସ. ସର୍ବ )—୧। ସର୍ବ—1. All. [ ଉ—Sabu ସବୁ ଶସ୍ତ୍ର ଅଛେ ସେ ହୋଇଲେ ଦୂଷଣ—କୃଷ୍ଣସିଂହ. মহাভারত. আদি । ] ୨। ଅନ୍ୟ ଶବ୍ଦ ପରେ ବହୁବଚନାର୍ଥରେ ବ୍ୟବହୃତ ପଦାଂଶ—2. Signifying plural number when used after words. [ ଯଥା—ସବୁ ଲୋକ=ସମସ୍ତ ଲୋକ; ଲୋକ ସବୁ=ଲୋକମାନେ । ]
সবই सब

ସବୁ କରି—ଦେ. ଅ—ସର୍ବମୋଟ; ସବୁ ମିଶାଇଲେ—In all.
Sabu kari সর্বমোট, সব জড়িয়ে सब मिलाकर

ସବୁଙ୍କର(ରି)—ଦେ. ସର୍ବନାମ—ସମସ୍ତଙ୍କର—Of all. [ ଉ—Sabuṅkara(ri) ସର୍ବାଗ୍ରେ ଶୁଣିଲ ବଣେ ସବୁଙ୍କର ଡାକ—ପ୍ରାଚୀ. ବାଲ୍ମୀକିରୂପେଣ ଗୀତା । ]
সবার, সবাকার सबका

ସବୁଙ୍କୁ—ଦେ. ସର୍ବନାମ—ସଭିଙ୍କି; ସମସ୍ତଙ୍କୁ—To all persons.
Sabuṅku [ ଉ—ତୁମମାନଙ୍କୁ କହାଇବ, ସବୁଙ୍କୁ ଉଆର କହିବ—ଭୂପତି. ପ୍ରେମପଞ୍ଚାମୃତ । ]
সবাইকে सबको

ସବୁଜ(ଜା)—ବୈଦେ. ( ଫା ) ବି ( ଫା. ସବ୍‌ଜା )—ଶାଗୁଆ ରଙ୍ଗ; Sabuja(jā) ହରିଦ୍‌ବର୍ଣ୍ଣ; ଗଛପତ୍ରର ବର୍ଣ୍ଣ—Green colour; emerald. ବିଣ—ଶାଗୁଆ; ହରିତ—Green.
সবুজ सबजा

ସବୁ ଜାଣ—ଦେ. ବିଣ ( ସ. ସର୍ବଜ୍ଞ )—ସର୍ବଜ୍ଞାଣ; ସର୍ବଜ୍ଞ—Sabu jāṇa Omniscient.
সব জান্তা सब जाननेवाला

ସବୁ ଜାଣତା(ନ୍ତା)—ଦେ. ବିଣ (ବ୍ୟଙ୍ଗ୍ୟ. ସଂ. ସର୍ବଜ୍ଞ)—ସବ୍‌ଜାନ୍ତା; Sabu jāṇatā(ntā) ସର୍ବଜ୍ଞ—Omniscient; all-knowing.
সব জান্তা सब जाननेवाला
( ସବୁ ଜାଣ୍ତା—ଅନ୍ୟରୂପ )

ସବୁଜି—ବୈଦେ. ବି (ଫା. ସବ୍‌ଜି)—୧। ଶାଗୁଆ ବସ୍ତୁ—1. A Sabuji green thing. ୨। ବୃକ୍ଷଲତାଦି—2. Trees and plants. ୩। ଶାକାଦି ପରିବା ପତ୍ର—3. Kitchen vegetables.
সবুজি सबजी

ସବୁଠ(ଠା)ଉଁ—ଦେ. ସର୍ବନାମ—ସବୁଠୁଁ ( ଦେଖ )—
Sabuṭha(ṭhā)uñ Sabuṭhuñ ( See )
সবথেকে सबसे

ସବୁଠା—ଦେ. ସର୍ବନାମ ( ସଂ. ସର୍ବ ଓ ସ୍ଥାନ )—ସବୁ ଜାଗା; ସବୁ ସ୍ଥାନ—All places.
Sabuṭhā সব জায়গা सब जगह

ସବୁଠାଇଁ—ଦେ. ସର୍ବନାମ ( ସଂ. ସର୍ବସ୍ଥାନେଷୁ )—ସବୁଠି ( ଦେଖ )
Sabuṭhaiñ সবঠাঁই सब जगह Sabuṭhiñ ( See )

ସବୁଠାକୁ—ଦେ. ସର୍ବନାମ—ସବୁ ସ୍ଥାନକୁ—To all places.
Sabuṭhāku সব জায়গায় सब जगहको

ସବୁଠାରୁ—ଦେ. ସର୍ବନାମ—୧ । ସବୁ ସ୍ଥାନରୁ—1. From all places. ୨ । ସର୍ବାପେକ୍ଷା—2. Than all.
Sabuthāru
সব জায়গাথেকে, সবাছে सबजगहसे, सबसे

ସବୁଠାରେ—ଦେ. ସର୍ବନାମ—ସବୁ ସ୍ଥାନରେ—At all places.
Sabuthāre সব জায়গায় सब जगहमें

ସବୁଠିଁ(ଠି)—ଦେ. ସର୍ବନାମ—ସବୁଠାରେ—At all places.
Sabuthiñ(thi) সব জায়গায় सब जगहमें

ସବୁଠିକା—ଦେ. ସର୍ବନାମ—ସବୁ ସ୍ଥାନର—Of all places.
Sabuthikā সব জায়গার सब जगहका
(ସବୁଠି କାର—ଅପଭ୍ରଂଶ)

ସବୁଠିକି(କୁ)—ଦେ. ସର୍ବନାମ—ସବୁ ସ୍ଥାନକୁ—To all places.
Sabuthiki(ku) সব জায়গায় सब जगहको

ସବୁଠୁଁ(ଠୁ)—ଦେ. ସର୍ବନାମ—୧ । ସବୁଠାରୁ; ସବୁ ସ୍ଥାନରୁ—1. From all places. ୨ । ସର୍ବାପେକ୍ଷା—2. Than all; of all. [ଉ—ଗେଲା ମଉଳା ସବୁଠୁଁ ସାର, ମଲେ ଝାଣ୍ଟି ଲୁଣ୍ଠେଇରୁ ବାହାର—ଢଗ । ]
Sabuthuñ(thu)
সব জায়গাথেকে
सबसे
সবাছে

ସବୁଠେଇଁ—ଦେ. ସର୍ବନାମ—୧ । ସର୍ବସ୍ଥାନରେ—1. At all places. ୨ । ସବୁ ଦେଶରେ—2. In all countries.
Sabuthein
সব জায়গায় सब जगहमें

ସବୁତ୍—ବୈଦେ. ବି (ଅ ସୁବୁତ)—୧ । ପ୍ରମାଣ—1. Proof. ୨ । କାରଣ—2. Cause. ବୈଦେ. ବିଣ—ପ୍ରମାଣିତ—Proved.
Sabut
সাবুদ सबूत, सुबूत

ସବୁଥି—ଦେ. ସର୍ବନାମ—ସବୁ ବିଷୟ—All things or matters
Sabuthi সব सबविषय

ସବୁଥିକି(କୁ)—ଦେ. ସର୍ବନାମ—୧ । ସବୁ ସ୍ଥାନକୁ—1. To all places. ୨ । ସବୁ ବିଷୟ ପ୍ରତି—2. For all matters. ୩ । ସବୁ କାର୍ଯ୍ୟକୁ—3. To all works.
Sabuthiki(ku)
সব বিষযে
सबकेलिये

ସବୁଥିରୁ—ଦେ. ସର୍ବନାମ—୧ । ସବୁ ବିଷୟରୁ—1. From all matters. ୨ । ସବୁ ବସ୍ତୁରୁ—2. From all things. ୩ । ସବୁ କାର୍ଯ୍ୟରୁ—3. From all works. ୪ । ସର୍ବାପେକ୍ଷା—4. Than all.
Sabuthiru
সবথেকে
सबसे

ସବୁଥିରେ—ଦେ. ସର୍ବନାମ—୧ । ସର୍ବତ୍ର; ସବୁଠାରେ—1. In all places. ୨ । ସବୁ ବିଷୟରେ; ସବୁ କଥାରେ—2. In all matters.
Sabuthire
সবজায়গায়, সবাতে सबमें

ସବୁ ଦିନ—ଦେ. ବି—୧ । ସବୁବେଳ—1. All times. ୨ । ପ୍ରତିଦିନ—2. Everyday. ଦେ. ଅ—୧ । ସବୁ ଦିନରେ; ସବୁ କାଳରେ—1. At all times. ୨ । ପ୍ରତିଦିନ—2. Daily.
Sabu dina
সবসময়
सब दिन

ସବୁନ୍ତି—ଦେ. ସର୍ବନାମ (ସଂ. ସର୍ବ)—୧ । ସମସ୍ତେ—1. All. ୨ । ସବୁଙ୍କି; ସମସ୍ତଙ୍କୁ—2. To all. ଗ୍ରା. ସର୍ବନାମ—ସବୁରି—Of all. (ଉ—ଏହିମନ୍ତ ସବୁନ୍ତି ସୁଖ, ସୁବର୍ଣ୍ଣରେ ଭୂଷି ମୁଖରେ ମୁଖ । ପ୍ରାଚୀ. ରହସ୍ୟମଞ୍ଜରୀ । )
Sabunti
সবাই সমস্তঙ্করু
सबको

ସବୁ ପ୍ରତିକି(କୁ)—ଦେ. ଅ—ସମସ୍ତଙ୍କ ଅପେକ୍ଷା—Of all. (ଉ—କୃଷ୍ଣଙ୍କ ସବୁପ୍ରତିକି ବଡ଼ କାଯ୍ୟ । କୃଷ୍ଣସିଂହ. ମହାଭାରତ. ବନ । )
Sabupratiki(ku)
সবচেয়ে सबसे

ସବୁ ବେଳ—ଦେ. ସର୍ବନାମ (ସଂ. ସର୍ବ ଓ ବେଳା)—ସର୍ବକାଳ—All times.
Sabu bela
সব সময় सब समय

ସବୁବେଳେ—ଦେ. କ୍ରି. ବିଣ—୧ । ସର୍ବଦା—1. Always. ୨ । ସତତ—2. Constantly. ୩ । ଅଧିକାଂଶ ସମୟରେ—3. Very often.
Sabubele
সব সময়ে सब समयमें

ସବୁମତେ—ଦେ. ଅ—ସବୁ ପ୍ରକାରେ—In all respects. (ଉ—ସେ ସବୁ ମତରେ ପୁରୁଷ ବୋଲାଉଛି । କୃଷ୍ଣସିଂହ. ମହାଭାରତ. ସଭା । )
Sabumate
(ସବୁ ମତରେ—ଅପଭ୍ରଂଶ)
সব রকমে सब तरहसे

ସବୁର୍—ବୈଦେ. ବି (ପ୍ରା. ସବର୍; ସବୁର୍)—୧ । ଅପେକ୍ଷା କରିବା—1. Waiting. ୨ । ଧୈର୍ଯ୍ୟ—2. Patience. ୩ । ସହିଷ୍ଣୁତା—3. Fortitude; forbearance. ବିଣ—ଧୈର୍ଯ୍ୟଶୀଳ—Patient. ଅ—୧ । ଧୈର୍ଯ୍ୟ ଧର—1. (Interjection) Be patient ! ୨ । ବନ୍ଦ କର ! ବିରତ ହୁଅ ! - 2 Stay ! stop !
Sabur
সবুব
सबूर

ସବୁର୍ କରିବା—ଦେ. ବି—୧ । ଧୈର୍ଯ୍ୟ ଧରିବା—1. To forbear; to have patience. ୨ । କାଳ ଅପେକ୍ଷା କରିବା—2. To bide one's time. ୩ । ଧୈର୍ଯ୍ୟସହକାରେ ଅପେକ୍ଷା କରିବା—3. To wait patiently. ୪ । ବିରତ ହେବା; କୌଣସି କାର୍ଯ୍ୟ ବନ୍ଦ କରିବା—4. To stop; to cease.
Sabur karibā
সবুব করা
सबूर करना

ସବୁର୍ ଗଛରେ ମେଉଆ ଫଳେ—ଦେ. ଢଗ—ହିନ୍ଦୀର 'ସବୁର୍ କା ଫଳ ମେ ମେବା ଫଲ୍ତା' ପ୍ରବଚନର ଅନୁବାଦ)—ଧୈର୍ଯ୍ୟଶୀଳ ବ୍ୟକ୍ତି ସୁଫଳ ଲାଭ କରେ—A patient man gets a good reward. [ଦ୍ର—ମେଉଆ=ସୁମିଷ୍ଟ କାଳୁଜ ଫଳ । ଧୈର୍ଯ୍ୟ ସହିତ ଅପେକ୍ଷା କଲେ ମେଉଆ ପରି ସୁମିଷ୍ଟ ଫଳ ଲାଭ ହୁଏ । ]
Sabur gachhare meuā phale
সবুরে মেওয়া ফলে
सबुरके पेड़में मेवा फलताहै

ସବୁର୍ ସହିବା—ଦେ. କ୍ରି—କାଳ ବିଳମ୍ବ ସମ୍ଭାଳିବା—To brook delay.
Sabur sahibā
সবুব সহা सबूर करना

ସବୁରାତ୍—ବୈଦେ. ବି (ପ୍ରା. ସବ୍ରାତ୍)—ସବୁର୍ (ଦେଖ)—Sabur (see).
Saburāt
সবুব सबुरा

ସବୁରାତ୍ କରିବା—ଦେ. କ୍ରି—ସବୁର୍ କରିବା (ଦେଖ) Subur karibā. (See)
Saburāt karibā
সবুব করা सबूर करना

ସବୁରାତ୍ ଦେବା—ଦେ. କ୍ରି—ରିହାଇ ଦେବା—To grant remission.
Saburāt debā
রেহাই দেওয়া सबुर देना

ସବୁରାଚ୍ଛ · ଦେ· ବଣ—୧ । ଧୈର୍ଯ୍ୟଶାଳି—1. Patient. ୨ । ଯେ
Saburāti ସମୟ ଦିଏ—2. Granting time. ୩ । ଯେ
(ସବୁରଛିଅ[ୟା]—ଅନ୍ୟରୂପ) ହଠାତ୍ ରାଗିଯାଏ ନାହିଁ--
সবুরে **सबुर करनेवाला** 3. Of a calm temper.

ସବୁରି—ଦେ. ସର୍ବନାମ. ବହୁବଚନ (ଫ. ସର୍ବନାମ 'ସବୁ' ଶବ୍ଦର ଷଷ୍ଠୀ
Saburi ବିଭକ୍ତି)—୧ । ସମସ୍ତଙ୍କର—1. Of all. (ଉ—
সবাকাব, সবাব, সবাবা ସବୁଛି ସବୁରି ଘର, ଘୋଷିଥିବ ଧନ
**सबका, सबकाह** ଗୀତ—ବାଳକୃଷ୍ଣ, ଚକ୍ରାଯୁଧ ସଞ୍ଜିଶ।) ୨। ସବୁ
ବ୍ୟକ୍ତିଙ୍କର—2. Of all persons. (ଉ—ଗଡ଼ବର
ମାଇପ ସବୁରି ଶାଳୀ । ଢଗ ।)

ସବୁରିଆ(ୟା)—ଦେ. ବଣ—ସବୁରାଚ୍ଛ (ଦେଖ)—
Saburiā(yā) Saburāti. (See)
সবুরে, ধৈর্য্যশীল **सबुर करनेवाला**

ସବୁରିଙ୍କି(ଙ୍କୁ)—ଗ୍ରା· ସର୍ବନାମ ସମସ୍ତଙ୍କୁ—
Saburiṅki(ṅku) To all.
সবাইকে **सबको**

ସବୁରି ଠ(ଠା)ଉଁ—ଦେ. ସର୍ବନାମ—୧ ।· ସବୁଠୁଁ (ଦେଖ)—
Saburi ṭha(ṭhā)uṅ 1. Sabuṭhuṅ. (See) ୨। ସମସ୍ତଙ୍କ
(ସବୁଠୁଁ—ଅନ୍ୟରୂପ) ଠାରୁ—2. From all. ୩ । ସମସ୍ତଙ୍କ
সবাব কাছথেকে, সবচেয়ে **सबसे** अपेक्षा; ·ସମସ୍ତଙ୍କ
ମଧ୍ୟରେ—3 Than all; of all.

ସବୁରି ଠା(ଠେ)ଇଁ—ଦେ. ସର୍ବନାମ—୧ । ସବୁଠିଁ (ଦେଖ)—
Saburi ṭhā(ṭhe)iṅ 1 Sabuṭhiṅ, (See) ୨ । ସମସ୍ତଙ୍କ
(ସବୁରିଠାରେ—ଅନ୍ୟରୂପ) ନିକଟରେ—2. At, near or
সব জায়গায়, সবাব কাছে **सबके पासमें** before all
persons

ସବୁରିବା—ଦେ. କ୍ରି—ସବୁର କରିବା (ଦେଖ)
Saburibā Sabur karibā. (See)
(ସବୁର ଦିବା—ଅନ୍ୟରୂପ) সবুব করা **सबुर करना**

ସବୁଲା—ପ୍ରାଦେ· (ଲବଥ) ସର୍ବନାମ—ସମସ୍ତ—
Sabulā All.

ସବୃଦ୍ଧିକ—ସଂ. ବଣ (ସ=ସହ+ବୃଦ୍ଧି+କ; ବୃଦ୍ଧି ସହିତ ବର୍ତ୍ତମାନ;
Sabṛuddhika ସହାର୍ଥ ବହୁବ୍ରୀହି)—୧ । ବୃଦ୍ଧିଯୁକ୍ତ—
1. With increase. ୨ । ସୁଦ ସମେତ—
2. With interest.

ସବୃଷ୍ଟିକ—ସଂ· ବ (ସହାର୍ଥ ବହୁବ୍ରୀହି; ସ+ବୃଷ୍ଟି+କ)—ବୃଷ୍ଟିସହିତ—
Sabṛushṭika Accompanied with rain

ସବେ—ଦେ. ସର୍ବନାମ—ସମସ୍ତେ—
Sabe সবে **सब** All.

ସବେଇ—ଦେ. ବ—ସବାଇ (ଦେଖ)—
Sabei Sabāi, (See)

ସବେକାଦର—ବୈଦେ· (ଅ) ବ—ମୁସଲମାନ ରମ୍‌ଜାନ୍ ମାସର
Sabekādar ସପ୍ତବିଂଶ ଦିନ—The 27th day of the
সবেকাদব month of Ram-jan of the Mahomedan
**सबेकादर** year.

ସବେଗ—ସଂ. ବଣ (ସ=ସହ+ବେଗ)—ବେଗବାନ୍—
Sabega With force; forceful; fleet.
সবেগ **वेगवान** (ସବେଗା—ସ୍ତ୍ରୀ)

ସବେ(ବି,ବ୍ବେ)ବରାତ୍—ବୈଦେ· ବ (ଫା· ସବ୍=ଶବ୍‌ଦ=ରାତି+
Sabe(bi,bbe)barāt ଇ=ର+ବରାତ୍=ମୁକ୍ତିଦାନ;ପାପମୋଚନ,
[ସବେବରାତ୍, ସବିବରାତ, ସବ୍ବେବରାତ୍—ଅନ୍ୟରୂପ] ସବ୍-ଇ-ବରାତ୍=
ପାପ ମୋଚନର ରାତି)—ସ୍ମବେରାତ୍; ମୁସଲମାନଙ୍କ ପର୍ବ-
সবেববাৎ; **सोबरातस** ବିଶେଷ—Name of a Mahomedan festival. [ବି—ଏହି ଦିନ ରାତିରେ
ନମାଜ ପଢ଼ିଲେ ଓ ରୋଜା ରଖିଲେ ଅର୍ଥାତ୍ ଉପବାସ
କଲେ ବହୁ ପୁଣ୍ୟଲାଭ ହୁଏ । ଏହି ଦିନ ପିତୃଲୋକଙ୍କ
ନାମରେ ଦରିଦ୍ରଙ୍କୁ ଖିଇରାତ୍ ଦେବାର ଉପଦେଶ
ମୁସଲମାନ୍ ଶାସ୍ତ୍ରରେ ଅଛି ।]

ସବେଶ(ଷ)—ସଂ. ବଣ.—ସ=[ସହ+ବେଶ (ଷ)]—୧ । ସମୀପସ୍ଥ;
Sabesa(sha) ନିକଟବର୍ତ୍ତୀ—1. Contiguous; near.
୨ । ଭୂଷିତ; ବେଶ-ପରିହିତ—2. Dressed;
accoutred.

ସବୋ—ପ୍ରାଦେ (ପାଟଣା) ସର୍ବ—ସବୁ—All.
Sabo

ସବ୍ଜା (ଜ୍ଜ) ଦେ. ବଣ.—ସବୁଜ (ଦେଖ)—Sabuja (See)
Sabjā (bji)

ସବ୍ଜାନ୍ତା—ଦେ. ବଣ.—ସବ୍‌ଜାନ୍ତା (ଦେଖ)—Sab jān-tā
Sabjān-tā (See)

ସବ୍ଜି—ବୈଦେ. ବ.—(ଫା)—୧ । ଶାଗ ପ୍ରଭୃତି ପନିପରିବା—
Sabji সবজী; **सबजी** 1. Potherbs and kitchen
vegetables. ୨ । ଭାଙ୍ଗ; ସିଦ୍ଧି—2. A drink
made of the leaves of Cannabis Indica.

ସବ୍ବା (ଭ୍ବା)—ଦେ. ବଣ.—ସବା (ଦେଖ)—Sabā (See)
Sabbā (bbhā)

ସବ୍ବା(ଭ୍ବା) ଅଗ—ଦେ. ବ. ବଣ ଓ କ୍ରି. ବଣ—ସବା ଅଗ (ଦେଖ)
Sabbā (bbhā) āga Sabā āga (See)
[ସ୍ବବା (ଭ୍ବା) ପଛ ବ୍ୟବହୃତ)]

ସବ୍ବାଇ—ଦେ. ବ—ସବାଇ (ଦେଖ)—Sabāi (See)
Sabbāi

ସବ୍ବା(ଭ୍ବା)ଖାଇ—ଦେ. ବ. ଓ ବଣ—ସବାଖାଇ (ଦେଖ)
Sabba(bbhā)khāi Sabākhāi (See).

ସବ୍ବା (ଭ୍ବା) ଖିଆ—ଦେ. ବ. ଓ ବଣ—ସବାଖିଆ (ଦେଖ)
Sabbā(bbhā)khiā Sabākhiā (See)

ସବ୍ବା(ଭ୍ବା)ବଡ଼—ଦେ. ବ.—୧ । ସବୁଠାରୁ ଜ୍ୟେଷ୍ଠ—1. Eldest.
Sabbā(bbhā)barḍa ୨ । ବୃହତ୍ତମ—2. Biggest;
largest.

ସବ୍ବା(ଭ୍ବା)ବାଲ—ଦେ· ବ.—ସବାବାଲ (ଦେଖ)
Sabbā(bbhā)bāla Sabā bāla (See)

ସବ୍ବା(ଭ୍ବା)ବାଲୁଅ—ଦେ. ବଣ—ସବାବାଲୁଅ (ଦେଖ)
Sabbā(bbhā)bāluā Sabābāluā (See)

ସବ୍ବା (ଭ୍ବା) ସାନ—ଦେ· ବଣ.—୧ । ସମସ୍ତଙ୍କଠାରୁ ସାନ—
Sabbā (bbhā) sāna 1. Youngest. ୨ । କ୍ଷୁଦ୍ରତମ—
ସବସେଛୋଟ; सबसेछोटा 2. Smallest.
[ସବ୍ବା(ଭ୍ବା)ବଡ଼—ବିପରୀତ]

ସବ୍ଭା—ଦେ, ବଣ·—(ସ. ସର୍ବ)—୧ । ସବୁ—1. All. (ଅନ୍ୟ
Sabbhā ଶବ୍ଦ ପୂର୍ବେ ଯୁକ୍ତ ହୁଏ ।) ୨ । ସମସ୍ତଙ୍କ ଅପେକ୍ଷା—
সবার; सबसे 2. Of all; others all than. (ଯଥା—
ସବ୍ଭା ବଡ଼, ସବା ସାନ, ସବ୍ଭା ଆଗ ।

ସବ୍ୟ—ସ. ବଣ.—(ସୂ ଧାତୁ=ପ୍ରସବ କରିବା, ପ୍ରେରଣ କରିବା +
Sabya କର୍ମ. ଯ)—୧ । ବାମ; ବାଆଁ—1. Left. ୨ ।
ଦକ୍ଷିଣ; ଡାହାଣ—2. Right· [ଦ୍ର—ସବ୍ୟ ଶବ୍ଦର
ବାମ ଓ ଦକ୍ଷିଣ ଦୁଇ ଅର୍ଥ ଥିଲେ ମଧ୍ୟ ସାଧାରଣତଃ ଏହା
ବାମ ଅର୍ଥରେ ବ୍ୟବହୃତ ହୁଏ; (ବିଶ୍ବକୋଷ)] ୩ ।
ପ୍ରତିକୂଳ—3. Contrary· ୪ । ପଶ୍ଚାତ୍—4. Hind;
back; rear; backward. ୫ । ଦକ୍ଷିଣଦିଗସ୍ଥ—
5. Southern. ୬ । ବାମ ଓ ଦକ୍ଷିଣ ଉଭୟ—
6. Both right and left. ୭ । ବାଆଁ କାନ୍ଧରେ
ପଇତାକୁ ପକାଇ କଟୀର ଡାହାଣ ଦିଗକୁ ଲମ୍ବାଇବା
ପ୍ରକାରେ ପଡ଼ିଥିବା (ଯଜ୍ଞୋପବୀତ)—7. (the sacred
thread) Passed over the left shoulder
down to the right side of the waist.
ସ. ବି (+କର୍ତ୍ତ୍ରି. ଯ)—୧ । ବିଷ୍ଣୁ (ବିଶ୍ବକୋଷ)—
1. Bishṇu. ୨ । ଯଜ୍ଞୋପବୀତ (ବିଶ୍ବକୋଷ)—
2. The sacred thread. ୩ । ସୂର୍ଯ୍ୟ ବା ଚନ୍ଦ୍ର
ଗ୍ରହଣର ୧୦ ପ୍ରକାର ଗ୍ରାସ ମଧ୍ୟରୁ ଏକତମ (ବିଶ୍ବକୋଷ)—
3. One of the ten kinds of eclipse.
୪ । ଅଙ୍ଗିର ଋଷିଙ୍କର ଏକ ପୁତ୍ର (ବିଶ୍ବକୋଷ)—
4. A son of a sage Aṅgirā. [ଦ୍ର—ଅଙ୍ଗିର
ଇନ୍ଦ୍ରଙ୍କୁ ପୁତ୍ର ରୂପେ ଲାଭ କରିବାକୁ କାମନା କରି
ଦେବାରାଧନ କରିଥିଲେ । ଇନ୍ଦ୍ର ତାହାଙ୍କ ପୁତ୍ର ରୂପେ ଜନ୍ମ
ଗ୍ରହଣ କରିଥିଲେ । ସେହି ପୁତ୍ର ସବ୍ୟ ନାମରେ ପରିଚିତ ।
ଏ ଋଗ୍‌ବେଦର ୧—୫୧।୫୭ ସୂକ୍ତର ମନ୍ତ୍ରଦ୍ରଷ୍ଟା ଋଷି ।
ବିଶ୍ବକୋଷ ।]

ସବ୍ୟ କର—ସ. ବି (କର୍ମଧା)—୧ । ବାମ ହାତ—1. Left hand.
Sabya kara ୨ । ଉଭୟ ହସ୍ତ—2. Left and right
hands. ୩ । ଦକ୍ଷିଣ ହସ୍ତ—3. Right hand.

ସବ୍ୟ ସାଚୀ—ସ. ବଣ. ପୁଂ (ସବ୍ୟ=ବାମ+ସଚ୍ ଧାତୁ=କ୍ଷେପଣ
Sabya sāchī କରିବା+କର୍ତ୍ତ୍ରି. ଇନ୍; ୧ମା. ୧ବ)—
(ସବ୍ୟସାଚୀ—ଅନ୍ୟରୂପ) ୧ । ଯେଉଁ ବ୍ୟକ୍ତି ବାମ ହସ୍ତ
ଦ୍ୱାରା ଶର ନିକ୍ଷେପ କରେ—1. Able to
shoot an arrow with the left hand.
୨ । ଯେଉଁ ବ୍ୟକ୍ତି ଉଭୟ ହାତ ଦ୍ୱାରା ଶର ନିକ୍ଷେପ
କରିବାରେ ପଟୁ—2. Ambidexterous; using
the left hand with as much facility as
the right hand in shooting. ବି· ପୁଂ—
ଅର୍ଜ୍ଜୁନଙ୍କ ନାମାନ୍ତର—A name of the 3rd
Pāṇḍaba brother. [ଦ୍ର—ଅର୍ଜ୍ଜୁନ ଉଭୟ ହସ୍ତ
ଦ୍ୱାରା ଶର ସନ୍ଧାନ କରି ପାରୁଥିଲେ ।]

ସବ୍ୟା—ସ. ବି. ସ୍ତ୍ରୀ—ଚନ୍ଦ୍ରାବଳୀଙ୍କର ଅନ୍ତରଙ୍ଗ ସଖୀ ବିଶେଷ—
Sabyā A female companion of
Chandrābaḷi· [ଦ୍ର—ଏହି କାଳରେ ସେହି ସ୍ଥଳରେ
ସବ୍ୟା ସଖୀ ପରବେଶ । ଅପ୍ରସିଦ୍ଧ. ବିଦଗ୍ଧ ଚିନ୍ତାମଣି ।]

ସବ୍ୟାଜ—ସ. ବଣ (ସ=ସହ+ବ୍ୟାଜ; ବହୁବ୍ରୀହି)—୧ । ଛଳଯୁକ୍ତ
Sabyāja —1. With pretext; fraudulent.
୨ । ସପ୍ରତିବନ୍ଧକ—2. Having obstacles.

ସବ୍ୟାଧି—ସ. ବଣ (ସହାର୍ଥ ବହୁବ୍ରୀହି)—ବ୍ୟାଧିଯୁକ୍ତ—
Sabyādhi Sick.

ସବ୍ୟେତର—ସ. ବଣ (ସବ୍ୟ+ଇତର; ୫ମୀ ତତ୍)—ଡାହାଣ;
Sabyetara . ଦକ୍ଷିଣ—Right (hand; side),

ସବ୍ୟେଷ୍ଠ(ଷ୍ଠା)—ସଂ. ବି (ସଂ. ସବ୍ୟେ=ବାମ ପାର୍ଶ୍ବରେ+ସ୍ଥା. ଧାତୁ=
Sabyeshṭha(shthā) ରହିବା+ଅ; ପକ୍ଷେ ସବ୍ୟେ+ସ୍ଥା ଧାତୁ+
କର୍ତ୍ତ୍ରି.ଅ;ସବ୍ୟେ+ସ୍ଥା ଧାତୁ+ତୃ;ଅଲୁକ୍ ସମାସ,ଯେ ରଥର
ବାମ ପାଖରେ ଉପବେଶନ କରେ)—୧ । ରଥଚାଳକ;
ସାରଥି—1. Charioteer; a car-driver. ୨ ।
ରଥର ବାମ ପାର୍ଶ୍ବରେ ଉପବିଷ୍ଟ ବୀର—2. A warrior
who sits on the leftside of the car.

ସବ୍ରହ୍ମଚାରୀ—ସ. ବି. ପୁଂ—(ସ=ସମାନ+ବ୍ରହ୍ମଚାରୀ)—ଯେଉଁ ଛାତ୍ର-
Sabrahmachārī ମାନେ ଏକ ଗୁରୁଙ୍କ ନିକଟରେ
ବେଦାଧ୍ୟୟନ କରିବା ପାଇଁ ବ୍ରହ୍ମଚର୍ଯ୍ୟ ଅବଲମ୍ବନ
କରନ୍ତି; ସତୀର୍ଥ; ସହାଧ୍ୟାୟୀ—A fellow student;
pupils of the same preceptor; reading
the Bedas under the same preceptor.

ସବ୍ରାହ୍ମଣ—ସ. ବଣ—(ସହାର୍ଥ ବହୁବ୍ରୀହି) (ସ+ବ୍ରାହ୍ମଣ)—ବ୍ରାହ୍ମଣ
Sabrāhmaṇa ବିଶିଷ୍ଟ—Having Brāhmaṇas

ସବ୍ରୀଡ଼—ସ ବଣ. ପୁଂ—(ସ=ସହ+ବ୍ରୀଡ଼ା; ବହୁବ୍ରୀହି)—ସଲଜ୍ଜ—
Sabrirḍa Modest; shameful; bashful.
(ସବ୍ରୀଡ଼ା—ସ୍ତ୍ରୀ)

ସଭକ୍ତି—ସ. ବଣ (ସହାର୍ଥ ବହୁବ୍ରୀହି; ସ+ଭକ୍ତି)—ଭକ୍ତି ସହିତ
Sabhakti ବର୍ତ୍ତମାନ—Accompanied with devo-
tion. ସଂ. କ୍ରି· ବଣ—ଭକ୍ତି ସହକାରେ—With
(ସଭକ୍ତିକ—ଅନ୍ୟରୂପ) devotion.

ସଭଙ୍ଗ ଶ୍ଳେଷ—ସଂ. ବି.—କାବ୍ୟର ଅଳଙ୍କାର ବିଶେଷ,ଶ୍ଳେଷ (ଦେଖ)-
Sabhaṅga ṡlesha (Rhetoric) Name of a figure
of speech.

ସଭୟ—ସଂ. ବଣ (ସହାର୍ଥ ବହୁବ୍ରୀହି, ସ+ଭୟ)—୧ । ଭୟବିଶିଷ୍ଟ;
Sabhaya ଭୟଯୁକ୍ତ—Attended with fear. ୨ ।
ଭୀତ—2. Fearful; apprehensive.

**ସଭର୍ତ୍ତୃକା**—ସଂ. ବିଣ. ସ୍ତ୍ରୀ—(ସ=ସହ+ଭର୍ତ୍ତୃ+କ+ଆ; ବହୁବ୍ରୀହି) Sabharttrukā ସଧବଟ୍ଟୀ, ସନାଥା; ସଧବା; ଅହ୍ୟ—Having her husband living.

**ସଭଳିତ**—ଦେ. ବିଣ (ସଂ. ସ୍ଖଳିତ)—ସ୍ଖଳିତ—Slipped; displa- Sabhalita ced. [ଭ୍ର—ସଭଳିତ ଚରଣ ହେଲ ସଙ୍ଗେ **ସ୍ଖଳିତ** **ବିଚଳିତ** ପୁଳକ ସ୍ଫୁରଇ । ଭଞ୍ଜ.—ସୁଭଦ୍ରା ପରିଣୟ ]

**ସଭସ୍ମ**—ସଂ. ବିଣ (ସହାର୍ଥ ବହୁବ୍ରୀହି; ସ+ଭସ୍ମନ୍; ୧ମା. ୧ବ) Sabhasma ୧ । ଭସ୍ମ ସହିତ ବର୍ତ୍ତମାନ—1. Having ashes. ୨ । ଭସ୍ମ ଲିପ୍ତାଙ୍ଗ (ଶବ୍ଦକୋଷ, ବୃହତ୍ ସଂହିତା) ଯାହାଙ୍କ ଦେହରେ ପାଉଁଶ ବୋଳା ହୋଇଅଛି—2. Having one's body besmeared with ashes.

**ସଭା**—ସଂ. ବି. ସ୍ତ୍ରୀ—(ସହ+ଭା ଧାତୁ=ଶୋଭା ପାଇବା+ଅଧି କ୍ରୃପ Sabhā +ଅ; ଯେଉଁଠାରେ ସଭ୍ୟମାନେ ଏକତ୍ର ହୋଇ ଶୋଭା ପାଆନ୍ତି)—୧ । କୌଣସି [ସଭା ଶବ୍ଦର ପର୍ଯ୍ୟାୟ— ସମସ୍ୟା, ପରିଷଦ୍, ଗୋଷ୍ଠୀ, ବିଶିଷ୍ଟ ଉଦ୍ଦେଶ୍ୟ ପାଇଁ ଯେଉଁଠାରେ ସମିତି, ସଂସଦ୍, ଆସ୍ଥାନ, ବହୁଲୋକ ସମବେତ ହୁଅନ୍ତି; ପରିଷଦ୍-ସଦସ, ସମାଜ, ପର୍ଷତ୍—Assembly; a meeting; a —ଜଟାଧର] league. ୨ । ଗୋଷ୍ଠୀ; ସମିତି; ସମାଜ—2 Company; society; an assemblage of persons. ୩ । ଜନତା—3. Multitude of men; a gathering of men; crowd; a large number. ୪ । ଗୃହ; ଶାଳା—4. House; room. ୫ । ମିଳନ ସ୍ଥଳ—5. Meeting place. ୬ । ରାଜସଭା; ରାଜଦରବାର—6. A royal court; king's council. [ଦ୍ର—ମନୁ ୭ମ ଅଧ୍ୟାୟ ୧୪୦ ଠାରୁ ୧୪୫ ଶ୍ଳୋକରେ ବର୍ଣ୍ଣିତ ହୋଇ ଅଛି ଯେ, ରାଜା ସୁସଜ୍ଜିତ ଗୃହରେ ଅବସ୍ଥାନପୂର୍ବକ ପ୍ରଜାମାନଙ୍କ ବିଷୟର କାର୍ଯ୍ୟ ସମାଧାନ କରିବେ; ରାଜା ସଭା ଗୃହରେ ପ୍ରବେଶ ପୂର୍ବକ ସେଠାରେ ଉପସ୍ଥିତ ଲୋକମାନଙ୍କ ସହିତ ମଧୁର ସମ୍ଭାଷଣ କରି ସେମାନଙ୍କୁ ପ୍ରଶାନ୍ତ ଦୃଷ୍ଟି ସହିତ ଅବଲୋକନ କରିବେ—ବିଶ୍ୱକୋଷ] ୭ । ଦ୍ୟୂତ (ଶବ୍ଦକୋଷ)—7. Gambling. ୮ । ପ୍ରଜାପତିଙ୍କ କନ୍ୟା (ଅଥର୍ବବେଦ)—8. Name of a daughter of Prajāpati ୯ । ଯେଉଁ ଗୃହରେ ସଭାର ଅଧିବେଶନ ହୁଏ—9 Council chamber; meeting hall (Ap t ୧୦ । ଦ୍ୟୂତଗୃହ—10. A gambling house (Apte). ୧୧ । ଧର୍ମାଧିକରଣ; ବିଚାରାଳୟ—11. A court of justice (Apte). ୧୨ । ରାଜାଙ୍କ ସଙ୍ଗେ ବହୁଲୋକଙ୍କ ସାକ୍ଷାତ୍କାର—12 King's audience; levee. (Apte) ୧୩ । ଯେଉଁ ସ୍ଥାନକୁ ବା ଗୃହକୁ ବହୁଲୋକ ଗମନ କରନ୍ତି—13. Any place much frequented (Apte). ଦେ. ବିଣ. ଓ ବିଣର ବିଣ. —(ସଂ. ସର୍ବ) (ଅନ୍ୟ ଶବ୍ଦ ପୂର୍ବେ ଯୁକ୍ତ) ସବୁ; ସବୁ—All (ଯଥା— ସବ **ସବ** ସଭାଗୀଥି, ସଭାଖାଣ୍ଡି, ସଭାବାଳ) ଦେ. ବି.— ସভା **सभा** ସାମାଜିକ ପ୍ରଶ୍ନ ବା ସମସ୍ୟା ମୀମାଂସାର୍ଥ ଅହୂତ ସମାଜସ୍ଥ ବ୍ୟକ୍ତିମାନଙ୍କର ସମାଜ; ଜାତିଅଣ ସଭା— An assembly called to decide a social question; a gathering of caste people; a social gathering. [ଦ୍ର—ଅଜକାଲି ସାଧାରଣ ସଭା ପରିଚାଳନ ନିମନ୍ତେ ନିର୍ବାଚିତ ବ୍ୟକ୍ତିଙ୍କୁ 'ସଭାପତି' ବା 'ଚେଅର୍‌ମ୍ୟାନ୍' ବା 'ପ୍ରେସିଡେଣ୍ଟ' ବୋଲ-ଯାଏ । ସଭାର କାର୍ଯ୍ୟାବଳୀର ବିବରଣ ଲିପିବଦ୍ଧ କରି ରଖିବା, କାଗଜ ପତ୍ର ରଖିବା ଓ ସଭା ଆହ୍ୱାନ କରିବା ପାଇଁ ଭାରପ୍ରାପ୍ତ ବ୍ୟକ୍ତିଙ୍କୁ ସମ୍ପାଦକ, ବା ସେକ୍ରେଟାରି ବା ମନ୍ତ୍ରୀ ଏବଂ ସଭାରେ ଆଲୋଚିତ ବିଷୟ ସମ୍ବନ୍ଧେ ମତ ଦେବା ଓ ଚର୍ଚ୍ଚା କରିବାର ଅଧିକାରୀ ବ୍ୟକ୍ତିମାନଙ୍କୁ ସଦସ୍ୟ ବା ସଭ୍ୟ ବା ମେମ୍ବର ବୋଲଯାଏ । ଯେଉଁ ସଭାରେ ଅନେକ-ଗୁଡ଼ିଏ ସଭ୍ୟ ଥାଆନ୍ତି, କୌଣସି ଗୁରୁତର ସମସ୍ୟା ସଭାରେ ଆଲୋଚିତ ହେବା ପୂର୍ବରୁ ତତ୍‌ସମ୍ବନ୍ଧେ ତଥ୍ୟାଦି ସଂଗ୍ରହ କରିବା ପାଇଁ ସଭ୍ୟମାନଙ୍କ ମଧ୍ୟରୁ ନିର୍ବାଚିତ କେତେଗୁଡ଼ିଏ ସଭ୍ୟଙ୍କ ଦ୍ୱାରା ଗଠିତ ଦଳକୁ 'ସମିତି ବା କମିଟି', ସବ୍‌କମିଟି, ମାନେଜିଙ୍ଗ୍ କମିଟି, ବା କାର୍ଯ୍ୟକାରୀ ସମିତି, ବା ବୋର୍ଡ୍ ଅଫ୍ ଡାଇରେକ୍ଟର୍ସ ବୋଲଯାଏ । ସଭାପତିଙ୍କୁ ସାହାଯ୍ୟ କରିବା ବା ସଭାପତିଙ୍କ ଅନୁପସ୍ଥିତିରେ କାର୍ଯ୍ୟ ଚଳାଇବା ବ୍ୟକ୍ତିଙ୍କୁ 'ସହକାରୀ ସଭାପତି, ଭାଇସ୍ ଚେଅର୍‌ମ୍ୟାନ୍ ବା ଭାଇସ୍ ପ୍ରେସିଡେଣ୍ଟ୍ ବୋଲଯାଏ । ସଂପାଦକଙ୍କ ସହକାରୀଙ୍କୁ ସହକାରୀ ସଂପାଦକ. ଅତିରିକ୍ତ ସମ୍ପାଦକ ବା ଯୁଗ୍ମ ସମ୍ପାଦକ ବୋଲଯାଏ । ଯେଉଁ ବିଶିଷ୍ଟ ଉଦ୍ଦେଶ୍ୟରେ ସଭାମାନ ଗଠିତ ହୁଏ, ସେହି ସେହି ଉଦ୍ଦେଶ୍ୟର ନାମରେ ସଭାମାନଙ୍କ ନାମକରଣ ହୁଏ । ଯଥା—ହରିସଭା, ଶିକ୍ଷାବର୍ଦ୍ଧିନୀ ସଭା, ଜବାବ ସଂସ୍କାର ସମାଜ, ଟେକ୍‌ସ୍ଟ୍ ବୁକ୍ କମିଟି, ଇନ୍‌ଭେଷ୍ଟମେଣ୍ଟ୍ କମିଟି, ଏଡୁକେଶନ୍ କମିଟି, ସାନିଟେସନ୍ କମିଟି, ମହିଳା ସଭା, ଗୋରକ୍ଷିଣୀ ସଭା ।]

**ସଭା ଅନ୍ତେ**—ଦେ. କ୍ରି. ବିଣ ( ସ. ସବ+ଅନ୍ତ )—ସବା ଶେଷରେ— Sabhā ante At the close; at last. [ ଉ—ସଭା ସবার শেষে ଅନ୍ତେ ପ୍ରକଟ ହେଲ—ଭଞ୍ଜ. କୋଟିବ୍ରହ୍ମାଣ୍ଡ- सबका शेषमें ସୁନ୍ଦରୀ । ]

**ସଭା ଅଗ**—ବୈଦେ. ବି—୧ । ( ସ. ସବ+ଅଗ୍ର )—ସମସ୍ତଙ୍କ ସମ୍ମୁଖସ୍ଥ Sabhā āga ସ୍ଥାନ—1. The front or foremost ( ସଭା ପତ୍ର—ବିପରୀତ ) place of all. ୨ । (ସଭା+ଅଗ୍ର) সবার আগা ସଭା ହେଉଥିବା ସ୍ଥାନର ସମ୍ମୁଖବର୍ତ୍ତୀ ସ୍ଥାନ—2. The सबका आगा front portion of a meeting. ୩ । ସଭ

ଘଟଣାର ଅନ୍ତବର୍ତ୍ତୀ ସମୟ—3. Most recent time; ୪ । ସବୁ ଘଟଣାର ପୂର୍ବବର୍ତ୍ତୀ ସମୟ—4. Earliest time.

ସଭା ଅଗରେ } କି. ଣ ରୁ ଦେ. ବଣ—୧ । ସମସ୍ତଙ୍କ ଅଗ୍ରବର୍ତ୍ତୀ—1. ( a place ) In
ସଭା ଅଗେ } front of all. ୨ । ଅନ୍ୟ ସମସ୍ତ ଘଟଣାର ପୂର୍ବବର୍ତ୍ତୀ—2. Happening before all others. ୩ । ସମସ୍ତଙ୍କ ଅଗ୍ରଜ—3. Eldest of all. ( ଯଥା—ସବାର ଆଗେ ସଭା ଅଗ ଭଲ) ୪ । ସର୍ବପ୍ରଥମ—4. First of all.
सबका आगे

**ସଭା ଆହ୍ୱାନ କରିବା**—ଦେ. କ୍ରି—କୌଣସି ସଭାରେ ଉପସ୍ଥିତ ହେବା
Sabhā āhwāna karibā ପାଇଁ ସଭାର ଅଧିବେଶନର ସମୟ,
সভা আহ্বান করা ସ୍ଥାନ ଓ ସଭାରେ ଆଲୋଚ୍ୟ ବିଷୟର ଉଲ୍ଲେଖ
सभा बुलाना କରି ସଭାର ସଭ୍ୟମାନଙ୍କୁ କିମ୍ବା ସର୍ବସାଧାରଣଙ୍କୁ (ସଭା ଡାକିବା—ଅନୁରୂପ ) ବିଜ୍ଞାପନଦ୍ୱାରା ଡାକିବା—To call a meeting; to convene a meeting.

**ସଭା କରିବା**—ଦେ. କ୍ରି—୧ । କୌଣସି ବିଷୟ ଆଲୋଚନା କରିବା
Sabhā karibā ପାଇଁ ସଭ୍ୟମାନଙ୍କୁ ଆହ୍ୱାନପୂର୍ବକ ଉପସ୍ଥିତ
সভা করা ବ୍ୟକ୍ତିମାନଙ୍କଦ୍ୱାରା ସଭାର କାର୍ଯ୍ୟ ସମାଧାନ କରିବା—
सभा करना 1. To hold a meeting. [ ଉ—ସଭା କଲେ ଲେଖେ ନ ବୋଲିବେ କି ? ଗୋପୀନାଥଙ୍କୁ ଗୋଷ୍ଠୀ ନ କେବେ କି ?—ଗୋପୀଭାଷା । ] ୨ । ସଭା ଆହ୍ୱାନ କରିବା—2. To call a meeting. ୩ । ( ଲକ୍ଷଣାର୍ଥ ) ସମବେତ ହେବା; ଏକତ୍ର ହେବା—3. To be assembled; to flock together. [ ଯଥା—ଗଛରେ କୁଆମାନେ ଆଜି ସଭା କରିଛନ୍ତି । ] ୪ । ସାମାଜିକ ବିଷୟର ବିଚାର ପାଇଁ ଜାତିଆଣ ସଭା ଆହ୍ୱାନ କରିବା ବା ତହିଁର କାର୍ଯ୍ୟ ପରିଚାଳନ କରିବା—
4. To call or hold a caste-gathering.

**ସଭାକାର**—ସଂ. ବି ଓ ବଣ ( ସଭା+କୃ ଧାତୁ+କର୍ତ୍ତୃ. ଅ )—ଯେ ସଭା
Sabhākāra ଆହ୍ୱାନ କରନ୍ତି ବା ସଭାର କର୍ମ କରନ୍ତି—
One who convenes or holds a meeting.

**ସଭାକାନ୍ତ**—ଦେ. ବଣ—ସବାକାନ୍ତ ( ଦେଖ )
Sabhākrānta Sabākrānta ( See )

**ସଭାକାନ୍ତ ଚକଡ଼ା**—ଦେ. ବି—ସବାକ୍ରାନ୍ତ ଚକଡ଼ା ( ଦେଖ )
Sabhākrānta chakaḍā Sabākrānta chakaḍā ( See )

**ସଭାଖାଇ**—ଦେ. ବି. ସ୍ତ୍ରୀ—ସବାଖାଇ ( ଦେଖ )
Sabhākhāi Sabākhāi ( See )
সব খাকী ପ୍ରାଦେ. ( ଗଞ୍ଜାମ ) ବି—ଛତିଖାଇ; କାର୍ତ୍ତିକ ମାସରେ
सर्वभक्षी ହବିଷ୍ୟ ( ନିୟମିତ ଭୋଜନ ) କରୁଥିବା ବ୍ୟକ୍ତିମାନେ କାର୍ତ୍ତିକ ପୂର୍ଣ୍ଣିମା ବାସୀ ଦିନ ହବିଷ୍ୟ ବ୍ରତ ଉଦ୍‌ଯାପନ କରିବା ଉପଲକ୍ଷରେ ବନ୍ଧୁବାନ୍ଧବମାନଙ୍କୁ ନିମନ୍ତ୍ରଣ କରି ସେମାନଙ୍କ ସଙ୍ଗେ ସମସ୍ତ ପ୍ରକାରର ଖାଦ୍ୟ ଖାଉଥିବାରୁ ଉତ୍ସବ—The feast held by persons who break the restricted fasting of the month of Kārttika and take all sorts of eatables on the morrow of the Kārttika full moon day.

**ସଭାଖିଆ(ୟା)**—ଦେ. ବି—ସବାଖିଆ ( ଦେଖ )
Sabhākhiā(yā) Sabākhiā (See)

**ସଭାଗ**—ସଂ. ବଣ ( ସହାର୍ଥ ବହୁବ୍ରୀହି, ସ+ଭାଗ )—ଭାଗବିଶିଷ୍ଟ—
Sabhāga Having portions. ବଣ. ଓ ବି ପୁଂ. (ସଭାଗା—ସ୍ତ୍ରୀ) ( ସଭା+ଗମ ଧାତୁ+କର୍ତ୍ତୃ. ଅ )—ଯେ ସଭାକୁ ଯାଆନ୍ତି—Those who attend a meeting.

**ସଭା ଗୃହ**—ସଂ. ବି—ଯେଉଁ ଘରେ ସଭାର ବୈଠକ ହୁଏ—
Sabhā gṛuha A meeting house.

**ସଭାଗ୍ୟ**—ସଂ. ବଣ. ପୁଂ (ସହାର୍ଥ ବହୁବ୍ରୀହି; ସ+ଭାଗ୍ୟ)—ଭାଗ୍ୟଯୁକ୍ତ—
Sabhāgya Fortunate; lucky.
( ସଭାଗ୍ୟା—ସ୍ତ୍ରୀ )

**ସଭାଘର**—ଦେ. ବି—ସଭା ଗୃହ ( ଦେଖ )
Sabhā ghara Sabhā gṛuha (See)

**ସଭା ଚର**—ସଂ. ବି. ପୁଂ ( ସଭା+ଚର ଧାତୁ+କର୍ତ୍ତୃ. ଅ )—
Sabhā chara ଯେ ସଭାରେ ଉପସ୍ଥିତ ହୁଅନ୍ତି—A person
( ସଭାଚରୀ—ସ୍ତ୍ରୀ ) who attends a meeting.
ବଣ. ପୁଂ—ସଭାରେ ବିଚରଣକାରୀ—Frequenting or attending meetings.

**ସଭାଚାର**—ସଂ ବି (ସଭା+ଆଚାର)—୧। ସମାଜରେ ଆଚରଣୀୟ ରୀତି—
Sabhāchāra 1. The customs of society (Apte).
୨ । ରାଜସଭାର ଶିଷ୍ଟାଚାରାନୁମୋଦିତ ରୀତି—2. Court-manners ( Apte ). ୩ । ସଭା ମଧ୍ୟରେ ଆଚରଣୀୟ ଆଦବକାଇଦା—3. Formalities or etiquette to be observed at a meeting. [ ଯଥା—ଜଣେ କହୁଥିବା ବେଳେ ଅନ୍ୟ ଜଣେ କହିବେ ନାହିଁ; ସଭାପତିଙ୍କ ବିନାନୁମତିରେ କେହି ଉଠି କିଛି କହିବେ ନାହିଁ; କେହି ଶିଷ୍ଟତା ବିରୁଦ୍ଧ ( unparliamentary ) ବାକ୍ୟ ବ୍ୟବହାର କରିବେ ନାହିଁ । ]

**ସଭାଜ୍** ( ଧାତୁ )—ସଂ—୧ । ସେବା କରିବା—1. To serve.
Sabhāj ( root ) ୨ । ଅଭ୍ୟର୍ଥନା କରିବା—2. To welcome. ୩ । ପୂଜା କରିବା—3. To worship.

**ସଭା ଜନ**—ସଂ. ବି.—୧ । (ସଭାରେ ଉପସ୍ଥିତ ଜନ; ଷ. ତ. ଲୋ.)
Sabhā jana ସଭାରେ ଉପସ୍ଥିତ ବ୍ୟକ୍ତିଗଣ—1. Persons attending a meeting. ୨ । (ଷଷ୍ଠୀ ତତ୍) ସଭ୍ୟ, ସଭାସଦ୍—2. Member of an assembly; an associate of a meeting. ୩ । (ସଭାଜ୍ ଧାତୁ +ଭାବ ଅନ)—ଭଦ୍ରଭାବ; ସୌଜନ୍ୟ ପ୍ରକାଶ; ଶିଷ୍ଟତା, 3. Courtesy; rendering of homage; politeness. ୪ । ଅଭ୍ୟର୍ଥନା; ସ୍ୱାଗତ ଓ କୁଶଳ ପ୍ରଶ୍ନାଦିପୂର୍ବକ ସମ୍ଭାଷଣ; ଅଭିବାଦନ—4. The ceremony

of welcoming; congratulation; courteous conversation. [ଦ୍ର—ବନ୍ଧୁଙ୍କ ସମାଗମ ବା ବିଦାୟ ହୋଇ ଯିବା ସମୟରେ ପରସ୍ପରକୁ ଅଭିନନ୍ଦନ କୁଶଳପ୍ରଶ୍ନ ଓ ସ୍ୱାଗତ ସମ୍ଭାଷଣକୁ ସଭାଜନ କୋହଯାଏ। ଏଥିରେ ପର୍ଯ୍ୟା ଅଭିନନ୍ଦନ, ଅପ୍ରଚ୍ଛନ୍ନ—ଶବ୍ଦକୋଷ ।] ୫। ପରିଚର୍ଯ୍ୟା—5. Serving; tending. ୬। ପୂଜନ; 6. Worshipping. ୭। ଆନନ୍ଦନ—7. Delighting; pleasing ବେ. ବି. (ବହୁବଚନ ପୁଂ ଓ ସ୍ତ୍ରୀ) ନାଚ, ଯାତ୍ରା, ତାମସା, ଥିଏଟର, ଅଭିନୟ ଆଦି ଦେଖିବାକୁ ସମାଗତ ଦର୍ଶକଗଣ—(plural) The audience or spectators assembled to witness a performance of dancing, play etc. [ଦ୍ର—ବ୍ୟବହାର ସଭାଜନେ। ଗାଇ ହେଲି ସାଙ୍ଗ—ଗାୟକାଙ୍କ ପଦ] ବିଣ—୧। (ସ=ସହ+ଭାଜନ) ସପାତ୍ର; ପାତ୍ରଯୁକ୍ତ—Having receptacles, pots or utensils ୨। (ସଭାଜ୍ ଧାତୁ+କର୍ତ୍ତୃ. ଅନ)—ପ୍ରୀତିଦାୟକ (ଶବ୍ଦକୋଷ)—2. Giving pleasure; gratifying.

**ସଭା ଡାକିବା**—ଦେ. କ୍ରି.—ସଭା ଅହ୍ୱାନ କରିବା (ଦେଖ) Sabhā ḍākibā Sabhā āhwāna karibā (see) সভা ডাকা सभा बुलाना

**ସଭା ତଳ**—ସଂ. ବି. (୬ଷ୍ଠୀ ତତ୍)—ସଭାର ଅଧିବେଶନ ହେଉଥିବା ସ୍ଥାନ Sabhā tala The place of a meeting. ଦେ. ବି. ସବାଚ୍ଛେ তলা ସମସ୍ତଙ୍କ ଅପେକ୍ଷା ନିମ୍ନ ଦେଶ—Lowest place. सबसे निम्न देश সবাছে নীচ্ ଦେ. ବିଣ—୧। ସମସ୍ତଙ୍କ ଅପେକ୍ଷା ଗତ—1. Lowest ୨। ସମସ୍ତଙ୍କ ଅପେକ୍ଷା କନିଷ୍ଠ—Youngest. सबसेनीचा

**ସଭାଧିବେଶନ**—ସଂ. ବି. (୬ଷ୍ଠୀତତ୍)—ସଭାରେ ବଇଠକ; ସଭାରେ Sabhādhibeśana ଅଲୋଚିତ ବିଷୟରେ ଅଲୋଚନା ହେବା ପାଇଁ ସଭ୍ୟମାନଙ୍କ ସମ୍ମିଳନ—A sitting of an assembly; a meeting.

**ସଭାଧ୍ୟକ୍ଷ**—ସଂ. ବି. ପୁ (୬ଷ୍ଠୀତତ, ସଭା+ଅଧ୍ୟକ୍ଷ)—ସଭାପତି—Sabhādhyaksha President; chairman of a (ସଭାନାୟକ, ସଭାନେତା—ଅନ୍ୟରୂପ) meeting or assembly. (ସଭାଧ୍ୟକ୍ଷା, ସଭାନାୟିକା, ସଭାନେତ୍ରୀ—ସ୍ତ୍ରୀ)

**ସଭା ନିର୍ବାହ କରିବା**—ଦେ କ୍ରି.—(ସଂ. ସଭା ଓ ନିର୍ବାହ)—Sabhā nirbhā karibā ସଭାର କାର୍ଯ୍ୟ ସମାଧାନ କରିବା—সভা নির্বাহ করা To conduct a meeting and सभा समाधा करना bring it to a successful termination.

**ସଭା ନାୟିକା**—ଦେ. ବି. ସ୍ତ୍ରୀ (ଅଧୁନିକ ପ୍ରୟୋଗ)—ସଭାପତିରୂପେ Sabhā nāyikā ବରିତା ବା ସଭାପତି ଅର୍ଥର ଅଧିକାରିଣୀ (ସଭାନେତ୍ରୀ—ଅନ୍ୟରୂପ) ନାରୀ—A lady taking the place of the president of an assembly or a congregation. সভানায়িকা, সভানেত্রী सभा नायिका

**ସଭା ପଛ**—ଦେ. ବିଣ.—ସଂ. ସର୍ବ ଓ ପଶ୍ଚାତ୍)—୧। ସମସ୍ତଙ୍କ ଅପେକ୍ଷା Sabhā pachha ପଶ୍ଚାଦ୍ଭାଗ—1. Hindmost part or সবার পিছনে portion or place. सबसे पिछे [ଦ୍ର—କ୍ୱଚିତ ଅଗେ ଏକତ ହୃତ ସଭା ପଛେ, ଥିଲେ ଗାଧିରାଜ ମଧ୍ୟରେ ରଖି ସ୍ୱଚ୍ଛେ। —କୃଷ୍ଣସିଂହ ମହାଭାରତ. ଶଲ୍ୟ] ୨। ସମସ୍ତଙ୍କ ଅପେକ୍ଷା ପଶ୍ଚାଦ୍‌ବର୍ତ୍ତୀ କାଳ—2. The time which is before all; most ancient সবাচ্ছেপেছু time. ୩। ସଭା ହେଉଥିବା ସ୍ଥାନର ସର୍ବ-ପଶ୍ଚାଦ୍‌ବର୍ତ୍ତୀ सबसे पीछाडो ସ୍ଥାନ—3. The hindmost portion or place in a meeting. ଦେ. ବିଣ—୧। ଅନ୍ୟ সবাপেছু ସମସ୍ତଙ୍କ ପଶ୍ଚାଦ୍‌ବର୍ତ୍ତୀ—1. Hindmost. ୨। ଅନ୍ୟ सबसेपिछला ସମସ୍ତ ଘଟନାର ପରେ ଘଟିବା—2. Latest. (ସର୍ବ ଅଗ—ତପସ୍ୟା) ୩। ଅନ୍ୟ ସମସ୍ତ ଘଟନାର ପୂର୍ବେ ଘଟି [ସଭା ପଛେ, ସଭା ପଛରେ—କ୍ରି. ବିଣରୂପ] ଥିବା—3. Oldest; earliest. ୪। ସବୁ କନିଷ୍ଠ—4. Youngest of all. (ଯଥା—ସଭା ପଛ ଭାଇ) ୫। ଯେ ଅନ୍ୟ ସମସ୍ତଙ୍କ ପରେ ଅସି ପହଞ୍ଚେ—5. Reaching or arriving at a place latest or last of all. ୬। ସମସ୍ତଙ୍କ ଶେଷରେ ଅବସ୍ଥିତ—6. Situated last of all.

**ସଭା ପଣ୍ଡିତ**—ସଂ. ବି—ରାଜସଭାର ବା ଅନ୍ୟ ସଭାର ସଭ୍ୟ ପଣ୍ଡିତ—Sabhā paṇḍita A pandit who is a member of a king's court or of any other assembly.

**ସଭାପତି**—ସଂ. ବି. ପୁଂ ଓ ସ୍ତ୍ରୀ—୧। ସଭାର ପ୍ରଧାନ ପରିଚାଳକ ବା ନାୟକ; Sabhāpati ସମାଜର ନେତା—1. President or chairman of a meeting; the leading person of a meeting. সভাপতি सभापति [ଦ୍ର—ସଭାପତିଙ୍କ ଆଦେଶ ଅନୁସାରେ ସଭାର କାର୍ଯ୍ୟାରମ୍ଭ କରାଯାଏ ଓ ସଭାର ସମସ୍ତ କାର୍ଯ୍ୟର ପରିଚାଳନ ଓ ଉଦ୍‌ଯାପନ କରାଯାଏ। (ସଭାପତି—ସ୍ତ୍ରୀ) ସଭାପତି ପଦର ସ୍ତ୍ରୀଲିଙ୍ଗ ଆକାର ସଭାପତି। ସଂସ୍କୃତ ବ୍ୟାକରଣର "ପତ୍ୟୁର୍ନୋ ଯଜ୍ଞସଂଯୋଗେ" ସୂତ୍ର ଅନୁସାରେ 'ଯଜ୍ଞାନୁଷ୍ଠାନ ଦ୍ୱାରା ସଂଯୁକ୍ତ ହୋଇଥିବା' ଅର୍ଥାତ୍ 'ବୈଦିକ ବିଧି ଦ୍ୱାରା ବିବାହିତା' ଅର୍ଥରେ ପତି ଶବ୍ଦର ସ୍ତ୍ରୀଲିଙ୍ଗ ପତ୍ନୀ ହୁଏ। ଅନ୍ୟତ୍ର ପତିର ସ୍ତ୍ରୀଲିଙ୍ଗରେ ପତି ହୁଏ। 'ଗ୍ରାମପତି' ଶବ୍ଦର ସ୍ତ୍ରୀଲିଙ୍ଗ 'ଗ୍ରାମପତି'।] ୨। ଦ୍ୟୂତ ଗୃହର ସ୍ୱାମୀ (ଶବ୍ଦକୋଷ)—2. The master of a gambling house. [ଦ୍ର—ପୁରୁଷ ସଭାର ନେତା ହେଲେ 'ଅମୁକ ସଭାପତି ହେଲେ' କୋହଯାଏ। କିନ୍ତୁ ସ୍ତ୍ରୀ ଉକ୍ତ ସ୍ଥାନ ଅଧିକାର କଲେ ତାଙ୍କ ପ୍ରତି ସଭାନେତ୍ରୀ, ସଭାଧ୍ୟକ୍ଷା, ସଭାନାୟିକା ଶବ୍ଦମାନ ପ୍ରୟୋଗ [illegible] ସ୍ତ୍ରୀଲିଙ୍ଗରେ ସଭାପତିପଦ ବ୍ୟବହାର [illegible]]

**ସଭାପତିତ୍ୱ**—ସଂ. ବି—୧ । ସଭାରେ ସଭାପତିରୂପେ କାର୍ଯ୍ୟ କରିବାର
Sabhāpatitwa ଅବସ୍ଥା—1. Chairmanship. presidency. ୨ । ସଭାପତିଙ୍କ ପଦ—2. The position or place of the president in a meeting.

**ସଭା ପର୍ବ**—ସଂ. ବି (ସଭା+ପର୍ବନ୍; ମ. ଧ. ଲେ; ସଭାବର୍ଣ୍ଣନାଯୁକ୍ତ
Sabhā parba ପର୍ବ)—ମହାଭାରତର ଅଷ୍ଟାଦଶ ପର୍ବ ମଧ୍ୟରୁ ଦ୍ୱିତୀୟ ପର୍ବ—Name of the second of 18 cantos of the Mahābhārata. [ ଦ୍ର—ଏହି ପର୍ବରେ ପାଣ୍ଡବମାନେ ବନକୁ ଯିବା ପୂର୍ବର ଘଟନାବଳି ବର୍ଣ୍ଣିତ ହୋଇଅଛି ଓ ଏଥିରେ ରାଜା ଯୁଧିଷ୍ଠିରଙ୍କ ବନବାସ ପୂର୍ବର ରାଜ ସଭା ପ୍ରଭୃତିର ବିଷୟ ବର୍ଣ୍ଣିତ ହୋଇଅଛି; ଏହା ଆଦି ପର୍ବର ପରବର୍ତ୍ତୀ ଓ ବନପର୍ବର ପୂର୍ବବର୍ତ୍ତୀ ଅଟେ । ]

**ସଭାପାଳ**—ସଂ. ବି—୧। ଦ୍ୱାରପାଳ; ଦ୍ୱାରରକ୍ଷକ—1. Doorkeeper.
Sabhāpāla (ଦ୍ର—ସଭାପାଳ ଅଗରେ କହନ୍ତେ ଏମାନ, ବେଶ ବଳାଇଲ ସେ ହୋଇ କୋଧ ମନ । କୃଷ୍ଣସିଂହ. ମହାଭାରତ. ଅବ । ) ୨ । ସଭାଗୃହର ରକ୍ଷକ—2. The keeper or guard of the council-chamber.

**ସଭା ପୂଜନ(ପୂଜା)**—ସଂ. ବି—ସଭାରେ ଉପସ୍ଥିତ ବ୍ୟକ୍ତିମାନଙ୍କ ପ୍ରତି
Sabhā pūjana(pūjā) ସମ୍ମାନ ପ୍ରଦର୍ଶନ—Worship or reverence paid to the audience. ଦେ.ବି—ମହାରାଷ୍ଟ୍ରୀୟ ସମାଜରେ ବିବାହ ଉତ୍ସବକୁ ସମାଗତ ବ୍ୟକ୍ତିମାନଙ୍କ ଅଭ୍ୟର୍ଥନାରୂପ ଆଚାର—The custom of welcoming the guests on the occasion of marriage amongst the Marhattas. [ଦ୍ର—ବିବାହର ପୂର୍ବଦିନ ବର ଓ କନ୍ୟା ପକ୍ଷରୁ ଆତ୍ମୀୟ, ସ୍ୱଜନ, ଗ୍ରାମବାସୀ ଓ ବନ୍ଧୁମାନଙ୍କୁ ନିମନ୍ତ୍ରଣ କରାଯାଏ । ବିବାହ ଦିନ ସେମାନେ ଆସି ବିବାହାନୁଷ୍ଠାନ କରାଯାଉଥିବା ସ୍ଥାନରେ ଉପସ୍ଥିତ ହେଲେ ପ୍ରାଙ୍ଗଣରେ ନୃତ୍ୟ ଗୀତାଦି ହୁଏ ଓ ସେମାନଙ୍କୁ ପାନ, ଅତର, ଗୋଲାପପାଣି ଦିଆଯାଏ । ତତ୍ପରେ ସମାଗତ ବ୍ୟକ୍ତିଙ୍କ ଗୋଟିଏ ଲେଖାଏଁ ନଡ଼ିଆ ଓ ବ୍ରାହ୍ମଣଙ୍କୁ ଓ ପୁରୋହିତଙ୍କୁ ଦକ୍ଷିଣା ଦିଆଯାଏ । ଲଗ୍ନ-କଙ୍କଣ ଧାରଣ ପରେ ଏହା ଅନୁଷ୍ଠିତ ହୁଏ । ବଙ୍ଗ ଦେଶରେ 'ମାଲ୍ୟ ଚନ୍ଦନ' ପ୍ରଥା ଓ ଓଡ଼ିଶାରେ 'ଫୁଲ ସଭା' ବା 'ଆଶୀର୍ବାଦ ସଭା' ପରି ମହାରାଷ୍ଟ୍ର ଦେଶରେ ଏହା ଗୋଟିଏ ଅନୁଷ୍ଠାନ ଅଟେ—ବିଶ୍ୱକୋଷ ।]

**ସଭାବ**—ଗ୍ରା. ବି (ସଂ. ସ୍ୱଭାବ)—ସ୍ୱଭାବ; ପ୍ରକୃତି—
Sabhāba ସଭାବ सोभाव Nature.

**ସଭା ବଇ(ଏ)ଠକ(କି)**—ଦେ. ବି—ସଭାର ଅଧିବେଶନ—
Sabhā bai(e)ṭhaka(ki) A sitting or meeting or
ସଭାବୈঠক समाकाबैठक session of an assembly.
(ସଭା ବୈଠକ[କି]—ଅନ୍ୟରୂପ)

**ସଭା ବଡ଼**—ଦେ. ବିଣ (ସଂ. ସର୍ବ ଓ ବୃହତ୍)—ସମସ୍ତଙ୍କ ଅପେକ୍ଷା
Sabhā barḍa ବଡ଼—Biggest; eldest; largest. (ଦ୍ର—
সবাব বড ଦଶରଥଙ୍କର ତିନୋଟି ରାଣୀ, ସଭା ବଡ଼ କୌଶଲ୍ୟା ।
सबसे बड़ा ଗୋଲକଣ୍ଠ. ପିଲଙ୍କ ରାମାୟଣ ।)

**ସଭା ବସା(ସେ)ଇବା**—ଦେ. କ୍ରି—୧ । କୌଣସି ବିଷୟର
Sabhā basā(se)ibā ଆଲୋଚନା କରାଯିବା ପାଇଁ ସଭା
সভা বসান্ ଆହ୍ୱାନ କରି ସଭାର ଅଧିବେଶନ କରାଇବା—
सभा बैठान् 1. To convene and hold a meeting for the discussion of a particular matter. ୨ । କୌଣସି ବିଶିଷ୍ଟ ଉଦ୍ଦେଶ୍ୟ ସାଧନାର୍ଥ ସମାଜ ପ୍ରତିଷ୍ଠିତ କରିବା ।—2. To start a society or association for a particular aim.

**ସଭା ବସିବା**—ଦେ. ବି—ସଭାର ଅଧିବେଶନ—
Sabhā basibā The holding or session of a
সভাবসা सभा बैठना meeting.

**ସଭା ବାଳ (ଇତ୍ୟାଦ)**—ଦେ. ବି—ସବା ବାଳ ଇତ୍ୟାଦ (ଦେଖ)
Sabhā bāla Sabābāla etc. (See)
(ସବାବାଳୁଅ—ବଣ. ପୁ.)

**ସଭା ବାଛ(ସ)ନ୍ଦ**—ଦେ. ବି—କୌଣସି ସଭାରେ ଉପସ୍ଥିତ ହେବା
Sabhā bāchha(sa)nda କିମ୍ବା ସଭାରେ ଯୋଗ ଦେବା ପାଇଁ
সভা বারণ କୌଣସି ଅପରାଧୀ ବା ସଭାହାର ଦଣ୍ଡିତ ବ୍ୟକ୍ତିକୁ
सभा बारन ସଭାପକ୍ଷରୁ କରାଯିବା ନିଷେଧ—Exclusion of a person from a meeting; excommunication of an offending member from a meeting.

**ସଭାଗୀ**—ସଂ. ବି. ପୁ.—ଦ୍ୟୂତଗୃହ ରକ୍ଷକ (ବିଶ୍ୱକୋଷ)—
Sabhābi The keeper of gambling house.

**ସଭା ଭଙ୍ଗ**—ସଂ. ବି (୬ଷ୍ଠୀ ତତ୍)—ସଭାର କାର୍ଯ୍ୟ ଶେଷ ବା ସ୍ଥଗିତ
Sabhā bhaṅga ହେବା ପରେ ସଭାଜନମାନଙ୍କର ସଭାଗୃହ ତ୍ୟାଗ—Dissolution or closing of a meeting.

**ସଭା ଭାଗେ**—ଦେ. ବି—ସଭା ସମକ୍ଷରେ—Before a meeting.
Sabhā bhāge (ଦ୍ର—କୋହିଲେ ତୁ ହାରିଲୁ ବୋଲି ସଭା
সভার সামনে समाके सामने ଭାଗେ । କୃଷ୍ଣସିଂହ. ମହାଭାରତ ବନ ।]

**ସଭା ଭାଙ୍ଗିବା**—ଦେ. କ୍ରି—୧ । ସଭାର କାର୍ଯ୍ୟ ସମାପ୍ତ ନ ହେଉଣୁ
Sabhā bhāṅgibā ତାହାକୁ ସ୍ଥଗିତ କରିବା—1. To
সভা ভাঙ্গা dissolve a meeting before the con-
सभा भागना clusion of its proceeding. ୨ । ସଭାର କାର୍ଯ୍ୟ ସମାପ୍ତ ହେବା ପରେ ସଭାକୁ ସ୍ଥଗିତ କରିବା—

2. To bring the proceedings of a meeting to conclusion. ଦେ. ବି—ସଭାଭଙ୍ଗ—Dissolution or closing of a meeting. [ଦ୍ର—ସଭାର କାର୍ଯ୍ୟ କାର୍ଯ୍ୟସୂଚୀ ସମାପ୍ତ ହେଲେ ଫଳତଃ ସଭାପତିଙ୍କ ଆଦେଶରେ ସଭାଭଙ୍ଗ ହୁଏ । କିମ୍ବା ସଭାର କାର୍ଯ୍ୟ କର୍ତ୍ତୃପକ୍ଷଙ୍କ ଦ୍ୱାରା ଅପ୍ରତ୍ୟାଶିତ ବା ଅନାବଶ୍ୟକ ବିବେଚିତ ହେଲେ ସଭାର କାର୍ଯ୍ୟ ନ ସରୁଣୁ କର୍ତ୍ତୃପକ୍ଷଙ୍କ ଦ୍ୱାରା ସ୍ଥଗିତ କରାଯାଏ କିମ୍ବା ସଭାରେ ଆଲୋଚ୍ୟ ବା ଆଲୋଚନୀୟ ବିଷୟ ମୀମାଂସିତ ବା ଆଲୋଚିତ ନ ହେଉଣୁ ତହିଁର ବିରୋଧୀ ପକ୍ଷଙ୍କ ଦ୍ୱାରା ଗୋଳମାଳ ଘଟି ହୋଇ ସଭା ଭଙ୍ଗ ହୁଏ।]

**ସଭା ଭୂଷଣ**—ସଂ. ବିଣ (୬ଷ୍ଠୀ ତତ୍)—ସଭା ମଣ୍ଡନ (ଦେଖ)
Sabhā bhūshana — Sabhā mandana (See)

**ସଭା ମଅଳଣ(ନ)**—ଗ୍ରା. ବି—(ସଂ. ସଭା+ମଳିନ)—ସଭା ଭଙ୍ଗ;
Sabhā ma-aļana(na) — ସଭାର କାର୍ଯ୍ୟର ସମାପ୍ତି—The
ସভা ভঙ্গ — termination of the procedings of a
**सभा भङ्ग** — meeting.

**ସଭା ମଅ(ଉ)ଳା(ଳେ)ଇବା**—ଦେ. କି—ସଭାର କାର୍ଯ୍ୟ ସାଙ୍ଗକରିବା—
Sabhā ma-a(u)ļā(ļe)ibā — To terminate the pro-
সভা ভঙ্গকরা **सभाभङ्ग करना** — ceedings of a meeting.

**ସଭା ମଅ(ଉ)ଳିବା**—ଦେ. କ୍ରି—ସଭାର କାର୍ଯ୍ୟ ସମ୍ପାଦନ ହେବା ପରେ
Sabhā ma-a(u)ļibā — ଅଧିବେଶନ ସ୍ଥଗିତ ହେବା—The
সভা ভঙ্গ **सभाभङ्ग** — termination or close of the proceedings of a meeting.

**ସଭା ମଣ୍ଡନ**—ସଂ. ବିଣ. ପୁଂ—(ସଭାର ମଣ୍ଡନ=ଭୂଷଣ)—୧ । ସଭାରେ
Sabhā mandana — ନିଜର ଉପସ୍ଥିତି ଦ୍ୱାରା ବା ନିଜର ପ୍ରତିଭା
(ସଭାମଣ୍ଡନା—ସ୍ତ୍ରୀ) — ବା ଗୁଣପଣ ଦେଖାଇବା ଦ୍ୱାରା ଯେଉଁ ବ୍ୟକ୍ତି ସଭାର ଅଳଙ୍କାର ରୂପେ ସଭାଜନମାନଙ୍କ ଦ୍ୱାରା ବିବେଚିତ ହୁଅନ୍ତି—(a person) Who by his presence or display of ability is considered as the ornament of an assemblage. ୨ । ପଣ୍ଡିତ, ନର୍ତ୍ତକ, ଗାୟକ ଆଦିଙ୍କୁ ରାଜାମାନଙ୍କ ପ୍ରଦତ୍ତ ଉପାଧି ବିଶେଷ—2. A title given by Rājās to pandits, dancers and singers. ସଂ. ବି.—(୬ଷ୍ଠୀତତ୍)—ସଭା ଗୃହକୁ ସଜାଇବା; ସଭା ସଜ୍ଜା—The
[ସଭାମଣ୍ଡଣୀ—ଦେଶଜ. ବି. ରୂପ] — furnishing of the hall or place of a meeting.

**ସଭାମଣ୍ଡନ କରିବା**—ଦେ. କି—୧ । ସଭାରେ ଉପସ୍ଥିତ ହୋଇ କିମ୍ବା
Sabhā mandana karibā — ନିଜର ଗୁଣପଣ ଦେଖାଇ ସଭା
(ସଭାମଣ୍ଡିବା—ଅନ୍ୟରୂପ) — ଜନଙ୍କୁ ମୋହିତ କରିବା—1. To
**সভা মণ্ডনকরা** — adorn or grace a meeting by one's
**सभामण्डन करना** — presence or by one's feats and accomplishments. ୨ । ସଭା ଗୃହକୁ ସାଜସଜ୍ଜା ଦ୍ୱାରା ଭୂଷିତ କରିବା—2. To furnish the place or hall of a meeting.

**ସଭା ମସିଣା**—ଦେ. ବି.—ସଭାରେ ବହୁତ ଲୋକଙ୍କ ବସିବା ପାଇଁ
Sabhā masinā — ବ୍ୟବହୃତ ଲମ୍ବ ମସିଣା ବା ସପ—Long
সভাৰ সপ — mats which are spread to seat many
**सभा बिछौना** — persons (gathered for a meeting or for other occasions).

**ସଭାରମ୍ଭ**—ସଂ. ବି—(୬ଷ୍ଠୀ ତତ୍)—ସଭାର ଅଧିବେଶନର ବା କାର୍ଯ୍ୟର
Sabhārambha — ଆରମ୍ଭ—The opening of the proceedings of a meeting.

**ସଭାର କାର୍ଯ୍ୟ(କର୍ମ)**—ଦେ. ବିଣ—ସଭାରେ ଆଲୋଚନୀୟ ବିଷୟର
Sabhāra karjja (karma) — ଆଲୋଚନା ଆଦି କର୍ମ—
(ସଭାର କାର୍ଯ୍ୟାବଳୀ—ଅନ୍ୟରୂପ) — The proceedings of a
সভাৰ কাৰ্য্য **सभाकाकार्य्य** — meeting.

**ସଭାର କାର୍ଯ୍ୟ ବିବରଣ**—ଦେ. ବି.—ସଭାର ଅଧିବେଶନରେ ଯାହା
Sabhāra karjya bibarana — ଯାହା ଆଲୋଚନା ବା ପ୍ରସ୍ତାବାଦି
ସଭାର କାର୍ଯ୍ୟାବଳୀ ବିବରଣ / ସଭାର ପ୍ରୋସିଡ଼ିଙ୍ଗ୍ }—ଅନ୍ୟରୂପ, — ହୁଏ, ତହିଁର ବିବରଣ (ଏହା ଗୋଟିଏ
সভাৰ কাৰ্য্য বিবৰণ — ଖାତାରେ ବା ପୁସ୍ତକରେ ଲିପିବଦ୍ଧ ହୋଇ
**सभाकाकार्य्य विवरण** — ରଖା ହୁଏ)—The minutes or record of the proceedings of a meeting; the proceedings of a meeting.

**ସଭାର କାର୍ଯ୍ୟ ବିବରଣୀ**—ଦେ. ବି—ଯେଉଁ ପୁସ୍ତକରେ ସଭାର କାର୍ଯ୍ୟ
Sabhāra kārjya bibaranī — ବିବରଣ ଲେଖା ହୁଏ
সভাৰ কাৰ্য্য বিবৰণী — (ଏଥିରେ ସଭାପତିଙ୍କର ଓ ସମ୍ପାଦକଙ୍କର
**सभाकी कार्य्य विवरणी** — ସ୍ୱାକ୍ଷର ରହେ)—The proceedings-book of a meeting.

ସଭାର କାର୍ଯ୍ୟାବଳୀ ବିବରଣୀ, ସଭାର କାର୍ଯ୍ୟ-ବିବରଣ ପୁସ୍ତକ, ସଭାର ପ୍ରୋସିଡ଼ିଙ୍ଗ୍ ବହି } ଅନ୍ୟରୂପ

**ସଭାର କାର୍ଯ୍ୟାରମ୍ଭ**—ଦେ. ବି—ସଭାରମ୍ଭ (ଦେଖ)
Sabhāra kārjyārambha — Sabhārambha (See)
সভাৰ কাৰ্য্যাৰম্ভ **सभाका कार्य्यारम्भ**

**ସଭାର କାର୍ଯ୍ୟ ବିବରଣୀ ଗୃହୀତ ହେବା**—ଦେ. କ୍ରି—ପୂର୍ବବର୍ତ୍ତୀ
Sabhāra kārjya bibaranī — ଅଧିବେଶନର ଲିପିବଦ୍ଧ କାର୍ଯ୍ୟା-
gruhita hebā — ବଳୀର ବିବରଣ ପରବର୍ତ୍ତୀ ଅଧିବେଶନରେ
(ସଭାର ପ୍ରୋସିଡ଼ିଙ୍ଗ୍ ଗୃହୀତ ହେବା—ଅନ୍ୟରୂପ) — ଉପସ୍ଥିତ ସଦସ୍ୟ ନିକ
সভাৰ কাৰ্য্য বিবৰণী গৃহীত হওয়া — ଟରେ ପଠିତ ହୋଇ ତାହା
**सभाकी कार्य्य विवरणी गृहीत होना** — ଠିକ୍ ଥିବା ସ୍ୱୀକୃତ ହେବା—The proceedings of a meeting being read and confirmed; the confirmation of the proceedings of a meeting at the next meeting after the record thereof is read at the latter meeting.

**ସଭାର ନିର୍ଦ୍ଧାରଣ** —ଦେ. ବି—ସଭାର ଅଧିବେଶନରେ ଉପସ୍ଥିତ ସଭ୍ୟ-
Sabhāra nirddhāraṇa ମାନଙ୍କଦ୍ୱାରା ମଞ୍ଜୁର କରାଯାଇଥିବା
ସভার নির্দ্ধারণ ପ୍ରସ୍ତାବ—The resolutions passed at
सभाका निर्द्धारण a meeting.

**ସଭାର ପ୍ରସ୍ତାବ**—ଦେ. ବି.—ସଭାର ଅଧିବେଶନରେ ସଭ୍ୟମାନଙ୍କ
Sabhāra prastāba ଆଲୋଚନା ଓ ବିଚାରାର୍ଥ ଉପସ୍ଥାପିତ
সভার প্রস্তাব ବିଷୟ—Proposals brought forward
सभाका प्रस्ताव for discussion at a meeting.

[ଦ୍ର—ସଭାରେ ପ୍ରଥମେ ଜଣେ ସଭ୍ୟ (ପ୍ରସ୍ତାବକ) ସଭ୍ୟ-ମାନଙ୍କ ନିକଟରେ ଗୋଟିଏ ପ୍ରସ୍ତାବ ଅବଗତ କରନ୍ତି । ଉକ୍ତ ପ୍ରସ୍ତାବକୁ ଆଉ ଜଣେ ସଭ୍ୟ (ଅନୁମୋଦକ) ଅନୁମୋଦନ କରନ୍ତି ଏବଂ ବିଷୟର ଗୁରୁତ୍ୱ ବିବେଚନାରେ ଉକ୍ତ ପ୍ରସ୍ତାବକୁ ଅନ୍ୟ ଜଣେ ବା ଅଧିକ ବ୍ୟକ୍ତି ( ସମର୍ଥକ ) ସମର୍ଥନ କରନ୍ତି । ଯଦି କୌଣସି ସଭ୍ୟ ଉକ୍ତ ପ୍ରସ୍ତାବ ପରିବର୍ତ୍ତେ ଅନ୍ୟ କୌଣସି ଶୋଧିତ ପ୍ରସ୍ତାବ ଉପସ୍ଥାପିତ କରନ୍ତି, ତାହା ଯଥାକ୍ରମେ ପ୍ରସ୍ତାବିତ, ଅନୁମୋଦିତ ଓ ସମର୍ଥିତ ହେବାପରେ ଉକ୍ତ ସଂଶୋଧିତ ଓ ମୂଳ ପ୍ରସ୍ତାବ ସମ୍ବନ୍ଧରେ ସଭାସଦମାନଙ୍କ ମତ ସଂଗୃହୀତ ହୁଏ ଓ ଯେଉଁ ପ୍ରସ୍ତାବ ସର୍ବସମ୍ମତିକ୍ରମେ ବା ଅଧିକାଂଶ ସଭ୍ୟଙ୍କ ସମ୍ମତିକ୍ରମେ ଗୃହୀତ ହୁଏ, ତାହା ସଭାର ନିର୍ଦ୍ଧାରଣ ରୂପେ ବିବେଚିତ ହୋଇ ଗୃହୀତ ହୁଏ; ଅନ୍ୟଥା ଉକ୍ତ ପ୍ରସ୍ତାବ ନାମଞ୍ଜୁର ହୁଏ । ବିବାଦ ସ୍ଥଳରେ ଉପସ୍ଥିତ ସଭ୍ୟମାନଙ୍କ ଭୋଟ୍ ଗଣତି କରାଯାଇ ଅଧିକାଂଶ ସଭ୍ୟଙ୍କ ସମର୍ଥିତ ପ୍ରସ୍ତାବ ସଭାର ନିର୍ଦ୍ଧାରଣ ରୂପେ ଗୃହୀତ ହୁଏ ।]

**ସଭାଶେଷେ**—ଦେ. କ୍ରି. ବିଣ—ସର୍ବଶେଷରେ—At the end of
Sabhā śeshe every thing; at last.
(ସଭାଶେଷରେ—ଅନ୍ୟରୂପ)
সবশেষে, সবারশেষে सबकेशेषमें

**ସଭାସଦ୍**—ସ ବି.—(ସଭା+ସଦ୍ ଧାତୁ=ସ୍ଥିତି; ବସିବା+କର୍ତ୍ତି କ୍ୱିପ୍)
Sabhāsad ୧ । ସଭାର କାର୍ଯ୍ୟରେ ଯେ ଯୋଗଦେବା ନିମନ୍ତେ
(ସଭାସଦ—ଦେ. ରୂପ) ଯାଆନ୍ତି; ସଭ୍ୟ—1. Member of an assembly or society, ୨ । ଦର୍ଶକ; ସଭା ଆଦି ଦେଖିବା ପାଇଁ ଆସିଥିବା ଲୋକମାନେ—2. The audience or spectators of a gathering. ୩ । ବିଚାରସଭାରେ ବିଚାର କାର୍ଯ୍ୟରେ ରାଜାଙ୍କୁ ସାହାଯ୍ୟ କରିବା ପାଇଁ ରାଜାଙ୍କ ମନୋନୀତ ଧର୍ମଶାସ୍ତ୍ରଜ୍ଞ, ବେଦଜ୍ଞ କୁଳୀନ, ସତ୍ୟବାଦୀ, ଶତ୍ରୁମିତ୍ରଙ୍କ ପ୍ରତି ସମଜ୍ଞାନବିଶିଷ୍ଟ, ବିଦ୍ୱାନ୍ ବ୍ୟକ୍ତିଗଣ—3. A body of persons selected by a king to help him in his judicial acts. (ଦ୍ର—ଏମାନଙ୍କ ସଂଖ୍ୟା ୩, ୫ ବା ୭ ହେବ୍—ବୃଷ୍ଟିକୋଷଧୃତ — ଯାଜ୍ଞବଲ୍କ୍ୟ, ମିତାକ୍ଷରା, ବୃହସ୍ପତି । ) ବିଣ—୧ । ସଭାକୁ ଯାଉଥିବା (ବ୍ୟକ୍ତି)—Going to join a meeting. ୨ । ବିଜ୍ଞ-2. Wise.

**ସଭାସଦ**—ଦେ. ବି.—(ସ. ସଭାସଦ୍)—ସଭାସଦ୍ (ଦେଖ)
Sabhāsada Sabhāsad (see)

**ସଭା ସମିତି**—ସ· ବି.—(ଏକାର୍ଥକ ସନ୍ଧିତ; ଅଧୁନାତ ପ୍ରୟୋଗ)—
Sabhā samiti ୧ । ସଭା ଆଦି—1 Meetings. ୨ । ଛୋଟ ଓ ବଡ଼ ସଭାମାନ—2 Big and small meetings; assemblies and committees.

**ସଭା ସାନ**—ଦେ·ବିଣ—ସମସ୍ତଙ୍କଠାରୁ ଆକାରରେ,ବୟସରେ ବା ପଦରେ
Sabhā sāna ଆଦିରେ ଛୋଟ—Youngest; smallest;
সবার ছোট lesser (in point of shape, age, posi-
सबसे छोटा tion etc).

**ସଭାସୀନ**—ସ. ବିଣ. ତ୍ରି—(ସଭା+ଆସୀନ; ୭ମୀ ତତ୍)—ସଭା
Sabhāsīna ସ୍ଥଳରେ ଉପବିଷ୍ଟ—Present at a meet-
(ସଭାସୀନା—ସ୍ତ୍ରୀ) ing; attending a meeting; seated at a meeting.

**ସଭାସ୍ତାର**—ସ. ବି. ପୁଂ—(ସଭା+ସ୍ତୃ ଧାତୁ=ଆଚ୍ଛାଦନ କରିବା+
Sabhā stāra କର୍ତ୍ତି ଅ)—ସଭ୍ୟ; ସଭାସଦ୍—A member of an assembly.

**ସଭା ସ୍ଥଳ (ସ୍ଥାନ)** ସ·ବି— (୬ଷ୍ଠୀ ତତ୍)—ଯେଉଁ ଯାଗାରେ ସଭା ହୁଏ—
Sabhā sthala(sthāna) The place of a meeting; the venue of a meeting.

**ସଭିଏ (ଏଁ, ୟେ, ୟେଁ)** ଦେ. ସର୍ବନାମ—( ସ. ସର୍ବ; ବ୍ୟକ୍ତିବାଚକ)
Sabhie(eñ, ye, yeñ) ସମସ୍ତେ—A . [ଦ୍ର—ଯେଉଁ ଦେଶ
সবাই, সব্বাই ଯେଉଁ ବହୁଯୁକ୍ତ ହୁଏ, ସେହି ନାମ ତାକୁ
सबकोइ ଦିଅନ୍ତି ସଭିଏଁ—କୃଷ୍ଣସିଂହ ମହାଭାରତ ଆଦି; ନମାର ଘରକୁ ଢାଇ ଗୋ ! ନରକାସୀ ଯେତେ ଅଛନ୍ତି ସଂସାରେ, ସଭିଏ ଉଭିଣୀ ଭାଇ ଗୋ—ବାଳକୃଷ୍ଣ ଫୁଲ ବଉଳ-ବେଣୀ ]

**ସଭି(ଭୀ)କ**—ସଂ· ବି. ପୁ.—(ସଭା+ଇକ)—୧ । ଦ୍ୟୂତ ସଭାପତି;
Sabhi(bhī)ka ଜୁଆ ଖେଳର ସଭାପତି—1. The president of a council of gamblers; the chief man in a company of gamblers; the chief of gamesters. ୨ । ଦ୍ୟୂତକ୍ରୀଡ଼ା ଗୃହର ଅଧ୍ୟକ୍ଷ—The keeper of a gaming house. [ଦ୍ର—ନାରଦ ଓ ଯାଜ୍ଞବଲ୍କ୍ୟ ସଭିକଙ୍କ କର୍ତ୍ତବ୍ୟ ଓ ତତ୍-ସମ୍ବନ୍ଧେ ରାଜାଙ୍କ କର୍ତ୍ତବ୍ୟ ନିମ୍ନଲିଖିତରୂପେ ନିର୍ଦ୍ଦେଶକର ଅଛନ୍ତି (ଯାଜ୍ଞବଲ୍କ୍ୟ ୧୭।୧୯୯-୨୦୧, ମିତାକ୍ଷରା ୨୩୫-୨୩୭):—ସଭିକ ଜୁଆଖେଳସଭାରେ ଅଧ୍ୟକ୍ଷତା କରିବେ ଓ ପଶାକାଠି ଓ ଜୁଆଖେଳର ଅନ୍ୟାନ୍ୟ ଉପକରଣ ଖେଳାଳିଙ୍କୁ ଯୋଗାଇବେ । ଖେଳର ଆୟ ୧୦୦ ମୁଦ୍ରାରୁ ଅଧିକ ହେଲେ ସଭିକ ଶତକଡ଼ା ୫, ଓ ୧୦୦ରୁ କମ୍

ହେଲେ ଶତକଡ଼ା ୧୦ ପାଇବେ । ରାଜାଙ୍କ ଅଶ୍ରୟରେ କରାସଦ ରହିବା ପାଇଁ ସଭିକ ତାଙ୍କ ଅପୂର ନିର୍ଦ୍ଧାରିତ ଅଂଶ ରାଜାଙ୍କୁ ଶୁଳ୍କ ଦେବେ । ରାଜା ଛକ୍ତ ଶୁଳ୍କ ପ୍ରାପ୍ତହେଲେ ହାରିଯାଇ ଥିବା ଖେଳାଳିଙ୍କଠାରୁ ପଣ ରଖା ଯାଇଥିବା ଧନ ସୁଲଭାସ୍ତ ବଧାନାନୁସାରେ ଅଦାୟ କରାଇ ଦେବେ । ଶୁଳ୍କ ନ ପାଇଲେ ରାଜା ଏହା କରିବେ ନାହିଁ । ଖେଳର ଦର୍ଶକମାନେ ଜୁଆ ଖେଳ ବାବଦ୍ ଝଗଡ଼ା ପାଇଁ ଉପସ୍ଥିତ ମକଦ୍ଦମାରେ ସାକ୍ଷୀ ଦେବେ । ଯେଉଁ ଖେଳାଳି ଅବୈଧ ଉପାୟ ଅବଲମ୍ବନ କରେ ତାଙ୍କୁ ରାଜା ତତ୍‌କ୍ଷଣାତ୍‌ରେ ଦଣ୍ଡ ଦେବେ ଓ ନିର୍ବାସିତ କରିବେ । ଜୁଆଖେଳ ଅଡ୍ଡାରେ ଅସଦାଚାରୀମାନଙ୍କୁ ଗିରଫ୍ କରିବା ପାଇଁ ରାଜା ଉପଯୁକ୍ତ ରାଜକର୍ମଚାରୀ ନିଯୁକ୍ତ କରିବେ । କିନ୍ତୁ ଜୁଆଡ଼ୀମାନଙ୍କୁ ରାଜା ଅଦୌ ପ୍ରଶ୍ରୟ ଦେବେ ନାହିଁ ଓ ଗୁରୁତର ଦଣ୍ଡ ଦେବେ ବୋଲି ମନୁ କହିଅଛନ୍ତି (୯ । ୨୨୧—୨୨୯) । ସମାଜ୍ଞୀଙ୍କ ତଳେ ଟୀକା ଦେଖ)]

**ସଭିଙ୍କ**—ଦେ. ସର୍ବ (୬ଷ୍ଠୀ ବିଭକ୍ତି)—ସମସ୍ତଙ୍କର—
Sabhiṅka Of all.
(ସଭିଙ୍କର—ଅନ୍ୟରୂପ) ସକଳେର ସବକା

**ସଭିଙ୍କି(ଙ୍କୁ)**—ଦେ. ସର୍ବ (୨ୟା ବିଭକ୍ତି)—୧ । ସମସ୍ତଙ୍କୁ—To all.
Sabbiṅki(ṅku) ୨ । ସମସ୍ତଙ୍କ ଅପେକ୍ଷା—2. Of all; than
ସକଲକେ all others. [ଉ—ଅଧିକ ସେ ସଭିଙ୍କି ବଳ
ସବକୋ ପ୍ରାକର୍ମରେ । କୃଷ୍ଣସିଂହ ମହାଭାରତ ଅଦ ।]

**ସଭିୟେ**—ଦେ. ସର୍ବ (ସଂ. ସର୍ବେ)—ସମସ୍ତେ—
Sabhiye All.
ସକଲେ [ଉ—ଅମୃତ ବୃଷ୍ଟି ହେଲା ପ୍ରାୟେ, ମଣିଲେ ସୁହୃଦ
ସବକୋଇ ସଭିୟେ । ପ୍ରାଚୀ, ପୂର୍ଣ୍ଣିତମ ଚନ୍ଦ୍ରୋଦୟ ।]

**ସଭୀକ**—ସଂ. ବି. ପୁଂ (ସଭା+ଈ; କ)—ସଭିକ (ଦେଖ)
Sabhīka Sabhika (See)

**ସଭୁରି**—ଦେ. ସର୍ବନାମ (ସଂ. ସର୍ବସ୍ୟ; ୬ଷ୍ଠୀ ଉତ୍)—
Sabhuri ସଭୁର; ସମସ୍ତଙ୍କର—Of all.
ସବାବ ସବକା

**ସଭେ**—ପ୍ରାଦେ. (ସମ୍ବଲପୁର) ସର୍ବନାମ (ସଂ. ସର୍ବେ)—ସମସ୍ତେ; ସଭିଏଁ-
Sabhe All.

**ସଭୋଚିତ**—ସଂ. ବିଣ (୭ମୀ ତତ୍)—ସଭାର ଉପଯୁକ୍ତ—
Sabhochita Fit for an assembly.
ସଂ. ବି. ପୁଂ—ପଣ୍ଡିତ (ଶବ୍ଦକୋଷ)—A learned person.

**ସଭ୍ୟ**—ସଂ. ବିଣ. ପୁଂ (ସଭା+ସାଧୁ ଅର୍ଥରେ. ଯ)—୧ । ସାମାଜିକ—
Sabhya 1. Sociable; social. ୨ । ସଭାରେ ଯୋଗ
(ସଭ୍ୟା—ସ୍ତ୍ରୀ) ଦେବା (ବ୍ୟକ୍ତି)—2. Attending a meeting ୩ । ସାଧୁଶୀଳ—3. Of good or honest nature. ୪ । ଭବ୍ୟ; ଶିଷ୍ଟ; ଭଦ୍ର; ସୁଜନ—4. Gentle; polite; courteous. ୫ । ଅଧୁନାତନ ମାର୍ଜିତ ରୁଚିରେ ସୁଶିକ୍ଷିତ—5. Civilised; polished. ୬ । ବିଶ୍ୱସ୍ତ—6. Trustworthy; reliable. ୭ । ସଦ୍‌ବଂଶୀୟ—7. Of noble birth. ୮ । ସମାଜର ବା ସମାଜର ହିତକର—8. Good for society or assembly. ୯ । ସଭା ସଂକ୍ରାନ୍ତ; ସଭା ସମ୍ବନ୍ଧୀୟ—9. Relating to an assembly or society. ୧୦ । ଦ୍ୟୁତକର—10. Gambling. ୧୧ । ପ୍ରତାରିତ (କ୍ୱଚିତ୍)—11. Cheated. ବି—୧ । ଦ୍ୟୁତକର; ଜୁଆଡ଼ି—1. Gamester. ୨ । ସଭାର ମେମ୍ବର; କୌଣସି ସଭାରେ ସମ୍ପୃକ୍ତ ବ୍ୟକ୍ତି—2. A member of a society. ୩ । ସଭାଜନ; ସଭାସଦ୍—3. A person attending or taking part in a meeting. [ଉ—ସଭ୍ୟମାନେ ତାଙ୍କ ପାଶେ ତ ବସିଥିଲେ, ଏ ମହାଭାରତ ଯେ ନୃପଙ୍କୁ ଶୁଣାଇଲେ । କୃଷ୍ଣସିଂହ. ମହାଭାରତ ।] ୪ । ସଜ୍ଜନ—4. A good man. ୫ । ଭଦ୍ରଲୋକ—5. A gentleman. ୬ । କୁଳୀନ ବ୍ୟକ୍ତି—6. A person of honourable parentage (Apte). ୭ । ଦ୍ୟୂତ ଗୃହାଧ୍ୟକ୍ଷ—7. The keeper of gaming house (Apte). ୮ । ରାଜାଙ୍କୁ ବିଚାର କର୍ମରେ ସାହାଯ୍ୟ କରିବା ପାଇଁ ନିଯୁକ୍ତ ବ୍ୟକ୍ତି—8. An assessor (Apte). ୯ । ସଭାର ସହକାରୀ ବ୍ୟକ୍ତି—9. An assistant at an assembly (Apte). ୧୦ । ଦ୍ୟୂତ ଗୃହାଧ୍ୟକ୍ଷଙ୍କ ଭୃତ୍ୟ—10. The servant of the keeper of a gaming house (Apte). ୧୧ । ପଞ୍ଚାଗ୍ନି ମଧ୍ୟରୁ ଏକତମ—11. Name of one of the five sacred fires (Apte).

**ସଭ୍ୟ ଜଗତ୍**—ସଂ. ବି (କର୍ମଧା)—୧ । ସଭ୍ୟ ସମାଜ—1. Polish-
Sabhya jagat ed society; the civilised world.
୨ । ଭଦ୍ର ବ୍ୟକ୍ତିଗଣ—2. All civilised persons.

**ସଭ୍ୟ ଜନ**—ସଂ. ବି—ଭଦ୍ରବ୍ୟକ୍ତି—
Sabhya jana Gentleman.

**ସଭ୍ୟତା(ତ୍ୱ)**—ସଂ. ବି (ସଭ୍ୟ+ଭାବ. ତା, ତ୍ୱ)—୧ । ସାମାଜିକତା—
Sabhyatā(twa) 1. Sociableness. ୨ । ଭଦ୍ରତା—2. Polished manners. ୩ । ଶିଷ୍ଟାଚାର; ସୌଜନ୍ୟ—3. Politeness; good manners. ୪ । ସାମାଜିକ ଉତ୍କର୍ଷ—4. Social excellence. ୫ । ମାର୍ଜିତ ରୁଚି ଓ ବ୍ୟବହାର—5. Polished manners; good taste. ୬ । ସାହିତ୍ୟ, ବିଜ୍ଞାନ, ଦର୍ଶନ, ସୁଶୀଳ, ଶ୍ରମଶିଳ୍ପ, ଧର୍ମନୀତି, ସାମାଜିକ ବିଜ୍ଞାନ ଅବତ ଅନୁଶୀଳନ ଓ ପାଳନ ହେତୁ ମନୁଷ୍ୟ ହୃଦୟରୁ ବ୍ୟକ୍ତିଗତ ଓ ବ୍ୟବହାରିଗତ ଉତ୍କର୍ଷ—6. Excellence of mind and conduct due to one's following the various

arts and sciences. ୬ । ସାହିତ୍ୟ ବିଜ୍ଞାନାଦି ଚର୍ଚ୍ଚା, ଅନୁଶୀଳନ ଓ ପାଳନ ପୂର୍ବକ ଲୋକ ଯାତ୍ରା—7. Civilisation. ୮ । ଲୋକ ସମାଜରେ ମିଳାମିଶି ଚଳିବା ଭାବ—8. Fellowship.

**ସଭ୍ୟତାନୁମତ**—ସଂ. ବି (୩ୟା ତତ୍)—୧ । ଶିଷ୍ଟାଚାର ସଙ୍ଗତ—Sabhyatānumata 1. Conformable to the usages of the civilised or polished society. ୨ । ସଭ୍ୟ ସମାଜର ବ୍ୟବହାର ଅନୁଯାୟୀ—[ସଭ୍ୟତା ବିରୁଦ୍ଧ—ବିପରୀତ] 2. Approved by the civilised world; according to the etiquettes of polished society.
ସଭ୍ୟତାନୁମୋଦିତ, ସଭ୍ୟତା ସମ୍ମତ, ସଭ୍ୟତାସଙ୍ଗତ—ଅନ୍ୟରୂପ

**ସଭ୍ୟତାପ୍ରାପ୍ତ**—ସଂ. ବିଣ. ପୁଂ (୨ୟା ତତ୍)—ସଭ୍ୟ; ଯେ ସଭ୍ୟ ହୋଇଅଛି—Civilised. Sabhyatāprāpta (ସଭ୍ୟତାପ୍ରାପ୍ତା—ସ୍ତ୍ରୀ)

**ସଭ୍ୟତା ବହିର୍ଭୂତ**—ସଂ. ବିଣ (୫ମୀ ତତ୍)—ସଭ୍ୟ ସମାଜର ବ୍ୟବହାରର ବିପରୀତ—Opposed to the usages of civilised society. Sabhyatā bahirbhūta
ସଭ୍ୟତା ବିଗହିତ, ସଭ୍ୟତା ବିରୁଦ୍ଧ—ଅନ୍ୟରୂପ

**ସଭ୍ୟ ନିର୍ବାଚନ**—ସଂ. ବି. (୬ଷ୍ଠୀ ତତ୍)—କୌଣସି ସଭା ପାଇଁ ସଭ୍ୟ ବା ମେମ୍ବର ବଛା—Selection or election of a member for a society or assembly. Sabhya nirbāchana
ସଭ୍ୟନିର୍ବାଚନ ସଭ୍ୟଚୁନନା

**ସଭ୍ୟ ଭବ୍ୟ**—ଦେ. ବିଣ. (ଏକାର୍ଥକ ସହଚର)—୧ । ଭଦ୍ର—Sabhya bhabya 1. Gentle; polite. ୨ । ଶିଷ୍ଟ ଓ ଶାନ୍ତ—2. Polite and gentle.
ସଭ୍ୟଭବ୍ୟ ସଭ୍ୟଭବ୍ୟ

**ସଭ୍ୟତାଲୋକ**—ସଂ. ବି (ରୂପକ; ସଭ୍ୟତା + ଆଲୋକ)—ସଭ୍ୟତା ରୂପ ଆଲୋକ; ଆଲୋକ ସଙ୍ଗେ ତୁଳନା କରାଯିବା ସଭ୍ୟତା—Civilisation compared to light; the light of civilisation. Sabhyatāloka

**ସଭ୍ୟ ସମାଜ**—ସଂ. ବି. (୬ଷ୍ଠୀ ତତ୍)—୧ । ସଭ୍ୟ ବ୍ୟକ୍ତିମାନଙ୍କର ସମାଜ—1. Civilised society. ୨ । ସଭ୍ୟବ୍ୟକ୍ତି ସମୂହ—2. The civilised persons. ୩ । ଜଗତର ଅଧିବାସୀମାନଙ୍କ ମଧ୍ୟରୁ ଯେଉଁମାନେ ସଭ୍ୟତାଲୋକ ପ୍ରାପ୍ତ ହୋଇଅଛନ୍ତି—3 The civilised world; that part of the world's population which is civilised. Sabhya samāja
ସଭ୍ୟସମାଜ ସଭ୍ୟସମାଜ

**ସଭ୍ୟ ହେବା**—ଦେ. କ୍ରି—୧ । ସଭ୍ୟ ସମାଜର ଆଚାର ବ୍ୟବହାରରେ ଶିକ୍ଷିତ ହେବା—1. To be civilised. ୨ । ଭଦ୍ରତା ଶିକ୍ଷା କରିବା—2. To learn manners. ୩ । ସଭ୍ୟତାନୁମତ ବ୍ୟବହାର କରିବା—3. To act politely. ୪ । କ୍ଷୌର ହେବା—4. To be shaven. [ଦ୍ର—ଅସଭ୍ୟ ଓ ଜଙ୍ଗଲି ଲୋକମାନେ କ୍ଷୌର ନ ହୋଇ ମୁଣ୍ଡରେ ଚୁଟି ଓ ଦାଢ଼ି ଅଧ ବଢ଼ାନ୍ତି । ଏଥି ଯୋଗୁ କ୍ଷୌର ହେବା ଅର୍ଥରେ 'ଭଦ୍ର ହେବା' ବା ସଭ୍ୟ ହେବା ବ୍ୟବହୃତ ହୁଏ ।] Sabhya hebā
ସଭ୍ୟହଓୟା ସଭ୍ୟହୋନା

**ସଭ୍ରମ**—ସଂ. ବିଣ (ସହାର୍ଥ ବହୁବ୍ରୀହି, ସ + ଭ୍ରମ)—ଭ୍ରମଯୁକ୍ତ—Having mistakes; erroneous. Sabhrama

**ସଭ୍ରମେ**—ଦେ. କ୍ରି ବିଣ. (ସଂ. ସମ୍ଭ୍ରମ)—୧ । ଅତ୍ୟନ୍ତ ଆଦରରେ—1. Very fondly [ଦ୍ର—ମାତା ସ୍ୱପୁତ୍ର ମୁଖ ଚୁମ୍ବି, ସଭ୍ରମେ କୋଳରେ ବସାଇ—ଜଗନ୍ନାଥ. ଭାଗବତ] ୨ । (ସଂ. ଭ୍ରମ) ଚାଞ୍ଚଲ୍ୟ ହୋଇ; ବ୍ୟତିବ୍ୟସ୍ତ ହୋଇ—2. With much agitation; much agitated or confused. [ଦ୍ର—ଜାଣିଲେ ଥିଲେ ଯେ କାମିନୀ ସଭ୍ରମେ କଲେ ଘୋଷ ଧ୍ୱନି—ଜଗନ୍ନାଥ. ଭାଗବତ] Sabhrame
ସଂଭ୍ରମେ ସବ୍ରମমে ସସଂଭ୍ରମମେ

**ସମ୍ (ଧାତୁ)**—ସଂ.—୧ । ତୁଲ୍ୟ ହେବା 1. To be equal. ୨ । ବିହ୍ୱଳ ହେବା—2. To be confused or agitated (Apte) ୩ । ବିହ୍ୱଳ ନ ହେବା—3. Not to be confused or agitated (Apte) Sam(root)

**ସମ୍**—ସଂ. ଉପସର୍ଗ (ଷୋ ଧାତୁ + କର୍ତ୍ତୃ ଅମ୍)—ଗୋଟିଏ ଉପସର୍ଗ—A prefix to verbs and verbal derivatives. [ଦ୍ର । ଏହା ଅନ୍ୟ ଧାତୁ ବା ଶବ୍ଦ ପୂର୍ବେ ଯୁକ୍ତ ହୋଇ ପଦ ନିଷ୍ପନ୍ନ ହୁଏ ଓ ଏହି ଉପସର୍ଗ ଦ୍ୱାରା ନାନାବିଧ ଅର୍ଥମାନ ପ୍ରତିପାଦିତ ହୁଏ । ଧାତୁ ପୂର୍ବେ 'ସମ୍' ଯୋଗ ହେଲେ 'ମ୍' ସ୍ଥାନରେ କେତେକ ସ୍ଥଳରେ ଂ ଅନୁସ୍ୱାର ହୁଏ ଓ କେତେକ ସ୍ଥଳରେ ମ ପରବର୍ତ୍ତୀ ବର୍ଣ୍ଣର ବର୍ଗୀୟ ଅନୁନାସିକ ବର୍ଣ୍ଣ ରୂପ ଧାରଣ କରି ଉକ୍ତ ଅକ୍ଷର ସଙ୍ଗେ ସନ୍ଧିଦ୍ୱାରା ମିଶିଯାଏ । ଯଥା—ସମ୍ + ଜୟ = ସଂଜୟ ବା ସଞ୍ଜୟ; ସମ୍ + ଯୁକ୍ତ = ସଂଯୁକ୍ତ, ସମ୍ + ବାଦ = ସଂବାଦ ବା ସମ୍ବାଦ; ସମ୍ + ଦର୍ଶନ = ସଂଦର୍ଶନ ବା ସନ୍ଦର୍ଶନ, ସମ୍ + ସ୍ଥାନ = ସଂସ୍ଥାନ ଇତ୍ୟାଦି; ଏହି ଉପସର୍ଗ ନିମ୍ନ କେତେକ ଅର୍ଥରେ ବ୍ୟବହୃତ ହୁଏ] ୧ । ସମ୍ୟକ୍; ବିଶେଷ—1. Especially; much. ୨ । ସମ୍ପୂର୍ଣ୍ଣ ରୂପେ—2. Fully; perfectly. (ଯଥା—ସମ୍ପାଦନ, ସମ୍ପ୍ରସାରଣ; ସମ୍ପୂର୍ଣ୍ଣ) ୩ । ଏକତ୍ର; ଏକ ସଙ୍ଗେ—3. Together with; simultaneously. (ଯଥା—ସଂଭାଷଣ, ସମବ୍ୟବହାର, ସମନ୍ୱୟ) ୪ । ସମୀପରେ—4. Near. (ଯଥା—ସମୁପସ୍ଥିତ) ୫ । ଅଭିମୁଖରେ; ସମ୍ମୁଖରେ; ଆଗରେ—5. In front of; before. (ଯଥା—ସମ୍ମୁଖ; ସମକ୍ଷ)—୬ । Sam

ସଂଯୋଗ; ସଂଗତ—6. Connection. ୭। ମିଳନ—7. Union. (ଯଥା—ସମୀପ; ସମ୍ମିଳନ) ୮। ପ୍ରକୃଷ୍ଟ—8. Excellent. (ଯଥା—ସଂରକ୍ଷଣ) ୯। ଅତ୍ୟନ୍ତ—9. Very; much; excessively. (ଯଥା—ସନ୍ତୋଷ, ସନ୍ତାପ) ୧୦। ଉତ୍ତମରୂପେ—10. Very well. ୧୧। ସମାନ; ତୁଲ୍ୟ—11. Equal; similar. (ଯଥା—ସମାନ, ସମଧ୍ୱ) ୧୨। ଶୋଭନ; ସୁନ୍ଦର—12. Beautiful. (ଯଥା—ସମ୍ଭୋଗ; ସଙ୍ଗମ; ସମ୍ମାନ ସମ୍ମାର୍ଜନ, ସମ୍ରାଟ୍) ୧୩। ସମୂହ—13. Multitude (ଯଥା—ସମାଜ) ୧୪। ଅଶ୍ଳେଷ—14. Embrace. (ଯଥା—ସମ୍ଭୋଗ)।

**ସମ୍ଜ୍ଞା**—ଦେ. ବିଣ—ସମଜ୍ଞା (ଦେଖ) Sam-jñā Samajñā (See)

ସମଜ୍ଞାଇବା, ସମ୍ଜ୍ଞାଣ
ସମ୍ଜ୍ଞାସମ୍ବ—ବି } ଅନ୍ୟରୂପ
ସମ୍ଜ୍ଞିବା, ସମଜେଇବା—କ୍ରି

**ସମ୍ଦି(ଧି)**—ପ୍ରାଦେ. (ସମ୍ବଲପୁର) ବି. ପୁଂ—ସମ୍ବନ୍ଧ—One's Sam-di(dhi) son's or daughter's father-in-law. [ସମ୍ଦେ(ଧେ)ନ—ସ୍ତ୍ରୀ]

**ସମ୍ଧୀନ୍**—ପ୍ରାଦେ. (ଲରିଅ) ବି. ସ୍ତ୍ରୀ—ସମନ୍ଧୁଣୀ—One's son's Sam-dhīn or daughter's mother-in-law.

**ସମ୍ନା**—ପ୍ରାଦେ. (ସମ୍ବଲପୁର) ବି—ଏକ ପ୍ରକାର ଦୁବ୍ବା ବା ଘାସ—Sam-nā A species of grass.

**ସମ୍ସ(ସେ)ର୍ଜଙ୍ଗ**—ଦେ. ବି—ନେପାଳର ପ୍ରଧାନ ମନ୍ତ୍ରୀଙ୍କ ଉପାଧି—Sam-sa(se)r-jang The title of the prime-minister of Nepal.

**ସମ**—ସ. ବିଣ—(ସମ୍ ଧାତୁ=ତୁଲ୍ୟ ହେବା+କର୍ତ୍ତରି ଅ) (ତୁଳନା sama କର—ଗ୍ରୀକ୍ ଭାଷାର ହୋମୋ, ହୋମିଓ)—୧। ତୁଲ୍ୟ; ସଦୃଶ—1. Similar; like. [ଉ—ନଳନେ ଭର ମୋଉଦନ୍ତ ଭଲ ବଂଚନ୍ତ ସମେ—ଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ] ୨। ସମାନ—2 Equal. ୩। (ସମା ସ୍ତ୍ରୀ) ସେହି; ତଦ୍ରୂପ—3. Same; identical. ୪। (ଅସମ, ବିଷମ—ବିପରୀତ] (ଗଣିତ) ଯୁଗ୍ମ; ଯୋଡ଼ (ସଂଖ୍ୟା)—4. Even (number). [ଉ—ଯେଉଁ ସଂଖ୍ୟା ୨ ସଖ୍ୟାର ଗୁଣିତକ ଅଟେ, ଅର୍ଥାତ୍ ଯାହା ଦୁଇରେ ହରିଲେ ଛିଣ୍ଡି ଯାଏ ତାକୁ ସମ ସଂଖ୍ୟା କୋଲଯାଏ।] ୫। ସକଳ; ସମସ୍ତ; ସମଗ୍ର—5. Complete; whole; all; entire (Apte). ୬। ଅବକ୍ର—6. Even; plane (Apte). ୭। ସମ୍ପୂର୍ଣ୍ଣ—7. Completed; full. ୮। ସମାଜସ୍ଥ; ସମାଜରେ ବା ସଂସାରରେ ସମାନ ଅବସ୍ଥାର ଅଧିକାରୀ (ବ୍ୟକ୍ତି)—8. (a person) Equal in status or social position. ୯। ସମତଳ—9. Level (Apte). ୧୦। ସରଳ; ଋଜୁ—10. Straight (Apte). ୧୧। ନ୍ୟାଯ୍ୟପର—12. Just; upright (Apte). ୧୩। ଅପକ୍ଷପାତ 13. Impartial (Apte). ୧୪। ପ୍ରତ୍ୟେକ—14. Every; each (Apte). ୧୫। ସମଭାବସ୍ଥିତ—15. Indifferent; unmoved (Apte). ୧୬। ଯଥାଯୋଗ୍ୟ—16. Suitable (Apte). ୧୭। ସୁବିଧାଜନକ—17. Convenient (Apte). ସଂ. ବି (ସଂ. ସମତା, ସମତ୍ୱ) ୧। (ଗଣିତ) ବର୍ଗମୂଳ ଅନୁସନ୍ଧାନାର୍ଥ ଅଙ୍କ ଉପରେ ଯେଉଁ ଭିନ୍ନ ରେଖା ଦିଆଯାଏ—1. (Mathematics) A line drawn over a number for extracting the square root thereof. ୨। କ୍ଷେତ୍ରର ବର୍ଗଫଳ—2. Calculated area of a geometrical figure or field. ୩। କାବ୍ୟାଲଙ୍କାର ବିଶେଷ; ଅର୍ଥାଲଙ୍କାର ବିଶେଷ; ଯୋଗ୍ୟ କର୍ମଦ୍ୱାରା ଅନୁରୂପ ବସ୍ତୁଦ୍ୱୟର ଶ୍ଳାଘାସ୍ପଦ ମିଳନ—3. A rhetorical figure in which two different objects are identified by indication of a suitable action. [ଉଦାହରଣ—

ଜୟ ଅଗ୍ରଜନ ଶ୍ରୀ ପୁରୁଷୋତ୍ତମ,
ବିଶ୍ୱେ ତୁମ୍ଭେ ବିଶ୍ୱରକ୍ଷା ବ୍ରତକ୍ଷମ,
ଲଭିଲ ଦେଖାଇ ଜଗତେ ଯୋଗ୍ୟତା
ସତ୍କୀର୍ତ୍ତ୍ୟ ରୂପେ ଏ ରୂପ କଳ୍ପଲତା
ସୁନ୍ଦର ମଧୁର ବେନିଙ୍କ ମିଳନ
ଶୌର୍ଯ୍ୟ ସଙ୍ଗେ ଅହା! ସୌନ୍ଦର୍ଯ୍ୟ ଯେସନ
ଚନ୍ଦ୍ରିକା ସଙ୍ଗେ ଏବେ ମିଳିଲେ ଚନ୍ଦ୍ରମା
ଶ୍ରୀପତି ସହିତେ ଲୋକମାତା ରମା

—ରାଧାନାଥ. ଚନ୍ଦ୍ରିକା]

୪। (ସଙ୍ଗୀତ) ତାଳ ଉପରେ ଦିଆଯିବା ବେଶୀ ଜୋର୍—4. (music) Beat of the maximum stress. ୫। (ସଙ୍ଗୀତ) ତାଳର ପ୍ରଥମ ଉତ୍ପତ୍ତି ସ୍ଥାନ; ଲୟ—5. (music) The origin of a cadence. ୬। (ଜ୍ୟୋତିଷ) ବୃଷ, କର୍କଟ, କନ୍ୟା, ବୃଶ୍ଚିକ, ମକର ଓ ମୀନ ରାଶିର ସାଧାରଣ ନାମ—6. Name of the even numbered zodiacal signs (Apte). ୭। ସମତଳ ପ୍ରଦେଶ; ଅବନ୍ଧୁର ସ୍ଥାନ—7. A level plain; a flat country (Apte). ସ. କ୍ରି. ବିଣ—୧। ସମଭିବ୍ୟାହାରରେ; ସଙ୍ଗେ—1. Accompanied by; in company with; together with (Apte) ୨। ସମାନ ଭାବରେ—2. Equally (Apte). ୩। ସତ୍ୟ; ସେହି ପ୍ରକାରେ—3. Like; similarly; in the same manner (Apte). ୪। ସମ୍ପୂର୍ଣ୍ଣରୂପେ—4. Entirely; completely (Apte). ୫। ଏକ ସମୟରେ—5. Simultaneously; all at once (Apte). ସଂ. ବି—

ଉପମା—Simile. [ ଉ—ଚାହାଙ୍କୁ ଦେବା ସମ ସହିଜେ ନିରୁପମ କମଳନୟନ ଗହଣ—ଦୀନକୃଷ୍ଣ. ରସକଲ୍ଲୋଳ । ]

**ସମ ଉଦିତ**—ଗ୍ରା. ବିଣ ( ସଂ. ସମୁଦିତ )—ସମୁଦିତ; ପ୍ରକାଶିତ—
Sama udita Appearing. [ଉ—ଗୋ ସହି ! ସମ ଉଦିତ
समुदित **समुदित** ଅଗେ ମଦନ—ପ୍ରାଚୀ. ରସକାଦମ୍ବ । ]

**ସମକକ୍ଷ**—ସଂ. ବିଣ. ପୁଂ ( ସମ=ସମାନ+କକ୍ଷ=ବାଜ ବା କକ୍ଷା=
Samakaksha ପ୍ରତିଯୋଗିତା ଯାହାର, ବହୁବ୍ରୀହି; କିମ୍ବା ସମ =ସମାନ କକ୍ଷ=ପ୍ରତିଯୋଗୀ; କର୍ମଧା )—୧ । ତୁଲ୍ୟ—1. Similar. ୨ । ପ୍ରତିଯୋଗ—2. Rival. ୩ । ତୁଲ୍ୟ ବଳବିଶିଷ୍ଟ—3. Of equal strength. ୪ । ସମାନ ଗୌରବ ବା ଅବସ୍ଥାବିଶିଷ୍ଟ—4. Of equal position or status. ୫ । ସମବଳ ପ୍ରତିଦ୍ୱନ୍ଦ୍ୱୀ—5. An equally strong rival; a match.

**ସମକଛ(ଚ୍ଛ)**—ଦେ. ବିଣ ( ସଂ. ସମକକ୍ଷ )—ସମକକ୍ଷ ( ଦେଖ )
Samakachha(chchha) Samakaksha (See )

**ସମ କଟିବନ୍ଧ**—ଦେ. ବି ( ଭୂଗୋଳ )—ସମ ମଣ୍ଡଳ ( ଦେଖ )
Sama katibandha Sama mandala ( See )

**ସମ କନ୍ୟା**—ସ.ବି.ସ୍ତ୍ରୀ (ସମା=ବିବାହ ପାଇଁ ଉପଯୁକ୍ତା ବା ଯୋଗ୍ୟା+
Sama kanyā କନ୍ୟା)—ବିବାହପାଇଁ ସମ୍ପୂର୍ଣ୍ଣ ଯୋଗ୍ୟା କୁମାରୀ; ବିବାହୋପଯୁକ୍ତା ବାଳିକା—A maid who has arrived at the full age for marriage; [ସଂକନ୍ୟକା—ଅନ୍ୟରୂପ] a girl of marriageable age.

**ସମକର୍ମା**—ସଂ. ବିଣ ( ବହୁବ୍ରୀହି, ସମ+କର୍ମନ୍; ୧ମା. ୧ବ )—
Samakarmā ତୁଲ୍ୟ କର୍ମଯୁକ୍ତ—Acting similarly.

**ସମ କାଳ**—ସ. ବି ( କର୍ମଧା )—ଏକସମୟ; ସେହିକ୍ଷଣ—
Sama kāla One time; the same time or moment.

**ସମ କାଳବର୍ତ୍ତୀ**—ସଂ. ବିଣ; ପୁଂ ( ସମକାଳ+ବୃତ୍ ଧାତୁ+ଣିନ୍.
Sama kālabartti ଇନ୍; ୧ମା. ୧ବ)—ସମକାଳିକ (ଦେଖ)
( ସମ କାଳବର୍ତ୍ତିନୀ—ସ୍ତ୍ରୀ ) Samakālika ( See )

**ସମ କାଳିକ**—ସ. ବିଣ ( ସମକାଳ+ଇକ )—ସମସାମୟିକ; ଏକ
Samakālika ସମୟରେ ବିଦ୍ୟମାନ; ଯାହା ଏକସମୟରେ
( ସମକାଳୀନ—ଅନ୍ୟରୂପ ) ଘଟେ—Contemporary,
ସମକାଳିକା } ସ୍ତ୍ରୀ
ସମକାଳୀନା }
happening or existing at the same time; simultaneous; caeval.

**ସମ କାଳୋତ୍ପନ୍ନ**—ସ. ବିଣ ( ୭ମୀ ତତ୍ )—ଏକସମୟରେ ଜାତ—
Sama kālotpanna Born at the same time.
( ସମ କାଳୋତ୍ପନ୍ନା—ସ୍ତ୍ରୀ )

**ସମ କୃତ୍**—ସଂ. ବି—କଫ ( ବୈଦ୍ୟକ ନିର୍ଘଣ୍ଟ )—
Sama krut Cold; catarrh.

**ସମକେନ୍ଦ୍ରିକ**—ସଂ. ବିଣ ( ସମକେନ୍ଦ୍ର+ଇକ )—ପରସ୍ପରର
Samakendrika ବେଢ଼ିଥିବା ଯେଉଁ ବୃତ୍ତମାନଙ୍କର କେନ୍ଦ୍ର ଗୋଟିଏ—Concentric.

**ସମକେନ୍ଦ୍ରିକ ବୃତ୍ତ**—ସଂ. ବି (କର୍ମଧା)—ଏକ କେନ୍ଦ୍ରବିଶିଷ୍ଟ ଏକାଧିକ
Samakendrika brutta ବୃତ୍ତ—Concentric circles.

**ସମ କୋଣ**—ସଂ. ବି (ଜ୍ୟାମିତି)—ସରଳରେଖା ଉପରେ ସିଧା ଲମ୍ବ-
Sama kona ଭାବରେ ଅନ୍ୟ ସରଳରେଖା ଦଣ୍ଡାୟମାନ ହେଲେ ରେଖାର ଦୁଇ ପାର୍ଶ୍ୱରେ ଯେଉଁ ଦୁଇ କୋଣ ଜାତ ହୁଏ—(geometry) Right angle. [ ଦ୍ର—ଯଦି ଏକ ସରଳ ରେଖା ଅନ୍ୟ ଏକ ସରଳ ରେଖା ଉପରେ ଲମ୍ବଭାବରେ ଏରୂପେ ଦଣ୍ଡାୟମାନ ହୁଏ ଯେ, ପ୍ରଥମ ରେଖାର ଉଭୟ ପାର୍ଶ୍ୱରେ ଉତ୍ପନ୍ନ କୋଣଦ୍ୱୟ ସମାନ ହୁଏ, ତେବେ ଉକ୍ତ ଦଣ୍ଡାୟମାନ ସରଳ ରେଖାକୁ ଲମ୍ବ ରେଖା ଓ ନିମ୍ନ ରେଖାକୁ ଭୂମି ବା ତଳ ରେଖା ଏବଂ ପ୍ରତ୍ୟେକ ସନ୍ନିହିତ କୋଣକୁ ସମକୋଣ ବୋଲାଯାଏ । ଗୋଟିଏ ବୃତ୍ତର କେନ୍ଦ୍ରକୁ ଭେଦକରି ପରସ୍ପରକୁ ଲମ୍ବଭାବରେ ଛେଦ କରିବା ୪ଟି ରେଖା କଟା ଗଲେ କେନ୍ଦ୍ର ଚତୁଃପାର୍ଶ୍ୱରେ ୪ଟି ସମକୋଣ ହୁଏ । ଆଧୁନିକ ବିଜ୍ଞାନର ଗଣନାର୍ଥ ଗୋଟିଏ ସମକୋଣକୁ ୯୦ ଡିଗ୍ରୀରେ ବିଭକ୍ତ କରାଯାଇଅଛି ଓ ଗୋଟିଏ ଡିଗ୍ରୀକୁ ୬୦ ସେକେଣ୍ଡରେ ବିଭକ୍ତ କରାଯାଇଅଛି । ଯେବେ ଦଣ୍ଡାୟମାନ ରେଖାଟି ସିଧା ନ ହୋଇ ତେରଛା ହୋଇ ତଳ ରେଖା ଉପରେ ପଡ଼େ ତେବେ ଦଣ୍ଡାୟମାନ ରେଖାର ଉଭୟ ପାର୍ଶ୍ୱସ୍ଥ କୋଣ ୨ଟି ସମାନ ନ ହୋଇ ଗୋଟିଏ ବଡ଼ ଓ ଗୋଟିଏ ସାନ ହୁଏ । ସମକୋଣଠାରୁ ବଡ଼ କୋଣକୁ ସ୍ଥୂଳ କୋଣ ଓ ଛୋଟ କୋଣକୁ ସୂକ୍ଷ୍ମ କୋଣ ବୋଲାଯାଏ । ]

**ସମକୋଣିକ**—ସଂ. ବିଣ ( ସମକୋଣ+ଇକ )—୧ । ( ଜ୍ୟାମିତି )
Samakonika ସମକୋଣ ସମ୍ବନ୍ଧୀୟ—1. ( geometry ) Relating to right angles; rectangular. ୨ । ( ଜ୍ୟାମିତି ) ସମକୋଣୀ; ଯେଉଁ କ୍ଷେତ୍ର (ଚତୁର୍ଭୁଜ, ତ୍ରିଭୁଜ)ରେ ସମକୋଣ ଥାଏ—2. ( geometry ) Having a right angle or angles.

**ସମକୋଣୀ**—ସଂ. ବିଣ ( ସମକୋଣ+ଇନ୍, ୧ମା. ୧ବ ) ( ଜ୍ୟାମିତି )
Samakoni —ଯେଉଁ କ୍ଷେତ୍ର ( ଯଥା; ତ୍ରିଭୁଜ, ଚତୁର୍ଭୁଜ)ର ମଧ୍ୟରେ ଏକ ବା ତତୋଽଧିକ ସମକୋଣ ଥାଏ—Right angled; rectangular (figure).

**ସମକୋଣୀ ତ୍ରିଭୁଜ**—ସଂ. ବି (ଜ୍ୟାମିତି)—ଯେଉଁ ତ୍ରିଭୁଜର ଗୋଟିଏ
Samakoni tribhuja କୋଣ ସମକୋଣ ଅଟେ—Right-
समकोणी त्रिभुज angled triangle. [ ଦ୍ର—ଏହି
**समकोण त्रिभुज** ତ୍ରିଭୁଜର ଅନ୍ୟ ୨ଟି କୋଣ ସୂକ୍ଷ୍ମ କୋଣ ଅଟେ । ତ୍ରିଭୁଜର ଯୋଡ଼ିଏ ବାହୁ ପରସ୍ପର ସହିତ ଲମ୍ବ ଓ ସିଧାଭାବରେ ମିଳିତ ହେଲେ ତାହା ସମକୋଣୀ ତ୍ରିଭୁଜ ହୁଏ । ଯେଉଁ ତ୍ରିଭୁଜରେ ଗୋଟିଏ ସ୍ଥୂଳ କୋଣ ଥାଏ ତାକୁ ସ୍ଥୂଳକୋଣୀ ତ୍ରିଭୁଜ ବୋଲାଯାଏ ଓ ଯେଉଁ ତ୍ରିଭୁଜର ତିନିଗୋଟି ଯାକ କୋଣ ସୂକ୍ଷ୍ମ କୋଣ ତାହାକୁ ସୂକ୍ଷ୍ମକୋଣୀ ତ୍ରିଭୁଜ ବୋଲାଯାଏ ।

ଯେଉଁ ସମକୋଣୀ ତ୍ରିଭୁଜର ୨ଟି ବାହୁ ସମାନ ଥାଏ ତାକୁ ସମକୋଣୀ ସମଦ୍ୱିବାହୁ ଓ ଯାହାର ବାହୁ ଅସମାନ ଥାଏ ତାକୁ ସମକୋଣୀ ବିଷମବାହୁ ତ୍ରିଭୁଜ କୁହାଯାଏ ।]

**ସମ କୋଳ**—ସଂ. ବି. ପୁଂ (ବହୁବ୍ରୀହି; ସମ=ଅନୁକୂଳ ଅଟେ କୋଳ
Sama kola =କୋଡ଼ ଯାହାର)—ସର୍ପ; ଭୁଜଙ୍ଗମ; ସାପ—
Snake; serpent.

**ସମକୋଷ୍ଠମିତି**—ସଂ. ବି—ଭୂମ୍ୟାଦିର ପରିମାଣ ନିର୍ଦ୍ଧାରଣ କ୍ରିୟା-
Samakoshṭhamiti ବିଶେଷ—A process of extracting the area or superficial contents of a plot. [ଦ୍ର—ଅଙ୍କ ଶାସ୍ତ୍ରଗଣିତରେ ଭୂମିର ପରିମାଣ (superficial contents) ବାହାର କରିବା ପାଇଁ ସମକୋଷ୍ଠମିତି ନାମକ ଅଙ୍କପ୍ରଣାଳୀ ପ୍ରଚଳିତ ହୋଇଅଛି । ଏଥିରେ କୌଣସି ସମପରିମାଣ ବର୍ଗଫଳ ଦ୍ୱାରା ଖଣ୍ଡିଏ ବହୁଭୁଜସୀମ ଭୂମିର ପରିମାଣ ସହଜରେ ଜଣାଯାଇ ପାରେ—ଶବ୍ଦକୋଷ]

**ସମକ୍ନ(କ୍ତ)**—ସଂ. ବିଣ (ସମ=ତୁଲ୍ୟ ରୂପେ+ଅକର୍ ଧାତୁ=ଗମନ
Samakna(kta) କରିବା+କର୍ତ୍ତୃ. ତ)—୧ । ତୁଲ୍ୟ ରୂପେ ଅବସ୍ଥାପିତ—1. Similarly situated. ୨ । ତୁଲ୍ୟ ରୂପେ ଗମନକାରୀ—2. Moving similarly. ୩ । ଏକ ସମୟରେ ଗଚ୍ଛନ୍ତା—3. Moving simultaneously. ୪ । ଯୋଡ଼ା; ସଙ୍ଗତ—4. Attached to each other; joined together.

**ସମ କ୍ୱାଥ**—ସଂ. ବିଣ (ବୈଦ୍ୟକ)—ଅଷ୍ଟମାଂଶ ଅବଶିଷ୍ଟ କ୍ୱାଥ; ଅଷ୍ଟମାଂଶ
Sama kwātha ଜଳ ଅବଶିଷ୍ଟ ଥାଉ ଥାଉ ନିଆଁ ଉପରୁ ଓହ୍ଲାଇବା କ୍ୱାଥ—A decoction which is brought down from the oven when one eighth of the original liquid is remaining.

**ସମକ୍ରିୟ**—ସଂ. ବିଣ (ବହୁବ୍ରୀହି; ସମ+କ୍ରିୟା+ଅ)—ସମାନ ବା ତୁଲ୍ୟ
Samakriya କ୍ରିୟା ବିଶିଷ୍ଟ—Acting similarly.
(ସମକ୍ରିୟା—ସ୍ତ୍ରୀ) (ସମକ୍ରିୟତା—ବି)

**ସମକ୍ଷ**—ସଂ. ଅ (ସଂ. ସମକ୍ଷଂ; ସମ=ଅଭିମୁଖ; ସାମନା+ଅକ୍ଷି=ଚକ୍ଷୁ,
Samaksha ଚକ୍ଷୁର ଅଭିମୁଖ=ସମକ୍ଷଂ; ଅବ୍ୟୟୀ ଭାବ ସମାସ) —ସମ୍ମୁଖରେ; ଆଗ ଅଗରେ; ସାମନାରେ; ପ୍ରତ୍ୟକ୍ଷ; ଅଗ୍ରତଃ—Before; in the presence of; before the very eyes of; within the sight of. ବିଣ—ସାମନାରେ ଦେଖାଯିବା; ପ୍ରତ୍ୟକ୍ଷ—
Visible; in sight.

**ସମକ୍ଷେ**—ଦେ. କ୍ରି. ବିଣ (ସଂ. ସମକ୍ଷଂ)—ସାମନାରେ; ଆପଣା ଆଖି
Samakshe ଆଗରେ—In the sight of, before (ସମକ୍ଷରେ—ଅନ୍ୟରୂପ) the very eyes of; in front of
ସମକ୍ଷେ ସମକ୍ଷେ

**ସମ ଗନ୍ଧକ**—ସଂ. ବି ( ସମ=ସମାନ+ଗନ୍ଧ=ଘ୍ରାଣ+କ )—କୃତ୍ରିମ
Sama gandhaka ଧୂପ—A prepared incense; a compounded incense for fumigating.

**ସମ ଖାତ**—ସଂ. ବି (କର୍ମଧା)—୧ । ଯେଉଁ ଗର୍ତ୍ତର ସବୁ ପଟର
Sama khāta ବାହୁମାନ ସମାନ—1. An excavation or pit with all its sides equal; a pit of equal length, breadth and depth. ୨ । (ବୀଜ ଗଣିତ) ଯେଉଁ ଗର୍ତ୍ତର ପାର୍ଶ୍ୱମାନ ଜଳ ପରି କରନ୍ତର ସମାନ୍ତରାଳ ( ଶବ୍ଦକୋଷ )—2. (algebra) Cylendrical pit.

**ସମ ଗନ୍ଧିକ**—ସଂ. ବି (ସମ+ଗନ୍ଧ+ଅନ୍ଧ ଅର୍ଥରେ ଇକ)—ଉଶୀର;
Sama gandhika ବେଣା ମୂଳ—The fragrant root of the Andropogen Muricatus grass.
ସଂ. ବିଣ—ତୁଲ୍ୟ ଗନ୍ଧ ବିଶିଷ୍ଟ—Having similar smell.

**ସମଗରା ଦହ(ପାଟ)**—ଦେ.ବି—ପୁରୀ ସହରର ନିକଟବର୍ତ୍ତୀ ପାଟ; ସମଙ୍ଗ
Samagarā daha(pāṭa) ପାଟ;ସରଦ୍ଧ—Name of a shallow expanse of water near the town of Puri. [ଦ୍ର—ଏଥିରେ ବର୍ଷାଦିନେ ପାଣି ଭର୍ତ୍ତି ହୋଇଯାଏ ଓ ଖରାଦିନେ ବାଲୁଅଧାନ ହୁଏ ସରଦ୍ଧ ଦେଶ ।] [ଭି—୧ । ସ୍ୱଚ୍ଛେ ଶୀଘ୍ର ବାଟେ ସମଗରା ଦହିଁ ପ୍ରସ୍ତୁତ ହୋଇ ଭୁବନ୍ତୁ, ୨ । ସମଗରା ପାଟେ ହଂସ ହଂସୀ ପଦ୍ମ ପତ୍ରର ଶଯ୍ୟରେ କୋଳ । ବ୍ରଧାନାଥ. ଗାଙ୍ଗ ।]

**ସମଗାର**—ଦେ. ବିଣ—ସମାନ; ସଦୃଶ—Equal. [ଭି—ତଥାପି
Samagāra ଲାବଣ୍ୟବତୀ ନିସୁଗୁଲଭାବ, ସୁନ୍ଦର ପଣେ ତାହାର
ସମାନ ସମାନ ନାହିଁ ସମାଗାର ହେ । ଉକ୍ତ. ଲାବଣ୍ୟବତୀ ।]

**ସମଗୁଣ**—ସଂ. ବି ( କର୍ମଧା )—ସମାନ ବା ତୁଲ୍ୟଗୁଣ—Similar
Samaguṇa property. ବିଣ. (ସମ=ସମାନ ଅଟେ ଗୁଣ
(ସମଗୁଣା—ସ୍ତ୍ରୀ) ଯାହାର; ବହୁବ୍ରୀହି)—ତୁଲ୍ୟଗୁଣ ବିଶିଷ୍ଟ—
Of similar property or atttribute.

**ସମଗୁଣ ଶ୍ରେଢ଼ୀ(ଣୀ)**—ସଂ. ବି ( ଗଣିତ )—ଯେଉଁ ସମସ୍ତ ରାଶିର
Samaguṇa śreḍhī(ṇī) ପ୍ରତ୍ୟେକ ପରବର୍ତ୍ତୀ ରାଶି ସହିତ ସମାନ ଅନୁପାତ ଥାଏ—(Arithmetic) A geometrical progression.

**ସମଗ୍ର**—ସଂ. ବିଣ. ( ସମ୍=ସମ୍ଯକ୍+ଗ୍ରହ୍ ଧାତୁ=ଗ୍ରହଣ କରିବା+
Samagra କର୍ତ୍ତୃ. ଅ)—୧ । ସମସ୍ତ; ସମୁଦାୟ; ସକଳ—
1. All; entire; whole. ୨ । ସଂପୂର୍ଣ୍ଣ—
2. Complete; full.

**ସମଗ୍ର ଯମକ**—ସଂ. ବି (ଅଳଙ୍କାର)—ଯମକ ବିଶେଷ—
Samagra jamaka A kind of alliteration.
[ଦ୍ର—ଯେଉଁ ରଚନାରେ ପଦରେ ବାରଂବାର ବର୍ଣ୍ଣ ସବୁ ଅଂଶରେ ଯମକ ଥାଏ ତାକୁ ସମଗ୍ର ଯମକ କୁହାଯାଏ । ଉ—ଭୂଦର କୋଦର ଶୁନ୍ଦର ସୁର ହର୍ତ୍ତା ହରକ ହର- ପରଶର ଭକ୍ତୀର ଚକ୍ଷୀର ସ୍ତ୍ରୀନ ଶିହର— ଯୋଗିଲ ଶୀତଳ ଶ୍ରେର—ଅଗସ୍ତ୍ୟ. ବର୍ଣ୍ଣଚନ୍ଦ୍ରମଣି ।]

**ସମଗ୍ର**—ଦେ. ବି—୧ । ସମଗରା (ଦେଖ)—1. Samagarā (See)
Samaṅga ୨ । ଔଷଧ ବିଶେଷ—2. A kind of medicine.

**ସମଙ୍ଗା**—ସ. ବି.—(ସମ୍=ଏକତ୍ର+ଅଙ୍ଗ୍ ଧାତୁ=ଗମନ କରିବା, Samangā ପ୍ରବୃତ୍ତ ହେବା+କର୍ତ୍ତି+ଅ+ଆ )—ମଞ୍ଜିଷ୍ଠା; ଲତା—The Indian madder creeper; Rubia Munjistha; Rubia Cordifolia. ୨ । ଲଜ୍ଜାଳୁଲତା—2. A bushy creeper; Mimosa Pudica. ୩ । ବାଳା; ଏକପ୍ରକାର ସୁଗନ୍ଧ ଘାସ—3. A kind of sweet scented grass; Andropogen Schaeonanthes. ୪ । ସୁଗନ୍ଧ ଗୁଳ୍ମବିଶେଷ; ଲୁଲୁବେଲ୍ଲ; ବାଳା—4. A kind of sweet scented bush; Pavonia Odorata.

**ସମ ଚତୁରସ୍ର**—ସ. ବି॰ (ବହୁବ୍ରୀହି, ସମ=ସମାନ+ଚତୁର=ଚାରି+ Sama chaturasra +ଅସ୍ର ବାହୁ)—(ଜ୍ୟାମିତି) ଯେଉଁ (ବିଷମ ଚତୁରସ୍ର—ବିପରୀତ) କ୍ଷେତ୍ରର ଚାରି ବାହୁ ସମାନ; ବର୍ଗ (ସମଚତୁର—ଅନ୍ୟ ବିଣ, ରୂପ) କ୍ଷେତ୍ର—A square. ବିଣ- ଚାରି ଚତୁରସ୍ର—Equal or even on all sides.

**ସମ ଚତୁର୍ବାହୁ**—ସ. ବି.—(ସମ=ସମାନ ଅଟେ ଚତୁର୍ବାହୁ ଯାହାର; Sama chaturbāhu ବହୁବ୍ରୀହି) (ଜ୍ୟାମିତି) ଯେଉଁ ଚତୁର୍ଭୁଜର ୪ଟି ଯାକ ବାହୁ ସମାନ—A square. ବିଣ. ଯାହାର (ସମ ଚତୁର୍ଭୁଜ—ଅନ୍ୟରୂପ) ଚାରି ବାହୁ ସମାନ—Square.

**ସମ ଚତୁଷ୍କୋଣ**—ସ॰ ବି ଓ ବିଣ—(ସମ=ସମାନ ଅଟେ ଚତୁଷ୍କୋଣ Sama chatushkoṇa ଯାହାର)—(ଜ୍ୟାମିତି) ଯେଉଁ ଚତୁର୍ଭୁଜର ୪ଟିଯାକ କୋଣ ସମକୋଣ—A rectangle.

**ସମଚିତ୍ତ**—ସ. ବିଣ. ପୁ. (ବହୁବ୍ରୀହି)-ସବୁ ପଦାର୍ଥରେ ତୁଲ୍ୟ ଦୃଷ୍ଟିବିଶିଷ୍ଟ; Samachitta ସର୍ବତ୍ର ସମଦର୍ଶୀ—Looking equally (ସମଚିତ୍ତା—ସ୍ତ୍ରୀ) on all things.
[ସମଚିତ୍ତତା (ତ୍ୱ)—ବି] (ସମଚେତାଃ—ଅନ୍ୟ ପୁ॰ ଓ ସ୍ତ୍ରୀରୂପ)

**ସମ ଚୁହାଁ**—ଦେ ବିଣ.—ସମଦର୍ଶୀ—Impartial. [ଜ—କଥା Sama chāhā̃ ନ କହନ୍ତି, ଜଗତ ମୋହନ୍ତି, ସବୁଠାରେ ସମଦର୍ଶୀ ସମଦର୍ଶୀ ସମଚୁହାଁ—ଗୀତିବୃନ୍ଦ—ରସକଲ୍ଲୋଳ]

**ସମଜ**—ସ॰ ବି. (ସମ୍+ଅଜ୍ ଧାତୁ ଗତ କରିବା+କର୍ତ୍ତି ଅ) ୧ । ପଶୁର Samaja ଦଳ; ପଶୁସମୂହ—A herd of beasts. [ ଜ— ସମଜା ଜଣ କେତେ ଗୋପ ଶିଶୁ ଥିଲେ ନିଜ ସ୍ଥଳୁଁ ଅସୃଜନ ଖେଳାଇ ସମଜ ସମଜ-ନିକରସୁର୍ଯ୍ୟ ଦଶୋଖ ରମ୍ଭା ନ ଗୀତ] ୨। ମୂର୍ଖଙ୍କ ଦଳ- 2. A crowd or number of fools. ୩। ବନ— 3. Forest ଦେ॰ ବି॰ (ସଂ॰ ସମ+ଜ୍ଞା ଧାତୁ ବା ବୁଧ ଧାତୁ) ୧ । ସମ୍ଯକ୍; ଉତ୍ତମରୂପେ ବୁଝିବା; ସମ୍ୟକ୍ ରୂପେ ବୁଝିବା — Comprehension; thorough understanding; thorough grasp of a matter. ୨ । ବୋଧ—2. Understanding; sense; appreciation; common sense. ୩ । ବିବେଚନା—3. Consideration, ୪। ଅର୍ଥବୋଧ 4. Comprehension of the meaning of any- thing.

**ସମ(ମୁ)ଜ କରା(ରେ)ଇବା**—ଦେ. କ୍ରି. ( ଣିଜନ୍ତରୂପ )—ସମଜାଇବା Sama(mu)j karā(re)iba (ଦେଖ)—Samajāiba (See)

**ସମ(ମୁ)ଜ କରିବା**—ଦେ॰ କ୍ରି,—ସମଜିବା (ଦେଖ) Sama(mu)ja karibā Samajibā (See)

**ସମ(ମୁ)ଜ୍(ଝ)ଦାର**—ଦେ.ବିଣ.ପୁ॰ ଓ ସ୍ତ୍ରୀ (ଓ.ସମଜ ଓ ଫା.ଦାର)— Sama(mu)j-(jh)-dār ୧ । ଯେ କୌଣସି ବିଷୟକୁ ଉତ୍ତମରୂପେ [ସମ(ମୁ)ଜଦାରିଅ—ଅନ୍ୟରୂପ] ବୁଝେ; ବୋଦ୍ଧା; ଯେ ବୁଝି (ସମ[ମୁ]ଜଦାରଅଣି—ସ୍ତ୍ରୀ) ପାରେ-1. A person who under- [ସମଜଦାରୀ—ବି] stands or dives into every ସମଜদার matter; sensible; appreciating; having समझदार strong common sence. ୨ । ବୁଦ୍ଧିମାନ— 2. Intelligent; grasping. ୩ । ବିଜ୍ଞ— 3. Wise. ୪ । ବିବେଚକ—4. Considerate.

**ସମ(ମୁ)ଜ ପଡ଼ିବା**—ଦେ.କ୍ରି—(କୌଣସି ବିଷୟ) ବୋଧଗମ୍ୟ ହେବା; Sama(mu)ja pardibā ବୁଝାଯିବା—To be under- বুঝাযাওয়া समझमें आना stood; to be compre- hended.

**ସମ(ମୁ)ଜରେ ଆଣିବା**—ଦେ॰ କ୍ରି—୧ । ବୁଝିବା; ହୃଦୟଙ୍ଗମ Sama(mu)jare ānibā କରିବା—1. To under- বুঝা, হৃদয়ঙ্গম করা stand; to comprehend. समझमें लाना ୨ । ବୁଝିବାକୁ ଚେଷ୍ଟା କରିବା—2. To try to understand.

**ସମ(ମୁ)ଜରେ ଆସିବା**—ଦେ. କ୍ରି—ବୁଝାଯିବା; ହୃଦୟଙ୍ଗମ ହେବା— Sama(mu)jare āsibā To be understood. বুঝাযাওয়া समझमें आना

**ସମ(ମୁ)ଜ(ଝ)ସ**—ଦେ. ବି (ସଂ. ସାମଞ୍ଜସ୍ୟ)—୧ । ସମାଧାନ— Sama(mu)ja(jha)sa 1. Accomplishment. ୨ । মিটিমাট, সামঞ্জস্য ସାମଞ୍ଜସ୍ୟ; ମିଟ୍ମାଟ୍; ବିବାଦଭଞ୍ଜନ— समंजस 2. Reconciliation; conciliation. ୩ । ସମଜାଇବା; ବୁଝାଇବା—3. Explaining a matter. ବିଣ. (ସଂ. ସମଞ୍ଜସ)—୧ । ଯୁକ୍ତିଯୁକ୍ତ সুসঙ্গত, সমঞ্জস ସୁସଙ୍ଗତ; ସମୀଚୀନ—1. Reasonable; सुसंगत rational. ୨ । ସମୁଚିତ; ଉଚିତ—2. Proper.

**ସମ(ମୁ)ଜସ କରିବା**—ଦେ॰ କ୍ରି—୧ । କୌଣସି ବିବାଦକୁ ସମାଧାନ Sama(mu)jasa karibā କରିବା—1. To bring about মিটিমাট করা a reconciliation of any dispute. समंजस करना ୨ । ବୁଝାଇବା; ସମଜାଇବା—2. To समझाना explain.

ସମ(ମୁ)ଝା—ଦେ·ବ ( ସ. ସମ୍=ସମ୍ୟକ୍ ଓ ଜ୍ଞା ବା ଧ୍ୟୈ ଧାତୁ= Sama(mu)jhā ଜାଣିବା)—ବୁଝିବା, ସମଝିବା—Understanding; comprehending. ବଣ-ସମଝଦାର(ଦେଖ) ବୁଝା, ସମଝା ସମଝ —Samajadāra (See)

ସମ(ମୁ)ଝା(ଝା,ଝେ,ଜେ)ଇବା—ଦେ· କ୍ରି (ସଂ. ସମ+ଜ୍ଞପନ;ସମଝିବା Sama(mu)jhā(jhā, jhe, je)iba ର ଣିଜନ୍ତ ରୂପ)—୧। ବୁଝାନ, ସମ(ମୁ)ଝା(ଝା)ନ ହୃଦୟଙ୍ଗମ କରାଇବା; ବୁଝାଇବା; ବୋଧଗମ୍ୟ ସମଝାନା କରାଇବା—1. To cause to understand; to make a person understand or grasp a matter. (ଉ—ତପବ୍ରତେ ସେହ ତାହାଙ୍କୁ ସମଝାଅ। କୃଷ୍ଣସିଂହ. ମହାଭାରତ।) ୨। ଅର୍ଥ ବୁଝାଇବା—2. To explain the meaning. ୩। ସ୍ପଷ୍ଟ ବା ବିସ୍ତରରୂପେ କହିବା—3. To speak in detail. (ଉ—ମୁହିଁ ଅନସ୍ଥାନ କରି ବୁଝି ପାରୁ ନାହିଁ, ତୁମ୍ଭେ ବୋଧି ଲୋଡ଼ି କହି ମୋତେ ସମଝାଇ। ତୁଳସୀ ବନ୍ଧମ ସ୍ୱାମାୟଣ।) ୪। ପ୍ରବର୍ତ୍ତାଇବା; ମନାଇବା—4. To persuade. (ଉ—ସେନ ସେନାକୁ ଯାଇ, କହିବା ସମଝାଇ। କବିସୂର୍ଯ୍ୟ· ବଳଦେବ ରଥ ଚମ୍ପୁ ର ଗୀତ।)

ସମ(ମୁ)ଝା(ଜି)—ଦେ. ବଣ. ପୁଂ—ସମଝଦାର (ଦେଖ) Sama(mu)jhā(ji) Samajadāra. (See) (ସମଝଅ—ଅନ୍ୟରୂପ) [ସମଝା, ସମଝେଇ—ସ୍ତ୍ରୀ]

ସମ(ମୁ)ଝାଇସ—ଦେ. ବ—୧। ସମଝସ (ଦେଖ)—1. Samajasa. Sama(mu)jhāisa (See) ୨। କୈଫିୟତ୍; ବ୍ୟାଖ୍ୟା—(ସମ୍[ମୁ]ଝାସି—ଅନ୍ୟରୂପ) 2. Explanation.

ସମ ଜାତି—ସଂ. ବ (କର୍ମଧା)—ଏକ ଶ୍ରେଣୀ—One and the Sama jāti same class. ବଣ (ବହୁବ୍ରୀହି)—ସମ ଜାତୀୟ (ଦେଖ)—Samajātiya. (See)

ସମ ଜାତୀୟ—ସଂ. ବଣ (ସମଜାତି+ଈୟ)—୧। ଏକଜାତୀୟ—Sama jātiya 1. Of one or the same class. ୨। (ସମ ଜାତୀୟା—ସ୍ତ୍ରୀ) ତୁଲ୍ୟ ଜାତି ବିଶିଷ୍ଟ—2. Of similar or equal caste; homogenous.

ସମ(ମୁ)ଝା(ଝା) ସମ(ମୁ)ଝି(ଝି)—ଦେ· ବ—୧। ଉତ୍ତମରୂପେ Sama(mu)jhā(jhā) sama(mu)ji(jhi) ବୁଝାଇବା—ବୁଝାବୁଝି, ସମଝାସମଝି 1. Clearly explaining a ସମଝା ସମଝି matter. ୨। ପରସ୍ପରକୁ ବୁଝାଇବା; ବୁଝାବୁଝି—3. Mutual explanation. ୩। ପରସ୍ପରର ଅର୍ଥ ପରସ୍ପର ବୁଝିବା—2. Mutual understanding of each other's meaning.

ସମଝି(ଝି)—ଦେ. ବଣ. ପୁଂ—ସମଝା ବଣ (ଦେଖ) Samaji(jhi) Samajā-adj. (See) (ସମଝି[ଝି]ଅ—ଅନ୍ୟରୂପ) [ସମଝା, ସମଝେଇ—ସ୍ତ୍ରୀ]

ସମ(ମୁ)ଝି(ଝି)ବା—ଦେ.କ୍ରି (ସଂ·ସମ୍=ସମ୍ୟକ୍+ଜ୍ଞା+ବା ଧ୍ୟୈ ଧାତୁ) Sama(mu)ji(jhi)bā —୧। ଠିକ୍‌ଭାବରେ ବିଷୟର ବୁଝା, ସମ(ମୁ)ଝା(ଝା) ତଥ୍ୟକୁ ଉତ୍ତମରୂପେ ବୁଝିବା; ହୃଦୟଙ୍ଗମ ସମଝନା କରିବା—1. To thoroughly understand or grasp a thing. (ଉ—ସମଝିଲ ନାହିଁ ନୃପତି କଥା। କବିସୂର୍ଯ୍ୟ. କବିତା।) ୨। ଅର୍ଥ ବୁଝିବା—2. To comprehend the meaning of a thing. (ଉ—ସମଝିଲ ନାହିଁ ପ୍ରକାଶ ଭାଷା। କବିସୂର୍ଯ୍ୟ. କବିତା।) ୩। (ସଂ. ସମଞ୍ଜ· ଧାତୁରୁ) ପରସ୍ପରର ଅର୍ଥ ବୁଝିଦେବା—3. To have a mutual clear understanding. [ଉ—ବିବାହମଣ୍ଡପରେ ପୁରୋହିତ ବରକନ୍ୟାଙ୍କୁ ସମ୍ବୋଧନ କରି କହନ୍ତି; 'ସମଞ୍ଜନ୍ତୁ' ସମଞ୍ଜଥା' ଅର୍ଥାତ୍ ତୁମ ଦୁହିଙ୍କର ପରସ୍ପରକୁ ବିବାହ କରିବାରେ ଇଚ୍ଛା ଅଛି କି ନାହିଁ, ଦୁହେଁ ଉତ୍ତମରୂପେ ବୁଝିନିଅ।]

ସମ(ମୁ)ଝି ହେବା—ଦେ·କ୍ରି (ସମୁଝିବାର କର୍ମବାଚ୍ୟ)—ବୁଝି ହେବା—Sama(mu)ji hebā To be understood or comprehended. (ଉ—ସାଗର ବୋଲିଲେ କନ୍ୟା। ସମଝି ସମଝା ଯାଓଯା ସମଝ ହୋନା ହୁଅଇ। ପ୍ର ଚୀ ବ୍ରହ୍ମକରୂପଗୀତା।)

ସମ(ମା)ଜ୍ଞା—ସଂ. ବ (ସମ=ସକଳ+ଜ୍ଞା ଧାତୁ=ଜାଣିବା+କରଣ. Sama(mā)jñā ବାଚ୍ୟ)—Renown; reputation.

ସମଜ୍ୟା—ସଂ. ବ (ସମ୍=ଏକତ୍ର+ଅଜ. ଧାତୁ=ଗମନ କରିବା+ Samajyā ଅଧିକରଣ. ଯ+ଆ; ଯେଉଁଠାକୁ ସଭ୍ୟମାନେ ଏକତ୍ର ଯାଆନ୍ତି)—୧। ସମାଜ—1. Society. ୨। ସଭା—2. Association; assembly; meeting. ୩। (+କର୍ତ୍ତୃ ଯ+ଅ) କୀର୍ତ୍ତି; ଯଶଃ—3. Fame; renown.

ସମଝ(ଝା,ଝି)—ଦେ ବ—ସମଜ (ଦେଖ) Samajha(jhā,jhi) Samaja (See)

ସମଞ୍ଜସ—ସ. ବଣ (ବହୁବ୍ରୀହି; ସମ୍=ସଂପୂର୍ଣ୍ଣ+ଅଞ୍ଜସ=ଔଚିତ୍ୟ ବା Samañjasa ଯାଥାର୍ଥ୍ୟ ଯାହାର ଅଥବା ସମ୍=ସମ୍ୟକ୍+ଅଞ୍ଜସା=ସତ୍ୟ, ଯାଥାର୍ଥ୍ୟ ଯାହାର)—୧। ସମୀଚୀନ; ସମ୍ୟକ୍ ଉଚିତ; ସମୁଚିତ—1. Proper; right. ୨। ଉପଯୁକ୍ତ—2. Fit. ୩। ଅଭ୍ୟସ୍ତ—3. Habituated; practised. ୪। ଅନୁଭବୀ; ଅଭିଜ୍ଞ—4. Experienced. ୫। ସୁପରିଚିତ—5. Well known; acquainted. ୬। ସୁଜନ—6. Good; honest. ୭। ଉତ୍ତମ; ଉତ୍କୃଷ୍ଟ—7. Good; excellent. ୮। ଠିକ୍; ଯଥାର୍ଥ; ଅଭ୍ରାନ୍ତ—8. Right; just. ୯। ସତ୍ୟ—9. True; correct. ୧୦। ସଂପୂର୍ଣ୍ଣରୂପେ ମିଳି ଯାଉଥିବା—10. Coinciding. ୧୧। ତୁଲ୍ୟ; ସଦୃଶ; ସମାନ—11. Equal; similar. ସଂ.ବ—୧। ଅପୋସରେ ମିଳାମିଶା; ବିବାଦର ସମାଧାନ; ମେଣ୍ଟାମେଣ୍ଟି—1. Settlement of a dis-

pute; amicable settlement. ୨ । ସ୍ଥିର-ସିଦ୍ଧାନ୍ତ—2. Decision. ( ଉ—ଜନ୍ୟା କରନ୍ତି ଭୁଲଶୀଳରୂପ ବଧୂକୁ, ସବୁ ଦେଖି ବରଙ୍କୁ କରିବା ସମଞ୍ଜସ । ଭୁଲସୀ. ବନମ ସ୍ୱାମ୍ୟୁଣ । ) ୩ । ସୁଜନ ବ୍ୟକ୍ତି—3. Virtuous person. ୪ । ଉତ୍ତମ ବ୍ୟକ୍ତି—4. Good or excellent person. ୫ । ଉପଯୋଗିତା; ଉପଯୁକ୍ତତା—5. Fitness, propriety; appropriateness. ୬ । ଯାଥାର୍ଥ୍ୟ—6. Correctness. ୭ । ସପୂର୍ଣ୍ଣରୂପେ ମିଳନ—7. Coincidence; close union. ୮ । ଦୁଇ ଜଣଙ୍କର ପରସ୍ପର ବୁଝାବୁଝି ହେବା ପରେ ମୀମାଂସା—8. Settlement of a matter after mutual explanation or understanding.

ସମଞ୍ଜସୀଭୂତ—ଙ୍ଗ. ବଣ (ସମଞ୍ଜସ+ଅଭୂତ ଭାବେ ଚ [ଚ୍ଚି]+ଭୂତ) Samañjasibhūta —୧ । ସମ୍ପୂର୍ଣ୍ଣ ରୂପେ ମିଳିତ—1. United; joined together. ୨ । ବିବାଦ ମେଣ୍ଟିବାପରେ ପରସ୍ପର ସହିତ ମିଳିତ;ସମ୍ମିଳିତ—2. Reconciled. ୩ । ଯେଉଁ ପରି ଅବସ୍ଥାରେ ବା ସ୍ଥାନରେ ଅବସ୍ଥିତ ଥିଲେ ପରସ୍ପର ପରସ୍ପରର କଷ୍ଟ ହାନି ନାହିଁ ସେହିପରି ଅବସ୍ଥିତ—3. So situated as not to be harmful to one another. ୪ । ପରସ୍ପର ପ୍ରତି ସୁବିଧାଜନକ ଭାବରେ ଅବସ୍ଥିତ—4. Appropriately or conveniently situated as regards each other.

ସମଣ୍ଠ—ସ. ବ (ବୈଦ୍ୟକ)—ଗମ୍ଭୀର; ସମଷ୍ଠିଳା ( ଦେଖ ) Samaṇṭha Samashṭhilā ( See)

ସମ ତଟ—ସ. ବ (ବହୁବ୍ରୀହି; ସମ+ତଟ)—ସମୁଦ୍ର ତୀରବର୍ତ୍ତୀ ଦେଶ-Sama taṭa ଭାଗ (ବିଶ୍ୱକୋଷ)—The country along the sea coast.

ସମ ତଳ—ସ. ବ (କର୍ମଧା; ସମ=ସମାନ+ତଳ)—୧ । ସମାନ ଭୂମି Sama taḷa —1. A level ground. ୨ । ଅବନ୍ଧୁର ଭୂମି—2. Even ground; plain surface. ବଣ (ବହୁବ୍ରୀହି; ସମାନ ଅଟେ ତଳ ଯାହାର)—ଯାହା ଉଚ୍ଚନୀଚ ନୁହେଁ; ଅବନ୍ଧୁର—Even; level; plane.

ସମତା(ତ୍ୱ)—ସ. ବ (ସମ+ଭାବାର୍ଥେ ତା; ତ୍ୱ)—୧ । ଏକରୂପତା—Samatā(twa) 1. Identity; sameness. ୨ । ଅବନ୍ଧୁରତା—2. Evenness; levelness. ୩ । ସାମ୍ୟ; ତୁଲ୍ୟତା—3. Equality.

ସମତି—ଗ୍ରା. ବ (ସଂ. ସମ୍ମତି)—ସମ୍ମତି; ରାଜି— Samati সমতি समति Consent; agreement.

ସମତିକ୍ରମ—ସଂ. ବ ( ସମ୍+ଅତିକ୍ରମ )—୧ । ସମ୍ୟକ ଲଂଘନ—Samatikrama 1. Transgression (Apte). (ସମତିକ୍ରାନ୍ତ—ବଣ) ୨ । ଛାଡ଼ିଦିବା—2. Omission (Apte).

ସମତିରିକ୍ତ—ସଂ. ବଣ (ସମ୍+ଅତିରିକ୍ତ)—ଅତ୍ୟଧିକ— Samatirikta Excessive; too much.

ସମତୀତ—ସ. ବଣ (ସମ=ସମ୍ୟକ୍+ଅତୀତ)—ସମ୍ୟକ୍‌ରୂପେ ଅତୀତ; Samatīta ଗତ; ବିଗତ—Past; gone.

ସମତୁଳ—ସ. ବଣ ( ବହୁବ୍ରୀହି; ସମ=ସମାନ ଅଟେ ତୁଳା=ତୁଳନା Samatuḷa ବା ଓଜନ ଯାହାର )—୧ । ସମାନ ଓଜନ-(ସମତୁଳା—ସ୍ତ୍ରୀ) ବିଶିଷ୍ଟ—1. Of the same or equal weight. ୨ । ତୁଳନାରେ ସମାନ—2. Equal in comparision. ୩ । ସମକକ୍ଷ—3. Similar, equal.

ସମ ତୁଲ—ଦେ. ବଣ—୧ । ( ସଂ. ସମତୁଳ ) ସମତଳ—Level; Sama tula plane. ୨ । ( ସଂ, ସମ ଓ ତୁଲ୍ୟ ) ଠିକ୍ সমতুল ସମାନ; ସବୁ ତୁଲ ( ୨ଟ ପଦାର୍ଥ )—2. Equal or समतुल similar to one another.

ସମତୁଲ(ଲେ)ଇବା—ଦେ. କ—ଉଚ୍ଚନୀଚ ଭୂମିକୁ ସମତଳ କରିବା— Samatulā(le)ibā To level an uneven surface. সমতল করা समतल करना

ସମତ୍ତ(ତ୍ୱ)—ଦେ. ବଣ ( ସଂ. ସମର୍ଥ )—୧ । ସମର୍ଥ—1. Able. Samatta(twa) ୨ । ଉପଯୁକ୍ତ—2. Fit. ୩ । ବଳଭୂତ; সমর্থ, সোমত্ত; সমত্ত ବଳବାନ୍—3. Strong. ୪ । ( ସ୍ତ୍ରୀ ) समरथ ସ୍ୱାମିଗୃହକୁ ଯାଇ ସେଠାରେ ସ୍ୱାମୀଙ୍କ ସଙ୍ଗେ ଘର କରିବା ପାଇଁ ଉପଯୁକ୍ତା (ଯୁବତୀ କନ୍ୟା)—4. ( a girl ) Who is fully developed and fit to live with her husband for consummation of marriage.

ସମତ୍ରୟ—ସ. ବ (ବୈଦ୍ୟକ)—ସମଭାଗ ଯୁକ୍ତ ହରିଡ଼ା, ଶୁଣ୍ଠି ଓ ଗୁଡ଼-Samatraya ତୁକ୍—(medicine) A mixture of myrobalan, dry ginger and cinnamon in equal proportions.

ସମ ତ୍ରିକୋଣ—ସ. ବ—ସମ ତ୍ରିଭୁଜ ( ଦେଖ ) Sama trikoṇa Sama tribhuja ( See )

ସମ ତ୍ରିଭୁଜ—ସ. ବ (କର୍ମଧା)—ସମବାହୁ ତ୍ରିଭୁଜ; ଯେଉଁ ତ୍ରିଭୁଜର Sama tribhuja ତିନି ଗୋଟି ଯାକ ବାହୁ ସମାନ— Equilateral triangle.

ସମତ୍ସର—ସ. ବଣ ପୁଂ ( ସହାର୍ଥ ବହୁବ୍ରୀହି; ସ+ମତ୍ସର )— Samatsara ମତ୍ସର ବିଶିଷ୍ଟ—Spiteful; envious. (ସମତ୍ସରା—ସ୍ତ୍ରୀ)

ସମଦ—ସ. ବଣ. ପୁଂ (ସହାର୍ଥ ବହୁବ୍ରୀହି, ସ+ମଦ)—୧ । ସଗର୍ବ— Samada 1. Proud. ୨ । ମତ୍ତତା ବିଶିଷ୍ଟ— (ସମଦା—ସ୍ତ୍ରୀ) 2. Intoxicated; furious. ୩ । କାମମଦ-(ସମଦେ—କ୍ରି. ବଣ. ରୂପ) ବିଶିଷ୍ଟ—3. Mad with rut (Apte). ୪ । ଅତି ଆନନ୍ଦିତ—4. Delighted; glad (Apte).

ସମଦେ—ସଂ. କି. ବଣ—ଗର୍ବସହକାରେ—Proudly.
Samade [ଦ୍ର—ସମସ୍ତ ମନ୍ତ୍ରୀ ସମଦେ କହୁ, ସକଳେ ଯେଉଁ ଯୁଦ୍ଧର ନାହିଁ । ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।]
সগর্বে গর্বিমে

ସମ ଦଣ୍ଡ—ଦେ.ବି (ଭୁଲନାକର—ସମଦନ=ବୈଦିକ ଅର୍ଥ, ଯୁଦ୍ଧ)—Sama danda ସେନା; ସୈନ୍ୟ—Army. [ଦ୍ର—ସମଦଣ୍ଡ ସେନା सेना ଯେଉଁଣେ ସେ ସକଳ ଅସ୍ତ୍ରେ, ପଶ୍ଚିମ ଦିଗକୁ ସ୍ନାନସେନ କଲ୍ପ କଲେ । ସାରଳା ଦାସ. ମହାଭାରତ ।]

ସମ ଦରଶନ—ଗ୍ରା. ବି ଓ ବଣ (ପଦ୍ୟ) (ସଂ. ସମ ଦର୍ଶନ)—ସମଦର୍ଶନ
Sama darasana (ଦେଖ)—Sama darsana ( See )

ସମ ଦରଶି—ଗ୍ରା. ବଣ (ସଂ. ସମଦର୍ଶୀ)—ସମଦର୍ଶୀ ( ଦେଖ )
Sama darasi Sama darsi ( See )
[ଦ୍ର—କୃଷ୍ଣର ସମ ସବୁ ଦୋଷରେ ରହନ୍ତ, ସମ ଦରଶିକି ସେ ଦୁଃଖର ପ୍ରାପତ । କୃଷ୍ଣସିଂହ. ମହାଭାରତ ।]

ସମ ଦର୍ଶନ—ସ. ବି (କର୍ମଧା)—୧ । ସବୁ ବିଷୟ ପ୍ରତି ଧୀର ସ୍ଥିର
Sama darsana ଯୁକ୍ତ ଦୃଷ୍ଟି—1. Moderate or calm view of every matter. ୨ । ଅପକ୍ଷପାତ ଦୃଷ୍ଟି—2. Impartial view of things. ୩ । ତତ୍ତ୍ୱ ଜ୍ଞାନ—3. Knowledge of the Essence of things. ୪ । ସବୁ ବିଷୟ ଓ ଲୋକ ପ୍ରତି ତୁଲ୍ୟ ଦୃଷ୍ଟି—4. Equal look or consideration for all.
ବଣ. ପୁଂ (ବହୁବ୍ରୀହି; ସମ=ସମାନ ଅଟେ ଦୃଷ୍ଟି=
(ସମ ଦର୍ଶନା—ବଣ. ସ୍ତ୍ରୀ) ଦର୍ଶନ ଯାହାର)—ସମଦର୍ଶୀ ( ଦେଖ )
Samadarsi ( See )

ସମ ଦର୍ଶିତା—ସ. ବି (ସମ ଦର୍ଶିନ୍+ଭାବ. ତା)—୧ । ଅପକ୍ଷପାତିତା—
Sama darsita 1. Impartiality. ୨ । ସ୍ଥିରଧୀରତା—2. Moderation in view. ୩ । ତୁଲ୍ୟଦର୍ଶିତା—3. Equal consideration for all.

ସମ ଦର୍ଶୀ—ସ. ବଣ.ପୁଂ(ସମ+ଦୃଶ୍ ଧାତୁ=ଦେଖିବା+କର୍ତ୍ତି. ଇନ୍;
Sama darsi ୧ମା. ୧ ବଚନ)—୧ । ଅପକ୍ଷପାତୀ; ଯେ ସବୁଙ୍କୁ
(ସମଦର୍ଶିନୀ—ସ୍ତ୍ରୀ) ଅପକ୍ଷପାତିତା ସହକାରେ ଦେଖେ ଏବଂ; ଭେଦଜ୍ଞାନରହିତ-1.Impartial in outlook; indifferent to all things. ୨ । ବିବେଚକ; ବିବେକୀ—2. Discerning; considerate; conscientious. ୩ । ଧୀର ସ୍ଥିର ବିଚାର ଯୁକ୍ତ—3. Moderate in view. ୪ । ଜ୍ଞାନୀ; ପଣ୍ଡିତ—3. Learned; wise. ୫ । ଆତ୍ମବୋଧସଂପନ୍ନ; ଆତ୍ମଜ୍ଞ—5. Self-knowing. ୬ । ତତ୍ତ୍ୱ ଜ୍ଞ—6. Acquainted with true knowledge of things. ୭ । ସୁଖ-ଦୁଃଖ,ଶତ୍ରୁ—ମିତ୍ର,ନିନ୍ଦା—ସ୍ତୁତି,ପଣ୍ଡିତ—ମୂର୍ଖ,ବ୍ରାହ୍ମଣ—ଚଣ୍ଡାଳ ଆଦିଙ୍କ ପ୍ରତି ଏକ ଦୃଷ୍ଟି ସଂପନ୍ନ—7. Looking on or regarding everything with equanimity; viewing everything r being equally. (ଭଗବଦ୍ ଗୀତା—୫।୧୮)

ସମ ଦଳକ—ସ. ବି. (ଅଧୁନିକ ବିଜ୍ଞାନ ପରିଭାଷା; ସମ=ସମାନ+ଦଳ
Sama dalaka =ପାଖୁଡ଼ା+କ)—ଯେଉଁ ଗେଣ୍ଡା ଶାମୁକାର ଦୁଇଟିଯାକ ପାଖୁଡ଼ା ସମାନ—Lamellibranchiata; having both the valves similar; bivalve (shell).

ସମ(ମୁ)ଦା(ଧା) ସମ(ମୁ)ଦି(ଧି)—ଦେ. ବି.(ସଂ.ସମନ୍ଧ ଓ ସମ୍ବନ୍ଧୀ)—ବିବାହ
Sama(mu)da(dha) sama(mu)di(dhi) ପରେ ବରଙ୍କ ଓ
বেয়াই মিলন କନ୍ୟାଙ୍କ ପିତା, ଅର୍ଥାତ୍ ଦୁଇ ସମ୍ବନ୍ଧୀଙ୍କ ମଧ୍ୟରେ
समधी मिलन ମିଳନ ଓ ଆଳାପ ଲୁପକ କର୍ମ(ଏଥିରେ କନ୍ୟାପିତା ବରପିତାଙ୍କୁ ନୂଆ ଲୁଗା ପିନ୍ଧାନ୍ତି ଓ କିଛି ଉପହାର ଦେଇ ଦୁହେଁ ଦୁହିଙ୍କୁ ଆଲିଙ୍ଗନ କରନ୍ତି)—The act of the bridegroom's and the bride's fathers embracing and befriending each other after the marriage is over.

ସମଦି(ଧି)—ଦେ ବ. ପୁଂ—ସମୁଦି ( ଦେଖ )
Samadi(dhi) Samudi ( See )
[ସମଦୁ(ଧୁ)ଣୀ—ସ୍ତ୍ରୀ] [ଦ୍ର—ତାଙ୍କ ସମଦୁଣୀମାନେ ତ ଅଳ ଆମ ଗୁରୁଙ୍କ ଆଶ୍ରମକୁ ଆସିଅଛନ୍ତି । ମଧୁସୂଦନ. ଉତ୍ତରରାମଚରିତ ।]

ସମ ଦୁଃଖ—ସଂ. ବଣ (ବହୁବ୍ରୀହି)—୧ । ସମାନ ଭୁପେ ଦୁଃଖ ଭୋଗ
Sama duhkha କରୁଥିବା—1. Suffering similarly;
(ସମଦୁଃଖା—ସ୍ତ୍ରୀ) fellow-sufferer. ୨ । ଯାହାର ଅନ୍ୟର ଦୁଃଖରେ ସହାନୁଭୂତ ଥାଏ—2. Feeling for another's woe; sympathising (Apte).

ସମ ଦୁଃଖ ସୁଖ—ସଂ. ବଣ. ପୁଂ ( ବହୁବ୍ରୀହି )—୧ । ଦୁଃଖ ଓ ସୁଖ
Sama duhkha sukha ଯାହା ଦୃଷ୍ଟିରେ ସମାନ (ବିଶ୍ୱକୋଷ;
(ସମ ଦୁଃଖ ସୁଖା—ସ୍ତ୍ରୀ) ଗୀତା ୨।୧୫)—1. Looking on misery and happiness with the same eye. ୨ । ଦୁଃଖରେ ଓ ସୁଖରେ ଭାଗଦାର୍—2. Partner in joy and sorrow (Apte).

ସମ ଦୃଶ୍(ଷ୍ଟି)—ସଂ. ବ (ସମ+ଦୃଶ୍ ଧାତୁ+କର୍ତ୍ତି. କ୍ୱିପ୍; ସମ ଅଟେ
Samadrus(shti) ଦୃଷ୍ଟି ଯାହାର; ବହୁବ୍ରୀହି)—ସମଦର୍ଶୀ (ଦେଖ)—Samadarsi ( See )

ସମଦୃଶ—ଦେ. ବଣ (ପଦ୍ୟ)—ସଦୃଶ—Equal, similar. [ଦ୍ର—
Samadrusa କାହିଁ ଅଛନ୍ତି ସମଦୃଶ, କାଳ ନଗାଳ ଦୁମ୍ଭେ
সমান समदृश ଦଶ—ଜଗନ୍ନାଥ. ଭାଗବତ]

ସମଦ୍ୱାଦଶାସ୍ର—ସ. ବି ( ବହୁବ୍ରୀହି )—୧ । ଯେଉଁ ଦ୍ୱାଦଶଭୁଜ
Samadwadasasra କ୍ଷେତ୍ରର ବା ଚକ୍ରର ବାହୁମାନ ସମାନ
1. An equilateral dodecagon (Apte). ୨ । ଦ୍ୱାଦଶଟି ସମଭୁଜ ଓ ସମକୋଣ ବିଶିଷ୍ଟ ତଳ ବା ଘେର (ବିଶ୍ୱକୋଷ)—2. Dodecahedron.

ସମଦ୍ୱିଦ୍ୱିଭୁଜ—ସ. ବ (ବହୁବ୍ରୀହି)—ଯେଉଁ ଚତୁର୍ଭୁଜର ପରସ୍ପର
Samadwidwibhuja ବିପରୀତ ବାହୁଦ୍ୱୟ ସମାନ—Rhomboid.
(ସମଦ୍ୱିଭୁଜ—ଅନାଗ୍ରୁ)

**ସମଧ(ନ୍ଧ)**—ଗ୍ରା. ବି (ସଂ. ସମ୍ବନ୍ଧ)—୧ । ସମ୍ବନ୍ଧ; ସମ୍ପର୍କ—1. Relation; connection. ୨ । ବିବାହଦ୍ୱାରା କୁଟୁମ୍ବିତା ସମ୍ପର୍କ—2. Relationship by marriage. ବିଣ—ସମ୍ବନ୍ଧୀୟ; ସଂପର୍କୀୟ—Relating to [ବ୍ୟ—କରଣୀ ଲେଖାରେ ଏହି ଶବ୍ଦର ସାଙ୍କେତିକ । ସ ।]
Samadha(ndha)
ସମନ୍ଧ **समंध**

**ସମଧ(ନ୍ଧ) କରିବା**—ଦେ. କି—ବିବାହ ସମ୍ବନ୍ଧଦ୍ୱାରା କୌଣସି ବ୍ୟକ୍ତି ବା ବଂଶ ସଙ୍ଗେ କୁଟୁମ୍ବିତା ସ୍ଥାପନ କରିବା—To establish relationship with a person or family by marriage.
Samadha(ndha) kariba
ସମନ୍ଧକବା **सम्'धकरना**
**समंषांधना**
[ସମଧ ବାନ୍ଧିବା—ଅନ୍ୟରୂପ]

**ସମଧରାତଳ**—ସଂ. ବି (ଜ୍ୟାମିତି)—ଯେଉଁ ଧରାତଳର ପୃଷ୍ଠ ସଂପୂର୍ଣ୍ଣରୂପେ ସମତଳ—(Geometry) A plane (Apte). ବିଣ—ଏକ ସମତଳରେ ସ୍ଥିତ—Situated on the same plane.
Samadharātala

**ସମଧର୍ମୀ[ର୍ମି]**—ସଂ. ବିଣ—ସମାନ ଧର୍ମ ବିଶିଷ୍ଟ—Of the same dharma. [ଉ—ତେଲ ସମଧର୍ମୀ ହୁଇଯୋଗ ଏକ ମିଳ, ନନ୍ଦକିଶୋର—ଗୀତା ବୋଧ]
Samadharmā(rmi)

**ସମଧାନ**—ଗ୍ରା. ବି (ସଂ ସନ୍ଧାନ)—୧ । ସଂଧାନ—1. Investigation; search. ୨ । ସୁରାକ୍—2. Trace; clue.
Samadhāna
ସନ୍ଧାନ **समधान**

**ସମଧିକ**—ସଂ. ବିଣ—(ସମ୍=ସମ୍ୟକ୍+ଅଧିକ)—ଅତ୍ୟଧିକ; ଅତିରିକ୍ତ—Too much; excessive.
Samadhika

**ସମଧୃତ**—ସଂ. ବିଣ—ତୁଲ୍ୟରୂପ; ଏକରୂପ ବିଶିଷ୍ଟ; ଏକବିଧ—Same; similar; equal.
Samadhruta

**ସମଧେ**—ଗ୍ରା. ଅ—(ଅମୁକର) ସମ୍ବନ୍ଧରେ ବା ସଂପର୍କରେ ବା ବିଷୟରେ—In relation to (so and so); with reference to (so and so); relating to (such or such matter).
Samadhe
ସମନ୍ଧେ **सम'धमें**
**समंधमे**

**ସମଧ୍ୱ**—ସଂ. ବିଣ. ପୁଂ (ବହୁବ୍ରୀହି, ସମ=ସମାନ ହୋଇଅଛି ଅଧ୍ୱା =ପଥ ଯାହାର)—୧ । ସମ ଯାତ୍ରିକ; ସହଯାତ୍ରୀ; ଏକତ୍ର ଭ୍ରମଣକାରୀ—1. Travelling together. ୨ । ଯାତ୍ରା କାଳୀନ ସହଚର—2. Accompanying a person during his journey.
Samadhwa
[ସମଧ୍ୱା—ସ୍ତ୍ରୀ]

**ସମନ[ନ୍ସ]**—ବୈଦେ. ବି—(ଇଂରାଜୀ)—[ଇଂ ସମ୍ମନ୍ସ]—ନିର୍ଦ୍ଦିଷ୍ଟ ତାରିଖରେ ଜବାନବନ୍ଦୀ ଦେବା ପାଇଁ କିମ୍ବା ଦଲିଲ ଦାଖଲ କରିବାପାଇଁ ବା ବିଚାରାଳୟରେ ହାଜର ହେବା ପାଇଁ ମୁଦାଲ ବା ଅସାମୀ ବା ସାକ୍ଷୀଙ୍କ ପ୍ରତି ବିଚାରାଳୟର ମୋହର ଓ ଦସ୍ତଖତ ସହିତ ପଠାଯିବା ଆଦେଶପତ୍ର—Summons to a witness or defendant or accused. [ବ୍ୟ—ସମନ ଅନେକ ପ୍ରକାରର—ଯଥା, ସାକ୍ଷୀ ସମନ, ମୁଦାଲ ସମନ, ପ୍ରତିବାଦୀ ସମନ, ସାଦାସମନ । ]
Saman(ns)
ସମନ **समन**

**ସମନ କରିବା**—ଦେ. କି (ଇଂରାଜୀ)—ସାକ୍ଷୀ, ପ୍ରତିବାଦୀ ବା ଅସାମୀକୁ ନିର୍ଦ୍ଦିଷ୍ଟ ତାରିଖରେ ହାଜର ହେବା ପାଇଁ ତା ପାଖକୁ ପରୱାନା ପଠାଇବା ବା ତାକୁ ତଲବ କରିବା—To summon a witness or an accused or a defendant. [ବ୍ୟ—ଅଦାଲତ ସାକ୍ଷୀଙ୍କ ବା ପକ୍ଷଙ୍କ ସମନ କରନ୍ତି ଓ ପକ୍ଷ ନିର୍ଦ୍ଦିଷ୍ଟ ସାକ୍ଷୀକୁ ବା ଅପର ପକ୍ଷଙ୍କୁ ଅଦାଲତଙ୍କ ଦ୍ୱାରା ସମନ କରାନ୍ତି । ]
Saman kariba
ସମନକରা **समनकरना**
(ସମନ କରାଇବା—ଣିଜନ୍ତରୂପ)

**ସମନ ଖରଚ**—ବୈଦେ. ବି (ଇଂରାଜୀ)—୧ । ସମନ ଜାରି କରାଇବା ପାଇଁ ସରକାରଙ୍କ ପାଖରେ ପ୍ରାର୍ଥୀର ଜମାଦେଇ କରିବା ସବୁ ପ୍ରକାରର ଖରଚ [ଯଥା—ସାକ୍ଷୀଙ୍କ ଖୋରାକ ଓ ରାହା ଖର୍ଚ୍ଚ] 1. Expenses deposited for the issue of summons. ୨ । ସମନ ଦିଆଦି (ଦେଖ)—2. Saman miādi (See)
Samana kharachā
ସমনখবচা **समनखरचा**
(ସମନ ଖର୍ଚ୍ଚ—ଅନ୍ୟରୂପ)

**ସମନ ଖୁ(ଖୋ)ରାକୀ**—ବୈଦେ. ବି (ଇଂରାଜୀ)—ସାକ୍ଷୀ ନାମରେ ସମନ କରାଯିବା ସମୟରେ ତାହାର କଚେରୀକୁ ଆସିବା ଉପଲକ୍ଷରେ ଖାଇବା ଖରଚ, ଯାହା ସମନ କରାଯିବାପାଇଁ ଦରଖାସ୍ତ ସଙ୍ଗେ ଦାଖଲ ହୁଏ—Diet expenses of a witness, deposited with a petition for issue of summons.
Saman khu (kho) rāki
ସমনখোবাকী **समनखुराकी**

**ସମନ ଜାରି**—ବୈଦେ. ବି (ଇଂରାଜୀ)—ଯେଉଁ ବ୍ୟକ୍ତିକୁ ସମନ କରାଯାଏ ତାହା ନିକଟରେ ଉକ୍ତ ସମ ନ ପହଞ୍ଚାଇ ତାକୁ ଜଣାଇବା—Service of a summons. [ବ୍ୟ—ଆଇନ ଅନୁସାରେ ଯେଉଁ ବ୍ୟକ୍ତିକୁ ଅଦାଲତରେ ହାଜର ହେବା ପାଇଁ ସମନ କରାଯାଏ ଉକ୍ତ ସମନ ସ୍ୱୟଂ ସେ ବ୍ୟକ୍ତି ଉପରେ କିମ୍ବା ତାହାର କ୍ଷମତାପ୍ରାପ୍ତ ଏଜେଣ୍ଟ ଉପରେ ଜାରି କରାଯାଏ କିମ୍ବା ତାହାର ଏକାନ୍ନବର୍ତ୍ତୀ ପରିବାରର କୌଣସି ସାବାଳକ ବ୍ୟକ୍ତି ଉପରେ ଜାରି କରାଯାଏ; କିମ୍ବା ସେ ନିଜେ ଘରେ ନ ମିଳିଲେ କିମ୍ବା ସମନ ନେବାକୁ ତା ପରିବାରର ଅନ୍ୟ କେହି ଉପଯୁକ୍ତ ବ୍ୟକ୍ତି ନ ମିଳିଲେ ତାହାର ବାସଗୃହର ସଦର ଦରଜାରେ ପିଆଦା ସମନକୁ ଟାଙ୍ଗିଦିଏ । ]
saman-jāri
ସମনজারি **समनजारी**

**ସମନ ଜାରି ରିଟନ(ର୍ଣ୍ଣ)**—ବୈଦେ. ବି (ଇଂରାଜୀ) ସମନ ରିଟନ (ଦେଖ)—Samana ritan (See)
Saman-jāri ritan (rņņ)

**ସମନ ବାହାର କରିବା**—ଦେ. କି (ଇଂରାଜୀ)—କୌଣସି ବ୍ୟକ୍ତି ହାଜର ହେବା ପାଇଁ ତାହାର ନିକଟକୁ ଅଦାଲତରୁ ପିଆଦା ଦ୍ୱାରା ସମନ ପଠାଯିବାର ବନୋବସ୍ତ କରିବା—To have a summons issued from a c...
Saman bāhāra kariba
ସমন বাহিবকরা **समननिकालना**

**ସମନ୍ ବାହାରିବା**—ଦେ· ବ (କଚରୀଅ)—ଅଦାଲତରୁ ଯିଥିବା
Saman bāhāribā ଦ୍ୱାରା କର୍ତ୍ତିଷ୍ଟ ବ୍ୟକ୍ତ ଜବାବ ସମନ
সমন বাহিরহওয়া ପ୍ରେରିତ ହେବା—Issue of summons.
समननिकलना

**ସମନ୍ ମିଆଦ**—ବୈଦେ· ବ (କଚରୀଅ)—ତଲବନା ମିଆଦ; ତଲ-
Saman miādi ବାନା; କୌଣସି ବ୍ୟକ୍ତ ଉପରେ ସମନଜାରି
সমন মেয়াদি समनस्यादी କରିବା ପାଇଁ ସରକାରଙ୍କର
ଯେଉଁ ଖରଚ ହୁଏ ତହିଁ ପାଇଁ ପ୍ରାର୍ଥୀ ସରକାରଙ୍କ
ନିକଟ ଅଗଭୁର କର୍ତିଷ୍ଟ ପରିମାଣରେ କୋର୍ଟଫିସ୍ ଦ୍ୱାରା
ଯେଉଁ ଖରଚ ଦାଖଲ କରେ—Process fees for
the service of summons, deposited by
the party who applies for the issue of
summons.

**ସମନ୍ ରିଟନ (ର୍ଣ୍ଣ)**—ବୈଦେ, ବ (କଚରୀଅ)—ସମନଜାରି ରିଟନ୍;
Saman ritan (rṇṇ) ଯିଥିବା ଅଭିପ୍ରେତ ବ୍ୟକ୍ତ ଉପରେ
সমন রিটান্ समनवापस ସମନଜାରି କରି ସାର, କପରି
ଭାବରେ ସମନଜାରି କରାଗଲା, କଏ କଣାଣ ହେଲା,
ଏହା ବର୍ଣ୍ଣନା କରି କୋର୍ଟରେ ଦାଖଲ କରିବା ରିପୋର୍ଟ୍—
Return of service of a summons.

**ସମନନ୍ତର**—ସଂ· ବଣ. (ସମ୍+ଅନନ୍ତର)—ଅବ୍ୟବହିତ ପରବର୍ତ୍ତୀ
Samanantara (ଭାଗବତ)-Immediately succeeding.

**ସମନାଥ**—ଗ୍ରା. ବ—(ସଂ ସୋମନାଥ)—୧ । ସୋମନାଥର ଡାକନାମ-
Samanātha 1.Nickname for calling Somanātha.
সমনাথ सोमनाथ ୨ । ହାତର ଅଳଙ୍କାର ବିଶେଷ—2.
A kind of ornament for the hand. [ଉ—
ଖଞ୍ଜି କରେ ଚୂଡ଼ ଗୁଞ୍ଜିର ବନ୍ଧ ସମନାଥ ଗରଗଡଅ—
ପ୍ରାଚୀ. ରହସ୍ୟମଞ୍ଜରୀ ]

**ସମନାଥ ବ୍ରତ**—ଗ୍ରା. ବ—ସୋମନାଥ ବ୍ରତ (ଦେଖ)
Samanātha brata Somanātha brata. (See)

**ସମନୁଜ୍ଞା**—ସଂ. ବ (ସମ୍+ଅନୁଜ୍ଞା)—ସମ୍ପୂର୍ଣ୍ଣ ଅନୁମତି—
Samanujñā Full approval or concurrence.
(ସମନୁଜ୍ଞାତ—ଅନ୍ୟରୂପ) [ସମନୁଜ୍ଞାତ—ବଣ]

**ସମନୁବ୍ରତ**—ସଂ· ବଣ. ପୁଂ ( ସମ୍+ଅନୁ+ବ୍ରତ )—ସଂପୂର୍ଣ୍ଣରୂପେ
Samanubrata ଅନୁଗତ—Completely devoted to
(ସମନୁବ୍ରତା—ସ୍ତ୍ରୀ) or attached to.

**ସମନ୍ତ**—ସଂ. ବ (ସମ୍+ଅନ୍ତ)—୧ । ଶେଷଭାଗ—1. End;
Samanta extremity. ୨ । ସୀମା—2. Boundary.
୩ । ସମୁଦାୟ—3. All; whole. ସଂ. ବଣ—୧ ।
ସମ୍ପୂର୍ଣ୍ଣ—1. Complete; entire. (Apte) ୨ ।
ବିଶ୍ୱଜନୀନ—2. Universal. (Apte). ସର୍ବନାମ—
ସମସ୍ତ; ସକଳ—Whole; all. କ୍ରି. ବଣ—୧ ।
ଚତୁର୍ଦ୍ଦିଗରେ—1. On all sides. ୨ । ପୂର୍ଣ୍ଣରୂପେ—
2. Entirely; completely.

**ସମନ୍ତତଃ**—ସଂ. ଅ. କ୍ରି· ବଣ ( ସମନ୍ତ+ତସ୍ ବିଭକ୍ତିରେ ଭସ୍ )—
Samantatah ୧ । ସମନ୍ତାତ୍; ସବୁଆଡ଼ୁ; ସବୁ ଦିଗରୁ—
1. From all sides. ୨ । ଚାରିଆଡ଼େ; ସବୁଆଡେ;
ସର୍ବତ୍ର—2. On all sides; everywhere.
୩ । ସମ୍ପୂର୍ଣ୍ଣରୂପେ—3. Wholly; altogether.

**ସମନ୍ତ ଦୁଗ୍ଧା**—ସଂ. ବ ( ବୈଦ୍ୟକ; ବହୁବ୍ରୀହି; ସମନ୍ତ=ପ୍ରାନ୍ତଭାଗରେ
Samanta dugdhā ଦୁଗ୍ଧ=କ୍ଷୀର ଅଛି ଯାହାର )—ସିଝୁ
ଗଛ; ନୁହୀ ବୃକ୍ଷ—The Euphorbia tree.

**ସମନ୍ତ ପଞ୍ଚକ**—ସଂ. ବ ( ବହୁବ୍ରୀହି; ସମନ୍ତ=ଚାରିଆଡ଼େ+ପଞ୍ଚକ=
Samanta pañchaka ପାଞ୍ଚଗୋଟି ହ୍ରଦ ଯାହାର )—
କୁରୁକ୍ଷେତ୍ର ପ୍ରଦେଶର ନାମ—Name of the dis-
trict Kurukshetra. [ ଦ୍ର—ପରଶୁରାମ ୨୧ ଥର
କ୍ଷତ୍ରିୟମାନଙ୍କୁ ନିର୍ବଂଶ କରି କ୍ଷତ୍ରିୟ ରକ୍ତଦ୍ୱାରା ଚତୁର୍ଦ୍ଦିଗରେ
୫ ଗୋଟ ହ୍ରଦ ପୂର୍ଣ୍ଣ କରିଥିବାରୁ ଏହି ନାମ । ] [ଉ—
କ୍ଷତ୍ରିୟଙ୍କ ରକତେ ସମନ୍ତ ପଞ୍ଚକ । ଖଟେ ପାଞ୍ଚ ହ୍ରଦ
ସେଥ୍ରୁ ହୋଇ ନାୟକ—କୃଷ୍ଣସିଂହ. ମହାଭାରତ । ] ୨ ।
କୁରୁକ୍ଷେତ୍ରସ୍ଥ ତୀର୍ଥବିଶେଷ—2. Name of a holy
place at Kurukshetra. [ ଉ—ବହୁତ ତୀର୍ଥ
ମାନ ପରିକ୍ରମ କରି । ସମନ୍ତ ପଞ୍ଚକକୁ ମଧ୍ୟ ମୁଁ ଦେଖିଲି—
କୃଷ୍ଣସିଂହ. ମହାଭାରତ । ]

**ସମନ୍ତ ଭଦ୍ର**—ସଂ, ବ ( ସମନ୍ତ=ସମ୍ପୂର୍ଣ୍ଣରୂପେ+ଭଦ୍ର=ଭାଗ୍ୟବାନ୍ )—
Samanta bhadra ବୁଦ୍ଧଦେବଙ୍କର ନାମ—A name of
( ସମନ୍ତ ପ୍ରଶ୍ନ—ଅନ୍ୟରୂପ ) the Buddha.

**ସମନ୍ତଭୁକ୍**—ସଂ· ବ ( ସମନ୍ତ=ସମୁଦାୟ+ଭୁଜ ଧାତୁ=ଖାଇବା+
Samantabhuk କର୍ତ୍ତ୍ରି. କ୍ୱିପ୍; ସମନ୍ତଭୁଜ୍; ୧ମା. ୧ବ )—
ଅଗ୍ନି; ହୁତାଶନ—Fire. ବଣ—ସର୍ବଭକ୍ଷ—All-
eating; omnivorous

**ସମନ୍ତାତ୍**—ସଂ. ଅ. ଓ କ୍ରି· ବଣ—ସମନ୍ତତଃ ( ଦେଖ )
Samantāt Samantataḥ ( See )

**ସମନ୍ତ୍ରକ**—ସଂ. ବଣ ( ସ=ସହିତ+ମନ୍ତ୍ର+କ; ମନ୍ତ୍ର ସହିତ ବିଦ୍ୟ-
Samantraka ମାନ)—୧ । ମନ୍ତ୍ରଯୁକ୍ତ—1. Joined with
a mystic formula. ୨ । ମନ୍ତ୍ରପୂତ—
2. Hallowed with mystic incantations.

**ସମନ୍ତ୍ରିକ**—ସଂ· ବଣ ( ସ+ମନ୍ତ୍ରିନ୍+କ୍ )—ମନ୍ତ୍ରିଯୁକ୍ତ (ରାଜା)—
Samantrika Attended by minister.

**ସମନ୍ୱୟ**—ସଂ. ବ (ସମ୍=ସମ୍ୟକ୍+ଅନ୍ୱୟ=ସମ୍ବନ୍ଧ)—୧ । ସଂଯୋଗ;
Samanwaya ମିଳନ; ସଙ୍ଗତି; ସଙ୍ଗମ—1. Union; con-
nection. ୨ । ସମଭିବ୍ୟାହାର—2. Accom-
paniment; sequence. ୩ । ପ୍ରାୟଶ୍ଚିତ୍ତ କରିବା
ପରେ ପତିତ ବ୍ୟକ୍ତିର ସମାଜରେ ପୁନର୍ଗ୍ରହଣ—3. Re-ad-
mission of an excommunicated person
to the fold of his society after atone-
ment or expiation. ୪ । ଅବିରୋଧ; ଶାନ୍ତି—

4. Peace; concord. ୪ । ପ୍ରାକୃତିକ କାର୍ଯ୍ୟକାରଣ ସମ୍ବନ୍ଧ—5. Natural sequence; conneection with the suceeding object as a natural consequence. ୬ । ଧାରାବାହିକତା; କ୍ରମ—6. Regular succession; order (Apte).

ସମନ୍ୱିତ—ସଂ. ବିଣ ( ସମ୍+ଅନ୍ୱିତ )—୧ । ମିଳିତ; ସଂଯୁକ୍ତ—
Samanwita 1. Connected or joined with. ୨ । ସମଭିବ୍ୟାହାରଦ୍ୱାରା ଯୁକ୍ତ—2. Possessed of; accompanied by; followed by.

ସମନ୍ୟୁ—ସଂ. ବିଣ (ସ=ସହିତ+ମନ୍ୟୁ=କ୍ରୋଧ)—୧ । ସକ୍ରୋଧ;
Samanyu ସକୋପ; କୋପଯୁକ୍ତ—1. Angry; full of anger; wrathful. ୨ । ଦୁଃଖିତ—2. Sorrowful. ବି—ମହାଦେବ; ଶିବ—The God Siba.

ସମନ୍ଧ—ଗ୍ରା. ବି ( ସଂ. ସମ୍ବନ୍ଧ )—ସମ୍ବନ୍ଧ ( ଦେଖ )
Samandha Sambandha ( See )

ସମ(ମୁ)ନ୍ଧୀ—ଗ୍ରା. ବି. ପୁଂ—ସମୁଧୀ ( ଦେଖ )—Samudhi (See)
Sama(mu)ndhi [ ଉ—ଭାଇଭୋଜିରୁ ସମ୍ବନ୍ଧୀଙ୍କ ସ୍ୱଅବି
(ସମ[ମୁ]ନ୍ଧୁଣୀ—ସ୍ତ୍ରୀ) ଆସି ଓଳିଏ ହୋଇ ଦାଣ୍ଡ ଦୁଆରେ ବସିଲେଣି—ଫଗୀରମୋହନ. ଛ ମାଣ ଆଠ ଗୁଣ୍ଠ । ]

ସମ ପଦ—ସଂ. ବି ( ସମ=ସମାନ ହୁଏ ପଦ=ଚରଣ ଯହିଁରେ )—
Sama pada ୧ । ରତିବନ୍ଧବିଶେଷ ( ଶବ୍ଦକୋଷ )—
1. Name of a pose during coition. [ ଦ୍ର—ରମଣୀର ପାଦଦ୍ୱୟକୁ ସ୍ୱକୀୟ ହୃଦୟରେ ସ୍ଥାପନ କରି କରଦ୍ୱାରା ସ୍ତନଦ୍ୱୟପୀଡ଼ନ—ରତିମଞ୍ଜରୀ । ] ୨ । ଧନୁର୍ଦ୍ଧାରୀର ପାଦଦ୍ୱୟକୁ ତୁଲ୍ୟରୂପ ଧାରଣପୂର୍ବକ ଅବସ୍ଥାନବିଶେଷ—2. One of the various postures assumed by an archer. ୩ । ତୁଲ୍ୟ ପଦ ବା ଅବସ୍ଥିତି—3. Equal or similar position or grade.

ସମ ପଦସ୍ଥ—ସଂ. ବିଣ ( ସମପଦ+ସ୍ଥା, ଧାତୁ+କର୍ତ୍ତୃ. ଅ )—୧ । ତୁଲ୍ୟ
Sama padastha ରୂପ ପଦ ବା ପଦବୀ ଯୁକ୍ତ—1. Of equal
( ସମପଦସ୍ଥା—ସ୍ତ୍ରୀ ) position or grade. ୨ । ତୁଲ୍ୟ ସମ୍ମାନବିଶିଷ୍ଟ—2. Occupying equal position of respect.

ସମ ପାଦ—ସଂ. ବି—ସମପଦ ୨ ( ଦେଖ )—Samapada 2
Sama pāda ( See ). ସଂ. ବିଣ—୧ । ସମାନ ଚରଣ ବିଶିଷ୍ଟ—1. Having equal pāda or feet. ୨ । ଯେଉଁ ଛନ୍ଦର ଚାରି ପାଦ ସମାନ ( ଶବ୍ଦକୋଷ )—2. ( a metre ) Having the four feet equal.

ସମ ପାଦ ଯମକ—ସଂ. ବି ( ଅଳଙ୍କାର )—ଯମକବିଶେଷ—A kind
Sama pāda jamaka of alliteration. [ ଦ୍ର—ପଦର ଅନ୍ତ୍ୟରେ ଓ ଶେଷରେ ସମାନ ବାକ୍ୟବିନ୍ୟାସ ଥିଲେ ଏ ଯମକ ହୁଏ; ଯଥା—ହର ଛିବର ଧନ ସଦା କାହିଁର ମନ ହେବୁ ହରଷି ବରଧନ । ବଧୂଜୀବଜୀବନ ନୋହୁଲେ ତ କଦାନ ମୋର ଏଥି ସିଦ ଜୀବନ—ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି । ]

ସମ ପୃଷ୍ଠ—ସଂ. ବିଣ (ବହୁବ୍ରୀହି; ସମ=ସମାନ ଅଟେ ପୃଷ୍ଠ ଯାହାର)—
Sama prushtha ସମତଳ; ଅବନ୍ଧୁର—Level; smooth.
( ସମପୃଷ୍ଠତା—ବି )

ସମ ପ୍ରାଣ—ସଂ. ବିଣ. ପୁଂ ( ବହୁବ୍ରୀହି; ସମ ଅଟେ ପ୍ରାଣ ଯାହାର )—
Sama prāna ଏକ ପ୍ରାଣ; ଯାହାଙ୍କର ହୃଦୟ ଏକ; ସହୃଦୟ—
(ସମପ୍ରାଣା—ସ୍ତ୍ରୀ) Of one mind. ବି—ସୁହୃଦ୍—
(ସମପ୍ରାଣତା—ବି) A hearty friend.

ସମବକାର—ସଂ. ବି ( ସମ୍+ଅବ+କୃ ଧାତୁ+ଅଧି. ଅ, ଯହିଁରେ
Samabakāra ବହୁ ଅର୍ଥ ସମବକୀର୍ଣ୍ଣ ହୁଏ)—ନାଟକବିଶେଷ—
A kind of drama. [ ଦ୍ର—ନାଟକ ନାନା ପ୍ରକାର; ଯଥା—ନାଟକ, ପ୍ରକରଣ, ଭାଣ, ସମବକାର ଓ ଡିମ । ସମବକାରରେ ବହୁ ଅର୍ଥର ସମବକରଣ ଅର୍ଥାତ୍ ଏକତ୍ର ସନ୍ନିବେଶ ହେବାରୁ ଏହି ନାମ ହୋଇଅଛି । ଦେବତା ବା ଅସୁରଙ୍କୁ ଆଶ୍ରୟ କରି କୌଣସି ପ୍ରସିଦ୍ଧ ବୃତ୍ତାନ୍ତ ଏଥିରେ ବର୍ଣ୍ଣିତ ହୁଏ । ଏହା ବୀରରସପ୍ରଧାନ, ଦେବାସୁର ଯୁଦ୍ଧ ବର୍ଣ୍ଣନା ଏଥିର ପ୍ରଧାନ ଉଦ୍ଦେଶ୍ୟ; ଏଥିର ଅଙ୍କ ସଂଖ୍ୟା ତିନ । ନାଟକର ପଞ୍ଚସନ୍ଧି ମଧ୍ୟରୁ କେବଳ ବିମର୍ଶ ସନ୍ଧି ଛଡ଼ା ଅନ୍ୟ ଚାରି ସନ୍ଧି ଏଥିରେ ଥାଏ । ଏଥିର ନାୟକ ଧୀରୋଦାତ୍ତ; ଏଥିରେ ଯୁଦ୍ଧକ୍ଷେତ୍ର, ଯୁଦ୍ଧ, ନଗରବିଦ୍ଧ୍ୱଂସ ବିଶଦରୂପେ ବର୍ଣ୍ଣିତ; ତିନି ଶୃଙ୍ଗାର ( ଶାସ୍ତ୍ରର ଅବିରୋଧରେ ଧର୍ମଶୃଙ୍ଗାର, ଅର୍ଥଲାଭାର୍ଥ କଳ୍ପିତ ଅର୍ଥଶୃଙ୍ଗାର ଓ କାମଶୃଙ୍ଗାର ) ଏଥିରେ ବର୍ଣ୍ଣିତ; କାମଶୃଙ୍ଗାର ପ୍ରଥମ ଅଙ୍କରେ ବର୍ଣ୍ଣିତ । ନାଟକ ପରି ପ୍ରବେଶକ ବା ବିନ୍ଦୁ ଏଥିରେ ନ ଥାଏ । ସାହିତ୍ୟ ଦର୍ପଣ ଗ୍ରନ୍ଥରେ 'ସମୁଦ୍ର ମନ୍ଥନ' ନାମକ ସମବକାର ନାଟକର ନାମ ଉଲ୍ଲେଖ ଅଛି—ଶବ୍ଦକୋଷ । ]

ସମବତାର—ସଂ. ବି ( ସମ୍=ସହିତ+ଅବ=ନିମ୍ନକୁ+ତୃ ଧାତୁ=
Samabatāra ପାରି ହେବା, ଗିବା+କରଣ. ଅ, ଯାହାଦ୍ୱାରା ତଳକୁ ଓହ୍ଲାଇ ଯାଅନ୍ତି )—୧ । ସୋପାନ; ସିଡ଼ିର ପାହାଚ—1. Steps of a staircase. ୨ । ( +ଭାବ. ଅ ) ଅବତରଣ; ଓହ୍ଲାଇବା—2. Descending, alighting. ୩ । ( +କର୍ମ. ଅ ) ପାରି ହେବା ଘାଟ; ତୀର୍ଥ—3. Landing place; landing stage; ferry.

ସମବଧାନ—ସଂ. ବି ( ସମ୍=ସମ୍ୟକ୍+ଅବଧାନ )—୧ । ବିଶେଷ
Samabadhāna ମନୋଯୋଗ—1. Close attention.
(ସମବହିତ—ବିଣ) ୨ । ନିଷ୍ପତ୍ତି; ମୀମାଂସା—
2. Decision; settlement.

ସମ ବୟଃସ୍ଥ—ସ. ବଣ. ପୁଂ—(ସମ=ସମାନ+ବୟଃ=ସ୍ଥା ଧାତୁ+
Samabayahstha କର୍ତ୍ତୃ.+ଅ)—ସମବୟସୀ;ଏକବୟସୀ—
(ସମବୟସ୍ଥ—ଅନ୍ୟରୂପ) Of the same age;
(ସମବୟଃସ୍ଥା; ସମବୟସ୍ଥ—ସ୍ତ୍ରୀ) coeval.

ସମ ବୟସ—ଦେ. ବଣ—ସମବୟଃସ୍ଥ—Of the same age.
Sama bayasa [ଜ୍ଞ—ସମବୟସ ଯେ ତୁମରେ ଛାଡୁଅଛନ୍ତି
सम वयसी ବାରୁ ତୋରେ । — ଜଗନ୍ନାଥ ଭାଗବତ ]
सम वयसी ଦେ. ବ—ଏକବୟସ—Same age.

ସମ ବୟସୀ—ଦେ. ବଣ. ପୁଂ ଓ ସ୍ତ୍ରୀ (ସ. ସମବୟଃସ୍ଥ)—ସମବୟଃସ୍ଥ
Sama bayasī (ଦେଖ)—Sama bayahstha (see).
सम वयसी सम वयसी (ସମବୟସିଅ—ଅନ୍ୟରୂପ)

ସମବର୍ଣ୍ଣ—ସଂ ବଣ (ବହୁବ୍ରୀହି)—ଏକ ବା ସମାନ ବର୍ଣ୍ଣ ବିଶିଷ୍ଟ—
Samabarṇṇa Of the same or similar barṇṇa.
(ସମବର୍ଣ୍ଣା—ସ୍ତ୍ରୀ) (ସମବର୍ଣ୍ଣତା—ବି)

ସମବର୍ତ୍ତୀ—ସଂ. ବଣ. ପୁଂ—(ସମ=ସମାନ+ବୃତ୍ ଧାତୁ=ରହିବା+
Sama barttī କର୍ତ୍ତୃ. ଇନ୍, ୧ମା ୧ବ)—ତୁଲ୍ୟରୂପେ ସ୍ଥିତ
(ସମବର୍ତ୍ତିନୀ—ସ୍ତ୍ରୀ ବଣ) Similarly situated or placed
(ସମବର୍ତ୍ତିତା—ବି) ସଂ. ବି. ପୁ. (୧ମା ୧ବ; ସବୁ ପ୍ରାଣୀଙ୍କ
ସଂବନ୍ଧେ ଏହାଙ୍କର ଅବସ୍ଥିତି ସମାନ) ଯମ;
କାଳ—The God of death.

ସମଲମ୍ବ—ସଂ ବଣ. (ବହୁବ୍ରୀହି)—ସମାନ ଲମ୍ବ ବିଶିଷ୍ଟ—
Samabalamba Having equal perpendiculars.
ସଂ. ବି. (ଜ୍ୟାମିତି)—ଯେଉଁ ଚତୁର୍ଭୁଜର ଲମ୍ବରେଖା
ସମାନ (ବିଶ୍ୱକୋଷ)—Trapezoid or rectange;
a quadrilateral figure having 2 equal
perpendiculars.

ସମ ବସରଣ—ସଂ. ବି. (ସମ୍+ଅବ+ସୃ ଧାତୁ+କର୍ମ ଅନ)—୧ ।
Samabasaraṇa ସଭାଗୃହ—1. Assembly hall. ୨ ।
ଧର୍ମ ମଣ୍ଡପ; ଯେଉଁ ମଣ୍ଡପରେ ଧର୍ମୋପଦେଶ ଦିଆଯାଏ
(ବିଶ୍ୱକୋଷ)—2. A pavillion in which reli-
gious discourses are delivered.

ସମବସ୍କନ୍ଦ—ସଂ. ବି. (ସମ୍+ଅବ+ସ୍କନ୍ଦ ଧାତୁ+ଭାବ ଅ)—୧ ।
Samabaskanda ଦୁର୍ଗାଦି ଦ୍ୱାରା ସମ୍ୟକ୍ ରୂପେ ସୁରକ୍ଷିତକରଣ
(ବିଶ୍ୱକୋଷ)—1. Protecting a place securely
by raising forts. (+କରଣ. ଅ) ଦୁର୍ଗ ପ୍ରାକାର
(ବିଶ୍ୱକୋଷ)—Rampart or wall of a fort.

ସମବସ୍ଥା—ସଂ. ବି.—(ସମ୍+ଅବସ୍ଥା)—୧ । ସମାନ ଅବସ୍ଥା; ତୁଲ୍ୟ
Samabasthā ଦଶା—1. Similar condition. ୨ ।
(ସମବସ୍ଥ—ବଣ) ସମତା; ସାମ୍ୟ—2. Similarity; identity.

ସମବସ୍ଥାନ—ସଂ. ବି. (ସମ୍+ଅବସ୍ଥାନ)—୧ । ସମ୍ୟକ୍ ଅବସ୍ଥାନ—
Samabasthāna 1. Peculiar or special situation;
unique position. ୨ । ସମଭାବରେ ଅବସ୍ଥାନ—
2. Equal or similar position.

ସମବସ୍ଥିତ—ସଂ.ବଣ. (ସମ୍+ଅବସ୍ଥିତ)—୧। ସମ୍ୟକ୍ ରୂପେ ଅବସ୍ଥିତ
Samabasthita —1. Peculiarly situated. ୨ । ସମ-
ଭାବରେ ଅବସ୍ଥିତ—2. Similarly placed or
situated.

ସମବସ୍ଥିତି—ସଂ. ବି (ସମ୍+ଅବସ୍ଥିତି)—ସମବସ୍ଥାନ (ଦେଖ)—
Samabasthiti Samabasthāna (See)

ସମବହାସ୍ୟ—ସଂ. ବଣ. (ସମ୍+ଅବ+ହସ୍ ଧାତୁ+କର୍ମ ଯ)—
Samabahāsya ସମ୍ୟକ୍ ରୂପେ ଉପହସନୀୟ—Deserving
(ସମବହାସ୍ୟା—ସ୍ତ୍ରୀ) to be derided or hooted out.
(ସମବହସନୀୟ—ଅନ୍ୟରୂପ)

ସମବାୟ—ସଂ. ବି. (ସମ୍+ଅବ+ଇ ଧାତୁ=ଗମନ କରିବା+କର୍ତ୍ତୃ
Samabāya ଅ)-୧ । ସମୂହ—1. Multitude; conglo-
(ସମବେତ—ବଣ) moration; aggregate. ୨। (+ଭାବ ଅ)
ସଂଯୋଗ; ମିଳନ—2. Union; conjunction;
cohesion. ୩ । ସମ୍ବନ୍ଧ—3. Connection. ୪ ।
ପରସ୍ପର ସଂବନ୍ଧ—4. Co-relation. ୫ । (ବୈଶେଷିକ
ଦର୍ଶନ ଶାସ୍ତ୍ର) ନିତ୍ୟ ସଂବନ୍ଧ—(Philosophy) 5.
Constant or intimate relation (between
subject and attribute, cause and effect,
the owner and the owned, the species
and the genus); (one of the 7 categories.
Baiseshika philosophy).
[ଟି—ଏହି ସମବାୟ-ସମ୍ବନ୍ଧର ଉଦାହରଣ, ଯଥା—କାର୍ଯ୍ୟ
ସହିତ କାରଣର, ଅବୟବ ସହିତ ଅବୟବୀର, ଗୁଣ ସହିତ
ଗୁଣୀର, ବ୍ୟକ୍ତି ସହିତ ଜାତିର, ଦେହ ସହିତ ଦେହୀର,
ଦ୍ରବ୍ୟର ଗୁଣ ସହିତ କର୍ମର, ବିଶିଷ୍ଟ ବସ୍ତୁ ସହିତ ତତ୍‌ଶ୍ରେଣୀର
ସମ୍ବନ୍ଧ ଇତ୍ୟାଦି ] ୬ । ନ୍ୟାୟଶାସ୍ତ୍ରାନୁମୋଦିତ ସଂବନ୍ଧ—
6. Logical relation, ସଂ. ବଣ—୧ । ସମବେତ
1. Collective; joint. ୨ । ଯୌଥ; ଦଳବଦ୍ଧ—
2. Co-operative.

ସମବାୟ ଋଣ ସମିତି—ସଂ. ବି. (ଅଧୁନାର ବ୍ୟବହାର)—ବହୁ ବ୍ୟକ୍ତିଙ୍କ
Samabāya ṛuṇa samiti ସମବେତ ମୂଳଧନ ଦ୍ୱାରା ବ୍ୟକ୍ତି-
ବିଶେଷଙ୍କୁ ପ୍ରୟୋଜନ ବେଳେ ଋଣ ଦେବା ପାଇଁ ଗଠିତ
ସମିତି; ଯୌଥ ମହାଜନ ସମିତି—Co-operative
credit society; a joint stock society
formed for lending money to its mem-
bers.

ସମବାୟୀ—ସଂ. ବଣ.—(ସମବାୟ+ଇନ୍; ୧ମା ୧ବ)—(ଦର୍ଶନ
Samabāyī ଶାସ୍ତ୍ର) ସମବାୟ ବା ନିତ୍ୟ ସଂବନ୍ଧଯୁକ୍ତ—Having
intimate relationship; having or holding
an attribute.

ସମବାୟୀ କାରଣ—ସଂ. ବି.—(ଦର୍ଶନ ଶାସ୍ତ୍ର) ଯେଉଁ [illegible]
Samabāyi kāraṇa ସଙ୍ଗେ [illegible]
(Philosophy) Material cause; [illegible]

which the effect is held in constant or eternal relation.

ସମବାର—ଗ୍ରା. ବି (ସଂ. ସୋମବାର)—ସୋମବାର—
Samabāra সোমবার सोमवार Monday.

ସମବାରିଆ—ଗ୍ରା. ବିଣ. ପୁଂ—୧ । ସୋମବାରରେ ଜାତ—1. Born
Samabāriā on a Monday. ୨ । ସୋମବାର ଦିନ (ସମବାରି—ସ୍ତ୍ରୀ) ଘଟିବା—2. Happening on Monday. সোমবেরে যাঁরা সোমবার ব্রত পালে—3. Fasting on सोमवारिआ Mondays. ବି. ପୁଂ—ଲୋକଙ୍କ ନାମ—A name given to males.

ସମବାଳି—ଦେ. ବି—ସମ୍ବାଳୁଆ (ଦେଖ)
Samabāli Sambāluā. (See)
(ସମବାଳ[ଳୁ]ଆ—ଅନ୍ୟରୂପ)

ସମବାହୁ—ସଂ. ବିଣ (ବହୁବ୍ରୀହି; ଜ୍ୟାମିତି)—ସମାନ ବାହୁଯୁକ୍ତ
Samabāhu (କ୍ଷେତ୍ର); ଯେଉଁ କ୍ଷେତ୍ରର ବାହୁମାନ ପରସ୍ପର (ସମବାହୁକ—ଅନ୍ୟରୂପ) ସହିତ ସମାନ—(Geometry) Equilateral; (a figure) having the sides equal.

ସମବେକ୍ଷଣ—ସଂ. ବି (ସମ୍+ଅବେକ୍ଷଣ)—ସମ୍ୟକ୍‌ରୂପେ ଦର୍ଶନ;
Samabekshaṇa ପର୍ଯ୍ୟବେକ୍ଷଣ (ଶବ୍ଦକୋଷ)—Observation.
(ସମବେକ୍ଷକ; ସମବେକ୍ଷିତ—ବିଣ)

ସମବେତ—ସଂ. ବିଣ (ସମ୍+ଅବ+ଇ. ଧାତୁ+କର୍ତ୍ତି. ତ)—
Samabeta ୧ । ଏକତ୍ରୀଭୂତ—1. Collected together; assembled. ୨ । (ବହୁଲୋକଙ୍କ) ସମ୍ମିଳିତ; ଇଜମାଲି; ଯୌଥ—2. Joint. ୩ । ପରସ୍ପର ସଂବଦ୍ଧ—3. Correlated. ୪ । ପରସ୍ପର ସଂଯୁକ୍ତ—4. Connected or joined together; united together; ୫ । ନିତ୍ୟ ସଂବନ୍ଧ ଦ୍ୱାରା ଯୁକ୍ତ—5. Inseparably or inevitably or etermally connected. ୬ । ସଞ୍ଚିତ (ଶବ୍ଦକୋଷ)—6. Stored. ୭ । ଏକ ଶ୍ରେଣୀ ଭୁକ୍ତ (ଶବ୍ଦକୋଷ)—7. Included in one class.

ସମବେତ ଚେଷ୍ଟା—ସଂ. ବି—ବହୁ ଲୋକଙ୍କ ସମ୍ମିଳିତ ଚେଷ୍ଟା—
Samabeta cheshṭā The joint efforts of many persons.

ସମବେତ ବାଣିଜ୍ୟ—ସଂ. ବି (ଅଧୁନିକ)—ବହୁ ଲୋକଙ୍କ ସମବେତ
Samabeta bāṇijya ମୂଳଧନ ଦ୍ୱାରା ହେବା ବାଣିଜ୍ୟ; ଇଜମାଲି (ସମବେତ ବ୍ୟବସାୟ—ଅନ୍ୟରୂପ) କାରବାର—Jointstock business or trade.

ସମବେତ ମୂଳଧନ—ସଂ. ବି (ଅଧୁନିକ)—ବାଣିଜ୍ୟାର୍ଥ ପାଇଁ ବହୁ
Samabeta mūladhana ଲୋକଙ୍କ ସମ୍ମିଳିତ ପୁଞ୍ଜି—
সমবেত মূলধন समवेत पूँजी Joint stock; joint capital.

ସମବେତ ହେବା—ଦେ. କ୍ରି—ଏକତ୍ର ହେବା; ଜମିବା—To be
Samabeta hebā collected together; to
সমবেত হওয়া समवेत होना assemble.

ସମ ବେଦନା—ସଂ. ବି (ଆଧୁନିକ ବ୍ୟବହାର)—ଅନ୍ୟର ଦୁଃଖରେ
Samabedanā ଦୁଃଖାନୁଭବ; ବେଦନାପ୍ରାପ୍ତ ବା ଦୁର୍ଦ୍ଦଶାଗ୍ରସ୍ତ ବ୍ୟକ୍ତି ପ୍ରତି ସହାନୁଭୂତି—Sympathy with a suffering person; commiseration.
(ଉ—ପ୍ରକାଶ କେବଳ ମାତ୍ର କଣ୍ଠକ ସେ ପଥେ ସମବେଦନାରୁ, ନାଥ! ଏହୁ ତାର ଶୁଭ । ରାଧାନାଥ ମହାଯାତ୍ରା।) ଦେ.ବି—ଅନ୍ୟର ସୁଖ ଦୁଃଖରେ ସହାନୁଭୂତି —Fellow-feeling (in joy and grief).

ସମବେଶ(ଷ)—ସଂ. ବି—୧ । ସମାନ ବେଶ ବା ସଜ୍ଜା—1. Same
Samabeśa(sha) or similar dress. ୨ । ଯୁଦ୍ଧସଜ୍ଜା; ସେନା ସମାବେଶ (ଶବ୍ଦକୋଷ)—2. Battle-array.

ସମବେଶନ—ସଂ. ବି—ବିବାହର ଚତୁର୍ଥ ରାତ୍ରିରେ ବୈଧୁନାର୍ଥ ବର-
Samabeśana କନ୍ୟାଙ୍କର ଏକତ୍ର ଶୟନ; ଚତୁର୍ଥୀକ୍ରିୟା—The ceremony of consummation held on the fourth night of marriage and consisting in both the bride and the bridegroom occupying the same bed.

ସମ ଭାଗ—ସଂ. ବି (କର୍ମଧା)—ସମାନଭାଗ—Equal share or
Sama bhāga part. ସଂ. ବିଣ—(ବହୁବ୍ରୀହି) ସମାନ ଭାଗ ବିଶିଷ୍ଟ—Of equal shares.

ସମ ଭାବ—ସଂ. ବି—୧ । ସମାନତା—1. Equality. ୨ । ସମତା;
Sama bhāba ସାମ୍ୟ—2. Equability. ୩ । ଏକ ରୂପତା —3. Continuance in the same state; sameness. ୪ । ସାଦୃଶ୍ୟ—4. Similarity. ୫ । ଅପରିବର୍ତ୍ତନୀୟ ଭାବ—5. Unchangeable condition.

ସମଭିଧା—ସଂ. ବି—(ସମ୍+ଅଭିଧା)—ସମ ନାମ (ଶବ୍ଦକୋଷ)—
Samabhidhā Same name.

ସମଭିବ୍ୟାହାର—ସଂ. ବି (ସମ୍+ଅଭି+ବି+ଆ+ହୃ ଧାତୁ=ହରଣ
Samabhibyāhāra କରିବା+ଭାବ. ଅ)—୧ । ସାହଚର୍ଯ୍ୟ;
ସମଭିବ୍ୟାହାରୀ } ବିଣ
ସମଭିବ୍ୟାହୃତ }
ସଙ୍ଗ—1. Company; association. ୨ । ଏକତ୍ରାବସ୍ଥିତି—2. Remaining together; co-existence. ୩ । ଏକତ୍ର ସଂଯୋଗ—3. Juxtraposition. ୪ । ଏକତ୍ର ଗମନ—4. Going together. ୫ । ଏକ ସଙ୍ଗେ ଉଚ୍ଚାରଣ—5. Simultaneous utterance.

ସମଭିବ୍ୟାହାରରେ—ଦେ. କ୍ରି. ବିଣ—ଏକ ସଙ୍ଗେ; ସାଙ୍ଗ ହୋଇ—
Samabhibyāhārare In the company of; along
সম ভিব্যাহারে समभिव्याहारमे with.
(ସମଭିବ୍ୟାହାରେ—ଅନ୍ୟରୂପ)

**ସମଭିବ୍ୟାହାରୀ**—ସଂ. ଭ ଓ ବିଣ. ପୁଂ (ସମଭିବ୍ୟାହାର+ଇନ୍)—୧ । Samabhibyāhārī ସାଥୀ; ସଙ୍ଗୀ—1. Associate; companion. ୨ । ଏକତ୍ର ଗମନକାରୀ; ସହଗାମୀ—2. Going together.
(ସମଭିବ୍ୟାହାରିଣୀ—ସ୍ତ୍ରୀ)
(ସମଭିବ୍ୟାହାର, ସମଭିବ୍ୟାହାରିତା, ସମଭିବ୍ୟାହୃତ—ଦେଖନ୍ତୁ)

**ସମଭିବ୍ୟାହୃତ**—ସଂ. ବିଣ. (ସମ୍+ଅଭି+ବି+ଆ+ହୃ ଧାତୁ+କର୍ମ+ତ)—୧ । ଏକତ୍ରୀଭୂତ—1 Gathered together; collected at one place. Samabhibyāhruta (ସମଭିବ୍ୟାହୃତ—ବି) ୨ । ଏକ ସଙ୍ଗେ ଗୃହୀତ—2. Moved together. ୩ । ସହୋଚ୍ଚାରିତ—3. Uttered together; simultaneously uttered. ୪। ସହିତ—together with; accompanied by; attended by.

**ସମଭିହାର**—ସଂ. ବି. (ସମ+ଅଭି+ହୃ ଧାତୁ=ହରଣ କରିବା+ଅ) ୧ । ପୌନଃପୁନ୍ୟ; ବାରଂବାର—1. Repeatedness. ୨ । ଅତିଶଯ୍ୟ—2. Excessiveness. Samabhihāra

**ସମଭୂମି**—ସଂ. ବି. (କର୍ମଧା)—୧ । ସମତଳ ସ୍ଥାନ—1. Level ground; even surface. ୨ । ସମ ଧରାତଳ—2. A plane ୩ । ମନ୍ଦିର ଅଟ୍ଟାଳିକାଦି ଭାଙ୍ଗି ତହିଁର ତଳଭୂମିକୁ ସମତଳ କରଣ (ବିଶ୍ୱକୋଷ)—3. Lavelling of the site of a demolished building or temple. Samabhūmi

**ସମମ୍**—ସଂ. ଅ. (ସମଧାତୁ=ସମାନ ହେବା, ଅବିକଳ ହେବା+ଅମ୍)—୧ । ସହ; ସହିତ—1. With. ୨। ଏକଦା; ଏକ କାଳରେ; ଏକ ସମୟରେ—2 At one time. ୩ । ଯୁଗପତ୍—3. Simultaneously. Samam

**ସମ ମଣ୍ଡଳ**—ସଂ. ବି. (ଭୂଗୋଳ ପରିଭାଷା—ଆଧୁନିକ ପ୍ରୟୋଗ) Sama mandala ଭୂମଣ୍ଡଳର ସେହି ଅଂଶ ଶୀତମଣ୍ଡଳଦ୍ୱୟ ଓ ଗ୍ରୀଷ୍ମମଣ୍ଡଳଦ୍ୱୟର ମଧ୍ୟବର୍ତ୍ତୀ—(Geography) The temperate zones of the globe. [ଦ୍ର—ଭୂମଣ୍ଡଳସ୍ଥ ବିଷୁବରେଖାର ଉତ୍ତର ଓ ଦକ୍ଷିଣକୁ ଲଗିଥିବା ମଣ୍ଡଳଟିକୁ 'ଗ୍ରୀଷ୍ମ ମଣ୍ଡଳ' (Torrid Zone) କହନ୍ତି । ଏଠାରେ ଗ୍ରୀଷ୍ମର ପରିମାଣ ଖୁବ୍ ଅଧିକ । ପୃଥିବୀ ମେରୁକୁ ବେଢ଼ିଥିବା ମଣ୍ଡଳ ଦ୍ୱୟକୁ 'ଶୀତ ବା ହିମ ମଣ୍ଡଳ' (Frigid Zone) କହନ୍ତି । ଏହି ଶୀତ ମଣ୍ଡଳରେ ଶୀତର ପ୍ରକୋପ ଅଧିକ ଅଟେ ।

ଗ୍ରୀଷ୍ମ ମଣ୍ଡଳର ଉତ୍ତରକୁ ଓ ଉତ୍ତର ଶୀତ ମଣ୍ଡଳର ଦକ୍ଷିଣକୁ ଲଗିଥିବା 'ସମମଣ୍ଡଳ'କୁ 'ଉତ୍ତର ସମ ମଣ୍ଡଳ' (North temperate zone) ଏବଂ ଗ୍ରୀଷ୍ମ ମଣ୍ଡଳର ଦକ୍ଷିଣ ଓ ଦକ୍ଷିଣ ଶୀତ ମଣ୍ଡଳର ଉତ୍ତରକୁ ଲଗିଥିବା 'ସମ ମଣ୍ଡଳ'କୁ 'ଦକ୍ଷିଣ ସମ ମଣ୍ଡଳ' (South temperate zone) କୁହାଯାଏ । ସମମଣ୍ଡଳଦ୍ୱୟରେ ଥିବା ଭୂପୃଷ୍ଠରେ ଶୀତର ଓ ଗ୍ରୀଷ୍ମର ଆଧିକ୍ୟ ନ ଥିବାରୁ ଅର୍ଥାତ୍ ସମତା ଥିବାରୁ ଏହି ମଣ୍ଡଳଦ୍ୱୟକୁ 'ସମମଣ୍ଡଳ' କୁହାଯାଏ ।]

**ସମୟ**—ସଂ. ବି. (ସମ୍=ସମାନ+ଇ ଧାତୁ=ଗମନ କରିବା+କର୍ତ୍ତୃ. ଅ; କିଂବା ସମ୍=ସମାନ+ଯା ଧାତୁ=ଗମନ କରିବା+କରଣ ଅ; ଯାହା ତଦ୍‌କାଳ ସମ ଭାବରେ ଗତି କରେ)—୧ । କାଳ—1. Time. ୨ । ଋତୁ—2. Season; period. ୩ । ପରିମିତ କାଳ—3. A space of time. ୪। ସୀମା—4. Boundary; limit. ୫ । ଉପଯୁକ୍ତ ବେଳା; ଯଥାଯୋଗ୍ୟ କାଳ—5. Proper time: fit season. ୬ । ନିର୍ଦ୍ଦିଷ୍ଟ କାଳ—6. Appointed time. ୭ । ଫୁରସତ୍; ଅବକାଶ; ଅବସର—7. Leisure. ୮ । ସୁଯୋଗ—8. Opportunity. ୯ । ନିୟମ—9. Rule. ୧୦ । ସତ୍ୟପ୍ରତିଜ୍ଞା; ଶପଥ—10. Promise; vow; oath. ୧୧ । ସିଦ୍ଧାନ୍ତ—11. Resolution. ୧୨ ।ଅନ୍ତିମକାଳ—12. Time of death. ୧୩ । ନିର୍ଦ୍ଦେଶ—13. Indication. ୧୪ । ସଙ୍କେତ—14. Sign ୧୫ । ଚୁକ୍ତି—15. Agreement; contract; convention. ୧୬ । ଆଦେଶ; ଆଜ୍ଞା—16. Command; order. ୧୭ । ଆଚାର; ବ୍ୟବହାର—17. Custom. ୧୮ । ମୀମାଂସା—18. Decision. ୧୯ । କର୍ତ୍ତବ୍ୟ ନିର୍ବାହ-19. Doing of a duty; fulfilment of duty; carrying out of a duty. ୨୦ । ପ୍ରଚାର; ଘୋଷଣା—20. Publication; promulgation; notification. ୨୧ । ଦୁଃଖାବସାନ—21. The end of misery. ୨୨ । ଉପଦେଶ—22. Advice; instruction. ୨୩। ଧର୍ମ—23. Religion; righteousness. ୨୪। ନ୍ୟାୟ—24. Justice. ୨୫। ସମ୍ପଦ (ବିଶ୍ୱକୋଷ)—25.Prosperity; affluence. ୨୬ । ବାକ୍ୟ (ବିଶ୍ୱକୋଷ)—26. Wor . ୨୭। କଥିତା-27. Speech. Samaya

ସଂ. ବିଣ ପୁଂ—(ସମ୍=ସମ୍ୟକ୍ ହୋଇଅଛି ଅୟ=ସୌଭାଗ୍ୟ ଯାହାର; ବହୁବ୍ରୀହି) ସୌଭାଗ୍ୟଶାଳୀ—Prosperous; fourtunate. ହେ. ବି. ୧। ମୃତ୍ୟୁ; କାଳପ୍ରାପ୍ତି—1. Death. ୨। ନିର୍ଦ୍ଧିଷ୍ଟ କାଳର ସୀମା—2. Limit of time. ୩। ମହଲତ; କୌଣସି କାର୍ଯ୍ୟପାଇଁ ଦିଆଯିବା ନିର୍ଦ୍ଦିଷ୍ଟ କାଳ—3. Time granted for the performance of a work; adjournment. ୪ । ବୟସ—4. Age. ୫ । କୌଣସି ବ୍ୟକ୍ତିର ଉନ୍ନତିର ବା ଅଧିକାରର ବା ପ୍ରଭୁତ୍ୱର କାଳ—5. Time of reign or predominance or prevalence; regime. [ଯଥା—ଅଲ୍ପକାଳ ଲୋକଙ୍କର ସମୟ ଚାଲିଅଛି, ତାହାଙ୍କୁ କଥା ଶୁଣାଇ କଏ ?] ୬ । ପଶୁମାନଙ୍କର ଋତୁକାଳ ବା ସଙ୍ଗମକାଳ—6. The mating season of animals.
(ସମୟା—ସ୍ତ୍ରୀ)
ସମୟ ସମୟ

**ସମୟ ଅସମୟ**—ଦେ. ବ—୧ । କାଳାକାଳ; ସୁସମୟ ଓ କୁସମୟ—
Samaya asamaya 1. Proper and improper
ସময়অসময় **समयअसमय** seasons; good and bad times. ୨ । ସବୁ ବେଳ—2. All times

**ସମୟ କରିବା**—ଦେ. କ୍ରି—୧ । କୌଣସି କାର୍ଯ୍ୟ କରିବା ପାଇଁ
Samaya karibā ସମୟର ବ୍ୟବସ୍ଥା କରିବା—1. To
ସময়করা **समयकरना** make time. ୨ । ନିର୍ଦ୍ଦିଷ୍ଟ ଦିନ ସ୍ଥିର କରିବା; ଚୁକ୍ତି କରିବା—2. To appoint a time-limit. [ ଯଥା—ପାଣ୍ଡବେ ସମୟ ତ କରିଥାଇଛନ୍ତି
କାହିଁକି ଲେଉଟିବେ କହ ତ ସୁଜନ ।
—କୃଷ୍ଣସିଂହ. ମହାଭାରତ. ବନ ]

**ସମୟକାର**—ସଂ. ବ. (ସମୟ+କୃ ଧାତୁ+କର୍ତ୍ତୃ. ଅ)—୧। ପରିଭାଷ୍ୟ—
Samayakāra 1. Glossary of technical terms.
୨ । ସଙ୍କେତ (କ୍ରିୟାଶ୍ଳେଷ)—2. Sign; indication.

**ସମୟ ଘଟିବା**—ଦେ. ବ—ସମୟ ମିଳିବା (ଦେଖ)—
Samaya ghaṭibā Samaya milibā (See)

**ସମୟ ଦେବା**—ଦେ. କ୍ରି—୧ । ମହଲତ ଦେବା; ଅବସର ମଞ୍ଜୁର
Samaya debā କରିବା—1. To grant time; to
ସময়দেওয়া **समयदेना** grant an adjournment. ୨ । ସମୟ ନିର୍ଦ୍ଦେଶ କରିବା—2. To appoint or fix a time.

**ସମୟ ନ ଥିବା**—ଦେ. ବ—୧ । ଫୁରୁସତର ବା ଅବସରର ଅଭାବ-
Samaya na thibā 1. Want of leisure.
ସময়নাথাকা **समयनरहना** ୨ । ସୁବିଧାର ଅଭାବ—2.
(ସମୟ ନ ମିଳିବା; ସମୟ ନ ହେବା—ଅନ୍ୟରୂପ) Want of opportunity.

**ସମୟ ନିରୂପଣ**—ସଂ. ବ—ନିର୍ଦ୍ଦିଷ୍ଟ ସମୟର ସ୍ଥିରୀକରଣ—A scer-
Samaya nirūpaṇa tainment of the exact time.

**ସମୟ ନେବା**—ଦେ. କ୍ରି—ମହଲତ ନେବା; ଅବକାଶ ପ୍ରାର୍ଥନା କରିବା
Samaya nebā —To take time.
ସময় নেওয়া **समय लेना**

**ସମୟ ପାଇବା**—ଦେ. କ୍ରି—୧ । ମହଲତ ପାଇବା; କୌଣସି କାର୍ଯ୍ୟ
Samaya pāibā ପାଇଁ ଅବକାଶ ପ୍ରାପ୍ତ ହେବା—1. To get
ସময় পাওয়া time. ୨ । ଉପଯୁକ୍ତ ଅବସର ପ୍ରାପ୍ତ ହେବା—
**समय पाना** 2. To get an opportunity. ୩ ।
ଫୁରୁସତ ପାଇବା—3. To get leisure.

**ସମୟ ବିଭାଗ**—ସଂ. ବ (ଷଷ୍ଠୀ ତତ୍)—୧ । ଭିନ୍ନ ଭିନ୍ନ କାର୍ଯ୍ୟ ପାଇଁ
Samaya bibhāga ଭିନ୍ନ ଭିନ୍ନ ବେଳର ବଣ୍ଟନ—
1. Division of time into a routine.
୨ । କାଳକୁ ଭିନ୍ନ ଭିନ୍ନ ଅଂଶରେ ବିଭାଗ କରିବା—
2. Division of time into distinct periods.
[ଦ୍ର—ଭିନ୍ନ ଭିନ୍ନ ଦେଶରେ ଲୋକେ ସମୟକୁ ଭିନ୍ନ ଅଂଶରେ ବିଭାଗ କରିଅଛନ୍ତି । ଯଥା—୧ ଶତାବ୍ଦୀ=୧୦୦ ବର୍ଷ । ୧ ବର୍ଷ=୧୨ ମାସ=୬ ଋତୁ । ୧ଋତୁ=୨ ମାସ । ୧ ମାସ=୩୦ ଅହୋରାତ୍ର=୩୦ ତିଥି=୨ ପକ୍ଷ । ୧ ପକ୍ଷ=୧୫ ଅହୋରାତ୍ର । ୧ ତିଥି=୧ ଅହୋରାତ୍ର=୧ ଦିନ+୧ ରାତ୍ରି=୮ ପ୍ରହର=୨୪ ଘଣ୍ଟା । ୧ ଦିନ=୧୨ ଘଣ୍ଟା=୪ ପ୍ରହର=୩୦ ଦଣ୍ଡ । ୧ ରାତ୍ରି=୧୨ ଘଣ୍ଟା=୪ ପ୍ରହର=୩୦ ଦଣ୍ଡ । ୧ ପ୍ରହର=୪ ଘଡ଼ି=୭½ ଦଣ୍ଡ । ୧ ଘଣ୍ଟା=୬୦ ମିନିଟ୍ । ୧ମିନିଟ୍=୬୦ ସେକେଣ୍ଡ୍ । ୧ ଦଣ୍ଡ=୬୦ ପଳ । ୧ ପଳ—୬୦ ବିପଳ । ୧ ବିପଳ=୬୦ ଲିତା । ୧ ଲିତା=୬୦ ବିଲିତା ଇତ୍ୟାଦି ।]

**ସମୟ ମିଳିବା**—ଦେ. ବ—୧ । ସୁଯୋଗ ଘଟିବା; ସୁବିଧା ଘଟିବା—
Samaya milibā 1. The happening of an opportunity.
ସময় মিলা ୨ । ଫୁରୁସତ ବା ଅବକାଶ ମିଳିବା-
**समय मिलना** 2. The getting of leisure.

**ସମୟ ସେବୀ**—ସଂ. ବଣ. ପୁଂ (ସମୟ+ସେବ୍ ଧାତୁ+କର୍ତ୍ତୃ. ଇନ୍;
Samaya sebī ୧ମା. ୧ବ)—୧ । ଯେ ବେଳ ଦେଖି କାମ
(ସମୟ ସେବିନୀ—ସ୍ତ୍ରୀ) କରେ—1. Time-serving. ୨ ।
କାଳର ମୂଲ୍ୟଜ୍ଞ—2. Knowing the value of time.

**ସମୟ ହେବା**—ଦେ. ବ—୧ । ମୃତ୍ୟୁ ଘଟିବା; ମରଣ ହେବା—1. Death;
Samaya hebā breathing one's last. ୨ । ସମୟ
ସময় হওয়া ମିଳିବା (ଦେଖ)—2. Samaya milibā (See)
**समय होना** ୩ । ଉପଯୁକ୍ତ ସମୟ ଉପସ୍ଥିତ ହେବା—3. The arrival of proper or fit time.

**ସମୟା**—ସଂ. ଅ ( ସମ୍+ଇ ଧାତୁ+କର୍ତ୍ତୃ. ଅ )—୧ । ସମୀପରେ;
Samayā ନିକଟରେ—1. Near; in the vicinity
ସময় **समय** of. ୨ । ମଧ୍ୟରେ—2. In the middle;
(ସମୟ—ପୁଂ) amidst; in the midst of. ସଂ. ବଣ. ସ୍ତ୍ରୀ
(ସମୟ+ସ୍ତ୍ରୀ. ଆ)—ସୌଭାଗ୍ୟଶାଳିନୀ—(Feminine)
Fortunate (woman). ଗ୍ରା. ବ (ସଂ. ସମୟ)—
୧ । ସମୟ; କାଳ—1. Time. ୨ । ମୃତ୍ୟୁ—
2. Death.

**ସମୟାଧ୍ୟୁଷିତ**—ସଂ. ବ—ଯେଉଁ ସମୟରେ ସୂର୍ଯ୍ୟ ବା ନକ୍ଷତ୍ର ଦୃଷ୍ଟି-
Samayādhyushita ଗୋଚର ହୁଏ ନାହିଁ; ସୂର୍ଯ୍ୟ ନକ୍ଷତ୍ର-
ବର୍ଜିତ କାଳ (ମନୁ. ୨।୧୫)—A time when the sun or the stars are not visible.

**ସମୟାନ୍ତର**—ସଂ. ବ (କର୍ମଧାରୟ; ଅନ୍ୟ+ସମୟ=ସମୟାନ୍ତର)—
Samayāntara ୧ । ଅନ୍ୟ ସମୟ—1. Another time.
୨ । ଭିନ୍ନ କାଳ—2. Different time.

**ସମୟାଭାବ**—ସଂ. ବି. (୬ଷ୍ଠୀ ତତ୍; ସମୟ+ଅଭାବ)—୧। କାଳର Samayābhāba ଅଭାବ; ବେଳ ନ ଅଣ୍ଟିବା—1. Want of time. ୨। ଅବସର ନ ମିଳିବା—2. Want of leisure.

**ସମ ଯୋଗ୍ୟ**—ସଂ. ବିଣ. ପୁଂ (ସମ=ସମାନ ରୂପେ+ଯୋଗ୍ୟ;କର୍ମଧା)—Sama jogya ୧। ସମକକ୍ଷ; ସମତୁଲ—1. Equal; similar. ୨। ସମାନ ରୂପେ ଯୋଗ୍ୟ—2. Equally fit. (ସମଯୋଗ୍ୟା—ସ୍ତ୍ରୀ; ସମଯୋଗ୍ୟତା—ବି)

**ସମୟୋଚିତ**—ସଂ ବିଣ—କାଳର ଉପଯୁକ୍ତ; ଯେଉଁ କାଳରେ ଯାହା Samayochita ଉପଯୋଗୀ—Befitting the times, suited to the occasion; opportune; seasonable.
ସମୟାନୁରୂପ, ସମୟୋପଯୋଗୀ, ସମୟୋପଯୁକ୍ତ } ଅନ୍ୟରୂପ

**ସମ ଯୋଦ୍ଧା**—ସଂ. ବି (ସମ+ଯୁଧ ଧାତୁ+ତୃ; ସମଯୋଦ୍ଧୃ; ୧ମା. ୧ବ) Sama joddhā —୧। ଏକ ସଙ୍ଗରେ ଏକ ପକ୍ଷରେ ଯୁଦ୍ଧ କରୁଥିବା ବୀର—1. Comrade in arms; warriors fighting on the same side. [ଉ—ଉଠ ଉଠ ଅହେ ସମଯୋଦ୍ଧାଗଣ ! କରେ କରବାଳ ଘେନ ସମରେ । ରାଧାନାଥ-କବିତାବଳୀ । ] ୨। ଯୁଦ୍ଧରେ ପ୍ରତିଦ୍ୱନ୍ଦ୍ୱୀ ବୀର—2. A rival or opponent; warrior; adversary. (ସମଯୋଧା; ସମଯୋଦ୍ଧୁ—ଦେ. ରୂପ)

**ସମର୍ କ(ଖ)ନ୍ଦ**—ବିଦେ- ବି (ନାମ)—ତୁର୍କିସ୍ଥାନର ଅନ୍ତର୍ଗତ ଓ ଅଧୁନା Samar k(kha)nd ରୁଷ ରାଜ୍ୟର ଅଧିକୃତ ସୁପ୍ରସିଦ୍ଧ ନଗର—Samarkand; name of a famous town in Turkistan.
[ବି—ଏହି ନଗର ବହୁ ପ୍ରାଚୀନ; ପୂର୍ବେ ଏହି ନଗରୀ ଇସ୍‌ଲାମ୍ ଧର୍ମର ଓ ପାରସୀ ସାହିତ୍ୟଚର୍ଚ୍ଚାର ପ୍ରଧାନ କେନ୍ଦ୍ର ଥିଲା । ପ୍ରାଚୀନ ନଗର ଵିଧ୍ୱସ୍ତ ହେବାରୁ ତାହା ଦୂର ଛଡ଼ା ନୂତନ ନଗର ନିର୍ମିତ ହେଲା । ଖ୍ରୀ ୭୦୨ ରେ ଆରବମାନେ ଏହା ଅଧିକାର କଲେ, ୧୨୧୯ ରେ ଏହା ଚେ(ଜେ)ଙ୍ଗିସ୍ ଖାଁଙ୍କର ଓ ୧୩୬୯ ରେ ଏହା ତୈମୁର୍ ଲଙ୍ଗଙ୍କ ଅଧିକାରରେ ଆସିଲା । ତୈମୁରଙ୍କ ସମୟରେ ନଗରର ବିଶେଷ ଉନ୍ନତି ସାଧିତ ହୋଇଥିଲା । ପରବର୍ତ୍ତୀ କେତେକ ଶତାବ୍ଦୀ ପର୍ଯ୍ୟନ୍ତ ଏ ନଗର ଇସ୍ଲାମ୍ ଧର୍ମର ପ୍ରଧାନ କେନ୍ଦ୍ର ଓ ବିଶ୍ୱବିଦ୍ୟାଳୟ ରୂପେ ପ୍ରତିଷ୍ଠା ଲାଭ କରିଥିଲା । ୧୮୬୮ ଖ୍ରୀଷ୍ଟାବ୍ଦରେ ଏହା ରୁଷ ସାମ୍ରାଜ୍ୟ ଭୁକ୍ତ ହେଲା—ବିଶ୍ୱକୋଷ ।]

**ସମର**—ସଂ. ବି (ସମ=ସମାନ+ଋ ଧାତୁ=ଗମନ କରିବା+ଅଧି- Samara କରଣ, ଅ; ଯହିଁରେ ଏକାଧିକ ବ୍ୟକ୍ତି ସମାନରୂପେ ଗମନ କରନ୍ତି; କିମ୍ବା ସ=ସହିତ+ମର=ମରଣଶୀଳ, ମରଣଶୀଳମାନଙ୍କ ସହିତ ବର୍ତ୍ତମାନ; ସହାର୍ଥ ବହୁବ୍ରୀହି)—ଯୁଦ୍ଧ; ରଣ;ସଂଗ୍ରାମ; ଲଢ଼େଇ—Battle; fight; war; conflict. ଦେ. ବି (ନାମ)—ସମରସିଂହ (ଦେଖ)—Samarasimha ( See ) [ ଉ—ସମର ସ୍ଥାନରେ
ସମର
ସକର
କେଶରୀ 'ସମର' ପୃଥ୍ୱୀରାଜ ସହ କରଣ ରଣ—କବି-କଶୋର, କୃଷ୍ଣକୁମାରୀ । ]

**ସମର କୁଶଳ**—ସଂ, ବିଣ. ପୁଂ ( ୭ମୀ ତତ୍ )—ଯୁଦ୍ଧନିପୁଣ; ଯୁଦ୍ଧ Samara kusala ବିଷୟରେ ଦକ୍ଷ—Versed the art of war; skilful in fighting. (ସମର କୁଶଳା—ସ୍ତ୍ରୀ) ( ସମର କୁଶଳତା—ବି )

**ସମର କୌଶଳ**—ସଂ. ବି ( ୭ମୀ ତତ୍ )—ଯୁଦ୍ଧ ବିଷୟକ କୌଶଳ ବା Samara kausala ନୈପୁଣ୍ୟ—Skill in war; the art of war.

**ସମର କ୍ଷେତ୍ର**—ସଂ. ବି (ମଧ୍ୟପଦଲୋପୀ କର୍ମଧା; ସମର ପାଇଁ ବ୍ୟବହୃତ Samara kshetra କ୍ଷେତ୍ର )—ଯୁଦ୍ଧ ଭୂମି; ଲଢ଼େଇ ଥାନ; ଯୁଦ୍ଧ ସ୍ଥାନ—War-field battlefield.
ସମର ପ୍ରାଙ୍ଗଣ, ସମର ଭୂମି, ସମର-ଭିତ୍ତି, ସମର ଭୂ, ସମର ବସୁଧା } ଅନ୍ୟରୂପ

**ସମର ଜିତ୍**—ସଂ. ବିଣ ପୁଂ ସ୍ତ୍ରୀ (ସମର+ଜି ଧାତୁ+କର୍ତ୍ତି)—ଯୁଦ୍ଧଜୟୀ—Samara jit Victorious in fight. ( ସମରଜେତା, ସମରଜୟୀ—ଅନ୍ୟ ପୁଂ, ରୂପ )

**ସମରତ**—ସଂ.ବି—ରତିବନ୍ଧବିଶେଷ—A particular pose in co-Samarata pulation. [ ବି—ନାରୀର ପଦଦ୍ୱୟକୁ ଜଙ୍ଘାଦ୍ୱୟ ସଙ୍ଗେ ସଂଯୁକ୍ତ କରି ସ୍ତନ ଧାରଣ ପୂର୍ବକ ରମଣକୁ ସମରତ ବୋଲଯାଏ—ରତିମଞ୍ଜରୀ । ]

**ସମରଥ**—ଗ୍ରା. ବିଣ ( ପଦ୍ୟ ) ( ସଂ, ସମର୍ଥ )—ସମର୍ଥ ( ଦେଖ )—Samaratha Samartha (See). [ ଉ—ପାଣ୍ଡୁଙ୍କର ସୁତକୁ ଜିଣିବାକୁ ରଣେ, ସମରଥ ନୋହିବି ମୋ ସୁତ ଆପଣେ—କୃଷ୍ଣସିଂହ ମହାଭାରତ ଅଦି । ] ଗ୍ରା. ବି (ସଂ- ସାମର୍ଥ୍ୟ)—ସାମର୍ଥ୍ୟ ( ଦେଖ )—Sāmarthya ( See )
ସମର୍ଥ
समरथ
ସାମର୍ଥ୍ୟ
सामरथ

**ସମରଥା**—ଗ୍ରା. ବିଣ ( ସଂ. ସମର୍ଥ )—୧ । ସାମର୍ଥ୍ୟଯୁକ୍ତ; ସମର୍ଥ—Samarathā 1. Strong; able. ୨ । ପରାକ୍ରମଶାଳୀ—2. Powerful. ଦେ. ବି—୧ । ଶୂଦ୍ରମାନଙ୍କର ବଂଶୋପାଧି ବିଶେଷ—1. A family title of Sūdras. ୨। ଦେବସେବକ ବିଶେଷ; ଭୁବନେଶ୍ୱର ଓ ପୁରୀ ମନ୍ଦିରରେ ଯେଉଁମାନେ ଠାକୁରଙ୍କ ଭୋଗ ପାଇଁ ଚାଉଳ ଗୋଟି, ଚୁଲି ଧୁଅନ୍ତି, ଚୁନା ଲଗାନ୍ତି ଓ ବାଡ଼ ବାଟନ୍ତି—2. A class of servants in Puri and Bhubaneswara temples who prepare and cleanse rice and kitchen--vegetables etc for the kitchen. [ବି—ସମରଥା ବା ସମର୍ଥା ଦୁଇ ଶ୍ରେଣୀର—ବ୍ରାହ୍ମଣ ସମର୍ଥା ଓ ଶୂଦ୍ର ସମର୍ଥା । ମହାପ୍ରଭୁଙ୍କ ଭୋଗ ପାଇଁ ବଟା ବସା ଆଦି କରିବା ସେବକ ବ୍ରାହ୍ମଣ-ସମରଥା ଓ ଚୁଲା ଲିପା, ବାଡ଼ ମୁଗ ଉଗଡ଼ା ଆଦି କରିବା ସେବକ ଶୂଦ୍ର ସମରଥା ଅଟନ୍ତି । ]
ସମର୍ଥ
समरथ

**ସମରପଣ**—ଗ୍ରା- ବି (ପଦ୍ୟ) ( ସଂ. ସମର୍ପଣ )—ସମର୍ପଣ ( ଦେଖ ) Samarapana Samarpana ( See )

**ସମର**ପିବା—ଗ୍ରା. କି ( ସ. ସମର୍ପିବା )—ସମର୍ପିବା ( ଦେଖ )
Samarapibā Samarpibā ( See )

**ସମର ପୋତ**—ସ. ବ ( ମ. ପ. ଲୋ. କର୍ମଧା )—ଯୁଦ୍ଧ ଜାହାଜ—
Samara pota A man-o-war; a warship.
( ସମର ତରୀ—ଅନ୍ୟରୂପ )

**ସମର ପ୍ରିୟ**—ସ. ବଣ. ପୁଂ ( ବହୁବ୍ରୀହି )—ଯୁଦ୍ଧପ୍ରିୟ; ଯେ ଯୁଦ୍ଧ
Samara priya କରିବାକୁ ସୁଖ ପାଏ—War-loving;
(ସମରପ୍ରିୟା—ସ୍ତ୍ରୀ) (ସମର ପ୍ରିୟତା—ବ) warlike.

**ସମର ବିଜ୍ଞାନ**—ସ. ବ ( ଆଧୁନିକ ପ୍ରୟୋଗ )—ଯୁଦ୍ଧ ବିଜ୍ଞାନ—
Samara bijñāna The science of war.

**ସମର ବିଦ୍ୟା**—ସଂ. ବ—୧ । ଯୁଦ୍ଧ ବିଜ୍ଞାନ—1. The science
Samara bidyā of war. ୨ । ଯୁଦ୍ଧ କୌଶଳ—
2. The art of war; skill in battle.

**ସମର ମୁହାଁ**—ଦେ. ବଣ—ଯୁଦ୍ଧ ପାଇଁ ସଜ୍ଜିତ; ଯୁଦ୍ଧ ପାଇଁ ଅଗ୍ରସର—
Samara muhāñ Ready for battle. [ ଉ—ଛାଡ଼
ସମର ମୁଖୋ ପ୍ରାଣ ମାୟା ଭାଙ୍ଗିଗଲ ଭୂଅ ଯୁଝିବାକୁ ହେଲେ ସମର
समर मुंहा ମୁହାଁ—ବଳଭଦ୍ର ଦେବ, ବାଲ୍ୟଲୀଳା । ]

**ସମର ମୂର୍ଦ୍ଧା**—ସ. ବ ( ୬ଷ୍ଠୀ ତତ୍, ସମରର ମୂର୍ଦ୍ଧନ୍=ଅଗ୍ରଭାଗ, ୧ମା
Samara mūrddhā ୧ବ )—ଯୁଦ୍ଧର ସମ୍ମୁଖଭାଗ; ଯେଉଁ-
ଠାରେ ଯୁଦ୍ଧ ପ୍ରଥମେ ଆରମ୍ଭ ହୁଏ—The front of battle.

**ସମର ଶଯ୍ୟା**—ସ. ବ (ରୂପକ କର୍ମଧା)—ଯୁଦ୍ଧସ୍ଥଳରୂପ ଶଯ୍ୟା (ଅର୍ଥାତ୍
Samara śajyā ଯେଉଁ ଶଯ୍ୟାରେ ଯୋଦ୍ଧାମାନେ ଶୋଇଲେ
ପର ମହାନିଦ୍ରାଭିଭୂତ ହୁଅନ୍ତି )—Field of battle
compared to a bed for the fallen warriors.

**ସମର ଶାୟିତ**—ସଂ. ବଣ. ପୁଂ ( ୭ମୀ ତତ୍ )—ଯୁଦ୍ଧରେ ପତିତ;
Samara śāyita ଯେ ଯୁଦ୍ଧ କରୁ କରୁ ହତ ହୋଇ ସମର-
(ସମରଶାୟିତା—ସ୍ତ୍ରୀ) ଭୂମିରେ ପଡ଼ିଥିବା ଲୋକ—Fallen in battle.

**ସମର ଶାୟୀ**—ସଂ. ବଣ. ପୁ ( ୭ମୀ ତତ୍ )—ସମର ଶାୟିତ (ଦେଖ)
Samara śāyi Samara śāyita ( See )
( ସମର ଶାୟିନୀ—ସ୍ତ୍ରୀ )

**ସମର ଶୀଳ**—ସଂ. ବଣ. ପୁଂ (ବହୁବ୍ରୀହି)—୧। ରଣକୁଶଳ; ଯୁଦ୍ଧପଟୁ—
Samara śila 1.Skilful in warfare. ୨। ଯୁଦ୍ଧରେ ନିଯୁକ୍ତ
—2. Engaged in fight. [ ଉ—କୃଷ୍ଣସାର
ଅଚଳବୃଷଭ ମହାବଳ ସେନ ହେଲ ସମରଶୀଳ ସେ—
(ସମରଶୀଳା—ସ୍ତ୍ରୀ) ଉଞ୍ଜ. ବୈଦେହୀଶବିଳାସ । ]

**ସମର ସଚିବ**—ସଂ. ବ ( ୬ଷ୍ଠୀ. ତତ୍ )—ଯୁଦ୍ଧ ମନ୍ତ୍ରୀ; ଯୁଦ୍ଧ ସମ୍ବନ୍ଧରେ
Samara sachiba ରାଜାଙ୍କୁ ପରାମର୍ଶ ଦେବା ମନ୍ତ୍ରୀ—
A war-minister; war lord.

**ସମର ସଚିବତା**—ସଂ. ବ (" ସମର ସଚିବ+ଭାବେ. ତା )—ଯୁଦ୍ଧ-
Samara sachibatā ମନ୍ତ୍ରିତ୍ୱ; ଯୁଦ୍ଧମନ୍ତ୍ରୀଙ୍କ ପଦ—The post
[ସମର ସାଚିବ୍ୟ—ଅନ୍ୟରୂପ] of a war-minister.

**ସମର ସଜ୍ଜା**—ସଂ. ବ—ଯୁଦ୍ଧସଜ୍ଜା; ରଣସଜ୍ଜା; ଯୁଦ୍ଧ କରିବା ପାଇଁ
Samara sajjā ପ୍ରସ୍ତୁତ ହେବା—Battle-array.

**ସମର ସିଂହ**—ଦେ. ବ ( ନାମ )—୧ । ମିବାର ବା ଚିତୋରର
Samara simha ଜଣେକ ରଜା—1. Name of an ancient king of Mewar in North India.
समर सिंह [ ଦ୍ର—ଏ ଦିଲ୍ଲୀର ଶେଷ ହିନ୍ଦୁ ରଜା ପୃଥ୍ୱୀରାଜଙ୍କ ଭଗିନୀ-
समर सिंह ପତି ଥିଲେ । କାନ୍ୟକୁବ୍ଜର ରଜା ଜୟଚନ୍ଦ୍ରଙ୍କ ଆହ୍ୱାନ
କ୍ରମେ ଅଫଗାନିସ୍ଥାନର ରଜା ମହମ୍ମଦ ଘୋରି ଦିଲ୍ଲୀକୁ
ଆକ୍ରମଣ କରିବାରୁ ଏ ପୃଥ୍ୱୀରାଜଙ୍କ ସଙ୍ଗେ ଯୋଗ ଦେଇ
ପ୍ରଥମବାର ମହମ୍ମଦ ଘୋରୀଙ୍କ ଆକ୍ରମଣକୁ ପ୍ରତିରୋଧ କରି
ନାରାୟଣ ନାମକ ସ୍ଥାନରେ ତାଙ୍କୁ ପରାଜିତ କଲେ । କିନ୍ତୁ
ଦ୍ୱିତୀୟଥର ଯୁଦ୍ଧରେ ପୃଥ୍ୱୀରାଜ ବନ୍ଦୀ ହେଲେ ଓ ସମର
ସିଂହ ସ୍ୱୀୟ ପୁତ୍ର କଲ୍ୟାଣ ସିଂହଙ୍କ ସଙ୍ଗେ ସମରଶାୟୀ
ହେଲେ—୧୧୯୩ ଖ୍ରୀ. । ] ୨ । ଗୁଜରାଟର ଜଣେ
ବିଖ୍ୟାତ ପ୍ରାଚୀନ ଜ୍ୟୋତିର୍ବିଦ୍—2. Name of a
famous ancient astronomer of gujerat.
[ ଦ୍ର—ଜଗଦ୍‌ଭୂଷଣ କୋଷ୍ଠକ, ତାଜକ ସିଦ୍ଧାନ୍ତ, ମନୁଷ୍ୟ
ଜାତକ, ତାଜକ ତନ୍ତ୍ର, ବର୍ଷଚର୍ଯ୍ୟା ବର୍ଣ୍ଣନ, ତାଜକତନ୍ତ୍ରସାର
ପ୍ରଭୃତି ଗ୍ରନ୍ଥ ଏହାଙ୍କ ରଚିତ—ବିଶ୍ୱକୋଷ । ]

**ସମରାଙ୍ଗଣ**(ନ)—ସଂ. ବ ( ୬ଷ୍ଠୀ ତତ୍ )—ଯୁଦ୍ଧକ୍ଷେତ୍ର—The field
Samarāngaṇa(na) of battle; the scene of battle.

**ସମରାଜି**—ଦେ. ବ ( ସଂ. ସୋମରାଜୀ )—ସୋମରାଜି ( ଦେଖ )—
Samarāji Somarāji ( See ) [ ଉ—ସମରାଜି ଜୁଆଡ଼
ଜାଙ୍ଗଲୀ ଜଳ । ମନୋହର ପାଣି ହରତାଳି—ଉଞ୍ଜ.
ଲବଣ୍ୟବତୀ । ]

**ସମ ରାଶି**—ସଂ. ବ ( କର୍ମଧା )—୧ । ( ଗଣିତ ) ଯେଉଁ ରାଶିକୁ ଦୁଇ
Sama rāśi ସଂଖ୍ୟାରେ ହରିଲେ ବାକି ଭାଗଶେଷ ରହେ ନାହିଁ;
ଅଯୁଗ୍ମ ରାଶି } ବିପରୀତ ଯୋଡ଼ ସଂଖ୍ୟା (ଯଥା—୨, ୪, ୬; ୮—
ବିଷମ ରାଶି } 1. Even number. ୨। (ଜ୍ୟୋତିଷ)
ମେଷାଦି ଦ୍ୱାଦଶରାଶି ମଧ୍ୟରୁ ୨ୟ, ୪ର୍ଥ, ୬ଷ୍ଠ, ୮ମ, ୧୦ମ
ଓ ୧୨ଶ ରାଶି—2. The signs of the Zodiac
comprising of even numbers

**ସମରୁ**—ଦେ. ବ ( ନାମ )—ଭାରତପ୍ରସିଦ୍ଧ ଜର୍ମାନୀ ସୈନିକବିଶେଷ—
Samaru A German warrior of Indian warfare
समरू of the 18th Century. [ ଦ୍ର—ଏହାଙ୍କ
समरु ଜନ୍ମ ଖ୍ରୀ. ୧୭୨୦ ଓ ମୃତ୍ୟୁ ୧୭୭୮ । ଏହାଙ୍କର ପ୍ରକୃତ
ନାମ ୱାଲ୍‌ଟର୍ ରେନ୍‌ହାର୍ଡ୍ (Walter Reinhard);
ଏହାଙ୍କ ଜନ୍ମସ୍ଥାନ ଜର୍ମାନୀରେ । ଏ ଭାରତକୁ ଆସି
ପ୍ରଥମେ ଫରାସୀ ସୈନିକ ବିଭାଗରେ, ପରେ ଯଥାକ୍ରମେ
ଇଷ୍ଟଇଣ୍ଡିଆ କମ୍ପାନୀର ସୈନିକ ବିଭାଗରେ, ଫରାସୀମାନଙ୍କ
ଅଧୀନତାରେ ଏବଂ ପରେ ଅଯୋଧ୍ୟା ନବାବଙ୍କର, ବଙ୍ଗ
ନବାବଙ୍କର ଭରତପୁର ଓ ଜୟପୁର ରଜାଙ୍କର ଓ ଦିଲ୍ଲୀର
ବାଦଶାହଙ୍କ ସୈନ୍ୟ ବିଭାଗରେ ଚାକିରି କରିଥିଲେ । ବଙ୍ଗ
ନବାବ ମୀରକାସିମଙ୍କ ଅଧୀନରେ ସେନାଧ୍ୟକ୍ଷ ଥିଲାବେଳେ
ଏ ୧୭୬୩ ସାଲରେ ପାଟନାରେ ୫୧ ଜଣ ଇଂରେଜ
ଓ ୧୦୦ ଅନ୍ୟ ଜାତୀୟ ବ୍ୟକ୍ତିଙ୍କୁ ଧରି ହତ୍ୟା କରିଥିଲେ ।

ଏଥି ପରେ ବହୁକାଳେ ଅଯୋଧ୍ୟାର ନବାବଙ୍କ ଅଧୀନତାରେ ରହି ତାଙ୍କଠାରୁ 'ସରଧାନା' ନାମକ ଏକ ମୂଲ୍ୟବାନ୍ ଭୂ-ବୃତ୍ତି ପାଇ ସେଠାରେ ଗୋଟିଏ ଦୁର୍ଗ ନିର୍ମାଣପୂର୍ବକ ତହିଁ ମଧ୍ୟରେ ସୁଦୃଢ଼ ସୈନ୍ୟ ରଖି ସମରୁ ବେଗମଙ୍କ ସହିତ ବାସ କଲେ । ଅଗ୍ରାରେ ଏହାଙ୍କ ମୃତ୍ୟୁ ଘଟିଲା । ଏ ମୂର୍ଖ ଓ କଷ୍ଟ ପ୍ରକୃତିକ ଥିଲେ । ଭାରତକୁ ଆସି ଏ Summer ବା Somers ନାମ ଗ୍ରହଣ କଲେ ଏବଂ ଭାରତୀୟମାନେ ଏହାଙ୍କୁ 'ସମରୁ' ନାମରେ ଡାକୁଥିଲେ ।]

ସମରୁ ବେଗମ୍—ଦେ. ବ (ନାମ)—ସମରୁଙ୍କ ରକ୍ଷିତା ସ୍ତ୍ରୀ—The Samaru begam name by which the mistress ସମରুবেগম্ of Samaru was known [ଦ୍ର—ଏହାଙ୍କ ଜନ୍ମ **समरुबेगम्** ୧୭୫୬ ରେ ଓ ମୃତ୍ୟୁ ୧୮୩୬ ରେ । ଏହାଙ୍କର ପ୍ରକୃତ ନାମ ଜେବଲନିସା । ଏ ଜାତିରେ ଜର୍ଜିଅନ୍ (Georgian) ଥିଲେ । ଏହାଙ୍କ ଜନ୍ମ କାଶ୍ମୀରରେ ହୋଇଥିଲା । ଏ 'ସମରୁ'ଙ୍କ ସ୍ତ୍ରୀରୂପେ ବାସ କରୁଥିଲେ ଏବଂ ସମରୁଙ୍କ ମୃତ୍ୟୁ ପରେ ତାଙ୍କ ଜମିଦାରୀର ଓ ପ୍ରଭୂତ ସୈନ୍ୟର ଅଧିକାରିଣୀ ହେଲେ । ତା ପରେ ଏ ରୋମାନ୍‌କାଥଲିକ୍ ଧର୍ମ ଗ୍ରହଣ କରି ଜଣେ ଫରାସୀଙ୍କୁ ବିବାହ କଲେ । ଉକ୍ତ ଫରାସୀ ଆତ୍ମହତ୍ୟା କଲା ପରେ ଏ ଇଂରେଜମାନଙ୍କ ସହିତ ଯୁଦ୍ଧ କରି ୧୮୦୩ ସାଲରେ 'ଅସାଇ' ନାମକ ଯୁଦ୍ଧରେ ପରାସ୍ତ ହୋଇ ପରେ ଇଂରେଜଙ୍କ ସଙ୍ଗେ ସନ୍ଧି ସ୍ଥାପନ କଲେ । ଏ ଖ୍ରୀଷ୍ଟାନ୍ ଧର୍ମର ଉନ୍ନତି ପାଇଁ ବହୁ ଧନ ଦାନ କରିଥିଲେ । ଏ କଲିକତାର ବିଶପ୍ (ଖ୍ରୀଷ୍ଟାନ୍ ଧର୍ମୋପଦେଶକ)ଙ୍କ ହସ୍ତରେ ଦାନାର୍ଥ ପଚିଶ ହଜାର ଟଙ୍କା ଅର୍ପଣ କରିଥିଲେ ଏବଂ ମିରଟରେ ଗୋଟିଏ ଗିର୍ଜା ନିର୍ମାଣ କରାଇଥିଲେ । ଏ ସର୍ବଦା ଖୁବ୍ ଆଡ଼ମ୍ବର ସହକାରେ ଚଳୁଥିଲେ ଓ ମୃତ୍ୟୁ ସମୟରେ ନଗଦ ୭୦।୮୦ ଲକ୍ଷ ଟଙ୍କା ରଖି ଯାଇଥିଲେ । ତାଙ୍କ ପରେ ତାଙ୍କ ପୌତ୍ର (Dyce Sembre) ତାଙ୍କ ସମ୍ପତ୍ତି ଭୋଗ କଲେ ।]

ସମରେନ୍ଦ୍ର ସିଂହ—ଦେ. ବ (ନାମ)—ମିବାରର ରାଣା ପ୍ରତାପ ସିଂହଙ୍କ Samarendra simha କନିଷ୍ଠ ଭ୍ରାତା—The younger সমরেন্দ্র সিংহ brother of Pratap Singh, Rāṇā of **समरेन्द्र सिंह** Mewar. [ଦ୍ର—ଏହାଙ୍କର ଅପର ନାମ ଶକ୍ତିସିଂହ ବା ଶାକ୍ତସିଂହ । ଏ ପ୍ରଥମେ ବଡ଼ ଭାଇ ପ୍ରତାପଙ୍କ ବିରାଗଭାଜନ ହୋଇ ବିପକ୍ଷୀୟ ମୋଗଲସମ୍ରାଟ୍ ଅକବରଙ୍କ ପକ୍ଷେ ଯୋଗ ଦେଇ ତାଙ୍କ ସେନାପତିରୂପେ ବଡ଼ ଭାଇଙ୍କ ବିରୋଧରେ ଅସ୍ତ୍ର ଧାରଣ କରିଥିଲେ । ମୋଗଲମାନଙ୍କ ସହିତ 'ହଲଦିଘାଟ' କ୍ଷେତ୍ରରେ ପ୍ରତାପ ସିଂହ ପରାସ୍ତ ହୋଇ ପ୍ରାଣରକ୍ଷାର୍ଥ ଯୁଦ୍ଧକ୍ଷେତ୍ର ତ୍ୟାଗ କଲାବେଳେ ଭ୍ରାତାଙ୍କୁ ହତ୍ୟା କରିବା ପାଇଁ ପଶ୍ଚାଦ୍ଧାବନ କରୁଥିବା ଦୁଇଜଣ ମୋଗଲ ଯୋଦ୍ଧାଙ୍କୁ ଏ ହତ୍ୟା କରି ଜ୍ୟେଷ୍ଠ ଭ୍ରାତାଙ୍କ ଜୀବନ ରକ୍ଷା କଲେ ଏବଂ ପରେ ଦୁଇ ଭାଇଙ୍କର ମିଳନ ହେଲା ।]

ସମରୋଚିତ—ସଂ. ବିଣ(୪ର୍ଥୀ ତତ୍)—ସମର ପାଇଁ ଉପଯୁକ୍ତ— Samarochita Fit for war; warlike. (ସମରୋପଯୁକ୍ତ—ଅନ୍ୟରୂପ) (ଯଥା—ସମରୋଚିତ ବେଶ)

ସମରୋତ୍ସବ—ସଂ. ବ(ରୂପକ)—ଉତ୍ସବ ରୂପେ କଳ୍ପିତ ଯୁଦ୍ଧ— Samarotsaba Fight compared to a festival.

ସମରୋଦ୍ଦେଶ—ସଂ. ବ (୬ଷ୍ଠୀ ତତ୍)—ରଣକ୍ଷେତ୍ର (ମହାଭାରତ) Samaroddeśa Battle-field.

ସମରୋପାୟ—ସଂ. ବ (୬ଷ୍ଠୀ ତତ୍)—ସମର କୌଶଳ (ଶବ୍ଦକୋଷ)— Samaropāya The art of war, skill in warfare.

ସମର୍ଘ—ସଂ. ବ—ସୁଲଭ ମୂଲ୍ୟ (ଶବ୍ଦକୋଷ)— Samargha Cheap price.
ସଂ. ବିଣ—ସସ୍ତା (ଶବ୍ଦକୋଷ)—Cheap.

ସମର୍ଚ୍ଚନ(ନା)—ସଂ. ବ (ସମ୍=ସମ୍ୟକ୍+ଅର୍ଚ୍ଚନ)—ସମ୍ୟକ୍ ପୂଜନ— Samarchana(nā) Much adoration. (ସମର୍ଚ୍ଚିତ—ବିଣ. ପୁଂ) [ସମର୍ଚ୍ଚିତା—ବିଣ. ସ୍ତ୍ରୀ]

ସମର୍ଣ୍ଣ(ର୍ଣ)—ସଂ. ବିଣ (ସମ୍=ସମ୍ୟକ+ଅର୍ଦ୍ଦ. ଧାତୁ=ପୀଡ଼ନ Samarṇna(rṇa) କରିବା+କର୍ମ. ତ)—୧ । ସମ୍ୟକ୍ ଉତ୍ପୀଡ଼ିତ—1.Tormented; afflicted. ୨।ପ୍ରାର୍ଥିତ— 2. Prayed for; solicited, asked for.

ସମର୍ଥ—ସଂ. ବିଣ. ପୁଂ (ସମ୍=ସମ୍ୟକ୍+ଅର୍ଥ. ଧାତୁ=ଯାଚ୍ଞା Samartha କରିବା, ଶକ୍ତ ହେବା+କର୍ତ୍ତୃ. ଅ)—୧ । ଶକ୍ତ (ସମର୍ଥା—ସ୍ତ୍ରୀ) ବଳିଷ୍ଠ; ବଳବାନ୍—1. Strong; mighty. [ସାମର୍ଥ୍ୟ, ସମର୍ଥତା—ବ] (ଉ—ମନେ କଲେ ଗ୍ରାମ ତ ଅଟନ୍ତି ସମର୍ଥ । କୃଷ୍ଣସିଂହ. ମହାଭାରତ. ବିରାଟ ।) ୨ । କ୍ଷମତାପନ୍ନ—2. Powerful. ୩ । କ୍ଷମ; ଶକ୍ତ; ପାରଗ— 3. Able, capable. ୪ । ଯୋଗ୍ୟ; ଉପଯୁକ୍ତ— 4. Fit; proper; appropriate. ୫ । ଉପକାରୀ; ହିତକାରୀ—5. Beneficial; wholesome. ୬ । ପ୍ରଶସ୍ତ—6. Spacious; wide; capacious; efficient. ୭ । ଅଭିପ୍ରେତ—7. Intended; desired. ୮ । ଯୁକ୍ତିଯୁକ୍ତ; ଯୁକ୍ତିସଙ୍ଗତ—8. Reasonable. ଦେ. ବିଣ. ସ୍ତ୍ରୀ (ସଂ. ସମର୍ଥା)—୧ । ବଳଶାଳୀ ଓ ହୃଷ୍ଟପୁଷ୍ଟ—1. Strong and well developed. ୨ । ରଜସ୍ୱଳା ହୋଇଥିବା—2. Arrived at puberty. ଗ୍ରା. ବ—ସାମର୍ଥ୍ୟ; ବଳ—Strength; power; capacity.

ସମର୍ଥକ—ସଂ. ବ (ସମ୍+ଅର୍ଥ. ଧାତୁ+କର୍ତ୍ତୃ. ଅକ)—ଚନ୍ଦନ Samarthaka କାଷ୍ଠ)—Sandal wood. ସଂ. ବ ଓ ବିଣ. ପୁଂ—ସମର୍ଥନକାରୀ; ଯେ କୌଣସି ପ୍ରସ୍ତାବକୁ ସମର୍ଥନ କରେ—Supporting; supporter of a proposal. [ଦ୍ର—ସଭାରେ ପ୍ରସ୍ତାବକ କୌଣସି

ପ୍ରସ୍ତାବକକୁ ଉପସ୍ଥାପିତ କଲେ ତାହା ଅନୁମୋଦକଙ୍କ ଦ୍ୱାରା ଅନୁମୋଦିତ ହେବା ପରେ ସମର୍ଥକଙ୍କ ଦ୍ୱାରା ସମର୍ଥିତ ହୁଏ । ଅଧିକାଂଶ ସଭ୍ୟଙ୍କ ଦ୍ୱାରା ବା ସମସ୍ତ ସଭ୍ୟଙ୍କ ଦ୍ୱାରା ସମର୍ଥିତ ପ୍ରସ୍ତାବ ସଭାରେ ଗୃହୀତ ବା କର୍ତ୍ତୀଗତ ହୁଏ ।]

**ସମର୍ଥତା(ତ୍ୱ)**—ସଂ ବି (ସମର୍ଥ + ଭାବେ. ତା; ତ୍ୱ) — ୧ । ସାମର୍ଥ୍ୟ—Samarthatā(twa) 1. Strength; ability; capability. ୨ । ବଳଶାଳିତା—2. Powerfulness. ୩ । ଯଥେଷ୍ଟତା—3. Adequacy. ୪ । ଯୋଗ୍ୟତା—4. Fitness.

**ସମର୍ଥନ**—ସଂ. ବି (ସମ୍ + ଅର୍ଥ ଧାତୁ + ଭାବ ଅନ)—୧ । ଯାଚ୍ଞା-Samarthana 1. Asking; begging. ୨ । ସ୍ଥିର-ସମର୍ଥିତ, ସମର୍ଥନୀୟ, ସମର୍ଥ୍ୟ } ବିଣ କରଣ—2. Ascertainment. ୩ । ଦୃଢ଼ୀକରଣ—3. Corroboration; strengthening. ୪ । ବିବାଦମୀମାଂସା-4. Settlement or decision of a dispute. ୫ । ବିବାଦଭଞ୍ଜନ—5. Reconciling a dispute or difference. ୬ । ବିବେଚନା; ଏହା ଉଚିତ, ଏହା ଅନୁଚିତ, ଏବମ୍ଭୂତ ବିବେଚନା—6. Discrimination. ୭ । ଅଧ୍ୟବସାୟ—7. Perseverance. ୮ । ଉତ୍ସାହ—8. Exertion; encouragement. ୯ । କୌଣସି ପ୍ରସ୍ତାବକୁ ଦୃଢ ଭାବରେ ଅନୁମୋଦନ; ମତର ପୋଷକତା କରିବା—9. Supporting of a proposal. ୧୦ । ସମ୍ଭାବନା—10. Probability. ୧୧ । ନିଷେଧ; ମନା (ବିଶ୍ୱକୋଷ)—11. Prohibition.

**ସମର୍ଥନ କରିବା**—ଦେ. କ୍ରି—୧ । ସଭା ସମିତି ପ୍ରଭୃତିରେ ପ୍ରସ୍ତାବକଙ୍କ Samarthana karibā ଦ୍ୱାରା ଉପସ୍ଥାପିତ ଓ ଅନୁମୋଦକଙ୍କ ସମର୍ଥন করা ଦ୍ୱାରା ଅନୁମୋଦିତ ପ୍ରସ୍ତାବର ଅନୁକୂଳ୍ୟରେ ମତ ଦେବା; समर्थन करना ପୋଷକତା କରିବା—1. To support a proposal which has been duly proposed and seconded at a meeting.

୨ । କୌଣସି କଥାର ଅନୁକୂଳ୍ୟରେ ମତ ଦେବା—2. To support any matter in question.

**ସମର୍ଥ କୋଷ**—ଦେ. ବି (ନାମ)—କଲିକତାର ସ୍ୱର୍ଗୀୟ ରାଜା ସର୍ Samartha kosha ରାଧାକାନ୍ତ ଦେବଙ୍କ ଦ୍ୱାରା ପ୍ରକାଶିତ সমর্থ কোষ ବିଭାଗ ଯୁକ୍ତ ବଙ୍ଗଳା ଶବ୍ଦାର୍ଥ କୋଷ—समर्थ कोष A dictionary published by the late Sir Raja Radhakanta Deb from Sobha bazar Rājbāṭi Calcutta.

[ବି—ଏଥିରେ ପ୍ରତ୍ୟେକ ପୃଷ୍ଠାରେ ଛଅ ଗୋଟି ସ୍ତମ୍ଭ ବା କଲମ୍ ଧାରାବାହିକରୂପେ ଲେଖା ଅଛି । ଯଥା—୧ମ କଲମ୍—ବଙ୍ଗଳା ଶବ୍ଦର ବଙ୍ଗଳା ଅର୍ଥ ଓ ଇଂରାଜୀ ଅର୍ଥ ।

୨ୟ କଲମ୍—ଇଂରାଜୀ ଶବ୍ଦର ଇଂରାଜୀ ଅର୍ଥ ଓ ବଙ୍ଗଳା ଅର୍ଥ ।

୩ୟ କଲମ୍—ପୌରାଣିକ ଶବ୍ଦ ଓ ନାମମାନଙ୍କ ଇତିବୃତ୍ତ ।

ଗ୍ରନ୍ଥର ଆରମ୍ଭରୁ ଏହି ଛକୋଟି କଲମ୍ ( Column ) ରେ ଯଥାକ୍ରମେ ବର୍ଣ୍ଣମାଳାକ୍ରମରେ ଏହି ତିନ ଗୋଟି ବିଷୟ ଲେଖା ଅଛି । ଏହି ପୁସ୍ତକଟି ବଙ୍ଗଳାର ଗୋଟିଏ ଅତି ଉପାଦେୟ ଗ୍ରନ୍ଥ ଅଟେ ଓ ଏହି 'ଭାଷାକୋଷ'ର ସଙ୍କଳନରେ ସେହି ଗ୍ରନ୍ଥରୁ ବିଶେଷ ସାହାଯ୍ୟ ମିଳି ଯାଇଅଛି ।]

**ସମର୍ଥନା**—ସଂ ବି ( ସମ୍ + ଅର୍ଥ ଧାତୁ + ଭାବ. ଅନ + ଆ )—Samarthanā ୧ । ସମର୍ଥନ ( ଦେଖ )—1. Samarthana (See). ୨ । ଅଶକ୍ୟ ବିଷୟରେ ଅଧ୍ୟବସାୟ ( ଯଥା—ସମୁଦ୍ରକୁ ମୁଁ ଶୋଷଣ କରିବି, ଏବମ୍ଭୂତ ଦୃଢ଼ ସଙ୍କଳ୍ପ—ବିଶ୍ୱକୋଷ)—2. Perseverance in the accomplishment of an impossible thing.

**ସମର୍ଥା**—ଦେ. ବିଣ ଓ ବି—ସମରଥା ( ଦେଖ ) Samarthā Samarathā ( See )

**ସମର୍ଥିଆ**—ଦେ. ବିଣ (ସଂ ସମର୍ଥ)—ଦମ୍ଭ; ବଳୁଆ—Samarthiā সমর্থ समर्थ Strong.

**ସମର୍ଥିତ**—ସଂ. ବିଣ (ସମ୍ + ଅର୍ଥ ଧାତୁ = ଯାଚ୍ଞା କରିବା + କର୍ମ. ତ) = Samarthita ୧ । କୃତସମର୍ଥନ—1. Supported. ୨ । ଯାଚିତ—2. Asked for. ୩ । ସ୍ଥିରୀକୃତ—3. Settled. ୪ । ଦୃଢ଼ୀକୃତ—4. Corroborated. ୫ । ମିମାଂସିତ—5. Decided; settled; reconciled. ୬ । ସୁବିବେଚିତ—6. Discriminated. ୭ । ସମ୍ମାନିତ—7. Adored; praised.

**ସମର୍ଦ୍ଧକ**—ସଂ. ବିଣ. ପୁଂ (ସମ୍ = ସମ୍ୟକ୍ + ଋଧ୍ ଧାତୁ = ବୃଦ୍ଧି ପାଇବା Samarddhaka + କର୍ତ୍ତୃ. ଅକ)—୧ । ବରଦ; ଅଭୀଷ୍ଟପ୍ରଦ—(ସମର୍ଦ୍ଧୟିତା—ଅନ୍ୟରୂପ) 1. Granting boons. ୨ । ସମର୍ଦ୍ଧିକା ସମର୍ଦ୍ଧୟିତ୍ରୀ } ସ୍ତ୍ରୀ କାମନା ପୂର୍ଣ୍ଣକାରୀ—2. Fulfilling one's desires

**ସମର୍ପକ**—ସଂ ବିଣ. ପୁଂ (ସମ୍ + ଅର୍ପ ଧାତୁ + କର୍ତ୍ତୃ. ଅକ)—Samarpaka ସମର୍ପଣ କର୍ତ୍ତା ( ଦେଖ ) (ସମର୍ପିକା—ସ୍ତ୍ରୀ) Samarpana karttā (See)

**ସମର୍ପଣ**—ସଂ. ବି (ସମ୍ + ଅର୍ପଣ = ଦାନ)—୧ । ଦାନ—1. Giving; absolute gift. ୨ । ନୈବେଦ୍ୟାଦି Samarpana ସମର୍ପିତ ସମର୍ପଣୀୟ ସମର୍ପ୍ୟ } ବିଣ ଦେବତାଙ୍କୁ ଉତ୍ସର୍ଗ କରିବା—2. Offering of some thing to a Deity. ୩ । ଅନ୍ୟ ବ୍ୟକ୍ତିଠାରେ କୌଣସି ବସ୍ତୁର ଭାର ଦେବା—3. Entrusting a thing to another; committing a thing to the charge of. ୪ । ସ୍ଥାପନ—4. Placing. ୫ । ଅନ୍ୟ ବ୍ୟକ୍ତିର ହସ୍ତରେ ଅର୍ପଣ—5. Delivery of a thing to the care of another person; handing over. ୬ ।

ସଂପ୍ରଦାନ; ସ୍ୱତ୍ୱ ତ୍ୟାଗପୂର୍ବକ ପ୍ରଦାନ—6. Surrender of a thing by relinquishing one's rights over it. ୭ । ଉପାସ୍ୟ ପୂଜାର ଶେଷରେ ସ୍ୱକୃତ ଦେବତାଙ୍କ ଉଦ୍ଦେଶ୍ୟରେ ଆତ୍ମ-ସମର୍ପଣ (ବଣ୍ଣକୋଷ)—7. Offering or surrendering one's self to the Deity after worship. [ପ୍ର—ଏଥିର ବାକ୍ୟ—ସଙ୍କଂ ବ୍ରହ୍ମାର୍ପଣମସ୍ତୁ ଓଁ ତତ୍ ସତ୍ ।]

ସମର୍ପଣ କର୍ତ୍ତା—ସଂ. ବଣ. ପୁଂ—ଯେ କୌଣସି ପଦାର୍ଥକୁ କୌଣସି Samarpaṇa karttā ବ୍ୟକ୍ତିଙ୍କ ହସ୍ତରେ ଅର୍ପଣ କରେ—(ସମର୍ପଣ କର୍ତ୍ତ୍ରୀ—ସ୍ତ୍ରୀ) Entrusting; surrendering.

ସମର୍ପଣ ଗ୍ରହୀତା—ଦେ. ବ (କତରଥ ଭାଷା)—ସମର୍ପିତ ବସ୍ତୁକୁ ଯେ Samarpaṇa grahītā ଗ୍ରହଣ କରେ—Trustee; donee; সমর্পণ গ্রহীতা a person who accepts a trust; समर्पण ग्रहीता a beneficiary.

ସମର୍ପଣ ଦାତା—ଦେ. ବ (କତରଥ ଭାଷା)—ଯେଉଁ ବ୍ୟକ୍ତି ସେବା ବା Samarpaṇa dātā ଦେବୋତ୍ତର ସଂପତ୍ତିକୁ ଅନ୍ୟ ବ୍ୟକ୍ତିକୁ সমর্পণ দাতা ସମର୍ପଣ କରେ—Doner of a trust. समर्पण दाता

ସମର୍ପଣ ପତ୍ର—ସଂ. ବ (କତରଥ ଭାଷା)—ଯେଉଁ ଦଲିଲ ଦ୍ୱାରା ଦେବ-Samarpaṇa patra ସେବା ଓ କୌଣସି ଦେବୋତ୍ତର ସଂପତ୍ତି କୌଣସି ବ୍ୟକ୍ତି ହାତରେ ସମର୍ପିତ ହୁଏ—A deed of trust; a deed of surrender or gift.

ସମର୍ପୟିତା—ସଂ. ବଣ. ପୁଂ (ସମ୍ + ଅର୍ପ ଧାତୁ + କର୍ତ୍ତୃ. ତୃ; ୧ମା. Samarpayitā ୧ବ)—ସମର୍ପଣ କର୍ତ୍ତା (ଦେଖ) (ସମର୍ପିତା—ଅନ୍ୟରୂପ) Samarpaṇa karttā (See) (ସମର୍ପୟିତ୍ରୀ, ସମର୍ପିତ୍ରୀ—ଅନ୍ୟରୂପ)

ସମର୍ପା—ଦେ. ବ (ନାମ)—ରାକ୍ଷସୀ ବିଶେଷ; ଅଶୋକ ବନରେ ସୀତାଙ୍କ Samarpā ରକ୍ଷିବା ନିଯୁକ୍ତା ସ୍ତ୍ରୀ ରାକ୍ଷସୀ ପ୍ରଧାନ ରକ୍ଷୟିତ୍ରୀ—সমর্পা The arch-demoness engaged by Rābaṇa समर्पा to keep guard over Sitā in the Asoka forest. [ପ୍ର—ବେଢ଼ରେ ସମର୍ପି ସମର୍ପାକୁ ସଖୀ ନିକଟ, କରଇ । ଉପ. ବୈଦେହୀଶବିଳାସ ।]

ସମର୍ପିତ—ସଂ. ବଣ (ସମ୍ + ଅର୍ପିତ)—୧ । ସମ୍ୟକ୍ ରୂପେ ନ୍ୟସ୍ତ; Samarpita ଅର୍ପିତ—1. Entrusted; delivered made over; surrendered; committed to the care of another. ୨ । ସ୍ଥାପିତ—2. Placed.

ସମର୍ପିବା—ଦେ. କ୍ରି—୧ । ସମର୍ପଣ କରିବା; ସର୍ମ୍ପିବା—1. To Samarpibā surrender; to make over; to সঁপা समर्पण करना entrust. [ପ୍ର—ସେ କରରେ ଯେବେ ଘନକେଶା ସମର୍ପିଲି ପୁନ ।—କବିସୂର୍ଯ୍ୟ. ସଙ୍ଗୀତ] ୨ । ଭାର ଅର୍ପଣ କରିବା—2. To commit to the care of. [ପ୍ର—ଏହା କହୁ ସମର୍ପଣ ସନ୍ତାନ ଭୁଇଁ ହେ ।—ମଧୁସୂଦନ. ଛନ୍ଦମାଳା]

ସମର୍ଯ୍ୟାଦ—ସଂ. ବଣ. ପୁଂ (ମର୍ଯ୍ୟାଦା ସହ ବର୍ତ୍ତମାନ; ସହାର୍ଥ ବହୁବ୍ରୀହି)-Samarjyāda ୧ । ସୀମାଯୁକ୍ତ—1. Bounded. ୨ । (ସମର୍ଯ୍ୟାଦା—ସ୍ତ୍ରୀ) ମର୍ଯ୍ୟାଦାଯୁକ୍ତ—2. Respectful; reverent. ୩ । ନିକଟସ୍ଥ; ସନ୍ନିହିତ—3. Adjoining. ୪ । ସଚ୍ଚରିତ୍ର—4. Of good conduct; honest.

ସମର୍ହଣ(ଣା)—ସଂ. ବ (ସମ୍ + ଅର୍ହଣ)—ସମ୍ୟକ୍ ପୂଜନ (ବଣ୍ଣକୋଷ)—Samarhaṇa (ṇā) Great worship.

ସମଳ—ସଂ. ବଣ. ପୁଂ (ସହାର୍ଥ ବହୁବ୍ରୀହି; ମଳ ସହିତ ବର୍ତ୍ତମାନ)—Samaḷa ୧ । ମଳଯୁକ୍ତ; ମଇଳା; ମଳିନ—1. Filthy. ୨ । (ସମଳା—ସ୍ତ୍ରୀ) ଅବିଳ; ମଳିନ—2. Dirty; foul. ୩ । କର୍ଦ୍ଦମଯୁକ୍ତ—3. Muddy. ୪ । କଳଙ୍କିତ; କଳୁଷିତ 4. Tarnished; tainted. [ପ୍ର—ବାଞ୍ଛିତ କର୍ମସ୍ଥାନର ଶ୍ରମ କଲେ ପ୍ରଘାତ ନାହିଁ, ନିର୍ମଳ ପଦାର୍ଥକୁ ସର୍ବଦା ସମଳ କରି ଯହିଁ ।—ଉପ. ବୈଦେହୀଶବିଳାସ] ସଂ. ବ—ବିଷ୍ଠା—Ordure; dung.

ସମଲପୁର—ଦେ. ବ—ସମ୍ବଲପୁର (ଦେଖ)—Samalapura Sambalapura (See)

ସମଲପୁରୀ—ଦେ. ବଣ—ସମ୍ବଲପୁରୀ (ଦେଖ) Samalapurī Sambalapurī (See) (ସମଲପୁରିଆ—ଅନ୍ୟରୂପ)

ସମଲା(ଇତ୍ୟାଦି)—ଦେ. ବ—ସମ୍ଭଲା ଇତ୍ୟାଦି (ଦେଖ) Samalā(etc) Sambhalā etc (See)

ସମଲା(ଲେ)ଇ—ଦେ. ବ. ସ୍ତ୍ରୀ ୧ । ଦେବୀଙ୍କ ନାମବିଶେଷ—1. Samalā(le)i Name of a popular Goddess. [ସମଲୀ—ଅନ୍ୟରୂପ] ୨ । ସମ୍ବଲପୁରର ଅଧିଷ୍ଠାତ୍ରୀ ଦେବୀ—সমলা समला 2. The Goddess presiding over Sambalpur.

ସମଲା(ଲେ)ଇ ଗଣ୍ଡ—ଦେ. ବ—ସମ୍ବଲପୁର ନିକଟବର୍ତ୍ତୀ ମହାନଦୀ-Samalā(le)i gaṇḍa ଗର୍ଭସ୍ଥ ଗଭୀର ଅଂଶବିଶେଷର समलाइमोन ନାମ—Name of a deep part of the bed of the Mahanadi river near Sambalpur.

ସମଲେଶ୍ୱରୀ—ଦେ. ବ. ସ୍ତ୍ରୀ—ସମଲାଇ ୨ (ଦେଖ) Samaleśwarī Samalāi 2 (See)

ସମ ଶଙ୍କୁ—ସଂ. ବ (ବହୁବ୍ରୀହି)—ଯେଉଁ ସମୟରେ ସୂର୍ଯ୍ୟ ଠିକ୍ Sama śanku ମସ୍ତକୋର୍ଦ୍ଧ୍ୱ ଦେଶରେ ଅବସ୍ଥାନ କରୁଥାଆନ୍ତି (ବଣ୍ଣକୋଷ)—A time when the sun is just overhead.

ସମଶନ—ସଂ. ବ (ସମ୍ + ଅଶନ)—ଅପର୍ଯ୍ୟାପ୍ତ ଭୋଜନ (ବଣ୍ଣକୋଷ) Samaśana A full meal.

ସମଶର ପୁର—ଦେ. ବ (ସଂ. ସୋମେଶ୍ୱର + ପୁର)—ପୁରୀ ଜିଲ୍ଲାର Samaśara pura ବ୍ରହ୍ମାଙ୍କ ପ୍ରଗଲା ଅନ୍ତର୍ଗତ ବ୍ରାହ୍ମଣ-সমশরপুর समसरपुर ଶାସନ ବିଶେଷ—Name of a Brahmin village in the Puri district.

[ଦ୍ର—ଏହି ଶାସନ ସତ୍ୟବାଦୀଠାରୁ ୩ ମାଇଲ୍ ଦୂରରେ ଅବସ୍ଥିତ; ଏହି ଗ୍ରାମର ପ୍ରଥମ ଦାନଗ୍ରହୀତା (ଶାଶିଗ୍ରାହୀ) ଯଜ୍ଞ କରିଥିଲେ ।]

**ସମଶର୍କର ଚୂର୍ଣ୍ଣ**—ସଂ. ବି—ବୈଦ୍ୟଶାସ୍ତ୍ରାନୁମୋଦିତ ଗ୍ରହଣୀ ଓ Samaśarkara chūrṇṇa କାଶ ରୋଗର ପଥ୍ୟଭୂତ ଅବ୍ୟର୍ଥ ମହୌଷଧ ଚୂର୍ଣ୍ଣ ବିଶେଷ—An efficacious medicnial powder used as an effective antidote against cough and dysentery. [ଦ୍ର—ଏହାର ଉପାଦାନ ଲବଙ୍ଗ, ଜାଇଫଳ, ପିପ୍ପଳୀ ପ୍ରତ୍ୟେକ ୧ ଭରି; ମରିଚ ୨ ଭରି, ଶୁଣ୍ଠି ୧୬ ଭରି ଓ ଓ ଶର୍କରା ୨୧ ଭରି । ଏହି ଉପାଦାନମାନ ଚୂର୍ଣ୍ଣ ହୋଇ କପଡ଼ାଛଣା ହୋଇ ଏ ଚୂର୍ଣ୍ଣ ପ୍ରସ୍ତୁତ ହୁଏ । ଏଥିରେ କାଶ, ଶ୍ୱାସ, ଅଗ୍ନିମାନ୍ଦ୍ୟ, ଗ୍ରହଣୀ, ଆମାଶୟ, ଅର୍ଶ ଭଲ ହୁଏ । ଯାଜପୁରର ସ୍ୱର୍ଗୀୟ ପଣ୍ଡିତ ସାଳମଣି ମିଶ୍ରଙ୍କ ଦ୍ୱାରା ଏହା ସୁପରୀକ୍ଷିତ ।]

**ସମ ଶୀତଳ**—ସଂ. ବିଣ—୧। ସାମାନ୍ୟ ରୂପେ ଶୀତଳ—1. Temperately cool. ୨। ଯାହା ଅତି ଥଣ୍ଡା ବା Sama śītala (ସମଶୀତଳତା—ବି) ଅତି ଗରମ ନୁହେଁ—2. Temperate.

**ସମଶୋଧନ**—ସଂ. ବି—(ବୀଜଗଣିତ)—ସମୀକରଣର ଉଭୟ ପାଖରୁ Samaśodhana ସମସଂଖ୍ୟା ବିୟୋଗ କରିବା ରୂପ କ୍ରିୟା (ସମବ୍ୟବକଳନ—ଅନ୍ୟରୂପ) ବିଶେଷ—(Algebra) Equal substraction (i.e. the subtraction of an equal quantity) from both sides of an equation.

**ସମଶ୍ନୁବାନ**—ସଂ. ବି. ପୁଂ (ସମ୍+ଅଶ୍ ଧାତୁ=ବ୍ୟାପିବା+କର୍ତ୍ତୃ Samaśnubāna ବାଚ୍ୟେ ଶୀଳାର୍ଥେ ଅନ; ୧ମା ୧ବ)—(ସମଶ୍ନୁବାନା—ସ୍ତ୍ରୀ) ୧। ବ୍ୟାପନଶୀଳ—1. Diffusing; spreading. ୨। ବ୍ୟାପ୍ତିବିଶିଷ୍ଟ—2. Diffused.

**ସମଶ୍ରେଣି(ଣୀ)**—ସଂ. ବି (କର୍ମଧା)—୧। ଏକଶ୍ରେଣୀ—1. Same Samaśreṇi(ṇī) class; same species. ୨। ତୁଲ୍ୟ ଶ୍ରେଣୀ—2. Similar class.

**ସମଶ୍ରେଣି(ଣୀ)ଭୁକ୍ତ**—ସଂ. ବିଣ—୧। ଏକ ଶ୍ରେଣୀର ଅନ୍ତର୍ଗତ—Samaśreṇi(ṇī)bhukta 1. Of the same class or species. ୨। ଏକ ଦଳର ଅନ୍ତର୍ଗତ—2. Of the same flock.

**ସମଷ୍ଟି**—ସଂ. ବି (ସମ୍=ସମ୍ୟକ୍+ଅଶ୍ ଧାତୁ=ବ୍ୟାପିବା+ଭାବ. Samashṭi ତି)—୧। ସମ୍ୟକ୍ ବ୍ୟାପ୍ତି; ଗୁଚ୍ଛଅଡ଼େ ବ୍ୟାପିଯିବା—1. Overspreading; pervading. ୨। ସାକଲ୍ୟ; ସାମଗ୍ର୍ୟ; ସମସ୍ତତା—2. Wholeness; (ବ୍ୟଷ୍ଟି—ବିପରୀତ) entirety. ୩। ପୁଞ୍ଜୀକୃତ ବା ଏକତ୍ର ରାଶୀକୃତ ସମସ୍ତ ବସ୍ତୁ—3. Aggregated or heaped up thing. ୪। (ଦର୍ଶନ) ସମସ୍ତ ବସ୍ତୁର ଏକତ୍ରାବସ୍ଥିତି—4. (philosophy) Totality of things. ୫। (ଗଣିତ) ଏକାଧିକ ସଂଖ୍ୟାର ଯୋଗଫଳ; ମୋଟ—5. (Mathematics) Sumtotal of many numbers or units.

**ସମଷ୍ଠି(ଷ୍ଠୀ,ଷ୍ଥି,ଷ୍ଥୀ)ଲ(ଲା)**—ସଂ.ବି (ସମ+ସ୍ଥା. ଧାତୁ+କର୍ତ୍ତୃ. ଇଲ+ Samashṭi(shṭī,shṭhi,shṭhī)la(lā) ଅ; କମା ସମ୍+ ଅନ୍ୟ ସଂସ୍କୃତ ନାମ—ଉଣ୍ଡୀର, ଅଷ୍ଠି=ହାଡ଼+ଲା. ଧାତୁ= ନନ୍ଦ୍ୟାମ୍ର, ଅମ୍ଳଗନ୍ଧକ, ଗ୍ରହଣ କରିବା+କର୍ତ୍ତୃ. ଅ;+ କୋକାମ୍ର; କଣ୍ଟକ ଫଳ, ଅ; ନପାତନ ସିଦ୍ଧ)-ବୈଦ୍ୟକ— ଉପଦଂଶ । ୧। ଏକ ପ୍ରକାର କ୍ଷୁପ, ଯାହା କୋକୁଆଁ ଜଳାଭୂମିରେ ଜନ୍ମେ; କଉଁକଡ଼ୁଆ—कक्कुंया 1. A sort of shrub ମ. କୋଭୁମ୍ବା growing on marshy ground. [ଦ୍ର—ଏହା କଟୁ, ରୁଚ୍ୟ, ମୁଖ ବିଶୋଧକ, କଫବାତ ପ୍ରଶମକ, ଦାହକାରୀ ଓ ପାଚକ । (ରାଜ ନିର୍ଘଣ୍ଟ ।] ୨। ଗଣ୍ଡୀର; ଗଣ୍ଡଦୁବା; ଗଣ୍ଠି ଘାସ; କାକୁଡ଼ିଆ ଘାସ—2. A species of grass; creeping cynoden. ୩। ଏକ ପ୍ରକାର କାକୁଡ଼ି—3. A species of cucumber.

**ସମଷ୍ଟୀଭୂତ**—ସଂ. ବିଣ (ସମଷ୍ଟି+ଅଭୂତ ତଦ୍ଭାବେ ଚ୍ୱି+ଭୂ+କର୍ତ୍ତୃ. ତ) Samashṭībhūta —ସମଷ୍ଟିଭୂତ; ଏକତ୍ର କରି ଯାଇଥିବା—Totalled up; aggregate.

**ସମ ସଂଖ୍ୟକ**—ସଂ. ବିଣ (ବହୁବ୍ରୀହି; ସମ+ସଂଖ୍ୟା+କ)—୧। ସମାନ Sama saṁkhyaka ସଂଖ୍ୟାବିଶିଷ୍ଟ—1. Of equal or (ସମ ସଂଖ୍ୟାତ—ଅନ୍ୟରୂପ) same number. ୨। ସମ ରାଶି ବିଶିଷ୍ଟ—2. Consisting of even (ସମସଂଖ୍ୟକା—ସ୍ତ୍ରୀ) numbers.

**ସମ ସଂଖ୍ୟା**—ସଂ. ବି—୧। ସମାନ ସଂଖ୍ୟା—1. Equal number. Samasaṁkhyā ୨। ସମ ରାଶି (ଦେଖ)—2. Sama rāśi (See)

**ସମ ସଂସ୍ଥାନ**—ସଂ. ବି (ବିଜ୍ଞାନ ପରିଭାଷା)—ଉଭୟ ଦିଗରେ ସମାନ Sama saṁsthāna ଅବସ୍ଥାନ; ସମାନଭାବରେ ଅବସ୍ଥାନ—(ସମ ସଂସ୍ଥିତ—ବିଣ) Equilibrium.

**ସମସନ**—ସଂ. ବି(ସମ୍+ଅସ୍ ଧାତୁ=କ୍ଷେପଣ କରିବା+ଭାବ ଅନ)—Samasana ୧। ସଂକ୍ଷେପ କରଣ—1. Abridgement. ୨। (ବ୍ୟାକରଣ) ଏକାଧିକ ଶବ୍ଦର ସମାସ—2. (grammar) A compound or aggregate formed of many words. ୩। ସମାସ କରଣ—3. Formation of a compound word.

**ସମସର**—ଦେ. ବି—ଗଞ୍ଜପା ତାସରେ ଦିଆଯିବା ଏକପ୍ରକାର ରଙ୍ଗ—Samasara A red paint used to paint the cards সমসের of 'Gañjapā' game. [ଦ୍ର—ଗେରୁ ମାଟିରେ समसेर କଇଥ ଅଠା ମିଶାଇ ଏହି ରଙ୍ଗ ପ୍ରସ୍ତୁତ କରାଯାଏ ।]

**ସମ ସରି**—ଦେ. ବିଣ (ସଂ. ସମ+ସଦୃଶ)—୧। ଠିକ୍ ସମାନ—Sama sari 1. Exactly equal. ୨। ସଦୃଶ୍ୟ; ତୁଲ୍ୟ—

সমতুল্য 2, Similar; [ ଜ୍—ଉଷସେ ରୁହାମଣା କରୁ । ଶବ
समान ମଇଜ ସମ ସରୁ—ଭୁପଛ୍ଟ ପ୍ରେମପଞ୍ଚାମୃତ । ]
( ସମ ସରଣ୍ଡୀ]--ଅନ୍ୟରୂପ ) ଦେ. ଅ (ସ. ସମମ୍)—ସହିତ—
সহিত सहित With; along with.

ସମ ସାମୟିକ—ସଂ. ଦଣ ( ସମ=ତୁଲ୍ୟ, ଏକ+ସାମୟିକ )—
Sama sāmayika ସମକାଳୀନ; ଏକ କାଳରେ ଘଟିବା—
Contemporary; happening at the same time; simultaneous.

ସମ ସାମୟିକ ଭାରତ—ଦେ. ବ ( ନାମ )—ପ୍ରାଚୀନକାଳରୁ ଭାରତ-
Sama sāmayika bhārata ବର୍ଷ ସମ୍ବନ୍ଧରେ ସମସାମୟିକ ବ୍ୟକ୍ତିମାନେ ଯେଉଁ ଯେଉଁ ବର୍ଣ୍ଣନା ଲିପିବଦ୍ଧ କରି ଯାଇ ଅଛନ୍ତି, ବଙ୍ଗୀୟ ଅଧ୍ୟାପକ ଶ୍ରୀ ଯୋଗେନ୍ଦ୍ରନାଥ ସମାଦ୍ଦାରଙ୍କ ସଙ୍କଳିତ ସେହି ସେହି ବର୍ଣ୍ଣନା ସମନ୍ୱିତ ପ୍ରକାଣ୍ଡ ବଙ୍ଗଳା ଗ୍ରନ୍ଥ—The title of a Bengalee historical work in many volumes compiling the various descriptions of India given by successive visitors to India ( Greek, Chinese, French, English, Russian ) by Prof J. N. Samāddār.

ସମ ସୁଖ ଦୁଃଖ—ସଂ. ବଣ. ପୁଂ ( ବହୁବ୍ରୀହି )—୧ । ସମବେଦନା-
Sama sukha duhkha ଅନୁଭବୀ—1. Sympathetic.
( ସମ ସୁଖ ଦୁଃଖା—ସ୍ତ୍ରୀ. ବଣ ) ୨ । ଯାହାର ସୁଖ ଓ ଦୁଃଖରେ ସମାନ ମନୋଭାବ—2. Having the same feeling in pleasure and pain. ସଂ. ବ ( କର୍ମଧାରୟ )—ସୁଖ ଦୁଃଖାଦିର ସମାନୁଭୂତି ( ପ୍ରକୃତିବାଦ )—
Same feeling in pleasure and pain.

ସମ ସୁପ୍ତି—ସଂ. ବ ( ସମ=ସକଳ+ସୁପ୍ତି=ନିଦ୍ରା; ଯେଉଁ ସମୟରେ
Sama supti ସମସ୍ତେ ମହାନିଦ୍ରା ଭଜନ୍ତି )—ମହାପ୍ରଳୟ; କଳ୍ପାନ୍ତ—The great or final dissolution of the universe.

ସମସେର୍—ପ୍ରାଦେ. ( ଗଡ଼ଜାତ ) ବ—କ୍ଷତ୍ରିୟ ବୀରମାନଙ୍କୁ ଦଆଯିବା
Samaser ଉପାଧି ବିଶେଷ—A title given to the Kshatriya heroes.

ସ(ସା)ମସେର୍ ଜଙ୍ଗ—ବୈଦେ. ବ—ନେପାଳର ମନ୍ତ୍ରୀ ଓ ସେନାପତିଙ୍କ
Sa(sā)maser jang ଉପାଧି—Title of the Prime
সামসের समसेर minister and General of Nepal.

ସମ ସ୍କନ୍ଧ—ସଂ. ବଣ. ପୁଂ ( ବହୁବ୍ରୀହି; ସମ=ସମାନ ଅଟେ ସ୍କନ୍ଧ
Sama skandha ଯାହାର )—ସମାନ ସ୍କନ୍ଧ ( ଦେଖ )
(ସମସ୍କନ୍ଧା—ସ୍ତ୍ରୀ) Samāna skandha ( See )

ସମସ୍ତ—ସଂ. ବଣ (ସମ୍+ଅସ୍ ଧାତୁ=କ୍ଷେପଣ କରିବା+କର୍ମ. ତ)—
Samasta ୧ । ସବୁ; ସମୁଦାୟ; ସକଳ—1. All. ୨ । ସମଗ୍ର
( ବ୍ୟସ୍ତ—ବିପରୀତ ) —2. Whole. ୩ । ଏକତ୍ରୀକୃତ;
(ସମଷ୍ଟି, ସମସନ, ସମାସ-ବ) ସଞ୍ଚିତ—3. Gathered; stored.
ସମସ୍ତ ଶବ୍ଦର ପର୍ଯ୍ୟାୟ—ସମ, ୪ । ସମଷ୍ଟିକୃତ—4. Totalled.
ସର୍ବ, ବିଶ୍ୱ, ସମଗ୍ର, ଅଶେଷ, ୫ । (ବ୍ୟାକରଣ) କୃତ ସମାସ; ସମାସ-
କୃତ୍ସ୍ନ, ନିଖିଳ, ଅଖିଳ, ଦ୍ୱାରା ନିଷ୍ପନ୍ନ (ପଦ)—5. Formed
ନିଃଶେଷ, ସକଳ, ପୂର୍ଣ୍ଣ, into a compound word.
ଅଖଣ୍ଡ, ଅନୂନକ, ଅନନ୍ତ, ୬ । ସଂକ୍ଷିପ୍ତ—6. Abridged. ୭ ।
ଅନବମ ( କୋଷଧର ) ସଂଯୁକ୍ତ—7. United; joined
সমস্ত together. ଦେ. ବ ( ବହୁବଚନ )—୧ । ସମୁଦାୟ
समस्त ପଦାର୍ଥ—1. All things; the whole. ୨ । ସବୁ ବ୍ୟକ୍ତି—2 All persons. ଦେ. ସର୍ବନାମ—ସବୁ—All.

ସମସ୍ତ ଦୁଗ୍ଧା—ସଂ. ବ ( ବୈଦ୍ୟକ )—ସେହୁଣ୍ଡ; ପତ୍ରର ସିଜ୍—
Samasta dugdhā Euphorbia Nerifolia (plant).

ସମସ୍ତା(ସ୍ଥା)ନ—ପ୍ରାଦେ. (ଗଞ୍ଜାମ ଓ ଭିଶାଖାପଟ୍ଟଣା) ବ—୧ । ଜମିଦାରୀ
Samastā(sthā)na —1. Estate. ୨ । ଦକ୍ଷିଣ ଓଡ଼ିଶାର
ସମସ୍ତା[ସ୍ଥା]ନମ୍—ଅନ୍ୟରୂପ) ରାଜା ବା ଜମିଦାରଙ୍କ ରାଜଧାନୀ—
2. The headquarters of a Zamindar or Rajā of South Orissa.

ସମସ୍ତା(ସ୍ଥା)ନମ ଅ(ଆ)ଫିସ୍(ସୁ)—ପ୍ରାଦେ. ( ଦକ୍ଷିଣ ଓଡ଼ିଶା ) ବ—
Samastā(sthā) a(ā)phis(su) ଦକ୍ଷିଣ ଓଡ଼ିଶାର ଜମିଦାର ଓ ରାଜାଙ୍କ ସଦର କାର୍ଯ୍ୟାଳୟ—The Sadar office of a Zamindar of South Orissa.

ସମସ୍ତିଙ୍କି—ଦେ. ସର୍ବନାମ (ବହୁବଚନ)—ସକଳ ବ୍ୟକ୍ତିଙ୍କୁ; ସମସ୍ତଙ୍କୁ—
Samastinki To all persons.
সকলকে, সবাইকে सबको

ସମସ୍ତେ—ଦେ. ସର୍ବନାମ ( ବହୁବଚନ )—ସବୁ ବ୍ୟକ୍ତି; ସର୍ବେ—
Samaste সকলে सब All men; all.

ସମସ୍ଥ—ସଂ. ବଣ. ପୁଂ ( ସମ+ସ୍ଥା ଧାତୁ+କର୍ତ୍ତି. ଅ )—ସମଭାବରେ
Samastha ସ୍ଥିତ—Placed equally; similarly
(ସମସ୍ଥା—ସ୍ତ୍ରୀ) (ସମସ୍ଥିତି—ବ) placed; juxtraposed.

ସମସ୍ଥଳୀ—ସଂ. ବ ( ସମ+ସ୍ଥଳୀ )—ଗଙ୍ଗା ଯମୁନାର ମଧ୍ୟବର୍ତ୍ତୀ ସମତଳ
Samasthalī ପ୍ରଦେଶ; ଦୋଆବ୍; ଅନ୍ତର୍ବେଦୀ—The plain country or valley between the Ganges and the Jamunā rivers; the modern Doab in the Panjab.

ସମସ୍ଥାନ—ପ୍ରାଦେ. ( ଗଞ୍ଜାମ ଓ ବିଶାଖାପାଟଣା ) ବ ( ସଂ. ସୀମନ୍ତ+
Samasthāna ସ୍ଥାନ )—୧ । ଶିରୋଦେଶ; ମୁଣ୍ଡ—1. Head.
( ସମସ୍ଥାନମ୍—ଅନ୍ୟରୂପ ) ୨ । ଅଗ୍ରଭାଗ—2. Top. ୩ । ଦକ୍ଷିଣ ଓଡ଼ିଶାର ଜମିଦାରଙ୍କ ରାଜଧାନୀ ବା ସଦର—3. Headquarters or capital of a Zamindar in South Orissa. ୪ । ଦକ୍ଷିଣ ଓଡ଼ିଶାର ରାଜ୍ୟ; ଜମିଦାରୀ—4. Estate in South Orissa.

ସମସ୍ୱାମିକ—ସଂ. ବଣ ( ବହୁବ୍ରୀହି )—ଏକସ୍ୱାମିକ; ଯାହାଙ୍କର ସ୍ୱାମୀ
Samaswāmika ଏକ—Having the same master; owned by one and the same proprietor.

**ସମସ୍ୱାମିତ୍ୱ**—ସଂ ବି ( ସମ+ସ୍ୱାମିତ୍ୱ )—ତୁଲ୍ୟ ସ୍ୱତ୍ୱ; ସମାନ ଅଧିକାର—Equal proprietory right over property.
Samaswāmitwa

**ସମସ୍ୟମାନ**—ସଂ, ବିଣ ( ସମ୍ + ଅସ୍ ଧାତୁ = କ୍ଷେପଣ କରିବା + କର୍ମ. ଆନ )—ଯେଉଁ ପଦମାନଙ୍କର ସମାସ କରି ଯାଇଅଛି—( words ) Joined together and formed into a compound word.
Samasyamāna

**ସମସ୍ୟା**—ସଂ. ବି (ସମ୍ + ଅସ୍ ଧାତୁ = କ୍ଷେପଣ କରିବା + କରଣ ଯ + ଆ )—୧ । ଶ୍ଲୋକର ପାଦପୂରଣାର୍ଥ ପ୍ରଶ୍ନ—1. A part of a stanza given out to a person to be filled up as a trial of poetic skill. [ଦ୍ର—ସମସ୍ୟାରେ ପ୍ରଶ୍ନକର୍ତ୍ତା ଶ୍ଲୋକର ଗୋଟିଏ ବା ଦୁଇଟି ଚରଣ ପ୍ରଶ୍ନରୂପେ ବୋଲନ୍ତି । ସମସ୍ୟା-ସାଧାନକାରୀ ଉକ୍ତ ଶ୍ଲୋକର ଅବଶିଷ୍ଟ ଚରଣ ପୂରଣ କରନ୍ତି ।] ୨ । ଜଟିଳ ବିଷୟ; ଦୁରୂହ ବିଷୟ; କଠିନ ପ୍ରଶ୍ନ; କୂଟ ପ୍ରଶ୍ନ—2. A knotty question. ୩ । ନାଆ ଦିଆ; ଢ଼ଗଢ଼ମାଳି; ପହଳି; ପୂରଣାର୍ଥ ପ୍ରହେଳିକା—3. A riddle; a puzzle; a conundrum. ୪ । ଉତ୍ତର ବା ସାଧନ ପାଇଁ ଉପସ୍ଥାପିତ ପ୍ରଶ୍ନ—4. A problem. ୫ । (+ଭାବ. ଯ+ଆ) ଘଟାଇବା—5 Causing to happen. ୬ । ସଂଘଟ୍ଟନ; ଘୋଟିବା—6. Pestling; ୭। ମିଶ୍ରଣ—7. Mixing together; compounding.
Samasyā
[ପ୍ରଥମ ଅର୍ଥରେ ସମସ୍ୟା ଶବ୍ଦର ପର୍ଯ୍ୟାୟ—ସମାସାର୍ଥା, ସମାସ୍ୟାର୍ଥା, ସମସ୍ୟାର୍ଥା ]

ସମସ୍ୟା **जवाब** ଦେ. ବି.—ଉତ୍ତର—Reply; answer. [ଉ—ଉହାଙ୍କ ବାସୁଦେବେ ଲକ୍ଷ୍ୟେ, କଉକେ ସମସ୍ୟା ନ ଦିଏ ।—ଜଗନ୍ନାଥ, ଭାଗବତ ।]

**ସମସ୍ୟା ଦେବା**—ଦେ. କ୍ରି.—୧ । ସମାଧାନ ପାଇଁ ଜଟିଳ ପ୍ରଶ୍ନ ପଚାରିବା—1. To ask a problem; to put a knotty riddle for solution. ୨ । ଉତ୍ତର ଦେବା—2. To give a reply.
Samasyā debā
সমস্যা দেওয়া
**समस्या देना**

**ସମସ୍ୟା ପୂରଣ**—ସଂ, ବି (ଷଷ୍ଠୀ ତତ୍)—୧ । ପ୍ରଶ୍ନ କରି ଯାଇଥିବା ଶ୍ଲୋକାଂଶର ଅପର ପାଦ ପୂରଣ—1. Filling up of the rest of an incomplete stanza given to be filled up. ୨ । ଜଟିଳ ବା କୁଟିଳ ପ୍ରଶ୍ନର ଉତ୍ତର ଦେବା; କଠିନ ବିଷୟର ସମାଧାନ—2. Solution of a problem. [ଉ—ବିଷ ପୁଞ୍ଜି ଦେଖା ନ ଯାଇ ଯେବେ ଥାଇ ଜାବରେ, ବିଷମ ସମସ୍ୟା ପୂରଣ ହେଲା ଏହି ଠାବରେ । ଭଞ୍ଜ—ଲାବଣ୍ୟବତୀ ।]
Samasyā pūraṇa
ସମସ୍ୟା ପୂର୍ତ୍ତି
ସମସ୍ୟା ସାଧନ } —ଅନ୍ୟରୂପ]
ସମସ୍ୟା ସମାଧାନ

**ସମସ୍ୟାର୍ଥା**—ସଂ, ବି —ସମସ୍ୟା (ଦେଖ)
Samasyārthā — Samasyā (See)

**ସମସ୍ୟା ସାଧିବା**—ଦେ. କ୍ରି—୧ । ଜଟିଳ ପ୍ରଶ୍ନର ଉତ୍ତର କରିବା—1. To answer a riddle or problem. ୨ । ଶ୍ଲୋକାଂଶର ଅବଶିଷ୍ଟାଂଶ ପୂରଣ କରିବା—2. To complete an incomplete stanza put to a person to test his poetic skill.
Samasyā sādhibā
সমস্যা সাধনকরা
**समस्या पूरण करना**

**ସମହ୍ୟା**—ସଂ. ବି—(ସମ୍ = ସମ୍ୟକ୍ + ଅହ୍ ଧାତୁ = ବ୍ୟାପିବା + କର୍ତ୍ତୃ. ଯ + ଆ) ଖ୍ୟାତି; ଯଶ; କୀର୍ତ୍ତି (ଶବ୍ଦରତ୍ନାବଳୀ)—Fame; renown; celebrity.
Samahyā

**ସମା**—ସଂ. ବିଣ, ସ୍ତ୍ରୀ (ସମ+ଆ)—ତୁଲ୍ୟା; ସମ ଶବ୍ଦର ସ୍ତ୍ରୀଲିଙ୍ଗ—Feminine of 'Sama'. ସଂ. ବି (ସମ୍ ଧାତୁ + କର୍ତ୍ତୃ. ଅ + ଆ; ସମ୍ ଧାତୁ = ବୈକ୍ଲବ୍ୟ ହେବା + କର୍ତ୍ତୃ. ଅ + ଆ; ନିତ୍ୟବହୁବଚନାନ୍ତ ଶବ୍ଦ)—ସମ୍ବତ୍ସର; ବର୍ଷ—A year. ଦେ. ବି—୧ । (ସଂ· ଶମ୍ଭୁ) ଶମା (ଦେଖ)—1. Śamā. (See) ୨ । ସୋମନାଥର ଅନାଦରାର୍ଥକ ଡାକ ନାମ—2. Nickname of 'Somanātha'.
Samā

**ସମା(ମେ)ଇବା**—ଦେ. କ୍ରି—ସମ୍ଭାଇବା (ଦେଖ)
Samā(me)ibā — Sambhaibā. (See)

**ସମାଂଶ**—ସଂ. ବି (କର୍ମଧା)—ତୁଲ୍ୟ ଅଂଶ—Equal share. ସଂ. ବିଣ—ତୁଲ୍ୟ ଅଂଶ ବିଶିଷ୍ଟ—Having equal share.
Samāmśa

**ସମାଂଶହାରୀ**—ସଂ. ବିଣ· ପୁଂ (ସମାଂଶ+ହୃ. ଧାତୁ+କର୍ତ୍ତୃ. ଇନ୍; ୧ମା. ଏକ )=୧ । ସମାନ ଅଂଶର ବା ଭାଗର ଗ୍ରହଣକାରୀ—1. Taking an equal share. ୨ । ସମାଭାଗାର୍ହ—2. Entitled to an equal share.
Samāmśahārī
(ସମାଂଶହାରିଣୀ—ସ୍ତ୍ରୀ)

**ସମାଂଶିକ**-ସଂ. ବିଣ. ପୁଂ (ସମ+ଅଂଶ+ଇକ)—୧ । ତୁଲ୍ୟାଂଶଗ୍ରାହୀ—1. Taking equal shares. ୨ । ସମାଂଶଭାଗୀ—2. Entitled to equal shares.
Samāmśika
(ସମାଂଶୀ—ଅନ୍ୟରୂପ)
(ସମାଂଶିକା, ସମାଂଶିନୀ—ସ୍ତ୍ରୀ)

**ସମାଂସ**—ସଂ. ବିଣ ( ସ = ସହ + ମାଂସ )—୧ । ମାଂସଯୁକ୍ତ—1. Having flesh; with flesh. ୨ । ମାଂସଳ—2. Fleshy. [ଦ୍ର—ଶାସ୍ତ୍ରରେ ଲିଖିତ ଅଛି ଯେ ଦେବତାଙ୍କ ଉଦ୍ଦେଶ୍ୟରେ ପଶୁହନନ କରି ସମାଂସ ରୁଧିର ସେହି ଦେବତାଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିବିବ-ବିଶ୍ୱକୋଷ ।]
Samāmsa

**ସମାଂସମୀନ**—ସଂ. ବିଣ· ପୁଂ ( ସ = ସହିତ + ମାଂସ + ମୀନ )—ମାଂସ ଓ ମତ୍ସ୍ୟଯୁକ୍ତ (ଭୋଜନ ବା ଖାଦ୍ୟ)—(Meal or food) With meat and flesh.
Samāmsamīna
(ସମାଂସମୀନା—ସ୍ତ୍ରୀ)

**ସମାଂସମୀନା**—ସଂ. ବି. ସ୍ତ୍ରୀ (ସ = ସମ୍ବତ୍ସର + ଲଭ୍ + ଅ; ନିପାତନ)—ପ୍ରତିବର୍ଷ ପ୍ରସବକା ଗାଈ; ବର୍ଷବିୟାଣୀ
Samāmsaminā

ଗାଈ—A cow which brings forth calf every year. (ଉ—ସମାଂସମୀନା ଅସୂତେ, ସମର୍ପ ଦେବକୁ ଧେନେ । କବିଚୂର୍ଣ. କଶୋରୀ ସ ଗୀତ ଚମ୍ପୂ)
ସଂ. ବିଣ. ସ୍ତ୍ରୀ—ସମାଂସମୀନ ଶବ୍ଦର ସ୍ତ୍ରୀଲିଙ୍ଗ—Feminine of Samāṁsamīna.

ସମାକର୍ଷଣ—ସଂ. ବି ( ସମ୍=ସମ୍ୟକ୍+ଆକର୍ଷଣ )—ସମ୍ୟକ୍ ଆକର୍ଷଣ—Great attraction.
Samākarshaṇa
(ସମାକୃଷ୍ଟ, ସମାକର୍ଷିତ—ବିଣ)

ସମାକର୍ଷିତ—ସଂ. ବିଣ. ପୁଂ (ସମ୍+ଆ+କୃଷ୍, ଧାତୁ=ଟାଣିବା; ଣିଚ୍+କର୍ମ. ତ )—ସମ୍ୟକ୍‌ରୂପେ ଆକର୍ଷିତ - Strongly attracted.
Samākarshita
(ସମାକର୍ଷିତା—ସ୍ତ୍ରୀ)

ସମାକର୍ଷୀ—ସଂ. ବିଣ. ପୁଂ (ସମ୍+ଆ+କୃଷ୍, ଧାତୁ=ଟାଣିବା+କର୍ତ୍ତୃ. ଇନ୍)—ବିଶେଷ ଭାବରେ ଆକର୍ଷଣ-କାରୀ —Strongly attracting.
Samākarshī
( ସମାକର୍ଷିଣୀ—ସ୍ତ୍ରୀ )
ସଂ. ବି—୧ । ବହୁଦୂରବ୍ୟାପୀ ଗନ୍ଧ—1. A smell which is diffused through a vast space. ୨ । ତୃଷ୍ଣାଜନକ ଗନ୍ଧ ବିଶିଷ୍ଟ ଭକ୍ଷ୍ୟଦ୍ରବ୍ୟ (ବିଶ୍ୱକୋଷ)—2. Food which has a very attractive and savoury smell.

ସମାକାର—ସଂ. ବି (କର୍ମଧା)—ସମାନ ଆକାର—Similar shape.
Samākāra
(ସମାକାରା—ସ୍ତ୍ରୀ) ସଂ. ବିଣ (ବହୁବ୍ରୀହି)—ତୁଲ୍ୟ ଆକାରବିଶିଷ୍ଟ—Having similar shape.

ସମାକୁଳ—ସଂ. ବିଣ. ପୁଂ (ସମ୍+ଆକୁଳ)—୧ । କାତର; ବ୍ୟାକୁଳ; ଅଧୀର; ଅଥୟ—1 Much perturbed; agitated; distressed. ୨ । ସଂଶୟଯୁକ୍ତ; ସଂଶୟିତ; ସନ୍ଦେହାକୁଳ—2. Doubtful; perplexed. ୩ । ହତବୁଦ୍ଧି—3. Bewildered. ୪ । (ଦ୍ୱାରା) ବ୍ୟାପ୍ତ—4. Pervaded by; diffused with. [ଯଥା—କୁସୁମ ସୁରଭି ସମାକୁଳ ଉପବନ ।] ୫ । (—ଦ୍ୱାରା) ପରିପୂର୍ଣ୍ଣ; ସଂକୁଳ—5. Full of; abounding in. [ଯଥା—ହିଂସ୍ର ଜନ୍ତୁ ସମାକୁଳ ଅରଣ୍ୟ ।]
Samākula
(ସମାକୁଳା—ସ୍ତ୍ରୀ)

ସମାକୃଷ୍ଟ—ସଂ. ବିଣ. ପୁଂ (ସମ୍=ସମ୍ୟକ୍+ଆକୃଷ୍ଟ)—ସମ୍ୟକ୍ ଆକୃଷ୍ଟ—Tightly attracted.
Samākṛushṭa
(ସମାକୃଷ୍ଟା—ସ୍ତ୍ରୀ)

ସମାକ୍ରନ୍ଦନ—ସଂ. ବିଣ. ପୁଂ (ସମ୍+ଆକ୍ରନ୍ଦ)—ସମ୍ୟକ୍ ପ୍ରକାରେ ଆକ୍ରମଣ—Fierce attack.
Samākrandana

ସମାକ୍ରାନ୍ତ—ସଂ. ବିଣ. ପୁଂ (ସମ୍+ଆକ୍ରାନ୍ତ)—୧ । ଚାରିଆଡ଼ୁ ଆକ୍ରାନ୍ତ—1. Attacked on all sides; overtaken. ୨ । ବିଶେଷ ଭାବରେ ଆକ୍ରାନ୍ତ—2. Forcibly attacked by. ୩ । ଗୃହୀତ—3. Taken ୪ । ପରିବ୍ୟାପ୍ତ; ବିସ୍ତୃତ—4. Spread; pervaded ୫ । ଚତୁର୍ଦ୍ଦିଗରେ ନିର୍ଦ୍ଦିଷ୍ଟ ସୀମାବିଶିଷ୍ଟ; ସୀମାବିଶିଷ୍ଟ—5. Bounded on all sides by given boundaries.
Samākrānta

ସମାକ୍ଷର—ସଂ. ବିଣ (ବହୁବ୍ରୀହି)—ସମାନ ଅକ୍ଷର ବିଶିଷ୍ଟ—Having similar or equal letters.
Samākshara

ସମାଖ୍ୟା—ସଂ. ବି (ସମ୍=ସମ୍ୟକ୍+ଆ+ଖ୍ୟା ଧାତୁ=କହିବା+ଭାବେ ଅ+ଆ)—୧ । କୀର୍ତ୍ତି; ଯଶ—1. Celebrity; renown. ୨ । ବିଶେଷ ଆଖ୍ୟା; ନାମ; ଉପାଧି—2 Title; name; term.
Samākhyā

ସମାଖ୍ୟାତ—ସଂ. ବି. ପୁଂ (ସମ୍=ସମ୍ୟକ୍+ଆଖ୍ୟାତ)—୧ । ବିଖ୍ୟାତ 1.Renowned; celebrated. ୨ । ବିଶେଷ ନାମଯୁକ୍ତ—2 Termed; named;titled.
Samākhyāta
(ସମାଖ୍ୟାତା—ସ୍ତ୍ରୀ)

ସମାଗତ—ସଂ. ବିଣ. ପୁଂ (ସମ୍=ସମ୍ୟକ୍+ଆଗତ)—୧ । ଉପସ୍ଥିତ—1. Present; arrived at. ୨ । ଏକତ୍ର ମିଳିତ—2. Assembled. ୩ । ଆଗତ; ଆସି-ଥିବା—3. Come. ୪ । ସାକ୍ଷାତ୍‌କାର କରିଥିବା; ସାକ୍ଷାତ୍‌କୃତ—4. Met.
Samāgata
(ସମାଗତା—ସ୍ତ୍ରୀ)
(ସମାଗମ, ସମାଗତି—ବି)

ସମାଗତି(ମ)—ସଂ. ବି ( ସମ୍+ଆ+ଗତି; ସମ୍+ଆଗମ )—୧ । ଉପସ୍ଥିତି—1. Presence. ୨ । ସମ୍ମିଳନ; ଏକ ସ୍ଥାନରେ ମିଳନ—2. Meeting together; assembling; gathering. ୩ । ଆଗମନ—3. Coming; arrival. ୪ । ସଙ୍ଗମ—4. Union; connection; junction. ୫ । ଗମନାଗମନ; ଗତାୟାତ; ସମୂହ—5. Coming and going; concourse. ୬ । ସଂପ୍ରାପ୍ତି (ବିଶ୍ୱକୋଷ)—6. Acquisition.
Samāgati(ma)

ସମାଘାତ—ସଂ. ବି ( ସମ୍=ସମ୍ୟକ୍+ଆଘାତ )—୧ । ଗୁରୁତର ଆଘାତ—1. Heavy blow. ୨ । ସଂଗ୍ରାମ; ଯୁଦ୍ଧ—2. Battle; fight. ୩ । ହତ୍ୟା; ବଧ—3. Killing; slaughter; murder..
Samāghāta
(ସମାହତ—ବିଣ)

ସମାଚୟନ—ସଂ. ବି ( ସମ୍+ଆ+ଚୟନ )—ଏକତ୍ର ସ୍ଥାପନ (ବିଶ୍ୱକୋଷ)—Placing or putting together.
Samāchayana

ସମାଚରଣ—ସଂ. ବି (ସମ୍+ଆଚରଣ)—ସଦାଚାର; ଉତ୍ତମ ଆଚରଣ-Good conduct.
Samācharaṇa
(ସମାଚରଣୀୟ—ବିଣ)

ସମାଚରିତ—ସଂ. ବିଣ (ସମ୍+ଆଚରିତ)—ସମ୍ୟକ୍ ଆଚରିତ—Practised; followed.
Samācharita
ସଂ. ବି—ସମାଚାର (ଦେଖ)—Samāchāra (See)

ସମାଚାର—ସଂ. ବି ( ସମ୍+ଆଚାର )—୧ । ଖବର; ସଂବାଦ—1. News; report; intelligence; relation; tidings. ୨ । ସଦାଚାର; ଉତ୍ତମ ଆଚରଣ—2. Good conduct; good behaviour. ୩ । ଶିଷ୍ଟାଚାର—3. Etiquette; approved social usage.
Samāchāra

ସମାଚ୍ଛନ୍ନ—ସଂ.ବଣ.ପୁଂ (ସମ୍+ଅଚ୍ଛନ୍ନ)—୧ । ସମ୍ପୂର୍ଣ୍ଣରୂପେ ଆବୃତ— Samāchchhanna 1. Wholly covered. ୨ । ଅଭ୍ରାବୃତ (ସମାଚ୍ଛନ୍ନା—ସ୍ତ୍ରୀ) —2. Overclouded. ୩ । ଲୁକ୍କାୟିତ —3. Concealed; enveloped. ୪ । ଚାରି ପାଖରେ ଘେରା ହୋଇଥିବା—4. Surrounded on all sides.

ସମାଚ୍ଛାଦନ—ସଂ. ବି ( ସମ୍+ଅଚ୍ଛାଦନ )—୧ । କୌଣସି ବସ୍ତୁକୁ Samāchchhādana ସମ୍ୟକ୍ ରୂପେ ବା ସମ୍ପୂର୍ଣ୍ଣ ରୂପେ ସମାଚ୍ଛାଦିତ } ବଣ] ଘୋଡ଼ାଇ ରଖାଯାଇଥିବା ଆବରଣ; ଆଚ୍ଛାଦନ— ସମାଚ୍ଛାଦନୀୟ } 1. A cover; envelope. ୨ । ସମ୍ପୂର୍ଣ୍ଣ ରୂପେ ଆବରଣ କରିବା—2. Covering wholly.

ସମାଜ—ସଂ. ବି (ସମ୍=ସମ୍ୟକ୍+ଅଜ୍ ଧାତୁ=ଗମନ କରିବା+ Samāja ଅଧିକରଣେ. ଅ)—୧ । ସଭା—1. Assembly; (ସାମାଜିକ—ବଣ) meeting. ୨ । ଗଣ; ସମୂହ— 2. Multitude. [ଭି—ଧୂତ ହୋଇ ବଳଶାଳ, ଧୂସର ହୋଇବା ମନ, ଧୋଇ ଶଙ୍କା କଳଙ୍କ-ସମାଜ ମାଳ । କବିସୂର୍ଯ୍ୟ. ଚମ୍ପୂ. ଧ ଗୀତ ।] ୩ । ଦଳ; ସଙ୍ଘ— 3. Company; crowd. ୪ । ସମ୍ପ୍ରଦାୟ; ବିଶେଷ କାର୍ଯ୍ୟ ବା ଉଦ୍ଦେଶ୍ୟ ସାଧନାର୍ଥ ଗଠିତ ଦଳ— 4. A society formed for a particular purpose; corporation. ୫ । ବୈଷ୍ଣବବିଶେଷଙ୍କ ସମାଧି ସ୍ଥାନ—5. The burial ground of an anchorite. ୬ । ଏକ ଧର୍ମ ଓ ଏକ ଆଚାର ସମ୍ପନ୍ନ ଲୋକ ସମଷ୍ଟି—6. A number of persons following the same religion or course of conduct, formed into a body or society or club. ୭ । ଦୈନନ୍ଦିନ କାର୍ଯ୍ୟ କଳାପ ଓ ବ୍ୟବହାରରେ ପରସ୍ପରକୁ ସାହାଯ୍ୟ କରି, ପରସ୍ପରର ସୁଖ ଦୁଃଖରେ ଭାଗୀ ହୋଇ ଏକ ସଙ୍ଗେ ସଂସାରରେ ଚଳାଚଳ ହେବା ଓ ସଦାଗ୍ରସ୍ତ ହେବା ନିମନ୍ତେ ଭିନ୍ନ ଭିନ୍ନ ବର୍ଣ୍ଣ, ଜାତି ବା ସଂପ୍ରଦାୟର ବ୍ୟକ୍ତି-ମାନଙ୍କ ଦ୍ୱାରା ଗଠିତ ହୋଇଥିବା ସଙ୍ଘ ବା ଗୋଷ୍ଠୀ— 7. A society formed by different sects or castes for the purpose of worldly and everyday intercourse; community. ୮ । ଜାତିଗଣ ସଭା—8. Caste-guild; a society of different caste-men. ୯ । (ପ୍ରାଚୀନ ସଂସ୍କୃତ) ମେଳା; ସାମାଜିକ ଉତ୍ସବ—9. A social festival or gathering. ୧୦ । ପଶୁମାନଙ୍କ ଛଡ଼ା ଅନ୍ୟ ପ୍ରାଣୀମାନଙ୍କର ଦଳ (ଅମର କୋଷ)—10. A crowd of animals other than beasts. [ଦ୍ର—ପଶୁ ସମୂହ ବା ଦଳକୁ 'ସମଜ' କୋହାଯାଏ । ଧର୍ମ, ଆଚାର, ମତ,ବିଦ୍ୟା ଆଦି ଯେଉଁ ବିଷୟ ଯେକ ସମାଜ ଗଠିତ ହୁଏ, ତାହା ସେହି ନାମରେ ନାମିତ ହୁଏ । ଯଥା—ହିନ୍ଦୁ ସମାଜ, ବ୍ରାହ୍ମଣ ସମାଜ, ପଣ୍ଡିତ ସମାଜ, ସାହିତ୍ୟ ସମାଜ, ବ୍ରାହ୍ମ ସମାଜ ଇତ୍ୟାଦି । ପୁଣି ଏକ ଶ୍ରେଣୀ ବା ଏକ ଜାତି ବିଶିଷ୍ଟ ବ୍ୟକ୍ତି ସମଷ୍ଟିଙ୍କୁ ଉକ୍ତ ସମାଜ ବୋଲି ଯାଏ; ଯଥା—ନାରୀ ସମାଜ, ସଭ୍ୟ ସମାଜ, ଶିକ୍ଷିତ ସମାଜ ଜନ ସମାଜ ।] ୧୧ । (+ଜଣ୍ଠି. ଅ) ହସ୍ତୀ (ଅନେକାର୍ଥ କୋଷ)—11. Elephant. ୧୨ । (+ଭୁକ. ଅ) ଏକତ୍ର ଗମନ—12. Going together; travelling in company. ଦେ. ବି ( ନାମ ) ପ୍ରଥମେ ସ୍ୱର୍ଗ ଉତ୍କଳର ସମ୍ପାଦକତାରେ ସ୍ୱର୍ଗତ ଗୋପବନ୍ଧୁ ଦାସଙ୍କ ଦ୍ୱାରା ସାପ୍ତାହିକରୂପେ ପରିଚାଳିତ ଓ ତତ୍ପରେ ତାଙ୍କ ଦ୍ୱାରା କଟକଠାରେ ସାପ୍ତାହିକରୂପେ ପ୍ରକାଶିତ ଓ ବର୍ତ୍ତମାନ କଟକଠାରେ ଶ୍ରୀ ଲିଙ୍ଗରାଜ ମିଶ୍ର ଏମ୍. ଏଙ୍କ ଦ୍ୱାରା ସମ୍ପାଦିତ ଓ ଶ୍ରୀ ରାଧାନାଥ ରଥଙ୍କ ପରିଚାଳିତ ଓ ସମାଜ ପ୍ରେସରୁ ପ୍ରକାଶିତ ସାପ୍ତାହିକ ଓ ଦୈନିକ ସମ୍ବାଦପତ୍ର – Name of the daily and weekly editions of a Newspaper started by the late Gopabandhu Das and now edited by Babu Lingraj Misra M.A. and managed by Babu Radhanath Rath.

ସମାଜ ଗତ—ସଂ. ବଣ ( ୭ମୀ ତତ୍ )—୧ । ସମାଜ ସମ୍ବନ୍ଧୀୟ— Samāja gata 1. Relating to society. ୨ । ସମାଜ ବଦ୍ଧ (ଦେଖ)—2. Samāja baddha (See). ୩ । ସାମାଜିକ—3. Social.

ସମାଜ ଗୃହ—ସଂ. ବି (ଆଧୁନିକ ପ୍ରୟୋଗ)—୧ । ବ୍ରାହ୍ମସମାଜ ଆଦିର Samāja gṛuha ଉପାସନାଳୟ—1. The prayer house (ସମାଜ ଘର—ଦେଶଜ ରୂପ) of Brāhma Samāja etc.; the prayer hall of a community. ୨ । ସଭା ଗୃହ—2. Meeting house.

ସମାଜ ଚ୍ୟୁତ—ସଂ. ବଣ. ପୁଂ ( ୫ମୀ ତତ୍ )—କୌଣସି ସମାଜରୁ Samāja chyuta ବହିଷ୍କୃତ—Excommunicated; (ସମାଜ ଚ୍ୟୁତ—ଅନ୍ୟରୂପ) out-casted. (ସମାଜ ଚ୍ୟୁତା, ସମାଜ ତ୍ୟକ୍ତା—ସ୍ତ୍ରୀ) (ସମାଜ ଚ୍ୟୁତି, ସମାଜ ତ୍ୟାଗ—ବି)

ସମାଜ ତତ୍ତ୍ୱ—ସଂ. ବି—ସାମାଜିକ ବୃତ୍ତାନ୍ତ—Social facts; Samāja tattwa facts about society.

ସମାଜ ନାୟକ—ସଂ.ବି.ପୁଂ (୬ଷ୍ଠୀ ତତ୍)--ସମାଜର ନେତା ବା ଅଗ୍ରଣୀ Samāja nāyaka ବ୍ୟକ୍ତି—A headman or leader of a society or community.

ସମାଜ ନୀତି—ସଂ. ବି ( ୬ଷ୍ଠୀ ତତ୍ ) —୧ । ସାମ୍ପ୍ରଦାୟିକ ନିୟମ— Samāja niti 1. Social rules. ୨ । ଯେଉଁ ବିଦ୍ୟା ଦ୍ୱାରା ସାମାଜିକ ତତ୍ତ୍ୱମାନଙ୍କ ଚର୍ଚ୍ଚା କରାଯାଏ— 2. Sociology.

**ସମାଜ ପତି**—ସଂ. ବି ପୁଂ ( ୬ଷ୍ଠୀ ତତ୍ )—ସମାଜର ନାୟକ; କୌଣସି
Samāja pati ସଂପ୍ରଦାୟର ମୁଖ୍ୟ ବ୍ୟକ୍ତି; ଗୋଷ୍ଠୀ ପତି—The headman or leader of a community. ଦେ. ବି—ବଙ୍ଗଦେଶର ବଂଶୋପାଧି ବିଶେଷ—A family title in Bengal.

**ସମାଜ ପତିତ**—ସଂ. ବିଣ. ପୁଂ (୫ମୀ ତତ୍)—ସମାଜ ଚ୍ୟୁତ (ଦେଖ)
Samāja patita Samāja chyuta ( See )
(ସମାଜ ପତିତା—ସ୍ତ୍ରୀ) (ସମାଜ ପତନ—ବି)

**ସମାଜ ବଦ୍ଧ**—ସଂ. ବିଣ. ପୁଂ ( ୩ୟା ତତ୍ )—ଦଳବଦ୍ଧ—
Samāja baddha Formed into a society.
(ସମାଜ ବଦ୍ଧା—ସ୍ତ୍ରୀ)

**ସମାଜ ବନ୍ଧନ**—ସଂ. ବି ( ୬ଷ୍ଠୀ ତତ୍ ବା ରୂପକ କର୍ମଧା )—
Samāja bandhana ୧ । ସାମାଜିକ ନିୟମ ବା ବ୍ୟବସ୍ଥା—1. Social rules. ୨ । ଯେଉଁ ବନ୍ଧନ ଯୋଗୁଁ ସମାଜରେ ମନୁଷ୍ୟ ଅନ୍ୟମାନଙ୍କ ସହିତ ଦଳବଦ୍ଧ ହୋଇ ରହେ—2. Social tie; bonds of society. ୩ । ସମାଜରେ ଅନ୍ୟ ବ୍ୟକ୍ତିମାନଙ୍କ ସଙ୍ଗେ ସଂପର୍କ—3. Social relationship.

**ସମାଜ ବହିର୍ଭୂତ**—ସଂ. ବିଣ ( ୫ମୀ ତତ୍ )—୧ । ସମାଜଚ୍ୟୁତ
Samāja bahirbhūta (ଦେଖ)—1. Samājachyuta ( See ). ୨ । ସମାଜ ବିରୁଦ୍ଧ ( ଦେଖ )—2. Samāja biruddha ( See )

**ସମାଜ ବିଧାନ**—ସଂ. ବି ( ୬ଷ୍ଠୀ ତତ୍ )—ସମାଜ ଶାସନ (ଦେଖ)
Samāja bidhāna Samāja śāsana ( See )
[ ସମାଜ ବିଧି—ଅନ୍ୟରୂପ ]

**ସମାଜ ବିରୁଦ୍ଧ**—ସଂ. ବିଣ ( ୬ଷ୍ଠୀ ତତ୍ )—ସାମାଜିକ ନିୟମର ବିପରୀତ ବା ପ୍ରତିକୂଳ—Contrary or opposed to the rules of society.
Samāja biruddha

**ସମାଜ ବିରୋଧୀ**—ସଂ. ବିଣ. ପୁଂ ( ଉପପଦ ତତ୍ )—୧ । ସମାଜର
Samāja birodhī ନିୟମ ବିରୋଧରେ କାର୍ଯ୍ୟକାରୀ—
(ସମାଜ ବିରୋଧିନୀ—ସ୍ତ୍ରୀ) 1. Acting contrarily to the rules of society. ୨ । ସମାଜ ବିରୁଦ୍ଧ ( ଦେଖ ) 2. Samāja biruddha (See)

**ସମାଜ ଭୁକ୍ତ**—ସଂ. ବିଣ ( ୭ମୀ ତତ୍ )—୧ । ସମାଜର ଅନ୍ତର୍ଗତ—
Samāja bhukta 1. Included in society. ୨ । କୌଣସି ସଂପ୍ରଦାୟର ସଭ୍ୟ ହୋଇଥିବା—2. Being a member of a community.

**ସମାଜ ଭୂଷଣ**—ସଂ. ବି ( ୬ଷ୍ଠୀ ତତ୍ )—ନିଜର ଗୁଣାବଳୀଦ୍ୱାରା ସମାଜର
Samāja bhūshaṇa ଭୂଷଣ ବା ଅଳଙ୍କାରସ୍ୱରୂପ ( ବ୍ୟକ୍ତି )—An ornament to a society.

**ସମାଜ ମନ୍ଦିର**—ସଂ. ବି (ଆଧୁନିକ ବ୍ୟବହାର)—ସମାଜ ଗୃହ (ଦେଖ)
Samāja mandira Samāja gruha (See)

**ସମାଜ ରହିତ**—ସଂ. ବିଣ ( ୫ମୀ ବା ୩ୟା ତତ୍ )—୧ । ସମାଜଚ୍ୟୁତ
Samāja rahita (ଦେଖ)—1. Samājachyuta (See).
(ସମାଜ ରହିତା—ସ୍ତ୍ରୀ) ୨ । ଯେଉଁମାନଙ୍କର ସମାଜ ନାହିଁ; ସମାଜ ହୀନ—2. (persons) Having no society or community.

**ସମାଜ ଶକ୍ତି**—ସଂ. ବି ( ୬ଷ୍ଠୀ ତତ୍ )—ସମାଜର କ୍ଷମତା—The
Samāja śakti power of a society; social strength.

**ସମାଜ ଶାସନ**—ସଂ. ବି ( ୬ଷ୍ଠୀ ତତ୍ )—୧ । ସମାଜରେ ପ୍ରଚଳିତ
Samāja śāsana ନିୟମ—1. Social rules. ୨ । ସମାଜରେ ଚଳୁଥିବା ରୀତି—2. Social customs. ୩ । ସାମାଜିକ ଶାସ୍ତି—3. Social punishment; social sanction. ୪ । ସମାଜର ସଭ୍ୟଙ୍କ ଉପରେ ସମାଜର ଥିବା ଅଧିକାର—4. The rule or mastery of a society over its members.

**ସମାଜ ଶୃଙ୍ଖଳ**—ସଂ. ବି ( ରୂପକ କର୍ମଧା )—ସମାଜ ବନ୍ଧନ (ଦେଖ)
Samāja śrunkhala Samāja bandhana (See).

**ସମାଜ ଶୃଙ୍ଖଳା**—ସଂ. ବିଣ (୬ଷ୍ଠୀ ତତ୍)—୧ । ସାମାଜିକ ପରିପାଟୀ—
Samāja śrunkhalā 1. Social nicety. ୨ । ସମାଜ ବନ୍ଧନ ( ଦେଖ )—2. Samāja bandhana (See)

**ସମାଜ ସଂସ୍କାର**—ସଂ. ବି ( ୬ଷ୍ଠୀ ତତ୍ )—ସମାଜରେ ଚଳୁଥିବା ଅହିତ-
Samāja saṃskāra କର ନିୟମ ବା ପ୍ରଥା ରହିତ କରି ତତ୍ପରିବର୍ତ୍ତିରେ ସୁନିୟମ ବା ହିତ କର ପ୍ରଥା ଚଳାଇବା କର୍ମ; ସାମାଜିକ କୁସଂସ୍କାରମାନଙ୍କ ଶୋଧନ—Social reform.

**ସମାଜ ସଂସ୍କାରକ**—ସଂ. ବି. ପୁଂ ( ଉପପଦ ତତ୍ )—ସାମାଜିକ
Samāja saṃskāraka କୁପ୍ରଥା ପରିବର୍ତ୍ତିନ ପୂର୍ବକ ସୁପ୍ରଥା
( ସମାଜ ସଂସ୍କାରିକା—ସ୍ତ୍ରୀ ) ପ୍ରବର୍ତ୍ତନ ପ୍ରତି ଯତ୍ନଶୀଳ ବ୍ୟକ୍ତି—Social reformer.

**ସମାଜ ସଂସ୍କାରୀ**—ସଂ.ବି.ପୁଂ—ସାମାଜିକ ସଂସ୍କାର ବା ପରିବର୍ତ୍ତନରେ ସହାୟ
Samāja saṃskārī ବା ଗୁଣକ ବ୍ୟକ୍ତି; ଯେ ସମାଜ ହିତକର
(ସମାଜ ସଂସ୍କାରିଣୀ—ସ୍ତ୍ରୀ) କୌଣସି ସୁପ୍ରଥାକୁ ପ୍ରଶ୍ରୟ ଦିଅନ୍ତି—Social reformer.

**ସମାଜ ହିତ**—ସଂ. ବି ( ୬ଷ୍ଠୀ ତତ୍ )—ସମାଜର ଉପକାର—
Samāja hita The good or benefit of society, communal welfare.

**ସମାଜ ହିତକର**—ସଂ. ବିଣ. ପୁଂ ( ଉପପଦ ତତ୍ )—୧ । ସମାଜର
Samāja hitakara ଉପକାରୀ ( ପ୍ରଥା ବା କାର୍ଯ୍ୟ )—
(ସମାଜ ହିତକରୀ—ସ୍ତ୍ରୀ) 1. Beneficial to society. ୨ । ଯଦ୍ଦ୍ୱାରା ସମାଜର ମଙ୍ଗଳ ଘଟେ—2. Bringing good to the community.

**ସମାଜ ହିତୈଷଣା**—ସଂ. ବି (୬ଷ୍ଠୀ ତତ୍)—ସମାଜର ମଙ୍ଗଳକାମନା—
Samāja hitaishaṇā Good wishes for the society.

**ସମାଜ ହିତୈଷୀ**—ସଂ. ବିଣ. ପୁଂ ( ଉପପଦ ତତ୍ )—ସମାଜର ମଙ୍ଗଳକାମୀ ( ବ୍ୟକ୍ତି )—Wishing good to the society.
Samāja hitaishī
(ସମାଜ ହିତକାରୀ—ଅନ୍ୟରୂପ)

( ସମାଜ ହୃଦୈଷଣା, ସମାଜ ହୃତକାରଣୀ —ସ୍ତ୍ରୀ )
ସମାଜ ହୃଦୈଷିଣୀ; ସମାଜ ହୃଦୈଷିତା, ସମାଜ ହୃତ, ସମାଜ ହୃତକାରତା } ବ

**ସମାଜୀ**—ଦେ ବଣ (ସଂ. ସାମାଜକ)—୧ । ସାମାଜକ—1. Social.
Samāji ୨ । କୌଣସି ସମାଜର ଅଧୀନ—2. Belonging
সামাজিক समाजी to any society.

**ସମାଜ୍ଞା**—ସଂ. ବ (ସମ୍ + ଆ + ଜ୍ଞା ଧାତୁ=ଜାଣିବା + କର୍ମ. ଅ +
Samājnā ସ୍ତ୍ରୀ. ଆ)—ଖ୍ୟାତି; ଯଶଃ—Celebrity; fame; renown.

**ସମାତୃ(ତା)**—ସଂ. ବଣ. ସ୍ତ୍ରୀ—ମାତୃ ସମା; ମାତୃସ୍ଥାନୀୟା—Occupy-
Samātru(tā) ing the position of one's mother.
ବ. ସ୍ତ୍ରୀ—ବିମାତା (ଶବ୍ଦକୋଷ)—Step-mother.

**ସମାତୃକ**—ସଂ. ବଣ. ପୁଂ (ସହାର୍ଥ ବହୁବ୍ରୀହି; ସ + ମାତୃ + କ)—
Samātruka ୧ । ମାତୃବିଶିଷ୍ଟ—1. Having one's
(ସମାତୃକା—ସ୍ତ୍ରୀ) (ଅମାତୃକ—ବିପରୀତ) mother.
୨ । ମାତାଙ୍କ ସମଭିବ୍ୟାହାର—
2. Accompanied by on 's mother.

**ସମାତ୍ମକ**—ସଂ. ବଣ (ବହୁବ୍ରୀହି)—ତୁଲ୍ୟ ସ୍ୱଭାବବିଶିଷ୍ଟ—Of the
Samātmaka same or similar nature.
[ସମାତ୍ମିକା—ସ୍ତ୍ରୀ] [ସମାତ୍ମା—ଅନ୍ୟ ପୁଂ ଓ ସ୍ତ୍ରୀରୂପ]

**ସମାଦର**—ସଂ. ବ (ସମ୍=ସମ୍ୟକ୍ + ଆଦର)—୧ । ସମ୍ମାନ; ବିଶେଷ
Samādara ଆଦର—1. Honour; veneration;
ସମାଦୃତ } ବଣ great respect. ୨ । ସମ୍ବର୍ଦ୍ଧନା—
ସମାଦରଣୀୟ 2. Welcome; honouring.

**ସମାଦାନ**—ସଂ. ବଣ. ସ୍ତ୍ରୀ (ସମ୍ + ଆଦାନ)—୧ । ସମ୍ୟକ୍ ଗ୍ରହଣ—
Samādāna 1. Proper acceptance. ୨ । ଉପଯୁକ୍ତ
ଦାନ ଗ୍ରହଣ—2. Act of receiving proper
gift. ୩ । ସୌଗତାହ୍ନିକ; ବୌଦ୍ଧମାନଙ୍କ ନିତ୍ୟକର୍ମ—
3. The daily rites of the Buddhists.

**ସମାଦା(ଦ୍ଦା)ର**—ଦେ. ବ.—ବଙ୍ଗ ଦେଶୀୟ ପାରିବାରିକ ଉପାଧି
Samādā(ddā)ra ବିଶେଷ—A family title in
সমাদার समादार Bengal.

**ସମାଦି(ଇତ୍ୟାଦି)**—ଗ୍ରା. ବ (ଅଶୁଦ୍ଧ) (ସଂ. ସମାଧି)—ସମାଧି ଇତ୍ୟାଦି
Samādi(etc) (ଦେଖ)—Samādhi etc (See)

**ସମାଦିବା**—ଦେ. କ୍ରି—ଆଶ୍ୱାସନା କରିବା—
Samādibā To give consolation; to console
আশ্বাস দেওয়া आश्वासदेना [ଜୀ—ସ୍ୱାମୀ ସଙ୍ଗୀ ସାଧବ ସମାଦଇ
ତୃପ୍ତ ଦେହ ମନ ଖେଦ ।—ପ୍ରାଚୀ. ରସକାରିଧି]

**ସମାଦୃତ**—ସଂ. ବଣ. ପୁଂ (ସମ୍ + ଆଦୃତ)—ସମ୍ମାନିତ; ଅତି ଆଦୃତ—
Samādruta 1. Very much respected; honour-
(ସମାଦୃତା—ସ୍ତ୍ରୀ) ed. ୨ । ସମ୍ବର୍ଦ୍ଧିତ—2. Welcome.

**ସମାଦେଶ**—ସଂ. ବ (ସମ୍ + ଆଦେଶ)—ସମ୍ୟକ୍ ଆଦେଶ; ଆଜ୍ଞା—
Samādesa Special order.
ସମାଦିଷ୍ଟ } ବଣ (ସମାଦେଶନ—ଅନ୍ୟରୂପ)
ସମାଦେଶିତ

**ସମାଧା**—ସଂ. ବ (ସମ୍ + ଆ + ଧା ଧାତୁ=ଧାରଣ କରିବା + ଭାବ
Samādhā ଅ + ଆ) ୧ । ସିଦ୍ଧାନ୍ତ; ମୀମାଂସା; ନିଷ୍ପତ୍ତି-
[ସମାଧାନ—ଅନ୍ୟରୂପ] 1. Decision; settlement of
[ସମାହିତ—ବଣ] an affair. ୨ । ବିରୋଧ ଭଞ୍ଜନ—
2. Reconciling of a dispute or difference. ୩ । ବିବାଦ ନିଷ୍ପତ୍ତି—3. Settlement of a dispute. ୪ । ନିୟମ—4. Rule; regulation. ୫ । ତପସ୍ୟା—5. Practice of religious austerities. ୬ । ନିଜର ଇଚ୍ଛାପ୍ରଣୋଦିତ ଧର୍ମାନୁଷ୍ଠାନ-6. Any religious observance voluntarily undetraken. ୭ । ସମାଧି; ଯୋଗ ସାଧନ; ବ୍ରହ୍ମରେ ମନକୁ ସ୍ଥିର କରି ରଖିବା—7. Abstraction of mind from external objects and fixing it on God; concentration of the mind on the Brahma. ୮ । ଅନୁସନ୍ଧାନ—8. Enquiry; research; investigation. ୯ । ସମର୍ଥନ—9. Act of seconding or supporting a proposal. ୧୦ । ଚିତ୍ତର ଏକାଗ୍ରତା; ଅବଧାନ; ପ୍ରଣିଧାନ—10. Concentration of mind; mental abstraction; composure. ୧୧ । ଧ୍ୟାନ—11. Religious meditation. ୧୨ । ପ୍ରତିକାର—12. Remedy. ୧୩ । କାର୍ଯ୍ୟର ସମାପନ—13. Completion or accomplishment of any work. ୧୪ । ନାଟକର ଅଙ୍ଗ ବିଶେଷ—14. Part of a drama [ବି—ଯେଉଁଠାରେ ବୀଜର ଅର୍ଥାତ୍ ନାଟକବର୍ଣ୍ଣିତ ପ୍ରଧାନ କାରଣର ଅବଧାନ ହୁଏ ତାକୁ ସମାଧା ବୋଲଯାଏ—ସାହିତ୍ୟ ଦର୍ପଣ]

**ସମାଧାନ**—ସଂ. ବ (ସମ୍ + ଆ + ଧା ଧାତୁ=ଧାରଣ କରିବା + ଭାବ
Samādhāna ଅନ)—୧। ସମାଧା (ଦେଖ)—1. Samādhā
(See) ୨ । ପ୍ରଶ୍ନର ଉତ୍ତର ଦାନ—2. An-
[ସମାହିତ, ସମାଧାନୀୟ—ବଣ] swering a question. ୩ ।
ସମସ୍ୟା ପୂରଣ—3. Solution of a problem or riddle. ଦେ. ବ ୧ । ଦୁଇ ଜଣଙ୍କ ବିବାଦ ମୀମାଂସା ପୂର୍ବକ ମିଳନ—1. Reconciliation bet-
সমাধান समाधान ween two disputing persons after settlement of dispute. ୨ ।
(ସମାଧାନ—ଗ୍ରା. ରୂପ) ଅପୋଷରେ ବିବାଦର ମୀମାଂସା-
2. Amicable settlement.

**ସମାଧାନ(ନି) କରିବା**—ଦେ. କ୍ରି—୧ । ସଂପନ୍ନ କରିବା—1. To
Samādhāna(ni) karibā accomplish. ୨ । (ବିବାଦ)
সমাধান করা समाधान करना ମେଣ୍ଟାଇବା—2. To settle or cause reconciliation of a dispute.

**ସମାଧାଣ୍ଡ**—ଦେ. ବଣ. ପୁଂ ଓ ସ୍ତ୍ରୀ—୧ । ଯେଉଁ ବ୍ୟକ୍ତି ଅନ୍ୟ ବ୍ୟକ୍ତିଙ୍କର
Samādhāni ବିବାଦ ମୀମାଂସା କରି ଦିଅନ୍ତି—1. (a person)

[ସମାଧାନଅ—ଅନ୍ୟରୂପ] समाधानी **समाधानी** Who amicably settles disputes between other persons. ୨ । ବିବାଦ ଭଞ୍ଜନ କରିବାରେ ପ୍ରବୀଣ—2. Skilful in bringing about amicable settlement. ୩ । ଶାନ୍ତପ୍ରକୃତିକ—3. Of a mild or cool temper.

**ସମାଧି**—ସଂ. ବି. Samādhi (ସମାହିତ—ବିଣ) (ସମ୍+ଆ+ଧା ଧାତୁ=ଧାରଣ କରିବା+ଅଧି କରଣ ଇ, ଯହିଁରେ ଲୋକଙ୍କର ମନ ସମାହିତ ହୁଏ)—୧ । ସମାଧା (ଦେଖ)—1. Samādhā (See) ୨ । ସମାଧାନ (ଦେଖ)—2 Samādhāna (See). ୩ । ପରମାତ୍ମାଙ୍କ ସହିତ ଜୀବାତ୍ମାର ଏକୀଭାବ—3. The unification of the human mind with the divinity; the mental operation by which 'the God in man is one with the man in God'. [ଉ—ଭର୍ଗ ସମାଧି ଭଙ୍ଗ କରିବ ।—କବିସୂର୍ଯ୍ୟ. ବଳେଶ୍ୱ ଚମ୍ପୂ ଉ. ଗୀତ] [ବି—ଇନ୍ଦ୍ରିୟମାନଙ୍କୁ ନିରୋଧ କରି ଗୋଟିଏ ମାତ୍ର ବିଷୟରେ ଦୃଢରୂପେ ମନୋନିବେଶ କଲେ ଉକ୍ତ ବିଷୟରେ ଏକାଗ୍ରତା ଜନ୍ମେ । ମନୋମଧ୍ୟରେ ଏକାଗ୍ରତା ବଦ୍ଧମୂଳ ହେଲେ 'ଧ୍ୟାନ' ହୁଏ । ଧ୍ୟାନ ବଦ୍ଧମୂଳକ ହେଲେ ତାହାକୁ 'ସମାଧି' ବୋଲିଯାଏ । ସମାଧି ହେଲେ ମନୁଷ୍ୟ ମନରୁ 'ଅହଂ ଭାବ' ଅର୍ଥାତ୍ ନିଜର ଅସ୍ତିତ୍ୱ ଭାବ ଲୁପ୍ତ ହୋଇ ଧ୍ୟେୟ ବସ୍ତୁ ପ୍ରତି ମନୁଷ୍ୟର ଏକମାତ୍ର ଲକ୍ଷ୍ୟ ରହେ । ଈଶ୍ୱରପ୍ରଣିଧାନ ଦ୍ୱାରା ଉତ୍କୃଷ୍ଟ 'ସମାଧି' ଲାଭ ହୁଏ । ପରମାତ୍ମା ସହିତ ଜୀବାତ୍ମାର ଏକାନ୍ତ ମିଳନହିଁ 'ସମାଧି'ର ଚରମ ଲକ୍ଷ୍ୟ । ଏହାହିଁ ଯୋଗସାଧନ ।

ଯୋଗର ଚରମ ଫଳ ସମାଧି—ପ୍ରଥମେ ଏକାଗ୍ରଚିତ୍ତ ଦ୍ୱାରା ଧାରଣା; ତତ୍ପରେ ଧ୍ୟାନ ଓ ତତ୍ପରେ ସମାଧି ହୁଏ । ଇନ୍ଦ୍ରିୟସକଳକୁ ନିରୋଧ କରି କୌଣସି ଗୋଟିଏ ବିଷୟରେ ଚିତ୍ତ ସ୍ଥିର କରିବାକୁ ଏକାଗ୍ରତା ବୋଲିଯାଏ । ମନ ବହୁକାଳ ଏକାଗ୍ର ହେଲେ ଧାରଣା ଜନ୍ମେ । ଧାରଣା ବଦ୍ଧମୂଳ ହେଲେ ଧ୍ୟାନ ହୁଏ । ଧ୍ୟାନ ବଦ୍ଧମୂଳ ହେଲେ ସମାଧି ହୁଏ । ପାତଞ୍ଜଳ ଓ ବେଦାନ୍ତାଦି ଦର୍ଶନରେ ଏହି ସମାଧି ବିଷୟରେ ବିସ୍ତୃତ ବିବରଣ ଓ ସାଧନ ଲିପିବଦ୍ଧ ହୋଇଅଛି । ଯେତେବେଳେ 'ମୁଁ ସତ୍ୟ, ଅନନ୍ତ, ଅଦ୍ୱୟ ବ୍ରହ୍ମସ୍ୱରୂପ ଅଟେ' ଏବଂଭୂତ ଜ୍ଞାନ ଜନ୍ମେ ଏବଂ ଚିତ୍ତବୃତ୍ତି ନଷ୍ଟ ହୋଇ ଅଖଣ୍ଡ ବ୍ରହ୍ମରୂପରେ ଅବସ୍ଥାନ କରିବାକୁ ସମର୍ଥ ହୁଏ, ସେତେବେଳେ ଉକ୍ତ ଯୋଗୀକୁ ସମାଧିସ୍ଥ ବୋଲିଯାଏ । ଏହି ସମାଧିହିଁ ସମାଧିର ଚରମୋତ୍କର୍ଷ; ଏହାକୁ ନିର୍ବିକଳ୍ପ ସମାଧି ବୋଲିଯାଏ । ଜ୍ଞାତା, ଜ୍ଞାନ ଓ ଜ୍ଞେୟ ଏହି ବିକଳ୍ପତ୍ରୟର ଜ୍ଞାନସତ୍ତ୍ୱେ ଅଦ୍ୱିତୀୟ ବ୍ରହ୍ମ ବସ୍ତୁରେ ଅଖଣ୍ଡାକାରରୂପେ ଆକାରିତ ଚିତ୍ତବୃତ୍ତିର ଅବସ୍ଥାନକୁ ସବିକଳ୍ପ ସମାଧି ବୋଲିଯାଏ । ଯେଉଁପରି ମାଟିରେ ତିଆରି ଗୋଟିଏ ହାତୀକୁ ଦେଖିଲେ ତହିଁରେ ହାତୀର ଜ୍ଞାନ ଥାଇ ମଧ୍ୟ ମୃତ୍ତିକାର ଜ୍ଞାନ ଥାଏ, ସେହିପରି ଦ୍ୱୈତଜ୍ଞାନ ଥାଇ ମଧ୍ୟ ଅଦ୍ୱୈତଜ୍ଞାନ ହେଲେ ତାକୁ ସବିକଳ୍ପ ସମାଧି ବୋଲିଯାଏ । ତତ୍ପରେ ସାଧକ କ୍ରମେ ସମାଧିବିଘ୍ନମାନଙ୍କ ଅତିକ୍ରମ କରି ଯେତେବେଳେ ଜ୍ଞାତା, ଜ୍ଞାନ ଓ ଜ୍ଞେୟ ଏହି ବିକଳ୍ପତ୍ରୟର ଅଭାବରେ ଅଦ୍ୱିତୀୟ ବ୍ରହ୍ମ ବସ୍ତୁରେ ଏକୀଭୂତ ହୋଇ ଅଖଣ୍ଡାକାରାକାର ଚିତ୍ତବୃତ୍ତିର ଅବସ୍ଥାନ ହୁଏ ସେତେବେଳେ ନିର୍ବିକଳ୍ପ ସମାଧି ହୁଏ । ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସବିକଳ୍ପ ସମାଧି, ଏସବୁ ନିର୍ବିକଳ୍ପ ସମାଧିର ଅଙ୍ଗ ବା ସୋପାନ । ଚିତ୍ତ ଯେତେବେଳେ ନିବାତ ପ୍ରଦୀପ ପରି ଅଚଳ ହୋଇ କେବଳ ଅଖଣ୍ଡ ଚୈତନ୍ୟମାତ୍ରର ଚନ୍ତାପର ହୁଏ, ସେତେବେଳେ ସମାଧିର ଶେଷ ଅବସ୍ଥା—ନିର୍ବିକଳ୍ପ ସମାଧି ହୁଏ—ବିଶ୍ୱକୋଷ ।]

୪ । ପ୍ରତିଜ୍ଞା—4. Vow; engagement. ୫ । ସମ୍ମତି—5. Consent; agreement. ୬ । ଚୁକ୍ତି—6. Contract; settlement. ୭ । ପ୍ରତିଶୋଧ—7. Requital; liquidation. ୮ । ସଞ୍ଚୟ—8. Storing. ୯ । ଅସାଧ୍ୟ ବିଷୟରେ ଅଧ୍ୟବସାୟ—9. Perseverance in a difficult or impracticable matter ୧୦ । ମୌନଭାବ; ବାକ୍‌ସଂଯମ; ମୌନାବଲମ୍ବନ—10. Silence. ୧୧ । କାବ୍ୟର ଗୁଣ ବିଶେଷ (ଯେଉଁଠାରେ ଦୁଇଟି ଘଟନା ଦୈବକ୍ରମେ ଏକ ସମୟରେ ଘଟେ ଏବଂ ଏକ କ୍ରିୟା ସହିତ ଦୁଇ କର୍ତ୍ତା ଅନ୍ୱୟ ହୋଇ ଦୁଇଟି ଘଟନା ପ୍ରକାଶିତ ହୁଏ)—11. A quality or condition of an epic [in a case where two events happen simultaneously and are expressed by using one verb (conveying double meaning) governed by two nominatives.] [ଉଦାହରଣ--ବାଟରେ ଯାଉଁ ଯାଉଁ ଦୁଇ ସଙ୍ଗୀଙ୍କ ମଧ୍ୟରେ କଳି ହେଲା ଏବଂ କଙ୍କରମୟ ବାଟରେ ଦୁହେଁଯାକ ଝୁଣ୍ଟି ପଡ଼ିଲେ । ଫଳରେ ଦୁଇ ସଙ୍ଗୀଙ୍କର ମନ ଓ ଗୋଡ଼ ଫାଟିଗଲା ।] ୧୨ । ଅର୍ଥାଲଂକାର ବିଶେଷ—12. A figure of speech, where an intended act is effected by an accidental occurrence. [ବି—ଦୈବାନୁକୂଲ୍ୟରୁ ଆରବ୍ଧ କର୍ମ ହଠାତ୍ ଅପ୍ରତ୍ୟାଶିତ ଉପାୟ ଦ୍ୱାରା ସିଦ୍ଧ ହେଲେ ତାହାକୁ ସମାଧି ଅଳଙ୍କାର ବୋଲିଯାଏ । ଯଥା—

ଶ୍ରୀକୃଷ୍ଣ କଂସକୁ ବଧ କରିବାକୁ ପ୍ରସ୍ତୁତ ହୋଇ ମଥୁରାକୁ ଯାଇଥିଲେ; କିନ୍ତୁ 'ମଞ୍ଚାରୁ ପଡ଼ି ମାମୁଁ ମଲା—ମଢେଇଁ ଦେଇବି ରଖିଲା' । ଏହିପରି ସ୍ଥଳରେ 'ସମାଧି ଅଳଙ୍କାର' ହୋଇଥାଏ ।] ୧୩ । ଭିକ୍ଷୁ ସ୍ୱର୍ଣ୍ଣ ଭିକ୍ଷୁ ଜୈନମୁନି ବିଶେଷ—13. Name of a Jaina sage

whose advent is predicted in the Jaina scripture. ୧୪ । ଅଙ୍ଗୀକାର ( ଶବ୍ଦକୋଷ )—14. Promise. ୧୫ । ଧ୍ୟାନ ( ଶବ୍ଦକୋଷ )—15. Contemplation. ୧୬ । ଆରୋପ ( ଶବ୍ଦକୋଷ)—16. Attributing a thing or an attribute to another thing. ୧୭ । ନିଦ୍ରା (ଶବ୍ଦକୋଷ)—17. Sleep. ୧୮ । ଏକାଗ୍ରତା (ଶବ୍ଦକୋଷ)—18. Concentration of mind. ୧୯ । ( ନାମ ) ମାର୍କଣ୍ଡେୟ ପୁରାଣାନ୍ତର୍ଗତ ଦେବୀ ମାହାତ୍ମ୍ୟରେ ବର୍ଣ୍ଣିତ ବୈଶ୍ୟ—19. Name of a Baiśya described in the Chandī. [ ଦ୍ର—ସୂର୍ଯ୍ୟବଂଶୀୟ ରାଜା ସୁରଥ ରାଜ୍ୟଚ୍ୟୁତ ହୋଇ ମେଧସ ଋଷିଙ୍କ ଆଶ୍ରମରେ ଉପସ୍ଥିତ ହେବା ସମୟରେ ଅସାଧୁ ସ୍ତ୍ରୀ-ପୁତ୍ରଙ୍କ ଦ୍ୱାରା ଗୃହରୁ ତାଡ଼ିତ ସମାଧି ନାମକ ବୈଶ୍ୟ ସେଠାରେ ପହଞ୍ଚିଲେ । ସେ କହିଲେ ଯେ, ମୋତେ ମୋ ସ୍ତ୍ରୀପୁତ୍ରାଦି ଘରୁ ତଡ଼ି ଦେଇଛନ୍ତି; ତଥାପି ମୋ ମନ ସେମାନଙ୍କ ପ୍ରତି ମମତାଶୂନ୍ୟ ହେଉ ନାହିଁ; ସେମାନଙ୍କ କୁଶଳ ସମ୍ବାଦ ଶୁଣିବାକୁ ଏବଂ ଜାଣିବାକୁ ଉଦ୍‌ବିଗ୍ନ ହେଉଅଛି । ସୁରଥ ରାଜା ମଧ୍ୟ ରାଜ୍ୟରୁ ବିତାଡ଼ିତ ହୋଇ ସ୍ୱୀୟ ରାଜ୍ୟ ପ୍ରତି ଓ ସ୍ୱୀୟ ଅମାତ୍ୟାଦିଙ୍କ ପ୍ରତି ମମତାଶୂନ୍ୟ ହୋଇ ନ ଥାନ୍ତି । ମେଧସ ମୁନି ବୈଶ୍ୟର ଏ ମମତା ଶୁଣି, ଏହା 'ମହାମାୟା'ଙ୍କ ପ୍ରଭାବ ଓ ଏ ମହାମାୟା ହିଁ ଦୁର୍ଗାଦେବୀ ବୋଲି କହିଲେ । ମୁନି ଦୁର୍ଗାଙ୍କର ଭିନ୍ନ ଭିନ୍ନ ସମୟରେ ଅବତାର ଓ ଦୁଷ୍ଟ ରାକ୍ଷସାଦି (ମହିଷାସୁର, ଶୁମ୍ଭ, ନିଶୁମ୍ଭ, ରକ୍ତବୀଜ ଆଦି)ଙ୍କ ବଧ ବିଷୟ ବର୍ଣ୍ଣନା କଲେ । ଏହା ଶୁଣି ରାଜା ଓ ବୈଶ୍ୟ, ଏ ଦୁହିଙ୍କ ମନରେ ନିର୍ବେଦ ଉପସ୍ଥିତ ହେଲା । ସେମାନେ ନଦୀତଟରେ ଦେବୀଙ୍କ ମୃଣ୍ମୟୀମୂର୍ତ୍ତି ନିର୍ମାଣ କରି ଦେବୀସୂକ୍ତ ଜପ କରି ଦେବୀଙ୍କ ଆରାଧନା କଲେ । ଏହିରୂପେ ତିନିବର୍ଷ ଦେବ୍ୟାରାଧନା ଓ ଦେବୀପୂଜା କରିବାରୁ ଦେବୀ ଆବିର୍ଭୂତା ହୋଇ ସେ ଦୁଇ ଜଣଙ୍କୁ ବର ଦେଲେ । ରାଜା ନଷ୍ଟରାଜ୍ୟ ପ୍ରାପ୍ତ ହେଲେ ଓ ବୈଶ୍ୟ ତତ୍ତ୍ୱଜ୍ଞାନ ଲାଭ କରି ମାୟାପାଶରୁ ମୁକ୍ତ ହେଲା ।]

ଦେ. ବି.—୧ । ପ୍ରାଣବାୟୁ ଥାଉଁ ଥାଉଁ ହିନ୍ଦୁ ସାଧୁ ସନ୍ନ୍ୟାସୀମାନେ ଭୂଗର୍ଭରେ ଆପଣା ପାଇଁ ଯେଉଁ ବିଶେଷ ବିଶ୍ରାମାଗାରର ଆୟୋଜନ କରନ୍ତି ଏବଂ ଯେଉଁଠାରେ ସେମାନଙ୍କ ମୃତ୍ୟୁପରେ ଦେହର ଅସ୍ଥି ବା ଚିତାଭସ୍ମ ସଞ୍ଚିତ ହୋଇ ପୂଜା ପାଏ—1. The place selected by Hindu mendicants for depositing their bones or ashes after death. [ଦ୍ର—ମୁସଲମାନଙ୍କ ଭାରତ ଆକ୍ରମଣପରେ ମୁସଲମାନମାନଙ୍କ କବର ପ୍ରଥାକୁ ଦେଖି ବୈଷ୍ଣବମାନେ ଏହି ରୀତି ଚଳାଇ ଥିବା ଅନୁମିତ ହୁଏ ।] ୨ । ଯୋଗ ଆସନ—2. A kind of seat during Joga exercise:

समाधि समाधि

[ଉ—ସଦାନନ୍ଦ ସମାଧିଉତ୍କଣ୍ଠ କରାଇଲେ ।—ପ୍ରାଚୀ. ପ୍ରତାପ. ଶଶିସେଣା] ୩ । କବର—3. Grave; tomb. [ଉ—ଜୀବନେ ହେଲେହେଁ ଘରଦ୍ୱାରେ କାଯା; ମରଣେ ଲଭିଲେ ଏକହେଁ ସମାଧି ।—ରାଧାନାଥ. ନନ୍ଦକେଶରୀ] ୪ । ଶବ ପୋତିବା—4. Burial. ୫ । ଶବର ଚିତା ଭସ୍ମ ପୋତାଯିବା ସ୍ଥାନ—5. A place where the ashes of a dead body is buried. [ଦ୍ର—କେତେକ ବୈଷ୍ଣବଙ୍କର ମୃତ ଦେହକୁ ଦାହ ନ କରି ସମାଧି ଦିଆଯାଏ ଓ ଉକ୍ତ କବରକୁ ଗାଦି ବୋଲାଯାଏ ।]

ସମାଧି କ୍ଷେତ୍ର—ସଂ. ବି.—(୬ଷ୍ଠୀ ତତ୍) ଯେଉଁ ସ୍ଥାନରେ ଶବମାନଙ୍କୁ କବର ଦିଆଯାଏ—Grave-yard; burial ground; cemetery; sepulchre.
Samādhi kshetra
ସମାଧିଭୂମି, ସମାଧିସ୍ଥାନ }—ଅନ୍ୟରୂପ

ସମାଧି ଗୃହ—ସଂ. ବି.—ସମାଧି ମନ୍ଦିର (ଦେଖ)—Samādhi mandira (See)
Samādhi gṛuha

ସମାଧି ଘି(ଘେ)ନିବା—ଦେ. କ୍ରି—ମୃତ୍ୟୁ ପରେ ପୋତାଯିବା—To be buried after death; (the dead body) to be consigned to the grave.
Samādhi ghi(ghe)nibā
সমাধি লওয়া समाधि लेना
(ସମାଧି ନେବା—ଅନ୍ୟରୂପ)

ସମାଧିତ୍ସୁ—ସଂ. ବିଣ—(ସମ୍ + ଆ + ଧା ଧାତୁ-ଇଚ୍ଛାର୍ଥେ ସନ୍ + ଉ)-ସମାଧାନ କରିବା ପାଇଁ ଇଚ୍ଛୁକ—Desirous of making "Samādhāna".
Samādhit-su

ସମାଧି ଦେବା—ଶବକୁ ପୋତିବା—To bury a dead body.
Samādhi debā সমাধি দেওয়া समाधि देना

ସମାଧି ପାଇବା—ଦେ. କ୍ରି.—ମୃତ୍ୟୁ ପରେ ପୋତାଯିବା—To be buried after death.
Samādhi pāibā
সমাধি পাওয়া समाधिपाना

ସମାଧି ପ୍ରସ୍ତର—ଦେ. ବି—ସମାଧି ଉପରେ ପୋତାଯିବା ପଥର—Tomb-stone.
Samādhi prastara
সমাধি পাথর समाधिपत्थर [ଦ୍ର—ଏ ପଥରରେ ସମାହିତବ୍ୟକ୍ତିଙ୍କ ନାମ ଧାମ ଆଦି ଲେଖା ହୁଏ ।]

ସମାଧି ବିଘ୍ନ—ସଂ. ବି.—(ମଧ୍ୟ ପଦଲୋପୀ କର୍ମଧା)—ଧ୍ୟାନ ବିଷୟରେ ବାଧା—Obstacles to one's meditation. ୨ । ଯୋଗୀଙ୍କର 'ନିର୍ବିକଳ୍ପ ସମାଧି' ଅବସ୍ଥା ଲାଭ ହେବା ବିଷୟରେ ଉପସ୍ଥିତ ବିଘ୍ନମାନ—2. Obstacles encountered by a Jogi to attain the final stage of Samādhi. [ଦ୍ର-ସାଧକ ସବିକଳ୍ପ ସମାଧି ଲାଭ କରି ଯେତେବେଳେ ନିର୍ବିକଳ୍ପ ସମାଧିରେ ଉପସ୍ଥିତ ହେବାକୁ ଅଗ୍ରସର ହୁଅନ୍ତି, ସେହି ଅବସ୍ଥାରେ ତାଙ୍କୁ ୪ଗୋଟି ବିଘ୍ନ ଅତିକ୍ରମ କରିବାକୁ ପଡ଼େ—ଲୟ, ବିକ୍ଷେପ, କଷାୟ ଓ ରସାସ୍ୱାଦନ । ଅଖଣ୍ଡ ବ୍ରହ୍ମ ବସ୍ତୁକୁ ଅବଲମ୍ବନ କରିବାକୁ ଅସମର୍ଥ ଅନ୍ତଃକରଣବୃତ୍ତିର ନିଦ୍ରାକୁ ଲୟ ବୋଲାଯାଏ । ଅଖଣ୍ଡ ବ୍ରହ୍ମକୁ ଅବଲମ୍ବନ କରି ନ-

ଯାହ ଅନ୍ତଃକରଣକୁ ଅନ୍ୟ କୌଣସି ବସ୍ତୁକୁ ଅବଲମ୍ବନ କଲେ ବଚେଷ ହୁଏ । କାମନା ବଶତଃ ଅନ୍ତଃକରଣକୁ ଅଖଣ୍ଡ ବ୍ରହ୍ମ ବସ୍ତୁକୁ ଅବଲମ୍ବନ କରିବାକୁ ଅସମର୍ଥ ହେଲେ ତାକୁ କଷାୟ ବୋଲଯାଏ । ନିର୍ବିକଳ୍ପ ସମାଧି ନ ହେଉଣୁ ସବିକଳ୍ପ ସମାଧିଜନିତ ଆନନ୍ଦ ଆସ୍ୱାଦନରେ ଚିତ୍ତକୁ ମଜିଗଲେ ତାକୁ ରସାସ୍ୱାଦନ ବୋଲଯାଏ । ଚିତ୍ତ ଏ ଚାରି ପ୍ରକାର ବିଘ୍ନରୁ ରହିତ ହେଲେ ବା ବିଘ୍ନକୁ ଅତିକ୍ରମ କଲେ ସମାଧିର ଚରମ ଅବସ୍ଥା—ନିର୍ବିକଳ୍ପ ସମାଧି—ଲାଭ ହୁଏ । ବିଶ୍ୱକୋଷ ।]

**ସମାଧି ବଧି**—ବି. ବି—ଯୋଗଶାସ୍ତ୍ରୋକ୍ତ ସମାଧି ଲାଭ କରିବା ପାଇଁ
Samādhi bidhi ଶାସ୍ତ୍ରରେ ଉପଦିଷ୍ଟ ବିଧାନ ବା ନିୟମମାନ—Rules enjoined in the Śāstras for attaining Samādhi.

**ସମାଧି ଭଗ୍ନ(ଙ୍ଗ)କରିବା**—ଦେ. କି—ସମାଧି ଭାଙ୍ଗିବା (ଦେଖ)—
Samādhi bhagna(ṅga)kariba Samādhi bhāṅgibā (See)

**ସମାଧି ଭଙ୍ଗ**—ବି. ବି (୬ଷ୍ଠୀ ତତ୍)—ଧ୍ୟାନଭଙ୍ଗ; ଧ୍ୟାନ ଭାଙ୍ଗିଯିବା—
Samādhi bhaṅga Interruption of meditation.

**ସମାଧି ଭାଙ୍ଗିବା**—ଦେ. କି (ସକର୍ମକ)—କୌଣସି ବ୍ୟକ୍ତିର ଧ୍ୟାନ ବା
Samādhi bhāṅgibā ତପସ୍ୟା ଭଙ୍ଗ କରିବା—To
[ସମାଧି ଭଙ୍ଗକରିବା—ଅନ୍ୟରୂପ] interrupt the medi-
[ସମାଧି ଭଙ୍ଗାଇବା—ଣିଜନ୍ତରୂପ] tation of a person.
সমাধি ভাঙ্গা समाधि तोड़ना [ଦ୍ର—ତପସ୍ୟାକାରୀ କଠିନ ତପସ୍ୟା ଆଚରଣ ପୂର୍ବକ କାଳେ ଇନ୍ଦ୍ରପଦ ଲାଭ କରିବେ, ଏହି ଆଶଙ୍କାରେ ଇନ୍ଦ୍ର ଅପ୍ସରାମାନଙ୍କୁ ପଠାଇ ତପସ୍ୟାକାରୀ ବ୍ୟକ୍ତିଙ୍କ ସମାଧି ଭଙ୍ଗ କରନ୍ତି ।] ଦେ. ବି—ଧ୍ୟାନ ଭଙ୍ଗ ହେବା—The interruption of a person's meditation.

**ସମାଧି ମଗ୍ନ**—ବି ବିଣ. ପୁଂ (୭ମୀ ତତ୍)—ଧ୍ୟାନମଗ୍ନ—
Samādhi magna Immersed in deep meditation.
(ସମାଧିମଗ୍ନା—ସ୍ତ୍ରୀ)

**ସମାଧି ମଠ**—ଦେ. ବି—ପୁରୀର ମଠବିଶେଷ—Name of a Matha
Samādhi matha or religious institution in
সমাধিমঠ समाधिमठ Puri.

**ସମାଧି ମନ୍ଦିର**—ଦେ. ବି—୧ । ସମାଧି ଉପରେ ନିର୍ମିତ ଗୃହ ବା ଦେଉଳ-
Samādhi mandira 1. A mausoleum; a
সমাধিমন্দির समाधिमन्दिर temple raised over a grave. ୨ । ମୃତବ୍ୟକ୍ତିଙ୍କ ଚିତାଭସ୍ମକୁ ପୋତି ତହିଁ ଉପରେ ନିର୍ମିତ ଦେବା ମନ୍ଦିର—2. A temple raised over the ashes of a dead person

**ସମାଧି ସ୍ତମ୍ଭ**—ଦେ ବି—୧ । ସମାଧି ଉପରେ ନିର୍ମିତ ସ୍ତମ୍ଭ, ଭୂଗର୍ଭ-
Samādhi stambha ନିହିତ ଶବୋପରି ରଚିତ ସ୍ତମ୍ଭ—
সমাধি স্তম্ভ समाधि स्तम्भ 1. A pillar raised over a grave.

**ସମାଧିସ୍ଥ**—ବି. ବିଣ. ପୁଂ—(ସମାଧି+ସ୍ଥା ଧାତୁ+କର୍ତ୍ତ୍ରି. ଅ)—୧। ଧ୍ୟାନ-
Samādhistha ନିମଗ୍ନ—1. Engaged in deep
[ସମାଧିସ୍ଥା—ସ୍ତ୍ରୀ] meditation. ୨ । ସମାଧି ମଧ୍ୟସ୍ଥ—2. Which is inside a grave. ୩ । ପରମାତ୍ମାଙ୍କ ଧ୍ୟାନରେ ପୂର୍ଣ୍ଣରୂପେ ମଗ୍ନ (ମନ, ବ୍ୟକ୍ତି, ଚିତ୍ତ)—3. (mind or person) Devoted exclusively to the sole thought of the Paramātmā [ଦ୍ର—ସଙ୍କଳ୍ପରହିତ ହୋଇ ଇନ୍ଦ୍ରିୟାର୍ଥଚିନ୍ତନରୁ ମୁକ୍ତ ହୋଇ ବ୍ରହ୍ମରେ ଲୀନ ହେବା ଅବସ୍ଥାକୁ ସମାଧିସ୍ଥ ଅବସ୍ଥା ବୋଲଯାଏ ।]

**ସମାଧି ହାଣ୍ଡି**—ଦେ. ବି—ପୁରୀରେ ଅନ୍ନ ମହାପ୍ରସାଦ ରଖାଯିବାର ଏକ
Samādhi hāṇḍi ପ୍ରକାର ହାଣ୍ଡି—Name of an ear-
সমাধি হাঁড়ি समाधि हाँड़ि then pot of the capacity of containing boiled rice weighing 3 to 4 seers. [ଦ୍ର—ଏଥିରେ ୩।୪ ସେର ଚାଉଳର ଅନ୍ନ ରହିପାରେ । ସମ୍ଭବତଃ ପୁରୀର ସମାଧି ମଠ ତରଫରୁ ଜଗନ୍ନାଥଙ୍କଠାରେ ଭୋଗ ଲଗି ଯାଉଥିବା ଅନ୍ନ ମହାପ୍ରସାଦ ଏହି ଆକାରର ହାଣ୍ଡିରେ ରଖାଯାଉଥିବାରୁ ଏହାର ଏପରି ନାମ ହୋଇଅଛି ।]

**ସମାଧେୟ**—ସଂ. ବିଣ (ସମ୍+ଆ+ଧା ଧାତୁ+କର୍ମ. ଯ)—
Samādheya ସମାଧାନର ଉପଯୁକ୍ତ—Fit for Samādhāna.

**ସମାଧ୍ମା(ଧ୍ନା)ତ**—ସଂ. ବିଣ. (ସମ୍+ଅଧ୍ମାତ; ଅଧ୍ନାତ)—୧ । ସମ୍ୟକ୍
Samādhmā(dhnā)ta ଶବ୍ଦିତ—1. Resounded. ୨ । ଉତ୍ସାହିତ—2. Encouraged. ୩ । ସମୁଦ୍ଦୀପିତ—3. Very much kindled. ୪ । ଗର୍ବିତ—4. Proud. ୫ । (ସମ୍=ସମାନ+ଅଧ୍ମାତ) ସମାନରୂପେ ଶବ୍ଦିତ—5. Emitting similar sounds.

**ସମାଧ୍ୟାୟୀ**—ସଂ. ବିଣ. ପୁଂ (ସମ୍+ଅଧ୍ୟାୟୀ)—୧ । ସହପାଠୀ—
Samādhyāyi 1. Studying together. ୨ । ତୁଲ୍ୟ
(ସମାଧ୍ୟାୟିନୀ—ସ୍ତ୍ରୀ) ଅଧ୍ୟୟନକାରୀ—2. Reading in the same or equal standard.

**ସମାନ୍**—ଦେ. ବିଣ (ସଂ ସମାନ)—ସମାନ (ଦେଖ)
Samān Samāna (See)
সমান ପ୍ରାଦେ. (ଗଞ୍ଜାମ) ବି—ସାମାନ୍ (ଦେଖ)
समान Sāmān (See

**ସମାନ**—ସଂ ବିଣ (ବହୁବ୍ରୀହି; ସ=ସହିତ, ସମ+ମାନ=ପରିମାଣ; Samāna ସମାନ ଅଟେ ପରିମାଣ ଯାହାର; କିମ୍ବା ସମ୍+ଆ+(ଅ ମାନ—ବପସର୍ଗ) ଣା ଧାତୁ=ନେବା+କର୍ତ୍ତ୍ରି. ଅ)—
୧ । ସମ; ସଦୃଶ; ତୁଲ୍ୟ—1. Equal. ୨ । ସମତଳ—2. Level. ୩ । ଅବିକଳ; ଏକ ରୂପ—3. Same; uniform. ୪ । ତୁଲ୍ୟ ପରିମାଣ ଆକାର ବା ଗୁଣ ବିଶିଷ୍ଟ—4. Equal in quantity, shape or quality. ୫ । ପ୍ରକୃତ—5. Proper

ସଂ. ବ (ସମ୍=ସମ୍ୟକ୍+ଅନ୍ ଧାତୁ=ବଞ୍ଚିବା+ଭାବ-ଅ)—୧ । ପ୍ରାଣବାୟୁବିଶେଷ; ଶରୀର ମଧ୍ୟସ୍ଥ ପଞ୍ଚବାୟୁ ମଧ୍ୟରୁ ନାଭି ଦେଶରେ ଅବସ୍ଥିତ ବାୟୁ—1. Name of one of the five winds inside the body. [ଦ୍ର—ଅନ୍ୟ ୪ଟି ବାୟୁର ନାମ—(ହୃଦୟରେ) ପ୍ରାଣ, (ଗୁହ୍ୟରେ) ଅପାନ, (ସର୍ବାଙ୍ଗ) ବ୍ୟାନ ଓ (ଊର୍ଦ୍ଧ୍ୱଦେଶରେ) ଉଦାନ ।] ୨। (ବ୍ୟାକରଣ) ଏକସ୍ଥାନରୁ ଉଚ୍ଚାରିତ ବର୍ଣ୍ଣ—2. Letters uttered from the same place. ଦେ· ବି—ସମାନା (ଦେଖ)—Samānā ( See )

**ସମାନ କରଣ**—ସ. ବି—୧ । ବକ୍ର ବସ୍ତୁକୁ ସଳଖ କରିବା (ଶବ୍ଦକୋଷ) Samāna karaṇa —1. Straightening. ୨ । ଏକ ଜାତୀୟ ଦୁଇଟି ବସ୍ତୁକୁ ସମାନ ଆକାରକୁ ଆଣିବା (ଶବ୍ଦକୋଷ)—2. Equalising of two things of the same class. ୩ । ଶିଥିଳ ଶିଶ୍ନର ସଂଯମନ-କରଣ (ଅଥବା ପ୍ରାଣଶାସ୍ତ୍ର)—3. Bringing about the erection of a prostrate penis.

**ସମାନ କର୍ମା**—ସ. ବଣ (ବହୁବ୍ରୀହି; ସମାନ+କର୍ମନ୍; ୧ମା· ୧ବ)—Samāna karmā ୧ । ସମ ବ୍ୟବସାୟୀ—1. Of the same profession. ୨ । ସମାନ କର୍ମକାରୀ—2. Doing equal or similar acts

**ସମାନ କାରଣ**—ସ. ବଣ (ବହୁବ୍ରୀହି)—ତୁଲ୍ୟକାରଣ ବିଶିଷ୍ଟ—Samāna kāraṇa Having similar causes.

**ସମାନ କାଳୀନ(କାଳିକ)**—ସ. ବଣ ( ସମାନକାଳ+ଈନ; ଇକ )—Samāna kālina(kālika) ୧। ସମକାଳୀନ; ଏକ କାଳରେ ଜାତ ବା ଉତ୍ପନ୍ନ—1.Born or produced at same time. ୨। ସମସାମୟିକ—2. Contemporary. ୩ । ଏକ ସମୟରେ ଘଟିବା—3. Happening simultaneously.

**ସମାନ ଜନ୍ମା**—ସଂ. ବଣ (ବହୁବ୍ରୀହି; ସମାନ+ଜନ୍ମନ୍; ୧ମା. ୧ବ)—Samāna janmā ତୁଲ୍ୟ ବୟସ୍କ—Of the same age.

**ସମାନ ଜାତୀୟ**—ସଂ. ବଣ. ପୁଂ ( ସମାନ+ଜାତି+ଈୟ )—Samāna jātiya ୧ । ତୁଲ୍ୟ ଜାତୀୟ—1. Of similar (ସମାନ ଜାତୀୟା—ସ୍ତ୍ରୀ) class. ୨ । ଏକ ଜାତୀୟ—2. Of the same caste or species.

**ସମାନ ତନ୍ତ୍ର**—ସଂ. ବଣ· ( ବହୁବ୍ରୀହି )—୧ । ଏକ ବ୍ୟବସାୟୀ—Samāna tantra 1. Of the same profession. (ସମାନ ତନ୍ତ୍ରା—ସ୍ତ୍ରୀ) ୨ । ଏକ ରୂପ ପ୍ରକୃତି ବିଶିଷ୍ଟ—2. Of the same nature. ୩ । ଏକ ଶାଖାଧ୍ୟୟନ ପୂର୍ବକ ଏକରୂପ ଯାଗଯଜ୍ଞ କରିବା (ଶବ୍ଦକୋଷ)—3. Engaged in the performance of similar vedic practices and reading the same branch of the Beda.

**ସମାନତା(ତ୍ୱ)**—ସଂ. ବ (ସମାନ+ଭାବେ· ତା; ତ୍ୱ)—ସମତା—Samānatā(twa) Equality; similarity.

**ସମାନ ଧର୍ମା**—ସଂ. ବଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ସମାନ+ଧର୍ମନ୍; ୧ମା Samāna dharmā ୧ବ)—୧ । ତୁଲ୍ୟ ଧର୍ମୀ; ଏକଧର୍ମ ବିଶିଷ୍ଟ—1. Of the same attribute. ୨। ଏକ ଧର୍ମାବଲମ୍ବୀ; ସଧର୍ମୀ—2. Professing the same religion.

**ସମାନନ**—ସଂ. ବଣ. ପୁଂ ( ସମ+ଆନନ; ବହୁବ୍ରୀହି )—Samānana ତୁଲ୍ୟ ଆନନ ବା ମୁଖ ବିଶିଷ୍ଟ—(ସମାନନା—ସ୍ତ୍ରୀ) Having similar faces.

**ସମାନ ନାମା**—ସଂ. ବଣ (ବହୁବ୍ରୀହି; ସମାନ+ନାମନ୍; ୧ମା, ୧ବ)—Samāna nāmā ୧ । ସନାମା; ସମାନନାମବିଶିଷ୍ଟ—1. Having similar names. ୨ । ଏକନାମ-ବିଶିଷ୍ଟ—2. Having the same name.

**ସମାନବୟଃ**—ସଂ. ବଣ ( ବହୁବ୍ରୀହି; ସମାନ+ବୟସ୍ )—୧ । ଏକ-Samāna bayah ବୟସ୍କ—1. Of the same age ( ସମାନବୟସ୍କ—ଅନ୍ୟରୂପ ) ୨ । ତୁଲ୍ୟବୟସ୍କ—2. Of similar age.

**ସମାନ ବୟସୀ**—ଦେ.ବଣ. ପୁଂ ଓ ସ୍ତ୍ରୀ (ସଂସମାନ ବୟଃ)—ସମାନବୟଃ Samāna bayasi (ଦେଖ)—Samānabāyah ( See ) ( ସମାନ ବୟସିଆ—ଅନ୍ୟରୂପ )

**ସମାନ ବର୍ଣ୍ଣ**—ସ. ବ ( ବ୍ୟାକରଣ )—ଏକ ସ୍ଥାନରୁ ଉଚ୍ଚାରିତ ବର୍ଣ୍ଣ; Samāna barṇṇa ସମୋଚ୍ଚାରିତ ବର୍ଣ୍ଣ—Letters uttered ( ସମାନବର୍ଣ୍ଣା—ସ୍ତ୍ରୀ ) from the same place. ବଣ—୧ । ତୁଲ୍ୟ ବର୍ଣ୍ଣବିଶିଷ୍ଟ—1. Of the same colour. ୨ । ତୁଲ୍ୟ ଜାତିବିଶିଷ୍ଟ—2. Of the same caste.

**ସମାନ ବଳ**—ସ. ବ ( କର୍ମଧା )—୧ । ତୁଲ୍ୟ ବଳ—1. Equal Samāna bala strength. ୨ । ( ବିଜ୍ଞାନ ) କୌଣସି ପଦାର୍ଥ ପ୍ରତି ବିପରୀତ ଦିଗରୁ ପ୍ରଯୁକ୍ତ ତୁଲ୍ୟ ବଳ—2. ( physical science ) Equal forces applied to a thing from opposite directions. ବଣ. ପୁଂ (ବହୁବ୍ରୀହି)—ତୁଲ୍ୟ ବଳବିଶିଷ୍ଟ—Of equal strength

**ସମାନ ବାହୁ**—ସ. ବଣ. ପୁଂ (ବହୁବ୍ରୀହି; ସମାନ ଅଟେ ବାହୁ ଯାହାର) Samāna bāhu —ସମ ବାହୁ ( ଦେଖ )—(ସମାନ ବାହୁକ—ଅନ୍ୟରୂପ) Sama bāhu ( See )

**ସମାନ ବ୍ରହ୍ମଚାରୀ**—ସ. ବଣ, ପୁଂ—୧ । ଏକରୂପ ବ୍ରହ୍ମଚର୍ଯ୍ୟ ଅଚରଣ-Samāna brahmachāri କାରୀ—1. Practising ( ସମାନ ବ୍ରହ୍ମଚାରିଣୀ—ସ୍ତ୍ରୀ ) similar continence. ୨। ଏକ ବ୍ରତଚାରୀ—2. Performing the same penance. ସ. ବି. ପୁଂ—ସତୀର୍ଥ ( ଶବ୍ଦକୋଷ )—Fellow-student.

**ସମାନ ଭୂତି**—ସ. ବ—୧ । ସାର୍ଷ୍ଟି ମୁକ୍ତି ( ଅର୍ଥାତ୍ ମୁକ୍ତ ହୋଇ ବିଷ୍ଣୁଙ୍କ Samāna bhuti ସମାନ ଐଶ୍ୱର୍ଯ୍ୟରେ ବୈକୁଣ୍ଠରେ ଅବସ୍ଥାନ)—1. The privilege of sitting in equal

glory with Bishnu in heaven after death.
୨ । ସମାନ ଐଶ୍ୱର୍ଯ୍ୟ—2. Similar effulgence.
[ ଉ—ସବୁ ମୁନଙ୍କ ମୋକ୍ଷ ଥାନ । କରେ ସମାନଭୂତ ଦାନ—ଜଗନ୍ନାଥ. ଭାଗବତ । ]

**ସମାନୟନ**—ସଂ. ବି ( ସମ୍+ଆନୟନ )—୧ । ସମ୍ୟକ୍ ଆନୟନ—
Samānayana 1. Upbringing; special bringing up;
(ସମାନୀତ—ବିଣ) ୨ । ମିଳନ—2. Union.

**ସମାନ ଶଯ୍ୟ**—ସଂ. ବିଣ, ପୁଂ ( ବହୁବ୍ରୀହି; ସମାନ+ଶଯ୍ୟା )—ଏକ
Samāna śajya ଶଯ୍ୟାରେ ଶୟନକାରୀ—
( ସମାନ ଶଯ୍ୟା—ସ୍ତ୍ରୀ ) Sleeping on the same bed.

**ସମାନ ଶୀଳ**—ସଂ. ବିଣ. ପୁଂ ( ବହୁବ୍ରୀହି; ସମାନ+ଶୀଳ )—୧ ।
Samāna śīla ତୁଲ୍ୟ ଆଚରଣ ବିଶିଷ୍ଟ—1. Of the same
(ସମାନଶୀଳା—ସ୍ତ୍ରୀ) conduct. ୨ । ତୁଲ୍ୟ ସ୍ୱଭାବ ବିଶିଷ୍ଟ—
2. Possessing the same nature.

**ସମାନ ସଂଖ୍ୟ**—ସଂ. ବିଣ. ପୁଂ ( ସମାନ+ସଂଖ୍ୟା+ଅ )—ତୁଲ୍ୟ
Samāna saṁkhya ସଂଖ୍ୟକ—Of equal number.
( ସମାନ ସଂଖ୍ୟକ—ଅନ୍ୟରୂପ )
( ସମାନ ସଂଖ୍ୟା, ସମାନ ସଂଖ୍ୟକା ସ୍ତ୍ରୀ )

**ସମାନ ସୁଖ ଦୁଃଖ**—ସଂ. ବିଣ. ପୁଂ (ବହୁବ୍ରୀହି; ସମାନ+ସୁଖ ଦୁଃଖ)—
Samāna sukha duhkha ଯାହାର ଦୃଷ୍ଟିରେ ସୁଖ ଓ ଦୁଃଖ
(ସମାନ ସୁଖ ଦୁଃଖା—ସ୍ତ୍ରୀ) ସମାନ—Feeling the same in pleasure and grief.

**ସମାନ ସ୍କନ୍ଦ**—ଗ୍ରା. ବିଣ ( ସଂ. ସମାନସ୍କନ୍ଧ )—ସମାନ ସ୍କନ୍ଧ ( ଦେଖ )
Samana skanda Samāna skandha ( See )

**ସମାନ ସ୍କନ୍ଧ**—ସଂ. ବିଣ ( ବହୁବ୍ରୀହି )—୧ । ସମସ୍କନ୍ଧ; ଯେଉଁ ବ୍ୟକ୍ତିର
Samāna skandha ସ୍କନ୍ଧର ଉଚ୍ଚତା ଅନ୍ୟବ୍ୟକ୍ତିର ସ୍କନ୍ଧର ଉଚ୍ଚତା
(ସମାନ ସ୍କନ୍ଧା—ସ୍ତ୍ରୀ) ସଙ୍ଗେ ସମାନ—1. Of the same height
( ସମାନ ସ୍କନ୍ଧତା—ବି ) ( literally of the same height as that of the shoulder of another ). ୨ । ( ଲକ୍ଷଣାର୍ଥ )—ଏକ ଅବସ୍ଥିତିଯୁକ୍ତ; ସମପଦସ୍ଥ — 2. Of the same position. ୩ । ଧନ, ବିଦ୍ୟା, ବୟସ ଆଦିରେ ପରସ୍ପର ସଙ୍ଗେ ସମାନ—
3. Equal in position; wealth and age.

**ସମାନା**—ସଂ. ବି—ନାୟିକା ତଳେ ନୋଟ ( ଦେଖ )—See note
Samānā below Nāyikā. ସଂ.ବିଣ.ସ୍ତ୍ରୀ (ସମାନ+ସ୍ତ୍ରୀ ଆ)—
ସମାନର ସ୍ତ୍ରୀଲିଙ୍ଗ—Feminine of Samāna.

**ସମାନାଧିକରଣ**—ସଂ. ବି (ସମାନ+ଅଧିକରଣ)—ଯେଉଁ ସାଧାରଣ
Samānādhikaraṇa ଗୁଣ ଥିବାରୁ ପଦାର୍ଥଗଣକୁ ଏକଜାତୀୟ
(ବ୍ୟାଧିକରଣ—ବିପରୀତ) ବୋଲାଯାଏ—Apposition; general property; common quality (the possession of which makes two things belong to the same class).

**ସମାନାଧିକାର**—ସଂ. ବି (କର୍ମଧା)—ତୁଲ୍ୟ ଅଧିକାର ବା ସ୍ୱତ୍ୱ —
Samānādhikāra Equal right or title.

(ସମାନାଧିକାରୀ—ବିଣ.ସ୍ତ୍ରୀ) ୨.ବିଣ.ପୁଂ—ସମାନ ଅଧିକାର ବିଶିଷ୍ଟ—
Having similar rights.

**ସମାନାର୍ଥ**—ସଂ. ବି (କର୍ମଧା)—ତୁଲ୍ୟ ଅର୍ଥ; ଏକ ଅର୍ଥ—Same or
Samānārtha similar meaning. ସଂ. ବିଣ (ବହୁବ୍ରୀହି)
—୧ । ଏକ ଅର୍ଥ ବିଶିଷ୍ଟ—1. Having the same meaning. ୨ । (ପୁଂ) ସମ ପ୍ରୟୋଜନ ବା ଉଦ୍ଦେଶ୍ୟ
( ସମାନାର୍ଥା—ସ୍ତ୍ରୀ ) ବିଶିଷ୍ଟ—2. Having the same necessity or aim.

**ସମାନୀକରଣ**—ସଂ. ବି ( ସମାନ+ଅଭୂତ ତଦ୍ଭାବେ ଚ୍ୱି [ଈ]+
Samānīkaraṇa କରଣ)—ଅସମାନ ବସ୍ତୁକୁ ସମାନ କରିବା—
Equalisation.

**ସମାନୀତ**—ସଂ. ବିଣ ( ସମ୍+ଆନୀତ )—୧ । ସମ୍ୟକ୍ ଆନୀତ—
Samānīta 1. Specially brought. ୨ । ମିଳିତ—
(ସମାନୀତା—ସ୍ତ୍ରୀ) 2. Joined together. ୩ । ସଙ୍ଗତ—
[ସମାନୟନ—ବି] 3. Reasonable; united.

**ସମାନୁପାତ**—ସଂ. ବି—( ଗଣିତ ) ଏକାଧିକ ଅନୁପାତର ସମାନତ୍ୱ—
Samānupāta ସମ୍ବନ୍ଧ; ଦୁଇ ବା ବହୁ ଅନୁପାତର ସମାନତ୍ୱ
ସମ୍ବନ୍ଧ—(Mathematics) Equal ratio; proportion; equality of ratio.

**ସମାନେ**—ଗ୍ରା. ଅ—ସହିତ; ସଦୃଶ; ତୁଲ୍ୟ—Like. [ଉ—ତାହାଙ୍କ
Samāne ଶଙ୍ଖ ଗାଣ୍ଡୀବ ଧାରୀ, ସେ ଲେହ ସମାନେ କଠୋର ।
**ସମାନେ ସମାନେ** ଜଗନ୍ନାଥ. ଭାଗବତ ।]

**ସମାନୋଦକ**—ସଂ. ବି (ବହୁବ୍ରୀହି; ସମାନ=ଏକ+ଉଦକ=ତର୍ପଣ
Samānodaka କାଳରେ ଦେୟ ଜଳ; ସମାନ ଅଟେ ତର୍ପଣ ଜଳ
ଯେଉଁମାନଙ୍କର)—ଏକୋଦକ; ଚତୁର୍ଦ୍ଦଶ ପୁରୁଷ ପର୍ଯ୍ୟନ୍ତ ତର୍ପଣୀୟ ଜ୍ଞାତି; ଉପରେ ୭ ପୁରୁଷ ଓ ତଳ ୭ ପୁରୁଷ ଏପରି ୧୪ ପୁରୁଷ ପର୍ଯ୍ୟନ୍ତ ସମ୍ପର୍କୀୟ ଜ୍ଞାତି—Kinsmen within fourteen generations of relationship; kinsmen connected by libation of water between 7th and 14th degrees.
[ ଦ୍ର—ସାତ ପୁରୁଷ ଅନ୍ତର୍ଗତ ଜ୍ଞାତିଙ୍କୁ ସପିଣ୍ଡ ବୋଲାଯାଏ । ୧୪ ପୁରୁଷ ପର୍ଯ୍ୟନ୍ତ ସମାନୋଦକ, ତଦୂର୍ଦ୍ଧ୍ୱ ସଗୋତ୍ର । ଯଥା—

ସପିଣ୍ଡତା ତୁ ପୁରୁଷେ ସପ୍ତମେ ବିନିବର୍ତ୍ତତେ,
ସମାନୋଦକଭାବସ୍ତୁ ଜନ୍ମନାମ୍ନୋରବେଦନେ ।

(ମିତାକ୍ଷରା, ବିବାଦଚନ୍ଦ୍ରାମଣି)

ମତାନ୍ତରରେ ଏକାଦଶ ପୁରୁଷଠାରୁ ଚତୁର୍ଦ୍ଦଶ ପର୍ଯ୍ୟନ୍ତ ଜ୍ଞାତିଙ୍କୁ ସମାନୋଦକ ବୋଲାଯାଏ ।]

**ସମାନୋଦର୍ଯ୍ୟ**—ସଂ. ବି. ପୁଂ (ବହୁବ୍ରୀହି ସମାନ+ଉଦର+ଯ)—
Samānodarjya ଏକମାତାଙ୍କ ସନ୍ତାନ—Blood brothers.
[ ସମାନୋଦର୍ଯ୍ୟା—ସ୍ତ୍ରୀ ]

**ସମାନୋପମା**—ସଂ. ବି—ଉପମାଳଙ୍କାରବିଶେଷ—A kind of simile
Samānopamā (figure of speech). [ ଦ୍ର—
ଯେଉଁ ସ୍ଥଳରେ ସମାନ ବା ସ୍ୱରୂପ ଶବ୍ଦ ଦ୍ୱାରା ସାଧାରଣ

ଧର୍ମର ବର୍ଣ୍ଣନ ହୁଏ, ସେହି ସ୍ଥଳରେ ଏହି ଅଳଙ୍କାର ହୁଏ; ଯଥା—

"ସାଳକାନନଶୋଭଙ୍ଗ ଏହି ଉଦ୍ୟାନମାଳା ବାଳାକ୍ୟାୟୁ ଶୋଭା ପାଉଅଛି ।" ଏଠାରେ ଉଦ୍ୟାନମାଳା ଉପମାନ ଓ ବାଳା ଉପମେୟ । ସାଲକାନନଶୋଭଙ୍ଗ ବିଶେଷଣ ଉଦ୍ୟାନମାଳା ପକ୍ଷରେ 'ସାଲବନଶୋଭିତା' ଓ ବାଳା ପକ୍ଷରେ 'ଅଳକ ବା ଚୂର୍ଣ୍ଣକୁନ୍ତଳଯୁକ୍ତ ଆନନ ବା ମୁଖ ଶୋଭିତା' ପ୍ରଯୋଜିତ ହୋଇଅଛି । କେହି କେହି ଏହାକୁ ସରୂପୋପମା ଅଳଙ୍କାର ବା ଶ୍ଳେଷୋପମା ଅଳଙ୍କାର କହନ୍ତି । ଯେଉଁଠାରେ ଅର୍ଥଶ୍ଳେଷ ହୋଇ ଉପମା ହୁଏ ସେଠାରେ ଶ୍ଳେଷୋପମା ଓ ଯେଉଁଠାରେ ଶବ୍ଦଶ୍ଳେଷ ହୋଇ ଉପମା ହୁଏ ସେଠାରେ ସମାନୋପମା ହୁଏ — ବିଶ୍ୱକୋଷ ।]

**ସମାନ୍ତକ**—ସଂ. ବି—କାମଦେବ (ବିଶ୍ୱକୋଷ)—
Samāntaka Cupid.

**ସମାନ୍ତର**—ସଂ. ବିଣ (ବହୁବ୍ରୀହି; ସମ+ଅନ୍ତର) ସର୍ବତ୍ର ସମଦୂରବର୍ତ୍ତୀ—
Samantara Parallel.
[ ସମାନ୍ତରାଳ—ଅନ୍ୟରୂପ ]

**ସମାନ୍ତର କ୍ଷେତ୍ର**—ସଂ. ବି ( ଜ୍ୟାମିତି )—ଯେଉଁ କ୍ଷେତ୍ରର ବିପରୀତ
Samāntara kshetra ବାହୁମାନ ସମାନ୍ତର—(Geometry)
[ସମାନ୍ତରାଳ କ୍ଷେତ୍ର—ଅନ୍ୟରୂପ] A parallellogram.

**ସମାନ୍ତର ବୃତ୍ତ**—ସଂ. ବି (ଜ୍ୟାମିତି) ଯେଉଁ ବୃତ୍ତମାନଙ୍କର ପରିଧି ପରସ୍ପର
Samāntara brutta ଠାରୁ ସମଦୂରବର୍ତ୍ତୀ; ଏକକେନ୍ଦ୍ରିକ
(ସମାନ୍ତରାଳ ବୃତ୍ତ—ଅନ୍ୟରୂପ) ବୃତ୍ତ—(Geometry) concentric circles

**ସମାନ୍ତର ରେଖା**—ସଂ. ବି—ଯେଉଁ ରେଖାମାନ ସର୍ବତ୍ର ପରସ୍ପରଠାରୁ
Samāntara rekhā ସମଦୂରବର୍ତ୍ତୀ ହୋଇଥାଆନ୍ତି—
(ସମାନ୍ତରାଳ ରେଖା—ଅନ୍ୟରୂପ) (Geometry) Parallel lines.

**ସମାନ୍ତର ଶୋଢ଼ୀ [ଶ୍ରେଣୀ]**—ସଂ. ବି—( ଗଣିତ ) ପରବର୍ତ୍ତୀ ସ୍ୱଣି
Samāntara srodhi (śreṇi) ଅପେକ୍ଷା ସମ ପରିମାଣରେ
ଗୁରୁତର ବା ଲଘୁତର ରାଶିସମୂହ—( Arithmetic ) Arithmetical progression.

**ସମାନ୍ତର ସରଳରେଖା**—ସଂ. ବି ( ଜ୍ୟାମିତି ) ଯେଉଁ ସରଳରେଖା
Samāntara saralarekhā ପରସ୍ପରର ସମାନ୍ତର—
(ସମାନ୍ତରାଳ ସରଳରେଖା—ଅନ୍ୟରୂପ) (Geometry) Parallel straight lines. [ ଦ୍ର - ଯେଉଁ ଦୁଇ ବା ତତୋଽଧିକ ସରଳ ସରଳରେଖା ଉଭୟ ଦିଗରେ ଯେତେ ଇଚ୍ଛା ସେତେ ଦୂରକୁ ପ୍ରସାରିତ ହେଲେ ପରସ୍ପର ସହିତ ମିଳିତ ବା ପରସ୍ପରର ନିକଟବର୍ତ୍ତୀ ହୁଅନ୍ତି ନାହିଁ ସେମାନଙ୍କୁ ସମାନ୍ତର ବା ସମାନ୍ତରାଳ ସରଳରେଖା ବୋଲାଯାଏ । ]

**ସମାନ୍ତରାଳ**(ଇତ୍ୟାଦି)—ସଂ.ବିଣ (ବହୁବ୍ରୀହି; ସମ+ଅନ୍ତରାଳ)--ସମାନ୍ତର
Samāntarāla (etc.) ଇତ୍ୟାଦି (ଦେଖ)
Samāntara etc. (See)

**ସମାନ୍ତରିକ କ୍ଷେତ୍ର**—ସଂ. ବିଣ (ସମାନ୍ତର+ଇକ)—(ଜ୍ୟାମିତି) ସମାନ୍ତର
Samāntarika kshetra କ୍ଷେତ୍ର; ସମାନ୍ତର ଚତୁର୍ଭୁଜ; ଯେଉଁ ଚତୁର୍ଭୁଜର ସମ୍ମୁଖବର୍ତ୍ତୀ ଭୁଜ ଦୁଇଟି ବାହୁ ପରସ୍ପରର ସମାନ୍ତର—( Geometry ) Parallellogram.

**ସମାପ୍ (ଧାତୁ)**—ସଂ. ( ସମ୍ ଉପସର୍ଗ+ଆପ୍ ଧାତୁ )—୧ । ଶେଷ
Samāp ( root ) କରିବା; ସମାପ୍ତ କରିବା—
1. To finish. ୨ । ସମ୍ପୂର୍ଣ୍ଣ କରିବା—
2 To complete. ୩ । ଶେଷ ହେବା—
3. To be completed.

**ସମାପ**—ସଂ. ବି ( ବହୁବ୍ରୀହି; ସମ=ସମାନ+ଅପ୍=ଜଳ ଯହିଁରେ;
Samāpa ସମ୍+ଅପ୍+ଅ)—୧ । ଦେବଯଜନ ସ୍ଥାନ—
1. A place for vedic worship. ୨ । ଯଜ୍ଞ—
2. Vedic sacrifice.

**ସମାପକ**—ସଂ ବିଣ (ସମ୍+ଆପ୍ ଧାତୁ ଣିଜନ୍ତ, ଅଥବା ଧାତୁ+କର୍ତ୍ତୃ
Samāpaka ଅକ)—ସମାପନକାରୀ; ଯେ କୌଣସି କାର୍ଯ୍ୟର
(ସମାପିକା—ସ୍ତ୍ରୀ) ସମାପ୍ତି କରେ; ଉଦ୍‌ଯାପକ—
Accomplishing, fulfilling; finishing.

**ସମାପତ**—ଗ୍ରା. ବିଣ ପଦ୍ୟ (ସ. ସମାପ୍ତ )—ସମାପ୍ତ (ଦେଖ)—
Samāpata Samāpta (See) ( ଉ—ଯେଉଁକାଳେ ସମାପ୍ତ ସମାପ୍ତ ଯାଗ କଲେ ସେ ସମାପତ—କୃଷ୍ଣସିଂହ. ମହାଭାରତ, ସଭା ।)

**ସମାପତି**—ଗ୍ରା. ବି ( ସ. ସମାପ୍ତି )—ସମାପ୍ତି ( ଦେଖ )—
Samāpati Samāpti (See) ( ଉ—ଏଠାରୁ ସମାପ୍ତି ସମାପ୍ତି ହେଲା ବନପର୍ବ ସମାପତି-କୃଷ୍ଣସିଂହ ମହାଭାରତ, ସଭା ।)

**ସମାପତି କରିବା**—ଗ୍ରା. କ୍ରି.—ସମାପ୍ତି କରିବା ( ଦେଖ )—
Samāpati karibā Samāpti karibā. (See)
ସମାପ୍ତି କରା ସମାପ୍ତି କରନା

**ସମାପତି ରସିଦ**—ଗ୍ରା. ବି (ଜଡଣ)—ସମାପ୍ତି ରସିଦ (ଦେଖ)—
Samāpati rasida Samāpti rasida (See).

**ସମାପତ୍ତି**—ସଂ. ବି (ସମ+ଆପତ୍ତି)—୧ । ସମକାଳରେ ଉପସ୍ଥିତ—
Samapatti 1. Simultaneous presence.
୨ । ପରସ୍ପରର ଆପତ୍ତି—2. Mutual objection.
୩ । ଯଦୃଚ୍ଛାସଙ୍ଗତି—3 Voluntary meeting or union.

**ସମାପନ**—ସଂ. ବି ( ସମ+ଆପ୍ ଧାତୁ ଣିଜନ୍ତ=ଆପି ଧାତୁ+ଭାବ
Samāpana ଅନ )—୧ । ସମାଧାନ; ଶେଷକରଣ—
(ସମାପନା—ଅନ୍ୟରୂପ) 1. Completion; accomplishment. ୨ । ସମାପ୍ତି—2. Finis;
(ସମାପିତ—ବିଣ) end. ୩ । ଉଦ୍‌ଯାପନ—3. Fulfilment; bringing to a close.

**ସମାପନ କରିବା**—ଦେ. କ୍ରି—୧ । ସମାଧା କରିବା—1. To accomplish. ୨ । ଶେଷ କରିବା—2. To bring to an end.
Samāpana karibā
ସମାପন করা; **समापन करना**

**ସମାପନୀୟ**—ସ. ବଣ (ସମ+ଆପ୍+ଧାତୁ କର୍ମ. ଅନୀୟ)—ସମାପ୍ୟ Samāpya (See)
Samāpaniya
(ସମାପୟିତବ୍ୟ—ଅନ୍ୟରୂପ)

**ସମାପନ୍ନ**—ସ. ବଣ (ସମ+ଆ+ପଦ୍ ଧାତୁ+କର୍ମ. କ୍ତ)—୧ । ଲବ୍ଧ; ପ୍ରାପ୍ତ—1. Obtained; got. ୨ । (ସମାପନ୍ନା—ସ୍ତ୍ରୀ (+କର୍ତ୍ତୃ. କ୍ତ) ବିପନ୍ନ; ବିପଦ୍‌ଗ୍ରସ୍ତ—2. Endangered. ୩ । ନିଷ୍ପାଦିତ; ସମ୍ପନ୍ନ; ସମ୍ପାଦିତ—3. Accomplished. ୪ । ହତ (ପ୍ରକୃତିବାଦ)—4. Killed. ୫ । ସମାପ୍ତ—5. Finished. ୬ । କ୍ଳିଷ୍ଟ (ବିଶ୍ୱକୋଷ)—6. Troubled.
Samāpanna

**ସମାପି (ଧାତୁ)**—ସ. (ସମ୍+ଆପ୍ ଧାତୁ ଣିଚ୍)—ଅନ୍ୟ ଦ୍ୱାରା ସମାପ୍ତ କରାଇବା—To cause to be completed or finished.
Samāpi(root)

**ସମାପିକା**—ସ. ବଣ. ସ୍ତ୍ରୀ—(ସମାପକ+ସ୍ତ୍ରୀ. ଆ.)—୧ । ସମାପକର ସ୍ତ୍ରୀଲିଙ୍ଗ—1.Feminine of "Samāpaka". ୨ । (ବ୍ୟାକରଣ) ଯାହାର ପ୍ରୟୋଗ ଦ୍ୱାରା ବାକ୍ୟ ସମାପ୍ତି ହୁଏ (କ୍ରିୟା)—2. Finite; (a verb) which closes or completes a sentence. ଲ.—ସମାପିକା କ୍ରିୟା(ଦେଖ)-Samāpikā kriyā(See)
Samāpikā

**ସମାପିକା କ୍ରିୟା**—ସ. ବ—(ବ୍ୟାକରଣ) ଯେଉଁ କ୍ରିୟା ଦ୍ୱାରା ବାକ୍ୟର ସମାପ୍ତି ହୁଏ—A finite verb; a verb which closes or completes a sentence.
Samāpikā kriyā
(ଅସମାପିକା କ୍ରିୟା—ବିପରୀତ)

**ସମାପିତ**—ସ.ବଣ(ସମ୍+ଆପ୍ ଧାତୁ ଣିଚ୍=ଆପି ଧାତୁ+କର୍ମ କ୍ତ)—୧ । ନିଷ୍ପାଦିତ; ସମ୍ପାଦିତ—1. Accomplished; fulfilled. ୨ । ସମାପ୍ତ—2. Completed. ୩ । ମାରିତ—3. Killed; murdered.
Samāpita

**ସମାପିତବ୍ୟ**—ସ. ବଣ (ସମ+ଆପ୍ ଧାତୁ ଣିଚ୍+ତବ୍ୟ)—ସମାପ୍ତ ହେବାର ଯୋଗ୍ୟ—Fit to be completed.
Samāpitabya

**ସମାପିତି**—ଗ୍ରା. ବ (ସଂ. ସମାପ୍ତି)—ସମାପ୍ତି (ଦେଖ)—Samāpti (See).
Samāpiti

**ସମାପିପୟିଷୁ**—ସ. ବଣ (ସମ୍+ଆପ୍ ଧାତୁ ଣିଚ୍+ଇଚ୍ଛାର୍ଥେ ସନ୍+କର୍ତ୍ତୃ ଉ)—ସମାପନ କରିବାକୁ ଇଚ୍ଛୁକ—Desirious of finishing or completing a thing.
Samāpipayishu

**ସମାପୀ**—ସ. ବଣ. ପୁଂ—(ସମ୍+ଆପ୍ ଧାତୁ+କର୍ତ୍ତୃ. ଇନ୍; ସମାପିନ୍, ସମା. ୧ବ)—ସମାପନକାରୀ—Finishing; accomplishing.
Samāpi
(ସମାପିନୀ—ସ୍ତ୍ରୀ)

**ସମାପ୍ତ**—ସ. ବଣ (ସମ୍+ଆପ୍ ଧାତୁ+କର୍ମ.କ୍ତ)—୧ । ପୂର୍ଣ୍ଣଶେଷ; ଶେଷ କରି ଯାଇଥିବା; ଯାହା ଶେଷ ହୋଇଅଛି—(ସମାପ୍ତି—ବ) 1. Finished. ୨ । ସଂପ୍ରାପ୍ତ—2. Got; received; attained. ୩ । ସମ୍ପୂର୍ଣ୍ଣ—3. Completed. ୪ । ସମାହୃତ—4. Accomplished. [ଦ୍ର—ଗ୍ରନ୍ଥ ଶେଷରେ 'ସମାପ୍ତ' ଶବ୍ଦ ଲେଖାଯାଏ, ଏଥିର ଅର୍ଥ—ଏହିଠାରେ ଗ୍ରନ୍ଥର ସମାପ୍ତି ବା ଶେଷ ହେଲା ।)
Samāpta

**ସମାପ୍ତ କରିବା**—ଦେ. କ୍ରି—୧ । ସମ୍ପୂର୍ଣ୍ଣ କରିବା—1. To complete. ୨ । (ପୁସ୍ତକାଦିର ପାଠ ବା ଲେଖନ) ଶେଷ କରିବା—2. To finish (the writing or reading of something).
Samāpta karibā
সমাপ্ত করা **समाप्त करना**

**ସମାପ୍ତ ପୁନରାତ୍ତତା**—ସ. ବ.—କାବ୍ୟୋକ୍ତ ଦୋଷ ବିଶେଷ; ରଚନାର ଦୋଷ ବିଶେଷ; ଯେଉଁ ସ୍ଥଳରେ ବାକ୍ୟକୁ ସମାପ୍ତ କରି ସାରି ପୁଣି ସେହି ବାକ୍ୟର ସୂତ୍ର ଗ୍ରହଣ କରାଯାଏ—A defect in composition wherein after closing the sentence the writer continues it again. [ଦ୍ର—ସାହିତ୍ୟ ଦର୍ପଣ ମତରେ ଏହା ରଚନାର ଗୋଟିଏ ଦୋଷ; 'ଚନ୍ଦ୍ରକିରଣ ପଡ଼ୁଛି' ଏ ବାକ୍ୟକୁ ସମାପ୍ତ କରି ପୁଣି ପଦ ଉପରେ ଲେଖାଯାଏ 'ପୃଥିବୀ ତଳକୁ ଉଦ୍ଭାସିତ କରି', ଏଠାରେ ଏହି ଦୋଷ ହେବ । 'ଚନ୍ଦ୍ରକିରଣ ପୃଥିବୀ ତଳକୁ ଉଦ୍ଭାସିତ କରି ପଡ଼ୁଛି', ଏପରି କହିବା ଉଚିତ ଥିଲା । ଆଧୁନିକ ବଙ୍ଗଳାରେ ଲକ୍ଷିତ ଏହି ଦୋଷକୁ ଅନେକ ଆଧୁନିକ ଓଡ଼ିଆ ଲେଖକ ଅନୁକରଣ କରି ଆଧୁନିକ ଓଡ଼ିଆ ସାହିତ୍ୟକୁ ସମାପ୍ତ ପୁନରାତ୍ତତା ଦୋଷରେ ପୂର୍ଣ୍ଣ କରୁଅଛନ୍ତି ।]
Samāpta punarāttata

**ସମାପ୍ତାର୍ଥ୍ୟ**—ସ.ବ (ସମାପ୍ତ+ଅର୍ଥ+ଯ+ଅ)—ସମସ୍ୟା (ଦେଖ)—Samasyā (See)
Samāptārthyā

**ସମାପ୍ତାଳ**—ସ. ବ. ପୁଂ (ସମାପ୍ତ+ଅଲ ଧାତୁ+କର୍ତ୍ତୃ. ଅ)—ପତି; ସ୍ୱାମୀ (ଶଳିପୁଷ୍ପର)—Husband; lord.
Samāptāla

**ସମାପ୍ତି**—ସ. ବ. (ସମ୍+ଆପ୍ ଧାତୁ=ପାଇବା+ଭାବ କ୍ତି)—୧ । ଶେଷ; ଅବସାନ—1. Termination; completion; conclusion. ୨ । ପ୍ରାପ୍ତି—2. Attainment; receipt. ୩ । ସମର୍ଥନ—3. Supporting; ratification. ୪ । କାର୍ଯ୍ୟ ସମାଧା—4. The end or accomplishment of any work. ୫ । ଉଦ୍ଯାପନ; ଉଦ୍‌ଯାପନ—5. Accomplishment or bringing to completion (said of a religious vow) ୬ । ବିବାଦଭଞ୍ଜନ (ବିଶ୍ୱକୋଷ)—6. Settlement of a dispute.
Samāpti

**ସମାପ୍ତି** ଦେ. ବ.—(ଦରଖାସ୍ତ)—ଡିକ୍ରି ହୋଇଥିବା ମକଦ୍ଦମାରେ ଡିକ୍ରିଦାର ଦେଣଦାରଠାରୁ ଡିକ୍ରି ହୋଇଥିବା ସମସ୍ତ ପାଉଣା ପାଇବା ଦ୍ୱାରା ମକଦ୍ଦମାର ଅବସାନ—Termination of a decree by full satisfaction; the full satisfaction of a decree (on the
সমাপ্তি **समाप्ति**

judgment—debtor fully satisfying the decree holder).

**ସମାପ୍ତିକ**—ସଂ. ବି. ପୁଂ—(ସମାପ୍ତି+କ)—ଅଧୀତବେଦଶାସ୍ତ୍ର; ଯେ
Samāptika ବେଦ ପାଠ ସମାପ୍ତ କରିଅଛନ୍ତି (ବିଶ୍ୱକୋଷ)—A person who has completed his course of study of the Bedas.

**ସମାପ୍ତି କରିବା**—ଦେ. କ୍ରି—୧ । ସମାପନ କରିବା—1. To accomplish; to bring to an end; to conclude.
Samāpti kariba
समाप्तिकरबा समाप्तिकरना
୨ । (କଚେରୀ) କୌଣସି ମକଦ୍ଦମାରେ ଡିକ୍ରିଦାର ଓ ଦେଣଦାରଙ୍କ ମଧ୍ୟରେ ଦେଣ୍ଣା ପାଉଣାକୁ ନିଷ୍ପତ୍ତି କରିବା—2. To have a decree fully satisfied, as between the decree holder and the judgment debtor.

**ସମାପ୍ତି ଦରଖାସ୍ତ**—ଦେ. ବି (କଚେରୀ)—ମକଦ୍ଦମାରେ ଡିଗ୍ରୀ ହୋଇ-
Samāpti darakhāsta ଥିବା ଧନାଦି ସମ୍ପୂର୍ଣ୍ଣରୂପେ ପାଇ-
समाप्तिदरखास्त समाप्तिदरख्वास्त ଥିବା ବିଷୟ ଉଲ୍ଲେଖ କରି ଡିଗ୍ରୀଦାର ଓ ଦେଣଦାରଙ୍କ ତରଫରୁ ଅଦାଲତରେ ଦିଆ-ଯିବା ଆବେଦନ ପତ୍ର—A petition filed in court intimating the full satisfaction of a decree.

**ସମାପ୍ତି ପାଇବା**—ଦେ. କ୍ରି.—ସମାପ୍ତ ହେବା—To be finished. or completed.
Samāpti pāibā
समाप्तिहओना समाप्तिहोना

**ସମାପ୍ତି ରସିଦ**—ଦେ. ବି (କଚେରୀ) (ସଂ ସମାପ୍ତି ଓ ଇଂ ରସିଦ୍)
Samāpti rasida ଡିଗ୍ରୀ ହୋଇଥିବା ଧନାଦି ଦେଣଦାର-
समाप्तिरसिद समाप्तिरसीद୍ ବାକି ବୁଝାଇ ଦେଇଥିବାର ନିଦର୍ଶନ ସ୍ୱରୂପ ଡିଗ୍ରୀଦାର ଦେଣଦାରକୁ ଯେଉଁ ରସିଦ ଦିଅନ୍ତି ବା ଅଦାଲତରେ ଦାଖଲ କରନ୍ତି—A receipt of full satisfaction of a decree granted by the decree holder on his decree being fully satisfied.

**ସମାପ୍ତୋଽୟଂ ଗ୍ରନ୍ଥଃ**—ସଂ. ବାକ୍ୟ—(ସ. ସମାପ୍ତଃ ଅୟଂ ଗ୍ରନ୍ଥଃ)—ଗ୍ରନ୍ଥ-
Samāpto(a)yaṁ granthaḥ ଶେଷରେ ଲେଖାଥିବା ସଂସ୍କୃତ ବାକ୍ୟ—ଏଥିର ଅର୍ଥ; ଏହି ଗ୍ରନ୍ଥ ଶେଷ ହେଲ—A Sanskrit sentence written at the end of a book, meaning—This book is finished here; the end; finis.

**ସମାପ୍ତ୍ୟର୍ଥା**—ସ. ବି—ସମସ୍ୟା (ଦେଖ)—
Samāptyarthā Samasyā (See)

**ସମାପ୍ୟ**—ସଂ ବିଣ (ସମ୍+ଆପ୍ ଧାତୁ+କର୍ମ ଯ)—ସମାପନୀୟ;
Samāpya ସମାପ୍ତ ହେବାର ଯୋଗ୍ୟ—Fit to be completed.

**ସମାପ୍ରିୟ**—ସଂ. ବିଣ. ପୁଂ—(ସମ୍+ଆ+ପ୍ରିୟ)—ଅତ୍ୟନ୍ତ ପ୍ରିୟ—
Samāpriya Very dear; beloved.
(ସମାପ୍ରିୟା—ସ୍ତ୍ରୀ)

**ସମାପ୍ଲ(ପ୍ଲା)ବ**—ସଂ. ବି (ସମ୍+ଆ+ପ୍ଲୁ ଧାତୁ+ଭାବ ଅ)—୧ ।
Samāpla(plā)ba ସ୍ନାନ; ଅବଗାହନ—1. Bath; immersion. ୨ । ଉତ୍ତମ ରୂପେ ଗାଧୁଆ—2. A good bath; a thorough bath.

**ସମାବର୍ତ୍ତନ**—ସଂ. ବି (ସମ+ଆବର୍ତ୍ତନ)—୧ । ପ୍ରତ୍ୟାଗମନ; ଲେଉଟି
Samābrtana ଆସିବା—1. Coming back; return-
(ସମାବର୍ତ୍ତି—ଅନ୍ୟରୂପ) ing. ୨ । ବେଦାଧ୍ୟୟନାନନ୍ତର-
[ସମାବୃତ୍ତ, ସମାବର୍ତ୍ତିତ, ସମାବର୍ତ୍ତନୀୟ—ବିଣ] ଗାର୍ହସ୍ଥ୍ୟାଧିକାର ପ୍ରଯୋଜକ କର୍ମ; ଦ୍ୱିଜ ଯୁବକର ଗୁରୁଗୃହରେ ପ୍ରଥମାଶ୍ରମ ସମାପନାନ୍ତର ଦ୍ୱିତୀୟାଶ୍ରମରେ ପ୍ରବୃତ୍ତି; ବାଲ୍ୟକାଳରେ ଯଜ୍ଞୋପବୀତ ଗ୍ରହଣ କରି ବ୍ରହ୍ମଚାରୀରୂପେ ଗୁରୁଗୃହରେ ବେଦଶିକ୍ଷା ଶେଷ କରି ବିବାହ ହେବା ପୂର୍ବରୁ ଗୁରୁଙ୍କ ଆଦେଶ କ୍ରମେ ଦ୍ୱିଜାତି ଯୁବକର ନିଜ ଗୃହକୁ ଫେରିବାରୂପ କର୍ମ—2. The ceremonial act of a twice-born youth returning to his house for marriage and becoming a householder after completing his student's career in his tutor's house. [ଦ୍ର—ପୂର୍ବକାଳରେ ବ୍ରତ ବା ଉପନୟନ ହେବା ପରେ ଦ୍ୱିଜ-ବାଳକ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରି ଗୁରୁଗୃହରେ ରହି ବେଦପାଠ କରୁଥିଲେ । ବେଦ ପାଠ ଶେଷ ହେଲେ ଗୁରୁଙ୍କୁ ଦକ୍ଷିଣା ଦେଇ ଗୁରୁଙ୍କଠାରୁ ଅନୁମତି ଓ ବିଦାୟ ଗ୍ରହଣ କରି ନିଜ ଗୃହକୁ ଫେରି ଆସି ବିବାହ କରିବା ପୂର୍ବରୁ 'ସମାବର୍ତ୍ତନ'ରୂପ କର୍ମ ଅନୁଷ୍ଠାନ କରୁଥିଲେ । ତାଇଚନ୍ଦ୍ରଶୁଦ୍ଧି ଓ ଶୁଭ ତିଥିରେ ଗୁରୁଗୃହବାସୀ ବ୍ରହ୍ମଚାରୀ କ୍ଷୌର ହୋଇ ସର୍ବୌଷଧି ଜଳରେ ସ୍ନାନ କରି ଉଦଙ୍ମୁଖ, କୁଶାସନୋ-ପବିଷ୍ଟ ଗୁରୁଙ୍କ ନିକଟରେ ପ୍ରାଙ୍ମୁଖ ହୋଇ ବସି ଗୃହସ୍ଥାଶ୍ରମରେ ପ୍ରବେଶ କରିବା ପାଇଁ ଗୁରୁଙ୍କଠାରୁ ଅନୁମତି ପାଇବା ପରେ ଘରକୁ ପ୍ରତ୍ୟାବର୍ତ୍ତନ କରି ବିବାହ କରୁଥିଲେ । ଆଜିକାଲି ଦ୍ୱିଜବାଳକ ମାନଙ୍କର ଗୁରୁଗୃହ-ବାସପୂର୍ବକ ବ୍ରହ୍ମଚର୍ଯ୍ୟାଶ୍ରମ ପାଳନ ରୀତି ନ ଥିବାରୁ ଦ୍ୱିଜାତିର ଦଶକର୍ମ 'ସଂସ୍କାର'ର ଅନ୍ତିମ ସଂସ୍କାର କୃତୋପନୟନ ବାଳକର 'ବ୍ରୋଷଣୀ' କରି ତେଣୁ ସେହି ଦିନ ତତ୍କ୍ଷଣାତ୍ ଘରକୁ ଫେରି ଆସିବାରେ ପର୍ଯ୍ୟବସିତ ହେଉଅଛି ।]

**ସମାବର୍ତ୍ତିତ**—ସଂ. ବିଣ. ପୁଂ(ସମ୍+ଆ+ବୃତ୍ ଧାତୁ ଣିଜନ୍ତ+କର୍ମ.ତ)—
Samābarttita ପ୍ରତ୍ୟାବର୍ତ୍ତିତ; ଯାହାକୁ ଫେରାଇ ଅଣାଯାଇ ଅଛି—Caused to come back; made to return.
(ସମାବର୍ତ୍ତିତା—ସ୍ତ୍ରୀ)

**ସମାବାୟ**—ସଂ. ବି (ଭରତକୃତ ଅମର ଟୀକା)—୧ । ସମୂହ—
Samābāya 1. Multitude. ୨ । ସମବାୟ; ସମାହାର—2. Aggregate.

**ସମାବାଳି**—ଦେ· ବ—ସୁଆଁ କାଳ; ସମ୍ଭାଳୁଆ—
Samābāli. Caterpillar.
(ସମାବାଳି[ଳୁ]ଆ—ଅନ୍ୟରୂପ) ଶୁଆପୋକ। ଶୁଆ

**ସମାବିଷ୍ଟ**—ସ. ବଣ (ସମ୍+ଅବିଷ୍ଟ)—୧ । କାର୍ଯ୍ୟରେ ନିବିଷ୍ଟ—1.
Samābishṭa Occupied. ୨ । କୌଣସି କାର୍ଯ୍ୟରେ ନିଯୁକ୍ତ—
(ସମାବିଷ୍ଟା—ସ୍ତ୍ରୀ) 2. Engaged in. ୩ । ଅଭିନିବିଷ୍ଟ; ଏକାଗ୍ର-
(ସମାବେଶ—ବ) ଚିତ୍ତ—3. Engrossed in. ୪ । ଏକତ୍ର
ଅବସ୍ଥିତ—4. Situated or placed together.

**ସମାବୃତ**—ସ. ବଣ (ସମ୍+ଅବୃତ)-୧ । ଚାରିଆଡ଼େ ଆବୃତ;
Samābṛuta ଚତୁର୍ଦ୍ଦିଗରେ ବେଷ୍ଟିତ—1. Enveloped;
(ସମାବରଣ—ବ) enclosed. ୨ । ଲୁକ୍କାୟିତ—2. Concealed; hidden under

**ସମାବୃତ୍ତ**—ସଂ. ବଣ (ସମ୍+ଆ+ବୃତ ଧାତୁ+କର୍ତ୍ତୃ· ତ)—
Samābṛutta ୧ । ପ୍ରତ୍ୟାବୃତ୍ତ—1. Returned; come
(ସମାବୃତ୍ତି—ବ) back. ୨ । ଗୁରୁଗୃହରେ ବେଦ ପାଠ ଶେଷ କରି
ଗୃହସ୍ଥାଶ୍ରମ ଆରମ୍ଭ କରିବା ପାଇଁ ଗୃହକୁ ପ୍ରତ୍ୟାବୃତ୍ତ;
ଲବ୍ଧାନୁଜ୍ଞ; ଯେଉଁ ଦ୍ୱିଜଯୁବକ ବ୍ରହ୍ମଚର୍ଯ୍ୟାଶ୍ରମ ପରେ
ଗୁରୁଙ୍କ ଆଦେଶ ପାଇ ଗୃହସ୍ଥାଶ୍ରମରେ ପ୍ରବେଶ କରିବାକୁ
ଗୃହକୁ ଫେରି ଆସି ଅଛନ୍ତି—2. Returned to one's home for being married after finishing the study of the Bedas at the preceptor's house and getting the preceptor's permission.

**ସମାବେଶ**—ସଂ. ବ (ସମ୍+ଆ+ବିଶ୍ ଧାତୁ+ଭାବ· ଅ)—
Samābesa ୧ । ପ୍ରବେଶ—1. Entrance; admitt-
(ସମାବିଷ୍ଟ—ବଣ) ance; admission. ୨ । ସଂସ୍ଥିତି—
2. Accomodation. ୩ । ମନୋଯୋଗ—
3. Attention. ୪ । ଏକତ୍ରାବସ୍ଥିତି; ସହାବସ୍ଥାନ—
4. Association; being placed together.

**ସମାବେଶନ**—ସଂ. ବ (ସମ୍+ଆ+ବିଶ୍ ଧାତୁ ଣିଚ୍+ଭାବ·ଅନ)—
Samābesana ୧ । ପ୍ରବେଶ କରାଇବା—1. Thrusting;
(ସମାବେଶିତ—ବଣ) admitting. ୨ । ଏକତ୍ର ସ୍ଥାପନ—
2. Placing together.

**ସମାବେଶିତ**—ସଂ. ବଣ (ସମ୍+ଆ+ବିଶ୍ ଧାତୁ ଣିଚ୍-ବେଶି ଧାତୁ
Samābesita +କର୍ମ. ତ)—୧ । ପ୍ରବେଶିତ; ଯାହାକୁ ପ୍ରବିଷ୍ଟ
(ସମାବେଶନ—ବ) କରି ଯାଇଅଛି; ସମାବେଶ ପ୍ରାପ୍ତ—
1. Thrust; caused to enter; admitted.
୨ । ଏକତ୍ର ରଖା ଯାଇଥିବା; ସହାବସ୍ଥାପିତ—2. Placed together. ୩ । ସଂସ୍ଥାପିତ—3. Accomodated.
୪ । ଅଭିନିବେଶିତ; ଯାହାର ମନୋଯୋଗ ଅନ୍ୟଦ୍ୱାରା ଆକର୍ଷିତ ହୋଇଅଛି—4. Having one's attention drawn to a matter by another.

**ସମାମ୍ନାତ**—ସଂ. ବଣ (ସମ୍+ଅମ୍ନାତ)—୧ । ସମାଧ୍ମାତ; ସମୋଚ୍ଚାରିତ
Samāmnāta —1. Uttered similarly. ୨ । ଏକ
ସଙ୍ଗେ ପଠିତ—2. Read together.

**ସମାମ୍ନାୟ**—ସଂ. ବ (ସମ୍+ଆ+ମ୍ନା ଧାତୁ=ପାଠ କରିବା+ଭାବ· ଅ)
Samāmnāya —୧ । ଏକତ୍ର ପଠନ—1. Reading together. ୨ । ଏକତ୍ର ଉଚ୍ଚାରଣ—2. Pronouncing together. ୩ । ପାଠ କ୍ରମ—3. Successive reading; reading of any matter one after the other. ୪ । ପରମ୍ପରତା—
4. Succession. ୫ । (+କର୍ମ· ଅ) ଶାସ୍ତ୍ର (ବିଶ୍ୱକୋଷ)
—5. Religious books; scriptures.
୬ । ସଂଖ୍ୟା (ବିଶ୍ୱକୋଷ)—6. Number. ୭ । ସମଷ୍ଟି
(ବିଶ୍ୱକୋଷ)—7. Aggregate.

**ସମାମ୍ନାୟିକ**—ସଂ. ବଣ (ସମାମ୍ନାୟ+ସମ୍ବନ୍ଧାର୍ଥେ. ଇକ)—୧ । ଶାସ୍ତ୍ର
Samāmnāyika ସମ୍ବନ୍ଧୀୟ—1. Relating to the
Sāstras. ୨ । ଶାସ୍ତ୍ରରେ ପଠିତ—2 Read or studied in the Sāstras.

**ସମାୟାତ**—ସ·ବଣ ପୁଂ(ସମ୍+ଆୟାତ)—୧ । ସମାଗତ—1. Come.
Samāyāta ୨ । ଉପସ୍ଥିତ—2. Arrived at. ୩ । ଏକତ୍ର
[ ସମାୟାତା—ସ୍ତ୍ରୀ ] ଆଗତ—3. Come together.
[ ସମାୟ—ବ ]

**ସମାଯୁକ୍ତ**—ସ. ବଣ (ସମ୍+ଆ+ଯୁଜ୍ ଧାତୁ+କର୍ମ· ତ)—୧ ।
Samājukta ଏକତ୍ର ଯୁକ୍ତ; ସଂଯୁକ୍ତ—1. Attached to;
[ ସମାଯୋଗ—ବ ] joined together.
[ ସମାଯୋଜିତ—ଣିଜନ୍ତ ଯୁଜ ଧାତୁରୁ ନିଷ୍ପନ୍ନ ବଣ ]

**ସମାଯୋଗ**—ସ. ବ (ସମ୍+ଆ+ଯୁଜ୍ ଧାତୁ+ଭାବ. ଅ)—
Samājoga 1. Union; association. ୨ । ସମବାୟ—
2. Multitude; conglomeration. ୩ । ପ୍ରୟୋଜନ—3. Necessity. ୪ । (+କର୍ମ· ଅ) ପରିଚ୍ଛଦ
—4. Dress; cloth.

**ସମାର**—ଦେ ବ (ସଂ. ସମ୍ଭାର)—ଦେଉଳର ବେଢ଼ା ମଧ୍ୟରେ ଥିବା
Samāra ଯେଉଁ କୋଠରିରେ ଭୋଗ ପାଇଁ ଚୂନା କୁଟା, ବେଶର-
ବଟା, ପରିବା କଟା ହୁଏ—A room inside the compound of a temple where rice etc are ground and kitchen vegetables chopped for the cooking of the Bhoga for the Deity. [ ଦ୍ର—ଭୁବନେଶ୍ୱର ଲିଙ୍ଗରାଜଙ୍କ ଦେଉଳ-
ବେଢ଼ାରେ ଥିବା ଏହି ଘରକୁ ସମାର କୋଲାଯାଏ । ପୁରୀ
ଜଗନ୍ନାଥଙ୍କ ଦେଉଳ ବେଢ଼ାରେ ଏହି ଘରକୁ ଚୁନାକୁଠା ମଣ୍ଡେଇ
କୋଲାଯାଏ । ଯେଉଁମାନେ ପରିବାକଟା ଚୂନାକୁଟା ଆଦି
କରନ୍ତି ସେମାନଙ୍କୁ ସମରଥା କୋଲାଯାଏ । ]

**ସମାରମ୍ଭ**—ସଂ. ବ (ସମ୍=ସମ୍ୟକ୍+ଅରମ୍ଭ)—୧ । କୌଣସି ଅନୁ-
Samārambha ଷ୍ଠାନର ବା କର୍ମର ଆରମ୍ଭ—1. The begin-
[ସମାରବ୍ଧ, ସମାରବ୍ଧ—ବଣ] ning of any work. ୨ । ଆରମ୍ଭ

କର୍ମ — 2. An act which has been begun.
ଦେ. ବି ( ସଂ. ସମ୍ + ଆଡମ୍ବର ବା ସମାରୋହ )— ଆଡ଼ମ୍ବର; ଘନଘଟା; ସମାରୋହ—Ado; show; grandeur. ( ଯଥା — କନ୍ୟା ଘର ଗ୍ରାମକୁ ବରଯାତ୍ରୀମାନେ ଭାରି ସମାରମ୍ଭରେ ଅସିଛନ୍ତି । )

**ସମାରମ୍ଭଣ** —ସଂ. ବି ( ସମ୍ + ଆ + ରଭ୍ ଧାତୁ + ଭାବ. ଅନ )— Samārambhaṇa ୧ । ଅଲିଙ୍ଗନ ( ଶବ୍ଦକୋଷ )— 1. Embrace. ୨ । ସମାଲମ୍ଭନ ( ଦେଖ ) ( ଶବ୍ଦକୋଷ )—2. Samālambhana ( See ). ୩ । ଗ୍ରହଣ ( ଶବ୍ଦକୋଷ )— 3. Taking; acceptance.

**ସମାରାଧନ**—ସଂ. ବି ( ସମ୍ + ଆରାଧନ )—ସମ୍ୟକ୍ ଆରାଧନ; ପୂଜନ— Samārādhana Worshipping; paying of homage.

**ସମାରାଧନ ତତ୍ପର**—ସଂ. ବିଣ. ପୁଂ (ବହୁବ୍ରୀହି)—ପୂଜା କରିବା ନିମନ୍ତେ Samārādhana tatpara ପ୍ରସ୍ତୁତ—Ready to ( ସମାରାଧନ ତତ୍ପରା—ସ୍ତ୍ରୀ ) worship.

**ସମାରାଧିତ**—ସଂ. ବିଣ. ପୁଂ ( ସମ୍ + ଆରାଧିତ )—ସମ୍ୟକ୍ ପୂଜିତ— Samārādhita Specially worshipped. (ସମାରାଧିତା—ସ୍ତ୍ରୀ)

**ସମାରୁରୁକ୍ଷୁ**—ସଂ. ବିଣ(ସମ୍ + ଆ + ରୁହ ଧାତୁ. ଇଚ୍ଛାର୍ଥେ ସନ୍ + କର୍ତ୍ତୃ. Samārurukshu ଉ)—ସମାରୋହଣ କରିବାକୁ ଇଚ୍ଛୁକ— ( ସମାରୁରୁକ୍ଷା — ବି ) Desirous of riding.

**ସମାରୂଢ଼**—ସଂ. ବିଣ ( ସମ୍ + ଆରୂଢ଼ )—୧ । ସମାରୋହଯୁକ୍ତ; Samārūḍha ଅଡ଼ମ୍ବରଯୁକ୍ତ—1. Pompous; magnificent; grand. ( ସମାରୋହଣ—ବି ) ୨ । ଅତ୍ୟୁନ୍ନତ— ( ସମାରୂଢ଼ା—ସ୍ତ୍ରୀ ) 2. Much elevated or advanced. ୩ । ଅରୂଢ଼; ଉପରେ ଚଢ଼ିଥିବା— 3. Riding upon.

**ସମାରୋପ**—ସଂ. ବି ( ସମ୍ + ଆରୋପ )—୧ । ସମ୍ୟକ୍ ରୋପଣ— Samāropa 1. Careful planting of seeds or seedlings. (ସମାରୋପଣ — ଅନ୍ୟରୂପ) ୨ । ସବିଶେଷ ଆରୋପ— [ ସମାରୋପିତ—ବିଣ ] 2. Particular or special attribution.

**ସମାରୋହ**—ସଂ. ବି ( ସମ୍ + ଆରୋହ = ଉନ୍ନତି; ଚଢ଼ିବା )—୧ । Samāroha ଅତ୍ୟୁନ୍ନତି—1. Considerable improvement; considerable advancement; elevation. ( ସମାରୋହଣ — ଅନ୍ୟରୂପ ) ୨ । ଆରୋହଣ— 2. Ascending; riding on. ୩ । ଜାକ୍‌ଜମକ; ଅଡ଼ମ୍ବର—3. Grandeur; pomp; eclat; ado. ୪ । ସମ୍ମତି—4. Consenting.

**ସମାର୍ଜନ(ନା)**—ଗ୍ରା. ବି—୧ । (ସଂ. ସମାଧାନ)—ସମାଧାନ; ଅଶ୍ୱାସନା— Samārjana(nā) 1. Conciliating; consoling. সমাধান समाधान ୨ । ( ସଂ. ସମ୍ମାର୍ଜନ )—ସମ୍ମାର୍ଜନ (ଦେଖ)—Sammārjana (See).

**ସମାର୍ଜନା କରିବା**—ଗ୍ରା. କ୍ରି.—୧ । ଅଶ୍ୱାସନା କରିବା— Samārjanā karibā 1. To conciliate; to সমাধান করা समाधान करना appease; to console. ୨ । ସମ୍ମାର୍ଜନ କରିବା (ଦେଖ)—2. Sammārjana karibā (see).

**ସମାର୍ଜିବା**—ଦେ. କ୍ରି ( ପଦ୍ୟ )—ଧୋଇବା—To wash. Samārjibā সমার্জ্জন করা सम्मार्जन करना [ ଉ—ତାହାଙ୍କ ଚରଣ ସଳଳେ, ଅଳକରେ ସମାର୍ଜିଲେ — ଜଗନ୍ନାଥ ଭାଗବତ ।]

**ସମାର୍ଥ**—ସଂ. ବି ( କର୍ମଧା )—୧ । ସମାନ ଅର୍ଥ—1. The same Samartha meaning. ୨ । ଏକ ପ୍ରୟୋଜନ—2. One or the same necessity. ୩ । ଏକ ଉଦ୍ଦେଶ୍ୟ— 3. The same aim. ୪ । (ବହୁବ୍ରୀହି) ଏକାର୍ଥବିଶିଷ୍ଟ [ସମାର୍ଥା—ସ୍ତ୍ରୀବିଣ] ଶବ୍ଦ—4. Synonym. ସଂ.ବିଣ (ବହୁବ୍ରୀହି)— [ସମାର୍ଥତା—ବି] ସମାର୍ଥକ ( ଦେଖ )—Samarthaka (See)

**ସମାର୍ଥକ**—ସଂ. ବିଣ (ସମ + ଅର୍ଥ + କ)—୧ । ତୁଲ୍ୟାର୍ଥକ; ଏକାର୍ଥକ. Samarthaka 1. Having the same meaning [ସମାର୍ଥବୋଧକ—ଅନ୍ୟରୂପ] or import; synonymous. ୨ । ସମପ୍ରୟୋଜନବିଶିଷ୍ଟ—2. Having the same or similar aim or need.

**ସମାର୍ଥୀ**—ସଂ. ବିଣ. ପୁଂ (ସମ୍ + ଅର୍ଥ ଧାତୁ + କର୍ତ୍ତୃ. ଇନ୍; ସମାର୍ଥିନ୍; Samārthī ୧ମା ୧ବ)—୧ । ଏକ ପ୍ରୟୋଜନ ବା ଉଦ୍ଦେଶ୍ୟ [ ସମାର୍ଥିନୀ—ସ୍ତ୍ରୀ ] ବିଶିଷ୍ଟ—1. Having the same necessity or aim. ୨ । ଶାନ୍ତି ପାଇଁ ଇଚ୍ଛୁକ [ ଶବ୍ଦକୋଷ ]—2. Desirous of peace. ୩ । ମନର ସମତା ସାଧନପ୍ରୟାସୀ [ ଶବ୍ଦକୋଷ ]— 3. Desirous of reconciliation or agreement.

**ସମାଲ୍**—ଦେ. ଅ (ସମାଳିବା କ୍ରିୟାର ଅନୁଜ୍ଞା ଏକବଚନ, ଅନାଦରାର୍ଥରୂପ; Samāl ଅବ୍ୟୟରୂପେ ବ୍ୟବହୃତ)—୧ । ହୁସିଆର୍ । ସାବଧାନ সামলাও समालो ହୁଅ—1. Be careful! Be on [ସମାଳ—ଅଦରାର୍ଥକରୂପ] your guard. ୨ । (ଆସନ୍ନ ବିପଦକୁ ) ସମ୍ଭାଳିବାକୁ ବା ସହିବାକୁ ପ୍ରସ୍ତୁତ ହୁଅ— 2. Be ready to bear the brunt of the impending danger.

**ସମାଳ**—ଦେ. ବି—୧ । ସବୁରିବା; ସମ୍ଭାଳ; ଧୈର୍ଯ୍ୟଧାରଣ— Samāḷa 1. Being patient; patience. সামলান सबूर ୨ । ସହିପିବା; ସହନଶୀଳତା— rbearance. ୩ । ଅପେକ୍ଷା କରିବା— 3. Waiting. ବିଣ —୧ । ସବୁରିଥିବା; ଧୈର୍ଯ୍ୟଶୀଳ- 1. Patient. ୨ । ଅପେକ୍ଷାକାରୀ—2. Waiting. ୩ । ସହନଶୀଳ—3. Forbearing. ସଂ. ବିଣ. [ସମାଳା—ସ୍ତ୍ରୀ] ପୁଂ (ସହାର୍ଥ ବହୁବ୍ରୀହି; ସ + ମାଳା + ଅ)— ୧ । ମାଳାବିଶିଷ୍ଟ—1. Having garlands.

ସମାଲକ୍ଷ୍ୟ—ସଂ. ବିଣ. (ସମ୍+ଆ+ଲକ୍ଷ୍. ଧାତୁ+କର୍ମ. ଯ)—
Samālakshya ୧ । ଦର୍ଶନଯୋଗ୍ୟ (ଶାବ୍ଦିକ ଦର୍ପଣ)—
(ସମାଲକ୍ଷ୍ୟା—ସ୍ତ୍ରୀ) 1. Fit to be seen. ୨ । ବିଶେଷରୂପେ ଚିହ୍ନିତ କରାଯିବାର ଯୋଗ୍ୟ—2. Deserving to be marked or noted; notable. ୩ । ଅନୁକରଣେ ସହଜଭାବେ ଦର୍ଶନଯୋଗ୍ୟ—3. Observable. ୪ । ପ୍ରଣିଧାନ ଯୋଗ୍ୟ—4. Fit to be attended to.

ସମା ଲଗା—ଦେ. ବିଣ—ପଞ୍ଚୁରେ ସମା ବା ମୁଦଅ ଲାଗିଥାବ—
Samā lagā Attached with a ring; having a
ସାମାଲାଗା ring attached to the end. (ଢ—
ସମାଲଗା ହୁଆ ଅକର୍ମଶୀଳ ଲୁଣ୍ଡିକ ସମାଲଗା ବାଡ଼ାର । ଉଗ ।)

ସମାଲବ୍ଧ—ସଂ. ବି (ସମ୍+ଆ+ଲଭ୍. ଧାତୁ ବା ଲମ୍. ଧାତୁ+କର୍ମ. ତ)—
Samālabdha ୧ । ରଞ୍ଜିତ; ଚର୍ଚ୍ଚିତ; ରଙ୍ଗ କରା ଯାଇଥିବା—
(ସମାଲମ୍ଭ[ଭି], ସମାଲମ୍ଭ[ଭି]ନ—ବି) 1. Besmeared; painted. ୨ । ଲେପିତ; ଅଲେପିତ—2. Anointed; overlaid. ୩ । ମେଳିତ—3. Joined together. ୪ । ହତ—4. Killed; murdered. ୫ । ଧୃତ—5. Seized.

ସମାଲମ୍ବ—ସଂ. ବି (ସମ୍+ଆ+ଲମ୍ବ. ଧାତୁ+ଭାବ. ଅ)—୧। ଉଚ୍ଚ ଓ
Samālamba ମଧାକ ଲମ୍ବାଇବା—1. Suspending;
(ସମାଲମ୍ବନ—ଅନ୍ୟରୂପ) hanging. ୨ । ସମ୍ୟକ୍ ଆଶ୍ରୟ—
[ସମାଲମ୍ବିତ—ବିଣ] 2. Special support. ୩ । ଭୂତୃଣ; ସୁଗନ୍ଧ ତୃଣ ବିଶେଷ (ରାଜ ନିର୍ଘଣ୍ଟ)—3. A kind of scented grass.

ସମାଲମ୍ବୀ—ସଂ. ବି—ସମାଲମ୍ବ ୩ (ଦେଖ) [ରାଜ ନିର୍ଘଣ୍ଟ]
Samālambī Samālamba 3. (See)

ସମାଲମ୍ଭ(ଭ)ନ—ସଂ. ବି (ସମ୍+ଆ+ଲମ୍ଭ, ଧାତୁ ବା ଲଭ୍. ଧାତୁ+
Samālambha(bha)na ଭାବ. ଅନ)—୧ । ରଞ୍ଜନ;
( ସମାଲମ୍ଭ[ଭ]—ଅନ୍ୟରୂପ ) ରଙ୍ଗାଇବା—1. Dyeing;
[ସମାଲବ୍ଧ—ବିଣ] painting. ୨ । ବୋଳିବା; ବିଲେପନ—2. Anointing; besmearing. ୩ । ମାରଣ; ହନନ; ବଧ—3. Killing; slaughtering. ୪ । ଦେହରେ ଚନ୍ଦନାଦି ବୋଳିବା—4. Besmearing the body with sandal paste etc.

ସମାଲମ୍ଭୀ—ସଂ. ବିଣ. ପୁଂ (ସମ୍+ଆ+ଲମ୍ଭ ଧାତୁ+କର୍ତ୍ତୃ ଇନ୍;
Samālambhī ସମାଲମ୍ଭିନ୍, ୧ମା ୧ବ)—୧ । ବିଲେପନକାରୀ-
[ ସମାଲମ୍ଭିନୀ—ସ୍ତ୍ରୀ ] 1. Besmearing; anointing. ୨ । ମାରଣକାରୀ; ହତ୍ୟାକାରୀ—2. Killing; slaughtering.

ସମାଳାପ—ସଂ. ବି (ସମ୍+ଆଳାପ)—ସମ୍ୟକ୍ ଆଳାପ (ଶବ୍ଦକୋଷ)-
Samālāpa Intimate conversation.

ସମାଲିଆ—ଦେ. ବି—ସମ୍ବାଳୁଆ (ଦେଖ)—Sambāluā (See)
Samāliā ଦେ. ବିଣ—ସମାଳୁଆ (ଦେଖ)—Samāluā (See)

ଦେ. ବିଣ. ପୁଂ—୧ । ଧୈର୍ଯ୍ୟଶୀଳ—1. Patient. ୨ । ଅପେକ୍ଷାକାରୀ—2. Waiting. ୩ । ସହନଶୀଳ—
धैर्य्यशील सबूरकरनेवाला 3. Forbearing.

ସମାଲୀ
ସମାଲୋ(ଳେ)ଇ } —ସ୍ତ୍ରୀ

ସମାଲିଙ୍ଗନ—ସଂ. ବି ( ସମ୍+ଆଲିଙ୍ଗନ )—ସମ୍ୟକ୍ ଆଲିଙ୍ଗନ—
Samāliṅgana Tight embrace; hugging.
[ସମାଲିଙ୍ଗିତ, ସମାଲିଙ୍ଗୀ—ପୁଂ. ସମାଲିଙ୍ଗିତା, ସମାଲିଙ୍ଗିନୀ—ସ୍ତ୍ରୀ ବିଣ]

ସମାଳି ନେବା—ଦେ. କ୍ରି—ସମ୍ଭାଳିବା (ଦେଖ)—
Samāḷi nebā Sambhāḷibā (See)
সামলান সামলে নেওয়া सँभालना
( ସମ୍ଭାଳିବା—ଅନ୍ୟରୂପ )

ସମାଲି—ସଂ. ବି. ସ୍ତ୍ରୀ ( ସ+ମାଳ+ଇ )—ପୁଷ୍ପମଞ୍ଜରୀ; ଫୁଲର
Samāli ତୋଡ଼ା ( ଶବ୍ଦକୋଷ )—Nosegay; boquet.

ସମାଳୁଆ—ଦେ. ବି—ସମ୍ବାଳୁଆ (ଦେଖ)
Samāḷuā Sambāḷuā (See)
ଦେ. ବିଣ. ପୁଂ—ସମାଲିଆ (ଦେଖ)—Samāḷiā (See)

ସମାଲୋକ—ସଂ. ବି ( ସମ୍+ଆ+ଲୋକ ଧାତୁ+ଭାବ ଅ )—
Samāloka ୧ । ସମ୍ୟକ୍‌ରୂପେ ଦର୍ଶନ—1. Observa-
(ସମାଲୋକନ—ଅନ୍ୟରୂପ) tion. ୨ । ଉତ୍ତମରୂପେ
[ ସମାଲୋକିତ, ସମାଲୋକ୍ୟ, ସମାଲୋକୀ—ବିଣ ] ଦେଖିବା—2. Good view.

ସମାଲୋଚକ—ସଂ ବିଣ. ଓ ବି. ପୁଂ (ସମ୍+ଆ+ଲୋଚ ଧାତୁ+କର୍ତ୍ତୃ
Samālochaka ଅକ)—ସମାଲୋଚୀ (ଦେଖ)
[ସମାଲୋଚିକା—ସ୍ତ୍ରୀ] Samālochī (See).

ସମାଲୋଚନ(ନା)—ସଂ ବି (ସମ୍+ଆଲୋଚନ)—କୌଣସି ବସ୍ତୁର,
Samālochana(nā) ବ୍ୟକ୍ତିର, ବିଷୟର ବା ରଚନାର
[ ସମାଲୋଚ—ଅନ୍ୟରୂପ ] ଦୋଷଗୁଣାଦିର ସମ୍ୟକ୍
[ସମାଲୋଚିତ—ବିଣ] ଅଲୋଚନା—Criticism or review of any matter, thing or person.

ସମାଲୋଚନୀୟ—ସଂ ବିଣ ( ସମ୍+ଅଲୋଚନୀୟ )—ଅଲୋଚିତ
Samālochanīya ହେବା ଯୋଗ୍ୟ—Deserving or
[ସମାଲୋଚ୍ୟ—ଅନ୍ୟରୂପ] fit to be criticised.

ସମାଲୋଚୀ—ସଂ ବିଣ ଓ ବି. ପୁଂ ( ସମ୍+ଆ+ଲୋଚ ଧାତୁ+କର୍ତ୍ତୃ
Samālochī ଇନ୍; ୧ମା ୧ବ )—ସମାଲୋଚନକାରୀ—
[ସମାଲୋଚିନୀ—ସ୍ତ୍ରୀ] (adj) Criticising; reviewing. (noun) Reviewer; critic.

ସମାଶ—ସଂ ବି (ସମ୍+ଅଶ ଧାତୁ=ଖାଇବା+ଭାବ ଅ)—୧ । ସମ୍ୟକ
Samāśa ଭକ୍ଷଣ (ପାଣିନି)—2. Good meal. ୨ । ସମ୍ୟକ୍ ଉପଭୋଗ—2. Thorough enjoyment.

ସମାଶଙ୍କିତ—ସଂ ବିଣ. ପୁଂ (ସମ୍+ଆଶଙ୍କିତ)—୧ । ଅତ୍ୟନ୍ତ ଭୀତ—
Samāśaṅkita 1. Terrified. ୨ । ଅତ୍ୟନ୍ତ ସନ୍ଦିଗ୍ଧ—

( ସମାଶଙ୍କୀ—ବି ) 2, Very suspecting; greatly suspicious.

**ସମାଶ୍ରୟ**—ସଂ ବି (ସମ୍+ଆଶ୍ରୟ)—୧ । ସମ୍ୟକ୍ ଆଶ୍ରୟ; ଅବଲମ୍ବନ-
Samāśraya 1. Refuge; support; shelter.
୨ । ସହାୟ—2. Help.

ସମାଶ୍ରିତ
ସମାଶ୍ରୟଣୀୟ } —ବିଣ
ସମାଶ୍ରୟୀ

**ସମାଶ୍ଳେଷ**—ସଂ ବି ( ସମ୍+ଆଶ୍ଳେଷ )—ଦୃଢ଼ ଆଲିଙ୍ଗନ—
Samāślesha Tight embrace.
(ସମାଶ୍ଳେଷଣ—ଅନ୍ୟରୂପ) (ସମାଶ୍ଳେଷିତ—ବିଣ)

**ସମାଷ**—ସଂ ବିଣ—( ସହାର୍ଥ ବହୁବ୍ରୀହି; ସ=ସହ+ମାଷ=ବ୍ରୀହି )—
Samāsha ବ୍ରୀହିମିଶ୍ରିତ—Mixed with Brihi grains.

**ସମାସ**—ସଂ. ବି. (ସମ୍+ଅସ୍ ଧାତୁ=କ୍ଷେପଣକରିବା ସଂକ୍ଷେପ କରିବା
Samāsa +ଭାବ ଅ)—୧ । ସଂକ୍ଷେପ—1. Abridgement; contraction. ୨ । ସଂଗ୍ରହ—2. Collecting; gathering. ୩ । ସମାହାର—3. Conglomeration. ୪ । ମିଳନ—4. Meeting together. ୫ । ସମର୍ଥନ—5. Ratification; supporting. ୬। (ସ+ମାସ)—ସମ୍ବତ୍ସର—6. Year ୭। (ବ୍ୟାକରଣ) ଦୁଇ ବା ତତୋଽଧିକ ପଦମଧ୍ୟସ୍ଥ ବିଭକ୍ତିର ଲୋପକରି ସେମାନଙ୍କୁ ଏକପଦକରଣ; ଅନେକ ପଦର ଏକପଦକରଣ—7. (grammar) Compounding of several words into a whole; abridgment of many separate words into one word. [ଦୁଇ—ଦୁଇ ବା ବହୁ ପଦକୁ ଏକପଦ କରିବା ରୂପବ୍ୟାକରଣଗତ ପ୍ରକ୍ରିୟାକୁ ସମାସ ବୋଲିଯାଏ । ସମାସରେ ପୂର୍ବପୂର୍ବପଦମାନଙ୍କ ବିଭକ୍ତିର ଲୋପ ହୁଏ ।

ସମାସ ଛଅ ପ୍ରକାର, ଯଥା—ଦ୍ୱନ୍ଦ୍ୱ, ବହୁବ୍ରୀହି, କର୍ମଧାରୟ, ତତ୍ପୁରୁଷ, ଦ୍ୱିଗୁ ଓ ଅବ୍ୟୟୀଭାବ । ଏଥି ମଧ୍ୟରେ ନିତ୍ୟ ସମାସ ଓ ଉପପଦ ସମାସ ପ୍ରଭୃତି କେତେକ ସମାସ ମଧ୍ୟ ଅଛି । ସମାସ ଦ୍ୱାରା ନିଷ୍ପନ୍ନ ପଦକୁ ସମସ୍ତ ପଦ ବୋଲିଯାଏ; ଯେଉଁ ପଦମାନଙ୍କୁ ସମାସଦ୍ୱାରା ଏକତ୍ର କରାଯାଏ ସେହି ପଦମାନଙ୍କୁ ସମସ୍ୟମାନ ପଦ ବୋଲିଯାଏ ।

ସମସ୍ୟମାନ ପଦମାନଙ୍କ ମଧ୍ୟରୁ ଆଦ୍ୟପଦକୁ ପୂର୍ବପଦ ଓ ଶେଷ ପଦକୁ ଉତ୍ତର ବା ପର ପଦ କହନ୍ତି ।

୧ । ଦ୍ୱନ୍ଦ୍ୱ ସମାସ—ଏ ସମାସରେ ସମସ୍ୟମାନ ପଦମାନଙ୍କର ପ୍ରତ୍ୟେକର ଅର୍ଥ ପ୍ରଧାନ ରୂପେ ପ୍ରତୀୟମାନ ହୁଏ । ଏହା ଦୁଇ ପ୍ରକାର—(କ) ଇତରେତର ଦ୍ୱନ୍ଦ୍ୱ, (ଖ) ସମାହାର ଦ୍ୱନ୍ଦ୍ୱ ।

(କ) ଭିନ୍ନ ଭିନ୍ନ ବସ୍ତୁମାନଙ୍କର ମିଳନକୁ ଇତରେତର ଦ୍ୱନ୍ଦ୍ୱ ବୋଲିଯାଏ,—ଯଥା
ରାମ ଓ ଲକ୍ଷ୍ମଣ=ରାମ ଲକ୍ଷ୍ମଣ; ନର ଓ ନାରୀ=ନରନାରୀ ।

(ସଂସ୍କୃତରେ ଇତରେତର ଦ୍ୱନ୍ଦ୍ୱ ଦ୍ୱିବଚନାନ୍ତ ବା ବହୁବଚନାନ୍ତ ହୁଏ ।)

(ଖ) ଏକ ଜାତୀୟ ବହୁ ପଦାର୍ଥର ସମାହାର ବା ସମଷ୍ଟି ବୁଝାଇବା ଦ୍ୱନ୍ଦ୍ୱ ସମାସକୁ 'ସମାହାର ଦ୍ୱନ୍ଦ୍ୱ' ବୋଲିଯାଏ ।

ଯଥା—ହସ୍ତୀ ଓ ଅଶ୍ୱମାନଙ୍କର ସମାହାର=ହସ୍ତ୍ୟଶ୍ୱ; ଅହି ଓ ନକୁଳର ସମାହାର=ଅହିନକୁଳ ।
( ସମାହାର ଦ୍ୱନ୍ଦ୍ୱ ସଂସ୍କୃତରେ କ୍ଲୀବଲିଙ୍ଗ ଏକବଚନାନ୍ତ ହୁଏ ।

ସଂସ୍କୃତରେ ଆଉ ଏକ ପ୍ରକାର ଦ୍ୱନ୍ଦ୍ୱ ସମାସ ଅଛି, ତାକୁ ଏକଶେଷଦ୍ୱନ୍ଦ୍ୱ ବୋଲିଯାଏ; ଯଥା—ପିତା ଓ ମାତା=ପିତରୌ; ଏ ସ୍ଥାନରେ ପିତା ଓ ମାତା ଏ ଦୁଇ ପଦରୁ ମାତା ଶବ୍ଦର ଲୋପ ହୋଇ କେବଳ ପିତା ଶବ୍ଦର ଦ୍ୱିବଚନ ଆକାରରେ ପିତରୌ ( ପିତୃଦ୍ୱୟ )ଶବ୍ଦ ପିତା ଓ ମାତା, ଦୁହିଁଙ୍କୁ ବୁଝାଉଛି । ଓଡ଼ିଆରେ ମଧ୍ୟ ଏକଶେଷ ଦ୍ୱନ୍ଦ୍ୱର ଉଦାହରଣରୂପେ "ଆପଣଙ୍କ ପିଲାଏ ଭଲ ଅଛନ୍ତି ?" ଏ ବାକ୍ୟରେ ପିଲାଏ ବା ପିଲାମାନେ ଶବ୍ଦର ଅର୍ଥ ପିଲା(ପୁତ୍ର) ଓ ପିଲା(କନ୍ୟା)ମାନେ । ଏଠାରେ ପିଲୀ ଶବ୍ଦର ଲୋପ ହୋଇ ପିଲା ଶବ୍ଦ ଏକଶେଷ ହେଲା । କଳିକାଳରେ ମନୁଷ୍ୟମାନେ ସ୍ୱଳ୍ପଜୀବୀ ହୋଇ ଅଛନ୍ତି । ଏଠାରେ ମନୁଷ୍ୟ(ପୁରୁଷ)ମାନେ+ମନୁଷ୍ୟା(ସ୍ତ୍ରୀ)ମାନେ ମିଶି ମନୁଷ୍ୟମାନେ ହେଲା ।

୨ । ବହୁବ୍ରୀହି ସମାସ—ଯେଉଁ ସମାସରେ ସମସ୍ୟମାନ ପଦସମୂହର ମୁଖ୍ୟ ଅର୍ଥ ପ୍ରଧାନ ନ ହୋଇ ସେହି ସମସ୍ତ ଅର୍ଥ ଦ୍ୱାରା ସୂଚିତ ଅନ୍ୟ ବସ୍ତୁ ମୁଖ୍ୟରୂପେ ପ୍ରତୀୟମାନ ହୁଏ, ତାକୁ ବହୁବ୍ରୀହି ସମାସ ବୋଲିଯାଏ:—

ଯଥା—ପୀତ ଅଟେ ଅମ୍ବର ଯାହାର ସେ=ପୀତାମ୍ବର; ଦିକ୍ ଅଟେ ଅମ୍ବର ଯାହାର ସେ=ଦିଗମ୍ବର; କ୍ରୂର ଅଟେ ସ୍ୱଭାବ ଯାହାର ସେ=କ୍ରୂରସ୍ୱଭାବ ।

ବହୁବ୍ରୀହି ସମାସ ଦ୍ୱିବିଧ, ସମାନାଧିକରଣ ଓ ବ୍ୟଧିକରଣ ।

ସମାନାଧିକରଣ—ସମାସରେ ପୂର୍ବ ଓ ପର ଉଭୟ ଯଦି ବିଶେଷ୍ୟ ହୁଏ—ଯଥା ଜଡ଼ବୁଦ୍ଧି, ନୀଳକଣ୍ଠ ।

ବ୍ୟଧିକରଣ—ପୂର୍ବପଦ ବିଶେଷଣ ଓ ପରପଦ ବିଶେଷ୍ୟ ହୁଏ । ଯଥା—ସ୍ୱର୍ଣ୍ଣଶୃଙ୍ଗ, ପୀତାମ୍ବର ।
ସାଧାରଣତଃ ବହୁବ୍ରୀହି ସମାସ ନିଷ୍ପନ୍ନ ପଦ ବିଶେଷଣ ହୁଏ ।

୩ । କର୍ମଧାରୟ—ଯେଉଁ ସମାସରେ ବିଶେଷଣ ସହିତ ବିଶେଷ୍ୟ ପଦର ମିଳନ ହୁଏ ତାକୁ କର୍ମଧାରୟ ବୋଲିଯାଏ କର୍ମଧାରୟର ଉତ୍ତରପଦ ବା ଶେଷ ପଦର ପ୍ରାଧାନ୍ୟ ହୁଏ ।

ଯଥା—

ପୀତ ଅଟେ ଅମ୍ବର=ପୀତାମ୍ବର; କ୍ରୂର ଅଟେ ପ୍ରକୃତି=କ୍ରୂରପ୍ରକୃତି; ଶୁକ୍ଳ ଅଟେ ପକ୍ଷ=ଶୁକ୍ଳପକ୍ଷ ।

କର୍ମଧାରୟ ସମାସ ତିନି ପ୍ରକାରର ଅଟେ । ଯଥା— (କ) ମଧ୍ୟପଦଲୋପୀ କର୍ମଧାରୟ, (ଖ) ରୂପକ କର୍ମଧାରୟ, (ଗ) ଉପମିତ କର୍ମଧାରୟ ।

(କ) ଯେଉଁ ସମାସରେ ବାକ୍ୟର ମଧ୍ୟପଦର ଲୋପ କରଯାଇ ଲୁପ୍ତ ପଦର ପୂର୍ବ ଓ ପରବର୍ତ୍ତୀ ପଦଦ୍ୱୟକୁ ଯୋଗ କରଯାଏ ତାହାକୁ ମଧ୍ୟପଦଲୋପୀ କର୍ମଧାରୟ ବୋଲଯାଏ । ଯଥା—ବଟ ନାମକ ବୃକ୍ଷ=ବଟବୃକ୍ଷ; ଘୃତ ମିଶ୍ରିତ ଅନ୍ନ=ଘୃତାନ୍ନ; ଛାୟା ପ୍ରଧାନ ତରୁ=ଛାୟାତରୁ; ସମୁଦ୍ର ଯାତ୍ରା ପାଇଁ ବ୍ୟବହୃତ ଯାନ=ସମୁଦ୍ରଯାନ ।

(ଖ) ଯେଉଁ ସମାସରେ ଉପମେୟ ପଦରେ ଉପମାନ ଆରୋପ କରଯାଏ ତାକୁ ରୂପକ କର୍ମଧାରୟ ବୋଲଯାଏ । ଯଥା—ଦେହରୂପ ପଞ୍ଜର=ଦେହ ପଞ୍ଜର; ଗୋରୂପ ଧନ=ଗୋଧନ; ଯଜ୍ଞ ରୂପ କର୍ମ=ଯଜ୍ଞକର୍ମ; ପିତୃ ରୂପ ଦେବ=ପିତୃଦେବ । ଏଠାରେ ଗୋ, ଯଜ୍ଞ ଓ ପିତୃ ସ୍ଥାନରେ ଯଥାକ୍ରମେ ଧନ, କର୍ମ ଓ ଦେବ ଆରୋପିତ ହୋଇଅଛି ।

(ଗ) ଉପମିତ କର୍ମଧାରୟରେ ସମାନ ଧର୍ମ ବା ସାଦୃଶ୍ୟ ବାଚକ ପଦର ଲୋପ ହୋଇ ଉପମେୟ ଶବ୍ଦ ସଙ୍ଗେ ଉପମାନ ଶବ୍ଦର ଯୋଗ କରଯାଏ ।

ଯଥା—ବ୍ୟାଘ୍ର ସଦୃଶ ପୁରୁଷ=ପୁରୁଷବ୍ୟାଘ୍ର, ଚନ୍ଦ୍ର ସଦୃଶମୁଖ=ମୁଖଚନ୍ଦ୍ର । (ଦ୍ର—ଚନ୍ଦ୍ରରୂପ ମୁଖ=ଚନ୍ଦ୍ରମୁଖ ରୂପକ ସମାସ) ।

ବିଶେଷଣ ଓ ବିଶେଷଣ ପଦ ମିଶି ମଧ୍ୟ କର୍ମଧାରୟ ସମାସ ହୁଏ, ଯଥା ପୀନ ଓ ଉନ୍ନତ=ପୀନୋନ୍ନତ ।

୪ । ତତ୍ପୁରୁଷ ସମାସ—ଦ୍ୱିତୀୟାଦି ବିଭକ୍ତିଦ୍ୱାରା ଅନ୍ୱିତ ପଦମାନଙ୍କର ସମାସକୁ ତତ୍ପୁରୁଷ ସମାସ ବୋଲଯାଏ । ଏ ସମାସରେ ଦ୍ୱିତୀୟାଦି ବିଭକ୍ତ୍ୟନ୍ତ ପଦ ପୂର୍ବେ ଥାଏ । ଏହି ସମାସରେ ଉତ୍ତର ପଦର ପ୍ରାଧାନ୍ୟ ରହେ ।

ତତ୍ପୁରୁଷ ସମାସ ଆଠ ପ୍ରକାର ଯଥା—୨ୟା ତତ୍ପୁରୁଷ, ୩ୟା ତତ୍ପୁରୁଷ, ୪ର୍ଥୀ ତତ୍ପୁରୁଷ, ୫ମୀ ତତ୍ପୁରୁଷ, ୬ଷ୍ଠୀ ତତ୍ପୁରୁଷ, ଓ ୭ମୀ ତତ୍ପୁରୁଷ, ନଞ୍ ତତ୍ପୁରୁଷ ଓ ଅଲୁକ୍ ।

୨ୟା ତତ୍ପୁରୁଷ, ଯଥା—ଗୃହକୁ ଆଗତ=ଗୃହାଗତ । ୩ୟା ତତ୍ପୁରୁଷ ଯଥା—ସର୍ପଦ୍ୱାରା ଦଷ୍ଟ=ସର୍ପଦଷ୍ଟ । ୪ର୍ଥୀ ତତ୍ପୁରୁଷ ଯଥା—ବିପ୍ରକୁ ଦତ୍ତ=ବିପ୍ରଦତ୍ତ । ୫ମୀ ତତ୍ପୁରୁଷ, ଯଥା—ସମାଜରୁ ଚ୍ୟୁତ=ସମାଜଚ୍ୟୁତ, ୬ଷ୍ଠୀ ତତ୍ପୁରୁଷ, ଯଥା—ମନୁଷ୍ୟର ବୁଦ୍ଧି=ମନୁଷ୍ୟବୁଦ୍ଧି, ସ୍ୱର୍ଗର ଦ୍ୱାର=ସ୍ୱର୍ଗଦ୍ୱାର । ୭ମୀ ତତ୍ପୁରୁଷ ଯଥା—ରାତ୍ରିରେ ଜାଗରଣ=ରାତ୍ରି ଜାଗରଣ । ନଞ୍ତତ୍ପୁରୁଷ—ଯେଉଁ ତତ୍ପୁରୁଷ ସମାସରେ ନାହିଁ ଅର୍ଥଯୁକ୍ତ ପଦ ଥାଏ ଯଥା—ନୁହେଁ ସୁର=ଅସୁର, ନୁହେଁ କାର୍ଯ୍ୟ=ଅକାର୍ଯ୍ୟ, ନୁହେଁ ଉକ୍ତ=ଅନୁକ୍ତ ।

ଅଲୁକ୍ ତତ୍ପୁରୁଷରେ—ଯେଉଁ ତତ୍ପୁରୁଷରେ ବିଭକ୍ତି ଯୁକ୍ତ ପୂର୍ବ ପଦର ବିଭକ୍ତିର ଆକାର ସମସ୍ତ ପଦରେ ଅବିକଳ ରହେ ।

ବନେ=ବନରେ ବା ଜଙ୍ଗଲରେ+ଶୟ=ଶୟନକାରୀ=ବନେଶୟ; ଖେ=ଖରେ ବା ଆକାଶରେ+ଚର=ବିଚରଣକାରୀ=ଖେଚର । ଉପପଦ ସମାସ ମଧ୍ୟ ତତ୍ପୁରୁଷ ସମାସରେ ଅନ୍ତର୍ଗତ (ବିଶ୍ୱକୋଷ) ।

୫ । ଦ୍ୱିଗୁ ସମାସ—ସଂଖ୍ୟାବାଚକ ଶବ୍ଦ ପୂର୍ବରେ ଥାଇ ଯେଉଁ ସମାସ ହୁଏ ତାକୁ ଦ୍ୱିଗୁ ସମାସ ବୋଲଯାଏ; ଏ ସମାସ ଦୁଇ ପ୍ରକାରର ଯଥା—ଉତ୍ତରପଦ ଦ୍ୱିଗୁ ଓ ସମାହାର ଦ୍ୱିଗୁ ।

(କ) ଉତ୍ତରପଦ ଦ୍ୱିଗୁ, ଯହିଁରେ ଉତ୍ତର ପଦର ପ୍ରାଧାନ୍ୟ ରହେ । ଯଥା—

ନବ=ନଅ ଗୋଟି+ଲକ୍ଷଣ=ନବଲକ୍ଷଣ;

ଦ୍ୱି=ଦୁଇ ଗୋଟି+ନାଥ=ଦ୍ୱିନାଥ ।

(ଖ) ସମାହାର ଦ୍ୱିଗୁ—ଯେଉଁ ସମାସ ଦ୍ୱାରା ବହୁ ସଂଖ୍ୟକ ପଦାର୍ଥର ସମାହାର ବା ଏକତ୍ରାବସ୍ଥିତି ବା ସମଷ୍ଟି ବୁଝାଯାଏ ତାକୁ ସମାହାର ଦ୍ୱିଗୁ ବୋଲଯାଏ । ଯଥା—

ସପ୍ତ=ସାତ+ଅହନ୍=ସାତ ଦିନର ସମାହାର ବା ସମଷ୍ଟି=ସପ୍ତାହ

ଚତୁର୍=ଚାରି+ଦିକ୍=ଚାରି ଦିଗର ସମାହାର=ଚତୁର୍ଦ୍ଦିକ୍

ପଞ୍ଚ=ପାଞ୍ଚ+ଲବଣ=ପାଞ୍ଚ ପ୍ରକାର ଲୁଣର ସମାହାର=ପଞ୍ଚ ଲବଣ ।

୬ । ଅବ୍ୟୟୀଭାବ ସମାସ—ଯେଉଁ ସମାସର ପୂର୍ବ ପଦ ଅବ୍ୟୟ ଓ ପରପଦ ଅନବ୍ୟୟ ଅଟେ, ତାକୁ ଅବ୍ୟୟୀଭାବ ବୋଲଯାଏ । ଏହି ସମାସରେ ପୂର୍ବପଦର ପ୍ରାଧାନ୍ୟ ରହେ ।

ଯଥା—ଅଧି+ଆତ୍ମନ୍=ଆତ୍ମାକୁ ଅଧିକାର କରି=ଅଧ୍ୟାତ୍ମ । ଯଥାବିଧି, ଆକଣ୍ଠ, ଉପକୂଳ ପ୍ରତିଦିନ ଇତ୍ୟାଦି ।

ଏହି ସମାସରେ ଅବ୍ୟୟ ପଦ ଦ୍ୱାରା ବିଭକ୍ତି, ଅସମ୍ପୃକ୍ତ, ଶବ୍ଦ, ପ୍ରାଦୁର୍ଭାବ, ଯଥା, ପର୍ଯ୍ୟନ୍ତ (ଆସମୁଦ୍ର), ସମୀପ, (ଉପକୂଳ), ପ୍ରତି ବା ପ୍ରତ୍ୟେକ (ଅନୁକ୍ଷଣ), ସମୃଦ୍ଧି, ବୃଦ୍ଧି, ଅର୍ଥାଭାବ, ଅତ୍ୟୟ, ମଧ୍ୟଭାଗ (ଅପଦଶ୍ଚ), ପଶ୍ଚାତ୍ (ଅନୁଶୋଚନା), ବୀପ୍ସା (ପ୍ରତିଦିନ), ଅନତିକ୍ରମ (ଯଥାବିଧି), ଯୁକ୍ତ,ବଶିଷ୍ଟ (ସଜନ), ସହିତ (ସହ ଗମନ), ସାଦୃଶ୍ୟ, ଅଭାବ (ନିର୍ବିଘ୍ନ), ଯୋଗପଦ୍ୟ, ଯୋଗ୍ୟତ (ଅନୁରୂପ), ସମ୍ବନ୍ଧୀୟ ବା ଅଧିକାର କରି (ଅଧ୍ୟାତ୍ମ) ପ୍ରଭୃତି ଅର୍ଥ ବୁଝାଯାଏ ।

ଏହି ଛଅ ପ୍ରକାର ସମାସରେ ସମସ୍ତ ସମସ୍ତରେ ସମାସୋତ୍ତର ବିଭକ୍ତିର ଲୋପ ହୋଇ ଅ, କ

ଆଦି କେତେଗୁଡ଼ିଏ ପ୍ରତ୍ୟୟ ହୁଏ । ଏ ପ୍ରତ୍ୟୟମାନଙ୍କୁ ସମାସାନ୍ତ ପ୍ରତ୍ୟୟ କହନ୍ତି, ଯଥା—ଇନ୍ଦ୍ରଙ୍କ ସଖା=ଇନ୍ଦ୍ର+ସଖା+ଅ=ଇନ୍ଦ୍ରସଖ ।
ଅନ୍ୟ ମନସ୍=ଅନ୍ୟ+ମନସ୍+କ=ଅନ୍ୟମନସ୍କ; ସମାନ ବୟସ ବିଶିଷ୍ଟ=ସମ+ବୟସ୍+କ=ସମବୟସ୍କ । ଏହି ଛଅଟି ସମାସ ମଧ୍ୟରେ ନିମ୍ନଲିଖିତ ସମାସମାନ ମଧ୍ୟ ସ୍ଥାନେ ସ୍ଥାନେ ପରିଲକ୍ଷିତ ହୁଏ ।

କ । ନିତ୍ୟ ସମାସ—ଯେଉଁ ସମାସରେ ସମସ୍ୟମାନ ବାକ୍ୟ ଦ୍ୱାରା ସମସ୍ତ ପଦ ଗଢ଼ା ନ ହୋଇ ଅନ୍ୟ ପଦ ଯୋଗ କରାଯାଇ ସମସ୍ତ ପଦର ଅର୍ଥ ପ୍ରକାଶିତ ହୁଏ ତାକୁ ନିତ୍ୟ ସମାସ ବୋଲାଯାଏ । ଯଥା—ଭୋଜନ ପାଇଁ ଏହା=ଭୋଜନାର୍ଥ, ଅନ୍ୟ+ଗ୍ରାମ=ଗ୍ରାମାନ୍ତର । କୁ ଶବ୍ଦ ଓ ପ୍ରାଦି ଶବ୍ଦ ସହିତ ନିଷ୍ପନ୍ନ ସମାସକୁ ନିତ୍ୟ ସମାସ ବୋଲାଯାଏ; ପ୍ର, ପରା, ଅପ ପ୍ରଭୃତି ଉପସର୍ଗ, ଅଲଂ, ଅନ୍ତର, ପୁରସ୍, ତିରସ୍, ପ୍ରାଦୁସ୍, ଆବିସ୍ ପ୍ରଭୃତି ଅବ୍ୟୟ ଶବ୍ଦ ଏବଂ ଚ୍ୱି (ଅଭୂତ ତଦ୍ଭାବେ ଚ୍ୱି), କ୍ତ୍ୱା (ତ୍ୱା) ଆଦି ପ୍ରତ୍ୟୟ ସହିତ ଯେଉଁ ସମାସ ହୁଏ ତାକୁ ମଧ୍ୟ ନିତ୍ୟସମାସ ବୋଲାଯାଏ ।
କୁତ୍ସିତ, ନମସ୍କାର, ଅଳଙ୍କାର, ଅନ୍ତର୍ହିତ, ପୁରୋଧା, ତିରସ୍କାର, ପ୍ରାଦୁର୍ଭାବ, ଆବିର୍ଭାବ, ସପିଣ୍ଡୀକରଣ, ଆଦି ନିତ୍ୟ ସମାସର ଉଦାହରଣ । ଅର୍ଥ (ପ୍ରୟୋଜନ) ଶବ୍ଦ ସହିତ ଚତୁର୍ଥ୍ୟନ୍ତ ପଦର ନିତ୍ୟ ସମାସ ହୁଏ । ଯଥା—ଯଜ୍ଞ ପାଇଁ ଏହା=ଯଜ୍ଞାର୍ଥ; ଭୋଜନ ପାଇଁ ଏହା=ଭୋଜନାର୍ଥ ।

ଖ । ଉପପଦ ସମାସ—ଉପପଦ ସହିତ କୃଦନ୍ତ ପଦର ଯେଉଁ ସମାସ ହୁଏ ତାକୁ ଉପପଦ ସମାସ କହନ୍ତି । ଯଥା—ମାଳା କରେ ଯେ=ମାଳାକାର; ଫଳକୁ ଦିଏ ଯେ=ଫଳଦ; ପ୍ରାଣକୁ ହନନ କରେ ଯେ=ପ୍ରାଣହା, ପ୍ରାଣଘ୍ନ; କୃତକୁ ଜାଣେ ଯେ=କୃତଜ୍ଞ; କ୍ଷୀରକୁ ପିଏ ଯେ=କ୍ଷୀରପାୟୀ । ଏ ସମାସ ତତ୍ପୁରୁଷ ସମାସର ଅନ୍ତର୍ଗତ ଅଟେ (ବିଶ୍ୱକୋଷ) ।

ଗ । ଅଲୁକ୍ ସମାସ—ସାଧାରଣତଃ ଦୁଇ ପଦର ସମାସ ହେଲେ ପୂର୍ବପଦର ବିଭକ୍ତିର ଲୋପ ହୁଏ କିନ୍ତୁ କେତେକ ସ୍ଥଳରେ ବିଶେଷ ବିଧାନ ଅନୁସାରେ ପୂର୍ବପଦର ବିଭକ୍ତି ଲୋପ ନ ହୋଇ ବିଭକ୍ତିଯୁକ୍ତ ପଦ ସମାସରେ ପୂର୍ବ ରୂପରେ ରହେ; ଏହାକୁ ଅଲୁକ୍ ସମାସ କହନ୍ତି; ଯଥା—ଅନ୍ତେବାସୀ, ବଲେଶୟ, ଖେଚର, ଯୁଧିଷ୍ଠିର, ଧନଞ୍ଜୟ ।

ଘ । ସୁପ୍ ସୁପ୍ ସମାସ—ସମାସ ସ୍ଥଳରେ ସୁବନ୍ତ ସହିତ ସୁବନ୍ତର (ଯଥା—ରାଜ ପୁରୁଷ), ତିଙନ୍ତ ସହିତ ସୁବନ୍ତର (ଯଥା—ପର୍ଯ୍ୟଭୂଷିତ), ନାମ ସହିତ ସୁବନ୍ତର (ଯଥା—କୁମ୍ଭକାର), ଧାତୁ ସହିତ ସୁବନ୍ତର (ଯଥା—ଅଜସ୍ର), ତିଙନ୍ତ ସହିତ ତିଙନ୍ତର (ପିବତ ଖାଦତା), ଓ ସୁବନ୍ତ ସହିତ ତିଙନ୍ତର (ଯଥା—କୃନ୍ତ ବିଚକ୍ଷଣା) ସମାସକୁ ସୁପ୍ ସୁପ୍ ସମାସ ବୋଲାଯାଏ ।

ସମସ୍ତ ବାକ୍ୟରେ ଥିବା ପଦମାନଙ୍କର ବିଶ୍ଳେଷଣ କଲେ ଅର୍ଥ ପରିସ୍ଫୁଟ ହୁଏ । ଏହି ବିଶ୍ଳେଷଣକୁ ସମାସ ବିଗ୍ରହ ବା ବ୍ୟାସ ବାକ୍ୟ ବୋଲାଯାଏ । (ବିଶ୍ୱକୋଷ) ]

**ସମାସ କରିବା**—ଦେ. କ୍ରି—ଭିନ୍ନ ଭିନ୍ନ ପଦକୁ ଏକତ୍ର କରି ସମସ୍ତ ପଦରେ ପରିଣତ କରିବା—To amalgamate many words into one compound word.
Samāsa karibā
সমাস করা
**समास करना**

**ସମାସକ୍ତ**—ସଂ. ବିଣ (ସମ୍=ସମ୍ୟକ୍+ଆସକ୍ତ)—୧ । ଅତ୍ୟାସକ୍ତ—1. Addicted. ୨ । ସଂଲଗ୍ନ—2. Attached. ୩ । ଯୁକ୍ତ—3. Joined; united. ୪ । ଲବ୍ଧ—4. Attained; obtained. ୫ । ଅଭିନିବିଷ୍ଟ—5. Absorbed in; engrossed in. ୬ । ବଶୀକୃତ—6. Brought under control. ୭ । ରାଶିକୃତ (ବିଶ୍ୱକୋଷ)—7. Heaped up.
Samāsakta
(ସମାସକ୍ତା—ସ୍ତ୍ରୀ)
(ସମାସକ୍ତି—ବି)

**ସମାସକ୍ତି**—ସଂ. ବି (ସମ୍+ଆସକ୍ତି)—ସମାସଙ୍ଗ (ଦେଖ)
Samāsakti Samāsanga (See)

**ସମାସଙ୍ଗ**—ସଂ. ବି (ସମ୍+ଆସଙ୍ଗ)—୧ । ଅତ୍ୟାସକ୍ତି—1. Excessive attachment. ୨ । ଅଭିନିବେଶ—2. Assiduity; close application. ୩ । ସଂଯୋଗ—3 Union; close connection.
Samāsanga
(ସମାସଞ୍ଜନ—ଅନ୍ୟରୂପ)

**ସମାସତ୍ତି**—ସଂ. ବି (ସମ୍+ଆ+ସଦ୍ ଧାତୁ+ଭାବ. ତି)—ସନ୍ନିକର୍ଷ, ନିକଟ—Propinquity; nearness.
Samāsatti

**ସମାସନ**—ସଂ. ବି (କର୍ମଧା)—୧ । ସମାନ ଆସନ—1. Equal seats. ୨ । ଏକ ଆସନ—2. The same seat. ସଂ. ବିଣ. ପୁଂ (ବହୁବ୍ରୀହି)—୧ । ସମାନ ଆସନ ବିଶିଷ୍ଟ—1. Occupying similar or equal seats or posts. ୨ । ଏକ ଆସନରେ ଆସୀନ—2. Occupying the same seat.
Samāsana
(ସମାସନା—ବିଣ ସ୍ତ୍ରୀ)

**ସମାସନ୍ନ**—ସଂ. ବିଣ (ସମ+ଆସନ୍ନ)—୧ । ସନ୍ନିହିତ—1. Lying close by. ୨ । ଅତି ନିକଟବର୍ତ୍ତୀ—2. Very near; impending. ୩ । ପ୍ରାପ୍ତ—3. Got.
Samāsanna

**ସମାସ ବିଗ୍ରହ**—ସଂ. ବି (ଷଷ୍ଠୀ ତତ୍)—ସମସ୍ତ ପଦକୁ ଭାଙ୍ଗି ତହିଁର ସମସ୍ୟମାନ ପଦମାନଙ୍କ ପୃଥକ୍କରଣ—Separation of a compound word into its component parts.
Samāsa bigraha

**ସମାସ ଭାବନା**—ସଂ. ବି (ବୀଜଗଣିତ)—ବିଭିନ୍ନ ଗୁଣଫଳର ଯୋଗଫଳର ନିରୂପଣ; ଦୁଇଟି ବୃତ୍ତାଂଶର ସମଜ୍ୟା (ସିଦ୍ଧାନ୍ତ ଶିରୋମଣି. ବିଶ୍ୱକୋଷ)—(algebra) Sine of the sum of two arcs.
Samāsa bhābanā

**ସମାସାଦିତ**—ସଂ. ବିଣ (ସମ୍+ଆ+ସଦ୍ ଧାତୁ=ପାଇବା, ଣିଚ୍+କର୍ମ. ତ)—୧ । ପ୍ରାପିତ—1. Caused to be obtained. ୨ । ସଂପ୍ରାପ୍ତ; ଲବ୍ଧ—
Samāsādita

2. Attained; got. ୩ । ସମାଗତ—3. Brought. ୪ । ଅହୃତ—4. Collected; gathered. ୫ । ଅକ୍ରାନ୍ତ—5. Attacked; overpowered. ୬ । ପହଞ୍ଚା ଯାଇଥିବା—6. Reached. ୭ । ଉଦ୍ଧୃତ—7. Extracted.

**ସମାସାଦ୍ୟ**—ସଂ. ବିଣ (ସମ୍+ଆ+ସଦ୍ ଧାତୁ=ଗମନ କରିବା+ Samāsādya କର୍ମ. ଯ)—୧ । ପ୍ରାପ୍ୟ—1. Due. ୨ । ଲଭ୍ୟ—2. Attainable. ୩ । ଉଦ୍ଧୃତ ହେବାର ଯୋଗ୍ୟ—3. Fit to be extracted. ୪ । ସମାଗତ ହେବା ଯୋଗ୍ୟ—4. Fit to be brought in.

**ସମାସାନ୍ତ**—ସଂ. ବି (ବ୍ୟାକରଣ)—ସମାସ ହେବା ପରେ ଆସିବା Samāsānta ପ୍ରତ୍ୟୟ ବିଶେଷ—(grammar) Suffixes put to some words when they are formed into a compound word. [ ଦ୍ର—ସଂସ୍କୃତ ବ୍ୟାକରଣରେ ଏହି ପ୍ରତ୍ୟୟମାନଙ୍କ ପାଇଁ ବିଶିଷ୍ଟ ବିଧିମାନ ଅଛି । (ଯଥା—ରାଜାହଃ ସଖିଭ୍ୟଷ୍ଟଚ୍); ମହାନ୍+ରାଜନ୍= ମହାରାଜନ୍ ଧର ନ ହୋଇ ମହାରାଜନ୍ ଶବ୍ଦରେ ଅ ପ୍ରତ୍ୟୟ ହୋଇ ମହାରାଜ ଶବ୍ଦ ସିଦ୍ଧ ହେଲା । ଇନ୍‌ଙ୍କ ସଂଜ୍ଞା= ଇନ୍ ସଂଜ୍ଞା; ପ୍ରତି+ଅୟନ୍=ପ୍ରତ୍ୟୟ; ଏହି ସବୁ ପ୍ରତ୍ୟୟକୁ ସମାସାନ୍ତ ବା ସମାସାନ୍ତ ପ୍ରତ୍ୟୟ କହନ୍ତି । ]

**ସମାସାର୍ଥ**—ସଂ. ବି (୬ଷ୍ଠୀ ତତ୍)—୧ । ସମାସର ଅର୍ଥ—1. The Samāsārtha meaning of a compound word. (ସମାସାର୍ଥା—ଆସ୍ତ ଅର୍ଥର ଅନ୍ୟରୂପ) ୨ । ସଂକ୍ଷିପ୍ତାର୍ଥ—2. Short or concise meaning. ୩ । (ବହୁବ୍ରୀହି) ସମସ୍ୟା—3. Riddle; problem.

**ସମାସାର୍ଦ୍ଧ**—ସଂ. ବିଣ (ସହାର୍ଥ ବହୁବ୍ରୀହି; ସ+ମାସାର୍ଦ୍ଧ)—ମାସାର୍ଦ୍ଧ Samāsārddha ବା । ପକ୍ଷବ୍ୟାପୀ—Occupying or spread over a fortnight.

**ସମାସୀନ**—ସଂ.ବିଣ.ପୁଂ (ସମ୍+ଆସୀନ)—ବସିଥିବା; କୃତୋପବେଶନ; Samāsīna ଉପବିଷ୍ଟ—Seated. (ସମାସୀନା—ସ୍ତ୍ରୀ)

**ସମାସୋକ୍ତ**—ସଂ. ବିଣ (ଆସ୍ୟା ତତ୍)—ସଂକ୍ଷେପରେ ଉକ୍ତ— Samāsokta Told concisely.

**ସମାସୋକ୍ତି**—ସଂ. ବି (୬ଷ୍ଠୀ ତତ୍)—ଅଳଙ୍କାର ବିଶେଷ— Samāsokti A figure of speech; a protracted metaphor; the figure of personification. [ ଦ୍ର—ଏଥିରେ ସମାନ କାର୍ଯ୍ୟ, ସମାନ ବିଶେଷଣ ଓ ସମାନ ଲିଙ୍ଗହାର ପ୍ରସ୍ତୁତ (ଯଥା—ନାୟିକା) ପଦାର୍ଥରେ ଅପ୍ରସ୍ତୁତ (ଯଥା—ନାୟକ) ପଦାର୍ଥର ବ୍ୟବହାର ସମ୍ୟକ୍ ଆରୋପିତ ହୁଏ ।

· ଏହି ବାୟୁକୁ ଲକ୍ଷ୍ୟ କରି କହୁଅଛନ୍ତି—'ହେ ବାୟୁ ! ତୁମେ କୌଣସି କାମିନୀର ସ୍ତନଦ୍ୱୟକୁ ବସନ ଅପସୃତ କରି (ଉଡ଼ାଇ ଦେଇ) ହସିହି ତାହାର ଅଙ୍ଗକୁ ଆଲିଙ୍ଗନ କରୁଅଛ ।' ଏଠାରେ ପ୍ରକୃତ ବାୟୁଠାରେ ଅପ୍ରକୃତ ଲମ୍ପଟାତ୍ମକର ବ୍ୟବହାର ଆରୋପିତ ହୋଇଅଛି; ଏହା ସମାସୋକ୍ତି ଅଳଙ୍କାର—ସାହିତ୍ୟ ଦର୍ପଣ । ]

**ସମାସ୍ଥାନ** (ଇତ୍ୟାଦି)—ପ୍ରାଦେ. (ଗଞ୍ଜାମ) ବି—ସମସ୍ଥାନ ଇତ୍ୟାଦି Samāsthāna (etc) (ଦେଖ)—Samasthāna etc. (See)

**ସମାସ୍ୟା**—ଗ୍ରା. ବି (ସଂ. ସମସ୍ୟା ଶବ୍ଦର ଅଶୁଦ୍ଧ ଉଚ୍ଚାରଣ)— Samāsyā ୧ । ସମସ୍ୟା (ଦେଖ)—1. Samasyā (See) ସମାସ୍ୟା ଜବାବ ୨ । ଶେଷ ଉତ୍ତର—2. Final reply. [ଦ୍ର—ବେଶି କଥା କହିବାର ସହେଜ ବାମାରଣ୍ଡ । ସମାସ୍ୟା ନ ଦେଇଣ ହେଲା ହେଠମାଥ—ପ୍ରାଚୀ. ପ୍ରତାପ ଶଶିରେଖା । ]

**ସମାହତ**—ସଂ. ବିଣ (ସମ୍+ଆହତ)—୧ । ସମ୍ୟକ୍‌ରୂପେ ଆହତ— Samāhata 1. Specially or much hurt. ୨ । ତାଡ଼ିତ —2. Expelled.

**ସମାହରଣ**—ସଂ. ବି (ସମ୍=ସମ୍ୟକ୍+ଆହରଣ)—୧ । ଏକତ୍ରୀ- Samāharaṇa କରଣ—1. Gathering. ୨ । ସଂଗ୍ରହ; (ସମାହୃତ—ବିଣ) ସମ୍ୟକ୍ ଆହରଣ—2. Collecting. ୩ । ସଞ୍ଚୟ—3. Storing up. ୪ । ସଂକ୍ଷିପ୍ତ କରିବା—4. Making concise, abridgement.

ସମାହର୍ତ୍ତା—ପୁଂ } ବ୍ୟକ୍ତିବାଚକ. ବିଣ
ସମାହର୍ତ୍ତ୍ରୀ—ସ୍ତ୍ରୀ }

**ସମାହାର**—ସଂ. ବି (ସମ୍+ଆ+ହୃ ଧାତୁ=ହରଣ କରିବା+ଭାବ· Samāhāra ଅ)—୧ । ସଂଗ୍ରହ; ବହୁ ବସ୍ତୁର ଏକତ୍ରୀକରଣ— 1. Collection. ୨ । ଆହରଣ—2. Gathering. ୩ । ସଂକ୍ଷେପ—3. Abridgement. ୪ । ମେଲନ— 4. Mixture; union. ୫ । ସମଷ୍ଟି; ସମୂହ; ପୁଞ୍ଜ— 5. Multitude; aggregate. ୬ । ଦ୍ୱନ୍ଦ୍ୱ ଓ ଦ୍ୱିଗୁ ସମାସବିଶେଷ —6. Name of a class of compound words expressing numerical and other aggregates.

ସମାହୃତ } ବିଣ
ସମାହାର୍ଯ୍ୟ }

**ସମାହାର ଦ୍ୱନ୍ଦ୍ୱ**—ସଂ. ବି (ବ୍ୟାକରଣ)—ଦ୍ୱନ୍ଦ୍ୱ ସମାସବିଶେଷ; ଯେଉଁ Samāhāra dwandwa ସମାସରେ ସମସ୍ତମାନ ପଦହାର ଲକ୍ଷିତ ବସ୍ତୁମାନଙ୍କର ସମାହାର ବା ସମଷ୍ଟି ସୂଚିତ ହୁଏ (ସମାସ ତଳେ ନୋଟ ଦେଖ)—Name of a class of compounds expressing the aggregate of many things.

**ସମାହାର ଦ୍ୱିଗୁ**—ସଂ. ବି (ବ୍ୟାକରଣ)—ସମାସ ବିଶେଷ; ଯେଉଁ Samāhāra dwigu ସମାସରେ ସଂଖ୍ୟାଯୁକ୍ତ ବସ୍ତୁମାନଙ୍କ ସମଷ୍ଟି ବୁଝାଏ (ସମାସ ତଳେ ଟୀକା ଦେଖ)—Name of class of compounds denoting numerical aggregate.

**ସମାହିତ**—ସଂ. ବିଣ (ସମ୍+ଆ+ଧା ଧାତୁ=ଧାରଣ କରିବା+କର୍ମ. Samāhita ତ)—୧ । ସମାଧିପ୍ରସ୍ତ; ଧ୍ୟାନମଗ୍ନ; ସମାଧିସ୍ଥ—

1. Absorbed or rapt in meditation. ୨ । ଅବହିତ; ଏକାଗ୍ରଚିତ୍ତ—2. Attentive. ୩ । ଶାନ୍ତଚିତ୍ତ—3. Of cool temperament. ୪। ଅଭ୍ରାନ୍ତଚିତ୍ତ—4. Calculating; unerring. ୫ । ଧୃତ; ଅବିଚଳିତ—5, Unmoved; firm; fixed. ୬ । ନିଷ୍ପାଦିତ; ନିଷ୍ପନ୍ନ—6. Accomplished, ୭ । ମୀମାଂସିତ—7. Decided. ୮ । ସ୍ଥାପିତ—8. Placed. ୯ । ସଂଗୃହୀତ—9. Collected. ୧୦ । ସଞ୍ଚିତ—10. Stored. ୧୧ । ଅଙ୍ଗୀକୃତ—11. Agreed. ୧୨ । ଦତ୍ତ—12. Given. ୧୩ । ବିଶୋଧିତ—13. Purified. ୧୪ । ଭୂଗର୍ଭରେ (ସମାଧି,ସମାଧା,ସମାଧାନ — ବି) ନିହିତ (ଶବ);ପୋତାଯାଇଥିବା; ସମାଧି କ୍ଷେତ୍ରରେ ପୋତା ଯାଇଥିବା—14. Buried;interred. ୧୫ ।ଶୁଚି (ବିଶ୍ୱକୋଷ)—15, Pure. ୧୬ । ନିର୍ବିବାଦୀକୃତ (ବିଶ୍ୱକୋଷ) —16. Freed from dispute. ୧୭ । ପ୍ରତିଜ୍ଞାତ (ବିଶ୍ୱକୋଷ)—17. Promised.

ସମାହୂତ—ସଂ. ବିଣ (ସମ୍ + ଆହୂତ)— ୧ । ସମ୍ୟକ୍‌ରୂପେ ଆହୂତ— Samāhūta 1, Specially called. ୨ । ନିମନ୍ତ୍ରିତ— (ସମାହ୍ୱାନ— ବି) 2. Invited.

ସମାହୃତ—ସଂ. ବିଣ ( ସମ୍ + ଆ + ହୃ. ଧାତୁ + କର୍ମ. ତ )— Samāhṛuta ୧ । ସଂଗୃହୀତ—1. Collected. ୨। ସଞ୍ଚିତ— ( ସମାହୃତି, ସମାହାର, ସମାହରଣ — ବି) 2, Stored. ୩ । ସଂକଳିତ; ଆହୃତ—3. Gathered; compiled. ୪ । ଏକତ୍ରୀକୃତ; ସଂମିଳିତ—4, Collected; put together. ୫ । ସଂକ୍ଷିପ୍ତ—5. Abridged. ୬ । ଆକୃଷ୍ଟ—6. Attracted. ୭ । ଆୟୋଜିତ; ଆଣିତ— 7. Brought together; arranged.

ସମାହୃତି—ସଂ. ବି ( ସମ୍ + ଆ + ହୃ. ଧାତୁ + ଭାବ. ତି )— Samāhṛuti ୧ । ସମାହାର—1. Multitude; aggre- (ସମାହୃତ— ବିଣ) gate. ୨ । ସଂଗ୍ରହ—2. Collection. ୩ । ସଞ୍ଚୟ—3. Storing. ୪ । ସଂକ୍ଷେପ—4. Abridgment. ୫ । ଆୟୋଜନ—5. Preliminary arrangement, ୬ । ଏକ କର୍ତ୍ତୃକ ବା ଅନେକ କର୍ତ୍ତୃକ ଏକାଭିପ୍ରାୟ ବାକ୍ୟମାନଙ୍କ ଏକୀକରଣ ( ଭରତ )— 6. Compilation of speeches or sentences conveying the same purport relating to the same or different writers or nominatives, into congruity.

ସମାହ୍ୱ—ସଂ. ବିଣ ପୁଂ (ବହୁବ୍ରୀହି; ସମ୍ + ଆହ୍ୱା + ଅ)—ସମ ନାମବିଶିଷ୍ଟ Samāhwa —Having the same or similar [ସମାହ୍ୱା—ସ୍ତ୍ରୀ], name.

ସମାହ୍ୱୟ—ସଂ. ବି (ସମ୍ + ଆ + ହ୍ୱେ. ଧାତୁ = ଡାକିବା + ଭାବ,ଅ)— Samāhwaya ୧ । ଯୁଦ୍ଧକୁ ଆହ୍ୱାନ—1. A challenge to fight. ୨ । (+ଅଧି. ଅ) ପ୍ରାଣିଦ୍ୟୂତ; ବାଜି ରଖି ପଶୁପକ୍ଷ୍ୟାଦି ଦ୍ୱାରା ଯୁଦ୍ଧ କରାଇବା—2. Making beasts and birds fight by laying wagers. ୩ । (+କରଣ. ଅ) ନାମ—3. Name. ୪ । ଆଖ୍ୟା—4. Definition; term. ୫ । ଦ୍ୟୂତ— (ବିଶ୍ୱକୋଷ)—5. Gambling. ୬ । (+ଅଧି. ଅ)— ଯୁଦ୍ଧ ( ବିଶ୍ୱକୋଷ )—6. Fight; battle. [ଦ୍ର— ମନୁ (୯—୨୨୧।୨୨୪) କହିଅଛନ୍ତି ଯେ, ରାଜା ନିଜ ରାଜ୍ୟରୁ ଦ୍ୟୂତ ଓ ସମାହ୍ୱୟ ନିବାରଣ କରିବେ । ଏ ଦୁଇଟି ଦୋଷ ରାଜ୍ୟନାଶକ ଅଟେ; କାରଣ, ଏ ଦୁଇଟି ପ୍ରକାଶ୍ୟଚୌର୍ଯ୍ୟ । ଅକ୍ଷ (ପଶା) ଓ ଶଲାକାଦି ଦ୍ୱାରା (ପଣପୂର୍ବକ) କ୍ରୀଡ଼ାକୁ ଦ୍ୟୂତ ଓ ମେଷକୁକ୍କୁଟାଦି ପ୍ରାଣୀଙ୍କ ଦ୍ୱାରା ବାଜି ରଖାଯାଇ କ୍ରୀଡ଼ାକୁ ସମାହ୍ୱୟ ବୋଲଯାଏ । ଅତଏବ ଏ ଦୁଇଟି କର୍ମ କରିବା ଓ କରାଇବା ଅପରାଧୀଙ୍କ ହସ୍ତଚ୍ଛେଦ ଓ ପ୍ରାଣଦଣ୍ଡାଦି ଦ୍ୱାରା ରାଜା ଦଣ୍ଡିତ କରିବେ । ଦ୍ୟୂତକାରୀ, ସମାହ୍ୱୟକାରୀ, ନଟବୃତ୍ତିଜୀବୀ, କ୍ରୂରଚେଷ୍ଟାପରାୟଣ, ଠକ ଆଦି ଲୋକଙ୍କୁ ରାଜା ରାଜଧାନୀ ମଧ୍ୟରେ ବାସ କରିବାକୁ ଅନୁମତି ଦେବେ ନାହିଁ । କାରଣ, ଏ ପ୍ରକାର କଣ୍ଟକମାନଙ୍କ ଅଧର୍ମ କାର୍ଯ୍ୟ ଦ୍ୱାରା ଭଦ୍ର ପ୍ରଜାମାନେ ଉତ୍ପୀଡ଼ିତ ହୁଅନ୍ତି । ବିଶ୍ୱକୋଷ ।

ଆଧୁନିକ ପାଶ୍ଚାତ୍ୟ ସଭ୍ୟ ସମାଜରେ ସମାଦୃତ ବାଜି ରଖାଯାଇ ଘୋଡ଼ା ଦଉଡ଼ ମଧ୍ୟ ସମାହ୍ୱୟ ।]

ସମାହ୍ୱା—ସଂ. ବିଣ. ସ୍ତ୍ରୀ—ସମାହ୍ୱର ସ୍ତ୍ରୀଲିଙ୍ଗ—Feminine of Samāhwā Samāhwa. ସଂ. ବି. ସ୍ତ୍ରୀ—ଗୋଜିହ୍ୱା ନାମକ ଶାକ—A kind of potherb.

ସମାହ୍ୱାତା—ସଂ. ବିଣ. ପୁଂ (ସମ୍ + ଆ + ହ୍ୱେ. ଧାତୁ + କର୍ତ୍ତୃ. ତୃ; Samāhwātā ୧ମା. ୧ବ)— ୧ । ଯୁଦ୍ଧକୁ ଆହ୍ୱାନକାରୀ— [ସମାହ୍ୱାତ୍ରୀ—ସ୍ତ୍ରୀ] 1. Challenging a person to battle. ୨ । ଦ୍ୟୂତକୁ ଆହ୍ୱାନକାରୀ—2. Inviting people to take part in gambling.

ସମାହ୍ୱାନ—ସଂ. ବି ( ସମ୍ + ଆହ୍ୱାନ )— ୧ । ଯୁଦ୍ଧକୁ ଆହ୍ୱାନ— Samāhwāna 1. A challenge to fight. ୨ । ନିମନ୍ତ୍ରଣ— ( ସମାହୂତ—ବିଣ ) 2 Invitation. ୩ । ସମ୍ମେଳନୀ— 3. Convocation. ୪ । ଦ୍ୟୂତକ୍ରୀଡ଼ାକୁ ଆହ୍ୱାନ— 4. Invitation to a person to join in gambling.

ସମି—ଦେ. ବି —ଶମି (ଦେଖ) Sami Śami. (See)

ସମିଆ—ଦେ. ବି—ସଙ୍କୋଚ (ଦେଖ) Samiā Saṅkocha. (See)

ସମିଆନା—ବୈଦେ. ବି (ଫା. ସମିୟାନା)—ଚାନ୍ଦୁଆ; ଚନ୍ଦ୍ରାତପ— Samiānā Canopy. सामिआना समियाना

ସମିକ—ସଂ. ବ (ସମ+ଇକ)—୧ । ବେଧନାସ୍ତ୍ର ବିଶେଷ—1. A
Samika kind of drilling instrument. ୨ । ବନଶୀ
କଣ୍ଟା—2. Angling hook. ୩ । ଶେଲ (ଶବ୍ଦ
ରତ୍ନାବଳୀ)—3. A hooked arrow; a dart.

ସମିତ୍—ସଂ. ବ (ସମ୍=ସମ୍ୟକ୍+ଇ· ଧାତୁ=ଯିବା+କର୍ମ.କ୍ୱିପ୍)—
Samit ଯୁଦ୍ଧ; ସମର—Fight; battle.

ସମିତ୍(ଦ୍)—ସ. ବ (ସମିଧ୍ ଶବ୍ଦ ୧ମା· ୧ବ)—ସମିଧ୍ (ଦେଖ)
Samit(d) Samidhs (See)

ସମିତ୍କର—ସଂ. ବଣ. ପୁଂ (ବହୁବ୍ରୀହି)—ହାତରେ ସମିଧ ଧରିଥିବା—
Samit-kara Holding fuel for vedic sacrifice in
[ସମିଦ୍ଧସ୍ତ, ସମିତ୍ ପାଣି—ଅନ୍ୟରୂପ] the hands.

ସମିତ୍କଳାପ—ସଂ. ବ (୬ଷ୍ଠୀ ତତ୍)—ଯଜ୍ଞସମିଧର ବିଡ଼ା—
Samit-kalāpa A bundle of fuel for Jajña.

ସମିତ୍କାଷ୍ଠ—ସଂ. ବ (ସମିଧ୍ରୂପେ ବ୍ୟବହୃତ କାଷ୍ଠ, ମଧ୍ୟପଦଲୋପୀ
Samit-kāshtha କର୍ମଧା)—ଯଜ୍ଞାଗ୍ନି ପ୍ରଦୀପନାର୍ଥ
ବ୍ୟବହୃତ କାଷ୍ଠ—Fuel used for igniting the
sacrificial fire.

ସମିତ୍କୁଶ—ସଂ. ବ (ଦ୍ୱନ୍ଦ୍ୱ)—ଯଜ୍ଞାର୍ଥ ସମିଧ ଓ କୁଶ—
Samit-kuśa Fuel and kuśa grass requir-
ed for performing Homa (vedic
sacrifice).

ସମିତ—ସଂ. ବ (ପାରିଭାଷିକ ଶବ୍ଦ)—ଦୁଇ ବସ୍ତୁର ସମତା ବା ତୁଲ୍ୟତା-
Samita ଜ୍ଞାପକ ଚିହ୍ନ; =ଏହିପରି ସମାନ ଚିହ୍ନ—
A conventional sign used to denote
equality (=). ସଂ.ବଣ (ସମ୍=ସମ୍ୟକ୍,ଏକତ୍ର+
ଇ ଧାତୁ=ଯିବା+କର୍ତ୍ତୃ ତ)—୧ । ଏକତ୍ରୀଭୂତ—
[ସମିତା—ସ୍ତ୍ରୀ] 1. Assembled; come together.
୨। (+କର୍ମ.ତ) ସମ୍ୟକ୍ପ୍ରାପ୍ତ—2. Got by special
समान समान process. ଦେ. ବଣ—ସମାନ—Equal.
[ଭି ଘିଅ, ଦୁଧ ପିଠା ତୁଲରେ ସବୁ ଭୃତ, ଖାଇଲେ ଅଃଇଛି
ନହେ ସମିତ—କୃଷ୍ଣସିଂହ ମହାଭାରତ ବନ ।]

ସମିତା—ସଂ. ବ (ସମ୍+ଇ ଧାତୁ+ତ+ଆ)—ଗୋଧୂମଚୂର୍ଣ୍ଣ; ମଇଦା,
Samitā ଗହମକୁ ଧୋଇ କୁଟି ଶୁଖାଇ ପେଷି ଗୁଣ୍ଡିରେ
ଚଲାଇଲେ ଯେଉଁ ଚୂନା ବାହାରେ (ଶବ୍ଦକଳ୍ପଦ୍ରୁମ)—
Wheaten flour. ସଂ. ବଣ—ସମିତର ସ୍ତ୍ରୀଲିଙ୍ଗ—
Feminine of Samita.

ସମିତି—ସଂ. ବ (ସମ୍=ଏକତ୍ର+ଇ ଧାତୁ+କର୍ମ.ବା.ଅଧି ତି)—୧ ।
Samiti ସଭା—1. A meeting or association.
୨ । କମିଟି—2. A committee; a sub-
committee. ୩ । ଯୁଦ୍ଧ—3. Battle. ୪ ।
(+ଭାବ.ତି)ସଙ୍ଗ—4. Association; company.
୫ । ସାମ୍ୟ-5. Equality. ୬। ସନ୍ନିପାତ (ବିଶ୍ୱକୋଷ)—
6. Collapse in fever. [ଦ୍ର—ସମିତିର ଅର୍ଥ ସଭା;
କିନ୍ତୁ ଭାଷାରେ କୌଣସି ସଭାର ସଭ୍ୟମାନଙ୍କ ମଧ୍ୟରୁ ବିଶେଷ
କାର୍ଯ୍ୟପାଇଁ ନିର୍ବାଚିତ ଅଳ୍ପଚିରସଂଖ୍ୟକ ସଭ୍ୟଙ୍କଦ୍ୱାରା
ଗଢ଼ା ସଭାକୁ ସମିତି ବା କମିଟି (Committee)
ବୋଲାଯାଏ । ସଭାର ଅଧିବେଶନରେ ଭିନ୍ନ ଭିନ୍ନ ବିଭାଗ
ବା ଶାଖା ବା କର୍ମସମ୍ପାଦନାର୍ଥ ଅନେକଗୁଡ଼ିଏ ସମିତି
ଗଠିତ ହୁଏ । ଯେଉଁ ଯେଉଁ ବିଶେଷ କାର୍ଯ୍ୟ ଉପଲକ୍ଷରେ
ସମିତି ଗଠିତ ହୁଏ ତତ୍ ତତ୍ ଶବ୍ଦ ସମିତି ଶବ୍ଦ
ପୂର୍ବରେ ଯୁକ୍ତ ହୁଏ । ଯଥା—କାର୍ଯ୍ୟନିର୍ବାହକ ସମିତି,
ଅଭ୍ୟର୍ଥନା ସମିତି, ପାଠ୍ୟପୁସ୍ତକସମିତି, ଗ୍ରାମ୍ୟସମିତି ।)

ସମିତିକ ଜାତି—ବୈଦେ·ବ (ନାମ)—ପଶ୍ଚିମ ଏସିଆରେ ପ୍ରାଚୀନକାଳରେ
Samitika jāti ବାସ କରୁଥିବା ଜାତିବିଶେଷ—The
सिमितिक सेमितिक Semites; the Semitic people.
[ଦ୍ର—ସେମ୍ ନାମକ ବ୍ୟକ୍ତି ଏମାନଙ୍କ ପୂର୍ବପୁରୁଷ
ବୋଲି ବାଇବଲରେ ଲେଖା ଅଛି ।

ସମିତିଙ୍ଗମ—ସଂ. ବ. ପୁଂ (ଅଲୁକ୍ ସମାସ. ସମିତିଂ=ସମିତିକୁ+ଗମ୍
samitingama ଧାତୁ+କର୍ତ୍ତୃ ଅ)—ସଭାସମିତିକୁ ଗମନକାରୀ-
(ସମିତିଂଗମ—ଅନ୍ୟରୂପ) Frequenting meetings.

ସମିତିଞ୍ଜୟ—ସଂ. ବଣ ପୁଂ (ଅଲୁକ ସମାସ; ସମିତିଂ=ସମିତିକୁ+
Samitiñjaya ଜି ଧାତୁ+କର୍ତ୍ତୃ ଅ)—ଯୁଦ୍ଧରେ ଜୟୀ—
Victorious in war. ସଂ. ବ—୧ । ଯମ—
1. Jama. ୨ । ବିଷ୍ଣୁ—2. Bishnu. ୩ ।
ମହାଭାରତବର୍ଣ୍ଣିତ ଯୋଦ୍ଧୃବିଶେଷ—3. A class of
(ସମିତିଂଜୟ—ଅନ୍ୟରୂପ) warriors.

ସମିଥ—ସଂ.ବ (ସମ+ଇ ଧାତୁ+କର୍ତ୍ତୃ ଥ)—୧ । ଅଗ୍ନି (ଉଣାଦିକୋଷ)
Samitha —1. Fire. ୨ । (+କର୍ମ ଥ)—ଯୁଦ୍ଧ
(ସିଦ୍ଧାନ୍ତକୌମୁଦୀ)—2.Fight ୩ । (କରଣ ଥ)--ଅହୁତି
(ସଂକ୍ଷିପ୍ତସାର)—3. Oblations of ghee poured
unto the sacrificial fire. ସଂ. ବଣ. ପୁଂ—
୧। ଆହୂତ (ବିଶ୍ୱକୋଷ)—1.Invited; challenged.
୨। ଅଗ୍ନିରେ ଆହୁତ ଦିଆଯାଇଥିବା—2. Offered as
oblation unto fire.

ସମିଦ୍—ସଂ. ବ (ସମିଧ୍ ଶବ୍ଦ ୧ମା ୧ବ)—ସମିଧ୍ (ଦେଖ)
Samid Samidh. (See)

ସମିଦ୍ଧ—ସଂ. ବଣ (ସମ୍+ଇନ୍ଧ. ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ତ)—
Samiddha ପ୍ରଦୀପ୍ତ; ପ୍ରଜ୍ୱଳିତ—Ignited; inflamed;
kindled; burning. [ଦ୍ର—ହୋମ କରିବା ସମୟରେ
ସମିଦ୍ଧ (ଜଳୁଥିବା) ଅଗ୍ନିରେ ଆହୁତି ଦେବାକୁ ହୁଏ ।
ଅସମିଦ୍ଧ ଅଗ୍ନିରେ ଆହୁତି ଦେଲେ ପୀଡ଼ା ଓ ଦାରିଦ୍ର୍ୟ
ଘୋଟେ—ବିଶ୍ୱକୋଷ ।]

ସମିନ୍ଧନ—ସ. ବ—(ସମ୍+ଇନ୍ଧ ଧାତୁ+କରଣ ଅନ)—ଅଗ୍ନି-
Samiddhana ପ୍ରଜ୍ୱାଳନାର୍ଥ କାଷ୍ଠାଦି; ଜାଳ—1. Fuel.
୨ । (+ଭାବ ଅନ) ଉଦ୍ଦୀପନ—2. Exciting.

ସମିଦ୍ଧାର—ସ· ବଣ. ପୁଂ—(ସମିତ୍+ହୃ ଧାତୁ+କର୍ତ୍ତୃ. ଅ)—ସମିଧ
Samiddhāra ଆହରଣକାରୀ—Collecting fuel for
Homa.

**ସମିଦ୍ବର**—ସଂ. ବି—(ସମିଦ୍ + ବର, ସମିତ୍‌ମାନଙ୍କ ମଧ୍ୟରେ ଶ୍ରେଷ୍ଠ) (ବୈଦ୍ୟକ)—ପଳାଶ—Butea Frondosa tree; the downy-branched Butea.
Samidbara

**ସମିଦ୍‌ଭାର**—ସଂ. ବି. (୬ଷ୍ଠୀ ତତ୍.)—ସମିଧର ଭାର—A load of fuel for Homa.
Samid-bhāra

**ସମିଧ୍**—ସଂ. ବି. (ସମ୍ + ଇନ୍ଧ ଧାତୁ=ପ୍ରାପ୍ତି ପାଇବା + କରଣ କ୍ୱିପ୍)
Samidh
[ଅନ୍ୟ ସଂ. ପ୍ରତିଶବ୍ଦ—ଇନ୍ଧନ, ଏଧସ୍, ଏଧଃ, ଇଧ୍ମ; ସମିନ୍ଧନ, କଳଞ୍ଜ]
୧। ଇନ୍ଧନ; ଜାଳ; ଜାଳେଣିକାଠ; ଅଗ୍ନି-ସନ୍ଦୀପନାର୍ଥ ବ୍ୟବହୃତ ତୃଣକାଷ୍ଠାଦି—1. Fuel. ୨। ହୋମକାଷ୍ଠ; ହୋମ ସମିଧ—2. Small pieces of wood or twigs used in kindling sacrificial fire.

[ଦ୍ର—ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ ଅନୁଷ୍ଠିତ ଯଜ୍ଞ ଓ ହୋମ ନିମନ୍ତେ ଭିନ୍ନ ଭିନ୍ନ ବୃକ୍ଷର ଶାଖା ସମିଧ ରୂପେ ବ୍ୟବହାର ହେବାର ବିଧି ଅଛି। ଯଥା—ରବି, ମଙ୍ଗଳ, ଚନ୍ଦ୍ର, ବୁଧ, ବୃହସ୍ପତି, ଶୁକ୍ର, ଶନି, ରାହୁ ଓ କେତୁଗ୍ରହଙ୍କ ଶାନ୍ତିବିଧାନାର୍ଥ ଅନୁଷ୍ଠିତ ହୋମରେ ଯଥାକ୍ରମେ ଅର୍କ, ପଳାଶ, ଖଦିର, ଅପାମାର୍ଗ, ପିପ୍ପଳ ବା ଅଶ୍ୱତ୍ଥ, ଉଦୁମ୍ବର, ଶମୀ, ଦୁବ୍ବା ଓ କୁଶ ବ୍ୟବହୃତ ହୁଏ। ଉପନୟନାଦି ସଂସ୍କାର କର୍ମରେ ଯଜ୍ଞ-ଡମ୍ବୁର ଓ ତାନ୍ତ୍ରିକ ହୋମରେ ବେଲପତ୍ରୀ ସମିଧ ବ୍ୟବହୃତ ହୁଏ। ହୋମସମିଧର ଲମ୍ବ ପ୍ରାଦେଶ ପରିମିତ, ଅର୍ଥାତ୍ ବିସ୍ତୃତ କରତଳର ବୁଢ଼ା ଅଙ୍ଗୁଠିର ଅଗରୁ ତର୍ଜନୀ ଅଙ୍ଗୁଠିର ଅଗ ପର୍ଯ୍ୟନ୍ତ, ଅର୍ଥାତ୍ ୧୦ ଅଙ୍ଗୁଳ ହେବ। ଏଥିର ସ୍ଥୂଳତା ୧ ଅଙ୍ଗୁଳରୁ ଅଧିକ ହେବ ନାହିଁ। ଏଥିରେ ବକ୍କଳ ଲାଗିଥିବ। ଏହା ଏକଶାଖା ଯୁକ୍ତ ହୋଇଥିବ। ପୋକରା ହୋଇ ନ ଥିବ; କମ୍ପା ବିଶୀର୍ଣ୍ଣ, ବିଦଳ, ହ୍ରସ୍ୱ, ଦ୍ୱିଧାକୃତ, ବଙ୍କ ବା ସ୍ଥୂଳ ହୋଇ ନ ଥିବ। ଏପରି ଦୋଷଯୁକ୍ତ ସମିଧ ଦ୍ୱାରା ହୋମ କଲେ ଅମଙ୍ଗଳ ଘଟେ।]

**ସମିଧ**—ସଂ ବି (ସମ୍ + ଇନ୍ଧ୍ ଧାତୁ=ପ୍ରଦୀପ୍ତ ହେବା + କର୍ତ୍ତୃ. ଅ)—୧। ଅଗ୍ନି—1. Fire. ଦେ. ବି, (ସଂ. ସମିଧ୍ ସମିଧ୍, ସାମିଧ ଶବ୍ଦ)—ସମିଧ୍ (ଦେଖ)—Samidh (See).
Samidha

**ସମିନ୍ଧନ**—ସଂ. ବି (ସମ୍ + ଇନ୍ଧ୍ ଧାତୁ=ଜାଳିବା + କରଣ ଅନ)—୧। ଯଜ୍ଞକାଷ୍ଠ; ସମିତ୍ (ଶବ୍ଦ ରତ୍ନାବଳୀ)—1. Fuel for sacrificial purpose. ୨। (+ଭାବ, ଅନ) ଉଦ୍ଦୀପନ—2. Enkindling.
Samindhana
(ସମିଦ୍ଧ—ବିଣ)

**ସମିବା**—ପ୍ରାଦେ (ସମ୍ବଲପୁର) କ୍ରି—ପଶିବା; ପ୍ରବେଶ କରିବା—To enter into.
Samibā

**ସମିର**—ସଂ.ବି (ସମ୍=ସମ୍ୟକ୍ + ଈ ଧାତୁ=ଗମନ କରିବା + କର୍ତ୍ତୃ ର)—ବାୟୁ; ପବନ (ହେମଚନ୍ଦ୍ର)—Air; wind.
Samira

**ସମୀ**—ଦେ. ବି—ଶମି (ଦେଖ)—Sami (See)
Sami

**ସମୀକ**—ସଂ. ବି (ସମ୍ ଧାତୁ=ବିହ୍ୱଳ କରିବା + କର୍ତ୍ତୃ. ଈକ)—ଯୁଦ୍ଧ; ସମର (ଅମର)—Fight; battle; conflict.
Samika

**ସମୀକରଣ**—ସଂ. ବି [ସମ + ଅଭୂତ ତଦ୍ଭାବେ (ଚ୍ୱି) ଈ + କରଣ, ଅସମ ବସ୍ତୁମାନଙ୍କୁ ସମାନ କରିବା]—୧। ସଦୃଶୀକରଣ; ଅସମ ପଦାର୍ଥମାନଙ୍କୁ ସମାନ କରିବା—1. Equalisation. ୨। (ବୀଜ ଗଣିତ) ଅଜ୍ଞାତ ସଂଖ୍ୟା ନିର୍ଣ୍ଣୟ କରିବାର ଗାଣିତିକ ପ୍ରକ୍ରିୟାବିଶେଷ, କୌଣସି ନିର୍ଦ୍ଦିଷ୍ଟ ରାଶିକୁ ଗ୍ରହଣ କରି ତତ୍ତୁଲ୍ୟ କୌଣସି ଅନିର୍ଦ୍ଦିଷ୍ଟ ରାଶିର ପରିମାଣ ନିର୍ଣ୍ଣୟକରଣ—2. (Algebra) Equation. ୩। (ଗଣିତ) ଏକାଧିକ ଭଗ୍ନାଂଶମାନଙ୍କୁ ସମାନ ହରବିଶିଷ୍ଟ ଭଗ୍ନାଂଶରେ ପରିଣତ କରିବା—3. (Arithmetic) Reduction of fractions into those of a common denomination.
Samikarana
ସମୀକାର } —ଅନ୍ୟରୂପ
ସମୀକ୍ରିୟା }

**ସମୀକୃତ**—ସଂ. ବିଣ [ସମ + ଅଭୂତ ତଦ୍ଭାବେ (ଚ୍ୱି) ଈ + କୃତ]—୧। ସମାନୀକୃତ; ଏକୀକୃତ—1. Equalised. ୨। ସମୀକରଣ ରୂପେ ଗଠିତ—2. Reduced into an equation.
Samikruta
(ସମୀକୃତି—ବି)

**ସମୀକ୍ଷ**—ସଂ. ବି (ସମ୍=ସମ୍ୟକ୍ + ଈକ୍ଷ୍ ଧାତୁ=ଦେଖିବା + କରଣ ଅ)—୧। ସାଂଖ୍ୟ ଦର୍ଶନ—1. The Sāmkhya system of philosophy. [ଦ୍ର—ଏହି ଶାସ୍ତ୍ର ଦ୍ୱାରା ପ୍ରକୃତି ଓ ପୁରୁଷଙ୍କର ସମ୍ୟକ୍ ଦର୍ଶନ ଲାଭ ହୁଏ।] ୨। (+ଭାବ. ଅ) ସମ୍ୟକ୍ ବିଚାର—2. Deliberation. ୩। ସମ୍ୟକ୍ ଦର୍ଶନ—3. Careful observation. ୪। ଯତ୍ନ (ବିଶ୍ୱକୋଷ)—4. Carefulness; care. ୫। ଅନ୍ୱେଷଣ (ବିଶ୍ୱକୋଷ)—5. Searching. ୬। ଆଲୋଚନା (ବିଶ୍ୱକୋଷ)—6. Discussion. ୭। ବିବେଚନା—7. Consideration.
Samiksha

**ସମୀକ୍ଷକ**—ସଂ.ବି. ପୁଂ (ସମ୍ + ଈକ୍ଷ୍ ଧାତୁ=ଦେଖିବା + କର୍ତ୍ତୃ ଅକ)—୧। (ହିସାବ ପତ୍ର ଆଦିର) ପରିଦର୍ଶକ—1. Auditor. ୨। ପରିଦର୍ଶକ; ପର୍ଯ୍ୟବେକ୍ଷକ—2. Observer. ବିଣ. ପୁଂ—ସମ୍ୟକ ଦର୍ଶନକାରୀ—Auditing; observing.
Samikshaka
(ସମୀକ୍ଷିକା—ସ୍ତ୍ରୀ)

**ସମୀକ୍ଷଣ**—ସଂ. ବି (ସମ୍ + ଈକ୍ଷଣ=ଦର୍ଶନ)—୧। ସମ୍ୟକ୍ ଦର୍ଶନ; ପ୍ରେକ୍ଷଣ; ପର୍ଯ୍ୟବେକ୍ଷଣ—1. Closely seeing; observation. ୨। ଆଲୋଚନା—2. Discussion. ୩। ଅନ୍ୱେଷଣ; ଅନୁସନ୍ଧାନ—3. Investigation; enquiry. ୪। ସାଂଖ୍ୟ ଦର୍ଶନ (ସିଦ୍ଧାନ୍ତ ଶେଷ)—4. The Sāmkhya system of philosophy.
Samikshana
(ସମୀକ୍ଷିତ—ବିଣ)

**ସମୀକ୍ଷା**—ସଂ. ବି (ସମ୍ + ଈକ୍ଷ୍ ଧାତୁ=ଦେଖିବା + ଭାବ. ଅ + ଆ)—୧। ସମ୍ୟକ୍ ଦର୍ଶନ; ପର୍ଯ୍ୟବେକ୍ଷଣ—1. Observation. ୨। ଯତ୍ନ—2. Care. ୩। ବୁଦ୍ଧି—3. Intelligence. ୪। ପ୍ରକୃତି—4. Nature.
Samikshā

୫ । (ଜୈମିନୀଙ୍କ) ମୀମାଂସା ଶାସ୍ତ୍ର—5. The system of Hindu philosophy founded by Jaimini. ୬ । (ବେଦାନ୍ତ ଦର୍ଶନ) ଚତୁର୍ବିଂଶତି ତତ୍ତ୍ୱ—6. (Bedānta philosophy) The 24 essential principles which are the foundation of true knowledge. ୭ । ଆଲୋଚନା—7. Discussion. ୮ । ଅନୁସନ୍ଧାନ—8. Investigation. ୯ । ଅନ୍ୱେଷଣ—8. Search.

ସମୀକ୍ଷିତ—ସଂ. ବି (ସମ୍ + ଈକ୍ଷ୍ ଧାତୁ=ଦେଖିବା + କର୍ମ. ତ)—
Samikshita ୧ । ସମ୍ୟକ୍ ଦୃଷ୍ଟ; ପର୍ଯ୍ୟବେକ୍ଷିତ—1. Observed. ୨ । ଅନ୍ୱେଷିତ—2. Searched. ୩ । ଆଲୋଚିତ—3. Discussed. ୪ । ଉତ୍ତମରୂପେ ପରୀକ୍ଷିତ (ହିସାବ)—4 Audited (account).

ସମୀକ୍ଷୀକରଣ—ସଂ. ବି—ବିବାହ ପରେ ବର ଓ କନ୍ୟାଙ୍କର ପରସ୍ପର
Samīkhīkaraṇa ମୁଖାବଲୋକନପୂର୍ବକ ବୈଦିକ ମନ୍ତ୍ରୋଚ୍ଚାରଣରୂପ କର୍ମ—The ceremony of the bride and the bride-groom confronting each other and chanting vedic formulae after marriage.

ସମୀକ୍ଷ୍ୟ—ସଂ ବି (ସମ୍ + ଈକ୍ଷ ଧାତୁ=ଦେଖିବା + କର୍ମ ଯ)—
Samikshya ସମୀକ୍ଷ (ଦେଖ)—Samīksha (See)
ସଂ. ବିଣ—ସମୀକ୍ଷଣ ଯୋଗ୍ୟ—Fit to be observed or discussed. ସଂ. ଅସମାପିକା କ୍ରିୟା—ପୂର୍ବାପର ବିବେଚନା କରି—After considering carefully; after due deiberation.

ସମୀକ୍ଷ୍ୟକାରିତା—ସଂ. ବି ( ସମୀକ୍ଷ୍ୟ + କୃ ଧାତୁ + କର୍ତ୍ତୃ ଇନ୍ + ଭାବ. ତା)—
Samīkshyakāritā ୧ । ପୂର୍ବାପର ବିବେଚନାପୂର୍ବକ କାର୍ଯ୍ୟକାରିତା—1. Habit of acting after carefully weighing the consequences ୨ । ପରିଣାମଦର୍ଶିତା—2. Foresight; prudence; providence.

ସମୀକ୍ଷ୍ୟକାରୀ—ସଂ. ବିଣ. ପୁଂ (ସମୀକ୍ଷ୍ୟ=ପୂର୍ବାପର ବିବେଚନା କରି + କୃ ଧାତୁ + କର୍ତ୍ତୃ ଇନ୍, ୧ମା.୧ବ.)—୧ ।
Samīkshyakārī ବିବେଚନା ପୂର୍ବକ କାର୍ଯ୍ୟକାରୀ—1. Acting after due deliberation. ୨ । ପରିଣାମଦର୍ଶୀ—2. Prudent; prudential; provident.
(ସମୀକ୍ଷ୍ୟକାରିଣୀ—ସ୍ତ୍ରୀ)

ସମୀକ୍ଷ୍ୟବାଦୀ—ସଂ. ବିଣ. ପୁଂ (ସମୀକ୍ଷ୍ୟ=ପୂର୍ବାପର ବିବେଚନା କରି + ବଦ ଧାତୁ + କର୍ତ୍ତୃ ଇନ୍ ୧ମା.୧ବ)
Samīkshyabādī ଯେ ଉତ୍ତମ ରୂପେ ବିବେଚନା ପୂର୍ବକ କଥା କହେ—Speaking out after due deliberation.
(ସମୀକ୍ଷ୍ୟବାଦିନୀ—ସ୍ତ୍ରୀ)
(ସମୀକ୍ଷ୍ୟବାଦିତା—ବି)

ସମୀର—ସଂ. ବି (ସମ୍ + ଈ ଧାତୁ ଗମନ କରିବା + ଅଧିକରଣ ବା
Samīcha କର୍ମ ଚ; ଯେଉଁଠାକୁ ନଦୀମାନେ ଯାଆନ୍ତି)—ସମୁଦ୍ର—The sea; ocean.

ସମୀଚକ—ସଂ. ବି (ସମ୍ + ଈ ଧାତୁ=ଗମନ କରିବା + ଅଧି ଚକ)—
Samīchaka ମୈଥୁନ (ଶବ୍ଦକଳ୍ପଦ୍ରୁମ)—Copulation.

ସମୀଚୀ ସଂ. ବି. ସ୍ତ୍ରୀ (ସମ୍ + ଈ ଧାତୁ + କର୍ତ୍ତୃ ଅ + ସ୍ତ୍ରୀ ଈ)—୧ ।
Samīchī ମୃଗୀ (ଭୂଶାବ୍ଦକୋଷ)—1 A she—deer; a roe. ୨ । (+ ଅଞ୍ଚ୍-ଅ + ଈ) ବନ୍ଦନା; ପୂଜା (କ୍ରିକାଣ୍ଡଶେଷ)—2. Worship. ୩ । ସ୍ତୁତି—3. Prayer.

ସମୀଚୀନ—ସଂ. ବି (ସମ୍ୟଚ୍=ସତ୍ୟ + ଈନ, ନିପାତନ, ବା ସମ + ଅଞ୍ଚ ଧାତୁ=ଗତ କରିବା + କର୍ତ୍ତୃ. ଈନ)—
Samīchīna ୧ । ଯଥାର୍ଥ—1. Right; correct. ୨ । ସତ୍ୟ—2. True ୩ । ସଙ୍ଗତ; ଉପଯୁକ୍ତ—3. Fit proper. ୪ । ଯଥାଯୋଗ୍ୟ—4. Befitting. ୫ । ଯୁକ୍ତିଯୁକ୍ତ—5 Reasonable. ୬ । ଉତ୍ତମ—6. Good.
(ସମୀଚୀନତା; ସମୀଚୀନତ୍ୱ—ବି)

ସମୀଦ—ସଂ. ବି (ସମିତା ଶବ୍ଦର ବିକଳ୍ପ ରୂପ)—ସମିତା (ଶବ୍ଦକଳ୍ପଦ୍ରୁମ); ଗୋଧୂମ ଚୂର୍ଣ୍ଣ; ମଇଦା—
Samīda Wheaten flour.

ସମୀନ—ସଂ. ବିଣ—୧ । (ସମା=ବତ୍ସର + ଈନ) ବତ୍ସର ସମ୍ବନ୍ଧୀୟ;
Samīna ବାର୍ଷିକ—1. Yearly; annual. ୨ । (ସ=ସହ + ମୀନ=ମତ୍ସ୍ୟ) ମତ୍ସ୍ୟ ସହିତ—2. Mixed with fish. ୩ । ମତ୍ସ୍ୟବିଶିଷ୍ଟ—3. Having fish.

ସମୀନିକା—ସଂ. ବି. ସ୍ତ୍ରୀ—( ସମା=ବର୍ଷ + ଈନ + କ + ସ୍ତ୍ରୀ ଆ)—
Samīnikā ସମାଂସମୀନା; ପ୍ରତିବର୍ଷ ପ୍ରସୂତା ଗାଈ; ବର୍ଷବିୟାଣି ଗାଈ—A cow which bears a calf every year.

ସମୀପ—ସଂ. ବିଣ (ସମ୍=ସଙ୍ଗତ ଅର୍ଥାତ୍ ମୁକ୍ତ ହୋଇଅଛି + ଅପ୍=ଜଳ ଯାହାର; ସମ୍ + ଅପ୍ + ଅ, ନିପାତନ ସିଦ୍ଧ)—
Samīpa ୧ । ସନ୍ନିହିତ—1. Adjacent. ୨ । ନିକଟବର୍ତ୍ତୀ—2. Near; at hand.
(ସମୀପତା, ସାମୀପ୍ୟ—ବି)

ସମୀପଗ—ସଂ. ବିଣ. ପୁଂ (ସମୀପ + ଗମ ଧାତୁ + କର୍ତ୍ତୃ ଅ)—ନିକଟକୁ
Samīpaga ଗମନକାରୀ—Proceeding near.
[ସମୀପଗାମୀ—ଅନ୍ୟରୂପ] [ସମୀପଗା, ସମୀପଗାମିନୀ—ସ୍ତ୍ରୀ]

ସମୀପତା(ତ୍ୱ)—ସଂ. ବି (ସମୀପ + ଭାବ ତା, ତ୍ୱ)—ସାମୀପ୍ୟ; ନୈକଟ୍ୟ—
Samīpatā(twa) Nearness; propinquity.
[ଦୂରତା—ବିପରୀତ]

| ୧ | ଇ | ଉ | ଋ,ଋ | ଌ | ଐ | ହ୍ରସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଘ | ଚ | ଶ,ଷ | ଜ୍ଞ | ଲୃ | ଐଅ | ୠ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଲୃ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ | ଇଅ | ଞ୍ଜ | ଦ୍ମ |

**ସମୀପତଃ**—ସ. ଅ (ସମୀପ+ପଞ୍ଚମୀ ବିଭକ୍ତିରେ ତସ୍)—ନିକଟରୁ; ପାଖରୁ—
Samīpataḥ From; from the side of.

**ସମୀପବର୍ତ୍ତୀ**—ସ. ବିଣ (ସମୀପ+ବୃତ ଧାତୁ=ଥିବା+କର୍ତ୍ତୃ ଇନ୍)
Samīpabarttī (ମା. ୧ବ) ସମୀପବର୍ତ୍ତିନ୍ ଶବ୍ଦ—ନିକଟବର୍ତ୍ତୀ—
(ସମୀପବର୍ତ୍ତିନୀ—ସ୍ତ୍ରୀ) (ଦୂରବର୍ତ୍ତୀ—ବିପରୀତ) Adjoining.

**ସମୀପରେ**—ଦେ. ଅବ୍ୟୟ—ନିକଟରେ; ପାଖରେ—Near; at hand.
Samīpare [ଉ—ଲୋହିତ ସାଗରର ସମୀପେ ପାଣ୍ଡୁ ସୁତେ
समीपे **समीपमें** କୃଷ୍ଣସିଂହ ମହାଭାରତ—ଅଦି]
[ସମୀପେ—ଅନ୍ୟରୂପ]

**ସମୀପସ୍ଥ**—ସଂ. ବିଣ (ସମୀପ+ସ୍ଥା ଧାତୁ+କର୍ତ୍ତୃ ଅ)—୧ । ନିକଟସ୍ଥ—
Samīpastha 1. Adjoining ୨ । ସମୀପରେ ଅବସ୍ଥିତ—
[ସମୀପସ୍ଥିତ—ଅନ୍ୟରୂପ] 2. Situated close at hand.
ସମୀପସ୍ଥା / ସମୀପସ୍ଥିତା } ସ୍ତ୍ରୀ [ଦୂରସ୍ଥ—ବିପରୀତ]

**ସମୀୟ**—ସଂ ବିଣ (ସମ+ଈୟ)—ସମସମ୍ବନ୍ଧୀ; ତୁଲ୍ୟକାରଣଜ—
Samīya Resulting from the same cause.

**ସମୀର**—ସଂ. ବି (ସମ୍+ଈର ଧାତୁ=ପ୍ରେରଣ କରିବା; ଗମନ
Samīra କରିବା+କର୍ତ୍ତୃ ଅ)—୧ । ବାୟୁ (ଅମର)—1. Wind,
air. ୨ । ଶମୀବୃକ୍ଷ (ରାଜନିର୍ଘଣ୍ଟ)—2. The name of a tree; Acacia Suma

**ସମୀରଣ**—ସଂ. ବି (ସମ+ଈର ଧାତୁ ଗମନ କରିବା+କର୍ତ୍ତୃ ଅନ)
Samīraṇa ୧ । ବାୟୁ; ପବନ (ଅମର)—1. Air; wind.
୨ । ମରୁବକ [ଅମର]; ମରୁଆ ଗୁଳ୍ମ—2. Sweet
Marjoram (plant). ୩ । ପଥିକ (ମେଦିନୀ)—
3. Traveller; a wayfarer. ୪ । (ସମ+ଈର୍ ଧାତୁ=ପ୍ରେରଣ କରିବା+ଭାବ ଅନ)—ପ୍ରେରଣ—
4. Sending. ୫ । (+କର୍ତ୍ତୃ ଅନ) ପ୍ରେରକ [ହଳାୟୁଧ]
5. Sender.

**ସମୀରିତ**—ସଂ. ବିଣ [ସମ୍+ଈର୍ ଧାତୁ=ପ୍ରେରଣ କରିବା,
Samīrita ଉଚ୍ଚାରଣ କରିବା+କର୍ମ କ୍ତ]—୧ । ଉଚ୍ଚାରିତ-
1. Uttered ୨ । ସମ୍ୟକ୍ ରୂପେ ପ୍ରେରିତ—2. Sent
forth; specially sent; deputed.

**ସମୀହନ**—ସଂ. ବି—୧ । (ସମ୍+ଈହ ଧାତୁ=ଚେଷ୍ଟା କରିବା+ଭାବ
Samīhana ଅନ)—ସମ୍ୟକ୍ ପ୍ରକାରେ ଚେଷ୍ଟା—1. Great
endeavour. ୨ । (+କର୍ତ୍ତୃ ଅନ)—(ବିଷ୍ଣୁ ସହସ୍ର ନାମୋକ୍ତ) ବିଷ୍ଣୁ—2 A name of Bishnu.

**ସମୀହା**—ସଂ ବି (ସମ୍+ଈହ ଧାତୁ=ଇଚ୍ଛା କରିବା+ଭାବ ଅ+
Samīhā ଆ)—୧ । ଇଚ୍ଛା—1. Desire; wish. ୨ ।
[ସମୀହିତ—ବିଣ] ସମ୍ୟକ୍ ଚେଷ୍ଟା; ଉଦ୍ୟମ—2. Great
effort. ୩ । ସନ୍ଧାନ—3. Investigation; search.

**ସମୀହିତ**—ସଂ. ବିଣ (ସମ୍+ଈହ୍ ଧାତୁ+ଚେଷ୍ଟା କରିବା; ଇଚ୍ଛା
Samīhita କରିବା+କର୍ମ କ୍ତ)—୧ । ଚେଷ୍ଟିତ; ଉଦ୍ୟୁକ୍ତ-
1. Endeavoured. ୨ । ଅଭୀଷ୍ଟ, ବାଞ୍ଛିତ—
2. Wished for; longed; desired.
ବି. ୧ । (+ଭାବ କ୍ତ) ସମ୍ୟକ୍ ଚେଷ୍ଟା—1. Effort.
୨ । ଇଚ୍ଛା—2 Desire.

**ସମୁଖ**—ସଂ. ବିଣ. ପୁଂ (ସହାର୍ଥ ବହୁବ୍ରୀହି; ସ+ମୁଖ)—୧ । ମୁଖ
Samukha ବିଶିଷ୍ଟ—1. Faced; having a face. ୨ ।
[ସମୁଖା—ସ୍ତ୍ରୀ] ବାଚାଳ; ଉପବକ୍ତା—2. Talkative. ଦେ. ବି.
ବାଗ୍ମୀ—Speaker; orator. ଗ୍ରା. ବି. (ସଂ ସାମ୍ମୁଖ୍ୟ)
सुमुख सम्मुख **समुख** ୧ । ସମ୍ମୁଖ—1. Front. ୨ । ପ୍ରସନ୍ନତା
(ସୁମୁଖର ଭାବଗାହ)—2 Good cheer. [ଉ—
କାଳବଶରୁ ହୋଇଛି ଦୁଃଖ ସୁଖ, କାଳ ଘେନ ହୋଇଛି
ସମୁଖ ବିମୁଖ । କୃଷ୍ଣସିଂହ. ମହାଭାରତ. ଶାନ୍ତି]

**ସମୁଖରେ**—ଗ୍ରା. କ୍ରି. ବିଣ—ଆଗରେ—
Samukhare In front of; before.
सुमुखे **समुखमे** (ସମ୍ମୁଖରେ—ଅନ୍ୟରୂପ)

**ସମୁଖାସମୁଖି**—ଗ୍ରା. ବିଣ. ଓ କ୍ରି. ବିଣ—ସାମନାସାମନି; ପରସ୍ପରର
Samukhāsamukhi ସମ୍ମୁଖବର୍ତ୍ତୀ—Facing each
सुमुखासुमुखि **सामनेसामने** other; being face to face with each other.

**ସମୁଚୟ**—ଦେ ବିଣ (ସଂ. ସମୁଚ୍ଚୟ)—ସମୁଦାୟ—All; whole;
Samuchaya entire. ବି—ସମାହାର—Aggre-
समुदाय **समुच्चय, समुचा** gate. କ୍ରି. ବିଣ—
(ସମୁଚ—ଅନ୍ୟରୂପ) ସମ୍ପୂର୍ଣ୍ଣରୂପେ—Fully.

**ସମୁଚିତ**—ସଂ. ବିଣ (ସମ୍=ସମ୍ୟକ୍+ଉଚିତ; କର୍ମଧାରୟ)—
Samuchita ୧ । ଉପଯୁକ୍ତ—1. Befitting; proper.
୨ । ଯୋଗ୍ୟ—2. Fit. ୩ । ସମଞ୍ଜସ—
3. Similar.

**ସମୁଚିତ ଦଣ୍ଡ**—ସଂ. ବି (କର୍ମଧା)—ଦୋଷର ବା ଅପରାଧର ଉପଯୁକ୍ତ
Samuchita daṇḍa ଦଣ୍ଡ—Condign or fit punishment.

**ସମୁଚ୍ଚ**—ସଂ. ବି (ସମ୍=ସମ୍ୟକ+ଉଚ୍ଚ)—ଅତ୍ୟୁଚ୍ଚ—
Samuchha (ସମୁଚ୍ଚତା—ବି) V ry high; lofty.

**ସମୁଚ୍(ଚ୍ଚା)ୟ**—ସ. ବି ( ସମ୍+ଉତ୍+ଚି ଧାତୁ=ଚୟନ କରିବା+
Samuchcha(chchā)ya ଭାବ. ଅ )—୧ । ସମାହାର—
1. Aggregate. ୨ । ସମୂହ—2. Multitude.
୩ । ସଂଗ୍ରହ—3. Collection. ୪ । ରାଶି—
4. Heap. ୫ । ଗଣନା; ଯୁକ୍ତି—5. Counting;

'ସାଧାରଣ ଲୋକେ ଅପର ପୃଷ୍ଠାରେ ସ୍ୱରର ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ମୂତ' ନ ମିଳିଲେ 'ମୁତ' ଖୋଜିବେ, 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗର୍ଯ୍ୟ' ନ ପାଇଲେ 'ଅଗ୍ରଜ' ଦେଖିବେ, 'ଅଲବଧ' ନ ପାଇଲେ 'ଅଳ୍ପବଧ' ଦେଖିବେ

estimate. ୬ । ( ବ୍ୟାକରଣ ) ବହୁ ପଦାର୍ଥର ଏକ କ୍ରିୟାରେ ଅନ୍ୱୟ ( ଏବଂ, ଚ, ଓ, ଅପି ଆଦି ଶବ୍ଦ ପ୍ରୟୋଗ ଦ୍ୱାରା ଏହା କରାଯାଏ )—6. ( grammar ) Many words being governed by a single verb ( by using the words and, also, or, too). ୭ । ଅର୍ଥାଲଙ୍କାରବିଶେଷ—7. A figure of speech. [ ଦ୍ର—ଯେଉଁଠାରେ କୌଣସି କାର୍ଯ୍ୟ ଗୋଟିଏ କ୍ରିୟାଦ୍ୱାରା ସିଦ୍ଧ ହୋଇ ପାରେ ସେଠାରେ ଏକାଧିକ କ୍ରିୟାର ପ୍ରୟୋଗ ହେଲେ ଏହି ଅଳଙ୍କାର ହୁଏ; ଯଥା—'ଏବେକେଇ କାଳୀ, ପିନ୍ଧିଛୁ କାଚ କୋଡାଇ ମାଳୀ, ପିନ୍ଧିଅଛୁ ସେହି ନେଳିଆ ଶାଢ଼ୀ, ତହିଁର ହୋଇଛୁ ରାଜଣା ପାଳ—ଚଗ । ଏ ସ୍ଥଳରେ କାଳୀ ସ୍ତ୍ରୀ ଲୋକ ପ୍ରଥମତଃ ଦେଖିବାକୁ ଅସୁନ୍ଦର, ଏଥିରେ ପୁଣି ଅଳଙ୍କାର ପିନ୍ଧିଛୁ କାଚ କୋଡାଇ ମାଳ, ଏଥିରେ ପୁଣି ପରିଧାନ ନେଳିଆ ଶାଢ଼ୀ, ଫେର୍ ସେ ସ୍ତ୍ରୀର ରାଜଣା ପାଳ ହୋଇଥିବାରୁ ତା ଦେହ ଓ ଲୁଗାପଟା ଯାକରେ ହାଣ୍ଡି କଳା ଲାଗିଅଛି । ଅତଏବ ଉକ୍ତ ସ୍ତ୍ରୀଲୋକ ଅତି କୁତ୍ସିତା ଦେଖା ଯାଉଅଛି; ଯେଉଁଠାରେ କାରଣ ସକଳ ମିଳିତ ହୋଇ କାର୍ଯ୍ୟ ବିଶେଷ ଉତ୍ପାଦନ କରେ ସେଠାରେ ସମୁଚ୍ଚୟ ଅଳଙ୍କାର ହୁଏ—ବିଶ୍ୱକୋଷ । ]

ସମୁଚର—ସଂ. ବି ( ସମ୍ + ଉତ୍ + ଚର୍ ଧାତୁ = ଗମନ କରିବା + ଭାବ. ଅ )—୧ । ସମ୍ୟକ୍ ଉଚ୍ଚାରଣ—
Samuchchara 1. Distinct or special utterance. ୨ । ଊର୍ଦ୍ଧ୍ୱକୁ ଉଠିବା; ଉତ୍ପତନ—2. Springing up; leaping up; ascending. ୩ । ପରିବର୍ଜ୍ଜନ; ପରିତ୍ୟାଗ—3. Abandonment. ସଂ. ବିଣ. ପୁଂ (+ କର୍ତ୍ତୃ. ଅ)—ସଞ୍ଚରଣଶୀଳ; ବିଚରଣଶୀଳ—Moving.

ସମୁଚରତ୍—ସଂ. ବି [ ସମ୍ + ଉତ୍ + ଚର୍ ଧାତୁ + କର୍ତ୍ତୃ. ଅତ୍
Samuchcharat (ଶତୃ)]—୧ । ଉଚ୍ଚାରକ—1. Uttering.
(ସମୁଚରନ୍ତୀ—ସ୍ତ୍ରୀ) ୨ । ଉତ୍ପତନଶୀଳ—2. Springing up; ascending.

ସମୁଚାର—ସଂ. ବି ଓ ବିଣ (ସମ୍ + ଉତ୍ + ଚର୍ ଧାତୁ + ଭାବ. ଅ —
Samuchchāra ସମୁଚର (ଦେଖ)—Samuchchara (See)
( ସମୁଚାରଣ—ଅନ୍ୟ ବି. ରୂପ )

ସମୁଚିତ—ସଂ. ବି ( ସମ୍ + ଉତ୍ + ଚି ଧାତୁ = ଚୟନ କରିବା + କର୍ମ
Samuchchita ତ )—୧ । ସଙ୍ଗୃହୀତ—1. Collected;
(ସମୁଚୟ—ବି) compiled. ୨ । ସ୍ତୂପୀକୃତ—2. Heaped up.

ସମୁଚ୍ଛନ୍ନ—ଦେ. ବିଣ ( ସଂ ସମୁତ୍ସନ୍ନ )—ସମୁତ୍ସନ୍ନ ( ଦେଖ )
Samuchchhanna Samutsanna ( See )

ସମୁଚ୍ଛଳନ—ସଂ. ବି ( ସମ୍ + ଉତ୍ + ଶଲ୍ ଧାତୁ + ଭାବ. ଅନ )—
Samuchchhalana ଗୁରୁଅର୍ଥେ ଖେଳେଇ ହୋଇଯିବା; ପରିବ୍ୟାପ୍ତି—Diffusion.

ସମୁଚ୍ଛଳିତ—ସଂ. ବି ( ସମ୍ + ଉତ୍ + ଶଲ୍ ଧାତୁ = ଗମନ କରିବା +
Samuchchhalita କର୍ତ୍ତୃ. ତ )—୧ । ପରିବ୍ୟାପ୍ତ; ସମନ୍ତାତ୍ ବିସ୍ତୀର୍ଣ୍ଣ; ଖେଳି ହୋଇ ଯାଇଥିବା; ଛଇଳିତ ହୋଇଥିବା—1. Diffused; spread on all sides. ୨ । ପ୍ଳାବିତ—2. Flooded; inundated. ୩ । ( ଜଳାଦିଯୁକ୍ତପାତ୍ର ) ଉଛୁଳି ପଡିବା—3. Overflowing from the receptacle.

ସମୁଚ୍ଛୁକ—ଗ୍ରା. ବିଣ ( ସଂ. ସମୁତ୍ସୁକ )—ସମୁତ୍ସୁକ ( ଦେଖ )
Samuchchhuka Samutsuka ( See )

ସମୁଚ୍ଛେଦ—ସଂ. ବି ( ସମ୍ + ଉଚ୍ଛେଦ )—୧ । ବିନାଶ; ଧ୍ୱଂସ—
Samuchchheda 1. Destruction; ruin. ୨ । ଉନ୍ମୂଳନ—2. Uprooting; eradication. ୩ । ସମୂଳ ବିନାଶ—3. Extermination.
(ସମୁଚ୍ଛେଦନ—ଅନ୍ୟରୂପ)
( ସମୁଚ୍ଛେଦିତ—ବିଣ )

ସମୁଚ୍ଛ୍ୱସିତ—ସଂ. ବିଣ ( ସମ୍ + ଉତ୍ + ଶ୍ୱସ୍ ଧାତୁ + କର୍ତ୍ତୃ. ତ )—୧ ।
Samuchchwasita ଊର୍ଦ୍ଧ୍ୱଶ୍ୱାସଯୁକ୍ତ, ଉଚ୍ଛ୍ୱାସଯୁକ୍ତ—1. Panting; gasping; deeply sighing. ୨ । ପୁନରୁଜ୍ଜୀବିତ—2. Enlivened; restored to life; resusciated. ୩ । ବିଶେଷରୂପେ ଫୁଲିଥିବା; ସ୍ଫୀତ—3. Swollen up; bloated.

ସମୁଚ୍ଛ୍ୱାସ—ସଂ. ବି ( ସମ୍ + ଉତ୍ + ଶ୍ୱସ୍ ଧାତୁ + ଭାବ. ଅ )—୧ ।
Samuchchhwāsa ଊର୍ଦ୍ଧ୍ୱଶ୍ୱାସ; ପ୍ରବଳ ନିଃଶ୍ୱାସ—1. Gasp; deep sigh; heavy sigh. ୨ । ସ୍ଫୀତି; ବିଶେଷ ଫୁଲ—2. Swelling; bloating. ୩ । ନିଃଶ୍ୱାସ ପ୍ରଶ୍ୱାସ—3. Inhalation and exhalation; breathing. ୪ । ସ୍ଫୁର୍ତ୍ତି; ସ୍ଫୁରଣ—4. Sparkling.

ସମୁଚ୍ଛ୍ର(ଚ୍ଛ୍ରା)ୟ—ସଂ. ବି ( ସମ୍ + ଉତ୍ + ଶ୍ରି ଧାତୁ = ସେବା କରିବା
Samuchchhra(chchhrā)ya + ଭାବ. ଅ )—୧ । ଅତ୍ୟୁନ୍ନତ—1. Elevation. ୨ । ଉଚ୍ଚତା—2. Height. ୩ । ଅତି ଉଚ୍ଚ ହୋଇ ଫୁଲିବା; ସ୍ଫୀତି—3. Swelling. ୪ । ବୃଦ୍ଧି—4. Increase. ୫ । କଳହ—5. Quarrel. ୬ । —ବିରୋଧ '6. Dispute; opposition.

ସମୁଚ୍ଛ୍ରିତ—ସଂ. ବିଣ ( ସମ୍ + ଉତ୍ + ଶ୍ରି ଧାତୁ + କର୍ତ୍ତୃ. ତ )—୧ ।
Samuchchhrita ବର୍ଦ୍ଧିତ—1. Increased. ୨ । ଅତ୍ୟୁନ୍ନତ—2. Elevated. ୩ । ଫୁଲି ଯାଇଥିବା—3. Swollen.
( ସମୁଚ୍ଛ୍ରିତି—ବି )

ସମୁଜ(ଜ)—ଦେ. ବି—ସମଜ ( ଦେଖ )
Samuj(ja) Samaja ( See )

ସମୁଜ୍ଜିହୀର୍ଷୁ—ସଂ. ବିଣ ( ସମ୍ + ଉତ୍ + ହୃ ଧାତୁ + ଇଚ୍ଛାର୍ଥେ ସନ୍ +
Samujjihirshu ଉ )—ସମ୍ୟକ୍‌ରୂପେ ଉଦ୍ଧାର କରିବାକୁ ଇଚ୍ଛୁକ—Desirous of delivering.
( ସମୁଜ୍ଜିହୀର୍ଷା—ବି )

ସମୁଜ୍ଝିତ—ସଂ• ବଣ ( ସମ୍+ଉଜ୍ଝିତ=ତ୍ୟକ୍ତ )—ପରିତ୍ୟକ୍ତ; Samujjhita ପରିବର୍ଜ୍ଜିତ—Abandoned; relinquished'

ସମୁଜ୍ଜ୍ୱଳ—ସଂ. ବଣ (ସମ୍=ସମ୍ୟକ୍+ଉଜ୍ଜ୍ୱଳ)—ଅତି ଉଜ୍ଜ୍ୱଳ—Samujjwala Very bright; radiant• ( ସମୁଜ୍ଜ୍ୱଳା—ସ୍ତ୍ରୀ ) ( ସମୁଜ୍ଜ୍ୱଳତା—ବି )

ସମୁଡ୍ଡୀନ—ସଂ. ବଣ ( ସମ୍+ଉତ୍=ଊର୍ଦ୍ଧ୍ୱ+ଡୀ ଧାତୁ=ଉଡିବା +କର୍ତ୍ତି. ତ )—ଯେ ଉଡ଼ି କରି ଊର୍ଦ୍ଧ୍ୱକୁ ଉଠି Samuddina ଅଛି; ଊର୍ଦ୍ଧ୍ୱାକାଶକୁ ଉଡ଼ିଥିବା—Risen to the (ସମୁଡ୍ଡୀନା—ସ୍ତ୍ରୀ) sky; risen high in the air (by flying).

ସମୁତ୍କ—ସଂ• ବଣ ପୁଂ ( ସମ୍+ଉତ୍କ )—ସମ୍ୟକ୍ ଅଭିଳାଷୀ—Samut-ka Very desirous. ( ସମୁତ୍କା—ସ୍ତ୍ରୀ )

ସମୁତ୍କଣ୍ଠ—ସଂ. ବଣ• ପୁଂ ( ସମ୍+ଉତ୍କଣ୍ଠ )—ବିଶେଷଭାବରେ Samut-kantha ଉତ୍କଣ୍ଠିତ ବା ବ୍ୟଗ୍ର—Very eager or ( ସମୁତ୍କଣ୍ଠିତ—ଅନ୍ୟରୂପ ) anxious. (ସମୁତ୍କଣ୍ଠା, ସମୁତ୍କଣ୍ଠିତା—ସ୍ତ୍ରୀ) (ସମୁତ୍କଣ୍ଠା—ବି)

ସମୁତ୍କୀର୍ଣ୍ଣ—ସଂ. ବଣ ( ସମ୍+ଉତ୍କୀର୍ଣ୍ଣ )—୧ । ବିଦ୍ଧ; ଛିଦ୍ରାନ୍ୱିତ—Samut-kirnna 1. Pierced through; bored; (ସମୁତ୍କୀର୍ଣ୍ଣା—ସ୍ତ୍ରୀ) perforated, ୨ । ଭଗ୍ନ—2. Broken. ୩ । ଖୋଦିତ—3. Engraved. ୪ । ବିକୀର୍ଣ୍ଣ; ବିକ୍ଷିପ୍ତ—4. Scattered.

ସମୁତ୍କ୍ରମ—ସଂ. ବି ( ସମ୍+ଉତ୍କ୍ରମ )—୧ । ଊର୍ଦ୍ଧ୍ୱଗମନ; ଉପରକୁ Samut-krama ଉଠିବା—1. Rising high; upward (ସମୁତ୍କ୍ରାନ୍ତି—ବି) motion; going up. ୨ । ଊର୍ଦ୍ଧ୍ୱକୁ ଡେଇଁବା—2. Leaping up, high jump, ସମୁତ୍କ୍ରମଣ, ସମୁତ୍କ୍ରାମଣ } ଅନ୍ୟରୂପ

ସମୁତ୍କ୍ରାନ୍ତ—ସଂ• ବଣ ( ସମ୍+ଉତ୍କ୍ରାନ୍ତ )—୧ । ଉଚ୍ଚକୁ ଗଛ Samut-krānta ଉଠିଥିବା—1. Risen high up. ୨ । ପ୍ରାଣୀ ଯାହା ଉପରକୁ ଡେଇଁ ଯାଇଥାଏ—2. (a thing) Over which an animal has leapt up, leaped or jumped over; scaled over.

ସମୁତ୍କ୍ରୋଶ—ସଂ• ବି ( ସମ୍+ଉତ୍+କ୍ରୁଶ୍ ଧାତୁ=ଶବ୍ଦ କରିବା Samut-krcśa +ଭାବ• ଅ)—୧ । ଉଚ୍ଚ ଶବ୍ଦ—1. Loud sound. ୨ । ଗର୍ଜ୍ଜନ—2. Roar. ୩ । ଚିତ୍କାର—3. Hallooing. ୪ । (+କର୍ତ୍ତି• ଅ) କୁରର ପକ୍ଷୀ—4. Osprey. ୫ । ଉତ୍କଲ ପକ୍ଷୀ—5. Eagle.

ସମୁତ୍ଥ—ସଂ• ବଣ ( ସମ୍+ଉତ୍+ସ୍ଥା ଧାତୁ+କର୍ତ୍ତି. ଅ )—୧ । Samuttha ଉତ୍ପନ୍ନ; ଉତ୍ପନ୍ନ—1. Produced. ୨ । ଉଠିଥିବା; (ସମୁତ୍ଥାନ—ବି) ଉଦିତ—2. Risen up.

ସମୁତ୍ଥାନ—ସଂ. ବି (ସମ୍+ଉତ୍ଥାନ)—୧ । ଉଦୟ—1. Rising Samutthāna up. ୨ । ଊର୍ଦ୍ଧ୍ୱଗମନ; ଉପରକୁ ଉଠିବା—2. Ascent. ୩ । ବୃଦ୍ଧି—3. Increase. ୪ । ଉତ୍ତୋଳନ—4. Raising up; lifting. ୫ । ଠିଆ ହେବା; ଗାତ୍ରୋତ୍ଥାନ; ବସିବା ଜାଗାରୁ ଉଠିବା—5. Standing up; getting up. ୬ । ବିଛଣାରୁ ଉଠିବା—6, Rising up from the bed. ୭ । ବ୍ୟାଧି ନିର୍ଣ୍ଣୟ (ମେଡିକାଲ)—7. Diagnosis. ୮ । ରୋଗଶଯ୍ୟାରୁ ଉଠିବା; ରୋଗମୁକ୍ତ—8. Recovery; a bed-ridden patient's getting up from the sick-bed. ୯ । ବିଶେଷ ଉଦ୍ୟୋଗ—9 Great effort; preparation. ୧୦। ଉନ୍ନୋତାଚରଣପୂର୍ବକ ଉତ୍ଥାନ—10. Resurrection. ୧୧ । ଉନ୍ନତ—11. Improvement; rise.

ସମୁତ୍ଥିତ—ସଂ. ବଣ (ସମ୍+ଉତ୍ଥିତ)—ସମୁତ୍ଥ ( ଦେଖ ) Samutthita Samuttha ( See )

ସମୁତ୍ପତନ—ସଂ. ବି ( ସମ୍+ଉତ୍ ପତନ )—ଉଡ୍ଡୟନ; ଉପରକୁ Samut-patana ଉଡ଼ିବା—Flying up; rising up (ସମୁତ୍ପତିତ—ବଣ) in the sky.

ସମୁତ୍ପତ୍ତି—ସଂ. ବି (ସମ୍+ଉତ୍ପତ୍ତି)—୧ । ସମୁତ୍ଥାନ ( ଦେଖ ) Samut-patti 1. Samutthāna (See) ୨ । ଉଦ୍ଭବ; (ସମୁତ୍ପନ୍ନ—ବଣ) ଉତ୍ପତ୍ତି; ଜନ୍ମ—2. Production; birth. ୩ । ଉପସ୍ଥିତି—3. Presence; arrival.

ସମୁତ୍ପାଟ—ସଂ. ବି ( ସମ୍+ଉତ୍ପାଟ )—ସମୂଳ ଉତ୍ପାଟନ; Samut-pāta ଉନ୍ମୂଳନ—Eradication; uprooting. (ସମୁତ୍ପାଟିତ, ସମୁତ୍ପାଟନୀୟ—ବଣ) (ସମୁତ୍ପାଟନ—ଅନ୍ୟରୂପ)

ସମୁତ୍ପାତ—ସଂ. ବି ( ସମ୍+ଉତ୍ପାତ )—ଅତ୍ୟନ୍ତ ଉପଦ୍ରବ—Samut-pāta Great harassment or disturbance; oppression.

ସମୁତ୍ପାଦନ—ସଂ• ବି ( ସମ୍+ଉତ୍ପାଦନ )—୧ । ଜନ୍ମାଇବା—Samut-pādana 1. Bringing forth; producing. ୨ । ଉତ୍ପତ୍ତି—2. Production; birth. (ସମୁତ୍ପାଦିତ, ସମୁତ୍ପାଦ୍ୟ, ସମୁତ୍ପାଦନୀୟ—ବଣ)

ସମୁତ୍ପିଞ୍ଜ—ସଂ. ବଣ. ପୁଂ (ସମ୍+ଉତ୍+ପିଜ୍ଞ୍ ଧାତୁ=ବଧ Samut-piñja କରିବା+କର୍ମ. ଅ)—ଅତ୍ୟନ୍ତ ଆକୁଳ (ସମୁତ୍ପିଞ୍ଜା—ସ୍ତ୍ରୀ• ବଣ) (ହେମଚନ୍ଦ୍ର); ଅତିଶୟ କାତର—Much agitated; distracted. ସଂ• ବି—ଛିନ୍ନ ଭିନ୍ନ ବ୍ୟାକୁଳ ସୈନ୍ୟ (ଅମର)—Distracted or routed army.

ସମୁତ୍ପୀଡ଼ନ—ସଂ• ବି ( ସମ୍+ଉତ୍ପୀଡନ )—ସମ୍ୟକ୍ ଅତ୍ୟାଚାର—Samutpirdana Great oppression. (ସମୁତ୍ପୀଡିତ—ବଣ)

ସମୁତ୍ଫାଲ—ସଂ. ବି (ସମ୍+ଉତ୍ଫାଲ)—୧ । ତରଙ୍ଗାୟିତ ଗମନ Samutphāla (ଶବ୍ଦକୋଷ)—1. Wavy motion. ୨ । ଅଶ୍ୱର ଅସ୍ଖଳନ ସହ ଗମନ; ଦୁଲକି—2. Canter of a horse. ୩ । ଦେବତାଙ୍କୁ କୋଳେଇ କରି ଗତି-

(ବିଶ୍ୱକୋଷ)—3. Motion by waving the body.

ସମୁତ୍‌ଫୁଲ୍ଲ—ସଂ. ବଣ. ପୁଂ (ସମ୍+ଉତ୍‌ଫୁଲ୍ଲ)—ଅତ୍ୟନ୍ତ ପ୍ରଫୁଲ୍ଲ—Samut-phulla Much delighted.
(ସମୁତ୍‌ଫୁଲ୍ଲା—ସ୍ତ୍ରୀ)

ସମୁତ୍‌ସନ୍ନ—ସଂ. ବଣ (ସମ୍+ଉତ୍‌ସନ୍ନ)—୧ । ବିନାଶିତ—Samut-sanna 1. Ruined; exterminated.
(ସମୁତ୍ସାଦିତ—ଅନ୍ୟରୂପ) ୨ । ନିର୍ମୂଳୀକୃତ—2. Eradicated; uprooted.

ସମୁତ୍‌ସାହ—ସଂ. ବି (ସମ୍+ଉତ୍ସାହ)—ଅତ୍ୟନ୍ତ ଉତ୍ସାହ—Samut-sāha Great encouragement.
(ସମୁତ୍ସାହିତ—ବଣ)

ସମୁତ୍‌ସୁକ—ସଂ. ବଣ. ପୁଂ (ସମ୍+ଉତ୍ସୁକ)—ବିଶେଷ ବ୍ୟଗ୍ର ବା Samut-suka ଉତ୍କଣ୍ଠିତ—Very anxious; all agog.
(ସମୁତ୍ସୁକା—ସ୍ତ୍ରୀ) (ସମୁତ୍ସୁକତା—ବି)

ସମୁତ୍‌ସୃଷ୍ଟ—ସଂ. ବଣ (ସମ୍+ଉତ୍‌ସୃଷ୍ଟ)—ପରିତ୍ୟକ୍ତ—Samut-srushṭa Abandoned.
(ସମୁତ୍‌ସର୍ଗ, ସମୁତ୍‌ସର୍ଜନ—ବି)

ସମୁଦକ୍ତ—ସଂ. ବଣ (ସମ୍=ସମ୍ୟକ୍+ଉତ୍=ଉପରକୁ+ଅଞ୍ଚ୍ ଧାତୁ=ଯିବା+ତ)—୧ । ଉତ୍ଥିତ—Samudakta 1. Taken up. ୨ । (କୂପାଦିରୁ) ଉତ୍ତୋଳିତ—2. Lifted up (from a well or pit).

ସମୁଦୟ—ସଂ. ବି (ସମ୍+ଉଦୟ)—୧ । ସମୂହ (ଅମର)—Samudaya 1. Multitude. ୨ । ସମସ୍ତ; ସକଳ—2. Whole; all. ୩ । ଯୁଦ୍ଧ (ମେଦିନୀ)—3. Fight; conflict. ୪ । ସମୁଦ୍‌ଗମ (ମେଦିନୀ)—4. Sprouting up. ୫ । ଦିବସ (ଶବ୍ଦ ରତ୍ନାକର)—5. Day. ୬ । ଅଭ୍ୟୁଦୟ; ଉନ୍ନତି—6. Rise; prosperity improvement. ୭ । ସମୁତ୍ଥାନ—7. Rise. ୮ । (ଜ୍ୟୋତିଷ) ଦିନାତ୍ରୀରେ ନାକ୍ଷତ୍ରଗତି ଅର୍ଥ ନାଡ଼ୀ—8. (Astrology) The movement of the sun's; entrance into a sign of the zodiac. [ଦ୍ର—ଜନ୍ମ ନକ୍ଷତ୍ରଠାରୁ ଅଷ୍ଟାଦଶ ନକ୍ଷତ୍ରକୁ ସମୁଦୟ ନାଡ଼ୀ କୋଲଯାଏ ।] ୯ । (ଜ୍ୟୋତିଷ) ଲଗ୍ନ—9. (astrology) Lagna. ଦେ. ବଣ—ସମୁଦାୟ;
समुदाय ସବୁ—All; whole; entire.
समुदाय

ସମୁଦ(ଦୁ)ର—ଗ୍ରା. ବି (ସଂ. ସମୁଦ୍ର)—ସମୁଦ୍ର (ଦେଖ)
Samuda(du)ra Samudra (See)
সমুদ্দুর दरिआ

ସମୁଦାଗମ—ସଂ. ବି (ସମ୍+ଉତ୍+ଆଗମ)—୧ । ସମ୍ୟକ୍ ଜ୍ଞାନ Samudāgama (ତ୍ରିକାଣ୍ଡଶେଷ)—1 Deep knowledge. ୨ । ପୂର୍ଣ୍ଣ ଚେତନା—2. Full consiousness.

ସମୁଦାଚାର—ସଂ. ବି (ସମ୍+ଉତ୍+ଆଚାର)—୧ । ଅଭିପ୍ରାୟ; Samudāchāra ଅଭିପ୍ରାୟ (ତ୍ରିକାଣ୍ଡ ଶେଷ)—1. Intention. ୨ । ଅଭିଳାଷ—2. Desire; wish. ୩ । ସମ୍ୟକ୍ ଆଚାର—3. Special custom; peculiar conduct. ୪ । ଶିଷ୍ଟାଚାର—4. Etiquette. ୫ । ନମସ୍କାର; ଅଭିବାଦନ (ବିଶ୍ୱକୋଷ)—5. Obeisance; salutation.

ସମୁଦାୟ—ସଂ. ବି (ସମ୍+ଉତ୍+ଇ ଧାତୁ=ଯିବା+ଭାବ.ଅ)—Samudāya ୧ । ସମୂହ (ଅମର)—1. Multitude. ୨ । (+କର୍ମ.ଅ)ଯୁଦ୍ଧ (ଅମର)—2. Battle; conflict; fight. ୩ । (+ଭକ୍ତି, ଅ) ପୃଷ୍ଠସ୍ଥାୟୀ ବଳ (ଅଜୟ)—3. The army at the rear of the main army;rear guard. ୪। ସମୁଚ୍ଛ୍ରୟ (ମେଦିନୀ)(ଦେଖ)—4. Samuchchhraya (See) ୫। ସକଳ; ସମସ୍ତ—5. All; whole. ୬ । (+ଭାବ.ଅ) ଉତ୍ଥାନ;ଉଦୟ—6 Rise. ଦେ. ବଣ—୧ । ସମସ୍ତ; ସବୁ; ସକଳ—
সমুদায়
समुदाय 1. All. ୨ । ସମ୍ପୂର୍ଣ୍ଣ—2 Whole; entire.

ସମୁଦା ସମୁଦି—ଦେ. ବି—ସମଧା ସମଧି (ଦେଖ)
Samudā samudi Samadhā samadhi (See)

ସମୁଦାହାର—ସଂ. ବି (ସମ୍+ଉତ୍+ଆ+ହୃ ଧାତୁ+ଭାବ. ଅ)—Samudāhāra କଥୋପକଥନ—Conversation; talk.

ସମୁଦି(ଧି)—ଦେ. ବି. ପୁଂ (ସଂ. ସମ୍ବନ୍ଧୀ)—ବୈବାହିକ; ଆପଣାର ପୁତ୍ର Samudi(dhi) ଯାହାଙ୍କ କନ୍ୟାକୁ କିମ୍ବା ଆପଣାର କନ୍ୟା ଯାହାଙ୍କ (ସମୁଦୁଣୀ—ସ୍ତ୍ରୀ) ପୁତ୍ରକୁ ବିବାହ କରିଥାଏ; ଆପଣାର ପୁଅର ବା
বেআ(হা)ই ଝିଅର ଶଶୁର—A person whose son
समधी has married one's daughter and vice versa; the father-in-law of one's son or daughter. [ଦ୍ର—ସମ୍ଧା, ସମୁଦି, ଭଣ୍ଡ ମିତ, ସାଙ୍ଗ ପଡଶା ସ୍ନେହ ଚତ୍ର । ଭୂଗୋ. ପ୍ରେମପଞ୍ଚ ମୃତ ।] [ଦ୍ର—ବଙ୍ଗଭାଷାରେ ସମ୍ବନ୍ଧୀର ଶବ୍ଦର ଅର୍ଥ ଶଳା, ହିନ୍ଦୀ ଭାଷାରେ ସମ୍ଧୀର ଅର୍ଥ ବୈବାହିକ ବା ଓଡ଼ିଆ ଭାଷାର ସମୁଦି । ବଙ୍ଗଳାରେ ପୁତ୍ରମାନଙ୍କ ଶ୍ୱଶୁରଙ୍କୁ ବେଆଇ ବା ବେହାଇ ଏବଂ ଶାଶୁଙ୍କୁ ବେଆଇନ୍ ବା ବେହାଇନ କହନ୍ତି ।]

ସମୁଦିତ—ସଂ. ବଣ (ସମ୍+ଉଦିତ)—୧ । ଉତ୍ଥିତ—1. Risen; Samudita ascended. ୨ । ସମ୍ୟକ୍ ଉଦିତ ବା [ସମୁଦ(ଦା)ୟ—ବି] ଉତ୍ଥିତ—2. Fully rise; risen up. ୩ । ସମୁତ୍ପନ୍ନ; ସମୁଦ୍‌ଭୂତ—3. Produced. ୪ । ଉନ୍ନତ—4. Lofty. ୫ । ସମ୍ୟକ୍‌ରୂପେ କଥିତ—5. Specially spoken. ୬ । ଉଚ୍ଚ ସ୍ୱରରେ କଥିତ—6. Uttered aloud.

ସମୁଦୀରଣ—ସଂ. ବି (ସମ୍+ଉଦୀରଣ=ଉଚ୍ଚାରଣ)-୧ । ଉଚ୍ଚାରଣ—Samudīraṇa 1. Utterance. ୨ । ସମ୍ୟକ୍ କଥନ—(ସମୁଦୀରିତ, ସମୁଦୀର୍ଣ୍ଣ—ବଣ) 2. Special speech.

ସମୁଦୁଣୀ—ଦେ. ବି. ସ୍ତ୍ରୀ—ସମ୍ପର୍କ ସ୍ତ୍ରୀ; ଅପଣାର ପୁଅର ବା କନ୍ୟାର ଶାଶୁ—The mother-in-law of one's son or daughter.
Samudunī
বেয়াইন সমধিনী

ସମୁଦୁର—ଗ୍ରା. ବି (ସଂ. ସମୁଦ୍ର)—ସମୁଦ୍ର (ଦେଖ)
Samudura Samudra. (See)
সমুদ্ৰ দরিয়া

ସମୁଦ୍ଗ—ସଂ. ବଣ (ସ=ସହ+ମୁଦ୍ଗ=ମୁଗ)—ମୁଗମିଶ୍ରିତ—
Samudga Mixed with Moong grain.

ସମୁଦ୍ଗ—ସଂ. ବି (ସମ୍+ଉତ୍+ଗମ୍ ଧାତୁ+କର୍ତ୍ତି. ଅ)—
Samudga ୧ । ସମ୍ପୁଟକ, ଫରୁଆ (ହେମଚନ୍ଦ୍ର) ପେଡ଼ା (ସମୁଦ୍ଗକ—ଅନ୍ୟରୂପ) (ଅମର)—1. A casket. ୨। ପତର-ଦନା; ଦୋନା।—2. A pot made of leaves. ୩ । ଯେଉଁ ପାତ୍ରର ଉପର ଫାଳ ବା ଢାଙ୍କ ଖୋଲିଯାଇ ପାରେ—3. A box with a removable cover.
ସଂ. ବଣ—ମୁଦ୍ଗବିଶିଷ୍ଟ -Having moong grains.

ସମୁଦ୍ଗତ—ସଂ ବଣ (ସମ୍+ଉଦ୍ଗତ)—୧ । ସମୁତ୍ଥିତ (ଦେଖ)—
Samudgata 1. Samutthita. (See) ୨ । ସମୁଦିତ—
(ସମୁଦ୍ଗମ—ବି) 2. Samudita. (See). ୩ । ଉତ୍ପନ୍ନ—
3. Produced.

ସମୁଦ୍ଗମ—ସଂ. ବି (ସମ୍+ଉଦ୍ଗମ)—୧ । ଉତ୍ଥାନ; ଉଦୟ—
Samudgama 1. Rising up; ascent. ୨। ଉତ୍ପତ୍ତି—
2. Birth.

ସମୁଦ୍‌ଗାର—ସଂ. ବି (ସମ୍+ଉଦ୍‌ଗାର)—ଅତ୍ୟନ୍ତ ବମନ—
Samud-gāra Violent vomiting.

ସମୁଦ୍ଗୀତ—ସଂ. ବଣ (ସମ୍+ଉତ=ଉଚ୍ଚୈଃସ୍ୱରରେ+ଗୀତ)—
Samudgīta ଉଚ୍ଚୈଃସ୍ୱରରେ ଗୀତ—Sung loudly.

ସମୁଦ୍ଗୀରଣ—ସଂ. ବି (ସମ୍+ଉଦ୍ଗୀରଣ)—୧ । ଉଦ୍‌ବମନ—
Samudgīrana 1. Vomiting forth. ୨ ।
(ସମୁଦ୍ଗୀର୍ଣ୍ଣ—ବଣ) ଉତ୍ତୋଳନ—2. Lifting up. ୩ । ଉଚ୍ଚାରଣ; କଥନ—3. Speaking; utterance.

ସମୁଦ୍ଗୀର୍ଣ୍ଣ—ସଂ. ବଣ (ସମ୍+ଉଦ୍+ଗୃ ଧାତୁ+କର୍ମ.ତ)—୧ । ବମିତ
Samudgīrnna 1. Vomited forth. ୨ । ଉତ୍ତୋଳିତ—2. Lifted up. ୩ । କଥିତ—
3. Spoken. ୪ । ଉଚ୍ଚାରିତ—4. Uttered.

ସମୁଦ୍ଦିଷ୍ଟ—ସଂ. ବଣ (ସମ୍+ଉଦ୍ଦିଷ୍ଟ)—୧ । ସମ୍ୟକ୍ ଉଦ୍ଦିଷ୍ଟ;
Samuddishta ଲକ୍ଷ୍ୟୀକୃତ—1. Striven after.
(ସମୁଦ୍ଦେଶ—ବି) ୨ । ଅନ୍ୱେଷିତ—2. Searched for; investigated.

ସମୁଦ୍ଧତ—ସଂ. ବଣ (ସମ୍+ଉତ୍+ହନ୍ ଧାତୁ=ବଧ କରିବା+କର୍ତ୍ତି.
Samuddhata ତ)—୧ । ଅଶିଷ୍ଟ; ଅବଗାତ (ଅମର)—
1. Ill-mannered; rude. ୨ । ଗର୍ବିତ—
2, Arrogant; proud; puffed up with pride, ୩ । ଉତ୍‌କ୍ଷିପ୍ତ—3. Thrown up. ୪ ।

ସମୁଦ୍ଗୀର୍ଣ୍ଣ (ହେମଚନ୍ଦ୍ର) (ଦେଖ)—4. Samudgirnna (See)

ସମୁଦ୍ଧରଣ—ସଂ. ବି (ସମ୍+ଉଦ୍ଧରଣ)—୧ । ଓପାଡ଼ିବା; ଉନ୍ମୂଳନ—
Samuddharana 1. Uprooting. ୨ । ଉତ୍ତୋଳନ—
(ସମୁଦ୍ଧାର—ଅନ୍ୟରୂପ) 2. Lifting up. ୩ । ଉନ୍ନମନ
(ସମୁଦ୍ଧୃତ—ବଣ) (ଅମର)—3. Raising up. ୪ । ମୋଚନ; ଉଦ୍ଧାର କରିବା—4. Loosening; liberation; deliverance. ୫ । ବମନ, ଉଦ୍‌ଗିରଣ—
5. Vomiting. ୬ । ବାନ୍ତାନ୍ନ (ଅମର)—
Vomited food.

ସମୁଦ୍ଧର୍ତ୍ତା—ସଂ. ବଣ. ପୁଂ (ସମ୍+ଉତ୍+ଧୃ ଧାତୁ=ଧାରଣକରିବା+
Samuddharttā କର୍ତ୍ତି. ତୃ ୧ମା.୧ବ.)—୧ । ଉଦ୍ଧାରକର୍ତ୍ତା—
(ସମୁଦ୍ଧର୍ତ୍ତ୍ରୀ—ସ୍ତ୍ରୀ) 1. Delivering. ୨ । ଉନ୍ମୂଳନକର୍ତ୍ତା—
2. Uprooting; eradicating. ୩ । ଋଣପରିଶୋଧକର୍ତ୍ତା—3. Liquidating one's loan.

ସମୁଦ୍ଧସ୍ତ—ସଂ ବି (ସମ୍+ଉତ୍+ହସ୍ତ)—ହାତଦ୍ୱାରା ପୋଛିପକାଇବା
Samuddhasta (ଶବ୍ଦକୋଷ)—Wiping out with the hand.

ସମୁଦ୍ଧାର—ସଂ.ବି (ସମ୍+ଉଦ୍ଧାର)—୧ । ମୁକ୍ତି; ପରିତ୍ରାଣ; ମୋଚନ—
Samuddhāra 1. Deliverance; salvation.
(ସମୁଦ୍ଧୃତ—ବଣ) ୨ । ଉନ୍ମୂଳନ—2, Eradication; uprooting. ୩ । ଉତ୍ତୋଳନ—3. Lifting up.

ସମୁଦ୍ଧୃତ—ସଂ. ବଣ (ସମ୍+ଉଦ୍ଧୃତ)—୧ । ଉତ୍ତୋଳିତ—
Samuddhruta 1. Drawn up; lifted up; raised up. ୨ । ମୋଚିତ; ଉଦ୍ଧାରିତ;
ସମୁଦ୍ଧରଣ } —ବି
ସମୁଦ୍ଧାର }
2. Delivered; rescued. ୩ । ଉଦ୍ଗୀର୍ଣ୍ଣ ବାନ୍ତ; ବମିତ—3. Vomited forth; emitted. ୪ । ଉନ୍ମୂଳିତ (ଶବ୍ଦକୋଷ)—4. Uprooted. ୫ । ଅସଦ୍‌ବ୍ୟବହାରପ୍ରାପ୍ତ (ଶବ୍ଦକୋଷ)—5. Ill-treated. ୬ । ଅଂଶୀକୃତ—6. Divided into shares. ୭ । ଗୃହୀତ—7. Taken. ୮ । ଅଧିକୃତ—
8. Taken possession of.

ସମୁଦ୍‌ବହ—ସଂ. ବଣ (ସମ୍+ଉତ୍+ବହ୍ ଧାତୁ+କର୍ତ୍ତି ଅ)—
Samudbaha ୧ । ଉତ୍ତୋଳନକର୍ତ୍ତା; ଉତ୍ତୋଳକ—
1, Lifting. ୨ । ବହନକାରୀ—2. Carrying. ୩ । ଶ୍ରେଷ୍ଠ—3. Chief; principal.

ସମୁଦ୍ବାହ—ସଂ. ବି—୧ । ସମ୍ୟକ୍ ପ୍ରକାରେ ବହନ—
Samudbāha 1. Carrying. ୨ । ବିବାହ (ଶବ୍ଦକୋଷ)—2, Marriage.

ସମୁଦ୍‌ବେଗ—ସଂ. ବି (ସମ୍+ଉଦ୍‌ବେଗ)—ସମ୍ୟକ୍ ଉଦ୍‌ବେଗ—
Samudbega Great anxiety.
(ସମୁଦ୍‌ବିଗ୍ନ—ବଣ)

**ସମୁଦ୍‌ଭବ**—ସଂ. ବି (ସମ୍‌+ଉଦ୍‌ଭବ)—୧ । ଉତ୍ପତ୍ତି—1. Production. ୨ । ଜନ୍ମ—2. Birth; origin. ୩ । ହୋମାଗ୍ନିର ନାମଭେଦ—3. Name of one of the sacrificial fires.
Samudbhaba
(ସମୁଦ୍‌ଭୂତି—ଅନ୍ୟରୂପ)
(ସମୁଦ୍‌ଭୂତ—ବିଣ)
ବିଣ—ଉଦ୍‌ଭୂତ; ଉତ୍ପନ୍ନ—Born; produced from.

**ସମୁଦ୍‌ଭାସିତ**—ସଂ. ବିଣ (ସମ୍‌+ଉଦ୍‌ଭାସିତ)—୧ । ପ୍ରଦୀପ୍ତ—1. Lighted; illuminated. ୨ । ଉଜ୍ଜ୍ୱଳୀକୃତ—2 Brightened. ୩ । ଶୋଭିତ—3. Decorated; shining.
Samudbhāsita

**ସମୁଦ୍‌ଭୂତ**—ସଂ. ବିଣ (ସମ୍‌+ଉଦ୍‌ଭୂତ)—୧ । ଜାତ—1. Born of. ୨ । ଉତ୍ପନ୍ନ—2. Produced from; originating from.
Samudbhūta

**ସମୁଦ୍ୟତ**—ସଂ. ବିଣ. ପୁଂ (ସମ୍‌+ଉଦ୍ୟତ)—ଉଦ୍ୟତ; ଉଦ୍ୟୁକ୍ତ—Striving; ready for; prepared for.
Samudyata

**ସମୁଦ୍ୟମ**—ସଂ. ବି (ସମ୍‌+ଉଦ୍ୟମ)—୧ । ସମ୍ୟକ୍ ଉଦ୍ୟମ—1, Great striving. ୨ । ବିଶେଷ ଚେଷ୍ଟା—2. Great endeavour. ୩ । ଆରମ୍ଭ—3. Beginning.
Samudyama
(ସମୁଦ୍ୟତ—ବିଣ)

**ସମୁଦ୍ର**—ସଂ. ବି (ସମ୍‌=ସମ୍ୟକ୍‌+ଉନ୍ଦ୍ ଧାତୁ=କ୍ଳିନ୍ନ ହେବା+ଅପାଦାନ. ର, ଚନ୍ଦ୍ରୋଦୟ ଦ୍ୱାରା ଯହିଁରୁ ଜଳସମୂହ କ୍ଳିନ୍ନ ହୁଏ, କିମ୍ବା ସ=ସହିତ+ମୁଦା=ମର୍ଯ୍ୟାଦା, ସୀମା; ଯାହା ମର୍ଯ୍ୟାଦା ବା ସୀମାଯୁକ୍ତ ହୋଇ ଅବସ୍ଥିତ; କିମ୍ବା ସ=ସହିତ+ମୁଦ୍ରା=ମଣିରତ୍ନାଦି; ଅର୍ଥାତ୍ ଯାହା ରତ୍ନାକର ଅଟେ । କିମ୍ବା ସମ୍‌=ସମ୍ୟକ୍‌+ଉଦ୍ରେକ : ନିପାତନ-ସିଦ୍ଧ; ଏଥିରେ ଜଳର ସମୁଦ୍ରେକ ବା ବାହୁଲ୍ୟ ହୁଏ; କିମ୍ବା ସମ୍‌=ସମ୍ୟକ୍‌+ଉଦ୍‌ଗତ+ର=ଅଗ୍ନି ଯହିଁରୁ)—୧ । ସାଗର; ପୃଥିବୀକୁ ବେଷ୍ଟନ କରିଥିବା ଜଳରାଶି—1. The sea; ocean. ୨ । (ଲକ୍ଷଣାର୍ଥେ) ସମୁଦ୍ର ପରି ବିଶାଳକାୟ ଓ ଅସୀମ ଗମ୍ଭୀର ବସ୍ତୁ—2, A thing illimitable and unfathomable as the ocean. ୩ । ସାମୁଦ୍ରିକ ଗ୍ରନ୍ଥକାର ମୁନିବିଶେଷ—3. Name of a sage who compiled a book on chiromancy. ୪ । ଏକ କଡ଼ା କଉଡ଼ିର ସାତ ଭାଗରୁ ଭାଗେ—4. One-seventh part of a courie. ୫ । ଗୃହ ସଂଖ୍ୟା—5. The number four.
Samudra

[ସମୁଦ୍ରର ଅନ୍ୟ ସଂ. ନାମ—ଅବ୍ଧି, ଅକୂପାର, ପାରାବାର, ସରିତ୍‌ପତି, ଉଦନ୍ୱାନ୍, ଉଦଧି, ସିନ୍ଧୁ, ସରସ୍ୱାନ୍, ସାଗର, ଅର୍ଣ୍ଣବ, ରତ୍ନାକର, ଜଳନିଧି, ଯାଦଃପତି, ଅପାଂପତି (ଅମର), ମହାକଚ୍ଛ, ନଦୀକାନ୍ତ, ତିମିଶୟ, ଦ୍ୱୀପବାନ୍, ଜଳେନ୍ଦ୍ର, ମନ୍ଥୀର, କ୍ଷୌଣୀପ୍ରାଚୀର, ମକରାଳୟ (ଜଟାଧର), ସରିତାଂପତି, ଜଳଧି, ନୀରନିଧି, କରଧି, ଅମ୍ବୁଧି, ପୟୋନିଧି, ପୟୋଧି, ଯାଦସାଂପତି, ନଦୀନ, ଇନ୍ଦୁଜନକ, ଊର୍ମିକୋଷ, ବାରାଂନିଧି, ବାରିନିଧି, ବାର୍ଦ୍ଧି, ବାରିଧି, ତୋୟନିଧି, କୀଲାଳଧି, ଧରଣୀପୂରଃ, ଶିବାହ୍ୱି, ଧରଣୀପ୍ଲବ, ବାଜ, ଜଟାଙ୍ଗଲ, ପେରୁ, ମିତଦ୍ରୁ, ବାହିନୀପତି, ରଙ୍ଗାଧର, ଦାରଦ୍‌ଊର୍ମି, ପ୍ରାଣଭିମାନ୍, ଊର୍ମିମାଳୀ, ମହାଶୟ, ଅର୍ଣ୍ଣୋନିଧି, ଅର୍ଣ୍ଣୋଧି, ତରସ, କୁଲଂକଷ, ତରପ (ଶବ୍ଦରତ୍ନାବଳୀ), ବାରରାଶି, ଶୈଳଶିବିର, ପରିବୃଢ଼, ତରନ୍ତ, ମହାପ୍ରାଚୀର (ତ୍ରିକାଣ୍ଡଶେଷ), ପୟୋଧି, ସରିନ୍ନାଥ, ଅମ୍ଭୋରାଶି, ଧୁନୀନାଥ, ନଦ୍ୟ, ଜଡ଼, ଅପାଂନାଥ (ମେଦିନୀ) ।

[ସାମୁଦ୍ରିକ, ସାମୁଦ୍ରୀୟ, ସାମୁଦ୍ର—ବିଣ] (Apte) ୬ । ଶିବ—6. An epithet of Śiba. (Apte) ସଂ. ବିଣ—(ସହାର୍ଥେ ବହୁବ୍ରୀହି; ସ+ମୁଦ୍ରା+ଅ)—ମୁଦ୍ରିତ; ମୁଦ୍ରାଯୁକ୍ତ—Sealed. (Apte) [ ଦ୍ର—ପୁରାଣ ମତରେ ମେରୁର ଚତୁର୍ଦ୍ଦିଗରେ ଅବସ୍ଥିତ ଏକକେନ୍ଦ୍ରିକ ସାତଗୋଟି ଦ୍ୱୀପ ଓ ୭ଗୋଟି ଦ୍ୱୀପକୁ ବେଢ଼ି ୭ ଗୋଟି ସମୁଦ୍ର ଅଛି । ପୁରାଣ ମତରେ ସମୁଦ୍ର ବ୍ରହ୍ମାଙ୍କ ନେତ୍ରରୁ ଜାତ ହୋଇ ଥିଲା । ପୁରାଣାନ୍ତର ମତରେ ଶ୍ରୀକୃଷ୍ଣଙ୍କ ଔରସରେ ବିରଜାଙ୍କ ଗର୍ଭରୁ ଜାତ ୭ଟି ପୁତ୍ର ୭ ସମୁଦ୍ର ହେଲେ । ଲବଣାମ୍ବୁଧି ସର୍ବକନିଷ୍ଠ । ସପ୍ତ ସମୁଦ୍ରର ନାମ—ଲବଣ, ଇକ୍ଷୁ, ସୁରା, ସର୍ପିଃ, ଦଧି, ଦୁଗ୍ଧ, ଜଳ । ପୁରାଣାନ୍ତର ମତରେ ସୂର୍ଯ୍ୟବଂଶୀୟ ସଗର ରାଜାଙ୍କ ଅନୁଷ୍ଠିତ ଯଜ୍ଞର ଅଶ୍ୱକୁ ଇନ୍ଦ୍ର ହରଣ କରିବାରୁ ସଗରଙ୍କର ୬ ହଜାର ପୁତ୍ର ଉକ୍ତ ହୃତ ଅଶ୍ୱକୁ ଖୋଜିବାକୁ ଭୂମି ଖୋଳିବାରୁ ଉକ୍ତ ଖାଲ ସାଗରରୂପରେ ପରିଣତ ହେଲା । ଏଥିପାଇଁ ସମୁଦ୍ରର ଅନ୍ୟ ନାମ ସାଗର ।

ପୂର୍ବ ଯୁଗମାନଙ୍କରେ ଦ୍ୱିଜାତିମାନେ ସମୁଦ୍ରଯାତ୍ରା କରୁଥିଲେ । କିନ୍ତୁ କଳିଯୁଗରେ ଦ୍ୱିଜାତିମାନଙ୍କର ସମୁଦ୍ର-ଯାତ୍ରା ନିଷିଦ୍ଧ ହୋଇଅଛି । କଶ୍ୟପପୁତ୍ର ଦେବତା ଓ ଅସୁରମାନେ ଅମୃତଲାଭାର୍ଥ ମନ୍ଦର ଗିରିକୁ ଖୁଆ ଓ ବାସୁକିକୁ ଦଉଡ଼ି କରି ସମୁଦ୍ରକୁ ମନ୍ଥିବାରୁ ସମୁଦ୍ର ମଧ୍ୟରୁ କାଳକୂଟ ହଳାହଳ ବିଷ [ଏହାକୁ ମହାଦେବ ପାନ କଲେ], ଉଚ୍ଚୈଃଶ୍ରବା ଅଶ୍ୱ, ଐରାବତ ଆଦି ଅଷ୍ଟଦିଗ୍‌ଗଜ, ଓ ଅଠଗୋଟି କରିଣୀ, କୌସ୍ତୁଭମଣି, ପାରିଜାତପୁଷ୍ପ, ଅପ୍‌ସରାମାନେ, ଲକ୍ଷ୍ମୀ, ବାରୁଣୀ ଅର୍ଥାତ୍ ସୁରା [ଏହାକୁ ଅସୁରମାନେ ଗ୍ରହଣ କଲେ], ଧନ୍ୱନ୍ତରି, ଚନ୍ଦ୍ର ଓ ଅମୃତ ବାହାରିଲେ । ଏହି ଅମୃତକୁ ଭଗବାନ ମାୟାରଚନାପୂର୍ବକ ଦେବତାମାନଙ୍କୁ ଖୁଆଇଲେ । ପୁରାଣ ଅନୁସାରେ ସମୁଦ୍ରର ଅଧିପତି ଦେବତା ବରୁଣ ଓ ତାଙ୍କର ରାଜଧାନୀ ସମୁଦ୍ର ମଧ୍ୟରେ । ସମୁଦ୍ର ଜଳ ଲବଣାକ୍ତ । ରାଜନିଘଣ୍ଟୁମତରେ ଏହି ଜଳର ଗୁଣ ବିସ୍ରତ୍ୱ, ରକ୍ତାମୟପ୍ରଦତ୍ୱ, ଉଷ୍ଣତ୍ୱ, ବୈକଣ୍ଠଦୋଷଜନକତ୍ୱ, ଦାହାର୍ତ୍ତିପିତ୍ତକାରକତ୍ୱ ।

ପୂର୍ବେ ଉତ୍କଳୀୟମାନେ ସମୁଦ୍ର ଲଙ୍ଘନ କରି ଯାବା, ବାଲି, ସିଂହଳ ଦ୍ୱୀପ ଆଦିରେ ବାଣିଜ୍ୟ କରୁଥିଲେ । ସମୁଦ୍ରଗାମୀ ଜାହାଜମାନଙ୍କୁ ବୋଇତ ବୋଲି ଯାଉଥିଲା ଓ ଜାହାଜର ନାବିକ ବା କାପ୍ତାନଙ୍କୁ ବୋଇତଥିଲା ବୋଲି ଯାଉଥିଲା ।]

**ସମୁଦ୍ରକ ପାଣି ଚଳୁ କରିବା**—ଦେ. କି—(ନ୍ୟାୟ) ( ଅଗସ୍ତ୍ୟ ଋଷି Samudraka pāṇi chaḷu karibā ମହାପ୍ରଭାଶୀ ଥିବାରୁ ତପଃ ପ୍ରଭାବରୁ ସମୁଦ୍ରର ସମସ୍ତ ଜଳକୁ ଆପଣା ଗଣ୍ଡୁଷ ମଧ୍ୟରେ ରଖି ପିଇଥିଲେ । ) ଅସମ୍ଭବ କାର୍ଯ୍ୟ କରିବାକୁ ସାହସ କରିବା ବ୍ୟକ୍ତି ପ୍ରତି ଏ ରଗ ପ୍ରୟୋଗ କରାଯାଏ—A proverb meaning 'He is going to quaff the whole ocean empty.

**ସମୁଦ୍ରକଫ**—ସଂ.ବ (୬ଷ୍ଠୀ ତତ୍)--ସମୁଦ୍ରଫେନ (ଦ୍ଵିକାଣ୍ଡ ଶେଷ) (ଦେଖ) Samudra kapha Samudra phena (See).

**ସମୁଦ୍ର କଲ୍ଲୋଳ (ଗର୍ଜନ)**—ସଂ. ବ (୬ଷ୍ଠୀ ତତ୍) ସମୁଦ୍ରର ଲହରୀ-Samudra kallola (garjana) ମାନଙ୍କର ପରସ୍ପର ସହିତ ଓ କୂଳ ସହିତ ଅଭିଘାତଜନିତ ଉଚ୍ଚ ଶବ୍ଦ—The roar of the sea.

**ସମୁଦ୍ର କାଞ୍ଚୀ**—ସଂ. ଶ. (ବହୁବ୍ରୀହି; ସମୁଦ୍ର ଅଟେ ଯାହାର ଚନ୍ଦ୍ରହାର)—Samudra kānchi ପୃଥିବୀ—The (sea-girt) earth.

**ସମୁଦ୍ର କାନ୍ତା**—ସଂ. ବ (୬ଷ୍ଠୀ ତତ୍)—୧ । ନଦୀ—1. River. ୨ । Samudrakāntā ସମୁଦ୍ରରେ ପଡ଼ୁଥିବା ନଦୀ (ହଳାୟୁଧ)—2. A river falling in the sea. ୩ । ସ୍ପୃକ୍କା; ପିଡ଼ଙ୍ଗ ଶାଗ (ରାଜ ନିର୍ଘଣ୍ଟ)—3. A species of potherb; the trigonella herb.

**ସମୁଦ୍ରକୁ ଶଙ୍ଖେ ପାଣି**—ଦେ. ପ୍ରବଚନ (ନ୍ୟାୟ) [ଦ୍ର—ଗୋଟିଏ Samudraku śaṅkhe pāṇi ଶଙ୍ଖରେ ଅତି ଅଳ୍ପ ପରିମିତ ଜଳ ସମ୍ଭାଏ । ସମୁଦ୍ରରେ ଜଳର ପରିମାଣ ଅପରିମିତ;

ସମୁଦ୍ରକୁ ଶଙ୍ଖେ ପାଣି } —ଅନ୍ୟରୂପ]
ସମୁଦ୍ରରେ ବିନ୍ଦୁପାତ }

ସମୁଦ୍ର ଜଳରେ ଏକ ଶଙ୍ଖ ପରିମିତ ଜଳ ମିଶାଇଲେ ବା ବିଶାଳ ସମୁଦ୍ରରେ ଜଳର ସାମାନ୍ୟ ବିନ୍ଦୁ ପାତ ହେଲେ ତାହା କିଛି ନୁହେ ।] ବଡ଼ ଲୋକଙ୍କୁ ଅତି ସାମାନ୍ୟ ବସ୍ତୁ
सागरके एकबिन्दु जल देओया ବା ଖାଦ୍ୟ ଦେବା ଯେମା ମହା-
सागरको एक बुन्दा पानि देना ଅଭିବସ୍ଥଳରେ ସାମାନ୍ୟ ବସ୍ତୁ ଦେବା ନ୍ୟାୟ—An analogy meaning the same as the English proverb 'A drop in the ocean'.

**ସମୁଦ୍ରକୁ ଡେଇଁବା**—ଦେ. କି—୧ । ସମୁଦ୍ର ଜଳକୁ ଲମ୍ଫ ଦେବା—Samudraku ḍeiṅbā 1. To jump into the ocean.
সমুদ্রে ঝাঁপ দেওয়া ୨ । ( ଲକ୍ଷଣାର୍ଥ ) ସଙ୍କଟ ବା ବିପଦ
समुद्रमे कुदना ମଧ୍ୟରେ ଆତ୍ମସମର୍ପଣ କରିବା; ଇଚ୍ଛା ପୂର୍ବକ ବିପଦକୁ ବରଣ କରିବା—(figurative) To voluntarily jump into danger; to court danger.

**ସମୁଦ୍ରକୁ ପେଲି ଦେବା**—ଦେ. କି—୧ । ସମୁଦ୍ର ଜଳରେ ବୁଡ଼ି ମରିବା Samudraku peli debā ପାଇଁ (କୌଣସି ବ୍ୟକ୍ତିକୁ) ଠେଲିଦେବା
সমুদ্রে ভাসিয়ে দেওয়া 1. To push a person
समुद्रमे ढकेलना to the sea. ୨ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ ବିପଦ ସଙ୍କୁଳ ସ୍ଥାନକୁ ବା ଅବସ୍ଥାକୁ ଛାଡ଼ିଦେବା—(figurative) To consign a man to a dangerous predicament.

ସମୁଦ୍ର ମଝିକୁ(କୁ) ପେଲିଦେବା }
ସମୁଦ୍ରକୁ ମେଲିଦେବା } —ଅନ୍ୟରୂପ
ସମୁଦ୍ରରେ ଭସା(ସେ)ଇ ଦେବା }

**ସମୁଦ୍ର କୂଳ**—ସଂ. ବ (୬ଷ୍ଠୀ ତତ୍)—ସମୁଦ୍ର ତଟ (ଦେଖ)—Samudra kūla Samudra taṭa (See)

**ସମୁଦ୍ରଗ**—ସଂ. ବି. ପୁଂ—୧ । ବୋଇତଚାଳକ; ନାବିକ—1. Sailor; Samudraga mariner. ୨ । ପୋତ ବଣିକ—2. A (ସମୁଦ୍ରଗାମୀ—ଅନ୍ୟରୂପ) merchant trading with ships; maritime trader,

ସମୁଦ୍ରଗା } —ସ୍ତ୍ରୀ
ସମୁଦ୍ରଗାମିନୀ }

ବିଣ—ସମୁଦ୍ରଗାମୀ (ଦେଖ) Samudragāmī (See)

**ସମୁଦ୍ର ଗର୍ଭ**—ସ. ବ ( ୬ଷ୍ଠୀ ତତ୍ )—୧ । ସମୁଦ୍ରର ଅଭ୍ୟନ୍ତର; Samudra garbha ସମୁଦ୍ରର ଯେଉଁ ଅଂଶରେ ଜଳ ଥାଏ—1. The bed of the ocean; the inside of the ocean. ୨ । ଜୁଆରର ଉଚ୍ଚତମ ସୀମା ମଧ୍ୟସ୍ଥ ସମୁଦ୍ର—2. The bed of the ocean upto the highest water-mark.

**ସମୁଦ୍ରଗା**—ସଂ. ବ. ସ୍ତ୍ରୀ ( ସମୁଦ୍ରଗ+ଆ )—ନଦୀ (ହେମଚନ୍ଦ୍ର)—Samudragā A river. ବିଣ-ସ୍ତ୍ରୀ—ସମୁଦ୍ରଗର ସ୍ତ୍ରୀଲିଙ୍ଗ—Feminine form of samudraga.

**ସମୁଦ୍ରଗାମୀ**—ଦେ. ବିଣ. ପୁଂ (ସମୁଦ୍ର+ଗମ୍ ଧାତୁ+ଇନ୍; ୧ମା. Samudra gāmī ୧ବ)—୧ । ଯାହା (ଯେଉଁ ନଦୀ ଆଦି) (ସମୁଦ୍ରଯାୟୀ—ଅନ୍ୟରୂପ) ସମୁଦ୍ର ଆଡ଼କୁ ଯାଉଅଛୁ—

ସମୁଦ୍ର ଗାମିନୀ } ସ୍ତ୍ରୀ
ସମୁଦ୍ର ଯାୟିନୀ }

1. (River) Going or running towards the sea; falling into the ocean. ୨ । ଯାହା (ଯେଉଁ ନୌକା ଆଦି) ସମୁଦ୍ରରେ ଗମନାଗମନ କରେ—2. Sea-going; ocean-going. ୩ । ଯେଉଁ ବ୍ୟକ୍ତି ସମୁଦ୍ରପଥରେ ଗମନାଗମନ କରେ—3. Sea-faring. ୪ । ସମୁଦ୍ର ସ୍ଥିତ (ପ୍ରକୃତିବାଦ)—4. Situated in the ocean.

**ସମୁଦ୍ର ଗୁପ୍ତ**—ଦେ. ବ ନାମ—୪ର୍ଥ ଶତାବ୍ଦୀର ଅର୍ଯ୍ୟାବର୍ତ୍ତର ମଗଧ Samudra gupta ରାଜ୍ୟର ଜଣେ ନରପତି—Name of
সমুদ্র গুপ্ত a king of northern India in the
समुद्र गुप्त 4th century A. D.

[ଦ୍ର—ଏ ପ୍ରଥମ ଚନ୍ଦ୍ରଗୁପ୍ତଙ୍କର ପୁତ୍ର ଥିଲେ ଓ ୩୨ ବର୍ଷ ରାଜତ୍ୱ କରିଥିଲେ । ଏହାଙ୍କର ରାଜ୍ୟସୀମା କେରଳ ଓ କାଞ୍ଚୀ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା । ମଗଧର ରାଜଧାନୀ ପାଟଳି ପୁତ୍ରଠାରୁ ଅଲ୍ଲାହାବାଦର ନିକଟବର୍ତ୍ତୀ କୌଶାମ୍ବୀ ବା କୁସୁମପୁରକୁ ଏ ନିଜର ରାଜଧାନୀ ଉଠାଇ ନେଇଥିଲେ ।]

**ସମୁଦ୍ର ଗୃହ**—ସ. ବ (ରୂପକ କର୍ମଧା)—୧ । ବରୁଣାଳୟ—1 The Samudra gṛuha sea which is the abode of he·

Hindu God Baruna. ୨ । ଜଳଯନ୍ତ୍ର ଗୃହ—
2. A house with a contrivance to fill it with water so as to be used as a place of resort during summer.

ସମୁଦ୍ର ଚୁଲୁକ—ସଂ. ବି. ପୁଂ (ସମୁଦ୍ର+ଚୁଲୁକ+ଗଣ୍ଡୂଷ; ବହୁବ୍ରୀହି; Samudra chuluka ଯେ ସମୁଦ୍ରକୁ ଚୁଲୁ କରିଥିଲେ)—ଅଗସ୍ତ୍ୟ ମୁନି—Sage Agastya.

ସମୁଦ୍ର ଚୌର—ସଂ. ବି ( ଆଧୁନିକ ପ୍ରୟୋଗ )—ଯେଉଁ ଚୋର ବା Samudra chaura ଡକାୟତମାନେ ସମୁଦ୍ରଗାମୀ ପୋତ ସମୁଦ୍রের চোর ଆଦିକୁ ଆକ୍ରମଣ କରି ଲୁଣ୍ଠନ କରନ୍ତି— समुद्र चोर Pirate; corsair.

ସମୁଦ୍ର ଚୌର୍ଯ୍ୟ—ସଂ. ବି ( ଆଧୁନିକ ପ୍ରୟୋଗ )—ସମୁଦ୍ରଗାମୀ Samudra chaurjya ଜାହାଜରୁ ଧନାଦି ଲୁଣ୍ଠନ କରିବା ବୃତ୍ତି সমুদ্রে চৌর্য্য समुद्र चौर्य्य —Piracy.

ସମୁଦ୍ରଜ—ସଂ. ବିଣ ( ସମୁଦ୍ର+ଜନ୍ ଧାତୁ+କର୍ତ୍ତୃ. ଅ )—ସମୁଦ୍ର-Samudraja ଜାତ; ସମୁଦ୍ରରୁ ଉତ୍ପନ୍ନ; ସାମୁଦ୍ରିକ; ସମୁଦ୍ରରୁ (ସମୁଦ୍ରଜା—ସ୍ତ୍ରୀ) ମିଳିବା—Sea-born; got from the sea. ବି—୧ । ସମୁଦ୍ର ଲବଣ; ପଙ୍ଗାଲୁଣ—1. Sea salt. ୨ । ପ୍ରବାଳ ମୁକ୍ତାଦି ରତ୍ନ—2. Coral, pearl etc found in the sea.

ସମୁଦ୍ର ଜନ୍ତୁ—ସଂ. ବି—ସମୁଦ୍ର ଜୀବ ( ଦେଖ ) Samudra jantu Samudra jiba ( See )

ସମୁଦ୍ରଜା—ସଂ. ବିଣ. ସ୍ତ୍ରୀ. (ସମୁଦ୍ର+ଜନ୍ ଧାତୁ+କର୍ତ୍ତୃ. ଅ+ Samudrajā ସ୍ତ୍ରୀ. ଆ)—ସମୁଦ୍ରଜର ସ୍ତ୍ରୀଲିଙ୍ଗ— Feminine of Samudraja.
ସଂ. ବିଣ. ସ୍ତ୍ରୀ—ଲକ୍ଷ୍ମୀ—Goddess Lakshmi.

ସମୁଦ୍ର ଜାତ—ସଂ. ବିଣ (୫ମୀ ତତ୍)—ସମୁଦ୍ରରୁ ଉତ୍ପନ୍ନ— Samudra jāta Produced or got from the ocean.

ସମୁଦ୍ର ଜୀବ—ସଂ. ବି ( ୭ମୀ ତତ୍ )—ସମୁଦ୍ରରେ ବାସ କରୁଥିବା Samudra jiba ଜନ୍ତୁ; ସାମୁଦ୍ରିକ ଜୀବ—Creatures living in the sea, marine animals.

ସମୁଦ୍ର ଢେଉ—ଦେ. ବି—ସମୁଦ୍ରରେ ଉଠିବା ଢେଉ ବା ତରଙ୍ଗ; Samudra dheu ସମୁଦ୍ର ଲହରୀ—The waves of the সমুদ্রের ঢেউ समुद्र ढेउ sea; billows.

ସମୁଦ୍ର ତଟ(ତୀର, ବେଳା, କୁକ୍ଷି)—ସଂ. ବି (୬ଷ୍ଠୀ ତତ୍)—ସମୁଦ୍ରର Samudra tata(tira, belā, kukshi) କୂଳବର୍ତ୍ତୀ ଦେଶ; ଉପକୂଳ—Sea-shore; sea coast.

ସମୁଦ୍ର ତନୟା—ସଂ. ବି. ସ୍ତ୍ରୀ (୬ଷ୍ଠୀ ତତ୍)—କ୍ଷୀରାବ୍ଧି ତନୟା; ଲକ୍ଷ୍ମୀ— Samudra tanayā Goddess Lakshmi; the daughter of the ocean.

ସମୁଦ୍ର ତଳ—ସଂ. ବି (୬ଷ୍ଠୀ ତତ୍)—ସମୁଦ୍ରର ନିମ୍ନବର୍ତ୍ତୀ ଭୂମି— Samudra tala The bed or floor of the ocean.

ସମୁଦ୍ର ଦୟିତା(ପତ୍ନୀ, ଯୋଷିତ)—ସଂ. ବି. ସ୍ତ୍ରୀ ( ୬ଷ୍ଠୀ ତତ୍ )— Samudra dayitā (patni, joshit) ନଦୀ—River.

ସମୁଦ୍ର ନବନୀତ—ସଂ. ବି ( ସମୁଦ୍ରର ନବନୀତ )—୧ । ଚନ୍ଦ୍ର— Samudra nabanita 1. Moon. ୨ । ଅମୃତ— 2. Nectar.

ସମୁଦ୍ର ନେମି—ସଂ. ବି (ବହୁବ୍ରୀହି; ସମୁଦ୍ର ଅଟେ ନେମି=ପରିଧି Samudra nemi ଯାହାର)—ପୃଥିବୀ—The earth.

ସମୁଦ୍ର ପୀଡ଼ା—ସଂ. ବି (ଆଧୁନିକ ଇଂରାଜୀ ବ୍ୟବହାରମୂଳକ Samudra pirdā ପ୍ରୟୋଗ)—ଜାହାଜରେ ବସି ସମୁଦ୍ରରେ সমুদ্র পীড়া ଗଲା ବେଳେ ଜାହାଜର ଆନ୍ଦୋଳନ ଯୋଗୁଁ समुद्र पीड़ा ମୁଣ୍ଡ ବ୍ୟଥା, ବାନ୍ତି ଓ ଜର ଆଦି ହେବା ରୂପ ପୀଡ଼ା—Sea sickness.

ସମୁଦ୍ର ପୋକ—ଦେ. ବି—ଏକ ପ୍ରକାର ଡାଙ୍ଗ ପରି ଫଡ଼ିଙ୍ଗା—A Samudra poka kind of twig-like grasshopper. সমুদ্রের পোকা समुद्रका कीड़ा

ସମୁଦ୍ର ଫଳ—ସଂ. ବି—୧ । ଅବ୍ଧି ଫଳ; ବୃକ୍ଷ ବିଶେଷ (ରାଜନିର୍ଘଣ୍ଟ) Samudra phala —1.Name of a medicinal tree. [ଦ୍ର—ଏହା କଟୁ, ଉଷ୍ଣକର, ବାତଦୋଷ ନାଶକ, ଭୂତ ନିବାରକ, କଫ ଓ ଭ୍ରମବର୍ଦ୍ଧକ ( ରାଜନିର୍ଘଣ୍ଟ ); ଏଥିର ଫଳର ପ୍ରଲେପ ଦେଲେ ଚର୍ମରୋଗ ନଷ୍ଟ ହୁଏ; ଏଥିର ମୂଳ ବାତନାଶକ ଓ ସ୍ନାୟୁ ଦୌର୍ବଲ୍ୟରେ ହିତକର, ବାତଘ୍ନ, ଲୂତା ବିଷ ନାଶକ, ତ୍ରିଦୋଷଘ୍ନ, କଫ ଓ ଭ୍ରାନ୍ତି ନାଶକ (ଭାବ ପ୍ରକାଶ) ।] ୨ । କପିତ୍ଥ ଫଳ; କଇଥ (ଶବ୍ଦକୋଷ)—2. Elephant-apple.

ସମୁଦ୍ର ଫେଣ—ଦେ. ବି (ସଂ. ସମୁଦ୍ରଫେନ)—ସମୁଦ୍ରଫେନ (ଦେଖ) Samudra phena Samudra phena ( See ) সমুদ্র ফেনা ପ୍ରାଦେ. (ସିଂହଭୂମି) ବି—ଏକ ପ୍ରକାର ଧାନ— समुद्र फेन A species of paddy.

ସମୁଦ୍ର ଫେନ—ସଂ. ବି (୬ଷ୍ଠୀ ତତ୍)—୧ । ସମୁଦ୍ରର ତରଙ୍ଗମାନଙ୍କ Samudra phena ଆଘାତ ପ୍ରତିଘାତରେ ଉତ୍ପନ୍ନ ଫେଣ সমুদ্রফেনা —1. Sea-foam. ୨ । ସମୁଦ୍ରସ୍ଥ समुद्रफेन ଶମ୍ବୁକାଦିବର୍ଗର ପ୍ରାଣୀ ବିଶେଷର କଙ୍କାଳ-
ଫା. କଫେଦରିୟା 2. Sepia Officinalis; cuttle-
ଆ. ଜବଦୁଲ୍ ବହର୍ fish bone. [ଦ୍ର—ଏହା ଶୀତଳ,
ତେଁ. ସାମୁଦ୍ର ନାଲକେ କଷାୟ, ନେତ୍ରରୋଗହର, କଫଘ୍ନ ଓ
[ଅନ୍ୟ ସଂ. ନାମ— କଣ୍ଠାମୟଘ୍ନ, ରୁଚିକର ଓ ବିଷଦୋଷ
ଡିଣ୍ଡୀର, ଫେନ, ଅବ୍ଧିବ- ଏବଂ କର୍ଣ୍ଣଶୂଳ ରୋଗର ଔଷଧ ।
କ ମଳ, ଅବ୍ଧି କଫ, ସମୁଦ୍ର- ଏହା ଶଙ୍ଖ ପରି କଠିନ ପଦାର୍ଥ, କିନ୍ତୁ
କଫ, ଜଳହାସ ଫେନକ, ଚୂର୍ଣ୍ଣ ଥିବାରୁ ରଙ୍ଗ ଲଗାଇବା
ଅବ୍ଧି ଫେନ, ବାର୍ଦ୍ଧି ଫେନ, ପୂର୍ବରୁ ପାଲିସ କରିବାପାଇଁ କାଠର
ପୟୋଧିଜ, ସୁଫେନ, ଅସମାନ ଉପରେ ରଙ୍ଗକଲାବାଳା-
ଅମ୍ବୁଧିଶୀର, ସାମୁଦ୍ର] ମାନେ ସମୁଦ୍ର ଫେଣ ଘଷନ୍ତି ।]

ସମୁଦ୍ର ବକ୍ଷଃ—ସଂ. ବି (୬ଷ୍ଠୀ ତତ୍)—ସମୁଦ୍ରର ଉପରଭାଗ— Samudra bakshah The surface of the sea. (ସମୁଦ୍ର ବକ୍ଷ—ଦେ. ରୂପ)

**ସମୁଦ୍ର ବଚନ**—ସଂ. ବି—ସାମୁଦ୍ର ବଚନ (ଦେଖ)
Samudra bachana   Sāmudra bachana (See)

**ସମୁଦ୍ର ବଳୟ**—ସଂ. ବି (ରୂପକ ସମାସ)—ମନୁଷ୍ୟର ହାତକୁ ବଳୟ
Samudra balaya   ବେଢ଼ିଥିବା ପରି ପୃଥିବୀକୁ ବେଢ଼ିଥିବା ସମୁଦ୍ର—The sea surrounding the sea like a bangle encircling the hand.
ସଂ. ବିଣ (ବହୁବ୍ରୀହି; ସମୁଦ୍ର ହୋଇଛି ବଳୟ ଯାହାର)
[ ସମୁଦ୍ରମେଖଳ—ଅନ୍ୟ ବିଣ. ରୂପ ]   —ଚତୁର୍ଦ୍ଦିଗରେ ସମୁଦ୍ର-
ସମୁଦ୍ରବଳୟା, ସମୁଦ୍ର ମେଖଳା—ସ୍ତ୍ରୀ ବିଣ.   ଦ୍ୱାରା ବେଷ୍ଟିତ—Surrounded by the sea; sea-girt; ocean-girt.

**ସମୁଦ୍ରବହ୍ନି**—ସଂ ବି (୬ଷ୍ଠୀ ତତ୍)—ବଡ଼ବାନଳ—
Samudra bahni   Submarine fire.

**ସମୁଦ୍ରବାସୀ**—ସଂ ବିଣ. ପୁଂ (ସମୁଦ୍ର+ବସ୍ ଧାତୁ+କର୍ତ୍ତୃ. ଇନ୍, ୧ମା
Samudra bāsī   ୧ବ, ତୁଳନାକର ଗଙ୍ଗାବାସୀ = ଗଙ୍ଗା-କୂଳବାସୀ)—୧ । ସମୁଦ୍ର ତୀରରେ ବାସ କରୁଥିବା (ବ୍ୟକ୍ତି) (ବିଶ୍ୱକୋଷ)—1. (Person) Residing on the shore of the sea. ୨ । ସମୁଦ୍ରରେ ବାସକାରୀ (ଯଥା—ଜୀବ)—2. Living in the ocean.

**ସମୁଦ୍ର ବେଳା**—ସଂ. ବି (୬ଷ୍ଠୀ ତତ୍)—ସମୁଦ୍ରତୀର—
Samudra belā   Sea-shore.

**ସମୁଦ୍ରମତ୍ସ୍ୟ**—ସଂ. ବି—ସାମୁଦ୍ରିକ ମାଛ; ଲୁଣିମାଛ—
Samudra matsya   Seafish,
[ସମୁଦ୍ର ମାଛ—ଦେଶଜ ରୂପ]

**ସମୁଦ୍ରମଥ(ନ୍ଥ)ନ**—ସଂ. ବି (୬ଷ୍ଠୀ ତତ୍)—ହିନ୍ଦୁ ପୁରାଣରେ ବର୍ଣ୍ଣିତ
Samudra matha(ntha)na   ଦେବତା ଓ ଅସୁରମାନଙ୍କଦ୍ୱାରା ସମୁଦ୍ରର ଆଲୋଡ଼ନ—The churning of the ocean by the Gods and the demons as described in the Hindu mythology. [ଦ୍ର—ଦୁର୍ବାସାଙ୍କ ଶାପରୁ ଇନ୍ଦ୍ର ଶ୍ରୀହୀନ ହେବାରୁ ଲକ୍ଷ୍ମୀ ସ୍ୱର୍ଗରୁ ଯାଇ ସମୁଦ୍ର ଗର୍ଭରେ ବାସ କଲେ । ବ୍ରହ୍ମାଙ୍କ ଉପଦେଶ ଅନୁସାରେ ମନ୍ଦର ପର୍ବତକୁ ମନ୍ଥନ ଦଣ୍ଡ ଓ ବାସୁକୀକୁ ମନ୍ଥନ ରଜ୍ଜୁ କରି ଏକ ପାଖକୁ ଦେବତାଗଣ ଓ ଅନ୍ୟ ପାଖକୁ ଅସୁରମାନେ ଟାଣି ସମୁଦ୍ରକୁ ମୋହିଲେ । ଦେବାସୁର ମନ୍ଥନର ଫଳରେ ପ୍ରଥମେ ହଳାହଳ ବିଷ ବାହାରିଲା । ଏ ବିଷର ଜ୍ୱାଳାରେ ସମସ୍ତେ ଅସ୍ଥିର ହୋଇ ମହାଦେବଙ୍କୁ ସ୍ତବ କରିବାରୁ ସେ ସନ୍ତୁଷ୍ଟ ହୋଇ ଉକ୍ତ ବିଷକୁ ପାନ କଲେ । ତତ୍ପରେ ପୁଣି ମନ୍ଥନ ଚଳିଲା । ଏଥିରୁ ଚନ୍ଦ୍ର, ପାରିଜାତ, ଉଚ୍ଚୈଃଶ୍ରବା ଅଶ୍ୱ, ଐରାବତ ଗଜ, ଓ ସୁରଭୀ ଗାଈ ବାହାରିଲେ ଓ ଧନ୍ୱନ୍ତରୀ ଅମୃତ ଭାଣ୍ଡ ସହିତ ବାହାରିଲେ ଓ ଲକ୍ଷ୍ମୀ ବାହାରିଲେ । ଅସୁରମାନେ ଅମୃତ ଭାଣ୍ଡ ହରଣ କରିବାକୁ ଉଦ୍ୟତ ହେବାରୁ ବିଷ୍ଣୁ ମୋହିନୀ ରୂପ ଧରି ଅସୁରମାନଙ୍କୁ ବଞ୍ଚନା କରି ଦେବତାମାନଙ୍କୁ ଉକ୍ତ ଅମୃତ ଦେଲେ । ଏଥି ଯୋଗୁଁ ଦେବ ଓ ଅସୁରମାନଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ଲାଗିଲା । ନାରଦ ଆସି ଏ ଯୁଦ୍ଧ ନିବାରଣ କଲେ । ଦେବତାମାନଙ୍କ ଦ୍ୱାରା ହୃତ ଅସୁରମାନଙ୍କୁ ଅସୁରଗୁରୁ ଶୁକ୍ର ବଞ୍ଚାଇଥିଲେ । ଶ୍ରୀମଦ୍ଭାଗବତର ଅଷ୍ଟମ ସ୍କନ୍ଧରେ ୬ଷ୍ଠ ଠାରୁ ୧୨ଶ ଅଧ୍ୟାୟ ପର୍ଯ୍ୟନ୍ତ ସମୁଦ୍ର ମନ୍ଥନର ବିବରଣ ବର୍ଣ୍ଣିତ ହୋଇ-ଅଛି—ବିଶ୍ୱକୋଷ]

**ସମୁଦ୍ର ମାଳୀ**—ସଂ ବିଣ (ସମୁଦ୍ର+ମାଳା+ଇନ୍; ୧ମା. ୧ବ)—
Samudra mālī   ସମୁଦ୍ର ଦ୍ୱାରା ବେଷ୍ଟିତ—Sea-girt.
[ସମୁଦ୍ରମାଳିନୀ—ସ୍ତ୍ରୀ]   ସଂ. ବି—ପୃଥିବୀ—The earth.

**ସମୁଦ୍ର ମେଖଳ**—ସଂ. ବିଣ) (ବହୁବ୍ରୀହି; ସମୁଦ୍ର+ମେଖଳା+ଅ)-
Samudra mekhala   ସମୁଦ୍ରଦ୍ୱାରା ବେଷ୍ଟିତ—Sea-girt.
ସମୁଦ୍ରବସନ, ସମୁଦ୍ରାମ୍ବର, ସମୁଦ୍ରବସନ } ଅନ୍ୟରୂପ (ତଥା ସମୁଦ୍ରମେଖଳ ଦ୍ୱୀପ)
ସମୁଦ୍ରମେଖଳା; ସମୁଦ୍ରବସନା, ସମୁଦ୍ରାମ୍ବରା, ସମୁଦ୍ରବସନା } —ସ୍ତ୍ରୀ

**ସମୁଦ୍ର ମେଖଳା**—ସଂ. ବି—୧ । (ବହୁବ୍ରୀହି; ସମୁଦ୍ର ଏହାର ଗୁରିଅଡ଼େ
Samudra mekhalā   ବେଢ଼ିଥାଏ) ପୃଥିବୀ—The earth.
ସମୁଦ୍ରବସନା; ସମୁଦ୍ରାମ୍ବରା—ଅନ୍ୟରୂପ   ୨ । (ରୂପକ କର୍ମଧାରୟ) ମନୁଷ୍ୟର କଟିଦେଶକୁ ମେଖଳା ବେଢ଼ିଥିବା ପରି ପୃଥିବୀକୁ ବେଢ଼ିଥିବା ସମୁଦ୍ର—2. The sea surrounding the earth like a girdle. ସଂ. ବିଣ. ସ୍ତ୍ରୀ—ସମୁଦ୍ର ମେଖଳର ସ୍ତ୍ରୀଲିଙ୍ଗ-Feminine of Samudra-mekhala.

**ସମୁଦ୍ର ଯାତ୍ରା**—ସଂ. ବି (୭ମୀ ତତ୍)—ଦେଶାନ୍ତରକୁ ଯିବାପାଇଁ ସମୁଦ୍ର-
Samudra jātrā   ଭ୍ରମଣ—Sea voyage, [ଦ୍ର—ପୂର୍ବେ ଆର୍ଯ୍ୟମାନେ ସମୁଦ୍ରଯାତ୍ରା କରୁଥିଲେ; କିନ୍ତୁ କଳି-ଯୁଗରେ ସମୁଦ୍ର ଯାତ୍ରା କେତେକ ଶାସ୍ତ୍ରରେ ନିଷିଦ୍ଧ ହୋଇ-ଅଛି । ମନୁ (୩ । ୧୫୮) ସମୁଦ୍ରଯାତ୍ରାକାରୀମାନଙ୍କୁ ଅପାଙ୍‌କ୍ତେୟ କହିଅଛନ୍ତି । ପୂର୍ବେ ଆର୍ଯ୍ୟମାନେ ସମୁଦ୍ର-ଯାତ୍ରା କରୁଥିବା ବିଷୟ ଏହି ନିଷେଧ ବଚନରୁ ଜଣାଯାଏ । କେହି କେହି କହିଅଛନ୍ତି ଯେ, ତୀର୍ଥଯାତ୍ରା, ଧର୍ମାର୍ଥଯାତ୍ରା, ବାଣିଜ୍ୟ ଓ ବିଦ୍ୟାଶିକ୍ଷାର୍ଥ ସମୁଦ୍ରଯାତ୍ରା କରି ଯାଇପାରେ । କିନ୍ତୁ ତୀର୍ଥଯାତ୍ରା ଛଡ଼ା ଅନ୍ୟ ଉଦ୍ଦେଶ୍ୟରେ ସମୁଦ୍ରଯାତ୍ରା କରିଥିବା ବ୍ୟକ୍ତିଙ୍କର ପ୍ରାୟଶ୍ଚିତ୍ତ କରିବା ଉଚିତ । ଐତି-ହାସିକ ଯୁଗରେ ଭାରତୀୟ ଓ କଳିଙ୍ଗ ବାସୀମାନେ ଯାଭା, ବାଲି ଆଦି ଦ୍ୱୀପକୁ ବାଣିଜ୍ୟ ଓ ଉପନିବେଶ ସ୍ଥାପନାର୍ଥ ଓ ଧର୍ମପ୍ରଚାରାର୍ଥ ଯାଇ ଥିବାର ବହୁ ପ୍ରମାଣ ମିଳେ—ବିଶ୍ୱକୋଷ]

**ସମୁଦ୍ର ଯାନ**—ସଂ. ବି (ମଧ୍ୟପଦଲୋପୀ କର୍ମଧା)—୧ । (୬ଷ୍ଠୀ ତତ୍)
Samudra jāna   ଅର୍ଣ୍ଣବ ପୋତ; ଜାହାଜ; ବୋଇତ—1. Ship; ocean going vessel. ୨ । (୭ମୀ ତତ୍) ସମୁଦ୍ର ଯାତ୍ରା—2. A voyage.

ସମୁଦ୍ର ଲବଣ—ସଂ. ବି—ସମୁଦ୍ରର ଜଳରୁ ଜାତ ଲବଣ; କରକଚ ଲୁଣ—
Samudra labaṇa Sea salt.
(ସମୁଦ୍ରଲୁଣ—ଦେ· ରୂପ)

ସମୁଦ୍ର ଲହଡ଼ା(ଢ଼ି)—ଦେ. ବି (ସଂ. ସମୁଦ୍ର+ଲହରୀ)—ସମୁଦ୍ର ଲହରୀ
Samudra lahaṛā(ṛi) (ଦେଖ)—Samudra laharī
ସମୁଦ୍ର କୀ ଢେଉ **समुद्र लहर** (See)

ସମୁଦ୍ର **ଲହରୀ**—ସଂ. ବି ( ୬ଷ୍ଠୀ ତତ୍ )—ସମୁଦ୍ରର ଉତ୍ତାଳ ତରଙ୍ଗ;
Samudra laharī ସମୁଦ୍ର ପାଣିର ପବନର ଆଘାତରୁ ଜାତ
ସମୁଦ୍ରତରଙ୍ଗ, ସମୁଦ୍ରୋର୍ମି, ସମୁଦ୍ରୋଚ୍ଛ୍ୱାସ } ଅନ୍ୟରୂପ ବଡ଼ ବଡ଼ ଢେଉ—
Big waves; billows; the waves of the sea.

ସମୁଦ୍ର ସୁଭଗା—ସଂ. ବି—ଗଙ୍ଗାନଦୀ—
Samudra subhagā The river Ganges (Apte).

ସମୁଦ୍ର ସ୍ନାନ—ସଂ. ବି (୭ମୀ ତତ୍)—ସମୁଦ୍ର ଜଳରେ ଗାଧୋଇବା—
Samudra snāna Sea bath.

ସମୁଦ୍ରା—ସଂ. ବି—୧ । ଆମ୍ବଅଦା; ଅମ୍ବକଷିଅ ଗଛ—1. The
Samudrā plant Zedoary ( Apte ). ୨ । ଶମୀଗଛ—
2. Acacia Suma (tree).

ସମୁଦ୍ରାନ୍ତ—ସଂ. ବି ( ୬ଷ୍ଠୀ ତତ୍ )—୧ । ସମୁଦ୍ରକୂଳ—1. The
Samudrānta sea shore ( Apte ). ୨ । ଜାଇଫଳ—
2. Nutmeg ( Apte ). ସଂ. ବିଣ (ବହୁବ୍ରୀହି)—
ସମୁଦ୍ରଦ୍ୱାରା ସୀମାବଦ୍ଧ—Bounded by the sea.

ସମୁଦ୍ରାନ୍ତା—ସଂ. ବି ( ବୈଦ୍ୟକ )—୧ । ପିଡ଼ଙ୍ଗ ଶାଗ; ଧୁକୁଳା—
Samudrāntā 1. A potherb; Trigonella Corniculata; ୨ । କାର୍ପାସୀ; କପାଗଛ—2. Cotton
plant; Gossypium Herbaceum. ୩ । ଦୁରାଲଭା—3. A thorny shrub; Albagi Maurorum. ୪ । ପୃଥିବୀ—4. The earth.

ସମୁଦ୍ରାରୁ—ସଂ. ବି ( ସମୁଦ୍ର+ଆ+ଋ ଧାତୁ=ଗମନ କରିବା+
Samudrāru କର୍ତ୍ତୃ· ଉ )—୧ । କୁମ୍ଭୀର—1. Crocodile.
୨ । ତିମିଙ୍ଗିଳ ମତ୍ସ୍ୟ—2. A large fabulous animal; devourer of whales. ୩ । ସେତୁବନ୍ଧ;
ରାମଙ୍କଦ୍ୱାରା ନିର୍ମିତ ସମୁଦ୍ର ସେତୁ—3. Adam's bridge constructed by Rāmachandra.

ସମୁଦ୍ରୀ(ଦ୍ରି)ୟ—ସଂ. ବିଣ ( ସମୁଦ୍ର+ଈୟ; ଇୟ )—୧ । ସାମୁଦ୍ରିକ;
Samudrī(dri)ya ସମୁଦ୍ର ସମ୍ବନ୍ଧୀୟ—1. Relating to
( ସମୁଦ୍ର୍ୟ—ଅନ୍ୟରୂପ ) the sea; maritime; marine.
oceanic. ୨ । ସମୁଦ୍ରଜାତ—2. Born of the sea.

ସମୁଧା ସମୁଧି—ଦେ. ବି—ସମଧା ସମଧି ( ଦେଖ )
Samudhā samudhi Samadhā samadhi ( See )

ସମୁଧୀ—ଦେ· ବି· ପୁଂ ( ସଂ. ସମ୍ବନ୍ଧୀ )—ସମୁଦୀ ( ଦେଖ )—
Samudhī ବେଆଇ **समधी** Samudī ( See )
[ ସମୁଧୁଣୀ, ସମୁଧିଅଣୀ—ସ୍ତ୍ରୀ ]

ସମୁନାଥ—ଗ୍ରା· ବି ( ନାମ ) ( ସଂ. ସୋମନାଥ )—ସୋମନାଥର ଡାକ
Samunātha ନାମ—Name for calling Somanātha.
( ସମୁନାଥିଆ—ଅନାଦରାର୍ଥକରୂପ )

ସମୁନାଥ ବ୍ରତ—ଗ୍ରା. ବି—ସୋମନାଥ ବ୍ରତ ( ଦେଖ )
Samunātha brata Somanātha brata ( See )

ସମୁନ୍ଦନ—ସଂ. ବି ( ସମ୍+ଉନ୍ଦ୍ ଧାତୁ=ଓଦା କରିବା; ଓଦା ହେବା
Samundana +ଭାବ. ଅନ )—୧ । ଓଦା କରିବା—
1. Moistening ( Apte ). ୨ । ଆର୍ଦ୍ରତା—
2. Wetness; moisture ( Apte ).

ସମୁନ୍ଦୀ(ନ୍ଧୀ)—ଦେ. ବି· ପୁଂ ( ସଂ. ସମ୍ବନ୍ଧୀ )—ସମୁଦୀ ( ଦେଖ )—
Samundī(ndhī) Samudī ( See ) [ ଉ—କନ୍ୟା ଜାତ
ବେଆଇ **समधी** ତୁ ରହୁ ଦେଇ । ସମୁନ୍ଦୀ ଚରଣେ ବନ୍ଦୋଇ—
ଉପେନ୍ଦ୍ର· ପ୍ରେମସୁଧାନିଧି । ]
[ ସମୁନ୍ଦ( ଧି )ଅଣୀ, ସମୁନ୍ଦ( ନ୍ଧୁ )ଣୀ—ସ୍ତ୍ରୀ ]

ସମୁନ୍ନ—ସଂ. ବିଣ (ସମ୍+ଉନ୍ଦ ଧାତୁ=ଓଦା ହେବା+କର୍ତ୍ତୃ. ତ)—
Samunna ଆର୍ଦ୍ର; ଓଦା—Moist; wet ( Apte ).

ସମୁନ୍ନତ—ସଂ. ବିଣ (ସମ୍+ଉନ୍ନତ)—୧। ଅତ୍ୟନ୍ତ ଉଚ୍ଚ—1. Very
Samunnata high; lofty; elevated. ୨ । ଉଚ୍ଚପଦସ୍ଥ—
[ ସମୁନ୍ନତି, ସମୁନ୍ନୟନ—ଅନ୍ୟରୂପ ] 2. Of high position
exalted. ୩ । ମହତ୍—3. Great; noble; sublime. ୪ । ଉନ୍ନତି ପ୍ରାପ୍ତ; ସମୃଦ୍ଧ—4. Prosperous; improved. ୫ । ଉପରକୁ ଟେକା ଯାଇଥିବା; ଉତ୍ତୋଳିତ—5. Lifted up; upraised.
( Apte ). ୬ ଗର୍ବିତ—6. Proud ( Apte )
୭ । ନ୍ୟାୟପ୍ରିୟ—7. Upright; just ( Apte )
୮ । ବାହାରକୁ ବାହାରିଥିବା—8. Projecting (Apte).

ସମୁନ୍ନତି—ସଂ· ବି (ସମ୍+ଉନ୍ନତି)—୧ । ବିଶେଷ ଉନ୍ନତି; ସମୃଦ୍ଧି—
Samunnati 1. Much improvement; prosperity.
୨ । ଉଚ୍ଚ ଅବସ୍ଥା ପ୍ରାପ୍ତି—2. Elevation; exaltation ୩ । ଉଚ୍ଚତା—3. Height; loftiness.
୪ । ଉତ୍ତୋଳନ—4. Lifting; raising ( Apte ).
୫ । ଉଚ୍ଚ ଅବସ୍ଥା—5. Eminence; high position ( Apte ). ୬ । ସମ୍ମାନ; ମର୍ଯ୍ୟାଦା—6. Dignity ( Apte ). ୭ । ବୃଦ୍ଧି—7. Increase
( Apte ). ୮ । ସଫଳତା—8. Success (Apte).
୯ । ଗର୍ବ—9. Pride; arrogance ( Apte ).

ସମୁନ୍ନଦ୍ଧ—ସଂ· ବିଣ ( ସମ୍+ଉତ୍+ନହ୍ ଧାତୁ=ବାନ୍ଧିବା+କର୍ତ୍ତୃ.
Samunnaddha ତ)—୧ । ଗର୍ବିତ—1. Bloated with
pride; arrogant. ୨। ପଣ୍ଡିତମନ୍ୟ—2. Thinking one's self as very learned; conceited. ୩ । ପ୍ରଧାନ; ଶ୍ରେଷ୍ଠ—3. Principal;
supreme. ୪ । ଉଦ୍ବଦ୍ଧ—4. Bound down; hung up; suspended. ୫ । ବଦ୍ଧ—5. Bound.

୬ । ସମୁନ୍ନତ, ସମୁନ୍ନତ—6. Elevated; exalted (Apte). ୭ । ସ୍ଫୀତ—7. Swollen (Apte). ୮ । ପୂର୍ଣ୍ଣ—8. Full (Apte)

**ସମୁନ୍ନୟନ**—ସଂ. ବି (ସମ୍+ଉନ୍ନୟନ)—୧ । କୌଣସି ବସ୍ତୁକୁ ଉନ୍ନତ କରିବା—1. Act of elevating. Samunnayana (ସମୁନ୍ନିନୀ—ଅନ୍ୟରୂପ) ୨ । ଉପରକୁ ଉଠାଇବା; ଉତ୍ତୋଳନ—2. Lifting or raising up. ୩ । ଉଦ୍ଭାବନ—3. Invention. ୪ । ଉତ୍କ୍ଷେପଣ; ଉପରକୁ ଫୋପାଡ଼ିବା—4. Throwing up. ୫ । ପ୍ରାପ୍ତି—5. Getting; obtaining (Apte). ୬ । ଘଟଣା—6. Occurence; event (Apte).

**ସମୁନ୍ମୂଳନ**—ସଂ. ବି (ସମ୍+ଉନ୍ମୂଳନ)—ଉପାଡ଼ି ଦେବା; Samunmūlana ନିର୍ମୂଳୀକରଣ—Uprooting; (ସମୁନ୍ମୂଳିତ—ବିଣ) eradication.

**ସମୁପଗମ**—ସଂ. ବି (ସମ୍+ଉପଗମ)—୧ । ନିକଟକୁ ଆସିବା; Samupagama ନିକଟାଗମନ—1. Approach (ସମୁପଗତ—ବିଣ) (Apte). ୨ । ସଂସ୍ପର୍ଶ—2. Contact (Apte).

**ସମୁପଚିତ**—ସଂ. ବିଣ (ସମ୍+ଉପ+ଚି ଧାତୁ=ଉନ୍ନୟନ କରିବା, Samupachita ଉଦାକରିବା+କର୍ମ. ତ)—୧ । ସମ୍ୟକ୍ (ସମୁପଚୟ—ବି) ବୃଦ୍ଧିପ୍ରାପ୍ତ—1. Much enlarged or increased. ୨ । ବହୁଳୀକୃତ—2. Magnified.

**ସମୁପଜୋଷସ୍**—ସଂ. ଅ (ସମ୍+ଉପ୍+ଜୁଷ ଧାତୁ=ସେବାକରିବା Samupajoshas +ଭାବ. ଅସ୍)—୧ । ଇଚ୍ଛାର ସମ୍ପୂର୍ଣ୍ଣ ଅନୁକୂଳରେ—1. Entirely according to wish (Apte) ୨ । ସୁଖରେ; ଆନନ୍ଦରେ—2. Happily (Apte).

**ସମୁପଧାନ**—ସଂ. ବି (ସମ୍+ଉପ+ଧା ଧାତୁ=ଧାରଣ କରିବା+ Samupadhāna ଭାବ. ଅନ)—୧ । ସମୁତ୍ପାଦନ— (ସମୁପହିତ—ବିଣ) 1. Producing. ୨ । ସ୍ଥାପନ—2. Placing. ୩ । ରକ୍ଷାକରିବା—3. Saving.

**ସମୁପବେଶ**—ସଂ. ବି (ସମ୍+ଉପ+ବିଶ୍ ଧାତୁ ଭାବ. ଅ)— Samupabeśa ୧ । ଉପବେଶନ—1. Sitting. (ସମୁପବିଷ୍ଟ—ବିଣ) ୨ । ଅଭ୍ୟର୍ଥନା—2. Welcoming; entertaining. ୩ । ଏକତ୍ର ବସିବା—3. Sitting down together.

**ସମୁପବେଶନ**—ସଂ. ବି (ସମ୍+ଉପ+ବିଶ୍ ଧାତୁ+ଅଧି. ଅନ)— Samupabeśana ୧ । ଗୃହ; ବାସସ୍ଥାନ—1. Residence; habitation (Apte). ୨ । (ସମ୍+ଉପ+ବିଶ୍, ଧାତୁ ଣିଚ୍+ଭାବ. ଅନ)—୨ । ବସାଇଦେବା—2. Setting down.

**ସମୁପଯୁକ୍ତ**—ସଂ. ବିଣ (ସମ୍+ଉପଯୁକ୍ତ)—ସମ୍ୟକ୍ ଉପଯୁକ୍ତ— Samupajukta Befitting. (ସମୁପଯୋଗ୍ୟ—ଅନ୍ୟରୂପ)

**ସମୁପସ୍ଥିତ**—ସଂ. ବିଣ (ସମ୍+ଉପସ୍ଥିତ)—୧ । ଉପସ୍ଥିତ; ପହଞ୍ଚିଥିବା- Samupasthita 1. Present; arrived. (ସମୁପସ୍ଥାନ, ସମୁପସ୍ଥିତି—ବି) ୨ । ସମୁପେତ (ଦେଖ) 2. Samupeta (See). ୩ । ଘଟିଥିବା—3. Happened; occurred. ୪ । ନିକଟସ୍ଥ—4. Near; proximate

**ସମୁପାର୍ଜନ**—ସଂ. ବି (ସମ୍+ଉପାର୍ଜନ)—୧ । ଏକତ୍ର ଅର୍ଜନ— Samupārjana 1. Acquiring together. (ସମୁପାର୍ଜିତ—ବିଣ) ୨ । ଏକସମୟରେ ଅର୍ଜନ—2. Simultaneous acquisition.

**ସମୁପେତ**—ସଂ. ବିଣ (ସମ୍+ଉପେତ)—୧ । ସମାଗତ, ଏକତ୍ର ଉପସ୍ଥିତ- Samupeta 1. Come together; assembled. ୨ । ଉପସ୍ଥିତ—2. Arrived at (Apte). ୩ । (ଦ୍ଵାରା) ଅଧ୍ୟୁଷିତ—3. Inhabited by (Apte). ୪ । ଯୁକ୍ତ; ବିଶିଷ୍ଟ—4. Furnished with; possessed of [Apte].

**ସମୁପେୟିବାନ୍**—ସଂ. ବିଣ. ପୁଂ (ସମ୍+ଉପ+ଇ ଧାତୁ=ଯିବା+ Samupeyibān କର୍ତ୍ତୃ. ବସ୍; ସମୁପେୟିବସ୍ ଶବ୍ଦ, ୧ମା. ୧ବ)— (ସମୁପେୟୁଷୀ—ସ୍ତ୍ରୀ) ୧ । ସମୁପସ୍ଥିତ (ଦେଖ)—1. Samupasthita. (See) ୨ । ସମୁପେତ (ଦେଖ)— 2. Samupeta. (See)

**ସମୁପୋଢ଼**—ସଂ. ବିଣ (ସମ୍+ଉପ+ବହ୍. ଧାତୁ=ବହନ କରିବା+ Samupordha କର୍ମ. ତ)—୧ । ଦମିତ—1. Controlled; checked; restrained. ୨ । ସଞ୍ଜାତ; ସମୁତ୍ପନ୍ନ—2. Produced; born. ୩ । ସମାସନ୍ନ—3. Impending. ୪ । ସମୁଦ୍ଗତ; ଉପରକୁ ଉଠିଥିବା—4. Risen; gone upwards. ୫ । ସଂଗତ—5. Assembled; collected. ୬ । ବୃଦ୍ଧିପ୍ରାପ୍ତ; ବର୍ଦ୍ଧିତ—6. Increased. (Apte). ୭ । ଆରବ୍ଧ—7. Begun. (Apte). ୮ । ନିକଟକୁ ଆଗତ—8. Brought near. (Apte).

**ସମୁର୍ବ(ର୍ବ)ର**—ସଂ. ବିଣ (ସମ୍+ଉର୍ବର)—ଅତ୍ୟନ୍ତ ଉର୍ବର—Very Samurba(rbba)ra fertile. (ଉ—× × ×କରେ ସମୁର୍ବର, ସ୍ଥାନ-ଉଚ୍ଚ-ପୀଡ଼-ଢଳେ ହୃଦୟ-ଉପରେ । ଚିନ୍ତାମଣି. ଚକ୍ରମାଦ୍ରଢ୍ୟ ।)

**ସମୁଲ୍ଲ(ଲ୍ଲା)ସିତ**—ସଂ. ବି (ସମ୍+ଉଲ୍ଲସିତ; ଉଲ୍ଲାସିତ)—୧ । ଅତ୍ୟନ୍ତ Samulla(llā)sita ଆନନ୍ଦିତ; ସମୁତ୍ଫୁଲ୍ଲ—1. Rejoic- (ସମୁଲ୍ଲାସ—ବି) ing; over-joyed; greatly delighted; exhilarated. ୨ । ଶୋଭିତ—2. Shining; looking beautiful. ୩ । କ୍ରୀଡ଼ାଶୀଳ—3. Playful. ୪ । ଅତି ଉଜ୍ଜ୍ୱଳ—4. Very brilliant.

**ସମୁଲ୍ଲସିବା**—ଦେ. କ୍ରି (ପଦ୍ୟ)—ସମୁଲ୍ଲସିତ ହେବା—To be glad or delighted. (ଉ—ହୃଦ ପଦ୍ମ ବିଭବ ସମୁଲ୍ଲସି ଥରେ । କବିସୂର୍ଯ୍ୟ. ସଂଗୀତ ।)
Samullasibā
সম্মুল্লসিত হওয়া **समुल्लसित होना**

**ସମୁଲ୍ଲାସିବା**—ଦେ. କ୍ରି (ପଦ୍ୟ) (ସମୁଲ୍ଲସିବାର ଣିଜନ୍ତ ରୂପ)—ଉଲ୍ଲାସିତ କରିବା; ଆନନ୍ଦିତ କରାଇବା—To delight. (ଉ—କନ୍ଦେ ବସୁନ୍ଧୁରଗର୍ଭ ଅହେତୁକତାରେ ଗହେଗୁଣରେ ସମୁଲ୍ଲାସିଲ୍ଲ ରେ । କବିସୂର୍ଯ୍ୟ. ସଙ୍ଗୀତ ।)
Samullāsibā
সমুল্লাসিত করা **समुल्लसित करना**

**ସମୁଲ୍ଲେଖ**—ସଂ. ବି. (ସମ୍+ଉଲ୍ଲେଖ)—୧ । ସମ୍ୟକ୍ ଉଲ୍ଲେଖ—1. Special mention. ୨ । ଖନନ; (ସମୁଲ୍ଲେଖନ—ଅନ୍ୟରୂପ) ଖୋଦନ—2. Engraving. ୩ । [ ସମୁଲ୍ଲିଖିତ, ସମୁଲ୍ଲେଖିତ—ବିଣ ] ଘର୍ଷଣ କରିବା—3. Scratching. ୪ । ଚାଞ୍ଛିବା—4. Scraping. ୫ । କଥନ—5. Talking, speaking.
Samullekha

**ସମୂଢ଼**—ସଂ. ବିଣ (ସମ୍+ବହ୍ ଧାତୁ=ବହନ କରିବା+କର୍ମ.ତ)—୧ । ଉଢ଼; ବିବାହିତ—1. Married. ୨। ଧୃତ—2. Caught. ୩ । ରାଶୀକୃତ—3. Heaped up; accumulated. ୪ । ଶୋଧିତ—4 Rectified; purified. ୫ । ଭୁଗ୍ନ; କୁବ୍ଜୀକୃତ—5. Bent; crooked. ୬ । ସଦ୍ୟୋଜାତ—6. Produced afresh. ୭ । ପରିଷ୍କୃତ—7. Cleansed. ୮। ଦମିତ—8. Restrained. ୯ । ଅନୁଦ୍ଧତ—9. Tranquilised. ୧୦ । ସଙ୍ଗତ—10. Associated. ୧୧ । ଏକତ୍ରୀକୃତ—11. Assembled. (Apte) ୧୨ । ସଗୃହୀତ—12. Collected. (Apte) ୧୩। ଗୁଡ଼ିଅଛି ଅଚ୍ଛନ୍ନ—13. Enveloped. ( Apte ). ୧୪ । ବାହିତ—14. Borne along. ( Apte ) ୧୫। ନୀୟମାନ—15. Led; conducted. (Apte)
Samūrḍha

**ସମୂରୁ(ର)**—ସଂ. ବି (ସମ୍=ଶୋଭନ+ଉରୁ ପାହାର; ବହୁବ୍ରୀହି)—ଏକପ୍ରକାର ମୃଗ—A species of deer. (ସମୂରକ—ଅନ୍ୟରୂପ)
Samūru(ra)

**ସମୂଳ**—ସଂ. ବିଣ (ସ=ସହ+ମୂଳ)—୧ । ମୂଳ ସହିତ—1. With the root; with the root attached to it. ୨ । କାରଣ ସହିତ; [ ନିର୍ମୂଳ, ଅମୂଳକ—ବିପରୀତ ] ସକାରଣ—2. Having foundation; well-founded. ୩ । ସହେତୁକ—3. Having cause. ଦେ. କ୍ରି. ବିଣ (ସଂ. ସମୂଳଂ)—ସମୂଳେ (ଦେଖ)—Samūle (See). ଦେ. ବିଣ—ନିଶ୍ଚିତ, ସ୍ଥିର—Ascertained (ଉ—ବନ୍ଦୀ କରିଛି ରମଣୀମଣିଙ୍କ ସମୂଳ କରିବା ଭାବି । ଭଞ୍ଜ. ବୈଦେହୀଶବିଳାସ ।)
Samūla (ସମୂଳକ—ଅନ୍ୟରୂପ)
সমূল **समूल**
স্থির **स्थिर**

**ସମୂଳେ**—ଦେ. କ୍ରି. ବିଣ (ସଂ. ସମୂଳଂ)—୧ । ମୂଳ ବା ଚେର ସହିତ—1. With root. ୨ । ସମ୍ପୂର୍ଣ୍ଣରୂପେ—2. Completely. ୩ । ଆଦ୍ୟକୁ ମିଶାଇ—3. Including the beginning. ୪ । ଆଦ୍ୟରୁ ଆରମ୍ଭ କରି—4. From the beginning. ୫ । ମୂଳପୋଛି କରି—5. From the very root; by tearing up the root.
Samūle
সমূলে **समूल**

**ସମୂଳେ(ସମୂଳରେ) ନାଶ(ନଷ୍ଟ, ବିନାଶ, ନିର୍ମୂଳ) ହେବା (ପାଇବା, ଲଭିବା)**—ଦେ. କ୍ରି—୧ । କୁଳ ଲୋପ ହେବା—1. To be extinct. ୨ । ମୂଳ ସହିତ ଉଚ୍ଛେଦପ୍ରାପ୍ତ ହେବା; ସମୁତ୍ପାଟିତ ହେବା—2. To be eradicated. ୩ । ଉଚ୍ଛିନ୍ନ ହେବା—3. To be exterminated.
Samūle(samūlare) nāśa (nashṭa, bināśa, nirmūla) hebā (pāibā, labhibā)
সমূলে নির্মূল (নষ্ট; নাশ) হওয়া **समूल नाश होना**

**ସମୂଳେ ନିର୍ମୂଳ**—ଦେ. ବି (ସଂ. ବାକ୍ୟ "ସମୂଳଂ ବିନଶ୍ୟତି"=ମୂଳ ସହିତ ନାଶ ହେବା)—(ସମୂଳେ ବିନଶ୍ୟ[ ଶ ]ତି—ଅନ୍ୟରୂପ) ୧ । ମୂଳୋଚ୍ଛେଦ; ବିନାଶ—1. Eradication; extinction. ୨। କୁଳ ଲୋପ—2. Extinction; extermination.
Samūle nirmūla
সমূলে নির্মূল **समूल नाश**

**ସମୂହ**—ସଂ. ବି (ସମ୍+ବହ୍ ଧାତୁ=ବହନ କରିବା+କର୍ତ୍ତ ଅ)—୧ । ସମୁଦାୟ; ସମସ୍ତ—1. All; whole; entirety. ୨ । ରାଶି—2. Heap; collection. ୩ । ନିବହ; ଗଣ; ସମାହାର—3. Multitude; assemblage; aggregate. ୪ । ଦଳ—4. Flock; troop; (Apte). ୫ । (ସମ୍+ଊହ୍ ଧାତୁ=ତର୍କ କରିବା+ଭାବ ଅ)—ସମ୍ୟକ୍ ତର୍କ—5. Special argument. ୬ । ବହୁତ ତର୍କ—6. Much argument. ୭ । ଅତ୍ୟନ୍ତ ସନ୍ଦେହ—7. Great doubt. ଦେ. ବିଣ.—୧ । ସମୁଦାୟ—1. All; entire; whole. ୨ । ବହୁ; ଅନେକ—2. Many; much. ୩ । ଏକ ଜାତୀୟ ବହୁ—3. Many of the same class or species. ୪ । ପ୍ରଚୁର; ଅତ୍ୟନ୍ତ; ଅତ୍ୟଧିକ—4. Excessive. [ ଦ୍ର—ଅନ୍ୟ ଶବ୍ଦ ପରେ ବ୍ୟବହୃତ ହେଲେ ବହୁବଚନ ସୂଚନା କରେ । ଯଥା—ପ୍ରାଣି ସମୂହ ।]
Samūha
সমূহ **समूह** ଦେ. ବି—ଗ୍ରାମର ବା ସମାଜର ସମ୍ମିଳିତ ବ୍ୟକ୍ତିଗଣ ବା ସଙ୍ଘ—All the members of a community acting jointly. [ ସଂସ୍କୃତ ଭାଷାରେ ସମୂହ, ସମୁଦାୟ, ଅଧିକାଂଶ ପ୍ରଭୃତି ଶବ୍ଦ କେବଳ ବିଶେଷ୍ୟ ରୂପେ ବ୍ୟବହୃତ ହୁଏ । ମାତ୍ର ଓଡ଼ିଆରେ ଏସବୁ ଶବ୍ଦ ବିଶେଷ୍ୟ ଓ ବିଶେଷଣ ଦୁଇ ଭାବରେ ବ୍ୟବହୃତ ହୋଇଥାଏ ।]

**ସମୂହ କ୍ଷତି**—ସଂ. ବି—୧ । ଅତ୍ୟନ୍ତ କ୍ଷତି—Much loss. ୨ ।
Samūha kshati ସବୁ ଦିଗରେ କ୍ଷତି—2. Loss on all sides. ୩ । ଯେଉଁ କ୍ଷତି ସମସ୍ତ ସମାଜର ଅଟେ—3. General loss. [ଦ୍ର—ଏହିପରି ସମୂହ ବିପଦ, ସମୂହ ଲାଭ ସମୂହହିତ, ସମୂହ ମଙ୍ଗଳ ଇତ୍ୟାଦି ଭାଷାରେ ବ୍ୟବହୃତ ହୁଏ । ]

**ସମୂହନ**—ସଂ. ବି (ସମ୍ + ବହ୍ ଧାତୁ + ଭାବ. ଅନ)-୧ । ଏକତ୍ରୀ କରଣ-
Samūhana 1. Bringing together. ୨ । ସଙ୍ଗ୍ରହ-2. Collection; compilation.

**ସମୂହନୀ**—ସଂ. ବି [ସମୂହ=(ଅଳଅର) ସଙ୍ଗି + ନୀ ଧାତୁ=ନେବା
Samūhanī + କର୍ତ୍ତୃ ଅ + ସ୍ତ୍ରୀ ଈ]—ସମ୍ମାର୍ଜନୀ; ଝାଡୁ—Broom; sweeping brush.

**ସମୂହରେ କାମ କରିବା**—ଦେ. କ୍ରି—ବହୁଲୋକ ସମ୍ମିଳିତ ହୋଇ
Samūhare kāma karibā କାର୍ଯ୍ୟ କରିବା—To act conjointly.
সমূহে কায করা
**समूहमें काम करना**

**ସମୂହାବଲମ୍ବନ ଜ୍ଞାନ**—ସଂ. ବି (ଦର୍ଶନ ଶାସ୍ତ୍ର)—ବହୁତା ବା ସମାହାର
Samuhābalambana jñāna ସଂକ୍ରାନ୍ତ ଜ୍ଞାନ—(philosophy) Perception of simultaneity or entity.

**ସମୂହ୍ୟ**—ସଂ. ବି (ସମ୍ + ବହ୍ ଧାତୁ + କର୍ମ. ଯ)-୧ । ଯଜ୍ଞୀୟ ଅଗ୍ନି-
Samūhya ବିଶେଷ—1. A kind of sacrificial fire. ୨ । ଯଜ୍ଞାଗ୍ନିର ସଂସ୍କାର ବିଶେଷ—2. A kind of vedic ritual for consecration of fire. ସଂ. ବିଣ ( ସମ୍ + ଊହ ଧାତୁ + କର୍ମ ଯ )—ତର୍କଣୀୟ—Arguable.

**ସମୃଦ୍ଧ**—ସଂ. ବିଣ (ସମ୍ + ଋଧ୍ ଧାତୁ=ବୃଦ୍ଧି ପାଇବା + କର୍ତ୍ତୃ. ତ)—
Samṛuddha ୧ । ସମ୍ୟକ୍ ବୃଦ୍ଧି ପ୍ରାପ୍ତ—1. Much in-
(ସମୃଦ୍ଧି—ବି) creased; full grown. ୨ । ସମୁନ୍ନତ—2. Exalted; elevated. ୩ । ବିଭବଶାଳୀ; ସଂପତ୍ତିବାନ୍; ଧନପୂର୍ଣ୍ଣ—3. Rich; wealthy. ୪ । ସମୃଦ୍ଧିଯୁକ୍ତ; ଐଶ୍ୱର୍ଯ୍ୟଶାଳୀ—4. Prosperous; thriving; flourishing. ୫ । କଲ୍ୟାଣ ଯୁକ୍ତ—5. Auspicious; blessed; blissful. ୬ । (+ କର୍ମ. ତ) ଉତ୍ପନ୍ନ; ଜାତ—6. Born; produced. ୭ । ସୁଖୀ—7. Happy. ୮ । ଭାଗ୍ୟବାନ୍—8. Fortunate. ୯ । ଫଳ ପୂର୍ଣ୍ଣ—9. Fruitful (Apte). ୧୦ । ପୂର୍ଣ୍ଣ—10. Full; complete; entire (Apte). ୧୧ । ବିପୁଳ; ପ୍ରଚୁର—11. Copious; abundant (Apte).

**ସମୃଦ୍ଧି**—ସଂ. ବି ( ସମ୍ + ଋଧ୍ ଧାତୁ=ବଢ଼ିବା + ଭାବ. ତି )—
Samṛuddhi ୧ । ସମ୍ୟକ୍ ବୃଦ୍ଧି—1. Increase; great growth. ୨ । ସମୁନ୍ନତି; ଉନ୍ନତି—2. Great improvement. ୩ । ସଂପତ୍ତି; ବିଭବ—3. Riches; wealth; affluence; opulence. ୪ । କଲ୍ୟାଣ; ଶ୍ରେୟଃ; ମଙ୍ଗଳ—4. Weal. ୫ । ସୁଖ—5. Happiness; bliss. ୬ । ଐଶ୍ୱର୍ଯ୍ୟ—6. Prosperity. ୭ । ଉତ୍ପତ୍ତି—7. Production. ୮ । ପ୍ରାଚୁର୍ଯ୍ୟ—8. Exuberance; profusion; abundance (Apte). ୯ । କ୍ଷମତା—9. Power. ୧୦ । ପ୍ରଭୁତ୍ୱ—10. Supremacy (Apte).

**ସମୃଦ୍ଧିମନ୍ତ**—ଦେ. ବିଣ (ସଂ. ସମୃଦ୍ଧିମତ୍)—ସମୃଦ୍ଧିମାନ୍ ( ଦେଖ )
Samṛuddhi manta Samṛuddhimān ( See)
(ସମୃଦ୍ଧିମାନ୍—ସଂ ରୂପ) [ଦ୍ର—ମହା ସଂପତ୍ତିରେ ସେ ଯୁକ୍ତ,
সমৃদ্ধিমন্ত ସମୃଦ୍ଧିମାନ ବିଧାତାନ୍ତ । ପ୍ରାଚୀ- ପୂର୍ଣ୍ଣତମ
**समृद्धिमन्त** ଚନ୍ଦ୍ରୋଦୟ ।]

**ସମୃଦ୍ଧିମାନ୍**—ସଂ. ବିଣ. ପୁଂ ( ସମୃଦ୍ଧିମତ୍ ଶବ୍ଦ; ୧ମା. ୧ବ )—
Samṛuddhimān ୧ । ସମୃଦ୍ଧିବିଶିଷ୍ଟ; ଐଶ୍ୱର୍ଯ୍ୟାନ୍ୱିତ—
(ସମୃଦ୍ଧିମତୀ—ସ୍ତ୍ରୀ) 1. Grand; prosperous; thriving.
(ସମୃଦ୍ଧିମତ୍ତା—ବି) ୨ । ଉନ୍ନତିଶୀଳ—2. Improving. ୩ । ଧନଶାଳୀ—3. Rich; opulent.

**ସମୃଦ୍ଧିଶାଳୀ**—ସଂ. ବିଣ. ପୁଂ ( ସମୃଦ୍ଧିଶାଳିନ୍ ଶବ୍ଦ; ୧ମା. ୧ବ )—
Samṛuddhiśālī ସମୃଦ୍ଧିମାନ୍ ( ଦେଖ )
(ସମୃଦ୍ଧିଶୀଳ—ଅନ୍ୟରୂପ) Samṛuddhimān ( See )
(ସମୃଦ୍ଧିଶାଳିନୀ, ସମୃଦ୍ଧିଶୀଳା—ସ୍ତ୍ରୀ)
(ସମୃଦ୍ଧିଶାଳିତା, ସମୃଦ୍ଧିଶୀଳତା—ବି)

**ସମୃଦ୍ଧି ସଂପନ୍ନ**—ସଂ. ବିଣ. ପୁଂ (୩ୟା ତତ୍)—ସମୃଦ୍ଧିମାନ୍ (ଦେଖ)
Samṛuddhi sampanna Samṛuddhimān (See)
(ସମୃଦ୍ଧି ସଂପନ୍ନା—ସ୍ତ୍ରୀ)

**ସମେ**—ଦେ. କ୍ରି. ବିଣ (ପଦ୍ୟ) (ସଂ. ସମମ୍ )—୧ । ସମାନ ସଂଖ୍ୟା-
Same ବିଶିଷ୍ଟ ଦଳରେ—1. In equal batches.
সমানে [ଉ—ସମେ ହୋଇଲେ ଗୃହ ଭାଗ, ଖୋଜନ୍ତି ବନ
**समानमें** ଗୃହ ଭାଗ । ଭୂପତି. ପ୍ରେମପଞ୍ଚାମୃତ ।] ୨ । ସମାନ ରୂପରେ—2. Equally. [ଉ—ସମେ ପ୍ରକାଶ ସର୍ବଠାରେ, ଜନ୍ତୁଙ୍କ ବାହ୍ୟ ଅଭ୍ୟନ୍ତରେ । ଜଗନ୍ନାଥ. ଭାଗବତ ।]

**ସମେତ୍**—ଦେ. ବିଣ (ସଂ. ସମେତ)—ସମେତ; ସହିତ—
Samet With; associated with; including.
সমেত **समेत**

**ସମେତ**—ସଂ. ବିଣ ( ସମ୍ + ଆ + ଇ ଧାତୁ=ଯିବା + କର୍ତ୍ତୃ. ତ )—
Sameta ୧ । ସହିତ—1. Together with; accompanied by. ୨ । ସହିତ ଯୁକ୍ତ; ସଙ୍ଗେ ଯୁକ୍ତ—2. Conjoined or associated with; combined with. ୩ । ସଂଗତ; ସଂଯୁକ୍ତ-3. Joined; attached. ୪ । ପ୍ରାପ୍ତ—4. Got; received. ୫ । ଉପସ୍ଥିତ—5. Present. ୬ । ସମୁପସ୍ଥିତ—6. Arrived at. ୭ । ଏକତ୍ର ମିଳିତ—7. Come or met together; united ( Apte ). ୮ ।

ନିକଟକୁ ଆଗତ—8. Come near; approached (Apte). ୯ । ହାତୁଡ଼ା ପାଇଥିବା—9. Come into collusion with; encountered by (Apte). ୧୦ । ଏକମତ; ସ୍ୱୀକୃତ—10. Agreed upon (Apte). ୧୧ । (ଅମୁକକୁ) ମିଶାଇ—11. Including.

ସମେତେ—ଗ୍ରା. ଅ—ସହିତ—With. [ ଉ—ଗୋବିନ୍ଦ ମୁଖ୍ୟ ଅବ କରି, ଲୁଚି ସମେତେ ଯେତେ ନାରୀ । ସେ ଧର୍ମ ଅନ୍ତରେ ଜାଣିଲେ, ମଣ୍ଡନେ କିଛି ନ ବୋଇଲେ—ଜଗନ୍ନାଥ. ଭାଗବତ । ] ଗ୍ରା. ସର୍ବନାମ—ସମସ୍ତେ—All.
Samete
ସମେତ(ତେ)
**समेत**

ସମେତେଣ—ଗ୍ରା. ଅ (ପଦ୍ୟ)—ସହିତ—With. [ ଉ—ବସନ୍ତ ମଳୟ ପବନ, ଷଡ଼ଋତୁଙ୍କ ସମେତେଣ । ଭେଳ ମୋହ ମଦ ମତ୍ସର, ସଙ୍ଗେ ଯେଣେ ଚଳ ସତ୍ୱର—ଜଗନ୍ନାଥ. ଭାଗବତ । ]
Sametena
ସମେତେ(ତ)
**समेत**

ସମେଧିତ—ସଂ. ବି (ସମ୍+ଇନ୍ଧ୍ ଧାତୁ=ଜଳିବା; ଣିଚ୍ ଏଧ ଧାତୁ +କର୍ମ. ତ)—୧ । ପ୍ରଜ୍ୱଳିତ—1. Enkindled; lighted; ignited. ୨ । ସମ୍ବର୍ଦ୍ଧିତ—2. Greatly increased. ୩ । ଉନ୍ନତ—3. Elevated. ୪ । ଉନ୍ନମିତ—4. Raised up. ୫ । ସବଳ; ବଳବାନ୍—5. Strong (Apte). ୬ । ସଂଯୁକ୍ତ—6. United (Apte).
Samedhita

ସମେଳେ—ଦେ. କ୍ରି. ବିଣ (ସଂ. ସମ୍ମିଳିତ)—୧ । ସମ୍ମିଳିତ ହୋଇ—1. Together; together with. [ ଉ—ବନାଇ ସୁମିତ୍ରାସୁତ, ଚାପରବ ସମ ମିତ୍ର । ଅଞ୍ଜନେୟୁ କପିଗୋତ୍ର, ଯୁତ ସମେଳେ—ଭଞ୍ଜ, ବୈଦେହୀଶ-ବିଳାସ । ] ୨ । ସମଭିବ୍ୟାହାରରେ—2. Accompanied by.
Samele
ସମେଳେ
**मिलकर**

ସମୋଦକ—ସଂ. ବି—୧ । (କର୍ମଧା; ସମ+ଉଦକ) ସମ ପରିମିତ ଜଳ—1. An equal quantity of water. ୨ । (ବହୁବ୍ରୀହି; ସମ ପରିମିତ ଉଦକ ଯହିଁରେ) ସମ-ପରିମିତ ଜଳଯୁକ୍ତ ଦଧି, ଯେଉଁ ଘୋଳରେ ଅଧେ ଦହି ଅଧେ ପାଣିଥାଏ, ମଥିତାର୍ଦ୍ଧାମ୍ବୁ ଦଧି—2. Churned curd containing whey and water in equal proportions; a mixture of half butter-milk and half water (Apte).
Samodaka

ସମୋପମା—ସଂ. ବି—ଉପମାଳଙ୍କାର ବିଶେଷ—A class of simile.
Samopamā

ସମ୍ପକ୍ୱ—ସଂ. ବିଣ (ସମ୍+ପକ୍ୱ)—୧ । ଉତ୍ତମରୂପେ ପାଚିଥିବା—1. Fully riped. ୨ । ଉତ୍ତମରୂପେ ପାକ କରି ଯାଇଥିବା—2. Well cooked.
Sampakwa
(ସଂପକ୍ୱ—ଅନ୍ୟରୂପ)

ସମ୍ପତ୍ ପ୍ରଦ—ସଂ. ବିଣ. ପୁଂ (ସମ୍ପଦ୍+ପ୍ର+ଦା ଧାତୁ+କର୍ତ୍ତୃ. ଅ)—ଯେ ସମ୍ପତ୍ତି ଦେଉଛି—Bestowing affluence or bliss.
Sampat prada
(ସମ୍ପତ୍ ପ୍ରଦା—ସ୍ତ୍ରୀ)

ସମ୍ପତ୍ ପ୍ରଦା ଭୈରବୀ—ସ ଚ—ସମ୍ପତ୍ତି ପ୍ରଦାୟୀ ତନ୍ତ୍ରପାସେଲ୍ଲା ଭୈରବୀବିଶେଷ—Name of a Goddess worshipped by the Tantrikas.
Sampat pradā bhairabī

ସମ୍ପତ୍ ଶାଳୀ—ସଂ. ବିଣ. ପୁଂ (ସମ୍ପଦ୍+ଅସ୍ତି ଅର୍ଥରେ ଶାଳଚ୍)—ସମ୍ପତ୍ତିଶାଳୀ (ଦେଖ)—Sampattisālī (See)
Sampat-sālī
(ସଂପତ୍ ଶାଳୀ—ଅନ୍ୟରୂପ)
(ସମ୍ପତ୍ ଶାଳିନୀ—ସ୍ତ୍ରୀ) (ସମ୍ପତ୍ତିଶାଳିତା—ବି)

ସମ୍ପତି—ଗ୍ରା. ବି (ସଂ, ସମ୍ପତ୍ତି)—୧ । ସମ୍ପତ୍ତି—1. Property. ୨ । ଅବଲମ୍ବନ; ବ୍ୟବସାୟ—2. Occupation; resort. [ ଉ—ବାଇ ମାଇପର କି ସମ୍ପତି । ସିନ୍ଦୁର ଫରୁଆ କଜଳପାତି—ଢଗ । ]
Sampati
ସମ୍ପତି
**सम्पति**

ସମ୍ପତ୍ତି—ସଂ. ବି (ସମ୍+ପଦ୍ ଧାତୁ=ଯାଇବା, ମିବା+କର୍ମ. ତି)—୧ । ଧନ; ଜାଏଦାଦ୍—1. Wealth; riches; property. ୨ । ଐଶ୍ୱର୍ଯ୍ୟ; ଋଦ୍ଧି; ଧନ-ବୃଦ୍ଧି—2 Prosperity; affluence; opulence. (ଉ—ଘୋଡ଼ାଚଢ଼ା ଠାଉଁ ସମ୍ପତ୍ତି ନାହିଁ, ଘରପୋଡ଼ାଠାରୁଁ ବିପତ୍ତି ନାହିଁ । ଢଗ ।) ୩ । ଶୋଭା—3. Beauty. ୪ । ଗୁଣୋତ୍କର୍ଷ—4. Excellence of quality. ୫ । ଗୌରବ—5 Glory; greatness. ୬ । ବିଭୂତି—6. Majesty. ୭ । ସୁଖ—7. Happiness; bliss. (ଉ—ତ୍ରିଶ ତ ସହସ୍ରୀ ସମ୍ପତ୍ତି ନ ସହେ । କୃଷ୍ଣସିଂହ. ମହାଭାରତ. ସଭା ।) ୮ । ସୌଭାଗ୍ୟ—8. Good fortune. (ଉ—ଏଣୁ ରାଜ୍ୟ ଭୁଲେ ପାଇବ ପ୍ରିୟବନ୍ତ, ପୁତ୍ରକଳତ୍ର ପୁଣିଟି ଭୁଞ୍ଜିବ ସମ୍ପତ୍ତି । କୃଷ୍ଣସିଂହ. ମହାଭାରତ. ବନ ।) ୯ । ସାଫଲ୍ୟ—9. Success; fulfilment; accomplishment. (Apte) ୧୦। ଉପଯୁକ୍ତ ଅବସ୍ଥା-10. Suitable state. (Apte) ୧୧ । ପ୍ରାଚୁର୍ଯ୍ୟ—11. Exuberance; plenty. (Apte) ୧୨। ପୂର୍ଣ୍ଣତା—12. Perfection. (Apte) ଦେ. ବି—ଭୂସମ୍ପତ୍ତି—Landed property.
Sampatti
(ସମ୍ପତ୍—ଅନ୍ୟରୂପ)
[ବିପତ୍ତି—ବିପରୀତ]
(ସମ୍ପତ୍—ବିଣ)
सम्पत्ति **सम्पत्ति**

ସମ୍ପତ୍ତି ଅରଜିବା—ଦେ. କ୍ରି—ଧନ ଅର୍ଜ୍ଜନ କରିବା—To acquire or earn riches.
Sampatti arajibā
सम्पत्ति क(का)मान **सम्पत्ति अरजना**
(ସମ୍ପତ୍ତି ଅରଜନ କରିବା, ସମ୍ପତ୍ତି କମା[ମେ]ଇବା, ସମ୍ପତ୍ତି ଅର୍ଜ୍ଜିବା—ଅନ୍ୟରୂପ)

ସମ୍ପତ୍ତିଆ—ଦେ. ବିଣ—ସମ୍ପତ୍ତିଶାଳୀ; ଧନବାନ୍; ଧନୀ—Wealthy.
Sampattiā (ସମ୍ପତ୍ତିବାନ୍—ଅନ୍ୟରୂପ)
सम्पत्तिशाली **सम्पत्तिवाला**

ସମ୍ପତ୍ତିକ—ସଂ. ବିଣ. ପୁଂ (ସମ୍ପତ୍ତି+କ)—ସମ୍ପତ୍ତିଶାଳୀ (ଶବ୍ଦକୋଷ) Affluent.
Sampattika [ ସମ୍ପତ୍ତିକା—ସ୍ତ୍ରୀ ]

ସମ୍ପତ୍ତି କରିବା—ଦେ. କ୍ରି—୧ । ସମ୍ପତ୍ତି ଅର୍ଜ୍ଜନ କରିବା—1. To earn riches; to acquire
Sampatti karibā

সম্পত্তি করা wealth. ୨ । ଧନ ଜମାଇବା—2. To
সম্পত্তি করনা amass wealth. ୩ । ଧନ ଦ୍ୱାରା ଭୂସମ୍ପତ୍ତି
କିଣିବା—3. To acquire or purchase landed property.

**ସମ୍ପତ୍ତି କ୍ଷୟ**—ସଂ. ବ (୬ଷ୍ଠୀ ତତ୍)—୧ । ଧନର ନାଶ—1. Loss
Sampatti kshaya of property. ୨ । ବିପତ୍ତି—
2. Adversity.

**ସମ୍ପତ୍ତି ଗମା(ମେ)ଇବା**—୧ । ସମ୍ପତ୍ତିକୁ ଅପବ୍ୟୟ କରିବା—1 To
Sampatti gamā(me)ibā squander away pro-
সম্পত্তি খোয়ান perty. ୨ । ବହୁ ବ୍ୟୟ ଓ ଦେଣା ଆଦି
সম্পত্তি গমানা ଯୋଗୁଁ ସ୍ୱସମ୍ପତ୍ତିଚ୍ୟୁତ ହେବା—2. To lose
(ସମ୍ପତ୍ତି ହର[ରେ]ଇବା, ସମ୍ପତ୍ତି ହେଲା[ଲେ]ଇବା-ଅନ୍ୟରୂପ) one's
[ସମ୍ପତ୍ତି ଜମା(ମେ)ଇବା—ବିପରୀତ] property.

**ସମ୍ପତ୍ତି ନାଶ**—ସଂ. ବ (୬ଷ୍ଠୀ ତତ୍)—୧ । ଧନର ନାଶ—1. Loss
Sampatti nāsa of property. ୨ । ଐଶ୍ୱର୍ଯ୍ୟ କ୍ଷୟ; ବିଭବ
ନାଶ—2. Adversity.

**ସମ୍ପତ୍ତି ବାଜ୍ୟାପ୍ତି**—ଦେ. ବ (ବହୁବ୍ରୀହି)—କୌଣସି ଦୋଷର ଦଣ୍ଡସ୍ୱରୂପ
Sampatti bājyāpti ରାଜଆଜ୍ଞା ବିଧାନ ଅନୁସାରେ କୌଣସି
সম্পত্তি বাজেয়াফ্‌ত ଲୋକର ସମ୍ପତ୍ତି ତାହାଠାରୁ ଛଡ଼ାଇ ନିଆଯାଇ
সম্পত্তি বাজ্যাফতি ସରକାରଙ୍କ ଖାସ୍ ଦଖଲକୁ ନିଆଯିବା—
Forfeiture of property.

**ସମ୍ପତ୍ତିବାନ୍**—ଦେ. ବିଣ—ଧନବାନ୍—
Sampattibān Rich; well-to-do.
সম্পত্তিবান্ সম্পত্তিবান্ ( ସମ୍ପତ୍ତିବନ୍ତ—ଅନ୍ୟରୂପ )

**ସମ୍ପତ୍ତି ବିଜ୍ଞାନ**—ସଂ. ବ (ଆଧୁନିକ)—ସମ୍ପତ୍ତିଶାସ୍ତ୍ର (ଦେଖ)
Sampatti bijnāna Sampattisāstra. (See)

**ସମ୍ପତ୍ତି ବେଳ(ଳା)**—ଦେ. ବ—ଐଶ୍ୱର୍ଯ୍ୟର ସମୟ; ଯେଉଁ ସମୟରେ
Sampatti beḷa(ḷā) ମନୁଷ୍ୟର ଐଶ୍ୱର୍ଯ୍ୟ ବୃଦ୍ଧି ହେଉଥାଏ—
সম্পত্তিবেলা, সম্পদের বেলা Time of prosperity.
सम्पत्तिका वक्त ( ପ୍ର—ସମ୍ପତ୍ତିବେଳେ ଭୂତର ନ କରିବ,
ବିପତ୍ତିବେଳେ କାତର ନ ହେବ—ଢଗ । )

**ସମ୍ପତ୍ତି ଶାସ୍ତ୍ର**—ସଂ. ବ. ( ଆଧୁନିକ )—ଧନ ବିଜ୍ଞାନ—
Sampatti Sāstra Economics; the science of
property.

**ସମ୍ପତ୍ତି ହୀନ**—ସଂ. ବିଣ. ପୁଂ ( ୩ୟା ତତ୍ )—୧ । ଧନହୀନ—
Sampatti hīna 1. Having no property.
( ସମ୍ପତ୍ତିବିହୀନ—ଅନ୍ୟରୂପ ) ୨ । ଗରିବ—2. Poor.
(ସମ୍ପତ୍ତିହୀନା, ସମ୍ପତ୍ତିବିହୀନା—ସ୍ତ୍ରୀ)

**ସମ୍ପଦ୍**—ସଂ. ବ (ସମ୍+ପଦ୍ ଧାତୁ=ଯିବା, ପାଇବା+କର୍ମ. କ୍ୱିପ୍;
Sampad ୧ମା. ୧ବ )—୧ । ସମ୍ପତ୍ତି ( ଦେଖ )—
(ସଂପଦ୍—ଅନ୍ୟରୂପ) 1. Sampatti ( See )
(ବିପଦ୍—ବିପରୀତ) ୨ । ଅଳଙ୍କାର—2. Decoration.
(Apte). ୩ । ମୁକ୍ତାର ହାର—3. A necklace
of pearls (Apte). ୪ । ଯଥୋଚିତ ପ୍ରଣାଳୀ—
4. Right method (Apte).

**ସମ୍ପଦ୍‌ବର**—ସଂ. ବ. ପୁଂ (ସମ୍ପଦ୍+ସଂଜ୍ଞାର୍ଥ ବର)—ରାଜା; ଭୂପତି—
Sampad-bara King.

**ସମ୍ପଦ୍‌ବିନିମୟ**—ସଂ. ବ (୬ଷ୍ଠୀ ତତ୍)—ପରସ୍ପର ମଧ୍ୟରେ ସମ୍ପତ୍ତିର
Sampad-binimaya ଆଦାନ ପ୍ରଦାନ—Exchange
of riches between each other.

**ସମ୍ପଦ୍‌ବିପଦ୍**—ସଂ. ବ (ସମାହାର ଦ୍ୱନ୍ଦ୍ୱ; ସମ୍ପଦ୍+ବିପଦ୍)—ସମ୍ପତ୍ତି ଓ
Sampad-bipad ବିପତ୍ତିର ସମାହାର (ଶବ୍ଦକୋଷ)—
Aggregate of prosperity and
[ସମ୍ପତ୍ତି ବିପତ୍ତି—ଅନ୍ୟରୂପ] adversity.

**ସମ୍ପଦ**—ଦେ, ବ ( ସଂ. ସଂପଦ୍ )—ସମ୍ପତ୍ତି ( ଦେଖ )—
Sampada সম্পদ सम्पद् Sampatti (See)
(ବିପଦ—ବିପରୀତ) ସଂ. ବ ( ବହୁବ୍ରୀହି; ସମ୍+ପଦ )—
ଯୁକ୍ତ ପଦରେ ଠିଆହେବା ( ଶବ୍ଦକୋଷ )—Standing
with the legs joined together.

**ସମ୍ପଦ୍‌ଲକ୍ଷଣ**—ସଂ. ବ ( ସମ୍ପଦ୍+ଲକ୍ଷଣ; ୬ଷ୍ଠୀ ତତ୍ )—
Sampad-lakshaṇa ଐଶ୍ୱର୍ଯ୍ୟର ଚିହ୍ନ—The sign of
[ସମ୍ପଲ୍ଲକ୍ଷଣ—ଅନ୍ୟରୂପ] prosperity (Apte).

**ସମ୍ପଧି**—ଗ୍ରା. ବ (ପ୍ରାଚୀନ ପଦ୍ୟ) (ସଂ. ସମ୍ପଦ୍)—ସମ୍ପତ୍ତି (ଦେଖ)—
Sampadhi Sampatti (See) ( ପ୍ର—କଷଟ
କାଳରେ କଲ୍ଲି ବିପରୀତ ବୁଦ୍ଧି, ଅଦଭୁତେ ହରାଇଲ୍ଲି
ଏଡ଼େକ ସମ୍ପଧି—ସାରଳା ଦାସ ମହାଭାରତ ସଭା)

**ସମ୍ପନ୍ନ**—ସଂ. ବିଣ. ପୁଂ (ସମ୍+ପଦ୍ ଧାତୁ=ଯିବା, ପାଇବା+କର୍ତ୍ତୃ. କ୍ତ)-
Sampanna ୧ । ଐଶ୍ୱର୍ଯ୍ୟଯୁକ୍ତ; ସମ୍ପତ୍ତିଶାଳୀ—
( ସଂପନ୍ନ—ଅନ୍ୟରୂପ ) 1. Prosperous; affluent;
(ସମ୍ପନ୍ନା—ସ୍ତ୍ରୀ) thriving. ୨ । ଧନୀ—2. Wealthy;
(ସମ୍ପନ୍ନବତୀ—ସ୍ତ୍ରୀ) rich. ୩ । (+କର୍ମ କ୍ତ) ସମ୍ପାଦିତ;
ନିଷ୍ପନ୍ନ—3. Accomplished; effected; brought
about. ୪ । ସମାପ୍ତିତ; ସମ୍ପୂର୍ଣ୍ଣ—4. Completed; finished. ୫ । ସଙ୍ଗରେ ଯୁକ୍ତ—5. Joined with; possessed of; having. [ଦ୍ର—
ଏହି ଅର୍ଥରେ 'ସମ୍ପନ୍ନ' ଶବ୍ଦ ଅନ୍ୟ ଶବ୍ଦ ସହିତ ସଂଯୁକ୍ତ
ହୋଇଥାଏ । ଯଥା—ବିଦ୍ୟାବିନୟସମ୍ପନ୍ନ, ସୌନ୍ଦର୍ଯ୍ୟ
ସମ୍ପନ୍ନ । ] ୬ । ସୌଭାଗ୍ୟବାନ୍—6. Fortunate (Apte). ୭ । ସୁଖୀ—7. Happy (Apte).
୮ । ସମ୍ପୂର୍ଣ୍ଣରୂପେ ବଢ଼ିଥିବା; ପୋଖତ; ପାକଳ—
8. Full-grown; mature (Apte). ୯ । (ଅମୁକ)
ବିଶିଷ୍ଟ; ଯୁକ୍ତ—9 Endowed with; possessed
of. (ଯଥା—ବିଦ୍ୟାବିନୟସମ୍ପନ୍ନ) ୧୦ । ପ୍ରକୃତ; ଠିକ୍—
10. Right; correct (Apte).

**ସମ୍ପରାୟ**—ସଂ. ବ (ସମ୍+ପରା+ଇ ଧାତୁ=ଯିବା+ଅଧିକରଣ ଅ).
Samparāya ୧ । ଯୁଦ୍ଧ—1. Fight; conflict.
(ସଂପରାୟ—ଅନ୍ୟରୂପ) ୨ । ଉତ୍ତରକାଳ; ଭବିଷ୍ୟତ୍; ଅସୃଷ୍ଟ—
2. Future. ୩ । ଆପଦ—3. Calamity. ୪ ।
(+କର୍ତ୍ତୃ. ଅ) ସନ୍ତାନ (ଶବ୍ଦକୋଷ)—4. Offspring.

**ସମ୍ପରାୟ(ୟି)କ**—ସଂ. ବ(ସମ୍ପରାୟ+ସ୍ୱାର୍ଥେ. କ; +ଇକ)—ସମ୍ପରାୟ
Samparāya(yi)ka (ଦେଖ)—Samparāya (See.)

**ସମ୍ପରିଗ୍ରହ**—ସଂ. ବି. (ସମ୍+ପରିଗ୍ରହ)—୧ । ଗ୍ରହଣ—1. Acceptance. ୨ । ସ୍ୱୀକାର—2. Consent. ୩ । ବିବାହ—3. Marriage.
Samparigraha

**ସମ୍ପର୍କ**—ସଂ ବି (ସମ୍=ସହିତ+ପୃଚ୍ ଧାତୁ=ଯୁକ୍ତ ହେବା+ଭାବ ଅ)—୧ । ସମ୍ବନ୍ଧ; ସଂସ୍ରବ—1. Relation; connection. ୨ । ସଂସର୍ଗ—2. Contact; association; society. ୩ । ସଂଯୋଗ; ମିଳନ—3. Union, mixture. ୪ । ବିବାହ ବା ରକ୍ତାଦି ଜନିତ ବନ୍ଧୁତା—4. Relationship by marriage or blood. ୫ । ସ୍ତ୍ରୀ ସଂସର୍ଗ; ମୈଥୁନ—5. Coition, sexual union. ୬ । ସ୍ପର୍ଶ—6. Touch; contact (Apte). ଦେ. ବି—ବହୁଦୂର ଭୁର ସମ୍ପର୍କ; Distant relationship. [ଉ—ସେ ମୋର ସମ୍ପର୍କରେ ଭାଇ ଅଟନ୍ତି ।]
Samparka
(ସଂପର୍କ—ଅନ୍ୟରୂପ)
(ସମ୍ପୃକ୍ତ, ସମ୍ପର୍କୀ, ସମ୍ପର୍କୀୟ—ବିଣ)
ସଂପର୍କ ସମ୍ପର୍କ

**ସମ୍ପର୍କବର୍ଜିତ**—ସଂ. ବିଣ (ଜାତ୍ୟା ଉଲ୍)—ସମ୍ବନ୍ଧଶୂନ୍ୟ—Unconnected, having no connection.
Samparka barjjita
ସମ୍ପର୍କଶୂନ୍ୟ } ଅନ୍ୟରୂପ
ସମ୍ପର୍କହୀନ

**ସମ୍ପର୍କ ରଖିବା**—ଦେ. କି—କୌଣସି ଲୋକ ସଙ୍ଗେ ବା କାର୍ଯ୍ୟ ସଙ୍ଗେ ଅପଣାର ସଂସ୍ରବ ରଖିବା—To have any connection with a person or thing.
Samparka rakhibā
ସଂପର୍କରଖା
सम्पर्करखना

**ସମ୍ପର୍କୀ**—ସଂ. ବିଣ. ପୁଂ. (ସମ୍ପର୍କ+ଅସ୍ତ୍ୟ ଅର୍ଥରେ ଇନ୍; ୧ମା. ୧ବ)—ସମ୍ବନ୍ଧଯୁକ୍ତ; ସମ୍ବନ୍ଧୀ—Connected with; related to.
Samparkī
(ସମ୍ପର୍କିନୀ—ସ୍ତ୍ରୀ)

**ସମ୍ପର୍କୀୟ**—ସ. ବିଣ ପୁ (ସମ୍ପର୍କ+ସମ୍ବନ୍ଧାର୍ଥେ ଈୟ)—୧ । ସମ୍ବନ୍ଧୀୟ; ସଂକ୍ରାନ୍ତ—1. Relating to; connected with. ୨ । ବନ୍ଧୁତା ଦ୍ୱାରା ଆବଦ୍ଧ—2. Related with. ୩ । ରକ୍ତ ସଂପର୍କଯୁକ୍ତ ବା ବିବାହ ସଂପର୍କଯୁକ୍ତ—3. Related by marriage or kinship.
Samparkīya
(ସମ୍ପର୍କୀୟା—ସ୍ତ୍ରୀ)

**ସମ୍ପର୍ଦ୍ଦା(ର୍ଦା)**—ଗ୍ରା° ବ (ସ° ସମ୍ପ୍ରଦାୟ)—୧। କୀର୍ତ୍ତନ ସମ୍ପ୍ରଦାୟ; କୀର୍ତ୍ତନ ଦଳ—1. A company of hymn-singers and players; a company of chanters of hymns with music. ୨ । ବୈଷ୍ଣବମାନଙ୍କ ସ୍ୱତନ୍ତ୍ର ସମାଜ—2. Sect of ascetics.
Samparddā(rdā)
ସମ୍ପ୍ରଦା
सम्प्रदा

**ସମ୍ପର୍ଦ୍ଦାନ**—ଗ୍ରା° ବ (ସ. ସମ୍ପ୍ରଦାନ)—ସମ୍ପ୍ରଦାନ (ଦେଖ)
Samparddāna Sampradāna (See)
ସମ୍ପ୍ରଦାନ सम्प्रदान

**ସମ୍ପା**—ସଂ. ବ (ସମ୍+ପତ୍ ଧାତୁ=ପଡ଼ିବା+କର୍ତ୍ତୃ. ଅ+ସ୍ତ୍ରୀ. ଆ)—ବିଦ୍ୟୁତ୍; ବିଜୁଳି—Lightning. ଦେ· ବି—(ସଂପା—ଅନ୍ୟରୂପ) ୧ । (ସଂ. ଶମ୍ପାତ)—ଗାଳି ଦେବା—1. Abusing. ୨ । ଅଭିଶାପ ଦେବା—2. Cursing. ଦେ. ବିଣ. ପୁଂ—୧ । ଯେ ଗାଳି ଦେବାରେ ଓ ଅଭିଶାପ ଦେବାରେ ଅଭ୍ୟସ୍ତ ବା ପାରଗ—1. Given to cursing and rebuking. ୨ । (ସଂ. ସମର୍ପଣ) ସମର୍ପିତ; ଉତ୍ସୃଷ୍ଟ—2. Made over; consigned.
Sampā
ସଁପା, ସାଁପା
अभिशाप
ସାଁପା
शाप देनेवाला
(ସମ୍ପୀ, ସମ୍ପେଇ—ସ୍ତ୍ରୀ)
ସଂପା संपना

**ସମ୍ପା(ମ୍ପେ)ଇବା**—ଦେ· କି—ସମ୍ପିବା କ୍ରିୟାର ପ୍ରଯୋଜକ ରୂପ; ଅନ୍ୟ ଦ୍ୱାରା ଗାଳି ଦଆଇବା—The causative form of Sampibā; to cause to be rebuked.
Sampā(mpe)ibā
ସାଁପାନ
शाप दिलाना

**ସମ୍ପାକ**—ସଂ. ବିଣ. ପୁ° (ସମ୍+ପଚ୍ ଧାତୁ=ପାକ କରିବା+କର୍ତ୍ତୃ. ଅ)
୧ । ଲମ୍ପଟ (ଧରଣୀ)—1. Lecherous; lewd. ୨ । ଧୃଷ୍ଟ (ମେଦିନୀ)—2. Arrogant ୩ । ଦୁଷ୍ଟ; ଅବିନୀତ—3. Wicked; wanton. ୪ । ତାର୍କିକ (ମେଦିନୀ)—4. Argumentative; reasoning well. ୫ । ଅଳ୍ପ (ଧରଣୀ)—5. Little. ୬ । ଚତୁର—6. Cunning; subtle (Apte) ୭ । କାମୁକ—7. Lustful. ୮ । କ୍ଷୁଦ୍ର—8. Small. ଦେ· ବି—୧ । (ବୈଦ୍ୟକ) ଆରଗ୍ୱଧ; ସୁନାରି ଗଛ—1. A tree; Cassia Fistula. ୨ । ଉତ୍ତମରୂପେ ପକ୍ୱ ହେବା ଅବସ୍ଥା—2. Matured condition.
Sampāka
(ସଂପାକ—ଅନ୍ୟରୂପ)

**ସମ୍ପା କଟା**—ଦେ. ବି (ସହଚର)—ଅଭିଶାପ ଦିଅ ଓ ଗାଳି ଦିଅ—Cursing and abusing.
Sampā katā
ସାଁପା କାଟା गाली शाप

**ସମ୍ପାଗ**—ଦେ. ବି—ସଂପାଗ (ଦେଖ)
Sampāga Sampāga (See)

**ସମ୍ପାଗୀ**—ସଂ. ବିଣ—ସଂପାଗୀ (ଦେଖ)
Sampāgi Sampāgi (See)

**ସମ୍ପା ଗଉରୀ**—ଦେ. (ପଦ୍ୟ) ବିଣ. ସ୍ତ୍ରୀ (ସମ୍ପା+ଗୌରୀ)—ବିଦ୍ୟୁତ୍ ପରି ଗୌର ବର୍ଣ୍ଣ ବିଶିଷ୍ଟା—(a woman) Of a bright colour or complexion (as that of the lightning).
Sampā gauri
ସମ୍ପା ଗଉରୀ
सम्पा गउरी
(ସମ୍ପା ଗୋରୀ—ଅନ୍ୟରୂପ)

**ସମ୍ପା ଗୌର**—ସଂ. ବିଣ. ପୁଂ (ସମ୍ପା ପରି ଗୌର)—ଉଜ୍ଜ୍ୱଳ ଗୌରବର୍ଣ୍ଣ ବିଶିଷ୍ଟ—Of a dazzling bright complexion.
Sampā gaura
(ସମ୍ପା ଗୌରୀ—ସ୍ତ୍ରୀ)

**ସମ୍ପାଟ**—ସଂ. ବି (ସମ୍+ପଟ୍ ଧାତୁ=ଗମନ କରିବା+କର୍ତ୍ତୃ. ଅ)—୧ । ତକୁ; ତାକୁଡ଼ (ଶବ୍ଦମାଳା)—1. Spindle. ୨ । (+ଭାବ. ଅ) ପରସ୍ପରକୁ କାଟିବା—2. Intersection.
Sampāta
(ସଂପାଟ—ଅନ୍ୟରୂପ)

ସମ୍ପାତ—ସଂ. ବି (ସମ୍+ପତ୍ଧାତୁ=ପଡ଼ିବା+ଭାବ. ଅ)—୧ । ପତନ—Sampāta 1. Falling. ୨ । ସମୂହ—2. Multitude. (ସଂପାତ—ଅନ୍ୟରୂପ) ୩ । ଅଭିସମ୍ପାତ; ଅଭିଶାପ—3. Curse. ୪ । ଉଡ୍ଡୟନ—4. Flying. ୫ । ଗମନ (ବିଶ୍ୱକୋଷ) —5. Going. ୬ । ପ୍ରବେଶ ( ବିଶ୍ୱକୋଷ )—6. Entrance. ୭ । ପକ୍ଷୀମାନଙ୍କର ଗତି ବିଶେଷ; ଉଚ୍ଚସ୍ଥାନରୁ ତଳକୁ ଖସି ପଡ଼ିବାର ଗତି—7. A kind of bird's motion; a bird's sudden dropping down.

ସମ୍ପାତ ଜଳଧାରା ଦେ. ବି—ଜଳଧାର—Shower of rain. [ଉ—ହୋଇ ଭୂମେ ନମ୍ରନତ ନ କର ସମ୍ପାତ ପାତ ନ ଦେଖ ତ ନୟନ ସ୍ୱତଃ । —ଭଞ୍ଜ. ପ୍ରେମସୁଧାନିଧି]

ସମ୍ପାତ ବଚନ—ସଂ. ବି—ଅଭିଶାପ ବାକ୍ୟ—Sampāta bachana A curse; imprecatory words. [ସମ୍ପାତ ବାକ୍ୟ—ଅନ୍ୟରୂପ]

ସମ୍ପାତି—ଦେ. ବି (ନାମ)—ଅରୁଣ ପୁତ୍ର; ଜଟାୟୁର ବଡ଼ ଭାଇ—Sampāti Name of a son of Aruṇa. [ସପାତି—ଅନ୍ୟରୂପ] [ବି—ଅରୁଣଙ୍କ ପତ୍ନୀଙ୍କ ନାମ ଶ୍ୟେନୀ ଓ ଦୁଇ ପୁତ୍ର ଯଥାକ୍ରମେ ସମ୍ପାତି ଓ ଜଟାୟୁ । ରାମାୟଣ କିଷ୍କିନ୍ଧ୍ୟା କାଣ୍ଡରେ ୫୬ ସର୍ଗଠାରୁ ୬୩ ସର୍ଗ ପର୍ଯ୍ୟନ୍ତ ଏମାନଙ୍କ ବିବରଣ ବର୍ଣ୍ଣିତ ହୋଇଅଛି । ଇନ୍ଦ୍ରଙ୍କ ଦ୍ୱାରା ବୃତ୍ରାସୁରର ବଧ ପରେ ଇନ୍ଦ୍ରଙ୍କୁ ଜୟ କରିବାକୁ ସମ୍ପାତି ଓ ଜଟାୟୁ ସ୍ୱର୍ଗପୁରକୁ ଗଲେ । ଯୁଦ୍ଧ କରୁ କରୁ ଏମାନେ ସୂର୍ଯ୍ୟଙ୍କ ସମ୍ମୁଖୀନ ହେଲେ । ଜଟାୟୁ ସୂର୍ଯ୍ୟଙ୍କ ପ୍ରଖର କିରଣ ସହ୍ୟ କରି ନ ପାରି ସନ୍ତପ୍ତ ହେବାରୁ ସମ୍ପାତି ଜଟାୟୁକୁ ପକ୍ଷଦ୍ୱାରା ଆଚ୍ଛାଦନ କଲା । ସୂର୍ଯ୍ୟ କିରଣରେ ସମ୍ପାତିର ପକ୍ଷ ପୋଡ଼ି ଗଲା ଓ ସେ ବିନ୍ଧ୍ୟ ପର୍ବତରେ ପତିତ ହେଲା । ବାନରଗଣ ସୀତାଙ୍କ ଅନ୍ୱେଷଣରେ ପ୍ରବୃତ୍ତ ହେବାବେଳେ ରାବଣଦ୍ୱାରା ସୀତା-ହରଣ ବୃତ୍ତାନ୍ତ ସମ୍ପାତିଠାରୁ ଶୁଣିଲେ— —ବିଶ୍ୱକୋଷ ]

ସମ୍ପାତିକ—ସଂ. ବି (ସମ୍ପାତି+ସ୍ୱାର୍ଥେ.କ)—ସମ୍ପାତି (ଦେଖ) (ଶବ୍ଦମାଳା) Sampātika Sampāti (See)

ସମ୍ପାତୀ—ସଂ ବିଣ. ପୁଂ (ସମ୍+ପତ ଧାତୁ+କର୍ତ୍ତୃ ଇନ୍; ୧ମା. ୧ବ) Sampāti ସମ୍ୟକ୍ ପତନଶୀଳ—Falling. (ସମ୍ପାତିନୀ—ସ୍ତ୍ରୀ)

ସମ୍ପାଦ—ଗ୍ରା. ବି (ସଂ. ସମ୍ବାଦ)—୧ । ପୁରାଣ ବର୍ଣ୍ଣିତ ବିଷୟ ବା Sampāda ଘଟନା—1. Any mythological episode. [ଉ—ଏ ଅଧ୍ୟା ଧଇର ସମ୍ପାଦ, ଶିବ ଅଠଗୁଳିଶ ପଦ । ପ୍ରାଚୀ. କର୍ଣ୍ଣ ମାହାତ୍ମ୍ୟ]
সংবাদ
সংবাদ
[ସପାଦ—ଅନ୍ୟରୂପ] ୨ । ସମ୍ବାଦ; ଖବର—2. News; intelligence. ୩ । ପୁରାଣରେ ବର୍ଣ୍ଣିତ ଦୁଇଜଣଙ୍କର କଥୋପକଥନ—3. Dialogue between two persons described in a mythological work. [ଉ—ଚୋରର ମୋହର ସମ୍ପାଦ ଏହୁ, ଏକମନ ହୋଇ ଶୁଣିବ ଯେହୁ । ପ୍ରାଚୀ. ନଳଚରିତ] ୪ । (କଚିତ୍‌ଅର୍ଥ) କଚେରୀର ମହାଫିଜ୍‌ଖାନାରେ ରକ୍ଷିତ କାଗଜରେ ଥିବା ବିଷୟର ଖବର. 4. Information about the contents of any record in a public record-room. ୫ । କିରଣ—5. Rays. [ଉ—କାଯୁତ ଅରୁଣ ସହମିତ ପ୍ରପାତରେ ହୃଦପଦ୍ମ ତୋଷିଲେ ।—ଭଞ୍ଜ. ବୈଦେହୀଶବିଳାସ] ୬ । ସଂଘର୍ଷ—6. Collision. [ଉ—ବଗ୍ରଜନ୍ତୁ ଯେ ଶିଲେ ବଳାଙ୍ଗନ୍ତୁ ସକଳେ ସ୍ୱକେ ଶୁଣ୍ଡରେ ଶୁଣ୍ଡରେ ସମ୍ପାଦ ।—ଭଞ୍ଜ. ବୈଦେହୀଶବିଳାସ ।] ୭ । ସମ୍ପାଦନ; ଉଦ୍ଧାର—7. Performance. [ଉ-ଶୁଣ ମୋ ଜନନୀ ପିଅର ଅସ୍ଥା ଯାଗ ସମ୍ପାଦ କର ।—ପ୍ରାଚୀ. କର୍ଣ୍ଣ ମାହାତ୍ମ୍ୟ] ଦେ. ବିଣ—ସମ୍ପୂର୍ଣ୍ଣ—Finished.
সম্পূর্ণ
ସଂପୂର୍ଣ୍ଣ [ଉ—ଦୁଇଣ ଚଉଦିଗଣ ପଦ, ଏ ଅଧ୍ୟ ହୋଇଲା ସମ୍ପାଦ ।—ପ୍ରାଚୀ. କର୍ଣ୍ଣମାହାତ୍ମ୍ୟ] ସଂ. ବି. (ସମ୍+ପଦ ଧାତୁ+ଭାବ ଅ)—୧ । ସମ୍ୟକ୍ ନିଷ୍ପାଦନ-(ବିଶ୍ୱକୋଷ) । 1. Completion; accomplishment. (Apte) ୨ । ଅର୍ଜନ—2. Acquisition (Apte).

ସମ୍ପାଦକ—ସଂ. ବିଣ. ପୁଂ (ସମ୍+ପଦ୍ ଧାତୁ ଣିଚ୍=କର୍ତ୍ତୃ. ଅକ)—Sampādaka ସମ୍ପାଦନକାରୀ; କାର୍ଯ୍ୟ ନିର୍ବାହକ—Accomplishing; performing; (ସଂପାଦକ—ଅନ୍ୟରୂପ) superintending. "ସ. ବି. ପୁଂ—(ସମ୍ପାଦିକା—ସ୍ତ୍ରୀ) (ସମ୍ପାଦକତା, ସଂପାଦକତ୍ୱ—ବି) ୧ । ସଭାର କାର୍ଯ୍ୟ ସମ୍ପାଦନକର୍ତ୍ତା; ସଭାର କାର୍ଯ୍ୟ ନିର୍ବାହକ—1. Secretary to an association. ୨ । ଯେଉଁ ବ୍ୟକ୍ତି ସଂବାଦପତ୍ର ବା ସାମୟିକ ପତ୍ରିକାର ପ୍ରବନ୍ଧାଦି ସଂଗ୍ରହ ପୂର୍ବକ ପ୍ରକାଶିତ କରନ୍ତି; ପତ୍ରିକାର ସଂକଳୟିତା ବା ପରିଚାଳକ—2. Editor to any newspaper or magazine. (ସମ୍ପାଦକୀୟ—ବିଣ) ୩ । ବିଦ୍ୟାଳୟର ବା କୌଣସି ଅନୁଷ୍ଠାନର କାର୍ଯ୍ୟପରିଚାଳନାଧ୍ୟକ୍ଷ—3. Secretary to a school or an institution.

ସମ୍ପାଦକତା(ତ୍ୱ)—ସ. ବି ( ସମ୍ପାଦକ+ଭାବେ. ତା, ତ୍ୱ )—Sampādakatā(twa) ୧ । ସମ୍ପାଦକଙ୍କ କର୍ମ—1. Editorship; secretaryship. ୨ । ସମ୍ପାଦନ—2. Accomplishment.

ସମ୍ପାଦକୀୟ—ସ. ବିଣ ( ସମ୍ପାଦକ+ସମ୍ବନ୍ଧାର୍ଥେ. ଈୟ )—ସମ୍ପାଦକ-Sampādakiya ସମ୍ବନ୍ଧୀୟ—Editorial.

ସମ୍ପାଦକୀୟ ମନ୍ତବ୍ୟ—ସ. ବି (ଅଧୁନିକ)—ସମ୍ବାଦପତ୍ର ବା ସାମୟିକ Sampādakiya mantabya ପତ୍ରିକାରେ ସମ୍ପାଦକଙ୍କ ସ୍ୱଲେଖନୀ-(ସମ୍ପାଦକୀୟ ଟିପ୍ପଣୀ—ଅନ୍ୟରୂପ) ପ୍ରସୂତ ମନ୍ତବ୍ୟ ବା ଟିପ୍ପଣୀ—

Editorial remarks; the editor's notes in a newspaper or magazine.

। । ସ୍ତମ୍ଭ —ସଂ. ବି (ଆଧୁନିକ)—ସମ୍ବାଦପତ୍ର ବା ସାମୟିକ
Sampādakiya stambha ପତ୍ରିକାର ଯେଉଁ ସ୍ତମ୍ଭରେ ସମ୍ପାଦକଙ୍କ ମନ୍ତବ୍ୟ ସ୍ଥାନ ପାଏ—Editorial column in a newspaper or magazine.

ସମ୍ପାଦ ଦରଖାସ୍(ସ୍ତ)—ଦେ. ବି (ଫାରସୀ)—ଫାରସିର ମହାଫିସ୍-
Sampāda darkhās(sta) ଖାନାରେ ରକ୍ଷିତ କାଗଜରୁ କୌଣସି
संवाद दरखास्त ସମ୍ବାଦ ପାଇବା ନିମନ୍ତେ ଲିଖିତ ପ୍ରାର୍ଥନା ପତ୍ର—
**सम्वाद् दरखास्त** Application for certain information from a record stored in a public record-room.

[ଦ୍ର—ଏହି ଦରଖାସ୍ତ ସଙ୍ଗେ ମହାଫିସ୍‌ଖାନାରୁ ଲୋଡ଼ାଯିବା କଥି ଖୋଜିବାରେ ନିଯୋଜିତ ସରକାରୀ କର୍ମଚାରୀଙ୍କ ପାରିଶ୍ରମିକ ନିମନ୍ତେ ଦରଖାସ୍ତକାରୀଙ୍କଠାରୁ ନିର୍ଦ୍ଧାରିତ ମୂଲ୍ୟର କୋର୍ଟଫିସ୍ ନିଆଯାଏ । ଏହି କୋର୍ଟଫିସ୍‌କୁ 'ତଲବି ଫିସ୍' କୋଲଯାଏ ।]

ସମ୍ପାଦନ—ସଂ. ବି (ସମ୍+ଣିଜନ୍ତ ପଦ ଧାତୁ ବା ପାଦ ଧାତୁ=ଗତି
Sampādana କରାଇବା+ଭାବ. ଅନ)—୧ । ସମାଧାନ; (ସଂପାଦନ—ଅନ୍ୟରୂପ) ସମାପନ; ନିଷ୍ପାଦନ—1. Accomplishment; completion. ୨ । ଗ୍ରନ୍ଥାଦିର ସଙ୍କଳନ ଓ (ସମ୍ପାଦନୀୟ, ସମ୍ପାଦ୍ୟ, ସମ୍ପାଦିତବ୍ୟ, ସମ୍ପାଦିତ—ବିଣ) ପ୍ରଚାରଣ—2. Editing or publication of any book. ୩ । ଉପାର୍ଜନ (ଶବ୍ଦକୋଷ)—3. Acquisition; earning.

ସମ୍ପାଦନ କରିବା—ଦେ. କ୍ରି—୧ । ସମ୍ପାଦକରୂପେ ସମ୍ବାଦପତ୍ରାଦି
Sampādana karibā ଚଳାଇବା—1. To edit a
सम्पादन करना paper. ୨ । ସମାଧା କରିବା—2. To ac-
**सम्पादन करना** complish. ୩ । ସମ୍ପାଦିବା (ଦେଖ)—3. Sampādibā (See)

ସମ୍ପାଦନୀୟ—ସଂ. ବିଣ (ସମ୍+ଣିଜନ୍ତ ପଦ୍ ଧାତୁ=ପାଦ୍ ଧାତୁ+
Sampādaniya କର୍ମ. ଅନୀୟ)-ସମ୍ପାଦିତ ହେବାର ଯୋଗ୍ୟ—Fit to be accomplished.

ସମ୍ପାଦୟିତା—ସଂ. ବିଣ (ସମ୍+ପଦ୍. ଧାତୁ ଣିଚ୍+କର୍ତ୍ତୃ. ତୃ; ୧ମା.
Sampādayitā ୧ବ)—ସମ୍ପାଦନକାରୀ—Accomplishing.
(ସମ୍ପାଦୟିତ୍ରୀ—ସ୍ତ୍ରୀ)

ସମ୍ପାଦି (ଧାତୁ)—ସଂ. (ସମ୍+ଣିଜନ୍ତ ପଦ୍ ବା ପାଦ ଧାତୁ)—ସମାପନ
Sampādi (root) କରିବା—To accomplish.

ସମ୍ପାଦିତ—ସଂ. ବିଣ (ସମ୍+ପାଦ୍. ଧାତୁ+କର୍ମ. ତ)—୧ । କୃତ-
Sampādita ସମ୍ପାଦନ; ସମାପିତ; ନିର୍ବାହିତ; ନିଷ୍ପାଦିତ—(ସଂପାଦିତ—ଅନ୍ୟରୂପ) 1. Accomplished; finished. ୨ । (ସମ୍ବାଦପତ୍ରଆଦି) ସଙ୍କଳିତ—2. Edited,

ସମ୍ପାଦିବା—ଦେ. କ୍ରି (ସମ୍ପାଦଧାତୁ)—୧ । ସମାଧାନ କରିବା—1. To
Sampādibā accomplish. (ଉ-ଅନ୍ତ୍ୟେଷ୍ଟି ସମ୍ପାଦ ବାହୁଡ଼ିଲେ
समाधान करना ଶୂନ୍ୟ ମନେ ସକଳେ । ରାଧାନାଥ. ଉଷା ।]
**समाधान करना** ୨ । ସାଇତିବା; ଯତ୍ନପୂର୍ବକ ରକ୍ଷା କରିବା;
यत्नकरे राखना ରକ୍ଷଣାବେକ୍ଷଣ କରିବା—2. To preserve; to
**हिफाजत करना** store with care; to keep in custody. (ଉ—ଯତ୍ନେ ସମ୍ପାଦିବା ଚିନ୍ତାମଣି ଅବା ମୋ କରେ ଦେଲୁ ସୁସାରେ । କବିସୂର୍ଯ୍ୟ. କିଶୋରଚନ୍ଦ୍ର. 'ଯ' ଗୀତ । ୩ । ସଂଗ୍ରହ କରିବା—3. To gather; to collect. ୪ । ମନରେ ସ୍ଥାନ ଦେବା—4. To entertain in the mind. (ଉ-ତନୁମଧ୍ୟା କିଶୋରୀ, ମନୁ ଦେଇ ପାସୋରି, ସେ ସ୍ନେହ ସମ୍ପାଦୁଛି ଭାରି ଭାରି । କବିସୂର୍ଯ୍ୟ, ସଙ୍ଗୀତ ।) ୫ । ଚିନ୍ତା କରିବା—5. To brood over a matter. ( ଉ—ଚିନ୍ତା କହନ୍ତା ଜଗତ ବନ୍ଦନାକୁ ସମ୍ପାଦିବ ଯିନା ଏସନ । ଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।)

୬ । କାମନା କରିବା; ମନାସିବା; ବାଞ୍ଛା କରିବା—6. To wish. [ ଉ—ଯୁଧିଷ୍ଠିରଙ୍କର ସେ ସମ୍ପାଦି ମଙ୍ଗଳ—କୃଷ୍ଣସିଂହ. ମହାଭାରତ. ସଭା । ] ୭ । ଘଟାଇବା; ଫଳରେ ଘଟାଇବା—7. To bring about; to cause a thing to take place. [ ଉ—ସରସେ ପିଟିବେ ତକା । ସମ୍ପାଦିବୁ ଏତେ ଏକା—କବିସୂର୍ଯ୍ୟ କିଶୋରୀ ଚନ୍ଦ୍ରାନନ ଗୀତ ।] ୮ । ଖୋଜିବା; ଲୋଡ଼ିବା—8. To inquire after; to search. [ ଉ—କହୁଥାଇ ଯେ, ଅଳ୍ପକେ ଭଜେ, ମଜନ ନ ସମ୍ପାଦେ—ଭଞ୍ଜ. ବୈଦେହୀଶବିଳାସ ।] ୯ । ( ଅର୍ଥ ଆଦିକୁ ) ବୁଝାଇବା—9. To denote; to convey (a meaning). [ ଉ—ବେଦ ଅର୍ଥ ଯେଣୁ ନ ସମ୍ପାଦେ—ଭଞ୍ଜ. ବୈଦେହୀଶବିଳାସ । ] ୧୦ । ବିଧାନ କରିବା—10. To make provision for. [ ଉ—ସମ୍ପାଦିବା ଲାଗି ଜନତାର ପ୍ରୀତି, ଭୋଜ ପରେ ଭୋଜ ଦେଉଅଛି ନିତି—ରାଧାନାଥ. ଦରବାର । ] ୧୧ । ସ୍ତ୍ରୀର ଗର୍ଭରେ ଜନ୍ମାଇବା—11. To cause to conceive; to impregnate. [ଉ—ତାହାର ଗର୍ଭେ ଶୁଭ ସୁତ, ଧର୍ମେ ସମ୍ପାଦ ପରୀକ୍ଷିତ । କୁମାର ଜନ୍ମେଜୟ ଆଦି, ସକଳ ଗୁଣେ ସେ ପ୍ରସିଦ୍ଧି—ଜଗନ୍ନାଥ. ଭାଗବତ । ] ୧୨ । (କୌଣସି କର୍ମ) କରିବା—12. To perform; to do (any act). [ ଉ—ପଣ୍ଡିତଜନ ଯାର ପାଦେ । ସେବା ସମ୍ପାଦ ଅପ୍ରମାଦେ—ଜଗନ୍ନାଥ. ଭାଗବତ] ୧୩ । ଭବିଷ୍ୟତ୍‌ରେ କାମରେ ଲାଗିବା ପାଇଁ ଅର୍ଜନ କରିବା—13. To earn for future use [ଉ—ଯେ ପ୍ରାଣୀ ତପ ଦାନ କରେ । ଯଶ ସମ୍ପାଦ ଏ ସଂସାରେ—ଜଗନ୍ନାଥ. ଭାଗବତ ] ୧୪ । ସଞ୍ଚିବା; ସଞ୍ଚୟ କରିବା—14. To store. ୧୫ । ଜାତ କରିବା—15. To produce

**ସମ୍ପାଦ୍ୟ**—ସ. ବଣ (ସମ୍+ପାଦ ଧାତୁ+କର୍ମ. ଯ)—ସମ୍ପାଦନୀୟ—Sampādya Fit to be accomplished; accomplishable. ( ସଂପାଦ୍ୟ—ଅନ୍ୟରୂପ ) ସଂ. ବ ( ଜ୍ୟାମିତି )—(ଉପପାଦ୍ୟ—ବିପରୀତ) କୌଣସି ଶବ୍ଦର ସମ୍ପାଦନ ବା ପ୍ରତିଷ୍ଠା ପାଇଁ କରୁଥିବା ଜ୍ୟାମିତିକ ପ୍ରତିଜ୍ଞା ବା ସମସ୍ୟା—(geometry) A problem. [ବି—ଜ୍ୟାମିତିର ପ୍ରତିଜ୍ଞାମାନ ସାଧାରଣତଃ ୨ ଶ୍ରେଣୀରେ ବିଭକ୍ତ । ୧ । ସମ୍ପାଦ୍ୟ; ୨ । ଉପପାଦ୍ୟ । ଯେଉଁ ପ୍ରତିଜ୍ଞାରେ କୌଣସି ସତ୍ୟର ସମାଧାନ କରାଯାଏ କିମ୍ବା କୌଣସି କ୍ରିୟା ସମ୍ପାଦନ କରିବାର ଆବଶ୍ୟକତା ପଡ଼େ, ତାହା ସମ୍ପାଦ୍ୟ । ଯଥା—'ଗୋଟିଏ ସରଳରେଖା ଉପରେ ଗୋଟିଏ ସମତ୍ରିବାହୁ ତ୍ରିଭୁଜ ଅଙ୍କିତ କରିବାକୁ ହେବ' । ଯେଉଁ ପ୍ରତିଜ୍ଞାରେ ଦତ୍ତ ବିଷୟ ପ୍ରମାଣିତ କରିବାକୁ ହୁଏ, ତାହା ଉପପାଦ୍ୟ । ଯଥା—'ଏକ ସରଳରେଖା ଅନ୍ୟ ସରଳରେଖା ଉପରେ ଦଣ୍ଡାୟମାନ ହେଲେ ଦଣ୍ଡାୟମାନ ରେଖାର ଉଭୟ ପାର୍ଶ୍ବସ୍ଥ କୋଣଦ୍ୱୟର ସମଷ୍ଟି ଦୁଇ ସମକୋଣର ସମଷ୍ଟି ସଙ୍ଗେ ସମାନ' । ]

**ସମ୍ପି ଦେବା**—ଦେ. କ୍ରି—୧ । (ସଂ. ସମର୍ପଣ)—ସମର୍ପଣ କରିବା—Sampi debā 1. To make over; to make over charge of. ୨ । ଅନ୍ୟର ହସ୍ତରେ କଢ଼ାଇ ଦେବା—2. To hand over.
ସଁପା, ସଁପେ ଦେଓଆ
सौंप देना

**ସମ୍ପିବା**—ଦେ. କ୍ରି—୧ । ( ସଂ. ଶପ୍ତ ) ଅଭିଶାପ କରିବା—Sampibā 1. To curse; to imprecate. ୨ । ଗାଳି ଦେବା—2. To call names; to abuse. [ ଉ—ସମ୍ପୁଥିଲ ଯହିଁ ସତୀ ଶର୍ମିଷ୍ଠାକୁ, କୂପଗତ କଲ ଯେଣୁ—ନନ୍ଦକିଶୋର. ଶର୍ମିଷ୍ଠା । ] ୩ । ( ସଂ. ସମର୍ପଣ ) ଉତ୍ସର୍ଗ କରିବା—3. To commit a thing to the charge of; to offer; to dedicate. [ ଉ—ସ୍ବ କୁଳର ହିତେ ପିତୃସତ୍ୟ ହିତେ ସମ୍ପିଲେ ଜୀବନ ମନ—ନନ୍ଦକିଶୋର. ଶର୍ମିଷ୍ଠା । ]
ସଁପା, ସାଁପା
शाप देना
ସଁପେ ଦେଓଆ
सौंप देना

**ସମ୍ପୀ**—ଦେ. ବଣ. ସ୍ତ୍ରୀ—ଯେଉଁ ସ୍ତ୍ରୀ ଅନ୍ୟ ବ୍ୟକ୍ତିକୁ ଗାଳିଦେବାରେ ବା ଅଭିଶାପ ଦେବାରେ ଅଭ୍ୟସ୍ତା—Sampī Termagant; shrewish; (a woman) given to cursing; foul-mouthed ( woman ).
ଯେ ସ୍ତ୍ରୀ ଗଲାଗାଲୀ ଦେୟ । पदेनेवाली
(ସମ୍ପେଇ—ଅନ୍ୟରୂପ)

**ସମ୍ପୀଡ଼ (ଧାତୁ)**—ସ. (ସମ୍+ପୀଡ଼)·୧ । କଷ୍ଟିତନ କରିବା; ଚୁପୁଡ଼ିବା Sampīrd(root) 1. To press; to wring out by pressing. ୨ । ପୀଡ଼ାଦେବା; ଉତ୍ପୀଡ଼ନ କରିବା-2. To oppress; to harass; to torture. ୩ । ପ୍ରେରଣ କରିବା—3. To send forth. ୪ । ଚିପିବା—4. To compress; to squeeze together (Apte) ୫। ଆନ୍ଦୋଳନ କରିବା; ଘାଣ୍ଟିବା—5. To agitate, to disturb. ୬ । ଗଣନା କରିବା-6. To compute; to reckon. (Apte). ୭ । ଲୁଚାଇପକାଇବା; ଘୋଡ଼ାଇପକାଇବା—7. To obscure; to eclipse.

**ସମ୍ପୀଡ଼ନ**—ସ. ବ (ସମ୍+ପୀଡ଼୍ ଧାତୁ+ଭାବ. ଅନ)—୧ । ଚିପିବା Sampīrdana କର୍ମ; କଷ୍ଟୀଡ଼ନ - 1. Pressing; squeezing together. ୨ । ଚୁପୁଡ଼ିବା କର୍ମ—2. Wringing out by pressing ୩ । ଉତ୍ପୀଡ଼ନ, ପୀଡ଼ାଦାନ; ଅତ୍ୟାଚାର—3. Oppressing; oppression; harassment; torture. ( ସମ୍ପୀଡ଼ିତ, ସମ୍ପୀଡ଼ନୀୟ, ସମ୍ପୀଡ୍ୟମାନ—ବଣ ) ୪ । ପ୍ରେରଣ—4. Transmission; sending forth; directing (Apte) ୫ । ଚିପିବା—5. Compression. ୬ । ଘଣ୍ଟାଘଣ୍ଟି—6. Agitating; stirring up; disturbing. (Apte) ୭ । ଦଣ୍ଡ ଦେବା—7. Punishment; castigation, (Apte).
(ସମ୍ପୀଡ଼ନ—ଅନ୍ୟରୂପ)

**ସମ୍ପୀଡ଼ନୀୟ**—ସ. ବଣ ( ସମ୍+ପୀଡ଼୍ ଧାତୁ+କର୍ମ. ଅନୀୟ )—୧ । Sampīrdanīya ସମ୍ପୀଡ଼ିତ ହେବାର ଯୋଗ୍ୟ—1. Fit to be squeezed or compressed. ୨ । ଉତ୍ପୀଡ଼ିତ ହେବାର ଯୋଗ୍ୟ—2. Deserving to be oppressed. ୩ । ଦଣ୍ଡନୀୟ—3 Punishable.

**ସମ୍ପୀଡ଼ା**—ସ. ବ (ସମ୍+ପୀଡ଼ା)—ଉତ୍ପୀଡ଼ନ—Sampīrdā Torment (Apte).

**ସମ୍ପୀଡ଼ିତ**—ସ. ବଣ ( ସମ୍+ପୀଡ଼୍ ଧାତୁ+କର୍ମ. ତ )—୧ । Sampīrdita ଉତ୍ପୀଡ଼ିତ—1. Oppressed. ୨ । କଷ୍ଟୀଡ଼ିତ; ଚୁପୁଡ଼ା ହୋଇଥିବା—2. Squeezed; pressed. ୩ । ଚିପା ହୋଇଥିବା—3. Compressed.
( ସମ୍ପୀଡ଼ିତା—ସ୍ତ୍ରୀ )

**ସମ୍ପୀଡ୍ୟମାନ**—ସ. ବଣ. ପୁଂ (ସମ୍+ପୀଡ଼୍ ଧାତୁ+କର୍ମ . ଅନ)—Sampīrdyamāna ୧ । ଯାହାକୁ ଚିପା ଯାଉଥାଏ—1. Being pressed or squeezed. ୨ । ଯାହାକୁ ଉତ୍ପୀଡ଼ିତ କରି ଯାଉଥାଏ—2. Being oppressed or harassed.
(ସମ୍ପୀଡ୍ୟମାନା—ସ୍ତ୍ରୀ)

**ସମ୍ପୀତି**—ସଂ. ବ (ସମ୍=ଏକତ୍ର+ପା ଧାତୁ=ପିଇବା+ଭାବ. ତି)—Sampīti ବହୁ ଲୋକଙ୍କର ଏକତ୍ର ପାନ—Drinking together; a drinking bout; compotation.

**ସମ୍ପୁଟ**—ସଂ. ବ ( ସମ୍+ପୁଟ୍ ଧାତୁ=ଲଗ୍ନ ହେବା+ଅଧି. ଅ )—Samputa ୧ । ପେଡ଼ି; କାଠ ପେଡ଼ି—1. A wooden case. ୨ । ପେଡ଼ି; ଢୁଙ୍କଣୀ ଯୁକ୍ତ ପେଟରା—2, A box with a lower part and a removable upper lid; a case with a cover; covered box. ୩ । ଫରୁଆ; କରଣ୍ଡ—3. Casket. ୪। ପୋଟଳା; ପୁଡ଼ା-4, Bundle; packet
[ ସଂପୁଟ—ଅନ୍ୟରୂପ ]

୫ । ଏକପ୍ରକାର ପ୍ରେମାଲିଙ୍ଗନ; ରତିବନ୍ଧ ବିଶେଷ—5. A form of amatory embrace during coition. [ଦ୍ର—ଏଥିରେ ପୁରୁଷ ଉଭୟ ପାଦକୁ ସଂପ୍ରସାରିତ କରି ଶଯ୍ୟାଗତକପୋଳକ ହୋଇ ରମଣ କରେ—ରତିମଞ୍ଜରୀ ।] ୬ । (ବୈଦ୍ୟକ)—କୁରବକ; ବାସକେରେଣ୍ଟା ଗୁଳ୍ମ—6. Barlaria Cristata plant. ୭। ଗାତ; ଖୋଲ—7. A cavity (Apte). ସଂ. ବିଣ ( +କର୍ତ୍ତୃ· ଅ )—୧ । ମିଳିତ; ଯୁକ୍ତ—1. Joined together. ୨ । ଏକଜାତୀୟ ଦୁଇ ପଦାର୍ଥର ମଧ୍ୟବର୍ତ୍ତୀ—2. Placed within two things of the same kind. ୩ । କୌଣସି ମନ୍ତ୍ରକୁ ପ୍ରତ୍ୟେକ ଶ୍ଳୋକର ପୂର୍ବରେ ଓ ପରେ ଉଚ୍ଚାରଣ ପୂର୍ବକ ବୋଲାଯିବା ( ଚଣ୍ଡୀପୁରାଣ )—3. ( Purāṇa ) Of which every sloka is preceded and followed by the utterance of a particular formula.

ସମ୍ପୁଟକ(କା)—ସଂ. ବି ( ସମ୍ପୁଟ+ସ୍ୱାର୍ଥେ କ+ଅ )—ସମ୍ପୁଟ Samputaka(kā) ( ଦେଖ )—Samputa ( See ) ( ସମ୍ପୁଟିକା—ଅନ୍ୟରୂପ )

ସମ୍ପୁଟ କର—ସଂ. ବିଣ, ପୁଂ ( ବହୁବ୍ରୀହି )—କୃତାଞ୍ଜଳି—With Samputa kara the hands folded; having the palms folded. ( ସମ୍ପୁଟ ପାଣି—ଅନ୍ୟରୂପ ) ( ସମ୍ପୁଟକର—ସ୍ତ୍ରୀ )

ସମ୍ପୁଟ ଚଣ୍ଡୀ—ସଂ. ବି—ଚଣ୍ଡୀ ବା ଦେବୀ ପୁରାଣର ପ୍ରତ୍ୟେକ ଶ୍ଳୋକ Samputa chaṇḍī ପାଠ କରିବା ସମୟରେ ପ୍ରତ୍ୟେକ ଶ୍ଳୋକର ପୂର୍ବେ ଓ ପରେ କୌଣସି ବିଶେଷ ମନ୍ତ୍ର ବା ପ୍ରାର୍ଥନାକୁ ଉଚ୍ଚାରଣ କରି ( ଅର୍ଥାତ୍ ପ୍ରତ୍ୟେକ ଶ୍ଳୋକକୁ ସମ୍ପୁଟ କରି ) ପାଠ କରାଯିବା ଚଣ୍ଡୀ—Reciting every Śloka of the Chaṇḍī Purāṇa by uttering a certain formula before and after every Śloka.

ସମ୍ପୁଟ ଜପ—ସଂ. ବି—କୌଣସି ମନ୍ତ୍ରକୁ କୌଣସି ବିଶିଷ୍ଟ ବଚନ ବା Samputa japa ସଂକଳ୍ପ ବାକ୍ୟ ଦ୍ୱାରା ସମ୍ପୁଟିତ କରି ଜପ କରିବା—Utterance of a certain mantra by prefixing and suffixing it with a certain formula. [ ଦ୍ର—ତନ୍ତ୍ରସାରରେ ଲିଖିତ ଅଛି ଯେ, ସକାମ ବ୍ୟକ୍ତି କାମନାସିଦ୍ଧି ପାଇଁ ଇଷ୍ଟ ମନ୍ତ୍ରକୁ ସମ୍ପୁଟ କରି ଜପ କରିବେ ଓ ନିଷ୍କାମ ବ୍ୟକ୍ତି ସମ୍ପୁଟ ବ୍ୟତୀତ ଜପ କରିବେ । କୌଣସି ବିଶିଷ୍ଟ ମନ୍ତ୍ର ବା ବଚନ ବା ଶ୍ଳୋକ ଦ୍ୱାରା ସମ୍ପୁଟ କରି ଚଣ୍ଡୀ ପାଠ କଲେ ଇଷ୍ଟ ଫଳଲାଭ ହୁଏ—ବିଶ୍ୱକୋଷ । ]

ସମ୍ପୁଟିତ—ସଂ. ବିଣ ( ସମ୍+ପୁଟ୍ ଧାତୁ=ଲଗାଯିବା+କର୍ମ. ତ )—Samputita ୧ । ଉପରୁ ତଳ ସଙ୍ଗେ ପେଡ଼ି ପରି ଯୋଡ଼ା ହୋଇ-ଥିବା—1. Joined together as to form a hollow case. ୨ । ଉପରେ ଓ ତଳେ ଘୋଡ଼ଣୀ ଥିବା—2. Enclosed by an upper and a lower lid.

ସମ୍ପୁନ୍ନ(ନ୍ୟ, ର୍ଣ)—ଗ୍ରା· ବିଣ ( ସଂ. ସମ୍ପୂର୍ଣ୍ଣ )—ସମ୍ପୂର୍ଣ୍ଣ ( ଦେଖ )—Sampunna(nya, rna) Sampūrṇṇa ( See ) [ଦ୍ର—ସଂପୂର୍ଣ୍ଣ सम्पूर्ण ସବନ୍ତ ଗୁଣରେ ଯେ ଅଟନ୍ତି ସମ୍ପୁନ୍ନ—ଜଗନ୍ନାଥ. ମହାଭାରତ· ଅଦି । ]

ସମ୍ପୂଜନ—ସଂ.ବି ( ସମ୍+ପୂଜ ଧାତୁ ଭାବ. ଅନ )—ସମ୍ୟକ୍ ପୂଜା—Sampūjana (ସମ୍ପୂଜା—ଅନ୍ୟରୂପ) Great adoration or worship ( ସମ୍ପୂଜିତ, ସମ୍ପୂଜନୀୟ, ସମ୍ପୂଜ୍ୟ—ବିଣ)

ସମ୍ପୂର୍ଣ୍ଣ—ସଂ. ବିଣ ( ସମ୍+ପୂର୍ ଧାତୁ+କର୍ମ· ତ କିମ୍ବା ସମ୍+ପୃ Sampūrṇṇa ଧାତୁ+କର୍ମ. ତ)—୧ । ପରିପୂର୍ଣ୍ଣ—1. Filled ( ସଂପୂର୍ଣ୍ଣ—ଅନ୍ୟରୂପ ) up. ୨ । ସମାପ୍ତ—2. Finished; ( ସମ୍ପୂର୍ତ୍ତି—ସ୍ତ୍ରୀ ) completed. ୩ । ସମ୍ପାଦିତ—3. Accomplished. ୪ । ସମଗ୍ର—4. Full; whole; all; entire. ସଂ· ବି (ସଙ୍ଗୀତ) ୧ ।—ସପ୍ତସ୍ୱରବିଶିଷ୍ଟ ରାଗ—1. (music) A melody or mode of music in which all the notes of the gamut are used. [ଦ୍ର—ପଞ୍ଚସ୍ୱରବିଶିଷ୍ଟ ରାଗକୁ ଔଡ଼ବ, ଷଟ୍‌ସ୍ୱରବିଶିଷ୍ଟ ରାଗକୁ ଷାଡ଼ବ ଓ ସପ୍ତସ୍ୱରବିଶିଷ୍ଟ ରାଗରାଗିଣୀକୁ ସମ୍ପୂର୍ଣ୍ଣ ବୋଲାଯାଏ । ଯଥା—ନଟ ବସନ୍ତ ରାଗ—ସଙ୍ଗୀତ ଦାମୋଦର । ] ୨ । ଶୂନ୍ୟ—2. Ether (Apte). ଦେ. କ୍ରି· ବିଣ ଓ ବିଣର ବିଣ—ସଂପୂର୍ଣ୍ଣରୂପେ सम्पूर्णरूपसे ସମ୍ପୂର୍ଣ୍ଣରୂପେ—Wholly; quite; completely; totally; entirely.

ସମ୍ପୂର୍ଣ୍ଣତୟା—ସଂ. କ୍ରି. ବିଣ ( ସମ୍ପୂର୍ଣ୍ଣତା ଶବ୍ଦର ତୃତୀୟା ବିଭକ୍ତିରେ Sampūrṇṇatayā ରୂପ; ସଂସ୍କୃତଭାଷାଭିଜ୍ଞ ପଣ୍ଡିତମାନଙ୍କ ବ୍ୟବହୃତ ଶବ୍ଦ )—ସମ୍ପୂର୍ଣ୍ଣରୂପେ ( ଦେଖ ) Sampūrṇṇarūpe ( See )

ସମ୍ପୂର୍ଣ୍ଣତର—ସଂ· ବିଣ ( ସମ୍ପୂର୍ଣ୍ଣ+ଅତିଶୟାର୍ଥେ· ତର )—ସମ୍ୟକ୍ Sampūrṇṇatara ପରିପୂର୍ଣ୍ଣ—Full to the brink.

ସମ୍ପୂର୍ଣ୍ଣତା(ତ୍ୱ)—ସଂ· ବି ( ସମ୍ପୂର୍ଣ୍ଣ+ଭାବେ. ତା,ତ୍ୱ )—୧ । ପରି-Sampūrṇṇatā(twa) ପୂର୍ଣ୍ଣତା—1. Fullness; perfection. ୨ । ସମଗ୍ରତା—2. Completeness; entirety. ୩ । ସମାପ୍ତି—3. Completion.

ସମ୍ପୂର୍ଣ୍ଣ ମୂର୍ଚ୍ଛା—ସଂ. ବି—୧ । ପୂର୍ଣ୍ଣ ଅଜ୍ଞାନ ଅବସ୍ଥା—1· Complete Sampūrṇṇa mūrchchhā fainting. ୨ । ମୃତ୍ୟୁ ( ବିଶ୍ୱକୋଷ )—2. Death. ସମ୍ପୂର୍ଣ୍ଣ ମୂର୍ଚ୍ଛିତ—ବିଣରୂପ )

ସମ୍ପୂର୍ଣ୍ଣରୂପେ—ଦେ. କ୍ରି. ବିଣ—୧ । ପୂର୍ଣ୍ଣଭାବରେ—1. Fully. Sampūrṇṇarūpe ୨ । ସମଗ୍ରରୂପରେ—2. Completely. ସଂପୂର୍ଣ୍ଣରୂପେ सम्पूर्णरूपसे

**ସମ୍ପୂର୍ଣ୍ଣା**—ସଂ. ବି. ସ୍ତ୍ରୀ—ସୂର୍ଯ୍ୟୋଦୟର ଦୁଇ ମୁହୂର୍ତ୍ତ ପୂର୍ବରୁ ଆରମ୍ଭ
Sampūrṇṇā ହୋଇଥିବା ଏକାଦଶୀ—Name of the 11th day of the lunar fortnight which begins two Muhūrttas before sunrise. [ ଦ୍ର—ସୂର୍ଯ୍ୟୋଦୟ କାଳର ପୂର୍ବ ମୁହୂର୍ତ୍ତଦ୍ୱୟ ବଶିଷ୍ଟ ଏକାଦଶୀକୁ ସମ୍ପୂର୍ଣ୍ଣା; ଅନ୍ୟ ଏକାଦଶୀକୁ ଖଣ୍ଡା ବୋଲାଯାଏ—ଉଥିତତ । ]

**ସମ୍ପୂର୍ତ୍ତି**—ସଂ. ବି ( ସମ୍+ପୂର୍ତ୍ତି )—ସମ୍ୟକ୍ ପୂର୍ତ୍ତି—Completion.
Sampūrtti ( ସଂପୂର୍ତ୍ତି—ଅନ୍ୟରୂପ )

**ସମ୍ପୃକ୍ତ**—ସଂ. ବିଣ (ସମ୍+ପୃଚ୍ ଧାତୁ=ମିଳିତ ହେବା+କର୍ମ କ୍ତ)—
Samprukta ୧ । ସମ୍ବନ୍ଧ; ସଂସୃଷ୍ଟ, ସଂଶ୍ଳିଷ୍ଟ—1. Related.
( ସଂପୃକ୍ତ—ଅନ୍ୟରୂପ ) ୨ । ଏକତ୍ର ମିଶ୍ରିତ, ମିଳିତ—
( ସମ୍ପର୍କ—ବି ) 2. Mixed up with ; blended. ୩ । ସଂଯୁକ୍ତ—3. Connected; joined. ୪ । ଗ୍ରଥିତ—4. Strung; sewn. ୫ । ଲଗ୍ନ; ସଂଲଗ୍ନ—5. Affixed. ୬ । ଖଚିତ—6. Set; inlaid ( Apte ). ୭ । ସ୍ପର୍ଶ କରିଥିବା—7. Touching.

**ସମ୍ପୃଣ**—ସ. ବିଣ ( ସମ୍+ପୃ ଧାତୁ+କର୍ମ. କ୍ତ )—୧ । ପୂର୍ଣ୍ଣତାପ୍ରାପ୍ତ
Sampruṇa (ଶବ୍ଦକୋଷ)—1. Which has attained completion. ୨ । ପୂର୍ଣ୍ଣ କରାଯାଇଥିବା—2. Filled up.

**ସମ୍ପେଇ ଦେବା**—ପ୍ରାଦେ. (ଯାଜପୁର) କ୍ରି—ସମର୍ପଣ କରିବା—
Sampei debā To make over.

**ସମ୍ପେଇବା**—ଦେ. କ୍ରି—(ସମ୍ପିବା କ୍ରିୟାର ଣିଜନ୍ତ ରୂପ)—ଅନ୍ୟ ଦ୍ୱାରା
Sampeibā ସମ୍ପିବା କ୍ରିୟା କରାଇବା—Causative of
सौंपाना शाप दिलाना Sampibā.

**ସମ୍ପେଷ**—ସ. ବି (ସମ୍+ପିଷ ଧାତୁ+ଭାବ. ଅ)—୧ । ସମ୍ୟକ୍ ପେଷଣ
Sampesha —1. Careful grinding; pulverisa-
(ସମ୍ପେଷଣ—ଅନ୍ୟରୂପ) tion. ୨ । (+କର୍ମ. ଅ) ଉତ୍ତମ ରୂପେ
(ସମ୍ପିଷ୍ଟ, ସମ୍ପେଷିତ—ବିଣ) ଚୂର୍ଣ୍ଣ ହୋଇଥିବା ଗୁଣ୍ଡ—2. Very fine powder.

**ସମ୍ପୋଡ଼**—ଦେ. ବି (ସମ୍ପୁଟ=ଆଲିଙ୍ଗନ)—୧ । ଖେଳ; କୌତୁକ—
Samporda 1. Amusement; sport. ୨ । ଆଲିଙ୍ଗନ
सम्पुट कौतुक 2. Embrace
আলিঙ্গন आलिङ्गन

**ସମ୍ପୋଡ଼େ**—ଦେ. କି. ବିଣ—ଅବଲୀଳାକ୍ରମେ; ଅନାୟାସରେ; ସହଜରେ
Samporde —Easily; as in sport.
অনায়াসে अनायासमें

**ସମ୍ପୋଷ୍ୟ**—ସ. ବିଣ ( ସମ୍+ପୋଷ୍ୟ )—୧ । ଅଭାବପୂରଣ ଯୋଗ୍ୟ
Samposya —1. Sufficient for filling up a
(ସଂପୋଷ୍ୟ—ଅନ୍ୟରୂପ ) want. ୨ । ଜୀବନଯାତ୍ରା ନିର୍ବାହ
(ସମ୍ପୋଷଣ—ବି) ପାଇଁ ଯଥେଷ୍ଟ—2. Sufficient for one's livelihood. ୩ । ଯଥେଷ୍ଟ; ଅଙ୍ଗୀକାର ଯୋଗ୍ୟ—3. Sufficient. ୪ । ପୋଷଣୀୟ ହେବାର ଯୋଗ୍ୟ—4. Fit to be supported; maintainable.

**ସମ୍ପ୍ରକ୍ଷାଳନ**—ସଂ. ବି ( ସମ୍+ପ୍ରକ୍ଷାଳନ )—୧ । ସମ୍ପୂର୍ଣ୍ଣ ସ୍ନାନ;
Samprakshālana ଗାଧୋଇବା—1. Complete ab-
(ସମ୍ପ୍ରକ୍ଷାଳ—ଅନ୍ୟରୂପ) lution; bathing. ୨ । ପ୍ଲାବନ—
(ସମ୍ପ୍ରକ୍ଷାଳିତ—ବିଣ) 2. Inundation.
(ସଂପ୍ରକ୍ଷାଳନ—ଅନ୍ୟରୂପ)

**ସମ୍ପ୍ରଣେତା**—ସଂ. ବି.ପୁଂ (ସମ୍+ପ୍ର+ନୀ ଧାତୁ+କର୍ତ୍ତୃ. ତୃ; ୧ମା.୧ବ)—
Sampranetā ୧ । ଶାସକ—1. A ruler (Apte). ୨ ।
(ସଂପ୍ରଣେତା—ଅନ୍ୟରୂପ) ବିଚାରପତି—2. A judge (Apte).
(ସମ୍ପ୍ରଣେତ୍ରୀ—ସ୍ତ୍ରୀ)

**ସମ୍ପ୍ରତର୍ଦ୍ଦନ**—ସଂ. ବି ( ସମ୍+ପ୍ର+ତର୍ଦ୍ଦ ଧାତୁ+କର୍ତ୍ତୃ. ଅନ )—
Sampratarddana ( ବିଷ୍ଣୁ ସହସ୍ରନାମୋକ୍ତ ) ବିଷ୍ଣୁ—
(ସଂପ୍ରତର୍ଦ୍ଦନ—ଅନ୍ୟରୂପ) A name of Bishṇu.

**ସମ୍ପ୍ରତାପନ**—ସଂ. ବି ( ସମ୍+ପ୍ରତାପନ )—୧ । ତତାଇବା—
Sampratāpana 1. Heating (Apte). ୨ । ପୋଡ଼ିବା—
(ସଂପ୍ରତାପନ—ଅନ୍ୟରୂପ) Burning (Apte). ୩ । ଉତ୍ପୀଡ଼ନ
ସମ୍ପ୍ରତାପନୀୟ, ସମ୍ପ୍ରତାପିତ } ବିଣ —3. Torturing; tormenting (Apte). ୪। ନରକଭେଦ (ଶବ୍ଦକୋଷ)—4. Name of a hell.

**ସମ୍ପ୍ରତି**—ସଂ. ଅ (ସମ୍+ପ୍ରତି; ସମ୍ ଓ ପ୍ରତି ଶବ୍ଦ ଦ୍ୱୟର ସମାହାର,
Samprati ଶବ୍ଦକୋଷ)—୧ । ଇଦାନୀଂ; ଅଧୁନା; ବର୍ତ୍ତମାନ;
(ସଂପ୍ରତି ଇତ୍ୟାଦି—ଅନ୍ୟରୂପ) ଆଜକାଲି—1. Now; at present. ୨ । ଏହିକ୍ଷଣି; ଏହି ମୁହୂର୍ତ୍ତରେ—2. At the present moment. ୩ । କିଛିକାଳ ପୂର୍ବରୁ—3. Lately; recently. ସଂ.ବି (ନାମ)—୧ । ଅଗତ-କଲୀୟ ଉତ୍ସର୍ପିଣୀ ଶାଖାର ଚତୁର୍ବିଂଶ ଅର୍ହତ୍ (ଶବ୍ଦକୋଷ) —1. Name of a Jaina saint. ୨ । ଅଶୋକଙ୍କ ଜଣେ ପୌତ୍ର; କୁଣାଳଙ୍କର ଏକ ପୁତ୍ର (ଶବ୍ଦକୋଷ)—2. Name of a grandson of Asoka.

**ସମ୍ପ୍ରତିପତ୍ତି**—ସଂ. ବି ( ସମ୍+ପ୍ରତିପତ୍ତି )—୧ । ସମ୍ୟକ୍ ଜ୍ଞାନ—
Sampratipatti 1. Comprehension; complete understanding. ୨ । (ହିନ୍ଦୁ ସ୍ମୃତି) ଏକ୍‌ରାର୍; ଅଭିଯୁକ୍ତ ବ୍ୟକ୍ତିର ଅପରାଧ ସ୍ୱୀକାର (ମନୁ ୮।୬୦)—2. (Hindu law) Confession; admission of an accused person. ୩ । (ହିନ୍ଦୁ ସ୍ମୃତି) ପ୍ରତିବାଦୀର ଏକ୍‌ରାର୍ ଜବାବ—3. A statement of the defendant admitting plaintiff's claim. ୪ । ସ୍ୱୀକାର—4. Consent; acknowledgement. ୫ । ଚୁକ୍ତି—5. Agreement; contract. ୬ । ସାହଚର୍ଯ୍ୟ—6. Companionship; co-operation. ୭ । ଉପସ୍ଥିତି—7. Presence; attendance. ୮ । ଆକ୍ରମଣ—8. Attack; assault. ୯ । ସମ୍ପାଦନ—9. Accomplishment; performance. ୧୦ । ଘଟନା—10. Occur-

rence (Apte). ୧୧ । ଅଙ୍ଗୀକାର (ବିଶ୍ବକୋଷ — 11. Mutual agreement.

**ସମ୍ପ୍ରତିପାଦନ**—ସଂ. ବି (ସମ୍ + ପ୍ରତିପାଦନ)—୧ । ସମ୍ୟକ୍ ରୂପେ Sampratipādana ପ୍ରତିପାଦନ—1. Proving beyond doubt. ୨ । ଅନ୍ୟକୁ (ସମ୍ପ୍ରତି ପାଦତ—ବିଣ) କୌଣସି ବସ୍ତୁର ପ୍ରଦାନ—2. Delivering over (Apte). ୩ । ଦାନ—3. Giving; granting; bestowal. (Apte)

**ସମ୍ପ୍ରତିରୋଧକ**—ସଂ. ବି (ସମ୍ + ପ୍ରତିରୋଧକ)—୧ । ପ୍ରତିବନ୍ଧକ; Sampratirodhaka ବିଘ୍ନ—1. Obstacle. ୨ । ସମ୍ୟକ୍ ରୂପେ ବାଧା—2. Complete obstruction (Apte). ୩ । କାରାବନ୍ଦ—3. Confinement; imprisonment (Apte). ସଂ. ବିଣ—୧ । ଯାହା ସମ୍ୟକ୍ ବାଧା ଦିଏ—1. Completely obstructing. ୨ । ଯାହା ଅବରୋଧ କରେ—2. Confining.

**ସମ୍ପ୍ରତିଷ୍ଠା**—ସଂ. ବି (ସମ୍ + ପ୍ରତିଷ୍ଠା)—୧ । ସ୍ଥିତି; ଅବସ୍ଥିତି— Sampratishṭhā 1. Existence. ୨ । ସମ୍ୟକ୍ ପ୍ରତିଷ୍ଠା— (ସମ୍ପ୍ରତିଷ୍ଠିତ—ବିଣ) 2. Establishment.

**ସମ୍ପ୍ରତିସଞ୍ଚର**—ସଂ. ବି (ସମ୍ + ପ୍ରତି + ସଞ୍ଚର)—ପ୍ରଳୟ ବିଶେଷ; Sampratisañchara ବ୍ରାହ୍ମ ପ୍ରଳୟ—A kind of universal dissolution. [ବି—ଏ ପ୍ରଳୟରେ ବ୍ରହ୍ମାଙ୍କର ମଧ୍ୟ ବିନାଶ ହୁଏ ।]

**ସମ୍ପ୍ରତୀକ୍ଷା**—ସଂ. ବି (ସମ୍ + ପ୍ରତୀକ୍ଷା)—୧ । ସମ୍ୟକ୍ ରୂପେ ବା ଧୈର୍ଯ୍ୟ Sampratīkshā ସହକାରେ ପ୍ରତୀକ୍ଷା—1. Patient waiting. ୨ । ଆଶା—2. Expectation; hope (Apte).

ସମ୍ପ୍ରତୀକ୍ଷଣୀୟ, ସମ୍ପ୍ରତୀକ୍ଷ୍ୟ, ସମ୍ପ୍ରତୀକ୍ଷିତ } ବିଣ

**ସମ୍ପ୍ରତୀତ**—ସଂ. ବିଣ—୧ । ସମ୍ୟକ୍‌ରୂପେ ପ୍ରତୀତ; ଯାହା ହୃଦୟଙ୍ଗମ Sampratīta ହୋଇଥାଏ—1. Fully comprehended; well understood. ୨ । କୌଣସି ବିଷୟରେ ନିଃସନ୍ଦେହୀକୃତ—2. Fully convinced (Apte). ୩ । ପ୍ରମାଣିତ—3. Proved (Apte). ୪ । ସ୍ବୀକୃତ—4. Admitted (Apte). ୫ । ପ୍ରସିଦ୍ଧ—5. Renowned (Apte); notorious. ୬ । ସମ୍ପୂର୍ଣ୍ଣ ରୂପେ ନିଶ୍ଚିତୀକୃତ—6. Fully ascertained.

**ସମ୍ପ୍ରତୀତି**—ସଂ. ବି (ସମ୍ + ପ୍ରତୀତି)—୧ । ସମ୍ୟକ୍ ଜ୍ଞାନ—1. Intimate or full knowledge. Sampratīti ୨ । ପ୍ରତ୍ୟୟସିଦ୍ଧ ଜ୍ଞାନ—2. Knowledge based on belief. ୩ । ପୂର୍ଣ୍ଣ ବିଶ୍ବାସ—3. Full belief. ୪ । ପ୍ରସିଦ୍ଧି; ଖ୍ୟାତି—4. Renown; celebrity; notoriety (Apte).

**ସମ୍ପ୍ରଦା**—ଗ୍ରା. ବି (ସଂ. ସମ୍ପ୍ରଦାୟ)—୧ । ବୈଷ୍ଣବ ବା ବୈରାଗୀମାନଙ୍କର ବିଭିନ୍ନ ଦଳ; ଅଖଡ଼ା—1. Sect of Sampradā anchorites. ୨ । ଖୋଳ କରତାଳ ସହ ନାମ ସଂକୀର୍ତ୍ତନ କରିବା ଦଳ—2. A company of choristers for singing hymns with music. ୩ । ଖୋଳ କରତାଳ ସହ ନାମ ସଂକୀର୍ତ୍ତନ—3. Chanting of hymns along with music.

ମଂପ୍ରଦା सम्प्रदा

**ସମ୍ପ୍ରଦାତା**—ସଂ. ବିଣ ପୁଂ (ସମ୍ + ପ୍ର + ଦା ଧାତୁ = ଦେବା + କର୍ତ୍ତି Sampradātā ତୃ; ୧ମା ୧ବ)—ସମ୍ପ୍ରଦାନ କର୍ତ୍ତା— (ସମ୍ପ୍ରଦାତା—ଅନ୍ୟରୂପ) Giving away; bestowing. (ସମ୍ପ୍ରଦାତ୍ରୀ—ସ୍ତ୍ରୀ) ସଂ. ବି—ଦାତା; ଦାନକାରୀ ବ୍ୟକ୍ତି— Doner; giver; bestower.

**ସମ୍ପ୍ରଦାନ**—ସଂ. ବି (ସମ୍ + ପ୍ରଦାନ)—୧ । ସମ୍ପୂର୍ଣ୍ଣରୂପେ ଦାନ; Sampradāna ସମର୍ପଣ; ସ୍ବ ସ୍ବତ୍ବ ଧ୍ବଂସ ପୂର୍ବକ ପରସ୍ବତ୍ବର (ସମ୍ପ୍ରଦାନ—ଅନ୍ୟରୂପ) ଉତ୍ପତ୍ତି ହେବା ପାଇଁ ଦାନ—1. Act of giving away; bestowing; donation; a gift out and out. ୨ । ବରଙ୍କୁ କନ୍ୟାଦାନରୂପ କର୍ମ—2. The act or ceremoney of giving away a daughter in marriage to the bridegroom. ୩ । (ସଂସ୍କୃତ —ବ୍ୟାକରଣ) ୪ର୍ଥୀ ବିଭକ୍ତିର କାରକ; ଯେଉଁ ବ୍ୟକ୍ତିକୁ ଦାନ କରାଯାଏ ତତ୍‌ସମ୍ବନ୍ଧୀୟ କାରକ—3. (Sanskrit grammar) The dative case. [ବି—ଦାତାର ସ୍ବତ୍ବକୁ ଲୋପ କରି ଦତ୍ତ ବସ୍ତୁରେ ଦାନଗ୍ରହୀତାଙ୍କ ସ୍ବତ୍ବର ଉଦ୍ଭବ କରାଇବା ଉଦ୍ଦେଶ୍ୟରେ ଦାନ କରିବା କ୍ରିୟା ସ୍ଥଳରେ ସମ୍ପ୍ରଦାନ କାରକ ୪ର୍ଥୀ ବିଭକ୍ତି ହୁଏ; ଯଥା ରାଜା ବ୍ରାହ୍ମଣଙ୍କୁ ଗୋରୁ ଦାନ କଲେ—ଏଠାରେ ବ୍ରାହ୍ମଣଙ୍କୁ ସମ୍ପ୍ରଦାନ କାରକ ୪ର୍ଥୀ ବିଭକ୍ତି ହେଲା; କିନ୍ତୁ ଯେଉଁଠାରେ ଦାତାଙ୍କ ସ୍ବତ୍ବ ଲୋପ ନ ହୁଏ ସେଠାରେ ସମ୍ପ୍ରଦାନ କାରକ ୪ର୍ଥୀ ବିଭକ୍ତି ହୁଏ ନାହିଁ । ଯଥା ସେ ଧୋବାକୁ ଲୁଗା ଦେଲେ । ଏଠାରେ 'ଧୋବାକୁ' ସମ୍ପ୍ରଦାନ କାରକ ହେବ ନାହିଁ । ସଂସ୍କୃତରେ କର୍ମ କାରକ ଓ ସମ୍ପ୍ରଦାନ କାରକର ଚିହ୍ନ ପୃଥକ୍; ଓଡ଼ିଆରେ ଏ ଦୁଇ କାରକର ଚିହ୍ନ 'କୁ'; ସଂସ୍କୃତ ବ୍ୟାକରଣରେ ରୁଚ୍ ଧାତୁ (ରୁଚିବା), ଧାରିଧାତୁ (ଧାରିବା), ଶ୍ଲାଘ ଧାତୁ (ପ୍ରଶଂସା କରିବା), କ୍ରୁଧ୍ ଧାତୁ, ଶପଧାତୁ ଆଦିର ପ୍ରୟୋଗ ସ୍ଥଳରେ ସମ୍ପ୍ରଦାନ କାରକ ହୁଏ । ଓଡ଼ିଆରେ ଏ ସବୁର ବ୍ୟବହାର ନାହିଁ ।] ୪ । ପ୍ରକୃଷ୍ଟ ଦାନ—4. Excellent gift. ୫ । ଦାନୀୟ ବ୍ୟକ୍ତି; ଯାହାଙ୍କୁ କୌଣସି ବସ୍ତୁ ଦାନ କରାଯାଏ— 5. Donee.

ସମ୍ପ୍ରଦତ୍ତ, ସମ୍ପ୍ରଦାୟକ, ସମ୍ପ୍ରଦାତା }—ବିଣ

**ସମ୍ପ୍ରଦାନୀୟ**—ସଂ. ବିଣ (ସମ୍ + ପ୍ର + ଦା ଧାତୁ + କର୍ମ ଅନୀୟ)— Sampradānīya ୧ । ଯେଉଁ ପଦାର୍ଥ ସମ୍ପ୍ରଦାନ କରା-

ଦିବାର ଯୋଗ୍ୟ ବା ସମ୍ପ୍ରଦାନ କରାଯିବା ପାଇଁ ଅଭିପ୍ରେତ— (ସଂପ୍ରଦାତବ୍ୟ—ଅନ୍ୟରୂପ) 1. (A thing) Fit to be given away or dedicated to be given away. ୨ । ( +ସମ୍ପ୍ରଦାନ ଅର୍ଥରେ ) ଯେଉଁ ବ୍ୟକ୍ତିକୁ କୌଣସି ବସ୍ତୁ ଦାନ କରିବା ପାଇଁ ସଂକଳ୍ପ କରାଯାଇଥାଏ—2. (A person) To whom any thing is proposed to be given away. ୩ । (+କର୍ମ ଅର୍ଥରେ) ସମ୍ପ୍ରଦାନର ଯୋଗ୍ୟ—3. Fit to be donated. ସଂ. ବି ଦାନ—A gift, donation (Apte)

ସମ୍ପ୍ରଦାୟ—ସଂ. ବି (ସମ୍+ପ୍ର+ଦା ଧାତୁ=ଉପଦେଶ ଦେବା+ କର୍ମ ଅ, ଯ ଆଗମ)—୧ । ଗୁରୁପରମ୍ପରା- Sampradāya (ସଂପ୍ରଦାୟ—ଅନ୍ୟରୂପ) (ସାମ୍ପ୍ରଦାୟିକ—ବିଣ) ଗତ ଉପଦେଶ—1. Instruction transmitted from a preceptor to a disciple for generations; (Apte); traditions handed down from generation to generation of teachers. ୨ । ଗୁରୁ ପରମ୍ପରା କ୍ରମେ ପ୍ରବର୍ତ୍ତିତ ଧର୍ମ ମତବାଦ—2. Traditional religious doctrines; a peculiar system of religious teaching. ୩ । ସମାଜ—3. Sect; community. ୪ । ଦଳ; ଗୋଷ୍ଠୀ—4. A company; band, a troupe. ୫ । ସଦାଚାର; ପ୍ରଥା—5. Established custom; usage (Apte). ୬ । ଏକ ଜାତି ବା ସମାଜ ବା ଧର୍ମାବଲମ୍ବୀଙ୍କ ମଧ୍ୟରୁ ବିଶିଷ୍ଟ ମତାବଲମ୍ବୀ ବା ସ୍ୱତନ୍ତ୍ର ଦେବପୂଜକଦଳ ବା ଶାଖା—6. Subsect; sub caste. [ଦ୍ର—ହିନ୍ଦୁ ଧର୍ମାବଲମ୍ବୀମାନେ ବୈଷ୍ଣବ ଶୈବ, ଶାକ୍ତ, ଗାଣପତ୍ୟ, ସୌର ଆଦି ନାନା ସମ୍ପ୍ରଦାୟରେ ବିଭକ୍ତ । ଏହି ସମ୍ପ୍ରଦାୟମାନେ ପୁଣି ନାନା ଉପସମ୍ପ୍ରଦାୟରେ ବିଭକ୍ତ । ଯଥା—ବୈଷ୍ଣବମାନେ ରାମାନୁଜ ଆଦି, ଗୌଡ଼ୀୟମାନେ ଶ୍ରୀ ଆଦି ନାନା ସମ୍ପ୍ରଦାୟ ବା ଉପସମ୍ପ୍ରଦାୟରେ ବିଭକ୍ତ । ଖ୍ରୀଷ୍ଟାନମାନେ ପ୍ରୋଟେଷ୍ଟାଣ୍ଟ, ରୋମାନ୍ କାଥଲିକ୍; ଗ୍ରୀକ୍ ଚର୍ଚ୍ଚ ଓ ସୀରିଆ ଆଦି ସମ୍ପ୍ରଦାୟରେ ବିଭକ୍ତ । ମୁସଲମାନମାନେ ମଧ୍ୟ ଶୀଆ, ସୁନ୍ନି ଆଦି ସମ୍ପ୍ରଦାୟରେ ବିଭକ୍ତ ।] ଦେ. ବି.—ସମ୍ପ୍ରଦା

सम्प्रदा सम्प्रदा (ଦେଖ)—Sampradā (See)

ସମ୍ପ୍ରଦାୟ ଭୁକ୍ତ—ସଂ. ବିଣ. ପୁଂ ( ୭ମୀ ତତ୍ )—ଏକ ସମ୍ପ୍ରଦାୟର Sampradāya bhukta (ସମ୍ପ୍ରଦାୟୀ—ଅନ୍ୟରୂପ) ଅନ୍ତର୍ଗତ—Included in a sect; being a member of a sect.

ସମ୍ପ୍ରଧାରଣ(ଣା) ସଂ. ବି ( ସମ୍+ପ୍ର+ଣିଜନ୍ତ ଧୃ ଧାତୁ+ଭାବ. ଅନ; Sampradhārana(nā) +ଆ )—୧ । ଯୁକ୍ତାଯୁକ୍ତ ବିବେଚନା; ସଦସତ୍ ବିବେଚନା; ଉଚିତାନୁଚିତ ନିର୍ଣ୍ଣୟ—1. Disicrimination; making disitinction between right and wrong; determining the propriety or otherwise of anything. ୨ । କର୍ତ୍ତବ୍ୟାବଧାରଣ; କର୍ତ୍ତବ୍ୟ ନିର୍ଣ୍ଣୟ—2. Moral judgment; ascertainment of one's duty. ୩ । ଅବଧାରଣ; ନିର୍ଣ୍ଣୟ—3. Ascertainment.

ସମ୍ପ୍ରପଦ—ସଂ. ବି ( ସମ୍+ପ୍ର+ପଦ୍ ଧାତୁ+ଭାବ. ଅ )—ଭ୍ରମଣ; Samprapada ପର୍ଯ୍ୟଟନ—Travelling; roaming about.

ସମ୍ପ୍ରପନ୍ନ—ସଂ. ବିଣ ( ସମ୍+ପ୍ରପନ୍ନ )—୧ । ଠାରେ ଉପସ୍ଥିତ— Samprapanna 1. Arrived at ( Apte ). ୨ । ବିଶିଷ୍ଟ—2. Endowed with; possessed of ( Apte ). ୩ । ପ୍ରବିଷ୍ଟ—3. Entered; fallen into ( Apte ).

ସମ୍ପ୍ରବଦନ—ସଂ. ବି ( ସମ୍+ପ୍ରବଦନ )—କଥାବାର୍ତ୍ତା— Samprabadana Conversation; dialogue (Apte).

ସମ୍ପ୍ରବର୍ତ୍ତନ—ସଂ. ବି ( ସମ୍+ପ୍ରବର୍ତ୍ତନ )—୧ । ଆରମ୍ଭ— Samprabarttana 1. Beginning. ୨ । କାର୍ଯ୍ୟରେ ହସ୍ତକ୍ଷେପଣ—2. Undertaking.

ସମ୍ପ୍ରବୃତ୍ତ, ସମ୍ପ୍ରବର୍ତ୍ତିତ } ବିଣ

ସମ୍ପ୍ରବୃଷ୍ଟ(ଷ୍ଟି)—ସଂ. ବି (ସମ୍+ପ୍ରବୃଷ୍ଟ)—ସମ୍ପୂର୍ଣ୍ଣ ବର୍ଷା— Samprabrushta(shti) Complete rainfall (Apte).

ସମ୍ପ୍ରବେଶ—ସଂ. ବି ( ସମ୍+ପ୍ରବେଶ )—ପୂର୍ଣ୍ଣରୂପେ ପ୍ରବେଶ, ଉତ୍ତମରୂପ Samprabeśa ପ୍ରବେଶ—Complete entrance; introduction (Apte). [ ସମ୍ପ୍ରବିଷ୍ଟ, ସମ୍ପ୍ରବେଶିତ—ବିଣ ]

ସମ୍ପ୍ରଭିନ୍ନ—ସଂ. ବିଣ ( ସମ୍+ପ୍ରଭିନ୍ନ )—୧ । ଚିରି ଯାଇ ମେଲା କରା Samprabhinna ଯାଇଥିବା—1. Split open; cleft ( Apte ). ୨ । ମତ୍ତ ( ହସ୍ତୀ ଆଦି )— 2. (an animal) In rut ( Apte).

ସମ୍ପ୍ରମାଦ—ସଂ. ବି ( ସମ୍+ପ୍ରମାଦ )—ମୋହ; ଭ୍ରାନ୍ତି (ବିଶ୍ୱକୋଷ) — Sampramāda [ ସମ୍ପ୍ରମତ୍ତ—ବିଣ ] Delusion.

ସମ୍ପ୍ରମୋଦ—ସଂ. ବି ( ସମ୍+ପ୍ରମୋଦ )—ଅତ୍ୟନ୍ତ ଆନନ୍ଦ (ବିଶ୍ୱ- Sampramoda କୋଷ )—Excessive joy; jubilee ( Apte ). [ସମ୍ପ୍ରମୋଦିତ—ବିଣ]

ସମ୍ପ୍ରମୋଷ—ସଂ. ବି (ସମ୍+ପ୍ରମୋଷ)—୧ । ଚୋରି (ବିଶ୍ୱକୋଷ)— Sampramosha 1. Theft. ୨ । ବିନାଶ—2. Destruction ( Apte ), ୩ । କ୍ଷତି—3. Loss (Apte). ୪ । କାଢ଼ିନେବା—4. Abstraction ( Apte ),

ସମ୍ପ୍ରଯୁକ୍ତ—ସଂ. ବିଣ ( ସମ୍+ପ୍ର+ଯୁଜ୍ ଧାତୁ=ଯୋଗ କରିବା+ Samprajukta କର୍ମ. ତ )—୧ । ଏକତ୍ର ଯୋଗ ଦିଆ— 1. Yoked together. ୨ । ଲାଭ ଉଦ୍ଦେଶ୍ୟରେ ବିନିଯୋଜିତ ( ଧନ )—2. Invested for profit. ୩ । ପରସ୍ପର ଦୃଢ଼ସଙ୍ଗମ—3. Sexually united ( Apte ). ୪ । ଦୃଢ଼ସଂକଳ୍ପ—4. Intent upon. ୫ । ( ବ୍ୟସନରେ ) ଆସକ୍ତ—5. Addicted to.

ସମ୍ପ୍ରଯୋ(ୟୋ)ଗ—ସଂ. ବି ( ସମ୍+ପ୍ର+ଯୁଜ୍ ଧାତୁ=ଯୋଗ କରିବା
Samprajo(yo)ga +ଭାବ.ଅ)—୧ । ବିନିଯୋଗ; ପ୍ରୟୋଗ—
[ ସଂପ୍ରଯୋ(ୟୋ)ଗ ଇତ୍ୟାଦି—ଅନ୍ୟରୂପ ] 1. Application.
ସମ୍ପ୍ରଯୁକ୍ତ, ସମ୍ପ୍ରଯୋଜିତ (ଭିନ୍ନ) } ବିଣ ୨ । ଧନାଦିର ବୃଦ୍ଧି
ସମ୍ପ୍ରଯୋଜକ, ସମ୍ପ୍ରଯୋଗୀ } କାମନାରେ ପ୍ରୟୋଗ; ଧନ
ପ୍ରୟୋଗ; ଲାଭପାଇଁ ବା ସୁଧପାଇଁ ଟଙ୍କା ଖଟାଇବା—
2. Investment of money. ୩ । ମାରଣ,
ବଶୀକରଣ,ଉଚ୍ଚାଟନ ଆଦି ତାନ୍ତ୍ରିକ କ୍ରିୟା—3. Tāntric
or esoteric or mesmeric rites employed
to control the action of other persons.
୪ । ଇନ୍ଦ୍ରଜାଲ; କୁହୁକ—4. Magic; the black
art. ୫ । ସାପେକ୍ଷତା—5. Corelation; mutual
dependence. ୬ । ସମ୍ବନ୍ଧ—6. Relationship.
୭ । ସଂଯୋଗ—7. Connection. ୮ । ଯୌନ
ସଙ୍ଗମ, ସଂସର୍ଗ; ରମଣ; ମୈଥୁନ—8. Cohabitation;
mutual sexual intercourse; sexual union.
୯ । ଲମ୍ପଟ୍ୟ—9. Lechery. ୧୦ । ସଂଯୋଗ;
ମିଳନ—10. Union; meeting ( Apte ).
୧୧ । ଧାରା—11. Connected series or
order. ୧୨ । ତାନ୍ତ୍ରିକ ଅଭିଚାର ( ଯଥା—ମାରଣ,
ବଶୀକରଣ, ଉଚ୍ଚାଟନ ) ର ପ୍ରୟୋଗ ( ଶବ୍ଦକୋଷ )—
12. Application of Tantric charms
against persons. ୧୩ । ଦୁଇ ପଦାର୍ଥକୁ ଯୋଡ଼ିବା
ପଦାର୍ଥ ବା ସୂତ୍ର—13. A connecting link;
fastener (Apte).

ସମ୍ପ୍ରଯୋଗୀ—ସଂ. ବିଣ. ପୁଂ ( ସମ୍+ପ୍ର+ଯୁଜ ଧାତୁ=ଯୋଗ
Samprajogī କରିବା+କର୍ତ୍ତୃ. ଇନ୍, ୧ମା. ୧ବ )—୧ ।
( ସମ୍ପ୍ରଯୋଗିନୀ—ସ୍ତ୍ରୀ ) ସମ୍ପ୍ରୟୋଗକାରୀ—1. Investing;
employing. ୨ । ଐନ୍ଦ୍ରଜାଲିକ; ତାନ୍ତ୍ରିକ ଅଭିଚାର
ପ୍ରୟୋଗକାରୀ—2. Practising magic; conjurin.
୩ । କାମୁକ; ବିଳାସୀ—3. Amorous;
wanton. ୪ । ଲମ୍ପଟ—4. Adulterous;
lecherous. ସଂ. ବି—୧ । ଧନ ଖଟାଇବା ବ୍ୟକ୍ତି—
1. Investor. ୨ । ଐନ୍ଦ୍ରଜାଲିକ—2. Magician;
a conjurer. ୩ । ଲମ୍ପଟ ବ୍ୟକ୍ତି—3. A lecher;
a libertine. ୪ । ଅନୈସର୍ଗିକ ଉପାୟରେ ଇନ୍ଦ୍ରିୟ
ଚରିତାର୍ଥକାରୀ ବ୍ୟକ୍ତି—4. A catamite (Apte).

ସମ୍ପ୍ରଯୋ(ୟୋ)ଜକ—ସଂ. ବିଣ. ପୁଂ ( ସମ୍+ପ୍ର+ଣିଜନ୍ତ ଯୁଜ୍
Samprajo(yo)jaka ଧାତୁ ବା ଯୋଜ ଧାତୁ=ଯୋଗ କରା-
(ସମ୍ପ୍ରଯୋ[ୟୋ]ଜିକା—ସ୍ତ୍ରୀ) ଇବା+କର୍ତ୍ତୃ. ଅକ)—୧ । କାମୁକ;
ଲମ୍ପଟ—1. Wanton; addicted to sexual
intercourse (Apte). ୨ । ସମ୍ପ୍ରଯୋଗ ଘଟାଇବା
ବ୍ୟକ୍ତି—2. Bringing about samprajoga.
ସଂ. ବି—୧ । ଦଲାଲ—1. Broker; tout. ୨ ।
ଯେଉଁ ବ୍ୟକ୍ତି ସ୍ତ୍ରୀଙ୍କୁ ଓ ପୁରୁଷଙ୍କୁ ସଙ୍ଗମାର୍ଥ ମିଳିତ କରାଏ—
2. Bawd; panderer; procurer. ୩ । ସଂଯୋଗ-
କାରୀ ବ୍ୟକ୍ତି—3. A joiner; uniter (Apte).

ସମ୍ପ୍ରଯୋ(ୟୋ)ଜନ—ସଂ. ବି ( ସମ୍+ପ୍ର+ଣିଜନ୍ତ ଯୁଜ୍ ଧାତୁ ବା
Samprajo(yo)jana ଯୋଜ ଧାତୁ=ଯୋଗ କରାଇବା+ଭାବ.
ସମ୍ପ୍ରଯୋ(ୟୋ)ଜିତ } ବିଣ ଅନ )—ଅନ୍ୟଦ୍ୱାରା ସମ୍ପ୍ରଯୋଗ
ସମ୍ପ୍ରଯୋ(ୟୋ)ଜ୍ୟ } ଘଟାଇବା—Bringing about
Samprajoga.

ସମ୍ପ୍ରସାଦ—ସଂ. ବି ( ସମ୍+ପ୍ର+ସଦ୍ ଧାତୁ=ପ୍ରସନ୍ନ ହେବା+
Samprasāda ଭାବ. ଅ )—୧ । ପ୍ରସନ୍ନତା—1. Favour.
( ସମ୍ପ୍ରସନ୍ନ—ବିଣ ) ୨ । ବିଶ୍ୱାସ—2. Trust. ୩ । ସୁଷୁପ୍ତି;
ଗଭୀର ନିଦ୍ରା—3. Slumber; sound sleep. ୪ ।
ଯୋଗ ଶାସ୍ତ୍ରୋକ୍ତ ଚିତ୍ତର ନିର୍ମଳତାସଂପାଦକ ସମ୍ପ୍ର-
ଦିଶେଷ—4. ( Joga ) A trial for bringing
about peace or contentment of mind.

ସମ୍ପ୍ରସାରଣ—ସଂ. ବି ( ସମ୍+ପ୍ରସାରଣ )—୧ । ବିସ୍ତାରଣ—
Samprasārana 1. Extending. ୨ । ବିସ୍ତାର—
(ସମ୍ପ୍ରସାରିତ—ବିଣ) 2. Extension. ୩ । ( ବ୍ୟାକରଣ )
ଇ, ଉ, ଋ, ଌ, ସ୍ଥାନରେ ଯଥାକ୍ରମେ ଯ, ୱ, ର, ଲ ଆଗମ
ହେବାଘଟଣା—3. (grammar) The substitution
of the letters Ja, Wa, Ra, La in the
place of the letters I, U, Ru, Lu. ୪ ।
ସମ୍ପୂର୍ଣ୍ଣରୂପେ ମେଲାଇ ଦେବା—
4. Complete spreading out.

ସମ୍ପ୍ରସ୍ଥିତ—ସଂ. ବିଣ ( ସମ୍+ପ୍ରସ୍ଥିତ )—୧ । ପ୍ରସ୍ଥାନୋଦ୍ୟତ—
Samprasthita 1. Ready to start. ୨ । ଗତ; ଯେ
(ସମ୍ପ୍ରସ୍ଥିତି, ସମ୍ପ୍ରସ୍ଥାନ—ବି) ଯାଇଅଛି—2 Gone; departed.

ସମ୍ପ୍ରହାର—ସଂ. ବି ( ସମ୍+ପ୍ରହାର )—୧ । ସମ୍ୟକ୍ ପ୍ରହାର; ବିଶେଷ
Samprahāra ପ୍ରହାର—1. Sound beating. ୨ ।
ସମ୍ପ୍ରହୃତ } ବିଣ ହନନ; ମାରଣ (ଧରଣୀ)—2 Slaughter.
ସମ୍ପ୍ରହାରୀ } ୩ । ଗମନ ( ମେଦିନୀ )—3. Going;
motion. ୪ । ଯୁଦ୍ଧ ( ଅମର )—4. Fight,
battle. ୫ । ମାଡ ମରାମରି; ପିଟାପିଟି—
5 Mutual striking; a strife.

ସମ୍ପ୍ରହାସ—ସ. ବି (ସମ୍+ପ୍ରହାସ)—ଉପହାସ; ବିଦ୍ରୂପ (ଶବ୍ଦକୋଷ)
Samprahāsa Redicule.

ସମ୍ପ୍ରାପତ—ଗ୍ରା. ବିଣ (ପଦ୍ୟ)—ସମ୍ପ୍ରାପ୍ତ (ଦେଶଜ)—Samprāpta.
Samprāpata (See) (ଉ—ଏକା ବିଜରେଟି ଯୁବତି, ସଦା
सम्प्राप्त सस्मास ସ୍ୱରୂପ ସମ୍ପ୍ରାତେ । ଗୀତା. ଦୁର୍ଗିନାମ
ଚନ୍ଦ୍ରୋଦୟ ।)

ସମ୍ପ୍ରାପ୍ତ—ସ. ବିଣ (ସମ୍+ପ୍ରାପ୍ତ)—୧ । ସମ୍ୟକ୍ ଲବ୍ଧ—
Samprāpta 1. Specially obtained; received.
(ସମ୍ପ୍ରାପ୍ତି—ବି) acquired; attained. ୨ । ସମାଗତ;
ଉପସ୍ଥିତ—2. Arrived.

**ସମ୍ପ୍ରୀତ**—ସଂ. ବିଣ (ସମ୍+ପ୍ରୀତ)—୧ । ସନ୍ତୁଷ୍ଟ—1. Satisfied; Samprīta content. ୨ । ଅତି ତୁଷ୍ଟ; ଅତ୍ୟନ୍ତ ପ୍ରୀତିଯୁକ୍ତ—(ସଂପ୍ରୀତ—ଅନ୍ୟରୂପ) 2. Much pleased; gratified; [ସମ୍ପ୍ରୀତି—ବି] delighted; overjoyed. ୩ । ପରସ୍ପର ପ୍ରତି ପ୍ରୀତ—3. Mutually loving; on good terms with each other.

**ସମ୍ପ୍ରେକ୍ଷଣ**—ସଂ. ବି (ସମ୍+ପ୍ରେକ୍ଷଣ)—୧ । ସମ୍ୟକ୍ ଦର୍ଶନ; Samprekshaṇa ଭୂୟୋଦର୍ଶନ—1. Observation. (ସଂପ୍ରେକ୍ଷଣ—ଅନ୍ୟରୂପ) [ସମ୍ପ୍ରେକ୍ଷିତ—ବିଣ] ୨ । ଅନୁସନ୍ଧାନ—2. Investigation; inquiry.

**ସମ୍ପ୍ରେଷ**—ସଂ. ବି (ସମ୍+ପ୍ର+ଇଷ୍. ଧାତୁ=ଗମନ କରିବା+ Sampresha ଭାବ ଅ )—୧ । ନିୟୋଗ; ବିଧି—1. Rule. ୨ । ପ୍ରେରଣ—2. Sending away. (Apte). ୩ । ସଂବାଦ ପ୍ରେରଣ—3. Sending of message. (Apte)

**ସମ୍ପ୍ରୋକ୍ଷଣ**—ସଂ. ବି (ସମ୍+ପ୍ରୋକ୍ଷଣ)—୧ । ସମ୍ୟକ୍ ଜଳସେଚନ—Samprokshaṇa 1. Thorough sprinkling. ୨ । (ସମ୍ପ୍ରୋକ୍ଷିତ—ବିଣ) ବଳିଦାନ ପୂର୍ବରୁ ପଶୁ ବଧ ସ୍ଥାନରେ ପଶୁ ଉପରେ ମନ୍ତ୍ରପାଠପୂର୍ବକ ଜଳସେଚନ—2. Consecration of the victim by sprinkling water over it by uttering some formulas.

**ସମ୍ପ୍ଲବ**—ସଂ. ବି ( ସମ୍+ପ୍ଲୁ. ଧାତୁ=ଗିବା+ଭାବ. ଅ )—Samplaba ୧ । ସମ୍ୟକ୍ ପ୍ଲାବନ; ବନ୍ୟା; ଜଳର ଅତିଶୟ (ସଂପ୍ଲବ—ଅନ୍ୟରୂପ) ବୃଦ୍ଧି—1. Inundation; flood. [ସମ୍ପ୍ଲୁତ, ସମ୍ପ୍ଲାବିତ—ବିଣ] ୨ । ପ୍ରଳୟକାଳୀନ ବନ୍ୟା—2. Deluge. ୩ । ଗୋଳମାଳ; ସଂକ୍ଷୋଭ—3. Restlessness. ୪ । ଇତସ୍ତତଃ ପତନ; ଚାରିଆଡ଼େ ବର୍ଷଣ (ଶବ୍ଦକୋଷ)—4. Showering on all sides. ୫ । ବିନାଶ; ଧ୍ୱଂସ—5. Falling into ruin; destruction (Apte).

**ସମ୍ଫାଳ**—ସଂ. ବି (ସମ୍+ଫଲ୍. ଧାତୁ=ଫଳ ଧାରଣ କରିବା+ Samphāla କର୍ତ୍ତୃ. ଅ) ୧ । ମେଘ—1. Cloud. ୨ । ମେଷ (ସଂଫାଳ—ଅନ୍ୟରୂପ) (ହେମଚନ୍ଦ୍ର)—2. Ram.

**ସମ୍ଫୁଲ୍ଲ**—ସଂ. ବିଣ ( ସମ୍=ସମ୍ୟକ୍+ଫୁଲ୍ଲ. ଧାତୁ=ପ୍ରସ୍ଫୁଟିତ Samphulla ହେବା+କର୍ତ୍ତୃ. ତ )—୧ । ପ୍ରଫୁଲ୍ଲ—(ସଂଫୁଲ୍ଲ—ଅନ୍ୟରୂପ ) 1. Delighted. ୨ । ପ୍ରସ୍ଫୁଟିତ; ବିକଶିତ—2. Full blown; expanded.

**ସମ୍ଫେଟ**—ସଂ. ବି (ନାଟ୍ୟୋକ୍ତିରେ)—୧ । ଅଶ୍ଳୀଳ; କ୍ରୋଧପୂର୍ବକ Sampheṭa କଥନ—1. Angry discourse. ୨। କ୍ରୁଦ୍ଧ ଜଣ କ୍ରୁଦ୍ଧ ବ୍ୟକ୍ତିଙ୍କର ଭେଟାଭେଟି—2. Encounter between two angry persons. (Apte).

**ସମ୍ବ୍** ( ଧାତୁ )—ସଂ.—୧ । ଗତି କରିବା—1. To go; to Samb (root) move. (Apte) ୨ । ଗଦା କରିବା; ସଂଗ୍ରହ (ସଂବ. ଷମ୍ବ୍—ଅନ୍ୟରୂପ) କରିବା—2. To accumulate; to heap up; to collect.

**ସମ୍ବ**—ସଂ. ବି ( ସମ୍ବ. ଧାତୁ=ଗମନ କରିବା+ଭାବ. ଅ )—Samba ୧ । ପୁନ ଥର ଚଷିବା; ପୁନ ଓଲଟ ଚଷ—1. Repeated cultivation; ploughing (ସଂବ—ଅନ୍ୟରୂପ) twice. (Apte) ୨ । ପ୍ରତିଲୋମାକର୍ଷଣ; ବିପରୀତ ଦିଗରୁ ଚଷିବା—2 Cultivating or ploughing from the opposite side. ୩ । ଜମିକୁ ଦ୍ୱିତୀୟ ଥର ଚଷିବା—3. Ploughing of a field for the second time. (Apte) ୪ । (+କର୍ତ୍ତୃ. ଅ) ଜଳ—4. Water.

**ସମ୍ବତ୍**—ସଂ. ବି ( ସମ୍+ବଦ୍. ଧାତୁ=କହିବା+କର୍ମ. କ୍ୱିପ୍ )—Sambat ୧। ସମ୍ବତ୍ସର, ବର୍ଷ—1. Year. ୨। ରାଜା ବିକ୍ରମାଦିତ୍ୟଙ୍କ (ସଂବତ୍—ଅନ୍ୟରୂପ) ପ୍ରବର୍ତ୍ତିତ ଅବ୍ଦ—2. The era promulgated by king Bikramāditya. [ ଦ୍ର—ଖ୍ରୀଷ୍ଟାବ୍ଦର ୫୭ ବର୍ଷ ପୂର୍ବରୁ ଏ ଅବ୍ଦ ପ୍ରବର୍ତ୍ତିତ ହୋଇ ଆସିଅଛି । ଖ୍ରୀଷ୍ଟାବ୍ଦ ସଙ୍ଗେ ୫୭ ସଂଖ୍ୟା ଯୋଗ କଲେ ସମ୍ବତ୍ ଅବ୍ଦର ସଂଖ୍ୟା ମିଳେ । 'ସନ' ଶବ୍ଦ ତଳେ ଟିପ୍ପଣୀ ଦେଖ ।

'ଅମରକୋଷ' ଅଭିଧାନରେ 'ସମ୍ବତ୍' ଶବ୍ଦ ଅବ୍ୟୟରୂପେ ପରିଗଣିତ ହୋଇଅଛି ।]

**ସମ୍ବତ୍ସର**—ସଂ. ବି (ସମ୍+ବତ୍ସର)—ପୂର୍ଣ୍ଣ ଏକ ବର୍ଷ; ବାର ମାସ—Sambatsara A year; a twelve month. (ସଂବତ୍ସର—ଅନ୍ୟରୂପ)

**ସମ୍ବଦନ**—ସଂ. ବି (ସମ୍+ବଦ୍. ଧାତୁ=କହିବା+ଭାବ. ଅନ)—Sambadana ୧ । କଥନ—1. Speaking. ୨। ଉଚ୍ଚାରଣ—(ସଂବଦନ—ଅନ୍ୟରୂପ) 2. Uttering. ୩ । (+କର୍ମ. ଅନ) ସମ୍ବାଦ—3. News; intelligence. ୪ । ସଦୃଶୀକରଣ—4. Act of making similar; equalisation.

**ସମ୍ବଦ୍ଧ**—ସଂ. ବିଣ (ସମ୍+ବନ୍ଧ୍. ଧାତୁ=ବାନ୍ଧିବା+କର୍ମ. ତ)—Sambaddha ୧ । ସମ୍ବନ୍ଧଯୁକ୍ତ—1. Having relation (ସଂବଦ୍ଧ—ଅନ୍ୟରୂପ) or connection; related to. ୨ । [ସମ୍ବନ୍ଧ—ବି] ଦୃଢ଼ବଦ୍ଧ; ପରସ୍ପର ସହିତ ବନ୍ଧା ହୋଇଥିବା—3. Well tied; bound; fastened together. ୩ । ସଂଯୁକ୍ତ; ସମ୍ମିଳିତ—3. Associated; joined to, united with; connected with. ୪ । ବନ୍ଦ (ଦ୍ୱାରାଦି)—4. Closed; shut. (Apte) ୫ । ବିଶିଷ୍ଟ—5. Endowed with. (Apte) . ୬ ।

(ବ୍ୟାକରଣ) ଅର୍ଥ ବା ରଚନା ସମ୍ବନ୍ଧ ବିଶିଷ୍ଟ—
6. Connected in sense; grammatically connected (Apte)

**ସମ୍ବନନ**—ସଂ. ବି (ସମ୍ + ବନ୍ ଧାତୁ=ଯାଚ୍ଞା କରିବା, ଅଧୀନ
Sambanana କରିବା + ଭାବ. ଅନ) —୧ । ଆଲୋଚନା—
1. Discussion; debating. ୨ । ବଶୀକରଣ—
2. Subjugating; bringing under control.
୩ । ମନ୍ତ୍ରୌଷଧି ଦ୍ୱାରା ମୁଗ୍ଧ କରିବା—3. Fascinating; infatuating; charming.

**ସମ୍ବନ୍ଧ**—ସଂ. ବି ( ସମ୍ + ବନ୍ଧ୍ ଧାତୁ + ଭାବ. ଅ )—୧ । ସମ୍ପର୍କ—
Sambandha 1. Relationship. [ ଦ୍ର—ଦୁଇ ( ସବନ୍ଧ ଇତ୍ୟାଦି—ଅନ୍ୟରୂପ ) ବ୍ୟକ୍ତିଙ୍କ ମଧ୍ୟରେ ଘଟିବା (ସମ୍ବନ୍ଧୀ, ସମ୍ବନ୍ଧୀୟ, ସମ୍ବନ୍ଧ—ବଣ) ସମ୍ବନ୍ଧ ୩ ପ୍ରକାରର; ଯଥା—
(୧) ବିଦ୍ୟାଜ ସମ୍ବନ୍ଧ (ଯଥା—ଗୁରୁଙ୍କ ସଙ୍ଗେ ଶିଷ୍ୟର ସମ୍ବନ୍ଧ; ଦୁଇ ଗୁରୁ ଭାଇଙ୍କ ମଧ୍ୟରେ ସମ୍ବନ୍ଧ) ।
(୨) ପ୍ରୀତିଜ ସମ୍ବନ୍ଧ ( ଯଥା—ମିତ୍ରତାଦ୍ୱାରା ସ୍ଥାପିତ ସମ୍ବନ୍ଧ) ।
(୩) ଯୋନିଜ ସମ୍ବନ୍ଧ (ଯଥା—ରକ୍ତ ବା ଜନ୍ମ ଓ ବିବାହାଦି ଦ୍ୱାରା ସ୍ଥାପିତ ସମ୍ବନ୍ଧ)] । ୨। ସଂସର୍ଗ—2. Connection; association [ ଦ୍ର—ଏ ସଂସର୍ଗ ପ୍ରତିଯୋଗୀ, ଅନୁଯୋଗୀ, ଆଧାର, ଆଧେୟ, ବିଷୟ ଓ ବିଷୟୀ ଭେଦରୁ ଅନେକ ପ୍ରକାର—ବିଶ୍ୱକୋଷ । ] ୩ । ଏକ ପଦାର୍ଥ ସଙ୍ଗେ ଅନ୍ୟ ପଦାର୍ଥର ସଂଯୋଗ—3. Connection or union of one thing with another, ( ଉ—ରତନର ସମ୍ବନ୍ଧେ ପାତେଶ ପଡ଼ିଛି—କୃଷ୍ଣସିଂହ ମହାଭାରତ ସଭା ।)
୪ । ମିଳନ—4. Union. ୫ । ସଙ୍ଘଟନ—5. Combination. ୬ । ସମୀଚୀନତା; ଉପଯୁକ୍ତତା; ଯୋଗ୍ୟତା—6. Propriety; fitness. ୭ । ( + କରଣ ଅ. ) ଆତ୍ମୀୟତା; ବନ୍ଧୁତା; ମିତ୍ରତା; ସଖ୍ୟ—7. Friendship; friendly connection.
୮ । କୁଟୁମ୍ବିତା—8. Kinship, ( ଉ—ବାବୁ, ଭାଇ, ପୁଅ ଯେ ସମ୍ବନ୍ଧ ବାନ୍ଧବ, ହରାଇଲେଟି ଯୁଧିଷ୍ଠିର ନରଧବ—କୃଷ୍ଣସିଂହ ମହାଭାରତ ଆଦି । ]
୯ । କାର୍ଯ୍ୟକାରଣତା ବା ଜନ୍ୟଜନକତା ଭାବ—9. Relationship of cause and effect.
୧୦ । ( ବ୍ୟାକରଣ ) ଷଷ୍ଠୀବିଭକ୍ତିଯୁକ୍ତ କାରକ—10. [grammar] The genitive case; the 6th case. [ ଦ୍ର—ସମ୍ବନ୍ଧ ଅନେକ ପ୍ରକାରର; ଯଥା—ଆଧାର ସଙ୍ଗେ ଆଧେୟର ସମ୍ବନ୍ଧ; ପ୍ରତିଯୋଗ୍ୟ ସଙ୍ଗେ ଅନୁଯୋଗ୍ୟର ସମ୍ବନ୍ଧ, ବିଷୟ ସଙ୍ଗେ ବିଷୟୀର ସମ୍ବନ୍ଧ ଇତ୍ୟାଦି । ] ୧୧ । ବିବାହଦ୍ୱାରା ସ୍ଥାପିତ ବନ୍ଧୁତ୍ୱ—11. Relationship by marriage; matrimonial alliance. ୧୨ । ସମୃଦ୍ଧି—12. Affluence; prosperity. ୧୩ । ବନ୍ଧୁ—13. A relative (Apte) ୧୪ । କୁଟୁମ୍ବ; ସଗୋତ୍ର—14. Kinsman (Apte). ୧୫ । ବିବାହ ଦ୍ୱାରା ବନ୍ଧୁତ୍ୱ ସ୍ଥାପନ—15. Establishment of relationship by marriage. ଦେ. ବିଣ—୧ । ସମର୍ଥ 1. Able; capable. ୨ । ଉପଯୁକ୍ତ; ସମୀଚୀନ—2. Proper right. ୩ । ମିଳିତ—3. United; joined together; combined.
সম্বন্ধ सम्बन्ध

**ସମ୍ବନ୍ଧ କରିବା**—ଦେ. କ୍ରି—କୌଣସି ବ୍ୟକ୍ତି ବା ବଂଶ ସଙ୍ଗେ ଆପଣା
Sambandha karibā ବଂଶର କୌଣସି ବ୍ୟକ୍ତିଙ୍କର
সম্বন্ধ করা सम्बन्ध करना ବୈବାହିକ ସମ୍ବନ୍ଧର ଚେଷ୍ଟା କରିବା—To form matrimonial alliance with any person or family.

**ସମ୍ବନ୍ଧ ପକା(କେ)ଇବା**—ଦେ. କ୍ରି—ଦୁଇ ବ୍ୟକ୍ତି ବା ଦୁଇ ବଂଶ ମଧ୍ୟରେ
Sambandha pakā(ke)ibā ବୈବାହିକ ସମ୍ବନ୍ଧ ଘଟିବାର
সম্বন্ধেরকথা চালান सम्बन्ध चलाना ପ୍ରସ୍ତାବ କରିବା—To propose a matrimonial alliance between 2 persons or 2 families.

**ସମ୍ବନ୍ଧ ପଡ଼ିବା**—ଦେ. କ୍ରି—ବୈବାହିକ ସମ୍ବନ୍ଧର ପ୍ରସ୍ତାବ ବା କଥାବାର୍ତ୍ତା
Sambandha parḍibā ଚଳିବା—The mooting of
সম্বন্ধের কথা চলা सम्बन्ध चलना a proposal for marriage relationship.

**ସମ୍ବନ୍ଧ ବାନ୍ଧିବା**—ଦେ, କ୍ରି—କୌଣସି ବ୍ୟକ୍ତି ବା ବଂଶ ସଙ୍ଗେ ଆପଣା
Sambandha bāndhibā ବଂଶର ବୈବାହିକ ସମ୍ପର୍କ
সম্বন্ধ বান্ধা सम्बन्ध बान्धना ସ୍ଥାପନ କରିବା—To form a marriage relationship between one's family and another's.

**ସମ୍ବନ୍ଧରେ**—ଦେ ଅ—୧ । ସମ୍ପର୍କରେ—1 In relation to;
Sambandhare in connection with.
সম্বন্ধে संबन्धमे ୨ । ବିଷୟରେ—2. About; in
(ସମ୍ବନ୍ଧେ—ଅନ୍ୟରୂପ) respect of; in the matter of; in regard to. [ ଦ୍ର—ସମ୍ବନ୍ଧରେ ବା ସମ୍ବନ୍ଧେ ଶବ୍ଦର ପରଣିଆ ସାଙ୍କେତିକ । ସ୍ମ । ବା ସ୍ମଧେ ଅଛି ।]

**ସମ୍ବନ୍ଧରେ ଷଷ୍ଠୀ ବିଭକ୍ତି**—ଦେ. ବି. (ବ୍ୟାକରଣ)—ଦୁଇ ବସ୍ତୁ ବା ଦୁଇ
Sambandhare shashṭhī bibhakti ବ୍ୟକ୍ତି ମଧ୍ୟରେ ବା
সম্বন্ধে ষষ্ঠি বিভক্তি ଏକ ବ୍ୟକ୍ତିସଙ୍ଗେ ଅନ୍ୟ ବସ୍ତୁର ବା ଗୁଣର
सम्बन्धे षष्ठी बिभक्ति ସମ୍ବନ୍ଧ ଥିଲେ ପ୍ରଥମ ବସ୍ତୁର ବା ବ୍ୟକ୍ତିର ହେବା ୬ଷ୍ଠୀ ବିଭକ୍ତି—Genitive case based on relationship or connection.
[ଉ—ଘରର କଥା—ଘର ସମ୍ବନ୍ଧୀୟ କଥା ।]

**ସମ୍ବନ୍ଧା ସମ୍ବନ୍ଧୀ**—ଦେ. ବି—ସମଦା ସମଦୀ (ଦେଖ)—
Sambandhā sambandhi Samadā samadī (See)
বেআয়ে বেআয়ে কোলাকুলি समन्धा समन्धी

**ସମ୍ବନ୍ଧୀ**—ସଂ. ବଣ. ପୁଂ (ସମ୍ବନ୍ଧ+କର୍ତ୍ତୃ. ଇନ୍; ୧ମା ୧ବ)—୧। **Sambandhī** ସମ୍ବନ୍ଧ ବିଶିଷ୍ଟ—1. Having relation' (ସମ୍ବନ୍ଧିନୀ—ସ୍ତ୍ରୀ) ୨। ମିଳିତ—2. Joined; associated. ୩। କୌଣସି ଦ୍ୱାରା ସମ୍ପର୍କ ଯୁକ୍ତ—3. Related to. [ଉ—ଅଛି ସମ୍ବନ୍ଧୀରେ ଅଦ୍ଭୁତ ସ୍ୱଭାବ ହୋଇ।—କୃଷ୍ଣସିଂହ. ମହାଭାରତ. ସଭା] ୪। ସଦ୍‌ଗୁଣ ବିଶିଷ୍ଟ—4. Possessing good qualities. ୫।ଉପଯୁକ୍ତ-5. Fit; befitting. ୬। ସମର୍ଥ—6 Capable. ୭। ସମ୍ବନ୍ଧୀୟ—7. Relating to; belonging to. ୮। ବହୁଗୁଣ ବିଶିଷ୍ଟ—8. Possessing many qualities (Apte). ୯। ବିଦ୍ୱାନ୍ (ବିଶ୍ୱକୋଷ)—9. Learned. ସଂ. ବି. ପୁଂ—୧। କୁଟୁମ୍ବ—1. Kinsman. ୨। ବିବାହ ବନ୍ଧନ ଦ୍ୱାରା ହୋଇଥିବା ବନ୍ଧୁ—2. A marriage relation. ୩। ମିତ୍ର (ବିଶ୍ୱକୋଷ)—3. A friend. ଦେ. ବି. ପୁଂ.—ସମୁଧୀ; ଅପଣା (ସମ୍ବନ୍ଧିଣୀ—ସ୍ତ୍ରୀ) ପୁତ୍ରର ବା କନ୍ୟାର ଶ୍ୱଶୁର—The father-ବେଆଇ **समधी** in-law of one's off spring. [ଉ—ଦୁର୍ଯ୍ୟୋଧନ ତୁମ୍ଭର ସମ୍ବନ୍ଧୀ ଅଟଇ, ତାକୁ ଛାଡ଼ି ଏହାଙ୍କ ସେବା ନ ଯୋଗାଇ।—କୃଷ୍ଣସିଂହ. ମହାଭାରତ. ଶଲ୍ୟ।] [ଦ୍ର—ବଙ୍ଗଳାରେ ଶଳାକୁ 'ସମ୍ବନ୍ଧୀ' ବୋଲାଯାଏ।]

**ସମ୍ବନ୍ଧିନୀ**—ସଂ. ବି—ସ୍ନେହ ଉଦ୍ଦୀପନାର ବିଭାବ ବିଶେଷ—A phase **Sambandhinī** of kindling of affection or love. (ଉ—ସମ୍ବନ୍ଧିନୀ ସମ୍ବନ୍ଧିନୀ ଅଭ୍ୟାଦିସା, ବିଚାର ତତ୍ତ୍ୱ ଗୁଣ ଅଛି ଯେଉଁ। ସାମନ୍ତସିଂହାର. ବିଦଗ୍ଧଚିନ୍ତାମଣି।) ସଂ. ବିଣ. ସ୍ତ୍ରୀ—ସମ୍ବନ୍ଧୀର ସ୍ତ୍ରୀଲିଙ୍ଗ—Feminine of Sambandhī.

**ସମ୍ବନ୍ଧୀୟ**—ସଂ. ବିଣ (ସମ୍ବନ୍ଧ+ଈୟ) ସମ୍ବନ୍ଧଯୁକ୍ତ; ସମ୍ପର୍କୀୟ—**Sambandhīya** Related to; relating to; pertaining to.

**ସମ୍ବର**—ସଂ. ବି (ସମ୍ ଧାତୁ=ଗମନକରିବା+ କର୍ତ୍ତୃ. ଅର; କିମ୍ବା ସମ୍ **Sambara** +ବୃ ଧାତୁ=ଆବରଣ କରିବା+କର୍ତ୍ତୃ. ଅ)- (ଶବର ଇତ୍ୟାଦି—ଅନ୍ୟରୂପ) ୧। ଜଳ—1. Water. ୨। ପର୍ବତ—2. Mountain. ୩। ପର୍ବତବିଶେଷର ନାମ—3. The name of a mountain. ୪। ସେତୁ—4. Bridge; dam. ୫। ବୌଦ୍ଧ-ବ୍ରତବିଶେଷ (ମେଦିନୀ)—5. Name of a Buddhist religious observance. ୬। (+ଶ୍ରବ ଅ) ସଂଯମ (ହିକାଣ୍ଡଶେଷ)—6. Self control; self-restraint. ୭। ଇନ୍ଦ୍ରିୟଦମନ—7. Controlling of the sense-organs. ୮। ସମ୍ବରଣ—8. Controlling. ୯। ଦମନ—9. Checking. ୧୦। ସମ୍ବର ହ୍ରଦ (ଦେଖ)—10. Sambara hrada (See) ୧୧। ସମ୍ବର ମତ୍ସ୍ୟ (ଦେଖ)—11. Sambara mateya (See) ୧୨। ଶମ୍ବର ୧ (ଦେଖ)—12. Sambara. (See) ୧୩। ଶମ୍ବର ୧୩ (ଦେଖ)—13. Sambara 13 (See). ଦେ. ବି. ସମ୍ବର ଦଶମୀ (ଦେଖ)—Sambara daśamī (See)

**ସମ୍ବରଣ**—ସଂ. ବି (ସମ୍+ବୃ ଧାତୁ=ଆବରଣ କରିବା+ଭାବ. ଅନ)- **Sambaraṇa** ୧। ଆବରଣ—1. Covering. ୨। ଲୁଗୁଇବା ସଂଗୋପନ; ଗୋପନ—2. Concealing. ୩। ଦମନ—3. Checking. repression. suppressing. ୪। ସମ୍ଭାଳିବା; ସଂଯମନ—4. Controlling; restraining. ୫। ବରଣ—5. Selecting. ୬। ବରମାଳାଦାନ—6. The act of selecting one's husband by presenting him with a garland. ୭। ଇନ୍ଦ୍ରିୟସଂଯମ—7. Controlling of the passions. ୮। ଚନ୍ଦ୍ରବଂଶୀୟ ଜଣେକ ରାଜା—8. Name of a king of the Lunar dynasty. [ଦ୍ର—ଏ ପାଞ୍ଚାଳରାଜାଙ୍କ ଦ୍ୱାରା ପରାଜିତ ହୋଇ ରାଜ୍ୟ ହରାଇଥିଲେ; ପରେ ବଶିଷ୍ଠଙ୍କୁ ପୁରୋହିତ କରି ବହୁ ଚେଷ୍ଟାରେ ରାଜ୍ୟ ପାଇଲେ। ଏ ସୂର୍ଯ୍ୟନନ୍ଦନା ତପତୀଙ୍କୁ ବିବାହ କରିବାକୁ ଇଚ୍ଛୁକ ହେବାରୁ ବଶିଷ୍ଠ ସୂର୍ଯ୍ୟଲୋକକୁ ଯାଇ ସୂର୍ଯ୍ୟଙ୍କ ଅନୁମତି ଗ୍ରହଣପୂର୍ବକ ତପତୀଙ୍କୁ ଏହାଙ୍କ ସଙ୍ଗେ ବିବାହିତା କରଇଲେ ଓ ଏହାଙ୍କ ଗର୍ଭରୁ କୁରୁ ନାମକ ବିଖ୍ୟାତ କୁମାର ଜନ୍ମଗ୍ରହଣ କରିଥିଲେ।]

**ସମ୍ବରଣ କରିବା**—ଦେ. କି—ସମ୍ଭାଳିବା; ଦମନ କରିବା—**Sambaraṇa kariba** To restrain; to check. ସম্বরণ করা **सम्वरण करना**

**ସମ୍ବର ଦଶମୀ**—ଦେ. ବି (ସଂ. ଶାମ୍ବ ଦଶମୀ)—ପୌଷ ଶୁକ୍ଳ ଦଶମୀରେ **Sambara daśamī** ଅନୁଷ୍ଠିତ ହିନ୍ଦୁମାନଙ୍କ ବ୍ରତ ବିଶେଷ; (ସମ୍ବର ଦଶେଇଁ—ଗ୍ରାମ୍ୟରୂପ) (ଏହି ବ୍ରତକୁ ଅସ୍ପୃଶ୍ୟଠାରୁ ସବୁ ଜାତି ସମ୍ବର দশমী ପାଳନ କରନ୍ତି)—A Hindu festival of **सम्बर दशमी** worshipping the Sun-god on the 10th day of the bright lunar fortnight of the month of Pausha, observed by all classes of people. [ଦ୍ର—ଏହି ଦିନ ପିଷ୍ଟକ, ନାରିକେଳ, କଦଳୀ, ଶର୍କରା ଆଦି ନୈବେଦ୍ୟ ଅର୍ପଣ କରି ମଧ୍ୟାହ୍ନରେ ସୂର୍ଯ୍ୟଙ୍କୁ ପୂଜା କରାଯାଏ। ଏଥିର ବାକ୍ୟ—"ପୌଷେ ମାସି ସିତେ ପକ୍ଷେ ଦଶମ୍ୟାଂ ଧର୍ମ ଦେବତାଂ ଘୃତପାଚିତ ପୂପାଦ୍ୟୈଃ ସମ୍ପୂଜ୍ୟେଦ୍ଭକ୍ତିଭାବତଃ।" କେହି କେହି ଉଦୟ କାଳରେ, ମଧ୍ୟାହ୍ନରେ ଓ ସନ୍ଧ୍ୟାରେ ମଧ୍ୟ ସେହିପରି ପୂଜା କରନ୍ତି। ଏହି ତିନିଥର ପୂଜାରେ ନୈବେଦ୍ୟ ଭିନ୍ନ।]

**ସମ୍ବର ଦୈତ୍ୟ**—ସଂ. ବି—ଶମ୍ବର ୧୩ (ଦେଖ) **Sambara daitya** Sambara 13 ( See )

ସମ୍ବର ମତ୍ସ୍ୟ—ସଂ.ବ—ବୃହତ୍କାୟ ସାମୁଦ୍ରିକ ମତ୍ସ୍ୟ ବିଶେଷ; ଶିଶୁମାର ?
Sambara matsya —A species of big sea fish; gangetic porpoise ?

ସମ୍ବର ମୃଗ—ସଂ. ବ—ଶମ୍ବର ୧ ( ଦେଖ )
Sambara mruga Sambara 1 ( See )

ସମ୍ବର ସିଙ୍ଘା—ଦେ. ବ—ଘଣ୍ଟି ୩ ( ଦେଖ )
Sambara singhā Ghanti 3 ( See )
ঘণ্টা घंटी

ସମ୍ବର ରିପୁ—ସଂ. ବ (୬ଷ୍ଠୀ ତତ୍) —ମଦନ; କାମଦେବ—
Sambara ripu Cupid (Apte).

ସମ୍ବର ହ୍ରଦ—ସଂ. ବ—ରାଜପୁତାନା ଅନ୍ତର୍ଗତ ଲବଣାକ୍ତ ହ୍ରଦ
Sambara hrada ବିଶେଷ—The Sambara lake in Rājputānā (from the water of which salt is extracted by evaporation). (ଦ୍ର—ଅସନ୍ତ ସମ୍ବରହ୍ରଦ କୈବିଡ ସଦାଓ ପ୍ରାଂଶୁତନୁ । ରାଧାନାଥ• ମହାଯାତ୍ରା ।) [ ଦ୍ର—ଏହି ହ୍ରଦର ଜଳକୁ ସୂର୍ଯ୍ୟକିରଣରେ ଶୁଖାଇ ତହିଁରୁ ଲୁଣ ଉତ୍ପାଦନ କରାଯାଏ । ]

ସମ୍ବରାରି—ସ. ବ ( ୬ଷ୍ଠୀ ତତ୍ )—ମଦନ; କାମଦେବ—
Sambarāri A name of the Cupid.
[ ଦ୍ର—କାମ ସମ୍ବରାସୁରକୁ ବଧ କରିଥିଲେ । ]

ସମ୍ବରାସୁର—ସ. ବ—ଶମ୍ବର ୧୩ ( ଦେଖ )
Sambarāsura Sambara 13 ( See )

ସମ୍ବରି—ଦେ. ବଣ ( ସ• ସାମ୍ବରୀ )—ସମ୍ବର ସମ୍ବନ୍ଧୀୟ—Relating
Sambari to sambara. (ଉ—ସମ୍ବରି ଚମ, ସମ୍ବରିଲୁଣ)
সম্বরি सम्बरका

ସମ୍ବରି ଚମ(ଚମଡ଼ା)—ଦେ. ବ—ସମ୍ବର ମୃଗର ଚର୍ମ—The hide
Sambari chama(chamardā) or skin of the
সম্বরি চামড়া सम्बरका चमड़ा Sambara deer.

ସମ୍ବରିତ—ସ• ବିଣ (ସମ୍+ଣିଜନ୍ତ ବୃ ଧାତୁ ବା ବର ଧାତୁ+କର୍ମ. ତ
Sambarita —୧ । ଆବୃତ—1. Covered over. ୨ ।)
(ସମ୍ବରଣ—ବ) ଗୋପିତ—2. Concealed. ୩ । ଦମିତ—
3. Controlled; restrained; checked. ୪ ।
ବରିତ—4. Selected.

ସମ୍ବରି ଲୁଣ—ଦେ. ବ ( ସ. ସମ୍ବରୀ ଲବଣ )—ସମ୍ବର ହ୍ରଦର ଜଳରୁ
Sambari luna ଉତ୍ପନ୍ନ ଲବଣ—Salt extracted
সম্বরি নুন from the water of the Sambara lake.
साम्भर नमक

ସମ୍ବରିବା—ଦେ. କ୍ରି ( ପଦ୍ୟ ) ( ସ. ସମ୍ବରଣ )—ଲୁଚାଇବା; ଗୋପନ
Sambaribā କରିବା—To conceal. [ ଉ—ଅହେ
সম্বরণ করা କ୍ଷେତ୍ରପାଳ ! କି ଶୁଳ ତୁମ୍ଭର ରଖିଲ କାହିଁ ସମ୍ବରି—
रोकना ରାଧାନାଥ ପାର୍ବତୀ । ]

ସମ୍ବରୀ—ସ• ବ ( ବୈଦ୍ୟକ ) ( ସମ୍ବ ଧାତୁ+କର୍ତ୍ତୃ. ଋ+ଈ )—
Sambarī ୧ । ବୃହଦନ୍ତୀ ନାମକ ଔଷଧ ଦ୍ରବ୍ୟ—1. Croton
(ଶମ୍ବରୀ—ଅନ୍ୟରୂପ) seeds. ୨ । ଶତାବରୀ (ଶତଚନ୍ଦ୍ରିକା)—
2. Asparagus Racemosus. ୩ । ମୂଷିକପର୍ଣ୍ଣୀ; ଆଖୁକର୍ଣୀ ( ଅମର )—3. Ipomoea Reniformis ( weed ).

ସମ୍ବର୍ତ୍ତ—ସ. ବ ( ସମ୍+ବୃତ୍ ଧାତୁ=ହେବା+ଭାବ. ଅ )—୧ ।
Sambartta କଳ୍ପାନ୍ତ ମହାପ୍ରଳୟ—1. The universal
(ସମ୍ବର୍ତ୍ତି ଇତ୍ୟାଦି—ଅନ୍ୟରୂପ) Deluge at the end of a Kalpa or age. ୨ ।( +କର୍ତ୍ତୃ. ଅ ) ବହୁ ଜଳବର୍ଷୀ ମେଘବିଶେଷ; ଚାରି ପ୍ରକାର ମେଘରୁ ଏକତମ—2. The name of one of the four classes of clouds, which rains much. ୩ । ପ୍ରଳୟ କାଳୀନ ସପ୍ତ ମେଘରୁ ଏକତମ—3 Name of a kind of cloud raining during the Dissolution of the universe. ୪ । ମୁନିବିଶେଷ—4. Name of a sage. [ ଦ୍ର—ଏ ମହର୍ଷି ଅଙ୍ଗିରାଙ୍କ ପୁତ୍ର ଓ ବୃହସ୍ପତିଙ୍କ ସାନ ଭାଇ । ବୃହସ୍ପତିଙ୍କର ଏହାଙ୍କ ପ୍ରତି ବିଦ୍ୱେଷ ଥିବାରୁ ଏ ଗୃହତ୍ୟାଗ କରି ବହୁ ଦେଶ ପର୍ଯ୍ୟଟନ କରିଥିଲେ । ଏହାଙ୍କ ପୌରୋହିତ୍ୟରେ ମରୁତ୍ତ ରାଜା କରନ୍ଧମଙ୍କର ଯଜ୍ଞ ସମ୍ପାଦନ କରିବାରୁ ଇନ୍ଦ୍ର ଉକ୍ତ ଯଜ୍ଞରେ ବିଘ୍ନ ଘଟାଇବାକୁ ଅସମର୍ଥ ହୋଇ ଶେଷରେ ମରୁତ୍ତଙ୍କ ସଙ୍ଗେ ସଖ୍ୟ ସ୍ଥାପନ କଲେ । ଏହି ଋଷି ତପସ୍ୟାଦ୍ୱାରା ବିଶେଷ ଅଲୌକିକତ୍ୱ ଲାଭ କରିଥିଲେ । ] ୫ । ଫର୍ଳ ଫଳ ବୃକ୍ଷ--5. Name of a fruit-bearing tree. ୬ । ( +ଭାବ. ଅ ) ( କୌଣସି ) ଆଡ଼କୁ ବୁଲିବା—6. Turning towards ( Apte ) ୭ । (+କର୍ତ୍ତୃ. ଅ ) ମେଘ—7. A cloud ( Apte ). ୮ । ବର୍ଷ— A year ( Apte ). ୯ । (+ଅଧି. ଅ) ସମୂହ—9. Collection; multitude.

ସମ୍ବର୍ତ୍ତକ—ସ• ବ ( ସମ୍+ଣିଜନ୍ତ ବୃତ୍ ଧାତୁ ବା ବର୍ତ୍ତ ଧାତୁ+କରଣ.
Sambarttaka ଅକ )—୧ । ବଳଦେବଙ୍କ ଲଙ୍ଗଳ—
1. The plough of Baladeba. ୨ । (+କର୍ତ୍ତୃ. ଅକ ) ବଳଦେବ; ଶ୍ରୀକୃଷ୍ଣଙ୍କ ବଡ଼ ଭାଇ—2. The elder brother of Srikrushna. ୩ । ( +କର୍ତ୍ତୃ. ଅକ ) ବଡ଼ବାନଳ—3. The oceanic fire; the submarine fire. ୪ । ମେଘବିଶେଷ—4. A kind of cloud. ୫ । କଳ୍ପାନ୍ତକାଳୀନ ଅଗ୍ନି—5. The fire of destruction at the end of a Kalpa.

ସମ୍ବର୍ତ୍ତକୀ—ସ. ବ. ପୁଂ ( ସମ୍ବର୍ତ୍ତକ+କର୍ତ୍ତୃ. ଇନ୍; ୧ମା. ୧ବ )—
Sambarttakī ସମ୍ବର୍ତ୍ତକ ନାମକ ଲଙ୍ଗଳଧାରୀ ବଳଦେବ—
An epithet of Baladeba who held a plough named Sambarttaka.

ସମ୍ବର୍ତ୍ତି—ସ. ବ ( ସମ୍+ଣିଜନ୍ତ ବୃତ୍ ଧାତୁ ବା ବର୍ତ୍ତ ଧାତୁ+କର୍ତ୍ତୃ.
Sambartti ଇ )—୧ । ପଦ୍ମର କେଶର ସମୀପସ୍ଥ ଦଳ—
(ସମ୍ବର୍ତ୍ତିକା—ଅନ୍ୟରୂପ) 1. The lotus petal near the

filaments. ୨ । ପଦ୍ମାଦିର ନବ ପତ୍ର—2. The new petals of lotus. ୩ । ବର୍ତ୍ତି; ଦୀପାବଳୀର ବର୍ତ୍ତିକା—3. Wick of a lamp.

ସମ୍ବର୍ଦ୍ଧକ—ସଂ. ବଣ. ପୁଂ ( ସମ୍+ବୃଧ୍ ଧାତୁ=ବଢ଼ିବା+କର୍ତ୍ତୃ. ଅକ ) Sambarddhaka —୧ । ସମ୍ୟକ୍ ବୃଦ୍ଧିକାରକ—1. Augmenting. (ସଂବର୍ଦ୍ଧକ ଇତ୍ୟାଦି—ଅନ୍ୟରୂପ) ୨ । ସମ୍ବର୍ଦ୍ଧନା-( ସମ୍ବର୍ଦ୍ଧିକା—ସ୍ତ୍ରୀ ) କାରକ; ସମ୍ମାନକାରକ; ଅଭ୍ୟର୍ଥନାକାରୀ—2. Welcoming; paying homage; honouring.

ସମ୍ବର୍ଦ୍ଧନ(ନା)—ସଂ. ବି. ( ସମ୍+ବୃଧ୍ ଧାତୁ ଣିଚ୍ ବର୍ଦ୍ଧି ଧାତୁ=ବଢ଼ା-Sambarddhana(nā) ଇବା+ଭାବ. ଅନ+ସ୍ତ୍ରୀ. ଆ )—୧ । ସମ୍ୟକ୍ ବୃଦ୍ଧି କରାଇବା; ବଢ଼ାଇବା—1. Augmenting; enhancing; augmentation. ୨ । ସମ୍ମାନନ; ସମ୍ମାନ ଦେଖାଇବା—2. Act of paying respects; or doing homage. ୩ । ଅଭ୍ୟର୍ଥନା—3. Welcoming. ୪ । ( ସମ୍+ବୃଧ୍ ଧାତୁ=ବଢ଼ିବା+ଭାବ. ଅନ+ଆ ) ସମ୍ୟକ୍ ବୃଦ୍ଧି—4. Increase. ୫ । ( +କର୍ତ୍ତୃ. ଅନ ) ସମୃଦ୍ଧି; ସମ୍ପତ୍ତି—5. Prosperity. ସଂ. ବଣ. ପୁଂ ( +କର୍ତ୍ତୃ. ଅନ)—ସମ୍ବର୍ଦ୍ଧକ ( ଦେଖ )—Sambarddhaka ( See )

ସମ୍ବର୍ଦ୍ଧିତ—ସଂ. ବଣ ( ସମ୍+ବୃଧ୍ ଧାତୁ ଣିଚ୍+କର୍ମ. ତ )—୧ । Sambarddhita ସମ୍ୟକ୍ ବୃଦ୍ଧି ପ୍ରାପିତ—1. Augmented; enhanced. ୨ । ସମ୍ମାନିତ—2. Honoured. ୩ । ଅଭ୍ୟର୍ଥିତ—3. Welcomed.

ସମ୍ବର୍ଦ୍ଧିତ କେଶ—ସଂ. ବି ( କର୍ମଧା )—ଅତିଶୟ ବଢ଼ିଥିବା କେଶ; Sambarddhita keśa ବଢ଼ା ଯାଇଥିବା କେଶ; ଯେଉଁ କେଶ କ୍ଷିଅର ବା କତୁରୀ ନ ହୋଇଥିବାରୁ ବଢ଼ି ଯାଇଥାଏ—Hairs suffered to grow very long. ( ସମ୍ବର୍ଦ୍ଧିତ କେଶା—ସ୍ତ୍ରୀ. ବଣ ) ସଂ. ବଣ. ପୁଂ ( ବହୁବ୍ରୀହି )—ଯେଉଁ ବ୍ୟକ୍ତି କ୍ଷିଅର୍ ନ ହୋଇ ବା କେଶନାଶକ ଔଷଧାଦି ପ୍ରୟୋଗ ନ କରି ଆପଣାର କେଶକୁ ବଢ଼ାଇଥାଏ—( a person ) Who has caused his hairs to grow very long.

ସମ୍ବର୍ଦ୍ଧିତ ବେଗ—ସଂ. ବି ( କର୍ମଧା )—ବୃଦ୍ଧି ପ୍ରାପିତ ବେଗ—Sambarddhita bega Augmented velocity. ( ସମ୍ବର୍ଦ୍ଧିତ ବେଗା—ସ୍ତ୍ରୀ. ବଣ ) ସଂ. ବଣ. ପୁଂ (ବହୁବ୍ରୀହି)—ଯାହାର ବେଗ ଅତିଶୟ ବଢ଼ା ଯାଇଅଛି—Having one's velocity enhanced.

ସମ୍ବର୍ମି(ର୍ମ୍ମି)ତ—ସଂ. ବଣ ( ସମ୍+ବର୍ମିତ )—ବର୍ମଚ୍ଛାଦିତ; ସମସ୍ତ Sambarmi(rmmi)ta ଦେହରେ ସାଞ୍ଜୁ ପିନ୍ଧିଥିବା—(ସଂବର୍ମିତ—ଅନ୍ୟରୂପ) Completely clad in armour.

ସମ୍ବଳ—ସଂ. ବି ( ଶମ୍ବ୍ ଧାତୁ=ଗମନ କରିବା+କରଣ. ଅଳ )—Sambalr ... ୧ । ପାଥେୟ; ବାଟ ଖରଚ—1. Travelling expenses. ୨ । ବାଟରେ ଚାଲିବା ପାଇଁ ଖାଦ୍ୟ ସାମଗ୍ରୀ—2. Provisions for a journey. [ ଦ୍ର—ବନକୁ ନାଳ ସମ୍ବଳ କରି—ଭଞ୍ଜ. ବୈଦେହୀଶବିଳାସ । ] ୩ । ସାହାରା; ଜୀବନଧାରଣୋପାୟ; ସଂସ୍ଥାନ—3. Means of subsistence; resources; livelihood. ୪ । ଧନ—4. Riches. ୫ । ପାଣ୍ଠି; ବ୍ୟବସାୟାଦିର ମୂଳଧନ—5. Capital of a trade. ୬ । ପୁଞ୍ଜି—6. Hoard. ୭ । ( +କର୍ତ୍ତୃ. ଅ ) ଜଳ—7. Water.

(ସଂବଳ ଇତ୍ୟାଦି ଶମ୍ବଳ — ଅନ୍ୟରୂପ)

ସମ୍ବଲପୁର—ଦେ. ବି ( ନାମ )—ଉତ୍କଳର ପଶ୍ଚିମପ୍ରାନ୍ତସ୍ଥ ଜିଲ୍ଲାର ଓ Sambalapura ନଗରର ନାମ—Name of a western ସମ୍ବଲପୁର ସମ୍ବଲପୁର District and town of Orissa; Sambalpur. [ଦ୍ର—ଏହାର ପ୍ରାଚୀନ ନାମ 'ସମ୍ବକା' ବା 'ସମ୍ବରକା' ଥିବା ଜଣାଯାଏ । ଜଗବନ୍ଧୁ. ପ୍ରାଚୀନ ଉତ୍କଳ ।

ଏହି ଜିଲ୍ଲା ପୂର୍ବେ ବିହାର-ଓଡ଼ିଶା ପ୍ରଦେଶର ଓ ବର୍ତ୍ତମାନ ନବ-ଓଡ଼ିଶାପ୍ରଦେଶର ଗୋଟିଏ ଜିଲ୍ଲା । ଏ ଜିଲ୍ଲାର ରାଜଧାନୀ ସମ୍ବଲପୁର ମହାନଦୀର କୂଳରେ ଦ୍ରାଘିମା ୨୧-୩୧ ଉତ୍ତର ଓ ୮୩-୫୬ ପୂର୍ବ ଅକ୍ଷାଂଶରେ ଅବସ୍ଥିତ । ପୂର୍ବେ ମହାନଦୀ ବାଟେ ବଡ଼ ବଡ଼ ଡଙ୍ଗା ଦ୍ୱାରା ସମ୍ବଲପୁର ସଙ୍ଗେ କଟକର ଧାନ, ଗୁଡ଼ଲ, ଶସ୍ୟ, ମଠା, ଟସର, ଲୁଣ, ନଡ଼ିଆ ଆଦିର କାରବାର ଚଳୁଥିଲା ।

୧୮୦୩ ସାଲର ସନ୍ଧି ଦ୍ୱାରା ମରହଟ୍ଟାମାନେ ଏହା ଇଂରେଜଙ୍କୁ ଦେଲେ । ଦୁଇ ବର୍ଷ ପରେ ଇଂରେଜମାନେ ଏହାକୁ ନାଗପୁରର ଭୋଁସ୍ଲାଙ୍କୁ ଫେରାଇ ଦେଲେ । ୧୮୧୭ ଖ୍ରୀଷ୍ଟାବ୍ଦରେ ଶେଷ ମରହଟ୍ଟା ଯୁଦ୍ଧରେ ଭୋଁସ୍ଲା ପରାସ୍ତ ହେବାରୁ ସମ୍ବଲପୁର ପୁଣି ଇଂରେଜମାନଙ୍କ ଅଧିକାରକୁ ଆସିଲା । ଏହା ପୂର୍ବେ ଚୌହାନବଂଶୀୟ କ୍ଷତ୍ରିୟ ରାଜାଙ୍କର ରାଜ୍ୟ ଥିଲା । ଶେଷ ରାଜା ନାରାୟଣସିଂହ ଅପୁତ୍ରକ ହୋଇ ପ୍ରାଣତ୍ୟାଗ କରିବାରୁ ୧୮୪୯ ଖ୍ରୀଷ୍ଟାବ୍ଦରେ ଗଭର୍ଣ୍ଣମେଣ୍ଟ ଏହାକୁ ଖାସ୍ କଲେ । ପ୍ରଥମେ ଏହା ମଧ୍ୟପ୍ରଦେଶ ଅଧୀନ ଥିଲା । ପରେ ୧୯୦୫ରେ ଓଡ଼ିଶାରେ ସାମିଲ ହେଲା । ଏହା ବର୍ତ୍ତମାନ ଗୋଟିଏ ବେ-କାନୁନ ଜିଲ୍ଲା ( Non-regulation District; Partially excluded area) ଅଟେ । ପ୍ରାଚୀନକାଳରେ ହୀରା କମନ୍ତେ ସମ୍ବଲପୁର ଇଉରୋପରେ ବିଖ୍ୟାତ ଥିଲା । ୧୯୩୧ ସାଲର ଜନଗଣନା ଅନୁସାରେ ଏହି ଜିଲ୍ଲାର ଲୋକସଂଖ୍ୟା ପ୍ରାୟ ୯ ଲକ୍ଷ । ବର୍ତ୍ତମାନ ଏଠାରେ ଭଲ ମଠା ବୁଣାଯାଏ । ( ହୀରାର ଦେବ ଜଳେ ଜୋଡ଼ ଦେଖ । ) ]

ସମ୍ବଲପୁରି—ଦେ. ବଣ—୧ । ସମ୍ବଲପୁର ସଂବନ୍ଧୀୟ—1. Relating Sambalapuri to Sambalpur. ୨ । ସମ୍ବଲପୁର ଅଞ୍ଚଳରେ (ସମ୍ବଲପୁରିଆ—ଅନ୍ୟରୂପ) ଜାତ ବା ପ୍ରସ୍ତୁତ—2. Produced सम्बलपुरी or manufactured in Sambalpur. सम्बलपुरी ୩ । ବିଣ ଓ ବି (ପୁଂ) ସମ୍ବଲପୁରର ଅଧିବାସୀ; ସମ୍ବଲପୁରବାସୀ—3 Resident of Sambalpur.

ସମ୍ବଲପୁରିଆଣୀ—ଦେ.ବଣ-'ସମ୍ବଲପୁରି' ବା 'ସମ୍ବଲପୁରିଆ'ର ସ୍ତ୍ରୀଲିଙ୍ଗ— Sambalapuriāṇī Feminine of 'Sambalapuri' or सम्बलपुरिणी 'Sambalapuriā'. ଦେ. ବି—ସମ୍ବଲପୁର सम्बलपुरकी ଅଧିବାସିନୀ ସ୍ତ୍ରୀ—A female of Sambalpur.

ସମ୍ବଲପୁରିଆ ପୋକ—ପ୍ରାଦେ. (ସିଂହଭୂମି) ବି—ଅସରପା (ପୋକ)— Sambalapuriā poka Cockroach.

ସମ୍ବଲପୁରୀ ଭାଷା—ଦେ. ବି—ସମ୍ବଲପୁରରେ ପ୍ରଚଳିତ ଓଡ଼ିଆଭାଷା— Sambalapurī bhāshā The Oriya language of Sambalpur. [ଦ୍ର—ସମ୍ବଲପୁରୀ ଭାଷାରେ ହିନ୍ଦୀଭାଷା-ପ୍ରଭାବିତ ଅନେକ ଶବ୍ଦ ବ୍ୟବହୃତ ହୁଏ ଏବଂ ବଙ୍ଗଳା-ଭାଷା ପରି ଅନେକ ଶବ୍ଦ ଶେଷରେ ହଳନ୍ତ ଉଚ୍ଚାରଣ କରାଯାଏ ଓ କ୍ରିୟାମାନ ମଧ୍ୟ ହଳନ୍ତଯୁକ୍ତ ହୋଇ ଉଚ୍ଚାରିତ ହୁଏ । ଯଥା—ହଟ୍‌ଲା, ଉଠ୍‌ଲା, ବସ୍‌ଲା । ଏହା ଛଡ଼ା ଳ ସ୍ଥାନରେ ଲ, ଣ ସ୍ଥାନରେ ନ ଉଚ୍ଚାରଣ ହୁଏ । ପୁଣି 'ଅଛନ୍ତି' ସ୍ଥାନରେ 'ଛନ୍' (ଯଥା—ଶୁଛନ୍= ଶୋଉଛନ୍ତି) ଓ 'ଓ' ସ୍ଥାନରେ 'ଉ' ( ଯଥା—ଶୋଇବା ସ୍ଥାନରେ ଶୁଇବା ) ଉଚ୍ଚାରଣ ଏବଂ 'ଅଛି' ସ୍ଥାନରେ 'ଅଛେ'—ଏହିପରି ଅନେକ ପ୍ରାଦେଶିକ ବିଶେଷତ୍ୱ ସମ୍ବଲପୁରୀ ଭାଷାରେ ଲକ୍ଷିତ ହୁଏ ।

ସମ୍ବଲପୁରୀ ଭାଷାର ଗୋଟିଏ ନମୁନା :—

"ଗୁଟେ ଲୋକର ଦୁଟେ ପୋ ଥିଲେ । ସେଥୁଁ ସାନ ପୋ ବାପ୍‌କେ କହେଲା—'ହ ଗୋ ବାବା ! ସମ୍ପତ୍ତିରୁ ମୋର ଯାହା ଭାଗ୍ ପଡ଼୍‌ବା, ସେଠା ମତେ ଭାଗ୍ କରଦେ ।' ବାପ୍ ଏହା ଶୁନ କରି ନିଜର ସମ୍ପତ୍ତିକେ ଦୁହି ପୋକେ ବାଣ୍ଟି ଦେଲା । କେତେ ଦିନ ଗଲା । ସାନ୍ ପୋଷ୍ଟା ତାର ଭାଗେଁ ପଡ଼୍‌ବା ସମ୍ପତ୍ତିଯାକ ଗୁଟେ ଠାନେ କରି ବିଦେଶ୍‌କେ ବାହାରିଗଲା । ସେ ଠାନେ ଯାହା ପାର୍‌ଲା, ଖରଚ୍ କରି କେତେକ୍ ଦିନେ ସବୁ ସମ୍ପତ୍ତିକେ ଉଡ଼ାଇ ଦେଲା । ଏନ୍ତାବେଲ୍‌କେ ସେ ଦେଶେଁ ଦୁର୍ଭିକ୍ଷ୍ ପଡ଼୍‌ଲା ବେଲ୍‌କେ ସେ ଖିଲ ଖାଇବାକେ ନାଇ ପାଇ ଉପାସେ ଦୁଖ୍ ପାଇଲା ।" (ଶ୍ରୀଅରସକ)

ସମ୍ବଳ ହୀନ—ସଂ. ବଣ. (ଷଷ୍ଠୀ ତତ୍)—୧ । ନିଃସମ୍ବଳ; ସଂସ୍ଥାନ Sambala hīna ହୀନ—1. Resourceless; having no capital; without capital. ୨। ଧନହୀନ— 2. Poor.

ସମ୍ବଳା (ଇତ୍ୟାଦି)—ଦେ. ବି ଓ ବଣ—ସମ୍ଭଳା ଇତ୍ୟାଦି (ଦେଖ) Sambaḷā (etc) Sambhaḷā etc. (See)

ସମ୍ବଳା(ଳା)—ପ୍ରାଦେ (ସମ୍ବଲପୁର) ବି—ସମ୍ବାଳୁଆ; ଶୁଁବାଳୁଆ— Sambaḷā(lā) Caterpillar; wooly bear.

ସମ୍ବଳ(ଲେ)ଇ—ଦେ. ବି (ନାମ)—ସମ୍ବଲପୁରର ଅଧିଷ୍ଠାତ୍ରୀ ଦେବୀ— Sambalā(le)ī The Goddess presiding over सम्बलाई सम्बलाई Sambalpur. (ସମ୍ବଲେଶ୍ୱରୀ—ଅନ୍ୟରୂପ)

ସମ୍ବଳ(ଲେ)ଇ ଗଣ୍ଡ—ଦେ. ବି—ସମଲାଇ ଗଣ୍ଡ (ଦେଖ) Sambalā(le)ī gaṇḍa Samalāī gaṇḍa. (See)

ସମ୍ବଳିତ—ସଂ. ବଣ (ସମ୍‌+ବଲ୍‌ ଧାତୁ+କର୍ମ. ତ)—ମିଳିତ— Sambaḷita 1. Joined to; associated with. ୨ । (ସଂବଳିତ—ଅନ୍ୟରୂପ) ବଳପ୍ରାପ୍ତ—2. Strengthened. ୩ । ସଂଯୋଜିତ—3. Conjoined to. ୪ । ସହିତ— 4. Along with. ୫ । ବେଷ୍ଟିତ—5. Surrounded by. ୬ । ଚୂର୍ଣ୍ଣିତ—6. Pounded; powdered; reduced to powder. ୭ । ସଙ୍ଗେ ଥିବା; ଯୁକ୍ତ ହୋଇଥିବା—7. Accompanied with; provided with; comprising of. ୮ । (ଅମୂଳକ) ଅନ୍ତର୍ଭୁକ୍ତ—8. Included in.

ସମ୍ବସଥ—ସଂ. ବି (ସମ୍‌+ବସ୍‌ ଧାତୁ=ବାସ କରିବା+ ଅଧିକରଣ. Sambasatha ଅଥ)—1. Residence; habitation. (ସଂବସଥ—ଅନ୍ୟରୂପ) ୨ । ବସତି; ଗ୍ରାମ—2. Village. ୩ । ପଲ୍ଲୀ—3. Hamlet.

ସମ୍ବହ—ସଂ. ବି (ସମ୍‌=ସମ୍ୟକ୍‌+ବହ୍‌ ଧାତୁ=ବହନ କରିବା+ Sambaha ଭାବ. ଅ)—୧ । ସମ୍ୟକ୍ ବହନ—1. Carry- (ସଂବହ—ଅନ୍ୟରୂପ) ing; wafting. ୨ । (+କର୍ତ୍ତି. ଅ) ବାୟୁ ବିଶେଷ; ମେଘବାହୀ ୫ ଗୋଟି ବାୟୁରୁ ଏକତମ— 2. Name of one of the 5 winds, which wafts or carries the clouds to and fro. [ଦ୍ର—ଯେଉଁ ବାୟୁ ମେଘମାନଙ୍କୁ ଇତସ୍ତତଃ ସଂଚାଳନ କରେ ଓ ଆକାଶରେ ବିମାନାଦିକୁ ଚଳାଏ, ତାହାର ନାମ ସମ୍ବହ ବାୟୁ । ଅନ୍ୟ ୪ ଗୋଟି ବାୟୁର ନାମ ଉଦ୍‌ବହ, ବିବହ; ଆବହ ଓ ପ୍ରବହ ।]

ସମ୍ବହିକା—ସଂ. ବି (ବୈଦ୍ୟକ) ( ସମ୍ବହ+କ+ଆ )—ଶୃଙ୍ଗାଟକ; Sambahikā ସିଙ୍ଗଡ଼ା—The throny fruit of an aquatic creeper; Trapa Bicornus.

ସମ୍ବା(ମ୍ଭେ)ଇବା—ଦେ. କି—ସମ୍ଭାଇବା (ଦେଖ) Sambā(mbe)ibā sambhāibā (See)

ସମ୍ବାକୃତ—ସଂ. ବଣ—ଦ୍ୱିତୀୟ ବାର କର୍ଷିତ ( ଭୂମି )— Sambākṛuta (Land) Ploughed for the 2nd (ଶମ୍ବାକୃତ—ଅନ୍ୟରୂପ) time. ସଂ. ବି—ଦୁଇ ଓଡ଼ (ଶମ୍ବାକୃତ—ଅନ୍ୟରୂପ) ଚଷ ହୋଇଥିବା ଜମି; ଦୋଓଡ଼ ଚଷା

ପାଇଥିବା କ୍ଷେତ—A field which has been ploughed twice.

**ସମ୍ବାଦ**—ସଂ. ବି ( ସମ୍ + ବଦ୍ ଧାତୁ = କହିବା + କର୍ମ. ଅ )—
Sambāda ୧ । ଖବର; ବାର୍ତ୍ତା; ସମାଚାର—
(ସବାଦ ଇତ୍ୟାଦ—ଅନ୍ୟରୂପ) 1. News; tidings; intelligence; report. ୨ । ଲୋକ ମୁଖରେ ପ୍ରଚାରିତ ସମାଚାର—2 Report or news spread from mouth to mouth. ୩ । ବୃତ୍ତାନ୍ତ—3. Information; detailed account. ୪ । ସାଦୃଶ୍ୟ—4. Resemblance; similarity. ୫ । ସମ୍ଭାଷ; ସମ୍ଭାଷଣ; କଥୋପକଥନ—5. Conversation; discourse. ୬ । ଦୁଇଜଣଙ୍କ ମଧ୍ୟରେ କଥାଭାଷା—6. Dialogue. ୭ । ପୁରାଣରେ ବର୍ଣ୍ଣିତ ଦୁଇ ଜଣଙ୍କ କଥୋପକଥନ—7. A dialogue between two persons as reported in the mythology. (ଉ—ମନୁ ବୋଇଲେ ଅହେ ବଳ ଶୁଣକର, ଏ ବିଷୟେ ସମ୍ବାଦ ଅଛି ଦ୍ୱିଜବର—କୃଷ୍ଣସିଂହ ମହାଭାରତ ଅନୁଶାସନ ।) ୮ । ପୁରାଣବର୍ଣ୍ଣିତ ଘଟନା ବା ବିଷୟ—8. A mythological episode. ଦେ. ବି (କଚେରୀ) କଚେରୀରେ ସଞ୍ଚିତ ନଥିରେ ଥିବା କୌଣସି ବିଷୟର ସମାଚାର; ସନ୍ଧାନ—Information regarding the contents of any public record.

**ସମ୍ବାଦ ଦରଖାସ(ସ୍ତ)**—ଦେ. ବି (କଚେରୀ)—କଚେରୀର ନଥିରେ ଥିବା
Sambāda darakhāsa(sta) କୌଣସି ବିଷୟର ସମ୍ବାଦ ପାଇବା
সম্বাদ দরখাস্ত संबाद दरखास्त ପାଇଁ ଦିଆଯିବା ଦରଖାସ୍ତ—
Application for getting any information from a public office.

**ସମ୍ବାଦଦାତା**—ସଂ. ବିଣ. ପୁଂ (ସମ୍ବାଦ + ଦା + କର୍ତ୍ତୃ. ତୃ; ୧ମା ୧ବ).
Sambādadātā ଯେ ଅନ୍ୟ ବ୍ୟକ୍ତିକୁ କୌଣସି ସମ୍ବାଦ ଦିଏ—
( ସମ୍ବାଦଦାତ୍ରୀ—ସ୍ତ୍ରୀ ) Supplying or giving any news. ସଂ. ବି (ଅଧୁନିକ)—ସମ୍ବାଦପତ୍ରରେ ପ୍ରକାଶିତ ହେବା ପାଇଁ ସ୍ଥାନାନ୍ତରରୁ ସମ୍ବାଦ ପ୍ରେରକ ବ୍ୟକ୍ତି—A correspondent of any newspaper.

**ସମ୍ବାଦ ଦେବା**—ଦେ. କ୍ରି—୧ । ସମ୍ବାଦ ପଠାଇବା, କୌଣସି ବ୍ୟକ୍ତିଙ୍କ
Sambāda debā ନିକଟକୁ କୌଣସି ସମ୍ବାଦ ପଠାଇବା—
সম্বাদ দেওয়া सम्बाद देना 1. Te send any information. ୨ । କୌଣସି ବ୍ୟକ୍ତିକୁ କୌଣସି ଖବର ଜଣାଇବା; ଏତଲା ଦେବା—2. To give or lodge any information.

**ସମ୍ବାଦ ନେବା**—ଦେ. କ୍ରି—କୌଣସି ବ୍ୟକ୍ତିର ବା ବିଷୟର ଖବର
Sambāda nebā ବୁଝିବା ବା ଜାଣିବା—To be informed
সম্বাদ নেওয়া संबाद लेना or to enquire about any person or matter.

**ସମ୍ବାଦ ପଠା(ଠେ)ଇବା**—ଦେ. କ୍ରି—ଅନ୍ୟ ବ୍ୟକ୍ତିଦ୍ୱାରା ବା ପତ୍ରଦ୍ୱାରା
Sambāda pathā(the)ibā ସ୍ଥାନାନ୍ତରକୁ ସମ୍ବାଦ ପ୍ରେରଣ
সম্বাদ পাঠান संबाद पठाना କରିବା—To send news.

**ସମ୍ବାଦ ପତ୍ର(ପତ୍ରିକା)**—ସଂ. ବି ( ଅଧୁନିକ ବ୍ୟବହାର )—ଯେଉଁ
Sambāda patra( patrikā ) ପତ୍ରିକାରେ ଦେଶର ନାନାବିଧ ସମ୍ବାଦ ପ୍ରଚାରିତ ହୁଏ—Newspaper.

[ ସମ୍ବାଦ ପତ୍ର ।

ସନ୍ଦର୍ଭ ଲେଖକ—ଶ୍ରୀଯୁକ୍ତ ଜଗନ୍ନାଥ ତ୍ରିପାଠୀ ବିଏ, ବିଟି.
ହେଡମାଷ୍ଟର କଟକ ଟ୍ରେନିଙ୍ଗ ସ୍କୁଲ୍

ମୁଦ୍ରାଯନ୍ତ୍ର ବା ଛାପାକଳର ଉଦ୍ଭାବନ ଦ୍ୱାରା ମାନବସମାଜର ଯେତେ ଉପକାର ହୋଇଅଛି ତାହା ବର୍ଣ୍ଣନାତୀତ । କାରଣ, ପୁସ୍ତକ ଏବଂ ସମ୍ବାଦ ପତ୍ରମାନଙ୍କର ପ୍ରଚାର ଦ୍ୱାରା ମାନବସଭ୍ୟତା ଯେତେ ଦ୍ରୁତବେଗରେ ଗତି କରୁଅଛି, ମୁଦ୍ରାଯନ୍ତ୍ର ଅଭାବରେ ତାହା ହୋଇ ପାରନ୍ତା ନାହିଁ । ବହୁକାଳ ପୂର୍ବରୁ ଚୀନ ଦେଶର ଲୋକମାନେ ସର୍ବପ୍ରଥମେ କାଠଖଣ୍ଡମାନଙ୍କ ସାହାଯ୍ୟରେ ଅକ୍ଷର ଛାପିବାକୁ ସର୍ବପ୍ରଥମେ ଉଦ୍ୟମ କରିଥିଲେ । ମାତ୍ର ଏହି ପ୍ରଣାଳୀରେ ବିଶେଷ ସୁବିଧା ହେଉ ନ ଥିଲା । ଆଜକୁ ପ୍ରାୟ ୫୦୦ବର୍ଷ ପୂର୍ବେ ଜର୍ମାନୀ ଦେଶର ଅନ୍ତର୍ଗତ ମେଞ୍ଜ୍ (Mainz) ନଗରବାସୀ ଗୁଟେନବର୍ଗ (Guttenburgh) ନାମକ ବ୍ୟକ୍ତିଙ୍କ ଦ୍ୱାରା ପ୍ରକୃତ ଛାପାକଳ ଉଦ୍ଭାବିତ ହୋଇଥିଲା । ଆଜିକାଲି ଛାପାକଳ ସାହାଯ୍ୟରେ ସବୁ ବିଷୟର ଇତିହାସ ଲିପିବଦ୍ଧ ହେଉଅଛି । ମାତ୍ର ଆଶ୍ଚର୍ଯ୍ୟର ବିଷୟ, ଛାପାକଳର ଇତିହାସ ବିଷୟରେ ସାଧାରଣଙ୍କୁ ବିଶେଷ କିଛି ଜଣା ନାହିଁ । ଖଣ୍ଡିଏ କାଠରେ ଅକ୍ଷରମାନ ଖୋଳି ଲୋକେ ବହି ଛାପିବାକୁ ଆରମ୍ଭ କଲେ । ମାତ୍ର ସେହି ଖୋଳାକାଠ ଘଷି ହୋଇଯିବାରୁ ତଦ୍ଦ୍ୱାରା ଅନ୍ୟ ବହି ଛାପା ହୋଇ ପାରିଲା ନାହିଁ । ସୁତରାଂ ଲୋକେ ଭାବିଲେ, ଯଦି ସେମାନେ ଧାତୁ ଦ୍ୱାରା ଅକ୍ଷର(ଟାଇପ୍)ମାନ ପ୍ରସ୍ତୁତ କରି ପାରିବେ, ତାହାହେଲେ ସେହି ଅକ୍ଷରମାନଙ୍କ ଦ୍ୱାରା ଗୋଟିଏ ବହି ଛପା ସାରିବା ପରେ ତଦ୍ଦ୍ୱାରା ଅନ୍ୟ ବହି ମଧ୍ୟ ଛାପି ହୋଇ ପାରିବ । ଉପର୍ଯ୍ୟୁକ୍ତ ମହାତ୍ମା ଗୁଟେନ୍‌ବର୍ଗ୍ ଜଣେ ଧାତୁ ବ୍ୟବସାୟୀଙ୍କ ସାହାଯ୍ୟରେ ପ୍ରଥମେ ଚଳନଶୀଳ ଅକ୍ଷର ବା ଟାଇପ୍‌ର ଉଦ୍ଭାବନ କରିଥିଲେ । ପ୍ରଥମେ କୌଣସି ଅକ୍ଷରର ଛାଞ୍ଚ ପ୍ରସ୍ତୁତ କରି ତହିଁରେ ତରଳ ଧାତୁ ଢାଳିବା ଦ୍ୱାରା ଅଳ୍ପ ସମୟ ମଧ୍ୟରେ ସେ ବହୁସଂଖ୍ୟକ ଟାଇପ୍ ପ୍ରସ୍ତୁତ କରିପାରିଲେ । ଖ୍ରୀଷ୍ଟଧର୍ମର ଧର୍ମଗ୍ରନ୍ଥ ବାଇବଲ୍ ସର୍ବପ୍ରଥମେ ଲାଟିନ୍ ଭାଷାରେ ଏହି ଟାଇପ୍ ଦ୍ୱାରା ମୁଦ୍ରିତ ହୋଇଥିଲା । ଏହାହିଁ ପାଶ୍ଚାତ୍ୟ ଜଗତର ସର୍ବପ୍ରଥମ ଛାପା ପୁସ୍ତକ । ଏଥିରେ ବହୁ ଅର୍ଥ ବ୍ୟୟିତ ହୋଇଥିଲା ସତ୍ୟ, ମାତ୍ର ଏହାଦ୍ୱାରା ସମସ୍ତ ପୃଥିବୀରେ ଛାପାକଳର ଜୟ ପ୍ରତିଷ୍ଠିତ ହେଲା ।

ଏହାର ଅଳ୍ପ ସମୟ ପରେ ଇଉରୋପର ଅନ୍ୟ ଦେଶମାନଙ୍କରେ ଛାପାକଳମାନ ପ୍ରତିଷ୍ଠିତ ହେଲା । କାକ୍‌ସ୍ଟନ୍ (Caxton) ନାମକ ବ୍ୟକ୍ତି ପ୍ରଥମେ ଇଂଲଣ୍ଡରେ ଛାପାକଳ ପ୍ରତିଷ୍ଠିତ କରିଥିଲେ । ଛାପାକଳ ସାହାଯ୍ୟରେ ପୁସ୍ତକମାନ ପ୍ରକାଶିତ ହେଲା । ମାତ୍ର କାଳକ୍ରମେ ଲୋକମାନେ ସମ୍ବାଦମାନ ଜାଣିବାକୁ ଇଚ୍ଛା କରିବାରୁ ସମ୍ବାଦପତ୍ରର ସୃଷ୍ଟି ହେଲା । ପୃଥିବୀର ସର୍ବପ୍ରଥମ ସମ୍ବାଦପତ୍ର Frankfurter Journal (ଫ୍ରାଙ୍କଫୋର୍ଟର ପତ୍ରିକା) ଜର୍ମାନୀ ଦେଶରୁ ସାପ୍ତାହିକରୂପେ ଖ୍ରୀ: ୧୬୧୫ ସାଲରେ ମୁଦ୍ରିତ ହେଲା । ତତ୍ପରେ ୧୬୧୭ ସାଲରେ ବେଲ୍‌ଜିଅମ୍ ଦେଶର ଆଣ୍ଟୱର୍ପ୍ ସହରରୁ ଦ୍ୱିତୀୟ ସମ୍ବାଦପତ୍ର ପ୍ରକାଶିତ ହେଲା । ୧୬୨୨ ଖ୍ରୀଷ୍ଟାବ୍ଦରେ ଲଣ୍ଡନରୁ Weekly News (ସାପ୍ତାହିକ ସମ୍ବାଦ) ନାମକ ପ୍ରଥମ ଇଂରାଜୀ ସମ୍ବାଦପତ୍ର ପ୍ରକାଶିତ ହେଲା । ତାହା ପରେ ଇଉରୋପର ଅନ୍ୟାନ୍ୟ ସହରମାନଙ୍କରେ ପ୍ରକାଶିତ କେତେକ ସମ୍ବାଦପତ୍ରମାନଙ୍କ ତାଲିକା ନିମ୍ନରେ ମୁଦ୍ରିତ ହେଲା ।

| ସହର | ଖ୍ରୀଷ୍ଟ ବର୍ଷ |
|---|---|
| ଫ୍ରାନ୍ସର ପାରିସ୍ | ୧୬୩୧ |
| ନରୱେର ଷ୍ଟକ୍‌ହୋମ | ୧୬୪୦ |
| ସ୍କଟଲଣ୍ଡର ଏଡିନ୍‌ବର୍ଗ | ୧୬୬୦ |
| ରୁଷିଆର ସେଣ୍ଟପିଟର୍ସ୍‌ବର୍ଗ | ୧୭୦୨ |
| ଇଟାଲୀର ରୋମ୍ | ୧୭୧୬ |
| ସ୍ପେନ୍‌ର ମାଡ୍ରିଡ୍ | ୧୭୨୬ |

ପ୍ରଥମ ସାପ୍ତାହିକ ଇଂରାଜୀ ସମ୍ବାଦପତ୍ର ୧୬୨୨ ରେ ପ୍ରକାଶିତ ହୋଇଥିଲେ ମଧ୍ୟ ସର୍ବପ୍ରଥମ ଇଂରାଜୀ ଦୈନିକ ସମ୍ବାଦପତ୍ର The Daily Courant, (ଦୈନିକ କାର୍ଣ୍ଟ-କହ) Queen Anne (ରାଣୀ ଆନ୍)ଙ୍କ ରାଜତ୍ୱକାଳରେ ୧୭୦୩ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲା ।

ଭାରତରେ ଇଂରାଜୀ ଶାସନ ପ୍ରତିଷ୍ଠିତ ହେବା ପରେ ୧୭୮୦ ଖ୍ରୀଷ୍ଟାବ୍ଦରେ କଲିକତା ନଗରରୁ ସର୍ବପ୍ରଥମ ଇଂରାଜୀ ସମ୍ବାଦପତ୍ର Bengal Gazette (ବେଙ୍ଗଲ୍ ଗେଜେଟ୍) ପ୍ରକାଶିତ ହେଲା । ୧୭୮୯ ସାଲରେ Bombay Herald (ବମ୍ବେଇ ହେରାଲ୍ଡ) ଏବଂ ୧୭୯୦ ସାଲରେ Bombay Courier (ବୋମ୍ବେ କାରିଅର) ପ୍ରକାଶିତ ହେଲା । ଶେଷୋକ୍ତ ସମ୍ବାଦପତ୍ରଟି ୧୮୩୮ ସାଲରେ Bombay Times (ବୋମ୍ବେଇ ସମୟ) ନାମ ଧାରଣ କଲା ଏବଂ ୧୮୬୧ ଖ୍ରୀଷ୍ଟାବ୍ଦରେ ଏହାର ନାମ Times of India (ଭାରତର ସମୟ) ହେଲା । ଏହା ବର୍ତ୍ତମାନ ଭାରତରେ ଗୋଟିଏ ସୁଖ୍ୟାତ ଦୈନିକ ସମ୍ବାଦପତ୍ର ଏବଂ ଏହାର ଅଫିସରୁ The Illustrated Weekly of India (ଭାରତର ସଚିତ୍ର ସାପ୍ତାହିକ) ନାମକ ସୁଖ୍ୟାତ ସଚିତ୍ର ସାପ୍ତାହିକ ପତ୍ରିକା ପ୍ରକାଶିତ ହେଉଅଛି ।

୧୭୮୦ ଖ୍ରୀଷ୍ଟାବ୍ଦରେ Calcutta Gazette (କଲିକତା ଗେଜେଟ୍) ପ୍ରକାଶିତ ହୋଇଥିଲା । ତତ୍ପରେ ବଙ୍ଗଳା ଅକ୍ଷରରେ ଟାଇପ୍ ପ୍ରସ୍ତୁତ ହେବାରୁ ୧୮୧୮ ଖ୍ରୀଷ୍ଟାବ୍ଦରେ ଲର୍ଡ ହେଷ୍ଟିଂସ୍ (Lord Hastings) ଭାରତର ବଡ଼ ଲାଟ ଥିବାବେଳେ 'ସମାଚାର ଦର୍ପଣ' ନାମକ ସର୍ବପ୍ରଥମ ବଙ୍ଗଳା ସମ୍ବାଦପତ୍ର ପ୍ରକାଶିତ ହୋଇଥିଲା । ଏହା ଶ୍ରୀରାମପୁରର ପାଦ୍ରୀମାନଙ୍କ ଉଦ୍ୟମରେ ପ୍ରକାଶିତ ହୋଇଥିଲା । ତତ୍ପରେ ୧୮୨୨ ଖ୍ରୀଷ୍ଟାବ୍ଦରେ 'ବମ୍ବେ ସମାଚାର' ନାମକ ଗୁଜରାଟୀ ଭାଷାରେ ମୁଦ୍ରିତ ଅନ୍ୟ ଏକ ସମ୍ବାଦପତ୍ର ପ୍ରକାଶିତ ହେଲା । କ୍ରମେ କ୍ରମେ ଭାରତର ବିଭିନ୍ନ ଦେଶୀୟ ଭାଷାରେ ସମ୍ବାଦପତ୍ରମାନ ପ୍ରକାଶିତ ହେଲା । 'ଉତ୍କଳ ଦୀପିକା' ଓଡ଼ିଆ ଭାଷାର ସର୍ବପ୍ରଥମ ସାପ୍ତାହିକ ସମ୍ବାଦପତ୍ର । ନିମ୍ନରେ ଭାରତବର୍ଷର କେତେକ ପ୍ରସିଦ୍ଧ ବର୍ତ୍ତମାନ ସମ୍ବାଦପତ୍ରମାନଙ୍କ ତାଲିକା ପ୍ରଦତ୍ତ ହେଲା—

ଇଂରାଜୀ ଦୈନିକ ପତ୍ରିକା

1. Advance—କଲିକତା, 2. Advocate of India—ବମ୍ବେଇ, 3. Amrit Bazar Patrika—କଲିକତା, 4. Bombay Chronicle—ବମ୍ବେଇ, 5. Civil and Military Gazette—ଲାହୋର, 6. Star of India—କଲିକତା, 7. Hindu—ମାନ୍ଦ୍ରାଜ, 8. Hindustan Times—ଦିଲ୍ଲୀ, 9. National Call—ଦିଲ୍ଲୀ, 10. Indian Daily Telegraph—ଲକ୍ଷ୍ନୌ, 11. Leader—ଆଲ୍ଲାହାବାଦ, 12 Madras Mail—ମାନ୍ଦ୍ରାଜ, 13. Pioneer—ଲକ୍ଷ୍ନୌ, 14. Rangoon times—ରେଙ୍ଗୁନ୍, 15. New Orissa—ବ୍ରହ୍ମପୁର, ଓଡ଼ିଶା, 16. Search Light—ବାଙ୍କିପୁର, 17. Statesman—କଲିକତା, 18. Tribune—ଲାହୋର, 19. The Observer—କଟକ ।

ଇଂରାଜୀ ସାପ୍ତାହିକ ପତ୍ରିକା

1. Orient—କଲିକତା, 2. The Illustrated Weekly of India—ବମ୍ବେଇ, 3. Marhatta—ପୁନା, 4. People—ଲାହୋର, 5. Dipali—କଲିକତା, 6. Dharmarajya—ଦିଲ୍ଲୀ ।

ଇଂରାଜୀ ମାସିକ ପତ୍ରିକା

1. Modern Review—କଲିକତା, 2. Indian Review—ମାନ୍ଦ୍ରାଜ, 3. Calcutta Review—କଲିକତା, 4. Baitarani—କଟକ, 5. Theosophy of India—ବନାରସ ।

ବଙ୍ଗଳା ଦୈନିକ ପତ୍ରିକା

୧. ଅନନ୍ଦ ବଜାର ପତ୍ରିକା—କଲିକତା, ୨. ବସୁମତୀ—କଲିକତା, ଯୁଗାନ୍ତର—କଲିକତା ।

ବଙ୍ଗଳା ମାସିକ ପତ୍ରିକା

୧. ପ୍ରବାସୀ—କଲିକତା, ୨. ବସୁମତୀ—କଲିକତା, ୩. ଭାରତୀ—କଲିକତା, ୪. ଉତ୍ତରା—ବନାରସ, ୫. ଭାରତବର୍ଷ—କଲିକତା ।

ବଙ୍ଗଳା ସାପ୍ତାହିକ ପତ୍ରିକା

୧. ବସୁମତୀ—କଲିକତା, ୨. ସାପାଲୀ—କଲିକତା ।

ଓଡ଼ିଆ ଦୈନିକ ପତ୍ରିକା

୧. ଆଶା—ବ୍ରହ୍ମପୁର, ୨. ସମାଜ—କଟକ, ୩. ଦେଶକଥା—କଟକ ।

ଓଡ଼ିଆ ସାପ୍ତାହିକ ପତ୍ରିକା

୧. ସମାଜ—କଟକ, ୨. ଗଡ଼ଜାତ ବାସିନୀ—ତାଳଚେର, ୩. କୃଷକ—କଟକ, ୪. ଆଶା—ବ୍ରହ୍ମପୁର, ୫. ଓଡ଼ିଆ—ବ୍ରହ୍ମପୁର, ୬. ଲୋକମତ—କଟକ, ୭. ନୂଆଁ ଦୁନିଆ—ବ୍ରହ୍ମପୁର, ୮. ଉତ୍କଳ ଦୀପିକା—ପୁରୀ ।

ଓଡ଼ିଆ ମାସିକ ପତ୍ରିକା

୧. ସହକାର—କଟକ, ୨. ନବଭାରତ—କଟକ, ୩. ଉତ୍କଳ ସାହିତ୍ୟ—କଟକ, ୪. ଭଞ୍ଜ ପ୍ରଦୀପ—ବାରିପଦା । ଏତଦ୍ଭିନ୍ନ କେତେଗୁଡ଼ିଏ ସାମୟିକ ପତ୍ରିକା ଉତ୍କଳର ଭିନ୍ନ ଭିନ୍ନ ସ୍ଥାନରୁ ଓ ବିଦ୍ୟାଳୟମାନଙ୍କରୁ ପ୍ରକାଶିତ ହେଉଅଛି ।

ସମ୍ବାଦ ପତ୍ରମାନ ଦୈନିକ, ସାପ୍ତାହିକ, ଅର୍ଦ୍ଧ-ସାପ୍ତାହିକ, ତୈମାସିକ, ପାକ୍ଷିକ, ସାମୟିକ ଆଦି ବିଭିନ୍ନ ରୂପେ ପ୍ରକାଶିତ ହୁଏ । ସମ୍ବାଦ ପତ୍ରର ସଙ୍କଳୟିତାଙ୍କୁ 'ସଂପାଦକ' (Editor), ସଂବାଦ ପତ୍ରରେ ପ୍ରକାଶିତ ହେବା ପାଇଁ ସଂବାଦ ଯୋଗାଇବା ବ୍ୟକ୍ତିଙ୍କୁ 'ସଂବାଦଦାତା' ବା 'ପତ୍ରପ୍ରେରକ' (News agent ବା correspondent) ଓ ଯେଉଁ ବ୍ୟକ୍ତିମାନେ ମୂଲ୍ୟ ଦେଇ ପତ୍ରିକା ନେଇ ଥାନ୍ତି, ସେମାନଙ୍କୁ 'ଗ୍ରାହକ' (Subscriber) କହନ୍ତି । ଅଧୁନାତନ ସଭ୍ୟ ଜଗତରେ ସମ୍ବାଦ ପତ୍ର ଦ୍ୱାରା ଲୋକମତ ଗଠିତ ଓ ପ୍ରଚାରିତ ହୁଏ ।]

ସମ୍ବାଦ ପାଇବା—ଦେ. କ୍ରି. ଅନ୍ୟ ବ୍ୟକ୍ତିଠାରୁ ଖବର ପାଇବା; Sambāda pāibā କୌଣସି ବିଷୟର ଖବର ଜାଣିବା— সংবাদ পাওয়া सम्वाद पाना To get any news.

ସମ୍ବାଦ ପ୍ରାପ୍ତି—ସଂ. ବି—କୌଣସି ବିଷୟର ସମାଚାର ପାଇବା— Sambāda prāpti Receipt of any news.

ସମ୍ବାଦ ବହ—ସଂ. ବିଣ. ଓ ବି ପୁଂ (ସମ୍ବାଦ=ବହ୍. ଧାତୁ+କର୍ତ୍ତୃ. ଅ) Sambāda baha —ଯେଉଁ ବ୍ୟକ୍ତି ଖବର ନିଆଅଣା କରେ— (ସମ୍ବାଦ ବାହକ, ସମ୍ବାଦଦାତା—ଅନ୍ୟରୂପ) Carrier of [ସମ୍ବାଦବହା, ସମ୍ବାଦବାହିକା, ସମ୍ବାଦବାହିନୀ—ସ୍ତ୍ରୀ] news; messenger.

ସମ୍ବାଦ ବାହିକା ନାଡ଼ି(ଡ଼ୀ)—ଦେ. ବି—( ମନୋବିଜ୍ଞାନ ) ଶରୀରର Sambāda bāhikā nāṛi(ṛī) ଯେଉଁ ନାଡ଼ିମାନ সংবাদবাহিকা নাড়ি ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁମାନଙ୍କ ସମ୍ବନ୍ଧୀୟ सम्वादग्राहिका नाड़ी ଜ୍ଞାନକୁ ମସ୍ତିଷ୍କରେ ପହଞ୍ଚାନ୍ତି— (Psychology) Sensory nerves; the nerves which carry messages of the outside world to brain centre.

ସମ୍ବାଦୀ—ସଂ. ବିଣ. ପୁଂ (ସମ୍+ବଦ୍ ଧାତୁ+କର୍ତ୍ତୃ ଇନ୍; ୧ମା. ୧ବ)— Sambādī ୧ । ଗାନକାରୀ—1. Singing. ୨ । ଉଚ୍ଚାରଣ- (ସମ୍ବାଦିନୀ—ସ୍ତ୍ରୀ) କାରୀ; କଥନକାରୀ—2. Speaking; uttering. ୩ । ଏକରୂପ ସମ୍ଭାଷଣକାରୀ—3. Speaking similarly. ୪ । ତୁଲ୍ୟ; ଏକରୂପ—4. Similar. ୫. ବି—( ସଙ୍ଗୀତ ) ବାଦ୍ୟସ୍ୱରର ସହଗାମୀ ସ୍ୱର— A tune accompanying a principal tune; paraphonia.

ସମ୍ବାଧ—ସଂ. ବି ( ସମ୍+ବାଧ୍ ଧାତୁ=ପୀଡ଼ନ କରିବା+ଭାବ. ଅ; Sambādha ସମ୍+ବାଧା+ଅ )—୧ । ସମ୍ୟକ୍ ବାଧା; (ସମ୍ବାଧ ଇତ୍ୟାଦ—ଅନ୍ୟରୂପ) ବିଶେଷ ବିଘ୍ନ—1. Impediment; serious obstacle. ୨ । ଭିଡ଼; ଜନତା— 2. Crowd. ୩ । ଭଗ; ଯୋନିମାର୍ଗ ( ମେଦିନୀ )— 3. The female organ; the vulva. ୪ । ସଙ୍କଟ (ମେଦିନୀ)—4. Critical condition; a narrow pass. ୫ । ଭୟ (ଶବ୍ଦରତ୍ନାବଳୀ)—5. Fear; dread. ୬ । ମହାବିପଦ—6. Great danger; difficulty. ୭ । ସଂଘର୍ଷ—7. Collision. ୮ । ନରକର ଦ୍ୱାର ( ଶବ୍ଦରତ୍ନାବଳୀ )—8. The door leading to hell. ୯ । ଉପରକୁ ମାଡ଼ିଆସିବା—9. Pressing on ( Apte ). ୧୦ । ଅଘାତ କରିବା— 10. Striking; hurting ( Apte ). ସଂ. ବିଣ (ବହୁବ୍ରୀହି; ସମ୍+ବାଧା+ଅ)—୧ । ସଙ୍କୀର୍ଣ୍ଣ; ଅପ୍ରଶସ୍ତ— 1. Narrow. ୨ । ଜନତାପୂର୍ଣ୍ଣ—2. Crowded. ୩ । ଅନ୍ୟ ବସ୍ତୁଦ୍ୱାରା ରୁଦ୍ଧ ହୋଇଥିବା; ନିରୁଦ୍ଧ—3. Blocked up (Apte). ୪ । ଉପରକୁ ମାଡ଼ି ଅସୁଥିବା— 4. Pressing. ଦେ. ବିଣ—ପୂର୍ଣ୍ଣ; ବହୁଳ—Full of; replete with. [ କ—ସେ ପୁଣି ଇଚ୍ଛଇ ତୋ ସଙ୍ଗ ସୁଧା । ସମ୍ବାଧ ବିମ୍ବାଧର ରସ ସୁଧା—ପ୍ରାଚୀ. ରସବାରିଧି । ]

ସମ୍ବାଧନ—ସଂ. ବି ( ସମ୍+ବାଧ ଧାତୁ+ଭାବ. ଅନ )—୧ । ବାଧା Sambādhana ଦେବା—1. Obstructing. ୨ । ( + କର୍ତ୍ତୃ. ଅ ) ମଦନ ଦ୍ୱାର; ଯୋନି ଦ୍ୱାର ( ମେଦିନୀ )— 2. Vaginal orifice; the vulva. ୩ । ଦ୍ୱାରପାଳ ( ମେଦିନୀ )—3. Door-keeper. ୪ । ଶୂଳାଗ୍ର ( ମେଦିନୀ )—4. The point of a pin or

spit. ୫ । ( +ଭାବ. ଅନ ) ବାଟ ଅବ ବନ୍ଦ କରିବା—5. Blocking up (Apte). ୬ । ଚାପିବା 6. Compressing (Apte) ୭ । ( +କରଣ. ଅନ ) ଫାଟକ—7. Gate ( Apte ). ୮ । ବାଡ଼; ଅଟକାଇବା ପାଇଁ ଦିଆଯିବା ବାଡ଼— 8. Barrier ( Apte ); fencing.

**ସମ୍ବାର**—ଗ୍ରା. ବି ( ସଂ. ସୋମବାର )—ସୋମବାର— Monday.
Sambāra সোমবার **सोमवार**

**ସମ୍ବାରିଆ**—ଦେ. ବିଣ—୧ । ସୋମବାରରେ ଘଟିବା—1. Happening on or relating to monday.
Sambāriā সোমবারিয়া [ ଭ—ସମ୍ବାରିଅ ହାଟ, ସମ୍ବାରିଅ ଜତରୁ । ] ୨ ।
**सोमवारका** ( ପୁଂ ) ସୋମବାର ଦିନ ଜନ୍ମଗ୍ରହଣ କରିଥିବା—
(ସମ୍ବାରିଣୀ) 2. ( a male ) Born on monday. ୩ । (ପୁଂ ) ସୋମବାର ବ୍ରତ ପାଳୁଥିବା—3. (masculine) Observing fast on monday. ଦେ ବି. ପୁଂ—
সম্বারি ସୋମବାର ଦିନ ଜନ୍ମ ହୋଇଥିବା କୌଣସି କୌଣସି
**सोमवारिया** ବ୍ୟକ୍ତିକୁ ଦିଆଯିବା ନାମ—1. A name given to a person born on a Monday. ୨ । ସୋମବାର ଦିନ ଉପବାସ ବା ବ୍ରତ କରିଥିବା ବ୍ୟକ୍ତି— 2. A person who observes fast on Monday.

**ସମ୍ବାଳ**—ଦେ. ବି ଓ ବିଣ—ସମ୍ଭାଳ ( ଦେଖ )
Sambāla Sambhāla ( See )

**ସମ୍ବାଳି(ଳୁ)ଆ**—ଦେ. ବି—ସୁଆଁ ବାଳ ପୋକ—
Sambāli(lu)ā Caterpillar; the wooly bear.
সোআঁ পোকা **सूआ** ( ସଂବାଳ—ଅନ୍ୟରୂପ )

**ସମ୍ବାଳିବା**—ଦେ. କ୍ରି—ସମ୍ଭାଳିବା ( ଦେଖ )
Sambālibā Sambhālibā ( See )

**ସମ୍ବାସ**—ସଂ. ବି ( ସମ୍+ବସ୍ ଧାତୁ+ଅଧି. ଅ )—୧ । ବାସସ୍ଥାନ—
Sambāsa 1.Residence; abode. ୨ । ( +ଭାବ. ଅ )
(ସଂବାସ—ଅନ୍ୟରୂପ) ଅବସ୍ଥିତି—2. Residence; living; staying. ୩ । ( +ଅଧି. ଅ ) ଅନାବୃତ ବିହାର ସ୍ଥାନ—3.A park; an open space for recreation. ୪ । ସଭା; ସମାଜ—4. Assembly; meeting; association.

**ସମ୍ବାହ**—ସଂ. ବି(ସମ୍+ବହ୍ ଧାତୁ ଣିଚ=ବାହ ଧାତୁ+ଭାବ. ଅ)—
Sambāha ୧ । ଅଙ୍ଗ ମର୍ଦ୍ଦନ; ଅନ୍ୟର ଦେହ ହାତରୁ
( ସଂବାହ ଇତ୍ୟାଦି—ଅନ୍ୟରୂପ ) ଅଇଁସା ଘଷା କରିବା; କ୍ଲାନ୍ତି ନିବାରଣାର୍ଥ କୌଣସି ବ୍ୟକ୍ତିର ହାତ ଗୋଡ଼ ଆଦିକୁ ଚାପିବା ବା ଦଳିବା—1. Shampooing; squeezing and rubbing of another person's limbs. ୨ । ଭାରାଦି ବହନ—2. Carrying or conveying of a load.

**ସମ୍ବାହକ**—ସଂ. ବିଣ. ପୁଂ ( ସମ୍+ବହ୍ ଧାତୁ ଣିଚ୍=ବାହ ଧାତୁ+
Sabāhaka କର୍ତ୍ତୃ. ଅକ )—୧ । ବାହକ; ବହନକାରୀ—
(ସମ୍ବାହିକା—ସ୍ତ୍ରୀ) 1. Conveying; carrying. ୨ । ଅଙ୍ଗ ମର୍ଦ୍ଦନକାରୀ; ଯେ ଅନ୍ୟ ବ୍ୟକ୍ତିଙ୍କ ହାତ ଗୋଡ଼ ଆଦି ଘଷା ମୋଡ଼ା କରେ—2. Shampooing. ୩ । ( ଜଡ଼ବିଜ୍ଞାନ ) ( ଅଧୁନିକ ପ୍ରୟୋଗ ) ଯାହା ଏକ ପଦାର୍ଥର ଉତ୍ତାପ ବା ବୈଦ୍ୟୁତିକୁ ଅନ୍ୟ ପଦାର୍ଥକୁ ବହି ନିଏ—3. ( physics ) Conveying or conducting heat or electricity from one body to another. ସଂ. ବି. ପୁଂ—୧ । ଗୋଡ଼ଘଷା ଭୃତ୍ୟ —1. A servant who shampoos the master's legs etc. ୨ । ( ଜଡ଼ବିଜ୍ଞାନ ) ପଦାର୍ଥରୁ ପଦାର୍ଥାନ୍ତରକୁ ଉତ୍ତାପ ଆଦି ବହନକାରୀ ବାୟୁ— 2. Conductor of heat or electricity.

**ସମ୍ବାହନ**—ସଂ. ବି ( ସମ୍+ବହ୍ ଧାତୁ, ଣିଚ୍+ଭାବ. ଅନ )—
Sambāhana ୧ । ସମ୍ବାହ (ଦେଖ)—1. Sambāha (See)
(ସମ୍ବାହିତ—ବିଣ) ୨ । (ଜଡ଼ବିଜ୍ଞାନ) ଜଳ ବା ବାୟୁଦ୍ୱାରା କୌଣସି ପଦାର୍ଥର ତାପ ଅନ୍ୟ ପଦାର୍ଥକୁ ବାହିତ ହେବା— 2. (physics) Convection of heat by water or air.

**ସମ୍ବାହିତ**—ସଂ. ବିଣ (ସମ+ବାହିତ)—୧ । ମର୍ଦ୍ଦିତ—1. Shampooed. ୨। ବାହିତ—2. Conveyed; convected.
Sambāhita

**ସମ୍ବିଗ୍ନ(ଗ୍ନ)**—ସଂ.ବି (ସମ୍+ବିଜ୍. ଧାତୁ=ଭୀତ ହେବା+କର୍ତ୍ତୃ.ତ)—
Sambigdha(gna) ୧ । ଭୀତ, ତ୍ରସ୍ତ—1. Terrified. ୨ । ଉଦ୍‌ବିଗ୍ନ—2. Anxious; concerned; agitated.

**ସମ୍ବିତ(ଦ୍)**—ସଂ. ବି (ସମ୍+ବିଦ୍. ଧାତୁ=ଜାଣିବା+ଭାବ. କ୍ୱିପ୍;
Sambit(d) ବୈଦା. ୧କ)—୧ । ଜ୍ଞାନ; ବୁଦ୍ଧି—1. Under-
( ସମ୍ବିତ୍[ଦ୍] ଇତ୍ୟାଦି—ଅନ୍ୟରୂପ) standing; intellect; wisdom; knowledge; perception. ୨ । ପରିଚୟ—2. Acquaintance. ୩ । ପ୍ରତିଜ୍ଞା— 3. Promise; vow. ୪ । ଚୁକ୍ତିର ସର୍ତ୍ତ— 4. Condition of an agreement. ୫ । ନିୟମ; ବିଧି—5. Rule; regulation. ୬ । ପ୍ରାକୃତିକ ବିଧି—6. Law of nature. ୭ । ଧର୍ମ-ବିଧି—7. A religious observance. ୮ । ଆଚାର—8. Conduct; practice; usage. ୯ । ଯୁଦ୍ଧ ସ୍ଥଳରେ ଚିତ୍କାର ଧ୍ୱନି—9. A battle-cry; war-cry. ୧୦ । ସଂକେତ—10. Sign; signal. ୧୧ । ସାଂକେତିକ ପଦ; ଠାର—11. A watch-word; cypher. ୧୨ । ସମାଧି—12. Burial; deep contemplation; mental abstraction. ୧୩ । ସମ୍ଭାଷଣ— 13. Discourse; conversation. ୧୪ ।

ସନ୍ତୋଷ—14. Satisfaction; contentment. ୧୫ । (+କର୍ମ. ଭାପ) ଣଣ ଗୁଳ୍ମ—15. A plant; Crotolaria Juncea. ୧୬ । ଯୁଦ୍ଧ—16. War; fight. ୧୭ । ନାମ—17. Name. ୧୮ । ଗଞ୍ଜାଇ ଗଛ—18. The Indian intoxicating hemp plant; Cannabis Indica. ୧୯ । ଭାଙ୍ଗ—19. An intoxicating drink made from Ganjā.

ସମ୍ବିତ୍—ସଂ. ବ (ସମ୍+ବିଦ୍ ଧାତୁ+ଭାବ.କ୍ତି)-୧ । ଅନୁଭବ; ଅନୁଭୂତି—
Sambitti 1. Experience. ୨ । ଚେତନା—2. Perception. ୩ । ବୁଦ୍ଧି—3. Intelligence. ୪ । ପୂର୍ବ ସ୍ମୃତି—4. Recollection. ୫ । (ମନୋବିଜ୍ଞାନ) ଇନ୍ଦ୍ରିୟଲବ୍ଧ ଜ୍ଞାନର ପ୍ରଥମ ସ୍ତର—5. (Psychology) Sensation. [ଦ୍ର—ଏହା ମନୋବିଜ୍ଞାନର ପାରିଭାଷିକ ଶବ୍ଦ । ଇଂରାଜୀରେ ଏହାକୁ ସେନ୍ସେସନ୍ (Sensation) କହନ୍ତି । ସଂବିତ୍ତି ବାହ୍ୟ ବସ୍ତୁର କ୍ରିୟା ଓ ମାନସ ପ୍ରତିକ୍ରିୟା ଉଭୟଦ୍ୱାରା ଉଦ୍ବୁଦ୍ଧ ହୁଏ । ବସ୍ତୁଜଗତ୍ ପ୍ରଥମତଃ ଇନ୍ଦ୍ରିୟ ଉପରେ ଆଘାତ କରେ ଏବଂ ସେହି ଆଘାତ ମସ୍ତିଷ୍କ ପ୍ରଦେଶରେ ପ୍ରବିଷ୍ଟ ହୋଇ ମାନସଶକ୍ତିର ଚେତନା ଜାଗ୍ରତ କରାଇଲେ 'ସଂବିତ୍ତି' ଜନ୍ମେ । ସଂବିତ୍ତି ସାହାଯ୍ୟରେ ଆମ୍ଭେମାନେ ଏତିକି ମାତ୍ର ଜାଣୁଁ ଯେ, ଗୋଟିଏ ଶକ୍ତିଯୁକ୍ତ ପଦାର୍ଥ ବିଦ୍ୟମାନ; କିନ୍ତୁ ସେହି ପଦାର୍ଥ କେଉଁ କେଉଁ ଗୁଣରେ ଭୂଷିତ, ଅର୍ଥାତ୍ ତାହାର 'ରୂପ', 'ବର୍ଣ୍ଣ', ପରିମାଣ ପ୍ରଭୃତି କିପରି ବା କେତେ, ତାହା କେତେ ଦୂରରେ ଅବସ୍ଥିତ, ଏ ପ୍ରକାର ଜ୍ଞାନ ଜନ୍ମିଲେ ବସ୍ତୁ-ପ୍ରତ୍ୟକ୍ଷ ଜନ୍ମେ । ସମ୍ବିତ୍ତି ପ୍ରତ୍ୟକ୍ଷ ଜ୍ଞାନର ମୂଳବୀଜ । ସମ୍ବିତ୍ତି ସାହାଯ୍ୟରେ ବାହ୍ୟ ବସ୍ତୁର ଅସ୍ତିତ୍ୱ ମାତ୍ର ଅନୁଭୂତ ହୁଏ, ପ୍ରତ୍ୟକ୍ଷ ସାହାଯ୍ୟରେ ବାହ୍ୟ ବସ୍ତୁର ପରିଚୟ ଘଟେ । ଇନ୍ଦ୍ରିୟ ପାଞ୍ଚ ପ୍ରକାର; ଏଣୁ ସମ୍ବିତ୍ତି ମଧ୍ୟ ପାଞ୍ଚ ପ୍ରକାର; ଯଥା—ଦର୍ଶନ-ସମ୍ବିତ୍ତି, ଶ୍ରବଣ-ସମ୍ବିତ୍ତି, ସ୍ପର୍ଶସମ୍ବିତ୍ତି, ଘ୍ରାଣ-ସମ୍ବିତ୍ତି ଓ ସ୍ୱାଦ-ସମ୍ବିତ୍ତି । ପଦାର୍ଥର ବିଭିନ୍ନ ଗୁଣଧର୍ମ ଜ୍ଞାନ ବିଭିନ୍ନ ସଂବିତ୍ତି-ସାପେକ୍ଷ; ଯଥା—ପଦାର୍ଥର 'ରୂପ' 'ବର୍ଣ୍ଣ' ଦର୍ଶନ-ସଂବିତ୍ତି ସାହାଯ୍ୟରେ, ପଦାର୍ଥର 'ଗନ୍ଧ' ଘ୍ରାଣ-ସଂବିତ୍ତି ସାହାଯ୍ୟରେ ସମାହୃତ ହୁଏ ।

ସନ୍ଦର୍ଭ ଲେଖକ—

ଅଧ୍ୟାପକ ଶ୍ରୀ ବିପିନବିହାରୀ ରାୟ, ଏମ୍. ଏ.]

ସମ୍ବିଦା—ସଂ. ବି (ସମ୍+ବିଦ୍ ଧାତୁ+ଭାବ. ଅ+ଆ)—ସମ୍ବିତ୍
Sambidā (ଦେଖ) Sambit. (See)

ସମ୍ବିଦା ମଞ୍ଜରୀ—ସଂ. ବି (ସମ୍ବିଦା=ଗଞ୍ଜେଇ+ମଞ୍ଜରୀ)—ଗଞ୍ଜେଇ; ଗଞ୍ଜା ଗଛର ମଞ୍ଜରୀ ବା କଳି—The spike of the flowers of the Indian hemp; Cannabis Sativa.
Sambidā manjari
(ଅନ୍ୟ ସଂସ୍କୃତ ନାମ—ଭଙ୍ଗା, ମାଦନୀ, ହର୍ଷିଣୀ)
[ଦ୍ର—ଏହା ମାଦକ, ଅଗ୍ନିଦୀପକ, ହର୍ଷୋତ୍ପାଦକ, ବଲ୍ୟ, କାମୋଦ୍ଦୀପକ, ନିଦ୍ରାକାରକ, ଗର୍ଭପାତକ, ବେଦନା ଓ ଆକ୍ଷେପନାଶକ । ଏହା ବାହ୍ୟାୟାମ, ଅନ୍ତ୍ରାୟାମ, ବିସୂଚିକା, ମଦାତ୍ୟୟ, ଶୂଳ, ଅମ୍ଳପିତ୍ତ, ଅଗ୍ନିମାନ୍ଦ୍ୟ, ଅତିପ୍ରବୃତ୍ତ-ରକ୍ତଶୋଣିତ ଓ କୁକୁରାଦିଙ୍କ ଦଂଶନଜନିତ ଜଳାତଙ୍କ ରୋଗରେ ଉପକାରୀ । ଏହାକୁ କେହି କେହି ବାଟି କରି, କେହି କେହି ନିଆଁ ଲଗାଇ ଚିଲମ ଦ୍ୱାରା ଧୂଆଁ ଓ ପୁଣି କେହି ମୋଦକରେ ମିଶାଇ ଖାଆନ୍ତି । ଗଞ୍ଜାଇମଞ୍ଜରୀର ଅଠାକୁ 'ଚରସ' ବୋଲାଯାଏ ।]

ସମ୍ବିଦିତ—ସଂ. ବିଣ (ସମ୍+ବିଦିତ)-୧ । ପରିଜ୍ଞାତ—
Sambidita 1. Known. ୨ । ପ୍ରତିଜ୍ଞାତ—2. Promised. ୩ । ପରିଚିତ; ଉତ୍ତମରୂପେ ଜଣାଶୁଣା—3. Well acquainted; well-known.

ସମ୍ବିଦ୍ବ୍ୟତିକ୍ରମ—ସଂ. ବି (୬ଷ୍ଠୀ ତତ୍) ପ୍ରତିଜ୍ଞା ଲଙ୍ଘନ—
Sambidbyatikrama Infringement or breach of promise; violation of promise.
(ସମ୍ବିଦ୍ବ୍ୟତିକ୍ରମ—ଅନ୍ୟରୂପ)

ସମ୍ବିଧା—ସଂ. ବି (ସମ୍+ବି+ଧା. ଧାତୁ=ଧାରଣ କରିବା+କରଣ. ଅ+ଆ)—୧ । ଅଳଙ୍କାର—1. Ornament.
Sambidhā
(ସଂବିଧା, ସମ୍ବିଧାନ—ଅନ୍ୟରୂପ) ୨ । ସାଜସଜ୍ଜା—2. Dress; fittings. ୩ । ରଚନା; ସଜ୍ଜା—3. Arrangement; orderly arrangement of parts; toilet; decoration. ୪ । ସଂଘଟନ; ଘଟଣା—4. Event; affair. ୫ । ଆୟୋଜନ—5. Preparation. ୬ । ବୈଚିତ୍ର୍ୟ—6. Variety. ୭। ସେବାର ସାମଗ୍ରୀ—7. Articles used in service. ୮ । ଭେଟି—8. Articles presented as a token of respect.

ସମ୍ବିଭକ୍ତ—ସଂ. ବିଣ (ସମ୍+ବିଭକ୍ତ)– ପୃଥକ୍କୃତ—
Sambibhakta Divided; separated.
(ସଂବିଭକ୍ତ— ଅନ୍ୟରୂପ)

ସମ୍ବିଷ୍ଟ—ସଂ. ବିଣ (ସମ୍+ବିଶ୍ ଧାତୁ+କର୍ତ୍ତୃ. କ୍ତ)—୧ । ନିଦ୍ରିତ; ସୁପ୍ତ—1. Asleep; sleeping.
Sambishta
(ସଂବିଷ୍ଟ—ଅନ୍ୟରୂପ) ୨ । ନିବିଷ୍ଟ—2. Engaged in; devoted to.
(ସମ୍ବେଶ—ବି)

ସମ୍ବୀକ୍ଷଣ—ସଂ. ବି (ସମ୍+ବୀକ୍ଷଣ)—୧ । ପର୍ଯ୍ୟବେକ୍ଷଣ—
Sambikshana 1. Observation. ୨ । ଅନ୍ୱେଷଣ—2. Searching; enquiry;
(ସଂବୀକ୍ଷଣ—ଅନ୍ୟରୂପ)
(ସମ୍ବୀକ୍ଷିତ—ବିଣ) ୩ । ଦର୍ଶନ; ଭେଟ—3. Seeing; interview.

ସମ୍ବୀତ—ସଂ. ବିଣ (ସମ୍+ବେ୍ୟ ଧାତୁ=ଘୋଡ଼ାଇବା+କର୍ମ. କ୍ତ)
Sambita ୧ । ଆବୃତ; ଆଚ୍ଛାଦିତ—1. Covered.
(ସଂବୀତ—ଅନ୍ୟରୂପ) ୨ । ଗୋପିତ—2. Concealed;

hidden. ୩ । ବୃଦ୍ଧ—3. Confined; bound. ୪ । ( ସମ୍+ବ+ଇ ଧାତୁ=ମିଶା+କର୍ତ୍ତୃ ତ )— ସମ୍ମିଳିତ—4. United; joined together. ୫ । ଏକତ୍ରୀଭୂତ—5. Collected.

ସମ୍ବୁଦ୍ଧ—ସଂ. ବଣ (ସମ୍+ବୁଧ୍ ଧାତୁ=ଜାଣିବା+କର୍ତ୍ତୃ ତ)—୧ । Sambuddha ଉଦ୍‌ବୁଦ୍ଧ, ଜାଗ୍ରତ—1. Awakened. (ସବୁଦ୍ଧ ଇତ୍ୟାଦି—ଅନ୍ୟରୂପ) ୨ । ଚେତନାଯୁକ୍ତ; ଚୈତନ୍ୟ ବିଶିଷ୍ଟ—2. Sentient; conscious. ୩ । ସମ୍ୟକ୍ ଜ୍ଞାନୀ—3. Very wise. ସଂ. ବି—ବୁଦ୍ଧାବତାର—The incarnation of Bishnu as the Buddha.

ସମ୍ବୁଦ୍ଧି—ସଂ. ବି ( ସମ୍+ବୁଧ୍ ଧାତୁ=ଜାଣିବା+ଭାବ. ତି )— Sambuddhi ୧ । ଆହ୍ୱାନ; ସମ୍ବୋଧନ—1. Calling; addressing. ୨ । ଜାଗରଣ—2. Awakening. ୩ । ଆମନ୍ତ୍ରଣ—3. Invitation. ୪ । ଦର୍ଶନ—4. Seeing; sight. ୫ । (ବ୍ୟାକରଣ) ସମ୍ବୋଧନ—5. (grammar) Vocative case. ୬ । ସମ୍ପୂର୍ଣ୍ଣ ଜ୍ଞାନ—6. Perfect knowledge. ୭ (ବ୍ୟାକରଣ) ସମ୍ବୋଧନର ଏକବଚନ—7. ( Grammar ) The singular number of the vocative case.

ସମ୍ବୃତ—ସଂ.ବଣ (ସମ୍+ବୃ ଧାତୁ=ଆବୃତ କରିବା+କର୍ମ.ତ)—ଗୁପ୍ତ— Sambruta Concealed.

ସମ୍ବୃତି—ସଂ. ବି ( ସମ୍+ବୃ ଧାତୁ=ଘୋଡ଼ାଇବା+ଭାବ ତି )— Sambruti ୧ । ଗୋପନ—1. Concealment. ୨ । ( ସଂବୃତି—ଅନ୍ୟରୂପ ) ଆଚ୍ଛାଦନ—2. Covering. ୩ । ( +କରଣ.ତି ) ଘୋଡଣୀ—3. A cover; a lid.

ସମ୍ବୃତ୍ତ—ସଂ. ବଣ ( ସମ୍+ବୃତ୍ ଧାତୁ+କର୍ତ୍ତୃ ବା କର୍ମ ତ )— Sambrutta ୧ । ନିଷ୍ପନ୍ନ; ସମ୍ପାଦିତ—1. Accomplished; finished. (ସବୃତ୍ତ ଇତ୍ୟାଦି—ଅନ୍ୟରୂପ) ୨ । ଜାତ—2. Born. ୩ । ଗୋପିତ—3. Hidden. ସଂ ବି—ବରୁଣଦେବ—The Indian Neptune; the Seagod.

ସମ୍ବୃତ୍ତି—ସଂ. ବି (ସମ୍+ବୃତ୍)—୧ । ଗୋପନ— 1. Concealment. Sambrutti ୨ । ନିଷ୍ପତ୍ତି—2. Completion; settlement. ୩ । ସିଦ୍ଧି—3. Accomplishment; success.

ସମ୍ବୃହଣ—ସଂ. ବି.—ବଳ ସମ୍ବିଧାନ ( ଚରକ )— Sambruhana Conservation or accumulation of strength.

ସମ୍ବେଗ—ସଂ. ବି ( ସମ୍+ବିଜ୍ ଧାତୁ=ଭୀତ ହେବା+ଭାବ. ଅ, Sambega ସମ୍+ବେଗ)—୧ । ଭୟ—1. Fear. (ସଂବେଗ ଇତ୍ୟାଦି—ଅନ୍ୟରୂପ) ୨ । ଭୟଜନିତ ତ୍ୱରା— (ସମ୍ବିଗ୍ନ—ବଣ) 2. Fright; haste due to fear. ୩ । ଅତି ବେଗ—3. Violent force; fury. ୪ । ଆବେଗ; ଉଦ୍‌ବେଗ—4. Anxiety.

ସମ୍ବେଜନ—ସଂ. ବି—ଅତ୍ୟନ୍ତ କମ୍ପନ (ସୁଶ୍ରୁତ)— Sambejana Shiver; violent trembling.

ସମ୍ବେଦ—ସଂ. ବି ( ସମ୍+ବିଦ୍ ଧାତୁ=ଜାଣିବା+ଭାବ ଅ )— Sambeda ୧ । ଅନୁଭବ—1. Experience; cognisance. (ସଂବେଦ ଇତ୍ୟାଦି—ଅନ୍ୟରୂପ) ୨ । ଜ୍ଞାନ—2. Knowledge; comprehension; perception. ୩ । ବୋଧ—3. Understanding.

ସମ୍ବେଦନ(ନା)—ସଂ. ବି (ସମ୍+ବିଦ୍ ଧାତୁ=ଜାଣିବା+ଭାବ ଅନ; Sambedana(nā) +ଆ) ୧ । ଅନୁଭବଜନିତ ଜ୍ଞାନ—1. Experimental knowledge; experience. ୨ । ଅନୁମାନ—2. Supposition; guess; inference. ୩ । ( +କରଣ. ଅନ )—ଛିକ୍‌କା (ବିଶ୍ୱକୋଷ); ଛିକ—3. Sneezing.

ସମ୍ବେଦ୍ୟ—ସଂ. ବଣ (ସମ୍+ବିଦ୍ ଧାତୁ=ଜାଣିବା+କର୍ମ. ଯ)— Sambedya ୧ । ଜ୍ଞେୟ—1. Cognizable. ୨। ଅନୁଭବ-( ସମ୍ବେଦନୀୟ—ଅନ୍ୟରୂପ ) ଯୋଗ୍ୟ—2. Fit to be experienced.

ସମ୍ବେଶ—ସଂ. ବି (ସମ୍+ବିଶ୍ ଧାତୁ=ପ୍ରବେଶ କରିବା, ଭୋଗ କରିବା, Sambeśa ଶୋଇବା+ଭାବ. ଅ )—୧ । ନିଦ୍ରା— [ସଂବେଶ ଇତ୍ୟାଦି—ଅନ୍ୟରୂପ] 1 Sleep. ୨ । ବିଶ୍ରାମ— 2. Repose. ୩ । (+ଅଧି ଅ)ପୀଠ;ଆସନ;କାଠଗ୍ରୀ—3. A stool; a pedestal. ୪ । (+ଭାବ ଅ) ଉପବେଶନ—4. Act of sitting. ୫ । ସୁରତ; ରତି—5. Coition. ୬। (+ଅଧି.ଅ) ଶଯ୍ୟା—6. Bed. (ଉ—ସମ୍ବେଶ ଅଶନ ବାରଇରେ—କବିସୂର୍ଯ୍ୟ କଣୋଗ୍ୱରଚମ୍ପୂ, କ ଗୀତ) ୭ । ସ୍ୱପ୍ନ—7. Dream. (ଉ—ଶୁଣ ଅହେ ସୁମନେ ଛଦ୍ମବେଶେ ସୁମନେ ସଂବେଶ ଆବେଶ ଶ୍ରାନ୍ତମ—ଭଞ୍ଜ.ବୈଦେହୀଶବିଳାସ) ୮। ରତିବନ୍ଧବିଶେଷ (ବିଶ୍ୱକୋଷ) 8.A posture during copulation. ୯। ଉପଭୋଗ ସ୍ଥାନ—9. Place of enjoyment. ୧୦। (ଭାବ.ଅ)-ଶୟନ (ବିଶ୍ୱକୋଷ); ଶୋଇବା—11. Sleeping.

ସମ୍ବେଷ୍ଟ—ସଂ. ବଣ ( ସମ୍+ବେଷ ଧାତୁ ଣିଚ୍+କର୍ମ. ତ )— Sambeshṭa ୧ । ସମ୍ୟକ୍ ବେଷ୍ଟିତ—1. Surrounded. (ସଂବେଷ୍ଟ—ଅନ୍ୟରୂପ) ୨ । ବସ୍ତ୍ରାଚ୍ଛାଦିତ ( ଶବ୍ଦକୋଷ )— (ସମ୍ବେଷ୍ଟନ—ଅନ୍ୟ. ବି. ରୂପ ) 2. Covered with cloth. ସଂ. ବି ( +ଭାବ. ଅ )—ବେଷ୍ଟନ; ଘେରିବା— Surrounding.

ସମ୍ବୋଧ—ସଂ. ବି (ସମ୍+ବୁଧ୍ ଧାତୁ=ବିନାଶ କରିବା+ଭାବ. ଅ)— Sambodha ୧ । ନାଶ ( ଜୟପାଳ )—1. Destruction. (ସଂବୋଧ—ଅନ୍ୟରୂପ) ୨ । କ୍ଷେପ; ନ୍ୟାସ ( ମେଦିନୀ )— 2. Deposit. ୩ । ବୋଧନ (ମେଦିନୀ)— 3. Awakening; explaining.

ସମ୍ବୋଧନ—ସଂ. ବ ( ସମ୍ + ବୁଧ୍ ଧାତୁ; ଣିଚ୍ + ଭାବ. ଅନ )—
Sambodhana ୧ । ଆମନ୍ତ୍ରଣ—1. Invitation. ୨ ।
(ସମ୍ବୋଧନ—ଇତ୍ୟାଦି, ଅନ୍ୟରୂପ) କୌଣସି ବ୍ୟକ୍ତିଙ୍କର ମନୋଯୋଗ ଆକର୍ଷଣାର୍ଥ ଆହ୍ୱାନ—2. Address to draw attention. ୩ । ଆହ୍ୱାନ—3. Calling ୪ । (ବ୍ୟାକରଣ) କାରକବିଶେଷ—4. (grammar) The vocative case [ଦ୍ର—ବ୍ୟାକରଣରେ ସମ୍ବୋଧନ ପ୍ରଥମା ବିଭକ୍ତି ହୁଏ—ଶବ୍ଦକୋଷ]

ସମ୍ବୋଧିତ, ସମ୍ବୋଧ୍ୟ, ସମ୍ବୋଧନୀୟ, ସମ୍ବୋଧନ-ବ୍ୟଞ୍ଜକ } ବିଣ

ସମ୍ବୋଧନ ଚିହ୍ନ—ଦେ. ବ ( ଆଧୁନିକ )—ସମ୍ବୋଧନ ସ୍ଥଳରେ
Sambodhana chihna ପୁସ୍ତକାଦିରେ ବ୍ୟବହୃତ ସଂକେତ—
সংবোধন চিহ্ন Note of admiration or vocation.
सम्बोधन चिह्न [ଦ୍ର—ଏହା '!' ଏହିପରି କାବ୍ୟ ମଧ୍ୟରେ (ସମ୍ବୋଧନ ସୂଚକ ଚିହ୍ନ—ଅନ୍ୟରୂପ) ଲେଖାଯାଏ ।]

ସମ୍ବୋଧିବା—ଦେ. କି (ପଦ୍ୟ)—ସମ୍ବୋଧନ କରିବା; ଡାକିବା—
Sambodhiba To address.
সংবোধন করা [ଦ୍ର—ପୁଣି ଭୂରୁଯୋଧକ ସମ୍ବୋଧି ବୃକୋଦର । सम्बोधन करना ସୁଧାନାଥ. ବୈଣୀସଂହାର ।]

ସମ୍ବ୍ୟାନ—ସଂ. ବ (ସମ୍ + ବ୍ୟେ ଧାତୁ=ଆଚ୍ଛାଦନ କରିବା + କରଣ, ଅନ)—୧ । ବସ୍ତ୍ର—1. Cloth. ୨ । ଉତ୍ତରୀୟ
Sambyana (ସଂବ୍ୟାନ—ଅନ୍ୟରୂପ) ବସ୍ତ୍ର—2. The upper garment.

ସମ୍ଭ୍ୟୂଢ଼—ସ. ବିଣ (ସମ୍ + ବ୍ୟୂଢ )—୧ । ଚୂର୍ଣ୍ଣ—1. Pounded;
Sambhyurdha bruised. ୨ । ଏକତ୍ର ମିଶ୍ରିତ—
( ସମ୍ଭୂଢ଼, ସମ୍ଭ୍ୟୂଢ଼ନ—ବ ) 2. Mixed together.

ସମ୍ବ୍ରାତ—ସ. ବିଣ—୧ । ପ୍ରଚୁର ( ଶବ୍ଦକୋଷ )—1. Enough;
Sambrata copious. ୨ । ବହୁ ସଂଖ୍ୟକ—
2. Numerous.

ସମ୍ଭବ—ସଂ. ବ (ସମ୍ + ଭୂ ଧାତୁ=ହେବା + ଭାବ. ଅ)—୧ । ଉତ୍ପତ୍ତି;
Sambhaba ଜନ୍ମ—1. Birth; origin. ୨ । (+
(ସମ୍ଭବ ଇତ୍ୟାଦି—ଅନ୍ୟରୂପ) କର୍ମ. ଅ ) ହେତୁ; କାରଣ—
2. Reason; cause. ୩ । ଅନୁମାନ—3. Guess. ୪ । ସମ୍ଭାବନା—4. Probability. ୫ । ସମୀଚୀନତା—5. Propriety. ୬ । ଯୁକ୍ତି—6. Argument. ୭ । ଯୋଗ୍ୟତା—7. Fitness; ability; proficiency. ୮ । ସଙ୍କେତ—8. Sign; signal. ୯ । କ୍ଷମତା; ଶକ୍ତି—9. Power; ability; might. ୧୦ । ପରିଚୟ—10. Acquaintance. ୧୧ । ସଖ୍ୟ—11. Friendship. ୧୨ । ( + କର୍ତ୍ତୃ. ଅ ) ବର୍ତ୍ତମାନ କଳ୍ପର ତୃତୀୟ ଜୈନାବତାର—12. Name of the third incarnation of the Jainas in the modern age. ୧୩ । ( + ଭାବ. ଅ ) କ୍ଷତି; ଧ୍ୱଂସ ( ଶବ୍ଦକୋଷ )—13. Ruin; loss. ଦେ.

সংভব ବିଣ—୧ । ସମ୍ଭବ୍ୟ; ସମ୍ଭାବନା ଯୋଗ୍ୟ; ସମ୍ଭବପର—
सम्भव 1. Possible. ୨ । ଯାହା ଘଟିପାରେ—2. Pro-
(ସମ୍ଭବ—ବିପରୀତ) bable. ଦେ. କି. ବିଣ—ସମ୍ଭବତଃ—
সংভব सम्भव Possibly; probably.

ସମ୍ଭବ କରିବା—ଦେ. କି—ଅନୁମାନ କରିବା—To guess.
Sambhaba kariba সম্ভব করা सम्भव करना

ସମ୍ଭବତଃ—ସଂ. ଅ ( ସମ୍ଭବ + ତସ୍ )—୧ । ବୋଧ ହୁଏ—1. Pro-
Sambhabatah bably. ୨ । ଅନୁମିତ ହୁଏ ଯେ—
2. It seems.

ସମ୍ଭାବନ—ସଂ. ବ ( ସମ୍ + ଭୂ ଧାତୁ + ଭାବ. ଅନ )—୧ । ଉଦ୍ଭାବନ
Sambhabana (ଶବ୍ଦକୋଷ)—1. Inventing.
୨ । ଉତ୍ପାଦନ—2. Producing.

ସମ୍ଭବପର—ସଂ. ବିଣ—ସମ୍ଭବ୍ୟ (ଦେଖ)—Sambhabya ( See)
Sambhabapara [ ଦ୍ର—ଉପରୋକ୍ତରେ ଅବଶ୍ୟ ପ୍ରସନ୍ନ ହେବ ବର । ଅଭି କେଉଁ ଉପାୟ କୁହେ ସମ୍ଭବପର—ମହାରାଜ ଜଗମୋହନ ବର୍ମା. ତୁଳସୀ. ଜନ୍ମ ରାମାୟଣ । ]

ସମ୍ଭବ ଲାଗିବା—ଦେ. କି—କୌଣସି ବିଷୟ ସମ୍ଭବ୍ୟ ବୋଧ ହେବା—
Sambhaba lagiba To seem possible.
সম্ভব লাগা सम्भव मालुम होना

ସମ୍ଭବ ହେବା—ଦେ. କି—(କୌଣସି ବିଷୟ) ସମ୍ଭବ୍ୟ ବୋଧ ହେବା;
Sambhaba heba ସମ୍ଭାବିତ ହେବା; ଅନୁମିତ ହେବା—
সম্ভবহওয়া ( anything ) To be thought possible;
सम्भव होना to seem probable.

ସମ୍ଭବାତୀତ—ସଂ. ବିଣ—୧ । ଅସମ୍ଭବ୍ୟ—1. Improbable
Sambhabatita ୨ । କାରଣଶୂନ୍ୟ—2. Groundless.
୩ । ଯୋଗ୍ୟତା ରହିତ—3. Unfit.

ସମ୍ଭବିବା—ଦେ କି ( ପଦ୍ୟ ) (ସଂ. ସମ୍ଭବ)—୧ । ଜାତ ହେବା—
Sambhabiba 1. To be born. [ ଦ୍ର—କେତକୀରୁ
সম্ভবা, সম্ভব হওয়া पैदा होना ସମ୍ଭବିଲେ ତୁଙ୍ଗାଷ—କବିସୂର୍ଯ୍ୟ.
সম্ভব হওয়া घटना କବିତା ।] ୨ । ଘଟିବା—2. To happen.
[ ଦ୍ର—ଘ ମାଇବାର ସମ୍ଭ-ବଳନାହିଁକ ଅମ୍ଭ-ସୁଯୋଗୁ ସିନା ବଞ୍ଚି ଅଇଲ୍ଁ ରେ । ବଶୋମାତିମ୍ଭୁ ଗୀତ]
সম্ভবপর হওয়া ୩ । ସମ୍ଭବପର ହେବା—3. To be possible.
साम्भव होना [ ଦ୍ର—ନବନୀତ ଚହୁଁ ମୃଦୁ ଦେହେ ତାହୁଁ ସମ୍ଭବିଲ ଏ କଦନ—କବିସୂର୍ଯ୍ୟ. ବଶୋମାତିମ୍ଭୁ ଗୀତ]

ସମ୍ଭବିଷ୍ଣୁ—ସଂ. ବିଣ (ସମ୍ + ଭୂ ଧାତୁ + କର୍ତ୍ତୃ ଇଷ୍ଣୁ) —ଉତ୍ପାଦନଶୀଳ—
Sambhabishnu Productive.

ସମ୍ଭବୀ—ଦେ. ବିଣ—( ଅମୁକ କୁଳରୁ ) ସମ୍ଭୂତ; ଜାତ—Born of
Sambhabi ( such a family ). [ଦ୍ର—ଅତ୍ରି ମୁନିଙ୍କର
সম্ভূত ଗୋତ୍ର ସମ୍ଭବୀ । ତୁଦେବ ସମ୍ପୃକ୍ତରୁ କବିରାଜ—କବିସୂର୍ଯ୍ୟ.
पैदा हुआ କବିତା ।]

ସମ୍ଭବ୍ୟ—ସଂ. ବିଣ ( ସମ୍ + ଭୂ ଧାତୁ=ହେବା + କର୍ମ. ଯ )—
Sambhabya ୧ । ସମ୍ଭାବନୀୟ; ଯାହା ଘଟି ପାରେ ବୋଲି
(ଅସମ୍ଭବ୍ୟ—ବିପରୀତ) ଅନୁମାନ କରାଯାଏ—1. Possible;

probable. ୬ । ବିଶ୍ୱାସ ଯୋଗ୍ୟ—2. Credible. ୩ । ଉତ୍ପନ୍ନ ଯୋଗ୍ୟ—3 Fit to be produced. ସଂ. ବି—କପିତ୍ଥ ( ଶବ୍ଦଚନ୍ଦ୍ରିକା )—Wood apple.

**ସମ୍ଭର**—ସଂ. ବି ( ସମ୍+ଭୃ ଧାତୁ+ଭାବ. ଅ )—୧ । ଅହରଣ; ସଂଗ୍ରହ—1. Collecting. ୨। ସମ୍ୟକ୍ ଭାର—2. Big load or responsibility.
Sambhara

**ସମ୍ଭର(ର୍ବ)**—ଗ୍ରା. ବି ( ସଂ. ସମାରୋହ )—୧ । ସମାରୋହ; ଆଡ଼ମ୍ବର; ଜାକଜମକ—1. Pomp; show; grandeour. [ଉ—ଅତି ସମ୍ଭରେ କରନ୍ତେ ଅଖିଳ ମଙ୍ଗଳ—ଶିଶୁଶଙ୍କର. ଧ୍ରୁବଚରିତ । ] ୨ । ଉତ୍ସବ—2. Festival. ୩ । ଗୌରବତ୍ୱ—3. Brilliance, brilliant display.
Sambhara(rba)
সমারোহ समारोह
( ସମ୍ଭରବ—ଅନ୍ୟରୂପ )

**ସମ୍ଭରଣ**—ସଂ. ବି ( ସମ୍+ଭୃ ଧାତୁ+ଭାବ. ଅନ )—୧ । ପୂର୍ଣ୍ଣତା ପ୍ରାପଣ—1. Bringing to completion or fulfilment. ୨ । ସମ୍ୟକ୍ ପୂର୍ଣ୍ଣିକରଣ (ଶବ୍ଦକୋଷ)—2. Filling up.
Sambharana
(ସମ୍ଭରଣୀୟ, ସମ୍ଭୃତ—ବିଣ)

**ସମ୍ଭରବେ**—ଗ୍ରା. କି. ବିଣ—ସମାରୋହରେ; ଆଡ଼ମ୍ବର ସହକାରେ—With pomp. [ଉ—ବିଶ୍ୱକର୍ମୀ ସୃଜ ବନ୍ଧୁ ମନ୍ତ୍ର ଜପି ପଦ୍ମ ସୁନ୍ଦ ସମ୍ଭରବେ ଆରମ୍ଭେ ଭୂମୁଳ ଯେ—ଉଞ୍ଜ. ବୈଦେହୀଶବିଳାସ । ]
Sambharabe
সমারোহে समारोहसे

**ସମ୍ଭରିବା**—ଦେ. କି ( ପଦ୍ୟ ) ( ସଂ. ସମ୍ଭରଣ )—ସମ୍ଭାଳିବା (ଦେଖ) Sambhalibā (See) ( ଉ—ସମ୍ଭର ନ ପାର ବ୍ରହ୍ମାଣ୍ଡ । ଫାଟିଣ ଗଲ ଉର୍ଦ୍ଧ୍ୱ ପିଣ୍ଡ—ପ୍ରାଚୀ. ମୂର୍ତ୍ତିଲମ ଚନ୍ଦ୍ରୋଦୟ । )
Sambharibā

**ସମ୍ଭଳ**—ସଂ. ଭ—୧ । ( ନାମ ) ( ସମ୍+ଭଲ୍ ଧାତୁ=ନିରୂପଣ କରିବା+କର୍ମ ଅ ) ପ୍ରାଚୀନ ଗ୍ରୀକ୍‌ମାନଙ୍କର ପୂର୍ବ ପ୍ରାନ୍ତସ୍ଥ ସାମ୍ରାଜ୍ୟର ନାମ—1. A Buddhist name for Selucia or Bactriana, the eastern empire of the ancient Greeks. ୨ । କନ୍ୟାର୍ଥୀ ପୁରୁଷ ( ଅଥର୍ବବେଦ )—2. A person disirous of getting a bride.
Sambhala
(ସଂଭଲ—ଅନ୍ୟରୂପ)

**ସମ୍ଭଳା**—ଦେ. ବି (ସଂ. ସମ୍ଭରଣ)—୧ । ସମ୍ଭାଳିବା ( ଦେଖ )—1. Sambhalibā (See) ୨ । ଧୈର୍ଯ୍ୟ—2. Patience. ୩ । ସହିବା—3. Bearing; enduring. ଦେ. ବିଣ—ସମ୍ଭାଳ (ଦେଖ)—Sambhāla (See).
Sambhalā
সামলান, সামাল सँभाल
(ଅସମ୍ଭଳା—ବିପରୀତ)

**ସମ୍ଭଳା ପଡ଼ିବା**—ଦେ. କି—ସମ୍ଭାଳି ହେବା ( ଦେଖ ) Sambhāli hebā ( See )
Sambhalā pardibā
সামলান सम्भाल पड़ना

**ସମ୍ଭଳା ଯି(ହେ)ବା**—ଦେ. କି—ସହ୍ୟ ହେବା—To be borne.
Sambhalā ji(he)bā
সামাল হওয়া सम्भालजाना

**ସମ୍ଭଳୀ**—ସଂ. ବି. ସ୍ତ୍ରୀ (ସମ୍+ଭଲ୍ ଧାତୁ=ନିରୂପଣ କରିବା+କର୍ତ୍ତୃ ଅ+ସ୍ତ୍ରୀ. ଈ)—କୁଟ୍ଟିନୀ; ଦୂତୀ ( ଅମର )—A procuress; a bawd.
Sambhalī
(ସଂଭଳୀ—ଅନ୍ୟରୂପ)

**ସମ୍ଭା(ମ୍ଭେ)ଇବା**—ଦେ. କି (ସଂ. ସମ୍ଭବ)—୧ । ସମ୍ଭବ ଜଣା ହେବା—1. To be thought probable ୨ । ପ୍ରବିଷ୍ଟ ହେବା; ପ୍ରବେଶ କରିବା—2. To enter into. [ଉ—ବ୍ରହ୍ମାଣ୍ଡ ଯାହା ଉଦରେ ଚଳନ୍ତେ ସମାଇ । ଉଞ୍ଜ. ବୈଦେହୀଶବିଳାସ ।] ୩ । ଭର୍ତ୍ତି ହୋଇପିବା—3. To be contained inside. [ଉ-ସେ ବ୍ରହ୍ମା ସୁଭଦ୍ରା ହୋଇଲେ, ଗ୍ରାଧାଙ୍କ ସଙ୍ଗେ ସମ୍ଭାଇଲେ । ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା ।] ୪ । ଯଥେଷ୍ଟ ହେବା; କୌଣସି ପାତ୍ରର ଆକାରକୁ ଗୃହ୍ଣ ଯଥେଷ୍ଟ ହେବା—4. To suffice for the capacity of any pot; to be capable of being contained in it [ଯଥା—ଏ ବସ୍ତାକେଇରେ ୫ ଗୌଣୀ ଧାନ ସମ୍ଭାଇବ, ଅଧିକ ବେଶୀ ଧାନ ସମ୍ଭାଇବ ନାହିଁ ।]
Sambhā(mbhe)ibā
সম্ভাবিত হওয়া सम्भावित होना
সেঁধোন समाना
যথেষ্ট হওয়া यथेष्ट होना

**ସମ୍ଭାବ**—ସଂ. ବି (ସମ୍+ଭାବ)—ଅବସ୍ଥା; ଦଶା (ଭ୍ରମାପୂର୍ଣ୍ଣ)—Condition; predicament.
Sambhāba

**ସମ୍ଭାବନ(ନା)**—ସଂ. ବି (ସମ୍+ଭୂ ଧାତୁ ଣିଚ=ଭାବ ଧାତୁ=ଚିନ୍ତା କରିବା+ଭାବ. ଅନ; +ଆ)—[ସଂଭାବନ(ନା), ଇତ୍ୟାଦ—ଅନ୍ୟରୂପ] ୧ । ଚିନ୍ତା—(ବିଣ—ସମ୍ଭାବନୀୟ, ସମ୍ଭାବିତ, ସମ୍ଭବ୍ୟ, ସମ୍ଭାବ୍ୟ) 1. Thought. ୨ । ଧ୍ୟାନ—2. Meditation. ୩। ପୂଜା; ସତ୍କାର—3. Worship. [ଉ—ଅର୍ଜ୍ଜୁନଙ୍କୁ ଦେଖିଣ ଦେବତା ଗନ୍ଧର୍ବେ, କରନ୍ତି ସମ୍ଭାବନା ଚଳେ ତାଙ୍କୁ ଭାବେ । କୃଷ୍ଣସିଂହ ମହାଭାରତ, ବନ ।] ୪। ଗୌରବ; ସମ୍ମାନ—4. Honour; respect. [ଉ—ସମ୍ଭାବନା ଗଉରବ କରିବାକୁ ଜଣେ ମାଧବ ନ ପେଷିଲ—ସୁଲକ୍ଷଣା ।] ୫ । ଯୋଗ୍ୟତା—5. Fitness; proficiency. ୬ । ଘଟିବାର ଆଶା—6. Expectancy ୭ । ଉତ୍କଟ-କୋଟିକ ସଂଶୟ; କଷ୍ଟଯୁକ୍ତ ସନ୍ଦେହ—7. Great chance; possibility; probability; contingency. ( ଉ—ଧୂମ ଦେଖା ଗଲେ ଅଗ୍ନିର ଥିବାକୁ ସମ୍ଭାବନା ବୋଲଯାଏ ।) ୮ । ସଂପାଦନ—8. Accomplishment. ୯ । ଅନୁଗ୍ରହ—9. Favour. ୧୦ । ସୁଖ୍ୟାତି—10. Reputation. ୧୧ । (ବ୍ୟାକରଣ) କ୍ରିୟାରେ ଯୋଗ୍ୟତା ବା ଅଧ୍ୟବସାୟ; କୌଣସି କ୍ରିୟାରେ କୌଣସି ଯୋଗ୍ୟତାର ଆରୋପଣ—11. (grammar) Capability or fitness of a verb to express some action; attributing of a capacity to a verb. ୧୨ । କାବ୍ୟାଲଙ୍କାର ବିଶେଷ—12. A figure of speech. [ଉ—ଯେଉଁଠାରେ
Sambhābana(nā)

କବି ବର୍ଣ୍ଣିତ ବିଷୟରେ ସମ୍ଭାବନାର ଅବେଶ କରିଥାନ୍ତି, ସେଠାରେ ଏହି ଅଳଙ୍କାର ହୁଏ ।] ୧୩ । ସ୍ୱୀକାର (ଶବ୍ଦକୋଷ)—13. Consent; agreement.

**ସମ୍ଭାବନା**—ଦେ. ବି ( ସଂ.ସମ୍ମାନନା )—ସମ୍ମାନନ—Showing Sambhābanā respect. [ଉ—ଚୈତନ୍ୟ ବାବୁ ଭୁଲେ সম্ভাবনা କରନ୍ତୁ ସମ୍ଭାବନା, ନ କହନ୍ତୁ କିଛି କଥା କେ मान ମହାମନା । କୃଷ୍ଣସିଂହ. ମହାଭାରତ. ବନ ।]

**ସମ୍ଭାବନା କରିବା**—ଦେ. କ୍ରି—୧ । ସମ୍ଭାବ୍ୟ ବୋଲି ମନେ କରିବା—Sambhābanā kariba 1. To think it probable সম্ভাবনা করা or likely. [ଉ—ବନାଳୀ ପ୍ରଭୁ କରିଣ କରି खयाल करना ସମ୍ଭାବନା । ଉଞ୍ଜ. ବୈଦେହୀଶବିଳାସ ।]
୨ । ସମ୍ମାନିତ କରିବା—2. To honour.

**ସମ୍ଭାବନୀୟ**—ସଂ. ବିଣ ( ସମ୍ + ଭୂ ଧାତୁ, ଣିଚ୍ + କର୍ମ. ଅନୀୟ )—Sambhābaniya ୧ । ଚିନ୍ତନୀୟ—1. Thinkable. ୨ । (ସମ୍ଭାବୟିତବ୍ୟ—ବିଣ) କଳ୍ପନୀୟ—2. Conceivable possible. ୩ । ପୂଜନୀୟ—3. Adorable. ୪ । ସମ୍ମାନନୀୟ—4. Respectable ୫ । ପ୍ରଶଂସନୀୟ—5. Praiseworthy.

**ସମ୍ଭାବିତ**—ସଂ. ବିଣ (ସମ୍ + ଭାବ ଧାତୁ + କର୍ମ. ତ)—୧ । କୀର୍ତ୍ତିଯୁକ୍ତ; Sambhābita ଖ୍ୟାତ; ପ୍ରସିଦ୍ଧ—1. Famous; reputed; জাত celebrated. ୨ । ପ୍ରଶଂସିତ—2. Praised. पैदाहुआ ୩ । ପୂଜିତ; ସତ୍କୃତ—3. Adored; honoured. ୪ । ସମ୍ମାନିତ; ସମ୍ମାନିତ—4. Respected. ୫ । ଚିନ୍ତିତ 5 Thought of; contemplated. ୬ । ଯାହା ଘଟିବ ବୋଲି ସମ୍ଭବ ବୋଧହୁଏ—6. Possible; probable; likely to happen. ୭ । ତର୍କିତ—7. Inferred; guessed. ଦେ. ବିଣ (ସଂ. ସମ୍ଭୂତ) ଜାତ—Born. [ଉ—ବୋଇଲା ରମଣୀମଣି ଏବେ ସମ୍ଭାବିତ । ଉଞ୍ଜ. ବୈଦେହୀଶବିଳାସ ।]

**ସମ୍ଭାବ୍ୟ**—ସଂ. ବିଣ (ସମ୍ + ଭୂଧାତୁ + କର୍ମ. ଯ)—୧ । ସମ୍ଭବ୍ୟ; Sambhābya ପ୍ରତର୍କ୍ୟ—1, Possible; probable. ୨ । ପ୍ରଶଂସନୀୟ; ଶ୍ଳାଘ୍ୟ—2. Priseworthy.

**ସମ୍ଭାର**—ସଂ. ବି (ସମ୍ + ଭୃ ଧାତୁ=ଧାରଣ କରିବା + ଭାବ. ଅ)—Sambhāra ୧ । ସାମଗ୍ରୀ; ଉପକରଣ; ଦ୍ରବ୍ୟଜାତ—(ସଂଭାର—ଅନ୍ୟରୂପ) 1. Materials. ୨ । ସଂଗ୍ରହ—2. Collection. ୩ । ଦ୍ରବ୍ୟଭାର; ସଂଗୃହୀତ ପଦାର୍ଥ ସମୂହ—3. Collected things. ୪ । ରାଶି; ଗଦା—4. Heap; assemblage. ୫ । ସମୂହ—5. Multitude. ୬ । ସମ୍ପୂର୍ଣ୍ଣତା; ପରି- समारोह ପୂର୍ଣ୍ଣତା—6. Fullness; completeness. ୭ । ପୁଷ୍ଟି समारोह ସାଧନ; ପୋଷଣ—7. Nourishment; mainten- सम्भाव ance. ଦେ. ବି (ସଂ. ସମାରୋହ)—୧ । ସମାରୋହ— भार 1. Pomp; show; grandeour. ୨। (ସଂ ସମ୍ଭାର) କନ୍ୟା ଘରକୁ ଏକତ୍ର ପ୍ରେରିତ ଅନେକ ଭାର ଦେବଦ୍ରବ୍ୟ—2. An assemblage of presents sent to a relative with pomp. ( ଉ—କେମନ୍ତ ସିବେ ଶାଶୁଘର, କେତେ ସମ୍ଭାର ଯେ—କେମନ୍ତ ଦେଇ ବାହା ।)

**ସମ୍ଭାରେ**—ଦେ. କ୍ରି. ବିଣ—ସମାରୋହରେ; ଆଡ଼ମ୍ବରରେ—With Sambhāre pomp; ostentatiously. সম্ভাবে **समारोहमे** (ଉ—କରି ବିଭାବରୀ ଥାଉଁ ସେ ବେଭାରରେ ସମ୍ଭାରେ ସୈନ୍ୟ ଅଣାଇ—ଉଞ୍ଜ. ବୈଦେହୀଶବିଳାସ ।)

**ସମ୍ଭାଳ**—ଦେ. ବିଣ (ସଂ. ସମ୍ବରଣ)—୧ । ସମ୍ବୃତ; ଆବୃତ—Sambhāla 1. Covered. ୨ । ଯାହା ସହାଯାଏ—সামাল সামলান **संवरण संभालना** 2. Borne. ଅସମ୍ଭାଳ, ଦୁସମ୍ଭାଳ }—ବିପରୀତ ୩ । ନିରୁଦ୍ଧ; ନିୟନ୍ତ୍ରିତ—3. Checked; restrained. ୪ । ଧୈର୍ଯ୍ୟଶୀଳ—4. Patient. ୫ । ସହିବାଗୁଣ- সামাল **सहिष्णुता** ଯୁକ୍ତ—5. Forbearing. ଦେ. ବି. ୧ । ଧୈର୍ଯ୍ୟଶୀଳତା—1. Patience. ୨। ସହିଷ୍ଣୁତା—2. Forbearance.

**ସମ୍ଭାଳ କରିବା**—ଦେ. କ୍ରି—ସମ୍ଭାଳିବା (ଦେଖ)—Sambhāliba Sambhāla kariba (See) (ଉ—ସ୍ୱର୍ଗ ଧର୍ମ ଡାକି সামলান **संभालना** ହୋଇଛନ୍ତି ଅଧିକାଂଶ, ସମ୍ଭାଳ କରୁଅଛନ୍ତି ଅଳ୍ପ ଶିରେ ଧରି—ପ୍ରାଚୀ. ବୃନ୍ଦାବନପୁରଣ ଗୀତା ।)

**ସମ୍ଭାଳନ୍ତା**—ଦେ. ବିଣ—ରକ୍ଷାକାରୀ—Protecting. ( ଉ—Sambhālantā ମୋଡେ ସମ୍ଭାଳନ୍ତା ଥିଲି ଜଣେକ, ତାହା সামলানেওয়ালা **सम्भालनेवाला** ସରିକେ ହୋଇବ ଷଣେକ—ପ୍ରାଚୀ. ରହସ୍ୟମଞ୍ଜରୀ ।)

**ସମ୍ଭାଳି(ଳୁ)ଆ**—ଦେ. ବିଣ ( ସଂ. ସଂବରଣ )—୧ । ଧୈର୍ଯ୍ୟଶୀଳ—Sambhāli(lu)ā 1. Patient. ୨ । ସହିଷ୍ଣୁ—সামলা, সামাইয়ে **सम्भालनेवाला** 2. Forbearing. ୩ । ସମ୍ଭାଳିବାକୁ; କୌଣସି କାର୍ଯ୍ୟର ଦାୟିତ୍ୱ ବା ଭାର ଗ୍ରହଣ କରି ତାହାକୁ ସୁସମ୍ପନ୍ନ କରିବାରେ ସମର୍ଥ ବା ଦକ୍ଷ—3. Capable of managing any শুঁয়াপোকা **सुआ** undertaking ଦେ. ବି—(ସଂ. ଶୂକ)—ସମାଳିଅ; ସଁବାଳୁଅ; ଶୁଅଁ ବାଳ ପୋକ—Caterpillar.

**ସମ୍ଭାଳି ନେବା**—ଦେ. କ୍ରି—ସମ୍ଭାଳିବା (ଦେଖ)—Sambhāli nebā Sambhāliba (See) সামলেনেওয়া **सम्भाललेना**

**ସମ୍ଭାଳିବା**—ଦେ. କ୍ରି (ସଂ. ସଂବରଣ; ପ୍ରାକୃତ—ସମ୍ଭଲ୍ ଧାତୁ, ତୁଳନା Sambhāliba ଭିଭ ମ. ସମ୍ଭାଲ ଓ ଅସାମୀ. ସାମର )—সামলা সমালান **सम्भलना सम्भालना** ୧ । ( ଦେହରେ ବସ୍ତ୍ରାଦି ) ଆବରଣ କରିବା—1. To cover the body with clothes. ( ଉ—ଗୋଟିକା ସମ୍ଭାଳ ବସନ, ଲଗ୍ନ କାନ୍ତ ପଞ୍ଜବନ—ଭୂପତି. ପ୍ରେମପଞ୍ଚାମୃତ) ।

୨ । ନିବାରଣ କରିବା—2. To prevent. ( ଉ— ପ୍ରଭୁ ହୋଇ ଯେବେ ତୁଅଇ ଅବିବେକୀ, ଭୃତ୍ୟ କେବେ ତାହାଙ୍କୁ ସମ୍ଭାଳି ପାରେ କି—କୃଷ୍ଣସିଂହ. ମହାଭାରତ.ବନ ।) ୩ । (କ୍ରୋଧ, ସ୍ନେହ ଆଦି) ସମ୍ବରଣ କରିବା; ନିରୋଧ କରିବା; ନିବାରଣ କରିବା—3. To check or restrain (one's passions). ୪ । ଧୈର୍ଯ୍ୟ ସହିତ ସହ୍ୟ କରିବା—4. To bear with patience. ୫ । (ବାକ୍ୟକୁ, ଜିହ୍ୱାକୁ) ସଂଯତ କରିବା—5. To control (one's tongue); to hold (the tongue). ୬ । ( ବେଗ, ଅଘାତ ବା ଧାକ୍କା) ସହିବା—6. To bear the brunt of (an attack or impact or force). ୭ । ଆତ୍ମରକ୍ଷା କରିବା—7.To preserve or defend one's self. ୮ । (ପରିବାର, ଦ୍ରବ୍ୟ, ମହତ୍ତ୍ୱ) ଯତ୍ନପୂର୍ବକ ରକ୍ଷା ବା ପାଳନ କରିବା—8. To maintain or preserve (any thing or family). (ଉ—ସମ୍ଭାଳ ମୋର ଅଭୁର, ସ୍ୱର୍ଣ୍ଣ ପଗ୍ର ଭୁ ମୋତେ—ଜଗନ୍ନାଥ ଶୋରୀ ଚମ୍ପୁ ଗୀତ ।) ୯ । (ଧୈର୍ଯ୍ୟ) ଚ୍ୟୁତ ନ ହେବା ପାଇଁ ତତ୍ପର ହେବା—9.To try for not losing (one's patience) ( ଉ—କେମନ୍ତେ ସମ୍ଭାଳିବ ଧୃତିକି ରେ—କବିସୂର୍ଯ୍ୟ ସଙ୍ଗୀତ । ) ୧୦ । ସବୁରିତ କରିବା; କିଛିକାଳ ଅପେକ୍ଷା କରିବା—10. To wait for some time. ୧୧ । ରକ୍ଷା କରିବା—11. To protect; to save. (ଉ—ବାଳକ ମୁଁ ସତେ, ତୁ ବୁଝାଉ ମୋତେ, କେ ତୋତେ ସମ୍ଭାଳୁ—ଭକ୍ତ. ବୈଦେହୀଶବିଳାସ । ) ୧୨ । ( ମଳ ମୂତ୍ରାଦିର ବେଗ) ଧାରଣ କରିବା ବା ନିରୋଧ କରିବା—12. To bear with fortitude (calls or nature); to check the propensity or impulse (of easing one's self). ୧୩ । ( ନଈ, ସ୍ରୋତ ) ନିଜର ମଧ୍ୟରେ ଧାରଣ କରିବା; ସମ୍ଭାଇବା—13, To be able to contain within one's self. (ଉ—ଦେବି ଗୋ ! ପ୍ରାବୃଟେ ତଟିନୀ ଯେସନେ ନ ପାରେ ବାରି ସମ୍ଭାଳି—ରାଧାନାଥ. ପାର୍ବତୀ ।) ୧୪ । ସ୍ଥିର ଓ ଅଚଳ ରଖିବା—14. To keep firm. ( ଉ—କାହିଁ ବୋଲିବି କଥା ଜାଣିବୁ କି ସର୍ବଥା ଅଛି କି ସମ୍ଭାଳିବୁ ଧୃତିକି ରେ—କବିସୂର୍ଯ୍ୟ ସଙ୍ଗୀତ । )

ସମ୍ଭାଳଅ—ଦେ. ବିଣ, ପୁଂ ( ସଂ. ସମ୍ବରଣଶୀଳ )—୧ । Sambhāḷia ଅପେକ୍ଷାକାରୀ—1. Waiting. ୨ । ଧୈର୍ଯ୍ୟଶୀଳ- (ସମ୍ଭାଳେ[ଳି]ଇ—ସ୍ତ୍ରୀ) 2. Patient. ୩ । ସହନଶୀଳ— (ଅସମ୍ଭାଳଅ—ବିପରୀତ) 3. Forbearing. সামলা, সামাইয়ে सम्भालनेवाला

ସମ୍ଭାଳି ଯି(ହେ)ବା—ଦେ. କ୍ରି—୧ । ଧୈର୍ଯ୍ୟଧାରଣ ପୂର୍ବକ ଅପେକ୍ଷା Sambhāḷi ji(he)bā କରିବା—1. To wait patiently. সামলে যাওয়া, সামলান ୨ । ଆତ୍ମନିରୋଧ କରିବା— सँभलजाना 2. To restrain or check one's self; to exercise self-restraint.

ସମ୍ଭାଷ(ଷା)—ସ. ବି (ସମ୍ + ଭାଷ୍ ଧାତୁ=କହିବା + ଭାବ. ଅ;+ Sambhāsha(shā) ସ୍ତ୍ରୀ ଆ)—୧ । ଅଳାପ; ପରସ୍ପର [ସଂଭାଷ(ଷା) ଇତ୍ୟାଦ—ଅନ୍ୟରୂପ] କଥୋପକଥନ—1.Talk; [ସମ୍ଭାଷଣ(ଣା)—ଅନ୍ୟରୂପ] conversation; discourse. (ସମ୍ଭାଷୀ—ପୁଂ, ବ୍ୟକ୍ତିବାଚକ ବିଣ) ୨ । ଅଭ୍ୟର୍ଥନା—2. Welcome. ଦେ. ବି (ସ. ସଂବାଦ)— ୧ । ଖବର—1. News; intelligence. ୨ । ପରିଚୟ—2. Recognition.
ସମ୍ଭାଷିତ / ସମ୍ଭାଷଣୀୟ / ସମ୍ଭାଷ୍ୟ } ବିଣ
সংবাদ [ଉ—ମୁହିଁ କେମନ୍ତେ ହୋଇ ତହିଁକି ଯିବି ? କନ୍ୟା ବୋଲି सम्बाद କାହାକୁ ସମ୍ଭାଷଣ ଦେବି ? ପ୍ରାଚୀ. ନଳଚରିତ ।]

ସମ୍ଭାଷଣା ଦେବା—ଦେ. କ୍ରି—ଆନନ୍ଦରେ କଥା କହିବା— Sambhāshaṇā debā To talk in joy. সম্ভাষণা দেওয়া [ଉ—ସତେ କି ସୁନ୍ଦରି ! ତୁମ୍ଭି ସମ୍ଭାଷଣା ଦେବ । सम्भाषण देना ପ୍ରାଚୀ. ପ୍ରଭାସ. ଶଶିସେଣା ।]

ସମ୍ଭାଷିବା—ଦେ. କ୍ରି (ପଦ୍ୟ)—ସମ୍ଭାଷଣ କରିବା; କଥୋପକଥନ Sambhāshibā କରିବା—To converse with. [ଉ— সম্ভাষণ করা ସମ୍ଭାଷିଲେ ହନୁକୁ ତରୁ ଉପରେ । ରାଧାନାଥ. सम्भाषण देना ମେଘଦୂତ ।]

ସମ୍ଭାଷୀ—ସ. ବିଣ. ପୁଂ (ସମ୍ + ଭାଷ୍ ଧାତୁ=କହିବା + କର୍ତ୍ତୃ. ଇନ୍; Sambhāshī ୧ମା. ୧ବ)—ଅଳାପକାରୀ—Talking; conversing; discoursing. (ସମ୍ଭାଷିଣୀ—ସ୍ତ୍ରୀ)

ସମ୍ଭିନ୍ନ—ସ. ବିଣ (ସମ୍ + ଭିଦ୍ ଧାତୁ=ଭେଦ କରିବା+କର୍ମ ତ)— Sambhinna ୧ । ସଂକ୍ଷୋଭିତ; ଆଲୋଡ଼ିତ—1. Churned; (ସଂଭିନ୍ନ—ଅନ୍ୟରୂପ) agitated. ୨ । ଚାଳିତ—2. Moved ୩ । ମିଳିତ—3. Joined; united. ୪ । ମର୍ଦ୍ଦିତ 4. Pressed, pounded. ୫। ମିଶ୍ରିତ—5. Mixed up; combined. ୬ । ପ୍ରସ୍ଫୁଟିତ—6. Full-blown. ୭ । ଭଗ୍ନ (ଶବ୍ଦକୋଷ)—7. Broken.

ସମ୍ଭୁ—ସ. ବିଣ (ସମ୍ + ଭୂ ଧାତୁ=ହେବା + କର୍ତ୍ତୃ. ଉ)— Sambhu ଯାହା ଜାତ ହୁଏ—Born (M. W.) (ସଂଭୁ—ଅନ୍ୟରୂପ)

ସମ୍ଭୁକ୍ତ—ସ. ବିଣ ( ସମ୍ + ଭୁଜ୍ ଧାତୁ=ଖାଇବା + କର୍ମ. ତ )— Sambhukta ୧ । ଉପଭୁକ୍ତ—1. Enjoyed. ୨ । ସଙ୍ଗମିତ; (ସଂଭୁକ୍ତ—ଅନ୍ୟରୂପ) ରମିତ—2. Cohabited; ravished. (ସମ୍ଭୋଗ—ବି)

ସମ୍ଭୂତ—ସ. ବିଣ ( ସମ୍ + ଭୂ ଧାତୁ=ହେବା + କର୍ତ୍ତୃ. ତ )—ଜାତ; Sambhūta ଉତ୍ପନ୍ନ—Born; produced. ଦେ. ବି (ସ. [ସଂଭୂତ ଇତ୍ୟାଦ—ଅନ୍ୟରୂପ] ସମ୍ଭୂତି)—ଜନ୍ମ—Birth.

(ସମ୍ଭୂତି, ସମ୍ଭବ—ବି) [ଡି—ଅସ୍ମାରୁ ଅସ୍ମାର ସମ୍ଭୂତ, ଏ ବେଦ ସମ୍ଭୂତ ବାକ୍ୟ ଅନୁମତ । ଜଗନ୍ନାଥ, ଭାଗବତ. ।]

ସମ୍ଭୂତ ବିଜୟ—ସଂ. ବି (ନାମ)—'ଶ୍ରୁତ କେବଳ' ସଂଜ୍ଞକ ଜୈନ Sambhūta bijaya ବିଶେଷ (ହେମଚନ୍ଦ୍ର)—Name of a class of Jaina saints.

ସମ୍ଭୂତି—ସଂ. ବି ( ସମ୍+ଭୂ ଧାତୁ=ହେବା+ଭାବ. ତି )—Sambhūti ୧ । ଉତ୍ପତ୍ତି; ଜନ୍ମ; ଉଦ୍ଭବ—1. Birth. ୨ । ବିଭୂତି; ଐଶ୍ୱର୍ଯ୍ୟ—2. Majesty. ୩ । କ୍ଷମତା; ଶକ୍ତି (ଶବ୍ଦକୋଷ)—3. Power.

ସମ୍ଭୂୟ କାରୀ—ସଂ. ବିଣ ଓ ବି. ପୁଂ (ସମ୍+ଭୂ ଧାତୁ+କର୍ତ୍ତି. ୟ=ଭୂ Sambhūya kārī ଧାତୁ+ଇନ୍;୧ମା.୧ବ)—୧ । ଏକ ସଙ୍ଗେ (ସମ୍ଭୂୟକାରିଣୀ—ସ୍ତ୍ରୀ) କାର୍ଯ୍ୟକାରୀ; ଏକତ୍ର ମିଳିତ ହୋଇ କାର୍ଯ୍ୟ-କାରୀ—1. Coadjuter; acting in unision. ୨ । ସହକର୍ମୀ—2. Colleague; working jointly. ୩ । ଅଂଶୀଦାର—3. Co-partner; carrying on joint business.

ସମ୍ଭୂୟ ସନ୍ଧାନ—ସଂ. ବି ( ସମ୍ଭୂୟ=ଏକତ୍ର ହୋଇ+ସନ୍ଧାନ= Sambhūya sandhāna ସନ୍ଧି ସ୍ଥାପନ)—ମିଳିତ ସନ୍ଧିକରଣ—A joint treaty; league.

ସମ୍ଭୂୟ ସମୁତ୍ଥାନ—ସଂ. ବି ( ସମ୍ଭୂୟ=ଏକତ୍ର ହୋଇ+ସମୁତ୍ଥାନ Sambhūya samutthāna =ଉଠିବା)—୧ । ସମ୍ମିଳିତ ଉତ୍ଥାନ—1. A joint rising. ୨ । ଯୌଥ କାରବାର; ବହୁ ଅଂଶୀଦାରଙ୍କ ସମ୍ମିଳିତ ମୂଳଧନରେ ହେବା କାରବାର; ବହୁ ଲୋକଙ୍କର ଏକତ୍ର ମିଳିତ ହୋଇ ବାଣିଜ୍ୟକରଣ—2. Joint stock business; fellowship in trade. [ଦ୍ର—ଏହି କାରବାରରେ ଲାଭ ବା କ୍ଷତି ଘଟିଲେ ତାହା ଅଂଶୀଦାର-ମାନେ ସମସ୍ତେ ନିଜ ନିଜର ଅଂଶ ଅନୁପାତରେ ଗ୍ରହଣ କରନ୍ତି ।] ୩ । ଅଂଶିଦାରୀ—3. Partnership. ୪ । ଯୌଥ କାରବାରରେ ଅଂଶୀଦାରମାନଙ୍କ ମଧ୍ୟରେ ଉପସ୍ଥିତ ବିବାଦ (ଶବ୍ଦକୋଷ)—4. Any dispute between the cosharers in a joint stock business.

ସମ୍ଭୃତ—ସଂ. ବିଣ (ସମ୍+ଭୃ ଧାତୁ=ଭରଣ କରିବା+କର୍ମ୍ମି. ତ)—Sambhṛuta ୧ । ସମ୍ୟକ୍ ପୁଷ୍ଟ—1. Brought up with (ସଂଭୃତ ଇତ୍ୟାଦି—ଅନ୍ୟରୂପ) care; fully developed. (ସମ୍ଭୃତା—ସ୍ତ୍ରୀ) ୨ । ଯତ୍ନ ସିଦ୍ଧ—2. Accomplished after much care. ୩ । ଦତ୍ତ—3. Given; bestowed. ୪। ଲବ୍ଧ—4. Got; received. ୫ । ସଂଚିତ—5. Stored. ୬ । ବର୍ଦ୍ଧିତ—6. Increased; lengthened. ୭ । ଜନିତ—7. Produced. ୮ । ପୂର୍ଣ୍ଣ—8. Full; filled up. ୯ । ସଙ୍କଳିତ; ସଂଗୃହୀତ—9. Collected; compiled. ୧୦ । ପ୍ରସ୍ତୁତ 10. Prepared.

ସମ୍ଭୃତାଙ୍ଗ—ସଂ. ବିଣ. ପୁଂ (ବହୁବ୍ରୀହି)—ପୁଷ୍ଟାଙ୍ଗ—Having the Sambhṛutāṅga body fully developed. (ସମ୍ଭୃତାଙ୍ଗୀ—ସ୍ତ୍ରୀ)

ସମ୍ଭୃତି—ସଂ. ବି (ସମ୍+ଭୃ ଧାତୁ=ଭରଣ କରିବା+ଭାବ. ତି)—Sambhṛuti ୧ । ସମ୍ୟକ୍ ପୋଷଣ—1. Bringing up with care. ୨ । ବର୍ଦ୍ଧନ—2. Increasing. ୩ । ପ୍ରସ୍ତୁତକରଣ—3. Preparation.

ସମ୍ଭେଦ—ସଂ. ବି (ସମ୍+ଭିଦ୍ ଧାତୁ=ପ୍ରବେଶକରିବା+ଭାବ. ଅ)—Sambheda ୧ । ମିଳନ—1. Union; meeting. ୨ । ନଦୀଦ୍ୱୟର ସଙ୍ଗମ ସ୍ଥଳ—2. The meeting place of two rivers. ୩ । ସ୍ଫୁଟନ; ଭେଦନ—3. Piercing through. ୪ । ନଦୀର ଓ ସାଗରର ସଙ୍ଗମ—4. Confluence; estuary of a river. ୫ । ବିଧାନ; ଘଟନା—5. Happening. ବିଡମ୍ବନା—6. Mockery, disappointment. ୭ । ଅସାମଥ ଜୁର୍ଗତ ତୀର୍ଥବିଶେଷ ( ଶବ୍ଦକୋଷ )—7. Name of a place of Hindu pilgrimage. [ଦ୍ର—ଏ ତୀର୍ଥରେ ଶୁଭବାସିନୀ ଦେବୀ ବିଦ୍ୟମାନ। ]

ସମ୍ଭୋକ୍ତା—ସଂ. ବିଣ ଓ ବି. ପୁଂ ( ସମ୍+ଭୁଜ ଧାତୁ+କର୍ତ୍ତି. ତୃ; ୧ମା. Sambhoktā ୧ବ)—ସମ୍ଭୋଗକାରୀ—Enjoying. ( ସମ୍ଭୋକ୍ତ୍ରୀ—ସ୍ତ୍ରୀ )

ସମ୍ଭୋଗ - ସଂ. ବି (ସମ୍+ଭୁଜ୍ ଧାତୁ=ଭୋଗ କରିବା+ଭାବ. ଅ)—Sambhoga ୧ । ଉପଭୋଗ; ସମ୍ୟକ୍ ଭୋଗ କରିବା—(ସମ୍ଭୋଗ ଇତ୍ୟାଦି—ଅନ୍ୟରୂପ) 1. Enjoyment. ୨ । ହର୍ଷ

ସମ୍ଭୁକ୍ତ, ସମ୍ଭୋଗୀ<br>ସମ୍ଭୋଗ୍ୟ } ବିଣ

—2. Delight. ୩ । ରତି-କ୍ରୀଡା; ସଙ୍ଗମ; ରମଣ—3. Sexual enjoyment; dalliance; ravishment; coition. [ଦ୍ର—ନାଗର ନାଗରୀଙ୍କ ମଧ୍ୟରେ ପରସ୍ପର ଅନୁରାଗପୂର୍ଣ୍ଣ ଦର୍ଶନ, ସ୍ପର୍ଶନ, ଆଲିଙ୍ଗନ, ଚୁମ୍ବନ, ଅଧର ପାନ, ବିନବିହାର, ଜଳକେଳି ଓ ମୈଥୁନକୁ ସମ୍ଭୋଗ ବୋଲଯାଏ । ] ୪ । ଶୃଙ୍ଗାରଭେଦ—4. A kind of making love. [ ଦ୍ର—ସାହିତ୍ୟ ଦର୍ପଣ ୨୨୫। ୨୨୬ରେ ଅଛି ପେ,ଶୃଙ୍ଗାର ୨ ପ୍ରକାର; ଯଥା—କରୁଣ ବିପ୍ରଲମ୍ଭାଖ୍ୟ ଶୃଙ୍ଗାର ଓ ସମ୍ଭୋଗାଖ୍ୟ ଶୃଙ୍ଗାର ।

ଯେଉଁ ସ୍ଥାନରେ ବିଳାସୀ ବିଳାସିନୀ ଦର୍ଶନ ଓ ସ୍ପର୍ଶନାଦଦ୍ୱାରା ଅନୁରକ୍ତ ହୋଇ ପରସ୍ପରକୁ ଭଜନା କରନ୍ତି ତାହା ସମ୍ଭୋଗାଖ୍ୟ ଶୃଙ୍ଗାର । ଚୁମ୍ବନ, ଆଲିଙ୍ଗନ, ଅଧରପାନ, ଜଳକେଳି, ବନବିହାର, ଚନ୍ଦ୍ରିକା ରଜନୀରେ ମିଳନ ଆଦ ଏଥିର ଅଙ୍ଗ ।

ବିପ୍ରଲମ୍ଭ ଅର୍ଥାତ୍ ବିରହଦ୍ୱାରା ସମ୍ଭୋଗ ପୁଷ୍ଟି ଲାଭ କରେ ନାହିଁ, ନାୟକ ନାୟିକାଙ୍କ ମିଳନ ପରେ ବିଚ୍ଛେଦରେ ପରସ୍ପର ପ୍ରେମ-ଚିନ୍ତାକୁ ବିପ୍ରଲମ୍ଭାଖ୍ୟ ଶୃଙ୍ଗାର ବୋଲଯାଏ] ୫ । (+କର୍ତ୍ତି. ଅ ) କେଳିନାଗର—5. A gallant; a lover; paramour.

ସମ୍ଭୋଗ ଶୃଙ୍ଗାର—ସ. ବି—ନାୟକ ନାୟିକାଙ୍କର ପରସ୍ପର ମିଳନ—
Sambhoga śruṅgāra Amorous enjoyment or
(ବିପ୍ରଲମ୍ଭ ଶୃଙ୍ଗାର—ବିପରୀତ) dalliance between lovers.

ସମ୍ଭୋଗୀ—ସ.ବିଣ.ପୁଂ (ସମ୍+ଭୁଜ୍ ଧାତୁ+କର୍ତ୍ତୃ. ଇନ୍ ୧ମା.୧ବ)—
Sambhogī ୧। ଉପଭୋଗକାରୀ; ସମ୍ଭୋଗକାରୀ—1. Enjoy-
(ସମ୍ଭୋଗିନୀ—ସ୍ତ୍ରୀ) ing. ୨। ସଙ୍ଗମକାରୀ—2. Cohabiting. ସ. ବି. ପୁ—ଜେଳନାଗର—
Paramour; a gallant

ସମ୍ଭୋଜନ—ସ. ବି (ସମ୍+ଭୋଜନ)—୧। ମିଳିତଭାବରେ;
Sambhojana ଗୋଷ୍ଠୀଭୋଜନ—1. Dining in company. ୨। ଜାତିଅଣ ଭୋଜି—
2. Social feast; caste-dinner.

ସମ୍ଭ୍ରମ—ସ. ବି (ସମ୍+ଭ୍ରମ୍ ଧାତୁ=ଭ୍ରମଣ କରିବା+ଭାବ. ଅ)—
Sambhrama ୧। ଭ୍ରମଣ—1. Walking. ୨। ଘୂର୍ଣ୍ଣନ
(ସମ୍ଭ୍ରମ ଇତ୍ୟାଦି—ଅନ୍ୟରୂପ) —2. Whirling. ୩।
(ସମ୍ଭ୍ରାନ୍ତ—ବିଣ) ମହାଭ୍ରମ; ଭ୍ରାନ୍ତି—3. Error. [ଉ—
ତେବେ ହୃଦୟ ଭାବ ଯାଇ, ଶୋକ ସମ୍ଭ୍ରମ ଥିବ ନାହିଁ—
ଜଗନ୍ନାଥ. ଭାଗବତ।] ୪। ଭୟ—4. Fear.
[ଉ—କସ ସମ୍ଭ୍ରମ ତୋର କୃଷ୍ଣ ଭୁଲେ—ପ୍ରାଚୀ. ରସ-
ବାରିଧି।] ୫। ଭୟ ବା ଆନନ୍ଦଜନିତ ଆବେଗ;
ଉଦ୍‌ବେଗ—5. Flurry; excitement due to
fear or joy. ୬। ମର୍ଯ୍ୟାଦା; ସମାଦର; ଆଦର;
ସମ୍ମାନ; ଗୌରବ; ଖାତିର୍—6. Respect; regard;
honour; reverence. [ଉ—କହିଁ ବସିଛୁ, ପୂଜ
ପଦ ସମ୍ଭ୍ରମେ ପରିରମ୍ଭଣ ନ ଦେଇ—ପ୍ରାଚୀ ରସବାରିଧି]
୭। ଭଦ୍ରତା—7. Civility; manners. ୮।
ଭକ୍ତିଜନିତ ବ୍ୟଗ୍ରତା ବା ଉତ୍କଣ୍ଠା; ଭୟ ମିଶ୍ରିତ ଭକ୍ତି—
8. Awe; confused mental condition due
to devotion. ୯। ଆସ୍ଥା; ବିଶ୍ୱାସ; ବ୍ୟବସାୟରେ
ବା ସମାଜରେ ସାଧାରଣଙ୍କର ଆସ୍ଥା—
9. Credit in business or society; trust.

ସମ୍ଭ୍ରମ କରିବା—ଦେ. କ୍ରି—୧। ସମ୍ମାନ କରିବା; ଆଦର କରିବା—
Sambhrama karibā 1. To show regard or
সংভ্রম করা reverence; to pay one's respects.
**सम्भ्रम करना** ୨। ଭକ୍ତି ସହିତ ଭୟ କରିବା—
2. To look up with awe.

ସମ୍ଭ୍ରାନ୍ତ—ସଂ. ବିଣ (ସମ୍+ଭ୍ରମ୍ ଧାତୁ+କର୍ତ୍ତୃ. ତ)—୧। ସମ୍ଭ୍ରମ-
Sambhrānta ଯୁକ୍ତ—1. Respectful. ୨। ମର୍ଯ୍ୟାଦା-
(ସଂଭ୍ରାନ୍ତ ଇତ୍ୟାଦି—ଅନ୍ୟରୂପ) ବନ୍ତ; ମାନନୀୟ; ଆଦରଣୀୟ—
ସମ୍ଭ୍ରମ } ସମ୍ଭ୍ରାନ୍ତି }—ବି 2. Respectable; honorable. ୩।
ଉଦ୍‌ବିଗ୍ନ—3. Agitated; confused. ୪। ଭଦ୍ର—4. Gentle; noble.

ସମ୍ଭ୍ରାନ୍ତ ତନ୍ତ୍ର—ସଂ. ବି (ଆଧୁନିକ ପ୍ରୟୋଗ)—ଭଦ୍ର ବା ଉଚ୍ଚବଂଶୀୟ
Sambhrānta tantra ବ୍ୟକ୍ତିମାନଙ୍କଦ୍ୱାରା ରାଜ୍ୟ ଶାସନ—
rule by the Oligarchy; aristocracy.

ସମ୍ଭ୍ରାନ୍ତ ବଂଶୀୟ—ସଂ. ବିଣ—ଭଦ୍ରକୁଳରେ ଜାତ; କୁଳୀନ—Born
Sambhrānta baṁśīya of a noble or respectable family.

ସମ୍ଭ୍ରାନ୍ତ ସଭା—ସଂ ବି (ଆଧୁନିକ ପ୍ରୟୋଗ)—ବିଲାତ ପାର୍ଲିଅମେଣ୍ଟର
Sambhrānta sabhā ସମ୍ଭ୍ରାନ୍ତବଂଶୀୟ ବ୍ୟକ୍ତିମାନଙ୍କଦ୍ୱାରା
ଗଠିତ ଶାଖା—The House of Lords of the
British Parliament.

ସମ୍ଭ୍ରାନ୍ତ ସମାଜ—ସଂ. ବି (ଆଧୁନିକ ପ୍ରୟୋଗ)—ଭଦ୍ରବଂଶୀୟ
Sambhrānta samāja ବ୍ୟକ୍ତିଗଣ—The aristocracy;
the nobility.

ସମ୍ମତ—ସଂ. ବିଣ (ସମ୍+ମନ୍ ଧାତୁ=ବୋଧ କରିବା+କର୍ମ. ତ)—
Sammata ୧। ଅନୁମତ—1. Approved; admi-
(ସଂମତ ଇତ୍ୟାଦି—ଅନ୍ୟରୂପ) tted. ୨। ସ୍ୱୀକୃତ—
(ସମ୍ମତି—ବି) 2. Agreed; consented. ୩।
ଅଭିପ୍ରେତ—3. Wished for. ୪। ପ୍ରିୟ—
সম্মতি 4. Dear. ଦେ. ବି—ସମ୍ମତି; ସ୍ୱୀକୃତି—Consent.
**सम्मति** [ଉ—ରଜା ବୋଇଲେ ଅହେ ଶୁଣ ପୁରୋହିତ। ଏରୁପେ
କର ମୋର ହୋଇଲା ସମ୍ମତ—କୃଷ୍ଣସିଂହ. ମହାଭାରତ;
ବନ।]

ସମ୍ମତ ହେବା—ଦେ. କ୍ରି—୧। ସ୍ୱୀକୃତ ହେବା—1. To agree;
Sammata hebā to consent. ୨। ଏକମତ ହେବା—
সম্মত হওয়া 2. To be of the same opinion.
**सहमत होना**

ସମ୍ମତି—ସ. ବି (ସମ୍+ମନ୍ ଧାତୁ+ଭାବ. ତି)—୧। ସ୍ୱୀକାର—
Sammati 1. Consent; agreement. ୨। ଅନୁଜ୍ଞା;
(ସମ୍ମତି ଇତ୍ୟାଦି—ଅନ୍ୟରୂପ) ଅନୁମତି—2. Permission. ୩।
ମଞ୍ଜୁରି; ମତ—3. Assent. ୪। ଆଦେଶ—
4. Order. ୫। ଇଚ୍ଛା; ବାସନା—5. Wish;
desire. ୬। ସମ୍ମାନ—6. Respect. ୭। ମତ—
7. Opinion. ୮। ଅଭିପ୍ରାୟ—8. Intention. ୯।
ଐକ୍ୟମତ୍ୟ—9. Concensus of opinion. ୧୦।
ଆତ୍ମବୋଧ; ଆତ୍ମଜ୍ଞାନ (ବିଶ୍ୱକୋଷ)—10. Knowledge of the soul. ଦେ. ବି—(କରଣ ସମାଜ)
পাকাদেখা ସଭାମଧ୍ୟ; କନ୍ୟାକର୍ତ୍ତା ଓ କନ୍ୟାକର୍ତ୍ତାଙ୍କ ମଧ୍ୟରେ ବିବାହ
**सिद्धान्त** ସମ୍ବନ୍ଧରେ ଚୁକ୍ତି ବା ମହାପ୍ରସାଦ ବନ୍ଧନ—Solemn
betrothal between the bride's and the
bridegroom's guardians. ଦେ. ଅ (ସ. ସମ୍ମିତ)
ତୁଲ୍ୟ—Like. (ଉ—ବାଲ୍ମୀକିର ପ୍ରଭୃତି କବିପତି
ସମ୍ମତ ସୁଗ୍ରୀବ ଆଦି ହେଲେ ହତ। ଉକ୍ତ. ବୈଦେହୀଶ-
ବିଳାସ।)

**ସମ୍ମତି ଗ୍ରହଣ**—ସଂ. ବି. (୬ଷ୍ଠୀ ତତ୍)—ଅନ୍ୟ ବ୍ୟକ୍ତିଠାରୁ ମଞ୍ଜୁରି Sammati grahaṇa ନେବା—Taking permission from or getting consent of a person.

**ସମ୍ମତି ଗ୍ରହୀତା**—ସଂ. ବିଣ. ଓ ବି. ପୁଂ—ଅନ୍ୟଠାରୁ ମଞ୍ଜୁରି ନେବା Sammati grahītā ବ୍ୟକ୍ତି—One who has taken (ସମ୍ମତିଗ୍ରହୀତ୍ରୀ—ସ୍ତ୍ରୀ) permission from another.

**ସମ୍ମତି ଦାତା**—ସଂ. ବିଣ. ଓ ବି. ପୁଂ—ଯେ ମଞ୍ଜୁରି ଦିଏ—Sammati dātā Grantor; giver of consent. (ସମ୍ମତିଦାତ୍ରୀ—ସ୍ତ୍ରୀ)

**ସମ୍ମତି ଦାନ**—ସଂ. ବି—ମଞ୍ଜୁରି ଦେବା—Sammati dāna Giving of consent or (ସମ୍ମତି ପ୍ରଦାନ—ଅନ୍ୟରୂପ) permission.

**ସମ୍ମତି ଦେବା**—ଦେ. କ୍ରି—୧ । ଅନୁକୂଳ ମତ ଦେବା; ମଞ୍ଜୁରି Sammati debā ଦେବା—1. To consent; to give সম্মতি দেওয়া assent. ୨ । ଅନୁମତି ଦେବା—2. To give सम्मति देना permission; to permit.

**ସମ୍ମଦ**—ସଂ. ବି (ସମ୍+ମଦ୍. ଧାତୁ=ହୃଷ୍ଟ ହେବା+ଭାବ. ଅ)—Sammada ୧ । ଆହ୍ଲାଦ; ଆନନ୍ଦ; ହର୍ଷ—1. Delight. (ସମଦ—ଅନ୍ୟରୂପ) ୨ । ଆମୋଦ—2. Merriment. ୩ । ବିଷ୍ଣୁ ପୁରାଣୋକ୍ତ ଗମ୍ଭୀରଜଳଚାରୀ ବହୁ ସନ୍ତତିଯୁକ୍ତ ମତ୍ସ୍ୟ ବିଶେଷ (ବିଷ୍ଣୁପୁରାଣ ୪ । ୧ । ୧୯)—3. Name of fabulous big fish. ଦେ. ବି—ଗର୍ବ—Pride. (ଉ—ବିପୁଳ ମେଘନାଦେ ଘନାଘନ ଅଛଦେ ବଢ଼େ କଣାଚର ସମ୍ମଦେ । ଭଞ୍ଜ. ବୈଦେହୀଶବିଳାସ ।) ସଂ. ବିଣ—ସୁଖୀ; ଆନନ୍ଦିତ—Happy; pleased.

**ସମ୍ମର୍ଦ(ର୍ଦ୍ଦ)**—ସଂ. ବି (ସମ୍+ମୃଦ୍. ଧାତୁ=ମର୍ଦ୍ଦନ କରିବା+ଭାବ. Sammarda(rdda) ଅ)—୧ । ସଂଘର୍ଷ—1. Collision. (ସଂମର୍ଦ[ର୍ଦ୍ଦ]—ଅନ୍ୟରୂପ) ୨ । ଭିଡ଼; ଜନତା—2. Crowd. [ସମ୍ମର୍ଦି(ର୍ଦ୍ଦି)ତ—ବିଣ] ୩ । ପେଷଣ—3. Pounding. ୪ । (+ଅଧିକରଣ. ଅ) ଯୁଦ୍ଧ; ସଂଗ୍ରାମ—4. Fight; battle; affray.

**ସମ୍ମାତୁର**—ସଂ. ବି. ପୁଂ (ସତ୍+ମାତୃ+ଅପତ୍ୟାର୍ଥେ. ଅ; କପାଳନ)—Sammātura ଭଦ୍ରମାତୁର; ସଚ୍ଚରିତ୍ରା ସ୍ତ୍ରୀଙ୍କ ପୁତ୍ର—(ସନ୍ମାତା—ଅନ୍ୟରୂପ) The son of a chaste or virtu-[ସମାତୁର, ସନ୍ମାତ୍ରୀ—ସ୍ତ୍ରୀ] ous mother.

**ସମ୍ମାଦ**—ସଂ. ବି (ସମ୍+ମଦ୍. ଧାତୁ=ଗର୍ବ କରିବା+ଭାବ. ଅ)—Sammāda ୧ । ମତ୍ତତା—1. Intoxication. ୨ । ଉନ୍ମାଦ—(ସଂମାଦ—ଅନ୍ୟରୂପ) 2. Madness. ୩ । ଅତି କ୍ରୋଧ—3. Fury of anger; rage. ୪ । (ନାମ) ବିଷ୍ଣୁପୁରାଣୋକ୍ତ ମତ୍ସ୍ୟାଧିପତି—4. Name of a mythological king of fishes described in the Bishṇu Purāṇa.

**ସମ୍ମାନ**—ସଂ. ବି—୧ । (ସମ୍+ମନ. ଧାତୁ=ପୂଜା କରିବା+ଭାବ. Sammāna ଅ)—୧ । ମର୍ଯ୍ୟାଦା; ଗୌରବ; ସମାଦର; ପୂଜା—(ସମ୍ମାନିତ—ବିଣ) 1. Respect; regard; honour; [ସଂମାନ ଇତ୍ୟାଦି-ଅନ୍ୟରୂପ] esteem; homage. ୨ । (ସମ୍+(ସମ୍ମିତ—ବିଣ) ମା. ଧାତୁ=ମାପିବା+ଭାବ. ଅନ) ସମ୍ୟକ୍ ପରିମାଣ—2. Measuring.

**ସମ୍ମାନ କରିବା**—ଦେ. କ୍ରି—କୌଣସି ବ୍ୟକ୍ତିଙ୍କୁ ସମାଦର ବା ମର୍ଯ୍ୟାଦା Sammān karibā କରିବା—To respect a person; (ସମ୍ମାନ ଦେଖା[ଖେ]ଇବା, ସମ୍ମାନ ଦେବା—ଅନ୍ୟରୂପ) to tender সম্মানকরা, সম্মানদেখান, সম্মানদেওয়া homage; to सम्मान करना, सम्मान दिखाना honour a person.

**ସମ୍ମାନନ(ନା)**—ସଂ. ବି (ସମ୍+ମନ୍. ଧାତୁ=ପୂଜା କରିବା+Sammānana(nā) ଭାବ. ଅନ+ଅ; +ଆ)—୧ । ମର୍ଯ୍ୟାଦା ଦେଖାଇବା; ସମ୍ମାନ କରିବା—

ସମ୍ମାନିତ
ସମ୍ମାନନୀୟ } —ବିଣ
ସମ୍ମାନ୍ୟ

1. Rendering of respects; paying of homage. ୨ । ପରିମାଣ କରିବା—2. Measuring.

**ସମ୍ମାନ ନାଶ**—ସଂ. ବି ( ୬ଷ୍ଠୀ ତତ୍ )—୧ । ମର୍ଯ୍ୟାଦାର ହାନି—Sammāna nāśa 1. Loss of honour. ୨ । ସୁନାମର ହାନି—2. Loss of prestige.

**ସମ୍ମାନନୀୟ**—ସଂ. ବିଣ. ପୁଂ (ସମ୍+ମନ ଧାତୁ=ପୂଜା କରିବା+କର୍ମ Sammānanīya ଅନୀୟ)—ସମ୍ମାନିତ ହେବାର ଯୋଗ୍ୟ—( ସମ୍ମାନନୀୟା—ସ୍ତ୍ରୀ ) Fit to be honoured; respectable.

**ସମ୍ମାନ ପାଇବା**—ଦେ. କ୍ରି—ସମ୍ମାନିତ ହେବା—Sammāna pāibā To be respected or treated সম্মানপাওয়া सम्मानपाना with respect.

**ସମ୍ମାନ ପାତ୍ର**—ସଂ. ବି (୬ଷ୍ଠୀ ତତ୍)—ସମ୍ମାନାସ୍ପଦ (ଦେଖ) Sammāna pātra Sammānāspada (See)

**ସମ୍ମାନ ପୁରଃସର ନିବେଦନ ମିଦଂ**—( ସଂସ୍କୃତବାକ୍ୟ )—( ମାନନୀୟ Sammāna puraḥsara nibedana midaṁ ବ୍ୟକ୍ତିଙ୍କ

ସମ୍ମାନପୂର୍ବକ
ସମ୍ମାନାନନ୍ତର } ନିବେଦନ ମିଦଂ—ଅନ୍ୟରୂପ]

ନିକଟକୁ ପତ୍ର ଲେଖିବା ଆଦ୍ୟରେ ଲେଖାଯିବା ବାକ୍ୟ)—ଏଥିର ଅର୍ଥ 'ପ୍ରଥମେ ମର୍ଯ୍ୟାଦା ପ୍ରକାଶ କରେ, ଏହି ନିବେଦନ'—A sentence written at the beginning of a letter, meaning—I beg to make this submission after tendering my regards to you.

**ସମ୍ମାନ ପ୍ରାପ୍ତ**—ସଂ. ବିଣ (ପୁଂ) (୨ୟା ତତ୍)—ସମ୍ମାନିତ [ଦେଖ] Sammāna prāpta Sammānita. [See]

**ସମ୍ମାନ ପ୍ରାପ୍ତି**—ସଂ. ବି [୬ଷ୍ଠୀ ତତ୍]—ସମ୍ମାନଲାଭ [ଦେଖ] Sammāna prāpti Sam māna labha. [See]

**ସମ୍ମାନ ରକ୍ଷା**—ସଂ, ବି [୬ଷ୍ଠୀ ତତ୍]—ମହତ୍ତ୍ୱ ରଖିବା—Sammāna rakshā Keeping one's honour intact.

**ସମ୍ମାନ ଲାଭ**—ସଂ. ବି [୬ଷ୍ଠୀ ତତ୍]—ନୂତନ ମର୍ଯ୍ୟାଦା ପ୍ରାପ୍ତି—
Sammāna lābha Acquisition of honour.

**ସମ୍ମାନ ହାନି**—ସଂ. ବି [୬ଷ୍ଠୀ ତତ୍]—ସମ୍ମାନ ନାଶ [ଦେଖ]
Sammāna hāni Sammāna nāśa. [See]

**ସମ୍ମାନାନନ୍ତର**—ଦେ· କ୍ରି· ·ବିଣ—ସମ୍ମାନ ବା ମର୍ଯ୍ୟାଦା କରିବା ପରେ
Sammānānantara (ନିବେଦନ କରିବା )—After
সম্মানানন্তর सम्मानानन्तर paying respects.
(ସମାନାନନ୍ତର—ଅନ୍ୟରୂପ)

**ସମ୍ମାନାର୍ହ**—ସଂ. ବିଣ· ପୁଂ (ଉପପଦତତ୍ )—ସମ୍ମାନଯୋଗ୍ୟ; ସମ୍ମାନ
Sammānārha ପାଇବାର ଯୋଗ୍ୟ—Fit to be honoured respectable; honourable.
(ସମ୍ମାନାର୍ହା—ସ୍ତ୍ରୀ)

**ସମ୍ମାନାସ୍ପଦ**—ସଂ. ବି (୬ଷ୍ଠୀ ତତ୍)—୧ । ସମ୍ମାନ ପାଇବାର ଉପଯୁକ୍ତ
Sammānāspada ବ୍ୟକ୍ତି—1. A person fit to be honoured. ୨ । ସମ୍ମାନଯୋଗ୍ୟ ବ୍ୟକ୍ତି—
2. Respectable man.

**ସମ୍ମାନିତ**—ସଂ. ବିଣ (ସମ୍+ମାନ୍ ଧାତୁ+କର୍ମ ତ)—୧ ।ସମାଦୃତ—
Sammānita 1. Respected. ୨ । ସତ୍କୃତ;
[ ସମ୍ମାନ, ସମାନନ(ନା)—ବି ] ପୂଜିତ—2. Venerated; honoured; adored.

**ସମ୍ମାର୍ଗ**—ସଂ. ବି—ସତ୍ ମାର୍ଗ (ବିଶ୍ୱକୋଷ)
Sammārga Honest way.

**ସମ୍ମାର୍ଜ(ର୍ଜ୍ଜ)କ**—ସଂ. ବିଣ. ପୁଂ (ସମ୍+ମୃଜ୍ ଧାତୁ=ଶୁଦ୍ଧ କରିବା+
Sammārja(rjja)ka କର୍ତ୍ତୃ ଅକ)—୧ । ପରିଷ୍କାରକ—
(ସମ୍ମାର୍ଜିକା—ସ୍ତ୍ରୀ) 1. Clearing. ୨ । ଶୋଧକ—
[ ସମାର୍ଜ(ର୍ଜ୍ଜ)କ—ଅନ୍ୟରୂପ ] 2. Rectifying.
୩। ଯାହା ସଫା କରେ—3. Cleansing, sweeping.
ସଂ ବି ( +କରଣ ଅନ )—୧ । ଯାହାଦ୍ୱାରା ସଫା କରାଯାଏ; ସମ୍ମାର୍ଜ୍ଜନୀ—1. Brush. ୨ । ( ପୁଂ ) ( +କର୍ତ୍ତୃ ଅକ )—ଯେଉଁ ବ୍ୟକ୍ତି ସଫା କରେ—
2. Sweeper.

**ସମ୍ମାର୍ଜ(ର୍ଜ୍ଜ)ନ(ନା)**—ସଂ. ବି (ସମ୍+ମୃଜ୍ ଧାତୁ=ଶୁଦ୍ଧ କରିବା+
Sammārja(rjja)na(nā) ଭାବ ଅନ+ଆ)—୧ । ସଂଶୋଧନ-
[ସଂମାର୍ଜ(ର୍ଜ୍ଜ)ନ(ନା) ଇତ୍ୟାଦି—ଅନ୍ୟରୂପ] 1. Correction.
୨ । ସଂଶୋଧନ—2 Rectifying ୩ । ପରିଷ୍କାର
ସମ୍ମାର୍ଜିତ } ବିଣ— କରଣ—3. Act of cleansing;
ସମ୍ମାର୍ଜନୀୟ } cleansing. ୪ । ଝାଡ଼ିବା; ପୋଛିବା
4. Act of sweeping or brushing.
୫ । ଶୁଦ୍ଧ କରିବା—5 Purifying. ୬ ।
କୌଣସି ଲିଖିତ ପୁସ୍ତକ ବା ପାଣ୍ଡୁଲିପିକୁ ଯତ୍ନପୂର୍ବକ ପରୀକ୍ଷା କରିବା ପରେ, ଅବଶ୍ୟକସ୍ଥଳରେ ତାହାର ସଂଶୋଧନ, ସଂଯୋଜନ, ପରିବର୍ତ୍ତନ ଆଦି ପ୍ରକ୍ରିୟା; ଉଦ୍ଧାରଣ—6. Revision of any book of written matter.

**ସମ୍ମାର୍ଜ(ର୍ଜ୍ଜ)ନୀ**—ସଂ· ବି (ସମ୍ମାର୍ଜନ+ଈ)—ଝାଡ଼ୁ; ଝାଡ଼ୁଣୀ; ବର୍ଦ୍ଧନୀ,ବାଢ଼ୁଣୀ
Sammārja(rjja)nī —Broomstick; a broom;
[ଏଥିର ପର୍ଯ୍ୟାୟ—ଶୋଧନୀ, ଉହନୀ, cleansing brush.
ସମୂହନୀ, ବହୁକାର, ବର୍ଦ୍ଧନୀ] [ଦ୍ର—ଗୃହସ୍ଥର ପଞ୍ଚ ସୂନା ମଧ୍ୟରେ ଏହା ଏକ । ଗୃହସ୍ଥ ପ୍ରତିଦିନ ପଞ୍ଚ ସୂନାର ବ୍ୟବହାର ଯୋଗୁଁ ବହୁ କ୍ଷୁଦ୍ର ପ୍ରାଣୀଙ୍କୁ ନାଶ କରେ । ଏ ପାପରୁ ମୁକ୍ତି ଲାଭ ପାଇଁ ପ୍ରତିଦିନ ପଞ୍ଚ ଯଜ୍ଞର ବିଧାନ ଅଛି । ]

**ସମ୍ମିତ**—ସଂ: ବିଣ (ସମ୍+ମା ଧାତୁ=ମାପିବା+କର୍ମ ତ)—୧ ।
Sammita ସଦୃଶ—1. Similar. ୨ । ତୁଲ୍ୟ ପରିମାଣ-
(ସଂମିତ—ଅନ୍ୟରୂପ) ବିଶିଷ୍ଟ—2. Of equal quantity or
(ସମ୍ମିତତ୍ୱ—ବି) measure; commensurate.

**ସମ୍ମିଳନ(ନୀ)**—ସଂ. ବି (ସମ୍+ମିଳନ=ମିଶ୍ରଣ)—୧ । ବହୁ ବସ୍ତୁର
Sammilana(nī) ଏକତ୍ର ମିଶ୍ରଣ—1. Mixing up of
(ସମିଳନ[ନୀ]—ଅନ୍ୟରୂପ) many things. ୨ । ସଂଯୋଗ
ସମ୍ମିଳନୀୟ, } —2. Union ୩ । ବିବାଦ
ସମ୍ମିଳିତ, ସମ୍ମିଳ୍ୟ } ବିଣ କରିଥିବା ବ୍ୟକ୍ତିଙ୍କର ମିଳନ—
3. Reconciliation. ୪ । ଏକତ୍ର ହେବା—
4. Gathering together. ଦେ. ବି ( ସଂ.
সম্মিলনী ସମ୍ମେଳନ, ସମ୍ମେଳନୀ )—ବହୁ ବ୍ୟକ୍ତିଙ୍କ ସମ୍ମିଳିତ ସଭା—
सम्मेलन Congress; assembly; a conference [ଦ୍ର—
ସମ୍ମିଳନୀ ଶବ୍ଦର ଅର୍ଥ ବହୁ ବ୍ୟକ୍ତିଙ୍କ ଏକତ୍ର ମିଳନ; ସମ୍ମେଳନୀର ଅର୍ଥ ଯେଉଁଠାରେ ବା ଯେଉଁ ସଭାରେ ବହୁ ବ୍ୟକ୍ତି ସମ୍ମିଳିତ ହୁଅନ୍ତି—ସାହିତ୍ୟ ସମ୍ରାଟ୍ ମହାଯାତ୍ରା ବିଜୟ ଦେବ । ]

**ସମ୍ମିଳନୀ ମଣ୍ଡପ**—ଦେ. ବି—ଯେଉଁ ମଣ୍ଡପରେ ସମ୍ମିଳନୀର ଅଧିବେଶନ
Sammilanī maṇḍapa ହୁଏ—The pandal of
সম্মিলনী মণ্ডপ सम्मेलन मण्डप a conference.

**ସମ୍ମିଳନୀର ଅଧିବେଶନ**—ଦେ. ବି—ସମ୍ମିଳନୀ ର ବୈଠକ—
Sammilanīra adhibeśana A session of a
সম্মিলনীর অধিবেশন सम्मेलनका अधिवेशन conference.

**ସମ୍ମିଳିତ**—ସଂ. ବିଣ (ସମ୍+ମିଳିତ)—୧ । ଏକତ୍ରୀଭୂତ—
Sammilita 1. Combined; amalgamated.
(ସମିଳିତ—ଅନ୍ୟରୂପ) ୨ । ସଂଯୋଜିତ—2. Associated;
(ସମ୍ମିଳନ—ବି) united; joined. ୩ । ଏକ ସ୍ଥାନରେ ଉପସ୍ଥିତ—3. Assembled; come together.

**ସମ୍ମିଳିତ ଚେଷ୍ଟା**—ସଂ. ବି—ବହୁ ଲୋକଙ୍କର ଏକତ୍ରୀଭୂତ ଉଦ୍ୟମ—
Sammilita cheshṭā Joint endeavour; combined endeavour.

**ସମ୍ମିଳିତ ହେବା**—ଦେ. କ୍ରି—୧ । ଏକତ୍ର ହେବା—1. To be
Sammilita hebā assembled together. ୨ । ଏକ-
সম্মিলিত হওয়া ଯୋଟ ହେବା—2. To combine.
सम्मिलित होना

**ସମ୍ମିଶ୍ର**—ସଂ. ବିଣ ( ସମ୍ + ମିଶ୍ର୍ ଧାତୁ = ମିଶିବା + କର୍ତ୍ତୃ ଅ )—୧ । Sammiśra ଏକତ୍ର ମିଶ୍ରିତ—1. Mixed up. ୨ । ଏକତ୍ର (ସମିଶ୍ର ଇତ୍ୟାଦ—ଅନ୍ୟରୂପ) ମିଳିତ—2. Commingled; combined. ୩ । ସଂଯୁକ୍ତ—3. Joined together.

**ସମ୍ମିଶ୍ରଣ**—ସଂ. ବି ( ସମ୍ + ମିଶ୍ରଣ )—୧ । ଏକତ୍ର ମିଳନ—Sammiśraṇa 1. Amalgamation; commingling. (ସମ୍ମିଶ୍ରିତ—ବିଣ) ୨ । ବହୁ ପଦାର୍ଥର ମିଶ୍ରଣ—2. Compound; mixture. ୩ । ଏକତ୍ର ମିଶାଇବା—3. Mixing up together.

**ସମ୍ମୀଳନ**—ସଂ. ବି ( ସମ୍ + ମୀଲ ଧାତୁ + ଭାବ. ଅନ )—୧ । ମୁଦ ହୋଇଯିବା; ବୁଜି ହୋଇଯିବା—1. Closing up (Apte). Sammīlana (ସମ୍ମୀଳିତ—ବିଣ) ୨ । ଘୋଡ଼ାଇ ପକାଇବା—2. Enveloping; covering (Apte).

**ସମ୍ମୁଖ**—ସଂ ବିଣ ( ମୁଖର ସମୀପ = ସମ୍ମୁଖ; ଲତାସମାସ )—୧ । Sammukha ସାମନା ସାମନି; ଅଭିମୁଖ; ସମକ୍ଷ—1. Front; (ସାମ୍ମୁଖ୍ୟ—ବି) in the front of. ୨ । ଅଗ—2. Fore. ୩ । କୌଣସି ଆଡ଼କୁ ମୁହଁ କରିଥିବା—3. Facing; confronting. ୪ । ମୁହାଁମୁହିଁ—4. Facing each other. ୫ । ସମର୍ଥ—5. Capable.
ସମ୍ମୁଖା ସମ୍ମୁଖୀ } ସ୍ତ୍ରୀ ୬ । ଏକ ଅଡ଼କୁ ମୁହଁ କରି ବିପରୀତ ଦିଗରେ ଅବସ୍ଥିତ—6 Opposite (Apte). ୭ । ଅନ୍ୟ ଅଡ଼କୁ ସିଧା କରି ଚାହିଁଥିବା—7. Looking towards (Apte). ୮ । (ଅନ୍ୟକୁ) ଭେଟିଥିବା—8. Encountering; meeting (Apte). ୯ । ଅନୁକୂଳ—9. Propitious (Apte). ସଂ. ବି ( ସର୍ବ + ମୁଖ ) ସମସ୍ତ ମୁଖ ( ଶବ୍ଦକୋଷ )—The whole face. ଦେ. କ୍ରି. ବିଣ (ସଂ. ସମ୍ମୁଖ) —୧ । ସାମନାରେ—1. In front of; before. ୨ । ସାମନା ସାମନି—2. Face to face. ୩ । (ଅନ୍ୟଙ୍କ) ଉପସ୍ଥିତିରେ—3. In the presence of [ ଦ୍ର—ଏହାର ଅପଭ୍ରଂଶ ଛାମୁ ଓ ସମୁଖ । ]

**ସମ୍ମୁଖ ଦନ୍ତ**—ସଂ. ବି—ପାଟିର ସାମନାରେ ଥିବା ଦାନ୍ତ, ଛାମୁଦାନ୍ତ—Sammukha danta Front teeth.

**ସମ୍ମୁଖବର୍ତ୍ତୀ**—ସଂ. ବିଣ. ପୁଂ ( ସମ୍ମୁଖ + ବୃତ୍ ଧାତୁ + କର୍ତ୍ତୃ. ଇନ୍; Sammukhabarttī ୧ମା, ୧ବ)—୧ । ସାମନାରେ ଥିବା—(ସମ୍ମୁଖବର୍ତ୍ତିନୀ—ସ୍ତ୍ରୀ) 1. Being in front of; front. ୨ । ସାମନା ପାଖର—2. Fore.

**ସମ୍ମୁଖ ଯୁଦ୍ଧ**—ସଂ. ବି ( ମ. ପ. ଲୋ )—ସମ୍ମୁଖସ୍ଥ ଦୁଇ ଯୋଦ୍ଧା ବା Sammukha juddha ଦୁଇ ଯୋଦ୍ଧୃଦଳ ମଧ୍ୟରେ ହେବା ଯୁଦ୍ଧ; ମୁହାଁମୁହିଁ ଯୁଦ୍ଧ—Hand to hand fight; fighting at close quarters. (ଉ—ଉତ୍କଳ ସମ୍ରାଟ ବଳିଷ୍ଠ ବାହିନୀ ସହିତେ ସମ୍ମୁଖ ରଣ—ରାଧାନାଥ ପାର୍ବତୀ ।)
ସମ୍ମୁଖ ରଣ, ସମ୍ମୁଖ-ସଂଗ୍ରାମ, ସମ୍ମୁଖ ସମର } ଅନ୍ୟରୂପ

**ସମ୍ମୁଖରେ**—ଦେ. କ୍ରି. ବିଣ—୧ । ସାମନା ସାମନି; ସାମନାରେ; Sammukhare ଆଗରେ—1. In front of; before. ସମ୍ମୁଖେ ୨ । ଉପସ୍ଥିତିରେ—2. In the presence of. सम्मुखमें ( ସମ୍ମୁଖେ—ଅନ୍ୟରୂପ )

**ସମ୍ମୁଖ ସମର**—ସଂ. ବି—ସାମନା ସାମନି ଲଢ଼େଇ, ଯେଉଁ ଯୁଦ୍ଧରେ Sammukha samara ପ୍ରତିଦ୍ୱନ୍ଦ୍ୱୀ ଯୋଦ୍ଧାମାନେ ସମ୍ମୁଖୀନ ହୋଇ ଯୁଦ୍ଧ କରନ୍ତି—Hand to hand fight; a fighting in close quarters.

**ସମ୍ମୁଖସ୍ଥ**—ସଂ. ବିଣ—ସାମନାରେ ଥିବା—Sammukhastha Lying in front of.

**ସମ୍ମୁଖା ସମ୍ମୁଖୀ**—ଦେ. ବିଣ—ପରସ୍ପର ସମ୍ମୁଖବର୍ତ୍ତୀ; ସାମନା ସାମନି—Sammukhā sammukhī Facing each other. ସମୁଖା ସମୁଖୀ सामने सामने

**ସମ୍ମୁଖୀ**—ସଂ. ଵି ( ସମ୍ମୁଖ + ଇନ୍; ୧ମା, ୧ବ )—ଦର୍ପଣ—Sammukhī Mirror (Apte).

**ସମ୍ମୁଖୀନ**—ସଂ. ବିଣ. ପୁଂ ( ସମ୍ମୁଖ + ଈନ )—ସମ୍ମୁଖବର୍ତ୍ତୀ—Sammukhīna Front; standing in front. ( ସମ୍ମୁଖୀନା—ସ୍ତ୍ରୀ )

**ସମ୍ମୁଖୀନ ହେବା**—ଦେ. କ୍ରି—୧ । ସାମନାକୁ ଆସିବା—1. To Sammukhīn hebā confront; to encounter. সম্মুখীন হওয়া सम्मुखीन होना ୨ । ଭେଟିବା—2. To meet.

**ସମ୍ମୁଗ୍ଧ**—ସଂ.ବିଣ.(ସମ୍ + ମୁଗ୍ଧ)—୧ । ଅତ୍ୟନ୍ତ ମୋହିତ; ବିମୋହିତ—Sammugdha 1. Charmed; fascinated. ୨ । (ସମୁଗ୍ଧ—ଅନ୍ୟରୂପ) ଜଡ଼ୀଭୂତ—2. Stupefied.

**ସମ୍ମୂଢ଼**—ସଂ ବିଣ.(ପୁଂ)(ସମ୍ + ମୂଢ଼) ୧ । ଅଜ୍ଞାନ—1. Ignorant. Sammūṛha ୨ । ରାଗାଦି ଦ୍ୱାରା ଅନ୍ଧୀଭୂତ—2. Blinded (ସମୂଢ଼—ଅନ୍ୟରୂପ) by passion. ୩ । କାମ ବା (ସମ୍ମୋହ—ବି) ସ୍ନେହାଦିଦ୍ୱାରା ଅନ୍ଧୀଭୂତ; ସମ୍ୟକ୍ ମୋହଯୁକ୍ତ—3. Infatuated; stupefied. ୪ । ମୂର୍ଚ୍ଛାଯୁକ୍ତ—4. Fainted; swooning. ୫ । ନିର୍ବୋଧ—5. Stupid; indolent. ୬ । ରାଶୀଭୂତ (ଶବ୍ଦକୋଷ)—6. Heaped up. ୭ । ଭଗ୍ନ (ଶବ୍ଦକୋଷ)—7. Broken. ୮ । ଶୀଘ୍ର ଜାତ ( ଶବ୍ଦକୋଷ )—8. Born soon.

**ସମ୍ମୂର୍ଚ୍ଛଦ**—ସଂ. ବି (ବୈଦ୍ୟକ)—ତୃଣାଦି—Sammūrchchhada Grass.

**ସମ୍ମୂର୍ଚ୍ଛନ(ନା)**—ସଂ. ବି (ସମ୍ + ମୂର୍ଚ୍ଛନ, ମୂର୍ଚ୍ଛନା)—୧ । ଅଚୈତନ୍ୟ; Sammūrchchhana(nā) ମୂର୍ଚ୍ଛା—1. Fainting; fit; [ସଂମୂର୍ଚ୍ଛନ(ନା)—ଅନ୍ୟରୂପ] loss of consciousness. ୨ । ବୃଦ୍ଧି—2. Increase. ୩ । ସର୍ବତଃ ବ୍ୟାପ୍ତି—3. Diffusion. ୪ । ବ୍ୟାପ୍ତି—4. Spreading out. ୫ । ବିସ୍ତାର; ପ୍ରସାର—5. Extension; extent.

୬ । ଉଚ୍ଚତା; ଉଚ୍ଛ୍ରାୟ ( ଶବ୍ଦକୋଷ )—
6. Elevation; height.

**ସମ୍ମୂର୍ଚ୍ଛନୋଦ୍ଭବ**—ସଂ. ବି (ବହୁବ୍ରୀହି)—ମତ୍ସ୍ୟାଦି—
Sammūrchchhanodbhaba Fishes.

**ସମ୍ମୂଳ**—ଦେ. ବିଣ (ସଂ. ସମୂଳ)—ସମୂଳ; ଅାଦ୍ୟ ସହିତ; ଆଦ୍ୟରୁ
Sammūla ଅାରମ୍ଭକରି—From the beginning.
ସମୂଳ **ସମୂଳ** (ଦ୍ର—ସର୍ବ ସମ୍ପୂର୍ଣ୍ଣ ନାମ ଜହି, ସମ୍ମୂଳକରି ଲୁହେ ଜହି—ଲୁପତି ପ୍ରେମପଞ୍ଚାମୃତ ।)

**ସମ୍ମୃଷ୍ଟ**—ସଂ. ବିଣ ( ସମ୍+ମୃଷ୍ଟ )—୧ । ସଂଶୋଧିତ—
Sammṛushṭa 1. Rectified. ୨ । ପରିଷ୍କୃତ;
(ସଂମୃଷ୍ଟ—ଅନ୍ୟରୂପ) ନିର୍ମଳୀକୃତ—2. Cleansed.
୩ । ଭଜାହୋଇଥିବା ( ବ୍ୟଞ୍ଜନାଦି )—
3. (curry) Flavoured by frying.
୪ । ସମ୍ମାର୍ଜିତ—4. Polished; swept.

**ସମ୍ମେଳନ(ନୀ)**—ସଂ. ବି(ସମ୍+ମିଲ୍ ଧାତୁ ଣିଚ୍=ମିଳିତ କରାଇବା+ଭାବ
Sammelana(nī) ଅନ୍;+ସ୍ତ୍ରୀ.ଈ)—୧ । ଏକତ୍ର କରାଇବା; ମିଳିତ
[ସମେଳନ(ନୀ)ଅନ୍ୟରୂପ] କରାଇବା—1. Mixing up; gathering. ୨। (+ଅଧିକରଣ;+ସ୍ତ୍ରୀ ଈ)—ମେଳା; ସଭା; ସମିତି
—2. Conference. ଦ୍ର—ଏକତ୍ର ମିଳନ କିମ୍ବା ବୁଝାଇଲେ ଏ ଶବ୍ଦର ଅାକାର ସମ୍ମିଳନ ଓ ମେଳା, ସଭା, ସମିତି ଅର୍ଥ ବୁଝାଇଲେ ସମ୍ମେଳନ ହୁଏ ବୋଲି ସାହିତ୍ୟ ସମ୍ରାଟ୍ ମହାରାଜା ବୀରମିତ୍ରୋଦୟଙ୍କ ମତ ଅଟେ । କିନ୍ତୁ ଅାପ୍ତେ, ଶବ୍ଦକୋଷ ଆଦି ଅଭିଧାନରେ ଏ ଭିନ୍ନ ବ୍ୟବସ୍ଥା ଲକ୍ଷିତ ହୁଏ ନାହିଁ ।]

**ସମ୍ମୋଦ**—ସଂ. ବି (ସମ୍+ମୋଦ)—୧ । ଅାମୋଦ; ପ୍ରୀତି—
Sammoda 1. Delight. ୨ । ପ୍ରମୋଦ—
[ସଂମୋଦ—ଅନ୍ୟରୂପ] 2. Merriment.

**ସମ୍ମୋହ**—ସଂ. ବି (ସମ୍+ମୋହ)—୧ । ଅଜ୍ଞତା—1. Ignorance.
Sammoha ୨ । ଅତ୍ୟନ୍ତ ମୋହ—2. Fascination;
( ସଂମୋହ ଇତ୍ୟାଦି—ଅନ୍ୟରୂପ ) stupefaction.
( ସମ୍ମୁଗ୍ଧ; ସମ୍ମୋହିତ—ବିଣ ) ୩ । ବିମୁଗ୍ଧ କରିବା—
3. Enchanting; fascinating. ୪ । ରାଗାଦି ଜନିତ ଅନ୍ଧତା—4. Blindness due to passion.
୫ । ମୂର୍ଚ୍ଛା—5. Swoon.

**ସମ୍ମୋହକ**—ସଂ. ବିଂ. ପୁଂ—ସମ୍ୟକ୍ ମୋହ ଉତ୍ପାଦନକାରୀ—
Sammohaka Causing stupefaction.
( ସମ୍ମୋହିକା—ସ୍ତ୍ରୀ ) ସଂ. ବି—ସନ୍ନିପାତ ଜ୍ୱରବିଶେଷ—
A kind of malignant fever. [ଦ୍ର—ଏଥିରେ ବେଦନା, କମ୍ପ, ନିଦ୍ରାନାଶ, ବମନ, ଦାହ, ପିପାସା, ଉଷ୍ଣତା, ଘର୍ମ, ପ୍ରଳାପ, ମୋହ, ମୂର୍ଚ୍ଛା, ଭ୍ରମ, ବାମ ବା ଦକ୍ଷିଣ ଅଙ୍ଗର ଅବସନ୍ନତା ହୁଏ—ଶବ୍ଦକୋଷ ।]

**ସମ୍ମୋହନ**—ସଂ. ବି (ସମ୍+ମୁହ୍ ଧାତୁ ଣିଚ୍=ମୋହିତ କରିବା—
Sammohana ମୁଗ୍ଧ କରିବା+ଭାବ ଅନ)—୧ । ବିମୁଗ୍ଧ
ସମ୍ମୋହିତ } —ବିଣ କରିବା—1. Fascinating; stupefying. ୨ ।
ସମ୍ମୋହନୀୟ
ସମ୍ମୋହନ-ବ୍ୟକ୍ତି ବାଚକ (+କର୍ତ୍ତୃ ଅନ) କନ୍ଦର୍ପର
ବାଣବିଶେଷ (ଯଦ୍ଦ୍ୱାରା କାମାତୁର ବ୍ୟକ୍ତି ସମ୍ମୋହ ପ୍ରାପ୍ତ ହୁଏ)—2. Name of one of the 5 shafts of Cupid (by which a lover is fascinated). ସଂ. ବିଣ—ମୋହଜନକ—Fascinating; stupefying.

**ସମ୍ୟକ୍**—ସଂ. ଅ ଓ ବି. ବିଣ (ସମ୍+ଅଞ୍ଚ୍ ଧାତୁ=ଯିବା+କର୍ତ୍ତୃ
Samyak କ୍ୱିପ୍)—୧ । ଉତ୍ତମରୂପେ—1. Excellently; well. ୨ । ଘନିଷ୍ଠରୂପେ—2. Intimately. ୩ । ପ୍ରକୃତରୂପେ—3. Rightly; correctly. ୪ । ସଂପୂର୍ଣ୍ଣରୂପେ—4. Fully; perfectly; entirely; thoroughly. ୫ । ବିଶିଷ୍ଟରୂପେ—5. Specially. ୬ । ସର୍ବପ୍ରକାରେ—6. In all manners. ସଂ. ବିଣ—
(ସମ୍+ଅଞ୍ଚ୍ ଧାତୁ+କ୍ୱିପ୍=ସମ୍ୟକ୍ ଶବ୍ଦ ୧ମା. ୧ବ)
ମନୋଜ୍ଞ—1. Beautiful. ୨ । ଯୋଗ୍ୟ; ଉପଯୁକ୍ତ—
2. Befitting; fit. ୩ । ଶୁଦ୍ଧ—3. Pure; correct; right. ୪ । ସମୁଦାୟ—4. Whole; entire ୫ । ସତ୍ୟ—5. True. ୬ । ସଙ୍ଗତ (ଶବ୍ଦକୋଷ)—6. Reasonable. ସଂ. ବି- ସତ୍ୟବଚନ (ଶବ୍ଦକୋଷ)—Truth; true words. ବିଣ.ର ବିଣ—୧ । ଅତ୍ୟନ୍ତ—1. Very; much. ୨ । ସର୍ବତୋଭାବରେ—2. In every respect.

**ସମ୍ୟକ୍(ଗ୍) ଦୃଷ୍ଟି**—ସଂ. ବି (ସନ୍ଧିଦ୍ୱାରା କ୍ ସ୍ଥାନରେ ଗ୍)—ଉତ୍ତମରୂପେ
Samyak(g)-drusti ଦେଖିବା; ପର୍ଯ୍ୟବେକ୍ଷଣ—Observation.

**ସମ୍ୟଗ୍ ଯୋଗ**—ସଂ. ବି—ସମାଧି (ଦେଖ)
Samyag-joga Samādhi (See)

**ସମ୍ରାଜ୍ଞୀ**—ସଂ. ବି. ସ୍ତ୍ରୀ ( ସମ୍ରାଜ୍+ସ୍ତ୍ରୀ ଈ )—୧ । ସମ୍ରାଟ୍ ପଦରେ
Samrāji ଅଧିଷ୍ଠିତା ସ୍ତ୍ରୀ—1. Empress. ୨ । ସମ୍ରାଟଙ୍କ
(ସମ୍ରାଟ୍—ପୁଂ) ପତ୍ନୀ—2. The wife of an Emperor.
[ଦ୍ର—କେହି କେହି କହନ୍ତି 'ସମ୍ରାଟ୍' ଶବ୍ଦ ଉଭୟ ଲିଙ୍ଗରେ ବ୍ୟବହୃତ ହୁଏ ।]

**ସମ୍ରାଜ୍ଞୀ**—ଦେ ଓ ବୈଦିକ ସ.ବି. ସ୍ତ୍ରୀ (ସଂ ସମ୍ରାଜୀ)—ସମ୍ରାଜ୍ଞୀ; ସସାଗର
Samrajñī ଧରାର ଅଧୀଶ୍ୱରୀ—Empress. [ଦ୍ର—ଅଥର୍ବ
ସମ୍ରାଜ୍ଞୀ ବେଦ, ଋଗ୍‌ବେଦ ଓ ତୈତ୍ତିରୀୟ ବ୍ରାହ୍ମଣରେ 'ସମ୍ରାଜ୍ଞୀ'
**ସମ୍ରାଜ୍ଞୀ** ଶବ୍ଦ ରାଣୀ ବା ଉଚ୍ଚପଦସ୍ଥା ସ୍ତ୍ରୀ ବା ସ୍ୱାମିନୀ ଅର୍ଥରେ ବ୍ୟବହୃତ ହୋଇଅଛି—M. W.)

**ସମ୍ରାଟ୍**—ସ. ବି. ପୁଂ [ସମ୍=ସମ୍ୟକ୍+ରାଜ୍ ଧାତୁ=ଶୋଭା ପାଇବା
Samrāṭ +କର୍ତ୍ତୃ କ୍ୱିପ୍; ସମ୍ରାଜ୍ ଶବ୍ଦ, ୧ମା. ୧ବ; ଯେ
(ସମ୍ରାଜ୍ଞୀ—ସ୍ତ୍ରୀ) ସମ୍ୟକ୍ ରୂପେ ଇହଲୋକରେ (ରାଜ୍ୟ ଶାସନ

(ସମ୍ରାଜ୍ଞୀ—ବୈଦିକ ସ୍ତ୍ରୀ) ଦ୍ୱାରା) ଓ ପର ଲୋକରେ (ରାଜସୂୟ ଯଜ୍ଞାନୁଷ୍ଠାନର ଫଳସ୍ୱରୂପ ଦ୍ୱାରା) ଶୋଭା ପାଆନ୍ତି]—ରାଜାଧିରାଜ; ମହାରାଜେଶ୍ୱର; ସାର୍ବଭୌମ; ଚକ୍ରବର୍ତ୍ତୀ; ବାଦଶାହା—An emperor; a king of kings; a paramount sovereign. [ଦ୍ର—ଯେଉଁ ରାଜା ଚତୁରବ୍ଧି ବେଷ୍ଟିତ ସସାଗରା ଧରାର ଅଧୀଶ୍ୱର, ଯେ ଦ୍ୱାଦଶ ରାଜମଣ୍ଡଳର ଅଧିପତି ଏବଂ ଯାହାଙ୍କ ଆଦେଶରେ ଅଧୀନ ଭୂପତିମାନେ ନିଜ ନିଜର ରାଜ୍ୟ ଶାସନ କରନ୍ତି, ଏବଂ ଯେ ରାଜସୂୟ ଯଜ୍ଞର ଅନୁଷ୍ଠାନ କରନ୍ତି, ତାହାଙ୍କୁ 'ସମ୍ରାଟ୍' ବୋଲାଯାଏ ।

ଭାଷାରେ 'ସମ୍ରାଟ୍' ଶବ୍ଦର ସ୍ତ୍ରୀଲିଙ୍ଗ ରୂପେ ବ୍ୟବହାର ହେଉଥିବା 'ସମ୍ରାଜ୍ଞୀ' ଶବ୍ଦ ଲୌକିକ ସଂସ୍କୃତ ବ୍ୟାକରଣ-ସମ୍ମତ ନୁହେ । 'ସମ୍ରାଜ୍' ଶବ୍ଦର ପୁଂଲିଙ୍ଗ ୧ମା ୧ ବଚନ 'ସମ୍ରାଟ୍' ଏବଂ ସ୍ତ୍ରୀ ଲିଙ୍ଗ ୧ମ ବଚନରେ 'ସମ୍ରାଜ୍' । ଏହିପରି 'ପରିବ୍ରାଟ୍' ଶବ୍ଦର ସ୍ତ୍ରୀଲିଙ୍ଗ 'ପରିବ୍ରାଜ୍' । କେବଳ ବୈଦିକ ସଂସ୍କୃତରେ 'ସମ୍ରାଜ୍ଞୀ' ଶବ୍ଦର ପ୍ରୟୋଗ ଦେଖାଯାଏ । କେହି କେହି ସମ୍ରାଟଙ୍କ ସ୍ତ୍ରୀକୁ 'ସମ୍ରାଟ୍ ପତ୍ନୀ' କହନ୍ତି, କିନ୍ତୁ 'ସମ୍ରାଜ୍-ପତ୍ନୀ' ଶବ୍ଦ ବ୍ୟାକରଣ ସିଦ୍ଧ । ବୈଦିକ ସଂସ୍କୃତରେ ସମ୍ରାଜ୍ଞୀ ଶବ୍ଦର ବ୍ୟବହାର ଅଛି । ସମ୍ରାଟଙ୍କ ରାଜ୍ୟକୁ ସାମ୍ରାଜ୍ୟ (Empire) ବୋଲାଯାଏ ।]

**ସମ୍ରାଟ**—ଦେ· ବି· ପୁଂ (ସଂ. ସମ୍ରାଟ) --ସମ୍ରାଟ୍ ( ଦେଖ )
Samrāṭa    Samrāṭ ( See )

**ସମ୍ଲିଷ୍ଟ**—ସଂ. ବିଣ (ସମ୍+ମ୍ଲେଚ୍ଛ୍ ଧାତୁ=ମିଳିତ ହେବା+କ୍ତ)
Samlishṭa —ସମ୍ମିଳିତ (ଦେଖ)—Sammilita (See)

**ସୟ୍** (ଧାତୁ)—ସଂ—ଗତି କରିବା—
Say (root)   To go; to move (Apte)

**ସଯତନ(ତ୍ନ)**—ଦେ· କ୍ରି. ବିଣ (ସଂ. ସଯତ୍ନ°; ସ=ସହିତ+ଯତ୍ନ)—
Sajatana(tna)   ଯତ୍ନ ପୂର୍ବକ—Carefully.
সযত্ন   **सयत्न**

**ସଯତନେ**—ଦେ. କ୍ରି· ବିଣ (ସଂ. ସଯତ୍ନ)—ସଯତ୍ନ ( ଦେଖ )
Sajatane   Sajatna ( See )
সযতনে   **सयत्नमें**

**ସୟାଁ**—ଦେ· ବିଣ—ଧର୍ଦ୍ଦ ରୋଗୀ; ଯେ ସବୁ ବେଳେ ହଇଁ ହଇଁ ହୋଇ
Sayāñ   ନିଶ୍ୱାସ ମାରୁଥାଏ; ଶ୍ୱାସରୋଗୀ—Asthmatic.
হাঁপানী রোগী, হাইঁপেঁয়ে   **साँसिया**
[ସଇଁଅ(ସୁଁ)—ଅନ୍ୟରୂପ]

**ସଯୂଥ୍ୟ**—ସଂ. ବିଣ (ସ+ଯୂଥ+ଯ)—କୌଣସି ଦଳର ବା ଗୋଷ୍ଠୀର
Sajuthya   ଲୋକେ—One of the same flock or
(ସଯୂଥ୍ୟା—ସ୍ତ୍ରୀ)   tribe (Apte).

**ସଯୋନି**—ସଂ. ବି (ସ=ସହ+ଯୋନି=ଭଗ)—୧ । (ସହସ୍ର ଯୋନି
Sajoni   ବିଶିଷ୍ଟ; ସହାର୍ଥ ବହୁବ୍ରୀହି)—ଇନ୍ଦ୍ର—1. Indra. [ଦ୍ର—ଗୌତମଙ୍କ ଅଭିଶାପରୁ ଇନ୍ଦ୍ରଙ୍କ ଦେହସାକ ଯୋନି-ଚିହ୍ନମୟ ହୋଇ ଯାଇଥିଲା । ଏଥିପାଇଁ ଇନ୍ଦ୍ରଙ୍କର ଅନ୍ୟ ନାମ 'ସହସ୍ର ଯୋନି' ।] ୨ । ଏକ ମାତାଙ୍କ ଗର୍ଭଜାତ ଭାଇ—2. One's whole or uterine brother (Apte). ୩ । ଦୁଇଟି ଦାନ୍ତ ବିଶିଷ୍ଟ ଗୁଆକାଚି 3. A pair of clippers for cutting betel-nut (Apte). ସଂ. ବିଣ (ବହୁବ୍ରୀହି; ସ=ସମାନ ଅଟେ ଯୋନି=ଉତ୍ପତ୍ତି ସ୍ଥାନ ଯାହାର)—୧ । ଯେଉଁମାନଙ୍କର ଉତ୍ପତ୍ତି ସ୍ଥାନ ଏକ=1. Of the same origin. ୨ । (ସ=ସମାନ ଅଟେ ଯୋନି ଉତ୍ପତ୍ତି ସ୍ଥାନ ଯାହାର; ବହୁବ୍ରୀହି )—ଏକ ମାତାଙ୍କ ଗର୍ଭଜାତ ( ମାତାଙ୍କ ଗର୍ଭ ଦ୍ୱାରା ପରସ୍ପର ସଂଯୁକ୍ତ—Having the same womb; born of the same mother, uterine ( brother or sister ) ( Apte ) ୩ । ଘନିଷ୍ଠ ସମ୍ପର୍କରେ ସମ୍ପୃକ୍ତ)—3. Closely related to. (Apte)

**ସର୍**--ବୈଦେ. ଅ (ଇଂ. ସର୍)—୧ । ଭଦ୍ରଲୋକମାନଙ୍କୁ ସମ୍ମାନାର୍ଥକ
Sar   ସମ୍ବୋଧନ—1. (vocative ) Sir ! Oh Sir !
স্যার, সার্   **सर, सार**   ୨ । ଶିକ୍ଷକମାନଙ୍କୁ ଛାତ୍ରମାନଙ୍କର ସମ୍ମାନାର୍ଥକ ସମ୍ବୋଧନ—2. Sir, a word addressed to a teacher by a student. ବୈଦେ. ବି (ଇଂ. ସର୍)—୧ । ଇଂଲଣ୍ଡରେ ରାଜଦତ୍ତ ଉପାଧିବିଶେଷ; ନାଇଟ୍ ( ଭଦ୍ରବଂଶୀୟ ବ୍ୟକ୍ତି )ମାନଙ୍କ ଉପାଧି—1. Sir, a title of knights in England. ୨ । ଭାରତବାସୀ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଇଂରେଜ ଗଭର୍ଣ୍ଣମେଣ୍ଟଙ୍କ ପ୍ରଦତ୍ତ ଉପାଧି—2. Sir, an honorary title granted to distinguished Indians by the British Government. ୩ । ( ଛାତ୍ରମାନଙ୍କ ଭାଷା ) ନିଜ ନିଜର ଶିକ୍ଷକ—3. A student's own teacher or master. ( ଯଥା—ଆଜି ଆମ ସର୍ ଘରକୁ ଯାଇଅଛନ୍ତି । )

**ସର୍**—ଦେ. ଅ (ଧ୍ୱନ୍ୟନୁକରଣ) ଅନବରତ ସୂକ୍ଷ୍ମ ଧାରାରେ ତଳକୁ
Sar   ପଡ଼ୁଥିବା ଜଳ ବା ଦୁଗ୍ଧାଦି ଜନିତ ଶବ୍ଦ—
( ସର୍‌ର୍, ସର୍‌ରସେଁ—ଅନ୍ୟରୂପ )   (Onomatopoeic)
সরসর   **सरसर**   The sound of water or milk falling into a pot in a slender continuous flow.

**ସରଉ(ଓ)ତା**—ପ୍ରାଦେ ( ସମ୍ବଲପୁର ) ବି—( ଦ୍ର. ସରୌତା;
Sar-u(o)tā   ସଂ. ସାର=ଲୌହ+ପତ୍ର; ପ୍ରା. ସାରବତ୍ତ)
( ସରୌତା—ଅନ୍ୟରୂପ )   ଗୁଆକାଚି—Betel-nut-cutter.

ସର୍କଲ୍ (ଇତ୍ୟାଦି)—ବୈଦେ. ବି (ଇଂ)—ସର୍କଲ୍ ଇତ୍ୟାଦି (ଦେଖ)
Sar-kal (etc)   Sarkal etc (See)

ସର୍କୁ(କ୍ୟୁ)ଲ(ଲା)ର୍ ଇତ୍ୟାଦି—ବୈଦେ· ବି [ଇଂ]—ସର୍କୁଲର୍
Sar-ku(kyu)la(lā)r etc   ଇତ୍ୟାଦି ( ଦେଖ )—Sarkular etc (See).

ସର୍ ଗମ—ଦେ· ବ—ସରିଗମ (ଦେଖ)
Sar-gam Sarigama (See)

ସର୍ ଗରମ୍—ବୈଦେ. ବଣ—ସରଗରମ୍ (ଦେଖ)
Sar-garam Saragaram (See)
(ସର୍ଗରମ୍—ଅନ୍ୟରୂପ)

ସର୍‌ଜନ୍ ଇତ୍ୟାଦି—ବୈଦେ. ବ (ଇଂ)—ସର୍ଜ୍ଜନ୍ ଇତ୍ୟାଦି (ଦେଖ)
Sar-jan etc Sarjan etc (See)

ସର୍ ଜନ୍ ହୁବାକ୍—ବୈଦେ. ବ (ନାମ)—ଉତ୍କଳ ପ୍ରଦେଶର ପ୍ରଥମ
Sar-jan hubbāk ଗଭର୍ଣ୍ଣର୍—The first Governor of the Orissa Province. [ଦ୍ର—ଏହାଙ୍କ ପୂର୍ଣ୍ଣ ନାମ ଓ ଉପାଧି ମାନ୍ୟବର ସର୍ ଜନ୍ ହୁବାକ୍ ଏମ. ଏ., କେ· ସି. ଏସ. ଆଇ., ଆଇ. ସି· ଏସ.। ଏ ନବ ଓଡ଼ିଶା ପ୍ରଦେଶର ପ୍ରଥମ ଗଭର୍ଣ୍ଣର୍ । ଇଣ୍ଡିଅନ ସିଭିଲ୍ ସର୍ଭିସ୍‌ର ଶାସନ ଶାଖା ( Executive branch) ର ଏ ସଦସ୍ୟ । ଏ ଇଂଲଣ୍ଡର କାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରୁ ଏମ ଏ. ପାସ୍ କରି ପ୍ରଥମେ ଜଏଣ୍ଟ୍ ମାଜିଷ୍ଟ୍ରେଟ ରୂପେ ୨୪।୧୦।୧୯୦୨ ରେ କାର୍ଯ୍ୟ କରି କ୍ରମଶଃ ମାଜିଷ୍ଟ୍ରେଟ ଓ କମିସନର୍ ଓ ବିହାର ଓଡ଼ିଶା ଶାସନ ସମିତି (Executive Council) ର ସଭ୍ୟ ଓ ଅର୍ଥସଦସ୍ୟ ହୋଇ ଶେଷରେ ଓଡ଼ିଶାର ପ୍ରଥମ ଗଭର୍ଣ୍ଣର ହେଲେ । ୧।୭।୧୯୩୮ ସୁଦ୍ଧା ଏହାଙ୍କର ସରକାରି କର୍ମରେ ୩୫ ବର୍ଷ ୭ ମାସ ୨୦ ଦିନ ବିତିଅଛି । ଓଡ଼ିଶାର କମିସନ୍‌ର ହେବା ପରେ ଏ ବିହାର ଓଡ଼ିଶା ପ୍ରଦେଶର ବାଙ୍କିଙ୍ଗ୍ ଏନ୍‌କ୍ୱାଇରି କମିଟିର ସଭାପତି ଓ ପରେ ଓଡ଼ିଶା ପ୍ରାଦେଶିକ ଶାସନସଂକ୍ରାନ୍ତ କମିଟିର ସଭାପତି ହୋଇ-ଥିଲେ । ଏ ଜଣେ ପଣ୍ଡିତ ଅଟନ୍ତି । ଗଣିତ, ଜ୍ୟୋତିଷ ଓ ଉଦ୍ଭିଦ୍‌ତତ୍ତ୍ୱରେ ଏହାଙ୍କର ଖୁବ୍ ଅଭିଜ୍ଞତା ଅଛି । ଓଡ଼ିଶାର କମିସନରରୂପେ ଏହି ଓଡ଼ିଆ ଭାଷାକୋଷପ୍ରତି ବିହାର ଓଡ଼ିଶା ସରକାରଙ୍କ ଦୃଷ୍ଟି ଏ ଆକର୍ଷଣ କରି ଉକ୍ତ ଗଭର୍ଣ୍ଣମେଣ୍ଟଙ୍କଠାରୁ ବିଶିଷ୍ଟ ସାହାଯ୍ୟ ଲାଭ କରାଇଥିଲେ । ଏହାଙ୍କ ନାମରେ ଭାଷାକୋଷର ପ୍ରଥମଖଣ୍ଡ ଉତ୍ସୃଷ୍ଟ ହୋଇଅଛି । ଓଡ଼ିଆ ଭାଷାର ଓ ସାହିତ୍ୟର ଏ ଜଣେ ପ୍ରେମିକ ଅଟନ୍ତି । ଲଣ୍ଡନର ପ୍ରାଚ୍ୟ ବିଦ୍ୟାଳୟ [London College of Oriental Studies]ର ପୁସ୍ତକାଗାରକୁ ଓଡ଼ିଆ ଭାଷାର ପୁସ୍ତକମାନ ଯୋଗାଇବା ପାଇଁ ଏ ଖୁବ ଯତ୍ନବାନ୍ ଅଟନ୍ତି । ମନ୍ତ୍ରୀମାନଙ୍କ ବିନା ସାହାଯ୍ୟରେ ୧ ବର୍ଷକାଳ ଓଡ଼ିଶାପ୍ରଦେଶ ଶାସନ କରି ୧।୪।୧୯୩୭ଠାରୁ ନିର୍ବାଚିତ ମନ୍ତ୍ରୀମାନଙ୍କ ସାହାଯ୍ୟରେ ଏ ଓଡ଼ିଶା ଶାସନ କରୁଅଛନ୍ତି । ଓଡ଼ିଶାରେ ଗୋବଂଶର ଉନ୍ନତି, କୁଷ୍ଠରୋଗ ଓ ରାଜଯକ୍ଷ୍ମାର ପ୍ରତିକାର ପାଇଁ ଏ ବହୁ ଯତ୍ନ କରିଅଛନ୍ତି । ଏ ସ୍ୱୟଂ ମଧ୍ୟ ଭାଷାକୋଷକୁ ଅର୍ଥ ସାହାଯ୍ୟ କରିଅଛନ୍ତି । ଏହାଙ୍କ ଜୀବନର ଅନ୍ୟ ଘଟଣା ଓ ବିବରଣ ପାଇଁ 'ହୁବାକ୍' ଶବ୍ଦ ତଳେ ଦେଖନ୍ତୁ ।]

ସର୍‌ଜନିଆ—ପ୍ରାଦେ (ଲରିଆ) ବ—ଉଚ୍ଚବଂଶୀୟ ବ୍ୟକ୍ତି—
Sar-janiā A person of high caste.

ସର୍‌ଡ଼ି(ଳି) ପଡ଼ିବା—ପ୍ରାଦେ (ସମ୍ବଲପୁର—ସର୍ଡ଼ିପଡ଼ିବା (ଦେଖ)
Sar-rdi(li) pardibā Sarrdi pardibā (See)

ସର୍‌ତାଳ—ବୈଦେ. ବ (ହି. ସର୍‌ତାଲ)—ଥର୍ ତାଲ କରିବ ପରେ
Sar-tāla ଜମିର ତୃତୀୟ କରିବ—The third
সবতাল सरताल, पड़ताल measurement of a land after the second measurement.

ସର୍‌ପିଁସ୍—ପ୍ରାଦେ (ଖଡ଼ିଆଳ) ବିଣ—ମିଥ୍ୟାବାଦୀ—Lying; un-
Sar-piñs truthful. ବି—୧ । ମିଥ୍ୟା—1. Lie; falsehood. ୨ । ମିଥ୍ୟାବାଦୀ ବ୍ୟକ୍ତି—2. A liar.

ସର୍‌ପୁନି—ଦେ· ବ—ଡେଙ୍ଗ ବେଜାରି ( ଦେଖ )
Sar-puni Ḍenga bejāri ( See )

ସର୍ ପ୍ରତାପ ଚନ୍ଦ୍ର ଭଞ୍ଜ ଦେବ(ଓ)—ଦେ. ବ (ନାମ)—ମୟୂରଭଞ୍ଜର
Sar pratāp chandra bhañja deba(o) ମହାରାଜା—Sir Pratāp Chandra Bhanj Deo, K. C. I. E; name of the present Mahārajā of Mayurbhanj State.
[ଦ୍ର—ଏ ସ୍ୱର୍ଗତ ମହାରାଜା ଶ୍ରୀ ରାମଚନ୍ଦ୍ରଙ୍କ ପୁତ୍ର ଓ ସ୍ୱର୍ଗତ ମହାରାଜା ପୂର୍ଣ୍ଣଚନ୍ଦ୍ରଙ୍କର କନିଷ୍ଠ ସହୋଦର । ଏହି ଭାଷାକୋଷ ଗ୍ରନ୍ଥର ଏ ଜଣେ ମୌଳିକ ପୃଷ୍ଠପୋଷକ ଓ ଅର୍ଥସାହାଯ୍ୟକାରୀ ।]

ସର୍ ବାସୁଦେବ ସୁଢଳ ଦେବ—ଦେ· ବ (ନାମ)—ବାମଣ୍ଡାର ସ୍ୱର୍ଗତ
Sar bāsudeba suḍhaḷa deba ଭାରତପ୍ରସିଦ୍ଧ ରାଜା—The late Sir Bāsudeb sudhal Deb C.I.E, late Raja of Bamrā State.
[ ଦ୍ର—ଏ ଜଣେ ସଂସ୍କୃତଜ୍ଞ ପଣ୍ଡିତ ଥିଲେ । ଏହାଙ୍କ ରଚିତ 'ଅଳଙ୍କାର ବୋଧୋଦୟ' ନାମକ ଅଳଙ୍କାର ପୁସ୍ତକ ଏବଂ 'ବୀରବାମା' ଓ 'ଛନ୍ଦୋମାଳା' କାବ୍ୟ ଓଡ଼ିଶାରେ ସୁପରିଚିତ । ତତ୍‌କାଳୀନ ରାଧାନାଥ, ମଧୁସୂଦନ ପ୍ରଭୃତି କବି ଓ ପଣ୍ଡିତମାନେ ତାଙ୍କଠାରୁ ଯଥେଷ୍ଟ ଉତ୍ସାହ ପାଇ ଥିଲେ । ତାଙ୍କ ଯୋଗୁଁ ଓଡ଼ିଶାରେ ଆଧୁନିକ ସାହିତ୍ୟ ଅନେକ ଅଗ୍ରସର ହୋଇଅଛି । ସେ ନିଜ ରାଜ୍ୟରେ ବୈଜ୍ଞାନିକ ରୀତିରେ ଅନେକ ଗବେଷଣା ଓ ଅନୁଷ୍ଠାନ କରି ରାଜ୍ୟର ଶ୍ରୀବୃଦ୍ଧି ସାଧନରେ ଅସାଧାରଣରୂପେ କୃତକାର୍ଯ୍ୟ ହୋଇ ଥିଲେ । ତାହାଙ୍କ ସୁଯୋଗ୍ୟ ପୁତ୍ର ସ୍ୱର୍ଗତ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମଧ୍ୟ ପିତାଙ୍କ ତୁଲ୍ୟ ସାହିତ୍ୟର, ମାତୃଭୂମିର ଓ ପ୍ରଜାଙ୍କର ସେବାରେ ଆତ୍ମ ବିନିଯୋଗ କରି ସର୍ବସାଧାରଣଙ୍କର ପ୍ରୀତିଭାଜନ ହୋଇଥିଲେ । ] (ଦ୍ର—ସଚ୍ଚିଦାନନ୍ଦଙ୍କର ଓ ଏହାଙ୍କର ଜୀବନୀ ସମ୍ବନ୍ଧେ ଅନ୍ୟ ବିବରଣ ପାଇଁ ସୁଢଳ ଦେବ ତଳେ ଦେଖନ୍ତୁ ।)

**ସର୍ ବୀର ମିତ୍ରୋଦୟ ସିଂହ ଦେବ**—ଦେ. ବ ନାମ—ସୋନପୁରର Sar bira mitrodaya simha deba ସ୍ୱର୍ଗତ ମହାରାଜା ମହାରାଜା ସର୍ ବୀର ମିତ୍ରୋଦୟ ସିଂହ ଦେବ, କେ. ସି. ଅଇ. ଇ., ଧର୍ମନିଧି, ଜ୍ଞାନଗୁଣାକର (ସୋନପୁର ଗଡ଼ଜାତର ଶାସକ)—The late Maharaja Sir Bira Mitrodaya Singha Deb K. C. I. E. Dharmanidhi, Gyānagunākara, the late Ruling Chief of Sonepur State.

**ସରଭି(ଭେ)ଅର୍**—ବୈଦେ. ବ (ଇଂ)—ସର୍ଭେଅର୍ ( ଦେଖ ) Sar-bhi(bhe)ar Sarbhear ( See )

**ସରଭେ (ଇତ୍ୟାଦି)**—ଦେ. ବ. (ଇଂ) - ସର୍ଭେ ଇତ୍ୟାଦି (ଦେଖ) Sar-bhe (etc) Sarbhe etc ( See )

**ସର ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେବ**—ଦେ. ବ (ନାମ)—କନିକାର Sar rājendra nārāyaṇa bhañja deba ରାଜା ବାହାଦୁର Sir Rajendra Narayan Bhanj Deo, Raja Bahadur of Kanika Estate of Orissa. [ ଦ୍ର—ଏ ମହାଶୟ ବିହାର ଓଡ଼ିଶା ପ୍ରଦେଶର ଶାସନ ସଭାର ଅର୍ଦ୍ଧ ସଦସ୍ୟ ହୋଇଥିଲେ ।]

**ସରର ସାଇଁ**—ଦେ. ଅ ( ଧ୍ୱନ୍ୟନୁକରଣ )—୧ । ତରଳ ପଦାର୍ଥର Sar-ra sāiñ ଅବିରତ ସରୁ ଧାର ପଡ଼ନର ଶବ୍ଦ—1. Sound (ସର୍ ରେ ହେଁ—ଅନ୍ୟରୂପ) of liquid falling down in ସର୍ ସର୍ narrow current. ୨। ଟିଣର ସାଇଁଶଗଡ଼ ନାମକ सरसें ଖେଳନାର ଘୂର୍ଣ୍ଣନ ଶବ୍ଦ—2. The sound produced by whirling a toy-cart made of tin.

**ସର୍ ସର୍**—ଦେ. ଅ—ସର ସର ( ଦେଖ ) Sar-sar Sara sara ( See )

**ସରସିଆ**—ପ୍ରାଦେ (ଉତ୍ତରଅଞ୍ଚଳ) ବଣ (ସଂ. ସଦୃଶ)—ସମାନ; ସଦୃଶ—Sar-sia Equal; similar. ବ—୧ । ସୋରସିଆ; କବାଟରେ ଲାଗିଥିବା ଶିକୁଳିର ମୂଳ ଅଂଶ, ଯାହା କବାଟରେ ମରାଯାଇ ଥାଏ—1. The hasp of a door chain. ୨ । କବାଟରେ ବା ଚିତ୍ତୁଡ଼ରେ ମରାଯାଇ ଥିବା ଶିକୁଳିର କୁଣ୍ଡା, ଯାହା ଚଉକାଠରେ ମରାଯାଇ ଥାଏ—2. The staple of a door chain.

**ସର**—ସଂ. ବ ( ସୃ ଧାତୁ=ଗମନ କରିବା+କର୍ତ୍ତୃ ଅ )—୧ । ଶର Sara (ଦେଖ)—1. Śara (See) ୨ । ସରୋବର; ପୋଖରୀ (ଶବ୍ଦ ରତ୍ନାବଳୀ)—2. Tank; pond; lake. ୩ । ଭୂଷଣ ବିଶେଷ—3. A kind of ornament. ୪ । ମଧୁ—4. Honey. ୫ । ମାଲ୍ୟ—5. Garland. ୬ । ହାରର ତନ୍ତୁ—6. String of garland or necklace. ୭ । ଲବଣ—7. Salt (Apte). ୮ । ଝରଣା—8. Waterfall (Apte); cascade. ୯ । ଜଳ—9. Water (Apte). ୧୦। (+ଭାବ.ଅ) ଗତି—10. Motion; movement (Apte).

ସଂ. ବଣ ( ସୃ ଧାତୁ=ଗମନ କରିବା+କର୍ତ୍ତୃ. ଅ )—୧ । ଗମନକାରୀ; ଗତି କରୁଥିବା (ଏ ଅର୍ଥରେ 'ସର' ଶବ୍ଦ ପରେ ପ୍ରାୟ ଯୁକ୍ତ ହୁଏ, ଯଥା—ଅଗ୍ରସର, ଅବସର ଇତ୍ୟାଦି)—1. Moving; going. ୨ । ସାରକ; ରେଚକ; ଯାହା କୋଷ୍ଠଶୁଦ୍ଧି କରାଏ—2. Laxative; cathartic. ଦେ.ବ (ସ୍ତ୍ରୀ) (ସଂ.ସରସ୍ୱତୀ)—୧ । ଗେହରେ ବାଳିକାକୁ ଡାକିବା ନାମ—1. Name for calling Saraswati in fondness. ୨ । (ସଂ. ସରଃ) ସର (ସର—ଅନ୍ୟରୂପ) ଘର; ଲିଙ୍ଗ; (ବିଶେଷତଃ) ଛେଳି, କୁକୁର, ଷଣ୍ଢ, ଘୋଡ଼ା, ମାଙ୍କଡ଼ ଆଦି ପଶୁଙ୍କର ଉଦ୍ଧୃତ ଲିଙ୍ଗର ଅଗ୍ରଭାଗ)—2. Penis; the fore part of the erect penis (especially of a goat, dog, bull, horse or monkey). ୩ । (ସଂ. ସରଃ) ତରଳ ପଦାର୍ଥ ଉପରେ ପଡ଼ିବା ଘନସ୍ତର—3. A thick layer of scum formed over any liquid. [ଦ୍ର—ସେ ଘର ପାଣି ଉପରେ ସର ପକାଇବା ଲୋକ ।] ୪ । ସରଃ ୩ ( ଦେଖ )—4. Sarah 3 ( See ) ୫ । ସରଃ ୪ ( ଦେଖ )—5. Sarah 4 ( See ) ୬ । ନୌକାରେ ବ୍ୟବହୃତ ଆହୁଲାର ଦଣ୍ଡ-ଅଂଶ—6. The pole portion of an oar. ୭ । ପୁରୀ ଜିଲ୍ଲାର ପୁରୀ ସହର ନିକଟବର୍ତ୍ତୀ ହ୍ରଦବିଶେଷ—7. Name of a lake in the Puri district near the Puri town. [ ଦ୍ର—ଏହା ପୁରୀ ନଗରର ଉତ୍ତର-ପୂର୍ବର ସମୁଦ୍ର ଉପକୂଳରେ ଅବସ୍ଥିତ । ପୂର୍ବ ପଶ୍ଚିମରେ ଏହା ୪ ମାଇଲ୍ ଓ ଉତ୍ତର ଦକ୍ଷିଣରେ ୨ ମାଇଲ୍ । ଏହା ଭାର୍ଗବୀ ନଦୀର ଜଳରେ ପୁଷ୍ଟ; ହ୍ରଦ ଓ ସମୁଦ୍ର ମଧ୍ୟରେ ଉଚ୍ଚ ବାଲି ଢିପ ଅଛି—ଏହାର ପ୍ରାଚୀନ ନାମ ସମଙ୍ଗ ଶାଠ ।] ସର ସ୍ୱର ଗ୍ରା. ବ ( ସଂ. ସ୍ୱର )—ସ୍ୱର—Voice. ( ଉ—ସ୍ନେହେ ବୋଲି ସ୍ନେହ ସରେ, ପ୍ରବେଶ ଫୁଲ ବନରେ—ପ୍ରତାପ. ଶଶିସେଣା । )

**ସରଉ(ଓ)ତା**—ଦେ. ବ ( ହି. ସରୌତା )—ଗୁଆକାତି—Sarau(o)tā ଜାଁତି सरौता Nut-cracker.

**ସରଃ**—ସଂ. ବ (ସୃ ଧାତୁ=ଗମନ କରିବା + ଅଧି. ଅସ୍ )—୧ । ପୁଷ୍କରଣୀ; Sarah ପୋଖରୀ; ସରୋବର; ତଡ଼ାଗ ( ଶବ୍ଦସାଗର )—( ସରସ୍—ଅନ୍ୟରୂପ ) 1. Pond; tank; lake. ୨ । (+ କର୍ତ୍ତୃ. ଅ ) ଜଳ ( ଜଟାଧର )—2. Water. ୩ । ଦହିର; ଦହିର ଉପରେ ପଡ଼ିବା ମୋଟ ସ୍ତର ( ରତ୍ନମାଳା )—3. The film formed over curd. ୪ । ଅଉଟା ଦୁଧ ଉପରେ ପଡ଼ିବା ଘନ ଆବରଣ; ଦୁଗ୍ଧର ସାରଭାଗ—4. Cream of milk; the film formed on the surface of milk cooled after boiling. ୫ । ( +ଭାବ. ଅ ) ଗତି ( ମେଦିନୀ )—5. Motion. ୬ । (+କର୍ତ୍ତୃ.ଅ) ବାଣ; ଶର (ହେମଚନ୍ଦ୍ର)

—6. Arrow. ୭ । ବାଣତୃଣ; ଏକପ୍ରକାର ତୃଣ; ଶରତୃଣ—7. A kind of reed; Saccharum Arundinaceum. ୮ । ଲବଣ ( ହେମଚନ୍ଦ୍ର )—8. Salt. ୯ । କର୍ପୂର (ଭରତ)—9. A water-spring. ୧୦ । ମନ୍ଦାକିନୀ ତରୁ ( ରାଜନିର୍ଘଣ୍ଟ )—10 Name of a tree. ସ. ବିଣ—ସର (ଦେଖ) Sara ( See )

**ସରଃ କାକ**—ସ.ବି.ପୁଂ (ସରୋବରଚାରୀ କାକ; ମ. ପ. ଲୋ; କର୍ମଧା)—Sarah kāka ହଂସ ( ଶବ୍ଦରତ୍ନାବଳୀ )—Swan. ( ସରଃ କାକୀ—ସ୍ତ୍ରୀ )

**ସରକ**—ସ ବିଣ. ପୁଂ ( ସୃ ଧାତୁ=ଗମନ କରିବା+କର୍ତ୍ତ୍ରି ଅକ )—Saraka ଗମନଶୀଳ; ଗତିବିଶିଷ୍ଟ (ଶବ୍ଦରତ୍ନାବଳୀ)—Moving. ( ସରିକା—ସ୍ତ୍ରୀ ) ସ. ବି—୧ । ସରୋବର ( ଶବ୍ଦରତ୍ନାବଳୀ )—1. Tank; lake. ୨ । ଆକାଶ (ସିଦ୍ଧାନ୍ତକୌମୁଦୀ)—2. The sky. ୩ । ଶୀଧୁ ପାତ୍ର; ମଦ୍ୟ ପାତ୍ର(ମେଦିନୀ)-3. A wine glass; goblet. ୪ । ଶୀଧୁ ପାନ; ମଦ୍ୟପାନ (ମେଦିନୀ)—4. Drinking of wine. ୫ । ଇକ୍ଷୁ ଶୀଧୁ; ଆଖୁ ରସରୁ ପ୍ରସ୍ତୁତ ମଦ ( ମେଦିନୀ)—5. Wine distilled from sugarcane juice. ୬ । ଅଚ୍ଛିନ୍ନ ଅଧ୍ୱଗନ୍ତବ୍ୟ; ଅଖଣ୍ଡିତ ବର୍ତ୍ମ ପଥ; ସଡ଼କ (ମେଦିନୀ)—6. A continuous line of road. ୭ । ମଦ୍ୟ ପରିବେଶନ (ଭରତ)—7. The serving of wine to drinkers; distribution of spirituous liquor. ୮ । ସୁରା; ମଦ୍ୟ—8. Spirituous liquor; spirits ( Apte ). ୯ । ( +ଭାବ. ଅକ ) ଗତି; ଗମନ—9. Going. ୧୦ । ( +କର୍ମ. ଅକ ) ସ୍ୱର୍ଗ—10. Heaven ( Apte ). ଦେ. ବି—୧ । ପଣ୍ୟବସ୍ତୁରାଶି—1. Merchandise. [ ଉ—ତାର ନିକଟ କୋଡ଼ିଏ ସରକ ବାରଗୋଡ଼ିଆ, ପନର ଗୋଡ଼ିଆ କୁଶଳୀ, ଚକ୍ରକନାଥ ଅଛି । କର୍ଣ୍ଣା ଦିନେ ସେଥିରେ ସଂଳକ ନେ ଅଣ କରେ—ଫକୀରମୋହନ. ଗଳ୍ପସ୍ୱଳ୍ପ । ) ୨ । ସ୍ଥାନାନ୍ତରକୁ ପଣ୍ୟବସ୍ତୁରାଶି ବହନ କରିବାର ଥର; ଖେପ—2. A trip of conveying merchandise.

**ସରକଟ**—ଦେ· ବିଣ—ଖୁବ୍ ବର୍ଷାଯୁକ୍ତ ( ସମୟ )—( a time ) Of Sarakaṭa plentiful rain. ( ଉ—କଳକଟ ସରକଟ, ସିଂହ ଶୁଖାଏ, କନ୍ୟେ କାନେ କାନ । ବନ୍ଧୁ ବନ୍ଧୁ ଭୂଲେ କରିଥିଲେ କାହିଁ ରହିବ ଧାନ—କୃଷିବଚନ । )

**ସର କଢ଼ା**—ଦେ, ବିଣ—ଯେଉଁ ଅଉଟା ଦୁଧର ଉପରେ ପଡ଼ିଥିବା Sara karḍhā ସରକୁ ବାହାର କରି ନିଆ ଯାଇଥାଏ—
ସର ତୋଲା ( milk ) From which cream has
पटाया हुआ been removed. ଦେ· ବି—ଗୁଣି ବିଦ୍ୟା ବା ମନ୍ତ୍ର ଯନ୍ତ୍ର ପ୍ରୟୋଗଦ୍ୱାରା କୌଣସି ଗାଈର ଦୁଗ୍ଧକୁ ସରଶୂନ କରିବାର ପ୍ରକ୍ରିୟା—Causing the milk of a cow to be devoid of cream by employing black magic. [ ଦ୍ର—ଯେଉଁ ଗାଈ ପ୍ରତି 'ସର କଢ଼ା' ପ୍ରୟୋଗ କରା ଯାଇଥାଏ, ତାହା-ଠାରୁ ଦୁହାଁ ହେବା ଦୁଧକୁ ଅଉଟିଲେ ସେ ଦୁଧରେ ଆଦୌ ସର ପଡ଼େ ନାହିଁ । ]

**ସରକଲ୍**—ବୈଦେ. ବି—ସର୍କଲ୍ ( ଦେଖ )—Sarkal ( See )
Sarakal সার্কেল सरकल

**ସର କଲମ**—ଦେ. ବି—ଲେଖଣୀ ରୂପେ ବ୍ୟବହୃତ ଶରତୃଣର କାଠି—Sara kalama Reed of 'Sara' grass used as
সর কলম सरकण्डाका कलम pen; reed-pen.

**ସରକସ୍**—ବୈଦେ. ବି (ଇଂ)—ସର୍କସ୍ (ଦେଖ)—Sarkas (See)
Sarakas সার্কাস सरकस

**ସରକା**—ବୈଦେ· ବି ( ଫା, ସରୋକାର )—୧ । ସମ୍ବନ୍ଧ; ସଂପର୍କ—Sarakā 1. Connection; relation. ୨ । ଅଂଶ;
সরোকার ହିସା—2. Share. ପ୍ରାଦେ. ( ଘାଟଶୀ )—
सरोकार କୁଟା ଅବା ଲୁଣ୍ଡା—A wisp of straw for iginiting fire.

**ସରକା(କେ)ଇବା**—ଦେ· କ୍ରି. ( ସ. ସୃ ଧାତୁ )—୧ । ଏକପାଖକୁ Sarakā(ke)ibā ଘୁଞ୍ଚାଇବା—1. To remove a thing
সরান to one side. ୨ । ସ୍ଥାନାନ୍ତରିତ କରିବା—
सरकाना 2. To remove a thing.

**ସର କାଢ଼ିବା**—ଦେ. କ୍ରି—୧ । ଅଉଟା ଦୁଧ ଉପରେ ପଡ଼ିଥିବା ସରକୁ Sara kārḍhibā ଉଠାଇ ନେବା —1. To remove the
সরতোলা मलाई निकालना layer of cream from
[ସରକାଢ଼ା(ଢ଼େ)ଇବା—ଣିଜନ୍ତରୂପ] boiled milk.
୨ । ମନ୍ତ୍ରଯନ୍ତ୍ର ପ୍ରୟୋଗଦ୍ୱାରା ଗାଈର ଦୁଧକୁ ସରଶୂନ କରିବା—2. To cause the milk of a cow to be devoid of cream by the employment of black magic. ୩ । (ଲକ୍ଷଣାର୍ଥ) କୌଣସି ପଦାର୍ଥର ସାର ଅଂଶକୁ ବାହାର କରିନେଇ ଅକାମିକା ଅଂଶକୁ ଛାଡ଼ିଦେବା—3. (figurative) To take away the essential part out of a thing and to leave the husk only.

**ସରକାର୍(ର)**—ବୈଦେ. ବି (ଫା. ସରକାର୍) ୧ । ପ୍ରଭୁ—1. Lord;
Sarakār(ra) master. ୨ । ସ୍ୱାମୀ; ମାଲିକ—2. Owner;
সরকার सरकार lord. ୩ । ଦେଶର ରାଜା—3. The king of a country. ୪ । ଦେଶୀୟ ରାଜାମାନଙ୍କ ପ୍ରତି ସମ୍ମାନସୂଚକ ବଚନ—4. His Highness. [ଉ—ସରକାରଙ୍କୁ କିଛି କଥା ଅଛପା ନାହିଁ ।] ୫ । ଦେଶର ଗଭର୍ଣ୍ଣମେଣ୍ଟ—5. The Government of a country. ୬ । ଦେଶର ଶାସନକର୍ତ୍ତା—6. Governor of a country. ୭ । ମୁସଲମାନ ରାଜତ୍ୱରେ ଦେଶର ରାଜସ୍ୱ ଆଦାୟର ସୁବିଧା ନିମନ୍ତେ ଗଠିତ ବିଭାଗ;

ସୁବା—7 A fiscal division of a Province during Mahomedan rule. [ଦ୍ର—୧ । ଗୁଡ଼ାଏ ମହଲ୍ଲାର ସମଷ୍ଟିରେ ପ୍ରଗନ୍ନା ଏବଂ ଗୁଡ଼ାଏ ପ୍ରଗନ୍ନାର ସମଷ୍ଟିରେ ଗୋଟିଏ ସରକାର୍ ହେଉଥିଲା ।

୨ । ମୁସଲମାନ୍‌ମାନଙ୍କ ରାଜତ୍ୱରେ 'ଦଣ୍ଡପାଟ' ପରବର୍ତ୍ତୀରେ 'ସରକାର୍' ନାମ ହେଲା । ଜଗବନ୍ଧୁ ପ୍ରାଚୀନ ଉତ୍କଳ ]

୮ । ଦେଣଦାରଙ୍କ ଠାରୁ ପାଉଣା ଟଙ୍କା ଅଦାୟକାରୀ—8. A collector of dues from debtors or persons who are liable to pay. [ଦ୍ର—ସହରବାସୀଙ୍କଠାରୁ ଟିକସ ଅଦାୟକାରୀ, ଦୋକାନଦାର ବା ମହାଜନଙ୍କ ନିଯୁକ୍ତ ଦେଣାଅଦାୟକାରୀ ଓ ପ୍ରଜାଙ୍କଠାରୁ ରାଜସ୍ୱ ଅଦାୟକାରୀମାନଙ୍କୁ 'ସରକାର' କହନ୍ତି । ]

୯ । ଘରର ଜମା ଖରଚ ପରିଦର୍ଶକ କର୍ମଚାରୀ; ଗୃହର ତତ୍ତ୍ୱାବଧାରକ—9. Superintendent of a household. ୧୦ । ବଙ୍ଗଦେଶର ବଂଶୋପାଧି ବିଶେଷ 10. A family title in Bengal [ଦ୍ର—ବଙ୍ଗ ଦେଶରେ ମୁସଲମାନ୍ ରାଜତ୍ୱ ସମୟରେ ଲେଖାପଢ଼ା ଜାଣିଥିବା ସମ୍ଭ୍ରାନ୍ତ ହିନ୍ଦୁ ଓ ମୁସଲମାନଙ୍କୁ ନବାବ ଏହି ଉପାଧି ଦେଉଥିଲେ ଏବଂ ତାହା କାଳକ୍ରମେ ବଂଶଗତ ଉପାଧିରେ ପରିଣତ ହୋଇଯାଇଅଛି ।] ୧୧ । ମୋଗଲ ରାଜତ୍ୱକାଳରେ ଦାକ୍ଷିଣାତ୍ୟର ପୂର୍ବ ଉପକୂଳବର୍ତ୍ତୀ କେତେକ ଅଞ୍ଚଳର ନାମ 11. A name formerly given to the seaside tracts on the east coast of South India; the Sircars. [ଦ୍ର—ଏହା ଦୁଇ ଭାଗରେ ବିଭକ୍ତ । ଯଥା—

୧ । ଉତ୍ତର ସରକାର (The Northern Sircars), ଅର୍ଥାତ୍ ଆଧୁନିକ ଗଞ୍ଜାମ, ବିଶାଖାପଟ୍ଟଣା, ଗୋଦାବରୀ ଓ କୃଷ୍ଣା ଜିଲ୍ଲାମାନ ।

୨ । ଦକ୍ଷିଣ ସରକାର (The Southern Sircars) ଅର୍ଥାତ୍ ଉତ୍ତର ସରକାରର ଦକ୍ଷିଣକୁ ଲାଗିଥିବା ଦାକ୍ଷିଣାତ୍ୟର ଉପକୂଳାଂଶ । ]

ବୈଦେ॰ ଅ—ରାଜା ଓ ହାକିମମାନଙ୍କୁ ଅନୁଗତ ବ୍ୟକ୍ତିମାନଙ୍କର ସଂବୋଧନ; ହେ ମହାଶୟ ! ହେ ପ୍ରଭୋ ! ହେ ସ୍ୱାମିନ୍ !—A word used in addressing kings and higher personages e. g. 'Your Honour' ! My Lord ! Your Highness. [ ଦ୍ର—ଏହି ଶବ୍ଦ ଇଂରାଜୀଭାଷାରେ ମଧ୍ୟ ବ୍ୟବହୃତ ହେଉଛି ।]

**ସରକାର୍ ବାହାଦୁର**—ବୈଦେ॰ ବି ( 'ସରକାର' ଶବ୍ଦ ସଙ୍ଗେ Sarakār bāhādur ସମ୍ମାନାର୍ଥକ 'ବାହାଦୁର' ଶବ୍ଦର ସରକାରବାହାদুর सरकारबहादुर ଯୋଗ )—ମାନନୀୟ ଗଭର୍ଣ୍ଣମେଣ୍ଟ—The Hon'ble Government.

**ସରକାର ଉମେଶଚନ୍ଦ୍ର**—ଦେ॰ ବି ( ନାମ )—ଓଡ଼ିଶାର ସର୍ବପ୍ରଥମ Sarakāra Umeśa Chandra ସ୍ୱର୍ଗତ ଉପନ୍ୟାସ-উমেশচন্দ্ সরকার उमेशचन्द्र सरकार ଲେଖକ—The first novel writer of modern Orissa; the late Babu Umeschandra Sircar [ଦ୍ର—ଏ ଓଡ଼ିଆ ଭାଷାରେ ପ୍ରଥମେ ଉପନ୍ୟାସ ଲେଖିଥିଲେ । ତାହାଙ୍କ ଲିଖିତ "ପଦ୍ମମାଳୀ" ଓଡ଼ିଆ ଭାଷାରେ ସର୍ବପ୍ରଥମ ଐତିହାସିକ ଉପନ୍ୟାସ ୧୮୮୮ ଖ୍ରୀଷ୍ଟାବ୍ଦରେ ଢେଙ୍କାନାଳଠାରୁ ପ୍ରକାଶିତ । ପାଲଲହଡ଼ା ରାଜ୍ୟର କର୍ମଚାରୀମାନଙ୍କଦ୍ୱାରା ପାଞ୍ଚଗଡ଼ ଆକ୍ରମଣ ଓ ହରିହର ଭ୍ରମରବରଙ୍କ ଦ୍ୱାରା ପାଲଲହଡ଼ା ଆକ୍ରମଣ ଏହି ଦୁଇଗୋଟି ଐତିହାସିକ ଘଟଣା ଅବଲମ୍ବନରେ ଲିଖିତ ଓ ପ୍ରସଙ୍ଗକ୍ରମେ ପାଲଲହଡ଼ା ରାଜ୍ୟର ଇତିବୃତ୍ତ ଓ ପାଞ୍ଚଗଡ଼ ପାଲଲହଡ଼ାର ଅଧିକାରରୁ ଚ୍ୟୁତ ହୋଇ ଗଭର୍ଣ୍ଣମେଣ୍ଟଙ୍କ ଖାସମହାଲ ଭୁକ୍ତ ହେବା ବିଷୟମାନ ଏଥିରେ ସନ୍ନିବେଶିତ । ଶିକ୍ଷିତ ସମାଜରେ ଏହି ପୁସ୍ତକଖଣ୍ଡି ଯଥେଷ୍ଟ ସମାଦର ଲାଭ କରିଥିଲା ଏବଂ ଏଥିର ଭାଷା ପ୍ରାଞ୍ଜଳ ଓ ଦୋଷବର୍ଜିତ ଥିବାରୁ କଲିକତା ବିଶ୍ୱବିଦ୍ୟାଳୟ ଦ୍ୱାରା ଓଡ଼ିଆ ପାଠ୍ୟପୁସ୍ତକରୂପେ ଏହା ନିର୍ବାଚିତ ହୋଇଥିଲା । "ପଦ୍ମମାଳୀ"ର ଦ୍ୱିତୀୟ ସଂସ୍କରଣ ୧୯୧୨ ଖ୍ରୀଷ୍ଟାବ୍ଦରେ ତାଳଚେର ଗଡ଼ଠାରୁ ଏବଂ ତୃତୀୟ ସଂସ୍କରଣ ୧୯୩୦ ରେ କଟକ ଲକ୍ଷ୍ମୀନାରାୟଣ ପ୍ରେସରୁ ପ୍ରକାଶିତ ହୋଇଥିଲା । ଉତ୍କଳ ସାହିତ୍ୟର ଗୌରବବର୍ଦ୍ଧନ ଓ ଉତ୍କଳୀୟ ଜନସମାଜର ପ୍ର · ·ମ୍ପାଦନ ଉମେଶଚନ୍ଦ୍ରଙ୍କ ଲକ୍ଷ୍ୟ ଥିଲା ।

ଉମେଶଚନ୍ଦ୍ର ୧୮୫୭ ମସିହାରେ ପୁରୀ ଧାମରେ ଜନ୍ମ-ଗ୍ରହଣ କରିଥିଲେ । ତାହାଙ୍କ ପିତା ଈଶ୍ୱରଚନ୍ଦ୍ର ଗଭର୍ଣ୍ଣ-ମେଣ୍ଟଙ୍କ ଅଧୀନରେ କମିଶ ଦାରୋଗାରୂପେ କାର୍ଯ୍ୟ କରୁ-ଥିଲେ । ପିତାଙ୍କର ଦୁଇ ପୁତ୍ର ଓ ଏକ କନ୍ୟା ମଧ୍ୟରୁ ଉମେଶଚନ୍ଦ୍ର ସର୍ବକନିଷ୍ଠ । ଅଳ୍ପ ବୟସରେ ବସନ୍ତରୋଗରେ ଈଶ୍ୱରଚନ୍ଦ୍ରଙ୍କ ମୃତ୍ୟୁ ହେବାରୁ ଦୁଇବର୍ଷବୟସ୍କ ବାଳକ ଉମେଶଚନ୍ଦ୍ର ଜ୍ୟେଷ୍ଠ ଭ୍ରାତା, ଭଗିନୀ ଓ ଜନନୀଙ୍କ ସହିତ କଟକକୁ ଆସି ଜାଙ୍କିବଜାରରେ ଆତ୍ମୀୟ କୁଟୁମ୍ବଙ୍କ ସାହାଯ୍ୟରେ ବି. ଏ. ପର୍ଯ୍ୟନ୍ତ ଅଧ୍ୟୟନ କରି ପ୍ରଥମେ ଓଡ଼ିଶାର କମିଶନର୍ ସାହେବଙ୍କ ଅଫିସ୍‌ରେ କାର୍ଯ୍ୟ ଆରମ୍ଭ କରିଥିଲେ । ତାହାଙ୍କ ବୁଦ୍ଧି, ବିବେଚନା ଓ କାର୍ଯ୍ୟଦକ୍ଷତା ହେତୁ ସେ କ୍ରମେ ଢେଙ୍କାନାଳରେ ଆସିଷ୍ଟାଣ୍ଟ ମାନେଜର, ତାଳଚେରର ଓ କନିକାର ମାନେଜର ପଦମାନ ପ୍ରାପ୍ତ ହୋଇଥିଲେ । ସେହି ସମୟରେ ଉକ୍ତ ରାଜ୍ୟମାନ କୋର୍ଟ୍ ଅଫ୍ ୱାର୍ଡ୍‌ସ୍‌ଙ୍କ ଅଧୀନ ଥିଲା ଏବଂ ଗଭର୍ଣ୍ଣମେଣ୍ଟ ସ୍ୱୟଂ ଉକ୍ତ ରାଜ୍ୟମାନ ପରିଚାଳନ କରୁଥିଲେ । ଢେଙ୍କାନାଳରେ କାର୍ଯ୍ୟ କରୁଥିବା ସମୟରେ ୧୮୮୮ ଖ୍ରୀଷ୍ଟାବ୍ଦରେ ତାହାଙ୍କ ରଚିତ

"ପଦ୍ମମାଳୀ" ପ୍ରଥମେ ପ୍ରକାଶିତ ହେଲା । କଳକାତାରେ ଥିବା ସମୟରେ ଅସୁସ୍ଥତା ହେତୁ ତାହାଙ୍କୁ ରାଜକାର୍ଯ୍ୟରୁ ଅବସର ଗ୍ରହଣ କରିବାକୁ ହୋଇଥିଲା (୧୮୧୯) । ସେପରି ଉପରାମ ଭୂଅନ୍ତେ ସେ କଟକ ଚାନ୍ଦିନୀଚାରସ୍ଥ ସ୍ୱୀୟ ବାସଭବନରେ ଥାଇ ଓଡ଼ିଆ ସାହିତ୍ୟ ସେବାରେ ମନୋଯୋଗୀ ହୋଇଥିଲେ ଏବଂ ତହିଁର ଫଳସ୍ୱରୂପ "ସତ୍ୟୋଧର୍ମ ପ୍ରତୋଜୟତଃ" ନାମକ ଓଡ଼ିଆ ଐତିହାସିକ ନାଟକ ପ୍ରକାଶିତ ହୋଇଥିଲା । ସେ ଛଦ୍ମନାମ ଗ୍ରହଣ କରି ଓଡ଼ିଆ ଭାଷାରେ ରଙ୍ଗମାଳିକା, ମହାମୂଲ୍ୟ ନାମକ ଦୁଇଖଣ୍ଡ ପୁସ୍ତିକା ମଧ୍ୟ ପ୍ରକାଶ କରିଥିଲେ । ମୁକୁର ନାମକ ଓଡ଼ିଆ ମାସିକ ପତ୍ରିକାର ସେ ଜଣେ ପ୍ରଧାନ ଲେଖକ ଥିଲେ । ସେଥିରେ ସେ "ଉଦାସୀ" ଏହି ଛଦ୍ମ ନାମ ଗ୍ରହଣ କରି "କେନ୍ଦୁଝର ବିଦ୍ରୋହ" ନାମକ ଏକ ଐତିହାସିକ ଉପନ୍ୟାସ ଧାରାବାହିକରୂପେ ପ୍ରକାଶ କରୁଥିଲେ । କିନ୍ତୁ ତାହା ସମ୍ପୂର୍ଣ୍ଣ ହୋଇ ପାରି ନ ଥିଲା ।

ଇଂରାଜୀରେ ସାହିତ୍ୟ ମଧ୍ୟ ଉମେଶଚନ୍ଦ୍ରଙ୍କ ଯଥେଷ୍ଟ ପାରଦର୍ଶିତା ଥିଲା ଏବଂ ସେ ଇଂରାଜୀରେ ମଧ୍ୟ କେତେଖଣ୍ଡି ପୁସ୍ତକ ପ୍ରଣୟନ କରିଥିଲେ । ସେଥିମଧ୍ୟରୁ ସହଜ ଇଂରାଜୀ ଶିକ୍ଷା ୧ମ ଭାଗ (Easy way to learn English, Part I) Temple of Truth, Speaking the truth ଓ ହିତୋପଦେଶର ଇଂରାଜୀ ପଦ୍ୟାନୁବାଦ ( ଅର୍ଥାଭାବରୁ ଅପ୍ରକାଶିତ ) ଉଲ୍ଲେଖଯୋଗ୍ୟ । ଶେଷ ବୟସରେ ଅର୍ଥାଭାବ ହେତୁ ତାହାଙ୍କୁ ପୁଣି ତାଳଚେର ରାଜାଙ୍କର 'ଅତାଲିକ୍' ପଦ ଗ୍ରହଣ କରିବାକୁ ପଡ଼ିଥିଲା ( ୧୯୧୧ ) ଏବଂ ସେହିଠାରେ ସେ ଆମାଶୟ ରୋଗରେ ୧୯୧୪ ଖ୍ରୀଷ୍ଟାବ୍ଦରେ ଇହଲୀଳା ସମ୍ବରଣ କଲେ ।

ତାହାଙ୍କର ତିନି ପୁତ୍ର ମଧ୍ୟରୁ ଜ୍ୟେଷ୍ଠ ପୁତ୍ର ଶ୍ରୀ ଅପୂର୍ବକୃଷ୍ଣ ସରକାର ବି. ଏ. ଶିକ୍ଷାବିଭାଗରେ ଗଭର୍ଣ୍ଣମେଣ୍ଟଙ୍କ ଅଧୀନତାରେ କାର୍ଯ୍ୟ କରନ୍ତି । ତାହାଙ୍କର ମଧ୍ୟ ଓଡ଼ିଆ ସାହିତ୍ୟ ପ୍ରତି ଅନୁରାଗ ଅଛି ଏବଂ ସେ ଓଡ଼ିଆ ଭାଷାରେ 'ଇଂଲଣ୍ଡର ଇତିହାସ' ୧ମ ଭାଗ ଓ ୨ୟ ଭାଗ ନାମକ ଦୁଇଖଣ୍ଡି ପୁସ୍ତକ ପ୍ରଣୟନ କରିଅଛନ୍ତି—ସନ୍ଦର୍ଭଲେଖକ ଡାକ୍ତର କୈଳାସଚନ୍ଦ୍ର ରାଓ । ]

**ସରକାର ମୁଦେଇ**—ବୈଦେ· ବି ( କଟକ ) —ପୁଲିସର ଫରିଆଦୀ Sarakāra mudei ମକଦ୍ଦମାରେ ଅଭିଯୋକ୍ତା ରୂପେ ଠିଆ ହୋଇ सरकार मुदेई ଥିବା ଗଭର୍ଣ୍ଣମେଣ୍ଟ—The Crown as com- **सरकार मुदेई** plainant in serious criminal cases.

**ସରକାରୀ**—ବୈଦେ. ବିଣ (ଫା.)—୧ । ସରକାର ବା ଗଭର୍ଣ୍ଣମେଣ୍ଟ Sarakārī ସମ୍ବନ୍ଧୀୟ—1. Relating to Government; सरकारी official. ୨ । ରାଜକୀୟ—2. Relating to the king; royal. (ସରକାରିଅ—ଦେ· ରୂପ) (ବେସରକାରୀ—ବିପରୀତ) ୩ । ପବ୍ଲିକ ମାଲିକ ରାଜା ବା ଗଭର୍ଣ୍ଣମେଣ୍ଟ ସ୍ୱୟଂ ଅଛନ୍ତି—3. Belonging to the King or the Government. ୪ । ସର୍ବସାଧାରଣଙ୍କ ବ୍ୟବହାର ଯୋଗ୍ୟ ବା ଯହିଁରେ ସର୍ବସାଧାରଣଙ୍କର ଅଧିକାର ଅଛି—4. Open to the public; used by the public. ୫ । ଯେଉଁ ସମ୍ପତ୍ତି ବ୍ୟକ୍ତିବିଶେଷଙ୍କର ନୁହେଁ—5. Not private; public (property).

**ସରକାରୀ ଓକିଲ**—ବୈଦେ· ବି ( ଫା· ସରକାରୀ+ଵକୀଲ୍ )—Sarakārī okila ଗଭର୍ଣ୍ଣମେଣ୍ଟ୍ ପ୍ଲିଡର୍; ଯେଉଁ ଓକିଲ সবকাৰী উকিল ଗଭର୍ଣ୍ଣମେଣ୍ଟଙ୍କ ପକ୍ଷରୁ ମକଦ୍ଦମା ଚଳାନ୍ତି— **सरकारी वकील** Government pleader.

**ସରକାରୀ କର୍ମଚାରୀ**—ଦେ· ବି—ସରକାରୀ ଚାକର ( ଦେଖ ) Sarakārī karmachārī Sarakārī chākara ( See ) সবকাৰী কৰ্ম্মচাৰী **सरकारी कर्मचारी**

**ସରକାରୀ କାଗଜ**—ବୈଦେ· ବି (ଫା)—୧ । ରାଜକୀୟ ନଥି ଅଛି—Sarakārī kāgaja 1. Government record; সবকাৰী কাগজ public records. ୨ । ରାଜକୀୟ କାର୍ଯ୍ୟରେ **सरकारी कागज** ବ୍ୟବହୃତ କାଗଜ—2. Papers intended (ସରକାରୀ କାଗଜ ପତ୍ର—ଅନ୍ୟରୂପ) for use in Govern- (ସରକାରୀ କାଗଜାତ୍—ବହୁବଚନ) ment service.

**ସରକାରୀ କାମ(ର୍ଯ୍ୟ)**—ଦେ. ବି—୧ । ରାଜକୀୟ କର୍ମ—1. Govern- Sarakārī kāma(rjya) ment service. ୨ । ଗଭର୍ଣ୍ଣ- सरकारी काज ମେଣ୍ଟଙ୍କ ଅଧୀନ ଚାକିରି—2. Service under **सरकारी काम** the Government.

**ସରକାରୀ ଚାକର**—ବୈଦେ. ବି—ଗଭର୍ଣ୍ଣମେଣ୍ଟଙ୍କ ଅଧୀନତାରେ କାର୍ଯ୍ୟ Sarakārī chākara କରୁଥିବା ଭୃତ୍ୟ—Government सरकारी চাকব servant; a public servant. [ଦ୍ର—

ସରକାରୀ ଚାକରିଆ, ସରକାରୀ ନଉକର, ସରକାରୀ ନୌକର } ଅନ୍ୟରୂପ
**सरकारी नौकर**

ଉଚ୍ଚ ଶ୍ରେଣୀର ରାଜକୀୟ ଭୃତ୍ୟଙ୍କୁ ସରକାରୀ କର୍ମଚାରୀ ଓ ନିମ୍ନ ଶ୍ରେଣୀର ଭୃତ୍ୟଙ୍କୁ ସରକାରୀ ଚାକର ବୋଲାଯାଏ । ]

**ସରକାରୀ ଚାକ(କି)ରୀ**—ବୈଦେ. ବି—ଗଭର୍ଣ୍ଣମେଣ୍ଟଙ୍କ ଅଧୀନ ଚାକିରି Sarakārī chāka(ki)rī —Government service. সবকাৰী চাকৰী **सरकारी नौकरी**
( ସରକାରୀ ନୌକରୀ[ନଉକରୀ]—ଅନ୍ୟରୂପ )

**ସରକାରୀ ଚିଟି(ଠି)**—ଦେ· ବି—୧ । ରାଜକୀୟ ପତ୍ର—1. A Govern- Sarakārī chiṭi(ṭhi) ment letter. ୨ । ରାଜକୀୟ सरकारी পত্র କର୍ମ ସମ୍ବନ୍ଧୀୟ ପତ୍ର—2. An official letter. **सरकारी चिट्ठी**

**ସରକାରୀ ସିରସ୍ତା**—ବୈଦେ. ବି ( ଫା )—ରାଜକୀୟ ଅଫିସ— Sarakārī sirastā Government office. সৰকাৰী সেৰস্তা **सरकारी सिरस्ता**

**ସରକାସ୍**—ବୈଦେ. ବ ( ଇଂ ସର୍କସ୍ )—ସର୍କସ୍ ( ଦେଖ )
Sarakās Sarkas ( See )

**ସରକ୍ଇଟ୍ (ଇତ୍ୟାଦ)**—ବୈଦେ. ବ—ସର୍କିଟ୍ ଇତ୍ୟାଦ ( ଦେଖ )
Sarakit (etc) Sarkit etc ( See )

**ସର(ରି)କଦାର** ବୈଦେ, ବ (ଫା)-ସରକ୍ କାର୍; ଅଂଶୀଦାର; କୌଣସି
Sara(ri)kidāra ସମ୍ପତ୍ତିର ଅଂଶର ମାଲିକ—A cosharer.
सरीकदार सरीक

**ସରକିବା**—ଦେ. କି ଫା. ସରକ୍ନା—ଘୁଞ୍ଚିବା—To move off.
Sarakibā सरा सरकना
(ସରକ ଯିବା—ଅନ୍ୟରୂପ) (ସରକା[ଙ୍କୋ]ଇବା—ଣିଜନ୍ତରୂପ)

**ସରକୁଲ**—ଗ୍ରା. ବୈଦେ. ବ—ସର୍କଲ୍ ( ଦେଖ )
Sarakula Sarkal ( See )

**ସରକୁ(କ୍ୟୁ)ଲ(ଲା)ର**—ବୈଦେ. ବ—ସର୍କୁଲର୍ ( ଦେଖ )
Saraku(kyu)la(lā)r Sarkular ( See )

**ସରଖତ**—ବୈଦେ. ବ ( ଇଂ )—ଘର ଭଡ଼ା ଦଅଯିବାର ସର୍ତ୍ତମାନ
Sarakhat ଲେଖାଥିବା ଦସ୍ତାବଜ—A deed in which
घरभाड़ा पाटा कबुलियत the conditions of the lease
सरखत of a house are recorded.

**ସରଗ**—ଗ୍ରା. ବ ( ସ. ସ୍ୱର୍ଗ )—୧ । ସ୍ୱର୍ଗ—1. Heaven. ୨ ।
Saraga ଆକାଶ—2. The sky.
स्वग सरग

**ସରଗ ଚନ୍ଦ**—ଦେ. ବ ( ସ. ସ୍ୱର୍ଗ+ଚନ୍ଦ୍ର )—୧ । ସ୍ୱର୍ଗର ଚନ୍ଦ୍ରମା—
Saraga chānda 1. The moon in the sky. ୨ ।
स्वर्गेर चान्द ( ଲକ୍ଷଣାର୍ଥ ) ଚନ୍ଦ୍ରମା ତୁଲ୍ୟ ସୁନ୍ଦର ବସ୍ତୁ ବା ବ୍ୟକ୍ତି—
सरग चाँद 2. [ figurative ] A person or thing
as beautiful as the moon. ୩ । (ଲକ୍ଷଣାର୍ଥ)
ଚନ୍ଦ୍ରମା ତୁଲ୍ୟ ମନୁଷ୍ୟର ଅପ୍ରାପ୍ୟ ବସ୍ତୁ—3. [ figurative ] A thing as unattainable as the moon.

**ସରଗ ତ(ତା)ର**—ଦେ. ବ ( ସ. ସ୍ୱର୍ଗ+ତାରା )—୧ । ସ୍ୱର୍ଗର ତାରା—
Saraga ta(tā)rā 1. A star in the sky. ୨ ।
स्वर्गेर तारा ( ଲକ୍ଷଣାର୍ଥ ) ତାରା ପରି ଉଜ୍ଜ୍ୱଳ ପଦାର୍ଥ—
सरग तारा 2. ( figurative ) A shining thing.
୩ । ( ଲକ୍ଷଣାର୍ଥ ) ତାରକା ପରି ଅପ୍ରାପ୍ୟ ବସ୍ତୁ—
3. ( figurative ) Any unattainable thing.

**ସରଗ ପଥର**—ଦେ. ବ—ଭୂଅପଥର—Hail-stone.
Saraga pathara शिल ओला

**ସରଗ ଫଳ**—ଦେ. ବ—ଭୂଅପଥର—Hail-stone. ପ୍ରାଦେ.
Saraga phala (ଗଡ଼ଜାତ) ବ—ମାଇପଙ୍କର ପରସ୍ପର ମଧ୍ୟରେ
शिल ओला ସ୍ଥାପନ କରିବା ବନ୍ଧୁତା—A kind of god-relationship amongst women.

**ସରଗମ୍**—ଦେ. ବ ( ସ. ସା. ରେ. ଗା. ମା. କମ୍ପା ସ୍ୱରଗ୍ରାମ )—
Saragam ୧ । ( ସଙ୍ଗୀତ ) ସ୍ୱରଗ୍ରାମ; ସପ୍ତସ୍ୱରର କ୍ରମଗତି—
सारिगामा 1. ( music ) Musical gamut. ୨ ।
सरगम ସଙ୍ଗୀତର ମୌଳିକ ସ୍ୱରମାନ—2. The elementary tunes of music. ( ଯଥା—ତାକୁ ତ
ସରଗମ୍ ଜଣା ନାହିଁ; ସେ ପୁଣି ଓସ୍ତାଦ୍ ହେବାକୁ ଭୁରୁଣା କରୁଛି । )

**ସରଗରମ୍**—ବୈଦେ. ଵଣ ( ଫା. ସର୍‌ଗରମ୍ )—୧ । ଅତ୍ୟନ୍ତ ଗରମ
Saragaram ବା ଉଷ୍ଣ—1. Very hot or warm.
सरगवम सरगर्म ୨ । ଉତ୍ତେଜିତ—2. Excited. ୩ ।
(ସରଗରମୀ—ବ); ଅତ୍ୟୁତ୍ସାହିତ; ଅତି ବ୍ୟଗ୍ର—3. Very eager.
୪ । ତେଜାଳିଆ; ସ୍ଫୁର୍ତ୍ତିବିଶିଷ୍ଟ; ତେଜସ୍ୱୀ—4. Energetic; vigorous. ୫ । ଜାକଜମକଥିବା; ଆଡ଼ମ୍ବରମୟ—5. Showy. ୬ । କୋଳାହଳପୂର୍ଣ୍ଣ—6. Full of ado. ୭ । ଲୋକପୂର୍ଣ୍ଣ; ଜନତାପୂର୍ଣ୍ଣ—7. Crowded. ୮ । ପ୍ରେମବିହ୍ୱଳ—8. Mad with love. ୯ । ଉତ୍ସାହୀ; ଉତ୍ସାହାନ୍ୱିତ—9. Full of promptness or energy. ୧୦ । କୌଣସି ଦ୍ରବ୍ୟର ବେଶି ଭିଡ଼ହେବା ହେବାରୁ ତହିଁର ମୂଲ୍ୟ ବା ଦର ବଢ଼ି ଯାଇଥିବା (ଅବସ୍ଥା)—10. The state of the market in which the price of a particular commodity has been rising very high. ( ଯଥା—ଏ ମାସରେ ଅନେକ ବିବାହ ଥିବାରୁ ଲୁଗାର ବଜାର ସରଗରମ ହୋଇ ଯାଇଛି । )

**ସରଗରୁ ତୋଳିବା**—ଦେ. କି ( ଲକ୍ଷଣାର୍ଥ )—ନ ଥିବା ବସ୍ତୁକୁ
Saragaru tolibā ବା ଅସମ୍ଭବ ବସ୍ତୁକୁ କଳ୍ପନାପ୍ରଭାବରୁ
आकाश फुँड़े तोला ଆଣିବା—( figurative ) To
सरगसे तोड़ना produce a non-existing or
(ସରଗରୁ ତୋଳ ଆଣିବା—ଅନ୍ୟରୂପ) physically impossible thing by stretch of imagination.
[ ଉ—ଚଳରେ ବର ଗଢ଼ିବ, ନାଁ ସରଗରୁ ତୋଳ ଆଣିବ ?—ଲକ୍ଷ୍ମଣଭାଗିସା. ନଅଭୁଣୀ । ]

**ସରଗରୁ ପଡ଼ିବା**—ଦେ. ଵଣ—୧ । ଯାହା ଆଶା କରାଯାଇ ନ ଥାଏ—
Saragaru pardibā 1. Unexpected. ୨ । ଅଦ୍ଭୁତ—
स्वर्गथेके पड़ा सरगसे गिरा हुआ 2. Wonderful.
स्वरग थेके पड़ा ଦେ. କି—୧ । ଉପରୁ ଖସି ପଡ଼ିବା—
सरगसे गीरना 1. To fall down from high.
[ଉ—ସରଗରୁ ପଡ଼ିଲେ ପକ୍ଷୁପାଣ୍ଡବେ, ମାର କନବାସ ଗଲେ—ଚଗ । ] ୨ । ( ଲକ୍ଷଣାର୍ଥ ) ଅପ୍ରତ୍ୟାଶିତଭାବରେ ଉପସ୍ଥିତ ହେବା ବା ଘଟିବା—2. [ figurative ] To happen unexpectedly.

**ସରଗୀ**—ପ୍ରାଦେ. ବ—୧ । (ସିଂହଭୂମି) ଶାଳୁଆ କାଠ—1. Śāla
Saragi timber. ୨ । ( କଳାହାଣ୍ଡି ) ଶାଳୁଆ ଗଛ—
2. Śāla tree. [ ଦ୍ର—ସରଗୀ ଚାଲ=ଶାଳୁଆ ଗଛ ବହୁଳ ଥାଏ କିମ୍ବା ଗ୍ରାମବିଶେଷର ନାମ । ]

**ସରଗୁଣା**—ଦେ. ବ—ସାରଗୁଣା; ଏକପ୍ରକାର ବୀଣା; ବାଦ୍ୟଯନ୍ତ୍ରବିଶେଷ
Saragunā A kind of musical instrument; a
वीणा वीणाविशेष kind of harp

**ସରଗୁଜା**—ଦେ. ବ—୧ । ଛୋଟନାଗପୁର ବିଭାଗର ଅନ୍ତର୍ଭୁକ୍ତ
Sarugujā ଦେଶୀୟ ରାଜ୍ୟବିଶେଷ—1.Name of a Ruling

ସରଗୁଜା ସର୍‌ଗୁଜା State near the Chotanagpur
ସରଗୋଜା, ସରଗୁଜା Division; Sarguja. ୨ । ରାମତିଲା;
ରାମତିଲ ସୋମପ୍ରଜାତୀୟ ବର୍ଗର କୃଷିଜାତ ବର୍ଷାୟୁଃ ଶାକ-ବିଶେଷର ତୈଳବୀଜ—2. Niger seed; Guizotia Abyssinica. [ ଦ୍ର—ଏହାର ଆଦିବାସ ଆଫ୍ରିକା; କିନ୍ତୁ କେତେମାନ ଭାରତରେ ସର୍ବତ୍ର ଏହାର ଚାଷ ହେଉଅଛି । ଏଥିରେ ଶୀତ ଦିନେ ହଳଦିଆ ଫୁଲ ଫୁଟେ । ଏହାର ମଞ୍ଜି ଚେପ୍ଟା । ଏଥିର ତେଲ ରାନ୍ଧିବାରେ, ଦେହରେ ଲଗାଇବାରେ, ଜଳାଇବାରେ ଓ ରଙ୍ଗରେ ମିଶାଇବାରେ ଲାଗେ । ଏହା ସୋରିଷ ତେଲ ଅପେକ୍ଷା ପତଳା । ]

ସରଗୁଞ୍ଜା—ଗ୍ରାଦେ. ( ସିଂହଭୂମ )ବି—ଲମ୍ବାକୃତିବିଶିଷ୍ଟ ରାଶି (ତିଳ)—
Saraguñjā A species of long sesame.

ସର ଘର—ଦେ. ବି ( ସଂ. ସାର+ଗୃହ )—ଭଣ୍ଡାର ଘର; ଅହାର୍ଯ୍ୟ
Sara ghara ସାମଗ୍ରୀ ସଞ୍ଚିତ ହେବାର ଗୃହ—Store-room
ଭାଡାର ଘର ଭଣ୍ଡାର ଘର for victuals.

ସର ଘରି(ରୁ)ଆ—ଦେ. ବି. ପୁଂ—ସର ଘରର ଭାରପ୍ରାପ୍ତ ଭୃତ୍ୟ;
Sara ghari(ru)ā ଭଣ୍ଡାର ରକ୍ଷକ—A store keeper;
ଭଁଡାରୀ ଭଣ୍ଡାରୀ the servant in charge of the
(ସରଘରଅଣୀ—ସ୍ତ୍ରୀ) store room.

ସରଘା—ସଂ. ବି ( ସୃ ଧାତୁ+ଅ=ସର=ଗମନକାରୀ+ହନ୍ ଧାତୁ=
Saraghā ଅଘାତ କରିବା+କର୍ତ୍ତୃ. ଅ )—ମଧୁମକ୍ଷିକା; ମହୁମାଛି
—Bee.

ସରଘା ପଟଳ—ସଂ. ବି ( ୬ଷ୍ଠୀ ତତ୍ )—ମହୁମାଛିଙ୍କ ଦଳ—
Saraghā paṭala A multitude of bees.

ସରଙ୍ଗ—ସଂ. ବି ( ସୃ ଧାତୁ+କର୍ତ୍ତୃ. ଅଙ୍ଗ )—୧ । ଚତୁଷ୍ପଦ ଜନ୍ତୁ—
Saraṅga 1. A quadruped ( Apte). ୨ । ପକ୍ଷୀ—
2. A bird ( Apte).

ସର୍‌ଚ(ଚେ)କି—ଦେ. ବି (ସଂ. ସର+ଚକ୍ର) —କଡ଼େଇରେ ଅଉଟା
Sara cha(che)ki ହେବା ଦୁଧ ଉପରେ ପଡ଼ୁଥିବା ଚକାକାର
(ସରଚକୁଳି—ଅନ୍ୟରୂପ) ସରକୁ ଉଠାଇ ଆଣି ପରସ୍ତ ପରସ୍ତ କରି
ସର ଚାকতি ସଜାଇ ତକୁଳ ସର ଯେଉଁ ପିଠା ତିଆରି
ମଲାଈ ରାବଡী କରାଯାଏ—Round thin flakes of cream formed ov r boiling milk and taken out and placed one over the other to make one thick layer.

ସରଜ୍—ବୈଦେ. ବି ( ଇଂ. ସର୍ଜ୍ )—ଏକପ୍ରକାର ପଶମୀ ଲୁଗା—
Saraj Serje; a kind of woolen cloth.
সার্জ सर्ज

ସରଜ—ସଂ. ବି ( ସର=ଦଧିର+ଜନ୍ ଧାତୁ+କର୍ତ୍ତୃ. ଅ )—
Saraja ୧ । ହୈୟଙ୍ଗବୀନ; କାଲିର ଦୁଧରୁ ପ୍ରସ୍ତୁତ ଘିଅ—
1. Ghee prepared from yesterday's milk. ୨ । ନବନୀତ; ଲହୁଣୀ—2. Butter. ସଂ. ବିଣ—ମଳିନ (ଭାଗବତ)—Dirty. ଗ୍ରା. ବି (ସଂ.ସରୋଜ)—ପଦ୍ମ—Lotus. ବୈଦେ. ବି—ସରଜ୍ ( ଦେଖ )
Saraj ( See )

ସରଜଃ—ସଂ. ବି ଓ ବିଣ. ସ୍ତ୍ରୀ ( ବହୁବ୍ରୀହି; ସ+ରଜସ୍ )—ସରଜସ୍କା
Sarajaḥ ( ଦେଖ )—Sarajaskā ( See ) ସଂ. ବି—
ପଙ୍କଜ, ପଦ୍ମ (ଶବ୍ଦକୋଷ)—Lotus.

ସରଜକ—ଗ୍ରା. ବି ( ପଦ୍ୟ )—ସର୍ଜକ ( ଦେଖ )
Sarajaka Sarjaka ( See )
সর্জক [ଦ୍ର—ସରଜକ ଭୁମ୍ଭେ ତ ଉସର । ଅଧମକୃତ୍ୟ. ବଦନ୍ତ
सर्जक ଚିନ୍ତାମଣି ।]

ସରଜ(ଜେ)ଣ୍ଟ୍—ବୈଦେ. ବି (ଇଂ. ସର୍ଜେଣ୍ଟ)—ସର୍ଜେଣ୍ଟ ( ଦେଖ )
Saraja(je)nṭ Sarjanṭ ( See )

ସରଜତ—ସଂ. ବିଣ (ସହାର୍ଥ ବହୁବ୍ରୀହି; ସ+ରଜତ)—ରଜତ ବିଶିଷ୍ଟ;
Sarajata ରୌପ୍ୟଯୁକ୍ତ—Having silver.

ସରଜନ୍—ବୈଦେ. ବି (ଇ. ସର୍ଜନ୍)—ସର୍ଜନ୍ ( ଦେଖ )
Sarajan Sarjan ( See )

ସରଜନ(ନା)—ଗ୍ରା. ବି (ପଦ୍ୟ) (ସ. ସର୍ଜନ)—୧ । ସର୍ଜନ (ଦେଖ)
Sarajana(nā) 1. Sarjana ( See ) [ଦ୍ର—ଦେବତା-ମାନଙ୍କର ଦିବ୍ୟ ପୁରମାନ, କେତେ ହୋଇ କଲେ ସେହି ସରଜନ । କୃଷ୍ଣସିଂହ. ମହାଭାରତ. ଅଦ ।]

ସରଜମି ନ୍(ନି)—ବୈଦେ. ବି (ଜଚରଥ) (ଫା. ସର୍=ପ୍ରଧାନ+
Sarajamin(ni) ଜମିନ୍=ସ୍ଥାନ; ସରେଜମିନ୍=ସମସ୍ତ ଭୂମି)
সরজমিন —୧ । ଭୂପୃଷ୍ଠ—1. The surface of the
सरजमीन earth. ୨ । ସ୍ଥାନ—2. Place. ୩ । ମକଦ୍ଦମା ସମ୍ବନ୍ଧ ସ୍ଥାନ—3. The spot or locality connected with a case. [ ଦ୍ର—ଅର୍ଥାତ × × × ସର ଜମିନରେ ପହଞ୍ଚି ବସ୍ତୁର ମୁତାବକ ଅସାମି ଘର × × ଖାନତଲାସ କରି ବହୁତ ଖୁସିଅଛରେ ଅସାମୀକୁ ଗ୍ରେପ୍ତାର କଲୁ—ଫକୀରମୋହନ. ଛମାଣ ଅଠଗୁଣ୍ଠ ।] ୪ । ଉତ୍ପତ୍ତିସ୍ଥଳ
4. Place of occurrence.

ସରଜମିନ୍ ତଦନ୍ତ(ତଦାରଖି[ଖା]) —ବୈଦେ.ବି (ଜଚରଥ)—ମକଦ୍ଦମା
Sarjamin tadanta(tadārakhi[kha]) ସମ୍ବନ୍ଧ ସ୍ଥାନରେ
সরজমিন তদন্ত ଉପସ୍ଥିତ ହୋଇ ସେଠାରେ କରିବା ଅନୁସନ୍ଧାନ—
सरजमीन तहकिकात A local investigation; local enquiry; local inspection.

ସରଜରି —ବୈଦେ.ବି (ଇଂ. ସର୍ଜେରି)—ଡାକ୍ତରି ଅସ୍ତ୍ର-ଚିକିତ୍ସା ବିଦ୍ୟା—
Sarajari সার্জরী सर्जरी Surgery.

ସରଜସା—ସ. ବି ଓ ବିଣ. ସ୍ତ୍ରୀ ( ସ+ରଜସ୍+ଅ )—ସରଜସ୍କା
Sarajasā (ଦେଖ)—Sarajaskā (See)

ସରଜସ୍କ—ସ. ବିଣ. ପୁଂ ( ବହୁବ୍ରୀହି; ସ=ସହିତ+ରଜସ୍+କ )—
Sarajaska ରଜୋବିଶିଷ୍ଟ; ଧୂଳିଯୁକ୍ତ—Dusty.
(ସରଜାଃ—ଅନ୍ୟରୂପ) (ସରଜସ୍କା, ସରଜାଃ—ସ୍ତ୍ରୀ)

ସରଜସ୍କା—ସ. ବିଣ ସ୍ତ୍ରୀ (ସରଜସ୍କ+ଆ)—୧ । ରଜସ୍ୱଳା; ରଜୋ-
Sarajaskā ବିଶିଷ୍ଟା—1. Menstruated. ୨ । ଋତୁମତୀ;
(ସରଜାଃ—ଅନ୍ୟରୂପ) ଋତୁମତୀ—2. In her menses.
ସ. ବି. ସ୍ତ୍ରୀ—୧ । ଋତୁମତୀ ସ୍ତ୍ରୀ—1. A menst-

ruated woman; a woman during her menses. ୨ । ପ୍ରାପ୍ତରଜସ୍କ ସ୍ତ୍ରୀ—2. A woman who has attained puberty.

**ସରଜା**—ଗ୍ରା· ବ (ପଦ୍ୟ) (ସ. ସୃଜ୍ ଧାତୁ)—ସର୍ଜନ (ଦେଖ)—
Sarajā Sarjana (See)
सरजन सरजन

**ସରଜାଇବା**—ଗ୍ରା· କି (ପଦ୍ୟ)—'ସରଜିବା' କ୍ରିୟାର ଣିଜନ୍ତରୂପ—
Sarajāibā Causative form of 'Sarajibā'.
सरजान सरजवाना

**ସରଜା(ଞ୍ଜା, ଞ୍ଜା)ମ**—ବୈଦେ. ବ (ଫା. ସର୍ + ଅଞ୍ଜାମ୍; ଯାହାଦ୍ୱାରା ସମସ୍ତ କର୍ମର ଅଞ୍ଜାମ ବା ସମାଧାନ ହୁଏ)—୧ । ଆବଶ୍ୟକ ଉପକରଣ; ସାମଗ୍ରୀ—1. Requisite articles; materials; appurtenances. (ଉ—ଠାକୁରଙ୍କ ଠାରେ ପୂଜା ସରଞ୍ଜାମ କାହିଁ ଅଛିକି ?—ଫକୀରମୋହନ. ଛମାଣଆଠଗୁଣ ।) ୨ । ଅସବାବ; ଗୃହର ଉପକରଣ—2. Furnitures. ୩ । ସାଜସଜ୍ଜା—3. Equipments. ୪ । ବସ୍ତୁଚୟ—4. Articles; things.
Sarajā(ñjā,ḍā)ma
सरंजाम सरंजाम, सरअंजाम

**ସରଜିବା**—ଗ୍ରା. କି (ପଦ୍ୟ)—(ସ.ସୃଜ୍ ଧାତୁ)—୧ । ସର୍ଜନ କରିବା—
Sarajibā 1. To create. [ ଉ—ଲୁଣ୍ଠା କରେ ମୁଁ ଧାତାକୁ କାହିଁକି ସରଜି ଛାଡ଼ୁ ଜଗତୁ ଭଣିଲ କଇଗରେ—କବିସୂର୍ଯ୍ୟ. କଣ୍ଠୋଗ୍ରଚନ୍ଦ୍ରଙ୍କ ଗୀତ ] ୨ । ଜାତ କରିବା; ଜନ୍ମାଇବା—2. To cause; to produce. ( ଉ—ବ୍ରହ୍ମଅସ୍ତ୍ର ବଳ ଦୈତ୍ୟକୁ ପୋଡ଼ିଦେଲେ, ସବୁ ପ୍ରାଣୀଙ୍କର ଅନଳ ସରଜଲେ—କୃଷ୍ଣସିଂହ. ମହାଭାରତ. ବନ । ) ୩ । ନିକ୍ଷେପ କରିବା—3. To throw. ( ଉ—ଅନ୍ୟୋନ୍ୟରେ ଯୁଦ୍ଧେ ସରଜି ଶରମାଳା, ସୁଝିଲେ କଟାକଟି ହେବାପାଇଁ ଗଲା—କୃଷ୍ଣସିଂହ. ମହାଭାରତ. କର୍ଣ୍ଣ । )
सरजा सरजना

**ସରଜୁ**—ଦେ. ବ. ସ୍ତ୍ରୀ ( ନାମ )—'ସରୋଜିନୀ'ର ଡାକ ନାମ—
Saraju The name for calling Sarojini.

**ସରଜୋର୍**—ବୈଦେ. ବଣ (ଫା. ସର୍ଜୋର୍)—୧ । ଜବରଦସ୍ତ—
Sarajor 1. Using force; making use of force; forcible. ୨ । ଦୁର୍ଦ୍ଦମ; ଦୁର୍ଦ୍ଧର୍ଷ—2. Invincible; redoubtable. ୩ । ଅତି ଦୁଷ୍ଟ—3. Very wicked.
सरजोर सरज़ोर
( ସର୍ଜୋର୍—ବ )

**ସରଞ୍ଜାମ ପତ୍ର**—ଦେ· ବ (ଷଷ୍ଠୀର୍ଥକ ୨ୟ ସହତର)—୧ । ନାନାପ୍ରକାର ସରଞ୍ଜାମ—1. Various articles. ୨ । ନାନାପ୍ରକାରର ଉପକରଣମାନ—2. Various necessary materials.
Saranjāma patra
सरंजामपत्र सरंजाम, असबाबसरअंजाम

**ସରଞ୍ଜାମୀ**—ଦେ. ବ—ସରଞ୍ଜାମ ସମ୍ବନ୍ଧୀୟ—
Saranjāmi 'Relating to materials.
सरंजामी सरंजामी

**ସରଞ୍ଜାମୀ ଖରଚ**—ଦେ· ବ (କଡରଥ)—ଜମିଦାରଙ୍କ କର୍ମଚାରୀମାନଙ୍କୁ ପ୍ରଜାମାନେ ଦେବା ଖରଚ—
Saranjāmi kharacha An abwab paid to a zamindar's tahsildar.
सरंजामि खरच सरंजामी खरच

**ସରଟ**—ସ. ବ (ସୃ ଧାତୁ + କର୍ତ୍ତୃ. ଅଟ)—୧ । ବାୟୁ—1. Air; wind ୨ । ମେଘଖଣ୍ଡ—2. A cloud (Apte) ୩ । ଝିଟିପିଟି—3. A lizard (Apte). ୪ । ମଧୁମାଛି—4. A bee (Apte) ୫ । ଏଣ୍ଡୁଅ—5. Chameleon.
Saraṭ

**ସରଟ(ଟୁ)**—ସ· ବ (ସୃ ଧାତୁ=ଗମନକରିବା+କର୍ତ୍ତୃ.ଅଟ, ଅଟୁ)—୧ । ବୃକଲାସ; ଏଣ୍ଡୁଅ—Chameleon; Lacertilia. (ଉ—ଶଙ୍ଖ ହୋଇଲା ମୟୂର ସରଟ ହୋଇଲା କୁବେର—ବିଶ୍ୱନାଥ. ବିଚିତ୍ରରାମାୟଣ ।) [ ଦ୍ର—ଏମାନଙ୍କ ଦେହ ଖଣ୍ଡିଆ ଓ ଚର୍ମରେ କଳା ଡୋରି ଥାଏ; ଦେହ ପାଞ୍ଚ ଛଅ ଅଙ୍ଗୁଳ ଲମ୍ବ, ଏବଂ ଲାଙ୍ଗୁଡ଼ ଦେହର ଦୁଇଗୁଣ; ଏମାନେ ଗଛରେ ଚଳପ୍ରଚଳ ହୁଅନ୍ତି ।] ୨ । ଝିଟିପିଟି—2 House lizard. ୩ । ବାୟୁ (ଶବ୍ଦକୋଷ)—3. Air.
Saraṭa(ṭu)

**ସରଟି**—ସ.ବ (ସୃ ଧାତୁ=ଗମନକରିବା+କର୍ତ୍ତୃ.ଅଟି)—୧ । ବାୟୁ—1. Wind; air. ୨ । ମେଘ—2. Cloud.
Saraṭi

**ସରଡ଼ିଆ**—ପ୍ରାଦେ· (ବଲାଙ୍ଗୀର ପାଟଣା) ବଣ—ଚିକ୍କଣ; ଖସଡ଼ା—
Sarardiā Slippery.

**ସରଡ଼ି ଯିବା**—ପ୍ରାଦେ. (ବଲାଙ୍ଗୀର ପାଟଣା) କି—ଖସିଯିବା—
Sarardi jibā To slip.

**ସରଣ**—ସ.ବ (ସୃ ଧାତୁ=ଗତି କରିବା+ଭାବ. ଅନ)—୧ । ଘୁଞ୍ଚିବା; ଗମନ; ଗତି—1. Moving; going; motion. ୨ । ଧୀରଗତି ( ହେ· ଶ )—2. Slow motion. ୩ । ଲୌହମଳ—3. Rust of iron; scoria. ୪ । ମାଧ୍ୱୀ ସୁରା (ବୈଦ୍ୟକ ଶବ୍ଦ)—4. Wine made from honey. ସଂ. ବଣ (+କର୍ତ୍ତୃ· ଅ) ଗମନଶୀଳ; ଗତିଶୀଳ—Moving. ଦେ. ବ ( ନାମ )—ଓଡ଼ିଶାରେ ବ୍ରାହ୍ମଣମାନଙ୍କର ବଂଶୋପାଧିବିଶେଷ—A family title of Brāhmaṇas in Orissa.
Saraṇa

**ସରଣା**—ସଂ. ବ (ସରଣ+ଆ)—( ବୈଦ୍ୟକ )—୧ । ପ୍ରସାରଣୀ ଲତା; ପଶାରୁଣୀ ଲତା—1. Foetida; ପ୍ରଥମ ଅର୍ଥରେ Paederia Foetide ଅନ୍ୟ ସଂସ୍କୃତ ନାମ—(creeper) ୨ । ତ୍ରିବୃତ୍; ପ୍ରସାରଣୀ, ରାଜବଳା, ତ୍ରିବୃତ୍ (ଶବ୍ଦକୋଷ)—ଭଦ୍ରପର୍ଣ୍ଣୀ, ପ୍ରତାପସା, 2. Ipomoea Turpethum (plant) ସରଣୀ, ସାରଣୀ, ଭଦ୍ରା, ଦେ. ବ—
Saraṇā

ବଳା, କଟମସ୍ତ ସେରଣା ମାଛ; ମହାଶଫର; ସବର୍ଣ୍ଣାଙ୍ଗୁଟି **ବଡ଼ୀପୋଠୀ** ବୃହତ୍ ଶଫର ମତ୍ସ୍ୟ; ଛେଲ୍ଲ ଭେଷ୍ଣ୍ଡ—A kind of fish; Barbus Sarana.

**ସରଣି(ଣୀ)**—ସଂ.ବ (ସୃ ଧାତୁ=ଗତି କରିବା+ଅଧିକରଣ. ଅନ୍;+ଈ; ଯହିଁରେ ଗମନ କରାଯାଏ—
Sarani(ni) [ ଶରଣି(ଣୀ)—ଅନ୍ୟରୂପ ] ୧ । ପଥ; ବାଟ—1. Way; course. ୨ । ମାର୍ଗ; ସଡ଼କ—2. Road. ୩ । ଶ୍ରେଣୀ; ପଙ୍କ୍ତି—3. Row. ୪ । ରୀତି—4. Mode. ୫ । ( +କର୍ତ୍ତି. ଅ ) ଗଳରୋଗବିଶେଷ—5. A sort of disease of the throat. ୬ । ପ୍ରସାରିଣୀ ଲତା; ପସାରୁଣୀ ଲତା—6. Foetida Paederia (creeper). ୭ । (+କର୍ତ୍ତି. ଅ) ସିଧା ବା ଅଖଣ୍ଡିତ ରେଖା—7. Straight or continuous line (Apte). ୮ । ବ୍ୟବସ୍ଥା; ବନ୍ଦୋବସ୍ତ—8. Arrangement (Apte). ୯ । ଲୋକେ ଯେଉଁ ରାସ୍ତାରେ କେବଳ ଗୁଲନ୍ତି, ଅର୍ଥାତ୍ ଯହିଁରେ ଗାଡ଼ି ଆଦି ଚଳେ ନାହିଁ (ସ୍ତ୍ରୀ. ଶ)—9. Footpath.

**ସରଣି କକୁଭ**—ସଂ. ବ (୬ଷ୍ଠୀ ତତ୍)—କୌଣସି ବ୍ୟକ୍ତିର ଯିବାର ବା
Sarani kakubha ଆସିବାର ବାଟର ଦିଗ—The direction of a person's path; the direction from which a person comes or to which a person goes. [ଉ—ଶୁଣି ଗୁହିଁ ତୋ ସରଣି-କକୁଭକୁ ରେ ତରୁଣୀ—କବିସୂର୍ଯ୍ୟ. ବଶୋଭଗମ୍. ଚ ଗୀତ । ]

**ସରଣୀ ବରଣୀ**—ଦେ. ବ ( ସ. ସରଣୀ=ପଥ+ବରଣ )—୧ । ବାଟ
Sarani barani ବରଣ; ବିବାହ କରିବାକୁ କନ୍ୟା ଘରକୁ ଆସୁଥିବା ବରଙ୍କୁ କନ୍ୟାଗୃହର କିଛି ଦୂରକୁ କନ୍ୟା କର୍ତ୍ତା ଯାଇ ଅର୍ଘ୍ୟ ଆଦି ଦେଇ ବରଣ ବା ନିମନ୍ତ୍ରଣ କରି କନ୍ୟା ଗୃହକୁ ଆଣିବାରୂପ କର୍ମ—1. The ceremonial welcome extended to the coming bridegroom by the bride's father before he reaches the bride's house for marriage. [ ଉ—ମୀନକେତୁ ନାମ ଭ୍ରମରକୁ ପଠିଥାଇ, ଅଣାଇଲେ ସରଣୀ ବରଣୀ କରି ତହିଁ—ଭଞ୍ଜ ଲାବଣ୍ୟ. ବତୀ । ] ୨ । କୌଣସି ସ୍ଥାନକୁ ଆସୁଥିବା ବିଶିଷ୍ଟ ଅତିଥିଙ୍କୁ ଖଣ୍ଡିଏ ଆଗକୁ ଯାଇ ପାଛୋଟି ଆଣିବା—2. Welcoming a guest by meeting him at some distance and accompanying him to his destination.

**ସରଣ୍ଡ**—ସଂ. ବ ( ସୃ ଧାତୁ=ଗତି କରିବା+କର୍ତ୍ତି. ଅଣ୍ଡ )—୧ । ପକ୍ଷୀ
Saranda 1. A bird [ Apte ]. ୨ । କାମୁକ ପୁରୁଷ; କାମୁକ ବ୍ୟକ୍ତି—2. A libertine; a dissolute person [ Apte ]. ୩ । ସରଟ; ଏଣ୍ଡୁଅ ( ଶବ୍ଦକୋଷ )—୪. Chameleon. ୪ । ଝିଟିପିଟି—4 Lizard [ Apte ]. ୫ । ଶଠ ବ୍ୟକ୍ତି; ଧୂର୍ତ୍ତ ବ୍ୟକ୍ତି—5. A rogue [ Apte ]. ୬ । ଏକପ୍ରକାର ଅଳଙ୍କାର ( ଶବ୍ଦକୋଷ )—6. A sort of ornament [ Apte ].

**ସରଣ୍ଡା**—ଦେ. ବ ( ନାମ )—କଟକ ଜିଲ୍ଲାର ବାଙ୍କୀ ରାଜ୍ୟ ଅନ୍ତର୍ଗତ
Saranda ଓ ମହାନଦୀର ଉତ୍ତରତୀରବର୍ତ୍ତୀ କ୍ଷୁଦ୍ର ପର୍ବତବିଶେଷ —Name of a hill on the north bank of the Mahanadi in the estate of Banki in the Cuttack district. [ଉ—ଏ ପରେ ସରଣ୍ଡା ମୁଣ୍ଡେ ପରଚଣ୍ଡେ ଉଠିବ ବହ୍ନି-ମୟୂଖ—ରାଧାନାଥ. ଯାଜଗୀ । ]

**ସରଣ୍ୟୁ**—ସ. ବ ( ସୃ ଧାତୁ=ଗତି କରିବା+କର୍ତ୍ତି. ଅନ୍ୟୁ )—୧ ।
Saranyu ବାୟୁ—1. Air. ୨ । ଅଗ୍ନି—2. Fire. (ଶରଣ୍ୟୁ—ଅନ୍ୟରୂପ) ୩ । ମେଘ—3. Cloud. ୪ । ଜଳ—4. Water. ୫ । ବସନ୍ତ—5. The spring season. ୬ । ଯମଦେବ—6. A name of Jama (Deity) [ Apte ].

**ସର(ରେ)ତ୍**—ବୈଦେ. ବ ( ଫା. ଶର୍ତ୍ତ )—କୌଣସି କଥାବାର୍ତ୍ତାର ବା
Sara(re)t ଚୁକ୍ତିର ଆନୁଷଙ୍ଗିକ ନିୟମ ବା ଅଙ୍ଗ—Condition
ସର୍ତ୍ତ of any contract. [ଉ—ବାହେ ସଦା ଚରଯ ସରତ
ଶର୍ତ୍ତ ବାସ ହେବ—ଭଞ୍ଜ. ବୈଦେହୀଶବିଳାସ ।] ସ. ବଣ [ସୃ. ଧାତୁ+କର୍ତ୍ତି. ଅତ୍ ( ଶତୃ ) ]—ଗମନ କରୁଥିବା—Moving. ସ. ବ—ସୂତ୍ର ( ଶବ୍ଦକୋଷ )—Thread.

**ସରଢା**—ପ୍ରାଦେ (ସମ୍ବଲପୁର) ବ—ସରୋଢା ( ଦେଖ )
Sarata Sarota ( See )

**ସରତ୍ନ**—ସ. ବଣ ( ସ=ସହିତ+ରତ୍ନ )—ରତ୍ନ ସହିତ ବର୍ତ୍ତମାନ —
Saratna Accompanied with gem.

**ସରତ୍ନି**—ସ.ବ (ସୃ ଧାତୁ=ଗତି କରିବା+କରଣ.ଅତ୍ନି)—୧। ମୁଷ୍ଟିବଦ୍ଧ
Saratni କର; ମୁଠା କରି ଯାଇଥିବା ହାତ—1. The hand with closed fist. ୨ । ମୁଠୁନି ପରିମାଣ; କହୁଣି-ଠାରୁ ହାତ ମୁଠାର ଅଗ ପର୍ଯ୍ୟନ୍ତ ମାପ; ରତ୍ନି—2. A kind of cubit measure of length from the elbow-joint upto the end of the fisted palm. [ ଦ୍ର—କହୁଣି ମୁଣ୍ଡଠାରୁ ମୁଷ୍ଟିବଦ୍ଧ ହସ୍ତର କାଣି ଅଙ୍ଗୁଠିର ମଝି ପବର ମୂଳଭାଗ ପର୍ଯ୍ୟନ୍ତ ପରିମାଣକୁ ରତ୍ନି ବା ସରତ୍ନି କୋଲଯାଏ । ]

**ସରଥ**—ସ. ବଣ.ପୁଂ (ସହାର୍ଥ ବହୁବ୍ରୀହି;ସ+ରଥ)—୧। ରଥାରୋହୀ—
Saratha 1. Mounting a chariot. [ ଉ—ବନ୍ଧୁ ପିଶାଚ ଗଲେ ସରଥେ ଚଢ଼ି ଶୈଳେ ଧୂମ୍ରାକ୍ଷ ଗୃହଁ ଧାଇଁ ଯେ—ଭଞ୍ଜ. ବୈଦେହୀଶବିଳାସ । ] ୨ । ରଥବିଶିଷ୍ଟ—2. Having a car. ସ. ବ. ପୁଂ—ରଥାରୋହୀ ଯୋଦ୍ଧା—A warrior riding on a chariot (Apte).

ସରଦ(ଇତ୍ୟାଦ)—ବୈଦେ. ବ (ଫା. ସର୍ଦ)—ସର୍ଦ ଇତ୍ୟାଦ (ଦେଖ)
Sarada etc Sarda (etc) (See)

ସରଦଙ୍ଗା—ଗ୍ରାଦେ. (ବଙ୍ଗଳିର ପାଠଣା) ବ—ମେଳା—
Saradaṅgā A congregation; a gathering; a fair.

ସରଦଲ(ଲି)—ଦେ. ବ ( ସ. ଶାର୍ଦ୍ଦୁଳ )—କବାଟର ଚଉକାଠ
Saradaḷa(ḷi) ଉପରେ ବଅଥିବା କାଠର ଚଉଡ଼ା ପଟା—
সাবদোল A broad plank put over the door-frame.
सरदल

ସରଦା—ବୈଦେ. ବ (ଫା. ସର୍ଦ୍; ଏହା ଖାଇଲେ ସର୍ଦି ହୁଏ)—
Saradā କାବୁଲରୁ ଅସୁଥିବା ଏକପ୍ରକାର ଉତ୍କୃଷ୍ଟ ତରଭୁଜ—
সবদা A kind of excellent water melon imported from Kābul.
सरदा

ସରଦାର(ର) (ଇତ୍ୟାଦ)—ବୈଦେ. ବ. ପୁଂ—ସର୍ଦାର ଇତ୍ୟାଦ
Saradār(ra) (etc) (ଦେଖ)—Sarddāra. etc (See)
(ସରଦାରଅଣୀ—ଦେ. ସ୍ତ୍ରୀ) [ଉ—ବାପ ପରମାଣିକ ଥିଲା ବୋଲ ଭୁଣ୍ଡାଟାଲୁ ସରଦାର କର ସବୁ ଚଉଁରୀଗୁଡ଼ାକ ତାକୁ ଜୁହାରୁଛନ୍ତି। ଫକୀରମୋହନ. ଛମାଣ ଅଠଗୁଣ୍ଠ।]

ସରଦାରୀ—ବୈଦେ. ବ (ଫା. ସର୍ଦାରୀ)—ସର୍ଦାରି (ଦେଖ)
Saradārī Sarddārī (See)

ସରଦ (ଇତ୍ୟାଦ)—ବୈଦେ. ବ—ସର୍ଦି ଇତ୍ୟାଦ (ଦେଖ)
Saradi (etc) Sarddi etc. (See)

ସରଦିଅା—ଦେ. ବଣ—ସର୍ଦିଅ (ଦେଖ)
Saradiā Sarddiā. (See)

ସରଦ ଗରମୀ—ଦେ. ବଣ—ସର୍ଦି ଗରମୀ (ଦେଖ)
Saradi garamī Sarddi garamī. (See)

ସରଦ୍ୱାନ୍—ସ. ବ. ପୁଂ (ନାମ) (ସରଦ୍ୱତ ଶବ୍ଦ)—୧। ଗୌତମ ମୁନ
Saradbān (ବିଶ୍ୱକୋଷ)—1. A name of Sage Gautama. ୨। ଗୌତମ ମୁନଙ୍କ ପୁତ୍ର (ବିଶ୍ୱକୋଷ)—2. Name of the son of Sage Gautama.

ସରଧା (ଇତ୍ୟାଦ)—ଗ୍ରା. ବ (ସ. ଶ୍ରଦ୍ଧା)—ଶରଧା ଇତ୍ୟାଦ (ଦେଖ)
Saradhā (etc) Śaradhā etc. (See)

ସରଧି—ସ. ବ (ସର=ଜଳ+ଧା. ଧାତୁ=ଧାରଣ କରିବା+ କର୍ତ୍ତୃ. ଇ)—ସମୁଦ୍ର—The sea. [ଉ—ବର୍ଣ୍ଣି
Saradhi ସରଧି ଶରଧି ଅଭୁତ କାନ୍ତ କାନ୍ତ ଉଲ୍ଲୋଳତ। ଉପ. ବୈଦେହୀଶବିଳାସ।] ଗ୍ରା. ବ. ସ୍ତ୍ରୀ—ଶ୍ରଦ୍ଧାମୟୀ ନାମ୍ନୀ ସ୍ତ୍ରୀର ଡାକ ନାମ—Name for calling a woman named Śraddhāmayī.

ସର(ରେ)ନଉ(ଓ)—ବୈଦେ. ବଣ (ଚଳଣ) (ଫା. ସରେନଓ)—
Sara(re)nau(o) ସରେନ (ଦେଖ)—Sarena. (See)

ସରନାମ୍(ମି)—ବୈଦେ. ବଣ (ଫା. ସର୍ ନାମ୍)—ପ୍ରସିଦ୍ଧ (ବୁ. ଣ)
Saranām(mi) Celebrated; famous.

ସରନାମା—ବୈଦେ. ବଣ (ଫା. ସର୍ ନାମାହ୍)—୧। ଲେଖ ବା ପ୍ରବନ୍ଧ-
Saranāmā ର ଶିରୋନାମା—1. The heading of a
শিবনামা letter or written article. ୨। ଚିଠିରେ
सरनामा ଅଭପ୍ରେତ ବିଷୟ ଲେଖାଯିବା ପୂର୍ବରୁ ପତ୍ରଗ୍ରାହୀଙ୍କ ନାମ ଓ ବିଶେଷଣ ଆଦ ଯୁକ୍ତ ଅବତାରଣା—2. The addressing portion before the beginning of the writing of the main contents of a letter. ୩। ପତ୍ରାଦରେ ଉପରେ ଲେଖାଯିବା ପତ୍ରଗ୍ରାହକଙ୍କ ନାମ ଓ ବାସସ୍ଥାନ ଅଦ—3. Superscription or name and address of the addressee of a letter.

ସରନ୍ତା(ନ୍ତି)—ଦେ. ବଣ—୧। ଯାହା ସରିଯାଏ—1. Exhaus-
Sarantā(nti) tive. ୨। ଶେଷ; ସର୍ବଶେଷ; ସବୁ ପଛ—
শেষ शेषहोनेवाला 2. Last, latest. [ଉ—ସରନ୍ତି ସୋମବାର।]
[ଅସରନ୍ତା, ଅସରନ୍ତି—ବିପରୀତ]

ସରନ୍ତା(ନ୍ତି) ଭଣ୍ଡାର—ଦେ. ବ—୧। ଯେଉଁ ଭଣ୍ଡାରର ଧନ ବ୍ୟୟ
Sarantā(nti) bhaṇḍāra ହୋଇ ସରିଯାଏ—1. A store-
ক্ষয়িত ভণ্ডাব house of which the contents are
शेषहोनेवाला भण्डार exhausted by being spent up.
(ଅସରନ୍ତା[ନ୍ତି] ଭଣ୍ଡାର—ବିପରୀତ) ୨। ଯେଉଁ ଭଣ୍ଡାରରେ
কাববাবি ভণ্ডাব ରକ୍ଷିତ ଧନରୁ ଚଳନ୍ତି ଖରଚ ଚଳେ; କାରବାରୀ
कारबारी भण्डार ଭଣ୍ଡାର—2. Treasury or store from which amounts are drawn from time to time for current expenses.

ସରନ୍ତା(ନ୍ତି) ସୋମବାର—ଦେ. ବ—ବୈଶାଖ ମାସର ଶେଷ
Sarantā(nti) somabāra ସୋମବାର—The last
(ସରନ୍ତା[ନ୍ତି] ସୋ[ମ]ବାର, Monday of the month
ସରନ୍ତା[ନ୍ତି] ସଁବାର—ଗ୍ରାମ୍ୟରୂପ) of Baiśākha. [ଦ୍ର—
শেষ সোমবার ଏହି ସୋମବାର ଦନ ଶିବମନ୍ଦରମାନଙ୍କରେ,
अन्तिम सोमवार ବିଶେଷତଃ ପୁରୀ ସହରର ଲୋକନାଥଙ୍କ ଠାରେ ସମ୍ମାନୀ ଲୋକଙ୍କର ଗୋଟିଏ ବଡ଼ ମେଳା ପ୍ରତିବର୍ଷ ହୁଏ।]

ସରନ୍ତା(ନ୍ତି) ସୋମବାର ମେଳା—ଦେ. ବ—ବୈଶାଖ ମାସର
Sarantā(nti) somabāra meḷā ସର୍ବଶେଷ ସୋମବାର ଦନ
শেষ সোমবাব মেলা ପୁରୀର ଲୋକନାଥଙ୍କ ଠାରେ ଅନୁଷ୍ଠିତ ହେବା ବାର୍ଷିକ ମେଳା—A gathering at the shrine of Lokanātha (in the Puri town) held annually on the last Monday of Baiśākha.

ସରନ୍ଧ୍ର—ସ. ବ (ସହାର୍ଥ ବହୁବ୍ରୀହ; ସ+ରନ୍ଧ୍ର)—ଛିଦ୍ରବିଶିଷ୍ଟ—
Sarandhra Having holes; perforated.
[ ସରନ୍ଧ୍ରତା—ବ ]

ସରପ—ଗ୍ରା. ବ (ପଦ୍ୟ) (ସ. ସର୍ପ)—ସର୍ପ (ଦେଖ)—Sarpa. (See)
Sarapa [ଉ—ଚନ୍ଦନ ବୋଲା ବାହୁଗଣ ମାରଗଣ, ଛିନ୍ନ ସରପ
সর্প सरप ପର ଚେଷ୍ଟା କଲେ ଜାଣ। କୃଷ୍ଣସିଂହ. ମହାଭାରତ. (ସରପା—ଅନାଦରାର୍ଥକ ରୂପ) ସ୍ପଷ୍ଟ।] ୨। (ଅଦରାର୍ଥକ) ସର୍ପେଶ୍ୱରର

[ସରପି(ପୁ)—ଆଦରାର୍ଥକ ରୂପ] ଡାକ ନାମ—2. Name for calling 'Sarpeśwara' in fondness.

ସରପଞ୍ଚ୍—ବୈଦେ. ବି (ଫା)—୧ । ପଞ୍ଚାଏତର ସଭାପତି—1. The Sarapañch President of a Pañchāyet. ୨। ଚୌକି- ସବପଞ୍ଚ ଦାରି ଇଉନିୟନ୍‌ର ପଞ୍ଚାଏତମାନଙ୍କ ପ୍ରେସିଡେଣ୍ଟ; ହେଡ୍- सरपंच ପଞ୍ଚାଏତ—2. The President of the Panchāyet of a Chowkidāri village-union. ୩। ଗ୍ରାମ୍ୟ ସହଯୋଗ ସମିତିର ସଭ୍ୟ ବା ପଞ୍ଚାଏତମାନଙ୍କ ସଭାପତି—3. The President of a village-Co-operative Society.

ସରପଟ୍—ଦେ. ବିଣ—ଜରଜର; ସରସର—Saturated; dren- Sarapaṭ ched. ଦେ. କ୍ରି. ବିଣ—୧ । ସମ୍ପୂର୍ଣ୍ଣରୂପେ— ଆବୁଇଥିଁ ଟି जरजर 1. Fully. ୨ । ପୂର୍ଣ୍ଣରୂପେ ଆର୍ଦ୍ର ହେବା ଆବୁଇଥିଁ ଟି सम्पूर्णरूपसे ପ୍ରକାରରେ—2. In a fully dren- ସବପଟ सरपट ched condition. ଦେ. ବି (ସଂ ସର୍ପଣ)— ଘୋଡ଼ା ପୁଣି ଉଠାଇ ଦଉଡ଼ିବା; ଥରଥରକେ ଦୁଇ ଅଗ ଗୋଡ଼କୁ ଓ ପୁଣି ଦୁଇ ପଛ ଗୋଡକୁ ଉଠାଇ ଦଉଡ଼ିବା—Running of a horse on all fours; horse's gallop.

ସର ପଠା—ଦେ. ବି—ସରକୁଶ ଜନ୍ମିଥିବା ନଦୀଗର୍ଭସ୍ଥ ଭୂମି— Sara paṭhā A land on the bed of a river ସବେବଟିପି सरपतकी दीयर on which grow the 'Sara' reeds.

ସର ପଣା—ଦେ. ବି ( ସଂ ସର+ପ୍ରପାନକ )—ଦୁଧସରମିଶ୍ରିତ ମିଷ୍ଟ Sara panā ପ୍ରପାନକ—A sweet drink mixed ସବେବ ପାନା मलाइ सरबत with cream. ( ଉ—ଛଣା ସୁଧା ସରପଣାରୁ ମଧୁର ଲାଗୁଥିଲା ଶ୍ୟାମ-ପ୍ରୀତି ଗୋ—ଜବାସୁନ୍ଦର ସଙ୍ଗୀତ ।)

ସର ପତ୍ରିକା—ସଂ. ବି (ସର=ଜଳ+ପତ୍ର+କ+ଆ; ବହୁବ୍ରୀହି)—୧ । Sara patrikā ପଦ୍ମପତ୍ର—1. Lotus leaf. ୨ । ପଦ୍ମ (ବିଶ୍ୱକୋଷ)—2. Lotus

ସର ପର୍ପଟୀ—ସଂ. ବି—ଶରଭଜା (ଦେଖ)— Sara parpaṭī Śarabhajā (See)

ସରପା—ପ୍ରାଦେ. (ଗଡ଼ଜାତ) ବିଣ—ଶସ୍ତା— Sarapā Cheap.

ସର ପାଟ(ହ୍ରଦ)—ଦେ.ବି (ନାମ)--ପୁରୀର ନିକଟବର୍ତ୍ତୀ ଅଗଭୀର ହ୍ରଦ— Sara pāṭa(hrada) The shallow Sara lake near hte Puri town. (ଉ—ସରପାଟୁଁ ଉଡ଼ି ସୁଖେ ଭ୍ରମି ଭ୍ରମି ତରଳ ଶଶି-ମୟୂଖେ—ରାଧାନାଥ. ପାର୍ବତୀ ।)

ସର ପାପ(ପୁ)ର୍ଡ଼ି—ଦେ .ବି (ସଂ ସର+ପର୍ପଟୀ)—ଶରଭଜା (ଦେଖ)— Sara pāpa(pu)rḍi Śarabhajā [See]

ସରପୁଲି—ଦେ. ବି—ଶରପୁଲି ( ଦେଖ )—Sarapuli [See] Sarapuli ସବ ପুরিয়া [ ଉ—ଗୋରସ ଘୃତ ସରପୁଲି, ନାନା ପିଷ୍ଟକେ ଖଣ୍ଡ ବୋଳି—ଜଗନ୍ନାଥ. ଭାଗବତ ।]

ସରପେଚ୍[ଞ୍ଚ]—ବୈଦେ. ବି (ଫା. ସର୍ ପେଚ୍)—ପଗଡ଼ି ଉପରେ Sarapech[ñch] ଲଗାଯିବା ରତ୍ନଖଚିତ ସ୍ୱର୍ଣ୍ଣାଲଙ୍କାରବିଶେଷ শবপেচ सरपेच —An ornament set with gems attached to the turban.

ସରପେଶ୍ୱର—ଗ୍ରା. ବି (ଗଦ୍ୟ)—ସର୍ପେଶ୍ୱର (ଦେଖ) Sarapeśwara Sarpeśwara [See]

ସରପୋଶ୍—ବୈଦେ. ବି (ଫା. ସର୍‌ପୋସ୍)—୧ । ଗ୍ଲାସ୍ ଆଦିର ଉପରସ୍ଥ Sarapoś ଢାଙ୍କଣୀ—1. The lid or cover of a সরপোশ सरपोश glass or pot. [ ଉ—ହୁକା ଉପରେ ସାନ ଅଟକା ପରି କଲମ, ତହିଁ ଉପରେ ସରପୋଶ—ଫକୀରମୋହନ. ଛମାଣ ଅଠଗୁଣ ।] ୨ । ଉପଢୌକନାଦି ପଠାଯାଉଥିବା ଥାଳିର, ଡାଲାର, ଭାଣ୍ଡି ଆଦିର ଉପରେ ଘୋଡ଼ାଯିବା କନା ବା ରୁମାଲ୍— 2. A napkin or piece of cloth covering a plate or tray in which any present is sent out.

ସରଫ୍—ବୈଦେ. ବି (ଇଂ. ଶ୍ରଫ୍; ଫା.ସରଫ୍)—୧ । ଟଙ୍କା ଆଦି ଭଙ୍ଗା- Saraph ଇବା ବ୍ୟବସାୟରେ ନିଯୁକ୍ତ ବ୍ୟକ୍ତି; ପୋଦ୍ଦାର— সব(রা)ফ सराफ 1. A shroff; a money-changer ୨ । ସରକାର ଖଜଣାଖାନା ଓ ବ୍ୟାଙ୍କ ଆଦିରେ ଦାଖଲ ହେବା ଟଙ୍କା ଆଦି ମୁଦ୍ରାକୁ ପରୀକ୍ଷା କରିବା ପାଇଁ ନିଯୁକ୍ତ କର୍ମଚାରୀ—2. A person who tests coins while they are paid to the treasury of Government or of a bank.

ସରଫ୍ ବେଶି—ବୈଦେ. ପ୍ରାଦେ (ଗଞ୍ଜାମ) ବି [ ଫା. ସରୁଫ୍‌ବେଶ୍ ]— Saraph beśi ମହାଜନକୁ ଲୁଣ ମାପିକରି ବଣିଥିବାବେଳେ ମାପିବା ପରେ ବଳିପଡ଼ିବା ଲୁଣ—Excess quantity of salt found on final weighment on delivery to a trader. [ଉ—କେହି କେହି ଚୁଲିଆ ସରଫ୍‌ବେଶି ବାବଦରେ ମଧ୍ୟ କିଛୁ କିଛୁ ପ୍ରାପ୍ତ ହୁଅନ୍ତି—ଫକୀରମୋହନ. ଗଳ୍ପସ୍ୱଳ୍ପ ।] [ବି—ଅଳ୍ପକାଳ ହେଲ ମରି ଯାଇଥିବା ଖଟକା ଲୁଣରୁ ପରେ ପାଣି ଶୁଖିଗଲେ ତାହା ଓଜନରେ କମି ହୋଇଯିବ, ଏହି ଆଶଙ୍କାରେ ମହାଜନଙ୍କୁ ବିଅଯିବା ପାଇଁ ଲୁଣ ଅଣିବା-ବେଳେ ଚୁଲିଆ [ ଲୁଣ ତିଆରି କରିବା ବ୍ୟକ୍ତି ] ଲୁଣ-ଗୋଲାରୁ ଅବଶ୍ୟକ ପରିମାଣ ଅପେକ୍ଷା କିଛି ବେଶି ଲୁଣ ଅଣିଥାଏ । ପୁଣି ଲୁଣକୁ ମହାଜନଙ୍କୁ ଦେବା ସମୟରେ ଶେଷଥର ମାପ ହେବାବେଳେ ଯେଉଁ ବଳକା ଲୁଣ ବାହାରେ ତାହାକୁ 'ସରଫ୍‌ବେଶି' କୁହାଯାଏ ।]

ସରଫ୍ରାଜ୍ (ଜ)—ବୈଦେ. ବିଣ. (ଫା—ସରଫ୍‌ରାଜ୍)—୧। ଗର୍ବୀ; Saraphrāj (ja) ଗର୍ବିତ—1. Arrogant; proud. ୨ । ଅସ୍ଫାଳନ ଦାସ—2. Boastful, bragging. ୩ । ଖୁସି; ଆନନ୍ଦିତ—3. Glad.

ସବଫ୍‌ରାଜ सरफराज ୪ । ଧନ୍ୟ—4. Praiseworthy. ୫ । କୃତାର୍ଥ (ବୃ. ଶ)—5. Having one's aim fulfilled. ୬ । ଉଚ୍ଚପଦସ୍ଥ—6. Occupying a high position. ବୈଦେ. ବ. (ଫା. ସରଫ୍‌ରାଜୀ= सरफराजी ସବଫରାଜି ଉଚ୍ଚପଦସ୍ଥତା)—୧ । ଗର୍ବ—1. Pride. ୨ । ଦାମ୍ଭିକତା; ସ୍ପର୍ଦ୍ଧା—2. Arrogance. ୩ । ଆସ୍ଫାଳନ—3. Boasting; bragging. ୪ । (ପୁଂ) ମୁସଲମାନଙ୍କୁ ଦିଆଯିବା ନାମବିଶେଷ—4. A name given to Mahomedans.

ସରଫସ୍ତରାଜ୍ ଖାଁ—ବୈଦେ.ବ (ଫା)--ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ବଙ୍ଗର Sarapharāj khān ଜଣେ ମୁସଲମାନ୍ ନବାବ—Name of a Nabob of Bengal of the eighteenth century A. D. (ଦ୍ର—ଏ ବଙ୍ଗ, ବିହାର ଓଡ଼ିଶାର ସୁବାଦାର୍ ବା ନବାବ୍ ସୁଜା ଉଦ୍ଦୌଲ୍ଲା ବା ସୁଜା ଉଦ୍ଦିନ୍ ଖାଁଙ୍କ ପୁତ୍ର ଓ ନବାବ ମୁର୍ଶିଦ୍ କୁଲିଖାଁଙ୍କ ଦୌହିତ୍ର; ଏହାଙ୍କର ନାମ ଅଲ୍ଲାଉଦ୍ଦୌଲ୍ଲା ଥିଲା । ମୁର୍ଶିଦ୍ କୁଲି ଖାଁ ନିଜର ଜାମାତା ସୁଜାଉଦ୍ଦିନ ଖାଁଙ୍କୁ ପ୍ରଥମେ ନାୟେବ୍ ଦେୱାନ୍, ପରେ ନାୟେବ୍ ନାଜିମ୍ ଓ ଉପୂରେ ଓଡ଼ିଶାର ଶାସନକର୍ତ୍ତା ନିଯୁକ୍ତ କରିଥିଲେ । ନବାବ ମୁର୍ଶିଦ କୁଲିଖାଁଙ୍କ ମୃତ୍ୟୁ ପରେ ସରଫ୍‌ରାଜ ଖାଁ ତାଙ୍କ ମାତାମହଙ୍କ ଉତ୍ତରାଧିକାରୀ ହେବା ପାଇଁ ଉଦ୍‌ଗ୍ରୀବ ଥିବା ଅବସ୍ଥାରେ ସୁଜାଉଦ୍ଦିନ୍ ନବାବ୍ ପଦ ଅଧିକାର କରିବାକୁ ରାଜଧାନୀ ମୁର୍ଶିଦାବାଦକୁ ଅଗ୍ରସର ହେଲେ । ସରଫ୍‌ରାଜ୍ ଏହା ଦେଖି ପିତା (ସୁଜାଉଦ୍ଦିନ୍)ଙ୍କୁ ନବାବ ଗାଦି ଛାଡ଼ି ଦେଲେ । ସୁଜାଉଦ୍ଦିନ୍ ସରଫ୍‌ରାଜଙ୍କୁ ବାଦଶାହୀ ଦେବାନ ପଦରେ ନିଯୁକ୍ତ କରି ନିଜେ ନବାବ୍ ହେଲେ । ୧୭୩୯ ଖ୍ରୀ. ରେ ସୁଜାଉଦ୍ଦିନଙ୍କ ମୃତ୍ୟୁ ହେବାରୁ ଏ ସରଫ୍‌ରାଜ୍ ନାମ ଗ୍ରହଣ କରି ନବାବ୍ ହେଲେ । ଏ ରାଜ୍ୟ ଶାସନରେ ମନୋଯୋଗୀ ନ ଥାଇ ଧର୍ମ କର୍ମ ଓ ଲୌକିକାଚାରରେ ସର୍ବଦା ନିଯୁକ୍ତ ରହୁଥିଲେ । ଏକ ବର୍ଷ ଦୁଇ ମାସ କାଳ ନବାବ୍ ହେବା ପରେ ବିହାରର ଶାସନକର୍ତ୍ତା ଅଲିବର୍ଦ୍ଦି ଖାଁ ସରଫ୍‌ରାଜ ଖାଁଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା କଲେ । ଭାଗୀରଥୀ କୂଳରେ ଯୁଦ୍ଧରେ ସରଫ୍‌ରାଜ ନିହତ ହେଲେ ଓ ଅଲିବର୍ଦ୍ଦି ଖାଁ ନବାବ୍ ହେଲେ—ବିଶ୍ୱକୋଷ । ]

ସରଫ୍(ଫ)ରାଜି—ବୈଦେ. ବ (ଫା. ସରଫ୍‌ରାଜୀ=ଉଚ୍ଚପଦସ୍ଥତା)—Saraph(pha)rāji ୧ । ଅହଙ୍କାର; ବୃଥା ଆସ୍ଫାଳନ—1. Boasting; bragging. ୨ । ଗର୍ବିତା—2. Arrogance. ୩ । ଆନନ୍ଦ—3. Joy.
ସବଫରାଜି सरफराजी

ସରଫା—ଦେ. ବଣ—ଶସ୍ତା—
Saraphā ଶସ୍ତା सस्ता Cheap.
ସବାଫୀ ବୈଦେ. ବ (ଅ. ସରାଫାତ୍)—୧ । ସରଫର କର୍ମ—
सराफा 1. The act or post of a shroff. ୨ । ଯେଉଁ ସ୍ଥାନରେ ବା ବଜାରରେ ଟଙ୍କା ଓ ନୋଟ୍ ଅଦଳବଦଳ ହୁଏ—2. Money-changer's market.

ସରଫୀ—ବୈଦେ. ବ (ଫା)—ସରଫ୍‌ର କର୍ମ ବା ବ୍ୟବସାୟ—
Saraphī The act or post of a shroff
ସବାଫୀ सराफी

ସରବ୍‌ଜାନ୍—ପ୍ରାଦେ. (ବଲାଙ୍ଗିର ପାଟଣା) ବ—ସର୍ବଜ୍ଞ—
Sarab-jān All-knowing.

ସରବ—ଗ୍ରା. (ସର୍ବନାମ, ଗଦ୍ୟ) (ସଂ ସର୍ବ)—ସର୍ବ (ଦେଖ)
Saraba ସବବ सरब Sarba (See) [ଉ—କୋଇଲି !
ସର୍ବ सरब ଗଲି ଏମେ ଘୁରୁକୁ ବାରବ । ଗ୍ରାମେ ଗ୍ରାମେ ଭିକ୍ଷ ଭୁଞ୍ଜି (ସରବା, ସରବୁ—ଅନ୍ୟରୂପ) ଜଣାଅ ସରବ ଲୋକେ—କାଳକୃଷ୍ଣ. ଅକାଳ କୋଇଲି । ] ଦେ. ବ (ନାମ)—ସର୍ବେଶ୍ୱରର ଡାକ ନାମ—Name for calling Sarbeśwara.

ସରବ ଜାଣ—ଗ୍ରା. ବ ଓ ବଣ—ସର୍ବଜ୍ଞ (ଦେଖ)
Saraba jāṇa Sarbajñna (See)

ସରବଜ୍ଞ—ଗ୍ରା. ବ ଓ ବଣ ( ପୁଂ ଓ ସ୍ତ୍ରୀ ) (ସଂ. ସର୍ବଜ୍ଞ)—ସର୍ବଜ୍ଞ
Sarabajña (ଦେଖ)—Sarbajña (See) (ଉ—ସରବଜ୍ଞ ନିଯୁକ୍ତା ଅଦ୍ଭୁତ୍ୟ କରନ । ପ୍ରକୃତିରୁ ପର ଅଚନ୍ତ୍ୟ ଚରଞ୍ଜନ—କୃଷ୍ଣସିଂହ. ମହାଭାରତ. ଖ୍ରୀଷ୍ଟ । )

ସରବତ୍—ବୈଦେ. ବ (ଫା. ସର୍‌ବତ୍)—ସର୍ବତ୍ (ଦେଖ)
Sarabat Sarbat (See)

ସରବତି—ବୈଦେ. ବଣ—ସର୍ବତି (ଦେଖ)
Sarabati Sarbati (See)

ସରବଥା—ଗ୍ରା. ଅ (ପଦ୍ୟ) (ସଂ. ସର୍ବଥା)—ସର୍ବଥା (ଦେଖ)
Sarabathā Sarbathā (See) ( ଉ—ସ୍ୱପନ୍ତି ଇଚ୍ଛା
ସବବଥା थिले ପର ଭଲ କଥା । କଦା ନ କରିବ ହେ ବନ୍ଧୁ
सरबथा ସରବଥା—କୃଷ୍ଣସିଂହ. ମହାଭାରତ, ବନ । )

ସରବଦା—ଗ୍ରା. ଅ (ପଦ୍ୟ) (ସଂ. ସର୍ବଦା)—ସର୍ବଦା (ଦେଖ)
Sarabadā ସବବଦା सरबदा Sarbadā (See)

ସରବନ—ଦେ. ବ (ନାମ) (ସଂ. ଶ୍ରମଣ)—ଅନ୍ଧକ ମୁନିଙ୍କ ପୁତ୍ର—
Sarabana Name of the son of a blind sage.
ସବବନ [ ଦ୍ର—ଏ ପୁତ୍ର ନିଜର ଅନ୍ଧ ପିତାମାତାଙ୍କୁ ଭାରରେ ବୋହି
सरबन ତୀର୍ଥ ଅଣା କରୁଥିଲା । ଏ ସରଯୂ ନଦୀରେ କଳସ ବୁଡ଼ାଉବାର ଶବ୍ଦ ଶୁଣି ଦଶରଥ ଏ ଶବ୍ଦକୁ ବଣ ହାତୀର ଗର୍ଜନ ବୋଲି ଅନୁମାନ କରି ଶବ୍ଦଭେଦୀ ଶରଦ୍ୱାରା ଏହାକୁ ମାରିଥିଲେ । ରାମାୟଣରେ ଏ ମୁନିକୁମାରର ନାମ ନାହିଁ । କିନ୍ତୁ ବୌଦ୍ଧ ଶାମଜାତକ ଗ୍ରନ୍ଥରେ ଅନ୍ଧ ମୁନିଙ୍କ ପୁତ୍ରକୁ ଜଣେ ରାଜା ଶବ୍ଦଭେଦୀ ଶରଦ୍ୱାରା ମାରିଥିବା ଓ ସେ ପୁତ୍ରର ନାମ ସରବନ ଥିବା ଉଲ୍ଲେଖ ଅଛି ।

ଅନ୍ଧ ମୁନି ବୃଦ୍ଧଙ୍କ ହାହା ଦେବାରୁ ଏକ ଦେବୀ ମୂର୍ତ୍ତି ଆବିର୍ଭୂତା ହୋଇ ମୃତ ପୁତ୍ରକୁ ଜୀଆଁଇ ଦେଲେ । ସରବନର ପିତୃଭକ୍ତିର ଗୀତ ଗାଇବା ବାଲା ଏକ ଭିକ୍ଷୁକ ସମ୍ପ୍ରଦାୟ ଅଯୋଧ୍ୟା ଅଞ୍ଚଳରେ ଦେଖାଯାଆନ୍ତି—ହିନ୍ଦି. ଶବ୍ଦସାଗର । ]

ସରବ ନାଶ—ଗ୍ରା. ବ ( ପଦ୍ୟ ) ( ସ. ସର୍ବନାଶ )—ସର୍ବନାଶ
Saraba nāsa ( ଦେଖ )—Sarbanāsa ( See )
সৰবনাশ सरबनाश

ସରବ ନାଶୀ—ଗ୍ରା. ବଣ (ପୁଂ ଓ ସ୍ତ୍ରୀ)—ସର୍ବନାଶୀ (ଦେଖ)—Sarba-
Saraba nāsi সৰবনাশী सरबनाशी nāsi (See)
( ସର୍ବନାଶିଣ—ଅନ୍ୟ ସ୍ତ୍ରୀ ରୂପ )

ସରବନ୍ଦ(ନ୍ଧ)—ଦେ. ବ (ଫା. ସର୍‌ବନ୍ଦ୍‌=ସଂ. ଶିରୋବନ୍ଧନ)—ପଗଡ଼ି
Saraband(ndh) —Turban. ବୈଦେ. ବ ଓ ବଣ—
সরবন্দ सरबन्ध ସରବନ୍ଦୀ (ଦେଖ) Sarabandi ( See )

ସରବନ୍ଦୀ(ନ୍ଧୀ)—ବୈଦେ. ବ ( ଫା. ସରବନ୍ଦୀ )—ଧନୁର୍ଦ୍ଧର; ଯୋଦ୍ଧା;
Sarabandi(ndhi) ତୀରନ୍ଦାଜ ( ହ. ଶ )—Bowman.
সৰবংধী ବଣ—ଧନୁର୍ଦ୍ଧର—Armed with a bow.
सरबंधी

ସର୍‌ବର—ପ୍ରାଦେ. ( କଲିଙ୍ଗର ପାଃଶା ) ଅ—ସରସର—Well-
Sarabara saturated; from which any liquid is dripping; drenched.

ସରବରା—ଦେ. ବ—ଚିଲିକାରେ ମିଳୁଥିବା ଏକପ୍ରକାର ମାଛ—
Sarabarā A class of fish found in the Chilkā.

ସରବରା ( ଇତ୍ୟାଦି )—ବୈଦେ. ବ ( ଫା. ସର୍‌ବରାହ୍‌ )—ସର୍ବରା
Sarabarā ( etc ) ଇତ୍ୟାଦି ( ଦେଖ )—Sarbarā etc
(ସରବରାହ—ଅନ୍ୟରୂପ) ( See ) [ ଉ—କରଗୀ ଓଜଣା କଲେ ଅମଳ । ସରବରା ଦେଉଥିଲେ ଭୂପାଳ—ବ୍ରଜନାଥ. ସମରତରଙ୍ଗ । ]

ସରବରୀ(ରୀ) (ଇତ୍ୟାଦି)—ବୈଦେ. ବ ଓ ବଣ (ଇଂ. ସର୍ଭେ)—ସର୍ଭେ
Sarabari(ri) (etc) ଇତ୍ୟାଦି (ଦେଖ)-Sarbari etc (See)

ସରବସ୍ୱ[ସ]—ଗ୍ରା. ବ (ସ. ସର୍ବସ୍ୱ)—ସର୍ବସ୍ୱ (ଦେଖ)—Sarbaswa
Sarabaswa[sa] সৰবস্ব सरबस्व ( See )

ସରବି(ବେ, ଭି, ଭେ)ଅ(ୟ)ର—ବୈଦେ ବ (ଇଂ. ସର୍ଭେଅର୍‌)—
Sarabi(be, bhi, bhe)a(ya)ra ସର୍ଭେଅର ( ଦେଖ )
সর্ভিয়র सरबीअर Sarbheara ( See )

ସରବି(ବେ, ଭି, ଭେ)ଅ(ୟ)ରି—ଦେ. ବ—ସର୍ଭେଅରି ( ଦେଖ )
Sarabi(be, bhi, bhe)a(ya)ri Sarbhe-ari ( See )
সর্বেয়ারী सरबीअरी

ସରବେ—ଦେ. ସର୍ବନାମ (ପଦ୍ୟ) (ସ. ସର୍ବେ)—୧ । ସମସ୍ତେ—1. All.
Sarabe [ ଉ—ବହନ୍ତ ସରବେ ହେଲେ ରାଜାଙ୍କ ବଚନେ—ରାଧାନାଥ. ମହାଯାତ୍ରା । ] ୨ । ସମସ୍ତ ଲୋକ—
সর্বে सर्वे 2. All men; all persons [ ଉ—ହୋଇଲ । ଥାଉବାକୁ ମନ ଯେବେ ଭବେ, ଅସ୍ତେ ଦେଖ ହୁଡେ ମନ, ଦାଅରୁ ସରବେ ଲେ—ବାଳକୃଷ୍ଣ. ଅକାଳ
সর্বে सर्वे ହୋଇଲ । ] ବୈଦେ. ବ ( ଇଂ. ସର୍ଭେ )—ସର୍ଭେ [ ଦେଖ ]—Sarbhe [ See ]

ସରବେଶ୍ୱର—ଗ୍ରା. ବ ( ସ. ସର୍ବେଶ୍ୱର )—ସର୍ବେଶ୍ୱର [ ଦେଖ ]
Sarabeswara সর্বেশ্বর Sarbeswara [ See ]
सरबेश्वर [ ସରବେଶର—ଅନ୍ୟରୂପ ]

ସରବ୍ୟ—ସ. ବ ( ଶରବ୍ୟର ଅନ୍ୟରୂପ )—ଶରବ୍ୟ [ ଦେଖ ]
Sarabya Sarabya [ See ]

ସରଭଜା—ଦେ. ବ—ଶରଭଜା [ ଦେଖ ]
Sarabhajā সৰভাজা Sarabhajā [ See ]

ସରଭିସ(ସି) ଇତ୍ୟାଦି—ବୈଦେ. (ଇଂ. ସର୍ଭିସ୍‌)—ସର୍ଭିସ ଇତ୍ୟାଦି
Sarabhis(si) etc [ ଦେଖ ]—Sarbhis etc [ See ]
সার্ভিস सरबिस

ସରଭେ (ଇତ୍ୟାଦି)—ବୈଦେ. ବ (ଇଂ. ସର୍ଭେ)—ସର୍ଭେ ଇତ୍ୟାଦି
Sarabhe (etc) [ ଦେଖ ]—Sarbhe etc [ See ]

ସରମ(ମ)—ବୈଦେ ବ (ଫା. ଶର୍ମ୍‌)—୧ । ଲଜ୍ଜା—1. Shame.
Saram(ma) ୨ । ମାନ; ସମ୍ଭ୍ରମ—2. Respects; regard.
সৰম शरम ୩ । ଅପମାନ—3. Humiliation. ୪ । ସଙ୍କୋଚ—4. Delicacy; coyness; modesty. [ ଉ—ନ ରହେ ଭଲଲଜ୍ଜା ଭରମ ତହୁଁ । ରସାଇ ଅନୁରାଗ କରେ ସ୍ୱାମିଙ୍କ—ରାଧାନାଥ. ମେଘଦୂତ । ] ଗ୍ରା. ବ ( ସ. ଶ୍ରମ )—ଶରମ ଇତ୍ୟାଦି ( ଦେଖ )
sarama etc [ See ]

ସରମ୍ କଥା—ଦେ. ବ—ଲଜ୍ଜାର ବିଷୟ—A matter of shame;
Saram kathā a shameful affair.
সৰম কথা शरमकी बात

ସରମ୍ କରିବା—ଦେ. କି—ଲଜ୍ଜା ବୋଧ କରିବା; ସଙ୍କୋଚ ବୋଧ
Saram karibā କରିବା—To feel coy; to feel shy.
সৰম করা शरम करना

ସରମ୍ ପାଇବା—ଦେ. କି—୧ । ଲଜ୍ଜିତ ହେବା—1. To be put
Saram pāibā to shame; to be ashamed.
সৰম পাওয়া ୨ । ଅପମାନିତ ହେବା—
शरम पाना 2. To be humiliated.

ସରମ୍ ହେବା—ଦେ. କି—ଲଜ୍ଜିତ ହେବା—
Saram hebā To be put to shame.
সৰম হওয়া सरमिंदा होना

ସରମା—ସଂ. ବ. ସ୍ତ୍ରୀ (ସ=ସହ+ରମ୍ ଧାତୁ=କ୍ରୀଡ଼ା କରିବା+କର୍ତ୍ତ୍ତି.
Saramā ଅ+ଆ )—୧ । କୁକୁରୀ; କୁତ୍ତୀ—1. A bitch. [ ଉ—କୁକୁରଙ୍କର ମାତା ସରମା ସୁନ୍ଦରୀ । ସେହି ପିଲ ଖାଇଲ ହୋଇଣ ଲଳସୀ—କୃଷ୍ଣସିଂହ. ମହାଭାରତ. ବନ] ୨ । ( ନାମ ) କଶ୍ୟପ ପତ୍ନୀବିଶେଷ—2. Name of one of the wives of sage Kāsyapa, who gave birth to bees and insects. [ ଉ—ଏହାଙ୍କ ଗର୍ଭରୁ ଭ୍ରମରାଦି ଜନ୍ମ ହୋଇଥିଲେ । ] ୩ । (ନାମ) ( ସର=ସରୋବର+ମା=ଜାତ ) ଗନ୍ଧର୍ବରାଜ ଶୈଳୁଷଙ୍କ କନ୍ୟା ଓ ରାବଣଭ୍ରାତା ବିଭୀଷଣଙ୍କ ପତ୍ନୀ—3. Name of the wife of Bibhishana; the younger brother of Rābana. [ଉ—ସରମା ମାନସସରୋବର କୂଳରେ ଜନ୍ମଗ୍ରହଣ କରିବା ସମୟରେ ବର୍ଷା ଋତୁରେ ସରୋବରର ଜଳ ବଢ଼ିଲା ଏବଂ ନବଜାତା ଶିଶୁର ଦେହକୁ

ବନ୍ତି ପାଣି ଲଗିବାର ଉପକ୍ରମ ହେବାରୁ ସରମାଙ୍କ ମାତା ଉକ୍ତ ସରୋବରକୁ ସମ୍ବୋଧନ କରି ଡାକ ପକାଇଲେ, 'ସରଃ ! ମା ବର୍ଦ୍ଧସ୍ୱ' ( ଅର୍ଥାତ୍ 'ହେ ସରୋବର ! ଭୁ ଅଉ ବଢ଼ ନାଁ )' । ଏଥିଯୋଗୁ ଏହି ବାକ୍ୟର ଅଦ୍ୟ ଦୁଇଟି ପଦକୁ ଅବଲମ୍ବନ କରି କନ୍ୟାର ନାମକରଣ ହୋଇଥିଲା । ସରମା ଧର୍ମପରାୟଣା ଥିଲେ ଓ ରାବଣଦ୍ୱାରା ହୃତା ଓ କାରାବଦ୍ଧା ସୀତାଙ୍କୁ ସରମା ସର୍ବଦା ସାନ୍ତ୍ୱନା ଦେଉଥିଲେ । ରାବଣର ମୃତ୍ୟୁ ପରେ ବିଭୀଷଣ ଲଙ୍କାର ରାଜା ହେଲେ ଓ ସରମା ରାଜମହିଷୀ ହେଲେ । ଏହାଙ୍କ ପୁତ୍ର ତରଣୀସେନ ମଧ୍ୟ ଧର୍ମଶୀଳ ଓ ସାଧୁ ଥିଲେ । ]

लाजुक शर्मिला ଦେ. ବିଣ. ପୁଂ—ଲଜ୍ଜାଶୀଳ—Modest.

( ସରମିଅ—ଅନ୍ୟରୂପ ) ( ସରମୀ—ସ୍ତ୍ରୀ )

**ସରମାତ୍ମଜ**—ସ. ବି. ପୁଂ ( ୬ଷ୍ଠୀ ତତ୍ ) —୧ । ବିଭୀଷଣଙ୍କ ଔରସରେ Saramātmaja ସରମାଙ୍କ ପୁତ୍ର; ତରଣୀସେନ—1. Son of Saramā. ୨ । ଅଣ୍ଡିରା କୁକୁରଛୁଆ— 2 Male puppy.

**ସରମିଅ(ଆ)**—ଦେ. ବିଣ. ପୁଂ—ଲଜ୍ଜାଶୀଳ—Modest; coy. Saramiā(nā) लाजुक शर्मिला

**ସରମି ଯିବା**—ଦେ. କି—ସଙ୍କୁଚିତ ହୋଇଯିବା—To shrink; Sarami jibā to be contracted. ପ୍ରାଦେ ( ବଙ୍ଗଳିର) संकुचित हओया ପାଠଣା ) କ୍ରି—ଅଚେତ ହେବା— शर्मिला होना To become unconcious.

**ସରଯୁ**—ସ. ବି ( ସୃ ଧାତୁ=ଗମନ କରିବା+କର୍ତ୍ତି. ଯୁ ) —ବାୟୁ Saraju ( ହିକାଣ୍ଡ ଶେଷ )—Air; wind.

**ସରଯୁ(ଯୂ)**—ସ. ବି. ସ୍ତ୍ରୀ ( ସର=ମାନ ସରୋବର+ଯା ଧାତୁ= Saraju(jū) ଗମନ କରିବା+କର୍ତ୍ତି. ଉ, ଊ; କିମ୍ବା ସୃ ଧାତୁ =ଗମନ କରିବା+କର୍ତ୍ତି. ଅଯୁ; ଅଯୂ )—ଅଯୋଧ୍ୟା ପ୍ରଦେଶସ୍ଥ ନଦୀବିଶେଷ—Name of a river in Oudh, on which the town of Ajodhyā stands.

[ବ୍ରି—ଋଗ୍ବେଦ,'ମହାଭାରତ ଓ ରାମାୟଣରେ ଏ ନଦୀର ନାମୋଲ୍ଲେଖ ଅଛି । ମାନସରୋବରରୁ ଏହି ନଦୀ ନିଃସୃତ ହୋଇ ହିମାଳୟକୁ ଭେଦ କରି ଗଙ୍ଗାରେ ମିଶିଅଛି । ଅଯୋଧ୍ୟା ନଗରୀ ଏହି ନଦୀ କୂଳରେ ଅବସ୍ଥିତ । ସମୁଦାୟ ନଦୀର ନାମ ଘର୍ଘରା ବା ଘୋଘରା; ମାତ୍ର ଅଯୋଧ୍ୟାରେ ଏ ନଦୀର ଯେଉଁ ଅଂଶ ପ୍ରବାହିତ ତାକୁ ସରଯୁ ବୋଲାଯାଏ । ରାମଚନ୍ଦ୍ର ଓ ତାଙ୍କର ଭ୍ରାତାମାନେ ଏହି ନଦୀରେ ପ୍ରବେଶ କରି ଯୋଗାବଲମ୍ବନ ପୂର୍ବକ ଦେହ ତ୍ୟାଗ କରିଥିଲେ । ବୈଦ୍ୟଶାସ୍ତ୍ର ମତରେ ଏହି ନଦୀର ଜଳ ସ୍ୱାଦୁ ଓ ବଳପୁଷ୍ଟିପ୍ରଦାୟକ ଅଟେ ।] ଦେ. ବି. ସ୍ତ୍ରୀ—ସ୍ତ୍ରୀମାନଙ୍କର ନାମ—A name given to females.

**ସରଯୁ ପ୍ରସାଦ**—ଦେ. ବି. ପୁଂ (ନାମ)—ପଶ୍ଚିମାମାନଙ୍କର ନାମ ବିଶେଷ Saraju prasāda Name of males in N. W. India. সরযু প্রসাদ सरयु प्रसाद

**ସରଳ**—ସ. ବି ( ସୃ ଧାତୁ=ଗମନ କରିବା+କର୍ତ୍ତି. ଅଳ )— Sarala ୧ । ଶାଳ ଗଛ ( ଦେଖ )—1. Sāla gachha (See) ୨ । ଏକପ୍ରକାର ଦେବଦାରୁ ଗଛ—2. A sort of pine; Pinus Longifolia.

୨ୟ ଅର୍ଥରେ ଅନ୍ୟ ସଂସ୍କୃତ ନାମ—ପୀତବୃକ୍ଷ, ସୁରଭିଦାରୁ, ପୀତଦ୍ରୁ, ପୂତିକାଷ୍ଠ, ଧୂପବୃକ୍ଷକ, ଭଦ୍ରଦାରୁ, ଶୀତଦାରୁ, ମନୋଜ୍ଞ, ସ୍ନିଗ୍ଧ, ଶରଦ ପଦକ, ଶୀତ

चिरका पेड़, सरल, धूप सरल

ତେ. ସରଳ ଦେବଦାରୁ, ଗହରେ

[ବ୍ରି—ଏହି ଗଛର କାଠ ହଳଦିଆ ଓ ସୁଗନ୍ଧ ବିଶିଷ୍ଟ । ଏଥିର କାଠକୁ ସିଝାଇଲେ ଟାରପିନ୍ ତେଲ ବାହାରେ ୍ବ ଏହାର ନିର୍ଯାସ ଶୁଖି ଗଲେ ତାହା ରଜନ୍ ହୁଏ । ବୈଦ୍ୟଶାସ୍ତ୍ର ଅନୁସାରେ ଏହା ମଧୁର, ତିକ୍ତରସ, କଟୁବିପାକ, ଲଘୁ, ସ୍ନିଗ୍ଧ, ଉଷ୍ଣବୀର୍ଯ ଓ ଉଷ୍ଣୋଦ୍ଭ । ଏହା କର୍ଣ୍ଣ ରୋଗ, କଣ୍ଠ ରୋଗ, ନେତ୍ରରୋଗ, କଫ, ବାୟୁ, ଦାହ, କାଶ, ମୂର୍ଚ୍ଛା, ଶୋଥ, କଣ୍ଡୁ ଓ ବ୍ରଣର ବିନାଶକ ଅଟେ ।] ୩ । ବୁଦ୍ଧ (ହୈମକୋଷ)— 3. The Buddha. ୪ । ଅଗ୍ନି (ଧରଣୀ)—4 Fire

ସ. ବିଣ—୧ । ଋଜୁ; ଅବକ୍ର; ସିଧା—1. Straight. ୨ । ସହଜ—2. Easy. ୩ । ସହଜସାଧ୍ୟ—3. Easy of solution. ୪ । ଉଦାର—4. Liberal-minded. ୫ । ମସୃଣ—5. Smooth. ୬ । କପଟଶୂନ୍ୟ—6. Frank; artless; guileless. ୭ । (ସରଳତା, ସରଳତ୍ୱ; ସାରଲ୍ୟ—ବି) ସାଧୁ; ସତ; ନ୍ୟାୟପର— (ସରଳା—ସ୍ତ୍ରୀ) 7. Honest; righteous; upright.

ଦେ. ବି—ଅଳଙ୍କାର ବିଶେଷ—A kind of ornament. [ଲି—ତାଡ଼, ଝୁମ୍ପା, ସରଳ, କାହୁଟି, ଜଗଦଳ । —ସାରଳା. ମହାଭାରତ, ସଭା ।]

**ସର ଲଗା**—ଦେ. (କସ୍ତୁର) ବିଣ—ଅକ୍ଳାନ୍ତ— Sara lagā Unfatigued.

**ସରଳ ଚିତ୍ତ**—ସ. ବି (କର୍ମଧା)—କପଟଶୂନ୍ୟ ହୃଦୟ— Sarala chitta Frank mind.

(ସରଳଚିତ୍ତା—ସ୍ତ୍ରୀ) ସ. ବିଣ. ପୁଂ (ବହୁବ୍ରୀହି)—ସରଳ ଚେତାଃ (ଦେଖ)—Sarala chetāḥ (See)

**ସରଳ ଚେତାଃ**—ସ. ବିଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ସରଳ+ଚେତସ୍ Sarala chetāh ଯାହାର)—କପଟଶୂନ୍ୟ ହୃଦୟ (ବ୍ୟକ୍ତି)— (ସରଳ ଚେତା—ଦେଖିଲ ରୂପ) Frank-hearted (person).

**ସରଳ ଝାଡ଼ା**—ଦେ.ବି—କୋଷ୍ଠଶୁଦ୍ଧି—Free movement of the Sarala jhārḍā সরলদাস্ত खुलासा पैखाना bowels. [ସରଳ ଦା(ଦୋ)ସ୍ତ, ସରଳ ଯୋଖସ—ଅନ୍ୟରୂପ]

**ସରଳତା(ତ୍ୱ)**—ସ. ବି (ସରଳ+ଭାବେ. ତା, ତ୍ୱ)—୧ । ଋଜୁତା— Saralatā(twa) 1. Straightness. ୨ । କପଟଶୂନ୍ୟତା— 2. Frankness; sincerity. ୩ । ନ୍ୟାୟପରତା— 3. Uprightness; rectitude.

**ସରଳ ତୃଣ**—ସ. ବି—ଭୂସ୍ତୃଣ ( ଦେଖ ) Sarala truna Bhustruna ( See )

**ସରଳ ଦ୍ରବ(ନର୍ଯ୍ୟାସ)**—ସଂ. ବି°(ଷଷ୍ଠୀ ତତ୍) ( ବୈଦ୍ୟକ )—ସରଳ Sarala draba(nirjyāsa) ବୃକ୍ଷର ରସ; ତାର୍ପିନ୍; ଗନ୍ଧବିରୋଜା; ଶ୍ରୀପିଷ୍ଟ (ଦେଖ)—Śripishṭa (See)

(ଅନ୍ୟ ସଂସ୍କୃତ ନାମ—ପାୟସ, ଶ୍ରୀବାସ, ବୃକଧୂପ, ଶ୍ରୀବେଷ୍ଟ, ତୈଳପର୍ଣ୍ଣୀ, ଶ୍ରୀପିଷ୍ଟ, ଶ୍ରୀବେଷ୍ଟ, ଶ୍ରୀବେଶ, ସରଳାଙ୍ଗ, ଯାସ, ଯବାସ, ଘୃତହୃଦ୍ୟ, ଦଧ୍ୟାହ୍ୱୟ, କ୍ଷୀରହ୍ୱୟ, ଅଜଙ୍ଗ, ଶୀରଶ୍ରୀ, ବାୟସ, ସରଳସ୍ରାବ )

**ସରଳଦ୍ରୁ**—ସଂ. ବି—ସରଳ ଗଛ; ଏକ ପ୍ରକାର ଦେବଦାରୁ ଗଛ—Saraladru A sort of pine; Pinus Longifolia.
(ସରଳ ଦ୍ରୁମ—ଅନ୍ୟରୂପ)

**ସରଳ ପ୍ରକୃତି**—ସଂ. ବି ( କର୍ମଧା )—୧ । ଉଦାର ପ୍ରକୃତି—Sarala prakṛuti 1. Liberal nature. ୨ । ନିଷ୍କପଟ ପ୍ରକୃତି; କପଟତାଶୂନ୍ୟ ସ୍ୱଭାବ—2. Frank nature.
ସଂ.ବିଣ.ପୁଂ ଓ ସ୍ତ୍ରୀ (ବହୁବ୍ରୀହି)—ସରଳ ପ୍ରକୃତିକ (ଦେଖ) Sarala prakṛutika (See)

**ସରଳ ପ୍ରକୃତିକ**—ସଂ. ବିଣ. ପୁଂ ( ବହୁବ୍ରୀହି )—ନିଷ୍କପଟ ପ୍ରକୃତିବିଶିଷ୍ଟ—Sarala prakṛutika Of frank nature.
(ସରଳ ପ୍ରକୃତିକା—ସ୍ତ୍ରୀ)

**ସରଳ ପ୍ରଶ୍ନ**—ସଂ. ବି ( କର୍ମଧା )—୧ । କପଟତାଶୂନ୍ୟ ଅସନ୍ଦିଗ୍ଧ ଉକ୍ତି ପ୍ରଶ୍ନ—1. Frank question. Sarala praśna ୨ । ସହଜସାଧ୍ୟ ପ୍ରଶ୍ନ—2. Easy question.

**ସରଳ ପ୍ରାଣ**—ସଂ. ବି (କର୍ମଧା)—କପଟତାଶୂନ୍ୟ ହୃଦୟ—Frank Sarala prāṇa heart; guileless mind.
(ସରଳପ୍ରାଣା—ସ୍ତ୍ରୀ) ସଂ. ବିଣ. ପୁଂ ( ବହୁବ୍ରୀହି )—ସରଳଚେତାଃ (ଦେଖ)—Sarala chetāh ( See )

**ସରଳ ବିଶ୍ୱାସ**—ସଂ. ବିଣ ( କର୍ମଧା )—ନିଷ୍କପଟ ବିଶ୍ୱାସ—Frank Sarala biśwāsa faith; good faith; bonafides.
ସଂ. ବିଣ. ପୁଂ (ବହୁବ୍ରୀହି)—ସରଳ ବିଶ୍ୱାସୀ ( ଦେଖ ) Sarala biśwāsi ( See )

**ସରଳ ବିଶ୍ୱାସୀ**—ସଂ. ବିଣ (ବହୁବ୍ରୀହି)—ଯେଉଁ ଲୋକ ମନରେ Sarala biśwāsi କୌଣସି କପଟ ବା ସନ୍ଦେହ ନ ରଖି ଅନ୍ୟଠାରେ ବା ଅନ୍ୟର କଥାରେ ବିଶ୍ୱାସ ସ୍ଥାପନ କରେ—Of good faith; bonafide.

**ସରଳ ବୁଦ୍ଧି**—ସଂ. ବି (କର୍ମଧା)—କପଟତାଶୂନ୍ୟ ବୁଦ୍ଧି ବା ମନ—Sarala buddhi Intelligence or understanding (ସରଳମତି—ଅନ୍ୟରୂପ) free from crookedness; frank mind. ସଂ. ବିଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି)—[କୁଟବୁଦ୍ଧି, କୁଟମତି—ବିପରୀତ] ୧ । ନିଷ୍କପଟ—1. Frana. ୨ । ସରଳହୃଦୟ—2. Frank-hearted.

**ସରଳ ରେଖା**—ସଂ. ବି—ଋଜୁ ରେଖା; ସିଧା ରେଖା—Sarala rekhā Straight line.

**ସରଳ ସ୍ରାବ (ସ୍ୟନ୍ଦ, ରସ)**—ସଂ. ବି (କର୍ମଧା) (ବୈଦ୍ୟକ)—ଶ୍ରୀପିଷ୍ଟ Sarala srāba (syanda, rasa) (ଦେଖ)—Śripishṭa (See)

**ସରଳ ହୃଦୟ**—ସଂ. ବି (କର୍ମଧା)—ସରଳ ଚିତ୍ତ (ଦେଖ)—Sarala chitta. (See) ସଂ. ବିଣ. ପୁଂ— Sarala hṛudaya
[ସରଳହୃଦୟା—ସ୍ତ୍ରୀ] (ବହୁବ୍ରୀହି) ସରଳଚେତାଃ ( ଦେଖ )—Sarala chetāh. (See)

**ସରଳା**—ସଂ ବିଣ. ସ୍ତ୍ରୀ [ ସରଳ + ସ୍ତ୍ରୀ. ଆ ]—ସରଳର ସ୍ତ୍ରୀଲିଙ୍ଗ—Saralā Feminine of Sarala. ସଂ. ବି—୧ । [ ବୈଦ୍ୟକ ] ନିସୁତ୍ତା; ତ୍ରିବୃତ୍; ଶ୍ୱେତ ନିସୁନ୍ଦା—1. White species of Ipomoea Turpethum (plant and root). ୨ । ନଦୀ ବିଶେଷ—2. Name of a river. ୩ । କପିଳ ଦ୍ରାକ୍ଷା (ଶବ୍ଦକୋଷ)—3. Brown grape. ୪ । କୃଷ୍ଣତୁଳସୀ (ବୈଦ୍ୟକ ଶବ୍ଦ)—4. Black-leaved Basil plant. ୫ । ମଲ୍ଲିକା (ହି. ଶ)—4. Jasmine. ଦେ. ବି. ସ୍ତ୍ରୀ—ସବଳା ସରଳା ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—A name given to females.

**ସରଲା**—ପ୍ରାଦେ. (ବାଲେଶ୍ୱର ଘାଟଣା) କ୍ରି—ସରଗଲା—Saralā (ସରୁଲା—ଅନ୍ୟରୂପ) Finished; ended.

**ସରଳା ଦେବୀ**—ଦେ. ବି—ଉତ୍କଳର ବିଦୁଷୀ ଜାତିକର୍ମିଣୀ ଶ୍ରୀମତୀ Saralā debi ସରଳା ଦେବୀ, ଏମ୍. ଏଲ୍. ଏ—Śrimatī Saralā Debi, M. L. A., the educated public-spirited lady of modern Orissa.

[ ଦ୍ର—ଏହାଙ୍କ ଜନ୍ମ—ଖ୍ରୀ. ୧୯୦୪, ଜନ୍ମସ୍ଥାନ—କଟକ ଜିଲ୍ଲା । ପିତାଙ୍କ ନାମ—ଶ୍ରୀ ବାସୁଦେବ କାନୁନ୍‌ଗୋ । ମାତାଙ୍କ ନାମ—ଶ୍ରୀମତୀ ପଦ୍ମାବତୀ ଦେବୀ । ଶ୍ରୀମତୀ ସରଳାଦେବୀଙ୍କ ଜନ୍ମ ହେବା ଦିନଠାରୁ ତାଙ୍କର ଖୁଲ୍ଲତାତ ସ୍ୱର୍ଗତଃ ଶ୍ରୀଯୁକ୍ତ ବାଲମୁକୁନ୍ଦ କାନୁନ୍‌ଗୋ ଓ ତାଙ୍କ ସ୍ତ୍ରୀ ଶ୍ରୀମତୀ ହେମନ୍ତକୁମାରୀ ଦେବୀ ତାଙ୍କୁ ପୋଷ୍ୟଦୁହିତାରୂପେ ଲାଳନ-ପାଳନ କରୁଥିଲେ । ୰ ବାଲମୁକୁନ୍ଦ କାନୁନ୍‌ଗୋ ବିହାର ଓ ଓଡ଼ିଶା ପ୍ରଦେଶର ଜଣେ ଡେପୁଟି କଲେକ୍ଟର୍ ଥିଲେ । ସରଳାଦେବୀଙ୍କ ସ୍ୱାମୀ ଶ୍ରୀଯୁକ୍ତ ଭଗୀରଥି ମହାପାତ୍ର ଏମ୍. ଏ., ବି. ଏଲ୍. କଂଗ୍ରେସର ଜଣେ ବିଶିଷ୍ଟ ନେତା ଓ ବର୍ତ୍ତମାନ କଟକ ମ୍ୟୁନିସିପାଲିଟିର ଚେଅରମାନ୍ । କଟକ ଜିଲ୍ଲା ଅନ୍ତର୍ଗତ ଜଗତ୍‌ସିଂହପୁର ଥାନାର ଗୁହା ଗ୍ରାମରେ ତାଙ୍କର ନିବାସ । ଭଗୀରଥି ବାବୁ ୧୯୨୧ ସାଲର ଅସହଯୋଗ ଆନ୍ଦୋଳନ ବେଳେ ଓକିଲାତି ଛାଡ଼ିଥିଲେ ଏବଂ ଦୁଇ ବର୍ଷ କାରାଗାର ମଧ୍ୟ ବରଣ କରିଥିଲେ । ସରଳା ଦେବୀ ଉଚ୍ଚପ୍ରାଇମେରୀ ଶିକ୍ଷା ଶେଷ କରି ସ୍କୁଲ ଛାଡ଼ିଥିଲେ । ସେ ନିଜେ ଅକ୍ଳାନ୍ତ ପରିଶ୍ରମ କରି ଓଡ଼ିଆ, ବଙ୍ଗଳା, ହିନ୍ଦି ଓ ଇଂରେଜୀ ଭାଷା ଶିକ୍ଷା କରିଅଛନ୍ତି ।

ସେ ପ୍ରାୟ ୧୨୧୮ ବର୍ଷ ହେଲା ଦେଶସେବା କରି ଆସୁଅଛନ୍ତି । ଯେତେବେଳେ ସେ ପରଦା ପ୍ରଥାକୁ ଲଙ୍ଘନ କରି ବାହାରକୁ ବାହାରିଲେ ସେତେବେଳେ ଆମ ଓଡ଼ିଶାର ହିନ୍ଦୁଘରର ମାଆ ଭଉଣୀମାନେ କବାଟ କଣରେ ଅଧା ରହୁଥିଲେ; ସେମାନଙ୍କର କୌଣସି ସାଧାରଣ କାର୍ଯ୍ୟରେ

ଯୋଗଦାନ କରିବା ଦୂରେ ଥାଉ, ସେମାନେ ବାଡ଼ିକୁ ବାହାରିବାକୁ ସାହସ କରୁ ନ ଥିଲେ । ସରଳାଦେବୀ ଉତ୍କଳର ହିନ୍ଦୁ ସମାଜର ମାଆ ଭଉଣୀଙ୍କର ଅବଗୁଣ୍ଠନ ଅଗ ଖୋଲିଛନ୍ତି, କହିଲେ ଚଳେ । ୧୯୨୪ ସାଲରେ କଟକରେ ସ୍ୱର୍ଗୀୟ ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କ ସଭାପତିତ୍ୱରେ ଯେଉଁ ସଭା ହୋଇଥିଲା ସେଠାରେ ସରଳାଦେବୀଙ୍କ ଅକ୍ଳାନ୍ତ ଚେଷ୍ଟା ଓ ପ୍ରଯତ୍ନର ଫଳରେ ହିନ୍ଦୁ ଘରର ଝିଅ ବୋହୂମାନେ ପ୍ରଥମେ ବହୁ ସଂଖ୍ୟାରେ ସାଧାରଣ ସଭାକୁ ଆସିଥିଲେ । ତହିଁ ପୂର୍ବରୁ କେବେହେଲେ ପୁରୁଷମାନଙ୍କ ସଭାକୁ ହିନ୍ଦୁ ଓଡ଼ିଆଣୀମାନେ ଯାଇ ନ ଥିଲେ । ସେହିଦିନଠାରୁ ପ୍ରତ୍ୟେକ ସଭା ସମିତିରେ ହିନ୍ଦୁ ମାଆ ଭଉଣୀମାନେ ଯୋଗ ଦେଉଥିବା ଦେଖାଯାଉଅଛି । ଗତ ସତ୍ୟାଗ୍ରହ ଆନ୍ଦୋଳନରେ ସ୍ତ୍ରୀମାନଙ୍କ ତରଫରୁ ପ୍ରଥମେ ସରଳାଦେବୀ ସୈନିକବାହିନୀରେ ନାମ ଲେଖାଇଥିଲେ । ଆଇନ୍ ଅମାନ୍ୟ ଆନ୍ଦୋଳନରେ ଓଡ଼ିଶାର ସ୍ତ୍ରୀମାନଙ୍କ ମଧ୍ୟରେ ସେ ସର୍ବପ୍ରଥମେ କାରାଦଣ୍ଡ ବରଣ କରିଥିଲେ । ନିଖିଳ ଭାରତ କଂଗ୍ରେସର ଅଧିବେଶନ ୧୯୩୧ ସାଲରେ ପୁରୀରେ ହେବ ବୋଲି ସ୍ଥିର ହୋଇଥିଲା । ସେ କରାଚୀ କଂଗ୍ରେସରେ ବକ୍ତୃତା ଦେଇ କଂଗ୍ରେସକୁ ଓଡ଼ିଶାକୁ ନିମନ୍ତ୍ରଣ କରିଥିଲେ । ଏଥି ପୂର୍ବରୁ କୌଣସି ଓଡ଼ିଆ ମହିଳା ନିଖିଳ ଭାରତ କଂଗ୍ରେସ ମହାସଭାରେ ବକ୍ତୃତା ଦେଇ ନ ଥିଲେ । ୧୯୩୧ ସାଲରେ ମାନ୍ଦ୍ରାଜ ପ୍ରଦେଶର ଇରୋଡ଼ଠାରେ ଯେଉଁ ପ୍ରାଦେଶିକ ତାମିଲ ମହିଳା ସମ୍ମେଳନୀ ବସିଥିଲା ତହିଁରେ ସରଳାଦେବୀ ସଭାପତି ପଦରେ ବରିତ ହୋଇଥିଲେ । ତହିଁ ପୂର୍ବରୁ କୌଣସି ଓଡ଼ିଆଣୀ ବା ଓଡ଼ିଆ ଏହିପ୍ରି ବଡ଼ ସମ୍ମେଳନରେ ଓ ବିଦେଶରେ ସଭାପତି ହୋଇନ ଥିଲେ । କଟକ ସମବାୟ ବାଙ୍କ୍‌ରେ ସେ ଅନେକ ବର୍ଷ ହେଲା ଡିରେକ୍‌ଟର୍ ରୂପେ କାର୍ଯ୍ୟ କରିଆସୁଅଛନ୍ତି । ଏଥି ପର୍ବେ ଓଡ଼ିଶାରେ କୌଣସି ମହିଳା ଡିରେକ୍‌ଟର୍ ହୋଇ ନ ଥିଲେ । ସରଳାଦେବୀ ଡିରେକ୍‌ଟର୍ ହେବା ପୂର୍ବରୁ ଭାରତର ଅନ୍ୟ ପ୍ରଦେଶମାନଙ୍କରେ ମଧ୍ୟ କୌଣସି ମହିଳା ବାଙ୍କ୍ ଡିରେକ୍‌ଟର୍ ହୋଇ ନ ଥିଲେ । ୧୯୩୮ରେ ନାରୀମଙ୍ଗଳ ସମିତିର ସଭାପତିରୂପେ ନିର୍ବାଚିତ ହୋଇ ବାଲ୍ୟବିବାହ ନିରୋଧ, ବିଧବାବିବାହ ପ୍ରଭୃତି ସାମାଜିକ ସୁଧାରକର୍ମରେ ସେ କାର୍ଯ୍ୟ କରି ଆସୁଅଛନ୍ତି । ପ୍ରାୟ ୬।୭ ବର୍ଷ ହେଲା ସେ କଟକ ସଦର ଲୋକାଲ୍‌ବୋର୍ଡର ମେମ୍ବର ହୋଇଅଛନ୍ତି । ଏଥି ପୂର୍ବରୁ ଓଡ଼ିଶାର କୌଣସି ମହିଳା ଲୋକାଲ୍‌ବୋର୍ଡ଼ର ସଭ୍ୟ ହୋଇ ନ ଥିଲେ ୧୯୩୧ ରେ ଯେଉଁ ଉତ୍କଳ ଯୁବକସଂଘ ଗଠିତ ହୋଇଥିଲା ସେଥିରେ ସେ ସଭାପତି ହୋଇଥିଲେ । ସେ ଛନ୍ଦସ୍ମୃତି ଗ୍ରନ୍ଥମାଳାର ସମ୍ପାଦନ ଭାର ଗ୍ରହଣ କରି ଅନେକ ପୁସ୍ତକ ସମ୍ପାଦନ କରିଅଛନ୍ତି । 'ସହକାରୀ' ନାମକ ମାସିକ ପତ୍ରିକା ମଧ୍ୟ ତାଙ୍କଦ୍ୱାରା ସମ୍ପାଦିତ ହେଉଥିଲା । ସେ ଇଂରେଜୀ, ଓଡ଼ିଆ, ବଙ୍ଗଳାରେ ଅନେକ ପ୍ରବନ୍ଧ ଭାରତର ଭିନ୍ନ ଭିନ୍ନ ପତ୍ରିକାମାନଙ୍କରେ କରିବାର ଲେଖି ଆସୁଅଛନ୍ତି । ଉତ୍କଳ ସମ୍ମେଳନୀର ସାଫଲ୍ୟ ପାଇଁ ମଧ୍ୟ ସେ ଅନେକକାର୍ଯ୍ୟ କରିଅଛନ୍ତି । ସମ୍ମେଳନୀର ସାଧାରଣ ପରିଷଦର ସେ ଜଣେ ସଭ୍ୟ । ଦେଶମିଶ୍ରଣ ଆନ୍ଦୋଳନରେ ସେ ଅନେକ ପରିଶ୍ରମ କରିଅଛନ୍ତି । 'ନିଖିଳ ଭାରତ ପରିଷଦ୍ୟନ୍ତ୍ରି ଅଖିଳ ସମ୍ମେଳନୀ'ରେ ଉତ୍କଳର ପ୍ରତିନିଧି ରୂପେ ସେ ସଭ୍ୟା ଅଟନ୍ତି । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ଓ କଟକ ଜିଲ୍ଲା କଂଗ୍ରେସ କମିଟିର ସଭ୍ୟା ରୂପେ ସେ କାର୍ଯ୍ୟ କରି ଆସୁଅଛନ୍ତି । ସେ ତାଙ୍କର ମନ ପ୍ରାଣକୁ କଂଗ୍ରେସ କାର୍ଯ୍ୟରେ ଓ ଜନସେବାରେ ଓ ବିଶେଷତଃ ନାରୀ ଜାତିର ପ୍ରଗତିରେ ଉତ୍ସର୍ଗ କରିଅଛନ୍ତି । କଂଗ୍ରେସ ତରଫରୁ ସେ ବର୍ତ୍ତମାନ ଓଡ଼ିଶା ବ୍ୟବସ୍ଥାପକ ସଭାରେ ନାରୀ ନିର୍ବାଚନ ମଣ୍ଡଳରୁ ପ୍ରତିନିଧି ରୂପେ ନିର୍ବାଚିତ ହୋଇଅଛନ୍ତି । ବାଲ୍ୟବିବାହ ନିରୋଧ ଆଇନର ସଂଶୋଧନ, ଯୌତୁକ ପ୍ରଥା ନିରୋଧ Anti-slavery ବା Concubinage Bill (ଦାସୀ ବା ପୋଇଲା ପ୍ରଥା ନିରୋଧକ ବିଲ୍), ପଣ ଇତ୍ୟାଦି ପ୍ରଭୃତି ସମ୍ବନ୍ଧରେ କେତୋଟି ବିଲ୍ ସେ ଓଡ଼ିଶା ଅସେମ୍ବ୍ଲିରେ ଉପସ୍ଥାପିତ କରିଅଛନ୍ତି । ଦେଶର ହିତଦୃଷ୍ଟିରୁ ଓ ବିଶେଷତଃ ନାରୀ ସମାଜର ମଙ୍ଗଳ ଦୃଷ୍ଟିରୁ ଅନେକଗୁଡ଼ିଏ ପ୍ରସ୍ତାବ ସେ ବ୍ୟବସ୍ଥାପକ ସଭାରେ ପାଶ୍ କରାଇ ପାରିଅଛନ୍ତି । ଦେଶର ମ୍ୟୁନିସିପାଲିଟି ଓ ଲୋକାଲ୍ ବୋର୍ଡ଼କୁ ପରାମର୍ଶ ଦେଇ ସେ ବହୁତ ଭଲ କାର୍ଯ୍ୟ ମଧ୍ୟ କରିଅଛନ୍ତି ।

• ଅନେକ ଲୋକହିତକର ଅନୁଷ୍ଠାନ ସହିତ ସେ ସଂପୃକ୍ତା । ଦେଶସେବା ଓ ନିଃସ୍ୱାର୍ଥପରତା ଯୋଗୁଁ ଆମ ଓଡ଼ିଶାରେ କାହିଁକି, ଭାରତର ଅନ୍ୟାନ୍ୟ ପ୍ରଦେଶରେ ମଧ୍ୟ ସେ ସମ୍ମାନିତ ହୋଇଅଛନ୍ତି—ସନ୍ଦର୍ଭ ଲେଖକ- ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ପଟ୍ଟନାୟକ । ]

ସରଳାଙ୍ଗ—ସଂ. ବି (ବୈଦ୍ୟକ)— ଶ୍ରୀପିଷ୍ଟ ( ଦେଖ )
Saralāṅga Śripishṭa ( See )

ସରଳାନ୍ତଃକରଣ—ସଂ. ବି (କର୍ମଧା, ସରଳ + ଅନ୍ତଃକରଣ)—ସରଳ ଚିତ୍ତ
Saralāntah karaṇa (ଦେଖ)—Sarala chitta (See)
ସଂ. ବିଣ (ବହୁବ୍ରୀହି)—ସରଳ ଚେତାଃ ( ଦେଖ )
(ସରଳାନ୍ତଃକରଣା—ବିଂ. ସ୍ତ୍ରୀ) Sarala chetāh ( See )

ସରଳି—ପ୍ରାଦେ· (ବାଲେଶ୍ୱର) ବି—ଶରାଳି ( ଦେଖ )
Sarali Sarāli ( See )

ସରଳି—ଦେ. ବି—ପଲମଠାରୁ କ୍ଷୁଦ୍ରତର ଓ ଗଭୀରତର ଲୌହ ପଲମ—
Saralí A concave crucible or pan smaller
ମାଳସା and deeper than an ordinary one.
କୋହୀ [ଦ୍ର—ଏ ଥିରେ ଦହିରୁ ଛେନା ପ୍ରସ୍ତୁତ କରାଯାଏ ।]
(ସରଳଅ—ଅନ୍ୟରୂପ)

ସରଳିଆ—ଦେ. ବିଣ. ପୁଂ ( ସଂ. ସରଳ )—୧ । ସରଳ; ନିଷ୍କପଟ—
Saraliā 1. Frank. ୨ । ଡେଙ୍ଗା ଓ ପତଳା; ସରୁ ଓ
(ସରଳୀ—ସ୍ତ୍ରୀ) ଲମ୍ବା—2. Tall and thin; slender

(ଉପସ୍ଥିତ—ରୂପଗତ) and long. ୩ । ସହଜ—3. Easy.
ସରଳ ୪ । (ଅଳଙ୍କାର ଅର୍ଥ) ଯାହା ସହଜରେ ଅଙ୍ଗରେ ଗଳି
ସରଲ ଯାଏ—4. (any ornament) Which easily fits into any limb. ଦେ. ବି—ସରଳି (ଦେଖ) Sarali (See)

**ସରଳିଆ**—ପ୍ରାଦେ· (କଳାହାଣ୍ଡି) ବି—ଚେଲୁଳଅଦଳ—
Saralia Centiped.

**ସରଳିଆ ଝାଡ଼ା**—ଦେ· ବି—କୋଷ୍ଠ ଶୁଦ୍ଧି—Easy evacuation;
Saralia jharda free movement of the
সরল বাহ্যি, সরল দাস্ত খুলাসা টট্টী bowels.
[ସରଳିଆ ଦ(ଦା)ସ୍ତ, ସରଳିଆ ଯୋଗଣ, ସରଳିଆ ବାହାରକୁ—ଅନ୍ୟରୂପ]

**ସରଳିବା**—ଦେ. କି (ସଂ. ସରଳ)—ଖଣ୍ଡାକୁ ଖାପରୁ କାଢ଼ି ହାତରେ
Saraliba ଖଣ୍ଡାର ଫଳକୁ ସଳଖିବା—To straighten
সোজা করা the blade of a sword after un-
সিধা করনা sheathing it. [ଉ—ଯାଇକେ ସନ୍ନମାନ ଅଣ୍ଟରେ କଷ୍ଟିଲେ, ସରଳି ଧୂପ ଖଣ୍ଡାମାନ ଭୂଆଁଇଲେ । କୃଷ୍ଣସିଂହ. ମହାଭାରତ. ବନ ।]

**ସରଳୋନ୍ନତ**—ସଂ· ବି ( ସରଳ ଅଥଚ ଉନ୍ନତ; କର୍ମଧା )—
Saralonnata ସିଧା ଭାବରେ ଉଚ୍ଚ; ଡେଙ୍ଗା—Straight and high; tall.

**ସରଶିଆ**—ପ୍ରାଦେ· (ସମ୍ବଲପୁର) ବିଣ—ସର୍ଶିଆ ( ଦେଖ )
Sarasia Sarsia ( See )

**ସରଶୁଆ(ଆଁ)ରି(ଳି)**—ଦେ, ବି—ମିଷ୍ଟାନ୍ନ ବିଶେଷ—Name of a
Sarasua(an)ri(li) sweetmeat enclosing cream in it. [ଉ—ଏହା ଗହମ ଅଟା, ଗୁଡ଼ ଓ ଦୁଧ ସରରେ ମିଶ୍ରିତ ଓ ଘୃତପକ୍ୱ ହୋଇ ପ୍ରସ୍ତୁତ ହୁଏ । ଏଥିମଧ୍ୟରେ ସରର ପୁର ମଧ୍ୟ ଦିଆଯାଇ ଥାଏ ।]

**ସରସ୍**—ସଂ. ବି—ସରଃ ( ଦେଖ )—Sarah ( See )
Saras ଦେ· ବିଣ—ସରସ (ଦେଖ)—Sarasa (See)

**ସରସ**—ସଂ. ବି (ସୃ ଧାତୁ=ଗତି କରିବା+ଅଧି· ଅସ; କିମ୍ବା ସ=
Sarasa ସହ+ରସ=ଜଳ )—ସରୋବର—Tank;
ସାରସ } ରୂପଗତ lake; pond. ସଂ. ବିଣ (ସହାର୍ଥ ବହୁବ୍ରୀହି;
ସାରସ } ସ=ସହ+ସରସ)—୧ । ରସଯୁକ୍ତ; ରସୁଆଳ—
1. Juicy; luscious. ୨ । ସୁସ୍ୱାଦୁ; ମଧୁର—
2.Sweet; agreeable to the taste. ୩ । ନୂତନ; ତାଜା; ଟଟକା—3. New; fresh; blooming (Apte). ୪ । ରସିକତାପୂର୍ଣ୍ଣ—4. Full of wit; humorous. ୫ । ପ୍ରଫୁଲ୍ଲ; ହାସ୍ୟଯୁକ୍ତ—5. Smiling; joyous. ୬ । ଆର୍ଦ୍ର; ଓଦା—6. Moist. ୭ । ସୁନ୍ଦର—7. Beautiful; charming; lovely (Apte). ୮ । ପ୍ରେମମୟ—8. Full of love; impassioned (Apte). ୯ । ଭାବମୟ—9. Expressive of poetical sentiment
সরেস (Apte). ଦେ· ବିଣ—୧ । ଉତ୍କୃଷ୍ଟ—1. Excellent.
सरस ୨ । ଉତ୍କୃଷ୍ଟତର—2. Superior. [ଉ—ସରସ ଗ୍ରନ୍ଥେ (ସାରସ—ରୂପଗତ) ରସ, ସୁଧୀ । ସ-ଅନୁପ୍ରାସ, ଶବ୍ଦଳଙ୍କ ଚାଟୁ ଲଭ ସନ୍ତୋଷ—ଗୋଲୋକ· ଇନ୍ଦୁରେଖା ।] ୩ । ରସିକତାପୂର୍ଣ୍ଣ; ରସିକ; ରସଜ୍ଞ—3. Witty; humorous; appreciative of wit and humour. ୪ । ନାଗରତା ପୂର୍ଣ୍ଣ—4. Full of gallantry. ୫ । ଗୁଣଗ୍ରାହକ—5.Appreciative of good qualities in others. ଦେ. ବି—ସରସା ( ଦେଖ ) Sarasa (See).

**ସରସ କଥା**—ସଂ. ବି—୧ । ରସିକତାଯୁକ୍ତ ବାକ୍ୟ—1. Witty or
Sarasa katha humorous words. ୨ । ଉତ୍କୃଷ୍ଟ
(ସରସ ବଚନ—ଅନ୍ୟରୂପ) କଥା—2. Excellent words.

**ସରସତା(ତ୍ୱ)**—ସଂ.ବି (ସରସ+ଭାବେ.ତା,ତ୍ୱ)—ସରସ ହେବାର ଭାବ—
Sarasata(twa) The state of being Sarasa.

**ସରସତୀ**—ଗ୍ରା. ବି ( ସଂ. ସରସ୍ୱତୀ; ପ୍ରା· ସରସଇ )—୧ । ସରସ୍ୱତୀ
Sarasati ଦେବୀ—1. The Goddess Saraswati.
সরসতী [ ଉ—ସରସତୀଙ୍କ ଗୁଣ ଭଜେ । ଖଗ ମୁଣ୍ଡ ଦେଖା
सरोसती, सरसई ମତେ. ଶିଶୁବଚନ । ] [ ଉ—ମଠର ସରସ୍ୱତୀଙ୍କ ବାହାନ ଥିବାରୁ ଶିଶୁମାନେ ଜଳରେ କୁମ୍ଭୀରକୁ ଦେଖିଲେ ଏହି ପଦ ବୋଲି ଥାଆନ୍ତି । ] ୨ । ସରସ୍ୱତୀ ନାମ୍ନୀ ସ୍ତ୍ରୀର ଡାକ ନାମ—
2. A nick name for calling Saraswati.

**ସରସ ପଣ(ପଣିଆ)**—ଦେ.ବି—ସରସତା—The state of being
Sarasa pana(pania) সরসতা सरसाइ Sarasa.

**ସରସ ବଦନ**—ସଂ. ବି ( କର୍ମଧା )—ପ୍ରଫୁଲ୍ଲ ମୁଖ; ହର୍ଷଯୁକ୍ତ ମୁଖ—
Sarasa badana Laughing or smiling face.
( ସରସ ମୁଖ—ଅନ୍ୟରୂପ ) ସଂ. ବିଣ· ପୁଂ ( ବହୁବ୍ରୀହି )—ହାସ୍ୟ-
( ସରସ ମୁହଁ—ବି ଦେଶଜରୂପ ) ମୁଖ; ସହର୍ଷ ବଦନ—Having
( ସରସ ମୁହାଁ—ବିଣ ଦେଶଜରୂପ ) , a smiling face.
( ସରସ ବଦନା, ସରସ ମୁଖୀ—ସ୍ତ୍ରୀ )

**ସରସ ବଦନିଆ**—ଦେ. ବିଣ. ପୁଂ—ପ୍ରଫୁଲ୍ଲ ମୁଖଯୁକ୍ତ; ହାସ୍ୟମୁଖବିଶିଷ୍ଟ
Sarasa badania Having a smiling or laughing
সরস বদন हँसमुँह face.
( ସରସ ମୁହାଁ[ହିଁ]—ଅନ୍ୟରୂପ )
( ସରସ ବଦନୀ; ସରସ ମୁହାଁ[ହିଁ]—ସ୍ତ୍ରୀ )

**ସରସର**—ଦେ. ବିଣ—୧ । ଜୁଡୁବୁଡୁ; ଜରଜର; ବିଶେଷଭାବରେ
Sarasara ତୈଳାଦିଦ୍ୱାରା ଜର୍ଜରିତ ବା ଲେପିତ; ଅତି ଆର୍ଦ୍ର—
সপ সপ 1. Copiously anointed or drenched
जर्जर, सराबोर with oil or ghee. ୨ । ଯାହା ଦେହରୁ ତୈଳାଦି ଜଳୀୟ ବସ୍ତୁ ବୋହି ପଡୁଥାଏ—2. From which a liquid is dripping; much besmeared with. [ଉ—ପାଣି ସରସର ।] ୩ । ଅର୍ଦ୍ଧଜର୍ଜର ପୂର୍ଣ୍ଣ—

3. Full of. [ ଯଥା—ମଳ ସରସର । ] ଦେ॰ ଅ ( ସଂ. ସୀତ୍କାର )—୧। ଶରୀର ବା ବ୍ରଣର କଷ୍ଟଥା କରିବା ଅବସ୍ଥା; ସିରୁସିରୁ—1. The aching condition
ଟନଟନ of a boil or sore. ୨ । ସଲସଲ; ଗଲଗଲ ହେବା
सरसर ଅବସ୍ଥା—2. Tickling sensation. ୩ । ଦେହ ରୋଗାକ୍ରାନ୍ତ ବୋଧ ହେବା ଅବସ୍ଥା—3. A feeling of being unwell. ୪ । ଖଟା ଖାଇବା ଯୋଗୁ ଦାନ୍ତ ସଢ଼ ପଡ଼ିବା—4. An uneasy sensation felt in the teeth on taking too much sour things. ଦେ॰ ବିଶର ବିଣ—ଅତ୍ୟନ୍ତ—Very much. (ଯଥା—ରକ୍ତସରସର ।) କ୍ରି. ବିଣ—ବାରଂବାର—Repeatedly. [ଉ—ସରସର ଝରଇ ଲୁହମାନ । ]

ସରସରି—ବୈଦେ. ବିଣ ( ଫା. ସର୍ସର୍ )—ସର୍ସରି ( ଦେଖ )
Sarasari Sarsari ( See )

ସରସରିଆ—ଦେ. ବିଣ—ସରସର ବିଣ ( ଦେଖ )
Sarasaria Sarasara adj ( See )

ସରସା—ସଂ॰ ବିଣ ( ସରସ+ଆ ) ( ବୈଦ୍ୟକ )—ଶ୍ୱେତତ୍ରିବୃତ୍; Sarasā ଧଳା ତେଉଡ଼ି—White species of Ipomoea
सवस, सवेस Turpethum. ଦେ. ବିଣ—ସରସ ( ଦେଖ )
सरस Sarasa ( See )
ପାନିସରା, ଦାନ୍তের গোড়া ফোলা ଦେ. ବି—ଦନ୍ତ ରୋଗବିଶେଷ—
सुसिर A sort of tooth disease resulting in the looseness of teeth and bleeding of the gums. [ ଉ—ଏ ରୋଗରେ ଦାନ୍ତର ମୂଳ ଢିଲୁଢିଲା ହୁଏ ଏବଂ ସାମାନ୍ୟ ଆଘାତରେ ଦାନ୍ତ ହଲେ ଓ ଦାନ୍ତ ମଳିରୁ ରକ୍ତ ବହେ । ]

ସରସା ଦନ୍ତା—ଦେ. ବିଣ. ପୁଂ—ସରସା ଦାନ୍ତୁଆ ( ଦେଖ )—
Sarasā dantā Sarasā dāntiā (See )
( ସରସା ଦାନ୍ତୀ—ସ୍ତ୍ରୀ )

ସରସା ଦାନ୍ତ—ଦେ. ବି—ସରସା ରୋଗଯୁକ୍ତ ଦାନ୍ତ—Tooth affec-
Sarasā dānta ted with the disease ( looseness
ପানসে দাঁত सुसिर दाँत and bleedig of the gums).

ସରସା ଦାନ୍ତୁଆ—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତିର ଦନ୍ତରୋଗ ଅଛି—
Sarasā dāntiā Suffering from looseness and
পানসে দেঁতো bleeding in the teeth or gingi-
सुसिर दाँत वाला vitis.
( ସରସାଦାନ୍ତୀ, ସରସା ଦାନ୍ତେଇ—ସ୍ତ୍ରୀ )

ସରସି—ପ୍ରାଦେ ( ଉତ୍ତର ) ବି—ବଡ଼ାଇ; ବାହାଦୁରୀ;ଆତ୍ମପ୍ରଶଂସା—
Sarasi Self-applause

ସରସିଆ—ଦେ. ବିଣ—ସରସ ( ଦେଖ )— Sarasa ( See )
Sarasiā सरेस सरस

ସରସିଁ ମାଳି—ପ୍ରାଦେ॰ (ଉତ୍ତର) ବି—ସୋରିଷ ଖଣ୍ଡ ଗୋଟୀରେ
Sarasiñ māli ଗଢ଼ାହୋଇଥିବା ସୁନାର ହାର; ସୋରିଷିଆ
(ସେଲିଷୋ ମିଳି—ଅନ୍ୟରୂପ) ହାର—A necklace of mustardshaped beads.

ସରସି(ସୀ)କ—ସଂ. ବି—ସାରସ ପକ୍ଷୀ—
Sarasi(sī)ka Crane ( bird ) ( Apte ).

ସରସିଜ—ସଂ. ବି ( ସରସି=ସରୋବରରେ+ଜନ୍ ଧାତୁ=ଜନ୍ମିବା,
Sarasija +କର୍ତ୍ତି. ଅ; ଅଲୁକ୍ ସମାସ )—ପଦ୍ମ; ସରୋରୁହ; ସରୋଜ—Lotus.

ସରସିତ—ଦେ. ବିଣ ( ପଦ୍ୟ )—ରସଯୁକ୍ତ—withy. [ ଉ—
Sarasita ସରସିତ ଚିତ୍ତ ପୁଣି କର୍ଣ୍ଣମୂ ସରସୀ । ଅଶେଷ ଷାଲୋ-
সরসিত सरसित ପ୍ରଭଳକୁ ଯହିଁ ପରକାଶି—ଭଞ୍ଜ॰ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ । ]

ସରସୀ—ସଂ. ବି॰ ସ୍ତ୍ରୀ ( ସୃ ଧାତୁ ଗମନ କରିବା+ଅଧି॰ ଅସ୍+ସ୍ତ୍ରୀ.
Sarasī ଈ )—ସରୋବର; ପୁଷ୍କରିଣୀ—Tank; pond.
[ ଉ—ସରସୀ କୂଳରେ ସାରସ ଷଡ଼୍ଜ/ଶ । ଅନଠାରେ ଅଛ ହେ କହ ନରବୀଣ !—କୃଷ୍ଣସିଂହ॰ ମହାଭାରତ. ବନ । ]

ସରସୀକ—ସଂ॰ ବି—ସାରସ ପକ୍ଷୀ ( ଶବ୍ଦରତ୍ନାବଳୀ )—
Sarasīka A sort of Indian crane.

ସରସୀରୁହ—ସ. ବି (ସରସୀ=ସରୋବର+ରୁହ୍ ଧାତୁ=ଜନ୍ମିବା+
Sarasīruha କର୍ତ୍ତି. ଅ)—୧ । ସରୋରୁହ; ସରୋଜ; ପଦ୍ମ—
1. Lotus. ୨ । ସାରସ ପକ୍ଷୀ—2. The crane (bird) (Apte).

ସରସୀରୁହେକ୍ଷଣ—ସ. ବିଣ. ପୁଂ (ବହୁବ୍ରୀହି; ସରସୀରୁହ ପରି ଈକ୍ଷଣ=
Sarasīrhekshaṇa ନୟନ ଯାହାର)—ପଦ୍ମ ପରି ସୁନ୍ଦରନେତ୍ର-
(ସରସୀରୁହେକ୍ଷଣା—ସ୍ତ୍ରୀ) ବିଶିଷ୍ଟ—Having eyes beautiful or charming as the petals of a lotus flower.

ସରସୋଁ—ପ୍ରାଦେ. (ବଲେଶ୍ୱର) ବି—(ସଂ. ସର୍ଷପ) ସୋରିଷ—
Sarasoñ Mustard seed.

ସରସ୍ତ—ଗ୍ରା. ବିଣ (ପଦ୍ୟ) ( ସଂ. ସ୍ରସ୍ତ )—ଶିଥିଳ—Slack. [ଉ—
Sarasta ହସ୍ତେ ସରସ୍ତ ବଳୟ ରସ ବାଣୀ ସଙ୍ଗିତେ ଲୁଡଇ
ঢিলা शिथिल ଭୁଜଙ୍ଗ । ପ୍ରାଚୀ॰ ଉପଭାବଧ ।]

ସରସ୍ୱତୀ—ସ. ବି. ସ୍ତ୍ରୀ (ସରସ୍=ଜଳ+ଅସ୍ତି ଅର୍ଥରେ ବତ୍+ସ୍ତ୍ରୀ.
Saraswatī ଈ)—୧ । ବାଗ୍‌ଦେବୀ; ବ୍ରହ୍ମାଙ୍କର ଏକତମ ପତ୍ନୀ-
ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ—1. The Hindu Goddess of learning and speech. [ଦ୍ର—ପୁରାଣ ମତରେ ଏ ଧର୍ମଦେବଙ୍କ ବାମ ପାର୍ଶ୍ୱରୁ ଆବିର୍ଭୂତା ହୋଇଥିଲେ । ଏ ଶୁକ୍ଳବର୍ଣ୍ଣା, ମକର ବା ହଂସାରୂଢ଼ା, ଶ୍ୱେତପଦ୍ମାସନା, ବୀଣା ପୁସ୍ତକଧାରିଣୀ ଓ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ । ମାଘ ଶୁକ୍ଳପଞ୍ଚମୀ ବା ଶ୍ରୀପଞ୍ଚମୀ ଦିନ ଓ ଶିଶୁଙ୍କ ବିଦ୍ୟାରମ୍ଭ କାଳରେ ଏହାଙ୍କର ପୂଜା କରାଯାଏ । ବ୍ରହ୍ମବୈବର୍ତ୍ତ ପୁରାଣରେ ଏ ଦେବୀଙ୍କ ଉତ୍ପତ୍ତି ବିଷୟରେ ଲେଖା ଅଛି ଯେ, ପରମାତ୍ମାଙ୍କ ମୁଖରୁ ଶୁକ୍ଳବର୍ଣ୍ଣା, ବୀଣାଧାରିଣୀ ଓ କୋଟିଚନ୍ଦ୍ର ପ୍ରଭା ଦେବୀ ଆବିର୍ଭୂତା ହେଲେ । ଏ ଦେବୀ ଶ୍ରୁତି ଓ ଶାସ୍ତ୍ର ମଧ୍ୟରେ ଶ୍ରେଷ୍ଠା ଓ ପଣ୍ଡିତମାନଙ୍କ ଜନନୀ ।

ଏ ବାଗଧିଷ୍ଠାତ୍ରୀ ଦେବୀ । ଏହି ପୁରାଣରେ ଗଣେଶ ଖଣ୍ଡରେ ଲେଖାଅଛି ଯେ, ସୃଷ୍ଟିକାଳରେ ପ୍ରଧାନାଶକ୍ତି ଈଶ୍ୱରଙ୍କ ଇଚ୍ଛାନୁସାରେ ପଞ୍ଚଧା ବିଭକ୍ତା ହେଲେ, ଯଥା—ରାଧା, ପଦ୍ମା, ସାବିତ୍ରୀ, ଦୁର୍ଗା ଓ ସରସ୍ୱତୀ । ଏମାନଙ୍କ ମଧ୍ୟରୁ ବାଗଧିଷ୍ଠାତ୍ରୀ, ଶାସ୍ତ୍ରଜ୍ଞାନଦାୟିନୀ, କୃଷ୍ଣକଣ୍ଠୋଦ୍ଭବା ଦେବୀ ସରସ୍ୱତୀ ଜଣେ ଅଟନ୍ତି । ଶ୍ରୀକୃଷ୍ଣ ପ୍ରଥମେ ଏ ଦେବୀଙ୍କ ପୂଜା କଲେ । ଏ ଦେବୀଙ୍କ ଆରାଧନାରେ ମୂର୍ଖ ପଣ୍ଡିତ ହୁଏ । ମାଘ ମାସର ଶୁକ୍ଳପଞ୍ଚମୀରେ ଓ ଶିଶୁଙ୍କ ବିଦ୍ୟାରମ୍ଭକାଳରେ ଏ ଦେବୀଙ୍କର ପୂଜା କରାଯାଏ । ଶ୍ରୀକୃଷ୍ଣଙ୍କ ଉପଦେଶକ୍ରମେ ଏ ଦେବୀ ନାରାୟଣଙ୍କୁ ଭଜନା କଲେ । ମାଘ ମାସ ଶୁକ୍ଳ-ପଞ୍ଚମୀର ସରସ୍ୱତୀ ପୂଜା ଶ୍ରୀକୃଷ୍ଣଙ୍କ ଦ୍ୱାରା ପ୍ରବର୍ତ୍ତିତ । ବିଶ୍ୱ-କୋଷ ।] ୨ । ବାଣୀ; ବାକ୍ୟ; କଥା—2. Word; speech. [ଉ—ବାଲାସ୍ନେହ-ସରସ୍ୱତୀଙ୍କ ପ୍ରାଣ, ବହନ ସରସ୍ୱତୀରେ ସେ ମିଳ । ଭଞ୍ଜ. ବୈଦେହୀଶବିଳାସ ।] ୩ । ସ୍ତ୍ରୀରତ୍ନ; ଉତ୍ତମା ସ୍ତ୍ରୀ (ମେଦିନୀ)—3. An excellent lady. ୪ । ସୋମଲତା (ଶବ୍ଦଚନ୍ଦ୍ରିକା)—4. The 'Soma' creeper. ୫ । ମନୁପତ୍ନୀବିଶେଷ (ମେଦିନୀ)—5. One of the wives of Manu. ୬ । ଗୋ; ଗାଈ (ମେଦିନୀ)—6. Cow. ୭ । ଜ୍ୟୋତିଷ୍ମତୀ (ରାଜନିର୍ଘଣ୍ଟ)—7. A creeper. ୮ । ବ୍ରାହ୍ମୀ (ରାଜ-ନିର୍ଘଣ୍ଟ)—8. A pot-herb. ୯ । ମଣ୍ଡୂକପର୍ଣ୍ଣୀ; ଥାଲକୁଡ଼ି—9. The Indian pennywort. ୧୦ । ଦୁର୍ଗା—10. The Goddess Durgā. [ଦ୍ର—ଦେବୀ-ଭାଗବତରେ ଅଛି ଯେ, ଅନନ୍ତଶକ୍ତି ବ୍ରହ୍ମା ବିଷ୍ଣୁ ମହେଶ୍ୱରଙ୍କୁ ସରସ୍ୱତୀ, ଲକ୍ଷ୍ମୀ ଓ କାଳୀ ଏହି ତିନି ଶକ୍ତି ପ୍ରଦାନ କଲେ । ଅନନ୍ତଶକ୍ତି ବ୍ରହ୍ମାଙ୍କୁ କହିଲେ ତୁମ୍ଭେ ଏହି ଦିବ୍ୟରୂପା, ଚାରୁହାସିନୀ, ରଜୋଗୁଣଯୁକ୍ତା ଶ୍ୱେତାମ୍ବରଧାରିଣୀ, ଶ୍ୱେତ ସର୍ବୈଙ୍ଗବାସିନୀ ମହାସରସ୍ୱତୀ ନାମ୍ନୀ ଶକ୍ତିଙ୍କୁ କ୍ରୀଡ଼ାସହଚରୀ-ରୂପେ ଗ୍ରହଣ କର । ବିଶ୍ୱକୋଷ ।] ୧୧ । ଅର୍ଯ୍ୟାବର୍ତ୍ତର ନଦୀ ବିଶେଷ—11. Name of a river, a branch of the Ganges. [ଉ—ସରସ୍ୱତୀ-ସମୁଦ୍ର-ସଙ୍ଗମରେ ସ୍ନାନ, କଲେ ସବୁ ହିନୋହେ ସହସ୍ରେ ଗାଈ ଦାନ । କୃଷ୍ଣସିଂହ. ମହାଭାରତ. ବନ ।] [ଦ୍ର—ହିନ୍ଦୁ ପୁରାଣୋକ୍ତ ପୁଣ୍ୟସଲିଳା ୭ଟି ନଦୀ (ଗଙ୍ଗା, ଯମୁନା, ଗୋଦାବରୀ, ସରସ୍ୱତୀ, ନର୍ମଦା, ସିନ୍ଧୁ, କାବେରୀ) ମଧ୍ୟରୁ ଏହା ଗୋଟିଏ । ଦେବ ପୂଜାକାଳରେ ପୂଜାର୍ଥଜଳରେ ଏହି ସାତୋଟି ନଦୀର ଜଳକୁ କଳ୍ପନା କରି ତଦ୍ୱାରା ପୂଜା କରାଯାଏ । ମନୁ ଲେଖିଛନ୍ତି ଯେ, ସରସ୍ୱତୀ ଓ ଦୃଷଦ୍ୱତୀ ନାମ୍ନୀ ଦେବନଦୀଦ୍ୱୟର ମଧ୍ୟବର୍ତ୍ତୀ ଦେଶକୁ ବ୍ରହ୍ମାବର୍ତ୍ତ ଏବ ଏହି ଦେଶରେ ପ୍ରଚଳିତ ଆଚାରକୁ ସଦାଚାର ବୋଲାଯାଏ । ମହାଭାରତ ଓ ବ୍ରହ୍ମବୈବର୍ତ୍ତ ପୁରାଣରେ ସମୁଦାୟ ନଦୀଙ୍କ ମଧ୍ୟରେ ଏ ନଦୀ ଅତି ପବିତ୍ର ବୋଲି କଥିତ । ବ୍ରହ୍ମବୈବର୍ତ୍ତ ପୁରାଣରେ ଏ ନଦୀର ଉତ୍ପତ୍ତି ବିବରଣ କାହାଣୀରୂପେ ବର୍ଣ୍ଣିତ ହୋଇଅଛି । ଲକ୍ଷ୍ମୀ, ସରସ୍ୱତୀ ଓ ଗଙ୍ଗା ହରିପ୍ରିୟା ଥିଲେ । ଏକଦା ବିଷ୍ଣୁଙ୍କର ଗଙ୍ଗାଙ୍କ ପ୍ରତି ବେଶି ପ୍ରେମ ଥିବା ଦେଖି ସରସ୍ୱତୀ ଗଙ୍ଗାଙ୍କ ଉପରେ ରାଗ କରି ଅଭିଶାପ ଦେଲେ; ସେହି ଅଭିଶାପ ଫଳରେ ଗଙ୍ଗା ନଦୀରୂପ ଧାରଣ କଲେ । ଗଙ୍ଗା ଏଥିରେ କୁପିତ ହୋଇ ସରସ୍ୱତୀଙ୍କୁ ଶାପ ଦେବାରୁ ସରସ୍ୱତୀ ମଧ୍ୟ ଗୋଟିଏ ନଦୀ ହେଲେ । ବେଦ ଓ ପୁରାଣାଦିରୁ ଦେଖାଯାଏ ଯେ, ଏକାଧିକ ଅଞ୍ଚଳରେ ସରସ୍ୱତୀ ନଦୀର ଅବସ୍ଥାନ କଳ୍ପିତ ହୋଇଥିଲା । ବୈଦିକ ଯୁଗର ଆର୍ଯ୍ୟମାନେ ଉତ୍ତର-ପଶ୍ଚିମ ଭାରତରେ ସିନ୍ଧୁନଦୀ କୂଳରେ ପଞ୍ଚନଦ ପ୍ରଦେଶରେ ଉପନିବେଶ କଲେ । ତତ୍ପରେ କ୍ରମଶଃ ପୂର୍ବଆଡ଼କୁ ଅଗ୍ରସର ହୋଇ ପୁଣ୍ୟସଲିଳା ସରସ୍ୱତୀ ତୀରରେ ବାସକଲେ । ଋଗ୍ବେଦ ସଂହିତାରୁ ଜଣାଯାଏ ଯେ, ଏ ନଦୀ ମଧ୍ୟଆସିଆରୁ କି ଦ୍ୱାରା ଆର୍ଯ୍ୟ-ମାନଙ୍କ ଉପନିବେଶ ନିକଟେ ପ୍ରବାହିତ ହେଉଥିଲା ଓ ଏହି ନଦୀଜଳର ସାହାଯ୍ୟରେ ଆର୍ଯ୍ୟମାନେ ଶସ୍ୟାଦି ଉତ୍ପାଦନ କରି ସମୃଦ୍ଧିମନ୍ତ ହୋଇ ଏ ନଦୀକୁ ଦେବନଦୀ ରୂପେ ପୂଜା କରୁଥିଲେ । ତତ୍ପରେ ସେମାନେ ଆହୁରି ପୂର୍ବକୁ ଆସି ଆଉ ଗୋଟିଏ ନଦୀକୁ ସରସ୍ୱତୀରୂପେ ପୂଜା କଲେ । ତତ୍ପରେ ପୁଣି ଆହୁରି ପୂର୍ବକୁ ଆସି ଆଉ ଗୋଟିଏ ନଦୀର ସରସ୍ୱତୀ ନାମ ଦେଲେ ବୋଲି ଜଣାଯାଏ । ସରସ୍ୱତୀ ନଦୀ ଅଲ୍ଲାହାବାଦ (ପ୍ରୟାଗ) ଠାରେ ଗଙ୍ଗା ଓ ଯମୁନା ସଙ୍ଗେ ମିଳିତ ହୋଇ ତ୍ରିବେଣୀ ସୃଷ୍ଟି କରିଥିଲା । ବର୍ତ୍ତମାନ ସରସ୍ୱତୀ ନଦୀର ଚିହ୍ନ ପ୍ରୟାଗଠାରେ ମିଳେ ନାହିଁ । ବେଦୋକ୍ତ ସରସ୍ୱତୀ ନାମ୍ନୀ ନଦୀ ସିମଲା ଦକ୍ଷିଣସ୍ଥ ସିରମୁର ରାଜ୍ୟର ପର୍ବତମାଳାରୁ ବାହାରି କୁରୁକ୍ଷେତ୍ର ନିକଟେ କର୍ଣ୍ଣାଲ ଜିଲ୍ଲା ଓ ପଟିଆଲା ରାଜ୍ୟନିକଟେ ସିର୍ସା ଜିଲ୍ଲାର ଘାଗାର (ଦୃଷଦ୍ୱତୀ) ନଦୀରେ ମିଶି ରାଜପୁତାନାର ମରୁ ପ୍ରଦେଶରେ ବିଲୀନ ହୋଇଅଛି । ବୈଦିକ ଯୁଗରେ ଏ ନଦୀ ବହିଯାଇ ପ୍ରୟାଗଠାରେ ଗଙ୍ଗାଯମୁନାସଙ୍ଗମରେ ଗଙ୍ଗାରେ ପଡ଼ୁଥିଲା । ବର୍ତ୍ତମାନ ଯେଉଁ ଯେଉଁ ସ୍ଥାନରେ ସରସ୍ୱତୀ ଅନ୍ତଃସଲିଳା (ଅଦୃଶ୍ୟ) ହୋଇଅଛି, ପୁରାଣରେ ସେ ସ୍ଥାନମାନଙ୍କୁ ବିନଶନ ବୋଲାଯାଏ । ଆଉ ଗୋଟିଏ ସରସ୍ୱତୀ ନଦୀ ରାଜପୁତାନାର ଆବୁ ପାହାଡ଼ରୁ ବାହାରି ପାଲନପୁର ଓ ରାଧନପୁର ରାଜ୍ୟନିକଟେ ବୋହି ଯାଇଅଛି (ସ୍କନ୍ଦପୁରାଣ ରେବାଖଣ୍ଡ) । ଅନ୍ୟ ଗୋଟିଏ ସରସ୍ୱତୀ ନଦୀ ବଙ୍ଗଦେଶର ହୁଗ୍ଲି ଜିଲ୍ଲାର ସପ୍ତଗ୍ରାମନିକଟେ ଯାଇ ଗଙ୍ଗାରେ ପଡ଼ୁଥିଲା । ଏହା ବର୍ତ୍ତମାନ ଗୋଟିଏ ନାଳର ଆକାର ଧାରଣ କରିଅଛି । ଏ ନଦୀ ଗଙ୍ଗାରେ ତ୍ରିବେଣୀଘାଟ ନିକଟରେ ପଡ଼ିବା ସ୍ଥାନରେ ତିନୋଟି ସ୍ରୋତ ମିଳିତ ହୋଇଥିବାରୁ ଏ ସ୍ଥାନର ନାମ ମଧ୍ୟ ତ୍ରିବେଣୀ ଓ ଏହା ତୀର୍ଥରୂପେ ପରିଚିତ । ଋଗ୍ବେଦରେ ସରସ୍ୱତୀ ସମୁଦ୍ରଗାମିନୀ ବୋଲି ଲେଖା ଅଛି ଓ ବୈଦିକ କାଳରେ ଏ ଦେବତାରୂପେ

ପୂଜିତା ହେଉଥିଲେ । ବେଦର ପରବର୍ତ୍ତୀ ବାଜସନେୟୀ ସଂହିତା ଓ 'ବ୍ରାହ୍ମଣ' ଗ୍ରନ୍ଥରେ ସରସ୍ୱତୀଙ୍କୁ ବାଗ୍‌ଦେବୀ ବୋଲି ଯାଇଅଛି । ପୁରାଣମାନଙ୍କରେ ସରସ୍ୱତୀଙ୍କୁ ବ୍ରହ୍ମାଙ୍କ କନ୍ୟା ଓ କେତେକ ଗ୍ରନ୍ଥରେ ବ୍ରହ୍ମାଙ୍କ ସ୍ତ୍ରୀ ଓ ମହାଭାରତରେ ଦକ୍ଷପ୍ରଜାପତିଙ୍କ କନ୍ୟା ବୋଲି ଲେଖାଯାଇଅଛି ।

(ବିଶ୍ୱକୋଷ)

ବୈଦ୍ୟଶାସ୍ତ୍ର ଅନୁସାରେ ସରସ୍ୱତୀ ନଦୀର ଜଳ ସୁସ୍ୱାଦୁ, ଲଘୁପାକ, ରୁଚିକର, ଅଗ୍ନିବର୍ଦ୍ଧକ, ପଥ୍ୟ ଓ ସର୍ବରୋଗହର ଅଟେ ।] ୧୨ । ସାୟଂ-ସନ୍ଧ୍ୟାରେ ଗାୟତ୍ରୀ ଜପକାଳରେ ବ୍ରାହ୍ମଣଙ୍କର ଧ୍ୟେୟା ଦେବୀ—12. The Goddess contemplated by the Brāhmaṇas during the evening prayers. [ ଦ୍ର—ଏହାଙ୍କର ବୃଦ୍ଧାବସ୍ଥା, କୃଷ୍ଣାବର୍ଣ୍ଣ ଦେହ, କୃଷ୍ଣାମ୍ବର, ବୃଷବାହନ ଓ ତିନି ଲୋଚନ ଅଟେ । ଏହାଙ୍କ ହସ୍ତରେ ତ୍ରିଶୂଳ ଓ ଡମରୁ । ଏ ରବିମଣ୍ଡଳମଧ୍ୟସ୍ଥା ଓ ରୁଦ୍ରଦୈବତାରୂପେ କଳ୍ପିତା ।] ୧୩ । ରୁଦ୍ରାଣୀ—13. The wife of Śiba. ୧୪ । ବ୍ରହ୍ମାଣୀ—14. The wife of Brahmā. [ଦ୍ର—ଦେବୀ ଭାଗବତ ମତରେ ସରସ୍ୱତୀ ବ୍ରହ୍ମାଙ୍କ ସ୍ତ୍ରୀ, କିନ୍ତୁ ବ୍ରହ୍ମବୈବର୍ତ୍ତପୁରାଣ ଅନୁସାରେ ଲକ୍ଷ୍ମୀ ଓ ସରସ୍ୱତୀ ଉଭୟେ ନାରାୟଣଙ୍କ ପତ୍ନୀ । କୌଣସି କୌଣସି ପୁରାଣରେ ଅଛି ଯେ, ସରସ୍ୱତୀ ବ୍ରହ୍ମାଙ୍କ କନ୍ୟା । କିନ୍ତୁ ଏକ ସମୟରେ ବ୍ରହ୍ମା ସ୍ୱୀୟ କନ୍ୟାଙ୍କୁ ଦେଖି କାମମୋହିତ ହେଲେ; ପରେ ଅତି କଷ୍ଟରେ କାମବେଗ ଦମନ କରି କାମଦେବଙ୍କୁ ଅଭିଶାପ ଦେଲେ । ଉକ୍ତ ଅଭିଶାପ ଫଳରେ ପରେ ମହାଦେବଙ୍କ ନୟନାନଳରେ କାମଦେବ ଭସ୍ମୀଭୂତ ହେଲେ । ବିଶ୍ୱକୋଷ ।] ଦେ. ବି. ସ୍ତ୍ରୀ—୧ । ଜୈନଦେବୀ ବିଶେଷ—1. A female Deity worshipped by the Jainas. ୨ । ସ୍ତ୍ରୀ ଲୋକଙ୍କ ନାମ—2. A name given to females. ୩ । (ପୁଂ) ପଣ୍ଡିତମାନଙ୍କୁ ଦିଆଯିବା ଉପାଧି ବିଶେଷ—3. A title bestowed on pandits. [ ଦ୍ର—ସ୍ୱର୍ଗତ ପଣ୍ଡିତ ମୋହନ ସେନାପତିଙ୍କୁ ବାମଣ୍ଡାର ସ୍ୱର୍ଗତ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବ ସରସ୍ୱତୀ ଉପାଧି ଦେଇଥିଲେ । ]

ସରସ୍ୱତୀ
সরস্বতী
सरस्वती

ସରସ୍ୱତୀ କଣ୍ଠାଭରଣ—ସଂ. ବି (୬ଷ୍ଠୀ ତତ୍; ସରସ୍ୱତୀ+କଣ୍ଠ+ଆଭରଣ)
Saraswatī kaṇṭhābharaṇa —୧ । କଳ୍ପିତ ସରସ୍ୱତୀ ଦେବୀଙ୍କର ବା ସରସ୍ୱତୀ ମୂର୍ତ୍ତିଙ୍କ କଣ୍ଠର ହାର—1. The necklace of the Deity Saraswatī. ୨ । (ନାମ) ଷାଠିଏ ତାଳ ମଧ୍ୟରୁ ଗୋଟିଏ (ହ. ଶ)—2. Name of one of the 60 musical cadence. ୩ । ଭୋଜରାଜ କୃତ ଅଳଙ୍କାର ଗ୍ରନ୍ଥବିଶେଷ (ହ. ଶ)—3. Title of a Sanscrit work on rhetoric by king Bhoja. ୪ । ପ୍ରମାର ବଂଶୀୟ ରାଜା ଭୋଜଙ୍କଦ୍ୱାରା ପ୍ରତିଷ୍ଠିତ ଧାରାନଗରସ୍ଥ ବିଦ୍ୟାଳୟର ନାମ—4. Name of a school started by king Bhoja.

ସରସ୍ୱତୀଙ୍କ ବର ପୁତ୍ର—ଦେ. ବି—ମହା ପଣ୍ଡିତ ବା ମହା କବି—
Saraswtīṅka bara putra A gifted poet or very learned person. [ ଦ୍ର—କାଳିଦାସ ସରସ୍ୱତୀଙ୍କ ବର ପୁତ୍ର ବୋଲି ବିଖ୍ୟାତ ହୋଇଥିଲେ । ]
সরস্বতীর বর পুত্র
सरस्वतीका बर पूत्र

ସରସ୍ୱତୀ ପୁତ୍ର (କୁଟୁମ୍ବ)—ସଂ. ବି—ପଣ୍ଡିତ ବା ବିଦ୍ୱାନ୍ ବ୍ୟକ୍ତି—
Saraswatī putra (kuṭumba) A pandit or learned man.

ସରସ୍ୱତୀ ପୂଜା—ସଂ. ବି—ମାଘ ଶୁକ୍ଳ ପଞ୍ଚମୀ ବା ଶ୍ରୀପଞ୍ଚମୀଦିନ ବିଦ୍ୟାର୍ଥୀ-
Saraswatī pūjā ମାନଙ୍କ ସରସ୍ୱତୀ ଦେବୀଙ୍କ ପୂଜା—The worship of the Goddss of learning; Saraswatī on the 5th day of the bright lunar fortnight of the month of Māgha.

ସରସ୍ୱତୀ ବାଲବାଣୀ—ସଂ. ବି—ବାଳ କଥିତ ଭାଷା ( ବିଶ୍ୱକୋଷ )—
Saraswatī bāḷabāṇī The laugnage used by children. [ ଦ୍ର—ଏଥିରେ ର ଓ ଳ ସ୍ଥାନରେ ଲ, ଶ ସ୍ଥଳରେ ଛ ଉଚ୍ଚାରଣ ଲକ୍ଷିତ ହୁଏ । ]

ସରସ୍ୱତୀ ବିଳାସ—ସଂ. ବି ( ନାମ )—ଉତ୍କଳର ରାଜା ପ୍ରତାପରୁଦ୍ର
Saraswatī biḷāsa ଦେବଙ୍କ ସଙ୍କଳିତ ସଂସ୍କୃତ ସ୍ମୃତି ଗ୍ରନ୍ଥ—Name of a treatise on Hindu law and usage by king Pratāparudra Deba of Orissa. [ ଦ୍ର—ଦାକ୍ଷିଣାତ୍ୟରେ ଏହା ପ୍ରାମାଣିକ ସ୍ମୃତି ଗ୍ରନ୍ଥରୂପେ ବ୍ୟବହୃତ । ]
সরস্বতী বিলাস
सरस्वती विलास

ସରସ୍ୱାନ୍—ସଂ. ବି (ସରସ୍=ଜଳ+ଅଛି ଅର୍ଥରେ ବତ୍; ୧ମା. ୧ବ)—
Saraswān ୧ । ସରୋବର—1. Tank; lake. ୨ । ନଦ—2. River. ୩ । ସମୁଦ୍ର—3. The ocean. ୪ । ମହିଷ—4. A buffalo. ସଂ. ବିଣ—ରସଯୁକ୍ତ—Juicy.

ସର(ରି)ହଦ୍(ଦ୍) ( ଇତ୍ୟାଦି )—ବୈଦେ. ବି ( ଅ. ସର୍‌ହଦ୍ )—
Sara(ri)had(dd) (etc) ସର୍ହଦ୍ ଇତ୍ୟାଦି ( ଦେଖ )
সরহদ सरहद्
Sarhad etc (See)

ସରହସ୍ୟ—ସଂ. ବିଣ ( ବହୁବ୍ରୀହି; ସ=ସହିତ+ରହସ୍ୟ )—୧ ।
Sarahasya ସମନ୍ତ୍ରକ; ମନ୍ତ୍ର ସହିତ—1. Joined with mystic formulae. ୨ । ସୋପନିଷଦ୍—2. Joined with Upanishad. ୩ । ରହସ୍ୟଯୁକ୍ତ—3. Mystical; magical.

ସରା—ସଂ. ବି (ସୃ ଧାତୁ=ଗତି କରିବା+ଅ+ଆ)—୧ । ଝରଣା—
Sarā 1. A spring. ୨ । ( ବୈଦ୍ୟକ )—ପସାରୁଣୀ ଲତା; ଗନ୍ଧଭଦ୍ରା; ପ୍ରସାରିଣୀ—2. Pæderia Foetida (creeper). ଦେ. ବି—୧ । ( ସଂ. ସର )—ସରି; ଏକାଧିକ ଖିଅଯୁକ୍ତ ମାଳା ଅବର ଖିଅ; ସୋରି—1. String ( of garlands etc ). ୨ । ( ସ
সরা
छड़

সরা ସରାର ) ଶରା ( ଦେଖ )—2. Sarā (See) [ଉ—
सराई; कसौरी ଭୁକ୍ତି ସଙ୍ଗେ ସ୍ଥିତ ହୋଇ କେହୁ । ତାଙ୍କୁ ଅରୁଣ
ମଣି ଧର ସରେ ସରା—ରାଧାନାଥ. ମହାଯାତ୍ରା । ] ବୈଦେ
ବି—୧ । ମୁସଲମାନ୍ମାନଙ୍କର ଦାୟାଧିକାର ଧର୍ମଶାସ୍ତ୍ର—
1. The law of inheritance of the Mahamedans; the Mahomedan law-book of
সবাই succession. ୨ । ( ଅ. ସରାଇ ) ସରାଇ; ପାନ୍ଥ-
सराय ନିବାସ; ଚଟ୍ଟିଘର—2. Inn. ଦେ. ବିଣ. ପୁଂ ( ଅନ୍ୟ
ইজ্জত খোয়া ଶବ୍ଦ ସଙ୍ଗେ ବ୍ୟବହୃତ; ଯଥା—ମହତସରା; ଇଜ୍ଜତ-
खोनेवाला ସରା )—୧ । ଯାହାଦ୍ୱାରା ( ମହତ୍ତ୍ୱ ଆଦି ) ସରଯାଏ
ବା ନଷ୍ଟ ହୁଏ; ନଷ୍ଟକାରୀ—1. Causing loss of
( reputation, honour ). ( ଯଥା—ନାଆଁ ସରା,
=ସୁନାମ ନଷ୍ଟକାରୀ । ) ୨ । ପେଉଁ ବ୍ୟକ୍ତି ସାର୍ ଦଏ—
2. (a person) Causing loss of. (ଉ—ଇଜ୍ଜତ
ସରା ଲୋକ । )

**ସର୍(ରେ)ଇ**—ବୈଦେ. ବି ( ଅ. ସରାଇ )—୧ । ପାନ୍ଥଶାଳା; ବାଟରେ
Sarā(re)i ପଥିକମାନଙ୍କର ବିଶ୍ରାମ କରିବାର ସ୍ଥାନ; ଚଟ୍ଟି—
সরাই 1. Caravanserai; an inn; serai. ୨ ।
सराय(इ) ପାନଶାଳା; ମଦଭାଟି—2. A drinking house; a
যে খোয়ায় tavern. ଦେ. ବିଣ. ସ୍ତ୍ରୀ (ଅନ୍ୟ ଶବ୍ଦ ପରେ ଲାଗେ)
खोनेवाली —ସରାର ସ୍ତ୍ରୀଲିଙ୍ଗ—Feminine form of
Sarā. ଗ୍ରାଦେ. (ପାଠଣା) ବି—ଅଟିକା—A small
earthen cooking pot.

**ସରାଇକ(କେ)ଲା**—ଦେ. ବି ( ନାମ )—ବଙ୍ଗଳାରେ ସରାଇକଲା
Sarāika(ke)lā ନାମର ଅପଭ୍ରଷ୍ଟ ଆକାର; ସରେଇକଲା ଗଡ଼-
ଜାତ—Sareikela ( of the Orissa States ).
[ ଉ—ସମ୍ପ୍ରତ ପୋଡ଼ାଶବଳା ଶବ୍ଦ ବଙ୍ଗଳାରେ ସରାଇ-
କ(କେ)ଲା ଓ ଇଂରାଜୀରେ ସେରାଇକେଲା (Seraikela)
ହୋଇଅଛି । ସିଂହଭୂମି ଜିଲେ ନୋଟ୍ ଦେଖ । ]

**ସର(ରେ)ଇ ଦେ(ନେ)ବା**—ଦେ. କ୍ରି ( ବଙ୍ଗଳାରୁ ଅନୁକୃତ )—
Sarā(re)i de(ne)bā ସ୍ଥାନାନ୍ତରିତ କରିବା; ଘୁଞ୍ଚାଇ ଦେବା—
সরিয়ে দেওয়া (নেওয়া) हटा देना (लेना) To remove.

**ସର୍(ରେ)ଇବା**—ଦେ. କ୍ରି ( ସ. ସୃ. ଧାତୁ ଣିଚ୍; ସାର୍ ଧାତୁ )—
Sarā(re)ibā ୧ । ସାରିବା ( ଦେଖ )—1. Sāribā (See)
সবান शेष करना ( ଉ—ସରାଇବ ତାପ ଅଙ୍ଗଦେଶରୁ—
হারান खोना ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି । ) ୨ । ହରାଇବା—
2. To lose. ( ଉ—ଅଚେତ ଧନକୁ କଚେତ ଘରେ
সরান ମହତ ସରେଇଲୁ—ଭଗ ) ୩ । (ବଙ୍ଗଳାରୁ ଅନୁକୃତ)
हटाना ସରକାଇବା; ଘୁଞ୍ଚାଇବା—3. To remove.

**ସରାଏ**—ଦେ. ବିଣ ଓ ବି—୧ । (ହାରଅଛିର) ଏକ ସର୍ ମାତ୍ର—1.
Sarāe One string only ( of a necklace ).
একসরা [ ଉ—ବିଶେଷଣ ପ୍ରୟୋଗରେ ସରାଏ ଶବ୍ଦ ବିଶେଷ୍ୟର
एकलड़ा ପୂର୍ବରେ ଲଗେ । ଯଥା—ସରାଏ ସୂତା; ବିଶେଷ୍ୟ
ପ୍ରୟୋଗରେ ଅନ୍ୟ ବିଶେଷ୍ୟର ପରେ ଲଗେ ।ଯଥା—ହାର
ସରାଏ ଗୁନ୍ଥି ଦିଅ । ] ୨ । ଏକ ସରାର ପରିମିତ—2.
One Sarā (small earthen saucer ) of.
( ଯଥା—ବିଶେଷଣରେ ସରାଏ ଗୁଡ଼, ବିଶେଷ୍ୟରେ ଗୁଡ଼
ସରାଏ । )

**ସରାକ**—ଦେ. ବି ( ସ. ଶ୍ରାବକ )—ସିଂହଭୂମି ଓ ଉତ୍ତର ଗଡ଼ଜାତ-
Saraka ବାସୀ ଓଡ଼ିଆଭାଷୀ ତନ୍ତିଜାତିବିଶେଷ—A class
সরাক of Oriya-speaking weavers of
सराक, सरावग Singhbhum and northern Orissa
States. [ ଉ—ଏମାନଙ୍କ ବଂଶୋପାଧି ଦେହୁରୀ ।
ଏମାନେ ଜୈନଧର୍ମାବଲମ୍ବୀ । ଏମାନେ କହନ୍ତି ଯେ,
ଏମାନଙ୍କ ପୂର୍ବପୁରୁଷ ବଙ୍ଗଦେଶରୁ ବାଣିଜ୍ୟାର୍ଥ
ଏ ଦେଶକୁ ଆସିଥିଲେ । ଏମାନେ ମାଛ ମାଂସ ଖାଆନ୍ତି
ନାହିଁ । ] ଦେ. ବି ଓ ବିଣ—ସରାଏ (ଦେଖ)
Sarāe ( See )

**ସରାକତ୍(ତି)**—ବୈଦେ. ବି (ଫାରସୀ) (ଫା. ସରାକତ୍, ଅ. ସିରାକତ=
Sarākat(ti) ଯୋଗ; ସମ୍ପର୍କ )—୧ । ହିଁସାଦାରୀ; ଅଂଶୀଦାରୀ;
স(সু)রাকত ସରିକ୍ଦାରୀ—1. Copartnership; coparcenary. ୨ । ବହୁ ଲୋକଙ୍କର ଏକତ୍ର
सराकत ବ୍ୟବସାୟ—2. Partnership in business;
joint stock business. ୩। ସମ୍ପର୍କ—3.Connection. ୪ । ହିଂସାଦାର—4. Cosharer. ୫ ।
ହିଂସା; ଅଂଶ—5. Share. ବୈଦେ. ବିଣ—ସରାକତ୍
ସମ୍ବନ୍ଧୀୟ—Relating to joint busines or
partnership.

**ସରାକତ୍(ତି) ନାମା**—ବୈଦେ. ବି ( ଫାରସୀ ) ( ଫା )—ଯେଉଁ
Sarākat(ti) nāmā ଦସ୍ତାବିଜଦ୍ୱାରା ଏକାଧିକ ବ୍ୟକ୍ତି ଏକତ୍ର
সরাকত নামা ବ୍ୟବସାୟ ଆରମ୍ଭ କରନ୍ତି—A deed of partnership.
सराकत नामा

**ସରାକତିଆ**—ଦେ. ବିଣ ( ଫାରସୀ ) ( ଅ. ସିରାକତ )—ସରାକତ୍
Sarākatiā ସମ୍ବନ୍ଧୀୟ—Relating to copartnership.
সবাকতি सराकतका
( ସରାକତୀ—ଅନ୍ୟରୂପ )

**ସରାକତ କାରବାର**—ବୈଦେ. ବି ( ଫାରସୀ ) ( ଫା. ସରାକତ+
Sarākati kārabāra କାରବାର)—Joint stock business; partnership business.
স(সু)রাকতি কারবার
सराकत कारबार

**ସରାଗ**—ସ. ବିଣ (ସ=ସହିତ+ରାଗ=ସ୍ନେହ; ସହାର୍ଥ. ବହୁବ୍ରୀହି)—
Sarāga ୧ । (ଅମୁକ ପ୍ରତି) ଅନୁରକ୍ତ—1. Attached to;
passionate for. ୨ । ( ଅମୁକ ପ୍ରତି ) ଶ୍ରଦ୍ଧା ଓ
ସ୍ନେହଯୁକ୍ତ—2. Affectionate; fond of. ୩ ।
ଲାଳାୟିତ—3. Hankering after. ୪ । ଅଭି-
ଲାଷୀ—4. Desirous of. ୫ । ରଞ୍ଜିତ—
5. Coloured. ୬ । ରକ୍ତବର୍ଣ୍ଣବିଶିଷ୍ଟ—6. Red.
সবাগ ଦେ. ବିଣ—୧ । କ୍ରୋଧଯୁକ୍ତ; କ୍ରୁଦ୍ଧ—1. Angry;
सराग enraged. ୨ । ଉତ୍କଣ୍ଠାଯୁକ୍ତ—2. Anxious.
୩ । ଅଗ୍ରହାନ୍ୱିତ—3. Eager. ୪ । ସ୍ଫୂର୍ତ୍ତିଯୁକ୍ତ—

4. Vigorous. ୫ । ହର୍ଷଯୁକ୍ତ—5. Joyous. ୬ । ସରସ; ରସିକତାଯୁକ୍ତ—6. Gallant; witty. ୭ । ହାସ୍ୟଯୁକ୍ତ—7. Smiling. ୮ । ଉଜ୍ଜ୍ୱଳ—8. Bright; splendid. ଦେ. ବି—୧ । ସ୍ନେହ—

সরাগ
सराग
1. Affection, fondness; doting. [ଉ—ପୂଜା କର ଯଦୁଙ୍କୁ ଅଛ ସରାଗରେ—କୃଷ୍ଣସିଂହ. ମହାଭାରତ. ବନ ।] ୨ । ସ୍ଫୂର୍ତ୍ତି—2. Vigour. [ଉ—କମ୍ପିଣ କରନ୍ତି ବହୁ ସରାଗରେ । କୃଷ୍ଣସିଂହ. ମହାଭାରତ. ସଭା ।] ୩ । ସୁଖ—3. Happiness. [ଉ—ଏହା ଜାଣି ଯିବା ବୋଲନ୍ତି ମହାଭାଗ, ପାଣ୍ଡବେ ବଢ଼ାଇବେ ଯମଙ୍କ ସରାଗ । କୃଷ୍ଣସିଂହ. ମହାଭାରତ. ବନ ।] ୪ । ଔତ୍ସୁକ୍ୟ; ଆଗ୍ରହ—4. Eagerness. [ଉ—ଆରମ୍ଭ କଲେ ଯୁଦ୍ଧେ ବହୁଣ ସରାଗ । କୃଷ୍ଣସିଂହ. ମହାଭାରତ. ବନ ।] ୫ । ଇଚ୍ଛା; ମମତା—5. Liking. [ଉ—ଏହା ଛାଡ଼ ଯାଅ ହେ ଯହିଁକି ସରାଗ । କୃଷ୍ଣସିଂହ. ମହାଭାରତ. ବନ ।] ୬ । ସନ୍ତୋଷ; ପ୍ରିୟତା—6. Fondness. [ଉ—ଖଳ ତାହାଙ୍କୁ ଦେଲେ ବହୁଣ ସରାଗ । କୃଷ୍ଣସିଂହ. ମହାଭାରତ. ସଭା ।] ୭ । ଅନୁରାଗ; ଲାଳସା—7. Desire; hankering. [ଉ—ଚଉଦ ଭୁବନେ ଯେତୁ ଅପୂରୁବ ତାହାରେ ବଳଇ ସରାଗ । ସିଶୁଶଙ୍କର. ଉଷାଅଭିଳାଷ ।]

ସର୍‌ ଗାତ—ଦେ. ବି—କାନ୍ଥ ଭିତରେ ବା ଭୂଇଁ ତଳେ ଟଙ୍କା ପଇସା ଲୁଚାଇ କରି ରଖିବା ପାଇଁ ଗୋଟିଏ ସର୍‌ ଉପରେ ଆଉ ଗୋଟିଏ ସର୍‌ର ମୁହଁ ମଡ଼ା ହୋଇ ରଖାଯିବା ପାଇଁ କରା ଯାଇଥିବା ଗର୍ତ୍ତ—A hole or recess made under the ground or inside a wall to conceal a Sarā with its cover for keeping money secretly.
Sarā gāta
চোরা গর্ত
चोरी ताक

ସରାଗୀ—ଦେ. ବିଣ. ପୁଂ ( ଦ. ସରାଗ )—୧ । ପ୍ରଫୁଲ୍ଲ; ହର୍ଷଯୁକ୍ତ—1. Merry; joyful. ୨ । ସ୍ଫୂର୍ତ୍ତିଯୁକ୍ତ—2. Vigorous; energetic. [ଉ—ପାଦ ବେକ ଘଷିଲେ ହୋଇଣ ସରାଗୀ । କୃଷ୍ଣସିଂହ. ମହାଭାରତ. ବନ ।] ୩ । ଉତ୍ସୁକ; ବ୍ୟଗ୍ର—3. Eager; hankering after.
Sarāgi
(ସରାଗିଅ—ଅନ୍ୟରୂପ)
(ସରାଗିଣୀ, ସରାଗିଅଣୀ—ସ୍ତ୍ରୀ)
সরাগী
सरागी

ସରାଟି(ଡ଼ି, ତି, ରି)—ଦେ. ବି—ଶରାଟି ( ଦେଖ )
Sarāṭi(ṛdi, ti, ri) Śarāṭi (See)

ସରାଣୀ—ଦେ. ବି. ସ୍ତ୍ରୀ—ରଜାନ୍ତଃପୁରରେ ସର ଘରର ଭାରପ୍ରାପ୍ତା ପରିଚାରିଣୀ—A maid servant in charge of the store room of a Rajā's harem.
Sarāṇi
ভাণ্ডারনী
भण्डारिणी, भण्डारिन

ସରାପ(ବ)—ବୈଦେ. ବି (ଫା. ଶରାବ୍; ତୁଳ. ସ. ସୁରା)—୧ । ମଦ—1. Wine. ୨ । ଭଟ୍ଟି ଦ୍ୱାରା ପ୍ରସ୍ତୁତ ମଦ—2. Spirituous liquor.
Sarāpa(ba)
সরাপ্(ব্)
सराब

ସରାପ(ବ) ଖାନା—ବୈଦେ. ବି ( ଫା. ଶରାବ୍‌ଖାନା )—ମଦ୍ୟଶାଳା; ଯେଉଁଠାରେ ଲୋକେ ମଦ କଣି ଖାଆନ୍ତି—A wine-shop; a place where people assemble for drinking wine; grogshop.
Sarāpa(ba) khānā
সরাপ খানা
सराब खाना

ସରାପ(ବ) ଖୋର୍—ବୈଦେ. ବିଣ ( ଫା. ଶରାବ୍‌ଖୋର୍ )—ଅଭ୍ୟସ୍ତ ମଦ୍ୟ ପାନାତୁରଲୋକ; ପାନାସକ୍ତ; ସୁରାପାୟୀ—Addicted to drink; drunkard.
Sarāpa(ba)khor
সরাপ খোর
सराबखोर

ସରାପୀ—ବୈଦେ. ବିଣ (ଫା)—ସରାପ ଖୋର୍ ( ଦେଖ )
Sarāpi সরাবী सराबी Sarāpa khor (See)
(ସରାପିଅ—ଦେ. ରୂପ)

ସରାଫ(ଫା, ଫୀ)—ବୈଦେ. ବି (ଇଂ)—ସରଫ(ଫା, ଫୀ) ( ଦେଖ )
Sarāph(phā, phi) Saraph(phā, phi) (See)

ସରାବ—ସ. ବି (ସର=ଜଳ+ଅବ୍ ଧାତୁ=ରକ୍ଷା କରିବା+କର୍ତ୍ତୃ.ଅ)—ଶରାବ (ଦେଖ)—Śarāba (See)
Sarāba
ବୈଦେ. ବି (ଫା. ସରାପ୍)—ସରାପ ଇତ୍ୟାଦି (ଦେଖ)
Sarāpa etc. (See)

ସରାବକ—ସ. ବି (ସରାବ+ସ୍ୱାର୍ଥେ. କ)—ଶରାବକ ( ଦେଖ )
Sarābaka Śarābaka (See)

ସରାବ ସଂପୁଟ—ସ. ବି—ଅଗ୍ନି ଉତ୍ତାପରେ ଉଷଧ ପ୍ରସ୍ତୁତ କରିବା ପାଇଁ ଦୁଇଟି ସରାର ମୁହଁ ଯୋଡ଼ା ହୋଇ ବନ୍ଦ କରା ଯାଇଥିବା ପାତ୍ର—A contrivance consisting of 2 shallow dishes with the mouths sealed to each other, used in preparing some medicines over fire.
Sarāba samputa
ଦେ. ବିଣ ( ବହୁବ୍ରୀହି )—ଯେଉଁ ପାତ୍ରର ଉପରେ ବା ମୁହଁରେ ସରା ଘୋଡ଼ା ହୋଇଥାଏ—(a pot) Covered with a flat dish as its lid.

ସରାବିକା—ସ. ବି (ସରାବ+ସ୍ୱାର୍ଥେ. କ+ସ୍ତ୍ରୀ. ଆ)—ଛୋଟ ସରା
Sarābikā —A smaller shallow earthen dish.

ସରା ମୁହାଁ—ଦେ.ବିଣ. ପୁଂ (ଅନାଦରାର୍ଥ)—ସରାର ମୁହଁ ପରି ଚଟକା ଓ ଅସୁନ୍ଦର ମୁଖବିଶିଷ୍ଟ ( ବ୍ୟକ୍ତି )—(a person) Having a flat and wide face; flat faced.
Sarā muhān
গোমদা মুখো
चकर मुहाँ
(ସରା ମୁହାଁ—ସ୍ତ୍ରୀ)

ସରାଳ(ଳି)—ଦେ. ବି (ସଂ. ସରାଳ, ସରାଳି)—ଶରାଟି ( ଦେଖ )
Sarāla(li) Śarāṭi (See)
[ଉ—ବଳାହକ ଉର୍ଦ୍ଧ୍ୱେ, ଅବାଚେ ଉର୍ଦ୍ଧ୍ୱାକ, ସରାଳ-କୁଳ-ବଳାରେ । ରାଧାନାଥ. ଯଯାତିକେଶରୀ ।]

ସରାସର୍—ବୈଦେ. ଅ (ଫା. ସର୍ ଅ ସର୍=ଏକ ମୁଣ୍ଡରୁ ଅନ୍ୟ ମୁଣ୍ଡ ପର୍ଯ୍ୟନ୍ତ)—୧ । ସମ୍ପୂର୍ଣ୍ଣ ରୂପେ; ପୂର୍ଣ୍ଣ ଭାବରେ—1. Fully; completely. ୨ । ସ୍ଥୂଳତଃ—2. Summarily.
Sarāsar
সরাসর
सरासर

ସରାସର—ବିଶେ. ଓ ଣ (ଫା· ସରାସର)—୧ । ସମାନ୍ତରାଳ—
Sarāsari 1. Parallel. ୨ । ଏକ ମୁଣ୍ଡରୁ ଅନ୍ୟ ମୁଣ୍ଡ ପର୍ଯ୍ୟନ୍ତ
সরাসরি ବିସ୍ତୃତ—2. Extending from one end to
सरासर the other. ୩ । ସଂକ୍ଷିପ୍ତ; ସ୍ଥୂଳ; ମୋଟାମୋଟି; ସର-
ସର—3. Summary; cursory. ବିଶେ. ବି—
୧ । ସ୍ଥୂଳ ବିଚାର—2. Summary consideration.
୨ । ଅନୁମାନ; ଅନ୍ଦାଜ—2. Inference. ୩ ।
ସରାସର ମକଦ୍ଦମା (ଦେଖ)—3. Sarāsari
makaddamā. (See) ୪ । (ଫା· ସର୍=ମୁଣ୍ଡ)
সরাসরি (ମୁସଲମାନ ଅଳଙ୍କାର) କପାଳରେ ପିନ୍ଧାଯିବା ଅଳଙ୍କାର;
मांगटीका ଅଳକା—4. An ornament for the brow
worn by Mahomadan ladies. ବିଶେ. ଅ—
୧ । ବରାବର; ସମ୍ପୂର୍ଣ୍ଣରୂପେ—1. Absolutely;
completely. ୨ । ଏକମୁଣ୍ଡରୁ ଅନ୍ୟମୁଣ୍ଡ ପର୍ଯ୍ୟନ୍ତ—
বরাবর 2. From one end to the other. ୩ । ସମା-
बराबर ନ୍ତରାଳ ରୂପରେ—3. Parallelly. ୪ । ସ୍ଥୂଳବିଚାର
ଫଳରେ; ସ୍ଥୂଳତଃ; ମୋଟାମୋଟି—4. Summarily;
শেষের cursorily. ବି. ବିଣ—ଶେଷହେଉଥିବା; ସରନ୍ତ—
शेषका Waning; concluding. [ ଉ—ସରାସର ମାସଲଡ଼;
ହାଟ ସରାସର ବେଳ ।]

ସରାସର ଅଦାଲତ—ବିଶେ. ବି (ଇଂରାଜୀ)-୧ । ଯେଉଁ ଅଦାଲତରେ
Sarasari adālata ମକଦ୍ଦମାମାନ ସରାସର ବିଚାର ହୁଏ
সরাসরি আদালত (ଯଥା—ଫଉଜଦାରୀ ଓ ରାଜସ୍ୱ ଓ ସ୍ମଲ୍ କାଜ୍-
सरासरि अदालत କୋର୍ଟ)—1. A court for summary
trial. ୨ । ବାକି ଖଜଣା ଅଦାୟ ପାଇଁ ମକଦ୍ଦମାର ବିଚାର
ଯେଉଁ ଅଦାଲତରେ ହୁଏ—2. Rent court.

ସରାସର ବିଚାର—ବି. ବି—୧ । (ଇଂରାଜୀ) ସଂକ୍ଷିପ୍ତ ବିଚାର; ଯେଉଁ
Sarāsari bichāra ବିଚାର କାଳରେ ପ୍ରମାଣ ଅଦି ସ୍ଥୂଳଭାବରେ
সরাসরি বিচার ଗୃହୀତ ହୁଅନ୍ତି—1. Summary trial.
सरासरि बिचार ୨ । ସ୍ଥୂଳ ବିଚାର—2. Cursory view.

ସରାସର ମକଦ(ଦ୍ଦ)ମା—ବିଶେ. ବି (ଇଂରାଜୀ)—୧ । ଯେଉଁ
Sarāsari makada(dda)mā ଫଉଜଦାରୀ ମକଦ୍ଦମାରେ ସାକ୍ଷୀ
সরাসরি মকদ্দমা ଅଦିଙ୍କ ଜମାନବନ୍ଦି ସମ୍ପୂର୍ଣ୍ଣରୂପେ ଲେଖା ନ ଯାଇ
सरासरि मुकदमा ସ୍ଥୂଳତଃ ତହିଁର ମର୍ମ ଦିଆ ଯାଏ—1. A case
of summary trial before a magistrate.
୨ । ବାକି ଖଜଣା ପାଇଁ ଜମିଦାରଙ୍କ ଦ୍ୱାରା ପ୍ରଜାନାମରେ
ମାଲ ଅଦାଲତରେ ଦାଏର କରାଯିବା ମକଦ୍ଦମା—2. Rent
suit; suit for arrears of rent. ୩ । ଯେଉଁ
ଦେବାଣୀ ମକଦ୍ଦମାରେ ଛୋଟ ଦାବୀମାନ ବୁଝାଯାଏ—
3. Small Cause Court cases.

ସରି(ରୀ)—ସଂ.ବି--(ସୃ ଧାତୁ=ଗତି କରିବା+କର୍ତ୍ତୃ.ଇ;+ଈ)—ଝରଣା;
Sari(rī) ନିର୍ଝର—A spring; fountain.
ଦେ. ବି—୧ । (ସଂ. ସର) ହାର ବା ମାଳ ବା ସୁତା
ନବ୍ ଛଡ଼ ଅଦିର ସୋର—1. A string (of garland or
necklace or thread). ୨ । (ସଂ. ସର=ବାଣ)
ସରଘର; ଲିଙ୍ଗ (ବିଶେଷତଃ ପଶୁ ଅଦିଙ୍କ ଲିଙ୍ଗ)—
2.Penis (specially of beasts). ୩ । (ସଂ ସର=
ମାଳା) ଧାଡ଼ି; ଶ୍ରେଣୀ—3. Row; line. ୪ । (ସଂ ସଦୃଶ)
সদৃশ सरिस, सरि ଉପମା; ତୁଳନା—4. Comparison.
୫ । (ସଂ. ସୃଧାତୁ=ଗମନ କରିବା) ଶଗଡ଼ ଚକ ଦ୍ୱାରା
লিলীক लिक ଭୂମିରେ ଅଙ୍କିତ ଚକ୍ର—5. The track of
a cart wheel left on the ground.
সদৃশ सरिस, सरि ଦେ. ବିଣ—୧ । ସଦୃଶ—1. Similar.
[ଉ—ଶିଶୁ ହେଲେହେଁ ତୁମ୍ଭେ କଲିଭ ସରି । କବିସୂର୍ଯ୍ୟ—
କିଶୋର ଚମ୍ପୂ—ସ ଗୀତ ।]
[ଶୁଣ ଅଛି ଯେତେ ଦେହେ ଗୋ ! ରୂପ ଯଉବନ ଭେକ
ବା ଭୂଷଣ ସରି ତା ସଙ୍ଗରେ ନୁହେ ଗୋ—ବାଳକୃଷ୍ଣ—
ଫୁଲ ବଉଳବେଣୀ ]
୨ । ସମାନ—2. Equal. [ଉ—ଅସୁର ବୀର୍ଯ୍ୟ ମୋର
ଅଛୁ ସରି ହୋଇ ।—କୃଷ୍ଣସିଂହ—ମହାଭାରତ, ବନ ।]
୩ । ତୁଲ୍ୟ—3. Alike; similar. [ଉ—କଳରେ
ତ ସରି ଜଗତେ ନାହିଁ ମୋତେ । କୃଷ୍ଣସିଂହ—ମହାଭାରତ,
ସଭା । ] ୪ । ଯୋଗ୍ୟ; ଉଚିତ—4. Proper; fit.
[ଉ—ଯାହା ପାଦେ ଲକ୍ଷ୍ମୀ, ଲେଖୁଥିଲେ ଶଚୀ-ନାହା ପଦ
ତୁଚ୍ଛ କରି, ତାହା ପରି ରମ୍ୟ ପଦାର୍ଥଙ୍କୁ ଯାହା, ପର ପର—
ଭକ ସରି । କବିସୂର୍ଯ୍ୟ—ସଙ୍ଗୀତ ।]
୫ । (ଏତେ,ସେତେ,କେତେ ଓ ଯେତେ ପରେ ବ୍ୟବହୃତ)
ଅବସ୍ଥା ପ୍ରାପ୍ତ; ଅବସ୍ଥାପନ୍ନ—5. Having attained
such condition. [ଉ—କେ କ ଦେଲ୍ଲ ଅବା
ମୁଁ ଏକା ନ ଦେବା ଯେବେ ଏତେ ସରି ହେଲ, ହେ
ମହାପ୍ରଭୁ !—କବିସୂର୍ଯ୍ୟ କଣାଣି] ଦେ. ଅ—୧ ।
সমান सरिस ଭଳି; ପରି—1. Like; same as; simi
lar to. [ଉ—କମଳେ ରବି-ବିମ୍ବ ତା ସରି କି ସେ ?
—ରାଧାନାଥ ମେଘଦୂତ] ୨ । (ଅମୁକ ସ୍ଥାନ) ପର୍ଯ୍ୟନ୍ତ;
ସରିକି—2. Up to (a place) ୩ । (ଅମୁକକାଳ)
পর্য্যন্ত पर्यन्त ପର୍ଯ୍ୟନ୍ତ—3. Till (a time) ୪ । (ଅମୁକ
ଅବସ୍ଥା) ପର୍ଯ୍ୟନ୍ତ—4. To (such condition.)
[ଉ—ବିଷୟରେ ପୀୟୂଷ ବୃଦ୍ଧି କରିବାର ଫଳ
ହେଲା ଏତେ ସରି ।—କବିସୂର୍ଯ୍ୟ ସଙ୍ଗୀତ] ଗ୍ରାଦେ.
(ଗଞ୍ଜାମ) ଅ.—୧ । (ପର୍ଯ୍ୟାପ୍ତବୋଧକ) ଏହାହିଁ ଯଥେଷ୍ଟ
ବା ପର୍ଯ୍ୟାପ୍ତ ହେବ—1. (Interjection denoting),
That will do; This is enough; Enough !
[ଦ୍ର—ଭାତ ଖାଉଥିବା ଲୋକର ପତ୍ରରେ ପରଷା ଦିବା
ଅନ୍ନ ଅଦି ଯଥେଷ୍ଟ ହୋଇଗଲେ, ଖାଇବା ବ୍ୟକ୍ତି ପରଷୁ-
ଥିବା ବ୍ୟକ୍ତିକୁ କହନ୍ତି—'ସରି', ଅର୍ଥାତ୍ 'ଯଥେଷ୍ଟ'
ହେଲା, ଅଉ ଦଅନା।] ୨ । ଏହା ଅନନ୍ତର ବିଷୟ

ହେବ—2 (Interjection denoting) This is well; This will be all right; This will be a matter for congratulation. [ଉ—ଅଦୃଷ୍ଟ ବଡ଼ କରଗୋସ୍, ଅଙ୍ଗୀକାର କଲେ ସର । —ଉପେନ୍ଦ୍ର ଭଞ୍ଜ କଳୋସ୍ ଚମ୍ପୂ ଣ ଗୀତ

**ସରଥ(ସ୍ତେ)ତ୍**—ବୈଦେ.ବ. (ଫା. ସର୍ତ୍)—ସର୍ତ୍ତ; ଚୁକ୍ତିର ଭଲରକ୍ତ ଅଂଶ
Saria(ye)t —Conditions of an agreement.
सर्त शर्त ବୈଦେ. ବଣ. (ଫା. ସରାସୃତ)—ମୁସଲମାନଙ୍କ ସବ
सरीयत शरीयत् ବା ଦାୟାଧିକାର ଶାସ୍ତ୍ର ସମ୍ବନ୍ଧୀୟ—Relating to the Mahomedan law of inheritance.

**ସରଥା**—ଦେ. ବଣ—ଯୋଗ ବା ମାଳଯୁକ୍ତ—(used in a compound word after a word denoting number,-as in three-stringed necklace)—Stringed; having (so many) strings.
Sariā
नवी
छड़ी
[ଉ—ଏହି ଶବ୍ଦ ଅନ୍ୟ ସଂଖ୍ୟାବାଚକ ଶବ୍ଦପରେ ବ୍ୟବହୃତ ହୁଏ । ଯଥା—ତିନିସରଥା ହାର; ପୁରସରଥା ଚନ୍ଦ୍ରହାର ।]

**ସରଣୀ**—ଦେ. ବ. ସ୍ତ୍ରୀ—ସରଣୀ (ଦେଖ)
Sariāṇī Saraṇī (See)

**ସରି ଆସିବା**—ଦେ. କ୍ରି.—(କୌଣସି କାର୍ଯ୍ୟ ବା ସମୟ) ଶେଷ ହୋଇ ଆସିବା; ଶେଷ ହେବାର ପୂର୍ବ ଅବସ୍ଥାରେ ବା ଅସନ୍ନ ଅବସ୍ଥାରେ ପହଞ୍ଚିବା—To approach the end; about to end. [ଉ—ଚଉଦ ବର୍ଷ ବନବାସ ସରି ଅସିଥିଲା । ଶାଳବନ୍ତ—ପିଲ୍ଲଙ୍କ ରାମାୟଣ ]
Sari āsibā
शेष हयेआसा
खतम हो रहना

**ସରିକ(କି)**—ବୈଦେ. ବ. (ଅ. ସରିକ୍=ଭାଗଦାର) ୧ । ଅଂଶ; ଭାଗ; ହିସା—1. Share; partnership. ୨ । ଅଂଶୀଦାର—2. Cosharer; partner.
Sarik(ki)
सरिक् सरीक

**ସରିକ(କି)ଦାର**—ବୈଦେ. ବ (ଅ ) କୌଣସି ସମ୍ପତ୍ତିର ଅଂଶୀଦାର—Cosharer; copartner. (ଉ—ଏଥିର ଜଣେ ୨୮ ଆଣି ସରିକଦାର ଥିବାରୁ ତାଙ୍କ ଅଦାଲତରେ ଅସିଲ ଦାବର ଅଛି । ଫକିର ମୋହନ—ଛମାଣ ଆଠଗୁଣ ।)
Sarik-(ki)dāra
सरिकदार सरीकदार

**ସରିକ(କି)ଦାରୀ**—ଦେ. ବ—ସରିକଦାରର ଅବସ୍ଥା—Partnership; the state or condition of being a co-sharer. ଦେ. ବଣ—ସରିକଦାରିଆ (ଦେଖ)—Sarik-dāria. (See)
Sarik-(ki)dāri
सरिकदारी
सरीकदारी
सरिकिदारी सरीकदारी

**ସରିକ(କି)ଦାରିଆ**—ଦେ. ବଣ—୧ । ସରିକଦାର ସମ୍ବନ୍ଧୀୟ—1. Relating to a cosharer. ୨ । ଅନେକ ଅଂଶୀଦାରମାନଙ୍କର ସ୍ୱାମିତ୍ୱ ଥିବା—2. Owned by many cosharers. [ଉ—ସରିକଦାରିଆ ମାହାଲ=ଯେଉଁ ଜମିଦାରୀରେ ଅନେକ ଅଂଶୀଦାର ଜମିଦାର ଥାଆନ୍ତି ।]
Sarik-(ki)dāriā
सरिकानी
सरीकदारका

**ସରିକ**—ସଂ. ବଣ. ପୁଂ (ସୃ. ଧାତୁ+କିକ. ଲଚ)—ଗମନକାରୀ; ଗନ୍ତା
Sarika (ସରିକା—ସ୍ତ୍ରୀ) (ଶବ୍ଦକୋଷ)—Going; moving

**ସରିକଣ୍ଠ**—ଦେ. ବଣ—ପରସ୍ପର ସହିତ ମାପରେ ସମାନ; ସମତୁଲ; ସରି ସମାନ—Equal in measurement; exactly equal to each other in quantity or measurement. ଦେ. ବ—ଠିକ୍ ନିର୍ଦ୍ଧାରଣ ଅନୁଯାୟୀ ଯଥାସମୟ; ଠିକ୍ ନିରୂପିତ ବେଳ—Just the fixed or appointed time.
Sarikaṇṭa
ठिक् समान
बराबर

**ସରିକା**—ସଂ. ବଣ. ସ୍ତ୍ରୀ (ସୃ. ଧାତୁ=ଗତ କରିବା+କିକ. ଅକ+ ସ୍ତ୍ରୀ. ଆ)—ଗମନକାରିଣୀ; ଗମନକାରିଣୀ—(Feminine) Moving. ସଂ. ବ— ୧ । (ବୈଦ୍ୟକ) ହିଙ୍ଗୁପତ୍ରୀ—1. Name of a herb. ୨ । ମୋତିର ସର ବା ଏକମାଳ (ହେ. ଶ)—2. A string of beads. ୩ । ମୋତି; ମୁକ୍ତା (ହେ. ଶ)—3. Pearl. ୪ । ଛୋଟ ପୋଖରୀ (ହେ. ଶ)—4. A small tank. ୫ । ରତ୍ନ (ହେ. ଶ)—5. Gem.
Sarikā
(ସରିକ, ସରିକ—ପୁଂ)
हिस्सा सरीक

ବୈଦେ. ବ—୧ । (ଅ. ସରିକ୍) ହିସା; ଅଂଶ; ଭାଗ—1. Share. ୨ । (ଫା. ସରୋକାର) ସମ୍ପର୍କ—2. Connection. ୩ । ସଂପର୍କ—3. Relation. ଗ୍ରା. ବଣ—ସମାନ; ସଦୃଶ—Similar; like.
सविकानि
सरोकार

**ସରିକି**—ଦେ. ଅ (ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ; ଯଥା—ଏ ସରିକି; କେଉଁ ସରିକି)—୧ । (ଅମୁକ ସୀମା) ପର୍ଯ୍ୟନ୍ତ; ଯାଏ; ଦୂର, ଅବଧି ଯାଏ—1. Upto (a limit) (ଉ—ଚିତ୍ରର ନ ଶୁଣା ସରିକି ବାସବ କୋଦଣ୍ଡରୁ ଚଣ୍ଡ ଧନୁ । ଉପେନ୍ଦ୍ର; କଳୋସ୍ ଚମ୍ପୂ ୫ ଗୀତ ।) ୨ । (ଅମୁକ ସ୍ଥାନ) ପର୍ଯ୍ୟନ୍ତ—2. Upto (a place). (ଉ—ଗୋପକୁଞ୍ଜ ପୁଞ୍ଜ ସରିକି । ଉପେନ୍ଦ୍ର. କଳୋସ୍ ଚମ୍ପୂ. ୭ ଗୀତ ।) ୩ । (ଅମୁକ ସମୟ) ପର୍ଯ୍ୟନ୍ତ—3. Upto or till (a time). (ଉ—ଅଜ ସରିକି ତାହା କହୁନ ମୁଁ କେବେ । କୃଷ୍ଣସିଂହ. ମହାଭାରତ. ଉଦ୍ଯୋଗ ।) ୪ । (ଅମୁକ ଅବସ୍ଥା) ପର୍ଯ୍ୟନ୍ତ—4. To the condition of; to the extent of. (ଯଥା—ତାଙ୍କ ରୋଗ ଏ ସରିକି ହେଲାଣି, ତେବେ ସୁଦ୍ଧା ବୈଦ୍ୟ ଡକାଉ ନାହାନ୍ତି ।) ୫ । ବି; ସୁଦ୍ଧା—5. Even. (ଉ—ଗଡି ସରିକି କରେ, ନାହିଁକି ନବେକରେ, ମହାର୍ଣ୍ଣବରେ ଅବଗାହନ୍ତି ଗୋ । ଉପେନ୍ଦ୍ର. କଳୋସ୍ ଚମ୍ପୂ. ୪ ଗୀତ ।) ୬ । ପାଖରେ; ପ୍ରତି—6. At; near. (ଉ—ଦାସର ସରିକି ବନ୍ଧୁ ନ ଯାକ । ଉପେନ୍ଦ୍ର. ସଙ୍ଗୀତ ।) ବୈଦେ. ବ (ଅ. ସରିକ)—ସରିକ୍ (ଦେଖ)—Sarik. (See)
Sariki
दूर, अवधि
पर्य्यन्त
ও मि

**ସରିକିଆ**—ଦେ. ବଣ—ଏକ ଯୋଗ ବିଶିଷ୍ଟ—Having one string only; single-stringed. ୨ । (ଫା ସରିକ) ସରିକ୍ ବା ହିସା ସମ୍ବନ୍ଧୀୟ—2. Relating to
Sarikiā
एकनरि एकछडका
सविकानि सरीकदारीका

a cosharer. ୩ । ସରିକ୍‌ଦାରିଆ (ଦେଖ)— 3. Sarik-dāriā (See)

ସରିକ ସରି—ଦେ. ଅ.—ସରିସରି (ଦେଖ)—
Sariki sari　Sari sari (See)

ସରିଗମ—ଦେ. ବି—ସାରିଗାମାପାଧାନି; ସଙ୍ଗୀତର ସପ୍ତସ୍ୱର; ସ୍ୱରଗ୍ରାମ—
Sarigama　The notes of the gamut; Solfa.
(ସରିଗମପଧନି—ଅନ୍ୟରୂପ)　সাবিগামা　सरिगम

ସରିଘର(ରା)—ଦେ. ବି—(ସଂ. ଶର)—୧ । ଲିଙ୍ଗ—1. Penis.
sarighara(rā)　୨ । ପଶୁ ଆଦିଙ୍କର ଉଦ୍ଧୃତ ଲିଙ୍ଗ—2. The
ধন　लिंग　erect penis of beasts.

ସରିତ୍—ସଂ. ବି (ସୃ ଧାତୁ=ଗମନ କରିବା+ଇତି ଇତ୍) ୧ । ନଦୀ—
Sarit　1. River.　୨ । ସୂତ୍ର—2. String; thread.
୩ । ଦୁର୍ଗା—3. Goddess Durgā.

ସରିତ୍‌କଫ—ସଂ. ବି (୬ଷ୍ଠୀ ତତ୍)—ନଦୀର ଫେଣ (ହି. ଣ)—
Sarit-kapha　The foam of the waters of a river.

ସରିତ୍-ପତି—ସଂ. ବି (୬ଷ୍ଠୀ ତତ୍)—ସମୁଦ୍ର—The sea (litterally
Sarit-pati　the lord of rivers).
(ସରିତ୍‌ପତି—ଅନ୍ୟରୂପ)

ସରିତ୍ ପ୍ରବାହ—ସଂ. ବି (୬ଷ୍ଠୀ ତତ୍)—ନଦୀର ସ୍ରୋତ—
Sarit-prabāha　The current of a river.
(ସରିତପ୍ରବାହ—ଅନ୍ୟରୂପ)

ସରିତ୍‌ସୁତ—ସଂ. ବି (୬ଷ୍ଠୀ ତତ୍)—ଗଙ୍ଗାପୁତ୍ର ଭୀଷ୍ମ—
Sarit-suta　Bhishma, the son of the Ganges.
(ସରିତ୍ସୁତ—ଅନ୍ୟରୂପ)

ସରିତ୍-ସ୍ରୋତଃ—ଦେ. ବି. (୬ଷ୍ଠୀ ତତ୍)—ନଦୀର ସ୍ରୋତ—
Sarit-srotah　The current of a river.
(ସରିତ୍ସ୍ରୋତଃ—ଅନ୍ୟରୂପ)

ସରିତ—ଦେ. ବି (ସଂ. ସରିତ୍)—ସରିତ୍; ନଦୀ—River. [ଉ-
Sarita　ଭୁରିତ ଉତ୍କଣ୍ଠା ସରିତ ବଢ଼ିଲା ଦମ୍ଭ-ଦ୍ରୁମ ଗଲା
সবিত　सरित　ଭସି—କବିସୂର୍ଯ୍ୟ ସଙ୍ଗୀତ ।]

ସରିତ ଈଶ—ଦେ. ବି (ପଦ୍ୟ)—ସମୁଦ୍ର—The sea.　( ଉ—
Sarita īśa　ବିଜୁଳିତ ଘାସେ ଯେ ସରିତଈଶ ସରି—ଭଞ୍ଜ
সবিতঈশ　सरितईश　ବୈଦେହୀଶବିଳାସ ।)

ସରିତପତି—ଦେ. ବି (ସଂ ସରିତ୍+ପତି)—ସମୁଦ୍ର—
Saritapati　সবিতপতি　सरितपति　The sea.

ସରିତାଂନାଥ—ସଂ. ବି (୬ଷ୍ଠୀ ତତ୍; ସରିତାଂ=ନଦୀମାନଙ୍କର+ନାଥ;
Saritāmnātha　ଅଲୁକ୍ ସମାସ)—ସରିତ୍‌ପତି; ସମୁଦ୍ର—
(ସରିତାଂପତି, ସରିତାମ୍ପତି—ଅନ୍ୟରୂପ)　The sea.

ସରିତାମ୍ବରା—ସଂ. ବି (ସରିତାଂ=ନଦୀମାନଙ୍କର+ବରା=ଶ୍ରେଷ୍ଠା;
Saritāmbarā　ଅଲୁକ୍ ସମାସ)—ଗଙ୍ଗା—The
(ସରିଦ୍‌ବରା—ଅନ୍ୟରୂପ)　Ganges (literally, the best of the rivers).

ସରିତୁଲ—ଦେ. ବିଣ (ସଂ. ସଦୃଶ+ତୁଲ୍ୟ)—୧ । ସରିତୁଲ (ଦେଖ)
Saritula　1. Saritula (See)　୨ । ଓଜନରେ
সমতুল　बराबर　ପରସ୍ପର ସଙ୍ଗେ ସମାନ—2. Equal to each other in weight.

ସରିତୁଲ—ଦେ. ବିଣ (ସଂ. ସଦୃଶ+ତୁଲ୍ୟ)—୧ । ପରସ୍ପର ସଙ୍ଗେ
Saritula　ସମାନ—1. Exactly similar to each
সমতুল　बराबर　other.　(ଉ—ସରି ହଉଛି ସରିତୁଲ, ଫିଟାଇଦେଲେ ମଲ୍ଲିଫୁଲ—ନାହିଁ ଦଉ;ବୃତ୍ତିର—ନଡ଼ିଆ ।)　୨ । ସମତଳ—2. Level.　୩ । ସମାନ-ତଳବିଶିଷ୍ଟ—3. Of the same level.

ସରିତ୍ତଟ—ସଂ. ବି (ସରିତ୍=ନଦୀ+ତଟ; ୬ଷ୍ଠୀ ତତ୍)—ନଦୀର କୂଳ—
Srittata　The bank or shore of a river.

ସରିତ୍ୱାନ୍—ସଂ. ବି (ସରିତ୍+ଅସ୍ତି ଅର୍ଥରେ ବତ୍; ୧ମା. ୧ବ)—ସମୁଦ୍ର-
Saritwān　The sea.

ସରିଦ୍‌ବରା—ସଂ. ବି (୭ମୀ ତତ୍; ସରିତ୍‌ମାନଙ୍କ ମଧ୍ୟରେ ବରା)—ଗଙ୍ଗା—
Sarid-barā　The Ganges.
(ସରିଦବରା—ଅନ୍ୟରୂପ)

ସରି ଦେବା—ଦେ. କି—ଉପମା ଦେବା; ତୁଳନା କରିବା—To
Sari debā　compare with. [ ଦ୍ର—ଅନ୍ୟ ସାଦୃଶ୍ୟ କି
উপমা দেওয়া　तुलना करना　ଦେବା ସରି—ଭଞ୍ଜ. କୋଟି ବ୍ରହ୍ମାଣ୍ଡସୁନ୍ଦରୀ ।]

ସରିନ୍ନାଥ—ସଂ. ବି (୬ଷ୍ଠୀ ତତ୍; ସରିତ୍+ନାଥ)—ସରିତ୍‌ପତି; ସାଗର—
Sarinnātha　The sea; ocean.

ସରି ପଟ—ଦେ. ବିଣ—୧ । ସରିତୁଲ—1. Exactly equal
Sari paṭa　with each other.　୨ । ସମାନସ୍ଥିତ—
সমতুল　बराबर　2. Of the same or similar posi-
প্রতিদ্বন্দী　विपक्ष　tion or status.　୩ । ପ୍ରତିଦ୍ୱନ୍ଦ୍ୱୀ—3. Rival.

ସରିଫ—ବୈଦେ. ବି (ଇଂ. ଶେରିଫ୍)—ସହରର ପ୍ରଧାନ ମଣ୍ଡଳ ବା
Sariph　ନେତା—Sheriff; the headman of a town
সেবিফ্　ବୈଦେ. ବି (ଆ)—ମାନନୀୟ; ପୂଜ୍ୟ—
शेरिफ्　Honourable; adorable.

ସରିବରି—ଦେ. ବି—୧ । କୌଣସି ବିବାଦର ସମାଧାନ—1. Settle-
Saribari　ment of a dispute. ୨ । ସମତା—2. Equa-
সমাধান　lity. ଦେ. ବିଣ—୧ । ସମାହିତ—1. Settled.
समाधान　୨ । ସଦୃଶ—2. Similar.

ସରିବା—ଦେ. କି (ସଂ. ସୃ ଧାତୁ=ଗତି କରିବା)—୧ । ନିଃଶେଷିତ
Saribā　ହେବା; ଅପଚିତ ହେବା—1. To be exhausted.
ফুবান　( ଉ—ସରୁ ସରିଲାଣି ସହେନପରର—କବିସୂର୍ଯ୍ୟ
खतम होना　ସଙ୍ଗୀତ ।)　୨ । ଶେଷ ହେବା;
ସାରିବା } ଣିଜନ୍ତରୂପ　ସମାପ୍ତ ହେବା—2. To be fini-
ସରାଇବା }　shed; to come to the end.
(ଉ—ମୋ କଥାଟି ସରିଲା, ଫୁଲ ଗଛଟି ମରିଲା—ଲୋକୋକ୍ତି)
୩ । ପୂରିବା; ସମ୍ପୂର୍ଣ୍ଣ ହେବା—3. To be comple-

ସର୍ପୀ—ସଂ. ବିଣ. ପୁଂ (ସୃପ୍. ଧାତୁ+ଇନ୍; ୧ମା, ୧ବ)—
Sarpī ଗମନକାରୀ; ଗମନଶୀଳ; ଜଙ୍ଗମ—Moving. ସଂ. ବି.
( ସର୍ପିଣୀ—ସ୍ତ୍ରୀ ) ସ୍ତ୍ରୀ—( ସର୍ପ+ସ୍ତ୍ରୀ. ଈ )—ମାଈ ସାପ—
A she-serpent.

ସର୍ପୀ(ର୍ପେ)ଷ୍ଟ—ସଂ. ବି (ସର୍ପୀ ବା ସର୍ପର ଇଷ୍ଟ=ପ୍ରିୟ)—ଶ୍ରୀଖଣ୍ଡ
Sarpi(rpe)shṭa ଚନ୍ଦନ ( ରତ୍ନମାଳା )—A species of sandal wood.
[ଦ୍ର—ଚନ୍ଦନ ଗଛରେ ବିଷଧର ସର୍ପ ରହନ୍ତି ବୋଲି ଜନ-ପ୍ରବାଦ ଓ କବିପ୍ରସିଦ୍ଧି ଅଛି ।]

ସର୍ପେଶ୍ବର—ସଂ ବି—ସର୍ପରାଜ; ଗରୁଡ଼—
Sarpeśwara The king of serpents.
সর্পেশ্বর ଦେ.ବି. ୧ । ପ୍ରତିଷ୍ଠିତ ମହାଦେବଙ୍କ ନାମ—1. Name
सर्पेश्वर of a nimage of Lord Śiba. ୨। ପୁରୁଷ ଲୋକଙ୍କ ନାମ—2. A name of males. ୩ । ଅଠଗଡ଼ ଅନ୍ତର୍ଗତ କ୍ଷୁଦ୍ର ପର୍ବତର ନାମ—3. Name of a hill in the Athgarh State. [ଦ୍ର—ଏହି ପାହାଡ଼ର ନିକଟବର୍ତ୍ତୀ ପାହାଡ଼କୁ ଧାଙ୍ଗାକୋଠ ପାହାଡ଼ ବୋଲାଯାଏ ] (ଉ—ଉତ୍ତରେ ବିରାଜେ ଶୈଳ ସର୍ପେଶ୍ବର । ରାଧାନାଥ—ନନ୍ଦିକେଶ୍ବରୀ ।) ୪ । ଏହି ପାହାଡ଼ ନିକଟରେ ଥିବା ଶିବ ଲିଙ୍ଗ—4. Name of an image of Śiba in the Athgarh State. [ଦ୍ର—ଏ ଦେବଙ୍କ ନିକଟେ ସ୍ଥଳୀକୁ ଅସି ହଳପ ଧରି ମିଛ କହିଲେ ଶୀଘ୍ର ମିଥ୍ୟାବାଦୀକୁ ଦୈବୀଦଣ୍ଡ ହୁଏ ବୋଲି ଲୋକେ ଦୃଢ଼ ବିଶ୍ବାସ କରନ୍ତି ।]

ସର୍ପେଶ୍ବରୀ—ଦେ. ବି—ଅଠଗଡ଼ର ପ୍ରଧାନ ନଦୀ, ସାପୁଆ ନଈ—Name
Sarpeśwari of a small river in the Athgarh
সর্পেশ্বরী सर्पेश्वरी state, (ଉ—ଉତ୍ତରେ ବିରାଜେ ଶୈଳ ସର୍ପେଶ୍ବର, ସର୍ପେଶ୍ବରୀ ଯାର ଧୁଅଇ ପୟର । ରାଧାନାଥ—ନନ୍ଦିକେଶ୍ବରୀ) (ଦ୍ର—ଏ ନଦୀ ସର୍ପେଶ୍ବର ପାହାଡ଼ ବାଟେ ବହି ଅଠଗଡ଼ ରାଜଧାନୀ ତଳେ ବହି ଯାଇ ମହାନଦୀରେ ପଡ଼ିଅଛି ।)

ସର୍ପୋନ୍ମାଦ—ସଂ. ବି—ଏକପ୍ରକାର ଉନ୍ମାଦ ରୋଗ—
Sarponmāda A kind of madness.
(ଦ୍ର—ଏଥିରେ ରୋଗୀ ସର୍ପ ପରି ଭୂମିରେ ଲୋଟେ, ଜିଭ ଲହ ଲହ କରେ, ଓ ଭାରି କ୍ରୁଦ୍ଧ ହୁଏ । ରୋଗୀର ଗୁଡ଼, ଦୁଧ ଆଦି ଖାଇବାକୁ ଭାରି ଲାଳସା ହୁଏ (ହି· ଶ)

ସର୍ପୋଶ୍—ବୈଦେ· ବି—(ଫା.) ସରପୋଶ (ଦେଖ)—
Sarpoś Sarapoś (See)

ସର୍ଫ୍—ବୈଦେ· ବିଣ—(ଫା)—ବ୍ୟୟିତ
Sarph सर्फ Spent.

ସର୍ଫ୍ ବେଶି—ବୈଦେ. ପ୍ରାଦେ. (ଗଞ୍ଜାମ) ବି—( ଫା. ସରଫ୍ ବେଶି )
Sarph beśi ସରଫ୍‌ବେଶି (ଦେଖ)—Saraph beśi (See)

ସର୍ଫ୍ ରାଜ—ବୈଦେ. ବି—(ଫା.) ସରଫ୍‌ରାଜ୍ (ଦେଖ)
Sarph rāj Saraph rāj (See)

ସର୍ଫ୍‌ରାଜି—ଦେ. ବି—ସରଫ୍‌ରାଜି (ଦେଖ)
Sarphrāji Saraph-raji (See)

ସର୍ବ(ଧାତୁ)—ସଂ—ଗମନ କରିବା
Sarb(root) To go; to more.

ସର୍ବ(ର୍ବ)—ସଂ. ବିଣ—(ସର୍ବ୍ ଧାତୁ+କର୍ତ୍ତି ଅ) ୧ । ସବୁ; ସମସ୍ତ;
Sarba(rbba) ସକଳ—1. All. ୨ । ପ୍ରତ୍ୟେକ—2. Each; every. ୩ । ସମଗ୍ର; ସମୁଦାୟ—3. Whole; entire. ୪ । ସମ୍ପୂର୍ଣ୍ଣ—4. Complete. ସଂ ସର୍ବନାମ—୧ । ସମସ୍ତେ—1. All. ୨। ପ୍ରତ୍ୟେକେ—2. Each. [ଦ୍ର—ଏହି ସର୍ବ ଶବ୍ଦର ବହୁବଚନ ପୁଂଲିଙ୍ଗ 'ସର୍ବେ' ମଧ୍ୟ ଭାଷାରେ ବ୍ୟବହୃତ ହୁଏ । ଯଥା—ସର୍ବେ ଚଳିବେ କାଳବଳେ ।] ସଂବି.—(ସୃ ଧାତୁ+କରଣ ବନ୍) ୧। ଶିବ; ମହାଦେବ (ଅମର)—1. Śiba. ୨। ବିଷ୍ଣୁ (ସହସ୍ରନାମ) —2. A name of Lord Bishṇu.

ସର୍ବଂ(ର୍ବଂ)ସହ—ସଂ. ବିଣ. ପୁଂ ( ସର୍ବଂ=ସବୁ ବିଷୟକୁ+ସହ ଧାତୁ+
Sarbaṁ(rbbaṁ)saha କର୍ତ୍ତୃ ଅ) ସହିଷ୍ଣୁ; ଯେ ସବୁ ବିଷୟ
(ସର୍ବଂସହା—ସ୍ତ୍ରୀ) ସହ୍ୟ କରେ—Bearing every thing; very patient; very forbearing.

ସର୍ବଂ(ର୍ବଂ)ସହା—ସଂ.ବି· ସ୍ତ୍ରୀ—(ସର୍ବଂସହ+ଆ)—ବସୁନ୍ଧରା; ପୃଥିବୀ—
Sarbaṁ(rbbaṁ) sahā The earth.
ସଂ. ବିଣ· ସ୍ତ୍ରୀ—ସର୍ବଂସହର ସ୍ତ୍ରୀ ଲିଙ୍ଗ—Feminine of Sarbaṁsaha (See)

ସର୍ବକର୍ତ୍ତା—ସଂ· ବି. ପୁଂ (ଉପପଦ ତତ୍ପୁରୁଷ)—୧ । ସବୁ ବସ୍ତୁର
Sarbakarttā ସ୍ରଷ୍ଟା—1. The creator of all. ୨ । ସମସ୍ତଙ୍କର ପ୍ରଭୁ—2. Lord of all. ୩ । ଈଶ୍ବର—3. God. ୪ । ବ୍ରହ୍ମା ( ଶବ୍ଦ ରତ୍ନାବଳୀ )—4. Brahmā.

ସର୍ବ କର୍ମ(ର୍ମ୍ମ)—ସଂ. ବି—ସମସ୍ତ କାର୍ଯ୍ୟ—
Sarba karma(rmma) All acts.

ସର୍ବ କର୍ମ(ର୍ମ୍ମ)କ୍ଷମ—ସଂ. ବିଣ· ପୁଂ—ସର୍ବକର୍ମୀ (ଦେଖ)
Sarba karma(rmma)kshama Sarbakarmī (See)
[ସର୍ବକର୍ମକ୍ଷମା—ସ୍ତ୍ରୀ]

ସର୍ବକର୍ମ(ର୍ମ୍ମ) ଫଳତ୍ୟାଗୀ—ସଂ. ବିଣ. ପୁଂ—ଯେ ନିଜକୃତ ସମସ୍ତ
Sarbakarma(rmma) phalatyāgī କର୍ମର ଫଳ ଚାହିଁ ଥଣା ନ ରଖି କର୍ମର ଫଳକୁ ଈଶ୍ବରଙ୍କଠାରେ ଅର୍ପଣ କରେ—Leaving the result of all his
(ସର୍ବକର୍ମଫଳତ୍ୟାଗ—ବି) actions to God.

ସର୍ବକର୍ମୀ(ର୍ମ୍ମୀ)—ସଂ. ବିଣ· ପୁଂ (ସର୍ବକର୍ମ+ଇନ୍; ୧ମା· ୧ବ)—
Sarbakarmī(rmmī) ସବୁ କାର୍ଯ୍ୟ କରିବାକୁ କ୍ଷମ—
(ସର୍ବକର୍ମୀଣ—ଅନ୍ୟରୂପ) Fit to do all work.
[ସର୍ବକର୍ମିଣୀ, ସର୍ବକର୍ମୀଣା—ସ୍ତ୍ରୀ]

ସର୍ବକାମ—ସଂ. ବି—୧ । (କର୍ମଧା) ସମସ୍ତ କାମନା—1. All
Sarbakāma desires. ୨ । ( ବହୁବ୍ରୀହି ) ମହାଦେବ [ହ. ଶ]—2. Śiba. ୩ । ଏକ ଅର୍ହତଙ୍କ ନାମ

(ବୃ. ଶ)—3. Name of a Buddha. ସଂ. ବଣ. ପୁଂ (ବହୁବ୍ରୀହି) ୧ । ସମସ୍ତ କାମନାକାରୀ (ବୃ. ଶ)—1. Wishing all things. ୨ । ସବୁ ଇଚ୍ଛା ପୂରଣକାରୀ—2. Fullfilling all wishes.

ସର୍ବକାମଦ—ସଂ. ବଣ. ପୁଂ (ସର୍ବକାମ+ଦା. ଧାତୁ+କର୍ତ୍ତୃ. ଅ)—Sarbakāmada ସର୍ବକାମନାପୂରଣକାରୀ—Fullfilling all desires. [ସର୍ବକାମଦା—ସ୍ତ୍ରୀ]

ସର୍ବକାଳ—ସଂ. ବ—୧ । ସକଳ ସମୟ—1 All times. ୨ । ଚିର କାଳ—2. Eternity. Sarbakāla

ସର୍ବକାଳୀନ—ସଂ. ବଣ ( ସର୍ବକାଳ+ଈନ )—ସବୁକାଳରେ ଘଟିବା—Of all ages; eternal. Sarbakālina

ସର୍ବକେଶର—ସଂ. ବ—ବକୁଳ ବୃକ୍ଷ ଓ ପୁଷ୍ପ (ବୃ. ଶ) Sarbakesara The Bakula tree and flower.

ସର୍ବକ୍ଷୟ—ସଂ. ବ—ସର୍ବନାଶ (ଦେଖ) Sarbakshaya Sarbanāsa. (See)

ସର୍ବକ୍ଷାର—ସ. ବ (ବୈଦ୍ୟକ)—୧ । ସାବୁନ; ୩୪ ପ୍ରକାର Sarbakshāra କ୍ଷାରର ମିଶ୍ରଣରେ ପ୍ରସ୍ତୁତ ମଳପରିଷ୍କାରକ सावुन् **साबुन** ପଦାର୍ଥ (ଭୃଙ୍ଗରାଜ)—1. Soap. ଭେ—ସର୍ବକ୍ଷାର [ଦ୍ର—ଏହା ଅତ୍ୟନ୍ତ କ୍ଷାରଗୁଣଯୁକ୍ତ, ମଳବର୍ଦ୍ଧକ, ସର୍ବକ୍ଷାର, ସମୁଦ୍ରକ୍ଷାର, ମୂତ୍ରଶୋଧକ, ଚର୍ମହିତକର, କ୍ଷାରମେଳକ, ଶ୍ଲେଷ୍ମକ୍ଷାର, ବସ୍ତିଶୋଧକ; କୃମି ଓ ଉଦାବର୍ତ୍ତ ମହାକ୍ଷାର, ମଳାର ରୋଗର ଉପକାରକ ଏବଂ ବାହ୍ୟ ପ୍ରୟୋଗରେ ଏହା ଗାତ୍ର ଓ ବସ୍ତ୍ରାଦିର ପରିଷ୍କାରକ ।] ୨ । ମୁଷ୍କକ ବୃକ୍ଷ (ବୃ. ଶ); ପାଟଳ ଗଛ—2. Stereospermum Suaveolens (tree).

ସର୍ବଗ—ସ. ବଣ. ପୁଂ (ସର୍ବ+ଗମ୍ ଧାତୁ+କର୍ତ୍ତୃ. ଅ)—୧ । ସର୍ବଗାମୀ; ଯେ ସବୁ ସ୍ଥାନକୁ ଯାଏ—1. Going everywhere. ୨ । ସର୍ବବ୍ୟାପୀ—2. Pervading everywhere. ସ. ବ—୧ । ଶିବ; ମହାଦେବ—1. Siba. ୨ । ବାୟୁ—2. Air. ୩ । ଜଳ—3. Water. ୪ । ଆତ୍ମା—4. Soul. ୫ । ବ୍ରହ୍ମ—5. The Divine Essence. Sarbaga (ସର୍ବଗା—ସ୍ତ୍ରୀ)

ସର୍ବଗତ—ସଂ. ବଣ (ସର୍ବ+ଗତ)—୧ । ସର୍ବତ୍ର ସ୍ଥିତ—1. Omnipresent. ୨ । ସର୍ବଗ (ଦେଖ)—2. Sarbaga (See) ୩ । ସର୍ବବ୍ୟାପୀ—3. All pervading. Sarbagata

ସର୍ବଗନ୍ଧ—ସଂ. ବ—ଚତୁର୍ଜାତକ, କଙ୍କୋଳ, ଲବଙ୍ଗ, କର୍ପୂର, ଅଗୁରୁ ଓ ଶିହ୍ଲକ—(ଶବ୍ଦଚନ୍ଦ୍ରିକା; ଭାବପ୍ରକାଶ]—A compound of various scented articles. Sarbagandha

ସର୍ବଗା—ସଂ. ବଣ. ସ୍ତ୍ରୀ (ସର୍ବଗ+ଆ)—ସର୍ବଗର ସ୍ତ୍ରୀଲିଙ୍ଗ—Feminine of Sarbaga. ସଂ. ବ—୧ । ଶ୍ୟାମାଲତା—1. A creeper; Panicum Frumentaceum. ୨ । କଙ୍ଗୁଧାନ୍ୟ—2. A sort of grain; Panicum Italicum. ୩ । ପ୍ରିୟଙ୍ଗୁ ବୃକ୍ଷ (ଶବ୍ଦଚନ୍ଦ୍ରିକା)—3. A kind of tree; Aglaia Roxburghiana. Sarbagā (ସର୍ବଗ—ପୁଂ)

ସର୍ବଗାମୀ—ସଂ. ବଣ. ପୁଂ (ସର୍ବ+ଗମ ଧାତୁ+ଇନ୍; ୧ମା; ୧ବ) Sarbagāmi ସର୍ବଗ (ଦେଖ)—Sarbaga (See) (ସର୍ବଗାମିନୀ—ସ୍ତ୍ରୀ)

ସର୍ବଗିଅଁ—ଗ୍ରା. ବ ଓ ବଣ (ସଂ. ସର୍ବଜ୍ଞର ଅଶୁଦ୍ଧ ଉଚ୍ଚାରଣ)—Sarbagiañ ସର୍ବଜ୍ଞ (ଦେଖ)—Sarbajña (See) सर्वज्ञ **सरबज्ञ** (ସର୍ବଗ୍ୟଁ—ଅନ୍ୟରୂପ)

ସର୍ବଗୁଣାକ(ଧା)ର—ସଂ. ବଣ ପୁଂ ଓ ସ୍ତ୍ରୀ ( ୬ଷ୍ଠୀତତ୍; ସର୍ବଗୁଣର ଆକର ବା ଆଧାର)—ସବୁ ଗୁଣର ଆଶ୍ରୟ; ସବୁ ଗୁଣ ଯୁକ୍ତ—Possessed of all qualities. Sarbagunāka(dhā)ra

ସର୍ବଗୁଣାନ୍ୱିତ—ସଂ. ବଣ ପୁଂ (କର୍ମଧାରୟ ଓ ୩ୟା ତତ୍)—ଯାହାଠାରେ ସବୁ ଗୁଣ ଥାଏ—Possessing all attributes. Sarbagunānwita (ସର୍ବଗୁଣାନ୍ୱିତା—ସ୍ତ୍ରୀ)

ସର୍ବଗ୍ୟଁ—ଗ୍ରା. (ପଦ୍ୟ) ବ. ଓ ବଣ (ସଂ. ସର୍ବଜ୍ଞ)—ସର୍ବଜ୍ଞ (ଦେଖ) Sarbagyañ Sarbajña (See) [ ଉ—ସର୍ବଗ୍ୟଁ सर्वज्ञ **सरबज्ञ** ଚତୁର ଚନ୍ଦ୍ରମା, ସକଳଗୁଣେ ଅନୁପମା—ଭୂପତି. ପ୍ରେମପଞ୍ଚାମୃତ]

ସର୍ବଗ୍ରନ୍ଥି—ସଂ. ବ—ପିପ୍ପଳମୂଳ (ଭୃଙ୍ଗରାଜ)—The root of piper; piper root. [ଦ୍ର—ଏହା ଗ୍ରନ୍ଥିଯୁକ୍ତ ଥିବାରୁ ଏହାର ଏପରି ନାମକରଣ ହୋଇଅଛି] Sarbagranthi (ସର୍ବଗ୍ରନ୍ଥିକ—ଅନ୍ୟରୂପ)

ସର୍ବଗ୍ରହଣ—ସଂ. ବ—୧ । ସବୁ ପଦାର୍ଥକୁ ନେବା—1. Acceptance of all things. ୨ । ସର୍ବଗ୍ରାସ ୨ (ଦେଖ)—2. Sarba grāsa 2 (See). Sarbagrahana

ସର୍ବଗ୍ରହାପହା—ସଂ. ବ—ନାଗଦମନୀ (ବୃ, ଶ)—Sarbagrahāpahā Indian wormwood.

ସର୍ବଗ୍ରାସ—ସଂ. ବ—୧ । ସମୁଦାୟ ପଦାର୍ଥକୁ ଖାଇବା—1. Eating up of all things. ୨ । ଚନ୍ଦ୍ରଗ୍ରହଣ ବା ସୂର୍ଯ୍ୟ ପରାଗ ସମୟରେ ଚନ୍ଦ୍ରର ବା ସୂର୍ଯ୍ୟର ସମୁଦାୟ ଅଂଶ ଅଦୃଶ୍ୟ ହେବା ଅବସ୍ଥା—2. Total eclipse. Sarbagrāsa

ସର୍ବଗ୍ରାସୀ—ସଂ. ବଣ. ପୁଂ—୧ । ଯେ ସମସ୍ତ ବସ୍ତୁକୁ ଗ୍ରାସ କରେ—1. All-eating; devouring every thing. ୨ । ଯେ ସବୁ ପଦାର୍ଥକୁ ଆତ୍ମସାତ୍ କରେ—2. Appropriating every thing to oneself. [ ଉ—ଏ ଭବସାଗରେ ସର୍ବଗ୍ରାସୀ କାଳ-କାଳ୍ୟା କହେ ଅବରତ—ରାଧାନାଥ. ପାର୍ବତୀ । ] Sarbagrāsi (ସର୍ବଗ୍ରାସିନୀ—ସ୍ତ୍ରୀ)

ସର୍ବଘୋଟ—ଦେ. ବଣ—ସର୍ବାଘୋଟ ( ଦେଖ ); Sarba ghota Sarbāghota ( See.)

ସର୍ବଘୋଟ ଦିବାକର—ଦେ. ବି—ଅତ୍ୟନ୍ତ ଗୋଳମାଳ—
Sarbaghoṭa dibākara Utter confusion.
सर्वघोट दिवाकर ବିଣ—ଯେ ଜାତିଭେଦ ଇତ୍ୟାଦି ମାନେ ନାହିଁ
सर्बघोट दिबाकर ଓ ସବୁ ଖାଦ୍ୟ ଖାଏ—(a person) Who does not observe the Hindu caste system and food restrictions.

ସର୍ବଙ୍କଷ—ସଂ.ବିଣ (ସର୍ବଂ=ସମସ୍ତଙ୍କୁ+କଷ ଧାତୁ=ଗମନ କରିବା+
Sarbaṅkasha କର୍ତ୍ତୃ.ଅ; ଅଲୁକ୍‌ସମାସ)—୧। ସର୍ବାତିକ୍ରମକ—
(ସର୍ବଂକଷ—ଅନ୍ୟରୂପ) 1. Passing over everything.
୨। ସର୍ବଶ୍ରେଷ୍ଠ—2. Chief; pre-eminent. ୩। ପାପୀ—3. Sinful. ସଂ. ବି—ପାପ—Sin.

ସର୍ବଚର୍ମୀ(ର୍ମ୍ମୀ)ଣ—ସଂ. ବିଣ (ସର୍ବ+ଚର୍ମ+ଈନ)—୧। ସକଳ
Sarbacharmī(rmmī)ṇa ଚର୍ମନିର୍ମିତ (ସିଦ୍ଧାନ୍ତ କୌମୁଦୀ)
—1. Made of all hides. ୨। ଯେଉଁ ବସ୍ତୁର ସମୁଦାୟ ଅଂଶ ଚର୍ମ ନିର୍ମିତ—2. Of which every part is made of hide.

ସର୍ବଜନ—ସଂ. ବି (କର୍ମଧା)—ସମସ୍ତ ବ୍ୟକ୍ତିମାନେ—
Sarbajana All men.

ସର୍ବଜନ ପ୍ରିୟ—ସଂ ବିଣ. ପୁଂ (କର୍ମଧା ଓ ୬ଷ୍ଠୀ ତତ୍)—ସବୁ
Sarbajana priya ଲୋକଙ୍କର ପ୍ରିୟ—Universally
[ସର୍ବଜନ ପ୍ରିୟା—ସ୍ତ୍ରୀ] loved; dear to all, popular.
[ସର୍ବଜନ ପ୍ରିୟତା—ବି]

ସର୍ବଜନ ବୋଧ୍ୟ—ସଂ ବିଣ (କର୍ମଧା ଓ ୩ୟା ତତ୍)—ଯାହାକୁ ସମସ୍ତେ
Sarbajana bodhya ବୁଝିପାରନ୍ତି—Understood by all; comprehensible by all.

ସର୍ବଜନ ସ୍ୱୀକୃତ—ସଂ. ବିଣ (କର୍ମଧା ଓ ୩ୟା ତତ୍)—ସମସ୍ତଙ୍କ
Sarbajana swikṛuta ଦ୍ୱାରା ସ୍ୱୀକୃତ—Admitted by all.

ସର୍ବଜନାନୁମତ—ସଂ. ବିଣ (କର୍ମଧା ଓ ୩ୟା ତତ୍)—ସମସ୍ତଙ୍କ ଦ୍ୱାରା
Sarba janānumata ଅନୁମୋଦିତ—Approved
(ସର୍ବଜନାନୁମୋଦିତ—ଅନ୍ୟରୂପ) by all; universally approved.

ସର୍ବଜନୀନ—ସଂ ବିଣ (ସିଦ୍ଧାନ୍ତକୌମୁଦୀ) (ସର୍ବଜନ+ଈନ)—୧।
Sarbajanīna ସର୍ବଜନସମ୍ବନ୍ଧୀୟ—1. Relating to all
(ସାର୍ବଜନୀନ, ସାର୍ବଜନିକ—ଅନ୍ୟରୂପ) men; universal.
୨। ସର୍ବଲୋକହିତକର—2. Beneficial to all.
୩। ସର୍ବତ୍ର ପ୍ରସିଦ୍ଧ—3. Universally celebrated; universally known.

ସର୍ବଜୟା—ସଂ ବି—୧। ପୁତ୍ରସୁବର୍ଣ୍ଣୋଲ୍ଲାସ ସ୍ତ୍ରୀକର୍ତ୍ତବ୍ୟ ଦ୍ୱାଦଶମାସ-
Sarbajayā ବ୍ୟାପୀ ବ୍ରତବିଶେଷ—1. A religious vow practised by females for a year.
[ବ୍ର—ଏ ବ୍ରତକୁ ମାର୍ଗଶିର ମାସ ବିଷୁବ ସଂକ୍ରାନ୍ତିଠାରୁ ଆରମ୍ଭକରି ୧ ବର୍ଷ ପର୍ଯ୍ୟନ୍ତ ପାଳିବାକୁ ହୁଏ। ଏହି ବ୍ରତ କଲେ ସ୍ତ୍ରୀମାନଙ୍କର ମନୋରଥ, ସୌଭାଗ୍ୟ, ପୁତ୍ର, ପୌତ୍ର, ଐଶ୍ୱର୍ଯ୍ୟ, ପିତୃଲୋକଙ୍କ ଉଦ୍ଧାର ଓ ଦେହାନ୍ତେ ବିଷ୍ଣୁଲୋକ ପ୍ରାପ୍ତି ହୁଏ। ଏହି ବ୍ରତରେ ପ୍ରଥମେ ନବ ଗ୍ରହ ପୂଜା କରି ହରଗୌରୀଙ୍କୁ ପୂଜା କରିବାକୁ ହୁଏ। ଏହି ବ୍ରତାଚାରିଣୀ ମାର୍ଗଶିରରେ ଶାକ, ପୌଷରେ ଲବଣ, ମାଘରେ ତୈଳ, ଫାଲ୍‌ଗୁନରେ ଗୁଡ଼, ଚୈତ୍ରରେ ପୁଷ୍ପ, ବୈଶାଖରେ ଖଇ, ଜ୍ୟେଷ୍ଠରେ ଧାନ୍ୟତଣ୍ଡୁଳ, ଆଷାଢ଼ରେ ଦଧି, ଶ୍ରାବଣରେ ବସ୍ତ୍ର, ଭାଦ୍ରରେ ବ୍ୟଞ୍ଜନ, ଆଶ୍ୱିନରେ ଘୃତ, କାର୍ତ୍ତିକରେ ଶସ୍ୟ ତ୍ୟାଗ କରିବେ ଏବଂ ବ୍ରତ ପୂର୍ଣ୍ଣ ହେଲେ ବ୍ରାହ୍ମଣଙ୍କୁ ଭୋଜନ ଓ ଦକ୍ଷିଣା ଦେବେ। ] ୨। ହରିଦ୍ରାଦି ବର୍ଗୀୟ ପୁଷ୍ପ କ୍ଷୁପବିଶେଷ; ରଣ୍ଡଫଳର ଗଛ—
2. The Indian shot plant; Canna Indica. (ବ୍ର—ଏହି ଗଛର ମୂଳରେ ଥିବା କନ୍ଦ ଗିଅଛ ପରି ଓ ସେଥିରୁ ଅନେକ ସଣ୍ଢା ବାହାରି ସେ ସ୍ଥାନ ଗୁଳ୍ମମୟ ହୋଇଯାଏ। ଫୁଲର ଶୋଭା ପାଇଁ ଏ ଗଛକୁ ଲୋକେ ବଗିଚାରେ ଲଗାନ୍ତି। ଏଥିର ଫୁଲ ଲୋହିତ ଓ ଫିକା, ହଳଦିଆ, ନାଲି ଓ ଛିଟିଛିଟିକିଆ ଆଦି ଅନେକ ବର୍ଣ୍ଣର ହୁଏ। ଏଥିର ଫଳ କାଙ୍କଡ଼ ପରି ଓ ମଞ୍ଜି କଳାକଳା, ଖଣିଅଙ୍କ ରଙ୍ଗ ପରି।)

ସର୍ବଜୟା ବ୍ରତ—ସଂ. ବି—ସର୍ବଜୟା ୧ (ଦେଖ)
Sarbajayā brata Sarbajayā 1. (See)

ସର୍ବ ଜାଣି—ଦେ. ବିଣ (ସଂ. ସର୍ବଜ୍ଞ)—ସର୍ବଜ୍ଞ (ଦେଖ)—
Sarbajāṇa Sarbajña (See) [ବ୍ର—ଲକ୍ଷ ଦେବ
सर्वजान ମୁହିଁ, ସର୍ବଜାଣ ଭୁଲି, ଦେଉଛି ଡରେ ଅହାର। କବ
सरबज्ञ କଏ କାହିଁ, ଅଧ ବାଟେ ଥାଇଁ, ଅସୁଛନ୍ତି ଆପ ଘର—
ପୀତାମ୍ବର ଦେଖା। ଭୁଆ ଜବତା; ସୁକୁମାର ଶିଟା।]
ଦେ. ବି—ସର୍ବଜ୍ଞ (ଦେଖ)—Sarbajña (See).

ସର୍ବ ଜାଣତ(ତା, ନ୍ତ, ନ୍ତା)—ଦେ. ବିଣ (ସଂ. ସର୍ବଜ୍ଞ)—ସର୍ବଜ୍ଞ
Sarba jāṇata(tā, nta, ntā) (ଦେଖ)—Sarbajña
सर्व जानता सरबज्ञ (See)

ସର୍ବ ଜାୟା—ଦେ. ବି (ବୈଦ୍ୟକ)—ସର୍ବଜୟା ୨ (ଦେଖ)—
Sarba jāyā Sarbajayā 2. (See) [ବ୍ର—ଏହି ଗଛର
सर्वजया ମୂଳ ବାଟି ଲେପନ କଲେ ବଣ ଘାମୁଡ଼ା ବିଷ ନଷ୍ଟ ହୁଏ—
बजंत्री ଦ୍ରବ୍ୟଗୁଣ. କଳ୍ପଦ୍ରୁମ।]

ସର୍ବଜିତ୍—ସଂ. ବିଣ (ସର୍ବ+ଜି ଧାତୁ=ଜୟ କରିବା+କର୍ତ୍ତୃ. କ୍ୱିପ୍)—
Sarbajit ଯେ ସମସ୍ତଙ୍କୁ ଜୟ କରେ—Victorious over
[ସର୍ବଜିତ—ଦେ. ରୂ] all. [ବ୍ର—ଯେଉଁ ଯାଗ ପ୍ରାନ୍ତରେ ହେଲେ ଅଭିଷେକ। ସର୍ବଜିତ ବୋଲାଏ ଯାଗ କଲ୍ଲ ଲେକ—କୃଷ୍ଣସିଂହ. ମହାଭାରତ, ସଭା।] ସଂ. ବି—
୧। କାଳଚକ୍ରର ଏକବିଂଶ ବର୍ଷ—1. The 21st year of the cycle of time. ୨। ମୃତ୍ୟୁ; କାଳ (ହ୍ର. ଶ)—2. Death. ୩। ଯଜ୍ଞବିଶେଷ (ହ୍ର.ଶ)—
3. Name of a vedic sacrifice.

ସର୍ବଜ୍ଞ—ସଂ. ବିଣ. ପୁଂ (ସର୍ବ+ଜ୍ଞା ଧାତୁ+କର୍ତ୍ତୃ. ଅ)—ସକଳଜ୍ଞାତା;
Sarbajña ଯେ ସମସ୍ତ ବିଷୟ ଜାଣେ—All-knowing; [ସର୍ବଜ୍ଞା—ସ୍ତ୍ରୀ] omniscient. ସଂ. ବି—୧। ଶିବ [ଅମର]
ସର୍ବଜ୍ଞତା } ବି —1. Siba. ୨। ବୁଦ୍ଧ [ଅମର]—2. The
ସର୍ବଜ୍ଞତ୍ୱ } Buddha. ୩। ବ୍ରହ୍ମା—3. Brahmā.

୪ । ପରମେଶ୍ୱର—4. God. ଦେ. ବି—ଯେଉଁ ବ୍ୟକ୍ତି
ସବজান ତନ୍ତ୍ରାଦି ବିଦ୍ୟା ସାଧନଦ୍ୱାରା ଗୁପ୍ତ ବିଷୟର ବା ହଜିଥିବା ବା
सरवज्ञ ଅପହୃତ ଦ୍ରବ୍ୟର ତଥ୍ୟ କହି ପାରନ୍ତି—A person who can divine into true facts regarding secret, stolen or lost things.

ସର୍ବଜ୍ଞତା(ତ୍ୱ)—ସଂ. ବି ( ସର୍ବଜ୍ଞ+ଭାବାର୍ଥେ. ତା; ତ୍ୱ )—ସର୍ବଜ୍ଞର
Sarbajnatā(twa) ଭାବ ବା ଧର୍ମ—Omniscience.

ସର୍ବଜ୍ଞା—ସଂ. ବିଣ. ସ୍ତ୍ରୀ ( ସର୍ବଜ୍ଞ+ଆ )—ସର୍ବଜ୍ଞର ସ୍ତ୍ରୀଲିଙ୍ଗ—
Sarbajnā Feminine of Sarbajna. ଦେ. ବି. ସ୍ତ୍ରୀ—
ଦୁର୍ଗା—Goddess Durgā.

ସର୍ବଜ୍ଞାତା(ତ୍ରୀ)—ସଂ. ବିଣ. ପୁଂ ( ସର୍ବ+ଜ୍ଞା ଧାତୁ+କର୍ତ୍ତୃ. ତୃ; ୧ମା
Sarbajnātā(nī) ୧ବ; ସର୍ବଜ୍ଞାନ+ଅସ୍ତି ଅର୍ଥରେ ଇନ୍; ୧ମା.
ସର୍ବଜ୍ଞାନୀ } ସ୍ତ୍ରୀ ୧ବ )—ସର୍ବଜ୍ଞ ( ଦେଖ )—
ସର୍ବଜ୍ଞାନିନୀ } Sarbajna ( See )

ସର୍ବଜ୍ୟା(ହ୍ୱା)ନି—ସଂ. ବି—ସର୍ବନାଶ; ସବୁ ବସ୍ତୁର ନାଶ (ହି. ଶ)—
Sarbajyā(hā)ni Loss of all things.

ସର୍ବତ୍—ବୈଦେ. ବି (ଫା)—ପଣା; ମିଠା ମିଶ୍ରିତ ପାନୀୟ—
Sarbat Sweetened drink; syrup
সর্বত सरबत

ସର୍ବତଃ—ସଂ. ଅ ( ସର୍ବ+୨ମୀ ଓ ୬ମୀ ବିଭକ୍ତି ସ୍ଥାନରେ ତସ୍ )—
Sarbatah ୧ । ଚାରିଆଡ଼େ; ସବୁଆଡ଼େ; ସମନ୍ତାତ୍—1. On all sides. ୨ । ସବୁଆଡ଼ୁ—2. From all sides. ୩ । ସବୁପ୍ରକାରରେ—3. In all ways. ୪ । ସବୁ ବିଷୟରେ—4. In all matters. ୫ । ସମ୍ପୂର୍ଣ୍ଣ ଭାବେ—5. Wholly; totally; completely; fully.

ସର୍ବତଃ ଶୁଭା—ସଂ. ବି. ସ୍ତ୍ରୀ. ( ବୈଦ୍ୟକ )—ପ୍ରିୟଙ୍ଗୁ ବୃକ୍ଷ (ଦେଖ)
Sarbatah subhā Priyangu bruksha ( See )

ସର୍ବ ତନ୍ତ୍ର—ସଂ. ବିଣ (ବହୁବ୍ରୀହି)—୧ । (ପୁଂ) ସକଳ ତନ୍ତ୍ରାଧ୍ୟେତା—
Sarba tantra 1. Versed or learned on all systems. ୨ । ଯେଉଁ ବିଷୟ ସ୍ୱୟଂ ପ୍ରସିଦ୍ଧ, ଅର୍ଥାତ୍ ଯାହା ପାଇଁ ଅନ୍ୟ ପ୍ରମାଣ ଆବଶ୍ୟକ ହୁଏ ନାହିଁ—2. Self-evident. ୩ । ସର୍ବ ଶାସ୍ତ୍ର ସମ୍ମତ ( ହି. ଶ )—3. Approved by all religious books. ସଂ. ବି—୧ । (୬ଷ୍ଠୀ ତତ୍) ସାଧାରଣ ତନ୍ତ୍ର ଶାସନ—1. Republic; democracy. ୨ । ( କର୍ମଧା ) ସବୁପ୍ରକାର ତନ୍ତ୍ର ଶାସ୍ତ୍ର—2. All Tantra-treatises.

ସର୍ବ ତାପକ(ନ)—ସଂ.ବିଣ (ସର୍ବ+ତପ୍ ଧାତୁ+କର୍ତ୍ତୃ.ଅକ,+ଅନ)—
Sarba tāpaka(na) ୧ । ଯେ ସମସ୍ତଙ୍କୁ ତାପିତ କରେ—1. Heating all. ୨ । ଯେ ସମସ୍ତଙ୍କୁ ଦୁଃଖ ଦିଏ—2. Oppressing or affecting all. ସଂ. ବି—୧ । କାମଦେବ—1. Cupid. ୨ । ସୂର୍ଯ୍ୟ (ହି. ଶ)—2. The sun.

ସର୍ବତି—ବୈଦେ. ବିଣ ( ଫା )—ପଣା ପରି ମିଠା—Sweet as
Sarbati syrup. [ ଯଥା—ସର୍ବତି କମଳା; ସର୍ବତି ଲେମ୍ବୁ । ]
সর্বতি सरबतके जैसा

ସର୍ବ ତିକ୍ତା—ସଂ. ବି—୧ । କାକମାଚୀ; ଲୁଣକୁଣିଆ ଶାକ ଗୁଳ୍ମ (ସର୍ବ-
Sarba tiktā କର୍ଣ୍ଣ )—1. Nightshade; Solanum Nigrum. ୨ । ଭଣ୍ଟାକୀ ( ହି. ଶ) ); ବାଇଗଣ—
2. Brinjal; Solanum Melongana.

ସର୍ବତେ—ଦେ. ଅ ( ସଂ. ସର୍ବତଃ )—୧ । ସବୁ ପ୍ରକାରେ—1. In
Sarbate all ways. ୨ । ସବୁଠାରେ; ସମସ୍ତଙ୍କ ବିଷୟରେ—
সব বকমে, সবাতে 2. In all matters. [ ଯଥା—ତାଙ୍କ
सबतरहसे, सबमें ଲାଭ ହେବାର ସର୍ବତେ ଗନ୍ଧ ଭାବ । ତାହାର
ଠାକରେ ସବୁ ଲୋକେ ଅବେଷାର—ପ୍ରାଚୀ. ରହସ୍ୟ ମଞ୍ଜରୀ । ]

ସର୍ବତୋବୃତ୍ତ—ସଂ.ବିଣ (ସର୍ବତଃ+ବୃତ୍ତ)—ସର୍ବତଃ ବ୍ୟାପକ (ହି.ଶ)—
Sarbatobrutta All-pervading.

ସର୍ବତୋଭଦ୍ର—ସଂ. ବିଣ ( ସର୍ବତଃ=ସବୁଆଡ଼େ+ଭଦ୍ର=ମଙ୍ଗଳ
Sarbatobhadra ବା ଶୋଭାଯୁକ୍ତ )—୧ । ସର୍ବତଃ ମଙ୍ଗଳ-
ଦାୟକ—1. Auspicious in all ways. ୨ । ( ପୁଂ ) ଯାହାର ମୁଣ୍ଡ, ମୁଛ, ଦାଢ଼ି, ସବୁ କେଶ ମୁଣ୍ଡିତ ହୋଇଅଛି ( ହି. ଶ )—2. Wholly shaven. ସଂ. ବି—୧ । ଦେବାଳୟବିଶେଷ ( ଅମର )—1. A sort of temple having four varandas and four doors. [ ବି—ଏ ପ୍ରକାର ଦେବାଳୟର ଚାରିଆଡ଼େ ପିଣ୍ଡା ଓ ଚାରିଆଡ଼େ ଦ୍ୱାର ଥାଏ ।] ୨ । ରାଜାଙ୍କ ବ୍ୟବହାରାର୍ଥ ନିର୍ମିତ ଗୃହ ବିଶେଷ—2. A kind royal room. ୩ । ବିଷ୍ଣୁ ରଥ (ଶବ୍ଦରତ୍ନାବଳୀ)—3. Name of the car of Bishnu. ୪ । ବ୍ୟୂହ ବିଶେଷ (ଅମରଟୀକା)-4. A kind of battle-array. ୫ । ସର୍ବତୋଭଦ୍ର ମଣ୍ଡଳ (ଦେଖ)—5. Sarbatobhadra mandala. (See) ୬ । ନିମ୍ବ ଗଛ (ଅମର)—6. The Neem tree. ୭ । ବାଉଁଶ (ଶବ୍ଦଚନ୍ଦ୍ରିକା)—7. Bamboo. ୮ । ଯାତ୍ରା, ଦାନ, ବିବାହାଦି ସମୟରେ ଶୁଭାଶୁଭ ଜ୍ଞାପକ ଜ୍ୟୋତିଷୋକ୍ତ ଚକ୍ର ବିଶେଷ (ଜ୍ୟୋତିଷତତ୍ତ୍ୱ)—8. An astronomical circle. [ବି—ଏହା ଚତୁରସ୍ର ଓ ଏଥିରେ ୮୧ (୯×୯) ଟି କୋଷ୍ଠଯୁକ୍ତ ପ୍ରକୋଷ୍ଠ ଥାଏ ।] ୯। ଚିତ୍ର ଅକ୍ଷର ବିନ୍ୟାସଯୁକ୍ତ ଚିତ୍ରକାବ୍ୟ ବିଶେଷ—9. A sort of picturesque composition of Slokas. [ଯଥା—ମାଘ କବିଙ୍କ କାବ୍ୟର ୧୯ଶ ସର୍ଗରେ ଶ୍ଳୋକ—

ସକାର ନାନାରକାସ
କାୟସାଦ ଦସାୟକା
ରସାହବା ବାହସାର
ନାଦ ବାଦ ଦବାଦନା ।

| | | | | | | | |
|---|---|---|---|---|---|---|---|
| ସ | କା | ର | ନା | ନା | ର | କା | ସ |
| କା | ୟ | ସା | ଦ | ଦ | ସା | ୟ | କା |
| ର | ସା | ହ | ବା | ବା | ହ | ସା | ର |
| ନା | ଦ | ବା | ଦ | ଦ | ବା | ଦ | ନା |

ଏହି ଶ୍ଳୋକକୁ ଆଦ୍ୟରୁ ଶେଷକୁ ଓ ଶେଷରୁ ଆଦ୍ୟକୁ, ପୁଣି ବାମ ମୁଣ୍ଡରେ ଉପରୁ ତଳକୁ ଓ ଦକ୍ଷିଣ ମୁଣ୍ଡରେ ତଳୁ ଉପରକୁ ପଢ଼ିଗଲେ ଏକାପ୍ରକାର ପଢ଼ାଯାଏ ।

ଓଡ଼ିଆ କାବ୍ୟମାନଙ୍କରେ ମଧ୍ୟ ଏପରି ଦୃଷ୍ଟାନ୍ତ ବିରଳ ନୁହେ । ଯଥା—

| | | | | | | | |
|---|---|---|---|---|---|---|---|
| ବ | ର | ହେ | ବ | ବ | ହେ | ର | ବ |
| ର | ସ | ବ | ହେ | ହେ | ବ | ସ | ର |
| ହେ | ବ | ର | ସ | ସ | ର | ବ | ହେ |
| ବ | ହେ | ସ | ଦା | ଦା | ସ | ହେ | ବ |

ଗୋଲୋକ. ଇନ୍ଦୁରେଖା ।] ୧୦ । ଏକ ପ୍ରକାର ପ୍ରହେଳିକା (ହ. ଶ)—10. A class of conondrum. [ଦ୍ର—ଏଥିରେ ଶବ୍ଦ ମଧ୍ୟସ୍ଥ ବର୍ଣ୍ଣାକ୍ଷରମାନଙ୍କର ମଧ୍ୟ ଅଲଗା ଅଲଗା ଅର୍ଥ ଗୃହୀତ କରାଯାଏ—ହ. ଶ ] ୧୧ । ଗନ୍ଧଦ୍ରବ୍ୟ ବିଶେଷ (ହ.ଶ)—11. Name of a kind of scent. ୧୨ । ଯେଉଁ ଗୃହର ଚାରିପାଖେ ପରିକ୍ରମା କରିବାକୁ ସ୍ଥାନ ଥାଏ (ହ. ଶ)—12. A house which has a broad path on all sides. ୧୩ । ହଠଯୋଗରେ ଆସନ ଓ ମୁଦ୍ରା ବିଶେଷ (ହ. ଶ)—13. Name of a posture of sitting and pose of the fingers during Haṭha Joga exercise.

**ସର୍ବତୋଭଦ୍ରକଚ୍ଛେଦ**—ସଂ. ବି (ସନ୍ଧିଦ୍ୱାରଚ୍ଛେ=ଛେ)—ଭଗନ୍ଦର ରୋଗର Sarbatobhadrakachchheda ଚିକିତ୍ସା ପାଇଁ କରାଯିବା ଚତୁଷ୍କୋଣ ଅସ୍ତ୍ରକ୍ଷତ (ସୁଶ୍ରୁତ)—A square cut made for theoperation of fistula.

**ସର୍ବତୋଭଦ୍ର ମଣ୍ଡଳ**—ସଂ. ବି—ଶାରଦୀୟ ଦୁର୍ଗାପୂଜା, ବ୍ରତ, ବୃଷୋ- Sarbatobhadra maṇḍaḷa ତ୍ସର୍ଗ ଓ ଗୃହ, ମନ୍ଦିର, ଜଳାଶୟାଦି ପ୍ରତିଷ୍ଠା ଉପଲକ୍ଷରେ ପଞ୍ଚବର୍ଣ୍ଣ ଚୂର୍ଣ୍ଣ ଦ୍ୱାରା ଭୂପୃଷ୍ଠରେ ଅଙ୍କିତ କିମ୍ବା ବସ୍ତ୍ରରେ ରଞ୍ଜିତ ପଦ୍ମଯୁକ୍ତ ଚତୁଷ୍କୋଣମଣ୍ଡଳ ବିଶେଷ—A square figure drawn on the ground with 5 coloured powders or painted on a piece of cloth on the 8th day of the bright lunar fortnight of Āświna for the worship of Durgā or for some other religious rites. [ଦ୍ର—ଏହା ଚତୁରସ୍ର, ଚତୁଃକୋଷ୍ଠ ଓ କୋଣସ୍ଥ ନବଚତୁଷ୍କଯୁକ୍ତ ଅଟେ । ]

**ସର୍ବତୋଭଦ୍ରା**—ସଂ. ବି—୧ । ଗମ୍ଭାରି ଗଛ [ ମେଦିନୀ ] (ଦେଖ)— Sarbatobhadrā 1. A timber tree; Gambhari tree; Gmelina Arborica ( ସର୍ବତୋଭଦ୍ରିକା—ଅନ୍ୟରୂପ ) ୨ । ନଟଯୋଷିତ୍ [ମେଦିନୀ]; ନଟୀ— 2. A dancing girl; an actress.

**ସର୍ବତୋଭାବରେ**—ଦେ. କ୍ରି. ବିଣ—୧ । ସବୁପ୍ରକାରେ—1. In all Sarbatobhābare ways. ୨ । ସମ୍ପୂର୍ଣ୍ଣରୂପେ— [ସର୍ବତୋଭାବେ—ଅନ୍ୟରୂପ] 2. Fully.
ସର୍ବতোভাবে **सवतोभावसे**

**ସର୍ବତୋମୁଖ**—ସଂ ବିଣ. ପୁଂ [ସର୍ବତଃ=ସବୁଆଡ଼େ+ମୁଖ ଯାହାର Sarbatomukha ବହୁବ୍ରୀହି]—୧ । ସର୍ବଦିଗଭିମୁଖୀ; [ ସର୍ବତୋମୁଖୀ—ସ୍ତ୍ରୀ ] ସବୁଆଡ଼କୁ ମୁହଁ କରିଥିବା— 1. Facing all sides. ୨ । ସର୍ବଦିଗବର୍ତ୍ତୀ— 2. Situate in all directions. ୩ । ସର୍ବତ୍ର ସ୍ଥିତ—3. Omnipresent. ୪ । ସର୍ବତ୍ର ବ୍ୟାପକ—4. All-pervading ସଂ. ବି— ୧ । ଆକାଶ [ମେଦିନୀ]—1. The sky. ୨ । ସ୍ୱର୍ଗ (ଶବ୍ଦମାଳା)—2. Heaven. ୩ । ଜଳ [ଅମର]- 3. Water. ୪ । ଶିବ (ମେଦିନୀ)—4. God Śiba. ୫ । [ ଚତୁର୍ମୁଖ] ବ୍ରହ୍ମା [ ମେଦିନୀ ]— 5. The Creator Brahmā. ୬ । ଆତ୍ମା (ମେଦିନୀ)—6. Soul. ୭ । ଅଗ୍ନି—7. Fire. ୮ । ବ୍ରାହ୍ମଣ (ଶବ୍ଦରତ୍ନାବଳୀ)—8. A Brāhmaṇa. ୯ । ବ୍ୟୂହରଚନା ବିଶେଷ ( ହ. ଶ. )— 9. A kind of battle-array. [ ଦ୍ର— ଏଥିରେ ଚାରିଆଡ଼କୁ ବ୍ୟୂହସ୍ଥ ସୈନ୍ୟମାନେ ମୁହଁ କରିଥାଆନ୍ତି ।

**ସର୍ବତୋମୁଖୀ ପ୍ରତିଭା**—ସଂ. ବି ( ଆଧୁନିକ )—ଯେଉଁ ପ୍ରତିଭା ସବୁ Sarbatomukhī pratibhā ଦିଗରେ କାର୍ଯ୍ୟ କରେ— All-comprehensive or all-round genius or talents.

**ସର୍ବତ୍ୟାଗ**—ସଂ. ବି (୬ଷ୍ଠୀ ତତ୍)—ସବୁ ବିଷୟର ବର୍ଜନ— Sarba tyāga Renunciation of all things.

ସର୍ବତ୍ୟାଗୀ—ସଂ ବିଣ, ପୁଂ (ସର୍ବ+ତ୍ୟାଗ+ଇନ୍, ୧ମା ୧ବ)-
Sarba tyāgī ଯେଉଁ ବ୍ୟକ୍ତି ଯାବତୀୟ ବିଷୟଭୋଗ ବର୍ଜନ
(ସର୍ବତ୍ୟାଗିନୀ—ସ୍ତ୍ରୀ) କରିଥାଏ—Renouncing the enjoyment of all worldly affairs.

ସର୍ବତ୍ର—ସଂ. ଅ (ସର୍ବ+୭ମୀ ବିଭକ୍ତିରେ ତ୍ର)—୧ । ସବୁଠାରେ; ସବୁ
Sarbatra ସ୍ଥାନରେ; ପ୍ରତି ସ୍ଥାନରେ—1. Everywhere; at all places. ୨ । ସବୁ ଦେଶରେ—2. In all countries. ୩ । ସବୁ କାଳରେ—3. At all times. ୪ । ସବୁଆଡ଼େ—4. On all sides.

ସର୍ବତ୍ରଗ—ସଂ. ବିଣ ପୁଂ (ସର୍ବତ୍ର+ଗମ୍ ଧାତୁ+କର୍ତ୍ତୃ ଅ)—
Sarbatraga ୧ । ସର୍ବଗ; ଯେ ସବୁଠାକୁ ଯାଏ—
[ସର୍ବତ୍ରଗା—ସ୍ତ୍ରୀ] 1. Going everywhere. ୨ । ଯାହାର ସବୁଠାକୁ ଅବାଧ ଗତି—2. One who is admitted everywhere. ସଂ. ବି. ପୁଂ—୧ । ବାୟୁ—1. Wind; air. ୨ । ମନୁଙ୍କର ଏକ ପୁତ୍ର (ଭା. ଶ)—2. The name of a son of King Manu. ୩ । ଭୀମସେନଙ୍କର ଏକ ପୁତ୍ର (ଭା.ଶ)—3. One of the sons of King Bhsenamaī.

ସର୍ବତ୍ରଗାମୀ—ସଂ. ବିଣ. ପୁଂ (ସର୍ବତ୍ର+ଗମ୍ ଧାତୁ+କର୍ତ୍ତୃ ଇନ୍; ୧ମା; ୧ବ)—୧ । ସର୍ବତ୍ରଗ (ଦେଖ)—
Sarbatragāmī
(ସର୍ବତ୍ରଗାମିନୀ—ସ୍ତ୍ରୀ) 1. Sarbatraga (See) ସଂ. ବି. ୧ । ବାୟୁ—1. The air. ୨ । ପରମାତ୍ମା—2. The Divine Essence.

ସର୍ବତ୍ରୈବ—ସଂ. ଅ (ସର୍ବତ୍ର+ଏବ)—ସବୁଠାରେହିଁ—
Sarbatraiba Certainly everywhere.

ସର୍ବଥା—ସଂ. ଅ (ସର୍ବ+ପ୍ରକାରାର୍ଥେ ଥା)—୧ । ସବୁ ପ୍ରକାରେ—
Sarbathā 1. In all ways. ୨ । ଅତିଶୟ; ଅତ୍ୟନ୍ତ—2. Much; very much. ୩ । (ପ୍ରତିଜ୍ଞାର୍ଥକ) ହଁ—3 (Denoting promise) Yes! I promise. ୪ । (ହେତ୍ୱର୍ଥକ)—4. (Denoting cause) Yes! ୫ । (ସ୍ୱୀକାରାର୍ଥକ)—5. (Denoting admission) Yes! I admit. ୬ । (ନିଶ୍ଚୟାର୍ଥକ) ନିଶ୍ଚେ—6. (Denoting certainty) Certainly. [ଦ୍ର—କାଳି ପ୍ରଭୃତେ ତୋର କଥା ବଂଶକୁ କହିବୁ ସର୍ବଥା ।
—ଭୂପତି ପ୍ରେମପଞ୍ଚାମୃତ]

ସର୍ବଦ—ସଂ. ବିଣ ଓ ବି. ପୁଂ (ସର୍ବ+ଦା ଧାତୁ+କର୍ତ୍ତୃ ଅ)—ସବୁ
Sarbada ଦାନକାରୀ—Bestower of all things.
(ସର୍ବଦାତା—ଅନ୍ୟରୂପ) (ସର୍ବଦା, ସର୍ବଦାତ୍ରୀ—ସ୍ତ୍ରୀ)

ସର୍ବଦମନ—ସଂ. ବିଣ ଓ ବି. ପୁଂ (ସର୍ବ+ଦମି ଧାତୁ=ଦମନ କରିବା
Sarbadamana +କର୍ତ୍ତୃ. ଅନ)—୧ । ଯେ ସମସ୍ତଙ୍କୁ
[ସର୍ବଦମନା—ସ୍ତ୍ରୀ] ଦମନ କରେ—1. Controlling or restraining all. ୨ । ସମସ୍ତଙ୍କର ଶାସକ—2. Ruler of all.
ସଂ. ବି. ପୁଂ—ରାଜା ଦୁଷ୍ମନ୍ତଙ୍କ ଔରସରେ ଶକୁନ୍ତଳାଙ୍କ ଗର୍ଭଜାତ ପୁତ୍ର ରାଜା ଭରତଙ୍କ ଶିଶୁକାଳୀନ ନାମ—The name given during his infancy to King Bharata, the son of Raja Dushmanta. [ଦ୍ର—ରାଜା ଦୁଷ୍ମନ୍ତ ସ୍ୱର୍ଗରୁ ଫେରି ଜମ୍ପୁରୁଷ ପର୍ବତରେ କଶ୍ୟପ ମୁନିଙ୍କ ଆଶ୍ରମରେ ପହଞ୍ଚିବା ସମୟରେ ସେଠାରେ ଦୁଷ୍ମନ୍ତଙ୍କ ଦ୍ୱାରା ପୂର୍ବରୁ ପ୍ରତ୍ୟାଖ୍ୟାତା ଶକୁନ୍ତଳାଙ୍କ ଗର୍ଭରେ ଜାତ ଔରସ ଶିଶୁ କୁମାରକୁ ଦେଖିଲେ । ଉକ୍ତ କୁମାର ଯେଠାରେ ଗୋଟିଏ ସିଂହୀର ଉପସ୍ଥିତରେ ତା ଶାବକକୁ ଧରି ତା ପାଟିକୁ ମେଲି କରି ତା ଦାନ୍ତ ଗଣିବାକୁ ଚେଷ୍ଟା କରୁଥିଲା । ତତ୍ପରେ ଦୁଷ୍ମନ୍ତ ନିଜ ପୁତ୍ରକୁ ଚିହ୍ନିଲେ ଓ ଶକୁନ୍ତଳାଙ୍କ ସଙ୍ଗେ ପୁନର୍ମିଳିତ ହେଲେ । ସେହି ମୁନି ଆଶ୍ରମରେ ଦୁଷ୍ମନ୍ତ-କୁମାର ସିଂହ ଆଦି ଦୁଷ୍ଟ ଜୀବଙ୍କୁ ଦମନ କରୁଥିବା ଦେଖି ମୁନିମାନେ କୁମାରଙ୍କୁ ସର୍ବଦମନ ନାମ ଦେଇଥିଲେ । ପରେ ଏହି କୁମାର ଭରତ ନାମରେ ଖ୍ୟାତ ହେଲେ ।]

ସର୍ବ ଦର୍ଶନ ସଂଗ୍ରହ—ସଂ. ବି—ମାଧବାଚାର୍ଯ୍ୟଙ୍କ କୃତ ସଂସ୍କୃତ ଗ୍ରନ୍ଥ-
Sarba darsana samgraha ବିଶେଷ—The title of a Sanskrit work by Mādhabāchājya, which is a compendium of all the schools of Hindu philosophy. [ଦ୍ର—ଏଥିରେ ସବୁ ପ୍ରକାରର ଦର୍ଶନ ଶାସ୍ତ୍ର ଆଲୋଚିତ ହୋଇଅଛି ।]

ସର୍ବ ଦର୍ଶୀ—ସଂ. ବିଣ. ପୁଂ (ସର୍ବ+ଦୃଶ୍ ଧାତୁ=ଦେଖିବା+କର୍ତ୍ତୃ.
Sarba darsī ଇନ୍; ୧ମା. ୧ବ)—୧ । ଯେ ସବୁ ବିଷୟ
(ସର୍ବଦ୍ରଷ୍ଟା—ଅନ୍ୟରୂପ) ଦେଖି ପାରେ; ସର୍ବଦ୍ରଷ୍ଟା—1. Omniscient; seeing everything; all-seeing. ୨ । ସର୍ବଜ୍ଞ—2. All-knowing.
(ସର୍ବ ଦର୍ଶିନୀ, ସର୍ବଦ୍ରଷ୍ଟ୍ରୀ—ସ୍ତ୍ରୀ)
ସଂ. ବି. ପୁଂ—୧ । ଈଶ୍ୱର—1 God. ୨ । ବୁଦ୍ଧଦେବ (ଶବ୍ଦ ରତ୍ନାବଳୀ)—2. The Buddha.

ସର୍ବଦଳ ସମ୍ମି(ମ୍ମେ)ଳନୀ—ସଂ. ବି (ଅଧୁନିକ ବ୍ୟବହାର ଇଂରେଜୀରୁ
Sarbadala sammi(mme)lanī ଅନୂଦିତ)—ସର୍ବବିଧ ମତବାଦୀଙ୍କର ଏକତ୍ର ମିଳନ ବା ସଭା—All parties conference.

ସର୍ବଦ୍ୱାରିକ—ସଂ. ବିଣ ଓ ବି. ପୁଂ (ସର୍ବଦ୍ୱାର+ଇକ)—ଦିଗ୍‌ବିଜୟୀ—
Sarbadwārika Conquerer of kingdoms in all the points of the compass.

ସର୍ବଦା—ସଂ. ଅ (ସର୍ବ+କାଳାର୍ଥେ ୭ମୀ ବିଭକ୍ତିରେ ଦା)—୧ । ସବୁ
Sarbadā ବେଳେ—1. Always. ୨ । ସବୁ କାଳରେ—2. At all times. (ସଂ. ବିଣ. ସ୍ତ୍ରୀ)—ସର୍ବଦର ସ୍ତ୍ରୀଲିଙ୍ଗ—Feminine of sarbada.

**ସର୍ବ ଦୁଃଖ କର**—ସ. ଵଣ—ସର୍ବ ଦୁଃଖ ପ୍ରଦ ( ଦେଖ )
Sarba duḥkha kara Sarba duḥkha prada (See)
(ସର୍ବଦୁଃଖକର—କ୍ଷପରଗ)

**ସର୍ବ ଦୁଃଖ କ୍ଷୟ**—ସ. ବ ( ୬ଷ୍ଠୀ ତତ୍ ) —ସମସ୍ତ ଦୁଃଖର ନାଶ—
Sarba duḥkha kshaya The end or extinction of all sorrow or trouble.

**ସର୍ବ ଦୁଃଖ ପ୍ରଦ**—ସ. ଵଣ. ପୁଂ—ଯେ ସବୁ ଦୁଃଖ ଦଏ—Giving
Sarba duhkha prada all sorts of trouble;
[ସର୍ବ ଦୁଃଖଦ—ଅନ୍ୟରୂପ] productive of much trouble.
[ସର୍ବ ଦୁଃଖ ପ୍ରଦା, ସର୍ବ ଦୁଃଖଦା—ସ୍ତ୍ରୀ]

**ସର୍ବ ଦେବ**—ସ. ବ—ସବୁ ଦେବତାମାନେ—
Sarba deba All the Deities.

**ସର୍ବ ଦେବ ନମସ୍କାର**—ସ. ବ—ସବୁ ଦେବତାଙ୍କୁ ପ୍ରଣାମ—Obei-
Sarba deba namaskāra sance made to all the Deities.

**ସର୍ବ ଦେବ ମୁଖ**—ସ. ବ ( ୬ଷ୍ଠୀ ତତ୍; ଅଗ୍ନିରେ ଆହୁତି ଦେଲେ ସବୁ
Sarba deba mukha ଦେବତା ପାଆନ୍ତି )—ଅଗ୍ନି (କ୍ରିଡାଧର)
—Fire.

**ସର୍ବ ଦେଶମୟ**—ସ. ଵଣ—ସକଳ ଦେଶ ସମ୍ବନ୍ଧୀୟ; ସକଳ ଦେଶୀୟ
Sarba deśamaya —Relating to all countries.
[ ସର୍ବ ଦେଶୀୟ—ଅନ୍ୟରୂପ ]

**ସର୍ବ ଦ୍ରଷ୍ଟା**—ସ. ଵଣ. ଓ ବ. ପୁଂ (ସର୍ବ+ଦୃଶ୍ ଧାତୁ+କର୍ତ୍ତୃ.ତୃ; ୧ମା.
Sarba drashṭā ୧ବ )—ସର୍ବଦର୍ଶୀ ( ଦେଖ )
[ସର୍ବଦ୍ରଷ୍ଟ୍ରୀ—ସ୍ତ୍ରୀ] Sarbadarśī ( See )

**ସର୍ବ ଧର୍ମ**—ସ. ବ—ସବୁ ପ୍ରକାରର ଧର୍ମ—
Sarba dharma All sorts of religion.

**ସର୍ବ ଧର୍ମ ସମନ୍ୱୟ**—ସ. ବ ( ୬ଷ୍ଠୀ ତତ୍. )—ବିଭିନ୍ନ ଧର୍ମମତମାନ
Sarba dharm samanwaya ଅଲୋଚନା କରି ତନ୍ମଧ୍ୟରେ ଲକ୍ଷିତ ମତଭେଦମାନ ଖଣ୍ଡନପୂର୍ବକ ସବୁ ଧର୍ମର ଏକମତତ୍ୱର ପ୍ରତିପାଦନ—Reconciliation of the apparent differences amongst all religions and establishment of their unity.

**ସର୍ବ ଧାତୁକ**—ସ. ବ ( ସର୍ବ ଧାତୁ+କ )—ତମ୍ବା ( ହ୍ର. ଶ )—
Sarba dhātuka Copper.

**ସର୍ବ ଧାରି(ରୀ)**—ସଂ. ବ—କାଳଚକ୍ରର ଦ୍ୱାବିଂଶ ବର୍ଷ—The 22nd
Sarba dhāri(ri) year of the cycle of time.

**ସର୍ବ ଧୁରା ବହ**—ସଂ. ଵଣ—( ସର୍ବ+ଧୁରା=ଭାର+ବହ୍ ଧାତୁ+
Sarba dhurā baha କର୍ତ୍ତୃ. ଅ )—ଯେ ସବୁ ପ୍ରକାରର ଭାର
[ସର୍ବ ଧୁରୀଣ—ଅନ୍ୟରୂପ] ବହେ—Carrying all sorts of loads. ସ. ବ—ଯେଉଁ ପଶୁ ( ଘୋଡ଼ା, ବଳଦ ଆଦ ) ଗାଡ଼ି, ରଥ, ଲଙ୍ଗଳ ପ୍ରଭୃତି ଟାଣେ ଏବଂ ଯେ ମନୁଷ୍ୟ ଓ ବୋଝ ଆଦ ବୁହେ—Beasts wich are accustomed to every sort of load or daftr.

**ସର୍ବନା(ନାଁ)**—ପ୍ରାଦେ. ( ସମ୍ବଲପୁର ) ବ ( ସଂ. ଶ୍ରବଣା; ଏହା ଶ୍ରାବଣ
Sarbanā(nāṅ) ମାସରେ ବା ବର୍ଷା ଋତୁରେ ଜନ୍ମେ ) —ବର୍ଷା ଋତୁରେ ଧାନକ୍ଷେତରେ ଜନ୍ମୁ ଜନ୍ମିବା ଅନାମନା ବା ବାଉମିଶା ଘଷ—A medley of weeds growing in the paddy fields during the rains.
[ ଢ଼—ଖେତ ନଶାଏ ସର୍ବନା । ଗାଁ ନଶାଏ କାଁମନା— ଢଗ । ]

**ସର୍ବନାଭ**—ସ. ବ ( ବହୁବ୍ରୀହି; ସର୍ବ+ନାଭି+ଅ )—ଏକପ୍ରକାର
Sarbanābha ଅସ୍ତ୍ର ( ହ୍ର. ଶ )—A kind of weapon of offence.

**ସର୍ବ ନାମ**—ସଂ. ବ ( ସର୍ବ+ନାମନ୍; ୬ଷ୍ଠୀ ତତ୍ )—୧ । ସମସ୍ତଙ୍କର
Sarba nāma ନାମ—1. Name of all. ୨ । (ବହୁବ୍ରୀହି) ( ବ୍ୟାକରଣ ) ଯେଉଁ ସବୁ ଶବ୍ଦ ( ଅମ୍ଭେ, ମୁଁ, ତୁମ୍ଭେ ତୁ, ଏ, ସେ, ତାହା, ଯେ, ସର୍ବ, ସବୁ ଇତ୍ୟାଦ ) ବିଶେଷ୍ୟ ପଦ ପରିବର୍ତ୍ତିରେ ବ୍ୟବହୃତ ହୁଏ—2. ( grammar ) A pronoun [ଦ୍ର—ସଂସ୍କୃତ ବ୍ୟାକରଣରେ ସର୍ବନାମକୁ ସାଧାରଣତଃ ୫ ଭାଗରେ ବିଭକ୍ତ କରାଯାଇଅଛି—୧ । ସର୍ବାଦ—ଯଥା; ସର୍ବ, ବିଶ୍ୱ, ଉଭୟ, ଏକ, ଏକତର;୨ । ଅନ୍ୟାଦ—ଯଥା; ଅନ୍ୟ, ଅନ୍ୟତର, ଇତର, କତର, କତମ, ଏକତମ, ୩ । ପୂର୍ବାଦ—ଯଥା; ପୂର୍ବ, ପର, ଅପର, ଅବର, ଅଧର, ଦକ୍ଷିଣ ଓ ସ୍ୱ; ୪ । ଯଦାଦ—ଯଥା;ଯଦ୍, ତଦ୍,ଏତଦ୍, ତ୍ୟଦ୍ ଓ କିମ୍; ୫ । ଇଦମାଦ—ଯଥା; ଇଦମ୍, ଅଦସ୍, ଯୁଷ୍ମଦ୍, ଅସ୍ମଦ୍ । ଅସ୍ତ୍ର ଓ ଅର୍ଦ୍ଧୀୟ ଅର୍ଥରେ ସ୍ୱ ଶବ୍ଦ ସର୍ବନାମ ।

ସଂସ୍କୃତରେ ସର୍ବନାମ ଶବ୍ଦମାନଙ୍କର ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ ଓ କ୍ଲୀବଲିଙ୍ଗରେ ଭିନ୍ନ ଭିନ୍ନ ଆକାର ଅଛି; କିନ୍ତୁ ଓଡ଼ିଆରେ ନାହିଁ ।

ସଂସ୍କୃତରେ କଥା କହିବା ବ୍ୟକ୍ତି ନିଜ ପ୍ରତି ଯେଉଁ ସର୍ବନାମ ଶବ୍ଦର ବ୍ୟବହାର କରନ୍ତି ତାହାର ଉତ୍ତମ ପୁରୁଷ ( ଯଥା—ମୁଁ, ଅମେ, ଆମ୍ଭେ );

ଯାହାଙ୍କୁ ସମ୍ବୋଧନ କରୁଥାଅନ୍ତି ତାଙ୍କ ପ୍ରତି ମଧ୍ୟମ ପୁରୁଷର ସର୍ବନାମ ପ୍ରଯୁକ୍ତ ହୁଏ ( ଯଥା—ତୁ, ତୁମ୍ଭେ, ଆପଣ );

ଏହା ଛଡ଼ା ଅନ୍ୟ ବ୍ୟକ୍ତି ବା ବସ୍ତୁଙ୍କ ପ୍ରତି ତୃତୀୟ ବା ପ୍ରଥମ ପୁରୁଷର ସର୍ବନାମ ପ୍ରଯୁକ୍ତ ହୁଏ ।

କିନ୍ତୁ କେତେକ ଓଡ଼ିଆ ବ୍ୟାକରଣକାର ଇଂରାଜୀର ଅନୁସରଣରେ ସଂସ୍କୃତର ଉତ୍ତମ ପୁରୁଷକୁ ପ୍ରଥମ ପୁରୁଷ, ମଧ୍ୟମ ପୁରୁଷକୁ ଦ୍ୱିତୀୟ ପୁରୁଷ ଓ ତୃତୀୟ ବା ପ୍ରଥମ ପୁରୁଷକୁ ତୃତୀୟ ପୁରୁଷ ବୋଲି ଉଲ୍ଲେଖ କରିଅଛନ୍ତି । ]

**ସର୍ବ ନାଶ**—ସଂ. ବ ( ୬ଷ୍ଠୀ ତତ୍ )—୧ । ସବୁ ପଦାର୍ଥର ବା ବସ୍ତୁର
Sarba nāsa ବା ବିଷୟର ଧ୍ୱଂସ—1. Destruction of all things. ୨ । ସମୂଳ ବିନାଶ—2. Extinction or ruin; complete loss. ୩ । ପ୍ରଳୟ—3. Universal Dissolution.

ସର୍ବ ନାଶିଅ—ଦେ. ବଣ, ପୁଂ ( ଗାଳି )—ଯେ ସର୍ବନାଶ ଘଟାଏ— Sarba nāsiā Causing or bringing about ruin; सर्वनाशी, सर्व नेशे सर्व नाशी ruinous. [ ସର୍ବନାଶୀ—ସ୍ତ୍ରୀ ]

ସର୍ବ ନାଶିନୀ—ସଂ. ବଣ. ସ୍ତ୍ରୀ ( ସର୍ବନାଶିନ୍+ସ୍ତ୍ରୀ. ଈ )—ସର୍ବନାଶୀର Sarba nāsinī ସ୍ତ୍ରୀଲିଙ୍ଗ—The feminine form [ ସର୍ବ ନାଶୀ—ପୁଂ ] of Sarbanāsī. ସଂ. ବି. ସ୍ତ୍ରୀ—ମହାକାଳୀ—The Goddess Mahākālī.

ସର୍ବ ନାଶୀ—ସଂ.ବଣ. ପୁଂ (ସର୍ବନାଶ+ଇନ୍, ୧୮।. ୧୦)—୧ । ସର୍ବ Sarba nāsī ଧ୍ୱଂସକାରୀ; ଯେ ସର୍ବନାଶ ଘଟାଏ—1. Caus- (ସର୍ବନାଶିନୀ—ସ୍ତ୍ରୀ) ing total ruin. ୨ । ସର୍ବନାଶକାରୀ—2. Destroying everything. ୩ । ପ୍ରଳୟଙ୍କରୀ—3. Causing utter dissolution. ଦେ. ବଣ. ସ୍ତ୍ରୀ—ସର୍ବନାଶିଅର ସ୍ତ୍ରୀଲିଙ୍ଗ—Feminine of Sarba nāsiā.

ସର୍ବନାଶେ ସମୁତ୍ପନ୍ନେ ଅର୍ଦ୍ଧଂ ତ୍ୟଜତି ପଣ୍ଡିତଃ—ସ. ପ୍ରବଚନ—ପଣ୍ଡିତ Sarbanāse samutpanne arddham ବା ଜ୍ଞାନୀ ବ୍ୟକ୍ତି tyajati panditah ଯେଉଁଠାରେ କୌଣସି ବସ୍ତୁର ସର୍ବନାଶ ଘଟିବା ଅବଶ୍ୟମ୍ଭାବୀ ବୋଲି ଦେଖନ୍ତି, ସେଠାରେ ଉକ୍ତ ବସ୍ତୁର ଅର୍ଦ୍ଧେ ବା ଅଂଶ ତ୍ୟାଗ କରି ଅନ୍ୟ ଅଂଶକୁ ରକ୍ଷା କରନ୍ତି—A Sanskrit proverb meaning "A wise man is content to give up a part (literally, a half) where he finds that he is about to lose the whole".

ସର୍ବ ନିୟନ୍ତା—ସ. ବଣ (ସର୍ବ+ନି+ଯମ୍ ଧାତୁ=ସଂଯମ କରିବା+ Sarba niyantā କର୍ତ୍ତ୍ରି. ତୃ, ୧୩।. ୧୦ )—ସକଳ ବିଷୟର (ସର୍ବନିୟନ୍ତ୍ରୀ—ସ୍ତ୍ରୀ) ପରିଚାଳକ—Guiding or controlling everything.

ସର୍ବନ୍ଦମ—ସ. ବଣ ଓ ବି. ପୁଂ (ସର୍ବଂ=ସମସ୍ତଙ୍କୁ+ଦମ୍. ଧାତୁ= Sarbandama ଦମନ କରିବା+କର୍ତ୍ତ୍ରି. ଅ; ଅଲୁକ୍ ସମାସ)— ( ସର୍ବଦମନ, ସର୍ବଂଦମ, ସର୍ବଂଦମନ—ଅନ୍ୟରୂପ ) ସର୍ବ ଦମନ (ଦେଖ)—Sarba damana. (See)

ସର୍ବ ପଥଜ୍ଞ—ସଂ. ବଣ. ପୁଂ (ସର୍ବପଥ+ଜ୍ଞା, ଧାତୁ=ଜାଣିବା+କର୍ତ୍ତ୍ରି. Sarba pathajña ଅ)—ଯେ ସବୁ ବାଟ ଜାଣେ— (ସର୍ବପଥଜ୍ଞା—ସ୍ତ୍ରୀ) Knowing all the roads.

ସର୍ବପଥୀନ—ସଂ.ବଣ. ପୁଂ (ସର୍ବ+ପଥ+ଈନ)-୧। ସର୍ବପଥଗାମୀ—1. Sarbapathīna Going on all ways. ୨ । ସର୍ବପଥଜ୍ଞ— (ସର୍ବପଥୀନା—ସ୍ତ୍ରୀ) 2. Knowing all the ways. ୩ । ସର୍ବ ପଥବ୍ୟାପୀ—3. Occupying the whole breadth of the road. ସ°. ବି—୧ । ରଥ ( ଶବ୍ଦକୋଷ )—1.Car; chariot. ୨ । ଯେଉଁ ରଥ ସବୁପ୍ରକାର ପଥରେ ଯାଇ ପାରେ—2. A car which can be used in all sorts of roads. ୩ । ଯେଉଁ ରଥ ରାସ୍ତାର ସବୁ ଅଂଶକୁ ଅଧିକାର କରେ (ଯଥା—ଜଗନ୍ନାଥ ମହାପ୍ରଭୁଙ୍କ ରୁକୁଣା ରଥ)—3. A very stupenduous car which occupies the whole breadth of the road.

ସର୍ବପା—ସ°. ବି. ସ୍ତ୍ରୀ—ବଳିରାଜ ପତ୍ନୀ—The name of the Sarbapā wife of king Bali. ସ°. ବଣ. ସ୍ତ୍ରୀ (ସର୍ବ+ (ସର୍ବପ—ପୁ°. ବଣ) ପା. ଧାତୁ+କର୍ତ୍ତ୍ରି. ଅ+ସ୍ତ୍ରୀ ଆ)—୧ । ସମସ୍ତ ପଦାର୍ଥ ପାନକର୍ତ୍ତ୍ରୀ—1. (female) Drinking everything. ୨ । ସମସ୍ତଙ୍କ ପାଳନକର୍ତ୍ତ୍ରୀ—2. (female) Maintaining or saving all.

ସର୍ବପାଚକ—ସଂ. ବି (ସର୍ବ+ପଚ. ଧାତୁ. ଣିଚ=ପାଚ. ଧାତୁ+କର୍ତ୍ତ୍ରି. Sarbapāchaka ଅକ; ଯାହା ସମସ୍ତ ଧାତୁକୁ ପାକ କରେ)— ସୁହାଗା; ଟଙ୍କଣକ୍ଷାର (ବୈ. ଶ)—Borax.

ସର୍ବ ପ୍ରକାର—ସଂ. ବି (କର୍ମଧା)—ସବୁ ରକମ—All sorts. ଦେ, Sarba prakāra ବଣ ( ବହୁବ୍ରୀହି )—ସବୁ ରକମର— सबबकम सबतरह Of all sorts.

ସର୍ବ ପ୍ରଧାନ—ସଂ. ବଣ (୭ମୀ ତତ୍)—୧ । ସର୍ବୋତ୍ତମ— Sarba pradhāna 1. Utmost. ୨ । ସର୍ବଶ୍ରେଷ୍ଠ; ସର୍ବୋତ୍କୃଷ୍ଟ—2. Superior to all others. ୩ । ସମସ୍ତଙ୍କ ମଧ୍ୟରେ ପ୍ରଧାନ—3. Head or Chief of all. ୪ । ସମସ୍ତଙ୍କ ମଧ୍ୟରେ ମୁଖ୍ୟ—4. Pre-eminent.

ସର୍ବ ପ୍ରିୟ—ସଂ. ବଣ.ପୁଂ—୧। (୬ଷ୍ଠୀ ତତ୍)—ସମସ୍ତଙ୍କର ଭଲ୍ଲଭ; ଯେ Sarba priya ସମସ୍ତଙ୍କର ପ୍ରିୟ; ସମସ୍ତେ ଯାହାକୁ ସ୍ନେହ (ସର୍ବପ୍ରିୟା—ସ୍ତ୍ରୀ) କରନ୍ତି—1. Dear to all; beloved by [ସର୍ବପ୍ରିୟତା—ବି] all ୨ । (ବହୁବ୍ରୀହି) ସମସ୍ତେ ଯାହାର ପ୍ରିୟ—2. Benevolent; catholic; all-loving. ୩ । ସମସ୍ତଙ୍କର ରୁଚିକର (କର୍ମ)—3. Pleasing to all.

ସର୍ବପ୍ରିୟା—ସ°. ବି. ସ୍ତ୍ରୀ—ସର୍ବବଲ୍ଲଭା (ଦେଖ)—Sarba ballavā Sarbapriyā (See) ସଂ. ବଣ. ସ୍ତ୍ରୀ—ସର୍ବପ୍ରିୟର ସ୍ତ୍ରୀଲିଙ୍ଗ—Feminine of Sarbapriya.

ସର୍ବ ବନ୍ଦନ—ଦେ. ବଣ (ସଂ. ସର୍ବବନ୍ଦନୀୟ)—ସର୍ବବନ୍ଦନୀୟ; ସମସ୍ତଙ୍କ Sarba bandana ପୂଜନୀୟ—Adorable by all. [ଉ— सर्ववन्दन ସର୍ବବନ୍ଦନ ତୁ ଠାକୁର, ତୋତେ ମୋହର ନମସ୍କାର । सर्ववंदन ଜଗନ୍ନାଥ- ଭାଗବତ ।]

ସର୍ବ ବନ୍ଦନୀୟ—ସଂ. ବଣ. ପୁଂ (୬ଷ୍ଠୀ ତତ୍)—ସମସ୍ତଙ୍କ ପୂଜନୀୟ— Sarba bandanīya Adorable by all. (ସର୍ବବନ୍ଦ୍ୟ—ଅନ୍ୟରୂପ) [ସର୍ବବନ୍ଦନୀୟା, ସର୍ବବନ୍ଦ୍ୟା—ସ୍ତ୍ରୀ]

ସର୍ବବର୍ଣ୍ଣିକା—ସଂ. ବି (ବୈଦ୍ୟକ)—ଗମ୍ଭାରୀ ଗଛ— Sarbabarnnikā Gmelina Arborea (tree)

ସର୍ବବଲ୍ଲଭ—ସଂ. ବଣ. ପୁଂ (୬ଷ୍ଠୀ ତତ୍)—ସର୍ବପ୍ରିୟ (ଦେଖ) Sarbaballabha. Sarbapriya. (See) ( ସର୍ବବଲ୍ଲଭା—ସ୍ତ୍ରୀ )

ସର୍ବବଲ୍ଲଭା—ସଂ. ବି. ସ୍ତ୍ରୀ – ଅସତୀ ନାରୀ (ଧରଣୀଧର); କୁଳଟା ସ୍ତ୍ରୀ—
Sarbaballabhā An unchaste woman; an adulteress. ସଂ. ବିଣ. ସ୍ତ୍ରୀ – ସର୍ବବଲ୍ଲଭର ସ୍ତ୍ରୀଲିଙ୍ଗ—
Feminine form of 'Sarbaballabha'.

ସର୍ବବାଦି ସମ୍ମତ—ସଂ. ବିଣ (ସର୍ବବାଦିନ୍+ସମ୍ମତ; ୩ୟା ତତ୍)—
Sarbabādi sammata ୧ । ସକଳ ମତବାଦୀଙ୍କ ଦ୍ୱାରା ଅନୁମୋଦିତ—1. Approved by all; universally acknowledged. ୨ । ସବୁ ସଂପ୍ରଦାୟଙ୍କ ଦ୍ୱାରା ସ୍ୱୀକୃତ—2. Admitted by all the different sects. ୩। ସମସ୍ତଙ୍କ ଦ୍ୱାରା ସ୍ୱୀକୃତ—
3. Unanimously agreed; agreed to by all.

ସର୍ବବାଦୀ—ସଂ. ବିଣ. ପୁଂ (ସର୍ବ+ବଦ୍ ଧାତୁ=କହିବା+କର୍ତ୍ତୃ. ଇନ୍, ୧ମା ଏକ,—୧ । ସବୁ ପ୍ରକାରର ମତ ଅବଲମ୍ବନ-କାରୀ —1. Holding all sorts of views. ୨ । ବିଭିନ୍ନ ମତାବଲମ୍ବୀ—2. Holding different views. ୩ । ସବୁ ସଂପ୍ରଦାୟର—
Sarbabādī
(ସର୍ବବାଦିନୀ – ସ୍ତ୍ରୀ)
3. Belonging to all sects. ସଂ. ବି – ଶିବଙ୍କର ଏକ ନାମ (ହ. ଶ)—A name of Śiba.

ସର୍ବବାଧା ପ୍ରଶମନ—ସ ବି (୬ଷ୍ଠୀ ତତ୍) ସବୁ ବାଧାର ନିବାରଣ—
Sarbabādhā prasamana Assuagement of all grief or obstacles.
(ସର୍ବବାଧାପ୍ରଶମକ—ବିଣ. ପୁଂ)

ସର୍ବବିଦ୍—ସଂ ବିଣ (ସର୍ବ+ବିଦ୍ ଧାତୁ=ଜାଣିବା+କର୍ତ୍ତୃ. କ୍ୱିପ)—
Sarbabid ସର୍ବଜ୍ଞ (ଦେଖ)—Sarbajña (See). ସଂ ବି—
୧ । ପରମେଶ୍ୱର—1. God. ୨ । ଓଁକାର (ହ. ଶ)—
2. The mystic syllable 'Om'.

ସର୍ବବିଦ୍ୟା—ସଂ. ବି (କର୍ମଧାରୟ)—ସବୁପ୍ରକାରର ବିଦ୍ୟା—
Sarbabidyā All branches of learning.

ସର୍ବବିଦ୍ୟା ବିଶାରଦ—ସଂ. ବିଣ. ପୁଂ (କର୍ମଧା ଓ ୭ମୀ ତତ୍)—
Sarbabidyā bisārada ସବୁ ବିଦ୍ୟାରେ ପାରଦର୍ଶୀ—
(ସର୍ବବିଦ୍ୟାବିଶାରଦା—ସ୍ତ୍ରୀ) Proficient in all branches of learning.

ସର୍ବବୀର—ସଂ. ବିଣ. ପୁଂ (ବହୁବ୍ରୀହି)—ବହୁପୁତ୍ରଯୁକ୍ତ (ହ. ଶ)
Sarbabīra Having many sons.
(ସର୍ବବୀରା – ସ୍ତ୍ରୀ)

ସର୍ବବେଦ—ସଂ. ବିଣ. ପୁଂ (ସର୍ବ+ବିଦ୍ ଧାତୁ=ଜାଣିବା+କର୍ତ୍ତୃ ଅ)-
Sarbabeda ୧ । ସର୍ବଜ୍ଞ (ଦେଖ)—1. Sarbajña (See)
୨ । ସବୁବେଦମାନ—2. All the Vedas.
(ସର୍ବବେଦା—ସ୍ତ୍ରୀ) ସଂ. ବିଣ. ପୁଂ—ସର୍ବବେଦାଧ୍ୟେତା ବ୍ରାହ୍ମଣ—A Brāhmaṇa learned in all the Bedas.

ସର୍ବବେଦସ—ସଂ. ବି—ସକଳ ସମ୍ପତ୍ତି (ହ. ଶ)
Sarbabedasa All property.

ସର୍ବବେଦା(ଦାଃ)—ସଂ ବି. ପୁଂ ( ସର୍ବ+ବିଦ ଧାତୁ+କର୍ତ୍ତୃ ଅସ୍=
Sarbabedā(dāh) ସର୍ବବେଦସ୍, ୧ମା ଏକ)—ଯେଉଁ ବ୍ୟକ୍ତି ସର୍ବସ୍ୱଦକ୍ଷିଣ ଯାଗ ସମ୍ପାଦନ କରିଅଛନ୍ତି (ଅମର)—
A person who has performed Sarbaswadakshiṇa sacrifice.

ସର୍ବବେଶୀ—ସଂ ବିଣ. ପୁଂ (ସର୍ବବେଶ+ଅସ୍ତି ଅର୍ଥରେ ଇନ୍; ୧ମା ଏକ)
Sarbabeśī ସବୁ ପ୍ରକାରର ବେଶଧାରୀ—
(ସର୍ବବେଶିନୀ—ସ୍ତ୍ରୀ) Assuming all sorts of dress. ସଂ ବି—୧ । ନଟ ( ହେମଚନ୍ଦ୍ର )—
1. An actor. ୨ । ବହୁରୂପୀ ବ୍ୟକ୍ତି—
2. A person who assumes different masks at different times.

ସର୍ବ ବୈନାଶିକ—ସଂ ବି [ସର୍ବ+ବୈନାଶିକ]—ଅସ୍ଥା ଅବ ସମସ୍ତଙ୍କୁ
Sarba bainā́sika ବିନାଶଶୀଳ ବୋଲି ଯେ କହେ; ବୌଦ୍ଧ (ହ. ଶ)—A Buddhist.

ସର୍ବ ବ୍ୟାପକ(ବ୍ୟାପୀ)—ସ. ବିଣ. ପୁଂ (ସର୍ବ+ବ୍ୟାପକ)—ଯାହା ସବୁ
Sarba byāpaka(byāpi) ଅବସ୍ଥାରେ ବା ବସ୍ତୁରେ ବ୍ୟାପି ଥାଏ—
Extending over all; all-pervading. ସ
(ସର୍ବବ୍ୟାପିକା, ସର୍ବବ୍ୟାପିନୀ—ସ୍ତ୍ରୀ) ବି—୧ । ଈଶ୍ୱର—1. God.
୨ । ଶିବ—2. Śiba. ୩ । ବ୍ରହ୍ମା—3. Brahmā.

ସର୍ବ ଭକ୍ଷ(କ୍ଷୀ)—ସ. ବି ( ସର୍ବ+ଭକ୍ଷ୍ ଧାତୁ+କର୍ତ୍ତୃ. ଅ;+କର୍ତ୍ତୃ.
Sarba bhaksha(kshī) ଇନ୍; ୧ମା. ଏକ)—ହୁତାଶନ;
ସର୍ବଭକ୍ଷା } ବିଣ.ସ୍ତ୍ରୀ ବହ୍ନି—Fire. ସଂ. ବିଣ.ପୁଂ—ଯେ
ସର୍ବ ଭକ୍ଷିଣୀ } ସମସ୍ତ ବସ୍ତୁ ଭକ୍ଷଣ କରେ—
(ସର୍ବଭକ୍ଷକ—ଅନ୍ୟରୂପ) All eating; omnivorous.

ସର୍ବ ଭକ୍ଷା—ସଂ. ବି. ସ୍ତ୍ରୀ ( ସର୍ବଭକ୍ଷ+ଆ )—ଛାଗୀ (ହେମଚନ୍ଦ୍ର)—
Sarba bhakshā She-goat.
ସଂ. ବିଣ. ସ୍ତ୍ରୀ—ସର୍ବଭକ୍ଷର ସ୍ତ୍ରୀଲିଙ୍ଗ—Feminine of Sarbabhaksha.

ସର୍ବ ଭକ୍ଷ୍ୟ—ସଂ.ବିଣ.ପୁଂ (ସର୍ବ ଅଟେ ଭକ୍ଷ୍ୟ ଯାହାର; ବହୁବ୍ରୀହି)—
Sarba bhakshya ସର୍ବଗ୍ରାସୀ ( ଦେଖ )
(ସର୍ବ ଭକ୍ଷ୍ୟା—ସ୍ତ୍ରୀ) Sarba grāsī ( See )

ସର୍ବ ଭବୋଦ୍ଭବ—ସଂ. ବି—ସୂର୍ଯ୍ୟ (ହ. ଶ)—
Sarba bhabodbhaba The sun.

ସର୍ବ ଭାବନ—ସଂ. ବି—ଶିବ (ହ. ଶ)—
Sarba bhābana Śiba.

ସର୍ବ ଭୁକ୍—ସଂ.ବିଣ. ପୁଂ ଓ ସ୍ତ୍ରୀ (ସର୍ବ+ଭୁଜ୍ ଧାତୁ+କର୍ତ୍ତୃ.କ୍ୱିପ)—
Sarba bhuk ସର୍ବଗ୍ରାସୀ (ଦେଖ)—Sarba grāsī (See)
ସଂ. ବି—ଅଗ୍ନି; ବହ୍ନି—Fire.

ସର୍ବ ଭୂତ—ସଂ. ବି (କର୍ମଧା)—ସମସ୍ତ ପ୍ରାଣୀ; ଜଗତର ପ୍ରାଣିଗଣ—
Sarba bhūta All beings.

ସର୍ବଭୂତ ହିତ—ସଂ. ବି (୬ଷ୍ଠୀ ତତ୍)—ସମସ୍ତ ପ୍ରାଣୀଙ୍କ ମଙ୍ଗଳ—
Sarbabhūta hita The bliss or good of all beings.
(ସର୍ବଭୂତହିତକର—ବିଣ. ପୁଂ)

ସର୍ବଭୂମିକ—ସଂ. ବି [ସର୍ବଭୂମି+କ]—ଦାରୁଚିନି [ହ. ଶ]
Sarbabhūmika Cinnamon.

ସର୍ବ ଭୋଗୀ—ସଂ. ବିଣ. ପୁଂ ( ସର୍ବ+ଭୋଗିନ୍, ୧ମା. ୧ବ )—
Sarba bhogi ୧ । ସର୍ବଭକ୍ଷ—1. Omnivorous. ୨ ।
[ ସର୍ବ ଭୋଗିନୀ—ସ୍ତ୍ରୀ ] ସମସ୍ତ ଭୋଗକାରୀ—
2. Enjoying everything.

ସର୍ବ ମଖ(ଖା)ସା—ପ୍ରାଦେ· ( ଜୟପୁର ) ବି – ଚିରସ୍ଥାୟୀ ଜାଗିର—
Sarba makha(khā)sā Permanent Jaighir.

ସର୍ବ ମଙ୍ଗଳ - ସଂ. ବି—୧ । ସର୍ବ ଶୁଭ; ସବୁ ବିଷୟରେ ମଙ୍ଗଳ—
Sarba mangala 1. Happiness in everything
୨ । ମୋକ୍ଷଦାତା—2. Saviour. ସଂ. ବିଣ. ପୁଂ—
[ ସର୍ବ ମଙ୍ଗଳା—ସ୍ତ୍ରୀ ] ୧ । ସବୁ ପ୍ରକାରର ମଙ୍ଗଳ ବିଧାତା—
1. Bringing about all sorts of happiness.
[ ଉ—ସର୍ବମଙ୍ଗଳ ଜଗନ୍ନାଥ । ]

ସର୍ବ ମଙ୍ଗଳକର—ସଂ. ବିଣ· ପୁଂ—ସବୁ ପ୍ରକାରର ମଙ୍ଗଳବିଧାୟକ—
Sarba mangalakara Giving all sorts of bliss
( ସର୍ବମଙ୍ଗଳକରୀ – ସ୍ତ୍ରୀ ) or happiness.

ସର୍ବ ମଙ୍ଗଳମୟ—ସଂ ବିଣ· ପୁଂ—ସବୁ ମଙ୍ଗଳର ଆଧାର—Full of
Sarba mangalamaya all sorts of happiness or
[ ସର୍ବ ମଙ୍ଗଳମୟୀ—ସ୍ତ୍ରୀ ] bliss; blissful.

ସର୍ବ ମଙ୍ଗଳା—ସଂ. ବି. ସ୍ତ୍ରୀ ( ସକଳ ପ୍ରକାରର ମଙ୍ଗଳକୁ ଯେ ଦିଅନ୍ତି—
Sarba mangalā ୧ । ଦୁର୍ଗା—1. Goddess Durgā.
୨ । ଲକ୍ଷ୍ମୀ ( ହ. ଶ. )—2. Goddess Lakshmi.
ସଂ· ବିଣ. ସ୍ତ୍ରୀ—ସର୍ବମଙ୍ଗଳର ସ୍ତ୍ରୀଲିଙ୍ଗ—Feminine
of Sarbamangala.

ସର୍ବ ମନ୍ଦିରା—ଦେ: ବି—ଏକଜାତୀୟ ପ୍ରାଚୀନ ଅର୍ଣ୍ଣବ ପୋତ ( ଭୋଜ-
Sarba mandirā ରାଜ ପ୍ରଣୀତ 'ଯୁକ୍ତିକଳ୍ପତରୁ' ଗ୍ରନ୍ଥ ଦ୍ରଷ୍ଟବ୍ୟ
ଜଗବନ୍ଧୁ· ପ୍ରାଚୀନ ଉତ୍କଳ)—A kind of ship used
in ancient time.

ସର୍ବମୟ—ସଂ. ବିଣ· ପୁଂ ( ସର୍ବ+ଵ୍ୟାପ୍ତ୍ୟର୍ଥରେ ମୟ )—୧ । ସର୍ବା-
Sarbamaya ତ୍ମକ; ଯାହା ସବୁଠାରେ ଖୋଷିଅଛି; ସର୍ବବ୍ୟାପକ—
[ ସର୍ବମୟୀ—ସ୍ତ୍ରୀ ] 1. All-pervading. ୨ । ଯାହାର
କ୍ଷମତା ସର୍ବତ୍ର ବିସ୍ତୃତ—2. Very influential. ୩ ।
ସର୍ବସ୍ୱ ସର୍ବଶକ୍ତିମାନ—3. Omnipotent.

ସର୍ବମୟ କର୍ତ୍ତା—ସଂ ବି· ପୁଂ—ଯେଉଁ ବ୍ୟକ୍ତିର କ୍ଷମତା ବା ଅଧିକାର
Sarbamaya karttā ସର୍ବବ୍ୟାପୀ—One who is the
all powerful head of an institution
(ସର୍ବମୟୀକର୍ତ୍ତ୍ରୀ—ସ୍ତ୍ରୀ) or place.

ସର୍ବ ମୂଲ୍ୟ—ସଂ ବି ( ବହୁବ୍ରୀହି; ସର୍ବ=ସବୁ ପଦାର୍ଥର ମୂଲ୍ୟରୂପେ
Sarba mūlya ଯାହା ଅବଲମ୍ବିତରେ ଦିଅଯାଇ ପାରେ )—
୧ । କପର୍ଦ୍ଦିକ; କଉଡ଼ି—1. Shell money. ୨ ।
କୌଣସି କ୍ଷୁଦ୍ର ମୁଦ୍ରା ( ହ. ଶ )—
2. Any small coin.

ସର୍ବ ମେଧ—ସଂ. ବିଣ ( ସର୍ବ=ମେଧ୍ ଧାତୁ=ବଧ କରିବା, ସଙ୍ଗ
Sarba medha କରିବା+କର୍ତ୍ତି. ଅ )—୧ । ସର୍ବ ସଂହାରକ;
ସର୍ବନାଶୀ—1. Destroying everything; all-destroying. ୨ । ସର୍ବସଙ୍ଗୀ—2. Accompanying all. ସଂ. ବି ( କର୍ମଧା )—୧ । ସର୍ବପ୍ରକାରର
ଯଜ୍ଞ—1. All sorts of Vedic sacrifices.
୨ । ସାର୍ବଜନକ ଯଜ୍ଞ ( ହ. ଶ )—2. A vedic
sacrifice open to all. ୩ । ଦଶଦିନ ଲୂତ୍ୟ
ସୋମଯାଗବିଶେଷ ( ହ. ଶ )—
3. A sort of Soma sacifice.

ସର୍ବସ୍ୱ—ଗ୍ରା· ଅ—ସବୁଠାରେ—Everywhere. [ ହି– ଝୋଡ
Sarbaya କଲୁ। ଚଣ୍ଡା ପିଠା ଦେଖୁଛି ସର୍ବସ୍ୱ—ପ୍ରାଚୀ.
सब जागाय सबजगहमें ବ୍ରହ୍ମକରୂପଣ ଗୀତା । ]

ସର୍ବ ଯମକ—ଦେ. ବି (ସଂ. ସର୍ବ+ଯମକ)—କାବ୍ୟାଳଙ୍କାରବିଶେଷ—
Sarba jamaka A figure of speech. [ ବ୍ର—ଏହା
सर्व यमक ଶବ୍ଦାଳଙ୍କାରରେ ପ୍ରଥମ ପଦ ଓ ଦ୍ୱିତୀୟ ପଦର ଶବ୍ଦ-
सर्व यमक ବିନ୍ୟାସ ଏକା ଭଳି କିନ୍ତୁ ଅର୍ଥ ଭିନ୍ନ । ] [ଉ—
ଅନ୍ତ ମକର ତାପ ନାଶେ ଶୋଭା ସାରସ ଚନ୍ଦ୍ରେ । ଅହୁମ-
କର ତାପ ନାଶେ ଶୋଭା ସାରସ ଚନ୍ଦ୍ରେ—ଭଞ୍ଜ ଲାବଣ୍ୟବତୀ ]

ସର୍ବ ଯୋଗୀ—ସଂ. ବି. ପୁଂ (୭ମୀ ତତ୍)—ଶିବ ( ହ. ଶ )—
Sarbajogi Siba.

ସର୍ବ ରକ୍ଷକ—ସଂ. ବିଣ ( ସର୍ବ+ରକ୍ଷ୍ ଧାତୁ+କର୍ତ୍ତି. ଅକ )—ଯେ
Sarba rakshaka ସମସ୍ତଙ୍କୁ ରକ୍ଷା କରେ—Protecting
[ସର୍ବରକ୍ଷଣ, ସର୍ବରକ୍ଷାକର—ଅନ୍ୟରୂପ] or saving all.

ସର୍ବ ରକ୍ଷଣ କବଚ – ସଂ, ବି—ବ୍ରହ୍ମବୈବର୍ତ୍ତ ପୁରାଣୋକ୍ତ ( କୃଷ୍ଣ ଜନ୍ମ
Sarba rakshana kabacha ଖଣ୍ଡ ୧୨ଶ ଅଧ୍ୟାୟ ) ବିଷ୍ଣୁ
ସ୍ତବବିଶେଷ—Name of a prayer ( lit. protective armour ) invoking Bishnu for
one's protection. [ ବ୍ର—ଏଥିରେ ଦେହର
ପ୍ରତ୍ୟେକ ଅବୟବକୁ ରକ୍ଷା କରିବା ପାଇଁ ବିଷ୍ଣୁଙ୍କୁ ଭିନ୍ନ
ଭିନ୍ନ ନାମରେ ଆହ୍ୱାନ କରାଯାଏ । ]

ସର୍ବ ରସ—ସଂ. ବି—୧ । ଧୂନକ; ଝୁଣା ( ଅମର )—1. Resin.
Sarba rasa ୨ । ବାଦ୍ୟଭାଣ୍ଡ; ବୀଣାଭେଦ; ଏକପ୍ରକାର ବୀଣା
( ମେଦିନୀ )—2. A kind of harp. ୩ । ସୁଧୀ;
ପଣ୍ଡିତ ( ଶବ୍ଦରତ୍ନାବଳୀ )—3. A learned man.
୪ । ଲବଣ ରସ ( ହେମଚନ୍ଦ୍ର )—4. Saline taste.
୫ । ଲବଣ; ଲୁଣ ( ହ. ଶ. )—5. Salt.
[ ସର୍ବରସା—ସ୍ତ୍ରୀ ] ସଂ. ବି· ପୁଂ—ସବୁ ବିଦ୍ୟାରେ ନିପୁଣ (ବ୍ୟକ୍ତି)
( ହ· ଶ )—Skilled in all the arts.

ସର୍ବ ରସା—ସଂ. ବିଣ· ସ୍ତ୍ରୀ ( ସର୍ବରସ+ଆ )—ସର୍ବ ରସର ସ୍ତ୍ରୀଲିଙ୍ଗ—
Sarba rasā Feminine in Sarba rasa. ସଂ. ବି—
ଖଇ ମଣ୍ଡ ( ହ. ଶ )—A food-paste prepared
by sifting boiled-fried paddy.

ସର୍ବ ରସୋତ୍ତମ—ସଂ. ବି—ଲବଣ ( ହେମଚନ୍ଦ୍ର )—
Sarba rasottama Salt.

ସର୍ବରା—ବୈଦେ॰ ବ ( ଫା. ସର୍‌ବର୍‌ହ୍—ରାଜାଙ୍କ କର୍ମ କର୍ତ୍ତା; Sarbarā ରାଜସ୍ୱ ଉପକରଣ ସଂଗ୍ରହ )—୧ । ରାଜସ୍ୱ—
খাজনা 1. Revenue. ୨ । ଜମିର ଖଜଣା—
मालगुजारी 2. Land-rent. ୩ । ପେଶ୍‌କସ୍—3 Revenue paid by a Feudatory Chief.

ସର୍ବରା କରିବା—ଦେ॰ କ୍ରି—କୌଣସି ଜମିକୁ ପ୍ରଜାସ୍ୱରୂପ ନିର୍ଦ୍ଦିଷ୍ଟ Sarbarā kariba ଖଜଣାରେ ଜମିଦାରଠାରୁ ପଟ୍ଟା ନେବା—
খাজানায় লওয়া, পাট্টা নেওয়া To take lease of a piece
पटा लेना of land on rent.

ସର୍ବରାକାର—ବୈଦେ॰ ବ ( ଫା. ସର୍ବରା+ସଂ. ପ୍ରତ୍ୟୟ, କାର )—
Sarbarākār ୧ । ଯେଉଁ କର୍ମଚାରୀ ପ୍ରଜାଙ୍କଠାରୁ ଖଜଣା
তহসিলদার ଅସୁଲ କରି ଜମିଦାର ବା ଗଭର୍ଣ୍ଣମେଣ୍ଟଙ୍କ ନିକଟରେ
सर्बराकार ଦାଖଲ କରନ୍ତି—1. A rent-collecting officer. [ ଦ୍ର—ଏହି କର୍ମଚାରୀ କାଳର ମିହ୍‌ନତାନା ପାଇଁ ଜମିରୁ କମା ଅସୁଲ ହେବାରୁ ନିର୍ଦ୍ଧାରିତ ଅଂଶ (ମାଲିକାନା) ପାଆନ୍ତି ।] ୨ । ଖୋରଧା ଖାସମହାଲର ରଇତଙ୍କଠାରୁ ରାଜସ୍ୱ ଅଦାୟ କରି ଗଭର୍ଣ୍ଣମେଣ୍ଟଙ୍କଠାରେ ଦାଖଲ କରିବା ପାଇଁ ନିଯୁକ୍ତ ବ୍ୟକ୍ତି—2. A rent-collecting agent of the Government in the Khurda Government estate; a Sarbarakar of the Government estate.
[ଦ୍ର—ଖୋରଧା ସରବରାକାରୀର ଇତିହାସପାଇଁ ପରିଶିଷ୍ଟ ଦ୍ରଷ୍ଟବ୍ୟ]

ସର୍ବରାକାରୀ—ବୈଦେ॰ ବଣ(ଫା)—ସର୍ବରାକାର ସମ୍ବନ୍ଧୀୟ—Relating
Sarbarākāri to Sarbarākār. ଦେ. ବ—ସର୍ବରାକାରର
সর্বরাকারী सर्बराकारी ପଦ—The post or service of a Sarbarākār.

ସର୍ବରାତ୍ର—ସଂ. ବ—ରାତ୍ରିର ସମସ୍ତ ଅଂଶ (ସିଦ୍ଧାନ୍ତ କୌମୁଦୀ)—The
Sarba rātra whole night; all night.

ସର୍ବରାହ—ବୈଦେ. ବ—୧ । ଫରମାସୀ ଜିନିଷ ଯୋଗାଇବା କର୍ମ—
Sarbarāha 1. The act of supplying articles on
সরবরাহ order; order-supplying. ୨ । ପଣ୍ୟ
सर्बराह ଦ୍ରବ୍ୟର ଆମଦାନୀ—
2. Importing of commodities.

ସର୍ବରି—ବୈଦେ. ବଣ ( ଇଂ ସର୍ଭେ )—(ଅଧୁନିକ) ସରକାରୀ ସର୍ଭେ
Sarbari ସମ୍ବନ୍ଧୀୟ—Relating to the modern
সার্বিয়ারি सर्वेका Surveying operation.
সার্ভেয়ারি ବୈଦେ. ବ—ସର୍ଭେଅର୍ ବା ମାପିବା କର୍ମଚାରୀଙ୍କ
सर्वेका काम କର୍ମ—Surveyorship; the work or post of a surveyor.

ସର୍ବରି ଇଲାକା—ବୈଦେ.ବ (ଇଂ.ସର୍ଭେ+ଫା. ଇଲାକା)—ସରକାରଙ୍କ
Sarbari ilākā ଭୂମି ମାପ ବିଭାଗ—The Survey
সার্বিয়ারি এলাকা सर्वेका इलाका Department of Government.

ସର୍ବରି ମାଣ—ଦେ. ବ—୨୪ ଦସ୍ତି ପରିମାଣରେ ୧ ମାଣ; ଅଧୁନିକ
Sarbari māṇa ସର୍ଭେ ଦ୍ୱାରା ମାପ ହୋଇଥିବା ଏକର—
একর An acre of English measure; one
सर्वेका एकर 'māṇa' measured by the 24 the dasti rod according to modern Survey.
[ଦ୍ର—ଶତକ୍ତ ଭୂଖଣ୍ଡର ସର୍ବସ୍ୱ ପରିମିତ ମାଣ ସୁଖ ଜମି ଥିଲା । ଫକୀରମୋହନ, ଗଳ୍ପସ୍ୱଳ୍ପ ।] [ଦ୍ର—ପୂର୍ବେ ଏ ଦେଶର ୧୨ ଦସ୍ତି, ୧୪ ଦସ୍ତି, ୧୬ ଦସ୍ତି ଓ ତିରିଶି ଦସ୍ତି ପରିମିତ ଦ୍ୱାରା ଭିନ୍ନ ଭିନ୍ନ ଅଞ୍ଚଳରେ ଜମି ମାପ ଦ୍ୱାରା 'ମାଣ' ସ୍ଥିରୀକୃତ ହେଉଥିଲା । କିନ୍ତୁ ଇଂରାଜ ସରକାର ସର୍ଭେ (Survey) ଓ ସେଟଲ୍‌ମେଣ୍ଟ (Settlement) ସମୟରେ ମାପ କରାଇ ଭିନ୍ନ ଭିନ୍ନ ଅଞ୍ଚଳର ସାବିକ 'ମାଣ' ବା ପରିମାଣକୁ 'ସର୍ବସ୍ୱ ମାଣ' ବା ଏକର୍ ଓ ଡେସିମଲ୍ (Acre and decimal) ରେ ପରିଣତ କରି ବନ୍ଦୋବସ୍ତ କାଗଜ (Record of Rights) ପ୍ରସ୍ତୁତ କରି ଅଛନ୍ତି ଇଂରାଜୀ ସର୍ଭେ ମାପର ଏକ ଏକର=୨୪ ଦସ୍ତି ପରିମାଣର ୧ ମାଣ ଥିବାରୁ ଏବଂ ସରକାରୀ ସର୍ଭେ ଓ ସେଟଲମେଣ୍ଟରେ ଭିନ୍ନ ଭିନ୍ନ ଦସ୍ତି ପରିମାଣର ମାଣକୁ ଏକରରେ ହିସାବ କରି ଯାଇଥିବାରୁ ଏକରକୁ 'ସର୍ବସ୍ୱ ମାଣ' କହନ୍ତି ।]

ସର୍ବରି ମାପ—ଦେ. ବ—ଅଧୁନିକ ବା ଇଂରାଜୀ ଧରଣରେ ଜମିର ମାପ—
Sarbari māpa Surveying or measuring of land
সার্বিয়ারি মাপ according to modern survey
सर्वेका नाप

ସର୍ବରୀ(ଇତ୍ୟାଦି)—ସଂ. ବ (ଶୃ ଧାତୁ=ଗମନ କରିବା+କର୍ତ୍ତୃ. ବନ୍)—
Sarbarī(etc) ରଜନୀ; ରାତି; ଶର୍ବରୀ ଇତ୍ୟାଦି (ଦେଖ)—
(ଶର୍ବରୀ—ଅନ୍ୟରୂପ) Night; Śarbarī etc (See).

ସର୍ବରୀ କର—ସଂ. ବ (ସର୍ବରୀ=ରାତ୍ର+କର=କରେ ଯେ; ଉପପଦ
Sarbarī kara ତତ୍)—ନିଶାକର; ଚନ୍ଦ୍ର—The moon.

ସର୍ବର୍ତ୍ତୁ—ସଂ॰ ବ (ସର୍ବ+ଋତୁ; କର୍ମଧାରୟ)—ସବୁ ଋତୁ—
Sarbarttu All the seasons of the year.

ସର୍ବର୍ତ୍ତୁ ପରିବର୍ତ୍ତ—ସଂ. ବ—ବତ୍ସର (କଠାଧର)—
Sarbarttu paribartta Year.

ସର୍ବର୍ତ୍ତୁ ଫଳ—ସଂ. ବ (ଷଷ୍ଠୀ ତତ୍)—ସର୍ବ ଋତୁରେ ଜାତ ଫଳମାନ
Sarbarttu phaḷa —1. Fruits produced in all the seasons of the year. ୨ ।
(ବହୁବ୍ରୀହି) ନଡ଼ିଆ ଗଛ—2. The cocoanut tree.
ସଂ. ବଣ—ଯେଉଁ ବୃକ୍ଷ ସବୁ ଋତୁରେ ଫଳ ଦିଏ—
Producing fruits in all the seasons of
(ସର୍ବର୍ତ୍ତୁ ଫଳା—ସ୍ତ୍ରୀ) the year.

ସର୍ବଳ(ଳା, ଳୀ)—ସଂ. ବ (ସର୍ବ=ସମସ୍ତ+ଲ ଧାତୁ=ଗ୍ରହଣ କରିବା
Sarbaḷa(lā, lī) +କର୍ତ୍ତୃ.ଅ;+ଆ;+ଈ)—ଏକ ତୋମରସ୍ତ୍ର—
1. A sort of weapon; javellin. ୨ । ସାବଳ; ଲୌହର ମୋଟା ଓ ଲମ୍ବ ଦଣ୍ଡ—2. A crowbar.

ସର୍ବ ଲିଙ୍ଗୀ—ସଂ. ବଣ. ପୁଂ (ସର୍ବ+ଲିଙ୍ଗ=ଚିହ୍ନ+ଇନ୍, ଅସ୍ତି
Sarba liṅgī ଅର୍ଥରେ; ୧ମା. ୧ବ)—ସକଳ ଚିହ୍ନଧାରୀ—

(ସର୍ବ ଲିଙ୍ଗିନୀ—ସ୍ତ୍ରୀ) Having or wearing all marks ସ.ବି—୧ । ପାଷଣ୍ଡ (ଅମର); ନାସ୍ତିକ —1. Atheist; an unbeliever. ୨ । ବେଦ ବିରୋଧୀରୂପେ ଓ ସର୍ବ-ଧର୍ମର ଚିହ୍ନଧାରୀ, ଧର୍ମ ବିଶ୍ୱାସରହିତ ବ୍ୟକ୍ତି—2. A person who has no fixed religious belief and who wears the insignia of all religious sects. ୩ । ବେଦ ବିରୋଧୀ ବୌଦ୍ଧ ସପଣକ —3. A Buddhist recluse not believing in Godhead. ୪ । ଧୂର୍ତ୍ତ ବ୍ୟକ୍ତି—4. A wicked person. ୫ । ପାମର ବ୍ୟକ୍ତି—5. A reprobate.

**ସର୍ବ ଲୋକ**—ସଂ. ବି—୧ । ଅଖିଳ ବ୍ରହ୍ମାଣ୍ଡ—1. The whole Sarba loka universe. ୨ । ସମୁଦାୟ ସୃଷ୍ଟି—2. The whole creation. ୩ । ସୃଷ୍ଟ ସକଳ ପ୍ରାଣୀ—3. The animal or living beings of the universe.

**ସର୍ବ ଲୋକ ପିତାମହ**—ସଂ. ବି. ପୁଂ (୬ଷ୍ଠୀ ତତ୍; ସର୍ବ ଲୋକଙ୍କର Sarba loka pitāmaha ପିତାମହ; ବ୍ରହ୍ମାଙ୍କ ଆଦେଶରେ ତାଙ୍କ ପୁତ୍ର ସ୍ୱାୟମ୍ଭୁବ ମନୁ ଯାବତୀୟ ଜୀବଜନ୍ତୁ ସୃଷ୍ଟି କରିଅଛନ୍ତି) —ବ୍ରହ୍ମା—Brahmā (literally the grandfather of all created beings).

**ସର୍ବ ଲୋକ ପ୍ରସିଦ୍ଧ**—ସ. ବିଣ (କର୍ମଧାରୟ; ୭ମୀ ତତ୍)—ବିଶ୍ୱବିଖ୍ୟାତ; Sarba loka prasiddha ଯାହାକୁ ବିଶ୍ୱବାସୀ ଜାଣନ୍ତି—Universally celebrated; world-famous. (ସର୍ବ ଲୋକ ଖ୍ୟାତ, ସର୍ବ ଲୋକ ବିଖ୍ୟାତ, ସର୍ବ ଲୋକ ବିଦିତ, ସର୍ବ ଲୋକ ବିଶ୍ରୁତ—ଅନ୍ୟରୂପ) (ସର୍ବ ଲୋକ ପ୍ରସିଦ୍ଧି, ସର୍ବ ଲୋକ ଖ୍ୟାତି, ସର୍ବ ଲୋକ ବିଖ୍ୟାତି, ସର୍ବ ଲୋକ ବିଶ୍ରୁତି—ବି)

**ସର୍ବ ଲୋକେଶ**—ସଂ. ବି—୧ । ଶିବ—1. Śiba. ୨ । ବ୍ରହ୍ମା—Sarba lokeśa 2. Brahmā. ୩ । ବିଷ୍ଣୁ—3. Bishṇu. ୪ । କୃଷ୍ଣ (ହି. ଶ)—4. Krushṇa.

**ସର୍ବ ଲୋହ**—ସଂ. ବି—୧ । (ବହୁବ୍ରୀହି) ଲୌହମୟ ବାଣ (ହେମଚନ୍ଦ୍ର) Sarba loha —1. An arrow made of iron. ୨ । (କର୍ମଧା) ସବୁ ଧାତୁ—2. All metals.

**ସର୍ବ ଲୌହ**—ସଂ. ବି—୧ । ତମ୍ବା (ହି. ଶ)—1. Copper. Sarba lauha ୨ । ବାଣ; ଶର (ହି. ଶ)—2. Arrow.

**ସର୍ବଶଃ**—ସଂ.ଭି.ବିଣ (ସର୍ବ+ପ୍ରକାରାର୍ଥେ ଶସ୍)—୧। ସବୁ ପ୍ରକାରେ—Sarbaśaḥ 1. In all ways. ୨ । ସାଧାରଣ ରୂପେ—2. Ordinarily.

**ସର୍ବ ଶକ୍ତିମତ୍ତା(ତ୍ତ୍ୱ)**—ସଂ. ବି ( ସର୍ବ ଶକ୍ତିମତ୍+ତା; ତ୍ୱ )—ସମସ୍ତ Sarba śaktimattā(ttwa) ଶକ୍ତିଯୁକ୍ତ ଅବସ୍ଥା—All-powerfulness; omnipotence.

**ସର୍ବ ଶକ୍ତିମୟ**—ସଂ. ବିଣ. ପୁଂ (ସର୍ବଶକ୍ତି+ଅନ୍ତ ଅର୍ଥରେ ମୟ୍)—Sarba śaktimaya ସର୍ବ ଶକ୍ତିମାନ୍ ( ଦେଖ ) (ସର୍ବ ଶକ୍ତିମୟୀ—ସ୍ତ୍ରୀ) Sarba śaktimān ( See )

**ସର୍ବ ଶକ୍ତିମାନ୍**—ସଂ. ବିଣ. ପୁଂ (ସର୍ବ+ଶକ୍ତି+ମତ୍; ୧ମା.୧ବ)—Sarba śaktimān ସକଳ ଶକ୍ତିର ଅଧିକାରୀ; ସବୁ ପ୍ରକାରେ (ସର୍ବ ଶକ୍ତିମତୀ—ସ୍ତ୍ରୀ) ବଳଶାଳୀ—Almighty; omnipo- (ସର୍ବ ଶକ୍ତିମତ୍ତ୍ୱ—ବି) tent. ସଂ. ବି—ପରମେଶ୍ୱର—The Almighty.

**ସର୍ବ ଶାନ୍ତି କୃତ୍**—ସ. ବିଣ. ପୁଂ ଓ ସ୍ତ୍ରୀ (ସର୍ବଶାନ୍ତି+କୃ ଧାତୁ+Sarba śānti krut କର୍ତ୍ତି କ୍ୱିପ୍)—ସକଳ ବିଷୟରେ ଶମ ଜାତକ—Assuaging every thing; bringing peace to every thing. ସ. ବି—ଦୁଷ୍ୟନ୍ତ ଓ ଶକୁନ୍ତଳା ପୁତ୍ର ଭରତରାଜ (ଶବ୍ଦ ରତ୍ନାବଳୀ)- (ଏହାଙ୍କର ପ୍ରସିଦ୍ଧ ନାମ ସର୍ବଦମନ)—A name of King Bharata, son of Śakuntalā.

**ସର୍ବ ଶାସ୍ତ୍ରଜ୍ଞ**—ସ. ବିଣ. ପୁଂ (ସର୍ବ ଶାସ୍ତ୍ର+ଜ୍ଞା ଧାତୁ+କର୍ତ୍ତି ଅ)—ସର୍ବ-Sarba śāstrajña ଶାସ୍ତ୍ର ଦର୍ଶୀ (ଦେଖ)—Sarba śāstra (ସର୍ବଶାସ୍ତ୍ରଜ୍ଞା, ସର୍ବଶାସ୍ତ୍ରଜ୍ଞତ୍ରୀ—ସ୍ତ୍ରୀ) darśi (See) (ସର୍ବଶାସ୍ତ୍ରଜ୍ଞତା, ସର୍ବଶାସ୍ତ୍ରଜ୍ଞତ୍ୱ—ବି) (ସର୍ବ ଶାସ୍ତ୍ର ଜ୍ଞାତା—ଅନ୍ୟରୂପ)

**ସର୍ବଶାସ୍ତ୍ରଦର୍ଶୀ**—ସ. ବିଣ. ପୁଂ (ସର୍ବଶାସ୍ତ୍ର+ଦୃଶ୍ ଧାତୁ+କର୍ତ୍ତିଇନ୍, Sarba śāstra darśi ୧ମା ୧ବ)—ଯେ ସବୁ ଶାସ୍ତ୍ର (ସର୍ବଶାସ୍ତ୍ରଦ୍ରଷ୍ଟା—ଅନ୍ୟରୂପ) ଜାଣେ—Versed in all (ସର୍ବଶାସ୍ତ୍ରଦର୍ଶିନୀ, ସର୍ବଶାସ୍ତ୍ରଦ୍ରଷ୍ଟ୍ରୀ—ସ୍ତ୍ରୀ) the Śāstras. (ସର୍ବଶାସ୍ତ୍ରଦର୍ଶିତା; ସର୍ବଶାସ୍ତ୍ରଦ୍ରଷ୍ଟୃତା—ବି)

**ସର୍ବଶାସ୍ତ୍ରବିଦ୍**—ସ. ବିଣ. ପୁଂ ଓ ସ୍ତ୍ରୀ ( ସର୍ବଶାସ୍ତ୍ର+ବିଦ୍ ଧାତୁ+କର୍ତ୍ତି Sarba śāstrabid କ୍ୱିପ୍)—ସର୍ବଶାସ୍ତ୍ରଦର୍ଶୀ (ଦେଖ)—Sarba śāstra darśi (See)
ସର୍ବଶାସ୍ତ୍ରବେତ୍ତା—ପୁଂ } ଅନ୍ୟରୂପ
ସର୍ବଶାସ୍ତ୍ରବେତ୍ତ୍ରୀ—ସ୍ତ୍ରୀ }

**ସର୍ବଶୁଚି**—ସ. ବି (ସର୍ବ=ସକଳ+ଶୁଚ=ପବିତ୍ର; ଯେ ସମସ୍ତଙ୍କୁ Sarba śuchi ଶୁଚ କରନ୍ତି; ବହୁବ୍ରୀହି)—୧ । ସୂର୍ଯ୍ୟ—1. The sun. ୨ । ଅଗ୍ନି=2. The fire.

**ସର୍ବଶୁଭ**—ସ. ବିଣ—(୭ମୀ ତତ୍ )ସକଳ ବିଷୟରେ ମଙ୍ଗଳସୂଚକ—Sarba śubha Auspicious or blissful in every way. ସ. ବି—ସକଳ ବିଷୟରେ ମଙ୍ଗଳ—Bliss or happiness in every matter.

**ସର୍ବଶୂନ୍ୟ ବାଦୀ**—ସ ବି—ବୌଦ୍ଧ (ହି. ଶ)—Sarbaśūnya bādi A Buddhist.

**ସର୍ବ ଶ୍ରେଷ୍ଠ**—ସ. ବିଣ. ପୁଂ (୭ମୀ ତତ୍)—୧ । ସର୍ବପ୍ରଧାନ (ଦେଖ) Sarba sreshṭha 1. Sarba pradhāna (See) (ସର୍ବଶ୍ରେଷ୍ଠା—ସ୍ତ୍ରୀ) ୨ । ସର୍ବୋତ୍ତମ—2. Best. (ସର୍ବଶ୍ରେଷ୍ଠତା—ବି)

**ସର୍ବସଂଗତ**—ସ. ବି—ଷଷ୍ଟିକ ଧାନ୍ୟ (ହି. ଶ)—A kind of Sarba saṁgata autumnal paddy. ସ. ବିଣ—ସର୍ବ ସଙ୍ଗତ (ଦେଖ)—Sarbasaṅgata (See)

**ସର୍ବ ସଂସର୍ଗ ଲବଣ**—ସ. ବି (ବୈଦ୍ୟକ)—ଔଷରକ; ଔଷର Sarba saṁsarga labaṇa ଲବଣ ବା ଦ୍ରୋଣୀ ଲବଣ;

ସୋରା; ଖାର ଲୁଣ (ସୁକ୍ଷକର୍ଷ)—Carbonate of soda; nitre; saltpetre.

ସର୍ବ ସଂହାର—ସ. ବ (୬ଷ୍ଠୀ ତତ୍)—୧ । ସମସ୍ତଙ୍କର ବିନାଶ— Sarba samhāra 1. Destruction of all. ୨ । (ଲକ୍ଷ୍ଣ୍ଣା) କାଳ—2. Time personified. ୩ । ମୃତ୍ୟୁ ଦେବତା—3. Death personified. (ସର୍ବସଂହାରକ, ସର୍ବସଂହର୍ତ୍ତା—ବିଣ. ପୁଂ)

ସର୍ବ ସଙ୍ଗତ—ସ. ବିଣ—୧ । ସର୍ବ ପ୍ରକାରେ ଉଚିତ—1. Proper Sarba sangata in every way. ୨ । ସର୍ବତ୍ର; ଉଚିତ—2. Proper everywhere. ସ. ବ—ଶସ୍ୟବିଧାନ୍ୟ—A kind of autumnal paddy.

ସର୍ବ ସତ୍ତ୍ୱ ରକ୍ଷିତ—ଦେ. ବିଣ—ସର୍ବ ସ୍ୱତ୍ୱ ରକ୍ଷିତ (ଦେଖ)— Sarba satwa rakhita Sarba swatwa rakshita (ସର୍ବସ୍ୱତ୍ୱ ସୁରକ୍ଷିତ—ଅନ୍ୟରୂପ) (See)
সর্বসত্ব রক্ষিত सर्वसत्वरक्षित

ସର୍ବ ସନ୍ନହନାର୍ଥକ—ସ. ବ—ସର୍ବାଭିସାର (ଦେଖ)— Sarba sannahanārthaka Sarbābhisāra (See)

ସର୍ବ ସମକ୍ଷ—ସ. ବ (୬ଷ୍ଠୀ ତତ୍)—ସମସ୍ତଙ୍କର ସମ୍ମୁଖ—Front Sarba samaksha of all; sight of all; public gaze.

ସର୍ବ ସମତା—ସ. ବ—ସମସ୍ତଙ୍କଠାରେ ସମଜ୍ଞାନ—Equality in Sarba samatā or equal regard to all matters.

ସର୍ବ ସମେତ—ଦେ. କ୍ରି ବିଣ—୧ । ସବୁ ସୁଦ୍ଧା—1. Altogether. Sarba sameta ୨ । ସମସ୍ତଙ୍କୁ ମିଶାଇଲେ—2. Totally; সবসমেত सबमिलाकर taking all together.

ସର୍ବସମ୍ମତ—ସ. ବିଣ (୩ୟା ତତ୍)—ସମସ୍ତଙ୍କ ଦ୍ୱାରା ସ୍ୱୀକୃତ— Sarba sammata Universally admitted.

ସର୍ବ ସମ୍ମତି—ସ. ବ—ସମସ୍ତଙ୍କର ଅଙ୍ଗୀକାର—Unanimity; universal acknowledgment.
Sarba sammati

ସର୍ବ ସମ୍ମତିକ୍ରମେ ଗୃହୀତ—ଦେ. ବିଣ (ସ. ସର୍ବ ସମ୍ମତିକ୍ରମେ ଗୃହୀତଂ) Sarba sammatikrame gruhīta ସମସ୍ତ ବ୍ୟକ୍ତିଙ୍କ ଦ୍ୱାରା সর্ব সম্মতিক্রমে গৃহীত ଅନୁମୋଦିତ—Unanimously accepted or passed; unanimously resolved.
सर्वसम्मतिसे स्वीकृत

ସର୍ବସହ—ସ. ବିଣ. ପୁଂ—ସର୍ବଂସହ (ଦେଖ)—Sarbamsaha Sarba saha (see) ସ. ବ (ବୈଦ୍ୟକ)—ଗୁଗ୍ଗୁଳ (ସର୍ବସହା—ସ୍ତ୍ରୀ) (ରତ୍ନମାଳା)—Indian bdellium.

ସର୍ବ ସହନୀକ(ସହନୀ)—ଦେ. ବିଣ. ପୁଂ—ଯେ ସବୁ ବିଷୟ ସହ୍ୟ Sarba sahanika(sahani) କରେ—Forbearing; সর্বসহা सर्वसहा bearing every treatment. (ସର୍ବସହନୀ—ସ୍ତ୍ରୀ)

ସର୍ବସାକ୍ଷୀ—ସ. ବ. ପୁଂ (୬ଷ୍ଠୀ ତତ୍; ସର୍ବ+ସାକ୍ଷିନ୍; ୧ମା ୧ବ; Sarbasākshī ଯେ ସମସ୍ତଙ୍କୁ ଦେଖୁଥାନ୍ତି)—୧ । ଈଶ୍ୱର— 1. God. ୨ । ଅଗ୍ନି—2. The fire. (ହ. ଶ) ୩ । ବାୟୁ (ହ.ଶ)—3. Air.

ସର୍ବ ସାଧନ—ସ. ବ (ବହୁବ୍ରୀହି)—୧ । ସ୍ୱର୍ଣ୍ଣ (ହ. ଶ)—1. Gold. Sarba sādhana ୨ । ଶିବ (ହ. ଶ)—2. Siba.

ସର୍ବସାଧାରଣ (ସାମାନ୍ୟ)—ସ. ବ—ସବୁ ଶ୍ରେଣୀର ଲୋକମାନେ; Sarba sādhārana (sāmānya) ଇତର ଓ ଭଦ୍ର ସବୁ ଶ୍ରେଣୀର ଲୋକେ—The public. ବିଣ.— ୧ । ଜନ ସାଧାରଣ ସମ୍ବନ୍ଧୀୟ—1. Relating to the public; public. ୨ । ସାମାନ୍ୟ—2. Ordinary.

ସର୍ବସାର—ସ. ବ( ୬ଷ୍ଠୀ ତତ୍ )—୧ । ସବୁ ପଦାର୍ଥର ସାର—1. Sarba sāra Extract or essence of all things. ୨ । ସବୁ ପଦାର୍ଥର ସାରାଂଶ—2. The summary or substance of all things. ସ. ବିଣ (୬ଷ୍ଠୀ ତତ୍)—ସବୁ ବସ୍ତୁ ମଧ୍ୟରେ ସାର ବା ପ୍ରଧାନ— Most substantial of all things.

ସର୍ବସିଦ୍ଧ—ସ. ବିଣ ( ୭ମୀ ତତ୍ )—୧ । ଯେ ସବୁ ବିଷୟ ସାଧନ- Sarba siddha କ୍ଷମ—1. Adept in everything. ସ. ବ—୧ । ଶିବଙ୍କ ଭୃତ୍ୟବିଶେଷ—1. Name of an attendant of Siba. ୨ । ଶ୍ରୀଫଳ (ପ୍ରକୃତିବାଦ)— 2. The Bael fruit and tree.

ସର୍ବସିଦ୍ଧା—ସ. ବ—ଚତୁର୍ଥୀ, ନବମୀ ଓ ଚତୁର୍ଦ୍ଦଶୀ ତିଥିତ୍ରୟ (ହ.ଶ) Sarbasiddhā Epithet of the 4th, 9th and 14th days of the lunar fortnight.

ସର୍ବସିଦ୍ଧି—ସ. ବ (୭ମୀ ତତ୍)—୧ । ସବୁ ବିଷୟରେ ସିଦ୍ଧି— Sarbasiddhi 1. Accomplishment or success in everything. ୨ । ଶ୍ରୀଫଳ; ବେଲ ( ଶବ୍ଦରତ୍ନାକର)—2. Marmalus fruit. ୩ । ପୂର୍ଣ୍ଣ ତର୍କ (ହ. ଶ)—3. Complete argument.

ସର୍ବସୁଦ୍ଧା—ଦେ. କ୍ରି. ବିଣ—ମୋଟରେ; ସର୍ବସମେତ— Sarbasuddhā Altogether.
সব সুদ্ধ सबमिलाकर

ସର୍ବସ୍ୱ—ସଂ. ବ (ସର୍ବ+ସ୍ୱ=ଧନ, ଦ୍ୱନ୍ଦ୍ୱ)—ସମୁଦାୟ ଧନ; ସବୁ Sarbaswa ସମ୍ପତ୍ତି—All property. [ ଭ—ଶଲ୍ୟଙ୍କ ପାଣ୍ଡବେ ହାରଣ ସର୍ବସ୍ୱ—କୃଷ୍ଣସିଂହ ମହାଭାରତ, ସଭା ।]

ସର୍ବ ସ୍ୱତ୍ୱ—ସଂ. ବ—ସବୁ ପ୍ରକାରର ସ୍ୱତ୍ୱ ବା ଅଧିକାର— Sarba swatwa All the rights concerning any thing.

ସର୍ବସ୍ୱତ୍ୱ ରକ୍ଷିତ—ସ. ବିଣ—ଯେଉଁ ପ୍ରକାଶିତ ପୁସ୍ତକ ଅଇନ ଅନୁସାରେ Sarbaswatwa rakshita ସରକାରଙ୍କ ଦପ୍ତରରେ (ସର୍ବସ୍ୱତ୍ୱସୁରକ୍ଷିତ—ଅନ୍ୟରୂପ) ରେଜେଷ୍ଟ୍ରି କରା ଯାଇଥାଏ ଓ

ସତ୍ତ୍ୱରୁ ଗ୍ରନ୍ଥକାରଙ୍କ ବିନା ଅନୁମତିରେ ଅନ୍ୟ କେହି କ୍ୟକ୍ତି କୌଣସି ଅଂଶ ଉଦ୍ଧାର ବା କ୍ୟବହାରପୂର୍ବକ ଅନ୍ୟ ଗ୍ରନ୍ଥ ପ୍ରକାଶ କରି ପାରିବେ ନାହିଁ—A book or publication of which all rights ( including the right of extracting, quoting, translating and copy right) are reserved for the author or other particular individual and registered under law.

ସର୍ବସ୍ୱଦକ୍ଷିଣ—ସଂ. ବିଣ ( ସର୍ବସ୍ୱ+ଦକ୍ଷିଣା; ବହୁବ୍ରୀହି )—ଯେଉଁ Sarbaswadakshina ଯାଗରେ ଯଜ୍ଞକର୍ତ୍ତା ନିଜର ସର୍ବସ୍ୱ ଦକ୍ଷିଣାରୂପେ ଦାନ କରନ୍ତି—(A vedic sacrifice) In which the performer gives away all his properties as present to Brāhmans. ସଂ. ବି—ବୈଦିକ ନାମକ ଯଜ୍ଞ—Name of a kind of vedic sacrifice.

ସର୍ବସ୍ୱନାଶ—ସଂ. ବି (କର୍ମଧା ଓ ୬ଷ୍ଠୀ ତତ୍) ସମସ୍ତ ସମ୍ପତ୍ତିର ବିନାଶ-Sarbaswanāsa Loss of all property.

ସର୍ବସ୍ୱାନ୍ତ—ସଂ. ବି (କର୍ମଧା ଓ ୬ଷ୍ଠୀ ତତ୍; ସର୍ବସ୍ୱ+ଅନ୍ତ)—ସର୍ବସ୍ୱ Sarbaswā nta ନାଶ (ଦେଖ)—Sarbaswanāsa (See) (ସର୍ବସ୍ୱାନ୍ତା—ସ୍ତ୍ରୀ) ସଂ. ବିଣ (ବହୁବ୍ରୀହି; ସର୍ବସ୍ୱ ହୋଇଅଛି ଅନ୍ତ ଯାହାର )—ଯାହାର ସର୍ବସ୍ୱ ନଷ୍ଟ ହୋଇଅଛି—Having all the properties exhausted.

ସର୍ବସ୍ୱୀ—ସଂ. ବି ( ସର୍ବସ୍ୱ+କର୍ତ୍ତ ଇନ୍; ୧ମା ୧ବ)—କର୍ଣ୍ଣସଙ୍କର Sarbaswi ଜାତିବିଶେଷ (ନାପିତ ଔରସରେ ଗୋପକନ୍ୟା ଗର୍ଭଜାତ ସନ୍ତାନ—ବ୍ରହ୍ମବୈବର୍ତ୍ତପୁରାଣ ବ୍ରହ୍ମଖଣ୍ଡ ୧୦ମ ଅଧ୍ୟାୟ)—Name of a mixed caste born of a cowherd woman and barber.

ସର୍ବସ୍ୟ—ଗ୍ରା. ସର୍ବ—ସମସ୍ତଙ୍କର—Of all. (ଉ—ଜାଣ ଏ Sarbasya ସର୍ବସ୍ୱେ ହୋଇ ପ୍ରଣ ଯେ ସର୍ବସ୍ୟ—ପ୍ରାଚୀ. ସବାର ସବକା ଶିବସ୍ୱରୋଦୟ ।)

ସର୍ବହର—ସଂ. ବିଣ. ପୁଂ ( ସର୍ବ+ହୃ ଧାତୁ+କର୍ତ୍ତ ଅ )—ଯେ ସବୁ Sarbahara ହରଣ କରେ—One who takes away (ସର୍ବହାରା—ଅନ୍ୟ ବିଣ ରୂପ) all or everything.

ସର୍ବହର } ବିଣ ସ୍ତ୍ରୀ—
ସର୍ବହାରଣୀ }
ସଂ. ବି. ୧ । ମୃତ୍ୟୁ—1. Death. ୨ । କାଳ—2. Time personified. ୩ । ଶିବ—3. Śiba. ୪ । ଯମ—4. The God of death.

ସର୍ବହିତ—ସଂ. ବି ( ୬ଷ୍ଠୀ ତତ୍ )—୧ । ସମସ୍ତଙ୍କର ମଙ୍ଗଳ—Sarba hita 1. The good of all; universal weal ୨ । ମରିଚ (ରାଜନିର୍ଘଣ୍ଟ)—2. Black pepper. (ସର୍ବହିତକର—ଅନ୍ୟ ବିଣ ରୂପ) ସଂ ବିଣ-ସମସ୍ତଙ୍କ ମଙ୍ଗଳକର—Beneficial to all.

ସର୍ବା—ଦେ. ବି. ପୁ ( ଅନାଦରାର୍ଥକ )—ସର୍ବେଶ୍ୱରର ଡାକ ନାମ—Sarbā Nick name of "Sarbeswara" (ସବୁ । ଅଦରାର୍ଥକ)

ସର୍ବାଂଶ—ସଂ ବି—ସମୁଦାୟ ଅଂଶ—Sarbāmsa All parts.

ସର୍ବାକ୍ଷ—ସ. ବି ( ବହୁବ୍ରୀହି; ସର୍ବ=ସର୍ବତ୍ର+ଅକ୍ଷି ଯାହାର )—Sarbāksha ରୁଦ୍ରାକ୍ଷ ( ଦେଖ )—Rudrāksha ( See )

ସର୍ବାଖ୍ୟ—ସ. ବି (ବହୁବ୍ରୀହି, ସର୍ବ+ଅଖ୍ୟା+ଅ)—ପାରଦ (ହି. ଶ) Sarbākhya —Mercury.

ସର୍ବାଘୋଟ—ଦେ. ବିଣ—ସର୍ବତ୍ର ଘୋଟିଥିବା—Enveloping Sarbāghota everything; overclouding. [ଉ—ଘୁଟଘୁଟେ କଳଦ ହୋଇଥାଏ ସର୍ବାଘୋଟ । ଚପଳା ଖେଳୁଥାଇ सर्वाघोट ଝଟଝଟ—କବିସୂର୍ଯ୍ୟ. ସଙ୍ଗୀତ । ]

ସର୍ବାଙ୍ଗ—ସ. ବି ( କର୍ମଧା )—୧ । ସମସ୍ତ ଅଙ୍ଗ; ସମୁଦାୟ ଦେହ—Sarbānga 1. All limbs of the body; the whole body. ୨ । ସମସ୍ତ ଅଂଶ—2. All parts. ୩ । ସମସ୍ତ ବେଦାଙ୍ଗ—3. All the Bedāngas.

ସର୍ବାଙ୍ଗ ସୁନ୍ଦର—ସ. ବିଣ. ପୁଂ ( ବହୁବ୍ରୀହି; ସର୍ବାଙ୍ଗ ଅଟେ ସୁନ୍ଦର Sarbānga sundara ଯାହାର )—୧ । ଯାହାର ସମସ୍ତ ଅବୟବ ସୁନ୍ଦର—1. ( a person ) Having all the limbs graceful or symmetrical. ୨ । ଯାହା ଦେହରେ କୌଣସି ଖୁଣ ନାହିଁ—2.(a person) Having no blemish in any limb of the body. ୩ । ଯେଉଁ ବସ୍ତୁର ସମସ୍ତ ଅଂଶ ସୁନ୍ଦର—3. Nice or faultless in every respect. [ସର୍ବାଙ୍ଗସୁନ୍ଦର ରସ—ଅନ୍ୟରୂପ] ୪ । ସ୍ୱର୍ଣ୍ଣାଦି ଧାତୁ ଘଟିତ ଆୟୁର୍ବେଦୋକ୍ତ ଔଷଧବିଶେଷ ( ଭୈଷଜ୍ୟ ରତ୍ନାବଳୀ )—4. Name of a medicinal preparation. [ ଦ୍ର—ପାରଦର, ଗନ୍ଧକର, ଟାଙ୍ଗଣାର, ମୁକ୍ତାର, ପ୍ରବାଳର, ଶଙ୍ଖର, ସୁନାର ଭସ୍ମମାନ ଏକତ୍ର ଲେମ୍ବୁ ରସରେ ଘୋଟି ଗଜପୁଟରେ ଉତ୍ତପ୍ତ କରି ଏହା ପ୍ରସ୍ତୁତ କରାଯାଏ ଏବଂ ଅନୁପାନ ବିଶେଷ ସହ ଏହା ବାତଜ, ଶ୍ଳେଷ୍ମଜ, ପିତ୍ତଜ ସନ୍ନିପାତ, ଅର୍ଶ, ଗ୍ରହଣୀ, ମେହ, ଶୂଳ, ଭଗନ୍ଦର ରୋଗରେ ପ୍ରୟୋଗ କରାଯାଏ । ]

ସର୍ବାଙ୍ଗାନବଦ୍ୟ—ସ. ବିଣ ( ବହୁବ୍ରୀହି; ସର୍ବାଙ୍ଗ ଅଟେ ଅନବଦ୍ୟ ବା Sarbāngānabadya ଅନିନ୍ଦ୍ୟ ଯାହାର)—ସର୍ବାଙ୍ଗସୁନ୍ଦର—(ସର୍ବାଙ୍ଗାନବଦ୍ୟା—ସ୍ତ୍ରୀ ) Having all the limbs graceful and symmetrical or faultless.

ସର୍ବାଙ୍ଗୀଣ—ସଂ. ବିଣ ( ସର୍ବାଙ୍ଗ+ସମ୍ବନ୍ଧାର୍ଥେ. ଈନ )—୧ । ସର୍ବାଙ୍ଗ Sarbāngina ସମ୍ବନ୍ଧୀୟ—1. Relating to all the limbs. ୨ । ସର୍ବାଙ୍ଗର ହିତକର—2. Beneficial to all the limbs. ୩ । ସର୍ବାଙ୍ଗ କ୍ୟାପକ—3. Pervading through all the limbs. ୪ । ନିଖୁଣ—4. Faultless. ୫ । ସମସ୍ତ ଅବୟବ ଯୁକ୍ତ—5. Having all the limbs whole.

ସର୍ବାଙ୍ଗୀଣ ଉନ୍ନତି—ସଂ. ବି—ସବୁ ବିଷୟରେ ଉନ୍ନତି—
Sarbāngiṇa unnati Improvement in all respects.

ସର୍ବାଙ୍ଗୀନ (ଇତ୍ୟାଦି)—ଦେ. ବିଣ ( ସର୍ବାଙ୍ଗୀଣର ଅଶୁଦ୍ଧ ବନାନ )—
Sarbāngina (etc) ସର୍ବାଙ୍ଗୀଣ ଇତ୍ୟାଦି ( ଦେଖ )—
सर्वाङ्गीन सर्बांगीन Sarbāngiṇa etc ( See )

ସର୍ବାଣୀ—ସଂ. ବି. ସ୍ତ୍ରୀ ( ସର୍ବ=ମହାଦେବ+ସ୍ତ୍ରୀ. ଈ; ଅନ୍. ଆଗମ;
Sarbāṇī ଛାଗଳ )—ସର୍ବ ପତ୍ନୀ; ଭବାନୀ; ଦୁର୍ଗା—
Goddess Durgā.

ସର୍ବାତିଥି—ସଂ. ବିଣ ( ବହୁବ୍ରୀହି )—ଯେଉଁ ବ୍ୟକ୍ତି ସବୁ ଅତିଥିଙ୍କ
Sarbātithi ସତ୍କାର କରେ ( ବ୍ୟ. ଶ )—( a person )
Extending hospitality to all comers; hospitable to all.

ସର୍ବାତ୍ମା—ସଂ. ବି (ସର୍ବ+ଆତ୍ମନ୍; ୬ଷ୍ଠୀ ତତ୍.; ସମସ୍ତ ବିଶ୍ୱର ଆତ୍ମା)—
Sarbātmā ୧ । ପରଂବ୍ରହ୍ମ ( ବ୍ୟ. ଶ )—1. The Universal Soul. ୨ । ଶିବ ( ବ୍ୟ. ଶ )—2. Śiba.
୩ । ଜିନ; ଅର୍ହତ୍ ( ବ୍ୟ. ଶ )—3 Jaina saint.

ସର୍ବାଦୃତ—ସଂ. ବିଣ. ପୁଂ ( ୩ୟା ତତ୍ )—ସମସ୍ତଙ୍କଦ୍ୱାରା ଆଦୃତ—
Sarbādṛuta Esteemed by all.
[ ସର୍ବାଦୃତା—ସ୍ତ୍ରୀ ]

ସର୍ବାଧିକାର—ସଂ. ବି—୧ । ( ୭ମୀ ତତ୍ ) ପୂର୍ଣ୍ଣ ପ୍ରଭୁତ୍ୱ—1. Full
Sarbādhikāra mastery; mastery in all matters.
୨ । ( କର୍ମଧା ) ସମସ୍ତ ଅଧିକାର—
2. All Sorts of authority.

ସର୍ବାଧିକାରୀ—ସଂ. ବିଣ. ପୁଂ (ସର୍ବାଧିକାର+ଇନ୍; ୧ମା. ୧ବ)—୧ ।
Sarbādhikārī ସବୁ ଅଧିକାର ସମ୍ପନ୍ନ—1. Having all authority or full mastery. ୨ । ଯାହାର
ସମସ୍ତଙ୍କ ଉପରେ ଅଧିକାର ଥାଏ; ମନ୍ତ୍ରୀ ପ୍ରଭୃତି
2. Having authority over all. ୩ । ସମସ୍ତଙ୍କ
ଉପରସ୍ଥ ହାକିମ—3. Highest authority. ସଂ.
ବି—ବଙ୍ଗ ଦେଶୀୟ କାୟସ୍ଥଙ୍କର ବଂଶୋପାଧିବିଶେଷ—
(ସର୍ବାଧିକାରିଣୀ—ସ୍ତ୍ରୀ) A family-title in Bengal.

ସର୍ବାନନ୍ଦ—ସଂ. ବିଣ. ପୁଂ ( ସର୍ବ=ସକଳ ବିଷୟରେ ଆନନ୍ଦ ଯାହାର;
Sarbānanda ବହୁବ୍ରୀହି)—ଯାହାର ସବୁ ବିଷୟରେ ଆନନ୍ଦ—
[ସର୍ବାନନ୍ଦା—ସ୍ତ୍ରୀ] One who is happy or glad under all circumstances and in all matters.
ସଂ. ବି. ପୁଂ—ଭୈରବବିଶେଷ—
Name of an attendant of Śiba.

ସର୍ବାନୁକାରିଣୀ—ସଂ. ବିଣ. ସ୍ତ୍ରୀ—ସର୍ବାନୁକାରୀର ସ୍ତ୍ରୀଲିଙ୍ଗ—Femi
Sarbānukāriṇī nine form of Sarbānukārī
ସଂ. ବି. ସ୍ତ୍ରୀ—ଶାଳପର୍ଣ୍ଣୀ ( ବୃକ୍ଷବିଶେଷ ) ( ଦେଖ )
Śālaparṇṇī ( See )

ସର୍ବାନୁକାରୀ—ସଂ. ବିଣ. ପୁଂ ( ସର୍ବ+ଅନୁ+କୃ ଧାତୁ+କର୍ତ୍ତୃ,
Sarbānukārī ଇନ୍; ୧ମା. ୧ବ )—ଯେ ସମସ୍ତଙ୍କୁ ଅନୁକରଣ
[ସର୍ବାନୁକାରିଣୀ—ସ୍ତ୍ରୀ] କରେ—Imitating all.

ସର୍ବାନୁକୂଳ—ଦେ. ବି—ସବୁ କାର୍ଯ୍ୟାରମ୍ଭ—Beginning of all
Sarbānukūḷa works. [ଉ—ହଂସା କପଟ ଦୂରେ ଦେଇ ।
ସର୍ବାନୁକୂଳେ କୃଷ୍ଣ ଭଜ—ଜଗନ୍ନାଥ. ଭାଗବତ । ]
ସଂ. ବିଣ—ସମସ୍ତଙ୍କର ଅନୁକୂଳ—Favourable to all.

ସର୍ବାନୁଭୂତି—ସଂ. ବି—୧ । (୬ଷ୍ଠୀ ତତ୍) ସକଳ ବିଷୟରେ ଅନୁ-
Sarbānubhūti ଭୂତି ବା ବୋଧ—1. Experience or cognisance of all matters. ୨ । ଜୈନ ସନ୍ନ୍ୟାସି-
ବିଶେଷ ( ୨୪ ପ୍ରକାର ଜୈନ ସନ୍ନ୍ୟାସୀ ମଧ୍ୟରୁ ଏକତମ )
2. One of the 24 classes of Jaina ascetics. ସଂ. ବିଣ. ପୁଂ ( ସର୍ବ=ସକଳ ବିଷୟରେ
ଅନୁଭୂତି ଯାହାର; ବହୁବ୍ରୀହି )—ତତ୍ତ୍ୱଜ୍ଞାତା—
Knowing the Great Truth.

ସର୍ବାଯମକ—ଦେ. ବି—ସର୍ବଯମକ (ଦେଖ)
Sarbājamaka Sarbajamaka. (See)

ସର୍ବାର୍ଥ—ସଂ. ବି—୧ । ସମସ୍ତ ପ୍ରୟୋଜନ—1. All necessity
Sarbārtha or requirements. ୨। ସମସ୍ତ ବ୍ୟବହାର—
2. All use. ୩ । ସବୁ ଉଦ୍ଦେଶ୍ୟ—3. All aims.
(ସର୍ବାର୍ଥା—ସ୍ତ୍ରୀ) ସଂ. ବିଣ. ପୁଂ—(ବହୁବ୍ରୀହି; ସର୍ବ ହୋଇଅଛି
ଅର୍ଥ ଯାହାର)—ଚରିତାର୍ଥ—One who has attained his aims.

ସର୍ବାର୍ଥ ସାଧକ—ସଂ. ବିଣ. ପୁଂ—୧ । ଯେ ସମସ୍ତ ଇଷ୍ଟସିଦ୍ଧ କରଏ—
Sarbārtha sādhaka 1. One who fulfils all the desires of persons. ୨ । ସମସ୍ତ ପ୍ରୟୋଜନ
ସାଧକ—2. Fulfilling all requirements. ୩ ।
ସିଦ୍ଧିଦାୟକ—3. Causing success. ବି. ପୁଂ—
ଇଷ୍ଟସିଦ୍ଧିକାରୀ ବ୍ୟକ୍ତି—Granter or fulfiller of
(ସର୍ବାର୍ଥ ସାଧିକା—ସ୍ତ୍ରୀ) one's desires.

ସର୍ବାର୍ଥ ସାଧନ—ସଂ. ବି (୬ଷ୍ଠୀ ତତ୍)—ସବୁ ପ୍ରୟୋଜନ ବା
Sarbārtha sādhana ଉଦ୍ଦେଶ୍ୟର ସିଦ୍ଧି—Fulfilment of all requirements or desires or aims.

ସର୍ବାର୍ଥ ସାଧିକା(ନୀ)—ସଂ. ବି. ସ୍ତ୍ରୀ—ଦୁର୍ଗା—Goddess Durgā.
Sarbārtha sādhikā(nī) ସଂ. ବିଣ. ସ୍ତ୍ରୀ—ସର୍ବାର୍ଥ ସାଧକର
ସ୍ତ୍ରୀଲିଙ୍ଗ—Feminine of Sarbārtha sādhaka. (See)

ସର୍ବାର୍ଥ ସିଦ୍ଧ—ସଂ. ବିଣ. ପୁଂ (ସର୍ବ ଅର୍ଥ ହୋଇଅଛି ସିଦ୍ଧ ଯାହାର;
Sarbārtha siddha ବହୁବ୍ରୀହି )—ପୂର୍ଣ୍ଣମନସ୍କାମ; ଯାହାର
(ସର୍ବାର୍ଥସିଦ୍ଧା—ସ୍ତ୍ରୀ) ସକଳ ବାଞ୍ଛା ସିଦ୍ଧ ହୋଇଅଛି; ସିଦ୍ଧାର୍ଥ—
One who has all his aims or desires fulfilled. ସଂ. ବି—୧ । ସିଦ୍ଧାର୍ଥ; ବୁଦ୍ଧଦେବ
(ଅମର)—1. The Buddha. ୨ । ( ନାମ )
ରାମଚନ୍ଦ୍ରଙ୍କ ରାଜତ୍ୱ ସମୟର ଜଣେ ଭିକ୍ଷୁକ ବ୍ରାହ୍ମଣ—
2. Name of a Brahman living in the reign of king Rāma. [ ଉ—ଏ ଗୋଟିଏ
କୁକୁରକୁ ଆଘାତ କରିବାରୁ କୁକୁରଟି ଯାଇ ରାମଚନ୍ଦ୍ରଙ୍କ

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ୍ | ଡ଼ଅ | ଙ୍କ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଘ | ସ | ଙ୍ଗ | ଇଅ | ଙ୍କ | ନ୍ତ |

କଳଙ୍କରେ ବ୍ରାହ୍ମଣ ନାମରେ ଅଭିଯୋଗ କଲେ । କିନ୍ତୁ ବ୍ରାହ୍ମଣ ଅବଧ୍ୟ ବୋଲି ମନ୍ତ୍ରୀମାନେ ପରାମର୍ଶ ଦେବାରୁ ରାମଚନ୍ଦ୍ରଙ୍କ ଉକ୍ତ କୁକୁର ପ୍ରାର୍ଥନା କଲା—"ଏ ବ୍ରାହ୍ମଣକୁ କୁଳପତି ପଦ ପ୍ରଦାନ କରି ଏହାକୁ କାଳଞ୍ଜର ଅଞ୍ଚଳର ଅଧ୍ୟକ୍ଷ କରନ୍ତୁ ।"

ରାମଚନ୍ଦ୍ର ଏପରି ଅଦ୍ଭୁତ ପ୍ରାର୍ଥନାର କାରଣ ପଚାରିବାରୁ କୁକୁର କହିଲା, "ମୁଁ ପୂର୍ବ ଜନ୍ମରେ ଏହି ପଦରେ ଅଧିଷ୍ଠିତ ହୋଇ ସତ୍କର୍ମ କରୁଥିଲି; କିନ୍ତୁ ଉକ୍ତ ପଦର ଅବଶ୍ୟମ୍ଭାବୀ ପାପାଚରଣ ଯୋଗୁଁ ଏ ଜନ୍ମରେ କୁକୁର ହୋଇ ଜନ୍ମଗ୍ରହଣ କରିଅଛି ।]

ସର୍ବାର୍ଥସିଦ୍ଧି—ସଂ. ବି (ଷଷ୍ଠୀ ତତ୍)—ସବୁ ପ୍ରୟୋଜନ ବା ଉଦ୍ଦେଶ୍ୟର Sarbārthasiddhi ସଫଳତା—Fulfilment of all aims or desires.

ସର୍ବାଶୀ—ସଂ. ବି ଓ ବିଣ. ପୁଂ (ସର୍ବ+ଅଶ୍ ଧାତୁ=ଖାଇବା+ Sarbāśī କର୍ତ୍ତୃ, ଇନ୍; ୧ମା ୧ବ)—ସର୍ବଭକ୍ଷ (ଦେଖ)— (ସର୍ବାଶିନୀ—ସ୍ତ୍ରୀ) Sarbabhaksha. (See)

ସର୍ବାସ୍ତ୍ର—ସଂ. ବିଣ. ତ୍ରି (ବହୁବ୍ରୀହି)—ସକଳ ଅସ୍ତ୍ରଯୁକ୍ତ— Sarbāstra Armed with all sorts of weapons. (ସର୍ବାସ୍ତ୍ରା—ସ୍ତ୍ରୀ)

ସର୍ବାସ୍ତ୍ରା—ସଂ. ବି. ସ୍ତ୍ରୀ—ଜୈନମତରେ ଷୋଡ଼ଶ ବିଦ୍ୟାଦେବୀଙ୍କ Sarbāstrā ଅନ୍ତର୍ଗତା ଦେବୀ ବିଶେଷ—One of the sixteen Deities mentioned in the Jaina Tantras.

ସର୍ବାନ୍ତଃକରଣରେ—ଦେ· କ୍ରି· ବିଣ—ମନର ସମ୍ପୂର୍ଣ୍ଣ ଗ୍ରାହ ହେଉଛ; Sarbāntahkaranare କୌଣସି ପ୍ରକାରେ ଦେବୁଶତାଗ୍ର ନ ସର୍ବାନ୍ତଃକରଣେ ସର୍ବାନ୍ତଃକରଣସେ ହୋଇ—With a full heart.

ସର୍ବାନ୍ତ୍ୟ—ସଂ. ବି ( ବହୁବ୍ରୀହି, ସର୍ବ+ଅନ୍ତ୍ୟ )—ଯେଉଁ ପଦ୍ୟର Sarbāntya ଚାରି ଚରଣର ଅନ୍ତ୍ୟବର୍ଣ୍ଣ ଏକ ଅଟେ (ଛ. ଶ)— A poem having the same letter at the end of its four feet or lines.

ସର୍ବାନ୍ନ ଭକ୍ଷକ—ସଂ. ବିଣ ପୁଂ (ସର୍ବାନ୍ନ+ଭକ୍ଷ୍ ଧାତୁ+କର୍ତ୍ତୃ ଅକ)— Sarbānna bhakshaka ଉଦର ପିଶାଚ; ଯେଉଁ ବ୍ୟକ୍ତି [ସର୍ବାନ୍ନୀନ—ଅନ୍ୟରୂପ] ସମସ୍ତଙ୍କ ପାକରେ ଅନ୍ନ ଭକ୍ଷଣ କରେ ସର୍ବାନ୍ନ ଭକ୍ଷିକା } ସ୍ତ୍ରୀ ସର୍ବାନ୍ନୀନା ( ହେମଚନ୍ଦ୍ର )—( a person ) Who takes food at the hands of all persons.

ସର୍ବାନ୍ନ ଭୋଜୀ—ସଂ. ବିଣ. ପୁଂ—ସର୍ବାନ୍ନ ଭକ୍ଷକ ( ଅମର ) ( ଦେଖ ) Sarbānnabhojī Sarbānna bhakshaka ( See )

ସର୍ବାବସର—ସଂ. ବି ( ବହୁବ୍ରୀହି )—ଅର୍ଦ୍ଧରାତ୍ର ( ତ୍ରିକାଣ୍ଡଶେଷ )— Sarbābasara Midnight.

ସର୍ବାଭିସନ୍ଧୀ—ସଂ. ବିଣ. ତ୍ରି (ସର୍ବ+ଅଭି+ସମ୍+ଧା.ଧାତୁ=ଲକ୍ଷ୍ୟ Sarbābhisandhī କରିବା+କର୍ତ୍ତୃ· ଇନ୍ ୧ମା ୧ବ)—୧ ।

ସର୍ବାଭିସନ୍ଧକ } ସ୍ତ୍ରୀ ସର୍ବାଭିସନ୍ଧିକା ସକଳାଭିସନ୍ଧାନବିଶିଷ୍ଟ; ସବୁ ପ୍ରକାର ବଞ୍ଚନା ଯୁକ୍ତ—1. Full of all kinds of deceit. ୨ । ଯେ ସମସ୍ତଙ୍କୁ ଉପହାସ କରେ— 2. Jeering at all. ୩ । ଯେ ସମସ୍ତଙ୍କୁ ଧୋକା ଦିଏ (ମନୁ)—3. Inveighing all persons. ସଂ. ବି—ଛଦ୍ମ ତାପସ; ବୈଡ଼ାଳବ୍ରତିକ ( ଅମର )— A false ascetic.

ସର୍ବାଭିସାର—ସଂ. ବି—ଚତୁରଙ୍ଗ ସୈନ୍ୟସନ୍ନାହ; ଚତୁରଙ୍ଗ ସେନା Sarbābhisāra ସନ୍ନିବେଶ ( ଅମର )—Battle array formed with the four classes of soldiers.

ସର୍ବାମାତ୍ୟ—ସଂ. ବି—ପରିବାରର ବା ଗୃହର ସବୁ ବ୍ୟକ୍ତି ( ଭୃତ୍ୟ Sarbāmātya ପରିଜନାଦି )—All the persons of a household ( including servants and dependants).

ସର୍ବାହ୍ନ—ସଂ. ବି ( ସର୍ବ+ଅହନ୍ )—ସମସ୍ତ ଦିନ; ଦିନ ତମାମ୍— Sarbāhna The whole day.

ସର୍ବିଅର୍—ବୈଦେ. ବି—ସର୍ଭେଅର୍ ( ଦେଖ ) Sarbiar Sarbhear ( See )

ସର୍ବିଅରି—ବୈଦେ. ବି—ସର୍ଭେଅରି ( ଦେଖ ) Sarbiari Sarbeari ( See )

ସର୍ବିସ୍ (ଇତ୍ୟାଦ)—ବୈଦେ· ବି—ସର୍ଭିସ୍ ଇତ୍ୟାଦ ( ଦେଖ ) Sarbis (etc) Sarbhis etc ( See )

ସର୍ବୀୟ—ସଂ. ବିଣ. ପୁଂ ( ସର୍ବ+ସମ୍ବନ୍ଧାର୍ଥେ, ଈୟ )—ସର୍ବ ସମ୍ବନ୍ଧୀୟ Sarbīya [ ସର୍ବୀୟା—ସ୍ତ୍ରୀ ] Relating to all.

ସର୍ବୁ—ଦେ. ବି—(ଆଦରାର୍ଥକ) ସର୍ବେଶ୍ୱରର ଡାକ ନାମ— Sarbu Nickname for Sarbeśwara.

ସର୍ବେ—ଦେ· ସର୍ବ ( ସଂ. ସର୍ବ ଶବ୍ଦର ପୁଂଲିଙ୍ଗ ୧ମା ବହୁବଚନ )— Sarbe ୧ । ସମସ୍ତେ—1. All. ୨ । ସବୁ ବ୍ୟକ୍ତିମାନେ— सर्वे, सकले सब 2. All men. ୩ । ସବୁ ପ୍ରାଣୀମାନେ— সার্বে सर्व 3. All beings. ବୈଦେ· ବି (ଇଂ. ସର୍ଭେ) —ସର୍ଭେ ( ଦେଖ )—Sarbhe ( See )

ସର୍ବେଅର୍—ବୈଦେ. ବି (ଇଂ. ସର୍ଭେୟର୍)—ସର୍ଭେଅର୍ (ଦେଖ) Sarbear Sarbhear ( See ) সার্ভেয়ার सर्वेयार

ସର୍ବେଇବ—ଦେ· ଅ ( ସଂ. ସର୍ବୈବ )—ସର୍ବୈବ ( ଦେଖ ) Sarbe-iba সর্বৈব सबही Sarbaiba ( See )

ସର୍ବେବ—ଦେ. ଅ ( ସଂ; ସର୍ବୈବ )—ସର୍ବୈବ ( ଦେଖ )— Sarbeba সর্বৈব सबही Sarbaiba ( See )

ସର୍ବେଶ୍ୱର—ସଂ.ବି.ପୁଂ (ଷଷ୍ଠୀ ତତ୍; ସର୍ବ+ଈଶ୍ୱର)—୧ । ସମସ୍ତଙ୍କର Sarbeśwara ପ୍ରଭୁ; ଏକାଧିପତି—1. The Lord of all. ୨ । ସାର୍ବଭୌମ ( ଦେଖ )—2. Sārbabhauma

'ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ'ଖୋଜିବେ, 'ମୁଚ' ନ ମିଳିଲେ 'ମୂଢ' ଖୋଜିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଗଳ' ନ ପାଇଲେ'ଅର୍ଗଳ' ଦେଖିବେ;'ଅଲବତ' 'ନ ପାଇଲେ 'ଅଲ୍‌ବତ୍'ଦେଖିବେ

( See ) ୩ । ମହାଦେବ; ଶିବ—3. God Śiba

ସର୍ବେଶ୍ୱର ଦେ. ବି. ପୁଂ—ଲୋକଙ୍କ ନାମ—
सर्वेश्वर A name given to males.

ସର୍ବେସର୍ବା—ଦେ. ବିଣ ( ସଂ. ସର୍ବେ=ସର୍ବ ଶବ୍ଦର ପୁଂ. ବହୁବଚନ
Sarbesarbā +ସର୍ବା=ସର୍ବ ଶବ୍ଦର ସ୍ତ୍ରୀ. ବହୁବଚନ )—
ସର୍ବେସର୍ବା ୧ । ସମସ୍ତଙ୍କ ଉପରେ କର୍ତ୍ତା; ଏକାଧିପତି—1. Master or lord over all; the supreme lord; overlord. ୨ । କୌଣସି ସ୍ଥାନର ବା ବିଷୟର ଏକମାତ୍ର କର୍ତ୍ତା ବା ନାୟକ—2. The supreme master or leader in a concern or place. ୩ । କୌଣସି ବ୍ୟକ୍ତିର ଏକମାତ୍ର ଆଶ୍ରୟ ବା ଅବଲମ୍ବନ—
सर्वेसर्वा
3. The only refuge of a person.

ସର୍ବୈବ—ସଂ. ସର୍ବ. ( ସର୍ବେ+ଏବ କିମ୍ବା ସର୍ବ+ଏବ )—ସବୁହିଁ;
Sarbaiba ସମସ୍ତେ—All; everything. ଦେ. ଅ— ସମ୍ପୂର୍ଣ୍ଣରୂପେ—Totally; fully. [ ଯ—କଥିତ ଭାଷାରେ 'ତାହାର ଦାବି ସର୍ବୈବ ମିଥ୍ୟା ଓ ଫରେବ ଅଟେ' ବୋଲି ଲେଖାଯାଏ । ]

ସର୍ବୈଶ୍ୱର୍ଯ୍ୟ—ସଂ. ବି ( କର୍ମଧା )—ସକଳ ଐଶ୍ୱର୍ଯ୍ୟ—All magni-
Sarbaiśwarjya ficence or prosperity.

ସର୍ବୈଶ୍ୱର୍ଯ୍ୟ ବିଧାତା—ସଂ. ବିଣ. ପୁଂ ( ୬ଷ୍ଠୀ ତତ୍; ସର୍ବୈଶ୍ୱର୍ଯ୍ୟ+ବି-
Sarbaiśwarjya bidhātā ଧାତୃ; ୧ମା. ୧ବ )—ଯେ
[ ସର୍ବୈଶ୍ୱର୍ଯ୍ୟ ବିଧାତ୍ରୀ—ସ୍ତ୍ରୀ ] ମନୁଷ୍ୟଙ୍କୁ ସକଳ ସମ୍ପଦ ଦିଅନ୍ତି— Bestowing all sorts of magnificence or supremacy. ବି. ପୁଂ—ସକଳ ସମ୍ପଦଦାତା— Giver of all sorts of magnificene.

ସର୍ବୋତ୍ତମ—ସଂ. ବିଣ ( ୭ମୀ ତତ୍ )—ସମସ୍ତଙ୍କ ମଧ୍ୟରେ ଉତ୍ତମ—
Sarbottama The best; the best of all.
[ ସର୍ବୋତ୍ତମତା—ବି ]

ସର୍ବୋତ୍ତର—ସଂ. ବିଣ ( ୭ମୀ ତତ୍ )—ସର୍ବପ୍ରଧାନ—Chief.
Sarbottara [ ସର୍ବୋତ୍ତରତା—ବି ]

ସର୍ବୋତ୍କୃଷ୍ଟ—ସଂ. ବିଣ—ସମସ୍ତଙ୍କ ମଧ୍ୟରେ ଉତ୍କୃଷ୍ଟ—Best of all;
Sarbotkrushta [ସର୍ବୋତ୍କୃଷ୍ଟା—ସ୍ତ୍ରୀ] most excellent.
[ସର୍ବୋତ୍‌କୃଷ୍ଟ—ଅନ୍ୟରୂପ] [ସର୍ବୋତ୍କୃଷ୍ଟତା—ବି]

ସର୍ବୋପର(ରେ)—ଦେ. ଅ ( ସ. ସର୍ବୋପରି )—୧ । ସମସ୍ତଙ୍କ ଉପରେ
Sarbopara(re) —1,Over all. ୨। ସମସ୍ତଙ୍କ ଅପେକ୍ଷା ଉଚ୍ଚ;
ସର୍ବୋପରି सर्वोपरि ଉଚ୍ଚତମ—2. Uppermost highest.

ସର୍ବୋପରି—ସଂ. ଅ ( ୬ଷ୍ଠୀ ତତ୍ )—ସର୍ବୋପର ( ଦେଖ )—
Sarbopari Sarbopara ( See )

ସର୍ବୌଘ—ସଂ. ବି ( ସର୍ବ+ଓଘ )—୧ । ଚତୁରଙ୍ଗ ସୈନ୍ୟ ସଜ୍ଜା
Sarbaugha ( ଅମର )—1. Battle-array consisting of all classes of soldiers. ୨ । ଗୁରୁ ବେଗ (ମେଦିନୀ)—2. Great force or velocity.

ସର୍ବୌଷଧି—ସଂ. ବି—କୁଷ୍ଠ, ମୁରାମାଂସୀ, ଜଟାମାଂସୀ, ହରିଦ୍ରା, ଦାରୁ-
Sarbaushadhi ହରିଦ୍ରା, ଶୈଳେୟ, ବଚ, ଚମ୍ପକ, ଶଠୀ ଓ ମୁସ୍ତା,ଏ ଦଶ ଦ୍ରବ୍ୟର ସମାହାର—A mixture consisting of ten herbs and used in mixing with bath-water. [ ଦ୍ର—ଏହି ଦଶଟି ଦ୍ରବ୍ୟକୁ ବାଟି, ଜଳପୂର୍ଣ୍ଣ କଳସୀରେ ମିଶାଇ ମନ୍ତ୍ରପୂତ କରି ସେହି ଜଳରେ ସ୍ନାନ କଲେ ସର୍ବ ଗ୍ରହଦୋଷ ଉପଶମିତ ହୁଏ । ମତାନ୍ତରରେ କୁଷ୍ଠ, ଜଟାମାଂସୀ, ହରିଦ୍ରା, ବଚ, ଶୈଳେୟ, ଚନ୍ଦନ, ମୁରା, ରକ୍ତଚନ୍ଦନ, କର୍ପୂର ଓ ମୁଥାକୁ ସର୍ବୌଷଧି ବୋଲାଯାଏ—ଶବ୍ଦକଳ୍ପଦ୍ରୁମ । ]

ସର୍ବୌଷଧିଗଣ—ସଂ. ବି—ମୁରାମାଂସୀ ଅାଦି ଔଷଧିସମୂହ—The
Sarbaushadhigana herbs consisting of Sarbaushadhi. [ ଦ୍ର—ଏଥିର ଶ୍ଳୋକ—ମୁରାମାଂସୀ ବଚ କୁଷ୍ଠଂ ଶୈଳେୟଂ ରଜନୀ ଦ୍ୱୟଂ । ଶଠୀ ଚମ୍ପକ ମୁସ୍ତଞ୍ଚ ସର୍ବୌଷଧିଗଣଃ ସ୍ମୃତଃ—ଶବ୍ଦଚନ୍ଦ୍ରିକା । ] [ ଦ୍ର—ପଦ୍ମ-ପୁରାଣ ଉତ୍ତରଖଣ୍ଡ ୧୦୨ ଅଧ୍ୟାୟରେ ୨୨ ଗୋଟି ଦ୍ରବ୍ୟର ସମବାୟକୁ ସର୍ବୌଷଧିଗଣ ବୋଲି କୁହା ଯାଇଅଛି । ]

ସର୍ବୌଷଧି ଜଳ—ସଂ. ବି ( ମଧ୍ୟପଦଲୋପୀ କର୍ମଧା )—ବଟା ହୋଇ-
Sarbaushadhi jala ଥିବା ସର୍ବୌଷଧି ଗୋଳା ଯାଇଥିବା ସ୍ନାନାର୍ଥ ଜଳ—Water mixed with the pasted Sarbaushadhi for bathing. [ଦ୍ର—ଏ ଜଳରେ ସ୍ନାନ କଲେ ଗ୍ରହଦୋଷ ଶମିତ ହୁଏ ବୋଲି ଶାସ୍ତ୍ରରେ ଲିଖିତ ହୋଇଅଛି । ]

ସର୍ଭରି (ଇତ୍ୟାଦି)—ଦେ'ଦେ. ବିଣ ଓ ବି—ସର୍କାରି ଇତ୍ୟାଦି (ଦେଖ)
Sarbhari (etc) Sarkari etc ( See )

ସର୍ଭାଇଭର—ବୈଦେ. ବିଣ ( କଥିତ. ଇଂ )—କୌଣସି ବ୍ୟକ୍ତିଙ୍କ
Sarbhāibhar ମୃତ୍ୟୁ ପରେ ତାଙ୍କ ଅଂଶୀୟ ଯେଉଁ ବ୍ୟକ୍ତି
ସାର୍ଭାଇଭର ତାଙ୍କ ଏକାନ୍ନବର୍ତ୍ତୀ ପରିବାରରେ ଜୀବିତ ଥାଆନ୍ତି
सर्भाइभर —A survivor in a joint Hindu family. [ ଦ୍ର—ମିତାକ୍ଷରା ସ୍ମୃତି ଲିଖିତ ବ୍ୟବସ୍ଥା ଅନୁସାରେ ଏକାନ୍ନବର୍ତ୍ତୀ ଭାଇମାନଙ୍କ ମଧ୍ୟରୁ ଜଣେ ଭାଇ ଅପୁତ୍ରକ ହୋଇ ମଲେ ତାହାର ହିସାକୁ ତା ସର୍ଭାଇଭର-ମାନେ ପାଆନ୍ତି । ]

ସର୍ଭା(ର୍ଭେ)ଣ୍ଟ—ବୈଦେ. ବି ( ଇଂ. ସର୍ଭେଣ୍ଟ )—ଭୃତ୍ୟ—Servant.
Sarbhā(rbhe)nt ସାର୍ଭେଣ୍ଟ सरभेंट

ସର୍ଭିଅର୍—ବୈଦେ. ବି ( ଇଂ )—ସର୍ଭେଅର୍ ( ଦେଖ )
Sarbhiar Sarbhear ( See )

ସର୍ଭିଅରି—ଦେ. ବ ଓ ବଣ—ସର୍ଭେଅରି ( ଦେଖ )
Sarbhiari Sarbheari ( See )

ସର୍ଭିସ୍—ବୈଦେ· ବ ( ଇଂ, ସର୍ଭିସ୍ )—୧ । ଚାକିରି—1. Service.
Sarbhis ୨ । ସରକାରୀ ଚାକିରି—2. Public service;
ସାର୍ଭିସ service under the Government. ୩ ।
सरभिस ଗଭର୍ଣ୍ଣମେଣ୍ଟର କାର୍ଯ୍ୟ—3. Government business. ୪ । ଧର୍ମମନ୍ଦିରରେ ଉପାସନା—4. Prayer or service in a church or temple. ୫ । ଭଡ଼ା ମଟର ଆଦି ନେଇ ନିର୍ଦ୍ଦିଷ୍ଟ ସ୍ଥାନରୁ ନିର୍ଦ୍ଦିଷ୍ଟ କାଳ-କ୍ରମରେ ଗମନାଗମନ—5. Motor or lorry service; regular plying of conveyance for hire from one place to another.

ସର୍ଭିସ୍ କାର୍ଡ଼ (ର୍ଡ)—ବୈଦେ. ବ ( କଟକୀଅ ) ( ଇଂ. ସର୍ଭିସ୍ କାର୍ଡ )
Sarbhis kārd(rd) —ସରକାରୀ କର୍ମ ସମ୍ପର୍କରେ ଲେଖା-
ସାର୍ଭିସ କାର୍ଡ ଯିବା ପୋଷ୍ଟକାର୍ଡ—Service card.
सरभिस कार्ड [ ସର୍ଭିସ୍ ପୋଷ୍ଟ କାର୍ଡ଼(ର୍ଡ)—ଅନ୍ୟରୂପ ]

ସର୍ଭିସ୍(ସି) ଟିକ୍(କେ)ଟ—ବୈଦେ. ବ (କଟକୀଅ) (ସର୍ଭିସ୍ ଟିକେଟ)-
Sarbhis(si) tika(ke)ta ସରକାରୀ କର୍ମରେ ପଠାଯିବା
(ସର୍ଭିସ୍ ପୋଷ୍ଟେଜ୍—ଅନ୍ୟରୂପ) ଚିଠି ଉପରେ ଲଗାଯିବା ଡାକ
ସର୍ଭିସ୍(ସି)ଟିକଲ ଅନ୍ୟରୂପ ଟିକଟ—Service ticket;
ସର୍ଭିସ୍(ସି)ଟିକଲ postal service-tickets or
ସାର୍ଭିସ ଟିକଟ सरभिस टिकट postage stamp.

ସର୍ଭିସ୍(ସି) ବହି—ଦେ. ବ (କଟକୀଅ)—ଯେଉଁ ଖାତାରେ କୌଣସି
Sarbhis(si) bahi କର୍ମଚାରୀଙ୍କ ଚାକିରିର ଧାରାବାହିକ ଇତିହାସ
( ସର୍ଭିସ୍ ବୁକ୍—ବୈଦେ ରୂପ ) ଲେଖା ହୋଇ ରହେ—
ସାର୍ଭିସ ବହି Service book of a servant kept in
सरभिस किताब the place of his work.

ସର୍ଭେ—ବୈଦେ.ବ (କଟକୀଅ)(ଇଂ)—ଜମି ମାପ—Survey. [ଦ୍ର—
Sarvey ସର୍ଭେ ଅନେକ ପ୍ରକାରର ଯଥା—୧ । ଚେନ୍ ସର୍ଭେ
ସାର୍ଭେ (chain survey)—ଆଧୁନିକ ଶିକୁଳିରେ ଲମ୍ବାର ଶିକୁଳି
सर्वे (୬୬ ଫୁଟ ବା ୧୦୦ ଫୁଟ ଲମ୍ବ) ଦ୍ୱାରା ଜମି ମାପ ।]
୨ । ଟ୍ରିଗନମେଟ୍ରିକାଲ୍ ସର୍ଭେ (Trigonometrical survey)—ଆଧୁନିକ ତ୍ରିକୋଣମିତି ଶାସ୍ତ୍ର ଅନୁସାରେ ଦୁର୍ଭେଦ୍ୟ ଜଙ୍ଗଲ ଓ ପାହାଡ଼ ଆଦିର ମାପ ।
୩ । ଫରେଷ୍ଟ୍ ସର୍ଭେ ( Forest survey )—ଜଙ୍ଗଲର ମାପ ।
୪ । କାଡାଷ୍ଟ୍ରାଲ୍ ସର୍ଭେ (Cadastral survey)—ସରକାରୀ ରେକର୍ଡ୍ସର ଆଦରେ ପୂରଣ କରିବା ଉଦ୍ଦେଶ୍ୟରେ କରାଯିବା ମାପ ।
୫ । ଟପୋଗ୍ରାଫିକାଲ୍ ସର୍ଭେ (Topographical survey)—ଦେଶର ଭିନ୍ନ ଭିନ୍ନ ସ୍ଥାନରେ ଥିବା ନଦୀ, ପର୍ବତ, ଗ୍ରାମ, ଗୃହ ଆଦିର ଅବସ୍ଥିତି ଦେଖାଇବା ଉଦ୍ଦେଶ୍ୟରେ କରାଯିବା ମାପ ।
୬ । ରେଭିନ୍ୟୁ ସର୍ଭେ (Revenue survey)—ଭୂମି ପାଇଁ ଗଭର୍ଣ୍ଣମେଣ୍ଟଙ୍କୁ ଦେୟ ରାଜସ୍ୱ କିର୍ଣ୍ଣୟ କରିବାପାଇଁ କରାଯିବା ମାପ ।
୮ । ମିଲିଟେରି ସର୍ଭେ (Military survey)—ସାମରିକ ସୁବିଧା କର୍ତ୍ତବ୍ୟାର୍ଥ କରାଯିବା ମାପ ।
୧। ପ୍ଲେନ୍ଟେବୁଲ ସର୍ଭେ (Plaintable survey)—ପ୍ଲେନ୍ ଟେବୁ ନାମକ ଯନ୍ତ୍ର ସାହାଯ୍ୟରେ କରାଯିବା ମାପ ।
୯ । କଣ୍ଟୁର ସର୍ଭେ (Contour survey)—କୌଣସି ଅଞ୍ଚଳର କଳିତ୍ର ସୀମା ରେଖା ନିରୂପଣାର୍ଥ ମାପ ।

ସର୍ଭେ ଅ(ଆ)ପି(ଫି)ସ୍—ବୈଦେ. ବ (କଟକୀଅ) (ଇଂ. ସର୍ଭେ ଅଫିସ୍)
Sarbhe a(ā)pi(phi)s —ଯେଉଁ କଚେରୀରେ ସର୍ଭେ
ସାର୍ଭେ ଆଫିସ ବିଭାଗର କାଗଜ ପତ୍ର ରହେ ଓ କର୍ମଚାରୀମାନେ
सर्वे ऑफिस କାର୍ଯ୍ୟ କରନ୍ତି—Office of the Survey Department.

ସର୍ଭେ ଅପି(ଫି)ସର୍—ବୈଦେ. ବ (କଟକୀଅ) (ଇଂ. ସର୍ଭେ ଅଫିସର୍)-
Sarbhe api(phi)sar ସର୍ଭେ ବିଭାଗର ଜିଲ୍ଲାର ଉଚ୍ଚତମ
ସାର୍ଭେ ଆଫିସର କର୍ମଚାରୀ—Survey Officer of a district.
सर्वे ऑफिसर [ଦ୍ର—ରାଜ୍ୟର ରାଜସ୍ୱ ନିର୍ଦ୍ଧାରଣାର୍ଥ କରାଯିବା ସର୍ଭେର ଉଚ୍ଚତମ କର୍ମଚାରୀ ଯେବେ ରାଜସ୍ୱ ବନ୍ଦୋବସ୍ତ ବିଭାଗର ଉଚ୍ଚତମ କର୍ମଚାରୀ ହୋଇ ଥାଆନ୍ତି ତାଙ୍କୁ Survey and Settlement Officer (ସର୍ଭେ ଏଣ୍ଡ ସେଟଲମେଣ୍ଟ ଅଫିସର) ବୋଲାଯାଏ । ସର୍ଭେ ଅଫିସରଙ୍କ ଅଧସ୍ତନ ସହକାରୀ କର୍ମଚାରୀଙ୍କୁ (Assistant Survey Officer) ଆସିଷ୍ଟାଣ୍ଟ ସର୍ଭେ ଅଫିସର୍ ବୋଲାଯାଏ ।]

ସର୍ଭେ ଅମିନ୍—ବୈଦେ· ବ (କଟକୀଅ) (ଇଂ. ସର୍ଭେ + ଫା. ଅମିନ୍)—
Sarbhey amin ଜମି ମାପ କରିବା କର୍ମଚାରୀ—
ସାର୍ଭେ ଆମିନ୍ सर्वे अमीन The Survey Amin.

ସର୍ଭେଅର୍—ବୈଦେ· ବ (ଇଂ. ସର୍ଭେଅର)—ଜମି ମାପ କରିବା ବ୍ୟକ୍ତି
Sarbhear —Surveyer.
ସାର୍ଭେୟାବ सर्वेअर

ସର୍ଭେଅର୍ ଜେନ(ନେ)ର(ରା)ଲ୍—ବୈଦେ. ବ (କଟକୀଅ) (ଇଂ.
Sarbhear jen(ne)ra(rā)l ସର୍ଭେୟର୍ ଜେନେରାଲ୍)—
ସାର୍ଭେୟାବ ଜେନେବାଲ ସରକାରଙ୍କ ମାପ ବିଭାଗର ପ୍ରଦେଶର ବା
सर्वेअर जेनेरल ସମସ୍ତ ରାଜ୍ୟର ସର୍ବୋଚ୍ଚ କର୍ମଚାରୀ—Survey General.

ସର୍ଭେଅରି—ଦେ. ବ ( ଇଂ. ସର୍ଭେଅରସିପ୍ )—ସର୍ଭେଅରର କର୍ମ ବା
Sarbheari ଚାକିରି—The work or post of a sur-
ସାର୍ଭେୟାବି veyer. ଦେ· ବଣ—୧ । ସର୍ଭେଅର ସମ୍ବନ୍ଧୀୟ—
सर्वेअ·ी 1. Relating to a surveyer. ୨ । ସର୍ଭେ ସମ୍ବନ୍ଧୀୟ—2. Relating to survey.
(ଯଥା—ସର୍ଭେଅରି ମାଣ ।)

ସର୍ଭେଅରି ମାଣ—ଦେ. ବ (କଟକୀଅ)—ବ୍ରିଟିସ୍ ସରକାରଙ୍କର ସର୍ଭେ
Sarbheari māṇa ମାପ ଅନୁସାରେ ମାପ କରାଯିବା ୨୪ ଦସ୍ତି

ଏକର ପଦ୍‌ଦସ୍ତ ଦାଣ୍ଡ ମାଣ; ଏକର୍‌; ସର୍ବର ମାଣ—Acre; a Māṇa
एकर measured by the 24 dasti rod.

ସର୍ଭେ ଅଇନ—ବୈଦେ. ବ (କଚରୁଆ) (ଇଂ. ସର୍ଭେ+ଫା.ଅଇନ)
Sarbhe āin —ଯେଉଁ ଅଇନରେ ଜମି ମାପ ସମ୍ବନ୍ଧୀୟ ବଧି-
(ସର୍ଭେ ଅଇନ୍—ଅନ୍ୟରୂପ) ମାନ ଲେଖା ଥାଏ—The Sur-
सार्भे आइन vey Act; the law relating to
सर्भे कानुन (ସର୍ଭେଅଲ୍, ସର୍ଭେଲି—ଅନ୍ୟରୂପ) survey.

ସର୍ଭେଇଙ୍ଗ୍—ବୈଦେ. ବ ( ଇଂ. ସର୍ଭେଇଙ୍ଗ )—
Sarbheiṅg ଜମି ମାପ କରିବା କାର୍ଯ୍ୟ—Surveying.
(ସର୍ଭେଇଂ—ଅଶୁଦ୍ଧ ଉଚ୍ଚାରଣ ଓ ଲେଖନ) सार्भेइंग् सर्भेइंग

ସର୍ଭେ ଇଲାକା—ବୈଦେ. ବ (କଚରୁଆ) (ଇଂ. ସର୍ଭେ+ଫା. ଇଲାକା)
Sarbhe ilākā —ସର୍ଭେ ଡିପାର୍ଟମେଣ୍ଟ ( ଦେଖ )
सार्भे एलाका Sarbhe dipāṛtmeṇt ( See )
सर्भे इलाका

ସର୍ଭେ ଇସ୍କୁଲ—ବୈଦେ. ବ ( ଇଂ. ସର୍ଭେ ସ୍କୁଲ୍ )—ଯେଉଁ
Sarbhe iskula ବିଦ୍ୟାଳୟରେ ଛାତ୍ରମାନଙ୍କୁ ଜମିର ମାପ ଅଦ
सार्भे इस्कुल ଶିକ୍ଷା ଦିଆଯାଏ—Survey school; a
सर्भे इस्कूल school for the training of students in surveying.

ସର୍ଭେ ଡିପାଟ(ର୍ଟ)ମେଣ୍ଟ—ବୈଦେ. ବ (କଚରୁଆ) (ଇଂ. )—ଜମି ମାପ
Sarbhe dipāt(rṭ)meṇt କରିବା ପାଇଁ ନିଯୁକ୍ତ ସରକାରୀ
सार्भे डिपार्टमेंट् ବିଭାଗ—The Survey Department.
सर्भे डिपार्टमेंट [ଦ୍ର—ଏହି ବିଭାଗର ଭିନ୍ନ ଭିନ୍ନ କର୍ମଚାରୀଙ୍କର ଇଂରେଜି ନାମ ଅଛି । ଯଥା—ସୁପରିଣ୍ଟେଣ୍ଡେଣ୍ଟ, ଅସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ, ଅଫିସର୍, ଅମିନ, ସୁପର୍‌ଭାଇଜର୍ ଇତ୍ୟାଦି ।]

ସର୍ଭେ ନକ୍ସା—ବୈଦେ. ବ (କଚରୁଆ)—(ଇଂ. ସର୍ଭେ+ଫା. ନକ୍ସା)—
Sarbhe naksā ଜମିମାପର ବିବରଣ ଯେଉଁ ନକ୍ସାରେ
(ସର୍ଭେ ନକସା—ଦେ. ରୂପ) ଅଙ୍କିତ ହୋଇଥାଏ—A survey
सार्भे नक्सा map; a map prepared or published in
सर्भे नकसा connection with the Survey opera-
(ସର୍ଭେମା[ମେ,ମ୍ୟା]ପ—ଅନ୍ୟରୂପ) tions of a tract of country- [ଦ୍ର—କୌଣସି ଅଞ୍ଚଳରେ ସରକାରୀ ସର୍ଭେ ହୋଇଗଲେ ଉକ୍ତ ସମସ୍ତ ଅଞ୍ଚଳର ମଜମୁନ୍ ନକ୍‌ସା ଓ ପ୍ରତ୍ୟେକ ମଉଜାର ସ୍ୱତନ୍ତ୍ର ନକ୍‌ସାମାନ ତିଆର କରାଯାଏ ଓ ଉକ୍ତ ଅସଲ ନକ୍‌ସାମାନଙ୍କରୁ ଲିଥୋଗ୍ରାଫ୍ ପ୍ରଣାଳୀରେ ମୁଦ୍ରିତ ନକ୍ସାମାନ ତିଆର କରାଯାଇ ତାହା ସର୍ବସାଧାରଣଙ୍କୁ ନିର୍ଦ୍ଧାରିତ ମୂଲ୍ୟରେ ବିକ୍ରି କରାଯାଏ । ପ୍ରତ୍ୟେକ ଜିଲ୍ଲାର କଲେକ୍ଟରମାନଙ୍କ ଅଫିସରେ ଏ ନକ୍‌ସାମାନ ବିକ୍ରି ପାଇଁ ରଖା ଯାଇଥାଏ ।]

ସର୍ଭେ ନ(ଲ)ମ୍ବର୍—ବୈଦେ. ବ (କଚରୁଆ) (ଇଂ. ସର୍ଭେ ନମ୍ବର)—
Sarbhe na(la)mbar ସର୍ଭେ ମାପରେ ଭିନ୍ନ ଭିନ୍ନ ଜମି ଚିହ୍ନିତ
( ସର୍ଭେ ନ[ଲ]ଅ[ମ୍ବ]ମ୍ବର—ଗ୍ରାମ୍ୟରୂପ ) କରିବା ପାଇଁ ନକ୍ସାରେ
सार्भे नम्बर ପ୍ରତ୍ୟେକ ଜମି(ପ୍ଲଟ)ରେ ଚିହ୍ନିତ ହୋଇଥିବା ସଂଖ୍ୟା—
सर्भे नम्बर The Survey-number of a plot of land.

ସର୍ଭେ ପାଟି(ର୍ଟି)—ବୈଦେ. ବ (ଇଂ. ସର୍ଭେ ପାର୍ଟୀ)—ଜମି ମାପ
Sarbhe pāṭi(rṭi) କରିବା ପାଇଁ ନିଯୁକ୍ତ କର୍ମଚାରୀଙ୍କ ଦଳ—
सार्भेपाटि सर्भे पार्टी A surveying party.

ସର୍ଭେ ମା(ମେ,ମ୍ୟା)ନୁ(ନ୍ୟୁ)ଅ(ଏ)ଲ୍—ବୈଦେ. ବ (ଇଂ. ସର୍ଭେ ମାନୁଅଲ )—ସର୍ଭେ
Sarbhe mā(me,myā)nu(nyu)a(e)l
सार्भेम्यानुअल् ବିଭାଗର କର୍ମଚାରୀଙ୍କ ବ୍ୟବହାରାର୍ଥ ଗଭର୍ଣ୍ଣମେଣ୍ଟଙ୍କ
सर्भे म्यानुएल ଦ୍ୱାରା ପ୍ରକାଶିତ ସର୍ଭେ ସଂବନ୍ଧୀୟ ଅଇନ୍ ଓ ବିଧି ମାନ ଥିବା ପୁସ୍ତକ—A manual of Survey.

ସର୍ଭେ ଯନ୍ତ୍ର—ଦେ. ଡ—ଜମି ମାପ କରିବା ପାଇଁ ବ୍ୟବହୃତ ଯନ୍ତ୍ର—
Sarbhe jantra Surveying instrument.
सार्भेयन्त्र सर्भे यन्त्र

ସର୍ଭେ ସେଟଲ୍‌ମେଣ୍ଟ—ବୈଦେ. ବ (ଇଂ. ସର୍ଭେ ସେଟ୍‌ଲ୍‌ମେଣ୍ଟ୍)—
Sarbhe seṭalmeṇt ଜମିର ମାପ ଓ ଭୂମିକର ନିରୂପଣାର୍ଥ
सार्भे सेटेलमेंट् ସରକାରୀ ବିଭାଗ ଓ କର୍ମ ପ୍ରଣାଳୀ ଦ୍ୱୟ—
सर्भे सेटलमेंट The Survey and Settlement Departments and operations.

ସର୍ଭେ ସ୍କୁଲ—ବୈଦେ. ବ ( ଇଂ. ସର୍ଭେ ସ୍କୁଲ୍ )—ସର୍ଭେ ଶିକ୍ଷା ଦିଆ
Sarbhe skula ଯିବା ବିଦ୍ୟାଳୟ—Survey school.
सार्भे स्कुल सर्भे स्कूल

ସର୍ଭେ ହାକିମ—ବୈଦେ. ବ (ଇଂ. ସର୍ଭେ+ଫା. ହାକିମ୍)—ସର୍ଭେ
Sarbhe hākima ବିଭାଗର ଉଚ୍ଚ କର୍ମଚାରୀ—An official
सार्भे हाकिम सर्भे हाकिम of the Survey Department.

ସର୍ମ—ବୈଦେ. ବ (ଫା. ଶର୍‌ମ୍)—ସରମ୍ (ଦେଖ)
Sarma Saram (See)
ଦେ. ବ (ସଂ. ଶ୍ରମ)—ଶ୍ରମ; ପରିଶ୍ରମ—Labour.

ସର୍ଲା—ପ୍ରାଦେ (ଲରୁଆ) ବଣ—ପିଚ୍ଛିଳ; ଖସଡ଼ା—
Sarlā Slimy; slippery.

ସର୍ଲି ପଡ଼ିବା—ପ୍ରାଦେ (ସମ୍ବଲପୁର) କ୍ରି—ସର୍ଡ଼ି ପଡ଼ିବା (ଦେଖ)
Sarli paṛibā Saṛdi paṛibā. (See)

ସର୍ଲି ମାରିବା—ପ୍ରାଦେ. (ପାଟଣା) କ୍ରି—ସୁ ସୁ ଶବ୍ଦ କରିବା—
Sarli māribā To produce a hissing sound.

ସର୍ଲି ଯିବା—ପ୍ରାଦେ (ପାଟଣା) କ୍ରି—ଗୋଡ ଖସି ଯିବାରୁ ପଡ଼ିଯିବା—
Sarli jibā To trip or stumble on account of the feet slipping on a slippery road or thing.

ସର୍ଶିଆ—ପ୍ରାଦେ. (ସମ୍ବଲପୁର) ଶ—୧ । ସମକାଳୀନ; ସମସାମୟିକ—
Sarsiā 1. Contemporary. ୨ । ସମବୟସ୍କ—2. Of the same age coeval. ୩ । ସମକକ୍ଷ—3. Rival; equal.

ସର୍ଷପ—ସଂ. ବ (ସୃ. ଧାତୁ=ଗମନ କରିବା+କର୍ତ୍ତୃ. ଅପ; 'ଷ'
Sarshapa ଆଗମ)—୧ । ସୋରିଷ ନାମକ ତୈଳବୀଜ ଓ
ସବିଷା, ସବିଷ ତଦ୍ଭିଦ ଗୁଳ୍ମ—1. Mustard;
सर्षों, राई, कालिराइ, सरसों, लाहि; rape seed; Brassica
बनारसिराइ, लाग राई, घोर राई Nigra; Brassica Napus.
ଫା. ସର୍ଷ୍ପ୍ [ଦ୍ର—ଏହା କୃଷିଜାତ ଗୁଳ୍ମ

ବହାର, ଡୋସ୍
ଅ. ଭୂଫେଅବସୁଦ୍
ତେ. ଗୁ ଗୁ ଅଶାଲୁ, ଅବାଲୁ
ମ. ମୋହରୀ
ସଂସ୍କୃତ ପର୍ଯ୍ୟାୟ—କଟୁକ, ସ୍ନେହ, ତନ୍ତୁଭ, କଦମ୍ବକ, ସରଷପ, ତନ୍ତୁକ, କଟୁସ୍ନେହ, ସର୍ଷପ, ରାଜଷବକ, ଗ୍ରହଘ୍ନ, କୁଷ୍ଠନାଶକ ।

ଅଟେ । ଏଥିର ଫୁଲ ହଳଦିଆ ଓ ଛୁଇଁ ସରୁ । ଛୁଇଁ ମଧ୍ୟରେ ଛୋଟ ଛୋଟ ମଞ୍ଜି ଥାଏ । ଏହି ଗଛର ପତ୍ରର ଚେକ୍ଷ ଓ ଲୋମ ନାହିଁ । ଏ ଗଛର ବର୍ଣ୍ଣ ନାଲି । ଏ ଗଛକୁ ଘଣାରେ ପେଡ଼ିଲେ ଏଥିରୁ ତେଲ (ସୋରିଷ ତେଲ, ସର୍ଷପତୈଳ) ବାହାରେ । ଏହି ତେଲକୁ ନାକଦଣ୍ଡିରେ ଓ ଗାଦ ତଳରେ ଘଷିଲେ ଶର୍ଦ୍ଦି ଭଲ ହୁଏ; ନାନା ଜାତିର ସୋରିଷ ଅଛି । ଯଥା—

(୧) ରାଇ ସୋରିଷ (ସଂ. ରାଜିକା, ରାଜସର୍ଷପ); ଏହି ସୋରିଷ ଛୋଟ ଏବଂ ନାଲି ଓ ଖଇରା ରଙ୍ଗର । ଏହାର ପତ୍ରର ମୂଳ ଅଗ ଅପେକ୍ଷା ସରୁ ।

(୨) ଧଳା ସୋରିଷ (ସଂ. ଶ୍ୱେତିକା, ଗୌର, ସିଦ୍ଧାର୍ଥ ବା ଶ୍ୱେତ ସର୍ଷପ)—

ଏହାର ବାଜ ଗୌରବର୍ଣ୍ଣ ।

(୩) ରକ୍ତ ସର୍ଷପ ବା ସାଧାରଣ ସୋରିଷ ।

ଏହି ସବୁ ଜାତିର ସୋରିଷର ବାଜକୁ ପେଡ଼ିଲେ ସେଥିରୁ କଟୁ ବା ସୁଗନ୍ଧ ତେଲ ବାହାରେ । ଏ ତେଲ ଦେହରେ ଲଗାଇବା, ଜାଳିବା, ଛୁଅଣ, ଭଜା ଓ ଅଚାର ପ୍ରସ୍ତୁତରେ ବ୍ୟବହୃତ ହୁଏ । ରାଇ ସୋରିଷରୁ ତେଲ ବେଶୀ ବାହାରେ । ସୋରିଷ ବଟାକୁ ବେସର ବୋଲାଯାଏ ଏବଂ ଏହା ଛୁଅଣରେ ଓ ଅଚାରରେ ବ୍ୟବହୃତ ହୁଏ ।

ବୈଦ୍ୟଶାସ୍ତ୍ର ଅନୁସାରେ ଏହା ତିକ୍ତ, କଟୁରସ, କଟୁବିପାକ, ସ୍ନିଗ୍ଧ, ଉଷ୍ଣ, ଉଷ୍ଣବୀର୍ଯ୍ୟ, କଫବାତଘ୍ନ, ରକ୍ତପିତ୍ତ ଓ ଅଗ୍ନିବର୍ଦ୍ଧକ, କଣ୍ଡୁ, କୁଷ୍ଠ, କୃମି ଓ ଗ୍ରହଦୋଷନାଶକ ଅଟେ ।] ୨ । ୬ ଲିଖ୍ୟା ପରିମାଣ—2. A very small standard of weight.

**ସର୍ଷପ ତୈଳ**—ସଂ. ବି ( ସର୍ଷପ+ସ୍ନେହାର୍ଥେ ତୈଳ )—ସର୍ଷପରୁ
Sarshapa taila ଜାତ ତୈଳ; ସୋରିଷ ତେଲ—
Mustard oil.

**ସର୍ଷପାରିଲା**—ବୈଦେ. ବି (ଇଂ ସାର୍ସାପାରିଲା)—ଚେମିଡ଼ି ଲଇ ମୂଳ
Sarshapārilā ଅବହାରା ଓବିଜ୍ଞାନକ ପ୍ରକ୍ରିୟାରେ ପ୍ରସ୍ତୁତ ରକ୍ତ-
সার্ষাপারিলা सार्सापैरिला ଶୋଧକ ପାନୀୟ ଔଷଧ-
ବିଶେଷ—Sarsapa rilla; a medicinal decoction made from the dried root of certain plants.

**ସର୍ଷପୀ**—ସଂ ବି—ଖଞ୍ଜନକା; ଖଞ୍ଜନପକ୍ଷୀ, କଜଳପାତିଆଜାତୀୟ ଚଢ଼େଇ
Sarshapi [ଜିକାଣ୍ଡ ଶେଷ]—The blue wagtail (bird).

**ସର୍ସର**—ଦେ. ବିଣ ଓ ଅ—ସରସର (ଦେଖ)
Sarsara Sarasara (See)

**ସର୍ସରି**—ବୈଦେ. ବିଣ—ସରସରି (ଦେଖ)
Sarsari Sarāsari (See)

**ସର୍ହଦ୍**—ବୈଦେ. ବି (କଚେରିଆ)—(ଅ. ସର୍‌ହଦ୍)—୧ । ସୀମା—
Sarhad 1. Boundary. ୨ । କୌଣସି ସ୍ଥାନର
সরহদ सरहद् ଚତୁଃସୀମା—2. The boundary of a place on all sides.

**ସର୍ହଦ୍ ଖୁଣ୍ଟ(ଣ୍ଟି)**—ଦେ. ବି (କଚେରିଆ)—ସୀମାଚିହ୍ନଯୁକ୍ତ ସ୍ତମ୍ଭ—
Sarhad khunta(nti) A boundary pillar.
সরহদ খুঁটো सरहद् खूंटी

**ସର୍ହଦ୍ ବିବାଦ**—ଦେ ବି (କଚେରିଆ)—ସୀମା ବିଷୟ ନେଇ ବିବାଦ—
Sarhad bibāda A boundary dispute.
(ସର୍ହଦ୍ ମକଦ୍ଦମା—ଅନୁରୂପ)
সরহদ বিবাদ सरहद् विवाद्

**ସର୍ହଦ୍ ସୀମା(ସୀମାନା)**—ଦେ. ବି—ଜମିର ସୀମା ରେଖା—
Sarhad simā(simānā) Boundary line.
সরহদ সীমা सरहद् सीमा

**ସଲ୍ (ଧାତୁ)**—ସଂ.—ଶୀଘ୍ର ଗମନ କରିବା—
Sal(root) To go swiftly.

**ସଲ୍**—ଦେ. ବି. ( ହେବ୍ରୁ ନାମ )—ବାଇବଲ୍ ଲିଖିତ ରାଜା
Sal ଡାଭିଡ୍‌ଙ୍କ ଶ୍ୱଶୁର—Saul, the father-
সল্ सल in-law of King David.
[ଦ୍ର—ସଲ୍ ବାଇବଲ୍‌ର ପୁରାତନ ଶାସ୍ତ୍ର (Old Testament) ର ୧ମ ଖଣ୍ଡ ସାମୁଏଲ୍ (Samuel)ରେ ଲିଖିତ ଇସ୍‌ରେଇଲ୍ (Israil) ବାସୀମାନଙ୍କ ରାଜା । ଏହାଙ୍କ ପିତାଙ୍କ ନାମ କିସ୍ (Kish) । ଈଶ୍ୱରାଦେଶ ଅନୁସାରେ ସାମୁଏଲ୍ ଏହାଙ୍କୁ ଈଶ୍ୱରପୂଜକ ଇସ୍‌ରେଇଲ୍‌ବାସୀଙ୍କ ସେନାଧ୍ୟକ୍ଷ ବା ରାଜାରୂପେ ଅଭିଷିକ୍ତ କରିଥିଲେ । ଏ ପ୍ରଥମେ ଇସ୍‌ରେଇଲ୍‌ବାସୀଙ୍କୁ ପ୍ରତିମାପୂଜକ ଫିଲିଷ୍ଟାଇନ୍ (Philistines) ମାନଙ୍କଠାରୁ ରକ୍ଷା କରିଥିଲେ । ଡାଭିଡ୍ ନାମକ ଜଣେ ଈଶ୍ୱରଭକ୍ତ ବୀରଙ୍କୁ ସଲ୍ ନିଜର ଗୋଟିଏ କନ୍ୟାକୁ ଦାନ କରିଥିଲେ । କିନ୍ତୁ ପରେ ଡାଭିଡ୍‌ଙ୍କ ଯଶୋ-ବିସ୍ତାରରେ ସଲ୍ ଈର୍ଷାନ୍ୱିତ ହୋଇ ଡାଭିଡ୍‌ଙ୍କୁ ହତ୍ୟା କରିବାକୁ ନାନା ଚକ୍ରାନ୍ତ କରି ଅକୃତକାର୍ଯ୍ୟ ହେଲେ । ପରେ ଈଶ୍ୱରାଦେଶରେ ସଲ୍ ରାଜପଦରୁ ଚ୍ୟୁତ ହେଲେ ଏବଂ ତାଙ୍କ ସ୍ଥଳରେ ଡାଭିଡ୍ (David) ରାଜପଦରେ ଅଭିଷିକ୍ତ ହେଲେ । ଅବଶେଷରେ ପ୍ରତିମାପୂଜକମାନଙ୍କ ସଙ୍ଗେ ଯୁଦ୍ଧରେ ପରାସ୍ତ ହୋଇ ସଲ୍ ନିଜେ ଗୋଟିଏ ଖଡ୍ଗ ଉପରେ ପଡ଼ି ଆତ୍ମହତ୍ୟା କଲେ ।]

**ସଲ୍ଟଣ(ନ)**—ଦେ. ବି—ସଲ୍ଟଣ (ଦେଖ)
Sal-tana(na) Saltana. (See)

**ସଲ୍ତା**—ପ୍ରାଦେ (ସମ୍ବଲପୁର) ବି—ବଳିତା; ସଳିତା—
Sal-tā A lamp-wick.

**ସଲ୍‌ଟା ବାଟ୍‌ବା**—ପ୍ରାଦେ. (ସମ୍ବଲପୁର) କ୍ରି—ବଳିତା ବଳିବା—To
Sal-tā bāt-bā twist pieces of rags into wicks.

**ସଲ୍‌ମା**—ବୈଦେ. ବି (ଫା. ସଲ୍‌ମା)—ସୁନା, ରୁପା ବା ଗିଲ୍‌ଟିରେ
Sal-mā ତିଆରି ଗୁଡ଼ିଅ ହୋଇଥିବା ଚକଚକିଆ ଗୋଲ ତାର—
ସଲମା Circular bits or spirals of tinfoils; a foil
**सलमा** of tin. [ଦ୍ର—ଏହା ଟୋପି ଓ ଶାଢ଼ୀ ଆଦିରେ ନକ୍‌ସା
ତିଆରି ହେବାରେ ଶିଅଁ ଯାଏ ।]

**ସଲ**—ଦେ. ବି. ଓ ବିଣ (ସଂ. ଶଲ୍ୟ)—ଶଲ (ଦେଖ)—
Sala Sāla. (See)
[ଦ୍ର—ଭଲ ଭଲ ଲୋକେ ଯାହା କହୁଥିଲେ ମଣିଲ ତାହା
ମୁଁ ସଲ ହେ । ବିଶ୍ୱନାଥ· ବଡ଼ଜ ରାମାୟଣ ।]

**ସଳ**—ସଂ: ବି (ସଲ୍ ଧାତୁ=ଶୀଘ୍ର ଗମନ କରିବା+କର୍ତ୍ତ୍ରି ଅ)—
Sala ଜଳ; ବାରି; ପାଣି—Water. ଗ୍ରା· କ୍ରି ବିଣ—ସତ୍ୱଳ;
शीघ्र जल्दि ଶୀଘ୍ର; ଚଞ୍ଚଳ—Soon. ଗ୍ରା· ବିଣ—
ସବল सरल (ସଂ ସରଳ)—ସରଳ—Easy; straight.

**ସଲଉଜ**—ବୈଦେ· ବି (ଇଂ. ସେଲେସ୍)—ସଲୋଜ (ଦେଖ)—
Salauja Salōja (See)

**ସଲ(ଲ୍ଲି)କି**—ଦେ. ବି (ସଂ. ଶଲ୍ଲକୀ)—ଝିଙ୍କ ପଶୁ—Porcupine.
Sala(lla)ki [ଦ୍ର—ଛାଡ଼ି ସଲକି ପଲ ଶ୍ୱାନହିଁ ହୁଂସେ ଯେ
ସଜାରু साहि —ଭଞ୍ଜ· ଲାବଣ୍ୟବତୀ]

**ସଲକ୍ଷଣ**—ଦେ· ବିଣ—୧ । ମନୋହର—1. Beautiful. ୨ ।
Salakshaṇa ଉତ୍ତମ ଲକ୍ଷଣ ବିଶିଷ୍ଟ—2. Having good
ସলক্ষণ सलक्षण signs. ଦେ· ବି—୧ । (ସଂ ସୁ-
ଲକ୍ଷଣ)—ଉତ୍ତମ ଲକ୍ଷଣ—1. Good internal indication. ୨ । ସଧବା ଲକ୍ଷଣ—2. The sign of
wifehood. [ଦ୍ର—କୋଲ ସପତ୍ନୀ ସହରେ ସଲକ୍ଷଣ
ଅଙ୍ଗଦରେ ଯୁକ୍ତ ହୋଇଣ ସୁଗ୍ରୀବେ ଗଜବନ୍ତ ଯେ ।—
ଭଞ୍ଜ. ବୈଦେହୀଶବିଳାସ]

**ସଲଖ**—ଦେ· ବିଣ· (ଫା. ସରଳ; ଅ. ସହଲ୍=ସହଜ)—ସରଳ;
Salakha ସିଧା; ଅବକ୍ର—Straight. [ଦ୍ର—ନାଭିଠାରୁ
ସোজা सीधा ମେରୁଦଣ୍ଡ କରିବ ସଲଖ ।—ପ୍ରାଚୀ. ଗୁରୁ-
(ବଙ୍କା—ବିପରୀତ) ଭକ୍ତିଗୀତା] ଦେ· କ୍ରି. ବିଣ—୧ ।
ସহজভাবে सीधाहोकर ସରଳ ଭାବରେ; ସିଧା ହୋଇ—
1. In a straightforward course.
୨ । ଅବିଲମ୍ବେ; ତତ୍‌କ୍ଷଣାତ୍—2. Straightway.
[ଦ୍ର—ମିଶିବା ଆଶାରେ ଗଲେ ଶରବେଗେ ସଲଖେ ଧାଇଁ
—ରାଧାନାଥ, ଉଷା ।]

**ସଲଖା**—ଦେ· ବିଣ—ସଲଖ; ସିଧା—Straight. [ଦ୍ର—ବାପ
Salakhā ବଙ୍କା ପୁଅ ସଲଖା, ନାତି ଟୋକା ଲାଗି ତରବା—
ସোজা सीधा ପ୍ରହେଳିକା; ଉତ୍ତର—ବାହୁଳଶଡ଼ା ବା ଧନୁ ]

**ସଲଖା(ଖେ)ଇବା**—ଦେ. କ୍ରି—ସଳଖିବା କ୍ରିୟାର ଣିଜନ୍ତ ରୂପ—
Salakhā(khe)ibā Causative form of the verb
সোজাকরান सीधाकराना to straighten.

**ସଲଖା ସଲଖି**—ଦେ· କ୍ରି· ବିଣ—ସିଧାଏ ସିଧାଏ; ସିଧା ସିଧା—
Salakhā salakhi Straightly; straightforwardly.
সোজাসোজি सीधासीधी

**ସଳଖି**—ଦେ. କ୍ରି· ବିଣ (ପଦ୍ୟ)—ସଲଖେ; ସିଧା ହୋଇ—Straightly.
Salakhi [ଦ୍ର—ବାଳ ଝୁଦଦେଶେ ସଲଖି
সোজাকরিয়া ଗଳି ଗଲ, ଅଡ଼ଚୁଥଲ ପର ହୋଇଣ ରହିଲ ।
सीधाहोकर —କୃଷ୍ଣସିଂହ. ମହାଭାରତ ବନ ]

**ସଳଖିବା**—ଦେ. କ୍ରି—୧ । ବକ୍ର ପଦାର୍ଥକୁ ଋଜୁ କରିବା; ସିଧା କରିବା
Salakhibā 1. To straighten. [ଦ୍ର—ଉଠିତ
সোজাকরা सीधाकरना ଆକାଶରେ ଘୋଟି ଉଠୁଁ ଗଲେ,
କଟିହିଁ ଧରି ପିଠିଟି ସଳଖିଲେ ।—କୃଷ୍ଣସିଂହ. ମହା-
সোজাসোজাযাওয়া सीधाजाना. ଭାରତ ଆଦି] ୨ ।
ସିଧାଏ ସିଧାଏ ଯିବା; ସରଳରେଖାରେ ଗତି କରିବା—
2. To go straight. [ଦ୍ର—ସେ କଟକରୁ ଏକ-
ଦମ ପୁରୀକୁ ସଲଖିଲେ ।] ୩ । ସିଧା ହୋଇ ବସିବା—
সোজা হয়েবসা सीधाबैठना 3. To sit upright.
୪ । ଗୋଟିଏ ସିଧା ପଦାର୍ଥ ପ୍ରସ୍ତୁତ କରିବା—4. To
সোজাকরা सीधाकरना prepare a straight
thing. [ଦ୍ର—ମୁଁ ତା ପାଇଁ ଗୋଟିଏ ମେଞ୍ଚ ସଲଖୁଛୁ
(ଅର୍ଥାତ୍ ତା ପାଇଁ ଗୋଟିଏ ସିଧା ମେଞ୍ଚ ତିଆରି କରୁଛି,
ଅର୍ଥାତ୍ ତାକୁ ଜବତ କରିବାକୁ ଷଡ଼୍‌ଯନ୍ତ୍ର କରୁଛି) ।]
୫ । (ଲକ୍ଷଣାର୍ଥ) ଦୁଷ୍ଟ ବା ଅପରାଧୀ ବ୍ୟକ୍ତିକୁ ଦଣ୍ଡାଦି
ଦ୍ୱାରା ସଂଯମିତ କରିବା—5. To teach a lesson
to an offender; to bring an offender or
a wicked person to book. ୬ । (ଭାଗ୍ୟ)
ଉଦିତ ହେବା; (ଭଲଦଶା) ଉପସ୍ଥିତ ହେବା—
6. To dawn (said of good luck); to be
in the ascendant. (ଯଥା—ବର୍ତ୍ତମାନ ତା ଭାଗ୍ୟ
ସଲଖିଛି ।)

**ସଳଖି ହେବା**—ଦେ. କ୍ରି—୧ । ସ୍ୱୟଂ ସଲଖ ବା ସିଧା ହେବା—
Salakhi hebā 1. To become straight. [ଦ୍ର—
সোজাহওযা सीधाहोना ବାର ବରଷରେ କୁକୁରଲାଙ୍ଗୁଡ଼
ସଲଖି ହୁଏ ନାହିଁ—ଢଗ] ୨ । (ଲକ୍ଷଣାର୍ଥ) ଦୁଷ୍ଟ
ବା କ୍ରୂର ପ୍ରକୃତି ତ୍ୟାଗ କରି ସ୍ୱସ୍ୱଭାବ ହେବା—
2 To improve; to give up one's crooked or wicked ways and become good.

**ସଲଖେ ସଲଖେ**—ଦେ. କ୍ରି. ବିଣ—୧ । ସିଧାଏ ସିଧାଏ; ଋଜୁଭାବରେ—
Salakhe salakhe 1. Straight; in a straight
সোজা সোজা, সোজা সজি manner; straightfor-
सीधासीधा wardly. ୨ । ପ୍ରତ୍ୟକ୍ଷ ଭାବରେ; ଅନ୍ୟର ଅପେକ୍ଷା
ନ କରି—2. Directly. (ଯଥା; ଜମିଦାର ମୋ
ଉପରେ ଜୁଲମ କରିବାରୁ ମୁଁ ସଲଖେ ସଲଖେ ଥାନାକୁ
ଚାଲିଗଲି ।)

**ସଲଗ**—ସ ବଣ (ସ. ସଲଗ୍ନ)—୧ । ସଲଗ୍ନ; ଲଗାଲଗ —1. Adjoining. ୨ । ସଂଯତ—2. Restrained; controlled; regulated. ୩ । ସମ୍ବନ୍ଧ—3. Connected.
Salaga
লাগালাগি संलग्न

**ସଲଗଡ**—ଦେ. ବଣ—ସଲଗ (ଦେଖ)—Salaga (See.
Salagarda [ଭୁ—ସେ ଅଲଗଡ଼ ସଲଗଡ କର ଘୁଡ଼ାଏ ବଢ
লাগালাগি संलग्न (ଅଲଗଡ଼—ବିପରୀତ) ଗଲ ।]

**ସଲଗା**—ପ୍ରାଦେ. (ଗଞ୍ଜାମ) ବି—(ତେଲିଙ୍ଗ ଶବ୍ଦ) ୧ । ୮୦ ସୁଞ୍ଜା
Salagā ବା ଏକ ପଣ ବସ୍ତୁ—1. An aggregate of eighty articles ୨। ୨୦ ମାଣ ପରିମିତ ଶସ୍ୟାଦି—2. A measure of 20 pots of grain etc.

**ସଲଗ(ଗେ)ଇବା**—ପ୍ରାଦେ (ଗଡ଼ଜାତ) କ୍ରି—୧ । ସଜାଡ଼ିଦେବା—1. To set right. ୨ । ସୁସଂଯତ କରିବା—2. To regulate. ୩ । ସଲଗ୍ନ କରିବା—3. To attach; to fasten.
Salagā (ge) ibā

**ସଲଗେ**—ଦେ. ଅ—ଲଗାଲଗି ହୋଇ—Lying closely. [ଉ—
Salage ରହିବାକୁ କଷ୍ଟେ ମନ ଲୋଭନ ସଲଗେ ପ୍ରସାଦ ବେଢ
লাগালাগিহযে संलग्नहोकर ରଚନ ।—ଭଞ୍ଜ କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀ ]

**ସଲଗ୍ନ**—ସ. ବଣ—(ସ+ଲଗ୍ନ; ବହୁବ୍ରୀହି) ଲଗ୍ନ ସହିତ—Accompanied with the 'Lagna'. ଗ୍ରା: ବଣ—
Salagna
সংলগ্ন संलग्न (ସ.ସଲଗ୍ନ) ସଲଗ୍ନ (ଦେଖ) Samlagna (See).

**ସଲଗ୍ନି**—ଦେ. ବଣ (ସ, ସଲଗ୍ନ)—୧ ।ନିକଟ ରକ୍ତ ସମ୍ପର୍କୀୟ (ବ୍ୟକ୍ତି)
Salagni —1. Closely related by blood. ୨। ଭ୍ରାତୃମାନଙ୍କ
কুটুম संलग्न ବା ଜ୍ଞାତିର (ବ୍ୟକ୍ତି)—2. Agnatic.
[ ସଲଗ୍ନିକ—ଅନ୍ୟରୂପ ]

**ସଲଘ**—ଦେ. ବଣ ( ସ. ଶ୍ଳାଘ୍ୟ )—୧ । ସୁନ୍ଦର—1. Beautiful.
Salagha ୨ । ଉତ୍ତମ—2. Good. ୩ । ( ସ. ସଂଲଗ୍ନ )
সুন্দর सुघड़ ସୁସଂଯତ—3. Well regulated or restrained. ୪ । ସୁରଚିତ—4. Well composed.
[ ଉ—ବରତ ପଦର୍ଥ ବର୍ଯ୍ୟାଲଣ ସଲଘ ରୂପଇନ୍ଦୁ ଚଣ୍ଡ ଅନଘ ସେ—ଭଞ୍ଜ. ବୈଦେହୀଶବିଳାସ । ]

**ସଲଙ୍ଗି**—ପ୍ରାଦେ. ( ପାଟଣା ବଲାଙ୍ଗିର ) ବି—ଶଢ଼ଙ୍ଗୀ ( ଦେଖ)
Salangi Shardngi ( See )

**ସଲଜ(ଜା)**—ଦେ. ବଣ. ପୁଂ (ସଂ. ସଲଜ୍ଜ)—୧ । ସଲଜ୍ଜ; ଲଜ୍ଜାଯୁକ୍ତ—
Salaja(jā) 1. Modest; bashful. ୨ । ଲଜ୍ଜିତ—
লাজুক सलज 2. Ashamed. [ ଉ—ସଲଜ ଭାବ ନଲଜ
[ନଲଜ—ବିପରୀତ] ଗାଏ, ଅତି ଅଲଜୁକ ନାଚନାଚ ଯାଏ-ଚଗ ]
[ ସଲଜୀ—ସ୍ତ୍ରୀ ]

**ସଲଜ୍ଜ**—ସ. ବଣ. ପୁଂ ( ବହୁବ୍ରୀହି; ସ=ସହିତ+ଲଜ୍ଜା )—ସଲଜ୍ଜ;
Salajja ଲଜ୍ଜାଯୁକ୍ତ—Modest.
[ ସଲଜ୍ଜା—ସ୍ତ୍ରୀ ] [ ନିର୍ଲଜ୍ଜ—ବିପରୀତ ]

**ସଲତା**—ଦେ. ବଣ—୧ । ଅଳ୍ପ ଅର୍ଦ୍ର—1. Slightly wet or moist. ୨ । ଥଣ୍ଡା—2. Cold.
Salatā
স্যাঁৎসেঁতে হাল

**ସଲତେଇବା**—ଦେ. କ୍ରି—ଅଳ୍ପ ଜଳଯୁକ୍ତ କରିବା—To make slightly watery. [ ଉ—ଛଅଣକୁ ସଲ-
Salateibā
अल्प जल देयओ सींचना ତେଇ କରିଁଗୁଲ୍ । ]

**ସଲନ୍ତ**—ଦେ. ବି—୧ । ଈଷତ ଅର୍ଦ୍ରତା—1. Slight wetness.
Salanta স্যাঁৎসেঁতে ୨। କୌଣସି ବିଷୟର ଈଷତ ସ୍ପର୍ଶ—2. A
हाल slight part of any matter; a particle or
স্যাঁৎসেঁতে touch of anything. ଦେ. ବଣ—ଅଳ୍ପ
थोडा हाल ଅର୍ଦ୍ର; ଈଷତ୍ ଓଦା—Slightly wet or moist.
[ ସଲନ୍ତିଆ—ଅନ୍ୟ ବଣ. ରୂପ ]

**ସଲପ**—ଦେ. ବି—ସଢ଼ପ ( ଦେଖ )
Salapa Sardapa ( See )

**ସଲପତ୍ର**—ସ. ବି—ଦାରୁଚିନି ( ତୁ. ଶ )—
Salapatra Cinnamon.

**ସଲ ପଶିବା**—ପ୍ରାଦେ. ( ସମ୍ବଲପୁର ) ବି—ଇଚା ପଶିବା—
Sala pasibā Stitching pain.

**ସଲ ବଲ**—ପ୍ରାଦେ. ( ପୁରୀ ) ବଣ—( ଅନ୍ୟର କୌଣସି ବିଷୟ
Sala bala ଦେଖି ) ବିମର୍ଷ—Dejected.

[ସାଲୁବାଲୁ—ଅନ୍ୟ ଅବ୍ୟୟ ରୂପ] ଦେ. ଅ—୧। କୌଣସି ଭୁଦିଷ୍ଟ
গজগজে सटसट ବସ୍ତୁ ମଧ୍ୟରେ ଅନ୍ୟ ଜନିଷର ବହୁଳ ମିଶ୍ରଣ—
1. The profuse mixing of one article with another definite article. ୨ । ଏକ ଜାଗାଯ୍ ବହୁ କ୍ଷୁଦ୍ର ଜୀବଙ୍କର ଇତସ୍ତତଃ ସଞ୍ଚରଣ ପ୍ରକାରେ; ସାଲୁ ସାଲୁ ( ଦେଖ )—2. Sālu sālu ( See )
[ ଉ—ଏଠାରେ ତେଲୁଣୀ ପୋକଗୁଡ଼ାକ ସଲ ବଲ ହେଉଅଛନ୍ତି; ମୁଣ୍ଡରେ ଉକୁଣୀ ସାଲୁ ସାଲୁ ହେଉଅଛନ୍ତି ।]

**ସଲ ମୁଦି**—ପ୍ରାଦେ. ( ସମ୍ବଲପୁର ) ବି—ବଜ୍ରକାପଟା ମୁଦି—A ring
Sala mudi made of the scales of the pangoline.

**ସଲ(ଲ୍ଲ)ରା**—ଦେ. ବି—ଶଲରା ( ଦେଖ )—Salarā ( See )
Sala(lla)rā করেলা गन्दा

**ସଲରି**—ଦେ. ବି—କାଦୁଅଖୁମ୍ପୀ ପକ୍ଷୀ—A species of small
Salari wading bird; the bar-tailed god-wit
কাদা খোঁচা Limosa Lapponica.
[ ଉ—ଏହି ପକ୍ଷୀମାନଙ୍କର ଗୋଡ଼ ଲମ୍ବ ଓ ଥଣ୍ଟ ବଡ଼ । ଏମାନେ ଉଡ଼ିବାରେ ଗୁରୁ ପାଖ ଇଞ୍ଚ ଓ ଲମ୍ବରେ ଛଅ ଇଞ୍ଚ ବଢ଼ନ୍ତି । ଏମାନଙ୍କ ଲାଙ୍ଗୁଡ଼ ଅତି ଛୋଟ । ଏମାନେ କାଦୁଅ ଜାଗାରେ ଭୁଲ ଥଣ୍ଟଦ୍ୱାରା ଖୁମ୍ପି କାଦୁଅରୁ ପୋକ ଜୋକ ଗେଣ୍ଡା ଅଦ ଧରି ଖାଅନ୍ତି ଏବଂ ଏମାନେ 'ଗୀ' 'ଗୀ' ଶବ୍ଦ କରନ୍ତି । ]

**ସଲ୍ ସଲ**—ଦେ॰ ଅ—ଦେହ ଉପରେ ମୁଣ୍ଡା ବା ଲୁଗା ଅବ ହାଲୁଚ; Sala sala ଭାବରେ ଶୁଳଭ କଲେ ଯେଉଁ କଣ୍ଡୁ ଅନୁଭୂତ ହୁଏ; সড সড গল গল—Tickling sensation felt on the सलसल body when a light article is passed over it.

**ସଲ୍ ସଲ କରିବା**—ଦେ॰ କ୍ରି—କୌଣସି ଅଙ୍ଗରେ ବା କାନର ଛିଦ୍ରରେ Salasala kariba ହାଲୁକାଭାବରେ କାଠି ବୁଲାଇବା'ଦ୍ୱାରା সড সড কবা ସେଠାରେ ଗଲ୍ ଜନ୍ମାଇବା—To produce a सलसलाना tickling sensation on any part of the body by moving some light and slender thing (e. g. feather) over it. [ ସଲ୍ସ( ଲେ) ଇବା—ଅନ୍ୟରୂପ ]

**ସଲ୍ ସଲିଆ**—ଦେ॰ ବିଣ—୧ । ଯାହା ସଲ ସଲ କରେ—1. Tick-Sala salia ling. ୨ । ସଲ ସଲ ବୋଧ ହେଉଥିବା— সডসডে सलसलिआ 2. Ticklish.

**ସଲା**—ବୈଦେ॰ ବି ( ଅ. ସଲାହ୍ )—୧ । ପରାମର୍ଶ; ମନ୍ତ୍ରଣା— Salā 1. Consultation. ୨ । ଉପଦେଶ—2. Advice. সলা सलाह ୩ । ଷଡ଼ଯନ୍ତ୍ର—3. Conspiracy, plotting. ୪ । ସ୍ୱପକ୍ଷରେ ଋଣିବା—4 Winning over to one's side. [ ଉ—ମନ୍ତ୍ରୀଙ୍କୁ ସଲାରେ ଋଣିବାକୁ ହେବ -ଫକୀରମୋହନ. ଗଳ୍ପସ୍ୱଳ୍ପ । ]

**ଶଲାକା, ଶଲା** ଦେ॰ ବି—୧ । ( ସଂ ଶଲାକା ) ଶଲାକା— सलाई 1. A long slender rod. ୨ । ଶଲଇ (ଦେଖ)— 2. Salāi ( See )

**ସଲ(ଲେ)ଇ**—ପ୍ରାଦେ. ( ଉତ୍ତର ବାଲେଶ୍ୱର ) ବି—ଦିଆସିଲି— Slā(le)i Match. ଦେ. ବି—ଶଲଇ ( ଦେଖ )— শলা सलाई Salāi ( See )

**ସଲ(ଲେ)ଇବା**—ଦେ. କ୍ରି—୧ । ସଲ ସଲ କରିବା—1. To excite Salā(le)ibā a tickling sensation. ୨ । ସଲ ସଲ সডসড়ান सलसलाना ବୋଧ ହେବା—2. To feel a tickling sensation.

**ସଲ(ଲେ)ଇ ହେବା**—ଦେ. କ୍ରି—(କାନ ଭିତର ବା ଅଙ୍ଗାଦି) ସଲ ସଲ Salā(le)i hebā ହେବା—To have a tickling sensa- সডসড়ান, সডসড কবা सलसल होना tion.

**ସଲା କରିବା**—ଦେ॰ କ୍ରି ( ଅ. ସଲାହ୍ )—୧ । ମନ୍ତ୍ରଣା କରିବା— Salā karibā 1. To consult. ୨ । ଷଡ଼ଯନ୍ତ୍ର କରିବା— সলা কবা सलाह करना 2. To conspire; to plot

**ସଲା ଗୁହିବା**—ଦେ. କ୍ରି ( ବଙ୍ଗଳାରୁ ଅନୁକୃତ )—ଅନ୍ୟ ବ୍ୟକ୍ତିଠାରୁ Salā chāhibā ପରାମର୍ଶ ଲୋଡ଼ିବା—To ask or seek সলা চাওয়া सलाह चाहना advice from a person. [ ସଲା ମାଗିବା, ସଲା ଲୋଡ଼ିବା—ଅନ୍ୟରୂପ ]

**ସଲଜ**—ଦେ॰ ବିଣ॰ ପୁଂ ( ବଙ୍ଗଳାରୁ ଅନୁକୃତ ) ( ସଂ. ସଲଜ୍ଜ )— Salāja ସଲଜ୍ଜ ( ଦେଖ )—Salajja ( See ) সলাজ सलज्ज [ ସଲଜୁକ—ଅନ୍ୟରୂପ ] [ ସଲଜା, ସଲଜୁକା—ସ୍ତ୍ରୀ ]

**ସଲା ଦେବା**—ଦେ॰ କ୍ରି—କୌଣସି ବ୍ୟକ୍ତିକୁ ପରାମର୍ଶ ଦେବା— Salā debā To give advice to a person. সলা দেওয়া, সলা सलाह देना

**ସଲା ନେବା**—ଦେ. କ୍ରି—ଅନ୍ୟ ବ୍ୟକ୍ତିଠାରୁ ପରାମର୍ଶ ନେବା— Salā nebā To take advice from any one. सलाह लेना সলা লওয়া

**ସଲାମ୍**—ବୈଦେ. ବି (ଅ. ସଲାମ୍ ବା ଅସ୍‌ସଲାମ୍=କୁଶଳ; ସୁଖଶାନ୍ତି)— Salām ୧ । ମୁସଲମାନୀ ନମସ୍କାର ବା ଅଭିବାଦନ—1. Maho- সেলাম medan form of greeting; salutation. सलाम [ ଭି—ଡାହାଣ ହାତର ପାପୁଲିକୁ କପାଳରେ ଲଗାଇ 'ସଲାମ' ବା 'ଅସ୍‌ସଲାମ୍ ଅଲେକୁମ୍' ବା 'ସଲାମ ଅଲେକୁମ୍' ଉଚ୍ଚାରଣ କରାଯାଏ । ] ୨ । ( ଲକ୍ଷଣାର୍ଥ ) ପ୍ରଶଂସାସୂଚକ ନମସ୍କାର—2. Greeting; praise. [ ଉ—ଫୁଲ ମଞ୍ଜୁଳା ତୋ ଲଲାମ ଛବିକି ସଲାମ ସହସ୍ରେ- ଥରେ ରେ—କବିସୂର୍ଯ୍ୟ, ସଙ୍ଗୀତ । ] ବୈଦେ. ଅ ( ଅ. সেলাম ସଲାମ୍ ଅଲେକମ୍=ଈଶ୍ୱରଙ୍କ ଦୟାରୁ ଆପଣଙ୍କର ସୁଖ सलाम अलेकुं ହେଉ )—ମୁସଲମାନୀ ନମସ୍କାର କରିବା ବ୍ୟକ୍ତିଙ୍କର ସଲାମ୍ ଅ'ଆ)ଲେକମ୍, ସଲାମ-ଲେକମ୍, ସଲାମ୍ ଅଲେକୁମ୍ } ଅନ୍ୟରୂପ ପରସ୍ପର ଅଭିବାଦନ- ସୂଚକ ବଚନ— (like 'Good morning' in English) A term used by Mahomedans in greeting each other.

**ସଲାମ ଉଠା(ଠେ)ଇବା**—ଦେ. କ୍ରି-୧। (ମୁସଲମାନୀ) ନମସ୍କାର କରିବା— Salāma uṭhā(ṭhe)ibā 1. To bow to a person. ୨ । ସଲାମ ଦେବା, ସଲାମ କରିବା, ସଲାମ ହେବା } ଅନ୍ୟରୂପ ( ଲକ୍ଷଣାର୍ଥ ) ଅନ୍ୟ ବ୍ୟକ୍ତି ନିକଟରେ সেলাম কবা ବଶ୍ୟତା ସ୍ୱୀକାର କରିବା—2. To admit one- सलाम करना self as inferior or subordinate to another. (ଉ—ଏକ ସଲାମ କ କରି ବିଣ୍ (ଦେଶ, ଶତ୍ରୁ) ସଲାମ କରିବା । ଉଗ ।) ୩ । (ତାଲିମ କରା ଯାଇଥିବା ହାତୀ) ହାକିମଙ୍କୁ ଦେଖି ଶୁଣ୍ଢକୁ ଉପରକୁ ଉଠାଇବା—3. (a trained elephant) To raise its trunk as a sign of obeisance.

**ସଲାମତ୍**—ବୈଦେ. ବି (ଅ. ସଲାମତ୍=ସବୁ ପ୍ରକାର ଆପଦରୁ Salāmat ରକ୍ଷିତ)—୧ । ସୁଖ—1. Happiness. ୨ । সেলামৎ ମଙ୍ଗଳ; କୁଶଳ—2. Bliss. ୩ । ସ୍ୱାସ୍ଥ୍ୟ— सलामत 3. Health. ୪ । ଶାନ୍ତି—4. Peace. ୫ । ମୁକ୍ତି— 5. Liberation. ୬ । ସବୁ ପ୍ରକାର ଆପଦରୁ ରକ୍ଷା ପାଇବା ଅବସ୍ଥା—6 The state of being protected from all danger. ବୈଦେ॰ ଅ— (ଡାକାଡକି ଭାଷା) ସଲାମ୍ (ଦେଖ)—Salām. (See) [ଉ—ତହଶିଲ—"ସାହେବ, ସଲାମତ୍" ଗଳସି—"ଏଁ, ହୁଁ ।" ଫକୀରମୋହନ ଗଳ୍ପସ୍ୱଳ୍ପ ।]

ସଲାମୀ—ବୈଦେ. ବଣ (ଅ)—୧ । ସଲାମ ସଂବନ୍ଧୀୟ—1. Relating to obeisance or salutation. ୨ । ସମ୍ମାନସୂଚକ—2 Salutatory. ବୈଦେ. ବ. (ଅ)—
Salāmi
সেলামী
सलामी
୧ । ରାଜା ଅବା ଜମିଦାରଙ୍କୁ ପ୍ରଥମ ଦର୍ଶନ ସମୟରେ ଭେଟିବା ବ୍ୟକ୍ତିଙ୍କର ଦେବା ଉପହାର; ଭେଟି; ଦର୍ଶନୀ; ଦକ୍ଷିଣା—1. A present given to a landlord or king by a visitor on the occasion of the first visit. ୨ । ନଜର; ନଜରାନା; ଜମିର ଖରିଦଦାର କିମ୍ବା ପ୍ରଜା ଦ୍ୱାରା ଜମିଦାରଙ୍କ ଉପହାରରୂପେ ପ୍ରଦତ୍ତ ନଗଦ ଟଙ୍କା—2. Cash present or premium paid to a landlord by a purchaser of a holding or a raiyat. [ଦ୍ର-ପୂର୍ବେ ଆଖିଦର୍ଶନ ସମୟରେ ପ୍ରଜାମାନେ ଜମିଦାରଙ୍କୁ ସଲାମୀ ଦଅନ୍ତି । ଜମି ପଟ୍ଟା ନେଲାବେଳେ ବା କିଣିବାବେଳେ ଯଥାକ୍ରମେ ପଟ୍ଟାଗ୍ରହୀତା ଓ ଖରିଦଦାର ଜମିଦାରଙ୍କୁ ସଲାମୀ ଦିଅନ୍ତି ।] ୩ । ନବାଗତ ସମ୍ମାନାର୍ହ ବ୍ୟକ୍ତିଙ୍କୁ ସମ୍ମାନ ପ୍ରଦର୍ଶନାର୍ଥ ସ୍ୱାଗତ ସୂଚକ ତୋପଧ୍ୱନି-3. Salute of cannon or gun-fire in honour of distinguished persons. ୪ । କୌଣସି ରାଜଧାନୀରେ ବା ସ୍ଥାନରେ ରାଜା ବା ତାଙ୍କର ପ୍ରତିନିଧି ପଦାର୍ପଣ କରିବା ସମୟରେ ସମବେତ ସୁସଜ୍ଜିତ ସୈନିକ ଦଳ ତାଙ୍କୁ ସମ୍ମାନ ପ୍ରଦର୍ଶନାର୍ଥ ଯେଉଁ ସାମରିକ ଅଭିବାଦନ କରନ୍ତି-4. A military salute made to the King or His Majesty's Representative by the army or police on his setting foot in a town or place. ୫ । କ୍ରମଶଃ ଗଡ଼ାଣିଆ ଗଡ଼ନ୍ତି—5. Gradual sloping. [ଦ୍ର-ସଲାମୀ ଏହି ଶବ୍ଦ ସହିତ ଅନ୍ୟ ଶବ୍ଦ ଯୁକ୍ତ ହୋଇ ଗଢ଼ା ହୋଇଥିବା କେତେ ଶବ୍ଦମାନ ଭାଷାରେ ବ୍ୟବହୃତ ହୁଏ । ଯଥା—ଅବଲସଲାମୀ, ଘଣ୍ଟାସଲାମୀ, ଭେଟ(ଟି)ସଲାମୀ, ମୁକାଅଁ ସଲାମୀ, ଦାଖଲଖାରିଜ ସଲାମୀ—ଇତ୍ୟାଦି ।]

ସଲା ସୁତ(ତୁ)ର(ରା)—ଦେ. ବ (ଅ. ସଲ୍‌ହା+ସଂ. ସୂତ୍ର; ସହିତରେ ଶବ୍ଦ ଯୁଗ୍ମ)—୧ । ମନ୍ତ୍ରଣା—1. Consultation.
Salā suta(tu)ra(rā)
(ସଲା ସୁତ[ରା]—ଅନ୍ୟରୂପ) (ଦ୍ର—ଭିତରେ ଭିତରେ ସଲାସୁତର କାହାରେ ଲଗିଛି କଳ । ତଗ ।) ୨ । ଷଡ଼ଯନ୍ତ୍ର—
সলা পরামর্শ
सलाह सूतर
2. Conspiracy, plot.

ସଲାହା (ଇତ୍ୟାଦି)—ବୈଦେ. ବ—ସଲା ଇତ୍ୟାଦି (ଦେଖ)
Salāhā (etc) Salā etc. (See)
( ସଲ୍ହା, ସଲ୍ଲା—ଅନ୍ୟରୂପ )

ସଲିଆ—ଦେ. ବଣ (ସଂ. ସରଳ)—ସରୁ ଓ ଡେଙ୍ଗା—
Saliā Tall and thin; slender and long.
সলুয়া पतला लम्बा, सलाईकापसा

ସଲି(ଡ଼ି)ଙ୍ଗ—ଦେ. ବ—ଶଳଙ୍ଗ (ଦେଖ)
Sali(ṛdi)ṅga Śaliṅga. (See)

ସଲିତା (ଇତ୍ୟାଦି)—ଦେ. ବ (ସଂ. ଶଳୀ)—ଶଳିତା ଇତ୍ୟାଦି (ଦେଖ)
Salitā (etc) Śalitā etc. (See)

ସଲିମ—ବୈଦେ. ବ (ନାମ) (ଫା)—୧ । ଭାରତରେ ପଠାଣ ସାମ୍ରାଜ୍ୟର ସମ୍ରାଟ୍ ଶେରସାହାଙ୍କ ଦ୍ୱିତୀୟ ପୁତ୍ର—1. Name of a Paṭhāna Emperor of India. [ଦ୍ର—ଶେରସାହାଙ୍କ ମୃତ୍ୟୁ ହେବାରୁ ଏ ଖ୍ରୀ ୧୫୪୫ ଠାରୁ ୧୫୫୪ ପର୍ଯ୍ୟନ୍ତ ଅଷ୍ଟ ବର୍ଷକାଳ ସେ ରାଜ୍ୟଶାସନ କରିଥିଲେ ।] ୨ । ମୋଗଲ ସମ୍ରାଟ୍ ଜାହାଙ୍ଗିରଙ୍କର ସିଂହାସନାରୋହଣ ପୂର୍ବର ନାମ; ଅକବରଙ୍କ ଜ୍ୟେଷ୍ଠ ପୁତ୍ର-2. The original name of the Moghal Emperor Jāhāṅgir, son of Akbar, before he ascended the throne.
Salim
সেলিম
सलीम

ସଲିଳ—ସଂ. ବ (ସଲ୍ ଧାତୁ=ଶୀଘ୍ର ଗମନ କରିବା+କର୍ତ୍ତୃ. ଇଲ)—
Salila ଜଳ; ପାଣି—Water.

ସଲିଳ କୁନ୍ତଳ—ସଂ. ବ—ଶୈବାଳ; ଶିଉଳି (ବିକାଶ କୋଷ)—
Salila kuntala Moss.

ସଲିଳ କ୍ରିୟା—ସଂ. ବ (ମ. ପ. ଲୋ; ସଲିଳ ଦ୍ୱାରା କୃତ୍ୟ କ୍ରିୟା)—
Salila kriyā ୧ । ଉଦକ କ୍ରିୟା; ତର୍ପଣାଦି; ଜଳାଞ୍ଜଳି—1. Offerings or libations of water to the spirits of one's deceased ancestors. ୨ । ଜଳ ସେକ—2. Fomentation with water. ୩ । ଜଳଦ୍ୱାରା ଚିତାଭସ୍ମ ଧୌତ କରିବା; ଚିତା ଶୀତଳେଇବା—3. The rite of washing the embers of the cremation fire.

ସଲିଳଜ—ସଂ. ବଣ (ଉପପଦ ତତ୍ପୁରୁଷ; ସଲିଳ+ଜନ୍ ଧାତୁ+କର୍ତ୍ତୃ. ଅ)—ଜଳଜ; ଜଳଜାତ—Born of water; aquatic. ସଂ. ବ—ପଦ୍ମ; ଅବ୍ଜ (ରାଜ ନିର୍ଘଣ୍ଟ)—Lotus.
Salilaja
(ସଲିଳଜନ୍ମା—ଅନ୍ୟରୂପ)

ସଲିଳଦ—ସଂ. ବଣ ( ସଲିଳ+ଦା ଧାତୁ+କର୍ତ୍ତୃ. ଅ )—ଜଳ ଦାନକାରୀ—Bestowing or supplying water. ସଂ. ବ—ମେଘ (ହ. ଶ)—Cloud.
Salilada

ସଲିଳଧର—ସଂ. ବ (ସଲିଳ+ଧୃ ଧାତୁ+କର୍ତ୍ତୃ. ଅ)—ମୁଥା (ହ. ଶ)
Saliladhara Tuberous grass-root.

ସଲିଳ ନିଧି—ସଂ. ବ (ସଲିଳ+ନି+ଧା. ଧାତୁ=ଧାରଣ କରିବା+କର୍ତ୍ତୃ. ଇ)—୧ । ସମୁଦ୍ର—1. The sea. ୨ । ସଂସ୍କୃତ ସରସି ଛନ୍ଦର ଏକ ନାମ (ହ. ଶ)—2. A name of the Sarasi metre.
Salila nidhi

ସଲିଳ ପତି (ରାଜ)—ସଂ. ବ (ଷଷ୍ଠୀ ତତ୍)—୧ । ବରୁଣ—1. The Deity Baruṇa. ୨ । ସମୁଦ୍ର—2. The sea.
Salila pati (rāja)

ସଲିଳ ପ୍ରିୟ—ସଂ. ବ (ବହୁବ୍ରୀହି)—ଶୂକର (ହ. ଶ)
Salila priya Hog.

ସଲିଳ ମୁଚ୍—ସଂ. ବ (ସଲିଳ + ମୁଚ୍ ଧାତୁ + କର୍ତ୍ତୃ. କ୍ୱିପ୍)—ମେଘ—
Salila muoh Cloud.

ସଲିଳ ଯୋନି—ସଂ. ବଣ (ବହୁବ୍ରୀହି)—ଜଳରୁ ଉତ୍ପନ୍ନ—
Salila joni Born of water.
ସଂ. ବ—ବ୍ରହ୍ମା (ହି ଣ) — God Brahmā.

ସଲିଳାକର—ସଂ. ବ (୬ଷ୍ଠୀ ତତ୍; ସଲିଳ + ଆକର)—ସମୁଦ୍ର—
Salilākara The sea.
[ ସଲିଳାଳୟ, ସଲିଳାର୍ଣ୍ଣବ—ଅନ୍ୟରୂପ ]

ସଲିଳାଶନ—ସଂ. ବଣ. ପୁଂ (ବହୁବ୍ରୀହି; ସଲିଳ + ଅଶନ)—ଯେ ଜଳ
Salilāśana ମାତ୍ର ପିଇ ବଞ୍ଚେ—Subsisting on water.
[ ସଲିଳାଶନା—ସ୍ତ୍ରୀ ]

ସଲିଳାଶୟ—ସଂ. ବ (୬ଷ୍ଠୀ ତତ୍)—ଜଳାଶୟ; ପୁଷ୍କରିଣୀ—
Salilāśaya Tank.

ସଲିଳାହାର—ସଂ. ବଣ. ପୁଂ (ବହୁବ୍ରୀହି)—ସଲିଳାଶନ (ଦେଖ)—
Salilāhāra Salilāśana. (See) ସଂ. ବ ( ରୂପକ )—
କେବଳ ଜଳପାନପୂର୍ବକ ଜୀବନ ଧାରଣ —
Subsistence on water only.

ସଲିଳୀ—ସଂ. ବଣ (ସଲିଳ + ଅସ୍ତ୍ୟର୍ଥରେ ଇନ୍; ୧ମା. ୧ବ)—
Salilī ୧ । ଜଳୀୟ—1. Aquatic. ୨ । ଜଳଧାରୀ—
2. Having water.

ସଲିଳେଚର—ସଂ. ବଣ (ସଲିଳେ + ଚର ଧାତୁ + କର୍ତ୍ତୃ. ଅ; ଅଲୁକ୍
Slilechara ସମାସ)-ଜଳଚର—Aquatic (animal).

ସଲିଳେନ୍ଧନ—ସ. ବ (୬ଷ୍ଠୀ ବା ବହୁବ୍ରୀହି; ସଲିଳ + ଇନ୍ଧନ )—
Salilendhana ବାଡ଼ବାନଳ (ହିନ୍ଦୁଶାସ୍ତ୍ର ଶେଷ)—
Submarine fire.

ସଲିଳେଶ(ନ୍ଦ୍ର)—ସଂ. ବ (୬ଷ୍ଠୀ ତତ୍)—ବରୁଣ—
Salilesa(ndra) The God Baruṇa.

ସଲିଳେଶୟ—ସ. ବଣ (ସଲିଳେ = ଜଳରେ + ଶୀ ଧାତୁ + କର୍ତ୍ତୃ ଅ;
Salileśaya ଅଲୁକ୍ ସମାସ )-ଜଳରେ ଶୟନକାରୀ—
Sleeping on or in water.

ସଲିଳୌକା—ସ. ବ (ସଲିଳ + ଓକସ୍ = ସଲିଳୌକସ୍; ୧ମା ୧ବ) —
Salilauka ଜଳୌକା; ଜୋକ — Leech.

ସଲିଳୌଦନ—ସ. ବ ( ମ. ପ. ଲୋ, ସିଲିଳରେ ପକ୍ୱ ଓଦନ )—
· Salilaudana ପକ୍ୱାନ୍ନ ( ହି. ଣ )—Food or rice
boiled in water.

ସଲୀ—ଦେ. ବ (ସ. ଶଲ୍ୟ)—୧ । ଶତ୍ରୁ—1. Enemy. (ଉ—
Salī ଭାମୀ-ଭାମିନୀ ବିଚ୍ଛେଦରେ ଉଲ୍ଲାସ ଦିବସ ହୁଅଇ ସଲୀ—
ଶକ୍ର ସଲ ଗୀତଗୋବିନ୍ଦ ରସକଲ୍ଲୋଳ ।) ୨ । ବିବାଦ-
2. Dispute. ୩ । ଶତ୍ରୁତା—3. Enmity.
୪ । ଦୁର୍ଘଟଣା—4. Mishap. ୫ । ଅଦୃଷ୍ଟ—
5. Misfortune; woe. (ଉ—ବିବାଦଅଗ୍ନ
ଭୂମ ଅମ୍ବର ଏ ସାତକୁମ୍ଭକୁମ୍ଭସୁକା ଯେକଯାଙ୍କ ସଲୀ—
ଉପେ. ବୈଦେହୀଶବିଳାସ ।)

ସଲୀ(ଲ୍ଲୀ)ଳ—ସ. ବଣ (ସ = ସହ + ଲୀଳା ବହୁବ୍ରୀହି)—୧ । ଲୀଳା-
Salī(llī)la ଯୁକ୍ତ—1. Sportive. ୨ । ଭଙ୍ଗୀସହିତ-
2. Full of gestures. ୩ । କୌତୁକ; କୌତୁହଳୀ-
3. Curious; funny; full of curiousity.

ସଲୋ(ଲୌ)ଜ—ବୈଦେ. ବ—୧ । (ଇଂ ସେଲେଡ)—ବିଲାତୀ
Salo(lau)ja ପରି ଏକପ୍ରକାର ବିଲାତି ଶାଗ—
সলোজ, সালাদ্ सलाद 1. Lettuce.
[ଉ—ଏହାର ପତ୍ରକୁ ସାହେବମାନେ କଞ୍ଚା ଖାଆନ୍ତି ।
ଶୀତକାଳରେ ଆମ ଦେଶ ଲୋକେ ଭୋଜନ ଅବ ସାହେ
ବଗିଚାରେ ଏହାକୁ ଲଗାନ୍ତି ଓ ଲବଣ କରି ଖାଆନ୍ତି ।]
୨ । (ଇଂ ସାଲଡ୍)—ଗାଜର, ମୂଳା, ପିଆଜ ଆଦିର ପକ୍ୱତ
ସିର୍କାରେ କିଛି ଦିନ ବୁଡ଼ାଇ ହୋଇ ରଖାଯାଇ ଉଥର
ଦିଆଯିବା ଅଚାର—2. Salad.

ସଲୋପୀ—ଦେ. ବ ( ନାମ )—ରାମାୟଣୋକ୍ତ ରାକ୍ଷସବିଶେଷ—
Salopi Name of a demon described in
সলোপী the Rāmāyana. ( ଉ—ବେଭୁରେ ଯେ
सलोपी ଅଲୋପୀ ସେ ବର୍ଣ୍ଣିରୁପ୍ରରୂପୀ, ସଲୋପୀ ସଲୋପି ସଦୃଶ—
ଉପେ. ବୈଦେହୀଶବିଳାସ ।)

ସଲୋମନ୍—ବୈଦେ.ବ (ହେବ୍ରୁ ନାମ) —ବାଇବଲ୍‌ଲିଖିତ ଜନୈକ ଜ୍ଞାନୀ
Saloman ପୁରୁଷ—Solomon—the Wise (Old
সলোমন্ सलोमन Testament of the Book
of Proverbs and Songs of Solomon) [ଉ-
ଏହାଙ୍କ କଥିତ ପ୍ରବଚନ ଓ ଗୀତଗୁଡ଼ିକ ବାଇବଲରେ
ଲିପିବଦ୍ଧ ହୋଇଅଛି । ଏ ଡାଉଦଙ୍କ ପୁତ୍ର
ଥିଲେ । ]

ସଲୋ ସଲୋ—ପ୍ରାଦେ (ପାଟଣା) କ୍ରି. ବଣ—ଶୀଘ୍ର ଶୀଘ୍ର—
Salo salo Quickly; promptly.

ସଲ୍‌ଟ—ବୈଦେ. ବ (ଇଂ)—ଲୁଣ—
Sal-t সল্ট नमक (ସଲ୍ଟ—ଅନ୍ୟରୂପ) Salt.

ସଲ୍‌ଟ ଇଲାକା—ବୈଦେ. ବ—ସରକାରଙ୍କ ନିମକ ବିଭାଗ; ଲୁଣ
Sal-t ilākā ରେଗୁଲେସନରେ କେହି ମାରି ପାରିବେ ନାହିଁ,
ସଲ୍‌ଟ ବିଭାଗ } —ଅନ୍ୟରୂପ ଏଥିପ୍ରତି ଦୃଷ୍ଟି ଦେବା
ସଲ୍‌ଟ ଡିପାର୍ଟମେଣ୍ଟ } ପାଇଁ ନିଯୁକ୍ତ ସରକାରୀ
সল্ট এলাকা (ডিপার্টমেন্ট, বিভাগ) नमक इलाका ବିଭାଗ-The
Salt Department of the Government.
[ ଉ—ଏହି ବିଭାଗର ନାନା ଶ୍ରେଣୀର କର୍ମଚାରୀଙ୍କର
ଉପାଧିବାଚକ ଇଂରେଜୀ ଓ ପାରସୀ ଶବ୍ଦ ପୂର୍ବେ ସଲ୍‌ଟ
ଶବ୍ଦ ବସି ସଲ୍‌ଟ ବିଭାଗର ଉକ୍ତ କର୍ମଚାରୀଙ୍କୁ
ବୁଝାଏ । ଯଥା—ସଲ୍‌ଟ ଇନସ୍‌ପେକ୍‌ଟର, ସଲ୍‌ଟ
ଦାରୋଗା । ]

ସଲ୍‌ଟ ପିଅ(ଉ)ନ୍—ବୈଦେ. ବ-ସରକାରଙ୍କ ନିମକ ବିଭାଗର ପିଅଦା-
Salt pia(u)n A peon of the Salt Department.
[ ଉ—ଏହିପରି ସଲ୍‌ଟ ଇନ୍‌ସ୍‌ପେକ୍ଟର, ସଲ୍‌ଟ ସବ୍

ଇନ୍‌ସପେକ୍ଟର୍, ସଲ୍ଟ ଦାରୋଗା, ସଲ୍ଟ ସୁପରିଣ୍ଟେଣ୍ଡେଣ୍ଟ୍ ଆଦି ଶବ୍ଦ ବ୍ୟବହୃତ ହୁଏ ।]

**ସଲ୍ଟଣ**—ଦୈଦେ· ବି (ଅ· ସଲ୍ତନତ୍=ବ୍ୟବସ୍ଥା, ରାଜ୍ୟ, ସାମ୍ରାଜ୍ୟ)—
Sal-tana ଶୋଭାଯାତ୍ରାରେ ପ୍ରଦର୍ଶିତ ଆଡ଼ମ୍ବର—
ଜାକଜମକ **धूमधाम** Ado; splendour accompanying a procession; grandeur.

**ସଲ୍ଲ**—ଗ୍ରାଦେ (ଗଞ୍ଜାମ) ବି (ଫା—ସଲାହ୍)-ମନ୍ତ୍ରଣା—Consultation.
Salla ବିଣ—କୃତସଂକଳ୍ପ—Determined; resolved.
ତେ. ସାଲହା ( ଯଥା—ସେମାନେ ମୋତେ ଘରୁ ଉଠାଇ
ଫା. ସଲ୍ହା ଦେବାପାଇଁ ସଲ୍ଲ ହୋଇଛନ୍ତି ।]

**ସଲ୍ଲକୀ (ଇତ୍ୟାଦି)**—ସଂ· ବି (ସଲ୍ ଧାତୁ+କର୍ତ୍ତି· ଅକ+ଈ)-(ଶଲ୍ଲକୀର
Sallakī (etc) ଅନ୍ୟରୂପ )—ଶଲ୍ଲକୀ ଇତ୍ୟାଦି ( ଦେଖ )
Sallakī etc. [See]

**ସଲ୍ଲା(ଲା,ହ୍ଲା,ଲ୍ହା)**—ଦୈଦେ. ବି—ସଲ୍ଲ (ଦେଖ)
Sallā[lā,hlā,lhā] Salā [See]

**ସଶ୍**—ଦୈଦେ· ବି (ଇଂ. ସସ୍)—୧ । ଖିଆ ଆଦରେ ଦିଆଯିବା
Sas ପରିଷ୍କାର—1. Sauce. ୨ । ବଳିତ ଚଟଣୀ—
2. Sauce; chutnee.

**ସଶ୍(ଶ)କାଳ(ଳେ)**—ଗ୍ରା. କ୍ରି. ବିଣ ( ସଂ. ସଦ୍ୟଃକାଳଃ ବା
Sas[sa]kāla[le] ତତ୍‌କାଳଂ )—ଶଶ୍‌କାଳ ( ଦେଖ )
Sas-kāla [See]

**ସଶଙ୍କ**—ସଂ. ବିଣ. ପୁଂ (ବହୁବ୍ରୀହି; ସ=ସହ+ଶଙ୍କା)—୧। ଶଙ୍କାଯୁକ୍ତ;
Sasanka ଭୀରୁ—1. Frightened; terrified;
(ସଶଙ୍କା—ସ୍ତ୍ରୀ) apprehensive. ୨। ଶଙ୍କାଉତ୍ପାଦନକାରୀ—
( ନିଃଶଙ୍କ—ବିପରୀତ ) 2. Causing fear or apprehension.

**ସଶଙ୍କ ଚିତ୍ତ**—ସଂ.ବି (କର୍ମଧା)—ଭୀତ ମନ—Frightened mind.
Sasanka chitta ସଂ. ବିଣ· ପୁ· (ବହୁବ୍ରୀହି) ଭୀତମନାଃ—
( ସଶଙ୍କଚିତ୍ତା—ସ୍ତ୍ରୀ ) Frightened; terrified.

**ସଶଙ୍କିତ**—ଗ୍ରା. ବିଣ (ସଂ. ସଶଙ୍କର ଅଶୁଦ୍ଧ ବ୍ୟବହାର)—ସଶଙ୍କ (ଦେଖ)
Sasankita Sasanka [See].
सशङ्कित **सशंकित**

**ସଶଙ୍କିବା**—ଦେ. କ୍ରି (ପଦ୍ୟ) ( ସଂ. ସଶଙ୍କ )—୧ । ସଶଙ୍କହେବା—
Sasankibā 1. To be apprehensive. ୨। ଭୟଭୀତହେବା—
सशङ्का **सशंकना** 2. To be frightened.

**ସଶବ୍ଦ**—ସଂ. ବିଣ (ସହାର୍ଥ ବହୁବ୍ରୀହି; ସ+ଶବ୍ଦ)—ଶବ୍ଦଯୁକ୍ତ—
Sasabda Sounding.
(ନିଃଶବ୍ଦ—ବିପରୀତ)

**ସଶବ୍ଦରେ**—ଦେ· କ୍ରି. ବିଣ (ସଂ. ସଶବ୍ଦଂ)—ଶବ୍ଦସହିତ; ଶବ୍ଦଜ୍ଞାପକ-
Sasabdare Making a sound.
सशब्द **सशब्दम्** (ସଶବ୍ଦେ—ଅନ୍ୟରୂପ)

**ସଶରୀର**—ସଂ. ବିଣ. ପୁଂ (ସହାର୍ଥ ବହୁବ୍ରୀହି)—ଦେହଯୁକ୍ତ—
Sasarira Corporeal; having a body; embodied.
(ସଶରୀରା—ସ୍ତ୍ରୀ)

**ସଶରୀରେ**—ଦେ. କ୍ରି. ବିଣ (ସଂ. ସଶରୀରଂ)—ଦେହ ସହିତ—
Sasarire with the body. [ଉ—ସେ ସଶରୀରରେ
सशरीर **सशरीरम्** ସ୍ୱର୍ଗକୁ ଗଲେ ।]
(ସଶରୀରରେ—ଅନ୍ୟରୂପ)

**ସଶଲ୍ୟ**—ସଂ. ବିଣ (ବହୁବ୍ରୀହି; ସ+ଶଲ୍ୟ)—୧ । ଶଲ୍ୟବିଦ୍ଧ;
Sasalya ଶେଲବିଦ୍ଧ—1. Pierced with dart.
(ସଶଲ୍ୟା—ସ୍ତ୍ରୀ) ୨ । ଯେଉଁ ଭୂମି ତଳେ ଶଲ୍ୟ (ବା ଭୂଗର୍ଭରେ
ଅସ୍ଥି ଆଦି) ଥାଏ—2. (land) Having bits
of bone under the ground ୩। କଣ୍ଟକବିଦ୍ଧ—
3. Pierced with thorn. ୪ । ପୀଡ଼ାଦାୟକ;
କଷ୍ଟଜନକ—4. Painful. ୫ । ଦୁଷ୍କର—5. Difficult. ସଂ. ବି— ଭଲ୍ଲ (ହି· ଶ)—Bear.

**ସଶସ୍ତ୍ର**—ସଂ. ବିଣ. ପୁଂ (ସ+ଶସ୍ତ୍ର; ବହୁବ୍ରୀହି)—ଶସ୍ତ୍ରଧାରୀ—Armed; armed with weapons.
Sasastra
(ସଶସ୍ତ୍ରା—ସ୍ତ୍ରୀ)

**ସଶସ୍ୟ**—ସଂ: ବିଣ· ପୁଂ (ସହାର୍ଥ ବହୁବ୍ରୀହି; ସ+ଶସ୍ୟ)—୧ । ଶସ୍ୟ
Sasasya ଯୁକ୍ତ—1. Having corn. ୨ । ଶସ୍ୟଶାଳୀ
(ସଶସ୍ୟା—ସ୍ତ୍ରୀ) 2. Full of corn.

**ସଶସ୍ୟା**—ସଂ. ବି—୧ । (ବୈଦ୍ୟକ) ନାଗଦନ୍ତୀ (ରତ୍ନମାଳା);ବହୁଅଙ୍ଗ-
Sasasyā 1. Fragia Involucrata (plant). ୨। ସଶସ୍ୟର
ସ୍ତ୍ରୀଲିଙ୍ଗ—Feminine form of 'sasasya.'

**ସଶାକ** - ସଂ. ବିଣ (ସହାର୍ଥ ବହୁବ୍ରୀହି)—ଶାକଯୁକ୍ତ—Having sāka
Sasāka ସଂ. ବି—ଅଦା (ହି. ଶ)—Ginger.

**ସଶ(ଶୀ)ଳ**—ଗ୍ରା. ବିଣ (ପଦ୍ୟ)—ଶିଥିଳ—Loose; slack.
Sasa(si)la (ଉ—ଗୋବିନ୍ଦ ପୀତାମ୍ବର ଝାଡ଼ୁ, ସଶୀଳ କଲେ ଗାଲ
शिथिल **शिथिल** ଗାଡ଼ୀ । ଭୂପତି. ପ୍ରେମପଞ୍ଚାମୃତ ।)

**ସଶୋକ**—ସଂ. ବିଣ· ପୁଂ (ସହାର୍ଥ ବହୁବ୍ରୀହି; ସ+ଶୋକ)—୧ । ଶୋକ
Sasoka ଯୁକ୍ତ—1. Grieving; sorrowful. ୨ । ରୋଦନ-
(ସଶୋକା—ସ୍ତ୍ରୀ) କାରୀ—2. Lamenting.

**ସଶ୍ମଶ୍ରୁ**—ସଂ. ବି. ସ୍ତ୍ରୀ—୧। ଶ୍ମଶ୍ରୁଯୁକ୍ତା ସ୍ତ୍ରୀ; ନରମାଳିନୀ (ହେମଚନ୍ଦ୍ର)—
Sasmasru 1. A bearded woman. ବି. ପୁଂ—
(ସଶ୍ମଶ୍ରୁକ—ଅନ୍ୟ ପୁଂ ରୂପ) ୨। ଶ୍ମଶ୍ରୁଯୁକ୍ତ ପୁରୁଷ—2. A bear-
(ସଶ୍ମଶ୍ରୁ, ସଶ୍ମଶ୍ରୁକା—ସ୍ତ୍ରୀ) ded man.

**ସଶ୍ରୀକ**—ସଂ. ବିଣ. ପୁଂ ( ସହାର୍ଥ ବହୁବ୍ରୀହି; ସ+ଶ୍ରୀ+କ )—
Sasrika ଲକ୍ଷ୍ମୀ ଶ୍ରୀଶିଷ୍ଟ—Having Lakshmi; pos-
(ସଶ୍ରୀକା—ସ୍ତ୍ରୀ) sessing beauty, grace etc.

**ସଷ୍ଟମ**—ଗ୍ରା· ବିଣ (ପଦ୍ୟ)—ଷଷ୍ଠ ( ଦେଖ )
Sashtama Sashtha ( See )
षष्ठम (ଉ—ସଷ୍ଟମ କାଳରେ ସ୍ଥିର ହୋଇଛି କର୍ମିଣ । ପ୍ରାଚୀ·
**षष्ठम** ବ୍ରହ୍ମନିରୂପଣ ଗୀତା ।)

**ସ(ସ୍ୱ)ଷ୍ଟିକ**—ଗ୍ରା· ବି· (ସଂ. ସ୍ଫଟିକ)—ସ୍ଫଟିକ—Crystal. [ଉ—
Sa(swa)shtika ସଷ୍ଟିକ ପରି ଏ ଦଶେ ସୃଷ୍ଟିରେ ନ ଯାଏ । ପ୍ରାଚୀ.
फटिक ବ୍ରହ୍ମନିରୂପଣ ଗୀତା ।] ଗ୍ରା. ବିଣ—୧ । ସ୍ଫଟିକ ପରି ସ୍ୱଚ୍ଛ—
**सफटिक** 1. Transparent as crystal. ୨ । ସ୍ଫଟିକ
ପରି ନିର୍ମଳ—2. Crystal-clear,

ସ(ସ୍ବ)ସ୍ତିକ ଜଳ(ପାଣି)—ଗ୍ରା. ବି—ସ୍ଫଟିକ ପରି ନିର୍ମଳ ଓ ସ୍ବଚ୍ଛ ପାଣି- Sa(swa)shṭika jaḷa(pāṇi) Crystal-clear and pure water.
ফটিক জল स्वच्छ जल

ସସ୍ (ଧାତୁ)—ସ—୧ । ନିଦ୍ରା ଯିବା; ଶୋଇବା ( ଶବ୍ଦକୋଷ )— Sas (root) 1. To sleep. ୨ । ସ୍ବପ୍ନ ଦେଖିବା—2. To dream.

ସସ୍‌ପେଣ୍ଟ(ଣ୍ଡ)—ବୈଦେ. ବି ଓ ବିଣ (ଇଂ)—ସସ୍‌ପେଣ୍ଟ ( ଦେଖ ) Sas-penṭ(ṇḍ) Sasapenṭ (See )

ସସଂଜ୍ଞ—ସ. ବିଣ. ପୁଂ (ସହାର୍ଥ ବହୁବ୍ରୀହି; ସ+ସଂଜ୍ଞା)—୧ । ସଂଜ୍ଞା- Sasaṁjña ଯୁକ୍ତ—1. Having definition. ୨ । ଚେତନା- (ସସଂଜ୍ଞା—ସ୍ତ୍ରୀ) ଯୁକ୍ତ—2. Sentient; conscious.

ସସଙ୍ଗ—ସ. ବିଣ. ପୁଂ—ସଙ୍ଗୀମାନଙ୍କ ସହିତ; ସଙ୍ଗ ବିଶିଷ୍ଟ (ଶବ୍ଦକୋଷ) Sasaṅga With companions. [ଦ୍ର—ତାହାଉଲେ ସସঙ্গী ଲକ୍ଷ୍ମଣ ରାମ ଘେନି, ନୃପାନ୍ତରୁ ଯେ ସସଙ୍ଗ ସେନାଙ୍କ । सङ्गीके साथ ଉଞ୍ଜ. ବୈଦେହୀଶବିଳାସ ।]

ସସଜ୍ଜ—ସ. ବିଣ. ପୁଂ (ସହାର୍ଥ ବହୁବ୍ରୀହି; ସ+ସଜ୍ଜା)—୧ । ସଜ୍ଜିତ— Sasajja 1. Dressed; fitted up. ୨ । ସଜ୍ଜା ବିଶିଷ୍ଟ— (ସସଜ୍ଜା—ସ୍ତ୍ରୀ) 2. Furnished.

ସସତ୍ତ୍ବ—ସ. ବିଣ. ପୁଂ ( ସହାର୍ଥ ବହୁବ୍ରୀହି; ସ+ସତ୍ତ୍ବ=ଜନ୍ତୁ )— Sasattwa ପ୍ରାଣିଯୁକ୍ତ—Having animals. (ସସତ୍ତ୍ବା—ସ୍ତ୍ରୀ)

ସସତ୍ତ୍ବା—ସ. ବିଣ. ସ୍ତ୍ରୀ ( ସ+ସହିତ+ସତ୍ତ୍ବ=ଗର୍ଭସ୍ଥ ପ୍ରାଣୀ+ଅ; Sasattwā ବହୁବ୍ରୀହି)—ଗର୍ଭିଣୀ; ଅନ୍ତଃସତ୍ତ୍ବା—Pregnant. ସ. ବି. ସ୍ତ୍ରୀ—ଗର୍ଭିଣୀ ସ୍ତ୍ରୀ—Pregnant woman.

ସସନ—ସ. ବି ('ଶସନ'ର ରୂପାନ୍ତର)—ଯଜ୍ଞାର୍ଥ ପଶୁ ହନନ (ଅମର Sasana ଟୀକା)—Killing of beasts for sacrifice. (ଶସନ, ଶାସନ—ଅନ୍ୟରୂପ)

ସସପେଣ୍ଟ(ଣ୍ଡ)—ବୈଦେ. ବି (ଇଂ. ସସ୍‌ପେଣ୍ଡ)—କିଛିକାଳ ପାଇଁ Saspeṇṭ(ṇḍ) ଚାକିରିରୁ ଚ୍ୟୁତ କରାହେବା; କର୍ମଚ୍ୟୁତ— সস্পেণ্ড Suspension from service. ବୈଦେ. ବିଣ. सस्पेंड (ଇଂ. ସସ୍‌ପେଣ୍ଡେଡ଼)—କିଛିକାଳ ପାଇଁ କାର୍ଯ୍ୟରୁ ରହିତ ବା କର୍ମଚ୍ୟୁତ—Suspended from service.

ସସମ୍ଭ୍ରମ—ସଂ. ବିଣ ( ସହାର୍ଥ ବହୁବ୍ରୀହି; ସ+ସମ୍ଭ୍ରମ )—୧ । ସମ୍ଭ୍ରମ- Sasambhrama ଯୁକ୍ତ; ଭକ୍ତିଭାବବିଶିଷ୍ଟ—1. Respectful. ୨ । ତ୍ବରା ବିଶିଷ୍ଟ; ଉଦ୍‌ବେଗ ବିଶିଷ୍ଟ—2. Hasty.

ସସମ୍ଭ୍ରମେ—ଦେ. କି. ବିଣ ( ସଂ. ସସମ୍ଭ୍ରମଂ )—୧ । ସମ୍ମାନ ପ୍ରଦର୍ଶନ- Sasambhrame ପୂର୍ବକ—1. Respectfully. ୨ । ତ୍ବରା (ସସମ୍ଭ୍ରମରେ—ଅନ୍ୟରୂପ) ସହିତ—2. Hastily. ୩ । ସାଦରରେ; সসংভ্রমে ଆଦରରେ—3. Cordially. ୪ । ଉଦ୍‌ବେଗ ससंभ्रमं ସହକାରେ—4. Anxiously.

ସସମ୍ମାନ—ସ. ବିଣ ( ସହାର୍ଥ ବହୁବ୍ରୀହି; ସ=ସହିତ+ସମ୍ମାନ )— Sasammāna ସମ୍ମାନଯୁକ୍ତ—Respectful.

ସସମ୍ମାନେ—ଦେ. କି. ବିଣ (ସ. ସସମ୍ମାନଂ)—ସମ୍ମାନ ସହିତ— Sasammāne Respectfully. (ସସମ୍ମାନରେ—ଅନ୍ୟରୂପ) সসম্মানে ससम्मान

ସସାକ୍ଷିକ—ସ. ବିଣ ( ସହାର୍ଥ ବହୁବ୍ରୀହି; ସ+ସାକ୍ଷୀ+କ )—ଯେଉଁ Sasākshika ଦଲିଲରେ ସାକ୍ଷୀ ଦସ୍ତଖତ କରି ଥାଆନ୍ତି— Attested (document). ସ. ବି ( କ୍ଷୁଦ୍ର ଦଲିଲ )—ସାକ୍ଷୀମାନଙ୍କ ସ୍ବାକ୍ଷର ଦ୍ବାରା ଲିଖିତ ଲେଖା—Attested deed.

ସସାଗର—ସ. ବିଣ. ପୁଂ (ସହାର୍ଥ ବହୁବ୍ରୀହି; ସ+ସାଗର )—ସାଗର- Sasāgara ଯୁକ୍ତ—With the ocean; including (ସସାଗରା—ସ୍ତ୍ରୀ) the ocean.

ସସାଗରା ଧରା (ପୃଥିବୀ)—ସ. ବି—ସାଗର ସହିତ ପୃଥିବୀ—The Sasāgarā dharā (pṛuthibī) world including the ocean.

ସସାଧ୍ବସ—ସ. ବିଣ. ପୁଂ ( ସ+ସାଧ୍ବସ=ଭୟ; ବହୁବ୍ରୀହି )— Sasādhwasa ୧ । ଭୟଯୁକ୍ତ; ସଭୟ—1. Fearful. ୨ । (ସସାଧ୍ବସା—ସ୍ତ୍ରୀ) ଭୀତ; ତ୍ରସ୍ତ—2. Frightened; terrified.

ସସାନ—ଗ୍ରା. ବି ( ସଂ. ଶ୍ମଶାନ )—ମଶାଣି— Sasāna शशान समशान Cremation ground.

ସସି ଠାର—ଦେ. ବି—ଶଶି ଠାର ( ଦେଖ ) Sasi ṭhāra Śaśi ṭhāra ( See )

ସସିଦ୍ଧ—ସଂ. ବି—ବଡ଼ ଶାଳ ଗଛ; ସର୍ଜ ବୃକ୍ଷ ( ଦ୍ର. ଶ )— Sasiddha A species of big Shorea Robusta ( tree).

ସସି(ସେ)ମିର—ଦେ. ବି—ଚାରିଗୋଟି ଶ୍ଳୋକର ଆଦ୍ୟ ଅକ୍ଷର ଗୁଡ଼ିକ Sasi(se)mirā ଦ୍ବାରା ରଚିତ ଶବ୍ଦ—A word com- সসিমিরা ससेमीरा posed of the four 1st letters of four couplets.

[ଦ୍ର—ଏହା ଭୋଜରାଜ ଓ କାଳିଦାସଙ୍କ ଜୀବନ ସମ୍ବନ୍ଧୀୟ ବେତାଳ ପଞ୍ଚବିଂଶତି ଗ୍ରନ୍ଥର ଗୋଟିଏ ଉପାଖ୍ୟାନର କାହାଣୀ ସଙ୍ଗେ ସମ୍ବନ୍ଧ । ଥରେ ଭୋଜରାଜାଙ୍କ ପୁତ୍ର ଶିକାର କରିବାକୁ ଯାଇ ନଗରକୁ ଫେରି ଆସି ନ ପାରି, ରାତ୍ରି ହେବାରୁ ନିବିଡ଼ ଅରଣ୍ୟ ମଧ୍ୟରେ ଅସହାୟ ରହିଗଲେ ଏବଂ ରାତିରେ ଅରଣ୍ୟର ହିଂସ୍ର ଜନ୍ତୁମାନଙ୍କଠାରୁ ରକ୍ଷା ପାଇବା ପାଇଁ ଗୋଟିଏ ଭାଲୁ ସଙ୍ଗେ ମିତ୍ରତା ସ୍ଥାପନ କଲେ । ରାଜପୁତ୍ର ଓ ଭାଲୁ ଦୁହେଁ ଗୋଟିଏ ଗଛ ଉପରେ ଚଢ଼ି ରାତ୍ରି- ଯାପନ କଲେ । ରାତ୍ରିର ପ୍ରଥମ ଅଂଶରେ ଭାଲୁ ତାହାର ଗୋଡ଼କୁ ଲମ୍ବାଇ ଗଛ ଡାଳରେ ବସିଲା ଓ ରାଜପୁତ୍ର ଭାଲୁର କୋଳରେ ଶୁଇପଡ଼ିଗଲେ । ଏହି ସମୟରେ ଗଛ ତଳକୁ ବାଘ ଆସି ଭାଲୁକୁ କହିଲା କରି କହିଲା, "ତୁ ଗୋଡ଼କୁ ଘୁଞ୍ଚାଇଦେ; ରାଜପୁତ୍ର ତଳକୁ ପଡ଼ିଗଲେ ମୁଁ ତାକୁ ଖାଇବି ।" କିନ୍ତୁ ଭାଲୁ କହିଲା, "ମୁଁ ରାଜପୁଅ ସଙ୍ଗେ ମିତ୍ର ହୋଇଛି । ମୁଁ ମିତ୍ରଦ୍ରୋହୀ ହେବି ନାହିଁ ।" ଏହା ଶୁଣି

ବାଘ ଫେରି ଗଲା; କିନ୍ତୁ ଗଲାବେଳେ ଭାଲୁକୁ କହିଗଲା "ଆରେ! ଦୁଇଗୋଡ଼ିଆ ( ମନୁଷ୍ୟ ଜାତି )କୁ ବିଶ୍ୱାସ ନାହିଁ।"

ରାତ୍ରିର ଶେଷ ଅଂଶକୁ ରଜାପୁଅ ଚେଇଁବ ଓ ଭାଲୁ ଶୋଇବ, ଏହିପରି କଥା ଅଗରୁ ଠିକ୍ ହୋଇ ଥିବାରୁ ରଜାପୁଅ ଉଦରରୁ ଉଠି ଗଛ ଉପରେ ଗୋଡ଼ ଲମ୍ବାଇ ବସିଲା ଓ ଭାଲୁ ତା କୋଡ଼ରେ ଶୋଇଲା । କିନ୍ତୁ ବାଘର ପୂର୍ବ କଥିତ ଉପଦେଶକୁ ଭାଲୁ ମନେ ରଖି ରଜାପୁଅର ଅଜ୍ଞାତରେ ଆପଣା ନଖକୁ ଗଛର ଗଣ୍ଡିରେ ବନ୍ଧ କରି ରଜାପୁଅର କୋଳରେ ଶୋଇଲା । ଏହି ସମୟରେ ପୁଣି ବାଘ ଆସି ରଜାପୁଅକୁ କହିଲା, "ଆରେ ! ଭାଲୁଟା ହିଂସ୍ର ଜନ୍ତୁ, ସେ ତତେ ଖାଇଯିବ; ତୁ ଗୋଡ଼ ଛାଡ଼ି ଦେ, ଭାଲୁ ଗଛ ଉପରୁ ଖସି ପଡ଼ୁ, ମୁଁ ତାକୁ ଖାଇବି ।" ରଜାପୁଅ ଏହା ଶୁଣି ଗୋଡ଼କୁ ଖସାଇ ଦେଲା; କିନ୍ତୁ ଭାଲୁ ପୂର୍ବରୁ ଚତୁର ହୋଇ ଗଛର ଗଣ୍ଡିରେ ନଖକୁ ବନ୍ଧ କରି ଥିବାରୁ ତଳକୁ ଖସି ପଡ଼ିଲା ନାହିଁ ।

ତାପରେ ସକାଳ ହେବାରୁ ଭାଲୁ ରଜାପୁଅକୁ କହିଲା, "ବାଘର ଉପଦେଶକୁ ମୁଁ ନ ମାନି ତତେ ରଖିଥିଲି; ତୁ ମିତ୍ରଦ୍ରୋହୀ ହେଲୁ; କିନ୍ତୁ ମୁଁ ମିତ୍ରଦ୍ରୋହୀ ହେବି ନାହିଁ । ଏଥିପାଇଁ ତୋତେ ପ୍ରାଣରେ ନ ମାରି ଛାଡ଼ି ଦେଉଛି ।" ଏହା କହି ଭାଲୁ ରଜାପୁଅର ଛାତି ଉପରେ 'ସସେମିରା' ଏହି ୪ଟି ଅକ୍ଷର ନଖଦ୍ୱାରା ଲେଖିଦେଇ ବଣଭିତରକୁ ଚାଲିଗଲା । ରଜାପୁଅ ପାଗଳ ହୋଇ ଏହି 'ସସେମିରା' ପଦକୁ ଉଦ୍ଗାର ଘୋଷି ଘୋଷି ନଅରରେ ଆସି ପହଞ୍ଚିଲା । ସବୁବେଳେ ଏହି ପଦକ ସେ ଘୋଷି ହେଉଥାଏ; ରଜାପୁଅ ମୁହଁରେ ଅନ୍ୟ କଥା ନାହିଁ, ଏହା ଦେଖି ଭୋଜରାଜା ବଡ଼ ଚିନ୍ତିତ ହେଲେ ଓ ଏହି ବାତୁଳପଣ କିପରି ଭଲ ହେବ, ଏଥିପାଇଁ ନାନା ପ୍ରକାର ଚେଷ୍ଟା କରି ବିଫଳମନୋରଥ ହେଲେ । ଅବଶେଷରେ ହତାଶ ହୋଇ ମନ୍ତ୍ରୀଙ୍କୁ ଆଦେଶ ଦେଲେ, "ମୋ ପୁଅକୁ ଯେ ନୀରୋଗ କରିଦେବ, ତାକୁ ରାଜ୍ୟରୁ ଅଧେ ପୁରସ୍କାର ଦିଆଯିବ ।" ଏହା ଶୁଣି ମନ୍ତ୍ରୀ ଘରକୁ ଫେରି ତାଙ୍କ ଘରେ ସ୍ତ୍ରୀ-ବେଶ ଧାରଣ କରି ଲୁଚିକରି ରହିଥିବା କାଳିଦାସଙ୍କୁ ସନ୍ଧ୍ୟାବେଳକୁ ଗୋଟିଏ ସ୍ତ୍ରୀର ବେଶ କରାଇ ଆପଣାର ଝିଅ ବୋଲି ରାଜାଙ୍କୁ ପରିଚୟ ଦେଇ ରଜାପୁଅ ନିକଟକୁ ସ୍ତ୍ରୀବେଶଧାରୀ ଅବଗୁଣ୍ଠିତ କାଳିଦାସଙ୍କୁ ସଙ୍ଗରେ ଆଣି ପହଞ୍ଚାଇଲେ । ଅବଗୁଣ୍ଠିତ କାଳିଦାସ ରଜାପୁଅଙ୍କ କାନରେ 'ସସେମିରା'ର ଅଦ୍ୟ ଅକ୍ଷରବିଶିଷ୍ଟ ୪ଟି ପୂର୍ଣ୍ଣାବସ୍ଥାଯୁକ୍ତ ଶ୍ଳୋକ ବୋଲିଲେ । ଯଥା—

ପ୍ରଥମ ଶ୍ଳୋକର ଅଦ୍ୟ 'ସ' ଅକ୍ଷର—

ସଦ୍ଭାବ ପ୍ରତିପନ୍ନାନାଂ ବଞ୍ଚନେ କା ବିଦଗ୍ଧତା,
ଅଙ୍କମାରୁହ୍ୟ ସୁପ୍ତାନାଂ ହନ୍ତୁଃ କିଂ ନାମ ପୌରୁଷମ୍ ?

[ଅର୍ଥ—ଯେଉଁମାନେ ଏକାନ୍ତ ବିଶ୍ୱସ୍ତ, ସେମାନଙ୍କୁ ପ୍ରତାରଣା କରିବାର ପାଣ୍ଡିତ୍ୟ ? ଯେଉଁମାନେ ଅଙ୍କକୁ ଆଶ୍ରୟ କରି ଶୋଇ ଥାଆନ୍ତି ତାଙ୍କୁ ମାରିଦେଲେ ହତ୍ୟାକାରୀର ପୌରୁଷ ପ୍ରକାଶ ପାଏ କି ?

ଦ୍ୱିତୀୟ ଶ୍ଳୋକର ପ୍ରଥମ ଅକ୍ଷର 'ସେ'—

ସେତୁଂଗତ୍ୱା ସମୁଦ୍ରସ୍ୟ ଗଙ୍ଗାସାଗର ସଙ୍ଗମମ୍
ବ୍ରହ୍ମହା ମୁଚ୍ୟତେ ପାପାତ୍ ମିତ୍ରଦ୍ରୋହୀ ନ ମୁଚ୍ୟତେ ।

[ଅର୍ଥ—ସେତୁବନ୍ଧ ରାମେଶ୍ୱରକୁ ଓ ଗଙ୍ଗାସାଗର ସଙ୍ଗମକୁ ଗଲେ (ସେଠାରେ ସ୍ନାନାଦି କଲେ) ବ୍ରହ୍ମହା ପାପରୁ ମୁକ୍ତ ହୁଏ; କିନ୍ତୁ ମିତ୍ରଦ୍ରୋହୀ ମୁକ୍ତ ହୁଏ ନାହିଁ ।]

ତୃତୀୟ ଶ୍ଳୋକର ଅଦ୍ୟ ଅକ୍ଷର 'ମି'—

ମିତ୍ରଦ୍ରୋହୀ କୃତଘ୍ନଶ୍ଚ ଯେ ଚ ବିଶ୍ୱାସଘାତକାଃ
ତେ ସର୍ବେ ନରକଂ ଯାନ୍ତି ଯାବଚ୍ଚନ୍ଦ୍ରଦିବାକରୌ ।

[ଅର୍ଥ—ଯେଉଁ ନରମାନେ ମିତ୍ରଦ୍ରୋହୀ, କୃତଘ୍ନ ଓ ବିଶ୍ୱାସଘାତକ ଅଟନ୍ତି ସେମାନେ ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ନରକକୁ ଯାଆନ୍ତି ।]

୪ର୍ଥ ଶ୍ଳୋକର ଅଦ୍ୟ ଅକ୍ଷର 'ରା'—

ରାଜଂସ୍ତ୍ୱଂ ରାଜ ପୁତ୍ରସ୍ୟ ଯଦି କଲ୍ୟାଣମିଚ୍ଛସି
ଦେହି ଦାନଂ ଦ୍ୱିଜାତିଭ୍ୟୋ ଦେବତାରାଧନଂ କୁରୁ ।

[ଅର୍ଥ—ହେ ରାଜନ୍, ଯେବେ ତୁମ୍ଭେ ରାଜପୁତ୍ରଙ୍କର ମଙ୍ଗଳ ଇଚ୍ଛା କର, ତେବେ (ଏ ମିତ୍ରଦ୍ରୋହ ପାତକର ପ୍ରାୟଶ୍ଚିତ୍ତ ପାଇଁ) ବ୍ରାହ୍ମଣମାନଙ୍କୁ ଦାନ ଦିଅ ଓ ଦେବାରାଧନା କର ।]

ରାଜପୁତ୍ର ସ୍ତ୍ରୀବେଶଧାରୀ କାଳିଦାସଙ୍କଠାରୁ ଏହି ୪ଟି ଅକ୍ଷରର ଚାବି (Key) ସ୍ୱରୂପ ଏ ଶ୍ଳୋକ ୪ଟି ଶୁଣିଲା ମାତ୍ରକେ ତାଙ୍କର ବାତୁଳପଣ ଛାଡ଼ିଗଲା ଏବଂ ରାଜପୁତ୍ର ଗତ ରାତ୍ରିରେ ଅରଣ୍ୟରେ ଭାଲୁ ସଙ୍ଗେ ଘଟିଥିବା ଘଟନାମାନ ରାଜାଙ୍କ ନିକଟରେ ବର୍ଣ୍ଣନା କଲେ । ଭୋଜରାଜ ଏହା ଶୁଣି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଉକ୍ତ ଛଦ୍ମବେଶଧାରୀଙ୍କୁ ପଚାରିଲେ—

'ଗୃହେ ବସସି କୌମାରି ! ଅରଣ୍ୟଂ ନୈବ ଗଚ୍ଛସି
ଋକ୍ଷବ୍ୟାଘ୍ରମନୁଷ୍ୟାଣାଂ କଥଂ ଜାନାସି ଭାଷିତଂ ?"

[ଅର୍ଥ—ହେ କୁମାରି ! ତୁମେ ଘରେ ବାସ କରୁ, ବଣକୁ ଯାଉନାହଁ (ଏପରି ଅବସ୍ଥାରେ) ଭାଲୁ, ବାଘ ଓ ମନୁଷ୍ୟମାନଙ୍କ କଥାବାର୍ତ୍ତା କିପରି ଜାଣିଲୁ ?]

ଏ ଶ୍ଳୋକର ପ୍ରତ୍ୟୁତ୍ତରରେ ଅବଗୁଣ୍ଠନବାନ୍ ସ୍ତ୍ରୀବେଶଧାରୀ କାଳିଦାସ ଉତ୍ତର ଦେଲେ—

'ଦେବଦ୍ୱିଜ ପ୍ରସାଦେନ ଜିହ୍ୱାଗ୍ରେ ମେ ସରସ୍ୱତୀ
ତେନାହଂ ନୃପ ! ଜାନାମି, ଭାନୁମତ୍ୟାସ୍ତିଲଂ ଯଥା ।

[ଅର୍ଥ—ହେ ନୃପ ! ଦେବତା ଓ ବ୍ରାହ୍ମଣଙ୍କ ଅନୁଗ୍ରହରୁ ମୋ ଜିହ୍ୱ ଅଗରେ ସରସ୍ୱତୀ ଅଛନ୍ତି । ସେଥିଯୋଗୁ ମୁଁ ଏ ବୃତ୍ତାନ୍ତମାନ ଜାଣି ପାରୁଛି । ଆପଣଙ୍କ ରାଣୀ ଭାନୁମତୀଙ୍କ ଜଙ୍ଘରେ ଗୋଟିଏ ତିଳ ଚିହ୍ନ ଥିବା କଥା ମୁଁ ସେହିପରି ସରସ୍ୱତୀଙ୍କ କୃପାରୁ ଜାଣି ପାରିଥିଲି, ସେହିପରି ଏ କଥା ମଧ୍ୟ ଜାଣିଲି ।"]

କେତେ ଦିନ ପୂର୍ବେ ଭୋଜରାଜାଙ୍କ ରାଣୀ ଭାନୁମତୀଙ୍କ ରୂପକୁ ରାଜାଦେଶରେ ଜଣେ ଚିତ୍ରକର ଗୋଟିଏ ଚିତ୍ରପଟରେ ଅଙ୍କନ କରି ଆଣି ରାଜାଙ୍କୁ ଦେଖାଇବାରୁ ରାଜା ସେ ରୂପଟି ଭାନୁମତୀଙ୍କର ଅବିକଳ ପ୍ରତିରୂପ ହୋଇଥିବା ଦେଖି ସନ୍ତୁଷ୍ଟ ହେଲେ । କିନ୍ତୁ ତାଙ୍କ ରାଜସଭାର ପଣ୍ଡିତ କାଳିଦାସ ସରସ୍ୱତୀଙ୍କ ବର ଯୋଗୁଁ ସର୍ବଜ୍ଞ ଥିବାରୁ ସେ ଭାନୁମତୀଙ୍କ ଅଙ୍ଗକୁ କେବେ ଦେଖିଲେ ହେଁ ଦେଖି ନ ଥିଲେ ସୁଦ୍ଧା ସେ ଚିତ୍ରର ଦୋଷକୁ ବାରି ଦେଇ କହିଲେ, "ଭାନୁମତୀଙ୍କ ଜଙ୍ଘରେ ଗୋଟିଏ କୃଷ୍ଣ ତିଳ ବା ଲକ୍ଷ୍ମୀ ଚିହ୍ନ ଅଛି; ତାହା ଚିତ୍ରକର ଏ ଚିତ୍ରପଟରେ ଅଙ୍କନ କରି ନାହିଁ ।" କୃଷ୍ଣ ତିଳ ଚିହ୍ନ ରାଣୀଙ୍କ ଜଙ୍ଘରେ ଅବସ୍ଥାନ କଥା ରାଜାଙ୍କ ଛଡ଼ା ଅନ୍ୟ କେହି ଜାଣୁ ନ ଥିଲେ; କାଳିଦାସ ସର୍ବଜ୍ଞ ଥିବାରୁ ଏହା ଜାଣିଲେ । ଏ ଚିତ୍ର କଥା ରାଜପୁତ୍ର ପାଗଳ ହେବା ପୂର୍ବର ଘଟଣା; ରାଣୀଙ୍କ ଜାନୁର ତିଳ କଥା କାଳିଦାସ କହିବାରୁ ରାଜା ତାଙ୍କଠାରେ ରାଣୀଙ୍କ ଜାନୁ ଦେଖିଥିବା କଥା ସନ୍ଦେହ କରି କୁପିତ ହୋଇ ତାଙ୍କୁ ପ୍ରାଣଦଣ୍ଡର ଆଦେଶ ଦେଇ ପ୍ରାଣଦଣ୍ଡବିଧାନାର୍ଥ ତାଙ୍କୁ ମନ୍ତ୍ରୀଙ୍କ ଜିମା କରିଥିଲେ । ତାଙ୍କୁ ପ୍ରାଣଦଣ୍ଡରେ ଦଣ୍ଡିତ କରିବା ପାଇଁ ରାଜାଙ୍କ ନିକଟରେ ଅଙ୍ଗୀକାର କରି ରାଜାଙ୍କ ବୁଦ୍ଧିମାନ୍ ମନ୍ତ୍ରୀ ତାଙ୍କୁ ନେଇ ଆପଣା ଘରେ ଜଣେ ସ୍ତ୍ରୀରୂପେ ପ୍ରଚ୍ଛନ୍ନ ବେଶରେ ରଖାଇ ଥିଲେ; ବର୍ତ୍ତମାନ ରାଜାଙ୍କ ପୁତ୍ର ପାଗଳ ହେବାରୁ କାଳିଦାସଙ୍କୁ ଅବଗୁଣ୍ଠନବତୀ ସ୍ତ୍ରୀ ବେଶରେ ଆଣି ରାଜପୁତ୍ରଙ୍କ ପାଖେ ଉପସ୍ଥିତ କରାଇଲେ । ଅବଗୁଣ୍ଠିତ ଛଦ୍ମ କାଳିଦାସ ଏହି ପ୍ରସଙ୍ଗକୁ ଶେଷୋକ୍ତ ଶ୍ଳୋକଦ୍ୱାରା ସୂଚନା କରିବାରୁ ଭୋଜରାଜ ଠଉରାଇ ନେଲେ ଯେ, ଏ ନାରୀବେଶଧାରୀ ସର୍ବଜ୍ଞ ଅନ୍ୟ କେହି ନୁହନ୍ତି, ଏ କବିଶ୍ରେଷ୍ଠ କାଳିଦାସ । ଏହା ଭାବିବା କାଳିଦାସଙ୍କ ମୁହଁରୁ ଓଢ଼ଣାଟି କାଢ଼ି ଦେବାରୁ କାଳିଦାସଙ୍କ ନିଜ ରୂପ ପ୍ରକାଶ ପାଇଲା ଏବଂ ଭୋଜରାଜ ସନ୍ତୁଷ୍ଟ ହୋଇ କାଳିଦାସଙ୍କୁ ପ୍ରେମାଲିଙ୍ଗନ କଲେ । ]

**ସସୀମ**—ସଂ. ବଣ ( ସହାର୍ଥ ବହୁବ୍ରୀହି; ସ+ସୀମନ୍; ୧ମା. ୧ବ )—
Sasima ୧ । ସୀମା ସହିତ—1. With the boundaries
୨ । ସୀମାର ମଧ୍ୟବର୍ତ୍ତୀ ( ହ୍ରୂ. ଶ )—2. Situated within the boundaries. ୩ । ନିକଟବର୍ତ୍ତୀ ( ଶବ୍ଦକୋଷ )—3. Adjoining.

**ସସୁକୁଳି**—ପ୍ରାଦେ. ( ଉତ୍ତର ବାଲେଶ୍ୱର ) ବ ( ତୁଳ. ହ, ଶସ୍କୁଲୀ)—
Sasukuli ପତଳପିଠା—Thin circular pancake.

**ସସୁର**—ସ. ବଣ ( ସହାର୍ଥ. ବହୁବ୍ରୀହି )—୧ । (ସ+ସୁର)—ଦେବଙ୍କ
Sasura ସଙ୍ଗ ବର୍ତ୍ତମାନ ( ଶବ୍ଦକୋଷ )—1. Present with the Deities. ୨ । ( ସ+ସୁରା+ଅ ) ସୁରାବିଶିଷ୍ଟ ( ଶବ୍ଦକୋଷ )—2. Having spirituous liquor.
ਸ਼ੱਸੁਰ ଗ୍ରା. ବ. ପୁଂ (ସଂ ଶ୍ୱଶୁର)—ଶ୍ୱଶୁର—Father-in-law.
ससुर ( ସାସୁ—ସ୍ତ୍ରୀ )

**ସସୈନ୍ୟ**—ସଂ ବଣ—ସେନା ସହିତ ବର୍ତ୍ତମାନ—
Sasainya Accompanied with an army.

**ସସୈନ୍ୟେ**—ଦେ. କ୍ରି. ବଣ ( ସଂ ସସୈନ୍ୟଂ )—ସେନା ସମଭିବ୍ୟାହାରରେ—Accompanied with an army,
Sasainye
ਸਸੈਨ੍ਯੇ ससैन्य ( ସସୈନ୍ୟରେ—ଅନ୍ୟରୂପ )

**ସସୌଷ୍ଠବ**—ସଂ. ବଣ. ପୁଂ ( ସହାର୍ଥ ବହୁବ୍ରୀହି; ସ+ସୌଷ୍ଠବ )—
Sasaushthaba ୧ । ପରମ ସୁନ୍ଦର—1. Very grace-
( ସସୌଷ୍ଠବା—ସ୍ତ୍ରୀ ) ful; very symmetrical.
୨ । ବେଗଗାମୀ—2. Swift.

**ସସ୍କାଳ(ଳେ)**—ଗ୍ରା. ଓ . ବଣ (ସଂ. ସଦ୍ୟସ୍କାଳଃ ବା ତତ୍କାଳଂ)—
Saskāla(le) ୧। ତତ୍କ୍ଷଣାତ୍—1. At once; immedia-
तक्षुनि, सकाल सकाल tely. ୨ । ଅତି ପ୍ରାତଃ—2. Very
सकाल early. ୩ । ଅତି ଶୀଘ୍ର—3. Very soon.

**ସସ୍ତା (ଇତ୍ୟାଦି)**—ଦେ. ବଣ (ସଂ. ସୁସ୍ଥ)—ଶସ୍ତା ଇତ୍ୟାଦି (ଦେଖ)—
Sastā (etc) सस्ता सस्ता Sastā etc ( See )

**ସସ୍ତ୍ରୀକ**—ସଂ. ବଣ ପୁଂ ( ସହାର୍ଥ. ବହୁବ୍ରୀହି; ସ+ସ୍ତ୍ରୀ. କ; ଆଗମ)—
Sastrika ସପତ୍ନୀକ—Accompanied by one's wife.
ଦେ. କ୍ରି. ବଣ ( ସଂ. ସସ୍ତ୍ରୀକଂ )—ସ୍ତ୍ରୀ ସହିତ—With one's wife; accompanied by one's wife.

**ସସ୍ତ୍ରୀକ ବିଦେଶ ବାସ**—ଦେ. ବ—ଆପଣା ସ୍ତ୍ରୀ ସହିତ ବିଦେଶରେ
Sastrika bidesa bāsa ବାସ କରିବା—Living a-
सस्त्रीक विदेस वास broad with one's wife.
सस्त्रीक विदेश वास

**ସସ୍ନେହ**—ସଂ.ବଂ. ପୁଂ (ସହାର୍ଥ. ବହୁବ୍ରୀହି; ସ+ସ୍ନେହ)—୧ । ସ୍ନେହ
Sasneha ବା ପ୍ରୀତିବିଶିଷ୍ଟ—1. Affectionate. ୨ । ତୈଳ
(ସସ୍ନେହା—ସ୍ତ୍ରୀ) ବିଶିଷ୍ଟ—2. Oily.

**ସସ୍ପୃହ**—ସଂ. ବଣ. ପୁଂ (ସ+ସ୍ପୃହା; ସହାର୍ଥ. ବହୁବ୍ରୀହି)—୧ । ସ୍ପୃହା-
Saspruha ଯୁକ୍ତ; ସାଭିଳାଷ—1. Longing. ୨ । ଲୋଭ
( ସସ୍ପୃହା—ସ୍ତ୍ରୀ ) ଯୁକ୍ତ; ଲୋଭାକ୍ରାନ୍ତ—2. Avaricious.

**ସସ୍ମିତ**—ସଂ. ବଣ. ପୁଂ ( ସହାର୍ଥ ବହୁବ୍ରୀହି; ସ+ସ୍ମିତ )—ହସଉ
Sasmita ହାସ୍ୟଯୁକ୍ତ; ସହାସ୍ୟ—Smiling.
( ସସ୍ମିତା—ସ୍ତ୍ରୀ )

**ସସ୍ମିତ ବଦନ**—ସଂ. ବ ( କର୍ମଧାରୟ )—ସହାସ୍ୟ ମୁଖ—
Sasmita badana Smiling face.
[ ସସ୍ମିତ ମୁଖ, ସସ୍ମିତାନନ—ଅନ୍ୟରୂପ ]

ସସ୍ମିତମୁଖୀ[ଖୀ], ସସ୍ମିତ-ବଦନା, ସସ୍ମିତାନନା } ସ୍ତ୍ରୀ ସଂ. ବଣ. ପୁଂ (ବହୁବ୍ରୀହି) ହାସ୍ୟଯୁକ୍ତ ମୁଖ—Having a smiling face.

ସସ୍ମିତେ—ବେ. କି. ଣ ( ସଂ. ସସ୍ମିତ )—ହାସ୍ୟଯୁକ୍ତ ମୁଖରେ—
Sasmite ସସ୍ମିତେ ସସ୍ମିତ With a smiling face.
[ ସସ୍ମିତରେ—ଅନ୍ୟରୂପ ]

ସସ୍ୱନ—ସଂ. ଣ ( ସହାର୍ଥ ବହୁବ୍ରୀହି; ସ+ସ୍ୱନ )—ସ୍ୱନ ବା ଶବ୍ଦ
Saswana ବିଶିଷ୍ଟ—Having sound.

ସସ୍ୱେଦ—ସଂ. ଣ. ପୁଂ ( ସହାର୍ଥ. ବହୁବ୍ରୀହି; ସ+ସ୍ୱେଦ )—ସ୍ୱେଦ-
Sasweda ଯୁକ୍ତ; ଘର୍ମିକ୍ତ—Perspiring; full of sweat.
[ ସସ୍ୱେଦା—ସ୍ତ୍ରୀ ]

ସସ୍ୱେଦା—ସଂ. ବି. ସ୍ତ୍ରୀ—୧ । ଦୂଷିତା କନ୍ୟା ( ଶବ୍ଦରତ୍ନାବଳୀ )—
Saswedā A ravished or deflowered girl.
୨ । ସ୍ୱେଦଯୁକ୍ତା ନାରୀ—2. A perspiring woman.
ସଂ. ଣ. ସ୍ତ୍ରୀ—ସସ୍ୱେଦର ସ୍ତ୍ରୀଲିଙ୍ଗ—Feminine of Sasweda.

ସସ୍ୟ (ଇତ୍ୟାଦି)—ସଂ. ବି (ସଂ. ଶସ୍ୟର ଅନ୍ୟରୂପ; ସସ ଧାତୁ=ବଢ଼ି-
Sasya (etc) ଯିବା+କରଣେ ଯ; ଯାହାଦ୍ୱାରା ପ୍ରାଣୀଙ୍କର ବୃଦ୍ଧି ହୁଏ ।] ୧ । ଶସ୍ୟ ଇତ୍ୟାଦି (ଦେଖ) ବ୍ରୀହିଆଦି ଧାନ୍ୟାଦି (ହେମଚନ୍ଦ୍ର)—1. Grains. [ ଦ୍ର—ଏହି ଅର୍ଥରେ ଅନ୍ୟ ଯୌଗିକ ଶବ୍ଦ ( ଯଥା—ସସ୍ୟକ୍ଷେତ୍ର, ସସ୍ୟପାଳ, ସସ୍ୟରକ୍ଷକ, ଇତ୍ୟାଦି)ମାନଙ୍କ ପାଇଁ 'ଶସ୍ୟ' ଶବ୍ଦ ପରେ ଦେଖ ।] ୨ । ଧାନ୍ୟ (ହେମଚନ୍ଦ୍ର)—2. Paddy. ୩ । ବୃକ୍ଷାଦିର ଫଳ—3. Fruits of trees. ୪ । ଶସ୍ତ୍ର (ହି. ଶ)—4. Weapon. ୫ । ଗୁଣ (ହି. ଶ.) 5. Quality. ୬ । ଉତ୍କୃଷ୍ଟତା—6. Excellence. ୭ । ଫଳାଦିର ଅଭ୍ୟନ୍ତରସ୍ଥ କୋମଳ ଅଂଶ—7. The kernel inside the seeds or fruits.

ସସ୍ୟକ—ସଂ. ବି (ସସ୍ୟ+କ)—୧ । ମଣିଭେଦ; ଏକପ୍ରକାର ମଣି
Sasyaka [ ମେଦିନୀ]—1. A kind of gem. ୨ । ଅସି; ଖଡ୍ଗ—2. Sword. ୩ । ନଡ଼ିଆ ମଧ୍ୟରେ ଥିବା କୋମଳ ପଦାର୍ଥ (ହେମଚନ୍ଦ୍ର)—3. The kernel inside the cocoanut. ୪ । ଶାଲିଧାନ (ହି. ଶ) 4. Winter-paddy.

ସସ୍ୟମାରୀ—ସଂ. ଣ—ସସ୍ୟନାଶକ—Destructive of corn.
Sasyamāri ସଂ. ବି—ମହାମୂଷିକ (ରାଜନିର୍ଘଣ୍ଟ)—ଏକ-ପ୍ରକାର ବଡ଼ ମୂଷା; ବଲିଆ ମୂଷା; ମାଟିଆ ମୂଷା (ଶବ୍ଦକୋଷ)—A big species of brown rats destroying corns in the field.

ସସ୍ୟଳ—ସଂ. ଣ—ଶସ୍ୟଳ (ଦେଖ)
Sasyala Śasyala (See)

ସସ୍ୟଶୀର୍ଷକ—ସଂ. ବି—୧ । [ ୬ଷ୍ଠୀ ତତ୍ ]—ନବଜାତ ଶସ୍ୟର
Sasyasirshaka ମଞ୍ଜରୀ—1. Newly come out ear of corn. ୨ । [ ବହୁବ୍ରୀହି; ସସ୍ୟ ଯହିଁ ଶୀର୍ଷକ ଯାହାର ]—କର୍ଣ୍ଣ [ ହେମଚନ୍ଦ୍ର ]- 2 The ear.

ସସ୍ୟ ଶୂକ—ସଂ. ବି ( ୬ଷ୍ଠୀ ତତ୍ )—ଧାନ୍ୟାଦି ଶସ୍ୟର ତୀକ୍ଷ୍ଣ ଦୀର୍ଘ
Sasya śūka ଲମ୍ବ ଅଗ୍ରଭାଗ—The awn of corn.

ସସ୍ୟ ସମ୍ବର—ସଂ. ବି—ଶାଳ ବୃକ୍ଷ (ଅମର)
Sasya sambara The Śāla tree.

ସସ୍ୟ ସମ୍ବରଣ—ସଂ. ବି—ଅଶ୍ୱକର୍ଣ୍ଣ ବୃକ୍ଷ (ରାଜନିର୍ଘଣ୍ଟ); ଶାଳବୃକ୍ଷ—
Sasya sambarana A kind of Sal tree; Shoria Robusta.

ସସ୍ୟହା—ସଂ. ଣ (ପୁଂ ଓ ସ୍ତ୍ରୀ)—(ସସ୍ୟ+ହନ୍ ଧାତୁ+କର୍ତ୍ତୃ କ୍ୱିପ୍;
Sasyahā ସସ୍ୟହନ୍; ୧ମା ୧ବ )—ସସ୍ୟନାଶକାରୀ—
Destructive of corn. ସଂ. ବି—୧ । ମେଘ (ଶବ୍ଦକୋଷ)—1. Cloud. ୨ । ( ନାମ ) ବଳି-କନ୍ୟା କର୍ମୋତ୍ପିଙ୍କ ଗର୍ଭରେ ଭୂଃସହଙ୍କ ଔରସ ପୁତ୍ର—2. Name of a grandson of Kali.

ସସ୍ର—ଗ୍ରା. ବି—୧ । ( ସଂ. ସହସ୍ର )—ସହସ୍ର—1. Thousand.
Sasra [ଦ୍ର—ଖୋଲ ସସ୍ର ଶବ ଅସ୍ତ୍ର ଦିବ୍ୟ ପୁର ରମଣୀ ସହସ୍ର ସହସ୍ର ଗୃହିଁଲ ବଳେଣି—ଶିଶୁଶଙ୍କର ଉଷାଭିଳାଷ । ] ଶସ୍ତ୍ର ଶସ୍ତ୍ର ୨ । ( ସଂ. ଶସ୍ତ୍ର )—ଶସ୍ତ୍ର (ଦେଖ)—2. Śasra (See) ୩ । ଉପାୟ—3. Means. ୪ । ପ୍ରତୀକାର—4. Remedy ଗ୍ରା. ଣ—ସହସ୍ର ସଂଖ୍ୟକ—Numbering a thousand. [ ଦ୍ର—ସୁରଭି କୋଇଲେ ହେ ସସ୍ରେ ପୁତ୍ର ଥାନ୍ତି—କୃଷ୍ଣସିଂହ ମହାଭାରତ ବନ ।]

ସସ୍ରା ଅର୍ଜୁନ—ଗ୍ରା. ବି (ନାମ)—ସହସ୍ରାର୍ଜୁନ; କାର୍ତ୍ତବୀର୍ଯ୍ୟାର୍ଜୁନ [ଦେଖ]
Sasrā arjuna Kārttabīrjyārjuna. [See]
(ସସ୍ରାର୍ଜୁନ—ଅନ୍ୟରୂପ) (ରାବଣ ସସ୍ରାଅର୍ଜୁନ ବାଣାସୁର ଆଉ ସହସ୍ରାର୍ଜୁନ ସହସ୍ରାର୍ଜୁନ ବୀର ଅଛ ଯେତେ, ଧନୁ ନ ଭାଙ୍ଗି କନ୍ୟାକୁ ନେବା ବୋଲି ବସୁଅଛ କ ଚିତ୍ତେ ବା—ବିଶ୍ୱନାଥ ଖୁଣ୍ଟିଆ ବିଚିତ୍ର ରାମାୟଣ ।]

ସସ୍ରେ—ଦେ. ଣ—ଏକ ସହସ୍ର ସଂଖ୍ୟକ—Numbering one
Sasre thousand; a of thousand. ସଂ ବି,
( ସସ୍ରେକ - ଅନ୍ୟରୂପ ) ଏକ ସହସ୍ର ସଂଖ୍ୟା—
ସହସ୍ରେକ ପୈକସହସ୍ର One thousand.

ସହ୍ ଧାତୁ—ସଂ.—ସହ୍ୟକରିବା; ସହିବା—
Sah root To bear; to suffer.

ସହ—ସଂ, ଅ (ସହ୍ ଧାତୁ+ଭାବ. ଅ)—୧ । ସହିତ—1. With;
Saha along with. ୨ । ସଙ୍ଗେ, ଏକ ସଙ୍ଗରେ; ଏକତ୍ର ହୋଇ; ଯୁଗପତ୍—2. Together with; simultaneously with. ୩ । ସମ-ଭିବ୍ୟାହାରରେ—3. Accompanied with. ୪ । ପ୍ରତିଯୋଗୀରୂପେ ବା ପ୍ରତିଦ୍ୱନ୍ଦ୍ୱୀରୂପେ—4. As a rival or competitor. [ ଦ୍ର—ରାମ ସହ ବାଳିମାର ଯୁଦ୍ଧ ଦାରୁଣ ।] ୫ । ଶତ୍ରୁରୂପେ ବା ବିପକ୍ଷରୂପେ—5. As an adversary or opantagonist. [ ଦ୍ର—ରାବଣ ରାମଙ୍କ ସହ ଯୁଦ୍ଧ କଲେ ।] ୬ । ସମାନାସନରେ ବା ଏକାସନରେ ଅବସ୍ଥିତ ହୋଇ—6. Occupying equal or the same seat or status. [ ଦ୍ର—ସେ ମୋ ସହ

ପଂକ୍ତି ଭୋଜନ କଲେ ।] [ ଦ୍ର—ଏହି ଅବ୍ୟୟ କମ୍ବ ଲକ୍ଷିତ ଅର୍ଥରେ ବ୍ୟବହୃତ ହୁଏ । ( a preposition having the following senses ଯଥା:—୧ । ସାହଚର୍ଯ୍ୟ; ସାହିତ୍ୟ—Accompaniment. ୨ । ସାକଲ୍ୟ—2. Entirety. ୩ । ସାଦୃଶ୍ୟ—3. Similarity. ୪ । ବିଦ୍ୟମାନତା—4. Presence.

୫ । ସାମର୍ଥ୍ୟ—5. Competence; ability. ୬ । ସାଫଲ୍ୟ—6. Fruitfulness; fulfilment; success. ୭ । ସମୃଦ୍ଧି—7. Greatness; prosperity. ୮ । ସମ୍ବନ୍ଧ—8. Connection.] ସଂ. ବଣ. ପୁଂ—(ସହା—ସ୍ତ୍ରୀ) ୧ । ସହିଷ୍ଣୁ—1. Enduring; forbearing; patient. ୨ । ସହନଶୀଳ—2. Capable of bearing. ୩ । ସମର୍ଥ; କ୍ଷମ—3. Able; competent. [ ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦ ପରେ ଯୁକ୍ତ ହୋଇ ସମାସ ହୁଏ । ଯଥା—କଷ୍ଟ ସହ, ଶ୍ରମ ସହ ।] ସଂ. ବି—୧ । ପାଂଶୁଲବଣ ( ଶବ୍ଦଚନ୍ଦ୍ରିକା )—1. Salt got from ashes. ୨ । ଅଗ୍ରହାୟଣ ମାସ (ହେମଚନ୍ଦ୍ର); ମାର୍ଗଶିର ମାସ—2. The month of Mārgasira. ୩ । ବଳ ( ମେଦିନୀ )—3. Strength; power. ୪ । ଜ୍ୟୋତିଃ ( ଶବ୍ଦରତ୍ନାବଳୀ )—4. Lustre. ୫ । ମହାଦେବ ( ବିଶ୍ୱକୋଷ )—5. Siba. ଦେ. ବି—୧ । ଗୁପ୍ତ ପରାମର୍ଶ—1. Secret consultation. ୨ । କୁମନ୍ତ୍ରଣା—2. Intrigue. ୩ । ପାପ ବୋଲି; ଗୁପ୍ତ ପ୍ରଣୟ—3. Secret love; amorous intrigue. ୪ । ( ଦୈବ୍ୟକ ) ସହଦେବ ୨, ୩, ୪ । ( ଦେଖ )—4. Sahadebā 2, 3, 4 ( See ) ୫ । (କଟକଥ) ଭ୍ରମ—5. Mistake; oversight. [ ଭ—ନବସିଖା ସହବମେ ଏ ବଲଲରେ ମୌଳାବ ନାମ ନେଲା ନାହିଁ ।] ଗ୍ରାଦେ. ( ଲବଥ ) ବି—ଚିତାଗ୍ନି—Cremation fire.

(Marginal: सला / कुमल / भूल / भूल्ल)

ସହଃ—ସଂ. ବି (ସହ୍ ଧାତୁ+କରଣ ଅସ୍; ସହସ୍; ୧ମା, ୧ବ)—୧ । Sahaḥ ଅଗ୍ରହାୟଣ ମାସ—1. The month of Mārgasira. ୨ । ବଳ; ଶକ୍ତି ( ମେଦିନୀ )—2. Power; might. ୩ । ତେଜଃ; ଜ୍ୟୋତିଃ—3. Lustre.

ସହ(ଅ)କ୍ ( ଇତ୍ୟାଦି )—ବୈଦେ. ବି ( ଫା. ସକ୍ )—ସକ୍ ଇତ୍ୟାଦି Saha(a)k (etc) ( ଦେଖ )—Sak etc ( See )

ସହ କରିବା—ଦେ. କି—୧ । ଗୁପ୍ତ ମନ୍ତ୍ରଣା କରିବା—1. To intrigue. Saha karibā ୨ । ଗୁପ୍ତ ପ୍ରଣୟ ସମ୍ବନ୍ଧରେ ମନ୍ତ୍ରଣା କରିବା—2. To carry on love-intrigue. (गुप्त मन्त्रणा करना, कुमेल करना)

ସହକର୍ମୀ(ର୍ମ୍ମା, ର୍ମୀ, ର୍ମ୍ମୀ)—ସଂ, ବି. ପୁଂ ( ସହ+କର୍ମନ୍; ସହ+କର୍ମନ୍+ଇନ୍; ୧ମା. Sahakarmā(rmmā, rmī, rmmī) ୧ବ )—ସହକାରୀ ବ୍ୟକ୍ତି; ଏକତ୍ର କାର୍ଯ୍ୟ କରୁଥିବା ବ୍ୟକ୍ତି—Colleague; co-worker. (ସହକର୍ମିଣୀ, ସହକର୍ମ୍ମିଣୀ—ସ୍ତ୍ରୀ) ବଣ. ପୁଂ—ଏକତ୍ର କର୍ମକାରୀ—Working in league.

ସହକାର—ସଂ. ବି ( ସହ=ଯୁଗପତ୍+କୃ ଧାତୁ=ବିକ୍ଷେପ କରିବା+ Sahakāra କର୍ତ୍ତୃ. ଅ; ଯାହା ସୁଗନ୍ଧକୁ ଯୁଗପତ୍ ବିକ୍ଷିପ୍ତ କରେ)—୧ । ଅତି ସୁଗନ୍ଧ ଆମ୍ବ ବୃକ୍ଷ—1. A fragrant mango tree. ୨ । ଆମ୍ବ ପଲ୍ଲବ—2. The leaf of the mango tree. ୩ । (ସହ+କୃ ଧାତୁ+ଭାବ.ଅ) ସାହାଯ୍ୟ—3. Help. ୪ । ସାହଚର୍ଯ୍ୟ—4. Accompaniment. ୫ । ( +କର୍ତ୍ତୃ. ଅ ) ସାହାଯ୍ୟକାରୀ ବ୍ୟକ୍ତି—5. Assistant. ସଂ. ବଣ—ସାହାଯ୍ୟକାରୀ—Assisting.

ସହକାରିଆ—ଦେ. ବଣ. ପୁଂ—୧ । ଗୁପ୍ତମନ୍ତ୍ରଣାକାରୀ—1. Intriguing. Sahakāriā ୨ । ଗୁପ୍ତ ପ୍ରଣୟକାରୀ—2. Carrying or love-intrigue. ୩ । ସହକାରୀ ( ଦେଖ )—3. Sahakārī ( See ) ଦେ. ବି—ପ୍ରେମିକ ପ୍ରେମିକାଙ୍କ ମଧ୍ୟରେ ଯେ ମିଳନ ଘଟାଏ—A go-between. ( ସହକାରୀ—ସ୍ତ୍ରୀ )

(Marginal: गुप्त मन्त्रणाकारी, कुमेलिया, सहकारी, सहकारी)

ସହକାରିତା(ତ୍ୱ)—ସଂ. ବି ( ସହକାରିନ୍+ଭାବ. ତା, ତ୍ୱ )—୧ । Sahakāritā(twa) ସହାୟକତ୍ୱ—1. The state of being an assistant. ୨ । ସାହଚର୍ଯ୍ୟ—2. Co-operation. ୩ । କୌଣସି କାର୍ଯ୍ୟରେ ବା ଅପରାଧରେ ସହାୟକାରିତା—3. Abetment of an offence or act. ୪ । ( ନ୍ୟାୟ ଶାସ୍ତ୍ର ) ଭିନ୍ନରୂପ ଥାଇ ମଧ୍ୟ ଉତ୍ପାଦ୍ୟୋତ୍ପାଦକତ୍ୱ—4. ( Logic ) Co-ordination as cause and effect in spite of dissimilarity.

ସହକାରୀ—ସଂ. ବଣ. ପୁଂ (ସହ+କୃ ଧାତୁ+କର୍ତ୍ତୃ.ଇନ୍; ୧ମା.୧ବ)—Sahakārī ୧ । ସାହାଯ୍ୟକାରୀ—1. Helping; assisting; (ସହକାରିଣୀ—ସ୍ତ୍ରୀ) auxiliary. ୨ । (ନ୍ୟାୟ ଶାସ୍ତ୍ର) ଭିନ୍ନରୂପ ଥାଇ ମଧ୍ୟ ଉତ୍ପାଦ୍ୟୋତ୍ପାଦକ ସମ୍ବନ୍ଧଯୁକ୍ତ—2. ( logic ) Having the relation of cause and effect in spite of dissimilarity. ସଂ. ବି—୧ । କାର୍ଯ୍ୟ ସାଧନରେ ସାହାଯ୍ୟକାରୀ—1. Abettor; helper; an assistant. ୨ । ପ୍ରତ୍ୟୟ; ସହଜ ଜ୍ଞାନ (ବିକାଶ ଶେଷ)—2. Intuitive knowledge. ଦେ. ବଣ—ସହକାରିଆର ସ୍ତ୍ରୀଲିଙ୍ଗ—Feminin of Sahakāriā.

**ସହକାରୀ ସଭାପତି**—ସଂ. ବି ( ଅଧୁନିକ ବ୍ୟବହାର; ପୁଂ ଓ ସ୍ତ୍ରୀ )—
Sahakārī sabhāpati ସଭାପତିଙ୍କୁ ସାହାଯ୍ୟ କରିବା କର୍ମଚାରୀ; ସଭାପତିଙ୍କ ଅନୁପସ୍ଥିତିରେ କର୍ମ କରିବା କର୍ମଚାରୀ—Assistant President; vice-president; vice-chairman; deputy president.

**ସହକାରୀ ସମ୍ପାଦକ**—ସଂ. ବି. ପୁଂ ( ଅଧୁନିକ ପ୍ରୟୋଗ )—ସମ୍ପାଦକଙ୍କ
Sahakārī sampādaka ସହକାରୀ କର୍ମଚାରୀ—Assistant Secretary.

**ସହକାରୀ ସୁପରିଣ୍ଟେଣ୍ଡେଣ୍ଟ**—ଦେ· ବି—ସୁପରିଣ୍ଟେଣ୍ଡେଣ୍ଟ୍ ବା କାର୍ଯ୍ୟ
Sahakārī suparintendent ପରିଦର୍ଶକଙ୍କ ସହକାରୀ—
सहकारी सुपरिन्टेण्डेण्ट् Assistant Superintendent.
**सहकारी सुपरिंटेंडेंट** [ ଦ୍ର—ଏହିପରି ଅନ୍ୟ ଇଂରାଜୀ ଶବ୍ଦ ପୂର୍ବେ ସହକାରୀ ଶବ୍ଦ ଲାଗି ବ୍ୟବହୃତ ହୁଏ । ]

**ସହକୃତ୍**—ସଂ· ବିଣ. ପୁଂ ଓ ସ୍ତ୍ରୀ ( ସହ + କୃ ଧାତୁ + କର୍ତ୍ତୃ. କ୍ୱିପ୍ )—
Sahakṛut ସାହାଯ୍ୟକାରୀ; ସହାୟ—Helping; auxiliary.

**ସହକୃତ୍ୱା**—ସଂ. ବିଣ. ପୁଂ ( ସହ + କୃ ଧାତୁ + କର୍ତ୍ତୃ. କ୍ୱନିପ୍; ସହ-
Sahakrutwā କୃତ୍ୱନ୍ ଶବ୍ଦ; ୧ମା. ୧ବ )—ସହକୃତ୍ ( ଦେଖ )
( ସହକୃତ୍ୱରୀ—ସ୍ତ୍ରୀ ) Sahakṛut ( See )

**ସହ କ୍ରମେ**—ଦେ. କି. ବିଣ ( କଟକଅ )—ଭ୍ରମବଶତଃ; ଭୁଲ୍‌ରେ—
Saha krame By mistake or oversight.
ଭୁଲକରେ भूलसे

**ସହ ଖଟ୍ୱାସନ**—ସଂ. ବିଣ. ପୁଂ (ବହୁବ୍ରୀହି; ସହ + ଖଟ୍ୱାସନ)—କୌଣସି
Saha khaṭwāsana ବ୍ୟକ୍ତି ସଙ୍ଗେ ଏକ ଖଟରେ ଶୟନକାରୀ
(ସହ ଖଟ୍ୱାସନା—ସ୍ତ୍ରୀ) ବା ଆସନରେ ଉପବେଶନକାରୀ (ବ୍ୟକ୍ତି)—
(a person) Using the same bed or seat along with another.

**ସହ ଗମନ**—ସଂ. ବି (ସହ=ସଙ୍ଗେ+ଗମନ)—୧ । ସଙ୍ଗରେ ଯିବା—
Saha gamana 1. Going with; accompanying.
(ସହ ମରଣ—୨ୟ ଅର୍ଥରେ ଅନ୍ୟରୂପ) ୨। ମୃତ ସ୍ୱାମୀଙ୍କ ଚିତାରେ ସ୍ତ୍ରୀକର ଅଗ୍ନିରୋହଣରୂପ କ୍ରିୟା; ସହମରଣ—2. The act of self-immolation of a widow in the cremation pyre of her deceased husband.

**ସହ ଗମ୍ୟ**—ସଂ. ବିଣ—ଏକତ୍ର ଗମନଯୋଗ୍ୟ—Deserving to be
Saha gamya gone with or together.

**ସହ ଗାମିନୀ**—ସଂ· ବିଣ. ସ୍ତ୍ରୀ ( ସହଗାମିନ୍ + ଈ )—ସହଗାମୀର
Saha gāminī ସ୍ତ୍ରୀଲିଙ୍ଗ—The feminine form of
( ସହଗାମୀ—ପୁଂ ) 'Sahagāmī'. ସଂ· ବି. ସ୍ତ୍ରୀ—ଯେଉଁ ସ୍ତ୍ରୀ ମୃତ ସ୍ୱାମୀଙ୍କ ଶବ ସଙ୍ଗେ ଚିତାରୋହଣ କରନ୍ତି—A woman who voluntarily ascends the funeral pyre of her deceased husband.

**ସହ ଗାମୀ**—ସଂ· ବିଣ· ପୁଂ. (ସହ=ସହିତ+ଗମ୍ ଧାତୁ +କର୍ତ୍ତୃ. ଇନ;
Saha gāmī ୧ମା· ୧ବ)—ଏକ ସଙ୍ଗେ ଗମନକାରୀ—Going
(ସହଗାମିନୀ—ସ୍ତ୍ରୀ) with; accompanying.

**ସହଚର**—ସଂ· ବିଣ· ପୁଂ (ସହ=ସଙ୍ଗେ+ଚର୍. ଧାତୁ=ଗମନ
Sahachara କରିବା+କର୍ତ୍ତୃ. ଅ)—୧ । ସହଗାମୀ; ଏକତ୍ର
(ସହଚରୀ—ସ୍ତ୍ରୀ) ଗମନକାରୀ—1. Going with. ୨। ସଙ୍ଗୀ—2. Acompanying. ସଂ, ବି—୧ । ସଙ୍ଗୀ—1. Companion. ୨ । ସାଥୀ; ଅନୁଗତ—2. Attendant; mate. ୩ । ପ୍ରତିବନ୍ଧକ ( ହେମଚନ୍ଦ୍ର )—3. Obstacle. ୪ । ଦୋସ୍ତ; ସାଙ୍ଗ ସୁଖ—4. A confident; bosom friend. ୫ । ଅନୁଚର; ଭୃତ୍ୟ—5. A servant. ୬ । ଝିଣ୍ଟି (ହେମଚନ୍ଦ୍ର); ଦାସକେରଣ୍ଡା ଗୁଳ୍ମ; ପୀତଝିଣ୍ଟି ଓ ନୀଳଝିଣ୍ଟି—6. A plant; Barlaria Cristata of two
सहचर varieties. ଦେ· ବି (କଟକଅ)—ବନ୍ଧୁକକୁ ବନ୍ଧୁକର
सहचर मାଲିକ ବ୍ୟକ୍ତିଙ୍କ ସଙ୍ଗେ ବୋହି କରି ନେବା ଭୃତ୍ୟ, (ଯାହାର ନାମ ବନ୍ଧୁକ-ଲାଇସେନ୍‌ସରେ ଲେଖାଥାଏ)—A retainer who carries a gun with the master (and whose name is noted in the gun-licence).

**ସହଚରିତ**—ସଂ. ବିଣ. ପୁଂ ( ବହୁବ୍ରୀହି; ସହ+ଚରିତ)—ଏକତ୍ର ବାସ
Sahacharita ଓ ଏକରୂପ ଆଚରଣଶୀଳ ( ଶବ୍ଦକୋଷ )—
(ସହଚରିତା—ସ୍ତ୍ରୀ) Living together and acting similarly.

**ସହଚରୀ**—ସଂ. ବି. ସ୍ତ୍ରୀ (ସହଚର+ସ୍ତ୍ରୀ. ଈ)—୧ । ସଙ୍ଗିନୀ—1. Fe-
Sahacharī male companion. ୨ । ସଖୀ—2. A female confidant of a lady. ୩ । ସହଧର୍ମିଣୀ; ପତ୍ନୀ—3. Wife. ୪ (ବୈଦ୍ୟକ) ପୀତ ଝିଣ୍ଟି (ଅମର) ଦାସକେରେଣ୍ଡା—4. A plant; Barlaria Cristata. ( ଉ—[ ୧ ଓ ୪ ] ବିଟପ ପ୍ରକମ୍ପିତ ସଙ୍ଗତ ସହଚରୀର ପୁର ଅଭିମୁଖହିଁ ହୋଇଛୁ । ଉଞ୍ଜ. ବୈଦେହୀଶବିଳାସ ।]

**ସହଚାରୀ**—ସଂ. ବିଣ. ପୁଂ (ସହ+ଚର୍. ଧାତୁ=ଗମନ କରିବା+
Sahachārī କର୍ତ୍ତୃ. ଇନ୍; ୧ମା. ୧ବ)—ସହଚର (ଦେଖ)—
(ସହଚାରିଣୀ—ସ୍ତ୍ରୀ) [ସହଚାରିତା( ଭୂ )—ବି] Sahachara. (See)

**ସହଜ**—ସଂ. ବି (ସହ+ଜନ୍. ଧାତୁ+କର୍ତ୍ତୃ. ଅ)—୧ । ସହୋଦର,
Sahaja ଏକମାତୃଗର୍ଭଜ ଭ୍ରାତା (ଅମର)—1. Brother; uterine brother. ୨ । ସ୍ୱଭାବ; ସ୍ୱଭାବ (ମେଦିନୀ)—2. Nature. ୩ । (ଜ୍ୟୋତିଷ) ଜନ୍ମଲଗ୍ନଠାରୁ ତୃତୀୟ ସ୍ଥାନ—3. (astrology) The 3rd place from the Lagna or natal sign in one's horoscope. [ଦ୍ର—ଏହି ତୃତୀୟ ସ୍ଥାନରେ ଥିବା ଗ୍ରହଙ୍କ ଦ୍ୱାରା ଜାତକ ବ୍ୟକ୍ତିଙ୍କ ଭାଇ, ଭଉଣୀ, ବିକ୍ରମ, ଭୃତ୍ୟାଦି ଅଦ ବିଷୟ ସ୍ଥିରୀକୃତ ହୁଏ ।] ସଂ. ବିଣ—୧ । ସହଜାତ—
(ସହଜା—ସ୍ତ୍ରୀ) 1. Born with. ୨ । ଏକତ୍ର ଜାତ—2. Born together. ୩ । ସ୍ୱାଭାବିକ; ନୈସର୍ଗିକ;

ଅକୃତ୍ରିମ—3. Innate; natural; inborn; inherent. ୪ । ଜନ୍ମାସ୍ୱାଷ ସିଦ୍ଧ—4. Instinctive. ୫ । ସୁଲଭ—5. Easily available· ଦେ. ବି—୧ । ପ୍ରେମ—1. Love. ୨ । ତନ୍ତ୍ରୋକ୍ତଭେଦ—2. A sort of Tantric rite. ଦେ· ବିଣ—୧ । ସରଳ; ଅନାୟାସସାଧ୍ୟ—1. Easy; not difficult. ୨ । ଯାହା ସଙ୍ଗେ ବ୍ୟବହାର କରିବା କଷ୍ଟକର ନୁହେଁ—2. Easy to deal with. ୩ । ସୁଗମ—3. Easily passable· ୪ । ସରଳ; ସିଧା—4. Straight, ୫ । ଯାହା ସମାଧାନ କରିବା କଷ୍ଟକର ନୁହେଁ—5. Easy of solution. ୬ । ସୁବୋଧ—6. Easily intelligible.

ସହଜ ଆସନ—ଦେ. ବି—ଯୋଗାସନବିଶେଷ—A sort of Sahaja āsana posture in Yoga. (ଦ୍ର—ସହଜ ଅସନ ସହজ আসন सहज आसन କହିବା ଶୁଣା । ପ୍ରାଚୀ· ସରତେ ଗୀତା ।)

ସହଜ ଉପାୟ—ଦେ. ବି (ସଂ. ସହଜୋପାୟ)—୧ । ସୁଗମ ପନ୍ଥା—Sahaja upāya 1 Easy means. ୨ । ସରଳ ଓ ସୁଲଭ ସহজ উপায় सहज उपाय ଉପାୟ—2. Plain mode.

ସହଜ କଥା—ଦେ. ବି—ସରଳ ବିଷୟ—Sahaja kathā Easy matter. সহজ কথা सहज बात्

ସହଜନ୍ମା—ସଂ. ବିଣ (ବହୁବ୍ରୀହି; ସହ+ଜନ୍ମନ୍; ୧ମା. ୧ବ)—Sahajanmā ୧ । ଯମଜ; ଏକକ ଜାତ—1. Born together; twin. ୨ । ସହୋଦର—2. Uterine.

ସହଜ ପନ୍ଥା—ଦେ. ବି—ବୌଦ୍ଧମାନଙ୍କର ମଧ୍ୟରେ ଏକପ୍ରକାର ମତ—Sahaja panthā A sectarian view held among the Buddhists. [ଦ୍ର—ସହଜିଆ ତଳେ ଟୀକା ଦେଖ]

ସହଜ ପ୍ରବଣ—ଦେ· ବିଣ (ଜଡ଼ ବିଜ୍ଞାନ)—ଯେଉଁ ସକଳ ବସ୍ତୁକୁ Sahaja prabaṇa ଅନାୟାସରେ ନତ କରାଯାଏ—সহজ প্রবণ ( Physical science ) Which can be सहजलचनेवाला easily bent; malleable. ( ସହଜ ପ୍ରବଣତା—ବି )

ସହଜ ପ୍ରଶ୍ନ—ଦେ. ବି—ଅନାୟାସସାଧ୍ୟ ପ୍ରଶ୍ନ—Sahaja praśna A question which is easy of সহজ প্রশ্ন सहज प्रश्न solution.

ସହଜ ବିଶ୍ୱାସ—ଦେ. ବି—୧ । ସ୍ୱାଭାବିକ ଧାରଣା—1. Inborn Sahaja biśwāsa faith; natural trust. সহজবিশ্বাস सहजविश्वास ୨ । ଅନାୟାସରେ ଜାତ ବିଶ୍ୱାସ—2. Easily attained faith; easy belief.

ସହଜ ବିଶ୍ୱାସୀ—ଦେ. ବିଣ—ଯେ କୌଣସି ବିଷୟକୁ ଅନାୟାସରେ Sahaja biśwāsi ବିଶ୍ୱାସ କରେ—Believing in সহজবিশ্বাসী सहजविश्वासी anything easily; credulous.

ସହଜ ବୁଦ୍ଧି—ଦେ· ବି—ପ୍ରାଣୀମାନଙ୍କ ମନରେ ଜନ୍ମରୁ ଉଦୟ ହୋଇଥିବା Sahaja buddhi ବୁଦ୍ଧି—Instinct. সহজবুদ্ধি सहजबुद्धि

ସହଜମାରି—ଦେ. ବି ( ବୈଦ୍ୟକ )—ବନ୍ୟ ତରୁବିଶେଷ—Sahajamāri A kind of wild tree. সহজমারি सहजमारी [ ଦ୍ର—ଏହା ୧୦।୧୨ ହାତ ଉଚ୍ଚ ହୁଏ । ଏ ଗଛର ଚେରକୁ ବାଟିକରି ଖାଇଲେ ଗଞ୍ଜେଇ ଠାରୁ ବେଶି ନିଶା ଧରେ । ଏହି ଗଛର ଛାଲରେ ଦେଶୀମାନେ ଘଙ୍ଗ ଘୋଡ଼ା ତେଆରି କରନ୍ତି ।]

ସହଜ ମିତ୍ର—ସଂ· ବି—୧। ସ୍ୱାଭାବିକ ମିତ୍ର—1. Born friends. ୨ । Sahaja mitra ଅପଣାର ଭଗିନେୟ, ପୈତୃଷ୍ୱସ୍ରୀୟ ଓ ମାତୃଷ୍ୱସ୍ରୀୟାଦି ବନ୍ଧୁ (ମିତାକ୍ଷରା)—2. One's sister's son, and son of one's father's sister and of mother's sister. [ଦ୍ର—ମିତାକ୍ଷରା ଅନୁସାରେ ସହଜ ମିତ୍ର ଓ ସହଜ ଶତ୍ରୁ, ଦୁଇ ଶ୍ରେଣୀର ଅର୍ଥରେ ପଦ ଗୃହୀତ ହୋଇଅଛନ୍ତି । ଭଣଜା, ମାଉସୀ ପୁଅ ଭାଇ, ପିଉସୀ ପୁଅ ଭାଇ, ଏମାନେ ସହଜ ମିତ୍ର ଏବଂ ଖୁଡ଼ୁତା ପୁଅ ଭାଇ ଓ ବୈମାତ୍ରେୟ ପୁଅ ଭାଇ ସହଜ ଶତ୍ରୁ ଅଟନ୍ତି—ଶବ୍ଦକୋଷ ।]

ସହଜ ଯାନ—ଦେ.ବି—ସହଜପନ୍ଥାବଲମ୍ବୀ ବୌଦ୍ଧମାନଙ୍କର ଶାଖାବିଶେଷ Sahaja jāna —A sect of Buddhists follow- সহজ যান · सहजयान ing the Sahaja panthā. [ଦ୍ର—ସହଜିଆ ତଳେ ଟୀକା ଦେଖ ।]

ସହଜ ଲବ୍ଧ—ସଂ. ବିଣ—ଅନାୟାସପ୍ରାପ୍ତ—Sahaja labdha Easily got.

ସହଜ ଲଭ୍ୟ—ସଂ. ବିଣ—ଅନାୟାସଲଭ୍ୟ—Sahaja labhya Easily attainable.

ସହଜ ଶତ୍ରୁ—ସଂ. ବି—୧। ସ୍ୱାଭାବିକ ଶତ୍ରୁ—1. Natural enmy. Sahaja śatru ୨ । ବୈମାତ୍ରେୟ, ପିତୃବ୍ୟ ଓ ପିତୃବ୍ୟ ପୁତ୍ର (ଏମାନେ ବିଷୟରେ ଅଂଶୀଦାର ଥିବାରୁ—ମିତାକ୍ଷରା)—2. One's step-brothers, paternal uncle and his son. [ ଦ୍ର—ସହଜମିତ୍ର ତଳେ ଟୀକା ଦେଖ ।]

ସହଜ ସାଧନ(ଭଜନ)—ଦେ. ବି ( ସହଜିଆ ଧର୍ମ ଦେଖ )—ସ୍ୱାଧୀନରେ Sahaja Sādhana(bhajana) କଳ୍ପିତା ଏକାନ୍ତ ବିଶ୍ୱସ୍ତା সহজসাধন सहजसाधन ପରକୀୟା ନାୟିକାଙ୍କ ସଙ୍ଗେ ମଧୁର ରସାବଲମ୍ବନ ଦ୍ୱାରା ଭକ୍ତସାଧନର ମାର୍ଗବିଶେଷ; ଭୋଗ ମାର୍ଗ ଦେଇ ଯୋଗପଥକୁ ଗମନପୂର୍ବକ ଭକ୍ତସାଧନ—Practice of devotion to God through satiation of lust with the help of a devoted lady.

ସହଜାତ—ସଂ. ବି, ପୁଂ—୧ । ସହୋଦର ଭାଇ—1. Brother; Sahajāta uterine brother. ୨ । ଯମଜ—(ସହଜାତା—ସ୍ତ୍ରୀ) 2. Twins. ସଂ. ବିଣ· ପୁଂ—

୧ । ଏକତ୍ର ଜାତ—1. Born together. ୨ । ସହୋଦର—2. Uterine.

**ସହଜାଦିତ୍ୟ**—ଦେ· ବି ( ନାମ )—ଉତ୍କଳର ସାମନ୍ତରାଜବିଶେଷ—
Sahajāditya Name of a feudatory King of Utkal. [ ଦ୍ର—ଏହାଙ୍କ ଉପାଧି ରାଜରାଜ ଦେବ; ୧୨୩୩ ସଂବତ୍‌ରେ ଭୁଲଣ ସହରରେ ଉତ୍କୀର୍ଣ୍ଣ ଅନଙ୍ଗଙ୍କ ଶିଳା ଫଳକରେ ଏ ତାହାଙ୍କ ପୂର୍ବବର୍ତ୍ତୀ ରାଜରୂପେ ବର୍ଣ୍ଣିତ ହୋଇ ଅଛନ୍ତି—ବିଶ୍ୱକୋଷ । ]

**ସହଜାଧିପତି**—ସଂ· ବି ( ଫଳିତ ଜ୍ୟୋତିଷ )—ଲଗ୍ନଠାରୁ ତୃତୀୟ
Sahajādhipati ଗୃହର ଅଧିପତି ଗ୍ରହ—( Astrology )
ସହଜାଧିନାଥ, ସହଜାଧୀଶ, ସହଜେନ୍ଦ୍ର—ଅନ୍ୟରୂପ
The planet presiding over the 3rd house from one's Lagna,

**ସହଜାନନ୍ଦ**—ଦେ· ବି—୧ । ବ୍ରହ୍ମ—1. The Supreme Soul.
Sahajānanda ୨ । ସହଜିଆଧର୍ମମାର୍ଗାନୁସାରୀଙ୍କ ପ୍ରାପ୍ତ ଆନନ୍ଦବିଶେଷ
সহজানন্দ सहजानन्द 2. The bliss enjoyed by the devotees engaged in the Sahajiā Dharma. ( ଉ—ସହଜ ଅସନ୍ନ କହିବ ଶୁଣ, ସହଜାନନ୍ଦକୁ ଯହିଁ ଦର୍ଶନ—ପ୍ରାଚୀ, ପରଚେଗୀତା । ]
( ସହଜିଆ ତଳେ ଟୀକା ଦେଖ )

**ସହଜାରି**—ସଂ. ବି—ସହଜଶତ୍ରୁ (ଦେଖ)
Sahajāri Sahaja satru (See)

**ସହଜିଆ**—ଦେ. ବିଣ—୧ । ସହଜ; ସରଳ; ସୁଗମ; ଅନାୟାସସାଧ୍ୟ—
Sahajiā 1. Easy. ୨ । ପ୍ରାକୃତିକ—2. Natural.
সোজা सहज ଦେ. ବି· ୧ । ( ବୈଷ୍ଣବସାହିତ୍ୟ ) ସହଜିଆଧର୍ମ ମାର୍ଗାବଲମ୍ବୀ ବ୍ୟକ୍ତି—1. A person professing the Sahajiā Dharma. ୨ । ବୈଷ୍ଣବଧର୍ମର ଏକ ଶ୍ରେଣୀ—2. A sect of
সহজিআ सहजिआ Baishnabas. [ ଦ୍ର—ଏହି ଶ୍ରେଣୀର ବୈଷ୍ଣବମାନଙ୍କର ବିଶ୍ୱାସ ଯେ ସେମାନେ ଯେଉଁ ପଥ ଅବଲମ୍ବନ କରିଅଛନ୍ତି ସେଥିରେ ସହଜରେ ମୁକ୍ତିଲାଭ କରାଯାଇ ପାରେ । ସହଜିଆମାନେ ରାଧାକୃଷ୍ଣଙ୍କର ମୂର୍ତ୍ତିପୂଜା ମାନନ୍ତି ନାହିଁ । ଶରୀର ଭିତରେ ରାଧାକୃଷ୍ଣଙ୍କର ଲୀଳା ଅଭିଜ୍ଞାତ, ଓ ନିଜ ଶରୀରର ତତ୍ତ୍ୱ ଜାଣି ପାରିଲେ ମନୁଷ୍ୟ ମୁକ୍ତିଲାଭ କରିପାରେ—ଏହା ସହଜିଆମାନଙ୍କର ମତ—ବିନାୟକ ଉ· ସା. ଇତିହାସ ।]

[ ଦ୍ର—ସହଜିଆ—ବୌଦ୍ଧଧର୍ମର ସହଜଯାନଶାଖାରୁ ଉଦ୍ଭୂତ ସାଧନ ମାର୍ଗବିଶେଷ ।

ସହଜଯାନରେ ସାଧକ ପ୍ରଥମେ ପ୍ରବୃତ୍ତିମାର୍ଗର ପଥିକ ହୋଇ ପରେ କ୍ରମଶଃ ଆନନ୍ଦ, ପରମାନନ୍ଦ, ସହଜାନନ୍ଦ ଓ ବିରମାନନ୍ଦ ଲାଭ କରନ୍ତି । ସହଜଯାନର ଏହି ବିରମାନନ୍ଦ ମହାଯାନ ପନ୍ଥାର ଶୂନ୍ୟ ବା ନିର୍ବାଣର ଅନୁରୂପ କହିଲେ ଚଳେ । କାଳକ୍ରମେ ଏହି ସହଜଯାନର ପ୍ରଭାବ ବୈଷ୍ଣବ ଧର୍ମକୁ ପ୍ରଭାବିତ କରି ଯେଉଁ ନୂତନ ଏକ ଧର୍ମର ସୃଷ୍ଟି-ପାତ କଲା ତାହା ସହଜଭଜନ ବା ସହଜିଆ ଧର୍ମ ନାମରେ କଥିତ । ନାମାଶ୍ରୟ, ମନ୍ତ୍ରାଶ୍ରୟ, ଭାବାଶ୍ରୟ, ପ୍ରେମାଶ୍ରୟ ଓ ରସାଶ୍ରୟ ଓ ପରମାଶ୍ରୟ ଏ ଭଜନର କ୍ରମିକ ସୋପାନ । ସ୍ୱକୀୟା ଓ ପରକୀୟା ଭେଦରେ ଦୁଇ ଶ୍ରେଣୀର ନାୟିକା ହେଲେହେଁ ପରକୀୟା ନାୟିକାର ପ୍ରାଧାନ୍ୟ ଏହି ଭଜନର ବିଶେଷତ୍ୱ ଅଟେ । କିନ୍ତୁ ଉତ୍କଳୀୟମାନଙ୍କ ନିବୃତ୍ତିମାର୍ଗର ବୈଷ୍ଣବ ଧର୍ମର ପ୍ରକୃତି ଏହି ସହଜୀୟା ଧର୍ମର ପ୍ରକୃତିଠାରୁ ଅନେକାଂଶରେ ପୃଥକ୍ । ସହଜୀୟା ଧର୍ମ ଯେଉଁପରି ବୈଷ୍ଣବ ଧର୍ମରୁ ସାର ଗ୍ରହଣ କରି ପୁଷ୍ଟ ହୋଇଥିଲା, କାଳକ୍ରମେ ସହଜିଆ ଧର୍ମର ପ୍ରଭାବ ମଧ୍ୟ ସେହିପରି ବୈଷ୍ଣବଧର୍ମ ଉପରେ ପତିତ ହୋଇଥିଲା—

ରାୟସାହେବ ଆର୍ତ୍ତବଲ୍ଲଭ—ପ୍ରାଚୀ ସମିତି ପ୍ରକାଶିତ ଶ୍ରୀବିଷ୍ଣୁଦେଶ୍ୱ ଗ୍ରନ୍ଥର ମୁଖବନ୍ଧ ।

ସହଜିଆ ଧର୍ମସମ୍ପ୍ରଦାୟ ବର୍ତ୍ତମାନ କାଳରେ ଗୌଡ଼ୀୟ ସମ୍ପ୍ରଦାୟର ଗୋଟିଏ ନିମ୍ନଶ୍ରେଣୀ ରୂପେ ଗଣ୍ୟ । ସାଧାରଣଙ୍କ ବିଶ୍ୱାସ ଯେ, ଶ୍ରୀମନ୍ନିତ୍ୟାନନ୍ଦ ପ୍ରଭୁଙ୍କ ପୁତ୍ର ବୀରଭଦ୍ର ଗୋସ୍ୱାମୀଙ୍କ ଠାରୁ ଏହି ସମ୍ପ୍ରଦାୟର ଉଦ୍ଭବ । କିନ୍ତୁ ସହଜିଆ ମତ ବହୁ ପୂର୍ବକାଳରୁ ଗୌଡ଼ମଣ୍ଡଳରେ ପ୍ରଚଳିତ ଥିଲା, ଏଥିର ଯଥେଷ୍ଟ ପ୍ରମାଣ ମିଳିଅଛି । ମହାମହୋପାଧ୍ୟାୟ ସ୍ୱର୍ଗୀୟ ହରପ୍ରସାଦ ଶାସ୍ତ୍ରୀ ନେପାଳରୁ ୬୦୦ ଶତାବ୍ଦୀ ପୂର୍ବର ପ୍ରାଚୀନ କାହ୍ନୁପାଦ, ଡୋମ୍ବିପାଦ, ଶାନ୍ତିଦେବ ପ୍ରଭୃତିଙ୍କର କେତେଗୁଡ଼ିଏ ପ୍ରାଚୀନ ପଦ ଓ ଦୋହା ସଂଗ୍ରହ କରି ପ୍ରକାଶ କରିଅଛନ୍ତି; ସେହି ପଦମାନଙ୍କରେ ସହଜିଆମାନଙ୍କ ମୂଳଧର୍ମମତର ଯଥେଷ୍ଟ ଉପକରଣ ରହିଅଛି । ସେ ପଦାବଳୀ ଆଲୋଚନା କଲେ ନିଃସନ୍ଦେହରେ ଜଣାପଡ଼ିବ ଯେ, ବୌଦ୍ଧତାନ୍ତ୍ରିକ ସମାଜରୁ ଏହି ସହଜିଆ ମତର ଉତ୍ପତ୍ତି ହୋଇଥିଲା । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ମହାଯାନ ସମ୍ପ୍ରଦାୟ ପ୍ରବଳ ହେଲା ଓ ତନ୍ମଧ୍ୟରେ ମାଧ୍ୟମିକ ଓ ଯୋଗାଚାର ନାମରେ ଦୁଇ ମତ ପ୍ରଚଳିତ ହେଲା । ମାଧ୍ୟମିକମାନେ ଶୂନ୍ୟବାଦୀ ଥାଇ ମଧ୍ୟ ଏକାଧିକ ବୁଦ୍ଧ ଓ ବୋଧିସତ୍ତ୍ୱଙ୍କ ଉପାସନା ସ୍ୱୀକାର କଲେ । ଯୋଗାଚାରୀମାନେ ଯୋଗଶାସ୍ତ୍ର ଚର୍ଚ୍ଚାର ଫଳରେ ଜୀବାତ୍ମା ଓ ପରମାତ୍ମାର ମିଳନ ସ୍ୱୀକାର କରି ଅନାତ୍ମବାଦୀ ମହାଜନମାନଙ୍କ ମଧ୍ୟରେ ଆତ୍ମବାଦ ପ୍ରଚାର କଲେ । ବିଭିନ୍ନ ବୁଦ୍ଧ ଓ ବୋଧିସତ୍ତ୍ୱଗଣଙ୍କ ମୂର୍ତ୍ତିପୂଜା ଏବଂ ଏଥି ସଙ୍ଗେ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ମହାଯାନ ମଧ୍ୟରେ ମନ୍ତ୍ରଯାନର ପ୍ରଭାବ ବିସ୍ତୃତ ହେଲା ଓ ବୁଦ୍ଧ ଏବଂ ବୋଧିସତ୍ତ୍ୱଙ୍କର ଗୋଟିଏ ଗୋଟିଏ 'ଶକ୍ତି' କଳ୍ପିତ ହେଲେ । ମହାଯାନ ସମ୍ପ୍ରଦାୟ ସମ୍ଭୂତ ମନ୍ତ୍ରଯାନରେ ବିଭିନ୍ନ ଶକ୍ତିପୂଜା ସଙ୍ଗେ ସର୍ବତ୍ର ତାନ୍ତ୍ରିକତାର ଘୋଷଣା ହେଲା । ବିଭିନ୍ନ ମହାଯାନ

ବୌଦ୍ଧ ସମ୍ପ୍ରଦାୟ ମଧ୍ୟରେ ଜ୍ଞାନଚର୍ଯ୍ୟା, ଇନ୍ଦ୍ରିୟସଂଯମ ଓ ସନ୍ନ୍ୟାସବୈରାଗ୍ୟହିଁ ପ୍ରଥମେ ନିର୍ବାଣ ପଦଲାଭର ଉପାୟ ବୋଲି ନିର୍ଦ୍ଦିଷ୍ଟ ହୋଇଥିଲା । ବୁଦ୍ଧଶିଷ୍ୟ ଆନନ୍ଦ ନାରୀ ଜାତିକୁ ସନ୍ନ୍ୟାସର ଅଧିକାର ପ୍ରଦାନ କଲେ । କାଳକ୍ରମେ ବୌଦ୍ଧ ବିହାର ଓ ସଙ୍ଘାରାମମାନଙ୍କରେ ବହୁତର ଶ୍ରାବକ ଭିକ୍ଷୁ ସଙ୍ଘଙ୍କ ପରି ଶତ ଶତ ଶ୍ରାବିକା ଆଶ୍ରୟ ଲାଭ କଲେ । ଅବଶ୍ୟ ପ୍ରଥମେ ଉଭୟଙ୍କର ନିବୃତ୍ତି ମାର୍ଗହିଁ ଲକ୍ଷ୍ୟ ଥିଲା । କିନ୍ତୁ ସ୍ତ୍ରୀ ପୁରୁଷଙ୍କର ଏକତ୍ର ଅବସ୍ଥାନର ବିଷମୟ ଫଳ (ଯୌନ ସ୍ୱାଧୀନତା) ଅବଶ୍ୟମ୍ଭାବୀ ହୋଇ ଉଠିଲା । ଜ୍ଞାନନିଷ୍ଠ ଜିତେନ୍ଦ୍ରିୟ ଶ୍ରାବକମାନେ କାମିନୀକାଞ୍ଚନର ତଥା ପ୍ରବୃତ୍ତି ମାର୍ଗର ସମ୍ପୂର୍ଣ୍ଣ ବିରୋଧୀ ଥିଲେହେଁ ସେମାନଙ୍କ ମଧ୍ୟରେ କେହି କେହି ଅଳ୍ପଧୀ ପ୍ରବୃତ୍ତିସାଧନା ଦ୍ୱାରା ନିବୃତ୍ତି ବା ମୋକ୍ଷପଥର ଉପାୟ ଅନୁସନ୍ଧାନରେ ପ୍ରବୃତ୍ତ ହେଲେ । ନିରବଚ୍ଛିନ୍ନ ଭୋଗ-ସାଧନା ଦ୍ୱାରା ଯେ ସହଜାନନ୍ଦ ଲାଭ ହୁଏ ଓ ତଦ୍ୱାରା ନିର୍ବାଣ ଲାଭ ହୋଇ ପାରେ, ଏହି ନବ ସମ୍ପ୍ରଦାୟ ଅତି ଗୋପନରେ ଏହାହିଁ ପ୍ରଚାର କଲେ ଓ ନବ ସମ୍ପ୍ରଦାୟ 'ବଜ୍ରଯାନ' ନାମରେ ପରିଚିତ ହେଲା ।

ପୁରାତନ 'ମହାଯାନ' ସମ୍ପ୍ରଦାୟ ଆଦି ବୁଦ୍ଧ ଓ ତାଙ୍କ ପ୍ରଜ୍ଞା ବା ଧର୍ମରୁ ସମ୍ଭୂତ ପାଞ୍ଚ ଧ୍ୟାନୀ ବୁଦ୍ଧ ଓ ଏହି ପାଞ୍ଚ ଧ୍ୟାନୀ ବୁଦ୍ଧଙ୍କର ୫ ଶକ୍ତି ଓ ଏମାନଙ୍କର ପୁତ୍ର ସ୍ଥାନୀୟ ୫ ବୋଧିସତ୍ତ୍ୱଙ୍କୁ ସ୍ୱୀକାର କରିଥିଲେ । ଏମାନଙ୍କର ଉପାସକ-ମାନେ 'ବୋଧି ସତ୍ତ୍ୱ ଯାନ' ନାମରେ ପରିଚିତ ହୋଇ ଥିଲେ । ପ୍ରବୃତ୍ତିମାର୍ଗୀ ନବ ସମ୍ପ୍ରଦାୟ ବଜ୍ରସତ୍ତ୍ୱ ନାମକ ଷଷ୍ଠ ଧ୍ୟାନୀ ବୁଦ୍ଧ, ତାଙ୍କର ବଜ୍ରେଶ୍ୱରୀ ନାମ୍ନୀ ଶକ୍ତି ଓ ଘଣ୍ଟା-ପାଣି ନାମକ ବୋଧିସତ୍ତ୍ୱଙ୍କ କଳ୍ପନା କଲେ । ଏହି ନବ ସମ୍ପ୍ରଦାୟ 'ବଜ୍ରସତ୍ତ୍ୱ ଯାନ' ବା 'ବଜ୍ରଯାନ' ନାମରେ ପ୍ରସିଦ୍ଧ ହେଲେ । ସେମାନଙ୍କର ଅଗୁରୁ ପଦ୍ଧତି, ସାତ ସାତ ଅତି ଗୁହ୍ୟ ତାନ୍ତ୍ରିକ ରହସ୍ୟାଚ୍ଛନ୍ନ । ଯେଉଁ ସମ୍ଭୋଗ-ଲାଳସାକୁ ପୁରାତନ ଧର୍ମ ପନ୍ଥୀମାନେ ଅତି ହେୟ ଓ ଘୃଣ୍ୟ ବୋଲି ବିବେଚନା କରି ତ୍ୟାଗ କରିଥିଲେ, ବଜ୍ରଯାନ ଶ୍ରାବକମାନେ ତାହାକୁହିଁ ଶ୍ରେୟଃଲାଭର ଉପାୟ ବୋଲି ଘୋଷଣା କଲେ । ଏହି ଧର୍ମାଚରଣ ସହଜସାଧ୍ୟ ଓ ଆପାତ-ମନୋରମ ହେବାରୁ ଆପାମର ସାଧାରଣ ଏହାକୁ ସାଦରେ ଗ୍ରହଣ କଲେ । ମହା ମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀଙ୍କ ଦ୍ୱାରା ନେପାଳରୁ ସଂଗୃହୀତ ୮ ଶତ ବର୍ଷ ପୂର୍ବର ହସ୍ତ ଲିଖିତ 'ଚଣ୍ଡ ରୋଷଣ ତନ୍ତ୍ର'ର ଟୀକାରେ 'ସହଜ ତନ୍ତ୍ର'ର ବ୍ୟାଖ୍ୟା ଲେଖା ଅଛି । ସେଥିରେ ଆନନ୍ଦ ୪ ପ୍ରକାର ଲେଖାଅଛି,— ଆନନ୍ଦ, ପରମାନନ୍ଦ, ସହଜାନନ୍ଦ, ବିରମାନନ୍ଦ । ଆଲିଙ୍ଗନ, ଚୁମ୍ବନ, ସ୍ତନ ମର୍ଦ୍ଦନ ପ୍ରଭୃତି ଦ୍ୱାରା ଯନ୍ତ୍ରାରୂଢ଼ ପରି ବଜ୍ର ଓ ପଦ୍ମ (ଲିଙ୍ଗ ଓ ଯୋନି) ସଂଯୋଗରେ ଯେଉଁ ଆନନ୍ଦ ସମ୍ଭୂତ ହୁଏ ତାହା 'ଆନନ୍ଦ' । ତତ୍ପରେ ପଦ୍ମାନ୍ତର୍ଗତ ବଜ୍ରର ଚାଳନ ଦ୍ୱାରା ମଣିମୂଳ ବୋଧିଚିତ୍ତ ପ୍ରାପ୍ତ ହେଲେ ତାହା 'ପରମାନନ୍ଦ' । ତତ୍ପରେ ପୁଣି ଯେତେବେଳେ ମଣିମୂଳରୁ ପଦ୍ମୋଦୟ ଅନ୍ତର୍ଗତ ଅଶେଷ ରୂପ କାର୍ଯ୍ୟ ନ ହୁଏ ତାହା 'ସହଜାନନ୍ଦ' । ଏଥିରେ ଗ୍ରାହ୍ୟ ଗ୍ରାହକ ଓ ଗ୍ରହଣାଦିମାନ-ବର୍ଜିତ ପରମ ସୁଖ ଉତ୍ପନ୍ନ ହୁଏ । ଏଥିପରେ ନିଶ୍ଚେଷ୍ଟ ହୋଇ 'ମୁଁ ସୁଖ ଭୋଗ କରିଅଛି' ଏହି ରୂପ ଅନୁଭବକୁ 'ବିରମାନନ୍ଦ' ବୋଲାଯାଏ । ପୂର୍ବୋକ୍ତ ୩ ପ୍ରକାର ଆନନ୍ଦ ତ୍ୟାଗ ଦ୍ୱାରା ଯେଉଁ ଆନନ୍ଦର ଅନୁଭୂତି ହୁଏ ତାହା ବିରମାନନ୍ଦ । ଶୂନ୍ୟତାର ନାମହିଁ ବିରମାନନ୍ଦ । ଏହାହିଁ ଅନାଦିନିଧନ ସର୍ବୈକସ୍ୱଭାବ ଜ୍ଞାନ ରୂପ ମହା ସୁଖ । ଏହି 'ସହଜାନନ୍ଦ' ରୂପ ମହାସୁଖ ବଜ୍ରଯାନ ସମ୍ପ୍ରଦାୟର ଲକ୍ଷ୍ୟ ଥିଲା । ଆଜି ମଧ୍ୟ ନେପାଳର ବୌଦ୍ଧ-ମାନେ ଏହି ବଜ୍ରଯାନ ସମ୍ପ୍ରଦାୟଭୁକ୍ତ । ଏକ ସମୟରେ ଗୌଡ଼ ବଙ୍ଗରେ ଏହି 'ବଜ୍ରଯାନ' ବିଶେଷ ପ୍ରବଳ ଥିଲା । ଗୌଡ଼ ବଙ୍ଗରେ ବୌଦ୍ଧ ଧର୍ମର ଅଧଃପତନ ଘଟିବାରୁ ସାଧାରଣଙ୍କ ହୃଦୟରେ ଏହି ବଜ୍ରଯାନର 'ସହଜ ଧର୍ମ' ଏପରି ବଦ୍ଧମୂଳ ହୋଇଥିଲା ଯେ, ତାକୁ ଉତ୍ପାଟିତ କରିବା ଅସାଧ୍ୟ ବୋଲି ଉପଲବ୍ଧି କରି ଶୈବ ଓ ଶାକ୍ତଗଣ 'ଶକ୍ତିସାଧନା' ଓ ବୈଷ୍ଣବଗଣ 'ସହଜ ଭଜନ' ପ୍ରଚାର କଲେ । ଅତଏବ 'ଶକ୍ତି ସାଧନା' ଓ 'ସହଜିଆ ମାର୍ଗ' ବଜ୍ରଯାନର ନୂତନ ସଂସ୍କରଣ; ଏଥିରେ ସନ୍ଦେହ ନାହିଁ ।

ମହାପ୍ରଭୁ ଚୈତନ୍ୟଙ୍କ ଅଭ୍ୟୁଦୟର ବହୁ ପୂର୍ବେ ବୈଷ୍ଣବ ତାନ୍ତ୍ରିକଗଣ 'ସହଜିଆ ମତ' ଗ୍ରହଣ କରିଥିଲେ । ଚଣ୍ଡୀ ଦାସଙ୍କ ପଦାବଳୀରେ ଏହା ସ୍ପଷ୍ଟ ବ୍ୟକ୍ତ ହୋଇଅଛି । ଯେଉଁ ବାଶୁଲୀ ଦେବୀଙ୍କ ପ୍ରତ୍ୟାଦେଶରେ ଚଣ୍ଡୀଦାସ 'ସହଜ ତତ୍ତ୍ୱ' ପ୍ରକାଶ କରିଥିଲେ ହିନ୍ଦୁ ଧର୍ମଶାସ୍ତ୍ରରେ ତାଙ୍କର ନାମୋଲ୍ଲେଖ ନାହିଁ । ନେପାଳର ବଜ୍ରଯାନର ଅନୁଗାମୀମାନଙ୍କ ଦ୍ୱାରା ବଜ୍ର ସତ୍ତ୍ୱର 'ଶକ୍ତି'ଙ୍କର ଯେଉଁ ଗୁହ୍ୟ ମୂର୍ତ୍ତି ଅଙ୍କିତ ହୁଅନ୍ତି, ତାଙ୍କ ସହିତ ଚଣ୍ଡୀଦାସଙ୍କ ପୂଜିତା ନାନ୍ନୁରର ବାଶୁଲୀ ମୂର୍ତ୍ତିଙ୍କର ଅନେକ ସୌସାଦୃଶ୍ୟ ଅଛି । ବୈଷ୍ଣବ ସହଜିଆ ମାନଙ୍କର ଆଦି ଉପାସ୍ୟା 'ବାଶୁଳୀ' ଅଟନ୍ତି । ଗୌଡ଼ ବଙ୍ଗରୁ ବୌଦ୍ଧ ଧର୍ମର ପ୍ରଭାବର ବିଲୋପ ସଙ୍ଗେ ସଙ୍ଗେ ମୁଣ୍ଡିତକେଶ ବୌଦ୍ଧ ଶ୍ରାବକ ଓ ଶ୍ରାବିକା-ମାନେ ବୈଷ୍ଣବ ସମାଜର ଆଶ୍ରୟ ଗ୍ରହଣ କରି 'ନେଡ଼ା ନେଡ଼ୀ' (ଲଣ୍ଡା ଲଣ୍ଡୀ) ନାମରେ ପରିଚିତ ହେଲେ । ପ୍ରଭୁ ନିତ୍ୟାନନ୍ଦଙ୍କ ପୁତ୍ର ବୀରଭଦ୍ର ବହୁଶତ ନେଡ଼ା ନେଡ଼ୀଙ୍କୁ ଉଦ୍ଧାର କରିଥିଲେ । ସମ୍ଭବତଃ ସେ ଏହିମାନଙ୍କଠାରୁ ବଜ୍ରଯାନ (ସହଜିଆ) ତତ୍ତ୍ୱ ଜାଣି ଥିବେ । ମହାଯାନ ସମ୍ପ୍ରଦାୟ ଜ୍ଞାନମାର୍ଗର ପଥିକ ଥିଲେ । ବଜ୍ରଯାନ ସମ୍ପ୍ରଦାୟ ରସମାର୍ଗର ପଥିକ ହେଲେ । ଏହି ରସମାର୍ଗ-ପଥିକଙ୍କୁ ସହଜିଆମାନେ 'ରସିକ' ବୋଲି ଡାକୁଅଛନ୍ତି । ଅତଏବ ଦେଖାଯାଏ ଯେ, ସହଜିଆମାନେ ଆନ ମାର୍ଗକୁ ନ

ଭକ୍ତ ପ୍ରକୃତ ପୁରୁଷ (ସ୍ତ୍ରୀ ପୁରୁଷ)ଙ୍କ ମିଳନକୁ ପୁରୁଷାର୍ଥ ବୋଲି ମନେ କରନ୍ତି । ପ୍ରେମଦାସ ରଚିତ ଅନନ୍ତ ଭୈରବ, ଅ ଗମସାର, ମୁକୁନ୍ଦଦାସ ରଚିତ ଅମୃତ ରତ୍ନାବଳୀ ଓ ଅମୃତ ରସାବଳୀ, ଏହି ୪ଟି ଗ୍ରନ୍ଥ 'ସହଜ ତତ୍ତ୍ୱ'ନିର୍ଦ୍ଦେଶକ ପ୍ରଧାନ ଗ୍ରନ୍ଥ । ଏହା ଛଡ଼ା ଗୋପୀଦାସ 'ନିଗୂଢାର୍ଥ ପ୍ରକାଶାବଳୀ' ଗ୍ରନ୍ଥରେ ଏ ଗ୍ରନ୍ଥ ଚତୁଷ୍ଟୟର ସାର ବୁଝାଇ ଅଛନ୍ତି । ଏହା ଛଡ଼ା ସହଜିଆ-ମାନଙ୍କର ଶତ ଶତ ପ୍ରାଚୀନ ବଙ୍ଗଳା ଗ୍ରନ୍ଥ ଅଛି । ଏ ଗ୍ରନ୍ଥମାନଙ୍କରେ ପ୍ରମାଣ ମିଳେ ଯେ, 'ପରକୀୟା-ସାଧନା' ସହଜିଆ ସମ୍ପ୍ରଦାୟର ଲକ୍ଷ୍ୟ । ଏହି ପରକୀୟା ସାଧନା କରୁ କରୁ କାମର ଧ୍ୱଂସ ହୋଇ ପ୍ରେମର ସଞ୍ଚାର ହୁଏ । ପରକୀୟା ନାୟିକାଙ୍କ ଦେହକୁ ଶ୍ରୀବୃନ୍ଦାବନ ଓ ପରକୀୟା ନାୟିକାଙ୍କଠାରେ ଶ୍ରୀ ଶ୍ୟାମସୁନ୍ଦର ଓ ରାଧାରାଣୀଙ୍କ ଅଧିଷ୍ଠାନ ବୋଲି ବିଶ୍ୱାସ କରି ଏମାନେ ତାଙ୍କ ସେବା କରନ୍ତି । ସେମାନେ କହନ୍ତି, ପ୍ରେମ ବିନା ବ୍ରଜେନ୍ଦ୍ରନନ୍ଦନଙ୍କ ପ୍ରାପ୍ତି ଦୁର୍ଲ୍ଲଭ । ସେମାନେ କହନ୍ତି, ପରକୀୟା ନାରୀଙ୍କ ସଙ୍ଗେ ତାଙ୍କ ଦେହ—ବୃନ୍ଦାବନରେ ବିଚରଣ କରି ଉକ୍ତ ବୃନ୍ଦାବନରେ ନିଜର ଜୀବନ, ଯୌବନ ଓ ଦେହ ଅର୍ପଣ ଓ ତାଙ୍କ ରତିରେ ନିଜ ରତି ମିଶାଇ ଭାବ ଓ ପ୍ରେମକୁ ଏକ କରି କାମବୀଜ କାମଗାୟତ୍ରୀଦ୍ୱାରା ସେହି କାମିନୀଙ୍କ କାମ-ରତିକୁ ଉତ୍ତେଜିତ କରି ତାଙ୍କ ଅଧରାମୃତ ପାନ କରି ସାଧକ ଓ ପରକୀୟା ଦୁହେଁ ଶ୍ରୀକୃଷ୍ଣଙ୍କୁ ଲାଭ କରିବେ । ସୁତରାଂ ଏମାନଙ୍କ ମତରେ ଭଜନ ସାଧନ କରିବାକୁ ହେଲେ ପ୍ରଥମତଃ ଗୋଟିଏ ସୁନ୍ଦରୀ, ନବଯୌବନସମ୍ପନ୍ନା ପରକୀୟା ରସିକା ରମଣୀ ଲୋଡ଼ା । ପରେ କୌଣସି ରସିକ ଭକ୍ତଙ୍କଠାରୁ ବା ଗୁରୁଙ୍କ ନିକଟରୁ ସାଧନମତ ଉପଦେଶ ନେଇ ସେହି ନାୟିକାଙ୍କଠାରେ ଦେହ-ମନ ସମର୍ପଣ କରି ସାଧନ ଭଜନ କଲେ ଶ୍ରୀକୃଷ୍ଣପ୍ରାପ୍ତି ଘଟେ । ସହଜିଆମାନେ କହନ୍ତି ଯେ ଚୈତନ୍ୟ ମହାପ୍ରଭୁ ଏହା ସାଧାରଣରେ ପ୍ରକାଶ ନ କରି ଅତି ଗୋପନରେ ରାୟ ରାମାନନ୍ଦ ଓ ସ୍ୱରୂପ ଦାମୋଦର ଆଦି କେତେକ ମର୍ମୀ ଭକ୍ତଙ୍କ ସଙ୍ଗେ ଏହା ଆସ୍ୱାଦନ କରିଥିବା କଥା ସ୍ୱରୂପ ଦାମୋଦରଙ୍କ 'କଡ଼ଚା' ଗ୍ରନ୍ଥରେ ଅଛି । ରାୟ ରାମାନନ୍ଦ ଜଗନ୍ନାଥଙ୍କ ଦେବଦାସୀଙ୍କୁ, ବ୍ରାହ୍ମଣ ଚଣ୍ଡୀଦାସ ଧୋବଣୀ ରାମୀକୁ, ବିଦ୍ୟାପତି ଶିବସିଂହଙ୍କ ରାଣୀ ଲଛିମାଙ୍କୁ, ଜୟଦେବ ପଦ୍ମାବତୀଙ୍କୁ, ଶ୍ରୀରୂପ ଗୋସ୍ୱାମୀ ମୀରାବାଈଙ୍କୁ, ବିଲ୍ୱମଙ୍ଗଳ ଚିନ୍ତାମଣିଙ୍କୁ, କୃଷ୍ଣଦାସ କବିରାଜ ଶ୍ୟାମାଙ୍ଗିନୀଙ୍କୁ ପରକୀୟା ନାୟିକାରୂପେ ଭଜନା କରିଥିଲେ । ଊର୍ଦ୍ଧ୍ୱରେତା ନ ହେଲେ ଏ ରସ ସାଧନ କରିବା ଅସମ୍ଭବ । ସାଧକ ଓ ସିଦ୍ଧମାନଙ୍କ ପଥରେ ରତି ନିଷିଦ୍ଧ । ପ୍ରବୃତ୍ତି ମାର୍ଗର ମଧ୍ୟ ଦେଇ କାମଗନ୍ଧହୀନ [ପ୍ରେମଲାଭ କରିବାହିଁ ସେମାନଙ୍କ ଉପଲକ୍ଷ୍ୟ ଅଟେ—ବିଶ୍ୱକୋଷ । ]

**ସହଜିଆ ମାର୍ଗ**— ଦେ. ବି—ସହଜିଆ ୨ ( ଦେଖ )
Sahajiā mārga Sahajiā 2 ( See )

**ସହଜେ**—ଦେ. କ୍ରି. ବି—୧ । ପ୍ରକୃତରେ; ସ୍ୱଭାବତଃ—1. Naturally. ( ଉ—ସହଜ କ୍ରୋଧ ହୃଦୟ । ସହଜେ ତୁ ସନ୍ତୁଦୟ—ଭକ୍ତସର୍ବସ୍ୱ. ସଙ୍ଗୀତ । ) ୨ । ଅନାୟାସରେ —2. Easily. ( ଉ—ଦେଶ ପ୍ରଜାଙ୍କର ମାୟା (ସହଜେଇ[ହିଁ]—ଅନ୍ୟରୂପ) ଭୁଟିଲେ ସହଜେ—ରାଧାନାଥ. ମହାଯାତ୍ରା । )
Sahaje
ସହଜେ
सहजमें

**ସହଜେତର**—ସଂ. ବିଣ ( ସହଜଠାରୁ ଇତର=ଭିନ୍ନ; ୫ମୀ ତତ୍ )—୧ । ଅସ୍ୱାଭାବିକ—1. Unnatural. ୨ । କୃତ୍ରିମ—2. Artificial.
Sahajetara

**ସହଜୋଦାସୀନ**—ସଂ. ବି (ହିନ୍ଦୁ ସ୍ମୃତି)—ସହଜ ଶତ୍ରୁ ଓ ସହଜ ମିତ୍ର ଲକ୍ଷଣ ରହିତ ବନ୍ଧୁ ଓ କୁଟୁମ୍ବଗଣ (ମିତାକ୍ଷରା ।) —( Hindu law ) One's relatives and agnates who are not included in the definition of Sahaja mitra and Sahaja satru.
Sahajodāsina

**ସହଣ**—ଦେ. ବି ( ସଂ. ସହନ )—୧ । ସହିବା—1. Bearing. ୨ । ସହିଷ୍ଣୁତା—2. Forbearance; endurance. ୩ । ଏକପ୍ରକାର ମୋଟା ବିଲାତି କଲଲୁଗା—3 A kind of foreign mill-made coarse cloth. ୪ । କର୍ଜ ସମୟରେ ଯେଉଁ ଦରରେ ଧାନ ଅଦା କରି ହେଉଥିବ ତହିଁଠାରୁ ବେଶି ଧାନ ପାଇବା ପାଇଁ ଟଙ୍କା ଅଗ୍ରୀମ୍ ଦେବା ରୀତି—4. The mode of advancing money to a debtor on condition that the debtor will pay back the money in the shape of paddy at a rate cheaper than the then prevailing rate, on the stipulated date of repayment of the loan. ୫ । ଟଙ୍କାର ସୁଧ ପାଇଁ ପ୍ରଚଳିତ ଦର ଅପେକ୍ଷା ଯେଉଁ ଅଧିକରୁ ଧାନ ଖାତକ ମହାଜନକୁ ଦିଏ—5. Excess paddy paid by the debtor to a creditor over and above the current selling rate in lieu of interest for money advanced on loan. ୬ । ଦେବତାଙ୍କୁ ପ୍ରଦେୟ ମାନସିକ ଭୋଗ ଆଦି—6. Offerings voewd to be given to a Deity.
Sahaṇa सहन सहन
বিলাতি কাপড় विलायती कपड़ा, सहन
দাদন, বাড়ি दादनी
মানসিক मन्नत

**ସହଣ ଲଗା(ଗେ)ଇବା**—ଦେ. କ୍ରି—ଦେଣା ସୁଝିବା ବେଳେ ଅସଲ ଟଙ୍କା ପାଇଁ ପ୍ରଚଳିତ ଦର ଅନୁସାରେ ଯାହା ଧାନ ଦେୟ ହେବ ତହିଁ ଉପରେ ସୁଧ ପରିବର୍ତ୍ତେ ଅଧିକା ଧାନ ଦେଇ କରଜ ସୁଝିବା ପାଇଁ ଖାତକ ସଙ୍ଗେ ଚୁକ୍ତି କରି ଖାତକକୁ ଟଙ୍କା କରଜ ଲଗାଇବା—To advance money [on loan to a debtor on condition that the debtor will repay the debt by deliver-
Sahaṇa lagā(ge)ibā
ধান বাড়ি দেওয়া
धानपर करज लगाना

ing paddy at the market rate on the stipulated day, together with a certain extra quantity of paddy for interest.

ସହଣା(ଣି)—ଦେ. ବ ( ସଂ ସହନ )—୧ । ସହନ—1. Endu-
Sahaṇā(ṇi) সহন सहन rance. ୨ । ସହିଷ୍ଣୁତା—
মানসিক 2. Forbearance. ୩ । ଦେବତାଙ୍କୁ ଶ୍ରଦ୍ଧେ ବା
मन्नत ଭୋଗ ଆଦ; ମାନସିକ—3. Offerings vowed to be given to a Deity. ( ଉ—ଅଜି ଯେତେ ଦଅଁ ଦେବାଙ୍କୁ ସହଣି ଥିଲି, ତାହା ସବୁ
সহনশীল ଦଆଗଲି—କେଶବ- ନାଏକବାରୁ । ) ଦେ. ବଣ.
सहनमा ପୁଂ. ( ସଂ. ଅହୃଷ୍ଟ )—ସହିଷ୍ଣୁ—Forbearing.
(ସହଣିକ[କା]—ଅନ୍ୟ ବଣ ରୂପ) (ସହଣୀ, ସହଣୀକା—ସ୍ତ୍ରୀ)

ସହଣି କରିବା—ପ୍ର ଦେ. ( ସିଂହଭୂମି ଓ ଗଞ୍ଜାମ ) କି—ଉଦ୍ଦେଶ୍ୟ
Sahaṇi karibā ସିଦ୍ଧି ହେଲେ ଦେବତାଙ୍କ ନିକଟରେ କୌଣସି
মানসিক কবা ଭୋଗ ବା ବଳି ଦେବା ପାଇଁ ମାନସିକ କରିବା—
मन्नत करना To vow to give some thing as offer.ng to a Deity on the fulfilment of one's desire.

ସହଣ୍ଡୁକ—ସଂ. ବ—ମାଂସ ବ୍ୟଞ୍ଜନ ବିଶେଷ (ଭାବପ୍ରକାଶ); ଛାଗର ମୁଣ୍ଡ
Sahaṇḍuka କୁଟାଯାଇ ଓ ମାଂସ କୁଟ୍ଟିତ ଓ ଖଣ୍ଡିତ କରାଯାଇ ରନ୍ଧାଯିବା ବ୍ୟଞ୍ଜନ—A curry of mutton. [ ବ୍ର—ଛାଗାଦର ଫଡ଼ଆ ଅବ ମାଂସଳ ସ୍ଥାନର ମାଂସକୁ ଛୋଟ ଛୋଟ କରି କାଟି ଧୋଇ କରି ରଖିବ । ସତେଇରେ ଘିଅରେ ( ଅଭାବରେ ତେଲରେ ) ହଳଦୀ ଓ ହେଙ୍ଗୁ ଭାଜି, ଘିଅରୁ ହଳଦ ଓ ହେଙ୍ଗୁକୁ କାଢି ମୃଦୁ ଅଗ୍ନି ଉତ୍ତାପରେ ଉକ୍ତ ଘୃତରେ ମାଂସକୁ ଭାଜିବ । ମାଂସ ସିଦ୍ଧ ହେଲେ ଜଳ ଓ ଲବଣ ସଂଯୋଗ କରି ମଧ୍ୟାବସ୍ଥାରେ ମସଲ ବଟା ପଣି ଦେବ । ଏରୂପେ ପାକ କରାଯିବା ବ୍ୟଞ୍ଜନକୁ ସହଣ୍ଡୁକ କହନ୍ତି । ଏହା ଅତ୍ୟନ୍ତ ଶୁକ୍ରବର୍ଦ୍ଧକ, ବଳକାରକ, ରୁଚିକର, ଅଗ୍ନିପ୍ରଦୀପକ ଓ ଧାତୁପୋଷକ—ଭାବପ୍ରକାଶ । ]

ସହତର—ପ୍ରାଦେ. ( ସମ୍ବଲପୁର ) ବ ଓ ବଣ (ସଂ. ସହସ୍ର)—ସହସ୍ର—
Sahatar Thousand.

ସହଦେବ—ସଂ. ବ (ନାମ)—୧ । ପାଣ୍ଡୁ ରାଜାଙ୍କ ପଞ୍ଚମ ପୁତ୍ର; ପଞ୍ଚମ
Sahadeba ପାଣ୍ଡବ—1. The fifth Pāṇḍaba brother. [ ବ୍ର—ପାଣ୍ଡୁ ରାଜାଙ୍କ କନିଷ୍ଠା ପତ୍ନୀ ମାଦ୍ରୀଙ୍କ ଗର୍ଭରୁ ଅଶ୍ୱିନୀକୁମାର ଦ୍ୱୟଙ୍କ ଔରସ ଜାତ ନକୁଳ ସହଦେବ ନାମକ ଯମଜ ଭ୍ରାତୃଦ୍ୱୟଙ୍କ ମଧ୍ୟରୁ ଏକତର ।

ମାଦ୍ରୀ ପାଣ୍ଡୁଙ୍କ ସହମୃତା ହେବାରୁ ଏ ଦୁଇ ଭାଇ ବିମାତା କୁନ୍ତୀଙ୍କ ଯତ୍ନରେ ଲାଳିତ ପାଳିତ ହୋଇ ବୈମାତ୍ରେୟ ଭ୍ରାତାମାନଙ୍କ ସହିତ କୃପ ଓ ଦ୍ରୋଣାଚାର୍ଯ୍ୟଙ୍କ ଠାରୁ ଅସ୍ତ୍ର ବିଦ୍ୟା ଶିକ୍ଷା କଲେ । ସହଦେବ ଅଶି- ମୁଷ୍ଟି ଧାରଣରେ ବିଶେଷ ଦକ୍ଷତା ଲାଭ କରିଥିଲେ । ଦ୍ରୌପଦୀଙ୍କ ଗର୍ଭରେ ଏହାଙ୍କ ଔରସରେ ଶ୍ରୁତସେନ ନାମକ ପୁତ୍ର ଜନ୍ମିଥିଲେ । ଏ ଦ୍ୟୁତିମତୀ ନାମ୍ନୀ ଯଦୁ- ବଂଶୀୟ କନ୍ୟାକୁ ବିବାହ କରିଥିଲେ ଓ ଅଜ୍ଞାତ ଯୁଧିଷ୍ଠିରଙ୍କର ଅଜ୍ଞାବହ ଥିଲେ । ପାଣ୍ଡବମାନଙ୍କ ଅଜ୍ଞାତବାସ କାଳରେ ଏ ବିରାଟ ରାଜାଙ୍କ ତନ୍ତ୍ରିପାଳ ନାମଧାରୀ ଗୋଶାଳାଧିପତି ରୂପରେ କାର୍ଯ୍ୟ କରୁଥିଲେ । ଯୁଧିଷ୍ଠିରଙ୍କର ରାଜସୂୟ ଯଜ୍ଞ କାଳରେ ଏ ଦକ୍ଷିଣ ଅଞ୍ଚଳରେ ରାଜାମାନଙ୍କ- ଠାରୁ କର ଆଦାୟ କରିଥିଲେ । କୁରୁକ୍ଷେତ୍ର ଯୁଦ୍ଧର ଅଷ୍ଟାଦଶ ଦିବସରେ ଏ ଶକୁନିଙ୍କୁ ହତ କରିଥିଲେ । ଏ ଯୁଧିଷ୍ଠିରଙ୍କର ମହାପ୍ରସ୍ଥାନରେ ସହଗାମୀ ହୋଇ ଅତ୍ୟଧିକ ପାଣ୍ଡିତ୍ୟାଭିମାନ ଜନିତ ପାପ ଯୋଗୁଁ ସ୍ୱର୍ଗ ପର୍ଯ୍ୟନ୍ତ ଯାଇ ନ ପାରି ସୁମେରୁ ଶିଖରରେ ପତିତ ହେଲେ ।

୨ । ମଗଧରାଜ ଜରାସନ୍ଧଙ୍କ ପୁତ୍ର (ଭାଗବତ)—2. Name of the son of Jarāsandha. [ବ୍ର—ଜରାସନ୍ଧଙ୍କ ମୃତ୍ୟୁ ପରେ ଏ ମଗଧର ରାଜା ହୋଇଥିଲେ । କୁରୁକ୍ଷେତ୍ର ଯୁଦ୍ଧରେ ଏ କୌରବଙ୍କ ପକ୍ଷ ଗ୍ରହଣ କରି ଚତୁର୍ଥ ଦିବସରେ ଅଭିମନ୍ୟୁଙ୍କଦ୍ୱାରା ନିହତ ହେଲେ ।]

୩ । ହର୍ଯ୍ୟଶ୍ୱ ରାଜାଙ୍କ ପୁତ୍ର (ହରିବଂଶ)—3. Name of a son of King Harjyaśwa. ୪ । ସୋମ- ଦତ୍ତଙ୍କ ପୁତ୍ର (ହରିବଂଶ)—4. Name of a son of King Somadatta. ୫ । ଅଗ୍ନିଷ୍ଟୋମ, ବ୍ୟାଖ୍ୟାଧର୍ମଙ୍କ ଓ ଶାକୁନ ଶାସ୍ତ୍ର ରଚୟିତାଙ୍କ ନାମ—(ବ୍ରହ୍ମବୈବର୍ତ୍ତ ପୁରାଣ)—5. Name of an author of some Sanscrit works. ଦେ. ବ (ପୁଂ) ଲୋକଙ୍କୁ ଦଆଯିବା ନାମ—A name given to males.

ସହଦେବା—ସଂ. ବ. ସ୍ତ୍ରୀ (ସହଦେବ+ସ୍ତ୍ରୀ. ଅ)—ଶାରିବା (ମେଦନୀ)-
Sahadebā 1. Śāribā (See) ୨ । ସର୍ପାକ୍ଷୀ (ମେଦନୀ ସାପ ଉଙ୍କାଳିଆ ଗୁଳ୍ମ—2. A plant. ୩ । ନାକୁଳୀ; ଏକ ପ୍ରକାର ରାସ୍ନା; ଗନ୍ଧରାସ୍ନା—3. A plant; Ophioxylon Serpentinum. ୪ । ପୀତ ଦଣ୍ଡୋତ୍ପଳା (ରତ୍ନମାଳା)—4. The yellow variety of Daṇḍotpalā. ୫ । ବଳାଭେଦ; ମହାବଳା; ବଳ ମୂଳୀ—5. A plant; Sida Rhombifolia.

[୫ମ ଅର୍ଥରେ ଅନ୍ୟ ସଂ. ନାମ—ଜ୍ୟେଷ୍ଠବଳା, ମହାବଳା, କଟମ୍ଭରା, କେଶାରୁହା, କେଶରିକା, ମୃଗାଦନୀ, କର୍ପପୁଷ୍ପା, ବେଣକଙ୍କଣୀ, ପୁରସିକା, ଦେବବଳା, ସାରଣୀ, ପୀତପୁଷ୍ପା, ଦେବାର୍ହା, ଗନ୍ଧବଲ୍ଲୀ, ମୃଗା, ମୃଗରସା ।]

[ବ୍ର—ଏହା ହୃଦ୍ରୋଗ, ବାତ, ଅର୍ଶ ଶୋଥହର, ଶୁକ୍ରବୃଦ୍ଧିକର, ବଲ୍ୟ ଓ ବିଷମ ଜ୍ୱର ନାଶକ । ]

୬ । (ନାମ) ବସୁଦେବ ପତ୍ନୀ
6. A name of the wife of Basudeba.

**ସହଦେବୀ**—ସଂ. ବି. ସ୍ତ୍ରୀ—(ସହଦେବ+ଈ. ଈ)—ସହଦେବଙ୍କ ସ୍ତ୍ରୀ—Sahadebī 1. Wife of Sahadeba. ୨ । ସର୍ପାକ୍ଷୀ (ଦେଖ)—2. Sarpākshī (See) ୩ । ସହଦେବା (ଦେଖ)—3. Sida Rhombifolia (plant ୪ । ସହଦେବା (୪) ଦେଖ—4. Sahadebā 4 (see) ୫ । ପ୍ରିୟଙ୍ଗୁ (ଦେଖ)—5. Priyangu (See). ୬ । ମହାନୀଳୀ (ଶବ୍ଦକୋଷ)—6. The big variety of the Indigo plant.

**ସହଦେବୀ ଗଣ**—ସଂ ବି—ଦେବ ପ୍ରତିଷ୍ଠାରେ ଦେବସ୍ନାନାର୍ଥ ବ୍ୟବହୃତ ଔଷଧିଗଣ [ଯଥା—ମହାବଳା, ବଳା, ଶତମୂଳୀ, ଶତାବରୀ, କୁମାରୀ, ଗୁଡୁଚୀ, ସିଂହୀ, ବ୍ୟାଘ୍ରୀ ଗନ୍ଧୁପୁର୍ଣ୍ଣ]—Sahadebī gaṇa A collection of herbs for bathing images during consecration.

**ସହଧର୍ମ(ର୍ମା)ଚରଣ**—ସ. ବି—ଏକ ସଙ୍ଗେ ଧର୍ମକର୍ମାନୁଷ୍ଠାନ—Sahadharma(rmā)charaṇa Performance of religious rites together.

**ସହଧର୍ମଚାରିଣୀ**—ସ. ବି. ସ୍ତ୍ରୀ (ସହ+ଧର୍ମ+ଚର୍. ଧାତୁ+କର୍ତ୍ତୃ. ଇନ୍+ଈ. ଈ)—ସହଧର୍ମିଣୀ (ଦେଖ)—Sahadharmachāriṇī Sahadharmiṇī. (See) ସଂ ବଣ. ସ୍ତ୍ରୀ—ସହଧର୍ମଚାରୀର ସ୍ତ୍ରୀଲିଙ୍ଗ—Feminine of Sahadarmachārī.

**ସହଧର୍ମଚାରୀ**—ସ. ବଣ. ପୁଂ (ସହ+ଧର୍ମ+ଚର. ଧାତୁ+କର୍ତ୍ତୃ. ଇନ୍; ୧ମା, ୧ବ)—ଏକ ସଙ୍ଗେ ଧର୍ମକର୍ମର ଅନୁଷ୍ଠାତା—Performing religious acts together. Sahadharmachārī (ସହଧର୍ମଚାରିଣୀ—ସ୍ତ୍ରୀ)

**ସହଧର୍ମା**—ସ. ବଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ସହ+ଧର୍ମନ୍; ୧ମା ୧ବ)—ସଧର୍ମୀ—Professing the same faith; having the same qualities or attributes. Sahadharmā

**ସହଧର୍ମିଣୀ**—ସ. ବି. ସ୍ତ୍ରୀ (ସହଧର୍ମନ୍+ଇନ୍+ଈ. ଈ)—୧ । ବେଦବିଧାନ ଦ୍ୱାରା ବିବାହିତା ସ୍ତ୍ରୀ (ଅମର)—Sahadharmiṇī 1. One's legally married wife. ୨ । ପତ୍ନୀ—2. One's wife. [ବ୍ୟୁ—କାରଣ, ସପତ୍ନୀକ ହୋଇ ଧର୍ମାଚରଣ କରିବ ବୋଲି ଶାସ୍ତ୍ରରେ ଉପଦେଶ ଅଛି ।]

**ସହନ**—ସ. ବି (ସହ୍. ଧାତୁ+ଭାବ. ଅନ)—୧ । ସହ୍ୟ କରିବା—Sahana 1. Bearing; endurance. ୨ । କ୍ଷାନ୍ତି; କ୍ଷମା; ସହିଷ୍ଣୁତା; ଧୈର୍ଯ୍ୟ—2. Forbearance; calm resignation. ୩ । ପ୍ରତୀକ୍ଷା ( ପ୍ରତ୍ୟୁତ୍ପାଦ )—3. Waiting. ସଂ. ବଣ. ପୁଂ—(+କର୍ତ୍ତୃ. ଅନ )—ସହିଷ୍ଣୁ; ସହନଶୀଳ—Forbearing; enduring.

**ସହ ନର୍ତ୍ତନ**—ସଂ. ବି—୧ । ଏକତ୍ର ମଣ୍ଡଳାକାର ନୃତ୍ୟକରଣ—Saha narttana 1. Dancing together in a ring.

ସହନର୍ତ୍ତକ—ପୁଂ
ସହନର୍ତ୍ତକୀ—ସ୍ତ୍ରୀ } —ବ୍ୟକ୍ତିବାଚକ ବିଶେଷ୍ୟ ୨ । ସ୍ତ୍ରୀ ପୁରୁଷ ଯୋଡା ଯୋଡ଼ା ହୋଇ ନାଚିବା—2. Ball dance.

**ସହନଶୀଳ**—ସଂ. ବଣ. ପୁଂ (ସହନ+ଅଭ୍ୟସ୍ତ ଅର୍ଥରେ ଶୀଳ)—Sahanaśīla ସହିଷ୍ଣୁ—Forbearing. (ସହନଶୀଳା—ସ୍ତ୍ରୀ) [ସହନଶୀଳତା—ବି]

**ସହନୀୟ**—ସଂ. ବଣ (ସହ୍. ଧାତୁ+କର୍ମ. ଅନୀୟ)—୧ । ସହନଯୋଗ୍ୟ; ସୋଢବ୍ୟ—1. Bearable; tolerable. Sahanīya ୨ । ସହ୍ୟ; ଯାହା ସହ ହୁଏ—2. Which is endured.

**ସହନ୍ତା**—ଦେ· ବଣ (ସଂ. ସହିଷ୍ଣୁ)—ସହନ୍ତି; ସହିଷ୍ଣୁ—Sahantā ଯେ ସହ୍ୟକରେ सहनमा Forbearing.

**ସହପକ୍ଷ**—ଦେ. ବଣ (ସଂ. ସପକ୍ଷ)—ସାହାପକ୍ଷ (ଦେଖ)—Sāhā paksha. (See) (ଉ—ବନ୍ଧୁ କହନ୍ତେ ବନ୍ଧୁ ଏବେ ତାଙ୍କ ହୋଇଛନ୍ତି ସହପକ୍ଷ । ବିଶ୍ୱନାଥ, ବଡ଼ଜେନା ଗୁଣାଯୁଣ ।) Sahapaksha सपक्ष

**ସହପତ୍ନୀ**—ସଂ. ବଣ. ସ୍ତ୍ରୀ—୧ । ପତ୍ନୀପତ୍ନୀଯୁକ୍ତ (ଶବ୍ଦକୋଷ)—Sahapatnī 1. (The husband and the wife) Going in company. ୨ । ପତିଙ୍କ ସମଭିବ୍ୟାହାରିଣୀ (ସ୍ତ୍ରୀ)—2. (the wife) Accompanied by the husband. ସଂ ବି—ଦମ୍ପତି (ଶବ୍ଦକୋଷ)—Couple; a married pair.

**ସହପାଂଶୁକ୍ରୀଳ**—ସଂ. ବି. ପୁଂ (ସହ+ପାଂଶୁ+କ୍ରୀଲ୍. ଧାତୁ=ଖେଳିବା+କର୍ତ୍ତୃ. ଅ; ଯେ ସଙ୍ଗୀପିଲାଙ୍କ ସଙ୍ଗେ ପାଉଁଶରେ ବା ଧୂଳିରେ ଖେଳେ)—୧ । ଧୂଳିଖେଳରେ ସାଙ୍ଗୀ—1. One's playmate of childhood. Sahapāṁśukīḷa ୨ । ବୟସ୍ୟ; ସଖା (ଶବ୍ଦକୋଷ)—2. Companion of the same age.

**ସହପାଂଶୁ କ୍ରୀଳନ (କ୍ରୀଡ଼ନ)**—ସଂ ବି (ସହ+ପାଂଶୁ+କ୍ରୀଲ୍, ଧାତୁ, କ୍ରୀଡ୍ ଧାତୁ=ଖେଳିବା+ଭାବ. ଅନ)—ପିଲାମାନଙ୍କ ଧୂଳିଖେଳ—Children's play by making houses of dust. Sahapāṁśu kīḷana (krīḍana)

**ସହପାଠ**—ସଂ. ବି—୧ । ଏକତ୍ର ପଠନ—1. Reading together. ୨ । (ଆଧୁନିକ) ବାଳକବାଳିକାମାନଙ୍କର ଏକତ୍ର ପାଠପଢ଼ା—2. Co-education. Saha pāṭha

**ସହପାଠୀ**—ସ. ବଣ. ପୁଂ (ସହ+ପଠ୍. ଧାତୁ+କର୍ତ୍ତୃ. ଇନ୍; ସହପାଠିନ୍; ୧ମା, ୧ବ)—ଏକତ୍ର ଅଧ୍ୟୟନକାରୀ; ସହାଧ୍ୟାୟୀ—Reading together. ସଂ ବି, ପୁଂ—ସାଙ୍ଗ ପଢ଼ୁଆ ପିଲା—Classmate. Sahapāṭhī (ସହପାଠିନୀ—ସ୍ତ୍ରୀ)

**ସହପାନ**—ସଂ. ବି—୧ । ଏକତ୍ର ପାନୀୟ ଦ୍ରବ୍ୟାଦିର ପାନ—1. A drinking of fluids in company. ୨ । ବହୁ ଲୋକଙ୍କର ଏକତ୍ର ସୁରାପାନ (ହେମଚନ୍ଦ୍ର)— Sahapāna

2. A drinking (of wine) in company; drinking bout.

ସହପିଣ୍ଡ କ୍ରିୟା—ସଂ. ବି—ସପିଣ୍ଡୀକରଣ ଶ୍ରାଦ୍ଧ (ମନୁ ୩।୨୪୮)—
Sahapiṇḍa kriyā Sapiṇḍīkaraṇa. (See)

ସହ ପୀତି—ସଂ. ବି—ଏକତ୍ର ମଦ୍ୟାଦି ପାନ (ଶବ୍ଦ ରତ୍ନାବଳୀ)
Saha pīti A drinking in company.

ସହପୂର୍ବାହ୍ଣ—ସଂ. ଅ (ଅବ୍ୟୟୀଭାବ)—ପୂର୍ବାହ୍ଣ ସଦୃଶ (ମୁଗ୍ଧବୋଧ
Saha pūrbāhṇa ବ୍ୟାକରଣ)—Like forenoon; similar to forenoon.

ସହ ପ୍ରଯା(ସ୍ଥା)ୟୀ—ସଂ. ବିଣ. ପୁଂ (ସହ+ପ୍ର+ଯା ଧାତୁ; ସ୍ଥା ଧାତୁ+
Saha prajā(sthā)yī କର୍ତ୍ତୃ ଇନ୍, ୧ମା ୧ବ)—ଏକ ସଙ୍ଗେ
[ ସହପ୍ରଯା(ସ୍ଥା)ୟିନୀ—ସ୍ତ୍ରୀ ] ଗମନକାରୀ; ସହଯାୟୀ—
Going or walking together.

ସହବତ୍—ବୈଦେ. ବି (ଅ. ସୋହ୍‌ବତ୍)—୧ । ସଂସର୍ଗ—1. Con-
Sahabat junction. ୨ । ସମ୍ପର୍କ—2. Connec-
সোহবত্ सोहवत tion. ୩ । ସହଚରତା—
3. Companionship, ୪ । ସହବାସ—4. Co-habitation. ୫ । ସଂସର୍ଗଜ ଦୋଷ ଗୁଣ—
5. Qualities which one attains as a result of companionship.

ସହବତୀ—ବୈଦେ. ବି—୧ । ସଙ୍ଗୀ—1. Companion. ୨ ।
Sahabatī ସହକାରୀ—2. Assistant.
(ସହବତ୍‌ଶବ୍ଦ—ଅପଭ୍ରଂଶ)
সোহবতী सोहवती

ସହବତ୍ସ—ସଂ. ବିଣ. ପୁଂ—ସବତ୍ସ; ବତ୍ସ । ସହିତ—
Sahabatsa Accompanied by the calf.
(ସହବତ୍ସା—ସ୍ତ୍ରୀ)

ସହ ବସତି—ସଂ. ବି—ଏକତ୍ର ଅବସ୍ଥାନ—
Saha basati Staying together.

ସହବାଦ—ସଂ. ବି—୧ । ବାଦାନୁବାଦ; ତର୍କ ବିତର୍କ—1. Discus-
Sahabāda sion. ୨ । ମକଦ୍ଦମାରେ ସଓ୍ୱାଲ ଜବାବ—2. Argument in court.

ସହବାସ—ସଂ. ବି (ସହ+ବସ ଧାତୁ+ଭାବ ଅ)—୧ । ପରସ୍ପର ସଂସର୍ଗ—
Sahabāsa 1. Mutual conjunction; intercourse.
୨ । ଏକସଙ୍ଗେ ଅବସ୍ଥାନ—2. Staying together.
୩ । ପତିପତ୍ନୀ ରୂପେ ଏକତ୍ରାବସ୍ଥାନ—
3 Living together as husband and wife.
୪ । ଏକତ୍ରବାସ—4. Living together. ୫ । ସଙ୍ଗମ
—5. Association. ଦେ. ବି—ସ୍ତ୍ରୀପୁରୁଷଙ୍କ ସଙ୍ଗମ; ମୈଥୁନ—Cohabitation; sexual inter-course.

ସହବାସ-ସମ୍ମତି-ଆଇନ୍—ଦେ. ବି—କୌଣସି ବାଳିକା ଅପଣା ସଙ୍ଗେ
Sahabāsa sammati āin ସଙ୍ଗମ କରିବାକୁ ପୁରୁଷକୁ
সহবাস সম্মতি-আইন अनुमति ଦେଲେ ବାଳିକାର ଯେଉଁ ବର୍ଷ ପର୍ଯ୍ୟନ୍ତ
सहवास सम्मति आइन् ବୟସ ହୋଇ ନ ଥିଲେ ତାହା ଆଇନ
ଅନୁସାରେ ବାଳିକାର ସମ୍ମତି ରୂପେ ଗୃହୀତ ହୁଏ ନାହିଁ, ଏହି ଆଇନ୍—The age-of-consent-law; the law which fixes the minimum age of a girl after which the girl will be considered to be free to give her legal consent to sexual union with a male.

ସହବାସୀ—ସଂ. ବିଣ. ପୁଂ (ସହ+ବସ୍ ଧାତୁ+କର୍ତ୍ତୃ ଇନ୍; ୧ମା. ୧ବ)—ଏକତ୍ରବାସକାରୀ—Living together.
Sahabāsī
(ସହବାସିନୀ—ସ୍ତ୍ରୀ)

ସହବ୍ରତ—ସଂ. ବିଣ. ପୁଂ (ବହୁବ୍ରୀହି)—ଏକାବ୍ରତାଶ୍ରୟୀ—
Sahabrata Observing vows together.
(ସହବ୍ରତା—ସ୍ତ୍ରୀ)

ସହବ୍ରତା—ସଂ. ବିଣ. ସ୍ତ୍ରୀ (ସହବ୍ରତ+ସ୍ତ୍ରୀ. ଅ)-ସହବ୍ରତର ସ୍ତ୍ରୀଲିଙ୍ଗ—
Sahabratā Feminine of Sahabrata.
ସଂ. ବି. ସ୍ତ୍ରୀ—ସହଧର୍ମିଣୀ; ବିବାହିତା ସ୍ତ୍ରୀ; ଧର୍ମପତ୍ନୀ (ବିଶ୍ୱକୋଷ)—One's wedded wife.

ସହଭାବୀ—ସଂ. ବି. ପୁଂ (ସହ+ଭୂ ଧାତୁ+କର୍ତ୍ତୃ. ଇନ୍; ୧ମା.୧ବ)—
Sahabhābī ୧ । ସହାୟ; ସାହାଯ୍ୟଦାତା (ତ୍ରିକାଣ୍ଡଶେଷ)—
(ସହଭାବିନୀ—ସ୍ତ୍ରୀ) 1. Help; abettor. ୨ । ସହଚର—
2. Companion. ୩ । ସହୋଦର; ସୋଦର—
3. Uterine brother. ବିଣ—୧ । ସହିତ ଉତ୍ପନ୍ନ—
1. Born with. ୨ । ସାହାଯ୍ୟକାରୀ—2. Helping; abetting.

ସହଭୁଜ୍—ସଂ. ବିଣ. ପୁଂ ଓ ସ୍ତ୍ରୀ (ସହ+ଭୁଜ୍ ଧାତୁ+ କର୍ତ୍ତୃ. କ୍ୱିପ୍)—
Sahabhuj ଏକତ୍ର ଭୋଜନକାରୀ—Eating or dining together.

ସହଭୂ—ସଂ. ବିଣ (ପୁଂ ଓ ସ୍ତ୍ରୀ) (ସହ+ଭୂ ଧାତୁ+କର୍ତ୍ତୃ କ୍ୱିପ୍)—
Sahabhū ଏକତ୍ର ଉତ୍ପନ୍ନ—Produced or born together.

ସହଭୁଲ୍—ଦେ. ବି (ବଙ୍ଗଳା)—୧ । ଅନବଧାନତାଜନିତ ଭ୍ରମ—Mistake;
Saha bhūl oversight. ୨ । କୌଣସି ବିଷୟ ଛାଡ଼ି ଯିବା
সহভুল भूलचूक —2. Omission.

ସହ ଭୋଜନ—ସଂ. ବି—୧ । ଏକତ୍ରଭୋଜନ; ସଗ୍ଧ (ଅମର)—
Saha bhojana 1. Dining together. ୨ । ପଂକ୍ତିଭୋଜନ
—2. Dining together in a row.
୩ । ଏକତ୍ର ଭୋଗ କରିବା (ବିଶ୍ୱକୋଷ)—
3. Enjoyment together; simultaneous enjoyment.

ସହଭୋଜୀ—ସଂ. ବିଣ. ପୁଂ (ସହ+ଭୁଜ୍ ଧାତୁ+କର୍ତ୍ତୃ ଇନ୍ ୧ମା ୧ବ)
Sahabhojī ଏକତ୍ରଭୋଜନକାରୀ—Dining together.
(ସହଭୋଜିନୀ—ସ୍ତ୍ରୀ)

ସହମ—ସଂ ବି.—ଫଳିତଜ୍ୟୋତିଷମତେ ବର୍ଷ ପ୍ରବେଶ ବିଷୟକାଳରେ
Sahama ବର୍ଷର ଫଳାଫଳ ନିର୍ଣ୍ଣୟ କରିବା ପାଇଁ ଓ
ଜନ୍ମକାଳରେ ଜାତ ବ୍ୟକ୍ତିର ଜୀବନର ଫଳାଫଳ ବୁଝିବା

ପାଇଁ ଗଣନା କରାଯିବା ତାଜକୋକ୍ତ ଯୋଗବିଶେଷ—The result of a kind of astrological calculation (according to the Tājaka method) for finding out what will happen in the coming year or what will happen to the life of a just born baby. [ଦ୍ର-ନୀଳକଣ୍ଠୋକ୍ତ ତାଜକ ଗ୍ରନ୍ଥରେ ସହମ ଗଣନା ପ୍ରଣାଳୀ ବର୍ଣ୍ଣିତ ହୋଇଅଛି। ଏହା ୫୦ ପ୍ରକାର। ଚନ୍ଦ୍ରସ୍ଫୁଟ, ରବିସ୍ଫୁଟ, ଲଗ୍ନସ୍ଫୁଟ, ବୃହସ୍ପତି ସ୍ଫୁଟ ଆଦିର ଯୋଗ ବିୟୋଗ ଦ୍ୱାରା ସହମ ଅନୟନ କରାଯାଏ। ସହମ ନିର୍ଣ୍ଣୟ କରି ଯେଉଁ ରାଶି ମିଳେ ସେହି ରାଶିର ଅଧିପତି ଗ୍ରହଙ୍କୁ ସହମାଧିପତି ବୋଲାଯାଏ। ଏହି ଗ୍ରହମାନଙ୍କର ଭିନ୍ନ ଭିନ୍ନ ଅବସ୍ଥାନ, ବଳ ଓ ଦୃଷ୍ଟିର ଫଳରେ ଶୁଭ ବା ଅଶୁଭ ନିର୍ଣ୍ଣୀତ ହୁଏ। ସହମମାନଙ୍କ ନାମରୁ ତତ୍ତତ୍ ସହମର ଫଳ ସୂଚିତ ହୁଏ, ଯଥା—ପୁଣ୍ୟସହମ, ରୋଗସହମ, ଶତ୍ରୁସହମ, କଳହସହମ, ମୃତ୍ୟୁସହମ, ଯଶଃସହମ, କାର୍ଯ୍ୟସିଦ୍ଧିସହମ, ପରଦେଶ ସହମ, ଜଳପଥସହମ, ଦରିଦ୍ରତା ସହମ, ବାଣିଜ୍ୟସହମ, ଉଦ୍‌ବାହ ସହମ, ବନ୍ଧୁ ସହମ, ଜ୍ଞାନ ସହମ ଇତ୍ୟାଦ—ବିଶ୍ୱକୋଷ।)]

**ସହ ମରଣ**—ସଂ. ବି—ସହାନୁଗମନ; ମୃତ ସ୍ୱାମୀଙ୍କ ଶବ ସହିତ
Saha maraṇa ଜ୍ୱଳଚିତାରୋହଣପୂର୍ବକ ସ୍ତ୍ରୀଙ୍କର ମରଣ—Concremation; the act of self-immolation of a widow by ascending the burning funeral pyre of her deceased husband.

[ଦ୍ର—ମୃତପତିଙ୍କ ଶବ ସଙ୍ଗେ ବିଧବା ପତ୍ନୀଙ୍କ ମରଣକୁ ସହମରଣ ବୋଲାଯାଏ। ଦୂର ଦେଶରେ ପତିଙ୍କ ମୃତ୍ୟୁ ହେଲେ କିମ୍ବା ପତିଙ୍କ ମୃତ୍ୟୁ ସମୟରେ ସ୍ତ୍ରୀ ଗର୍ଭିଣୀ ବା ରଜସ୍ୱଳା ଥିଲେ ପତିଙ୍କ ଶବଦାହ ପରେ ତାଙ୍କର କୌଣସି 'ସନ୍ତକ'କୁ ଧରି ତାଙ୍କ ବିଧବାଙ୍କର ଚିତାଗ୍ନିରେ ପ୍ରବେଶ କରିବାକୁ ଅନୁମରଣ ବୋଲାଯାଏ। ଯେଉଁ ସ୍ତ୍ରୀ ପତିଙ୍କ ସହଗମନ ବା ଅନୁମରଣ କରନ୍ତି ତାଙ୍କୁ ସତୀ ବୋଲାଯାଏ। ମୃତପତିଙ୍କ ସହ ମରଣ ପ୍ରଥା ବେଦରେ ସୂଚିତ ହୁଏ। କିନ୍ତୁ ଏହା ବୈଦିକ ଯୁଗରେ ଅବଶ୍ୟକର୍ତ୍ତବ୍ୟ ଥିବାର ପ୍ରମାଣ ନାହିଁ। ଶିଶୁସନ୍ତାନରକ୍ଷିତ୍ରୀ, ଗର୍ଭିଣୀ ଓ ରଜସ୍ୱଳା ପକ୍ଷରେ ସହମରଣ ନିଷିଦ୍ଧ ଥିବା ବୃହସ୍ପତି ଆଦି ସ୍ମୃତିରୁ ଦେଖାଯାଏ। ମହାଭାରତରେ ସହମରଣର ବହୁ ଉଦାହରଣ ଅଛି। ମନୁ ସହମରଣର ବ୍ୟବସ୍ଥା ନ କରି ବିଧବାଗଣଙ୍କର ବ୍ରହ୍ମଚର୍ଯ୍ୟାବଲମ୍ବନର ବ୍ୟବସ୍ଥା କରିଅଛନ୍ତି। ସହମରଣ ପୂର୍ବରୁ ସତୀ ଯେଉଁ 'ସଙ୍କଳ୍ପ ବାକ୍ୟ' ଉଚ୍ଚାରଣ କରନ୍ତି, ସେଥିରୁ ଦେଖାଯାଏ ଯେ, ସତୀ ସ୍ୱେଚ୍ଛାରେ ଜ୍ୱଳଚ୍ଚିତାରେ ପ୍ରବେଶ କରିବେ। ଅଥବା ସହମରଣ ପାଇଁ ଇଚ୍ଛା ନ କଲେ ସେ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିବେ। ଦୁଇ ହଜାର ବର୍ଷ ପୂର୍ବେ ମଧ ଗ୍ରୀସ୍ ଓ ରୋମ୍ ଦେଶର ପଣ୍ଡିତ ଓ ଐତିହାସିକମାନେ ଭାରତରେ ସହମରଣ ପ୍ରଥା ପ୍ରଚଳିତ ଥିବା କଥା ଲେଖି ଯାଇଅଛନ୍ତି। କାଳକ୍ରମେ ଅନିଚ୍ଛୁକା ବିଧବାଙ୍କୁ ଜବରଦସ୍ତି କରି ଲୋକେ ସ୍ୱାମୀଙ୍କ ଚିତାଗ୍ନିରେ ନିକ୍ଷେପ କଲେ। ଖ୍ରୀ ୧୮୨୮ ସାଲ ପୂର୍ବରୁ କେବଳ କଲିକତା ଓ ତନ୍ନିକଟବର୍ତ୍ତୀ ଅଞ୍ଚଳରେ ପ୍ରତିବର୍ଷ ୩୦୦ ଠାରୁ ୬୦୦ ପର୍ଯ୍ୟନ୍ତ ସତୀଦାହ ହେଉଥିଲା। ରାଜା ରାମମୋହନ ରାୟଙ୍କ ପ୍ରଚେଷ୍ଟା ଫଳରେ ଭାରତର ବଡ଼ଲାଟ ଲର୍ଡ ଉଇଲିୟମ୍ ବେଣ୍ଟିଙ୍କ୍ ୪।୧୨।୧୮୨୯ ତାରିଖରେ ସତୀଦାହକୁ ଦଣ୍ଡନୀୟ ଅପରାଧ ବୋଲି ଘୋଷଣା କରି ଆଇନ୍ ଜାରି କଲେ ଓ ସତୀ ଦାହରେ ସହାୟତା କରିବା ବ୍ୟକ୍ତିଙ୍କୁ ମଧ ଦଣ୍ଡ୍ୟ କଲେ। ତହିଁର ଫଳରେ ଭାରତର ହିନ୍ଦୁ ସମାଜରୁ କ୍ରମଶଃ ସହମରଣ ପ୍ରଥା ରହିତ ହୋଇଅଛି। ପ୍ରାଚୀନ ଶାକଦ୍ୱୀପବାସୀମାନଙ୍କ ମଧ୍ୟରେ, ଚୀନ ଦେଶର କେତେକ ଅଞ୍ଚଳରେ, କେତେକ ଭାରତୀୟ ଦ୍ୱୀପପୁଞ୍ଜ (ଯଥା—ବାଲି ଓ ଲମ୍ବକ ଦ୍ୱୀପ)ରେ ମୃତପତିଙ୍କ ସଙ୍ଗେ ବିଧବାର ମରଣ ଓ ବଧ କଥା ପ୍ରଚଳିତ ଥିଲା ଓ ଅଛି। (ବିଶ୍ୱକୋଷ)]

**ସହମାନ**—ସଂ. ବିଣ—୧। (ସହ ଧାତୁ + କର୍ତ୍ତୃ ଅନ)—ସହ୍ୟକରୁଥିବା—
Sahamāna 1. Enduring; forbearing; patiently bearing.
(ସହମାନା—ସ୍ତ୍ରୀ) ୨। (ସହ + ମାନ) ମର୍ଯ୍ୟାଦାସହିତ—2. With respect. ସଂ. ବି ସର୍ବଶକ୍ତିମାନ୍ ଈଶ୍ୱର (ବିଶ୍ୱକୋଷ)—The Omnipotent God.

**ସହ ମୃତା**—ସଂ. ବିଣ, ସ୍ତ୍ରୀ—ମୃତ ପତିଙ୍କ ଚିତାରୋହଣ ପୂର୍ବକମୃତା(ସ୍ତ୍ରୀ)-
Saha mṛutā (a woman) Immolating herself by ascending her husband's funeral pyre.

**ସହ ଯାତ୍ରା**—ସଂ. ବି—ଏକ ସଙ୍ଗେ ପ୍ରସ୍ଥାନ—
Saha jātrā Going together.

**ସହଯାତ୍ରୀ**—ସଂ. ବିଣ, ପୁଂ (ସହଯାତ୍ରିନ୍ ଶବ୍ଦ; ସହ + ଯାତ୍ରା + ଅସ୍ତି
Sahajātri ଅର୍ଥରେ ଇନ୍ ୧ମା; ୧ବ)—ଏକସଙ୍ଗେ ଗମନକାରୀ—Travelling together.
ସହଯାତ୍ରିଣୀ } —ସ୍ତ୍ରୀ
ସହଯାତ୍ରିକା }
ବି—୧। ଏକ ସଙ୍ଗେ ଯାତ୍ରା କରୁଥିବା
[ସହଯାତ୍ରିକ—ଅନ୍ୟରୂପ] ବ୍ୟକ୍ତି—1. A fellow-traveller. ୨। ଯେଉଁ ଯାତ୍ରୀମାନେ ସଙ୍ଗହୋଇ ତୀର୍ଥକୁ ଯାତ୍ରା କରନ୍ତି—2. Fellow-pilgrims.

**ସହଯାୟୀ**—ସଂ. ବିଣ (ସହଯାୟିନ୍ ଶବ୍ଦ; ସହ + ଯା ଧାତୁ + କର୍ତ୍ତୃ
Sahajāyi ଇନ୍ ୧ମା ୧ବ)—୧। ଏକସଙ୍ଗେ ଗମନକାରୀ-
[ସହଯାୟିନୀ—ସ୍ତ୍ରୀ] 1. Going or travelling together. ୨। ସହଯାତ୍ରୀ (ଦେଖ)—2. Sahajātri (See)

**ସହଯୁଦ୍ଧ୍ୱା**—ସଂ. ବିଣ (ସହ + ଯୁଧ୍ ଧାତୁ + କର୍ତ୍ତୃ କନ୍; ସହଯୁଦ୍ଧ୍ୱନ୍
Sahajuddhwā ୧ମା. ୧ବ)—ଏକତ୍ର ଯୁଦ୍ଧକାରୀ—Fight-

ing together. ବି—ସହଯୋଦ୍ଧା; ଏକତ୍ର ଯୁଦ୍ଧକାରୀ ବୀର—Co-warrior.

**ସହଯେ**—ଗ୍ରା, ଅ—ସହଜେ; ସ୍ୱଭାବତଃ—
Sahaje Naturally.
[ଉ—ଅପ୍ରୀତି ପ୍ରୟୋଜନ ଭାର
ଗୋବିନ୍ଦ ସହଯେ ଅନ୍ତର ।
ଭୂପତି. ପ୍ରେମ. ପଞ୍ଚାମୃତ ।]

**ସହଯୋଗ**—ସଂ. ବି (ସହ+ଯୋଗ)—୧ । ସଂଯୋଗ—1. Union.
Sahajoga ୨ । ମିଳନ—2. Meeting. ୩ । ସଙ୍ଗ—
[ଅସହଯୋଗ—ବିପରୀତ] 3. Company. ୪ । କୌଣସି
କାର୍ଯ୍ୟରେ ଅନ୍ୟ ସହିତ ଯୋଗଦାନ—4. Cooperation with others. ୫ । ସମ୍ଭୋଗ; ମୈଥୁନ—
Cohabitation.

**ସହଯୋଗିତା(ତ୍ୱ)**—ସଂ. ବି—( ସହଯୋଗିନ୍+ଭାବ ତା )—ଅନ୍ୟ
Sahajogitā(twa) ସହିତ ଯୋଗ ଦେଇ କାର୍ଯ୍ୟ କରିବା—
(ଅସହଯୋଗିତା—ବିପରୀତ) Cooperation.

**ସହଯୋଗୀ**—ସଂ. ବିଣ. ପୁଂ (ସହଯୋଗିନ୍ ଶବ୍ଦ; ସହ+ଯୋଗ+
Sahajogi ଇନ୍)—୧ । ସହକାରୀ—1. Assisting.
[ସହଯୋଗିନୀ—ସ୍ତ୍ରୀ] ୨ । ସାହାଯ୍ୟକାରୀ—2. Helping.
୩ । ଏକତ୍ର କାର୍ଯ୍ୟକାରୀ—3. Cooperating; co-operative ବି—୧ । ସହକାରୀ ବ୍ୟକ୍ତି—1 An assistant. ୨ । ଏକ ସଙ୍ଗେ କାର୍ଯ୍ୟକାରୀ ବ୍ୟକ୍ତି—
[ଅସହଯୋଗୀ—ବିପରୀତ] 2 Colleague. ୩ । ସହଯୋଗ
ଦେବା ବ୍ୟକ୍ତି—3. Cooperator. ଦେ· ବି—
सहयोगी **सहयोगी** (ଅଧୁନିକ ରାଜନୀତି) ସରକାରଙ୍କ ସଙ୍ଗେ
ସହଯୋଗ କରି କାର୍ଯ୍ୟ କରିବା ବ୍ୟକ୍ତି—( Modern-politics) A person who acts in cooperation with the Government.

**ସହଯୋଗୀ ସମିତି**—ଦେ· ବି—ବହୁଲୋକଙ୍କ ସମ୍ମିଳିତ ଧନ ଓ ଚେଷ୍ଟା
Sahajogi samiti ଦ୍ୱାରା ଗଠିତ ବ୍ୟବସାୟ ସମିତି—
सहयोगीसमिति **सहयोगिसमिति** Cooperative society.

**ସହଯୋଗୀ ଋଣ ସମିତି**—ଦେ· ବି.—ବହୁ ଲୋକଙ୍କ ସମ୍ମିଳିତ ଧନ ଓ
Sahajogi ruṇa samiti ଚେଷ୍ଟାଦ୍ୱାରା ସଂଗଠିତ ସଭ୍ୟମାନଙ୍କୁ
सहयोगी ऋण समिति ଦରକାରବେଳେ ସେମାନଙ୍କୁ ଅଳ୍ପ ସୁଧରେ
**सहयोगी ऋण समिति** ଋଣ ଦେଇଥିବା ପାଇଁ ପ୍ରତିଷ୍ଠିତ ସଂଘ;
କୃଷି ବାଙ୍କ—Co-operative Credit Society.
[ଦ୍ର—ଏହି ସମିତିମାନ ଅନେକ ଗ୍ରାମରେ ପ୍ରତିଷ୍ଠିତ । ଏହାକୁ କୃଷି ବାଙ୍କ ମଧ୍ୟ କହନ୍ତି । ଟଙ୍କାର ଅଭାବ ହେଲେ ଗ୍ରାମବାସୀମାନେ ଗ୍ରାମର ମହାଜନଙ୍କଠାରୁ ଟଙ୍କା କରଜ ନିଅନ୍ତି । ଏହି ମହାଜନମାନେ ତାଙ୍କ ଇଚ୍ଛାନୁଯାୟୀ ବହୁତ ସୁଧ ନିଅନ୍ତି । ଏହାଦ୍ୱାରା କେତେକ ବର୍ଷ ପରେ ଖାତକର ଦେୟ ଟଙ୍କା ଏତେ ବଢ଼ିଯାଏ ଯେ, ଯେଉଁ ଲୋକ ଋଣ ନେଇଥାଏ ସେ ଦେଣା ସୁଝି ପାରେ ନାହିଁ । ସମୟ ସମୟରେ ଏହି କରଜ ସୁଝିବାଲାଗି ଖାତକର ଜମି ବାଡ଼ି ବିକ୍ରୀ ହୋଇଯାଏ । ମାତ୍ର କୃଷିବାଙ୍କର ସୁଧ ଅଳ୍ପ ହୋଇଥିବାରୁ କୃଷକମାନେ ସହଜରେ ତାହା ସୁଝି ପାରନ୍ତି ।

ଗ୍ରାମରେ ଯେଉଁ ସହଯୋଗ ବାଙ୍କ୍ ଥାଏ ତାହା କେନ୍ଦ୍ର ବାଙ୍କ୍‌ଠାରୁ ଟଙ୍କା ଋଣ ଆଣିଥାଏ । ଗ୍ରାମବାସୀମାନେ ଏହି ବାଙ୍କ୍‌ର ମେମ୍ବର ବା ସଭ୍ୟ ହୋଇପାରନ୍ତି । କୌଣସି ସଭ୍ୟ ଇଚ୍ଛା କଲେ ବାଙ୍କ୍‌ରେ ଟଙ୍କା ଜମା କରି ପାରନ୍ତି । ଏଥିଲାଗି ତାଙ୍କୁ ବାଙ୍କ୍‌ରୁ ସୁଧ ମିଳେ । ଯେଉଁମାନେ ଟଙ୍କା କରଜ ନିଅନ୍ତି ସେମାନେ ଯେଉଁ ସୁଧ ଦିଅନ୍ତି ତାହା ବାଙ୍କ୍‌ରେ ଜମା ରହେ । ଏହିପରି ଗ୍ରାମ ବାଙ୍କ୍‌ର ପାଣ୍ଠି କ୍ରମେ କ୍ରମେ ବଢ଼େ । ଯଦି ଋଣ ନିଆଯାଇଥିବା ମୂଳ ଓ ସୁଧ ନିୟମିତ ରୂପେ ଅସୁଲ ହୁଏ ତାହାହେଲେ ବାଙ୍କ୍ କାର୍ଯ୍ୟ ସୁଚାରୁରୂପେ ଚଳେ । ଏହା ହେବାଲାଗି ଗ୍ରାମବାସୀମାନେ ଦାୟୀ । କାରଣ ସେମାନେ ନିଜେ ଗ୍ରାମବାଙ୍କର ସଭ୍ୟ । ସେମାନେ ଇଚ୍ଛା କଲେ କରଜ ଟଙ୍କା ମୂଳ ଓ ସୁଧ ଯଥା ସମୟରେ ସୁଝି ଦେଇ ପାରିବେ । ଏହା ଦ୍ୱାରା ବାଙ୍କ୍‌ର ମଙ୍ଗଳ ହେବ ଏବଂ ସେମାନଙ୍କର ମଧ୍ୟ ଭଲ ହେବ । କାରଣ, ସେମାନେ ଟଙ୍କା ଯେତେ ଅଧିକ ସମୟ ଆପଣା ହାତରେ ବାନ୍ଧି ରଖିବେ ସେମାନଙ୍କୁ ସେତେ ଅଧିକ ସୁଧ ଦେବାକୁ ପଡ଼ିବ ।

ଗ୍ରାମବାସୀମାନଙ୍କର ମନେ ରଖିବା ଉଚିତ ଯେ, ସେମାନେ ବାଙ୍କ୍‌ରୁ ଯେଉଁ ଟଙ୍କା କରଜ ନେବେ ସେ ଟଙ୍କା ଯେପରି କେବଳ କୃଷିର ଉନ୍ନତି କରିବାରେ ଖରଚ କରନ୍ତି । ତାହା ହେଲେ ସେମାନେ କୃଷିରୁ ଯେଉଁ ଲାଭ ପାଇବେ ତହିଁରୁ କରଜ ଟଙ୍କା ଅସଲ ଓ ସୁଧ ସୁଝି ପାରିବେ ଏବଂ କିଛି ଟଙ୍କା ମଧ୍ୟ ନିଜର ଖର୍ଚ୍ଚ ପାଇଁ ବଳି ପାରିବ । ସୁତରାଂ ଏହି ଟଙ୍କାରେ କେହି ଭଲ ବଳଦ, କେହି ଭଲ ବିହନ, କେହି ଭଲ ସାର କିଣି କରିପାରିବେ । କେହି ନିଜ ଜମିକୁ ଦୂରରୁ ପାଣି ଆଣିବାଲାଗି ନାଳ ଖୋଳି ପାରିବେ କିମ୍ବା ନିଜ ଜମିର ଚାରି ପାଖରେ ମାଟି ବନ୍ଧ ତିଆରି କରି ପାରିବେ । ଏହିସବୁ କାର୍ଯ୍ୟଦ୍ୱାରା ଜମି ଏତେ ଉର୍ବର ହେବ ଯେ, ତହିଁରୁ ଦୁଇ-ଗୁଣ ବା ତିନିଗୁଣ ଫସଲ ଆଦାୟ ହୋଇପାରିବ । ଏହି ଉପକାର ତୁଳନାରେ ବାଙ୍କ୍ ଯେଉଁ ଅଳ୍ପ ସୁଧ ନିଏ ତାହା କିଛି ନୁହେଁ, କହିବାକୁ ହେବ । ସମୟ ସମୟରେ ଏକ-କାଳୀନ କିଛି ଧନ ଲଗାଇବାଦ୍ୱାରା ଜମିର ଯେଉଁ ଉପକାର ହୁଏ ତାହାଦ୍ୱାରା ଆଗାମୀ କେତେ ବର୍ଷ ଲଗେ ଲଗେ ଭଲ ଫସଲ ଆଶା କରାଯାଏ । ସମୟ ସମୟରେ ବାଙ୍କ୍ ସରକାର କର୍ମଚାରୀମାନେ ଗ୍ରାମମାନଙ୍କୁ ଆସି କୃଷି, ସ୍ୱାସ୍ଥ୍ୟ ଓ ଶିକ୍ଷା ସମ୍ବନ୍ଧରେ ଗ୍ରାମବାସୀମାନଙ୍କୁ ଉପଦେଶ ଦିଅନ୍ତି । ଗ୍ରାମବାସୀମାନଙ୍କର ଏହି ଉପଦେଶ ସବୁ ମାନି କାମ କରିବା ଉଚିତ ।

ଯେଉଁମାନେ କୃଷିର ଉପକାର କରିବାଲାଗି ବାଙ୍କ୍‌ରୁ ଟଙ୍କା ଆଣି ତାହା ଅନ୍ୟ ଖର୍ଚ୍ଚରେ ବ୍ୟୟ କରି ଦିଅନ୍ତି, ସେମାନେ ବାଙ୍କ୍‌ରୁ କିଛି ଉପକାର ପାଇ ପାରନ୍ତି ନାହିଁ; କାରଣ,

ସେମାନଙ୍କ କୃଷିର କିଛି ଉନ୍ନତି ହୋଇପାରେ ନାହିଁ ଏବଂ ବାଳ୍ ଝଙ୍କା ସୃଷ୍ଟିବା ଲାଗି ସେମାନଙ୍କୁ ବଡ଼ ହଇରାଣ ହେବାକୁ ହୁଏ । ଏବଂ ଶେଷକୁ ସେମାନେ ନାସ୍ତ ହୁଅନ୍ତି । ଏଥିର ଉଦାହରଣ ଆମ ଦେଶରେ ବିରଳ ନୁହେଁ ।]

ସହଯୋଦ୍ଧା—ସଂ. ବି.—(ସହ+ଯୁଧ୍, ଧାତୁ+କର୍ତ୍ତୃ ତୃ=ସହଯୋଦ୍ଧୃ ଶବ୍ଦ ୧ମା. ୧ବ)—ସହଯୁଦ୍ଧ୍ୱା (ଦେଖ)
Sahajoddhā Sahajuddhwā (See)

ସହଯ୍ୟ—ଗ୍ରା. ବିଣ—ସହ୍ୟ (ଦେଖ)
Sahajya সহ্য सह्य Sahya (See)

ସହ୍ରଗଇ(ହି)—ବୈଦେ.ବି (ଫା.)—ମୁସଲମାନ୍‌ମାନଙ୍କ ମଧ୍ୟରେ ରୋଜା (ଦିନ ତମାମ ଉପବାସ) ପାଳକା ବ୍ୟକ୍ତିଙ୍କର ରାତି ଥାଉଁ ଥାଉଁ ଭୋଜନ—Meal taken by a Mahomedan who observes fast throughout the daytime somehours before dawn.
Sabargai (hi) সহরগহী सहरगही (ସହ୍ରଗଇ[ହି]—ଅନ୍ୟରୂପ)
[ଦ୍ର—ମୁସଲମାନମାନେ ରମ୍‌ଜାନ୍ ମାସରେ ଯେଉଁ ରୋଜା ରଖନ୍ତି (ଉପବାସ ବ୍ରତ ପାଳନ୍ତି), ତହିଁରେ ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଜଳଗ୍ରହଣ ନିଷିଦ୍ଧ; ଏପରି କି, ସେ ସମୟରେ ଥୁପ ଢୋକିଲେ ବା ହାଙ୍କୁଟି ହେଲେ ରୋଜା ବିଫଳ ହୁଏ । ବ୍ରତଧାରୀମାନେ ରାତି ଶେଷରୁ ଘଣ୍ଟା ବେଳେ ଉଠି କିଛି ଖାଆନ୍ତି ଓ ଦିନସାରା ନିର୍ଜଳ ଉପବାସ କରନ୍ତି ।]

ସହର—ବୈଦେ.ବି (ଫା)—୧ । ନଗର—1. Town; city. ୨ । ରାଜଧାନୀ—2. Capital. ଦେ. ବି (ସଂ. ଶବର)—ଓଡ଼ିଶାର ଅନାର୍ଯ୍ୟ ବଣୁଆ ଜାତି ବିଶେଷ—A class of wild nomadic tribes of non-aryan origin found in Orissa.
Sahara সহর सहर সবর सबर (ସହରୁଣୀ—ସ୍ତ୍ରୀ)
[ଦ୍ର—ଏମାନେ ଉଚ୍ଚ ଜାତୀୟ ହିନ୍ଦୁମାନଙ୍କ ଅସ୍ପୃଶ୍ୟ । ଏମାନଙ୍କର ପ୍ରଧାନ ପର୍ବ ଗମ୍ହା ପୂର୍ଣ୍ଣିମା । ସେ ଦିନ ଏମାନେ ଫଳ ମୂଳ ସଂଗ୍ରହ କରି ରାଜାଙ୍କୁ ଭେଟି ଦିଅନ୍ତି, ଓ ଘୁମୁରା ବଜାଇ ପୁରୁଷମାନେ ନାଚନ୍ତି ଓ ଗୀତ ବୋଲନ୍ତି । ଏମାନେ ଜଙ୍ଗଲରୁ କାଠ ଓ ଫଳ ମୂଳ ସଂଗ୍ରହ କରି ଜୀବିକା ନିର୍ବାହ କରନ୍ତି ।]

ସହରତ୍—ବୈଦେ. ବିଣ (ଫା. ସୋହରତ୍)—୧ । ପ୍ରସିଦ୍ଧ—1. Famous. ୨ । ପ୍ରକାଶ୍ୟ—2. Public. ୩ । ପ୍ରକଟିତ—3. Published.
Saharat সহরত্ सोहरत

ସହର ତଳି—ଦେ. ବି—ନଗରର ଉପକଣ୍ଠ—The suburbs of a town or city.
Sahara tali সহর তলি सहरका प्रान्त

ସହର ତଳିଆ—ଦେ. ବିଣ—୧ । ନଗରର ଉପକଣ୍ଠବାସୀ—1. Resident of the suburbs of a town. ୨ । ନଗରର ଉପକଣ୍ଠ ସମ୍ବନ୍ଧୀୟ—2. Suburban.
Sahara taliā সহর তলিয়া सहरप्रान्ती

ସହର ପଲ୍ଲୀ—ଦେ. ବି (ସଂ. ଶବର ଓ ପଲ୍ଲୀ)—ଶବରପଲ୍ଲୀ; ଶବରମାନଙ୍କର କ୍ଷୁଦ୍ର ଗ୍ରାମ—A hamlet inhabited by Sabaras.
Sahara palli শবরপল্লী सहरकी पल्लि

ସହର ପାଖିଆ—ଦେ. ବିଣ—ସହରର ନିକଟବର୍ତ୍ତୀ—Adjacent to town; adjoining a city.
Sahara pākhiā সহরের পাশের सहर पास वाला
[ଦ୍ର—ସହର ପାଖିଆ ନଈ କୂଳ ପ୍ରାୟ, ଦୁଇ କୋଶ ପର୍ଯ୍ୟନ୍ତ ହାଟ ବସିଲା ପରି ଲୋକଙ୍କ ଗହଳ ଚହଳ ଲାଗିଥାଏ । ଫକୀରମୋହନ. ଗଳ୍ପସ୍ୱଳ୍ପ ।]

ସହର ବାସିନ୍ଦା—ଦେ. ବି ଓ ବିଣ—ନାଗରିକ—A townsman; resident of a town; citizen.
Sahara bāsindā (ସହରବାସୀ—ଅନ୍ୟରୂପ) সহর বাসিন্দা सहर वासिन्दा

ସହରସା—ସଂ. ବି (ବୈଦ୍ୟକ)—ବନ ମୁଗ; ମୁଦ୍ଗପର୍ଣ୍ଣୀ (ଶବ୍ଦରତ୍ନାବଳୀ)—Phaseolus Trilobus.
Saharasā

ସହରା—ଦେ. ବି—୧ । ଏକଜାତୀୟ ମୋଟ ଶାରଦ ଧାନ—1. A species of winter paddy. ୨ । ପୁଂ (ସଂ. ଶବର) ଶବରଜାତୀୟ ବ୍ୟକ୍ତି—2. A person of the Sabara cast.
Saharā শবর सबरा (ଶହରା[ରୁ]ଣୀ—ସ୍ତ୍ରୀ)

ସହରାଜ—ଦେ. ବି—ସୋମରାଜ (ହରିବୃଷ୍ଟି, ଦ୍ରବ୍ୟଗୁଣ) (ଦେଖ); ଔଷଧଗୁଳ୍ମ ବିଶେଷ; ବାକୁଚ—Name of a medicinal plant; Serratula Anthelimintica.
Saharāja সোমরাজ, হাকুচ बकुची

ସହରାଡ଼ି(ଳି)—ଦେ. ବି—ଶରାଟି (ଦେଖ)—Sarāti (See)
Saharārdi(li) শরাল টিটিহরী

ସହରି—ସଂ. ବିଣ (ସ=ସଦୃଶ+ହରି, ଅବ୍ୟୟୀଭାବ)—ହରିସଦୃଶ (ମୁଗ୍ଧବୋଧ ବ୍ୟାକରଣ)—Similar to Hari. ବି—୧ । ସୂର୍ଯ୍ୟ (ଶବ୍ଦକଳ୍ପଦ୍ରୁମ)—1. The sun. ୨ । ବୃଷ (ଶବ୍ଦକଳ୍ପଦ୍ରୁମ)—2. Bull. ବୈଦେ. ବିଣ ଓ ବି (ଫା.)—ସହରିଆ (ଦେଖ)—Sahariā (See) ବୈଦେ. ବି (ଅ.)—ସହ୍ରଗଇ (ଦେଖ)... Sahar-gai (See) ପ୍ରାଦେ. (ସମ୍ବଲପୁର ଓ ଗଡ଼ଜାତ) ବି—ଶବରଜାତି—Sabara caste.
Sahari সহুরে सहरू

ସହରିଆ—ଦେ. ବିଣ—ସହର ବା ନଗର ସମ୍ବନ୍ଧୀୟ—Relating to a town; urban.
Sahariā সহুরে सहरू

ସହରି ଜାଲ(ଲି)ମ୍—ବୈଦେ. ବି (ଫା.) (ବ୍ୟଙ୍ଗ୍ୟ)—ସହରବାସୀ ବା ନାଗରିକଙ୍କ ଢଙ୍ଗ ବା ରୀତି—The manners of a townsman.
Sahari jāla(li)m সহুরেচং सहरू जालिम

ସହର୍ଷ—ସଂ. ବିଣ (ସ+ହର୍ଷ)—ହର୍ଷଯୁକ୍ତ—Delighted. ବି—୧ । ହର୍ଷ (ବିଶେଷ)—1. Delight; joy. ୨ । ସ୍ପର୍ଦ୍ଧା; ଅହଙ୍କାର (ବିଶେଷ)—2. Boasting; arrogance.
Saharsha (ସହର୍ଷା—ସ୍ତ୍ରୀ)

ସହଳ—ଦେ. କ୍ରି. ବିଣ (ସଂ. ସଦ୍ୟଃକାଳ)—୧ । ଶୀଘ୍ର—1. Soon. ୨ । ସତ୍ୱର; ଚଞ୍ଚଳ—2. Quickly; briskly.
Sahala শিগ্‌গির [ଦ୍ର—ଶାରିର ସହଳ, ପିଲିର ସହଳ, ଦାଣ୍ଡ ଘର

जल्दी ଖଣ୍ଡି ଅଛୁଅଁ କର, କେବେ ଓଡ଼ଶାରେ କରବ ସର—
ଭୋର } ବଙ୍ଗଳାରେ ଛଗ ।] ୩ । ପ୍ରତ୍ୟୁଷରେ—3. Early. ବଣ—
ସଠ } ୧ । ପ୍ରତ୍ୟୁଷରେ ଘଟିବା—1. Happening
ସକାଳ सुबह early in the morning. ୨। ଫୁର୍ତ୍ତିଯୁକ୍ତ—
ସକାଳ सुबहका 2. Brisk. ୩ । ସତ୍ୱର—3. Quick.
ଫୁର୍ତ୍ତିବାଜ फुर्तिला [ବ୍ର—ମୂଳ ଅ. ସହଲ=ଶିଥିଳ, ଶ୍ଲଥ,
ଶସ୍ତା, ସହଜ; ବ. ସହଲ=ଶିଥିଳ—Slack; loose.
କୋମଳ ସ୍ପର୍ଶ=Soft ତୁଳ. ହି ସହଲ=ସରଳ,ସହଜ]

**ସହଳ ଖିଆ**—ଦେ. ବଣ—୧ । ଯେ ଶୀଘ୍ର ଭୋଜନ କିମ୍ବା ଶେଷ
Sahala khiā କରେ—1. One who finishes his
সকাল খেকো(গো) meal quickly. ୨ । ଯେ ପ୍ରତ୍ୟୁଷରେ
जल्दी खानेवाला ବା ଅନ୍ୟମାନଙ୍କ ଅପେକ୍ଷା ପୂର୍ବରୁ ଭୋଜନ
সকালখাওয়া କରେ—2. One who takes
शीघ्र भोजन, his meal early or whose time
सुबहमे भोजन of meal is earlier than others.
ବି—୧ । ଶୀଘ୍ର ଭୋଜନ—1. Quick eating.
୨ । ପ୍ରତ୍ୟୁଷ ଭୋଜନ—2. Early morning meal.
[ବ୍ର—ଏଗୁଡ଼ାକ ସହଳ ଗାଧୁଆ, ସହଳ ଶୁଆ ଆଦି ହୁଏ ।]

**ସହଲ୍**—ବୈଦେ. ବଣ (ଅ)—ସସ୍ତା—Cheap. [ଉ—ଭଜମହଲ !
Sahala ହାଟରେ ଶୁଣୁଥା ଭୁଲ ସହଲ୍—ଛଗ ।]
শস্তা ବି ( ସଂ. ଶଲ୍ୟ)—ଶଲ ( ଦେଖ )
सस्ता Sala ( See )

**ସହଳ ସ(ସା)ହଳ**—ଦେ. କ୍ରି. ବଣ—୧ । ଅତି ଶୀଘ୍ର; ଜଲଦି ଜଲଦି-
Sahala sa(sā)'hala 1. Very quickly. ୨ । ଅତି
সকাল সকাল ପ୍ରତ୍ୟୁଷରେ—2. Very early in the
सुबह सुबह morning.

• **ସହଲି**—ପ୍ରାଦେ (ଛତିଶଗଡ଼) ବଣ—ଶସ୍ତା—
Sahali Cheap.

**ସହଳିଆ**—ଦେ. କ୍ରି. ବଣ—ସହଳ (ଦେଖ)—Sahala (See)
Sahaliā ବଣ—ସହଳ (ଦେଖ)—Sahala (See)
চট্‌পটে জলदबाज ୨ । ଯେ କୌଣସି କାର୍ଯ୍ୟ ଶୀଘ୍ର ବା
(ସହଳେଇ—ସ୍ତ୍ରୀ) ପ୍ରତ୍ୟୁଷରେ ସମ୍ପାଦନ କରେ—2. Performing any act swiftly or early.

**ସହଶଯ୍ୟାସନାଶନ**—ସ. ବଣ. ପୁଂ (ସହ+ଶଯ୍ୟା+ଆସନ+ଅଶନ;
Saha śajyāsanāśana ବହୁବ୍ରୀହି)—ଏକତ୍ର ଶୟନ, ଉପ-
(ସହଶଯ୍ୟାସନାଶନା—ସ୍ତ୍ରୀ) ବେଶନ ଓ ଭୋଜନକାରୀ(ଭାଗବତ)—
Sleeping, sitting and dining together.

**ସହସ୍**—ସ. ବି—ସହଃ (ଦେଖ)—
Sahas Sahaḥ (See)

**ସହସ**—ସ. ବଣ. ପୁଂ (ସ=ସହିତ+ହସ=ହାସ୍ୟ)—୧ । ସହାସ୍ୟ;
Sahasa ହାସ୍ୟଯୁକ୍ତ—1. Smiling; laughing. [ବ୍ର—
ମାଘ କାବ୍ୟର ୬ଷ୍ଠ ସର୍ଗରେ 'ସହସା' ଏହି ଅର୍ଥରେ ସ୍ତ୍ରୀଲିଙ୍ଗରେ
(ସହସା—ସ୍ତ୍ରୀ) ବ୍ୟବହୃତ ହୋଇଅଛି ।] ସ. ବି—୧ । (ସହ୍ ଧାତୁ+
ଅଧିକରଣ ଅସ୍ ) ମାର୍ଗଶିର ମାସ—1. The month of
Mārgaśira. ୨ । (+କର୍ମ. ଅସ୍ ) ବଳ; ଶକ୍ତି—
2. Power; strength. ୩ । ଜ୍ୟୋତି; ତେଜଃ—3.
Lustre; vigour. ଦେ. ବି ଓ ବଣ—ସହସହ
(ଦେଖ)—Saha saha (See)

**ସହସମ୍ଭବ**—ସ. ବଣ. ପୁଂ—(ସହ+ସମ୍ଭବ; ବହୁବ୍ରୀହି)—ସହଜାତ—
Saha sambhaba Born together.
(ସହସମ୍ଭବା—ସ୍ତ୍ରୀ)

**ସହସହ**—ଦେ. ବି ଓ ବଣ (ସ. ଶତଶତ)—୧ । ଶତଶତ; ବହୁ-
Sahasaha ଶତ—1. Hundreds. ୨ । ଅସଂଖ୍ୟ—
শতশত सासौ 2. Myriads; innumerable.

**ସହସା**—ସଂ. ଅ (ସହ=ସହିତ+ସୋ ଧାତୁ=ନାଶ କରିବା+
Sahasā କର୍ତ୍ତୃ. ଅ+ଆ)—୧ । ଅକସ୍ମାତ; ହଠାତ୍—
1. All at once. ୨ । ଅତର୍କିତ ଭାବେ—2.
Unexpectedly. ୩ । ପୂର୍ବରୁ ଚିନ୍ତା ବା ବିବେଚନା
ନ କରି—3. Without forethought. ବଣ. ସ୍ତ୍ରୀ
( ସହସର ସ୍ତ୍ରୀଲିଙ୍ଗ )—ହାସ୍ୟକାରିଣୀ—Laughing
(female) [ବ୍ର—ମାଘ କାବ୍ୟର ୬ ସର୍ଗ ୫୭
ଶ୍ଳୋକରେ ଏହି ଅର୍ଥରେ 'ସହସା' ଶବ୍ଦ ବ୍ୟବହୃତ
ହୋଇଅଛି ।]

**ସହସା ଦୃଷ୍ଟ**—ସ. ବଣ—ହଠାତ୍ ଦେଖାଯାଇଥିବା—Unexpectedly seen. ବି (ପୁଂ) ଦତ୍ତକପୁତ୍ର (ଶବ୍ଦ
Sahasā drushta
କଳ୍ପଦ୍ରୁମ)—Adopted son.

**ସହସାନ**—ସ.ବଣ.ପୁଂ—(ସହ ଧାତୁ=ସହ୍ୟ କରିବା+କର୍ତ୍ତୃ ଅସାନ)—
Sahasāna ୧ । କ୍ଷମାଯୁକ୍ତ, (ଉଣାଦି କୋଷ)—1. For-
giving. ୨ । ସହିଷ୍ଣୁ—2. Forbearing. ବି—
୧ । ମୟୂର (ଉଣାଦି କୋଷ)—1. Peacock.
୨ । ଯଜ୍ଞ (ଉଣାଦି କୋଷ)—2. A Vedic sa-
(ସହସାନା—ସ୍ତ୍ରୀ) crifice.

**ସହସିତ**—ସ. ବଣ (ସ+ହସିତ=ହାସ୍ୟ)—ସହାସ୍ୟ—
Sahasita Smiling; laughing.

**ସହସେବୀ**—ସ. ବଣ. ପୁଂ—ଏକତ୍ର ସେବାକାରୀ—Serving or
Sahasebi tending together. ସ. ବି, ପୁଂ—
[ସହସେବିନୀ, ସହସେବକା—ସ୍ତ୍ରୀ] ଏକତ୍ର ସେବାକାରୀ ବ୍ୟକ୍ତି—
(ସହସେବକ—ଅନ୍ୟରୂପ) Co-servant

**ସହସୈନ୍ୟ**—ଦେ. ବି—(କାଇବର୍) ଏକତ୍ର ହୋଇ ଏକ ପକ୍ଷରେ
Sahasainya ଯୁଦ୍ଧ କରୁଥିବା ସୈନ୍ୟ—Soldiers
সহসৈন্য सहसैन्य fighting on one side.

**ସହସ୍ୟ**—ସ. ବି (ସହ୍ ଧାତୁ=ସହ୍ୟ କରିବା+ଯ, କପାଳନ; କର୍ମା
Sahasya ସହସ୍=ଅଗ୍ରହାୟଣ ମାସ+ପରବର୍ତ୍ତୀ ଅର୍ଥେ ଯ)
ପୌଷମାସ—The lunar month of Paausha.

**ସହସ୍ତ**—ସଂ. ବଣ. ପୁଂ (ସ+ହସ୍ତ)—ହସ୍ତଯୁକ୍ତ—
Sahasta Having hands.
(ସହସ୍ତା—ସ୍ତ୍ରୀ)

**ସହସ୍ର**—ସଂ. ବ (ସ=ସମାନ+ହସ୍ ଧାତୁ=ହସିବା+କର୍ତ୍ତି. ର)—
Sahasra ଦଶଶତ ସଂଖ୍ୟା; ହଜାର—Thousand. ବଣ.
୧ । ଦଶଶତ ସଂଖ୍ୟକ—1. Numbering a thousand. ୨। ଅସଂଖ୍ୟ—2. Innumerable; multitudinous. [ଦ୍ର—ସହସ୍ର ଶବ୍ଦର ପୂର୍ବେ ସଂଖ୍ୟାବାଚକ ଶବ୍ଦ ଲଗିଲେ ସହସ୍ର ସଂଖ୍ୟାର ସେତେ ଗୁଣ ସଂଖ୍ୟା ବୁଝାଏ ଯଥା—ଏକ ସହସ୍ର, ସାର୍ଦ୍ଧ ସହସ୍ର, ଦ୍ୱିସହସ୍ର ଶତସହସ୍ର ଇତ୍ୟାଦ ।] ସ୍ତ୍ରୀ ବ—(ସଂ. ଶସ୍ତ୍ର)—ଶସ୍ତ୍ର—Weapon.
অস্তব; अस्तर

**ସହସ୍ର ଆଖି**—ଦେ. ବ—ଇନ୍ଦ୍ର; ସହସ୍ରାକ୍ଷ—Indra, the king of
Sahasra ākhi the Gods. [ ଦ୍ର—ବଙ୍ଗଳାରେ କଳାକ ସହস্র আঁখি सहस्राक्ष, सहस्रनयन ସେ ସହସ୍ର ଅକ୍ଷି । କୃଷ୍ଣସିଂହ. ମହାଭାରତ. ବନ ।]

**ସହସ୍ର କର**—ସଂ. ବ (ବହୁବ୍ରୀହି, ସହସ୍ର=ଅସଂଖ୍ୟ ଅଛେ କର=
Sahasra kara କିରଣ ଯାହାର)—୧ । ସୂର୍ଯ୍ୟ—1. The sun.
୨ । (ସହସ୍ର ବାହୁ ଥିବାରୁ)—କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ (ଦେଖ) 2. Kārttabirjyārjuna (See)

**ସହସ୍ର କାଣ୍ଡା**—ସଂ. ବ—ଶ୍ୱେତଦୁବ୍ବା (ରାଜନିର୍ଘଣ୍ଟ)—The white
Sahasra kāṇḍā variety of Dooba grass.

**ସହସ୍ର କିରଣ**—ସଂ. ବ (ବହୁବ୍ରୀହି; ସହସ୍ର+କିରଣ)—ସହସ୍ରକର;
Sahasra kiraṇa ସୂର୍ଯ୍ୟ—The sun.

**ସହସ୍ର କୁମ୍ଭ**—ସଂ. ବ—(ମ. ପ. ଲୋ; ସହସ୍ର ଛିଦ୍ରଯୁକ୍ତ କୁମ୍ଭ)—ରାଜ୍ୟାଭିଷେକ ଓ ଦେବସ୍ନାନ ଉପଲକ୍ଷରେ
Sahasra kumbha ବ୍ୟବହୃତ ବହୁ ଛିଦ୍ରବିଶିଷ୍ଟ କୁମ୍ଭ—A pitcher with many holes used in the bath of Deities and kings.

**ସହସ୍ର କୃତ୍ୱ(ତ୍ୱଃ)**—ସଂ. କ୍ରି. ବଣ (ସହସ୍ର+କୃତ୍ୱ; କୃତ୍ୱସ୍)—୧ ।
Sahasra krutwa(twah) ହଜାରେ ଥର—1. A thousand times. ୨ । ଅସଂଖ୍ୟଥର—2. Innumerable times; times out of number. ୩ । ବହୁବାର; ବାରମ୍ବାର—3. Repeatedly.

**ସହସ୍ରଗୁ**—ସଂ. ବଣ (ସହସ୍ର+ଗୋ, ବହୁବ୍ରୀହି)—ଯାହାର ହଜାରେ
Sahasragu ଗୋରୁ ଅଛନ୍ତି—Owning a thousand cows. ସଂ. ବ—ସୂର୍ଯ୍ୟ (ହ: ଶ)—The sun.

**ସହସ୍ର ଚକ୍ଷୁଃ**—ସଂ. ବ (ବହୁବ୍ରୀହି; ସହସ୍ର+ଚକ୍ଷୁଃ)—ଇନ୍ଦ୍ର—Indra.
Sahasra chakshuh ସଂ. ବଣ—ସହସ୍ର ନୟନଯୁକ୍ତ—Thousand-eyed.

**ସହସ୍ର ଚେତଃ(ଚିତ୍ତ,ଚରଣ)**—ସଂ. ବ (ବହୁବ୍ରୀହି)—ବିଷ୍ଣୁ (ହ. ଶ)—
Sahasra chetah(chitta, charaṇa) Bishṇu.

**ସହସ୍ରଣୀ**—ସଂ. ବ (ଯେ ଯୁଦ୍ଧସ୍ଥଳରେ ସହସ୍ର ରଥୀଙ୍କୁ ଶତ୍ରୁ ହସ୍ତରୁ ରକ୍ଷା
Sahasraṇī କରି ପାରନ୍ତି)—ଭୀଷ୍ମ (ହ. ଶ)—A name of Bhīshma.

**ସହସ୍ରଣୁତ୍**—ସଂ. ବ (ବୈଦିକ)—ଚୁକ୍ର; ଖଟାପାଳଙ୍ଗ ଶା.ଗ—
Sahasranut The common sorrel (plant).

**ସହସ୍ରତମ**—ସଂ. ବଣ (ସହସ୍ର+ପୂରଣାର୍ଥେ ତମ)—ହଜାରେ ସଂଖ୍ୟାର
Sahasratama ପୂରଣ—One thousandth.

**ସହସ୍ରଦ**—ସଂ. ବଣ. ପୁଂ—୧ । ଗୋସହସ୍ର ଦାତା—1. Giving
Sahasrada away 1000 cows. ୨ । ବହୁ ଦାତା—
(ସହସ୍ରଦା—ସ୍ତ୍ରୀ) 2. Bestowing much gift. ସଂ. ବ ବାଳିଆ ମାଛ (ହ. ଶ)—3. The catfish.

**ସହସ୍ର ଦଂଷ୍ଟ୍ର(ଷ୍ଟ୍ରୀ)**—ସଂ. ବ (ସହସ୍ର ଦଂଷ୍ଟ୍ରନ୍ ଶବ୍ଦ)——ବୋଦାଳ
Sahasra daṁshṭra(shṭrī) ମତ୍ସ୍ୟ; ବାଳିଆ ମାଛ; ପାଠୀନ. বোয়াল মাছ (ଶବ୍ଦରତ୍ନାବଳୀ)—A big scaleless बोयारी, पहीना fresh water fish; the catfish; Wallago Atta. [ଦ୍ର—ଏହା ଶ୍ଳେଷ୍ମକର, ବଳବର୍ଦ୍ଧକ ଓ ଶୁକ୍ରଜନକ । ଏହାଦ୍ୱାରା ରକ୍ତପିତ୍ତ ଦୂଷିତ ହୁଏ ଓ କୁଷ୍ଠ ରୋଗ ଉତ୍ପନ୍ନ ହୁଏ । ଏହା ନିଦ୍ରାଳୁ ଓ ମାଂସଭୋଜୀ ।]

**ସହସ୍ର ଦକ୍ଷିଣ**—ସଂ. ବ (ବହୁବ୍ରୀହି; ସହସ୍ର+ଦକ୍ଷିଣା)—ଯେଉଁ
Sahasra dakshiṇa ଯଜ୍ଞରେ ହଜାରେ ଗୋରୁ ବା ହଜାରେ ମୁଦ୍ରା ଦକ୍ଷିଣା ଦିଆଯାଏ—A Vedic sacrifice in which 1000 cows or coins are presented to Brāhmaṇas.

**ସହସ୍ର ଦଳ**—ସଂ. ବ—୧ । (ଦ୍ୱିଗୁ) ହଜାରେ ପାଖୁଡ଼ା—1. One
Sahasra daḷa thousand petals. ୨ । (ବହୁବ୍ରୀହି) (ପୁରାଣୋକ୍ତ) ସହସ୍ର ଦଳଯୁକ୍ତ ପଦ୍ମ—2. (mythological) Lotus with a thousand petals. ୩ । ବହୁ ଦଳବିଶିଷ୍ଟ ପଦ୍ମ (ଶବ୍ଦକୋଷ)—3. Many-petalled lotus. ବଣ—ହଜାରେ ପାଖୁଡ଼ାଯୁକ୍ତ—Thousand-petalled.

**ସହସ୍ର ଦୃକ୍(ଶ୍)**—ସଂ.ବ ଓ ବଣ (ସହସ୍ର+ଦୃକ୍=ଚକ୍ଷୁ ଯାହାର; ସହସ୍ର
Sahasra druk(ś) +ଦୃଶ୍ ଧାତୁ+କର୍ତ୍ତି. କ୍ୱିପ୍)—ସହସ୍ରନୟନ (ଦେଖ)—Sahasra nayana (See) ସଂ. ବ. ବିଷ୍ଣୁ (ପୁରୁଷସୂକ୍ତ)—A name of Bishṇu.

**ସହସ୍ର ଦୋଃ**—ସଂ. ବ (ବହୁବ୍ରୀହି; ସହସ୍ର+ଦୋସ୍=ହସ୍ତ; ସହସ୍ର
Sahasra doḥ ଦୋସ୍ ଶବ୍ଦ)—କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ (କଣ୍ଠାଭରଣ) (ଦେଖ)—Kārttabirjyārjuna (See)

**ସହସ୍ରଧା**—ସଂ. କ୍ରି. ବଣ (ସହସ୍ର+ପ୍ରକାରାର୍ଥେ ଧା)—୧ । ହଜାର
Sahasradhā ପ୍ରକାରରେ—1. In a thousand ways. ୨ । ହଜାର ଥର—2. A thousand times. ୩ । ହଜାରେ ଅଂଶରେ—3. Into a thousand parts. ୪ । ଅସଂଖ୍ୟଥର—4. Many times; innumerable times.

ସହସ୍ର ଧାର—ସଂ. ବ ( ବହୁବ୍ରୀହି )—ବିଷ୍ଣୁଚକ୍ର—The circular
Sahasra dhāra weapon of Bishṇu. ବଣ—ସହସ୍ର ଧାରଯୁକ୍ତ ( ପାତ୍ର )—( a pot ) From which water flows in thousands of streams.

ସହସ୍ର ଧାରା—ସଂ.ବ—ଦେବତା ସ୍ନାନାର୍ଥ ସହସ୍ର ଛିଦ୍ରଯୁକ୍ତ ପାତ୍ରରୁ ଗଳିତ
Sahasra dhārā ଜଳଧାର—Water flowing in a thousand lines from a thousand-bored pot on an Idol (as in a sprinkling bath or shower bath).

ସହସ୍ର ଧୀ(ବୁଦ୍ଧି)—ସଂ. ବଣ. ପୁଂ ଓ ସ୍ତ୍ରୀ—ତୀକ୍ଷ୍ଣ ବୁଦ୍ଧିବିଶିଷ୍ଟ—
Sahasra dhī(buddhi) Very keen-witted.

ସହସ୍ର ନୟନ—ସଂ. ବ. ପୁଂ ( ବହୁବ୍ରୀହି; ଗୌତମଙ୍କ ଅଭିଶାପରୁ
Sahasra nayana ଏହାଙ୍କ ଦେହସାକ ଅସଂଖ୍ୟ ନୟନ ସଦୃଶ ଚିହ୍ନ ଥିବାରୁ )—ଇନ୍ଦ୍ର—God Indra. ବଣ. ପୁଂ—ସହସ୍ର ଚକ୍ଷୁର୍ଯୁକ୍ତ—Thousand-eyed.

ସହସ୍ର ନାମ—ସଂ. ବ ( ସହସ୍ର+ନାମନ୍ )—ବିଷ୍ଣୁ ବା ଶିବ ଆଦି
Sahasra nāma ଦେବତାଙ୍କର ସହସ୍ର ନାମ ସମ୍ବଳିତ ସ୍ତୋତ୍ର—A prayer reciting a thousand different names of a Deity.

ସହସ୍ର ନେତ୍ର—ସଂ.ବଣ ଓ ବ (ବହୁବ୍ରୀହି)—୧। ସହସ୍ର ନୟନ (ଦେଖନ୍ତୁ)
Sahasra netra ଇନ୍ଦ୍ର—1. God Indra. ୨। ବିଷ୍ଣୁ ( ଭାଗବତ )—2. Bishṇu.

ସହସ୍ର ପତି—ସଂ. ବ ( ୬ଷ୍ଠୀ ତତ୍ )—୧ । ସହସ୍ର ଲୋକଙ୍କ ଶାସନ-
Sahasra pati କର୍ତ୍ତା—1. A governer over a thousand subjects. ୨ । ସହସ୍ର ଗ୍ରାମର ଅଧିକାରୀ ( ମନୁ ୭।୧୧୫ )—2. The lord of a thousand villages. ୩ । ସହସ୍ର ସଂଖ୍ୟକ ମୁଦ୍ରାର ଅଧିକାରୀ—3. The owner of one thousand coins.

ସହସ୍ର ପତ୍ର—ସଂ.ବଣ—ସହସ୍ର ପାଖୁଡ଼ାଯୁକ୍ତ—Thousand-petal-
Sahasra patra led. ବ—ସହସ୍ର ଦଳ ( ଦେଖ ) Sahasra daḷa ( See )

ସହସ୍ରପାତ୍—ସଂ. ବଣ (ବହୁବ୍ରୀହି)—ହଜାରେ ପାଦଯୁକ୍ତ—Having
Sahasrapāt a thousand feet. ବ—୧ । ବିଷ୍ଣୁ ( ପୁରୁଷସୂକ୍ତ )—1. An epithet of Bishṇu. ୨ । ଋଷିବିଶେଷ—2. Name of a sage. ( ଉ—ସହସ୍ରପାତ୍, ଯୁଗଳବର୍ତ୍ତି, ଲବଣାଶ୍ୱ—କୃଷ୍ଣସିଂହ. ମହାଭାରତ. ବନ । )

ସହସ୍ର ପାଦ—ସଂ. ବଣ ( ବହୁବ୍ରୀହି )—ସହସ୍ର ପାଦଯୁକ୍ତ—Thou-
Sahasra pāda sand-legged. ବ—୧ । ସୂର୍ଯ୍ୟ ( ମେଦିନୀ )—1. The sun. ୨ । ବିଷ୍ଣୁ (ମେଦିନୀ)—2. Bishṇu. ୩ । କାରଣ୍ଡ ପକ୍ଷୀ; କାଲ ହଂସ—3. An aquatic bird; a species of duck.

ସହସ୍ର ବଦନ—ସଂ. ବଣ ( ବହୁବ୍ରୀହି )—ସହସ୍ର ମୁଖଯୁକ୍ତ—
Sahasra badana Thousand-faced. ବ—ବିଷ୍ଣୁ ( ଶବ୍ଦରତ୍ନାବଳୀ )—Bishṇu.

ସହସ୍ର ବାହୁ—ସଂ. ବଣ ( ବହୁବ୍ରୀହି )—ହଜାରେ ବାହୁଯୁକ୍ତ—
Sahasra bāhu Having a thousand arms. ବ—୧ । କାର୍ତ୍ତବୀର୍ଯ୍ୟାର୍ଜୁନ (ଦେଖ)—1. Kārttabīrjyārjuna. ୨ । ବିଷ୍ଣୁ—2. Bishṇu. ୩ । ବଳିଙ୍କ ଜ୍ୟେଷ୍ଠପୁତ୍ର ବାଣରାଜ ( ଭାଗବତ )—3. Name of a demon king, son of Baḷi.

ସହସ୍ର ବିଧ—ସଂ. ବ—୧ । ସହସ୍ର ପ୍ରକାର—1. Thousand
Sahasra bidha kinds. ୨ । ବହୁପ୍ରକାର—2. Innumerable sorts. ବଣ—୧। ସହସ୍ର ପ୍ରକାରର—1. Thousand kinds of. ୨। ଅସଂଖ୍ୟ ପ୍ରକାରର—2. Of innumerable sorts.

ସହସ୍ର ବୀର୍ଯ୍ୟ—ସଂ. ବଣ. ପୁଂ (ବହୁବ୍ରୀହି)—ପ୍ରଭୂତ ବଳଶାଳୀ—
Sahasra bīrjya Very mighty.

ସହସ୍ର ବୀର୍ଯ୍ୟା—ସଂ. ବ. ସ୍ତ୍ରୀ (ସହସ୍ର+ବୀର୍ଯ୍ୟ=ପ୍ରତାପ; ତେଜଃ+
Sahasra bīrjyā ସ୍ତ୍ରୀ. ଆ; ବହୁବ୍ରୀହି)—୧ । ଦୁବ (ଅମର)—1. The doob grass. ୨ । ମହାଶତାବରୀ (ରାଜନିର୍ଘଣ୍ଟ)—2. Asparagus Racemsus (plant). ୩ । ନୀଳ ଦୁବ—3. The blue doob grass. ବଣ. ସ୍ତ୍ରୀ—ସହସ୍ର ବୀର୍ଯ୍ୟର ସ୍ତ୍ରୀଲିଙ୍ଗ—Feminine of Sahasra bīrjya.

ସହସ୍ର ବେଧ—ସଂ. ବ—୧ ।' ଅମ୍ଳବେତସ ଶାଗ—1. The
Sahasra bedha common sorrel. ୨ । ଚୁକ୍ର; କାଞ୍ଜିକା ଭେଦ (ରାଜନିର୍ଘଣ୍ଟ)—2. Fermented rice-gruel. ୩ । ହିଙ୍ଗୁ (ହ. ଶ)—3. Assafoetida.

ସହସ୍ର ବେଧି—ସଂ. ବ—ହିଙ୍ଗୁ; ହେଙ୍ଗୁ (ମେଦିନୀ, ରାଜନିର୍ଘଣ୍ଟ)—
Sahasra bedhi Assafoetida.

ସହସ୍ର ବେଧୀ—ସଂ. ବଣ ( ସହସ୍ର ବେଧିନ୍ ଶବ୍ଦ; ୧ମା. ୧ବ )—
Sahasra bedhi ଯାହା ସହସ୍ରକୁ ବେଧ କରେ—Piercing through a thousand. ବ—୧ । ଅମ୍ଳବେତସ; ଜଳ ବେତ (ମେଦିନୀ)—1. A kind of water-ratan. ୨ । କସ୍ତୁରୀ (ରାଜନିର୍ଘଣ୍ଟ)—2. Musk. ୩ । ହେଙ୍ଗୁ (ହ. ଶ)—3. Assafoetida.

ସହସ୍ର ଭିତ୍—ସଂ. ବଣ (ସହସ୍ର+ଭିଦ୍ ଧାତୁ+କର୍ତ୍ତୃ. କ୍ୱିପ୍; ସହସ୍ର
Sahasra bhit ଭିଦ୍; ୧ମା. ୧ବ )—ସହସ୍ରବେଧୀ (ଦେଖ)-Sahasrabedhī. (See) ବ—ସହସ୍ରବେଧୀ (ଦେଖ)-Sahara bedhī. (See)

ସହସ୍ର ଭୁଜ—ସଂ. ବଣ. ପୁଂ ( ବହୁବ୍ରୀହି )—ହଜାର ହସ୍ତବିଶିଷ୍ଟ—
Sahasra bhuja Having a thousand hands or (ସହସ୍ରଭୁଜା—ସ୍ତ୍ରୀ) arms. ବ—୧ । ବିଷ୍ଣୁ ( ଭାଗବତ )—

1. Bishṇu. ୨ । କାର୍ତ୍ତିବୀର୍ଯ୍ୟାର୍ଜୁନ—2. Kārttabirjyārjuna. ୩ । ବଳ ପୁତ୍ର ବାଣରାଜ—3. The demon Bāṇa.

ସହସ୍ର ଭୁଜା—ସଂ. ବ. ସ୍ତ୍ରୀ—ମହିଷାସୁରମର୍ଦ୍ଦିନୀ ଦୁର୍ଗା—(ମାର୍କଣ୍ଡେୟ ପୁରାଣ ଦେବୀମାହାତ୍ମ୍ୟ)—The Goddess Sahasra bhujā Durgā. ସଂ. ବଣ. ସ୍ତ୍ରୀ—ସହସ୍ରଭୁଜର ସ୍ତ୍ରୀଲିଙ୍ଗ—Feminine of Sahasra bhuja.

ସହସ୍ର ମୂର୍ଦ୍ଧା—ସଂ. ବଣ. ପୁଂ (ବହୁବ୍ରୀହି; ସହସ୍ର+ମୂର୍ଦ୍ଧନ; ୧ମା. ୧ବ)—ହଜାରେ ମସ୍ତକଯୁକ୍ତ—Having a thousand heads. ବ—ବିଷ୍ଣୁ (ଭାଗବତ)—Bishṇu. Sahasra mūrddhā

ସହସ୍ର ମୂଳୀ—ସଂ. ବ (ବୈଦ୍ୟକ)—୧ । ଦ୍ରବନ୍ତୀ; ବୃହଦନ୍ତୀ ବୃକ୍ଷ (ରାଜନିର୍ଘଣ୍ଟ)—1. Croton Polyandrum (plant). ୨। ଅଖୁକର୍ଣ୍ଣୀ (ଶବ୍ଦକୋଷ)(ଦେଖ)—2. Ākhukarṇṇī. (See) Sahasra mūli

ସହସ୍ର ମୌଳି—ସଂ. ବଣ. ଓ ବ—ସହସ୍ର ମୂର୍ଦ୍ଧା (ଦେଖ) Sahasra mauli Sahasra mūrddhā. (See)

ସହସ୍ର ରଶ୍ମି—ସଂ. ବ (ବହୁବ୍ରୀହି)—ସହସ୍ରକର; ସୂର୍ଯ୍ୟ—The sun. Sahasra rasmi

ସହସ୍ର ଲୋଚନ—ସଂ. ବ ଓ ବଣ—ସହସ୍ର ନୟନ (ଦେଖ) Sahasra lochana Sahasra nayana. (See)

ସହସ୍ର ଶିଖର—ସଂ. ବଣ (ବହୁବ୍ରୀହି)—ସହସ୍ର ଶିଖର ବିଶିଷ୍ଟ—Having a thousand peaks. Sahasra sikhara ସଂ.ବ—ବିନ୍ଧ୍ୟ ପର୍ବତ (ଶବ୍ଦକୋଷ)—The Bindhya range of mountains.

ସହସ୍ର ଶୀରଷ(ଷା)—ଗ୍ରା.ବ (ସଂ. ସହସ୍ରଶୀର୍ଷା)—ବିଷ୍ଣୁ—Name of Bishṇu [ଦ୍ର—ସହସ୍ରଶୀରଷା ନାମେ ଦେବ ପୁରୁଷ । ପ୍ରାଚୀ. ଉଦ୍ଧବ୍ୟ-ମଞ୍ଜରୀ ।] Sahasra sirisha(shā) सहस्रशीर्षा सहस्रशीर्षा

ସହସ୍ର ଶୀର୍ଷା—ସଂ. ବଣ ଓ ବ (ସହସ୍ର+ଶୀର୍ଷନ୍; ୧ମା. ୧ବ)—ସହସ୍ର ମୂର୍ଦ୍ଧା (ଦେଖ)—Sahasra mūrddhā. (See) Sahasra sirsha

ସହସ୍ର ଶ୍ରବଣ—ସଂ. ବ (ବହୁବ୍ରୀହି)—ବିଷ୍ଣୁ (ଭାଗବତ)—Bishṇu. Sahasra srabaṇa

ସହସ୍ର ହର୍ଯ୍ୟଶ୍ୱ—ସଂ. ବ—ଇନ୍ଦ୍ରରଥ (ଶବ୍ଦ କଳ୍ପଦ୍ରୁମ)—The car of Indra. Sahasra harjyaswa

ସହସ୍ରା—ସଂ. ବ—୧ । ଅମ୍ବଷ୍ଠା; ଅକାନବନ୍ଧ ଲତା—1. Stephania Hernandifolia (creeper). ୨ । ଅମ୍ଳିଲତ ଶାଗ—2. Oxalis Corniculata (potherb). ୩। ମୟୂରଶିଖା ଗୁଳ୍ମ (ହ. ଶ)—3. Celesia Cristata (plant). Sahasrā

ସହସ୍ରାଂଶୁ—ସଂ. ବ (ବହୁବ୍ରୀହି; ସହସ୍ର+ଅଂଶୁ)—ସୂର୍ଯ୍ୟ—The sun. Saharāmsu

ସହସ୍ରାକ୍ଷ—ସଂ. ବ (ବହୁବ୍ରୀହି)—୧ । ଇନ୍ଦ୍ର (ଅମର)—1. Indra. [ଦ୍ର—ଗୌତମ ମୁନିଙ୍କ ଅଭିଶାପରେ ଇନ୍ଦ୍ରଙ୍କ ସର୍ବ ଶରୀର ସ୍ତ୍ରୀ-ଚିହ୍ନମୟ ହୋଇ ଯାଇଥିଲା । ପରେ ଉକ୍ତ ମୁନିଙ୍କ ଅନୁଗ୍ରହରୁ ଏହି ଚିହ୍ନ ସବୁ ଚକ୍ଷୁରେ ପରିଣତ ହେଲା, ତେଣୁ ଇନ୍ଦ୍ରଙ୍କୁ 'ସହସ୍ରାକ୍ଷ' 'ସହସ୍ର ନୟନ' ଇତ୍ୟାଦି ବୋଲାଯାଏ ।] ୨ । ବିଷ୍ଣୁ (ପୁରୁଷ ସୂକ୍ତ)—2 Bishṇu. Sahasrāksha

ସହସ୍ରାଣୀ(ନୀ)କ—ସଂ. ବ (ନାମ) (ସହସ୍ର ଅଟେ ଅନୀକ=ସେନା ଯାହାର)—ଶତାନୀକ ରାଜାଙ୍କ ପୁତ୍ର (ଅର୍ଚ୍ଚ ପୁରାଣ)—Name of the son of king Satānika. [ଦ୍ର—ଏହାଙ୍କ ପିତା ଶତାନୀକ ଯଜ୍ଞରେ ବ୍ରାହ୍ମଣମାନଙ୍କୁ ସହସ୍ର ସହସ୍ର ରଥ, ଗଜ ଅଶ୍ୱାଦି ଦାନ କରି ପୁତ୍ରଲାଭ କରିଥିବାରୁ ବ୍ରାହ୍ମଣମାନେ ଉକ୍ତ ପୁତ୍ରକୁ ଏହି ନାମ ଦେଇଥିଲେ ।] Sahasrāṇi(ni)ka

ସହସ୍ରାଧିପତି—ସଂ. ବ—ସହସ୍ର ପତି (ଦେଖ) Sahasrādhipati Sahasra pati. (See).

ସହସ୍ରାନନ—ସଂ. ବ (ବହୁବ୍ରୀହି)—ବିଷ୍ଣୁ (ଭାଗବତ)—Bishṇu. Sahasrānana

ସହସ୍ରାର—ସଂ. ବ (ବହୁବ୍ରୀହି; ସହସ୍ର ଅଟେ ଅର=କୋଣ ଯାହାର) (ତନ୍ତ୍ର) ଶିରୋମଧ୍ୟସ୍ଥ ସୁଷୁମ୍ନା ନାଡ଼ୀସ୍ଥ କଳ୍ପିତ ଅଧୋମୁଖ ସହସ୍ରଦଳ ପଦ୍ମ—The thousand-petalled lotus said to exist inside the head. [ଦ୍ର—ଏହା ସାଧକମାନଙ୍କ ଦୃଷ୍ଟିଗୋଚର ହୁଏ ।] Sahasrāra

ସହସ୍ରାର୍ଜୁନ—ସଂ. ବ (ମ. ଶ. ଲେ; ସହସ୍ରକରଯୁକ୍ତ ଅର୍ଜୁନ)—କାର୍ତ୍ତିବୀର୍ଯ୍ୟାର୍ଜୁନ (ଦେଖ)—Kārttabirjyārjuna (See). Sahasrārjuna

ସହସ୍ରାସ୍ୟ—ସଂ. ବ (ବହୁବ୍ରୀହି; ସହସ୍ର+ଆସ୍ୟ)-ସହସ୍ରବଦନ (ଦେଖ) Sahasrāsya Sahasra badana (See).

ସହସ୍ରାହ୍ୱି—ସଂ. ବ (ବୈଦ୍ୟକ)—ମୟୂରଶିଖା ନାମକ ଗୁଳ୍ମ—Celesia Cristata (plant). (ଅନ୍ୟ ସଂ ନାମ—ମୟୂରଶିଖା, ମଧୁଛଦା) [ଦ୍ର—ଏହା ଲଘୁ, ମଧୁର ଏବଂ ପିତ୍ତ, କଫ, ଅତିସାର, ମୂତ୍ରକୃଚ୍ଛ୍ର ଓ ବାଳରୋଗ-ନାଶକ ।] Sahasrāhi মোবশিখা मोरशिखा

ସହସ୍ରୀ—ସଂ. ବ. ପୁଂ (ସହସ୍ର+ଅସ୍ତି ଅର୍ଥରେ ଇନ୍; ୧ମା ୧ବ)—୧ । ସହସ୍ରସେନାଧିପତି; ହଜାରୀ—1. The general over a thousand soldiers. ୨ । ସହସ୍ରପତି (ଦେଖ)—2. Sahasra pati (See) ସଂ. ବଣ. ପୁଂ—୧ । ସହସ୍ରବିଶିଷ୍ଟ—1. Having a thousand. ୨ । ଯାହାର ସହସ୍ର ସଂଖ୍ୟକ ଅଶ୍ୱ ଗଜାଦି ସୈନ୍ୟବଳ ଅଛି (ଶବ୍ଦକୋଷ)—2. Owning one thousand soldiers. Sahasri

ସହସ୍ରେ—ଦେ. ବି. ଓ ବଣ—୧ । ଏକ ସହସ୍ର—1. One thousand. ୨ । ଅସଂଖ୍ୟ—2. Innumerable. Sahasre (ସହସ୍ରେକ—ଅନ୍ୟରୂପ) হাজার हजारों

ସହା—ସଂ.ବ (ସହ୍ ଧାତୁ+କର୍ତ୍ତୃ.ଅ+ଆ)—୧। ସର୍ବଂସହା; ପୃଥିବୀ—
Sahā 1. The earth. ୨। ଘୃତକୁମାରୀ (ଅମର)-
2. Aloe Indica. ୩। ମୁଦ୍‌ଗପର୍ଣ୍ଣୀ (ଅମର)—
3. Phaseolus Trilobus. ୪। ଜଣୀ; ଜଣ ଭେଷଜ (ମେଦିନୀ)—4. A medicinal herb. ୫। ଦଣ୍ଡୋତ୍ପଳ (ମେଦିନୀ)—5. Canscora Decussta (plant). ୬। ଶୁକ୍ଳଝିଣ୍ଟୀ (ଶବ୍ଦଚନ୍ଦ୍ରିକା); ଧାସକେରଣ୍ଟା ଗୁଳ୍ମ—6. Barlaria Crastata (plant) ୭। ସର୍ପକଙ୍କାଳୀ (ଶବ୍ଦଚନ୍ଦ୍ରିକା)—7. Name of a plant. ୮। ରାସ୍ନା (ରତ୍ନମାଳା)—8. Vanda Roxburghii. ୯। ସ୍ୱର୍ଣ୍ଣକ୍ଷୀରୀ (ରତ୍ନମାଳା); କଣ୍ଟାକୁସୁମ; ଅଗସ୍ତିଗୁଳ୍ମ—9. A thorny plant; Gamboge Thistle. ୧୦। ପୀତଦଣ୍ଡୋତ୍ପଳ [ରତ୍ନମାଳା]—10. A species of 'Dandotpala'. ୧୧। ତରଣୀ ପୁଷ୍ପ (ରାଜନିଘଣ୍ଟୁ); ସେବତୀ ଫୁଲ—11. Musk rose; Rosa Moschata. ୧୨। କୁଷ୍ମାଣ୍ଡଲତା (ଚରେକୁଷ୍ଟ. ଦ୍ରବ୍ୟଗୁଣ)—12. Tricosanthes Cucumerina. ୧୩। (+କର୍ମ. ଅ+ଆ) ହେମନ୍ତଋତୁ (ହ. ଶ)—13. Early winter ୧୪। ମାର୍ଗଶିର ମାସ (ହ. ଶ)—14. The month of Margasira. ୧୫। ମେହେନ୍ଦି (ଦେଖ) ନଖରଞ୍ଜକ (ହ. ଶ)—15. Mehendi (See).

ସହା ସହନା ଦେ. ବ (ସହ ଧାତୁ)—୧। ସହିବା-
ସାହାୟ୍ୟ ସହାଇ(ତ) 1. Enduring, bearing. ୨। ସହାୟ—2. Help. (ଯ—ସହା ହୋଇ ବୃତ୍ତି ଭୁଲରେ ତୁମ୍ଭେ ମୋର, ଥିବାଠାରେ ଦାସୀ ହୋଇଲି ମୁଁ ତାହାର—କୃଷ୍ଣସିଂହ, ମହାଭାରତ. ବନ।)

ସହାଇବା—ଦେ. କ୍ରି—ସହିବା କ୍ରିୟାର ଣିଜନ୍ତରୂପ—The causa-
Sahāibā tive form of 'Sahibā' (ଯ—
ସହାନ ସହବାନା ଏ କାଳକୁ ବନବାସ ସହାଇଲେ ବିଧି ଅହୋ ବ ବସ୍ତୁରେ—ସ୍ୱଧାନାଥ. ଯଯ ଛ।)

ସହାଃ—ସଂ.ବ (ସହସ୍ ଶବ୍ଦ; ସହ୍ ଧାତୁ+କର୍ମ.ଅସ)—୧। ଅଗ୍ରହାୟଣ
Sahāḥ ମାସ; ମାର୍ଗଶିର ମାସ (ଅମର)—1. The month of 'Mārgasira'. ୨। ହେମନ୍ତ କାଳ (ମେଦିନୀ)—2. The beginning of winter or cold season.

ସହାଚର—ସଂ. ବ (ସହ୍+ଆ+ଚର୍ ଧାତୁ+କର୍ତ୍ତୃ.ଅ)—୧। ସହଚର
Sahāchara (ଦେଖ)—1. Sahachara (See) ୨। ପୀତଝିଣ୍ଟୀ (ଶବ୍ଦରତ୍ନାବଳୀ)—2. The yellow-flowered species of Barlaria Crastata plant.

ସହାତ—ଗ୍ରା. ବଣ (ସଂ. ସ୍ୱହସ୍ତ)—୧। ସ୍ୱହସ୍ତକୃତ—1. Done or
Sahāti performed by one's hands. (ସହାତଅ—ଅନ୍ୟରୂପ) ୨। ସ୍ୱକୃତ—2. Done by (ସହାତ—ଦ୍ୱଯଗତ) one's self. (ଯଥା—
ନିଜେର ହাতের আপকেহাতকা ସହାଇ ଗୃହ=ଯେଉଁ କୃଷିକର୍ମ ମୂଳଥ ଦ୍ୱାର ବା ଅନ୍ୟ ବ୍ୟକ୍ତି ଦ୍ୱାରା କରା ନ ଯାଇ କେବଳ ଯେଉଁ ସ୍ୱାମୀଙ୍କ ଦ୍ୱାରା କରାଯାଏ।)

ସହାଧ୍ୟାୟୀ—ସଂ. ବ. ପୁଂ (ସହ+ଅଧି+ଇ ଧାତୁ+କର୍ତ୍ତୃ. ଇନ୍)
Sahādhyāyī ସହାଧ୍ୟାୟିନ୍ ଶବ୍ଦ ୧ମା. ୧ବ)—ଏକ (ସହାଧ୍ୟାୟିନୀ—ସ୍ତ୍ରୀ) ସମୟରେ ଏକ ଗୁରୁଙ୍କ ଶିକ୍ଷକତାଧୀନ ହୋଇ ପଢୁଥିବା ଶିଷ୍ୟ; ସହପାଠୀ—Fellow student.

ସହାନୁଗମନ—ସଂ. ବ—ସହ ଗମନ (ଦେଖ)
Sahānugamana Saha gamana (See)

ସହାନୁଭବ—ସଂ. ବ (ସହ+ଅନୁଭବ)—ଅପରର ସୁଖଦୁଃଖରେ
Sahānubhaba ତାଦୃଶ ଅନୁଭବ—Sympathy; (ସହାନୁଭୂତି—ଅନ୍ୟରୂପ) fellow-feeling.

ସହାୟ—ସଂ. ବଣ (ସହ+ଇ ଧାତୁ=ଯିବା+କର୍ତ୍ତୃ. ଅ)—
Sahāya ୧। ସହଚର; ଅନୁଚର—1. Attendant. ୨। (ସହାୟା—ସ୍ତ୍ରୀ) ସାହାଯ୍ୟକାରୀ—2. Helper; ally. ୩। ସାହାଯ୍ୟ (ହ. ଶ)—3. Help. ଦେ. ବଣ—୧। ଅବଲମ୍ବନ—1. Support. ୨। ଆଶ୍ରୟ ସ୍ଥଳ—2. Refuge, patron. ୩। ସଙ୍ଗୀ—3. Companion.
ସহায় ଦେ. ବ—ବିହାରମାନଙ୍କ ବଂଶୋପାଧି ବିଶେଷ—
सहाय A family-title in Bihar.

ସହାୟକ—ସଂ. ବଣ (ସହାୟ+ସ୍ୱାର୍ଥେ. କ)—ସାହାଯ୍ୟକାରୀ—
Sahāyaka Helping. ବ (କଚେରୀ)—ଅପରାଧୀର
ସহায়ক ସାହାଯ୍ୟକାରୀ ବ୍ୟକ୍ତି—Abettor of an offence.
सहायक

ସହାୟତା(ତ୍ୱ)—ସଂ. ବ (ସହାୟ+ଭାବ. ତା; ତ୍ୱ)—୧। ସାହାଯ୍ୟ—
Sahāyatā(twa) 1. Help; assistance. ୨ ପୃଷ୍ଠପୋଷକତା—2. Abetment; patronage. ୩। ସଙ୍ଗିତା—3. Companionship.

ସହାୟତା କରିବା—ଦେ. କ୍ରି—୧। ସାହାଯ୍ୟ କରିବା—1. To
Sahāyatā karibā help. ୨। ଅନୁକୂଳ ହେବା—2. To
সহায়তা করা befriend; to patronise. ୩ (କଚେରୀ)—
सहायता करना ଅପରାଧୀକୁ ଅପରାଧ କରିବାରେ ସାହାଯ୍ୟ କରିବା—3. To abet an offence.

ସହାୟତାକାରୀ—ସଂ.ବଣ—ସାହାଯ୍ୟକାରୀ—Helping; abetting.
Sahāyatākāri ଦେ. ବ (କଚେରୀ)—ଅପରାଧୀର ସାହାଯ୍ୟ-
(ସହାୟତା କାରିଣୀ—ସ୍ତ୍ରୀ) କାରୀ—Abettor.

ସହାୟ ବଳ—ଦେ. ବ (ସହଚର ବଳ)—(କୌଣସି କାର୍ଯ୍ୟ ସାଧନ
Sahāya bala ହେବା ପାଇଁ ଲୋଡ଼ା) ସହାୟ ଓ ସାମର୍ଥ୍ୟ—
সহায় বল A patron or helper and strength
सहाय बल (required for any work).

**ସହାୟ ସମ୍ପତ୍ତି(ଦ)**—ଦେ. ବି (ସହଚର ଶବ୍ଦ)—(କାର୍ଯ୍ୟ ସାଧନ ପାଇଁ ଲୋଡ଼ା) ବନ୍ଧୁ ବଳ ଓ ଧନ ବଳ; ସାହାଯ୍ୟକାରୀ ବନ୍ଧୁ ଓ ଧନ—Friend and riches; the state of having a patron to support you and riches to enable you to do a thing.
Sahāya sampatti(da)
সহায় সংপত্তি
**सहाय संपति**

**ସହାୟ ସୌଷ୍ଠବ**—ସଂ. ବି (ଷଷ୍ଠୀ ତତ୍)—ସାହାଯ୍ୟର ଆଧିକ୍ୟ—Exuberance or sufficiency or excellence of help.
Sahāya saushṭhaba

**ସହାୟ ହୀନ**—ସଂ. ବିଣ (ତୃତୀୟା ତତ୍)—ନିଃସହାୟ—Helpless.
Sahāya hīna (ସହାୟ ହୀନା—ସ୍ତ୍ରୀ)

**ସ(ସୁ)ହା ଯିବା**—ଦେ. କି—ସହିବାର କର୍ମବାଚ୍ୟ ରୂପ—Passive voice of verb to bear; to be borne.
Sa(su)hā jibā
সহ্য হওয়া
**सहन होना**

**ସହାୟୀ**—ସଂ. ବିଣ. ପୁଂ—ସହାୟ ବିଶିଷ୍ଟ (ଶବ୍ଦକୋଷ)—Having assistance.
Sahāyī (ସହାୟିନୀ—ସ୍ତ୍ରୀ)

**ସହାର**—ସଂ. ବିଣ (ସ+ହାର)—ହାରଯୁକ୍ତ—Wearing necklace. (ଯଥା—ସହାର କଣ୍ଠ) । ବି (ସହ୍ ଧାତୁ+କର୍ତ୍ତୃ. ଅର)—୧ । ଆମ୍ର ବୃକ୍ଷ (ଉଣାଦି କୋଷ)—1. Mango tree. ୨ । ମହା ପ୍ରଳୟ (ହଳାୟୁଧ)—2. Dissolution of the creation.
Sahāra

**ସହାରୋଗ୍ୟ**—ସଂ. ବିଣ (ବହୁବ୍ରୀହି; ସହ+ଆରୋଗ୍ୟ)—ନୀରୁଜ; ନୀରୋଗ (ହେମ ଚନ୍ଦ୍ର)—Hale; healthy.
Sahārogya (ସହାରୋଗ୍ୟା—ସ୍ତ୍ରୀ)

**ସହାର୍ଦ୍ଦ**—ସଂ. ବିଣ (ସ+ହାର୍ଦ୍ଦ=ପ୍ରେମ)—୧ । ପ୍ରେମଯୁକ୍ତ—1. Affectionate. ୨ । ସପ୍ରେମ—2. Loving.
Sahārdda

**ସହାସାର**—ସଂ. ବି (ବୈଦ୍ୟକ)—ମୁସବର—The dried juice of aloes.
Sahāsāra

**ସହାସ୍ୟ**—ସଂ. ବିଣ (ସ+ହାସ୍ୟ)—ହାସ୍ୟଯୁକ୍ତ—smiling; laughing.
Sahāsya (ସହାସ୍ୟା—ସ୍ତ୍ରୀ)

**ସହାସ୍ୟ ବଦନ**—ସଂ. ବି (କର୍ମଧା)—ସହାସ୍ୟ ମୁଖ—Smiling face. ବିଣ. ପୁଂ—ହାସ୍ୟମୁଖ ଯୁକ୍ତ—Having a smiling face.
Sahāsya badana (ସହାସ୍ୟ ବଦନା—ସ୍ତ୍ରୀ. ବିଣ)

**ସହି**—ବୈଦେ. ବି (ଅ. ସହୀ=ସ୍ୱାକ୍ଷର)—୧। ଦଲିଲରେ ବା ଲେଖାରେ ସ୍ୱାକ୍ଷର—1. Signature in a document. ୨। (ସ୍ୱାକ୍ଷର କରିବା ବ୍ୟକ୍ତି ଉକ୍ତ କାର୍ଯ୍ୟରେ ସମ୍ମତ ହେବା ଅର୍ଥରୁ—ସ୍ୱୀକାର; ରାଜି; ସମ୍ମତ—2. Consent; agreement. [ଉ—ବହୁଲ ହରିକରି ଦେବେ ସହ କଲେ ତା ପୁଣି ନକଲ ସେଠାରୁ କାଢ଼ାଇଲେ । କୃଷ୍ଣସିଂହ. ମହାଭାରତ. ସଭା ।] ଦେ. ବିଣ (ଅନ୍ୟ ଶବ୍ଦସଙ୍ଗେ ଲାଗେ, ଯଥା—ଚଳନସହି; ମାପସହି) ୧ । ଉପଯୁକ୍ତ; ଯୋଗ୍ୟ; ଯଥେଷ୍ଟ—1. Fit or sufficient for. ୨ । ସଦୃଶ—2. Similar. ପ୍ରାଦେ (ବାଲେଶ୍ୱର) ଅ—ସରି; ସମାନ—Like. (ଯଥା—ତା ସହିରେ ମୁଁ ଲୋକ ଦେଖି ନାହିଁ) ଦେ. ବି—ସଙ୍ଗାତ (ଦେଖ)—Sangāta (See).
Sahi
সহি, সই
**सहि**

**ସହି କରିବା**—ଦେ. କି—୧ । ଦଲିଲରେ ସ୍ୱାକ୍ଷର କରିବା—1. To sign a document. ୨ । (ଯେଉଁ ଲୋକକୁ ଦସ୍ତଖତ କରି ନ ଆସେ ତା ପକ୍ଷରେ) ସନ୍ତକ କାଟିବା—2. To put one's mark on a document (in the case of an illiterate person.) [ଦ୍ର—ମୂର୍ଖଲୋକ ଦଲିଲରେ ଆପଣାର ସନ୍ତକ କାଟିଦେବ କିମ୍ବା କଲମକୁ ଛୁଇଁ ଦେବ ବା ଆପଣାର ବୁଢ଼ାଆଙ୍ଗୁଠି ଚିହ୍ନ ବସାଇ ଦେବ; ଏବଂ ନକଲନବିଶ ଉକ୍ତ ବ୍ୟକ୍ତିର ନାମ ଲେଖି 'ଏ ବୁଢ଼ାଆଙ୍ଗୁଠି ବା ଅମୁକ ସନ୍ତକ ଅମୁକ ବ୍ୟକ୍ତିର ସହି । କି । (ଅର୍ଥାତ୍ ବକଲମ) ନକଲନବିଶ, ଲେଖିଦେବ ।] ୩ । ଛିଦ୍ରାଦିରେ ଲମ୍ବା ପଦାର୍ଥ ପୂରାଇବା; ଭର୍ତ୍ତି କରିବା; ପୂରାଇବା—3. To thrust a long thing into a hole. [ଯଥା—ନଳାରେ ବାଉଁଶ ସହି କରିବା) ୪ । ସ୍ୱୀକାର କରିବା; ରାଜି ହେବା—4. To agree to. [ଉ—ଏହା ଶୁଣି ସୁବାକୁ ମାତା ସହି କଲେ, ପୁତ୍ରେ କହି ସେ ନାହିଁ ଆଉ କରିଲେ । କୃଷ୍ଣସିଂହ. ମହାଭାରତ. ବନ]
Sahi kariba
সইকরা
**सहिकरना**
ভরা
**भरना**
স্বীকারকরা
**स्वीकारकरना**

**ସହି(ହି)କାରିଆ**—ଦେ. ବିଣ—୧ । ଯଥୋପଯୁକ୍ତ—1. Fit; proper; befitting. ୨ । ହୃଷ୍ଟପୁଷ୍ଟ—2. Stout and strong.
Sahi(i)kāriā
যথোপযুক্ত
**यथोपयुक्त**

**ସହିତ**—ସଂ. ବିଣ (ସହ୍ ଧାତୁ=ସହିବା+କର୍ତ୍ତୃ. ତ, ଇ ଆଗମ; କିମ୍ବା ସହ=ସଙ୍ଗେ+ଇ ଧାତୁ=ଯିବା+କର୍ତ୍ତୃ. ତ)—୧ । ସମଭିବ୍ୟାହୃତ—1. Accompanied by. ୨ । ଏକତ୍ର ସଂଯୁକ୍ତ; ମିଳିତ—2. Joined or united with. ୩ । (ସ+ହିତ) ଇଷ୍ଟ ସାଧକ; ହିତଜନକ—3. Beneficial. ୪ । (ସମ୍=ସମ୍ୟକ୍+ହିତ) ସମ୍ୟକ୍ ମଙ୍ଗଳକର (ମୁଗ୍ଧବୋଧ)—4. Specially beneficial. ଅ—୧ । ସଙ୍ଗେ—1. With; together with. ୨ । ସମଭିବ୍ୟାହାରରେ—2. In the company of. ୩ । ଯୁକ୍ତହୋଇ—3. Joined with.
Sahita (ସାହିତ୍ୟ—ବି)

**ସହିତବ୍ୟ**—ସଂ. ବିଣ—(ସହ୍ ଧାତୁ+କର୍ମ. ତବ୍ୟ)—ସହନୀୟ; ସୋଢ଼ବ୍ୟ—Fit to be borne.
Sahitabya

**ସହିତରେ**—ଦେ. ଅ—ସହିତେ (ଦେଖ)—Sahite (See)
Sahitare
সহিত
**साथमें**

**ସହିତା**—ସଂ. ବିଣ.—(ସହିତୃ ଶବ୍ଦ; ସହ୍ ଧାତୁ+କର୍ତ୍ତୃ. ତୃ)—୧ । ସହନଶୀଳ; ସହିଷ୍ଣୁ (ସିଦ୍ଧାନ୍ତକୌମୁଦୀ)—1. Forbearing. ୨ । କ୍ଷମାଶୀଳ—2. Forgiving. ୩ । ଯେ ସହେ; ସୋଢ଼ା—3. Enduring.
Sahitā (ସହିତ୍ରୀ—ସ୍ତ୍ରୀ)

୪ । ପ୍ରତୀକ୍ଷାଶୀଳ—4. One who waits.
୫ । ଧୀର; ଧୈର୍ଯ୍ୟଶୀଳ—5. Patient.

ସହିତେ—ଦେ. ଅ (ସଂ. ସହିତ)—୧। ସଙ୍ଗେ—1. With; together with. ୨ । ସଙ୍ଗ ହୋଇ—2. Accompanied by. ୩ । ସାଥିରେ—3. In the company of. ୪ । ମୋଟେ; ଆଦୌ—4. At all. [ଯଥା—ଯେଉଁ ଶତ୍ରେ ଶତ୍ରେ ଦେଉଥିଲ ଯେ, ଏବେ ତାହାର ସହିତେ ନାହିଁ ] ୫ । ସୁଦ୍ଧା—5. Even. (ଯଥା—ମୁଁ ତାଙ୍କ ଘରକୁ ନିମନ୍ତ୍ରଣ କରିଥିଲି ଯେ, ତାଙ୍କ ଘରୁ ଅଣ୍ଡା ବଚ୍ଚା ସହିତେ ସମସ୍ତେ ଆସିଥିଲେ)—୬ । ମଧ୍ୟ; ବି—6. Also. [ଉ—ମାତା ସହିତେ ନାହିଁ ଘରେ, କେଣୁ ମୁଁ ବ୍ୟାକୁଳ ମନରେ । ଜଗନ୍ନାଥ. ଭାଗବତ ।]
Sahite
ସହିତ ସାଥମେ
মোটে বিলকুল

ସହିତେଣ—ଗ୍ରା. ଅ (ପଦ୍ୟ)—ସହିତେ ୧, ୨ ଓ ୩ (ଦେଖ)—Sahite 1, 2 and 3 (See)
Sahitena

ସହିତ୍ର—ସଂ. ବ (ସହ୍ ଧାତୁ+କରଣ. ତ୍ର)—ସହନର କରଣ; ଯାହା ଦ୍ୱାରା ସହନ କରାଯାଏ (ଶବ୍ଦକୋଷ)—That which enables one to bear.
Sahitra

ସହିଥିଲ—ଗ୍ରା. ବ—(ସଂ. ଶୈଥିଲ୍ୟ)—୧ । ଶିଥିଳତା—1. Slackness. ୨ । ଶିଥିଳ—2. Slack.
Sahithila
শিথিল শিথিল

ସହି ଦେବା—ଦେ. କ୍ରି (କଚରଥ)—କୌଣସି କାଗଜରେ ଆପଣାର ଦସ୍ତଖତ କରିବା—To give or attach one's signature to a document or writing.
Sahi debā
সহিদেওয়া সহীকরনা

ସହି ନେବା—ଦେ. କ୍ରି (କଚରଥ)—କୌଣସି କାଗଜରେ କୌଣସି ବ୍ୟକ୍ତିଙ୍କଠାରୁ ଦସ୍ତଖତ କରାଇ ନେବା—To take a paper from a person after having it signed by him.
Sahi nebā
সহিনেওয়া সহীলেনা

ସହି ପାରିବା—ଦେ. କ୍ରି—୧ । ସହିବାକୁ ସମର୍ଥ ହେବା—1 To be able to bear; to be capable of enduring. [ଯଥା—ମୁଁ ଆଉ ତା ଦାଉ ସହି ପାରିବି ନାହିଁ] ୨ । କୌଣସି ବିଷୟ ଦେଖିଲେ ବା ଶୁଣିଲେ ନ ଚିଡ଼ିବା—2. Not to resent at any thing; to forbear. ୩ । ପରଶ୍ରୀକାତର ନ ହେବା—3. Not to be spiteful. ୪ । କୌଣସି ବ୍ୟକ୍ତି ସଙ୍ଗେ 'ସହି' ବସିବା—4. To form 'Sahi' friendship with a person.
Sahi pāribā
সহিতেপাবা সহসকনা
সহিপাতা দোস্তীকরনা

ସହି ବସିବା—ଦେ. କ୍ରି—କୌଣସି ବ୍ୟକ୍ତିଙ୍କ ସଙ୍ଗେ ବା ଘରଗୁଡ଼ିକ ମଧ୍ୟରେ 'ସହି'ରୂପ ବନ୍ଧୁତା ପ୍ରତିଷ୍ଠା କରିବା—To set up a relationship of Sahi with a person. [ଉ—ପରସ୍ପରକୁ ମହାପ୍ରସାଦ ବା ଭୋଗ ଦିଅ ଦେଇ ହୋଇ ଦୁଇ ଜଣ 'ସହି' ବସନ୍ତି ।]
Sahi basibā
সহি পাতা দোস্তী করনা

ସହିବା—ଦେ. କ୍ରି (ସହ୍ ଧାତୁ)—୧ । ସହ୍ୟ କରିବା; ସମ୍ଭାଳିବା—1. To bear. [ଉ—ସମ୍ପଦଟି ମୋର ଜେ; ସହ ଏହି ଥର ରେ—କବିସୂର୍ଯ୍ୟ. କଣୋପାଖ୍ୟାନ.ସ ଗୀତ ।] ୨ । ଅପେକ୍ଷା କରିବା—2. To wait. [ଉ—ପ୍ରତିଷ୍ଠା ଭୁଜ ଦଣ୍ଡେ ରହ । କୃଷ୍ଣ ଦେଖିବା ଯାଏ ସନ୍ତ—ଭୂପତି. ପ୍ରେମପଞ୍ଚାମୃତ । ] ୩ । କ୍ଷମା କରିବା—3. To forgive. ( ଯଥା—ଦୋଷ ସହିବା ।) ୪ । କଷ୍ଟ ବା ଦୁଃଖ ଆଦି ଭୋଗ କରିବା—4. To suffer. [ ଉ—ଉଦ୍ଦେଶ୍ୟ ସାଧନ ପାଇଁ ଗୋ, ଲଞ୍ଛନା ଗଞ୍ଜନା ସହିବାକୁ ହେଲେ ସହିଯିବା ମଥା ନଇଁ ଗୋ—ବାଲକୃଷ୍ଣ. ଗୁରୁଲିବଙ୍ଗଲତା । ] ୫ । ଅଙ୍ଗେ ଲଭିବା; ଅନୁଭବ କରିବା—5. To experience. ( ଯଥା—ସେ ଅନେକ ଗାଳି ମାଡ଼ ସହିଲାଣି ।) ୬ । ଭାର ବା ବୋଝ ଆଦି ବହନ କରିବାକୁ ସମର୍ଥ ହେବା—6. To be able to support or carry a burden. ( ଯଥା—ଭାର ସହିବା ) ୭ । ଅନ୍ୟ ବ୍ୟକ୍ତିର କାର୍ଯ୍ୟକୁ ଅନୁମୋଦନ କରିବା—7. To suffer another person to do a thing. ( ଯଥା—ତା ଗରବକୁ ବଧାତା ସହିଲେ ତ ହୁଏ ।) ୮ । ଅନ୍ୟର କୃତ ଅତ୍ୟାଚାରକୁ ନୀରବରେ ସହ୍ୟ କରିବା—8. To bear silently; to tolerate. ( ଯଥା—ଚହଟିବା ଲୋକ ବଡ଼ ନୁହେଁ, ସହିବା ଲୋକ ବଡ଼ ।) ୯ । ଦେବତାଙ୍କୁ ପୂଜା ବା ଭୋଗ ଆଦି ମନାସିବା—9. To vow or promise any offering to a Deity. [ ଉ—ଦେକାମୁହାଁ ସହେ ଦେବମାନଙ୍କୁ—କବିସୂର୍ଯ୍ୟ. ଜବଡାକଲ୍ଲୋଳ । ] ୧୦ । ସୁଖକର ବୋଧ ହେବା—10. To be endurable. ( ଯଥା—ଉଷୁମ୍ଡାଳୁ ଗୋଲ ପାଣି ସହେ । ) ୧୧ । କୌଣସି ଦୁଃଖ ବା ବେଦନାଜନକ ଘଟନା ବା ଅପଚୟର ବିଷୟ ଘଟିବାରେ ଆପତ୍ତି ନ କରିବା—11. To suffer a thing to happen. [ ଉ—ଶିଶୁପ ଦେହା ଏହା ସହିଲୁ ରେ—କବିସୂର୍ଯ୍ୟ. କଣୋପାଖ୍ୟାନ. ଘ ଗୀତ ।] ୧୨ । ( କାଳ ) ମେଣ୍ଟିବା—12. To suffice ( said of time ). [ ଉ—ଶମ୍ଭୁ ପରସ୍ପରୀ ଭଣେ କେତେ କାଳ ବହିଲ । ଶୃଙ୍ଗାର ଶାସ୍ତ୍ରକୁ କହି ସମୟ ନ ସହିଲ—କବିସୂର୍ଯ୍ୟ. ସଙ୍ଗୀତ । ] ୧୩ । ଦାଉ ସମ୍ଭାଳିବା—13. To bear the brunt of.
Sahibā
সহা সহনা
ସହାଇବା } ଅନ୍ୟରୂପ
ସୁହାଇବା }
মানসিক করা মন্নত করনা
সওয়া সহনা

ସହି ଯିବା—ଦେ. କ୍ରି—ସହ୍ୟ ବା ଭୋଗ କରିବାରେ ଅଭ୍ୟସ୍ତ ହେବା—To be habituated to bear. [ ଉ—ସହୁଯା ରେ ମନ ସହୁଯା, ଶଣ୍ଢି ଥ ପଥିର ଚାହିଁବା ମାତ୍ର, ଦନାବେଳେ ଶାଳ ରହୁଯା—ଭଜ । ] [ଉ—ଉଦ୍ଦେଶ୍ୟ ସାଧନ ପାଇଁ ଗୋ, ଲଞ୍ଛନା ଗଞ୍ଜନା ସହିବାକୁ
Sahi jibā
সহে যাওয়া সহজানা

ହେଲେ ସହିଯିବା ମଥା ନଇଁ ଗୋ—ବାଳକୃଷ୍ଣ. ଗୁରୁ-
ଲବଙ୍ଗଲତା । ]

ସହିଯ୍ୟ—ଗ୍ରା. ବିଣ—ସହ୍ୟ ( ଦେଖ )—Sahya ( See )
Sahijya সহ্য सहय

ସହିଯ୍ୟ କରିବା—ଗ୍ରା· କ୍ରି—ସହ୍ୟ କରିବା; ସହିବା—To bear; to
Sahijya kariba সহ্য করা सहय करना endure.

ସହିଯ୍ୟ ହେବା—ଗ୍ରା· କ୍ରି—ସହ୍ୟ ହେବା—To be borne; to
Sahijya heba সহ্য হওয়া सहय होना be endured.

ସହିଷ୍ଣୁ—ସଂ· ବିଣ ( ସହ୍ ଧାତୁ+କର୍ତ୍ତ୍ରି. ଇଷ୍ଣୁ )—୧ । ସହନଶୀଳ—
Sahishṇu 1. Enduring. ୨ । କ୍ଷମାଶୀଳ—2. Forgiving; forbearing. ୩ । ଧୈର୍ଯ୍ୟଶୀଳ—
3. Patient. ୪ । ପ୍ରତୀକ୍ଷାଶୀଳ—4. Waiting.

ସହିଷ୍ଣୁତା—ସଂ· ବି ( ସହିଷ୍ଣୁ+ଭାବ ଅର୍ଥେ· ତା )—ସହନଶୀଳତା—
Sahishṇutā Forbearance; endurance; tolerance.

ସହିସ (ଇତ୍ୟାଦି)—ଦେ· ବି (ଫା· ସାଇସ୍ )—ଘୋଡ଼ାର ସେବକ ବା
Sahisa (etc) ଭୃତ୍ୟ; ସଇସ ଇତ୍ୟାଦି ( ଦେଖ )—Groom
সইস साइस for a horse; syce. [ ଦ୍ର—ଏ ଶବ୍ଦ
ଇଂରାଜୀରେ ସେଇସ୍ ରୂପରେ ଚଳୁଅଛି । ]

ସହି ସଙ୍ଗାତ—ଦେ· ବି ( ସହଚର )—ସହି ବା ସଙ୍ଗାତ ସମ୍ବନ୍ଧଯୁକ୍ତ
Sahi saṅgāta ବନ୍ଧୁ—Friends related to each
সই সঙ্গাত संगी संघात other as Sahi and Saṅgāta.

ସହି ସମ୍ଭାଳି—ଦେ· କ୍ରି. ବିଣ ( ସହିବା ଓ ସମ୍ଭାଳିବା କ୍ରିୟା ଦ୍ୱୟର
Sahi sambhāḷi ଯୁକ୍ତରୂପ କ୍ରିୟା ସହିସମ୍ଭାଳିବାର ଅସମାପିକା
সযে সামলে କ୍ରିୟା; ଏକାର୍ଥକ ସହଚର ଶବ୍ଦ )—୧ । କାଳ
ठहरकर ଅପେକ୍ଷାପୂର୍ବକ—1. After waiting. ୨ ।
ଧୈର୍ଯ୍ୟଧାରଣପୂର୍ବକ—2. Patiently. ( ଯଥା—
ସହି ସମ୍ଭାଳି ସବୁ କାମ କଲେ ପଛକୁ ଅନୁତାପ କରିବାକୁ
ହୁଏ ନାହିଁ । )

ସହି ସମ୍ଭାଳ(ଳୁ)ଆ—ଦେ. ବିଣ· ପୁଂ—୧ । ଧୈର୍ଯ୍ୟଶୀଳ—1. Patient.
Sahi sambhāḷi(ḷu)ā ୨ । ସହିଷ୍ଣୁ—2. Enduring; forbearing.
সহিষ্ণু, সবুরে सहनशील; सहनमा
( ସହି ସମ୍ଭାଳୀ, ସହି ସମ୍ଭାଳେଇ—ସ୍ତ୍ରୀ )

ସହି ହେବା—ଦେ, କ୍ରି ( ସହିବା କ୍ରିୟାର କର୍ମବାଚ୍ୟ )—ସହ୍ୟ ହେବା
Sahi hebā —To be borne. ( ଯଥା—ତାର ଯୁଲମ
সহ্য হওয়া सहय होना ଆଉ ଏଣିକି ସହି ହେବ ନାହିଁ । )

ସହି—ଦେ· ବି. ସ୍ତ୍ରୀ ( ସଂ. ସଖୀ )—୧ । ସଖୀ; ସହଚରୀ—1. A
Sahi female companion. ୨ । ( ପୁଂ. ଓ ସ୍ତ୍ରୀ )
সই सखी, सहेली ଲୋକଙ୍କ ମଧ୍ୟରେ କରାଯିବା ପ୍ରେମ ସମ୍ବନ୍ଧ—
2. An affectionate relationship set up between two persons. [ ଦ୍ର—ଏପରି ସ୍ଥଳରେ
ଉଭୟେ ପରସ୍ପରକୁ 'ସହି' ବୋଲି ଡାକନ୍ତି । ] ୩ ।
ମହାପ୍ରସାଦ ବନ୍ଧୁ—3. God relation.

ସହୁରି—ସଂ. ବି (ସହ୍ ଧାତୁ+କର୍ତ୍ତ୍ରି. ଉରି)—୧। (ପୁଂ) ସୂର୍ଯ୍ୟ [ଉଣାଦି
Sahuri କୋଷ]—1. The sun. ୨ । ( ସ୍ତ୍ରୀ ) ପୃଥିବୀ—
[ସିଦ୍ଧାନ୍ତକୌମୁଦୀ]—2. The earth. ୩ । ଅର୍କ ବୃକ୍ଷ—
3. Calotropis Gigantea plant.

ସହୃଦୟ—ସଂ ବିଣ ( ସ=ସହିତ+ହୃଦୟ )—୧ । ପ୍ରଶସ୍ତଚେତାଃ;
Sahṛudaya ପ୍ରଶସ୍ତମନାଃ (ଭରତ); ଉଦାରମନାଃ—
[ ସହୃଦୟା—ସ୍ତ୍ରୀ ] Magnanimous; liberal-
[ ସହୃଦୟତା—ବି ] minded; high-minded.
୨ । ସାମାଜିକ—2. Social. ୩ । ବିଦ୍ୱାନ୍—
3. Learned. ୪ । କାବ୍ୟାର୍ଥାଭ୍ୟାସାଧୀନ ପରିପକ୍ୱ
ବୁଦ୍ଧି—4. Having the intellect ripened
by studies. ୫ । ରସିକ—5. Witty; gallant.

ସହୃଲ୍ଲେଖ—ସଂ ବି (ସ+ହୃଲ୍ଲେଖ)—୧ । ବଶିବର୍ତ୍ତିତାନ୍ନ (ପ୍ରାୟଶ୍ଚିତ୍ତ
Sahṛullekha ବିବେକ); ଯେଉଁ ଅନ୍ନ ସମ୍ବନ୍ଧେ ହୃଦୟରେ
ବିଚିକିତ୍ସା । ବା ସଂଶୟ ଜାତ ହୁଏ—1. Food regarding which one feels suspicious. ୨।ଦୂଷିତାନ୍ନ
(ଶବ୍ଦକୋଷ)—2. Contaminated food. [ଦ୍ର—
ଏପ୍ରକାର ଅନ୍ନକୁ ଶାସ୍ତ୍ରକାରମାନେ ପୁରୀଷ ସଙ୍ଗେ ସମାନ
ବୋଲି ବିବେଚନା କରିଅଛନ୍ତି ।

ସହେ—ଗ୍ରା. ବି ଓ ବିଣ ( ସଂ. ଶତ )—ଏକଶତ—
Sahe স सौ One hundred.

ସହେତୁ—ସଂ. ବିଣ (ସ+ହେତୁ)—୧ । ହେତୁ ସହିତ ବର୍ତ୍ତମାନ—
Sahetu 1. Existing with the cause.
[ ସହେତୁକ—ଅନ୍ୟରୂପ ] ୨ । ଉଦ୍ଦେଶ୍ୟବିଶିଷ୍ଟ—
2. Having an aim.

ସହୋକ୍ତି—ସଂ. ବି ( ସହ+ଉକ୍ତି )—ଅଳଙ୍କାରବିଶେଷ [ ଯେଉଁ
Sahokti ଅଳଙ୍କାରରେ 'ସହ' ଶବ୍ଦାର୍ଥ ଦ୍ୱାରା ଗୋଟିଏ ପଦ
ଦୁଇଟି ଭିନ୍ନ ଭିନ୍ନ ବିଷୟର ବାଚକ ହୁଏ ]—
A figure of speech. [ ଦ୍ର—ଅତିଶୟୋକ୍ତିକୁ
ମୂଳୀଭୂତ କରି କାର୍ଯ୍ୟକ୍ରମେ ସହାର୍ଥବାଚକ ଶବ୍ଦ ଦ୍ୱାରା ଗୁଣ-
କ୍ରିୟାଦିର ସାଦୃଶ୍ୟ ଅଥବା ସମକାଳୀନତ୍ୱ ପ୍ରତିପନ୍ନ କଲେ
ସହୋକ୍ତି ଅଳଙ୍କାର ହୁଏ ।
ଚୂଳମଣି· ଦାଶ ଅଳଙ୍କାରତରଙ୍ଗିଣୀ ।
ଉଦାହରଣ—
୧ । ଅନନ୍ତର ସ୍ୱେଦ ସଲିଳ ସଙ୍ଗେ ଲଜ୍ଜା ବିଗଳିତ
ହେଲା—କାଦମ୍ବରୀ ।
୨ । ଶସ୍ତ୍ର ଭୂମି ସ୍ନେହତାଙ୍କ ଶତ୍ରୁ ନାଭି
ତଳେ, ଓଟାରିନେଲେ ତା ମୁନ ଶତ୍ରୁ ପ୍ରାଣ ସହ—
ମହାଯାତ୍ରା ।]

ସହୋଟଜ—ସଂ. ବି ( ସହ+ଉଟଜ=ପର୍ଣ୍ଣଶାଳା; ଉଟଜ-
Sahoṭaja ସହ ବର୍ତ୍ତମାନ )—ମୁନିମାନଙ୍କ ପର୍ଣ୍ଣ-
ଶାଳା ( ହାରାବଳୀ )—The hut of a hermit.

ସହୋଢ—ସଂ. ବି (ପୁଂ)—୧। (ସହ+ଊଢା=ବିବାହିତା+ଅ; ବହୁବ୍ରୀହି; ବିବାହିତା କନ୍ୟା ସହିତ ବର୍ତ୍ତମାନ)
Sahordha
(ସହୋଢା—ସ୍ତ୍ରୀ) ହିନ୍ଦୁଶାସ୍ତ୍ରୋକ୍ତ ଦ୍ୱାଦଶବିଧ ପୁତ୍ରମାନଙ୍କ ମଧ୍ୟରୁ ଏକତମ (ମନୁ); ବିବାହବେଳକୁ ଗର୍ଭବତୀ ହୋଇଥିବା କନ୍ୟାର ଗର୍ଭରୁ ବିବାହ ପରେ ଜାତ ପୁତ୍ର—1. A son born of a woman who was pregnant on the date of marriage. [ଦ୍ର—ଏ ସନ୍ତାନ ଜ୍ଞାତପିତୃକ ବା ଅଜ୍ଞାତପିତୃକ ହେଲେ ମଧ୍ୟ ବିବାହିତ ସ୍ୱାମୀଙ୍କ ସନ୍ତାନ ବୋଲି ପରିଗଣିତ ହୁଏ। (କୁଲ୍ଲୁକଭଟ୍ଟ)।] ୨। (ସହ+ବହ ଧାତୁ+କର୍ମ. କ୍ତ, କର୍ମ୍ମାସ+ହୋଢ଼=ହୃତ ଧନ)—ଚୌର୍ଯ୍ୟଲବ୍ଧ ଧନ ବା ଦ୍ରବ୍ୟ ସହ ଧୃତ ଚୋର (ମନୁ ୯।୨୭୦)—2. A thief caught red-handed or with the stolen article.

ସହୋଢଜ—ସଂ. ବି. ପୁଂ (ସହୋଢା+ଜନ୍ ଧାତୁ+କର୍ତ୍ତୃ. ଅ)—
Sahordhaja ବିବାହ ସମୟରେ ଗର୍ଭବତୀ ହୋଇଥିବା
(ସହୋଢଜା—ସ୍ତ୍ରୀ) କନ୍ୟାର ଗର୍ଭଜ ସନ୍ତାନ—A child born of a bride who was pregnant on the date of marriage.

ସହୋଢା—ସଂ. ବି. ସ୍ତ୍ରୀ (ସହ=ଗର୍ଭଙ୍କ ସହିତ+ଊଢା=
Sahordha ବିବାହିତା)—ବିବାହ ସମୟରେ ଗର୍ଭବତୀ ହୋଇଥିବା କନ୍ୟା—A pregnant bride; a bride who is pregnant on the date of marriage.

ସହୋତ୍ଥ—ସଂ. ବିଣ. (ସହ=ସଙ୍ଗେ+ଉତ୍+ସ୍ଥା ଧାତୁ+କର୍ତ୍ତୃ. ଅ)—
Sahottha ସହୋତ୍ଥାୟୀ (ଦେଖ)—Sahotthāyī (See)
(ସହୋତ୍ଥା—ସ୍ତ୍ରୀ)

ସହୋତ୍ଥାୟୀ—ସଂ. ବିଣ. ପୁଂ (ସହୋତ୍ଥାୟିନ୍ ଶବ୍ଦ; ସହ=ସଙ୍ଗେ+
Sahotthāyī ଉତ୍+ସ୍ଥା ଧାତୁ+କର୍ତ୍ତୃ. ଇନ୍ ୧ମା, ୧ବ)—
[ସହୋତ୍ଥାୟିନୀ—ସ୍ତ୍ରୀ] ସମକାଳେ ବା ଏକସଙ୍ଗରେ ଉଠିଥିବା—Risen simultaneously.

ସହୋତ୍ଥିତ—ସଂ. ବିଣ [ସହ+ଉତ୍+ସ୍ଥା ଧାତୁ+କର୍ତ୍ତୃ. କ୍ତ]—
Sahotthita ସହୋତ୍ଥାୟୀ [ଦେଖ]-Sahotthāyī [See]
(ସହୋତ୍ଥିତା—ସ୍ତ୍ରୀ)

ସହୋଦକ—ସଂ. ବି—ସମାନୋଦକ (ଦେଖ)
Sahodaka Samānodaka (See)

ସହୋଦର—ସଂ. ବି. ପୁଂ (ବହୁବ୍ରୀହି; ସହ+ଉଦର=ମାତୃଗର୍ଭ)—ସୋଦର;
Sahodara ଏକ ମାତୃ ଗର୍ଭଜାତ ସନ୍ତାନ—Uterine
[ସହୋଦରା—ସ୍ତ୍ରୀ] brother.

ସହୋଦର କଳ୍ପ—ସଂ. ବିଣ—ନିଜର ଭାଇ ପରି ସ୍ନେହପାତ୍ର—
Sahodara kalpa Loved like a brother;
[ସୋଦରପ୍ରତିମ—ଅନ୍ୟରୂପ] brotherly.
(ସହୋଦରକଳ୍ପା, ସହୋଦରପ୍ରତିମା—ସ୍ତ୍ରୀ)

ସହୋବଳ—ସଂ. ବି—(ସହସ୍+ବଳ)--ଦୌରାତ୍ମ୍ୟ (ଶବ୍ଦକଳ୍ପଦ୍ରୁମ)—
Sahobala Oppression.

ସହୋର—ସଂ. ବିଣ [ସହ ଧାତୁ+କର୍ତ୍ତୃ ଓର; ଯେ ସବୁ ସହ୍ୟ
Sahora କରନ୍ତି]—୧। ସାଧୁ (ଉଣାଦିକୋଷ)—
1. Honest; upright. ୨। ଧର୍ମିଷ୍ଠ—2. Righteous.

ସହୋଷିତ—ସଂ. ବିଣ, ପୁଂ (ସହ+ଉଷିତ)—ଏକତ୍ରବାସକାରୀ—
Sahoshita Living together.

ସହ୍ୟ—ସଂ. ବିଣ (ସହ୍ ଧାତୁ+କର୍ମ. ଯ)—୧। ସହନୀୟ; ସହନ-
Sahya ଯୋଗ୍ୟ; ସୋଢବ୍ୟ; ସହି ହେବାର ଯୋଗ୍ୟ (ମେଦିନୀ)—
(ଅସହ୍ୟ—ବିପରୀତ) 1. Bearable; endurable; tolerable.
(ସହ୍ୟତା—ବି) ୨। ସୁମଧୁର (ଶବ୍ଦ ରତ୍ନାବଳୀ—2. Sweet.)
୩। ସମାନ—3. Equal. ୪। ଉପଯୁକ୍ତ—4 Fit.
୫। ପ୍ରଚୁର—5. Abundant. ୬। ମନୋଜ୍ଞ—6. Lovely. ୭। ଶକ୍ତ; ସମର୍ଥ—7. Able; competent. ୮। ପ୍ରିୟ (ମହାଭାରତ)—8. Dear; liked. ବି—୧। ଆରୋଗ୍ୟ (ଶବ୍ଦ ରତ୍ନାବଳୀ)—1. Health. ୨। ସାମ୍ୟ (ଶବ୍ଦ ରତ୍ନାବଳୀ)—2. Equality; equanimity. ୩। ପଶ୍ଚିମ ଘାଟ ପର୍ବତ; ପୁନା ଅଞ୍ଚଳର ଉତ୍ତର ପଶ୍ଚିମସ୍ଥ ପର୍ବତ; ସହ୍ୟାଦ୍ରି 3. Name of a range of mountains; the Western Ghats of India.

[ଦ୍ର—ଏହି ପର୍ବତ ପୌରାଣିକ କୁଳାଚଳ ମଧ୍ୟରୁ ଏକତମ; ଏହା ବୋମ୍ବେଇ ପ୍ରେସିଡେନ୍‌ସିରେ ଅବସ୍ଥିତ। ତାପ୍ତୀ ନଦୀଠାରୁ ପର୍ତ୍ତୁଗାଲ ଅଧିକୃତ ଗୋଆ ପର୍ଯ୍ୟନ୍ତ ଏ ପର୍ବତମାଳା ବିସ୍ତୃତ। ଏହାର ଅନ୍ୟ ନାମ ପଶ୍ଚିମ ଘାଟ ପର୍ବତ। ଏହାର ପାଲଘାଟ ନାମକ ଶାଖା ପର୍ବତମାନ ଏହି ପର୍ବତ ଶ୍ରେଣୀର ଅନ୍ତର୍ଗତ। ଏ ପର୍ବତ ଉତ୍ତର ଓ ଦକ୍ଷିଣ କୋଙ୍କଣ ପ୍ରଦେଶର ପୂର୍ବ ସୀମା ରୂପେ ସମୁଦ୍ର ଉପକୂଳର ସମାନ୍ତରାଳ ଭାବରେ ଅବସ୍ଥିତ। ମାନ୍ଦ୍ରାଜ ପ୍ରଦେଶର ନୀଲଗିରି ନାମକ ଜିଲ୍ଲା ଏହି ପର୍ବତର ଦକ୍ଷିଣ ପଶ୍ଚିମାଂଶରେ ଅବସ୍ଥିତ। ଏହି ପର୍ବତ ପୃଷ୍ଠ ସାଧାରଣତଃ ସମୁଦ୍ର ଅପେକ୍ଷା ୨୦୦୦।୩୦୦୦ ଫୁଟ ଉଚ୍ଚ। କିନ୍ତୁ କୌଣସି କୌଣସି ପର୍ବତଶୃଙ୍ଗର ଉଚ୍ଚତା ୫୦୦୦ ଫୁଟ। ମହାରାଷ୍ଟ୍ରୀୟ ଅଭ୍ୟୁଦୟ କାଳରେ ମହାରାଷ୍ଟ୍ରୀୟମାନେ ଏ ପର୍ବତ ଉପରେ ଅନେକଗୁଡ଼ିଏ ଦୁର୍ଭେଦ୍ୟ ଗିରିଦୁର୍ଗ ନିର୍ମାଣ କରିଥିଲେ। ଏଥିର ଅନେକ ସ୍ଥାନରେ ସୁମିଷ୍ଟ ଜଳପୂର୍ଣ୍ଣ ପ୍ରସ୍ରବଣମାନ ଅଛି। ସହ୍ୟାଦ୍ରି ପର୍ବତର ଉଚ୍ଚତମ ଅଞ୍ଚଳ (୪୭୧୭ ଫୁଟ)ରେ ବମ୍ବେଇ ଗଭର୍ଣ୍ଣରଙ୍କ ଗ୍ରୀଷ୍ମାବାସ ମହାବଲେଶ୍ୱରଠାରେ ନିର୍ମିତ ହୋଇଅଛି। ମହାବଲେଶ୍ୱରରେ ଇତିହାସପ୍ରସିଦ୍ଧ ପ୍ରାଚୀନ ଦୁର୍ଗ ଓ ଦେବମନ୍ଦିର ଅଛି। ଏ ପର୍ବତ କାଟି ହୋଇ ଅନେକଗୁଡ଼ିଏ ରାସ୍ତା ଓ ରେଳପଥ ନିର୍ମିତ ହୋଇଅଛି। କେତେକ ସ୍ଥାନରେ ଘୋର କୃଷ୍ଣବର୍ଣ୍ଣ ପ୍ରସ୍ତର ଅଛି। ସେଠାରେ ବୃକ୍ଷ ଲତାଦି ଜନ୍ମେ ନାହିଁ।

ତାହା ତଳୁ ୪୦୦୦ ଫୁଟ ଉଚ୍ଚତା ପର୍ଯ୍ୟନ୍ତ ପର୍ବତରେ ସର୍ବତ୍ର ସୁନ୍ଦର ବୃକ୍ଷ ଲତାଦି ଦେଖାଯାଏ ଓ ମନେହୁଏ ସେ ସବୁ ସ୍ଥାନରେ ଚିରବସନ୍ତ ବିରାଜିତ । ଦକ୍ଷିଣ-ପଶ୍ଚିମ ମୌସୁମି ବାୟୁପ୍ରବାହର ଆରମ୍ଭରେ ଓ ଶେଷରେ ଏଠାରେ ଖୁବ୍ ଝଡ଼, ବର୍ଷା ଓ ବଜ୍ରଘାତ ହୁଏ—ବିଶ୍ୱକୋଷ ।]

ସହ୍ୟ କରିବା—ଦେ. କ୍ରି—ସହିବା ( ଦେଖ
Sahya karibā Sahibā ( See )
সহ্য করা সহন করনা

ସହ୍ୟ ଗୁଣ—ଦେ. ବି—୧ । ସହିବା ଗୁଣ—1. Forbearance.
Sahya guṇa ୨ । ଧୈର୍ଯ୍ୟ—2. Patience.
সহ্য গুণ सहन गुण

ସହ୍ୟ ପରି - ଦେ. ବିଣ ଓ କ୍ରି· ବିଣ —ଦେହରେ ସହି ହେଲା ଭଳି;
Sahya pari ସହନୀୟ ପ୍ରକାରେ—Tolerable; fit to be
সহনীয় প্রকার borne. (ଯଥା—ପାଣିକୁ ସହ୍ୟ ପରି ଗରମ କରି
सहनेके माफिक ଗାଧୋଇବ ।)
(ସହ୍ୟ ଭଳି, ସହ୍ୟ ମତ—ଅନ୍ୟରୂପ)

ସହ୍ୟ ପର୍ବତ—ସଂ. ବି—ସହ୍ୟ ବି·୩ ( ଦେଖ )
Sahya parbata Sahya 3 ( See )
(ସହ୍ୟାଦ୍ରି—ଅନ୍ୟରୂପ)

ସହ୍ୟ ହେବା—ଦେ. କ୍ରି—ବରଦାସ୍ତ ହେବା; ସହି ହେବା—
Sahya hebā To be borne or endured.
সহ্য হওয়া सहन होना

ସହ୍ୟାଦ୍ରି—ସଂ· ବି (ସ. ଷ. ଲୋ; ସହ୍ୟ ନାମକ ଅଦ୍ରି)—ସହ୍ୟ (ବି) ୩
Sahyādri ( ଦେଖ )—Sahya (noun) 3 (See)

ସହ୍ଲା (ଇତ୍ୟାଦି) ବୈଦେ. ବି—ସଲା ଇତ୍ୟାଦି (ଦେଖ)
Sahlā (etc) Salā etc (See)

ସା—ସଂ.ବି (ସୋ ଧାତୁ=ନାଶକରିବା+କର୍ତ୍ତୃ.ଅ+ଆ)—୧। ଶାନ୍ତି—
Sā 1. Peace. ୨ । ଶ୍ରୀ; ଶୋଭା—2. Beauty; grace; grandeour. ୩ । ( ସ ତଦ୍ ଶବ୍ଦର ସ୍ତ୍ରୀଲିଙ୍ଗ ଏକବଚନ=ସେହି ସ୍ତ୍ରୀ )—ଗୌରୀ; ପାର୍ବତୀ—( ଶବ୍ଦରତ୍ନାବଳୀ )—3. Goddess Pārbatī. ୪ । ଲକ୍ଷ୍ମୀ (ଶବ୍ଦରତ୍ନାବଳୀ)—4. Goddess Lakshmī. [ଦ୍ର—ସଂସ୍କୃତ ସର୍ବନାମ 'ତଦ୍' ଶବ୍ଦର ସ୍ତ୍ରୀଲିଙ୍ଗ ଏକବଚନରେ 'ସା' ହୁଏ। ଓଡ଼ିଆରେ ତଦ୍ ଶବ୍ଦର ପୁଂଲିଙ୍ଗ ଏକବଚନ 'ସେ' ( ସ୍ୟୁ.ଚ. ସଃ ) ଓ ସ୍ତ୍ରୀଲିଙ୍ଗ ଏକବଚନରେ 'ସେ' (ସଂ.ସା) ଏବଂ କ୍ଲୀବଲିଙ୍ଗରେ 'ତାହା ବା ସେ' (ସଂ. ତତ୍) ବ୍ୟବହୃତ ହୁଏ ।] ୫ । ହିନ୍ଦୁ ସଙ୍ଗୀତର ସପ୍ତ ସ୍ୱର (ସା, ରି, ଗ, ମ, ପା, ଧା, ନି) ର ପ୍ରଥମ ସ୍ୱର—5. The first note of the Hindu gamut or scale of music. [ ଦ୍ର—ଏହା ଷଡ଼ଜ ବା ମୟୂରଧ୍ୱନିର ଅନୁକରଣ । 'ସ୍ୱର' ଶବ୍ଦ ନୋଟ୍ ଦେଖ । ସ୍ୱରଲିପି କରିବାବେଳେ ଉଦାରା ଗ୍ରାମର 'ସା' କୁ ମୁଦାରା ଗ୍ରାମର 'ସା' କୁ ଓ ତାର ଗ୍ରାମର 'ସା' କୁ 'ସା' ଉପରେ ବିଭିନ୍ନ ଚିହ୍ନ ଦିଆଯାଇ ଚିହ୍ନିତ କରାଯାଏ । ଏହି 'ସା' ସ୍ୱର ଓ ତତ୍ପରବର୍ତ୍ତୀ 'ରି' ସ୍ୱରର ମଧ୍ୟବର୍ତ୍ତୀ କଡ଼ି ବା ମଧ୍ୟମ ସ୍ୱରକୁ 'ସା' ଉପରେ ଅନ୍ୟ ଚିହ୍ନ ଦ୍ୱାରା ଚିହ୍ନିତ କରାଯାଏ ।] ଦେ. ବିଣ (ଚଳିତ)

সাং ସାଃ (ଫା. ସାକିନ୍‌ର ସାଙ୍କେତିକ) ( ଏହା କୌଣସି ସ୍ଥାନର ନାମ ପୂର୍ବେ ବ୍ୟବହୃତ ହେଲେ ଏଥିର ଅର୍ଥ) ଅମୁକ ସ୍ଥାନର ବା ଅମୁକ ସ୍ଥାନବାସୀ—(An abbreviation of the Persian word 'Sākin') — Resident of; of ( so and so place). [ଦ୍ର—ଶ୍ରୀ ନରସିଂହ ପ୍ରହରାଜ । ସା । ସିଦ୍ଧେଶ୍ୱରପୁର; ଲକ୍ଷ୍ମୀଧର କାହେଲ । ସା । କୃଷ୍ଣଚନ୍ଦ୍ରପୁର ।
ଏହି ସାଙ୍କେତିକ ଶବ୍ଦରେ । ହା । ବା । ଛା । ଲେଖିଲେ (ହାଲ୍ ସାକିନ୍), କ୍ରମ୍ଭା ଏହା ପରେ । ହା । ବା । । ଛା । (ସାକିନ୍ ହାଲ) ଲେଖିଲେ ଏଥିର ଅର୍ଥ ଅମୁକ ସ୍ଥାନରେ ବର୍ତ୍ତମାନ ବାସ କରୁଥିବା ( ଯଥା—ଗୋପାଳଚନ୍ଦ୍ର ପ୍ରହରାଜ । ସା । ଛା । ଭୁଷାକୋଷ ଲେନ୍, କଟକ ।]

ସାଅନ୍ତ (ଇତ୍ୟାଦି)—ଦେ. ବି. ପୁଂ—ସାଆନ୍ତ ଇତ୍ୟାଦି (ଦେଖ)
Sā-anta (etc) Sā-ānta etc (See)

ସାଆ (ଇତ୍ୟାଦି)—ଦେ. ବି—ସାହା ଇତ୍ୟାଦି (ଦେଖ)
Sā-ā (etc) Sāhā etc (See)

ସାଆଁକାର—ପ୍ରାଦେ (ସାଠଣା) ବି—ସାହୁକାର (ଦେଖ)
Sā-āṅkāra Sāhukāra (See)

ସାଆଜ—ଦେ. ବି—ସାହାଜ (ଦେଖ)
Sā-āja Sāhāja (See)

ସାଆଜାଦା—ବୈଦେ. ବି. (ପୁଂ)—ସାହାଜାଦା (ଦେଖ)
Sā-ājādā (ସାଅଜାଦୀ—ସ୍ତ୍ରୀ) Sāhājādā [See]

ସାଆଡ଼ା (ଇତ୍ୟାଦି)—ଦେ· ବି—ସାହାଡ଼ା ଇତ୍ୟାଦି (ଦେଖ)
Sā-ārḍā (etc) Sāhārḍā etc [See]

ସାଆଣ (ଇତ୍ୟାଦି)—ଦେ. ବି—୧ । ସାହାଣ ଇତ୍ୟାଦି ( ଦେଖ )
Sā-āṇa (etc) 1. Sāhāṇa etc [See]

ସାଆନ୍ତ—ଦେ· ବି. ପୁଂ ( ସଂ. ସାମନ୍ତ )—୧ । ପ୍ରଭୁ—1. Lord;
Sā-ānta master. [ଦ୍ର—ଭୁମ୍ବ ବନ୍ଧୁ ସାଅନ୍ତ ମୋ ନୋହିବଟ
সামন্ত स्वामी ଦେହ । ଦର୍ଶିଲେ ଦର୍ଶିବ ମୋତେ ଅପେ ଲୁବଗ୍ରାହ ! (ସାଆନ୍ତାଣୀ—ସ୍ତ୍ରୀ) ପ୍ରାଚୀ. ଉପେନ୍ଦ୍ରଭଞ୍ଜ । ] ୨ । ଭୃତ୍ୟର ଖାମିନ୍ଦ—2. The master of a servant; an employer. ୩ । ଭର୍ତ୍ତା; ସ୍ୱାମୀ—
সামন্ত 3. Husband. ୪ । ରାଜପୁତ୍ରଙ୍କ ଉପାଧି—4. Title
सामन्त of a prince. ( ଯଥା—ଗଡ଼ିର ସାଅନ୍ତ, ଟିକାଏତ ସାଅନ୍ତ ଇତ୍ୟାଦି ।) ୫ । ରାଜବଂଶୀୟ ବ୍ୟକ୍ତିଙ୍କ ଉପାଧି—5. Title of persons of a Raj-family. (ଯଥା—ଛୋଟର ସାଅନ୍ତ=ରାଜାଙ୍କ ତଳ ଭାଇ; ସର୍ବସୁନ୍ଦ

ସାଅନ୍ତ ।) ୬। ( ସଂ ସାମନ୍ତ=ସୈନ୍ୟାଧିପ ) କ୍ଷତ୍ରିୟଙ୍କ ବଂଶୋପାଧି—6. A family-title of Kshatriyas. ( ଯଥା—ସର୍ଦ୍ଦାର ସାଅନ୍ତ । ) ୭ । ରାଜାଙ୍କ ରକ୍ଷିତା ସ୍ତ୍ରୀଗର୍ଭଜାତ ସନ୍ତାନ ଓ ତଦ୍‌ବଂଶୀୟ ବ୍ୟକ୍ତି; ରାଜାଙ୍କ 'ଅନ୍ତର' ଶ୍ରେଣୀୟ ବ୍ୟକ୍ତିମାନଙ୍କ ଉପାଧି—7. Persons born of a Rājā's concubines; title of the illegitimate sons of a Rājā and their descendants. ୮ । କୁଳୀନ କରଣ—8. A respectable Karaṇa. ୯ । ପୁରୀ ଜିଲ୍ଲାର ରାଜାଙ୍କ ବ୍ରାହ୍ମଣ ଶାସନର କୁଳୀନ ବ୍ରାହ୍ମଣଙ୍କ ଉପାଧି—9. Title of high caste Brāhmaṇas of the Puri Śāsana villages. [ ଦ୍ର—ପୁରୀ ଜିଲ୍ଲାର ବ୍ରାହ୍ମଣ ଶାସନମାନଙ୍କରେ ବୈଦିକ ବ୍ରାହ୍ମଣମାନେ ଉପନିବେଶ ସ୍ଥାପନ କରିବା କାଳରେ ସେମାନଙ୍କ ମଧ୍ୟରୁ ନୈଷ୍ଠିକ ବ୍ରାହ୍ମଣମାନଙ୍କୁ ବାଛି କରି ଓଡ଼ିଶାର ହିନ୍ଦୁ ରାଜାମାନେ 'ସାମନ୍ତ' ଉପାଧି ଦେଇଥିଲେ ଓ ଏମାନେ ଅନ୍ୟ ଶାସନୀ ବ୍ରାହ୍ମଣଙ୍କ ଅପେକ୍ଷା କୁଳୀନ ବୋଲି ଗୃହୀତ ହେଲେ । ଏହି 'ସାଅନ୍ତ' ବ୍ରାହ୍ମଣ ପ୍ରଧାନ ଚାରି ଶ୍ରେଣୀରେ ବିଭକ୍ତ । ଯଥା—

୧ । ହସ୍ତିନାବରପଦାର—ନନ୍ଦ ସାଅନ୍ତ, ୨ । ବୀର ନରସିଂହପୁରର—ବସ୍ତସ [ ବତ୍ସ ] ସାଅନ୍ତ, ୩ । ବୀର ହରେକୃଷ୍ଣପୁରର— ଗୁଅନିଅ ସାଅନ୍ତ, ୪। ଜଗନ୍ନାଥପୁରର—ବାଜପେୟୀ ସାଅନ୍ତ ।

ଏମାନେ ସାଧାରଣ ବ୍ରାହ୍ମଣଙ୍କ ପାକରେ ଅନ୍ନ ଖାଉ ନ ଥିଲେ ଓ ସେମାନଙ୍କ ବଂଶରେ ବିବାହ କରୁ ନ ଥିଲେ । ସାଧାରଣ ବ୍ରାହ୍ମଣମାନେ ବଂଶଗତ ମର୍ଯ୍ୟାଦାକୁ ଅପେକ୍ଷା ନ କରି ଏମାନଙ୍କ ଘରେ ଅନିମନ୍ତ୍ରିତ ହୋଇ ସୁଦ୍ଧା ଭୋଜନ କରୁଥିଲେ । ବର୍ତ୍ତମାନ ଅଧିକାଂଶ ସ୍ଥଳରେ ଏ ପ୍ରଥାମାନ ରକ୍ଷିତ ହେଉନାହିଁ । ] ୧୦ । ସାମନ୍ତ ରାଜା; ରାଜାଙ୍କ ଅଧୀନ କ୍ଷୁଦ୍ର ରାଜା ବା ଜମିଦାର—10. A feudatory or tributary chief under a Rājā. ୧୧ । ଗୁରୁଜନମାନଙ୍କ ପ୍ରତି ସମ୍ମାନାର୍ଥକ ସମ୍ବୋଧନ—11. A title of respect used in addressing one's elders. ( ଯଥା—ଦଦା [ଦଦେଇ] ସାଅନ୍ତ, ବାପା ସାଅନ୍ତ । ) ୧୨ । କରଣମାନଙ୍କ ବିବାହରେ ବରଙ୍କ ସଙ୍ଗେ ବରଯାତ୍ରୀରୂପେ ଆସିଥିବା ବରପକ୍ଷୀୟ ଶ୍ରେଷ୍ଠ 'କରଣ' ବନ୍ଧୁ ବା ଜ୍ଞାତି—12. The principal ralatives of the bridegroom who accompany him to the marriage. [ଦ୍ର—କରଣମାନଙ୍କ ବିବାହରେ ବରଙ୍କ ଗହଣରେ ବରଯାତ୍ରୀରୂପେ ଆସିଥିବା ନିର୍ଦ୍ଦିଷ୍ଟ ସଂଖ୍ୟକ ଯେତେ ଜଣ 'ସାଅନ୍ତ'ଙ୍କ ପାଇଁ ପୂର୍ବରୁ ଜବାବ ଛିଣ୍ଡିଥିବ ସେତେ ଜଣଙ୍କ ପାଇଁ କନ୍ୟା କର୍ତ୍ତା ବିଦାକି ବା ମର୍ଯ୍ୟାଦା ସ୍ୱରୂପ ଲୁଗା, ବାସନ ଓ ଟଙ୍କା ଉପହାର ଦେବା କଥା ପୂର୍ବରୁ (ଅର୍ଥାତ୍ 'ନିଉକାର' ବେଳେ) ଚୁକ୍ତି ହୋଇଥାଏ ଓ ଉକ୍ତ 'ସାଅନ୍ତ ବିଦାକି' ବା 'ସାଅନ୍ତ ମର୍ଯ୍ୟାଦା' ଦିଆ ନ ଯିବା ପର୍ଯ୍ୟନ୍ତ ବରଯାତ୍ରୀମାନେ କନ୍ୟା ଘରେ ଜଳ ଗ୍ରହଣ କରନ୍ତି ନାହିଁ । ଏ ସବୁ ପ୍ରଥା ଏଣିକି କ୍ରମଶଃ ଅନାଦୃତ ହେଉଥିବା ସୁଖର ବିଷୟ । ] ୧୩ । ଅଗିରି ( ଉଗ୍ରକ୍ଷତ୍ରିୟ )ଙ୍କ ବଂଶୋପାଧିବିଶେଷ—13. Family-title of the Āgirī caste. ୧୪ । ଧୋବା ବା ଭଣ୍ଡାରିଙ୍କ ଦ୍ୱାରା ସେବିତ ଗ୍ରାମର ଅଧିବାସୀ ବ୍ରାହ୍ମଣଗଣ—14. The Brāhmaṇas of the village of which a washerman or barber is a common servant; a village-servant's master.

**ସାଅନ୍ତ ଚାକର**—ଦେ. ବି ( ବିପରୀତାର୍ଥ ଶବ୍ଦର ଦ୍ୱନ୍ଦ୍ୱ )—ପ୍ରଭୁ ଓ ଭୃତ୍ୟ—Master and servant; the employer and the employee.
Sā-ānta chākara
সামন্ত চাকর
मालिक नौकर
( ସାଅନ୍ତ ଚାକରିଆ—ଅନ୍ୟରୂପ )

**ସାଅନ୍ତ ପଣ**—ଦେ. ବି—୧। ପ୍ରଭୁତ୍ୱ—1. Mastership; lordship. ( ଉ—ସାଅନ୍ତପଣକୁ ଯୋଗ୍ୟ ନୁହନ୍ତି; ଓଳିଆ ନ ହେଲେ କେତେ ରୁଷନ୍ତି—ତଗ ।) ୨ । ବଡ଼ପଣ—2. Greatness. ୩ । ଭୃତ୍ୟ ଉପରେ ଖାମିନ୍ଦ ହେବା ଅବସ୍ଥା—3. The state of being an employer.
Sā-ānta paṇa
সামন্তপনা
सामन्तपन
(ସାଅନ୍ତପଣିଆ[ଆଁ]—ଅନ୍ୟରୂପ)

**ସାଅନ୍ତ ବାପ(ପା)**—ଦେ. ବି. ପୁଂ—ପିତାମହ—One's paternal grandfather. ( ଉ—ପଣ୍ଡିତଙ୍କ ସାଅନ୍ତ ବାପଙ୍କର ମଝିଲାପୁଅ ଭାଇଙ୍କର ଉଣେଇଶି ମାଉସୀ ପୁଅ ଭାଇ ନବଦ୍ୱୀପ ଯାଇ ନ୍ୟାୟଶାସ୍ତ୍ର ପଢ଼ି ଆସିଥିଲେ—ଫକୀରମୋହନ. ଛମାଣ ଆଠଗୁଣ୍ଠ । )
Sā-ānta bāpa(pā)
ঠাকুর দাদা
दादा
( ସାଅନ୍ତ ମା, ସାଅନ୍ତ ମାଆ—ସ୍ତ୍ରୀ )

**ସାଅନ୍ତ ବିଦାକି(ମର୍ଯ୍ୟାଦା)**—ଦେ. ବି—କରଣମାନଙ୍କ ବିବାହରେ ବରଯାତ୍ରୀରୂପେ ଆସିଥିବା ସାଅନ୍ତମାନଙ୍କୁ କନ୍ୟା ପକ୍ଷରୁ ଦଆଯିବା ବସ୍ତ୍ରାଦି ଉପଢୌକନ—Presents i. e. cloth etc given to the principal friends of the bridegroom who accompany him to the bride's house for the marriage.
Sā-ānta bidāki(marjyādā)
বরযাত্রী মর্য্যাদা
बरातको बिदाई

**ସାଅନ୍ତ ବିରାଦର**—ଦେ. ବି ( ସଂ. ସାମନ୍ତ+ଫା· ବେରାଦର )—ରାଜବଂଶର କୁଟୁମ୍ବୀ ବ୍ୟକ୍ତିଗଣ—The kinsmen of a Raj family.
Sā-ānta birādara
সামন্ত বেরাদর
सामन्त बेरादर

**ସାଅନ୍ତ ବ୍ରାହ୍ମଣ**—ଦେ. ବି—ପ୍ରାଚୀନ ଓଡ଼ିଶା ରାଜାଙ୍କ ପ୍ରତିଷ୍ଠିତ ବ୍ରାହ୍ମଣ ଶାସନର କୁଳୀନ ବ୍ରାହ୍ମଣ—High caste Brāhmaṇa of the Śāsana villages, established by the ancient Rajas of Orissa.
Sā-ānta brāhmaṇa
কুলীনব্রাহ্মণ
श्रोत्रियब्राह्मण

**ସାଅନ୍ତ** ଭାଇପୁଅ—ଦେ. ବ—ରଜାଙ୍କର ଭାଇମାନେ ଓ ଦାସୀଙ୍କ ଗର୍ଭ-
Sa-anta bhaipua ଜାତ ବ୍ୟକ୍ତିଗଣ—Persons who
সামন্তভাইপো सामन्तभाइपुत्र are legitimate and illegitimate sons of a Raja's family.

**ସାଅନ୍ତ ମଣି**—ଦେ. ବ—ପ୍ରଭୁ ବା ସ୍ୱାମୀଙ୍କ ପ୍ରତି ସ୍ନେହ ସମ୍ବୋଧନ—
Sā-ānta maṇi An affectionate term of
সামন্তমণি सरकार endearment addressed to one's master or husband. [ ଉ—କେଉଁ କଥା ପାଇଁ ସାଅନ୍ତମଣି, ଯାଉଥିଲେ ମଥାମଣି ଭଗ ।]

**ସାଅନ୍ତର**—ଦେ. ବ (ସ. ସାମନ୍ତ+ରାଜ)—ସାମନ୍ତରାୟ (ଦେଖ)—
Sā-āntarā Sāmantarāya (See) [ଉ—ଓଗ୍ର ଘରର ପାଣିଅଁ, ଉତ୍ତଧୂର ହିଁଅ ବଳଅଁ, ସାଅନ୍ତର ପୁଅ ବର, ଅଠର ଖଣ୍ଡ ବାଇଦ ବାଜେ ଛଙ୍ଗର ଛଙ୍ଗର—ଭଗ ।]

**ସାଅନ୍ତର ଚଉଧୁରୀ**—ଗ୍ରାଦେ. (ଯାଜପୁର) ବ—ଯାଜପୁରର ଶାସନ-
Sā-āntarā chaudhuri ବାସୀ କୁଳୀନ ବ୍ରାହ୍ମଣ ବଂଶ-
ବିଶେଷ—Title of a high class Brahman family resident of the Sāsana villages of Jājpur.
[ସାଅନ୍ତର ଚୌଧୁରୀ—ଅନ୍ୟରୂପ]

**ସାଅନ୍ତା(ନ୍ତେ)ଇ**—ଦେ. ବଣ—ସାଅନ୍ତ ସମ୍ବନ୍ଧୀୟ—Relating to a
Sā-āntā(nte)i Sā-ānta. ବ—୧ । ସାଅନ୍ତ ପଦ—
সামন্তসম্বন্ধীয সামন্তকী 1. The title or posi-
সামন্তপনা सामंतपन tion of a Sā-ānta. ୨ । ସାମନ୍ତ ପଣ; ପ୍ରଭୁତ୍ୱ—2. Mastership; lordship.

**ସାଅନ୍ତାଣୀ**—ଦେ. ବ. ସ୍ତ୍ରୀ—୧ । ସାଅନ୍ତ ପରିବାରର ସ୍ତ୍ରୀ—
Sā-āntāṇi 1. A female of a 'Sā-ānta'
(ସାଅନ୍ତ—ପୁଂ) family. ୨ । ପ୍ରଭୁଙ୍କ ସ୍ତ୍ରୀ—
সামন্তপত্নী मालिकिनी 2. The wife of a
ঠাকুরানী मालिकिनी servant's master.
୩ । ଭୃତ୍ୟର ସ୍ତ୍ରୀ—ପ୍ରଭୁ; ମାଲିକାଣୀ; ଖାଉନ୍ଦାଣୀ—
3. The mistress of a household. ୪ । ଗୃହର କର୍ତ୍ତ୍ରୀ—4. The Mistress of a household.
୫ । ବଡ଼-ପରିବାରର କର୍ତ୍ତ୍ରୀ ସ୍ତ୍ରୀମାନଙ୍କ ପ୍ରତି ସମ୍ମାନ-ସୂଚକ ସମ୍ବୋଧନ—5. An endearing term of address to the prominent ladies of a noble family. (ଯଥା—ବୋଡୁ ସାଅନ୍ତାଣୀ, କେମା ସାଅନ୍ତାଣୀ; ମାଅ ସାଅନ୍ତାଣୀ ।) [ବି—ସାଅନ୍ତାଣୀଙ୍କ ବୟସ, ପରିବାରରେ ସ୍ଥାନ ଓ ଅବାଚ' ଅନୁସାରେ ଏହି ଶବ୍ଦ ପୂର୍ବରେ ବଡ଼, ବୁଢ଼ୀ, ମଝିଅଣୀ, ସାନ, କୋଡ଼ୁ; ମାଅ, ଗେଡ଼ୀ, ଓଡ଼ଗେଇ ଆଦି ଶବ୍ଦ ବ୍ୟବହୃତ ହୁଏ ।

ସାଅନ୍ତାଣୀ କଥା ବାଟେ }
ପୋଇଲୀ କଥା ଘରେ } ନ୍ୟାୟ—
ସାଅନ୍ତାଣୀ ଅନ୍ୟାୟ ବା ମନ୍ଦ କାର୍ଯ୍ୟ କଲେ ତାହାକୁ ଲୋକେ ଆଦର ସହିତ ଗ୍ରହଣ କରନ୍ତି, କିନ୍ତୁ ପୋଇଲୀ ବା ଗୃହଦାସୀ ସେହି କାର୍ଯ୍ୟ କଲେ ତାହାକୁ ଲୋକେ ଘୃଣା ଚକ୍ଷୁରେ ଦେଖନ୍ତି । ଏହାର ସମାର୍ଥକ ଭଗ—
'ଧୋବଧାଉଳିଆ ଚୋରି କରନ୍ତି,
ରଙ୍କୁଣୀ ଦେଖିଲେ ମାରି ଗୋଡ଼ାନ୍ତି ।']
୩ । ଦେବୀ—3. Goddess; a female Deity. (ଉ—କୋଇଲି ! ଲେଡ଼ା ଡାକ ଉଠୁନ୍ତି ଦେଶରୁ । ଲକ୍ଷ୍ମୀ ସାଅନ୍ତାଣୀ ପୁଣି ଆସିବେଟି ଘର ଲେ କୋଇଲି !—ଜାନକୃଷ୍ଣ. ଅକାଳ କୋଇଲି !

**ସାଅନ୍ତାଳ** (ଇତ୍ୟାଦି)—ଦେ. ବ—ସାନ୍ତାଳ ଇତ୍ୟାଦି (ଦେଖ)
Sā-āntāla [etc] Sāntāla etc [See]

**ସାଅନ୍ତିଆ**—ଦେ. ବଣ—୧ । ସାଅନ୍ତ ସମ୍ବନ୍ଧୀୟ—1. Relating to
Sā-āntiā 'Sā-ānta'. ୨ । କରଣ ସମାଜ ସମ୍ବନ୍ଧୀୟ—
সামন্ত সম্বন্ধীয় 2. Relating to the Karaṇa Society.
सामन्तका (ଯଥା—ସାଅନ୍ତିଆ ବାହା)

**ସାଅପକ୍ଷ**—ଗ୍ରା. ବ—ସପକ୍ଷ (ଦେଖ
Sā-āpaksha Sāpaksha. (See)

**ସାଆବ** (ଇତ୍ୟାଦି)—ଦେ. ବ (ପୁଂ)—ସାହେବ ଇତ୍ୟାଦି (ଦେଖ)
Sā-āba (etc) Sāheba etc. (See)

**ସାଆବାଣୀ**—ଦେ. ବ (ସ୍ତ୍ରୀ)—ସାହେବାଣୀ (ଦେଖ)
Sā-ābāṇi Sāhebāṇi. (See)

**ସାଆବାନ** (ଇତ୍ୟାଦି)—ଦେ. ବ ଓ ବଣ—ସାହେବାନ (ଦେଖ)
Sā-ābāni (etc) Sahebāni. (See)
(ସାଆବାନଅ[ଅଁ]—ଅନ୍ୟ ବଣରୂପ)

**ସାଆ ଭରସା**—ଦେ. ବ—ସାହା ଭରସା (ଦେଖ)
Sā-ā bharasā Sāhā bharasā. (See)

**ସାଅରା**—ଦେ. ବ—୧ । ସାହାରା (ଦେଖ)—1. Sāhārā. (See)
Sā-ārā ୨ । ସାହାଡ଼ା ଇତ୍ୟାଦି (ଦେଖ)—2. Sāhārḍā etc. (See)

**ସାଅଳିଆ**—ଦେ. ବଣ—ଶାଉଳିଆ (ଦେଖ)
Sā-āliā Śāuliā. (See)

**ସାଅଲ**—ଦେ. ବ (ଇଂ. ସ୍ଲେଜ୍)—ବରଫ ଉପରେ ଟଣା ହେବା ଚକ-
Sā-āla ହୀନ ଗାଡ଼ି—1. Sledge. [ଉ—ଏସ୍କିମୋମାନେ ଚାକାହীন গাড়ী ତରଳ ବରଫ ଉପରେ ସାଅଲ ଚଳାଇ ପାରୁ बरफ गाड़ी ଜାହାନ୍ତି । ଦୈନିକ ଅଶା ।] ୨ । ସାହାଲ (ଦେଖ)—2. Sāhāla. (See)

**ସାଅଲମ୍**—ଦେ. ବ (ନାମ)—ଦିଲ୍ଲୀର ଶେଷ ଓ ନାମମାତ୍ର ମୋଗଲ
Saālam ସମ୍ରାଟ୍ ସାହାଆଲମ୍—The last nominal
সাআলম Moghul Emperor [ବି—ଏହାଙ୍କର ଜନ୍ମ ଖ୍ରୀ:

**साहआलम** ୧୭୨୮, ସିଂହାସନାରୋହଣ ୧୭୬୯ ଓ ମୃତ୍ୟୁ ୧୮୦୬ରେ ହୋଇଥିଲା । ଏହାଙ୍କର ଅନ୍ୟ ନାମ ଅଲି ଗୌହର୍ । ଏ ଶେଷ ମୋଗଲ ସମ୍ରାଟ୍ ଥିଲେ । ଏ ଲର୍ଡ଼୍ କ୍ଲାଇବଙ୍କୁ ବଙ୍ଗ, ବିହାର, ଓଡ଼ିଶାର ଦେୱାନୀ (ରାଜସ୍ୱ ଅଦାୟର ଭାର) ଓ ବାର୍ଷିକ ଛବିଶି ଲକ୍ଷ ଟଙ୍କା ଜମାରେ ପଟ୍ଟା ଦେଇଥିଲେ । ମାତ୍ର ୧୮୦୩ ସାଲ ପର୍ଯ୍ୟନ୍ତ ଓଡ଼ିଶା ମରହଟ୍ଟାମାନଙ୍କ ହାତରେ ଥିଲା । ସେହି ସାଲରେ ଦୌଲତ୍‌ରାଓ ସିନ୍ଧିଆ ଓ ବେରାରର ରାଜା ଓଡ଼ିଶାକୁ ଓ ଖାନ୍ଦେଶକୁ ଇଂରେଜମାନଙ୍କୁ ଅର୍ପଣ କରିଥିଲେ ।

ଏ ବଙ୍ଗ ଦେଶ ଆକ୍ରମଣ କରି ପ୍ରଥମେ ଇଂରେଜମାନଙ୍କ ଦ୍ୱାରା ବନ୍ଦୀ ହୋଇ ପରେ ଇଂରେଜଙ୍କ ସଙ୍ଗେ ସନ୍ଧି ସ୍ଥାପନ କଲେ । ପରେ ମାଧୋଜୀ ସିନ୍ଧିଆ ଏହାଙ୍କୁ ଦିଲ୍ଲୀର ରାଜସିଂହାସନରେ କିଛି ଦିନ ବସାଇବା ପରେ ରୋହିଲାମାନଙ୍କ ସର୍ଦ୍ଦାର ଏହାଙ୍କୁ ପରାସ୍ତ କରି ଏହାଙ୍କ ଆଖି ଦୁଇଟି ଫୁଟାଇ ଦେଲେ ଓ ଏ ପୁଣି ମରହଟ୍ଟାମାନଙ୍କ ଶରଣାପନ୍ନ ହେଲେ । ତୃତୀୟ ମରହଟ୍ଟା ଯୁଦ୍ଧ ପରେ ୧୮୦୩ ରେ ଇଂରେଜମାନେ ପୁଣି ଏହାଙ୍କୁ ଦିଲ୍ଲୀର ସିଂହାସନରେ ବସାଇଲେ, କିନ୍ତୁ ଏ ନାମ ମାତ୍ର ବାଦଶାହା ଥାଇ ୧୮୦୬ ରେ ପ୍ରାଣତ୍ୟାଗ କଲେ ।]

ସାଥଳା—ଗ୍ରା- ବି॰ ସ୍ତ୍ରୀ—ସାରଳା (ଦେଖ)—
Sā-ā̤la̤ Sārala̤ (See)
(ସାଥଳା ଠାକୁରାଣୀ—ଅନ୍ୟରୂପ)

ସାଥସ—ଗ୍ରା. ବି (ସଂ. ସାହସ)—୧ । ସାହସ(ଦେଖ)—1. Sāha̤sa
Sā-a̤sa (See). ୨ । (ଶ୍ୱାସ) ଶ୍ୱାସ (ଦେଖ)—2. Śwa̤sa
সাহস **साहस** শ্বাস **सांस** (See).

ସାଥସ୍ର—ଗ୍ରା. ବି (ସଂ. ଶାସ୍ତ୍ର)—ଶାସ୍ତ୍ର (ଦେଖ)—
Sā-a̤sra Śāstra (See)
শাস্ত্র **शास्त्र**

ସାଇ—ଦେ. ବି (ସଂ. ସହ ଶବ୍ଦ)—୧ । ଏକ ସ୍ଥାନରେ ବାସ କରୁଥିବା ବ୍ୟକ୍ତିମାନଙ୍କ ଗୃହାବଳି; ଗୃହପଙ୍‌କ୍ତି—1. The row of houses of the residents of a certain place. ୨ । ପଙ୍‌କ୍ତି; ଧାଡ଼ି; ଶ୍ରେଣୀ—2. Row; line. ୩ । ଗ୍ରାମର ବା ନଗରର ପଡ଼ା ବା ଅଂଶ ବା ଗଳି—3. Part of a village. or town; quarter; street or lane. [ଦ୍ର—କଟକ ସହରର ଭିନ୍ନ ଭିନ୍ନ ଅଂଶକୁ ବଜାର (ଯଥା—ଚୌଧୁରୀ ବଜାର, ବାଲୁବଜାର) ବା ସାହି ବୋଲାଯାଏ) ଯଥା—ଶେଖବଜାର ସାହି, କୋଣ୍ଡାସାହି, ମଙ୍ଗଳାସାହି, ପେଠିଆ ସାହି ଇତ୍ୟାଦି ।)
Sāi
পাড়া **टोला**

ବାଲେଶ୍ୱର ସହରର ଭିନ୍ନ ଭିନ୍ନ ଅଂଶକୁ 'ଗଞ୍ଜ' ବୋଲାଯାଏ । ଯଥା—ମୋତିଗଞ୍ଜ, ମାଣିକ ଗଞ୍ଜ ।

ସମ୍ବଲପୁର ସହରର ଭିନ୍ନ ଭିନ୍ନ ଅଂଶକୁ ପଡ଼ା ବୋଲାଯାଏ ଯଥା—ଖଟନାୟକ ପଡ଼ା, ଦଲେଇ ପଡ଼ା, ଝାଡ଼ୁପଡ଼ା, ନନ୍ଦପଡ଼ା ଇତ୍ୟାଦି ।

ପୁରୀ ସହରର ଭିନ୍ନ ଭିନ୍ନ ଅଂଶକୁ ସାହି ବୋଲାଯାଏ । ଯଥା—ଦୋଳମଣ୍ଡପ ସାହି, ବାଲି ସାହି, ହରଚଣ୍ଡୀ ସାହି, ହେତୁଗୋହିରୀ ସାହି, କାଳସେଲୀ ସାହି, କୁଣ୍ଡେଇବେଣ୍ଟ ସାହି ଇତ୍ୟାଦି ।]

୪ । ଗ୍ରାମର ବା ସହରର ଯେଉଁ ଅଂଶରେ ଏକ ଜାତୀୟ ବା ଏକ ବ୍ୟବସାୟାବଲମ୍ବୀ ବ୍ୟକ୍ତିମାନେ ବାସ କରନ୍ତି—4. The part of a town or village inhabited by people of one caste or profession. [ଦ୍ର—ଏକ ଜାତୀୟ ବା ଏକ ବ୍ୟବସାୟାବଲମ୍ବୀମାନେ ଏକତ୍ର ବାସ କରୁଥିବା ଅନୁସାରେ ସାହିର ନାମକରଣ ହୁଏ । ଯଥା—ତେଲିଙ୍ଗସାହି, ବାଉରିସାହି ।

ଦେବତାମାନଙ୍କ ନାମ ଅନୁସାରେ ମଧ୍ୟ ସାହିର ନାମ ହୁଏ । ଯଥା—ହରଚଣ୍ଡୀସାହି, କାଳସେଲୀସାହି, ଠାକୁରସାହି । ନୂତନ କରି ନିର୍ମିତ ସାହିକୁ ନୂଆ ସାହି ବୋଲାଯାଏ ।]

୫ । ପଲ୍ଲୀଗ୍ରାମ; ଖଣ୍ଡଗ୍ରାମ—5. A hamlet. [ଲୋ—ହାଣ୍ଡି ସାହିରେ ମାଣିକ ପଡ଼ିଲେ ଗୋରୁହାଡ଼ ଯେଣ୍ଟି ପିଟନ୍ତି । ଇତ୍ୟାଦି ।] ପ୍ରାଦେ (କଟକ ଜିଲ୍ଲାର ଉତ୍ତରାଂଶ) ବି—ଅଗଣା—Court-yard. ପ୍ରାଦେ (ବଲାଙ୍ଗିର ପାଟଣା) ସର୍ବନାମ—ସେହି—That. ପ୍ରାଦେ (ସମ୍ବଲପୁର, ବଲାଙ୍ଗିର) ବି—(ତୁଳ॰ ହି॰ ସାହି)ଝିଙ୍କ—Procupine. ପ୍ରାଦେ (ଅଳ) ବି—ବାସଗୃହ; ଘର—Home; residence.

ସାଇ ଅଣ୍ଡିରା(ମରଦ, ମର୍ଦ୍ଦ)—ଗ୍ରା. ବି (ଇତର) (ବ୍ୟଙ୍ଗ୍ୟ)—ସାହିରେ Sāi aṇḍirā(marada, marda) ବାସ କରୁଥିବା ପୁରୁଷଗଣ (ବିଶେଷତଃ ଯୁବକଗଣ)—The males (specially the young men) inhabiting a certain street or quarter of a town or of a village.
পাড়ারমরদ **टोलेकामर्द**

ସାଇଆ—ଦେ. ବିଣ—ଗ୍ରାମର ବା ନଗରର କୌଣସି ସାହିର ଅଧିବାସୀ—Sāia̤ Inhabiting a certain street or part of a town or village.
পাড়াওয়ালা **टोलावाला**
ବୈଦେ (ପର୍ତ୍ତୁଗୀଜ୍) ବି—ସାୟା (ଦେଖ)—Sāya̤(See).

ସାଇ ଆଖଡ଼ା—ଦେ. ବି—ସାଇ ଜାଗା (ଦେଖ)—
Sāi ākharḍa̤ Sāi jāga̤ (See)
পাড়ারআখড়া **टोलेकाअखाड़ा**

ସାଇଁ—ଦେ. ବି—(ସଂ. ସ୍ୱାମୀ)—୧ । ପ୍ରଭୁ; ସ୍ୱାମୀ—1. Lord. [ଉ—ତୁମ୍ଭେ ତ ତ୍ରିଭୁବନ ଲୋକଙ୍କର ସାଇଁ—କୃଷ୍ଣସିଂହ, ମହାଭାରତ, ବନ ।] ୨ । ଦେବତା—2.Deity.
Saiñ
সাঁই **साँई**

୩ । ପରମେଶ୍ୱର—3. God. (ଉ—ଯାହା କରିବେ ସାଇଁ, ତାହା କାହାର ହାତରେ ନାହିଁ । ଜଗ) । ୪ । ରାଜା—4. King. [ଉ—ଦୁଇ ମାସ ମଧ୍ୟରେ ମାର ଲଙ୍କ ସାଇଁ—କୃଷ୍ଣସିଂହ. ମହାଭାରତ. ବନ ।] ୫ । ବୁଢା ମୂଳା ଗଛରୁ ବାହାରିବା ପୁଷ୍ପଦଣ୍ଡ—5. Flower-stem which sprouts up from a grown up radish. ଗ୍ରାଦେ॰ (ବଉର)ବି—ହିଙ୍କ—Porcupine.

ସାଇଁ ପୁଞ୍ଜି—ପ୍ରାଦେ.(ଲଢ଼ଥ) ବି—ମୂଳଧନ—The capital of
Sāiñ punji a business.

ସାଇଁ ମୂଳା—ଦେ. ବି—ଯେଉଁ ମୂଳା ବୁଢା ହୋଇ ସେଥିରୁ ସାଇଁ
Sāiñ mūḷā ବାହାରି ଥାଏ; ଓ ଯାହାର ଶସ ଯାକ କଡାପର
ସାଇଁ मूला **बूढ़ामुला** ହୋଇଥାଏ—Fibrous radish.

ସାଇଁ ମୂଷା—ପ୍ରାଦେ.(ସମ୍ବଲପୁର-ଗଡ଼ଜାତ) ବି—(ଭୂଳ.ହ୍.ସାଗ୍ମ)ହିଙ୍କ—
Sāiñ mūshā Porcupine.

ସାଇଁଲେରି ଗୀତ—ପ୍ରାଦେ (ସମ୍ବଲପୁର, ଖଡ଼ିଆଳ) ବି—ଖଡ଼ିଆଳ
Sāiñlori gita ଓ ସମ୍ବଲପୁର ଅଞ୍ଚଳରେ ଇତର ଜନସମାଜରେ
(ସାଇଁଲେରିଥ ଗୀତ—ଅନ୍ୟରୂପ) ପ୍ରଚଳିତ ଏକ ପ୍ରକାର ଗୀତ—A kind of popular song prevalent amongst the common people in Khariar and Sambalpur areas.

ସାଇଁ ଶଗ(ର)ଡ଼ା—ଦେ॰ ବି—(ଧ୍ୱନ୍ୟନୁକରଣ, ସାଇଁ + ଶକଟ)—
Sāiñ śaga(ra)ṛḍā ଏକ ପ୍ରକାର ଚକ ଯୁକ୍ତ କାଠର ବା
साईं शकट **चरखरी** ଟିଣର ଖେଳନା (ଯାହାକୁ ବୁଲାଇଲେ ସାଇଁ ସାଇଁ ଶବ୍ଦ କରି ଚକ ବୁଲେ)—A sort of toy rattle made of tin or wood.

ସାଇଁ ସାଇଁ—ଦେ. କ୍ରି. ବିଣ—(ଧ୍ୱନ୍ୟନୁକରଣ) ସାଇଁ ସାଇଁ ଧ୍ୱନି-
Sāiñ sāiñ ପୂର୍ବକ—Making a nasal hissing
साईं साई **सनसन** sound; smacking sound. [ଉ—ଶ୍ୱାସ ରୋଗୀ ନିଶ୍ୱାସ ମାରିଲେ, ସ୍ୱରୁକୁ ବାରମ୍ବାର ଶୂନ୍ୟରେ ମାରିଲେ, ଧାନ ଗଛ ପବନରେ ଇତସ୍ତତଃ ସଞ୍ଚାଳିତ ହେଲେ ଏହି ଶବ୍ଦ ଉତ୍ପନ୍ନ ହୁଏ ।]

ସାଇକ(କେ)ଲ୍—ବୈଦେ. ବି—(ଇଂ)—ବାଇ ସାଇକଲ୍; ଗୁନ
Sāika(ke)l ଗାଡ଼ି—Bicycle; bike. [ଉ—
साइकल **साइकल** ଦୁଇଟି ଚକ ଥିବା ସାଇକଲ୍‌କୁ ବାଇ ସାଇକଲ୍; (ସାଇକଲ୍—ଅନ୍ୟରୂପ) ଓ ତିନିଗୋଟି ଚକଥିବା ସାଇକଲ୍‌କୁ ଟ୍ରାଇସାଇକଲ୍ କୁହାଯାଏ ।]

ସାଇକଲ୍ ମାରି ପହଞ୍ଚିବା—ଦେ. କ୍ରି—ସାଇକଲ୍‌ଦ୍ୱାରା ଗତି କରି
Sāikal māri pahañchibā କୌଣସି ସ୍ଥଳରେ ଶୀଘ୍ର ଉପସ୍ଥିତ
साइकल कविया पहूँचा ହେବା—To bike to a certain
**साइकल चढ़ पहुँचना** place.

ସାଇକ(କୋ)ଲଜି—ବୈଦେ॰ ବି (ଇଂ)—ମନୋବିଜ୍ଞାନ—
Sāika(ko)laji Psychology; science of mind.
साइकलजि **साइकलजि**

ସାଇକୁ ଯିବା—ପ୍ରାଦେ (ଅଳ) କ୍ରି—ଘରକୁ ଯିବା—
Sāiku jibā To go home.

ସାଇକ୍ଲୋପିଡିଆ—ବୈଦେ॰ ବି (ଇଂ)—ଯେଉଁ ବଡ଼ କୋଷ-
Sāiklopidiā ଗ୍ରନ୍ଥରେ ବର୍ଣ୍ଣମାଳାକ୍ରମେ ଶବ୍ଦମାନଙ୍କ ସମ୍ବନ୍ଧରେ
साइक्लोपिडिआ ବହୁ ଜ୍ଞାତବ୍ୟ ବିଷୟ ଥାଏ—Cyclopaedia.
**साइक्लोपिडिया**

ସାଇକ୍ଲୋଷ୍ଟାଇଲ୍—ବୈଦେ. ବି (ଇଂ)—ଅକ୍ଷର ଲେଖା ବା ଟାଇପ୍
Sāiklostāil ହୋଇଥିବା କାଗଜର ବହୁ ସଂଖ୍ୟକ ନକଲ କରିବା
साइक्लोष्टाइल **साइक्लोस्टाइल** ଯନ୍ତ୍ର—Cyclostyle.

ସାଇଙ୍ଗା(ଙ୍ଗ୍ୟା)—ଗ୍ରା. ବି—ସଂଜ୍ଞା; ପାରିବାରିକ ପଦବୀ—
Sāiṅgā(ṅgyā) One's family-title.
संग्या **उपनाम**

ସାଇଜ୍—ବୈଦେ. ବି (ଇଂ)—(ପଦାର୍ଥର) ଆକାର—
Sāij साइज **साइज** Size.

ସାଇ ଜା(ଜେ)ଗା—ପ୍ରାଦେ (ପୁରୀ ସହର) ବି—ସାଇ ଅଖଡ଼ା; ପୁରୀ
Sāi jā(je)gā ସହରରେ ପ୍ରତ୍ୟେକ ସାଇରେ ଥିବା ବ୍ୟାୟାମ-ଶାଳା ଓ ସଙ୍ଗୀତ ଗୃହ—A common room or club room of a Sāi (in Puri town) where the inhabitants of the Sāi assemble for purposes of recreation and amusement.

ସାଇଟ୍—ବୈଦେ॰ ବି (ଇଂ)—୧ । ଦୃଶ୍ୟ; ଦୃଷ୍ଟି—1. Sight.
Sāiṭ साइट **साइट** ୨ । ସ୍ଥାନ—2. Site.

ସାଇଟ୍ ଘଣ୍ଟା(ଣ୍ଟି)—ଦେ॰ ବି—ରେଳ ଷ୍ଟେସନକୁ ଆସୁଥିବା ରେଳଗାଡ଼ି
Sāiṭ ghaṇṭā(ṇṭi) ଷ୍ଟେସନକୁ ଦୃଷ୍ଟିଗୋଚର ହେଲେ ଷ୍ଟେସନ୍-
साइट घंटा କର୍ମଚାରୀମାନେ ଷ୍ଟେସନରେ ଉପସ୍ଥିତ ଯାତ୍ରୀ-
**साइट घण्टा** ଅଙ୍କୁ ଏହା ଜଣାଇ ଦେବା ପାଇଁ ଯେଉଁ ଘଣ୍ଟା ବଜାନ୍ତି—The bell rung when the incoming train is in sight at a station the sight bell.

ସାଇଟ୍ ଭେନ୍—ବୈଦେ॰ ବି (ଇଂ)—୧ । ଜମି ମାପିବା କମ୍ପାସ୍
Sāiṭ bhen ବ୍ୟବହୃତ କମ୍ପାସର ଅଂଶବିଶେଷ—1. Sight-
साइट भेन vane of a prismatic compass. [ଉ—
**साइट भेन** ଏହି ଯନ୍ତ୍ର ମଧ୍ୟରେ ଥିବା ଅତି ସରୁ ଚୁଳା ବାଟେ ଦୂରସ୍ଥ ବସ୍ତୁକୁ ଲକ୍ଷ୍ୟ କରାଯାଏ ।] ୨ । ବନ୍ଧୁକର ନଳ ଅଗରେ ଥିବା ମାଛିକୁ ଲକ୍ଷ୍ୟ ପ୍ରତି ଦୃଷ୍ଟି କରିବା ପାଇଁ ଥିବା ଖଣ୍ଡ—2. Sight-vane of a gun.

ସାଇଟ୍ ହୋଲ୍—ବୈଦେ॰ ବି (ଇଂ)—ବାହାରକୁ ଦେଖିବା ପାଇଁ
Sāiṭ hol ଦୁର୍ଗ ପ୍ରାଚୀରରେ ବା ଘରର କାନ୍ଥରେ ଥିବା ଛିଦ୍ର ବା
साइट हल ନଳା—Sight-hole; a peep-hole.
**साइट होल**

ସାଇଡ୍—ବୈଦେ. ବ ( ଇଂ )—ପାଖ; ପାର୍ଶ୍ୱ—Side.
Sāiḍ ସାଇଡ୍ साइड्

ସାଇଡ୍ ବ(ବା)କ୍ସ—ବୈଦେ. ବ (ଇଂ)—ଦର୍ଶକମାନେ ବସି ଅଭିନୟ
Sāiḍ ba(bā)ksa ଦେଖିବା ପାଇଁ ଥିଏଟର ଘରର ପାର୍ଶ୍ୱରେ
ସାଇଡ ବক্স ଥିବା ଅବୃତ କ୍ଷୁଦ୍ର କୋଠରି—A side box
साइड् बक्स in a theatre

ସାଇଡ୍ ବୋର୍ଡ୍(ର୍ଡ)—ବୈଦେ. ବ ( ଇଂ )—ବାସନ ଅଦ ସଜାଇ
Sāiḍ borḍ(rḍ) ରଖିବା ପାଇଁ ଖାନା କାମରାର ପାଖରେ ରଖା
ସାଇଡ ବୋড় ଯାଇଥିବା ଅଲମାରି—Sideboard.
साइड् बोड़्

ସାଇଡ୍ ରୁମ୍—ବୈଦେ. ବ ( ଇଂ )—ଘରର ବଡ଼ କୋଠରି ପାଖରେ
Sāiḍ rum ଥିବା ଛୋଟ କୋଠରି—Side room.
ସାଇଡ রুম साइड रूम

ସାଇଡ୍ ଲାଇଟ୍—ବୈଦେ. ବ ( ଇଂ )—ରଙ୍ଗମଞ୍ଚକୁ ଆଲୋକିତ କରିବା
Sāiḍ lāiṭ ପାଇଁ ମଞ୍ଚର ପାର୍ଶ୍ୱରେ ଜଳୁଥିବା ଆଲୁଅ—
সাইড লাইট साइड् लाइट Side light

ସାଇଡ୍ ସାଡ୍ଲ—ବୈଦେ. ବ ( ଇଂ )—ମେମ୍‌ମାନେ ଘୋଡ଼ା ଚଢ଼ିବା
Sāiḍ sāḍl ପାଇଁ ଯେଉଁ ଏକପାଖିଆ ଜିନ୍ ବ୍ୟବହାର କରନ୍ତି—
ସାଇଡ ସାଡ্‌ল साइड् साड्ल Side saddle. [ଦ୍ର—ଏହି
ଜିନ୍ ଉପରେ ମେମ୍‌ମାନେ ଗୋଟିଏ ପାଖକୁ ଦୁଇ ଗୋଡ଼କୁ
ଲମ୍ବାଇ କରି ବସନ୍ତି । ]

ସାଇ ଡାକରା—ଦେ. ବ—ଏକ ସାଇର ସମସ୍ତ ବ୍ୟକ୍ତିଙ୍କୁ ବା ସବୁ ସାଇ-
Sāi ḍākarā ଭାଇମାନଙ୍କୁ ଭୋଜନାର୍ଥ ନିମନ୍ତ୍ରଣ—Invitation
ପାড়া নিমন্ত্রণ to all the inhabitants of a parti-
टोलको निमन्त्रण cular quarter of the town or
village to dinner.

ସାଇଡିଙ୍ଗ—ବୈଦେ. ବ ( ଇଂ )—ରେଲ୍ ଷ୍ଟେସନରେ ଅସଲ ରେଲ୍
Sāiḍing ଲାଇନ୍ ପାଖରେ ଥିବା ଅସ୍ଥାୟୀ ଲାଇନ୍, ଯେଉଁ ଲାଇନ୍‌ରେ
ସାଇଡিঙ্ ଅବ୍ୟବହୃତ ରେଲଗାଡ଼ିକୁ ଅଲଗା କରି ରଖାଯାଏ—
साइडिङ्ग् The siding of a Railway station
( where detatched waggons are
(ସାଇଡଂ—ଅଶୁଦ୍ଧରୂପ) kept).

ସାଇ ତଳିଆ—ଦେ. ବଣ—୧ । ନଗରର ସାହିର ବା ଗ୍ରାମର ସାହିର
Sāi taliā ନିକଟବର୍ତ୍ତୀ—1. Adjoining any quarter
পাড়াৰ কাছেৰ of a town or village. ୨ । ନଗରର
गाँवके नजदीक वाला ସାହିର ବା ଗ୍ରାମର ସାହିର ଉପକଣ୍ଠରେ
ବାସକାରୀ—Residing in the outskrits of a
town or village.

ସାଇତା—ଦେ. ବ ( ସ. ସ୍ଥାୟିତ୍ୱ; ସଞ୍ଚିତ )—୧ । ସାଇତିବା; ସଞ୍ଚୟ
Sāita କରିବା—1. Act of storing. ୨ । ସଞ୍ଚିତ
ସାଇତকরা जमा ହେବା ଅବସ୍ଥା—2.The state of being
সাইত হয়ে থাকা stored. ବଣ—ସାଇତା ଯାଇଥିବା; ସଞ୍ଚିତ—
जमा हुआ Stored up. [ଉ—ଧାନ ପାଞ୍ଚ ସାତ ଭରଣ
ମଧ୍ୟ ଘରେ ସାଇତା ଅଛି—ଫକୀରମୋହନ. ଛମାଣ.
ଅଠଗୁଣ୍ଠ । ]

ସାଇତା(ତେ)ଇବା—ଦେ. କି—ଣି ସାଇତିବା କ୍ରିୟାର ଣିଜନ୍ତ ରୂପ—
Sāitā(te)ibā 1. The causative form of Sāitibā.
সাইত করান ୨ । ଅନ୍ୟ ଦ୍ୱାରା ସୁରକ୍ଷିତ କରାଇବା—
जमा करना 2. To cause to be stored.

ସାଇତା ଥିବା—ଦେ. ବଣ ଓ ବ—ସଞ୍ଚିତ ହୋଇ ରକ୍ଷିତ—
Sāitā thibā Stored up. ଦେ. ବ—ସଞ୍ଚିତ ଓ ରକ୍ଷିତ
[ସାଇତା ଯା(ହୋ)ଇଥିବା—ଅନ୍ୟରୂପ] ହୋଇଥିବା ଅବସ୍ଥା—
সাইত হয়ে থাকা The state of being stored up.
संचित होकर जमा हुआ [ଉ—ସାଇତା ଥିବାର, ବୃଥା
କୋହିବାର, ଙ୍କାଇବାର ବଡ଼ ଦୁଃଖରେ ସଙ୍ଗାତ—
କବିସୂର୍ଯ୍ୟ. ସଙ୍ଗୀତ ।]

ସାଇତା ଯି(ହେ)ବା—ଦେ. କି—(ସାଇତିବା କ୍ରିୟାର କର୍ମବାଚ୍ୟରୂପ)—
Sāitā ji(he)bā ସୁରକ୍ଷିତ ହେବା—To be stored.
সাইত হওয়া; जमा होना

ସାଇତା ସାଇତି—ଦେ. ବ—ସୁରକ୍ଷଣ ଓ ସଞ୍ଚୟ—Storing and
Sāitā sāiti সাইত স্নূক जमा उमा preserving.

ସାଇତି—ପ୍ରାଦେ ( ବାଲେଶ୍ୱର ) ବ—ଅନୁକୂଳ—Auspicious
Sāiti beginning.

ସାଇତିବା—ଦେ. କି—(ସ. ସ୍ଥାୟିତ୍ୱ ବା ସଞ୍ଚିତ)—୧ । କୌଣସି
Sāitibā ପଦାର୍ଥକୁ ଯତ୍ନ ପୂର୍ବକ ସଞ୍ଚୟ କରିବା—1. To store
সাইত করা सजाकर रखना with care. [ଉ—ସ୍ୱାମୀ
ବୋଇଲେ ଏ ନ ହୁଇ ଏ କାଳକୁ । ମାଣ୍ଡି, ଘରେ ସାଇତି
ରଖ ନେଇ ସ୍ନାନକୁ । କୃଷ୍ଣସିଂହ. ମହାଭାରତ. ସ୍ୱର୍ଗ ।]
୨ । ସୁରକ୍ଷିତ କରିବା—2. To preserve. ୩ ।
ଭବିଷ୍ୟତ ବ୍ୟବହାରାର୍ଥ ସଞ୍ଚାଇବା—3. To keep or
preserve a thing for future use. ୪ । କାହାର
ଜିମାରେ ବା ହେପାଜତରେ ରଖିବା—4. To keep a
thing in one's custody. ୫ । ଯତ୍ନ ନେବା—
5. To take care of. ୬ । କୌଣସି ବ୍ୟକ୍ତିକୁ
ଭରଣପୋଷଣ ପୂର୍ବକ ଯତ୍ନରେ ରଖିବା; ପୋଷିବା—
ବাখা पालना 6. To maintain and take care of a
person.

ସାଇନ୍—ବୈଦେ. ବ (ଇଂ)—୧ । ଚିହ୍ନ—1. Sign. ୨। (ଅଧିକନ୍ତ,
Sāin ତ୍ରିକୋଣମିତି) ବୃତ୍ତ ଖଣ୍ଡର ଏକ ପ୍ରାନ୍ତରୁ ଟଣା ଯାଇଥିବା
সাইন্ ବ୍ୟାସ ଉପରକୁ ବୃତ୍ତ ଖଣ୍ଡର ଅନ୍ୟ ପ୍ରାନ୍ତ ବିନ୍ଦୁରୁ ଯେଉଁ
साइन लମ୍ବ ରେଖା ପାତିତ କରାଯାଏ—2. (Trigonometry)
The sine of an arc.
[ ଦ୍ର—'କଖ' ବୃତ୍ତ ଖଣ୍ଡର ଏକ ପ୍ରାନ୍ତ 'ଖ' ଅଟେ,
ଯେଉଁ ବ୍ୟାସ 'ଖଗ' ଟଣା ଗଲା, ଉକ୍ତ ବୃତ୍ତ ଖଣ୍ଡର
ଅନ୍ୟ ପ୍ରାନ୍ତ 'କ' ବିନ୍ଦୁରୁ ସେହି 'ଖଗ' ବ୍ୟାସ ଉପରେ
ପାତିତ ଲମ୍ବ ରେଖା 'କଙ'କୁ ଉକ୍ତ ବୃତ୍ତ ଖଣ୍ଡର 'ସାଇନ୍'

ବୋଲଯାଏ । ଉକ୍ତ ବୃତ୍ତଖଣ୍ଡର ଅନ୍ୟ ଅଂଶ 'କଗଖ' ସମ୍ବନ୍ଧେ ଉକ୍ତ 'କଘ' ରେଖାକୁ 'କୋସାଇନ୍' ବୋଲଯାଏ ସାଇନ୍ ଓ କୋସାଇନ୍ ଅପେକ୍ଷିକ ଶବ୍ଦଦ୍ୱୟ ଅଟନ୍ତି ।] ୩ । (ତ୍ରିକୋଣମିତି) କୋଣର ଏକ ବାହୁର ଗୋଟିଏ ବିନ୍ଦୁରୁ ଅନ୍ୟ ବାହୁ ଉପରକୁ ଲମ୍ବ ହୋଇ ଟଣାଯିବା ରେଖା ଓ ଯେଉଁ ବାହୁର ବିନ୍ଦୁରୁ ଲମ୍ବ ଟଣା ହୋଇଥାଏ—3. (Trigonometry) The sine of an angle. [ଦ୍ର—କଖଗ କୋଣର କଖ ବାହୁର ଘ ନାମକ ଯେ କୌଣସି ବିନ୍ଦୁରୁ ଖଗ ଉପରେ ଘଚ ଲମ୍ବ ଟଣା ହୋଇଅଛି ଘଚ, ଖଘ କୁ ଘଖଚ ବା କଖଗ କୋଣର 'ସାଇନ୍' ବୋଲଯାଏ ।]

ସାଇନ୍ ବୋର୍ଡ୍(ର୍ଡ୍)—ବୈଦେ. ବି (ଇଂ)—ଯେଉଁ ପଟାରେ ଦୋକାନ Sain bord(rd) ଅଫିସ ନାମ ବା ଜ୍ଞାତବ୍ୟ ବିଷୟମାନ ଲେଖା ସାଇନ୍ ବୋର୍ଡ୍ ବା ଚିତ୍ରିତ ହୋଇ ଦୋକାନର ବା ଅଫିସ୍‌ର साइन बोर्ड ସମ୍ମୁଖରେ ଟଙ୍ଗା ହୋଇଥାଏ—A sign-board of a shop or office.

ସାଇ ନାଚ—ଦେ. ବି—୧ । ସାଇ ଯାତ (ଦେଖ)—1. Sāi jāta Sāi nāta (See). ୨ । ସହରର ବା ଗ୍ରାମର କୌଣସି ସାଇରେ ভেয়ে নাচ, বাবোয়ারি କରାଯିବା ନାଚ—2. Dancing per- टोलेका नाच formed in any quarter of the town.

ସାଇ(ଏ)ନ୍ସ—ବୈଦେ, ବି (ଇଂ)—ବିଜ୍ଞାନ—Science. Sāi(e)ns সাইন্স साय॑स्

ସାଇ(ଏ)ନ୍ସ କ୍ଲାସ୍—ବୈଦେ. ବି (ଇଂ)—ବିଦ୍ୟାଳୟରେ ବିଜ୍ଞାନ ଶିକ୍ଷା Sāi(e)ns klās ଦିଆଯିବା ଶ୍ରେଣୀ—The science class সাইন্স কলাস of a school or college. साय॑स क्लास [ଦ୍ର—ଏହି ସାଇନ୍ସ ଶବ୍ଦ ସଙ୍ଗେ ଲେକ୍‌ଚରର୍, ପ୍ରୋଫେସର୍, ଟିଚର୍, ଲେକ୍‌ଚରର୍ ଆଦି ଇଂରାଜୀ ଶବ୍ଦ ବ୍ୟବହୃତ ହୁଏ ।]

ସାଇନ୍ସ ଲାବ(ବୋ)ରେଟରି—ବୈଦେ. ବି (ଇଂ)—ବୈଜ୍ଞାନିକ ପରୀକ୍ଷା- Sāins lāba(bo)retari ମନ୍ଦିର—Science laboratory. সাইন্স লাবোরেটারী साइन्स लाबोरेटारी

ସାଇ ପଡ଼ିଶା—ଦେ. ବି—୧ । ନିଜ ସାଇରେ ବାସ କରୁଥିବା ବ୍ୟକ୍ତି ଓ Sāi pardisā ନିକଟ ପ୍ରତିବେଶୀ—1. The residents of পড়া পড়শী, পাট পড়শী one's quarter of the town अड़ौश पड़ौश, अरोश परोश and one's close neigh- (ସାଇ ପଡ଼ୋଶୀ—ଅନ୍ୟରୂପ) bours. ୨ । ଗ୍ରାମର ବା ସହରର [ସାଇ ପଡ଼ି(ଡ଼ୋ)ଶୁଣୀ—ସ୍ତ୍ରୀ] ନିଜ ସାଇରେ ବାସ କରୁଥିବା ପ୍ରତିବାସୀ—2. A neighbour of one's quarter of the town or village. [ଦ୍ର—ଲୋ ନାଥି ରଙ୍ଗିଆ ସଜ, ମତେ ଦୂଶିକୁ ଦଶା ଗଲ ! ଦ୍ୱାରେ ଲମ୍ବରେ କାଳିବ ଶିଂସା, ଜଳୁଥିବେ ସାଇ ପଡ଼ିଶା—ଲୁପ୍ତବଚନ ।]

ସାଇପ(ପି, ଫ, ଫି)ନ୍(ନି)—ବୈଦେ. ବି ( ଇଂ. ସାଇଫନ୍ )—କୃତ୍ରିମ Sāipa(pi, pha, phi)n(ni) କେନାଲ୍ ଅଥବା ତଳେ ସଫେଇ [ସାଇପ(ପି, ଫ, ଫି)ନ୍(ନି)ପୋଲ—ଅନ୍ୟରୂପ] ନାଳର ବା ନଦୀ সাইফন পুল ଅଥବା ସ୍ରୋତ ଯିବାପାଇଁ ପ୍ରସ୍ତୁତ ବନ୍ଧାକୁହ ପୋଲ ସାଇଫନ ପୁଲ ପୋଲ ]—A syphon bridge (constructed) to let the current of another canal or river flow below the newly constructed or artificial canal.

ସାଇ ପିଲା—ଦେ. ବି—ଏକ ସାଇର ବାଳକ ବା ଶିଶୁଗଣ—The Sāi pilā boys or children of a particular পাড়ার ছেলে quarter of a town or village. टोलेका लड़का (ସାଇପିଲାଏ—ବହୁବଚନ)

ସାଇବ (ଇତ୍ୟାଦି)—ଦେ, ବି—ସାହେବ ଇତ୍ୟାଦି ( ଦେଖ ) Sāiba (etc) Sāheba (etc) ( See )

ସାଇବ ଚଣା—ପ୍ରାଦେ. (ଗଞ୍ଜାମ) ବି (ଏହା ଚଣା ଜାତୀୟ ଓ ସାହେବଙ୍କ Sāiba chaṇā ଦେଶରୁ ଆସିଥିବାରୁ)—ମଟର—Pea.

ସାଇବାଣୀ—ଦେ. ବି. ସ୍ତ୍ରୀ—ସାହେବାଣୀ ( ଦେଖ ) Sāibāṇi Sāhebāṇi ( See )

ସାଇବାନି—ଦେ. ବି ଓ ବିଣ—ସାହେବାନି ( ଦେଖ ) Sāibāni Sāhebāni ( See ) [ସାଇବାନିଆ(ଆଁ)—ଅନ୍ୟ. ବିଣ. ରୂପ]

ସାଇ ବାଲା—ଦେ. ବିଣ—ସାଇର ଅଧିବାସୀ (ବ୍ୟକ୍ତି ବା ଗୃହସ୍ଥ)— Sāi bālā Residents of any quarter of a (ସାଇ ବୁଆଲା—ଅନ୍ୟରୂପ) town or village. পাড়ার टोला वाला

ସାଇ ବୁଲା—ଦେ. ବି—ଗ୍ରାମର ବା ନଗରର ସାଇମାନଙ୍କୁ ବୁଲିବାକୁ Sāi bulā ଯିବା—Paying a visit to any quarter পাড়া বেড়ান of a town or village. [ଦ୍ର—ରଜସଂକ୍ରାନ୍ତି टोलेका घुमाव ସମୟରେ ସ୍ତ୍ରୀଲୋକମାନଙ୍କର ସାଇ ବୁଲା ହୁଏ ।] (ସାଇ ବୁଲା—ସ୍ତ୍ରୀ) ବିଣ. (ପୁଂ)—(ଗାଳି)—ଯେଉଁ ବ୍ୟକ୍ତି କର୍ମହୀନ পাড়া বেড়ানিয়া ହୋଇ ସାଇ ସାଇ ବୁଲୁଥାଏ—A do-nothtoलेमें घुमने वाला ing sort of person who passes his time by visiting different quarters of the village or town; a loafer.

ସାଇ ଭାଇ—ଦେ. ବି—୧ । ନିଜର ସାଇରେ ବାସ କରୁଥିବା ଯୋଗୁଁ Sāi bhāi ଯେ ଅପଣାର ଭାଇ ସ୍ଥାନୀୟ—1. Brethren of পাড়ার ভাই the same quarter of a town or टोला परोसी village. ୨ । (ସହରର ଶବ୍ଦ) ଅପଣା ସାଇର ସଇ ଭାଇଆ } ଅନ୍ୟରୂପ ଅଧିବାସୀ ଓ ଅପଣାର ଜ୍ଞାତି— ସାଇ ଭାୟା } 2. One's neighbours and agnates. ୩ । ସାଇ ପଡ଼ିଶା ( ଦେଖ )—3. Sāpardisā ( See )

**ସାଇ ଭେଣ୍ଡା (ଭେଣ୍ଡିଆ)**—ଦେ. ବି. ପୁଂ (ବ୍ୟଙ୍ଗ୍ୟ)—ଏକ ସାଇର ଯୁବକଗଣ—The young men of a particular quarter of a town or village.
Sāi bhendā (bhendiā)
ପାଡାର ଜୋୟାନ
टोलेका ज़वान

**ସାଇ ମଉଜ**—ଦେ. ବି—ଏକ ସାଇର ଅଧିବାସୀମାନଙ୍କ ଅନୁଷ୍ଠିତ ନୃତ୍ୟ ଗୀତ ଭୋଜନାଦି—Amusements and picnics arranged amongst the inhabitants of any quarter.
Sāi mauja
ପାଡାର ଆମୋଦ
टोलेका जलसा

**ସାଇମନ୍ କମିସନ୍**—ବୈଦେ· ବି (ଇଂ)—ଭାରତର ଶାସନ ସମ୍ବାର ବିଷୟର ତଦନ୍ତ (୧୯୨୮—୧୯୨୯ରେ) ଇଂଲଣ୍ଡରୁ ଆସିଥିବା ସାତ ଜଣ ବ୍ରିଟିଶ୍ ପ୍ରତିନିଧି (ସରଜନ୍ ସାଇମନ୍ ସାହେବ ଏହି କମିଟିର ସଭାପତି ଥିଲେ)—Simon Commission.
Sāiman kamisan
সাইমন্ কমিশন্
साइमन कमीसन

**ସାଇମନ୍ ସପ୍ତା**—ଦେ. ବି (ବ୍ୟଙ୍ଗ୍ୟ)—ସାଇମନ୍ କମିସନ୍‌ରେ ଥିବା ସାତ ଜଣ ପ୍ରତିନିଧିଙ୍କ ଉଦ୍ଦେଶ୍ୟରେ ବ୍ୟବହୃତ ବ୍ୟଙ୍ଗ୍ୟ ଉକ୍ତି—Ironical name given to the seven members of the Simon Commission. (ତୁଳନୀୟ—ଶନିସପ୍ତା)
Sāiman saptā
সাইমন সপ্তা
साईमन सप्ता

**ସାଇମନ୍ ସାତଭାୟା**—ଦେ. ବି (ବ୍ୟଙ୍ଗ ଉକ୍ତି)—ସାଇମନ୍ କମିଶନ୍‌ର ସାତ ଜଣ ସଭ୍ୟ—(Ironical) The seven members of the Simon Commission. (ତୁଳ—ସାତଭାୟା ଦେଖ)
Sāiman sātabhāyā
সাইমন সাতভেয়ে
साईमन सातभैया

**ସାଇ ମିଣିପ**—ଦେ. ବି. ପୁଂ (ଏକବଚନ)—ଏକ ସାଇର ଅଧିବାସୀ ପୁରୁଷ—A male inhabitant of a particular quarter of a town or village.
Sāi minipa
(ସାଇ ମିଣିପେ—ବହୁବଚନ)
[ସାଇ ମାଇପି—ସ୍ତ୍ରୀ· ଏକବଚନ]
(ସାଇ ମାଇପେ—ସ୍ତ୍ରୀ. ବହୁବଚନ)
পাড়ার মিন্‌সে
टोलेका मर्द

**ସାଇ ମୁଖିଆ**—ଦେ· ବି—କୌଣସି ସାଇର ମୁଖ୍ୟବ୍ୟକ୍ତି ବା ନେତା—The leader or principal person of a Sāi.
Sāi mukhiā
পাড়ার মুখ্যব্যক্তি
टोलेका मुख्यआदमी
(ସାଇ ସର୍ଦ୍ଦାର—ଅନ୍ୟରୂପ)

**ସାଇ ମୁଣ୍ଡ**—ଦେ· ବି—ସାଇର ଶେଷଭାଗ—The extremity of the rows of houses in a Sāi.
Sāi munda
পাড়ার মাথা ( ଉ—ବୃନ୍ଦାବାନ ବାବା ଘରକୁ, ସାଇମୁଣ୍ଡ ଘର ଲୋଡ଼ରୁ । ଛନ୍ଦ ।)
टोलेकि आखिर

**ସାଇ ମୁଣ୍ଡିଆ**—ଦେ· ବିଣ—ସାଇ ମୁଣ୍ଡରେ ଅବସ୍ଥିତ—Situate at one end of a 'Sāi'.
Sāi mundiā
পাড়ার শেষে অবস্থিত
टोलेकी आखिरवाला

**ସାଇ ମୂଳିଆ**—ଦେ.ବିଣ—ସାଇ ସାଇ ବା ଧାଡ଼ି ଧାଡ଼ି ହୋଇ ସଜ୍ଜିତ ବା ନିର୍ମିତ (ଗୃହାଦି)—(Houses) Arranged or constructed in rows.
Sāi mūliā
সারিবাঁধা
धारीवाला

**ସାଇ ମେଳ**—ଦେ. ବି—ଏକ ସାଇର ଅଧିବାସୀଙ୍କ ମଧ୍ୟରେ ଏକତା—Unity amongst the inhabitants of a 'Sāi'.
Sāi mela
পাড়ার মিল
टोलेका मेल

**ସାଇ ମେଳିଆ**—ଦେ. ବି—ସାଇର ଅଧିବାସୀଙ୍କୁ ଏକତ୍ର ମେଳ କରାଇ ଷଡ଼ଯନ୍ତ୍ର କରିବା ବ୍ୟକ୍ତି—A person who instigates the inhabitants of a 'Sāi' to combine. ଦେ. ବିଣ—ସାଇର ଅଧିବାସୀମାନଙ୍କୁ ମେଳ କରାଇବା (ବ୍ୟକ୍ତି)—Instigating the persons of a Sāi to combine.
Sāi meliā
পাড়ার সর্দার
टोलेके मेलिआ

**ସାଇ ଯାତ**—ପ୍ରାଦେ. (ପୁରୀ ସହର) ବି—୧ । ଗୋସାଣୀ ଯାତ; ପୁରୀ ସହରର ଭିନ୍ନ ଭିନ୍ନ ସାଇରୁ ଦଶହରା (ଶାରଦୀୟ) ଦୁର୍ଗାପୂଜା ଉପଲକ୍ଷରେ ବାହାରିବା ଦେବୀମୂର୍ତ୍ତିମାନଙ୍କ ଶୋଭାଯାତ୍ରା—1. A procession of the images of Durgā from the different quarters of the town of Puri during the Durgā Pūjā festival. [ ଦ୍ର—ଏହି ସାଇ ଯାତରେ ଦେବୀମୂର୍ତ୍ତି ବା 'ଗୋସାଣୀ' ମୂର୍ତ୍ତିମାନଙ୍କ ସଙ୍ଗେ ନାନାବିଧ ଦେବଦେବୀ ମୂର୍ତ୍ତି ଓ ଲୋକେ ନାନା ପ୍ରକାର ମଲ୍ଲ ଓ ନାଗାବେଶ ଧରି ପୁରୀର ଭିନ୍ନ ଭିନ୍ନ ସାଇରେ ବୁଲନ୍ତି ଓ ଜଗନ୍ନାଥଙ୍କ ସିଂହଦ୍ୱାର ସାମନାରେ ସବୁ ପ୍ରତିମୂର୍ତ୍ତିମାନଙ୍କର ମେଳଣ ହୁଏ । ଏହି ନାଗାମାନେ ଅନେକ ପ୍ରକାର ଅସ୍ତ୍ରଶସ୍ତ୍ର ବିଭୂଷିତ ହୋଇ ଓ ଦେହରେ ଜଅଁଳା ବଅଁଳା ଧରି ସାମାନ ଘୁରାଇ ମଲ୍ଲକ୍ରୀଡ଼ା ଦେଖାନ୍ତି । ଏହି ଯାତାରେ ଏକ ସାଇର ଯାତ୍ରା-ଦଳ ଅନ୍ୟ ସାଇକୁ ଯାଇ ସେଠାରେ ଅଶ୍ଳୀଳ ଓ ବ୍ୟକ୍ତିଗତ ଅପବାଦସୂଚକ ଗୀତମାନ ବୋଲନ୍ତି । ] ୨ । ଚଇତ୍ର ରାମନବମୀଠାରୁ ଲୋକମାନେ ନୃସିଂହ, ରାମ, ଲକ୍ଷ୍ମଣ, ସୀତା, ହାତହତିଆର-ବନାନାଗା, ମହାଦେବ, କାଳିକା, ହରଚଣ୍ଡୀ ଆଦି ବେଶ ହୋଇ ଅଶ୍ଳୀଳ ଗୀତ ଗାଇ ପୁରୀର ସାତ ସାଇରେ ବୁଲି ଯେଉଁ ଯାତ୍ରା କରନ୍ତି—2. A procession of people assuming different masks during the 'Rāma Nabamī' in the town of Puri, visiting different parts of the town, accompanied with music, rude songs and athletic displays.
Sāi jāta
(ସାଇଯାତର—ଅନ୍ୟରୂପ)

**ସାଇଯ୍ୟ (ଇତ୍ୟାଦି)**—ଗ୍ରା. ବି—ସାହାଯ୍ୟ ଇତ୍ୟାଦି (ଦେଖ)
Sāijya (etc) Sāhājya etc. (See)

**ସାଇରତ**—ବୈଦେ. ବି (ଫା)—ସଇରତ. (ଦେଖ)
Sāirāt Sairāt (See)

**ସାଇଲକ୍**—ଦେ· ବି (ନାମ)—୧ । ଇଂରାଜ କବି ସେକ୍‌ସପିଅରଙ୍କର ମର୍ଚ୍ଚାଣ୍ଟ ଅଫ୍ ଭେନିସ୍ ନାମକ ନାଟକରେ ବର୍ଣ୍ଣିତ ସୁଦ୍‌ଖୋର ଇହୁଦୀ
Sāilak
সাইলক্
साईलक

ମହାଜନର ନାମ—1. Shylock the Jew. ୨ । ( ଲକ୍ଷଣାର୍ଥ ) ନିର୍ମମ ସୁଦ୍‌ଖୋର ବ୍ୟକ୍ତି—2. A cruel usurer.

ସାଇଲି—ଗ୍ରା. କ୍ରି—ସାଇବା କ୍ରିୟାର ଭୂତ ସାମୀପ୍ୟ ବର୍ତ୍ତମାନକାଳର Sāilā ତୃତୀୟ ପୁରୁଷ ଅନାଦରାର୍ଥକ ଏକବଚନ (ସେ) ସାବିল खतमकिया 'ସାରିଲି'ର ଅନ୍ୟରୂପ—( ସାଇଲେ—ଆଦରାର୍ଥକରୂପ ଓ ବହୁବଚନରୂପ ) The other form of 'Sārilā, past tense the third person singular number of the verb Sāribā.

ସାଇଲୋ—ଦେ. ବି (ନାମ)—କଟକ ଜିଲ୍ଲାର ପ୍ରଗଣାବିଶେଷ—Sāilo The name of a Pergana in the সাইলো साईलो district of Cuttack.

ସାଇ ସାଇ—ଦେ· କ୍ରି. ବିଣ—୧। ଏକ ସାଇରୁ ଅନ୍ୟ ସାଇ, ଏହିପରି Sāi sāi ବହୁ ସାଇ—1. From one quarter of পাড়াপাড়া टोलाटोला a town or village to another; from quarter to quarter. ୨। ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ, ଏହିପରି ବହୁ ସ୍ଥାନକୁ-2. From place to place. [ ଉ—ସାଇ ସାଇ ହୋଇ ବୁଲଇ ଗୋରସ, ମଦ ବିକାଯାଏ ବସି—ଭଗ ]

(ସାଇ ସାଇ ମୂଷା—ଅନ୍ୟ ପ୍ରାଦେଶିକରୂପ) ପ୍ରାଦେ (ସମ୍ବଲପୁର, ଗଡ଼ଜାତ) ଝିଙ୍କ—Porcupine.

ସାଉ (ଇତ୍ୟାଦି)—ଗ୍ରା. ବି—ସାହୁ ଇତ୍ୟାଦି (ଦେଖ) Sāu (etc) Sahu etc (See)

ସାଉଁରିଆ—ପ୍ରାଦେ (ଲଇଥ) ବିଣ—ଶ୍ୟାମଳବର୍ଣ୍ଣ (ବ୍ୟକ୍ତି)—Sāuṅriā Of a dark complexion.

ସାଉଁଲିଆ ପୋକ—ଦେ. ବି—ମାଛିଙ୍କ ପରି ଏକଜାତୀୟ ପୋକ; ଅମ୍ବ Sāuṅliā poka ଡାହାଣୀ (ପୋକ)—A kind of flying জাযাপোকা insect. [ବି—ଏମାନେ ଅମ୍ବ ଆଦି ତୋଟାରେ ଥାଆନ୍ତି । ବର୍ଷାଦିନେ ତୋଟାରୁ ଉଡ଼ିଆସି ଘରର କାନ୍ଥରେ ଲାଗନ୍ତି ।]

ସାଉଁ ସାଉଁ—ଦେ. କ୍ରି. ବି (ଧ୍ୱନ୍ୟନୁକରଣ)—ଘୁଷୁରି ଅଦ ଜନ୍ତୁ ମଇଳା Sāuṅ sāuṅ ଅଦ ଖାଇବା ସମୟରେ ଯେଉଁ ଭଳି ନାସାଯୁକ୍ତ ঘোঁতঘোঁত घडघड ଶବ୍ଦ କରନ୍ତି—(Onomatopoeic) Nasal sound made by hogs while eating offal.

ସାଉ ଖାତ(ଖାତକ)—ଦେ. ବି (ସହଚର ଶବ୍ଦ)—ସାହୁ ଖାତକ (ଦେଖ) Sāu khāta(khātaka) Sāhukhātaka [See] সাহুখাতক महाजनखदुका ( ଉ—ଅପେ ହୋଏ ମହାଜନ ଅପେ ସାଉ ଖାତ—ପ୍ରାଚୀ ବୁଦ୍ଧକରୂପଣ ଗୀତା ।]

ସାଉ ଘର—ଦେ. ବି—ମାଲିକଙ୍କ ପରିବାର; ସାଆନ୍ତଙ୍କ ଘର—Sāu ghara Master's house or family. মহাজনের বাড়ি मालिकका घर ( ଉ—ମୁଁ ସାଉ ଘର ଗୋରୁ ଖୋଜ ଅସିଥିଲି—ଫକୀରମୋହନ ଛମାଣ ଆଠଗୁଣ୍ଠ ।)

ସାଉ(ଉ)ଟା—ଦେ. ବି—୧ । ସାଉଟିବା—Collecting; pick-Sāu(uṅ)ṭā ing up. ୨ । ଇତସ୍ତତଃ ଭୂମିରେ গুটান इकठा ଗଡ଼ିବା; ଭୂମିରେ ଲୁଣ୍ଠନ—(ସାଉଁଣ୍ଟା—ଅନ୍ୟରୂପ) 2. Rolling or wallowing ছতান लोटना on the ground. (ଉ—ସିପାଇଙ୍କ ଭୂଲରେ ଦାଡ଼ି ଅନୁସ୍ଥିତା, ଘୋଡ଼ାମାନେ ଯେ ଦେଲେ ଧୂଳରେ ସାଉଁଟା—କୃଷ୍ଣସିଂହ ମହାଭାରତ କର୍ଣ୍ଣ) গুটান इकट्‌ठा कियाहुआ ବିଣ—୧ । ସଂଗୃହୀତ—1. Gathered up. ( ଉ—ସାଉଁଟା କାଣ୍ଡ କ

(ସାଉଟୀ—ସ୍ତ୍ରୀ. ବିଣ) ଯୁଝିବୁ ପାଏ ?) ୨ । ଯେ ଗୋଟାଏ—2. One who gathers up or collects [ ବ୍ୟ—ଏହି ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ଲାଗେ । ଯଥା—ଘଣି ସାଉଁଟା, ଗୋବର ସାଉଟା; ଅମ୍ବ ସାଉଁଟା ।)

ସାଉ(ଉ)ଟା(ଟେ)ଇବା—ଦେ. କ୍ରି (ସାଉଟିବାକ୍ରିୟାର ଣିଜନ୍ତରୂପ )—Sāu(uṅ)ṭā(ṭe)ibā The causative form of গুটান इकट्ठाकरना Sāuṭibā—ଅନ୍ୟଦ୍ୱାରା ସାଉଟିବା କାର୍ଯ୍ୟ କରାଇବା—To collect through others.

ସାଉ(ଉଁ)ଟା ଦେବା—ଦେ. କ୍ରି—ଇତସ୍ତତଃ ଗଡ଼ିବା—To roll on Sāu(uṅ)ṭā debā the ground; to be strewn here (ସାଉଣ୍ଟାଦେବା—ଅନ୍ୟରୂପ) and there. ছড়িযেপড়া लोटना

ସାଉ(ଉଁ)ଟା ସାଉ(ଉଁ)ଟି—ଦେ· ବି—ଗୋଟିଏ ଗୋଟିଏ କରି Sāu(uṅ)ṭā sāu(uṅ)ṭi ଗୋଟାଇ ବହୁ ପଦାର୍ଥ ଗୋଟାଇବା, গুটিয়ে গুটিয়ে জড করা କ୍ରିୟା—Act of gathering or इकट्‌ठा उकट्‌ठा picking up many things one by one.

ସାଉ(ଉ)ଟି(ଟୀ)—ଦେ. ବି. (ପୁଂ ଓ ସ୍ତ୍ରୀ)—(ଯାହାକୁ ପିଲାମାନେ Sāu(uṅ)ṭi(ṭī) ଗୋଟାଇ କରି ଆଣିଥାଆନ୍ତି; ଅତଏବ ଯାହାର (ସାଉଣ୍ଟି[ଣ୍ଟୀ]—ଅନ୍ୟରୂପ) ବିଶେଷ ମୂଲ୍ୟ ନାହିଁ)—ଅପତ୍ୟଶୀଙ୍କୁ ଦିଆଯିବା ଗୋଟିଏ ନାମ—A name given to children whose elders have predeceased their birth. ବିଣ. ସ୍ତ୍ରୀ (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ କুড়ুনী ହୁଏ; ଯଥା—ଘଣିସାଉଁଟୀ)—ସଂଗ୍ରହକାରିଣୀ—ସାଉଟାର इकट्ठाकरनेवाली ସ୍ତ୍ରୀଲିଙ୍ଗ—Feminine of words ending with 'Sāunṭā' a verbal adjective.

ସାଉ(ଉଁ)ଟିବା—ଦେ. କ୍ରି—(ସ. ସମୁତ୍ପାତ; ସାଯୂହ) ୧ । ଇତସ୍ତତଃ Sāu(uṅ)ṭibā ବିକ୍ଷିପ୍ତ ପଦାର୍ଥକୁ ସଂଗ୍ରହ କରିବା—1. To গুটান इकट्ठाकरना collect things strewn here and there.

[ ଦ୍ର—ଯେଉଁସ୍ଥାନେ ନୃପ ହୋଇଥିଲେ ଠିଆ
ସେ ସ୍ଥାନେ ଲୀଳା—କମଳ,
ପକାଇ ସାଉଁଟି ଅଣି ପୂଣି ଦେଣ୍ଟୁ
ବୋଲଇ ଗଣ୍ଡମଣ୍ଡଳ ।
ଗଉଡ଼ଗୋଉ—ଶର୍ମିଷ୍ଠା ।]

୨ । ଭୂଇଁରୁ ଖୁଣ୍ଟିବା; ଗୋଟାଇବା—2. To pick up. ୩ । ଏକତ୍ର ଟେକି ଧରିବା—3. To hold up by lifting. [ ଦ୍ର—ଫିଟି ପଡ଼ି ଥିବାରୁ ଅଯତ୍ନେ ଖାଉଟି, ଡେବର କରେ ତାହା କାଙ୍କଣ ସାଉଁଟି । କୃଷ୍ଣସିଂହ, ମହାଭାରତ. ବନ ।] ୪ । ଲେଟିବା; ଭୂମିରେ ଗଡ଼ିବା—4. To roll on the ground.

ସାଉ(ଇଁ)ଟିବା(ଲା) କାଣ୍ଡ ଯୁଦ୍ଧକୁ ନ ପାଏ(ଯୋଗାଏ)—ଦେ. ପ୍ରବଚନ
Sāu(uñ)ṭibā(lā) kāṇḍa juddhaku na pāe (jogāe) —ଅନ୍ୟର ବ୍ୟବହୃତ ବସ୍ତୁରେ କାର୍ଯ୍ୟ ଚଳେ ନାହିଁ—No work can be done with articles once used by som one and then picked up.
[ ଦ୍ର—ଅନ୍ୟ ଲୋକର ବ୍ୟବହୃତ କାଣ୍ଡ, ଯାହା ରଣଭୂମିରେ ପଡ଼ିଥାଏ, ତାକୁ ଯେବେ କୌଣସି ବ୍ୟକ୍ତି ସଂଗ୍ରହ କରି ଆଣିଥାଏ, ଏପରି ଅକାମିକା ଶରଦ୍ୱାରା ଯୁଦ୍ଧ କାର୍ଯ୍ୟ ଚଳେ ନାହିଁ; ସେହିପରି ଗୋଟାଇ ଅଣିବ ପଦାର୍ଥରେ କାମ ଚଳେ ନାହିଁ ।
ଯେଉଁ ବ୍ୟକ୍ତିର ବା ଯୋଦ୍ଧାର ନିଜର ଶରତୂଣୀରେ ଶର ନ ଥାଏ ସେ ଯୁଦ୍ଧଭୂମିରେ ଅନ୍ୟ ଯୋଦ୍ଧାର ବ୍ୟବହୃତ ଓ ପରିତ୍ୟକ୍ତ ଶରକୁ ସଂଗ୍ରହ କରି ଯୁଦ୍ଧ କରିବାରୂପ ଅସମ୍ଭବ ଓ ହାସ୍ୟାସ୍ପଦ ଅବସ୍ଥାରେ ଏ ପ୍ରବଚନ ବୋଲାଯାଏ ।]

ସାଉଣ୍ଟିଆ—ପ୍ରାଦେ: (ଗଞ୍ଜାମ) ବି—ଗଞ୍ଜାମର ଉଦ୍ୟାନ ଖଣ୍ଡରେ ବାସ
Sāuṇṭiā କରୁଥିବା ଅଧମ ଅଧିବାସୀ ଶୂଦ୍ର ଜାତିବିଶେଷ—A class of Śūdras living in the Udyāna khaṇḍa of the Ganjam district. [ ଦ୍ର—ଏମାନେ ଓଡ଼ିଆ ଓ ଏମାନଙ୍କ ମାତୃଭାଷା ଓଡ଼ିଆ ଅଟେ ।]

ସାଉତା—ପ୍ରାଦେ (ବଲାଙ୍ଗିର ପାଟଣା) ବିଣ—ସାଇତା ଯାଇଥିବା—
Sāutā Stored up for future use.

ସାଉ(ଇଁ)ତି—ପ୍ରାଦେ (କେନ୍ଦୁଝର) ବି—ଗଡ଼ଜାତଅଧିବାସୀ ଅନାର୍ଯ୍ୟ
Sāu(uñ)ti ଜାତିବିଶେଷ—A class of non-aryan residents of the Orissa States. [ ଦ୍ର—ଏମାନେ କେନ୍ଦୁଝର ରାଜ୍ୟରେ ଅଛନ୍ତି । ଉଚ୍ଚ ବର୍ଣ୍ଣର ହିନ୍ଦୁମାନେ ଏମାନଙ୍କ ହାତରୁ ଜଳ ଗ୍ରହଣ କରନ୍ତି । ଏମାନେ ଶାନ୍ତିପ୍ରିୟ ଓ କୃଷିଜୀବୀ । ଏମାନଙ୍କର ଅଗ୍ରଜ ବ୍ୟବହାର, ଗୁଙ୍ଗୁନାଟ, ଗ୍ରାମ ମଧ୍ୟରେ ଅଭ୍ୟାଗତ ପାଇଁ ନିର୍ଦ୍ଦିଷ୍ଟ ବସା(ଡେରା)ଗୃହ, ଗ୍ରାମ ସମ୍ପର୍କୀୟ ପରାମର୍ଶ ସଭା, ଅବିବାହିତ ବ୍ୟକ୍ତିମାନଙ୍କ ରାତି ଯାପନ ପାଇଁ ମଣ୍ଡଅ ବା ଦରବାର ଘର ଜମିଣ ଅବ ଭୂୟାଁମାନଙ୍କ ପରି । କେନ୍ଦୁଝର 'ବୋଡ଼ା-ଜାଲ'ର ମହାପାତ୍ର ଜମିଦାର ଏମାନଙ୍କ ପ୍ରଧାନ ଦଳପତି ।]

ସାଉଡିବା—ପ୍ରାଦେ. (ବଲାଙ୍ଗିର ପାଟଣା) କ୍ରି—ସାଇତିବା (ଦେଖ)
Sāutibā Sāitibā (See)

ସାଉଳ—ଦେ. ବିଣ—ଖୋସାମଦିଆ—Flattering (person).
Sāuḷā [ ଦ୍ର—ଗର୍ବ ହଂସ କରି ସାଉଳ ମତି, ସେଠାଙ୍କ
ଖোসামুদে খুসামদী ବୋଲି ଅଛନ ପ୍ରକୃତି—ପ୍ରାଚୀ. ପରଚେ-ଗୀତା ।]

ସାଉ(ଇଁ)ଳା—ଦେ.ବି (ସଂ.ସମତଳ)—୧ (ଦେଖ) ସାଉଁଳିବା କାମ—
Sāu(uñ)ḷā The act of smoothing up (the
চুল আঁচড়ান, सीटना hair). ୨ । ଗୁହ୍ଟ; ତୋଷାମୋଦ—
খোসামোদ खुसामद 2. Flattery. ବିଣ—୧। ପାନିଅରେ ଭୁଣ୍ଡିଅ
ফিবান (চুল) सीटा हुआ ହୋଇ ମସୃଣ କରାଯାଇଥିବା (କେଶ)—
1. Combed and made smooth (hair). ୨। ଚିକଣ; ମଖମଲ ପରି ମସୃଣ ଓ ସ୍ନିଗ୍ଧ—2. Oily and velvety.
সাওৰ ୩ । (ସଂ ) ଶ୍ୟାମଳ ବା କୃଷ୍ଣବର୍ଣ୍ଣବିଶିଷ୍ଟ—3. Of
सँवला black or blue colour. ୪ । ଯେ କେଶବେଶାଦି
ସାଉ(ଇଁ)ଳୀ } ସ୍ତ୍ରୀ ପ୍ରସାଧନକାର୍ଯ୍ୟ ନିଜକୁ ଛାଟ ଚିକଣ କରି-
ସାଉ(ଇଁ)ଳେଇ } ଥାଏ—4. A person who is particular in his toilet and dress; beaux.
খোসামুদে ୫ । ସାଉଳିଆ; ଯେଉଁ ବ୍ୟକ୍ତି କୋମଳ ଓ ଖୋସାମଦିଆ
खुसामदी କଥା କହେ—5. Oily-tongued; smooth-tongued. ୬ । ସାଉଳିଆ; କୋମଳ ଓ ଖୋସାମଦିଆ ( କଥା )—6. Smooth and flattering (words).

ସାଉ(ଇଁ)ଳା(ଳେ)ଇବା—ଦେ. କ୍ରି—୧ । ସାଉଳିବା କ୍ରିୟାର
Sāu(uñ)ḷā(le)ibā ଣିଜନ୍ତରୂପ—1. The causative
খোসামদ করা form of Sāuḷibā. ୨ । ସାଉଳେଇବା;
खुसामद करना ଗୁହ୍ଟି କରିବା—2. To flatter.

ସାଉ(ଇଁ)ଳା କଥା—ଦେ. ବି—କୋମଳ ଓ ଗୁହ୍ଟି ବାକ୍ୟ; ସାଉଳା
Sāu(uñ)ḷā kathā କଥା—Smooth and flattering
খোসামুদে কথা खुसामदी बात words.

ସାଉ(ଇଁ)ଳିଆ—ଦେ. ବିଣ (ସଂ. ଶ୍ୟାମଳ)—୧ । ଶ୍ୟାମଳବର୍ଣ୍ଣବିଶିଷ୍ଟ—
Sāu(uñ)ḷiā শ্যামল साँवला 1. Dark complexioned.
চিক্কণ चिक्कन ୨ । (ସଂ. ଶ୍ରମ) ମସୃଣ ଓ ଚିକଣ—
[ ସାଉ(ଇଁ)ଳୀ—ସ୍ତ୍ରୀ ] 2. Smooth and oily.
খোসামুদে खुसामदी ୩। ଗୁହ୍ଟିଯୁକ୍ତ(ବାକ୍ୟ)—3. Flattering.
সাঙ্গা ପ୍ରାଦେ (ପୁରୀ) ବି—ଗୋଟିଏ ଲେଖାଏଁ ବଳଦର ସ୍ୱାମୀ ଦୁଇ
सुपटैती ଜଣ ବ୍ୟକ୍ତିଙ୍କର ନିଜ ନିଜ ଜମିରେ ଯଥାକ୍ରମେ ଦିନେ ଦିନେ ହଳ ହଳ ବୁଲାଇବାର ପଦ୍ଧତି—The system of cultivating each other's lands under the arrangement that one man should lend his only bullock to the other and vice versa every alternate day. [ ଦ୍ର—ଦୁଇ ଜଣଙ୍କର ପ୍ରତ୍ୟେକଙ୍କର ସ୍ୱତନ୍ତ୍ର ଜମି ଅଛି ଓ ହଳ ଲଙ୍ଗଳ ଅଛି; କିନ୍ତୁ ଗୋଟିଏ ଲେଖାଏଁ ବଳଦ ଅଛି । ଅତ

ପ୍ରଥମ ବ୍ୟକ୍ତି ଜଣକ ଅନ୍ୟ ଜଣକଠାରୁ ବଳଦଟି ମାଗି ନେଇ ତାକୁ ଆପଣା ବଳଦ ସଙ୍ଗେ ଯୋଚି ନିଜ ଜମିରେ ହଳ କଲେ; ତାପରେ ପୁଣି ଦ୍ୱିତୀୟ ବ୍ୟକ୍ତି ତା ଜମିରେ ପ୍ରଥମ ବ୍ୟକ୍ତିର ବଳଦ ଆଣି ଯୁଗ କଲେ । ଏହି ପଦ୍ଧତିକୁ ସାଉଳଅ ବୋଲିଥାଏ । ]

ସାଉ(ଉଁ)ଳିବା—ଦେ. କ୍ରି (ସଂ. ସମତଳ)—୧। କେଶଗୁଡ଼ିକୁ ପାଳଆ ଦ୍ୱାରା Sāu(uñ)libā ବା କଙ୍କତଲଦ୍ୱାରା ମସୃଣ କରିବା—1. To smooth ( the hair with the comb or palm ). ୨। ତେଲିଆ କେଶକୁ କୁଣ୍ଡାଇ ଚକଣ କରିବା—2. To comb oiled hair into smoothness. ( ଯଥା—ସାଉଁଳିଲ ଯେବାଳେ ଜଣେ କେଶ ଧରି—କୃଷ୍ଣସିଂହ. ମହାଭାରତ. ଆଦି । ) ୩। କୋମଳ ଓ ଗୂଢ଼ କଥାଦ୍ୱାରା ମୁଗ୍ଧ କରିବା; ସାଉଁଲେଇବା—3. To charm a person by oily words and flattery. ୪। ଗେଲ୍ହା କରିବା—4. To pet a person; to fondle.

চিকণ করা, ফুসলান · चिकना करना · ফুসলান · फुसलाना

ସାଉଳୀ—ଦେ. ବି (ସଂ. ଶଷ୍କୁଲୀ)—ପତଳି ପିଠା— Sāuḷi Thin pastry cake. সাউলী पूरी (ଯଥା—ମୁଗ ସାଉଳୀ ।)

ସାଉ(ଉଁ)ଲେଇ କରି କଥା କହିବା—ଦେ. କ୍ରି—୧ । କୋମଳ ଓ Sāu(uñ)lei kari kathā kahibā ମଧୁର ବାକ୍ୟ କହିବା- ফুসলান 1. To speak softly and sweetly; to फुसलाकर बोलना inveigle. ୨ । ଗୁହାରି କରିବା—2. To flatter. ୩ । ଗେଲ କରିବା—3. To pet; to fondle.

ସାଏ—ବୈଦେ. ବି (ଫା)—୧ । ବାକ୍ୟର ବା ପ୍ରସ୍ତାବର ଅନୁମୋଦନ— Sāe 1. Approval of a proposal. ୨ । ସମାପ୍ତି— সাএ 2. Completion; conclusion. (ଯଥା—ସାଇ साय ହୋଇଲା ସାଯୁ ।) ୩ । ସମ୍ମତି—3. Consent. সাএ ବିଣ—୧ । ସମାପ୍ତ—1. Finished ୨ । ସମ୍ମତ; ଅନୁ- समाप्त ମୋଦିତ—2. Approved; agreed to.

ସାଏଁ କରି—ପ୍ରାଦେ. (ପାଟଣା) କ୍ରି. ବିଣ—ଝଟ୍ କରି; ଝଟିତ— Sāeñ kari Very soon; quickly.

ସାଏଁ କଲା—ପ୍ରାଦେ. (ଲିପିଅ) କ୍ରି. ବିଣ—ଜଲଦି; ଶୀଘ୍ର— Sāeñ kalā Quickly; very soon.

ସାଏଁ ସାଏଁ—ପ୍ରାଦେ. (ପାଟଣା) ଅ—ଶାଇଁ ଶାଇଁ ( ଦେଖ ) Sāeñ sāeñ Śāiñ śāiñ ( See )

ସାଏକ—ଗ୍ରା. ବି (ସଂ. ସାୟକ)—ସାୟକ ( ଦେଖ ) Sāeka Sāyaka ( See )

ସାଏ କରିବା—ଦେ. କ୍ରି—୧ । କଥାକୁ ବା ପ୍ରସ୍ତାବକୁ ଅନୁମୋଦନ Sāe karibā କରିବା—1. To approve of a propo- সাএ দেওয়া sal. ୨ । ଏକମତ ହେବା; କଥାକୁ 'ଏକଲ୍' सहमत होना କରିବା—2. To say 'ditto' to a thing. ସାଏ କବା ୩ । ସମାପନ କରିବା—3. To finish or accom- समाप्त करना plish a matter.

ସାଏତ୍ ଧରିବା—ଦେ. କ୍ରି (ଅ. ସାଅତ୍=ଅବକାଶ; ସୁଅବସର; Sāet dharibā ମୁହୂର୍ତ୍ତ)—୧। ଶୁଭ ମୁହୂର୍ତ୍ତ ଗଣି ସ୍ଥିର କରିବା— সাইত ধরা 1. To fix or find out an auspici- सायत धरना ous time. ୨ । ସୁଅବସର ଠିକ୍ କରିବା— 2. To find out an opportune moment. (ଯଥା—ଏହି ସମୟରେ ଗଣକ ଯାଇଁ ସାଏତ୍ ଧରି, କହିଲ ଏହିକ୍ଷଣି ପ୍ରୟାଣ କରିବେ ସାରବର କେଶରୀ । ବ୍ରଜନାଥ. ସମର ତରଙ୍ଗ ।)

ସାଏଦ୍(ଧ)—ପ୍ରାଦେ. (ସମ୍ବଲପୁର) ବିଣ—ସାଧ୍ୟ— Sāed(dh) Controllable.

ସାଏଦ୍(ଧ) କରିବା—ପ୍ରାଦେ. (ସମ୍ବଲପୁର) କ୍ରି—୧ । ସାଧ୍ୟ କରିବା; Sāed(dh) karibā ଆୟତ୍ତ କରିବା—1. To bring under control. ୨ । ଦାଉ ସାଧିବା—2. To take revenge. ୩ । ହଇରାଣ କରିବା—3. To put one to trouble; to harass.

ସାଏ ଦେବା—ଦେ. କ୍ରି—କୌଣସି ପ୍ରସ୍ତାବକୁ ବା କଥାକୁ ଅନୁମୋଦନ Sāe debā କରିବା—To approve of a proposal; সাএ দেওয়া सम्मति देना to pass a proposal.

ସାଏନ୍ତ—ଗ୍ରା. ବି—ସାଅନ୍ତ ( ଦେଖ ) Sāenta Sā-ānta ( See ) (ଯଥା—ଘରେ ସାଏନ୍ତ ଜନ୍ମିଅଛି ଯେବେ, ଏତେ ଘରଣୀ ବାହୁଁନି ତେବେ । ପ୍ରାଚୀ. ଘରଚେ ଗୀତା ।)

ସାଏନ୍ସ୍ (ଇତ୍ୟାଦି)—ବୈଦେ. ବି (ଇଂ)—ସାଇନ୍ସ୍ ଇତ୍ୟାଦି (ଦେଖ) Sāens (etc) Sāins etc. ( See )

ସାଏପ୍—ପ୍ରାଦେ. (ସମ୍ବଲପୁର) ବି (ସଂ. ଶାପ) —ଅଭିଶାପ— Sāep Curse; imprecation.

ସାଏଲ୍—ବୈଦେ. ବି (କତରିଆ) (ଫା. ସାୟଲ୍)—୧ । ଆପତ୍ତିକାରୀ— Sāel 1. Objector. ୨ । ମକଦ୍ଦମା ସମ୍ପର୍କୀୟ ସମ୍ପତ୍ତିର সাএল্ ଦାବିଦାର—2. A claimant to the subject- सायल् matter of dispute in a case.

ସାଏସ୍ତା ଖାଁ—ଦେ. ବି ( ନାମ )—୧ । ମୋଗଲ ସମ୍ରାଟ୍ ଆରଙ୍ଗ- Sāestā khāñ ଜେବଙ୍କର ଜଣେକ ସେନାପତି—1. Name সাএস্তা খাঁ of a Mahomedan general of the सायेस्ता खाँ Moghal Emperor Aurangzeb. [ଦ୍ର—ଏ ବଙ୍ଗଳାର ଜଣେ ବିଖ୍ୟାତ ମୋଗଲ ଶାସନକର୍ତ୍ତା ଥିଲେ । ଏହାଙ୍କର ପ୍ରକୃତ ନାମ ତାଲିବ୍ ଓ ମିର୍ଜା ମୁରାଦ୍ । ୧୬୪୧ ସାଲରେ ମୋଗଲ ସମ୍ରାଟଙ୍କ ପ୍ରଧାନ ମନ୍ତ୍ରୀ ଉଜୀର ଆସଫ୍‌ଖାଁଙ୍କ ମୃତ୍ୟୁ ହେବାରୁ ସମ୍ରାଟ ସାହାଜାହାନ୍ ଏହାଙ୍କୁ ଉଜିର ପଦରେ ନିଯୁକ୍ତ କଲେ । ପୂର୍ବେ ଏ ବେରାରର ଶାସନ- କର୍ତ୍ତା ଥିଲେ । ୧୬୫୨ ଖ୍ରୀଷ୍ଟାବ୍ଦରେ ଏ ଗୁଜରାଟ ବିଜୟାର୍ଥ ପ୍ରେରିତ ହେଲେ ଓ ୧୬୫୮ ସାଲରେ ସାହାଜାହାନଙ୍କ ମୃତ୍ୟୁ

ପରେ ଏ ମରହଟ୍ଟା ରାଜା ଶିବାଜୀଙ୍କୁ ଦମନ କରିବା ନିମନ୍ତେ ୧୬୫୯ ସାଲରେ ଆରଙ୍ଗଜେବଙ୍କ ଦ୍ୱାରା ମହାରାଷ୍ଟ୍ରକୁ ପ୍ରେରିତ ହୋଇଥିଲେ । ପୁନାରେ ଅବସ୍ଥାନ କରିବା ସମୟରେ ଶିବାଜି ରାତ୍ରିକାଳରେ ହଠାତ୍ ଏହାଙ୍କୁ ଆକ୍ରମଣ କରି-ଥିଲେ । ଏଥିରେ ବହୁତ କ୍ଷତିଗ୍ରସ୍ତ ହୋଇ ସାଏସ୍ତା ପଳାଇ ଯିବା ସମୟରେ ଶିବାଜିଙ୍କ ତରବାରି ଆଘାତରେ କେତେ ଗୋଟି ଅଙ୍ଗୁଠି ହରାଇଥିଲେ । ୧୬୬୨ ସାଲରେ ଏ ବଙ୍ଗଳାର ଶାସନକର୍ତ୍ତା ନିଯୁକ୍ତ ହୋଇଥିଲେ ଓ ଏହାଙ୍କ ଅମଳରେ ବଙ୍ଗଳାରେ ମୋଗଲ୍‌ଶାସନ ଦୃଢ଼ ହୋଇଥିଲା । ଏ ଢାକାରେ ବଙ୍ଗର ରାଜଧାନୀ ସ୍ଥାପନ କରିଥିଲେ । ଏହାଙ୍କ ଅମଳରେ ବଙ୍ଗଦେଶରେ ଏକ ମହଣ ଚାଉଳର ମୂଲ୍ୟ ଦୁଇ ଅଣା ଥିଲା । ଏ ଖୁବ୍ ଚତୁର ଓ ଉତ୍କୃଷ୍ଟ ଶାସକ ଥିଲେ । ୧୬୯୪ ଖ୍ରୀଷ୍ଟାବ୍ଦରେ ୯୩ ବୃଦ୍ଧ ବର୍ଷ ବୟସରେ ଏହାଙ୍କର ମୃତ୍ୟୁ ହୋଇଥିଲା । ସାଜାହାନଙ୍କ ରାଜତ୍ୱକାଳରେ ଏ ଆଗ୍ରାରେ ଓ ଆଲ୍ଲାହାବାଦରେ ଯଥାକ୍ରମେ ଉଦ୍ୟାନ ଓ ମସଜିଦ୍ ନିର୍ମାଣ କରାଇଥିଲେ । ଆଲ୍ଲାହାବାଦର ମସଜିଦ୍ ୧୮୫୭ ସାଲର ସିପାହୀ ବିଦ୍ରୋହ ପରେ ଧ୍ୱସ୍ତ ହେଲା—ବିଶ୍ୱକୋଷ] ୨ । ( ଲକ୍ଷଣାର୍ଥ ) ସାଏସ୍ତା ଖାଁଙ୍କ ପରି ପ୍ରବଳ ପ୍ରତାପୀ ବ୍ୟକ୍ତି—2. (figurative) A very powerful or mighty personage (like Sāyesta Khān).

ସାଓ—ପ୍ରାଦେ. (ଛତିଶଗଡ଼) ବି—ତେଲି—
Sāo An oilman.

ସାଂଖ୍ୟ (ଇତ୍ୟାଦି)—ସଂ. ବି—ସାଙ୍ଖ୍ୟ ଇତ୍ୟାଦି ( ଦେଖ )
Sāṁkhya (etc) Sāṅkhya etc ( See )

ସାଂଖ୍ୟ କାରିକା—ଦେ. ବି—କପିଳ ମୁନିଙ୍କ ସାଂଖ୍ୟ ଦର୍ଶନ—The
Sāṁkhya kārikā system of Hindu philosophy
সাংখ্যকারিকা of sage Kapiḷa. ( ଉ—ଏଥି ସଂଶୟ କର
সাংখ্যকারিকা ନାହିଁ, ସାଂଖ୍ୟକାରିକା ଅଛି କହି—ପ୍ରାଚୀ· ପୂର୍ଣ୍ଣତମ ଚନ୍ଦ୍ରୋଦୟ । )

ସାଂଗ୍ରାମିକ—ସଂ. ବିଣ ଓ ବି—ସାଙ୍ଗ୍ରାମିକ (ଦେଖ)
Sāṁgrāmika Sāṅgrāmika (See)

ସାଂଘାତିକ—ସଂ. ବିଣ—ସାଙ୍ଘାତିକ (ଦେଖ)
Sāṁghātika Sāṅghātika (See)

ସାଂଦୃଷ୍ଟିକ—ସଂ. ବି—ସାନ୍ଦୃଷ୍ଟିକ (ଦେଖ)
Sāṁdṛushṭika Sāndṛushtika (See)

ସାଂବତ୍ସରିକ(ଇତ୍ୟାଦି)—ସଂ. ବିଣ—ସାମ୍ବତ୍ସରିକ ଇତ୍ୟାଦି (ଦେଖ)
Sāṁbatsarika (etc) Sāmbatsarika etc (See)

ସାଂବାଦିକ—ସଂ. ବିଣ—ସାମ୍ବାଦିକ (ଦେଖ)
Sāṁbādika Sāmbādika (See)

ସାଂବାଳି—ଦେ· ବି—ଶୁଆଁ ବାଳ ପୋକ—
Sāmbāḷi Caterpillar.
[ସାଂବାଳ(ଳ)ଥ—ଅନ୍ୟରୂପ]
সুয়াঁপোকা শুআ

ସାଂଯାତ୍ରିକ—ସଂ. ବିଣ. ପୁଂ (ସଂଯାତ୍ରା+ଇକ)—ଜାହାଜଦ୍ୱାରା ଦ୍ୱୀପାନ୍ତର
Sāṁjātrika ଗମନ—Going to another island
(ସାଂଯାତ୍ରିକା—ସ୍ତ୍ରୀ) in a vessel on a voyage.
ବି—ପୋତବଣିକ (ଅମର)—A merchant trading with the help of ships; a voyaging merchant.

ସାଂଯୁଗୀନ—ସଂ. ବିଣ·ପୁଂ (ସଂଯୁଗ=ଯୁଦ୍ଧ+କୁଶଳାର୍ଥେ ଈନ)—ଯୁଦ୍ଧ-
Sāṁjugīna କୁଶଳ—Dexterous in war; skil-
(ସାଂଯୁଗୀନା—ସ୍ତ୍ରୀ) ful in fight.

ସାଂରାବିଣ—ସଂ. ବି (ସଂରାବିନ୍+ଅ)—ହାଟରେ ଜାତ ହେବା ଉଚ୍ଚ
Sāṁrābiṇa ଶବ୍ଦ ( ମୁଗ୍ଧବୋଧ ବ୍ୟାକରଣ )—
The high sound rising from the crowd in a market.

ସାଂଶୟିକ—ସଂ.ବିଣ. ପୁଂ (ସଂଶୟ+ଇକ)—୧ । ସଂଶୟଯୁକ୍ତ;ସନ୍ଦେହାନ-
Sāṁśayika Doubtful; doubting; suspicious;
(ସାଂଶୟିକା—ସ୍ତ୍ରୀ) sceptic. ୨ । ଅସ୍ଥିରବୁଦ୍ଧି—
2. Fickle-minded. ୩ । ଅକୃତସଙ୍କଳ୍ପ—
3. Having formed no resolve. ୪ ।
ଅକୃତନିଶ୍ଚୟ—4. Unsettled; hesitating.

ସାଂସ୍ରାବିଣ—ସଂ. ବି (ସଂସ୍ରାବିଣ+ଇନ)—ବୃକ୍ଷରୁ ବୃକ୍ଷକୁ ବ୍ୟାପିକରି
Sāṁsrābiṇa ରସର ସମ୍ୟକ୍ ସ୍ରାବ (ସଂକ୍ଷିପ୍ତସାର)—
Flow of juice or sap from one tree to another.

ସାଂସର୍ଗିକ—ସଂ· ବିଣ ( ସଂସର୍ଗ+ଇକ )—୧ । ସଂସର୍ଗ ସମ୍ବନ୍ଧୀୟ—
Sāṁsargika 1. Relating to company.
୨ । ସଂସର୍ଗଜ—2. Born of association.

ସାଂସାରିକ—ସଂ. ବି ( ସଂସାର+ଇକ )—ସଂସାର ସମ୍ବନ୍ଧୀୟ—
Sāṁsārika Relating to the world; worldly.
(ସାଂସାରିକତା—ବି)

ସାଂସିଦ୍ଧିକ—ସଂ. ବିଣ (ସଂସିଦ୍ଧି+ଇକ)—ସ୍ୱାଭାବିକ—
Sāṁsiddhika Natural; innate; congenital.

ସାଂସ୍ଥାନିକ—ସଂ. ବିଣ (ସଂସ୍ଥାନ+ଇକ)—୧ । ସଂସ୍ଥାନସମ୍ବନ୍ଧୀୟ—
Sāṁsthānika 1. Relating to one's subsistence.
୨ । ସମାନଦେଶୀୟ; ଏକଦେଶୀୟ—2. Of the same place or country.

ସାଙ୍କୁଁଳିବା—ପ୍ରାଦେ ( ସମ୍ବଲପୁର ) କ୍ରି—୧ । ଉଞ୍ଛିବା—
Sāṅuṅlibā 1. To scrape off. ୨ । ପାଲିସ କରିବା-
ସାଂଚ୍ଲିବା }—ଅନ୍ୟରୂପ 2. To polish. ୩ । ମସୃଣ
ସାଂଛିଲିବା } କରିବା—3. To smooth.

ସାଁକୁର୍—ପ୍ରାଦେ (ସମ୍ବଲପୁର) ବିଣ (ମୂଳ.ଏହି ଅର୍ଥରେ ହିନ୍ଦୀ. ସାଂକର)
Sāṅkur ( ସଂ. ସଙ୍କୀର୍ଣ୍ଣ )—ସଙ୍କୀର୍ଣ୍ଣ; ଅପ୍ରଶସ୍ତ—Narrow.

ସାଁଜ୍ଞା( ଙ୍ଗ୍ୟା,ଯ୍ଞାଁ )—ଗ୍ରା. ବି. ( ସଂ. ସଂଜ୍ଞା )—ବଂଶୋପାଧି—
Sāñjñā ( ṅgyā,yāñ ) Family title or cognomen.

ସାଁଗ୍ଭ—ପ୍ରାଦେ (ଲହ୍ଅ) ବଣ—ସଚ୍ଚ; ସତ୍ୟବାଦୀ—
Sāñchā Truthful.

ସାଁଜ—ପ୍ରାଦେ (ମେଦିନୀପୁର) ବି—ସନ୍ଧ୍ୟା; ସଞ୍ଜବେଳ—
Sāñj Evening.

ସାଁଝ—ପ୍ରାଦେ (ବସ୍ତର) ବି—ସନ୍ଧ୍ୟା; ସଞ୍ଜବେଳ—
Sāñjha Evening.

ସାଁତାଳ—ଦେ. ବି—ସାନ୍ତାଳ (ଦେଖ)
Sāñtāḷa Sāntāḷa (See)

ସାଁପ୍—ପ୍ରାଦେ (ବସ୍ତର) ବି (ଭୁଲ. ହି. ସାପ୍)—ସାପ—
Sāñp Snake; serpent.

ସାକଂ—ସଂ. ଅ (ସହ+ଅକ୍ ଧାତୁ=ଯିବା+ଅମ୍)—ସହ; ସହିତ;
Sākaṁ ସଙ୍ଗେ (ଅମର)—With; together with.
(ସାକମ୍—ଅନ୍ୟରୂପ) [ଦ୍ର—ଏହି ଶବ୍ଦର ବ୍ୟବହାର ଓଡ଼ିଆରେ ଦୃଷ୍ଟ ହୁଏ ନାହିଁ।]

ସାକଠ—ଦେ. ବିଣ (ସଂ ଶଠ; ଶାକ୍ତ)—୧। ଶଠ—1. Deceitful.
Sākaṭa ୨। ଦୁଷ୍ଟ—2. Wicked. (ଭ—କପଟୀ
শঠ शठ, साकट ଲମ୍ପଟୀ ଯେ ଲୋକ, ସାକଠ ପରେ ଯେ ହିଂସକ—ପଶୋକାନ୍ତ ପ୍ରେମଭକ୍ତିବ୍ରହ୍ମଗୀତା।]

ସାକଲ୍ୟ—ସଂ. ବି (ସକଳ+ଭାବ. ଯ)—୧। ସମୁଦାୟ—
Sākalya 1. Entirety; wholeness. ୨। ହୋମାର୍ଥ ମିଶ୍ରିତ ତିଳାଦିଦ୍ରବ୍ୟ—2. Sessamum and other articles mixed for the Homa.

ସାକାଙ୍କ୍ଷ—ସଂ. ବିଣ. ପୁଂ (ସ+ଆକାଙ୍କ୍ଷା; ସହାର୍ଥ ବହୁବ୍ରୀହି)—
Sākāṅksha ୧। ଆକାଙ୍କ୍ଷାଯୁକ୍ତ; ସସ୍ପୃହ—1. Desirous.
(ସାକାଙ୍କ୍ଷା—ସ୍ତ୍ରୀ) ୨। ଲାଳାୟିତ—2. Hankering after.
(ନିରାକାଙ୍କ୍ଷ—ବିପରୀତ) ୩। ଲୁବ୍ଧ—3. Covetous; lustful.

ସାକାର—ସଂ. ବିଣ (ବହୁବ୍ରୀହି; ସ=ସହିତ+ଆକାର)—ଆକାର-
Sākāra ଯୁକ୍ତ—Having shape or form; corporeal.
(ନିରାକାର—ବିପରୀତ)

ସାକାର ପୂଜକ—ସଂ. ବି ଓ ବିଣ ପୁଂ—ଈଶ୍ୱରଙ୍କୁ ମୂର୍ତ୍ତିରୂପେ ଯେ
Sākāra pūjaka ପୂଜାକରେ—Idol worshipper.
(ସାକାରପୂଜିକା—ସ୍ତ୍ରୀ)

ସାକାର ପୂଜା—ସଂ. ବି—ସାକାରୋପାସନା (ଦେଖ)—
Sākāra pūjā Sakāropāsanā (See)

ସାକାର ବାଦ—ସଂ. ବି—ଈଶ୍ୱର ଆକାର ବିଶିଷ୍ଟ ଅଟନ୍ତି, ଏବଂଭୂତ ମତ-
Sākāra bāda The tenet that God has definite shapes; idolatry.

ସାକାର ବାଦୀ—ସଂ. ବି ଓ ବିଣ. ପୁଂ—(ସାକାରବାଦନ୍ ଶବ୍ଦ)—ସାକାର-
Sākāra bādi ବାଦ ମତାବଲମ୍ବୀ—A follower of the tenet of idolatry.
(ସାକାରବାଦିନୀ—ସ୍ତ୍ରୀ)

ସାକାରୋପାସକ—ସଂ. ବି ଓ ବିଣ. ପୁଂ—ସାକାରପୂଜକ (ଦେଖ)—
Sākāropāsaka Sākārapūjaka (See)
(ସାକାରୋପାସିକା—ସ୍ତ୍ରୀ)

ସାକାରୋପାସନା—ସଂ. ବି—ଈଶ୍ୱରଙ୍କୁ ମୂର୍ତ୍ତି ରୂପରେ ପୂଜା କରିବା—
Sākāropāsanā Idol worship; idolatry.

ସାକ(ଖି)ନ୍(ନି)—ବୈଦେ. ବିଣ(କଚିତ୍‌ଅ) (ଅ. ସାକ୍ଳନ=ନିବାସୀ)
Sāki(khi)n(ni) (ଅନ୍ୟ ଶବ୍ଦ ପୂର୍ବେ ଲାଗେ)—ଅମୁକ ସ୍ଥାନର
সাকিন साकिन ନିବାସୀ—Inhabitant of; resident of.
(ଯଥା—ସାକିନ୍ ସିନ୍ଧେଶ୍ୱରପୁର) [ଦ୍ର—ଏଥିର ସାଙ୍କେତିକ। ସା।] ବି—ନିବାସ; ବାସସ୍ଥାନ—Residence; place where a man lives; a person's address. (ଭ—ହାଲ ସାକିନ୍ କହିକ। ଫକୀରମୋହନ ଛମାଣ. ଆଠଗୁଣ୍ଠ)

ସାକିନ୍(ନି) ହାଲ୍—ବୈଦେ. ବିଣ (କଚିତ୍‌ଅ) (ଫା. ଅନ୍ୟ ସ୍ଥାନବାଚକ
Sākin(ni) hāl ଶବ୍ଦ ପୂର୍ବେ ଲେଖାଯାଏ)—ହାଲ୍ ସାକିନ୍;
সাকিন হাল ଅଧୁନା (ଅମୁକ ସ୍ଥାନରେ) ବାସ କରୁଥିବା—
साकीन हाल At present residing at. [ଦ୍ର—ଏଥିର ସାଙ୍କେତିକ। ସା। ହା। କମା। ସା। ଢା।]

ସାକୀ—ବୈଦେ. ବି. ପୁଂ ଓ ସ୍ତ୍ରୀ (ଅ)—୧। ଯେଉଁ ଲୋକ ମଦ-
Sākī ପିଇଲାକୁ ମଦ ଆଣି ଯୋଗାଏ—1. One who
সাকী provides wine to drinkers. ୨। ପ୍ରେମିକ;
साकी ପ୍ରେମିକା—2. Lovers.

ସାକୁଚ (ଇତ୍ୟାଦି)—ଦେ. ବି—ସାଙ୍କୁଚ ଇତ୍ୟାଦି (ଦେଖ)
Sākucha (etc) Sāṅkucha etc. (See)
শাঁকোচ सांकुच

ସାକୁ(କୂ)ତ—ସଂ. ବିଣ (ସ=ସହ+ଆକୂତ=ଅଭିପ୍ରାୟ)—
Sāku(kū)ta ଅଭିପ୍ରାୟଯୁକ୍ତ; ସାଭିପ୍ରାୟ—Having
(ସାକୂତା—ସ୍ତ୍ରୀ) intention or desire.

ସାକୁରୁଣ୍ଡ—ସଂ. ବି (ବୈଦ୍ୟକ)—ବୃକ୍ଷ ବିଶେଷ (ରକ୍ତକର୍ଣ୍ଣ)—
Sākuruṇḍa Name of a medicinal tree.
ଅନ୍ୟ ସଂ ନାମ—ତିକ୍ତଫଳ, କୁରୁଣ୍ଡ, ବକଟ, ବସ୍ତ୍ରଭୂଷଣ, କଟୁକ ଫଳ। [ଦ୍ର—ଏହାର ଗୁଣ କଷାୟତ୍ୱ, ରୁଚିକାରିତ୍ୱ, ଦୀପନତ୍ୱ, ଧାରକତ୍ୱ, ଶ୍ଳେଷ୍ମାବାତନାଶିତ୍ୱ, ଲଘୁତ୍ୱ, ବସ୍ତ୍ରରଞ୍ଜନତ୍ୱ। ଏ ଗଛକୁ ଗୁଜରାଟରେ 'ସକୁରୁଣ୍ଡର' ବୋଲାଯାଏ।]

ସାକୁଲା—ଦେ. ବି (ସଂ. କାକୁତି)—୧। ସାକୁଲାଇବା (କର୍ମ ଦେଖ)—
Sākulā 1. Inveigling. (See) ୨। କାକୁତି ମିନତି—
কাকুতিমিনতি 2. Soliciations. ବିଣ—୧। କୋମଳ
ঠাণ্ডা (କଥା)—1. Soft (words). ୨। ଶଠ (ଉକ୍ତି)—
2. Flattering. ୩। (ପୁଂ) କାକୁତିମିନତିକାରୀ—
(ସାକୁଲୀ, ସାକୁଲେଇ—ସ୍ତ୍ରୀ) 3. Solicitous. ୪। ସାକୁଲିଆ (ଦେଖ)—4. Sākuliā. (See)

ସାକୁଲା(ଲେ)ଇବା—ଦେ. କ୍ରି—୧। କୋମଳ କଥା କହି କୌଶଳି
Sākulā(le)ibā ବ୍ୟକ୍ତିକୁ ମୁଗ୍ଧ କରିବା—1. To charm a
বাবু বাছা করা, গাএ হাত person by soft words.
বুলান, সজিএ কজিএ কথা বলা ୨। ଶଠ କରିବା—2. To

ଫୁସଲାନ, फुसलाना flatter. ୩ । ଫୁସୁଲାଇବା—3. To inveigle ୪ । କାକୁତି ମିନତି କରିବା—
4. To pray humbly; to solicit.

ସାକୁଲି ସାକୁଲି—ଦେ. ବି—ଚାଟୁ ଓ ସ୍ନିଗ୍ଧ କଥା କହିବା—Inveig-
Sākulā sākuli ling. [ ଭି—ଅଙ୍କ ପାହନ୍ତ କଥା ଶୁଣି ଫୁସଲା ଫୁସଲି କଥ ଲ ସାକୁଲି ସାକୁଲି ଭଳ—ଫକୀରମୋହନ· फुसला फुसली ଗଳ୍ପସ୍ୱଳ୍ପ । ]

ସାକୁଲିଆ—ଦେ. ବିଣ. ପୁଂ—୧ । ଯେ କୋମଳ କଥା କହେ—
Sākulīā 1. One who speaks soft and sweet
মিষ্টভাষী words. ୨ । ମଧୁରଭାଷୀ—2. Sweet-
मिठा बोलने वाला speaking. ୩ । ସ୍ନିଗ୍ଧଭାଷୀ—3. Oily-
ସାକୁଲି } ସ୍ତ୍ରୀ tongued. ୪ । ଚାଟୁଭାଷୀ—4. Flat-
ସାକୁଲେଇ } tering. ବିଣ—ସ୍ନିଗ୍ଧ; ମଧୁର (ଭାଷା)—
Sweet; oily ( words ).

ସାକୁଲ୍ୟ—ସଂ· ବି ( ସକୁଳ+ଭାବ. ଯ )—ଏକ କୁଳରେ ଜାତ ହେବା
Sākulya ଯୋଗୁଁ ଦୁଇ ଜଣଙ୍କ ମଧ୍ୟରେ ସମ୍ପର୍କ—Agnatic relationship; relationship between two persons born in the same family.

ସାକେତ—ସଂ· ବି ( ସ=ସହ+ଆ+କିତ୍ ଧାତୁ+ଅଧି· ଅ )—
Sāketa ଦଶରଥଙ୍କ ରାଜଧାନୀ; ଅଯୋଧ୍ୟାନଗର ( ଶବ୍ଦ-
(ସାକେତନ—ଅନ୍ୟରୂପ) ରତ୍ନାବଳୀ )—Another name for the town of Ajodhyā.

ସାକେତକ—ସଂ. ବିଣ. ଓ ବି ( ପୁଂ ) ( ସାକେତ+ବାସୀ ଅର୍ଥରେ
Sāketaka କ )—ସାକେତବାସୀ, ଅଯୋଧ୍ୟାବାସୀ ( ହୁ. ଶ )—
Resident of Ajodhyā

ସାକ୍ତୁକ—ସଂ. ବି ( ସକ୍ତୁ=ଛତୁଆ+କ=ସକ୍ତୁକ+ଅ )—୧ ।
Sāktuka ସକ୍ତୁସମୂହ—1. A mass or quantity of corn flour. ୨ । ଯବ ( ସିଦ୍ଧାନ୍ତ କୌମୁଦୀ )—
2. Barely. ବିଣ—ସକ୍ତୁସମ୍ବନ୍ଧୀୟ—
Relating to corn flour.

ସାକ୍ଷ ( ଇତ୍ୟାଦି )—ଦେ. ବି—ସାକ୍ଷ୍ୟ ଇତ୍ୟାଦି ( ଦେଖ )
Sāksha ( etc ) Sākshya etc ( See )

ସାକ୍ଷର—ସଂ. ବିଣ ( ସହାର୍ଥ ବହୁବ୍ରୀହି; ସ+ଅକ୍ଷର )—୧ । ଅକ୍ଷର-
Sākshara ଯୁକ୍ତ—1. Having letters. ୨ । ଅକ୍ଷର ସମ୍ବଳିତ—2. Consisting of letters. ୩ । ପୁଂ. ବୈଦଗ୍ଧ; ବିଦ୍ୱାନ୍—3. Literate; learned. ଦେ.ବି ( ସଂ. ସ୍ୱାକ୍ଷର )—୧ । ସ୍ୱନାମ ଲିଖନ ( ବିଶ୍ୱକୋଷ )—
1. Signing of one's name. ୨ । ସହି; ସ୍ୱାକ୍ଷର—
(ସାକ୍ଷରୀ—ସ୍ତ୍ରୀ. ବିଣ) 2. Signature.

ସାକ୍ଷର କରିବା—ଦେ. କି (ସଂ. ସ୍ୱାକ୍ଷର+କୃ ଧାତୁ )—ନିଜର ନାମକୁ
Sākshara karibā ଦସ୍ତଖତ କରିବା—To sign one's
স্বাক্ষর করা दस्तखत करना name.

ସାକ୍ଷସୂତ୍ର କମଣ୍ଡଳୁ—ସଂ. ବିଣ (ସ=ସହିତ+ଅକ୍ଷସୂତ୍ର+କମଣ୍ଡଳୁ)—
Sākshasūtra kamaṇḍalu ଅକ୍ଷସୂତ୍ର ଓ କମଣ୍ଡଳୁଧାରୀ ( ସନ୍ନ୍ୟାସୀ )—( an anchorite ) Holding a string of beads and a water-pot called Kamaṇḍalu.

ସାକ୍ଷାତ୍—ସଂ· ଅ ( ସ=ସହ+ଅକ୍ଷି=ଚକ୍ଷୁଃ+ଅତ୍. ଧାତୁ=ଗମନ
Sākshāt କରିବା+କ୍ୱିପ୍; ଅକ୍ଷି ଶବ୍ଦ ସ୍ଥାନରେ ଅକ୍ଷ )—
୧ । ସ୍ୱୟଂ—1. Self. ୨ । ପ୍ରତ୍ୟକ୍ଷରେ; ସମ୍ମୁଖରେ ( ଅମର )—2. Directly; in front; before one's eyes. ୩ । ମୁଖ୍ୟ—3. Direct; immediate. ୪ । ପ୍ରତ୍ୟକ୍ଷୀଭୂତ—4. ( in person ) Within one's veiw. ୫ । ସାମନା ସାମ୍ନି—
5. Face to face. ୬। ମୂର୍ତ୍ତିମାନ୍—6. Corporeal. ୭ । ସମାନ; ସଦୃଶ; ତୁଲ୍ୟ ( ଅମର )—
সাক্ষাৎ 7. Equal; similar. ଦେ. ବି—୧। ସାକ୍ଷାତ୍‌କାର;
साक्षात ଭେଟ—1. Meeting; interview. ୨ । ଦେଖା; ଦେଖିବା; ଦର୍ଶନ—2. Seeing; visit.

ସାକ୍ଷାତ୍ କରିବା—ଦେ. କି—କୌଣସି ବ୍ୟକ୍ତିଙ୍କୁ ଦେଖା କରିବା—
Sākshāt karibā To pay a visit to a person;
সাক্ষাৎ করা to have an interview with a person.
साक्षात करना [ ଦ୍ରୁ—ସାହେବମାନଙ୍କ ସଙ୍ଗେ ସାକ୍ଷାତ୍ କରିବ ପୂର୍ବରୁ ତାଙ୍କ ଦ୍ୱାରରେ ଥିବା ଚପରାସୀ ହାତରେ ଦର୍ଶକଙ୍କୁ ନିଜର ନାମ ଓ ପରିଚୟ ଲେଖାଥିବା ଖଣ୍ଡେ ଦର୍ଶନ କାର୍ଡ଼ ପଠାଇବାକୁ ହୁଏ । ]

ସାକ୍ଷାତ୍ କର୍ତ୍ତା—ସଂ. ବିଣ ( ସାକ୍ଷାତ୍ କର୍ତ୍ତୃ. ଶବ୍ଦ )—ସାକ୍ଷାତ୍‌କାରୀ; ଯେ
Sākshāt-karttā ଦେଖା କରେ—Having an inter-
(ସାକ୍ଷାତ୍ କର୍ତ୍ତ୍ରୀ—ସ୍ତ୍ରୀ) view with; visiting; interviewing.

ସାକ୍ଷାତ୍‌କାର—ସଂ· ବି ( ସାକ୍ଷାତ୍+କୃ ଧାତୁ+ଭାବ. ଅ )—ପ୍ରତ୍ୟକ୍ଷୀ-
Sākshāt-kāra କରଣ; କୌଣସି ବ୍ୟକ୍ତିଙ୍କ ସଙ୍ଗେ ଦେଖା ବା ଭେଟ—Interview with any one.

ସାକ୍ଷାତ୍ କାରଣ—ଦେ. ବି—ମୁଖ୍ୟ କାରଣ; ପ୍ରତ୍ୟକ୍ଷ କାରଣ—
Sākshāt kāraṇa Direct cause; immediate cause.
সাক্ষাৎ কারণ साक्षात कारण

ସାକ୍ଷାତ୍‌କାର ଲାଭ—ସଂ. ବି—ଦର୍ଶନଲାଭ—Having an
Sākshāt-kāra lābha interview with

ସାକ୍ଷାତ୍‌କାର ଲାଭ କରିବା—ଦେ. କି—କୌଣସି ବ୍ୟକ୍ତିଙ୍କର ଦର୍ଶନ
Sākshāt-kāra lābha karibā ପାଇବା—To have
সাক্ষাৎকার লাভ করা access to a person for an
साक्षातकार होना interview.

ସାକ୍ଷାତ୍‌କାରୀ - ସଂ. ବିଣ ( ସାକ୍ଷାତ୍‌କାରିନ୍ ଶବ୍ଦ )—ସାକ୍ଷାତ୍ କର୍ତ୍ତା
Sākshāt-kārī ( ଦେଖ )—Sākshāt-karttā (See).
[ ସାକ୍ଷାତ୍‌କାରିଣୀ—ସ୍ତ୍ରୀ ]

**ସାକ୍ଷାତ୍ ଘଟନା**—ସଂ. ବ—ପ୍ରତ୍ୟକ୍ଷୀଭୂତ ଘଟନା—An event
Sākshāt ghaṭanā which has actually been seen by a person.

**ସାକ୍ଷାତ୍ ଦେବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ ଦେଖା ଦେବା—
Sākshāt debā To grant an interview to a
সাক্ষাৎ দেওয়া **साक्षात देना** person.

**ସାକ୍ଷାତ୍ ପାଇବା (ଲଭିବା)**—ଦେ. କ୍ରି—ସାକ୍ଷାତ୍କାର ଲାଭ କରିବା;
Sākshāt pāibā (labhibā) କୌଣସି ବ୍ୟକ୍ତିଙ୍କର ଦେଖା
সাক্ষাত পাওয়া বা ଦର୍ଶନ ପାଇବା—To have access to
**साक्षात पाना, साक्षात लाभकरना** a person for an in-
(ସାକ୍ଷାତ୍ ମିଳିବା [ହେବା]—ଭିନ୍ନଶବ୍ଦରୂପ) terview; to have an opportunity of having an interview with a person.

**ସାକ୍ଷାତ୍ ପ୍ରମାଣ**—ସଂ. ବ—ପ୍ରତ୍ୟକ୍ଷୀଭୂତ ପ୍ରମାଣ—
Sākshāt pramāṇa Direct evidence.

**ସାକ୍ଷାତ୍ ଯମ**—ଦେ. ବ (ସଂ. ସାକ୍ଷାତ୍ ଯମଃ)—୧ । ସ୍ୱୟଂ
Sākshāt jama ଯମଦେବ—1. The God of death
সাক্ষাৎ যম in person. ୨ । ଦେଖିବାକୁ ଠିକ୍ ଯମପରି ଭୟଙ୍କର
**साक्षात यम** ଓ ଉଗ୍ରରୂପ—2. Fierce in appearance like the God of death; an impersonation of the God of death. ୩ । ଯମପରି ନିଷ୍ଠୁର—3. Cruel as the God of dath.

**ସାକ୍ଷାତ୍ ଲାଭ**—ଦେ. ବ—ସାକ୍ଷାତ୍କାର ଲାଭ—
Sākshāt lābha Having an interview with a
সাক্ষাৎ লাভ **साक्षात लाभ** person.

**ସାକ୍ଷାତ୍ ସମ୍ବନ୍ଧ**—ଦେ. ବ—ପ୍ରତ୍ୟକ୍ଷୀଭୂତ ସମ୍ବନ୍ଧ—
Sākshāt sambandha Direct connection or
সাক্ষাৎ সম্বন্ধ **साक्षात सम्बन्ध** relation.

**ସାକ୍ଷାତ୍ ହେବା**—ଦେ. ବ—୧ । କୌଣସି ବ୍ୟକ୍ତିଙ୍କ ସଙ୍ଗେ ଭେଟ
Sākshāt hebā ହେବା—1. Having an inter-
সাক্ষাৎ হওয়া view or meeting (with a person).
**साक्षात होना** ୨ । ଦୁଇ ଜଣଙ୍କର ପରସ୍ପର ଭେଟ ହେବା—
2. (Two persons) Meeting together; having an interview with each other.

**ସାକ୍ଷାତ**—ଦେ. ବ—ସାକ୍ଷାତ୍କାର (ଦେଖ)—Sākshātkāra.
Sākshāta (See) କ୍ରି. ବଣ—୧ । ସ୍ୱୟଂ—1. In
সাক্ষাত person; personally. (ଉ—ଅସ୍ତ୍ର ମନ୍ତ୍ର ସହିତେ
**साक्षात** ସାକ୍ଷାତ ଦେବମାନେ । କୃଷ୍ଣସିଂହ. ମହାଭାରତ. ବନ ।)
୨ । ସମ୍ମୁଖରେ; ସାମନାରେ—2. In front of
(ଉ—ସାକ୍ଷାତ ଦେଖିଲାପରି, ସାକ୍ଷୀ ହେବାକୁ କାହାର ।
କବିସମ୍ରାଟ. ଉପେନ୍ଦ୍ରଭଞ୍ଜ. ଚମ୍ପୂ. ସଂଗୀତ ।)

**ସାକ୍ଷାତରେ**—ଦେ. କ୍ରି. ବଣ (ସଂ. ସାକ୍ଷାତ୍)—୧ । ସ୍ୱୟଂ—
Sākshātare 1. In person. ୨ । ସମ୍ମୁଖରେ—2. In
সাক্ষাতে front of. ୩ । ଉପସ୍ଥିତିରେ—3. In the pre-
**साक्षातमें** sence of. ୪ । ସାମନା ସାମନି—4. Face to face.

**ସାକ୍ଷାତରେ କହିବା**—ଦେ. କ୍ରି—(କୌଣସି ବିଷୟ କୌଣସି ବ୍ୟକ୍ତିଙ୍କୁ)
Sākshātare kahibā ସ୍ୱୟଂ କହିବା—To tell any-
সাক্ষাতে বলা **साक्षातमें कहना** thing to anyone in person.

**ସାକ୍ଷାତେ(ନ୍ତେ)**—ଦେ. ଅ (ସଂ. ସାକ୍ଷାତ୍)—୧ । ସ୍ୱଚକ୍ଷୁରେ—
Sākshāte(nte) 1. With one's own eyes. (ଉ—
সাক্ষাতে ଏହି ମତେ ସାକ୍ଷାତେ ଅମ୍ଭେ ଦେଖିଅଛୁଁ । କୃଷ୍ଣସିଂହ.
**साक्षाते** ମହାଭାରତ. ବନ ।) ୨ । ସ୍ୱୟଂ—2. In person.
(ଉ—ସାକ୍ଷାତେ କୃଷ୍ଣ ହୋଇ ବିଜେ ପାଣ୍ଡୁକ ଗୃହେ ।
କୃଷ୍ଣସିଂହ. ମହାଭାରତ. ଆଦି ।) ୩ । ଦେଖିବାକୁ ଠିକ୍
ଅବିକଳ—3. Exactly similar in appearance to (so and so); looking exactly like (so and so) ୪ । ପ୍ରତ୍ୟକ୍ଷ ଭାବରେ—4. Directly, to one's direct knowledge. (ଉ—ଏବେ
ସେହି କଥା ସାକ୍ଷାତେ ଗଲା ଜଣା, କିମ୍ପା ତୁମ୍ଭେ କାହିଁ
କରୁଛ ବୃଥା ବଣା । କୃଷ୍ଣସିଂହ. ମହାଭାରତ. ବନ ।)

**ସାକ୍ଷାଦ୍ଦର୍ଶନ**—ସଂ. ବ—୧ । ନିଜର ଆଖିରେ ଦେଖିବା—
Sākshāddarśana 1 Seeing with one's own
(ସାକ୍ଷାଦ୍ଦୃଷ୍ଟି—ଅନ୍ୟରୂପ) eyes. ୨ । ସାମନା ସାମନି ଦେଖା—
2. Direct vision.

**ସାକ୍ଷାଦ୍ଦର୍ଶୀ**—ସଂ. ବଣ. ପୁଂ (ସାକ୍ଷାତ୍+ଦର୍ଶନ୍=ସାକ୍ଷାଦ୍ଦର୍ଶିନ୍
Sākshāddarśī ଶବ୍ଦ; ୧ମା. ୧ବ)—ଯେ ସ୍ୱୟଂ ଦେଖିଥାଏ—
(ସାକ୍ଷାଦ୍ଦର୍ଶିନୀ—ସ୍ତ୍ରୀ) Having personally seen (anything); having a personal interview with.

**ସାକ୍ଷାଦ୍ଦ୍ରଷ୍ଟା**—ସଂ. ବଣ. ପୁଂ (ସାକ୍ଷାଦ୍ଦ୍ରଷ୍ଟୃ ଶବ୍ଦ)—ସାକ୍ଷାଦ୍ଦର୍ଶୀ (ଦେଖ)
Sākshāddrashṭā Sākshāddarśī. (See)
(ସାକ୍ଷାଦ୍ଦ୍ରଷ୍ଟ୍ରୀ—ସ୍ତ୍ରୀ)

**ସାକ୍ଷାଲ୍ଲାଭ**—ଦେ. ବ—ସାକ୍ଷାତ୍କାର ଲାଭ; ଦେଖା ମିଳିବା—
Sākshāllābha Having an interiew with.
সাক্ষাৎ লাভ **साक्षात लाभ**

**ସାକ୍ଷି**—ଦେ. ବ (କଚେରୀ) (ସଂ. ସାକ୍ଷୀ)—୧ । ସାକ୍ଷୀ (ଦେଖ)—
Sākshi 1. Sākshī. (See) ୨ । (ସଂ. ସାକ୍ଷ୍ୟ) ସାକ୍ଷ୍ୟ
সাক্ষী **गवाही** (ଦେଖ)— 2. Sākshya. (See)
সাক্ষ **गवाह**

**ସାକ୍ଷି ଅଲଗର୍ଦ୍ଦା**-ଦେ. ବ—ସାକ୍ଷୀ ଦେବାକୁ ଥିବାବେଳେ ସ୍ଥାନରେ ଠିଆ
Sākshi alagardā ହୋଇ ସାକ୍ଷ୍ୟ ଦିଏ—The witness
সাক্ষির কাঠগড়া **गवाहीका कठघेरा** box.

**ସାକ୍ଷି ଇଜା(ଝା)ର**—ଦେ. ବ (କଚେରୀ) —ସାକ୍ଷି ଜବାନବନ୍ଦି (ଦେଖ)
Sākshi ijā(jhā)ra Sākshi jabān bandi. (See)
( ସାକ୍ଷି ଇଜାହାର—ଅନ୍ୟରୂପ )
সাক্ষি এজাহার **गवाही इजहार**

ସାକ୍ଷି କରିବା—ଦେ॰ କ୍ରି (କଟରଅ)—୧ । କୌଣସି ବ୍ୟକ୍ତିକୁ କୌଣସି
Sākshi karibā ଘଟଣାର ସାକ୍ଷୀରୂପେ ପ୍ରକାଶ କରିବା ବା
সাক্ষি কবা ତଲବ କରିବା—1. To cite a person as a
**गवाही करना** witness. ୨ । କୌଣସି ବ୍ୟକ୍ତିକୁ କୌଣସି
ଦଲିଲରେ ସାକ୍ଷୀ ପକାଇବା—2. To have a person as an attesting witness to a document; to get a person to attest a document.

[ ଦୃ—ଏକ ସାକ୍ଷି ସାକ୍ଷି ନୁହେଁ, ଏକ ଆଖି ଆଖି ନୁହେଁ—ପ୍ରବଚନ ।

ଯେଉଁପରି କଣା ବ୍ୟକ୍ତିକୁ ଚକ୍ଷୁଷ୍ମାନ୍ ବୋଲିପାରିବ ନାହିଁ, ସେହିପରି ଜଣେ ସାକ୍ଷୀଦ୍ୱାରା କୌଣସି ବିଷୟ ପ୍ରମାଣିତ ହେଲା ବୋଲି ବୋଲିପାରି ପାରେ ନାହିଁ ।]

ସାକ୍ଷି ଖରଚ(ଚ୍ଚା)—ଦେ॰ ବି (କଟରଅ)—ସମନ ଜରିପିବା ସାହିତ
Sākshi kharacha(chā) ଯାତାୟାତ ଖରଚ ପାଇଁ ପକ୍ଷ ଦ୍ୱାରା
সাক্ষী খরচ ଦାଖଲ ହେବା ଧନ—Expenses depo-
**गवाही खर्च** sited in a court for summoning a witness.
( ସାକ୍ଷି ଖର୍ଚ୍ଚ [ର୍ଚ୍ଚା]—ଅନ୍ୟରୂପ )

ସାକ୍ଷି ଖୁ(ଖୋ)ରାକି—ଦେ॰ ବି ( କଟରଅ )—ଅଦାଲତକୁ କୌଣସି
Sākshi khu(kho)rāki ସାକ୍ଷୀକୁ ସମନ କରିବା ବ୍ୟକ୍ତି ଉକ୍ତ
সাক্ষী খোরাকী ସାକ୍ଷୀର ଖାଇବା ଖରଚ ପାଇଁ ଯେଉଁ ଖରଚ
**गवाही खोराकी** ସମନ ଜାରିବେଳେ ଅଦାଲତରେ ଜମା କରେ
—Diet money deposited in court for a witness whom a party summons.

ସାକ୍ଷି ଗଭା(ଗଭାଇ, ଗଭେଇ, ଗୁହା)—ଦେ॰ ବି ( କଟରଅ; ଏକାର୍ଥକ
Sākshi gabhā(gabhāi, gabhei, guhā) ଯୁଗ୍ମତର
সাক্ষী সাবুত ଶବ୍ଦ, ସଂ॰ ସାକ୍ଷୀ ଓ ଫା. ଗଭାଇ)—୧ । ସାକ୍ଷୀ—
**साक्षी गवाही** 1. Witness. ୨ । ସାକ୍ଷୀ ଓ ପ୍ରମାଣ—
2. Evidence and testimony of a witness.

ସାକ୍ଷି ଗୁଜାରିବା—ଦେ॰ କ୍ରି (କଟରଅ)—କୌଣସି ବ୍ୟକ୍ତିକୁ ଆପଣାର
Sākshi gujāribā ପକ୍ଷ ସମର୍ଥନ କରିବା ପାଇଁ ହାକିମଙ୍କ
সাক্ষী গুজবান ସମ୍ମୁଖରେ ଜବାନବନ୍ଦି କରାଇବା—To cause
**गवाही गुजारना** a person to give evidence as witness on one's behalf.

ସାକ୍ଷି ଗୁଜୁରିବା—ଦେ॰ କ୍ରି ( କଟରଅ )—ଅଦାଲତରେ ସାକ୍ଷୀରୂପେ
Sākshi gujuribā ଜବାନବନ୍ଦୀ ଦେବା—To depose as
সাক্ষী গুজরা **गवाही गुजरना** a witness in a case.

ସାକ୍ଷି ଗୋ(ଜୁ, ଜୋ)ଟା(ଟେ)ଇବା—ଦେ॰ କ୍ରି—କୌଣସି ମକଦ୍ଦମାର
Sākshi go(ju, jo)ṭā(ṭe)ibā ସାକ୍ଷୀମାନଙ୍କୁ ସଂଗ୍ରହ କରିବା—
সাক্ষী জোটান **गवाही जुटाना** To collect evidence or witnesses for a case.

ସାକ୍ଷି ଜବାନବନ୍ଦି—ଦେ॰ ବି ( କଟରଅ )—୧ । ସାକ୍ଷୀ ଅଦାଲତରେ
Sākshi jabānabandi ସାକ୍ଷ୍ୟ ଦେବା—1. Testimony
সাক্ষী জবানবন্দী or deposition given by a wit-
**गवाही जबानबंदी** ness. ୨ । ଅଦାଲତଙ୍କଦ୍ୱାରା ଲିପିବଦ୍ଧ
ହୋଇଥିବା ସାକ୍ଷି-ପ୍ରଦତ୍ତ ପ୍ରମାଣ—2. Evidence or deposition of a witness recorded by the court.

ସାକ୍ଷି ଜେରା—ଦେ॰ ବି ( କଟରଅ )—ଯେଉଁ ପକ୍ଷ କୌଣସି ସାକ୍ଷୀକୁ
Sākshi jerā ତଲବ କରିଥାଏ ତାହାର ବିପକ୍ଷ ଓକିଲ
সাক্ষী জেরা ଆଦିଙ୍କଦ୍ୱାରା ଉକ୍ତ ସାକ୍ଷୀକୁ ପଚାରି ଯିବା କୂଟପ୍ରଶ୍ନ—
**गवाहीकी जीरह** Cross examination of a witness.

ସାକ୍ଷିଣ—ଦେ॰ ବି ( ପ୍ରାଚୀନ ପ୍ରୟୋଗ; ସଂ॰ ସାକ୍ଷିନ୍ ଶବ୍ଦର ୧ମା. ବହୁ
Sākshiṇa ବଚନ, ସାକ୍ଷିଣଃ )—ସାକ୍ଷୀ ( ଦେଖ )—Sākshī
সাক্ষী **गवाही** ( See ). [ ଉ—ସେ ପାପ ପୁଣ୍ୟରେ ସାକ୍ଷିଣ,
ତୋ ପାଦେ ପଶିଲି ଶରଣ—ଜଗନ୍ନାଥ. ଭାଗବତ । ]

ସାକ୍ଷି ତାଲିକା—ଦେ॰ ବି (କଟରଅ)—ମକଦ୍ଦମାରେ ପକ୍ଷ ଦ୍ୱାରା ଦାଖଲ
Sākshi tālikā ହେବା ନିଜର ସାକ୍ଷିମାନଙ୍କର ନାମ—
সাক্ষী তালিকা List of one's witnesses filed by a
**गवाही तालिका** party in court.

ସାକ୍ଷି ତାଲିମ୍ କରିବା—ଦେ॰ କ୍ରି (କଟରଅ)—ସାକ୍ଷୀ ଦେବା ସମୟରେ
Sākshi tālim karibā ସାକ୍ଷୀ କଅଣ କହିବ ତାହା ତାକୁ
সাক্ষী তালিম কবা ବତାଇବା ବା ଶିଖାଇବା—
**गवाही तालिम करना** To coach a witness.

ସାକ୍ଷି ତିଆର(ରି) କରିବା—ଦେ॰ କ୍ରି (କଟରଅ)—ସାକ୍ଷୀ ସଜାଇବା (ଦେଖ)
Sākshi tiāra (ri)karibā Sākshī sajāibā (See)
সাক্ষী তৈবি করা **गवाही तैयार करना**

ସାକ୍ଷି ଦେବା—ଦେ॰ କ୍ରି (ସକର୍ମକ; କଟରଅ)—୧ । କୌଣସି ବ୍ୟକ୍ତିକୁ
Sākshi debā କୌଣସି ଘଟଣାର ସାକ୍ଷୀରୂପେ ପ୍ରକାଶ କରିବା—
সাক্ষী দেওয়া 1. To cite a person as a witness.
**गवाही देना** [ ଉ—ଗୃହ ପାଉଥାଏ ଭରମକୁ, କଥା କହୁଥାଏ ଶରମକୁ, ମରମେ ମରମେ ଯାହା ହେଉଥାଏ ସାକ୍ଷି ଦେଉଥାଏ ଧରମକୁ—ଛଗ । ] ୨ । ( ଅକର୍ମକ ) ସାକ୍ଷ୍ୟ ଦେବା; କୌଣସି ମକଦ୍ଦମାରେ ନିଜେ ସାକ୍ଷୀସ୍ୱରୂପ ଜାଣିଥିବା ଘଟଣା ବା ବିବରଣ ଅଦାଲତଙ୍କୁ କହିବା—
2. To depose as a witness in a case.

ସାକ୍ଷି ଦ୍ୱୈଧ—ସଂ॰ ବି ( ସଂ॰ ସାକ୍ଷିନ୍+ଦ୍ୱୈଧ; ୬ଷ୍ଠୀ ତତ୍ )—୧ । ଏକ
Sākshi dwaidha ଘଟଣା ସମ୍ବନ୍ଧେ ଭିନ୍ନ ଭିନ୍ନ ସାକ୍ଷୀମାନେ
ଦୁଇ ପ୍ରକାର କଥା ସାକ୍ଷ୍ୟ ଦେବା—1. Contradictory versions of the same thing by different witnesses. ୨ । ଏକ ଘଟଣା ସମ୍ବନ୍ଧେ ବିପରୀତବାଦୀ ଦୁଇ ଜଣ ସାକ୍ଷୀ—2. Two witnesses contradicting each other.

ସାକ୍ଷି ନେବା—ଦେ. କ୍ରି ( ଜଠରଥ )—କୌଣସି ମକଦ୍ଦମା ସମ୍ବନ୍ଧୀୟ
Sākshi nebā ପ୍ରମାଣ ସାକ୍ଷୀଙ୍କ ମୁହଁରୁ ଶୁଣିବା—To take
সাক্ষী লওয়া evidence from a person; to examine
गवाही लेना a witness.

ସାକ୍ଷି ପକା(କେ)ଇବା—ଦେ. କ୍ରି (ଜଠରଥ)—୧ । କୌଣସି ବ୍ୟକ୍ତିକୁ
Sākshi pakā(ke)ibā କୌଣସି ଦଲିଲର ସାକ୍ଷୀରୂପେ ଦସ୍ତଖତ
সাক্ষী ফেলা କରାଇବା—1. To make or get a
गवाही बनाना person attest a deed. ୨ । (ଲେଖକ)
ନିରକ୍ଷର ସାକ୍ଷୀର ନାମ ଓ ସଙ୍କେତ ଦଲିଲରେ ଲେଖିବା—
2. ( the writer of a deed ) To write out the name or mark of an illiterate person as a witness to a deed.

ସାକ୍ଷି ପଡ଼ିବା—ଦେ. କ୍ରି (ଜଠରଥ)—କୌଣସି ସାକ୍ଷୀ ନିଜର ନାମ ବା
Sākshi paṛibā ଦସ୍ତଖତ କୌଣସି ଦଲିଲରେ ଲେଖିବା
সাক্ষী পড়া —To attest a document ( by
गवाही होना signing one's name or putting one's mark thereon.)

ସାକ୍ଷି ପ୍ରମାଣ—ଦେ. ବ ( ଜଠରଥ; ସଂ. ସାକ୍ଷୀ ଓ ପ୍ରମାଣ )—୧ ।
Sākshi pramāṇa ସାକ୍ଷୀଦ୍ୱାରା କୌଣସି ଘଟଣାର ପ୍ରମାଣ—
সাক্ষী প্রমাণ 1. Proof of any matter by witness.
गवाही सबुत ୨ । (ସ୍ୱଚ୍ଛତର) ସାକ୍ଷୀଙ୍କଦ୍ୱାରା ଓ ଅନ୍ୟ ଉପାୟରେ
ଘଟଣାର ପ୍ରମାଣ—2. Proof of any matter by evidence, oral and documently.

ସାକ୍ଷି ମାନିବା—ଦେ. କ୍ରି ( ଜଠରଥ )—ଅପଣା ପକ୍ଷ ସମର୍ଥନ ପାଇଁ
Sākshi mānibā କୌଣସି ବ୍ୟକ୍ତିଙ୍କୁ ସାକ୍ଷୀରୂପେ ଉଲ୍ଲେଖ
সাক্ষী মানা କରିବା—To cite a person as one's
गवाही मानना witness.

ସାକ୍ଷି ମିଆଦ—ଦେ. ବ (ଜଠରଥ)—ସାକ୍ଷୀଙ୍କ ଉପରେ ସମନ
Sākshi miādi ଜାରି କରିବାକୁ ଯିବା ପିଅଦାର ଖରଚ ପାଇଁ
সাক্ষী মেয়াদী गवाही मियादी ସମନ ପାଇଁ ପ୍ରାର୍ଥନାକାରୀ
ପକ୍ଷ ଅଦାଲତରେ ଯେଉଁ ଫୋଟଫିସ୍ ଦାଖଲ କରେ—
Process fees deposited in court by a person who prays for summoning a witness.

ସାକ୍ଷି ମୁଚ (ଚ୍ଛ, ଚି, ଚେ) ଲ (ଲି) କା—ଦେ. ବ (ଜଠରଥ)—ଏକ
Sākshi mucha (chā, chi, che) la (li) kā ତାରିଖରେ
সাক্ষীমোচলকা गवाहिमुचालिका ଅଦାଲତରେ ଉପସ୍ଥିତ
ହୋଇଥିବା ସାକ୍ଷୀ ଅନ୍ୟ ଧାର୍ଯ୍ୟ ତାରିଖରେ ପୁନର୍ବାର
ସମନ କରି ନ ଯାଇ ମଧ୍ୟ ନିଜେ ଆସି ହାଜର ହେବା
ପାଇଁ ଯେଉଁ ସ୍ୱୀକାର ପତ୍ର ଅଦାଲତରେ ଦସ୍ତଖତ କରି
ଦିଅନ୍ତି—Personal recognisance taken from a witness (who attends court) to appear on the next date without issue of fresh summons.

ସାକ୍ଷିସଜା(ଜେ)ଇବା—ଦେ. କ୍ରି—କୌଣସି ବିଷୟରେ ପ୍ରମାଣ ପାଇଁ
Sākshi sajā(je)ibā ମିଥ୍ୟା ସାକ୍ଷୀ ଯୋଗାଡ଼ କରିବା—
সাক্ষিসাজান गवाहीतूलकरना To get up or fabricate false witness.

ସାକ୍ଷି ସମନ—ଦେ. ବ (ଜଠରଥ)—(ସ. ସାକ୍ଷୀ ଓ ଇଂ. ସମନ୍ସ)
Sākshi samana ସାକ୍ଷୀଙ୍କର ଅଦାଲତରେ ହାଜର ହେବା
সাক্ষিসমন ପାଇଁ ଅଦାଲତର ମୋହରଯୁକ୍ତ ଆଦେଶ ଲିପି—
गवाहीसमन Summons to a witness.
(ସାକ୍ଷିସ୍ମନ—ଗ୍ରାମ୍ୟରୂପ)

ସାକ୍ଷି ସାବୁ(ବୁ)ତ୍ (ତା,ତି)—ଦେ. ବ (ଜଠରଥ) —(ସ. ସାକ୍ଷୀ ଓ ପା.
Sākshi sābi(bu)t (tā,ti) ସୁବୁତ୍=ପ୍ରମାଣ)--ସାକ୍ଷୀ ପ୍ରମାଣ,
সাক্ষিসাবুদ. ସାକ୍ଷୀ ଦ୍ୱାରା କୌଣସି ଘଟଣାକୁ ପ୍ରମାଣିତ କରିବା—
गवाहीसुबुद Evidence or proof of any matter adduced by a witness.

ସାକ୍ଷି ହାଜିରା—ଦେ. ବ (ଜଠରଥ)—ଅପଣା ପକ୍ଷରୁ ଅଦାଲତରେ
Sākshi hājirā ହାଜର ହୋଇଥିବା ସାକ୍ଷୀମାନଙ୍କ ତାଲିକା
সাক্ষীহাজিরা गवाहीहाजिरी ( ଯାହା ପକ୍ଷ ଅଦାଲତରେ
ଦାଖଲ କରେ)—List of witnesses in attendance in court, filed by a party.

ସାକ୍ଷୀ—ସ. ବଣ, ପୁଂ (ସାକ୍ଷାତ୍+ଇନ୍; ସାକ୍ଷାତ୍ ସ୍ଥାନରେ ସାକ୍ଷ;
Sākshī ସ=ସହିତ+ଅକ୍ଷି=ଚକ୍ଷୁଃ+ଅ+ଇନ୍, ୧ମା.
(ସାକ୍ଷିଣୀ—ସ୍ତ୍ରୀ) ୧ବ)—୧ । ଦ୍ରଷ୍ଟବ୍ୟ, (ହେମଚନ୍ଦ୍ର)—
[ସାକ୍ଷ, ସାକ୍ଷିତ୍ୱ—ବ] 1. Cognisant of any matter
୨ । ଦେଖିଥିବା ବିଷୟର କଥକ—2. Bearing testimony; giving evidence. ବ—୧ । ସାକ୍ଷାତ୍ ଦ୍ରଷ୍ଟା ବ୍ୟକ୍ତି—1. Witness; eye-witness. ୨ । ଯେ କୌଣସି ଘଟଣା ସ୍ୱଚକ୍ଷୁରେ ଦେଖିଥାଏ; ଉପଦ୍ରଷ୍ଟା—2. A spectator; onlooker. ୩ । ଦ୍ରଷ୍ଟବ୍ୟ ବ୍ୟକ୍ତି—3. A person who is cognisant of the fact of a case or event. ୪ । ଯେଉଁ ବ୍ୟକ୍ତି ନିଜେ ଦେଖିଥିବା ଓ ଜାଣିଥିବା ବିଷୟ ଧର୍ମାଧିକରଣରେ ବିଚାରକଙ୍କ ନିକଟରେ ପ୍ରକାଶ କରେ—4. A witness who deposes in court as to the matters within his knowledge. [ଦ୍ର—ଅଦାଲତରେ ଯେଉଁ ପକ୍ଷ କୌଣସି ସାକ୍ଷୀଙ୍କୁ ସମନ କରିଥାଏ, ସେହି ପକ୍ଷ ପ୍ରଥମେ ଉକ୍ତ ସାକ୍ଷୀଙ୍କୁ ମୁଖ୍ୟ ପ୍ରଶ୍ନ ବା ଜବାନବନ୍ଦୀ କରନ୍ତି । ତତ୍ପରେ ଅପର ପକ୍ଷ ଉକ୍ତ ସାକ୍ଷୀଙ୍କୁ କୁଟ ପ୍ରଶ୍ନ ବା ଜେରା କରନ୍ତି ଓ ଜେରାରେ ପ୍ରକାଶ ହୋଇଥିବା କୌଣସି ବିଷୟ ବୁଝାଇବା ପାଇଁ ସମନ କରିଥିବା ପକ୍ଷ ତାକୁ ପୁନଃ ପ୍ରଶ୍ନ କରନ୍ତି ।]
୫ । ସାକ୍ଷି ଇତ୍ୟାଦି ( ଦେଖ )—5. Sākshi etc ( See ).

**ସାକ୍ଷୀ ଗୋପାଳ**—ଦେ. ବି—୧। ସତ୍ୟବାଦୀ ଗୋପୀନାଥ (ଦେଖ)—
Sākshi gopāla 1. Satyabādī gopīnātha. (See)
সাক্ষী গোপাল ୨। ସତ୍ୟବାଦୀ (ଦେଖ)—2. Satyabādī
**साक्षी गोपाल** (See) ୩। ବେଙ୍ଗଲ୍ ନାଗପୁର ରେଲୱେର ପୁରୀ ଶାଖା ଲାଇନ୍‌ସ୍ଥ ସାକ୍ଷୀଗୋପାଳ ମନ୍ଦିରର ନିକଟବର୍ତ୍ତୀ ରେଲ ଷ୍ଟେସନ—2. Name of the B. N. Ry. station near the Sakhigopal temple on the Puri branch. [ କ୍ର—ଏହି ଷ୍ଟେସନ ଠାରୁ ସାକ୍ଷୀ ଗୋପାଳଙ୍କ ମନ୍ଦିର ୧ ମାଇଲ୍ ଦୂରବର୍ତ୍ତୀ ଅଟେ; ଏଠାରେ ଡାକ୍ତରଖାନା, ପୋଷ୍ଟଅଫିସ୍, ଡାକଘର, ଡାକ ବଙ୍ଗଳା ଓ ଥାନା ଅଛି । ଏ ଗ୍ରାମକୁ କେହି କେହି ସତ୍ୟବାଦୀ କହନ୍ତି ।] ୪। (ଲକ୍ଷଣାର୍ଥ) ନିଷ୍କ୍ରିୟ ବା ନିଶ୍ଚେଷ୍ଟ ସାକ୍ଷୀ—4. (Figurative) A do-nothing witness; a witness who virtually does nothing. ୫। (ଲକ୍ଷଣାର୍ଥ) ମୂକ ସାକ୍ଷୀ—5. (Figurative) A dumb witness. ୬। (ଲକ୍ଷଣାର୍ଥ) ଯେଉଁ ସାକ୍ଷୀ ଦର୍ଶକ ମାତ୍ର ହୋଇଥାଏ; ଯେ ଦୃଷ୍ଟ ବିଷୟରେ କୌଣସି ପକ୍ଷ ଅବଲମ୍ବନ ନ କରି କେବଳ ମାତ୍ର ଗୁଙ୍ଗ ରହିଥାଏ—6. (Figurative) A disinterested witness; a mere spectator. ୭। ନାମିକ ମାତ୍ର ବ୍ୟକ୍ତି; ନାମତଃ ସାକ୍ଷୀ—7. A nominal witness.

**ସାକ୍ଷୀଗୋପାଳ କମି(ମେ)ଟି**—ଦେ. ବି—ସତ୍ୟବାଦୀ କମିଟି (ଦେଖ)
Sākshigopāla kami(me)ṭi Satyabādī kamiṭi.
(ସାକ୍ଷୀଗୋପାଳ ମନ୍ଦିର କମିଟି—ଅନ୍ୟରୂପ) (See)

**ସାକ୍ଷୀ ଗୋପୀନାଥ**—ଦେ. ବି—ସତ୍ୟବାଦୀ ଗୋପୀନାଥ (ଦେଖ)
Sākshi gopīnātha Satyabādī gopīnātha. (See)

**ସାକ୍ଷ୍ୟ**—ସଂ. ବି (ସାକ୍ଷିନ୍+ଭାବ. ଯ)—୧। ସାକ୍ଷୀର କର୍ମ—
Sākshya 1. The act of a witness. ୨। ଧର୍ମାଧିକରଣରେ ସାକ୍ଷୀଙ୍କ ଦ୍ୱାରା ପ୍ରଦତ୍ତ ପ୍ରମାଣ—2. Testimony or evidence of a witness in a court of justice. ୩। ସାକ୍ଷୀଠାରୁ ପ୍ରମାଣ ଗ୍ରହଣ—3. Taking evidence from a witness [କ୍ର—ମନୁଷ୍ୟଦ୍ୱାରା ଅଛି, ଯେଉଁ ବ୍ୟକ୍ତି ନିଜେ କୌଣସି ଘଟନା ଦେଖିଥାଏ ବା ଶୁଣିଥାଏ ବା ଅନୁଭବ କରି ଜାଣିଥାଏ, ତା'ଦ୍ୱାରା ପ୍ରଦତ୍ତ ପ୍ରମାଣକୁ ସାକ୍ଷ୍ୟ ବୋଲାଯାଏ ।
ନାରଦ, ଯାଜ୍ଞବଲ୍କ୍ୟ, ମନୁ, ବିଷ୍ଣୁ, କାତ୍ୟାୟନ, ବୃହସ୍ପତି ଆଦିଙ୍କ ରଚିତ ଦଣ୍ଡଶାସ୍ତ୍ରମାନଙ୍କରେ 'ସାକ୍ଷ୍ୟ' ଦେବାର ପ୍ରଣାଳୀ ଓ ମିଥ୍ୟା ସାକ୍ଷ୍ୟ ଦେବାର ଦଣ୍ଡ ଓ କେଉଁ ବିଷୟରେ କିପରି ସାକ୍ଷୀଙ୍କ ସାକ୍ଷ୍ୟ ଗ୍ରାହ୍ୟ, ଇତ୍ୟାଦି ବିଷୟ ବିଷଦରୂପରେ ବର୍ଣ୍ଣିତ ହୋଇଅଛି ଓ କେଉଁ ଶ୍ରେଣୀର ଅଭିଯୋଗକୁ କିପରି ସାକ୍ଷ୍ୟ ଦ୍ୱାରା ପ୍ରମାଣିତ କରିବାକୁ ହେବ ଏହା ମଧ୍ୟ ବର୍ଣ୍ଣିତ ହୋଇଅଛି ।] ଦେ· ବି—
সাক্ষী ସାକ୍ଷୀ—Witness. (କ୍ର—ବିଷୟ ଶସ୍ତ୍ର ପକ୍ଷିଙ୍କି କରୁଥିଲ
**साक्षी** ସାକ୍ଷ୍ୟ । ଭଞ୍ଜ, ବୈଦେହୀଶବିଳାସ ।)

**ସାକ୍ଷ୍ୟ ଗ୍ରହଣ**—ସଂ. ବି (୬ଷ୍ଠୀ ତତ୍)—ସାକ୍ଷି ନେବା; କୌଣସି
Sākshya grahaṇa ସାକ୍ଷୀର କଥିତ ବିଷୟକୁ ଶୁଣିବା ଓ ଲେଖିବା—Taking down the deposition of a witness; taking evidence.

**ସାକ୍ଷ୍ୟ ଦାନ**—ସଂ. ବି (୬ଷ୍ଠୀ ତତ୍)—ସାକ୍ଷ୍ୟ ଦେବା—Giving
Sākshya dāna evidence; bearing testimony.
(ସାକ୍ଷ୍ୟ ପ୍ରଦାନ—ଅନ୍ୟରୂପ)

**ସାକ୍ଷ୍ୟ ଦେବା**—ଦେ. କ୍ରି (ଉଭୟାର୍ଥ)—ସାକ୍ଷୀରୂପେ କୌଣସି ବିଷୟ
Sākshya debā କହିବା—To testify to any
সাক্ষ্য দেওবা matter; to bear testimony to any
**साक्ष्य देना** matter.

**ସାକ୍ଷ୍ୟ ନେବା**—ଦେ. କ୍ରି (ଉଭୟାର୍ଥ)—କୌଣସି ବ୍ୟକ୍ତିର ସାକ୍ଷ୍ୟ ଗ୍ରହଣ
Sākshya nebā କରିବା—To take down evidence
সাক্ষ্য লওয়া **साक्ष्य लेना** of a witness.

**ସାକ୍ଷ୍ୟ ମଞ୍ଚ**—ସଂ. ବି—ସାକ୍ଷୀ ଅଲଗଡ୍ଡା; ଅଦାଲତର ଯେଉଁ ସ୍ଥାନରେ
Sākshya mañcha ଠିଆ ହୋଇ ସାକ୍ଷୀ ସାକ୍ଷ୍ୟ ଦିଏ—Witness box; a platform for witness while giving evidence.

**ସାକ୍ଷ୍ୟ ଲକ୍ଷ୍ୟ**—ଦେ· ବିଣ—ଯେଉଁ ବିଷୟ କୌଣସି ବ୍ୟକ୍ତି ନିଜେ
Sākshya lakshā ସ୍ୱଚକ୍ଷୁରେ ଦେଖି ଲକ୍ଷ୍ୟ କରିଥାଏ;
(ସାକ୍ଷ୍ୟ ଲକ୍ଷ୍ୟ ପ୍ରତ୍ୟକ୍ଷ—ଅନ୍ୟରୂପ) ପ୍ରତ୍ୟକ୍ଷୀକୃତ (ବିଷୟ)—
সাক্ষ্য লক্ষ্য (A matter) Within one's direct
**प्रत्यक्ष** knowledge; personally known (matter); realised; within one's cognisance. (କ୍ର—ବୋଇଲେ ଶ୍ରୀହରି ସାକ୍ଷ୍ୟ ଲକ୍ଷ୍ୟ କରି ଦେଖାଇ କି
(ସାକ୍ଷଲକ୍ଷ—ଗ୍ରା. ରୂପ) ଦେବ । ଅଭିମନ୍ୟୁ· ବିଦଗ୍ଧ ଚିନ୍ତାମଣି ।)

**ସାକ୍ଷ୍ୟ ଲକ୍ଷ୍ୟ ପ୍ରତ୍ୟକ୍ଷ କରିବା**—ଦେ· କ୍ରି—କୌଣସି ବିଷୟକୁ ନିଜେ
Sākshya lakshya pratyakshya karibā ଦେଖି ଜାଣିବା—To know or become
সাক্ষ্য লক্ষ্য প্রত্যক্ষ করা ଜାଣିବା—To know or become
**स्वयं देखना** cognisant of any matter by seeing it with one's own eyes.

**ସାକ୍ଷ୍ୟ ଲକ୍ଷ୍ୟ ପ୍ରତ୍ୟକ୍ଷ ପ୍ରମାଣ**—ଦେ. ବି—ନିଜେ ଦେଖିଥିବା ସାକ୍ଷୀର
Sākshya lākshya pratyaksha prāmāṇa ପ୍ରମାଣ—
প্রত্যক্ষ প্রমাণ The testimony of a witness who
**प्रत्यक्ष प्रमाण** has seen with his own eyes; direct evidence.

**ସାଖି** (ଇତ୍ୟାଦି)—ଗ୍ରା. ବି (ସଂ. ସାକ୍ଷୀ)—ସାକ୍ଷି ଇତ୍ୟାଦି (ଦେଖ)
Sākhi (etc) Sākshi etc (See)

**ସାଖି ଶବଦ**—ଦେ· ବି—ମନଗଢ଼ା କଥା—Imaginary things·
Sākhi śabada (କ୍ର—ସାଖି ଶବଦଗୁଡ଼ାଏ କହନ୍ତି, ଲୋକଙ୍କ
মনগড়া কথা ଦେଖାଇ ମନକୁ ମୋହନ୍ତି । ବ୍ରାହ୍ମୀ· ସବଦେ
**गढ़न्त बात** ଗୀତା ।)

**ସାଖ୍ୟ**—ସଂ. ବି (ସଖି+ଯ)—ସଖ୍ୟ; ମିତ୍ରତା—Friendship.
Sākhya ଗ୍ରା. ବି (ସଂ. ସାକ୍ଷ୍ୟ)—ସାକ୍ଷ୍ୟ (ଦେଖ)—Sākshya. (See)

**ସାଗ୍ରଥ୍**—ବୈଦେ. ବି (ଫା)—ସାଗିରଥ୍ (ଦେଖ)
Sāg-rath Sāgirath. (See)

**ସାଗ**—ପ୍ରାଦେ (ଲଥଅ) ବି—ପରିବା—
Sāga Kitchen vegetables.
ଦେ ବି—ଶାଗ ଇତ୍ୟାଦି (ଦେଖ)—Sāga etc (See)

**ସାଗର**—ସଂ. ବି ( ସଗର=ସୂର୍ଯ୍ୟବଂଶୀୟ ରାଜାବିଶେଷ+ତାଙ୍କର ଏହା ଅର୍ଥରେ ଅ )—୧। ସିନ୍ଧୁ, ସମୁଦ୍ର—1. The
Sāgara sea. [ଦ୍ର—ସଗର ରାଜାଙ୍କର ୬୦ ହଜାର ପୁତ୍ର ଅପହୃତ ଯଜ୍ଞାଶ୍ୱକୁ ଖୋଜିବାକୁ ଭୂମି ଖୋଳିବାରୁ ସେହି ଖାଲ ସମୁଦ୍ରରେ ପରିଣତ ହେଲା। ଏଥିଯୋଗୁ ସଗର ରାଜାଙ୍କ ନାମ ଅନୁସାରେ ଏହା ସାଗର ହୋଇଅଛି।
ସୁବିସ୍ତୀର୍ଣ୍ଣ ବା ବୃହତ୍ତର ସାଗରକୁ ମହାସାଗର ବୋଲାଯାଏ। ସମୁଦ୍ର ତଳେ ଟୀକା ଦେଖ।] ୨। ବଡ଼ ପ୍ରାକୃତିକ ହ୍ରଦ—2. A lake. (ଯଥା—କାର୍ତ୍ତିସ୍ଥାନ ସାଗର, କୃଷ୍ଣ ସାଗର।) ୩। (ଲକ୍ଷଣାର୍ଥ) ସାଗର ପରି ବହୁପରିମିତ ବସ୍ତୁର ଆଧାର; ଭଣ୍ଡାର—3. (metaphorical) Sea; ocean; a great storehouse. (ଯଥା—ଦୟା ସାଗର।) ୪। (ଲକ୍ଷଣାର୍ଥ) ବହୁ ସଂଖ୍ୟକ ବ୍ୟକ୍ତି ବା ବହୁ ପରିମିତ ବସ୍ତୁ—4. (figurative) A very large quantity of anything or very large number of men. (ଯଥା—ଦାନ ସାଗର।) ୫। ଲୋକ ସାଧାରଣ; ଜନ ସାଧାରଣ—5. Public at large. (ଯଥା—ଏ କଥାଟା ସାଗର ମଝରେ ପକାଇ ଦେବା।) ୬। ସଂଖ୍ୟା ବିଶେଷ; ଦଶପଦ୍ମ ସଂଖ୍ୟା; ୧୪ ଶୂନ୍ୟଯୁକ୍ତ ସଂଖ୍ୟା—6. One hundred trillion. ୭। ମୃଗ ବିଶେଷ—7. A species of deer. ୮। ଚାରି ବା ସାତ ସଂଖ୍ୟା—8. The number four or seven (Apte). ଦେ. ବି—୧। ମଧ୍ୟପ୍ରଦେଶର ନଗର ବିଶେଷ—1. Name of a town in Central India. ୨। ବଡ଼ କୃତ୍ରିମ ଜଳାଶୟ—2. Big artificial tank. (ଯଥା—ଭୁବନେଶ୍ୱରର ବିନ୍ଦୁ ସାଗର।)

**ସାଗର କେଶରୀ**—ଦେ. ବି (ତୁଲ୍ୟାର୍ଥ ବହୁବ୍ରୀହି; ସାଗରରେ କେଶରୀ
Sāgara kesarī ସ୍ୱରୂପ)—(ଲକ୍ଷଣାର୍ଥ) ଜାହାଜ—A ship
सागर केशरी (ଦ୍ର—ସାଗର କେଶରୀ ସଙ୍ଖାଳି କେଶର, ଗରଜେ
सागर केशरी ଯେ କାଳେ ଜଗାଇ ଅନଳ। ମଧୁସୂଦନ କବିତା।)

**ସାଗର ଗର୍ଭ**—ସଂ. ବି (୬ଷ୍ଠୀ ତତ୍)—ସମୁଦ୍ରର ଅଭ୍ୟନ୍ତର; ସମୁଦ୍ର ଗର୍ଭ
Sāgara garbha —The bed or inside of the ocean.

**ସାଗର ଗାମିନୀ**—ସଂ. ବି. ସ୍ତ୍ରୀ (ସାଗରଗାମିନ୍+ସ୍ତ୍ରୀ. ଈ)—ସ୍ରୋତସ୍ୱତୀ;
Sāgaragāminī ନଦୀ ( ଯାହା ସମୁଦ୍ରରେ ପଡ଼ୁଅଛି )—A river (flowing into the sea).
ସଂ. ବିଣ. ସ୍ତ୍ରୀ—ସାଗରଗାମୀର ସ୍ତ୍ରୀଲିଙ୍ଗ—Feminine of Sāgaragāmi.

**ସାଗର ଗାମୀ**—ସଂ. ବିଣ (ସାଗରଗାମିନ୍ ଶବ୍ଦ; ସାଗର+ଗମ୍ ଧାତୁ+
Sāgaragāmī କର୍ତ୍ତୃ. ଇନ୍)—ସମୁଦ୍ରଗାମୀ (ଦେଖ)—
(ସାଗରଗାମିନୀ—ସ୍ତ୍ରୀ) Samudragāmi (See).

**ସାଗରଜ**—ସଂ. ବିଣ (ସାଗର+ଜନ୍ ଧାତୁ+କର୍ତ୍ତୃ. ଅ)—ସମୁଦ୍ରରୁ
Sāgaraja ଜାତ—Born of the sea.
ବି (ବୈଦ୍ୟକ)—ସାମୁଦ୍ର ଲବଣ—Sea-salt.

**ସାଗର ନେମି (ମେଖଳା)**—ସଂ. ବିଣ. ସ୍ତ୍ରୀ ( ବହୁବ୍ରୀହି; ସାଗର ଅଟେ
Sāgara nemi(mekhalā) ନେମି ବା ପ୍ରାନ୍ତଭାଗ ଯାହାର)—ଚତୁଃପାର୍ଶ୍ୱରେ ସମୁଦ୍ର ଦ୍ୱାରା ପରିବେଷ୍ଟିତ—Surrounded by the ocean; ocean-girt. ବି. ସ୍ତ୍ରୀ—ପୃଥିବୀ—The earth.

**ସାଗର ପେଶା**—ବୈଦେ. ବି (ଫା—ଶାଗିର୍ଦ୍ ପେଶା)—୧। ବର୍ଣ୍ଣସଙ୍କର
Sāgara pesa ଜାତି ବିଶେଷ—1 A mixed caste.
वर्णसङ्कर ୨। ଗୋଲାମଜାତି; କରଣଙ୍କର ଓ ଉତ୍କଳର ଉପନିବେଶୀ ବଙ୍ଗୀୟ କାୟସ୍ଥଙ୍କର ରକ୍ଷିତା ସ୍ତ୍ରୀ ଗର୍ଭଜାତ ସନ୍ତାନଙ୍କ ଜାତି—2. A caste of half breed born of concubines kept by Karaṇas and Bengalees who colonised in Orissa.

**ସାଗର ବକ୍ଷଃ**—ସଂ. ବି (୬ଷ୍ଠୀ ତତ୍)—ସମୁଦ୍ରର ଉପରିଭାଗ—
Sāgara bakshah The surface of the sea.
(ସାଗରବକ୍ଷ—ଦେ. ରୂପ)

**ସାଗର ଶାଖା**—ସଂ. ବି ( ୬ଷ୍ଠୀ ତତ୍ )—ଯେଉଁ ସଙ୍କୀର୍ଣ୍ଣ ସାଗରାଂଶ
Sāgara śākhā ସ୍ଥଳ ମଧ୍ୟକୁ ପଶି ଯାଇଥାଏ—
An arm of the sea; firth; frith.

**ସାଗର ବାସୀ**—ସଂ. ବିଣ. ପୁଂ—୧। ସାଗର ତୀରବାସୀ—
Sāgara bāsī 1. Living on the sea-shore.
( ସାଗରବାସିନୀ—ସ୍ତ୍ରୀ ) ୨। ସାଗର ମଧ୍ୟରେ ବାସକାରୀ—
2. Living in the sea.

**ସାଗର ସଙ୍ଗମ**—ସଂ. ବି (୬ଷ୍ଠୀ ତତ୍)—ଯେଉଁଠାରେ ନଦୀ ସମୁଦ୍ରରେ
Sāgara saṅgama ପଡ଼ିଥାଏ; ନଦୀର ଓ ସମୁଦ୍ରର ସଙ୍ଗମ ସ୍ଥାନ—
The mouth of a river; the place where a river falls into the sea; estuary.

**ସାଗର ସିନ୍ଧୁ ସଙ୍ଗମ**—ସଂ. ବି—୧। ତୀର୍ଥ ବିଶେଷ—1. The name
Sāgara sindhu saṅgama of a sacred place.
(ଦ୍ର—ସାଗରସିନ୍ଧୁ ସଙ୍ଗମେ ବୁଡ଼ିଲେ ପ୍ରମୋଦେ, ଜନ ନ ପଡ଼ଇ ଜାଣ ଦେହିଦେହେ ବିପଦେ—କୃଷ୍ଣସିଂହ ମହାଭାରତ. ବନ।) ୨। ସିନ୍ଧୁନଦର ଅରବସାଗରରେ ପଡ଼ିଥିବା ସ୍ଥାନ—
2 The mouth of the Indus.

ସାଗର ସ୍ନାନ—ସଂ. ବ ( ୭ମୀ ତତ୍ )—୧ । ସମୁଦ୍ରରେ ଗାଧୁଅ—
Sāgara snāna 1. A sea-bath. ୨ । ଶୁଭ
[ସାଗରସ୍ନାନଯୋଗ—ଅନ୍ୟରୂପ] ଯୋଗ ବିଶେଷ; ଯେଉଁ
ସାଗରସିନା(ନ୍ନା)ନ } —ଗ୍ରାମ୍ୟ ରୂପ ଯୋଗରେ ସମୁଦ୍ରରେ ସ୍ନାନ
ସାଗରସ୍ନାହାନ କଲେ ମହା ପୁଣ୍ୟ ହୁଏ—
2. An auspicious period during which a bath in the sea is deemed very meritorious. ଦେ. ବ.—ଜୈ୍ୟଷ୍ଠ ଶୁକ୍ଳ ଦଶମୀ; ଦଶହରା—The 10th day of the bright lunar fortnight of Jyaishtha.

ସାଗର—ଗ୍ରା. ବ (ସଂ. ସାଗର) —ସମୁଦ୍ର—The sea. [ ଉ—
Sāgarā ଇକ୍ଷୁ ଲବଣାଦି ସପ୍ତ ସାଗର—ପ୍ରାଚୀନହସ୍ତମଞ୍ଜରୀ]
সাগর সমুদ্র सागर

ସାଗରାନୂପକ—ସଂ. ବିଶ. ପୁଂ ( ବହୁବ୍ରୀହି; ସାଗର+ଅନୂପ+କ )—
Sāgarānūpaka ସାଗରତୀରବାସୀ, (ମହାଭାରତ, ଶବ୍ଦକୋଷ)
Living on the sea-shore.

ସାଗରାନ୍ତ—ସଂ. କ୍ରି. ବିଣ—ସମୁଦ୍ର ପର୍ଯ୍ୟନ୍ତ—Upto the ocean.
Sāgarānta [ଉ—ସାଗରାନ୍ତ କର ସେ ନିଜର ଧର୍ମରେ, କଲେ ପାଳନା ସେ ନୃପଙ୍କ କରନ୍ତରେ—କୃଷ୍ଣସିଂହ ମହାଭାରତ. ଅଦି । ] ସଂ. ବିଣ ( ବହୁବ୍ରୀହି )—
ସାଗର ଯାହାର ସୀମା—Bounded by the sae; having the sea as the limit.

ସାଗରାମ୍ବର—ସଂ. ବିଣ ( ବହୁବ୍ରୀହି; ସାଗର ହୋଇଅଛି ଅମ୍ବର=
Sāgarāmbarā ଅଚ୍ଛାଦକ ବସ୍ତ୍ର ଯାହାର) —ସାଗରବେଷ୍ଟିତା
(ପୃଥିବୀ)—Sea-girt (earth).

ସାଗରାଳୟ—ସଂ. ବ (ବହୁବ୍ରୀହି; ସାଗର ଅଟେ ଅଳୟ=ବାସସ୍ଥାନ
Sāgarālaya ଯାହାର )—ବରୁଣ ଦେବ—
The God presiding over the sea.

ସାଗରୋତ୍ଥ—ସଂ. ବିଣ. ( ୫ମୀ ତତ୍ )—ସମୁଦ୍ରରୁ ଜାତ—
Sāgarottha Born of the ocean.
ସଂ. ବ—ସାମୁଦ୍ର ଲବଣ ( ଶବ୍ଦକୋଷ )—
The sea salt.

ସାଗରୋପମ—ସଂ. ବିଣ (ବହୁବ୍ରୀହି; ସାଗର+ଉପମା+ଅ)—ସମୁଦ୍ର
Sāgaropama ସଦୃଶ—Comparable to
(ସାଗରୋପମା—ସ୍ତ୍ରୀ) the ocean.

ସାଗସ୍—ସଂ. ବିଣ (ବହୁବ୍ରୀହି; ସ+ଅଗସ୍)—ପାପକର୍ମିଷ୍ଠ—
Sāgas Sinful.
[ ସାଗଃ—ଅନ୍ୟରୂପ ]

ସାଗି ଦେବା—ଦେ. କ୍ରି [ସକର୍ମକ]—ଦେହର ମଧ୍ୟଭାଗକୁ ନୁଆଁଇବା—
Sāgidebā To sag; to bend down the body
বাঁকান ঝুকানা, লচকানা in the middle.
(ଭୂଳନୀୟ—ଇଂ.ଅକର୍ମକ To sag ସାଗ =ନଇଁଯିବା)
. [ ଉ—ଘୋଡ଼ା ପ୍ରସ୍ରାବ କଲାବେଳକୁ ତା ପିଠିକୁ ସାଗିଦିଏ; ମନୁଷ୍ୟ ଅଳସ ଭାଙ୍ଗିଲାବେଳକୁ ତା ପିଠିକୁ ସାଗିଦିଏ । ]

ସାଗିବା—ଦେ. କ୍ରି—୧ । ( ସକର୍ମକ ) ସାଗି ଦେବା ( ଦେଖ )—
Sāgibā বাঁকান লচকানা Sāgi debā ( See )
বেঁকে যাওয়া লচকনা ୨ । ( ଅକର୍ମକ ) ସାଗି ଯିବା (ଦେଖ)
Sāgi jibā ( See )

ସାଗି ଯିବା—ଦେ. କ୍ରି—୧ । (ଅକର୍ମକ) ( କୌଣସି ଲମ୍ବ ସିଧା ବସ୍ତୁ )
Sāgi jibā ମଝିରେ ନଇଁ ଯିବା—1. To sag or become
বেঁকে যাওয়া bent in the middle (said of a long
লচক জানা and straight thing). [ ଯଥା—ପାଲିଙ୍କି ବାଉଁଶ ଏସ ବର୍ଷା ଖାଇ ସାଗି ଗଲାଣି । ] ୨ ।
କୁବ୍‌ଜପୃଷ୍ଠ ହେବା—2. To become hump-backed in the middle.

ସାଗିରଥ(ଥି)—ବୈଦେ. ବ ( ଫା. ସାଗିର୍ଦ )—୧ । ଗୁରୁଙ୍କ ଶିଷ୍ୟ—
Sāgirath(thi) 1. A disciple. ୨ । ଯେ ଓସ୍ତାଦଙ୍କଠାରୁ
চেলা, সাগিরদ্ ମଲ୍ଲବିଦ୍ୟା ବା ସଙ୍ଗୀତ ବିଦ୍ୟା ଶିଖିଥାଏ—
সাগরেদ 2. A pupil of an athlete or musician.

ସାଗି ହେବା—ଦେ. କ୍ରି. ( ସାଗିବାର କର୍ମବାଚ୍ୟରୂପ )—୧ । (ବାଙ୍କ
Sāgi hebā ଲମ୍ବ ବସ୍ତୁ ) ସଳଖି ହେବା —1. To become
সোজা হওয়া straightened (said ofa long and bent
লচকনা thing). ୨। କୁବ୍‌ଜପୃଷ୍ଠ ହେବା; କୁଜାହେବା—2. To become hump-backed. ୩ । କୁବ୍‌ଜପୃଷ୍ଠ ହେବା; ନଇଁ ଯିବା—3. To become depressed in the middle.

ସାଗୁ—ବୈଦେ. ବ (ମାଲୟ, ସାଗୁ; ପର୍ତ୍ତୁଗୀଜ୍ ସାଗୁ; ଇଂ. ସାଗୋ)
Sāgu —୧ । ତାଳ ବା ଗୁବାକାଦି ବର୍ଗର ଭାରତୀୟ ଦ୍ୱୀପପୁଞ୍ଜର
সাগু ବୃକ୍ଷବିଶେଷ—1. The sago palm; Metroxy-
साबू lon Romphii. [ ଉ—ଏହା ଗୁଆଗଛ ପରି ଦେଖିବାକୁ ସୁନ୍ଦର ଓ ବାଉଁଶାକୃତି, କିନ୍ତୁ ତାଳଗଛ ପରି ମୋଟ । ଏଥିର ଗଣ୍ଡି ଉପରର ଶସକୁ କୁଟି ପାଣିରେ କଚୁଡ଼ାଇଲେ ଚକ୍ରିର ମଣ୍ଡରୁ ଏକପ୍ରକାର ଧଳା ଦାନା ବାହାରେ ଓ ସେ ଦାନାକୁ ପାଉଁଅ ପରି ଖୀର କରାଯାଏ ଓ ଏହ ଖାଦ୍ୟ ଅତି ଲଘୁ ବୋଲି ରୋଗୀମାନଙ୍କୁ ଖାଇବାକୁ ଦିଆଯାଏ । ଏହା ଏ ଦେଶର ଗଛ ନୁହେଁ ଓ ଏହା ସଦ୍ୟପରଚଳାଗିପୁ । ଲୋକେ ଏ ଗଛକୁ ଆଣି ସଉକରେ ବଗିଚାରେ ଲଗାନ୍ତି । ଏ ଗଛର ଫଳ ଖଜୁରିକୋଳି ପରି
সাগুদানা ପେଣ୍ଡା ପେଣ୍ଡା ହୋଇ ଫଳେ । ] ୨ । ସାଗୁଦାନା
साबूदाना ( ଦେଖ )—2. Sāgudānā ( See ). ୩ ।
সাগু ସାଗୁଦାନାଦ୍ୱାରା ପ୍ରସ୍ତୁତ ( ଦୁଗ୍ଧ ବା ଜଳ ମିଶ୍ରିତ ) ଲଘୁ-
साबू ପାକ ତରଳ ଖାଦ୍ୟ—3. A light liquid food prepared with sago.

ସା: ଗୁ:—ଦେ. ବ —(ଗଣିତ) 'ସାଧାରଣ ଗୁଣନୀୟକ'ର ସାଙ୍କେତିକ—
Sā: gu: ( arithmetic ) An abbreviation for

সাধাবণ গুণনীযক 'common multiple'. ଦ୍ର—ଗ: ସା·
সাঃ গুঃ ଗୁ: ଗରିଷ୍ଠ ସାଧାରଣ ଗୁଣନୀୟକର ଓ ଲ: ସା: ଗୁ:
ଲଘିଷ୍ଠ ସାଧାରଣ ଗୁଣିତକର ସାଙ୍କେତିକ ଅଙ୍କ ।]

ସାଗୁଆ—ଦେ. ବଣ (ସଂ. ଶାକବର୍ଣ୍ଣ)—ଶାଗୁଆ; ସବୁଜବର୍ଣ୍ଣ; ସାବଜା—
Sāguā Green-

ସାଗୁଆନ୍ (ନି, ଣ୍, ଣି)—ଦେ· ବି—ଶାକତରୁ ( ଦେଖ )
Sāguān (ni, n, ṇi) Śākataru ( See )

ସାଗୁଣା ( ଇତ୍ୟାଦି )—ଦେ, ବି ( ପୁଂ· ଓ ସ୍ତ୍ରୀ )—ଶାଗୁଣା ଇତ୍ୟାଦି
Sāguṇā (etc ) ( ଦେଖ )—Śāguṇā etc ( See )
সকুনি गीध [ ଦୃ—ବିଲୁଅ ସାଗୁଣାଙ୍କ ଖାଇବାର ଡରେ—
କୃଷ୍ଣସିଂହ. ମହାଭାରତ· ବନ । ]

ସାଗୁଣା ପଡ଼ିବା—ଦେ· ବି—ଶବ ନିକଟରେ ଦଳ ଦଳ ହୋଇ ଶାଗୁଣା
Sāguṇā parḍibā ଜମା ହେବା—The gathering of
সকুনি পড়া vultures near a dead body.
गीधा उतरना

ସାଗୁଣା ବେକା—ଦେ.ବଣ (ପୁଂ)—ଯେଉଁ ପୁରୁଷର ଗଳା ସାଗୁଣାର ଗଳା
Sāguṇā-bekā ପରି ଲମ୍ବ ଓ ଅସୁନ୍ଦର—Vulture-necked
সকুনে গলা ( person ); having a long neck.
गीध गला वाला [ ସାଗୁଣା ବେକୀ—ସ୍ତ୍ରୀ ]

ସାଗୁ ଦାନା—ଦେ· ବି—ସାଗୁ ଗଛର ଶସରୁ ତିଆରି କ୍ଷୁଦ୍ର ଗୋଲାକୃତି
Sāgu dānā ବଟିକାକାର ବସ୍ତୁବିଶେଷ—Sago parti-
সাগুদানা साबूदाना cles; the grain of sago.

ସାଗୁନ୍—ପ୍ରାଦେ (ପାଟଣା) ବି—ସାବୁନ୍ ( ଦେଖ )—Sābun (See).
Sāgun ପ୍ରାଦେ. ( ଖଣ୍ଡଥଳ )—ଶାଗୁଆନ୍ ( ଦେଖ )
Śāguān ( See )

ସାଗୁ ବାଡ଼ି—ପ୍ରାଦେ ( ଗଞ୍ଜାମ ) ବି—ଉଠିଆ କଅଁଚ; ଉଠିଅ ଜମି—
Sāgu bārḍi A cultivated field.

ସାଗେଇବା—ଦେ. କ୍ରି—୧ । (ସକର୍ମକ) ସାଗି ଦେବା ( ଦେଖ )—
Sāgeibā বাঁকান लचकाना Sāgi debā ( See )
বেঁকে যাওয়া ୨ । ( ଅକର୍ମକ ) ସାଗି ଯିବା ( ଦେଖ )
लचकना Sāgi jibā ( See )

ସାଗ୍ନି—ସଂ. ବଣ ( ସହାର୍ଥ ବହୁବ୍ରୀହି; ସ+ଅଗ୍ନି )—ଅଗ୍ନିବିଶିଷ୍ଟ—
Sāgni Having five.

ସାଗ୍ନିକ—ସଂ. ବଣ. ପୁଂ ( ସ=ସହିତ+ଅଗ୍ନି=ସାଗ୍ନି+କ )
Sāgnika —ନିରନ୍ତର ଯଜ୍ଞାଗ୍ନିର ରକ୍ଷାକାରୀ; ଅଗ୍ନି-
[ନିରଗ୍ନିକ—ବିପରୀତ] ହୋତ୍ରୀ ( ବ୍ରାହ୍ମଣ ); ସ୍ନାତକ—
(a Brāhmaṇa) Who daily performs vedic fire-worship and preserves the sacrificial fire at his house perpetually.
[ ଦ୍ର—ପୂର୍ବେ ବ୍ରାହ୍ମଣମାନେ ସାଗ୍ନିକ ହେଉଥିଲେ । ଉପନୟନ ବେଳେ ଯେଉଁ ହୋମାଗ୍ନି ପ୍ରଜ୍ୱାଳିତ ହେଉଥିଲା, ଉପନୀତ ବ୍ରାହ୍ମଣ ତାକୁ ଯତ୍ନପୂର୍ବକ ଘର ସ୍ଥିତ ଜଳାଇ ରଖି ସେଥିରେ ପ୍ରତିଦିନ ହୋମ କରୁଥିଲେ ଓ ସେହି ଅଗ୍ନିରେ ତାଙ୍କ ଶବ ଦାହ ହେଉଥିଲା । ]

ସାଗ୍ର—ସଂ. ବଣ (ସହାର୍ଥ ବହୁବ୍ରୀହି; ସ+ଅଗ୍ର)—୧ । ଅଗ୍ରବିଶିଷ୍ଟ—
Sāgra Having a top; topped. ୨ । ସମଗ୍ର (ବିଶ୍ୱ-
କୋଷ )—2. Entire; whole.

ସାଗ୍ରହ—ସଂ. ବଣ. ( ସହାର୍ଥ ବହୁବ୍ରୀହି; ସ+ଆଗ୍ରହ )—ଆଗ୍ରହାନ୍ୱିତ;
Sāgraha ଆଗ୍ରହ ବିଶିଷ୍ଟ—Ardent.
[ ସାଗ୍ରହା—ସ୍ତ୍ରୀ ]

ସାଙ୍କ୍‌ଲିବା—ପ୍ରାଦେ ( ସମ୍ବଲପୁର ) କ୍ରି—ଉଖୁରିବା—
Saṇk-libā [ସାଙ୍କ୍ଲିବା—ଅନ୍ୟରୂପ] To scrape off.

ସାଙ୍କଥିକ—ସଂ. ବଣ. ପୁଂ ( ସଙ୍କଥା+ଇକ )—ସଙ୍କଥା ବା କଥୋପ-
Sāṅkathika କଥନ ବିଷୟରେ ପଟୁ—
[ ସାଙ୍କଥିକା—ସ୍ତ୍ରୀ ] Skilful in conversation.

ସାଙ୍କରିକ—ସଂ.ବଣ.ପୁଂ (ସଙ୍କର+ଇକ)—ସଙ୍କର ବା ମିଶ୍ରବର୍ଣ୍ଣସମ୍ବନ୍ଧୀୟ-
Sāṅkarika Relating to mixed or hybrid caste.
(ସାଙ୍କରିକା—ସ୍ତ୍ରୀ)

ସାଙ୍କର୍ଯ୍ୟ—ସଂ. ବି ( ସଙ୍କର+ଭାବ. ଯ )—୧ । ସଙ୍କରର ଭାବ—
Sāṅkarjya 1. The state of being hybrid;
hybridism. ୨ । ମିଶ୍ରଣ—2. Mixture.

ସାଙ୍କଳ୍ପିକ—ସଂ. ବଣ (ସଙ୍କଳ୍ପ+ଇକ)—ସଙ୍କଳ୍ପସମ୍ବନ୍ଧୀୟ—
Sāṅkaḻpika Relating to Saṅkaḻpa.

ସାଙ୍କୁଚ-ଦେ. ବି (ସଂ. ସାଙ୍କୁଚୀ)—ଶାଙ୍କୁଚ ମାଛ—
Sāṅkucha The stigray fish.
সাংকোচ মাছ सांकुच

ସାଙ୍କୁ(ଙ୍କୋ)ଚିବା—ଦେ. କ୍ରି (ସଂ· ସଙ୍କୁଚିତ)—ସଙ୍କୁଚିତ କରିବା—
Sāṅku(ṅko)chibā To contract.
সঙ্কুচিত করা सकुचाना

ସାଙ୍କୁ(ଙ୍କୋ)ଚି ଯିବା—ଦେ. କ୍ରି (ଅକର୍ମକ)—ସଙ୍କୁଚିତ ହେବା—
Sāṅku(ṅko)chi jibā To become contracted.
সঙ্কুচিত হওয়া सकुचना

ସାଙ୍କୁଚୀ—ସଂ. ବି. ସ୍ତ୍ରୀ—ଶାଙ୍କୁଚ ମାଛ (ବିଶ୍ୱକୋଷ)—
Sāṅkuchī The stingray fish.

ସାଙ୍କୁଡ଼(ଡୁ)ପାଙ୍କୁଡ଼(ଡୁ)—ଦେ. ବଣ (ସଂ. ସଙ୍କୁଚିତ)—୧ । ଶୀତ
Sāṅkuṛḍ(ṛḍu)pāṅkuṛḍ(ṛḍu) ବା ଭୟ ଯୋଗୁଁ
ଯେ ଅଙ୍ଗପ୍ରତ୍ୟଙ୍ଗକୁ ସଙ୍କୁଚିତ କରିଥାଏ—
জডসড হওয়া सिकुड़नेवाला 1. Contracting
জডসড় হওয়া सिकुड़ाहुआ the limbs ( for
জড়সড় सिकुड़ाहुआ (आदमी) fear or cold )
୨ । ସଙ୍କୁଚିତ—2. Contracted; drawn in.
ବି—(ଶୀତାର୍ତ୍ତ ବା ଭୀତତ୍ରସ୍ତ) ଅଙ୍ଗ ପ୍ରତ୍ୟଙ୍ଗକୁ ଯାକିଯୁକି କରିଥିବା ବ୍ୟକ୍ତି—A person who sits by contracting or drawing in his limbs.
( ଯଥା—ସାଙ୍କୁଡ଼ି ପାଙ୍କୁଡ଼ି ପୁଞ୍ଜିଏ—ତଗ=ଶୀତଋତୁ ୪ ମାସ; ଏହି ଋତୁରେ ଲୋକେ ଶୀତ ଯୋଗୁଁ ଯାକିଯୁକି ହୋଇ ବସନ୍ତି ।)

ସାଙ୍କୁଡ଼୍ ପାଙ୍କୁଡ଼୍ ହେବା—ଦେ. କ୍ରି (ଶୀତରେ ବା ଭୟରେ) ଯାକସୁକ Sāṅkuṛd-pāṅkuṛd hebā ହେବା; ଅଙ୍ଗପ୍ରତ୍ୟଙ୍ଗକୁ ଜଡ଼ସଡ଼ ହଓୟା सिकुड़ना ଯାକିବା ବା ସଙ୍କୁଚିତକରିବା–To contract or draw in one's limbs (on account of cold or fright).

ସାଙ୍କୁଡ଼ା—ଦେ. ବି. ( ସଂ. ସଙ୍କୋଚନ )—ଅଙ୍ଗାଦିର ସଙ୍କୋଚନ—Sāṅkuṛa Contracting (of one's limbs); অঙ্গাদির গুটান सिकुड़न compressing; drawing in. ଦେ. ବିଣ—ସଙ୍କୁଚିତ—Contracted.

ସାଙ୍କୁଡ଼ା(ଡ଼େ)ଇବା—ଦେ. କ୍ରି—୧ । ସାଙ୍କୁଡ଼ିବା କ୍ରିୟାର ଣିଜନ୍ତରୂପ—Sāṅkuṛā(ṛe)ibā 1. The causative form জড় সড় কৰান सिकुड़ाना of 'Sāṅkuṛibā' ୨ । ସଙ୍କୁଚିତ କରିବା—2. To contract. ( ଉ—ପାଞ୍ଚଣ ବାଡ଼ ମାଡ଼ ଖାଇ ଅଣ୍ଟ କର, ପିଟିଛି ଦେଉଅଛ୍ଛ ସାଙ୍କୁଡ଼ାଇ . କର—କୃଷ୍ଣସିଂହ ମହାଭାରତ, ବନ । )

ସାଙ୍କୁଡ଼ିବା—ଦେ. କ୍ରି ( ସଂ. ସଙ୍କୁଚିତ )—୧ । ( ସକର୍ମକ )—Sāṅkuṛibā (ଅଙ୍ଗପ୍ରତ୍ୟଙ୍ଗାଦିକୁ) ସଙ୍କୁଚିତ କରିବା—জড়সড় কৰা सिकुड़ना 1. To contract; to draw in together one's limbs. ୨ । ( ଅକର୍ମକ )—ସଙ୍କୁଚିତ ହେବା—2. To become contracted or drawn in. ୩ । ( ଲକ୍ଷଣାର୍ଥ )—ଭୟତ୍ରସ୍ତ ହେବା—3. ( figurative ) To be affrighted or terror-struck; [ଉ—ଛଞ୍ଚାଣକୁ ଦେଖିବା କପୋତ ପକ୍ଷୀରୂପେ, ପରଶୁରାମଙ୍କୁ ଦେଖି ସାଙ୍କୁଡ଼ିଲେ ଭୂପେ—ତୁଳସୀ ବଳରାମ ରାମାୟଣ ।]

ସାଙ୍କୁଡ଼ି ଯି(ହେ)ବା—ଦେ. କ୍ରି [ ସଂ. ସଙ୍କୁଚିତ ]—୧ । [ ସାଙ୍କୁଡ଼ିବା Sāṅkuṛi ji(he)bā କ୍ରିୟାର କର୍ମବାଚ୍ୟରେ ରୂପ]—ସଙ୍କୁଚିତ ହେବା—1. To become contracted. জড়সড় হযেযাওয়া सिकुड़जाना ୨ । ଶୀତ ବା ( ସାଙ୍କୁଡ଼ି ହୋଇଯିବା—ଅନ୍ୟରୂପ ) ଭୟରେ ଯାକସୁକ ହେବା—2. To be shrivelled up or contracted with fear or cold.

ସାଙ୍କୁନ(ନା,ନ୍ୟ)—ଗ୍ରା. ବି (ସ. ଶକୁନ)—ଶକୁନ (ଦେଖ)—Sāṅkuna(nā,nya) Śakuna (See)

ସାଙ୍କୁର୍—ପ୍ରାଦେ (ସମ୍ବଲପୁର ଓ ପାଟଣା । )—ବି—ସାଁକୁର (ଦେଖ) Sāṅkur Sāṅkur [See]

ସାଙ୍କୁଳିବା—ଦେ. କ୍ରି.—୧ । ସାଙ୍କୁଡ଼ିବା (ଦେଖ)—Sāṅkulibā 1. Sāṅkuṛibā [ See ]. শিকলদিয়ে বান্ধা सिकड़िबांधना ୨ । ଶୃଙ୍ଖଳରେ ବାନ୍ଧିବା—2. To enchain.

ସାଙ୍କୃତି—ସ.ବି. ପୁଂ (ନାମ)—ବୈୟାଘ୍ରପାଦ୍ୟଗୋତ୍ରର ପ୍ରବରପ୍ରବର୍ତ୍ତକ Sāṅkṛuti ମୁନିବିଶେଷ—Name of a sage who was the forefather of a Prabara. [ ଦ୍ର—ବୈୟାଘ୍ରପାଦ୍ୟଗୋତ୍ରର ଓ ସାଙ୍କୃତିପ୍ରବରରାତ ଅପୁତ୍ରକ ଶ୍ରାଦ୍ଧଦେବଙ୍କୁ ତର୍ପଣ କରାଯାଏ । ]

ସାଙ୍କୃତ୍ୟ—ସଂ. ବି. ପୁଂ ( ସାଙ୍କୃତି+ଗୋତ୍ରାପତ୍ୟାର୍ଥେ. ଯ )—ସାଙ୍କୃତି Sāṅkṛutya ମୁନିଙ୍କ ଗୋତ୍ରାପତ୍ୟ—A person born ( ସାଙ୍କୃତ୍ୟାୟନ—ଅନ୍ୟରୂପ ) in the family or race of sage Sāṅkṛuti.

ସାଙ୍କେତିକ—ସ. ବିଣ (ସଙ୍କେତ+ସମ୍ବନ୍ଧାର୍ଥେ. ଇକ)—୧ । ସଙ୍କେତ-Sāṅketika ସମ୍ବନ୍ଧୀୟ—1. Relating to signal or symbol. ୨ । ସଙ୍କେତସୂଚକ—2. Symbolical. ୩ । ସଙ୍କେତକାରକ—3. Signalling. ୪ । ସଙ୍କେତ ଦ୍ୱାରା ସୂଚିତ—4. Indicated or expressed by means of symbols. ୫ । ସଂକ୍ଷିପ୍ତ ଉପାୟରେ ସମାହୃତ—5. Abbreviated. ୬ । [ଗଣିତ] ସଂକ୍ଷିପ୍ତ ଉପାୟରେ ଅଙ୍କସମସ୍ୟା ସାଧନକାରୀ (ବିଧି ବା ପ୍ରଣାଳୀ)—6. [Arithmetic] (a mode) Consisting of working out an arithmetical sum by a concise or short process. ୭। ବିଜ୍ଞାନଆଦିରେ ସଂକ୍ଷିପ୍ତରୂପେ ଭାବ ବା ଅର୍ଥ ବା ଶବ୍ଦ ପ୍ରକାଶ କରିବା ପାଇଁ ବ୍ୟବହୃତ (ଚିହ୍ନ)—7. Conventional (signs or expressions).

[ ଦ୍ର—ଶବ୍ଦକୋଷ, ବିଜ୍ଞାନ, ଗଣିତ, ଜ୍ୟାମିତି, ଦଲିଲ ଲେଖା, ପ୍ରୁଫ୍‌ସିଟ୍ ସଂଶୋଧନ ଆଦିରେ କୌଣସି ଶବ୍ଦକୁ ବା ବାକ୍ୟକୁ ପୂର୍ଣ୍ଣାଙ୍ଗରୂପେ ନ ଲେଖି ତାହା ଚୁମ୍ବକରେ ଲେଖିବା ଓ ବୁଝିବା ପାଇଁ ସାଙ୍କେତିକ ଚିହ୍ନମାନ ବ୍ୟବହୃତ ହୁଏ ।

ଗଣିତରେ କ ସଙ୍ଗେ ଖ ସମାନ ଅଟେ, ଏହା ନ ଲେଖି ସଂକ୍ଷେପରେ କ=ଖ ଲେଖାଯାଏ; ଏହିପରି ଯୋଗ +; ବିୟୋଗ —; ଗୁଣନ ×; ହରଣ ÷; ବର୍ଗମୂଳ √; ଘନମୂଳ ∛; ଅତଏବ ∴; କୋଣ ∠; ତ୍ରିଭୁଜ △, ଏହିପରି ସାଙ୍କେତିକ ଚିହ୍ନମାନ ଲେଖାଯାଏ । କରଣୀ ଓ କଡ଼ଚାଆ ଭାଷାରେ ସାକନ୍=। ସା ।; ପ୍ରଗନ୍ନେ=। ପ୍ର ।; ମୁତାବକ, ମୁକାମ, ମୁଫରକା=। ମୁ ।, ବାବତ୍=। ବା । କମ୍ମା । ଦ୍ରା ।; ଭୁ=୵; ମଧ୍ୟରୁ=ଙ୍ଗ; ସମ୍ବନ୍ଧେ=ସ୍ମ; ଦଲିଲମ=। ଦ ।; ନବସନ୍ଧା=। ନ ।; ଲେଖିତଂ=। ଲେ । ଭମ୍ମା । ଲ ।; ନମ୍ବର=। ନ ।; ସରେଢ଼ର୍ତ=। ସ ।, ଲଖରାଜ=। ଲ ।; ବାହେଲି=। ବା ।; କ୍ରଣ୍ଟ୍ରେଓ୍ବର=। କ୍ର ।

ଓଡ଼ିଆରେ କରଣୀ ଅକ୍ଷର ମଧ୍ୟ ଏକ ପ୍ରକାର ସାଙ୍କେତିକ ଲେଖା ।

ବନ୍ଧନୀରେ ଓ ଭର୍ତ୍ତ ଅକ୍ଷରେ—ଉତ୍ତର=ଉ; ପୂର୍ବ=ପୂ; ପଶ୍ଚିମ=ପ; ଦକ୍ଷିଣ=ଦ; ଭରଣ=ଭ;, ଗଣ୍ଡା—ଗୌ; ଟଙ୍କା=ଟ; କାହାଣ=କା; ଇତ୍ୟାଦି=ଇ; ସାର=ସା; ଗାଏ=ଡେ।

ଛାପାଖାନାରେ ପ୍ରୁଫ୍ ସଂଶୋଧନର ଉଦାହରଣ—

କାଟିଦିଅ=୬; ଅକ୍ଷର ମଧ୍ୟରେ ସ୍ଥାନ ଛାଡ଼=II; ଅକ୍ଷରକୁ ଉପରକୁ ଉଠାଅ=⌊; ଅକ୍ଷରକୁ ତଳକୁ ଖସାଅ=‸; ଧାଡ଼ିକୁ ସିଧା କର= =; ଦୁଇ ଅକ୍ଷର ମଧ୍ୟରେ ଅନ୍ୟ ଅକ୍ଷର ଯୋଗ କର=Λ; ପୂର୍ଣ୍ଣଚ୍ଛେଦ=।; କମା=, ]

**ସାଙ୍କେତିକ ଧାର**—ଦେ. ବି (ଗଣିତ)—ବାଲକ୍ଷଥ ହିସାବ; ହିସାବ କରିବାର ଇତର ଜନ ବୋଧ୍ୟ ସରଳ
Sāṅketika dhārā
ସାଙ୍କେତିକଧାରা(নিয়ম) सांकेतिकधारा ପ୍ରଣାଳୀ—A particular method of calculation which is practicable even for illiterate people.

**ସାଙ୍କେତ୍ୟ**—ସଂ. ବି (ସଙ୍କେତ+ଯ)—ମୂଳ ପ୍ରମାଣ ଶୂନ୍ୟ ପାଷଣ୍ଡ-
Sāṅketya
ଗମ; ପାଷଣ୍ଡମାନଙ୍କ ଶାସ୍ତ୍ର (ବିଶ୍ୱକୋଷ)—The books of authority of un-believers.

**ସାଙ୍କୋର୍ଡ଼(ଡ଼ା)(ଇତ୍ୟାଦି)**—ସାଙ୍କୁର୍ଡ଼ (ଡ଼ା) ଇତ୍ୟାଦି (ଦେଖ)—
Sāṅkord(rdā)(etc) Sāṅkurd(rdā) etc (See)

**ସାଙ୍କ୍ରାମିକ**—ସଂ. ବିଣ (ସଙ୍କ୍ରାମ+ଇକ)—ସଙ୍କ୍ରମଶୀଳ—Contag-
Sāṅkrāmika
ious, infectious (disease). ବି. ବି - [ସାଙ୍କ୍ରାମିକ, ସାଙ୍କ୍ରାମିକ—ଅନ୍ୟରୂପ] ଯେଉଁ ରୋଗ ରୋଗୀର ଦେହରୁ ଅନ୍ୟ ଦେହକୁ ସଂକ୍ରମଣ କରେ (ବିଶ୍ୱକୋଷ)—A contagious disease.

**ସାଙ୍କ୍ଷେପିକ**—ସଂ ବିଣ (ସଂକ୍ଷେପ+ଇକ)—୧। ସଂକ୍ଷିପ୍ତ (ବିଶ୍ୱକୋଷ)-
Sāṅkshepika
1. Abbreviated. ୨। ସଂକ୍ଷେପ-
[ସାଂକ୍ଷେପିକ—ଅନ୍ୟରୂପ] କାରକ [ବିଶ୍ୱକୋଷ]—2. Abbreviating.

**ସାଙ୍ଖ୍ୟ**—ସଂ. ବିଣ (ସଂଖ୍ୟା=ସମ୍ୟକ୍ ଜ୍ଞାନ+ଅ)—ଜ୍ଞାନୀ—
Sāṅkhya
1. Wise. ୨। ଜ୍ଞାନସମ୍ବନ୍ଧୀୟ—2. Relat-
(ସାଙ୍ଖ୍ୟ, ସାଂଖ୍ୟ—ଅନ୍ୟରୂପ) ing to wisdom. ବି. କପିଳ ମୁନିଙ୍କ ପ୍ରଣୀତ ହିନ୍ଦୁ ଦର୍ଶନ ଶାସ୍ତ୍ର—The system of Hindu philosophy of sage Kapila.

**ସାଙ୍ଖ୍ୟ ଦର୍ଶନ**—ସଂ. ବି—କପିଳ ଦର୍ଶନ; କପିଳ ମୁନିଙ୍କ ପ୍ରବର୍ତ୍ତିତ ଦର୍ଶନ
Sāṅkhya darśana
ଶାସ୍ତ୍ର—The system of philosophy propounded by Sage Kapila.

[ଦ୍ର—ସାଙ୍ଖ୍ୟ ଦର୍ଶନ ଆର୍ଯ୍ୟମାନଙ୍କ ଷଡ଼୍‌ଦର୍ଶନ ମଧ୍ୟରୁ ଗୋଟିଏ। ମହର୍ଷି କପିଳ ଏହି ଦର୍ଶନ ଶାସ୍ତ୍ରର ପ୍ରଣେତା। ସଂଖ୍ୟା ଶବ୍ଦର ଅର୍ଥ ସମ୍ୟକ୍ ଜ୍ଞାନ ବା ସମ୍ୟକ୍ ବିବେକ। ଏ ଦର୍ଶନରେ ସମ୍ୟକ୍ ବିବେକ ଦ୍ୱାରା ଆତ୍ମକଥନ ହୋଇ ଥିବାରୁ ଏ ଦର୍ଶନର ନାମ ସାଙ୍ଖ୍ୟ। (ସାଙ୍ଖ୍ୟ ଦର୍ଶନର ଭାଷ୍ୟକାର ବିଜ୍ଞାନ ଭିକ୍ଷୁ)। ଏଥିରେ ସଂଖ୍ୟା, ପ୍ରକୃତି ଓ ଚତୁର୍ବିଂଶତି ତତ୍ତ୍ୱର ବିବୃତ୍ତି ହୋଇଅଛି। କପିଳ ମୁନି ଜୀବଙ୍କ ଦୁଃଖ ବିମୋଚନ ପାଇଁ ଯେଉଁ ଦର୍ଶନଶାସ୍ତ୍ରର ଉପଦେଶ ଦେଇଥିଲେ ତାହାର ନାମ 'ତତ୍ତ୍ୱ ସମାସ'। ଏହା ଅତି ସଂକ୍ଷିପ୍ତ ଥିଲା। ସେ ଏହାକୁ ଆସୁରି ମୁନିଙ୍କୁ ଓ ଆସୁରି ପଞ୍ଚଶିଖଙ୍କୁ ଦେଇଥିଲେ। ପଞ୍ଚଶିଖ ଏହା ସଂସାରରେ ପ୍ରଚାର କଲେ। କ୍ରମେ କାଳକ୍ରମେ କପିଳଙ୍କ ତତ୍ତ୍ୱ ସମାସ ଲୁପ୍ତ ହେବାରୁ ବିଜ୍ଞାନ ଭିକ୍ଷୁ ସାଂଖ୍ୟ ତତ୍ତ୍ୱମାନଙ୍କୁ ବିସ୍ତୃତ ଭାବରେ ବର୍ଣ୍ଣନା କଲେ। ପୁଣି ଈଶ୍ୱରକୃଷ୍ଣ, ନାମକ ପଣ୍ଡିତ କପିଳଙ୍କ ପ୍ରଚାରିତ ଜ୍ଞାନକୁ ଅବଲମ୍ବନ କରି ଆର୍ଯ୍ୟା ଛନ୍ଦରେ 'ସାଙ୍ଖ୍ୟକାରିକା' ନାମରେ ଗ୍ରନ୍ଥ ପ୍ରଣୟନ କଲେ। ଏହି ଗ୍ରନ୍ଥ ବର୍ତ୍ତମାନ ସାଙ୍ଖ୍ୟଦର୍ଶନର ସମୀଚୀନ ଓ ପ୍ରାମାଣିକ ଗ୍ରନ୍ଥ ଅଟେ। ଖ୍ରୀଷ୍ଟ ୫ମ ଶତାବ୍ଦୀରେ ପରମାର୍ଥ ନାମକ ବ୍ୟକ୍ତି ଚୀନ ଭାଷାରେ ସାଙ୍ଖ୍ୟକାରିକାର ଅନୁବାଦ ପ୍ରକାଶ କରିଥିଲେ। ସାଙ୍ଖ୍ୟସୂତ୍ର ଅପେକ୍ଷା ସାଙ୍ଖ୍ୟ କାରିକା ବିଶେଷ ଆଦର ଲାଭ କରିଥିଲା। ଷଡ଼୍‌ଦର୍ଶନର ଟୀକାକାର ବାଚସ୍ପତି ମିଶ୍ର ସାଙ୍ଖ୍ୟ ସୂତ୍ରର ଟୀକା ନ କରି ସାଙ୍ଖ୍ୟକାରିକାର ଟୀକା କରିଥିଲେ। ତାଙ୍କ ଗ୍ରନ୍ଥର ନାମ ସାଙ୍ଖ୍ୟତତ୍ତ୍ୱ-କୌମୁଦୀ ଓ ଏହା ସାଙ୍ଖ୍ୟ ଦର୍ଶନ ବିଷୟକ ପ୍ରାମାଣିକ ଗ୍ରନ୍ଥ ଅଟେ। ଅଧୁନା ପ୍ରଚଳିତ ସାଙ୍ଖ୍ୟଦର୍ଶନ ୬ ଅଧ୍ୟାୟରେ ବିଭକ୍ତ ଓ ଏଥିରେ ୫୨୬ ଟି ସୂତ୍ର ଅଛି। ସାଙ୍ଖ୍ୟ ଶାସ୍ତ୍ରର ୪ଟି ବ୍ୟୂହ—ହେୟ, ହାନ, ହେୟହେତୁ ଓ ହାନୋପାୟ। ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ, ଏହି ତ୍ରିବିଧ ଦୁଃଖର ଅତ୍ୟନ୍ତ ନିବୃତ୍ତିର ନାମ 'ହାନ' (ବା ପରିତ୍ୟାଗ)। ପ୍ରକୃତି ଓ ପୁରୁଷର ଅବିବେକ ବା ଅଭେଦଜ୍ଞାନ 'ହେୟ ହେତୁ' ଏବଂ ଏହି ତ୍ରିବିଧ ଦୁଃଖର ଅତି ନିବୃତ୍ତି ପାଇଁ ବିବେକଜ୍ଞାନ ସାଧନ ଚେଷ୍ଟାକୁ ହାନୋପାୟ ବୋଲାଯାଏ। ସାଙ୍ଖ୍ୟ ଦର୍ଶନରେ ଈଶ୍ୱରଙ୍କ ପ୍ରମାଣ ସ୍ୱୀକୃତ ହୋଇ ନ ଥିବାରୁ ଏହାର ନାମ ନିରୀଶ୍ୱର ସାଙ୍ଖ୍ୟ। ଶଙ୍କରାଚାର୍ଯ୍ୟ କପିଳ ପ୍ରଣୀତ ସାଙ୍ଖ୍ୟକୁ ନିରୀଶ୍ୱର ସାଙ୍ଖ୍ୟ ଓ ପତଞ୍ଜଳି ପ୍ରଣୀତ ସାଙ୍ଖ୍ୟକୁ ସେଶ୍ୱର ସାଙ୍ଖ୍ୟ ନାମ ଦେଇ ଅଛନ୍ତି। କପିଳଙ୍କ ମତରେ ଜ୍ଞାନ-ଦ୍ୱାରା ମୁକ୍ତି ଓ ପତଞ୍ଜଳିଙ୍କ ମତରେ ଯୋଗଦ୍ୱାରା ମୁକ୍ତି ଲାଭ ହୁଏ। କପିଳଙ୍କ ମତରେ 'ପ୍ରମାଣାଭାବରୁ ଈଶ୍ୱରଙ୍କ ଅସ୍ତିତ୍ୱ ସିଦ୍ଧ ହେଉ ନାହିଁ।' ପ୍ରମାଣ ତିନି ପ୍ରକାର—ପ୍ରତ୍ୟକ୍ଷ, ଅନୁମାନ ଓ ଶବ୍ଦ (ବା ଆପ୍ତବାକ୍ୟ, ଯଥା ବେଦ)। ସାଙ୍ଖ୍ୟ ମତରେ ତ୍ରିବିଧ ଦୁଃଖର ଅତ୍ୟନ୍ତ ନିବୃତ୍ତି ହିଁ ମୁକ୍ତି। ଏକମାତ୍ର ବିବେକ ଜ୍ଞାନହିଁ ଏହି ଦୁଃଖ ନିବୃତ୍ତିର ଉପାୟ। ସାଙ୍ଖ୍ୟରେ ପଞ୍ଚବିଂଶତି ତତ୍ତ୍ୱର ଉଲ୍ଲେଖ ଅଛି। ଯଥା ପ୍ରକୃତି, ମହତ୍, ଅହଙ୍କାର, ପଞ୍ଚତନ୍ମାତ୍ର (ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ), ଏକାଦଶ ଇନ୍ଦ୍ରିୟ (ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ ଓ ମନ), ପଞ୍ଚମହାଭୂତ (କ୍ଷିତି, ଅପ୍

ତେଜଃ, ମରୁତ୍, ବ୍ୟୋମ] ଓ ପୁରୁଷ । ଏଥି ମଧ୍ୟରେ ପ୍ରଥମୋକ୍ତ ୨୪ ଟି ତତ୍ତ୍ୱ ଜଡ଼ ଓ ପୁରୁଷ ଚେତନ । ପ୍ରକୃତିହିଁ ଜଗତର ମୂଳ କାରଣ ଅଟେ ଓ ଏହା ସତ୍ । [ପୁରୁଷ କେବଳ ସାକ୍ଷୀ [ବିଶ୍ୱକୋଷ]।

**ସାଙ୍ଖ୍ୟ ଯୋଗ**—ସଂ. ବି ୧ । (ମ. ପ. ଲୋ; ସାଙ୍ଖ୍ୟୋକ୍ତ ଯୋଗ)—Sāṅkhya joga ସାଙ୍ଖ୍ୟ ଦର୍ଶନ ପ୍ରଦର୍ଶିତ ଜ୍ଞାନ ଯୋଗ; ବ୍ରହ୍ମବିଦ୍ୟା, ଯହିଁରେ ଅନ୍ତରର ନିବୃତ୍ତି ହୋଇ ସାଙ୍ଖ୍ୟ ବା ବେଦ ଜ୍ଞାନ ଦ୍ୱାରା ଜୀବର ମୁକ୍ତି ଲାଭ ହୁଏ—1. The system of attaining salvation by following the doctrines of the Sāṅkhya Philosophy. ୨ । ଭଗବଦ୍‌ଗୀତାର ତୃତୀୟ ଅଧ୍ୟାୟରେ ବର୍ଣ୍ଣିତ 'ସାଙ୍ଖ୍ୟ' ବା ଜ୍ଞାନ ଯୋଗ ଓ 'ଯୋଗ' ବା କର୍ମଯୋଗ—2. Two sorts of attaining salvation laid in the 3rd chapter of the Gita, viz, cultivation of True Wisdom and following one's Duty.

[ବି—କୁରୁକ୍ଷେତ୍ରରେ ସମବେତ କୁରୁପାଣ୍ଡବ ସୈନ୍ୟଙ୍କୁ ଦେଖି ଅର୍ଜ୍ଜୁନ ବିଷଣ୍ଣ ହୋଇ ଯୁଦ୍ଧ କରିବାକୁ ଅନିଚ୍ଛା ପ୍ରକାଶ କରିବାରୁ ଭଗବାନ୍ ଶ୍ରୀକୃଷ୍ଣ ଗୀତାର ଦ୍ୱିତୀୟ ଅଧ୍ୟାୟରେ ବ୍ରାହ୍ମୀସ୍ଥିତି (ସାଙ୍ଖ୍ୟୋକ୍ତ ଯୋଗ ବା ବ୍ରହ୍ମବିଦ୍ୟା) ବିଷୟରେ ଅର୍ଜ୍ଜୁନଙ୍କୁ ଉପଦେଶ ଦେଲେ । ଦ୍ୱିତୀୟ ଅଧ୍ୟାୟର ୩୮ଶ ଶ୍ଳୋକରେ କହିଲେ, ଯେ ସୁଖ ଦୁଃଖ, ଲାଭାଲାଭ, ଜୟାଜୟରେ ସମାନ ବୁଦ୍ଧି କରି ଯୁଦ୍ଧ କର, ତୁମ୍ଭର ପାପ ହେବ ନାହିଁ । ୩୯ଶ ଶ୍ଳୋକରେ କହିଲେ, ଯେ 'ସାଂଖ୍ୟ' ଅନୁସାରେ ତୁମ୍ଭଙ୍କୁ ଏ ବୁଦ୍ଧି କଥା କହି ବର୍ତ୍ତିମାନ 'ଯୋଗ' ଅନୁସାରେ ବୁଦ୍ଧି କଥା କହିବି । ଏଠାରେ 'ସାଂଖ୍ୟ' ଶବ୍ଦ ଦ୍ୱାରା କପିଳ ମୁନିଙ୍କ 'ସାଖ୍ୟ ଦର୍ଶନ' ଓ 'ଯୋଗ' ଶବ୍ଦ ଦ୍ୱାରା ପାତଞ୍ଜଳଙ୍କ 'ଯୋଗଦର୍ଶନ' ଭଗବାନଙ୍କ ଉଦ୍ଦିଷ୍ଟ ନଥିଲା । 'ସାଂଖ୍ୟ'ର ଅର୍ଥ 'ସନ୍ନ୍ୟାସମାର୍ଗ' ଓ 'ଯୋଗ'ର ଅର୍ଥ 'କର୍ମ ମାର୍ଗ' ବୋଲି ବୁଝିବାକୁ ହେବ । ଗୀତାର ତୃତୀୟ ଅଧ୍ୟାୟର ତୃତୀୟ ଶ୍ଳୋକରେ ଭଗବାନ୍ କହିଅଛନ୍ତି ଯେ, ପୁରାକାଳରେ ଓ ଦ୍ୱିତୀୟ ଅଧ୍ୟାୟରେ ଅମ୍ଭେ ସଂସାରରେ ଦୁଇପ୍ରକାର ନିଷ୍ଠାର କଥା କହିଅଛୁଁ—୧ । ସାଂଖ୍ୟମାନଙ୍କର ଜ୍ଞାନ ଯୋଗ ଦ୍ୱାରା ଉତ୍ପନ୍ନ ନିଷ୍ଠା ଓ ୨ । ଯୋଗୀମାନଙ୍କର କର୍ମଯୋଗ ଦ୍ୱାରା ଉତ୍ପନ୍ନ ନିଷ୍ଠା । ନିଷ୍ଠା ଶବ୍ଦର ଅର୍ଥ ମୋକ୍ଷ ଲାଭ କରିବାର ମାର୍ଗ । ଏ ଦୁଇ ମାର୍ଗାନୁଗାମୀଙ୍କୁ ଯଥାକ୍ରମେ ସାଂଖ୍ୟ ବା 'ସନ୍ନ୍ୟାସମାର୍ଗୀ' ଓ ଯୋଗ ବା 'କର୍ମଯୋଗମାର୍ଗୀ' ବୋଲଯାଏ; ଗୀତାର ପଞ୍ଚମ ଅଧ୍ୟାୟର ଚତୁର୍ଥ ଓ ପଞ୍ଚମ ଶ୍ଳୋକରେ ଭଗବାନ୍ କହିଅଛନ୍ତି ଯେ, ମୂର୍ଖମାନେ 'ସାଂଖ୍ୟ' ଓ 'ଯୋଗ'କୁ ପୃଥକ୍ ବୋଲି କହନ୍ତି, କିନ୍ତୁ ପଣ୍ଡିତମାନେ କହନ୍ତି ଯେ, ଏ ଦୁଇ ମାର୍ଗ ମଧ୍ୟରୁ ଗୋଟିଏ ମାତ୍ର ମାର୍ଗକୁ ଅବଲମ୍ବନ କଲେ ଏକହିଁ ଫଳ (ମୋକ୍ଷ) ଲାଭ ହୁଏ । ଅତଏବ ଏ ଦୁଇ ମାର୍ଗ ଏକ । କିନ୍ତୁ ଯୋଗ (କର୍ମ) ବିନା ସାଂଖ୍ୟ (ସନ୍ନ୍ୟାସ) ପ୍ରାପ୍ତି କଠିନ । ଯେଉଁ ବ୍ୟକ୍ତି କର୍ମଯୋଗଯୁକ୍ତ ହୋଇଅଛନ୍ତି ତାଙ୍କର ଅବିଳମ୍ବେ ବ୍ରହ୍ମ ପ୍ରାପ୍ତି ବା ମୋକ୍ଷଲାଭ ହୁଏ । ସନ୍ନ୍ୟାସମାର୍ଗରେ ଜ୍ଞାନକୁ ପ୍ରଧାନ ମାନିଲେ ମଧ୍ୟ କର୍ମ ନ କଲେ ଜ୍ଞାନର ସିଦ୍ଧି ହୁଏ ନାହିଁ । ଅତଏବ କର୍ତ୍ତବ୍ୟ ଜ୍ଞାନ କରି ଫଳକୁ ଈଶ୍ୱରଙ୍କଠାରେ ଅର୍ପଣ କରି ନିଷ୍କାମଭାବରେ କର୍ମ କରିବା କର୍ତ୍ତବ୍ୟ । ଏହାହିଁ ଭଗବଦ୍‌ଗୀତାର ପ୍ରତିପାଦ୍ୟ ଉପଦେଶ—ବାଳ ଗଙ୍ଗାଧର ତିଲକଙ୍କ ଶ୍ରୀମଦ୍‌ଭଗବଦ୍‌ଗୀତା ରହସ୍ୟ ବା କର୍ମଯୋଗ ଶାସ୍ତ୍ର । ]

**ସାଙ୍ଗ**—ସଂ. ବିଣ ( ସହାର୍ଥ ବହୁବ୍ରୀହି; ସ=ସହିତ+ଅଙ୍ଗ )—୧ । Sāṅga ଅଙ୍ଗବିଶିଷ୍ଟ; ଅବୟବଯୁକ୍ତ—1. Having limbs. [ନିରଙ୍ଗ—ବିପରୀତ] ୨ । ସର୍ବାବୟବ ବିଶିଷ୍ଟ; ପୂର୍ଣ୍ଣାଙ୍ଗ;ସମ୍ପୂର୍ଣ୍ଣ—2. Full-limbed; complete. [ ଉ—ସାଙ୍ଗ ହେଲା ଅବଠାରୁ ଭୁଜପଣ ମୋର—ସ୍ୱଧାନାଥ. ମହାଯାତ୍ରା) ( ସାଙ୍ଗତା—ବି ) ୩ । ଯାହାର କୌଣସି ଅଙ୍ଗ ଖଣ୍ଡିଆ ନ ଥାଏ; ଅବିକଳାଙ୍ଗ—3. Having all the parts or limbs complete. ଦେ. ବି ( ସଂ. ସଙ୍ଗ )—୧ । ସଙ୍ଗ ସହଚରତ୍ୱ—1. Companionship. ୨ । ( ସଂ. ସଙ୍ଗୀ ) ସହଚର—2. Companion. ୩ । (ସଂ.ଶକ୍ତ) ସଙ୍ଗୀ ଶାଙ୍ଗ ( ଦେଖ )—3. Sanga ( See ) ବିଣ—ଶେଷ ୧ । ସମାପ୍ତ—1. Finished. ସଙ୍ଗେ ଥାକା ୨ । ସାଙ୍ଗରେ ଥିବା—2. Accompanying; ସଂଗମେ ରହନେ ବାଲା attending on. (ଯଥା—ଅଭ୍ୟାଗତଙ୍କ ସାଙ୍ଗ ଲୋକ ୫୦ ଜଣ ଭୋଜନ କଲେ । ) ପ୍ରାଦେ- (ସିଂହଭୂମ) ବି—ସାନ ଭଉଣୀର ବର—Husband of one's younger sister. [ଦ୍ର—ବଡ଼ ଭଉଣୀଙ୍କ ବରଙ୍କୁ 'ଗଇଁ' ଭୁଆଯାଏ । ] ପ୍ରାଦେ ( ସମ୍ବଲପୁର, ଅଠମଲ୍ଲିକ, ବୌଦ୍ଧ ) ବି—ଭାଇ ଶଳା; ଭାଇଙ୍କ ଶାଳକ—One's brother's wife's brother.

**ସାଙ୍ଗ କରିବା**—ଦେ. କି—୧ । ସଙ୍ଗୀସ୍ୱରୂପ ଗ୍ରହଣ କରିବା—Sāṅga kariba 1. To take any one as one's companion. ସଙ୍ଗୀ କବା ସଂଗୀ କରନା ୨ । କୌଣସି କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିବା—ସାଙ୍ଗ କବା 2. To complete a work. ସାଂଗ କରା

**ସାଙ୍ଗକୁ**—ଦେ. ଅ—୧ । ସାଙ୍ଗେ ( ଦେଖ )—1. Sānge ( See ) Sāngaku ସଙ୍ଗେ ସଂଗମେ ୨ । ନିକଟକୁ; ପାଖକୁ—2. To; near. ସଙ୍ଗେ ନଜଦୀକ

**ସାଙ୍ଗ ଦଉଡ଼ା(ଡ଼ି, ଡ଼ା,ଡ଼ି)**—ଦେ. ବି—ସାଙ୍ଗି ଦଉଡ଼ା ( ଦେଖ ) Sāṅga daurḍā(ḍi, ṛā, ri) Sāṅgi daurḍā (See)

**ସାଙ୍ଗ ଧରିବା**—ଦେ. କି—ସଙ୍ଗୀରୂପେ କୌଣସି ବ୍ୟକ୍ତିର ଅନୁସରଣ Sāṅga dhariba କରିବା—To attend a person. ସଙ୍ଗ ଧବା to be on the wake of a person; ସଂଗ ପକଡ଼ନା

ସାଙ୍ଗ ପଢ଼ୁଆ—ଦେ. ବି (ପୁଂ)—ସହପାଠୀ—Classmate;
Sāṅga pardhuā সঙ্গী পড়ুয়া schoolmate.
**साथ पढ़ने वाला** ( ସାଙ୍ଗ ପଢ଼ୋଇ—ସ୍ତ୍ରୀ )

ସାଙ୍ଗ ପରିହାସି—ଦେ. ବିଣ, ପୁଂ ଓ ସ୍ତ୍ରୀ—ସଙ୍ଗୀ ଓ ପରିହାସ କରିବାର
Sāṅga parihāsi ଉପଯୁକ୍ତ ( ଅର୍ଥାତ୍ ଯେଉଁ ବ୍ୟକ୍ତି ମୋର
সমান সঙ্গী ସଙ୍ଗୀ ହେବା ଉପଯୁକ୍ତ ଯେଉଁ ବ୍ୟକ୍ତିକୁ ମୁଁ
**संग दिल्लगी बाज** ଥଟ୍ଟା ପରିହାସ କରି ପାରେଁ )—(a person) With whom one can form companionship and with whom one can cut jokes.

ସାଙ୍ଗ ପାଙ୍ଗ—ଗ୍ରା. ବିଣ—ସାଙ୍ଗୋପାଙ୍ଗ (ଦେଖ)
Sāṅga pāṅga Sāṅgopāṅga ( See )

ସାଙ୍ଗ ବାଲା—ଦେ. ବି—ଏକ ଦଳଭୁକ୍ତ ସଙ୍ଗୀମାନେ—Members
Sāṅga bālā সঙ্গওয়ালা of the same company.
**संग वाला** ( ସାଙ୍ଗବାଲି—ସ୍ତ୍ରୀ )

ସାଙ୍ଗ ଭାଇ—ଦେ. ବି, ପୁଂ—୧ । ଏକ ଦଳଭୁକ୍ତ ବା ଶ୍ରେଣୀଭୁକ୍ତ ବ୍ୟକ୍ତି;
Sāṅga bhāi ଭ୍ରାତୃସ୍ଥାନୀୟ ବ୍ୟକ୍ତି—1. Members of the
সঙ্গী ভাই same class or profession; brethren.
**संगी भाइ** ୨ । ସହକର୍ମୀ ବ୍ୟକ୍ତି—2. Colleague.

ସାଙ୍ଗ ମଣି(ନି)ଷ—ଗ୍ରା. ବି—୧ । ସାଙ୍ଗରେ ଥିବା ବ୍ୟକ୍ତି—
Sāṅga maṇi(ni)sha 1. Retinue. ୨ । ପାର୍ଶ୍ୱଚର—
সঙ্গের লোক **संगी लोक** 2. Attendant.
(ସାଙ୍ଗ ଲୋକ, ସାଙ୍ଗ ମନୁଷ୍ୟ—ଦେ. ରୂପ)

ସାଙ୍ଗ ମେଳ(ଳି)—( ସ. ସଙ୍ଗୀ ଓ ମିଳନ )—୧ । ସଙ୍ଗୀମାନଙ୍କ ସାହ-
Sāṅga mela(li) ଚର୍ଯ୍ୟ—1. Companionship of
সঙ্গীদের মেলা friends. ୨ । ବହୁ ସଙ୍ଗୀଙ୍କ ସମାଗମ—
**संगी लोकोंका मेल** 2. Gathering of many friends.
( ସାଙ୍ଗ ମେଳିଆ—ବିଣ )

ସାଙ୍ଗ ମୋହ(ହୋ)ବତ୍—ଦେ. ବି—ସଙ୍ଗୀମାନଙ୍କ ଅନୁରୋଧ ଉପ-
Sāṅga moha(ho)bat ରୋଧ—Request of compani-
সঙ্গ মোহবত **संगी मुहब्बत** ons.

ସାଙ୍ଗ ମୋହ(ହୋ)ବତିଆ—ଦେ. ବିଣ ( ପୁଂ ଓ ସ୍ତ୍ରୀ )—ଯେଉଁ ଲୋକ
Sāṅga moha(ho)batiā ସାଙ୍ଗମାନଙ୍କ ଇଚ୍ଛାନୁଯାୟୀ ଏବଂ ନ ପାରି
**संगी मुहब्बत वाला** କାମ କରେ—( a person ) Acting
(ସାଙ୍ଗ ମୋହବତି—ଅନ୍ୟରୂପ) to please his companions.
(ସାଙ୍ଗ ମୋହବତେଣି—ସ୍ତ୍ରୀ)

ସାଙ୍ଗ ରୂପକ—ସ. ବି—ଏକପ୍ରକାର ରୂପକ; ରୂପକ ( ଦେଖ )
Sāṅga rūpaka A kind of simile; Rūpaka (See)

ସାଙ୍ଗରେ—ଦେ. ଅ—ସଙ୍ଗେ (ଦେଖ)—Saṅge ( See )
Saṅgare ( ସାଙ୍ଗେରେ—ଗ୍ରାମ୍ୟରୂପ )

ସାଙ୍ଗରେ ରହିବା—ଦେ. କ୍ରି—୧ । (ଅମୁକର ) ପକ୍ଷରେ ରହିବା—
Sāṅgare rahibā 1. To take one's side.
পক্ষে থাকা **पक्षमें रहना** ୨ । ( କୌଣସି ବ୍ୟକ୍ତି ସଙ୍ଗେ )
সঙ্গে থাকা ଗୋପନ ଅବୈଧ ସମ୍ପର୍କ ରଖିବା—
**साथ रहना** 2. To be connected in an illicit way.

ସାଙ୍ଗ ସରି(ସରିସା)—ଦେ. ବି ( ସଂ. ସଙ୍ଗ ଓ ସଦୃଶ )—ସଙ୍ଗୀ ବା
Sāṅga sari(sarisā) ସମକକ୍ଷ ବ୍ୟକ୍ତି—Companion or
সমান বা সমকক্ষ সঙ্গী **संगीसाथी** equal.

ସାଙ୍ଗ ସାଥି (ସୁଖି)—ଦେ. ବି ( ସଂ. ସଙ୍ଗ ଓ ସଖା )—୧ । ସଙ୍ଗୀ ଓ
Sāṅga sāthi(sukha) ସହଚର—1. Companion.
সঙ্গী সাথী ୨ । କ୍ରୀଡ଼ା ସଙ୍ଗୀ—2. Playmate. ୩ ।
**संगीसाथी** ଆମୋଦ ସଙ୍ଗୀ—3. A companion in amusements; a boon companion. ୪ ।
ସହଚରମାନଙ୍କ ସହିତ ଏକତ୍ର ଆମୋଦ ପ୍ରମୋଦ—
4. Amusements enjoyed in the company of ones mate's.

ସାଙ୍ଗ ସୋବତ (ସୋହ[ହୋ]ବତ)—ଦେ. ବି ( ସହଚର ଶବ୍ଦ; ସଂ.
Sāṅga sobat(soha[ho]bat) ସଙ୍ଗ ଓ ଫା. ସୋହବତ୍ )—
সঙ্গী সাথী **संगसोहबत** ୧ । ଏକସଙ୍ଗ ଓ ସହବାସରେ ଥିବା
(ସାଙ୍ଗସୁଙ୍ଗା—ଅନ୍ୟରୂପ) ବ୍ୟକ୍ତିଗଣ—1. Persons who live and move together.
୨ । ନର୍ମ ସହଚର—2. Boon companion.
সঙ্গীদের উপবোধ। ( ମୋହବତ ଅର୍ଥରେ ସୋହବତ୍ ଶବ୍ଦର ଭ୍ରମ
**संग मुहब्बत** ଜନକ ପ୍ରୟୋଗ) ସାଙ୍ଗମାନଙ୍କ ମୋହବତ; ସଙ୍ଗୀ-
ମାନଙ୍କ ଅନୁରୋଧ ଉପରୋଧ—3. Ruquest of one's friends. ୪ । ସଙ୍ଗୀମାନଙ୍କ ଇଚ୍ଛାଲକ୍ଷ୍ୟ—
4. Susceptibility or sensitiveness to please one's friends. ୫ । ସଙ୍ଗ ମେଳ; ସହ-
ଚରତ୍ୱ—5. Companionship; company of friends.

ସାଙ୍ଗ ସୋବତ(ସୋହ[ହୋ]ବତ)ରେ ପଡ଼ିବା—ଦେ. କ୍ରି—୧ ।
Sāṅga sobat(soha[ho]batre pardibā ସଙ୍ଗ ମେଳରେ
সঙ্গে পড়া **संग सोहबतमे पडना** ପଡ଼ିବା ବା ବଶୀଭୂତହେବା
1. To be guided by the influence of one's companions. ୨ । ସଙ୍ଗୀମାନଙ୍କ ଇଚ୍ଛା-
ଲକ୍ଷ୍ୟକୁ ବା ଉପରୋଧକୁ ଜଗି କାମ କରିବା—
2. To act so as to please one's friends.

ସାଙ୍ଗସୋବତି(ସୋହ[ହୋ]ବତି)—ଦେ. ବିଣ, ପୁଂ ଓ ସ୍ତ୍ରୀ—୧ । ସାଙ୍ଗ
Sāṅgasobati(soha[ho]bati) ମୋହବତିଆ; ଯେଉଁ ବ୍ୟକ୍ତି
[ ସାଙ୍ଗସୋହ( ହୋ )ବତିଆ—ଅନ୍ୟ ବିଣ ରୂପ ] ସଙ୍ଗୀମାନଙ୍କ
(ସାଙ୍ଗସୋହ[ହୋ]ବତେଣି—ସ୍ତ୍ରୀ) ଅନୁରୋଧ ଏଡ଼ି ନ ପାରି
সঙ্গীদের উপবোধওয়ালা **संगसोहबत वाला** କୌଣସି କାର୍ଯ୍ୟ କରେ;
ଯେଉଁ ବ୍ୟକ୍ତି ସଙ୍ଗୀମାନଙ୍କ ମୁହଁ ଚାହିଁ ପାରେ ନାହିଁ—
1. A person who is prone to do acts to please his friends ୨। ଯେଉଁ ବ୍ୟକ୍ତି ସଙ୍ଗୀମାନଙ୍କ
ମେଳରେ କାଳ କଟାଏ—2. A person who passes his time with his companions.
ଦେ. ବି—ସାଙ୍ଗ ସୋବତ୍ ( ଦେଖ )—Sāṅga sobat (See).

ସାଙ୍ଗ ହେବା—ଦେ. କି—୧ । କୌଣସି ବ୍ୟକ୍ତି ସହିତ ସହଚରତ୍ୱ
Sāṅga hebā ସ୍ଥାପନ କରିବା—1. To establish
সংগী হওয়া **संगहोना** companionship with any person. ୨ । କୌଣସି ବ୍ୟକ୍ତିଙ୍କ ସମଭିବ୍ୟାହାରୀ ହେବା—2. To accompany a person. ୩ । (କୌଣସି କାର୍ଯ୍ୟ) ସରିବା; ସମ୍ପୂର୍ଣ୍ଣ ହେବା—
সাং হওয়া **सांगहोना** 3. To be completed or finished. ୪ । ( କୌଣସି କାର୍ଯ୍ୟ ) ସମ୍ପୂର୍ଣ୍ଣ ଅଙ୍ଗବିଶିଷ୍ଟ ହେବା—4. (any work) To be done without the omission of any of its parts or limbs.

ସାଙ୍ଗା—୧ । ଗ୍ରାଦେ ( ବାଲେଶ୍ୱରପାଟଣା ) ବି—ଗୃହ ଘରର ଭଲ—
Sāṅgā The cross beams of a thatched house. ୨ । ଗ୍ରାଦେ ( ଉତ୍ତର ପଶ୍ଚିମ ଗଡ଼ଜାତ; ତୁଳ ହି. ସାଂଗା)—ବି—ନୀଚଶ୍ରେଣୀଙ୍କ ମଧ୍ୟରେ ବିଧବାବିବାହ—Widow marriage amongst the low caste Hindus.

ସାଙ୍ଗି—ଦେ. ବି ( ସଂ. ସଙ୍ଗୀ )—୧ । ସଙ୍ଗୀ ( ଦେଖ )—
Sāṅgi সংগী **संगी** 1. Saṅgi ( See ) ୨ । ଏକସଙ୍ଗେ ବ୍ୟବସାୟ କରିବା ବ୍ୟକ୍ତି; ଅଂଶୀଦାର—2. Partner; coparcener ୩ । (ସଂ. ଶଙ୍କୁ) ଶାଙ୍ଗ (ଦେଖ)—Śāṅga (See) ବିଣ—ସାଙ୍ଗିଆ (ଦେଖ)—Sāṅgiā (See)

ସାଙ୍ଗିଆ—ଦେ. ବିଣ ( ସଂ. ସଙ୍ଗୀ )—ସଙ୍ଗୀ ସମ୍ବନ୍ଧୀୟ—
Sāṅgiā Relating to companion.
সংগীদের **संगी** ବି—୧ । ସଙ୍ଗୀ—Companion. ୨ । (ବୃଂ) ଯେଉଁମାନେ ଶାଙ୍ଗିଦ୍ୱାରା ଭାରବସ୍ତୁ ବହନ କରନ୍ତି 2. Persons who carry heavy loads suspended from a strong pole.
সংগী **संगी** ଗ୍ରା. ବି ( ସଂ. ସଂଜ୍ଞା )—ସଂଜ୍ଞା;
সংজ্ঞা **उपनाम** କୌଣସି ବ୍ୟକ୍ତିର ବଂଶଗତ ଉପାଧି—Family-title of a person.

ସାଙ୍ଗିଆଁ—ଦେ. ବି—ଶାଙ୍ଗିଆ ୨ (ଦେଖ)
Sāṅgiañ Śāṅgia 2 (See)

ସାଙ୍ଗି କରିବା—ଦେ. କି—୧ । କୌଣସି କାର୍ଯ୍ୟ ପାଇଁ ଅନ୍ୟ ବ୍ୟକ୍ତିକୁ
Sāṅgi karibā ସଙ୍ଗୀରୂପେ ଗ୍ରହଣ କରିବା—1. To take
সঙ্গিকরা a person as one's companion or
**संगी करना** partner. ୨ । ସାଙ୍ଗ କରିବା (ଦେଖ)—2. Sāṅga karibā. (See)

ସାଙ୍ଗି ଦଉଡ଼ା(ଡ଼ି,ରା,ରି)—ଦେ. ବି—ଯେଉଁ ଦଉଡ଼ି ଦ୍ୱାରା ଖୁବ୍ ଭାର
Sāṅgi daurḍā(ṛdi,rā,ri) ପଥର ଆଦିକୁ ବାଉଁଶ ଝୁଲାଇ ଶାଙ୍ଗି
সাঙ্গি দড়ি ବାଉଁଶ ଦ୍ୱାରା ନାକେଇ ସ୍ଥାନାନ୍ତରିତ କରାଯାଏ—A
**सांगकी रस्सी** rope or chord with the help of which heavy things are removed from one place to another, suspended in the middle of a pole on the shoulders of pairs of persons.

ସାଙ୍ଗିବା—ଗ୍ରାଦେ. (ବସ୍ତୁର) କି—କହିବା—
Sāṅgibā To tell; to speak.

ସାଙ୍ଗି ବାଉଁଶ—ଦେ. ବି (ସଂ. ସଙ୍ଗୀ+ବଂଶ)—ଯେଉଁ ମଜବୁତ
Sāṅgi bāuṅsa ବାଉଁଶର ମଧ୍ୟଭାଗରେ ଭାର ପଦାର୍ଥମାନଙ୍କୁ
সাঙ্গি বাঁশ ଦଉଡ଼ା ଦ୍ୱାରା ଝୁଲାଇ ଦୁଇ ବାଉଁଶର ଦୁଇମୁଣ୍ଡକୁ
**सांङ्गिका बाँस** ନାକେଇ କରି ସ୍ଥାନାନ୍ତରିତ କରାଯାଏ—A strong pole with the help of which heavy things are removed by pairs of men shouldering it at both ends, while the things are suspended at the middle.

ସାଙ୍ଗି ଶିକୁଳା(ଳି)—ଦେ. ବି (ସଂ. ସଙ୍ଗୀ+ଶୃଙ୍ଖଳ)—ଯେଉଁ ଶିକୁଳି
Sāṅgi śikulā(li) ଦ୍ୱାରା ସାଙ୍ଗିରେ ଭୂଡ଼ା ହେବା ଭାରପଦାର୍ଥ
সাঙ্গি শিকল ବନ୍ଧାଯାଏ—A chain for tying and
**सांङ्गिका जंजीर** suspending heavy things under a pole which is shouldered at both ends by pairs of men.

ସାଙ୍ଗୁଆ—ଦେ. ବିଣ. (ବୃଂ)—ଯେଉଁ ବ୍ୟକ୍ତି ସଙ୍ଗୀମାନଙ୍କ ସମାଜରେ
Sāṅguā ଚଳିବାକୁ ଭଲ ପାଏ; ସାମାଜିକ—Fond of
(ସାଙ୍ଗେ[ଗୋ]ଇ—ସ୍ତ୍ରୀ) company; sociable; social.
সঙ্গপ্রিয় ବି—୧ । ସଙ୍ଗୀ; ସହଚର—1. Companion; mate.
**संगचाहनेवाला** ୨ । ସାଥୁଆ; ଯେଉଁ ଯାତ୍ରୀ-ଗୁମାସ୍ତା ଅନ୍ୟ ପଣ୍ଡାଙ୍କ
সঙ্গী, সহচর ଯାତ୍ରୀମାନଙ୍କ ସଙ୍ଗ ଧରି ବହୁ ଦୂରରୁ ଗାଥିଆ
**सङ्गी** ଆସିଥାଆନ୍ତି—2. A canvassing agent accompanying the pilgrims of some other Paṇḍā than his (agent's) employer to a shrine from a long distance. ୩ । ଯେଉଁ ଲୋକମାନେ ସାଙ୍ଗି ବାଉଁଶ ଦ୍ୱାରା ଭାର ନାକେଇ କରି ବୁହାନ୍ତି—3. Persons who carry loads by means of Sāṅgi pole.

ସାଙ୍ଗେ—ଦେ. କ୍ରି. ବିଣ—୧ । ସାଥିରେ; ସଙ୍ଗେ; ସଙ୍ଗରେ; ସମଭି-
Sāṅge ବ୍ୟାହାରରେ; ଏକ ସଙ୍ଗେ—1. Along with; in
সঙ্গে, সাথে the company of; accompanied by.
**सङ्गमें** ୨ । ସହିତ—2. With. ୩ । ଏକତ୍ର—3. Together.

ସାଙ୍ଗେଇବା—ଦେ. କି—ସାଙ୍ଗି ବାଉଁଶ ଓ ସାଙ୍ଗି ଦଉଡ଼ା ଦ୍ୱାରା
Sāṅgeibā କୌଣସି ପଦାର୍ଥକୁ ସ୍ଥାନାନ୍ତରକୁ ବୁହାଇବା—
সাংগীকরে নওয়া To carry a heavy thing by
**सांङ्गीसे ढोना** suspending it from a pole.

ସାଙ୍ଗେନ୍—ଗ୍ରାଦେ. (ବାଲେଶ୍ୱର ପାଟଣା) ବି—ସାଞ୍ଜୁ—
Sāṅgen Armour.

**ସାଙ୍ଗେ ଲଗା(ଗେ)ଇବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିର ସଙ୍ଗେ କଳହ ବା ବିବାଦ କରିବା—1. To quarrel or dispute with a person. ୨ । କୌଣସି ବ୍ୟକ୍ତିକୁ ବିରକ୍ତ କରିବା—2. To tease a person. ୩ । କୌଣସି ବ୍ୟକ୍ତିକୁ ଉତ୍ତ୍ୟକ୍ତ କରିବା—3. To irritate a person. ୪ । କୌଣସି ବ୍ୟକ୍ତିକୁ କଷ୍ଟ ବା ପୀଡ଼ା ଦେବା—4. To oppress or trouble a person; to harrass a person. ୫ । କୌଣସି ବ୍ୟକ୍ତିର ଅନିଷ୍ଟ କରିବାକୁ ଚେଷ୍ଟା କରିବା—5. To try to injure a person. ୬ । (ପ୍ରଯୋଜକ) କୌଣସି ବ୍ୟକ୍ତିକୁ ଆକ୍ରମଣ କରିବା ପାଇଁ କୁକୁର ଆଦିକୁ ଉତ୍ତେଜିତ କରିବା—6. To set (a dog) to attack a person. ୭ । କୌଣସି ବ୍ୟକ୍ତିକୁ ହାକିମ ବା ମହାଜନଙ୍କ ନିକଟ ଆଣିବା ପାଇଁ ତା ନିକଟ ପିଅଦା ପଠାଇବା—7. To depute a peon to bring a person.

Sāṅge lagā(ge)ibā
(ସାଙ୍ଗେରେ ଲଗା[ଗେ]ଇବା—ଗ୍ରାମ୍ୟରୂପ)
ସঙ্গে লাগা
পীছে পড়না
সঙ্গে লাগান
সংগমেঁ লগানা

**ସାଙ୍ଗେ ଲଗିବା**—ଦେ. କ୍ରି—୧ । ବହୁକାଳ କୌଣସି ବ୍ୟକ୍ତିର ଅନିଷ୍ଟ ସାଧନ ପାଇଁ ଚେଷ୍ଟା କରିବା—1. To try to harass a person for a long time. ୨ । କୌଣସି ବ୍ୟକ୍ତି ସଙ୍ଗେ ଧାରାବାହିକରୂପେ ବିବାଦ କରିବା—2. To go on quarreling or disputing with a person. ୩ । କୌଣସି ବ୍ୟକ୍ତିକୁ ବିରକ୍ତ କରିବା—3. To tease a person. ୪ । ଆକ୍ରମଣ କରିବାପାଇଁ କୌଣସି ବ୍ୟକ୍ତିର ବା ଜୀବର ପଛରେ ଗୋଡ଼ାଇବା—4. To chase a person or animal; to set on an animal. ୫ । କୌଣସି ବ୍ୟକ୍ତି ହାକିମ ବା ମହାଜନ ନିକଟରେ ଉପସ୍ଥିତ ନ ହେବା ପର୍ଯ୍ୟନ୍ତ ଉକ୍ତ ବ୍ୟକ୍ତିର ସଙ୍ଗେ ସଙ୍ଗେ (ପିଅଦା ଆଦି) ରହିବା—5. (e. g. a peon) To closely follow a person and attend on him to oblige him to attend a place or court. ୬ । କୌଣସି ବ୍ୟକ୍ତିର ଅନିଷ୍ଟ ସାଧନ କରିବା ପାଇଁ କିମ୍ବା ତାହାର ଦୋଷଗୁଡ଼ିକ ବିଷୟ ଜାଣିବା ପାଇଁ ତା ପିଛ ଧରିବା ବା ତା ପ୍ରତି ଅବିରତ ତୀକ୍ଷ୍ଣ ଦୃଷ୍ଟି ରଖିବା—6. To shadow a person. ୭ । କୌଣସି ବ୍ୟକ୍ତିକୁ ବା ଜୀବକୁ ପୋଷିବା ବା ବଢ଼ାଇବା ପାଇଁ ଖୁବ୍ ଯତ୍ନ କରିବା—7. To take much care of a person or animal; to bring up with care. (ଯଥା—ମୋ ବଳଦ କୁକୁର ତୁଅର ସାଙ୍ଗେ ଲଗି ଲଗି ଛଅ ମାସରେ ତା କେମିତି ବଳ କଲି ।) ୮ । କୌଣସି ଦ୍ରବ୍ୟରେ ଅନ୍ୟ ଦ୍ରବ୍ୟ ସଂଯୋଜିତ ବା ଗଠିତ ହେବା—8. To be attached to another thing. (ଯଥା—ଏ ଦକ୍ଷିଣୀ ଖେଥ ସଙ୍ଗେ ସେହି ଫୁଲିବାକୁ ଖୁବ୍ ସୁନ୍ଦର ଦେଖାଗଲା ।) ୯ । ଗାଡ଼ି ଆଦିରେ (ଗୋଟିଏ ବଳଦ) ତାହାର ଯୋଡ଼ା ଜୀବ ସଙ୍ଗେ ଯୋଚ୍ଚା ହିବା—9. (a bullock) To be yoked to a cart with its equal.

Sāṅge lāgibā
(ସାଙ୍ଗରେ ଲଗିବା—ଅନ୍ୟରୂପ)
সঙ্গে লাগা
পিছেপড়না

**ସାଙ୍ଗେ ସାଙ୍ଗେ**—ଦେ. କ୍ରି. ବିଣ.—୧ । ସହିତ—1. With. ୨ । ସମଭିବ୍ୟାହାରରେ—2. In the company of; along with. ୩ । ଏକତ୍ର—3. Together. ୪ । ଏକ ସମୟରେ; ଯୁଗପତ୍—4. Simultaneously; all at once. ୫ । ତତ୍କ୍ଷଣାତ୍; ସେହିକ୍ଷଣି—5. Immediately; at once.

Sāṅge sāṅge
সঙ্গেসঙ্গে, সাথেসাথে
সাথে সাথ

**ସାଙ୍ଗୋପାଙ୍ଗ**—ସଂ. ବିଣ (ସ+ଅଙ୍ଗ+ଉପାଙ୍ଗ)—୧ । ଅଙ୍ଗ ଉପାଙ୍ଗ ଯୁକ୍ତ; ପୂର୍ଣ୍ଣାଙ୍ଗ—1. Having all the limbs complete. ୨ । ଯାହାର କୌଣସି ଅଂଶ ଖଣ୍ଡିଆ ବା ଅସମ୍ପୂର୍ଣ୍ଣ ରହି ନାହିଁ—2. Having none of the parts left incomplete. ୩ । ଶାସ୍ତ୍ର ବା ବିଧି ନିର୍ଦ୍ଦିଷ୍ଟ ସମସ୍ତ ଅଙ୍ଗମାନ ଅନୁଷ୍ଠିତ ହୋଇଥିବା (କର୍ମ)—(any rite) Performed without the omission of any detail or part.

Sāṅgopāṅga
(ସାଙ୍ଗୋପାଙ୍ଗତା—ବି)

**ସାଙ୍ଗୋପାଙ୍ଗ କରିବା**—ଦେ. କ୍ରି—କୌଣସି କାର୍ଯ୍ୟ ସର୍ବାଙ୍ଗସୁନ୍ଦର ସମ୍ପାଦନ କରିବା—To complete any work with all its details.

Sāṅgopāṅga karibā
সাঙ্গোপাঙ্গোকরা
सांगोपांगकरना

**ସାଙ୍ଗୋପାଙ୍ଗ ବେଦ**—ସ. ବି—(ଅଙ୍ଗ ଓ ଉପାଙ୍ଗ ସହିତ ବେଦ)—ଋକ୍, ଯଜୁଃ, ସାମ ରୂପ ତିନିଅଙ୍ଗ ଓ ଶିକ୍ଷା କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦଃ, ଜ୍ୟୋତିଷ, ରୂପ ଛଅ ଉପାଙ୍ଗଯୁକ୍ତ ସମଗ୍ର ବେଦ—All the Bedas with all the secondary branches of learning.

Sāṅgopāṅga beda

**ସାଙ୍ଗ୍ୟା(ଙ୍ଗ୍ୟାଁ)**—ଗ୍ରା. ବି (ପ୍ରା. ସଂଜ୍ଞା)—ସଂଜ୍ଞା (ଦେଖ)—Saṅgña (See)

Sāṅgyā(ṅgyāṅ)

**ସାଙ୍ଗ୍ରାମ**—ଗ୍ରା. ବି. (ସ. ସଙ୍ଗ୍ରାମ)—ସଙ୍ଗ୍ରାମ; ଯୁଦ୍ଧ—Fight.

Sāṅgrāma
সংগ্রাম
संग्राम

**ସାଙ୍ଗ୍ରାମିକ**—ସ. ବିଣ. (ସଙ୍ଗ୍ରାମ+ସମ୍ବନ୍ଧାର୍ଥେ ଇକ)—୧ । ସଙ୍ଗ୍ରାମ ସମ୍ବନ୍ଧୀୟ—1. Relating to battle. ୨ । ଯୁଦ୍ଧୋପଯୋଗୀ—2. Fit for fight. ୩ । ରଣକୁଶଳ—3. Warlike. ବି—ସେନାପତି—Commander; general.

Sāṅgrāmika

ସାଙ୍ଘାତିକ—ସଂ. ବିଣ (ସଙ୍ଘାତ+ଇକ)—୧ । ମାରାତ୍ମକ; ପ୍ରାଣ-
Sānghātika ନାଶକ—1. Fatal. ୨ । ବିନାଶଜନକ-
2. Destructive; ruinous. ସଂ. ବି—ଜନ୍ମ-
ନକ୍ଷତ୍ର ଠାରୁ ଷୋଡ଼ଶ ନକ୍ଷତ୍ର—The 16th asterism from one's natal star. ଦେ. ବି.—
(ପ୍ରାଣିତତ୍ତ୍ୱବିଜ୍ଞାନ ପରିଭାଷା) ସମଷ୍ଟିବଦ୍ଧ ଏକ ଜାତୀୟ
କ୍ଷୁଦ୍ର ଶାମୁକା—(Zoology) A species of small shells clustering together.

ସାଙ୍ଗ୍ଜ୍ଞା—ଗ୍ରା. ବି (ସଂ. ସଞ୍ଜ୍ଞା)—କୌଣସି ବ୍ୟକ୍ତିର ପାରିବାରିକ ଉପାଧି-
Sānjnā Family–title of a person.
উপাধি, সংজ্ঞা उपनाम

ସାଚକ୍—ବୈଦେ. ବି(ତୁର୍କୀ)—ମୁସଲମାନମାନଙ୍କ ବିବାହର ଅନୁପୂର୍ବିକ
Sāchak ସ୍ତ୍ରୀଆଚାରର ବିଶେଷ; ବିବାହ ପ୍ରସ୍ତାବ କରିବାରୁ
সাচক साचक କନ୍ୟା ଘରକୁ କନ୍ୟା ପାଇଁ ମେହେନ୍ଦି,
ସୁମିଷ୍ଟ ଫଳ (ମେୱା) ଓ ସୁଗନ୍ଧ ଅତର ପଠାଇବା ଅଗ୍ରୂର—
A rite amongst the Mahomedans consisting of sending a present of sweet fruits and scent etc to the bride's house from the bridegroom's house.

ସାଚ୍ଚ(ଚ୍ଛା)—ଦେ. ବିଣ.(ପୁଂ. ଓ ସ୍ତ୍ରୀ) (ସଂ. ସତ୍ୟ; ହି. ସଚ୍ଚା)—୧ । ସଚ୍ଚା
Sachā(chchā) (ଦେଖ)—1. Sachchā (See)୨ । ସତ୍ୟ –
ସାଚୀ(ଚ୍ଚୀ) } —ସ୍ତ୍ରୀ 2. True. ୩ । ସତ୍ୟବାଦୀ—
ସଚେ(ଚ୍ଚେ)ଇ } 3. Truthful ୪ । ସତ୍—
সাঁচ্চা साचा 4. Honest; moral. ୫ । ଖାଣ୍ଟି;
ଅବିମିଶ୍ର—5. Pure; genuine; unadulterated.

ସାଚ୍ଚ(ଚ୍ଛା) ପଣ—ଦେ. ବି—ସଚ୍ଚୋଟ୍‌ପଣ (ଦେଖ)—
Sāchā(chchā)paṇa Sachot-paṇa (See)
সাঁচ্চাপনা सचापन [ସାଚ୍ଚ(ଚ୍ଛା)ପଣିଆ(ଆଁ)—ଅନ୍ୟରୂପ]

ସାଚାର—ସଂ. ବିଣ (ବହୁବ୍ରୀହି; ସ+ଆଚାର)—ଆଚାରବାନ୍; ସଦାଚାର-
Sāchāra ସମ୍ପନ୍ନ—Following approved usage.
(ସାଚାରା—ସ୍ତ୍ରୀ) [ସାଚାରତ(ତ୍ୱ)—ବି.

ସାଚି—ସଂ. ଅ (ସଚ୍ ଧାତୁ=ସେବା କରିବା+କର୍ମ ଇ)—୧ । ବକ୍ର—
Sāchi 1. Curved. ୨ । ତିର୍ଯ୍ୟକ୍; ତେରଚ୍ଛା—
2. Crooked; awry; oblique.
ছাঁচি ଦେ. ବି (ସଂ. ଶ୍ୱେତ ବା ସତ୍ୟ)—୧ । ପରିଷ୍କୃତ ଗୁଡ଼;
सफेद चीनी ଚିନି—1. Refined molasses; bleached sugar. [ଦ୍ର—ସାଚି ଚିନି ଗଙ୍ଗାଜଳ ମିଶାଇ ପଇଡ଼, କର୍ପୂର ମରିଚ ଯୁକ୍ତ ସ୍ୱାଦରସ ବଢ଼ । ପ୍ରାଚୀ. ରହସ୍ୟ ମଞ୍ଜରୀ ।] ୨ । ମିଷ୍ଟାନ୍ନ—2. Sweetmeat. [ଦ୍ର—ସୁମଧୁର ଅର୍ଦ୍ଧ-ସ୍ଫୁଟ ମିଷ୍ଟ ଭାଷେ ଅଧଃକୃତ କରୁ ସାଚି । ରାଧାନାଥ. ଯାଜ୍ଞ ।] ୩ । ଖଣ୍ଡ; ନବାତ; ଚିନି—3.
খাঁড় शक्कर Brown sugar. ଦେ. ବିଣ. (ସଂ. ଶ୍ୱେତ)—୧। ଧଳା;
শ্বেত ଶ୍ୱେତ—1. White (ଯଥା—ସାଚି ଖାତ, ସାଚି ଧଡ଼ି ।)
सफेद ୨ । (ସତ୍ୟ) ଉତ୍କୃଷ୍ଟ—2. Excellent. ୩ । ଅସଲ;
ଅବିମିଶ୍ର—3. Genuine; true; unadulterated.

ସାଚି ଉଖୁଡ଼ା—ଦେ. ବି—ଗୁଡ଼ରେ ବା ଚିନିରେ ଭିଜାଇ ଉଖୁଡ଼ା—
Sāchi ukhurḍā Fried rice coated with white
চিনির মুড়কি लाई sugar.

ସାଚି କଖାରୁ—ଦେ. ବି (ଶ୍ୱେତ କୁଷ୍ମାଣ୍ଡ ବା ସତ୍ୟ କୁଷ୍ମାଣ୍ଡ)—(ଏହାର
Sāchi kakhāru ଉପର ଧଳା ଥିବାରୁ) ଶ୍ୱେତ କୁଷ୍ମାଣ୍ଡ; ପାଣି—
ছাঁচি কুমড়া କଖାରୁ—Pumpkin; Benincasa Cerifera.
साची कुम्हड़ा

ସାଚି କୋରା—ଦେ. ବି—ଧଳା ଗୁଡ଼ ବା ଚିନିରେ ପ୍ରସ୍ତୁତ କୋରା—
Sāchi korā A ball of sweetmeat made with
বসকোবা सफेद कोरा white sugar.

ସାଚି କ୍ଷା(ଖା)ର—ଦେ. ବି (ସଂ. ସର୍ଜିକ୍ଷାର ବା ସ୍ୱର୍ଜିକାକ୍ଷାର; ଏହା ସାଚି
Sāchi kshā(khā)ra ବା ଶ୍ୱେତ ଥିବାରୁ)—୧ । ଖାର ମାଟି;
সাজি খাব, সাজি মাটি ସାଜି ମାଟି—1. Rhesoil. ୨ । ସୋଡ଼ା
सज्जी खार —2. Soda; sodium bicarbonate.
୩ । ସୋଡ଼ିଅମ୍ ବା ପୋଟାସିୟମ୍ ଓ ଅଙ୍ଗାର ଘଟିତ କ୍ଷାର-
ବିଶେଷ—3. Carbonate of potash; carbonate of soda.

ସାଚି ଧଡ଼ି—ଦେ.ବି—ଲୁଗାରେ ଦିଆ ଯାଇଥିବା ରେଶମର ଧଳା କିନାରି
Sāchi dharḍi —White silk-border of a cloth.
সাদা পাড় सफेद कोर

ସାଚି ଧଡ଼ିଆ(କିନାରି)—ଦେ. ବିଣ—ଧଳା ଧଡ଼ିଯୁକ୍ତ (ଲୁଗା)—
Sāchi dharḍiā(kinārī) White bordered (cloth).
সচ্চা পেড়ে सफेद कोरदार

ସାଚି ପାନ—ଦେ. ବି (ସଂ. ସତ୍ୟ ବା ଶ୍ୱେତ+ପର୍ଣ୍ଣ)—୧ । ପାଚି କରି
Sāchi pāna ଧଳ ପଡ଼ି ଯାଇଥିବା ପାନ—1.Matured and
ছাঁচি পান bleached betel leaf. ୨। ଏକ ପ୍ରକାର ସୁଗନ୍ଧ-
साँची पान ଯୁକ୍ତ ପାନ—2. A kind of scented betel leaf. [ଦ୍ର—ଏହା ଖାଇବାକୁ ଅତି ଭଲ ।]

ସାଚିବ୍ୟ—ସଂ. ବି ( ସଚିବ+ଭାବ. ଯ )—୧ । ମନ୍ତ୍ରିତ୍ୱ—
Sāchibya 1. Ministry. ୨ । ରାଜ୍ୟ ଶାସନ—
2 Administration of a kingdom. ଦେ.
ବି—୧ । ସାହାଯ୍ୟ—1. Help; assistance. ୨ ।
ପରାମର୍ଶ—2. Counsel; advice. ୩ । ମୂଲ୍ୟ-
ସୁଲଭତା—3. Cheapness.

ସାଚି ମାଟି—ଦେ. ବି—ସାଜି ମାଟି ( ଦେଖ )
Sāchi māṭi Sāji māṭi ( See )

ସାଚୀକରଣ—ସଂ. ବି ( ସାଚି+ଅଭୂତ ତଦ୍ଭାବେ ଚ୍ୱି+କରଣ )—
Sāchīkaraṇa ସିଧା ଜିନିଷକୁ ବଙ୍କା କରିବା; ବକ୍ରୀକରଣ;
କୁଆଁଇବା—Bending a straight thing.

ସାଚୀକୃତ—ସଂ. ବିଣ ( ସାଚି+ଅଭୂତ ତଦ୍ଭାବେ ଚ୍ୱି+କୃତ )—
Sāchīkṛuta ବକ୍ରୀକୃତ—Bent.

ସାଜ—ଦେ. ବ (ସ. ସଜ୍ଜା; ଫା. ସାଜ୍)—୧ । ସଜ୍ଜା; ପୋଷାକ; ବେଶ-
Sāja 1. Dress; accoutrements. ୨ । ସଜ୍ଜିତ ହେବା
साज साज ଉପକରଣ—2. Equipments; fittings; trappings. ୩ । ଅଳଙ୍କାରର ଉପକରଣସମୂହ—3. Materials for decoration. ୪। ଅଳଙ୍କାର—4. Ornament ୫ । ଘରର ଅସବାବ; ଗୃହସଜ୍ଜାର ଉପକରଣ—5. Furniture. ୬ । ସନାହ; ବର୍ମ—6. Armour. ୭ । ଅସ୍ତ୍ର ଶସ୍ତ୍ରାଦ—7. Weapons. ୮ । ଅଳଙ୍କାରର ଏକ ସେଟ୍ ବା ଏକ ସାର—8. A set of ornaments. ୯ । ସୌନ୍ଦର୍ଯ୍ୟ; ଶୋଭା—9. Beauty; grace. [ଉ—ଶତ ଶତ ମଦନ ସୁନ୍ଦର, ଶୋଭଇ ଅପରୂପ ସାଜେ । ମଧୁସୂଦନ. ଉତ୍କଳ ଗାଥା ।]

ସାଜ କରିବା—ଦେ· କି—ସଜ କରିବା; ସଜ୍ଜିତ କରିବା; ସଜାଇବା—
Sāja kariba To decorate; to fit up; to equip.
साज करा सजाना

ସାଜ ଗୋଜ—ଦେ. ବ (ନିରର୍ଥକ ସହଚର ଶବ୍ଦ)—ସାଜସଜ୍ଜା (ଦେଖ)
Sāja goja Sājasajjā (See) ବଣ—୧ । ସଜବାଜ;
साजगोज, साजसोज ସୁସଜ୍ଜିତ—1. Well dressed;
साजबाज dressed up. ୨ । ସମ୍ପୂର୍ଣ୍ଣରୂପେ ସଜ୍ଜିତ—2. Fully decorated or equipped.

ସାଜଣା(ଣି)—ଦେ· ବ—ସାଜିଣୀ (ଦେଖ)—
Sājanā(ni) Sājinī (See)

ସାଜ ପକା(କେ)ଇବା—୧ । (ଘୋଡ଼ା ଆଦିଙ୍କୁ) ସାଜଦ୍ୱାରା ସଜ୍ଜିତ
Sāja pakā(ke)ibā କରିବା—1. To fit up or har-
साज फेला ness (a horse etc). ୨ । ଅଳଙ୍କାରାଦି ଦ୍ୱାରା
साज करना ସଜ୍ଜିତ କରିବା—2. To decorate with
(ସାଜ ଦେବା—ଅନ୍ୟରୂପ) ornaments.

ସାଜ(ଜି)ସ୍—ବୈଦେ· ବ (ଇଂରେଜୀ, ଫା. ସାଜିଶ୍)—୧ । (ମନାର୍ଥ)
Sāja(ji)s ମେଳ—1. Combination· ୨ । କୁମନ୍ତ୍ରଣା;
साजोस ଷଡ଼ଯନ୍ତ୍ର—2. Collusion; conspiracy. [ଦ୍ର—
साजिस ସାଧାରଣତଃ ଏହା ଯୋଗ ଶବ୍ଦ ପରେ ସହଚର ରୂପେ ବ୍ୟବହୃତ ହୁଏ, ଯୋଗସାଜସ୍ ।] ବୈଦେ. ବଣ (ଇଂରେଜୀ)—ଷଡ଼ଯନ୍ତ୍ର ଜନିତ—Collusive.

ସାଜ(ଜି)ଶ୍ କରିବା—ଦେ. କି—ଷଡ଼ଯନ୍ତ୍ର କରିବା—To collude;
Sāja(ji)s kariba साजोस करा साजिस करना to plot.

ସାଜ(ଜି)ସି—ବୈଦେ. ବଣ (ଇଂରେଜୀ; ଫା. ସାଜିସ୍=ଷଡ଼ଯନ୍ତ୍ର)—
Sāja(ji)si ଷଡ଼ଯନ୍ତ୍ରଜନିତ—Collusive. (ଯଥା—ସାଜସି
साजेसि ଡକାୟତି ।) ଦେ. ବ (ଇଂରେଜୀ)—ସାଜସ୍ (ଦେଖ)
साजिस किया हुआ Sājas (See)

ସାଜ ସଜ୍ଜା—ଦେ. ବ (ଫା. ସାଜ୍+ସଂ. ସଜ୍ଜା ସହଚର ଶବ୍ଦ)—
Sāja sajjā ୧ । ବେଶର ଉପକରଣସମୂହ—1. Materials
साजसज्जा for dress or decoration.
साजसज्जा, साजसामान, साजबाज (ଉ—ଏ ପଦ ଗୌରବ ଏବେ ସାଜସଜ୍ଜା—ପ୍ରଭୁ ତାର ଭଳେ କାହିଁ ତମ୍ବୁଳଲଜ୍ଜା—ରାଧାନାଥ. ଦରବାର ।) ୨ । ଅସବାବ; ଗୃହ ସଜ୍ଜା—2. Furniture.

ସାଜାତ୍ୟ—ସ. ବ (ସଜାତି+ଭାବ· ଯ)—ସଜାତୀୟତା; ଏକ-
Sājātya ଜାତୀୟତା—The state of being of one class or caste.

ସାଜି—ଦେ. ବ—ବୈଦେ. ବ (ଫା)—୧ । ମେଳ—1. Com-
Sāji bination. ୨ । ବ୍ୟବସାୟରେ ଏକାଧିକ ଲୋକଙ୍କର
साजि ଯୋଗ—2. Partnership in business.
साझी, साझा ୩ । କୃଷିରେ ଭାଗଦାରୀ; ଭାଗ—3. Part-
साहाय्य nership in cultivation. ୪ । (ସ. ସାହାଯ୍ୟ)
सहाय ସାହାଯ୍ୟ—4. Help; assistance·
सम्मति ୫ । ସମ୍ମତି—5. Consent; agreement. (ଉ—
समत ତାହା କେମନ୍ତ ମୁହିଁ କରିବି ସାଜି—ପିତାମ୍ବର. ଇନ୍ଦ
एजमालि କଣ୍ଠମନବତୀ ।) ବଣ—ଇଜ୍‌ମାଲି (ଦେଖ)
इजमाल Ij-māl (See)

ସାଜି ଖା(କ୍ଷା)ର—ଦେ. ବ (ସ. ସର୍ଜିକ କ୍ଷାର)—ସାଜିମାଟି (ଦେଖ)
Sāji khā(kshā)ra Sājimāti (See)

ସାଜି(ଜେ)ଣି—ଦେ. ବ (ସଂ. ସଜ୍ଜ ଧାତୁ)—୧ । ସାଜସଜ୍ଜା; ସଜ୍ଜିତ
Sāji(je)ni କରଣ; ଅଳଙ୍କରଣ—1. Decorating. (ଉ—
साज पोषाक କବେଶ ସାଜେଣୀ ପାରିଜାତ ଫୁଲ ଗନ୍ଧ—କେଶବ.
सजावट ରାମାୟଣ. ଅର ।) ୩ । ଅଳଙ୍କାର—3. Ornaments. ୪ । ପୋଷାକ—4. Dress. ୫ । ସଜ୍ଜା—5. Equipments.

ସାଜିଦାର୍—ବୈଦେ. ବ (ଫା.)—ଯୌଥ ବ୍ୟବସାୟରେ ଅଂଶୀଦାର;
Sājidār ଭାଗଦାର—Partner (in business).
অংশীদার हिस्सेदार, साझेदार

ସାଜିନି ଖେଳିବା—ପ୍ରାଦେ· (ଯାଜପୁର) କି—କଳ ଭୁଗିବା—
Sājini khelibā To cut somersault or capers.

ସାଜିବା—ଦେ. କି (ସଂ. ସଜ୍ଜ ଧାତୁ)—୧। (ଅଳଙ୍କାର ଆଦିଦ୍ୱାରା)
Sājibā ନିଜେ ସଜ୍ଜିତ ହେବା; ସଜ ହେବା—1. To be
साजा dressed up; to dress one's self. ୨ । (ଅନ୍ୟକୁ)
सजाना ସୁସଜ୍ଜିତ କରିବା; ଅଳଙ୍କୃତ କରିବା—2. To decorate; to fit up (another). (ଉ—କେତେବେଳେ ବେଶସାଜିବ—ଭଞ୍ଜ. ପ୍ରେମସୁଧାନିଧି ।) ୩ । କୌଣସି କାର୍ଯ୍ୟ ପାଇଁ ନିଜେ ପ୍ରସ୍ତୁତ ହେବା—3. To be prepared or ready for a work. ୪ । କୌଣସି କାର୍ଯ୍ୟ ପାଇଁ ନିଜକୁ ପ୍ରସ୍ତୁତ କରିବା—4. To prepare or fit up one's self for any thing. (ଉ—ଯୁଦ୍ଧ ମନ ଆଉ ଅନୁକମ ବୃଷ୍ଟି, ସଜ ସଜ-ଭୁଜ-ଦାୟି ବେଗେ ସାଜ ସାଜ ହେ—ଭଞ୍ଜ. ପ୍ରେମସୁଧାନିଧି ।) ୫ । ସଜାଇବା; ସଜ୍ଜିତ କରିବା—5. To arrange; to equip. ୬ । ସାଜିବା

—7. To store up. (ଉ—ଖୋଜି ଉଚ ଭାବରେ ଗୋ। ଜାଣିଥିବୁ ସାହୁଙ୍କ ଭୋଠ ଗନ୍ତାଘରେ ରଖିବା ଯତନେ ସାଜ ଗୋ—ବାଳକୃଷ୍ଣ.ଗୃରୁଲବଙ୍ଗଲତା ।) ୭। ଉପଯୋଗୀ ହେବା— 7. To suit. (ଯଥା—ବୃଦ୍ଧ କାଳରେ ଫୁଲଧଡ଼ିଥିଲା ଲୁଗା ମୋତେ ସାଜବ ନାହିଁ ।) ୮। ଯଥୋପଯୁକ୍ତରୂପେ ଶୋଭା ପାଇବା—8. To befit; to be becoming. ୯। ସୁନ୍ଦର ଦେଖାଯିବା—9. To look smart; to appear beautiful. ୧୦। ଶୋଭା ପାଇବା—10. To look well. (ଉ—ସହସ୍ର ଶୃଙ୍ଗ ପ୍ରାୟ ସାଜେ। ସୁରଚ୍ଛ କଶ୍ୟପ ବସ୍ତ୍ରେ—ଜଗନ୍ନାଥ. ଭାଗବତ ।) ୧୧। ଦୀପ୍ତି ପାଇବା—11. To shine forth.

ସାଜି ମାଟି—ଦେ. ବି ( ସଂ. ସର୍ଜ୍ଜି+ମୃତ୍ତିକା )—୧ । କ୍ଷାରଯୁକ୍ତ ମୃତ୍ତିକା—1. Fuller's earth; natron; rhesoil. ୨। ସୋରା—2. Nitre; saltpetre. ୩। ଲୁଣି ମାରି ଯାଇଥିବା ମାଟି—3. Soil saturated with potassium or sodium.
Sāji māṭi
সাজিমাটি
सज्जी

ସାଜରେ ଚଷିବା—ଦେ. କ୍ରି—( ଏକାଧିକ କୃଷକ ) ଭୂମିର ଭାଗଦାର ହୋଇ କୃଷି କରିବା—To cultivate a land in partnership.
Sājire chashibā
সাজায়ে চাষ করা
साझीमे चाष करना

ସାଜସ୍ (ଇତ୍ୟାଦି)—ବୈଦେ. ବି ( କଚରଥ )—ସାଜସ୍ ଇତ୍ୟାଦି ( ଦେଖ )—Sājas etc. ( See )
Sājis (etc)

ସାଜିଶି—ବୈଦେ. ବିଣ ଓ ବି (କଚରଥ)—ସାଜସି (ଦେଖ) Sājasi See)
Sājisi

ସାଜି ହେବା—ଦେ. କ୍ରି—କୌଣସି ବ୍ୟବସାୟରେ ବା କୃଷିରେ ଭାଗଦାର ହେବା—To go in as partner in a business
Sāji hebā
অংশীদার হওযা हिस्सेदार होना

ସାଜୁ—ଦେ. ବି—ସାଞ୍ଜୁ ( ଦେଖ )—Sāñju. (See) ପ୍ରାଦେ. ( ଲରଥ ) ବି—(ସ. ସଜ୍ଜା)—୧। ସଜ୍ଜା; ଅବରଣ—1. Fittings. ୨। ଅଳଙ୍କାର—2. Ornament.
Sāju
(ସାଜୁଅ—ଅନ୍ୟ ଦେ. ରୂପ)

ସାଜେ—ଦେ. ବି ଓ ବିଣ—ଏକ ସେଟ୍; ଏକ ସାଜ—One set [ ଯଥା—ସାଜେ ଅଳଙ୍କାର (ବିଣ); ଅଳଙ୍କାର ସାଜେ (ବି)] ପ୍ରାଦେ. (ଗଡ଼ଜାତ ବି—ଅସନ (କାଠ) (ଦେଖ)—Asana (wood) (See)
Sāje
একথাক(সেট)
एकसेट

ସାଜୋ—ପ୍ରାଦେ. (ପାଟଣା) ବି—(ସ. ସଜ୍ଜା)—ବେଶ; ଭୂଷଣ—Attire; decoration.
Sājo

ସାଞ୍ଚ(ଞ୍ଚି)—ଦେ. ବି—ଛାଞ୍ଚ (ଦେଖ) Chhāñcha. (See)
Sañcha (ñchi) ছাঁচ साँच

ସାଞ୍ଚା (ଇତ୍ୟାଦି)—ଦେ. ବିଣ—ସାଚ୍ଚା ଇତ୍ୟାଦି (ଦେଖ) Sācha etc. (See)
Sāñchā (etc)

ସାଞ୍ଚାରିକ—ସଂ. ବିଣ (ସଞ୍ଚାର+ଇକ)—୧ । ସଞ୍ଚାର ସମ୍ବନ୍ଧୀୟ—1. Relating to motion. ୨ । ସଞ୍ଚରଣଶୀଳ—2. Moving. ୩ । ସଞ୍ଚାରଯୋଗ୍ୟ—3. Fit to be moved, moveable.
Sāñchārika
( ସାଞ୍ଚାରିକା ସ୍ତ୍ରୀ )

ସାଞ୍ଜନ—ସଂ, ବି (ସ+ଅଞ୍ଜନ)—କୃକଲାସ; ଏଣ୍ଡୁଅ—Chameleon.
Sāñjana

ସାଞ୍ଜୁ—ଦେ. ବି (ସଂ. ସଜ୍ଜା; ସଜ୍ଜନ)—୧ । ଯୋଦ୍ଧାର ଦେହରକ୍ଷକ ପୋଷାକ—1. Armour. (ଉ—ସହସ୍ର ଦଶ ଘୋଡ଼ା ଲଗାଇ ସାଞ୍ଜୁରୁ । କୃଷ୍ଣସିଂହ. ମହାଭାରତ. ବନ ।) ୨ । ତନୁତ୍ରାଣ; କବଚ; ବର୍ମ—2. Coat of mail; a protective armowr of a warrior. (ଉ—ଏବେ ଭୂମ୍ଭେମାନେ ସାଞ୍ଜୁ ଅଙ୍ଗରେ ଭିଡ଼ । କୃଷ୍ଣସିଂହ. ମହାଭାରତ, ବନ ।) ୩ । ପକ୍ଷ—3. Wing. (ଉ—ବଳ ହୁମନ୍ତ ପର୍ବତ ପ୍ରବଳ ବାତଜନିତ ହେବାରୁ ସାଞ୍ଜୁ ଉଡ଼ିତ ରାକ୍ଷସ ବଂଶେ । ଭଞ୍ଜ. ବୈଦେହୀଶବିଳାସ ।)
Sāñju
সাঁজোয়া
बकतर

ସାଞ୍ଜୁଆ—ଦେ, ବି—ସାଞ୍ଜୁ (ଦେଖ)-Sāñju. (See) ବିଣ. (ପୁଂ)—ସାଞ୍ଜୁଆଳ (ଦେଖ)—Sāñjuāḷa (See).
Sañjuā
(ସାଞ୍ଜେ[ଞ୍ଜୋ]ଈ—ବିଣ. ସ୍ତ୍ରୀ)

ସାଞ୍ଜୁ(ଞ୍ଜୋ)ଆଳ—ଦେ. ବିଣ (ପୁଂ ଓ ସ୍ତ୍ରୀ)—ବର୍ମାବୃତ—Armoured.
Sāñju(ñjo)āḷa
সাঁজোয়াল कवचयुक्त, बकतरवाला

ସାଞ୍ଜୁଳାଯି(ହେ)ବା—ଦେ. କ୍ରି (ସାଞ୍ଜୁଳିବାର କର୍ମବାଚ୍ୟରୂପ—ଏକତ୍ର ଛନ୍ଦା ହେବା—To be tied up together, two or more with each other. (ଉ—ସାଧାରଣ ବନ୍ଦୀଙ୍କ ସହିତ ରାଜବନ୍ଦୀଙ୍କୁ ସାଞ୍ଜୁଳା ଯାଇଛି । ଦୈନିକ ଆଶା ।)
Sāñjuḷā ji(he)bā
যোড়া বাঁধা হওযা
जोड़ाजाना

ସାଞ୍ଜୁଳିବା—ଦେ. କ୍ରି (ସଂ. ସଯୋଜନ)—୧ । ଦୁଇ ବା ତତୋଧିକ ବସ୍ତୁ (ଯଥା,କଣ୍ଡିଆ)କୁ ବା ଜୀବ (ଯଥା,ଗୋରୁ, ମେଣ୍ଢା, ବାଛୁରି)ଙ୍କୁ ଦଉଡ଼ି ଦ୍ୱାରା ପରସ୍ପରସଙ୍ଗେ ଛନ୍ଦି ଦେବା—1. To tie up two or more things or animals with each other by means of a rope or string. ୨ । ଦୁଇ ବା ତତୋଧିକ ଜୀବଙ୍କୁ ବା ବ୍ୟକ୍ତିଙ୍କୁ ଏକ ସ୍ଥାନରେ ରଖିବା—2. To put two or more things or animals together.
Sāñjuḷibā
জোড়া বাঁধা
जोड़ना

ସାଞ୍ଜେ(ଞ୍ଜୋ)ଇବା—ଦେ. କ୍ରି (ସଂ. ସସ୍ଜ୍ ଧାତୁ)—ସଜାଇବା; ସଜ୍ଜିତ କରିବା—To decorate.
Sāñje(ñjo)ibā
সাজান सजाना

ସାଟ୍—ବୈଦେ. ବି (ଇଂ)—କମିଜ—Shirt. ଦେ. ଧ୍ୱନ୍ୟନୁକରଣ; ଅ—ଶଟ୍ (ଦେଖ)—Sat (See) ବି—୧ । ସାଜସ୍ ଶଙ୍କା; କୁମନ୍ତ୍ରଣା—1. Collusion; conspiracy. ୨ । ଇଙ୍ଗିତ; ସଙ୍କେତ—2. Cypher; signal; gesture. ୩ । ଶଗଡ଼ ବନ୍ଧା ଦ୍ୱାରୁ ଅଳଗ୍ନି ଧରିବାପାଇଁ ପଛ ପାଖର ଫଳର ମୁଣ୍ଡରେ ଦିଆ ଯାଇଥିବା କାଠର ଖିଲ—
Sāt
সাট্, সট্
সট্ सट
সঙ্কেত, সব, সাট্
सलाह शकटेव कील
कीला

3. Wooden pins attached to the ends of the hindmost cross-piece to keep it attached to the posterior ends of the beams of a cart.

**ସାଟ୍‌ଖିଲା(ଖୀଲ)**—ଦେ. ବ—ସାଟ୍ ୩ (ଦେଖ)
Sāṭ-kilā(khila)　　Sāṭ 3 (See)

**ସାଟ୍ କୋଟ୍**—ବୈଦେ. ବ (ଇଂ, ସହୃତର ଶବ୍ଦ)—କମିଜ ଓ କୋଟ୍—
Sāṭ koṭ　　Shirt and coat.
सार्ट् कोट्　　सर्ट कोट

**ସାଟ୍ ଦଉଡ଼ା(ଡ଼ି,ଡ଼ୁ,ଡ଼ି)**—ଦେ.ବ—ଶଗଡ଼ର ଦଣ୍ଡା ଦୁଇଟିର ପଛ ମୁଣ୍ଡକୁ
Sāṭ daurḍā(rḍi, rā, ri)　　ଶେଷ ଫଳ ସଙ୍ଗେ ବାନ୍ଧି ରଖିଥିବା ଦଉଡ଼ା—A string tied round both the back ends of the beams of a cart to keep them attached to the hindmost cross-piece.

**ସାଟ**—ଦେ. ବ—୧ । ସାଠ (ଦେଖ)—1. Sāṭha (See)
Sāṭa　　୨ । ଶାଣ୍ଠ (ଦେଖ)—Sāṇṭha (See)

**ସାଟ(ଟି)ଣ(ଣି,ନ୍,ନି)**—ବୈଦେ. ବ (ଇଂ.ସାଟିନ୍; ଗ୍ରୀକ ଭାଷା· ଗ୍ରେଟନ) ରେଶମକମିଶ୍ର ମୋଟା ଓ ଚକ୍‌ଚକ ଲୁଗା—
Sāṭa(ṭi)ṇ(ṇi,n,ni)
साटिन　　कालटी　　Satin.

**ସାଟ(ଟି)ଣ(ଣି,ନ୍,ନି) ଜନ୍(ନି)**—ବୈଦେ. ବ (ଇଂ)—ସାଟିନ୍ ପରି ମସୃଣ ତୁଳା ସୂତା ନିର୍ମିତ ଲୁଗା-
Sāṭa(ṭi)ṇ(ṇi,n,ni) jin(ni)
साटिन जिन　　कालटी जीन　　Satin jean (cloth).

**ସାଟିପି(ଫି)କ(କେ)ଟ୍**—ବୈଦେ. ବ (ଇଂ)—ସାର୍ଟିଫିକଟ୍ (ଦେଖ)—
Sāṭipi(phi)ka(ke)ṭ　　Sārṭiphikaṭ (See)

**ସାଟିବା**—ଦେ. କ୍ରି—ସାଣ୍ଟିବା (ଦେଖ)
Sāṭibā　　Sāṇṭibā (See)

**ସାଟେଇବା**—ଦେ. କ୍ରି—ସାଣ୍ଟେଇବା (ଦେଖ)
Sāṭeibā　　Sāṇṭeibā (See)

**ସାଟୋପ**—ସଂ. ବଣ (ସ+ଆଟୋପ)—୧ । ସାଡ଼ମ୍ବର—1. Grand.
Sāṭopa　　୨ । ଅହଙ୍କୃତ; ଗର୍ବ—2. Proud;
आडम्बर साटोप arrogant.　୩ । ବିକଟାଳ—3. Ferocious.
ଦେ. ବ—୧ । ଗର୍ବ—1. Pride; arrogance.
୨ । ଆଡ଼ମ୍ବର—2. Pomp; grandeur.

**ସାଟୋପେ**—ଦେ. କ୍ରି. ବଣ—୧ । ଆଡ଼ମ୍ବର ସହକାରେ—
Sāṭope　　1. With pomp; with grandeur.
आडम्बरे　　साटोपमें　　(ଭ—ଉଗିଲା ସାଟୋପେ ଘଡ଼ୋ ଅନେକ ଭୂଷଣ—ଚନ୍ଦ୍ରାମଣି· ବଳମାବତୀ ।)
୨ । ଗର୍ବ ସହକାରେ—2. Proudly.

**ସାଠ**—ଦେ. ବ—୧ । ଶାଣ୍ଠ (ଦେଖ)—Sāṇṭha (See)
Sāṭha,　　୨ । (ଶ୍ଳିଷ୍ଟ ଶବ୍ଦର ଅର୍ଥଗୁଡ଼ିକ ସହିତର)—
धन　घन　　ଯେଉଁ ବୁଦ୍ଧି ବା ବିଚକ୍ଷଣତା ପୁସ୍ତକରୁ ତା
(पडा)गुना　　साठ　　ପାଠରୁ ମିଳି ନ ଥାଏ; ସାଂସାରିକ ଅଭିଜ୍ଞତା—2. Sharpness of intellect which is not derived from book-learning. worldly experience. (ଭ—ଏମାନେ ପାଠରେ ଯାହା କରିବେ ମୁଁ ସାଠରେ ତାହା କରିବି—ଭୁଧାନାଥ· ବଦେଇ ।)　୩ । ସାଂସାରିକ ବିଷୟ ବୁଦ୍ଧି—
3. Commonsense.　[ବ୍ର—ପାଠ ସଙ୍ଗେ ପୁଅ ସାଠୁଆ—ଦେ. ପ୍ରବଚନ । ଅର୍ଥାତ୍ ସାଂସାରିକବିଷୟବୁଦ୍ଧି-ସମ୍ପନ୍ନ ବଂଶରୁ ଜାତ ସନ୍ତାନମାନେ ସାଂସାରିକ ବିଷୟରେ ବୁଦ୍ଧିମାନ୍ ହେବା ଦେଖାଯାଏ ।]　୪ । ବୁଦ୍ଧିର ତୀକ୍ଷଣତା—4. Sharpness of intellect; intelligence.

**ସାଠିଆ(ଏ) (ଇତ୍ୟାଦି)**—ଗ୍ରା· ବ ଓ ବଣ—ଷାଠିଆ(ଏ) ଇତ୍ୟାଦି
Sāṭhiā(e) (etc)　　(ଦେଖ)—Shāṭhia(e) etc. (See)

**ସାଠ(ଠି)ଣ(ନ୍) (ଇତ୍ୟାଦି)**—ବୈଦେ. ବ—ସାଟଣ୍ ଇତ୍ୟାଦି (ଦେଖ)
Sāṭha(ṭhi)ṇ(n)(etc)　　Sāṭaṇ etc. (See)

**ସାଠିବା**—ଦେ. କ୍ରି—ସାଣ୍ଠିବା (ଦେଖ)
Sāṭhibā　　Sāṇṭibā (See)
(ସାଠେଇବା—ପ୍ରୟୋଜକରୂପ)

**ସାଠୁଆ**—ଦେ· ବଣ ପୁଂ—୧ । ବୁଦ୍ଧିମାନ୍—1. Intelligent;
Sāṭhuā　　sharp of intellect; keen-witted.
[ସାଠେ(ଠା)ଇ—ସ୍ତ୍ରୀ]　　୨ । ସାଂସାରିକ ବିଷୟବୁଦ୍ଧିସମ୍ପନ୍ନ—
2. Having strong commonsense.

**ସାଡ଼ଗାଡ଼ି**—ଗ୍ରାଦେ (ସମ୍ବଲପୁର) ବ—ପିଲା ଓ ସ୍ତ୍ରୀମାନଙ୍କର ଏକପ୍ରକାର
Sārḍ-gāḍi　　ଖେଳ—An indoor game amongst children and females.

**ସାଡ଼ସାତି**—ଦେ. ବ (ସଂ. ସାର୍ଦ୍ଧ ସପ୍ତ)—୧ । ସାର୍ଦ୍ଧ ସପ୍ତ—
Sārḍ-sāti　　1. Seven and a half.
[ସାଡେ(ଢ଼,ଢ଼େ)ସାଟ—ଅନ୍ୟରୂପ]　　୨ । ସାର୍ଦ୍ଧ ସପ୍ତ ବର୍ଷ—
साढ़ेसात　　साढ़ेसाति　　2. Seven years and a half.
୩ । ଶନିର ମନ୍ଦ ଦଶା ଭୋଗର ସମୟ; ସାର୍ଦ୍ଧ ସପ୍ତ ବର୍ଷ—
3. Seven and a half years, a period of bad influence of the Planet Saturn on the life of a person.　[ଦ୍ର—ଶନିଗ୍ରହ ତଳେ ନୋଟ୍ ଦେଖ ।]

**ସା(ସ୍ୟା)ଡ଼**—ଦେ. ବ—୧ । ସେଆଡ଼; ସେ ଦଗ; ସିଆଡ଼—
Sā(syā)rḍḍa　　1. That side.　(ଭ—
ସ୍ୟାଡ଼
ଇଅଡ଼ } —ବ୍ୟବହୃତ　ଯେତେବେଳେ ସାଡ଼ ଫୌଜ ଆସି ପହଞ୍ଚିବେ ଏଠା ଫୌଜ ଯାଇ ଲଢ଼ାଇ
ওদিগ　　उधर　　ହବ—ଭକାର· କଟକକଥା ।)
[ସେ(ସି)ଅଡ଼—ଅନ୍ୟରୂପ]　　୨ । ସେହି ସ୍ଥାନ—
2. That place.

**ସା(ସ୍ୟା)ଡ଼କା**—ଦେ. ବଣ—୧ । ସେହି ଅଡ଼ର—1. Of that side.
Sā(syā)rḍakā　　୨ । ସେହି ସ୍ଥାନର—2. Of that place.
ସା(ସ୍ୟା)ଡ଼କାର
ସେ(ସି)ଅଡ଼କା } —ଅନ୍ୟରୂପ

(ଅଡକା, ଇଅଡକା, ସ୍ୟାଡକା, ସ୍ୟାଡ଼କାର, ଇସ୍ୟାଡ଼କାର—ବଦଗଣ୍ଡ)
ଓଦିଗକାବ उधरको

ସା(ସ୍ୟା)ଡକୁ—ଦେ. ଅ—୧ । ସେହି ଅଡକୁ; ସିଅଡକୁ—
Sā(syā)rḍaku 1. To that side. ୨ । ସେହି
ଓଦିଗେ(କେ) उधर ସ୍ଥାନକୁ—2. To that place.
[ସି(ସେ)ଅଡ଼କୁ—ଅନ୍ୟରୂପ] [ସ୍ୟାଡ଼କୁ, ଇଅଡକୁ—ବଦଗଣ୍ଡ]

ସାଡ ଦି(ଦେ)ଆ(ୱା, ବା)ଲି—ବୈଦେ. ବ—ସଡ଼ ଦିଆଲି ( ଦେଖ )
Sārḍa di(de)ā(wā, bā)li Sarḍa diāli ( See )

ସାଡ ଦୁ(ଦୋ)ଳି—ଦେ. ବ (ସଂ. ଶାର୍ଦ୍ଦୂଳୀ)—ସାର ଦୋଳି (ଦେଖ)
Sārḍa du(do)ḷi Sāra doḷi ( See )

ସାଡମ୍ବର—ସଂ. ବଣ. ପୁଂ ( ସ+ଆଡମ୍ବର; ସହାର୍ଥ ବହୁବ୍ରୀହି )—
Sārḍambara ଆଡମ୍ବର ଯୁକ୍ତ—Grand; full of ado;
(ସାଡମ୍ବରା—ସ୍ତ୍ରୀ) pompous.

ସାଡମ୍ବର ରୀତି—ସଂ. ବ—ରୀତି ୧୨ ( ଦେଖ )
Sārḍambara riti Riti 12 ( See )
[ଦ୍ର—ରୀତି ତଳେ ନୋଟ ଦେଖ । ସାଡମ୍ବର ରୀତିର ଉଦାହରଣ—ବଳନ ସ୍ଵର୍ଣ୍ଣସ୍ଥଳୀ, ବନଗଜକୁଳ-କଣ୍ଡୂଳ କପୋଳଭିତ୍ତି ଘର୍ଷଣେ ଉନ୍ମିତ, ଦ୍ରୁମାବଳୀ ଦେଖୁଁ ଯେଉଁ ପ୍ରବାହେ, ସୁରର ଅରଣ୍ୟ ପୁଷ୍ପ ପୁଞ୍ଜ ପୁଞ୍ଜ ହୋଇ, ବନଦେବୀଙ୍କର କି ସେ ଅର୍ଘ୍ୟ ଭଳାଞ୍ଜଳି । ରାଧାନାଥ, ମହାଯାତ୍ରା]

ସାଡ(ଢ, ଡ଼େ, ଢେ)ସାତି—ଦେ. ବ ( ସଂ. ସାର୍ଦ୍ଧ ସପ୍ତ )—ଫଳିତ
Sārḍa(rḍha, rḍe, rḍhe)sāti ଜ୍ୟୋତିଷ ଅନୁସାରେ ଶନି
साढे साती ଗ୍ରହଙ୍କ ବିଶିଷ୍ଟ ଅବସ୍ଥାନ ଜନିତ ମନୁଷ୍ୟର ମନ୍ଦ ଦଶା
साढे साती (astrology) Evil extending over 7½ years in a man's life due to a very inauspicious position of the planet Saturn.

ସାଡା—ଦେ. ବ(ସଂ. ସ୍ଵର ବା ସଂଜ୍ଞା; ବଙ୍ଗଳାରୁ ଅନୁକୃତ)—୧ । ସ୍ଵର,
Sārḍā ଶବ୍ଦ; ଧ୍ଵନି—1. Sound. ୨ । ଚୈତନ୍ୟ—
সাড়া 2. Sensibility; consciousness; sensitive-
आवाज ness. ୩ । ସ୍ପନ୍ଦନ—3. Vibration. ୪ । ଡାକର
ଜବାବ—4. Response to a call. ୫ । ଉଚ୍ଚୈଃ ସ୍ଵରରେ ଉତ୍ତର—5. Loud reply. ୬ । ଆହ୍ଵାନ; ଡାକ ହାକ—6. Call; halloo.

ସାଡ଼ା ଦେବା—ଦେ. କ୍ରି (ବଙ୍ଗଳାରୁ ଅନୁକୃତ)—୧ । ପ୍ରଶ୍ନର ଉତ୍ତର
Sārḍā debā ଦେବା—1. To give a reply. ୨ । ସ୍ପର୍ଶ-
সাড়া দেওয়া ବୋଧ ସୂଚକ ଭଙ୍ଗୀ ପ୍ରକାଶ କରିବା—
आवाज देना 2. To respond to touch; to give indication of sensibility.

ସାଡା ଶବଦ(ସ୍ଵର, ସୋର)—ଦେ. ବ ( ଏକାର୍ଥକ ସହଚର )—
Sārḍā śabada(swara, sor) ୧ । କୌଣସି ପ୍ରକାରର ଶବ୍ଦ
সাড়া শব্দ ବା ଧ୍ଵନି—1. Any sound whatever. ୨ ।
आवाज ସ୍ପର୍ଶବୋଧ—2. Response to touch.
୩ । ଚୈତନ୍ୟ—3. Conciousness. ୪ । ଜୀବର ଅତି କ୍ଷୀଣ ପ୍ରାଣ ଥିବାର ପ୍ରମାଣ—4. Slight indication of life in an animal.

ସା(ସ୍ୟା)ଡୁ—ଦେ. ଅ—୧ । ସେହି ଦିଗରୁ—1. From that
Sā(syā)rḍu side. ୨ । ସେହି ସ୍ଥାନରୁ—2. From that
(ସିଅଡୁ, ସେ ଅଡୁ—ଅନ୍ୟରୂପ) place. ପ୍ରାଦେ. (ପାଟଣା,
ওদিগ থেকে କଳାହାଣ୍ଡି, ଅଞ୍ଚଳ) ବ—ସାରୁ—Taro.
उधरसे [ସ୍ୟାଡୁ, ଇଅଡୁ—ବଦଗଣ୍ଡ]

ସା(ସ୍ୟା)ଡେ—ଦେ. ଅ—୧ । ସେ ଦିଗରେ; ସେଣେ—1. In that
Sā(syā)rḍe side. ୨ । ସେ ସ୍ଥାନରେ; ସେଠାରେ—
[ସି(ସେ)ଅଡ଼େ—ଅନ୍ୟରୂପ] 2. There. ବଣ (ସଂ. ସାର୍ଦ୍ଧ)—
(ଇଅଡ଼େ—ବଦଗଣ୍ଡ) ସାର୍ଦ୍ଧ—One and a half times
ওদিগে उधर সাঢ़ে साढे as much.

ସାଡ଼େ(ଢେ)ସାତି—ଦେ. ବ—ସାଡ ସାତି ( ଦେଖ )
Sārḍe(rḍhe)sāti Sārḍa sāti ( See )

ସାଢ଼ୀ—ପ୍ରାଦେ. ( ଲଡ଼ଥ ) ବ—ଦୁଗ୍ଧାଦିର ସର—Cream of
Sārḍhi milk. ଦେ. ବ (ସଂ. ଶାଟିକା)—ଶାଟିକା; ସଧବା
সাড়ী ସ୍ତ୍ରୀମାନଙ୍କ ପରିଧେୟ ଧଡ଼ିଦାର ଲୁଗା; ଶାଢ଼ୀ ଇତ୍ୟାଦି
साडी (ଦେଖ)—Woman's cloth (having borders)

ସାଢ଼ୁ—ପ୍ରାଦେ. (ବସ୍ତର) ବ. (ପୁଂ.)—ସଢ଼ୁ ( ଦେଖ )
Sārḍhu Sarḍhu ( See )

ସା(ସ୍ୟା)ଢେ—ଦେ. ବଣ ( ସଂ. ସାର୍ଦ୍ଧ )—ସାର୍ଦ୍ଧ; ଏକ ମାତ୍ରା ଓ ପୁଣି
Sā(syā)rḍhe ଅର୍ଦ୍ଧ ମାତ୍ରା—Half as much again; one
সাঢ়ে साढे and a half.[ଦ୍ର—ଏହା ଅନ୍ୟ ସଂଖ୍ୟାବାଚକ ଶବ୍ଦ ପରେ ଯୁକ୍ତ ହୁଏ । ଯଥା—ସାଢ଼େ ତିନ=୩½ ବା ୩୫; ସାଢେ ଦଶ=୧୦½ ବା ୧୦୫]

ସାଣ(ଇତ୍ୟାଦି)—ଦେ. ବ (ସଂ. ଶାଣ)—୧। ଶାଣ ଇତ୍ୟାଦି (ଦେଖ)—
Sāṇa(etc) 1. Śāṇa etc (See) ୨। ସାହାଣ ଇତ୍ୟାଦି (ଦେଖ)
সাণ स्रुंड 2. Sāhāṇa etc ( See )

ସାଣ୍ଟ(ଣ୍ଠ, ଣ୍ଠୁ)ଣ(ଣା)—ଦେ. ବ—ସଣ୍ଠଣ ( ଦେଖ )
Sāṇṭa(ṇṭha, ṇṭhu)ṇa(ṇā) Sanṭhaṇa ( See )

ସାଣ୍ଟି(ଣ୍ଠି)ବା—ଦେ. କ୍ରି ( ସଂ. ସଟ୍ ଧାତୁ=ହିଂସା କରିବା )—
Sāṇṭi(ṇṭhi)bā ୧। ଧାନ୍ୟାଦି କ୍ଷୁଦ୍ର ବସ୍ତୁକୁ ଏକତ୍ର ମିଶାଇବା—
মিশান 1. To mix up together small articles.
मिलाना ୨ । ଫେଣ୍ଟିବା—2. To intimately mix to-
কাঁড়া, ছাঁটা gether. ୩ । ଧାନ ଅବଦକୁ କାଣ୍ଡିବା—3. To
छाँटना cleanse rice of the husk by husking or
ঘা'মাবা beating. ୪ । ଆଘାତ କରିବା—4. To beat;
धकेलना, ढकेलना to strike. ୫ । ବଳପୂର୍ବକ ଠେଲିବା—
মলা 5. To push with vigour. ୬ । ବଳପୂର୍ବକ
घसीटना ଉପର୍ଯ୍ୟୁପରି ଘଷିବା; ମଳିବା—6. To press re-
সাঁটা, সেঁটে দেওয়া peatedly and vigorously.
ऐंठना ୭ । ଅଣ୍ଟିବା; ସଂଲଗ୍ନ କରିବା—7. To fasten; to
সাঁটা टुकाना attach firmly. ୮ । ଅଭ୍ୟାସୁର କରିବା—

ସୋଜা করা 8. To oppress. ୯ । ବିପନ୍ନ କରିବା; ବିପଦରେ
সিধা করনা ପକାଇବା—9. To put a person to dan-
স্যাঁটা ger or difficulties. ୧୦ । ବଙ୍କା ହୋଇଥିବା
ठूसना ପିଠିକୁ ସିଧା କରିବା– 10. To stiffen or straighten one's back. ୧୧ । (ବ୍ୟଙ୍ଗ) ବହୁତ ଗୁଡ଼ାଏ ଖାଇବା—11. (irony) To eat much.

ସାନ୍ତେ(ଣ୍ଠେ)ଇବା—ଦେ· କି—୧ । ସାଣ୍ଟିବା କିୟାର ଣିଜନ୍ତ ରୂପ—
Sāṇte(ṇṭhe)ibā 1. Causative of 'Sāṇṭibā.'
স্যাঁটান ୨ । ବୁଡ଼ବୁଡ଼େଇବା; ଧ୍ୱସ୍ତ ହେବା—2. To be
मिलवाना overpowered; to break down.

ସାଣ୍ଟୋନାଇନ୍—ବୈଦେ ବି (ଇଂ)—କୃମିଘ୍ନ ଡାକ୍ତରୀ ଚୂର୍ଣ୍ଣବିଶେଷ—
Sāṇṭonāin Santonine. [ ବ୍ର—ଏହାର ଗଛ ପଶ୍ଚିମ
'সান্টোনাইন হିମାଳୟରେ ଜନ୍ମେ (Artemisia Maritima);
सांटोनाइन ଜନ୍ମ ଏ ଗଛ ଫଳରୁ ଉଠାଯାଇ ସେଠାରେ ଷ୍ଟୋର୍ରୁ (ସାଣ୍ଟୋନିନ୍—ଅନ୍ୟରୂପ) ବୈଜ୍ଞାନିକ ପ୍ରକ୍ରିୟାରେ ଚୂର୍ଣ୍ଣ ଛିଥିର ହୋଇ ଭାରତକୁ ଆସେ । ]

ସାଣ୍ଡ୍ ଗ୍ଲାସ୍—ବୈଦେ· ବି ( ଇଂ )—ତଳେ ଛିଦ୍ର ଥିବା ବାଲିପୂର୍ଣ୍ଣ ପାତ୍ର,
Sāṇḍ-glās ଯହିଁରୁ ବାଲି ଗଳିପଡ଼ିବାଦ୍ୱାରା ସମୟ ନିରୂପଣ
স্যাণ্ড গ্লাস କରାଯାଏ; ଶୁକ୍ର ଯନ୍ତ୍ର—Sand-glass.
सॉँड्ग्लास

ସାଣ୍ଡ ପେପର୍—ବୈଦେ. ବି ( ଇଂ )—କାଠର ଓ ଧାତୁର ଜିନିଷ
Sāṇḍ pepār ପାଲିସ କରିବା ପାଇଁ ବ୍ୟବହୃତ, ଅଠା ସାହାଯ୍ୟରେ
স্যাণ্ড পেপার କାଚ ଗୁଣ୍ଡା ଲଗା ଯାଇଥିବା କାଗଜ—
साँड पेपर Sand-paper.

ସାଣ୍ଡ—ଗ୍ରାଦେ ( ବସ୍ତୁର ) ବି—ଷଣ୍ଢ—
Sanda Bull.

ସାତ୍ ( ଧାତୁ )—ସ.—ସୁଖୀ ହେବା—
Sāt ( root ) To be happy.

ସାତ—ସ. ଅ ( ପ୍ରତ୍ୟୟ ) ( ଅନ୍ୟ ବିଶେଷ୍ୟ ଶବ୍ଦ ପରେ ଯୁକ୍ତ ହୁଏ;
Sat [ବ୍ର—ପରିଣତ ଓ ଦେୟ ଅର୍ଥର ଶବ୍ଦରୁ ଉତ୍ତର ଏହି ପ୍ରତ୍ୟୟ ହୁଏ—ଜଳସାତ୍, ଅଗ୍ନିସାତ୍, ପାତ୍ରସାତ୍ ]—(ଅମୁକ ବସ୍ତୁ ମଧ୍ୟରୁ) ଗୃହୀତ; ଅନ୍ତର୍ଭୁକ୍ତ--Included in; taken into (a thing). ଦେ. ଅ (ସ. ସ୍ୟାତ୍)—
यदिओ ୧ । ସ୍ୟାତ୍; ଯଦସ୍ୟାତ୍; ଯଦ୍ୟପି—1. If. ୨ । ପକ୍ଷା-
अगरचे ନ୍ତରରେ—2. On the other hand. ୩ । ଅଥବା
'সঙ্গে —3. Or. ୪ । (ସହ; ସହିତ) ସହତ—4. With.
साथ [ ବ୍ର—ସାଥ ଗଲ ସାତ୍, ଉସ୍ଥ ଗଲ ତାହା ସାତ୍—ତଗ] ଗ୍ରାଦେ ( ଭିତରଭୁଖା, ସମ୍ବଲପୁର ) ବିଣ—ସାତ; ୨—
The number 7.

ସାତ—ସ. ବି ( ସାତ୍ ଧାତୁ=ସୁଖୀ ହେବା+ଭାବ. ଅ )—୧ ।
Sāta ସୁଖ—1. Happiness. ୨ । ମଙ୍ଗଳ—2. Bliss. ୩ । ହର୍ଷ—3. Pleasure; joy. ୪ । ସିଂହରୂପୀ ଗନ୍ଧର୍ବବିଶେଷ—4. Name of an aereal being in the form of a lion. ବିଣ—୧ । (ସନ୍ ଧାତୁ= ଦେବା+କର୍ମ· ତ ) ଦତ୍ତ—1. Given. ୨ । (ସୋ ଧାତୁ=ନାଶ ପାଇବା+କର୍ତ୍ତି.ତ) ନଷ୍ଟ—2. Spoiled;
সাত destroyed. ଦେ. ବି ( ସଂଖ୍ୟାବାଚକ; ସଂ. ସପ୍ତନ୍,
सात ପ୍ରା. ସତ୍ତ )—୧ । ସପ୍ତ ସଂଖ୍ୟା—1. Seven,
সাতা ୨ । ସତା; ୭ ଟିପଯୁକ୍ତ ଗଞ୍ଜପା ଖାଉ—2. The card
सता containing 7 tips or points (Indian
সাত game of cards). ବିଣ—୧ । ସପ୍ତ ସଂଖ୍ୟକ—1.
सात Seven. (ଯଥା—ସାତ କଥାରେ ସଙ୍ଗ ଭୁଲେ ।)ଗ୍ରା.ଅ—
সাথে ସଙ୍ଗେ—With. [ ବ୍ର—ଭଗବାନଙ୍କ ସୃଷ୍ଟିରେ ସାତ
साथ ଗୋଟିଏ ରହସ୍ୟପୂର୍ଣ୍ଣ ସଂଖ୍ୟା । ଦିବ୍ୟ ଦୃଷ୍ଟି ସମ୍ପନ୍ନ ପ୍ରାଚୀନ ଋଷିମାନେ ଅନୁଭୂତିଦ୍ୱାରା ଜାଣିଥିଲେ ଯେ ଏହି ଦୃଶ୍ୟମାନ ଜଗତ ବ୍ୟତୀତ ଭଗବାନ୍ ଆଉ ଛଅ ଗୋଟି ଲୋକ ସୃଷ୍ଟି କରିଅଛନ୍ତି । ଏମାନଙ୍କୁ ସାତଲୋକ ବା ସପ୍ତଲୋକ ବୋଲି ଯାଏ । ସେମାନଙ୍କ ନାମ ଭୂଃ,ଭୁବଃ,ସ୍ୱଃ ଇତ୍ୟାଦି । ଏଥିମଧ୍ୟରୁ କେବଳ ଭୂର୍ଲୋକ ବା ଜଡ଼ପୃଥିବୀ ଚର୍ମଚକ୍ଷୁର ବିଷୟୀଭୂତ ହୋଇଥାଏ । ଅନ୍ୟ ଛଅ ଗୋଟି ଲୋକ ସାଧାରଣ ଚକ୍ଷୁଦ୍ୱାରା ଦେଖା ଯାଏ ନାହିଁ । ଏଗୁଡ଼ିକ ସୂକ୍ଷ୍ମଲୋକ ଏବଂ ପ୍ରତ୍ୟେକ ଲୋକ ତାହାର ପରବର୍ତ୍ତୀ ଲୋକ ଅପେକ୍ଷା ସୂକ୍ଷ୍ମତର । ଅଧିକ ଆଶ୍ଚର୍ଯ୍ୟର ବିଷୟ ଯେ, ପ୍ରତ୍ୟେକ ଲୋକ ପୁଣି ସାତଭାଗରେ ବିଭକ୍ତ । ଯଥା—ଭୂର୍ଲୋକ—କଠିନ, ତରଳ, ବାଷ୍ପବାୟୁ ଏବଂ ଆଉ ୪ ଗୋଟି ସୂକ୍ଷ୍ମ ବିଭାଗରେ ବିଭକ୍ତ । ସୁତରାଂ ମନୁଷ୍ୟ ଚକ୍ଷୁଦ୍ୱାରା ଭୂର୍ଲୋକର କେତେକ କଠିନ ଓ ତରଳ ଅଂଶ ବ୍ୟତୀତ ଅନ୍ୟ ୫ ଗୋଟି ଅଂଶ ଦେଖି ପାରେ ନାହିଁ । ଅତଏବ ମନୁଷ୍ୟର ଜ୍ଞାନ କେତେ ସୀମାବଦ୍ଧ ତାହା ସହଜରେ ବୁଝାଯାଏ । ଅଧୁନାତନ ବେତାର ବାର୍ତ୍ତା ଯେଉଁ (Ether) ଇଥର ମଧ୍ୟରେ ଯାତାୟାତ କରେ ତାହା ଭୂଲୋକର ସୂକ୍ଷ୍ମବିଭାଗ ମଧ୍ୟରୁ ଗୋଟିଏ । ସୂର୍ଯ୍ୟରଶ୍ମିକୁ ବିଶ୍ଳେଷଣ କଲେ ଦେଖାଯାଏ ଏଥିରେ ସାତଗୋଟି ବିଭିନ୍ନ ରଙ୍ଗର ରଶ୍ମିମାନ ଅଛି । ସେମାନଙ୍କ ସମ୍ମିଶ୍ରଣରେ ଧଳା ରଶ୍ମି ହୁଏ । ସଙ୍ଗୀତର ଧ୍ୱନି ମଧ୍ୟ ସାତ ସ୍ୱରରେ ବିଭକ୍ତ । ଏହିପରି ସୃଷ୍ଟିର ନାନା ବିଗରେ ସାତ ସଂଖ୍ୟାର ବ୍ୟବହାର ଦେଖାଯାଏ । ହିନ୍ଦୁମାନେ ଏହା ପର୍ଯ୍ୟବେକ୍ଷଣ କରି ମାଙ୍ଗଳିକ କାର୍ଯ୍ୟମାନଙ୍କରେ ଏଥିର ବ୍ୟବହାର କରି ଅଛନ୍ତି; ଯଥା—ସାତମଙ୍ଗଳା, ସାତପାପ, ସାତ ସ୍ତ୍ରୀ ବନ୍ଦାପନା କରିବା, ଭାଗବତ ସାତ ଦିନରେ ପାଠ ଶେଷ କରିବା ଇତ୍ୟାଦି । ]

ସାତ ଅଲଗା—ଦେ· ବିଣ—୧ । ପରସ୍ପରଠାରୁ ପୃଥକ୍ ହୋଇ ଭିନ୍ନ
Sāta alagā ଭିନ୍ନ ସ୍ଥାନରେ ଅବସ୍ଥିତ ( ବ୍ୟକ୍ତି ବା ବସ୍ତୁ )—1.
ছাড়াছাড়ি (many things or persons) Separated
सात अलग from each other. ୨ । ସମ୍ପୂର୍ଣ୍ଣରୂପେ ପରସ୍ପର
( ସାତ ଅଲଗା ପନ୍ଦର ଖାଁ—ଅନ୍ୟରୂପ ) ସମ୍ପର୍କରହିତ—
2. Totally unconnected.

ସାତ ଅହୁଅ—ଦେ. ବି.(ସ୍ତ୍ରୀ)—ସାତଜଣ ସଧବା ସ୍ତ୍ରୀଲୋକ; କନ୍ୟାଙ୍କୁ ବନ୍ଦାପନା କରିବାରେ ଓ ଅନ୍ୟାନ୍ୟ ମଙ୍ଗଳ କାର୍ଯ୍ୟରେ ଏକତ୍ର ହେବା ୭ ଜଣ ସଧବା ସ୍ତ୍ରୀ—Seven women ( who have their husbands living ) who are required in certain ceremonial rites in connection with a marriage or other auspicious function amongst the Hindus.
Sāta ahia
সাত এয়ো
सात सोहागिनी
(ସାତ ଅହ୍ୟ—ଅନ୍ୟରୂପ)

ସାତ ଉତ୍ତର ଶହେ(ଏ)—ଦେ. ବି ଓ ବିଣ ( ସଂ. ସପ୍ତୋତ୍ତର ଶତ )—ଏକ ଶହ ସାତ—One hundred and seven. [ ଦ୍ର—ଏହିପରି ସାତ ଉତ୍ତର ଦୁଇଶ ଆଦି ଶବ୍ଦ ହୁଏ । ]
Sāta uttara sahe(e)
একশ সাত
एकसौ सात

ସାତ କ(କୋ)ଣିଆଁ—ଦେ. ବିଣ ( ସଂ. ସପ୍ତ ଓ କୋଣ )—ସପ୍ତ କୋଣବିଶିଷ୍ଟ (କ୍ଷେତ୍ର); ସପ୍ତ ବାହୁବିଶିଷ୍ଟ—A figure having seven angles; septagonal.
Sāta ka(ko)ṇiañ
সাত কোণা
सात कोनिआ

ସାତ କଥା—ଦେ. ବି—୧ । ନାନା କଥା—1. Many words. (ଯଥା—ଏ କଥାଟି ସାତ କଥାରେ କଥାଏ ।) ୨ । ନାନାପ୍ରକାରର ରିପୋର୍ଟ—2. Various reports. [ ଦ୍ର—ସାତକଥାରେ ସଙ୍ଗ ଭୁଲେ—ପ୍ରବଚନ । ଅର୍ଥାତ୍, ଏକାଧିକ ପ୍ରଲୋଭନ ବାକ୍ୟଦ୍ୱାରା ସତୀ ସ୍ତ୍ରୀର ମନ ମଧ୍ୟ ବିଚଳିତ ହୁଏ; କିମ୍ବା ସ୍ୱାମୀଙ୍କ ନାମରେ ବହୁ ବ୍ୟକ୍ତିଙ୍କ ମୁହଁରୁ ଚୁଗୁଲି ଶୁଣିଲେ ସତୀ ସ୍ତ୍ରୀର ମନ ମଧ୍ୟ ବିଚଳିତ ହୁଏ । ] ୩ । ବହୁ କଟୁକ୍ତି—3. Various abuses. (ଯଥା—ମୁଁ ତାକୁ ଆଜି ସାତ କଥା ଶୁଣାଇ ଦେବି ।)
Sāta kathā
সাত কথা
सात बात

ସାତକ ପଣିକିଆ—ଦେ. ବି—ସାତ ସଂଖ୍ୟାରେ ୧ ଠାରୁ ୧୦ ପର୍ଯ୍ୟନ୍ତ ଗୁଣାଯାଇ ଲେଖାଯିବା ପଣିକିଆର ଧାଡ଼ିମାନ—The multiplication tables of 7 multiplied by 1 upto ten consecutively.
sātaka paṇikiā
সাতের ঘরের নামতা
सातका पहाड़ा

ସାତ କଥାରେ କଥାଏ—ଦେ. ବାକ୍ୟ—ଅନେକ କଥା ମଧ୍ୟରେ ଗୋଟିଏ ସାର ବଚନ—A pithy or substantial saying out of many sayings. ୨ । ଅନେକ ବାଜେ କଥା ମଧ୍ୟରୁ ଗୋଟିଏ ମୂଲ୍ୟବାନ୍ କଥା—2. A valuable saying amongst a lot of things said.
Sāta kathāre kathāe
সাত কথাতে এক কথা
सार बात

ସାତ କାଣ୍ଡ—ଦେ. ବି—ରାମାୟଣର ସପ୍ତ କାଣ୍ଡ ବା ବିଭାଗ—The seven volumes or parts of the great epic the Rāmāyaṇa. [ ଦ୍ର—ବାଲ୍ମୀକିକୃତ ରାମାୟଣ-ବର୍ଣ୍ଣିତ ବିଷୟମାନ ସାତ ଗୋଟି କାଣ୍ଡରେ ବା ବିଭାଗରେ ଲିପିବଦ୍ଧ ହୋଇଅଛି । ରାମାୟଣ ଦେଖ । ]
Sāta kāṇḍa
সাত কাণ্ড
सात कांड

ସାତ କାଣ୍ଡ ରାମାୟଣ—ଦେ. ବି—୧ । ରାମାୟଣ ପରି ବୃହତ୍ ଗ୍ରନ୍ଥ—1. A big book like the Rāmāyaṇa. ୨ । ଅତି ବୃହତ୍ କଥାସାର—2. A very big matter. [ ଦ୍ର—ସାତ କାଣ୍ଡ ରାମାୟଣ ଶୁଣି, ପଚାରୁଛି ସୀତା ମାଈ କି ଅଣ୍ଡିରା । ଚଳ—ଏହା ଅମନୋଯୋଗୀ ବ୍ୟକ୍ତିପ୍ରତି ପ୍ରଯୋଜ୍ୟ ବାକ୍ୟ । ଯେଉଁ ଲୋକର ଆଗରେ ସାତ କାଣ୍ଡ ରାମାୟଣ ପଢ଼ା ଯାଇଥାଏ ସେ ତଦନ୍ତର୍ଗତ ବିଷୟମାନଙ୍କପ୍ରତି ମନୋଯୋଗ ନ ଦେଇ ରାମାୟଣ ପାଠ ଶେଷ ହେବା ପରେ 'ସୀତା' କିଏ, ଏହା ଲକ୍ଷ କରି ନ ଥିବାରୁ ପଚାରେ "ସୀତା ପୁରୁଷ କି ସ୍ତ୍ରୀ ?" ସେହିପରି କୌଣସି ବ୍ୟକ୍ତିର ନିକଟରେ ବର୍ଣ୍ଣିତ ବିଷୟର ଉଲ୍ଲେଖ ଶେଷ ହେବା ପରେ ସେ ଯଦି ମୂଳ ଉଦ୍ଦେଶ୍ୟ ବୁଝିବାପାଇଁ ପ୍ରଶ୍ନ କରେ, ଏହିପରି ସ୍ଥଳରେ ଏ ବାକ୍ୟ ପ୍ରଯୋଗ କରାଯାଏ ।]
Sāta kāṇḍa rāmāyaṇa
সাত কাণ্ড রামায়ণ
सात कांड रामायण

ସାତ କାମୁଡ଼ା—ଦେ. ବି—୧ । ଏକପ୍ରକାର କଳା ଷଟ୍‌ପଦ ପକ୍ଷଯୁକ୍ତ ପୋକ—1. A kind of biting insect [ ଦ୍ର—ଏ ପୋକ ଲମ୍ବରେ ୧ ଅଙ୍ଗୁଳ ଓ ଚେପ୍ଟା । ଏମାନଙ୍କର ଦେହ ୩ ଭାଗରେ ବିଭକ୍ତ ୨—ମୁଣ୍ଡ, ପେଟ ଓ ଲାଞ୍ଜ । ଲାଞ୍ଜରେ ଦୁଇଟି ନାଙ୍ଗୁଡ଼ ଅଛି ଓ ମୁଣ୍ଡରେ ଦୁଇଟି ନାଙ୍ଗୁଡ଼ ଅଛି । ଏମାନଙ୍କର କାମୁଡ଼ା ବିଷ କାମୁଡ଼ା ପରି କଷ୍ଟପ୍ରଦ । ଏମାନଙ୍କର ଗୋଡ଼ ଦୁଇଗୋଟି; ପ୍ରବାଦ ଅଛି ଯେ, ଏହା ଥରେ କୌଣସି ମନୁଷ୍ୟକୁ କାମୁଡ଼ିଲେ ତାହାର ଅଙ୍ଗର ଅନ୍ୟ ୬ ଗୋଟି ଅଙ୍ଗର କାମୁଡ଼ାରୁ ବିରତ ହୁଏ ନାହିଁ ।] ୨ । ଏକ ପ୍ରକାର ପୋକ—2. The silver fish insect; a species of insect; Lepisma Saccharina ( called also shiner, silver witch, silver moth and furniture bug). [ ଦ୍ର—ଏମାନେ ଲମ୍ବରେ ଅଧ ଇଞ୍ଚ ପର୍ଯ୍ୟନ୍ତ ହୁଅନ୍ତି; ଲାଞ୍ଜ ପାଖେ ଦୁଇଟି ଓ ମୁଣ୍ଡପାଖେ ଦୁଇଟି କଣ୍ଟା ଥାଏ । ଏମାନେ ପୁରୁଣା ବହିରେ ଓ ଲୁଗାପଟାରେ ଲାଗନ୍ତି । ଏମାନଙ୍କର ଗୋଡ଼ ଦୁଇଗୋଟି । ଏମାନଙ୍କ ଦେହ ଧଳା, ପାଉଁଶିଆ ଓ ଚକଚକିଆ । ଏମାନଙ୍କୁ ମଲା ଦେଖିଲେ ଦେହରୁ ଏକପ୍ରକାର ଧଳା ପାଉଁଶିଆ ଅତି ଛୋଟ କାତି ବା ରେଣୁ ବାହାରେ । ଏମାନେ ପକ୍ଷହୀନ । ଏମାନଙ୍କ ଦେହ ଚେପ୍ଟା ]
Sāta kāmurdā
সাত পোকা
सात कीड़ा
খুলা পোকা

ସାତକୁ ସତର କରିବା—ଦେ. କ୍ରି—କୌଣସି ବିଷୟକୁ ଅତିରଞ୍ଜିତ କରି ବର୍ଣ୍ଣନା କରିବା, ଅର୍ଥାତ୍ ମିଛ କଥା ଯାଡ଼ିକରି କହିବା—To tell lies (literally, to) describe seven as seventeen
sātaku satara karibā
সাতকে সতর করা
सातको सतर करना

ସାତକେ—ଦେ. ବ—୭ ରେ ୧ ଗୁଣିଲେ; ୭×୧—Seven
Sātake multiplied by one.
সাতকে সাত सातका सात

ସାତକୋଶିଆ ଗଣ୍ଡ—ଦେ·ବ—ପ୍ରାୟ ସାତ କୋଶ ସାର୍ଘ ମହାନଦୀର ଗଭୀର
Sāta kośiā gaṇḍa ଅଂଶର ନାମ—Name of a deep gorge of the Mahānadī river, about 14 miles long between Angul and Baudh State. [ ଦ୍ର—ଏହି ଗଣ୍ଡ ବୌଦ୍ଧ ଅନ୍ତର୍ଗତ ସୁନାକୁଣିଆଠାରୁ ଦଶପଲ୍ଲା ଅନ୍ତର୍ଗତ ବଡମୂଲ ଘାଟୀ ପର୍ଯ୍ୟନ୍ତ ବିସ୍ତୃତ । ଏଠାରେ ମହାନଦୀର ଗର୍ଭ ସଙ୍କୀର୍ଣ୍ଣ ଓ ଗଭୀର ଓ ଏଥିର ଦୁଇ ପାଶରେ ଅତ୍ୟୁଚ୍ଚ ପର୍ବତ ଓ ଜଙ୍ଗଲ । ଏଠାରେ ନଦୀର ସ୍ରୋତ ଅତି ଦ୍ରୁତ ଓ କାଉଁରୀମାନେ ଦୁଇପାଶର ପର୍ବତ କାନ୍ଥରେ ଅଙ୍କୁଶି ମାରି ଡଙ୍ଗାକୁ ଅଟକାଇ ଅଟକାଇ ଚାଳିତ କରନ୍ତି । ଏଥିର ଦୈର୍ଘ୍ୟ ପ୍ରାୟ ୧୪ ମାଇଲ୍ ଓ ପ୍ରସ୍ଥ ୬ ଶହ ହାତରୁ ୩ ଶହ ହାତ ପର୍ଯ୍ୟନ୍ତ । ଏଥିର ଜଳରେ କୁମ୍ଭୀର ଓ ଦୁଇ ପାଖରେ ଜଙ୍ଗଲରେ ବାଘ ଆଦି ହିଂସ୍ର ଜନ୍ତୁ ଥିବାରୁ ଏହି ଅଞ୍ଚଳରେ ସ୍ଥଳପଥରେ ଓ ଜଳପଥରେ ଯାତ୍ରା ବିପଦ୍‌ଜନକ । ]

ସାତଖୁଣ(ଣି) ମାଫ୍—ଦେ· ବ—ରାଜାନୁଗ୍ରହରୁ ବ୍ୟକ୍ତିବିଶେଷଙ୍କୁ ୭
Sātakhuṇ(ṇi) māph ଗୋଟି ନରହତ୍ୟା ଅପରାଧର ଦଣ୍ଡରୁ
সাতখুন্ মাফ্ ଅବ୍ୟାହତି ଦେଇଥିବାରୁ ପ୍ରାଚୀନ ପ୍ରଥା—
सातखून माफ A custom of yore by which certain favourites of the king were granted the privilege of being exempt from punishment to the extent of committing seven murders. [ ଦ୍ର—ଯେଉଁ ବ୍ୟକ୍ତି ଧନ ବା ଅଧିକାର ବଳରେ କ୍ଷମତାଶାଳୀ ବ୍ୟକ୍ତିଙ୍କ ଅନୁଗ୍ରହ ଯୋଗୁଁ ଅପରାଧ ବା ଦୋଷ କଲେ ସୁଦ୍ଧା ଦଣ୍ଡିତ ହୁଅନ୍ତି ନାହିଁ ବୋଲି ଦେଖାଯାଏ, ତାଙ୍କ ସମ୍ବନ୍ଧରେ ଏ ବାକ୍ୟ ପ୍ରୟୋଗ କରାଯାଏ । ଅର୍ଥାତ୍ ସେ ବ୍ୟକ୍ତି ଦୋଷ କଲେ ମଧ୍ୟ ଦଣ୍ଡ ପାଇବେ ନାହିଁ । ]

ସାତ ଖୁରା—ଦେ. ବ—ପ୍ରଥମେ ରଜସ୍ୱଳା ବାଳିକାର ପ୍ରଥମ ରଜୋ-
Sāta khurā ଦର୍ଶନର ସପ୍ତମ ଦିନ ସାତ ଜଣ ଅନ୍ୟ ମାଈପଙ୍କ ଦ୍ୱାରା ଦୁବ, ବରକୋଳି ପତ୍ର ଓ ହଳଦୀଆ ଚାଉଳରେ ବନ୍ଦାପନା—A custom or rite of saluting a girl on the 7th day of her first
(ସାତାଖୁରା ବନ୍ଦାଣ—ଅନ୍ୟରୂପ) menses.

ସାତଗାତି ଖେଳ—ଗ୍ରାଦେ. (ସମ୍ବଲପୁର) ବ—ବାଟିଗାତ ଖେଳ—
Sātagāti khela An indore game played by
सातघड़ा females by distributing and redistributing one by one in succession 12 seeds in each of 2 rows of 7 holes dug on the ground or on a plank. [ଦ୍ର—ଦୁଇଟି ଧାଡ଼ିରେ ଛଅ ଗୋଟି ଲେଖାଏଁ ଗାତ ଓ ପ୍ରତି ମୁଣ୍ଡର ମଝିରେ ଅଧିକ ଗୋଟିଏ ଲେଖାଏଁ ଗାତ ଥାଏ । ଶେଷ ମୁଣ୍ଡର ଦୁଇ ଗାତକୁ 'ମାଇଗାତ' ବା 'ବୋଇତ' କହନ୍ତି । ଦୁଇ ଜଣ ଖେଳାଳି, ପ୍ରତ୍ୟେକଙ୍କର ୬ଗୋଟି ଗାତ ଓ ଗୋଟିଏ ମାଇ ଗାତ ଏହିପରି ସାତ ଗୋଟି ଗାତ ଥାଏ । ମାଇ ଗାତ ଛଡ଼ା ପ୍ରତ୍ୟେକ ଗାତରେ ଏକାଦିକ୍ରମେ ୧୨ ଗୋଟି ଲେଖାଏଁ ତେନ୍ତୁଳି ମଞ୍ଜି ବା ଗିଲ ମଞ୍ଜି ବା ଗୋଡ଼ି ଥାଏ । ସେହି ମଞ୍ଜିକୁ ଗୁଟିର କହନ୍ତି । ପ୍ରଥମ ଖେଳାଳି ତା ପାଖରଗୋଟିଏ ଗାତରୁ ୧୨ଟି ମଞ୍ଜିକୁ କାଢ଼ି ପରବର୍ତ୍ତୀ ଗାତମାନଙ୍କରେ ଓ ଆପଣା ମାଇଗାତରେ ଗୋଟିଏ ଗୋଟିଏ ମଞ୍ଜି ପକାଇ ପକାଇ ଅଗ୍ରସର ହୁଏ । ଯେଉଁ ଗାତରେ ମଞ୍ଜି ଶେଷ ହୋଇଯାଏ ତାର ପରବର୍ତ୍ତୀ ଗାତରୁ ପୁଣି ମଞ୍ଜି କାଢ଼ି ନେଇ ପ୍ରତି ଗାତରେ ଗୋଟିଏ ଲେଖାଏଁ ମଞ୍ଜି ପକାଇ ଅଗ୍ରସର ହୁଏ । ଏହିପରି ମଞ୍ଜି ପକାଇ ଅଗ୍ରସର ହେଉ ହେଉ ଯେବେ ତା ନିଜର ମାଇ ଗାତରେ ମଞ୍ଜିତକ ଶେଷ ହୁଏ, ତେବେ ସେ ଖେଳାଳି 'ଟୁଟୁ, ଟୁଠୁ, ଟୁଠୋ' ହୁଏ । ପ୍ରଥମ ଖେଳାଳି 'ଟୁଠୋ' ହେଲାରୁ ଆର ଖେଳାଳି ପ୍ରଥମ ପରି କରୁ କରୁ ସେ ମଧ୍ୟ ଟୁଟୁ ହୁଏ । ଦୁହେଁଯାକ ଟୁଟୁ ହେଲାରୁ ଯାହାର ମାଇ ଗାତରେ ବେଶୀ ମଞ୍ଜିଥାଏ ସେ ଜିତେ । ଯାହା ଗାତରେ ମଞ୍ଜି କମ୍ ଥାଏ ସେ ହାରିଯାଏ । ଅନ୍ୟ ଥର ଖେଳକୁ ଯାହାର ମଞ୍ଜି ଯେତେ ଗାତକୁ ନିଅଣ୍ଟ ହେବା ଦେଖାଯାଏ, ସେ ସେତେ ଗାତ 'କାଣୀ' ହୁଏ । ]

ସାତଗୁଣା—ଦେ· ବ (ସଂ. ସପ୍ତ+ଗୁଣିତ)—ସାତ ଗୁଣ—Seven
Sātaguṇā fold. ବିଣ. (ସ. ସପ୍ତ ଗୁଣିତ)—୧। ସପ୍ତତନ୍ତ୍ରୀଯୁକ୍ତ
সাত গুণ सात गुणा —1. Having seven strings. (ଉ
সপ্তগুণা सातगुनिआ —ସାତ ଛନ୍ଦ ଯାଗକୁ ପ୍ରତିପାଦନ୍ତି, ସାତ ଗୁଣା ବୀଣା ସାତୋଟି ମହାଯାତି । କୃଷ୍ଣସିଂହ, ମହାଭାରତ. ବନ ।) ୨। ସାତଗୁଣ ବେଶି—2. Seventimes more.

ସାତ ଘଡ଼ି—ଗ୍ରାଦେ. (ବାଲେଶ୍ୱର) ବ-ପୌଷ ମାସ ଶୁକ୍ଳ ଦଶମୀ ତିଥିରେ
Sāta ghaṛi ହେବା ଉପବାସ ଓ ପର୍ବ; ଶମ୍ଭର ଦଶମୀ—A fast and festival held on the 10th day of the bright lunar fortnight of the month of Pausha.

ସାତ ଘଡ଼ିଆ—ଦେ· ବ (ଏହା ଦିନ ସାତ ଘଡ଼ି ବା ପ୍ରାୟ ଦ୍ୱିପ୍ରହରରେ
Sāta ghaṛiā ଫୁଟିବାରୁ )—ବନ୍ଧୁକ ପୁଷ୍ପ; ବଧୂଲି ଫୁଲ;
(ସାତଘଡ଼ିଆ ଫୁଲ—ଅନ୍ୟରୂପ) ଦୁପହରିଆ ଫୁଲ—
ସଂ. ବନ୍ଧୁଜୀବ, ଅର୍କବଲ୍ଲଭ Pentapetes Phoenecia (a
ଦୁର୍ଯ୍ୟବନ୍ଧୁ, ରକ୍ତପୁଷ୍ପ । flower).
বান্ধুলী गुलदुपहरिया ତେ. ମାକେନା

ସାତ ଘର ଟପିବା—ଦେ. କି—ଗ୍ରାମ ମଧ୍ୟରେ ଅନେକ ଦୂର ଭ୍ରମଣ
Sāta ghara ṭapibā କରିବା—To walk a long
সাত ঘর টপকে যাওয়া distance in a village.
सात घर कूदना

ସାତ ଘର ବୁଡ଼ା(ଭଙ୍ଗା)—ଦେ. ବିଣ. (ପୁଂ)—ଯେଉଁ ବ୍ୟକ୍ତି ଅନେକ
Sāta ghara burḍā(bhaṅgā) ପରିବାରରେ ଅଶାନ୍ତି ବା
সাত ঘর ভাঙ্গা କଳହ ବା ବିନାଶ ଘଟାଏ—A person
**सात घर डुबाने वाला** who foments ruin or quarrel in several families.
( ସାତ ଘର ବୁଡ଼େଇ, ସାତ ଘର ଭଙ୍ଗେଇ—ସ୍ତ୍ରୀ )

ସାତ ଘର ବୁଡ଼ା(ଡ଼େ)ଇବା—ଦେ. କ୍ରି—ବହୁ ପରିବାରରେ କଳହ ଓ
Sāta ghara burḍā(rḍe)ibā ଅଶାନ୍ତି ଆଦି ଲଗିବାର
সাত ঘর ভেঙ্গে দেওয়া କାରଣ ହେବା—To cause or
**सातघर डुबाना** foment trouble and dissension in many families.
ସାତ ଘର ଭଙ୍ଗା(ଙ୍ଗେ)ଇବା, ସାତ ଘର ଭାଙ୍ଗିବା, ସାତ ଘର(ରେ) ନିଆଁ ଲଗାଇବା } ଅନ୍ୟରୂପ

ସାତ ଘାଟରେ(ଭୁଠରେ) ପାଣି ପିଆଇବା—ଦେ. କ୍ରି—( ମର୍କଟରାଜ
Sāta ghāṭare(tuṭhare) pāṇi piāibā ରାମ ରାବଣକୁ
সাত ঘাটের জল খাওয়ান ପରାସ୍ତ କରି ନିଜ ଲାଙ୍ଗୁଳରେ ବାନ୍ଧି
**सात घाटका पानी पिलाना** ତାକୁ ସାତ ସମୁଦ୍ରର ଜଳ ଖୁଆଇଥିବା ବିଷୟକ ପୌରାଣିକ କଥାକୁ ଲକ୍ଷ୍ୟ କରି ) କୌଣସି ବ୍ୟକ୍ତିକୁ ନାନା ସ୍ଥାନକୁ ଯିବାକୁ ବାଧ୍ୟ କରି ହଇରାଣ କରିବା—To haraes a person by obliging him to go from place to place.

ସାତ ଘାଟରେ ପାଣି ପିଇବା—ଦେ. କ୍ରି—ଅତ୍ୟନ୍ତ ହଇରାଣ ହୋଇ
Sāta ghāṭare pāṇi pi-ibā ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ,
সাত ঘাটে জল খাওয়া ଏପରି ବହୁ ସ୍ଥାନକୁ ଯିବା ଆସିବା କରିବା
**सात घाटका पानी पीना** —To be much harassed and obliged to run from place to place.

ସାତ ଘେ(ଭେ)ରି—ଦେ. ବି—୧ । ସାତଥର ପ୍ରଦକ୍ଷିଣ—1. Cir-
Sāta ghe(bhe)rā cumambulation 7 times.
সাত ঘোরা ( ଉ—ଭୁ ବୁଲି ନାହିଁ, ସାଧବାଣୀ ବୋଲୁ ! ସାତ
**सात फेरी** ଘେରି ବୁଲି ଯାଅ ତ—ଶିଶୁ ଗୀତ )
୨ । ବିବାହ କାଳରେ ବର ଓ କନ୍ୟାଙ୍କଦ୍ୱାରା ସାତଥର ହୋମାଗ୍ନି ପ୍ରଦକ୍ଷିଣ — 2. Circumambulation round the sacrificial fire by the birde and bridegroom together at the marriage alter.

ସାତ ଛିଣ୍ଡା(ଚିରା)—ଦେ. ବିଣ—ବହୁ ସ୍ଥଳରେ ଚିରା—Tattered
Sā:a chhindā(chirā) or torn in many place.
সাত ছেড়া (ଯଥା—ସାତ ଛିଣ୍ଡା ଖଜୁରି ପଟି; ସାତ ଛିଣ୍ଡା ଲୁଗା)
**सात छेद वाला**

ସାତ ଜନମ(ଜନ୍ମ)—ଦେ. ବି ( ସଂ. ସପ୍ତ ଜନ୍ମ )—ସଂସାରରେ ବହୁ
Sāta janama(janma) ଜନ୍ମ ଜନ୍ମାନ୍ତର—Various
সাত জনম rebirths in the world; being born
**सात जनम** and reborn many times in this world. [ ବି—ପ୍ରବାଦ ଅଛି ଯେ, କାଳିଦାସ ଗଜମୂର୍ଖ ଥାଇ ନିଜର ସ୍ତ୍ରୀ ରାଜକୁମାରୀଙ୍କଠାରୁ ଅପମାନ ପାଇ ବିଦ୍ୟା-ବୁଦ୍ଧି ଲାଭ କରିବା ଆଶାରେ ସରସ୍ୱତୀଙ୍କ ଶରଣାପନ୍ନ ହେଲେ; ସରସ୍ୱତୀ ଯୋଗବଳରେ ଜାଣିଲେ ଯେ, କାଳିଦାସଙ୍କ କପାଳରେ ଏ ଜନ୍ମ କଥା ଦୂରେ ଥାଉ, ସାତ ଜନ୍ମରେ ସୁଦ୍ଧା ବିଦ୍ୟାଲାଭ ନାହିଁ । ଏଣେ କାଳିଦାସଙ୍କ ପ୍ରାର୍ଥନାତି-ଶଯ୍ୟରେ ବିଚଳିତା ହୋଇ ସରସ୍ୱତୀ ତାଙ୍କର ସାତ ଜନ୍ମ-ବ୍ୟାପି ମୂର୍ଖତା ଦୋଷ ଦୂରକରିବା ପାଇଁ ତାଙ୍କୁ ସାତଥର ସ୍ତ୍ରୀୟ ଗର୍ଭକୁ ନେଇ ସାତଥର ଜନ୍ମ କରିବା ପରେ ତାଙ୍କୁ ବିଦ୍ୟାଲାଭରୂପ ବର ଦେଲେ ଓ ତହିଁ ଫଳରେ ମୂର୍ଖ କାଳିଦାସ ଅସାଧାରଣ ପଣ୍ଡିତ ହେଲେ । ]

ସାତ ଡଙ୍କିଆ—ପ୍ରାଦେ ( ବାଙ୍କି ଓ କଟକ ) ବି—ଚାଟେଭାମ୍ପା ଫୁଲ
Sāta ḍaṅkiā ଓ ଗଛ—Plumeria Acumenata; Plumeria Acutifolia ( tree and flower ).

ସାତ ତାଳ ପାଣି—ଦେ. ବି—( ସାତଗୋଟି ତାଳ ଗଛ ବୁଡ଼ି ଯିବା
Sāta tāla pāṇi ଭଳି ) ଅତି ଗଭୀର ଜଳ—
সাত পুরুষ জল Very deep water ( in which
**सात ताल पानी** seven palm trees will sink standing one over the other.

ସାତତ୍ୟ—ସଂ. ବି ( ସତତ + ଭାବ, ଯ )—୧ । ଅବିଚ୍ଛେଦ, ଅବି-
Sātatya ଚ୍ଛିନ୍ନତା—1. Continuity. ୨ । ସତତ ଘଟିବା
ଅବସ୍ଥା—2. Frequency.

ସାତ ଦୀପ—ଦେ. ବି ( ସଂ. ସପ୍ତ ଓ ଦୀପ )—ବର କନ୍ୟାଙ୍କୁ ବନ୍ଦାଇବା
Sāta dīpa ପାଇଁ ବ୍ୟବହୃତ ସପ୍ତବର୍ତ୍ତି ଓ ସପ୍ତ ମୁଖଯୁକ୍ତ ପ୍ରଦୀପ—
সাত দীপ A lamp with seven wicks and
**चौमुख दीप** seven mouths used in being waved before a newly married couple.

ସାତ ଦେଶ—ଦେ. ବି—୧ । ବହୁ ଦେଶ—1. Many countries.
Sāta deśa ୨ । ନାନା ଅଞ୍ଚଳ—2. Many places. ଗ୍ରା.
সাত দেশ ବି—ବାହ୍ମଣ ଜାତିମାନଙ୍କର ବହୁ ଅଞ୍ଚଳରୁ ସମାଗତ
**सात देश** ପ୍ରତିନିଧିମାନଙ୍କ ପଞ୍ଚାୟତ ସଭା—A meeting of
ସାତ ରାଇଜ, ସାତ ରାଜ୍ୟ } ଅନ୍ୟରୂପ castemen from various countries assembled to consider some important social questions.

ସାତ ନକଲ—ଦେ. ବି—ଅସଲ ପଦାର୍ଥର ନକଲରୁ ନକଲ କରାଯାଇ,
Sāta nakala ଏହିପରି ସାତଥର ନକଲ ହେବାର ଫଳରେ
সাত নকল ଯେଉଁ ନକଲ କରାଯାଏ—1. Copy of a
**सात नकल** copy, being seven times removed from the original. ୨ । କୌଣସି ବସ୍ତୁର ଅତି ବିକୃତ ନକଲ—2. Very distorted copy. [ ବି—ସାତ ନକଲରେ ଅସଲ ଗାଏବ୍ ବା ଖାସ୍ତା-ପ୍ରବଚନ—ଅର୍ଥାତ୍ ଅସଲ ବସ୍ତୁରୁ କ୍ରମାଗତ ନକଲ କରାଯାଇ, ନକଲରୁ ପୁଣି ନକଲ କରାଯାଇ ଶେଷରେ ଯଦ୍ୱା ବାହାରେ ତହିଁରେ ଅସଲ ମୂଳ ଲେଖାରେ ଥିବା

ବିଷୟ ସମ୍ପୂର୍ଣ୍ଣରୂପେ ବିକୃତ ଓ ଭ୍ରମପ୍ରମାଦପୂର୍ଣ୍ଣ ହୋଇଯାଏ । ସେହିପରି କୌଣସି ସାର ବସ୍ତୁରୁ ଅନେକ ଥର ଉପାଦାନ କାଢ଼ି ନିଆଗଲା ପରେ ଏହି ପ୍ରବଚନ ଲାଗେ । ]

**ସାତନ[ଲ]ର୍**—ଦେ. ବି (ସଂ. ସପ୍ତ ଓ ଲହରୀ)—ସାତସରି; ହାର ଅଦର ସାତ ଗୋଟି ସୋରି—Seven strings ( of a necklace ).
Sāta na(la)r
সাত নব सातलड़ा, सातलड़, सतलडा

**ସାତ ନ(ଲ)ରି(ରୀ)**—ଦେ. ବିଣ—ସାତ ସୋରିଯୁକ୍ତ (ହାର)—Seven-stringed (necklace).
Sāta na(la)ri(rā)
(ସାତନ[ଲ]ରିଆ—ଅନ୍ୟରୂପ)
সাতনবি सातलड़ा, सातलड़ा, सतलड़ा

**ସାତ ପଛ**—ଦେ. ଅ (ସଂ. ସପ୍ତ+ପଶ୍ଚାତ୍)—୧ । ସମସ୍ତଙ୍କ ପଛ—1. Behind or after all. ୨ । ସମସ୍ତଙ୍କ ପରେ ଅଗତ—2. Arrived after all. ୩ । ସମସ୍ତଙ୍କ ପରେ ଜାତ—3. Youngest.
Sāta pachha
(ସାତ ପଛରେ—କ୍ରି. ବିଣ)
[ସବା ଆଗ—ବିପରୀତ]
সাতপিছু सबसेपिछे

**ସାତ ପତୁରିଆ**—ଦେ. ବି (ସଂ. ସପ୍ତ ପତ୍ରିକା)—୧ । ସାତଟି ପତର ହେଲେ ଯେଉଁ (ଜହ୍ନି ବା ଭେଣ୍ଡି) ଗଛ ଫଳେ—1. The Luffa creeper and lady's finger plant which bears fruit when it has only seven leaves from the time of sprouting. ୨ । (ସଂ ସପ୍ତ ପତ୍ରିକା) ଖେଣ୍ଡି ଜହ୍ନି; ଯେଉଁ ଜହ୍ନି ଏକାଠି ସାତଟି ଫଳ ଧରେ—2. A kind of Luffa plant bearing clusters of fruits.
Sāta paturiā
(ସାତ ପତିଆ—ଅନ୍ୟରୂପ)
থোকধুন্দল
सातपूति, सतपुतिया

**ସାତ ପର**—ଦେ. ବି—୧ । ସମ୍ପୂର୍ଣ୍ଣରୂପେ ନିଃସମ୍ପର୍କୀୟ ବ୍ୟକ୍ତି—1. An outsider who has no relationship with a person. (ଉ—କୋଇଲି ! ଘର ଧନ ନେଲେ ସାତ ପର, ଘୋଟିଗଲା ଚଉପାଶେ କାଳ ଭୟଙ୍କର ଲୋ କୋଇଲି । ବାଳକୃଷ୍ଣ. ଅକାଳ କୋଇଲି ।) ୨ । ସମ୍ପୂର୍ଣ୍ଣରୂପେ ଅଜ୍ଞାତ ବ୍ୟକ୍ତି—2. A complete stranger.
Sāta para
সাত পব
सातसे बाहर

**ସାତ ପହଣ୍ଡି**—ଦେ. ବି—୧ । ଏକ ପ୍ରକାର ଶିଶୁ ଖେଳ—1. A kind of game of children. ( ଉ—ଅବର କେହୁ ଖେଳଇ ପଶା ନ୍ୟାୟିବଲ, ଗଞ୍ଜା ସାତପହଣ୍ଡି ଫୋପଡ଼ା ଗୁଣ୍ଡିମାଳ । ପୀତାମ୍ବର. ନୃସିଂହ ପୁରାଣ ।) [ବି—ଏଥିରେ ପିଲାମାନେ ଏକ ସ୍ଥାନରେ ଗୋଟିଏ ବାଲି ଗଦା କରି ସେହି ବାଲିରେ ଗୋଟିଏ ବାଡ଼ି ପୋତନ୍ତି । ସେ ବାଡ଼ଠାରୁ ସାତ ପାହୁଣ୍ଡ ଦୂରରେ ଏକ ଦଗରେ ମାପି ଚିହ୍ନଦେଇ ସେଠାରେ ଜଣେ ପିଲା ଠିଆ ହୁଏ, ବାଡ଼ଠାରୁ ବିପରୀତ ଦଗରେ ୧୪ ପାହୁଣ୍ଡ ମାପି ଚିହ୍ନ ଦେଇ ସେଠାରେ ଆଉ ଜଣେ ପିଲା ଠିଆ ହୁଏ । ଅନ୍ୟ ପିଲାମାନେ ଏ ସୀମାର ବାହାରେ ଥାଇ ଭିତର-ଥର ତାଳ ମାରନ୍ତି । ଭିତ ମଧ୍ୟରେ ଯେଉଁ ପିଲାଟି ସାତ ପାହୁଣ୍ଡ ସୀମା ମଧ୍ୟରେ ଥାଏ ସେ ବାଲିଗଦା ନିକଟକୁ ଯାଇ ସେଠାରେ ପୋତା ଯାଇଥିବା ବାଡ଼ି ଖଣ୍ଡିକ ଧରି ଦଉଡ଼େ । ଗୋଟି ଗୋଟି ତାଳ ମରି ହେବା ଶେଷ ସମୟକୁ ଯେବେ ୧୪ ପାହୁଣ୍ଡରେ ଥିବା ପିଲାଟି ପ୍ରଥମ ପିଲାକୁ ଗୋଡ଼ାଇ କରି ଛୁଇଁବାକୁ ସମର୍ଥ ହୁଏ ତେବେ ବାଡ଼ି ଧରିଥିବା ପିଲାଟି ହାରିଯାଏ ଓ ତାହା ସ୍ଥାନ ଆଉ ଜଣେ ନୂଆ ପିଲା ଅଧିକାର କରେ ।] ୨ । ସାତ ଘେରି ୩ (ଦେଖ)—2. Sātagherā 3. (See)
Sāta pahaṇḍi.
(ସାତ ପହଣ୍ଡିଆ—ଅନ୍ୟରୂପ)

**ସାତ ପାଞ୍ଚ**—ଦେ. ବି—୧ । ବହୁ ଲୋକ—1. Many persons. [ ବି—ସାତ ପାଞ୍ଚଙ୍କ ଲ(ଲା)ଠି, ଏକ ଜଣକୁ ବୋଝ । ପ୍ରବଚନ—ଯେଉଁ ଯଷ୍ଟିଖଣ୍ଡମାନ ପ୍ରତ୍ୟେକ ଲୋକ ଅନାୟାସରେ ହାତରେ ଧରି ପାରନ୍ତି, ବହୁ ଲୋକଙ୍କର ଉକ୍ତ ଯଷ୍ଟିମାନ ଏକତ୍ର କରିଗଲେ ଜଣେ ଲୋକକୁ ତାହା ଗୋଟିଏ ବୋଝ ହୁଏ । ବହୁ ଲୋକଙ୍କର ଅନାୟାସସାଧ୍ୟ କାର୍ଯ୍ୟ ଜଣକ ଉପରେ ପକାଇଲେ ତାହା ତାହାକୁ ଭାରଜନକ ହୁଏ । ଏପରି ସ୍ଥଳରେ ଏ ପ୍ରବଚନର ଉଦାହରଣ ଦିଆଯାଏ ।] ୨ । ମୀମାଂସାର ଅସ୍ଥିରତା—2. Uncertainty of decision. ୩ । ଦ୍ୱୈଧୀଭାବ; ସନ୍ଦେହ—3. Hesitation. ( ଯଥା—ସାତ ପାଞ୍ଚ କରିବା । ) ୪ । ଅନେକ ବିଷୟ—4. Many matters. (ଉ—ତହୁଁ ଦଶରଥ କେତେ ସାତ ପାଞ୍ଚ ବିଚାରି ବଶିଷ୍ଠଙ୍କୁ କହିଲେ । ନୀଳକଣ୍ଠ. ପିଲାଙ୍କ ରାମାୟଣ ।)
Sāta pāñcha
সাত পাঞ্চ
सात पाँच

**ସାତ ପାଞ୍ଚ କରିବା**—ଦେ. କି—ଥରେ ସାତ, ଥରେ ପାଞ୍ଚ, ଏହିପରି ଭାବିବା; କିଛି ସ୍ଥିର କରି ନ ପାରିବା; ସନ୍ଦିହାନ ହେବା; କୌଣସି ମୀମାଂସାରେ ଉପସ୍ଥିତ ନ ହେବା—To hesitate; not to be able to decide a matter definitely.
Sāta pāñcha karibā
সাত পাঞ্চ কবা
सात पाँच करना

**ସାତ ପାତାଳ**—ଦେ. ବି—ସପ୍ତପାତାଳ (ଦେଖ) Saptapātāḷa. (See)
Sāta pātāḷa
সপ্ত পাতাল सात पाताल

**ସାତ ପୁଅ**—ଦେ. ବି—ଗଳ୍ପ ଓ କାହାଣୀରେ ବର୍ଣ୍ଣିତ ଏକ ପରିବାରରେ ଥିବା ସାତ ଗୋଟି ପୁଅ—Seven sons of a family narrated in folktales. [ ଦ—ଏହି ଚର ସାତ ବୋହୂ, ସାତ ଭାଇ, ସାତ ଜାଆ ଓ ସୁନାଂନାକୀ ଝିଅ ବୋଲି ଏକ ପରିବାରରେ ଜାତ ୭ ପୁଅ ଓ ଗୋଟିଏ ମାତ୍ର ଝିଅର ବିଷୟ କାହାଣୀରେ ବର୍ଣ୍ଣିତ ହୋଇଅଛି । ]
Sāta pua
সাত ছেলে
सात बेटा

ସାତ ପୁଅ ମା—ଦେ. ବି—୧ । ଗ୍ରାମ ଦେବତା ବିଶେଷ—Name of
Sāta pua mā a village Deity. ୨ । ସପ୍ତ ପୁତ୍ରଙ୍କ
(ସାତ ପୁଅ ମାଅ—ଅନ୍ୟରୂପ) ଜନନୀ—2. The mother
সাতছেলের মা of seven sons. ଦେ. ବିଣ—୧ । ସପ୍ତ
सात लड़कोंकी मा ପୁତ୍ରଙ୍କ ଜନନୀ ପରି ଦର୍ପୀ ଓ ଅହଙ୍କାରମୟ—
1. Full of pride and bragging (like the mother of seven sons). ୨ । ଆଡ଼ମ୍ବରମୟ—
2. Grand; accompanied with much ado.
(ଯଥା—ଅଳ୍ପ ସନ୍ଧିମ ଥାଉ ତେଣେ ସାତ ପୁଅ ମା ହୋଇ ଅଛନ୍ତି ।)

ସାତ ପୁର୍ଡା(ର୍ଡି)—ଦେ. ବି—ଶିଶୁମାନଙ୍କ କ୍ରୀଡ଼ା ବିଶେଷ—
Sāta purdā(rdi) A game of children.
(ସାତ ପୁଡ଼ିଆ—ଅନ୍ୟରୂପ)

ସାତପୁରି—ଦେ. ବି (ସଂ. ସପ୍ତପୂରିକା)—ସାତପ୍ରକାରର ପୂର ଦିଆ
Sātapūri ଯାଇଥିବା ପିଠା, ଯାହା ସାତପୁରି
পুলিপিঠা पूरी ଅମାବାସ୍ୟା ଦିନ ଦେବତାଙ୍କୁ ଭୋଗ
ଲଗାଯାଏ—A cake (containing seven kinds of Pūra) offered to a Deity on Sātapūri new-moon day.

ସାତପୁରି ଅମାବାସ୍ୟା—ଦେ. ବି (ସଂ. ସପ୍ତପୂରିକା ବା ସପ୍ତପିଠିକା
Sātapūri amābāsyā ଅମାବାସ୍ୟା)—ଭାଦ୍ର ମାସର
ସାତପୁରି ଅମାସିଆ } —ଗ୍ରାମ୍ୟରୂପ ଅମାବାସ୍ୟା—The new
ସାତପୁରି ଅମେଇସା } moon day of the
সাতপুলি অমাবাস্যা सतपुरी अमाबासया month of
'Bhādra' [ଦ୍ର—ଏହି ଅମାବାସ୍ୟାର ଅନ୍ୟ ନାମ
ଦୌର୍ଣ୍ଣୀ ଅମାବାସ୍ୟା । ଏ ଦିନ ଜଗନ୍ନାଥ ଓ ଲିଙ୍ଗରାଜ
ମହାପ୍ରଭୁଙ୍କୁ ସାତପ୍ରକାରର ପୁରବିଶିଷ୍ଟ (ମତାନ୍ତରରେ ସାତ
ପ୍ରକାରର) ପିଷ୍ଟକ ଭୋଗ କରାଯାଏ । ଏ ଦିନ ମଧ୍ୟ ପିତୃ-
ଲୋକଙ୍କୁ ପିଣ୍ଡ ଦେବାର ବିଧି ଅଛି । ଏ ଦିନ ସ୍ତ୍ରୀମାନେ
ସ୍ୱାମୀଙ୍କର ପୂଜା କଲେ ପୁତ୍ରବତୀ ହୁଅନ୍ତି ଓ ସାତ ଜନ୍ମ
ପର୍ଯ୍ୟନ୍ତ ବିଧବା ହୁଅନ୍ତି ନାହିଁ ।]

ସାତପୁରିଆ—ପ୍ରାଦେ (ଗଡ଼ଜାତ) ବି—ସାତଫେଣିଆ ୨ (ଦେଖ)
Sātapuriā Sātapheṇiā 2 (See)

ସାତପୁରୁଷ—ଦେ. ବି (ସଂ. ସପ୍ତପୁରୁଷ)—୧ । ମନୁଷ୍ୟ ନିଜକୁ ମିଶାଇ
Sāta purusha ଉପରର ୩ ଓ ତଳର ୩ ପୁରୁଷ—
সাতপুরুষ सातपुरूष 1. Seven generations (including one's self as one) consisting of one's ancestors and descendants. ୨ । ସାତ
সাতপুরুষ सातमनुष ମନୁଷ୍ୟର ଉଚ୍ଚତା ବା ଗଭୀରତା—2. Great depth or height.

ସାତପୁରୁଷି—ଦେ. ବିଣ—୧ । ସାତପୁରୁଷସମ୍ବନ୍ଧୀୟ—1. Relating to seven generations.
Sātapurushi
( ସାତ ପୁରୁଷିଆ—ଅନ୍ୟରୂପ ) ୨ । ଚିରସ୍ଥାୟୀ—
সাতপুরুষে सातपुरुषी,सातपुरुषानी 2. Permanent
୩ । ବହୁପୁରୁଷାଗତ—2. Ancestral.

ସାତ ଫେଣିଆ—ଦେ. ବିଣ—ସପ୍ତ ଫଣୀ (ଦେଖ)—Sapta phaṇī
Sāta pheṇia সপ্ত ফণা सात फनि ( See )
(ସାତ ଫେଣା—ଅନ୍ୟରୂପ) ଦେ. ବି—୧ । ସପ୍ତ ଫଣା ( ଦେଖ )
সপ্ত ফণা, ফণি মনসা सात फेनी 1. Sapta phaṇā (See)
সাতপুরিআ ୨ । ଏକପ୍ରକାର ମହୁମାଛି ( ଏମାନେ ଏକ ସ୍ଥାନରେ
सतपुरिया ସପ୍ତ ଶାଖାଯୁକ୍ତ ଫଣା ବା ଚାକ କରିଥାନ୍ତି ବୋଲି )—
2. A species of bees; Apis Indica.
[ ଦ୍ର—ମହୁମାଛି ତଳେ ନୋଟ ଦେଖ । ]

ସାତ ବାର—ଦେ. ବି (ସଂ. ସପ୍ତ+ବାସର)—୧ । ସପ୍ତାହର ସାତ ଦିନ—
Sāta bāra Seven week-days. [ ଦ୍ର—ରବି, ସୋମ,
সাত বার ମଙ୍ଗଳ, ବୁଧ, ଗୁରୁ, ଶୁକ୍ର, ଶନି ଏମାନେ ୭ବାର ଅଟନ୍ତି]
सात बार ୨ । ସାତଥର—2. Seven times.

ସାତ ବାହାନ—ସଂ. ବି (ବହୁବ୍ରୀହି; ସାତ=ସିଂହରୂପୀ. ଗନ୍ଧର୍ବ+ବାହନ
Sāta bāhāna ଯାହାର)—ଶାଳିବାହନ ରାଜା (ହେମଚନ୍ଦ୍ର)—
King Sālibāhana. [ ଦ୍ର—କଥିତ ଅଛି ଯେ,
ଶାଳିବାହନ ଶୈଶବରେ ସାତ ନାମକ ସିଂହରୂପୀ ଗନ୍ଧର୍ବ
ଉପରେ ଆରୋହଣ କରି ଭ୍ରମଣ କରୁଥିଲେ । ]

ସାତ ବେ(ମେ)ଣ୍ଟି—ଦେ. ବି—ପୂର୍ବକାଳର ରାଜଦଣ୍ଡବିଶେଷ—A
Sāta be(me)nṭi sort of punishment by which
( ସାତ ବେ[ମେ]ଣ୍ଟିଆ—ଅନ୍ୟରୂପ ] the offender's head was shaved, leaving seven tufts of hair at 7 places on the head. [ ଦ୍ର—ଦଣ୍ଡିତ
ବ୍ୟକ୍ତିର ମୁଣ୍ଡରେ ସାତ ଯାଗାରେ ବେଣ୍ଟି ବା କେଶଗୁଚ୍ଛ
ଛାଡ଼ି କରି ତାକୁ ଶିଥିର କରାଯାଉଥିଲା । ଏଥିର ସାତ
ବେଣ୍ଟି ଯୋଗୁଁ ଅତି ଅସୁନ୍ଦର ଦେଖା ଯାଉଥିବା ବ୍ୟକ୍ତିକୁ
ପ୍ରତି ବଜାରରେ ରାଜକର୍ମଚାରୀମାନେ ବୁଲାଉଥିଲେ । ]

ସାତ ଭଉଁରି(ଭୌଁରି)—ଦେ. ବି ( ସଂ. ସପ୍ତ+ଭ୍ରମୀ )—ସାତ ଘେର ୨
Sāta bhauṅri(bhauṅri) (ଦେଖ)—Sāta ghera 2
সাত ঘোরা सात भाँरी ( See )

ସାତ ଭାଇଆ—ଦେ, ବି—୧ । ( ସଂ. ଛନ୍ଦ ) ଶାଖାଚର ଚଟକାଦି
Sāta bhā-iā ବର୍ଗର ଚଞ୍ଚଳ ପକ୍ଷିବିଶେଷ—1. The jungle
সাত ভেয়ে, ছাতারিআ Brabbler; chat; warbler;
सात भइया, सत भइया Crateropus Canorus. [ଦ୍ର—
ଏମାନଙ୍କ ପୁଚ୍ଛ ଛକାକାରରେ ବିସ୍ତୃତ ଓ ଗୋଲ; ଧୂମ୍ରବର୍ଣ୍ଣ
ପକ୍ଷ ଓ ପୁଚ୍ଛ ସମବର୍ଣ୍ଣ । ଏମାନଙ୍କ ଛାତି ଢଳଢଳ ।
ଏମାନେ 'କେଚେ କେଚେ' ରବ କରନ୍ତି, ଦଳ ଦଳ ହୋଇ
ରହନ୍ତି ଓ ଶସ୍ୟ ଖାଆନ୍ତି । ] ୨ । ( ସଂ. ସପ୍ତ ଓ ଭ୍ରାତୃ )
সাত ভায়া; সাত ভেয়ে ସପ୍ତ ତାରକାଯୁକ୍ତ କୃତ୍ତିକା ନକ୍ଷତ୍ର—
सत भइया 2. The Pleidas; the third asterism.

[ ଦ୍ର—ଏ ସପ୍ତ ନକ୍ଷତ୍ରଙ୍କ ନାମ—ଅମ୍ବା, ଦୁଲା, କଳଚ୍ଛୀ, ଅଭ୍ରୟନ୍ତୀ, ମେଘୟନ୍ତୀ, ବର୍ଷୟନ୍ତୀ ଓ ଚୁପୁଳିକା । ନକ୍ଷତ୍ର ତଳେ ଟୀକା ଦେଖ । ] ୩ । ବାଲମୂଳିଆ ଘାଏ ଏକପ୍ରକାର ବ୍ରଣ—3. A species of boil. [ ଦ୍ର—ଏହା ଗୋଟିଏ ବାହାରିଲେ କ୍ରମଶଃ ଏହିପରି ୭ ଗୋଟା ଉଠି ଭୟଙ୍କର ଯନ୍ତ୍ରଣା ଦିଏ । ] ୪ । ଅଣ୍ଡିରା ମାଙ୍କଡ଼ଙ୍କର ଦଳ—4. A herd consisting exclusively of male monkeys ( which become very predatory. [ ଦ—ଏ ଦଳରେ କେବଳ ଗୁଡ଼ାଏ ଅଣ୍ଡିରା ମାଙ୍କଡ଼ ଥାଆନ୍ତି; ମାଈ ମାଙ୍କଡ଼ ନ ଥାନ୍ତି । ଏମାନେ ଭାରି ଦୁର୍ବୃତ୍ତ ହୁଅନ୍ତି । ] ଦେ. ବିଣ—୧ । ବହୁ ସ୍ୱାମିକ (ସମ୍ପତ୍ତି,କର୍ମ)—1. ( property or work ) Pertaining to many persons or workers. ୨ । ଭାଗମାଲ—2. Joint.

**ସାତ ଭାଇଅ ଅଖଡ଼ା**—ଦେ. ବି—ବହୁ ସ୍ୱାମିକ ଅନୁଷ୍ଠାନ; ଯେଉଁଠାରେ Sāta bhāiā ākhardā ବହୁ ଲୋକଙ୍କର ପ୍ରଭୁତ୍ୱ ଥିବାରୁ बाबोयारि କାହା ଅଦେଶ କେହି ମାନେ ନାହିଁ—बहु मुखिया काम An institution in which there are more than one master and where there are confusion and clash of authority.

**ସାତ ଭାଇଆ ଗେଧ**—ଦେ. ବି—ସାତ ଭାଇଅ ୪ ( ଦେଖ ) Sāta bhāiā gedha Sāta bhāiā 4 ( See )

**ସାତ ଭୁବନ**—ଦେ. ବି—ସପ୍ତ ଭୁବନ (ଦେଖ)—Sapta bhubana Sāta bhubana সাত ভুবন सात भुवन ( See )

**ସାତ ମଙ୍ଗ(ଙ୍ଗୁ)ଳା**—ଦେ· ବି ( ସଂ ସପ୍ତ ମଙ୍ଗଳ )—ସପ୍ତ ମଙ୍ଗଳା Sāta maṅga(ṅgu)lā ( ଦେଖ )—Sapta maṅgalā ( See ) ( ଉ—ବହୁ ମହୋତ୍ସବ କଲେ ଯେ, ସାତମଙ୍ଗଳାକୁ ଗଲେ—ବିଶ୍ୱନାଥ ବିଚିତ୍ର ରାମାୟଣ । )

**ସାତ ମାଇପି(ପେ)**—ଦେ. ବି. ସ୍ତ୍ରୀ ( ବହୁବଚନ )—ବିବାହାଦି ମଙ୍ଗଳ Satā māipi(pe) କାର୍ଯ୍ୟ ଉପଲକ୍ଷରେ ଏକତ୍ର ହୋଇଥିବା ସାତ সাত মেয়ে ଜଣ ବା ବହୁ ସ୍ତ୍ରୀଲୋକ—A gathering of सात स्त्री seven or many women on festive ( ସାତ ମିଶିପି[ପେ]—ପୁଂ) social occasions.

**ସାତ ମାସିଆ**—ଦେ. ବିଣ—୧ । ସପ୍ତ ମାସ ବୟସ୍କ ( ଶିଶୁ )—1. ( a Sāta māsiā child ) Aged 7 months. ୨ । ଗର୍ଭ সাত মাসের ଧାରଣର ସପ୍ତମ ମାସରେ ଜାତ ( ଶିଶୁ )—सत माखा 2. (a child) Born in the 7th month of its mother's pregnancy. [ ଦ୍ର—ଏ ଶିଶୁ ଅତି ଦୁର୍ବଳ ହୁଅନ୍ତି । ] ଦେ. ବି— ଛତରୁଣିଆ (ଦେଖ); ଗର୍ଭଧାରଣରେ ସପ୍ତମ ମାସ ପରେ ଗର୍ଭିଣୀ ପାଇଁ ପ୍ରେରିତ ପିଷ୍ଟକାଦିର ସାମଗ୍ରୀ ଓ ତତ୍ସମ୍ପର୍କୀୟ ବିଧାନମାନ—Present of materials for cakes etc sent to a pregnant woman after the 7th month of pregnancy.

**ସାତୟ**—ସଂ. ବିଣ (ସାତି—ସୌତ୍ର ଧାତୁ.=ସୁଖ ହେବା+ଯ; ଅଥବା Sātaya ସାତ=ସୁଖ+ଅ )—ସୁଖକର—Pleasant; pleasing

**ସାତଲା**—ସଂ.ବି—୧ । (ସଂ.ସପ୍ତଲା)—ଚର୍ମକଷା (ଅମର); ସେହୁଣ୍ଡଭେଦ; Sātalā ଏକପ୍ରକାର ସିଜୁ; ଦେଉଳିଆ ସିଜୁ —1. A kind of cactus; Origaum Valgoris. [ଦ୍ର—ଏହା ଏକଜାତୀୟ ସିଜୁ । ଏହାର କ୍ଷୀର ତୀକ୍ଷ୍ଣ ଓ ଫୁଲ ଲୋହିତ; ବୈଦ୍ୟଶାସ୍ତ୍ରଙ୍କ ମତରେ ଏହା ବନ୍ୟକ୍ଷୁପ । ଏଥିର ଡାଳ ୧ ଠାରୁ ୩ ଫୁଟ ପର୍ଯ୍ୟନ୍ତ ଲମ୍ବ ହୁଏ । ଏଥିର ଡାଳରେ ରୋମ ଥାଏ । ବୈଦ୍ୟକମତରେ ସପ୍ତଲା ତିକ୍ତ ରସ, କଟୁବିପାକ, ବାୟୁବର୍ଦ୍ଧକ, ଶୀତବୀର୍ଯ୍ୟ । ଏହା ଶୋଥ,କଫ,ଆନାହ, ପିତ୍ତ, ଉଦାବର୍ତ୍ତ ଓ ରକ୍ତଦୁଷ୍ଟି ନାଶକ ।]

ପ୍ରଥମ ଅର୍ଥରେ ଅନ୍ୟ ସଂ—ସପ୍ତଲା, ସାତ୍ତ, ବହୁଲା, ବିମଳା, ଅମଳା, ବହୁଫେନା, ଚର୍ମକଷା, ଫେନା, ସାତ୍ରା, ବିଷାଣିକା, ସ୍ୱର୍ଣ୍ଣପୁଷ୍ପୀ, ଯବଫଳା; एकप्रकार मनसा; सातला

୨ୟ ଅର୍ଥରେ ସଂ ନାମ—ସପ୍ତଲା, ନେପାଳୀ, ନବମାଳକା, ବାସନ୍ତୀ । ୨ । ନବମାଳିକା; କଥଲ (କ୍ଷୁପ ଓ ଫୁଲ )—Jasminum Arborescens; Jasminum Zambac; Floribus Multiplicatis. ( plant and flower) ଦେ· ବି—(ସଂ. ସପ୍ତଲା) ସୁବୁରମଲ୍ଲୀ; ବହୁଦଳମଲ୍ଲୀ—Many-petalled Jasmine. नवमल्लिका; बसन्तीनेवारी; মোতিযাবেলা, সাতলা; तेहराबेली

**ସାତଲା ଘୋଟ**—ପ୍ରାଦେ· (ଗଞ୍ଜାମ) ବି—ବାଟି ବା କଉଡ଼ି ଖେଳରେ Sātalā ghoṭa ବାଟିକୁ ମାରିବାର ସପ୍ତମ ଅଘାତ—The hitting of a cowrie by another cowrie for the 7th time in the game of cowries.

**ସାତ ଶଯ୍ୟା**—ଦେ. ବି—ସପ୍ତ ଶଯ୍ୟା (ଦେଖ) Sāta śajyā Saptaśajyā. (See)

**ସାତ ଶାଗ**—ଦେ. ବି—ଦୁତିଆ ଓଷା ସମୟରେ ସ୍ତ୍ରୀମାନଙ୍କ ଦ୍ୱାରା Sāta śāga ସଂଗୃହୀତ ନାନାପ୍ରକାରର ଶାଗ—Various potherbs gathered by women on the occasion of Dutiā osha festival.

**ସାତ ଶାସନ**—ଦେ. ବି—୧ । ପୁରୀ ଜିଲ୍ଲାର ଉସୁନାବରପଦା ନିକଟସ୍ଥ Sāta śāsana ସାତ ଗୋଟି ବ୍ରାହ୍ମଣ ଶାସନ—1. The seven Brahman villages near Usunā Barapadā in the Puri district. ୨ । ଯାଜପୁର ସହରର ସାତ ଗୋଟି କୁଳୀନ-ବ୍ରାହ୍ମଣ-ଶାସନ— 2 .The seven villages of Jajpur town inhabited by high caste Brāhmaṇas.

**ସାତ ସଉତୁଣିଆ**—ଦେ· ବି—ଶାଖାଚର କ୍ଷୁଦ୍ର ପକ୍ଷି-ବିଶେଷ—The Sāta sautuṇiā minivet. [ ଦ୍ର—ଏମାନଙ୍କ ପିଠିର ପଚଭାଗର ପର କଣ୍ଠାପର ଟାଣୁଆ; ଅଣ୍ଟା ଲୋଟେ, ଶଳୁ ଓ ବଡ଼ା । ନାକରୁ
ସାତ ସଗ, ସାତ ସୁଅଳୀ }—ଅନ୍ୟରୂପ

সাতসতী, সাতসয়ালী ପର ଡାକିଥାଏ; ପକ୍ଷ ପାର୍ଶ୍ୱ ଓ ଅଗରୁ ସରୁ । ଏମାନେ ଗଛରେ ଦଳ ଦଳ ହୋଇ ରହନ୍ତି ଓ ଯୋକଯୋକ ଖାଆନ୍ତି; ୮ରୁ ୧୨ ଅଙ୍ଗୁଳ ପର୍ଯ୍ୟନ୍ତ ଦୀର୍ଘ ହୁଅନ୍ତି । ଏମାନେ ଦୁଇ ଜାତୀୟ ଅଟନ୍ତି ।

୧ । ବଡ଼ସୁଥଳୀ—୧୨ ଅଙ୍ଗୁଳ ଲମ୍ବା, ମୁଣ୍ଡ ଚକ୍କଣ କଳା, ପୃଷ୍ଠ ଅତ୍ୟନ୍ତ ରକ୍ତବର୍ଣ୍ଣ—Pericrocotus Specinus ବୈ. ବଡ଼ ସସୁାଲି ।

୨ । ଚିକ୍କ ସୁଥଳୀ—୮ ଅଙ୍ଗୁଳ ଲମ୍ବ, ମୁଣ୍ଡ ଧୂସର, ପୃଷ୍ଠ ରକ୍ତ ବର୍ଣ୍ଣ—Pericrocotus Perigrinns. ବୈ. ବୈ. ଛୋଟ ସସୁାଲି । ]

**ସାତ ସତର**—ଦେ. ବି—ସାତ ପାଞ୍ଚ (ଦେଖ)—Sātapāncha. Sāta satara (See) ବିଣ—ବହୁ; ଅନେକ—Many. সাত পাঁচ **सात पाँच**

**ସାତ ସତର କରିବା**—ଦେ. କ୍ରି—ସାତକୁ ସତର କରିବା (ଦେଖ) Sāta satara karibā Sātaku satara karibā.(See)

**ସାତ ସନ୍ଧି**—ଦେ. ବି—ଅଗମ୍ୟ ବା ଗୁପ୍ତ ସ୍ଥାନମାନ— Sāta sandhi Very hidden or inaccessible places. সাত সন্ধি **सात सन्धि**

**ସାତ ସମୁଦ୍ର**—ଦେ. ବି—ସପ୍ତ ସମୁଦ୍ର (ଦେଖ) Sāta samudra Sapta samudra (See) (ସାତ ସାଗର—ଅନ୍ୟରୂପ) সাতসমুদ্র **सात समुद्र**

**ସାତ ସମୁଦ୍ର ତେର ନଦୀ ପାର(ରି)**—ଦେ. ବି—ସମୁଦ୍ରର ଅନ୍ୟ ପାଖରେ Sāta samudra tera nadī pāra(ri) ବହୁ ଦୂରରେ ( ସାତ ସମୁଦ୍ର ଲଙ୍କା ପାର—ଅନ୍ୟରୂପ ) ଥିବା ଦେଶ— সাত সমুদ্র তের নদী পার A far off distant **सात समुद्र तेर नदी पार, सात समुद्र पार** country beyond the (seven) seas.

**ସାତ ସ(ସ୍ୱ)ରଗ**—ଦେ., ବି—ସପ୍ତ ସ୍ୱର୍ଗ (ଦେଖ) Sāta sa(swa)raga Sapta swarga (See) (ସାତ ସ୍ୱର୍ଗ—ଅନ୍ୟରୂପ) সাত সর্গ **सात स्वर्ग**

**ସାତ ସାଇ(ହି)**—ଦେ. ବି—ପୁରୀ ସହରର ଆଦ୍ୟ ୭ ଗୋଟି ବସ୍ତି— Sāta sāi(hi) The original 7 hamlets or quarters of the Puri town. [ ଯଥା— ଦୋଳମଣ୍ଡପ ସାଇ, କୁଣ୍ଡେଇବେଣ୍ଟ ସାଇ, ମାର୍କଣ୍ଡେଶ୍ୱର ସାଇ, ଚଉଡ଼ଙ୍ଗ ସାଇ, କାଳି ସାଇ, ହରଚଣ୍ଡୀ ସାଇ, ବାସେଳୀ ସାଇ । ପୁରୀ ସହରରେ ୭ ଗୋଟି ସାଇ ଓ ୫୨ ଗୋଟି ବନ୍ଧ ଥିବାର ପ୍ରବାଦ ଅଛି, କିନ୍ତୁ ବର୍ତ୍ତମାନ ସାଇ ସଂଖ୍ୟା ତତୋଧିକ ହୋଇଅଛି ।]

**ସତାସାତ୍**—ଦେ. ବି—ସାତେସାତ୍ (ଦେଖ) Sātāsāt Sātesāt [See]

**ସାତି**—ସଂ. ବି (ସୋ ଧାତୁ=ନାଶ କରିବା+ଭାବ ତି)—୧ । ବିନାଶ- Sāti 1. Destruction. ୨ । ଅବସାନ; ଶେଷ—2. End. ୩ । ପୀଡ଼ା—3. Sickness. ୪ । ଶିର ବେଦନା—4. Pain; pang; aching. ୫ । (ସନ୍ ଧାତୁ=ଦାନକରିବା+ଭାବ ତି)—ଦାନ— সাথী **साथि** 5. Gift; donation. ଦେ. ବି—୧ । ସାଥି (ଦେଖ)—1. Sāthi (See) ( ଉ—କଣ୍ଟ ବନ୍ଧୁ ଏ ଯେଉଁ ସମ୍ପଦର ସାତି— অভাব **अभाव** ନନ୍ଦକଶୋର କର୍ଣ୍ଣୁରଣୀ ।) ୨ । ଅଭାବ— 2. Want; lack (ଉ—ବାପ ତେଲ ସାତିରେ ଲଣ୍ଡା, ପୁଅ ବୁଲେଇ ବେଣ୍ଟି ରଖୁଛି ! ଢଗ ।) সাথে **साथमें** ଅ—ସାଥିରେ; ସଙ୍ଗେ ସମଭିବ୍ୟାହାରରେ- সাতী **सातका** With; in the company of ବିଣ—ସାତସମ୍ବନ୍ଧୀୟ—Relating to seven.

**ସାତିକ**—ଗ୍ରା. ବିଣ (ସଂ. ସାତ୍ତ୍ୱିକ)—ସାତ୍ତ୍ୱିକ (ଦେଖ) Sātika Sātwika (See) সাত্তিক **सातिक**

**ସାତିଶୟ**—ସଂ. ବିଣ (ସ+ଅତିଶୟ=ଅଧିକ)—ଅତ୍ୟଧିକ— Sātisaya Very much; excessive.

**ସାତିସାର**—ସଂ. ବିଣ. ପୁଂ (ସ+ଅତିସାର)—ଅତିସାରରୋଗଯୁକ୍ତ; Sātisāra ଅତିସାରଗ୍ରସ୍ତ—A person suffering (ସାତିସାରା—ସ୍ତ୍ରୀ) from dysentery.

**ସାତୀଳକ**—ସଂ. ବି—(ସତୀଳ+ଅ+କ)ସତୀଳ (ଦେଖ) Sātilaka Satila (See)

**ସାତୁଆ**—ଦେ. ବି. ପୁଂ—୧ । ସହଚର; ସାଥୁଆ; ସଙ୍ଗୀ— Sātua 1. Companion; colleague. [ସାତେ(ତୋ)ଇ—ସ୍ତ୍ରୀ] ୨ । ଭାଗିଦାର—2. Co- সাথুয়া, সেথো **साथी** sharer. ୩ । ସହଯାତ୍ରୀ— 3. Fellow traveller.

**ସାତୁଆଳ**—ଦେ. ବିଣ.—ସପ୍ତମ—Seventh; 7th. Sātuāla (ଉ—ଏବେ ମୁଁ ସାତୁଆଳ କନ୍ୟେ ନାରଦେଶ) সপ্তম **सातवा** ପଦ୍ମରୁ ଜୁମୁଟି ହୋଇଲ ପ୍ରକାଶ— କୃଷ୍ଣସିଂହ ମହାଭାରତ ଶାନ୍ତି ।)

**ସାତୁକୀ**—ଦେ. ବିଣ. ପୁଂ ଓ ସ୍ତ୍ରୀ (ସଂ. ସାତ୍ତ୍ୱିକ)—ସାତ୍ତ୍ୱିକଲକ୍ଷଣଯୁକ୍ତ- Sātukī Having Sātwika qualities. সাত্তিক **सातकी** ( ଉ—ରାଧା ସାତୁକୀ ସୁକେଶୀ ଗୁରୁଣୀ, ଯାହା କହୁଛି ବେଦ ଅଥର୍ବାଣୀ—ପ୍ର.ଚୀ ଭକ୍ତିଦୀପମଞ୍ଜରୀ)

**ସାତୁକ୍ୟ(ଇତ୍ୟାଦି)**—ଦେ.ବିଣ—ସାତ୍ତ୍ୱିକ ଇତ୍ୟାଦି (ଦେଖ) Sātukya(etc) Sātwika etc [See]

**ସାତୁ(ତୋ)ଟା**—ଗ୍ରା. ବି ଓ ବିଣ (ଅନାଦରାର୍ଥକ)—୧ । ସାତଗୋଟା— Sātu(to)ṭā 1. Seven in number. [ସାତ(ତୁ,ତୋ)ଟି—ଆଦରାର୍ଥକ]୨ । ଘଣ୍ଟାରେ ସାତ ବାଜିବା ବେଳ- যাতটা **सात** 2. 7 o'clock [ ଦ୍ର—ଟା, ଟାଏ,ଟି ଅଦ୍ୱୟଯୁକ୍ତ ହେଲେ ଅକାରାନ୍ତ ଓ ଇକାରାନ୍ତ କେତେକ ସଂଖ୍ୟାବାଚକ ଓ ଅନ୍ୟ ବିଶେଷ୍ୟ ଶବ୍ଦର ଶେଷ ଅକ୍ଷର ଉକାରାନ୍ତ

ହୋଇ ଉଚ୍ଚାରିତ ହୁଏ; ଯଥା—ସାଆଁଠା, ସାହୋଠା, ମଣିଷଠାଏ, ଭଲଠା, ଘରୋଠା, ଛଳୋଟି, ଘରୁଠା ।]

ସାତେ—ଗ୍ରା. ଅ [ସଂ ସହିତ]—ସାଥେ; ସଙ୍ଗେ—With. [ଉ—
Sāte ସାପ ଗଲା ସାତେ, ଡମ୍ବ ଗଲ ତାହା ସାତେ—ଭଗ ।]
সাথে साथमे

ସାତେସାତ୍—ଦେ. ଅ [ସଂ ସହିତ]—୧ । ସାଥେସାଥ; ସଙ୍ଗେ ସଙ୍ଗେ
Sātesāt 1. Together with. ୨ । ତତକ୍ଷଣାତ୍—
সাথে সাথে साथेसाथे 2. At once; immediately.
୩ । ଅତିଶୀଘ୍ର—3. Very soon.

ସାତୋଡ଼ା—ଦେ. ବି—୧ । କେତେ ପ୍ରାଚୀନ ଗଡ଼ଜାତର ରାଜବଂଶର
Sātorḍā ଉପାଧିବିଶେଷ—1. A title of some of the ancient ruling families of Orissa.
୨ । କେତେକ ପ୍ରାଚୀନ ରାଜକର୍ମଚାରୀଙ୍କ ଉପାଧି—
2. Title given to Rajas of small principalities.

ସାତୋଡ଼ାବେହେରା ମହାପାତ୍ର—ଦେ. ବି—ପ୍ରାଚୀନ ଉତ୍କଳର ରାଜାଙ୍କ
Sātorḍā beherā mahāpātra ଅଧୀନ ମଫସଲର ରାଜକର୍ମଚାରୀବିଶେଷ—Name of an official in the muffasil under the ancient kings of Orissa. [ଦ୍ର—ପୁରୁଣା ସନଦମାନଙ୍କରେ 'ସାତୋଡ଼ାବେହେରା ମହାପାତ୍ର'ଙ୍କ ପ୍ରତି ଆଦେଶ ଦିଆଯାଇଅଛି ଯେ, ଅମୁକ ବ୍ୟକ୍ତିଙ୍କୁ ଏ ଭୂମି ଚିରକାଳ ନିଷର ରୂପେ ପ୍ରଦତ୍ତ ହେଲା ।]

ସାତ୍ତ୍ୱିକ (ଇତ୍ୟାଦି)—ସଂ. ବିଣ—ସାତ୍ତ୍ୱିକ ଇତ୍ୟାଦି (ଦେଖ)
Sāttwika (etc) Satwika etc. (See)

ସାତ୍ତ୍ୱିକ ଅଭିନୟ—ସଂ. ବି—ସ୍ତମ୍ଭ ସ୍ୱେଦାଦି ସାତ୍ତ୍ୱିକ ବିକାର ଯୁକ୍ତ
Sāttwika abhinaya ହୋଇ ପାତ୍ରମାନେ ରଙ୍ଗମଞ୍ଚରେ ଯେଉଁ ଅଭିନୟ ଦେଖାନ୍ତି—The exhibitin of sweating, prostration and other indications of attachment or amour by actors on certain occasions.

ସାତ୍ତ୍ୱିକାନୁଭାବ—ସଂ. ବି ( ସାତ୍ତ୍ୱିକ+ଅନୁଭାବ; ବହୁବ୍ରୀହି )—ସତ୍ତ୍ୱ
Sāttwikānubhāba ଗୁଣରୁ ଯାହାର ଉତ୍ପତ୍ତି—Produced from Sattwa guṇa. ସଂ ବି (କର୍ମଧା)—ଭକ୍ତିର ବା ପ୍ରେମର ଅତିଶଯ୍ୟର ଫଳରେ ଶରୀରରେ ଜାତ କେତେକ ପରିବର୍ତ୍ତନ—Some physical changes due to paroxysm of devotion or love. [ଦ୍ର—ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ, ବୈବର୍ଣ୍ଣ୍ୟ, ଅଶ୍ରୁ ଓ ପ୍ରଳୟ, ଏହି ଆଠ ଗୋଟିର ନାମ ସାତ୍ତ୍ୱିକାନୁଭାବ ଅଟେ ।]

ସାତ୍ୱ—ସଂ. ବିଣ (ସତ୍ତ୍ୱ+ଅ)—ସତ୍ତ୍ୱଗୁଣ ସମ୍ବନ୍ଧୀୟ; ସାତ୍ତ୍ୱିକ (ହି.ଶ)
Sātwa Relating to satwa guṇa.

ସାତ୍ୱତ୍—ସଂ. ବି (ସାତ୍ୱ+ଅତ୍. ଧାତୁ=ସତତ ଗମନ କରିବା+କର୍ତ୍ତି
Sātwat କ୍ୱିପ୍)—୧ । ଯଦୁବଂଶୀୟମାନଙ୍କର ଶାସିତ ପ୍ରାଚୀନ ରାଜ୍ୟ ବିଶେଷ—Name of a kingdom ruled by the Jadu dynasty of ancient western India. ୨ । ଯଦୁବଂଶୀୟ ଲୋକ—2. A person of the Jadu clan. ୩ । (ସାତ ଧାତୁ=ସୁଖୀ କରାଇବା+କର୍ତ୍ତି. ବତ୍) ଉପାସକ; ପୂଜକ—3. Worshipper.

ସାତ୍ୱତ—ସଂ. ବି (ସାତ୍ୱତ୍+ଅ)—୧ । ସାତ୍ୱତ୍‌ଦେଶୀୟ ଲୋକମାନେ
Sātwata (ବହୁବଚନ)—1. The inhabitants of the ancient Sātwat country. ୨ । ବଳଦେବ, ବଳରାମ ( ହେମଚନ୍ଦ୍ର )—2. Balarāma, the elder step brother of Śrīkṛushṇa. ୩ । ଶ୍ରୀକୃଷ୍ଣ 3. Śrīkṛushṇa. ୪ । ଯଦୁବଂଶୀୟ ବ୍ୟକ୍ତି; ଯାଦବ (ହ୍ଵି. ଶ)—4. A generic name for a person of the Jadu dynasty. ୫ । ବିଷ୍ଣୁ (ତ୍ରିକାଣ୍ଡ ଶେଷ)—5. Bishṇu. ୬ । (ସାତ୍ୱତୀ+ଅପତ୍ୟାର୍ଥେ. ଅ) ଶିଶୁପାଳ—6. Śiśupāḷa. ୭ । ବିଷ୍ଣୁଭକ୍ତ ବିଶେଷ (ଯେଉଁ ଭକ୍ତ ଅନନ୍ୟ ମନରେ ବିଷ୍ଣୁଙ୍କୁ ଭଜନ କରେ ଓ ସତ୍ୟକୁ ଏବଂ ସତ୍ତ୍ୱଗୁଣକୁ ସର୍ବଦା ଆଶ୍ରୟ କରିଥାଏ ଏବଂ କାୟମନୋବାକ୍ୟରେ ବିଷ୍ଣୁଙ୍କର ସେବାରେ ସର୍ବଦା ଲାଗିଥାଏ; ପଦ୍ମପୁରାଣ)—7. A devotee of Bishṇu who devotes himself solely to the service of Bishṇu. ୮ । ଯଦୁବଂଶୀୟ ଅଂଶୁରାଜଙ୍କ ପୁତ୍ର ଜଣେ ରାଜା—8. Name of a king of the Jadu dynasty. [ଦ୍ର—ଏ ଅତିଶୟ ବିଷ୍ଣୁଭକ୍ତ, ପ୍ରତାପୀ, ମହାତ୍ମା, ଦାନତତ୍ପର, ଧନୁର୍ବେଦବିତ୍ ଥିଲେ ଓ କୁଣ୍ଡଗୋଲାଦି ସମ୍ବନ୍ଧେ ଏ ଗୋଟିଏ ସ୍ମୃତିଶାସ୍ତ୍ର ପ୍ରବର୍ତ୍ତିତ କରିଥିଲେ । ଏହାଙ୍କ ନାମାନୁସାରେ ସେହି ଶାସ୍ତ୍ର ଚଳୁଅଛି । ଏହାଙ୍କର ପାଞ୍ଚଗୋଟି ପୁତ୍ର ମଧ୍ୟରୁ ଜଣଙ୍କର ନାମ ଭୋଜ (କୂର୍ମପୁରାଣ)] । ୯ । ମନୁସଂହିତାରେ ଉକ୍ତ ବ୍ରାତ୍ୟ ବୈଶ୍ୟଙ୍କଠାରୁ ଉତ୍ପନ୍ନ ଜାତିବିଶେଷ (ହି. ଶ)—9. Name of an uninitiated Baisya caste according to Manu. [ଦ୍ର—ମନୁ ୧୦।୨୩ ରେ ଲେଖା ଅଛି ଯେ, ବ୍ରାତ୍ୟ ବୈଶ୍ୟଙ୍କଠାରୁ ସୁଧନ୍ୱା, ଚାର୍ଯ୍ୟ, କାରୁଷ, ବିଜନ୍ମା, ମୈତ୍ର ଓ ସାତ୍ୱତ ଜାତ ହୋଇଥିଲେ ।]

ସାତ୍ୱତୀ—ସଂ. ବି ସ୍ତ୍ରୀ ( ସାତ୍ୱତ୍+ସ୍ତ୍ରୀ ଈ )—୧ । ନାଟକବୃତ୍ତିବିଶେଷ;
Sātwati ନାଟକୀୟ ରୀତିବିଶେଷ—1. Name of a dramatic style. [ଦ୍ର—ଏ ବୃତ୍ତିର ବ୍ୟବହାର ବୀର, ରୌଦ୍ର, ଅଦ୍ଭୁତ, ଶୃଙ୍ଗାର ଓ ଶାନ୍ତ ରସରେ କରାଯାଏ । ଯେଉଁ ସ୍ଥଳରେ ନାୟକଙ୍କ ଉକ୍ତିରୁ ତାଙ୍କର ଶୂରତା, ଦାନଶୀଳତା, ଦାକ୍ଷିଣ୍ୟ ଆଦି ଗୁଣ

ପ୍ରକଟିତ ହୁଏ, ସେଠ ରେ ସାତ୍ୱତୀ ବୃତ୍ତି ହୋଇଥିବା ବୋଲଯାଏ । ] ୨ । ଶିଶୁପାଳଙ୍କ ମାତା—2. Name of the mother of Sisupāla. ୩ । ସୁଭଦ୍ରାଙ୍କର ଏକ ନାମ ( ହ. ଶ. )—3. A name of Subhadrā.

**ସାତ୍ୱତୀ ବୃତ୍ତି**—ସଂ. ବି—ସାତ୍ୱତୀ ୧ (ଦେଖ) Sātwati brutti Sātwati 1 (See)

**ସାତ୍ତ୍ୱିକ**—ସଂ. ବିଣ ( ସତ୍ତ୍ୱ+ଇକ )—୧ । ସତ୍ତ୍ୱଗୁଣସମ୍ବନ୍ଧୀୟ—Sātwika 1. Relating to 'Satwa guṇa' ( ସାତ୍ତ୍ୱିକୀ—ସ୍ତ୍ରୀ ) ୨ । ସତ୍ତ୍ୱଗୁଣ ପ୍ରଣୋଦିତ—2. Prompted by righteousness. ୩ । ସତ୍ତ୍ୱଗୁଣଜାତ—3. Born of or resulting from 'Satwa guṇa' ୪ । ଯେଉଁ ବ୍ୟକ୍ତିଠାରେ ସତ୍ତ୍ୱ ଗୁଣ ପ୍ରଧାନ ଅଟେ; ସତ୍ତ୍ୱଗୁଣ ପ୍ରଧାନ—4. ( a person ) In whom Satwaguṇa predominates. [ ଦ୍ର—ଭଗବଦ୍ ଗୀତା ୧୭ଶ ଓ ୧୮ଶ ଅଧ୍ୟାୟରେ ସାତ୍ତ୍ୱିକପ୍ରିୟ ଆହାର, ସାତ୍ତ୍ୱିକଯଜ୍ଞ, ସାତ୍ତ୍ୱିକତପ, ସାତ୍ତ୍ୱିକ ଯୋଗ, ସାତ୍ତ୍ୱିକଜ୍ଞାନ, ସାତ୍ତ୍ୱିକକର୍ମ, ସାତ୍ତ୍ୱିକବୁଦ୍ଧି, ସାତ୍ତ୍ୱିକ ଧୃତି ଓ ସାତ୍ତ୍ୱିକ ସୁଖର ପ୍ରକାର ବର୍ଣ୍ଣିତ ହୋଇଅଛି । ସାତ୍ତ୍ୱିକମାନେ ଦେବତାମାନଙ୍କୁ ଭଜନ୍ତି; ରାଜସିକମାନେ ଯକ୍ଷ ରାକ୍ଷସାଦିଙ୍କୁ ଭଜନ୍ତି ଓ ତାମସିକମାନେ ପ୍ରେତ ଓ (ସାତ୍ତ୍ୱିକତା—ବି) ଭୂତାଦିଙ୍କୁ ଭଜନ୍ତି । ] ୫ । ସତ୍; ସାଧୁ—( ସାତ୍ତ୍ୱିକୀ—ସ୍ତ୍ରୀ ) Honest; righteous; upright. ୬ । ସତ୍ୟ—6. True. ୭ । ଫଳାକାଙ୍କ୍ଷାରହିତ—7. Free from desire, ୮ । ନିଃସ୍ୱାର୍ଥ—8. Selfless; unselfish. ବି—୧ । ମନରେ ଭକ୍ତି ବା ପ୍ରେମ ଯୋଗୁଁ ସତ୍ତ୍ୱଗୁଣର ଉଦ୍ରେକ ହେଲେ ଯେଉଁ ଯେଉଁ ଶାରୀରିକ ବିକାର ଅବସ୍ଥା ଘଟେ—1. Physical states or indications of a person who is overpowered with devotion or amour ( they are eight in number ). [ଦ୍ର—ଏହା ଅଷ୍ଟବିଧ-ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, କମ୍ପ, ବୈବର୍ଣ୍ଣ୍ୟ, ଅଶ୍ରୁ, ପ୍ରଳୟ ବା ମୂର୍ଚ୍ଛା ବା ପ୍ରଳାପ । ଯେଉଁ ଭକ୍ତ ବିଭୁପ୍ରେମରେ ବୁଡ଼ିଯାଇ ବାହ୍ୟଜ୍ଞାନଶୂନ୍ୟ ହୁଅନ୍ତି ଓ ଯେଉଁ ପ୍ରେମିକ ପ୍ରେମିକା କାମନଦରେ ମଗ୍ନ ହୋଇ ବାହ୍ୟଜ୍ଞାନଶୂନ୍ୟ ହୁଅନ୍ତି, ସେମାନଙ୍କଠାରେ ଏହି ଲକ୍ଷଣମାନ ପ୍ରକାଶ ପାଇବା ଦେଖା ଅଛି ।] ୨ । ବ୍ରହ୍ମା (ହେମଚନ୍ଦ୍ର)—2. Brahmā, the Creator. ୩। ସାତ୍ୱତୀ ୧ (ଦେଖ) (ହ. ଶ)—Sātwati 1 (See) ୪ । ବିଷ୍ଣୁ (ହ. ଶ)—4. An epithet of Bishṇu.

**ସାତ୍ତ୍ୱିକ କର୍ତ୍ତା**—ସଂ. ବି—ଯେଉଁ ବ୍ୟକ୍ତି ଫଳକାମନା ତ୍ୟାଗ କରି କାମ-Sātwika karttā କ୍ରୋଧାଦି ବର୍ଜିତ ଓ ସଙ୍ଗରହିତ ହୋଇ କର୍ମ କରେ (ଗୀତା)—A person who does things most disinterestedly.

**ସାତ୍ତ୍ୱିକ କର୍ମ**—ସଂ. ବି—ସଙ୍ଗରହିତ, କାମନା ରହିତ ଓ ରାଗଦ୍ୱେଷ-Sātwika karma ରହିତ ହୋଇ କରାଯିବା କର୍ମ (ଗୀତା)—Disinterested, dispassionate and righteous act.

**ସାତ୍ତ୍ୱିକ ଜ୍ଞାନ**—ସଂ. ବି—ସର୍ବଭୂତଠାରେ ଏକରୂପ ଜ୍ଞାନ ଓ ବିଭକ୍ତ Sātwika jnāna ବସ୍ତୁରେ ଅବିଭକ୍ତ ଜ୍ଞାନ (ଗୀତା)—Equal consideration in all things.

**ସାତ୍ତ୍ୱିକ ତପଃ**—ସଂ. ବି—ଅଫଳାକାଙ୍କ୍ଷୀ ଯୋଗୀ ବ୍ୟକ୍ତିଙ୍କ ତପସ୍ୟା Sātwika tapaḥ (ଗୀତା)—The penance done by a devotee who has no motives.

**ସାତ୍ତ୍ୱିକ ଦାନ**—ସଂ. ବି—ଉପଯୁକ୍ତ ଦେଶକାଳ ପାତ୍ରରେ ଅନୁପକାରୀ Sātwika dāna ବ୍ୟକ୍ତିକୁ କର୍ତ୍ତବ୍ୟପ୍ରେରଣାରେ ପ୍ରଦତ୍ତ ଦାନ (ଗୀତା)—A gift made in a disinterested manner and prompted by a sense of duty.

**ସାତ୍ତ୍ୱିକ ଧୃତି**—ସଂ. ବି ( କର୍ମଧା )—ମନଃପ୍ରାଣେନ୍ଦ୍ରିୟ କ୍ରିୟାକୁ Sātwika dhruti ଅବ୍ୟଭିଚାରୀ ଯୋଗ ଦ୍ୱାରା ଯେଉଁ ଧୃତି ଧାରଣ କରେ (ଗୀତା)—Composure or steadiness which always keeps the mind, body and organs regulated and controlled.

**ସାତ୍ତ୍ୱିକ ପୁରାଣ**—ସଂ. ବି—ବିଷ୍ଣୁ ପୁରାଣ, ନାରଦୀୟ ପୁରାଣ, ଭାଗବତ, Sātwika purāṇa ଗରୁଡ଼, ପଦ୍ମ ଓ ବରାହ ପୁରାଣ, ଏହି ୬ ଗୋଟି ପୁରାଣ—Six Purāṇas classified as the best ones.

**ସାତ୍ତ୍ୱିକ ପୂଜା**—ସଂ. ବି (କର୍ମଧା) - ସାତ୍ତ୍ୱିକୀ ପୂଜା (ଦେଖ) Sātwika pūjā Sātwiki pūjā. (See)

**ସାତ୍ତ୍ୱିକ ପ୍ରିୟ**—ସଂ. ବିଣ—ସାତ୍ତ୍ୱିକ ବ୍ୟକ୍ତିର ପ୍ରିୟ (ପଥ୍ୟ—ଖାଦ୍ୟ)—Sātwika priya Dear to or loved by a 'Sātwika' person.

**ସାତ୍ତ୍ୱିକ ପ୍ରିୟ ଖାଦ୍ୟ**—ସଂ. ବି—ଯେଉଁ ଆହାର ଦ୍ୱାରା ଆୟୁ, ବଳ Sātwika priya khādya ତଥା ସାତ୍ତ୍ୱିକ ଗୁଣ ବୃଦ୍ଧି ହୁଏ (ସାତ୍ତ୍ୱିକ ପ୍ରିୟ ଆହାର—ଅନ୍ୟରୂପ) ["ଆୟୁଃସତ୍ତ୍ୱ ବଳାରୋଗ୍ୟ ସୁଖ ପ୍ରୀତି ବିବର୍ଦ୍ଧନାଃ, ରସ୍ୟା ସ୍ନିଗ୍ଧା ସ୍ଥିରା ହୃଦ୍ୟା ଆହାରାଃ ସାତ୍ତ୍ୱିକ ପ୍ରିୟାଃ ।" ଗୀତା ୧୭ ଅଧ୍ୟାୟ ]—A class of food which contributes towards one's physical and mental health.

**ସାତ୍ତ୍ୱିକବନ୍ତ**—ଗ୍ରା. ବିଣ—ସତ୍ତ୍ୱଗୁଣ ଯୁକ୍ତ—Having the virtue Sātwikabanta of righteousness. ସାତ୍ତ୍ୱିକ ସାତ୍ତ୍ୱିକବନ୍ତ [ଦ୍ର—ସାତ୍ତ୍ୱିକବନ୍ତ ଲୋକ ଶୁଦ୍ଧ ହୋଇଥିଲେ, କ୍ରମରେ ଅଧିକକୁ ଲଭନ୍ତି ସେ ଭଲେ । କୃଷ୍ଣସିଂହ- ମହାଭାରତ ବନ ।]

**ସାତ୍ତ୍ୱିକ ବିକାର**—ସଂ. ବି—୧ । ସାତ୍ତ୍ୱିକ ୧ ( ଦେଖ )
Sātwika bikāra 1. Sātwika 1 ( See )
(ସାତ୍ତ୍ୱିକ ଭାବ—ଅନୁଭାବ) ୨ । ପ୍ରେମିକ ପ୍ରେମିକାଙ୍କ ଅଙ୍ଗାଦିରେ ଲକ୍ଷିତ ପ୍ରେମ ବା କାମାସକ୍ତି ଓ ଭକ୍ତି ଜନିତ ଅଷ୍ଟବିଧ ବିକାର—2. Eight kinds of physical manifestations of a person who is overpowered with devotion or amour.

[ଦ୍ର—ଏହି ଅଷ୍ଟବିଧ ବିକାରର ନାମ ଯଥା—୧—ସ୍ତମ୍ଭ, ୨—ବୈବର୍ଣ୍ଣ୍ୟ, ୩—ରୋମାଞ୍ଚ, ୪—କମ୍ପ, ୫—ସ୍ୱେଦ, ୬—ଅଶ୍ରୁ, ୭—ସ୍ୱରଭଙ୍ଗ, ୮—ପ୍ରଳୟ ବା ମୂର୍ଚ୍ଛା ବା ପ୍ରଳାପ । ଏହି ଅଷ୍ଟବିଧ ଲକ୍ଷଣ ନାୟକନାୟିକାଙ୍କ ଅଙ୍ଗରେ ଓ ଭକ୍ତଙ୍କ ଅଙ୍ଗରେ ଗୋଟିକ ପରେ ଗୋଟିଏ କ୍ରମରେ ପ୍ରକାଶ ପାଏ । କବିବର ଉପେନ୍ଦ୍ର ଭଞ୍ଜ ତତ୍‌କୃତ କୋଟିବ୍ରହ୍ମାଣ୍ଡସୁନ୍ଦରୀ କାବ୍ୟର ୧୮ଶ ଛାନ୍ଦର ୨୨ଶ ପଦରୁ ୨୯ଶ ପଦରେ ଏହି ବିକାରମାନଙ୍କ ବର୍ଣ୍ଣନା କରିଅଛନ୍ତି । ନିମ୍ନରେ ତାହା ପ୍ରଦତ୍ତ ହେଲା—

୧ । ସ୍ଥଗିତ ତନୁରୁ ଲେଖିତ କରି ଦ୍ୱିଜସୁ ବୋଲେ
ହେମ ପିତୁଳା ତୁଲା ହେଲ କାନ୍ତବର୍ତ୍ତିଳା ଭୁଲେ ।
(ସ୍ତମ୍ଭ)

୨ । ଦେଖି ଦେଖି ଭଜେ ବିବର୍ଣ୍ଣ କର୍ଣ୍ଣିଲ ଯେ ଅପସ୍ୱ,
ଏ ଶୋଭସଦନ ମଦନ ସୁଧା ଲେପଇ ସସ୍ୱ ।
(ବୈବର୍ଣ୍ଣ୍ୟ)

୩ । ପୁଲକକାଳକ ଶୁହିଁ ଯେ ଅଦ୍ୟା କହିଲ ବେଗେ,
ଛୁରିତକ ତରୁ ତରୁଣୀ ପୁଷ୍ପାଙ୍କୁର ସବାଙ୍ଗେ ।
(ରୋମାଞ୍ଚ)

୪ । ମଧ୍ୟା ଭାଷେ ସତ ଭୁଷଙ୍କ ଲଭସ୍ୱତରେ ଥର
ଶୋଭାକର କର ଅଧର ନବ ପଲ୍ଲବ ପର ।
(କମ୍ପ)

୫ । ଅନ୍ୟା ବୋଲେ ଜାତ ବିରହ-ଜାତବେଦ ସଙ୍ଗାବେ
ଉଲେ ପ୍ରକ୍ଷଲେ ଅର୍ଦ୍ଧାଙ୍ଗୁଁ ଉଠେ ପୂଷ୍ଣ ତା ଏବେ
(ସ୍ୱେଦ)

୬ । ନୋହୁ କବାର ନେତ୍ର କାର ଛଚ୍ଛ ପ୍ରଥମା କରେ
ଗଳାବ୍ଜେ ମିଳିତ ମିଳନ୍ତ ମକରନ୍ଦ ଉଦ୍‌ଗାରେ ।
(ଅଶ୍ରୁ)

୭ । ବଚନ କରନ୍ତେ ରଚନ ଅଧେ ଦ୍ୱିତୀୟା ଭାଷେ
କଳକଣ୍ଠ କଣ୍ଠ ଭଙ୍ଗେ ଶୋକ-ଘନ ପ୍ରକାଶେ ।
(ସ୍ୱରଭଙ୍ଗ)

୮ । ଜନ ବଖାନ ବହୁ ବଶେ ତାହା ତୃତୀୟା ଗୃହୁଁ
ପ୍ରକିଳ୍ପ ଭୁଲକ ଭାବକ କହୁ ଚେତନା ବହୁ ।
(ଅଚୈତନ୍ୟବା ପ୍ରଳୟ)

**ସାତ୍ତ୍ୱିକ ବୁଦ୍ଧି**—ସଂ. ବି ( କର୍ମଧା )—ଯେଉଁ ବୁଦ୍ଧିଦ୍ୱାରା ପ୍ରବୃତ୍ତି-ନିବୃତ୍ତି,
Sātwika buddhi କାର୍ଯ୍ୟାକାର୍ଯ୍ୟ, ଭୟାଭୟ, ବନ୍ଧମୋକ୍ଷ ଜଣାଯାଏ ( ଗୀତା )—Intelligence which is able to distinguish good from bad.

**ସାତ୍ତ୍ୱିକ ଯଜ୍ଞ**—ସଂ. ବି—କର୍ତ୍ତବ୍ୟ ପ୍ରେରଣାରେ ବିଧିପୂର୍ବକ ଅନୁଷ୍ଠିତ
Sātwika jajna ଫଳକାମନା ରହିତ ଯଜ୍ଞ (ଗୀତା)—A sacrifice performed with customary rites from a sense of duty.

**ସାତ୍ତ୍ୱିକ ସ୍ମୃତି**—ସଂ. ବି—ବଶିଷ୍ଠ, ହାରୀତ, ବ୍ୟାସ, ପରାଶର, ଭରଦ୍ୱାଜ,
Sātwika smruti କାଶ୍ୟପ ମୁନିମାନଙ୍କ କୃତ ସ୍ମୃତିଶାସ୍ତ୍ର ( ପଦ୍ମପୁରାଣ )—The codes of Hindu law compiled by 6 of the ancient law-givers of India.

**ସାତ୍ତ୍ୱିକା**—ସଂ. ବି. ସ୍ତ୍ରୀ ( ସାତ୍ତ୍ୱିକ+ସ୍ତ୍ରୀ. ଆ )—ଦୁର୍ଗା (ପ୍ରକୃତିବାଦ)—
Sātwikā A name of Durgā.

**ସାତ୍ତ୍ୱିକାହାର**—ସଂ. ବି ( କର୍ମଧା )—ଯେଉଁ ଆହାରଦ୍ୱାରା ସତ୍ତ୍ୱଗୁଣର
Sātwikāhāra ବୃଦ୍ଧି ହୁଏ; ସାତ୍ତ୍ୱିକପ୍ରିୟ ଆହାର—The food which improves the good qualities of the partaker.

**ସାତ୍ତ୍ୱିକୀ**—ସଂ. ବିଣ (ସାତ୍ତ୍ୱିକ+ସ୍ତ୍ରୀ. ଈ)—ସାତ୍ତ୍ୱିକ ଶବ୍ଦର ସ୍ତ୍ରୀଲିଙ୍ଗ—
Sātwikī The feminine of Sātwika. ବି—ଦୁର୍ଗା ( ଶବ୍ଦରତ୍ନାବଳୀ )—Goddess Durgā.

**ସାତ୍ତ୍ୱିକୀ ପୂଜା**—ସଂ. ବି—୧ । ଜପଯଜ୍ଞ ଓ ନିରାମିଷ ନୈବେଦ୍ୟ ଓ
Sātwikī pūjā ସ୍ତବ ପାଠଦ୍ୱାରା କରାଯିବା ପୂଜା—1. Worship of a Deity performed in a Sātwika manner. ୨ । ଫଳକାମନା ରହିତ ଦେବାରାଧନା—2. Worshipping a Deity without asking for any boon.

**ସାତ୍ମକ**—ସଂ. ବିଣ ( ସ+ଆତ୍ମନ୍+କ)— ଆତ୍ମବିଶିଷ୍ଟ; ଆତ୍ମା ଦ୍ୱାରା ଯୁକ୍ତ
Sātmaka (ହି. ଶ )—Joined with the soul.
( ସାତ୍ମିକା—ସ୍ତ୍ରୀ )

**ସାତ୍ମ୍ୟ**—ସଂ. ବିଣ ( ଆତ୍ମନ୍+ହିତାର୍ଥେ. ଯ=ଆତ୍ମ୍ୟ; ସ=ସହିତ
Sātmya ବର୍ତ୍ତମାନ+ଆତ୍ମ୍ୟ )—୧ । ସୁଖଜନକ ( ଭୈଷଜ୍ୟ ରତ୍ନାବଳୀ )—1. Producing happiness. ୨ । ସୁଖକର—2. Pleasant. ୩ । ମଙ୍ଗଳକର—3. Beneficial. ସଂ. ବି—୧ । ସାରୂପ୍ୟ; ସରୂପତା ( ହି. ଶ )—1. The state of being corporeal. ୨ । ( ବୈଦ୍ୟକ ) ଯେଉଁ ରସ ସେବନଦ୍ୱାରା ଶରୀରର ଉପକାର ହୁଏ ଓ ଯାହାର ଫଳରେ ପ୍ରକୃତିବିରୁଦ୍ଧ କୌଣସି କର୍ମ କଲେ ଶରୀରର ଅନିଷ୍ଟ ହୁଏ ନାହିଁ ( ହି. ଶ )—2 Any food which is beneficial to the body. ୩ । ଋତୁ, କାଳ, ଦେଶ ଆଦିର

ଅନୁକୂଳ ଅହାର ବହାରାଦ (ବ୍ୟୁ. ଶ)—3. Food and conduct befitting particular seasons and countries.

ସାତ୍ୟକ—ସଂ. ବି. ପୁଂ (ସତ୍ୟକ+ଅପତ୍ୟାର୍ଥେ. ଇ)—କୃଷ୍ଣଙ୍କ ସାରଥି; Sātyaki ଯଦୁବଂଶୀୟ ସାରଥିଶେଷ—Name of the charioteer of Srikrushna. [ ଉ—ଏହାଙ୍କ ପିତାଙ୍କ ନାମ ସତ୍ୟକ ଥିଲା । ଏହାଙ୍କର ଅପର ନାମ ଯୁଯୁଧାନ । ଏ ଶ୍ରୀକୃଷ୍ଣଙ୍କର ଶିଷ୍ୟ ଓ ବିଶେଷ ସ୍ନେହପାତ୍ର ଥିଲେ । ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କଠାରୁ ଏ ଅସ୍ତ୍ରବିଦ୍ୟା ଶିଖିଥିଲେ । କୁରୁକ୍ଷେତ୍ରରେ ଏ ପାଣ୍ଡବଙ୍କ ପକ୍ଷ ଅବଲମ୍ବନ କରି ଚତୁର୍ଦ୍ଦଶ ଦିବସରେ କୁରୁସେନାଙ୍କ ବ୍ୟୂହ ଭେଦ କରି ଅନେକ ମହାରଥୀଙ୍କୁ ପରାସ୍ତ କରିଥିଲେ । କିନ୍ତୁ ଶେଷରେ ଭୂରିଶ୍ରବା ଏହାଙ୍କୁ ପରାଜିତ କରିବାରୁ ଅର୍ଜ୍ଜୁନ ସେଠାରେ ଉପସ୍ଥିତ ହୋଇ ଭୂରିଶ୍ରବାଙ୍କ ଦକ୍ଷିଣ ବାହୁ ଛେଦନ କଲେ ଏବଂ ଏ ଭୂରିଶ୍ରବାଙ୍କୁ ବଧ କଲେ । ଯଦୁବଂଶ ଧ୍ୱଂସକାଳରେ ଏ ନିଧନପ୍ରାପ୍ତ ହେଲେ । ଅଙ୍ଗଦ ନାମରେ ଏହାଙ୍କର ଗୋଟିଏ ପୁତ୍ର ଥିଲା । ]

ସାତ୍ୟଦୂତ—ସଂ. ବି—ସରସ୍ୱତୀ ଆଦି ଦେବୀଙ୍କ ଉଦ୍ଦେଶ୍ୟରେ ଅନୁଷ୍ଠିତ Sātyadūta ହୋମ (ବ୍ୟୁ. ଷ)—Homa performed in honour of Saraswati and other Goddesses.

ସାତ୍ୟବତ—ସଂ. ବି. ପୁଂ (ସତ୍ୟବତୀ+ଅପତ୍ୟାର୍ଥେ. ଅ)— Sātyabata ବ୍ୟାସଦେବ—The sage Byāsa. (ସାତ୍ୟବତେୟ—ଅନ୍ୟରୂପ)

ସାତ୍ରାଜିତ—ସଂ. ବି. ପୁଂ (ସତ୍ରାଜିତ+ଅପତ୍ୟାର୍ଥେ ଅ)—ରାଜା Sātrājita ଶତାନୀକ—King Śatānika.

ସାତ୍ରାଜିତୀ—ସଂ. ବି. ସ୍ତ୍ରୀ (ସତ୍ରାଜିତ+ଅପତ୍ୟାର୍ଥେ ଅ+ସ୍ତ୍ରୀ. ଈ)— Sātrājiti ଶ୍ରୀକୃଷ୍ଣଙ୍କର ଏକତମା ମହିଷୀ ସତ୍ୟଭାମା— Queen Satyabhāmā.

ସାଥ—ଦେ. ଅ (ସଂ. ସାର୍ଦ୍ଧଂ; ସହ; ସହିତ)—୧ । ସହିତ— Sātha 1. With. [ ଉ—ତୁମ୍ଭେ ଏକା ଲାଗି ପାର ତାହାଙ୍କ साथ साथ ସାଥ—କୃଷ୍ଣସିଂହ. ମହାଭାରତ. ବନ । ] ୨ । ସଙ୍ଗେ—2. In company of. ବି—ସଙ୍ଗ— Company. [ ଉ—ଜନ୍ମିଥାଏ ପୁଣି ଯାଇ ସେ ଭୁଞ୍ଜି ସାଥ—କୃଷ୍ଣସିଂହ. ମହାଭାରତ. ବନ । ]

ସାଥରେ—ଦେ. ଅ—ସଙ୍ଗରେ; ସଙ୍ଗେ; ସହିତେ—With; along Sāthare with; in the company of. [ ଉ— संगे, साथे ବସିଲ ମୁହିଁ ଯାଇ ମାତଳ ସାଥରେ—କୃଷ୍ଣସିଂହ. साथमें (ସାଥିରେ, ସାଥେ—ଅନ୍ୟରୂପ) ମହାଭାରତ. ବନ । ]

ସାଥା(ଥେ)ସାଥ(ଥି)—ଦେ. ଅ—ସାତେସାତ (ଦେଖ)—Sātesāt Sātha(the)sāth(thi) (See) সাথে সাথে সঙ্গে সঙ্গে (ସାଥିସାଥି) साथेसाथ

ସାଥି—ଦେ. ବି—୧ । ସଙ୍ଗ—1. Companionship. ୨ । ସଙ୍ଗୀ— Sāthi 2. Companion. [ ଉ—ସମସ୍ତେ ସୁଖର ସାଥି, সাথী ଅର୍ଥର ଦାସ; କେବଳ ପଡ଼ିଲେ କେହି କାହାର ନୁହେଁ— साथी ଫକୀରମୋହନ. ଛମାଣ. ଆଠଗୁଣ୍ଠ । ] ୩ । ସହଯାତ୍ରୀ— 3. A fellow-traveller. ୪ । ଭାଗିଦାର— 4. Partnership. ୫ । ସହକର୍ମୀ—5. Colleague; fellow; associate. ୬ । ଦୁଃଖ ଓ ସୁଖଭୋଗରେ ସଙ୍ଗୀ—6. A companion in trouble and সঙ্গে joy. ଅ—ସଙ୍ଗେ—With. (ଉ—ଦଅନ୍ତ ଦେଖା साथ ମିଳି ଅନ୍ୟ ନଦୀ ସାଥି—କୃଷ୍ଣସିଂହ. ମହାଭାରତ. ବନ ।) ବିଣ—କୌଣସି ବ୍ୟକ୍ତି ସଙ୍ଗେ ଭଲ ମନ୍ଦରେ ସମାନଭାବରେ ଦାୟୀ—Equally responsible with any person; sharing the responsibility with any person.

ସାଥି କରିବା—ଦେ. କି—କୌଣସି ବ୍ୟକ୍ତିଙ୍କୁ ଆପଣାର ସହଚରରୂପେ Sāthi kariba ଗ୍ରହଣ କରିବା—To take a person সাথি করা साथी करना as one's companion.

ସାଥି ଦାର—ଦେ. ବି—୧ । ଭାଗଦାର; ଭାଗୁଆଳୀ—1. Partner. sāthi dār ୨ । ସହଚର—2. Companion. অংশীদাব ভাগীদাব साथी

ସାଥି ଦାରି—ଦେ. ବି—ଭାଗଦାରି— Sāthi dāri Partnership. ভাগদাবী भागदारी

ସାଥି ଧରିବା—ଦେ. କି—କୌଣସି ବ୍ୟକ୍ତିର ସହଚରରୂପେ ତାକୁ Sāthi dharibā ଅନୁସରଣ କରିବା—To follow সাথী ধবা साथ धरना a person as companion. (ସାଥି ଛାଡ଼ିବା—ବିପରୀତ)

ସାଥି ସଙ୍ଗ(ଙ୍ଗୀ)—ଦେ. ବି (ସହ ଚର ଶବ୍ଦ)—ସଙ୍ଗୀ—Associate. Sāthi sanga(ngi) (ଉ—ଏକା ରହୁଅଛୁ କାହିଁ ନୋହେ সঙ্গী সাথী संगीसाथी ସାଥି ସଙ୍ଗ—ପ୍ରାଚୀ କୃଷ୍ଣନକ୍ଷତ୍ର ଗୀତା ।)

ସାଥୁଆ—ଦେ. ବି. ପୁଂ—୧ । ସଙ୍ଗୀ; ସହଚର—1. Companion. Sāthua ୨ । ପଥପ୍ରଦର୍ଶକ ସହଚର—2. A guide. [ସାଥେ(ଥୋ)ଇ—ସ୍ତ୍ରୀ] ୩ । ଯେଉଁ ଯାତ୍ରୀ ଗୁମାସ୍ତା ଅନ୍ୟ সাথুআ, সেথো साथी ପଣ୍ଡାର ଯାତ୍ରୀଙ୍କ ସଙ୍ଗେ ଦୂର ଦେଶରୁ ତୀର୍ଥକୁ ଆସିଥାଏ—3. A pilgrim-agent who accompanies another Panda's pilgrims from a long distance to the place of pilgrimage. ପ୍ରାଦେ. (ସିଂହଭୂମି) ବି—ସ୍ୱର୍ଣ୍ଣକାର; ବଣିଆ—Goldsmith.

ସାଥୋଡ଼ା (ଇତ୍ୟାଦି)—ଦେ. ବି—ସତୋଡ଼ା ଇତ୍ୟାଦି (ଦେଖ) Sāthorda (etc) Satordā etc (See)

ସାଦ—ସଂ ବି (ସଦ୍ ଧାତୁ=ଅବସନ୍ନ ହେବା+ଭାବେ ଅ) ୧ । ବିଷାଦ- Sāda 1. Grief. ୨ । ଗତି—2. Motion.

୩ । ଶରଣ—3. Taking shelter. ୪ । ଆଳସ୍ୟ—4. Idleness; inertness. ୫ । କ୍ଷୀଣତା; କୃଶତା—5. Leanness. ୬ । ବିନାଶ—6. Destruction. ୭ । ହିଂସା—7. Malevolence. ୮ । ବିଶୁଦ୍ଧି—8. Purity. ୯ । ଇଚ୍ଛା (ପ୍ରକୃତିବାଦ)—9. Desire. ୧୦ । ଗର୍ଭିଣୀର ଭକ୍ଷଣେଚ୍ଛା; ଦୋହଦ ( ପ୍ରକୃତିବାଦ )—10. The desire of a pregnant woman for particular articles of food.

**ସାଦତ୍**—ବୈଦେ. ବି (ଫା)—୧। ଅଭ୍ୟାସ—1. Habit. ୨ । (ପୁଂ) Sādat ମୁସଲମାନଙ୍କ ନାମ—2. A name of Mahomedans.
সাদত্ आदत

**ସାଦତ୍ ଅଲ୍ଲୀ**—ଦେ· ବି (ନାମ)—୧ । ଅଯୋଧ୍ୟାର ନବାବ ବଂଶର Sādat alli ପ୍ରତିଷ୍ଠାତା—1. Name of the founder of the nabab family of Oudh.
সাদত আলী सादत आली
[ଦ୍ର—ଏ ପାରସ୍ୟରୁ ଭାରତକୁ ବାଣିଜ୍ୟ କରିବା ପାଇଁ ଆସି ମୁସଲମାନ୍ ରାଜା ମହମ୍ମଦ ଶାହାଙ୍କଦ୍ୱାରା ଅଯୋଧ୍ୟା ଓ ଅଲ୍ଲାହାବାଦର ନବାବପଦରେ ନିଯୁକ୍ତ ହୋଇଥିଲେ ଓ ପରେ ଅଗ୍ରା ଓ ବଙ୍ଗର ମଧ୍ୟବର୍ତ୍ତୀ ଦେଶର ସ୍ୱାଧୀନ ନବାବ ହୋଇ ଖ୍ରୀ ୧୭୩୯ ସାଲରେ ପ୍ରାଣତ୍ୟାଗ କରିଥିଲେ ।] ୨ । ଅଯୋଧ୍ୟାର ଜଣେକ ନବାବ—2. Name of a Nabab of Oudh. [ଦ୍ର—ଅସଫ୍ ଉଦ୍ଦୌଲାଙ୍କ ମୃତ୍ୟୁ ପରେ ଗଭର୍ଣ୍ଣର୍ ଜେନରଲ୍ ସର୍ ଜନ୍ ଶୋର୍ ଲକ୍ଷ୍ନୌଠାରେ ଏହାଙ୍କୁ ୧୭୯୮ ରେ ନବାବ-ଗାଦିରେ ବସାଇଥିଲେ ।]

**ସାଦନ**—ସଂ ବି (ସଦ୍ ଧାତୁ ଣିଚ୍, ସାଦ ଧାତୁ+ଅଧିକରଣ ଅନ)—୧ । Sādana ସଦନ; ଗୃହ (ଭରତ)—1. House; dwelling. ୨ । (+ଭାବ ଅନ)—ବିନାଶନ—2. Destroying. ୩ । ଅବସାଦ; ବିଷାଦ ଜନ୍ମାଇବା—3. Causing sorrow or grief. ୪ । ଦୂରୀକରଣ—4. Removing.

**ସାଦନୀ**—ସଂ ବି (ସଦ୍ ଧାତୁ ଣିଚ୍, ସାଦ ଧାତୁ+କର୍ତ୍ତୃ ଅନ+ଈ)—Sādani କଟୁକା ( ରାଜନିଘଣ୍ଟୁ ); ତ୍ରିପୁଙ୍ଗ—Black hellebore.

**ସାଦଜୟ**—ଦେ· ବି (ନାମ)—ପ୍ରାଚୀନ ଓଡ଼ିଆ କବିବିଶେଷ—Sādajaya Name of an ancient Oriya poet. [ଦ୍ର—ଏ 'ଶାରଳାସ୍ତୁତି' ପ୍ରଭୃତି ପୁସ୍ତକ ପ୍ରଣୟନ କରିଥିଲେ ।]

**ସାଦର**—ସ. ବି ( ସ+ଆଦର; ସହାର୍ଥେ ବହୁବ୍ରୀହି)—ଆଦରଯୁକ୍ତ—Sādara Cordial; respectful; fond. ପ୍ରାଦେ ( ଗଞ୍ଜାମ )—ବି—ଲାଞ୍ଚ ବା ବକ୍‌ସିସ୍—Bribe or illegal gratification or tip.

**ସାଦର ବଚନ**—ସଂ ବି (କର୍ମଧା)—ଆଦରଯୁକ୍ତ ବାକ୍ୟ—Sādara bachana Cordial words.

**ସାଦର ସମ୍ଭାଷଣ**—ସଂ· ବି (କର୍ମଧା)୧—ଆଦରଯୁକ୍ତ କଥୋପକଥନ—Sādara sambhāshana 1. Cordial conversation. ୨ । ଆଦରଯୁକ୍ତ ସ୍ୱାଗତ ସମ୍ଭାଷଣ—2. Cordial welcome.

**ସାଦରାଲିଙ୍ଗନ**—ସଂ. ବି (କର୍ମଧା)—ପ୍ରୀତିଯୁକ୍ତ ଆଲିଙ୍ଗନ—Sādarālingana Cordial embrace.

**ସାଦରି କୋଲ**—ପ୍ରାଦେ ( ଗଡ଼ଜାତ ) ବି—କେନ୍ଦୁଝର, ବାମଣ୍ଡା ଆଦି Sādari kola ଗଡ଼ଜାତରେ ଅନାର୍ଯ୍ୟମାନଙ୍କ କଥିତ ବିହାରୀଭାଷା—The Bihari language spoken by the non-aryans of Keonjhar, Bamra and other northern Oriya States. [ ଦ୍ର—ଏଥିରେ ଓଡ଼ିଆ ଭାଷାର ବିଶେଷ ପ୍ରଭାବ ଦେଖାଯାଏ ।]

**ସାଦରେ**—ଦେ· କ୍ରି. ବିଣ (ସଂ. ସାଦରଂ)—ଆଦର ସହକାରେ—Sādare Cordially; fondly.
সাদরে सादर

**ସାଦା (ଇତ୍ୟାଦି)**—ବୈଦେ. ବିଣ—ସାଧା ଇତ୍ୟାଦି (ଦେଖ) Sādā (etc) Sādhā etc (See).

**ସାଦି**—ସ. ବିଣ (ସଦ୍ ଧାତୁ +କର୍ତ୍ତ୍ରି· ଇ)—ଅବସନ୍ନ—Pulled Sādi down; overpowered. ବି—୧ । ସାରଥି (ହେମଚନ୍ଦ୍ର)—1. Charioteer. ୨ । ଅଶ୍ୱାରୋହୀ ବା ଗଜାରୋହୀ ବା ରଥାରୋହୀ ଯୋଦ୍ଧା (ଭରତର ଟୀକା )—2. A warrior riding a horse or elephant or car. ୩ । ବାୟୁ (ସଂକ୍ଷିପ୍ତ ସାର)—3. The air.

**ସାଦିତ**—ସଂ. ବି (ସଦ୍. ଧାତୁ ଣିଚ୍—ସାଦ. ଧାତୁ+କର୍ମ. କ୍ତ)—Sādita ୧। ବିଷାଦିତ—1. Aggrieved; afflicted with grief. ୨ । ଶରଣପ୍ରାପିତ—2. Given shelter; having taken refuge. ୩ । ଗମିତ—3. Caused to go. ୪ । ଦୁର୍ବଳୀକୃତ—4. Emaciated.

**ସାଦୀ**—ସଂ. ବି (ସଦ୍ ଧାତୁ+ଇନ୍; ସାଦିନ୍ ଶବ୍ଦ; ୧ମା, ୧ବ)—Sādi ୧ । ଘୋଡ଼ସବାର; ଅଶ୍ୱାରୋହୀ (ଅମର)—1. A horseman; rider, jockey. ୨ । ଗଜାରୋହୀ (ମେଦିନୀ)—2. A warrior riding an elephant. ୩ । ରଥାରୋହୀ (ମେଦିନୀ)—3. A warrior riding a car. ୪ । ଅଶ୍ୱାରୋହୀ ସେନା—4. Cavalry soldier. ଦେ. ବି. ସ୍ତ୍ରୀ—ସାଧବାନାମ୍ନୀ ସ୍ତ୍ରୀର ଡାକନାମ—Nickname of 'Sādhabi'.
সাধী साधी

**ସାଦୃଶ(ଶେ)**—ଗ୍ରା· ଅ—ସଦୃଶ—Like. [ ଉ—ସୁବର୍ଣ୍ଣ ସାଦୃଶେ Sādrusa(se) ବଦନ । ଭୂପତି. ପ୍ରେମ ପଞ୍ଚାମୃତ ।]
সাদৃশ सादृश

**ସାଦୃଶ୍ୟ**—ସଂ. ବି (ସଦୃଶ+ଭାବ. ଯ)—୧ । ସଦୃଶତା; ତୁଲ୍ୟତା—Sādrusya 1. Similarity; resemblance. ୨ । ସମାନତା—2. Equality; likeness.

୩ । ଆଲେଖ୍ୟ; ଛବି; ମନୁଷ୍ୟର ରୂପ ଥିବା ଚିତ୍ର ବା ଫଟୋ—3. A portrait; a photo. ୪ । ହରିଣ; ମୃଗ (ହେ. ଶ)—4. Deer.

ସାଧ (ଧାତୁ)—ସଂ—୧ । ସାଧନ କରିବା—1. To perform. ୨ । Sādha (root) ନିଷ୍ପନ୍ନ କରିବା; ସିଦ୍ଧ କରିବା; ସମାଧାନ କରିବା—2. To accomplish. ୩ । ସମ୍ପୂର୍ଣ୍ଣରୂପେ ନିର୍ମାଣ କରିବା—3. To build or make.

ସାଧ (ଇତ୍ୟାଦି)—ଦେ. ବି (ସଂ. ସାଦ; କିଂବା ସ୍ୱାଦ, ବା ଶ୍ରଦ୍ଧା)—ଶାଧ Sādha (etc) ଇତ୍ୟାଦି (ଦେଖ)—Sādha etc. (See) ୧ । ସାଧ ଗର୍ଭିଣୀର ଦୋହଦ; ଗର୍ଭିଣୀର ଭୋଜନ କରିବାର ସ୍ପୃହା—ସାଧ 2. The desire of a pregnant woman for a particular article of food. ୨। ଗର୍ଭିଣୀର ବାଞ୍ଛିତ ଖାଦ୍ୟ ଦ୍ରବ୍ୟ—2. Particular article of food desired by a pregnant woman. ୩ । ଚଳିତ୍ରି ଖିଅ; ଗର୍ଭର ସପ୍ତମ ମାସ ପରେ ଗର୍ଭିଣୀର ଭୋଜନାର୍ଥ ବନ୍ଧୁ ଅଦିଙ୍କ ଘରୁ ପ୍ରେରିତ ମିଷ୍ଟାନ୍ନାଦି ଭୋଜନ ସାମଗ୍ରୀ—3. Victuals and sweets sent to a pregnant woman after the 7th month of her pregnancy. ୪ । ଅଭିଳାଷ; ବାଞ୍ଛା—4. Desire; wish. ୫ । କୌଣସି ଦ୍ରବ୍ୟ ପ୍ରତି ଆକାଂକ୍ଷା—5. Fancy or fondness for any article

ସାଧକ—ସଂ. ବିଣ (ସାଧ୍ ଧାତୁ ଣିଚ୍—ସାଧି. ଧାତୁ=ସିଦ୍ଧ କରିବା+ Sādhaka କର୍ତ୍ତି. ଅକ)—୧ । ସାଧନକାରକ; ନିଷ୍ପାଦକ—[ସାଧିକା—ସ୍ତ୍ରୀ] 1. Accomplishing. ୨ । ନିପୁଣ; ଦକ୍ଷ—2. Expert; skilful. ୩ । ଆରାଧକ; ପୂଜକ—3. Worshipping. ୪ । ସହାୟକ—4. Helping. ୫ । ପୂର୍ଣ୍ଣକାରକ—5. Fulfilling. ୬ । କାର୍ଯ୍ୟସିଦ୍ଧିରେ ସହାୟକ—6. Helping a person in the accomplishment of a work. ବି—୧ । ଦେବତାଙ୍କର ପୂଜକ—1. Worshipper or devotee of a Deity. ୨ । କାର୍ଯ୍ୟ ସିଦ୍ଧିରେ ସହାୟକ ବ୍ୟକ୍ତି—2. An associate or assistant. ୩ । ଯେଉଁ ବ୍ୟକ୍ତି ମନ୍ତ୍ରାଦିରେ ସିଦ୍ଧିଲାଭ କରିଥାଏ—3. A person who has succeeded in bringing a 'Mantra' to its fruition. ୪ । ଯୋଗୀ; ତପସ୍ୱୀ; ଯୋଗସାଧକ—4. A person practising austerities. ୫ । ମନ୍ତ୍ରାଦି ସାଧନରେ ନିଯୁକ୍ତ ବ୍ୟକ୍ତି—5. A person engaged in practising any esoteric formula. ୬। ଯାହା ଦ୍ୱାରା କୌଣସି କାର୍ଯ୍ୟ ସାଧିତ ହୁଏ—6. A person or instrument with whose help a work is accomplished. ୭ । ଗୁଣିଆ; ଓଝା (ହେ. ଶ)—7. An exorcist. ୮ । ପୁତ୍ରଂଜୀବ ଗଛ (ହେ. ଶ)—8. Putramjiba tree. ୯। ଦଅଣା ଗୁଳ୍ମ (ହେ. ଶ)—9. Da-anā. (plant). ୧୦ । ପିତ୍ତ (ହେ. ଶ)—10. Bile.

ସାଧକା—ସଂ. ବି. [ସ୍ତ୍ରୀ]—(ସାଧକ+ସ୍ତ୍ରୀ. ଆ; ଯାହାଙ୍କ ନାମ ସ୍ମରଣ Sādhakā କଲେ ସବୁ କାର୍ଯ୍ୟର ସିଦ୍ଧି ହୁଏ)—ଦୁର୍ଗା—Goddess Durgā.

ସାଧନ—ସଂ. ବି (ସାଧ୍. ଧାତୁ=କର୍ମ ନିଷ୍ପତ୍ତି କରିବା+କରଣ. ଅନ)—Sādhana ୧ । (ବ୍ୟାକରଣ) ତୃତୀୟା ବିଭକ୍ତି; କରଣ କାରକ; ଯାହାର ସାହାଯ୍ୟରେ କ୍ରିୟା ସାଧିତ ହୁଏ—1. (Grammar) The 3rd or the instrumental case (applied in cases where an act is performed by or with the help of any thing or person). ୨ । (ନ୍ୟାୟ ଶାସ୍ତ୍ର) ହେତୁ—2. (Logic) What leads to a conclusion; sufficient reason. ୩ । (+ଭାବ. ଅନ) ସମ୍ପାଦନ; ନିଷ୍ପାଦନ—3. Accomplishment of a work. ୪ । ଉଦ୍ଦେଶ୍ୟ ଲାଭ—4. Attainment of an aim or object. ୫ । (ବୈଦ୍ୟକ) ଧାତୁ ଅଭ୍ର ଶୋଧନ କର୍ମ—5. The act or process of purifying metals for medicinal purposes. ୬ । ସିଦ୍ଧି ଲାଭ—6. Fruition; fulfilment. ୭ । କାର୍ଯ୍ୟ ସାଧନାର୍ଥ ନିଯୁକ୍ତ ଉପାୟ—7. Appliance; expedient; means employed to accomplish a work. ୮ । ହେତୁ; କାରଣ—8. Reason; cause. ୯ । ସମସ୍ୟା ସମାଧାନ; ଗଣିତାଦିର ପ୍ରଶ୍ନ ସମାଧାନ—9. Solution of a problem. ୧୦ । ସାମଗ୍ରୀ; ଉପକରଣ—10. Materials. ୧୧ । ଉପାୟ (ମେଦିନୀ) 11. Resources; means. ୧୨ । ମାରଣ—12. Killing; slaughter. ୧୩ । ଅନ୍ତ୍ୟେଷ୍ଟିକ୍ରିୟା (ଅମର, ଭରତ)—13. Funeral rites; obsequies; disposal of a dead body. ୧୪ । ଅଗ୍ନିଦାନ; ଶବ ସତ୍କାର (ଅମର ଭରତ); ମୃତବ୍ୟକ୍ତିର ଶବ ଦାହ କ୍ରିୟା—14. Cremation; igniting or setting fire to a corpse. ୧୫ । ଗତି; ଗମନ (ଅମର; ଭରତ)—15. Going; movement. ୧୬ । ପଦାର୍ଥ; ଦ୍ରବ୍ୟ (ଅମର; ଭରତ)—16. Thing; article. ୧୭ । ସମ୍ପତ୍ତି; ଧନ (ଅମର, ଭରତ)—17. Riches; wealth. ୧୮ । ଅର୍ଥ ଦାପନ (ଅମର, ଭରତ)—18. Investment of money. ୧୯ । ବିନାଶନ-19. Destroying. ୨୦ । ମୃତ୍ତୋଲୀକରଣ (ମେଦିନୀ)-

[କଥା—ଘୋଡା, ହାତୀ, ରଥ, ଅସ୍ତ୍ର, ଶସ୍ତ୍ର, ଗୁଳିଗୋଳା]
20. The sinews of war. ୨୧ । ସୈନ୍ୟ (ମେଦିନୀ)—21. Army. ୨୨ । ବାହନ (ମେଦିନୀ)-22. Conveyance. ୨୩ । ଶିଶ୍ନ; ମେଢ୍ର (ମେଦିନୀ)-23. Penis; male organ. ୨୪ । ଉଧ (ଧରଣୀ) ପଶୁମାନଙ୍କ ସ୍ତନ ବା ପଣ୍ଡା—25. Udder. ୨୫ । ମୈତ୍ରୀ ( ଧରଣୀ )—25. Friendship. ୨୭ ସିଦ୍ଧୌଷଧ (ମେଦିନୀ)—27. Infallible or effective medicine. ୨୮ । ଅନୁବ୍ରଜ୍ୟା; ଅନୁଗମନ (ଅମର, ଭରତ)—28. Following. ୨୯। ତପସ୍ୟା—29. Penance; religious austerities. ୩୦ । ତପସ୍ୟା ଓ ଜପ ଓ ସଂଯମାଦିଦ୍ୱାରା ମନ୍ତ୍ର ସିଦ୍ଧ କରଣ—30. Act of exercising or practising a spiritual formula to bring it to fruition. ୩୧ । ଉପାସନା; ଆରାଧନା—31. Worshipping. ୩୨ । କାରିଗରର ଯନ୍ତ୍ର ଶସ୍ତ୍ରାଦି—32. Implements or instruments of an artisan. ୩୩ । ଦଣ୍ଡ ଦେବା—33. Punishing. ୩୪ । ପ୍ରମାଣ (ହ୍ଲ. ଶ)—34. Evidence. ୩୫ । ଋଣ ଆଦିର ଶୋଧନ (ହ୍ଲ. ଶ)—35. Liquidation of loan.
ଦେ. ବି—୧ । ବ୍ୟାୟାମ; କୁସ୍ତି; କସରତ୍—1. Physical exercise; athletics. ୨ । ପଡ଼ିଆ ବା ଜଙ୍ଗଲ ଜମିକୁ ଆବାଦ କରିବା—2. Reclamation of waste or jungle land. ୩ । ସନ୍ତୋଷ ବିଧାନ କର୍ମ—3. Act of pleasing or satisfying a person. ୪ । ପଶୁ ଆଦିଙ୍କୁ କାର୍ଯ୍ୟ କରିବା ପାଇଁ ତାଲିମ କରିବା—4. Training of animals etc. for work.

**ସାଧନ କରିବା**—ଦେ. କ୍ରି—୧ । ନିଷ୍ପନ୍ନ କରିବା—1. To accomplish. ୨ । ଫଳସିଦ୍ଧି ଘଟାଇବା—2. To bring about the fruition. ୩ । ମନ୍ତ୍ରସିଦ୍ଧି ପାଇଁ ଆରାଧନାଦି କରିବା—3. To perform suitable rites for bringing a mystic formula to its fruition. ୪ । (ସମସ୍ୟାକୁ) ସମାଧାନ କରିବା—4. To solve (a ridle or problem). ୫ । କୁସ୍ତି ବା ଦଣ୍ଡ ଇତ୍ୟାଦି କରିବା—5. To perform athletic feats or exercises. ୬ । ତାନ୍ତ୍ରିକସିଦ୍ଧି ଲାଭ କରିବା—6. To attain success in Tantric rites. ୭ । ଦଣ୍ଡ ଦେବା—7. To punish. ୮ । ଯନ୍ତ୍ରତ୍ କରିବା—8. To bring under control. ୯ । (ପତିତ ଜମିକୁ) ଆବାଦ କରିବା—9. To reclaim (waste land). ୧୦ । ଦୁଷ୍ଟ ଜୀବକୁ ବା ବ୍ୟକ୍ତିକୁ ଦଣ୍ଡାଦି ଦ୍ୱାରା ଅଧୀନ କରିବା; ମଣ କରିବା—10. To train or break a wicked beast.
Sādhana kariba
সাধন করা
साधन करना

**ସାଧନ କ୍ଷମ**—ସଂ. ବିଣ ( ୭ମୀ ତତ୍; ସାଧନ ବିଷୟରେ କ୍ଷମ )—ସାଧନ କରିବାକୁ ସମର୍ଥ—Able to accomplish
Sādhana kshama
(ସାଧନ କ୍ଷମା—ସ୍ତ୍ରୀ)

**ସାଧନନିଷ୍ଠ**—ସ ବିଣ. ପୁଂ (ବହୁବ୍ରୀହି; ସାଧନ+ନିଷ୍ଠା+ଅ)—ସାଧନ ବିଷୟରେ ଏକାଗ୍ର ଚିତ୍ତ—Bent on accomplishing anything.
Sādhananishṭha
(ସାଧନନିଷ୍ଠା—ସ୍ତ୍ରୀ)
(ସାଧନନିଷ୍ଠତା—ବି)

**ସାଧନ ନିଷ୍ଠା**—ସ ବି (୭ମୀ ତତ୍) ସାଧନ କରିବା ବିଷୟରେ ତତ୍ପରତା-Eagerness in accomplishing any thing. ସ ବିଣ. ସ୍ତ୍ରୀ (ସାଧନନିଷ୍ଠ+ସ୍ତ୍ରୀ. ଆ)—ସାଧନନିଷ୍ଠର ସ୍ତ୍ରୀଲିଙ୍ଗ—Feminine of Sādhananishṭha.
Sādhana nishṭhā

**ସାଧନ ଭଜନ**—ଦେ. ବି (ଏକାର୍ଥକ ସହଚର; ସ. ସାଧନ ଓ ଭଜନ) ଜପତପ; ପୂଜା ଆରାଧନା—Various acts of performing religious rites; worship and meditation.
Sādhana bhajana
সাধন ভজন
साधन भजन

**ସାଧନା**—ସ. ବି (ସାଧ୍ ଧାତୁ=ନିଷ୍ପାଦନ କରିବା+ଭାବ. ଅନ+ଆ) ୧ । ସାଧନ (ଦେଖ)—1. Sādhana(See) ୨ । ସିଦ୍ଧିଲାଭ ପାଇଁ କରିବା ଚେଷ୍ଟା ଓ ବହୁତ ପ୍ରକ୍ରିୟା—2. Expedients and means for accomplishing any act. ୩ । ସିଦ୍ଧି—3. Accomplishment. ଦେ. ବି—ତାଲିମ୍—Training.
Sādhanā

**ସାଧନୀ**—ସଂ. ବି—ସମାଧାନକାରୀ ( ପୁସ୍ତକାଦି )—(a book) In which problems have been solved.
Sādhanī

**ସାଧନୀୟ**—ସଂ. ବିଣ ( ସାଧ୍ ଧାତୁ+କର୍ମ. ଅନୀୟ )—୧ । ଯାହା ସମ୍ପାଦନ କରି ଯାଇପାରେ; ନିଷ୍ପାଦ୍ୟ—1. Practicable. ୨ । ସାଧନଯୋଗ୍ୟ-2. Capable of being accomplished. ୩ । ଆରାଧନୀୟ—3. Worshippable. ୪ । ସାଧିତ ହେବାର ଉପଯୁକ୍ତ—4 Fit to be accomplished.
Sādhanīya
(ସାଧନୀୟତା—ବି)

**ସାଧବ**—ଦେ. ବି (ସ. ସାଧୁ ଶବ୍ଦର ବହୁବଚନ ସାଧବଃ)—୧ । ସାଧୁ ବ୍ୟକ୍ତି—1. An upright man. ( ଉ—ଏଣୁ ସାଧବେ ନିତ୍ୟେ ଶୁଣି, ଅନନ୍ତପଣ ଗୁଣଭଣି—ଜଗନ୍ନାଥ ଭାଗବତ । ) ୨ । ପଣ୍ଡିତ ବ୍ୟକ୍ତି—2. Learned person. ( ଉ—ଯେବେ ହେ ସାଧବ ବଚନ ରସ, ଘନକେଶୀ ପୁଂସ ପ୍ରେମ ଅବେଶ—ଗୋଲକ ଇନ୍ଦୁରେଖା । ) ୩ । ସାଧୁତ, ମହାଜନ; ବଣିକ-3. A merchant.
Sādhaba
(ସାଧବାଣୀ—ସ୍ତ୍ରୀ)
সাধব
साधव
মহাজন
साहुकार

[ବି—ବାହାଣୀରେ ପ୍ରତ୍ୟେକ ରାଜ୍ୟରେ ରାଜା, ମନ୍ତ୍ରୀ, କୋଟୁଆଳ ଓ ସାଧବ ଏହିପରି ୪ ଜଣ ବ୍ୟକ୍ତିଙ୍କ ନାମୋଲ୍ଲେଖ ଥାଏ ଓ ସେମାନଙ୍କ ପୁଅମାନେ ପରସ୍ପର ସଙ୍ଗାତ କରିଥିବା ମଧ୍ୟ ବର୍ଣ୍ଣିତ ଥାଏ ।] ୪ । ନୌବଣିକ; ବୋଇତଧଳ—4. A merchant trading by ships. ୫ । ମୂଳଧନାଧ୍ୟକ୍ଷ; ସାହୁକାର—5. A capitalist. ୬ । ଲକ୍ଷପତି—6. A millionaire.

ସାଧବଘର ବୋହୂ—ଦେ. ବି—ଇନ୍ଦ୍ରଗୋପ; ଗାଈ ପୋକ; ମଖମଲ Sādhabaghara bohū ପୋକ—The Coccinella; মখমলীপোকা, সিন্দুরেপোকা the cochineal insect; बीरबहुटी Coccus Cacti. [ବି—ଏମାନେ ନାଲି ମଖମଲ ପରି କୋମଳ ଲୋହିତବର୍ଣ୍ଣ ଅବରଣବିଶିଷ୍ଟ, ଷଟ୍‌ପଦ ବିଶିଷ୍ଟ ପୋକ । ଏହାଙ୍କର ଦୁଇଟି ଶୁଣ୍ଢ ଅଛି । ଏମାନେ ସ୍ତ୍ରୀଜାତୀୟ ପୋକ । ଅର୍ଣ୍ଣିଷ ପୋକଙ୍କର ଦୁଇଟି ପକ୍ଷ ଅଛି ଓ ସେମାନେ ସ୍ତ୍ରୀପୋକଙ୍କଠାରୁ ଲମ୍ବା ଓ ସରୁ; ମୁଣ୍ଡଅଡ଼େ ଦୁଇଟି କଣ ଓ ପଛ ପାଖେ ୨ଟି ସରୁ କେଶ ତାହାର ଥାଏ । ବର୍ଷାଦିନେ ଏମାନେ ପଡ଼ିଆ ଭୂଇଁରେ ବୁଲୁଥାଆନ୍ତି । ଏମାନେ ନାଗଫେଣିଆ ଗଛରେ ବସା କରି ରହନ୍ତି । ସାଧବ ଘରର ସ୍ତ୍ରୀମାନେ ନାଲି ପାଟଲୁଗା ପିନ୍ଧିବାପରି ଏମାନେ ମଖମଲ ଅବରଣରେ ଆବୃତ ହୋଇ ଥିବାରୁ ଏମାନଙ୍କୁ ଏହି ନାମ ଦିଆଯାଇ ଅଛି ।] (ଉ—"ଶ୍ୟାମଳ ଦୁବାଦଳେ ଶୋଭିତ ମହୀ, ସାଧବବୋହୂ ତହିଁପରେ ଶୋଭଇ ଯେ—ବର୍ଷା. ମଧୁସୂଦନ ରାଓ ।) ୨ । ସାଧବ ବା ବଣିକ ବଂଶର କୂଳବଧୂ—2. The housewife of a Sādhaba's family.
( ସାଧବବୋହୂ—ଅନ୍ୟରୂପ )

ସାଧବାଣୀ—ଦେ. ବି. ସ୍ତ୍ରୀ—୧ । ସାଧବର ସ୍ତ୍ରୀ—1. A female of Sādhabāṇi the merchant class. ୨ । ସାଧବଘର ସାধুনী, সাধুয়ানী ବୋହୂ (ଦେଖ)—2. Sādhabaghara साहुकारनी bohū. (See)
সাধুর বউ बीर बहुटी সিন্দুরে পোকা

ସାଧବୀ—ଦେ. ବି. ସ୍ତ୍ରୀ (ସ. ସାଧ୍ୱୀ)—୧ । ସାଧ୍ୱୀ; ସତୀ ସ୍ତ୍ରୀ—1. A Sādhabi chaste woman. (ଉ—ଉତ ସାଧବୀ ପତିବ୍ରତା, সাধ্বী साधवी ମନ୍ତ୍ର ହୋଇବେ ଅନେକ ଭକ୍ତା । ଜଗନ୍ନାଥ. এয়োস্ত্রী सधवा ଭାଗବତ ।) ୨ । ଅବିଧବା ସ୍ତ୍ରୀ, ସଧବାସ୍ତ୍ରୀ—সতী साधवी 2. A woman whose husband is সতী साधवी alive. ୩ । ସ୍ତ୍ରୀଲୋକଙ୍କ ନାମ—3. A name given to females.

ସାଧୟିତବ୍ୟ—ସଂ. ବିଣ (ସାଧ ଧାତୁ + କର୍ମ ତବ୍ୟ)—ସାଧନୀୟ (ଦେଖ) Sādhayitabya Sādhanīya (See).

ସାଧୟିତା—ସଂ. ବିଣ. ପୁଂ ( ସାଧ ଧାତୁ + କର୍ତ୍ତି ତୃ; ୧ମା. ୧ବ )—Sādhayitā ସାଧକ; ସାଧନକାରୀ—Accomplishing. (ସାଧୟିତ୍ରୀ—ସ୍ତ୍ରୀ)

ସାଧର୍ମ୍ମ୍ୟ—ସଂ. ବି ( ସଧର୍ମ୍ମ + ଭାବ. ଯ )—୧ । ସାଦୃଶ୍ୟ—Sādharmmya 1. Similarity. ୨ । ଏକଧର୍ମିତ; ସଧର୍ମିତା—2. The state of having the same quality.

ସାଧା (ଇତ୍ୟାଦି)—ଦେଦେ. ବିଣ.—ଶାଧା ଇତ୍ୟାଦି (ଦେଖ) Sādhā (etc) Śādhā etc (See)

ସାଧା କପି—ଦେ. ବି ( କଚରିଆ )—ସରକାରୀ ଦଲିଲର ଯେଉଁ Sādhā kapi ନକଲରେ ମୋହର ମସ୍ତ ହୋଇ ନ ଥାଏ—সাদা কপি सादा कॉपी A plain copy of any document of a court, which is not certified to be a true copy; an uncertified copy of a public document.

ସାଧାରଣ—ସଂ. ବିଣ (ସ + ଆଧାରଣ = ମାନ, ଆଧାର; କିମ୍ବା ସ + Sādhāraṇa ଧାରଣା = ସଧାରଣା + ଅ)—୧ । ସମସ୍ତଙ୍କଠାରେ (ସାଧାରଣୀ—ସ୍ତ୍ରୀ) ବର୍ତ୍ତମାନ—1. Common to all. ୨ । ସାମାନ୍ୟ; ଯାହା ସର୍ବତ୍ର ବା ସବୁଦିନର ଦେଖାଯାଏ—2. Ordinary; general. ୩ । ଇଜମାଲି, ଯହିଁରେ ସମସ୍ତଙ୍କର ଅଧିକାର ଥାଏ—3. Joint; owned by all. ୪ । ବହୁଭୋଗ୍ୟ—4. Enjoyable by many. ୫ । ସଦୃଶ; ତୁଲ୍ୟ; ଏକବିଧ—5. Similar.
সাধারণতা, সাধারণত্ব, সাধারণ্য } ବି ୬ । ଅନେକ ସମ୍ବନ୍ଧୀୟ—6. Relating to many. ୭ । ପ୍ରକାଶ୍ୟ—7. Public; manifest. ୮ । ସାର୍ବଜନିକ—8. Universal. ୯ । ସରଳ; ସହଜ (ଦ୍ର. ଶ)—9. Easy. ବି—୧ । (ନ୍ୟାୟ ଦର୍ଶନ) ହେତ୍ୱାଭାସ ବିଶେଷ—1. Name of a kind of general indication. ୨ । ଭାବପ୍ରକାଶ ଅନୁସାରେ ଯେଉଁ ପ୍ରଦେଶରେ ବା ଅଞ୍ଚଳରେ ଜଙ୍ଗଲ, ଜଳ, ରୋଗ, ଶୀତ ଓ ଗ୍ରୀଷ୍ମର ଆଧିକ୍ୟ ହୋଇଥାଏ (ଦ୍ର. ଶ)—2. A country where jungle, water, sickness, cold and heat are extensive. ୩ । ଉପର୍ଯ୍ୟୁକ୍ତ ଦେଶର ଜଳ (ଦ୍ର. ଶ)—3. The water of the above country. ଦେ. ବି—ସାଧାରଣ ଜନ ସାଧାରଣ—The public. ବିଣ—୧ । ସାଧା; साधारण ନିଷ୍କପଟ—1. Frank; guileless. ୨ । ଗର୍ବଶୂନ୍ୟ—2. Prideless; having no pride.

ସାଧାରଣ ଗୁଣ—ସଂ. ବି—ଯେଉଁ ଗୁଣ ସବୁଠାରେ ଦେଖାଯାଏ—Sādhāraṇa guṇa General or common quality or attribute.

ସାଧାରଣତଃ—ଦେ. ଅ ( ସ. ସାଧାରଣ୍ୟ + ତସ୍ = ସାଧାରଣ୍ୟତଃ )—Sādhāraṇatah ୧ । ସଚରାଚରତଃ—1. Generally; সাধারণতঃ commonly. ୨ । ମୋଟାମୋଟି; ସ୍ଥୂଳତଃ—साधारणतः 2. Roughly. ୩ । ସବୁଠାରେ; ସର୍ବତ୍ର—3. Everywhere. ୪ । ସାମାନ୍ୟ ଭାବରେ—4. Ordinarily. ୫ । ବହୁ ସ୍ଥାନରେ ବା ସମୟରେ—

5. In many places or instances. [ଦ୍ର—ସାଧାରଣ ଶବ୍ଦ ବିଶେଷଣ ଥିବାରୁ ସେଥିରେ ତସ୍ ପ୍ରତ୍ୟୟ ସଂସ୍କୃତ ବ୍ୟାକରଣ ବିରୁଦ୍ଧ । ସାଧାରଣ ଶବ୍ଦରୁ ଉତ୍ପନ୍ନ ସାଧାରଣ୍ୟ ଶବ୍ଦ ପରେ ତସ୍ ପ୍ରତ୍ୟୟ ହେଲେ ସାଧାରଣ୍ୟତଃ ପଦ ହେବ; ସୁତରାଂ ମଧ୍ୟ ସେହିପରି ଗୋଟିଏ ଅବ୍ୟାକରଣିକ ବ୍ୟବହାର ଅଟେ ।]

**ସାଧାରଣ ତନ୍ତ୍ର**—ଦେ. ବି—ପ୍ରଜାମାନଙ୍କ ନିର୍ବାଚିତ ପ୍ରତିନିଧିଙ୍କ ଦ୍ୱାରା Sādhārana tantra ପରିଚାଳିତ ଶାସନ ତନ୍ତ୍ର—Democracy; republic. সাধারণ তন্ত্র साधारण तन्त्र

**ସାଧାରଣ ଦେଶ**—ସଂ. ବି—୧ । ଜାଙ୍ଗଲାନୂପଲକ୍ଷଣସମ୍ପନ୍ନ ସ୍ଥାନ—Sādhārana desa 1. Jungly and marshy country. ୨ । ସାଧାରଣ ୨ (ଦେଖ)—2. Sādhārana 2 (See)

**ସାଧାରଣ ଧର୍ମ**—ସଂ. ବି—୧ । ସାଧାରଣ ଗୁଣ (ଦେଖ) Sādharana dharma 1. Sādhārana guna (See) ୨ । ଚତୁର୍ବର୍ଣ୍ଣର ପ୍ରତିପାଳ୍ୟ ଧର୍ମ—2. Observances observable by the 4 castes of the Hindu society. ୩ । ସାର୍ବଜନୀନ ଧର୍ମ—3. Universal religion.

**ସାଧାରଣ ପଞ୍ଚାଏ(ୟ)ତ୍**—ଦେ. ବି—ଚଉକିଦାରୀ ଇଉନିଅନର ପ୍ରେସି-Sādharana panchāe(ya)t ଡେଣ୍ଟଙ୍କ ଛଡ଼ା ଅନ୍ୟ ମେମ୍ବର ଗଣ—The members of a Chawkidary Panchayet except the President. সাধারণ পঞ্চায়ত্ साधारण पंचायत

**ସାଧାରଣ ପଥ(ମାର୍ଗ)**—ସଂ. ବି—ସାଧାରଣଙ୍କ ବ୍ୟବହୃତ ରାସ୍ତା—Sādhārana patha (mārga) Public road; highway.

**ସାଧାରଣ ପୁସ୍ତକାଳୟ**—ଦେ. ବି—ଯେଉଁ ପୁସ୍ତକାଳୟରେ ସର୍ବ-Sādhārana pustakālaya ସାଧାରଣ ପୁସ୍ତକ ପାଠ କରିବା ପାଇଁ ଅଧିକାରୀ ଅଟନ୍ତି—Public library. সাধারণ পুস্তকালয় साधारण पुस्तकालय

**ସାଧାରଣ ସଭା**—ଦେ. ବି—ଯେଉଁ ସଭାରେ ଜନସାଧାରଣ ଯୋଗ Sādhārana sabhā ଦେଇ ପାରନ୍ତି—Public meeting. সাধারণ সভা साधारण सभा

**ସାଧାରଣ ସମ୍ପତ୍ତି**—ଦେ. ବି—ଯେଉଁ ସମ୍ପତ୍ତିରେ ସର୍ବସାଧାରଣଙ୍କର Sādhārana sampatti ଅଧିକାର ଅଛି—Public property. সাধারণ সংপত্তি साधारण संपत्ति

**ସାଧାରଣ ସ୍ତ୍ରୀ**—ସଂ. ବି (କର୍ମଧା, ସାଧାରଣୀ+ସ୍ତ୍ରୀ)—ପଣ୍ୟ ସ୍ତ୍ରୀ; ଗଣିକା; Sādhārana strī ବାରବନିତା (ହେମଚନ୍ଦ୍ର)—A public (ସାଧାରଣ ରମଣୀ, ସାଧାରଣ ବନିତା—ଅନ୍ୟରୂପ) woman; a prostitute.

**ସାଧାରଣ ହିତ**—ଦେ. ବି—ସର୍ବସାଧାରଣଙ୍କ ମଙ୍ଗଳ—Public weal; Sādhārana hita the benefit of all; public good. সাধারণ হিত साधारण हित

**ସାଧାରଣ ହିତକର**—ଦେ. ବିଣ—ସର୍ବସାଧାରଣଙ୍କ ମଙ୍ଗଳକର—Sādhārana hitakara Beneficial to the public. সাধারণ হিতকর साधारण हितकर

**ସାଧାରଣୀ**—ସଂ. ବିଣ—ସାଧାରଣର ସ୍ତ୍ରୀଲିଙ୍ଗ—The feminine of Sādhārani Sādhārana. ବି—୧ । କୁଞ୍ଚିକା (ହେମଚନ୍ଦ୍ର); ଚାବି—1. A key. ୨ । କାଇଞ୍ଚ; ଗୁଞ୍ଜାଫଳ—2. A red seed; Abrus Precatorius. ୩ । (ନାମ) ଅପ୍ସରାବିଶେଷ (ହ. ଶ)—3. Name of a heavenly nymph.

**ସାଧାରଣେତର**—ସଂ. ବିଣ (କର୍ମଧା, ସାଧାରଣ+ଇତର)—Sādhāranetara ଅସାଧାରଣ; ଅନନ୍ୟସାଧାରଣ—Extraordinary. [ଦ୍ର—ପଦ ନଗଣ ଶେଷରେ ଣ ରହିବ, ଉଦାହରଣ-ମଣି ପଣରୁ; ସାଧାରଣେତର ଗୁଣରୁ, କରକ ପାରିବେ ନାହିଁ ଭଣନା—କବିସୂର୍ଯ୍ୟ. ସଙ୍ଗୀତ । ]

**ସାଧାରଣ୍ୟ**—ସଂ. ବି (ସାଧାରଣ+ଭାବ. ଯ)—୧ । ସାଧାରଣ ହେବାର Sadharanya ଭାବ; ସାଧାରଣତା—1. State of being common or ordinary. ୨ । ସାମ୍ୟ—2. Equality. ୩ । କୁଞ୍ଚିକା (ହେମଚନ୍ଦ୍ର); ଚାବି—3. A key. ୪ । ଏକଦେଶୀୟ ଜନସାଧାରଣ ବା ଜାତି; ଜନସମୂହ—4. A community; a people. ୫ । ଯେଉଁ ଦୋଷ ବା ଗୁଣ ସମସ୍ତଙ୍କଠାରେ ଅଛି—5. Common quality (virtue or vice).

**ସାଧା ସିଧା(ଦା)**—ଦେ. ବିଣ—୧ । ସରଳ ଓ ନିଷ୍କପଟ; ସରଳମତି—Sādhā sidhā(dā) 1. Frank and guileless (person). ୨ । ଅନଳଙ୍କୃତ—2. Plain; unadorned. সাদাসিদা(দে) सादासिधा

**ସାଧିକା**—ସଂ. ବିଣ. ସ୍ତ୍ରୀ (ସାଧକ+ସ୍ତ୍ରୀ. ଆ; ବିକଳ୍ପେ ସାଧକା)—Sādhikā ୧ । ସାଧକର ସ୍ତ୍ରୀଲିଙ୍ଗ—1. Feminine of Sādhaka. ବି—୧। ସୁଷୁପ୍ତି; ଗାଢ଼ ନିଦ୍ରା (ହେମଚନ୍ଦ୍ର)-1. Slumber; deep sleep. ୨ । ଶାସନକର୍ତ୍ତ୍ରୀ—2. A female ruler; governess.

**ସାଧିକାର**—ସଂ. ବିଣ (ସ+ଅଧିକାର)—ଅଧିକାରଯୁକ୍ତ—Sādhikara Having authority.

**ସାଧିତ**—ସଂ. ବିଣ (ସାଧ୍ ଧାତୁ ଣିଚ୍+କର୍ମ ତ)—୧ । ନିଷ୍ପାଦିତ; Sādhita ସମ୍ପାଦିତ—1. Effected; accomlipshed. ୨ । ସମାହିତ—2. Solved. ୩ । ବିନାଶିତ—3. Destroyed. ୪ । ଦଣ୍ଡିତ—4. Punished. ୫ । ପ୍ରମାଣଦ୍ୱାରା ନିର୍ଣ୍ଣୀତ—5. Proved. ୬ । ଶୋଧିତ—6. Rectified. ୭ । ଦାପିତ—7. Bestowed; invested. ୮ । ଶୋଧିତ (ହ. ଶ)—8. Purified. ୯ । ପରିଶୋଧିତ (ଋଣାଦି) (ହ. ଶ)—9. Liquidated (loan)

ସାଧିତାର୍ଥ—ସଂ. ବଣ. ପୁଂ (ବହୁବ୍ରୀହି; ସାଧିତ ହୋଇଅଛି ଅର୍ଥ ଯାହାର)
Sādbitārtha —ଯାହାର ଉଦ୍ଦେଶ୍ୟ ସିଦ୍ଧ ହୋଇଅଛି—
(ସାଧିତାର୍ଥା—ସ୍ତ୍ରୀ) One who has his aim or object accomplished.

ସାଧିବା—ଦେ. କ୍ରି ( ସଂ. ସାଧ୍ ଧାତୁ )—୧ । ସାଧନ କରିବା (ଦେଖ)
Sādhibā 1. Sādhana kariba ( See ) [ ଉ—ଇଚ୍ଛା
ସାଧା ଯେବେ ସୁଖଭୋଗ ଗୋ । ଅଳସ୍ୟ ଦଳାସେ ସଦାଯୋଗ
ସାଧନ କରନା, ସାଧନା କର ସାଧ ସଦା କର୍ମଯୋଗ ଗୋ—ବାଳ-
(ସାଧା[ଧେ]ଇବା—ଣିଜନ୍ତରୂପ) କୃଷ୍ଣ. ଫୁଲ ବଉଳବେଣୀ ।] ୨ । ବହୁ ଲୋକଙ୍କଠାରୁ ଚନ୍ଦା ଭେଦା ଅର୍ଥ ଅଦାୟ କରିବା—2. To collect subscription from many persons. ୩ । ଲୋକଙ୍କଠାରୁ ଧନ ଅଦାୟ କରିବା—3. To collect money. ( ଯଥା—ଭେଟାଖଞ୍ଜା ସାଧିବା । ) ୪ । ପୂର୍ବର ବୈର ଶୋଧନ କରିବା—4. To be avenged [ ଉ—ସାଧିବାକୁ ମନ ଥିଲେହେଁ ପ୍ରାଣକୁ ବାଧିବା ଯାଏ କି କଥା—କବିସୂର୍ଯ୍ୟ. ସଙ୍ଗୀତ] ୫ । ଅନୁନୟ ବିନୟ କରିବା—5. To make solicitations; to make humble prayers. ୬ । ମନ୍ତ୍ର ଓ ଉପାସନାଦ୍ୱାରା ଦେବଦେବୀ ଆଦିଙ୍କୁ ବରପ୍ରଦ କରାଇବା—6. To obtain boons from Deities and spirits by the performance of esoteric rites. (ଉ—ସାଧିଅଛି ଏ ବ ସବୁଙ୍କ ଦେବୀଙ୍କ ଏହାକୁ ପାରିବ କେ କଷ୍ଟ—କବିସୂର୍ଯ୍ୟ ରତ୍ନାକର ଚମ୍ପୂ ସଙ୍ଗୀତ । ) ୭ । ବଶୀଭୂତ କରିବା—7. To bring under control. (ଉ—କେ ଶାଗ ଫଳ ମୂଳ ଖାଉଛନ୍ତି, ମନକୁ ନାନାପ୍ରକାର ସାଧନ୍ତି—ପ୍ରାଚୀ ପରିବେଶୀତା ।) ୮ । ସାଧିକରିବା; ପଡ଼ିଆ ଜମିକୁ କୃଷି ଆଦି ଦ୍ୱାରା ଚଷାବାଯୋଗ୍ୟ କରିବା—8. To reclaim waste land and bring it under cultivation. ୯ । (ପ୍ରାଚୀନ)—ଶାସନ କରିବା ( ମାଦଳା ପାଞ୍ଜି )—9. To govern; to rule. ( ଉ—ଇନ୍ଦ୍ର ଅସନେ ବସି ଭୋଗେ ତ୍ରିଲୋକ ସାଧିଲକ ବଶେ—ଜଗନ୍ନାଥ ଭାଗବତ । ) ୧୦ । ଅତ୍ୟାଚାର କରିବା—10. To oppress. ୧୧ । ( ପରର ଅନିଷ୍ଟ, ମନ୍ଦ, ଅମଙ୍ଗଳ) କରିବା—11. To do; to commit (harm or evil to another). (ଉ-ଘନ ଚନ୍ଦ ଦନ୍ଦ ନାହିଁ ଅନିଷ୍ଟ ସାଧିବା ନାହିଁ—ବାଳକୃଷ୍ଣ. ଉଜ୍ଜ୍ୱଳଖଡ଼ ଇତ୍ୟାଦି) ୧୨ । ଗଣିତର ସମସ୍ୟାର ସମାଧାନ କରିବା—12. To solve a mathematical problem. ୧୩ । ମଣ କରିବା—13. To train or break (an animal). ( ଯଥା—ଭୂ ଏ ବାମୁଣ୍ଡକୁ କଡୁଭ ସାଧିଲଣି, ସେ ଅଉ ଯୁଧୁରୁବ ନାହିଁ । ) ୧୪ । ସିଦ୍ଧିଲାଭ କରିବା—14. To attain success. ( ଉ—ଚେଷ୍ଟାରେ ଚଢ଼ି ସାଧିଲି ମନୋରଥ—କୃଷ୍ଣସିଂହ ମହାଭାରତ ସଭା । ) ୧୫ । ଜିଣିବା—15. To conquer. (ଉ—ବନ୍ଧୁ ଯୋଧୀ-ଦଳରେ ପାରିବ ଦେ ସାଧି-ଭଙ୍ଗ ବୈଦେହୀଶ ବିଳାସ ।) ୧୬ । (ଜ୍ୟୋତିଷ) ଗଣନାଦ କରି ଫଳାଫଳ ବାହାର କରିବା—16. ( astrology ) To determine the result by calculation. ( ଯଥା—ଜାତକ ସାଧିବା ।)

ସାଧିମା—ସଂ. ବ ( ସାଧୁ+ଭାବ ଇମନ୍; ସାଧିମନ୍ ଶବ୍ଦ ୧ମା. Sādhimā ୧ବ )—ସାଧୁତା—Honesty; uprightness.

ସାଧିଷ୍ଠ—ସଂ. ବଣ (ସାଧୁ+ଅତ୍ୟର୍ଥେ. ଇଷ୍ଠ)—୧ । ଅତ୍ୟନ୍ତ ସାଧୁ—
Sādhishtha 1. Very honest. ୨ । ଅତି ନ୍ୟାଯ୍ୟ-
2. Very legitimate or proper. ୩ । ଯୋଗ୍ୟ;
ଉପଯୁକ୍ତ—3. Fit. ୪ । କଠିନ—4. Hard.
୫ । ( ବାଢ଼+ଭାବ. ଇଷ୍ଠ)—ଅତି; ଭୃଶ; ଅତ୍ୟନ୍ତ—
5. Excessive.

ସାଧିଷ୍ଠାନ—ସଂ. ବ ( ସ+ଅଧିଷ୍ଠାନ )—(ତନ୍ତ୍ର) ଦେହମଧ୍ୟସ୍ଥ କଳ୍ପିତ
Sādhisṭhāna ୬ ଗୋଟି ଚକ୍ର ମଧ୍ୟରୁ ଦ୍ୱିତୀୟ ଚକ୍ର;
( ସାଧିଷ୍ଠାନ ଚକ୍ର—ଅନ୍ୟରୂପ ) ଲିଙ୍ଗ ଚକ୍ର—The 2nd of the 6 spirals ( chakras ) said to exist inside the human body.

ସାଧି—ପ୍ରାଦେ (ଛତିଶ ଗଡ଼) ବ—(ହୁଲ ହି. ସାଦି)—ବିବାହ—
Sādhi Marriage.

ସାଧୀୟାନ୍—ସଂ. ବଣ. ପୁଂ ( ସାଧୀୟସ୍ ଶବ୍ଦ ୧ମା. ୧ବ; ସାଧୁ+
Sādhiyān ଅତିଶୟାର୍ଥେ. ଈୟସ୍ )—ସାଧିଷ୍ଠ (ଦେଖ)—
(ସାଧୀୟସୀ—ସ୍ତ୍ରୀ) Sādhistha (See)

ସାଧୁ—ସ. ବଣ (ସାଧ୍. ଧାତୁ+କର୍ତ୍ତରି. ଉ)—୧ । ସୁଶୀଳ; ସଚ୍ଚରିତ୍ର;
Sādhu ସଦାଶୟ—1. Virtuous; good. ୨ । ଧର୍ମଶୀଳ;
(ସାଧ୍ୱୀ—ସ୍ତ୍ରୀ) ଧାର୍ମିକ—2. Pious; religious; god-fearing. ୩ । କପଟହୀନ—3. Honest. ୪ । ମହତ୍; ମହାଶୟ—4. Noble; magnanimous. ୫ । ସୁନ୍ଦର; ସୁନ୍ଦର—5. Graceful; beautiful. ୬ । କୁଳୀନ; ସଦ୍‌ବଂଶଜାତ—6. Of high birth. ୭ । ସମର୍ଥ—7. Able. ୮ । ନିପୁଣ—8. Skilful. ୯ । ହିତକର—9. Beneficial. ୧୦ । ଉଚିତ—10. Proper. ୧୧ । ଉତ୍ତମ—11. Good. ୧୨ । ପ୍ରଶଂସନୀୟ (ହ୍ରି. ଷ)—12. Praiseworthy. ୧୩ । ଯୋଗ୍ୟ; ଉପଯୁକ୍ତ—13. Fit; capable. ବ—୧ । ମୁନି—1. Sage; saint. ୨ । ମହାପୁରୁଷ—2. A great man. ୩ । କାବୁଲିବାଳ; ମହାଜନ—3. Money-lender; usurer. ୪ । ବଣିକ; ମହାଜନ—4. A

merchant. ୫ । ଦେବଭକ୍ତ—5. A devotee. ୬ । ଶାକ୍ୟ ମୁନି; ବୁଦ୍ଧ—6. The Buddha. ୭ । ଜନ; ବୌଦ୍ଧ ଯତି, ଜୈନ ଯତି—7. A Buddhist or Jaina monk. ୮ । ସଦାଚାରୀ ଓ ସଦ୍‌ବ୍ୟକ୍ତି—8. A good person. [ଦ୍ର—ଶାସ୍ତ୍ର ଓ ପୁରାଣାଦି ( ଯଥା—ପଦ୍ମପୁରାଣ ଉତ୍ତର ଖଣ୍ଡ, ଗରୁଡ଼ ପୁରାଣ, କଳ୍କି ପୁରାଣ, କଳ୍କିପୁରାଣ, ବିଷ୍ଣୁପୁରାଣ)ରେ ସାଧୁ ବ୍ୟକ୍ତିଙ୍କ ବର୍ଣ୍ଣନା ଅଛି । ଯେଉଁ ବ୍ୟକ୍ତି କାୟମନୋବାକ୍ୟରେ ବିଷ୍ଣୁଭକ୍ତ, ଜିତେନ୍ଦ୍ରିୟ, ସଦାସନ୍ତୁଷ୍ଟ, ସମଚିତ୍ତ, କର୍ମୋଦ୍ୟ, ସଦୟ, ଶାନ୍ତ, ଦମ୍ଭ ଓ ଅହଙ୍କାରବର୍ଜିତ, କାମ କ୍ରୋଧ ଲୋଭ ମୋହାଦିରହିତ ସନ୍ତୁଷ୍ଟ, ସର୍ବଜ୍ଞ ସମଦର୍ଶୀ, ସତ୍ୟବାଦୀ, ପରଦ୍ରୋହକାରୀ, ପ୍ରିୟବାଦୀ, ଜିତେନ୍ଦ୍ରିୟ, ବ୍ରହ୍ମଚର୍ଯ୍ୟାବଲମ୍ବୀ, ପରୋପକାରୀ, ଶୁଦ୍ଧାଚାରୀ, ତାଙ୍କୁ ସାଧୁ ବୋଲଯାଏ ।] ୯ । ଯେଉଁ ବ୍ୟକ୍ତି ମନ୍ତ୍ର, ତନ୍ତ୍ରାଦି ସାଧନରେ ସିଦ୍ଧ ହୋଇଅଛନ୍ତି (ହ୍ର. ଗ)—9. A person who has succeeded in his spiritual exercise. ୧୦ । ଦମନକ; ଦଅଣା ଗୁଳ୍ମ (ହ୍ର. ଶ) (ଦେଖ)—10. Damanaka. (see). ୧୧ । ବରୁଣ ବୃକ୍ଷ (ହ୍ର. ଶ) (ଦେଖ)—11. Baruṇa tree. ( See ) ଅ—ସାଧୁ ସାଧୁ ( ଦେଖ )—Sādhu sādhu. (See) ( ଭ—ସାଧୁ ଶବଦ ଶୁନ୍ୟେ ସ୍ଫୁରେ, ପୁଷ୍ପ ବରଷେ କରନ୍ତରେ । ଜଗନ୍ନାଥ, ଭାଗବତ । ) ଦେ. ବ—୧ । ବାବାଜୀ;

ସାଧୁ
ସାଧୁ
ବୈଷ୍ଣବ—1. A religious recluse. [ ଦ୍ର—ବୈଷ୍ଣବମାନଙ୍କ ସଙ୍ଖ୍ୟାକୁ ଏତେ ଜଣ ସାଧୁ ବୋଲି ନ କହି ଏତେ ମୂର୍ତ୍ତି ସାଧୁ ବୋଲି ଲୋକେ କହନ୍ତି । ] ୨ । ପୁରୁଷ ଲୋକଙ୍କୁ ଦିଆଯିବା ନାମ—2. A name given to males.

ସାଧୁକ—ସଂ. ବ—୧ । କଦମ୍ବ ଗଛ (ହ୍ର. ଶ)—1. Neuclea Sādhuka Cadamba; ୨ । ବରୁଣ ଗଛ ( ଦେଖ )—2. Baruṇa tree, (See).

ସାଧୁକାରୀ—ସଂ. ବିଣ. ତ୍ରି ( ସାଧୁକାରିନ୍; ୧ମା. ୧ବ )—ଉତ୍ତମ Sādhukāri କାର୍ଯ୍ୟକାରୀ—Performing good acts. ( ସାଧୁକାରିଣୀ—ସ୍ତ୍ରୀ)

ସାଧୁଜ—ସଂ. ବଣ. ତ୍ରି (ସାଧୁ+ଜନ୍. ଧାତୁ+କର୍ତ୍ତି. ଅ)—ଭଦ୍ର-Sādhuja ବଂଶୋଦ୍ଭବ; କୁଳୀନ—Of gentle or noble (ସାଧୁଜା—ସ୍ତ୍ରୀ) birth.

ସାଧୁ ଜନ—ସଂ. ବ—ଉଚ୍ଚିପ୍ରକୃତିର ବ୍ୟକ୍ତି—
Sādhu jana A saintly person.

ସାଧୁ ଜାତ—ସଂ. ବିଣ—୧ । ସୁନ୍ଦର (ହ୍ର. ଶ)—1. Beautiful. Sādhu jāta ୨ । ଉଜ୍ଜ୍ୱଳ (ହ୍ର. ଶ)—2. Bright.

ସାଧୁତ—ଗ୍ରା. ବ—(ସଂ. ସାଧୁ)—ସାଧବ; ମହାଜନ; ବଣିକ—Sādhuta সাধু, মহাজন साहुकार A merchant. (ପ୍ରାଚୀନ ବ. ସାଧବ) [ଦ୍ର—ସାଧୁତ ମହତଘରେ ଜନ୍ମ ହେଉ ଥାନ୍ତି । ଦାଂଗୀ—ଶାସ୍ତ୍ରୁଦ୍ଧି ଗୀତା ]

ସାଧୁତ (ତ୍ୱ)—ସଂ. ବ—(ସାଧୁ+ଭାବ. ତା; ତ୍ୱ)—୧ । ଧାର୍ମିକତା—Sādhutā(twa) 1. Piety. ୨ । ଭଦ୍ରତା; ସୌଜନ୍ୟ; ଶିଷ୍ଟାଚାର—2. Gentlemanliness; courteousness. ୩ । ନ୍ୟାୟପରାୟଣତା—3. Righteousness. ୪ । ସଦାଚରଣ; ସଦ୍‌ବ୍ୟବହାର—4. Good conduct. ୫ । ଉତ୍ତମତା—5. Goodness.

ସାଧୁ ଧର୍ମ—ସଂ. ବ—ଜୈନମାନଙ୍କ ମତରେ ସାଧୁମାନଙ୍କ ଆଚରଣ—Sādhu dharma Conduct of a Jaina saint. [ ଦ୍ର—ଏହା ୧୦ ପ୍ରକାର । ଯଥା—କ୍ଷାନ୍ତି, ମାର୍ଦ୍ଦବ, ଆର୍ଜ୍ଜବ, ମୁକ୍ତି, ତପ, ସଂଯମ, ସତ୍ୟ, ଶୌଚ, ଅକିଂଚନ ଓ ବ୍ରହ୍ମ (ହ୍ର. ଶ) ]

ସାଧୁ ଧୀ(ବୁଦ୍ଧି)—ସଂ. ବିଣ. ତ୍ରି. ଓ ସ୍ତ୍ରୀ (ବହୁବ୍ରୀହି, ସାଧୁ+ଧୀ,ବୁଦ୍ଧି)—Sādhu dhī(buddhi) ୧ । ସୁବୁଦ୍ଧିବିଶିଷ୍ଟ ( ବ୍ୟକ୍ତି )—1. High-minded; noble-minded. ୨ । (ସ୍ତ୍ରୀ) ଶ୍ୱଶ୍ରୂ; ଶାଶୂ ( ଜ୍ୱାଇଁବାଲା )—2. Mother-in-law.

ସାଧୁ ପଙ୍ଗତ—ଦେ. ବ ( ସ. ସାଧୁ ଓ ପଙ୍‌କ୍ତି )—ସାଧୁ ବା ବୈଷ୍ଣବ-Sādhu paṅgata ମାନଙ୍କ ପଙ୍‌କ୍ତି ଭୋଜନ—A dining the assembled Sādhus.
সাধুদের পঙ্গত
साधूओंका पंगत

ସାଧୁ ପୁରୁଷ—ସ. ବ—ସାଧୁ ଜନ ( ଦେଖ )
Sādhu purusha Sādhu jana ( See )

ସାଧୁ ପୁଷ୍ପ—ସଂ. ବ—୧ । ସ୍ଥଳପଦ୍ମ ( ଶତମାଳା ) ( ଦେଖ )—Sādhu pushpa Sthaḷapadma ( See ) ୨ । ଉତ୍ତମ ପୁଷ୍ପ—2. A good or beautiful flower.

ସାଧୁ ପ୍ରକୃତି—ସଂ. ବିଣ. ତ୍ରି ( ବହୁବ୍ରୀହି )—ସଦ୍‌ସ୍ୱଭାବବିଶିଷ୍ଟ—Sādhu prakṛuti Saintly. ସଂ. ବ (କର୍ମଧା)—ସୁସ୍ୱଭାବ—( ସାଧୁ ପ୍ରକୃତିକ=ଅନ୍ୟ ବିଣ ରୂପ ) Good nature.

ସାଧୁ ପ୍ରୟୋଗ—ସଂ. ବ ( କର୍ମଧା )—୧ । ଶିଷ୍ଟ ପ୍ରୟୋଗ ( ଦେଖ ) Sādhu prayoga Śishṭa prayoga ( See ) ୨ । ( ମ. ପ. ଲେ ) ଶିଷ୍ଟସମାଜାନୁମତ ଭାଷାର ପ୍ରୟୋଗ—2. Approved application, style or language approved by polished society.

ସାଧୁ ବାଦ—ସଂ. ବ ( ସାଧୁ+ବଦ୍ ଧାତୁ+ଭାବ. ଅ )—ସାଧୁ ! Sādhu bāda ସାଧୁ ! ଏହିପରି ବାକ୍ୟ; ପ୍ରଶଂସା; ଧନ୍ୟ ଧନ୍ୟ (କ୍ରିୟାବାଦ—ବ୍ୟବହୃତ) ପଦ; ଧନ୍ୟବାଦ—Praise; applause; eulogy.

ସାଧୁ ବାହ—ସଂ ବ. ତ୍ରି ( ସାଧୁ+ବହ ଧାତୁ+କର୍ତ୍ତି. ଅ )—ବଶୀଭୂତ Sādhu bāha ( ଦେମତଳ ); ସୁଶିକ୍ଷିତ ଓ ଶାନ୍ତ ଅଶ୍ୱ—1. A trained and meek horse. ୨ । ଉତ୍ତମ ବାହନ—2. A good conveyance.

ସାଧୁବାହୀ—ସଂ. ବ (ସାଧୁ+ବହ ଧାତୁ+କର୍ତ୍ତି. ଇନ୍; ୧ମା. ୧ବ)—Sādhubāhi ସୁଶିକ୍ଷିତ ଓ ବଶୀଭୂତ ଅଶ୍ୱ ଅମର )—A trained and gentle horse . ବିଣ—୧ । ଯେଉଁ

ଯଣ୍ତ ଉତ୍ତମରୂପେ ବହନ କରେ ( ଶବ୍ଦ ରତ୍ନାବଳୀ )—
1. ( a beast ) Carrying the rider in a good manner. ୨ । ( ସାଧୁ ବାହ+ଇନ୍; ସମା. ବେ ) ସୁନ୍ଦର ଘୋଡ଼ାବିଶିଷ୍ଟ—
2. Owning or having a good horse.

ସାଧୁ ବୃକ୍ଷ—ସଂ. ବି—୧ । ସୁନ୍ଦର ବୃକ୍ଷ—1. A good tree. ୨ ।
Sādhu bruksha ୨ । କଦମ୍ବତରୁ ( ଶବ୍ଦକୋଷ )—
2. Anthocephalus Cadambo ( a tree ).
୩ । ବରୁଣ ବୃକ୍ଷ ( ରାଜନିଘଣ୍ଟୁ )—
3. Cratæva Religiosa ( wild tree ).

ସାଧୁ ବୃତ୍ତ—ସଂ. ବିଣ. ପୁଂ ( ସାଧୁ+ବୃତ୍ତ=ଚରିତ୍ର; ବହୁବ୍ରୀହି )—
Sādhu brutta ସଚ୍ଚରିତ୍ର; ସତ୍‌ସ୍ୱଭାବ—
(ସାଧୁ ବୃତ୍ତା—ସ୍ତ୍ରୀ) Of good conduct.

ସାଧୁ ବୃତ୍ତି—ସଂ. ବି ( କର୍ମଧା )—୧ । ଉତ୍ତମ ଜୀବିକା—1. A good
Sādhu brutti profession. ୨ । ଉତ୍ତମ ଆଚରଣ—
2. Good conduct.

ସାଧୁ ବୈଷ୍ଣବ—ଦେ. ବି ( ସହରର ଶବ୍ଦ )—ସାଧୁ ସନ୍ଥ ( ଦେଖ )
Sādhu baishnaba Sādhu santha ( See)
সাধু বৈষ্ণব साधु वैष्णव ( ସାଧୁ ବୈଷମ—ଗ୍ରାମ୍ୟରୂପ )

ସାଧୁ ଭାଷା—ଦେ. ବି—୧ । ସଂସ୍କୃତଶବ୍ଦପ୍ରଧାନ କଥିତ ଭାଷା—
Sādhu bhāshā 1. Spoken language abounding
সাধু ভাষা साधु भाषा in Sanskrit words. ୨ । ଶିଷ୍ଟ (ଅପଭ୍ରଂଶ ଭାଷା—ବିପରୀତ) ଶିକ୍ଷିତସମାଜରେ ପ୍ରଚଳିତ ସଂସ୍କୃତମୂଳକ ଓ ଅପଭ୍ରଷ୍ଟ ହୋଇ ନ ଥିବା ଭାଷା—2. The vernacular language of the educated; the undefiled vernacular of the country, which is free from slang. ୩ । ଶୁଦ୍ଧ ଭାଷା; ଦୋଷଶୂନ୍ୟ ଭାଷା—3. Language free from any fault. ୪ । ଯେଉଁ ଭାଷା ଅଶ୍ଳୀଳ ନୁହେ—
4. Language which is not obscene.

ସାଧୁ ମଉଛ(ଚ୍ଛ)ବ—ଦେ. ବି—ଯେଉଁ ମହୋତ୍ସବରେ ବା ମେଳାରେ
Sādhu ma-uchha(chchha)ba ବହୁ ସାଧୁ ବା ବୈଷ୍ଣବ
সাধু মেলা साधु मेला ମିଳିତ ହୁଅନ୍ତି—A gathering or feast of Baishnabas.
( ସାଧୁ ମେଳା, ସାଧୁ ମଉଛ—ଅନ୍ୟରୂପ )

ସାଧୁ ଲକ୍ଷଣ—ସଂ. ବି ( ୬ଷ୍ଠୀ ତତ୍ )—ଯେଉଁ ଚିହ୍ନ ବା ଲକ୍ଷଣ-
Sādhu lakshana ମାନଙ୍କଦ୍ୱାରା ସାଧୁଜନ ଚିହ୍ନା ଯାଆନ୍ତି—
The marks or traits or characteristics distinguishing a saintly person from others. [ ଦ୍ର—ଶାସ୍ତ୍ର ପୁରାଣାଦିରେ ସାଧୁବ୍ୟକ୍ତି-ମାନଙ୍କର ଅନେକ ଲକ୍ଷଣ ବର୍ଣ୍ଣିତ ଅଛି; ସାଧୁ ଓ ସାଧୁ ଧର୍ମ ତଳେ ଟୀକା ଦେଖ । ]

ସାଧୁ ଶୀଳ—ସଂ. ବିଣ ( ବହୁବ୍ରୀହି; ସାଧୁ+ଶୀଳ—ସ୍ୱଭାବ )—ସଚ୍ଚରିତ୍ର;
Sādhu sīla ସତ୍‌ସ୍ୱଭାବବିଶିଷ୍ଟ—Of saintly character.
( ସାଧୁଶୀଳା—ସ୍ତ୍ରୀ )

ସାଧୁ ସଙ୍ଗ(ସହବାସ)—ସଂ. ବି ( ୬ଷ୍ଠୀ ତତ୍ )—ସାଧୁବ୍ୟକ୍ତିଙ୍କ ସହିତ
Sādhu sanga( sahabāsa ) ବସତି କରିବା—
Company of virtuous men; companionship of or association with saintly persons.

ସାଧୁ ସନ୍ଥ—ଦେ. ବି (ସହରର ଶବ୍ଦ; ସାଧୁ+ସନ୍ତ୍ ଶବ୍ଦର ସ ବହୁବଚନ,
Sādhu santha ସନ୍ତଃ)—ସାଧୁ ବୈଷ୍ଣବ; ବାବାଜୀ ବୈଷ୍ଣବ—
Anchorites and recluses.

ସାଧୁ ସମ୍ମତ—ସଂ. ବି ( ୩ୟା ତତ୍ )—ସଜ୍ଜନାନୁମୋଦିତ; ସାଧୁବ୍ୟକ୍ତି-
Sādhu sammata ମାନଙ୍କ ଅନୁମୋଦିତ—Approved by good or saintly persons.

ସାଧୁ ସାଧୁ !—ସଂ. ଅ ( ପ୍ରଶଂସା ବା ଅନୁମୋଦନାର୍ଥକ ଅବ୍ୟୟ )—
Sādhu sādhu ! ଧନ୍ୟ ଧନ୍ୟ ! ବାଃ ବାଃ !—(interjection)
Bravo ! well done ! [ ଉ—ଶ୍ରୀକୃଷ୍ଣ କାଣ୍ଡ ନିରକ୍ଷ ପାଣ୍ଡବ ସୈନ୍ୟ ସିନ୍ଧୁ । ଗାଇ କର ବୋଇଲେ ଶ୍ରୀକୃଷ୍ଣ ସାଧୁ ସାଧୁ—କୃଷ୍ଣସିଂହ. ମହାଭାରତ. ଶ୍ରୀକୃ । ]

ସାଧୁ ସେବା—ସଂ ବି—ସାଧୁବ୍ୟକ୍ତିଙ୍କ ପରିଚର୍ଯ୍ୟା—
Sādhu sebā Serving a saintly person.

ସାଧୃତ—ସଂ ବି (ସ=ସହିତ+ଅଧୃତ=ଧୃତ)—୧ । ମୟୂରସମୂହ
Sādhruta (ଜୟପୁର)—1 A flock of peacocks.
୨ । ପଣ୍ୟଶାଳୀ; ହାଟ [ ଜୟପୁର ]—2. Market.
୩ । ଅତପତ୍ର; ଛତା—(ଜୟପୁର)—3. Umbrella.

ସାଧ୍ୱର—ସଂ ବିଣ (ସ+ଅଧ୍ୱର)—ଯଜ୍ଞ ସହିତ—Accompanied;
Sādhwara with vedic sacrifice.

ସାଧ୍ୱସ—ସଂ ବି ( ସାଧୁ+ଅସ୍ ଧାତୁ=କ୍ଷେପଣକରିବା+କର୍ମ ଅ )—
Sādhwasa ୧ । ଭୟ; ତ୍ରାସ—1. Fear; alarm; fright; terror. ୨ । ଶଙ୍କା—2. Apprehension. ୩ । ସମ୍ଭ୍ରମ—3. Regard; awe. ୪ । ମନର ଆବେଗ; ବ୍ୟାକୁଳତା—4. Anxiety mental concern. ୫ । କିଂକର୍ତ୍ତବ୍ୟବିମୂଢ଼ତା—
5. Consternation; bewilderment.

ସାଧ୍ୱାଚାର—ସଂ ବି—୧ । ସାଧୁମାନଙ୍କ ଆଚରଣ—1. Conduct of
Sādhwāchāra saintly persons. ୨ । ଶିଷ୍ଟାଚାର
(ହି. ଶ)—2. Etiquette

ସାଧ୍ୱୀ—ସଂ ବିଣ. ସ୍ତ୍ରୀ (ସାଧୁ+ସ୍ତ୍ରୀ ଈ)—୧ । ସାଧୁଶୀଳା ( ସ୍ତ୍ରୀ )—
Sādhwī 1. Saintly (woman). ୨ । ପତିବ୍ରତା; ସତୀ
(ସାଧୁ—ପୁଂ) —2. Chaste. ୩ । ସଚ୍ଚରିତ୍ରା—
3. ( a woman ) Of good conduct.
ବି. ସ୍ତ୍ରୀ—୧ । ପତିବ୍ରତା ସ୍ତ୍ରୀ—1. Faithful wife;

a chaste woman. ୬। ପତିବ୍ରତା ସ୍ତ୍ରୀ—2. A woman devoted to her husband. [ଦ୍ର—ସାଧ୍ୱୀଙ୍କ ଲକ୍ଷଣ—ସ୍ୱାମୀ ଅର୍ଥ ହେଲେ ଯେ ଅର୍ଥ ହୁଅନ୍ତି, ତୁଷ୍ଟ ହେଲେ ମୁଦିତା ହୁଅନ୍ତି, ପ୍ରବାସୀ ହେଲେ ମଳିନା ଓ କୃଶା ହୁଅନ୍ତି, ମୃତ ହେଲେ ପତିଙ୍କ ସହଗମନ କରନ୍ତି ତାଙ୍କୁ ସାଧ୍ୱୀ ବୋଲିଯାଏ। ଦ୍ୱାଶିଷ ସ୍ମୃତିଶାସ୍ତ୍ର।] ସଂ ବି—୧। ଶୁକ୍ଳ ପାଷାଣ (ହି. ଶ)—1. A kind white stone. ୨। ମେଦା ନାମକ ଅଷ୍ଟବର୍ଗୀୟ ଔଷଧୀ (ହି. ଶ)—2. Name of Medā, a rare herb.

**ସାଧ୍ୟ**—ସଂ ବିଣ (ସାଧ୍ ଧାତୁ ଣିଚ ସାଧି ଧାତୁ+କର୍ମ ଯ)—୧। କର୍ତ୍ତବ୍ୟ
Sādhya —1. Accomplishable. ୨। ମନୁଷ୍ୟ ଯାହା ସମ୍ପାଦନ କରି ପାରେ—
(ସାଧ୍ୟା - ସ୍ତ୍ରୀ) 2. Practicable. ୩। ସାଧନାର୍ହ—
(ଅସାଧ୍ୟ—ବିପରୀତ) 3. Fit to be achieved.
(ସାଧ୍ୟତା—ବି)
୪। (ନ୍ୟାୟଶାସ୍ତ୍ର) ଯେଉଁ ପ୍ରତିଜ୍ଞା ସାଧନ ବା ପ୍ରମାଣ କରିବାକୁ ହେବ; ପ୍ରତିପାଦ୍ୟ—4. (logic) (a proposition) To be proved, solved, deduced, established or inferred from certain data. ୫। ସମାଧାନ ଯୋଗ୍ୟ—5. Soluble. ୬। (ବୈଦ୍ୟଶାସ୍ତ୍ର)—ଯେଉଁ ରୋଗ ଔଷଧ ବା ଚିକିତ୍ସାଦ୍ୱାରା ଉପଶାନ୍ତ କରି ଯାଇ ପାରେ; ପ୍ରତିକରଣୀୟ—6. Curable (disease). ୭। ସହଜ; ସରଳ (ହି. ଶ)—7. Easy. ବି—୧। ଦ୍ୱାଦଶ ପ୍ରକାର ଗଣଦେବତା—1 Name of a group of twelve Deities. [ଦ୍ର—ଏମାନଙ୍କର ନାମ ଯଥା—ମନଃ, ମନ୍ତା, ପ୍ରାଣ, ନର, ଅପାନ, ବୀର୍ଯ୍ୟବାନ୍, ବିନଭୂ, ନୟ, ଦଂଶ, ନାରାୟଣ, ବୃଷ ଓ ପ୍ରଭୁ; ଶାରଦୀୟ ନବରାତ୍ର ପୂଜାରେ ଏ ଗଣଦେବତାମାନଙ୍କର ପୂଜା କରାଯାଏ—ହି. ଶ] ୨। (ନ୍ୟାୟଶାସ୍ତ୍ର) ଅନୁମିତ ବିଷୟ—2 (logic) An inferred mater. [ଦ୍ର-ପର୍ବତରୁ ଧୂଆଁ ବାହାରୁଛି, ଅତଏବ ଅନୁମିତ ହେଉଛି ଯେ, ପର୍ବତରେ ଅଗ୍ନି ଅଛି। ଏଠାରେ ଧୂଆଁର ଦର୍ଶନରୁ ଅଗ୍ନିର ଅବସ୍ଥିତି ସାଧ୍ୟ ହେଲା।] ୩। ଯୋଗବିଶେଷ—3. Name of a class of spiritual communion. [ଦ୍ର—ଏହା ଜପ ହୋମଦ୍ୱାରା ସିଦ୍ଧ ହୁଏ।] ୪। ଦେବତା (ହି. ଶ)—4. Deity. ୫। (ଫଳିତ ଜ୍ୟୋତିଷ) ବିଷ୍କୁମ୍ଭ ଆଦି ୨୭ ଯୋଗ ମଧ୍ୟରୁ ଏକବିଂଶ ଯୋଗ—5. (astrology) The twentyfirst astrological conjunction. [ଦ୍ର—ଏ ଯୋଗ ବହୁତ ଶୁଭ। ଏ ଯୋଗରେ କାର୍ଯ୍ୟ ଅବଲମ୍ବ ହେଲେ ତାହା ଉତ୍ତମରୂପେ ସିଦ୍ଧ ହୁଏ। ଏ ଯୋଗରେ ଜାତ ଶିଶୁ ଅସାଧ୍ୟ ସାଧନ କରେ ଓ ବୀର, ଧୀର, ବୁଦ୍ଧିମାନ୍ ଓ ବିଜାତ ହୁଏ—ହି. ଶ।] ୬। ତନ୍ତ୍ର ମତରେ ଗୁରୁଙ୍କଠାରୁ ଗ୍ରହଣୀୟ ୪ ପ୍ରକାର ମନ୍ତ୍ର ମଧ୍ୟରେ ଏକ (ହି. ଶ)—6. One of the 4 kinds of Mantras with which a disciple is initiated by the
साध्य preceptor. ଦେ. ବିଣ—୧। (ଯେଉଁ ଜମି)
साधय ଅବାଦ କରାଯାଇ ପାରେ—1. Reclaimable (land) ୨। ଦଣ୍ଡାଦିଦ୍ୱାରା କରାୟତ୍ତ; ଶାସିତ—2. Brought under control; tamed. [ଦ୍ର—ମୁଁ ସାଧ୍ୟ ହୋଇଲେ ଉଅରଣରେ—କବିସୂର୍ଯ୍ୟ, ସଙ୍ଗୀତ।] ୩। ତାଲିମ ବା ମଣ କରି ଯାଇଥିବା (ପଶୁ ଆଦି)—3. Trained, broken (animal)
साध्य ବି—୧। ଶକ୍ତି, କ୍ଷମତା; ସାମର୍ଥ୍ୟ—1. Power; capa-
साधय city. (ଯଥା—ଅମ ଢଣ୍ଡୀ ସାଆନ୍ତାଣୀଙ୍କ ଆଗରେ ଗୃହକର୍ତ୍ତାଙ୍କର ଭୁଣ୍ଡ ପିଟାଇବାର କ ସାଧ୍ୟ ଅଛି।) ୨। ସାଧନ—2. Accomplishment. [ଦ୍ର—ଏ ଧର୍ମ ସାଧ୍ୟ ଥାଉ ଦୂରେ। ଯେ ପ୍ରାଣୀ ଶୁଣି ଶ୍ରଦ୍ଧା କରେ—ଜଗନ୍ନାଥ, ଭାଗବତ।]

**ସାଧ୍ୟ କରିବା**—ଦେ. କ୍ରି—୧। ଦଣ୍ଡାଦିଦ୍ୱାରା ଦୁଷ୍ଟ ବ୍ୟକ୍ତିକୁ ଜବତ
Sādhya karibā କରିବା—1. To bring a wicked
साध्य करना person under control. ୨। ଶାସନ ଦ୍ୱାରା
साधय करना ବଶରେ ଆଣିବା—2. To bring under control. ୩। ପତିତ ଜମିକୁ କୃଷି ଆଦି ଦ୍ୱାରା ଅବାଦ କରିବା—3. To reclaim waste land. ୪। ବ୍ୟାୟାମ ଆଦିରେ ସିଦ୍ଧିଲାଭ କରିବା—4. To succeed in practising athletic feats. ୫। ଘୋଡ଼ା ଆଦି ପଶୁଙ୍କୁ ମଣ କରିବା—5. To break a horse or beast; to train.

**ସାଧ୍ୟକ୍ରମେ**—ଗ୍ରା. କ୍ରି. ବିଣ—ସାଧ୍ୟମତ (ଦେଖ)—Sādhyamata
Sādhyakrame साध्यमत साधयक्रमसे (See)

**ସାଧ୍ୟତା(ତ୍ୱ)**—ସଂ ବି (ସାଧ୍ୟ+ଭାବ. ତା,ତ୍ୱ)—ସାଧନୀୟ ହେବାର ଅବସ୍ଥା
Sādhyatā(twa) —Practicability; the state of being capable of solution; feasibility.

**ସାଧ୍ୟତାବଚ୍ଛେଦ**—ସଂ. ବି (ନ୍ୟାୟଶାସ୍ତ୍ର)—ସାଧ୍ୟତାର ସ୍ଥିରୀକରଣ—
Sādhyatābachchheda (logic) Determination of the deduction or inference to be made from given propositions.

**ସାଧ୍ୟତାବଚ୍ଛେଦକ**—ସଂ. ବିଣ (ସାଧ୍ୟତା+ଅବଚ୍ଛେଦକ)—(ନ୍ୟାୟଶାସ୍ତ୍ର)
Sādhyatābachchhedaka ସାଧ୍ୟତାର ଅବଚ୍ଛେଦକ; ଅନୁମିତ ବିଧେୟତାବଚ୍ଛେଦକ—(logic) Determining the deduction to be made from propositions in a logical problems.

**ସାଧ୍ୟ ପକ୍ଷ**—ସଂ. ବି—୧। (ନ୍ୟାୟଶାସ୍ତ୍ର) ଯେଉଁ ବିଷୟ ମୀମାଂସା ବା ସାଧନ
Sādhya paksha ହେବା ପାଇଁ ଉପସ୍ଥାପିତ ହୋଇଥାଏ—

1. ( logic ) Matter at issue; the proposition to be arrived at; that matter whose existence is predicated in the subject; the proposition sought to be established. ୨ । ସାଧିତ ହେବା ଯୋଗ୍ୟ ଅବସ୍ଥା—2. The state of being accomplishable.

**ସାଧ୍ୟବସାନିକା**—ସଂ. ବି—ସାହିତ୍ୟ ଦର୍ପଣ ଅନୁସାରେ ଏକପ୍ରକାର Sādhyabasānikā ଲକ୍ଷଣା—A kind of Lakshaṇa in literary composition.

**ସାଧ୍ୟ ବହିର୍ଭୂତ**—ଦେ·ବିଣ—(ସଂ.ସାଧ୍ୟାବହିର୍ଭୂତ)-ସାଧ୍ୟାତିରିକ୍ତ(ଦେଖ) Sādhya bahirbhūta Sādhyātirikta ( See )

**ସାଧ୍ୟ ମତ(ତେ)**—ଦେ. କ୍ରି. ବିଣ—ଯଥାସାଧ୍ୟ; କ୍ଷମତାନୁଯାୟୀ— Sādhya mata(te) As far as practicable; as সাধ্যমত **यथासाध्य** much as one can do.

**ସାଧ୍ୟ ସାଧନ**—ସଂ.ବି—୧। (ନ୍ୟାୟ ଶାସ୍ତ୍ର) ସାଧ୍ୟ ଓ ସାଧନ—1. (logic) Sādhya sādhana The data and the inference or conclusion. ୨ । ( ନ୍ୟାୟ ) ସାଧ୍ୟ ବିଷୟର ସମାଧାନ—2. ( logic ) The solution of a problem; the demonstration of a theorem. [ ଦ୍ର—ନ୍ୟାୟ ଶାସ୍ତ୍ରରେ—ଯେଉଁ ପ୍ରତିଜ୍ଞା ପ୍ରମାଣ କରିବାକୁ ହେବ ତାହା 'ସାଧ୍ୟ' ଓ ଯାହାଦ୍ୱାରା ତାକୁ ପ୍ରମାଣରେ ଉପନୀତ ହେବାକୁ ହେବ ତାହା 'ସାଧନ' ବୋଲଯାଏ । ଯଥା—'ପର୍ବତୋ ବହ୍ନିମାନ୍ ଇତି ଧୂମାତ୍' ଅର୍ଥାତ୍ ପର୍ବତ ଉପରେ ଧୂଆଁ ଦେଖାଯିବାରୁ ପର୍ବତରେ ନିଆଁ ଅଛି ବୋଲି ଅନୁମାନ କରାଯାଏ । ଏ ସ୍ଥଳରେ 'ଧୂମ' ହେଲ ସାଧନ 'ପର୍ବତ ବହ୍ନିମାନ୍' ହେଲ 'ସାଧ୍ୟ' । ] ୩ । ଯାହା ସାଧନ ହେବାର ସମ୍ଭବ ତହିଁର ସାଧନ— 3. The doing or accomplishing of what is possible.

**ସାଧ୍ୟ ସାଧନା**—ଦେ· ବି—୧ । ( ଉଦ୍ଦେଶ୍ୟ ସିଦ୍ଧି ପାଇଁ ) ନାନାପ୍ରକାର Sādhya sādhanā ଅନୁନୟ ବିନୟ—1.Urgent suppliসাধ্য সাধনা cations; solicitations. ୨ । ତର୍କ ବିତର୍କ— **साध्यसाधना** 2. Argument; reasoning.

**ସାଧ୍ୟ ସିଦ୍ଧି ପାଦ**—ସଂ. ବି (ଧର୍ମ ଶାସ୍ତ୍ର, ହିନ୍ଦୁ ଆଇନ)—ବ୍ୟବହାରର ୪ର୍ଥ Sādhya siddhi pāda ପାଦ; ନ ସୂ ପାଦ ( ମିତାକ୍ଷର ); ଧର୍ମାଧିକରଣ ବା ଅଦାଲତରେ ପକ୍ଷମାନଙ୍କଦ୍ୱାରା ଘଟିତ ହେବା ୪ର୍ଥ କ୍ରମ—The 4th stage of the pleading in a litigation. [ ଦ୍ର—୧ମ ପାଦ ବା ଭୂଷାପାଦ=ପ୍ରତ୍ୟର୍ଥୀ ବା ପ୍ରତିବାଦୀର ସମ୍ମୁଖରେ ଲେଖନ । ୨ୟ ବା ଉତ୍ତରପାଦ=ଶ୍ରୁତାର୍ଥର ଉତ୍ତର ଲେଖନ । ୩ୟ ବା କ୍ରିୟାପାଦ=ଅର୍ଥୀର ସତ୍ୟ ଲେଖନ । ଚତୁର୍ଥ ବା ସାଧ୍ୟସିଦ୍ଧି ପାଦ=ପୂର୍ବୋକ୍ତ ପାଦମାନଙ୍କରେ ସ୍ଥିରିକରଣ । ]

**ସାଧ୍ୟ ହେବା**—ଦେ. କ୍ରି—୧ । ଅଧୀନ ବା ଆୟତ୍ତ ହେବା— Sādhya hebā 1. To be under control. সাধ্য হওয়া **साध्य होना** ୨ । ଦଣ୍ଡାଦ୍ୱାରା ବଶୀଭୂତ ହେବା—2. To be brought under control. (ଭୂ—ବେ ବୋଲଇ ଦାସ ଦାସୀ ହୋଇଥାଅ, ଅଜ ଯାଗ କୁଣ୍ଡରେ ସଙ୍ଗ ସାଧ୍ୟ ହୁଅ— କୃଷ୍ଣସିଂହ ମହାଭାରତ ଅଦ ।। ୩ । ତାଲିମ ହେବା; ମଣ୍ଡ ହେବା —3. To be trained.

**ସାଧ୍ୟାତିରିକ୍ତ**—ଦେ· ବିଣ (ସଂ ସାଧ୍ୟାତିରିକ୍ତ)—କ୍ଷମତାରୁ ଅତିରିକ୍ତ— Sādhyātirikta Beyond one's power or (ସାଧ୍ୟାତୀତ—ଅନ୍ୟରୂପ) capacity. সাধ্যাতিরিক্ত **साध्यातिरिक्त**

**ସାଧ୍ୟାନୁଯାୟୀ**—ଦେ· କ୍ରି· ବିଣ—ଯଥାସାଧ୍ୟ; ସାଧ୍ୟମତେ— Sādhyānujāyī As far as possible; to the (ସାଧ୍ୟାନୁସାରେ—ଅନ୍ୟରୂପ) best of one's capacity; সাধ্যানুযায়ী **यथासाध्य** to the utmost of one's power.

**ସାଧ୍ୟାୟତ୍ତ**—ଦେ· ବିଣ (ସଂ. ସାଧ୍ୟାୟତ୍ତ)—୧ । ଆୟତ୍ତାଧୀନ; କ୍ଷମତାର Sādhyāyatta ଅଧୀନ—1. Within the range সাধ্যায়ত্ত **साध्यायत्त** of one's power. controllable. ୨ । କାହାର କ୍ଷମତା ମଧ୍ୟକୁ ଆଗତ— 2. Brought under one's control.

**ସାଧ୍ୟାସାଧ୍ୟ**—ସଂ ବିଣ ( ଉପସ୍ଥିତ ସହିତର )—ସାଧ୍ୟ ଓ ଅସାଧ୍ୟ— Sādhyāsādhya ( matters ) Which are accomplishable and which are not so. আবাদী অনাবাদী **साध्यासाध्य** ଦେ, ବିଣ— ଆବାଦ ଯୋଗ୍ୟ ଓ ଆବାଦର ଅଯୋଗ୍ୟ—Culturable and unculturable (land)

**ସାଧ୍ୟାସାଧ୍ୟ ରକବା**—ଦେ. ବି—କୌଣସି ମହଲା ବା ସୀମା ମଧ୍ୟରେ Sādhyāsādhya rakabā ଥିବା ଆବାଦ ଯୋଗ୍ୟ ଓ আবাদী অনাবাদী রকবা **साध्यासाध्य रकबा** ଆବାଦର ଅଯୋଗ୍ୟ ଜମି—All lands within an area which are culturable and not so. [ଦ୍ର—ସାବକ ସନନ୍ଦ ଓ ସେବକାରମାନଙ୍କରେ ସୀମା· ବନ୍ଦିଷ୍ଟ ସମସ୍ତ ସାଧ୍ୟାସାଧ୍ୟ ରକବା ଗ୍ରହୀତାମାନଙ୍କୁ ଦଆଗଲା ବୋଲି ଲେଖା ଯାଇଥିବା ଦେଖାଯାଏ ।]

**ସାନଲୀ**—ପ୍ରାଦେ ( କଳାହାଣ୍ଡି ) ବି—ଦ୍ୱିତୀୟ ବିବାହିତା ସାନ୍‌ଭଉଣୀ San-lī ପତ୍ନୀ—One's younger or second wife.

**ସାନ**—ଦେ, ବିଣ (ସଂ· ସନ୍ନ=କ୍ଷୀଣ, ସାମାନ୍ୟ=ଅଳ୍ପ; ତୁଳ. ଦ୍ରାବିଡ଼ Sāna ଚେଣ୍ଣା)—୧ । ଛୋଟ; କ୍ଷୁଦ୍ର—1. Small; ছোট **छोट** little. [ବି—ଅର୍ଥ ବଡ଼ ଯେତ

ସାନ—ପ୍ରଚଳନ—ଯେଉଁ ଲୋକ ବେଶି ପରିମାଣରେ ଖାଦ୍ୟ ଖାଇ ପାରେ ନାହିଁ, ଅଥଚ ପକ୍ଷରେ ବେଶି ପରିମାଣରେ ଖାଦ୍ୟ ବଢାଏ ତା ପ୍ରତି ଏ ବାକ୍ୟ ପ୍ରୟୋଗ କରାଯାଏ। ଅର୍ଥାତ୍ ଅଶୀ ତୁଳନାରେ ସେଠିଁ ଶ୍ରେଷ୍ଠ। ] ୨। ଶିଶୁ; ଅଳ୍ପବୟସ୍କ—2. Young in age. ୩। ବୟସରେ କନିଷ୍ଠ—3. Younger in age. (ଯଥା—ସାନ ମରଇ ବଡ ଥାଇ, ଏହାର ନ୍ୟାୟ ନ ପାଇ—ଜଗନ୍ନାଥ. ଭାଗବତ।) ୪। କ୍ଷୁଦ୍ରତର—4. Smaller. ୫। ନୀଚ—5. Low. (ଯଥା—ନ ମଣ କାହାକୁ ସାନ ଗୋ! ତୁଚ୍ଛ ପଦ୍ମ ପାଶ ସାମାନ୍ୟ ହେଲେହେଁ, ଦେବ ଶିରେ ପାଏ ସ୍ଥାନ ଗୋ! ବାଲକୃଷ୍ଣ. ଫୁଲ କଉଳବେଣୀ।] ୬। ନୀଚତର—6. Lower. ୭। ନିକୃଷ୍ଟ—7. Inferior.

**ସାନ ଅଠ**—ଦେ. ବି—ତେମା ଖେଳ; ୫ ଗୋଟି କଉଡ଼ିରେ ଖେଳା Sāna aṭha ଯିବା ଏକ ପ୍ରକାର ଖେଳ—A kind of indoor game with cowries.

**ସାନ କଥା**—ଦେ. ବି—୧। କନିଷ୍ଠ ବ୍ୟକ୍ତିର କଥା—1. The Sāna kathā words from the mouth of a (ସାନକଥା—ଅନ୍ୟରୂପ) younger person. ୨। ନୀଚ ଛୋଟ କଥା ଲୋକର କଥା—2. The words from the ছোটীবাত mouth of a low person. ୩। କନିଷ୍ଠ ବା ନମ୍ରସ୍ଥ ବ୍ୟକ୍ତିର ଉପଦେଶ—3. The advice or counsel of a younger or lower person.

**ସାନକୁହା ମାନିବା**—ଦେ. କ୍ରି—କନିଷ୍ଠ ବା ନମ୍ରସ୍ଥ ବ୍ୟକ୍ତିର Sānakuhā mānibā ଉପଦେଶକୁ ଗ୍ରହଣ କରିବା—ছোটকথা মানা To follow the advice of one's छोटेकीबात मानना younger or inferior.

**ସାନ କେରେଣ୍ଡା**—ଦେ. ବି—ଶ୍ରେଷ୍ଠ ଗୁଳ୍ମ ବିଶେଷ—Sāna kerendā Caressa Spinarum (Haines).

**ସାନ କ୍ଷୀର(ରି) କୋଳି**—ଦେ. ବି (ବୈଦ୍ୟକ)—ଔଷଧ ଗୁଳ୍ମ ବିଶେଷ Sāna kshira(ri) koli (ଦ୍ରବ୍ୟଗୁଣ କଳ୍ପଦ୍ରୁମ)—ସ. ଖୀରୀ, ଦୁଗ୍ଧିକା, କ୍ଷୀରପର୍ଣ୍ଣୀ Name of a medicinal ক্ষবাই দুধী plant with edible plums ତେ. ପିଲ୍ଲପାଲ

**ସାନ ଖସୁ**—ଗ୍ରାଦେ (ବସ୍ତର) ବି—କୁଣ୍ଡିଆ—A petty skin-Sāna khasu disease consisting of small eruptions.

**ସାନ ଛତା**—ଦେ. ବି—ପୁରୀରେ ଜଗନ୍ନାଥଙ୍କ ସିଂହଦ୍ୱାର ନିକଟରେ Sāna chhatā ଅବସ୍ଥାନ କରୁଥିବା ଏକଦଳ ବାବାଙ୍କର (ସାନ ଛତା ଅଖଡ଼ା, ସାନ ଛତା ମଠ—ଅନ୍ୟରୂପ) ଅଖଡ଼ା—সান ছাতা A sect or group of mendicants resid-सान छाता ing near the Lion's gate of the Puri temple of Jagannātha. [ଦ୍ର—ଏମାନେ ପୂର୍ବେ ବଡ଼ଦାଣ୍ଡରେ ଛତା ଯୋଗ ତହିଁ ତଳେ ରହୁଥିଲେ, କିନ୍ତୁ ସରକାର ତାଙ୍କୁ ଦାଣ୍ଡରୁ ଉଠାଇ ଦେବାରୁ ଏମାନେ ସିଂହଦ୍ୱାର ନିକଟରେ ମଠ କରି ରହୁଅଛନ୍ତି। ଏହିସବୁ ମଧ୍ୟ ଅନ୍ୟ ଗୋଟିଏ ଅଖଡ଼ାକୁ ବଡ଼ଛତା ବୋଲଯାଏ।]

**ସାନ ଜା(ଯା)ଆ**—ଦେ. ବି. ସ୍ତ୍ରୀ (ସ୍ତ୍ରୀ ପକ୍ଷରେ)—ଦେବରଙ୍କ ସ୍ତ୍ରୀ—Sāna jā(jā)ā One's husbands's younger ছোটজা छोटीदयादनी brothers wife.

**ସାନ ଥାଳି**—ଗ୍ରାଦେ (ବସ୍ତର) ବି—ଛୋଟ ଥାଳ ବା ଥାଳିଆ—Sāna tāṭhi A small plate.

**ସାନନ୍ଦ**—ସ. ବଣ. ପୁଂ (ବହୁବ୍ରୀହି, ସ+ଆନନ୍ଦ)—ସହର୍ଷ; ଆହ୍ଲାଦିତ-Sānanda Glad; joyous; delighted. (ସାନନ୍ଦା—ସ୍ତ୍ରୀ) ବି—୧। ଷୋଡ଼ଶ ଧ୍ରୁବକାନ୍ତର୍ଗତ ଧ୍ରୁବକ-ବିଶେଷ (ସଙ୍ଗୀତ ଦାମୋଦର)—1. One of the 16 classes of refrains in Hindu music. [ଦ୍ର—ଏଥିରେ ୧୮ଟି ଅକ୍ଷର ଓ ଏଥିର ବ୍ୟବହାର ପ୍ରାୟ ଶୃଙ୍ଗାରରସ ବର୍ଣ୍ଣି କରେ ଧ୍ରୁବ—ସୂ. ଶ)।] ୨। ବୃକ୍ଷ-କରଞ୍ଜ—(ରାଜନିଘଣ୍ଟୁ)—2. A sort of tree. ଦେ. ବି—ଲୋକଙ୍କୁ ଦିଆଯିବା ନାମ—A name given to males.

**ସାନନ୍ଦରେ**—ଦେ. କ୍ରି. ବଣ (ସ. ସାନନ୍ଦଂ)—ଆନନ୍ଦ ସହକାରେ—Sānandare Gladly; joyfully. সানন্দে सानन्दमें

**ସାନନ୍ଦୂର**—ସ. ବି—ବହୁବିଶ୍ୱର ସମୁଦ୍ରର ଉତ୍ତର ଓ ମଳୟ Sānandwara ଗିରିର ଦକ୍ଷିଣସ୍ଥ ତୀର୍ଥବିଶେଷ—Name of a place of Hindi pilgrimage in Southern India. ଦ୍ର—ଏଠାରେ ସୁନ୍ଦର ନାମକ ଗୋଟିଏ ପୁଷ୍କରିଣୀ ଅଛି।]

**ସାନ ପାସ୍**—ଦେ, ବି (ଅଧୁନା ସ୍କୁଲ ପିଲାମାନଙ୍କ ଦ୍ୱାରା ବ୍ୟବହୃତ)—Sāna pās ଏକ; ପରିସ୍ରା କରିବାକୁ ଯିବାପାଇଁ ଗୁରୁଙ୍କ ଅନୁମତି-ছোট পাস্ पांच मिनिट Permission of the teacher to a student to go out to pass urine.

**ସାନ ପିଲା**—ଦେ. ବି—୧। (ପୁଂ ଓ ସ୍ତ୍ରୀ) ଶିଶୁ ବାଳକ ବାଳିକା—Sana pilā 1. Young ones; children. ছোট ছেলে, মেয়ে ୨। (ପୁଂ) ସାନ ପୁଅ—2. Youngest son, छोटा लड़का, लड़की

**ସାନ ପୁଅ**—ଦେ. ବି. ପୁଂ—କନିଷ୍ଠ ପୁତ୍ର—Youngest son. Sāna pua [ଦ୍ର—ଏହିପରି ସାନ ଝିଅ, ସାନ ছোট ছেলে छोटा लड़का लड़की ଭାଇ, ସାନ ଭଉଣୀ, ସାନ ବୋହୂ, ସାନ ମାମୁଁ, ସାନ ମାଉସୀ ଇତ୍ୟାଦି ହୁଏ।]

**ସାନ ବାବୁ**—ଦେ ବି—୧। ଗୃହର କନିଷ୍ଠ ବାବୁ—1. The Sāna bābu youngest master in the family. ছোট বাবু छोटा बाबू ୨। ଅଫିସ୍‌ର ବଡ ବାବୁଙ୍କ

ଅଧସ୍ତନ ବାବୁ—2. The assistant or subordinate Indian officer in an office.

ସାନ ବାଳ—ଦେ. ବି—କ୍ଷୁଦ୍ର କେଶ—Small or short hairs.
Sāna bāla (ଉ—ଫଙ୍ଗୁଡ଼ ଲୋ ! ସାନ ବାଳ ତୋ, ଲମ୍ବବାଳ
ছোটচুল छोटा बाल ଦେ । ଶିଶୁଙ୍କ ସ୍ନାନ ଗୀତ ।)

ସାନ ବୁଆ—ପ୍ରାଦେ (ବାଲେଶ୍ୱର,ପାଟଣା) ବି—କାକା; ଚଳେଇ—
Sāna buā (ସାନ ମା—ସ୍ତ୍ରୀ) Paternal uncle.

ସାନ ବୋଲ—ଦେ. ବି—ସାନ କଥା (ଦେଖ)
Sāna bola Sāna kathā. (See)
ছোট কথা छोटि बात

ସାନ ଭଇଞ୍ଚ—ଦେ. ବି—କଣ୍ଟାଳିଆ ଗୁଳ୍ମ ବିଶେଷ—
Sāna bhaiñcha Flacourtia Ramontchi
বৌঁচ छोटि किङ्किणी (thorny bush)

ସାନ ଭାତ—ଦେ. ବି—୧ । ଖୁଦ ଭାତ—1. Particles of rice
Sāna bhāta cooked. ୨ । ଭାତ, ତୋରାଣୀ, ଖଟା
খুদভাত ଓ ଲୁଣ ଚକଟା ଯାଇ ତିଆରି ହୋଇଥିବା ଖାଦ୍ୟ—
खुदिका भात A kind of food prepared with cooked rice, gruel, sour and pungent articles kneaded together. [ ଢ଼—ଏହାକୁ ଶ୍ରେଷ୍ଠ ଲୋକମାନେ ତରକାରୀରୂପେ ବ୍ୟବହାର କରନ୍ତି ।]

ସାନ ମଝିଆଁ—ଦେ. ବିଣ—ଚାରି ଜଣଙ୍କ ମଧ୍ୟରୁ ତୃତୀୟ ଭାଇ (ଭାଇ
Sāna majhiāñ ଇତ୍ୟାଦି)—The 3rd of four (bro-
ছোট মেজ, সেজো छोटेसे बडा thers etc).
(ସାନ ମଝିଆଣୀ—ସ୍ତ୍ରୀ) (ବଡ଼ ମଝିଆଁ—ବିପରୀତ)

ସାନ ମୁହଁ—ଦେ. ବି—ଶ୍ରେଷ୍ଠ ଲୋକର ମୁହଁ—The mouth of a
Sāna muhañ low person. (ଉ—ସାନ ମୁହଁରୁ ବଡ଼
ছোট মুখ କଥା, ଶୁଣିଲେ ମନରେ ଦୁଏ ବଥା—ଢଗ ।)
छोटा मुहँ

ସାନ ଲଙ୍କା ଗବ—ପ୍ରାଦେ (ଗଡ଼ଜାତ) ବି—ବାଇଗବ ୨ ( ଦେଖ )
Sāna laṅkā gaba Bāigaba 2 ( See )

ସାନଲି—ପ୍ରାଦେ (ପାଟଣା) ବି—ସ୍ତ୍ରୀ—୧ । ଦ୍ୱିତୀୟ ବିବାହିତା ପତ୍ନୀ—
Sānali 1. One's second wife. ୨ । କନିଷ୍ଠା ପତ୍ନୀ—
(ସାନବାଈ—ଅନ୍ୟରୂପ) 2. One's younger wife.

ସାନ ସିନ୍ଦୁକ—ପ୍ରାଦେ. (ବସ୍ତର) ବି—କାଠର ଛୋଟ ବାକ୍ସ—
Sāna sinduka A wooden box.

ସାନ ସାନ—ଦେ. ବି ଓ ବିଣ ( ବହୁବଚନ )—ଛୋଟ ଛୋଟ ବସ୍ତୁ
Sāna sāna (ଲୋକ ବା ବସ୍ତୁ)—Many small (indivi-
ছোট ছোট duals or things). [ଉ—ବଡ଼ ବଡ଼ ଗଲେ
छोटा छोटा ପସର ପାଟି, ସାନ ସାନ ଥଇଲେ,ବେସର ବାଟି—ଢଗ ।]

ସାନସି—ସଂ. ବି—ସୁବର୍ଣ୍ଣ (ଶବ୍ଦ କୋଷ)—
Sānasi Gold.

ସାନ ହାତି—ପ୍ରାଦେ. (ଗଡ଼ଜାତ ବି)—ବନ୍ୟ ବୃକ୍ଷ ବିଶେଷ—
Sāna hāti A species of wild tree.

[ଦ୍ର—ଏହା ୧୦।୧୫ ହାତ ଉଚ୍ଚ ହୁଏ । ଏଥିରୁ ଅଙ୍ଗାର ହୁଏ, ବାଡ଼ ତିଆରି ହୁଏ; ଏଥିରେ ତିଆରି କାଠବାଡ଼ ଜାଳ ଦିଶେ ।]

ସାନି—ବୈଦେ. କ୍ରି. ବିଣ (ଅ)—୧ । ପୁନର୍ବାର; ଅନ୍ୟ ଥରେ—
Sāni 1. Once again. ୨ । ଦ୍ୱିତୀୟ ଥର—2. Second
সানি, ছানি time. ବିଣ—୧ । ପୁନର୍ବାର ଅନୁଷ୍ଠିତ—1.Done
फिर, सानी again. ୨ । ଦ୍ୱିତୀୟବାର କୃତ—2. Done for a second time. ୩ । ଦୋସର; ଦ୍ୱିତୀୟ; ଅନ୍ୟ—3. Another; second. ୪ । ସମାନ—4. Equal.
সানি বিচার, ছানি ବି ( କଚେରିଆ )—୧ । ଫଏସଲ ହୋଇଥିବା
फिर बिचार, सानी बिचार ମକଦ୍ଦମାର ପୁନର୍ବିଚାର—
1. Review or retrial or restoration of a case once disposed of. ୨ । (କଚେରିଆ) ଅପିଲ୍ ଅଦାଲତଙ୍କ ଆଦେଶ କ୍ରମେ ପୁନର୍ବିଚାର ପାଇଁ ନିମ୍ନ ଅଦାଲତକୁ ମକଦ୍ଦମାର ପ୍ରେରଣ—2. Remand of a case to the lower court for retrial.
সানি ଦେ. ବି—୧ । ଗୋରୁଙ୍କୁ ଖୁଆଇବା ପାଇଁ ପିଡିଆ ଗୁଣ୍ଡ
सानी ଗୋଳିଆ ହୋଇଥିବା କଟାନଡ଼ା—1. Cut straw mixed with oilcake for feeding cattle. ୨ । ( ଆଦରାର୍ଥକ ) ସାନନ୍ଦଙ୍କ ଡାକ ନାମ—2 Nick-name of 'Sānanda' in fondness.

ସାନି କରିବା—ଦେ. କ୍ରି (କଚେରିଆ)—ଫଏସଲ ହୋଇଥିବା ମକଦ୍ଦମା
Sāni karibā ପୁନର୍ବିଚାର ହେବା ପାଇଁ ପ୍ରାର୍ଥନା କରିବା—
সানি করা To apply for review or retrial of
सानी करना a case.

ସାନିକା—ସଂ. ବି—ବଂଶୀ (ଶବ୍ଦ ରତ୍ନାବଳୀ)—
Sānikā A flute.
(ସାନେୟିକା, ସାନେୟୀ—ଅନ୍ୟରୂପ)

ସାନିକ(କୁ) ଆସିବା—ଦେ. କ୍ରି ( କଚେରିଆ )—(ଫଏସଲ ହୋଇଥିବା
Sāniki(ku) āsibā ମକଦ୍ଦମା) ଅପିଲ୍ ଅଦାଲତଙ୍କ ଆଦେଶରେ
সানিকে আশা ପୁନର୍ବିଚାର ପାଇଁ ନିମ୍ନ ଅଦାଲତକୁ ଫେରି ଆସିବା
सानिकेलिये आना (a disposed of case) To be remanded to the lower court for retrial.

ସାନି ଗି(ଗେ)ରସ୍ତ (ଘଇତା)—ଗ୍ରା. ବି—ପରିତ୍ୟକ୍ତା ବା ବିଧବା ସ୍ତ୍ରୀର
Sāni gi(ge)rasta (ghaitā) ବିନା ବିବାହରେ ରକ୍ଷକ ପୁରୁଷ—
সানি গিরস্ত 1. A man with whom a widow or
दूसरा स्वामी a woman forsaken by her husband lives as husband and wife without a formal marriage. ୨ । ଦୁତିଆ ବିବାହର ସ୍ୱାମୀ—2. A widow's second husband (amongst the Sudras).

ସାନି ଘାଟି—ପ୍ରାଦେ. (ବାଲେଶ୍ୱର ପାଟଣା) ବି—ବିବାଦ ପରେ ମିଳାମିଶା
Sāni ghāṭi —Reconciliation after quarrel.

ସାନିଟା(ଟେ)ରି—ବୈଦେ. ବିଣ (ଇଂ)—ସ୍ୱାସ୍ଥ୍ୟ ସମ୍ବନ୍ଧୀୟ—
Sānitā(te)ri Sanitary.
সানিটেরী सानिटेरी

ସାନିଟା(ଟେ)ରିଅମ୍—ବୈଦେ. ବି ( ଇଂ )—୧ । ସ୍ୱାସ୍ଥ୍ୟକର ସ୍ଥାନ—
Sānitā(te)riam 1. Sanatorium; sanitarium.
(ସାନାଟୋରିଅମ୍—ଅନ୍ୟରୂପ) ୨ । ସ୍ୱାସ୍ଥ୍ୟ ନିବାସ—2. A refuge for purposes of regaining health. ୩ । ଅସ୍ୱେଚ୍ଛୋନ୍ମୁଖ ରୋଗୀମାନଙ୍କ ପାଇଁ ଡାକ୍ତରଖାନା—3. A hospital for invalids.
সানিটেরিয়াম सानिटेरियाम

ସାନିଟା(ଟେ)ରି ଇନ୍‌ସ୍‌ପେକ୍‌ଟର—ବୈଦେ. ବି (ଇଂ)-ନଗରାଦିର ସ୍ୱାସ୍ଥ୍ୟ-
Sānitā(te)ri ins-pektar ପରିଦର୍ଶକ କର୍ମଚାରୀ—Sanitary
সানিটেরী ইন্‌সপেকটার सानिटेरी इंसपेक्टर Inspector.

ସାନିଟା(ଟେ)ରି କମିସନ୍—ବୈଦେ. ବି (ଇଂ)--ଯେଉଁ କର୍ମଚାରୀଦଳ ସ୍ୱାସ୍ଥ୍ୟ
Sānitā(te)ri kamisan ସମ୍ବନ୍ଧରେ ପରିଦର୍ଶନ ଓ ବିଚାର କରନ୍ତି
সানিটেরী কমিসন —Sanitary Commission.
सानिटेरी कमिसन

ସାନିଟା(ଟେ)ରି କମିସନର—ବୈଦେ. ବି (ଇଂ)—ସ୍ୱାସ୍ଥ୍ୟ ବିଭାଗର ପରି-
Sānitā(te)ri kamisanar ଦର୍ଶନକାରୀ ଉଚ୍ଚ କର୍ମଚାରୀ—
সানিটেরী কমিসনার Sanitary Commissioner.
सानिटेरी कमिसनार

ସାନିଟା(ଟେ)ରି ଟାୱେଲ୍ (ତଉଲିଆ)—ବୈଦେ. ବି (ଇଂ)—ଋତୁସ୍ରାବ
Sānitā(te)ri tāwel(taulia) କାଳରେ ସ୍ତ୍ରୀ ଲୋକଙ୍କ
সানিটেরী টাওয়েল ବ୍ୟବହୃତ କୌପୁନୀ—Sanitary towel.
सानिटेरी टावेल

ସାନି ଦାଏ(ୟେ)ର୍—ବୈଦେ. ବି (କଚେରିଆ)—୧ । ମକଦ୍ଦମାର ପୁନର୍ବିଚାର
Sāni dāe(ye)r ପାଇଁ ଦରଖାସ୍ତ—1. Petition or motion for review of a case. ୨ । ଥରେ ଉଠାଇ ନିଆ ଯାଇଥିବା ମକଦ୍ଦମାକୁ ପୁଣି ବିଚାର ପାଇଁ ଦାଖଲ କରିବା—2. Reinstitution or refiling of a suit which had been withdrawn. ୩ । ଫଇସଲ ହୋଇଥିବା ମକଦ୍ଦମାର ସାନି ବିଚାର ନିମନ୍ତେ ପୁନଃପ୍ରବର୍ତ୍ତନ—3. Review or reinstitution of a disposed of case.

ସାନିବା—ପ୍ରାଦେ. ( ସମ୍ବଲପୁର ) କି (ତୁଳ. ହି. ଏହି ଅର୍ଥରେ ସାନ୍‌ନା)
Sāniba —ବହୁ ପଦାର୍ଥକୁ ଏକତ୍ର ମିଶାଇ ଗୋଳାଇବା; ସାନିବା
—To mix together many things.

ସାନି ବିଚାର (ତଜ୍‌ବିଜ୍)—ବୈ. ବି (କଚେରିଆ)—ନିଷ୍ପତ୍ତି ହୋଇଥିବା
Sāni bichāra (taj-bij) ମକଦ୍ଦମାର ଦ୍ୱିତୀୟବାର ବିଚାର—
সানি বিচার Re-trial of a disposed of case.
सानी तजबीज

ସାନି ମକଦ୍ଦମା—ବୈ. ବି ( କଚେରିଆ )—ଫଇସଲ ପରେ ପୁଣି ବିଚାର
Sāni makadamā ହେବା ମକଦ୍ଦମା—A case restored
সানি মোকদ্দমা सानी मुकद्दमा for re-trial.

ସାନି ସମନ—ବୈଦେ. ବି ( କଚେରିଆ )—ଥରେ ସମନ କରାଯାଇଥିବା
Sāni samana ସାକ୍ଷୀଙ୍କୁ ଦ୍ୱିତୀୟ ଥର କରାଯିବା ସମନ—
সানি সমন Summons taken out against a
सानी सम्मन witness for the second time; the resummoning of a witness.

ସାନି ହୁକୁମ୍—ବୈଦେ. ବି—୧ । (କଚେରିଆ) ମକଦ୍ଦମାକୁ ସାନି ବିଚାର
Sāni hukum କରିବା ପାଇଁ ହୁକୁମ—1. Order for re-
সানি হুকুম mand or restoration or retrial of a
सानी हुकुम case. ୨ । କୌଣସି ବିଷୟରେ ହୋଇଥିବା ଆଦେଶ ପରେ ପୁନରାଦେଶ—2. A second order; fresh or revised ordera.

ସାନୁ—ସଂ. ବି ( ସନ ଧାତୁ=ଦେବା+କର୍ତ୍ତୃ. ଉ )—୧ । ଗିରିତଟ;
Sānu ପର୍ବତର ଉପରସ୍ଥ ସମତଳ ଭୂମି; ଅଧିତ୍ୟକା—1. Plateau; a table-land; a level expanse of land on a mountain. ୨ । ବନ (ମେଦିନୀ)—2. Forest; wood. ୩ । ପ୍ରବଳ ପବନ; ବାତ୍ୟା ( ମେଦିନୀ )—3. Wind; storm. ୪ । ପଥ; ମାର୍ଗ (ମେଦିନୀ)—4. Way; road. ୫ । ଅଗ୍ର (ମେଦିନୀ)—5. Top. ୬ । ପଣ୍ଡିତ; ବୋଦ୍ଧା ( ମେଦିନୀ )—7. A learned man. ୭ । ସୂର୍ଯ୍ୟ; ଅର୍କ ( ଜଟାଧର )—7. The sun. ୮ । କିଶଳୟ; ପଲ୍ଲବ ( ଜଟାଧର )—8. Leaf; new leaf. ୯ । ପର୍ବତର ଶିଖର ( ଶ୍ରୀ. ଶ )—9. The peak of a mountain. ୧୦ । ସମତଳ ଭୂମି ( ଶ୍ରୀ. ଶ )—10. Level ground. ୧୧ । ପାହାଡ଼ିଆ ଜଙ୍ଗଲ ( ଶ୍ରୀ. ଶ )—11. Mountanous forest. ୧୨ । ଅନ୍ତ; ଲମ୍ବ ବସ୍ତୁର ମୁଣ୍ଡ (ଶ୍ରୀ. ଶ)—12. The end or extremity of a long thing.

ସାନୁକମ୍ପ—ସଂ. ବିଣ. ପୁଂ ( ବହୁବ୍ରୀହି, ସ+ଅନୁକମ୍ପା+ଅ )—
Sānukampa ସଦୟ—Kind; sympathetic.

ସାନୁକୂଲ୍ୟ—ସଂ. ବିଣ ( ସ+ଅନୁକୂଲ୍ୟ )—ସଦୟ; ଅନୁକୂଳ—
Sānukūlya Favourable; propitious.

ସାନୁଜ—ସଂ. ବିଣ ( ସହାର୍ଥ ବହୁବ୍ରୀହି, ସ+ଅନୁଜ=କନିଷ୍ଠ )—
Sānuja ୧ । କନିଷ୍ଠ ସହିତ ବର୍ତ୍ତମାନ—1. Accompanied by one's younger. ୨ । ( ସାନୁ+ଜନ୍ ଧାତୁ+କର୍ତ୍ତୃ. ଅ ); ପର୍ବତର ସାନୁଦେଶରୁ ଜାତ—2. Born of the plateau of a mountain. ବି—୧ । ( ପର୍ବତ ଉପରେ ଜନ୍ମିଥିବାରୁ ) ପ୍ରପୌଣ୍ଡରୀକ ( ରାଜନିର୍ଘଣ୍ଟ ), ଏକପ୍ରକାର ପାର୍ବତ୍ୟ ବୃକ୍ଷର ମୂଳ—1. Root stock of Nymphea Lotus. ୨ । ( ପର୍ବତ ଉପରେ ଜନ୍ମୁଥିବାରୁ ) ତୁମ୍ବୁରୁ ବୃକ୍ଷ ( ରାଜନିର୍ଘଣ୍ଟ ); ନେପାଳ ଧନିଆ—2. Xanthoxy-

(ସାନୁଜା—ସ୍ତ୍ରୀ) Ion Alatum. ଦେ. ବି—ଅନୁଜ—ଛୋଟ ଭାଇ 2. Younger brother. [ ଉ—ଶୁଣ ହେ ଛୋଟା ଭାଇ ସାନୁଜ ସୁଗ୍ରୀବର ଶୁନ ହାରିଲୁ—ବିଶ୍ୱନାଥ. ବିଚିତ୍ର ରାମାୟଣ । ]

ସାନୁ ଦେଶ—ସଂ. ବି—ପର୍ବତର ସାନୁ ବା ଉପରସ୍ଥ ସମତଳ ଦେଶ—Sānu desa Table-land; plateau. [ ସାନୁପ୍ରଦେଶ—ଅନ୍ୟରୂପ ]

ସାନୁନୟ—ସଂ. ବିଣ ( ବହୁବ୍ରୀହି, ସ+ଅନୁନୟ )—ସବିନୟ—Sānunaya Respectful.

ସାନୁନାସିକ—ସଂ. ବିଣ ( ସ+ଅନୁନାସିକ )—ଅନୁନାସିକ ବର୍ଣ୍ଣବିଶିଷ୍ଟ Sānunāsika —Having nasal letters.

ସାନୁମାନ—ସଂ. ବି ( ସାନୁ+ଅସ୍ତି ଅର୍ଥେ ମତ୍, ସାନୁମତ୍ ଶବ୍ଦ, ୧ମା. ୧ବ )—ପର୍ବତ—Mountain. Sānumān [ ସାନୁମାନ—ଦେ. ରୂପ ] [ ଉ—ସାନୁମାନ ଉରଜା, ଦନୁଜାରି ସାନୁଜା, ଭାନୁତନୁଜାଞ୍ଚିତ ବେଣୀ—ଭଞ୍ଜ. ସୁଭଦ୍ରା ପରିଣୟ । ]

ସାନୁମାନକ—ସଂ. ବି—ପ୍ରପୌଣ୍ଡରୀକ (ଦ୍ର. ଶ) ( ଦେଖ ) Sanumānaka Prapaundarika ( See )

ସାନେୟିକା—ସଂ. ବି—ବଂଶୀ; ମଞ୍ଜୁଷ (ଶବ୍ଦ ରତ୍ନାବଳୀ)—Flute. Sāneyikā [ ସାନେୟୀ—ଅନ୍ୟରୂପ ]

ସାନ୍ତ—ସଂ, ବିଣ ( ବହୁବ୍ରୀହି; ସ+ଅନ୍ତ )—୧ । ଅନ୍ତ ବା ସୀମାବିଶିଷ୍ଟ, ସସୀମ—1. Bounded; definite. ୨ । ଯେଉଁ ଶବ୍ଦର ଅନ୍ତରେ 'ସ' ଥାଏ—2. ( words ) Ending with the letter 'Sa'. ଦେ. ବି—୧ । ବର୍ଦ୍ଧିଷ୍ଣୁ ସୀମା ବା ଦୈର୍ଘ୍ୟ ବା ଆକାରବିଶିଷ୍ଟ ଭୂଭାଗ—1. Area of a given dimension or length. ୨। ବନ୍ଦିଷ୍ଟ ସୀମା—2. A given boundary. ୩ । (ସଂ. ସାମନ୍ତ) ସାଅନ୍ତ ( ଦେଖ )—3. Sā-ānta ( See ) ଦେ. ବି (ସଂ. ସମାନ୍ତର)—ସମାନ୍ତରାଳ—Parallel. [ଯଥା—ଭାଇ ଭାଗରେ ପୈତୃକ ଘରବାଡ଼ିରୁ ମୋ ଭାଗ ଲମ୍ବେ ଲମ୍ବେ ୩ ବଖରା 'ସାନ୍ତ'ରେ ପଡ଼ିଲା । ] ଦେ. ଅ—ଆରମ୍ଭରୁ ଶେଷ ପର୍ଯ୍ୟନ୍ତ—From the beginning to the end.

Sānta

ସାନ୍ତ

सान्त

ସମାନ୍ତର

बराबर

ସାନ୍ତନା—ଗ୍ରା. ବି ( ସଂ. ସାନ୍ତ୍ୱନା )—ସାନ୍ତ୍ୱନା ( ଦେଖ )—Sāntanā ସାନ୍ତ୍ୱନା सांतना Sāntwanā ( See )

ସାନ୍ତପନ—ସଂ. ବି (ସମ+ତପ୍ ଧାତୁ ଣିଚ୍ ଭାବି ଧାତୁ+ଭାବ. ଅନ)—Sāntapana ବ୍ରତବିଶେଷ—A kind of religious austerity. [ ଦ୍ର—ଏଥିରେ ଅନ୍ୟ ଖାଦ୍ୟ ଦ୍ରବ୍ୟ ତ୍ୟାଗ କରି ଯଥାକ୍ରମେ ୬ ଦିନ ଓ ୭ ସ୍ୱଚ୍ଛ ଗୋମୟ, ଗୋମୂତ୍ର, ଦୁଗ୍ଧ, ଦଧି, ଘୃତ ଓ କୁଶୋଦକ ଖାଇବାକୁ ହୁଏ । ଦିନେ ଯଥାକ୍ରମରେ ଏ ସବୁ ଖାଇ ତହିଁ ପରଦିନ ଯଥାକ୍ରମେ ଉପବାସ କରିବାକୁ ହେଲେ ଏ ବ୍ରତକୁ 'କୃଚ୍ଛ୍ର ସାନ୍ତପନ' ବା ସନ୍ତାପନ କୃଚ୍ଛ୍ର ବୋଲଯାଏ ( ମନୁ ୧୧ଶ ଅଧ୍ୟାୟ ) ଓ ଯଥାକ୍ରମେ ଉକ୍ତ ୬ଟି ଦ୍ରବ୍ୟ ୭ ଦିନ ସେବନ କରି ସପ୍ତମ ଦିନ ଉପବାସ କରିବାକୁ ହେଲେ, ଏହାକୁ 'ମହା ସାନ୍ତପନ ବୋଲଯାଏ—ଗରୁଡ଼ ପୁରାଣ । ]

ସାନ୍ତପନ କୃଚ୍ଛ୍ର—ସଂ. ବି (ସାନ୍ତପନ+କୃଚ୍ଛ୍ର)—ବ୍ରତ ବିଶେଷ—Sāntapana kruchchhra A kind of austerity. [ଦ୍ର—ସାନ୍ତପନ ତଳେ ଟୀକା ଦେଖ ।]

ସାନ୍ତ ବାପା—ଦେ. ବି ପୁଂ—ସାଅନ୍ତ ବାପା (ଦେଖ) Sānta bāpā Sā-ānta bāpā, (See) [ ସାନ୍ତମା—ସ୍ତ୍ରୀ ]

ସାନ୍ତର—ସଂ, ବିଣ (ସ+ଅନ୍ତର)—୧ । ବ୍ୟବଧାନବିଶିଷ୍ଟ; ବ୍ୟବହିତ; ଛିଦ୍ରିଦ୍ର—1. Porous; having spaces between. ୨ । ବିରଳ—2. Sparse; thin set; open in texture. ୩ । ଜାଲି-ଜାଲି ଥିବା—3. Netted. Sāntara (ସାନ୍ତ—ସ୍ତ୍ରୀ ବିରଳ) [ସାନ୍ତରତା—ବି]

ସାନ୍ତରତା(ତ୍ୱ)—ସଂ. ବି ( ସାନ୍ତର+ଭାବ. ତା, ତ୍ୱ )—ଯେଉଁ ଗୁଣ ଥିବାରୁ ଜଡ଼ ବସ୍ତୁମାନଙ୍କ ଅନ୍ତର୍ଦେଶରେ ଛିଦ୍ରିଏ ଛିଦ୍ରିଏ ବ୍ୟବଧାନ ବା ଅନ୍ତର ଥାଏ—The state of solids having pores in them. Sāntaratā(twa)

ସାନ୍ତରା—ଦେ. ବି—୧ । ସୁରଙ୍ଗୀ ମିଠା କମଳା—1. Sweet orange. ୨ । ସାଅନ୍ତରା (ଦେଖ)—2. Sā-āntarā. (See) Sāntarā (ସାଅନ୍ତରା, ସାନ୍ଧା—ଅନ୍ୟରୂପ) ସିଲଟ କମଳା ପ୍ରାଦେ (ସମ୍ବଲପୁର) ବି—ମିଠା ଲେମ୍ବୁ—सिलेट कमला Sweet orange.

ସାନ୍ତାନିକ—ସଂ, ବିଣ—(ସନ୍ତାନ+ସମ୍ବନ୍ଧାର୍ଥେ ଇକ)—୧ । ସନ୍ତାନ ସମ୍ବନ୍ଧୀୟ—1. Relating to offspring. ୨ । ପ୍ରସରଣଶୀଳ—2. Expansive. ସଂ. ବି. ପୁଂ—ସନ୍ତାନୋତ୍ପାଦକ ନିମିତ୍ତ ପତ୍ନୀକାମୀ ବ୍ରାହ୍ମଣ—A Brāhmana who takes a wife for be-getting an offspring. Sāntānika

ସାନ୍ତାପିକ—ସଂ. ବିଣ (ସନ୍ତାପ+ଇକ)--ସନ୍ତାପଦାୟକ (ଶବ୍ଦକୋଷ)—Sāntāpika Giving trouble or botheration.

ସାନ୍ତାଳ—ଦେ. ବି. ପୁଂ (ସଂ. ସମତଳ)—ଛୋଟନାଗପୁର ଅଞ୍ଚଳବାସୀ ଜଙ୍ଗଲୀ ଅନାର୍ଯ୍ୟ ଜାତି ବିଶେଷ—A non-aryan wild tribe of Chhota-nagpur; the Santhals. [ଦ୍ର—ସାନ୍ତାଳମାନେ ଭାରତର ଗୋଟିଏ ଅଧମ ଅନାର୍ଯ୍ୟ ଜାତି । ଏମାନେ ମେଦନୀପୁର, ପଶ୍ଚିମ ବଙ୍ଗ, ଓଡ଼ିଶା ଗଡ଼ଜାତ, ବାଲେଶ୍ୱର, ଭାଗଲପୁର ଓ ଛୋଟନାଗପୁରର ସାନ୍ତାଳ ପରଗଣାରେ ବାସ କରନ୍ତି । କଥିତ ଅଛି ଯେ, ବହୁ ପୂରୁଷ ପୂର୍ବେ ଏମାନେ ମେଦନୀପୁର ଅନ୍ତର୍ଗତ ସାଓନ୍ତ ନାମକ ସ୍ଥାନରେ ବାସ କରୁଥିଲେ ଓ ଏଥିଯୋଗୁଁ ଏମାନଙ୍କ ନାମ ସାଓନ୍ତାଳ ହୋଇଅଛି । ପୂର୍ବେ ଏମାନଙ୍କ ନାମ 'ଖରବାର' ଥିଲା । କର୍ଣ୍ଣେଲ୍ ଡାଲ୍ଟନ୍ କହନ୍ତି ଯେ, ସାଅନ୍ତାଳଙ୍କ ନାମରୁ

Sāntāla

(ସାନ୍ତାଳୀ, ସାନ୍ତାଳଅଣୀ—ସ୍ତ୍ରୀ)

संथाल

सँथाल

( ସାଅନ୍ତାଳ—ଅନ୍ୟରୂପ )

ମେଦିନୀପୁରର 'ସାଓନ୍ତ' ଗ୍ରାମର ନାମକରଣ ହୋଇଅଛି । କାରଣ, ସରଗୁଜାରେ ଓ କେନ୍ଦୁଝରରେ 'ସାଓନ୍ତ' ନାମକ ଏକ ଜାତି ଅଛନ୍ତି । ସାନ୍ତାଳଙ୍କୁ ପଚାରିଲେ ସେମାନେ ମାଝୀ ବା ସାନ୍ତାଳ ମାଝୀ ବୋଲି ଅପଣାକୁ ପରିଚୟ ଦିଅନ୍ତି । ଏମାନଙ୍କ ମଧ୍ୟରୁ କେହି କେହି ଶ୍ୟାମବର୍ଣ୍ଣ, କିନ୍ତୁ ଅଧିକାଂଶ ବ୍ୟକ୍ତି ଅଙ୍ଗାର ପରି କୃଷ୍ଣବର୍ଣ୍ଣ; ନାସିକାର ଅଗ୍ରଭାଗ ନିଗ୍ରୋମାନଙ୍କ ପରି ସ୍ଥୂଳ ଓ ନାକ ଚେପଟା; ମୁହଁ ବଡ ଓ ଓଷ୍ଠ ସ୍ଥୂଳ; ତଳ ଓଠ ଉପର ଓଠ ଅପେକ୍ଷା ବେଶୀ ବାହାର ପଡ଼ିଥାଏ; ମୁଣ୍ଡର କେଶ ଘନ ଓ କୁଞ୍ଚିତ ଓ କୃଷ୍ଣବର୍ଣ୍ଣ । ପାଶ୍ଚାତ୍ୟ ପଣ୍ଡିତମାନେ ଏମାନଙ୍କୁ ଦ୍ରାବିଡ଼ୀୟ ବଂଶ ସମ୍ଭୂତ ବୋଲି ସ୍ଥିର କରିଅଛନ୍ତି । ଏମାନଙ୍କ ମଧ୍ୟରେ କିମ୍ବଦନ୍ତୀ ଅଛି ଯେ, ଗୋଟିଏ ବନ୍ୟ ହଂସର ୨ଟି ଡିମ୍ବରୁ ଏମାନଙ୍କର ଆଦି ଦମ୍ପତି ପିଲ୍‌ଚୁହଡ୍ରାମ୍ ଓ ପିଲ୍‌ଚୁବୁଢ଼ୀ ଜନ୍ମିଥିଲେ । ଏ ଦୁହିଙ୍କ ବଂଶଧରମାନେ ୭ ବିଭାଗରେ ବିଭକ୍ତ ହେଲେ; ବର୍ତ୍ତମାନ ମଧ୍ୟ ସାନ୍ତାଳମାନେ ୭ ଶ୍ରେଣୀରେ ବିଭକ୍ତ । ଆଦି ଦମ୍ପତିଙ୍କଠାରୁ ଉତ୍ପନ୍ନ ୭ଟି ଶ୍ରେଣୀ ଛଡ଼ା ପରେ ଏମାନଙ୍କର ଆଉ ୫ଟି ଶ୍ରେଣୀ ବଢ଼ିଲା । ଏହି ୧୨ ଶ୍ରେଣୀ ମଧ୍ୟରେ ପରସ୍ପର ବିବାହ ପ୍ରଥା ଚଳେ । ଏକ ସମ୍ପ୍ରଦାୟର ବ୍ୟକ୍ତି ସେହି ସମ୍ପ୍ରଦାୟର ସ୍ତ୍ରୀକୁ ବା ପୁରୁଷକୁ ବିବାହ କରି ନ ପାରେ । ସାନ୍ତାଳମାନଙ୍କ ନିମ୍ନତମ ଶ୍ରେଣୀ 'ବେଦିଆ' । ବାଳିକା ପୂର୍ଣ୍ଣଯୁବତୀ ହେଲେ ମନୋମତ ପତି ନିର୍ବାଚନ କରେ । ଅବିବାହିତା ବାଳିକା ଗର୍ଭଧାରଣ କଲେ ଗର୍ଭାଧାନକାରୀ ପୁରୁଷ ତାକୁ ବିବାହ କରିବାକୁ ବାଧ୍ୟ ହୁଏ । ଏମାନଙ୍କ ମଧ୍ୟରେ ବହୁ ବିବାହ ନାହିଁ । ପତ୍ନୀ ବନ୍ଧ୍ୟା ହେଲେ ସ୍ୱାମୀ ଅନ୍ୟ ସ୍ତ୍ରୀ ବିବାହ କରି ପାରେ । ସଧବୀକ ଦେବର ସ୍ତ୍ରୀୟ ବିଧବା ଭାଉଜକୁ ବିବାହ କରେ । ଜଗମାଝୀ ବା ପୁରୋହିତଙ୍କ ଦ୍ୱାରା ମହୁଆ ଗଛ ମୂଳେ ବିବାହ ସମ୍ପାଦିତ ହୁଏ । କନ୍ୟାଶୁଳ୍କ ଓ ଯୌତୁକ ପ୍ରଥା ଏମାନଙ୍କ ମଧ୍ୟରେ ଅଛି । ବିବାହ ସମୟରେ ବର କନ୍ୟାର କପାଳରେ ଓ ସୀମନ୍ତରେ ସିନ୍ଦୂର ଲଗାଇ ଦିଏ । କନ୍ୟା କୁତ୍ସିତରୂପା ବା ବିକୃତାଙ୍ଗୀ ହେଲେ ଜାମାତା ଶ୍ୱଶୁର ଘରେ ୫ବର୍ଷ ଘରଜୋଇଁଆଁ ହୋଇ ରହି କୃଷିକାର୍ଯ୍ୟ କରେ ଓ କନ୍ୟାକୁ ଉପଭୋଗ କରେ; ୫ବର୍ଷ ପରେ ଶ୍ୱଶୁରଙ୍କଠାରୁ ହଳେ ବଳଦ, କିଛି ଗୁଞ୍ଜଳ ଓ କୃଷିଯନ୍ତ୍ର ଗ୍ରହଣ କରି ଜାମାତା ଚିରକାଳ ପାଇଁ ଶ୍ୱଶୁରଙ୍କଠାରୁ ଓ କନ୍ୟାଠାରୁ ବିଦାୟ ନିଏ । ଏମାନଙ୍କ ମଧ୍ୟରେ ସାଙ୍ଗା ବା ବିଧବା ବିବାହ ଅଛି । ପରିତ୍ୟକ୍ତା ସ୍ତ୍ରୀ ମଧ୍ୟ ପତ୍ୟନ୍ତର ଗ୍ରହଣ କରି ପାରେ । ସ୍ୱାମୀର ବା ସ୍ତ୍ରୀର ଇଚ୍ଛା ଅନୁସାରେ ବିବାହ ଭଙ୍ଗ ହୋଇ ପାରେ । ବିବାହ ଭଙ୍ଗାର୍ଥ ଇଚ୍ଛୁକ ପକ୍ଷ ଅପର ପକ୍ଷକୁ ( ସ୍ୱାମୀକୁ ବା ସ୍ତ୍ରୀକୁ ) କିଛି ଜୋରିମାନା ଦିଏ ଓ ଗ୍ରାମବାସୀଙ୍କ ଆଗରେ ୩ଟି ଶାଳପତ୍ର ଛିଣ୍ଡାଇ ଦିଏ ଓ ଗୋଟିଏ ଜଳପୂର୍ଣ୍ଣ ପିତ୍ତଳ କଳସକୁ ଲେଉଟାଇ ପକାଏ । ପିତାର ମୃତ୍ୟୁ ପରେ ପୁଅମାନେ ପିତୃସମ୍ପତ୍ତି ସମାନ ଭାଗରେ ବାଣ୍ଟି ନିଅନ୍ତି । ସମ୍ପତ୍ତି ବିଭାଗ ସମୟରେ କନ୍ୟା ଗୋଟିଏ ଗାଈ ପାଏ । ଏମାନେ ମରଙ୍ଗବୁରୁ (ପ୍ରଧାନ ଦେବତା), ମୋରେକେ (ଅଗ୍ନି), ଜାଇରଇରା (ମୋରେକୋଙ୍କ ଭଉଣୀ, ବଣ ଦେବତା), ଗୋସେନଇରା (ମୋରେକୋଙ୍କ ସାନ ଭଉଣୀ), ପରଗଣା (ଡାକିନୀମାନଙ୍କ ମଧ୍ୟରେ ପ୍ରଧାନ) ଓ ମାଝୀ (ପରଗଣାଙ୍କ ଅଧସ୍ତନ ଦେବ)ଙ୍କ ପୂଜା କରନ୍ତି । ଏହା ଛଡ଼ା ପ୍ରତ୍ୟେକ ସାନ୍ତାଳର ଓରାକବଂଗ (କୁଳ ଦେବତା) ଓ ଅବଗେବଂଗ (ଗୁପ୍ତ ଦେବତା) ଅଛନ୍ତି । ପୂର୍ବେ ସାନ୍ତାଳମାନଙ୍କ ମଧ୍ୟରେ ନରବଳୀ ପ୍ରଚଳିତ ଥିଲା । ପୌଷ ମାସରେ ଶସ୍ୟ କ୍ଷେତରୁ ଘରକୁ ଆଣିବା ସମୟରେ ଏମାନଙ୍କର ପ୍ରଧାନ ଉତ୍ସବ ହୁଏ । ଶୂକର, ଛାଗ ଓ କୁକ୍କୁଟ ବଳି ଦେବତାଙ୍କୁ ଦିଆଯାଏ । ସ୍ତ୍ରୀ ପୁରୁଷ ସମସ୍ତେ ମଦିରା ପାନରେ ମତ୍ତ ହୋଇ ଉତ୍ସବ ସମୟରେ ବ୍ୟଭିଚାରରେ ଲିପ୍ତ ହୁଅନ୍ତି । ଫାଲ୍‌ଗୁନ ମାସରେ ଶାଳଫୁଲ ଫୁଟିବା ସମୟରେ, ଆଷାଢ଼ ମାସରେ କ୍ଷେତରେ ବୀଜ ବପନ କରିବା ସମୟରେ ଓ ପୌଷ ମାସର ପ୍ରଥମ ଦିନ ମୃତ ପୂର୍ବପୁରୁଷଙ୍କୁ ପୂଜା ଉପଲକ୍ଷରେ ଉତ୍ସବ କରାଯାଏ । ମାଘ ମାସରେ ଏମାନଙ୍କ ବର୍ଷ ଶେଷ ହୁଏ । ପ୍ରତ୍ୟେକ ସାନ୍ତାଳ ଜୀବନରେ ଥରେ ଜମସିମ୍ ବା ସୂର୍ଯ୍ୟ ଦେବଙ୍କ ପୂଜା କରି ଛେଳି ଓ ମେଣ୍ଢା ବଳି ଦିଏ ଓ ବର୍ଷକ ପରେ ଗୃହ-ଦେବତାଙ୍କୁ ଗୋଟାଏ ଗାଈ ଓ ପୂର୍ବପୁରୁଷଙ୍କୁ ଗୋଟିଏ ଷଣ୍ଢ ବଳି ଦିଏ । ପ୍ରତ୍ୟେକ ଗ୍ରାମରେ ପ୍ରଧାନ ବ୍ୟକ୍ତି ମାଝି ଓ ପ୍ରତ୍ୟେକ ପରଗଣାର ପ୍ରଧାନ ବ୍ୟକ୍ତିଙ୍କୁ ପରଗଣୈତ ବୋଲିଯାଏ । ସାନ୍ତାଳମାନେ ଶବଦାହ କରନ୍ତି । ଏମାନଙ୍କର କଥିତ ଭାଷା ଓରାଓ । ୧୮୫୫ଖ୍ରୀଷ୍ଟାବ୍ଦରେ ଏମାନେ ବିଦ୍ରୋହ କରିଥିଲେ । ଧନୁର୍ବିଦ୍ୟାରେ ଏମାନେ ସିଦ୍ଧହସ୍ତ ।

ସାନ୍ତାଳ, କୋଲ୍ହ, ମୁଣ୍ଡା, ଓରାଓଁ ଏକ ଶ୍ରେଣୀର ଅଟନ୍ତି । (ବିଶ୍ୱକୋଷ) ]

**ସାନ୍ତାଳ ପରଗଣା(ନା)**—ଦେ.ବି(ନାମ)—ବିହାର ପ୍ରଦେଶର ଭାଗଲପୁର
Sāntāla paragaṇā(nā) ବିଭାଗର ଜିଲ୍ଲାବିଶେଷ—
(ସାନ୍ତାଳପ୍ରଗନ୍ନା—ଅନ୍ୟରୂପ) Name of a district
সাঁওতালপরগনা संथालपरगना of the Bhagalpur Division of Bihar. [ ଦ୍ର—ଏହାର ପ୍ରଧାନ ନଗର ଦୁମୁକା । ବାବା ବୈଦ୍ୟନାଥ (ଦେବଘର) ଏହି ଜିଲ୍ଲାରେ ଅବସ୍ଥିତ । ଏହି ଜିଲ୍ଲା ଅନୁନ୍ନତ ବ୍ରିଟିଶ୍ ଶାସିତ ଜିଲ୍ଲା ଓ ଏଥିର ଶାସନକର୍ତ୍ତାଙ୍କୁ ଡେପୁଟୀ କମିସନର୍ ବୋଲିଯାଏ । ଏହି ଜିଲ୍ଲାର କ୍ଷେତ୍ରଫଳ ୫୪୭୭ ମାଇଲ । ଏ ଜିଲ୍ଲାର ୬ଟି ସବ୍‌ଡିଭିଜନ୍ ବା ମହକୁମା ଅଛି;—ସଦର ବା ଦୁମ୍‌କା, ଦେଓଘର, ଗୋଡ୍ଡୀ, ଜାମତାଡ଼, ରାଜମହଲ, ପକାଉର୍ । କଲେକ୍ଟର୍ ଓ ଜଜ ଓ ମାଜିଷ୍ଟ୍ରେଟ୍ କାର୍ଯ୍ୟ ଡେପୁଟି କମିସନର୍ କରନ୍ତି ।

ସାନ୍ତାଳି—ଦେ. ବଣ—୧ । ସାନ୍ତାଳସମ୍ବନ୍ଧୀୟ—1. Relating to
Sāntāli the Sānthals. ୨ । ବଙ୍ଗଳା,
(ସାନ୍ତାଳିଅ—ଅନ୍ୟରୂପ) ବିହାର ଓ ଓଡ଼ିଶା ପ୍ରଦେଶମାନଙ୍କ
সাওঁতালি संथाली ଅଧିବାସୀ ସାନ୍ତାଳମାନଙ୍କ
କଥିତ ଖେରୱାରି ଭାଷାର ରୂପାନ୍ତର—2. A dialect of the Kherwāri spoken by the Sānthals of Bengal, Bihar and Orissa.

ସାନ୍ତି—ଦେ· ବି—(ସଂ· ସମାନ୍ତର) ··ସାନ୍ତ. ଦେ. ବି· ୩ (ଦେଖ)—
Sānti Sānta 3 (See) ପ୍ରାଦେ (ଗଡଜାତ) ବି (ରଜାଙ୍କୁ ଶାନ୍ତ କରିବାକୁ ଦିଆଯିବାରୁ) ଶାଣୁଅ ଶିକାରରେ ମାରଥିବା ମୃଗ ଆଦି ପଶୁର ପଛଅଙ୍ଗର ଗୋଟିଏ ଫାଳ ଥ(ଯାହା ଶିକାର ରଏଲ୍‌ଟି (Royalty) ସ୍ୱରୂପ ରଜାଙ୍କୁ ଦେବାକୁ ବାଧ୍ୟ)—The rump of a beast killed by a hunter (which is presented to the Rājā as his royalty in a game).

ସାନ୍ତିଆ—ପ୍ରାଦେ (ଗଞ୍ଜାମ) ବି—ଗଞ୍ଜାମ ଜିଲ୍ଲାର ଶୂଦ୍ରଜାତିବିଶେଷ—
Sāntiā Name of a Śūdra caste living in the district of Ganjam.
ଦେ· ବଣ—ସାଅନ୍ତିଆ ଇତ୍ୟାଦି ( ଦେଖ )
Sā-āntiā etc. ( See )

ସାନ୍ତ୍ୱ ( ଧାତୁ )—ସ—ଶାନ୍ତ କରିବା; ପ୍ରବୋଧ କରିବା—
Sāntwa (root) To console; to pacify; to assuage; to condole.

ସାନ୍ତ୍ୱ—ସ ବି (ସାନ୍ତ୍ୱ ଧାତୁ+ଭାବ ଅ)—୧ । ସାମ; ପ୍ରବୋଧ ବାକ୍ୟ-
Sāntwa 1. Consoling words. ୨ । ଶ୍ରୁତି-ପ୍ରୀତିଜନକ ବାକ୍ୟ—2. Sweet words. ୩ । ଦାକ୍ଷିଣ୍ୟ—3. Politeness; generosity.

ସାନ୍ତ୍ୱନ(ନା)—ସ ବି ( ସାନ୍ତ୍ୱ ଧାତୁ+ଭାବ ଅନ;+ଆ )—୧ ।
Sāntwana(nā) ସମାଶ୍ୱାସନ; ପ୍ରିୟବଚନଦ୍ୱାରା ପ୍ରବୋଧ ଦାନ—1. Consolation. ୨ । ପ୍ରିୟକର; ସାମୋପାୟ—2. Assuaging; pacifying. ୩ । ବିପନ୍ନ ବା ଶୋକଗ୍ରସ୍ତ ବ୍ୟକ୍ତିକୁ ଆଶ୍ୱାସନା ଦେବା—3. Condolence. ୪ । ପ୍ରଣୟ; ପ୍ରେମ (ହି. ଶ-4. Love; attachment. ୫ । ସ୍ନେହପୂର୍ବକ କୁଶଳ ପ୍ରଶ୍ନ ( ହି. ଶ )-5. Affectionate enquiry about one's wellbeing. ୬ । ସନ୍ଧି; ମିଳନ (ହି. ଶ)—6. Union.

ସାନ୍ତ୍ୱନ(ନା) କରିବା (ଦେବା)—ଦେ·କ୍ରି—ଦୁଃଖିତ ବ୍ୟକ୍ତିକୁ ଆଶ୍ୱାସନା
Sāntwana(nā) karibā(debā) ଦେବା—To
সান্ত্বনা করা সান্ত্বনা দেওয়া सांत्वना करना console; to condole.

ସାନ୍ତ୍ୱନା ଦାନ—ସ ବି—ଦୁଃଖିତ ବ୍ୟକ୍ତିକୁ ଆଶ୍ୱାସନା ଦେବା—
Sāntwanā dāna Condolence.

ସାନ୍ତ୍ୱନ(ନା) ଦାୟକ—ସ ବଣ ପୁଂ (ସାନ୍ତ୍ୱ+ଦା ଧାତୁ+କର୍ତ୍ତୃ ଅକ)—
Sāntwana(nā)dāyaka ଯେ ବା ଯାହା ସାନ୍ତ୍ୱନା ଦିଏ—
ସାନ୍ତ୍ୱନ(ନା)ପ୍ରଦ ⎫ Consolatory;
ସାନ୍ତ୍ୱନ(ନା)ପ୍ରଦାୟକ ⎬—ଅନ୍ୟରୂପ condoling.
ସାନ୍ତ୍ୱନ(ନା)ଦାତା ⎭
ସାନ୍ତ୍ୱନ(ନା)ଦାୟିକା ⎫
ସାନ୍ତ୍ୱନ(ନା)ପ୍ରଦା ⎬ସ୍ତ୍ରୀ—
ସାନ୍ତ୍ୱନ(ନା)ପ୍ରଦାୟିକା ⎪
ସାନ୍ତ୍ୱନ(ନା)ଦାତ୍ରୀ ⎭

ସାନ୍ତ୍ୱନିତ—ସ ବଣ (ସାନ୍ତ୍ୱନ+ସ୍ୱାର୍ଥେ ଇତ)—ସାନ୍ତ୍ୱନାପ୍ରାପ୍ତ—
Sāntwanita Consoled.

ସାନ୍ତ୍ୱବାଦ—ସ ବି—ସାନ୍ତ୍ୱନାମୟ ବାକ୍ୟ—Consolatory words
Sāntwabāda condolatory message.

ସାନ୍ତ୍ୱୟିତା—ସ ବଣ· ପୁଂ [ସାନ୍ତ୍ୱ ଧାତୁ+କର୍ତ୍ତୃ ତୃ, ୧ମା ୧ବ]—
Sāntwayitā ସାନ୍ତ୍ୱନାଦାୟକ [ ଦେଖ ]—Sāntwanā
[ସାନ୍ତ୍ୱୟିତ୍ରୀ—ସ୍ତ୍ରୀ] dāyaka (See)

ସାନ୍ଦିବା—ଦେ· କ୍ରି—ସାନ୍ଧିବା [ଦେଖ]
Sāndibā Sāndhibā (See)

ସାନ୍ଦୀପନି—ସ ବି ପୁଂ [ସନ୍ଦୀପନ=ମୁନିବିଶେଷ+ଗୋତ୍ରାପତ୍ୟାର୍ଥେ ଇ]-·
Sāndipani ମୁନିବିଶେଷ; କୃଷ୍ଣ ଓ ବଳରାମଙ୍କର ଧନୁର୍ବିଦ୍ୟା-ଶିକ୍ଷକ—Name of a sage who was the tutor in archery to Srikrushna, [ବି—ବାରାଣସୀର ନିକଟବର୍ତ୍ତୀ ଅବନ୍ତୀ ନଗରରେ ଏହାଙ୍କ ଆଶ୍ରମ ଥିଲା । ଏ ସବୁ ଶାସ୍ତ୍ରରେ ବିଚକ୍ଷଣ ଥିଲେ । ଶ୍ରୀକୃଷ୍ଣ ଓ ବଳରାମ ଏହାଙ୍କଠାରୁ ଧନୁର୍ବିଦ୍ୟା ଶିକ୍ଷା କରି ସାରି କଥଣ ଗୁରୁ ଦକ୍ଷିଣା ଦେବେ ବୋଲି ଏହାଙ୍କୁ ପଚାରିବାରୁ ଏ ଏହାଙ୍କ ମୃତ ପୁତ୍ରର ଉଦ୍ଧାର ପ୍ରାର୍ଥନା କରିଥିଲେ । ପ୍ରଭାସତୀର୍ଥରେ ସମୁଦ୍ରରେ ସ୍ନାନ କରିବା ସମୟରେ ଏହାଙ୍କ ପୁତ୍ରକୁ ଶଙ୍ଖରୂପଧର ପଞ୍ଚଜନ ନାମକ ଦୈତ୍ୟ ହରଣ କରି ନେଇଥିଲା । ଗୁରୁଙ୍କ ଅନୁରୋଧକ୍ରମେ ଶ୍ରୀକୃଷ୍ଣ ସମୁଦ୍ରକୁ ଯାଇ ସେ ପୁତ୍ରର ଅସ୍ଥି ସଂଗ୍ରହ କରି ଯମପୁରକୁ ଯାଇ ଯମକୁ ପରାସ୍ତ କରି ସେ ପୁତ୍ରକୁ ପୂର୍ବ ଶରୀର ପ୍ରଦାନ କରାଇ ମୁନିଙ୍କଲାଇ ଆଣି ଗୁରୁଙ୍କଠାରେ ଅର୍ପଣ କଲେ । ଶ୍ରୀକୃଷ୍ଣ ଦ୍ୱାରକାକୁ ଯାଇ ରଜା ହେବା ପରେ ସାନ୍ଦୀପନି ସେଠାକୁ ଯାଇ ଯଦୁବଂଶୀୟମାନଙ୍କର ପୁରୋହିତ ହୋଇଥିଲେ—ବିଷ୍ଣୁପୁରାଣ ।]

ସାନ୍ଦୃଷ୍ଟିକ ନ୍ୟାୟ—ସଂ ବି (ସମ୍+ଦୃଷ୍ଟ+ଇକ) ପ୍ରତ୍ୟକ୍ଷଫଳ; ତାତ୍-
Sāndrushtika nyāya କାଳିକଫଳ—A sort of reasoning. [ବି-୧ । ଏହି ନ୍ୟାୟଅନୁସାରେ ଯେଉଁ ମୃତ ବ୍ୟକ୍ତିଙ୍କର ପିତାମହଙ୍କଠାରୁ ତୌଳିକ ପର୍ଯ୍ୟନ୍ତ କେହି ଉତ୍ତରାଧିକାରୀ ନ ଥାନ୍ତି, ତାହାଙ୍କ ତ୍ୟକ୍ତ ଧନକୁ ତାହାଙ୍କ ଜ୍ଞାତି

ପ୍ରତିଭାମନ୍ତ ଓ ପ୍ରତିଭାମଗ୍ନ ପାଅନ୍ତି (ବାୟୁକ୍ରମସଂଗ୍ରହ) । ୨ । କୃଷ୍ଣପକ୍ଷ ଚନ୍ଦ୍ରନାନ୍ଦ୍ୟାୟ । ପୂର୍ବେ ଗୋଟିଏ ବିଷୟ ଯେଉଁଠିରୁ ଯେ ଦେଖା ହୋଇଥିଲା ସେହିରୂପ ଅନ୍ୟ ଗୋଟିଏ ବିଷୟ ଦେଖିଲେ ପୂର୍ବ ଦୃଷ୍ଟ ରୁ ତଦନୁରୂପ ଫଳ କଳ୍ପନା ହେଲେ ଏ ନ୍ୟାୟ ଖଟା ଯାଏ (ବିଶ୍ୱକୋଷ; ହ ଶ)] ।

**ସାନ୍ଦ୍ର**—ସଂ. ବିଣ. (ସ=ସହିତ+ଅଦ୍. ଧାତୁ=ବନ୍ଧନ କରିବା+ **Sāndra** ରକ୍. ର)—୧ । ଘନ; ନିବିଡ଼—1. Thick, dense; close set; compact. ୨ । ଅଭେଦ୍ୟ (ଅମର)—2. Impervious. ୩ । ସ୍ନିଗ୍ଧ (ମେଦିନୀ) 3. Oily. ୪ । ଚିକ୍କଣ—4. Smooth; ୫ । ମନୋଜ୍ଞ; ସୁନ୍ଦର (ଶବ୍ଦ ରତ୍ନାବଳୀ)—5. Pleasing. ୬ । ମୃଦୁ—6. Gentle; mild. ବି—୧ । ବନ; ଅରଣ୍ୟ (ମେଦିନୀ)—1. Forest. ୨ । ଦହି;ଘୋଳ—2. Churned buttermilk.

**ସାନ୍ଦ୍ରତା(ତ୍ୱ)**—ସଂ. ବି (ସାନ୍ଦ୍ର+ଭାବ.ତା;ତ୍ୱ)—ଘନତା; ନିବିଡ଼ତା— **Sāndratā(twa)** Denseness; compactness.

**ସାନ୍ଦ୍ରପଦ**—ସଂ. ବି (ବହୁବ୍ରୀହି)—ଛନ୍ଦୋବିଶେଷ—Name of a **Sāndra pada** metre. (ଦ୍ର—ଏଥିର ପ୍ରତ୍ୟେକ ଚରଣରେ ୧୧ ଅକ୍ଷର ଥାଏ; ପ୍ରଥମ, ଚତୁର୍ଥ, ପଞ୍ଚମ ଓ ଦଶମ ଅକ୍ଷର ଗୁରୁ, ଅନ୍ୟ ବର୍ଣ୍ଣମାନ ଲଘୁ; ସାଧାରଣତଃ ଏ ଛନ୍ଦର ପ୍ରୟୋଗ ଦେଖାଯାଏ ନାହିଁ, ଛନ୍ଦରତ୍ନାକର ବିଶ୍ୱକୋଷ)

**ସାନ୍ଦ୍ରପୁଷ୍ପ**—ସଂ.ବି (ଏଥିର ଫୁଲଗୁଡ଼ାକ ଘନ ଭାବରେ ଶ୍ରେଣୀରେ ଲାଗିଥିବାରୁ **Sāndrapushpa** ବହୁବ୍ରୀହି)—ବିଭୀତକ ବୃକ୍ଷ ଓ ପୁଷ୍ପ; ବାହାଡ଼ା ଗଛ ଓ ଫୁଲ, ( ଶବ୍ଦ ଚନ୍ଦ୍ରିକା )—1. Beleric myrobalan (tree and flower)

**ସାନ୍ଦ୍ରପ୍ରସାଦ ମେହ**—ସଂ. ବି—ଚରକର ନିଦାନ ସ୍ଥାନରେ ଲିଖିତ **Sāndraprasāda meha** ମେହ ରୋଗବିଶେଷ—A kind of gonorrohea. [ ଦ୍ର—ଏ ରୋଗରେ ମୂତ୍ରର କେତେକାଂଶ ଘନ ଓ କେତେକାଂଶ ତରଳ ହୁଏ ଓ ମୂତ୍ରକୁ ପାତ୍ରରେ ରଖିଲେ ଉପରଭାଗ ପତଳା ଓ ନିମ୍ନଭାଗ ଘନ ହୁଏ । ଶ୍ଳେଷ୍ମା କୁପିତ ହୋଇ ଏ ରୋଗ ବାହାରେ । ]

**ସାନ୍ଦ୍ର ମେହ**—ସଂ. ବି—ମେହ ରୋଗବିଶେଷ—A kind of gono- **Sāndra meha** rrohea in which the urine coagulates after a time. [ ଦ୍ର—ଏହା ଶ୍ଳେଷ୍ମଜ । ଏ ରୋଗୀର ମୂତ୍ରକୁ କୌଣସି ପାତ୍ରରେ ରଖିଲେ କିଛି ସମୟ ପରେ ତାହା ଗାଢ଼ ହୁଏ—ଚରକ । ]

**ସାନ୍ଦ୍ର ସ୍ନିଗ୍ଧ**—ସଂ. ବିଣ—ଘନ ଓ ଚିକ୍କଣ; ମେଦୁର— **Sāndra snigdha** Dense and smooth.

**ସାନ୍ଧ**—ସଂ. ବିଣ ( ସନ୍ଧି+ଅ )—ସନ୍ଧିସମ୍ବନ୍ଧୀୟ— **Sāndha** Relating to sandhi.

**ସାନ୍ଧକାର**—ସଂ. ବିଣ ( ସ+ଅନ୍ଧକାର; ସହାର୍ଥ ବହୁବ୍ରୀହି )—ଅନ୍ଧକାର- **Sāndhakāra** ଯୁକ୍ତ—Dark.

**ସାନ୍ଧି(ନ୍ଦି)**—ଦେ. ବି ( ସଂ. ସନ୍ଧି=ସହ ଭୋଜନ )—ସହ ଭୋଜନ; **Sāndhi(ndi)** ପଂକ୍ତିଭୋଜନ; ବହୁ ଲୋକଙ୍କର ଏକତ୍ର ଭୋଜନ; पंक्ति भोजन ପଙ୍ଗତ ( ଗୋପୀନାଥ ନନ୍ଦ )—A dinner पंघत, पंगत in which many people dine together; a caste-dinner; a social dinner.

**ସାନ୍ଧିକ**—ସଂ. ବି ( ସନ୍ଧା=ମଦ୍ୟ ସନ୍ଧାନ+ଇକ )—୧ । ଶୌଣ୍ଡିକ; **Sāndhika** ଶୁଣ୍ଢି—1. A distiller of wine. ୨ । (ସନ୍ଧି +ଇକ ) ସନ୍ଧି କର୍ତ୍ତା—2. The maker of a treaty.

**ସାନ୍ଧିବା**—ଦେ. କ୍ରି ( ସମ୍+ଧା ଧାତୁ=ସନ୍ଧିରୁ )—୧ । ଏକାଧିକ **Sāndhibā** ବସ୍ତୁକୁ ଏକତ୍ର ମିଶ୍ରିତ କରିବା ପାଇଁ ହାତଦ୍ୱାରା चटकाना ଚକଟିବା; ଦଳିବା—1. To knead up two or सांदना more than two things. ୨ । ( ସଂ. ସାନ୍ଦ୍ର ) सानना ଘନଭାବରେ ପଦାର୍ଥକୁ ଜଳଦ୍ୱାରା ମିଳାଇବା—2. To mix together very intimately any thing with water. [ ଯଥା—ଚୂନ ବାଲିକୁ ସାନ୍ଧି ମସଲା ତିଆର କରିବା, ମଇଦାକୁ ସାନ୍ଧି ଲୁଚି ତିଆର କରିବା । ] ୩ । ଛିଦ୍ରରେ କୌଣସି ବସ୍ତୁକୁ ପୂରାଇ ଖୋଞ୍ଚିବା—3. To press or ram a thing into a hole. ୪ । ପ୍ରହାର କରିବା; ମାଡ଼ ଦେବା—4. To beat; to deal blows.

**ସାନ୍ଧିବିଗ୍ରହିକ**—ସଂ. ବିଣ.ପୁଂ (ସନ୍ଧିବିଗ୍ରହ+ଇକ)—ସନ୍ଧି ଓ ବିଗ୍ରହ ସାଧନ **Sāndhibigrahika** ବିଷୟରେ ନିପୁଣ—Skilful in bringing about peace and war. [ ଦ୍ର—ପୂର୍ବେ ଓଡ଼ିଶାର ସ୍ୱାଧୀନ ରାଜାମାନେ ବ୍ରାହ୍ମଣମାନଙ୍କୁ ଏହି ଉପାଧି ଦେଉଥିଲେ । ବର୍ତ୍ତମାନ ଏହା ଅପଭ୍ରଷ୍ଟ ହୋଇ 'ଶନ୍ଦବିଗ୍ରହୀ'ରେ ପରିଣତ ହୋଇଅଛି । ଏବେ ବାଲେଶ୍ୱର ଅଞ୍ଚଳରେ 'ସନ୍ଧିବିଗ୍ରହୀ' ଉପାଧିଧାରୀ ବ୍ରାହ୍ମଣ ଦେଖାଯାଆନ୍ତି ] ସଂ. ବି --ସନ୍ଧି ଓ ବିଗ୍ରହ କାର୍ଯ୍ୟରେ ରାଜାଙ୍କୁ ପରାମର୍ଶ ଦେବା କର୍ମଚାରୀ—Foreign Secretary and Minister for peace and war.

**ସାନ୍ଧିବେଳ**—ସଂ. ବିଣ ( ସନ୍ଧିବେଳା+ଅ )—ସନ୍ଧ୍ୟା ସମ୍ବନ୍ଧୀୟ **Sāndhibela** ( ସିଦ୍ଧାନ୍ତ କୌମୁଦୀ )—Relating to evening.

**ସାନ୍ଧ୍ୟ**—ସଂ. ବିଣ ( ସନ୍ଧ୍ୟା+ଭବ ଓ ସମ୍ବନ୍ଧୀୟ ଅର୍ଥରେ ଅ )—୧ । **Sāndhya** ସନ୍ଧ୍ୟାସମ୍ବନ୍ଧୀୟ—1. Relating to the evening. ୨ । ସନ୍ଧ୍ୟାକାଳୀନ—2. Happening in the evening. ୩ । ସନ୍ଧ୍ୟାକାଳରେ ଅନୁଷ୍ଠେୟ—3. Performable in the evening.

**ସାନ୍ଧ୍ୟ କୁସୁମ**—ସଂ. ବି ( କର୍ମଧା. ଏହା ସନ୍ଧ୍ୟା ବେଳେ ଫୁଟିବାରୁ )— **Sāndhya kusuma** ନିଶକ ପୁଷ୍ପ ( ରାଜନିର୍ଘଣ୍ଟ ); ସଦାବହାର ଫୁଲ—Periwinkle ( flower ).

ସଂ. ବଣ (ବହୁବ୍ରୀହି) - ଯେଉଁ ଗଛ ମାନଙ୍କର ଫୁଲ ସନ୍ଧ୍ୟା ବେଳେ ଓ ଭୋର ଫୁଟେ—(trees) Flowering (ସାନ୍ଧ୍ୟ କୁସୁମା—ସ୍ତ୍ରୀ) at dawn and eve.

ସାନ୍ଧ୍ୟ ଗଗନ—ସଂ. ବ (କର୍ମଧା)—ସନ୍ଧ୍ୟାକାଳରେ ବହୁବର୍ଣ୍ଣ ରଞ୍ଜିତ Sāndhya gagana ଅକାଶ—The evening sky.

ସାନ୍ଧ୍ୟ ତାରା(ନକ୍ଷତ୍ର)—ସଂ. ବ (କର୍ମଧା)—୧। ସନ୍ଧ୍ୟାକାଳରେ Sāndhya tārā(nakshatra) ଦେଖାଯିବା ନକ୍ଷତ୍ର—1. A star appearing in the evening. ୨। ସନ୍ଧ୍ୟାକାଳୀନ ଶୁକ୍ର ତାରା—2. The evening star.

ସାନ୍ଧ୍ୟ ଦୀପ (ପ୍ରଦୀପ)—ସଂ. ବ (କର୍ମଧା)—ସନ୍ଧ୍ୟା ପ୍ରଦୀପ; ସଞ୍ଜବତୀ; Sandhya dīpa (pradīpa) ସନ୍ଧ୍ୟାବେଳେ ଜଳାଯିବା ଦୀପ—Lamp or wick lighted at nightfall.

ସାନ୍ଧ୍ୟ ବାତ(ୟୁ)—ସଂ. ବ (କର୍ମଧା)—ସାନ୍ଧ୍ୟ ସମୀର (ଦେଖ) Sāndhya bāta(yu) Sāndhya samīra (See).

ସାନ୍ଧ୍ୟ ଭଜନ—ସ. ବ—ସନ୍ଧ୍ୟାକାଳୀନ ଈଶ୍ୱର ସ୍ତୁତି—Sāndhya bhajana Evening prayer; vespers.

ସାନ୍ଧ୍ୟ ଭୋଜ(ଜି)—ଦେ. ବ (ଅଧୁନିକ)—ସନ୍ଧ୍ୟାକାଳରେ ନିମନ୍ତ୍ରିତ Sāndhya bhoja(ji) ଓ ସମ୍ମିଳିତ ବନ୍ଧୁମାନଙ୍କର ଭୋଜି—সান্ধ্য ভোজ सांध्य भोज Evening party; tea party.

ସାନ୍ଧ୍ୟ ଭୋଜନ—ସଂ. ବ (କର୍ମଧା)—ସନ୍ଧ୍ୟାବେଳେ ଖିଆଯିବା ଖାଦ୍ୟ—Sāndhya bhojana Supper; evening meal.

ସାନ୍ଧ୍ୟ ମିଳନ—ସଂ. ବ (ଅଧୁନିକ)—ବଶିଷ୍ଟ ବ୍ୟକ୍ତିଙ୍କୁ ସମ୍ମାନ Sāndhya milana ଦେଖାଇବା ଉପଲକ୍ଷରେ ସନ୍ଧ୍ୟାକାଳରେ (ସାନ୍ଧ୍ୟ ସମ୍ମି[ମ୍ମେ]ଳନ[ନୀ]—ଅନ୍ୟରୂପ) ନିମନ୍ତ୍ରିତ ଓ ଏକତ୍ର ଉପସ୍ଥିତ ବନ୍ଧୁମାନଙ୍କର ସାମାଜିକ ମିଳନ—An evening party; a social gathering of friends in the evening, generally in honour of some distinguished friend.

ସାନ୍ଧ୍ୟ ସମୀର(ସମୀରଣ)—ସଂ. ବ (କର୍ମଧା)—ସନ୍ଧ୍ୟାବେଳେ ବହୁବା Sāndhya samīra(samīraṇa) ଧୀର ପବନ—The evening breeze.

ସାନ୍ଧ୍ୟ ସମୀରଣ ସେବନ କରିବା—ବେ. କ୍ରି—ସନ୍ଧ୍ୟାବେଳେ ବାହାରେ Sāndhya samīrana sebana karibā ବୁଲି ବାହାରି ଆସିବା—সান্ধ্য সমীরণ সেবন করা सांध्य समीरण सेवन करना To take an airing in the evening.

ସାନ୍ଧ୍ୟାକାଶ—ସଂ. ବ (କର୍ମଧା)—ସାନ୍ଧ୍ୟ ଗଗନ—Sāndhyākāśa The evening sky.

ସାନ୍ଧ୍ୟାଲୋକ—ସଂ. ବ (କର୍ମଧା)—ସନ୍ଧ୍ୟାକାଳୀନ ଆଲୋକ—Sāndhyāloka Evening light; twilight.

ସାନ୍ଧ୍ୟାହ୍ନିକ—ସଂ. ବ (କର୍ମଧା)—ସନ୍ଧ୍ୟାକାଳରେ ଅନୁଷ୍ଠେୟ Sāndhyāhnika ଉପାସନାବିଧି—Evening prayer; vespers.

ସାନ୍ନହନିକ—ସଂ. ବଣ. ପୁଂ (ସନ୍ନହନ+ପ୍ରୟୋଜନ ଅଛି ଏହାର, Sānnahanika ଏହି ଅର୍ଥରେ ଇକ)—୧। କବଚଧର; ସଜାହି ବଶିଷ୍ଟ (ସିଦ୍ଧାନ୍ତ କୌମୁଦୀ)—1. Armoured. ୨। ସେ ବପଦ ଅସନ୍ନ ଦେଖି ସୈନ୍ୟମାନଙ୍କୁ ବର୍ମାବୃତ ହେବା ପାଇଁ ଅଦେଶ ଦଅନ୍ତି—2. Giving order to the soldiers to put on armour on seeing imminent peril. ୩। ବର୍ମ ବହନକାରୀ (ବ୍ୟକ୍ତି) [ବିଶ୍ୱକୋଷ]—3. Carrying armour.

ସାନ୍ନାଯ୍ୟ—ସଂ. ବ (ସମ୍+ଣୀ ଧାତୁ=ନେବା+କର୍ମ, ଯ)—ହବିଃ; Sānnājya ହବନୀୟ ଘୃତ; ଯଜ୍ଞାର୍ଥ ଘୃତ; ମନ୍ତ୍ରପୂତ ଘୃତ—Consecrated ghee used for oblations unto the fire.

ସାନ୍ନାହି(ହୁ)କ—ସ. ବଣ—୧। କବଚ ପରିହିତ—1. Armoured. Sānnāhi(hu)ka ୨। କବଚ ଧାରଣଯୋଗ୍ୟ (ବିଶ୍ୱକୋଷ)—2. Fit to be armoured.

ସାନ୍ନିଧ୍ୟ—ସ. ବ (ସନ୍ନିଧି+ସ୍ୱାର୍ଥେ ଯ)—ସାମୀପ୍ୟ; ନୈକଟ୍ୟ; ସନ୍ନିଧି—Sānnidhya Propinquity; nearness. [ ଦ୍ର—ଅର୍ଚ୍ଚକଙ୍କର ତେଜପ୍ରାବଲ୍ୟ, ଅର୍ଚ୍ଚନର ଅତିଶାୟନ, ପୂଜାରେ ବା ପୂଜକଙ୍କର ସବୁ ଅଙ୍ଗର ପୂର୍ଣ୍ଣତା ଓ ଧ୍ୟାନ ଅନୁସାରେ ପ୍ରତିମାଙ୍କ ଗଢଣ ହେଲେ ଦେବପ୍ରତିମାରେ ଦେବତାଙ୍କର ସାନ୍ନିଧ୍ୟ ହୁଏ, ଅନ୍ୟଥା ହୁଏ ନାହିଁ । ଛାଥିତତ୍ତ୍ୱ । ]

ସାନ୍ନିପାତିକ—ସଂ. ବଣ (ସନ୍ନିପାତ+କୋପନାର୍ଥେ ଇକ)—ସନ୍ନିପାତ Sānnipātika ରୋଗଜନିତ ବା ବାତପିତ୍ତକଫଜ; ତ୍ରିଦୋଷକୋପଜନିତ—Resulting from the morbid state of the 3 humours of the body; resulting from collapse or congestion of the wind, bile and phlegm of the system. ସଂ ବ—ସନ୍ନିପାତ ଜ୍ୱର—Fever due to the morbid condition in the three humours.

ସାନ୍ନିପାତିକ ଜ୍ୱର—ସ. ବ—ତ୍ରିଦୋଷଜ ଜ୍ୱର ରୋଗ—Typhoid Sānnipātika jwara fever; a malignant con- (ସାନ୍ନିପାତିକ ବିକାର—ଅନ୍ୟରୂପ) gestive fever.

ସାନ୍ନ୍ୟାସିକ—ସଂ. ବ (ସନ୍ନ୍ୟାସ+ଗ୍ରାହକାର୍ଥେ. ଇକ)—ସନ୍ନ୍ୟାସୀ—Sānnyāsika An anchorite; a recluse.

ସାନ୍ୱୟ—ସଂ. ବଣ (ସହାର୍ଥ ବହୁବ୍ରୀହି; ସ+ଅନ୍ୱୟ)—ଅନ୍ୱୟ ସହ Sānwaya ବର୍ତ୍ତମାନ—Accompanied with Anwaya.

ସା(ସାଁ)ପ୍—ପ୍ରାଦେ (ସମ୍ବଲପୁର) ବ. (ସଂ. ସର୍ପ)—ସାପ; ସର୍ପ—Sā(sā̃)p Snake; serpent.

ସା(ସାଁ)ପ୍‌କଟି—ପ୍ରାଦେ (ସମ୍ବଲପୁର) ବ—ନେଉଳ—Sā(sā̃)pkati Ichneumon.

ସା(ସାଁ)ପ ଜୋଗ୍—ପ୍ରାଦେ (ସମ୍ବଲପୁର) ବ—ସାପକାତି—Sā(sā̃)pa jog Slough of snakes.

ସାପ—ଦେ. ବ (ସଂ. ସର୍ପ)—୧। ସର୍ପ; ଭୁଜଙ୍ଗ—1. Snake; Sāpa serpent [ ଦ୍ର—ପୁରାଣ ମତରେ ଦକ୍ଷ ପ୍ରଜାପତିଙ୍କ (ମାଈ ସାପ, ସାପୁଣୀ—ସ୍ତ୍ରୀ) କନ୍ୟା ଓ କଶ୍ୟପମୁନିଙ୍କ ଏକତମା

ସାପ ପତ୍ନୀ କଦ୍ରୁଙ୍କ ଗର୍ଭରୁ ଏମାନେ ଜାତ ହୋଇଥିଲେ ।
ସାଁପ ସାଧାରଣତଃ ସାପମାନେ ଲମ୍ବ ଓ ପଦହୀନ । ଏମାନେ
ସମ୍ବଲ· ସାପ୍ ଭୂଇଁରେ ଘୁସୁର ଘୁସୁର ଚାଲନ୍ତି ଓ ଅଧିକାଂଶ ସାପ
ତେ. ପାମ୍ବୁ ବିଷଧର ଅଟନ୍ତି । ଏମାନଙ୍କ ଦାନ୍ତରେ ବିଷ ଥାଏ । ଏହି ବିଷ ପ୍ରାଣୀର ରକ୍ତ ସଙ୍ଗେ ମିଶିଗଲେ ପ୍ରାଣୀ ମରିଯାଏ । ଧଣ୍ଡ ପ୍ରଭୃତି କେତେକ ସାପଙ୍କର ବିଷ ନାହିଁ ଓ ଅଜଗର ପ୍ରଭୃତି କେତେକ ସାପ ମୃଗ ଆଦି ପ୍ରାଣୀମାନଙ୍କୁ ଗିଳି ପକାନ୍ତି । ସାପମାନେ ଅଣ୍ଡଜ । କେବଳ ବୋଡ଼ା ସାପ ମାଆ ପେଟରୁ ଛୁଆ ହୋଇ ଜନ୍ମ ହୁଏ । ଏମାନେ ମୂଷା ଆଦି ଖୋଳିଥିବା ଗାତରେ, ପାହାଡ଼ ଗହ୍ୱରରେ ଓ ଗଛର କୋରଡ଼ରେ ରହନ୍ତି । ସାପମାନେ ଗୁଟିଏ ଅଙ୍ଗୁଳଠାରୁ ୨୦।୨୫ ହାତ ପର୍ଯ୍ୟନ୍ତ ଲମ୍ବ ହୁଅନ୍ତି । କେତେକ ସାପ ପାଣିରେ ରହନ୍ତି । ଆମେରିକା ମହାଦେଶରେ ଏକ ପ୍ରକାର ଭୀଷଣ ବିଷଧର ସାପ ଅଛନ୍ତି, ସେମାନଙ୍କୁ ର୍‍ୟାଟେଲ୍ ( Rattle ) ସାପ କହନ୍ତି । ସେମାନଙ୍କ ଲାଞ୍ଜ ଅଗରେ ହାଡ଼ମାଳ ଲାଗିଥାଏ ଓ ସେମାନେ ଗତି କଲାବେଳେ ସେ ହାଡ଼ଗୁଡ଼ିକ ପରସ୍ପର ସହିତ ବାଜି ଘଡ଼ ଘଡ଼ ଶବ୍ଦ ଦୂରକୁ ଶୁଣାଯାଏ । ସମୁଦ୍ରରେ ଏକ ପ୍ରକାର ଅତି ବୃହତ୍ ସାପ ଅଛନ୍ତି ଓ ସେମାନେ ଲମ୍ବରେ ବହୁ ଶତ ହାତ ବୋଲି ଶୁଣାଯାଏ । ପୁରାଣରେ ସାତ ଫେଣା ଓ ସହସ୍ର ଫେଣାଯୁକ୍ତ ସାପ ଥିବା ଲେଖାଅଛି । ହିନ୍ଦୁ ପୁରାଣ ମତରେ ସହସ୍ରଫଣାଧାରୀ ବାସୁକି ଏ ପୃଥିବୀକୁ ଟେକି ଧରି ଅଛି । ସର୍ପର ଶତ୍ରୁ ନେଉଳ ଓ ମୟୂର ଅଟନ୍ତି । ଏମାନେ ସାପକୁ ମାରି ଖାଆନ୍ତି । ସାପମାନଙ୍କ ଅନ୍ତକ ଗରୁଡ଼ ବୋଲି ମଧ୍ୟ ପୁରାଣରେ ଅଛି । ନାଗ, ତମ୍ପ ଆଦି କେତେକ ବିଷଧର ସର୍ପଙ୍କର ଫଣା ଅଛି । କେଳାମାନେ ପଦ୍ମତୋଳା ବୋଲି ଓ ନାଗେଶ୍ୱରୀ ନାମକ ଯନ୍ତ୍ର ବଜାଇ ମନ୍ତ୍ର ଓ ଔଷଧ ଦ୍ୱାରା ବିଷଧର ସର୍ପଙ୍କୁ ବଶ କରନ୍ତି । ପୁରୀ ଜିଲ୍ଲାରେ ଆଶ୍ୱିନ ମାସରେ ବାହାରିବା ଖାଇ ଯାତରେ ଲୋକେ ନାଗା ସାଜି ମନ୍ତ୍ରବଳରେ ନିଜ ନିଜର ଦେହରେ ଓ ବାହୁରେ ସାପ ଗୁଡ଼ାଇ ହୋଇ ବାହାରିବା ଦେଖାଯାଏ । ସର୍ପ ବିଷର ଅମୋଘ ଔଷଧ ଅଦ୍ୟ ପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନାହିଁ । ନବ ଆବିଷ୍କୃତ ଲେକ୍‌ସିନ୍ ଏଥିର ଗୋଟିଏ ବିଖ୍ୟାତ ଔଷଧ । ଗଦ ନାମକ ଗୁଳୁଚି ଚେର ସାପ ବିଷର ଉତ୍କୃଷ୍ଟ ଔଷଧ ବୋଲି ଦେଖାଯାଇଅଛି । ସାଧାରଣତଃ ସାପମାନେ ଗ୍ରୀଷ୍ମପ୍ରଧାନ ଦେଶରେ ଦେଖାଯାଆନ୍ତି । ଏମାନଙ୍କ ଦେହରେ ଗୋଟିଏ କାତିର ଖୋଳଥାଏ ଓ ବର୍ଷକୁ ବର୍ଷ ଏମାନେ ଏ କାତିକୁ ଛାଡନ୍ତି । ସାପର ବିଷ (ଗରଳ) ସାନ୍ନିପାତିକ ରୋଗରେ ଔଷଧରୂପେ ବ୍ୟବହୃତ ହୁଏ ।

ନାନାଜାତୀୟ ସାପ (ନାଗ, ବୋଡ଼ା, ତମ୍ପ, ଅଜଗର, ଡମଣା, ଧଣ୍ଡ, ଚିତି, ଅହିରାଜ, ମଣିଚୂଡ଼, ଗୋଖର, ମାଟିଦରଜିଆ, ଲଉଡଙ୍କିଆ, ଶଙ୍ଖାମୂଠିଆ ଆଦି)ଙ୍କ ବିଷୟ ସେହି ସେହି ଶବ୍ଦମାନଙ୍କ ତଳେ ଲେଖାଅଛି । କ୍ରୂର ଓ ପରର ଅନିଷ୍ଟକାରୀ ଓ କୁଟିଳପ୍ରକୃତିବିଶିଷ୍ଟ ବ୍ୟକ୍ତିଙ୍କୁ ସାପ ସଙ୍ଗେ ତୁଳନା କରାଯାଏ । ବାଇବଲ୍ ମତରେ ଶୟତାନ (Satan) ସାପ ରୂପ ଧାରଣ କରି ପୃଥିବୀର ଆଦମ ଦମ୍ପତିଙ୍କୁ ଭୁଲାଇ ପାପଗ୍ରସ୍ତ କରିଥିଲା । ସାପର ନାମ ଲୋକେ ସାଧାରଣତଃ ରାତିରେ ଉଚ୍ଚାରଣ କରିବା ଅମଙ୍ଗଳକର ବୋଧ କରନ୍ତି । ଏଥିପାଇଁ 'ସାପ' ଶବ୍ଦ ନ କହି 'ଲମ୍ବ ଜନ୍ତୁ' 'ଲତି' 'କାଠି' ଇତ୍ୟାଦି ଶବ୍ଦ କହନ୍ତି । ସାପ ମହାଦେବଙ୍କ ଭୂଷଣ । ଶ୍ରୀକୃଷ୍ଣ କାଳିୟ ନାମକ ଏକ ବିଷଧର ସାପକୁ ଦଳନ କରିଥିଲେ । ପୁରାଣ ମତରେ ସାପମାନେ ପାତାଳସ୍ଥ ନାଗଲୋକରେ ବାସ କରୁଥିଲେ ଓ ମନୁଷ୍ୟମାନେ ସୁନ୍ଦରୀ ନାଗକନ୍ୟାମାନଙ୍କୁ ବିବାହ କରୁଥିଲେ ।

ସାପମାନେ ପବନ ଆହାର କରନ୍ତି ଓ ଏମାନଙ୍କର କାନ ନ ଥିବାରୁ ଏମାନେ ଆଖିରେ ଶୁଣନ୍ତି ବୋଲି ପୁରାଣକାର ଓ କବି ମାନେ ବିଶ୍ୱାସ କରୁଥିଲେ; କିନ୍ତୁ ଏହା ଭ୍ରାନ୍ତ ଧାରଣା ବୋଲି ପ୍ରମାଣିତ ହୋଇଅଛି । ସାପମାନଙ୍କର ଦାନ୍ତର ଓ ପାଟିର ଗଠନ ଏପରି ଯେ, ଏମାନେ ଯେଉଁ ଜୀବକୁ ପାଟି ଦ୍ୱାରା କାମୁଡ଼ି ଧରନ୍ତି ତାହାକୁ ଛାଡ଼ି ଦେଇ ପାରନ୍ତି ନାହିଁ ଓ ଧୃତ ଜୀବକୁ ଗଳାଧଃକରଣ କରିବା ଛଡ଼ା ତାକୁ ପାଟିରୁ ଛାଡ଼ି ଦେବାର ଉପାୟ ଏମାନଙ୍କର ନ ଥାଏ ।

କେତେକପ୍ରକାର ସାପଙ୍କ ନାମ —

ଅଠ ନାଗ ଷୋଳ ଚିତି, ବାର ବୋଡ଼ା ତେର ଜାତି,
(କେଳାଙ୍କ ପ୍ରବଚନ)

ଗୋଖର—୧ । ଦୁଧିଆ—ବଳରାମ ଗୋଟି—ଧଳା କଣ୍ଠାଚିହ୍ନବିଶିଷ୍ଟ ।
ଜଗନ୍ନାଥଗୋଟୀ—କଳା କଣ୍ଠାଚିହ୍ନବିଶିଷ୍ଟ ।
୨ । ଶ୍ୱେତ—କାନ୍ଥୁଆ, ଗହମା, ଜଡ଼ା ।
ବୋଡ଼ା—ଚନ୍ଦନ ବୋଡ଼ା, କାଦୁଅ ବୋଡ଼ା ।
ଚିତି—ଧଳା ଚିତି, କଳା ଚିତି ।
ତମ୍ପ—ତମ୍ବାକାଟିଆ, ଇଟାଳିଆ, କୋଳଥିଆ, ଅଢେଇ କଅରିଆ, ଗେଣ୍ଡାଳିଆ

ନାଗ—ପଦ୍ମ, ଶଙ୍ଖଚୂଡ଼, କର୍କୋଟକ, ମହାପଦ୍ମ, କୁଳିକ, ତକ୍ଷକ, ବାସୁକି, ଅନନ୍ତ ।

ଶଙ୍ଖାମୂଠିଆ, ଅହିରାଜ, ମଣିଚୂଳ, ଶଙ୍ଖଚୂଳ, ଅଜଗର, ଡମଣା, ମାଟିଦରଜିଆ, ଧଣ୍ଡ, କାଣିନାଗ, ଲଉଡଙ୍କିଆ, ରଣା, ଦୋମୁଣ୍ଡିଆ ଇତ୍ୟାଦି ।

କୃଷ୍ଣସିଂହ ମହାଭାରତ ଆଦିପର୍ବରେ ସାପମାନଙ୍କର ବଂଶ ଓ ଭିନ୍ନ ଭିନ୍ନ ନାମ ସମ୍ବନ୍ଧେ ନିମ୍ନଲିଖିତ ପଦମାନ ଅଛି—

ବହୁତ ଭୁଜଙ୍ଗମ ଅଛନ୍ତି ମହୀରେ,
କେତେ ତାହା ବିସ୍ତାରି କହିବା ସଭିରେ ।
ପ୍ରଥମେ କଦ୍ରୁ ପୁତ୍ର ଶେଷଦେବ ହେଲେ,
ତାହାଙ୍କର ଅନୁଜ ବାସୁକି ବୋଲାଇଲେ ।

ଐରାବତ ତକ୍ଷକ କର୍କୋଟ ଧନଞ୍ଜୟ,
ମଣିନାଗ ପୂରଣ ଅନ୍ତ କାଳକେୟ ।
ପିଞ୍ଜରକ ଏଲାପତ୍ର ମାଲ ଅମାଲ,
ବାମନ କଲମାଷ ଅର୍ଦ୍ଧକ ଶବଳ ।
ହରିଦ୍ରକ କଳଶ ପୋତକ ସୁରମୁଖ,
ବମଲ ପିଣ୍ଡକ ନୋଅପ୍ର ଦଧିମୁଖ ।
ଶଙ୍ଖ ବାଳଶିଖ ନିଷ୍ଠାନକ କପୋତକ,
ପିଙ୍ଗଳ ନହୁଷ ଯେ ମୁଦ୍‌ଗର ପିଣ୍ଡକ ।
ବାହ୍ୟକର୍ଣ୍ଣ ହସ୍ତିପଦ ଯେ ଅଶ୍ୱତର,
ବୃତ୍ତ ସମ୍ବର୍ତ୍ତକ କୁଷ୍ମାଣ୍ଡକ କୁଞ୍ଜର ।
ଶଙ୍ଖମୁଖ ପିଣ୍ଡାରକ ଯେ କ୍ଷେମକ,
କର୍କଶ ଅକର୍କଶ ବଲ୍ୱକ ଉଲକ ।
କୁଣ୍ଡୋଦର ମହୋଦର କରବୀର,
ପୁଷ୍ପଦଂଷ୍ଟ୍ର ବଲ୍ୱାଣ୍ଡର ଶଙ୍ଖଶିର ।
ମୂଷକାଦ ପୂର୍ଣ୍ଣଭଦ୍ର ହରିଦ୍ରକ,
ଶ୍ରୀବତ୍ସ ଅପରାଜିତ ଯେ ଜ୍ୟୋତକ ।
କଉରବ୍ୟ ଧୃତରାଷ୍ଟ୍ର ଶଙ୍ଖପିଣ୍ଡ,
ବରଜା ସୁବାହୁ ଫିରଜ ଅଳପିଣ୍ଡ ।
ହସ୍ତିପିଣ୍ଡ ସୁମୁଖ ହେମଗୁହ କୁଠର,
କୌଣପାଶନ କୁମୁଦ ଉତ୍ତର ପ୍ରଭାକର ।
କମ୍ବଳ କର୍ଦ୍ଦମ ବହୁମୂଳକ ନାଗ
ଏମାନେଟି ନାଗମାନଙ୍କ ମହାଭାଗ ।

ସାପମାନଙ୍କ ସମ୍ବନ୍ଧେ କେତେକ ଡଗ, ପ୍ରବଚନ, ନ୍ୟାୟ ଆଦି—

୧ । ସାନ ସାପର ବିଷ ଝାଣ (ଜାତ୍ର)—ପ୍ରବଚନ କ୍ଷୁଦ୍ର ସର୍ପର ବିଷ ଉତ୍କଟତର ।

୨ । ବିଛା ମନ୍ତ୍ର ନ ଜାଣି ସାପ ଗାତରେ ହାତ ପୂରାଇବା—ନ୍ୟାୟ ।

୩ । ସାପ ମାରି ପର ଗଳାରେ ପକାଇବା—ନ୍ୟାୟ ।

୪ । ବେଙ୍ଗରେ ମନ୍ତ୍ର ସାପ ବାନ୍ଧିବା—ନ୍ୟାୟ ।

୫ । ସାପ ଗଲେ ଗାତେ, ଡମ୍ବ ଗଲେ ଭାତା ସାତେ—ପ୍ରବଚନ ।

୬ । ସୁଅରେ ସାପ ମୁଣ୍ଡ ଛିଣ୍ଡି ଯାଉଛି—ପ୍ରବଚନ ।

୭ । ସାପକୁ ଦୁଧ ପିଆଇଲେ ଗରଳ ବାନ୍ତ କରେ—ନ୍ୟାୟ ।

୮ । ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ; ସାପ ନ ମରୁ କି ବାଡ଼ି ନ ଭାଙ୍ଗୁ—ନ୍ୟାୟ ।

୯ । ସାପ ମରୁ ବାଡ଼ି ନ ଭାଙ୍ଗୁ—ନ୍ୟାୟ ।

୧୦ । ସାପ ହୋଇ କାମୁଡ଼ିବା, ଗୁଣିଆଁ ହୋଇ ଝାଡ଼ିବା—ନ୍ୟାୟ ।

୧୧ । (ନାଗ) ସାପ ଚୁଟିକୁ ଧରିବା—ନ୍ୟାୟ ।

୧୨ । ସାପ ନେଉଳ ସମ୍ବନ୍ଧ—ନ୍ୟାୟ ।

୧୩ । ସାପ ପର ଗାତ ଖୋଜିବା—ନ୍ୟାୟ ।]

୨ । ( ଲକ୍ଷଣାର୍ଥ ) ପରର ଅନିଷ୍ଟକାରୀ ବ୍ୟକ୍ତି; କ୍ରୂର ଓ ଖଳ ବ୍ୟକ୍ତି—2. (metaphorical) A wicked person.

**ସାପ କଙ୍କାଳି**—ଦେ. ବି (ସଂ. ସର୍ପ କଙ୍କାଳିକା)—ସପୁଷ୍ପ ଜାତୀୟ ଔଷଧି ବୃକ୍ଷ ବିଶେଷ ( ହରେକୃଷ୍ଣ ଦ୍ରବ୍ୟଗୁଣ )—(ସାପ କଙ୍କାଳିଆ—ଅନ୍ୟରୂପ)
Sāpa kaṅkāḷi Name of a medicinal tree; Vanda Roxburghi.
সর্প কঙ্কালিকা सर्प लता

**ସାପ କଣ୍ଟା**—ଦେ. ବି (ସଂ. ସର୍ପ+କଣ୍ଟକ)—ମୃତ ସର୍ପର ଅସ୍ଥି କଙ୍କାଳ—
Sāpa kaṇṭā Skeleton or bones of a dead snake.
সাপের কাঁটা साँपका काँटा

**ସାପ କାଟି**—ଦେ· ବି—୧ । ସର୍ପାଘାତ—1. Snake-bite. ୨ । ସର୍ପାଘାତ ଜନିତ ମୃତ୍ୟୁ—2. Death due to snake bite.
Sāpa kāṭi
সাপ কাটি साँप कटी

**ସାପ କାଟିବା**—ଦେ· ବି—ସର୍ପାଘାତ ଜନିତ ମୃତ୍ୟୁ ଘଟିବା—
Sāpa kāṭibā Death by snake bite.
সাপ(পে) কাটা (ପ୍ରୟୋଗ—ତାକୁ ସର୍ପ କାଟିଲା—ସର୍ପ ଦଂଶନ ଦ୍ୱାରା ତାହାର ମୃତ୍ୟୁ ଘଟିଲା ।)
साँप काटना

**ସାପ କାତି**—ଦେ. ବି—ସାପ ଦେହର ଖୋଳ ବା ଆବରଣ—
Sāpa kāti The slough of a snake.
সাপের খোলস साँप केचुआ

**ସାପ କାମୁଡ଼ା**—ଦେ. କ୍ରି—ସର୍ପ ଦଂଶନ—Snake-bite.
Sāpa kāmuṛā সাপের কামড় साँप काटना

**ସାପ କାମୁଡ଼ିବା**—ଦେ· ବି—ସର୍ପ ଦଂଶନ—
Sāpa kāmuṛibā Snake-bite.
সাপ কামড়ান साँप काटना

**ସାପକ୍ଷ**—ଦେ. ବି (ସଂ. ସପକ୍ଷ)—୧ । ଅନୁକୂଳ—1. Propitious; favourable. ୨ । ସ୍ୱପକ୍ଷୀୟ—2. Belonging to one's party. ବି—ସହାୟ—Support; help.
Sāpaksha
সাঁপক্ষ, সপক্ষ [ସାଅ(ହା)ପକ୍ଷ—ଅନ୍ୟ ରୂପ]
सपक्ष

**ସାପ ଖେଳା**—ଦେ. ବି—କେଳାମାନଙ୍କର ମନ୍ତ୍ର ବୋଲି ବା ନାଗେଶ୍ୱରୀ ନାମକ ଯନ୍ତ୍ର ବଜାଇ ସାପକୁ ଉତ୍ଥିତ ଅବସ୍ଥା କରାଇବା—Causing a snake to rear its head, being attracted by the song or flute of the snake charmer.
Sāpa kheḷā
সাপ খেলন
साँप खेलाना

**ସାପ ଖେଳା(ଳେ)ଇବା**—ଦେ. କ୍ରି—(କେଳା) ନାଗେଶ୍ୱରୀ ବଜାଇ ବା ଶବ୍ଦଚୋଳା ଅଦ ବୋଲି ସାପକୁ ମୁଗ୍ଧ କରି ଆଗରେ ରଖାଇବା ବା ଫଣା ଟେକାଇବା—
Sāpa kheḷā(ḷe)ibā
সাপ খেলান
साँप खेलाना (a snake charmer) To cause a snake to be charmed or to rear its head and expand its hood, by uttering certain formulae and songs and blowing flutes. [ ଦ୍ର—ଆମ ଦେଶର କେଳାମାନେ ସାପକୁ ଖେଳାଇବା ସମୟରେ ଯେଉଁ ଗୀତ ଓ ପଦମାନ ବୋଲନ୍ତି

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | "ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ୍ | ଉଅ | ନ୍ଧ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଘ | ସ | ଟ୍ୟ | ଇଅ | ଙ୍ଗ | ନ୍ଦ |

ତାହାକୁ 'ପଦ୍ମତୋଳା' ବୋଲଯାଏ । ଏହି ଗୀତରେ ଶ୍ରୀକୃଷ୍ଣଙ୍କ ଜନ୍ମ, କାଳିନ୍ଦୀ ହ୍ରଦରେ ଶ୍ରୀକୃଷ୍ଣଙ୍କର କାଳୀୟଦଳନ ଆଦି ବର୍ଣ୍ଣିତ ହୋଇଥାଏ । ସ୍ଥାନ ବିଶେଷରେ ସାପୁଆମାନେ ବଂଶୀ ଓ ନାଗେଶ୍ୱର ବଜାଇ ସାପକୁ ଖେଳାନ୍ତି ।]

ସାପ ଗରଜନ—ଦେ. ବି (ସଂ. ସର୍ପ ଗର୍ଜନ)—ସାପର ଫଁ ଫଁ ଶବ୍ଦ—
Sāpa garajana The hissing of a snake.
[ସାପ ଗର୍ଜନ—ଅନ୍ୟରୂପ] সাপের গর্জন साँप गरजन

ସାପ ଗରଳ—ଦେ. ବି (ସଂ. ସର୍ପ ଗରଳ)—ସର୍ପର ବିଷ—
Sāpa garaḷa সাপেরগরল साँपविष Snake poison.

ସାପ ଗାତ—ଦେ. ବି (ସ. ସର୍ପ+ଗର୍ତ୍ତ)—ସର୍ପମାନେ ଯେଉଁ ଗର୍ତ୍ତରେ
Sāpa gāta ରହନ୍ତି—A hole inhabited by a
সাপের গর্ত साँपका बिल, बाँबी snake.
[ଦ୍ର—ସର୍ପମାନେ ରହିବା ପାଇଁ ନିଜେ ଗର୍ତ୍ତ ଖୋଳି ପାରନ୍ତି ନାହିଁ । ସେମାନେ ମୂଷା ଆଦିଙ୍କ ଗର୍ତ୍ତ ବା ଗଛର କୋରଡ଼ ବା ପଥର ଖୋଲରେ ରହନ୍ତି ।]

ସାପ ଚୋଟ—ଦେ. ବି—ସର୍ପର ଦଂଶନ—
Sāpa choṭa সাপেরচোট साँपचोट Snake bite.

ସାପ ଛତୁ—ପ୍ରାଦେ (ଜୟପୁର) ବି—(ସଂ. ସର୍ପଛତ୍ର)—ଏକ ପ୍ରକାର
Sāpa chhatu ଛତୁ—A kind of mushroom.

ସାପ ଛୁଇଁବା—ଦେ. ବି (ଶୁଭାଶଂସୀ ବାକ୍ୟର ପ୍ରୟୋଗ)—ସାପ
Sāpa chhuiñbā କାମୁଡ଼ିବା—(Euphemism) Snake-
সাপে ছোঁয়া साँप छूना biting.

ସାପଟା(ଟେ)ଇବା—ଦେ. କି—୧ । ସାପ ପରି ଗୁଡ଼ାଇ ହୋଇ କୁଣ୍ଡ
Sāpaṭā(ṭe)ibā ଳିକରେ ଧରିବା; ଜଡ଼ାଇ ଧରିବା—1. To
ସାପଟି ଧରିବା } —ଅନ୍ୟରୂପ entwine (like a snake).
ସାପଟେଇ ଧରିବା } ୨ । ଜାବୁଡ଼ି କରି ଧରିବା—
সাপটান चिपटना 2. To hold firmly.

ସାପ ଡଂ(ଡଂ,ଦଂ)ଶିବା—ଦେ. ବି ( ସଂ. ସର୍ପଦଂଶକ )—ସାପ
Sāpa ḍaṁ(ḍhaṁ,daṁ)sibā କାମୁଡ଼ିବା ( ଦେଖ )—
সাপ কামড়ান साँप काटना Sāpa kāmuṛibā. (See)

ସାପତନ—ଗ୍ରା. ବିଣ (ସଂ. ସାପତ୍ନ୍ୟ)--ସାବତ [ଭାଇ, ଭଉଣୀ, ମାଆ]—
Sāpatana Step (brother, sister, mother).
সত सौतिला [ଭ୍ର—ଗରୁଡ଼ ତ ଅଟଇ ସାପତନ ଭାଇ । କୃଷ୍ଣସିଂହ. ମହାଭାରତ. ବନ ।]

ସାପତ୍ନ—ସଂ. ବି (ସପତ୍ନ=ଶତ୍ରୁ+ସ୍ୱାର୍ଥେ. ଅ; କିମ୍ବା ସପତ୍ନୀ+
Sāpatna ଅପତ୍ୟାର୍ଥେ. ଅ)—୧ । ଶତ୍ରୁ—1. Enemy. ୨ । ଶତ୍ରୁତା—2. Enmity.

ସାପତ୍ନ୍ୟ—ସଂ. ବି (ପୁଂ) (ସପତ୍ନୀ+ଅପତ୍ୟାର୍ଥେ. ଯ)—୧ । ସପତ୍ନୀ-
Sāpatnya ପୁତ୍ର; ସହୋଦରୀଶ ପୁତ୍ର—1. Step son. ୨ । (+ଭାବ. ଯ) ସପତ୍ନୀ ଭାବ—2. The state of being a co-wife. ୩ । (+ସମାନାର୍ଥେ.ଯ) ଶତ୍ରୁ (ଅମର)—3. Enemy. ୪ । ପ୍ରତିଦ୍ୱନ୍ଦ୍ୱୀ—4. Rival. ୫ । ଶତ୍ରୁତା—5. Enmity.

ସାପତ୍ନେୟ—ସଂ. ବି (ପୁଂ) (ସପତ୍ନୀ+ଅପତ୍ୟାର୍ଥେ. ଏୟ)-ସପତ୍ନୀପୁତ୍ର—
Sāpatneya Step son.
(ସାପତ୍ନେୟୀ—ସ୍ତ୍ରୀ)

ସାପତ୍ୟ—ସଂ. ବିଣ. ପୁଂ (ସହାର୍ଥ ବହୁବ୍ରୀହି; ସ+ଅପତ୍ୟ)—ସନ୍ତାନ
Sāpatya ବିଶିଷ୍ଟ—Having offspring.
[ସାପତ୍ୟା—ସ୍ତ୍ରୀ]

ସାପଦ୍—ସଂ. ବିଣ ( ସହାର୍ଥ ବହୁବ୍ରୀହି; ସ+ଆପଦ୍ )-ଆପଦ୍‌ବିଶିଷ୍ଟ—
Sāpad Dangerous.

ସାପ ପେଡ଼ା—ଦେ. ବି—କେଳାମାନେ ଯେଉଁ ପେଡ଼ାରେ ସାପକୁ
Sāpa peṛā ରଖନ୍ତି; କରଣ୍ଡ—A case in which
সাপের পেঁড়ী साँपकि पोती snakes are kept confined.

ସାପ ଫେଣା(ଣା)—ଦେ. ବି (ସଂ. ସର୍ପ ଓ ଫଣା)—ସର୍ପର ଫଣା—
Sāpa phena(ṇā) The expanded hood of a snake.
সাপের ফণা साँपका फेंच

ସାପ ବଣ—ଦେ. ବି (ସଂ. ସର୍ପ+ବନ)—ସର୍ପମୟ ସ୍ଥାନ—
Sāpa baṇa The place infested with snakes.
সাপের বন साँप बन (ତୁଳନା କର—ସୁନ୍ଦରବଣ)

ସାପ ବିଷ—ଦେ. ବି (ସଂ. ସର୍ପ ବିଷ)—ସର୍ପର ଗରଳ—
Sāpa bisha সাপের বিষ साँप विष Snake poison.

ସାପ ମଣି—ଦେ. ବି (ସଂ. ସର୍ପମଣି)—ନାଗ ଆଦି ସାପଙ୍କ ମୁଣ୍ଡରେ ଥିବା
Sāpa maṇi ଏକ ପ୍ରକାର ମଣି—(ଏହାକୁ କେତେକ ଲୋକ
সাপের মণি କେଉଁଠିଅଛି ବୋଲି ପ୍ରଚାର କରନ୍ତି)—The gem
साँप मणि found in the head of some poisonous snakes.

ସାପ ମନ୍ତ୍ର—ଦେ. ବି (ସଂ. ସର୍ପ ମନ୍ତ୍ର)—ସର୍ପମନ୍ତ୍ର; ସାପକୁ ବଶ କରିବା
Sāpa mantra ପାଇଁ କିମ୍ବା ସାପ ବିଷ ଛଡ଼ାଇବା ପାଇଁ
সাপেরমন্ত্র ବ୍ୟବହୃତ ମନ୍ତ୍ର—Mystic formulae used in
साँप मन्त्र charming snakes or in alleviatng the fatal effects of snake bite.

ସାପ ମାରି—ଦେ. ବି (ସଂ. ସର୍ପ+ମାରକ)—ଶ୍ୟେନବର୍ଗର ବଡ଼ାଗର
Sāpa māri ଶିକାରୀ ପକ୍ଷୀବିଶେଷ—The short-
ভাস পক্ষী tailed eagle; Circaetus Gallicus. [ଦ୍ର—
उकाब ଏମାନଙ୍କର ଦୈର୍ଘ୍ୟ ୧୯ ହାତ; ମୁଣ୍ଡ ବଡ଼, ଚଞ୍ଚୁ ବଙ୍କା, ପୁଚ୍ଛ ଦୀର୍ଘ, ନଖ ଛୋଟ । ଏମାନେ ପର୍ବତରେ ଥାଆନ୍ତି ଓ ସାପ ବେଙ୍ଗ ଧରି ଖାଆନ୍ତି ।]

ସାପ ଯୋଗ—ପ୍ରାଦେ (ପାଟଣା) ବି (ତୁଳ,ହି. ସାଂପଯୋଗ)—ସାପ କାତି
Sāp jega —The slough of a snake.

'ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ଠକ୍ଷ୍ମିତ ଅକ୍ଷର ଓ ମାତ୍ରା ଏବଂ ୨ଠକ୍ଷିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚକ୍ଷୁର ବଦଳରେ ୨ ବା ୧ ଚକ୍ଷିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ'ଖୋଜିବେ; 'ମୁଢ଼' ନ ମିଳିଲେ 'ମୂଢ଼' ଖୋଜିବେ; 'ବନ୍ଧୁ'ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଗଳ' ନ ପାଇଲେ'ଅର୍ଗଳ' ଦେଖିବେ,'ଅଲବଢ଼' ନ ପାଇଲେ 'ଅଲ୍‌ବଢ଼'ଦେଖିବେ

**ସାପରାଧ**—ସଂ. ବିଣ. ପୁଂ ( ସହାର୍ଥ ବହୁବ୍ରୀହି; ସ+ଅପରାଧ )—ଅପରାଧ Sāparādha ଯୁକ୍ତ—Offending. ବି. ପୁଂ—ଅପରାଧୀ— (ସାପରାଧା—ସ୍ତ୍ରୀ) Offender.

**ସାପିଣ୍ଡ(ଣ୍ଡ୍ୟ)**—ସଂ. ବି (ସପିଣ୍ଡ+ଭାବ. ଅ; ଯ)—ସ୍ଥାବରତ୍ୱ; ସପିଣ୍ଡତା Sāpiṇḍa(ṇḍya) (ପୁରୁଷମାନଙ୍କ ମଧ୍ୟରେ ୭ ପୁରୁଷ ପର୍ଯ୍ୟନ୍ତ ଗୋତ୍ର ସମ୍ବନ୍ଧ ଓ କନ୍ୟା ପକ୍ଷରେ ୩ ପୁରୁଷ ପର୍ଯ୍ୟନ୍ତ ରକ୍ତ ସମ୍ବନ୍ଧ)—Consanguinity; kinship (within 7 generations of agnates in the case of males and 3 in case of females).

**ସାପୁଆ**—ଦେ. ବିଣ—୧ । ସାପ ପରି ସରୁ—1. Narrow ( as a Sāpuā snake ). ( ଯଥା—ସାପୁଆ ଡଙ୍ଗା, ସାପୁଆ ନଈ । ) ସକ ସାଁପିୟା ୨ । ଯେଉଁଠାରେ ବହୁତ ସାପ ଥାଆନ୍ତି; ସର୍ପମୟ—2. Full of or infested with snakes. ୩ । ସର୍ପ ଦମନ କରିବାରେ ଦକ୍ଷ—3. Skilful in handling snakes. ସାପুড়େ ୪ । ସାପ ଧରିବା ଓ ସାପ ଖେଳାଇବା ଯାହାର ଜୀବିକା—4. Earning livelihood by catching and charming snakes. ସକ ଡୋଙ୍ଗା ଦେ.ବି-ସାଁପିୟା ନାବ ୧ । ଏକପ୍ରକାର ସରୁ ଡଙ୍ଗା—1. A species of narrow boat. ୨ । ଅଠଗଡ଼ରେ ପ୍ରବାହିତ ସର୍ପୋଣ୍ଟ୍ ନଦୀ ( ଦେଶ )—2. Name of a small river flowing in the Āṭhagarḍa State. ପ୍ରାଦେ· ( ବାଲେଶ୍ୱର ) ବି—ମତ୍ସ୍ୟବିଶେଷ—A kind of fish. ପ୍ରାଦେ· ( ଗଡ଼ଜାତ ) ବି—ଚିଚିଡ଼ା—Snake gourd. ପ୍ରାଦେ. ( ଗଞ୍ଜାମ ) ବି—ଘରର ଛପର ଉପରେ ବସିଥିବା ଗୁଜକୁ ଯେଉଁ ସରୁଆ କାଠଖଣ୍ଡିମାନ ଟିଣ୍ଡ ଦିଆ ହୋଇ ପରି ରହିଥାଏ—The diagonal pieces of wood which support the perpendicular Guja put on an Urā of a thatched house.

**ସାପୁଆ କେଳା**—ଦେ· ବି—ଏକଜାତୀୟ କେଳା; ଯେଉଁ କେଳାମାନେ Sāpuā keḷā ସାପ ଧରି ଓ ସାପ ଖେଳାଇ ଜୀବିକା ନିର୍ବାହ ସାପুড়ିଆ, ସାପুড়େ କରନ୍ତି—A class of wandering ସାଁପ କେଳା snake charmers. [ ଉ—ଲୁହୁଡ଼ା ପୋଷା, ଭଙ୍ଗ ବେଲୁଆ, ବେକେ ଗରଗଡ଼ ମାଳା, ଦୂରରୁ ଦେଖିଲେ ଏହାଙ୍କୁ ଚିହ୍ନିବ କଷ୍ଟେ ଏ ସାପୁଆ କେଳା—ଭଗ । ]

**ସାପୁଆ ଡଙ୍ଗା**—ଦେ. ବି—ଗୋଟିଏ ଲମ୍ବ ଓ ମୋଟ କାଠଗଡ଼ ଖୋଳା Sāpuā ḍangā ହୋଇ ତିଆରି ହୋଇଥିବା ( ସାପ ପରି ) ସରୁ ସରୁ ଡୋଙ୍ଗା ଓ ଲମ୍ବ ଡଙ୍ଗା—A slender and long ସାଁପିୟା ନାବ boat (scooped out of one log of wood); a dug-out.

**ସାପୁଆ ନଈ**—ଦେ. ବି—୧ । ( ସାପ ପରି ) ସରୁଆ ନଦୀ—1. A Sāpuā naī narrow river; rivulet. ୨ । ଅଠଗଡ଼ର ସକ ନଦୀ କ୍ଷୁଦ୍ର ନଦୀ—2. Name of a small river ସାଁପିୟା ନଦୀ flowing in the Āṭhagarḍa State. [ ଦ୍ର—ଏ ନଦୀ ହିନ୍ଦୋଳରୁ ବାହାରି ଢେଙ୍କାନାଳ ଓ ଅଠଗଡ଼ ବାଟେ ବହି ମହାନଦୀରେ ପଡ଼ିଅଛି । ]

**ସାପୁଆ ପଥର**—ଦେ· ବି (ନାମ)—ନୟାଗଡ଼ର ନାଗଝର ନଦୀକୂଳରେ Sāpuā pathara ଥିବା ଗୋଟିଏ ୬୦ ହାତ ଲମ୍ବ ପଥର—A long slab of stone, 60 cubits long, found on the bank of the Nāgajhara river in the Nayāgarḍaa State [ ଦ୍ର—ଏହାର ଆକାର ଓ ଗଢ଼ଣ ଅବିକଳ ସାପ ପରି; ବର୍ଣ୍ଣ ଈଷତ୍ କଳା ଓ ଧଳା ମିଶା । ]

**ସାପୁଆ ବିରୁଡ଼ି**—ପ୍ରାଦେ. ( ଗଡ଼ଜାତ ) ବି—ଏକଜାତୀୟ ବିରୁଡ଼ି—Sāpuā birurḍi A kind of wasp. [ଦ୍ର—ଏମାନଙ୍କର ବସା ବା ଫେଣା ସାପଙ୍କ କାତି ପରି ଲମ୍ବା ଓ ସରୁ । ]

**ସାପୁଆ ମହୁଫେଣା**—ପ୍ରାଦେ· (ଗଡ଼ଜାତ) ବି—ଏକପ୍ରକାର ମହୁମାଛିଙ୍କ Sāpuā mahupheṇā ଦ୍ୱାରା ନିର୍ମିତ ସରୁଆ ମହୁଫେଣା—A long honeycomb made by a kind of bees. [ ଦ୍ର—ଏହି ଫେଣାକୁ ମହୁମାଛିମାନେ ଗଛର କୋରଡ଼ରେ ତିଆରି କରନ୍ତି । ଏହାର ଓସାର ପ୍ରାୟ ଦୁଇ ଅଙ୍ଗୁଳ ଓ ଲମ୍ବା ଏକ ହାତ । ]

**ସାପୁଆ ମୁଣ୍ଡି**—ଦେ· ବି—ଖଣ୍ଡପଡ଼ାର ପର୍ବତବିଶେଷ—Name of a Sāpuā muṇḍi hill in Khaṇḍaparḍā State of Orissa. ( ଉ—ତାହାର ଦକ୍ଷିଣେ ବଣେ ବଲ୍ମୀକ ଅଦ୍ଭୁତ ସେ ଗିରି, ସାପୁଆ ମୁଣ୍ଡି ଅଧଧା ତାହାର—ଚନ୍ଦ୍ରାମଣି ବିବାହଦର୍ଶ । ) [ ଦ୍ର—ଏହାର ଛବି ୧୨୨୯ ପୃଷ୍ଠା । ]

**ସାପୁଟା(ଟେ)ଇବା**—ଦେ. କ୍ରି—ସର୍ପ ପରି ଗୁଡ଼େଇ ହୋଇ ଧରିବା—Sāputā(ṭe)ibā To hold firmly by entwining. ସାପଟାନ ଚିପଟାନା

ସପୁଟା(ଟୋ)ଇ ଧରିବା, ସାପେଟିବା, ସାପୁଟେଇ ଧରିବା, ସାପୁଟେଇବା } ଅନ୍ୟରୂପ

**ସାପୁଣୀ**—ଦେ. ବି. ସ୍ତ୍ରୀ ( ସଂ. ସର୍ପିଣୀ )—୧ । ସ୍ତ୍ରୀ ସର୍ପ—1. A Sāpuṇī female snake. ( ଉ—ସାପୁଣୀ ଫେଣା ଟେକି ସାପିନୀ ସାବଧାନତା ସହିତ ଅନାଇଲା ପରି ଗୁରୁଅଡ଼କୁ ଅନାଇ ଅନର୍ଗଳ କହୁଚି ଓଜାଡ଼ ପକାଉ ଅଛି—ଫଙ୍କିରମୋହନ· ଛମାଣ ଅଠଗୁଣ୍ଠ । ) ୨ । ( ଲକ୍ଷଣାର୍ଥ ) କୁଟିଳ ଓ ଖଳ ପ୍ରକୃତିବିଶିଷ୍ଟା ସ୍ତ୍ରୀ—2. ( figurative ) A wicked woman.

ସାପେକ୍ଷ—ସଂ. ବଣ ( ବହୁବ୍ରୀହି; ସ+ଅପେକ୍ଷା )—୧ । ଅପେକ୍ଷାଯୁକ୍ତ—
Sāpeksha 1. Waiting. ୨ । ପରସ୍ପରାପେକ୍ଷୀ—
(ସାପେକ୍ଷତା[ତ୍ୱ]—ବି) 2. Mutually dependent. ୩ । ପରସ୍ପର ପ୍ରତି ଅକାଙ୍କ୍ଷାବିଶିଷ୍ଟ—3. Mutually disirous of each other. ୪ । ଯେ ଅନ୍ୟର ଅପେକ୍ଷା ରଖେ—4. Depending on another. [ବି—ଯେ ଅନ୍ୟର ଅପେକ୍ଷା ରଖେ ତେ ସାପେକ୍ଷ, ସ୍ୱାମୀ ଓ ସ୍ତ୍ରୀ ପରସ୍ପର ସାପେକ୍ଷ; ଅର୍ଥାତ ସ୍ୱାମୀର ଅର୍ଥ ସ୍ତ୍ରୀ ସାହାଯ୍ୟରେ, ସ୍ତ୍ରୀର ଅର୍ଥ ସ୍ୱାମୀ ସାହାଯ୍ୟରେ ବୋଧଗମ୍ୟ ହୁଏ; ଏଣୁ ସ୍ୱାମୀ ଓ ସ୍ତ୍ରୀ ସାପେକ୍ଷ ଶବ୍ଦ । 'ମୁଁ ତୁମ୍ଭ ଘରକୁ ଯିବି' ଏହି ବାକ୍ୟ ନିରପେକ୍ଷ; କିନ୍ତୁ (ପୂର୍ବଭାଗ) ତୁମ୍ଭେ ଆସ, ତେବେ (ପରଭାଗ) ମୁଁ ତୁମ୍ଭ ଘରକୁ ଯିବି ।' ଏହା ସାପେକ୍ଷ; କାରଣ 'ତୁମ୍ଭ ଘରକୁ ମୋହର ଯିବା' 'ତୁମ୍ଭ ଆସିବା'ର ଅପେକ୍ଷା ରଖେ । ଏହି ଜାତୀୟ ବାକ୍ୟ ସାଙ୍କଳ୍ପିକ ( =Hypothetical ) ନାମରେ କଥିତ । ଅନ୍ୟ ଏକ ଶ୍ରେଣୀର ସାପେକ୍ଷ ବାକ୍ୟ ଆମ୍ଭେମାନେ ବ୍ୟବହାର କରୁଁ ଯାହାକୁ ବୈକଳ୍ପିକ (= Disjunctive ) ବୋଲିଯାଏ; ଯଥା—ରାମ କଟକରେ ଅଛି ( =ପୂର୍ବ ଭାଗ ) ଅଥବା ଗାଁଆଁକୁ ଯାଇଅଛି (=ପର ଭାଗ ) ।' ଏଠାରେ 'ଗାଁଆଁକୁ ଯାଇଥିବା' 'କଟକରେ ନ ଥିବା' ଉପରେ ଓ 'କଟକରେ ଥିବା' 'ଗାଁଆଁକୁ ନ ଯାଇଥିବା' ଉପରେ ନିର୍ଭର କରେ । ସାପେକ୍ଷ ବାକ୍ୟ ଜଟିଳ; ଏହା ଏକାଧିକ ବାକ୍ୟ ବିଶିଷ୍ଟ; କିନ୍ତୁ ତହିଁର ବାକ୍ୟ ପରସ୍ପର ସଂଯୁକ୍ତ; ବିଚ୍ଛିନ୍ନଭାବରେ ଅବସ୍ଥିତ ନୁହେଁ । ସାଂକଳ୍ପିକ ବାକ୍ୟରେ ପୂର୍ବଭାଗ ପରଭାଗର ଅପେକ୍ଷା ରଖେ ନାହିଁ । କେବଳ ପରଭାଗ ପୂର୍ବଭାଗର ଅପେକ୍ଷା ରଖେ । ବୈକଳ୍ପିକ ବାକ୍ୟରେ ଯେ କୌଣସି ଭାଗ ଅନ୍ୟ ଭାଗର ସଂଘଟନ ଉପରେ ନିର୍ଭର କରେ । 'ଅନୁପସ୍ଥିତ ଛାତ୍ରମାନେ ଜୋରିମାନା ଦେବେ' ଏହି ବାକ୍ୟ ନିରପେକ୍ଷ । 'ଯଦି ଛାତ୍ର ଅନୁପସ୍ଥିତ ହୁଅନ୍ତି ତେବେ ଜୋରିମାନା ଦେବେ' ଏହା ସାପେକ୍ଷ ବାକ୍ୟ । ଏହି ଦୁଇ ବାକ୍ୟକୁ ଆମ୍ଭେମାନେ ଅନେକ ସମୟରେ ଏକ ଅର୍ଥରେ ବ୍ୟବହାର କରିଥାଉଁ । କିନ୍ତୁ ଏ ଦୁହିଙ୍କ ମଧ୍ୟରେ ଟିକିଏ ସୂକ୍ଷ୍ମ ପ୍ରଭେଦ ରହିଅଛି । ଯେତେବେଳ ପର୍ଯ୍ୟନ୍ତ କୌଣସି ମାତ୍ର ଛାତ୍ର ଅନୁପସ୍ଥିତ ହୋଇ ନାହିଁ ଅର୍ଥାତ୍ ଯଦି ଛାତ୍ରର ଅନୁପସ୍ଥିତି ଭବିଷ୍ୟତ୍-ଗର୍ଭରେ ଥାଏ, ତେବେ ସେ କ୍ଷେତ୍ରରେ ସାପେକ୍ଷ ବାକ୍ୟର ବ୍ୟବହାର ପ୍ରଶସ୍ତ । କାରଣ ନିରପେକ୍ଷ ବାକ୍ୟ ପ୍ରୟୋଗ-ଦ୍ୱାରା ବୁଝାଯିବ ଯେ, ଛାତ୍ର ଅନୁପସ୍ଥିତି ଘଟି ଯାଇଅଛି—ସନ୍ଦର୍ଭ ଲେଖକ. ପ୍ରୋଫେସର୍ ବିପିନବିହାରୀ ରାୟ, ଏମ୍, ଏ, । ]

ସାପ୍ତପଦୀନ—ସଂ. ବଣ ( ସପ୍ତପଦ+ଜାତାର୍ଥେ ଈନ )—୧ । ସାତ ପଦ
Sāptapadīna କଥାଦ୍ୱାରା ଜାତ (ବନ୍ଧୁତା)—1.(friendship) Resulting from the exchange of seven words. ୨ । ସାତଥର ପଦକ୍ଷେପଦ୍ୱାରା ନିର୍ବୃତ୍ତ ବା ନିଷ୍ପନ୍ନ—2. Resulting from seven steps.
ବି—୧ । ସଖ୍ୟ; ବନ୍ଧୁତା—1. Friendship. ୨ । ସାତପଦ କଥାରେ ଉତ୍ପନ୍ନ ବନ୍ଧୁତା—2. Friendship resulting from the exchange of seven sentences. ୩ । ଏକସଙ୍ଗରେ ସାତ ପାଦ୍ଦୁ ଯିବା-ଦ୍ୱାରା ଉତ୍ପନ୍ନ ବନ୍ଧୁତା—3. Frindship contracted between person proceeding seven steps together.

ସାପ୍ତ ପୌରୁଷ—ସଂ. ବଣ (ସପ୍ତପୁରୁଷ+ବ୍ୟାପ୍ତ୍ୟର୍ଥେ ଅ)—ସାତ ପୁରୁଷ
Sāpta paurusha ବ୍ୟାପୀ—Extending over or relating to or existing for seven generations.

ସାପ୍ତମିକ—ସଂ ବଣ (ସପ୍ତମୀ+ଇକ)—ସପ୍ତମୀସମ୍ବନ୍ଧୀୟ ( ବ୍ୟା. ଶା )—
Sāptamika Relating to saptamī.

ସାପ୍ତାହିକ—ସଂ. ବଣ (ସପ୍ତାହ+ସମ୍ବନ୍ଧାର୍ଥେ. ଇକ)—ସପ୍ତାହସମ୍ବନ୍ଧୀୟ—
Sāptāhika Weekly.

ସାପ୍ପି—ପ୍ରାଦେ ( ଗଞ୍ଜାମ ) ବି—ଶିଶୁମାନଙ୍କର ଜିଭ, ପାଟି ଓ ଓଠ
Sāppi ପ୍ରଭୃତିରେ ବାହାରିବା ଛୋଟ ଛୋଟ ଘାଆ—Small sores or eruptions appearing on the tongue, mouth and lips of infants.

ସାଫ୍—ବୈଦେ. ବଣ (ଅ)—୧। ସଫା; ନିର୍ମଳ—1. Clear; clean.
Sāf ୨ । ସ୍ପଷ୍ଟ—2. Distinct. ୩ । ପରିଷ୍କୃତ—
ପରିଷ୍କାର साफ 3. Cleansed. ୪ । ନିର୍ଭୀକ-ଭାବରେ ବୋଲାଯିବା (କଥା); ଖାଣ୍ଟି—4. Out-spoken (words) ୫ । ସ୍ୱଚ୍ଛ—5. Transparent. ୬ । ଅମିଶ୍ରିତ—6. Unadulterated; unmixed. ୭ । ଉଜ୍ଜ୍ୱଳ—7. Bright. ୮ । ନିଷ୍କପଟ—8. Free from guile. ୯ । ଯହିଁରେ ଗୋଳମାଳ ନ ଥାଏ—9. Free from confusion or duplicity. ୧୦ । ନିର୍ବାଧକ—10. Free from impedements. ୧୧ । ଯହିଁରେ କିଛି ଲେଖା ନ ଥାଏ; ସାଦା—11. Blank. ୧୨ । ନିଷ୍ପତ୍ତି କରି ଯାଇଥିବା ( ହିସାବ )—12. Cleared up (account). ୧୩। ସନ୍ଦେହଶୂନ୍ୟ—13. Free doubt.
କ୍ରି. ବଣ—୧ । ସ୍ପଷ୍ଟରୂପେ—1. Clearly. ୨ । ସମ୍ପୂର୍ଣ୍ଣରୂପେ—2. Fully. ୩ । ନିଃସନ୍ଦେହ ରୂପେ—3. Undoubtedly.

ସାଫ୍ କଥା—ଦେ. ବି—୧ । ସ୍ପଷ୍ଟ କଥା, ସ୍ପଷ୍ଟ ବାକ୍ୟ; ଖାଣ୍ଟି କଥା-
Sāf kathā 1. Plain speech; outspoken
ସାଫ୍ କଥା साफ बात words. ୨ । ନିଷ୍କପଟ ବାକ୍ୟ—2. Guileless words.

ସାଫ୍ କ(କୋ)ବ(ବା)ଲ—ବୈଦେ ବି (ଇତର୍ଅ) (ଅ)-ପେଞ୍ଚି କବଲ
Sāf ka(ko)ba(bā)la ବା ବନ୍ଧକପତ୍ର ଦ୍ୱାରା ସମ୍ପତ୍ତିର
সাফ্ কোবালা साफ कबाला ସମୁଦାୟ ସତ୍ତ୍ୱ ବିକ୍ରି କରାଯାଏ—An out-and-out sale; a complete transfer-deed.

ସାଫ୍ କରିବା—ଦେ. କ୍ରି—୧ । ସଫା କରିବା; ପରିଷ୍କୃତ କରିବା—
Sāf kariba 1. To cleanse. ୨ । (ହିସାବ)
সাফ্ করা साफ करना ହିସାବ କରିବା—2. To clear off an account.

ସାଫ୍ କହିବା—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ ସ୍ପଷ୍ଟକଥା କହିବା—
Sāf kahibā 1. To speak plainly to a
সাফ্ বলা साफ कहना person.
୨ । ନିଃସନ୍ଦେହଭାବରେ କହିବା—2. To speak anything free from doubt.

ସାଫ୍ ବତ(ତେ)ଇବା—ଦେ. କ୍ରି—କୌଣସି ବ୍ୟକ୍ତିକୁ କର୍ଣ୍ଣ ବିଦ୍ଧ କରେ
Sāf batā(te)ibā ଅପ୍ରିୟ କଥା ସ୍ପଷ୍ଟରୂପେ କହିବା—
সাফ্ বলা साफ बतलाना To speak out plain unpleasant things.

ସାଫ୍ ସାବ(ବି,ବୁ)ତ୍—ବୈଦେ. ବଣ ( ଅ. ସାଫ୍ ସାବିତ୍ )—୧ ।
Sāf saba(bi,bu)t ସ୍ପଷ୍ଟରୂପେ ପ୍ରମାଣିତ—
সাফ্ সাবুদ साफ साबित 1. Clearly proved; proved beyond doubt. ୨ । ସ୍ୱତଃ ସିଦ୍ଧ—2. Self evident.

ସାଫ୍ ସାବି(ବୁ)ତା—ବୈଦେ. ବି (ଅ. ସାଫ୍ ସବୁତ୍)—୧। ସ୍ପଷ୍ଟ ପ୍ରମାଣ—
Sāf sabi(bu)tā 1. Clear proof. ୨ । ଅକାଟ୍ୟ ପ୍ରମାଣ—2. Incontrovertible proof.

ସାଫ୍ ସୁତ(ତୁ)ର(ରା)—ବୈଦେ. ବଣ (ଅ. ସାଫ୍ ସୁଥ୍‌ରା; ସଦୃତର ଶବ୍ଦ)—୧ । ପରିଷ୍କାର ପରିଚ୍ଛନ୍ନ—1.
Sāf suta(tu)ra(rā)
[ସାଫସୁତୁର(ରା)—ଅନ୍ୟରୂପ] Neat and clean. ୨। ପରିଷ୍କୃତ ଓ
সাফ্ সুতরা साफ सुथरा ସୁନ୍ଦର—2. Cleansed add dainty.

ସାଫସୁ(ସୋ)ଫ୍—ଦେ. ବଣ—ସାଫସୁତର (ଦେଖ)
Sāf su(so)f Sāfsutara (See)
পরিষ্কার পরিচ্ছন্ন साफ सुथरा

ସାଫଲ୍ୟ—ସ. ବି (ସଫଳ+ଭାବ. ଯ)—୧ । ସଫଳତା; କୃତକାର୍ଯ୍ୟତା; ସିଦ୍ଧି—1. Fruitfulness; success.
Sāphalya
୨ । ଫଳୋତ୍ପତ୍ତି—2. Production of the result.
୩ । ଲାଭଜନକତା—3. Profitableness.

ସାଫା—ବୈଦେ. ବଣ ( ଅ. ସାଫ୍ )—ସାଫ୍ ( ଦେଖ )—
Saphā Saph (See) ବି (ଅ. ସଫାହ୍)
পাগড়ী साफा ୧ । ପଗଡ଼ି—1. Turban.
୨ । ଶିକାରୀ କୁକୁରକୁ ଶିକାର କରିବା ପୂର୍ବରୁ ବା ଘୋଡ଼ାକୁ ଦୌଡ଼ାଇବା ପୂର୍ବରୁ ଉପବାସୀ ରଖିବା—2. Keeping a hunting dog without food before hunting.

ସାଫି—ବୈଦେ. ବି ( ଅ. ସାଫ୍ )—୧ । ପରିଷ୍କୃତ ଅବସ୍ଥା—
Sāphi 1.Cleanliness. ୨। ଚିଠାରୁ ବା
সাফী साफी ପାଣ୍ଡୁଲିପିରୁ ପରିଷ୍କୃତଭାବରେ ଲେଖନ—
2. Fair-copying. [ ଉ—ଭୁଲ ସଂଖ୍ୟା ମଧ୍ୟରେ ସିଠାର କଣା, କବଲ ଚିଠା ଓ ସାଫି, ସବୁଲ—ଫଗାରମୋହନ. ଛମାଣ ଆଠଗୁଣ୍ଠ ।) ୩ । ପାଣ୍ଡୁଲିପିରୁ ପରିଷ୍କୃତ ହୋଇ ନକଲ କରି ଯାଇଥିବା ଲେଖ—
3. Faircopied writing. ୪ । ଦେହ ପରିଷ୍କାର କରିବା ପାଇଁ ବ୍ୟବହୃତ ମାର୍ଜନୀ; ଗାମୁଛା; ତଉଲିଆ—4. A towel; a napkin for cleansing the body.
୫ । ଗଞ୍ଜାର ଧୂଆଁ ପିଇବାବେଳେ ଚିଲମର ତଳ ପାଖରେ ଲଗାଇ କରି ପେଉଁ କନା ଖଣ୍ଡି ଧରାଯାଏ—5. A thin rag held below the Ganja-smoking chilam or pipe. ୬ । ଭାଙ୍ଗଛଣା କନା—
6. A rag used for straining Bhānga. ୭। ସାଠରନ୍ଧା; ଯେଉଁ ରନ୍ଧାରେ କାଠକୁ ପାଲିସ କରାଯାଏ—
7. Carpenter's polishing plane. ପ୍ରାଦେ. (କୁଡ଼ଣ ଗଡ଼) ବି—ରୁମାଲ—Handkerchief. ବଣ—
୧ । ସାଫ୍ (ଦେଖ)—1. Sāf. (See) ୨ । ଚିଠାରୁ ପରିଷ୍କୃତ ହୋଇ ନକଲ କରାଯାଇଥିବା—
2. Faircopied.

ସାଫିଆନା—ବୈଦେ. ବି (ଅ)—୧ । ପରିଷ୍କୃତ ଅବସ୍ଥା—
Sāfiānā 1. Cleanliness. ୨ । ନିର୍ଦ୍ଦୋଷତ୍ୱ—
সাফাই 2. Innocence. ୩ । ହାତ ସଫାଇ; ନିପୁଣତା—
सफाई 3. Skill; skill in art; a mechanic's skill of the hand.

ସାଫିଆନା କରିବା—ଦେ. କ୍ରି—୧ । (ମନାର୍ଥ) ନିଜର ନିର୍ଦ୍ଦୋଷତ୍ୱ
Sāfiānā kariba ପ୍ରକାଶ କରିବା—1. To show off one's innocence.
ସାଫିଆନା ଦେଖା(ଖେ)ଇବା } —ଅନ୍ୟରୂପ
ସାଫିଆନା ଦେଖା(ଖେ)ଇ ହେବା }
সাফিয়ানা দেখান, সাফাই দেখান ୨ । ନିର୍ଦ୍ଦୋଷତ୍ୱ ବାହାନା
सफाई दिखाना କରିବା—2. To feign innocence.

ସାଫି କରିବା—ଦେ. କ୍ରି—୧ । ପରିଷ୍କୃତ କରିବା—1. To
Sāfi kariba cleanse. ୨ । ଚିଠାରେ ଲେଖା ଥିବା;
সাফ্ করা ବିଷୟକୁ ପରିଷ୍କାର କରି ଲେଖିବା—
सफाई करना 2. To fair copy.

ସାଫୁଲ୍—ପ୍ରାଦେ (ସମ୍ବଲପୁର) ବଣ. (ସ. ସଫଳ)—ସଫଳ; ସାର୍ଥକ—
Sāful Successful.

ସାଫେଇ—ବୈଦେ. ବି (ଫା)—ସୁନ୍ନୀ ସମ୍ପ୍ରଦାୟଭୁକ୍ତ ମୁସଲମାନମାନଙ୍କର ଚାରି ଶାଖା ମଧ୍ୟରୁ ଏକତମ—One of the four
Sāfei

ସାଫେଈ subsects of the Sunni Mahomedans; the
সাফেই Saffeis. [ ଦ୍ର—ଏମାନଙ୍କର ପ୍ରବର୍ତ୍ତକ ଧର୍ମଗୁରୁ ଇମାମ 'ସାଫେଇ'ଙ୍କ ନାମରୁ ଏହି ନାମ ହୋଇଅଛି । ଏହି ଶାଖା ଆରବ, ମିସର, ଉତ୍ତର ଅଫ୍ରିକା, ବମ୍ବେ ପ୍ରଦେଶସ୍ଥ ବୋହ୍ରାମାନଙ୍କ ମଧ୍ୟରେ ଓ ମଲୟ ଉପକୂଳରେ ଦେଖାଯାଆନ୍ତି । ଅନ୍ୟ ୩ ଶାଖା – ହନାଫି, ହନ୍‌ବଲି, ମାଲିକ ଅଟନ୍ତି ।]

ସାଫ୍ର(ଫ୍ରା)ନ୍—ବୈଦେ. ବି (ଇଂ)—ଜାଫ୍ରାନ୍ କେଶର—
Sāphra(phrā)n জাফ্রান্ কেশর जाफ्रान केसर Saffron.

ସାବ୍(ବା)ରୀ—ପ୍ରାଦେ (ଗଞ୍ଜାମ) ବି. (ଇଂ ସବରେନ୍)—ସ୍ୱର୍ଣ୍ଣ ମୁଦ୍ରା—
Sāb(ba)rā Sovereign (gold coin).

ସାବରା ସୁନା—ପ୍ରାଦେ (ଗଞ୍ଜାମ) ବି—ଇଂଲଣ୍ଡ ପ୍ରଚଳିତ ସ୍ୱର୍ଣ୍ଣମୁଦ୍ରାର
Sābarā sunā ଉପାଦାନ ସ୍ୱର୍ଣ୍ଣ—Sovereign-gold.

ସାବକ୍—ବୈଦେ. ବିଣ (ଅ. ସାବକ୍)—୧ । ପୁରାତନ—1. Old.
Sābak ୨ । ବିଗତ; ପୂର୍ବକାଳୀନ; ଅତୀତ କାଳ ସମ୍ବନ୍ଧୀୟ—
(ବିପ—ହାଲ୍) 2. Relating to the past. ୩ । ପୂର୍ବ
সাবেক साविक ବର୍ଷର—3. Of the past year.

ସାବକ୍ ଦସ୍ତୁର—ବୈଦେ. ବି (ଅ; ସାବକ୍ ଦସ୍ତୁର୍)—ପ୍ରାଚୀନ
Sābak dastur ପ୍ରଥା—Ancient custom.
সাবেক দস্তুর साविक दस्तूर

ସାବକ୍ ବ(ବା)କିଆ(ବାକି)—ବୈଦେ. ବିଣ (ଅ. ସାବକ୍ ବାକ୍ଷୀ)—
Sābak ba(bā)kia(bāki) ୧ । ପୂର୍ବ ବର୍ଷମାନଙ୍କ ପାଇଁ
সাবেক্ বাকি ବାକି—1. Due for the past years ୨ ।
साविक बकाया ପୂର୍ବବର୍ଷରୁ ବାକି ଥିବା—2. Outstanding
সাবেকবাকি from the last year. ବି—ପୂର୍ବ ବର୍ଷର
साविकबकाया ପୂର୍ବବର୍ଷୀ-ସନମାନଙ୍କର ବାକି ଖଜଣା—Arrears of rent due for the previous years.

ସାବକ୍ ସନ—ବୈଦେ. ବି (ଅ)—ଗତ ବର୍ଷ—
Sābak sana সবেক সন साविक सन Last year.

ସାବକ୍ ହାଲ୍—ବୈଦେ. ବିଣ (ଫା. ସହଚର ଶବ୍ଦ)—୧ । ଗତ ଓ
Sābak hāl ବର୍ତ୍ତମାନ—1. Past and present. ୨ । ପୂର୍ବ ବର୍ଷର ଓ ଚଳିତ ବର୍ଷର—2. Of the past
সাবেক্ হাল साविक हाल and of the present year; arrear and current.

ସାବକାର—ପ୍ରାଦେ (ବଉଦ) ବି—୧ । ଅଋଣୀ ବ୍ୟକ୍ତି—A person
Sābakāra without any loan. ୨ । ଧନୀ ବ୍ୟକ୍ତି—
2. A moneyed man. ୩ । ସାହୁକାର; ମୂଳଧନପତି—
3. A capitalist.

ସାବକାଶ—ସଂ. ବିଣ (ବହୁବ୍ରୀହି; ସ+ଅବକାଶ)—୧ । ଅବକାଶ
Sābakāśa ଯୁକ୍ତ—1. Having leisure. ୨ । ଅବସର
ପ୍ରାପ୍ତ—2. On leave. ୩ । ସୁଯୋଗବିଶିଷ୍ଟ—
সাবকাশ 3. Opportune. ଦେ. ବି (ସଂ. ସୁଅବକାଶ)—
सावकाश ୧ । ସୁଯୋଗ—1. Opportunity. ୨ । ଉତ୍ତମ

ଅବସର—2. Fit occasion. ୩ । ଅବକାଶ; ଫୁରସତ—
3. Leisure.

ସାବଗୁଣ୍ଠନ—ସଂ. ବିଣ. ପୁଂ (ସ+ଅବଗୁଣ୍ଠନ)—ଅବଗୁଣ୍ଠିତ; ଓଢଣା
Sābagunṭhana ପକାଇଥିବା—Veiled.
[ସାବଗୁଣ୍ଠନା—ସ୍ତ୍ରୀ]

ସାବତ୍—ବୈଦେ. ବିଣ (ଫା. ସାବତ୍)—ସାବୁତ୍ (ଦେଖ)
Sābat Sābut. (See)

ସାବତ—ଦେ. ବିଣ (ସଂ. ସପତ୍ନୀ)—ବୈମାତ୍ରୟ—Stepmotherly.
Sābata [ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ,
সৎ ଯଥା—ସାବତପୁଅ, ସାବତ ମାଆ, ସାବତ ଭାଇ ଇତ୍ୟାଦି ।]
सौतेला ବି—ବଳଭଦ୍ର ଗୋତ୍ରୀ ବ୍ରାହ୍ମଣ ଓ ଶୂଦ୍ରମାନଙ୍କ ବଂଶୋପାଧି ବିଶେଷ—A family title of Balabhadra gotri Brāhmaṇas and of Śūdras.

ସାବତ ଜନନୀ—ଦେ. ବି. ସ୍ତ୍ରୀ—ବିମାତା—Step-mother. (ଉ—
Sābata janani ସାବତ ଜନନୀ ହଂସ୍ରକଭାବ ନ ଧର ମନେ—
সত্ মা सौतेली मा ବିଶ୍ୱନାଥ. ବିଚିତ୍ର ରାମାୟଣ । )

ସାବତନ—ଦେ. ବିଣ ( ସଂ. ସାପତ୍ନ )—ସାବତ ( ଦେଖ )—
Sābatana Sābata ( See ) [ ଉ—ଏ ଭଳି ଭାଇଙ୍କର ଭୂତେର ସାବତନ ଭାଇ—ଗୋଲକଣ୍ଠ. ସିଦ୍ଧ ରାମାୟଣ । ]

ସାବତନ କଣ୍ଟା—ଦେ. ବି—ମୃତସପତ୍ନୀଗର୍ଭଜାତ ସାବତ ସନ୍ତାନ—
Sābatana kaṇṭā The children left by one's
সতীন কাঁটা सौतेला काँटा deceased co-wife.

ସାବତ ପୁଅ—ଦେ. ବି—ସପତ୍ନୀ ପୁତ୍ର—Stepson. [ ଉ—ଏକା-
Sābata pua ଦରେ ସାବତ ପୁଅଙ୍କ ପାଶକୁ । ନ ଥିବଟି କଥା
সতীন পো, সৎ পো, সৎ বেটা ବାରତା ହୋଇବାକୁ—କୃଷ୍ଣସିଂହ.
सौतेला लड़का ମହାଭାରତ. ବନ । ]
( ସାବତ ଝିଅ—ସ୍ତ୍ରୀ )

ସାବତ ଭାଇ—ଦେ. ବି—ମାତାଙ୍କ ସପତ୍ନୀ-ପୁତ୍ର—Step-brother.
Sābata bhāi [ଉ—ଏ ଦୁହେଁ ଯେ ସାବତ ଭାଇ ତ ତୁମ୍ଭର—
সতীন ভাই सौतेला भाई କୃଷ୍ଣସିଂହ. ମହାଭାରତ. ସଭା । ]
(ସାବତନ ଭାଇ—ଅନ୍ୟରୂପ) (ସାବତ ଭଉଣୀ—ସ୍ତ୍ରୀ)

ସାବତ ମା(ମାତା, ମାଆ)—ଦେ. ବି. ସ୍ତ୍ରୀ—ମାତାଙ୍କ ସପତ୍ନୀ—One's
Sābata mā(mātā, mā-ā) stepmother. [ଉ—
সৎ মা ନକୁଳ ତ ସାବତ ମାଆଙ୍କ ତୁମ୍ଭର—କୃଷ୍ଣସିଂହ. ମହାଭାରତ.
सौतेली मा ବନ । ]

ସାବତା—ବୈଦେ. ବି (ଅ. ସବୂତ)—ସାବୁତା; ପ୍ରମାଣ—Evidence;
Sābatā সাবুত सबूत proof.
সৎ মা सौतेली मा ଦେ. ବି (ସ୍ତ୍ରୀ)—ସାବତ ମା—Step-mother. [ ଉ—ମୋର ଜନନୀଙ୍କ ଠାକୁରାଣୀ ପରେ ସେବନ୍ତି ସବୁ ସାବତା—ପ୍ରାଚୀ. ଉତ୍ତରଖଣ୍ଡ । ]

ସାବତି—ପ୍ରାଦେ. ( କଟକିଆ ) ବି ( ମୂଳ. ଫା. ସବୁତ୍ )—ପ୍ରମାଣ—
Sābati Evidence.

ସାବଦ୍ୟ—ସ. ବଣ ( ସ+ଅବଦ୍ୟ )—୧ । ନନ୍ଦନୀୟ ( ହ୍ରି ଶ )—
Sābadya 1. Blameable. ୨ । ଅଅଉଜ୍ଜନକ ( ହ୍ରି ଶ )—
2. Objectionable. ସ. ବ—ଯୋଗୀମାନଙ୍କଦ୍ୱାରା ଲଭ୍ୟ ଛଅ ଯୋଗଶକ୍ତି ମଧ୍ୟରୁ ଏକ ( ହ୍ରି ଶ )—
One of the powers attainable by Jogis.
[ ଦ୍ର—ଅନ୍ୟ ଦୁଇ ଶକ୍ତିର ନାମ ନିରବଦ୍ୟ ଓ ସୂକ୍ଷ୍ମ—ହ୍ରି ଶ । ]

ସାବଧାନ୍—ଗ୍ରା. ଅ ( ସ. ଅବଧାନ )—୧ । ମହାଶୟ; ହେ ଅବଧାନ ।
Sābadhān मशाशय महाशय —1. Oh ! sir !.
সাবধান ୨ । ( ସଂ. ସାବଧାନ )—ହୁସିଅର !—
सावधान 2. Take care !

ସାବଧାନ—ସ. ବଣ ( ସ+ଅବଧାନ )—୧ । ସଚେତନ—1. Conscious. ୨ । ହୁସିଅର; ସତର୍କ—2 Cautious; careful. ୩ । ଅବହିତ; ମନୋଯୋଗୀ—3. Attentive.
Sābadhāna
(ସାବଧାନା—ସ୍ତ୍ରୀ)
(ସାବଧାନତା—ବ)

ସାବଧାନ କରିବା—ଦେ. କ୍ରି—୧। ମନୋଯୋଗ କରିବା; ମନୋଯୋଗପୂର୍ବକ ଶୁଣିବା ବା ପଢିବା—1. To attend to; to pay attention to.
Sābadhāna karibā
সাবধান করা
सावधान करना ( ଉ—ସୁଜନେ ସାବଧାନ କର । ଦ୍ୱିତୀୟ ଅଧ୍ୟାୟ ବିବରଣ—ପ୍ରାଚୀ. ପୂର୍ଣ୍ଣଚନ୍ଦ୍ର ଚନ୍ଦ୍ରୋଦୟ । )
୨ । ସତର୍କ କରିବା—2. To caution; to warn.

ସାବଧାନ ହେବା—ଦେ. କ୍ରି—କୌଣସି କାର୍ଯ୍ୟରେ ସତର୍କତା ଅବଲମ୍ବନ କରିବା—To take care in any matter; to be careful; to beware.
Sābadhāna hebā
সাবধান হওয়া
सावधान होना

ସାବଧାନୀ—ଦେ. ବଣ (ସଂ. ସାବଧାନା)—୧ । ସାବଧାନର ସ୍ତ୍ରୀଲିଙ୍ଗ—1. The feminine of Sābadhāna.
Sābadhānī
সাবধান (ଉ—ସୁଣ-କଥାକ ! ସାବଧାନୀ ହୁଅରେ ଦେଖି ଯିବାକୁ
सावधान ମୁଁ କହୁଛୁ—ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ) ୨ ।
( ପୁଂ ) ଦତ୍ତାବଧାନ; କୃତସଂକଳ୍ପ—2. Bent upon; intent on. ( ଉ—ଦ୍ରୁପଦଙ୍କ ଯୋଏ ଯେ ସାତ୍ୟକଙ୍କି ଭେଟ । ଯୁଦ୍ଧରେ ହୋଇଛନ୍ତି ମହା ସାବଧାନୀ—କୃଷ୍ଣସିଂହ. ମହାଭାରତ. କର୍ଣ୍ଣ । )

ସାବନ୍—ପ୍ରାଦେ. ( ମେଦନୀପୁର ) ବ—ସାବୁନ୍—
Sāban Soap.

ସାବନ—ସଂ. ବ ( ସବନ+ସମ୍ବନ୍ଧେ ଅ )—୧ । ସବନ ବା ଯଜ୍ଞ ସମ୍ବନ୍ଧୀ ଦିନ—1. A day for vedic sacrifice.
Sābana
୨ । ଯଜ୍ଞକର୍ମାନ୍ତ ( ମେଦିନୀ )—2. The end of vedic sacrifice. ୩ । ଯଜମାନ; ଯେ ଯଜ୍ଞ କର୍ମନିମିତ୍ତ ପୁରୋହିତ ନିଯୁକ୍ତ କରେ ( ମେଦିନୀ )—3. The constituent of a priest; the principal for whom a vedic sacrifice is performed. ୪ । ବରୁଣ ( ମେଦିନୀ )—4. The God of the ocean. ୫ । ଯଜ୍ଞବିଶେଷ—5. A kind of vedic sacrifice. ୬ । ଅହୋରାତ୍ର—6. Day and night. ୭ । ଏକ ସୂର୍ଯ୍ୟୋଦୟରୁ ଅନ୍ୟ ସୂର୍ଯ୍ୟୋଦୟ ବ୍ୟାପୀ କାଳ; ୬୦ ଦଣ୍ଡ ବ୍ୟାପୀ କାଳ—7. The time between one sunrise and the next.
ଦେ. ବଣ—ସାବନା ( ଦେଖ )—
Sābanā ( See )

ସାବନ ଦିନ(ଦିବସ)—ସଂ. ବ—୧ । ଏକ ସୂର୍ଯ୍ୟୋଦୟରୁ ଅନ୍ୟ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ କାଳ; ସୌର ଦିବସ—1. A solar day. ୨ । ଅହୋରାତ୍ର ( ମଳମାସ ତତ୍ତ୍ୱ )—2. A day and night; a day of 24 hours. [ ଦ୍ର—ଏକ ଋଷିର ପ୍ରମାଣ ଅନୁସାରେ ଯେଉଁ ଦିନ ହୁଏ ତାକୁ ଶୁଦ୍ଧ ଦିନ କହନ୍ତି । ଏକ ସୂର୍ଯ୍ୟୋଦୟଠାରୁ ଅନ୍ୟ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଏକ ଅହୋରାତ୍ରକୁ ସାବନ ଦିନ ବୋଲଯାଏ । ଏହାର ପରିମାଣ ୬୦ ଦଣ୍ଡ । କିନ୍ତୁ ସୂର୍ଯ୍ୟଙ୍କ ମନ୍ଦ ଗତି ଓ ଶୀଘ୍ର ଗତି ଓ ସ୍ଥିତିକର ବକ୍ରତା ଯୋଗୁଁ ସାବନ ଦିନର ହ୍ରାସ ବୃଦ୍ଧି ହୁଏ । ଏକ ସୌରଦିବସ ଭିତରେ ନାକ୍ଷତ୍ର ଦିନ ଅପେକ୍ଷା ସାବନ ଏକ ଦିନ ନ୍ୟୂନ ହୁଏ । ସାବନ ୩୦ ଦିନରେ ଏକ ସାବନ ମାସ ହୁଏ । ସାବନ ୧୨ ମାସରେ ଏକ ସାବନ ବର୍ଷ ହୁଏ । ଯେ କୌଣସି ଦିନର ସୂର୍ଯ୍ୟୋଦୟଠାରୁ ଆରମ୍ଭ କରି ୩୦ ଅହୋରାତ୍ର ପର୍ଯ୍ୟନ୍ତ ଏକ ସାବନ ମାସ ହୁଏ । ସାବନ ବତ୍ସର ସୌର ବତ୍ସର ଅପେକ୍ଷା ୫ ଦିନ ୧୫ ଦଣ୍ଡ ୩୧ ବିପଳ ୨୪ ଅନୁପଳ ନ୍ୟୂନ ହୁଏ । ଅତଏବ ଏକ ସୌର ବତ୍ସର=ସାବନ ୩୬୫ ଦିନ ୧୫ ଦଣ୍ଡ ୩୧ ବିପଳ ୨୪ ଅନୁପଳ । ସାବନ ମାସାନୁସାରେ ସଂସ୍କାର ଓ ଯଜ୍ଞକର୍ମାଦି କାର୍ଯ୍ୟ କରାଯାଏ । ଅଶୌଚ ମଧ୍ୟ ସାବନ ମାସ ଅନୁସାରେ ଗୃହୀତ ହୁଏ । ଅଶୌଚ, ସଂସ୍କାର ଓ ଯଜ୍ଞ କର୍ମରେ ସୌର ବା ଶୁଦ୍ଧ ମାସ ଧରାଯାଏ ନାହିଁ । ବିଶ୍ୱକୋଷ ।]

ସାବନ ବର୍ଣ୍ଣ—ଦେ. ବ—୧ । (ସ. ଶ୍ୟାମ) ଶ୍ୟାମବର୍ଣ୍ଣ—1. Dark complexion. ୨ । (ସଂ. ଶ୍ୟାବ)
Sābana barnna
(ସାବନ ବନ—ଗ୍ରାମ୍ୟରୂପ) ଯାହା ଭଲା ନୁହେଁ କି ଗୋରା ନୁହେଁ—
শ্যামবর্ণ 2. Medium complexion (not fair nor dark).
साँवल

ସାବନ ବର୍ଷ(ବତ୍ସର)—ସଂ. ବ—୩୬୦ଟି ସୂର୍ଯ୍ୟୋଦୟ ଯୁକ୍ତ ବର୍ଷ (ସାବନ ଦିନ ଦେଖ)—
Sābana barsha(batsara) The year consisting of 360 sunrises and 360 sunsets.

ସାବନ ମାନ—ସଂ. ବ—ସୂର୍ଯ୍ୟୋଦୟ ଦ୍ୱାରା ପରମିତ ଗଣନା—
Sābana māna Calculation according to sunrise. [ଉ—ଶବାଦି ସାବନମାନରେ ଗୃହୀତ ହୁଏ । ଓଡ଼ିଆ ପାଞ୍ଜି ।]

ସାବନ ମାସ—ସଂ. ବି—୧ । ତିରିଶି ଅହୋରାତ୍ର ବିଶିଷ୍ଟ ମାସ (ସାବନ ଦିନ ଗଣନା ହେଲେ ଏହି ମାସ)—1. A
Sābana māsa month consisting of 30 days and nights.

ସାବଳା—ଦେ. ବିଣ. ପୁଂ (ସଂ. ଶ୍ୟାବ=କୃଷ୍ଣ ପୀତବର୍ଣ୍ଣ)—ଯାହାର
Sābanā ଦେହ ଅତିକଳା ବା ଅତି ଗୋରା ନୁହେଁ; ଶାମବର୍ଣ୍ଣ
(ସାବଳୀ, ସାବ[ଳୋ]ଣୀ—ସ୍ତ୍ରୀ) ଶରୀର ବିଶିଷ୍ଟ; ଫିକା କଳା—
शामवर्ण Brown; brunette; of dark complexion;
साँवला having complexion which is midway between dark and fair; medium-complexioned.

ସାବୟବ—ସଂ. ବିଣ (ବହୁବ୍ରୀହି; ସ+ଅବୟବ)—ଅବୟବ ଯୁକ୍ତ—
Sābayaba Having body; corporeal. ସଂ. ବି—
(ସାବୟବା—ସ୍ତ୍ରୀ) ସାଙ୍ଗରୂପକ ଅଳଙ୍କାର (ଶବ୍ଦକୋଷ)—
A kind of simile (figure of speech).

ସାବର—ସଂ. ବି—୧ । ଲୋଧ୍ର; ଲୋଧ (ଅମର ଟୀକା,ଶବ୍ଦରତ୍ନାବଳୀ)—
Sābara 1. Simplocus Racemosa. (tree) ୨ । ପାପ
(ବିଶ୍ୱ)—2. Sin. ୩ । ଅପରାଧ (ବିଶ୍ୱ)—
3. Offence. ୪। ମୃଗ ବିଶେଷର ମାଂସ (ଶବ୍ଦକୋଷ)—
4. A kind of venison. [ବି—ଏହି ମାଂସ ସ୍ନିଗ୍ଧ, ଶୀତଳ, ଗୁରୁ, ମଧୁରରସ, ମଧୁର ବିପାକ, ଶ୍ଳେଷ୍ମବର୍ଦ୍ଧକ ଓ ରକ୍ତପିତ୍ତନାଶକ—ଶବ୍ଦକୋଷ ।]

ସାବରକ—ସଂ. ବି (ସାବର+କ)—ଶ୍ୱେତ ଲୋଧ୍ର—The white
Sābaraka variety of Simplocus Racemosa.
(ସାବର ଲୋଧ୍ର—ଅନ୍ୟରୂପ)

ସାବର—ପ୍ରାଦେ (ଗଞ୍ଜାମ ଓ କୋରାପୁଟ) ବି. (ଇଂ. ସବରେନ୍)—ଇଂଲଣ୍ଡ
Sābara ପ୍ରଚଳିତ ସ୍ୱର୍ଣ୍ଣମୁଦ୍ରା; ଗିନି—Guinea; sovereign.

ସାବରିକା—ସଂ. ବି—ନିର୍ବିଷ ଜୋକ (ହି. ଶ)
Sābarikā Non-venomous leech.

ସାବର୍ଣ୍ଣ—ସଂ. ବି ପୁଂ (ସବର୍ଣ୍ଣା=ସୂର୍ଯ୍ୟପତ୍ନୀ ଛାୟା+ଅପତ୍ୟାର୍ଥେ. ଅ)—
Sābarṇṇa ୧ । ଦ୍ୱିତୀୟ ମନୁ—1. The 2nd Progenitor of mankind. ୨ । ସାବର୍ଣ୍ଣି
(ଦେଖ)—2. Sābarṇṇi. (See) ସଂ. ବିଣ—
ସବର୍ଣ୍ଣ ସମ୍ବନ୍ଧୀୟ—Relating to Sabarṇṇa.

ସାବର୍ଣ୍ଣ ଲକ୍ଷ୍ୟ—ସଂ. ବି—ଚର୍ମ (ଶବ୍ଦ ରତ୍ନାବଳୀ)—
Sābarṇṇa lakshya Skin.

ସାବର୍ଣ୍ଣି—ସଂ. ବି (ସବର୍ଣ୍ଣା=ସୂର୍ଯ୍ୟପତ୍ନୀ ଛାୟା+ଅପତ୍ୟାର୍ଥେ. ଇ)—
Sābarṇṇi ୧ । ଅଷ୍ଟମ ମନୁ; ସୂର୍ଯ୍ୟପତ୍ନୀ ସଂଜ୍ଞାଙ୍କ ସବର୍ଣ୍ଣ ଛାୟାଙ୍କ ଗର୍ଭଜାତ ମନୁ—Name of a son of the Sun-god, the 8th Progenitor of mankind. [ବି—ସୂର୍ଯ୍ୟଙ୍କ ପତ୍ନୀଙ୍କ ନାମ ସଂଜ୍ଞା; ସେ ସୂର୍ଯ୍ୟଙ୍କ ତେଜ ସହି ନ ପାରି ତାଙ୍କର ସବର୍ଣ୍ଣା (ସଦୃଶ ବର୍ଣ୍ଣା) ଛାୟାଙ୍କୁ ନିର୍ମାଣ କରି ତାଙ୍କୁ ସୂର୍ଯ୍ୟଙ୍କ ନିକଟ ଛାଡ଼ି ପିତୃଗୃହକୁ ଲୁଚି କରି ଗୁଳିଗଲେ । ଏହି ଛାୟାଙ୍କ ଗର୍ଭରେ ସାବର୍ଣ୍ଣିଙ୍କର ଜନ୍ମ ହେଲା । 'ସବର୍ଣ୍ଣା'ଙ୍କ ଗର୍ଭରୁ ଜାତ ହେବାରୁ ସନ୍ତାନଙ୍କ ନାମ ସାବର୍ଣ୍ଣ ବା ସାବର୍ଣ୍ଣି ହେଲା । ଏହାଙ୍କର ଗୋଟିଏ ଭଉଣୀ ତପତୀ ଓ ଭାଇ ଶନି । ଦେବୀ-ମାହାତ୍ମ୍ୟରେ ବର୍ଣ୍ଣିତ ହୋଇଅଛି ଯେ, ସ୍ୱାରୋଚିଷ ମନ୍ୱନ୍ତରରେ ସୁରଥ ନାମକ ରାଜା ରାଜ୍ୟଭ୍ରଷ୍ଟ ହୋଇ ମେଧସ ମୁନିଙ୍କ ଆଶ୍ରମରେ ପହଞ୍ଚି ସେଠାରେ ସମାଧିବୈଶ୍ୟ ସଙ୍ଗେ ଦେବୀ ମାହାତ୍ମ୍ୟ ଶୁଣି ନଦୀତୀରରେ ଦେବୀଙ୍କ ମୃଣ୍ମୟୀ ମୂର୍ତ୍ତି ପୂଜା କରି ନଷ୍ଟ ରାଜ୍ୟ ପ୍ରାପ୍ତ ହେଲେ ଏବଂ ଦେହାନ୍ତେ ସୂର୍ଯ୍ୟଙ୍କ ଔରସରେ ସାବର୍ଣ୍ଣି ମନୁ ନାମରେ ଜନ୍ମ ଗ୍ରହଣ କଲେ । ପୌରାଣିକରେ ମତ୍ସ୍ୟ ପୁରାଣରେ ବର୍ଣ୍ଣିତ ହୋଇଅଛି ଯେ, ମନୁଙ୍କଠାରୁ ୧୦ ଜଣ ସାବର୍ଣ୍ଣି ନାମଧାରୀ ପୁତ୍ର ଜନ୍ମ ହୋଇଥିଲେ ।] ୨। ଗୋତ୍ର ବିଶେଷ—2. The root name of some clans. [ବି—ଏହି ଗୋତ୍ରର ପାଞ୍ଚ ପ୍ରବରର ଯଥା—ଔର୍ବ, ଚ୍ୟବନ, ଭାର୍ଗବ, ଜାମଦଗ୍ନ୍ୟ ଓ ଆପ୍ନୁବତ୍—ଶବ୍ଦକୋଷ ।] ୩ । ଏକ ମନ୍ୱନ୍ତରର ନାମ (ହି. ଶ); ସାବର୍ଣ୍ଣି ମନୁଙ୍କ ଭୋଗକାଳ—3. Name of a Manwantara or the regime of the Sābarṇṇi Manu.

ସାବଳ—ଦେ. ବି—୧ । ଶବଳ (ଦେଖ)—1. Sābala. (See)
Sābala [ବି—ହିନ୍ଦିରେ ସାବଲ୍ ଶବ୍ଦର ଅର୍ଥ ବର୍ଚ୍ଛା (ହି. ଶ)]—
सावर ୨ । (ବହିଁଅ ଶବ୍ଦ) ସୁନାର ଓ ରୁପାର ଝାଳ ଅଦ ଡିଆରି
साबर କରିବାରେ ବ୍ୟବହୃତ ଲୁହାର ଏକପ୍ରକାର ହତିଆର—
2. A goldsmith's instrument for preparing gold and silver water jugs. [ବି—ଏହା ଲମ୍ବା ଓ ଏଥିର ଏକ ମୁଣ୍ଡ ମୁନିଆ । ଏହା ଉପରେ ଧାତୁ ପଟକୁ ରଖି ହାତୁଡ଼ିରେ ପିଟିଲେ ଧାତୁପଟ ପତଳା ହୁଏ ।]

ସାବଳ ଉଞ୍ଛିଳା ପରି—ଦେ. ବିଣ—ହୃଷ୍ଟପୁଷ୍ଟ; ସବଳ—
Sābal uñchhilāpari Very healthy.
ମଟା शीशाकेजो

ସାବଳ ଭଙ୍ଗା—ପ୍ରାଦେ (ହିନ୍ଦୋଳ) ବି—ଏକପ୍ରକାର ଅରଣ୍ୟ ଗୁଳ୍ମ—
Sābala bhangā A kind of wild plant. [ବି—ଏହାର ମୂଳରୁ ସାବଳ ପରି ଗୋଲ ଓ ଲମ୍ବା ଦଣ୍ଡ ବାହାରେ । ଉକ୍ତ ଦଣ୍ଡ ଭୂମି ଉପରକୁ ଯେତିକି ବାହାରିଥାଏ ଭୂମି ତଳେ ମଧ୍ୟ ସେତିକି ଥାଏ ।]

ସାବଲମ୍ବନ—ସଂ ବିଣ (ବହୁବ୍ରୀହି;ସ+ଅବଲମ୍ବନ)-ଅବଲମ୍ବନ ସହିତ—
Sābalambana With prop.

ସାବଶେଷ—ସଂ ବିଣ (ସହାର୍ଥ ବହୁବ୍ରୀହି;ସ+ଅବଶେଷ)୧। ଅବଶିଷ୍ଟ-
Sābaśesha 1. Remaining. ୨। ଅସମ୍ପୂର୍ଣ୍ଣ—
2. Incomplete. ୩। ଅବଶେଷ ସହିତ ବିଦ୍ୟମାନ—
3. Having the remainder.

ଷାବଷ୍ଟମ୍ଭ—ସଂ· ବଣ ( ସହାର୍ଥ ବହୁବ୍ରୀହି; ସ+ଅବଷ୍ଟମ୍ଭ )—୧ ।
Sābashṭambha ଦୃଢ଼; ମଜଭୁତ୍ ( ହି. ଶ )—1. Strong
୨ । ଅସ୍ୱନିର୍ଭର; ସ୍ୱାବଲମ୍ବୀ ( ହି. ଶ )—2. Self-reliant. ସଂ. ବି—ବାସ୍ତୁବିଶେଷ; ଯେଉଁ ବାସ୍ତୁରେ ବା ଘରଭିତ୍ତିରେ ନିର୍ମିତ ଘରର ଉତ୍ତର ବା ଦକ୍ଷିଣ ପାଖରେ ରାସ୍ତା ଥାଏ (ଶବ୍ଦକୋଷ)—A kind of homestead in which a road runs on the south or north side of the house built on it.
[ ଦ୍ର—ଏ ବାସ୍ତୁ ଶୁଭପ୍ରଦ—ବୃହତ୍ ସଂହିତା ୫୩।୬୧ । ]

ଷାବହିତ—ଗ୍ରା· ବଣ ( ଅଶୁଦ୍ଧ ପ୍ରୟୋଗ; ଶୁଦ୍ଧ, ସାବଧାନ )—୧ ।
Sābahita ମନୋଯୋଗୀ—1. Attentive. ୨ । ସାବଧାନ
সাবহিত —2. Careful. କ୍ରି. ବଣ—ମନୋଯୋଗ-
सावधान ସହକାରେ—Attentively.

ଷାବାଡ଼—ବୈଦେ. ବଣ ( ଅ. ତୁଲନୀୟ; ଫ. ସବାଡ଼ )—୧ ।
Sābārd କୃତକାର୍ଯ୍ୟ—1 Accomplished. ୨ । ସମ୍ପୂର୍ଣ୍ଣ—
সাবাড় 2. Finished; completed. ୩ । ନିଃଶେଷିତ—
3. Exhausted. ୪ । ବିନାଶପ୍ରାପ୍ତ—4. Des-
आखीर troyed; ruined. ୫ । ସର୍ବସ୍ୱାନ୍ତ—
5. Having one's properties gone; shorn or deprived of whatever one had; undone.

ଷାବାଡ଼ କରିବା—ଦେ· କ୍ରି—୧ । (କର୍ମ) ସମ୍ପାଦନ କରିବା—1. To
Sābārd kariba accomplish (a work). ୨ । ସମ୍ପୂର୍ଣ୍ଣ
সাবাড় করা କରିବା—2. To Complete. ୩ । ନିଃଶେ-
आखीर करना ଷିତ କରିବା—3. To exhaust; to finish.
୪ । କୌଣସି ବ୍ୟକ୍ତିକୁ ସର୍ବସ୍ୱାନ୍ତ କରିବା—4. To ruin a person. ୫ । ବିନଷ୍ଟ କରିବା—5. To destroy. ୬ । ସର୍ବନାଶ ଘଟାଇବା—6. To cause ruin. ୭ । ( ଲକ୍ଷଣାର୍ଥ ) ମାରି ପକାଇବା—
7. ( figurative ) To kill.

ଷାବାଧ—ସଂ. ବଣ—ପୀଡ଼ିତ; ଅସୁସ୍ଥ ( ଶବ୍ଦରତ୍ନ; ଶବ୍ଦକୋଷ )—
Sābādha Ill; sick.

ଷାବାଳ(ଲ)କ୍(ଗ୍)—ବୈଦେ. ବଣ ( ଅ· ସାବାଲଗ୍ )—ଆଇନ୍
Sābāla(la)k(g) ଅନୁସାରେ ଯାହାର ବୟସ ନିର୍ଦ୍ଧିଷ୍ଟ ବୃଦ୍ଧିବାର
সাবালক बालिग ଉପଯୋଗୀ ବୟସ ହୋଇଅଛି; ବୟଃପ୍ରାପ୍ତ;
ଷାବାଲ[ଲି]କା[ଗୀ] } ସ୍ତ୍ରୀ ପ୍ରାପ୍ତବୟସ୍କ; ପ୍ରାପ୍ତ ବ୍ୟବହାର—
ଷାବାଲକା[ଗା] Major, one who has attained majority according to the law of the land. ଦେ· ବି—ବୟଃପ୍ରାପ୍ତ ବ୍ୟକ୍ତି; ପ୍ରାପ୍ତ-ବ୍ୟବହାର—Major person; a person who has attained majority according to the law of the land. [ ଦ୍ର—୧ । କେହି କେହି ସଂସ୍କୃତ ବାଲକ ଶବ୍ଦ ସଙ୍ଗେ ଏ ଶବ୍ଦର ସମ୍ପର୍କ ଥିବାର ଭ୍ରାନ୍ତ ଅନୁମାନ କରି ଏହାର ସ୍ତ୍ରୀଲିଙ୍ଗ ଅକାରାନ୍ତ 'ସାବାଲିକା' ବ୍ୟବହାର କରନ୍ତି । ]
[ଦ୍ର—୨ । ଭିନ୍ନ ଭିନ୍ନ ଦେଶରେ ଓ ଭିନ୍ନ ଭିନ୍ନ କାଳରେ ଓ ଭିନ୍ନ ଭିନ୍ନ ଦେଶର ଆଇନ୍‌ରେ ବାଲକ-ବାଳକାଙ୍କର 'ସାବାଳକ' ହେବାର ବୟସ ନିର୍ଦ୍ଧାରିତ ହୋଇଅଛି । ଶିଶୁମାନଙ୍କର ହିତାହିତ ବିବେକ ନ ଥିବାରୁ ସେମାନଙ୍କ ଶରୀର ଓ ସମ୍ପତ୍ତି ରକ୍ଷା ବୃଦ୍ଧି କରିବାକୁ ସରକାର ଗାର୍ଡିଆନ୍ ( ଅଭିଭାବକ ) ନିଯୁକ୍ତ କରନ୍ତି । ଯେ ସାବାଳକ ହୋଇ ନ ଥାନ୍ତି ତାଙ୍କଦ୍ୱାରା ସମ୍ପାଦିତ ଦଲିଲ, ଖରିଦ, ଚୁକ୍ତି ଆଦି ଅକର୍ମଣ୍ୟ ବୋଲି ବିବେଚିତ ହୁଏ । ୧୮ ବର୍ଷ ପୂରିଲେ ନାବାଳକ ସାବାଳକ ହୁଏ; ଜଜ୍ ଯାହା ପାଇଁ ଜଜ ସାହେବ ଅଭିଭାବକ ନିଯୁକ୍ତ କରି ଥାଆନ୍ତି ଓ ଯାହାର ସମ୍ପତ୍ତି କୋର୍ଟ ଅଫ୍ ୱାର୍ଡ଼ସ୍ ବୁଝୁଥାଆନ୍ତି ତାହାର ୨୧ ବର୍ଷ ବୟସ ପୂରିଲେ ସେ ସାବାଳକ ହୁଏ । ]

ଷାବାଳ(ଲ)କ(ଗି)—ବୈଦେ. ବି ( ଅ. ସାବାଲଗୀ )—ପ୍ରାପ୍ତବୟସ୍କ
Sābāla(la)ki(gi) ଅବସ୍ଥା—Majority.
সাবালকি बालिग अवस्था

ଷାବାସ୍—ବୈଦେ. ଅ ( ଅ )—ଧନ୍ୟ ଧନ୍ୟ ! ବାଃ !—(interjec-
Sābās tion) Well done! Bravo! ବି—ଧନ୍ୟବାଦ;
সাবাস शाबास ପ୍ରଶଂସାବାଦ—Applause; praise; approbation. ବ—୧ । ପ୍ରଶଂସା ସୂଚକ—1. Laudatory. ୨ । ପ୍ରଶଂସାର୍ହ—2. Praiseworthy.

ଷାବାସ୍ କରିବା—ଦେ· କ୍ରି—ପ୍ରଶଂସା କରିବା; ଧନ୍ୟ ଧନ୍ୟ କହିବା—
Sābās kariba To praise; to belaud; to
সাবাস করা शाबास करना extol.

ଷାବାସ୍ ଭାଇ ବାଃ—ଦେ· ଅ—ଧନ୍ୟରେ ଭାଇ !—(interjection).
Sābās bhāi bāh Well done! Bravo Brother!
ଷାବାସ୍‌ରେ ଭାଇ } ଅନ୍ୟରୂପ
ଯାବାସରେ ଭାଇ ବାଃ
সাবাস ভাই, বাঃ शाबास भाई वाह

ଷାବାସି—ବୈଦେ. ବି (ଅ ଶାବାଷ୍)—୧ । ଧନ୍ୟବାଦ; ପ୍ରଶଂସାବାଦ-
Sābāsi 1. Praise. ୨ । ବାହାଦୁରି—
সাবাসি शाबासी 2. Praiseworthiness.
ବଣ—୧ । ପ୍ରଶଂସାସୂଚକ—1. Laudatory.
୨ । ପ୍ରଶଂସାଭାଜନ—2. Praiseworthy.

ଷାବାସିଆ—ଦେ. ବଣ—ପ୍ରଶଂସାଜନକ—
Sābāsiā Praiseworthy.
সাবাসিআ शाबासवाला

ଷାବାସି ଦେବା—ଦେ· କ୍ରି—ପ୍ରଶଂସା କରିବା—
Sābāsi debā To applaud.
সাবাসি দেওয়া शाबासी देना

ଷାବି—ଦେ. ବି—୧ । ସାବି ଗୁଡ଼ୁଲ (ଦେଖ)—1. Sābichāula
Sābi (See) ୨ । ସାବୁନ୍ (ଦେଖ)—2. Sābun (See)

୩ । ସାବିତ୍ରୀନାମ୍ନୀ ସ୍ତ୍ରୀଲୋକର ଡାକ ନାମ—
3. Nickname for Sābitrī.

**ସାବିକ୍** (ଇତ୍ୟାଦି)—ବୈଦେ. ଵଣ ଓ ବି—ସାବକ ଇତ୍ୟାଦି (ଦେଖ)
Sabik (etc) Sabak etc (See)

**ସାବିଚାଉଳ**—ପ୍ରାଦେ.(ଗଞ୍ଜାମ)ବି—(ବୈଦେଶିକ)--ସାଗୁଦାନା—Sago.
Sābi chāula [ଦ୍ର—ଏହା ସ୍ୱାଦୁ ଓ ଲଘୁ । ଏହା ମୃଦୁ ବିରେଚକ ଏବଂ ଜ୍ୱରାଦି ରୋଗରେ ପଥ୍ୟରୂପେ ବ୍ୟବହୃତ ହୁଏ—ଦ୍ରବ୍ୟଗୁଣ· କଳ୍ପଦ୍ରୁମ । ]

**ସାବିତ(ତି)**—ବୈଦେ. ଵଣ (ଫା· ସବୂତ୍=ସମ୍ପୂର୍ଣ୍ଣ; ପୂର୍ଣ୍ଣାଙ୍ଗ)—
Sābit(ti) ୧ । ସୁନ୍ଦର—1. Nice. ୨ । ସୁବିଧାଜନକ—
ସୁନ୍ଦର ସାବୁତ 2. Convenient. ବୈଦେ. ବି ଓ ଵଣ (ଫା)
ସାବୁତ(ତି) (ଦେଖ)—Sabut(ti) (See)

**ସାବିତ୍ର**—ସଂ. ଵଣ (ସବିତୃ+ସମ୍ବନ୍ଧାର୍ଥେ. ଅ)—୧ । ସୂର୍ଯ୍ୟସମ୍ବନ୍ଧୀୟ;
Sābitra ସୌର—Solar. ବି—୧ । (+ସ୍ୱାର୍ଥେ, ଅ)
[ସାବିତ୍ରୀ—ସ୍ତ୍ରୀ] ସବିତା; ସୂର୍ଯ୍ୟ (ଶବ୍ଦ ରତ୍ନାବଳୀ)—1. The sun. ୨ । ମହାଦେବ; ଶିବ (ମେଦିନୀ)—2. God Siba. ୩ । ଅଷ୍ଟମ ବସୁ; ଅଷ୍ଟାବସୁ ମଧ୍ୟରୁ ଏକତମ—3. One of the Basu group of Deities. [ଦ୍ର—ଯୁଦ୍ଧରେ ସାବିତ୍ରର ଅଜ୍ଞା ସୁମାଳି ରାକ୍ଷସଙ୍କୁ ଏ ବଧ କରିଥିଲେ । ] ୪ । ବ୍ରାହ୍ମଣ (ହେମଚନ୍ଦ୍ର)—4, A Brāhmaṇa, ୫ । ଯଜ୍ଞୋପବୀତ (ଶବ୍ଦ ରତ୍ନାବଳୀ)—5, The sacred thread worn by the twice born amongst the Hindus. ୬ । ଗର୍ଭ (ଶବ୍ଦରତ୍ନାବଳୀ)—6. Uterus; belly.

**ସାବିତ୍ରୀ**—ସଂ. ଵଣ. ସ୍ତ୍ରୀ (ସବିତୃ+ଅ+ସ୍ତ୍ରୀ. ଈ)—ସାବିତ୍ରର
Sābitrī ସ୍ତ୍ରୀଲିଙ୍ଗ—The feminine of 'Sābitra'. ବି—୧ । ସୂର୍ଯ୍ୟମଣ୍ଡଳର ଅଧିଷ୍ଠାତ୍ରୀ ଦେବତା—1. The Goddess presiding over the solar orb. ୨ । ବେଦମାତା; ଗାୟତ୍ରୀମନ୍ତ୍ରାଧିଷ୍ଠାତ୍ରୀ ଦେବୀଙ୍କର ଦ୍ୱିପ୍ରହରକାଳୀନ ଧ୍ୟେୟରୂପ—2. The form of the personified 'Gāyatrī' formula (Mantra) contemplated at noon, said to be the mother of the Bedas. [ଦ୍ର—ଏ ଯୁବତୀ, ଶୁକ୍ଳବର୍ଣ୍ଣା, ତ୍ରିନେତ୍ରା, ଚତୁର୍ଭୁଜା, ଶୁକ୍ଳାମ୍ବରଧାରିଣୀ, ଗରୁଡ଼ସ୍କନ୍ଧସ୍ଥିତା, ଶଙ୍ଖଚକ୍ରଗଦାପଦ୍ମଧାରିଣୀ ଓ ବିଷ୍ଣୁଦେବତା ଅଟନ୍ତି । ବ୍ରାହ୍ମଣମାନେ ମଧ୍ୟାହ୍ନ ସନ୍ଧ୍ୟା ସମୟରେ ଗାୟତ୍ରୀ ଜପିବା ପୂର୍ବରୁ ଏହାଙ୍କୁ ଧ୍ୟାନ କରନ୍ତି ।

ଏ ବ୍ରହ୍ମାଙ୍କ ପତ୍ନୀ । ସବିତା (ସୂର୍ଯ୍ୟ)ଙ୍କ ଔରସରେ ଚନ୍ଦ୍ରପତ୍ନୀ ପୃଶ୍ନିଙ୍କ ଗର୍ଭରୁ ଏ ଜନ୍ମିଥିଲେ । ଏ ବେଦମାନଙ୍କୁ ପ୍ରସବ କରିଥିଲେ । ଏହାଙ୍କର ଅନ୍ୟ ନାମ ଶତରୂପା, ଗାୟତ୍ରୀ, ସରସ୍ୱତୀ, ବ୍ରହ୍ମାଣୀ ।

ଭାରତର ଭିନ୍ନ ଭିନ୍ନ ତୀର୍ଥରେ ଏ ଭିନ୍ନ ଭିନ୍ନ ନାମରେ ପୂଜିତା ହେଉଅଛନ୍ତି । ଯଥା—ପୁଷ୍କରରେ ସାବିତ୍ରୀ, ବାରାଣସୀରେ ବିଶାଳାକ୍ଷୀ, ପ୍ରୟାଗରେ ଲଳିତା, ଏକାମ୍ର କାନନରେ କୀର୍ତ୍ତିମତୀ, ବିନ୍ଧ୍ୟାଚଳରେ ସୀତା, ପୁରୁଷୋତ୍ତମରେ ବିମଳା ଇତ୍ୟାଦି ।] ୩ । ଦୁର୍ଗା, ପାର୍ବତୀ (ମେଦିନୀ)—3. Goddess Pārbatī. ୪ । ମଦ୍ରଦେଶର ରାଜା ଅଶ୍ୱପତିଙ୍କ କନ୍ୟା ଓ ସତ୍ୟବାନଙ୍କୁ ସ୍ୱୟମ୍ବର ବିଧିରେ ବିବାହ କରିଥିବା ସାଧ୍ୱୀ (ସତ୍ୟବାନ୍ ତଳେ ଟୀକା ଦେଖ)—4. Name of the devoted wife of Satyabān. ୫ । ଦ୍ୱିଜବାଳକର ଉପନୟନ—5. Name of one of the rites performed for the assumption of the sacred thread of a twice born boy. [ଦ୍ର—ଏହି ସଂସ୍କାର କରା ନ ଗଲେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ବ୍ରାତ୍ୟବା ପତିତ ହୁଅନ୍ତି । ଉପନୟନକାଳରେ ଦ୍ୱିଜବାଳକ ସାବିତ୍ରୀ ମନ୍ତ୍ରର ଦୀକ୍ଷା ଗ୍ରହଣ କରେ, ଏଥିପାଇଁ ଏ ସଂସ୍କାରର ନାମ ସାବିତ୍ରୀ । ବ୍ରାହ୍ମଣର ଷୋଡ଼ଶ ବର୍ଷ, କ୍ଷତ୍ରିୟର ଦ୍ୱାବିଂଶତି ବର୍ଷ ଓ ବୈଶ୍ୟର ଚତୁର୍ବିଂଶତି ବର୍ଷ ପର୍ଯ୍ୟନ୍ତ ଉପନୟନସଂସ୍କାରକାଳ । ଏହି ବୟସ ମଧ୍ୟରେ ସାବିତ୍ରୀ ସଂସ୍କାର ନ ହେଲେ ଉକ୍ତ ଜାତିର ଦ୍ୱିଜବାଳକକୁ ବ୍ରାତ୍ୟ ବୋଲାଯାଏ । ତତ୍ପରେ ଉପନୟନ ସଂସ୍କାର କରାଗଲେ ଯଥାବିଧାନ ବ୍ରାତ୍ୟ-ପ୍ରାୟଶ୍ଚିତ୍ତ କରିବାକୁ ହୁଏ । ଦ୍ୱିଜବର୍ଣ୍ଣତ୍ରୟ ଉପନୟନ ପରେ ପ୍ରତିଦିନ ତ୍ରିସନ୍ଧ୍ୟାରେ ସାବିତ୍ରୀ (ଗାୟତ୍ରୀ) ଜପ କରିବେ । ମନୁସଂହିତା ୨ୟ ଅଧ୍ୟାୟ ୭୬ ଶ୍ଳୋକଠାରୁ ୮୩ ଶ୍ଳୋକ ପର୍ଯ୍ୟନ୍ତ ସାବିତ୍ରୀ ଜପର କର୍ତ୍ତବ୍ୟ ଅଛି । ପ୍ରଣବ (ଓଁ), ବ୍ୟାହୃତି (ଭୂଃ, ଭୁବଃ, ସ୍ୱଃ) ସହିତ ସାବିତ୍ରୀ (ତତ୍ ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି ଧିୟୋ ଯୋନଃ ପ୍ରଚୋଦୟାତ୍) ତ୍ରିସନ୍ଧ୍ୟାରେ ଦ୍ୱିଜମାନେ ଜପ କରିବେ । ଦେଖ ଭାଗବତ (୧୨।୨।୩-୪)ରେ ଲେଖାଅଛି ଯେ, ଥରେ ମାତ୍ର ସାବିତ୍ରୀ ଜପ କଲେ ଦିନକୃତ ପାପ, ଦଶବାର ଜପରେ ଅହୋରାତ୍ରକୃତ ପାପ, ଶତବାର ଜପରେ ମାସାର୍ଜ୍ଜିତ ପାପ, ସହସ୍ରବାର ଜପରେ ସମ୍ବତ୍ସରାର୍ଜ୍ଜିତ ପାପ, ଲକ୍ଷ ଜପରେ ଇହଜନ୍ମାର୍ଜ୍ଜିତ ପାପ, ଦଶ ଲକ୍ଷ ଜପରେ ଅନ୍ୟ ଜନ୍ମର ପାପ, ଶତ ଲକ୍ଷ ଜପରେ ସର୍ବଜନ୍ମର ପାପ ବିନଷ୍ଟ ହୁଏ ଓ ଦଶଶତ ଲକ୍ଷ ଜପ କଲେ ମୋକ୍ଷଲାଭ ହୁଏ । ଭଗବାନ ଶ୍ରୀକୃଷ୍ଣ ଗୋଲୋକରେ ବ୍ରହ୍ମାଙ୍କୁ ସାବିତ୍ରୀଦେବୀଙ୍କୁ ଅର୍ପଣ କଲେ ଓ ବ୍ରହ୍ମାଙ୍କ ସ୍ତବରେ ପରିତୁଷ୍ଟା ହୋଇ ସାବିତ୍ରୀ ବ୍ରହ୍ମାଙ୍କୁ ପତିରୂପେ ବରଣ କଲେ—(ବିଶ୍ୱକୋଷ) ।] ୬ । ଧର୍ମଙ୍କ ପତ୍ନୀ ଓ ଦକ୍ଷଙ୍କ କନ୍ୟା (ହ· ଶ)—6. Name of the wife of Dharma and daughter of Daksha. ୭ । କଶ୍ୟପଙ୍କ ସ୍ତ୍ରୀ (ହ. ଶ)—7. Name of a wife of sage Kaśyapa. ୮ । ଅଷ୍ଟାବକ୍ରଙ୍କ କନ୍ୟା

( ହି· ଶ )—8. Daughter of Ashṭābakra sage. ୯ । ଯମୁନା ନଦୀ (ସୂର୍ଯ୍ୟଙ୍କ କନ୍ୟା) (ହି· ଶ)—9. The river Jamunā. ୧୦ । ସରସ୍ୱତୀ ନଦୀ ( ହି. ଶ )—10. The extinct river Saraswatī. ୧୧ । ପ୍ଲକ୍ଷ ଦ୍ୱୀପର ଏକ ନଦୀ (ହି.ଶ)—11. A river of the mythological Plaksha island. ୧୨ । ଧାର ନଗରର ରାଜା ଭୋଜଙ୍କ ସ୍ତ୍ରୀ (ହି· ଶ)—12. Wife of king Bhoja. ୧୩ । ସଧବା ସ୍ତ୍ରୀ (ହି. ଶ)—13. A woman whose husband is alive. ୧୪ । ଅଁଳା (ହି.,ଶ)—14. Embelic myrobalan. ୧୫। ତୀର୍ଥବିଶେଷ (ହି. ଶ)—15. Name of a place of Hindu pilgrimage. ଦେ.ବି —୧। ଶତପ ଜାତୀୟ ଏକପ୍ରକାର ଗୁଳ୍ମ—1. A plant (like that of dill-seed) [ଦ୍ର—ଏଥିର ପତ୍ର ସୁବାସିତ ଓ ଏଥିର ଫଳ ସୁସ୍ୱାଦ ଶତପ ପରି । ଏହି ଫଳ ବା ମଞ୍ଜି ତରକାରୀରେ ମସଲାରୂପେ ବ୍ୟବହୃତ ହୁଏ । ଏଥିର ପତ୍ର ଦ୍ୱାରା କାଞ୍ଜି ଆଦି କରାଯାଏ । ଆରବୀ ଭାଷାରେ ଶତପର ନାମ 'ଶୀବତ' । ଏହି ଶୀବତରୁ ଏହି ଶବ୍ଦ ଉତ୍ପନ୍ନ ହୋଇଥିବା ଅନୁମିତ ହୁଏ ।] ୨। ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—2. A name given to females. ୩ । ସାବିତ୍ରୀ ଅମାବାସ୍ୟା (ଦେଖ)—3. Sābitrī amābāsyā (See).

**ସାବିତ୍ରୀ ଅମାବାସ୍ୟା**—ଦେ. ବି (ସଂ, ସାବିତ୍ରୀ ଓ ଅମାବାସ୍ୟା)—ଜ୍ୟେଷ୍ଠ Sābitrī amābāsyā କୃଷ୍ଣଚତୁର୍ଦ୍ଦଶୀ ଓ ଏ ଦିନ ସ୍ତ୍ରୀଲୋକମାନଙ୍କ [ସାବିତ୍ରୀ ଅମାସ୍ୟା—ଅନ୍ୟରୂପ। କର୍ତ୍ତବ୍ୟ ବ୍ରତ ବିଶେଷ—The (ସାବିତରୀ ଅମେଇସା—ଗ୍ରା, ରୂପ) newmoon of the সাবিত্রী চতুর্দ্দশী month of 'Jyeshṭha'. [ଦ୍ର—ସ୍ତ୍ରୀମାନେ বরসাইত 'ସାବିତ୍ରୀ'ଙ୍କ ପରି ଅଖଣ୍ଡ ସଧବା ହେବା ପାଇଁ ଏ ବ୍ରତ କରନ୍ତି । ଏ ଦିନ ସତ୍ୟବାନ୍ ଓ ସାବିତ୍ରୀଙ୍କୁ ପୂଜା କରାଯାଏ । ଆମ ଦେଶରେ ସ୍ତ୍ରୀମାନେ ଏ ଦିନ ଉପବାସ କରନ୍ତି, ଅନ୍ନ ଗ୍ରହଣ କରନ୍ତି ନାହିଁ ଓ ଅପରାହ୍ଣରେ ପୂଜା ଶେଷ ହେଲେ (ଧୂଅମୃତ, ନାରିକେଳ, ପକ୍ୱଆମ୍ର, ପନସ, ରମ୍ଭା, ସପୁରି, ତାଳସଜଅଡ଼) ଫଳାହାର କରନ୍ତି; ଏହି ବ୍ରତ ଚତୁର୍ଦ୍ଦଶ ବର୍ଷ ସାଧ୍ୟ । ଏହି ବ୍ରତ ଗ୍ରହଣ କରି ୧୪ ବର୍ଷ ପରେ ଏହାର ଉଦ୍‌ଯାପନ କରାଯାଏ । ଏ ବ୍ରତ ରାତ୍ରରେ କର୍ତ୍ତବ୍ୟ । ଦିନଯାକ ଉପବାସ ରହି ରାତ୍ରରେ ପୂଜା କରି ସାବିତ୍ରୀ ଉପାଖ୍ୟାନ ଶୁଣି ତତ୍‌ପରେ ନୈବେଦ୍ୟ ଭୋଜନ କରିବ । "ଶ୍ରୀଁ, ହ୍ରୀଁ, କ୍ଲୀଁ ସାବିତ୍ର୍ୟୈ ସ୍ୱାହା" ଏହା ସାବିତ୍ରୀ ପୂଜାର ମନ୍ତ୍ର—ବିଶ୍ୱକୋଷ ।]

**ସାବିତ୍ରୀ ଉପାଖ୍ୟାନ**—ଦେ. ବି—ସତ୍ୟବାନଙ୍କ ପତ୍ନୀ ସାବିତ୍ରୀଙ୍କ ଚରିତ- Sābitrī upākhyāna The anecdote of 'Sābitrī' সাবিত্রী উপাখ্যান **सावित्री कथा** [ ଦ୍ର—ସାବିତ୍ରୀ ମଦ୍ର ଦେଶର ରାଜା ଅଶ୍ୱପତିଙ୍କର ଏକମାତ୍ର ଦୁହିତା ଓ ପିତା-ମାତାଙ୍କର ଅତ୍ୟନ୍ତ ସ୍ନେହାସ୍ପଦ ଥିଲେ । ଯୁବତୀ ହେବା ପରେ ଏହାଙ୍କ ପାଇଁ ଉପଯୁକ୍ତ ବର ନ ମିଳିବାରୁ ଏ ପିତା-ମାତାଙ୍କ ଅନୁମତିକ୍ରମେ ଅମାତ୍ୟଗଣ ସମଭିବ୍ୟାହାରରେ ଗୋଟିଏ ଅନୁରୂପ ବର ଖୋଜିବାକୁ ବାହାରି ବହୁ ଦେଶ ବୁଲି ବୁଲି ଶେଷରେ ଗୋଟିଏ ତପୋବନରେ ପହଞ୍ଚିଲେ । ସେଠାରେ ସ୍ୱରାଜ୍ୟରୁ ନିର୍ବାସିତ ଶାଲ୍ୱ ଦେଶର ରାଜା ଦ୍ୟୁମତ୍‌ସେନ ଓ ତାଙ୍କ ରାଣୀଙ୍କ ସହି ବାସ କରୁଥିବା ରାଜପୁତ୍ର ସତ୍ୟବାନଙ୍କ ଉପରେ ଏହାଙ୍କ ଦୃଷ୍ଟି ପଡ଼ିବାରୁ ସାବିତ୍ରୀ ତାଙ୍କୁ ନିଜର ଭାବିସ୍ୱାମୀରୂପେ ମନୋନୀତ କରି ରାଜଧାନୀକୁ ଫେରି ପିତାଙ୍କୁ ଜଣାଇଲେ । ଏହି ସମୟରେ ଦେବର୍ଷି ନାରଦ ଅଶ୍ୱପତିଙ୍କ ନିକଟରେ ଉପସ୍ଥିତ ହୋଇ ଏ ବିବାହରେ ମତ ନ ଦେବା ପାଇଁ ଅଶ୍ୱପତିଙ୍କୁ ଅନୁରୋଧ କଲେ । କାରଣ, ନାରଦ ତପୋବଳରେ ଜାଣିପାରିଲେ ଯେ, ସତ୍ୟବାନଙ୍କ ପରମାୟୁ ଆଉ ଏକ ବର୍ଷ ମାତ୍ର ଅଛି । ମାତ୍ର ସାବିତ୍ରୀ ଏ ପ୍ରସ୍ତାବରେ କର୍ଣ୍ଣପାତ ନ କରି କହିଲେ—ମୁଁ ଯାହାଙ୍କୁ ପତିରୂପେ ବରଣ କରିସାରିଛି, ସେହି ମୋର ପତି, ଓ ତାଙ୍କ ଛଡ଼ା ଅନ୍ୟ କେହି ମୋର ସ୍ୱାମୀ ହୋଇ ନ ପାରନ୍ତି । ରାଜା ଅଗତ୍ୟା ସାବିତ୍ରୀଙ୍କୁ ସତ୍ୟବାନଙ୍କ ସହିତ ବିବାହ ଦେଲେ । ବିବାହ ପରେ ସାବିତ୍ରୀ ପିତୃଗୃହର ରାଜସମ୍ପଦ, ବିଳାସ ଓ ଦାସଦାସୀବର୍ଗଙ୍କୁ ତ୍ୟାଗ କରି ସ୍ୱାମୀଙ୍କ ସହିତ ତପୋବନର କୁଟୀରରେ ଏକା ରହି ଶାଶୁ ଓ ଶ୍ୱଶୁରଙ୍କ ସେବାରେ ଲାଗିଲେ ।

ବିବାହର ଏକ ବର୍ଷ ପୂରିବାକୁ ୩ ଦିନ ବାକି ଅଛି ସାବିତ୍ରୀ ତ୍ରିରାତ୍ର-ବ୍ରତ ଅବଲମ୍ବନ କଲେ । ଅନନ୍ତର ଯେଉଁ ଦିନ ଏକ ବର୍ଷ ପୂର୍ଣ୍ଣ ହେବ ଓ ସତ୍ୟବାନଙ୍କର ପରମାୟୁ ଶେଷ ହେବ, ସେ ଦିନ ସତ୍ୟବାନ୍ ଫଳ ମୂଳ ଓ ସମିଧ ଆହରଣ କରିବାକୁ ବନକୁ ଯିବାବେଳେ ସାବିତ୍ରୀ ତାଙ୍କ ସଙ୍ଗରେ ଗଲେ । ସତ୍ୟବାନ୍ ଫଳ ଆହରଣ କରିବା ସମୟରେ ଗୋଟାଏ ଗଛର ଡାଳ ତାଙ୍କ ମୁଣ୍ଡରେ ବାଜିଲା ଓ ସେ ଅଶାନ୍ତ ବୋଧ କରିବାରୁ ବନ ମଧ୍ୟରେ ଗୋଟିଏ ବୃକ୍ଷ ମୂଳେ ସାବିତ୍ରୀଙ୍କ କୋଳରେ ମୁଣ୍ଡ ରଖି ନିଦ୍ରାଗଲେ ଓ ତାହାହିଁ ତାଙ୍କର ମହାନିଦ୍ରା (ମୃତ୍ୟୁ) ହେଲା । କିନ୍ତୁ ସାବିତ୍ରୀ ମୃତ ସ୍ୱାମୀଙ୍କ ମସ୍ତକକୁ ନିଜ କୋଡ଼ରେ ରଖି ସେହି ଗଛ ମୂଳରେ ବସି ରହିଲେ । ଏହି ସମୟରେ ଯମଦୂତମାନେ ସତ୍ୟବାନଙ୍କ ଆତ୍ମାକୁ ନେବାକୁ ସେଠାକୁ ଆସିଲେ; ମାତ୍ର ସାବିତ୍ରୀଙ୍କ ପରି ସାଧ୍ୱୀଙ୍କ ଅଙ୍ଗକୁ ସ୍ପର୍ଶ କରି ତାଙ୍କ କୋଳରୁ ମୃତ ପତିଙ୍କୁ ଛଡ଼ାଇ ନେବାକୁ ସାହସ କଲେ ନାହିଁ । ଯମଦୂତମାନେ ମୃତ ଆତ୍ମାକୁ ନ ନେଇ ଫେରି ଗଲେ ଏବଂ ଯମରାଜଙ୍କୁ ସମ୍ବାଦ ଦେଲେ । ଶେଷକୁ ଯମରାଜ ନିଜେ ଉପସ୍ଥିତ ହେଲେ । ସାବିତ୍ରୀ ସେହିପରି ମୃତ ସ୍ୱାମୀଙ୍କ ମସ୍ତକକୁ କୋଳରେ ଧରି ଅଚଳା ଅଟଳା ହୋଇ ବସି ଥାଆନ୍ତି । ଯମଙ୍କୁ ଦେଖି ସାବିତ୍ରୀ ତାଙ୍କୁ ସ୍ତବ କରିବାକୁ ଲାଗିଲେ । ଯମ ସ୍ତବରେ ସନ୍ତୁଷ୍ଟ ହୋଇ ସତ୍ୟବାନଙ୍କ

ସ୍ୱାମୀଙ୍କ ଛଡ଼ା ଅନ୍ୟ ଯେ କୌଣସି ବର ମାଗିବା ପାଇଁ ସାବିତ୍ରୀଙ୍କୁ କହିଲେ । ସାବିତ୍ରୀ ଶତ ପୁତ୍ର ପାଇବା ପାଇଁ ପ୍ରାର୍ଥନା କଲେ । ଯମ ଚିନ୍ତା ନ କରିପାରି ସେଥିରେ 'ହଁ' ଉତ୍ତର ଦେବାରୁ ସତ୍ୟବାନଙ୍କୁ ଛାଡ଼ିଦେବା ପାଇଁ ସାବିତ୍ରୀଙ୍କୁ କହିଲେ; ସାବିତ୍ରୀ କହିଲେ 'ଯମରାଜ ! ମୁଁ ସତୀ; ଆପଣ ମୋ ସ୍ୱାମୀଙ୍କୁ ନେଇଗଲେ ମୁଁ କପରି ଶତପୁତ୍ର ପାଇବି ?' ଏହା ଶୁଣି ଯମ ଅଗତ୍ୟା ସତ୍ୟବାନଙ୍କୁ ପୁନଃ ଜୀବିତ କରିଦେଇ ଫେରିଗଲେ ।

ସାବିତ୍ରୀଙ୍କ ସତୀତ୍ୱ ପୃଥିବୀରେ ଆଦର୍ଶ ହୋଇ ରହିଅଛି । ଏମନ୍ତ କି, ବନେ ସୀତା ରାମଚନ୍ଦ୍ରଙ୍କୁ କହିଥିଲେ 'ସାବିତ୍ରୀ ସତ୍ୟବାନଙ୍କର ଏକାନ୍ତ ଅନୁଗତା ସହଧର୍ମିଣୀ ଥିଲେପରି ମୁଁ ତୁମ୍ଭର ଏକାନ୍ତ ବଶବର୍ତ୍ତିନୀ ଅଟେ ।']

**ସାବିତ୍ରୀ ପତନ**—ସଂ ବି (୬ଷ୍ଠୀ ତତ୍; ସାବିତ୍ରୀର ପତନ)—ଉପନୟନ ବା ଯଜ୍ଞୋପବୀତ ଗ୍ରହଣ କରିବାର ଉପଯୁକ୍ତ କାଳ ଅତୀତ ହେଲେ ଦ୍ୱିଜ କୁମାର ଯେଉଁ ଅପରାଧ ବା ଦୋଷର ଭାଗୀ ହୁଏ (ସାବିତ୍ରୀ ୫ ତଳେ ଟୀକା ଦେଖ)—The sin to which a boy of a twice-born caste is liable if the proper time for investiture of the sacred thread is allowed to pass.
Sābitrī patana

**ସାବିତ୍ରୀ ପତିତ**—ସଂ. ବିଶ. ପୁଂ (୫ମୀ ତତ୍; ସାବିତ୍ରୀରୁ ପତିତ)—ଉପନୟନଯୋଗ୍ୟ କାଳ ଅତୀତ ହେବା ପରେ ମଧ୍ୟ ବ୍ରତ ହୋଇ ନ ଥିବା (ଦ୍ୱିଜ କୁମାର)—(A Dwija boy) Who has passed the proper time of investiture.
Sābitrī patita

**ସାବିତ୍ରୀ ପ୍ରଦାନ**—ସଂ. ବି—ବ୍ରତ ବେଳାରେ ଗୁରୁଙ୍କଦ୍ୱାରା ଦ୍ୱିଜ କୁମାର କର୍ଣ୍ଣରେ ଗାୟତ୍ରୀ ମନ୍ତ୍ର ଦାନ—The ceremony of wishpering the Gāyatrī formula to a Dwija boy on the investiture alter.
Sābitrī pradāna

**ସାବିତ୍ରୀ ବ୍ରତ**—ସଂ. ବି—ସାବିତ୍ରୀ ଅମାବାସ୍ୟା ଦିନ ସ୍ତ୍ରୀମାନଙ୍କର କରିବା ବ୍ରତ—(ସାବିତ୍ରୀ ଅମାବାସ୍ୟା ତଳେ ଟୀକା ଦେଖ)—The religious fast and rites performed by women on the Sābitrī Amābāsyā day.
Sābitrī brata

**ସାବିତ୍ରୀ ସୂତ୍ର**—ସଂ. ବି—ଯଜ୍ଞୋପବୀତ—The secred thread with which a Dwija boy is invested.
Sābitrī sūtra

**ସାବିନ୍(ନି)**—ବୈଦେ. ବି (ପର୍ତ୍ତୁଗୀଜ୍ ସାବନ; ସାବାଓଁ; ଫ୍ରେଞ୍ଚ୍ ସାବୋନ୍, ସାବୌଁ)—କ୍ଷାର ତୈଳ ସଂଯୋଗରେ ନିର୍ମିତ ମଳ ପରିଷ୍କାରକ ବସ୍ତୁ—Soap. [ଦ୍ର—(ସାବେନ—ଅନ୍ୟରୂପ) ଏଣାରୁ ସାବୁନ ଶବ୍ଦ ମଧ୍ୟରେ ଗ୍ରାହ୍ୟକର ଦେଇ ଥାନ୍ତି ପାଲଟାଇ ବୃନ୍ଦାବନ ବସୁଙ୍କର । ଉଦାହରଣ ଗୀତ ଲହରୀ ।)
Sābin(ni) সাবান साबुन

**ସାବଣୀ**—ସଂ. ବି. ସ୍ତ୍ରୀ (ସୁ ଧାତୁ+କର୍ତ୍ତୃ ଇନ୍+ସ୍ତ୍ରୀ ଈ)—ସରିତ୍; ନଦୀ—River. ଦେ, ଶବ୍ଦ—ସାବାନାର ସ୍ତ୍ରୀ ଲିଙ୍ଗ The feminine of 'Sābanā'. ବୈଦେ. ବି ସାବନ୍ Soap.
Sābinī

**ସାବୁ (ଇତ୍ୟାଦି)**—ବୈଦେ. ବି (ମାଲୟ ଭାଷା)—ସାଗୁ ଇତ୍ୟାଦି (ଦେଖ)—Sagu etc (See)
Sābu(etc) দাগ साब

**ସାବୁତ (ତା, ଦ, ଦା)**—ବୈଦେ. ବିଶ (ଅ· ସାବତ=ପ୍ରମାଣିତ)—୧ । ପ୍ରମାଣିତ; ସାବ୍ୟସ୍ତ—1. Proved: evident. ୨ । ନିର୍ଦ୍ଧାରିତ—2. Settled; ascertained. ୩ । ନିଶ୍ଚିତ—3. Certain. ୪ । ଠିକ୍—Right; correct. ୫ । ସମ୍ପୂର୍ଣ୍ଣ—5. Complete. ୬ । ସାଙ୍ଗ—6. With all the parts complete. ବୈଦେ. ବି· (ଅ ସାବୁତ୍=ପ୍ରମାଣ)—ପ୍ରମାଣ—Evidence
Sābut(tā, d, dā) পূর্ণ साबित প্রমাণ साबुत

**ସାବୁତ୍ କରିବା**—ଦେ· କ୍ରି—ପ୍ରମାଣିତ କରିବା—To prove by evidence.
Sābut kariba সাবুত করা সবুত করনা

**ସାବୁତ୍ ଦେବା**—ଦେ. କ୍ରି—ପ୍ରମାଣ ଅଗତ କରିବା—To adduce evidence or proof.
Sābut debā সাবুদ দেওয়া साबुत देना

**ସାବୁତ ନେବା**—ଦେ. କ୍ରି—ଅନ୍ୟଠାରୁ ପ୍ରମାଣ ଗ୍ରହଣ କରିବା—To take evidence from others.
Sābut nebā সাবুদ লওয়া साबुत लेना

**ସାବୁ ଦାନା**—ଦେ· ବି—ସାଗୁଦାନା (ଦେଖ)—Sāgudānā (See)
Sāgudānā সাগুদানা साबुदाना

**ସାବୁନ୍**—ବୈଦେ. ବି (ପର୍ତ୍ତୁଗୀଜ୍. ସାବନ୍; ସବାଓଁ; ଫ୍ରେ; ସାବୁନ୍, ସାବଁ)—କ୍ଷାର ଓ ତୈଳ ମିଶ୍ରିତ ମଳ ପରିଷ୍କାରକ ଓ ଫେନୋତ୍ପାଦକ ବସ୍ତୁବିଶେଷ—Soap. [ଦ୍ର—ଆଜିକାଲି ନାନାପ୍ରକାର, ନାମର ଓ ଆକାରର କଠିନ ଓ ତରଳ ସାବୁନ ପ୍ରସ୍ତୁତ ହେଉଅଛି । ବ୍ୟବହାର ଅନୁସାରେ ଓ ନିର୍ମାଣକର୍ତ୍ତାଙ୍କ ନାମ ଓ ଉପକରଣର ନାମ ଅନୁସାରେ ସାବୁନର ନାମ ଦିଆଯାଏ । ଯଥା—ଲୁଗାକଚା ସାବୁନ, କ୍ଷୌର ହେବା ସାବୁନ, କାର୍ବଲିକ୍ ସାବୁନ ଇତ୍ୟାଦି । ସୋଡ଼ା ଓ ନଡ଼ିଆତେଲ ରନ୍ଧା ଭଲ ସାବୁନ ହୁଏ । କରୁ ପରିମାଣରେ ତିଆରି କରିବା ଲାଗି ନଡ଼ିଆ ତେଲ ପରିବର୍ତ୍ତରେ ଘୋଲଙ୍ଗ କମ୍ବା ମହୁଲ ତେଲ ବ୍ୟବହାର କରାଯାଏ ।
Sābun সাবান साबुन

ୟୁରୋପୀୟମାନେ ଭାରତବର୍ଷକୁ ଆସିବା ପୂର୍ବେ ଭାରତରେ ସାବୁନ ବ୍ୟବହୃତ ହେଉ ନ ଥିଲା । ପର୍ତ୍ତୁଗୀଜ୍‌ମାନେ ସର୍ବପ୍ରଥମେ ଭାରତକୁ ଆସିଥିଲେ । ସମ୍ଭବତଃ ସେମାନଙ୍କଠାରୁ ଭାରତବାସୀମାନେ ସାବୁନର ବ୍ୟବହାର

ଶିଶିଲେ । ତତ୍ତୁଚ୍ଚେ ଭାରତରେ ବସ୍ତ୍ରାଦ ପରିଷ୍କାର କରିବା ପାଇଁ ନାନାପ୍ରକାର କ୍ଷାର, ଉଦ୍ଭିଜ୍ଜ ପାଉଁଶ, ସାଜ୍ଜମାଟି ଏବଂ ରିଠାଫଳ ଅଦର ବ୍ୟବହାର ହେଉଥିଲା । ପାଶ୍ଚାତ୍ୟ ବୈଜ୍ଞାନିକମାନଙ୍କ ମତ ଏହି କ, ଯେଉଁ ଦେଶରେ ଯେତେ ପରିମାଣରେ ସାବୁନ ବ୍ୟବହୃତ ହୁଏ ସେ ଦେଶ ସେତିକ ପରିମାଣରେ ସଭ୍ୟ ବୋଲି ବିବେଚିତ ହୁଏ । ସାବୁନ ଗୋଟିଏ ଲବଣ ( Salt ) ତୁଲ୍ୟ ରସାୟନିକ ଯୌଗିକ ପଦାର୍ଥ । ଲବଣ ମାନେ କ୍ଷାର ( Alkali ) ଓ ତୈଳିକ ଅମ୍ଳ ( Acid ) ସଂଯୋଗରେ ପ୍ରସ୍ତୁତ । ସେହିପରି ସାବୁନ କ୍ଷାର ( Alkali ) ଓ ତୈଳିକ ଅମ୍ଳ (Fatty Acid)ରେ ପ୍ରସ୍ତୁତ । ତୈଳରେ କମ୍ବା ଚର୍ବିରେ କୌଣସି କ୍ଷାର ସଂଯୋଗ କରି ଅଗ୍ନିର ଉତ୍ତାପରେ ଫୁଟାଇଲେ ତାହା ଘଣ୍ଡା ହୋଇ ଜମିଗଲେ ସାବୁନ ହୁଏ । ପଟାସ୍ ଅପେକ୍ଷା ସୋଡ଼ାର ଅମ୍ଳଧାରଣ କ୍ଷମତା ବେଶୀ ଓ ଜମାଟ ବାନ୍ଧିବା ଶକ୍ତି ମଧ୍ୟ ବେଶୀ । ଏଥିପାଇଁ ସୋଡ଼ାରେ ତିଆର ସାବୁନକୁ କଠିନ ସାବୁନ ( Hard soap ) ଓ ପଟାସ୍‌ରେ ତିଆର ସାବୁନକୁ କୋମଳ ସାବୁନ (Soft soap) ବୋଲଯାଏ । ଯେଉଁ ତୈଳ ଯେତେ ଅଧିକ ପରିମାଣରେ କ୍ଷାର ଶୋଷଣ କରେ ସେଥିରେ ସେତେ ବେଶି ପରିମିତ ସାବୁନ ତିଆର ହୁଏ । ନଡ଼ିଆ ତେଲ, ରେଡ଼ୀ, ତିଳ, ମସିନା, ଚିନାବାଦାମ, ପାମ୍ ( ତାଳ ), କପାମଞ୍ଜି ଅଦର ତେଲରେ ସାବୁନ ତିଆରି ହୁଏ । ଏହାଛଡ଼ା କେତେ ଗୋଟି ଉଦ୍ଭିଜ୍ଜ ଚର୍ବି ( Vegetable fat )ରେ ମଧ୍ୟ ସାବୁନ ତିଆର ହୁଏ । କେତେକ ଜାନ୍ତବ ଚର୍ବୀ ମଧ୍ୟ ସବୁନ ତିଆରରେ ଲାଗେ । କାଛୁ, କୁଣ୍ଡିଆ, ଦେହର ବୈବର୍ଣ୍ଣ୍ୟ ଓ ଅନ୍ୟାନ୍ୟ ରୋଗ ନବାରଣାର୍ଥ ଭିନ୍ନ ଭିନ୍ନ ଉପାଦାନ ମିଶାଇ ସାବୁନ ତିଆର କରାଯାଏ—ବିଶ୍ୱକୋଷ । ]

**ସାବେକ୍ (ଇତ୍ୟାଦ)** ବୈଦେ. ବଣ.—ସାବକ୍ ଇତ୍ୟାଦ ( ଦେଖ )
**Sābek ( etc )**  Sābak etc ( See )

**ସାବେଣୀ**—ବୈଦେ. ବ. ଗ୍ରାମ୍ୟ—ସାବୁନ୍ ( ଦେଖ )
**Sābeni**  Sābun ( See )
ଦେ. ବଣ. ସ୍ତ୍ରୀ—ସାବିନୀ (ଦେଖ)—Sābini (See)

**ସାବେବରାତ୍**—ବୈଦେ. ବ ( ଅ )—ମୁସଲମାନ୍ ସାବନ୍ ମାସର
**Sābebarāt** ଚତୁର୍ଦ୍ଦଶ ଦନ ( ସବେବରାତ୍ ଦେଖ )—The
সবেবরাৎ 14th day of the Mahomedan month
सबेबरात 'Sābana'.  ( Sabebarāt See ).

**ସାବେଲି**—ଦେ. ବ—ଅସ୍ତ୍ରବିଶେଷ—A kind of weapon. [ଉ—
**Sābeli** ବଙ୍ଗେଶ୍ୱର ଶାଳାବତ୍ୟ ପିଟିଲେ ସାବେଳି । ଉଡ଼ଶିଳା
সাবেলি भाला ପଢ ବସ ଲକ୍ଷ ମହାବଳେ—ସ୍ୱାଧୀନାଥ ମହାଯାତ୍ରା । ]

**ସାବ୍ଦୀ(ବ୍ଦୀ)**—ସଂ. ବ ( ସ+ଅବ୍ଦ+ଈ, ଏହା ବର୍ଷକେ ଥରେ ଫଳ
**Sābdi(bdi)** ଧରେ )—ଦ୍ରାକ୍ଷାବିଶେଷ—A sort of grape.

**ସାବ୍ଧି**—ସଂ. ବଣ ( ସ+ଅବ୍ଧି )—ସମୁଦ୍ର ସହିତ; ସସମୁଦ୍ର—With
**Sābdhi**  the sea; including the sea.

**ସାବ୍ଧି ଦ୍ୱୀପ**—ସଂ. ବଣ—ସମୁଦ୍ର ଓ ଦ୍ୱୀପ ସହିତ—Including or
**Sābdhi dwipa**  comprising the sea and the
(ସାବ୍ଧି ଦ୍ୱୀପା—ସ୍ତ୍ରୀ)  islands.

**ସାବ୍ଧିଦ୍ୱୀପା ବସୁନ୍ଧରା**—ସ ବ—ସସାଗରା ଧରା; ଜଳଭାଗ ଓ ଦ୍ୱୀପାଦ-
**Sābdhidwipā basundharā**  ସମନ୍ୱିତ ପୃଥିବୀ—
The globe including the ocean and the islands.

**ସାବ୍ୟସ୍ତ (ସ୍ଥ)**—ଦେ. ବଣ (ସ ସୁବ୍ୟବସ୍ଥ)—୧ । ଉତ୍ତମରୂପେ ପ୍ରମାଣିତ—
**Sābyasta(stha)** 1. Well proved; legally established.
সাব্যস্ত साबित  ୨ । ସୁନିଶ୍ଚିତ—
2. Settled; ascertained; determined.

**ସାବ୍ୟସ୍ତ(ସ୍ଥ) କରିବା**—ଦେ. କ୍ରି—୧ । ନରୂପଣ କରିବା—1. To
**Sābyasta(stha) karibā** ascertain. ୨ । ପ୍ରମାଣ ଦ୍ୱାରା
সাব্যস্ত করা ସ୍ଥିର କରିବା—2. To settle or determine
साबित करना a matter by proof. (ଯଥା—ସତ୍ତ୍ୱ ସାବ୍ୟସ୍ତ କରିବା, ଅମୁକକୁ ଅପରାଧ(ଧୀ) ସାବ୍ୟସ୍ତ କରିବା ।)

**ସାବ୍ୟସ୍ତ(ସ୍ଥ) ହେବା**—ଦେ. କ୍ରି—ପ୍ରମାଣ ଦ୍ୱାରା ସ୍ଥିରୀକୃତ ହେବା—
**Sābyasta(stha) hebā**  To be ascertained by
সাব্যস্তহওয়া साबितहोना  evidence.

**ସାଭାପତ**—ସ. ବ. ପୁଂ(ସଭାପତ+ଅ)—ସଭାପତିଙ୍କ ପୁତ୍ର (ବିଶ୍ୱକୋଷ)
**Sābhāpata** —Son of a Sabhāpati. ସ. ବଣ—
ସଭାପତି ସମ୍ବନ୍ଧୀୟ—Relating to Sabhāpati.

**ସାଭିପ୍ରାୟ**—ସ. ବଣ. ପୁଂ (ସ+ଅଭିପ୍ରାୟ)—୧ । ଅଭିପ୍ରାୟ ସହିତ—
**Sābhiprāya** 1. With intention. ୨ । ଅଭିପ୍ରାୟ ବଶିଷ୍ଟ-
(ସାଭିପ୍ରାୟା—ସ୍ତ୍ରୀ)  2. Having intention.

**ସାଭିଳାଷ**—ସ. ବଣ. ପୁଂ—ଅଭିଳାଷଯୁକ୍ତ—
**Sābhilāsha**  Having desire or wish.
(ସାଭିଳାଷା—ସ୍ତ୍ରୀ)

**ସାଭ୍ୟସୂୟ**—ସ. ବଣ. ପୁଂ (ସ+ଅଭ୍ୟସୂୟା)—ଅସୂୟା ପରବଶ
**Sābhyasūya,**  (ବିଶ୍ୱକୋଷ)—Spiteful.
(ସାଭ୍ୟସୂୟା—ସ୍ତ୍ରୀ)

**ସାମ୍‌କେଲ**—ପ୍ରାଦେ (ସମ୍ବଲପୁର) ବ. (ସ. ଶମ୍ବୂକ)—ଗେଣ୍ଡା ଶାମୁକା—
**Sām-kel**  Oyster.

**ସାମ୍‌ନା-ଦେଖ୍**—ଦେ. ବ (ସିପାଶୀମାନଙ୍କ ପ୍ରବର୍ତ୍ତିତ ଡ୍ରିଲ୍ ସମ୍ବନ୍ଧୀୟ
**Sāmnā-dekh** ଅଦେଶ ବଚନ)—ଅଗକୁ ଚାହିଁ ।—A term
সাম্‌না-দেখ सामनेदेखो  of drill) Eyes-front !

**ସାମ (ଧାତୁ)**—ସ—ସାନ୍ତ୍ୱନା କରିବା—
**Sāma (root)**  To console; to condole.

**ସାମ**—ସ. ବ [ସୋ. ଧାତୁ=(ପାପ ଓ ବିରୋଧକୁ) ନାଶ କରିବା+କର୍ତ୍ତୃ.
**Sāma** ମନ୍; ସାମନ୍ ଶବ୍ଦ; ୧ମା. ୧ବ; ଯାହା ପାପକୁ ଓ ବିରୋଧକୁ ନାଶ କରେ)—୧ । ଚତୁର୍ବେଦାନ୍ତର୍ଗତ ତୃତୀୟ ବେଦ—
1. The 3rd of the Bedas; (scriptures of

the Hindus). [ଦ୍ର—ଏଥିର ମନ୍ତ୍ରମାନ ଗାନ କରିବାକୁ ହୁଏ । ଏହି ବେଦର ଗାନ୍ଧର୍ବବେଦ (ସଙ୍ଗୀତ ବିଦ୍ୟା) ଉପବେଦ ବା ଅଙ୍ଗ ଅଟେ । ଏହି ବେଦର କାଶ୍ୟପ ଗୋତ୍ର, ବିଷ୍ଣୁ ଦେବତା ଓ ଜଗତୀ ଛନ୍ଦ ଅଟେ । ଭଗବଦ୍ଗୀତା ରେ ଶ୍ରୀକୃଷ୍ଣ ସାମବେଦକୁ ବେଦମାନଙ୍କ ମଧ୍ୟରେ ଉଚ୍ଚ ସ୍ଥାନ ଦେଇଅଛନ୍ତି । ଏହି ବେଦର ଶାଖା ସହସ୍ର । ଛାନ୍ଦୋଗ୍ୟ ପ୍ରଭୃତି ଉପନିଷଦ୍ ସାମବେଦରୁ ଉତ୍ପନ୍ନ । ସାମବେଦର ଧ୍ୱନି ଶ୍ରବଣ କରି ଅନ୍ୟ ବେଦ ଅଧ୍ୟୟନ କରିବା ନିଷିଦ୍ଧ । ପାଦବଦ୍ଧ ଓ ଅର୍ଥଯୁକ୍ତ ଛନ୍ଦୋବଦ୍ଧ ବୈଦିକ ମନ୍ତ୍ରଗୁଡ଼ିକ ଋକ୍, ଗୀତରୂପେ ରଚିତ ବୈଦିକ ମନ୍ତ୍ରଗୁଡ଼ିକ ସାମ ଏବଂ ଛନ୍ଦଃ ଓ ଗୀତବର୍ଜିତ ମନ୍ତ୍ରଗୁଡ଼ିକ ଯଜୁଃରୂପେ ଖ୍ୟାତ ।] ୨ । ସାମବେଦାନ୍ତର୍ଗତ ମନ୍ତ୍ର—2. The mystic formulas which are contained in the 'Sāma' Veda. ୩ । ସାମ ଗାନ; ସାମବେଦ ଗାନ—3. The singing of the hymns of the 'Sāma' Beda. ୪ । (ସାମ ଧାତୁ+ଭାବ. ଅ) ସାନ୍ତ୍ୱନା ବାକ୍ୟ—4. Consolatory words; condoling words. ୫ । ମଧୁର ଭାଷଣ; ପ୍ରିୟବଚନ—5. Sweet or endearing words. ୬ । (ରାଜାଙ୍କ କର୍ତ୍ତବ୍ୟ) ଶତ୍ରୁ ବଶୀକରଣୋପାୟବିଶେଷ; ପ୍ରିୟବାକ୍ୟ, ଅର୍ଥପ୍ରଦାନ, ସମ୍ବନ୍ଧ ବା ବନ୍ଧୁତା ସ୍ଥାପନ, କ୍ରୋଧୋପଶମନାଦି ଦ୍ୱାରା ଶତ୍ରୁକୁ ବଶ କରିବା ଉପାୟ; ସନ୍ଧି ସ୍ଥାପନ—6. One of the 4 expedients which a king should apply towards his enemy; the art of bringing one's adversary into control; conciliation. [ଦ୍ର—ଚ୍ଛନ୍ଦ୍ର ଶାନ୍ତି ଶାସ୍ତ୍ରର ଉପଦେଶ ଯେ, ରାଜା ଶତ୍ରୁ ପ୍ରତି ୪ ପ୍ରକାରର ଉପାୟ ଯଥାକ୍ରମେ ପ୍ରୟୋଗ କରିବେ । ଯଥା—ସାମ, ଦାନ, ଦଣ୍ଡ, ଭେଦ ।] ୭ । ପ୍ରିୟକରଣ (ବିଶ୍ୱକୋଷ)—7. Acting to please another. ୮ । ଗୀୟମାନ ବୈଦିକ ମନ୍ତ୍ର; ଯଜ୍ଞରେ ଯେଉଁ ସବୁ ମନ୍ତ୍ର ଗୀତ ହୁଏ (ବିଶ୍ୱକୋଷ)—9. Vedic Mantras which are sung during Vedic sacrifice. ଗ୍ରା. ବି—ଶ୍ୟାମସୁନ୍ଦରର
ଶ୍ୟାମ ଡାକ ନାମ—Nickname for Syāmasundara.
ସାମ

ସାମଏ(ଇ)—ବୈଦେ. ବି (ଇଂ)—ମଧ୍ୟ ଓ ଦକ୍ଷିଣ ଇଉରୋପର ଅଲ୍‌ପ୍‌ସ୍, Sāmae(i) ପିରିନିସ୍ ଆଦି ପର୍ବତର ଉଚ୍ଚ ଶୃଙ୍ଗଦେଶରେ ବିଚରଣ
ସାମ୍ୟ କରୁଥିବା ହ୍ରସ୍ୱଶୃଙ୍ଗବିଶିଷ୍ଟ, ଦ୍ରୁତଗାମୀ ଏକପ୍ରକାର କ୍ଷୁଦ୍ରମୃଗ
सामय —Chamois; a small species of antilopes living on the Alps and Pyrenese and other European mountains; Rubicapra Tragus. [ଦ୍ର—ଏମାନଙ୍କ ଚମଡ଼ାରୁ ଅତି କୋମଳ ଓ ପତଳା କଷା ଚମଡ଼ା ତିଆର ହୁଏ ଓ ସେହି ଚମଡ଼ାକୁ ଧୋଇ ଓ ଚିକ୍କଣ ଆଦି ପାଲିସ କରାଯାଏ । ସେହି ଚମଡ଼ାକୁ Chamois leather ସାମଏ ଚମଡ଼ା କୁହାଯାଏ । ଏ ଶବ୍ଦର ଇଂରାଜି ଉଚ୍ଚାରଣ ସାମ୍ମି ବା ସାମଇ ।]

ସାମଏ ଚମଡ଼ା—ବୈ. ବି (ଇଂ. ସାମଏ+ଫା. ଚର୍ମ)—ସାମଏ ମୃଗର Sāmae chamarḍā ଚର୍ମରୁ ନିର୍ମିତ ପତଳା କଷା ଚମଡ଼ା—
সাময় চামড়া सामय चमड़ा Chamois leather.
(ଶାମଏ ଲେଦର୍—ବୈଦେ ରୂପ)

ସାମକ—ସଂ. ବି (ସମ୍ ଧାତୁ=ସମାନ କରିବା+କର୍ତ୍ତୃ. ଅକ)—୧ । Sāmaka ମୂଳଋଣ (ମିତାକ୍ଷରା); ସୁଧ ଛାଡ଼ି ନିଆ ଯାଇଥିବା ଋଣର ଅସଲ ଧନ—1. The principal of a loan. ୨ । (ଷୋ ଧାତୁ=ନାଶ କରିବା+କର୍ତ୍ତୃ. ଅକ)—ତକୁଶାଣ (ବୈକାଣ୍ଡ ଶେଷ); ତାକୁଡ଼ର ପିଣ୍ଡ—2. The ball at the base of a spindle. ୩ । ଶାଣ ପଥର—3. Whetstone. ସଂ ବି ଓ ବିଣ (ସାମନ୍+କ)—୧ । ସାମବେଦାଧ୍ୟୟନକାରୀ ବ୍ୟକ୍ତି—1. A person studying the Sāma Beda. ୨ । ସାମ ବେଦାଭିଜ୍ଞ ବ୍ୟକ୍ତି—2. A person versed in the Sāma Beda.

ସାମଗ—ସଂ ବିଣ. ପୁଂ (ସାମନ୍+ଗୈ ଧାତୁ=ଗାଇବା+କର୍ତ୍ତୃ ଅ)—Sāmaga ୧ । ସାମବେଦୀ ବ୍ରାହ୍ମଣ (କଣ୍ଠାଧର)—
(ସାମଗୀ—ସ୍ତ୍ରୀ) A Brāhmaṇa following the 'Sāma' Beda. ୨ । ସାମବେଦଗାନକାରୀ ବ୍ରାହ୍ମଣ—2. A Brāhmaṇa singing the hymns of the Sāma Beda.

ସାମ ଗର୍ଭ—ସଂ ବି (ବହୁବ୍ରୀହି; ସାମକୁ ଅଛି ଗର୍ଭରେ ଯାହାଙ୍କର)—ବିଷ୍ଣୁ Sāma garbha (ଶବ୍ଦରତ୍ନାବଳୀ)—Bishṇu.

ସାମଗାନ(ୟ)—ସଂ ବି (ସାମ+ଗୈ ଧାତୁ+ଭାବ ଅନ+ଅ)—ସ୍ୱର ବା Sāmagāna(ya) ଛନ୍ଦଃ ଦ୍ୱାରା ସାମ ବେଦର ମନ୍ତ୍ର ଗାଇବା—
ସାମଗାୟନ } —ଅନ୍ୟରୂପ The chanting of the hymns of the Sām Veda.
ସାମଗୀତ }

ସାମଗିରି—ପ୍ରାଦେ (ଲଉଆ) ଓ ଗ୍ରା. ବି—ସାମଗ୍ରୀ—Sāmagri Sāmagiri (See); materials; ingredients.

ସାମଗୀ—ସଂ ବି. ସ୍ତ୍ରୀ—୧ । (ସାମଗର ସ୍ତ୍ରୀଲିଙ୍ଗ) ସାମବେଦୀ ବ୍ରାହ୍ମଣର ସ୍ତ୍ରୀ—Sāmagi 1. The wife of a Sāmaga Brahman. ୨ । ସାମଗାନକାରିଣୀ ସ୍ତ୍ରୀ—2. A woman chanting the Sāma Beda.

ସାମଗିରି—ଗ୍ରା (ପଦ୍ୟ) ବି—୧ । ସାମଗ୍ରୀ (ଦେଖ)—1. Samagri Sāmagiri সামিগ্রী (See) ୨। ଅସ୍ତ୍ର ଶସ୍ତ୍ର; ହାତ ହତିଆର—
सामगिरी 2. Weapons; implements. (ଉ—ଶମ୍ଭୁ ଦମ୍ଭ ଶିବ ଗଣ ଗଡ଼ୁଚ ଦେଖିଲେ, ବଜ୍ର ସାମଗୀର କାମ ଟୁଙ୍କୁ ଉଦ୍ୟ କଲେ—ଶିଶୁଶଙ୍କର ଉଷା ଅଭିଳାଷ ।)

ସାମଗ୍ରୀ—ସଂ ବି (ସମଗ୍ର+ଭାବାର୍ଥେ ଅ+ଈ)—୧ । କାରଣସମୂହ Samagri (ପଦାର୍ଥ ଭୂତ)—1. Causes. ୨ । ଦ୍ରବ୍ୟ; ବସ୍ତୁ—2. Thing. ୩ । ଦ୍ରବ୍ୟସମୂହ; ଦ୍ରବ୍ୟ

ସମ୍ଭାର—3. A collection of things. ୪ । ସରଞ୍ଜାମ; ଉପକରଣ—4. Materials ୫ । ଉପାଦାନସମୂହ—5. Ingredients. ୬। ଖାଦ୍ୟ ବସ୍ତୁ-ଚୟ—6. Victuals. ୭ । ରନ୍ଧନ ପାଇଁ ବ୍ୟବହୃତ ପାତ୍ରାଦି—7. Cooking utensils. ୮ । ଦଳବଳ (ପ୍ରକୃତିବାଦ)—8. Retinue; band. ୯ । ଅସ୍ତ୍ରଶସ୍ତ୍ର—9. Weapons, ୧୦। ଭଣ୍ଡାର—10. Store-room ୧୧। କାରିଗରର ଯନ୍ତ୍ରାଦି; ସାଧନ—11. Implements; tools of an artisan. ଦେ• ବ—ଭୋଜିରେ ବହୁପ୍ରକାର ଖାଦ୍ୟବସ୍ତୁ—Different items of food served in a feast. (ଯଥା—ଭାଙ୍କ ଘରୁଘର ଶିରସ୍ତିଠାରେ ଭଲ ସାମଗ୍ରୀମାନ ହୋଇଥିଲା ।)

ସାମଗ୍ରୀ ପତ୍ର—ଦେ. ବ (ଜଣର୍ଥକ ଦ୍ୱିତୀୟ ସହଚର ଶବ୍ଦ)—ନାନାବିଧ
Sāmagrī patra ବସ୍ତୁ—Many articles.
(ସାମଗ୍ରୀପାତି; ସାମଗ୍ରୀପତ୍ରର—ଅନ୍ୟରୂପ)
সামিগ্রীপত্র सामग्रीआदि

ସାମଗ୍ର୍ୟ—ସଂ. ବ ( ସମଗ୍ର+ଭାବାର୍ଥେ. ଯ )—୧ । ସମଗ୍ରତା—
Sāmagaya 1. Wholeness; completeness; entirety. ୨ । ସାମଗ୍ରୀ ( ଦେଖ )—2. Sāmagrī (See)

ସାମଜ—ସଂ. ବ (ସାମନ୍=ସାମ ବେଦ+ଜନ୍ ଧାତୁ+କର୍ତ୍ତି. ଅ, କଥିତ
Sāmaja ଅଛି ଯେ ବ୍ରହ୍ମା ସାମ ବେଦ ଗାନ କରିବାବେଳେ ହସ୍ତୀ ଜନ୍ମିଥିଲା )—ହସ୍ତୀ ( ମେଦିନୀ )—Elephant. ବିଣ—ସାମରୁ ଜାତ—Born of or resulting from conciliation.

ସାମଜ(ଞ୍ଜ)ସ—ଦେ. ବ (ସଂ. ସାମଞ୍ଜସ୍ୟ)—୧ । ସାମଞ୍ଜସ୍ୟ; ବିବାଦର
Sāmaja(ñja)sa ଅପୋଷରେ ମେଳ; ବିବାଦ ପରେ ମେଳାପ
1. Conciliation. ୨ । ବିବାଦର ଅପୋଷ ମୀମାଂସା
সামংঞ্জস্য सामंजस ବା ସମାଧାନ—2. Amicable settlement of a dispute. ୩ । ସଦ୍ଭାବ; ଦୁଇଜଣଙ୍କ ମଧ୍ୟରେ ମେଳ—3. Good feeling. ବିଣ—ଯେଉଁ ବ୍ୟକ୍ତି ବିବାଦକୁ ମିଳାଇଦିଏ—Conciliatory; bringing about amicable settlement.

ସାମଞ୍ଜସ୍ୟ—ସଂ. ବ (ସମଞ୍ଜସ=ଉଚିତ+ଭାବ ଯ)—୧ । ସମଞ୍ଜସତା;
Sāmañjasya ଉପଯୋଗିତା—1. Fitness. ୨। ସମୀଚୀନତା; ଔଚିତ୍ୟ—2. Propriety. ୩ । ମେଳ; ମେଳାପ; ସଦ୍ଭାବ—3. Good feeling; agreement; harmony. ୪ । ଐକମତ୍ୟ; ଏକମନ ହେବାର ଭାବ; ମତର ଐକ୍ୟ; ମନର ମେଳ—4 Agreement; accordance. ୫ । ସମତା—5. Consistency; congruity. ୬ । ଉତ୍କର୍ଷ—6. Excellence.

ସାମଞ୍ଜସ୍ୟ (ସାଧନ)ବିଧାନ—ସଂ. ବ ( ୭ମୀ ତତ୍ )—୧ । ମେଳ
Sāmanjasya (sadhana)bidhāna କରାଇବା—1. Bringing about conciliation or agreement. ୨ । ଏକରୂପତା କରଣ—2. Harmonising.

ସାମଧେନୀ—ସଂ. ବ (ସମିଧ୍+ଆ+ଧା ଧାତୁ=ଧାରଣକରିବା+କରଣ
Sāmadhenī ଅନ+ଈ; ସମିଧ+ଅଧାନ୍ନ;କଣପାଠନ)
୧ । ହୋମାଗ୍ନିସନ୍ଦୀପନ ମନ୍ତ୍ର; ନିଆଁ ଜଳାଇବାର ମନ୍ତ୍ର; ଅଗ୍ନିସନ୍ଦୀପନ କରିବାବେଳେ ଯେଉଁ ମନ୍ତ୍ର ପାଠ କରାଯାଏ—1. A mystic formula for igniting sacrificial fire. ୨ । ଇନ୍ଧନ—2. Fuel.

ସାମନା—ଦେ• ବ (ସଂ. ସମ୍ମୁଖ; ଉର୍ଦ୍ଦୁ ଓ ହିନ୍ଦୀ)—ଅଗ୍ର; ସମ୍ମୁଖଭାଗ—
Sāmanā Front part. ବିଣ—ସମ୍ମୁଖୀନ—Front;
সামনা सामना opposite.

ସାମନା-ଚାଲ୍—ଦେ. ବ—(ସିପାହୀମାନଙ୍କ ପ୍ୟାରେଡ୍‌ର ଡ୍ରିଲ୍ ସମ୍ବନ୍ଧୀୟ
Sāmanā chāl ଆଦେଶ ବଚନ) ଅଗ୍ରସର ହୁଅ—(a term
সামনাচল্ सामनेचलो of drill) Forword-march।

ସାମନା ଦାନ୍ତ—ଦେ. ବ (ସଂ ସମ୍ମୁଖ ଦନ୍ତ)—ଅଗ୍ରଦାନ୍ତ—
Sāmanā dānta Front teeth.
সামনাদান্ত सामनेकादांत

ସାମନାରେ—ଦେ• କ୍ରି. ବିଣ—ସମ୍ମୁଖରେ—
Sāmanāre In front of; in the face of; before.
সামনে सामनेंमे

ସାମନା ସାମନି—ଦେ• ବିଣ—ପରସ୍ପର ସମ୍ମୁଖୀନ—Facing each
Sāmanā sāmani other or one another.
সামনাসামনি सामनासामनि କ୍ରି. ବିଣ—ପରସ୍ପରଙ୍କ ସମ୍ମୁଖରେ—In front of each other.

ସାମନି—ସଂ. ବ (ସୋ ଧାତୁ=ନାଶ କରିବା+କରଣ ମନ୍+ଈ-
Sāmanī ପଗା, ପଶୁ ବନ୍ଧନର ରଜ୍ଜୁ (ସାର ସୁନ୍ଦରୀ)—A rope for tying beasts.

ସାମନ୍ତ—ସଂ ବିଣ (ବହୁବ୍ରୀହି; ସମ୍=ସଂଲଗ୍ନ ଅଛି ଅନ୍ତ=ଏକ-
Sāmanta ଦେଶ ଯାହାର; କିମ୍ବା ସମନ୍ତାତ୍+ଭବ ଅର୍ଥରେ ଅ;କଣପାଠନ)—୧। ରାଜ୍ୟର ସମୀପବର୍ତ୍ତୀ—1. Adjacent to the kingdom. ୨ । ନିକଟବର୍ତ୍ତୀ—2. Adjacent. ସ ବ—୧ । ରାଜାଙ୍କ ଅଧୀନ ଛୋଟ ରାଜା—1. A tributary or feudatory chief under a king. [ଦ୍ର—ରାଜ୍ୟର ମଧ୍ୟରେ ଭଲ ସ୍ଥଳର ଭୂମିର କ୍ଷୁଦ୍ରାଂଶର ଭୂସ୍ୱାମୀଙ୍କୁ ସାମନ୍ତ କହନ୍ତି—ଶବ୍ଦକୋଷ] ୨ । ସମୀପବର୍ତ୍ତୀ ଦେଶର ରାଜା—2. King of an adjacent kingdom. ୩ । ଅଧିନାୟକ (ଶବ୍ଦକୋଷ)—3. Leader. ୪ । ସାମୀପ୍ୟ

(ପ୍ରକୃତିବାଦ)—4. Propinquity. ୫ । ଶ୍ରେଷ୍ଠ ପ୍ରଜା-ମଣ୍ଡଳ (ପ୍ରକୃତିବାଦ)—5. Prominent subjects of a kingdom

सामन्त सामंत ସାମନ୍ତ—ଦେ. ବି—୧ । ଶାଅନ୍ତ (ଦେଖ) 1. Sā-ānta (See) ୨ । ମଣ୍ଡଳେଶ୍ୱର; ଜମିଦାର—2. A landlord. ୩ । ଗ୍ରାମର ମଣ୍ଡଳ—( ସାମନ୍ତାଣୀ—ସ୍ତ୍ରୀ ) 3. The headman of a village. ୪ । ରାଜବନ୍ଧୁବର—4. A royal kinsman or agnate. ୫ । କ୍ଷତ୍ରିୟମାନଙ୍କ ଉପାଧି—5. A general title amongst the Kshatriyas. ୬ । ଭଦ୍ର ପ୍ରଜା—6. A subject of gentle family. ୭ । ଉଚ୍ଚବଂଶୀୟ ବ୍ୟକ୍ତି—7. A nobleman. ୮ । କରଣମାନଙ୍କର ସାଧାରଣ ଉପାଧି—8. A generic title of the Karaṇas. ୯ । ସାଅନ୍ତ ବ୍ରାହ୍ମଣ; କୁଳୀନ ବ୍ରାହ୍ମଣ—9. A Brāhmaṇa of high social status. ୧୦ । ସ୍ୱାମୀ; ପ୍ରଭୁ; ଶାସ୍ତିଭ—10. Master; lord. [ ଉ—ଅବଠାରୁ ତୁମ୍ଭେ ହୋଇଲ ମୋ ସାମନ୍ତ । ଯା ବୋଲୁଥିବ ତାହା କରିବ ଭୃତ୍ୟ—କୃଷ୍ଣସିଂହ. ମହାଭାରତ. ଶାନ୍ତି । ] ୧୧ । ଗ୍ରାମର ଯେଉଁ ଗୃହସ୍ଥଙ୍କର ଧୋବା ଭଣ୍ଡାରୀ ସେବା ଶନ୍ତି—11. A householder of a village who is served by a particular washerman or barber. [ ଉ—ଉକ୍ତ ଗୃହସ୍ଥ ସେହି ସେବକ ଧୋବାର ବା ଭଣ୍ଡାରୀର ସାମନ୍ତ ବୋଲନ୍ତି । ] ୧୨ । ଗୁରୁଜନମାନଙ୍କ ପ୍ରତି ସମ୍ମାନାର୍ଥ ସମ୍ବୋଧନ—12. A term of respect used for one's elders. ୧୩ । ଅଗ୍ରି ( ଉଗ୍ରକ୍ଷତ୍ରିୟ ) ମାନଙ୍କ ବଂଶୋ-ପାଧିବିଶେଷ—13. A family-title amongst the Āgris. ୧୪ । ସେନାପତି—14. A commander; a general. ୧୫ । କରଣ ବିବାହରେ ବରଙ୍କସଙ୍ଗେ ଆସି-ଥିବା ଶିଷ୍ଟ ବରଯାତ୍ରୀ—15. Respectabel persons accompanying a bridegroom to a Karaṇa marriage. ୧୬ । ଚାନ୍ଦକସାର ଟୀକା ପ୍ରଣେତା ଜଣେ ଜ୍ୟୋତିର୍ବିଦ୍ (ବିଶ୍ୱକୋଷ) (ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀ)—16. Name of an astrologer who was the author of an astrological Key-book.

ସାମନ୍ତ ଗିରି (ପଣ)—ଦେ. ବି—୧ । ସ୍ୱାମିତ୍ୱ—1. Mastery. Sāmanta giri (paṇa) ୨ । ସାମନ୍ତ ହେବାର ଅବସ୍ଥା—सामन्तपना 2. The state of being a Sāmanta सामन्तपन (ସାମନ୍ତ ପଣିଆ; ସାମନ୍ତ ପଣିଆଁ—ଅନ୍ୟରୂପ )

ସାମନ୍ତ ବଡ଼ାକ (ମର୍ଯ୍ୟାଦା)—ଦେ. ବି— ସାଅନ୍ତ ବଡ଼ାକ ( ଦେଖ ) Sāmanta bidāki (marjyādā) Sā-ānta bidāki ( See )

ସାମନ୍ତ ରଜା—ଦେ. ବି— ରଜାଙ୍କ ଅଧୀନ ରଜା—Sāmanta rājā A feudatory chief under a king.

ସାମନ୍ତ ସେନ—ଦେ. ବି—ବଙ୍ଗଦେଶର ସେନ ବଂଶୀୟ ରାଜାମାନଙ୍କ Sāmanta sena ଆଦିପୁରୁଷ—The name of the ancestor of the Sena family of kings of Bengal. [ ଦ୍ର—ଏ ଦାକ୍ଷିଣାତ୍ୟର ଜଣେ ସାମନ୍ତ ରାଜା ଥିଲେ; କୌଣସି କାରଣରୁ ରାଜାଙ୍କ କୋପରେ ପଡ଼ିବାରୁ ସେଠାରୁ ପଳାଇ ଆସି ନବଦ୍ୱୀପରେ ବାସ କରି ( ୧୦ମ ଶତାବ୍ଦୀରେ ) ରାଜ୍ୟ ସ୍ଥାପନ କଲେ; ଏହାଙ୍କ ପୁତ୍ର ହେମନ୍ତ ସେନ ଓ ପୌତ୍ର ବିଜୟ ସେନ ଥିଲେ—ବିଶ୍ୱକୋଷ । ]

ସାମନ୍ତା(ନ୍ତେ)ଇ—ଦେ. ବିଣ—ସାମନ୍ତ ସମ୍ବନ୍ଧୀୟ—Relating to Sāmantā(nte)i Sāmanta. ବି—ସାମନ୍ତ ପଦ—सामन्तपना The position or state of being a सामन्तपन Sāmanta.

ସାମନ୍ତେଶ୍ୱର—ସ. ବି ( ୬ଷ୍ଠୀ ତତ୍ )—ରାଜାଧିରାଜ; ସାମନ୍ତ ରାଜା-Sāmanteśwara ମାନଙ୍କ ଚକ୍ରବର୍ତ୍ତୀ—A sovereign.

ସାମନ୍ୟ—ସ. ବି. ପୁଂ ( ସାମନ୍ + ସ୍ନାତା ଅର୍ଥରେ. ଯ )—ସାମବେଦଜ୍ଞ Sāmanya ବ୍ରାହ୍ମଣ—A Brāhmaṇa versed in the Sāma Beda.

ସାମ ବାଦ—ସ. ବିଣ ( ୬ଷ୍ଠୀ ତତ୍ )—୧ । ପ୍ରିୟବାକ୍ୟ କଥନ Sāma bāda (ବିଶ୍ୱକୋଷ) —1. Speaking of things agreeable to a person. ୨ । ପ୍ରିୟବାକ୍ୟ ( ବିଶ୍ୱକୋଷ )—2. Agreeable words.

ସାମବାୟିକ—ସ. ବିଣ ( ସମବାୟ + ଇକ )—ସମବାୟ ସମ୍ବନ୍ଧୀୟ—Sāmabāyika Relating to Samabāya or aggregate; cooperative. ବି—୧ । ନାୟକ; ଦଳପତି —1. Headman or leader. ୨ । ସଚିବ; ମନ୍ତ୍ରୀ (ହେମଚନ୍ଦ୍ର )—2. Minister.

ସାମ ବେଦ—ସଂ. ବି—ସାମ ୧( ଦେଖ ) Sāma beda Sāma 1( See )

ସାମବେଦିଆ—ଦେ. ବିଣ ( ସଂ. ସାମବେଦଜ୍ଞ )—ସାମବେଦାଧାୟୀ Sāmabediā (ବ୍ରାହ୍ମଣ)—( a Brāhmaṇa ) Studying सामवेदी the Sāma Beda.

ସାମବେଦୀ—ସଂ. ବି. ପୁଂ ( ସାମବେଦ + ଇନ୍; ୧ମା. ୧ବ )—ସାମ-Sāmabedī ବେଦାଧାୟୀ ବ୍ରାହ୍ମଣ—A Brāhmaṇa studying the Sāma Beda. ଦେ. ବିଣ—ସାମବେଦିଆ ( ଦେଖ )—Samabediā ( See )

ସାମବେଦୀୟ—ସଂ. ବିଣ—୧ । ସାମବେଦ ସମ୍ବନ୍ଧୀୟ—1. Relating to the Sāma Beda. Sāmabedīya ୨ । ସାମ-ବେଦାଧାୟୀ—2 Studying the SāmaBeda.

ସାମ ମଲ(ଲ୍ଲ)—ଦେ. ବି—ସାମଲ ( ଦେଖ ) Sāma mala(lla) Sāmala ( See )

ସାମୟିକ—ସଂ. ବିଣ (ସମୟ + ଉଚିତାର୍ଥେ.ଇକ)—୧ । ସମୟୋଚିତ; Sāmayika କାଳୋପଯୋଗୀ—1. Befitting the time;

opportune. ୨ । ସମୟେ ସମୟେ ଯାହା ଘଟି ପାରେ —2. Happening at times. ୩ । ଅସ୍ଥାୟୀ— 3. Temporary. ୪ । ନିୟମାନୁଯାୟୀ—4. According to rule; following a rule.

ସାମ ଯୋନି—ସଂ. ବି ( ସାମ=ସାମବେଦ ଅଟେ ଯୋନି=ଉତ୍ପତ୍ତିସ୍ଥଳ ଯାହାର )—ସାମବେଦୋତ୍ପନ୍ନ—Born of the Sāma Beda. ବି—୧ । ହସ୍ତୀ—1. Elephant. ୨ । ବ୍ରହ୍ମା—2. Brahmā the creator.
Sāma joni

ସାମର୍—ପ୍ରାଦେ. ( ଛତିଶଗଡ଼ ) ବି—ଶମ୍ବର ମୃଗ— The Sambar deer.
Sāmar

ସାମର—ପ୍ରାଦେ. (ଛତିଶଗଡ଼) ବିଣ—ସାମାନ୍ୟ ଗୋରା—Of slightly fair complexion. ସଂ. ବି ( ସମର + ସ୍ୱାର୍ଥେ ଅ)—ସମର (ଶବ୍ଦକୋଷ); ଯୁଦ୍ଧ—Battle. ସଂ. ବିଣ—ଯୁଦ୍ଧଭବ ( ଶବ୍ଦକୋଷ )—Due to war.
Sāmara

ସାମରଥ୍—ପ୍ରାଦେ ( ସମ୍ବଲପୁର ) ବିଣ ( ସଂ ସମର୍ଥା )—ପ୍ରାପ୍ତରଜସ୍କା; ରଜସ୍ୱଳା; ପୁରୁଷଯୋଗ୍ୟା (ବାଳିକା)—Matured (girl); who has attained puberty. (ଯଥା—ସେ ଝିଅ ସାମରଥ୍ ହେଲାଣି) ।
Sāmarath

ସାମରଥ—ଗ୍ରା. ବି ( ସଂ. ସାମର୍ଥ୍ୟ )—ସାମର୍ଥ୍ୟ ( ଦେଖ )—Sāmarthya (See). [ ଉ—ବପ୍ତା ଦଶରଥ ଜଣା ସାମରଥ ଭରତଙ୍କ ଭୂଷଣ—ଉଜ୍ଞ. ବୈଦେହୀଶବିଳାସ । ] ବିଣ (ସଂ. ସମର୍ଥ )—ସାମରଥା ( ଦେଖ )—Sāmarathā (See)
Sāmaratha
সামর্থ্য सा(स)मरथ

ସାମରଥା(ଥୀ)—ଗ୍ରା. ବିଣ (ସଂ ସମର୍ଥ)—୧ । ସାମର୍ଥ୍ୟବିଶିଷ୍ଟ; ବଳଯୁକ୍ତ; ବଳିଷ୍ଠ—1. Strong; mighty. [ ଉ—ଜଗତ ତ ସମରେ ଅଛ ସାମରଥା—କୃଷ୍ଣସିଂହ ମହାଭାରତ ବନ ।] ୨ । ଯୋଗ୍ୟ— 2. Able; competent. ୩ । କ୍ଷମତାଶାଳୀ— 3. Powerful. ୪ । ବୀରତାଯୁକ୍ତ—4. Heroic. ବି—୧ । ବୀର—1. Hero. ୨ । ସମର୍ଥ ବ୍ୟକ୍ତି— 2. Mighty person. ୩ । ଯୋଗ୍ୟ ବ୍ୟକ୍ତି- 3. Able person.
Sāmarathā(thī)
সমর্থ समरथ

ସାମରଥ୍ୟ—ଗ୍ରା. ବି (ସଂ ସାମର୍ଥ୍ୟ)—ସାମର୍ଥ୍ୟ (ଦେଖ)—Sāmarthya (See) [ ଉ—ଧୃଷ୍ଟକୁ ମାରିବାକୁ ତୁମ୍ଭ ସାମରଥ୍ୟ— କୃଷ୍ଣସିଂହ ମହାଭାରତ. ବନ ।]
Sāmarathya
সামর্থ্য सामरथ्य

ସାମରାଧିପ—ସଂ ବି. ପୁଂ (ସାମର + ଅଧିପ)—ସେନାପତି [ଶବ୍ଦକୋଷ] A general.
Sāmarādhipa

ସାମରିକ—ସଂ ବିଣ (ସମର + ସମ୍ବନ୍ଧାର୍ଥେ ଇକ)—୧ । ଯୁଦ୍ଧସମ୍ବନ୍ଧୀୟ 1. Relating to war; military. ୨ । ସମରପ୍ରିୟ—2. Warlike; martial; fond of war. ୩ । ସମରୋପଯୋଗୀ— 3. Fit for battle; warlike.
Sāmarika

ସାମରିକ ଅଦାଲତ—ଦେ. ବି—ଯୁଦ୍ଧସମ୍ବନ୍ଧୀୟ ଅପରାଧମାନଙ୍କ ବିଚାର କରାଯିବା ଅଦାଲତ ବା ବିଚାରାଳୟ— Court-martial.
Sāmarika adālata
সামরিক আদালত सामरिक अदालत

ସାମରିକ ଆଇନ୍—ଦେ. ବି—ଯୁଦ୍ଧସମୟରେ ଚଳିବା କଠୋର ଆଇନ୍- Martial law.
Sāmarika āina
ସାମରିକ ବିଧି
ସାମରିକ ବିଧାନ } —ଅନ୍ୟରୂପ
সামরিক আইন सामरिक आइन

ସାମରିକ ପୋତ (ଜାହାଜ, ତରୀ)—ସଂ ବି ( ଆଧୁନିକ )—ରଣପୋତ; ଯୁଦ୍ଧଜାହାଜ-Warship; man-o-war.
Sāmarika pota(jāhāja, tarī)
সামরিক পোত सामरिक जहाज

ସାମରିକ ବିଚାର—ସଂ ବି (ଆଧୁନିକ) ଯୁଦ୍ଧ ସମ୍ବନ୍ଧୀୟ ଅପରାଧର ବିଚାର— A trial in a court martial.
Sāmarika bichāra
সামরিক বিচার सामरिकविचार

ସାମରିକ ବିଚାରାଳୟ—ସଂ ବି (ଆଧୁନିକ) ସାମରିକ ଅଦାଲତ (ଦେଖ) Sāmarika adālata (See)
Sāmarika bichārālaya
সামরিক বিচারালয় सामरिक विचारालय

ସାମରିକ ବିଦ୍ୟାଳୟ—ସଂ ବି (ଆଧୁନିକ)—ଯେଉଁ ବିଦ୍ୟାଳୟରେ ଯୁଦ୍ଧବିଦ୍ୟା ଶିକ୍ଷାଦିଏ— [ ଦ୍ର—ଆଗେ କେବଳ ବିଲାତରେ ଏହା ଥିଲା; ଆଜିକାଲି ଭାରତରେ ମଧ୍ୟ ଏହି ବିଦ୍ୟାଳୟ ସ୍ଥାପିତ ହୋଇଅଛି]--A school for military training.
Sāmarika bidyālaya
সামরিক বিদ্যালয় सामरिक विद्यालय

ସାମରିକ ବିଭାଗ—ଦେ. ବି—ରାଜ୍ୟଶାସନାଧୀନ ଯୁଦ୍ଧସମ୍ବନ୍ଧୀୟ ବିଭାଗ- The military Department of the Government.
Sāmarika bibhāga
সামরিক বিভাগ सामरिक विभाग

ସାମରିକ ମନ୍ତ୍ରୀ (ସଚିବ)—ଦେ. ବି—ଯେଉଁ ମନ୍ତ୍ରୀ ଯୁଦ୍ଧ ସମ୍ବନ୍ଧୀୟ ବିଷୟ ପରିଚାଳନ ଓ ପରାମର୍ଶ କରନ୍ତି—War minister; war-lord.
Sāmarika mantrī (sachība)
সামরিক মন্ত্রী
सामरिक मन्त्री

ସାମରେୟ—ସଂ. ବିଣ (ସମର + ଏୟ ସମ୍ବନ୍ଧାର୍ଥେ)—ସାମରିକ (ଦେଖ) Sāmarika. (See)
Sāmareya

ସାମର୍ଥ—ଗ୍ରା. ବିଣ ( ସଂ. ସମର୍ଥ )—ସମର୍ଥ (ଦେଖ)—Samartha. (See) ବି—(ସଂ. ସାମର୍ଥ୍ୟ) ସାମର୍ଥ୍ୟ (ଦେଖ)— Sāmarthya. (See) ( ଉ—ତାହାକୁ ବଳ ଅଛି ଏ ଜଗତେ ତାର୍ଥ, ବୋଲିବାକୁ କାହାର ଅଛେ କି ସାମର୍ଥ । କୃଷ୍ଣସିଂହ. ମହାଭାରତ. ବନ ।)
Sāmartha
সমর্থ सामर्थ्य
সামর্থ্য सामर्थ

ସାମର୍ଥ ପଣ—ଗ୍ରା. ବି (ସଂ. ସମର୍ଥ + ଓଡ଼ିଆ.ପଣ)—ସାମର୍ଥ୍ୟ(ଦେଖ)— Sāmarthya. (See) ( ଉ—ଲେଖ ବୈଷ୍ଣବ ପଦରଜେ, ସାମର୍ଥ ପଣ ପରକାଶେ— ଭୂପତି. ପ୍ରେମପଞ୍ଚାମୃତ ।)
Sāmartha paṇa
সামর্থ্য समर्थपन

ସାମର୍ଥା(ର୍ଥୀ)—ଦେ. ବିଣ ଓ ବି—ସାମରଥା (ଦେଖ) Sāmarathā. (See)
Sāmarthā(rthī)

**ସାମର୍ଥାଇବା**—ଦେ. କ୍ରି—ବୁଝାଇବା; ସମଝାଇବା; ସମର୍ଥନ କରିବା—
**Sāmarthāibā** To explain; to support. (ଯଥା—ମୁଁ ତାଙ୍କୁ କେତେ ସାମର୍ଥାଇ କହିଲି, ମାତ୍ର ସେ ମୋ କଥା ଶୁଣିଲେ ନାହିଁ ।)

**ସାମର୍ଥ୍ୟ**—ସଂ. ବି (ସମର୍ଥ+ଭାବ. ଯ)—୧ । ଶକ୍ତି; କ୍ଷମତା—
**Sāmarthya** 1. Power; potency. ୨ । ବଳ—2. Might; strength. ୩ । ଯୋଗ୍ୟତା—3. Ability; fitness. ସଂ. ବିଣ—୧ । ଶବ୍ଦର ପ୍ରତିପାଦ୍ୟ (ବିଷୟବୀ ଅର୍ଥ) (ଶବ୍ଦକୋଷ)—1. Denotative (meaning of a term). ୨ । ଶ୍ଳାଘ୍ୟ (ଶବ୍ଦକୋଷ)—2. Praiseworthy.

**ସାମର୍ଥ୍ୟ ପାଇବା**—ଦେ. କ୍ରି. (ଭୁକ୍ତ, ଏ କାମ କରିବାକୁ ମୋର ବଳ
**Sāmarthya pāibā** ପାଉ ନାହିଁ)—ସାମର୍ଥ୍ୟ ଯଥେଷ୍ଟ ହେବା—
সামর্থ্য পাওয়া Being able. (ଯଥା—ଅଣିବାକୁ ମୋର
सामर्थ्य पाना ସାମର୍ଥ୍ୟ ପାଉ ନାହିଁ । କୃଷ୍ଣସିଂହ. ମହାଭାରତ, ଶାନ୍ତି ।)

**ସାମର୍ଷ**—ସଂ. ବିଣ. ପୁଂ (ସହାର୍ଥ ବହୁବ୍ରୀହି; ସ+ଅମର୍ଷ)—୧ । ଅମର୍ଷ
**Sāmarsha** ଯୁକ୍ତ—1. Spiteful. ୨ । କ୍ରୋଧବିଶିଷ୍ଟ
(ସାମର୍ଷା—ସ୍ତ୍ରୀ) (ଶବ୍ଦକୋଷ)—2. Wrathful.

**ସାମଲ**—ଦେ. ବି (ସଂ. ସାହସ+ମଲ୍ଲ)-୧ । ପାଇକମାନଙ୍କର ବଂଶୋପାଧି-
**Sāmala** ବିଶେଷ—1. A family title of the descen-
[ସାମଲଆଣୀ—ସ୍ତ୍ରୀ] dants of the Oriya militia. ୨ । ଶୂଦ୍ର, ଚଷା ଓ ଖଣ୍ଡାଏତମାନଙ୍କର ବଂଶୋପାଧି ବିଶେଷ—2. A family title of Śūdras and Khaṇḍāetas. ୩ । ପାଣ ଓ ବାଉରିମାନଙ୍କର ବଂଶୋପାଧି ବିଶେଷ—3. A family title of Pāṇas and Bāuris.

**ସାମଳା**—ଦେ, ବିଣ—ସାଉଁଳା ( ଦେଖ )—Sāuṅḷā. (See)
**Sāmaḷā** ପ୍ରାଦେ. (ଉତ୍ତର ବାଲେଶ୍ୱର) ବି—ସୂଆଁ ନଈ (ଦେଖ)—Suāṅ nai. (See)

**ସାମଲା**—ବୈଦେ. ବି (ଆ)—୧ । ମୁକ୍ତାର ଓ ଓକିଲମାନେ ମୁଣ୍ଡରେ
**Sāmalā** ସେଉଁ ପୁରୁଣାକାଳିଆ ପାଗ ପିନ୍ଧନ୍ତି—1. An old-
সামলা fashioned turban used by legal practi-
सामला tioners. ୨ । ପୂର୍ବକାଳର ରାଜକର୍ମଚାରୀମାନଙ୍କ ପଗଡ଼ୀ—2. A turban used to be worn by courtiers.

**ସାମଳାଇବା**—ଦେ. କ୍ରି—ସାଉଁଳାଇବା (ଦେଖ)
**Sāmaḷāibā** Sāuṅḷāibā. (See)

**ସାମଳାୟନ**—ସଂ. ବିଣ, ପୁଂ. (ସମଳ+ଅୟନ)—୧ । ସମଳ ସ୍ଥାନରୁ
**Sāmaḷāyana** ପ୍ରତ୍ୟାବୃତ୍ତ (ଶବ୍ଦକୋଷ)—1. Returned from a dirty place. ୨ । ସମଳ ସ୍ଥାନବାସୀ [ଶବ୍ଦକୋଷ]—2. Residing in a dirty place. ସଂ. ବି—ସମଳ ସ୍ଥାନର ଅଦୂରବର୍ତ୍ତୀ ସ୍ଥାନ (ଶବ୍ଦକୋଷ)—A place adjoining a dirty place.

**ସାମଳିଆ**—ଦେ. ବିଣ—ସାଉଁଳିଆ (ଦେଖ)
**Sāmaḷia** Sāuṅḷia. (See)

**ସାମଳିବା**—ଦେ. କ୍ରି—ସାଉଳିବା (ଦେଖ)—Sāuḷibā. (See)
**Sāmaḷibā** (ଯଥା—କେ ଚକୁରଶୋଭା ଭଙ୍ଗି ପେ, ସୁବାସ ତଇଳେ କେଶ ସାମଳିଲି, ଉପମା ଦୃଷ୍ଟି ଭୁଡ଼ାଇ ପେ । ଗୋଲକ. ଉପେନ୍ଦ୍ରଭଞ୍ଜ ।)

**ସାମଳେୟ**—ସଂ. ବିଣ ଓ ବି (ସମଳ+ଏୟ)—ସାମଳାୟନ (ଦେଖ)
**Sāmaḷeya** Sāmaḷāyana. (See)

**ସାମଲ୍ୟ**—ସଂ. ବିଣ ଓ ବି (ସମଳ+ଯ)—ସାମଳାୟନ (ଦେଖ)
**Sāmaḷyā** Sāmaḷāyana. (See)
ବି—ସମଳତା (ଶବ୍ଦକୋଷ)—Dirtiness.

**ସାମ(ମୁ)ସେଇ**—ଦେ. ବି—ଅବଖୁରା; ଅତି ଛୋଟ ଗାଡ଼ି—
**Sāma(mu)sei** A very small water jug.
আবখোরা लोटिया

**ସାମସେର୍ ଜଙ୍ଗ୍**—ଦେ. ବି—ନେପାଳ ଶାସନକର୍ତ୍ତା ଓ ପ୍ରଧାନ
**Sāmaser jaṅg** ରାଜମନ୍ତ୍ରୀଙ୍କ ଉପାଧି—The title of the
সমসের জংগ minister and the Governor of the
समसेर जंग Nepal State.

**ସାମାଜିକ**—ସଂ. ବିଣ (ସମାଜ+ସମ୍ବନ୍ଧାର୍ଥେ, ଇକ)—୧ ।
**Sāmājika** ସମାଜ ସମ୍ବନ୍ଧୀୟ—1. Relating to an association or meeting. ୨ । ସହୃଦୟ; ଯେଉଁ ବ୍ୟକ୍ତି ସମାଜରେ ମିଶେ—2. Sociable. ୩ । ଭଦ୍ର; ଶିଷ୍ଟ—3. Civil. ବି—୧ । ସଭାସଦ; ସଭ୍ୟ (ଅମର)—1. Member of an association. ୨ । କୌଣସି ସମାଜର ବ୍ୟକ୍ତି—2. Member of a society or community. ୩ । ଲୌକିକତା; ସମାଜର ପ୍ରଥାଗତ ମର୍ଯ୍ୟାଦା—3. Social conventions.

**ସାମାଜିକ ତନ୍ତ୍ର**—ସଂ. ବି—୧ । ସମାଜରେ ଚଳୁଥିବା ତନ୍ତ୍ର—
**Sāmājika tantra** 1. Social rule. ୨ । ଯେଉଁ ନିୟମ ଦ୍ୱାରା ସମାଜ ବା ସଭା ଆଦ ପରିଚାଳିତ ହୁଏ—2. Rules for conducting societies or associations.
ସାମାଜିକ ନିୟମ, ସାମାଜିକ ବିଧାନ, ସାମାଜିକ ବିଧି—ଅନ୍ୟରୂପ

**ସାମାଜିକତା**—ସଂ ବି (ସାମାଜିକ+ଭାବ ତା)—୧ । ଲୌକିକତା—
**Sāmājikatā** 1. Convention. ୨ । ବନ୍ଧୁ ବେଭାର; ବନ୍ଧୁମାନଙ୍କ ମଧ୍ୟରେ ଉପହାରର ଆଦାନପ୍ରଦାନ—2. Exchange of social presents. ୩ । ସହୃଦୟତା, ଭଦ୍ରତା; ଶିଷ୍ଟତା—3. Civility. ୪ । ସମାଜାନୁମତ ମର୍ଯ୍ୟାଦା—4. Social etiquette. ୫ । ସାମାଜିକ ରୀତି ବା ପ୍ରଥା—5. Social custom.

**ସାମାଜିକ (ରୀତି)ପଦ୍ଧତି**—ସଂ ବି—ସମାଜରେ ଚଳୁଥିବା ବ୍ୟବହାର—
**Sāmājika (rīti)paddhati** Social custom; usage.

ସାମାଜିକ ମୃତ୍ୟୁ—ସଂ ବି (ଆଧୁନିକ ବ୍ୟବହାର)—ରାଜଦ୍ରୋହାଦି
Sāmājika mrutyu ଅପରାଧ ବା ଦେବାଳିଆ ହେବା ଯୋଗୁଁ ଯେଉଁ ବ୍ୟକ୍ତି ସମାଜରୁ ବହିଷ୍କୃତ ହୁଏ ବା ଅଚଳ-ବୃଷ୍ଟିରେ ମୃତ ବୋଲି ବିବେଚିତ ହୁଏ—Civil death.

ସାମାତ୍ ସାମ୍ୟ—ସଂ. ବି—୧ । ପର୍ଯ୍ୟାୟକ୍ରମେ ଗ୍ରହମାନଙ୍କର ବିଷୁବ
Sāmātsāmya ରେଖାରେ ପ୍ରବେଶ ଓ ତହିଁରୁ ନିର୍ଗମ (ବିଶ୍ୱକୋଷ)—1. The entrance into and exit from the equator of one planet after another in succession. ୨ । ପର୍ଯ୍ୟାୟକ୍ରମେ ଆଗମନ ଓ ନିର୍ଗମନ—2. Successive comings in and goings out.

ସାମାତ୍ୟ—ସଂ. ବିଣ. ପୁଂ (ସହାର୍ଥ ବହୁବ୍ରୀହି; ସ+ଅମାତ୍ୟ)—ଅମାତ୍ୟବିଶିଷ୍ଟ
Sāmātya (ସାମାତ୍ୟା—ସ୍ତ୍ରୀ) —Having ministers,

ସାମାନ୍ - ଦେଶିଦେ. ବି ( ଫା. ସାମାନ୍; ତୁଳ. ସଂ. ସାମଗ୍ରୀ )—(ଏ ଶବ୍ଦ
Sāmān ଗଞ୍ଜାମ ଓ ବିଅମାନଙ୍କ ମଧ୍ୟରେ ଅଧିକ
সামান **सामान** ପରିମାଣରେ ପ୍ରଚଳିତ)—୧ । ସାମଗ୍ରୀ; ଉପକରଣ; ଦ୍ରବ୍ୟାଦି; ଜିନିସପତ୍ର—1. Articles; furniture ୨ । କୌଣସି ବ୍ୟକ୍ତିଙ୍କ ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁଚୟ, ଯାହା ଏକତ୍ର ବନ୍ଧା ହୋଇ ବିଦେଶକୁ ସାଙ୍ଗରେ ନିଆଯାଏ —2. Luggage; baggage. ୩ । କାରିଗରର ଯନ୍ତ୍ରାଦି—3. Implements. ୪ । କୌଣସି କାର୍ଯ୍ୟର ସାଧନସ୍ୱରୂପ ବସ୍ତୁଚୟ—4. Materials.

ସାମାନ୍ ପତ୍ର—ଦେ. ବି ( ନିରର୍ଥକ ଦ୍ୱିତୀୟ ସହଚର ଶବ୍ଦ )—ନିତ୍ୟ
Sāmān patra ବ୍ୟବହାର୍ଯ୍ୟ ବସ୍ତୁଜାତ; ଆବଶ୍ୟକ ଦ୍ରବ୍ୟସମୂହ
মাল পত্র **सामान चिज** —Collection of one's articles of every day use.

ସାମାନ ଗ୍ରାମିକ—ସଂ. ବିଣ ( ସମାନ ଗ୍ରାମ+ଇକ )—୧ । ଏକ ଗ୍ରାମ-
Sāmāna grām ika ଜାତ—1. Belonging to one village. ୨ । ଏକ ଗ୍ରାମବାସୀ—2. Residing in the same village.

ସାମାନାଧିକରଣ୍ୟ—ସଂ. ବି ( ସମାନାଧିକରଣ+ଭାବ. ଯ )—୧ । ଏକ-
Sāmānādhikaranya ତ୍ରାବସ୍ଥିତ ଅବସ୍ଥା; ଏକ ସ୍ଥାନରେ ସ୍ଥିତି; ଏକାଶ୍ରୟ ବୃତ୍ତି—1. The state of being situated together; co-existence. ୨ । ସମାନାଧିକରଣତା—2. Being in the same category or situation. ୩ । ସାଧାରଣ ଗୁଣର ବା ଧର୍ମର ଅବସ୍ଥିତି ସ୍ଥାନ ( ବିଶ୍ୱକୋଷ )—3. The place where common attributes are found.

ସାମାନ୍ୟ—ସଂ. ବିଣ ( ସମାନ+ଯ )—୧ । ଯାହା ସବୁଠି ବା ସବୁ
Sāmānya ବସ୍ତୁରେ ମିଳେ; ସତତଚର; ସର୍ବବିଷୟକ—(ସାମାନ୍ୟା—ସ୍ତ୍ରୀ) 1. Universal; common to all. (ଅସାମାନ୍ୟ—ବିପରୀତ) ୨ । ସାଧାରଣ—2. Ordinary. [ ଉ—ସାମାନ୍ୟ ବିପଦେ ଗୃହ-ବିଗ୍ରହ ବିସ୍ମରି—ରାଧାନାଥ ମହାଯାତ୍ରା । ] ୩ । ଅତି ଅଳ୍ପ—3. Slight. ୪ । ତୁଚ୍ଛ; ନଗଣ୍ୟ—4. Trivial; insignificant. ବି—୧ । ଗୋତ୍ୱ, ମନୁଷ୍ୟତ୍ୱ ଆଦି ଜାତିସାଧର୍ମ୍ୟ ( ଯଥା—ଗୋରୁର ଗୋତ୍ୱ, ମନୁଷ୍ୟର ମନୁଷ୍ୟତ୍ୱ )—1. Generic quality; state of having an attribute common to a class. ୨ । ଏକ ଜାତି; ଏକ ଶ୍ରେଣୀ—2. One caste; one class; same species; genus. ୩ । ଯୌଗିକ ସିଦ୍ଧିବିଶେଷ—3. A kind of divine attainment due to the exercise of Joga. [ଦ୍ର—ଅଷ୍ଟାଦଶ ଯୋଗଜନ୍ୟ ସିଦ୍ଧି ବ୍ୟତୀତ ଆଉ ୫ ଗୋଟି ସାମାନ୍ୟ ସିଦ୍ଧି ଅଛି । ଯଥା—୧ ତ୍ରିକାଳଜ୍ଞତା, ୨ ଅଦ୍ୱନ୍ଦ୍ୱତ୍ୱ, ୩ ଚିତ୍ତଜ୍ଞତା, ୪ ବହ୍ନ୍ୟମୃତା, ୫ ଅପରାଜେୟତା । ଏଥିପାଇଁ ଭାଗବତ ଏକାଦଶସ୍କନ୍ଧ ଷୋଡ଼ଶ ଅଧ୍ୟାୟ ଅନୁସନ୍ଧେୟ ।] ୪ । ପ୍ରକାର; ରକମ—4. Kind. ୫ । ବହୁ ବସ୍ତୁଙ୍କର ବା ପ୍ରାଣୀଙ୍କର ଥିବା ସାଧାରଣ ଗୁଣ—5. Common attribute. ୬ । କାବ୍ୟାଲଙ୍କାରବିଶେଷ—6. A figure of speech. [ ଦ୍ର—ଯେଉଁ ସ୍ଥଳରେ ପ୍ରକୃତ ବିଷୟର ସଦୃଶ ଗୁଣଦ୍ୱାରା ଅନ୍ୟ ତାଦାତ୍ମ୍ୟ ହୁଏ, ଅର୍ଥାତ୍ ଯେଉଁ ସ୍ଥଳରେ ସାଧାରଣ ଧର୍ମବଳରେ ଅନେକ ବସ୍ତୁ ଏକତ୍ରସମ୍ବଦ୍ଧ ହୁଏ ସେଠାରେ ଏ ଅଳଙ୍କାର ହୁଏ । ଉଦାହରଣ—'ଶୁକ୍ଲାଭିସାରିକାଗଣ ଶୁକ୍ଳବସ୍ତ୍ରପରିହିତା ହୋଇ ମଲ୍ଲିକାମାଳାସୁଶୋଭିତା, ଶ୍ୱେତଚନ୍ଦନଚର୍ଚ୍ଚିତା ହୋଇ ଚନ୍ଦ୍ରକିରଣରେ ଅଲକ୍ଷିତ୍ୟ । ( ପୃଥକ୍‌ରୂପେ ଅପର ଲକ୍ଷଣୀୟା ) ହୋଇ ସୁଖରେ ଗମନ କରୁଅଛନ୍ତି' । ଏ ସ୍ଥଳରେ ଶୁକ୍ଳବସ୍ତ୍ର, ମଲ୍ଲିକାମାଳା, ଶ୍ୱେତ ଚନ୍ଦନ ଓ ଚନ୍ଦ୍ରିକା ଏ ସକଳ ଶୁଭ୍ର ବସ୍ତୁ ଥିବାରୁ ଶୁକ୍ଲାଭିସାରିକା ଚିହ୍ନା ପଡ଼ୁ ନାହାନ୍ତି । ଏଠାରେ ଏହି ଅଳଙ୍କାର ହେଲା—ବିଶ୍ୱକୋଷ ] ୭ । ସାମଗ୍ର୍ୟ—7. Aggregation; totality. ୮ । (ବୈଶେଷିକ ନ୍ୟାୟଦର୍ଶନ) ବ୍ୟାପକ ଓ ବୃହତ୍ତର ସାଧାରଣ ଲକ୍ଷଣଗତ ସଂଜ୍ଞା—8.(Baiseshika Nyāya school of philosophy) A definition which applies to a genus(as opposed to aspecies). [ଦ୍ର—ବୈଶେଷିକ ଦର୍ଶନରେ ୬ଟି ପଦାର୍ଥ ସ୍ୱୀକୃତ ହୋଇଅଛି । ଯଥା—ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ, ସମବାୟ ଓ ବିଶେଷ । ନିତ୍ୟ ଓ ଅନେକ ସମବେତ ପଦାର୍ଥର ନାମ ସାମାନ୍ୟ ବା ଜାତି । ଗୋଟିଏ ବସ୍ତୁର ସଂଯୋଗ ହୁଏ ନାହିଁ; ଏକାଧିକ ବସ୍ତୁର ସଂଯୋଗ ଘଟେ । ସୁତରାଂ ସଂଯୋଗ ଅନେକ ସମବେତ ଅଟେ । କିନ୍ତୁ ଏ ସଂଯୋଗ ନିତ୍ୟ ନୁହେଁ, ଅନିତ୍ୟ । ସାମାନ୍ୟ ୨ ପ୍ରକାର, ପର ସାମାନ୍ୟ ବା ପର ଜାତି ଓ ଅପର ସାମାନ୍ୟ ବା ଅପର ଜାତି—ବିଶ୍ୱକୋଷ ।

"ଭାରତୀୟମାନେ ଆର୍ଯ୍ୟ ଓ ଅନାର୍ଯ୍ୟ ଅଟନ୍ତି । ଆର୍ଯ୍ୟମାନେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର, ଏହି ଚାରି

ଜାତିରେ ବିଭକ୍ତ । ବ୍ରାହ୍ମଣମାନେ ୪ ବେଦ ଅନୁସାରେ ୪ ଶ୍ରେଣୀରେ ବିଭକ୍ତ” । ଏହି ସ୍ଥଳରେ ଯଥାକ୍ରମେ ‘ଭାରତୀୟ’- ‘ଆର୍ଯ୍ୟ’ ଓ ‘ଅନାର୍ଯ୍ୟ’ ଶବ୍ଦଗୁଡ଼ିକୁ ସାମାନ୍ୟ ସଂଜ୍ଞା ଓ ସଂକୀର୍ଣ୍ଣତର ଓ କ୍ଷୁଦ୍ରତରମାନଙ୍କୁ ଶବ୍ଦମାନଙ୍କୁ ( ଯଥା—ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ) ବିଶେଷ ସଂଜ୍ଞା କୁହାଯାଏ । ]
୯ । ସାଦୃଶ୍ୟ; ସମାନତା—9. Similarity.

ସାମାନ୍ୟ କଥା—ଦେ. ବି—ତୁଚ୍ଛ ବିଷୟ—A small or insignificant matter.
Sāmānya kathā সামান্য কথা

ସାମାନ୍ୟ ଗୁଣ—ସଂ. ବି—ଏକଜାତୀୟ ପ୍ରାଣୀ ବା ବସ୍ତୁ ମଧ୍ୟରେ ଥିବା ସାଧାରଣ ଗୁଣ—A generic attribute; a common quality.
Sāmānya guṇa

ସାମାନ୍ୟତଃ—ସଂ. କ୍ରି. ବିଣ—୧ । ସାଧାରଣତଃ—1. Generally; ordinarily; commonly. ୨ । ସାମାନ୍ୟ ରୂପେ—2. Slightly.
Sāmānyataḥ

ସାମାନ୍ୟ ନାୟିକା (ବନିତା)—ସଂ. ବି ( କର୍ମଧା; ସାମାନ୍ୟା+ନାୟିକା ) —କାବ୍ୟାଦିରେ ବର୍ଣ୍ଣିତା ବେଶ୍ୟାରୂପିଣୀ ନାୟିକା—A prostitute depicted as the heroine of a plot.
Sāmānya nāyikā (banitā)

ସାମାନ୍ୟ ପୂଜା ବିଧି ( ପଦ୍ଧତି )—ସଂ. ବି—ଯେଉଁ ପୂଜାବିଧିଦ୍ୱାରା ଯେ କୌଣସି ଦେବତାଙ୍କର ଅର୍ଚ୍ଚନା କରାଯାଏ—A ritual with which the worship of any Deity is conducted.
Sāmānya pūjā bidhi (paddhati)

ସାମାନ୍ୟ ବିଧି—ସଂ. ବି (କର୍ମଧା)—ସାଧାରଣ ନିୟମ—A general rule. [ ଦ୍ର—ଶାସ୍ତ୍ରରେ ଅଛି ଯେ, (ବିଶେଷ ବିଧି—ବିପରୀତ) ଏକ ବିଷୟରେ ଶାସ୍ତ୍ରରେ ସାମାନ୍ୟ ବିଧି ଓ ବିଶେଷ ବିଧି ଥିଲେ ବିଶେଷ ବିଧି ସାମାନ୍ୟ ବିଧି ଅପେକ୍ଷା ବଳବତ୍ତର ହେବ । ‘କୌଣସି ଜୀବକୁ ହିଂସା କରିବ ନାହିଁ ।’ ଏହା ଗୋଟିଏ ସାମାନ୍ୟ ବିଧି ଅଟେ । ‘ଯଜ୍ଞାର୍ଥ ପଶୁ ବଧ କରିବ’ ଏହା ବିଶେଷ ବିଧି ଅଟେ । ଏ ସ୍ଥଳରେ ବିଶେଷ ବିଧିଦ୍ୱାରା ସାମାନ୍ୟ ବିଧି ଖଣ୍ଡିତ ହେବ । ]
Sāmānya bidhi

ସାମାନ୍ୟ ଲକ୍ଷଣ—ସଂ. ବି—୧ । ଯେଉଁ ଲକ୍ଷଣ ଏକ ଜାତୀୟ ସମସ୍ତଙ୍କ ଠାରେ ଥାଏ—1. A common trait or characteristic of a species or genera. ୨ । ସାଧାରଣ ସଂଜ୍ଞା—2. A general definition.
Sāmānya lakshaṇa

ସାମାନ୍ୟ ଲକ୍ଷଣା—ସଂ. ବି (ବହୁବ୍ରୀହି; ସାମାନ୍ୟ+ଲକ୍ଷଣ+ଆ)—ଅଲୌକିକ ସନ୍ନିକର୍ଷବିଶେଷ, ଅପ୍ରତ୍ୟକ୍ଷପକ୍ଷ ସାମାନ୍ୟ ଜ୍ଞାନ; ଏକ ଜାତୀୟ ଗୋଟିଏ ବସ୍ତୁକୁ ବା ପ୍ରାଣୀକୁ ଦେଖିଲେ ସେହି ଜାତିର ସମୁଦାୟ ବସ୍ତୁଙ୍କ ବା ପ୍ରାଣୀଙ୍କ ସମ୍ବନ୍ଧେ ଯେଉଁ ସାଧାରଣ ବା ସାମାନ୍ୟ ଧାରଣା ବା ଜ୍ଞାନ ମନରେ ଜନ୍ମେ—Intuition; inference about the common attribute of a class on seeing one of it. [ଦ୍ର—ନ୍ୟାୟ ଶାସ୍ତ୍ର ମତରେ—ଅଲୌକିକ ସନ୍ନିକର୍ଷ ତିନିବିଧ ଅଟେ । ଯଥା—ସାମାନ୍ୟ ଲକ୍ଷଣା, ଜ୍ଞାନଲକ୍ଷଣା ଓ ଯୋଗଜ ଲକ୍ଷଣା ।]
Sāmānya lakshaṇā

ସାମାନ୍ୟ ଶାସନ—ସଂ. ବି—ସାମାନ୍ୟାଧିକାର (ଶବ୍ଦ ରତ୍ନାବଳୀ)—Common title or ownership.
Sāmānya śāsana

ସାମାନ୍ୟା—ସଂ. ବିଣ. ସ୍ତ୍ରୀ ( ସାମାନ୍ୟ+ସ୍ତ୍ରୀ. ଆ )—ସାମାନ୍ୟର ସ୍ତ୍ରୀଲିଙ୍ଗ—The feminine of ‘Sāmānya’.
Sāmānyā
ବି—ପଣ୍ୟସ୍ତ୍ରୀ; ସାଧାରଣୀ ନାୟିକା; ବେଶ୍ୟା; ଧନମାତ୍ର ଲାଭାର୍ଥ ସକଳପୁରୁଷଭୋଗ୍ୟା ସ୍ତ୍ରୀ—A prostitute; a public woman. [ଦ୍ର—ଭାନୁଦତ୍ତଙ୍କ ରସମଞ୍ଜରୀ ଗ୍ରନ୍ଥ ଅନୁସାରେ ସାମାନ୍ୟା ତିନିବିଧା । ଯଥା—ଅନ୍ୟସମ୍ଭୋଗଦୁଃଖିତା, ବକ୍ରୋକ୍ତିଗର୍ବିତା ଓ ମାନବତୀ; ବକ୍ରୋକ୍ତିଗର୍ବିତା ଦ୍ୱିବିଧା, ଯଥା—ପ୍ରେମଗର୍ବିତା, ସୌନ୍ଦର୍ଯ୍ୟଗର୍ବିତା । ଏ ନାୟିକାମାନେ ପ୍ରତ୍ୟେକେ ଅବସ୍ଥାଭେଦରେ ଅଷ୍ଟବିଧା ହୁଅନ୍ତି । ଯଥା—ପ୍ରୋଷିତଭର୍ତ୍ତୃକା, ଖଣ୍ଡିତା, କଳହାନ୍ତରିତା, ବିପ୍ରଲବ୍ଧା, ଉତ୍କଣ୍ଠିତା ବା ବିରହୋତ୍କଣ୍ଠା, ବାସକସଜ୍ଜା, ସ୍ୱାଧୀନଭର୍ତ୍ତୃକା ଓ ଅଭିସାରିକା ।]

ସାମାନ୍ୟାଧିକାର—ସଂ. ବି—ଏକ ବସ୍ତୁରେ ବହୁ ବ୍ୟକ୍ତିଙ୍କର ପ୍ରବର୍ତ୍ତିବା ଅଧିକାର—Common proprietory right over a thing.
Sāmānyādhikāra

ସାମାୟିକ—ସଂ. ବିଣ. ପୁ. (ସମାୟ+ଇକ)—ମାୟାବିଶିଷ୍ଟ (ପାଣିନି)—Illusive.
Sāmāyika (ସମାୟିକା—ସ୍ତ୍ରୀ)

ସାମାସିକ—ସଂ. ବିଣ (ସମାସ+ଇକ)—ସାଂକ୍ଷେପିକ; ସଂକ୍ଷେପ ସମ୍ବନ୍ଧୀୟ—Relating to abridgement.
Sāmāsika
ସଂ. ବି (ସମାସ+ସ୍ୱାର୍ଥେ ଇକ)—ସମାସ (ଦେଖ)—Samāsa. (See)

ସାମି—ସଂ. ଅ (ସାମ୍. ଧାତୁ+ଇ)—୧ । ନିନ୍ଦନୀୟ—1. Blamable. ୨ । ଅର୍ଦ୍ଧ—2. Half. ୩ । କିୟଦଂଶ—3. A part; a portion. ଦେ. ବି—୧ । ସମି; ଲୌହ ବା ଲୌହବଳୟ—1. A small iron ring. ୨ । (ଆଦରାର୍ଥକ) ଶ୍ୟାମସୁନ୍ଦରର ଡାକ ନାମ—2. A name for calling ‘Śyāmasundara’ in fondness.
Sāmi
सामी
सामी

ସାମିଆ(ୟା)ନା—ବୈଦେ. ବି ( ଫା )—ଶୂନ୍ୟ; ଚନ୍ଦ୍ରାତପ—An awning. (ଉ—ଖଟ ଉପର ପାଲଙ୍କି, ତମ୍ବୁ କନାତ ନାନାଜାତି ବିଛଣା ସାମିଆନା ନୋହେ ଲେଖି । ବ୍ରଜନାଥ. ସମରତରଙ୍ଗ ।)
Sāmiā(yā)nā সামিয়ানা सामियाना

ସାମିକୃତ—ସଂ. ବି (ସାମି+କୃତ)—୧ । ଅର୍ଦ୍ଧୀକୃତ; ଯାହା ଅର୍ଦ୍ଧେକ କରାଯାଇଅଛି—1. Made into half; reduced to half. ୨ । ଯାହାକୁ ନିନ୍ଦା କରାଯାଇଅଛି (ଶବ୍ଦକୋଷ)—2. Blamed; found fault with.
Sāmikṛuta

ସାମିଗ୍ରୀ—ଗ୍ରା. ବି (ସଂ. ସାମଗ୍ରୀ)—ସାମଗ୍ରୀ (ଦେଖ) Sāmagrī. (See)
Sāmigrī সামিগ্রী सामिग्री

ସାମିତ—ସଂ. ବିଣ (ସମିତା+ସମ୍ବନ୍ଧାର୍ଥେ. ଅ)—ସମିତା ବା ମଇଦା
Sāmita ସମ୍ବନ୍ଧୀୟ—Relating to wheaten flour.

ସାମିତ୍ୟ—ସଂ. ବିଣ (ସମିତି+ସମ୍ବନ୍ଧାର୍ଥେ. ଯ)—ସମିତି ସମ୍ବନ୍ଧୀୟ—
Sāmitya Relating to Samiti.

ସାମିଧେନୀ(ନ୍ୟ)—ସଂ. ବି (ସମିଧ୍+ଆ+ଧା. ଧାତୁ+କରଣ. ଅନ+
Sāmidheni(nya) ଈ;, ସମିଧ୍+ଅଧାନ; କଥାଚନ)—ସାମଧେନୀ
(ଦେଖ)—Sāmadheni. (See)

ସାମିନା—ପ୍ରାଦେ. ( ଉତ୍ତର ବାଲେଶ୍ୱର ) ବି—ସାମିଆନା—
Sāminā An awning.

ସାମି ପୀତ—ସଂ. ବିଣ ( ସାମି=ଅର୍ଦ୍ଧେକ+ପା. ଧାତୁ+କର୍ମ. ତ )—
Sāmi pita ଅଧ ପିଆ; ଅର୍ଦ୍ଧ ପାନକୃତ—Half-drunk.

ସାମି ଭୁକ୍ତ—ସଂ. ବିଣ ( ସାମି=ଅର୍ଦ୍ଧେକ+ଭୁକ୍ତ )—୧ । ଅର୍ଦ୍ଧେକ
Sāmi bhukta ଭୁକ୍ତ—1. Half-eaten. ୨ । ଦରଖିଆ;
ଅଂଶତଃ ଭୁକ୍ତ—2. Partly eaten

ସାମିଷ—ସଂ. ବିଣ ( ସହାର୍ଥ. ବହୁବ୍ରୀହି; ସ+ଆମିଷ )—ଆମିଷ-
Sāmisha ବିଶିଷ୍ଟ—Having meat; accompanied
with meat.
[ ନିରାମିଷ—ବିପରୀତ ]

ସାମିଷ ଶ୍ରାଦ୍ଧ—ସଂ. ବି—ମତ୍ସ୍ୟ ଓ ମାଂସାଦିଦ୍ୱାରା ପିତୃଲୋକଙ୍କ ଉଦ୍ଦେ-
Sāmisha srāddha ଶ୍ୟରେ କରାଯିବା ଶ୍ରାଦ୍ଧ—Srāddha
offered to the deceased ancestors with
meat. [ ଦ୍ର—ମନୁ ତୃତୀୟ ଅଧ୍ୟାୟରେ ଭିନ୍ନ ଭିନ୍ନ
ଆମିଷଦ୍ୱାରା ଶ୍ରାଦ୍ଧ କଲେ ପିତୃଗଣ କେତେ କାଳ ପର୍ଯ୍ୟନ୍ତ
ତୃପ୍ତିଲାଭ କରନ୍ତି ତାହା ବର୍ଣ୍ଣିତ ହୋଇଅଛି । ଯଥା—
ମାଛରେ ୨ ମାସ, ହରିଣ ମାଂସରେ ୩ ମାସ, ମେଷ
ମାଂସରେ ୪ ମାସ, ଦ୍ୱିଜାତିଭକ୍ଷ୍ୟ ପକ୍ଷିମାଂସରେ ୫ ମାସ,
ଛାଗ ମାଂସରେ ୬ ମାସ, ଚିତ୍ରିତ ମୃଗ ମାଂସରେ ୭ ମାସ,
ଏଣ ମାଂସରେ ୮ ମାସ, କୃଷ୍ଣସାର ମାଂସରେ ୯ ମାସ,
ବରାହ ଓ ମହିଷ ମାଂସରେ ୧୦ ମାସ, ଠେକୁଆ ଓ କୂର୍ମ
( କଚ୍ଛପ ) ମାଂସରେ ୧୧ ମାସ, ବଡ଼କାଣିଆ ମାଛ, ଗଣ୍ଡା
ମାଂସ ଓ ରକ୍ତଛାଗ ମାଂସରେ ଅନନ୍ତକାଳ ପାଇଁ ପିତୃଗଣ
ତୃପ୍ତିଲାଭ କରନ୍ତି—ମନୁ. ୩।୨୬୮।୨୭୨ । ]

ସାମୀଚୀ—ସଂ. ବି—ବନ୍ଦନା; ପୂଜା ( ହାରାବଳୀ )—
Sāmichi Worship.

ସାମୀପ୍ୟ—ସଂ. ବି ( ସମୀପ+ସ୍ୱାର୍ଥେ. ଯ )—୧ । ନୈକଟ୍ୟ; ସାନ୍ନିଧ୍ୟ—
Sāmipya 1. Nearness; vicinity. ୨ । (ବ୍ୟାକରଣ)
ସାମୀପ୍ୟାଧିକରଣ; ଅଧିକରଣବିଶେଷ—2. (grammar)
A sort of the 7th case (locative). [ଦ୍ର—
ସମାସ ସ୍ଥଳରେ ଯେଉଁଠାରେ ଅବ୍ୟୟ ପଦର ସାମୀପ୍ୟ
ଅର୍ଥ ହୁଏ ସେଠାରେ ଅବ୍ୟୟୀଭାବ ସମାସ ହୁଏ; ଯଥା—
କୂଳର ସମୀପବର୍ତ୍ତୀ ଦେଶ=ଉପକୂଳ । ଗଙ୍ଗାର ସାମୀପ୍ୟ-
ଅନୁଗଙ୍ଗ; କୁମ୍ଭର ନିକଟରେ=ଉପକୁମ୍ଭ ।] ୩ । ଆଧାର-
ଭେଦ—3. A class of receptacles.

ସାମୀପ୍ୟାଧିକରଣ—ସଂ. ବି—ଅଧିକରଣ ବିଶେଷ; ଯେଉଁ ଅଧିକରଣ-
Sāmipyādhikarana ଦ୍ୱାରା ନିକଟବର୍ତ୍ତୀତା ବୁଝାଯାଏ —
A class of locative case denoting nearness.

ସାମୀର୍ଯ୍ୟ—ସଂ. ବି ( ସମୀର+ସମ୍ବନ୍ଧାର୍ଥେ. ଯ )—ସମୀର ବା ବାୟୁ
Sāmirjya ସମ୍ବନ୍ଧୀୟ—Relating to air or wind.

ସାମିଲ୍(ଲି)—ବୈଦେ. ବିଣ (ଜଚରଥ;ଅ.ସାମିଲ୍; ତୁଳ.ସ.ସମ୍ମିଳକ,
Sāmil(li) ସମ୍ମିଳିତ )—୧ । ଅନ୍ତର୍ଗତ; ଅନ୍ତର୍ଭୁକ୍ତ—
ସାମିଲ 1. Included in. ୨ । ସୀମାଭୁକ୍ତ—2. Included
सामिल in a boundary. ( ଯଥା—ଜଗନ୍ନାଥପୁର ସାମିଲ୍
ନୂଆଗାଁ ଗ୍ରାମ । ) ୩ । ଅଙ୍ଗୀଭୂତ—
3. Incorporated; amalgamated.

ସାମିଲ୍(ଲି) କରିବା—ଦେ. କ୍ରି ( ଜଚରଥ )—୧ । ଅନ୍ତର୍ଭୁକ୍ତ
Sāmil(li) kariba କରିବା । 1. To include. ୨ । ଅନ୍ୟ
সামিল করা ବସ୍ତୁ ସଙ୍ଗେ ଏକତ୍ର ମିଶାଇ ନେବା—
सामिल करना 2. To amalgamate.

ସାମିଲ୍(ଲି) ମଉଜା (ମୌଜା)—ବୈଦେ. ବି ( ଅ. ସାମିଲ୍; ଫା.
Sāmil(li) maujā (mau)jā ମୌଜା )—ବଡ଼ ଗ୍ରାମର
সামিল মৌজা ଅନ୍ତର୍ଗତ କ୍ଷୁଦ୍ର ଗ୍ରାମ—A small village
सामिल मौजा included in a larger village.

ସାମିଲାତ୍—ବୈଦେ. ବିଣ ( ଜଚରଥ )—୧ । ଅନ୍ତର୍ଭୁକ୍ତ—1. In-
Sāmilāt cluded. ୨ । ଅବିଭକ୍ତ—2. Joint. ବି—
সামীলাত ୧ । ଅନ୍ତର୍ଭୁକ୍ତ ପଦାର୍ଥ—1. Incorporated
सामिलात article. ୨ । ଅବିଭକ୍ତ ସମ୍ପତ୍ତି—2. Joint
property.

ସାମୁଏଲ୍—ବୈଦେ. ବି ( ନାମ )—( ହେବ୍ରୁ ଭାଷା ) ବାଇବଲ୍
Sāmuel ଲିଖିତ ଏଲ୍କାନାଙ୍କ ଔରସରେ ତାଙ୍କର ପ୍ରଥମା ସ୍ତ୍ରୀ
সামুয়েল্ ହାନାଙ୍କ ଗର୍ଭଜାତ ସନ୍ତାନ—Samuel; the son
सामुयल of Elkanah and Hannah of the Bible.
[ ଦ୍ର—ଏହାଙ୍କ ମାତା ଏହାଙ୍କ ଜନ୍ମ ପୂର୍ବରୁ ମାନସିକ
କରିଥିଲେ ଯେ, ତାଙ୍କର ଯେବେ ପୁଅଟିଏ ହେବ ସେ ପୁଅକୁ
ସେ ଈଶ୍ୱରଙ୍କ ନାମରେ 'ସାଧୁ' କରି ଦେବେ । ଏହି
'ସାମୁଏଲ୍' ଶବ୍ଦର ଅକ୍ଷରିକ ଅର୍ଥ 'ଈଶ୍ୱରଙ୍କଠାରୁ ପ୍ରାର୍ଥନାନୁ-
ସାରେ ପ୍ରାପ୍ତ ।' ଏ ଈଶ୍ୱରଙ୍କଠାରୁ ସ୍ୱପ୍ନାଦେଶ ପାଇ ମହାତ୍ମାଙ୍କ
ହୋଇଥିଲେ । ଏହାଙ୍କ ନାମରେ ବାଇବଲ୍‌ର ପ୍ରାଚୀନ
ବିଧାନ ( Old Testament )ରେ ୩୧ ଅଧ୍ୟାୟବିଶିଷ୍ଟ
୧ ସାମୁଏଲ୍ ( I Samuel ) ଓ ୨୪ ଅଧ୍ୟାୟବିଶିଷ୍ଟ
୨ ସାମୁଏଲ୍ ( II Samuel ) ନାମକ ଗ୍ରନ୍ଥ ଅଛି । ]

ସାମୁଦାୟିକ—ସଂ. ବିଣ ( ସମୁଦାୟ+ଇକ )—ସମୁଦାୟ ସମ୍ବନ୍ଧୀୟ—
Sāmudāyika Relating to the wohle. ସଂ ବି—
(ଫଳିତ ଜ୍ୟୋତିଷ)—ଜନ୍ମ ନକ୍ଷତ୍ରଠାରୁ ଅଷ୍ଟାଦଶ ନକ୍ଷତ୍ର
—( Astrology ) The eighteenth asterism
counted from one's natal asterism.

[ଦ୍ର—ଏ ନକ୍ଷତ୍ର ଅଶୁଭ ନକ୍ଷତ୍ର । ଏ ନକ୍ଷତ୍ରରେ ଶୁଭ କର୍ମାନୁଷ୍ଠାନ ନିଷିଦ୍ଧ । ଗୋଚର ସଞ୍ଚାରକାଳରେ ଗ୍ରହମାନେ ଏ ନକ୍ଷତ୍ରରେ ଉପସ୍ଥିତ ହେବା ସମୟରେ ଜାତ ବ୍ୟକ୍ତିର ମିତ୍ରକ୍ଷୟ, ଭୃତ୍ୟକ୍ଷୟ ଓ ଅର୍ଥନାଶ ଘଟେ—ଜ୍ୟୋତିସ୍ତତ୍ତ୍ୱ ।]

ସାମୁଦ୍ର—ସଂ. ବିଣ ( ସମୁଦ୍ର + ଭବ ପ୍ରଭୃତି ଅର୍ଥରେ ଅ )—୧ । ସମୁଦ୍ର Sāmudra ସମ୍ବନ୍ଧୀୟ—1. Relating to ocean; marine; maritime. ୨ । ସମୁଦ୍ରଜାତ—2. Born of the sea. ୩ । ସମୁଦ୍ରରୁ ଉତ୍ପନ୍ନ—3. Produced from the sea. ବି—୧ । ସମୁଦ୍ର ଫେନ ( ରାଜନିର୍ଘଣ୍ଟ )—1. Bone of the cuttle fish. ୨ । ସମୁଦ୍ର ଜଳଜାତ ଲବଣ; କରକଚ ଲବଣ (ରାଜବଲ୍ଲଭ)—2. Sea-salt. ୩ । ସମୁଦ୍ର ଯାତ୍ରୀ—3. A person undertaking a sea-voyage. ୪ । ଦେହସ୍ଥ ଚିହ୍ନ (ମେଦିନୀ)—4. Natal marks on the body. ୫ । (ସମୁଦ୍ର ମୁନି କଥିତ) ସାମୁଦ୍ରିକ; ଶରୀରସ୍ଥ ଚିହ୍ନ (ବିଶେଷତଃ ହାତ ପାପୁଲିର ରେଖା)ମାନଙ୍କୁ ଦେଖି ମନୁଷ୍ୟର ଗୁଣ ଓ ପ୍ରକୃତି ନିର୍ଣ୍ଣାୟକ ଶାସ୍ତ୍ର—5. Cheiromancy; a treatise dealing with personal marks on the body. ୬ । ସାମୁଦ୍ରିକ ଶାସ୍ତ୍ରବେତ୍ତା—6. A person versed in palmistry; fortune-teller. ୭ । ସମୁଦ୍ରଗାମୀ ବଣିକ (ଶବ୍ଦକୋଷ)—7. Maritime trader. ୮ । ସୁଶ୍ରୁତୋକ୍ତ ବିଷଧର ମଶକ ବିଶେଷ (ଶବ୍ଦକୋଷ)—8. A kind of poisonous mosquito. [ ଦ୍ର—ଏ ମଶକ ଦଂଶନ କଲେ ଶରୀରର କଣ୍ଡୁ, ଦଂଶ ଓ ଶୋଥ ଉତ୍ପନ୍ନ ହୁଏ । ସୁଶ୍ରୁତ—୫ । ୮ ] ୯ । ମାର୍କଣ୍ଡେୟ ପୁରାଣଲିଖିତ ଦେଶ ବିଶେଷ—9. Name of a country mentioned in the Mārkandeya Purāna. ୧୦ । ନାରିକେଳ (ଶବ୍ଦକୋଷ)—10. Cocoanut. ୧୧ । ଦ୍ୱୀପାନ୍ତର ବଚ; ଚୋପଚିନି (ଶବ୍ଦକୋଷ)—11. China root.

ସାମୁଦ୍ରକ—ସ. ବି (ସମୁଦ୍ର + ଅ = ସାମୁଦ୍ର + କ) – ୧ । ସାମୁଦ୍ର ଲବଣ. Sāmudraka କରକଚ (ରାଜନିର୍ଘଣ୍ଟ)—1. Sea salt. ୨ । ସାମୁଦ୍ରିକ ଗ୍ରନ୍ଥ—2. A treatise dealing with the marks on the body. ୩ । ସମୁଦ୍ରଗାମୀ ବଣିକ୍ (ମହାଭାରତ)—3. Maritime trader. ସଂ; ବିଣ—ସମୁଦ୍ର ସମ୍ବନ୍ଧୀୟ (ଶବ୍ଦକୋଷ)—Maritime.

ସାମୁଦ୍ର ବଚନ—ସଂ. ବି—ସ୍ତ୍ରୀ ପୁରୁଷମାନଙ୍କ ଦେହରେ ଥିବା ଚିହ୍ନରୁ Sāmudra bachana ତଦ୍ବିଶିଷ୍ଟବ୍ୟକ୍ତିମାନଙ୍କ ଗୁଣ, ପ୍ରକୃତି ଓ ଭବିଷ୍ୟତ୍ ବର୍ଣ୍ଣନାତ୍ମକ ବଚନ—Saying regarding the nature and fortune of persons bearing certain natal signs on the body.

ସାମୁଦ୍ର ମତ୍ସ୍ୟ—ସ. ବି—ଲୁଣୀମାଛ—Sea-fish. [ ଦ୍ର—ଏହା ଗୁରୁ, Sāmudra matsya ସ୍ନିଗ୍ଧ, ମଧୁର, ନାତିପିତ୍ତବର୍ଦ୍ଧକ, ବାତହର, ଉଷ୍ଣ, ବୃଷ୍ୟ ଓ ଶ୍ଳେଷ୍ମବର୍ଦ୍ଧକ—ସୁଶ୍ରୁତ ।]

ସାମୁଦ୍ର ଲବଣ—ସ. ବି—ସମୁଦ୍ରଜାତ ଲବଣ; କରକଚ ଓ ପଙ୍ଗାଲୁଣ-Sāmudra labana Sea salt. [ଦ୍ର—ଲବଣ ତଳେ କୋଷ୍ଠ ଦେଖ ।]

ସାମୁଦ୍ର ସ୍ଥଳକ—ସଂ. ବି ( ସମୁଦ୍ର + ଅ + ସ୍ଥଳ + କ )—ସମୁଦ୍ରସ୍ଥଳୀ Sāmudra sthalaka ଦେଶ (ଶବ୍ଦକୋଷ)—A country in a vicinity of the sea.

ସାମୁଦ୍ରିକ—ସଂ. ବି (ସମୁଦ୍ର + ସମ୍ବନ୍ଧାର୍ଥେ ଇକ)—ସମୁଦ୍ର ସମ୍ବନ୍ଧୀୟ—Sāmudrika Marine; maritime; relating to the sea. ବି—୧ । ( ସମୁଦ୍ର = ମୁନିବିଶେଷ + ତତ୍କୃତଶାସ୍ତ୍ରାର୍ଥେ ଇକ) ଦେହରେ ଭିନ୍ନ ଭିନ୍ନ ଚିହ୍ନଧାରୀ ବ୍ୟକ୍ତିଙ୍କ ଗୁଣ, ପ୍ରକୃତି, ପରମାୟୁ ଓ ଭବିଷ୍ୟତ୍ ଆଦି ନିର୍ଣ୍ଣାୟକ ଶାସ୍ତ୍ର । 1. Cheiromancy; a treatise which tells the nature, longevity and future of persons having different marks on the body; cheirosophy. ୨ । ସାମୁଦ୍ରିକ ଶାସ୍ତ୍ରବେତ୍ତା—2. A person versed in cheiromancy; cheirosophist. [ଦ୍ର—ସମୁଦ୍ର ନାମକ ଜଣେ ମୁନି ପ୍ରଥମେ ଏ ଶାସ୍ତ୍ର ରଚନା କରିଥିଲେ । ସାମୁଦ୍ରିକ ଫଳିତ ଜ୍ୟୋତିଷ ଶାସ୍ତ୍ରର ଗୋଟିଏ ବିଭାଗ । ପୁରୁଷ ଓ ସ୍ତ୍ରୀମାନଙ୍କର କରତଳସ୍ଥ ରେଖା ଓ ଚିହ୍ନ, ପାଦତଳସ୍ଥ ରେଖା ଓ ଚିହ୍ନ, ଦନ୍ତ, କେଶ, ଦେହର ବର୍ଣ୍ଣ, ଲିଙ୍ଗ, ଭଗ, ନାଭି, ସ୍ତନ, କଫ, କପାଳସ୍ଥ ରେଖା, ହୃଦୟ, ଉଦର, ଅଙ୍ଗୁଳି, ଲୋମ, ଜିହ୍ୱା, ନାସିକା, ଦେହରେ ତିଳ ଓ ମଶକଚିହ୍ନ ଆଦିରୁ ତଦ୍ବିଶିଷ୍ଟ ଚିହ୍ନଧାରୀ ବ୍ୟକ୍ତିଙ୍କ ପ୍ରକୃତି, ଆୟୁ, ରୋଗ, ଭବିଷ୍ୟତ୍, ସୁଭଗତ୍ୱ, ଦୁର୍ଭଗତ୍ୱ, କୁଳ, ଶୀଳ ଆଦି ସାମୁଦ୍ରିକ ଶାସ୍ତ୍ରୋକ୍ତ ବଚନରୁ ସ୍ଥିର କରାଯାଏ । ଅତି ପ୍ରାଚୀନକାଳରୁ ଭାରତରେ ସାମୁଦ୍ରିକ ଶାସ୍ତ୍ରର ଚର୍ଚ୍ଚା ହୋଇ ଆସିଅଛି । ପ୍ରାଚୀନ ରୋମ୍ ଓ ଗ୍ରୀସ୍‌ରେ ମଧ୍ୟ ଏହି ବିଦ୍ୟା ପ୍ରଚଳିତ ଥିଲା । ଏଥିରେ କରତଳାଙ୍କିତ ରେଖା ବିବରଣ, ରେଖାମାନଙ୍କ ବର୍ଣ୍ଣ ବିଚାର, କରତଳରେ ଗ୍ରହଗଣଙ୍କ ସ୍ଥାନ ନିର୍ଦ୍ଦେଶ, ଶରୀରସ୍ଥ ଚିହ୍ନଗଣ, ନାସିକା, ନେତ୍ର, ଦନ୍ତ, ଲଲାଟ, ମସ୍ତକ, ବକ୍ଷ, କରତଳ, ପଦତଳ, ନୟନପ୍ରାନ୍ତ, ନଖ, ଜାନୁ, ଅଧର, ଜିହ୍ୱା, କଟିଦେଶ, ବାହୁ, ହୃଦୟ, ମସ୍ତକ, ଶରୀରର ବର୍ଣ୍ଣ, କେଶ, ବକ୍ଷଦେଶ, କରାଙ୍ଗୁଳି, ପଦାଙ୍ଗୁଳି, ନାରୀଙ୍କର ସ୍ତନ ଆଦି ଜନିତ ପୁରୁଷ ଓ ସ୍ତ୍ରୀଙ୍କର ଭିନ୍ନ ଭିନ୍ନ ପ୍ରକୃତି, ଅବସ୍ଥା, ଭାଗ୍ୟ, ରୋଗ, ଧନ, ଧର୍ମ, ଫଳ ଆଦି ବର୍ଣ୍ଣିତ ହୋଇଅଛି । ପୂର୍ବକାଳରେ ଭାରତ ବର୍ଷରେ ଏହି ଶାସ୍ତ୍ର ଏତେ ଉନ୍ନତି ଲାଭ କରିଥିଲା ଯେ, ଏଥିର ସାହାଯ୍ୟରେ ଜ୍ୟୋତିଷ ପରି ଅଭ୍ରାନ୍ତ ଭବିଷ୍ୟଦ୍‌ବାଣୀ କୁହାଯାଇ ପାରୁଥିଲା । ବର୍ତ୍ତମାନ ଇଉରୋପ

ଓ ଆମେରିକାରେ ଏହି ଶାସ୍ତ୍ରର ବିଶେଷ ଗବେଷଣା ହେଉଅଛି ।]

ସାମ୍ନା (ଇତ୍ୟାଦି)—ଦେ. ବି—ସାମନା ଇତ୍ୟାଦି ( ଦେଖ )
Sāmnā (etc) Sāmanā etc. ( See )

ସାମ୍ନୀ—ସଂ. ବି (ସାମନ୍ =ସାମବେଦ + ଈ)—ବୈଦିକ ଛନ୍ଦୋବିଶେଷ
Sāmni (ଶବ୍ଦ ରତ୍ନାବଳୀ)—Name of a Vedic metre.
[ଦ୍ର—ସାମ୍ନୀ ଅନୁଷ୍ଟୁପ୍, ସାମ୍ନୀ ଉଷ୍ଣିକ୍, ସାମ୍ନୀ ଗାୟତ୍ରୀ, ସାମ୍ନୀ ଜଗତୀ, ସାମ୍ନୀ ତ୍ରିଷ୍ଟୁପ୍, ସାମ୍ନୀ ପଙ୍କ୍ତି, ସାମ୍ନୀ ବୃହତୀ ନାମରେ ସପ୍ତଏ ବୈଦିକ ଛନ୍ଦ ଅଛି ।]

ସାମ୍ପରାୟିକ—ସଂ. ବିଣ ( ସମ୍ପରାୟ=ଯୁଦ୍ଧ, ପରଲୋକ+ଇକ )—
Sāmparāyika ୧ । ପାରଲୌକିକ—1. Relating to existence after death. ୨ । ଯୁଦ୍ଧ ସମ୍ବନ୍ଧୀୟ—2. Relating to war. ୩ । ଯୁଦ୍ଧାର୍ହ (ବିଶ୍ୱକୋଷ); ଯୁଦ୍ଧର ଉପଯୁକ୍ତ—3. Fit for battle. ବି—ଯୁଦ୍ଧ—War; battle.

ସାମ୍ପାନ୍—ବୈଦେ. ବି (ଇଂ)—ଚୀନ୍ ଦେଶୀୟ ଡଙ୍ଗା—Sampan;
Sāmpān a chinese boat with a roof.
ସାମ୍ପାନ୍ [ଦ୍ର—ଏହା ୧୦।୧୨ ଫୁଟ ଲମ୍ବ ଓ ଏଥି ଉପରେ ଛାଳ
साँपान थାଏ ଓ ଲୋକେ ଏଥିରେ ରହି ପାରନ୍ତି ।]

ସାମ୍ପୁଟି(ଡ଼ି)ବା—ଦେ. କି ( ସ. ସମ୍ପୁଟ )—ଘୋଡ଼ି ଧରି ଚାପି ଧରିବା—
Sāmputi(ṛdi)bā To hold tightly by
ସାମ୍ପଟାନ चिपटना enveloping on all sides.

ସାମ୍ପେନ୍—ବୈଦେ. ବି ( ଇଂ )—ଫ୍ରାନ୍ସଦେଶ ପ୍ରସ୍ତୁତ ଏକପ୍ରକାର
Sāmpen ଉତ୍କୃଷ୍ଟ ମଦ—Champagne ( wine ).
ସାମ୍ପେନ साम्पेन.

ସାମ୍ପ୍ରତ—ସ. ବିଣ ( ସମ୍ପ୍ରତ+ଅ )—୧ । ଯୁକ୍ତ ( ବିଶ୍ୱକୋଷ )—
Sāmprata 1. Joined. ୨ । ଇଦାନୀନ୍ତନ ( ହରିବଂଶ )—
2. Modern.

ସାମ୍ପ୍ରତମ୍—ସ. କି. ବିଣ ( ସମ୍ପ୍ରତ+ଅମ୍ )—ସମ୍ପ୍ରତି; ଅଧୁନା—
Sāmpratam Now; at present. ବିଣ ( ସମ୍+ପ୍ର+ ( ସାମ୍ପ୍ରତଂ—ଅନ୍ୟରୂପ ) ତନ୍ ଧାତୁ+କର୍ତ୍ତୃ. ଅମ୍ )—ଯୁକ୍ତ; ଉଚିତ—Proper; becoming.

ସାମ୍ପ୍ରତିକ—ସ. ବିଣ (ସମ୍ପ୍ରତି+ଇକ)—ସମ୍ପ୍ରତିଭବ (ବିଶ୍ୱକୋଷ)—
Sāmpratika Recent. ସ. ବି ( ସମ୍ପ୍ରତି+ସ୍ୱାର୍ଥେ. ଇକ ) —ସମ୍ପ୍ରତି ( ଦେଖ )—Samprati ( See )

ସାମ୍ପ୍ରଦାୟିକ—ସ. ବିଣ (ସମ୍ପ୍ରଦାୟ+ଇକ )—ସମ୍ପ୍ରଦାୟ ସମ୍ବନ୍ଧୀୟ—
Sāmpradāyika Sectarian.

ସାମ୍ପ୍ରଦାୟିକ ନିର୍ବାଚନ—ସ. ବି ( ଅଧୁନିକ ବ୍ୟବହାର )—କୌଣସି
Sāmpradāyika nirbāchana ଜାତି ବା ଧର୍ମ ସମ୍ପ୍ରଦାୟ ବା ଗୋଷ୍ଠୀ ମଧ୍ୟରୁ ସେହି ସେହି ଗୋଷ୍ଠୀଦ୍ୱାରା ପ୍ରତିନିଧି ବାଛି ନେବା—Communal representation.

ସାମ୍ପ୍ରଯୋ(ୟୋ)ଗିକ—ସ. ବିଣ ( ସମ୍ପ୍ରଯୋଗ+ଇକ )—ନିତ୍ୟ
Sāmprajo(yo)gika ସମ୍ପ୍ରଯୋଗାର୍ହ ( ପାଣିନି )—
Deserving Samprajoga or investment daily.

ସାମ୍ବ—ସ. ବି—ଶ୍ରୀକୃଷ୍ଣଙ୍କ ଔରସରେ ଜାମ୍ବବତୀଙ୍କ ଗର୍ଭଜାତ ପୁତ୍ର; ଶାମ୍ବ
Sāmba ( ବିଶ୍ୱକୋଷ ) ( ଦେଖ )—Śāmba ( See )

ସାମ୍ବତ୍ସରିକ—ସ. ବିଣ (ସମ୍ବତ୍ସର+ସମ୍ବନ୍ଧାର୍ଥେ. ଇକ)—୧ । ବାର୍ଷିକ—
Sāmbatsarika 1. Annual. ୨ । ଯାହା ବର୍ଷକେ ଥରେ ଘଟେ—2. Coming up once in the year. [ ଯଥା—ସାମ୍ବତ୍ସରିକ ଶ୍ରାଦ୍ଧ, ଉତ୍ସବ ଇତ୍ୟାଦି ]
ବି—ସାମ୍ବତ୍ସରିକ ଶ୍ରାଦ୍ଧ—Annual oblation of Pinda to one's deceased ancestors

ସାମ୍ବନ୍ଧିକ—ସଂ. ବି ( ସମ୍ବନ୍ଧ+ସ୍ୱାର୍ଥେ. ଇକ )—୧ । ସମ୍ବନ୍ଧ ( ଦେଖ )
Sāmbandhika 1. Sambandha ( See ) ୨ । ଶ୍ୟାଳକ ( ବିଶ୍ୱକୋଷ )—2. One's wife'sr brother.
ସଂ. ବିଣ—୧ । ସମ୍ବନ୍ଧ ବିଷୟକ—1. Relating to Sambandha. ୨ । ବୈବାହିକବିଷୟକ (ବିଶ୍ୱକୋଷ)—
2. Nuptial; marital.

ସାମ୍ବ ପୁର(ରୀ)—ସଂ. ବି ( ସାମ୍ବ ପ୍ରତିଷ୍ଠିତ ପୁର )—ଅଧୁନିକ ମୁଲତାନ
Sāmba pura(ri) —The ancient name of Multan.
[ ଦ୍ର—ସାମ୍ବ ଶାକଦ୍ୱୀପରୁ ମଗ ବ୍ରାହ୍ମଣମାନଙ୍କୁ ସୂର୍ଯ୍ୟମୂର୍ତ୍ତିଙ୍କ ପୂଜା ପାଇଁ ଅଣାଇ ଚନ୍ଦ୍ରଭାଗା ନଦୀତୀରରେ ଏହି ନଗର କମୀଣ ଓ ସ୍ଥାପନ କରି ସେମାନଙ୍କୁ ସେଠାରେ ରଖାଇଲେ । ସାମ୍ବ ଯେଉଁଠାରେ ସୂର୍ଯ୍ୟାରାଧନା କରୁଥିଲେ ତାହା ମିତ୍ରବନ ନାମରେ ଖ୍ୟାତ ହୋଇଥିଲା-ବିଶ୍ୱକୋଷ ।]

ସାମ୍ବ ପୁରାଣ—ସଂ. ବି—ଉପପୁରାଣ ବିଶେଷ—
Sāmba purāṇa Name of a secondary Purāṇa.

ସାମ୍ବର—ସଂ. ବିଣ ( ସମ୍ବର+ଭବାର୍ଥେ. ଅ )—ରାଜପୁତନାର ସମ୍ବର-
Sāmbara ହ୍ରଦଜାତ—Produced from the lake Sambara in Rajputana. ବି—ଏକପ୍ରକାର ଲବଣ; ସମ୍ବରହ୍ରଦଜାତ ଲବଣ; ଗଡ଼ ଲବଣ—Salt manufactured from the inland salt lake of Rajputana. [ ଦ୍ର—ଲବଣ ତଳେ ନୋଟ ଦେଖ ]
ଦେ. ବି ( ସଂ. ସମ୍ବର )—ଶମ୍ବର ୧ ( ଦେଖ )—
Śambara 1 ( See ) ବିଣ—ସାମ୍ବରି ( ଦେଖ )—
Sāmbari ( See )

ସାମ୍ବରି—ଦେ. ବିଣ (ସଂ. ଶାମ୍ବରୀ)—ସମ୍ବରମୃଗ ସମ୍ବନ୍ଧୀୟ—Relating
Sāmbari to the Sambara deer. ବି—ସାମ୍ବରି ଚମ
ସାମ୍ବରି साँमरी (ଦେଖ)—Sāmbari chama (See)

ସାମ୍ବରି ଚମ—ଦେ. ବି ( ସଂ. ଶାମ୍ବର+ଚର୍ମ )—୧ । ଶମ୍ବର ମୃଗର
Sāmbari chama ଚର୍ମ—1. The leather of Sambar
ସାମ୍ବରି ଚମଡ଼ା deer. ୨ । ସାମଏ ମୃଗର କଷା ହୋଇଥିବା ଚର୍ମ—
साँमरी चमड़ा 2. Chamois leather.

ସାମ୍ବରୀ—ସଂ. ବି—୧ । ଶାମ୍ବରୀ ( ଦେଖ )—1 Śāmbarī (See)
Sāmbarī ୨ । ସାମ୍ବରୀ ଲବଣ ( ଦେଖ )—
2. Sāmbari labaṇa ( See )

**ସାମ୍ଭର ଲବଣ**—ସଂ. ବି. ସମ୍ଭର ହ୍ରଦଜାତ ଲବଣ—Salt manufactured from the salt lakes of Rājputana.
Sāmbari labana

**ସାମ୍ବାଦିକ**—ସଂ. ବି ( ସମ୍ବାଦ+ଇକ )—୧ । ନୈୟାୟିକ—1. Logician. ୨ । ( ଅଧୁନିକ ପ୍ରୟୋଗ ) ସମ୍ବାଦପତ୍ରମାନଙ୍କର ସମ୍ବାଦଦାତା—2. News-supplier of a newspaper; news-agent; correspondent of a newspaper.
Sāmbādika
সাম্বাদিক
साम्बादिक

**ସାମ୍ଭବୀ**—ସଂ. ବି ( ସାମ୍ଭବ+ଈ )—ରକ୍ତ ଲୋଧ୍ର—Red variety of Symplocus Racemosus.
Sāmbhabī

**ସାମ୍ଭସ୍**—ସଂ. ବିଣ ( ସ+ଅମ୍ଭସ୍ )—ଜଳଜ—Watery.
Sāmbhas

**ସାମ୍ମତ୍ୟ**—ସଂ. ବି ( ସମ୍ମତ+ଭାବାର୍ଥେ. ଯ )—ସମ୍ମତିର ଭାବ—The state of consent.
Sāmmatya

**ସାମ୍ମାତୁର**—ସଂ. ବି. ପୁଂ ( ସମ୍ମାତୃ+ଅପତ୍ୟାର୍ଥେ. ଅ )—ସତୀ-ପୁତ୍ର—The son of a chaste woman.
Sāmmatura
[ ସାମ୍ମାତୁରୀ—ସ୍ତ୍ରୀ ]

**ସାମ୍ମୁଖୀ**—ସଂ. ବି—ଯେଉଁ ତିଥି ସନ୍ଧ୍ୟା ପର୍ଯ୍ୟନ୍ତ ରହେ ( ହି. ଶ )—A lunar day which lasts till evening.
Sāmmukhī

**ସାମ୍ମୁଖ୍ୟ**—ସଂ. ବି ( ସମ୍ମୁଖ+ଭାବାର୍ଥେ. ଯ )—ସମ୍ମୁଖର ଭାବ; ସାମନା—The state of being in front.
Sāmmukhya

**ସାମ୍ମୋଦନିକ**—ସଂ. ବିଣ ( ସମ୍ମୋଦନ+ଇକ )—ସମ୍ମୋଦଦାୟକ; ଆନନ୍ଦଦାୟକ (ଶବ୍ଦକୋଷ)—Pleasant.
Sāmmodanika

**ସାମ୍ୟ**—ସଂ. ବି ( ସମ+ଭାବେ. ଯ )—୧ । ସମାନତା; ସମତା; ତୁଲ୍ୟତ୍ୱ—1. Equality. ୨ । ସାଦୃଶ୍ୟ—2. Similarity. ୩ । ସାମଞ୍ଜସ୍ୟ—3. Harmony; equilibrium. ୪ । ଏକତା—4. Oneness. ୫ । ସାନ୍ତ୍ୱନା—5. Consolation. ୬ । ଏକସ୍ଥାନତ୍ୱ (ଶବ୍ଦକୋଷ)—6. The state of being the same place. ସଂ. ବିଣ—ସମଭାପନ୍ନ (ଶବ୍ଦକୋଷ)—Having the same condition or equality.
Sāmya

**ସାମ୍ୟ ବାଦ**—ସଂ. ବି (ଅଧୁନିକ)—ରାଜନୀତିକ ମତ ବିଶେଷ—The political theory of equality; communism. [ବି—ସବୁ ଲୋକେ ସମାନ; ରାଜା, ପ୍ରଜା, ଉଚ୍ଚ, ନୀଚ, ଧନୀ, ଦରିଦ୍ର, କୁଲୀନ, ଅକୁଲୀନ, ଏମାନଙ୍କ ଭିତରେ ପ୍ରଭେଦ ରହିବା ଉଚିତ ନୁହେଁ । ଯାବତୀୟ ଧନ ଓ ସମ୍ପତ୍ତିରେ ସମସ୍ତଙ୍କର ସମାନ ଅଧିକାର ରହିବା ଉଚିତ, ଏହିପରି ମତବାଦ । ଏହି ମତବାଦ ପ୍ରଥମେ ରୁଷିଆରୁ ବାହାରି ବର୍ତ୍ତମାନ ନାନା ଦେଶରେ ବ୍ୟାପୁଅଛି ।]
Sāmya bāda
সাম্যবাদ
साम्यवाद

**ସାମ୍ୟ ବାଦୀ**—ସଂ. ବିଣ. ପୁଂ (ଅଧୁନିକ ପ୍ରୟୋଗ)—ଯେଉଁ ବ୍ୟକ୍ତି ସାମ୍ୟବାଦ ମତ ଅବଲମ୍ବନ କରନ୍ତି—One who advocates the theory of equality; communist.
Sāmya bādī
(ସାମ୍ୟବାଦିନୀ—ସ୍ତ୍ରୀ)
সাম্যবাদী
साम्यवादी

**ସାମ୍ୟ ଭାବ**—ସଂ. ବି—୧ । ପଦାର୍ଥର ସମଭାବରେ ଅବସ୍ଥିତ ଓ ସ୍ଥିର ହୋଇ ରହିବା—1. State of equilibrium. ୨ । ସର୍ବତ୍ର ସମଦର୍ଶିତା—2. Equality of regard for all.
Sāmya bhāba

**ସାମ୍ୟ ସଂସ୍ଥାପନ**—ସଂ. ବି—ସାମଞ୍ଜସ୍ୟ ସ୍ଥାପନ—The creation or establishment of harmony.
Sāmya samsthāpana
(ସାମ୍ୟ ସ୍ଥାପନ—ଅନ୍ୟରୂପ)

**ସାମ୍ୟାବସ୍ଥା**—ସଂ. ବି—୧ । ତୁଲ୍ୟାବସ୍ଥା—1. Equal condition. ୨ । ସତ୍ତ୍ୱ, ରଜଃ ଓ ତମଃ ଗୁଣତ୍ରୟର ସମାନ ଅବସ୍ଥା—2. The equal state of the three natural attributes. [ବି—ଏ ଅବସ୍ଥାରେ କୌଣସି ବିକାର ବା ବିକ୍ଷୋଭ ହୁଏ ନାହିଁ । ଏହାକୁ 'ପ୍ରକୃତି' ବୋଲଯାଏ—ହି. ଶ ।]
Sāmyābasthā

**ସାମ୍ୟୁତ୍ଥାନ**—ସଂ. ବି—ଯଜ୍ଞ ସମାପନ ପାଇଁ ବିଘ୍ନ ବା ଅସୁବିଧା (ଶବ୍ଦକୋଷ)—Any obstacle or inconvenience for the performance of a Jajña.
Sāmyutthāna

**ସାମ୍ରାଜ୍ୟ**—ସଂ. ବି (ସମ୍ରାଜ୍+ଭାବେ. ଯ)—୧ । ସାର୍ବଭୌମତ୍ୱ; ଏକଛତ୍ରାଧିପତ୍ୟ—1. The state of being an emperor; suzerainty; sultanate. ୨ । ସମ୍ରାଟଙ୍କ ଅଧିକାର, ସମ୍ରାଟଙ୍କ ଶାସନାଧୀନ ରାଜ୍ୟ—2. Empire. ୩ । ସର୍ବପ୍ରଧାନ ରାଜ୍ୟ (ପ୍ରକୃତିବାଦ)—3. Pre-eminent kingdom. ୪ । ପୂର୍ଣ୍ଣ ଅଧିକାର (ହି. ଶ)—4. Full mastery.
Sāmrājya

**ସାମ୍ରାଜ୍ୟ ପ୍ରତିଷ୍ଠା**—ସଂ. ବି (୬ଷ୍ଠୀ ତତ୍)—ଏକଛତ୍ର ରାଜ୍ୟ ସ୍ଥାପନ—The establishment of an empire.
Sāmrājya pratishthā
ସାମ୍ରାଜ୍ୟ ସଂସ୍ଥାପନ } —ଅନ୍ୟରୂପ
ସାମ୍ରାଜ୍ୟ ସ୍ଥାପନ }

**ସାମ୍ରାଜ୍ୟ ବାଦ**—ଦେ. ବି (ଅଧୁନିକ)—ବିଶାଳ ସାମ୍ରାଜ୍ୟର ଅଙ୍ଗ ହେଲେ ଦେଶର ବୈଷୟିକ ଓ ରାଜନୀତିକ ଉନ୍ନତି ଅପେକ୍ଷାକୃତ ସୁକର ହୁଏ, ଏହି ମତବାଦ—Imperialism in politics.
Sāmrājya bāda
সাম্রাজ্যবাদ
साम्राजयवाद

**ସାମ୍ରାଜ୍ୟବାଦୀ ଦଳ**—ଦେ. ବି (ଅଧୁନିକ ପ୍ରୟୋଗ)—ବିଶାଳ ସାମ୍ରାଜ୍ୟର ଅଙ୍ଗ ହେଲେ ଦେଶର ବୈଷୟିକ ଓ ରାଜନୀତିକ ଉନ୍ନତି ଅପେକ୍ଷାକୃତ ସୁକର ହୁଏ, ଏହି ମତ ଯେଉଁମାନେ ପୋଷଣ କରନ୍ତି—The imperialists (in politics).
Sāmrājyabādī dala
(ସାମ୍ରାଜ୍ୟ ସମର୍ଥକ ଦଳ—ଅନ୍ୟରୂପ)
সাম্রাজ্যবাদী দল
साम्राजयवादी दल

**ସାମ୍ରାଣି କର୍ଦ୍ଦମ**—ସଂ. ବି—ଜବାଦ ନାମକ ଗନ୍ଧଦ୍ରବ୍ୟ (ରାଜନିର୍ଘଣ୍ଟ)—ଶାଳଅପତନ କୋଷ—Name of
Sāmrāṇi kardama

a scent. [ଦ୍ର—ଏହା ଗନ୍ଧମାର୍ଜାର ବା ଖଟାଶ ଶରୀରର କୋଷ ବା ସ୍ରାବ୍ୟ । ଏହା ସୁଗନ୍ଧ ଓ ଏକ ପ୍ରକାର କସ୍ତୁରୀ ରୂପେ ପରିଗଣିତ ।]

ସାମ୍ରାଣିଜ—ସଂ. ବ—ମହାଫାରେଭତ ଫଳ (ରାଜ ନିର୍ଘଣ୍ଟ)—
Sāmrānija 'A sort of guava,

ସାମ୍ରାଣୀ—ଦେ. ବ (ବୈଦ୍ୟକ)—ଏକପ୍ରକାର ଔଷଧ ଗଛ (ଦ୍ରବ୍ୟଗୁଣ
Sāmrāni କଳ୍ପଦ୍ରୁମ )—ସାତଲା ( ଦେଖ )—
ସଂ. ସପ୍ତଲା, ଚର୍ମକଷା, Name of a medicinal tree.
ସର୍ଣ୍ଣିପୁଷ୍ପୀ, ଭୂରିଫେନା, ବିମଳା
চামবকষা
সাতলা
ଦେ. ସାମ୍ରାଣୀଚେଟ୍ଟ

ସାୟ—ଜଂ. ବ (ଷୋ ଧାତୁ=ନାଶକରିବା+କର୍ତ୍ତୃ. ଅ)—୧ । ଦିନାନ୍ତ;
Sāya ସାୟଂକାଳ; ସନ୍ଧ୍ୟା (ଅମର)—1. Evening. ୨ । ବାଣ; ଶର [ମେଦିନୀ]—2. Arrow. ୩ । [+ଭାବ ଅ] ନାଶ—3. Destruction. ୪ । ଅବସାନ—4. Close. ୫ । ଶେଷ—5. Finish; end. ୬ । ଉତ୍ସବ ( ହିକାଣ୍ଡଶେଷ )—6. Festival.
ସହାୟ ସହায় ଗ୍ରା. ବ (ସଂ. ସାହାଯ୍ୟ)—ସାହାଯ୍ୟ—Help. ବଣ (ବଙ୍ଗଳାରୁ ଅନୁକୃତ) ସମାପ୍ତ-Finished.

ସାୟଂ—ସଂ. ଅ.—(ଷୋ ଧାତୁ ସମାପନ କରିବା+କର୍ତ୍ତୃ ଅମ୍; ଯାହା
Sāyam ଦିବସକୁ ସମାପନ କରେ)—୧ । ସନ୍ଧ୍ୟା; ସାୟଂକାଳ—Evening; nightfall. ୨ । ବାଣ; ଶର(ହ୍ର. ଶ)—2. Arrow. ୩ । ସାୟଂକାଳୀନ (ହ୍ର. ଶ)—3. Relating to or happening in the evening.

ସାୟଂ କାଳ—ସ. ବ—ସନ୍ଧ୍ୟା; ଦିନାନ୍ତ; ସାୟଂସନ୍ଧ୍ୟାକାଳ—
Sāyam kāla Night-fall; evening; eventide.
(ସାୟଂକାଳୀନ—ବଣ) [ଦ୍ର—ଦିବସର ଅନ୍ତିମ ଏକ ଦଣ୍ଡ ଓ ରାତ୍ରିର ପ୍ରଥମ ଏକ ଦଣ୍ଡ, ଏହି ଦୁଇଦଣ୍ଡକାଳ ସାୟଂକାଳ—ଶବ୍ଦକୋଷ]

ସାୟଂକୃତ୍ୟ—ସ.ବ—ସାୟଂସନ୍ଧ୍ୟା (ଦେଖ)
Sāyam krutya Sāyamsandhyā (See)

ସାୟଂ ଗୃହ—ସଂ ବଣ. ପୁଂ—ଯେଉଁ ବ୍ୟକ୍ତି ସନ୍ଧ୍ୟା ସମୟରେ
Sāyam gruha ଯେଉଁଠାରେ ପହଞ୍ଚେ, ସେଠାରେହିଁ ବାସ କରେ ( ହ୍ର. ଶ. )—[a person] Who takes up his residence at the place where he arrives at nightfall.

ସାୟଂ ଗୋଷ୍ଠ—ସ. ବ. ପୁଂ—ସାୟଂକାଳରେ ଗୋଚାରଣ ସ୍ଥାନରେ
Sāyam goshṭha ଅବସ୍ଥାନକାରୀ ଗୋ ( ଶବ୍ଦକୋଷ )—
(ସାୟଂ ଗୋଷ୍ଠା—ସ୍ତ୍ରୀ) Cattle which stays in the pasture at nightfall.

ସାୟଂ ପ୍ରାତଃ—ସ. ଅ—୧ । ସନ୍ଧ୍ୟା ବେଳେ ଓ ସକାଳେ—
Sāyam prātah 1. At morning and evening.
(ସାୟମ୍ପ୍ରାତଃ—ଅନ୍ୟରୂପ) ୨ । ସନ୍ଧ୍ୟା ଓ ସକାଳ—2. Morning and evening.

ସାୟଂ ତନ—ସ. ବଣ ପୁଂ—ସାୟନ୍ତନ ( ଦେଖ )
Sāyam tana Sāyantana ( See )

ସାୟଂ ପ୍ରାତରାଶୀ—ସ. ବ ପୁଂ (ସାୟଂ ପ୍ରାତଃ+ଅଶ୍ ଧାତୁ+କର୍ତ୍ତୃ
Sāyam prātarāsi ଇନ୍; [ମେ. ୧ବ)—ସନ୍ଧ୍ୟା ବେଳେ
(ସାୟଂ ପ୍ରାତରଶିନୀ—ସ୍ତ୍ରୀ) ଓ ସକାଳେ ଭୋଜନକାରୀ—
(ସାୟମ୍ପ୍ରାତରାଶୀ—ଅନ୍ୟରୂପ) Taking food in the evening and morning.

ସାୟଂ ପ୍ରାତିକ—ସ. ବଣ (ସାୟଂ ପ୍ରାତଃ+ଇକ; କଦାଚନ)—ସନ୍ଧ୍ୟା
Sāyam prātika ବେଳେ ଓ ସକାଳେ ଘଟିବା—Happen-
(ସାୟମ୍ପ୍ରାତିକ—ଅନ୍ୟରୂପ) ing at eve and morn.

ସାୟଂ ଭବ—ସଂ. ବଣ. ପୁଂ (ଅବ୍ୟୟୀ ଭାବ; ସାୟଂ+ଭୂ ଧାତୁ+
Sāyam bhaba କର୍ତ୍ତୃ.ଅ)—୧ । ସନ୍ଧ୍ୟାବେଳେ ଜାତ—1.Born
(ସାୟମ୍ଭବ—ଅନ୍ୟରୂପ) at eve. ୨ । ସନ୍ଧ୍ୟାକାଳୀନ—
(ସାୟଂ ଭବା—ସ୍ତ୍ରୀ) 2. Happening at eve.

ସାୟଂ ଭୋଜନ—ସଂ.ବ (ଅବ୍ୟୟୀ ଭାବ)—ସନ୍ଧ୍ୟାକାଳୀନ ଭୋଜନ—
Sāyam bhojana Supper.
(ସାୟମ୍ଭୋଜନ—ଅନ୍ୟରୂପ)

ସାୟଂ ଭୋଜୀ—ସଂ. ବଣ. ପୁଂ—ସନ୍ଧ୍ୟା ସମୟରେ ଆହାରକାରୀ—
Sāyam bhoji Taking meal at eve.
(ସାୟଂ ଭୋଜିନୀ—ସ୍ତ୍ରୀ) (ସାୟମ୍ଭୋଜୀ—ଅନ୍ୟରୂପ)

ସାୟଂ ସନ୍ଧ୍ୟା—ସଂ. ବ—୧। ସନ୍ଧ୍ୟା ବେଳ; ବେଳବୁଡ଼—1. Night-
Sāyam sandhyā fall. ୨ । ସନ୍ଧ୍ୟାକାଳରେ କର୍ତ୍ତବ୍ୟ ଉପାସନା—2. Evening service; worship performed at nightfall; vespers. [ଦ୍ର—ଦ୍ୱାଦଶୀ, ପୂର୍ଣ୍ଣିମା, ଅମାବାସ୍ୟା, ସଂକ୍ରାନ୍ତି ଓ ଶ୍ରାଦ୍ଧ ଦିବସରେ ସାୟଂ ସନ୍ଧ୍ୟା ନିଷିଦ୍ଧ । ] ୩ । ସାୟଂକାଳୋପାସ୍ୟା ଦେବତା; ସରସ୍ୱତୀ ୧୨ ( ଦେଖ )—3. Deity Saraswati who is worshipped by the twice born castes at night fall.

ସାୟଂ ସନ୍ଧ୍ୟା ଦେବତା—ସ. ବ—ସରସ୍ୱତୀ ୧୨ ( ଦେଖ )
Sāyam sandhyā debatā Saraswati 12 ( See )

ସାୟକ—ସ. ବ ( ଷୋ ଧାତୁ=ନାଶ କରିବା+କର୍ତ୍ତୃ. ଅକ )—
Sāyaka ୧ । ବାଣ; ଶର—1. Arrow; dart. ୨ । ଖଡ୍ଗ—2. Sword. ୩ । ବଜ୍ର—3. Thunder. ୪ । ଅସ୍ତ୍ର ଶସ୍ତ୍ର—4. Weapon. ୫ । ଭଦ୍ରମୁଞ୍ଜ ( ଦେଖ )—5. Bhadramuñja ( See ) ୬ । ପାଞ୍ଚ ସଂଖ୍ୟା ( ହ୍ର. ଶ )—6. The number five. ୭ । ବର୍ଣ୍ଣବୃତ୍ତବିଶେଷ ( ହ୍ର. ଶ )—7. A kind of metre. [ ଦ୍ର—ଏଥିରେ ପ୍ରତ୍ୟେକ ପାଦରେ ଯଥାକ୍ରମେ ସଗଣ, ଭଗଣ, ତଗଣ, ଏକଲଘୁ ଓ ଏକଗୁରୁ ବର୍ଣ୍ଣ ଥାଏ—ହ୍ର. ଶ । ]

**ସାୟକ ପୁଙ୍ଖ(ଙ୍ଖା)**—ସଂ· ବି ( ୬ଷ୍ଠୀ ତତ୍ )—ଶରପୁଚ୍ଛ—
Sāyaka puṅkha(ṅkā) The tail of an arrow.

**ସାୟଣ**—ସଂ· ବି (ନାମ)—ସାୟନ ( ଦେଖ )—Sāyana ( See )
Sāyaṇa [ ସାୟଣାଗ୍ରର୍ଯ୍ୟ—ଅନ୍ୟରୂପ ]

**ସାୟଣୀ(ଣୀ)ୟ**—ସଂ· ବିଣ ( ସାୟଣ+ଈୟ )—୧ । ସାୟନାଗ୍ରର୍ଯ୍ୟ
Sāyaṇī(ṇī)ya ସମ୍ବନ୍ଧୀୟ—1. Relating to Sāyaṇa.
୨ । ସାୟନାଗ୍ରର୍ଯ୍ୟକୃତ ( ଗ୍ରନ୍ଥ )—
2. Composed by Sāyanacharya.

**ସାୟତନ**—ସଂ. ବି ( ସହାର୍ଥ ବହୁବ୍ରୀହି; ସ+ଅୟତନ )—ଅୟତନ
Sāyatana ବିଶିଷ୍ଟ—Having dimensions.

**ସାୟ ଦେବା**—ଦେ. କି ( ବଙ୍ଗଳାରୁ ଅନୁକୃତ )—କୌଣସି ବ୍ୟକ୍ତିର
Sāya debā କଥାରେ ହଁ ମାରିବା—To say ditto to
সায দেওয় **हाँजी हाँजी करना** what another says.

**ସାୟନ**—ସଂ. ବି ( ନାମ )—ଟୀକାକାରବିଶେଷ—Name of an
Sāyana [ସାୟନାଗ୍ରର୍ଯ୍ୟ—ଅନ୍ୟ ବି. ରୂପ] annotator.
[ ଦ୍ର—ଏ ଋଗ୍‌ବେଦାଦିର ଭାଷ୍ୟକାର ସୁପ୍ରସିଦ୍ଧ ମହା ପଣ୍ଡିତ ଥିଲେ । ଦାକ୍ଷିଣାତ୍ୟ ବିଦ୍ୟାନଗରସ୍ଥିଥିବା ମହାରାଜ ହରିହର ସଙ୍ଗମ, ପ୍ରଥମ ବୁକ୍କ ଓ ତତ୍‌ପୌତ୍ର ଦ୍ୱିତୀୟ ହରିହର ଏହାଙ୍କ ବିଦ୍ୱତ୍ତାରେ ମୁଗ୍ଧ ହୋଇ ଏହାଙ୍କୁ ରାଜ-ମନ୍ତ୍ରୀ କରିଥିଲେ । ଏହାଙ୍କ ପିତାଙ୍କ ନାମ ମାୟଣ । ଏହାଙ୍କ ଭ୍ରାତା ପ୍ରଥମେ ରାଜମନ୍ତ୍ରୀ ଥିଲେ ଓ ପରେ ଶୃଙ୍ଗେରୀ ମଠରେ ଗୁରୁପଦରେ ପ୍ରତିଷ୍ଠିତ ହୋଇ ବିଦ୍ୟାରଣ୍ୟ ସ୍ୱାମୀ ବା ମୁନି ନାମରେ ପୂଜିତ ହେଲେ । ଏ ୧୩୮୭ ଖ୍ରୀଷ୍ଟାବ୍ଦରେ ପର-ଲୋକ ଗମନ କରିଥିଲେ । ଏ ବୈଦିକଭାଷ୍ୟ, ଉପନିଷଦ ଭାଷ୍ୟ, ସ୍ମୃତିଭାଷ୍ୟ, ବ୍ୟାକରଣ ଭାଷ୍ୟ, ବେଦାନ୍ତ ଟୀକା, ଭଗବଦ୍‌ଗୀତା ଭାଷ୍ୟ ଆଦି ଶତାଧିକ ଗ୍ରନ୍ଥ ରଚନା କରି-ଥିଲେ—ବିଶ୍ୱକୋଷ । ] ସଂ. ବିଣ (ସ+ଅୟନ )—
ଅୟନବିଶିଷ୍ଟ ( ଗ୍ରହ ଆଦି )—
( planets ) Having Ayana.

**ସାୟନ୍ତନ**—ସଂ. ବିଣ (ସାୟଂ+ଭବାଦ୍ୟର୍ଥେ. ତନ)—୧ । ସାୟଂକାଳ
Sāyantana ସମ୍ବନ୍ଧୀୟ—1. Relating to evening.
[ସାୟନ୍ତନୀ—ସ୍ତ୍ରୀ] ୨ । ସାୟଂକାଳୀନ—
2. Happening in the evening.

**ସାୟନ୍ତା**—ଗ୍ରା. ବି. ସ୍ତ୍ରୀ ( ନାମ )—ଶାନ୍ତା; ଋଷ୍ୟଶୃଙ୍ଗଙ୍କ ପତ୍ନୀ—
Sāyantā Colloquial name of the wife of sage
Ṛushyaśruṅga. [ ଦ୍ର—ସାୟନ୍ତା କନ୍ୟାକୁ ଦାନ କରିବା ପ୍ରଦାନ । ପରମପୁରୁଷ ସେ ଅଟନ୍ତ ବନ୍ଧଜନ—
ବିଶ୍ୱନାଥ. ବଇଦ ରାମାୟଣ । ]

**ସାୟନ୍ଦୁଗ୍ଧ**—ସଂ. ବି—ସନ୍ଧ୍ୟା ସମୟରେ ଦୁହାଁ ଯିବା ଦୁଧ—
Sāyandugdha Milk drawn in the evening.
[ ସାୟଂଦୁଗ୍ଧ—ଅନ୍ୟରୂପ ]

**ସାୟନ୍ଦୋହନ**—ସଂ. ବି—ସନ୍ଧ୍ୟାକାଳୀନ ଗୋ ଦୋହନ—
Sāyandohana Milking in the evening.
[ ସାୟଂଦୋହ, ସାୟଂଦୋହନ—ଅନ୍ୟରୂପ ]

**ସାୟମାଶ**—ସଂ. ବି—ସାୟଂ ଭୋଜନ—Supper, evening
Sāyamāśa [ ସାୟାଶନ—ଅନ୍ୟରୂପ ] meal.

**ସାୟମାହୁତି**—ସଂ. ବି ( ସାୟଂ+ଆହୁତି )—ସନ୍ଧ୍ୟା ସମୟରେ ଦିଆ-
Sāyamāhuti ଯିବା ଆହୁତି—Oblation of ghee unto the fire at eve.

**ସାୟ(ଏ, ୟେ)ଲ୍**—ବୈଦେ. ବି( ଜଡ଼ରଥ )—ଦରଖାସ୍ତକାରୀ—
Sāya(e, ye)l সাএল **सायल** Applicant.

**ସାୟା**—ଦେଦେ. ବି ( ପର୍ତ୍ତୁଗୀଜ୍ )—ସ୍ତ୍ରୀମାନଙ୍କର କଟିଠାରୁ ତଳକୁ
Sāyā ପିନ୍ଧା ଯିବା ଢିଲା ଘାଗରା—A loose-flowing
সাযা lower gown or skirt worn by females
**साया, घाँघरा** down from the waiste.

**ସାୟାଁ**—ଗ୍ରା. ବି—ସଞ୍ଜ୍ଞା( ଦେଖ )
Sāyāṅ Sañjñā ( See )

**ସାୟାବନ୍ଦୀ**—ବୈଦେ. ବି ( ଫା. ସାୟାହ୍ ବନ୍ଦୀ )—ମୁସଲମାନମାନଙ୍କ
Sāyābandī ବିବାହ ପାଇଁ ମଣ୍ଡପ ନିର୍ମାଣ କର୍ମ—The act of
সায়াবন্দী raising a marriage altar for a mar-
**सायाबन्दी** riage ( of Mahomedans ).

**ସାୟାର୍**—ବୈଦେ. ବି ( ଇଂ )—ଇଂଲଣ୍ଡ, ସ୍କଟଲଣ୍ଡ ଓ ଆୟର୍ଲଣ୍ଡର
Sāyār ଭିନ୍ନ ଭିନ୍ନ ଅଂଶ ବା ବିଭାଗ—Shire of Great
সাযার **सायार** Bretain and (Ireland).

**ସାୟାରମ୍ଭ**—ସଂ. ବି ( ୬ଷ୍ଠୀ ତତ୍; ସାୟ+ଆରମ୍ଭ )—ସାୟଂକାଳର
Sāyārambha ଆରମ୍ଭ ( ବିଶ୍ୱକୋଷ )—
The beiginning of nightfall.

**ସାୟାଶନ**—ସଂ. ବି ( ମ. ପ. ଲୋ; ସାୟଂକାଳୀନ ଅଶନ୍ କମ୍ମ ୭ମୀ ତତ୍, ସାୟେ ଅଶନ )—ଦିନାନ୍ତେ ଭୋଜନ;
Sāyāśana
ସନ୍ଧ୍ୟା ଭୋଜନ—Evening meal; supper.

**ସାୟାସ**—ସଂ. ବିଣ (ସହାର୍ଥ ବହୁବ୍ରୀହି; ସ+ଆୟାସ)—ଆୟାସଯୁକ୍ତ—
Sāyāsa Accompanied with effort.

**ସାୟାହ୍ନ**—ସଂ. ବି ( ସାୟ+ଅହନ୍; ଅହର୍=ଦିନର+ସାୟ=ଶେଷ )
Sāyāhna —୧ । ଦିନାନ୍ତ, ଦିବସର ଶେଷ ଦଣ୍ଡଦ୍ୱୟ; ଦିନର ଶେଷ ଦଣ୍ଡ ଓ ରାତ୍ରିର ପ୍ରଥମ ଦଣ୍ଡ—1. The last Daṇḍa of the day and the first Daṇḍa of the night. [ ଦ୍ର—ଏହି ସମୟକୁ ଗୋଧୂଳିବେଳ ବୋଲଯାଏ । ଏହି ସମୟରେ ଶ୍ରାଦ୍ଧ, ଶୟନ; ଭୋଜନ ଓ ଶୁଭକର୍ମ ନିଷିଦ୍ଧ—ଶବ୍ଦକଳ୍ପଦ୍ରୁମ ।] ୨ । ଦିବସର ଶେଷ ପଞ୍ଚମ ଭାଗ (ବିଶ୍ୱକୋଷ ଉଦ୍ଧୃତ)—2. The last fifth part of the day. [ଦ୍ର—ଶାସ୍ତ୍ରରେ ଦିବସକୁ ୫ ଭାଗରେ ବିଭକ୍ତ କରାଯାଇଅଛି । ପ୍ରଥମ ୩ ମୁହୂର୍ତ୍ତ ପ୍ରାତଃ, ତତ୍‌ପରବର୍ତ୍ତୀ ୩ ମୁହୂର୍ତ୍ତ ସଙ୍ଗବ ବା ପୂର୍ବାହ୍ନ, ତତ୍‌ପରେ ୩ ମୁହୂର୍ତ୍ତ ମଧ୍ୟାହ୍ନ,ତତ୍‌ପରେ ୩ ମୁହୂର୍ତ୍ତ ଅପରାହ୍ନ ଓ ଶେଷ ୩ ମୁହୂର୍ତ୍ତ ସାୟାହ୍ନ ଅଟେ । ଏକ ମୁହୂର୍ତ୍ତ=୨ ଦଣ୍ଡ କାଳ; ୧ ଦିବସ=୩୦ ଦଣ୍ଡ=୧୫ ମୁହୂର୍ତ୍ତ—ଉଦ୍ଧୃତ ।]

**ସାୟିକା**—ସଂ. ବି (ସୋ. ଧାତୁ+ଅକ+ଆ)—କ୍ରମସ୍ଥିତି—
Sāyikā Gradual position; succession; successive position.

ସାୟୀ—ସ. ବ. ପୁଂ (ସୋ ଉମ୍ମା ସେଁ, ଧାତୁ=ନାଶ କରିବା+କର୍ତ୍ତି. Sāyī ଇନ୍; ସାୟିନ୍ ୧ମା. ୧ବ; ଯେଉଁ ବ୍ୟକ୍ତି ଗନ୍ତବ୍ୟକ୍ଲେଶକୁ (ସାୟିନୀ—ସ୍ତ୍ରୀ) ନାଶ କରେ)—ଅଶ୍ୱାରୋହୀ—A horse-rider.

ସାୟୁଜ୍ୟ—ସଂ. ବ (ସହ+ଯୁଜ୍. ଧାତୁ=ଯୋଗ କରିବା+କର୍ତ୍ତି. Sāyujya କ୍ୱିପ୍=ସଯୁଜ୍=ସହଯୋଗ+ଭାବ. ଯ)—
୧ । ସହଯୋଗ—1. Co-operation. ୨ । ଏକତ୍ୱ, ଏକତା—2. Unity. ୩ । ଅଭେଦ—3. Identity. ୪ । ସାଦୃଶ୍ୟ—4. Similarity, ୫ । ପଞ୍ଚଧା ମୁକ୍ତିର ଅନ୍ତର୍ଗତ ମୁକ୍ତି ବିଶେଷ—5. A kind of emancipation. [ଦ୍ର—ମୁକ୍ତି ୫ ପ୍ରକାର ବୋଲି ଭାଗବତ ତୃତୀୟ ଅଧ୍ୟାୟରେ ବର୍ଣ୍ଣିତ ଅଛି ।
୧ । ସାଲୋକ୍ୟ—ବିଷ୍ଣୁଙ୍କ ସହିତ ଏକଲୋକରେ ବାସ ।
୨ । ସାର୍ଷ୍ଟି—ସମାନୈଶ୍ୱର୍ଯ୍ୟ ।
୩ । ସାମୀପ୍ୟ—ନୈକଟ୍ୟ ।
୪ । ସାରୂପ୍ୟ—ଏକରୂପତା ।
୫ । ସାଯୁଜ୍ୟ—ଏକତା; ବିଷ୍ଣୁଙ୍କ ଦେହରେ ଭକ୍ତର ଲୀନ ହେବା ଅବସ୍ଥା ।
ଏହି ଶେଷୋକ୍ତ ମୁକ୍ତିଲାଭ କଲେ ଭକ୍ତ ଭଗବାନଙ୍କଠାରେ ଲୀନ ହୋଇଯାଏ । ଶାସ୍ତ୍ରରେ ଲେଖାଅଛି ଯେ, ସାଯୁଜ୍ୟ ୨ ପ୍ରକାର—ଭଗବତ ସାଯୁଜ୍ୟ ଓ ବ୍ରହ୍ମସାଯୁଜ୍ୟ । ସାଯୁଜ୍ୟ ମୁକ୍ତିରେ ଭକ୍ତ ପକ୍ଷରେ ଭଗବତ୍ ସେବାର ଅଭାବ ଘଟେ । ଅତଏବ ଭକ୍ତ ଅନ୍ୟ ୪ ପ୍ରକାର ମୁକ୍ତିକୁ କାମନା କରେ ଓ ଏ ମୁକ୍ତିକୁ କାମନା କରେ ନାହିଁ—ଭାଗବତ ୩ୟ ଅଧ୍ୟାୟ ।]

ସାୟେ—ସଂ. ଅ ( ସାୟ+୭ମୀ ବିଭକ୍ତିରେ ଏ )—ଦିନାନ୍ତେ; Sāye ସନ୍ଧ୍ୟାବେଳେ—At eve.

ସାୟେକ—ଗ୍ରା. ବ (ସାୟକର ଅଶୁଦ୍ଧ ଉଚ୍ଚାରଣ)—ସାୟକ (ଦେଖ) Sāyeka Sāyaka. (See)

ସାୟେ(ଏ)ନ୍ସ୍ (ଇତ୍ୟାଦି)—ବୈଦେ. ବ (ଇଂ. ସାଏନ୍ସ୍)—ବିଜ୍ଞାନ; Sāye(e)ns (etc) ସାଏନ୍ସ୍, ଇତ୍ୟାଦି (ଦେଖ)—Science.

ସାୟେଲ୍—ବୈଦେ. ବ (କଚରୀଅ)—ସାୟଲ୍ (ଦେଖ) Sāyel Sāyal. (See)

ସାୟେସ୍ତା ଖାଁ—ବୈଦେ. ବ (ନାମ)—ସାଏସ୍ତା ଖାଁ; ଖ୍ରୀଷ୍ଟୀୟ ସପ୍ତଦଶ Sāyestā khān ଶତାବ୍ଦୀର ବଙ୍ଗର ଜଣେ ମୋଗଲ ଶାସନ- সায়স্তা খাঁ କର୍ତ୍ତା—Name of a Governor of Bengal सायेस्ता खाँ under the Moghuls in the seventeenth century A. D. [ଦ୍ର—ଏହାଙ୍କ ଜନ୍ମ ଖ୍ରୀ ୧୬୦୩; ମୃତ୍ୟୁ ଖ୍ରୀ ୧୬୯୪ । ଏହାଙ୍କ ପିତା ଆସଫ୍‌ଖାଁ ମୋଗଲ ସମ୍ରାଟଙ୍କ ଉଜୀର ବା ପ୍ରଧାନ ମନ୍ତ୍ରୀ ଥିଲେ । ଆସଫ୍‌ଖାଁଙ୍କ ମୃତ୍ୟୁ ପରେ ସାହାଜାହାନ୍ ଖ୍ରୀ. ୧୬୪୧ରେ ଏହାଙ୍କୁ ଉଜୀର କଲେ । ତତ୍ପୂର୍ବେ ଏ ବେରାରର ଶାସନକର୍ତ୍ତାରୂପେ ନିଯୁକ୍ତ ହୋଇଥିଲେ । ଖ୍ରୀ. ୧୬୫୬ରେ ସମ୍ରାଟ୍ ଆରଙ୍ଗଜେବ୍ ଏହାଙ୍କୁ ଦାକ୍ଷିଣାତ୍ୟର ରାଜପ୍ରତିନିଧି ଓ ୧୬୫୯ରେ ଏହାଙ୍କୁ ଶାସନକର୍ତ୍ତାରୂପେ ନିଯୁକ୍ତ କଲେ । ଶିବାଜୀଙ୍କ ସହିତ ଖ୍ରୀ. ୧୬୬୧ରେ ଏହାଙ୍କର ଯୁଦ୍ଧ ହୋଇଥିଲା ଓ ସେଥିରେ ଶିବାଜୀ ଜୟଲାଭ କରିଥିଲେ ଓ ଏଥିପରେ ଶିବାଜୀଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଆରଙ୍ଗଜେବ ଅମ୍ବରର ଅଧିପତି ଜୟସିଂହଙ୍କୁ ଓ ଆଫଗାନ ସେନାପତି ଦିଲେର୍ ଖାଁଙ୍କୁ ପଠାଇଲେ ଓ ଅବଶେଷରେ ସମ୍ରାଟଙ୍କ ସଙ୍ଗେ ଶିବାଜୀଙ୍କର ସନ୍ଧି ହେଲା । ଶିବାଜୀ ଅଧିକାର କରିଥିବା ମୋଗଲ ରାଜ୍ୟମାନ ଫେରାଇ ଦେଲେ ଓ ବିଜାପୁର ରାଜ୍ୟକୁ ଜୟ କରିବାରେ ସମ୍ରାଟଙ୍କୁ ସାହାଯ୍ୟ କଲେ । ସମ୍ରାଟ ଶିବାଜୀଙ୍କୁ ମହାରାଷ୍ଟ୍ର ଦେଶର ରାଜା ବୋଲି ସ୍ୱୀକାର କଲେ ଓ ତାଙ୍କ ପୁତ୍ର ଶମ୍ଭୁଜୀଙ୍କୁ ମୋଗଲ ସମ୍ରାଟଙ୍କର ୫ ହଜାର ଅଶ୍ୱାରୋହୀ ସେନାଙ୍କ ମନସବଦାର (ସେନାପତି) କଲେ । ସମ୍ରାଟ୍ ଶିବାଜୀଙ୍କୁ ବନ୍ଧୁଭାବରେ ଦିଲ୍ଲୀକୁ ଡକାଇଲେ ଓ ସେଠାରେ ସାୟେସ୍ତା ଖାଁ ( ଦାକ୍ଷିଣାତ୍ୟରେ ପୂର୍ବ ଯୁଦ୍ଧରେ ପରାସ୍ତ ହୋଇଥିବା ଅହଙ୍କାର ସାଧିବା ଉଦ୍ଦେଶ୍ୟରେ ) ସମ୍ରାଟଙ୍କୁ ଗୁପ୍ତ ପରାମର୍ଶ ଦେଇ ଶିବାଜୀଙ୍କୁ ଦିଲ୍ଲୀରେ ବନ୍ଦୀ କରାଇଲେ । କିନ୍ତୁ ଶିବାଜୀ କୌଶଳ ଅବଲମ୍ବନ କରି ସେଠାରୁ ଖସି ଗଲେ । ୧୬୬୬ରେ ସମ୍ରାଟ୍ ସାୟେସ୍ତା ଖାଁଙ୍କୁ ବଙ୍ଗଳାର ଶାସନକର୍ତ୍ତା ନିଯୁକ୍ତ କଲେ । ଏହାଙ୍କ ସମୟରେ ବଙ୍ଗଦେଶରେ ମୋଗଲ ଅଧିକାର ଦୃଢ଼ତର-ରୂପେ ପ୍ରତିଷ୍ଠିତ ହେଲା ଓ ସର୍ବତ୍ର ଶାନ୍ତି ବିରାଜିଲା । ସେ ସମୟରେ ୧ ମହଣ ଚାଉଳର ମୂଲ୍ୟ ଦୁଇ ଅଣା ମାତ୍ର ଥିଲା । ସାୟେସ୍ତା ଖାଁ ଢାକାରେ ରାଜଧାନୀ ସ୍ଥାପନ କଲେ । ସେ ସମୟରେ କଲିକତାରେ ଅବସ୍ଥିତ ଇଷ୍ଟଇଣ୍ଡିଆ କୋମ୍ପାନୀଙ୍କ ବାଣିଜ୍ୟ-କୋଠୀର ଶାସନକର୍ତ୍ତା ଜବ୍ ଚାର୍ଣ୍ଣକ୍‌ଙ୍କ ସହିତ ସାୟେସ୍ତା ଖାଁଙ୍କର ଯୁଦ୍ଧ ହୋଇଥିଲା । ଏ ୧୬୯୪ରେ ୯୧ ବର୍ଷ ବୟସରେ ପରଲୋକ ଗମନ କଲେ । ଏ ଆଗ୍ରାରେ ଯମୁନାତୀରରେ ଗୋଟିଏ ଉଦ୍ୟାନ ଓ ପ୍ରାସାଦ ଏବଂ ଅଲ୍ଲାହାବାଦରେ ଗୋଟିଏ ଜୁମାମସଜିଦ୍ ନିର୍ମାଣ କରାଇଥିଲେ । ଏ ସବୁର ଧ୍ୱଂସାବଶେଷ ଅଦ୍ୟାପି ବିଦ୍ୟମାନ—ବିଶ୍ୱକୋଷ ।
ଅନ୍ୟ ସମ୍ବାଦ ପାଇଁ ସାଏସ୍ତା ଖାଁ ତଳେ ଦିଆଯାଇଥିବା ନୋଟ୍ ଦେଖ । ]

ସାଯ୍ୟ—ଗ୍ରା. ବ ( ସଂ. ସାହାଯ୍ୟ )—ସାହାଯ୍ୟ ( ଦେଖ )—Sāhājya Sājya সাহায্য साहाय्य (See)

ସାର୍ (ଇତ୍ୟାଦି)—ବୈଦେ. ଅ ଓ ବ (ଇଂ. ସରର ଅଶୁଦ୍ଧ ଲେଖନ)—Sār (etc) ସର୍ ଇତ୍ୟାଦି ( ଦେଖ )—Sar etc ( See ) সার सर

ସାର୍ ( ଧାତୁ )—ସ—ଦୁର୍ବଳ ହେବା ( ବିଶ୍ୱକୋଷ )—Sār ( root ) To become weak.

ସାର୍ବା—ପ୍ରାଦେ. ( ଉତ୍ତରଭାଗ ) କ୍ରି—ସାରିବା—Sār-bā To finish.

ସାର୍ଲିନ୍—ପ୍ରାଦେ• ( ଗଞ୍ଜାମ ) କ୍ରି—( ମୁଁ ) ଶେଷ କଲିଣି—
Sār•lin (1) Have finished.

ସାର—ସ• ବି ( ସୃ ଧାତୁ=ଗମନ କରିବା ବା ସ୍ଥିର ହେବା+କର୍ତ୍ତୃ• ବା କରଣ, ଅ )—୧ । କୌଣସି ପଦାର୍ଥର ଶ୍ରେଷ୍ଠାଂଶ—
Sāra 1. The most excellent part of a thing; substance. ୨ । ସାରାଂଶ; ସ୍ଥିରାଂଶ ( ଅମର )—2. Essential part. ୩ । ତେଜଃ—3. Vigour. ୪ । ବଳ ( ଅମର )—4. Strength. [ ଉ—ଚୌକୁଟିକି ସିନା ହଟି, ମୋ ସାର ଯାଉଛି ଭୁଟି—କବିସୂର୍ଯ୍ୟ, କଣୋସାଚାଳ, ଛ-ଗୀତ । ] ୫ । ଦେହର ମଜ୍ଜା—5. Marrow. ୬ । ବୃକ୍ଷର ମଜ୍ଜା; ମଞ୍ଜ ( ଅମର )—6. The pith of a tree; the heart-wood of a tree. ୭ । ବୀର୍ଯ୍ୟ; ବୀରତ୍ୱ—7. Heroism. ୮ । ବଳ୍କୁସାର ( ରାଜନିର୍ଘଣ୍ଟ )—8. A kind of ashes. ୯ । ବାୟୁ ( ଳଟାଧର )—9. Air. ୧୦ । ରୋଗ ( ଧରଣୀ )—10. Sickness. ୧୧ । ପାଶକ; ପଶା ଖେଳର ଗୋଟି ( ଶବ୍ଦରତ୍ନାବଳୀ )—11. The dice balls. [ ଉ—ବପଇଲ କାଠିକି ଧର ଭୃଙ୍ଗ ମୁଷ୍ଟିକି ପ୍ରହାର ସାର ସାରେ ଯେ—ଉଞ୍ଜ. ବୈଦେହୀଶବିଳାସ । ] ୧୨ । ( ସର+ସ୍ୱାର୍ଥେ, ଅ ) ଦଧ୍ୟୁତ୍ତର; ନବନୀତ (ଶବ୍ଦରତ୍ନାବଳୀ ଓ ରାଜନିର୍ଘଣ୍ଟ)—12. Butter. ୧୩ । ( ସର+ସ୍ୱାର୍ଥେ. ଅ ) ଦୁଧର ସର—13. The cream of milk. ୧୪ । ଜଳ ( ମେଦିନୀ )—14. Water. ୧୫ । ଧନ (ମେଦିନୀ)—15. Riches. ୧୬ । ଲୌହ ( ଭାବପ୍ରକାଶ )—16. Iron. ୧୭ । ବିପିନ; ବନ (ଶବ୍ଦରତ୍ନାବଳୀ)—17. Forest. ୧୮ । କାଠିନ୍ୟ; ଦୃଢ଼ତା—18. Hardness. ୧୯ । ବୃକ୍ଷବଳ୍କଳ ରସ—19. The sap of a tree. ୨୦ । ଅରିଷ୍ଟ; ନିର୍ଯ୍ୟାସ—20. Essence; extract. ୨୧ । ସଂକ୍ଷେପ—21. Synopsis; summary or purport. ୨୨ । କଥାର ମର୍ମ; ତାତ୍ପର୍ଯ୍ୟ; ତତ୍ତ୍ୱାର୍ଥ—22. Substance of a speech. ୨୩ । ରହସ୍ୟ—23. Hidden meaning. ୨୪ । ଅତିସାର—24. Dysentery. ୨୫ । ଉତ୍କର୍ଷ—25. Excellence; worth. ୨୬ । ନାନାବର୍ଣ୍ଣ—26. Various colours. ୨୭ । କ୍ଷେତକୁ ଉର୍ବର କରିବା ପାଇଁ ଦିଆଯିବା ପଦାର୍ଥ; ଖତ—27. Manure. ୨୮ । ଗୋମୟ—28. Cow-dung. ୨୯ । ଉତ୍ତରୋତ୍ତର ଉତ୍କର୍ଷ ବର୍ଣ୍ଣନାରୂପ ଅର୍ଥାଳଙ୍କାରବିଶେଷ ( ସାହିତ୍ୟଦର୍ପଣ )—29. Name of a figure of speech. [ ଦ୍ର—ପୂର୍ବାପୂର୍ବ ପଦାର୍ଥ ଅପେକ୍ଷା ଉତ୍ତରୋତ୍ତର ପଦାର୍ଥର ଉତ୍କର୍ଷ ବର୍ଣ୍ଣନାକୁ ସାର କୁହାଯାଏ । ଭୂଳମଣି. ଅଳଙ୍କାର ତରଙ୍ଗିଣୀ । ]

( ଉଦାହରଣ—ବାଞ୍ଛ ନେଇଛନ୍ତି ଯାହା କଳେ ଲୀଳାମୟ
ପୁଣି ମର୍ତ୍ତ୍ୟ ଲୀଳା ଲାଗି ଅଖିଳ ଭାରତେ
ପର୍ବତଦଳେ ଶ୍ରେଷ୍ଠ ଯେସନେ ପ୍ରଚୁର ଭାରତ
ଶ୍ରେଷ୍ଠ ଏ ଉତ୍କଳ ଭୂମି ଗୁଣେ ଗଣାଯାଉଛି
× × × ×
ପୁଷ୍ପକୁଳେ ଶ୍ରେଷ୍ଠ ତାର କେଶର ଯେସନେ
ଶ୍ରେଷ୍ଠ ଏ ନୀଳାଦ୍ରି ଧାମ ସମଗ୍ର ଉତ୍କଳେ—
ରାଧାନାଥ. ମହାଯାତ୍ରା । )

୩୦ । ଅମୃତ (ଭାଗବତ ୭ମ ଅଧ୍ୟାୟ)—30. Nectar. ୩୧ । ଦାଡ଼ିମ୍ବ ବୃକ୍ଷ (ବୈଦ୍ୟକୋଷ)—31. The Pomegranate tree. ୩୨ । ପିୟାଶାଳ ବୃକ୍ଷ (ବୈଦ୍ୟକୋଷ)—32. Buchanania Latifolia tree. ୩୩ । ରଙ୍ଗ (ବୈଦ୍ୟକୋଷ)—33. Tin. ୩୪ । ମୁଦ୍ଗ (ବୈଦ୍ୟକୋଷ)—34. Phaseolus Radiatus (grain). ୩୫ । କ୍ୱାଥ (ବୈଦ୍ୟକୋଷ)—35. Decoction. ୩୬ । ନୀଳୀବୃକ୍ଷ (ବୈଦ୍ୟକୋଷ)—36. Indigo plant. ୩୭ । କର୍ପୂର (ବୈଦ୍ୟକୋଷ)—37. Camphor. ୩୮ । ଗଛରୁ ପରସ୍ରୁତ ନିର୍ଯ୍ୟାସ; ଶୁଖିଲା ଅଠା (ବୈଦ୍ୟକୋଷ)—38. Died gum. ୩୯ । ସାଳ ବୃକ୍ଷର ସାର (ବୈଦ୍ୟକୋଷ)—39. Resin of Shorea Robusta tree. ୪୦ । ପଣା; ପାନକ ( ବୈଦ୍ୟକୋଷ )—40. Sweetened drink. ୪୧ । ଦେହାଭ୍ୟନ୍ତରେ ସ୍ଥିର ପଦାର୍ଥ ( ବୈଦ୍ୟକୋଷ )—41. The substantial part inside the body. [ଦ୍ର—ଚରକର ବିମାନ ସ୍ଥାନରେ ବର୍ଣ୍ଣିତ ହୋଇଅଛି ଯେ, ଦେହର ସାର ଅଠଗୋଟି, ଯଥା—ତ୍ୱକ୍, ରକ୍ତ, ମାଂସ, ମେଦ, ଅସ୍ଥି, ମଜ୍ଜା, ଶୁକ୍ର ଓ ସତ୍ତ୍ୱ । ଶରୀରର ଅଠଗୋଟି ସାରର ଲକ୍ଷଣ ଓ ଫଳ ସ୍ୱତନ୍ତ୍ରରୂପେ ବର୍ଣ୍ଣିତ ହୋଇଅଛି । ଯେଉଁମାନେ ଏହି ସବୁ ସାରସମ୍ପନ୍ନ ସେମାନେ ବଳବାନ୍, ସର୍ବସୁଖାନ୍ୱିତ ଓ କ୍ଳେଶସହ ହୁଅନ୍ତି । ସେମାନେ ନିଜର ସାମର୍ଥ୍ୟ ଉପରେ ଖୁବ୍ ଆସ୍ଥାବାନ୍, ଦୃଢ଼ଶରୀର, ସଂଯତ ଓ ସୁସମାହିତଗାତ୍ର ହୁଅନ୍ତି । ସର୍ବସାରସମ୍ପନ୍ନ ବ୍ୟକ୍ତିଙ୍କ ସ୍ୱର ପ୍ରଭୂତକନକ, ସ୍ନିଗ୍ଧ, ଗମ୍ଭୀର ଓ ମହାନ୍ ହୁଏ ଓ ସେମାନେ ସୁଖୀ, ଐଶ୍ୱର୍ଯ୍ୟଶାଳୀ, ସମ୍ମାନଶାଳୀ ଓ ଧନୀ ହୁଅନ୍ତି । ସେମାନଙ୍କୁ ଜରା ଓ ରୋଗ ଅଳ୍ପ ଆକ୍ରମଣ କରେ । ସେମାନଙ୍କ ଅପତ୍ୟମାନେ ତୁଲ୍ୟଗୁଣାନ୍ୱିତ, ବହୁବିସ୍ତାରକାରୀ ଓ ଦୀର୍ଘଜୀବୀ ହୁଅନ୍ତି । ଯେଉଁମାନଙ୍କର ଶରୀରରେ ଏ ଅଠଗୋଟି ସାର ବିଦ୍ୟମାନ, ସେମାନଙ୍କୁ ସର୍ବସାର, ଯାହାଙ୍କର ଏଥି ମଧ୍ୟରୁ କେତେଗୋଟି ସାର ଥାଏ ସେମାନଙ୍କୁ ମଧ୍ୟସାର, ଯାହାଙ୍କର ଏ ସାରମାନଙ୍କ ମଧ୍ୟରୁ ଅଳ୍ପ କେତୋଟି ଥାଏ ସେମାନଙ୍କୁ ଅଳ୍ପସାର ଓ ଯାହାଙ୍କର ଏ ସବୁ ସାରର ଅଭାବ ଥାଏ ତାଙ୍କୁ ଅସାର କୁହାଯାଏ । ସର୍ବସାର ବ୍ୟକ୍ତି ଦୀର୍ଘାୟୁ ଓ ବଳିଷ୍ଠ, ମଧ୍ୟସାର ମଧ୍ୟବଳ ଓ ମଧ୍ୟାୟୁ ଓ ଅଳ୍ପସାର ଅଳ୍ପବଳ ଓ ଅଳ୍ପାୟୁ ହୁଅନ୍ତି ।

ଚକ୍ରସ୍ତମ୍ଭମାନେ ଚକ୍ରସ୍ଥାନରେ ସ୍ୱେଗୀର ଉକ୍ତ ସାରମାନ ପରୀକ୍ଷା କରି ସ୍ୱେଗୀର ବଳାବଳ ନିରୂପଣ କରିବେ—ବୈଦ୍ୟକୋଷ ।] ୪୨ । ଦୋଫସଲି ଜମି (ଗ୍ରା. ଶ)—42. A land growing more than one crop. ୪୩ । ଗୋଶାଳା (ଗ୍ରା. ଶ)—43. Cow-shed; cattle-pen. ୪୪ । ଦୁହିଁ ହେବାର ପର-କ୍ଷଣରେ ଅଉଟା ହୋଇଥିବା ଦୁଧ (ଗ୍ରା. ଶ)—44. Milk boiled just after it is drawn. ୪୫। ପରିଣାମ; ଫଳ (ଗ୍ରା. ଶ)—45. Result; outcome. ବିଣ—

୧ । ବର; ଶ୍ରେଷ୍ଠ; ଉତ୍କୃଷ୍ଟ—1. Excellent; pre-(ସାର—ସ୍ତ୍ରୀ) eminent. ୨ । ଅତି ଦୃଢ଼ (ଶବ୍ଦରତ୍ନାକର)—2. Very hard or strong. ୩ । ନାନାବର୍ଣ୍ଣ ବିଶିଷ୍ଟ—3. Variegated. ୪ । ବଳବାନ୍—4. Strong. ୫ । ସ୍ଥାୟୀ—5. Permanent. ୬ । ସାରଭୂତ; ଅସଲ—6. Essential. ୭ । ସଂକ୍ଷିପ୍ତ—7. Summarized; abridged. ୮ । ନ୍ୟାଯ୍ୟ (ମେଦିନୀ)—8. Right; just. ୯ । ସର୍ବୋତ୍ତମ—9. Best. ଦେ. ବି—୧ । ପ୍ରାଣ; ଜୀବନ—1. Life.

ସାব
**सार**
(ଉ—ମାର ରହିଛି ଶର ଶାଣି, ତାର ତ ଚରଣ ଅଛି ଜାଣି, ସାରକୁ ଯୋଜିବି ଛଣି । ଭକ୍ତସର୍ବସ୍ୱ (ସଙ୍ଗୀତ) । ୨ । ସାରୀ ପକ୍ଷୀ; ମଇନା—2. Myna bird. (ଉ—

সারী
**सारी**
ସୁଚୁରନ୍ତି ଅଣ୍ଟାରେ କଣ୍ଠ ଫେଡ଼ି, ଶୁଆ ନଖାକ୍ରାନ୍ତ ବକ୍ଷ, ଶ୍ୟାମା, ସାର, ଚକାଷୁଏ । ରାଧାନାଥ, ମହାଯାତ୍ରା ।)

সেট
**सेट**
୩ । ଅଲଙ୍କାର ଆଦିର ଏକ ସେଟ୍—3. A set(of ornaments etc.)[ଯଥା—ସେ ଝିଅକୁ ସୁନାର ସାରେ ଓ ରୁପାର ସାରେ ଅଲଙ୍କାର ଦେଇଛି; ଏକ ସାର (ସାତ ଖଣ୍ଡ) ଭୂଷାକୋଷର ମୂଲ୍ୟ ଦେଢ଼ଶତ ଟଙ୍କା ଅଟେ ।]

হাবাহাবী ୪ । ଅସମବାହୁକ କ୍ଷେତ୍ରର ଏକାଧିକ ସ୍ଥାନର ମାପମାନଙ୍କର
**सार, हाराहारी** ହାରାହାରି ପରିମାଣ—4. The mean of various measurements taken of an irregular field. [ଦ୍ର—ଏଥିର ସାଙ୍କେତିକ । ସା । ]

୫ । ବାହାରେ ଗଦା ହୋଇଥିବା ଚୂଳାଧାନ ଉପରେ
চিহ্ন, নাগ ଦିଆଯିବା ପାଉଁଶ ଚିହ୍ନ—5. Marks made with
**चिह्न** ashes on a heap of grain when left at an open place.

ସାରକ—ସଂ. ବିଣ (ସୃ ଧାତୁ ଣିଚ୍=ସାରି. ଧାତୁ+କର୍ତ୍ତ୍ରି. ଅକ)—
Sāraka ବିରେଚକ—Laxative; purgative. ବି—
(ସାରିକା—ସ୍ତ୍ରୀ) ୧ । ବିରେଚକ ଔଷଧ—1. A laxative; a purgative. ୨ । ଜୟପାଳ (ଶବ୍ଦକଳ୍ପଦ୍ରୁମ)—2. Croton seed.

ସାର କଥା—ଦେ. ବି—୧ । ସାରଗର୍ଭ କଥା—1. Substantial
Sāra kathā word. ୨ । ଶ୍ରେଷ୍ଠ ବିଷୟ—2. Essential
সাব কথা matter. ୩ । ସାର ମର୍ମ—3. Substance;
**सारबात** gist; summary. ୪ । କଥାର ଉଦ୍ଦେଶ୍ୟ—4. The motive or intention of a speech.

ସାର କମା—ଦେ. ବି. ସ୍ତ୍ରୀ—ଦେବୀ ବିଶେଷ—Name of a
Sāra kamā popular goddess. (ଉ—ଦୁର୍ଗା ସାରକମା ମାଉଳୀ ଉଲୋକମା । ପୀତାମ୍ବର ନୃସିଂହପୁରାଣ ।)

ସାର କରିବା—ଦେ. କ୍ରି—୧ । ଅସମବାହୁ କ୍ଷେତ୍ରର ଏକାଧିକ ସ୍ଥାନ ମାପି
Sāra karibā ଚଉଡ଼ିର ହାରାହାରି ନେବା—1. To
হাবাহাবি বাহিবকবা **सारलेना** take a mean of the measurements of a side of an irregular field. ୨ । ସାର କରିବା ( ଦେଖ )—2. Sāra karibā (See)

ସାର କୁଢ଼—ଦେ. ବି (ଫ ସାର ଓ କୁଢ଼)—ଖତକୁଢ଼; ଖତଗଦା—
Sāra kuṛdha A heap of cowdung; a hole
সাবকুঢ **खादकीजगह** where sweepings of the cowshed are deposited.

ସାରଖଦିର—ସ ବି—୧ । ଦୁଷ୍ଟ ଦର (ଶବ୍ଦକଳ୍ପଦ୍ରୁମ); ଦୁର୍ଗନ୍ଧ ଖଦିର—
Sārakhadira 1. A kind of catechu; a kind
ঝইয়াবাবলা **बबुरी** of foetid catechu. ୨ । ବିଟଖଦିର ( ବୃକ୍ଷ ); ଗନ୍ଧଗୁହାରିଆ ଗଛ—2. Acacia Farnesira (tree).

ସାରଗନ୍ଧ(ନ୍ଧି)—ସ. ବି (ବହୁବ୍ରୀହି; ସାର=ଶ୍ରେଷ୍ଠ ଅଟେ ଗନ୍ଧ ଯାହାର)·
Sāragandha(ndhi) ଚନ୍ଦନ—Sandal wood.

ସାରଗର୍ଭ—ସଂ. ବିଣ ( ବହୁବ୍ରୀହି; ସାର ଅଛି ଗର୍ଭରେ ଯାହାର )—
Sāragarbha ସାରଯୁକ୍ତ; ଯାହାର ଅଭ୍ୟନ୍ତରରେ ସାର ବା
ସାରଗର୍ଭକ } ଉତ୍କର୍ଷ ଅଛି—Substantial; containing
ସାରଗର୍ଭିତ } —ଅନ୍ୟରୂପ substance inside.

ସାରଗାର—ଦେ. ବିଣ—୧ । ଉତ୍କୃଷ୍ଟ—Excellent. ୨ । ସାରଯୁକ୍ତ-
Sāragāra সাবোবান **सार** 2. Substantial (ଉ—ସେ ଗଞ୍ଜନ ଭଞ୍ଜନ ସେ ପ୍ରଥମା ଗିରିଜା, ସାରଗାର ଗୁଣା ଅଠା କାଠିରେ ଲଗିଲ—ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।) ୩ । ମୀମାଂସିତ—3. Finally settled. (ଯଥା—ଅଳ୍ପ ଘଣ୍ଟା ଏଥରେ ଏ କଥା ସାରଗାର ହୋଇଗଲା ।) ବି—ଶେଷ ମୀମାଂସା—Final settlement. (ଯଥା—ଦିନ ଦିନ ହେଲା ବସି ବସି ଅମୁକ କଥାର ସାରଗାର ନ ହେଲା ।)

ସାରଗୁଡ଼—ଦେ. ବି (ଫ. ସାର+ଗୁଡ଼)—ମଣ୍ଡୁଣୀ; ଭଷଗ ଦୁର-
Sāra gurda ଭୁବାପାକ ଗାଢ଼ତର ଇକ୍ଷୁ ରସ;
চিটা গুড় সাব গুড় **सार गुड** ଚିଟା ଗୁଡ଼—Thickened molasses. [ଦ୍ର—ଏହା ଭେଦକ, ବଳକାରକ, ଲଘୁ, ମଧୁରରସ, ଶୁକ୍ରବର୍ଦ୍ଧକ; ପିତ୍ତ, ବାୟୁ ଓ ରକ୍ତଦୋଷନାଶକ ।]

**ସାରଗୁଣା**—ଦେ॰ ବି ( ସଂ॰ ସାରଙ୍ଗ )—୧ । ବାଦ୍ୟଯନ୍ତ୍ରବିଶେଷ; ସାରଙ୍ଗି ବାଜା—1. A kind of stringed musical instrument. ୨ । ଉତ୍କୃଷ୍ଟ ତାରମାନ—2. Fine wires. ୩ । ଉତ୍କୃଷ୍ଟ ଗୁଣ—3. Superior quality. ( ଉ—୨ ଓ ୩ ଅର୍ଥ—ବୁଦ୍ଧ ବୁଦ୍ଧ ଯହିଁ କଳ୍ପପ୍ରଯୁକ୍ତବିଶିଷ୍ଟ ସାରଗୁଣାହିଁ ବ୍ୟକ୍ତ—ଭଞ୍ଜ ୪ । (ପୁଂ॰) (ସଂ ଶକୁନ )—ଶାଗୁଣା; ଗୃଧ୍ର—4. Vulture.
Sāraguṇā
सारङ्गि गुना
शकुन गीध
(ସାରଗୁଣୀ—ସ୍ତ୍ରୀ)

**ସାରଗୋ**—ଦେ ବି—ଓଡ଼ିଶା ଉପକୂଳର ପ୍ରାଚୀନ ବନ୍ଦରବିଶେଷ— ( ଜଗବନ୍ଧୁ ପ୍ରାଚୀନ ଉତ୍କଳ )—Name of an ancient seaport of Orissa.
Sārago

**ସାରଗ୍ରାହୀ**—ସଂ॰ ବିଣ ( ସାରଗ୍ରାହିନ୍ ଶବ୍ଦ; ସାର+ଗ୍ରହ୍ ଧାତୁ =ଗ୍ରହଣ କରିବା+କର୍ତ୍ତ୍ରି ଇନ୍; ୧ମା; ୧ବ )—ଯେ ସାର ଗ୍ରହଣ କରେ; ସାର ଗ୍ରହଣ କର୍ତ୍ତା—One who appreciates the or accepts inner worth of a matter.
Sāra grāhī
( ସାରଗ୍ରାହିଣୀ—ସ୍ତ୍ରୀ )
ସାରଗ୍ରାହିତା } —ବି
ସାରଗ୍ରାହିତ୍ୱ }

**ସାରଘ(ଘ୍ୟ)**—ସଂ॰ ବି (ସରଘା=ମହୁମାଛି+କୃତାର୍ଥେ, ଅ; ଯ)—ମଧୁ; ମହୁ (ଜଟାଧର )—Honey. [ ଦ୍ର—ମଧୁମକ୍ଷିକା ନାନାବିଧ ପୁଷ୍ପରୁ ସଂଗ୍ରହ କରିବା ମଧୁକୁ ସାରଘ ମଧୁ ବୋଲାଯାଏ । ବୈଦ୍ୟକ ମତରେ ଏହା ଅତି ଲଘୁ, ରୁକ୍ଷ, ନାତିଶୀତଳ, ପାଚକ, ବଳକର ଓ କାସ, ଯକ୍ଷ୍ମାରୋଗ, କାମଳ, ଅର୍ଶଃ, ଅତିସାର, ନେତ୍ରରୋଗ, କ୍ଷତ ଓ କ୍ଷତଜ ରୋଗରେ ହିତକର—ବିଶ୍ୱକୋଷ] ।
Sāragha(ghya)

**ସାର ଘାଟି**—ଦେ॰ ବି—୧ । ପାର ହେବାପାଇଁ ବିଷମ ସ୍ଥାନ; ସଙ୍କଟ—1. A very dangerous place for crossing. ୨ । ବିଷମ ବା ଜଟିଳ ସମସ୍ୟା—2. Crisis; dilemma.
Sāra ghāṭi
বিষম ঘাটি
बिषम सङ्कट

**ସାରଙ୍ଗ୍**—ଦେ॰ ବି—ସାରଙ୍ଗୀ ( ଦେଖ )
Sāraṅ
Sāraṅgi ( See )

**ସାରଙ୍ଗ୍**—ବୈଦେ, ବି (ଫା॰ ସର୍‌ହଙ୍ଗ୍)—୧ । ନୌକାର ନାବିକମାନଙ୍କ ଅଧ୍ୟକ୍ଷ—1. The head sailor. ୨ । ନୌକାର ଚାଳକ—2. The guide of a boat. ୩ । ବୋଟର କାପ୍ତାନ—3. The captain of a boat.
Sāraṅg
সারেঙ্গ
सारेङ्ग

**ସାରଙ୍ଗ**—ସଂ, ବି ( ସୃ ଧାତୁ=ଗତି କରିବା+କର୍ତ୍ତ୍ରି, ଅଙ୍ଗ )—୧ । ଚାତକ ପକ୍ଷୀ (ଅମର)—1. Coccyster. ୨ । ହରିଣ; ମୃଗ (ମେଦିନୀ)—2. Dear. ୩ । ହସ୍ତୀ; ମତଙ୍ଗଜ (ମେଦିନୀ)—3. Elephant. ୪ । ଭୃଙ୍ଗ; ଭ୍ରମର (ହ୍ର. ଶ)—4. The black bee. ୫ । ଛତ୍ର; ଛତା (ଶବ୍ଦ ରତ୍ନାବଳୀ)—5. Umbrella. ୬। ରାଜହଂସ (ଶବ୍ଦ ରତ୍ନାବଳୀ)—6. Swan. ୭ । ଚିତ୍ର ମୃଗ (ଶବ୍ଦ ରତ୍ନାବଳୀ)—7. Spotted deer. ୮ । ବାଦ୍ୟ ଯନ୍ତ୍ର ବିଶେଷ; ସାରଙ୍ଗୀ (ଶବ୍ଦ ରତ୍ନାବଳୀ)—8. A kind of stringed musical instrument. ୯ । ଅଂଶୁକ (ରତ୍ନାବଳୀ)—9. Thin cloth. ୧୦। ନାନା ବର୍ଣ୍ଣ (ଅନେକାର୍ଥ କୋଷ)—10. Varied colour. ୧୧ । ମୟୂର (ଅନେକାର୍ଥ କୋଷ)—11. Peacock. ୧୨ । କାମଦେବ (ଅନେକାର୍ଥ କୋଷ)—12. Cupid. ୧୩ । ଧନୁ (ଅନେକାର୍ଥ କୋଷ)—13. Bow. ୧୪ । କେଶ (ଅନେକାର୍ଥ କୋଷ)—14. Hair. ୧୫ । ସ୍ୱର୍ଗ (ଅନେକାର୍ଥ କୋଷ)—15. Heaven. ୧୬। ଆଭରଣ; ଅଳଙ୍କାର (ଅନେକାର୍ଥ କୋଷ)—16. Ornaments. ୧୭ । ପଦ୍ମ (ଅନେକାର୍ଥ କୋଷ)—17. Lotus. ୧୮ । ଶଙ୍ଖ ( ଅନେକାର୍ଥ କୋଷ )—18. Conch. ୧୯ । ଚନ୍ଦନ ( ଅନେକାର୍ଥ କୋଷ )—19. Sandal. ୨୦ । କର୍ପୂର ( ଅନେକାର୍ଥ କୋଷ )—20 Camphor. ୨୧ । ପୁଷ୍ପ; ଫୁଲ (ଅନେକାର୍ଥ କୋଷ)—21. Flower. ୨୨ । କୋକିଳ (ଅନେକାର୍ଥ କୋଷ)—22. Cuckoo. ୨୩ । ମେଘ ( ଅନେକାର୍ଥ କୋଷ )—23. Cloud. ୨୪ । ପୃଥିବୀ; ଭୂମି ( ଅନେକାର୍ଥ କୋଷ )—24. The earth. ୨୫ । ରାତ୍ରି ( ଅନେକାର୍ଥ କୋଷ )—25. Night. ୨୬ । ଦୀପ୍ତି ( ଅନେକାର୍ଥ କୋଷ )—26. Lustre. ୨୭ । ମଣି ( ଅନେକାର୍ଥ କୋଷ )—27. Gem. ୨୮ । ସିଂହ ( ଅନେକାର୍ଥ କୋଷ )—28. Lion. ୨୯ । ସ୍ୱର୍ଣ୍ଣ ( ଅନେକାର୍ଥ କୋଷ )—29. Gold. ୩୦ । ପରିଚ୍ଛଦ (ଅନେକାର୍ଥ କୋଷ)—30. Dress. ୩୧ । ଚନ୍ଦ୍ର—31. The moon. ୩୨ । ଖଞ୍ଜନ ପକ୍ଷୀ; ଭୃଙ୍ଗ—32. Wagtail. ୩୩ । ରକ୍ତ କଇଁ—33. Red lily. ୩୪ । ଶ୍ୟେନ; ବାଜ ପକ୍ଷୀ ( ହ୍ର॰ ଶ )—34. Hawk. ୩୫ । ସୂର୍ଯ୍ୟ ( ହ୍ର. ଶ )—35. The sun. ୩୬ । ସର; ଜଳାଶୟ ( ହ୍ର. ଶ )—36. Tank. ୩୭ । ଏକପ୍ରକାର ମହୁମାଛି (ହ୍ର॰ ଶ)—37. A species of bees. ୩୮ । ବିଷ୍ଣୁଙ୍କ ଧନୁ ( ହ୍ର॰ଶ )—38. Name of Bishṇu's bow. ୩୯ । ଲାବ ପକ୍ଷୀ ( ହ୍ର॰ ଶ )—39. The grey quail bird. ୪୦ । ଶ୍ରୀକୃଷ୍ଣଙ୍କ ଏକ ନାମ ( ହ୍ର. ଶ )—40. A name of Śrikṛushṇa. ୪୧ । ସମୁଦ୍ର (ହ୍ର. ଶ)—41. The sea. ୪୨ । ଜଳ (ହ୍ର. ଶ)—42. Water. ୪୩ । ବାଣ; ଶର ( ହ୍ର. ଶ )—43. Arrow. ୪୪ । ଦୀପକ (ହ୍ର॰ ଶ)—44. Lamp. ୪୫ । ଶିବ ( ହ୍ର. ଶ )—45. Śiba. ୪୬ । ସୁଗନ୍ଧିତ ଦ୍ରବ୍ୟ ( ହ୍ର. ଶ )—46. Scented article. ୪୭ ।
Sāraṅga

ସର୍ପ ( ହ୍ର. ଶ )—47. Serpent. ୪୮ । ସ୍ତ୍ରୀ; ନାରୀ ( ହ୍ର. ଶ )—48. Woman. ୪୯ । ଦିନ (ହ୍ର. ଶ)—49. Day. ୫୦ । ଖଡ୍ଗ ( ହ୍ର. ଶ )—50. Sword. ୫୧ । କପୋତ ( ହ୍ର. ଶ )—51. Dove. ୫୨ । ଛନ୍ଦୋବିଶେଷ ( ହ୍ର. ଶ )—52. Name of a metre. [ ଦ୍ର—ଏଥିରେ ଗୁରୁଟି ତଗଣ ଥାଏ; ଏହାର ଅନ୍ୟ ନାମ ମୌକ୍ତିକାବଳୀ ( ହ୍ର. ଶ ) । ଏହି ଛନ୍ଦର ପ୍ରତି ଚରଣରେ ୨୨ଟି ଅକ୍ଷର । ୧ମ, ୨ୟ, ୪ର୍ଥ, ୬ଷ୍ଠ, ୭ମ, ୮ମ, ୧୦ମ ଓ ୧୧ଶ ବର୍ଣ୍ଣ ଗୁରୁ । ଅନ୍ୟ ବର୍ଣ୍ଣମାନେ ଲଘୁ—ଛନ୍ଦକୋଷ] ୫୩ । କୁଚ; ସ୍ତନ (ହ୍ର. ଶ)—53. Female breast. ୫୪ । ହାତ (ହ୍ର. ଶ)—54. Hand. ୫୫ । ବାୟସ (ହ୍ର. ଶ)—55. The crow. ୫୬ । ହଳ (ହ୍ର.ଶ)—56. Plough. ୫୭ । ଗ୍ରହ; ନକ୍ଷତ୍ର ( ହ୍ର. ଶ )—57. Heavenly luminary. ୫୮ । ବେଙ୍ଗ ( ହ୍ର. ଶ )—58. Frog. ୫୯ । ଗଗନ; ଆକାଶ ( ହ୍ର. ଶ )—59. The sky. ୬୦ । ବସ୍ତ୍ର (ହ୍ର.ଶ)—60. Cloth. ୬୧ । ପକ୍ଷୀ ( ହ୍ର. ଶ )—61. Bird. ୬୨ । ଈଶ୍ୱର ( ହ୍ର. ଶ )—62. God. ୬୩ । କଜ୍ଜ୍ୱଳ ( ହ୍ର. ଶ )—63. Collyrium. ୬୪ । ବିଦ୍ୟୁତ୍; ବିଜୁଳି—64. Lightning. ୬୫ । ଏକ ରାଗ—6‑. Name of a musical mode. [ ଦ୍ର—ଏଥିରେ ସବୁ ସ୍ୱର ଶୁଦ୍ଧ । କେହି କେହି ଏହାକୁ ମେଘ ରାଗର ସହଚର କହନ୍ତି । କେହି କେହି ଏହାକୁ ମଲ୍ଲାର ଓ ଦେବଗିରି ରାଗଦ୍ୱୟର ସଂଯୋଗରେ ଉତ୍ପନ୍ନ ସଙ୍କର ରାଗ କହନ୍ତି—ହ୍ର. ଶ । ] ବିଣ—୧ । (ସାର+ଅଙ୍ଗ) ନାନାବର୍ଣ୍ଣବିଶିଷ୍ଟ; ଶବଳ—1. 'Multi‑coloured, variegated. ୨ । ରଞ୍ଜିତ ( ହ୍ର ଶ )—2. Coloured. ୩ । ସୁନ୍ଦର ( ହ୍ର. ଶ )—3. Beautiful. ଦେ. ବି—୧ । ଶାରଙ୍ଗ ( ଦେଖ )—1. Sārang ( See ) ୨ । ରତିକ୍ରୀଡ଼ା—2. Copulation. ( ଦ୍ର—ସାରଙ୍ଗ [ ପଦ୍ମ ] ମୁଖୀ ସାରଙ୍ଗ [ ଶ୍ରୀକୃଷ୍ଣ ] ସାରଙ୍ଗ [ ରତିକ୍ରୀଡ଼ା ]ରେ ମାତିଲେ—ସଙ୍ଗୀତ । )

**ସାରଙ୍ଗ କେଶରୀ**—ଦେ. ବି (ନାମ)—ସାରଙ୍ଗଗଡ଼ର କର୍ମିତା ଉତ୍କଳର ଜଣେ ରାଜା—Name a Raja of Orissa.
Sāranga kesarī

**ସାରଙ୍ଗ ଗଡ଼**—ଦେ. ବି ( ନାମ )—ଓଡ଼ିଶାର ପ୍ରାଚୀନ ଦୁର୍ଗବିଶେଷ—Name of an ancient fort of Orissa. [ ଦ୍ର—ସାରଙ୍ଗ କେଶରୀ କଟକର ଦକ୍ଷିଣରେ ( ବର୍ତ୍ତମାନ ପଟିଆବାଲ୍ଲାରେ ) ସାରଙ୍ଗ ଗଡ଼ ନାମକ ଏକ ଦୁର୍ଗ ନିର୍ମାଣ କରିଥିଲେ—କୃପାସିନ୍ଧୁ. ଇତିହାସ । ]
Sāranga garda

**ସାରଙ୍ଗଧର**—ସ. ବି. ପୁଂ ( ଉପପଦ ତତ୍ପୁରୁଷ )—୧ । ଧନୁର୍ଦ୍ଧର—1. Archer; bowman. ୨ । ବିଷ୍ଣୁ—2. Bishnu. ଦେ. ବି—ପୁରୁଷ ଲୋକଙ୍କୁ ଦିଆଯିବା ନାମ—A name given to males.
Sārangadhara
[ ସାରଙ୍ଗପାଣି—ଅନ୍ୟରୂପ ]

**ସାରଙ୍ଗନାଥ**—ସ. ବି ( ନାମ )—ସାରନାଥ ( ହ୍ର. ଶ ) ( ଦେଖ ) Sāranāth ( See )
Sāranganātha

**ସାରଙ୍ଗମୁଖୀ**—ସ. ବିଣ. ସ୍ତ୍ରୀ—ପଦ୍ମମୁଖୀ; ସୁନ୍ଦର ମୁଖବିଶିଷ୍ଟା [ ସ୍ତ୍ରୀ ]—( a woman ) Having a beautiful face.
Sārangamukhī

**ସାରଙ୍ଗ ନୟନା**(ଲୋଚନା, ନେତ୍ରା, ନେତ୍ରୀ)—ସ. ବିଣ. ସ୍ତ୍ରୀ (ବହୁବ୍ରୀହି)—ଏଣୀନୟନା [ ସ୍ତ୍ରୀ ]—( woman ) Having the eyes as graceful as that of deer.
Sāranga nayanā(lochanā, netrā, netrī)

**ସାରଙ୍ଗ ରଦ**—ସ. ବି—ହସ୍ତି ଦନ୍ତ—Ivory. [ ଦ୍ର—ସାରଙ୍ଗରଦ ପଲଙ୍କେ, ସାରଙ୍ଗ ପଙ୍କିଳ ଅଙ୍କେ, ସାରଙ୍ଗମୁଖୀ ସାରଙ୍ଗ ସାରଙ୍ଗରେ ମାତିଲେ—ସଙ୍ଗୀତ । ]
Sāranga rada

**ସାରଙ୍ଗିଆ**—ଦେ. ବି. ପୁଂ—ସାରଙ୍ଗୀ ଯନ୍ତ୍ର ବାଦନକାରୀ—A musician playing on the Sārangi.
Sārangiā
ସାରଙ୍ଗୀ ବଜାଇଏ ସାରংগিয়া

**ସାରଙ୍ଗିକ**—ସ. ବି ( ସାରଙ୍ଗ=ମୃଗ+ଇତ୍ୟାକାରୀ ଅର୍ଥରେ ଇକ )—ବ୍ୟାଧ ( ଶିକାରୀ ଚୌମ୍ବୁଗ୍ରା )—A hunter.
Sārangika

**ସାରଙ୍ଗୀ**—ସ. ବି. ସ୍ତ୍ରୀ ( ସାରଙ୍ଗ+ଈ; ଏହା ଧନୁକାକାର ଥିବାରୁ )—ବାଦ୍ୟଯନ୍ତ୍ରବିଶେଷ—A sort of iron‑and brass‑stringed fiddle; hurdy gurdy. [ ଦ୍ର—ଏ ବାଦ୍ୟଯନ୍ତ୍ର ବହୁ ପ୍ରାଚୀନକାଳରୁ ଭାରତରେ ଚଳି ଆସୁଅଛି । ଏହାର ଦୈର୍ଘ୍ୟ ପ୍ରାୟ ୧½ ହାତ । ଏଥିର ଧ୍ୱନିକୋଷ ଓ ଦଣ୍ଡ ଖଣ୍ଡିଏ କାଠରେ ତିଆରି । ଧ୍ୱନିକୋଷ ଉପରେ ଚମଡ଼ା ଛାଉଣି ହୋଇଥାଏ ଓ ଦଣ୍ଡରେ ପରଦାମାନ ଥାଏ । ଦଣ୍ଡର ଊର୍ଦ୍ଧ୍ୱଭାଗରେ ଉଭୟ ପାର୍ଶ୍ୱରେ ଦୁଇଟି ଲେଖାଏଁ ୪ ଗୋଟି ଖୋଲକରେ ୪ ଗୋଟି ଲୌହ ତାର ଲଗା ହୋଇଥାଏ ଓ ପାର୍ଶ୍ୱସ୍ଥ ଗୁଡ଼ାଏ ଖୋଲକରେ ଗୁଡ଼ାଏ ପିତ୍ତଳର ତାର (ପାର୍ଶ୍ୱତନ୍ତ୍ରିକା) ଲାଗିଥାଏ । ଏହା ଘୋଡ଼ା ବାଳର କମାଣି ( ଧନୁ ) ସାହାଯ୍ୟରେ ବାଦିତ ହୁଏ । ବାଦକ ଡାହାଣ ହାତରେ କମାଣିକୁ ତାରମାନଙ୍କ ଉପରେ ଘଷନ୍ତି ଓ ବାଆଁ ହାତକୁ ମୁଠାକରି ଆଙ୍ଗୁଠିମାନଙ୍କୁ ପରଦାମାନଙ୍କ ପୃଷ୍ଠରେ ତାରମାନଙ୍କରେ ଚଳାନ୍ତି । ଏ ବାଦ୍ୟର ସ୍ୱର ଅତି ମଧୁର । ଏହା ଗାନ ବ୍ୟବସାୟୀମାନେ ବହୁଳଭାବେ ବ୍ୟବହାର କରନ୍ତି । ହ୍ର. ଶ; ବିଶ୍ୱକୋଷ ।] ଦେ. ବି—ଏକ ପ୍ରକାର ଗଡ଼ଜାତ ସରୁ ଲମ୍ବା ବାଉଁଶ—Dendrocalamus Strictus (Kirtikar); a kind of long and slender bamboo.
Sārangi
ସାরেঙ্গ
সারঙ্গী

**ସାର ଚଳା(ଲେ)ଇବା**—ଦେ. କ୍ରି—ପଶା ଖେଳର ଘରରେ ଗୋଟିକୁ ଦାନ ପଡ଼ିବା ଅନୁସାରେ ଚଳାଇବା (ସାର ଗୁଳିବା—ଅନ୍ୟରୂପ) ଗୁଳିତ କରିବା—To move the dice balls according to the turns of the dice.
Sāra chalā(le)ibā
গুটিচালান, গুটিচালা
गोटीचलाना

**ସାରଜ**—ସଂ. ବ (ସାର=ଦଧି ଓ ଦୁଗ୍ଧାଦିର ସାର+ଜନ୍. ଧାତୁ+କର୍ତ୍ତୃ. ଅ)—ନବନୀତ; ଲହୁଣୀ (ଶବ୍ଦଚନ୍ଦ୍ରିକା)—Butter. ବୈଦେ. ବ (ଇଂ. ସର୍ଜ୍)—ଏକ ପ୍ରକାର ପଶମୀ ମୋଟାଲୁଗା—Serge; a kind of woolen cloth.
Sāraja
সাবজ
সারজ

**ସାରଜାସବ**—ସଂ. ବ—ଶାଳ ଚନ୍ଦନାଦି ସାତେଇଶ୍ ବଂଶଜ ପ୍ରକାରର ଅସବ—Twenty kinds of spirits (wine) distilled from Shorea Robusta and other plants. [ଦ୍ର—ଶାଳ, ପ୍ରିୟଙ୍ଗୁ, ରକ୍ତ-ଚନ୍ଦନ, ଚନ୍ଦନ, ଖଦିର, ଶ୍ୱେତଖଦିର, ଛନ୍ଦଅଳା, ଅଶ୍ୱ-କର୍ଣ୍ଣ, ଅର୍ଜ୍ଜୁନ, ଅସନ, ବିଟ୍‌ଖଦିର, ଚନ୍ଦ୍ରକ, କଳସି (ଅପାମାର୍ଗ), ଶମୀ, କରକୋଳ, ଶଂଶପା, ଶିଶୁପ, ଅଶୋକ, ଧନ୍ୱନ ଓ ମହୁଲ, ଏହି ୨୦ ପ୍ରକାର କାଷ୍ଠର ସାରରୁ ଏହା ପ୍ରସ୍ତୁତ । ଏହା ମଳର, ଶରୀରର ଓ ଅଗ୍ନିର ବଳପ୍ରଦ ଓ ଅନିଦ୍ରା, ଶୋକ ଓ ଅରୁଚିନାଶକ ଏବଂ ଆନନ୍ଦ ଉତ୍ପାଦକ—ବିଶ୍ୱକୋଷ, ଚରକ ।]
Sārajāsaba

**ସାରଟ**—ସଂ. ବ (ସରଟ+ସ୍ୱାର୍ଥେ ଅ)—୧ । ବହୁରୂପୀ ଏଣ୍ଡୁଅ—1. Chameleon. ୨ । ଗୋଧି—2. Varanus Salvator.
Sārata

**ସାରଣ**—ସଂ. ବ (ସୃ. ଧାତୁ=ଗତି କରିବା. ଣିଚ୍ ସାର. ଧାତୁ=ଚଳାଇବା+ଭାବ. ଅନ)—୧ । ଗମନ—1. Moving. ୨ । ଅପସାରଣ—2. Removing. ୩ । ସୁଧାରିବା; ଦୋଷ ଶୁଦ୍ଧି—3. Setting right. ୪ । ଅତିସାର ରୋଗ (ହେମଚନ୍ଦ୍ର)—4. Dysentery. ୫ । ଗନ୍ଧଭେଦ (ଧରଣୀ)—5. A kind of scent. ୬ । ଭଦ୍ରବଲା (ଧରଣୀ)—6. A kind of herbarious plant. ୭ । ଆମ୍ରାତକ; ଅମ୍ବଡ଼ା (ଶବ୍ଦଚନ୍ଦ୍ରିକା)—7. Hogplum. ୮ । ରାବଣଙ୍କର ମନ୍ତ୍ରି-ବିଶେଷ—8. Name of a minister of 'Rābana'. [ଦ୍ର—ରାବଣଙ୍କ ଅନ୍ୟ ମନ୍ତ୍ରୀର ନାମ ଶୁକ । ସାରଣ ରାବଣଙ୍କ ଆଦେଶରେ ଛଦ୍ମବେଶରେ ରାମଚନ୍ଦ୍ରଙ୍କ ସୈନ୍ୟ-ବଳ କଳନା କରିବାକୁ ରାମଚନ୍ଦ୍ରଙ୍କ ଶିବିରରେ ପ୍ରବେଶ କରିଥିଲେ; ବିଭୀଷଣ ଏହାଙ୍କୁ ଚିହ୍ନି ରାମଚନ୍ଦ୍ରଙ୍କ ସମ୍ମୁଖରେ ପହଞ୍ଚାଇଲେ; କିନ୍ତୁ ରାମଚନ୍ଦ୍ର ଏହାଙ୍କ ପ୍ରତି ସଦ୍‌ବ୍ୟବହାର କରି ଛାଡ଼ି ଦେଲେ ।] ୯ । ପସାରୁଣୀ ଲତା (ବିଶ୍ୱକୋଷ)—9. Paederia Foetida (creeper) ଦେ. ବ—ବିହାର ପ୍ରଦେଶର ଗୋଟିଏ ଜିଲ୍ଲା—Name of a district of Bihar. ଗ୍ରା. ବ—ସ୍ତ୍ରୀ ଲୋକମାନେ ସ୍ୱାମୀ ବା ଗୁରୁଜନମାନଙ୍କ ନାମ କାରଣ (ନାରାୟଣ) ହୋଇଥିଲେ ସେ ନାମ ନ କହି ତତ୍-ପରିବର୍ତ୍ତେ ବ୍ୟବହାର କରିବା ନାମ—A variation of the name by which a woman (the nickname of whose husband or elder is Nārana) calls a person nicknamed 'Nārana'. [ଦ୍ର—ଏହିପରି ସ୍ୱାମୀ ବା ଗୁରୁଜନମାନଙ୍କ ନାମ ନ ଧରି ସ୍ତ୍ରୀଲୋକମାନେ ଭିକାରୀ ପରିବର୍ତ୍ତରେ ଶିକାରୀ, ଗୋପାଳ ପରିବର୍ତ୍ତରେ ନୋପାଳ, ଗୋପୀନାଥ ପରିବର୍ତ୍ତରେ ନୋପୀନାଥ ଆଦି ବ୍ୟବହାର କରନ୍ତି ।]
Sārana

**ସାରଣ ଗଡ଼**—ଦେ. ବ—ପୂର୍ବ ଗଡ଼ଜାତ ରାଜ୍ୟପୁଞ୍ଜର ଗୋଟିଏ ରାଜ୍ୟ—Sarangarh, a State in the Eastern States Agency. [ଦ୍ର—ପୂର୍ବେ ଏହା ସମ୍ବଲପୁର ରାଜାଙ୍କ ଅଧୀନ ଗୋଟିଏ ଗଡ଼ଜାତ ଥିଲା । ଏହି ରାଜ୍ୟାଧିପତିମାନେ ଗଣ୍ଡ ଜାତୀୟ । ମହାନଦୀ ଏ ରାଜ୍ୟ ମଧ୍ୟରେ ୫୦ ମାଇଲ ପର୍ଯ୍ୟନ୍ତ ପ୍ରବାହିତ । ଏହି ରାଜ୍ୟର ସମ୍ଲେଶ୍ୱରୀ ମନ୍ଦିର ଦର୍ଶନ ଯୋଗ୍ୟ—ବିଶ୍ୱକୋଷ]
Sārana garda

**ସାରଣା**—ଦେ. ବ—୧ । ଧନବ୍ୟୟ—1. Spending of money. ୨ । ବନ୍ଦୋବସ୍ତ; ଠିକଣା; ସଂସ୍ଥାନ—2. Arrangement, settlement.
Sāranā
খবচ, খরচা; ଖରଚ ব্যবস্থা ପ୍ରବନ୍ଧ

**ସାରଣି**—ସଂ. ବ, ସ୍ତ୍ରୀ—(ସୃ. ଧାତୁ ଣିଜନ୍ତ=ସାରଧାତୁ+କର୍ତ୍ତୃ.ଅନି)—୧ । କ୍ଷୁଦ୍ର ନଦୀ (ଜଟାଧର କୋଷ)—1. Rivulet. ୨ । ପ୍ରସାରଣୀ ଲତା; ପସାରୁଣୀ ଲତା—2, Paederia Foetida (creeper); Muncuna Monosperme (Haines). ୩ । ପୁନର୍ନବା (ବୈଦ୍ୟକ ଜଟାଧର)—3. Hog-weed. ଦେ. ବ—ଏକପ୍ରକାର ଖେଳନା—A kind of toy.
Sārani
ଲାଟୁ
ଲଟ୍ଟୁ

**ସାରଣିକ**—ସଂ. ବ. ପୁଂ (ସରଣି+ଇକ)—ପଥିକ—Wayfarer.
Sāranika [ସାରଣିକା—ସ୍ତ୍ରୀ]

**ସାରଣିକଘ୍ନ**—ସଂ. ବ (ସାରଣିକ+ହନ୍ ଧାତୁ+କର୍ତ୍ତୃ. ଅ)—ବାଟ-ମାରଣା; ବାଟପାଡ଼ି; ଯେଉଁ ଦସ୍ୟୁ ପଥିକ-ମାନଙ୍କର ସର୍ବସ୍ୱ ଲୁଟି କରେ—A highwayman; a dacoit who robs travellers.
Saranikaghna

**ସାରଣୀ**—ସଂ. ବ. ସ୍ତ୍ରୀ (ସୃ ଧାତୁ+କର୍ତ୍ତୃ. ଅନ+ଈ)—୧ । କ୍ଷୁଦ୍ର ନଦୀ (ମେଦିନୀ)—1. Rivulet; streamlet. ୨ । ପ୍ରସାରିଣୀ; ପସାରୁଣୀ ଲତା (ମେଦିନୀ)—2. Paederia Foetida. ଦେ. ବ—ଏକପ୍ରକାର ଖେଳନା—A kind of toy rattle. [ଦ୍ର—ପୁଞ୍ଜିକଥୁଲି ଅପସର । ସାରଣୀ ଯେନ ଖେଳୁଥିଲ—ଜଗ-ନ୍ନାଥ. ଭାଗବତ ।] [ଦ୍ର—ନଡ଼ିଆ ବା ବେଲ ଭିତରୁ ଶସ କାଢ଼ି ଭିତ୍ତି ଫମ୍ପା ଖୋଳ ମଧ୍ୟରେ କ୍ୟାସରୁଷେ ଗୋଟିଏ କାଠି ଗଳାଇ କାଠିରେ ଦଉଡ଼ି ଗୁଡ଼ାଇ ସେ ଦଉଡ଼ିକୁ ଟାଣିଥାଣି ଛାଡ଼ି ଦେଲେ ଘର୍ ଘର୍ ଶବ୍ଦ କରେ ।]
Sārani
ଲାଟୁ
ଲଟ୍ଟୁ

**ସାରଣୀ ଗ୍ରନ୍ଥ**—ସ. ବ (ନାମ)—ଏକପ୍ରକାର ହିନ୍ଦୁ ଜ୍ୟୋତିଷ ଶାସ୍ତ୍ର—A treatise on Hindu astrology by the help of which calender is compiled. [ଦ୍ର—ଏଥିର ସାହାଯ୍ୟରେ ପାଞ୍ଜିର ଗଣନା ହୁଏ ।]
Sārani grantha

ସାରଣ୍ଡ—ସଂ. ବ ( ସୃ ଧାତୁ ଣିଚ୍, ସାର୍ ଧାତୁ+କର୍ମ, ଅଣ୍ଡ )—
Saranda ସର୍ପାଣ୍ଡ ( ଜନ୍ତୁଧର )—
The egg of a serpent.

ସାରଣ୍ଡା—ଦ. ବ—ସୁବର୍ଣ୍ଣପୁର ନିକଟସ୍ଥ ପାହାଡ଼ବିଶେଷ—Name of a
Sārandā hillock near Subarnapur (in Banki).
[ଦ୍ର—ଏ ପର୍ବତର ମୂଳରେ ଅଂଶୁପା କୁଦ ଅବସ୍ଥିତ । ]

ସାର ତରୁ—ସଂ.ବ (ଏହା ବୃକ୍ଷର ଭିତରଭାଗ ବୃଦ୍ଧି କରିବାରୁ; ଅଥବା ସାର
Sāra taru =ଜଳ ପ୍ରଧାନ ତରୁ; ସ. ଷ. ତତ୍ପୁ)—୧ । କଦଳୀ
ବୃକ୍ଷ ( ଅମରକୋଷ )—1. Banana tree. ୨ । ଖଇର
( ବୈଦ୍ୟକ ଶବ୍ଦସିନ୍ଧୁ )—2. Acacia Catechu
( tree ).

ସାରତ(ଥ)—ଗ୍ରା. ବ ( ନାମ ) ପୁଂ—ଲୋକଙ୍କ ନାମ—
Sārata(tha) A name given to males.

ସାରଥକ—ଗ୍ରା. ବଣ ( ସଂ ସାର୍ଥକ )—ସାର୍ଥକ ( ଦେଖ )—
Sārathaka Sārthaka ( See )

ସାରଥା—ଦେ. ବ ( ନାମ )—ବାଲେଶ୍ୱର ଜିଲ୍ଲାରେ ବାଲେଶ୍ୱରର
Sārathā ଉତ୍ତରରେ ପ୍ରବାହିତ ସମୁଦ୍ରଗାମିନୀ ନଦୀ ଓ ତାହାର
সাবথা[ঠা] ତଟକୂଳସ୍ଥ ବନ୍ଦର—Name of small river
सारथा and a port on it in the district of
Balasore. [ ଦ୍ର—ଏହି ବନ୍ଦର ଅକ୍ଷାଂଶ ୨୧° ।
୩୦'।୩୦" ଉତ୍ତର ଓ ଦ୍ରାଘିମା ୮୭°।୮'।୧୬" ପୂର୍ବରେ
ଅବସ୍ଥିତ ।

ଏହି ନଦୀରେ ନଳଡାଗଡ଼ ଗ୍ରାମ ପର୍ଯ୍ୟନ୍ତ ପଣ୍ୟ-
ବାହୀ ନୌକାମାନ ଗମନାଗମନ କରନ୍ତି । ଏହି ବନ୍ଦରରେ
ନୌକାଦ୍ୱାରା ପ୍ରଭୂତ ଚାଉଳ ବ୍ୟବସାୟ ଚଳେ । ଏଥି
ନିକଟରେ ବହୁଆ ନାମରେ ଆଉ ଗୋଟିଏ ବନ୍ଦର ଅଛି—
ବିଶ୍ୱକୋଷ । ]

ସାରଥି—ସଂ. ବ ( ସୃ ଧାତୁ ଣିଚ୍ ସାର ଧାତୁ=ଚଳାଇବା+କର୍ତ୍ତ୍ତୃ.
Sarathi ଅଥି, ଅଥବା ସ+ରଥ=ସରଥ=
[ ପ୍ରଥମ ଅର୍ଥରେ ଏ ଶବ୍ଦର ଅଶ୍ୱ+ପ୍ରେରଣାର୍ଥେ. ଇ )—୧ ।
ଅନ୍ୟ ସଂ ନାମ—ନିୟନ୍ତା, ରଥଚାଳକ; କୋଚ୍ୱାନ—1. A
ପ୍ରାଜିତା, ସୂତ, କ୍ଷତ୍ତା, ଯନ୍ତା, coachman; a charioteer;
ସବ୍ୟେଷ୍ଠା, ଦକ୍ଷିଣସ୍ଥ, ରଥ- cardriver. ୨ । ସହାୟକ—
କୁଟୁମ୍ବୀ, ନିୟାମକ, ଗୁରୁରକ, 2. Helper; assistant.
ପ୍ରଚେତା, ରଥାରୋହ ] ୩ । ସମୁଦ୍ର ( ସଂକ୍ଷିପ୍ତସାର ଉଣାଦି )
3. The sea; the ocean. ଦେ. ବ. ପୁଂ—
ଲୋକଙ୍କ ନାମ—A name given to males.

ସାରଥୁକ—ଗ୍ରା. ବଣ ( ସଂ ସାର୍ଥକ )—ସାର୍ଥକ ( ଦେଖ )
Sarathuka সার্থক सारथक Sārthaka ( See )

ସାରଥୁକି(କ୍ୟ)—ଗ୍ରା. ବ ( ସଂ. ସାର୍ଥକତା; ସାର୍ଥକ୍ୟ )—ସାର୍ଥକତା
Sārathuki(kya) ( ଦେଖ )—Sārthakatā (See)
সার্থকতা सारथकता

ସାରଥ୍ୟ—ସଂ. ବ ( ସାରଥି+ଭାବେ. ଯ )—୧ । ସାରଥିର କର୍ମ—
Sārathya 1. The work of a charioteer. ୨ ।
ସହାୟ; ସାହାଯ୍ୟ—2. Assistance. ୩ । ଯାନ
( ବିଶ୍ୱକୋଷ )—3. A conveyance.

ସାରଥ୍ୟ ନୈପୁଣ୍ୟ—ସଂ. ବ ( ୭ମୀ ତତ୍ )—ସାରଥିର କାର୍ଯ୍ୟରେ
Sārathya naipunya ପଟୁତା—Skill in driving a
car.

ସାରଦ—ସଂ. ବଣ ( ସାର=ବଳ+ଦା ଧାତୁ+କର୍ତ୍ତ୍ତୃ.ଅ )—ଯାହା
Sārada ବଳ ଦିଏ; ସାରଦାତା—Giving strength;
[ସାରଦା—ସ୍ତ୍ରୀ] infusing vigour.

ସାରଦା—ସଂ. ବଣ. ସ୍ତ୍ରୀ—ସାରଦାତ୍ରୀ; ସାରଦ ଶବ୍ଦର ସ୍ତ୍ରୀଲିଙ୍ଗ—
Sāradā Feminine of Sārada. ବ—୧ । ସରସ୍ୱତୀ;
[ ଶାରଦା—ଅନ୍ୟରୂପ ] ବାଗ୍‌ଦେବୀ [ ଶବ୍ଦରତ୍ନାବଳୀ ]—
1. The Goddess of learning. ୨ । ଦୁର୍ଗା
[ ତଥ୍ୟାଦି ତନ୍ତ୍ର ]—2. Goddess Durgā. ଦେ.
সাবদা ବ—୧ । ଲିପିବିଶେଷ —1. Name of a script.
सारदा [ ଦ୍ର—ଗୁପ୍ତ ବଂଶର ଅଧଃପତନ ପରେ ଗୁପ୍ତ ଲିପିରୁ ଶାରଦା,
ଓ କୁଟୀଳ ପ୍ରଭୃତି ଲିପି ଉତ୍ତର ଓ ପଶ୍ଚିମ ଭାରତରେ
ପ୍ରଚଳିତ ହେଲା । ଟାକ୍ରୀ, ଗୁରୁମୁଖୀ ଓ ସିନ୍ଧୀ ଅକ୍ଷରମାନ
ସାରଦା ଲିପିରୁ ଅନୁକୃତ—ବିଶ୍ୱକୋଷ । ] ୨ । ( ପୁଂ ଓ
ସ୍ତ୍ରୀ ) ଲୋକଙ୍କୁ ଦିଆଯିବା ନାମ—2. A name given
to males and females. ବୈଦେ. ବ (ପ୍ରା)—
ବେହେଲା ପରି ତନ୍ତ୍ରୀ ଯନ୍ତ୍ର ବିଶେଷ—A sort of
guitar or violin.

ସାରଦା ଆଇନ୍—ଦେ. ବ—୧୯୨୯ ସାଲରେ ବଡ଼ଲାଟଙ୍କ ବ୍ୟବସ୍ଥାପକ
Sāradā āin ସଭାରେ ପାଶ୍ ହୋଇଥିବା ବାଲ୍ୟ ବିବାହ
সাবদা আইন নିରୋଧକ ଆଇନ—The Sāradā Act of
सारदा आइन 1929. [ଦ୍ର—ବଡ଼ଲାଟଙ୍କ ସଭା (ଅସେମ୍ବ୍ଲି)ରେ
ଏ ଆଇନକୁ ଉପସ୍ଥାପିତ କରିଥିବା ବାବୁ ହରବିଲାସ ସାର-
ଦାଙ୍କ ବଂଶୋପାଧି ଅନୁସାରେ ଏ ବିଲ୍‌ର ନାମକରଣ
ହୋଇଅଛି । ଏ ଆଇନ ଅନୁସାରେ ୧୮ ବର୍ଷରୁ ଅଳ୍ପ-
ବୟସ୍କ ବାଳକ ଓ ୧୪ ବର୍ଷରୁ ଅଳ୍ପବୟସ୍କା ବାଳିକାଙ୍କର
ବିବାହ ହେଲେ ଉକ୍ତ ବିବାହରେ ସମ୍ପୃକ୍ତ ପକ୍ଷମାନେ
ଦଣ୍ଡନୀୟ ହେବେ । ଏହି ଆଇନକୁ ଓଡ଼ିଶାର ଭୁବନାନନ୍ଦ
ଦାସଙ୍କ ପ୍ରବର୍ତ୍ତିତ ୧୯୩୭ -୩୮ ରେ ଗୋଟିଏ ଅଇନ
ଦ୍ୱାରା କଠୋରତର କରି ଯାଇଅଛି ।]

ସାରଦାଚରଣ ମିତ୍ର—ଦେ. ବ(ନାମ)-ଜଣେ ବଙ୍ଗୀୟ ସ୍ୱର୍ଗତ ହାଇକୋର୍ଟର
Sāradā charana mitra ଜଜ୍—The late Justice
সাবদাচবণ মিত্র Sārada Charana Mitra of Calcutta.
सारदाचरण मित्र [ଦ୍ର-ଏ କଲିକତା ହାଇକୋର୍ଟର ଜଜ୍ ଥିଲେ ।
୧୮୫୮ ରେ ଏହାଙ୍କର ଜନ୍ମ । ଏ କଲିକତା ବିଶ୍ୱ-
ବିଦ୍ୟାଳୟରେ ଏଣ୍ଟ୍ରାନ୍ସ, ଏଫ୍. ଏ, ଓ ବି. ଏ.
ପରୀକ୍ଷାରେ ବଙ୍ଗରେ ପ୍ରଥମ ସ୍ଥାନ ଓ ଏମ୍. ଏ. ରେ
ଦ୍ୱିତୀୟସ୍ଥାନ ଅଧିକାର କରିଥିଲେ; ପରେ ରାୟଚାନ୍ଦ ଓ
ପ୍ରେମଚାନ୍ଦ ବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବି. ଏଲ୍ ବା
ଓକାଲତି ପାଶ କରି କେତେକ ବର୍ଷ କଲିକତା ହାଇ-

କୋର୍ଟରେ ଓକାଲତି କରି ପ୍ରଥମେ ଅସ୍ଥାୟୀ ଭାବରେ, ପରେ ଜଜ୍. ଗୁରୁଦାସ ବନ୍ଦୋପାଧ୍ୟାୟ ଅବସର ଗ୍ରହଣ କରିବାରୁ ତାଙ୍କ ସ୍ଥାନରେ ସ୍ଥାୟୀ ଭାବରେ ହାଇକୋର୍ଟ ଜଜ୍ ହେଲେ । ଏ ଛଅ ବର୍ଷ ଜଜ କାମ କରି ଅବସର ଗ୍ରହଣ କରି ବଙ୍ଗୀୟ ସାହିତ୍ୟ ସେବାରେ ନିଯୁକ୍ତ ହେଲେ । ଏ ବଙ୍ଗୀୟ ସାହିତ୍ୟ ପରିଷଦର ସଭାପତି ହୋଇଥିଲେ । ବଙ୍ଗୀୟ ପ୍ରାଚୀନ କବି ବିଦ୍ୟାପତିଙ୍କ ଗ୍ରନ୍ଥାବଳୀର ଏ ଗୋଟିଏ ସଠିକ ସଂସ୍କରଣ ପ୍ରକାଶ କରିଥିଲେ । ନାନାବିଧ ଶାସ୍ତ୍ର ଓ ପୁରାଣରୁ କାୟସ୍ଥମାନଙ୍କ ସମ୍ବନ୍ଧେ ତତ୍ତ୍ୱମାନ ସଂଗ୍ରହ କରି ଏ 'କାୟସ୍ଥ-କାରିକା' ନାମକ ଗ୍ରନ୍ଥ ସଂକଳନ କରିଥିଲେ । ସମଗ୍ର ଭାରତରେ ଦେବନାଗରୀ-ଲିପି ଚଳାଇବା ପାଇଁ ଏ ବିଶେଷ ଚେଷ୍ଟା କରିଥିଲେ । ଏ ଖୁବ୍ ନିଷ୍ଠାପର ହିନ୍ଦୁ ଥିଲେ । ]

**ସାରଦା ତିଳକ**—ସଂ. ବି—ବ୍ରହ୍ମତତ୍ତ୍ୱବିଷୟକ ସଂସ୍କୃତ ଗ୍ରନ୍ଥବିଶେଷ—
**Sāradā tilaka** Name of a Sanscrit treatise on metaphysics. (ଉ—ସାରଦା ତିଳକ ବିଗ୍ରହରେ, କ୍ରମ ସ୍ଥିତିକାର ଅଦ୍ୟରେ । ପ୍ରାଚୀ—ପୂର୍ଣ୍ଣତମ. ଚନ୍ଦ୍ରୋଦୟ ।)

**ସାରଦା ପୀଠ (ତୀର୍ଥ)**—ଦେ. ବି (ନାମ)—କାଶ୍ମୀରର ତୀର୍ଥ ବିଶେଷ—
**Sāradā pitha (tirtha)** A place of pilgrimage in 'Kāsmira'.
सारदा पीठ **सारदा पीठ**

**ସାରଦା ବଙ୍ଗଳା**—ପ୍ରାଦେ (ପାଟଣା ଓ ବଲାଙ୍ଗିର) ବି—ଲତା-ଫଳ ବିଶେଷ—
**Sāradā baṅgalā** Name of a fruit.
[ଦ୍ର—ଏହା ପଚିଲେ ହଳଦିଆ ହୋଇ ଯାଏ; ପାଚିଲେ ଶିଅଯାଏ ।]

**ସାରଦା ଭୁବନ**—ଦେ. ବି—କଟକ ଜିଲ୍ଲାର ଝଙ୍କଡ଼ ଗ୍ରାମ—
**Sāradā bhubana** 'Jhaṅkarḍa' the seat of the Goddess Sāradā'. (ଉ—ସ୍ୱାହାସ ରହିଲ ଭୂମେ ସାରଦା ଭୁବନେ—ପ୍ରାଚୀ. ଶିଶୁରୁଦ୍ରଙ୍କ ଗୀତା ।)

**ସାରଦା ମଣ୍ଡଳ**—ଦେ. ବି—ସାରଦାଙ୍କ ଅଧିଷ୍ଠିତ ସ୍ଥାନ; ଝଙ୍କଡ଼—
**Sāradā maṇḍala** Jhaṅkarḍa, the seat of the Goddess 'Sāradā'. (ଉ—ଏମନ୍ତ କରି ଝଙ୍କଡ଼ ସାରଦା ମଣ୍ଡଳେ । ପ୍ରାଚୀ. ଶିଶୁରୁଦ୍ରଙ୍କ ଗୀତା ।)

**ସାରଦା ସୁନ୍ଦରୀ**—ସଂ. ବି—ଦୁର୍ଗା (ଶବ୍ଦକୋଷ)—
**Sāradā sundari** Goddess Durgā.

**ସାର ଦେବା**—ଦେ. କ୍ରି—୧ । କ୍ଷେତକୁ ଉର୍ବର କରିବା ପାଇଁ ତହିଁରେ ସାର ବା ଖତ ଦେବା—1. To manure a field. ୨। ବାହାରେ ଗଦା ହୋଇଥିବା ଧାନ ବା ଶସ୍ୟକୁ କେହି ଚୋରି କରି ନେଲେ ଧରି ପଡ଼ିବ ବୋଲି ତହିଁ ଉପରେ ପାଉଁଶ ଗୁଣ୍ଡା ଦ୍ୱାରା ରେଖାମାନ ଟାଣିବା—2. To draw lines with chalk-powder or ashes on a heap of paddy or other grain left in the open.
**Sāra debā**
सार देओया **खाद देना**
दाग देओया **दाग देना**

**ସାର ଦ୍ରୁମ**—ସଂ. ବି—୧ । ଖଦିର ବୃକ୍ଷ (ରାଜନିର୍ଘଣ୍ଟ)—
**Sāra druma** 1. Catechu tree. ୨ । (ସ. ପୁ. ଲୋ) ସାର ପ୍ରଧାନ ବୃକ୍ଷ—2. A tree abounding in Sāra.

**ସାର ଧାନ୍ୟ**—ସଂ. ବି—ଶ୍ରେଷ୍ଠ ଧାନ୍ୟ (ଶବ୍ଦକୋଷ)—
**Sāra dhānya** Excellent variety of paddy.

**ସାରନାଥ**—ଦେ. ବି (ନାମ)—କାଶୀ ନିକଟବର୍ତ୍ତୀ ପ୍ରସିଦ୍ଧ ବୌଦ୍ଧ-ପୀଠ ଓ ପଲ୍ଲୀ—Name of a famous Buddhistic sacred place near Benares.
**Sāranātha**
सावनाथ **सारनाथ**
[ଦ୍ର—ବର୍ତ୍ତମାନ ବାରାଣସୀ ନଗରର ଉତ୍ତର ପଶ୍ଚିମରେ ୪ ମାଇଲ୍ ଦୂରରେ ଏହି ସ୍ଥାନ ଅବସ୍ଥିତ । ଏଠାରେ ବୁଦ୍ଧ ପ୍ରଥମେ ବୌଦ୍ଧଧର୍ମ ପ୍ରଚାର କରିଥିଲେ । ଏହାର ପ୍ରାଚୀନ ନାମ ମୃଗଦାବ (Dear park) । ଏ ସ୍ଥାନ ନାନାବିଧ ବୌଦ୍ଧ କୀର୍ତ୍ତିରେ ମଣ୍ଡିତ; ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ପ୍ରାରମ୍ଭରେ ଚୀନ ପରିବ୍ରାଜକ ଫାହିୟାନ୍ ଏ ସ୍ଥାନ ପରିଦର୍ଶନ କରିଥିଲେ; ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀରେ ହୁଏନ୍ସାଂ ମଧ୍ୟ ଏ ସ୍ଥାନ ପରିଦର୍ଶନ କରିଥିଲେ । ପାଶ୍ଚାତ୍ୟ ପ୍ରତ୍ନତତ୍ତ୍ୱବିତ୍‌ମାନେ ଗତ ଅଷ୍ଟାଦଶ ଶତାବ୍ଦୀରୁ ଏ ସ୍ଥାନ ଖନନ କରାଇ ଅନେକ ପ୍ରାଚୀନ ବୌଦ୍ଧ କୀର୍ତ୍ତିର ଉଦ୍ଧାର କରିଅଛନ୍ତି ।

ପଣ୍ଡିତ ଶ୍ରୀ କୁଳମଣି ଦାସଙ୍କ ପ୍ରଣୀତ 'ହିମାଳୟ ପଥେ' ନାମକ ପୁସ୍ତକରେ ସାରନାଥର ବିସ୍ତୃତ ବିବରଣ ପ୍ରଦତ୍ତ ହୋଇଅଛି ।

ଏଠାରେ ଭୂଗର୍ଭରୁ ମହାରାଜ ଅଶୋକଙ୍କର ଗୋଟିଏ ଶିଳାଲିପି, ଗୋଟିଏ ମନ୍ଦିରର ଭିତ୍ତି, ଜନୈକଙ୍କ ସମୟର ବୋଧିସତ୍ତ୍ୱମୂର୍ତ୍ତି, ପ୍ରସ୍ତରସ୍ତମ୍ଭ ଓ ସ୍ତୂପ ଗାହୋଳୀର୍ଣ୍ଣ ଲିପି, ଗୋଟିଏ ବୃହତ୍ ସଂଘାରାମର ଭିତ୍ତି, ବହୁ ହିନ୍ଦୁ, ଜୈନ ଓ ବୌଦ୍ଧ ଦେବଦେବୀଙ୍କ ମୂର୍ତ୍ତି ଓ ଗୁଡ଼ିଏ ବୌଦ୍ଧସ୍ତୂପ ବାହାରି ଅଛି । ]

**ସାରଣ୍ଡା(ଣ୍ଡା)**—ଦେ. ବି—ସିଂହଭୂମି ଜିଲ୍ଲାର ଅନ୍ତର୍ଗତ ହୋ ମାନଙ୍କ ଦ୍ୱାରା ଅଧ୍ୟୁଷିତ ଗୋଟିଏ ପୀଢ଼ (ଏଥିରେ ଗ୍ରାମ ସଂଖ୍ୟା ପ୍ରାୟ ୮୮୨)—Name of a collection of non-aryan villages in Singbhum.
**Sārandā(ṇḍā)**
सावन्दा **सारंदा**

**ସାର ପାଦପ**—ସଂ. ବି (ଏଥିର ମଞ୍ଜ ଅତ୍ୟନ୍ତ ଶକ୍ତ ଥିବାରୁ)—ଧାମନ ବୃକ୍ଷ (ରତ୍ନମାଳା); ଭାମଣ ଗଛ—
**Sāra pādapa** A timber tree; Cordia Macleodii.

**ସାରଦ**—ସଂ. ବି (ସରୟୁ+ଅ; ଜାତାର୍ଥେ)—ସରୟୁନଦୀଜାତ ବସ୍ତୁ (ଅମର)
**Sārada** A thing produced or got from the river 'Saraju.

**ସାରବତ୍ତା**—ସଂ. ବି (ସାରବତ୍+ତ୍ୱ ତା)—ସାରବାନ୍ ହେବା ଅବସ୍ଥା-
**Sārabatta** The State of being substantial.

**ସାର ବନ୍ଦୀ**—ଦେ. ବଣ—ଶ୍ରେଣୀବଦ୍ଧ—Arranged in rows.
**Sāra bandi** ବି—ଶ୍ରେଣୀବଦ୍ଧକରଣ—Arranging in rows.
শ্রেণীবদ্ধ, সারবন্দী **श्रेणीबद्ध**

**ସାର ବର୍ଜିତ**—ସଂ. ବଣ—ନିଃସାର; ଅସାର—
**Sāra barjita** Having no substance.

ସାରବାନ—ସଂ ବଣ· ପୁଂ(ସାର+ଅସ୍ତ୍ୟର୍ଥରେ ବନ୍ତୁ;ମ=ବ)—ସାର
Sārabān ବା ଶ୍ରେଷ୍ଠାଂଶ ଯୁକ୍ତ; ସସାର—Substantial
(ସାରବତୀ—ସ୍ତ୍ରୀ) (ସାରବତ୍ତ—ବ)

ସାର ବାହିବା—ଦେ. କ୍ର—ସାର ଚଲାଇବା (ଦେଖ)
Sāra bāhibā Sāra chaḷāibā [See]
(ସାର ବାହିନେବା—ଅନ୍ୟରୂପ)
সার চালান গোটী চালানা ( ଯଥା—ପଶାପଟି
ମୁହିଁ ଛାଏଁ ନାହିଁ, ଦାନ ପଡଲେ ସାର ଦେଇ ବାହୁ—
ଉପେନ୍ଦ୍ର ଭଞ୍ଜ ସଙ୍ଗୀତ ।)

ସାରଭଙ୍ଗ—ଦେ. ବ—କୌଣସି ବିଷୟର ବା କାରବାରର ଶେଷ
Sārbbānga ମୀମାଂସା—Final decision or settle-
চূডান্ত নিষ্পত্তি, সিদ্ধান্ত ment of a matter or tran-
saction. [ଦ୍ର—ଅଲୋଚନା ବା ତର୍କ ବିତର୍କପରେ
କୌଣସି ବିଷୟରେ ଉଭୟ ପକ୍ଷଙ୍କ ବିବାଦ ବା ମତ-
ଭେଦକୁ ଭଞ୍ଜନ କରି ଶେଷରେ ସାରକଥା କହିବାକୁ
ସାରଭଙ୍ଗ କରିବା ବୋଲାଯାଏ ।]

ସାରଭାଣ୍ଡ—ସଂ. ବ—୧ । ଅକୃତ୍ରିମ ଧାନ (ମୃଗନାଭ୍ୟାଦି)—
Sārabhānda 1. Natural receptacle or bag
(e. g. the cover or bag enclosing the
musk). ୨ । ଅକୃତ୍ରିମ ପଣ୍ୟ ଦ୍ରବ୍ୟ—(ବିଶ୍ୱକୋଷ)—
2. Any commodity which is found in
nature.

ସାର ଭୂତ—ସଂ. ବଣ—(ସାର+ଭୂ, ଧାତୁ+କର୍ତ୍ତୃ. ତ)—ସର୍ବ ଶ୍ରେଷ୍ଠ;
Sāra bhūta କୌଣସି ପଦାର୍ଥର ସାର ସ୍ୱରୂପ—Essential.
(ସାର ଭୂତା—ସ୍ତ୍ରୀ)

ସାରଭୃତ୍—ସଂ. ବଣ (ସାର+ଭୃ ଧାତୁ=ଗ୍ରହଣ କରିବା+କର୍ତ୍ତୃ କ୍ୱିପ୍)-
Sārabhṛut ସାରଗ୍ରାହୀ—Accepting the sāra of
things.

ସାରମର୍ମ—ସଂ. ବ—୧ । କୌଣସି ବିଷୟର ଅସଲ ମର୍ମ—1. The
Sāramarma essential import. ୨ । ସଂକ୍ଷିପ୍ତ ମର୍ମ—
2. Summary of any matter; synopsis.

ସାରମିତି—ସଂ. ବ—(ସାର=ଶ୍ରେଷ୍ଠ ବିଷୟ+ମା· ଧାତୁ=ମାପିବା+
Sāramiti କରଣ ତି)—ବେଦ (ହେମଚନ୍ଦ୍ର)—The Bedas.

ସାରମୂଷିକା—ସଂ. ବ—ଦେବଦାଳୀ (ଭରତ ନିର୍ଦ୍ଦେଶ); ଏକପ୍ରକାର
Sāra mūshikā ଲତା; ତରଡ଼ା — Bristly Luffa;
Andropagen Serratus (a creeper and
its fruit).

ସାରମେୟ—ସଂ. ବ—(ସରମା=କୁକ୍କୁରୀ+ଅପତ୍ୟାର୍ଥେ ଏୟ)—
Sārameya (ସାରମେୟୀ—ସ୍ତ୍ରୀ) କୁକୁର (ଅମର)—Dog.

ସାରମେୟ ଯୁଗଳ—ସଂ. ବ—କାଳକାଞ୍ଜ ମଣ୍ଡଳ ନାମକ ନକ୍ଷତ୍ରଦ୍ୱୟ
Sārameya jugaḷa (ନକ୍ଷତ୍ରରେ ଟୀକା ଦେଖ)—
Canis Vanaticii (2 stars).

ସାର ଯମକ—ଦେ. ବ (ଅଳଙ୍କାର) ଯମକ ବିଶେଷ—A kind of
Sāra jamaka alliteration. [ ଦ୍ର—ଏହାର ଉଦାହରଣ
ଯଥା—ନାଗରମଣୀ ଗଣ ନାଗରମଣି ଗଣନା ନୋହି
ଦେଇଣ ଢୁକିବେ । ଅଭିମନ୍ୟୁ, ବିଦଗ୍ଧ ଚିନ୍ତାମଣି ।]

ସାରଳା—ଦେ· କ୍ର. ସ୍ତ୍ରୀ ( ସଂ. ସାରଦା=ସରସ୍ୱତୀ, ଦୁର୍ଗା )—
Sāraḷā ୧ । କଟକ ଜିଲ୍ଲାର ଝଙ୍କଡ଼ ପ୍ରଗଣା ଓ ତିର୍ତ୍ତୋଲ ଥାନା
(ସାରଳା ଠାକୁରାଣୀ—ଅନ୍ୟରୂପ) ଅନ୍ତର୍ଗତ କନକପୁରରେ
সারলা ବିରାଜିତା ଦୁର୍ଗାପ୍ରତିମା—1. The name of an idol
সারদা of Durga at Kanakapur in the Cuttack
district.
[ଦ୍ର—ଏହାଙ୍କୁ ଲୋକେ ବିଦ୍ୟାଦାତ୍ରୀ ବାଗ୍‌ଦେବୀ ବୋଲି
ମଧ୍ୟ ଗ୍ରହଣ କରନ୍ତି । ଏହାଙ୍କ ନିକଟରେ ଛାତ୍ର ଓ ମଲ୍ଲଯୋଦ୍ଧା
ବଳିପଡନ୍ତି; ବଳଦୁର୍ଗା ମନ୍ତ୍ରରେ ଏହାଙ୍କ ପୂଜାହୁଏ;କିନ୍ତୁ ଏହାଙ୍କ
ପୂଜାରେ ତୁଳସୀ ଓ ବେଲପତ୍ରୀ ଉଭୟ ଲାଗେ । ଏହାଙ୍କ
ସେବାପାଇଁ ଖଞ୍ଜା ଥିବା ଦେବୋତ୍ତର ସମ୍ପତ୍ତିର ପରିଚାଳନାର୍ଥ
କଟକର କଲେକ୍ଟରଙ୍କଦ୍ୱାରା ଗୋଟିଏ କମିଟୀ ନିଯୁକ୍ତ
ହୋଇଅଛି । ଏହାଙ୍କ ନିକଟରେ ଅଧ୍ୟାତ୍ମ ପଣ୍ଡିତ ଶୂଦ୍ରମୁନି
ସାରଳା ଦାସ କବିତ୍ୱ ପ୍ରାପ୍ତ ହୋଇଥିଲେ । ଏହାଙ୍କର
'ଘଟ'କୁ ନେଇ ସେବକମାନେ ଉତ୍କଳର ବିଭିନ୍ନ ଅଞ୍ଚଳରେ
ବୁଲି ଗୋଡରେ ଘଣ୍ଟା ବାନ୍ଧି ଓ ନର୍ତ୍ତକୀ ବେଶ ଧାରଣ
କରି ନାଚନ୍ତି । ଏହାଙ୍କର ବାହନ ସିଂହ ଥିବାରୁ ଏହାଙ୍କୁ
କେହି କେହି 'ସିଂହସାରଳା' ବୋଲି ଡାକନ୍ତି । ] ୨ ।
ସରସ୍ୱତୀ—2. Goddess Saraswati. [ ଯଥା—
ଅଣ୍ଟା ପାଇ ସାରଳା ଯେ କେବେ ଚଳଗଲେ—ପ୍ରଭା ସ.
ଶଶିସେଣା । ]

ସାରଳାଙ୍କ ଘଟ(ଣ୍ଟ)—ଦେ. ବ—ସାରଳା ଠାକୁରାଣୀଙ୍କ ନିକଟରେ
Sāraḷānka ghata(nta) ପଣାସଂକ୍ରାନ୍ତି ଦିନ ପୂଜା ପାଇଥିବା
সারলার ঘাট ଘଟ ବା ମାଠିଆ—A consecrated pit-
সারলোকা ঘট cher of water representing the
Goddess Sāraḷā which is carried by
the Sebakas from village to village
during summer. [ ଦ୍ର—ଏହାକୁ ସାରଳା
ଠାକୁରାଣୀଙ୍କ ମାଳୀ ସେବକମାନେ ମୁଣ୍ଡରେ ବହନ କରି
ଗୋଡରେ ଘଣ୍ଟା ବାନ୍ଧି ଉତ୍କଳର ଗ୍ରାମେ ଗ୍ରାମେ ଗ୍ରୀଷ୍ମକାଳରେ
ଘଣ୍ଟା ବଜାଇ ନାଚନ୍ତି ଓ ଲୋକେ ଉକ୍ତ ଘଟକୁ ପଣା
ନୈବେଦ୍ୟ ଦିଅନ୍ତି । ]

ସାରଳା ଦାସ—ଦେ. ବ (ନାମ)—ଓଡ଼ିଆ ପଦ୍ୟ ମହାଭାରତ ରଚୟିତା
Sāraḷā dāsa —The author of the metrical
সারলা দাস Mahābhārata in Oriya. [ ଦ୍ର—
সরলা দাস କଟକ ଜିଲ୍ଲା ଝଙ୍କଡ଼ ପରଗଣାର 'ତେଲୁଙ୍ଗପଦା'
ନାମକ ଗ୍ରାମରେ ଏହାଙ୍କର ଜନ୍ମ । ଓଡ଼ିଶାର ସ୍ୱାଧୀନ
ରାଜା କପିଳେନ୍ଦ୍ର ଦେବଙ୍କ (୧୪୩୨-୧୪୭୨ ଖ୍ରୀଷ୍ଟାବ୍ଦ)
ସମୟରେ ପ୍ରସିଦ୍ଧ ଓଡ଼ିଆ ମହାଭାରତ ଗ୍ରନ୍ଥ ଏ ରଚନା କରି-
ଥିଲେ—ଡାକ୍ତରଶୀ· ଭିତ ଚନ୍ଦ୍ର ସାହିତ୍ୟ. ଇତିହାସ ।
ଏହାଙ୍କୁ 'ଶୂଦ୍ରମୁନି' ସାରଳା ଦାସ କହନ୍ତି । ଏହାଙ୍କର
ପ୍ରଥମ ନାମ ସିଦ୍ଧେଶ୍ୱର ଥିଲା । ଏ ପ୍ରଥମେ ମୂର୍ଖ ଥିଲେ;

ପରେ ସାରଳା ଠାକୁରାଣୀଙ୍କଠାରେ ଅଧା ପଡ଼ି ଠାକୁରାଣୀଙ୍କଠାରୁ ବର ପାଇ, ସାରଳା ଠାକୁରାଣୀଙ୍କ ମନ୍ଦିରରେ ପ୍ରତି ଦିନ ପଢ଼ା ଯାଉଥିବା ସଂସ୍କୃତ ମହାଭାରତ ପୁରାଣ ଶୁଣି ଓଡ଼ିଆରେ ମହାଭାରତ ରଚନା କରିଥିଲେ । କିନ୍ତୁ ମୂଳ ସଂସ୍କୃତ ମହାଭାରତ ସଙ୍ଗେ ଉକ୍ତ ମହାଭାରତର ଅବିକଳ ମେଳ ନାହିଁ । ଏ ମହାଭାରତରେ ବହୁ ଅନେକ ମୌଳିକ କଥା ଛାଡ଼ି ଯାଇଅଛନ୍ତି ଓ କେତେକ କାଳ୍ପନିକ ଆଖ୍ୟାନ ମଧ୍ୟ ଯୋଗ କରିଅଛନ୍ତି । ଓଡ଼ିଆ ପଦ୍ୟ ରଚନାରେ ଏହାଙ୍କର ଲେଖା ପ୍ରାଚୀନ ବୋଧ ହେଉଥିବାରୁ ଏହାଙ୍କୁ ଆଦିକବି ବୋଲି ଲୋକେ କହନ୍ତି । ଏ ପଞ୍ଚଦଶ ଶତାବ୍ଦୀର ଲୋକ । ଏ ପୁରୀ ଜଗନ୍ନାଥଙ୍କ ଦେଉଳ ବେଢ଼ା ମଧ୍ୟସ୍ଥ କଳ୍ପବଟ ମୂଳେ ବସି ତାଙ୍କ ମହାଭାରତ ରଚନା କରିଥିଲେ । ପୁରୀ ମୁକ୍ତିମଣ୍ଡପର ପଣ୍ଡିତମାନେ ସନ୍ତୁଷ୍ଟ ହୋଇ ତାଙ୍କୁ 'ଶୂଦ୍ରମୁନି' ଉପାଧି ଦେଇଥିଲେ । ସାରଳାଙ୍କଠାରୁ ବର ପାଇ ସେ କବି ହୋଇଥିବାରୁ ସେ ନିଜେ ଆପଣାକୁ 'ସାରଳା ଦାସ' ବୋଲି ପରିଚିତ କରାଇଲେ ।

ସେ ସମୟରେ ଓଡ଼ିଶାରେ କପିଳେନ୍ଦ୍ରଦେବ ରାଜା ଥିଲେ । ରାଜା ତାଙ୍କ କବିତ୍ୱରେ ସନ୍ତୁଷ୍ଟ ହୋଇ ତାଙ୍କୁ 'ପରିଡ଼ା' ଉପାଧି ଦେଇଥିଲେ । ତାଙ୍କ ବଂଶଧରମାନେ ସେହି 'ପରିଡ଼ା' ଉପାଧିକୁ 'ପରିଜା' ବୋଲି ଏବେ ବ୍ୟବହାର କରୁଅଛନ୍ତି ।

ତାଙ୍କ ନାମ ଅନୁସାରେ ଝଙ୍କଡ଼ର ଉତ୍ତର-ପଶ୍ଚିମରେ 'ସାରଳା' ନାମରେ ଗୋଟିଏ ଗ୍ରାମ ବସିଥିଲା, ସେ ଗ୍ରାମକୁ ବର୍ତ୍ତମାନ 'ବଡ଼ ସାରୋଳ' ବୋଲାଯାଏ ।

କବି ନ ହୋଇଥାଇ ପ୍ରଥମ ଜୀବନରେ ଗୃହବାସ ଓ ମୂଲିଆ କାମ କରୁଥିଲେ । ମହାଭାରତ ଲେଖି ସାରି ସେ ବୃଦ୍ଧାନଦୀ କୂଳରେ ଗୋଟିଏ ମଠ ସ୍ଥାପନ କରି ସେହିଠାରେ ଶେଷ ଜୀବନ କଟାଇଲେ । ତାଙ୍କୁ ଲୋକେ 'ମୁନିଗୋସାଇଁ' ବୋଲି ଡାକୁଥିଲେ ଓ ଏବେ ମଧ୍ୟ ସେହି ଆଶ୍ରମକୁ ସ୍ଥାନୀୟ ଲୋକେ ମୁନି ଗୋସାଇଁ ମଠ କହନ୍ତି । ମାଘ ଶୁକ୍ଳ ସପ୍ତମୀ ଦିନ ସେ ପରଲୋକ ଗମନ କରିଥିଲେ । ପ୍ରତି ବର୍ଷ ସେହି ଦିନ ଏଠାରେ ଗୋଟିଏ ମହୋତ୍ସବ ହୁଏ— ବନମାଳୀ ପଣ୍ଡା· ପଞ୍ଚାମୃତ । ]

**ସାରଳା ଭାରତ**—ଦେ· ବି—ଶୂଦ୍ରମୁନି ସାରଳା ଦାସଙ୍କ କୃତ ଓଡ଼ିଆ ପଦ୍ୟ ମହାଭାରତ—The metrical Mahābhārata composed by the poet Sārala Dāsa in Oriya.
Sārala bhārata
सारला महाभारत
**সারলা মহাভারত**
( ସାରଳା ମହାଭାରତ—ଅନ୍ୟରୂପ ) [ ଦ୍ର—ଏହା ମୂଳ ସଂସ୍କୃତ ମହାଭାରତର ଉପାଖ୍ୟାନ ଅନୁସାରେ ଧାରାବାହିକରୂପେ ଲିଖିତ ହୋଇ ନାହିଁ । ]

**ସାର ଲୋ(ଲୌ)ହ**—ସଂ· ବି ( ସାର=ସାରାଂଶ+ଲୋହ )—୧ । ଲୋହସାର; ଇସ୍ପାତ—1. Steel. ୨ । ଖାଣ୍ଟି ଲୁହା—2. Pure iron.
Sāra lo(lau)ha

**ସାରଲ୍ୟ**—ସଂ· ବି (ସରଳ+ଭାବ· ଯ)—୧ । ସରଳତା—1 Straightness. ୨ । ନିଷ୍କପଟତା—2. Frankness; straightforwardness.
Sāralya

**ସାର ଶୂନ୍ୟ**—ସଂ· ବିଣ ( ଷଷ୍ଠୀ ତତ୍ପୁରୁଷ )—୧ । ଅସାର—1. Having no substance; unsubstantial. ୨ । ନିକୃଷ୍ଟ—2. Inferior.
Sāra śūnya

**ସାରସ୍ ମେଘୁଆ**—ପ୍ରାଦେ· ( ସମ୍ବଲପୁର ) ବି—ଚତୁର୍ଦ୍ଦିଗରେ ମେଘ ଘୋଟି, ମେଘ ବର୍ଷିଥିବା ଢଙ୍ଗ ବା ଭାବ—Cloudy weather portending rain. (ଯଥା—ଅଜି ସାରସ୍ ମେଘୁଆ ହୋଇଛେ ।)
Sāras meghuā

**ସାରସ**—ସଂ· ବି ( ସରସ=ସରୋବର+ଅ; ସରୋବରରେ ବିଚରଣ କରୁଥିବାରୁ )—୧ । (ପୁଂ) ଜଳଚର ପକ୍ଷୀବିଶେଷ; ଚଢ଼େଇଆଙ୍କ—1. The white stork or crane; Indian or Siberian crane; Ardea Siberica ( M. W. ) Cineria Alba; Grus Cinerea.
Sārasa
[ପ୍ରଥମ ଅର୍ଥରେ ଅନ୍ୟ ସଂ· ନାମ—ପୁଷ୍କରାହ୍ୱ, ଗୋନର୍ଦ୍ଦ, କାକୁଭ, ଲକ୍ଷ୍ମଣ, ଲକ୍ଷଣ, ସରସୀକ, ସରୋତ୍ସବ, ସରୋରୁହ, ରସିକ, କାମୀ]
( ସାରସୀ—ସ୍ତ୍ରୀ )
[ ଦ୍ର—ଏହା ଜଳଚର ବର୍ଗର ଧଳା ଓ ଦୁଇ ହାତ ଲମ୍ବର ପକ୍ଷୀ । ଏ ଉତ୍ତରଭାରତବାସୀ, କିନ୍ତୁ ଶୀତକାଳରେ ଏ ଦେଶକୁ ଆସନ୍ତି । ଏମାନଙ୍କ ଆକାର ହାଡ଼ଗିଲା ପକ୍ଷୀଙ୍କ ପରି । ଏମାନେ ଏକକ ଯୋଡ଼ା ଯୋଡ଼ା ହୋଇ ବିଚରଣ କରନ୍ତି । ଏମାନଙ୍କ ଗୋଡ଼ ଓ ବେକ ଲମ୍ବ; ଥଣ୍ଟ ବଡ଼ ଓ ମୁନିଆଁ । ଏ ପକ୍ଷୀର ମାଂସ ମଧୁର, ଅମ୍ଳ, କଷାୟ; ଏବଂ ମହାତିସାର, ପିତ୍ତ, ଗ୍ରହଣୀ ଓ ଅର୍ଶୋରୋଗରେ ଉପକାରୀ । ଏ ପକ୍ଷୀ ସାଧାରଣତଃ ଜଳା ଭୂମିରେ ବାସ କରେ । ଏହାର ଦେହର ପାଲକ [ଲୋମ] ଖୁଣ୍ଟିକ ଧୂସର; ମସ୍ତକର ଅଗ୍ରଭାଗ, ଚକ୍ଷୁ ଓ ଚଞ୍ଚୁର ମଧ୍ୟବର୍ତ୍ତୀ ସ୍ଥାନର ପାଲକମାନ କଳା; ମସ୍ତକର ଟିକ୍ ଉପରଭାଗ ସମ୍ମୁଖ ଲୋମହୀନ ଓ ରକ୍ତବର୍ଣ୍ଣ; ଚକ୍ଷୁ ହରିତାଭ କୃଷ୍ଣବର୍ଣ୍ଣ, ଚଞ୍ଚୁର ଅଗ୍ରଭାଗ ଈଷତ୍ କୃଷ୍ଣ; ପାଦ କଳା; ଏହାର ଚଞ୍ଚୁର ଅଗ୍ରରୁ ପୁଚ୍ଛର ଶେଷ ପର୍ଯ୍ୟନ୍ତ ଦୈର୍ଘ୍ୟ ୪ ଫୁଟ୍ । ଏ ଭ୍ରମଣଶୀଳ ପକ୍ଷୀ, ବର୍ଷଯାକ ଏମାନେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଆ ଆସ କରନ୍ତି । ଏମାନେ କୃଷକମାନଙ୍କ କ୍ଷେତରେ ବୁଣା ଯାଇଥିବା ଶସ୍ୟବୀଜମାନଙ୍କୁ କ୍ଷେତରୁ ଖୁଣ୍ଟିକରି ଖାଆନ୍ତି; ଶାମୁକା, ଗେଣ୍ଡା, ବେଙ୍ଗ ଇତ୍ୟାଦି ମଧ୍ୟ ଖାଆନ୍ତି । ବେଳେ ବେଳେ ଏମାନେ କୁଟା ବା ଘାସ ଗଦା ମଧ୍ୟରେ ଓ ଭଗ୍ନ ଅଟ୍ଟାଳିକାର କାନ୍ଥ ପ୍ରାଚୀର ଉପରେ ବସା ବାନ୍ଧନ୍ତି । ଏ ଗୋଟାଏ ଥରରେ ୨ଟି ଡିମ୍ବ ପ୍ରସବ କରେ ଓ ଶାବକଙ୍କୁ ମନୁଷ୍ୟ ଅପେକ୍ଷା ବେଶି ସ୍ନେହରେ ଓ ଯତ୍ନରେ ପାଳେ । ଏସିଆ, ଆଫ୍ରିକା ଅଷ୍ଟ୍ରେଲିଆ ଓ ଇଉରୋପର ଉତ୍ତରାଂଶରେ ଏ ପକ୍ଷୀ ଦେଖା ଯାଆନ୍ତି । ଏମାନେ ଏକ ଦେଶ ଛାଡ଼ି ଅନ୍ୟ ଦେଶକୁ ଯିବା ବେଳେ ସ୍ତରରେ ଆକାଶରେ ବହୁ ଊର୍ଦ୍ଧ୍ୱରେ·

ଅର୍ଦ୍ଧଚନ୍ଦ୍ରାକାର ଶ୍ରେଣୀବଦ୍ଧ ହୋଇ ଗମ୍ଭୀର ଶବ୍ଦ କରି ନୃତ୍ୟନ୍ତି । ସାରସ ପକ୍ଷୀ ଶୀଘ୍ର ପୋଷା ମାନେ ଓ ପାଳିତ ସାରସ ପକ୍ଷୀ ପାଳକଙ୍କ ଉଦ୍ୟାନରେ ବିଚରଣ କରି ଉଦ୍ୟାନରୁ କୀଟ ପତଙ୍ଗ ଖାଆନ୍ତି ଓ ସେ ସ୍ଥାନରୁ ଉଡ଼ି ପଳାଇ ଯାଆନ୍ତି ନାହିଁ । ଶାକୁନ ଶାସ୍ତ୍ରରେ ଲେଖା ଅଛି ଯେ, ଯାତ୍ରାଦି ଶୁଭ କାର୍ଯ୍ୟରେ ସାରସଦ୍ୱନ୍ଦ୍ୱଙ୍କୁ ଦେଖିଲେ ଇଷ୍ଟ ସିଦ୍ଧ ହୁଏ; ଗମନକାଳରେ ପୃଷ୍ଠଦେଶରେ ଏମାନଙ୍କ ଧ୍ୱନି ଶୁଣିଲେ ଇଷ୍ଟନାଶ ଘଟେ; ବାମଦିଗରେ ଧ୍ୱନି ଶୁଣାଗଲେ ସ୍ତ୍ରୀଲାଭ; ଅଗ୍ରେ ଶୁଣାଗଲେ ରାଜାଙ୍କଠାରୁ ଅର୍ଥଲାଭ ହୁଏ; ଦୁଇଟି ସାରସଙ୍କ ଏକତ୍ର କଳଧ୍ୱନି ଶୁଣାଗଲେ ଅର୍ଥଲାଭ ହୁଏ । (ବିଶ୍ୱକୋଷ) । ୨ । ହଂସ (ପ୍ରକୃତିବାଦ)—2. Swan. ୩ । ( ସରସ୍+ଜାତାର୍ଥେ ଅ )—ପଦ୍ମ (ଅମର)— 3. Lotus. ୪ । [ସ=ସହ+ରସ]—ଚନ୍ଦ୍ର (ମେଦିନୀ)- 4. The moon. ୫ । ସ୍ତ୍ରୀକଟ୍ୟାଭରଣ; ଗୋଠ, ଚନ୍ଦ୍ରହାର—5. A waist chain. ୬ । ପକ୍ଷୀ- 6. A bird in general [ M. W. ] ୭ । ପଦ୍ମବନ—7. A place where lotus plants grow. [ଉ—ବାଣ ଉଷାର ଦୃଷ୍ଟି ଜପି ସାରସ ଉଠି ସଞ୍ଚରଣ ଭୁଞ୍ଜିଲେ ଯେ—ଭଞ୍ଜ ବୈଦେହୀଶ ବିଳାସ ।] ୮ । ସରୋବର ଜଳ—8. Water of a tank. [ ବ୍ର—ପର୍ବତ ପ୍ରଭୃତି ଦ୍ୱାରା ନଦ୍ୟାଦିର ଜଳ ରୁଦ୍ଧ ସ୍ଥାନକୁ ସରସ୍ ଓ ତହିଁର ଜଳକୁ ସାରସ ଜଳ ବୋଲାଯାଏ । ଏହି ଜଳ ବଳକର, ପିପାସା- ନାଶକ, ମଧୁରରସ, ଲଘୁ, ରୁଚିକର, କଷାୟରସ, ରୁକ୍ଷ ଓ ମଳ ମୂତ୍ରରୋଧକ—ଭାବପ୍ରକାଶ ।]

ସାରସ ଜଳ—ସଂ. ବି (କର୍ମଧା)—ସାରସ ୮ (ଦେଖ)
Sārasa jala Sārasa 8 (See)

ସାରସନ(ନା)—ସଂ. ବି (ସାର=ବଳ+ସନ୍· ଧାତୁ=ଦାନ କରିବା+ Sārasana(na) କର୍ତ୍ତ୍ରି. ଅ; ଯାହା ଦେହକୁ ବଳଦାନ କରେ)—୧ । ପୁରୁଷର କଟିବନ୍ଧନ; କମର ବନ୍ଧ— 1. Belt. [ଉ—××××ବରଙ୍ଗୁ ଉତାର ଚିନ୍ମୟ ଶିରସ୍ତ୍ରାଣ, ସାରସନ, ଭୂଷା । ରାଧାନାଥ. ମହାଯାତ୍ରା ।] ୨ । କାଞ୍ଚି; ସ୍ତ୍ରୀମାନଙ୍କ କଟିର ଆଭରଣ; ଗୋଠ; ଚନ୍ଦ୍ରହାର ଆଦି—2. Waist chain of a woman. ୩ । ମେଖଳା; ଓଢ଼ଣୀ ସ୍ତ୍ରୀମାନେ କାଞ୍ଚୁଲାକୁ ଦେହରେ ଦୃଢ଼ କରି ରଖିବା ପାଇଁ ଅଣ୍ଟା ଉପରେ ଯେଉଁ ପଟୀ ପିନ୍ଧନ୍ତି—3. A woman's girdle. [ ବ୍ର—କାଞ୍ଚୁଲି ପିନ୍ଧି ତାହାକୁ ଦେହରେ ଦୃଢ଼ ସଲଗ୍ନ କରିବା ପାଇଁ ଯେଉଁ କମରପଟ୍ଟୀ ଆଦି ବନ୍ଧା ହୁଏ ତାକୁ ସାରସନ ବୋଲାଯାଏ । ବିଶ୍ୱକୋଷ ।]

ସାରସ୍ୱତ—ସଂ. ବିଣ (ସରସ୍ୱତୀ+ଅ)—୧ । ସରସ୍ୱତୀ ସମ୍ବନ୍ଧୀୟ— Sāraswata 1. Relating to Saraswati. ୨ । ସାରସ୍ୱତ ଦେଶୀୟ—2. Belonging to the Sāraswata country. ୩ । ବିଦ୍ୱାନ୍; ପଣ୍ଡିତ—3. Learned. (ଉ—ସାରସ୍ୱତ ବ୍ରାହ୍ମଣର ବାଣୀ-ଅର୍ଚ୍ଚନା ଚରିତ୍ର— ରାଧାନାଥ. ମହାଯାତ୍ରା ।) ୪ । (ସାରସ୍ୱତ୍+ଅ) ସମୁଦ୍ର ସମ୍ବନ୍ଧୀୟ—4. Oceanic; maritime. ବି—୧ । ବିଲ୍ୱଦଣ୍ଡ (ହେମଚନ୍ଦ୍ର)—1. A stick made from the branch of the Bilwa tree. ୨ । ହସ୍ତିନାପୁରର ଉତ୍ତରପଶ୍ଚିମସ୍ଥ ଦେଶ ବିଶେଷ (ହେମଚନ୍ଦ୍ର)— 2. Name of a country to the north-west of Delhi. ୩ । ସାରସ୍ୱତ ଦେଶୋଦ୍ଭବ ବ୍ରାହ୍ମଣ—3. A Brāhmaṇa from the Sāraswata country. ୪ । ଗୌଡ଼ୀୟ ବ୍ରାହ୍ମଣମାନଙ୍କର ୫ ଗୋଟି ଶାଖା ମଧ୍ୟରୁ ଗୋଟିଏ—4. One of the five branches of the Gaurdiya Brāhmaṇas. [ବି—ଏହା ବିନ୍ଧ୍ୟ ପର୍ବତର ଉତ୍ତରବାସୀ ପଞ୍ଚଗୌଡ଼ ବ୍ରାହ୍ମଣମାନଙ୍କର ଗୋଟିଏ ଶାଖା । ପଞ୍ଚ ଗୌଡ଼ ଯଥା—

ସାରସ୍ୱତ, କାନ୍ୟକୁବ୍ଜ, ଗୌଡ଼, ମୈଥିଳ ଓ ଉତ୍କଳ ।

ସାରସ୍ୱତ ବ୍ରାହ୍ମଣମାନେ ମର୍ଯ୍ୟାଦ ଅଟନ୍ତି । ସ୍କନ୍ଦ ପୁରାଣରେ ବ୍ରାହ୍ମଣମାନଙ୍କୁ ପ୍ରଧାନ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇ- ଅଛି; ଯଥା—ପଞ୍ଚଗୌଡ଼ୀୟ ଓ ପଞ୍ଚ ଦ୍ରାବିଡ଼ । ବିନ୍ଧ୍ୟୋ- ତ୍ତରବାସୀମାନେ ପଞ୍ଚଗୌଡ଼ୀୟ ଓ ବିନ୍ଧ୍ୟର ଦକ୍ଷିଣବାସୀ- ମାନେ ପଞ୍ଚଦ୍ରାବିଡ଼ ଶ୍ରେଣୀଭୁକ୍ତ । 'ସାରସ୍ୱତ' ପଞ୍ଚଗୌଡ଼ୀୟ ବ୍ରାହ୍ମଣଙ୍କର ଏକଶାଖା । ଯେଉଁ ବ୍ରାହ୍ମଣମାନେ ପୂର୍ବେ ପଞ୍ଚନଦ ଅଞ୍ଚଳରେ ସରସ୍ୱତୀ ନଦୀ ତୀରରେ ବାସ କରୁ- ଥିଲେ ସେମାନେ ଓ ସେମାନଙ୍କ ବଂଶଧରମାନେ ସାରସ୍ୱତ ନାମରେ ଖ୍ୟାତ ହେଲେ । ଏହି ସରସ୍ୱତୀ ନଦୀ ଆଜିକାଲି ରାଜପୁତାନାର ମରୁଭୂମି ମଧ୍ୟରେ ଲୀନ ହୋଇଅଛି । ହିନ୍ଦୁମାନେ ବିଶ୍ୱାସ କରନ୍ତି ଯେ, ସରସ୍ୱତୀ ନଦୀ ବର୍ତ୍ତମାନ ଅନ୍ତଃସଲିଳା ହୋଇ ପ୍ରୟାଗ (ତ୍ରିବେଣୀ) ଠାରେ ଗଙ୍ଗା ଯମୁନା ସଙ୍ଗେ ମିଳିତ ହୋଇଅଛି । ସାରସ୍ୱତ ବ୍ରାହ୍ମଣମାନେ ୪ଟି ପ୍ରଧାନ ଉପଶାଖାରେ ବିଭକ୍ତ, ଯଥା—ପାନ, ଅଷ୍ଟାନ, ବାରହି ଓ ବାହନ । ଏହି ଉପଶାଖାମାନଙ୍କରେ ପାନରେ ୫, ଅଷ୍ଟାନରେ ୮, ବାରହିରେ ୧୨ ଓ ବାହାନରେ ୫୨ଟି ଭିନ୍ନ ଗୋତ୍ର ଅଛି । ହରିଦ୍ୱାର, ଥାନେଶ୍ୱର ଓ ମଥୁରାର ପଣ୍ଡାମାନଙ୍କ ନିକଟରେ ଏ ସବୁ ବଂଶପରିଚୟ ଜ୍ଞାପକ ହସ୍ତ- ଲିଖିତ ଗ୍ରନ୍ଥମାନ ଅଛି । ବୋମ୍ବାଇ ପ୍ରେସିଡେନ୍‌ସିର ଧାରବାଡ଼, ବେଲଗାଓଁ ଓ କାନାଡ଼ା ଜିଲ୍ଲାରେ ଏ ବ୍ରାହ୍ମଣ ଅଛନ୍ତି । ଏମାନଙ୍କ ମଧ୍ୟରେ ସ୍ମାର୍ତ୍ତ ଓ ବୈଷ୍ଣବମତାବଲମ୍ବୀ ଦୁଇଟି ଦଳ ଅଛି । ବୋମ୍ବାଇ ପ୍ରଦେଶରେ ସାରସ୍ୱତ ବ୍ରାହ୍ମଣମାନେ ସେନ୍‌ୱୀ ନାମରେ ପରିଚିତ—ବିଶ୍ୱକୋଷ ।] ୫ । କଳ୍ପବିଶେଷ; ସାରସ୍ୱତ କଳ୍ପ ( ଦେଖ )— 5. Sāraswata kalpa ( See ). ୬ । ସରସ୍ୱତୀ ନଦୀପୁତ୍ର ମୁନିବିଶେଷ—6. Name of a sage who

was the son of the Saraswatī river. ୭ । ପ୍ରସିଦ୍ଧ ସଂସ୍କୃତ ବ୍ୟାକରଣବିଶେଷ—7. Title of a famous and old Sanscrit grammar. ଦେ• ବିଣ ( ଲକ୍ଷଣାର୍ଥ )—୧ । ଶ୍ରେଷ୍ଠ—1. ( figurative ) Excellent. ( ଭ—ବୋଲଇ ଶୁଣ ମଧ୍ୟରେ ସାରସ୍ୱତ ଜେଉ—ଭଞ୍ଜ, ବୈଦେହୀଶବିଳାସ । ) ୨ । ଯୋଗ୍ୟ—2. Worthy. ୩ । ସାରଯୁକ୍ତ—3. Substantial. ୪ । ପ୍ରସିଦ୍ଧ—4. Famous; celebrated. ବି—ଉତ୍କୃଷ୍ଟ ବିଷୟ; ଶ୍ରେଷ୍ଠଭାବ—Excellent idea. [ ଭ—ଧ୍ୟାନରେ ମୋ ସ୍ୱାମୀ ଭାବ, ଭାବ ଭୁ ସାରସ୍ୱତ ଯେଉ—ପ୍ରାଚୀ, ଜଗନ୍ନାଥମାହାତ୍ମ୍ୟ । ]

ସାବ, ଉତ୍କୃଷ୍ଟ, ଶ୍ରେଷ୍ଠ
ଶ୍ରେଷ୍ଠ

ସାରସ୍ୱତ କଳ୍ପ—ସଂ. ବି—୧ । ବ୍ରହ୍ମାଙ୍କ ଦିବସବିଶେଷ—1. Name Sāraswata kalpa of one of the days of Brahmā. ୨ । ସରସ୍ୱତୀଙ୍କର ଉପାସନା ପ୍ରକରଣ—2. The mode prescribed for worshipping the Goddess Saraswati. [ ଦ୍ର—ଏହି ବିଧିରେ ଉପାସନା କଲେ ଭକ୍ତ ବାକ୍‌ସିଦ୍ଧ ହୁଏ; ସରସ୍ୱତୀଙ୍କ ମନ୍ତ୍ର ଐଁ । ଏହି ମନ୍ତ୍ର ୧୨ ଲକ୍ଷ ଜପ କଲେ ମୂକ ବ୍ୟକ୍ତି ସୁଦ୍ଧା ବାଗୀଶ ହୁଏ । ଏହି କଳ୍ପ ସାଧନ କରି ଦ୍ୱୈପାୟନ ବେଦବ୍ୟାସ ହୋଇଥିଲେ—ଶବ୍ଦକୋଷ । ]

ସାରସ୍ୱତ ବ୍ରତ—ସଂ ବି—ମତ୍ସ୍ୟପୁରାଣ କଥିତ ସରସ୍ୱତୀଙ୍କ ଉପାସନାମୂଳକ Sāasrwata brata ବ୍ରତବିଶେଷ—A religious penance observed in worshipping the Goddess Saraswati. [ ଦ୍ର—ଏହି ବ୍ରତରେ ଅଷ୍ଟମୀ ଦିନ ସରସ୍ୱତୀଙ୍କ ପୂଜା କରାଯାଏ ଓ ୧୩ ମାସ ପର୍ଯ୍ୟନ୍ତ ପ୍ରତି ଅଷ୍ଟମୀ ଦିନ ଏ ବ୍ରତ କରିବାକୁ ହୁଏ । ଏ ବ୍ରତ କଲେ ମନୁଷ୍ୟ ବିଦ୍ୟା, ଅର୍ଥ, ଧାର୍ମିକତ୍ୱଗୁଣ ଓ ମୋକ୍ଷଲାଭ କରେ । ]

ସାରସ୍ୱତ ବ୍ରାହ୍ମଣ—ସଂ. ବି—ସାରସ୍ୱତ ୩ ( ଦେଖ ) Sāraswata brāhmana Sāraswata 3 ( See )

ସାରସ୍ୱତୀୟ—ସଂ. ବିଣ ( ସରସ୍ୱତୀ+ଈୟ )—ସରସ୍ୱତୀ ସମ୍ବନ୍ଧୀୟ—Sāraswatīya Relating to Saraswati. (ସାରସ୍ୱତ୍ୟ—ଅନ୍ୟରୂପ)

ସାରସ୍ୱତୋତ୍ସବ—ସଂ. ବି—ଶ୍ରୀପଞ୍ଚମୀ; ମାଘ ଶୁକ୍ଳ ପଞ୍ଚମୀ; ସରସ୍ୱତୀ ପୂଜା Sāraswatotsaba —The worship and festival done on the 5th day of the bright fortnight of Māgha for Goddess Saraswati.

ସାର ହୀନ—ସଂ. ବିଣ ( ବହୁବ୍ରୀ ତତ୍ )—ସାରଶୂନ୍ୟ; ଅସାର—Sāra hīna Having no substance.

ସାରା—ସଂ. ବିଣ ( ସାର+ଅ )—୧ । କୃଷ୍ଣତ୍ରିବୃତା (ଶବ୍ଦରତ୍ନାବଳୀ) Sārā —1. The black variety of Ipomoea Turpethum. ୨ । ଦୁବା; ଦୁବ (ବୈଦ୍ୟକ) —2. Doob grass. ୩ । (ବୈଦ୍ୟକ) ଶାଳୋ; ଧଉଳା; ଦେବୁଳଥ ସିଜୁ, ସେହୁଣ୍ଡଭେଦ—3. Euphorbia Antiquorum; Origanum Valgoris. ୪ । କଦଳୀ ( ହି. ଶ )—4. Plantain. ୫ । ତାଳଶଙ୍କ ( ହି. ଶ ) ( ଦେଖ )—5. Tālīsapatra ( See ). ଦେ. ବିଣ ( ସଂ. ସମଗ୍ର )—୧ । ସମୁଦାୟ; ସମସ୍ତ—1. Whole; entire. ( ଯଥା—ସାରା ଦିନ, ସାରା ରାତି । ) ୨ । ସମ୍ପୂର୍ଣ୍ଣ—2. Full; complete. (ଯଥା—ସାରା ସଂସାର) ୩ । ହାରାହାରୀ (ସ ସାର) ହାରାହାରି—3. Mean; nett. (ଯଥା—ସାରା ଦାମ ) ୪ । ସାରଯୁକ୍ତ; ସାରଗର୍ଭ; ସାରବାନ୍—4. Substantial. ( ଯଥା—ସାରା କଥା । ) ୫ । ଶେଷରେ ନିଶ୍ଚିନ୍ତ ବା ମୀମାଂସିତ—5. Final; finally settled. ( ଯଥା—ସାରା ଭାଉ, ସାରା ଦର । ) ୬ । ପ୍ରହାରଦ୍ୱାରା ଶାସିତ—6. Brought under control or reduced to submission by punishment. ( ଯଥା—ମାଡରେ ତାକୁ ସାରା କରିଦ । ) ୭ । ନିଃଶେଷ; ସମ୍ପୂର୍ଣ୍ଣରୂପେ ଶେଷାବନ୍ତ—7. Completed; finished. କ୍ରି, ବିଣ—ସାରା; ତମାମ—Throughout. [ ଭ—ତରୁଣ ସାରା ସାହେବଙ୍କ ଦୁଆରେ ନେଉଳ ପରି ଲୁଙ୍ଗ ଲୁଙ୍ଗ ହେବାକୁ ନାହିଁ—ଫକୀରମୋହନ. ଛ ମାଣ ଆଠଗୁଣ୍ଠ । ] [ ଭ—ନ ହେବାକୁ କଇଁଭରା । କଟିବ ଜୀବନ ସାରା—ବାଲକୃଷ୍ଣ, ଭକାଘୁଅ, ଭକାହିଁ ଥ । ]

ସାରା
ସାରା
ସାରାହାରୀ
ସାବ
ସାର
ଠୀକ
ଠିକ
ସାରା
ସାରା

ସାରାଂଶ—ସଂ. ବି (କର୍ମଧା; ସାର+ଅଂଶ)—୧ । ପଦାର୍ଥର ଶ୍ରେଷ୍ଠାଂଶ Sārāmsa ବା ମଜ୍ଜା—1 The pith or marrow of any thing. ୨ । ଅର୍କ—2. Essence. ୩ । ସଂକ୍ଷିପ୍ତ ମର୍ମ; କଥାର ମର୍ମ—3. The purport or summary or synopsis of any thing. ଦେ. ବି—ଦରଦାମର ସ୍ଥିରୀକରଣ—Settlement of price after negotiation

ସାରା କଥା—ଦେ. ବି—୧ । ଶେଷ ସିଦ୍ଧାନ୍ତରୂପେ ମୀମାଂସିତ କଥା—Sārā kathā 1 Finally settled word. ୨ । ସାର—ସାବ କଥା सार बात ଯୁକ୍ତ ବିଷୟ—2. Essential thing

ସାର କରି ଦେବା—ଦେ. କ୍ରି—୧ । ଭୂମି ତଳକୁ ସମାନ କରିବା—Sārā kari debā 1. To level the ground. ସାব করে দেওয়া बराबर करदेना (ସାର କରିବା—ଅନ୍ୟରୂପ) ঠাণ্ডা করে দেওয়া ୨ । ଦଣ୍ଡ ଦେବା; ଶାସିତ କରିବା; ଶାସ୍ତି ठंडा करदेना ଦେବା—2. To punish. [ ଭ—ଠକ ଠାପୁଆ ଲୋକମାନଙ୍କୁ କାଳ । ସାର କରନ୍ତି ସେହୁ ହୁଏ ପ୍ରବଳ—ବ୍ରଜନାଥ. ସମରତରଙ୍ଗ । ] ୩ । କଳହ ମୀমাংসা করা କରିବା; ମୀମାଂସା କରିବା; ଦୁଇ ଜଣଙ୍କ ବିବାଦ ବା निपटारा करदेना କଳହ ମତଭେଦକୁ ମଧ୍ୟସ୍ଥତାଦ୍ୱାରା ମୀମାଂସା କରିବା—3. To finally settle the difference between two persons by mediation. ୪ । କୌଣସି କାର୍ଯ୍ୟକୁ ସମାପ୍ତ କରିବା—

ସାସୁ—ସଂ. ବଣ (ସହାର୍ଥ ବହୁବ୍ରୀହି; ସ+ଅସୁ)—ପ୍ରାଣବିଶିଷ୍ଟ; ଜୀବନ୍ତ—Alive; living.
Sāsu

ସାସୂୟ—ସଂ. ବଣ. ପୁଂ (ସ+ଅସୂୟା+ଅ)—ଅସୂୟାବିଶିଷ୍ଟ—
Sāsūya (ସାସୂୟା—ସ୍ତ୍ରୀ) Spiteful.

ସାସେରାମ—ଦେ. ବ (ନାମ) (ସଂ. ସହସ୍ରାରାମ)—ବିହାର ସାହାବାଦ
Sāserāma ଜିଲ୍ଲାର ଗୋଟିଏ ସବ୍‌ଡିଭିଜନ୍ ଓ ତହିଁର ନଗର—
सासेराम Sāseram, a Subdivision and town of
सासेराम Sahabad district. [ ଦ୍ର—ଏହି ନଗରରେ
ପୂର୍ବେ ସହସ୍ର ବୌଦ୍ଧ ଆରାମ ଥିଲା । ନିକଟରେ ଏକ
କୋଶ ଦୂରରେ ପର୍ବତଶିଖରରେ ପ୍ରସ୍ତର ଗାତ୍ରରେ
ଅଶୋକଙ୍କ ଶିଳାଲିପି ଅଛି ଓ ଅନେକ ବୌଦ୍ଧକୀର୍ତ୍ତିର
ଭଗ୍ନାବଶେଷ ଅଛି । ପାଖିର ପଠାଣ ସମ୍ରାଟ ସେର୍‌ସାହାଙ୍କ
ନିର୍ମିତ କାରୁକାର୍ଯ୍ୟ ଓ କୋରାନର ଶ୍ଳୋକସମ୍ବଳିତ କବର
ଓ ଗୋଟିଏ ବୃହତ୍ ସରୋବରର ମଧ୍ୟସ୍ଥଳରେ ଅଷ୍ଟକୋଣ-
ବିଶିଷ୍ଟ ଉକ୍ତ ପ୍ରସ୍ତରର କବର ଏଠାର ଦର୍ଶନୀୟ ବସ୍ତୁ ।
ନଗରର ଜନସଂଖ୍ୟାର ପ୍ରାୟ ଅର୍ଦ୍ଧେକ ମୁସଲମାନ୍—
ବିଶ୍ୱକୋଷ ।]

ସାସ୍ଥି—ସଂ. ବଣ (ସହାର୍ଥ ବହୁବ୍ରୀହି; ସ+ଅସ୍ଥି)—ଅସ୍ଥିବିଶିଷ୍ଟ—
Sāsthi Having bone.

ସାସ୍ନା—ସଂ. ବ (ଷସ୍ ଧାତୁ=ନିଦ୍ରିତ ହେବା+କର୍ତ୍ତି. ଆ)—
Sāsnā ଗୋରୁର ଗଳକମ୍ବଳ (ଅମର)—A dewlap of a bullock or bull.

ସାସ୍ପିଡ୍ ଇନାମ୍—ପ୍ରାଦେ. (ଗଞ୍ଜାମ) ବ. (ଇଂ. ସସ୍‌ପେଣ୍ଡେଡ୍+ଫା.
Sāspid inām ଇନାମ୍)—(ଜରଥଅ ଭାଷା)—ଲାଖରାଜ
ବାଜ୍ୟାପ୍ତି—Resumed rent-free land.

ସାସ୍ର—ସଂ. ବଣ (ସ+ଅସ୍ର)—୧ । ସାଶ୍ରୁ—1. Fearful. ୨ ।
Sāsra ରୋରୁଦ୍ୟମାନ—2. Crying. ୩ । ସରକ୍ତ—
3. With blood; bloody. ୪ । କୋଣ ସହିତ—
4. Angular.

ସାସ୍ରନୟନ—ସଂ. ବ ଓ ବଣ ପୁଂ—ସାଶ୍ରୁନୟନ (ଦେଖ)—
Sāsranayana Sasrunayana. (See)
(ସାସ୍ରନେତ୍ର, ସାସ୍ରଲୋଚନ—ଅନ୍ୟରୂପ)
[ସାସ୍ରନୟନା, ସାସ୍ରନେତ୍ରା, ସାସ୍ରଲୋଚନା—ସ୍ତ୍ରୀ. ବଣ]

ସାହ୍‌ଜାଦା—ବୈଦେ. ବ. ପୁଂ—ସାହାଜାଦା (ଦେଖ)—Sāhājādā.
Sāh-jādā (ସାହ୍‌ଜାଦୀ—ସ୍ତ୍ରୀ) (See)

ସାହ୍‌ଜାହାନ୍—ଦେ. ବ (ନାମ)—ସାହାଜାହାନ୍ (ଦେଖ)
Sah-jāhān Sāhājāhān. (See)

ସାହ—ଦେ. ବ—ସାହା ୧।୨ (ଦେଖ)
Sāha Saha 1-2. (See)

ସାହଙ୍କାର—ସଂ. ବଣ. ପୁଂ (ସ+ଅହଙ୍କାର)—ଅହଙ୍କାରଯୁକ୍ତ—
Sāhaṅkāra (ସାହଙ୍କାରା—ସ୍ତ୍ରୀ) Proud; arrogant.

ସାହଚର୍ଯ୍ୟ—ସଂ. ବ (ସହଚର+ଭାବ. ଯ)—୧ । ସଙ୍ଗ—
Sāhacharjya 1. Company. ୨ । ସଂସର୍ଗ—2. Asso-
ciation. ୩ । ସହଚରର ଭାବ—3. Companion-
ship. ୪ । ସହଗମନ—4. Accompaniment.
୫ । ସମାନାଧିକରଣ୍ୟ; ଏକାଧିକରଣ ବୃତ୍ତି—5. The
state of being together; juxtaposition.

ସାହଜିକ—ସଂ. ବଣ (ସହଜ+ଇକ)—୧। ପ୍ରକୃତିଜାତ, ସ୍ୱଭାବସିଦ୍ଧ—
Sāhajika 1. Natural. ୨ । ସହଜାତ; ଜନ୍ମଗତ—
2. Innate; in-born.

ସାହସ—ସଂ. ବ (ସହସ୍=ବଳ+ଅ; ବଳଦ୍ୱାରା ନିବୃତ୍ତ କର୍ମ)—
Sāhasa ୧ । ଅପରାଧର ଦଣ୍ଡ (ଅମର)—1. Punishment
for offence. ୨ । ଅର୍ଥଦଣ୍ଡ—2. Fine. [ଦ୍ର—
ସ୍ମୃତିଶାସ୍ତ୍ରରେ ସାହସ ବା ଦଣ୍ଡ ୩ ପ୍ରକାରର ନିର୍ଦ୍ଦିଷ୍ଟ
ଅଛି । ଯଥା—୧ । ଉତ୍ତମ ସାହସ=୮୦ ପଣ ବା ସହସ୍ର
ମୁଦ୍ରା, ୨ । ମଧ୍ୟମ ସାହସ=ଏଥିର ଅର୍ଦ୍ଧ, ୩ । ଅଧମ
ସାହସ=ଏଥିର ଅର୍ଦ୍ଧେ ।] ୩ । ବଳାତ୍କାର କୃତକାର୍ଯ୍ୟ
(ମେଦିନୀ)—3. Any act done by the use of
force. ୪ । ଦୁଷ୍କୃତ କର୍ମ; ଅପରାଧ; ପାପ (ହେମଚନ୍ଦ୍ର)-
4. Sin; offence. ୫ । ଅବିମୃଶ୍ୟକୃତ କାର୍ଯ୍ୟ
(ହେମଚନ୍ଦ୍ର)—5. An act done without due
deliberation; a rash act. ୬ । ଦ୍ୱେଷ (ହେମ-
ଚନ୍ଦ୍ର)—6. Grudge; malice. ୭ । ନରହତ୍ୟା,
ଡକାଇତି ଓ ପରଦାରଗମନାଦି ବଳପ୍ରୟୋଗଯୁକ୍ତ
ଅପରାଧ—7. Offences committed by the use
of force or violence (e. g. robbery, rape
and murder etc). [ଦ୍ର—ଦ୍ରବ୍ୟସ୍ୱାମୀର ସମ୍ମୁଖରେ
ଲୁଣ୍ଠନୀ ଲୋକ ପର ଦ୍ରବ୍ୟକୁ ବଳପୂର୍ବକ ଛଡ଼ାଇନେବାର
ନାମ ସାହସ; ମାତ୍ର ଦ୍ରବ୍ୟସ୍ୱାମୀର ଅସାକ୍ଷାତରେ ଦ୍ରବ୍ୟକୁ
ଅପହରଣ କରିବା ଓ ଉକ୍ତ ଦ୍ରବ୍ୟକୁ ନେଇ ନ ମାନିବାର
ନାମ ସ୍ତେୟ (ଚୋରି) ଅଟେ—ମନୁ ୮—୩୩୨ ।

ରାଜା ସାହସିକ (ସାହସ ଅପରାଧକାରୀ) ବ୍ୟକ୍ତିକୁ
ଅବଶ୍ୟ ଦଣ୍ଡ ଦେବେ, ଏମନ୍ତ କି, ଯେତେବେଳେ
ସାହସିକମାନଙ୍କ କର୍ତ୍ତୃକ ବର୍ଣ୍ଣାଶ୍ରମୀମାନଙ୍କର ଧର୍ମାଚରଣରେ
ପ୍ରତିବନ୍ଧକ ହୁଏ; ଦ୍ୱିଜାତୀୟ ବ୍ୟକ୍ତିମାନେ ଶସ୍ତ୍ରଧାରଣ
କରି ସାହସିକଙ୍କୁ ହତ୍ୟା କଲେ ଦୋଷଭାଗୀ ହେବେ
ନାହିଁ । ମନୁ—୮ । ୩୪୪—୩୫୧ ।

ବଳପୂର୍ବକ କୃତ ଅପରାଧର ନାମ ସାହସ । ଏହି ଶ୍ରେଣୀର
ଅପରାଧ ନାରଦସ୍ମୃତି ଅନୁସାରେ ପାଞ୍ଚଭାଗରେ ବିଭକ୍ତ ।
ଯଥା—ମନୁଷ୍ୟମାରଣ, ସ୍ତେୟ, ପରଦାରାଭିମର୍ଷଣ, ପାରୁଷ୍ୟ
ଓ ଅନୃତ । ଏହି ଶ୍ରେଣୀର ଅପରାଧକୁ ପ୍ରମାଣିତ କରିବା
ପାଇଁ ଦାସ, ସ୍ତ୍ରୀ, ଅନ୍ଧ, ବଧିର, କ୍ଲୀବ, ବାଳକ, ବୃଦ୍ଧମାନେ

ମଧ୍ୟ ସାକ୍ଷ୍ୟ ଦେଇ ପାରନ୍ତି । ] ୮ । ନରହତ୍ୟା—8. Murder. ୯ । ବଳାତ୍କାରରେ ସ୍ତ୍ରୀ ରମଣ—9. Rape. ୧୦ । ବଳାତ୍କାରରେ ଦସ୍ୟୁତା; ପର ଦ୍ରବ୍ୟର ବଳପୂର୍ବକ ଅପହରଣ—10. Robbery; forcible removal of another's property; theft accompanied with the use or show of force. [ ଦ୍ର—ଯାଜ୍ଞବଲ୍କ୍ୟ ଅନୁସାରେ ଯେଉଁ ବ୍ୟକ୍ତି 'ସାହସ' କରେ ତାହାର ହୃତଦ୍ରବ୍ୟର ମୂଲ୍ୟର ଦୁଇଗୁଣ ଦଣ୍ଡ ଓ ଯେଉଁ ବ୍ୟକ୍ତି 'ସାହସ' କରି ଅପଳାପ କରେ ବା ଲୁଚାଏ ତାହାର ହୃତ ଦ୍ରବ୍ୟର ମୂଲ୍ୟର ଚତୁର୍ଗୁଣ ଦଣ୍ଡର ବିଧାନ ଅଛି । ] ୧୧ । ଅବିମୃଶ୍ୟକାରୀ କର୍ମ—11. Rash act. ୧୨ । ଭୟରାହିତ୍ୟ; ନିର୍ଭୀକତା—12. Fearlessness. ୧୩ । ଦମ୍ଭ; ବଳଦର୍ପ; ଶୌର୍ଯ୍ୟ—13. Courage; boldness. ୧୪ । ଅତ୍ୟାଚାର—14. Oppression; violence; outrage. ୧୫ । ଅନୌଚିତ୍ୟ—15. Impropriety. ୧୬ । ଧୃଷ୍ଟତା—16. Impertinence; rudeness. ୧୭ । ଅଗ୍ନି-ବିଶେଷ; ପାକଯଜ୍ଞରେ ସ୍ଥାପିତ ଅଗ୍ନି—17. Name of a consecrated fire invoked for cooking. [ ଦ୍ର—ଯେଉଁ ଅଗ୍ନିଦ୍ୱାରା ହୋମାର୍ଥ ଚରୁ ପାକ ହୁଏ, ସେ ଅଗ୍ନିର ନାମ ସାହସ—ଶବ୍ଦକୋଷ । ]

ସାହସ କରି—ଦେ. କ୍ରି. ବିଣ—ନିର୍ଭୀକତା ସହିତ—
Sāhasa kari — Boldly; fearlessly.
সাহাস করিয়া — साहस करके

ସାହସପୂର୍ବକ, ସାହସ ସହକାରେ, ସାହସ ସହିତ } —ଅନ୍ୟରୂପ

ସାହସ କରିବା—ଦେ. କ୍ରି—୧ । ବଳାତ୍କାର କରିବା—
Sāhasa kariba — 1. To use force or violence.
সাহস করা — साहस करना
୨ । ଦୁଃସାହସିକ କର୍ମ କରିବା; ଅବିମୃଶ୍ୟକାରିତା କରିବା—2. To act rashly; to take a bold step. (ଉ—ଖେଳାଖେଳି ଶଙ୍କିନାହିଁ କି ସାହସ କଲୁ ରେ—ଦିବ୍ୟସୂର୍ଯ୍ୟ ବଶୋଦା ଚମ୍ପୁ ଶ ଗୀତ ।) ୩ । ଦୁଃସାହସିକ କାର୍ଯ୍ୟରେ ହସ୍ତକ୍ଷେପ କରିବା—3. To undertake or aspire to do a bold act.

ସାହସ ଖଟିବା—ଦେ. କ୍ରି—ଯଥେଷ୍ଟ ସାହସ ମନରେ ଜାତ ହେବା—
Sāhasa khatibā — Having sufficient courage.
সাহস পাওয়া — साहस होना

ସାହସ ବାନ୍ଧିବା—ଦେ. କ୍ରି—୧ । ଦମ୍ଭ ଧରିବା; ଚିତ୍ତକୁ ଦୃଢ଼କରିବା-
Sāhasa bāndhibā — 1. To fortify one's mind with courage.
সাহস বাঁধা — साहस बांधना
( ବାନ୍ଧ' ତୁ ସାହସ ହୃଦେ ଥରେ ଦୁରାଶୟ—ରାଧାନାଥ. ବେଣୀସଂହାର ।) ୨ । ସାହସ ଅବଲମ୍ବନ କରିବା—2. To have or summon courage.

ସାହସା—ଦେ. ବି—ଦମ୍ଭ—Courage. (ଉ—ରଣରଙ୍ଗେ
Sāhasā
সাহস — साहस
ପଣ୍ଡିତମାନଙ୍କର, ତାରି ମଦନେ ବଡ ସାହସା—ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । )
ବିଣ. ପୁଂ—ଅସମସାହସିକ—Fool-hardy.

ସାହସାଙ୍କ—ସଂ. ବି (ସାହସ=ଶୌର୍ଯ୍ୟ ଅଛି ଅଙ୍କ=ଚିହ୍ନ ଯାହାର)—
Sāhasāṅka — ବିକ୍ରମାଦିତ୍ୟ ରାଜା ( ଜଟାଧର )—King Bikramāditya.

ସାହସିକ—ସଂ. ବିଣ—୧ । ନିର୍ଭୀକ—1. Fearless. ୨ ।
Sāhasika — ଶୌର୍ଯ୍ୟଶୀଳ—2. Courageous; bold.
( ସାହସିକା—ସ୍ତ୍ରୀ ) ୩ । ବଳାତ୍କାର ଅପରାଧକାରୀ—3. Committing offence by the use of force.
ବି—ଯେଉଁ ବ୍ୟକ୍ତି ଦସ୍ୟୁତା, ପରଦାର, ନରହତ୍ୟାଦି ୫ଟି ଅପରାଧ କରେ—A person who commits any of the offences of murder, rape, robbery, rude speech and falsehood. [ଦ୍ର—ମନୁଶାସ୍ତ୍ର ଅନୁସାରେ ଦସ୍ୟୁ, ମନୁଷ୍ୟ ମାରକ, ପାରଦାରିକ, ପରୁଷବାଦୀ ଓ ଅନୃତବାଦୀ ବ୍ୟକ୍ତିମାନେ କୌଣସି ବିଷୟରେ ସାକ୍ଷୀରୂପେ ଗୃହୀତ ହେବେ ନାହିଁ । ବଳପୂର୍ବକ ଅନ୍ୟକୁ ମାଡ଼ ଦେବା ବା ହତ୍ୟା କରିବା, ଡକାଇତି, ବଳପୂର୍ବକ ସ୍ତ୍ରୀସମ୍ଭୋଗ, ବଳପୂର୍ବକ ପର କ୍ଷେତ୍ରାଧିକାର, ପର ସ୍ତ୍ରୀ ସଙ୍ଗମ ଏ ପାଞ୍ଚ ଅପରାଧକାରୀଙ୍କୁ ସାହସିକ ବୋଲଯାଏ ।]

ସାହସିକତା—ସଂ. ବି (ସାହସିକ+ଭାବ. ତା)—ସାହସିକର ଭାବ ବା
Sāhasikatā — କାର୍ଯ୍ୟ—The act of a Sāhasika.
(ସାହସିକ୍ୟ—ଅନ୍ୟରୂପ)

ସାହସିବା—ଦେ. କ୍ରି. ( ପଦ୍ୟ )—ସାହସ କରିବା—
Sāhasibā — To undertake to do a bold or
সাহস করা — साहस करना — forcible act.
[ଦ୍ର—ବୋଲଇ ଇନ୍ଦ୍ର କେବେ ବସି, ସଂଗ୍ରାମ କରିବ ସାହସି—ଜଗନ୍ନାଥ, ଭାଗବତ । ]

ସାହସୀ—ସଂ. ବିଣ. ପୁଂ ( ସାହସ+ଅସ୍ତି ଅର୍ଥରେ ଇନ୍; ୧ମା ୧ବ)—
Sāhasī — ୧ । ଶୌର୍ଯ୍ୟଶୀଳ—1. Courageous.
(ସାହସିନୀ—ସ୍ତ୍ରୀ) ୨ । ନିର୍ଭୀକ—2. Bold; fearless;
(ସାହସିଆ—ଦେ. ରୂପ) undaunted.

ସାହସ୍ର—ସଂ. ବି (ସହସ୍ର+ସମୂହାର୍ଥେ ଅ)—୧ । ବହୁ ସହସ୍ର;
Sāhasra — ସହସ୍ର ସମୂହ—1. Many thousands. ୨ । ସହସ୍ରମାତ୍ର—2. A thousand only. ୩ । ସହସ୍ର ସେନାର ଅଧିନାୟକ—3. A commander of one thousand soldiers. ବିଣ—୧ । ସହସ୍ର ସମ୍ବନ୍ଧୀୟ—Relating to one thousand. ୨ । ସହସ୍ରସଂଖ୍ୟକ—2. Numbering one thousand. ୩ । ସହସ୍ର ସଂଖ୍ୟକ ବ୍ୟକ୍ତିଙ୍କ ସହାୟପ୍ରାପ୍ତ—3. Assisted or supported by one thousand persons.

୪ । ସହସ୍ର ସଂଖ୍ୟକ ମୁଦ୍ରାଦ୍ୱାରା କ୍ରୀତ—4. Purchased with a thousand coins. ୫ । ସହସ୍ର ଧନ ମୂଲ୍ୟ ପରିମିତ—5. Valued at one thousand coins; of the value of one thousand coins.

**ସାହସ୍ରକ**—ସଂ. ବିଣ (ସାହସ୍ର+କ)—ସହସ୍ର ସଂଖ୍ୟା ବିଶିଷ୍ଟ—
Sāhasraka Numbering a thousand.

**ସାହସ୍ରିକ**—ସଂ. ବିଣ (ସହସ୍ର+ଇକ)—ସହସ୍ର ସମ୍ବନ୍ଧୀୟ—
Sāhasrika Relating to a thousand. ବି,—ସହସ୍ର ଭାଗର ଏକଭାଗ (ବିଶ୍ୱକୋଷ)—One thousandth part.

**ସାହା**—ଦେ. ବି (ସଂ. ସାଧୁ)—୧ । ଶୁଣ୍ଡି ଓ ତେଲିଆଦି ବ୍ୟବସାୟୀଙ୍କର ବଂଶୋପାଧି—1. Family title of trading castes. ୨ । ବିହାରର ବୈଶ୍ୟ ଓ କାୟସ୍ଥମାନଙ୍କ ବଂଶୋପାଧି ବିଶେଷ—2. Family title of Kāyasthas and Baiśyas in Bihar. ୩ । ପୂର୍ବବଙ୍ଗରେ ବଣିକଜାତିର ବଂଶୋପାଧି ବିଶେଷ—3. A family title of a caste of traders in East Bengal. ୪ । (ସଂ. ସହାୟ) ଆଶ୍ରୟଦାତା—4. Refuge. [ଉ—ଝଡ଼ ବଢ଼ି ମଡ଼କରେ, ସାହା ହେବ ପ୍ରଜାକୁଳେ—ବାଳକୃଷ୍ଣ-ରଜାପୁଅ ରଜାହୋଇଥି] ୫ । ସହାୟ—5. Help. [ଉ—ତୁମ୍ଭ ବାହୁ ସାହାରେ ଯୁଧିଷ୍ଠିର ରାଜା, ଧୃତରାଷ୍ଟ୍ର ପୁତ୍ରେ ଯୁଝିବା କଲେ ମଜା—କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।] ୬ । ସହାୟକାରୀ; ସାହାଯ୍ୟକାରୀ—6. Helper; supporter. [ଉ—ନ ଭଙ୍ଗରେ ଶୁଭାଙ୍ଗୀ ଭରଗ ନୁଅ ସାହା—କବିସୂର୍ଯ୍ୟ. କଂଶୋଷଚମ୍ପୂ. ୫ ଗୀତ ।] ୭ । (ସଂ. ଶ୍ୱାସ) ପ୍ରାଣବାୟୁ—7. Life-breath. ୮ । ଜୀବନୀଶକ୍ତି—8. Vital spark. ୯ । ପ୍ରାଣ—9. Life. [ଉ—ସଞ୍ଜକୁମୁଦ ସମ ହାସ ବିକାସ, ତୁ ବିନା ସାହା ରେ—କବିସୂର୍ଯ୍ୟ. ସଙ୍ଗୀତ ।] ୧୦ । ଆତ୍ମା—10. Soul. ୧୧ । (ସଂ. ଶାଖା) ଶାଖା—11. Branch. ୧୨ । (ସଂ. ସଖା) ବନ୍ଧୁ—12. Friend. ୧୩ । ଶଗଡ଼ର ଅଗ ଫଳ—13. The cross-bars put between the shafts of a bullock cart. ବୈଦେ. ବି (ଫା. ଶାହ.)—୧ । ରାଜା—1. King. ୨ । ପାରସ୍ୟ ରାଜାଙ୍କ ଉପାଧି—2. Saha; the title of the king of Persia. ୩ । ମୁସଲମାନମାନଙ୍କ ବଂଶୋପାଧିବିଶେଷ—3. A family title of the Mahomedans. ୪ । ପ୍ରାଚୀନ ଭାରତର କେତେକ ମୁସଲମାନ୍ ରାଜାଙ୍କ ବଂଶୋପାଧି—4. Family title of some Mahomedan kings of India. [ଦ୍ର—ଫାର୍ସୀ—'ଶାହ' ଶବ୍ଦରୁ 'ସାହା' ଶବ୍ଦର ବ୍ୟବହାର ଭାଷାରେ ହୋଇଥିବା କଥା କେତେ ଲୋକ କହନ୍ତି । କିନ୍ତୁ ବଙ୍ଗଳା ବିଶ୍ୱକୋଷକାର ବହୁ ଗବେଷଣାଦ୍ୱାରା ସ୍ଥିର କରିଅଛନ୍ତି ଯେ ଫାର୍ସୀ ଭାଷାର ବ୍ୟବହାର ପୂର୍ବରୁ ଭାରତରେ 'ସାହ' ବା 'ସାହି' ଶବ୍ଦ ପ୍ରଚଳିତ ହେଉଥିଲା । ଭାରତୀୟ ପ୍ରାଚୀନ ଶିଳାଲିପି ଓ ମୁଦ୍ରାଲିପିରେ ଗାନ୍ଧାର, ରାଜପୁତାନା, ପଞ୍ଜାବ ଓ ସୌରାଷ୍ଟ୍ରରେ 'ସାହ' ରାଜବଂଶର ଉଲ୍ଲେଖ ଅଛି । ମୁଦ୍ରାତତ୍ତ୍ୱବିଦ୍ ରାପ୍‌ସୋନ୍ ସାହେବ ମୁଦ୍ରାସମୂହ ଆଲୋଚନା କରି ସ୍ଥିର କରିଅଛନ୍ତି ଯେ, ଖ୍ରୀଷ୍ଟପୂର୍ବ ୨ୟ ଅବ୍ଦଠାରୁ ମାମୁଦ୍‌ଗଜନୀଙ୍କ ଭାରତ ଆକ୍ରମଣ (ଖ୍ରୀଷ୍ଟାବ୍ଦ ୧୦୨୪) ପର୍ଯ୍ୟନ୍ତ 'ସାହି' ରାଜାମାନେ ଗାନ୍ଧାରରେ ରାଜତ୍ୱ କରୁଥିଲେ । ମହାରାଜ ସମୁଦ୍ରଗୁପ୍ତଙ୍କ ଅଲ୍ଲାହାବାଦସ୍ଥ ସ୍ତମ୍ଭଲିପିରୁ ଜଣାପାଏ ଯେ, ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀର 'ସାହି' ଓ 'ସାହାନୁସାହି' ରାଜବଂଶ ଭାରତରେ ପ୍ରବଳ ଥିଲେ ଓ ଏମାନଙ୍କୁ ଜୟ କରି ସମୁଦ୍ରଗୁପ୍ତ ଭାରତ ସମ୍ରାଟ୍ ହୋଇଥିଲେ । ମୁସଲମାନ୍ ବାଦ୍‌ସାହାମାନେ ଯେଉଁପରି ସାହା ଓ ସାହାନ୍‌ସାହା ଉପାଧିରେ ପରିଚିତ ହେଉଥିଲେ, ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀଠାରୁ ଭାରତରେ ମହତ୍ତ୍ୱବ୍ୟଞ୍ଜକ 'ସାହାନୁସାହି' ଉପାଧିବିଶିଷ୍ଟ ରାଜବଂଶ ରାଜତ୍ୱ କରୁଥିଲେ ।] ୫ । (ଫା. ଶାଦୀ) ବିବାହ—5. Marriage. [ଦ୍ର—ଏହି ଶବ୍ଦ ବାହା ଶବ୍ଦ ସଙ୍ଗେ ସହଚରରୂପେ ବ୍ୟବହୃତ ହୁଏ । ଯଥା—ବାହାସାହା=ବିବାହାଦି ।]

Sāhā
সাহা साहा
সাহায্য साहाय
সহায় साहा
প্রাণ साँस
শাখা डाली
সখা सखा
মুখী বাতা कीला
শাহ शाह
বিয়ে शादी

**ସାହା ଆଲମ୍**—ବୈଦେ. ବି (ନାମ)—ଦିଲ୍ଲୀର ଶେଷ ନାମ ମାତ୍ର ମୋଗଲ ସମ୍ରାଟ—The last nominal Moghul Emperor. [ଦ୍ର—ଏ ଦିଲ୍ଲୀର ଶେଷ ମୋଗଲ ସମ୍ରାଟ୍ ଥିଲେ । ଏ ଖ୍ରୀ. ୧୭୬୧ରେ ସମ୍ରାଟ ହୋଇଥିଲେ । ଏ ପ୍ରଥମେ ୧୭୬୪ରେ ଲର୍ଡ କ୍ଲାଇବଙ୍କ ଅମଳରେ ଇଂରାଜମାନଙ୍କଦ୍ୱାରା ପରାସ୍ତ ହୋଇ ମୋଗଲ ରାଜଧାନୀ ଦିଲ୍ଲୀ ପରିତ୍ୟାଗ କରି ଇଂରାଜଙ୍କଠାରୁ ବାର୍ଷିକ ୨୪ ଲକ୍ଷ ଟଙ୍କା ବୃତ୍ତି ପାଇ ନାମମାତ୍ର ସମ୍ରାଟ୍‌ରୂପେ ଅଲ୍ଲାହାବାଦରେ ଇଂରାଜମାନଙ୍କ ଦାକ୍ଷିଣ୍ୟରେ ବାସ କଲେ । ପରେ ସିନ୍ଧିଆ ଏହାଙ୍କ ବନ୍ଦୀ କରି ରଖିଥିଲେ । ଜଣେ ଅଫଗାନ୍ ଏହାଙ୍କ ଆଖି ଫୁଟାଇ ଦେଇଥିଲା । ଇଂରାଜମାନେ ୧୮୦୮ରେ ଏହାଙ୍କୁ କାରାମୁକ୍ତ କରି ପେନ୍‌ସନ ଦେଲେ । ଏହାଙ୍କ ଅମଳରେ ମୋଗଲ ରାଜ୍ୟର ଶେଷ ହେଲା ଓ ଇଂରାଜ ରାଜତ୍ୱ କ୍ରମେ ବିସ୍ତୃତ ଲାଭ କଲା ।]

Sāhā ālam
সাহা আলম
शाह आलम

**ସାହା ଉଡ଼ିବା**—ଦେ. କ୍ରି—୧ । ପ୍ରାଣ ଛାଡ଼ିଯିବା; ଦେହରୁ ପ୍ରାଣବାୟୁ ବହିର୍ଗତ ହେବା—1. The passing away of the life-breath from the body. ୨ । ପ୍ରାଣାନ୍ତକ କଷ୍ଟ ବା ପ୍ରାଣସଙ୍କଟ ଉପସ୍ଥିତ ହେବା; ହଂସା ଉଡ଼ିଯିବା—2. The state of a person who is about to die. ୩ । ଦେହତ୍ୟାଗ; ମୃତ୍ୟୁ ଘଟିବା—3. Dying.

Sāhā uṛibā
প্রাণ উড়া
साँस निकलना

**ସାହାଁ**—ପ୍ରାଦେ (ଉତ୍ତରାଞ୍ଚଳ) ବି—ସାହାସ—
Sāhāñ Courage; bravery.

**ସାହାଁସେ**—ପ୍ରାଦେ (ଲରଥ) କ୍ରି. ବିଣ—ଏକାଥରକେ—
Sāhāñse All at once.

**ସାହାକାର୍**—ପ୍ରାଦେ (ସମ୍ବଲପୁର) ବି—୧ । ସାହୁକାର; ଉତ୍ତମର୍ଣ୍ଣ; Sāhākār ମହାଜନ—1. Creditor. ୨ । କୁସୀଦଜୀବୀ—2. An usurer.

**ସାହା ଖର୍ଚ୍ଚୀ**—ଦେ. ବିଣ—ଯିଏ ଉଚ୍ଚତର ଅସ୍ଥିର ବୃତ୍ତି ଯେ ବ୍ୟୟ କରେ Sāhā kharchi ନାହିଁ; ଅପବ୍ୟୟୀ—Prodigal; spend-ସାଖରଚେ thrift. (ଉ—ଲୋକଟା ବଡ ସାହାଖର୍ଚ୍ଚୀ ଥିଲା । साहा खर्ची ଫକୀରମୋହନ. ଛମାଣ ଅଠଗୁଣ୍ଠ ।) (ସାହା ଖରଚୀ, ସାହା ଖରଚଅ—ଅନ୍ୟରୂପ)

**ସାହାଜ**—ଦେ ବି ( ବୈଦ୍ୟକ ) ( ସଂ. ସର୍ଜ୍ଜ=ଅସନ ବା ଶାଳ Sāhāja କାଠ)—ଏକପ୍ରକାର ଅରଣ୍ୟ ତରୁ—A sort of शालकाठ hardy timber tree. [ଦ୍ର—ଏଥିର ଚାଠ ଶକ୍ତ सलईकापेड थିବାରୁ ଏଥିରେ ଶଗଡ଼ ଦଣ୍ଡାଆଦି ତିଆରି ହୁଏ । ଏହା ଅସନକାଠ ଶ୍ରେଣୀର ।]

**ସାହାଜାଦା**—ବୈଦେ. ବି, ପୁଂ (ଫା. ସାହ୍‌ଯାଦା)—ରାଜପୁତ୍ର—
Sāhājādā Prince; a king's son.
(ସାହାଜାଦୀ—ସ୍ତ୍ରୀ) साहाजादा शाहज़ादा

**ସାହାଜାହାଁ**—ଦେ. ବି (ନାମ) (ଫା. ଅକ୍ଷରିକ ଅର୍ଥ ଜଗତ୍‌ପତି)—Sāhājāhāñ ଦିଲ୍ଲୀର ପଞ୍ଚମ ମୋଗଲ ସମ୍ରାଟ—Sāhjāhān; (ସାହାଜାହାନ୍—ଅନ୍ୟରୂପ) the fifth Moghul Emperor, साहाजाहाँ of Delhi. [ ଦ୍ର—ଏ ଅରଙ୍ଗଜେବଙ୍କ ପିତା, शाहजहाँ ଜାହାଙ୍ଗୀରଙ୍କ ଚତୁର୍ଥ ପୁତ୍ର ଓ ଅକବରଙ୍କ ପୌତ୍ର । ଜାହାଙ୍ଗୀରଙ୍କ ରାଜପୁତଜାତୀୟା ପତ୍ନୀ ଯୋଧବାଈଙ୍କ ଗର୍ଭରୁ ଏହାଙ୍କର ଜନ୍ମ । ଜାହାଙ୍ଗୀରଙ୍କ ପ୍ରେୟସୀ ମହିଷୀ ନୁରଜାହାନଙ୍କ ଭାଇଙ୍କ କନ୍ୟା 'ମମତାଜ୍‌ମହଲଙ୍କ' ସଙ୍ଗେ ଏହାଙ୍କର ବିବାହ ହୋଇଥିଲା । ଜାହାଙ୍ଗୀରଙ୍କ ଜୀବଦ୍ଦଶାରେ ଏ ପିତାଙ୍କର ବିଦ୍ରୋହୀ ହୋଇ ବଙ୍ଗଦେଶ ଓ ଦାକ୍ଷିଣାତ୍ୟରେ ବାସ କରୁଥିଲେ ଓ ଜାହାଙ୍ଗୀରଙ୍କ ମୃତ୍ୟୁ ପରେ ଏ କୌଶଳକ୍ରମେ ୧୬୨୮ ସାଲରେ ଦିଲ୍ଲୀର ରାଜସିଂହାସନ ଅଧିକାର କଲେ ଏବଂ ଆପଣାର ଅଧିକାଂଶ ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ବଧ କରାଇ ଆପଣାର ଅଧିକାରକୁ ନିଷ୍କଣ୍ଟକ କରିଥିଲେ । ଏହାଙ୍କର ପ୍ରଥମ ନାମ ଖୁରମ୍ ଥିଲା । ଏ ଜାହାଙ୍ଗୀରଙ୍କ ଅମଳରେ ଉଦୟପୁରର ରାଜାଙ୍କୁ ପରାଜିତ କରି ପିତାଙ୍କ ନିକଟରୁ 'ସାହାଜାହାନ୍' ଉପାଧି ପାଇ ଥିଲେ । ଏହାଙ୍କ ଦ୍ୱାରା ଦାକ୍ଷିଣାତ୍ୟର ବିଜୟନଗର ଓ ଗୋଲକୁଣ୍ଡା ରାଜ୍ୟ ଦୁଇଟି ମୋଗଲସାମ୍ରାଜ୍ୟଭୁକ୍ତ ହୋଇଥିଲା ।

ଏହାଙ୍କର ଚାରିପୁତ୍ର ମଧ୍ୟରୁ ତୃତୀୟପୁତ୍ର ଅରଙ୍ଗଜେବ୍ ଏହାଙ୍କର ପୀଡ଼ିତାବସ୍ଥାରେ ଏହାଙ୍କୁ ବନ୍ଦୀ କରି ଓ ଅନ୍ୟ ଭ୍ରାତାମାନଙ୍କୁ ପରାସ୍ତ କରି ୧୬୫୮ ମସିହାଠାରୁ ୧୬୬୫ ମସିହା ପର୍ଯ୍ୟନ୍ତ ପିତାଙ୍କ ନାମରେ ରାଜ୍ୟ ଚଳାଇଲେ ଓ ୧୬୬୬ ଅବ୍ଦରେ ଏହାଙ୍କର ମୃତ୍ୟୁ ପରେ ନିଜେ ଅଲମ୍‌ଗୀର ଅର୍ଥାତ୍ "ଜଗଜ୍ଜୟୀ" ଉପାଧିଗ୍ରହଣ କରି ସମ୍ରାଟ୍ ହେଲେ । ଏହାଙ୍କର ସିଂହାସନାରୋହଣ ୧୬୨୮, ରାଜତ୍ୱ ୧୬୫୮ ପର୍ଯ୍ୟନ୍ତ ଓ ମୃତ୍ୟୁ ୧୬୬୬ ରେ ହୋଇଥିଲା ।

ସାହାଜାହାନ୍ ଅକବରଙ୍କ ସାମ୍ୟନୀତି ଅନୁସରଣ କରି ହିନ୍ଦୁ ମୁସଲମାନ୍‌ମାନଙ୍କୁ ସମାନ ଦୃଷ୍ଟିରେ ଦେଖୁଥିଲେ । ଏ ଆଡ଼ମ୍ବରପ୍ରିୟ ଥିଲେ ଏବଂ ୬ କୋଟି ଟଙ୍କା ବ୍ୟୟ କରି ତାତ୍କାଳୀନ ରାଜଧାନୀ ଆଗ୍ରାଠାରେ ମଣିମୁକ୍ତାଖଚିତ ଗୋଟିଏ ମୟୂରସିଂହାସନ ନିର୍ମାଣ କରାଇଥିଲେ । ଏହାଙ୍କ ରାଜତ୍ୱର ଚତୁର୍ଦ୍ଦଶ ବର୍ଷରେ ଏହାଙ୍କ ମହିଷୀ ମମତାଜ୍‌ମହଲ୍ ପରଲୋକ ଗମନ କରିବାରୁ ତାଙ୍କ ସ୍ମରଣାର୍ଥ ଏ କାରୁକାର୍ଯ୍ୟଖଚିତ ଜଗତରେ ଅତୁଳନୀୟ ଶ୍ୱେତମର୍ମର ପ୍ରସ୍ତରର ତାଜ୍‌ମହଲ୍ ନାମକ ଗୋଟିଏ ସମାଧି ଆଗ୍ରାଠାରେ ୩ କୋଟି ସାଢେ ୧୭ ଲକ୍ଷ ମୁଦ୍ରା ବ୍ୟୟରେ ନିର୍ମାଣ କରାଇଥିଲେ । ଆଗ୍ରାଠାରେ ଗୋଟିଏ ମୋତିମସ୍‌ଜିଦ୍ ଓ ଦିଲ୍ଲୀଠାରେ ଜୁମା ମସ୍‌ଜିଦ୍ ଓ ରାଜପ୍ରାସାଦ ଓ ଦେୱାନ୍-ଇ-ଖାସ୍ ନାମକ ରାଜଦରବାର ମଣ୍ଡପ ଅତି ବହୁଲକ୍ଷ ଟଙ୍କା ବ୍ୟୟରେ ନିର୍ମାଣ କରାଇଥିଲେ । ଏହି ସୌଧମାନଙ୍କ ମଧ୍ୟରୁ ଅଧିକାଂଶ ବର୍ତ୍ତମାନ ପର୍ଯ୍ୟନ୍ତ ବିଦ୍ୟମାନ ଥାଇ ସର୍ବ ଜଗତକୁ ସ୍ତମ୍ଭିତ ଓ ବିସ୍ମିତ କରୁଅଛି ।]

**ସାହାଜାହାନ୍ ପୁର**—ଦେ. ବି (ନାମ)—ଆଗ୍ରା ଏବଂ ଅଯୋଧ୍ୟା ଯୁକ୍ତ-Sāhajāhān pura ପ୍ରଦେଶର ଗୋଟିଏ ନଗର—A town (ସାହାଜାନ୍ ପୁର—ଅନ୍ୟରୂପ) in the United Provinces साहाजाहान पुर of Agra and Oudh. [ ଦ୍ର—ଏଠାରେ शाहजाहान पुर ପ୍ରସ୍ତୁତ ଦେଶୀ ବା ଅରକ୍ଷିତ (Rum) ବିଖ୍ୟାତ । ମୋଗଲ ବାଦଶାହା ସାହାଜାହାନଙ୍କ ନାମ ଅନୁସାରେ ଏହି ନଗରର ନାମକରଣ ହୋଇଅଛି ।]

**ସାହାଜୀ**—ଦେ. ବି (ନାମ)—ଶିବାଜୀଙ୍କ ପିତା—Father of Sāhāji Sibāji. [ଦ୍ର—ଏ ବିଜାପୁର ସୁଲତାନଙ୍କ ଅଧୀନ ଗୃହସ୍ଥ [ସାହାଜୀ ଭୌଁସଲ—ଅନ୍ୟରୂପ] କରିଥିଲେ ଓ ତାଙ୍କଠାରୁ କେତେକ साहाजी ଜାଗିର ପାଇଥିଲେ । ଏ ଯୁବକ ଶିବାଜୀଙ୍କୁ ଦାଦାଜୀ सहाजी କୋଣ୍ଡଦେବ ନାମକ ଜଣେ ବ୍ରାହ୍ମଣଙ୍କ ଅଭିଭାବକତ୍ୱରେ ରଖିଥିଲେ । ଶିବାଜୀ ଦାଦାଜୀଙ୍କଠାରୁ ଯୁଦ୍ଧବିଦ୍ୟା ଶିଖିଥିଲେ । ପରେ ଶିବାଜୀ ବିଜାପୁରର ଅନେକଗୁଡ଼ିଏ ଦୁର୍ଗ ଦଖଲ କରିବାରୁ ବିଜାପୁରର ସୁଲତାନ ସାହାଜୀଙ୍କୁ ବନ୍ଦୀ କରିଥିଲେ । ଶିବାଜୀ ବିଜାପୁର ରାଜ୍ୟର ପ୍ରଧାନ ଶତ୍ରୁ ମୋଗଲ ବାଦସାହ ଅରଙ୍ଗଜେବ୍‌ଙ୍କ ସହିତ ସନ୍ଧି କରିବାରୁ ବିଜାପୁର ସୁଲତାନ ସାହାଜୀଙ୍କୁ ମୁକ୍ତ କରି ଦେଇଥିଲେ ।]

**ସାହାର୍ଡ଼ା (ଇତ୍ୟାଦି)**—ଦେ. ବି—ଶାହାର୍ଡ଼ା ଇତ୍ୟାଦି (ଦେଖ)
Sāhārdā (etc) Sāhārdā etc. (See)

**ସାହାଡ଼ାପଟରି**—ପ୍ରାଦେ (ବାଲେଶ୍ୱର) ବ—ମତ୍ସ୍ୟବିଶେଷ—
Sāhārdāpatari A kind of fish.

**ସାହାଡ଼ା(ଡ଼େ)ଈ**—ଦେ ବ. ସ୍ତ୍ରୀ—( ଶାହାଡ଼ା ଗଛରେ ପୂଜା ପାଉ-
Sāha rdā(rde)ī ଥିବାରୁ )—ଶାହାଡ଼ା ଗଛରେ ପୂଜା ପାଉଥିବା
সাওড়াদেবী ଗ୍ରାମଦେବତା ବିଶେଷ—Name of a village
साहाड़ादेवी Goddess worshipped in the trunk of a 'Sāhārdā' tree.

**ସାହାଣ**—ଦେ. ବ ( ସଂ ଶାଣ )—୧ । ଶାଣ ( ଦେଖ )—
Sāhāna Sāna (See) ୨ । (ସଂ. ସାଧାରଣ) ବହୁସଂଖ୍ୟକ
শাণ सान ଜୀବ ଜନ୍ତୁଙ୍କର ଦଳ; ପଲ—
দল, সারি झुंड 2. Horde of animals.
( ଯଥା—ଦେଖିଲେ କାଙ୍ଗ୍ରେଶ କପି ସାହାଣ—ଜଗନ୍ନାଥ ଚରଣ ରାମାୟଣ । ) ବିଣ—( ସଂ. ସାଧାରଣ ) ସର୍ବସାଧାରଣଙ୍କ ପ୍ରବେଶାଧିକାରଯୁକ୍ତ—Accessible to the public; open to the public ପ୍ରାଦେ ( ପୁରୀ) ବ—( ପୁରୀ ଜଗନ୍ନାଥ ମନ୍ଦିର ସାନ୍ତମାନଙ୍କ ବ୍ୟବହୃତ ଶବ୍ଦ—ଏହା ଗଦା ସଙ୍ଗେ ସହଚର ରୂପେ ବ୍ୟବହୃତ ହୁଏ)—ବ୍ୟାୟାମକାରୀ ମଲ୍ଲ ଲୁହା ଗଦା ବୁଲାଇବା ଅଭ୍ୟାସ କରିବେଲେ ଏକ ହାତରେ ଗଦା ଓ ଅନ୍ୟ ହାତରେ ଯେଉଁ ଲୁହାର ଲମ୍ବା ପଟା ଧରି ବୁଲାଏ—A long bit of flat iron held by a gymnast in one hand while exercising with an iron mace in the other ପ୍ରାଦେ ( ଗଡ଼ଜାତ ) ବ—ଗୋରୁଙ୍କ ଧରିବା ଶରୀର ରୋଗବିଶେଷ—A kind of cattle disease. [ଦ୍ର—ଏଥିରେ ଦେହର ରୋମ ଠାକୁରେ; ଗୋରୁ ଶୋଇବ ସ୍ଥାନରୁ ଉଠି ପାରନ୍ତି ନାହିଁ; କଣ୍ଠ ମୂଳରେ ଅଳ୍ପ ଘାଆ ବାହାରେ । ଏପରି ରୋଗ ହେଲେ ଗୋରୁଙ୍କ ଦେହରେ ତାତିଲା ଲୁହାରେ ଦାଗ ଦିଅନ୍ତି ।]

**ସାହାଣ କରିବା**—ଦେ. କ୍ରି (ସଂ. ଶାଣ)—ଯନ୍ତ୍ର ଅସ୍ତ୍ରକୁ ଶାଣ ଦେବା
Sāhāna kariba ବା ପକାଇବା; ଧାର କରିବା—
( ସାହାଣ ଦେବା—ଅନ୍ୟରୂପ ) To whet; to
শাণ দেওয়া सान करना sharpen an instrument by whetstone.

**ସାହାଣ ଭଣ୍ଡାର**—ପ୍ରାଦେ (ଭାଲଚେର) ବ—ରାଜାଙ୍କର କୋଷାଗାର-
Sāhan bhandāra King's treasury.

**ସାହାଣ ପଥର**—ଦେ. ବ—ଶାଣ ପଥର (ଦେଖ)
Sāhān pathara Sāna pathara (See)
শাণ পাথর सान पथर

**ସାହାଣ ମେଲା**—ଦେ. ବ—ଜଗନ୍ନାଥଙ୍କ ଦେଉଳରେ ଯେଉଁ ସମୟରେ
Sāhāna melā ଜଗନ୍ନାଥଙ୍କ ସାନ୍ନିଧ୍ୟକୁ ଯାଇ ସର୍ବସାଧାରଣ ଯାତ୍ରୀ ଦର୍ଶନ କରି ପାରନ୍ତି—The time when the inner shrine of the Idol Jagannātha of Puri is open to the public.

**ସାହାଣା**—ଦେ. ବ—ଗୋରୁଙ୍କ ବେକରେ ଓ ମୁହଁର ଫୁଲା ରୋଗ—
Sāhānā A cattle desease.
खाँहा

**ସାହାଣି**—ବୈଦେ. ବ (ଫା. ସାହାନାହ୍ =ଗ୍ରାମର ରକ୍ଷକ )—୧ ।
Sāhāni ଖଣ୍ଡାଏତ ଓ ଶୂଦ୍ରମାନଙ୍କର ବଂଶୋପାଧିବିଶେଷ—
साहानी 1. A family title of Khandāyatas
সহিস साईस and Sūdras. ୨ । ଅଶ୍ୱ
ରକ୍ଷକ; ସହିସ—2. Groom; the keeper of a horse.

**ସାହାନ୍ ସାହା**—ବୈଦେ. ବ (ଫା. ସାହାନ୍‌ସାହ୍)—ରାଜାଧିରାଜ, ସମ୍ରାଟ—
Sāhān sāhā A king of kings; an emperor.
সাহান সাহা शाहन शाह

**ସାହାନା**—ବୈଦେ, ବ (ଫା. ସାହାନାହ୍)—ଅର୍ଦ୍ଧ ରାତ୍ରି ପ୍ରହରରେ
Sāhānā ଗୀତ ହେବା ରାଗର ନାମ—Name
সাহানা शहाना of a musical tune suitable to be sung at midnight.
ପ୍ରାଦେ (ଲରଥ) ବ—ସଣ୍ଡାସି—Tongs.

**ସାହାପକ୍ଷ**—ପ୍ରାଦେ (ଲରଥ) ବିଣ—ସାହାପକ୍ଷ (ଦେଖ)
Sahāpakh Sāhāpaksha (See).

**ସାହାପକ୍ଷ**—ଗ୍ରା. ବ (ସଂ. ସପକ୍ଷ; ସହାୟ+ପକ୍ଷ)—ସହାୟ—Help.
Sāhāpaksha ( ଯ—ତାର କେହେ କେହି ସାହାପକ୍ଷ ଅଛ—
সহায় सहाय ନୀଳକଣ୍ଠ ସିଂହଙ୍କ ରାମାୟଣ । )
সপক্ষ सापक्ष ବିଣ—୧ । ଅନୁକୂଳ—1. Favourably disposed. ୨ । ସହାୟକାରୀ—2. Helping. [ଦ୍ର—ଅପାରଲୋକ ସାହାପକ୍ଷ, ଭଜଲେ ଯାର ଦେଉ ମୋକ୍ଷ । ପ୍ରାଚୀ କର୍ଣ୍ଣମାହାତ୍ମ୍ୟ]

**ସାହାପତି**—ଗ୍ରା. ବ—ସାହାପକ୍ଷ (ଦେଖ)—
Sāhāpati Sāhāpaksha (See)
সহায় साहाय

**ସାହାପୁରି**—ଦେ. ବ—ବଜାରରେ ବିକି ହେଉଥିବା ଏକ ଜାତ ଗୁଆ—
Sāhāpuri A sort of betel nut sold in the
সাহাপুরী साहापुरि market.

**ସାହା ପୁରୁଷ**—ଦେ. ବ—୧ । ଜୀବାତ୍ମା—1. Life (personified).
Sāhā purusha (ଯଥା—ମୋ ସାହାପୁରୁଷ ଉଡ଼ିଗଲା) ୨ । ପ୍ରାଣ-
সাহাপুরুষ साहापुरुष ବାୟୁ—2. The breath of life.
୩ । ପ୍ରେତାତ୍ମା—3. Ghost. (ଯଥା—ସେ ମଲେ ତୋ ସାହାପୁରୁଷ ଏଠାରେ ରହିବ ।)

**ସାହାବ(ଇତ୍ୟାଦି)**—ବୈଦେ. ବ—ସାହେବ ଇତ୍ୟାଦି (ଦେଖ)—
Sāhaba (etc) Sāheba etc (see)

**ସାହାବନ୍ତ**—ଦେ. ବିଣ—ସାହାଯ୍ୟକାରୀ—Supporting; helping;
Sāhābanta assisting. [ଦ୍ର—ପାଣ୍ଡୁସୁତମାନେ ହେବାରୁ
সাহায্যকারী सहायक ସାହାବନ୍ତ । କୃଷ୍ଣସିଂହ ମହାଭାରତ, ଉଦ୍ଯୋଗ]

ସାହା ବଳ—ଦେ, ବ ( ସଂସ୍କୃତ ଶବ୍ଦ; ସଂ ସହାୟ ଓ ବଳ )—ସହାୟ
Sāhā bala ଓ ବଳ—Support and strength. (ଯଥା
সহায়সাপক्ष सहायबल ମୋର ସାହାବଳ କେହି ନାହିଁ)

ସାହା ଭରସା—ଦେ, ବ (ସଂକର ଶବ୍ଦ; ସଂ. ସହାୟ ଓ ଭରସା)—
Sāhā bharasā ସହାୟ ଓ ଆଶା—Help and hope.
আশাভরসা सहायभरोसा (ଯଥା—ମୋର କେହି ସାହାଭରସା ନାହିଁ)

ସାହାଭୂତ—ଦେ. ବଣ (ସଂ. ସହ ସମ୍ଭୂତ)—ସଙ୍ଗର ରୂପେ ଉପଗତ—
Sahābhūta Personified [ଉ—ଦେଶର ସୁ. ସାହାଭୂତ
সহায়ভূত सहायभूत ଅର୍ପଣରେ, ଯାଉଣ ହେଉଥିଲେ କୃତ୍ତିକ ଦେବତ୍ତରେ। କୃଷ୍ଣସିଂହ. ମହାଭାରତ. ଦର୍ଶ୍ଣୀ]

ସାହାୟ—ଗ୍ରା, ବ (ସଂ ସହାୟ)—ସହାୟ ( ଦେଖ )
Sāhāya সহায় सहाय Sahāya (See)

ସାହାୟକ—ସଂ. ବ (ସହାୟ+ଷ୍ୟ ବା କର୍ମଣେ ଞ)—
Sāhāyaka ୧। ସହାୟତା (ଶବ୍ଦକୋଷ)—1. Help; support. ୨। ଅନୁକମ୍ପ—2 Favour.

ସାହାଯ୍ୟ—ସଂ. ବ ( ସହାୟ + ଯ )—୧। ସହାୟତା—1. Help;
Sāhājya aid; assistance. ୨। ଅନୁକୂଲ୍ୟ—
সাহায্য 2. Favour. ଦେ. ବ—ସ୍କୁଲ ଆଦ ଚଳାଇବା ପାଇଁ
साहाय्य ସରକାରରୁ ମିଳିବା ଅର୍ଥ—Grant-in-aid or stipend given to a school or other institution from public funds.

ସାହାଯ୍ୟ କରିବା—ଦେ. କି ସହାୟତା କରିବା—
Sāhājya kariba To help; to assist.
সাহায্য করা साहाय्य करना

ସାହାଯ୍ୟ କୃତ—ଦେ. ବ—ସାହାଯ୍ୟ ପ୍ରାପ୍ତ ( ଦେଖ )
Sāhājya kruta Sāhājya prāpta ( See )
সাহায্য কৃত साहाय्य कृत

ସାହାଯ୍ୟ ଦାତା—ଦେ. ବଣ. ପୁଂ—ଯେ ସାହାଯ୍ୟ କରେ—
Sāhājya dātā Helping; assisting.
(ସାହାଯ୍ୟ ଦାତ୍ରୀ—ସ୍ତ୍ରୀ) সাহায্য দাতা साहाय्य देने वाला

ସାହାଯ୍ୟ ଦାନ—ସଂ ବ—ସାହାଯ୍ୟ କରଣ—
Sāhājya dāna Rendering of help
ସାହାଯ୍ୟ ଦେବା—ଦେ. କି—ସାହାଯ୍ୟ କରିବା—
Sāhājya debā To help; to assist.
সাহায্য দেওয়া साहाय्य देना

ସାହାଯ୍ୟ ପ୍ରାପ୍ତ—ଦେ. ବଣ—( ଗଭର୍ଣ୍ଣମେଣ୍ଟଙ୍କଠାରୁ ) ଅର୍ଥ-ସାହାଯ୍ୟ
Sāhājya prāpta ପାଉଥିବା (ସ୍କୁଲ ଆଦି)—
(ସାହାଯ୍ୟ ପ୍ରାପ୍ତି—ବ) Aided (by the government).
সাহায্য প্রাপ্ত साहाय्य प्राप्त

ସାହାଯ୍ୟ ପ୍ରାର୍ଥନା(ଭିକ୍ଷା)—ସଂ. ବ—ଅନ୍ୟଠାରୁ ସାହାଯ୍ୟ ଲୋଡ଼ିବା-
Sāhājya prārthanā(bhikshā) Asking for help.

ସାହାଯ୍ୟ ପ୍ରାର୍ଥୀ—ସଂ. ବଣ - ସାହାଯ୍ୟ ଲୋଡ଼ୁଥିବା ( ବ୍ୟକ୍ତି )—
Sāhājya prārthi Seeking help; soliciting help.
(ସାହାଯ୍ୟ ପ୍ରାର୍ଥିନୀ—ସ୍ତ୍ରୀ) (ସାହାଯ୍ୟ ଲାଭ—ଦେ. ରୂପ)

ସାହାଯ୍ୟ ଲାଭ—ସଂ. ବ—ସହାୟତାର ପ୍ରାପ୍ତି—
Sāhājya lābha Getting of help.

ସାହାର—ଦେ. ବ ( ସଂ. ସହକାର )—ସହକାର; କ ଉତ୍କୃଷ୍ଟ ଓ ସୁବାସିତ
Sahāra ଆମ୍ବ—A sweet flavoured and excellent
সহকার सहकार kind of mango.

ସାହାରଣ(ନ)ପୁର—ଦେ. ବ ( ନାମ )—ଯୁକ୍ତ ପ୍ରଦେଶର ଗୋଟିଏ
Sāhārana(na)pura ନଗର ଓ ଜିଲ୍ଲା—Name of a
সাহারণপুর district and town in the United
सहारनपुर Province of India.

ସାହାରା—ଦେ. ବ (ନାମ )—ଆଫ୍ରିକାର ମଧ୍ୟବର୍ତ୍ତୀ ମରୁଭୂମି—
Sāhārā The Sāhārā desert of Africa. [ ଉ—
সাহারা ଏହା ଅଫ୍ରିକା ମହାଦେଶର ଉତ୍ତର ପଶ୍ଚିମରେ ଅବ-
सहारा ସ୍ଥିତ। ଏହା ପୃଥିବୀରେ ସବୁଠାରୁ ବଡ଼ ମରୁଭୂମି। ଏହାର ଦୈର୍ଘ୍ୟ ୨ ହଜାର ମାଇଲ୍ ଓ ପ୍ରସ୍ଥ ହଜାରେ ମାଇଲ୍।]

ସାହାଳ—ଦେ. ବ—ଚିଲିକାର ଏକପ୍ରକାର ମାଛ—
Sāhāla A kind of fish (of the Chilka lake).

ସାହାଳି—ଦେ. ବ ( ସଂ. ଶାଳ; ସାହି=ଗୃହ; ଶ୍ରେଣୀ )—ଗୃହର
Sāhāli ଶ୍ରେଣୀ; ଧାଡ଼ି—A row of houses. [ ଉ—
সারি মহল ଉଭେ ନବ ହରିପୁର ଶାସନ ମୁଣ୍ଡ ସାହାଳି ଘରକୁ ଛାଡ଼ ପଶ୍ଚିମ ପାଠେଏ ବଦମ ଦୂରରେ ବଳଦେବଙ୍କ ପୂଜା-ପିଣ୍ଡି ବା ମଣ୍ଡପ—ଫକୀରମୋହନ. ଗଳ୍ପସ୍ୱଳ୍ପ।]

ସାହାଳି ସାହାଳି ହୋଇ ବସିବା—ଗ୍ରାଦେ. (ପାଠଶାଳା ବଳଙ୍ଗିର) କ୍ରି—
Sāhāli sāhāli hoi basibā ଧାଡ଼ି ଧାଡ଼ି ହୋଇ ବସିବା—
To sit in rows.

ସାହାଳିଆ—ଦେ. ବଣ—ସାହାଳି ବା ଶ୍ରେଣୀବଦ୍ଧ; ଶ୍ରେଣୀବଦ୍ଧ—
Sāhālia সারি বাঁধা महलका Arranged in rows.
[ ଯଥା—ଉଚ୍ଚ ସାହାଳିଆ ଘର। ]

ସାହାସ—ଗ୍ରା. ବ—୧। ( ସଂ. ସାହସ )—ସାହସ ( ଦେଖ )—
Sāhāsa Sāhasa ( See ) [ ଉ—ସାହାସକୁ ଥିବା ଧର
সাহস साहस ମୋ; ଛର ଦୁର୍ବଳତା ଅସିଲେ ପାଖକୁ ଉଡ଼ିବା ଗେଲଠା ମାର ମୋ—ବାଳକୃଷ୍ଣ. ଗୁରୁଲବଙ୍ଗଲତା। ]
কষ্ট ୨। ପୀଡ଼ା—2. Pang; pain. [ ଉ—କର ଯାହା
क्लेश ସାହା ସାହାସ କାମର ବର ଉତ୍ସବ କରାଇବ—ଭକ୍ତ.
শ্বাস, হাঁপানো ପ୍ରେମସୁଧାନିଧି।] ୩। (ସଂ. ଶ୍ୱାସ) ଶ୍ୱାସ
साँस ( ଦେଖ )—3. Swāsa ( See ) ଗ୍ରାଦେ. (ଗଞ୍ଜାମ) ବ—ନକ୍ସ ବା ତାସ ଖେଳରେ ଜଣେ ଖେଳାଳି ହାତରେ ରଙ୍ଗ ସାଇ ସଙ୍ଗେ ନଥିଲେ ବା ଦୁକା ଥିଲେ ଓ ଅନ୍ୟ ଖେଳାଳି ହାତରେ ମଙ୍ଗୀ ଓ ବଡ଼ଙ୍ଗ ଥିଲେ ନଅ ବା ଦୁକାକୁ ଲକ୍ଷ କରି ଖେଳିବା ଏବଂ ଛକ ସାରଠାରୁ ୬ଟି ପାଉଣା ଥିବା ସାରକୁ ଖେଳିବା—A position in the game of cards when a player plays

to win the 9 pointed card of his adversary.

ସାହାସ ଉଡ଼ିବା—ଦେ. କ୍ରି ( ସଂ. ଶ୍ୱାସ )—୧ । ଊର୍ଦ୍ଧ୍ୱଶ୍ୱାସ ହେବା; Sāhāsa urḍibā ଦେହମ୍ ହେବା—1. Being out of হাঁপিয়ে পড়া breath. ୨ । ଧୈର୍ଯ୍ୟଚ୍ୟୁତ ହେବା; ଅଧୀର साँस उड़ना ହେବା—2. Becoming impatient; losing patience. ( ସାହାସ ଉଡ଼ିଯିବା—ଅନୁରୂପ ) [ ଉ—ସ୍ୱେଦ ବହୁ ସର୍ପ ହୋଇ ଜଳରେ ବୁଡ଼ିଲା । ଦେଖି ଶଶିସେଣା ବାଳୀ ସାହାସ ଉଡ଼ିଲା—ପ୍ରତାପ, ଶଶିସେଣା । ] ୩ । କିଂକର୍ତ୍ତବ୍ୟବିମୂଢ଼ ହେବା—3. Being bewildered. ୪ । କିଳ୍ପସ୍ତାହ ହେବା—4. Losing courage. ୫ । ହଂସା ଉଡ଼ିଯିବା; ପ୍ରାଣାନ୍ତିକ ଅବସ୍ଥାରେ ପଡ଼ିବା—5. To be at the last extremity.

ସାହାସ କରିବା—ଦେ କ୍ରି—ସାହସ କରିବା ( ଦେଖ )— Sāhāsa karibā Sāhasa karibā ( See ) সাহস করা साहस करना

ସାହାସ ବାନ୍ଧିବା—ଦେ. କ୍ରି - ସାହସ ବାନ୍ଧିବା (ଦେଖ)—Sāhasa Sāhāsa bāndhibā bāndhibā (See) [ ଉ—ଏହା ଶୁଣି সাহাস বান্ধা ସାହାସ ବାନ୍ଧ କରିବାସ୍ତ ହାତରେ ଧନୁ ଶର ଘେନି साहस बान्धना ରାଜାଙ୍କ ଡାଗ ଉପରକୁ ଉଠିଗଲେ ରାଜକନ୍ୟା ଦିଲ୍ଲୀର ମହାଭାରତ । ]

ସାହାସ ମୁଣ୍ଡି—ପ୍ରାଦେ ( ଉତ୍ତରାତ ) ବି—ଶଗଡ଼ର ଧୁର ଦା କୁଣ୍ଢଳର Sāhāsa muṇḍi ମଝିରେ ବନ୍ଧନରେ ବନ୍ଧା ହୋଇଥିବା । ଜୁଇ ଦଣ୍ଡାର ଅଗ୍ର; ଧୁରମୁଣ୍ଡ— The two front ends of the two beams of a bullock cart which are joined together at the tapering point.

ସାହାସ ମଲ(ଲ୍ଲ)—ଦେ. ବି ( ସଂ. ସାହସ ଓ ମଲ୍ଲ )—ସାସମଲ Sāhāsa mala(lla) ( ଦେଖ )—Sasamala ( See ) সাসমল सासमल

ସାହାସା—ଦେ. ବିଣ. ପୁଂ—୧ । ସାହାସିକ (ଦେଖ)—1. Sāhāsika Sāhāsā ( ସାହାସିଆ—ଅନୁରୂପ ) ( See ) সাহসী ୨ । ଅସମ୍ଭବ୍ୟକାରୀ—2. Rash. ୩ । ଦୁଃସାହସିକ साहसी ( ସାହାସୀ, ସାହାସେଇ—ସ୍ତ୍ରୀ ) 3. Foolhardy. হাঁপো রোগী साँसी ୪ ଶ୍ୱାସରୋଗାକ୍ରାନ୍ତ—4. Asthmatic. झूठा মিথ্যাবাদী ୫ । ମିଥ୍ୟାବାଦୀ—5. Liar; lying.

ସାହାସିବା—ଦେ. କ୍ରି (ସଂ. ଶ୍ୱାସ)—୧ । ମହାଶ୍ରମାଦ ଯୋଗୁଁ ଊର୍ଦ୍ଧ୍ୱଶ୍ୱାସ Sāhāsibā ହେବା—1. To pant for breath owing হাঁপিয়ে পড়া to excessive labour. ୨ । ଶ୍ୱାସରୁଦ୍ଧ हकमना ହେବା—2. To gasp. ୩ । ( ସଂ ଶୁଷ୍ ଧାତୁ ) শুকিয়ে ফেটে যাওয়া (ଜମି ଅବ) ଶୁଷ୍କ ହୋଇ ବା ଜର୍ଜର ହେବା— सूखना 3. (land) To become very dry. [ ଯଥା—ଶୁଖି ଖରାରେ ଜମି ସାହାସି ଯାଇଥିଲା ବୋଲି ଆଷାଢ଼ ଅସ୍ତ୍ର ବର୍ଷା ହୋଇ ମଧ୍ୟ ଭୂଇଁ ପାଣିପାଇ ସବୁ ଶୋଷିନେଲା । ]

ସାହାସୀ—ଗ୍ରା. ବିଣ ପୁଂ ଓ ସ୍ତ୍ରୀ (ସଂ. ସାହସୀ)—ସାହସିକ (ଦେଖ)— Sāhāsi সাহসী साहसी Sāhasika ( See )

ସାହାସୁଜା—ବୈଦେ ବି (ନାମ)—ଅଫଗାନ ସ୍ଥାନର ଜଣେ ଅମୀର— Sāhāsujā Name of an Ameer of Afghanistan. সাহাসুজা [ ଉ—ଏହାଙ୍କୁ ଦୋସ୍ତ ମହମ୍ମଦ ସିଂହାସନରୁ ତଡ଼ି साहसूजा ଦେବାରୁ ଏ ଭାରତକୁ ଆସି ଇଂରାଜମାନଙ୍କର ଶରଣ ପଶିଲେ । ଭାରତର ଗଭର୍ଣ୍ଣର ଜେନେରଲ ଲର୍ଡ ଅକଲାଣ୍ଡ ଏହାଙ୍କୁ ସହାୟ ହୋଇ ୧୮୩୦ ସାଲରେ ଅଫଗାନ ସ୍ଥାନର ସିଂହାସନରେ ବସାଇଲେ; ବନ୍ଧୁ ପ୍ରଜାମାନେ ମେଳ କରି ଏହାଙ୍କୁ ୧୮୪୨ ସାଲରେ ହତ୍ୟା କଲେ ଓ ଉତ୍ତାରେ ଦୋସ୍ତ ମହମ୍ମଦ୍ ଇଂରାଜମାନଙ୍କ ସଙ୍ଗେ ସନ୍ଧି କରି କାବୁଲର ଅମୀର ହେଲେ । ]

ସାହାସେଇବା—ଦେ. କ୍ରି—ସାହାସିବା (ଦେଖ) Sāhāseibā Sāhāsibā. (See)

ସାହାସ୍ତର—ପ୍ରାଦେ (ସମ୍ବଲପୁର)—ଶାସ୍ତ୍ର (ଦେଖ) Sāhāstara Śāstra. (See)

ସାହାସ୍ତ୍ର(ସ୍ତ୍ରୁ)—ଗ୍ରା. ବି (ସଂ. ଶାସ୍ତ୍ର)—୧ । ଶାସ୍ତ୍ର ( ଦେଖ ) Sāhāstra(sra) শাস্ত্র शास्तर 1. Śāstra (See) প্রিয় বচন ୨ । କେଣସି ବ୍ୟକ୍ତିର କଥିତ ବା ବ୍ୟବହୃତ ପ୍ରିୟ प्रिय बात ବଚନ—2 An often quoted saying or passage uttered by a person.

ସାହାସ୍ତ୍ର ପୁରାଣ—ଗ୍ରା. ବି (ଧନ୍ଦ୍ୱର ଶବ୍ଦ)—୧ । ଶାସ୍ତ୍ର ଓ ପୁରାଣ— Sāhāsra purāṇa 1. Scriptures and mythology. শাস্ত্র পুরাণ ୨ । ଧର୍ମ ଗ୍ରନ୍ଥମାନ—2. Religious tracts. शास्तर पुराण

ସାହାସ୍ତ୍ର ବଚନ—ଗ୍ରା. ବି—ଶାସ୍ତ୍ର ବଚନ—Sayings or pass- Sāhāsra bachana ages from scriptures. শাস্ত্র বচন शास्तर वचन

ସାହି—ପ୍ରାଦେ (ଉତ୍ତର ଅଞ୍ଚଳ) ବି—୧ । ମସୀ; କାଳି— Sāhi 1. Writing ink.
୨ । ସିନ୍ଧ ( ଜୁଳ, ଦୁ. ଶାଳ )—2. Porcupine.
ଗ୍ରା. ବି ଓ ବିଣ ( ସଂ. ସହାୟ )—ସାହିଆ ( ଦେଖ ) Sāhia (See)
ଦେ. ବି - ସାଇ ଇତ୍ୟାଦି (ଦେଖ) Sāi etc. (See)

ସାହିଅ—ଗ୍ରା ବି (ସଂ. ସହାୟ)—ସାହାଯ୍ୟ; ସହାୟ— Sāhia সহায় सहाय Help; support. ବିଣ—ସହାୟକ—Helping; assisting.

ସାହିଆ—ଦେ. ବିଣ—ସାଇଆ ( ଦେଖ ) Sāhiā পাড়ার टोलावाला Sāiā ( See )

ସାହିତ୍ୟ—ସଂ. ବି (ସହିତ+ଷ୍ୟଞ୍)—୧ । ସଙ୍ଗ—1. Company Sahitya ୨ । ସଂସର୍ଗ—2. Association. ୩ । ସାହାଯ୍ୟ— 3. Help. ୪ । ଏକତ୍ର ମିଳନ—4. Meeting. ୫ । ପରସ୍ପରର ସାପେକ୍ଷ କେତେ ଶବ୍ଦର ଏକ କ୍ରିୟାନ୍ୱୟିତ୍ୱ

—5. The state of many words governing or being governed by the same verb. (ଉଦାହରଣ—ଧବ ଖଦିର ପଳାଶ ଛେଦନ କର—ଏଠାରେ ସାହିତ୍ୟ ହୋଇଅଛି ।) ୬। (ସମ୍=ସମ୍ୟକ୍+ହିତ+ଯ; କିମ୍ବା ସହିତ+ଯ)—ଶବ୍ଦ ଶାସ୍ତ୍ର, କାବ୍ୟ, ନାଟକ, ଅଳଙ୍କାର ପ୍ରଭୃତି—6. Literature, belles lettres. [ବି—ଏକ ମନୁଷ୍ୟର ବା ଏକ ସମାଜର ମନୋଗତ ଭାବକୁ ଅନ୍ୟ ବ୍ୟକ୍ତିର ବା ଅନ୍ୟ ସମାଜର ଚିତ୍ତାକର୍ଷକ କରିବା ପାଇଁ ଲିଖିତ ପ୍ରୟୋଗ କରି ଗଲେ ତାହାକୁ ସାହିତ୍ୟ କୁହାଯାଏ ।] ୭। ଅନ୍ୟ ଲୋକ ବୁଝି ପାରିବା ଭଳି ଲିଖିତ ଭାଷାରେ ବ୍ୟକ୍ତ କରାଯିବା ମାନବର ବ୍ୟକ୍ତିଗତ ବା ଜାତୀୟ ଚିନ୍ତା—7. Literature; thoughts of a person or a group of persons when reduced to writing for the purpose of being understood or appreciated by others. [ବି—ମନୁଷ୍ୟର ମନର ଭାବ ବା ଚିନ୍ତା ଅନ୍ୟ ବ୍ୟକ୍ତି ନିକଟରେ ମୁଖର 'ଭାଷା' ଦ୍ୱାରା ବ୍ୟକ୍ତ କରାଯାଏ ଓ ସେହି ଚିନ୍ତା ପୋତଦେଲେ ଲିଖିତ ଆକାରରେ ବ୍ୟକ୍ତ କରାଯାଏ ତାହା ସାହିତ୍ୟ ନାମ ଧାରଣ କରେ । ମନୁଷ୍ୟର ମନର ଭାବ ଯେତେ ଅଧିକ ବିସ୍ତୃତ ହୋଇଅଛି 'ସାହିତ୍ୟ' ମଧ୍ୟ ସେହି ସେହି ବିଷୟକୁ ଅଧିକାର କରିଅଛି । ଧର୍ମଶାସ୍ତ୍ର, କର୍ମଶାସ୍ତ୍ର, ଯୋଗ ଶାସ୍ତ୍ର, ବିଜ୍ଞାନ, ଦର୍ଶନ, ଇତିହାସ ଗଣିତ, ଜ୍ୟୋତିଷ ଇତ୍ୟାଦି 'ସାହିତ୍ୟର' ସୀମା ମଧ୍ୟରେ । ସାହିତ୍ୟ ସାଧାରଣତଃ ଦୁଇଟି ଆକାରରେ ଦେଖାଯାଏ, ଯଥା—ଗଦ୍ୟ ଓ ପଦ୍ୟ । ପଦ୍ୟ ଅଥବା ଗଦ୍ୟ ସାହିତ୍ୟର ରଚନାରେ ମଧ୍ୟ କଳା ବା ଚାତୁରୀ ପ୍ରୟୋଗ କରାଯାଏ । କିନ୍ତୁ ଯେଉଁ ସାହିତ୍ୟରେ କଳା ବା ଚାତୁରୀ (ଯଥା—କଳ୍ପନା ଚାତୁରୀ, ଶବ୍ଦ ଚାତୁରୀ, ଛନ୍ଦୋବନ୍ଧନ ଚାତୁରୀ, ଅଳଙ୍କାର ଚାତୁରୀ ବ୍ୟାକରଣ ପ୍ରୟୋଗ) ସ୍ପଷ୍ଟ ଭାବେ ପ୍ରକାଶ୍ୟମାନ ହୁଏ ତାହାକୁ 'ବିଶୁଦ୍ଧ ସାହିତ୍ୟ' ବା ଉଚ୍ଚ ଶ୍ରେଣୀର ସାହିତ୍ୟ ବୋଲାଯାଏ । ଭିନ୍ନ ଭିନ୍ନ ଅଙ୍ଗ, ପ୍ରତ୍ୟଙ୍ଗ, ଶ୍ରେଣୀ, ଉପଶ୍ରେଣୀ, ଭାଗ, ବିଭାଗ, ଦେଶ ଅନୁସାରେ ସାହିତ୍ୟ ଭିନ୍ନ ଭିନ୍ନ ନାମରେ ଅଭିହିତ ହୁଏ । ଯଥା—ଧର୍ମ ସାହିତ୍ୟ, ଐତିହାସିକ ସାହିତ୍ୟ, ଜାତୀୟ ସାହିତ୍ୟ (ଏକ ଜାତିର ବା ସମାଜର ବିଶେଷତ୍ୱ ଜ୍ଞାପକ ସାହିତ୍ୟ), ବିଶୁଦ୍ଧ ସାହିତ୍ୟ, (କାବ୍ୟ, ଅଳଙ୍କାର ଆଦି କଳାଯୁକ୍ତ ସାହିତ୍ୟ), ବିଜ୍ଞାନ ସାହିତ୍ୟ (ଯହିଁରେ ବିଜ୍ଞାନର ଚର୍ଚ୍ଚା ହୋଇଥାଏ), ଉଚ୍ଚ ସାହିତ୍ୟ (କଳା, ଚାତୁରୀ ଓ କଳ୍ପନା ପ୍ରଚୁର ସାହିତ୍ୟ), ଲୌକିକ ସାହିତ୍ୟ ( ଇତର ଲୋକସମାଜରେ ଚଳିତ ବିଷୟମାନ ଯେଉଁ ସାହିତ୍ୟରେ ଲିପିବଦ୍ଧ ହୋଇଥାଏ । ଯଥା—ଗୀତ, କାହାଣୀ, ପ୍ରବଚନ, ଲୌକିକ ଗୀତ ଆଦି), ଉତ୍କଳ ସାହିତ୍ୟ ବା ଓଡ଼ିଆ ସାହିତ୍ୟ (ଉତ୍କଳ ପ୍ରଦେଶର ଭାଷା ବିଷୟକ ସାହିତ୍ୟ । ଏହିପରି ବଙ୍ଗୀୟ ସାହିତ୍ୟ ଇଂରାଜୀ ସାହିତ୍ୟ ଆଦି ହୁଏ), ଲଘୁ ସାହିତ୍ୟ (ସୁକୁମାର ଶିଶୁ ଆଦିଙ୍କ ଉପଯୋଗୀ ସାହିତ୍ୟ ଓ ଯହିଁରେ କଳ୍ପନା ଶକ୍ତିର ବିଶେଷ ଖେଳା ନ ଥାଏ । ଯଥା—ଶିଶୁ ସଙ୍ଗୀତ, ଗାଠ ବଚନ ଆଦି) । ଭାରତରେ ଇଂରାଜ ବିଦ୍ୟା ପ୍ରଚାର ଦ୍ୱାରା ବର୍ତ୍ତମାନ ସାହିତ୍ୟ କହିଲେ କାବ୍ୟ, ବ୍ୟାକରଣ, ଅଳଙ୍କାର, ଦର୍ଶନ, ପୁରାଣ, ଇତିହାସ, ଗଣିତ, ରସାୟନ, ଉଦ୍ଭିଦ ବିଦ୍ୟା ପ୍ରଭୃତି ସକଳ ପ୍ରକାର ଶାସ୍ତ୍ର ବୁଝାଯାଏ ।]

**ସାହିତ୍ୟ ଚର୍ଚ୍ଚା**—ସଂ. ବି—ସାହିତ୍ୟ ସମ୍ବନ୍ଧେ ଆଲୋଚନା—Sāhitya charchchā Pursuit of literature.

**ସାହିତ୍ୟ ଦର୍ପଣ**—ସଂ. ବି—ପ୍ରାଚୀନ ଉତ୍କଳର ରାଜା ପୁରୁଷୋତ୍ତମ-Sāhitya darpaṇa ଦେବଙ୍କ ରାଜସଭାର ଓଡ଼ିଆପଣ୍ଡିତ ବିଶ୍ୱନାଥ ମହାପାତ୍ରଙ୍କ କୃତ ସମଗ୍ର ଭାରତ ପ୍ରସିଦ୍ଧ ସଂସ୍କୃତ ଅଳଙ୍କାର ଶାସ୍ତ୍ର ବିଶେଷ—A book on rhetoric written by the Oriya Pandit Biswānatha Mahāpātra of the court of King Purushottama Deba, of ancient Orissa. [ବି—ଏହା ସଂସ୍କୃତ ସାହିତ୍ୟରେ ସଂସ୍କୃତ ଅଳଙ୍କାର ସମ୍ବନ୍ଧେ ନୋଟିଏ ପ୍ରାମାଣିକ ଗ୍ରନ୍ଥରୂପେ ଗୃହୀତ ।]

**ସାହିତ୍ୟ ଦର୍ପଣକାର**—ଦେ. ବି ( ନାମ )—ସାହିତ୍ୟଦର୍ପଣ ନାମକ Sāhitya darpaṇakāra ଅଳଙ୍କାର ଗ୍ରନ୍ଥର ପ୍ରଣେତା କବିରାଜ ବିଶ୍ୱନାଥ ମହାପାତ୍ର—Author of Sāhitya darpaṇa, Biswanātha Mahāpātra.

**ସାହିତ୍ୟ ପରିଷଦ୍**—ସ. ବି—ଯେଉଁ ସଭାରେ ସାହିତ୍ୟ ବିଷୟ ଚର୍ଚ୍ଚା Sāhitya parishad ହୁଏ—Literary society. [ସାହିତ୍ୟ ସଭା, ସାହିତ୍ୟ ସମାଜ, ସାହିତ୍ୟସଙ୍ଘ—ଅନ୍ୟରୂପ]

**ସାହିତ୍ୟ ବିଶାରଦ**—ସ.ବି ଓ ବିଣ ପୁଂ-ପଣ୍ଡିତଙ୍କୁ ପ୍ରଦତ୍ତ ଉପାଧି ବିଶେଷ; Sāhitya bisārada ସାହିତ୍ୟରେ ଧୁରନ୍ଧର ବ୍ୟକ୍ତି—A title [ସାହିତ୍ୟବିଶାରଦା—ସ୍ତ୍ରୀ] given to exceptionally proficient persons in literature.

**ସାହିତ୍ୟ ଭକ୍ତ**—ସ. ବି (୭ମୀ ତତ୍)—ଯେଉଁ ବ୍ୟକ୍ତି ସାହିତ୍ୟ ପ୍ରତି Sāhitya bhakta ଅନୁରକ୍ତ—A votary of literature.

**ସାହିତ୍ୟ ଭଣ୍ଡାର**—ସ. ବି (୬ଷ୍ଠୀ ତତ୍ ବା ରୂପକ)——ଭଣ୍ଡାର Sāhitya bhandāra ସଙ୍ଗେ ତୁଳନୀୟ ସାହିତ୍ୟ—Literature compard to a storehouse.

**ସାହିତ୍ୟ ରଥୀ**—ସ. ବି (ଅଧୁନିକ ପ୍ରୟୋଗ; ସାହିତ୍ୟରେ ରଥୀ-Sāhitya rathī ସ୍ୱରୂପ)—ସାହିତ୍ୟ ଓ ରଚନା ଆଦିରେ ଧୁରନ୍ଧର [ସାହିତ୍ୟ ସମ୍ରାଟ—ଅନ୍ୟରୂପ] ବ୍ୟକ୍ତି; ସାହିତ୍ୟ ସେବକମାନଙ୍କ ସାହିତ୍ୟରଥୀ ମଧ୍ୟରେ ପ୍ରଧାନ ବ୍ୟକ୍ତି—A person versed in ସାହିତ୍ୟରଥୀ literature; an authority in literary matters.

ସାହିତ୍ୟ ସମାଜ—ସଂ ବି—ଯେଉଁ ସଭାରେ ସାହିତ୍ୟଚର୍ଚ୍ଚା କରିବା କର୍ତ୍ତବ୍ୟ
Sāhitya samāja ଅଧିବେଶନମାନ ହୁଏ—Literary
society. [ବି— ଉତ୍କଳ ସାହିତ୍ୟ ସମାଜ କଟକରେ
୩୭ ବର୍ଷ ହେଲା ଅନୁଷ୍ଠିତ । କଟକ ଟାଉନହଲ୍ କଟକଷ୍ଥି
ଶାସ୍ତ୍ରୀମଣ୍ଡପ ଭବନରେ ଏହାର ଅଧିବେଶନ ହୁଏ ।]

ସାହିତ୍ୟ ସେବକ—ସଂ ବି ଓ ବିଣ ପୁଂ (୬ଷ୍ଠୀ ତତ୍; ଅଧୁନାତନ
Sāhitya sebaka ପ୍ରୟୋଗ)—୧ । ସାହିତ୍ୟ ଚର୍ଚ୍ଚାରେ
[ସାହିତ୍ୟ ସେବିକା—ସ୍ତ୍ରୀ] ସର୍ବଦା ଅନୁରକ୍ତ (ବ୍ୟକ୍ତି)—1. (A
সাহিত্য সেবক person) Who has devoted his life
साहित्य सेवक to the service of literature. ୨ । କାବ୍ୟ;
ନାଟକାଦିର ରଚୟିତା—2. An author of
books of literary merit.

ସାହିତ୍ୟ ସେବା—ସଂ ବି (୬ଷ୍ଠୀ ତତ୍)—ବିଷ୍ଟା ସହକାରେ ସାହିତ୍ୟ
Sāhitya sebā ଚର୍ଚ୍ଚା—Service of literature.

ସାହିତ୍ୟ ସେବୀ—ସଂ ବି ଓ ବିଣ ପୁଂ—ସାହିତ୍ୟ ସେବକ (ଦେଖ)
Sāhitya sebī Sāhitya sebaka. (See)
সাহিত্যসেবী ଦେ. ବିଣ ଓ ବି—(ବ୍ୟଙ୍ଗ; ଅତ୍ୟଧିକସେବୀ,
साहित्यसेवी ମାଦକସେବୀ ଅଧ ଶବ୍ଦରେ 'ସେବୀ' ଶବ୍ଦର
ବ୍ୟବହାରର ସୂଚନାରୁ) ସାହିତ୍ୟ ସେବା ଯାହାଙ୍କ
ପକ୍ଷରେ ବ୍ୟସନରେ ବା ଦୁର୍ବ୍ୱଳତାରେ ପରିଣତ ହୋଇଅଛି—
(ironical) An addict to literature.

ସାହିତ୍ୟାକାଶ—ସଂ ବି (ରୂପକ; ସାହିତ୍ୟ + ଆକାଶ)·ଆକାଶ ସଙ୍ଗେ
Sāhityākāśa ତୁଳନୀୟ ସାହିତ୍ୟ—Literature
compared to the firmament.

ସାହିତ୍ୟାଧ୍ୟାପକ—ସଂ ବି (ଅଧୁନାତନ ବ୍ୟବହାର)—ସାହିତ୍ୟ ବା କାବ୍ୟ
Sāhityādhyāpaka ଶାସ୍ତ୍ରର ଶିକ୍ଷାଦାତା—A professor
or teacher of literature.

ସାହିତ୍ୟାନୁରକ୍ତ—ସଂ ବିଣ ପୁଂ (୭ମୀ ବା ୪ର୍ଥୀ ତତ୍)—ସାହିତ୍ୟ-
Sāhityānurakta ଚର୍ଚ୍ଚାରେ ଅନୁରକ୍ତ—Devoted to
(ସାହିତ୍ୟାନୁରକ୍ତା—ସ୍ତ୍ରୀ) literature.

ସାହିତ୍ୟାନୁରାଗ—ସଂ ବି (୪ର୍ଥୀ ବା ୭ମୀ ତତ୍)—ସାହିତ୍ୟ ଚର୍ଚ୍ଚା
Sāhityānurāga ପ୍ରତି ପ୍ରଗାଢ ସ୍ନେହ—Attachment
[ସାହିତ୍ୟାନୁରକ୍ତି—ଅନ୍ୟରୂପ] for literature.
(ସାହିତ୍ୟାନୁରାଗୀ—ବିଣ. ପୁଂ, ସାହିତ୍ୟାନୁରାଗିଣୀ—ବିଣ. ସ୍ତ୍ରୀ)

ସାହିତ୍ୟାମୋଦ—ସଂ ବି (ସ. ଷ ତତ୍)—ସାହିତ୍ୟ ଚର୍ଚ୍ଚାରୁ ଜାତ
Sāhityāmoda ଆନନ୍ଦ—Joy derived from the pur-
(ସାହିତ୍ୟାମୋଦୀ—ବିଣ) suit of literature.

ସାହିତ୍ୟାଲୋଚନା—ସଂ ବି (୬ଷ୍ଠୀ ତତ୍)—ସାହିତ୍ୟ ଚର୍ଚ୍ଚା (ଦେଖ)
Sāhityālochanā Sāhitya charchchā (See)

ସାହିତ୍ୟିକ—ସଂ. ବିଣ (ସାହିତ୍ୟ + ଇକ)—ସାହିତ୍ୟ ସମ୍ବନ୍ଧୀୟ—
Sāhityika Literary. (ବି ଓ ବିଣ; ଲକ୍ଷାର୍ଥେ + ଇକ) ସାହିତ୍ୟ
(ସାହିତ୍ୟିକା—ସ୍ତ୍ରୀ) ସେବକ (ଦେଖ)—Sāhitya sebaka.

ସାହି ପଡଶି (ପଡଶା, ପଡୁଶି, ପଡୋଶୀ)—ଦେ. ବି (ପୁଂ ଓ ସ୍ତ୍ରୀ)—
Sahi pardaśi(pardiśā, pardiśi, pardośī) ସାଇ-
ପଡଶା (ଦେଖ)—Sāipardiśā (See).
[ସାହିପଡ(ଡୁ,ଡୋ)ଶୁଣୀ—ସ୍ତ୍ରୀ] পাড়া পড়শি टोला पड़ोसा

ସାହିବ(ଇତ୍ୟାଦି)—ବୈଦେ. ବି. ପୁଂ—ସାହେବ ଇତ୍ୟାଦି (ଦେଖ)
Sāhiba (etc) (ସାହିବାଣୀ—ସ୍ତ୍ରୀ) Sāheba etc (See).

ସାହିବାଲା—ଦେ ବିଣ—ସାଇବାଲା (ଦେଖ)
Sāhibāla Sāi bāla (See).
(ସାହିବୁଅଲା—ଅନ୍ୟରୂପ) (ସାହିବାଲୀ—ସ୍ତ୍ରୀ)
পাড়ার লোক टोला वाला

ସାହି ଭାଇ—ଦେ. ବି—ସାଇଭାଇ (ଦେଖ)
Sāhi bhāi Sāibhāi [See].

ସାହି ଭେଣ୍ଡା—ଦେ. ବି (୬ଷ୍ଠୀ ତତ୍)—ସାଇଭେଣ୍ଡା (ଦେଖ)
Sāhi bhendā Sāibhendā [See].
(ସାହିଭେଣ୍ଡିଆ, ସାହିକୁଅଳ, ସାହିଜବାନ—ଅନ୍ୟରୂପ)

ସାହି ମୁଣ୍ଡ—ଦେ. ବି—ସାଇ ମୁଣ୍ଡ (ଦେଖ)
Sāhi munda Sāi munda (See).

ସାହିମୁଣ୍ଡିଆ—ଦେ· ବିଣ—ସାଇମୁଣ୍ଡିଆ (ଦେଖ)
Sāhimundiā Sāimundiā (See).

ସାହି ମେଳ—ଦେ. ବି—ସାଇମେଳ (ଦେଖ)
Sāhi mela Sāi mela (See).

ସାହି ମେଳା—ଦେ. ବି—୧ । ସାହିବାଲାମାନଙ୍କର ବୈଠକ—
Sāhi melā 1. A meeting of the in-
পাড়ার বৈঠক टोलेका मेला habitants of a Sāhi.
୨ । ସାହିବାଲାମାନଙ୍କର ମେଳକ ଭୋଜି—2. A dinner of
the combined 'Sāhibālās'

ସାହି ମେଳି—ଦେ,ବି—ସାହିବାଲାମାନଙ୍କର ଏକତ୍ର ସମ୍ମିଳିତ ଷଡ଼ଯନ୍ତ୍ର-
Sāhi meli A combination of the 'Sāhi-
পাড়ার মেলি टोलेके मेली bālās'
(ସାହିମେଳିଆ—ବିଣ)

ସାହିଯ(ଯ୍ୟ)—ଗ୍ରା. ବି (ସଂ· ସାହାଯ୍ୟ)—ସାହାଯ୍ୟ (ଦେଖ)
Sāhija(jya) Sāhājya ( See )
সাহায্য साहाज्य

ସାହୁ—ଦେ. ବି. ପୁଂ ( ସଂ. ସାଧୁ )—୧ । ମହାଜନ; ବଣିକ—
Sāhu 1. A trader; a merchant. ୨ । ଋଣଦାତା;
(ସାହୁଆଣୀ—ସ୍ତ୍ରୀ) ଉତ୍ତମର୍ଣ୍ଣ—2, A lender; a money-
মহাজন lender; creditor. (ଉଦା—ଧନ ଦରବ ନେଇ
महाजन ସାହୁ, ପ୍ରାଣ ନେଇଲା ମାଣ୍ଡିଆ ସାହୁ—ରାଗ ।) ୩ । ବଣିଆ,
ପାଟରା, ତେଲି, ଗୁଡ଼ିଆ, ଶୁଣ୍ଡୀ, ଥୋରିଆ, ଗୁଣ୍ଡି,
ମାସ୍ତାନବ୍ରାହ୍ମଣ ଆଦିଙ୍କର ବଂଶୋପାଧି ବିଶେଷ—
সাহু 3. A family title of goldsmiths, oilmen,
साहु confectioners, Sūdras, Mastāna
Brāhmaṇas etc. ୪ । (ନାମ) ଶମ୍ଭୁକଙ୍କ ପୁତ୍ର; ଶିବାଜୀଙ୍କ

ମୃତ୍ୟୁପରେ ମରହଟ୍ଟାମାନଙ୍କର ଦ୍ୱିତୀୟ ରଜା—2. Name of the 2nd king of the Marhattas. [ଦ୍ର—ଏହାଙ୍କର ରାଜଧାନୀ 'ସାତାର' ଥିଲା । ଏ ଆରଙ୍ଗ୍‌ଜେବ୍ ବାଦ୍‌ଶାହାଙ୍କ ନିକଟରେ ଥିଲେ, କିନ୍ତୁ ଆରଙ୍ଗ୍‌ଜେବଙ୍କ ମୃତ୍ୟୁ ପରେ ନିଜ ଦେଶକୁ ଫେରି ଆସି ଖ୍ରୀ: ୧୭୦୮ ଠାରୁ ରାଜତ୍ୱ କଲେ । ଏ ଅତି ଦୁର୍ବଳ ରଜା ଥିଲେ ଓ ଏହାଙ୍କର 'ପେଶବା' ଉପାଧିଧାରୀ ବାଲଜୀବାଜୀ ରାଓ ମନ୍ତ୍ରୀ ଏହାଙ୍କ ନାମରେ ରାଜ୍ୟ ଶାସନ କରି ରାଜ୍ୟର ସର୍ବମୟ କର୍ତ୍ତା ହୋଇଥିଲେ । 'ସାହୁ' ୧୭୪୮ ସାଲରେ ପ୍ରାଣତ୍ୟାଗ କରିଥିଲେ ।] ୨ ପ୍ରାଦେ. (ଗଞ୍ଜାମ ଓ ସମ୍ବଲପୁର) ବି—ମୂଲିଆର ଗାମିଡ଼ ବା ସ୍ୱାମୀ—The master under whom a day-labourer works.

**ସାହୁ କରିବା**—ଦେ. କ୍ରି—ମହାଜନଠାରୁ ଧନ କରଜ କରିବା—Sāhu karibā To borrow money from a money-lender.
ଧାର୍ କରା মহাজন করনা

**ସାହୁକାର**—ଦେ. ବି. ପୁଂ—୧ । ଋଣଦାତା; ମହାଜନ; ଉତ୍ତମର୍ଣ୍ଣ—Sāhukāra 1. A moneylender; creditor; (ସାହୁକାରଆଣୀ—ସ୍ତ୍ରୀ) usurer. ୨ । କାର୍ଣ୍ଣିଜ୍ୟାଦିର ମୂଳଧନାଧ୍ୟକ୍ଷ; ଶେଠ—2. A capitalist.
সাউকার साहुकार

**ସାହୁକାରି**—ଦେ. ବି—ସାହୁକାର ପଣ; ମହାଜନି—Sāhukāri Usury; moneylending.
সাউকারি साहुकारी

**ସାହୁକାରିଆ**—ଦେ. ବିଣ—ସାହୁକାର ସମ୍ବନ୍ଧୀୟ—Sāhukāriā Relating to Sāhukāra.
সাউকারী साहुकारका

**ସାହୁ ଖାତକ**—ଦେ. ବି (ବିପରୀତାର୍ଥକ ସହଚର)—ଉତ୍ତମର୍ଣ୍ଣ ଓ ଅଧମର୍ଣ୍ଣ—Sāhu khātaka Creditor and debtor.
মহাজন খাতক महाजन खदुका

**ସାହୁ ଖାତକି**—ଦେ. ବି—ସାହୁପଣ ଓ ଖାତକପଣ; ସାହୁ ଓ ଖାତକ ମଧ୍ୟରେ ଥିବା ସମ୍ବନ୍ଧ—The relationship between a creditor and debtor. ବିଣ—ସାହୁ ଖାତକିଆ (ଦେଖ) Sāhu khātikiā ( See )
Sāhu khātaki
খাতক মহাজন
खदुका महाजनी

**ସାହୁ ଖାତକିଆ**—ଦେ. ବିଣ—ସାହୁ ଓ ଖାତକ ସମ୍ବନ୍ଧୀୟ—Sāhu khātakiā Relating to a creditor and debtor.
খাতক মহাজনি महाजन खदुकाका

**ସାହୁଘର କରିବା**—ଦେ. କ୍ରି—ସାହୁ କରିବା ( ଦେଖ ) Sāhu ghara karibā Sāhu karibā ( See )

**ସାହୁଜି**—ଦେ. ବି—୧ । ସାହୁ ଉପାଧିଧାରୀ ବ୍ୟକ୍ତିଙ୍କ ପ୍ରତି ସମ୍ମାନାର୍ଥକ ସମ୍ବୋଧନ—1. A term of respect addressed to a person having the title of 'Sāhu.' ୨ । ମହାଜନ ବା ଋଣଦାତାଙ୍କ ପ୍ରତି ସମ୍ମାନାର୍ଥକ ସମ୍ବୋଧନ—2. A term of respect addressed to a creditor. ୩ । ସାହୁ ୪ ( ଦେଖ )—4. Sāhu ( See )
Sāhuji
সাহুজী (সাহু মহাশয়)
महाजनजी
সাহুজী
साहुजी

**ସାହୁ ପରଆର**—ଦେ ଋଣଦାତାଙ୍କର ଧାରିଥିବା ଟଙ୍କା ସୁଝିବାକୁ ସମର୍ଥଥିବା ସେସବୁରେ ସାହୁର ମନରେ ଥିବା ବିଶ୍ୱାସତା—The credit of a debtor in the eyes of his creditor. ବିଣ—ଖାତକର ଯେଉଁ ପଦାର୍ଥ ଥିବାରୁ ଖାତକର ଦେଣା ସୁଝିବାର ସମର୍ଥତା ସମ୍ବନ୍ଧରେ ମହାଜନ ବିଶ୍ୱାସ କରେ—(anything) Which being in possession of the debtor produces credit in the eyes of the creditor [ଦ୍ର—ଦାଣ୍ଡରେ କବାଟ ବାଡ଼ରେ ଛାଟି, ସାହୁ ପରଆର ଏଁଥ ଦର୍ଶି—ଢଗ ।]
Sāhu patiāra
মহাজনের প্রত্যয়
महाजन बिश्वास

**ସାହୁ ବାହ୍ମୁଣ**—ପ୍ରାଦେ. (ଗଞ୍ଜାମ) ବି—ଏକ ଜାତୀୟ ବ୍ରାହ୍ମଣ ବାହ୍ମୁଣ—A class of Brāhmaṇas who trade on silk cloths (in Ganjam). [ଦ୍ର—ଏମାନେ ମଠା ଓ ପାଟ ଲୁଗା ବେପାର କରି ଜୀବିକା ନିର୍ବାହ କରନ୍ତି ।]
Sāhu bāhmuṇa
[ସାହୁ ବ୍ରାହ୍ମଣ (ସ୍ତ୍ରୀ) -ଅପଭ୍ରଂଶ]

**ସାହୁ ମ(ମା)ହାଜନ**—ଦେ. ବି (ଏକାର୍ଥକ ସହଚର)—୧ । ଋଣଦାତା; ଉତ୍ତମର୍ଣ୍ଣ—1. Creditor. ୨ । ବଣିକ—2. A trader; merchant.
Sāhu ma(mā)hājana
সাহু মহাজন
साहु महाजन

**ସାହେନ**—ପ୍ରାଦେ. (ଲରିଆ) ବି. ସ୍ତ୍ରୀ—ସାହୁକାର ସ୍ତ୍ରୀ—The wife of a sāhukāra.
Sāhen

**ସାହେବ**—ବୈଦେ. ବି. ପୁଂ ( ଆ. ସାହବ୍=ସମ୍ଭ୍ରାନ୍ତ ବ୍ୟକ୍ତି )—୧ । ସମ୍ଭ୍ରାନ୍ତ ବ୍ୟକ୍ତି; ସମ୍ମାନନୀୟ ବ୍ୟକ୍ତି—1. A respectable person; a man of position. [ଦ୍ର—ହରେ ଓଷର ଓଳ ଅଦ୍ଭୁତଙ୍କ ସାହେବ ଗାନା ଗାଇ ଛତ୍ର ହୋଇ ଶୋଇଥିଲେ—ଫକୀରମୋହନ. ଛ ମାଣ ଆଠ ଗୁଣ୍ଠ ।] ୨ । ସମ୍ମାନସୂଚକ ଉପାଧି ବା ସମ୍ବୋଧନ; (ଯଥା—ମହାଶୟ)—2. A term of respect used in addressing a respectable person. ୩ । ମ୍ଲେଚ୍ଛ ମୁସଲମାନ୍‌ମାନଙ୍କ ପ୍ରତି ସମ୍ବୋଧନ—3. A term of respect addressed to a respectable Mahomedan. [ ଯଥା—ମୌଲଭୀ ସାହେବ; ହକମ୍ ସାହେବ । ] ୪ । ଇଉରୋପୀୟ ଓ ଇଉରେସୀୟମାନଙ୍କର ସାଧାରଣ ଉପାଧି—4. A distinguishing term used for Europeans and Eurasians. [ ଯଥା—ପାଦ୍ରୀ ସାହେବ, ଫିରଙ୍ଗୀ ସାହେବ, କଳା ସାହେବ । ] ୫ । ଉଚ୍ଚ ରାଜକର୍ମଚାରୀ ବା ଶାସନକର୍ତ୍ତାଙ୍କ ପ୍ରତି ସମ୍ବୋଧନ—5. A term of respect used to a high official. [ ଯଥା—ଦରୋଗା ସାହେବ, ଦାରୋଗା ସାହେବ, ପୁଲିସ ସାହେବ ଇତ୍ୟାଦି । ] ୬ । ମୁସଲମାନ
Sāheba
সাহেব
साहब
ସାହେବାଣୀ, ସାହେବାଣୀ } ସ୍ତ୍ରୀ

କାଇଦା ବା ଶିଷ୍ଟାଚାର ଅନୁସାରେ କୌଣସି ଭଦ୍ରବ୍ୟକ୍ତି ବା ବନ୍ଧୁବାନ୍ଧବଙ୍କୁ ସ୍ନେହ ବା ସମ୍ମାନସୂଚକ ସମ୍ବୋଧନ—6. A term of endearment or respect addressed to any gentlemen or friend. [ ଯଥା—ଭାଇ ସାହେବ, ବାବୁ ସାହେବ । ] ୭ । ଇଂରାଜ ଗଭର୍ଣ୍ଣମେଣ୍ଟଙ୍କଦ୍ୱାରା ଭାରତୀୟ ହିନ୍ଦୁମାନଙ୍କୁ ଦିଆଯିବା ଉପାଧିର (ଯଥା—ରାଏ ସାହେବ, ରାଓ ସାହେବ, ରାଜା ସାହେବ, ମହାରାଜା ସାହେବ) ଓ ମୁସଲମାନମାନଙ୍କୁ ଦିଆଯିବା ଉପାଧିର (ଖାଁ ସାହେବ, ସର୍ଦ୍ଦାର ସାହେବର) ଶେଷ ପଦ—7. The last term of some of the honorific titles given by the British Government to Indian Hindus and Mahomedans. [ ଦ୍ର—ଏହା 'ବାହାଦୁର' ଉପାଧିର ନିମ୍ନତର ଉପାଧି । ] ୮ । ( ଅବ୍ୟୟ, ସମ୍ବୋଧନ ) ହେ ମହାଶୟ; ହେ ମାନନୀୟ ମହାଶୟ—8. ( Interjection ) Sir ! Respectable Sir ! [ ଦ୍ର—ସାହେବ ଶବ୍ଦ ବ୍ୟକ୍ତିଙ୍କ ପଦଗୌରବସୂଚକ ଉପାଧିରେ ଯୋଗ କରାଯାଏ; ଯଥା—ବାବୁ ସାହେବ, ଡାକ୍ତର ସାହେବ ଇତ୍ୟାଦି ।

ଦେଶର, ବିଭାଗର ବା ଜିଲ୍ଲାର ପ୍ରଧାନତମ ରାଜକର୍ମଚାରୀମାନଙ୍କ ଉପାଧି ପରେ 'ସାହେବ' ଶବ୍ଦ ବ୍ୟବହାର ହୁଏ; ଯଥା—ଡାକ୍ତର ସାହେବ, ପୁଲିସ ସାହେବ, ଜଜ ସାହେବ, କଲଟର ବା କଲେକ୍ଟର ସାହେବ, ମାଜିଷ୍ଟର ବା ମାଜିଷ୍ଟ୍ରେଟ୍ ସାହେବ, ଲାଟ୍ ସାହେବ; କମିସନ୍ ବା କମିସନର୍ ସାହେବ, ଜିଲ୍ଲା ସାହେବ ।

ସାହେବ ଶବ୍ଦ ଆରବୀ ଭାଷାରେ ପୁଂଲିଙ୍ଗ ଓ ତାହାର ସ୍ତ୍ରୀଲିଙ୍ଗରେ ସାହେବ ଓ ସାହେବା ହୁଏ । କିନ୍ତୁ ସାଧାରଣତଃ ଓଡ଼ିଆ ଭାଷାରେ ସ୍ତ୍ରୀଲୋକମାନଙ୍କ ପ୍ରତି ଏହି ଶବ୍ଦ ବ୍ୟବହାର କରାଯାଏ । ଯଥା—ମେମ ସାହେବ, ରାଣୀ ସାହେବ, ବିବୀ ସାହେବ, ମିସ୍ ସାହେବ ।

ଯେଉଁ ଭାରତୀୟମାନେ ବିଲାତ ଯାଇ କିମ୍ବା ବିଲାତ ନ ଯାଇ ସାହେବୀ ଚାଲି ଚଳଣି ଅନୁକରଣ କରିଅଛନ୍ତି ସେମାନଙ୍କ ବଂଶୋପାଧି ସଙ୍ଗେ ସାହେବ ଶବ୍ଦ ଯୋଗ କରାଯାଏ । ଯଥା—ଦାସ ସାହେବ, ସେନ୍ ସାହେବ, ଗୁପ୍ତ ସାହେବ, ପଟ୍ଟନାୟକ ସାହେବ, ତ୍ରିପାଠୀ ସାହେବ, ମିଶ୍ର ସାହେବ ଇତ୍ୟାଦି ।

ଅନ୍ୟାନ୍ୟ କେତେକ ଶବ୍ଦ ପରେ ମଧ୍ୟ ସାହେବ ଶବ୍ଦ ଯୁକ୍ତ ହୁଏ; ଯଥା—ବକ୍ସାସି ବା ବୁଖାସି ସାହେବ, ମିଆଁ ସାହେବ, ହାକମ୍ ସାହେବ, ମଉଲବୀ ବା ମୌଲବୀ ସାହେବ, ବାବୁ ସାହେବ, ବାବା ସାହେବ, ମିସ୍ ସାହେବ, ମେମ୍ ସାହେବ, ବିବୀ ସାହେବ, କଳା ସାହେବ, ଗୋରା ସାହେବ, ଫିରଙ୍ଗି ସାହେବ, ଦୋମିଶା ସାହେବ, ଗନ୍ତା ସାହେବ, ନାନା ସାହେବ, ମୁ ସାହେବ ବା ମୋ ସାହେବ, ଫିରଚର ସାହେବ, ପାଦ୍ରୀ ସାହେବ, ନାକ୍କାନା ସାହେବ ଇତ୍ୟାଦି ।

ଭାରତୀୟମାନଙ୍କ ଭାରତ ଗଭର୍ଣ୍ଣମେଣ୍ଟଙ୍କ ପ୍ରଦତ୍ତ କେତେକ ଉପାଧିର ଅଙ୍ଗରୂପେ ଏ ଶବ୍ଦ ମଧ୍ୟ ବ୍ୟବହୃତ ହୁଏ; ଯଥା—ରାଓ ସାହେବ, ରାଏ ସାହେବ, ଖାଁ ସାହେବ । ]

ସାହେବ ଜାଦା—ବୈଦେ. ବି ( ପା )—ମୁସଲମାନ ଭଦ୍ରସନ୍ତାନ—The son of a Mahomedan gentleman. [ ଦ୍ର—ଏହି ନାମରେ କଟକ ସହରରେ ଗୋଟିଏ ବଜାର ଅଛି । ଭାଷାକୋଷ ଲେନ୍ ଓ ଆଶ୍ରମ ଏହି ବଜାରରେ ଅବସ୍ଥିତ ।]
Sāheba jādā
সাহেব জাদা
साहब जादा
(ପାଠ—ଜାଦା—ସ୍ତ୍ରୀ)

ସାହେବ ମେମ୍—ବୈଦେ. ବି—ପୁରୁଷ ଓ ସ୍ତ୍ରୀ ସାହେବ—A European gentleman and lady.
Sāheba mem
সাহেব মেম
साहब मेम

ସାହେବ ସୁବା—ବୈଦେ. ବି ( ଅ. ସାହେବ ଓ ସୁବାଦାର )—୧ । ଧନବାନ୍ ଓ ପଦସ୍ଥ ଇଉରୋପୀୟ—1. Rich and noble Europeans. ୨ । ହାକିମ ହୁକୁମା—2. High officials.
Sāheba subā
সাহেব সুবা
साहब सूबा

ସାହେବା—ବୈଦେ. ବି. ସ୍ତ୍ରୀ ( ଅ )—ସାହେବ ଶବ୍ଦର ସ୍ତ୍ରୀଲିଙ୍ଗ; ଭଦ୍ର ମହିଳାଙ୍କ ନାମ ପରେ ବ୍ୟବହୃତ ସମ୍ମାନାର୍ଥକ ଶବ୍ଦ; ମହାଶୟା—A term used after the name of noble females. ( ଯଥା—ରାଣୀ ସାହେବା )
Sāhebā
সাহেবা
साहिबा

ସାହେବାଣୀ—ଦେ. ବି. ( ସାହେବ ଶବ୍ଦରେ ଓଡ଼ିଆ ସ୍ତ୍ରୀଲିଙ୍ଗାନ୍ତ ଅଣୀ ପ୍ରତ୍ୟୟ )—ବିବି; ମେମ୍; ଇଉରୋପୀୟା ସ୍ତ୍ରୀ—A European lady.
Sāhebāṇī
সাহেবা মেম

ସାହେବାନ୍—ବୈଦେ. ବି (ବହୁବଚନ) (ପା)—ସାହେବ ଶବ୍ଦର ବହୁବଚନ—Plural of the word Sāheba.
Sāhebān
সাহেববা
साहबान

ସାହେବାନା—ଦେ. ବି—ସାହେବ ବା ଇଉରୋପୀୟମାନଙ୍କର ଭାବ, ଆଚରଣ ବା ପଦ୍ଧତି—European mode or conduct or fashion. ବିଣ—ସାହେବାନି (ଦେଖ) Sāhebāni ( See )
Sāhebānā
সাহেবিয়ানা
साहबाना

ସାହେବାନି—ଦେ. ବି—ସାହେବାନା ( ଦେଖ ) Sāhebānā ( See ) ବିଣ—ସାହେବ ବା ଇଉରୋପୀୟଙ୍କ ଯୋଗ୍ୟ ବା ଉପଯୁକ୍ତ—Befitting a European. (ଯଥା—ସାହେବାନି କାଇଦା, ସାହେବାନି ଢଙ୍ଗ ।)
Sāhebāni
সাহেবিয়ানা
साहबानी

ସାହେବାନିଆ—ଦେ. ବିଣ—ସାହେବ ବା ଇଉରୋପୀୟଙ୍କ ଯୋଗ୍ୟ ବା ଉପଯୁକ୍ତ—Befitting a European.
Sāhebāniā
সাহেবী
साहबानी

ସାହେବାନି କାଇ( ଏ, ୟ )ଦା—ଦେ. ବି—ଇଉରୋପୀୟମାନଙ୍କ ଶିଷ୍ଟାଚାର—European etiquette.
Sāhebāni kāi(e,ya)dā
সাহেবী কায়দা
साहबानी कायदा

**ସାହେବାନି ଚଳଣି(ଣ)**—ଇଉରୋପୀୟମାନଙ୍କ ପରି ଅଚଳଣ—
Sāhebānı chaḷaṇa(ṇa) Mode of conduct befitting a European.
साहेबी चाल **साहबानी चलन**
(ସାହେବାନି ଗୁଲ୍[ଲ୍], ସାହେବାନି ଗୁଲ୍‌ଚଳଣି[ଣ]—ଅନ୍ୟରୂପ)

**ସାହେବାନି ଢଙ୍ଗ**—ଦେ. ବି—ସାହେବମାନଙ୍କର ରୀତି—
Sāhebānı dhaṅga Mode of Europeans.
साहेबी ढङ्ग **साहबानी ढङ्ग**

**ସାହେବିଆନା**—ଦେ. ବି ସାହେବାନା (ଦେଖ)—Sāhebānā.
Sāhebıānā (See) ବିଣ—ସାହେବାନି (ଦେଖ)—Sāhebānı. (See)

**ସାହେବୀ**—ଦେ. ବି ଓ ବିଣ—ସାହେବାନି (ଦେଖ)—Sāhebānı
Sāhebī (See) (ଉ—ସାହେବୀ ପୋଷାକ କେତୁ ଅବା ପିନ୍ଧି। ସୁଧାନାଥ. ଦରବାର।)

**ସାହେବେନ୍**—ପ୍ରାଦେ. (ସମ୍ବଲପୁର) ବି—ସାହେବାଣୀ—
Sāheben A European lady.

**ସାହେଯ**—ପ୍ରାଦେ (ଲରଥ) ବି—ସାହାଯ୍ୟ—
Sāheja Sāhājya.

**ସାହେର**—ଗ୍ରା. ବି (ପ୍ରାଚୀନ ଶବ୍ଦ) (ସଂ. ସାଗର)—ସମୁଦ୍ର—
Sāhera Ocean. (ଉ—ସ୍ୱପ୍ନ ଅଙ୍କା ଗିରେ ବହୁ ଦେନି, ଅଞ୍ଜନା-
साग्वर **सायर** ସୁତ ସାହେର ଲଙ୍ଘି। ବିଶ୍ୱନାଥ. ବିଚିତ୍ର ରାମାୟଣ।)

**ସାହ୍ନ**—ସଂ. ବିଣ (ସହାର୍ଥ ବହୁବ୍ରୀହି; ସ+ଅହନ୍) ଦିବସବିଶିଷ୍ଟ—
Sāhna Consisting of a day.

**ସାହ୍ୱୟ**—ସଂ. ବି (ସ+ଅହ୍ୱୟ)—୧। ସମାହ୍ୱୟ; ପେଡ଼ଦ ପ୍ରାଣିଦ୍ୟୂତ
Sāhwaya (ବିଶ୍ୱକୋଷ)—1. Fight of animals by laying wagers. ୨। ପଶୁ ଯୁଦ୍ଧ—2. Fight of animals (e. g. cockfight; bullfight).
ସଂ. ବିଣ—ନାମଯୁକ୍ତ; ନାମବିଶିଷ୍ଟ (ବିଶ୍ୱକୋଷ)—
Having a name.

**ସାହ୍ୟ**—ସଂ. ବି (ସହ+ଭାବାର୍ଥେ ଯ)—୧। ସାହାଯ୍ୟ; ସହାୟତା
Sāhya (ବିଶ୍ୱକୋଷ)—1. Help; support. ୨। ମେଳନ
साहाय्य (ବିଶ୍ୱକୋଷ)—2. Combination; union.
**सहाय** ୩। ସହଚରତ୍ୱ (ଧରଣୀ)—3. The state of companionship. ଗ୍ରା. ବିଣ—ସାହାଯ୍ୟକାରୀ; ସହାୟ—Helping. ଗ୍ରା. ବି—ସହାୟକାରୀ—
Helper; assistant.

**ସାହ୍ୟକୃତ୍**—ସଂ. ବିଣ (ପୁଂ. ଓ ସ୍ତ୍ରୀ) (ସାହ୍ୟ+କୃ. ଧାତୁ+କର୍ତ୍ତି.
Sāhyakrut କ୍ୱିପ୍)—୧। ସମଭିବ୍ୟାହାରୀ; ସଙ୍ଗୀ (ବିଶ୍ୱକୋଷ)—1. Accompanying. ୨। ସାହାଯ୍ୟକାରୀ—2. Helping.

**ସାହ୍ଲା**—ପ୍ରାଦେ (ଲରଥ) ବି—୧। ସହ୍ଲା (ଦେଖ)—1. Sahlā.
Sāhlā (See) ୨। ବହୁବ୍ୟକ୍ତିଙ୍କ ମେଳ—2. Combination of many people. ବିଣ—୧। ମେଳ ବାନ୍ଧି ଥିବା (ବ୍ୟକ୍ତିଗଣ)—1. Combined (persons). ୨। ପରାମର୍ଶ ସଂଭୂତ (କର୍ମ)—2 (act) Due to or resulting from consultation or advice.

**ସାହ୍ଲାଦ**—ସଂ. ବିଣ. ପୁଂ (ସହାର୍ଥ ବହୁବ୍ରୀହି; ସ+ଅହ୍ଲାଦ)—
Sāhlāda ୧। ଅହ୍ଲାଦଜନକ (ବିଷୟ)—1. Delightful.
(ସାହ୍ଲାଦା—ସ୍ତ୍ରୀ) ୨। ଅହ୍ଲାଦିତ (ବ୍ୟକ୍ତି)—2. Delighted; overjoyed. ଦେ. କ୍ରି. ବିଣ (ସଂ. ସାହ୍ଲାଦଂ)—ଅହ୍ଲାଦ ସହକାରେ—With joy; joyously.

**ସି (ଧାତୁ)**—ସଂ—୧। ବନ୍ଧନ କରିବା—1. To tie. ୨। ଭୂମି
Si (root) ଖନନ କରିବା—2. To dig earth.

**ସି**—ଦେ. ଅ—୧। (ଧ୍ୱନ୍ୟନୁକରଣ) ଲଙ୍କାମରିଚ ବା ରାଗ ଖାଇଲେ
Si ପାଟିରୁ ବାହାରିବା ଶବ୍ଦ—1. Hissing sound made
सीसी by a person after tasting pungent
**सीत्** things. ୨। (ଅନୁକରଣ ଧ୍ୱନି) ସିଟି ମାରିବାର ଶବ୍ଦ—2. Whistling sound. ୩। (ସଂ. ବର୍ତ୍ତମାନ କାଳ ଓ ଅନୁଜ୍ଞା ୨ୟ ପୁରୁଷ ଏକବଚନାର୍ଥକ କ୍ରିୟାରେ ଯୋଗ କରାଯିବା ଅକ୍ଷର) ପ୍ରାଚୀନ ଓଡ଼ିଆରେ ଅନୁଜ୍ଞା ୨ୟ ପୁରୁଷ ଏକବଚନରେ କ୍ରିୟାର ଧାତୁରେ ଯୋଗ କରାଯିବା ଅକ୍ଷର—3. An inflection used after a verb in the imperative mood, singular number. (ଉ—ସେ କଥା କହି ଚୋର ଏବେ ହେଲୁ ଅସି, ଜାଣିଣ କୋଦଣ୍ଡ ଭୁଜ ଶମନ ତୁହସି। ବଳରାମ. ରାମାୟଣ ଅଯୋଧ୍ୟା।) ୪। (ଧ୍ୱନ୍ୟନୁକରଣ) ଶୀତରେ ଥରୁଥିବା ବ୍ୟକ୍ତିର ସିତ୍କାର ଶବ୍ଦ—4. The hissing sound of a person shivering with cold. ୫। ସି ଅକ୍ଷର (ଦେଖ)—5. Si akshara. (See) ପ୍ରାଦେ. (ସମ୍ବଲପୁର) (କ୍ରିୟାର ପ୍ରତ୍ୟୟ ବିଶେଷ)—ବର୍ତ୍ତମାନ କାଳ ୩ୟ ଓ ୧ମ ପୁରୁଷ ଏକବଚନ ଓ ଭବିଷ୍ୟତ୍ କାଳ ୧ମ ପୁରୁଷ ଏକବଚନରେ କ୍ରିୟାରୁପରେ ଯୋଗ କରାଯିବା ଅକ୍ଷର—Inflection added to a verb to indicate Indicative mood, future tense, 1st person singular and present tense, 1st. and 3rd. persons singular. [ଦ୍ର—ଓଡ଼ିଆରେ କ୍ରିୟା ପରେ 'ଛି'ର ବ୍ୟବହାର ପରି ଏହାର ବ୍ୟବହାର ଅଟେ। ଯଥା—ହୋସି=ହେଉଛି।]

(ଉ—ଭୂଲ ! ମୁଇଁ ତୋ କୋଲ୍ହା କରସି ଗୋ।
ନନ୍ଦପୁଅର କଥା ମନେ କେଲ୍ହାକେଲ୍ହା ଲଗସି ଗୋ।
ବଂଶୀ ଥାଇସି କଲଥ ଟେକିଠିର
ପିନ୍ଧି ଥାଇସି ହଳଦିଆ କଛକର୍
ଧୋବ ଫର୍‌ଫର୍ ଟେ ଜଅନ୍ ବାଟ ଭି ଟେ
ଦେକେ ଓଲ୍ହାଇ ଆଇସି ଗୋ।
ସିବାବେଲ୍ କେ ଯମ୍‌ନା ଜଲେ
ଭସି ଥାଇସି କଦମ୍ ତଲେ

ମତେ ଅନାଇ ଭାଲଥ ଠୋକା
ଭାଇଭାଇ କଥା କହୁସି ଗୋ ।
ଭାଇ ଭାଇ ମନ୍ତର ଅଇସି ଭାଇକେ
ମୁଣ୍ଡା ଉଇଁଶା କୋଶି ଖାଏକେ
ଯେତେ ଥାଇସି ଖୀର୍ ଲଡୁକା
ଗ୍ରେସ୍‌ଭ କର୍ ଖାଇସି ଗୋ ।
ସମ୍ବଲପୁରୀ ଲୌକିକ ଗୀତ ।)

ପ୍ରାଦେ° (ଗଞ୍ଜାମ) ଅ—ମଧ୍ୟ; ବ—Too; also.
[ଉ—ମୁଁ ସି ଯାଇଥିଲି ।]

ସିଅ(ଇତ୍ୟାଦି)—ଦେ. ବ (ସ. ଶିଙ୍)—ଶିଅ ଇତ୍ୟାଦ (ଦେଖ)
Sia (etc) Śia etc (See)

ସିଅଁ—ପ୍ରାଦେ (ଇଉର ବ୍ୟବହୃତ; ଅନୁଗୁଳ, ଗଡ଼ଜାତ) ବ—ସ୍ରୋତ;
Siañ ସୁଅ—Current· ଦେ. କ୍ରି—ସେଇଁବା କ୍ରିୟାର
সেলাইকর सिलाईकरो ଅନୁଜ୍ଞାରେ ରୂପ (ତୁମ୍ଭେ)
ସିଲାଇ କର—(Imperative mood of the
verb To sew) (you) Do sew.

ସି ଅକ୍ଷର—ଦେ. ବ (ପୂର୍ବେ ଶିଶୁର ପ୍ରଥମେ ବିଦ୍ୟାରମ୍ଭବେଳେ ଗୁରୁ
Si akshara ଭୂମିରେ ଖଡିଦ୍ୱାରା • ଗୋଟି ମଣ୍ଡଳୀ
ক অক্ষর सि अक्षर କାଟି କିମ୍ବା ସିଦ୍ଧିରସ୍ତୁ ( ସ.
ସିଦ୍ଧିରସ୍ତୁ—ବିଦ୍ୟା ସିଦ୍ଧି ହେଉ) ଲେଖି ଶିଶୁଙ୍କ ହାତ
ଧରି 'ସିଦ୍ଧିରସ୍ତୁ' ଉଚ୍ଚାରଣ କରି ତାହା ଉପରେ ଶିଶୁର
ହାତକୁ ବୁଲାଇ କରନ୍ତି । ଏହି ଶବ୍ଦର ପ୍ରଥମ ଅକ୍ଷର 'ସି'
ଥିବାରୁ ଏପରି ନାମ ହୋଇଅଛି । )
ବିଦ୍ୟାରମ୍ଭରେ ଶିଶୁର ବୋଲିବା ଓ ଲେଖିବା ପ୍ରଥମ
ଅକ୍ଷର—The 1st letter written and uttered by a child when first ceremonially learning to write.

(ତାକୁ) ସି ଅକ୍ଷର ବରୁଣା(ଣେ)ଇ ପର୍ବତ—ଦେ. ପ୍ରବଚନ—ଗ୍ରାମ୍ୟ
Si akshara baruṇa(ṇe)i parbata ବ୍ୟକ୍ତିପ୍ରତି
ক অক্ষর গো মাংস करिया अक्षर भैंस बराबर ପ୍ରୟୋଗ
କରାଯିବା ବାକ୍ୟ [ ଅର୍ଥାତ୍ ତାହାର ବିଦ୍ୟାରମ୍ଭ ମୁଦ୍ଧା
ହୋଇ ନ ଥିବାରୁ ତାକୁ 'ସି' ଅକ୍ଷର ବରୁଣାଇ ପର୍ବତ
(ଖୋରଧାର କଡ଼ ପାହାଡ଼ ଓ କଟକର ମହାବିନାୟକଙ୍କ
ପର୍ବତ) ପରି ବଡ଼ ଓ ଅସାଧ୍ୟ ଜଣା ଯାଉଛି]—ସେ ନିରକ୍ଷର
ବା ମୂର୍ଖ ଅଟେ—(a phrase used to denote a person who has not even begun the alphabets, and to whom the 1st letter of a beginner appears like a mountain) He is illiterate or unlettered.

ସି ଅକ୍ଷର ବିବର୍ଜି(ଜ)ତ(ତା)—ଦେ. ବିଣ—ଅତି ମୂର୍ଖ ( ବ୍ୟକ୍ତି );
Si akshara bibarji[rjji]ta(tā) ଯେଉଁ ବ୍ୟକ୍ତି.
ক অক্ষর বিবর্জিত शि अक्षर बिबर्जित ଆଦୌ ବିଦ୍ୟା-
ରମ୍ଭ କରି ନାହିଁ କିମ୍ବା ଯାହାର ବର୍ଣ୍ଣପରିଚୟ ମଧ୍ୟ ଅରମ୍ଭ
ହୋଇ ନାହିଁ—Unlettered; a person who has not even begun the alphabets

ସିଅଲ୍—ପ୍ରାଦେ (ବଲଙ୍ଗିର, ପାଟଣା) (ସ ଶୀତଳ)—ଶୀତଳ; ଥଣ୍ଡା—
Sial Cool; cold.

ସିଅଲ—ଦେ.ବ—ଖଜୁରି ଓ ତାଳ ଗଛରୁ ରସ (ତାଡ଼ି) କାଢ଼ିବାର ଜାତିବା
Siala ବ୍ୟବସାୟୀ ଜାତି; ଶିଅଳ ( ଦେଖ )—
পাশী, শিওলী पासी A depressed caste, whose profession is to tap date palm and palmyra trees for toddy.

ସିଅଲ ପାଗ—ପ୍ରାଦେ. ( ବଲଙ୍ଗିର ପାଟଣା ) ବ—ଶୀତଳ
Siala pāga ପାଗ; ଥଣ୍ଡା ଋତୁ ବା ସମୟ—
Cool or cold weather.

ସିଆ—ବୈଦେ ବ. ( ଫା. ସିହା )—ସିହା ( ଦେଖ )—
Siā Sihā (See). ଦେ° ବ (କଣିଆ ଭାଷା) ସୁନା—
সোনা सोना Gold.

ସିଆଇ(ହି)—ବୈଦେ° ବ (ଫା. ସିୟାହି)—ମସୀ; କାଳି—
Siāi(hi) Writing ink.
কালী সেহাই सयाही

ସି. ଆଇ. ଇ.—ବୈଦେ° ବ ( ଇ° ) ଇଂରେଜ ସରକାରଙ୍କ ପ୍ରଦତ୍ତ
Si. āi. i. ଉଚ୍ଚ ସମ୍ମାନସୂଚକ ଉପାଧି ବିଶେଷ—
সি আই. ই सि. आइ ई The title C. I. E.
(ଏହା Companion of Indian Empire ଶବ୍ଦର
ସଙ୍କେତ; ଏଥିର ଅର୍ଥ ଭାରତ ସାମ୍ରାଜ୍ୟର ସଙ୍ଗୀ ବା
ବନ୍ଧୁ । )

ସିଆଇ(ହି) ଘଡ଼ି—ଦେ. ବ—ମସୀ ପାତ୍ର; କାଳି ଦଉ; ଦୁଆତ—
Siāi(hi) ghardi Inkpot; inkstand.
[ସିଅଇଦାନ(କ)—ଅନ୍ୟରୂପ] দোয়াত मसिहा(दा)नी

ସି.ଆଇ.ଡି—ବୈଦେ° ବ ( ଇ°. ସି. ଆଇ. ଡି. )—ଗୁପ୍ତ ପୁଲିସ୍,
Si.āi.di ସରକାରଙ୍କ ଡିଟେକ୍‌ଟିଭ୍ ବା ଗୁଇନ୍ଦା ପୁଲିସ ବିଭାଗ—
সিআইডি सिआईडी The C. I. D. Department of the Govt. [ଦ୍ର—ଏହା ଇଂରେଜ Criminal Investigation Department ଶବ୍ଦତ୍ରୟର ସଙ୍କେତ]

ସିଆଁ(ଣା)—ଦେ. ବ (ସଂ° ସୀବନ)—ସିଲେଇ କର୍ମ—
Siañ(ṇā) Sewing.
সিআঁ सिलाइ ଦେ° ବିଣ—ସିଲାଇ କରାଯାଇଥିବା; ସୂଚୀ-
সেলাইকরা सिलाइकियाहुआ Sewn.

ସିଆଁ (ଣା)ଇ(ଇଁ)ବା—ଦେ. କ୍ରି (ସଂ° ସୀବ୍ ଧାତୁ ଣିଜନ୍ତ)—୧ ।
Siañ(ṇa)i(iñ)bā (ସିଇଁବା କ୍ରିୟାର ଣିଜନ୍ତ ରୂପ) ଅନ୍ୟଦ୍ୱାରା
সিঁআন, সেলাইকরান सलवाना ସିଲାଇକର୍ମ କରାଇବା—1.
(Causative of Siiñbā) To cause to be sewn. [ଉ—ସିଅଇଁ ଫୁଲକୁ ତା ବସ୍ତ୍ରଗୁଡ଼ିକ କେଉଁ
সিঅঁা, সিয়াঁ सीना ସମୟରେ ସିଆଁଇଛି ।—ଅଭିମନ୍ୟୁ.

ବନ୍ଦର୍ ଧରାରାମଣି] ୨ । (ସଂ. ସୀବ୍ ଧାତୁ) ସିଇଁବା (ଦେଖ)—Siiñba (See)

ସିଅଁ(ଞା)ସି(ସେ)ଇଁ—ଦେ. ବି—ନାନା ବସ୍ତୁକୁ ସିଲେଇ କରିବା କାର୍ଯ୍ୟ Siañ ña)si(se)iñ Act of sewing many things.
সিআঁ সিই सिलाईसलाई

ସିଅକାଟୁ—ପ୍ରାଦେ. (ଗଞ୍ଜାମ) ବି. (ତେଲୁଗୁ)—ସ୍ତ୍ରୀଲୋକମାନଙ୍କ Siakāṭu ମଣିବନ୍ଧରେ ପିନ୍ଧାଯିବା କଙ୍କଣ ବିଶେଷ—A kind bracelet. [ଉ—କଡ଼ଖାଇ ସମୀପେ ସିଅକାଟୁ ଦେଲେ ପଣ୍ଡି ।—କବିସୂର୍ଯ୍ୟ. ଚନ୍ଦ୍ରକଳା]

ସିଅଡ଼—ଦେ. ବି—୧ । ସେହି ଆଡ଼; ସେ ଦିଗ—1. That side. Siarda ୨ । ବିପରୀତ ଦିଗ—2. Opposite direction. [ସ୍ୟାଡ଼—ଅନ୍ୟରୂପ] ୩ । ସେ ଦେଶ ବା ଅଞ୍ଚଳ—3. That country or locality.
সেথা, উদিক(গ) उधर
ଦେ. ବିଣ—୧ । ସେ ଦିଗର—1. Of that side.
উদিগ্কার उधरका ୨ । ସେ ଦେଶର—2. Of that country or locality.

ସିଅଡ଼(ଡ଼ି)କା—ଦେ.ବିଣ—୧। ସେହି ଦିଗର—1. Of that side. Siarda(rdi)kā ୨ । ସେହି ଦେଶର ବା ଅଞ୍ଚଳର—2. Of that country or locality.
ସିଅଡ଼(ଡି)କାର; ସ୍ୟାଡ଼(ଡି)କା, ସ୍ୟାଡ଼(ଡ଼ି)କାର }—ଅନ୍ୟରୂପ
সিদিগ্কার; উদিগ্কার उधरका ୩ । ବିପରୀତ ଦିଗର—3. Of an opposite direction.
ଇଅଡ଼(ଡ଼ି)କା, ୟାଡ଼(ଡ଼ି)କା; ଇଅଡ଼(ଡ଼ି)କାର; ୟାଡ଼(ଡ଼ି)କାର }—ବିପରୀତ

ସିଅଡ଼(ଡ଼ି, ଡ଼ୁ)କୁ—ଦେ. ଅ—ତେଣିକି; ସେହିଆଡ଼କୁ; ସେହିଦିଗକୁ—Siard(rdi; rdu) ku 1. To that side; to that direction. ୨ । ବିପରୀତ ଦିଗକୁ—2. To an opposite direction. ୩ । ତା ପରେ; ସେହି ସମୟ ପରେ—3. After that time.
[ସ୍ୟାଡ଼(ଡ଼ି,ଡ଼ୁ)କୁ—ଅନ୍ୟରୂପ)
সেদিকে, উদিকে उधरको
[ଇଅଡ଼(ଡ଼ି;ଡ଼ୁ)କୁ; ୟାଡ଼(ଡ଼ି;ଡ଼ୁ)କୁ—ବିପରୀତ]

ସିଅଡ଼ି—ଦେ. ବି—(ଦେଶିଅ ଶବ୍ଦ)—୧ । ପତ୍ତାର କଣାରେ Siardi ରୁପାର ବା ସୁନା ସରୁ ଖଣ୍ଡର ମୁଣ୍ଡକୁ ଭରିଭି କରି ତାର କରିବାକୁ ହେଲେ ସଣ୍ଡାସିଭଳି ଯେଉଁ ହତିଆରରେ ଭଲ୍ଲ ସୁନା ବା ରୁପାର ମୁଣ୍ଡକୁ ଧରି ଟାଣନ୍ତି—1. A prong or pair of tongs used by the goldsmiths for holding the silver or gold wire while drawing it through holes of a metal plate for making wires. ୨ । ବନ୍ୟଲତା ବିଶେଷ—2. A kind of wild creeper with big leaves. [ଉ—ଏଥିର ପତ୍ରରେ ଚଉପଦ ଓ ଖଲ ସିଅଁଯାଏ ଓ ଛତା ଉପରେ ଘର ଛପାଯାଏ। ଏଥିର ଫଳ ବଣ ହାତମାନେ ପୋଡ଼ି କରି ଖାଆନ୍ତି ଓ ଘଞ୍ଚର ଚୋଲାରେ ଭାତ ଖାଆନ୍ତି। ଏଥିର ଲଞ୍ଚରେ ଲଇ ହୁଏ। ସିଅଡ଼ି ଲତାରେ ଗଣ୍ଠି ପକାଯାଇ ବିଦ୍ରୋହ ବା ମେଳିର ସଂବାଦ ଗ୍ରାମେ ଗ୍ରାମେ ବୁଲାଯାଏ।]
সাড়াশি सडसा

ସିଅଡ଼ିକ(କୁ)—ଦେ. ଅ—ସିଅଡ଼କୁ (ଦେଖ)—Siardik (ku) Siardaku (See)
[ସ୍ୟାଡ଼ିକ(କୁ, ଅନ୍ୟରୂପ]
[ଇଅଡ଼କ(କୁ), ୟାଡ଼ିକ(କୁ)—ବିପରୀତ]

ସିଅଡ଼ି ଗଣ୍ଠି ଫେରା(ରେ)ଇବା—ପ୍ରାଦେ.(ଗଡ଼ଜାତ) କ୍ରି—(ଗଡ଼ଜାତର Siardi ganthi pherā(re)ibā ଭୂୟାଁ, କନ୍ଧଆଦି ଅନାର୍ଯ୍ୟମାନେ) ସିଅଡ଼ି ଲତାରେ ଗଣ୍ଠି ପକାଇ ରାଜ୍ୟତମାମ ବିଦ୍ରୋହ ବା ମେଳିର ଉତ୍ତେଜନାମୂଳକ ଚିହ୍ନ ଗ୍ରାମରୁ ଗ୍ରାମାନ୍ତରକୁ ଫେରାଇବା—(Said of the people and specially non-aryan people of the Orissa States)—To despatch from one village to another a Siardi creeper with knots as an incitement and indication to rise in or join a revolt. [ଉ—ଯେଉଁ ଗ୍ରାମର ଲୋକ ମେଳରେ ଯୋଗ ଦେବାକୁ ସ୍ୱୀକୃତ ହୁଅନ୍ତି ସେମାନେ ଲତାରେ ଗୋଟିଏ ଗଣ୍ଠି ପକାନ୍ତି । ଗଣ୍ଠି ବୁଲି ଯାଇ ମୂଳସ୍ଥାନକୁ ଫେରି ଆସିଲେ ମେଳିର ସୂତ୍ରପାତ ହୁଏ । —କ୍ଷେତ୍ରମୋହନ. କେନ୍ଦୁଝର ଇତିହାସ ।]
[ସିଅଡ଼ି ଗଣ୍ଠି ବୁଲା(ଲେ)ଇବା—ଅନ୍ୟରୂପ]

ସିଅଡ଼ି ଲଇ—ଦେ. ବି—ସିଅଡ଼ି ୨ (ଦେଖ)—Siardi lai Siardi 2 (See)

ସିଅଡ଼ୁ(ଡ଼ୁଁ)—ଦେ. ଅ—୧ । ସେ ଆଡ଼ୁ; ତେଣୁ; ସେଦିଗରୁ—1. Siardu(rdu) From that side; from that direction. ୨ । ବିପରୀତ ଦିଗରୁ—2. From an opposite direction. ୩ । ସେ ଅଞ୍ଚଳରୁ—3. From that locality.
সিদিগ্ থেকে, হেথাথেকে उधरसे
[ସ୍ୟାଡ଼ୁ(ଡ଼ୁଁ)—ଅନ୍ୟରୂପ]
[ଇଅଡ଼ୁ(ଡ଼ୁଁ), ୟାଡ଼ୁ(ଡ଼ୁଁ)—ବିପରୀତ]

ସିଅଡ଼େ—ଦେ. ଅ—୧ । ସେ ଦିଗରେ—1. On that side. Siarde ୨ । ସେଠାରେ—2. There. ୩ । ସେ ଦେଶରେ; ତେଣେ—3. In that country or locality. ୪ । ବିପରୀତ ଦିଗରେ—4. In an opposite direction. ୫ । ଅନ୍ୟପକ୍ଷରେ—5. On the other hand. ଦେ. ବିଣ. (ସ. ସାର୍ଦ୍ଧ) ସାଢ଼େ (ଦେଖ)—Sārdhe (See).
সেদিকে उधरमें
(ଇଅଡ଼େ, ୟାଡ଼େ—ବିପରୀତ)
সাঢ়ে साढ़े

ସିଅ(ହା)ଣ—ଦେ. ବିଣ. ପୁଂ ଓ ସ୍ତ୍ରୀ (ସ. ସଜ୍ଞାନ)—୧ । ଚତୁର; Siā(hā) a ଚାଲାକ—1. Clever; shrewd. ୨ । (ସ୍ୟାଣ, ସିଅଣିଆ, ସିହାଣିଆ, ସ୍ୟାଣିଆ—ଅନ୍ୟରୂପ) ବୁଦ୍ଧିମାନ୍—2. Intelligent. ୩ । ଶଠ; ଧୂର୍ତ୍ତ—3. Sly; crafty.
সিয়ান(না), সেয়ান(না) सयाना, सियाना
( ସିଅଣୀ, ସିଅଣେଇ—ସ୍ତ୍ରୀ )

ସିଅଣା—ଦେ. ବଣ. ସ୍ତ୍ରୀ ( ସ. ସଜ୍ଞାନା )—୧ । ଋତୁମତୀ; ପ୍ରାପ୍ତ-
Siāṇā ଯୌବନା; ରଜସ୍ୱଳା ହୋଇଥିବା ( ବାଳିକା )—
ସোমত্ত 1. Menstruated ( girl ); who has attain-
ସ୍ୟାନୀ, रजस्वला ed puberty. ୨ । (ପୁଂ ଓ ସ୍ତ୍ରୀ) ସିଅଣ
(ଦେଖ)—2. Siāṇa (See)

ସିଅଣା ଚତୁର(ରା)—ଦେ. ବଣ. ପୁଂ ଓ ସ୍ତ୍ରୀ ( ଏକାର୍ଥକ ସହଚର )—
Siāṇā chatura(rā) ଅତ୍ୟନ୍ତ ଚତୁର ବା ଧୂର୍ତ୍ତ—
সেয়ানা চতুর चतुर सयान Very sly.
(ସିଅଣୀ ଚତୁରେଣୀ—ସ୍ତ୍ରୀ)

ସିଅଣା ପଣ(ପଣିଆଁ)—ଦେ. ବି—୧ । ଚତୁରତା—1. Clever-
Siāṇā paṇa(paṇiāṅ) ness. ୨ । ଧୂର୍ତ୍ତତା—2. Slyness.
সেয়ানতি सयानपन ୩ । ବୁଦ୍ଧିମତ୍ତା—3. Intelligence.

ସିଅଣା ପାଗଳ(ଲ)—ଦେ. ବଣ—୧ । ଯେଉଁ ଦୋଷୀ ବା ଅନ୍ୟାୟକାରୀ
Siāṇā pāgaḷa(la) ବ୍ୟକ୍ତି ନିଜର ଦୋଷ ବା ଅନ୍ୟାୟ ପ୍ରକାଶିତ
(ଜାଣି ସିଅଣା, ଜାଣି ସିଅଣିଆ—ଅନ୍ୟରୂପ) ହେବା କଥା ଅଗରୁ
সেয়ানা পাগল ଜାଣି ପାରି ବାତୁଳତାର ବାହାନା କରେ—1. A
सयान पागल wrong doer or offender who feigns madness to screen or excuse his wrong or crime. ୨ । ଯେଉଁ ଚତୁର ବ୍ୟକ୍ତି ବାତୁଳତାର ଭାନ କରେ—2. A clever person who feigns insanity. ୩ । ବାହାରେ ଲୋକଙ୍କୁ ଦେଖାଇବା ପାଇଁ ବାତୁଳ ବା ସରଳ କିନ୍ତୁ ପ୍ରକୃତରେ ଦୁର୍ବୃତ୍ତ ବା କୁଟବୁଦ୍ଧି ବ୍ୟକ୍ତି—3. A person who is wicked or sly at heart but affects frankness or madness.

ସିଅଣା ହେବା—ଦେ. କ୍ରି—(ବାଳିକା) ପ୍ରଥମେ ରଜସ୍ୱଳା ହେବା;
Siāṇā hebā ଘର ଯୋଗ୍ୟ ହେବା; ସ୍ନାନ ପାଇବା—To be
সোমত্ত হওয়া menstruated for the first time.
रजस्वला होना, जूनेकोहोना

ସିଅଣାରେ ସିଅଣାରେ କୋଳା କୋଳି—ଦେ. ପ୍ରବଚନ—ପରସ୍ପର
Siāṇāre siāṇāre koḷā koḷi ପ୍ରତି କପଟ ବନ୍ଧୁତା
ସିଅଣାରେ ସିଅଣାରେ କୁଣ୍ଢା କୁଣ୍ଢି / ସିଅଣାରେ ସିଅଣାରେ ମିଳାମିଶା }—ଅନ୍ୟରୂପ] ଦେଖାଇବା; ଦୁଇ ଜଣ ଧୂର୍ତ୍ତ ବ୍ୟକ୍ତିଙ୍କ
সেয়ানে সেয়ানে কোলা কোলী ମଧ୍ୟରେ କୃତ୍ରିମ ବନ୍ଧୁତାର
सयानमें सयानमें गल बहियां ଆଦାନ ପ୍ରଦାନ—
Exchange of civilities between two sly persons.

ସିଅଣିଆ(ଆଁ) (ଇତ୍ୟାଦି)—ଦେ. ବଣ. ପୁଂ ଓ ସ୍ତ୍ରୀ—
Siāṇiā(āṅ) ସିଅଣ(ଣା) ଇତ୍ୟାଦି ( ଦେଖ )
Siāṇa(ṇā) etc. ( See )

ସିଅଣୀ—ଦେ. ବଣ. ସ୍ତ୍ରୀ—ସିଅଣର ସ୍ତ୍ରୀଲିଙ୍ଗ—
Siāṇi Feminine of 'Siāṇa'.
(ସିଅଣେଈ—ସ୍ତ୍ରୀ)

ସିଅ(ଆଁ)ନ୍—ପ୍ରାଦେ. ( ସମ୍ବଲପୁର ) ବି—୧ । ଅଧିନାୟକ—
Siā(āṅ)n 1. Leader. ୨ । ଦଳପତି—2. Leader of a group. ପ୍ରାଦେ. (ସମ୍ବଲପୁର) ବଣ—୧। ସିଅଣା; ଚତୁର—1. Clever. ୨ । ହୁସିଆର—2. Wary; cautious.

ସିଅନଙ୍ଗା—ଦେ. ବି—ବୌଦରେ ଅବସ୍ଥିତ ଗୋଟିଏ ପର୍ବତ (ଛଡା
Siānaṅgā ୧୧୧୭ ପୃଷ୍ଠା)—The name of a mountain in the State of Baud.

ସିଆଣା—ପ୍ରାଦେ. (ଲଇଅ) ବଣ—ସିଅଣା।—
Siāṇā Clever; sly.

ସିଆର୍—ବୈଦେ. ବି (ଇଂ)—ଯୌଥ କାରବାରରେ ଅଂଶୀଦାରର ହିସା—
Siār A share in a joint business.
সেয়ার সেযर

ସି. ଆର୍. ଦାସ୍—ବଙ୍ଗର ପ୍ରସିଦ୍ଧ ରାଜନୀତିକ ନେତା ସ୍ୱର୍ଗୀୟ ଦେଶ-
Si, ār. dās ବନ୍ଧୁ ଚିତ୍ତରଞ୍ଜନ ଦାସ—The late C. R. Das, the late celebrated political leader of Bengal.

[ଦ୍ର—ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ କଲିକତାର ପଟଲ ଡଙ୍ଗାରେ ବାସ କରୁଥିବା ଗୋଟିଏ ପରିବାରରେ ୧୮୭୦ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପୂର୍ବ ବଂଶଧରମାନଙ୍କର ବାସସ୍ଥାନ ବିକ୍ରମପୁର ପ୍ରଗନାର ତେଲିବାଗ ଗ୍ରାମ ଥିଲା । ତାଙ୍କ ପିତା ଭୁବନ ମୋହନ କଲିକତା ହାଇକୋର୍ଟର ଅଟର୍ଣ୍ଣି ଥିଲେ; ସେ ତାଙ୍କ ଜୀବନର ମଧ୍ୟଭାଗରେ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ; ଏବଂ ଦୁଇ ଗୋଟି ପତ୍ରିକାର ସମ୍ପାଦକ ଥିଲେ; ଦୁଃଖୀ ଲୋକମାନଙ୍କ ପ୍ରତି ଦୟା ପ୍ରଦର୍ଶନ ନିମିତ୍ତ ବହୁତ ଅର୍ଥ ଋଣ କରିଥିଲେ । ଚିତ୍ତରଞ୍ଜନଙ୍କର ଜନ୍ମର କେତେକ ବର୍ଷ ପରେ ଭୁବନମୋହନ ଭବାନୀ ପୁରକୁ ଆସି ବାସ କଲେ । ଚିତ୍ତରଞ୍ଜନ ୧୮୮୬ ଖ୍ରୀଷ୍ଟାବ୍ଦରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପ୍ରେସିଡେନ୍ସି କଲେଜରେ ପ୍ରବେଶ କଲେ । ଏହି ସମୟରେ ତାଙ୍କର ଅସାଧାରଣ ବାଗ୍ମିତା ଦ୍ୱାରା ଛାତ୍ର ଓ ଅଧ୍ୟାପକଗଣ ବିସ୍ମିତ ହୋଇଥିଲେ । ସେ ୧୮୯୦ ମସିହାରେ ବି. ଏ. ପାସ୍ କଲେ । ସିଭିଲ୍ ସର୍ଭିସ୍ ପଢିବା ଲାଗି ଭୁବନମୋହନ ପୁତ୍ରଙ୍କୁ ବିଲାତ ପଠାଇ ଦେଲେ । ଚିତ୍ତରଞ୍ଜନ ବିଲାତରେ ଥିବା ସମୟରେ ଭାରତର ପ୍ରଧାନ ରାଜନୀତିକ ଦାଦା ଭାଇ ନାଓରୋଜି ବିଲାତ ପାର୍ଲିମେଣ୍ଟର ସଭ୍ୟ ହେବା ପାଇଁ ଚେଷ୍ଟା କରୁଥିଲେ । ସାହେବମାନେ ଏ ଚେଷ୍ଟାରେ ବାଧା ଦେଉଥିଲେ ଏବଂ ପାର୍ଲିମେଣ୍ଟର ଜଣେ ସଭ୍ୟ ନିଜ ବକ୍ତୃତାରେ ଭାରତୀୟ-ମାନଙ୍କୁ ଦାସ ଜାତି ବୋଲି କହିଥିଲେ । ଚିତ୍ତରଞ୍ଜନଙ୍କ ପକ୍ଷରେ ସ୍ୱଜାତିର ଏହି ଅପମାନ ଅସହ୍ୟ ହୋଇଥିଲା । ସେ ଅଦମ୍ୟ ଉତ୍ସାହରେ ଅତି ଅଳ୍ପ ଭାରତୀୟ ଛାତ୍ରଙ୍କ ସାହାଯ୍ୟରେ ବିଲାତର ନାନା ସ୍ଥାନରେ ସଭା ସମିତି କରି

ଓଜସ୍ୱିନୀ ଭାଷାରେ ବକ୍ତୃତା କରି ଏହି ଉକ୍ତିର ତୀବ୍ର ପ୍ରତିବାଦ କରିଥିଲେ । ଏହି ଆନ୍ଦୋଳନର ଫଳରେ ଯେଉଁ ବ୍ୟକ୍ତି ଭାରତୀୟମାନଙ୍କୁ ନିନ୍ଦା କରିଥିଲେ, ସେ କ୍ଷମା ପ୍ରାର୍ଥନା କରି ପାର୍ଲାମେଣ୍ଟ ସଭ୍ୟପଦ ଇସ୍ତଫା ଦେବାକୁ ବାଧ୍ୟ ହେଲେ । ଚିତ୍ତରଞ୍ଜନଙ୍କର ଏହି ବକ୍ତୃତା ଓ ଏକାଗ୍ରତା ଦେଖି କେତେକ ଇଂରାଜୀ ସଂବାଦ ପତ୍ର ମଧ୍ୟ ବିଲାତରେ ପ୍ରଥମେ ତାଙ୍କର ଭବିଷ୍ୟ ରାଜନୀତିକ ଜୀବନର ବୀଜ କଥନ କରିଥିଲେ । ସେ ସିଭିଲ୍ ସର୍ଭିସ୍ ପରୀକ୍ଷାରେ ପାସ୍ କରି ପାରିଲେ ନାହିଁ, ମାତ୍ର ୧୮୯୩ ଖ୍ରୀଷ୍ଟାବ୍ଦରେ ବାରିଷ୍ଟରୀ ପାସ କରି ଭାରତକୁ ଫେରି ଆସିଲେ । କଲିକତା ହାଇକୋର୍ଟରେ ବାରିଷ୍ଟର କରିବା ସମୟରେ ସେ ସମୟ ସମୟରେ ସାହିତ୍ୟସେବା ମଧ୍ୟ କରୁଥିଲେ ଏବଂ କେତେ-ଗୁଡ଼ିଏ କବିତା ରଚନା କରିଥିଲେ । ୧୮୯୮ ଖ୍ରୀଷ୍ଟାବ୍ଦରେ ବିଜ୍ଞାନ ଷ୍ଟୋର୍‌ର ଦେୱାନ ବରଦା ପ୍ରସନ୍ନ ହାଲଦାରଙ୍କ କନ୍ୟା ଶ୍ରୀମତୀ ବାସନ୍ତୀ ଦେବୀଙ୍କ ସହିତ ଚିତ୍ତରଞ୍ଜନଙ୍କର ଶୁଭ ପରିଣୟ ସମ୍ପନ୍ନ ହୋଇଥିଲା । ବାସନ୍ତୀ ଦେବୀ ପତିଙ୍କର ଯୋଗ୍ୟା ପତ୍ନୀ ଥିଲେ । ୧୯୦୬ ସାଲରେ ବଡ଼ଲାଟ ଲର୍ଡ଼ କର୍ଜନ୍ ବଙ୍ଗ ପ୍ରଦେଶକୁ ବଙ୍ଗ ଓ ପୂର୍ବବଙ୍ଗ, ଏପରି ଦୁଇଟି ପ୍ରଦେଶରେ ବିଭକ୍ତ କରିବାରୁ ବଙ୍ଗଦେଶରେ ଘୋର ଆନ୍ଦୋଳନ ଉପସ୍ଥିତ ହେଲା । ଅରବିନ୍ଦ ଘୋଷ ସେହି ଆନ୍ଦୋଳନର ନେତା ଥିଲେ । ୧୯୦୮ ମସିହାରେ ପ୍ରସିଦ୍ଧ ଆଲିପୁର ବୋମା ମକଦ୍ଦମାରେ ବଙ୍ଗର ବହୁତ ଯୁବକ ଏବଂ ସ୍ୱୟଂ ଅରବିନ୍ଦ ମଧ୍ୟ ମୁଦାଲା ଥିଲେ । ମକଦ୍ଦମା ଚଳାଇବା ପାଇଁ ଯଥେଷ୍ଟ ଅର୍ଥ ନ ଥିଲା । ଏହି ବିପଦ ସମୟରେ ଚିତ୍ତରଞ୍ଜନ ପାରିଶ୍ରମିକ ଗ୍ରହଣ ନ କରି ମୁଦାଲାମାନଙ୍କ ପକ୍ଷରୁ ମକଦ୍ଦମା ଲଢ଼ିଲେ । ଏ ମକଦ୍ଦମାରେ ନିଯୁକ୍ତ ସରକାର ପକ୍ଷର ପ୍ରସିଦ୍ଧ ବାରିଷ୍ଟର ନର୍ଟନ୍ ସାହେବଙ୍କ ପ୍ରତିଦ୍ୱନ୍ଦ୍ୱୀରୂପେ ଚିତ୍ତରଞ୍ଜନକୁ ଠିଆ ହେବାକୁ ପଡ଼ିଲା । ମକଦ୍ଦମା ଆଠ ମାସ କାଳ ଚାଲିଲା । ଏଥିରେ ଚିତ୍ତରଞ୍ଜନଙ୍କର ଯେ କେତେ ଆର୍ଥିକ କ୍ଷତି ହେଲା ତାହା ସହଜରେ ଅନୁମେୟ । ମାତ୍ର ଏହି ମକଦ୍ଦମାରେ ସେ ଜୟଲାଭ କଲେ । ଦେଶ ଲାଗି ଏପରି ନିଃସ୍ୱାର୍ଥପର କାର୍ଯ୍ୟ କରିଥିବାରୁ ତାହାଙ୍କୁ ଦେଶବନ୍ଧୁ ଆଖ୍ୟା ପ୍ରଦତ୍ତ ହେଲା । ଏହି ମକଦ୍ଦମାରେ ଜୟଲାଭ କରିବାଦ୍ୱାରା ତାଙ୍କର ନାମ ଏତେ ପ୍ରସିଦ୍ଧି ଲାଭ କଲା ଯେ, ସେ ବାରିଷ୍ଟରୀ କରି ଦିନକୁ ପ୍ରାୟ ଏକ ହଜାର ଟଙ୍କା ଆୟ କଲେ । ଦେଶ-ସେବା ଲାଗି ଏବଂ ଦାନ ଲାଗି ଅଜସ୍ର ଅର୍ଥ ବ୍ୟୟ କରି ସୁଦ୍ଧା ସେ ପିତୃଋଣ ପରିଶୋଧ କରିବା ନିଜର କର୍ତ୍ତବ୍ୟ ବୋଲି ମନେ କରୁଥିଲେ, ସୁତରାଂ ପିତାଙ୍କର ୬୫ ହଜାର ଟଙ୍କାର ଋଣ ସମସ୍ତ ସେ ପରିଶୋଧ କଲେ ।

ସେ ୧୯୧୧ ସାଲର ଦୁର୍ଭିକ୍ଷକ୍ଲିଷ୍ଟ ଲୋକଙ୍କ ପାଇଁ ଦଶ-ହଜାର ଟଙ୍କା ଦାନ କରିଥିଲେ । ଅନାଥାଶ୍ରମ ପ୍ରତିଷ୍ଠା, ଶିକ୍ଷା ଓ ସାହିତ୍ୟର ଉନ୍ନତି କଳ୍ପେ ସେ ଅକାତର ଦାନ କରିଥିଲେ । ୧୯୦୫ ସାଲରେ ଚିତ୍ତରଞ୍ଜନ କଂଗ୍ରେସରେ ଯୋଗ ଦେଲେ । ଏହି ସମୟରେ କଂଗ୍ରେସରେ ଦୁଇଗୋଟି ଦଳ ହୋଇଥିଲା । ଚିତ୍ତରଞ୍ଜନ ନବୀନ ଦଳର ନେତା ହେଲେ । ୧୯୧୪ରୁ ୧୯୧୮ ପର୍ଯ୍ୟନ୍ତ ଇଉରୋପୀୟ ମହା-ସମର ଲାଗିଲା । ୧୯୧୯ ସାଲରେ ମହାତ୍ମା ଗାନ୍ଧି ଅହମଦା-ବାଦର ସାବରମତୀଠାରେ ଆଶ୍ରମ ସ୍ଥାପନ କରି ରାଓଲାଟ୍ Rowlat Act ଆଇନ ବିରୁଦ୍ଧରେ ସତ୍ୟାଗ୍ରହ ଚଳାଇବା ପାଇଁ ସ୍ଥିର କଲେ । ଚିତ୍ତରଞ୍ଜନ ଏହି ସତ୍ୟାଗ୍ରହର ମୂଳ-ନୀତିକୁ ସମର୍ଥନ କରି କଲିକତାରେ ବକ୍ତୃତା ଦେଉଥିଲେ । ଜାଲିଆନାବାଗ୍‌ର ହତ୍ୟାକାଣ୍ଡ ତଦନ୍ତ କରିବା ଲାଗି କଂଗ୍ରେସ ଯେଉଁ କମିଟି ଗଠନ କରିଥିଲେ ସେଥିରେ ଚିତ୍ତରଞ୍ଜନ ଜଣେ ସଭ୍ୟ ନିର୍ବାଚିତ ହୋଇଥିଲେ । ୧୯୧୯ ମସିହାରେ ପଞ୍ଜାବର ଅମୃତ ସହରଠାରେ କଂଗ୍ରେସ ଅଧିବେଶନ ହେଲା । ପଣ୍ଡିତ ମୋତିଲାଲ ନେହେରୁ ସେଥିରେ ସଭାପତି ହୋଇଥିଲେ । ସେହି ସଭାରେ ଚିତ୍ତ-ରଞ୍ଜନ ସରକାରଙ୍କ ଭାରତ ଶାସନ ସଂସ୍କାରର ପ୍ରତିବାଦ କରିଥିଲେ, ମହାତ୍ମା ଗାନ୍ଧିଙ୍କର ଅସହଯୋଗ ନୀତିକୁ ଚିତ୍ତରଞ୍ଜନ ପ୍ରଥମେ ସମର୍ଥନ କରୁ ନ ଥିଲେ । ମାତ୍ର ୧୯୨୦ ମସିହାରେ କଲିକତାଠାରେ ଅନୁଷ୍ଠିତ କଂଗ୍ରେସର ବିଶେଷ ଅଧିବେଶନରେ ଅସହଯୋଗ ପ୍ରସ୍ତାବ ଗୃହୀତ ହୋଇଗଲା । ସେହି ସାଲର ଶେଷକୁ ନାଗପୁରଠାରେ କଂଗ୍ରେସର ବିରାଟ ଅଧିବେଶନ ହେଲା । ସେଠାରେ ଅସହଯୋଗର ଶେଷ ନିଷ୍ପତ୍ତି ହେବାର କଥା ଥିଲା । ଚିତ୍ତରଞ୍ଜନ ଗୋଟିଏ ସ୍ୱତନ୍ତ୍ର ରେଳଗାଡ଼ି (Special train) ଭଡ଼ା କରି ବଙ୍ଗଦେଶର କଂଗ୍ରେସ ପ୍ରତିନିଧିମାନଙ୍କୁ ନେଇ ନାଗପୁର ଯାତ୍ରା କଲେ । ସେ ଅସହଯୋଗ ନୀତିର ତୀବ୍ର ପ୍ରତିବାଦ କରିବାକୁ ଯାଇଥିଲେ; ମାତ୍ର ମହାତ୍ମାଜୀଙ୍କ ସହିତ କିଛି ସମୟ ଗୋଟିଏ ନିର୍ଜନ କୋଠରୀରେ କଥାବାର୍ତ୍ତା ହେବା ପରେ ତାଙ୍କର ମତ ପରିବର୍ତ୍ତିତ ହେଲା ଓ ତାଙ୍କର ପୂର୍ବ ଧାରଣା ସବୁ ଭାଙ୍ଗିଗଲା । ଚିତ୍ତରଞ୍ଜନ ମହାତ୍ମାଜୀଙ୍କର ପଟ୍ଟଶିଷ୍ୟ ହେଲେ; ତପରେ ବଙ୍ଗଦେଶର ଗ୍ରାମେ ଗ୍ରାମେ ବୁଲି ଅସହଯୋଗ ନୀତି ପ୍ରଚାର କଲେ । ୧୯୨୧ ମସିହା ନଭେମ୍ବର ମାସରେ ଭାରତ ସମ୍ରାଟଙ୍କ ଯୁବରାଜ (Prince of Wales) ଭାରତ ଭ୍ରମଣ କରିବାକୁ ଆସି ବମ୍ବେଠାରେ ପହଞ୍ଚିଲେ । ସେ ଦିନ କଂଗ୍ରେସ ଆଦେଶ ଅନୁସାରେ ସମଗ୍ର ଭାରତରେ ଧର୍ମଘଟ ( ହରତାଲ ) ହେଲା । ଚିତ୍ତ-ରଞ୍ଜନଙ୍କ ଚେଷ୍ଟାରେ କଲିକତାରେ ଏ ଧର୍ମଘଟ ଅସାଧାରଣ ଭାବରେ ସଫଳ ହେଲା । ଏହା ପରେ ବଙ୍ଗଲାଟ ବଙ୍ଗଳାର ସ୍ୱେଚ୍ଛାସେବକ ମଣ୍ଡଳକୁ ବେଆଇନ ବୋଲି ଘୋଷଣା କଲେ । ଚିତ୍ତରଞ୍ଜନ ସରକାରଙ୍କର ଏହି ଆଦେଶର ପ୍ରତିବାଦ କରିବା ଲାଗି ସ୍ୱେଚ୍ଛାସେବକ ସଂଖ୍ୟା ବୃଦ୍ଧି କରିବାରେ ଲାଗିଲେ । ତାଙ୍କ ଆହ୍ୱାନରେ ହଜାର ହଜାର

ଯୁବକ ଏହି ସ୍ୱେଚ୍ଛାସେବକ ଦଳରେ ଯୋଗ ଦେଲେ ଓ ଚିତ୍ତରଞ୍ଜନ ତହିଁର ସେନାପତି ହେଲେ । ସେନାପତିଙ୍କ ଆଦେଶରେ ଗୋଟିଏ ସ୍ୱେଚ୍ଛାସେବକବାହିନୀ ୧୯୨୧ ଡିସେମ୍ବରରେ କଲିକତାର ବଡ଼ବଜାରକୁ ପ୍ରେରିତ ହେଲେ । ସେଠାରେ ସରକାର ସେମାନଙ୍କୁ ଗିରଫ କଲେ । ଚିତ୍ତରଞ୍ଜନଙ୍କ ଏକମାତ୍ର ପୁତ୍ର ଚିରରଞ୍ଜନ ଅନ୍ୟମାନଙ୍କ ସହ ମଧ୍ୟ ଗିରଫ ହେଲେ । ତହିଁଆର ଦିନ ନାରୀ ସ୍ୱେଚ୍ଛାସେବିକାମାନେ ବାହାରି କିଛି ଦୂର ଅଗ୍ରସର ହୋଇ ଗିରଫ ହେଲେ । ସେଥିମଧ୍ୟରେ ଚିତ୍ତରଞ୍ଜନଙ୍କର ପତ୍ନୀ ଓ ଭଗିନୀ ଥିଲେ । ସେମାନଙ୍କୁ ଜେଲରେ ଅଟକ ରଖାଯାଇ ସନ୍ଧ୍ୟା ବେଳକୁ ଛାଡ଼ି ଦିଆଗଲା । ତହିଁର କିଛି ଦିନ ପରେ ଚିତ୍ତରଞ୍ଜନ ନିଜେ ଗିରଫ ହେଲେ । ସେହି ଦିନ ବଙ୍ଗର ଆହୁରି କେତେ ଜଣ ବିଶିଷ୍ଟ ନେତାଙ୍କୁ ଗିରଫ କରାଗଲା । ଚିତ୍ତରଞ୍ଜନଙ୍କ ପତ୍ନୀ ଶଙ୍ଖଧ୍ୱନି ଏବଂ ହୁଳହୁଳି ମଧ୍ୟରେ ପତିଙ୍କୁ କାରାବାସାର୍ଥ ବିଦାୟ ଦେଲେ । ୧୯୨୨ ମସିହା ଜାନୁଆରୀ ମାସରେ ଦେଶବନ୍ଧୁଙ୍କର ବିଚାର ଆରମ୍ଭ ହେଲା । ଚିତ୍ତରଞ୍ଜନ ମୁକ୍ତି ଲଭିବା ପାଇଁ ମକଦ୍ଦମା ଲଢ଼ିଲେ ନାହିଁ ଏବଂ ୬ ମାସ ବିନାଶ୍ରମ କାରାବାସଦଣ୍ଡ ବରଣ କଲେ । କାରାଗାରରେ ଥାଇ ସୁଦ୍ଧା ସେ ଦେଶର ଅବସ୍ଥା ଏବଂ କର୍ମୀମାନଙ୍କ ବିଷୟ ଚିନ୍ତା କରୁଥାଆନ୍ତି । ତାଙ୍କର ଜେଲରୁ ମୁକ୍ତି ଉପଲକ୍ଷରେ କଲିକତା ସହରରେ ବିଶେଷ ଉତ୍ତେଜନା ହେବାର ଆଶଙ୍କା କରି ସରକାର ତାଙ୍କ କାରାଦଣ୍ଡର ମିଆଦ ଶେଷ ହେବା ପୂର୍ବରୁ ଦେଶବନ୍ଧୁଙ୍କୁ ମୁକ୍ତ କରି ଦେଲେ । କାରାମୁକ୍ତ ଚିତ୍ତରଞ୍ଜନଙ୍କୁ ସମ୍ବର୍ଦ୍ଧନା କରିବାକୁ କଲିକତାରେ ବିରାଟ ସଭା ହେଲା । ୧୯୨୨ ସାଲରେ ଗୟା କଂଗ୍ରେସରେ ଚିତ୍ତରଞ୍ଜନ ସଭାପତି ନିର୍ବାଚିତ ହେଲେ; ସେଥିରେ କଂଗ୍ରେସ ସଭ୍ୟମାନଙ୍କର ବ୍ୟବସ୍ଥା ସଭାମାନ ଦଖଲ କରିବା ଆବଶ୍ୟକ ବୋଲି ଚିତ୍ତରଞ୍ଜନ ପ୍ରସ୍ତାବ କଲେ । ମାତ୍ର ସେ ପ୍ରସ୍ତାବ କଂଗ୍ରେସଦ୍ୱାରା ଗୃହୀତ ନ ହେବାରୁ ସେ କଙ୍ଗ୍ରେସର ସଭାପତି ପଦରୁ ଇସ୍ତଫା ଦେଲେ । କଙ୍ଗ୍ରେସରେ ଦୁଇ ଦଳ ସୃଷ୍ଟି ହେଲା । ଏହି ସମୟରେ ସ୍ୱରାଜଦଳର ସୃଷ୍ଟି ହେଲା ।

୧୯୨୪ ସାଲରେ ଚିତ୍ତରଞ୍ଜନ କଲିକତା କର୍ପୋରେସନ୍ (ମିଉନିସିପାଲିଟି)ର ମେୟର୍ (ସଭାପତି) ନିର୍ବାଚିତ ହେଲେ । ତାଙ୍କର ମେୟର୍ କର୍ମ କାଳରେ କଲିକତା ସହରର ଅନେକ ଉନ୍ନତି ସାଧିତ ହୋଇଥିଲା । ୧୯୨୫ ସାଲରେ ତାଙ୍କର ସ୍ୱାସ୍ଥ୍ୟଭଙ୍ଗ ହେଲା । ଡାକ୍ତରମାନଙ୍କ ପରାମର୍ଶରେ ସେ ଦାର୍ଜିଲିଙ୍ଗ୍‌ରେ ଯାଇ ରହିଲେ ଓ ସେହି ବର୍ଷ ଜୁନ୍ ମାସରେ ସେ ଇହଲୀଳା ଶେଷ କଲେ । କଲିକତାକୁ ତାଙ୍କର ଶବ ଆଣାଗଲା । ସ୍ୱୟଂ ମହାତ୍ମାଜୀ ଅନ୍ୟମାନଙ୍କ ସହିତ ଶବାଧାର ବହନ କରିଥିଲେ । ଶୋଭାଯାତ୍ରାରେ ଲକ୍ଷ ଲକ୍ଷ ଲୋକ ଯୋଗ ଦେଇଥିଲେ । ସେ ତାଙ୍କର ବିରାଟ ବାସଭବନ ନାରୀହାସପାତାଲ ଓ ଧାତ୍ରୀବିଦ୍ୟାଳୟ ପାଇଁ ଦାନ କରି ଯାଇଥିଲେ । ବର୍ତ୍ତମାନ ସେ ହାସ୍‌ପାତାଲ୍‌ରେ ହଜାର ହଜାର ନାରୀ ଚିକିତ୍ସା ପାଉଅଛନ୍ତି । ତାଙ୍କର ଶ୍ରାଦ୍ଧ ସଭାରେ ମହାତ୍ମାଜୀ ବକ୍ତୃତା କରିଥିଲେ ଏବଂ ଭାରତର ବଡ଼ଲାଟେ ତାଙ୍କର ସ୍ମୃତି ପ୍ରତି ସମ୍ମାନ ଦେଖାଇବା ଲାଗି ମହାତ୍ମାଜୀ ଗୃହଆଡ଼କୁ ସନ୍ଦେଶ ପଠାଇଥିଲେ ।

ସନ୍ଦର୍ଭ ଲେଖକ

ପଣ୍ଡିତ ଶ୍ରୀ ଜଗନ୍ନାଥ ତ୍ରିପାଠୀ, ବି. ଏ., ବି. ଟି. ]

**ସିଆର୍ ବସିବା**—ଦେ. କ୍ରି—କୌଣସି ବ୍ୟବସାୟରେ ଅନ୍ୟମାନଙ୍କ ସହିତ ହିସାଦାର ହେବା—To go into shares; to be a partner in a joint stock business.
Siār basibā
সীআব্ বসা
सेयर करना

**ସିଆର**—ଦେ. ବି—ଶିଆର (ଦେଖ)
Siāra — Śiāra (See)

**ସିଆରି**—ଦେ. ବି—ଶିଆରି; ସିଅଡ଼ି ଇତ୍ୟାଦି (ଦେଖ)
Siāri — Śiāri; siārḍi etc. (See)

**ସିଆରିବା**—ଦେ. କ୍ରି—ଶିଆରିବା (ଦେଖ)
Siāribā — Śiāribā, (See)
( ସିଅରେଇବା—ଅନ୍ୟରୂପ )

**ସିଆଳି (ଇତ୍ୟାଦି)**—ଦେ. ବି—ଶିଆଳି ଇତ୍ୟାଦି (ଦେଖ)
Siāḻi (etc) — Śiāḻi etc. (See)

**ସିଆଳିଆ ପ(ପୁ,ପୋ)ତନି**—ଦେ. ବି—ଶାଳିଆପତନି (ଦେଖ)
Siāḻiā pa(pu,po)tani — Śāḻiāpatani. (See)

**ସିଆଳି ଲତା**—ଦେ. ବି—୧ । ଔଷଧି ଲତା ବିଶେଷ (କବିରାଜ ହରେକୃଷ୍ଣ ମିଶ୍ରଙ୍କ ପ୍ରଣୀତ 'ଦ୍ରବ୍ୟଗୁଣ')—1. A kind of medicinal creeper. ୨ । ସିଅଡ଼ି ୨ (ଦେଖ)—2. Siarḍi 2 (See)
Siāḻi latā

**ସିଇଠି(ଠିଁ)**—ଗ୍ରା. ସର୍ବନାମ—ସେହିଠାରେ; ସେହି ସ୍ଥାନରେ—There; therein.
Si-iṭhi(ṭhiñ) সেখানে वहाँपर
(ସିଇଠେଇଁ—ଅନ୍ୟରୂପ)

**ସିଇ(ଇଁ,ଞି)ବା**—ଦେ. କ୍ରି (ସଂ. ସୀବ୍. ଧାତୁ)—୧। ସିଲାଇ କରିବା—1. To sew. (ଉ—ଶର ସୂଚୀରେ ଶରୀର ଯୁଗ ଗାତେ ସିଇଁଲା । କବିସୂର୍ଯ୍ୟ. ରତ୍ନାକର. ଚମ୍ପୂ ।)
Si-i(iñ,ñi)bā
সীবা, সীঁয়া
सीना

(ଉ—ଅପାଙ୍ଗ ଦୃଷ୍ଟିରେ ସିଇଁ
କାହା ମନ ବାସଛନ୍ତି
ଝୁଲିଏ ଅଛୁ ରଥଇ
ପରମାନନ୍ଦ କହଇ;
ସିରୁ ପଦ—ପ୍ରୀତିରସା ମଞ୍ଜିରେ—
ପ୍ରୀତିଲଭି, ହେବୁ ପର ବାଳା ବଇରାଗୀରେ । ସଙ୍ଗୀତ ।)

୨ । ଦନା ବା ଖଲିପତ୍ର ପ୍ରସ୍ତୁତ କରିବା ପାଇଁ ଶାଳ, ଅଦ୍ଦ ଗଛର ପତ୍ରମାନଙ୍କରେ ଖଡ଼ିକା ଫୋଡ଼ିବା—2. To sew Śāḻā leaves together to form a receptacle or plate.

ସିଇର—ପ୍ରାଦେ. (ସାକ୍ଷୀଗୋପାଳ) ବ—ମାଟି ଗୋବର ଲେଖା ହୋଇ ନ ଥିବା ଟୋକେଇ—A basket which has not been plastered with a layer of clay and cow dung.
Si-irā

ସିଉ—ଦେ. ବ—ସିଓ (ଦେଖ)
Siu Sio (See)

ସିଉକା(କି)—ଦେ. ବ (ସଂ. ଚତୁଷ୍କ)—ଟଙ୍କାର ଚତୁର୍ଥାଂଶ ମୁଦ୍ରା—
Siukā(ki) A four anna bit. [ଦ୍ର—ଭାରତ ପ୍ରଚଳିତ ଏ ମୁଦ୍ରା ପୂର୍ବେ ରୁପାରେ ତିଆରି ହେଉଥିଲା; ଏବେ ବ୍ରୋଞ୍ଜ୍ (Bronze) ଧାତୁରେ ତିଆରି ହେଉଅଛି।]
সীকী
सूका, चौअन्नी

ସିଉକା(କି)ଏ(କ)—ଦେ. ବ—ଏକ ସିଉକା ମାତ୍ର—
Siukā(ki)e(ka) One four anna bit only.
এক সীকী एक सूका

ସିଉକା(କି)କର—ଦେ. ବଣ—ଏକ ସିଉକା ମୂଲ୍ୟର—
Siukā(ki)kara Of the value of 4 annas.
এক সীকীব एक सूकाका

ସିଉକାର (ଇତ୍ୟାଦି)—ଗ୍ରା. ବ (ସଂ. ସ୍ୱୀକାର)—ସୀଉକାର ଇତ୍ୟାଦି
Siukāra (etc) (ଦେଖ)—Sīukāra etc. (See) (ଉ—ମୁହାଁମୁହିଁ ସିଉକାର, ସେ କ ଭୁଇ ସିଉକାର। ତଗ।)
ଦେ. ବଣ—ଚାରି ଅଣା ମୂଲ୍ୟର—Of the value of a four anna bit

ସିଉକି ଦୋଅ(ଓ)ଣି—ଦେ. ବ (ସବୁଡର)—ଚାରି ଅଣା ମୂଲ୍ୟର ଓ ଦୁଇ
Siuki doa(o)ni ଅଣା ମୂଲ୍ୟର ମୁଦ୍ରାଦ୍ୱୟ—Four anna bits
(ସିଉକି ଦୋଣି—ଅନ୍ୟରୂପ) and two anna bits.
সীকী দুআনী [ ଦ୍ର—ଏହାପରି ସିଉକି ଅଣି, ସିଉକି ଅଧୁଲି, ଆଦି ଶବ୍ଦର ପ୍ରୟୋଗ ହୁଏ।]
चौअन्नी दोअन्नी

ସିଉନା—ପ୍ରାଦେ.(କଟକ) ବ—ଗମ୍ଭାରୀ(ଗଛ)—
Siunā Gmelina Arborea tree.

ସିଉନ୍ତା—ଦେ. ବ (ସଂ. ସୀମନ୍ତ)—ସୁନ୍ଥା; କେଶବିନ୍ୟାସ ବିଶେଷ—
Siuntā A mode of dressing the ringlets of the hair on the brow.
সীঁথি सबथ
[ସିଉଁତା—ଅନ୍ୟରୂପ]

ସିଉନ୍ତି(ନ୍ଥି)—ଦେ. ବ (ସଂ. ସୀମନ୍ତ)—ସନ୍ଥି; ସୀମନ୍ତର ଅଳଙ୍କାର.
Siunti(nthi) An ornament for the forehead.
সীঁথি मांगटीका [ସିଉଁତି(ଥି)—ଅନ୍ୟରୂପ]

ସିଉନ୍ତିଆ—ପ୍ରାଦେ.(ସମ୍ବଲପୁର) ବ—(ସଂ. ସୀମନ୍ତ) ସ୍ତ୍ରୀମାନଙ୍କ ସୁନ୍ଥା—
Siuntiā Mode of parting the combed hair of females over the fore-head.
[ସିଉଁତିଆ—ଅନ୍ୟରୂପ]

ସିଉରା—ପ୍ରାଦେ.(ଢେଙ୍କାନାଳ) ବ—ଟୋକେଇ—
Siurā Basket of wicker work.

ସିଏ—ଗ୍ରା. ସର୍ବନାମ, ପୁଂ ଓ ସ୍ତ୍ରୀ (ସଂ. 'ତତ୍' ଶବ୍ଦରୁ ପୁଂ. 'ସଃ' ଓ
Sie ସ୍ତ୍ରୀ ସା)—ସେ—He or she. [ଉ—ସିଏତ ସିଏ, ଅଭୁ
সে वह ବାଡ଼ପଡ଼ା କଣୁଅ କଏ।—ତଗ]

ସିଓ—ଦେ. ବ (ସଂ. ସେବ, ସିବତିକା ଫଳ)—ସିବତିକା ଫଳ
Sio (ଦେଖ)—Sibitikā phala (See)

ସିଂକ—ପ୍ରାଦେ. (ଲକ୍ଷ୍ମୀ) ବ—ଶଳକା—
Sṁk Slender long pick.

ସିଂକିବା—ପ୍ରାଦେ. (ଲକ୍ଷ୍ମୀ) କି—ସିଂଘାଣି ପୋଛିବା—To wipe
Siṁkribā away the mucus from one's running nose.

ସିଂଖପତା—ପ୍ରାଦେ.—(ଲକ୍ଷ୍ମୀ) ବ—ଶଳକାଦ୍ୱାରା ସିଇଁ ହୋଇଥିବା
Siṁkh-patā ପତ୍ରମାନ; ଖଲି—A flat plate made by sewing leaves together.

ସିଂଖାଣ—ସଂ. ବ—(ସିଙ୍ଘ୍ ଧାତୁ+ଅଣ)—ସିଂହାଣ (ଦେଖ)—
Siṁkhāṇa Siṁhāṇa (See)

ସିଂଗ(ଘ, ହ)ରା—ପ୍ରାଦେ. (ସମ୍ବଲପୁର) ବ—ଶିଂଗ୍ରା (ଦେଖ)—
Siṁg (gh,h)-rā Siṁg-rā (See)

ସିଂଗଲ—ବୈଦେ. ବ ଓ ବଣ—ଶିଂଗଲ୍ (ଦେଖ)—
Siṁgal Siṁgal (See)

ସିଂଗା(ଘା)ଣି(ଇତ୍ୟାଦି)—ଦେ. ବ—ଶିଂଗାଣି ଇତ୍ୟାଦି (ଦେଖ)—
Siṁgā(ṁghā)ṇi(etc) Siṁgāṇi etc (See)

ସିଂଗା(ଘା)ଣିଆ—ଦେ. ବଣ. ପୁ—ଶିଂଗାଣିଆ (ଦେଖ)—
Siṁgā(ṁghā) ṇiā Siṁgāṇiā (See)
[ସିଂଗା(ଘା)ଣେଇ—ସ୍ତ୍ରୀ]

ସିଂଗା(ଘା)ପୁର—ଦେ. ବ—ସିଙ୍ଗାପୁର (ଦେଖ)—
Siṁgā(ṁghā)pura Siṅgāpura (See)

ସିଂଗିଲ—ବୈଦେ. ବ ଓ ବଣ—ଶିଂଗଲ୍ (ଦେଖ)—
Siṁgil Siṁgal (see)

ସିଂଗେ(ଘେ)ଇ(ଇତ୍ୟାଦି)—ଦେ. ବ—ଶିଂଗେଇ ଇତ୍ୟାଦି (ଦେଖ)—
Siṁge (ṁghe)ī (etc) Siṁgeī (See)

ସିଂଘ(ଗ) (ଇତ୍ୟାଦି)—ଗ୍ରା. ବ. ପୁ—୧। (ସଂ. ସିଂହ) ସିଂହ (ଇତ୍ୟାଦି)
Siṁgha(ga) (etc) (ଦେଖ)—Siṁha etc (See). ୨।
[ସିଂଘୁଣୀ—ସ୍ତ୍ରୀ] (ସଂ. ଶୃଙ୍ଗ)—ଶିଂଘ ଇତ୍ୟାଦି (ଦେଖ)—
Siṅgha etc (See)

ସିଂଘଡା (ଇତ୍ୟାଦି)—ଦେ. ବ—ଶିଂଘଡ଼ା ଇତ୍ୟାଦି (ଦେଖ)—
Siṁghaṛā (etc) Siṁghaṛā etc (See)

ସିଂଘଣ—ସଂ. ବ (ସିଙ୍ଘ୍ ଧାତୁ=ଶୁଙ୍ଘିବା+କର୍ମ ଅନ)—୧। ନାକିଆ
Siṁghaṇa ମଳ—1. Snot; the mucus of the nose. ୨। ଲୌହ ମଳ (ପ୍ରକୃତିବାଦ)—2. The rust or dross of iron.

ସିଂଘଳ—ଗ୍ରା. ବ—ସିଂହଳ (ଦେଖ)—
Siṁghaḷa Siṁhaḷa (See)

ସିଂଘଳୀ—ଗ୍ରା. ବ ଓ ବଣ—ସିଂହଳୀ (ଦେଖ)—
Siṁghaḷi Siṁhaḷī (See).
সিংহলী सिंहली ଦେ. ବ—ସିଂହଳ ଦ୍ୱୀପରେ ବ୍ୟବହୃତ ଏକ ପ୍ରକାର ଭାଷା—The Singhalese language; a language of the Southern group

of the outer sub-branch of Indo-aryan language; used in Ceylon.

ସିଂଘାଣ—ସ. ବି (ଶିଂଘ ଧାତୁ+କର୍ମ ଅନ)—୧ । ନାସିକା ମଳ—Simghāṇa 1. Snot. ୨ । କଫ; ଶ୍ଳେଷ୍ମା—2. Phlegm.

ସିଂଘାଣକ—ସ. ବି (ସିଂଘାଣ+କ)—୧ । ନାସିକାମଳ—1. Snot. Simghāṇaka ୨ । କାଚପାତ୍ର (ଶବ୍ଦକୋଷ)—2. Glass pot. ୩ । ନାସିକାରୋଗ ବିଶେଷ—3. A kind of ear-disease. [ ଦ୍ର—ଏ ରୋଗରେ କଫ ଅତ୍ୟନ୍ତ ବଢି ନାକ ଭିତରର ସ୍ରୋତକୁ ଋଦ୍ଧ କରେ; ନିଶ୍ୱାସ ନେବା ଅଟିବା ବେଳେ ଘୁଡ଼ୁ ଘୁଡ଼ୁ ଶବ୍ଦ ହୁଏ ଓ ଶୀନସ ରୋଗ ଅପେକ୍ଷା ବେଶି ବେଦନା ହୁଏ ଓ ଅନବରତ ପିଚ୍ଛିଳ ପୀତବର୍ଣ୍ଣ ଘନ କଫ ନିର୍ଗତ ହୁଏ—ଶବ୍ଦକୋଷୋଦ୍ଧୃତ ବାକ୍ୟ] ୪ । ଅଶ୍ୱରୋଗ ବିଶେଷ—4. A kind of horse-desease. [ଦ୍ର—ଏହା ବାତଜ, ପୈତ୍ତିକ ଓ ଶ୍ଳୈଷ୍ମିକ ଭେଦରେ ୩ ପ୍ରକାର । ଏଥିରେ ଅଶ୍ୱର ନାକରୁ ଭିନ୍ନ ଭିନ୍ନ ପ୍ରକାରର କଫ ନିର୍ଗତ ହୁଏ (ଜୟଦତ୍ତ) ] ୫ । ଲୌହକିଟ୍ଟ; ମଣ୍ଡୁର (ଶବ୍ଦକୋଷ—5. Scoria of iron.

ସିଂଘାନ—ସ. ବି—ଲୁଲୁଣ୍ଡ ବୃଦ୍ଧି (ଶବ୍ଦକୋଷ)—Simghāna Hydrocele.

ସିଂଘାଲ—ପ୍ରାଦେ. (ଦେଶଅଳ) ବି—ବାଳିଆ ମାଛ ପରି ବଡ଼, ଅଁଶହୀନ ଓ ବେକ ପାଖରେ ୨ଟା କଣ୍ଟା ଥିବା ବଡ଼ ମାଛ; Simghāla ଟେଙ୍ଗ ମାଛ—Macrones Aor; a scaleless fish with a big snout.

ସିଂଘାରି (ଇତ୍ୟାଦି)—ଦେ. ବି—ଶିଘାରି ଇତ୍ୟାଦି (ଦେଖ)—Simghāri (etc) Simghāri etc (see)

ସିଂଘାରିବା—ଦେ. କ୍ରି—ମନ୍ତ୍ରମୁଗ୍ଧ ଜନ୍ତୁ (ପଥା ସାପ)କୁ ମନ୍ତ୍ରମୋହରୁ ମୁକ୍ତ Simghāribā କରି ଲଢର କରାମତ ଦେଖାଇବା ପାଇଁ ଉତ୍ତେଜିତ କରିବା—To free an animal from a charm and excite it to fury.
ଚିମ୍ବାନ ଟୋନାଛୁଡ଼ାନା

ସିଂଘା(ଗା)ରି ହେବା—ଦେ. କ୍ରି—ବିବାଦ ବା ଗୋଳମାଳ କରିବାକୁ Simghā (gā) ri hebā ରାଗରେ ଉଠେଇ ଲଢେଇ ହେବା; ଝାଳମେଣ୍ଟାହବାବ ସିଂହନୈ ସେଗରଜନା ଉଗାଡୁ ଡ଼ହୋଇ କୌଣସି ଛାଲଖୋଜା ଅସତ୍କାର୍ଯ୍ୟ କରିବା ଉଦ୍ଦେଶ୍ୟରେ ବାହା ଗୋଲଡିବା—

ସିଂଘିଣୀ—ସ. ବି—ନାସିକା ( ହଳାୟୁଧ )—Simghinī Nose.

ସିଂଘେନ୍—ପ୍ରାଦେ. ( ବାଲ୍‌ଙ୍ଗିର ପାଠଣା ) ବି—ଶିଂଗାଣି ( ଦେଖ ) Simghen Simgāni ( See )

ସିଂଚ୍ଚ—ଦେ. ବି ଓ ବିଣ (ସ. ସିଚ୍ଚ ଧାତୁ )—ସିଞ୍ଚା ( ଦେଖ ) Simchā Sinchā ( See )

ସିଂଚ୍ଚ(ଚେ)ଇବା—ଦେ. କ୍ରି—ସିଞ୍ଚାଇବା ( ଦେଖ ) Simchā(che)ibā Sinchāibā ( See )
ଛେଁଚାନ ଛୀଁଟବାନା

ସିଂଚିବା—ଦେ. କ୍ରି ( ସ. ସିଚ ଧାତୁ )—ସିଞ୍ଚିବା ( ଦେଖ )—Simchibā Sinchibā ( See )
ଛିଂଟା ଛୀଁଟନା

ସିଂବଙ୍ଗା—ପ୍ରାଦେ. (କୋଲ୍ହ) ବି—ସୂର୍ଯ୍ୟ ( ଦେବତା )—The Sun Simbangā ( God ). [ ଦ୍ର—କୋଲ୍ହମାନେ ବିବାଦ କଷ୍ଟଣ୍ଡ ପାଇଁ ଗ୍ରାମପଞ୍ଚାୟତ ବା ସରକାରଙ୍କ ନିକଟ ନିମ୍ନ-ଲିଖିତ ଶପଥ କରନ୍ତି—
'ସିଦ୍ଧବାରେ ସିଂବଙ୍ଗା ଏତେରେ ନାଗେ ଏର୍ରା'
( ଏଥିର ଅର୍ଥ—ଉପରେ ସୂର୍ଯ୍ୟଦେବତା ଓ ତଳେ ବାସୁକି ମାତାଙ୍କ ନାମ ଧରି ମୁଁ ଶପଥ କରୁଛି । ]

ସିଂସା—ଦେ. ବି (ସ. ସୀସକ)—ସୀସା (ଧାତୁ)—Lead (metal). Simsā ପ୍ରାଦେ ( ବୌଦ୍ଧ ) ବି—ସୀସା ପେନ୍‌ସିଲ—Lead pencil; wooden pencil.
ସୀସା ରାଁଗା ତେ. ସୀସମୁ

ସିଂହ—ସ. ବି. ପୁଂ ( ହିନ୍ସ୍ ଧାତୁ=ହିଂସା କରିବା; ବଧ କରିବା+ଅଚ୍. ଅ; ବର୍ଣ୍ଣ ବିପର୍ଯ୍ୟୟରେ ନିପାତନ ସିଦ୍ଧ )—୧ । ପ୍ରସିଦ୍ଧ ଶ୍ୱାପଦ ବନ୍ୟ ପଶୁ; ମୃଗେନ୍ଦ୍ର—1. The lion; Felis Leo. [ ଦ୍ର—ଏହାର ବେକରେ ଓ ମୁଣ୍ଡରେ ଦୀର୍ଘ କେଶର ଥାଏ ଓ ଲାଙ୍ଗୁଳର ଅଗରେ କୃଷ୍ଣବର୍ଣ୍ଣ ଲୋମଗୁଚ୍ଛ ଥାଏ । ସିଂହୀର ବେକରେ ଓ ମୁହଁରେ କେଶର ନ ଥାଏ । ସିଂହର ବର୍ଣ୍ଣ ପିଙ୍ଗଳ ବା ଫିକା ହଳଦିଆ । ଅଫ୍ରିକାର ଅଲଜିରିଆଠାରୁ କେପ୍‌କଲୋନି ପର୍ଯ୍ୟନ୍ତ ସବୁ ଅଞ୍ଚଳରେ ଓ ପାରସ୍ୟରେ ସିଂହ ଦେଖାଯାଆନ୍ତି ।
ପୂର୍ବେ ଭାରତବର୍ଷରେ ଅନେକ ସିଂହ ଥିଲେ । ଉତ୍କଳର ଦେବାଳୟାଦିରେ ସିଂହର ମୂର୍ତ୍ତି ବହୁଳ ପରିମାଣରେ ଦେଖାଯାଏ । କିନ୍ତୁ ବର୍ତ୍ତମାନ କେବଳ କମ୍ରେ ପ୍ରଦେଶସ୍ଥ କାଠିଆବାଡ଼ର ଜଙ୍ଗଲରେ ସିଂହ ଦେଖାଯାଆନ୍ତି ।
ସିଂହର ଗର୍ଜନ ଅତି ଭୟଙ୍କର । ଏହାର କଟି ଅତି ସରୁ ଥିବାରୁ ସରୁ କଟିଯୁକ୍ତା ସ୍ତ୍ରୀମାନଙ୍କ କଟିକୁ ମୃଗେନ୍ଦ୍ର କଟୀ ସଙ୍ଗେ ତୁଳନା କରାଯାଏ । ସିଂହ ସମସ୍ତ ବନ୍ୟ ପଶୁ ମଧ୍ୟରେ ବଳିଷ୍ଠ; ସେଥିପାଇଁ ତାକୁ 'ପଶୁରାଜ' ବୋଲାଯାଏ । ଅଫ୍ରିକାର ଜଙ୍ଗଲରେ ଅନେକ ସିଂହ ଅଛନ୍ତି । ସିଂହମାନେ ପର୍ବତର ଗୁହାରେ ବାସ କରନ୍ତି । ଅଫ୍ରିକାର ସିଂହମାନେ ବାଲୁକାମୟ ସ୍ଥାନରେ ବିଚରଣ କରନ୍ତି । ପୁରୁଷ ସିଂହର ବେକ ଉପରେ କେଶର ଥାଏ, ମାଈ ସିଂହର କେଶର ନ ଥାଏ । ସିଂହୀ ଏକାଥରକେ ୩।୪ଟି ଶାବକ ପ୍ରସବ କରେ । ନବଜାତ ଶିଶୁର ୧୦।୧୫ ଦିନ ପରେ ଆଖି ଫିଟେ । ସିଂହକୁ

( ସିଂହୀ—ସ୍ତ୍ରୀ )
ସିଂହର ପ୍ରତିଶବ୍ଦ—
ମୃଗେନ୍ଦ୍ର, ପଞ୍ଚାସ୍ୟ, ହର୍ଯ୍ୟକ୍ଷ, କେଶରୀ, ହରି (ଅମର) ପାରୀନ୍ଦ୍ର, ଶ୍ୱେତପିଙ୍ଗଳ, କଣ୍ଠୀରବ, ପଞ୍ଚଶିଖ, ଶୈଳାଟ, ଗ୍ରାମକଣ୍ଟକ, ପତାଙ୍କ, ମୃଗରାଟ୍, ମୃଗରାଜ, ମନ୍ଦୁରସ୍ଥବ, କେଶୀ, ଲମ୍ବୋଦର, କରଦାରକ, (ଶବ୍ଦରତ୍ନାବଳୀ), ମହାବୀର, ଶ୍ୱେତପିଙ୍ଗ, ଗଜମୋଚନ, ମୃଗାରି (ଜଟାଧର), ଇଭାରି, ନଖରାୟୁଧ, ମହାନାଦ, ମୃଗପତି ( ହେମଚନ୍ଦ୍ର ) , ପଞ୍ଚମୁଖ, ନଖୀ, ମାଂସ, କ୍ରବ୍ୟାଦ, ମୃଗାଧିପ, ଶୂର, ବିକ୍ରାନ୍ତ, ଦ୍ୱିରଦାନ୍ତକ, ବହୁବଳ, ସୃପ୍ତ, ବଳୀ, ବିକ୍ରମୀ, ସପ୍ତପିଙ୍ଗଳ ।

ଗୁହରେ ଅଣି ପୋଷିଲେ ସେ ବରାହ ପର ଶୋଷା ମାନେ ।

ବୈଦ୍ୟଶାସ୍ତ୍ର ଅନୁସାରେ ଏହାର ମାଂସ ଅର୍ଶ, ପ୍ରମେହ, ଜଠରମଧ୍ୟ ଓ ଜଡ଼ତା ନାଶ କରେ । ଅନ୍ୟ ଗୁହାଶୟ ଜୀବମାନଙ୍କ ମାଂସ ପରି ସିଂହର ମାଂସ ବାତହର, ଗୁରୁ, ଉଷ୍ଣ, ମଧୁର, ସ୍ନିଗ୍ଧ, ବଲ୍ୟ ଓ ନେତ୍ର ଗୁହ୍ୟ ବିକାରରେ ହିତକର । ସିଂହର ଚର୍ବି ବାତରୋଗରେ ଔଷଧରୂପେ ବ୍ୟବହୃତ ହୁଏ ।| ୨ । (ଅନ୍ୟ ଜାତିବାଚକ ଶବ୍ଦ ସଙ୍ଗେ ଯୁକ୍ତ ହେଲେ ଶ୍ରେଷ୍ଠତା ବୁଝାଏ । ଯଥା—ନରସିଂହ,ପୁରୁଷ-ସିଂହ, କପିସିଂହ) ଶ୍ରେଷ୍ଠ—2. Chief of a class [ଦ୍ର—ତହିଁ ଦ୍ୱିଜ ସଙ୍ଗେ ସେ ନୃପକୁଳ ସିଂହ—କୃଷ୍ଣସିଂହ. ମହାଭାରତ ବନ । ] ୩ । (ଜ୍ୟୋତିଷ) ମେଷାଦି ଦ୍ୱାଦଶ ରାଶିର ଅନ୍ତର୍ଗତ ପଞ୍ଚମ ରାଶି—3. The astrological sign Leo. [ଦ୍ର—ସିଂହ ରାଶି ମଘା ଓ ପୂର୍ବଫାଲ୍ଗୁନୀ ନକ୍ଷତ୍ର ଏବଂ ଉତ୍ତର ଫାଲ୍ଗୁନୀର ପ୍ରଥମ ପାଦ ଅଧିକାର କରିଅଛି । ସୂର୍ଯ୍ୟ ଭାଦ୍ର ମାସରେ ଏ ରାଶିରେ ଅବସ୍ଥାନ କରନ୍ତି । ଏହି ରାଶିରେ ଜନ୍ମିବା ବ୍ୟକ୍ତି କ୍ରୋଧୀ, ଶୀଘ୍ରଗାମୀ, ହାସ୍ୟବାଣୀ, ଅଳ୍ପ ବକ୍ତା, ଚଞ୍ଚଳ, ଶୀତଳ ଓ ମତ୍ସ୍ୟପ୍ରିୟ ହୁଏ । ସିଂହ ଲଗ୍ନରେ ଜାତ ବ୍ୟକ୍ତି ଭୋଗୀ, ଶତ୍ରୁବନ୍ଧନ ସ୍ଥଲୋଦର, ଅଳ୍ପ ପୁତ୍ର, ଉତ୍ସାହୀ ଓ ଗଜଲକ୍ଷମ ହୁଏ । ] ୪ । ସୌର ଭାଦ୍ର ମାସ—4. The solar month of Bhādra; ୫ । ରକ୍ତ ଶିଗ୍ରୁ ; ନାଲ ସଜନା ( ରାଜ-ନିର୍ଘଣ୍ଟ )—5. The red variety of horse radish. ୬ । ବୌଦ୍ଧ ଯତିମାନଙ୍କର ଧ୍ୱଜ (ହେମଚନ୍ଦ୍ର) —6. The flag of Buddhist monks. ୭ । ରାମାୟଣରେ ବର୍ଣ୍ଣିତ ଚନ୍ଦ୍ରଗିରି ପର୍ବତବାସୀ ବିଶାଳ ପକ୍ଷିବିଶେଷ—7. Name of a gigantic mythological bird mentioned in the Rāmāyaṇa. [ଦ୍ର—ଏ ଏତେ ବଳଶାଳୀ ଯେ, ହସ୍ତୀ ଓ ତିମି-ମତ୍ସ୍ୟଙ୍କୁ ଧରି ଗାତରେ ପ୍ରବେଶ କରେ ।] ୮। ରାକ୍ଷସବିଶେଷ— 8. Name of a giant. [ ଦ୍ର—ବିହଟ ର କେଶରୀ-ସିଂହ ବେନି ବଳେ କହନ୍ତି ଏ ତର୍କେ ସମ ବେ—ଭଞ୍ଜ. ବୈଦେହୀଶବିଳାସ । ]

ସିଂହ
ସିଂହ ଦେ. ବି—୧ । କ୍ଷତ୍ରିୟମାନଙ୍କର ବଂଶୋପାଧିବିଶେଷ—1. A family title of Kshatriyas. ୨ । କାୟସ୍ଥ, ସାଗରପେଶା, ଶୂଦ୍ର, ରାଜପୁତ ଆଦିଙ୍କ ବଂଶୋପାଧିବିଶେଷ—2. A family title of some Kayasthas etc. ୩ । (ଅନ୍ୟ ଗୁଣ ବା ଉତ୍କର୍ଷବାଚକ ଶବ୍ଦ ସଙ୍ଗେ ଯୁକ୍ତ) ରାଜପ୍ରଦତ୍ତ ଉପାଧିବିଶେଷ—3. A title given by Rajahs to persons ( added to another word ). [ ଦ୍ର—ପାଲଟାସିଂହ, ବଳଅରସିଂହ, ଛଟ୍‌ପଟ୍‌ସିଂହ, ବାଘସିଂହ ଇତ୍ୟାଦି । ]

ସିଂହ କେଶର—ସଂ. ବି (୬ଷ୍ଠୀ ତତ) ୧ । ସଟା; ସିଂହଜଟା; ସିଂହର Simha kesara ମୁହଁ, ମୁଣ୍ଡ ଓ ବେକରେ ଥିବା ଲମ୍ବ କେଶର— (ସିଂହକେଶରକ—ଅନ୍ୟରୂପ) 1. The manes of a lion. ୨। ବକୁଳ ଗଛ (ବୈଦ୍ୟକ ଶବ୍ଦ)—2. The Bakula tree; Mimusops Elengi.

ସିଂହ ଗ୍ରୀବ—ସ. ବିଣ. ପୁଂ (ବହୁବ୍ରୀହି; ସିଂହର ଗ୍ରୀବାପରି ଗ୍ରୀବା Simha grība ଯାହାର)—ସିଂହପରି ଉନ୍ନତ ଗ୍ରୀବା ବିଶିଷ୍ଟ— (ସିଂହଗ୍ରୀବା—ସ୍ତ୍ରୀ) Having a neck as high as that of a lion.

ସିଂହ(ହି)ଟାଳୀ—ଦେ. ବି— ଏକ ପ୍ରକାର ଶଳ୍କହୀନ କ୍ଷୁଦ୍ର ମତ୍ସ୍ୟ;ଏହାର Simha(mhi)ṭāḷī ଦୁଇ ଗାଲରେ ଦୁଇଟା କଣ୍ଟା ଥାଏ; ଏହାକୁ ট্যাংরা ও टैंगी ସିଂଘୀମାଛ କହନ୍ତି— A species of small fish.

ସିଂହଡ଼ା—ଦେ. ବି (ସଂ. ଶୃଙ୍ଗାଟକ)—ସିଂଘଡ଼ା (ଦେଖ)— Simharda Singharda. (See) সিঙ্গাড়া (ଦ୍ର— ସିଂହଡ଼ା କେଶର ଘରି ଗୁଆଘୃତେ ପୋଡ଼, सिंहार କର୍ପୂର ମରିଚ ମେଳ ମିଠା ଦୁଧେ ମୋହି । ସ୍ଥାଣୀ. ରହସ୍ୟମଞ୍ଜରୀ ।)

ସିଂହତଳ—ସ. ବି ( ସଂହତ+ତଳ; କପାତକ )—କରଯୋଡ଼ନ; Simhatala କୃତାଞ୍ଜଳ ( ଭ୍ରମାଣସ୍ଥ ଅମରଟୀକା )—The folded palms.

ସିଂହ ତୁଣ୍ଡ—ସ, ବି—୧ । ସେହୁଣ୍ଡ ବୃକ୍ଷ; ସିଜୁ ଗଛ (ରାଜନିର୍ଘଣ୍ଟ)— Simha tunda 1. Euphorbia Nerifolia. ୨ । ଏକ ପ୍ରକାର ମାଛ (ଶବ୍ଦକୋଷ)—2. A kind of fish. [ଦ୍ର—ମାଗୁର ପ୍ରଭୃତି ମାଛକୁ ସିଂହତୁଣ୍ଡ ବୋଲିଯାଏ । ଦୈବ ଓ ପୈତ୍ର କର୍ମରେ ଏ ମତ୍ସ୍ୟ ବ୍ୟବହାର୍ଯ୍ୟ— ମନୁ ୫।୧୬ ।

ସିଂହ ଦର(ରୋ)ଜା—ଦେ. ବି ( ସଂ. ସିଂହଦ୍ୱାର )—ସିଂହଦ୍ୱାର Simha dara(ro)jā (ଦେଖ)—Simhadwāra. ( See ) (ସିଂହଦୁଆର—ଅନ୍ୟରୂପ) [ଦ୍ର—ଅରସେଶେକୋଷର ଦର୍ଶନ ଅଶେ সিংহদরজা, সিংহদুয়ার ସିଂହଦୁଆରେ, ବାଦେ ଆଜ ଦେବଦେବାଏ सिंहदरवाजा ଯେଣ୍ଡା ପୂଜାସମ୍ଭାରେ । ରାଧାନାଥ. ଚନ୍ଦ୍ରଭାଗା ।]

ସିଂହଦ୍ୱାର—ସଂ. ବି (ମଧ୍ୟପଦଲୋପୀ କର୍ମଧାରୟ; ସିଂହମୂର୍ତ୍ତି ଚିହ୍ନିତ Simhadwāra ଦ୍ୱାର; ଏଥିର ଦୁଇ ପାର୍ଶ୍ୱରେ ସିଂହର ମୂର୍ତ୍ତି ଥାଏ)—ରାଜପ୍ରାସାଦ ଓ ଦେବାଳୟକୁ ପ୍ରବେଶକରିବାପାଇଁ ପ୍ରଧାନ ବା ସଦର ଦୁଆର—The main entrance to a palace or temple.

ସିଂହ ଧ୍ୱନି—ସଂ. ବି (୬ଷ୍ଠୀ ତତ୍)—୧ । ସିଂହର ଶବ୍ଦ ବା ଗର୍ଜନ— Simha dhwani 1. The roar of a lion. ୨ । ସିଂହନାଦ ସଦୃଶ ଉଚ୍ଚ ଶବ୍ଦ (କୁମାରସମ୍ଭବ ୧।୫୬ ର )— 2. A loud roar like that of a lion.

ସିଂହ ନାଥ—ଦେ. ବି (ନାମ)—ବାଙ୍କୀ ବୈଦ୍ୟେଶ୍ୱରର ସମ୍ମୁଖରେ Simha nātha ମହାନଦୀ ଗର୍ଭରେ ବଡ଼ମ୍ବା ଗଡ଼ଜାତ୍ରକ୍ତ ଏକ ପାହାଡ଼ ଦ୍ୱୀପ ଓ ତହିଁରେ ଥିବା ମନ୍ଦିରରେ ପ୍ରତିଷ୍ଠିତ

ଶିବବିଗ୍ରହ—Name of an idol of Śiba on a hillock-island in the bed of the Mahānadī river opposite Baidyeswara in Banki. ( ଉ—ସ୍ରୋତେ ଶୈଳଶୃଙ୍ଗେ ଶଶାଙ୍କ ଶେଖର, ସିଂହନାଥ ପୁଣି ଧବଳେଶ୍ୱର । ସ୍ୱଧାନାଥ. ନନ୍ଦିକେଶ୍ୱରୀ ।) [ବି—ଏହି ପାହାଡ଼କୁ ସିଂହନାଥ ମୁଣ୍ଡିଆ ବୋଲିଯାଏ । ଏହା ମହାନଦୀ ଗର୍ଭସ୍ଥ ଗୋଟିଏ ଦ୍ୱୀପ । ଏହି ପାହାଡ଼ରେ ଗୋଟିଏ ଗୁହା ଅଛି ଏବଂ ସେହି ଗୁହାରେ ଗୋଟିଏ ବୈରାଗୀ (ଯେ ପୂର୍ବେ ଗୃହସ୍ଥ ଥାଇ ଦ୍ୱିତୀୟ ଥର ଦାରପରିଗ୍ରହ କରିଥିଲେ ଓ ପରେ ସସ୍ତ୍ରୀକ ସଂସାର ତ୍ୟାଗ କରିଅଛନ୍ତି) ଓ ତାଙ୍କ ମାତାଜୀ (ବୈରାଗୀଙ୍କର ଦ୍ୱିତୀୟ ବିବାହିତା ସ୍ତ୍ରୀ) ମଠ କରି ଅଛନ୍ତି । ସେହି ପାହାଡ଼କୁ ଲାଗି ଗୋଟିଏ ଅମ୍ବତୋଟା ଅଛି । ମନ୍ଦିରଟି ପ୍ରସ୍ତରଶିଳାରେ ପୂର୍ଣ୍ଣ । ଏହି ମୁଣ୍ଡିଆ ଉପରେ ବଡ଼ାମ୍ବା ରାଜାଙ୍କର ଗୋଟିଏ କୋଠା ଅଛି । ଏଠାରେ ଅନ୍ୟ କେହି ବାସ କରନ୍ତି ନାହିଁ, ଏବଂ ବୈଦ୍ୟେଶ୍ୱରନିବାସୀ ପଣ୍ଡାମାନେ ପ୍ରତିଦିନ ନଦୀ ପାରି ହୋଇ ଆସି ଏହି ମହାଦେବଙ୍କର ସେବା କରନ୍ତି ।

ସ୍ଥାନୀୟ କିମ୍ବଦନ୍ତୀ ଅଛି ଯେ, ରାମଚନ୍ଦ୍ରଙ୍କ ବନବାସ ସମୟରେ ଏ ବିଗ୍ରହ ଲକ୍ଷ୍ମଣଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲେ । ରାମଚନ୍ଦ୍ରଙ୍କ ପ୍ରତିଷ୍ଠିତ ରାମନାଥ ଶିବଲିଙ୍ଗ ନଦୀର ଅପର ପାରରେ ଓ ସୀତା ବା ବୈଦେହୀଙ୍କ ପ୍ରତିଷ୍ଠିତ ବୈଦ୍ୟନାଥ ଶିବଲିଙ୍ଗ ନିକଟବର୍ତ୍ତୀ ବୈଦ୍ୟେଶ୍ୱର ମୁଣ୍ଡିଆ ତଳେ ପ୍ରତିଷ୍ଠିତ । ବଡ଼ାମ୍ବାରେ ମିଳୁଥିବା ଓଡ଼ିଆ ରାମାୟଣରେ ଏହି କିମ୍ବଦନ୍ତୀର ଉଲ୍ଲେଖ ଅଛି । ଓଡ଼ିଶା ଗଡ଼ଜାତର ଅରଣ୍ୟ ଦଣ୍ଡକାରଣ୍ୟର ଅନ୍ତର୍ଗତ ଥିବାରୁ କେହି କେହି ଏପରି ଅନୁମାନ କରନ୍ତି । କଥିତ ଅଛି— ଭୁବନେଶ୍ୱର ମନ୍ଦିର ନିର୍ମାତା—ଲଲାଟେନ୍ଦୁ କେଶରୀଙ୍କ ଭାଇ ବିରାଟ କେଶରୀ (ଖ୍ରୀଷ୍ଟୀୟ ୭ମ ଶତାବ୍ଦୀ) ଏ ମନ୍ଦିରକୁ ତୋଳାଇଥିଲେ ।]

**ସିଂହନାଥ ମୁଣ୍ଡିଆ**—ଦେ· ବି (ନାମ)—ମହାନଦୀ ଗର୍ଭସ୍ଥ ବଡ଼ାମ୍ବା
Simhanātha muṇḍiā ରାଜ୍ୟର ଅନ୍ତର୍ଗତ ପାହାଡ଼ ବିଶେଷ—Name of a hillock on the bed of the Mahānadī.

**ସିଂହ ନାଦ**—ସଂ. ବି (୬ଷ୍ଠୀ ତତ୍)—୧ । ସିଂହଧ୍ୱନି (ଦେଖ)—
Simha nāda 1. Simha dhwani. (See) ୨ । ଯୋଦ୍ଧାମାନଙ୍କର ଉତ୍ସାହବର୍ଦ୍ଧକ ରବ (ଅମର)—2. A war-cry; shout of warriors, a roar made by warriors in the brunt of the fight. [ବି—ଗଜଯୂଥ ଦର୍ଶନ କରି ସେହି ଦଳର ଭୟଜନକ କରିବାକୁ ସିଂହ ଯେଉଁ ଗର୍ଜ୍ଜନ କରେ ଏବଂ ଶତ୍ରୁଭଙ୍ଗ ଓ ନିଜ ଦଳର ଉତ୍ସାହବୃଦ୍ଧି ପାଇଁ ଯୋଦ୍ଧା ଯେଉଁ ଗର୍ଜ୍ଜନ ଶବ୍ଦ କରେ ତାକୁ ସିଂହନାଦ ବୋଲିଯାଏ (ବିଶ୍ୱକୋଷ) ।] ୩ । ମହାଦେବ (ମହାଭାରତ)—3. Mahādeba. ୪ । ସଂସ୍କୃତ ଛନ୍ଦୋବିଶେଷ—4. Name of a Sanscrit metre. [ବି—ଏଥିର ପ୍ରତି ଚରଣରେ ୧୩ ଅକ୍ଷର ଥାଏ; ୩ୟ, ୫ମ, ୧୨ଶ ଓ ତ୍ରୟୋଦଶ ଅକ୍ଷର ଗୁରୁ; ଅନ୍ୟ ବର୍ଣ୍ଣମାନ ଲଘୁ—ଛନ୍ଦୋମଞ୍ଜରୀ ।]

**ସିଂହ ନାଦକ**—ସଂ. ବି ( ସିଂହ+ନଦ୍ ଧାତୁ+କରଣ. ଅକ )—
Simha nādaka ତୂରୀ; ଶିଙ୍ଗା; ରଣଶିଙ୍ଗା (ହାରାବଳୀ)—A war-trumpet.
ସଂ. ବିଣ. ପୁଂ (+କର୍ତ୍ତୃ· ଅକ)—ସିଂହପରି ନାଦକାରୀ—Roaring like lion.

**ସିଂହ ନାଦିକା**—ସଂ. ବି ( ସିଂହ ନାଦକ+ସ୍ତ୍ରୀ. ଆ )—
Simha nādikā ଦୁରାଲଭା (ଶବ୍ଦ ଚନ୍ଦ୍ରିକା) ( ଦେଖ ) Durālabhā ( See )
ସଂ. ବିଣ. ସ୍ତ୍ରୀ—ସିଂହନାଦକର ସ୍ତ୍ରୀଲିଙ୍ଗ—Feminine of simha nādaka.

**ସିଂହ ପର୍ଣ୍ଣୀ**—ସଂ· ବି—ବାସକ (କଟାଧର); ବାସଙ୍ଗ ଗଛ—
Simha parṇṇī A tree; Adhatoda Vasaca.

**ସିଂହ ପୁଚ୍ଛିକା**—ସଂ. ବି—କ୍ଷୁଦ୍ର ପର୍ଣ୍ଣିକା; କ୍ଷୁଦ୍ର ଚକ୍ର ପର୍ଣ୍ଣୀ; ପୃଶ୍ନି ପର୍ଣ୍ଣୀ
Simha puchchhikā ଲତା (ରତ୍ନମାଳା; ଅମର); ମାଷପର୍ଣ୍ଣୀ (ସିଂହ ପୁଚ୍ଛା—ଅନ୍ୟରୂପ) A creeper; Uraria Lagopoides.

**ସିଂହ ପୁର**—ଦେ. ବି (ନାମ)—ପ୍ରାଚୀନ କଳିଙ୍ଗର ଏକ ରାଜଧାନୀ—
Simha pura A capital of the ancient Kalinga Empire.

**ସିଂହ ପୁଷ୍ପୀ**—ସଂ. ବି—ପୃଶ୍ନି ପର୍ଣ୍ଣୀ ( ଦେଖ )
Simha pushpī Pṛuśni parṇṇī ( See )

**ସିଂହ ବାହିନୀ**—ସଂ. ବି. ସ୍ତ୍ରୀ [ସିଂହରୂପ ବାହ ( ବାହନ )+ଅସ୍ତି.
Simha bāhinī ଅର୍ଥରେ ଇନ୍+ସ୍ତ୍ରୀ. ଈ)—ଦୁର୍ଗା—Goddess Durgā. [ବି—ଏ ସିଂହରେ ଆରୋହଣ କରି ମହିଷାସୁରଙ୍କୁ ବଧ କରିଥିଲେ ।]

**ସିଂହ ବାହୁ**—ଦେ. ବି (ନାମ)—ସିଂହଭୂମିର ଜନୈକ ରାଜା—Name
Simha bāhu of a king of Simhabhūmi. [ବି—ଏ ବୁଦ୍ଧ ଦେବଙ୍କ ସମକାଳୀନ । ଏହାଙ୍କ ପୁତ୍ର ବିଜୟ ସିଂହ ରାଜ୍ୟରୁ ନିର୍ବାସିତ ହୋଇ ଲଙ୍କାକୁ ଯାଇ ସେଠାର ଆଦିମ ନିବାସୀମାନଙ୍କୁ ଜୟ କରି ସେଠାରେ ରାଜ୍ୟ ସ୍ଥାପନ କରିଥିଲେ । ସିଂହଳ ଦେଖ]

**ସିଂହ ବିକ୍ରମ**—ସଂ. ବି ( ୬ଷ୍ଠୀ ତତ୍ )—ସିଂହର ପରାକ୍ରମ—The
Simha bikrama strength of a lion. ସଂ· ବିଣ. ପୁଂ (ସିଂହ ବିକ୍ରମା—ସ୍ତ୍ରୀ) (ବହୁବ୍ରୀହି)—ସିଂହ ପରି ପରାକ୍ରମଶାଳୀ—Strong as a lion.

**ସିଂହ ବିକ୍ରାନ୍ତ**—ସଂ. ବିଣ (ସିଂହ+ବି+କ୍ରମ୍ ଧାତୁ+କର୍ତ୍ତୃ ତ)—ସିଂହ
Simha bikrānta ପରି ପରାକ୍ରମୀ—Strong as a lion.
ସଂ. ବି—ଅଶ୍ୱ; ଘୋଟକ ( ହାରାବଳୀ, ଶବ୍ଦମାଳା )—The horse.

ସିଂହ ବନ୍ନା—ସଂ, ବ—ମାଷପର୍ଣ୍ଣୀ ( ଦେଖ )—
Simha binnā Māshaparṇṇī ( See )

ସିଂହଭୂମ୍(ମି)—ଦେ. ବ (ନାମ)—ଅଧୁନା ବିହାର ପ୍ରଦେଶର ଅନ୍ତର୍ଗତ
Simhabhūm(mi) ଓଡ଼ିଆ ଜିଲ୍ଲାବିଶେଷ—A district now
সিংহভূম in the province of Bihar mostly
सिंहभूमि inhabited by Hos and the Oriyas.
[ଦ୍ର—୧ । ଏହା ପ୍ରଥମେ ଭୂୟାଁମାନଙ୍କର ରାଜ୍ୟ ଥିଲା । ଭୂୟାଁମାନଙ୍କ ଅଭ୍ୟୁଦୟ ପୂର୍ବେ ଏଠାରେ ସରାକ (ଜୈନ-ଶ୍ରାବକ ) ଜାତିର ପ୍ରାଧାନ୍ୟ ଥିଲା । ଏଠାରେ ସିଂହବାହୁ ରାଜା ରାଜତ୍ୱ କରୁଥିଲେ । ଏ ଏପରି ପ୍ରଜାପ୍ରିୟ ଥିଲେ ଯେ, ପ୍ରଜାମାନଙ୍କ ଆପତ୍ତି ଯୋଗୁଁ ଅତ୍ୟାଚାରୀ ଯୁବରାଜ ବିଜୟସିଂହଙ୍କୁ ଅକୁଣ୍ଠିତ ଚିତ୍ତରେ ରାଜ୍ୟରୁ ବହିଷ୍କୃତ କରି ଦେଇଥିଲେ । ସିଂହବାହୁ ଅନେକ ଜଳାଶୟ, ପୁଷ୍କରିଣୀ ଓ କୁଲ୍ୟା (କେନାଲ) ଖୋଳାଇ ଥିଲେ ।

ସିଂହଭୂମିର ନାମ ପୂର୍ବରେ ଯେ କଅଣ ଥିଲା ତାହା ଏପର୍ଯ୍ୟନ୍ତ ଆମ୍ଭେମାନେ ଜାଣି ପାରୁ ନାହିଁ । ତେବେ ସ୍ଥୂଳତଃ ଜଣାଯାଏ ଯେ, ଏହା ଗୋଟିଏ ଜଙ୍ଗଲ-ମୂଳକ ଥିଲା । ଏହାର ଆଦିମ ବାସିନ୍ଦା ହୋ ଓ ଭୂୟାଁ । ପ୍ରଭୃତି ଥିଲେ; ଆର୍ଯ୍ୟ ଜାତି କେହି ବାସ କରୁ ନ ଥିଲେ । ଯେତେବେଳେ ସିଂହ ରାଜାମାନେ ରାଜପୁତାନାରୁ ଆସି ଅନାର୍ଯ୍ୟ-ମାନଙ୍କୁ ଜୟ କରି ଏଠାରେ ରାଜ୍ୟ ସ୍ଥାପନ କଲେ, ସେହି ଦିନଠାରୁ ସିଂହଭୂମିର ନାମକରଣ, ସିଂହ ରାଜାମାନଙ୍କ ଅଧିକୃତ ହେବାରୁ, ସିଂହଭୂମି ହେଲା । କେହି କେହି ସାହେବ ଓ ପ୍ରତ୍ନତତ୍ତ୍ୱାନୁସନ୍ଧିତ୍ସୁ କହନ୍ତି ଯେ, ହୋ ମାନେ ସୂର୍ଯ୍ୟଦେବତାଙ୍କୁ 'ସିଙ୍ଗିବଙ୍ଗା' କହନ୍ତି; ସୁତରାଂ ଏହି ଶବ୍ଦର ଅପଭ୍ରଂଶରେ ସିଂହଭୂମି ହୋଇଅଛି । କିନ୍ତୁ ଏହା ଯୁକ୍ତିସିଦ୍ଧ ବା ସର୍ବବାଦିସମ୍ମତ ହୋଇ ନ ପାରେ ବୋଲି ଆମ୍ଭମାନଙ୍କର ମତ । ଆମ୍ଭେ ସିଂହରାଜାମାନଙ୍କ ଏ ଅବଧି ତେର ପୁରୁଷ ପର୍ଯ୍ୟନ୍ତ ଜାଣିପାରୁଅଛୁଁ । ପୂର୍ବରେ ସିଂହରାଜାଙ୍କର ଆଉ କେତେ ପୁରୁଷ ଥିଲେ, ତାହା ଆମ୍ଭମାନଙ୍କୁ ଜଣା ନାହିଁ । କିମ୍ବା ପ୍ରଥମତଃ କେଉଁ ବ୍ୟକ୍ତି ଆସି ସିଂହଭୂମିରେ ରାଜ୍ୟ ସ୍ଥାପନ କରିଥିଲେ ତାହା ମଧ୍ୟ ଅବିଦିତ । କିନ୍ତୁ ଏହା ଧ୍ରୁବ ସତ୍ୟ ଯେ, ଏହାର ପ୍ରତିଷ୍ଠାତା ସିଂହରାଜାମାନେହିଁ ଅଟନ୍ତି । ପୋଡ଼ାହାଟ, କେସ୍ରା, ଆନନ୍ଦପୁର, ଫୋଡ଼ଙ୍ଗକଲା ( ସରେଇକଲା ), ଖରସୁଆଁ ପ୍ରଭୃତି ଯେତେ ରାଜ୍ୟ ଅଛି, ସେ ରାଜ୍ୟର ରାଜବଂଶଗଣ ଏକ ସିଂହବଂଶର ଶାଖା । ଏହି ସିଂହଭୂମିର ତଦାନୀନ୍ତନ ମହାରାଜା ଘନଶ୍ୟାମ ସିଂହ ସନ ୧୮୧୮ ମସିହାରେ ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟଙ୍କ ଅଧୀନତା ସ୍ୱୀକାର କଲେ । ପୂର୍ବରେ ଉପର୍ଯ୍ୟୁକ୍ତ ସମସ୍ତ ରାଜ୍ୟ ସ୍ୱତନ୍ତ୍ର ଥିଲା । ସେହି ପୂର୍ବକାଳରୁହିଁ ଏହି ସିଂହରାଜାମାନେ ଓଡ଼ିଆ ଭାଷାକୁ ନିଜ ମାତୃଭାଷାରୂପେ ଗ୍ରହଣ କରି ଆସିଅଛନ୍ତି । ଓଡ଼ିଶାର ସମ୍ରାଟ ଗଜପତିଙ୍କର ସିଂହଭୂମିର ମହାରାଜାଙ୍କ ସହ ବିଶେଷ ବନ୍ଧୁତ୍ୱ ଥିଲା; ଗଜପତିଙ୍କ ରାଜ୍ୟରୁ ଆର୍ଯ୍ୟ ବାସିନ୍ଦା ଓଡ଼ିଆମାନଙ୍କୁ ଆଣି ସିଂହଭୂମିର ମହାରାଜା ତାଙ୍କ ରାଜ୍ୟରେ ରଖାଇ ଥିଲେ । ଅଦ୍ୟାବଧି ବହୁ ଆର୍ଯ୍ୟବାସିନ୍ଦା ଏ ଅଞ୍ଚଳରେ ଅଛନ୍ତି ଏବଂ ଉତ୍କଳୀୟ ବ୍ରାହ୍ମଣ, କରଣ ଓ ଖଣ୍ଡାୟତ ପ୍ରଭୃତିହିଁ ରାଜାଙ୍କର ପ୍ରଧାନ କର୍ମଚାରୀରୂପେ ପୁରୁଷାନୁକ୍ରମେ ବୃତ୍ତିଭୋଗୀ ହୋଇ ରହି ଅଛନ୍ତି । ଆଜ ଯାଏ ଯେଉଁ ସମସ୍ତ ସିରସ୍ତାର କାଗଜପତ୍ର, ଦଲିଲ ଦସ୍ତାବିଜ ପ୍ରଭୃତି ସିଂହରାଜାମାନଙ୍କର ଅଛି, ସେ ସମସ୍ତହିଁ ଓଡ଼ିଆ ଭାଷାରେ ଲେଖା । ଅବଶ୍ୟ ପରେ ପରେ କ୍ରମାନୁସାରେ ଆର୍ଯ୍ୟବାସିନ୍ଦାମାନେ ସ୍ୱତନ୍ତ୍ର ଅନ୍ୟାନ୍ୟ ପ୍ରଦେଶରୁ ଆସି ସିଂହଭୂମିରେ ବାସ କରିଅଛନ୍ତି । କିନ୍ତୁ ସେମାନେ ଓଡ଼ିଆ ଭାଷାକୁହିଁ ସିଂହଭୂମିର ପ୍ରଧାନ ଭାଷା ବୋଲି ଗ୍ରହଣ କରିଅଛନ୍ତି ଓ ଓଡ଼ିଆମାନଙ୍କ ଅନୁକରଣରେ ସମସ୍ତ ପର୍ବପର୍ବାଣି ଓ ସାମାଜିକ ବିଧିମାନ ସମ୍ପାଦନ କରନ୍ତି । ହଣ୍ଟର ସାହେବ Statistical Account of India ବୋଲି ଯେଉଁ ପୁସ୍ତକଟି ପ୍ରଣୟନ କରିଅଛନ୍ତି [ ସନ ୧୮୭୭] ସେଥିରେ ସେ ଯେଉଁ ହିସାବ ଦେଖାଇ ଅଛନ୍ତି, ସେଥିରୁ ସ୍ପଷ୍ଟଭାବେ ଆଭାସ ମିଳେ ଯେ, ସିଂହଭୂମିରେ ଅନାର୍ଯ୍ୟମାନଙ୍କୁ ଛାଡ଼ି ଦେଲେ ଓଡ଼ିଆ ଜାତିରହିଁ ପ୍ରଚୁରତା ଓ ପ୍ରକର୍ଷ ଉପଲବ୍ଧି ହୁଏ—ସନ୍ଦର୍ଭ ଲେଖକ ହରିଚରଣ ରାଜହଂ ଦୈନିକ ଆଶା ୮।୧।୩୦ ।

ବର୍ତ୍ତମାନ 'ହୋ' [ ସାନ୍ତାଳ ]ମାନେ ସିଂହଭୂମିର ପ୍ରଧାନ ଅଧିବାସୀ ଅଟନ୍ତି ଓ ଏଠାରେ ବହୁସଂଖ୍ୟକ ଓଡ଼ିଆ ବାସ କରନ୍ତି । ଏହି ଜିଲ୍ଲାର ଜାମସେଦପୁର [ଟାଟାନଗର] ଠାରେ ଟାଟାକମ୍ପାନିଙ୍କ ପୃଥିବୀ ବିଖ୍ୟାତ ଲୁହା ଓ ଇସ୍ପାତ କାରଖାନା [ Tata Iron and Steel Works] ପ୍ରତିଷ୍ଠିତ ହେବାରୁ ଏହି କାରଖାନାରେ କାମ କରିବା ପାଇଁ ବହୁ ହିନ୍ଦୀଭାଷୀ ଓ ବଙ୍ଗଭାଷୀ ଲୋକ ଏଠାରେ ଅଧିବାସୀ ହୋଇଅଛନ୍ତି । ଏହା ଓଡ଼ିଆବହୁଳ ଅଞ୍ଚଳ ଥିବାରୁ ପୂର୍ବେ ଭାଷାସୂତ୍ରରେ ଗଢ଼ା କଂଗ୍ରେସ-ପ୍ରଦେଶମାନଙ୍କ ମଧ୍ୟରେ ସିଂହଭୂମି ଉତ୍କଳର ଅନ୍ତର୍ଭୁକ୍ତ ହୋଇଥିଲା, କିନ୍ତୁ ପରେ କଂଗ୍ରେସ ନେତା ବିହାରୀ ରାଜେନ୍ଦ୍ରପ୍ରସାଦଙ୍କ ଆଦେଶରେ ଏହା ବିହାରର ଅନ୍ତର୍ଗତ ହୋଇଅଛି । ଦୁର୍ଭାଗ୍ୟର ବିଷୟ ଯେ, ସିଂହଭୂମି ରାଜନୀତିକ ଓଡ଼ିଶାର ସୀମାଭୁକ୍ତ ହୋଇ ନାହିଁ ଓ ଏଥିର ଫଳରେ ଏଠାର ଅଧିବାସୀ ଓଡ଼ିଆମାନେ ନିଜ ମାତୃଭାଷା ଶିକ୍ଷା ଲାଭ କରିବାକୁ ସୁବିଧା ପାଉନାହାନ୍ତି ଓ କ୍ରମଶଃ ଜାତୀୟତା ହରାଉ ଅଛନ୍ତି । ସିଂହଭୂମିକୁ ଓଡ଼ିଶା ପ୍ରଦେଶକୁ ଆଣିବା ପାଇଁ ସିଂହଭୂମିର ତଥା ଓଡ଼ିଶାର ଓଡ଼ିଆମାନଙ୍କର ଚେଷ୍ଟା ଲାଗିଅଛି ।

ସିଂହଭୂମିରେ ଓଡ଼ିଆ ଶିକ୍ଷା ପ୍ରଚାର ଓ ପ୍ରସାର ବୃଦ୍ଧି ପାଇଁ ଓଡ଼ିଆ ବିଦ୍ୟାଳୟମାନ ସ୍ଥାପନ କରିବା ଓ ଓଡ଼ିଆ ଶିକ୍ଷାର ଅଭିବୃଦ୍ଧି ପାଇଁ ବିହାର ଗଭର୍ଣ୍ଣମେଣ୍ଟଙ୍କଠାରୁ ଲୋକ ସଂଖ୍ୟା ଅନୁପାତରେ ସାହାଯ୍ୟ ଲାଭ କରିବା ପାଇଁ ପଣ୍ଡିତ

କୃଷ୍ଣଚନ୍ଦ୍ର ଅଗ୍ରୱାଲ୍ ପ୍ରମୁଖ କେତେ ଦେଶକର୍ମୀ ସିଂହଭୂମି ଜଙ୍ଗଲ ସତ୍ୟାଗ୍ରହ ଚେଷ୍ଟା କରୁଅଛନ୍ତି । ସମ୍ପ୍ରତି କଟକର ଶ୍ରୀମାନ୍ ବୃନ୍ଦାବନ ସାହୁ ପ୍ରମୁଖ କେତେଗୁଡ଼ିଏ ଦେଶପ୍ରେମିକ ଯୁବକ ଓଡ଼ିଶା ପ୍ରଦେଶରେ ଯୁକ୍ତ ନ ହୋଇଥିବା ଅନ୍ୟାନ୍ୟ ଓଡ଼ିଆ ଅଞ୍ଚଳ ସଙ୍ଗେ ସିଂହଭୂମି ଉପରୁ ଓଡ଼ିଶାପ୍ରଦେଶକୁ ଆସିବ ଏଥିପାଇଁ 'ବିଚ୍ଛିନ୍ନ ଉତ୍କଳ ଅବକାଶ ବାହିନୀ' ନାମରେ ଗୋଟିଏ ସଙ୍ଘ ଗଢ଼ି ଅଛନ୍ତି ।]

ସିଂହ ମାଦଳା—ଦେ. ବ—ସରେଇକଳା ରାଜାଙ୍କ ଗୃହରେ ରକ୍ଷିତ
Simha mādalā ସିଂହଭୂମିର ତଥା ସିଂହରାଜବଂଶର ଇତିହାସ —The history of Simhabhūmi and the Simha line of Kings preserved in the Seraikela Raj-family.

ସିଂହ ମୁଖ—ସଂ. ବ ( ୬ଷ୍ଠୀ ତତ୍ )—୧ । ସିଂହର ମୁଖ—
Simha mukha 1. Lion's face. ୨ । ହସ୍ତୀର ଭୂଷଣ ବିଶେଷ—2. Name of a sort of trapping of the elephant.

ସିଂହ ମୁଖୀ—ସଂ. ବ—ବାସକ (ରାଜ ନିର୍ଘଣ୍ଟ); ବାସଙ୍ଗ (ଦେଖ)
Simha mukhi Bāsanga ( See )

ସିଂହ ଯାନା—ସଂ. ବି. ସ୍ତ୍ରୀ (ବହୁବ୍ରୀହି; ସିଂହ ଅଟେ ଯାନ ବା ବାହନ
Simha jānā ଯାହାର)—ଦୁର୍ଗା—Goddess Durgā.
(ସିଂହରଥା—ଅନ୍ୟରୂପ)

ସିଂହ ରଜା—ଦେ. ବ (ନାମ)—୧ । ସିଂହଭୂମିର ରାଜା; ସିଂହଭୂମ୍
Simha rajā (ଦେଖ) 1. Simhabhūm ( See )
সিংহ রাজা सिंहभूमिका राजा ୨ । ପଶୁରାଜ ସିଂହ—
2. Lion, the king of beasts.

ସିଂହ ରାଠୋର—ପ୍ରାଦେ. (ସିଂହଭୂମ) ବ—କ୍ଷତ୍ରିୟ ଜାତି ବିଶେଷ—
Simha rāṭhora A race of Kshatriyas.
[ବି—ସ୍ୱମେଶ୍ୱରର ଶିବଲିଙ୍ଗଙ୍କ ରକ୍ଷା ପାଇଁ ଶ୍ରୀରାମ ଠାକୁର ଦେଇ ଏହି ବଂଶ ସ୍ଥାପନ କରିଥିଲେ । ଏମାନଙ୍କ ବଂଶଧରମାନେ ରାଜପୁତ ବାଟେ କନୌଜ ଆସିଥିଲେ । କନୌଜରୁ ଦଳେ ମାରବାଡ଼ ଗଲେ । ଦଳେ ପୁଣି ପ୍ରଶ୍ନୋତ୍ତର ଦେଇ କେଣ୍ଡ୍ରା ରାଜାଙ୍କ ରାଜ୍ୟରେ ପୋଡ଼ାହାଟ ରାଜ୍ୟ ସ୍ଥାପନ କଲେ । ପୋଡ଼ାହାଟରୁ ଅଭିରାମ ସିଂହଙ୍କ ପ୍ରପିତାମହ ବିକ୍ରମ ସିଂହ ଆସି ସରେଇକଳା ରାଜ୍ୟ ସ୍ଥାପନ କରିଥିଲେ—ହ. ଶ]

ସିଂହଳ—ସଂ. ବ ( ନାମ )—୧ । ଲଙ୍କା ଦ୍ୱୀପ—1. Ceylon.
Simhala [ବି—ସିଂହଭୂମିର ରାଜା ସିଂହ ବାହୁଙ୍କ ଦ୍ୱାରା ରାଜ୍ୟରୁ ବହିଷ୍କୃତ ରାଜପୁତ୍ର ବିଜୟସିଂହ ଏହି ଦ୍ୱୀପକୁ ଜୟ କରିଥିବାରୁ ତାହାଙ୍କର ନାମ ଅନୁସାରେ ଏହି ନାମ ହୋଇଅଛି ବୋଲି କେହି କେହି କହନ୍ତି । ଭାରତର ଦକ୍ଷିଣରେ ସିଂହଳ ଅବସ୍ଥିତ ଥିବା କ୍ୟୋତିଷଶାସ୍ତ୍ର ଗ୍ରନ୍ଥରେ ଅଛି ।] ୨ । ପିତ୍ତଳ—2. Brass. ୩ । ରାଙ୍ଗା; ଟିଣ ଧାତୁ—3. Tin. ୪ । ଦାରୁଚିନି—4. Cinnamon.

ସିଂହଳସ୍ଥା—ସଂ. ବ (ବୈଦ୍ୟକ)—ସେହି ଲୀ (ରାଜ ନିର୍ଘଣ୍ଟ)—
Simhalasthā A medicinal plant.

ସିଂହଳାସ୍ଥାନ—ସଂ. ବ—ତାଳ ବୃକ୍ଷ ସଦୃଶ ବୃକ୍ଷ ବିଶେଷ (ଶବ୍ଦମାଳା)—
Simhalāsthāna A kind of palm tree.

ସିଂହଳୀ—ଦେ. ବଣ ( ସଂ. ସିଂହଳୀୟ )—୧ । ସିଂହଳ ସମ୍ବନ୍ଧୀୟ—
Simhali 1. Relating to Ceylon. ୨ । ସିଂହଳ
সিংহলী ଦେଶୀୟ—2 Ceylonese. ୩ । ସିଂହଳ ଅଧିବାସୀ
सिंहली —3. Residing in Ceylon. ୪ । ସିଂହଳ ଦେଶ ପ୍ରଚଳିତ (ଭାଷା)—4. Simhalese (language).

ସିଂହଳୀୟ—ସଂ. ବଣ (ସିଂହଳ+ଈୟ)—ସିଂହଳ ଦେଶ ସମ୍ବନ୍ଧୀୟ—
Simhaliya Ceylonese.

ସିଂହ ଲୀଳ—ସଂ. ବ (ସିଂହ+ଲୀଳା; ବହୁବ୍ରୀହି)—ସିଂହ ପରି ଲୀଳା-
Simha lila ଯୁକ୍ତ—Sportive as a lion ସଂ. ବ—ରତିବନ୍ଧ ବିଶେଷ—A sort of posture during coition. [ବି—ଏହା 'ବିପରୀତ' ରତିବନ୍ଧ ବିଶେଷ । ଏ ବନ୍ଧରେ ନାରୀ ଭୂମିରେ ବାମ ଜାନୁର ଉରୁ ଦେଶରେ ପଦ ଦ୍ୱୟ ସ୍ଥାପନ କରି ରମଣ କରେ—ରତି ମଞ୍ଜରୀ ।]

ସିଂହ ଶାବକ(ଶିଶୁ)—ସଂ. ବ (୬ଷ୍ଠୀ ତତ୍)—ସିଂହର ଛୁଆ—
Simha śābaka(śiśu) Cub of a lion.

ସିଂହ ସଂହନନ—ସଂ. ବଣ. ପୁଂ (ସିଂହ ପରି ଅତ୍ୟୁତ୍ତମ ସଂହନନ=
Simha samhanana ଦେହ ଯାହାର; ବହୁବ୍ରୀହି)—
୧ । ସିଂହ ତୁଲ୍ୟ ସର୍ବାଙ୍ଗସୁନ୍ଦର; ବରାଙ୍ଗରୂପୋପେତ (ଅମର)—1. (a person) Having a symmetrical body like the lion. [ଉ—ତଥି ପରେ ମଣ୍ଡି ଛନ୍ତି ସିଂହାସନ, ଯୁବା ଦେବାରୂଢ଼ ସିଂହସଂହନନ-ରଘୁନାଥ. ଚନ୍ଦ୍ରିକା ।] ୨ । ସିଂହ ସଦୃଶ ଦୃଢ଼ବପୁଃ—2. Strong-bodied as a lion. ସଂ. ବ (୬ଷ୍ଠୀ ତତ୍, ସିଂହ+ସମ୍+ହନ୍ ଧାତୁ+ଭାବ. ଅନ)—ସିଂହ ଶିକାର—Lion-hunting.

ସିଂହ ସାରଳା—ଦେ. ବ—କଟକ ଜିଲ୍ଲାର ଝଙ୍କଡ଼ରେ ପ୍ରତିଷ୍ଠିତା
Simha sāralā ସିଂହବାହିନୀ ସାରଳା ଠାକୁରାଣୀ—The Deity Sāralā (Durgā) in Jhankarda in the Cuttack district.

ସିଂହା—ସଂ. ବ (ସିଂହ+ଆ)—ନାଡ଼ ( ରାଜନିର୍ଘଣ୍ଟ )—Pulse.
Simhā ଦେ. ବ (ସଂ. ଶୃଙ୍ଗ)—ଶିଙ୍ଗା; ରଣ ଶିଙ୍ଗା—
সিংঘা नरसिंघा War horn; a war trumpet.

ସିଂହାଚଳ—ସଂ. ବ—ହିନ୍ଦୁ ପୁରାଣୋକ୍ତ ପବିତ୍ର ତୀର୍ଥ ଓ ପର୍ବତ;
Simhāchala ସୀମାଚଳ (ଦେଖ)—Simāchala (See)
(ସିଂହାଦ୍ରି—ଅନ୍ୟରୂପ)

ସିଂହାଣ(ନ)—ସଂ. ବ (ସିଙ୍ଘ୍ ଧାତୁ=ଶୁଙ୍ଘିବା+କର୍ମ. ଅନ)—
Simhāṇa(na) ୧ । ଲୌହମଳ (ଅମର); ମଣ୍ଡୂର; ଲୁହାଗୁହ—

[ଶିଂ(ଘିଂ)ଘାଣ—ଅନ୍ୟରୂପ] 1. Rust of iron; the dross of iron. [ଦୃ—ଏହା ଖାଣ୍ଡୁ ରୋଗ ନାଶ କରେ ।] ୨ । ନାସିକା ମଳ; ସିଙ୍ଘାଣି—2. Snot; mucus of the nose. (ଶିଂହାଣକ, ସିଂଗାଣ, ସିଂଘଣ—ଅନ୍ୟରୂପ)

ସିଂହ — ଦେ. ବ—୧ । ପରାକ୍ରମୀ—1. Powerful. [ଦୃ—ଭୂମିର ବଳେ ଶୂର ଭଇଏ ସିଂହାଣ । କୃଷ୍ଣସିଂହ. ମହାଭାରତ. ବନ ।] ୨ । ଚତୁର—2. Cunning. [ଦୃ—କୃଷ୍ଣ ଅଗ୍ରକ ସିଂହାଣ. କଲେ ବଡ଼ଇ ମାଲ ବନ୍ଧାଣ । ଶାନ୍ତିକୃଷ୍ଣ. ରସକଲ୍ଲୋଳ ।] ଦେ. ବ—୧ । ପୁରୁଷସିଂହ; ବୀର—1. A hero like the lion [ଦୃ—ତାହାଲେ ଅଛେ ପାର୍ଥ, ଯଦିଯୁ ସିଂହାଣ । କୃଷ୍ଣସିଂହ. ମହାଭାରତ. ବନ ।] ୨ । ଧାନ—2. Paddy.

ସିଂହାଣ(ନ)କ—ସଂ. ବ ( ସିଂହାଣ, ସିଂହାନ+ସ୍ୱାର୍ଥେ କ )—Simhāṇa(na)ka ନାସିକା ମଳ; ସିଂଘାଣି—Snot; mucus of the nose.

ସିଂହାଣ ପଣ—ଦେ. ବ—ବୀରତ୍ୱ—Heroism; valour. [ଦୃ—Simhāṇa paṇa କନ୍ଦରରେ ସିଂହଟି ବସିଣ ସିଂହାଣ, ପଣ ଛାଡ଼ ଦେଇ ଶୋଇଥାଇଲାଣି ଜାଣ । କୃଷ୍ଣସିଂହ. ମହାଭାରତ. ବନ ।] (वीरत्व / वीरता)

ସିଂହାବଲୋକନ—୧ । ସିଂହର ଚାହାଣି (ବାଟରେ ଯାଇ ଯାଇ Simhābalokana ଠିଆ ହୋଇ ପଛକୁ ଚାହିଁବା, ପୁଣି ଚାଲିବା)—1. Lion's glance; pausing and looking back from time to time (like a lion). ୨ । ନ୍ୟାୟ ବିଶେଷ; ସିଂହ ଯେପରି ବାଟ ଯାଇ ଯାଇ ମଝିମଝିରେ ଠିଆ ହୋଇ ପଛଅଡ଼କୁ ଦୂରସ୍ଥ ବସ୍ତୁକୁ ଅବଲୋକନ କରେ, ସେହିପରି ସ୍ଥଳରେ ଏ ନ୍ୟାୟ ବ୍ୟବହାର ହୁଏ—2. An analogy applied to cases were a person looks back on distant things ignoring nearer things. ୩ । ପଦ୍ୟ ରଚନାରେ ଶବ୍ଦଭୂଷା ବିଶେଷ; ଶୃଙ୍ଖଳା ବା ଅନୁପ୍ରାସ ଯୁକ୍ତ ରଚନା ବିଶେଷ—3. A kind of alliteration in which a particular group of letters occur in many places in a stanza. [ଦୃ—ଉପେନ୍ଦ୍ର ଭଞ୍ଜ ଓ ଅଭିମନ୍ୟୁ ସାମନ୍ତସିଂହାର ଅନେକ ରଚନାରେ ଏହା ଦେଖାଯାଏ । ସିଂହ ଯେଉଁପରି ଚାଲିଗଲା ବେଳେ ମୁହଁ ବୁଲାଇ ପଛକୁ ବେଳେ ବେଳେ ଅନାଉଥାଏ, ସେହିପରି ଗୋଟିଏ ଧାଡ଼ିର ଶେଷରେ ବା ମଧ୍ୟରେ ଥିବା ଶବ୍ଦ ବା ଅକ୍ଷର ପର ପଦର ପ୍ରଥମରେ ବା ମଧ୍ୟରେ ଲେଖାଯାଏ, ଯଥା—

'ଧନ୍ୟ ରଥେ ଭୂମି ଜନ୍ମ ଶୁଭକ୍ଷଣେ' ଭୂମେଣ୍ଡ ଘଲ କଥାଣି

ଭୂମିର ମହିମା ପ୍ରକାଶିବା ପାଇଁ ପଞ୍ଚମୁଖୀ ହୁଏ ବାଣୀ—ବାଣୀକର ସୁତ ଏ ପାପ ସଂସାରେ ଅଛ କ ଅସିବ ଫେର ?

ଫେର କ ଅସିବ ରାଧାନାଥ ଯୁଗ ବାଳକ ବ ଜନ୍ମ ଭେଲ ।

ଦେଶ ଓ ଗଦ୍ୟ—ଜଗନ୍ନାଥ ତ୍ରିପାଠୀ ।

ସିଂହାବଲୋକନ ୩ ପ୍ରକାରର । ଯଥା—୧ । ଶୃଙ୍ଖଳା ସିଂହାବଲୋକନ—ଏଥିରେ ଏକ ଧାଡ଼ିର ଶେଷ ଅକ୍ଷର ଦୁଇଟି ଓ ପରବର୍ତ୍ତୀ ଧାଡ଼ିର ଆଦ୍ୟ ଅକ୍ଷର ୨ଟି ସମାନ ଅଟେ । ଯଥା—

କଞ୍ଜ ଚନ୍ଦ୍ର ଦରପଣ ବଦନ ରଞ୍ଜନ
ଜନ ହରଷ ଜନକ ବର ସରସନ
ସନକ ମନ ବଶକ ସଦନକ ହସ
ହଂସ ଗମନ ରଙ୍ଗିଲ ଦର୍ଶନ ତରସ ।

—ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ]

୨ । ସାଧାରଣ ସିଂହାବଲୋକନ —

[ଦୃ—ସକଳ-କେଳକଳା - କୁଶଳା-ବାଳା !
କଳା-କାଜଳ-କେଶା ଗୁଣ-ବଳେଳା !
କୋକିଳ-କଳସ୍ୱରା ବର ରସିକା !
କା କରେ କଳ୍ପ କବା ଶରୀର ବକା ରେ ?

— କୃଷ୍ଣଚନ୍ଦ୍ର କର. ରସକେଳୀ ]

(ଏହି କବିତାଂଶରେ ୨ଟି ମାତ୍ର ବର୍ଣ୍ଣର ବ୍ୟବହାର ହୋଇଅଛି ।)

୩ । ଚକ୍ର ସିଂହାବଲୋକନ—ଏଥିରେ ଗୋଟିଏ ଶ୍ଳୋକର ପ୍ରଥମ ଧାଡ଼ିରେ ଆଦ୍ୟ ପଦ ବା ବର୍ଣ୍ଣଦ୍ୱୟ, ଯାହା ଶ୍ଳୋକର ୪ର୍ଥ ଧାଡ଼ିର ଶେଷ ପଦ ବା ବର୍ଣ୍ଣଦ୍ୱୟ ତାହା ଅଟେ । ]

ସିଂହାର—ଦେ. ବ (ସଂ. ଶୃଙ୍ଗାର )—ଶିଂଗାର (ଦେଖ)—Simhāra Singhāra (See) [ଦୃ—କଳ୍ପରେ ସିଂହାର ଯାହା, କଲ୍ପ ଦେଲେ ଗଲା, ପାର୍ଥ ! ସେ ସିଂହାର ହୁଏ ଅନର୍ଥର ହେତୁ —ରାଧାନାଥ. ମହାଯାତ୍ରା]

ସିଂହାରହାର—ଦେ.ବ (ସଂ ଶୃଙ୍ଗାରହାର )—ଶିଂଘଡାହାର (ଦେଖ)—Simhārahāra 1. Singhardāhāra (See) [ସିଂହାରହାର—ଅନ୍ୟରୂପ] ୨ । ଜଗନ୍ନାଥ ମହାପ୍ରଭୁଙ୍କର ଶ୍ରୀର ପିଠା ଅଦର ଏକ ପ୍ରକାର ଭୋଗ । (ଜଗବନ୍ଧୁ—ପ୍ରାଚୀନ ଉତ୍କଳ)—2. A kind of offering made to the Deity Jagannātha of Puri. (शिउंलि / सिंहारहार)

ସିଂହାସନ—ସଂ. ବ (ମଧ୍ୟପଦଲୋପୀ କର୍ମଧାରୟ; ସିଂହ ଚିହ୍ନିତ ଆସନ; Simhāsana ଏଥିରେ ସିଂହର ମୂର୍ତ୍ତି ଥାଏ)—୧ । ରାଜଗାଦି; ସ୍ୱର୍ଣ୍ଣମୟ ରାଜାସନ; ଯାହା ଉପରେ ବସି ରାଜା ରାଜପଦରେ ଅଭିଷିକ୍ତ ହୁଅନ୍ତି—1. A king's throne. ୨ । ଦେବତାଙ୍କର ବସିବା ଆସନ ବା ବେଦୀ—2. A throne or pedestal on which an idol is installed. ୩ । ଯୋଗାସନ ବିଶେଷ—3. A sort of posture during in spiritual meditation. [ଦୃ—ଏଥିରେ ଚେକା.

ସକାଇ 'ବସି ଦୁଇ ଗୋଇଠିକୁ ଅଣ୍ଡକୋଷର ତଳେ ଦୁଇ ପାଖରେ ଲଗାଇ (ଅର୍ଥାତ୍ ବାଆଁ ଗୋଇଠିକୁ ଅଣ୍ଡକୋଷ ତଳେ ଡାହାଣ ପାଖେ ଓ ଡାହାଣ ଗୋଇଠିକୁ ଅଣ୍ଡକୋଷ ତଳେ ବାଆଁ ପାଖେ ଲଗାଇ ରଖି ) ଦୁଇ ଜଙ୍ଘଉପରେ ସଂପ୍ରସାରିତ ମୁଷ୍ଟିକୁ ଜାନୁ ବା ଜଙ୍ଘ ଉପରେ ରଖି ସିଧା ହୋଇ ବସି ନାସାଗ୍ର ପ୍ରତି ଦୃଷ୍ଟି ପକାଇବାକୁ ବୁଝାଏ । —ହଠଯୋଗ ପ୍ରଦୀପ ] ୪ । ଷୋଡ଼ଶ ରତି ବନ୍ଧାନ୍ତର୍ଗତ ଚତୁର୍ଦ୍ଦଶ ବନ୍ଧ—4. A posture during coition. [ବି—ଏଥିରେ ପୁରୁଷ ନିଜର ଜଂଘ ଓ ବାହୁ ମଧ୍ୟରେ ସ୍ତ୍ରୀର ପଦଦ୍ୱୟକୁ ଧାରଣ କରି ସ୍ତ୍ରୀର ସ୍ତନ ଧାରଣ ପୂର୍ବକ ରମଣ କରେ । —ରତିମଞ୍ଜରୀ ]

ସିଂହାସନ ଚକ୍ର—ସଂ. ବି (ଜ୍ୟୋତିଷ)—ସପ୍ତବିଂଶତି ନକ୍ଷତ୍ରାଙ୍କିତ Simhāsana chakra ନରାକାର ଚକ୍ରତ୍ରୟ—(Astrology) Three figures of man in which the 27 asterisms are put, to calculate the future of a king ascending the throne. [ବି—ପ୍ରତ୍ୟେକ ଚକ୍ରରେ ୯ଟି ଲେଖାଏଁ ନକ୍ଷତ୍ର ଅବସ୍ଥାପିତ କରାଯାଏ । ଏହି ଚକ୍ରର ଗଣନା କ୍ରମେ ସିଂହାସନାରୂଢ଼ ରାଜାଙ୍କର ଶୁଭାଶୁଭ କଳ୍ପିତ ହୁଏ ।]

ସିଂହାସନ ଚ୍ୟୁତ—ସଂ. ବିଣ (୫ମୀ ତତ୍)—୧ । ରାଜା ସନରୁ ତାଡ଼ିତ—Simhāsana chyuta 1. Dethroned. ୨ । ରାଜ୍ୟ ଅଧିକାରରୁ ବଞ୍ଚିତ—2. Deprived of sovereignty. (ସିଂହାସନ ଭ୍ରଷ୍ଟ—ଅନ୍ୟରୂପ)

ସିଂହାସନାଧିରୂଢ଼—ସଂ. ବିଣ. ପୁଂ (୭ମୀ ତତ୍)—୧ । ସିଂହାସନରେ Simhāsanādhirūrdha ଉପବିଷ୍ଟ—1. Ascending or sitting on throne. ୨ । ରାଜ୍ୟାଧିକାରପ୍ରାପ୍ତ—2. Installed on the throne. ( ସିଂହାସନାରୂଢ଼—ଅନ୍ୟରୂପ ) [ସିଂହାସନାଧିରୂଢ଼ା, ସିଂହାରୂଢ଼ା—ସ୍ତ୍ରୀ]

ସିଂହାସନାରୋହଣ—ସଂ. ବି (୭ମୀ ତତ୍) ରାଜାସନରେ ବସିବା—Simhasanārohana Ascending the throne; installation on the throne.

ସିଂହାସ୍ୟ—ସଂ. ବି—୧ । (ସିଂହ + ଆସ୍ୟ = ମୁଖ; ୬ଷ୍ଠୀ ତତ୍)—ସିଂହର Simhāsya ମୁହଁ—1. Lion's face. ୨ । (ବହୁବ୍ରୀହି) ବାସକ (ଅମର); ବାସଙ୍ଗ ଗଛ—2. The Vasaca tree. ସଂ. ବିଣ. ପୁଂ (ବହୁବ୍ରୀହି; ସିଂହର ମୁଖ ପରି (ସିଂହାସ୍ୟା—ସ୍ତ୍ରୀ. ବିଣ) ମୁଖ ଯାହାର) ସିଂହ ପରି ଭୟଙ୍କରମୁଖଯୁକ୍ତ—Having the face as ferocious as that of a lion.

ସିଂହିକା—ସଂ. ବି ସ୍ତ୍ରୀ (ସିଂହୀ = ରାହୁର ମାତା + ସ୍ୱାର୍ଥେ କ + ଆ)—Simhikā ୧ । ଏହାଙ୍କ ନାମ ଦକ୍ଷପ୍ରଜାପତିଙ୍କ କନ୍ୟା; କାଶ୍ୟପପତ୍ନୀ; ରାହୁ ମାତା—1. Name of the mother of Rāhu. [ବି—ମହର୍ଷି କାଶ୍ୟପଙ୍କ ଔରସରେ ଏହାଙ୍କ ଗର୍ଭରୁ ଗ୍ରହଗଣ ଓ ରାହୁ ଜନ୍ମିଥିଲେ ।] ୨ । ସିଂହୀ—2. Lioness. ୩ । ରାମାୟଣବର୍ଣ୍ଣିତ ଜଣେ ରାକ୍ଷସୀ—3. Name of a demoness mentioned in the Rāmāyana. [ବି—ଏ ଲଙ୍କା ନିକଟସ୍ଥ ସାଗର ଗର୍ଭରେ ବାସ କରୁଥିଲା ଏବଂ ଆକାଶରେ ଚଳପ୍ରଚଳ ହେଉଥିବା ଜୀବ ଜନ୍ତୁଙ୍କ ଛାୟା ଜଳ ଉପରେ ପଡ଼ିଲେ ଏହି ରାକ୍ଷସୀ ମାୟା ବଳରେ ଉକ୍ତ ଜୀବ ଜନ୍ତୁଙ୍କୁ ଆକର୍ଷଣ କରି ଆଣି ଖାଉଥିଲା । ହନୁମାନ ସୀତାଙ୍କୁ ଠାବ କରିବାପାଇଁ ସାଗର ଉପରେ ଲଙ୍କାଭିମୁଖେ ଉଡ଼ି ଗଲାବେଳେ ତାହାଙ୍କର ଛାଇ ପାଣି ଉପରେ ପଡ଼ିବାରୁ ସିଂହିକା ହନୁମାନଙ୍କୁ ଆକର୍ଷଣ କରି ଗିଳିଦେଲା । କିନ୍ତୁ ହନୁମାନ ନିଜ ବିକ୍ରମରେ ରାକ୍ଷସୀର ପେଟ ଚିରି ବାହାରି ଆଇଲେ ଏବଂ ଫଳରେ ରାକ୍ଷସୀ ମରିଗଲା ।]

ସିଂହିକାସୁତ (ସୂନୁ)—ସଂ. ବି ( ୬ଷ୍ଠୀ ତତ୍ )—୧ । ରାହୁ—Simhikāsuta (sūnū) 1. The Ascending Node; the Dragon's Head. ୨ । ଯାଗରେ ଆବାହନ କରାଯିବା ବାସ୍ତୁ ପୁରୁଷ ( ବାସ୍ତୁ ଯାଗ ତତ୍ତ୍ୱ )—2. A being invoked during the consecration ceremony of a foundation.

ସିଂହିଠାଲି—ଦେ. ବି—ଶିଂଗି (ଦେଖ) Simhi ṭāli Simgi (See)

ସିଂହିରି—ପ୍ରାଦେ (ବାଲେଶ୍ୱରପାଠଣୀ) ବି—ଭାରର ବାଉଁଶନିର୍ମିତ ଶିକା—Simhiri The bamboo-made pan of a banghy.

ସିଂହୀ—ସଂ. ବି. ସ୍ତ୍ରୀ (ସିଂହ + ସ୍ତ୍ରୀ ଈ)—୧ । ମାଈ ସିଂହ; ସିଂହ ସ୍ତ୍ରୀ—Simhī Lioness. ୨ । ସିଂହିକା; ରାହୁ ମାତା—The mother of Rāhu. ୩ । ବାର୍ତ୍ତାକୀ; ବାଇଗଣ ( ଅମର )—3. Brinjal. ୪ । କଣ୍ଟକାରୀ ( ଅମର ) ଅଙ୍କ ରାନ୍ତି—4. Solanum Anthocarpum. ୫ । ବୃହତୀ; ବଡ଼ାଭେଜି ଲଟାବେଙ୍ଗକୋଳି (ବୃକ୍ଷ)—5. Solanum Indicum. ୬ । ବାସକ; ବାସଙ୍ଗ ଗଛ ( ମେଦିନୀ )—6. The Vasaka tree. ୭ । ମୁଦ୍ଗପର୍ଣ୍ଣୀ (ରାଜନିର୍ଘଣ୍ଟ )—7. A kind of wild creeper; Phaseolus Trilobus.

ସିଂହୀଲତା—ସଂ. ବି—ବୃହତୀ (ଭାବପ୍ରକାଶ); ଲଟାବେଙ୍ଗକୋଳି—S imhī latā Solanum Indicum.

ସିଂହୁଣୀ—ଦେ. ବି. ସ୍ତ୍ରୀ (ସଂ. ସିଂହୀ)—ମାଈ ସିଂହ—Simhuṇi सिंहिनी, सिंही सिंहनी Lioness.

ସିଁ—ଦେ. ଅ (ଧ୍ୱନ୍ୟର୍ଥକ)—ଅନୁନାସିକ ସେଁ ସେଁ ଶବ୍ଦ—Siṅ সুঁইসুই সোঁ Nasal hissing sound. (ସିଁଇଁ, ସିଁ, ସିଁ—ଅନ୍ୟରୂପ)

ସିଁଆଁ—ଦେ. ଅ (ଧ୍ୱନ୍ୟର୍ଥକ)—ସିଅଁ (ଦେଖ)
Siñāñ Siāñ. (See)

ସିଁଆଁ(ଏଁ)ଇବା—ଦେ. କ୍ରି—ସିଅଁଇବା (ଦେଖ)
Siñāñ(-ñ)ibā Siāñibā. (See)

ସିଁଆଁଣ(ଣା)—ଦେ. ବଣ—ସିଅଣ (ଦେଖ)
Siñāñṇa (ṇā) Siāṇa. (See)
[ ସିଁଅଁଣିଅ—ଅନ୍ୟରୂପ ]

ସିଁଆଁ ସେଁଇଁ—ଦେ. ବ—ସିଅଁ ସିଇଁ (ଦେଖ)
Siñāñ señiñ Siāñ'si-iñ. (See)

ସିଁଇଁବା—ଦେ. କ୍ରି—ସିଇବା (ଦେଖ)
Siñiñbā Si-ibā. (See)

ସିଁଉ(ଉଁ)ଣ୍ଟା—ଦେ. ବ (ସଂ. ସୀମନ୍ତ)—ସିଉଣ୍ଟା (ଦେଖ)
Siñu(uñ)ṭā Siuṇṭā. (See)
[ ସିଁଉନ୍ଟା—ଅନ୍ୟରୂପ ]

ସିଁଉଁତି(ଥି)—ଦେ. ବ (ସଂ. ସୀମନ୍ତ)—ସିଉଣ୍ଟି (ଦେଖ)
Siñuñti(thi) Siunti. (See)
[ ସିଉନ୍ତି(ନ୍ଥି)—ଅନ୍ୟରୂପ ]

ସିଁଉଁଟିଆ—ପ୍ରାଦେ (ସମ୍ବଲପୁର)—ସିଉଣ୍ଟିଆ (ଦେଖ)
Siñuñṭiā Siuntiā. (See)
[ ସିଉଣ୍ଟିଆ—ଅନ୍ୟରୂପ ]

ସିଁକେର୍—ପ୍ରାଦେ (ଲଡ଼ଥ) ବ—ସିଂଘାଣି—
Siñker The mucus of the nose.

ସିଁଗ(ଘ,ହ)ରା—ପ୍ରାଦେ (ସମ୍ବଲପୁର) ବ—ଶିଂଗ୍ରା (ଦେଖ)
Siñg(gh,h)-rā Śimg-rā. (See)

ସିଁଗ(ଗି)ଲ୍—ବୈଦେ. ବ ଓ ବଣ—ଶିଂଗଲ୍ (ଦେଖ)
Siñga(gi)l Śimgal. (See)

ସିଁଗା(ଘା)ଣି (ଇତ୍ୟାଦ)—ଦେ. ବ—ଶିଂଗାଣି ଇତ୍ୟାଦ (ଦେଖ)
Siñgā(ghā)ṇi (etc) Śimgāṇi etc. (See)

ସିଁଗା(ଘା)ଣିଆ—ଦେ. ବଣ. ପୁଂ—ଶିଂଗାଣିଅ (ଦେଖ)
Siñgā(ghā)ṇiā Śimgāṇiā. (See)
( ସିଁଗା[ଘା]ଣେଇ—ସ୍ତ୍ରୀ )

ସିଁଗା(ଘା)ପୁର—ଦେ. ବ—ସିଙ୍ଗାପୁର (ଦେଖ)
Siñgā(ghā)pura Siṅgāpura. (See)

ସିଁଗେ(ଘେ)ଈ (ଇତ୍ୟାଦ)—ଦେ. ବ—ଶିଂଗେଈ ଇତ୍ୟାଦ (ଦେଖ)
Siñge(ghe)ī (etc) Śimgeī etc. (See)

ସିଁଘ (ଇତ୍ୟାଦ)—ଗ୍ରା. ବ (ସଂ. ସିଂହ)—ସିଂହ ଇତ୍ୟାଦ (ଦେଖ)
Siñgha (etc) Simha etc. (See)

ସିଁଘଳ—ଗ୍ରା. ବ—ସିଂହଳ (ଦେଖ)
Siñghaḷa Simhaḷa. (See)

ସିଁଘଳୀ—ଗ୍ରା. ବ—ସିଂହଳୀ (ଦେଖ)
Siñghaḷī Simhaḷī. (See)

ସିଁଘାରିବା—ଦେ. କ୍ରି—ସିଂଘାରିବା (ଦେଖ)
Siñghāribā Simghāribā. (See)

ସିଁଘାରି ହେବା—ଦେ. କ୍ରି—ସିଂଘାରି ହେବା (ଦେଖ)
Siñghāri hebā Simghāri hebā. (See)

ସିଁଘାଲ—ପ୍ରାଦେ. (ଗଡ଼ଜାତ) ବ—ସିଂଘାଲ (ଦେଖ)
Siñghāla Simghāla. (See)

ସିଁଚ—ଦେ. ବ ଓ ବଣ (ସଂ. ସିଚ୍ ଧାତୁ)—ସିଞ୍ଚା (ଦେଖ)
Siñchā Siñchā. (See)

ସିଁଚ(ଚେ)ଇବା ଦେ. କ୍ରି—ସିଞ୍ଚାଇବା (ଦେଖ)
Siñchā(che)ibā Siñchāibā (See)

ସିଁଚିବା—ଦେ. କ୍ରି (ସଂ. ସିଚ୍ ଧାତୁ)—ସିଞ୍ଚିବା (ଦେଖ)
Siñchibā Siñchibā. (See)

ସିଁଡ଼ି(ଢ଼ି)—ଗ୍ରା. ବ (ସଂ. ଶ୍ରେଣୀ)—ସିଡ଼ି (ଦେଖ)
Siñrdi(rdhi) Sirdi. (See)

ସିଁତି(ଥି)—ଦେ. ବ (ସଂ. ସୀମନ୍ତ)—୧। ସୁନ୍ଥା; ସୀମନ୍ତ—1. Parting of the hair over the brow. ୨। ସୀମନ୍ତର ଅଳଙ୍କାରବିଶେଷ—2. An ornament for the hair of the forehead.
Siñti(thi)
सिंथी सिउथ
सिंथी मांगटीका

ସିଁଦି(ଧି) (ଇତ୍ୟାଦ)—ଦେ. ବ (ସଂ. ସନ୍ଧି)—ସିନ୍ଧି ଇତ୍ୟାଦ (ଦେଖ)
Siñdi(dhi) (etc) Sindi etc. (See)

ସିଁଦି(ଧି)ଆ—ଦେ. ବ—ସିନ୍ଦି(ନ୍ଧି)ଆ (ଦେଖ)
Siñdi(dhi)ā Sindi(ndhi)ā. (See)

ସିଁଦି(ଧି)ଆର(ଳ)—ଦେ. ବ—ସିନ୍ଧିଆର (ଦେଖ)
Siñdi(dhi)ārā(la) Sindiārā. (See)

ସିଁଦୁ(ଧୁ)—ଗ୍ରା. ବ [ଜାମ] [ସଂ. ସିନ୍ଧୁ]—ସିନ୍ଧୁ (ଦେଖ)
Siñdu(dhu) Sindu. (See)

ସିଁଦୁ(ଧୁ)କ—ଗ୍ରା. ବ—ସିନ୍ଦୁକ (ଦେଖ)
Siñdu(dhu)ka Sinduka. (See)

ସିଁଦୂର—ଗ୍ରା. ବ—ସିନ୍ଦୂର (ଦେଖ)
Siñdūra Sindūra. (See)

ସିଁଦୂରି—ଗ୍ରା ବ ଓ ବଣ—ସିନ୍ଦୂରି (ଦେଖ)
Siñdūri Sindūri. (See)

ସିଁଦୁରିଆ—ଗ୍ରା. ବଣ—ସିନ୍ଦୂରିଆ (ଦେଖ)
Siñdūriā Sindūriā. (See)

ସିଁସା—ଦେ. ବ—(ସଂ. ସୀସକ)—ସିଂସା (ଦେଖ)
Siñsā Simsā. (See)

ସିଁହ (ଇତ୍ୟାଦ)—ଗ୍ରା. ବ (ସଂ. ସିଂହ)—ସିଂହ ଇତ୍ୟାଦ [ଦେଖ]
Siñha (etc) Simha etc. [See]

ସିକ୍ (ଧାତୁ)—ସଂ.—ଗମନ କରିବା; ଗତି କରିବା—
Sik (root) To go; to move.

ସିକ୍—ସଂ. ବଣ [ସିଚ୍ ଧାତୁ=ଛିଞ୍ଚିବା+କର୍ତ୍ତି. କ୍ୱିପ୍]—ସେଚନକାରୀ—Sprinkling ବୈଦେ. ବ ଫା. ସୀଖ୍]—[ସିକ୍‌ବ—ଅନ୍ୟରୂପ] ୧। ଲୁହାର ଛଡ଼—1. Iron rod. ୨। ପୁରୁଣାକାଳିଆ ସରୁ ନଳିଆ ବନ୍ଧୁକ—2. An old-fashioned narrow-barelled gun.
Sik

**ସିକ୍ମୀ**—ବୈଦେ. ବି [ ଫା ]—ଅଧୀନ ପ୍ରକାର ଅଧିକାର—
Sik-mī Subordinate interest; an under
सीकीमी **সিকমী** tenure. ବୈଦେ.
ବିଣ—ଜମିଦାର ବା ସ୍ୱତ୍ୱାଧିକାରୀର ଅଧୀନ—
Subordinate; sub ( tenant ); holding a subordinate tenure. [ଯଥା—ସିକ୍ମୀ ଜମିଦାରୀ; ସିକ୍ମୀ ରଇଅତ । ]

**ସିକ୍ମୀ ଗଉନ୍ତିଆ**—ପ୍ରାଦେ [ସମ୍ବଲପୁର] ବି—ଗଉନ୍ତିଆ ଥିବା ଗ୍ରାମର
Sik-mi gauntiā ଜମିର ସ୍ୱତ୍ୱାଧିକାରୀ ବ୍ୟକ୍ତି (ସମ୍ବଲପୁର ମାନୁଆଲ—୧୯୨୮)—Sub proprietor of lands in a gaontiali village.

**ସିକ୍ମୀ ଜମିଦାରୀ**—ଦେ. ବି—ଜମିଦାରର ଅଧୀନ ଜମିଦାରୀ—
Sik-mī jamidārī A Sikmi Zamidndari.
(ସିକ୍ମୀ ମାହାଲ—ଅନ୍ୟରୂପ)
सीकमी जमीदारी **সিকমী জমিদারী**

**ସିକ୍ମୀ ପଟା(ଟ୍ଟା)**—ଦେ. ବି—ସବ୍‌କମ୍ ରଇତକୁ ଦିଆଯିବା ପଟ୍ଟା—
Sik-mī paṭā(ṭṭā) A sub lease.
सीकमी पाटा **সকমী পাটা**

**ସିକ୍ମୀ ପ୍ରଜା**—ଦେ. ବି—ରଇତର ଅଧୀନ ରଇତ—A sub-lesee;
Sik-mi prajā a sub-tenant; an under-tenant.
[ସିକ୍ମୀ ରଇ(ଏ,ୟ)ତ—ଅନ୍ୟରୂପ]
सीकमी रायत **সিকমী প্রজা**

**ସିକ୍ମୀଦାର**—ବୈଦେ. ବି—ସ୍ୱତ୍ୱାଧିକାରୀର ବା ରଇତର ଅଧୀନ
Sik-mīdār ସ୍ୱତ୍ୱାଧିକାରୀ—Holder of a subordinate interest, a sub-lessee.
सीकमीदार **সিকমীদার**

**ସିକ୍ଲା(ଲି)**—ପ୍ରାଦେ (ଗଡ଼ଜାତ) ବି—ଶିକୁଳି—
Sik-lā(li) [ସିକୁଲି—ଅନ୍ୟରୂପ] Chain.

**ସିକ**—ଦେ. ବି [କଣିଆ ଶବ୍ଦ]—ତାରକସୀ କାମର ଅଳଙ୍କାରପ୍ରସ୍ତୁତିରେ
Sika ଯେଉଁ ତାରକୁ ପ୍ରଧାନ କରି ତାହାର ବଳରେ ଅନ୍ୟାନ୍ୟ ଅଂଶ ଗଢ଼ା ହୁଏ—The main wire from which other finer wires radiate in a filigree work. ବୈଦେ. ବି ( ଫା ସୀକ୍ )
সিক্ **पतलालोहेकाछड़** ଲୁହାର ସରୁ ଛଡ଼—Iron rod.

**ସିକଞ୍ଜା**—ବୈଦେ. ବି (ଫା)—ବନ୍ଧା ବହି ଉପରେ ଚାପ ଦେବାର
Sikanjā ଯନ୍ତ୍ର ବିଶେଷ—An instrument used to
সিকংজা **सिकंजा** press bound books. [ଦ୍ର—ଏହା ସାହାଯ୍ୟରେ ବହିର ଧାଡ଼ି ମଧ୍ୟ କଟା ହୁଏ । ଅଗେ ଓଡ଼ିଶାରେ ବହି କାଟିବା କାର୍ଯ୍ୟ ଏହାର ଦ୍ୱାରା ସବୁ ପ୍ରେସରେ ହେଉଥିଲା । ମାତ୍ର ଏବେ କଟା କଳ(Cutting machine) ର ସୃଷ୍ଟି, କଟାକାର୍ଯ୍ୟ ସିକଞ୍ଜାର ବ୍ୟବହାରକୁ ପ୍ରାୟଶଃ ଉଠାଇ ଦେଲାଣି ।]

**ସିକତା**—ସଂ. ବି (ସିଚ୍ ଧାତୁ=ଛିଞ୍ଚିବା+କର୍ମ ଅତ+ଆ)—୧ ।
Sikatā ବାଲୁକା; ବାଲି (ଜୁଳକାବର୍ଣ୍ଣ)—1. Sand.
[ଦ୍ର—ଏ ଅର୍ଥରେ ସିକତା ଶବ୍ଦ ସଂସ୍କୃତରେ କେବଳ ବହୁ ବଚନାନ୍ତ] ୨ । ବାଲିଆ ଭୂଇଁ; ବାଲୁକାମୟ ଭୂମି (ମେଦିନୀ)—2. Sandy soil. ୩ । ଶର୍କରା; ଚିନି—3. Sugar.

**ସିକତାବାନ**—ସଂ. ବିଣ (ସିକତା+ଅସ୍ତି ଅର୍ଥରେ ବତ୍; ସିକତା
Sikatābān ବତ୍ ଶବ୍ଦର ୧ମା. ୧ବ)—ସିକତିଳ; ବାଲୁକା-
(ସିକତାବତୀ—ସ୍ତ୍ରୀ) ମୟ—Sandy; full of sand.

**ସିକତାମୟ**—ସଂ. ବିଣ—ବାଲୁକାମୟ—Sandy. ସଂ. ବି—
Sikatāmaya ୧ । ବାଲୁକାମୟ ତଟ—1. Sandy
[ସିକତାମୟୀ—ସ୍ତ୍ରୀ] bank ୨ । ଯେଉଁ ଦ୍ୱୀପର ଉପକୂଳ କେବଳ ବାଲୁକାପୂର୍ଣ୍ଣ—2. An island with sandy shore.

**ସିକତିଳ**—ସଂ. ବି (ସିକତା+ଯୁକ୍ତାର୍ଥେ ଇଳ)— ସିକତାମୟ; ବାଲୁକା-
Sikatila ମୟ—Sandy.

**ସିକନ୍ଦର**—ଦେ. ବି (ନାମ)—ସେକନ୍ଦର (ଦେଖ)—
Sikandar Sekandar (See)
[ସିକନ୍ଦର ବଦଶା(ବାଦସାହା)—ଅନ୍ୟରୂପ]

**ସିକଲ୍**—ବୈଦେ. ବି (ଫା; ଶକଲ୍; ତୁଳନା ସଂ. ଶିଖା)—ମୁହଁର
Sikal ଚେହେରା—Facile expression; mien;
চেহেবা **शकल** bearing.

**ସିକଲ୍ ଖସି ପଡ଼ିବା**—ଦେ. ବି—ମୁହଁର ଚେହେରା ବଦଳି ହେବା;
Sikal khasi pardibā ମୁହଁ ଶୁଖିଯିବା—State of be-
মুখফ্যাকাসে হওয়া **शकलनीचाहोना** ing browbeaten.
[ସିକଲ୍ ଖସିଯିବା—ଅନ୍ୟରୂପ]

**ସିକ(କା, ଖା)ସ୍ତ**—ବୈଦେ. ବି (ଫା. ସିକସ୍ତ=ଦୁର୍ଦ୍ଦଶାଗ୍ରସ୍ତ )—
Sika(kā,kha)sta ତୁଳ ସଂ. ଶୁଷ୍କ) ୧ । କ୍ଷତି—1.Damage
ক্ষতি **सिकस्त** ୨ । ବିନାଶ—2. Destruction. ୩ । ଭଙ୍ଗ—3. Breaking. ୪ । କ୍ଳାନ୍ତି—4. Weariness. ବୈଦେ. ବିଣ—୧ । କ୍ଷତିଗ୍ରସ୍ତ—1.Damag-
ক্ষতিগ্রস্ত **सिकस्त** ed. ୨ । ଭଗ୍ନ—2. Broken. ୩ । ବିନଷ୍ଟ—3. Destroyed. ୪ । ଶୁଷ୍କ—4. Dried up; withered. ୫ । ଦୁରବସ୍ଥାପ୍ରାପ୍ତ—5. Reduced to bad or wretched condition. ୬ । କ୍ଳାନ୍ତ; ଶ୍ରାନ୍ତ—6. Pulled down; fatigued. ୭ । ବିମର୍ଷ—7. Sorrowfult. ୮ । ଜୀର୍ଣ୍ଣଶୀର୍ଣ୍ଣ—8. Emaciated; lean.

**ସିକ(କା)ସ୍ତ,ପ(ପା)ଇଉଅ(ଆ)ସ୍ତ**—ବୈଦେ.ବିଣ (କଚଇଆ) (ଫା)—
Sika(kā)stpa(pā)iua(ā)st ଯେଉଁ ଭୂମି ନଦୀ
সিকস্তপাইবস্ত্ **सिकस्तपैबस्त** ବଢ଼ିରେ ଧୋଇ ହୋଇଯାଏ
[ସିକ(କ)ସ୍ତ ପ(ପା)ଇସ୍ତ—ଅନ୍ୟରୂପ] କିମ୍ବା ଯେଉଁ ଜମି ନଦୀ ଖାଇଯାଇ ଥିବାରୁ ନଷ୍ଟ ହୋଇଥାଏ—(Land)

Damaged by erosion by the flood of a river; diluvian. [ଦ୍ର—ନଦୀର ଭଙ୍ଗୁ କୂଳରେ ଥିବା ଜମିର ଜମିଦାରମାନଙ୍କ ମଧ୍ୟରେ ଏକ ଅଞ୍ଚଳର ଜମିକୁ ନଦୀଗର୍ଭ ଖାଇଯିବା ଓ ଅନ୍ୟ କୂଳରେ ଚଢ଼ା ପଡ଼ିବା ଯୋଗୁ ଯେଉଁ ବିବାଦ ଘଟେ ତାହାର ମୀମାଂସା କରିବାକୁ ଗଭର୍ଣ୍ଣମେଣ୍ଟ କେତେଗୁଡ଼ିଏ ଆଇନ୍ କରିଅଛନ୍ତି ।]

ସିକ(କା)ସ୍ତି—ବୈଦେ· ବି (ଫା)—୧ । କ୍ଷତିଗ୍ରସ୍ତ ଅବସ୍ଥା—1. Sika(kā)sti Damaged condition. ୨ । ଦୁର୍ଦ୍ଦଶା· ক্ষতি सकस्ती ଗ୍ରସ୍ତ ଅବସ୍ଥା—2. Wretched state. [ସିକ(କା)ସ୍ତିଆ—ଅନ୍ୟରୂପ] ବୈଦେ· ବିଣ ୧ । କ୍ଷତିଗ୍ରସ୍ତ; ক্ষতিগ্রস্ত सिकस्त ଭଗ୍ନ—1. Damaged; ruined. ୨ । କ୍ଳାନ୍ତ—2. Pulled down; fatigued; wearied. ୩ । ବିମର୍ଷ—3· Sorrowful. ୪ । ଦୁରବସ୍ଥା ପ୍ରାପ୍ତ—4. Reduced to wretched condition.

ସିକସ୍ତି ଜମି—ବୈଦେ. ବି—ନଦୀବନ୍ୟା ଦ୍ୱାରା ଖାଇଯାଇଥିବା ବା ବାଲି Sikasti jami ମାଡ଼ିଯାଇ ନଷ୍ଟ ହୋଇ ଯାଇଥିବା ଜମି— সিকস্তিজমি सिकस्तीजमीन Land damaged by alluvion and diluvion.

ସିକା—ବୈଦେ. ବି—ସିକ୍କା (ଦେଖ)— Sikā (ସିକାଟଙ୍କା—ଅନ୍ୟରୂପ) Sikkā (See)

ସିକା(ଇତ୍ୟାଦି)—ଦେ· ବି—(ସଂ. ଶିକ୍ୟ ବା ଶିକ୍ୟ) —ଶିକା ଇତ୍ୟାଦି Sikā (etc) ଦେଖ)—Sikā etc (See)

ସିକାଏ(ୟ,ୟେ)ତ—ବୈଦେ. ବି (ଅ. ସିକାୟତ୍)—ଅଭିଯୋଗ— Sikāe(ya,ye)t 1. Complaint. ୨ । ଦୋଷାରୋପ— শিকায়ত্ शिकायत 2. Laying of a charge against a person. ୩ । ନିନ୍ଦା—3. Blame. ୪ । ଚୁଗୁଲି— 4. Backbiting.

ସିକାଏ(ୟ,ୟେ)ତି—ଦେ. ବିଣ—ସିକାଏତ୍ ସମ୍ବନ୍ଧୀୟ— Sikā(ya, ye)ti Relating to complaint. শিকাযতী शिकायती

ସିକାୟା—ଦେ· ବି (ସଂ. ଅରିଷ୍ଟକ)—ବଦୁଲ ଜାତୀୟ ଏକ ଜଙ୍ଗଲୀ Sikāyā ଗଛ—Sapindus Mukorissi. [ଦ୍ର— ছোটরিঠা कोची, सीकाकाइ, बनरिठा ଏହା ପୂର୍ବ ଓ ଦକ୍ଷିଣ ଭାରତରେ ବଣରେ ଜନ୍ମେ । ଏଥିର ତେଲ ଓ ଫଳ ଔଷଧରେ ଲାଗେ; ଚୂର୍ଣ୍ଣ ଚେପଟା ଓ ଉଜ୍ଜ୍ୱଳ ଘନ ଫୁଟ-ବାଲ୍; ତହିଁ ମଧ୍ୟରେ ଚେପଟା ମଞ୍ଜି ଥାଏ । ଏହି ଚୂର୍ଣ୍ଣକୁ ବାଟି ମାଇପେ ମୁଣ୍ଡରେ ଲଗାଇ ବାଳ ଧୋଇ ବାଳରୁ ମଳ ସଫା କରନ୍ତି । ଏହାକୁ ଗଞ୍ଜାମରେ 'ବଢ଼ଫଳ' କହନ୍ତି ।]

ସିକି—ଦେ· ଅ ( ନିଶ୍ଚୟାର୍ଥକ )—ସିନା; ନିଶ୍ଚେ; ହିଁ; ହଁ— Siki Certainly. [ଭି—ପାରନ୍ତୁ ପାର ସିକି ରକ୍ଷା କର ଇ ପାରେ, ପ୍ରାକୃତ ଲୋକଠାରେ ସମ୍ଭବ ନ ପାରେ । କୃଷ୍ଣସିଂହ. ହୀ ମହାଭାରତ. ଦ୍ରୋଣ ।]

ସିକ(କ୍କି)ମ୍—ଦେ. ବି(ନାମ)—ନେପାଳ ଓ ଭୁଟାନର ମଧ୍ୟବର୍ତ୍ତୀ ସ୍ୱାଧୀନ Sik(kki)im ରାଜ୍ୟ ବିଶେଷ—Name of a feudatory সিকিম্ State between Nepal and Bhutan. सिक्किम

ସିକମ(ମି) (ଇତ୍ୟାଦି)—ବୈଦେ. ବି ଓ ବିଣ—ସିକ୍‌ମୀ ଇତ୍ୟାଦି Sikim(mi) (etc) (ଦେଖ)—Sik-mi etc. (See)

ସିକୁନ୍—ପ୍ରାଦେ. (ଖଡ଼ଅଳ) ବି—ବାଉଁଶ ଖଡ଼ିକା; ବାଉଁଶ ଚିରି Sikun ହୋଇ ତିଆରି ହେବା ସରୁ କାଠି—Long narrow sticks made out of bamboo lathis.

ସିକେ(ଖେ)ନ—ପ୍ରାଦେ· (ଖଡ଼ିଅଳ) ବିଣ—୧। ମଣ ହେଉଥିବା(ପଶୁ) Sike(khe)n 1. Under training. —୨। ଅନ୍ୟଠାରୁ ଶିକ୍ଷା ଦ୍ୱାରା ପ୍ରାପ୍ତ(ବୁଦ୍ଧି)—2. Got from the teaching of another.

ସିକେ(ଖେ)ନ୍ ବଛା—ପ୍ରାଦେ. ( ଖଡ଼ଅଳ ) ବି—ମଣ ହେଉଥିବା Sike(khe)n bachhā ଦାମୁଡ଼ି—A young ox which is being trained to draw plough or cart. [ଦ୍ର—ଜନ୍ମଠାରୁ ୩।୪ ମାସ ଯାଏ ବାଛୁରିକୁ ଲଇ ବଛ, ଦୁଧ ପିଉଥିବା ଯାଏ—ପିଅବଛା, ଦୁଧ ଛାଡ଼ିବା ପରେ—ଛଡ଼ା ବଛା; ମଣ ହେଉଥିବା ସମୟରେ ସିକେନ୍ ବଛା, ମଣ ହେବାର ଏକ ବର୍ଷ ପରେ ବାହିବଛା, ତତ୍ପରେ ବଳଦ କହନ୍ତି ।]

ସିକେନ୍ ବୁଇଦ୍(ବୁଧି)—ପ୍ରାଦେ. (ଖଡ଼ଅଳ) ବି—ଅନ୍ୟଠାରୁ ଶିକ୍ଷା Siken buid(budhi) ପାଇଥିବା ବୁଦ୍ଧି; ସିଖେଇ ଦେଲା ବୁଦ୍ଧି —Intelligence due to the tutoring of another person.

ସିକେନ୍ ବୁଧିଆ—ପ୍ରାଦେ· (ଖଡ଼ଅଳ) ବିଣ—ଯେଉଁ ବ୍ୟକ୍ତି ଅନ୍ୟର Siken budhiā କଥାରେ ଚାଲେ—A person who acts according to the tutoring of another.

ସିକ୍କ—ବୈଦେ· ବି—ସିକ୍ ( ଦେଖ ) Sikka Sik ( See)

ସିକ୍କା—ବୈଦେ ବି ( ଅ. ସିକ୍କା=ମୁଦ୍ରା; ମୋହର; ଛାପ )— Sikkā ମୋଗଲ ବାଦସାହାଙ୍କ ଅମଳରେ ଭାରତରେ ଚଳୁଥିବା (ସିକ୍କା ଟଙ୍କା—ଅନ୍ୟରୂପ) ରୌପ୍ୟ ମୁଦ୍ରା; ଗୋଟି ଟଙ୍କା (ଏହା সিক্কা, সিকা টাকা ଆକାରରେ ଅଧୁନିକ ଟଙ୍କାଠାରୁ ଛୋଟ, କିନ୍ତୁ सिक्का ଓଜନରେ ବେଶୀ ଏବଂ ଏଥିରେ ଅଧୁନିକ ଟଙ୍କା ଅପେକ୍ଷା ଖାଦ କମ ଥିଲା)—Silver coin current in India during the Moghul reign. [ଦ୍ର—୧୮୦୩ ମସିହାରେ ବ୍ରିଟିଶ୍ ରାଜତ୍ୱ ଆରମ୍ଭ ହେବାରୁ ସିକ୍କା ଏକ ଟଙ୍କାର ମୂଲ୍ୟ ୪ କାହାଣ କଉଡ଼ି ସ୍ଥିର ହେଲା । ରାଧାନାଥ. ପ୍ରାଚୀନ. ଉତ୍କଳ—୧୦୦ ସିକ୍କା ଟଙ୍କା=ଅଧୁନିକ ଟ ୧୦୬।୯୫ ପାଇ ।]

ସିକ୍ତ—ସଂ. ବଣ (ସିଚ୍ ଧାତୁ=ଛିଞ୍ଚା+କର୍ମି. ତ)—୧ । ପାଣି ଛିଞ୍ଚା
Sikta　ଯାଇଥିବା—1. Sprinkled with water.
୨ । ଅର୍ଦ୍ରୀଭୂତ—2. Moistened.

ସିକ୍ଥ—ସଂ. ବ (ସିଚ୍ ଧାତୁ+କର୍ତ୍ତ୍ରି. ଥ)—୧ । ମହୁଚିଞ୍ଚି; ମହଣ
Siktha (ମେଦିନୀ)—1. Bees wax. ୨। ନୀଳୀ (ହେମଚନ୍ଦ୍ର)-
2. The Indigo plant. ୩ । ଭକ୍ତପୁଲାକ; ଗ୍ରାସ;
ଅନ୍ନର ଏକ ଗ୍ରାସ (ମେଦିନୀ)—3. One mouthful of food.

ସିକ୍ଥକ—ସଂ. ବ (ସିକ୍ଥ+ସ୍ୱାର୍ଥେ. କ)—ମହୁଚିଞ୍ଚି; ମହଣ—
Sikthaka　Bees wax.

ସିକ୍ମୀ (ଇତ୍ୟାଦ)—ଦେ. ବ ଓ ବଣ—ସିକ୍‌ମୀ ଇତ୍ୟାଦ (ଦେଖ)
Sikmi (etc)　Sik-mi etc. ( See )

ସିକ୍ୟ(କ୍ୟା)—ସଂ. ବ (ସିକ୍ ଧାତୁ=ଗମନ କରିବା+କର୍ତ୍ତ୍ରି. ଯ;
Sikya(kya)　+ଅ)—ଶିକା ( ଦେଖ )—Sika ( See )

ସିକ୍ୟିତ—ସଂ. ବଣ (ସିକ୍ୟ+ଇତ)—ଶିକାରେ ରଖା ଯାଇଥିବା (ବସ୍ତୁ)
Sikyita　—(anything) Kept in a 'Sika.'

ସିକ୍ଷ୍ୟ—ସଂ. ବ—ସ୍ଫଟିକ (ଶବ୍ଦ କଳ୍ପଦ୍ରୁମ)—
Sikshya　Quartz.

ସିଖ୍ (ଇତ୍ୟାଦ)—ଦେ. ବ—ଶିଖ୍ ଇତ୍ୟାଦ ( ଦେଖ )—
Sikh (etc)　Sikh etc. ( See )

ସିଖର(ରି)ଣୀ—ଦେ. ବ (ସଂ. ଶିଖରିଣୀ)—ଶିଖରିଣୀ ୩ (ଦେଖ)—
Sikhara(i)ni　Sikharini ( See )

ସିଖା—ଦେ. ବ ( ସଂ. ଶିକ୍ଷା; ପ୍ରା. ସିକ୍‌ଖା )—୧ । ଶିକ୍ଷା—
Sikha　1. Learning.　୨ । ଶିଅ(ଖା)ଇବା; ଉତ୍ତେଜିତ
শেখা सिखा　କରିବା—2. Instigating. ୩ । ଅଧ୍ୟାପନା—
3. Teaching; tutoring. ଦେ. ବଣ—୧। ଶିକ୍ଷା
উত্তেজিত　ପ୍ରାପ୍ତ—1. Taught; tutored. ୨ । ଉତ୍ତେଜିତ—
सिखित　2. Instigated. ୩ । ଯେ ଅନ୍ୟଠାରୁ ଶିକ୍ଷା କରେ
—3. Learning from another. [ଦ୍ର—ଦେଖା
ସିଖା ଓଡ଼ିଶା—ଭଗ ।]

ସିଖ୍ରି—ପ୍ରାଦେ. (ଲଉଅ) ବ ଓ ବଣ—ଅଇଁଠା—
Sikhri　Leaving of another's food.

ସିଗ୍—ପ୍ରାଦେ. (ଲଉଅ) ବ—କୌଣସି ପଦାର୍ଥର ଅଗ୍ରଭାଗ—
Sig　The top part of anything.

ସିଗ(ଗା)ରେଟ୍—ବୈଦେ. ବ ( ଇଂ. ସିଗାରେଟ୍ )—ଏକ ଜାତୀୟ
Sig-(ga)ret　ଛୋଟ ପିକା—Cigarette.
(ସିଗ୍ରେଟ୍—ଅନ୍ୟରୂପ)　সিগারেট্　सिगरेट

ସିଗଲ୍—ବୈଦେ. ବ (ଇଂ. ସିଗଲ୍)—ସମୁଦ୍ର ଉପରେ ଭାସିବା ଓ
Sigal　ଉଡ଼ିବା ଏକ ପ୍ରକାର ଛୋଟ ଚଢ଼େଇ—Sea-gull.
সিগল্　सिगल

ସିଗା—ପ୍ରାଦେ. (ବଲାଙ୍ଗିର ପାଟଣା) ବଣ—ବଡ଼—
Siga　Large.

ସିଗାର୍—ବୈଦେ, ବଣ (ଇଂ. ସିଗାର୍)—ପିକା—
Sigar　সিগার　सिगार　Cigar.

ସିଗାର୍ ଟ୍ରେ—ବୈଦେ. ବ (ଇଂ)—ପିକା ରଖିବା ଥାଳିଆ—
Sigar tre　Cigar-tray.
সিগারট্রে　सिगार ट्रे

ସିଗିର୍ ବିଗିର୍—ପ୍ରାଦେ (ସମ୍ବଲପୁର) ବଣ—ସାଲୁ ସାଲୁ (ଦେଖ)
Sigir bigir　Salu salu. (See)

ସିଗ୍ନାଲ୍—ବୈଦେ. ବ ( ଇଂ. ସିଗ୍‌ନାଲ୍ )—ଷ୍ଟେସନକୁ ରେଲଗାଡ଼
Signal　ଅସିବା ଦୂରରୁ ତାକୁ ଗାଡ଼ର ଅଗମନସୂଚକ ପୂର୍ବ-
সিগনাল্　सिगनल　ସଙ୍କେତ—Signal given of an incoming train.

ସିଗ୍ନାଲର୍—ବୈଦେ. ବ (ଇଂ. ସିଗ୍‌ନାଲର୍ )—୧ । ସଙ୍କେତଦାତା;
Signalar　ଯେ ସଙ୍କେତ ଦିଏ—1. Signaller. ୨ । ରେଲ
সিগ্নালর　ଗାଡ଼ିର ସିଗନାଲ୍ ଦେଖାଇବା ଭାର ଯେଉଁ କର୍ମଚାରୀ
सिगनलर　ବା ଭୃତ୍ୟ ଉପରେ ଥାଏ—2. Signal man.
(ସିଗ୍ନଲ୍ ମାନ୍—ଅନ୍ୟରୂପ)　୩ । ଟେଲିଗ୍ରାଫ କଳ ଚଳାଇବା
କର୍ମଚାରୀ—3. The operator of a Telegraph Office.

ସିଗ୍ରି—ପ୍ରାଦେ (ଲଉଅ) ବ—ପିଠା ବିଶେଷ—
Sigri　A kind of cake.

ସିଙ୍କ୍ରା—ପ୍ରାଦେ (ବସ୍ତର) ବ—ଶିକୁଳି—
Sink-ra　A chain.

ସିଙ୍କୋନା—ବୈଦେ. ବ ( ଇଂ. ସିନ୍‌କୋନା )—ଅଙ୍କକାଦ ବର୍ଗର
Sinkona　ଅମେରିକାଦେଶୀୟ ଗଛ—Cinchona. [ ଦ୍ର—
সিঙ্কোনা　ବର୍ତ୍ତମାନ ବଙ୍ଗର ଦାର୍ଜିଲିଙ୍ଗ୍ ଓ ମାନ୍ଦ୍ରାଜର ନୀଲଗିରି
सिनकोना　ପାହାଡ଼ରେ ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ଏହାର ଚାଷ
ହେଉଅଛି । ଏହି ଗଛର ଛେଲି ପାଣିରେ ଚକଟିଲେ
ସେଥିରୁ ଏକପ୍ରକାର ମଣ୍ଡ ବାହାରେ । ସେ ମଣ୍ଡକୁ
ଶୁଖାଇଲେ ତାହା ଅଫାଣ୍ଡୁର ଚୂର୍ଣ୍ଣରେ ପରିଣତ ହୁଏ ।
ତାହାକୁ 'ସିଙ୍କୋନା' ବା କୁଇନାଇନ୍ ବୋଲିଯାଏ ।
ଏହା ଜ୍ୱରଘ୍ନ ଔଷଧ; କିନ୍ତୁ ଏହା ଖାଇଲେ ବାନ୍ତି
ଦେଖାଏ; ବେଶୀ ମାତ୍ରାରେ ଏହା ସେବନ ଚଲେ
ଦୁର୍ବଳତା ବଢ଼େ ଓ କାନରେ ଝାଇଁ ଝାଇଁ ଶବ୍ଦ ଓ
(ସିନ୍‌କୋନା—ଅନ୍ୟରୂପ)　ମୁଣ୍ଡବୁଲା ଅନୁଭୂତ ହୁଏ । ]

ସିଙ୍କୋଲା—ପ୍ରାଦେ (ଗଡ଼ଜାତ) ବ—ଶିକୁଳା ଘାସ (ଦେଖ)
Sinkola　Sikula ghasa. (See)

ସିଙ୍ଗ(ଘ,ହ)ରା—ପ୍ରାଦେ (ସମ୍ବଲପୁର) ବ—ଶିଂଗ୍ରା (ଦେଖ)
Sing(ngh,h)-ra　Simg-ra. (See)

ସିଙ୍ଗସିଙ୍ଗିଆ—ପ୍ରାଦେ (ପାଳପୁର) ବ—ଚିଡ଼ିଚିଡ଼ା; ଉମତମ—
Sing-singia　Surly; peevish.
(ଦ୍ର—ସେ ଜଣେ ଭାରି ସିଙ୍ଗସିଙ୍ଗିଆ ଲୋକ ।)

ସିଙ୍ଗ(ଘ) (ଇତ୍ୟାଦ)—ପ୍ରା.ବ (ସଂ.ସିଂହ)—ସିଂଗ (ଘ)ଇତ୍ୟାଦ(ଦେଖ)
Singa (ngha) (etc)　Simga(gha) etc. (See)

ସିଙ୍ଗ(ଙ୍ଗି,ଙ୍ଗେ,ଙ୍ଘ,ଙ୍ଘି,ଙ୍ଘେ)ଡ଼ା (ଇତ୍ୟାଦି)—ଦେ. ବି—୧ । ଶିଂଗଡ଼ା
Singa(ṅgi,ṅge,ṅgha,ṅghi,ṅghe)rḍā (etc) ଇତ୍ୟାଦି (ଦେଖ)—1. Siṁgarḍā etc. ( See ). ୨ । ତାଳଚେରର ନଦୀ ବିଶେଷ—2 Name of a river in the Talcher State of Orissa. ( ଉ—ସିଙ୍ଗଡ଼ା ଛଟିଣ ଯୌତ ଅଙ୍ଗାର ପ୍ରାନ୍ତରେ । ରାଧାନାଥ, ମହାଯାତ୍ରା ।)

ସିଙ୍ଗ(ଙ୍ଗି)ଲ୍—ବୈଦେ. ବି ଓ ବିଣ—ଶିଂଗଲ୍ (ଦେଖ)
Singa(ṅgi)l Siṁgal. (See)

ସିଙ୍ଗା(ଙ୍ଘା)ଣି (ଇତ୍ୟାଦି)—ଦେ. ବି—ଶିଂଗାଣି ଇତ୍ୟାଦି (ଦେଖ)
Singā(ṅghā)ṇi (etc) Siṁgāṇi etc. (See)

ସିଙ୍ଗା(ଙ୍ଘା)ଣିଆ—ଦେ. ବିଣ, ପୁଂ—ଶିଂଗାଣିଆ (ଦେଖ)
Singā(ṅghā)ṇiā Siṁgāṇiā. (See)
(ସିଙ୍ଗା[ଙ୍ଘା]ଣେଇ —ସ୍ତ୍ରୀ)

ସିଙ୍ଗା(ଙ୍ଘା)ପୁର—ଦେ. ବି (ନାମ)—୧ । ମାଳୟ ଉପଦ୍ୱୀପର ଦକ୍ଷିଣ ପ୍ରାନ୍ତରେ ଥିବା ବନ୍ଦର—1. Singapore.
Singā(ṅghā)pura
ସିଂଙ୍ଗାପୁର
सिंगापुर
[ ଦ୍ର—ଏହା ମାଳୟ ଉପଦ୍ୱୀପର ଦକ୍ଷିଣରେ ଅବସ୍ଥିତ ଗୋଟିଏ ଦ୍ୱୀପ । ୧୮୧୯ ସାଲରେ ସର୍ ଷ୍ଟାମ୍ଫୋର୍ଡ ରାଫ୍‌ଲ୍‌ସ ଏହାକୁ ବ୍ରିଟିଶ୍‌ସାମ୍ରାଜ୍ୟଭୁକ୍ତ କରିଥିଲେ । ୧୯୨୧ ସାଲରେ ଏଠାରେ ଦୁର୍ଗ ନିର୍ମାଣ କରିବାର ସ୍ଥିର ହେଲା । ସେତେବେଳେ ଏହା ଗୋଟିଏ ଜଙ୍ଗଲମୟ ସନ୍ତସନ୍ତିଆ ସ୍ଥାନ ଥିଲା; କେବଳ ଏଠାରେ ଗୋଟିଏ ପୁରାତନ କାଳର ପୋତାଶ୍ରୟ ଥିଲା । ବ୍ରିଟିଶ୍ ଇଞ୍ଜିନିଅର୍‌ମାନଙ୍କର ଗୃହୁସ୍ତ ବର୍ତ୍ତମାନ ଏହାକୁ ଶୁଷ୍କଭୂମି, ପୋତାଶ୍ରୟ, ରାସ୍ତା ଏବଂ ରେଲରାସ୍ତାରେ ପରିଣତ କରଅଛି । ବର୍ତ୍ତମାନ ଏହା ପୃଥିବୀରେ ସର୍ବାପେକ୍ଷା ଦୁର୍ଭେଦ୍ୟ ଦୁର୍ଗସମ୍ପନ୍ନ ଦ୍ୱୀପ । ଏହା ବ୍ରିଟିଶ୍‌ଜାତିର ପ୍ରଶାନ୍ତ ମହାସାଗରରେ ସର୍ବପ୍ରଧାନ ନୌବାହିନୀ କେନ୍ଦ୍ର [Naval Base]. ଏହି ନୌକେନ୍ଦ୍ର ନିର୍ମାଣରେ ୧୦୦ ଲକ୍ଷ ପାଉଣ୍ଡ ବା ସାଢ଼େ ୧୩ କୋଟି ଟଙ୍କା ଖର୍ଚ୍ଚ ହୋଇଅଛି । ଏଥିର ସଂପୃକ୍ତ କୋଠାବାଡ଼ିମାନଙ୍କ ଖର୍ଚ୍ଚ ହିସାବ କଲେ ମୋଟ ଖର୍ଚ୍ଚ ଦୁଇକୋଟି ପାଉଣ୍ଡ ବା ୩୦ କୋଟି ଟଙ୍କାରୁ ଅଧିକ ହେବ । ଏଠାରେ ବହୁସଂଖ୍ୟକ ଯୁଦ୍ଧଜାହାଜ ଏବଂ ଉଡ଼ାଜାହାଜ ରହିଅଛି । ଅଷ୍ଟ୍ରେଲିଆ, ନିଉଜିଲାଣ୍ଡ, ହଂକଂ ପ୍ରଭୃତି ଦେଶମାନଙ୍କୁ ଏବଂ ଭାରତବର୍ଷରେ ବ୍ରିଟିଶ୍‌ଜାତିର ବିପୁଳ ବାଣିଜ୍ୟକୁ ରକ୍ଷା କରିବା ଏହି ନୌକେନ୍ଦ୍ରର ପ୍ରଧାନ ଉଦ୍ଦେଶ୍ୟ ।

ସନ୍ଦର୍ଭଲେଖକ—ଶ୍ରୀ ଜଗନ୍ନାଥ ତ୍ରିପାଠି, ବି. ଏ, ବି. ଟି ।]
୨ । କଟକ ଜିଲ୍ଲାର ମଧୁପୁର କିଲ୍ଲାଅନ୍ତର୍ଗତ ଗ୍ରାମବିଶେଷ—2. Name of a village in Cuttack district. [ଦ୍ର—ଏଠାରେ ପଣାସଂକ୍ରାନ୍ତି ସମୟରେ ଏକମାସବ୍ୟାପୀ ଏକ ପ୍ରକାଣ୍ଡ ମେଳା ହୁଏ । ଓଡ଼ିଶା ବାହାର ଅଞ୍ଚଳମାନଙ୍କରୁ ଅନେକ ବେପାରୀ ଆସି ଏଠାରେ ମାସକ ପର୍ଯ୍ୟନ୍ତ ରହନ୍ତି । ନାନା ଦୂର ସ୍ଥାନରୁ ସହସ୍ରାଧିକ ନରନାରୀ ଏହି ମେଳା ଦେଖିବା ପାଇଁ ରୁଣ୍ଡ ହୁଅନ୍ତି ।]

ସିଙ୍ଗାର୍ ବାଡ଼ି—ପ୍ରାଦେ (ବାଲେଶ୍ୱର)—ଦୁଇ ଖଣ୍ଡ କଡ଼ି କାଠ
Singār bārḍi ଉପରେ ରହିଥିବା ଛୋଟ ଛୋଟ କାଠଖଣ୍ଡ (ଯାହା ଉପରେ ପକ୍‌କା ଛତର ଟାଇଲ୍ ବସାଯାଏ); ବରଗା—Pieces of rafter put over two timbers of a roof.

ସିଙ୍ଗାର (ଇତ୍ୟାଦି)—ଦେ. ବି—୧ । ଶିଂଙ୍ଗାର ଇତ୍ୟାଦି (ଦେଖ)—
Singāra (etc) 1. Siṁgāra etc. (See) ୨ । ଭୂଷଣ—
ସିংগার 2. Ornament. [ଉ—କି ବର୍ଣ୍ଣିବ ତାହା ରୂପଶୋଭା,
सिंगार ଅହା ବିଷାଦ ଯାର ସିଙ୍ଗାର । ରାଧାନାଥ. ଯଯାତି ।]

ସିଙ୍ଗା(ଙ୍ଘା)ରିବା—ଦେ କ୍ରି—ସିଂଘାରିବା (ଦେଖ)
Singā (ṅghā) ribā Siṁghāribā. (See)

ସିଙ୍ଗା(ଙ୍ଘା)ରି ହେବା—ଦେ. କ୍ରି—ସିଂଘାରି ହେବା (ଦେଖ)
Singā (ṅghā) ri hebā Siṁghāri hebā. (See)

ସିଙ୍ଗୁରୁ—ପ୍ରାଦେ (ଗଡ଼ଜାତ) ବି—ଶାଗୁଆନ୍ (ଦେଖ)
Singuru Sāguān. (See)

ସିଙ୍ଘଣ—ସଂ. ବି ( ହନସ୍. ଧାତୁ+କର୍ତ୍ତି. ଅନ; ନିପାତନ)—ସିଂଘାଣ
Singhaṇa (ଶବ୍ଦରତ୍ନାବଳୀ)(ଦେଖ)—Singhāṇa. (See)

ସିଙ୍ଘଣକ—ସଂ.ବି (ସିଙ୍ଘଣ+ଅକ)—ସିଙ୍ଘାଣ [ଦେଖ](ଶବ୍ଦରତ୍ନାବଳୀ)
Singhaṇāka Singhāṇa [See].

ସିଙ୍ଘଳ—ଗ୍ରା. ବି—ସିଂହଳ [ଦେଖ]—
Singhaḷa Simhaḷa [See].

ସିଙ୍ଘଳୀ—ଗ୍ରା. ବି.—ସିଂହଳୀ [ଦେଖ]
Singhaḷī Simhaḷī [See].

ସିଙ୍ଘା—ଦେ. ବି—୧ । ଶିଂଗା ( ଦେଖ )—1. Singā (See).
Singhā ୨ । ଚିଲିକାରେ ଚଳୁଥିବା ଡଙ୍ଗାର ପାଲକୁ ବା ତଲେଇକୁ ଅଗ ମଙ୍ଗରେ ଖଟାଇବା ପାଇଁ ବ୍ୟବହୃତ ଦଉଡ଼ି ( ନଟିଠାରୁ ଛୋଟ )—2. The string which fastens the sail or bamboo matting to the prow of a country boat in the Chilka lake.

ସିଙ୍ଘାଣ—ସଂ.ବି (ହନସ୍ ଧାତୁ=ନାଶକରିବା+କର୍ତ୍ତି ଅନ;ବର୍ଣ୍ଣବିପର୍ଯ୍ୟୟ; ନିପାତନ )—ସିଂହାଣ ( ଦେଖ )—
Singhāṇa Simhāṇa [See].

ସିଙ୍ଘାରୀ—ଦେ. ବି—ରାଜା ବା ଦେବତାଙ୍କ ବେଶକାରୀ—
Singhārī Dresser; dresser of an idol or a King.
শিঙ্গারী सिंगारी

ସିଙ୍ଘିଣୀ—ସଂ. ବି—ନାସିକା (ହଳାୟୁଧ)—
Singhinī The nose.

ସିଙ୍ଘୁଣୀ—ଗ୍ରା. ବି. ସ୍ତ୍ରୀ—ସିଂହୀ (ଦେଖ)—
Singhuṇī Simhī [See].
( ସିଙ୍ଘ—ପୁଂ )

ସିଚ୍ ( ଧାତୁ )—ସଂ.—୧ । ସେଚନ କରିବା; ଛିଞ୍ଚିବା—
Sich [root] 1. To sprinkle. ୨ । ସିକ୍ତ କରିବା;

ଓଦା କରିବା—2. To moisten. ୩ । ସେକିବା; ଉତ୍ତପ୍ତ ପ୍ରୟୋଗ କରିବା—3. To foment; to apply heat.

ସିଚୟ—ସଂ. ବି (ସଚ୍ ଧାତୁ=ଜଳାଦି ସେଚନ କରିବା + କର୍ମ. ଅୟ)—Sichaya ୧ । ବସ୍ତ୍ର ( ହେମଚନ୍ଦ୍ର )—1. Cloth. ୨ । ଜୀର୍ଣ୍ଣ ବସ୍ତ୍ର (କିଙ୍କାଣ୍ଡ ଶେଷ)—2. Torn cloth; rag.

ସିଜର୍—ଦେ. ବି (ନାମ) (ଇଂ. ସିଜାର୍)—ପ୍ରାଚୀନ ରୋମ୍ ସାମ୍ରାଜ୍ୟର Sijar सीज़र् सिज़र ଜଣେକ ରାଜା—Caesar. [ଦ୍ର—ଏହାଙ୍କର ପୁରା ନାମ ଜୁଲିଅସ୍ ସିଜର୍ (Julius Caesar) । ଜନ୍ମ ଖ୍ରୀ: ପୂ: ୧୦୦ ଅବ୍ଦ । ବାଗ୍ମିପ୍ରବର ସିସିରୋଙ୍କର ଏ ସମସାମୟିକ ଥିଲେ । ଏ ପ୍ରଥମବୟସରେ ରୋମ୍ ସାମ୍ରାଜ୍ୟର ପ୍ରଧାନ ବ୍ୟକ୍ତି ବୋଲି ପରିଗଣିତ ହୋଇ ଥିଲେ ଏବଂ ସିସିରୋଙ୍କ ଛଡ଼ା ଏହାଙ୍କ ପରି ରୋମ୍‌ରେ ଅନ୍ୟ କେହି ବାଗ୍ମୀ ନ ଥିଲେ । ଏ ପ୍ରଥମେ ରୋମ୍ ରାଜ୍ୟରେ ଜଣେ ଶାସନକର୍ତ୍ତା (consul) ହୋଇ ପରେ ଇଉରୋପର ପଶ୍ଚିମବର୍ତ୍ତୀ ଦେଶକୁ ଓ ଇଂଲଣ୍ଡକୁ ଆକ୍ରମଣ କରି ସେ ଦେଶମାନଙ୍କୁ ରୋମ୍ ସାମ୍ରାଜ୍ୟଭୁକ୍ତ କଲେ । ଏ ଆଫ୍ରିକାକୁ ଯାଇ ସେଠାର ରାଜକୁମାରୀ କ୍ଲିଓପାଟ୍ରାଙ୍କଠାରେ ପ୍ରାଣ ସମର୍ପଣ କଲେ । ଏହା ପୂର୍ବରୁ ସେ କ୍ରମଶଃ ୩ ଗୋଟି ସ୍ତ୍ରୀଙ୍କର ପାଣି ଗ୍ରହଣ କରି ସାରିଥିଲେ । ତାଙ୍କ ଔରସରେ କ୍ଲିଓପାଟ୍ରାଙ୍କର ଗୋଟିଏ ପୁତ୍ର ଜାତ ହେଲା । ତାହା ପରେ ଏ ମିଶରର ରାଜା ଟଲେମୀଙ୍କୁ ପରାସ୍ତ କରି କ୍ଲିଓପାଟ୍ରାଙ୍କୁ ମିଶରର ରାଜ ସିଂହାସନରେ ବସାଇ ଦେଶକୁ ଫେରିଲେ । ଏ ଅପଣାକୁ ସାଧାରଣତନ୍ତ୍ର ରୋମ୍ ସାମ୍ରାଜ୍ୟର ସମ୍ରାଟ୍ ବୋଲି ଜ୍ଞାନ କରୁଅଛନ୍ତି, ଏହା ସନ୍ଦେହ କରି କେତେଗୁଡ଼ିଏ ଦେଶପ୍ରାଣ ବ୍ୟକ୍ତି ଚକ୍ରାନ୍ତ କରି ଏହାଙ୍କୁ ଖ୍ରୀ. ପୂ: ୪୪ ଅବ୍ଦରେ ଗୁପ୍ତ ଭାବରେ ହତ୍ୟା କଲେ ।

ଏ ଖ୍ରୀ: ପୂ: ୫୫ ଅବ୍ଦରେ ଇଂଲଣ୍ଡକୁ ଆକ୍ରମଣ କରି ତାହାକୁ ରୋମ୍ ସାମ୍ରାଜ୍ୟଭୁକ୍ତ କରିଥିଲେ । ଏ ପଞ୍ଜିକାର ସଂସ୍କାର କରିଥିଲେ ଓ ଲାଟିନ୍ ବ୍ୟାକରଣରେ ଅପାଦାନ କାରକ (Oblative case)ର ନୂତନ ପ୍ରଚଳନ କରାଇଥିଲେ ।]

ସିଜା—ଦେ. ବି ଓ ବିଣ—ସିଝା ( ଦେଖ ) Sijā Sijhā ( See )

ସିଜା(ଜେ)ଇବା—ଦେ. କ୍ରି—ସିଝାଇବା ( ଦେଖ ) Sijā(je)ibā Sijhāibā ( See )

ସିଜିବା—ଦେ. କ୍ରି—ସିଝିବା ( ଦେଖ ) Sijibā Sijhibā ( See )

ସିଜୁ—ଦେ. ବି—ସିଝୁ ( ଦେଖ )—Sijhu ( See ) [ଦ୍ର—ସିଜୁ Siju ଅଳୁ ବାଡ଼େ, ଝଙ୍କା ପିଢ଼ା ଡାଲେ, ଫୁଟେ ତୋର ଜଙ୍ଘି ଫୁଲେ । ନନ୍ଦକିଶୋର ଶର୍ମିଷ୍ଠା ।]

ସିଝା—ଦେ. ବି (ସଂ. ସିଦ୍ଧ; ପ୍ରା. ସିଜ୍‌ଝ)—ସିଦ୍ଧ କରିବା—Sijhā Boiling. सीझा, सीभा सीझा ଦେ. ବିଣ—ସିଦ୍ଧ—Boiled.

ସିଝା(ଝେ)ଇବା—ଦେ. କ୍ରି—ଅଗ୍ନି ଉତ୍ତାପରେ ସିଦ୍ଧ କରିବା—Sijhā(jhe)ibā To boil a thing over fire. सीझाना, सीझाना सीझाना

ସିଝା ଘା—ଦେ. ବି—ଗରମ ପାଣି ବା ଗରମ ତେଲ ଆଦି ପଡ଼ି Sijhā ghā ଦେହରେ ହୋଇଥିବା ଫୋଟକା ଓ ବ୍ରଣ—सिझा घा सीझा घा Scald. (ସିଝା ଘାଅ—ଅନ୍ୟରୂପ)

ସିଝା ମଣ୍ଡା—ପ୍ରାଦେ. (ସିଂହଭୂମ) ବି—ଅଧାରରେ ସିଦ୍ଧ ମଣ୍ଡା ପିଠା-Sijhā mandā Cake boiled in water vapour.

ସିଝିବା—ଦେ. କ୍ରି (ସଂ. ସିଦ୍ଧ; ସଂ. ସିଧ୍ ଧାତୁ)—ଅତପ ବା ଅଗ୍ନିରେ Sijhibā ସିଦ୍ଧ ହେବା—To be boiled over fire or सीझा, सिझा सिझना in sun's rays.

ସିଝୁ—ଦେ. ବି (ସଂ. ସୀହୁଣ୍ଡ; ସେହୁଣ୍ଡ; ସ୍ନୁହୀ)—ପତର ସିଝୁ; ମନସା Sijhu ସିଝୁ; ଦଣ୍ଡା ସିଝୁ—Euphorbia Nivulia; सीज, सीझ, मनसा सीज Euphorbia Hirta (Haines). सिज, धुही, थुहर [ଦ୍ର—ଏହା ଏକ ପ୍ରକାର କ୍ଷୀର ଅ. ଜକୁମ୍ ଗଛ । ଏହାର ପତର ଅଲୁଅ ବୁଢ଼ର-ସଂସ୍କୃତ ପର୍ଯ୍ୟାୟ— ଛକି ପରି ଓ ମୋଟା । ଏ ଗଛର ସିଂହ ତୁଣ୍ଡ, ଦଣ୍ଡ ବୃକ୍ଷକ, ଡାଳରେ ଓ ପତ୍ର ମୂଳରେ ଯୋଡ଼ା କଣ୍ଟା, ବଜ୍ରୀ, ବଜ୍ରଦ୍ରୁ, ବଜ୍ରକଣ୍ଟକ, ଯୋଡ଼ା କଣ୍ଟା ଥାଏ । ଏ ଗଛ ଆମ ବଜ୍ରଦ୍ରୁମ, ନେତାରି, ଦେଶରେ ଜଙ୍ଗଲରେ ବହୁତ ଓ କଣ୍ଟା କୃଷ୍ଣସାର, ସୁଧା, ନାଗଦ୍ରୁ, ଥିବାରୁ ଲୋକେ ଏହାଦ୍ୱାରା ବାଡ଼ କାଣ୍ଡଶାଖ, ଶୀହୁଣ୍ଡ, ଦିଅନ୍ତି । ଏହାର ପତ୍ର ଓ ଡାଳ ସମନ୍ତ ଦୁଗ୍ଧା, କାଣ୍ଡ ରୋହକ, ଭାଙ୍ଗି ଦେଲେ ଚୂନ ପାଣି ପରି ଖୁବ୍ ଶୀହୁଣ୍ଡ, ସେହୁଣ୍ଡ, ସ୍ନୁକ୍, ଧଳା ବହଳଆ କ୍ଷୀର ବାହାରେ । ମହାବୃକ୍ଷ, ସ୍ନୁହା, ସ୍ନୁହି, ସ୍ନୁହୀ, ଏହାର ପତ୍ରକୁ ଛେଳିମାନେ ଗୁଡ଼ା, ଗୁଡ଼, ସ୍ନୁଷା, ଗୁଡ଼ୀ । ଖାଆନ୍ତି । ଏହାର କ୍ଷୀର ଅଠାଳିଆ, ଗଛ ଝାମ୍ପୁଡ଼ା ଓ ବକଳ ମୋଟ ।

ବୈଦ୍ୟଶାସ୍ତ୍ର ଅନୁସାରେ ଏହା ତୀକ୍ଷ୍ଣ ବିରେଚକ, ଅଗ୍ନି, ପାଚକ, କଟୁରସ ଓ ଗୁରୁ । ଏହା ଶୂଳ, ଆମ, ଅଷ୍ଠୀଳିକା, ଉଦରାଧ୍ମାନ, କଫ, ଗୁଳ୍ମ, ଜଠର, ବାୟୁ, ଉନ୍ମାଦ, ମୋହ, କୁଷ୍ଠ, ଅର୍ଶ, ଶୋଥ, ମେଦ, ଅଶ୍ମରୀ, ପାଣ୍ଡୁ, ବ୍ରଣ, ଜ୍ୱର ପ୍ଲୀହା ଓ ବିଷ ନାଶକ ।

ଏହାର ଅଠା ଗୁଳ୍ମ, କୁଷ୍ଠ, ପାଣ୍ଡୁ ଆଦି ରୋଗରେ ପ୍ରୟୋଗ କରାଯାଏ ଏବଂ ଏହା ବିରେଚକ ।

ଦେବ ଶୟନ ପରେ କୃଷ୍ଣ ପକ୍ଷ ପଞ୍ଚମୀରେ ଗୃହର ଅଗଣାରେ ସିଝୁ ଗଛରେ ପୁଷ୍ପ ନାଗସ୍ୱରୂପଙ୍କୁ ପୂଜା କରିବାର ବିଧି ଅଛି । (ଦେବୀ ପୁରାଣ, ଇତ୍ୟାଦି ଗ୍ରନ୍ଥ)

କଣ୍ଟାଗୁନ୍ୟ ସିଝୁ ମଧ୍ୟ ଅଛି । ତାହାର ପତ୍ର ସିଝୁ ପତ୍ରଠାରୁ ଛୋଟ ଓ ପତଳା । ଜଙ୍ଗଲରେ ନାନାଜାତୀୟ ସିଝୁ ଦେଖାଯାଏ ।]

ସିଝୁ ଶୋଲ—ଦେ. ବ—ଶିଝୁ ଶୋଲ ( ଦେଖ )
Sijhu śola Śijhu śola ( See )

ସିଞ୍ଚଡ଼ା—ଦେ· ବ ଓ ବଣ ( ସ. ସଞ୍ଚାଳନ )—ଛିଞ୍ଚଡ଼ା ( ଦେଖ )
Siñcharḍā Chiñcharḍā ( See )

ସିଞ୍ଚଡ଼ା(ଡ଼େ)ଇବା—ଦେ· କ୍ରି.—ସିଞ୍ଚାଡ଼ିବାର ଣିଜନ୍ତରୂପ—
Siñcharḍā(ṛe)ibā The causative of Siñcharḍā
छिटान सींचाना

ସିଞ୍ଚଣା—ଦେ· ବ ( ସ. ସେଚନ )—ସିଞ୍ଚନ ( ଦେଖ )
Siñchaṇā Siñchana ( See )

ସିଞ୍ଚନ୍—ସ. ବଣ· ପୁଂ ( ସିଚ୍ ଧାତୁ + କର୍ତ୍ତୃ· ଶତୃ [ ଅତ୍ ]; ସିଞ୍ଚତ୍
Siñchan ଶବ୍ଦର ୧ମା· ୧ବ)—ସେଚନକାରୀ—Sprinkling
[ ସୀଞ୍ଚନ୍ତ, ସୀଞ୍ଚନ୍ତୀ—ସ୍ତ୍ରୀ ]

ସିଞ୍ଚନ—ସଂ. ବ (ସିଚ୍ ଧାତୁ + ଭାବ. ଅନ)—ସେଚନ—Sprinkling.
Siñchana [ ଦ୍ର—ପ୍ରାଚୀନ ସଂସ୍କୃତରେ 'ସିଞ୍ଚନ' ପ୍ରୟୋଗ ଦେଖାଯାଏ । ପରବର୍ତ୍ତୀ କାଳରୁ ଏହି ଶବ୍ଦ ସ୍ଥାନରେ 'ସେଚନ' ପ୍ରୟୋଗ ହେଉଅଛି । ]

ସିଞ୍ଚା—ଦେ. ବ ( ସଂ. ସିଚ୍ ଧାତୁ; ସିଞ୍ଚନ )—ଛିଞ୍ଚା; ଛିଞ୍ଚିବା କ୍ରିୟା—
Siñchā Sprinkled. [ ଉ—ଚନ୍ଦନ ଜଳ ସିଞ୍ଚା ଅଙ୍ଗରେ
छिंचा सींचा ହୋଉଛି—କୃଷ୍ଣସିଂହ· ମହାଭାରତ· ଅଦି । ]
छेंचा सींचा ଦେ. ବଣ—ଛିଞ୍ଚା ହୋଇଥିବା; ସିକ୍ତ—
Sprinkled.

ସିଞ୍ଚା(ଞ୍ଚେ)ଇବା—ଦେ· କ୍ରି ( ସଂ· ସିଚ୍ ଧାତୁ ଣିଜନ୍ତ )—ଅନ୍ୟଦ୍ୱାରା
Siñchā(ñche)ibā ସେଚନ କ୍ରିୟା କରାଇବା—To cause
छिंचान सींचाना to sprinkle. [ ଉ—କସ୍ତୁରୀ କର୍ପୂରୁ ଘନ ଅଣି ରାଜା ସିଞ୍ଚାଇ ସକଳ ସ୍ଥାନେ—ରାଧାନାଥ ଗ୍ରନ୍ଥାବଳୀ । ]

ସିଞ୍ଚାଡ଼ିବା—ଦେ· କ୍ରି ( ସଂ ସଞ୍ଚାଳନ )—୧ । ଛିଞ୍ଚାଡ଼ିବା; ଇତସ୍ତତଃ
Siñchārḍibā ସଞ୍ଚାଳନ କରିବା—1. To wave to and
छिटान छींटना fro. ୨ । ଇତସ୍ତତଃ ବିଞ୍ଚିବା ବା ବୁଣିବା—
2. To strew.

ସିଞ୍ଚାଣି—ଦେ. ବ ( ସଂ ସିଞ୍ଚନ )—ସିଞ୍ଚନ ( ଦେଖ )
Siñchāṇi Siñchana ( See )

ସିଞ୍ଚା ବିଞ୍ଚା—ଦେ. ବ ( ସହଚର )—ସିଞ୍ଚିବା କର୍ମ ଓ ବିଞ୍ଚିବା କର୍ମ—
Siñchā biñchā The act of sprinkling and fanning.
सींचा पंखालगा [ ଉ—କେତେ ସିଞ୍ଚା ବିଞ୍ଚାରେ ଅଚେତ ହେବାରୁ ସେ କହିଲେ—ଗୋଲକଣ୍ଠ ଦାସ· ପିଲଙ୍କ ରାମାୟଣ । ]

ସିଞ୍ଚିତ—ଦେ· ବଣ ( ସଂ· ସିକ୍ତ )—ଛିଞ୍ଚା ଯାଇଥିବା—
Siñchita Sprinkled.

ସିଞ୍ଚିତା—ସଂ. ବ—ପିପ୍ପଳୀ ( ଶବ୍ଦଚନ୍ଦ୍ରିକା )—
Siñchitā Long pepper.

ସିଞ୍ଚିବା—ଦେ. କ୍ରି ( ସଂ. ସିଚ୍ ଧାତୁ )—୧ । ସିଞ୍ଚିବା; ସେଚନ
Siñchibā କରିବା—1. To sprinkle. [ ଉ—ଅସ୍ପାର
छिंचा ଉଚ୍ଚତ ବାଞ୍ଛି ଗୋ; କଷ୍ଟ ପ୍ରେମମଞ୍ଜ ପୋଡଣ ହୃଦରେ
सींचना ଉତ୍ପଦାର ଜଡ଼ି ସିଞ୍ଚି ଗୋ—ବାଲକୃଷ୍ଣ· ଫୁଲ ବଉଳବେଣୀ । ] ୨ । ଜଳାର୍ଦ୍ର କରିବା—2. To moisten. [ ଉ—ସୁଧିଷ୍ଠିର ଶୋକ ଅଗ୍ନିକ ଜାଣିବାକୁ, ସିଞ୍ଚିଲେ ବୃହଦଶ୍ୱ ବାଣୀ ଅମୃତକୁ—କୃଷ୍ଣସିଂହ. ମହାଭାରତ. ବନ । ]

ସିଞ୍ଜା—ସ. ବ—ଶିଞ୍ଜା; ଅଳଙ୍କାରଧ୍ୱନି (ଶବ୍ଦକଳ୍ପଦ୍ରୁମ)—The tinkling
Siñjā sound of ornaments. ଦେ. ବ ( ସଂ ଶିଞ୍ଜିନୀ )—ଧନୁର ଗୁଣ—The string of a bow.

ସିଟ—ବୈଦେ. ବ—୧ । (ଇଂ ଶୀଟ୍) ନକ୍ସାର ବା କାଗଜର ଫର୍ଦ୍ଦ—
Siṭ 1. A sheet of map or paper. ୨ । ( ଇଂ.
सिट ସୀଟ୍ ) ଛାତ୍ରାବାସରେ ବାଳକର ରହିବାର ସ୍ଥାନ—
सिट 2. The seat of student in a hostel. ୩ । ସିନେମା, ଥିଏଟର,ସର୍କସ ବା ସଭାସମିତିରେ ଦର୍ଶକଙ୍କ ବସିବାର ସ୍ଥାନ—3. The seat of the audience in a cinema, circus or meeting etc. ୪ । ଆସନ —4. Seat.

ସିଟି(ଟି)କା—ଦେ. ବ ( ସଂ. ଶୀତ୍କାର )—ଛଟିକା; ଛିଞ୍ଚାଡ଼ିବା—
Siṭ-(ṭi)kā सिटिकान छिटका Strewing
सिटिकान ଦେ. ବଣ. ପୁଂ—ସଞ୍ଚାଳନକାରୀ—Waving to
छिटनेवाला and fro. [ ଉ—ନାକ ସିଟିକା—ଯେ ନାକକୁ
[ସିଟିକା, ସିଟିକେଇ—ସ୍ତ୍ରୀ] ସିଟିକାଏ । ]

ସିଟକା(କେ)ଇବା—ଦେ. କ୍ରି ( ସଂ ଶୀତ୍କାର )—ଛିଞ୍ଚାଡ଼ିବା; ଛଟ୍କା-
Siṭ-kā(ke)ibā ଇବା; ସଞ୍ଚାଳିତ କରିବା; ଇତସ୍ତତଃ ସଞ୍ଚାଳନ
सिटकान छिटकाना କରିବା—To wave; to move to and fro.

ସିଟି(ଟି)କଣି—ଦେ. ବ—ଛଟ୍କଣି ( ଦେଖ )
Siṭ-(ṭi)kiṇi Chhiṭ-kiṇi ( See )

ସିଟ୍କିଣି—ପ୍ରାଦେ ( ବସ୍ତର ) ବ—ବେଡ଼ି ( ଦେଖ )
Sit-kiṇi Berḍi ( See )

ସିଟି(ଟି କିବା—ଦେ. କ୍ରି—ଛଟ୍କିବା ( ଦେଖ )
Siṭ-(ṭi)kibā Chhiṭ-kibā ( See )

ସିଟ(ଟା, ଠ, ଠା)—ଦେ. ବ—ଶିଟ ( ଦେଖ )
Siṭa (ṭa, ṭha, ṭhā) Śiṭa (See)

ସିଟ(ଠ,ଠି)କରଣ—ଦେ. ବ—ଶ୍ରେଷ୍ଠ କରଣ ( ଦେଖ )
Siṭa(ṭha, ṭhi)karaṇa Śreshṭha karaṇa (See)

ସିଟାମ୍—ବୈଦେ. ବ [ ଇଂ. ଷ୍ଟାମ୍ପ୍ ]—୧ । ଷ୍ଟାମ୍ପ; ଦଲିଲ ଅଦି
Siṭām ଲେଖାହେବା ପାଇଁ ସରକାରଙ୍କ ଛାପା ମରା କାଗଜ—
सिटाम स्टाम्प 1. Stamp for writing document. ୨ । ଡାକଟିକଟ—2. Postage stamp.

ସିଟାମ୍ ଫରେସ୍ [ଫୁରୁସ୍, ଭେଣ୍ଡର୍]—ବୈଦେ. ବ [ ଇଂ. ଷ୍ଟାମ୍ପ+
Siṭām pharos [phurus, bhendar] ଫା. ଫରୋସ୍; ଇଂ,
सिटामदार, सिटाम भेण्डर ଭେଣ୍ଡର୍ ]—ସରକାରଙ୍କ ଲାଇସେନ୍ସ·

स्टाम्प फरोस · ପ୍ରାପ୍ତ ସରକାରୀ ଷ୍ଟାମ୍ପ ବିକ୍ରେତା — Licensed stamp vendor.

ସିଟାମ୍ ଭେଣ୍ଡରି—ଦେ· ବି—ଷ୍ଟାମ୍ପ ଭେଣ୍ଡରର କାର୍ଯ୍ୟ—
Sitām bhendari The work of a stamp vendor·
সীটাম ভেণ্ডরী स्टाम्प बेवडरी

ସିଠାଳ—ଦେ. ବିଣ—୧ । ମହମ ସିଠା ପରି—1. Waxen. ୨ ।
Siṭhāla সীটে चपचपाया ଅଠାଳିଆ—2. Gummy·
( ସିଠାଳିଆ—ଅନ୍ୟରୂପ ) সীটান ୩ । ସିଠା ପରି ବିବର୍ଣ୍ଣ—
सीठियाया 3. Pale as wax; wan·

ସିଟି(ଠି)—ଦେ. ବି ( ସଂ ସିତ୍‌କାର; 'ଶୀ' ଧ୍ୱନି )—୧ । ମୁହଁଦ୍ୱାରା
Siṭi(ṭhi) ସାର୍ଦ୍ଦ 'ଶୀ ଶୀ' ଧ୍ୱନି—1. Whistling sound
সিটি सीटी by the lips ୨ । ମୁହଁଦ୍ୱାରା ଫୁଙ୍କି ସାର୍ଦ୍ଦ 'ଶୀ'
ଧ୍ୱନି କରିବାର ଯନ୍ତ୍ର—2. A whistle. ବୈଦେ. ବି.
(ଇଂ. ସିଟି) ସହର; ନଗର—City ( e. g. Patna city).

ସିଟିଙ୍ଗ୍—ବୈଦେ. ବି (ଇଂ. ସିଟିଙ୍ଗ୍ )—ସଭାସମିତିର ଅଧିବେଶନ—
Siting সিটিং सिटिं Sitting (of an association).
(ସିଟିଂ—ଅଶୁଦ୍ଧ ବନାନ)

ସିଟି ଦେବା (ମାରିବା)—ଦେ. କ୍ରି—୧ । ମୁଖଦ୍ୱାରା ସାର୍ଦ୍ଦ 'ଶୀ' ଧ୍ୱନି
Siṭi debā (māribā) କରିବା—1. To whistle with
সিটি দেওয়া, সিটি মারা the mouth. ୨ । ସିଟି ଯନ୍ତ୍ରଦ୍ୱାରା
सीटी देना ଧ୍ୱନି କରିବା—2. To sound a whistle.

ସିଠ—ପ୍ରାଦେ ( ଜାଳେଶ୍ୱର ) ବି —ଶ୍ରେଷ୍ଠିକରଣ; ରାଜାଙ୍କର ହିସାବ·
Siṭha ପତ୍ର ବୁଝିବା କର୍ମଚାରୀ—An accountant of a Rājā.
ଦେ· ବି ଓ ବିଣ —ସିଠା (ଦେଖ)—Siṭhā (See)

ସିଠା—ଦେ. ବି—୧ । ଶିଠା ( ଦେଖ )—1. Siṭhā ( See )
Siṭhā সিঠা सीठा ୨ । ମହୁ ଶିଠା; ମହମ—Beeswax.
সিঠা गोंद ୩ । ଅମ୍ବ, ପଣସ, ସଜନା ଆଦି ଗଛରୁ ବହି ଅଳ୍ପ
ଶୁଖି ଯାଇଥିବା ଘନ ଅଠା—3. Dried juice or
gum of certain trees, such as, mango,
jack, etc. [ ଉ—ଅମ୍ବ ସିଠା, ସଜନା ସିଠା,
সিঠা ପଣସ ସିଠା ।] ୪ (ଅବଶିଷ୍ଟ) କୌଣସି ଦ୍ରବ୍ୟରୁ ରସ ବା
सीठा କର୍ପୂର କାଢ଼ାର କରି ନେବା ପରେ ଦ୍ରବ୍ୟର ବର୍ଜିତ ଅଂଶ
—4. Refuse of any matter after the
juice has been squeezed. [ ଉ—କାଶେଷ
କରି ପୀୟୂଷ ପିଇବାରୁ ରହିଛି ବିନା ମାତର ସିଠା—
ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।] ୫ । ଗଞ୍ଜେଇ ବା ଧନ୍ଦୁରୁ ମଦର
ଆଦି ସଙ୍ଗେ ବାଟି ବନ୍ଧା ଲଡ଼ୁକୁ ପାଣିରେ ଗୋଳାଇ ତାକୁ
ଲନାରେ ଛାଣି ନେବା ପରେ ଲନାରେ ଅବଶିଷ୍ଟ ରହୁଥିବା
ଲଦଡ଼ା ଅଂଶ—5. Dregs of Bhang after
it is silted. ୬ । ତେଲର କାଣ୍ଡି—6. The sediment at the bottom of an oil vessel.
ପ୍ରାଦେ (ପୁରୀ) ବି—ସେଠା; ସେ ସ୍ଥାନ—That place.

সিটে ଦେ. ବିଣ—ସିଠା ପରି ବିବର୍ଣ୍ଣ; ସିଠାଳିଆ—Waxen;
सिठाकाजैसा pale as wax. [ ଉ—ଜରଯୋଗୁଁ ତା
ମୁହଁ ସିଠା ପଡ଼ି ଗଲାଣି ।]

ସିଠାକା—ପ୍ରାଦେ ( ପୁରୀ ) ବିଣ—ସେଠାକା ( ଦେଖ )
Siṭhākā Seṭhākā ( See )

ସିଠାକାର—ପ୍ରାଦେ ( ପୁରୀ ) ବିଣ—ସେଠାକାର ( ଦେଖ )
Siṭhākāra Seṭhākāra ( See )

ସିଠାକୁ—ପ୍ରାଦେ ( ପୁରୀ ) ବି—ସେଠାକୁ ( ଦେଖ )
Siṭhāku Seṭhāku ( See )

ସିଠାମ (ଇତ୍ୟାଦି)—ବୈଦେ· ବି—ସିଟାମ୍ ଇତ୍ୟାଦି ( ଦେଖ )—
Siṭhāma (etc) Siṭām etc ( See ) [ ଉ—କୁଳ ଘଣ୍ଟା
ମଧ୍ୟରେ ସିଠାମ କଣା, କବଲ ଠିଠା, ସାଙ୍ଗ ହୋଇଲେ—
ଫକୀରମୋହନ. ଛ ମାଣ ଅଠଗୁଣ୍ଠ । ]

ସିଠାରୁ—ପ୍ରାଦେ· ( ପୁରୀ ) ବି—ସେଠାରୁ ( ଦେଖ )
Siṭhāru Seṭhāru ( See )

ସିଠାଳ—ଦେ· ବିଣ—ସିଠାଳ ( ଦେଖ )—Siṭāla ( See )
Siṭhāla (ସିଠାଳିଆ—ଅନ୍ୟରୂପ)

ସିଠି(ଠିଁ)—ପ୍ରାଦେ. ( ପୁରୀ ) ବି—ସେଠାରେ ( ଦେଖ )
Siṭhi(ṭhiñ) Seṭhāre ( See )

ସିଠିକା—ପ୍ରାଦେ· ( ପୁରୀ ) ବିଣ—ସେଠିକା ( ଦେଖ )
Siṭhikā Seṭhikā ( See )

ସିଠିକାର—ପ୍ରାଦେ. ( ପୁରୀ ) ବିଣ—ସେଠିକାର ( ଦେଖ )
Siṭhikāra . Seṭhikāra ( See )

ସିଠିକି —ପ୍ରାଦେ· ( ପୁରୀ ) ବି —ସେଠିକି ( ଦେଖ )
Siṭhiki Seṭhiki ( See )

ସିଠୁ(ଠୁଁ)—ପ୍ରାଦେ ( ପୁରୀ ବି—ସେଠୁ ( ଦେଖ )
Siṭhu(ṭhuñ) Seṭhu ( See )

ସିଠୁଆ—ଦେ. ବିଣ—୧ । ସିଠାଳ; ସିଠାପରି ପରିତ୍ୟକ୍ତ ବା ଅକା-
Siṭhuā সিঠা सिठाकाजैसा ମିକା—1. Left as refuse.
সিঠান सीठियाया ୨। ବିବର୍ଣ୍ଣ—2. Pale-coloured. [ଉ—
ମୁହଁ ସିଠୁଆ କଲା ପଡ଼ିଯାଇଛି—ଫକୀରମୋହନ.
ଗଳ୍ପସ୍ୱଳ୍ପ । ]

ସିଠେଇଁ—ପ୍ରାଦେ· ( ପୁରୀ ) ବି—ସେଠେଇଁ ( ଦେଖ )—Seṭheiñ·
Siṭheiñ ( See ) [ ଉ—ସଙ୍ଗୀମାନେ ବ ଅଛନ୍ତି ସିଠେଇଁ
ରହନ୍ତୁ—ଗାଳକଣ୍ଠ. ପିଲାଙ୍କ ରାମାୟଣ । ]

ସିଡ଼୍(ଢ଼)—ଦେ ବି ( ସଂ. ସିଧାତୁ=ବନ୍ଧନ କରିବା । )—୧ । ସେଡ଼
Sirḍa(rḍha) ( ଦେଖ )—1. Serḍa ( See ) ୨ । ସୂତା
পাঁজ पौंर କାଟିବା ପାଇଁ ଧୁଣା ତୁଳାରେ ଛଅର କରା-
ଯାଇଥିବା ବଳଣା—2. Roll of carded cotton
পাল used in spinning yarn. ୩ । ( ଜାହାଜ଼ଅ-
पाल ଶବ୍ଦ ) ଜାହାଜର ପାଲ—3. The sail of a ship.
রসি ୪ । ଜାହାଜର ପାଲ ଟଣା ଦଉଡ଼ି—4 The rope
रस्सी or riggings of the sail.

ସିଢ଼(ଢ଼) ହଙ୍କାରିବା—ଦେ. କି—ସେଢ଼ ହଙ୍କାରିବା ( ଦେଖ )
Sirda(rdha) hankāribā Serda hankāribā (See)

ସିଢ଼ି(ଢ଼ି)—ଦେ. ବ ( ସଂ ଶ୍ରେଣୀ; ଦ୍ର ଃଶ୍ରେଣୀ, ଶ୍ରିଷ୍ଟି [Beams])—
Sirdi(rdhi) ୧ । ନିଃଶ୍ରେଣୀ; ଜଙ୍ଗୀ—1. Ladder. ୨ । ସୋପାନାବଳୀ; ପାବଚ୍ଛଦସ୍ତ—
2. Flight of steps.

ସିଢ଼ୁ(ଢ଼ୁ)ଆ—ଦେ· ବିଣ—ନିଶ୍ରେଣୀ ପରି ସରୁ—Narrow like a
Sirdu(rdhu)ā ladder· ଦେ· ବ (ନାମ)—( ଏହା
सिंडिव मत ପୁଟେ଼ ଅଲ ସରୁ ଥିବାରୁ ) କଟକ ସହରର ପୂର୍ବ
सीढ़ीका जैसा ପ୍ରାନ୍ତରେ ଏକ ମାଇଲଠାରୁ ବାହାରିଥିବା କାଠଯୋଡ଼ି ନଦୀର ଗୋଟିଏ ଶାଖା, ଯାହା ୫।୬ ମାଇଲ ପରେ ପୁଣି କାଠଯୋଡ଼ି ସଙ୍ଗେ ମିଶିଅଛି)—A river branching from the Kāthjori river about one mile from the eastern extremity of the town of Cuttack and meeting it again after a course of 5 or 6 miles.

ସିଢ଼—ଦେ. ବ—ସିଢ଼ ( ଦେଖ )
Sirdha Sirda ( See )

ସିଣି ସିଣିଆ—ପ୍ରାଦେ. (କଟକ) ବିଣ—ଫଣଫଣିଆ; ସରଦ ଯୋଗୁ
Sini siniā ସାମାନ୍ୟ ଫୁଲିଥିବା (ମୁହଁ)—A little swollen
फनफने on account of cold (face).
फनफन, फनकनिया ପ୍ରାଦେ· ( ବାଲେଶ୍ୱର ) ବିଣ—ହଣିସିଣି; ଅବଢ଼ଙ୍ଗ; ଅବଳଅ—Awkward. [ ଯଥା—ଗୁଣି ତେଲ ଲଗାଇଲେ ଜମିଛ ସିଣିସିଣିଆ ଲାଗେ ।]

ସିଣ୍ଡିକେଟ୍—ବୈଦେ. ବ (ଇଂ)—ବିଶ୍ୱବିଦ୍ୟାଳୟର ଶାସନକାର୍ଯ୍ୟ
Sindiket ପରିଚାଳକ ସଭା—The syndicate of a uni-
सिण्डिकेट versity. [ ଦ୍ର—ଏଥିର ସଭ୍ୟଙ୍କୁ ଫେଲୋ
सिंडिकेट (Fellow) ବୋଲାଯାଏ ।]

ସିତ୍-ଲି—ପ୍ରାଦେ· (ସମ୍ବଲପୁର) ବ—ଜଳାଭୂମି; ଜୋଡ଼—
Sit-li Marshy land; marsh; a moor.

ସିତ—ସଂ· ବ (ସୋ ଧାତୁ=ନାଶ କରିବା, କମ୍ବା ସି ଧାତୁ=ବନ୍ଧନ
Sita କରିବା+କର୍ତ୍ତୃ. ତ)—୧ । ଶୁକ୍ଳବର୍ଣ୍ଣ ( ଅମର )—
1. White colour. ୨ । ରୌପ୍ୟ (ଶବ୍ଦ କଳ୍ପଦ୍ରୁମ)—
2. Silver. ୩ । ମୂଳକ; ମୂଳା (ଶବ୍ଦ କଳ୍ପଦ୍ରୁମ)—
3. Radish. ୪ । ଚନ୍ଦନ (ରତ୍ନମାଳା)—4. Sandal.
୫ । ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟ ( ଶବ୍ଦ ରତ୍ନାବଳୀ )—
5. The sage 'Sukra'; the preceptor of the demons. ୬ । ଶର; ବାଣ (ଧ୍ୱନ୍ୟ ମଞ୍ଜରୀ)—
6. Dart; arrow. ୭ । ଶ୍ୱିତ୍ର; ଶ୍ୱେତକୁଷ୍ଠ (ବିକାଣ୍ଡ ଶେଷ)—7. Vitiligo; leucoderma; albino.
୮ । ଶୁକ୍ର ଗ୍ରହ (ହେ. ଶ)—8. The planet Venus.
୯ । ଶୁକ୍ଳପକ୍ଷ (ହେ. ଶ)—9. The bright fortnight of a lunar month. ୧୦ । ଚିନି (ହେ ଶ)—
10. White sugar. ୧୧ । ଧଳା କାଞ୍ଚନ ଗଛ (ହେ. ଶ)—11. The white flowered Kanchana tree. ୧୨ । ସ୍କନ୍ଦଙ୍କ ଅନୁଚର ବିଶେଷ (ହେ. ଶ)—
12. Name of one of the attendants of Skanda. ୧୩ । ଭୂର୍ଜ ପତ୍ର (ହେ. ଶ)—13. The leaves of Birch tree. ୧୪ । ଧଳା ତିଳ (ହେ. ଶ)
—14. White sesamum seed. ସ. ବିଣ. ପୁଂ—
୧ । ଶୁକ୍ଳ; ଧଳା ( ଅମର )—1. White.
(ସିତା—ସ୍ତ୍ରୀ) ୨ । (ସି ଧାତୁ=ବନ୍ଧନ କରିବା+କର୍ମ. ତ)—
ଅବସିତ; ସମାପ୍ତ; (ବିଶ୍ୱ)—2. Finished. ୩ । ଜ୍ଞାତ; ଜ୍ଞାତ (ବିଶ୍ୱ)—3. Known. ୪ । ବଦ୍ଧ (ବିଶ୍ୱ)—
4. Bound down; tied; fastened. ୫ । ଉଜ୍ଜ୍ୱଳ (ହେ. ଶ)—5. Bright. ୬ । ଚକଚକିଆ (ହେ. ଶ)—
6. Glittering; dazzling. ଦେ. ବ (ସଂ, ସୀତା ରାମ )—ସୀତାରାମର ଡାକ ନାମ—Nickname for Sitārāma.

ସିତ କଙ୍ଗୁ—ସ. ବ—ସର୍ଜ ନିର୍ଯ୍ୟାସ (ହେ· ଶ)—
Sita kangu Gum·resin.

ସିତ କଣ୍ଟା—ସ· ବ—ଶ୍ୱେତ କଣ୍ଟକାରୀ (ଶବ୍ଦ କଳ୍ପଦ୍ରୁମ) ( ଦେଖ )
Sita kantā Sweta kantakāri ( See )
(ସିତ କଣ୍ଟାରିକା—ଅନ୍ୟରୂପ)

ସିତ କଣ୍ଠ—ସ· ବ (ବହୁବ୍ରୀହି; ସିତ=ଶୁକ୍ଳ ଅଟେ କଣ୍ଠ ଯାହାର)—
Sita kantha ଦାତ୍ୟୂହ ବା ଡାହୁକ ପକ୍ଷୀ—Moor hen
Rallus Aquaticus. ସ· ବିଣ· ପୁଂ—ଶ୍ୱେତ ବର୍ଣ୍ଣ କଣ୍ଠ ବିଶିଷ୍ଟ—White-necked.

ସିତ କର—ସ· ବ (ସିତ=ଶୁକ୍ଳ ଅଟେ କର=କର ଯାହାର;
Sita kara ବହୁବ୍ରୀହି)—୧ । ଚନ୍ଦ୍ର—1. The moon. ୨ । କର୍ପୂର—2. Camphor.

ସିତ କର୍ଣ୍ଣୀ—ସ. ବ—ବାସଙ୍ଗ (ଶବ୍ଦ କଳ୍ପଦ୍ରୁମ) ( ଦେଖ )
Sita karnni Bāsanga ( See )

ସିତକାଂଶୁ—ସ· ବ—ସିତାଂଶୁ ( ଦେଖ )
Sitakāmsu Sitāmsu ( See )

ସିତ କୁଞ୍ଜର—ସ. ବ—୧ । (କର୍ମଧା) ଶ୍ୱେତ ହସ୍ତୀ—1. White
Sita kunjara elephant. ୨ । (ବହୁବ୍ରୀହି) ଇନ୍ଦ୍ର—
2. God Indra, the God of rains.
୩ । (କର୍ମଧା) ଇନ୍ଦ୍ରଙ୍କ ହସ୍ତୀ; ଐରାବତ—3. The elephant of Indra, the God of rains.

ସିତ କୁମ୍ଭୀ—ସ. ବ—ସିତ ପାଟଳା ( ଦେଖ )
Sita kumbhi Sita pātalā ( See )

ସିତ କ୍ଷାର—ସ. ବ—ସୁହାଗା ( ଦେଖ )
Sita kshāra Borax.

ସିତ ଗୁଞ୍ଜା—ସ. ବ—ଶ୍ୱେତ କାଇଞ୍ଚ (ଶବ୍ଦ କଳ୍ପଦ୍ରୁମ)—The white
Sita gunjā variety of Kāincha seeds.

ସିତ ଚିହ୍ନ—ସଂ. ବ (ବହୁବ୍ରୀହି)—ବଲ୍ଲକା ଗଡ଼; ବାଳଗଡ଼ଡ଼ା ମାଛ
Sita chihna (ଚ୍ଚାବ୍ରବଳୀ)—A sort of small scaly fresh waterfish.

ସିତଛତ୍ର—ସଂ. ବ—ରାଜଛତ୍ର (ଶବ୍ଦକୋଷ)—The umbrella
Sitachchhatra of royalty.

ସିତଛତ୍ରା(ତ୍ରୀ)—ସଂ. ବ—ଶତ ପୁଷ୍ପା; ଶଲ୍ଫ—
Sitachchhatrā(trī) Fenugreek.

ସିତଛତ୍ରିତ—ସଂ. ବଣ ପୁଂ (ସିତଛତ୍ର+ସନ୍ତ୍ୟାର୍ଥେ. ଇତ)—
Sitachchhatrita ଶ୍ୱେତ ଛତ୍ରଯୁକ୍ତ (ରାଜା)—(the king) Having a white umbrella held over him.

ସିତଚ୍ଛଦ—ସଂ. ବ (ବହୁବ୍ରୀହି; ସିତ=ଶୁକ୍ଳ ଅଟେ ଛଦ=ପକ୍ଷ
Sitachchhada ଯାହାର)—୧। ରାଜ ହଂସ (ହେମଚନ୍ଦ୍ର)—
1. Swan. ୨। ହଂସ—2. Drake. ୩। ରକ୍ତ ଶୋଭାଞ୍ଜନ (ହ୍ର. ଶ)—3. The red flowered variety of Moringa tree.

ସିତଚ୍ଛଦା—ସଂ. ବ (ବହୁବ୍ରୀହି)—ଶ୍ୱେତ ଦୁବା (ରାଜ ନର୍ଘଣ୍ଟ)—
Sitachchhadā The white Doob grass.

ସିତଜା—ସଂ. ବ—ସିତାଖଣ୍ଡ (ଦେଖ)
Sitajā Sitākhanda. (See)

ସିତତା(ତ୍ୱ)—ସଂ. ବ (ସିତ+ଭାବାର୍ଥେ. ତା; ତ୍ୱ)—ଶୁକ୍ଳତା—
Sitatā(twa) Whiteness.

ସିତ ଦର୍ଭ—ସଂ. ବ (କର୍ମଧା)—ଶ୍ୱେତକୁଶ (ରାଜନର୍ଘଣ୍ଟ)—The
Sita darbha white variety of Kuśa grass

ସିତ ଦୀଧିତି—ସଂ. ବ (ବହୁବ୍ରୀହି; ସିତ=ଶୁକ୍ଳ+ଦୀଧିତି=କିରଣ
Sita dīdhiti ଯାହାର)—ଚନ୍ଦ୍ର—The moon.

ସିତଦୀପ୍ୟ—ସଂ. ବ—ଶ୍ୱେତ ଜୀରକ (ରାଜନର୍ଘଣ୍ଟ)—The white
Sitadīpya variety of cumin seed.

ସିତଦୂର୍ବା(ର୍ବା)—ସଂ. ବ—ଶ୍ୱେତ ଦୁବା (ରତ୍ନମାଳା) (ଦେଖ)
Sita dūrbā(rbbā) Śweta dūrbā. (See)

ସିତ ଦ୍ୱିଜ—ସଂ. ବ (କର୍ମଧା)—ରାଜ ହଂସ—
Sita dwija Swan.

ସିତଦ୍ରୁ—ସଂ. ବ (କର୍ମଧା)—୧। ଶୁକ୍ଳବର୍ଣ୍ଣବିଶିଷ୍ଟ ବୃକ୍ଷ—1. A
Sitadru white tree. ୨। ମୋରଟ ବିଶେଷ; ମୁରୁଗା
(ସିତଦ୍ରୁମ—ଅନ୍ୟରୂପ) ଘାସ—2. A sort of grass; Sanserveira Zeylanica. ୩। ଅର୍ଜ୍ଜୁନ ଗଛ (ହ୍ର. ଶ)-
3. The Arjuna tree.

ସିତ ଧାତୁ—ସଂ. ବ—୧। ଶୁକ୍ଳ ଧାତୁ—1. White metal. ୨।
Sita dhātu ଖଡ଼ିମାଟି; ଖଡ଼ି (ରାଜନର୍ଘଣ୍ଟ)—2. Chalk.

ସିତ ପକ୍ଷ—ସଂ. ବ—୧। (କର୍ମଧା) ଶୁକ୍ଳ ପକ୍ଷ—1. The bright
Sita paksha fortnight of the lunar month.
୨। (ବହୁବ୍ରୀହି) ରାଜହଂସ (ଶବ୍ଦରତ୍ନାବଳୀ)—2. The swan.

ସିତପର୍ଣ୍ଣୀ—ସଂ. ବ—ଅର୍କ ପୁଷ୍ପିକା ବୃକ୍ଷ (ରତ୍ନମାଳା)—
Sitaparnnī A plant; Calotropis Gigantea.

ସିତ ପଞ୍ଚଦଶୀ—ସଂ. ବ—ପୂର୍ଣ୍ଣିମା—
Sita panchadaśī Fullmoon.

ସିତ ପାଟଳା—ସଂ. ବ—ଶ୍ୱେତପାଟଳ ଗଛ; ଶୁକ୍ଳ ପାଟଳା ବୃକ୍ଷ; ଶୁକ୍ଳ
Sita pātalā ପୁଷ୍ପଯୁକ୍ତ ପାଟଳ ଗଛ—The white-
(ସିତ ପାଟଳିକା—ଅନ୍ୟରୂପ) flowered variety of
শ্বেতপারুল Pātali tree. [ଗୁଣ—ତିକ୍ତରସ,
श्वेतपाडरी ଗୁରୁତ୍ୱ, ଉଷ୍ଣତ୍ୱ; ବାତହନ୍ତ୍ରୀ, କଫ,
ମ ଶ୍ୱେତପାଡଲ ଶ୍ରମ, ଶୋଥନାଶକତ୍ୱ ଏହାର ଗୁଣ
ସଂ. ପର୍ଯ୍ୟାୟ—ସିତକୁମ୍ଭୀ, ଅଟେ।]

ଫଲେରୁହା, ସିତାମୋଘା, କୁବେରାକ୍ଷୀ, ଶ୍ୱେତାହ୍ୱା, କାଷ୍ଠପାଟଳା, ଧବଳପାଟଳୀ ]

ସିତପୁଙ୍ଖା—ସଂ. ବ—ସିତଶାୟକା (ଦେଖ)—
Sitapunkhā Sita śāyakā (See)

ସିତପୁଷ୍ପ—ସଂ. ବ—୧। କେ ବର୍ତ୍ତି ମୁସ୍ତକ; କେଉଟିଆ ମୁଥା (ଡଲ୍ଟା-
Sita pushpa (ଧର)—1. A large-bulbed variety of grass root. ୨। ତଗର ବୃକ୍ଷ (ଶବ୍ଦରତ୍ନାବଳୀ)—2. A white-flowering plant.
୩। ଶ୍ୱେତ ରୋହିତ; ଶ୍ୱେତ ପୁଷ୍ପ ଗଛ (ରାଜନର୍ଘଣ୍ଟ)—
3. A white variety of the Suāma (a timber tree). ୪। କାଶ (ରାଜନର୍ଘଣ୍ଟ—
4. A white flowered reed. ୫। ଏକ ପ୍ରକାର ଅଖୁ (ହ୍ର. ଶ)—5. A kind of sugarcane. ୬। ଶିରସ ଗଛ (ହ୍ର. ଶ)—6. Albizza Lebbek (tree) ୭। ଖିଣ୍ଡ ଖର୍ଜ୍ଜୁର (ହ୍ର. ଶ)—7. A kind of white date (palm).

ସିତପୁଷ୍ପା—ସଂ. ବ—୧। ମଲ୍ଲିକା (ଶବ୍ଦରତ୍ନାବଳୀ)—1. Jasmine.
Sitā pushpā ୨। ବଳା; ବାଡ଼ଅଁଲା; ବଳମୂଳୀ (ହ୍ର. ଶ)—
2. Sida Cordifolia.

ସିତପୁଷ୍ପୀ—ସଂ. ବ—୧। ଶ୍ୱେତାପରାଜିତା (ରାଜନର୍ଘଣ୍ଟ)—1. The
Sita pushpī white variety of Clitoris flower.
୨। କେବର୍ତ୍ତିମୁସ୍ତକ (ହ୍ର. ଶ)—2. A variety of bulbous rooted grass. ୩। କାଶତୃଣ (ହ୍ର ଶ)
3. The Kāsa grass. ୪। ନାଗବଲ୍ଲୀ; ପାନ (ହ୍ର. ଶ)—4. The piper betel (creeper).

ସିତ ପ୍ରଭ(ରାଗ)—ସଂ. ବ (ବହୁବ୍ରୀହି, ସିତ ଅଟେ ପ୍ରଭା ଯାହାର)—
Sita prabha(rāga) ରୌପ୍ୟ - Silver ସଂ. ବଣ.—
ଶ୍ୱେତ ବର୍ଣ୍ଣ ଯୁକ୍ତ—White.

ସିତ ବରାହ(ଇତ୍ୟାଦି)—ସଂ. ବ—ଶ୍ୱେତ ବରାହ ଇତ୍ୟାଦି (ଦେଖ)—
Sita barāha(etc) Śweta barāha etc (See)

ସିତ ବର୍ଷାଭୂ—ସଂ. ବ—ଶ୍ୱେତପୁନର୍ନବା (ରାଜନର୍ଘଣ୍ଟ)—The white
Sita barshābhū variety of hogweed.

ସିତ ବଲ୍ଲରୀ—ସଂ. ବ—ବଣଜାମୁ (ବୃ. ଶ)—
Sita ballarī The wild variety of black berry.

ସିତ ବଲ୍ଲୀଜ(ମରିଚ)—ସଂ ବ—ଶ୍ୱେତ ମରିଚ (ଦେଖ)—
Sita ballīja (maricha) Śweta maricha (See)

ସିତବାଜୀ—ସଂ. ବ—(ବହୁବ୍ରୀହି, ସିତବାଜିନ୍; ୧ମା. ୧ବ)—ଅର୍ଜୁନ
Sitabājī (ବୃ. ଶ)—Arjuna.

ସିତ ବାର ବାରକ)—ସଂ. ବ—ମଦରଙ୍ଗା ଶାଗ (ବୃ. ଶ)—
Sita bāra(bāraka) Alternanthera Sessilis (potherb).

ସିତ ମଣି—ସଂ. ବ—୧ । ଚନ୍ଦ୍ରକାନ୍ତ ମଣି—1. The moon-
Sita maṇi stone. ୨ । ସିତୋପଲ; ସ୍ଫଟିକ ମଣି—
2. Crystal; quartz.

ସିତ ମାଷ—ସଂ. ବ—ରାଜମାଷ; ଏକ ପ୍ରକାର ଧଳା ବିରି—
Sita māsha A kind of Phaseolus; Brihi.

ସିତମ୍ବର—ଦେଦେ. (ଗ୍ରା) ବ (ଇଂ. ସେପ୍‌ଟେମ୍ବରର ଅଶୁଦ୍ଧ ଉଚ୍ଚାରଣ)
Sitambara ଇଂରେଜୀ ବର୍ଷର ନବମ ମାସ; ସେପ୍‌ଟେମ୍ବର
सेप्टेम्बर सितम्बर ମାସ—The month of September.
(ସିତମ୍ବ—ଅନ୍ୟରୂପ)

ସିତରଞ୍ଜ—ସଂ. ବ (ବହୁବ୍ରୀହି)—କର୍ପୂର (ବୃ. ଶ)—
Sitarañja Camphor.

ସିତରଞ୍ଜନ—ସଂ. ବ—ପୀତବର୍ଣ୍ଣ (ହେମଚନ୍ଦ୍ର)
Sitarañjana Yellow colour.

ସିତ ରଶ୍ମି—ସଂ ବ (ବହୁବ୍ରୀହି; ସିତ ଅଟେ ରଶ୍ମି ଯାହାର)—
Sita raśmi ୧ । ଚନ୍ଦ୍ର—1. The moon. ୨ । କର୍ପୂର
2. Camphor.

ସିତ ରୁଚି—ସଂ. ବ (ବହୁବ୍ରୀହି, ସିତ ଶୁକ୍ଳ ବର୍ଣ୍ଣ+ରୁଚି=କିରଣ)-
Sita ruchi ଚନ୍ଦ୍ର—The moon. [ଉ—ସବନକରେ
ମୋର ନାମଟି ମସୀର, ଜଗତରେ ମୁହିଁ ବୋଲାଏଁ
ସିତରୁଚି ।—କୃଷ୍ଣସିଂହ. ମହାଭାରତ ଭୀଷ୍ମ ।]

ସିତଶାୟକା—ସଂ. ବ—ଶ୍ୱେତ ଶରପୁଙ୍ଖା ବା ବନ ଗ୍ଲାଳ—
Sita śāyakā (ରାଜନିର୍ଘଣ୍ଟ)—The white variety of Tephrosia.

ସିତ ଶିଂଶପା—ସଂ. ବ—ଶ୍ୱେତ ଶିଂଶପା ବୃକ୍ଷ—
Sita śiṁśapā The white variety of sissoo tree.

ସିତ ଶି(ସି)ବ—ସଂ. ବ—୧ । ସୈନ୍ଧବ ଲବଣ; ସୈନ୍ଧବ (ଦେଖ)-
Sita śi(si)ba 1. A variety of salt; rock-
[ଶୀତଶିବ(ସି)ବ—ଅନ୍ୟରୂପ] salt. ୨ । ଶମୀ ବୃକ୍ଷ
(ବୃ. ଶ)—2. Acacia Suma (tree).

ସିତ ଶିମ୍ବିକ—ସଂ. ବ—ଗୋଧୂମ (ହେମଚନ୍ଦ୍ର)—
Sita śimbika Wheat.

ସିତଶୂକ—ସଂ. ବ (ବହୁବ୍ରୀହି)—ଯବ (ବୃ. ଶ)—
Sitaśūka Barley (grain).

ସିତ ଶୂରଣ—ସଂ. ବ—ବନଶୂରଣ (ରାଜନିର୍ଘଣ୍ଟ)—
Sita śūraṇa The wild varety of arum.

ସିତଶୃଙ୍ଗୀ—ସଂ. ବ [ସିତ+ଶୃଙ୍ଗ+ଇନ୍; ୧ମା ୧ବ]—ଅତିବିଷା
Sitaśrungī [ବୃ. ଶ]—Aconite.

ସିତସପ୍ତି—ସଂ. ବ (ସିତ=ଶୁକ୍ଳ ଅଟେ ସପ୍ତି=ଅଶ୍ୱ ଯାହାର; ବହୁବ୍ରୀହି)-
Sita sapti ୧ । ମଧ୍ୟମ ପାଣ୍ଡବ ଅର୍ଜୁନ—1. The third
Pāṇḍaba brother Arjjuna. ୨ । [କର୍ମଧା]
ଶ୍ୱେତ ଅଶ୍ୱ—2. White horse.

ସିତ ସର୍ଷପ—ସଂ, ବ—ଗୌର ସର୍ଷପ; ଧଳା ସୋରିଷ [ରାଜନିର୍ଘଣ୍ଟ]
Sita sarshapa The white variety of rye.

ସିତ ସାଗର[ସିନ୍ଧୁ]—ସଂ. ବ—୧ । କ୍ଷୀର ସାଗର—1. The mytho
Sita sāgara sindhu logical sea of milk.
୨ । ଗଙ୍ଗା [ବୃ.ଶ] 2. The Ganges.

ସିତ ସାର (ସାରକ)—ସଂ. ବ [ଅନ୍ୟରୂପ ଶିତସାର]—ଶାଳିଞ୍ଚ ଶାକ;
Sita sāra (sāraka) ମଦରଙ୍ଗା (ରାଜନିର୍ଘଣ୍ଟ)—A sort
of aquatic pot herb; Alteranthera Sessilis

ସିତସିଂହୀ—ସଂ. ବ—ଶ୍ୱେତ କଣ୍ଟକାରୀ (ରାଜନିର୍ଘଣ୍ଟ) (ଦେଖ)
Sitasiṁhī Śweta kaṇṭakārī (See)

ସିତା—ସଂ. ବଣ (ସିତ+ଆ)—ସିତର ସ୍ତ୍ରୀଲିଙ୍ଗ; ଶ୍ୱେତା; ଶୁକ୍ଳା—
Sitā Feminine of Sita (white). ସଂ. ବ—୧ ।
ଶ୍ୱେତ ଶର୍କରା; ଖଣ୍ଡ; ଚିନି, ନବାତ; ଶକ୍କର (ରାଜନିର୍ଘଣ୍ଟ)—
1. Bleached sugar; white sugar. [ଉ—
ମାଧୁର୍ଯ୍ୟ ଲୋଭରେ ଖାଇଲେ ସିତା—କବିସୂର୍ଯ୍ୟ. ସଙ୍ଗୀତ ।]
[ ଗୁ—ଏହା ସୁମଧୁର, ରୁଚ୍ୟ, ବାତପିତ୍ତଦାହହର,
ଶୁକ୍ରକର, ମୂର୍ଚ୍ଛାଛର୍ଦ୍ଦିଜ୍ୱର ନାଶକ ଅଟେ । ] ୨ । ମଲ୍ଲିକା
(ଶବ୍ଦରତ୍ନାବଳୀ)—2. Jasmine. ୩ । ଶ୍ୱେତ
କଣ୍ଟକାରୀ (ଦେଖ)—3. Śweta kaṇṭakārī (See)
୪ । କାଲୁଚୀ; ସୋମରାଜୀ—4. Serratula Anthelmentica ୫ । ବିଦାରୀ; ଭୂଇଁକଖାରୁ (ରାଜନିର୍ଘଣ୍ଟ)—
5. A medicinal bulbous root; Ipomoea
Digitata. ୬ । ଶ୍ୱେତଦୂର୍ବା (ରାଜନିର୍ଘଣ୍ଟ)—
6. The white doob grass. ୭ । ଚନ୍ଦ୍ରିକା;
ହାଲିମ (ରାଜନିର୍ଘଣ୍ଟ)—7. Common cress.
୮ । କୁଟୁମ୍ବିନୀ ଗୁଳ୍ମ (ରାଜନିର୍ଘଣ୍ଟ)—8. A kind of
plant. ୯ । ମଦ୍ୟ (ରାଜନିର୍ଘଣ୍ଟ)—9. Wine.
୧୦ । ପିତ୍ତଳ; ପିତ୍ତଳ (ରାଜନିର୍ଘଣ୍ଟ)—10 Brass
୧୧ । ଜାମ୍ବୁମାଳୀ; ଉଦଉଦଳଆ ନାମକ ଗୁଳ୍ମ (ରାଜନିର୍ଘଣ୍ଟ)—11. A plant; Thalicrotnm Faliolosum. ୧୨ । ଦୋଜଗା; ମୁରୁଗା ଘାସ; ମୁର୍ବା (ରାଜନିର୍ଘଣ୍ଟ)—12. A kind of grass. ୧୩ । ପର୍ବତ
ଜାତ ଅପରାଜିତା (ରତ୍ନମାଳା)—13. The clitoris
flower growing in the mountain. ୧୪ ।
ଚନ୍ଦ୍ରିକା; (ଜ୍ୟୋତ୍ସ୍ନା ବୃ. ଶ)—14. Moonlight.

୧୫ । ଶୁକ୍ଳପକ୍ଷ (ବି. ଶ)—15 The bright lunar fortnight. ୧୬ । ଅର୍କପୁଷ୍ପୀ (ବି. ଶ)—16. Arkapushpi ( See ). ୧୭ । ବଚ୍ଚ ( ବି. ଶ )—17. Acorus Calamus; the sweet flag (root). ୧୮ । ଶ୍ୱେତଲୀ ପିପ୍ପଳୀ ( ବି. ଶ )—18. A kind of white long pepper. ୧୯ । ଅମ୍ରାତକ; ଅମ୍ବଡ଼ା (ବି. ଶ)—19. Hogplum. ୨୦। ଗୋରୋଚନା (ବି. ଶ)—20. A yellow pigment got from dead kine ୨୧ । ରଜତ; ରୁପା ( ବି. ଶ )—21. Silver. ୨୨ । ଶ୍ୱେତପୁନର୍ଣ୍ଣବା ( ବି. ଶ )—22. The white variety of hogweed. ୨୩ । ଶ୍ୱେତ ପାଟଳ ବୃକ୍ଷ ( ବି. ଶ )—23. The white flowered Stereospermum Suaveolens tree. ୨୪ । ଧଳା ଶିମ୍ବ ( ବି. )—24. White bean ଗ୍ରାଦେ. ( ବଲଙ୍ଗିର ପାଟଣା ) ବି—ପଖାଳ ଭାତ—Watered boiled rice.

ସିତାଂଶୁ—ସଂ. ବି ( ବହୁବ୍ରୀହି; ସିତ ଅଟେ ଅଂଶୁ ଯାହାର )—୧ । Sitāmsu ଚନ୍ଦ୍ର—1. The moon. ୨ । କର୍ପୂର—2. Camphor.

ସିତାଂଶୁ ତୈଳ—ସଂ. ବି—କର୍ପୂର ତୈଳ ( ଶବ୍ଦକଳ୍ପଦ୍ରୁମ )— Sitāmsu taila Oil of camphor.

ସିତାଂଶୁ ମୁଖ—ସଂ. ବଣ. ପୁଂ ( ବହୁବ୍ରୀହି; ସିତାଂଶୁ ପରି ମୁଖ ଯାହାର ) Sitāmsu mukha —ଚନ୍ଦ୍ରମୁଖ; ଚନ୍ଦ୍ର ପରି ସୁନ୍ଦର ମୁଖବିଶିଷ୍ଟ (ସିତାଂଶୁ ମୁଖୀ—ସ୍ତ୍ରୀ) —Having the face as beautiful as the moon.

ସିତା ଖଣ୍ଡ—ସଂ. ବି—୧ । ମଧୁଜାତ ଶର୍କରା—1. Sugar from Sitā khanda honey. [ ବି—ଏଥିର ଗୁଣ— ସ. ପର୍ଯ୍ୟାୟ—ଖଣ୍ଡକ, ସିତଜା, ଶର୍କରଜା, ମାଧବୀ, ମଧୁଶର୍କରା, ମାକ୍ଷିକଶର୍କରା ମଧୁରତ୍ୱ, ଛର୍ଦ୍ଦି, କଫ, ତୃଷା, କୁଷ୍ଠ, ଶ୍ୱାସ,ହିକ୍କା,ପିତ୍ତଦୋଷ ନାଶକତ୍ୱ ।] ୨ । ମିଶ୍ରି ( ବି. ଶ )— 2. Sugar candy

ସିତାଗ୍ର—ସଂ. ବି (ବହୁବ୍ରୀହି; ସିତ+ଅଗ୍ର)—କଣ୍ଟକ (ହାରାବଳୀ)— Sitāgra Thorn.

ସିତାଙ୍କ—ସ. ବି—ବାଲୁକାଗଡ଼ ମତ୍ସ୍ୟ; ବାଲିଗରଡ଼ା ମାଛ (ହାରାବଳୀ) Sitānka —A species of small scaly fresh-water fish.

ସିତାଙ୍ଗ—ସଂ. ବି—ଶ୍ୱେତ ରୋହିତ, ଧଳା ସୁଅମ କାଠ (ଶବ୍ଦକଳ୍ପଦ୍ରୁମ)— Sitānga A white species of Suāma tree.

ସିତାଜାଜୀ—ସଂ. ବି—ଶ୍ୱେତ ଜୀରକ ( ଶବ୍ଦକଳ୍ପଦ୍ରୁମ )— Sitājāji The white Jirā.

ସିତାଦି—ସଂ. ବି—୧ । ଗୁଡ଼ ( ଶବ୍ଦକଳ୍ପଦ୍ରୁମ )—1. Molasses Sitādi ୨ । ଖଣ୍ଡ; ଚିନି—2. Whitened sugar; bleached sugar.

ସିତାନନ—ସଂ. ବଣ. ପୁଂ ( ବହୁବ୍ରୀହି )—ଶୁକ୍ଳ ମୁଖଯୁକ୍ତ—Having Sitānana a white face. ସଂ. ବି—୧ । ଗରୁଡ଼ [ ଶବ୍ଦକଳ୍ପଦ୍ରୁମ ]—1. The mythological [ ସିତାନନା—ସ୍ତ୍ରୀ ] king of birds. ୨ । ବେଲ ଗଛ [ ବି. ଶ ]— 2. Aegle Marmalus ( tree ).

ସିତାପାଙ୍ଗ—ସଂ. ବି ( ବହୁବ୍ରୀହି; ସିତ=ଶୁକ୍ଳବର୍ଣ୍ଣ+ଅପାଙ୍ଗ=ଚକ୍ଷୁର Sitāpānga ପ୍ରାନ୍ତଭାଗ )—ମୟୂର—Peacock.

ସିତା ଫଳ—ଗ୍ରାଦେ ( ଗଞ୍ଜାମ, ସୁମ୍ବଲପୁର )—ଆତ—Custard Sitā phala apple; Anona Squamosa. আতা सीताफल, शरीफा

ସିତା(ତି)ବର—ସଂ. ବି—ସୁନିଷଣ୍ଣକ; ଶାକବିଶେଷ; ସୁନୁସୁନିଆ ଶାଗ— Sitā(ti)bara Marselia Quadrifoliata. ସ ପର୍ଯ୍ୟାୟ—ସୁଚ୍ୟାହ୍ୱ, ସୁତପତ୍ରକ, ଶ୍ରୀବାରକ, ଶିଖୀ, ବଦ୍ରୁ, ସ୍ୱସ୍ତିକ, ସୁନିଷଣ୍ଣକ, କୁରୁଟ, କୁକ୍କୁଟ, ସୂଚୀଦଳ, ଶୈତାବର, ମେଧାକୃତ, ଗ୍ରାହକ, ଚତୁଷ୍ପତ୍ରୀ, ସିତିବରକ [ ବି—ଏହା ସଗ୍ରାହୀ, କଷାୟ, ଉଷ୍ଣ, ତ୍ରିଦୋଷନାଶୀ, ମେଧା ଓ ରୁଚିପ୍ରଦ, ରସାୟନ ଓ ନିଦ୍ରାକାରୀ ଅଟେ । ଏହାର ପତ୍ର ଚତୁର୍ଦଳ ଓ ପତ୍ରର ଭେଳ ଲମ୍ବ ପରି ସରୁ । ଏହା ଜଳାଭୂମିରେ ଜନ୍ମେ । ] সুসনে শাক सुसनी साक

ସିତାବରୀ—ସଂ. ବି—ବାକୁଚୀ; ସୋମରାଜୀ ( ଶବ୍ଦକଳ୍ପଦ୍ରୁମ )— Sitābari Serratula Anthelmintica (herb and seed ).

ସିତାବ୍ଜ—ସଂ. ବି—ଶ୍ୱେତ ପଦ୍ମ— Sitābja White lotus.

ସିତାଭ—ସଂ ବଣ. ପୁଂ (ସିତ+ଆଭା; ବହୁବ୍ରୀହି)—ଶୁକ୍ଳ ଆଭାଯୁକ୍ତ— Sitābha Having a white lustre. ସଂ. ବି—କର୍ପୂର— (ସିତାଭା—ସ୍ତ୍ରୀ) Camphor ଚନ୍ଦ୍ର—The moon.

ସିତାଭା—ସଂ ବି—ତକ୍ରାହ୍ୱାକ୍ଷୁପ (ଶବ୍ଦକଳ୍ପଦ୍ରୁମ) — Sitābhā A kind of medicinal plant.

ସିତା ଭୋଗ—ଦେ. ବି (ସ. ସିତା=ଶୁକ୍ଳ ବା ଚିନି+ଭୋଗ)— Sitā bhoga ୧ । ଗୁଜୁଳି ଅଟା, ମଇଦା, କ୍ଷୀର ଓ ଛେନା ଦ୍ୱାରା সীতাভোগ ପ୍ରସ୍ତୁତ ଘୃତପକ୍ୱ ମିଷ୍ଟାନ୍ନବିଶେଷ—1. A kind of सितामीग sweetmeat. [ ବି—ସିତାଭୋଗ ଦେଖିବାକୁ ଧଳା ଗୁଡ଼ପରି । ଗୁଜୁଳିଅଟା, ମଇଦା, କ୍ଷୀରଛେନା ଓ ଘନ ଅଉଟା ଦୁଧ ବା ରାବଡ଼ିକୁ ଏକତ୍ର ଚକଟି ତାକୁ ପିଠଉପରି କରି ଜାଲିଚାଟୁର ଉଚ୍ଚବାଟେ ଘିଅ ଉପରେ କସିଥିବା ଘିଅ କରେଇରେ ଘାଞ୍ଚ ଏହା ତିଆରି କରାଯାଏ । ବର୍ତ୍ତମାନର ସିତାଭୋଗ ପ୍ରସିଦ୍ଧ ମିଷ୍ଟାନ୍ନ ଅଟେ । ଅଧୁନା ଏହା କଟକରେ ଓ ଅନ୍ୟାନ୍ୟ ସ୍ଥାନରେ ପ୍ରସ୍ତୁତ ହେଉଅଛି । ] ୨ । ଏକପ୍ରକାର ସରୁ ଧାନ—2. Name of a species of fine paddy. [ ବି—ଏଥିର ଗୁଜୁଳି ବାସନାଯୁକ୍ତ ହୁଏ । ]

ସିତାଭ୍ର—ସଂ. ବି—୧ । କର୍ପୂର (ଅମର)—1. Camphor. ୨ ।
Sitābhra ଧଳା ମେଘ (ହ. ଶ)—2. White cloud.
(ସିତାଭ୍ରକ—ଅନ୍ୟରୂପ)

ସିତାମ୍ବର—ସ. ବି—୧ । (କର୍ମଧା) ଶୁକ୍ଳ ବସ୍ତ୍ର—1. White
Sitāmbara cloth. ୨ । (ବହୁବ୍ରୀହି) ଜୈନମାନଙ୍କ ଶ୍ୱେତାମ୍ବର ସମ୍ପ୍ରଦାୟ—2. A sect of the Jainas.
ସ. ବିଣ. ପୁଂ—ଶୁକ୍ଳ ବସ୍ତ୍ର ପରିଧାନକାରୀ (ବ୍ୟକ୍ତି)—
[ସିତାମ୍ବରା—ସ୍ତ୍ରୀ. ବିଣ] Wearing white cloth.

ସିତାମ୍ଭୋଜ—ସଂ ବି (କର୍ମଧା, ସିତ+ଅମ୍ଭୋଜ)—ଶ୍ୱେତପଦ୍ମ—
Sitāmbhoja White lotus.

ସିତାର(ରା)—ବୈଦେ. ବି [ଫା. ସେତାର୍, ସିତାର୍ (ସେ, ସି= ତିନି+ତାର); ବୋଧହୁଏ ପୂର୍ବେ ଏଥିରେ ୩ଟି ତାର ଥିଲା; ସ. ହିନ୍ଦୀ]—ଲାଉଭୁମ୍ବୀ ଲାଗିଥିବା ଏବଂ ଲୁହାର ୧ ଗୋଟି ଓ ପିତଳର ୪ଟି ବା ୬ଟି, ଏପରି ମୋଟରେ ୫ଟି ବା ୭ଟି ତାରଯୁକ୍ତ ବାଦ୍ୟଯନ୍ତ୍ର ବିଶେଷ—
Sitāra(rā) / ସେତାର / सितार
Guitar [ବି—ଲାଉ ଭୁମ୍ବୀର ପାଶାକାର ଅର୍ଦ୍ଧାଂଶ ଉପରେ ପଟା ଛାଉଣି କରି ତହିଁରେ ଗୋଟିଏ ଫୋପଲ ଦଣ୍ଡା ଲଗାଯାଏ; ସେହି ଦଣ୍ଡାର ଏକ ମୁଣ୍ଡରେ କଣାମାନ କରି ସେ କଣାମାନଙ୍କରେ କାଠର ଖିଲମାନ ଖୋଞ୍ଚାଯାଏ । ଭୁମ୍ବୀର ଯେଉଁ ମୁଣ୍ଡରେ ଦଣ୍ଡ ଲାଗିଥାଏ ତହିଁର ବିପରୀତ ମୁଣ୍ଡରେ ଗୋଟିଏ ଖିଲମାର ସେ ଖିଲରେ ତାରଗୁଡ଼ିକର ଗୋଟିଏ ମୁଣ୍ଡ ବନ୍ଧାଯାଏ ଓ ସେ ତାରମାନଙ୍କୁ ଦଣ୍ଡର ଉପରେ ଲମ୍ବ ଭାବରେ ନେଇ ଦଣ୍ଡର ଅନ୍ୟ ମୁଣ୍ଡର ଛିଦ୍ରମାନଙ୍କରେ ଖୋଞ୍ଚାଥିବା ଖିଲ-ମାନଙ୍କ ଦେହରେ ବାନ୍ଧିବାକୁ ହୁଏ ଓ ଉକ୍ତ ଖିଲମାନଙ୍କ ଦ୍ୱାରା ଉକ୍ତ ତାରମାନଙ୍କୁ ଢିଲାଯାଏ ବା ଟାଣଗୁଳା କରାଯାଏ । ଦଣ୍ଡର ଅଗ୍ର ଭାଗରେ ଧାତୁର ଖଣ୍ଡିଏ ପରଦା ବା ଘାଟି ବନ୍ଧାଯାଏ । ଡାହାଣ ହାତର ତର୍ଜନୀ ଅଙ୍ଗୁଠି ଦ୍ୱାରା ତାର-ମାନଙ୍କୁ ଧ୍ୱନିତ କରାଯାଏ ଓ ବାଁ ହାତ ଦ୍ୱାରା ଦଣ୍ଡକୁ ମୁଠାଇ ଧରି ବାଁ ହାତର ତର୍ଜନୀଅଙ୍ଗୁଠି ଦ୍ୱାରା ତାରକୁ ଉକ୍ତ ପରଦା ବା ଘାଟ (ସଂ. ଘଟ୍ଟ)ମାନଙ୍କ ଉପରେ ଚିପିବାକୁ ଓ ଛାଡ଼ିଦେବାକୁ ହୁଏ ଓ ପରଦାମାନଙ୍କ ଉପରେ ବାଁ ହାତର ତର୍ଜନୀଅଙ୍ଗୁଠିକୁ ଉପରକୁ ବା ତଳଆଡ଼କୁ ଚଳାଇଲେ ଭିନ୍ନ ଭିନ୍ନ ସ୍ୱର ବାହାରେ । ଲୁହା ତାର ଦ୍ୱାରା ନିର୍ମିତ 'ମିଜରାବ୍'କୁ ଡାହାଣ ହାତର ତର୍ଜନୀଅଙ୍ଗୁଠିରେ ଟୋପିପରି ପିନ୍ଧି ଏହି ତାରମାନଙ୍କୁ ବଜାଇବାକୁ ହୁଏ ।

ଲାଉର ଖୋଳର ଅର୍ଦ୍ଧାଂଶକୁ ଭୁମ୍ବ, ଭୁମ୍ବା ବା ଭୁମ୍ବୀ (ସଂ. ତୁମ୍ବ) କୋହାଯାଏ । ତୁମ୍ବ ଉପରେ ଛାଉଣି ହୋଇ ଥିବା ପତଳା କାଠର ପଟାକୁ 'ତବଲି' କହନ୍ତି । ତବଲି ଓ ଭୁମ୍ବୀର ଗୋଟିଏ ପାଖରେ ଗୋଟିଏ 'ଖିଲ (ପଙ୍କ୍ତି)ରେ ତାରମାନଙ୍କୁ ଗଣ୍ଠାଇ ରଖି ତବଲିର କେନ୍ଦ୍ରରେ ଦୁଇଟି ଗୋଡ଼ ଥିବା ହାଡ଼ର ବା ହାତୀଦାନ୍ତର ଘୋଡ଼ଅ (ସଉଅର, ଚଉକୀ, ସବାର) ର ଉପର ଦେଇ ତାରମାନଙ୍କୁ ଟାଣି କରି ଦଣ୍ଡର ଶେଷ ଭାଗରେ ଅଗ୍ର ଭାଗରେ ସଂଲଗ୍ନ ୨ଟି ହାଡ଼ ବା ହାତୀଦାନ୍ତର ମଗରମୁହାଁ ପିଢ଼ା [ଅଢ଼ ବା ଅରଣୀ; ସଂ. ଅଳ] ଉପର ବାଟେ ନେଇ ତାରମାନଙ୍କୁ ଦଣ୍ଡାର ମୁଣ୍ଡରେ ଥିବା କାଠ ଖିଲ [କାନ; ସଂ. କର୍ଣ୍ଣ] ରେ ଗୁଡ଼ାଇବାକୁ ହୁଏ ।

ପ୍ରଥମ ତାର ଇସ୍ପାତର । ଏହାକୁ 'ବାଜ୍' 'ପକ୍କା' ବା 'ନାୟକୀ' ତାର ବୋଲାଯାଏ । ଏହି ତାରକୁ ଡାହାଣ ହାତରେ ମଜରବ୍ ଦ୍ୱାରା ବଜାଇ ବାଁ ହାତର ଅଙ୍ଗୁଠି-ମାନଙ୍କ ଦ୍ୱାରା ଘାଟ ବା ପରଦା ଉପରେ ଘଷି ସ୍ୱରକୁ ଉପକମ୍ପିତ କରାଯାଏ । ଅନ୍ୟ ପିତଳ ତାରଗୁଡ଼ିକରେ କେବଳ ମଜରବ୍‌କୁ ଅଘାତ କରିବାକୁ ହୁଏ । ୨ୟ ଓ ୩ୟ ତାରକୁ 'ଖରଜ'ର ଯୋଡ଼ି, ୪ର୍ଥ ଲୁହାର ତାରକୁ 'ପଞ୍ଚମ' ଓ ୫ମ ତାରକୁ 'ଖରଜ' ବୋଲାଯାଏ । ଏହି ୫ଟି ତାର ବ୍ୟତୀତ ୨ଟି ଛୋଟ ଲୁହା ତାରକୁ 'ତରଫ୍ ତାର' ବା 'ଚିକାରୀ' କୋହଯାଏ । 'ନାୟକୀ' ତାରର ସ୍ୱରକୁ ଉଚ୍ଚମିତ କରିବା ପାଇଁ ତାରର ମୁଣ୍ଡ ଅର୍ଥାତ୍ ସବାର ଓ ପଙ୍କ୍ତିର ମଧ୍ୟରେ ଥିବା ଅଂଶରେ କାଚର ମାଳି ବା ଗୋଲି ବା ଛୋଟ କଉଡ଼ି [ମାନ୍ଜୀ] ଲଗା ଯାଇଥାଏ ।

ପୂର୍ବେ ଓଡ଼ିଶା ଗଡ଼ଜାତର କେନ୍ଦୁଝରରେ ସିତାରର ଉତ୍କୃଷ୍ଟ ତାର ପ୍ରସ୍ତୁତ ହେଉଥିଲା । ବର୍ତ୍ତମାନ ଯୁକ୍ତପ୍ରଦେଶର ବଙ୍ଗଲଣ୍ଡରୁ ସିତାର ପାଇଁ ଉତ୍କୃଷ୍ଟ ତାର ଆସେ ।]

ସିତାରୀ—ଦେଶ. ବି—ସିତାର ବଜାଇବାରେ ଦକ୍ଷ ବ୍ୟକ୍ତି—
Sitāri A person who can play on guitar.
[ସିତାରବାଜ୍, ସିତାରିଆ—ଅନ୍ୟରୂପ]
ସେତାରୀ सितारी, सितारबाज

ସିତାର୍ଜ(ର୍ଜ୍ଜ)କ—ସଂ, ବି—ଶ୍ୱେତ ତୁଳସୀ—The white variety
Sitārja(rjja)ka of Basil plant. [ବି—ଏହା କଟୁ, ଉଷ୍ଣ, କଫବାତ ଓ ନେତ୍ର ରୋଗର ନାଶକ, ରୁଚ୍ୟ ଓ ସୁଖପ୍ରସବକାରକ ଅଟେ ।]
ସଂ. ପର୍ଯ୍ୟାୟ—ବୈକୁଣ୍ଠ, କଠଞ୍ଜର, କୁଠେରକ, ଜମ୍ଭୀର, ଗନ୍ଧବହଳ, ସୁମୁଖ, କଟୁପତ୍ରକ ।
ଶ୍ୱେତ ତୁଳସୀ सफेद आजबला
ମ. ପାଂଢ଼ରୀ ଆଜବଲା

ସିତାଳକ—ସଂ. ବି—ଶ୍ୱେତ ଅର୍କ (ଭୂରାଜନିର୍ଘଣ୍ଟ)—
Sitālaka The white variety of Calotropis Gigantea plant.

ସିତା ଲତା—ସଂ. ବି—ଶ୍ୱେତଦୁବ୍ୱା (ରତ୍ନମାଳା)—
Sitālatā The white Doob grass.

ସିତାଳିକା—ସଂ. ବି—ଶୁକ୍ତି; ସିପ (ହ. ଶ)
Sitālikā Oyster shell.

ସିତାଶ୍ମା—ସଂ. ବି (ସିତ+ଅଶ୍ମନ୍=ପଥର; ମୋ. ୧ବ)—ଚନ୍ଦ୍ରକାନ୍ତ ମଣି—A gem; the moon-stone.
Sitāśmā

ସିତାଶ୍ୱ—ସଂ. ବି—୧ । ( କର୍ମଧା ) ଧଳା ଘୋଡ଼ା—1. White
Sitāswa horse. ୨ । ( ବହୁବ୍ରୀହି ) ଅର୍ଜୁନ—
2. The 3rd Pāṇḍaba brother. ୩ । (ବହୁବ୍ରୀହି)
ଚନ୍ଦ୍ରମା (ହ୍ରୁ. ଶ)—3. Moon.

ସିତାସିତ—ସଂ. ବିଣ ( ସିତ+ଅସିତ )—ଶୁକ୍ଳ ଓ କୃଷ୍ଣ—White
Sitāsita and black. ସଂ. ବି—୧ । ବଳରାମ; ବଳଦେବ—
1. The brother of Srikṛushṇa. ୨ ।
( ଜ୍ୟୋତିଷ ) ଶୁକ୍ର ଗ୍ରହ ସହିତ ଶନି ଗ୍ରହ—
2. The planet Venus with Saturn.
୩ । ଗଙ୍ଗା ଓ ଯମୁନା ( ହ୍ରୁ. ଶ )—3. The Ganges
and the Jamuna rivers.

ସିତାହ୍ୱୟ—ସଂ. ବି—୧ । ସଜନା ( ରାଜନିର୍ଘଣ୍ଟ )—
Sitāhwaya 1. The horse radish.
୨ । ଶ୍ୱେତ ରୋହିତ; ଧଳା ସୁଅନ୍ନ ଗଛ (ରାଜନିର୍ଘଣ୍ଟ)—
2. A timber tree. ୩ । ଧଳା ସଜନା (ହ୍ରୁ. ଶ)
3. The white flowered Moringa. ୪ । ଧଳା
ତୁଳସୀ (ହ୍ରୁ. ଶ)—4. The white Basil plant.

ସିତି—ସଂ. ବିଣ ( ସି ଧାତୁ=ବନ୍ଧନ କରିବା+କର୍ତ୍ତୃ. ତି; ଅନ୍ୟରୂପ
Siti ଶିତି )—୧ । ଶୁକ୍ଳ ( ରମାନାଥ )—
1. White. ୨ । କୃଷ୍ଣ; କଳା [ ରମାନାଥ ]—
2. Black. ୩ । ନୀଳ—3. Blue.

ସିତିକଣ୍ଠ—ସଂ. ବି—ଶିତିକଣ୍ଠ; ମହାଦେବ [ଶବ୍ଦକଳ୍ପଦ୍ରୁମ]—
Sitikaṇṭha God Siba.

ସିତିକାର—ଗ୍ରା. ବି [ ସଂ. ସୀତ୍କାର ]—ସୀତ୍କାର [ ଦେଖ ]—
Sitikāra Sīt-kāra (See). [ ଉ—କହେ
सीत्कार सिसकारी ଉପେନ୍ଦ୍ର ସିତିକାରେ କହେ ତୁମ୍ଭି
ପଡି ମୁଖେ ବୋଲେ ସାଡି ତୋ ଏ ନା—ଭଞ୍ଜ
ରସପଞ୍ଚକ ।]

ସିତିବାର(ବାରକ)—ସଂ. ବି—ସିତାବର [ଦେଖ]
Sitibāra(bāraka) Sitābara (See)

ସିତିବାସ—ସଂ. ବି—ବଳଦେବ [ଶବ୍ଦକଳ୍ପଦ୍ରୁମ]—
Sitibāsa Lord Baladeba.

ସିତିମା—ସଂ.ବି [ସିତ+ଭାବେ ଇମନ୍; ୧ମା• ୧ବ]—୧। ଶୁକ୍ଳତା—
Sitimā 1. Whiteness. ୨ । କୃଷ୍ଣତା—
2. Blackness.

ସିତିଲିଆ—ପ୍ରାଦେ [ ବାଲେଶ୍ୱରପାଟଣା ] ବି—ଓଷ୍ଠ ଘାଆ—
Sitiliā Eruptions or sores in the mouth
or on the lips.

ସିତିଲି ପଶିବା—ପ୍ରାଦେ [ ବାଲେଶ୍ୱରପାଟଣା ] କ୍ରି—ସନ୍ତେଇବା;
Sitili pasibā ଅକୁହେବା—To be damp.

ସିତୁ—ଦେ. ବି (ନାମ) ( ଅଦରାର୍ଥକ )—'ସୀତାରାମ'ର ଡାକନାମ—
Situ The name for calling 'sitārāma'
(ସିତୁଆ— ଅନାଦରାର୍ଥ ରୂପ)

ସିତେକ୍ଷୁ—ସଂ. ବି (ସିତ+ଇକ୍ଷୁ)—ଶ୍ୱେତେକ୍ଷୁ; ଧଳା ଅଖୁ—
Sitekshu White sugarcane.

ସିତେତର—ସଂ.ବି (୫ମୀ ତତ୍; ସିତ+ଇତର) ୧ । ଶ୍ୟାମଶାଳ; କୁଲତ୍ଥ
Sitetara 1. A cereal; horse-gram.
୨ । ଶୁକ୍ଳେତର ବର୍ଣ୍ଣ—2. Any colour other
than white. ସଂ. ବିଣ—୧ । କୃଷ୍ଣବର୍ଣ୍ଣଯୁକ୍ତ;
କଳା—1. Black. ୨ । ନୀଳ (ହ୍ରୁ. ଶ); ନେଳି—
2. Blue.

ସିତେତର ଗତି—ସଂ. ବି—କୃଷ୍ଣବର୍ତ୍ମା; ଅଗ୍ନି (ହଳାୟୁଧ)—
Sitetara gati Fire.

ସିତୋଦର—ସଂ. ବି (ବହୁବ୍ରୀହି; ସିତ=ଶ୍ୱେତ+ଉଦର ଯାହାର)—
Sitodara କୁବେର ( ହେମଚନ୍ଦ୍ର )—
The God of wealth.

ସିତୋଦ୍ଭବ—ସଂ. ବି—ଶ୍ୱେତ ଚନ୍ଦନ ( ଶବ୍ଦରତ୍ନାବଳୀ )—
Sitodbhaba The white sandal.
ସଂ. ବିଣ—ଶର୍କରାରୁ ଜାତ—Produced from
sugar.

ସିତୋପଳ—ସଂ ବି (ସିତ+ଉପଳ)—୧ । ଖଡ଼ିମାଟି; ଖଡ଼ (ହିକାଣ୍ଡ-
Sitopala ଶେଷ)—1. Chalk. ୨ । ସ୍ଫଟିକ
(ରାଜନିର୍ଘଣ୍ଟ)—2. Quartz.

ସିତୋପଳା—ସଂ ବି—୧ । ଶର୍କରା ( ହେମଚନ୍ଦ୍ର )—1. Sugar.
Sitopalā ୨ । ମିଶ୍ରି (ହ୍ରୁ• ଶ)—2. Sugarcandy.

ସିଦ(ଦା,ଦି,ଦୁ,ଧ,ଧା,ଧି,ଧୁ)—ଗ୍ରା. ବି ( ନାମ )—ସିଦ୍ଧନାଥ ବା
Sida(dā,di,du,dha,dhā,dhi,dhu) ସିଦ୍ଧେଶ୍ୱରର ଡାକନାମ-
[ସିଦ(ଧି)ଆ, ସିଦେ(ଧେ)ଇ—ଅନ୍ୟରୂପ] Names for call-
ing Siddheswara.

ସିଦ(ଧ)ଶର—ଗ୍ରା. ବି—ସିଦ୍ଧେଶ୍ୱରର ଡାକନାମ—
Sida(dha)sara Name for calling Sidheswara.

ସିଦା(ଧା)—ଦେ. ବି (ସଂ ସିଦ୍ଧ; ଯାହା ସିଦ୍ଧ କରାଯିବ )—କୌଣସି
Sidā(dhā) ଅଭ୍ୟାଗତ ବ୍ୟକ୍ତିଙ୍କ ଭୋଜନ ନିମିତ୍ତ ତାଙ୍କ
सिधा सिधा ନିକଟକୁ ପ୍ରେରିତ ଡାଲି ଚାଉଳ
ଆଦି ରନ୍ଧନ ସାମଗ୍ରୀର ସମ୍ଭାର; ଅମାନ୍ତି; ଅସିଦ୍ଧ ଖାଦ୍ୟ-
A tray of victuals; uncooked victuals
सिधे सीधा sent to a guest.
ଦେ• ବିଣ (ସଂ ଶୁଦ୍ଧ)—୧ । ସଳଖ—1. Straight.
୨ । ଅମାୟିକ; ସରଳ; ନିଷ୍କପଟ—2. Straight;
simple. ୩ । ପ୍ରହାର ବା ଦଣ୍ଡାଦ୍ୱାରା ଅନୁଗତ—
3. Brought under control.

ସିଦା(ଦେ)ଇବା—ଦେ• କ୍ରି—ସିଧାଇବା (ଦେଖ)
Sidā(de)ibā Sidhāibā (See)

ସିଦା ସଞ୍ଚା—ଦେ. ବି (ଏକାର୍ଥକ ଶବ୍ଦଦ୍ୱୟ)—ସିଦା [ଦେଖ]
Sidā sanchā Sidā (See)
सिधापत्र सीधासामग्री

**ସିଦା ସାମଗ୍ରୀ**—ଦେ. ବି—ରନ୍ଧାଇବାପାଇଁ ଅଭ୍ୟାଗତଙ୍କୁ ଦିଆଯିବା
Sidā sāmagrī ଦ୍ରବ୍ୟମାନ—Uncooked victuals
सिधासामग्री सिधासामग्री sent to a guest.

**ସିଦି**—ଗ୍ରା. ବି (ସଂ ସିଦ୍ଧି)—ସିଦ୍ଧି (ଦେଖ)
Sidi Siddhi (See)
सिधि सिद्धी

**ସିଦୋ**—ଗ୍ରାଦେ (ବଲାଙ୍ଗିରପାଟଣା) ବି—ସୁଯୋଗ; ସୁବିଧା—
Sido Opportunity; chance.

**ସିଦ୍ଧ**—ସଂ ବିଣ [ସିଧ୍ ଧାତୁ+କର୍ମ ତ]—୧। ଅଗ୍ନି ଉପରେ ପାକ
Siddha କରି ଯାଇଥିବା; ପକ୍ୱ; ସିଝା ଯାଇଥିବା—1. Boiled over fire. ୨। ରନ୍ଧା ଯାଇଥିବା; ପକ୍ୱ—2. Cooked. ୩। ପ୍ରସିଦ୍ଧ—3. Famous; celebrated. ( ଉ—ବୋଧହୋଏ ଏ ସିଦ୍ଧ; ଧରିବଧିଲେ ସିଦ୍ଧ, ବୋଧ ଦେଇଣ ଗଲ ସେ—ଭଞ୍ଜ ବୈଦେହୀଶବିଳାସ । ) ୪। ସମାହୃତ; କୃତକୃତ୍ୟ; ସମ୍ପାଦିତ—4. Accomplished; effected. ୫। ପ୍ରତିପାଦିତ; ତର୍କ ବା ପ୍ରମାଣାଦି ଦ୍ୱାରା ନିର୍ଣ୍ଣିତ—5. Established by argument, reasoning or proof. ୬। ପ୍ରମାଣୀକୃତ—6. Proved; demonstrated. ୭। ଫଳିତ; ସଫଳ; ଉପଲବ୍ଧ—7. Solved; fulfilled. ୮। ନିତ୍ୟ—8. Eternal; permanent. ୯। ମୁକ୍ତ—9. Released. ୧୦। ସିଦ୍ଧିବିଶିଷ୍ଟ—10. Blessed with success; successful. ୧୧। ମନ୍ତ୍ରସିଦ୍ଧିଯୁକ୍ତ—11. Accomplished in mystic formulae. ୧୨। ପରିଶୋଧିତ—12. Refined. ୧୩। ନିପୁଣ; ପାରଦର୍ଶୀ—13. Expert; skilled. ୧୪। ଯୋଗ ସାଧନରେ ବା ତପସ୍ୟାରେ ସିଦ୍ଧିପ୍ରାପ୍ତ—14. One who has attained success in Joga or penance. ୧୫। ଲକ୍ଷ୍ୟରେ ଉପସ୍ଥିତ—15. Arrived at one's aim. ୧୬। ମୋକ୍ଷର ଅଧିକାରୀ (ହି. ଶ)—16. Deserving beatitude. ୧୭। ଫଳରେ ଲାଗିଥିବା—17. Come to pass; which has borne fruit. ୧୮। ନିର୍ଣ୍ଣୀତ—18. Settled. ୧୯। ଶୋଧିତ (ଋଣ) (ହି. ଶ)—19. Repaid; liquidated; cleared off. ୨୦। ମୂଳଗ—20. Inherent. [ ଯଥା—ସ୍ୱଭାବସିଦ୍ଧ ଗୁଣ । ] ସ. ବି—୧। ସୈନ୍ଧବ ଲବଣ ( ସଜ୍ଜନସର୍ବସ୍ୱ )—1. A kind of salt. ୨। କୃଷ୍ଣ ଧୁତୁରା ( ସଜ୍ଜନସର୍ବସ୍ୱ )—2. The black variety of Datura plant. ୩। ଗୁଡ଼ ( ସଜ୍ଜନସର୍ବସ୍ୱ )—3. Molasses. ୪। ବ୍ୟବହାର ( ଶବ୍ଦରତ୍ନାବଳୀ ); ମକଦ୍ଦମା (ହି. ଶ)—4. Litigation. ୫। ଦେବ-ଯୋନିବିଶେଷ—5. A class of aerial beings; a class of Demi-gods [ ଦ୍ର—ସିଦ୍ଧମାନଙ୍କ ନିବାସ ସ୍ଥାନ ଭୁବର୍ଲୋକ ଓ କାହା କାହା ମତରେ ହିମାଳୟ ଅଟେ । ବାୟୁପୁରାଣ ମତରେ ଏମାନଙ୍କ ସଂଖ୍ୟା ୮୮ ହଜାର । ଏମାନେ ସୂର୍ଯ୍ୟଙ୍କ ଉତ୍ତର ଓ ସପ୍ତର୍ଷିଙ୍କ ଦକ୍ଷିଣ ଅନ୍ତରୀକ୍ଷରେ ବାସ କରନ୍ତି । ଏମାନେ ଏକ କଳ୍ପ ଯାବତ ରହନ୍ତି ( ହି. ଶ ) । ଏମାନେ ଅଣିମାଦି ଐଶ୍ୱର୍ଯ୍ୟ ସମ୍ପନ୍ନ । କଶ୍ୟପସ୍ତ ଏହି ଶ୍ରେଣୀର ଅନ୍ତର୍ଗତ । ] ୬। ଯୋଗସିଦ୍ଧ ବା ତପଃସିଦ୍ଧି ପ୍ରାପ୍ତ ମୁନି—6. A sage who has attained success in mystic exercises or in Joga and penance. [ଉ—ବୋଧ ହୋଏ ଏ ସିଦ୍ଧ ଧରି ବଧିଲେ ସିଦ୍ଧ—ଭଞ୍ଜ. ବୈଦେହୀଶବିଳାସ । ] ୭। ( ଜ୍ୟୋତିଷ ) ବିଷ୍କୁମ୍ଭାଦି ସପ୍ତବିଂଶତି ଯୋଗାନ୍ତର୍ଗତ ଏକବିଂଶ ଯୋଗ—7. (Astrology ) One of the 27 astrological conjunction. [ଦ୍ର—ଏହା ଶୁଭ ଯୋଗ, ଏଥିରେ ଜାତ ହେବା ବ୍ୟକ୍ତି ଜିତେନ୍ଦ୍ରିୟ, ସର୍ବକଳାନିଧାନ, ଗୌର, ବିଜ୍ଞାତ, ସତ୍ୟବାଦୀ ଓ ଭୋଗୀ ହୁଏ । ] ୮। କୃଷ୍ଣ ସିନ୍ଦୁବାର ( ହି. ଶ )—୨. The black variety of Sindubāra. ୯। ଧଳା ରୋହିଷ ( ହି. ଶ )—9. Weite Ryh. ୧୦। ଅର୍ହତ୍; ଜିନ ( ହି. ଶ )—10. Jaina saint. ଦେ. ବି—ସିଦ୍ଧନାଥ ବା ସିଦ୍ଧେଶ୍ୱରର ଡାକ ନାମ—Name for calling Siddhanātha or Siddheśwara.

**ସିଦ୍ଧ ଅତିବଡ଼ ଜଗନ୍ନାଥ ଦାସ ଗୋସ୍ୱାମୀ**—
Siddha ati barda jagannātha dāsa goswāmi
[ ଦ୍ର—ସିଦ୍ଧ ଯୋଗୀ ଶ୍ରୀ ଅତି ବଡ଼ ଜଗନ୍ନାଥ ଦାସ ଗୋସ୍ୱାମୀ ପୁରୀର ବଡ଼ ଓଡ଼ିଆ ମଠର ପ୍ରତିଷ୍ଠାତା । ଉତ୍କଳର ପୁଣ୍ୟଶ୍ଳୋକ ମହାରାଜ କପିଳେନ୍ଦ୍ର ଦେବଙ୍କ ପ୍ରତିଷ୍ଠିତ କପିଳେଶ୍ୱରପୁର ଶାସନ ଏହି ମହାତ୍ମାଙ୍କର ଜନ୍ମସ୍ଥାନ । ଏହି ଶାସନଟି ପୁରୁଷୋତ୍ତମ କ୍ଷେତ୍ରର ପଶ୍ଚିମରେ ପ୍ରାୟ ତିନି କୋଶ ଦୂରରେ ଅବସ୍ଥିତ । ୧୪୯୦ ଖ୍ରୀଷ୍ଟାବ୍ଦ ଭାଦ୍ରମାସ ଶୁକ୍ଳପକ୍ଷ ଅଷ୍ଟମୀ ଅନୁରାଧା ନକ୍ଷତ୍ର ବୁଧବାର ଦିନ ମଧ୍ୟାହ୍ନ ସମୟରେ ଏ ମହାତ୍ମା ଏ ଗ୍ରାମରେ ଆବିର୍ଭୂତ ହୋଇଥିଲେ । ଯେଉଁ କ୍ଷଣରେ ବୃଷଭାନୁ ନନ୍ଦିନୀ ରାଧାଦେବୀଙ୍କର ଜନ୍ମ ବୋଲି ପୁରାଣରେ ବର୍ଣ୍ଣିତ ହୋଇଅଛି, ଠିକ୍ ସେହିକ୍ଷଣରେ ଜଗନ୍ନାଥ ଦାସ ଜନ୍ମଗ୍ରହଣ କରିଥିବାରୁ ତାଙ୍କୁ ରାଧାଙ୍କର ଅଂଶାବତାର ବୋଲି ଲୋକେ ବିଶ୍ୱାସ କରନ୍ତି । ତାଙ୍କ ପିତାଙ୍କ ନାମ ଭଗବାନ ଦାସ ଓ ମାତାଙ୍କ ନାମ ପଦ୍ମାବତୀ । ଭଗବାନ ଦାସ ମହାରାଜା ପୁରୁଷୋତ୍ତମ ଦେବଙ୍କର ପୌରାଣିକ ଥିଲେ । ପଦ୍ମାବତୀ ବଡ଼ ଧର୍ମପରାୟଣା, ସୁଶୀଳା ଓ ପତିଭକ୍ତା ଥିଲେ । ଶୋଣୀ ଦେବୀ

କେହି ଏହାଙ୍କ ଦ୍ୱାରରୁ ନିରାଶ ହୋଇ ଫେରୁ ନ ଥିଲେ । ଭଗବାନ ଦାଶଙ୍କର ପୁତ୍ରଜନ୍ମ ସମ୍ବାଦ ଲୋକମୁଖରେ ପ୍ରଚାରିତ ହେଲାକ୍ଷଣି ଗ୍ରାମର ଚତୁଃପାର୍ଶ୍ୱରୁ ବହୁସଂଖ୍ୟକ ସ୍ତ୍ରୀ ପୁରୁଷ ରୁଣ୍ଡ ହେଲେ । ସଦ୍ୟୋଜାତ ଶିଶୁଟିର ସୂତିକା ଗୃହରେ ବିଦ୍ୟୁତ୍ ପ୍ରାୟ ଶୋଭା ଦେଖି ସମସ୍ତେ ଚମତ୍କୃତ ହୋଇଥିଲେ । ଭୂମିଷ୍ଠ ଶିଶୁର ମହାପୁରୁଷ ଲକ୍ଷଣ ଓ ଲୋକୋତ୍ତର ଲାବଣ୍ୟ ଦେଖି ଦର୍ଶକବୃନ୍ଦ ଆନନ୍ଦ ଓ ବିସ୍ମୟରେ ମଗ୍ନ ହୋଇ ଜନକ ଜନନୀଙ୍କ ତପସ୍ୟାର ପ୍ରଶଂସାପୂର୍ବକ ନବଜାତ ଶିଶୁର ମଙ୍ଗଳ କାମନା କରି ନିଜ ନିଜ ଗୃହକୁ ଫେରିଗଲେ ।

ଶିଶୁଟି ଜଗନ୍ନାଥ ଦେବଙ୍କ ପ୍ରସାଦରୁ ଲବ୍ଧ ବୋଲି ଭାବି ଭଗବାନ ଦାଶ ପଣ୍ଡିତମାନଙ୍କ ପରାମର୍ଶକ୍ରମେ ତାହାର ଜଗନ୍ନାଥ ବୋଲି ନାମକରଣ କଲେ । ଶିଶୁଟି କ୍ରମେ ଚତୁର୍ଥ ବୟସରେ ପଦାର୍ପଣ କରିବା ବେଳକୁ ପିତା ତାହାଙ୍କର ଚୂଡ଼ାକର୍ମ, କର୍ଣ୍ଣବେଧ ଆଦି ଶେଷ କରିଥିଲେ । ଏହି ଚତୁର୍ଥ ବର୍ଷ ବୟସ୍କ ବାଳକ କେବଳ କ୍ରୀଡ଼ା କୌତୁକରେ ସମୟ କଟାଉଥିଲେହେଁ ତାହାଙ୍କର ଅସାଧାରଣ ସ୍ମରଣଶକ୍ତିର ଓ ପ୍ରତିଭାର ପରିଚୟ ମିଳୁଥିଲା । ପଞ୍ଚମ ବର୍ଷରେ ସେ ବିଦ୍ୟାରମ୍ଭ କରି ପୂର୍ବ ଜନ୍ମ ସଂସ୍କାର ବଶତଃ ଅତି ଅଳ୍ପ ସମୟ ମଧ୍ୟରେ ପଠିତ ବିଷୟମାନ ମନେ ରଖି ପାରୁଥିଲେ । ସେ ପ୍ରଥମେ ଗ୍ରାମ ପାଠଶାଳାରେ ବର୍ଣ୍ଣପାଠ ଓ ଅଙ୍କ ଆଦି ଶିଖିଥିଲେ; ଉପନୟନ ଉତ୍ତାରେ ପିତାଙ୍କ ନିକଟରେ ଅମରକୋଷ, ଅଭିଧାନ ଏବଂ କଳାପ ଓ ବର୍ଦ୍ଧମାନ ନାମକ ଦୁଇଟି ସଂସ୍କୃତ ବ୍ୟାକରଣ ସମ୍ପୂର୍ଣ୍ଣ କଣ୍ଠସ୍ଥ କରି ସେଥିରେ ଅତ୍ୟନ୍ତ ପାଣ୍ଡିତ୍ୟ ଲାଭ କରିଥିଲେ । ନିକଟବର୍ତ୍ତୀ ବ୍ରାହ୍ମଣ ଶାସନକୁ ପ୍ରତିଦିନ ଯାଇ ଯଜୁର୍ବେଦ ଓ ସାମବେଦର ସଂହିତାମାନ ମଧ୍ୟ ସେ ଅଧ୍ୟୟନ ଓ କଣ୍ଠସ୍ଥ କରିଥିଲେ; ନ୍ୟାୟ ବେଦାନ୍ତାଦି ଦର୍ଶନଶାସ୍ତ୍ର ଏବଂ ମହାଭାରତ ଓ ରାମାୟଣ ଆଦି ଧର୍ମଶାସ୍ତ୍ର ସମସ୍ତ ପଢ଼ିଲେ, ସର୍ବଶେଷରେ ଶ୍ରୀମଦ୍ଭାଗବତ ଅଧ୍ୟୟନ କଲେ । ଏହି ସମୟରେ ପିତା ଭଗବାନ ଦାଶ ଜଗନ୍ନାଥଙ୍କର ବିବାହ ପ୍ରସ୍ତାବ ଉଠାଇଲେ । କିନ୍ତୁ ଜଗନ୍ନାଥ ଆଉ କେତେକ ଶାସ୍ତ୍ରର ଅଧ୍ୟୟନ ସମାପ୍ତ କରି ବିବାହ କରିବା ପାଇଁ ପିତାଙ୍କୁ ପ୍ରାର୍ଥନା କଲେ । ଅଷ୍ଟାଦଶ ବର୍ଷ ବୟସ ବେଳକୁ ସେ ସମସ୍ତ ଶାସ୍ତ୍ରରେ ପ୍ରବୀଣତା ଲାଭ କରିଥିଲେ । ପଣ୍ଡିତ ସମାଜରେ ତାହାଙ୍କ ଖ୍ୟାତି କ୍ରମେ କ୍ରମେ ବଢ଼ିବାରେ ଲାଗିଲା । ବୟୋବୃଦ୍ଧି ସଙ୍ଗେ ସଙ୍ଗେ ତାହାଙ୍କର ଭଗବତ୍ ପ୍ରୀତି ମଧ୍ୟ କ୍ରମଶଃ ବୃଦ୍ଧି ହେଲା । ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଠାରେ ତାଙ୍କର ପ୍ରଗାଢ ଭକ୍ତି ହେତୁ ସେ ପ୍ରତ୍ୟହ ଜଗନ୍ନାଥ ଦର୍ଶନ ନିମନ୍ତେ ଶ୍ରୀକ୍ଷେତ୍ରକୁ ଆସୁଥିଲେ; ମନ୍ଦିର ଭିତର ବେଢ଼ାରେ ବଟଗଣେଶଙ୍କ ନିକଟରେ ବସି ଶ୍ରୀମଦ୍‌ଭାଗବତ ପାଠ କରୁଥିଲେ । ପ୍ରତ୍ୟହ ବହୁଲୋକ ପୁରାଣ ଶୁଣିବାକୁ ସେଠାରେ ରୁଣ୍ଡ ହେଉଥିଲେ । କଳ୍ପବଟ ନାମକ ଶ୍ରୀ ଜଗନ୍ନାଥଙ୍କ ପ୍ରତିମୂର୍ତ୍ତିଙ୍କ ନିକଟରେ ଆଜି ପର୍ଯ୍ୟନ୍ତ ପୁରାଣ ପାଠ ହେଉଅଛି ଓ ପୁରାଣ ପାଠକଙ୍କ ପାଇଁ ରାଜପ୍ରଦତ୍ତ ବୃତ୍ତି ମଧ୍ୟ ଖଞ୍ଜା ଅଛି ।

୧୫୦୯ ଖ୍ରୀଷ୍ଟାବ୍ଦରେ ଶ୍ରୀଚୈତନ୍ୟଦେବ ସନ୍ନ୍ୟାସ ଗ୍ରହଣ କରି ଭକ୍ତଗଣ ସମେତ ଶ୍ରୀଜଗନ୍ନାଥ ଦେବଙ୍କ ଦର୍ଶନ ନିମନ୍ତେ ପୁରୀକୁ ଆଗମନ କରିଥିଲେ । ସେତେବେଳକୁ ଜଗନ୍ନାଥ ଦାସଙ୍କର ବୟସ ଊନବିଂଶତି ବର୍ଷ । ଶ୍ରୀଚୈତନ୍ୟ ଦେବ ବଡ଼ଦେଉଳରେ ପ୍ରବେଶ କରି ବଟ ମୂଳରେ ପ୍ରଥମେ ଏହାଙ୍କୁ ଭେଟିଥିଲେ । ସାକ୍ଷାତ୍ ମାତ୍ରେ ଦୁଇ ଭକ୍ତଙ୍କର ଅପୂର୍ବ ମିଳନ ଘଟିଲା । ଦୁହିଙ୍କ ମଧ୍ୟରେ ଅନନ୍ତ ଭାବର ମଧୁର ଆଦାନପ୍ରଦାନ ହେଲା । ଅଢ଼ାଇ ଦିନ ପର୍ଯ୍ୟନ୍ତ ଦୁହେଁ ଏକତ୍ର ବାସ କଲେ; ଅନ୍ୟ କାହାରି ସହିତ ସାକ୍ଷାତ୍କାର ହେଲା ନାହିଁ । ପରସ୍ପରଙ୍କ ଆଲିଙ୍ଗନରେ ଦୁହେଁ ପ୍ରେମବିହ୍ୱଳ ଓ ଭାବୋନ୍ମତ୍ତ ହେଉଥିଲେ ।

ଦିନେ ଦାସେ ଶ୍ରୀମଦ୍ଭାଗବତର ଦଶମ ସ୍କନ୍ଧ ବ୍ରହ୍ମସ୍ତୁତି ପାଠ କରୁଅଛନ୍ତି; ଏମନ୍ତ ସମୟରେ ଚୈତନ୍ୟ ଆସି ଉପସ୍ଥିତ ହେବାରୁ ତାଙ୍କର ଭାବାବେଶ ହେଲା । ଅନନ୍ତର ସଂକୀର୍ତ୍ତନ କରି ସେ ଶ୍ରୀଚୈତନ୍ୟଙ୍କ ସଙ୍ଗରେ ମନ୍ଦିର ପ୍ରଦକ୍ଷିଣ ଓ ଜଗନ୍ନାଥ ଦେବଙ୍କ ଦର୍ଶନ କଲେ । ତତ୍ପରେ ସ୍ୱୀୟ ସହଚରବର୍ଗଙ୍କ ଆଡ଼କୁ ଚାହିଁ ଶ୍ରୀଚୈତନ୍ୟ କହିଲେ 'ବ୍ରହ୍ମ ସର୍ବଭୂତରେ ପୂରି ରହି ଅଛନ୍ତି । ମୁଁ ଶ୍ରୀ ଜଗନ୍ନାଥ ଦେବଙ୍କୁ ଯେପରି ଭୟ ଓ ଭକ୍ତି କରେ ସର୍ବତ୍ର ମୋର ସେହି ଭାବ । ବିଶେଷତଃ ଦାସଙ୍କ ବିଷୟରେ ମୁଁ ବେଶି ଭୀତ; କାହିଁକି ନା, ଦାସେ ଜଗନ୍ନାଥଙ୍କ ସଙ୍ଗୀ, ଦାସଙ୍କ ପାଦପଦ୍ମ ମହାପ୍ରେମର ଆକର, ମୁଁ ତାହା ନିଷ୍କାମ ଭାବରେ ହୃଦୟରେ ଭାବୁଥିବି ।' ଏହା କହି ଚୈତନ୍ୟଦେବ ବାରମ୍ବାର ଦାସଙ୍କୁ ସମ୍ମାନ ଦେଖାଇଲେ । ତାହା ଦେଖି ତଦନ୍ତ୍ୟ ଅନ୍ୟାନ୍ୟ ବୈଷ୍ଣବମାନେ ମଧ୍ୟ ସମ୍ମାନ ଦେଖାଇ ନିଜ ନିଜ ବସାକୁ ଫେରି ଗଲେ । ଏହିପରି ପ୍ରତିଦିନ ଶ୍ରୀଚୈତନ୍ୟ ଶ୍ରୀ ଜଗନ୍ନାଥ ଦେବଙ୍କୁ ଦର୍ଶନ କରିବାକୁ ଆସିବା ସମୟରେ କିଛିକ୍ଷଣ ବଟ ମୂଳରେ ବସି ଜଗନ୍ନାଥଙ୍କ ମୁଖରୁ ପୁରାଣ ଶ୍ରବଣ କରୁଥିଲେ । ଏହା ଦେଖି ଗୌଡ଼ୀୟ ବୈଷ୍ଣବଗଣ ଅତ୍ୟନ୍ତ ଈର୍ଷାନ୍ୱିତ ହୋଇ କହିଲେ—"ଦେଖନ୍ତୁ, ଆପଣ ଜଣେ ଅଦୀକ୍ଷିତଙ୍କୁ ପ୍ରେମାଲିଙ୍ଗନ କରୁ ଅଛନ୍ତି । ବୈଷ୍ଣବ ପକ୍ଷରେ ସାଂପ୍ରଦାୟିକ ଲୋକଙ୍କଠାରୁ ଦୀକ୍ଷା ଗ୍ରହଣ କରି ନ ଥିବା ବ୍ୟକ୍ତିର ଅଙ୍ଗ ସ୍ପର୍ଶ କରିବା ଶାସ୍ତ୍ରନିଷିଦ୍ଧ ।" ଏହା ଶୁଣି ଶ୍ରୀଚୈତନ୍ୟ ଦେବ କହିଲେ, "ଏହା ଠିକ୍ କଥା ନୁହେ । ବ୍ରାହ୍ମଣଙ୍କ ଅଙ୍ଗ ଭକ୍ତିମୟ । ବ୍ରାହ୍ମଣଙ୍କ ଅଙ୍ଗରେ ଶ୍ରୀକୃଷ୍ଣଙ୍କ ବାସ । ସୁତରାଂ ଶ୍ରୀକୃଷ୍ଣ ଓ ବ୍ରାହ୍ମଣଙ୍କ ମଧ୍ୟରେ ଭିନ୍ନାଭିନ୍ନ ବିଚାର କରିବା କଦାପି ଉଚିତ ନୁହେ । ଉପଦିଷ୍ଟ ନୋହିଲେ ମଧ୍ୟ ଦାସେ ଭକ୍ତିମୟ ଶରୀରଧାରୀ ।" ବାସ୍ତବିକ ଦୟାମୟ ଭଗବାନ ଅହେତୁକୀ ଦୟା ପ୍ରକାଶ କରି ଜୀବମାନଙ୍କୁ ନିଜ ଆଡ଼କୁ ଆକର୍ଷଣ

କରିବା ପାଇଁ ସ୍ୱୟଂ ଶ୍ରୀଗୁରୁ ରୂପରେ ପ୍ରକାଶିତ ହୋଇ ସେମାନଙ୍କୁ ମହା ଅନୁଗ୍ରହ କରି ଥାଆନ୍ତି, ଏହା ଭାରତୀୟ ସାଧକ ଓ ଭକ୍ତବୃନ୍ଦ ଉତ୍ତମରୂପେ ବୁଝନ୍ତି, ଏବଂ ଅମ୍ଭମାନଙ୍କର ଦାସେ ମଧ୍ୟ ତାହା ଉତ୍ତମ ରୂପେ ଉପଲବ୍ଧି କରିଥିଲେ । ତେଣୁ ସେ ନିଜକୃତ ଓଡ଼ିଆ ଭାଗବତରେ ଲେଖି ଯାଇ ଅଛନ୍ତି :—

"ସର୍ବ ଶାସ୍ତ୍ରର ମଧ୍ୟ ସାର, ଦୁର୍ଲ୍ଲଭ ନର କଳେବର ।
ସୁଲଭ ନାବ ରୂପେ ଘଟନ୍ତି, ବନ୍ଧନ ଭବ ସିନ୍ଧୁ ତଟେ ।
ଏ ନାବେ ଗୁରୁ କର୍ଣ୍ଣଧାର, ମୁହିଁ ଅନୁକୂଳ ସମୀର ।
ଏମନ୍ତ ନାବ ଆହିଁ କୂଳେ, ଯେବା ନ ତରେ ଭବ ଜଳେ,
ସେ ନର ହୀନ ମୂଢ଼ମତି, ତାହାକୁ ବୋଲି ଆତ୍ମଘାତୀ ।"

ଜଗନ୍ନାଥ ଦାସେ ବଡ଼ ଜ୍ଞାନବାନ ଲୋକ ଥିଲେ । ସେ ଶୁଣି ପାରିଲେ ଯେ, ଗୌଡ଼ୀୟ ବୈଷ୍ଣବମାନେ ଶ୍ରୀଚୈତନ୍ୟଙ୍କ ଆଗରେ ଅପଶଂସା କରୁଅଛନ୍ତି ଯେ, ଦାସେ ବୈଷ୍ଣବ ଧର୍ମ—ଦୀକ୍ଷିତ ନୁହନ୍ତି । ତେଣୁ ତାଙ୍କ ମନ ଦୀକ୍ଷା ଗ୍ରହଣ ପାଇଁ ବ୍ୟାକୁଳ ହୋଇ ଉଠିଲା । ସେ ଅତି ଆଗ୍ରହରେ ଶ୍ରୀଚୈତନ୍ୟ ଦେବଙ୍କ ନିକଟରେ ଉପସ୍ଥିତ ହେଲେ । ସେତେବେଳେ ଶ୍ରୀଚୈତନ୍ୟ ଦେବ କାଶୀ ମିଶ୍ରଙ୍କ ଘରେ ଅବସ୍ଥାନ କରୁଥିଲେ । କାଶୀ ମିଶ୍ରଙ୍କ ଘର ବର୍ତ୍ତମାନ ରାଧାକାନ୍ତ ମଠ ନାମରେ ଖ୍ୟାତ । ଦାସେ ଦୁଇ ହାତରେ ଦୁଇଟି ଛୋଟ କୁଣ୍ଡିଆରେ ମହାପ୍ରସାଦ ଧରି ଉକ୍ତ ମଠରେ ପହଞ୍ଚିଲେ । ସେତେବେଳକୁ ଚୈତନ୍ୟ ସମୁଦ୍ର ସ୍ନାନ ସମାପ୍ତ କରି ମଠସ୍ଥ ସ୍ୱୀୟ ପ୍ରକୋଷ୍ଠରେ ଅବସ୍ଥାନ କରୁଥାଆନ୍ତି । ଦାସେ ହସ୍ତପ୍ରକ୍ଷାଳନ କରି ତାହାଙ୍କୁ ନମସ୍କାର କରନ୍ତେ ସେ ତାହାଙ୍କୁ ମହା ସମାଦରରେ କହିଲେ, "ପୂର୍ଣ୍ଣ ଭକ୍ତିମୟ ଦାସ ଅପଣେ ! ଅସିବା ହେଉ ।" ତାହା ଶୁଣି ଦାସେ ଯୁକ୍ତକରରେ ଅତି ବିନୟରେ କହିଲେ, "ଆଜ୍ଞା ! ମୁଁ ଅଦୀକ୍ଷିତ । ମୋତେ ସ୍ପର୍ଶ କରନ୍ତୁ ନାହିଁ । ଦୟା କରି ମୋତେ ଦୀକ୍ଷା ପ୍ରଦାନ କରନ୍ତୁ ।" ଏହା ଶୁଣି ଶ୍ରୀଚୈତନ୍ୟ ଦେବ ଅତ୍ୟନ୍ତ ଆନନ୍ଦିତ ହୋଇ ମତ୍ତ ବଳରାମ ଦାସଙ୍କ ଅଙ୍ଗୁଳି ଗୁହିଁଲେ ଏବଂ ଏହାଙ୍କୁ ଦୀକ୍ଷା ପ୍ରଦାନ କର ବୋଲି ଇଙ୍ଗିତ କଲେ । ଦାସେ ଯେପରି ଗୁରୁ ଆକାଂକ୍ଷା କରୁଥିଲେ ତଦନୁରୂପ ଗୁରୁ ପାଇଲେ ।

ଏପରିରେ ସେ ବୈଷ୍ଣବ ଧର୍ମ ଗ୍ରହଣ କରି ପ୍ରତ୍ୟହ ଶ୍ରୀ ଜଗନ୍ନାଥଙ୍କର ଅନସର, ଅବକାଶ, ଧୂପ, ବଡ଼ ସିଂହାର ଆଦି ସେବାରେ ଖଟି ଥାଆନ୍ତି । ମହାପ୍ରଭୁଙ୍କର ପହୁଡ଼ ପରେ ଦାସେ ନିଜ ଆଶ୍ରମକୁ ଫେରୁଥିଲେ ।

ଜଗନ୍ନାଥ ଦାସ ସ୍ୱୀୟ ଗୁରୁ ବଳରାମ ଦାସଙ୍କୁ ଯେପରି ସମ୍ମାନ ଦେଖାଉଥିଲେ, ଶ୍ରୀଚୈତନ୍ୟ ଦେବଙ୍କୁ ମଧ୍ୟ ସେହିପରି ସମ୍ମାନ ଦେଖାଉଥିଲେ । ପ୍ରତିଦିନ ପ୍ରଭାତରୁ ଗାତ୍ରୋତ୍ଥାନ କରି ଗୁରୁଙ୍କୁ ଦଣ୍ଡବତ କରୁଥିଲେ ଓ ଗୁରୁଙ୍କ ନିମନ୍ତେ ଦନ୍ତକାଷ୍ଠ ଓ ମୁଖ ପ୍ରକ୍ଷାଳନାର୍ଥ ଜଳ ଯୋଗାଇ ରଖୁଥିଲେ; ସ୍ନାନାର୍ଥ ଜଳଦାନ, ଶଯ୍ୟାମାର୍ଜ୍ଜନ ଓ ଦଣ୍ଡକମଣ୍ଡଳୁ ମାର୍ଜ୍ଜନାଦି ଗୁରୁଙ୍କର ନାନାବିଧ ସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରୁଥିଲେ । ତାଙ୍କୁ "ହରେରାମ କୃଷ୍ଣ" ମନ୍ତ୍ର ଭଜନ କରୁଥିବା ଦେଖି ଶ୍ରୀଚୈତନ୍ୟ ସନ୍ତୁଷ୍ଟ ହୋଇ ତାଙ୍କୁ ପଚାରିଲେ, "ଦାସେ ! ଅପଣଙ୍କ ଗତି ଦେଖିଲେ ଜଣାଯାଏ, ଆପଣ ସାଧକ ନୁହନ୍ତି, ନିତ୍ୟସିଦ୍ଧ । ଅପଣ ପୂର୍ବତନ ସିଦ୍ଧ ଶରୀର କିପରି ପାଇଲେ, କହିବା ହେଉନ୍ତୁ ।" ତାହା ଶୁଣି ଦାସେ କହିଲେ, "ମହାପ୍ରଭୋ ! ଅପଣ ତ ଅନ୍ତର୍ଯ୍ୟାମୀ, ଆପଣଙ୍କୁ କେଉଁ କଥା ଅଗୋଚର ? ଅପଣ ଯେତେବେଳେ ପଚାରୁଅଛନ୍ତି ଆପଣଙ୍କୁ ଅବଶ୍ୟ ମୋର କହିବା ଉଚିତ । ବୈକୁଣ୍ଠପୁରରେ ସୁବର୍ଣ୍ଣପୀଠସ୍ଥିତ ମଣି ମଣ୍ଡିତ ମଣ୍ଡପରେ ଯୁଗଳମୂର୍ତ୍ତିଙ୍କର ପ୍ରକାଶ ସ୍ମରଣ କରି ମୁଁ ଯେତେବେଳେ ଭାବାବିଷ୍ଟ ହେଲି, ସେତେବେଳେ ମୋର ବାହ୍ୟଜ୍ଞାନ ଏକାବେଳେ ଅନ୍ତର୍ହିତ ହୋଇଥିଲା । ଉପଲବ୍ଧ କଲି, ନିତ୍ୟ ବୈକୁଣ୍ଠଧାମରେ ଶ୍ରୀମଦ୍‌ରାଧାକୃଷ୍ଣ ଏକତ୍ରାବସ୍ଥିତ ଥିଲେ, ପରସ୍ପର ପରସ୍ପର ପ୍ରତି ଆନନ୍ଦରେ ନିରୀକ୍ଷଣ କଲେ; ଭଗବାନ୍ ଶ୍ରୀମତୀ ରାଧାରାଣୀଙ୍କ ମୁଖକୁ ଚାହିଁ ମନ୍ଦହାସ୍ୟ ପ୍ରକାଶ କଲେ; ସେ ହାସ୍ୟରୁ କୋଟିବ୍ରହ୍ମାଣ୍ଡ ଜାତ ହେଲା । ଆପଣ ମଧ୍ୟ ସେହି ହାସରୁ ଆବିର୍ଭୂତ ହେଲେ । ମୁଁ ରାଧାଙ୍କ ହାସରୁ ସମ୍ଭୂତ ହୋଇ ଅପଣଙ୍କ ନିକଟରେ ଉପସ୍ଥିତ ହେଲି । ପ୍ରଭୁ ଆପଣଙ୍କୁ ଆଜ୍ଞା ଦେଲେ, 'ଯାଅ, ମର୍ତ୍ତ୍ୟରେ ଅବତାର ଗ୍ରହଣ କରି କଳିକଳୁଷିତ ଜନମାନଙ୍କୁ ହରିନାମ କୀର୍ତ୍ତନ କରାଇ ଚୈତନ୍ୟ ପ୍ରଦାନ କର । ଏହି ସୂତ୍ରରେ ତୁମ୍ଭର ଚୈତନ୍ୟ ନାମ ହେବ ।' ଅନନ୍ତର ମୋତେ ଆଜ୍ଞା ଦେଲେ, 'ଯାଅ, ତୁମ୍ଭେ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇ ଏହି ମୂର୍ତ୍ତି ଧ୍ୟାନ କରୁଥିବ । ଅନ୍ତକାଳରେ ଏଥି ଗତି ପାଇବ ।'" ଏହା ଶୁଣି ଶ୍ରୀଚୈତନ୍ୟ ଭାବଗଦ୍‌ଗଦ ହୋଇ କହିଲେ, "ଏ ଅତି ଅପୂର୍ବ ରହସ୍ୟ । ଯେଉଁ ରାଧିକା ଶ୍ରୀକୃଷ୍ଣଙ୍କର ପ୍ରେମର ସର୍ବସ୍ୱ, ତୁମ୍ଭେ ସେହି ରାଧାଙ୍କର ଅଂଶ । ଆଃ ! ଏ ଅତି ଚମତ୍କାର ଭାବ ।" ଦାସଙ୍କୁ ସମ୍ବୋଧନ କରି ଚୈତନ୍ୟ ଦେବ କହିଲେ, 'ଦାସେ ! ଆପଣ ଅତି ବଡ଼ ।' ଏହା କହି ଶ୍ରୀଚୈତନ୍ୟ ନିଜର ଗୈରିକ ଉତ୍ତରୀୟ ତାହାଙ୍କ ମୁଣ୍ଡରେ ବାନ୍ଧି ଦେଲେ । ସେହି ଦିନଠାରୁ ଲୋକେ ତାହାଙ୍କୁ 'ଅତିବଡ଼ ଗୋସ୍ୱାମୀ' ବୋଲି ଡାକିଲେ । ତାହାଙ୍କ ପ୍ରତିଷ୍ଠିତ ସମ୍ପ୍ରଦାୟକୁ 'ଅତି ବଡ଼ୀ ସମ୍ପ୍ରଦାୟ' କୁହାଯାଏ ।

ଶାସ୍ତ୍ରରେ ଲେଖା ଅଛି, କୃଷ୍ଣଭକ୍ତି ଦୁଇପ୍ରକାର; ଯଥା— ଐଶ୍ୱର୍ଯ୍ୟ ଜ୍ଞାନମିଶ୍ରା ଏବଂ କେବଳା ବା ଐଶ୍ୱର୍ଯ୍ୟଜ୍ଞାନଶୂନ୍ୟା । କେହି କେହି ଅତିବଡ଼ ଗୋସ୍ୱାମୀଙ୍କୁ ଐଶ୍ୱର୍ଯ୍ୟ ଜ୍ଞାନମିଶ୍ରା କୃଷ୍ଣଭକ୍ତିର ଉପାସକ ଶ୍ରେଣୀୟ ବୋଲି କହୁଥାଆନ୍ତି ।

ଥରେ ଉତ୍କଳର ମହାରାଜା ପ୍ରତାପରୁଦ୍ର ଦେବ ଜଗନ୍ନାଥ ଦର୍ଶନକୁ ଯାଇଥିଲେ, ଏମନ୍ତ ସମୟରେ ଶ୍ରୀଚୈତନ୍ୟଙ୍କ ସଙ୍ଗେ ମନ୍ଦିରରେ ତାଙ୍କର ଭେଟ ହେଲା ।

ମହାରାଜ ଶ୍ରୀଚୈତନ୍ୟଙ୍କୁ ପଚାରିଲେ, "ଜଗନ୍ନାଥ ମୂର୍ତ୍ତିରେ କିପରି ରାଧାକୃଷ୍ଣଙ୍କର ଯୁଗଳମୂର୍ତ୍ତି ଭାବ ଉପଲବ୍ଧି କରି ପାରିବି, ଏହା ମୋତେ ଅନୁଗ୍ରହ କରି ବୁଝାଇ ଦିଅନ୍ତୁ ।" ଏହା ଶୁଣି ଶ୍ରୀଚୈତନ୍ୟ ଦେବ ଉତ୍ତର ଦେଲେ 'ଏମ୍ଚ ଅତିବଡ଼ ସ୍ୱାମୀ ତାହା ଆପଣଙ୍କୁ ସ୍ପଷ୍ଟଭାବେ ବୁଝାଇ ଦେବେ ।" ତହୁଁ ଅତିବଡ଼ ସ୍ୱାମୀ ଶ୍ରୀ ଜଗନ୍ନାଥ ଦାସ ମହାରାଜ ପ୍ରତାପରୁଦ୍ର ଦେବଙ୍କୁ ତାହା ବୁଝାଇ ଦେବାରୁ ରାଜା ତାଙ୍କଠାରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତାଙ୍କର ଭକ୍ତ ଓ ବଶୀଭୂତ ହେଲେ । ଶ୍ରୀ ଜଗନ୍ନାଥ ମନ୍ଦିରର ବାୟୁ କୋଣରେ ମାର୍କଣ୍ଡେୟ ତୀର୍ଥର ଅନତିଦୂର ଦକ୍ଷିଣରେ ନିଜ ରାଣୀଙ୍କର ଶ୍ରୀକ୍ଷେତ୍ରରେ ଅବସ୍ଥାନ ନିମନ୍ତେ ମହାରାଜଙ୍କର ଯେଉଁ ରାଜପ୍ରାସାଦ ନିର୍ମିତ ହୋଇଥିଲା, ତହିଁରେ ଜଗନ୍ନାଥ ଦାସଙ୍କୁ ରହିବାକୁ ମହାରାଜ ପ୍ରାର୍ଥନା କଲେ । ଅତିବଡ଼ ସ୍ୱାମୀ ପ୍ରଥମେ ସେଠାରେ ରହିବାକୁ ଅନିଚ୍ଛୁକ ଥିଲେ ସୁଦ୍ଧା ମହାରାଜଙ୍କର ସେବାରେ ଓ ଭକ୍ତିରେ ସନ୍ତୁଷ୍ଟ ହୋଇ କିଛି କାଳ ସେଠାରେ ଅବସ୍ଥାନ କଲେ । ବର୍ତ୍ତମାନ ତାହା ଓଡ଼ିଆମଠ ନାମରେ ଖ୍ୟାତ ।

ଅନନ୍ତର ଅତିବଡ଼ ସ୍ୱାମୀ ସଂସାର କୋଳାହଳ ବର୍ଜିତ ସମୁଦ୍ରତୀରବର୍ତ୍ତୀ ବାଲୁକାମୟ ଭୂମିରେ ଏକ ନିର୍ଜନ ଭଜନକୁଟୀ ସ୍ଥାପନ କଲେ । ଏହାର ଆଧୁନିକ ନାମ ସାତଲହରି ମଠ । ଏହି ମଠଟି ଶଙ୍କରାଚାର୍ଯ୍ୟ ମଠର ଦକ୍ଷିଣରେ ଅବସ୍ଥିତ । ଏଠାରେ ଜଗନ୍ନାଥ ଦାସଙ୍କର ମଣିବିଗ୍ରହ (ପ୍ରସ୍ତର-ମୂର୍ତ୍ତି) ବିଦ୍ୟମାନ । କଥିତ ଅଛି ଶ୍ରୀ ଅତିବଡ଼ ସ୍ୱାମୀ ସମୁଦ୍ରତରଙ୍ଗର ଘୋର ଗର୍ଜନ ଯୋଗୁଁ ଭଜନସ୍ମରଣରେ ଅସୁବିଧା ଅନୁଭବ କରି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର କୃପାପ୍ରାର୍ଥୀ ହେବାରୁ ପ୍ରଭୁଙ୍କ ଆଜ୍ଞାରେ ସମୁଦ୍ର ସାତ ସ୍ତର ଲହରୀର ଦୂରତା ପର୍ଯ୍ୟନ୍ତ ଦୂରକୁ ଘୁଞ୍ଚି ଯାଇଥିଲା । ତେଣୁ ସେହି ଦିନଠାରୁ ଉକ୍ତ ମଠଟିର ନାମ ସାତଲହରି ମଠ ହୋଇଅଛି ।

ପ୍ରତିଦିନ ସନ୍ଧ୍ୟାରେ ଶ୍ରୀ ଜଗନ୍ନାଥ ଦେବଙ୍କ ପହୁଡ଼ ପରେ ମେଧା ଓ ସୁମେଧା ନାମରେ ପରମା ସୁନ୍ଦରୀ ଦୁଇ ଜଣ ସଖୀ ( ଦେବଦାସୀ ) ଅତିବଡ଼ ସ୍ୱାମୀଙ୍କ ଆଶ୍ରମକୁ ଆସି ତାହାଙ୍କ ସେବା କରୁଥାଆନ୍ତି । ଏହା ଶୁଣି ମହାରାଜ ପ୍ରତାପରୁଦ୍ର ଦେବ ବିସ୍ମିତ ଓ ଦୁଃଖିତ ହୋଇ ଅତିବଡ଼ ସ୍ୱାମୀଙ୍କ ଚରିତ୍ରରେ କଳଙ୍କ ଆଶଙ୍କା କରି ସ୍ୱୟଂ ଅର୍ଦ୍ଧରାତ୍ରି ସମୟରେ ଅକାରି ବାଜି କରି ତାହା ପ୍ରତ୍ୟକ୍ଷ କଲେ । ମାତ୍ର ଭକ୍ତାବତାର ଅନ୍ତର୍ଯ୍ୟାମୀ ଅତିବଡ଼ସ୍ୱାମୀ ତାହା ଜାଣି ପାରି ରାଜାଙ୍କୁ ଉଦ୍ଦେଶ୍ୟ କରି କହିଲେ, 'ମହାରାଜ ! ଆପଣଙ୍କ ଅନ୍ତଃପୁରରେ ମହାଦେଈଙ୍କୁ ଯେପରି ପରିଚାରିକାମାନେ ସେବା କରନ୍ତି, ମୋତେ ମଧ୍ୟ ଏହି ଦୁଇଟି ଦିବ୍ୟଅପରୂପା ସ୍ତ୍ରୀ ଆସି ସେବା କରନ୍ତି ।' ମହାରାଜା ତହୁଁ ଏ ଦୁଇଟି ସ୍ତ୍ରୀଙ୍କୁ ଧରିବାକୁ ଚେଷ୍ଟା କରିବାରୁ ଉକ୍ତ ସ୍ତ୍ରୀ ଦୁହେଁ ଦୃଷ୍ଟି ଦୃଷ୍ଟି ଅନ୍ତର୍ହିତା ହୋଇଗଲେ । ଏହା ଦେଖି ରାଜା ଭୟରେ ଓ ଭକ୍ତିରେ ବିହ୍ୱଳ ହୋଇ ଅତିବଡ଼ ସ୍ୱାମୀଙ୍କ ନିକଟରେ କ୍ଷମା ପ୍ରାର୍ଥନା କଲେ । ଆଉ ଦିନେ ମହାରାଜ କିଛି ମୂଲ୍ୟର ଚନ୍ଦନକାଠ କିଣି ଜଗନ୍ନାଥ ମହାପ୍ରଭୁଙ୍କଠାରେ ତାହା ଲାଗି କରିବା ନିମନ୍ତେ ଅତିବଡ଼ ସ୍ୱାମୀଙ୍କ ହସ୍ତରେ ଅର୍ପଣ କଲେ । ମାତ୍ର ସ୍ୱାମୀ ସେହି ଚନ୍ଦନ ଘୋରି ତାଙ୍କ ଆଶ୍ରମର କାନ୍ଥରେ ବୋଳି ଦେଲେ । ମହାରାଜ ଏହା ଶୁଣି ପାରି ବଡ଼ ଦୁଃଖିତ ହେଲେ; କିନ୍ତୁ ଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରିବାକୁ ଆସି ଦେଖିଲେ ଯେ, ସେହି ଚନ୍ଦନ ମହାପ୍ରଭୁଙ୍କ ଶ୍ରୀଅଙ୍ଗରେ ବୋଳା ହୋଇଅଛି । ଅତିବଡ଼ ସ୍ୱାମୀ ଏହିପରି ଅନେକ ଚମତ୍କାର ମହିମା ପ୍ରକାଶ କରି ଭକ୍ତମାନଙ୍କର ହୃଦୟ ବଶୀଭୂତ କରିଥିଲେ ।

କିଛି ଦିନ ପରେ ଦିନେ ଶତ ଶିଷ୍ୟ ପରିବେଷ୍ଟିତ ବ୍ରହ୍ମାନନ୍ଦ ନାମକ ଜନୈକ ମାୟାବାଦୀ ସନ୍ନ୍ୟାସୀ ଆସି ଶ୍ରୀକ୍ଷେତ୍ରରେ ଉପସ୍ଥିତ ହେଲେ । ତାଙ୍କ ହସ୍ତରେ ଗୋଟିଏ ପତାକା ଥିଲା; ସଙ୍ଗରେ ଗୋଟିଏ ତ୍ରିକୋଣାକାର ଛତ୍ର ଥିଲା । ସେ ମହାରାଜାଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ, "ପଣ୍ଡିତମାନଙ୍କୁ ଡକାନ୍ତୁ, ମୋତେ ବ୍ରହ୍ମଭିକ୍ଷା ଦିଅନ୍ତୁ । ବିତର୍କରେ ମୋତେ ପରାଜୟ କଲେ ମୁଁ ଦୀକ୍ଷା ଗ୍ରହଣ କରିବି । ନ ହେଲେ ମୁଁ ଏଠାରୁ ଗୋଟିଏ ଚତୁଷ୍କୋଣ ଛତ୍ର ଜୟ ବିଦାୟ ଗ୍ରହଣ କରିବି ।" ତହୁଁ ମହାରାଜ ପ୍ରତାପରୁଦ୍ରଦେବ ଅତିବଡ଼ ସ୍ୱାମୀଙ୍କୁ ଡକାଇ ସନ୍ନ୍ୟାସୀଙ୍କ ସଙ୍ଗେ ତର୍କ କରିବାକୁ ଅନୁରୋଧ କଲେ । ଶ୍ରୀ ଅତିବଡ଼ ସ୍ୱାମୀ ଯୁକ୍ତି ତର୍କରେ ଅଦ୍ୱୈତବାଦ ଖଣ୍ଡନ କରି ସ୍ୱୀୟ ପ୍ରଭୁଙ୍କ ଅଚିନ୍ତ୍ୟ ଭେଦାଭେଦ ଭାବ ପ୍ରତିପାଦନ କଲେ । ଏଥିରେ ବ୍ରହ୍ମାନନ୍ଦଙ୍କର ଗର୍ବ ଚୂର୍ଣ୍ଣୀଭୂତ ହେଲା । ସେ ଛତ୍ର ଓ ପତାକା ତ୍ୟାଗ କରି ସନ୍ନ୍ୟାସଗ୍ରହଣପୂର୍ବକ ଦାକ୍ଷିଣାତ୍ୟକୁ ଯାତ୍ରା କଲେ ।

ଦିନେ ମହାରାଜ ପ୍ରତାପରୁଦ୍ରଦେବ ଜଗନ୍ନାଥ ଦର୍ଶନ ସାରି ବଟମୂଳ ପର୍ଯ୍ୟନ୍ତ ଗଲେ । ବଟମୂଳରେ ଅତିବଡ଼ ସ୍ୱାମୀଙ୍କୁ ଦର୍ଶନ କରି ମହାରାଜାଙ୍କର ଭାବାବେଶ ହେଲା । ସେ ଚକ୍ଷୁରୁନ୍ମୀଳନ କରି ଦେଖିଲେ—

"ଅସ୍ମିନ୍ବାଟେ ଜଗନ୍ନାଥ ଦାସୋ ବଂଶୀ ଧନୁଃ ଶରାନ୍,
ଶଙ୍ଖଚକ୍ରଗଦାପଦ୍ମଂ ବିଭ୍ରନ୍ନ୍ୟାନ୍ମାଽଭିବର୍ତ୍ତତା ।

ଅର୍ଥାତ୍ ଅତିବଡ଼ ଜଗନ୍ନାଥ ଦାସ ଅଷ୍ଟଭୁଜ ହୋଇଅଛନ୍ତି; ସେ ଚାରିଗୋଟି ହସ୍ତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ, ଦୁଇଟି ହସ୍ତରେ ଧନୁଶର ଏବଂ ଅପର ଦୁଇଗୋଟି ହସ୍ତରେ ବଂଶୀ-ଧାରଣପୂର୍ବକ ଅଚିନ୍ତ୍ୟ ଷଡ଼୍‌ଭୁଜସମନ୍ୱିତ ଶ୍ୟାମବର୍ଣ୍ଣ ସ୍ୱରୂପେ ବିଦ୍ୟମାନ । ଦିନେ ପ୍ରତାପରୁଦ୍ରଦେବ ଶ୍ରୀଚୈତନ୍ୟଙ୍କୁ କହିଲେ, ଆମ୍ଭର ଶ୍ରୀମତୀ ଗୌରୀ ପାଟମହାଦେଈଙ୍କୁ ମନ୍ତ୍ରୋପଦେଶ ଦେବା ନିମନ୍ତେ ଶ୍ରୀଗୁରୁ ଦରକାର । ଏହା ଶୁଣି ଚୈତନ୍ୟ ଅତିବଡ଼ ସ୍ୱାମୀଙ୍କୁ କହିଲେ-'ଆପଣ ସ୍ତ୍ରୀଭାବ ଧାରଣ କରି ରାଣୀଙ୍କୁ ଦୀକ୍ଷାପ୍ରଦାନ କରନ୍ତୁ' । ଅତିବଡ଼ ସ୍ୱାମୀ ସ୍ତ୍ରୀଭାବ ଧାରଣ କଲେ । ମହାରାଜ ତାହାଙ୍କ ଅଙ୍ଗପ୍ରତ୍ୟଙ୍ଗରେ ସ୍ତ୍ରୀ

ଚିହ୍ନମାନ ଅବଲୋକନ କରି ବିସ୍ମିତ ହୋଇ ତାହାଙ୍କୁ ସବିନୟ ସମର୍ଦ୍ଧନା କରି ତାହାଙ୍କଠାରୁ ପାଟମହାଦେଈଙ୍କୁ ଭିକ୍ଷାଗ୍ରହଣ କରାଇଲେ ।

ଏ 'ବିଷୟ ଜଡ୍ୟଗୁପ୍ତ ଚୂଡ଼ାମଣି' ନାମକ ଗ୍ରନ୍ଥରେ ବର୍ଣ୍ଣିତ ଅଛି ।

ଅଛବଡ଼ ସ୍ୱାମୀଙ୍କ ମାହାତ୍ମ୍ୟ କ୍ରମେ କ୍ରମେ ଶୃତିଅକ୍ଷେ ପ୍ରଚାରିତ ହେବାରୁ କି ସ୍ତ୍ରୀ, କି ପୁରୁଷ, ଦଳ ଦଳ ହୋଇ ଜିଜ୍ଞାସୁ ଭାବରେ ତାହାଙ୍କ ନିକଟରେ ଉପଗତ ହେଲେ । ସ୍ତ୍ରୀଲୋକମାନେ ସଙ୍କୋଚ ବୋଧ ନ କରି ବଟମୂଳରେ ବହୁ ସଂଖ୍ୟାରେ ରୁଣ୍ଡ ହେଉଥିଲେ । ଅଛବଡ଼ ସ୍ୱାମୀଙ୍କର ୧୨ଜଣ ଶିଷ୍ୟ ଥିଲେ । ସେମାନେ ଓଡ଼ିଶାରେ ନାନା ସ୍ଥାନରେ ମଠମାନ ସଂସ୍ଥାପନ କରିଯାଇଅଛନ୍ତି ।

ଶ୍ରୀ ଅଛବଡ଼ ଜଗନ୍ନାଥ ଦାସ ଗୋସ୍ୱାମୀ ବଟ ଗଣେଶଙ୍କ ନିକଟରେ ବସି ସଂସ୍କୃତ ଭାଗବତକୁ ଓଡ଼ିଆ ଭାଷାରେ ନବାକ୍ଷରୀ ବୃତ୍ତରେ ରଚନା କରିଥିଲେ । ଅଦ୍ୟାବଧି ତାହା ଓଡ଼ିଶାରେ ପୁରପଲ୍ଲୀମାନଙ୍କରେ ସର୍ବତ୍ର ପାଠ କରାଯାଉଥିବା ଦେଖାଯାଏ । ଏହି ଗ୍ରନ୍ଥ ପ୍ରଣୟନ କରି ସେ ଉତ୍କଳର ମହୋପକାର ସାଧନ କରି ଯାଇଅଛନ୍ତି । ଏହା ଛଡ଼ା ସେ ସଂସ୍କୃତ ଓ ଉତ୍କଳ ଭାଷାରେ ଭକ୍ତିରସପୂର୍ଣ୍ଣ ବହୁତ ଗ୍ରନ୍ଥ ଲେଖିଯାଇ ଅଛନ୍ତି ।

୧୬୫୦ ଖ୍ରୀଷ୍ଟାବ୍ଦରେ ମାଘ ଶୁକ୍ଳ ପକ୍ଷ ସପ୍ତମୀ ଦିନ ଶ୍ରୀ ଅଛବଡ଼ସ୍ୱାମୀଙ୍କର ତିରୋଧାନ ହେଲା । ତାଙ୍କର ସୂକ୍ଷ୍ମ ଶରୀର ବିଦ୍ୟୁତ୍ଆକାର ଧାରଣ କରି ଜଗନ୍ନାଥଙ୍କ ଶ୍ରୀଅଙ୍ଗରେ ଲୀନ ହୋଇଗଲା ।

---

ଶ୍ରୀ ଚୈତନ୍ୟ ଦେବଙ୍କ ସମୟରେ ଉତ୍କଳର ଯେଉଁ ବୈଷ୍ଣବ ମହାପୁରୁଷମାନେ ପ୍ରସିଦ୍ଧିଲାଭ କରିଥିଲେ ସେମାନେ ପଞ୍ଚସଖା ନାମରେ ବିଖ୍ୟାତ । ଏହି ପଞ୍ଚମୂର୍ତ୍ତି ବୈଷ୍ଣବ ମହାପୁରୁଷମାନେ ପରସ୍ପର ସଖା ଥିଲେ ବୋଲି ସେମାନଙ୍କର ନାମ ପଞ୍ଚସଖା ହୋଇଥିଲା । ସେମାନଙ୍କର ନାମ—

ଶ୍ରୀ ଅଛବଡ଼ ଜଗନ୍ନାଥ ଦାସ, ଶ୍ରୀ ବଳରାମ ଦାସ, ଶ୍ରୀ ଅନନ୍ତ ଦାସ, ଶ୍ରୀ ଯଶୋବନ୍ତ ଦାସ ଓ ଶ୍ରୀ ଅଚ୍ୟୁତାନନ୍ଦ ଦାସ । ଶ୍ରୀ ଅଛବଡ଼ ଜଗନ୍ନାଥ ଦାସଙ୍କ ପରେ ତାଙ୍କର ୧୨ ଶିଷ୍ୟଙ୍କ ମଧ୍ୟରୁ ସୁପ୍ରସିଦ୍ଧ ଗୋପୀନାଥ ଦାସ ସ୍ୱାମୀ ଓଡ଼ିଆ ମଠର ଅଧିକାରୀ ହେଲେ । ତାଙ୍କର ଶିଷ୍ୟ ମାଧବାନନ୍ଦ ଓ ତାହାଙ୍କ ଶିଷ୍ୟ ମୁରାରି ଓ ଦ୍ୱାରିକାବଲ୍ଲଭ ଦାସ ଏମାନେ ଯଥାକ୍ରମେ ଓଡ଼ିଆ ମଠର ଅଧିକାରୀ ହେଲେ । ଅଧିକାରୀ ମୁରାରି ଦାସ ଗୋସ୍ୱାମୀ ଏ ମଠରେ ମୃତ୍ତିକା ନିର୍ମିତ ୩ ଗୋଟି ବୃହଦାକାର ନଦିଅରେ ଶ୍ରୀମହାପ୍ରସାଦ ଜଳ (ଅର୍ଥାତ୍ ଅଭଡ଼ା ତୋରାଣି) ରଖାଇ ଥିଲେ । ଅଦ୍ୟାବଧି ପୂର୍ବପରି ଏହା ମଧ୍ୟ ଏ ମଠରେ ରଖାଯାଇଅଛି । ଏ ତୋରାଣି ଶୀତ ଓ ଗ୍ରୀଷ୍ମ ସମୟରେ ବମ୍ବେଇ, ମାନ୍ଦ୍ରାଜ, ପଶ୍ଚିମ ଓ କଲିକତା ପ୍ରଭୃତିକୁ ରେଲ ଦ୍ୱାରା ପଠାଯାଉ ଅଛି । ଏ ମଧ୍ୟ କେତେଶହ ଏକ ଭୂସମ୍ପତ୍ତି ଦାନ କରିଥିଲେ । ମୁରାରିଙ୍କ ଶିଷ୍ୟ ରାମକୃଷ୍ଣ; ତାହାଙ୍କ ଶିଷ୍ୟ ପୁରୁଷୋତ୍ତମ, ତାହାଙ୍କ ଶିଷ୍ୟ ମୁକୁନ୍ଦ, ତାହାଙ୍କ ଶିଷ୍ୟ ବଂଶୀଧର ଦାସ । ଏ ଜଣେ ନୈଷ୍ଠିକ, ବିଦ୍ୱାନ୍ ଓ ସଚ୍ଚରିତ୍ର ସାଧୁ ଥାଇ ମଠୀୟ ସମ୍ପତ୍ତିର ସୁପରିଚାଳନା କରିଥିଲେ । ତାହାଙ୍କର ଶିଷ୍ୟ ନୀଳାଦ୍ରି ଦାସ ଅତ୍ୟନ୍ତ ବିଦ୍ୱାନ୍ ଥିଲେ । ଉକ୍ତ ମହାତ୍ମା ମଠର ଶ୍ରୀବୃଦ୍ଧି ନିମନ୍ତେ ଢେଙ୍କାନାଳ, ତାଳଚେର, ଭୁଞ୍ଜଙ୍ଗ, କେନ୍ଦୁଝର, ବଳରାମପୁର, ଝିଗିରିଆ, ଖଣ୍ଡପଡ଼ା, ରଣପୁର, ହୁମା ପଭୃତି ରାଜ୍ୟରୁ ଏବଂ ପୁରୀ, କଟକ, ବାଲେଶ୍ୱର ଜିଲ୍ଲାମାନଙ୍କରୁ ବହୁ ସମ୍ପତ୍ତି ଉପାର୍ଜ୍ଜନ କରିଥିଲେ । ଏ ମହାତ୍ମା ପ୍ରତ୍ୟହ ସନ୍ଧ୍ୟା, ତର୍ପଣ, ପୂଜା, ହୋମ ପୁରାଣପାଠ କରି ଶ୍ରୀ ଜଗନ୍ନାଥଦେବଙ୍କ ଦର୍ଶନ କରୁଥିଲେ; ବ୍ରାହ୍ମଣ ଓ ବୈଷ୍ଣବମାନଙ୍କୁ ଯଥାବିଧି ଅର୍ଚ୍ଚନା କରୁଥିଲେ । ସେ ମଧ୍ୟ ପୁରୀର ପଞ୍ଚାୟତ କମିଟିର ମେମ୍ବର ଥିଲେ । ତାହାଙ୍କ ଶିଷ୍ୟ ରାସବିହାରୀ ଦାସ; ତାଙ୍କ ଶିଷ୍ୟ ବୈକୁଣ୍ଠଗତ ଶ୍ରୀ ରାମକୃଷ୍ଣ ଦାସ ଗୋସ୍ୱାମୀ ଏହି ମଠର ପୂର୍ବତନ ଅଧିକାରୀ । ଏ ମହାତ୍ମା ବିଦ୍ୱାନ୍, ବିବେକୀ, ସ୍ୱଧର୍ମପରାୟଣ, ସାଧୁଚରିତ୍ର ଓ ପରମ ବୈଷ୍ଣବ ଥିଲେ । ମଠରେ ସଂସ୍କୃତ ଟୋଲ୍ ଏହାଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ଏ ମହାଶୟ ଜଗନ୍ନାଥବଲ୍ଲଭ ଏଣ୍ଡାଉମେଣ୍ଟ କମିଟିର ଜଣେ ସଦସ୍ୟ ଥିଲେ । ଏହା ଛଡ଼ା ସେ ପୁରୀର ଅବୈତନିକ ବେଞ୍ଚମାଜିଷ୍ଟ୍ରେଟ୍ ଥିଲେ ଏବଂ ଦେଶହିତକର କାର୍ଯ୍ୟମାନଙ୍କରେ ମଧ୍ୟ ଅର୍ଥ ସାହାଯ୍ୟ କରୁଥିଲେ । ଏ ମହାତ୍ମା ନିତ୍ୟନୈମିତ୍ତିକ କର୍ମମାନ ଯଥାବିଧି ସମାଧାନ କରୁଥିଲେ; ବ୍ରାହ୍ମଣ, ବୈଷ୍ଣବ ଓ ଅନ୍ୟାନ୍ୟ ଶ୍ରେଣୀୟ ଲୋକମାନଙ୍କୁ ସମଦୃଷ୍ଟିରେ ଦେଖୁଥିବାରୁ ସର୍ବଜନ ଅଦୃତ ହୋଇ ଥିଲେ । ସେ ମଠର ସମୁନ୍ନତି ସାଧନ କରିବା ନିମନ୍ତେ କେତେକ ଭୂସମ୍ପତ୍ତି ଅର୍ଜ୍ଜନ କରିପାଇଅଛନ୍ତି । ଏହାଙ୍କର ଶିଷ୍ୟ ମଠର ବର୍ତ୍ତମାନ ଅଧିକାରୀ ଶ୍ରୀ ବୃନ୍ଦାବନ ଦାସ ଗୋସ୍ୱାମୀ । ଏ ମହାଶୟ ବିଦ୍ୱାନ୍, ବିବେକୀ, ଦାନଶୀଳ, ଧର୍ମପରାୟଣ ଓ ଜିତେନ୍ଦ୍ରିୟ ଅଟନ୍ତି; ଗୁରୁଙ୍କ ଆଦର୍ଶରେ ଜୀବନ ଗଠନ କରି ମଠୀୟ ସମ୍ପତ୍ତିର ସୁପରିଚାଳନାରେ ସର୍ବଦା ତତ୍ପର । ବ୍ରାହ୍ମଣ, ବୈଷ୍ଣବ, ଅତିଥି ଓ ଅଭ୍ୟାଗତ, ଯେ କେହି ପ୍ରାର୍ଥୀ ଏହାଙ୍କ ନିକଟରେ ଉପସ୍ଥିତ ହେଲେ ନିରାଶ ହୋଇ ଫେରନ୍ତି ନାହିଁ । ଏ ମହାଶୟ ଦେଶହିତକର କାର୍ଯ୍ୟରେ ଅର୍ଥସାହାଯ୍ୟ କରିବାରେ କୁଣ୍ଠିତ ହୁଅନ୍ତି ନାହିଁ; ବିଶେଷତଃ, ଗତ ପ୍ରବଳ ବନ୍ୟାରେ ବିପନ୍ନ ଲୋକମାନଙ୍କୁ ଧାନ ଚାଉଳ ସାହାଯ୍ୟ କରିଅଛନ୍ତି । ଶ୍ରୀଜଗନ୍ନାଥ ଦେବଙ୍କ ନୈବେଦ୍ୟ ପାଇଁ ମଠରେ ଯାହା ଯାହା ଖଞ୍ଜା ଅଛି ତାହା ଉତ୍ତମରୂପେ ଚଳାଉଅଛନ୍ତି । ଶ୍ରୀଜଗନ୍ନାଥ ଦେବଙ୍କ ରତ୍ନସିଂହାସନସ୍ଥ କନକମଣ୍ଡପକୁ ସନ ୧୯୩୨ ମସିହାରେ ବହୁ ଅର୍ଥ ବ୍ୟୟ କରି ନୂତନଭାବେ ନିର୍ମାଣ କରାଇ ଅଛନ୍ତି ଏବଂ ଉକ୍ତ ସିଂହାସନର ପଶ୍ଚାଦ୍ଭାଗ କଳା ଶଙ୍ଖମର୍ମର ପଥରରେ ନିର୍ମାଣ କରିବାଦ୍ୱାରା ତାହାର ପରମ ଶୋଭା

ବର୍ଦ୍ଧିତ କରୁଅଛନ୍ତି । ଅଷ୍ଟଜଣ ଗୋସ୍ୱାମୀଙ୍କଠାରୁ ଏ ପର୍ଯ୍ୟନ୍ତ ମଠରେ ଏକାଦଶ ଗାଦି ଗୋସ୍ୱାମୀମାନଙ୍କର ଅବସ୍ଥାନ ହେଲା । ପୂର୍ବୋକ୍ତ ଗୋସ୍ୱାମୀ ମୁକୁନ୍ଦ ଦାସ ୫ ଗୋଟି ଶିଷ୍ୟ କରି ପ୍ରଧାନ ଶିଷ୍ୟଙ୍କୁ ନିଜ ମଠରେ ଗାଦିନସୀନ କରାଇ ଅପର ୪ ଗୋଟିଙ୍କୁ ମଠର ଚତୁଃପାର୍ଶ୍ୱରେ ରଖାଇ ପୁରୀ, କଟକ,ବାଲେଶ୍ୱର ଓ ଖୋରଧା ଅଞ୍ଚଳରେ ସେମାନଙ୍କ ଚଳାଚଳ ପାଇଁ କେତେକ ଭୂସମ୍ପତ୍ତି ଲଞ୍ଜି ଦେଇ ଯାଇ ଅଛନ୍ତି । ଉକ୍ତ ୪ ଗୋଟି ମଠ ଅଦ୍ୟାବଧି ବଡ଼ ଓଡ଼ିଆ ମଠର ଅଧୀନ ଥାଇ ଚଳି ଆସୁଅଛି । ଯଥା—୧ ସାନ ଓଡ଼ିଆ ମଠ, ୨ ମଧୁ ଦାସ ମଠ, ୩ ବନମାଳି ଦାସ ମଠ ଓ ୪ ଭାଗବତ ଦାସ ମଠ ।

ଏହା ଛଡ଼ା ପୁରୀ କୁଣ୍ଡାଇବେଣ୍ଟସାହି ଓ ଦାଣ୍ଡିମାଳ ସାହିରେ ଅଦ୍ୟାବଧି ୧୬।୧୭ଟି ମଠ ଅଛି । ସେହି ସବୁ ମଠର ଅଧିକାରୀଗଣ ବଡ଼ ଓଡ଼ିଆ ମଠର ନେତୃତ୍ୱ ସ୍ୱୀକାର କରୁଥାଆନ୍ତି । ଏହି ସବୁ ମଠର ଅଧିକାରୀମାନଙ୍କ ମୃତ୍ୟୁରେ ବଡ଼ ଓଡ଼ିଆ ମଠର ଅଧିକାରୀ ମହୋଦୟ ଶାଢ଼ି ବାନ୍ଧିଲେ ସେମାନେ ନିଜ ନିଜ ମଠରେ ଅଧିକାରୀ ହୁଅନ୍ତି । ଏହି ବଡ଼ ଓଡ଼ିଆ ମଠର ମଠାବଲମ୍ବୀ ଶିଷ୍ୟମାନେ ମୋଗଲବନ୍ଦି ଓ ଗଡ଼ଜାତମାନଙ୍କରେ ନାନାସ୍ଥାନରେ ପ୍ରାୟ ୬୦ ହଜାର ପର୍ଯ୍ୟନ୍ତ ଅଛନ୍ତି ।

ବର୍ତ୍ତମାନ ଅଧିକାରୀ ବୃନ୍ଦାବନ ଦାସ ଗୋସ୍ୱାମୀ ଭାଷାକୋଷର ଜଣେ ପରମଶ୍ରେଷ୍ଠ ପୃଷ୍ଠପୋଷକ ଅଟନ୍ତି ।

ସନ୍ଦର୍ଭ ଲେଖକ—ପୁରୀ ଓଡ଼ିଆ ମଠ ରାମକୃଷ୍ଣ ଟୋଲର ହେଡ୍‌ପଣ୍ଡିତ ଶ୍ରୀ ରାମଚନ୍ଦ୍ର ମିଶ୍ର ନ୍ୟାୟରତ୍ନ । ]

**ସିଦ୍ଧକ**—ସଂ. ବି (ସିଦ୍ଧ+କ)—୧ । ସିନ୍ଦୁବାର; ବେଗୁନିଆ (ବୃକ୍ଷବିଶେଷ)—1. Vitex Integrifolia (tree).
Siddhaka
୨ । ଶାଳ (ବୃକ୍ଷବିଶେଷ)—2. The Śāla tree.

**ସିଦ୍ଧ କାମ**—ସଂ. ବିଣ, ପୁଂ (ବହୁବ୍ରୀହି)—ସିଦ୍ଧାର୍ଥ; ଯାହାର ମନୋରଥ ସଫଳ ହୋଇଅଛି—Having attained one's aims.
Siddha kāma
(ସିଦ୍ଧକାମା—ସ୍ତ୍ରୀ)

**ସିଦ୍ଧ କାମେଶ୍ୱରୀ**—ସଂ. ବି—କାମାଖ୍ୟା ଦେବୀଙ୍କର ପଞ୍ଚମୂର୍ତ୍ତି ଅନ୍ତର୍ଗତ ପ୍ରଥମ ମୂର୍ତ୍ତି—The first of the five images of the Goddess Kāmākhyā.
Siddha kāmeśwarī
[ଏହାଙ୍କ ଧ୍ୟାନ—ରକ୍ତଶଶିଯୁତବର୍ଣ୍ଣା କୁଙ୍କୁମାଗ୍ନିଭବର୍ଣ୍ଣା
ମଣିକନକବିଚିତ୍ରା ଲୋଲଜିହ୍ୱା ତ୍ରିନେତ୍ରା
ଅଭୟବରଦହସ୍ତା ସାକ୍ଷସୂତ୍ରାଗ୍ରହସ୍ତା
ନବତରୁଣବେଶାର୍ଦ୍ଧା ମୁକ୍ତକେଶୀ ସୁହାସା—
କାଳିକାପୁରାଣ· ୬୧ ଅଧ୍ୟାୟ । ]

**ସିଦ୍ଧ କ୍ଷେତ୍ର**—ସଂ. ବି—୧ । ଦଣ୍ଡକବନର ଅଂଶବିଶେଷ—1. Name of a part of the ancient Daṇḍaka forest. ୨ । ଯେଉଁ ସ୍ଥାନରେ ଯୋଗୀ ବା ତନ୍ତ୍ରସାଧକ ଶୀଘ୍ର ସିଦ୍ଧିଲାଭ କରନ୍ତି—2. A hallowed place where persons easily attain success in Joga and Tantric rites.
Siddha kshetra

**ସିଦ୍ଧ ଗଙ୍ଗା**—ସଂ. ବି—ମନ୍ଦାକିନୀ; ସ୍ୱର୍ଗଗଙ୍ଗା (ଜଟାଧର)—The Ganges said to flow through Heaven
Siddha gaṅgā

**ସିଦ୍ଧ ଗଣ**—ସଂ. ବି—ସିଦ୍ଧମାନଙ୍କର ସମୂହ—A multitude of the Siddha class of demi-gods.
Siddha gaṇa

**ସିଦ୍ଧ ଗୁଟିକା**—ସଂ. ବି—ଯେଉଁ ମନ୍ତ୍ରସିଦ୍ଧ ବଟିକାକୁ ପାଟରେ ପୂରାଇବା ବ୍ୟକ୍ତି ଅଦ୍ଭୁତ ଶକ୍ତି ଲାଭ କରେ (ହି. ଶ)—A hallowed pill which endows a person who keeps it in his mouth with supernatural powers.
Siddha guṭikā

**ସିଦ୍ଧ ଗୋସା(ସେ)ଇଁ**—ଦେ. ବି—ସିଦ୍ଧପୁରୁଷ; ମୁକ୍ତ; ଯୋଗୀ—An ascetic.
Siddha gosā(se)iñ
सिद्ध पुरुष सन्त गोसाइँ

**ସିଦ୍ଧ ଦେବ**—ସଂ. ବି—ଶିବ; ମହାଦେବ (ଶବ୍ଦରତ୍ନାବଳୀ)—God Śiba.
Siddha deba

**ସିଦ୍ଧ ଧାତୁ**—ସଂ. ବି—ପାରଦ (ବିକାଣ୍ଡଶେଷ)—Mercury.
Siddha dhātu

**ସିଦ୍ଧ ନାଥ**—ସଂ. ବି—ମହାଦେବ—Śiba, ଦେ. ବି—୧ । ମହାଦେବଙ୍କ ମୂର୍ତ୍ତିବିଶେଷ; ସିଦ୍ଧେଶ୍ୱର—1. Name of an idol of Śiba. ୨ । ପୁରୁଷଙ୍କ ନାମ—2. A name given to males. କାଠଯୋଡ଼ି କଟକ ନିକଟରେ ମହାନଦୀରୁ କାଠଯୋଡ଼ି ବାହାରିଥିବା ସ୍ଥାନ ନରାଜର ପାହାଡ଼ରେ ଅବସ୍ଥିତ ଶିବଲିଙ୍ଗ ଓ ପାହାଡ଼—3. Name of a Śibaliṅga as well as of a hillock in Narāja where the Kāṭhajoṛi branches off from the Mahānadī (Orissa).
Siddha nātha
सिद्धनाथ
सिद्धनाथ

**ସିଦ୍ଧ ପକ୍ଷ**—ସଂ. ବି—୧ । (ନ୍ୟାୟଶାସ୍ତ୍ର) ମୀମାଂସା କରାଯାଇଥିବା ବିଷୟ—1. (logic) Conclusion. ୨ । ପ୍ରମାଣିତ ବିଷୟ—2. Proved matter.
Siddha paksha

**ସିଦ୍ଧ ପଥ**—ସଂ. ବି (ସିଦ୍ଧମାନଙ୍କ ପଥ; ୬ଷ୍ଠୀ ତତ୍)—ଅନ୍ତରୀକ୍ଷ; ଆକାଶ (ହି. ଶ)—The sky.
Siddha patha

**ସିଦ୍ଧ ପୀଠ**—ସଂ. ବି—୧ । (ତନ୍ତ୍ର) ଯେଉଁ ସ୍ଥାନରେ ଏକ ଲକ୍ଷ ବଳିଦାନ, କୋଟି ସଂଖ୍ୟକ ହୋମ ଓ କୋଟି ମହାବିଦ୍ୟା ଜପ ହୋଇଅଛି (ପୀଠ ଶବ୍ଦ ଦେଖ)—1. A place sanctified by the offering of one lakh of victims, 10 millions of Vedic oblations and 10 millions of mystic incantations of Durgā. ୨। ସିଦ୍ଧକ୍ଷେତ୍ର (ଦେଖ) 2. Siddha kshetra (See).
Siddha pīṭha

**ସିଦ୍ଧ ପୁର**—ସଂ. ବି—ଜମ୍ବୁଦ୍ୱୀପରୁ ଉତ୍ତରସ୍ଥ ଭୂଗୋଳକର ଅଧୋଦେଶ ବିଶେଷ (ସିଦ୍ଧାନ୍ତଶିରୋମଣି)—A my-
Siddha pura

thological country below the globe described in astrological treatises.

ସିଦ୍ଧ ପୁରୁଷ—ସଂ. ବି (କର୍ମଧା)—୧ । ସିଦ୍ଧିପ୍ରାପ୍ତ ବ୍ୟକ୍ତି—1. A
Siddha purusha person who has attained success; an adept. ୨ । ମୁକ୍ତ ମାନବ—2. A person who has attained salvation. ୩ । ଯୋଗୀ—3. An ascetic. ୪ । ମନ୍ତ୍ରସିଦ୍ଧ ବ୍ୟକ୍ତି—4. A person who has attained success in accomplishing mystic formula. ୫ । ଯେଉଁ ବ୍ୟକ୍ତି ଇପ୍ସିତ ବସ୍ତୁ ଲାଭ କରି ପାରନ୍ତି—5. A person who gets anything he wants.

ସିଦ୍ଧ ପୁଷ୍ପ—ସଂ. ବି—କରବୀର ବୃକ୍ଷ (ରାଜନିର୍ଘଣ୍ଟ)—The
Siddha pushpa Oleander. [ଦ୍ର—ଏହା ସିଦ୍ଧମାନଙ୍କ ପ୍ରିୟ ପୁଷ୍ପ ଓ ମନ୍ତ୍ରସିଦ୍ଧି ପାଇଁ ପ୍ରଯୁକ୍ତ ହୁଏ—ହି. ଶ ।]

ସିଦ୍ଧପ୍ରୟୋଜନ—ସଂ. ବିଣ. ପୁଂ-ସିଦ୍ଧକାମ (ଦେଖ)—Siddha kāma.
Siddha prayojana (See) ସଂ. ବି—ଗୌର ସର୍ଷପ (ରାଜ
(ସିଦ୍ଧପ୍ରୟୋଜନା—ସ୍ତ୍ରୀ. ବିଣ) ନିର୍ଘଣ୍ଟ)—The white rye.

ସିଦ୍ଧ ବସ୍ତି—ସଂ. ବି (ଆୟୁର୍ବେଦ)—ତୈଳ ଅଦର ପିଚକାରୀ (ହି. ଶ)
Siddha basti Syringing or spraying with oil.

ସିଦ୍ଧ ବିଦ୍ୟା—ସଂ. ବି—ଦଶ ମହାବିଦ୍ୟାର ଏକ (ଦେଖ)—
Siddha bidyā One of the daśa mahābidyā: (See)

ସିଦ୍ଧ ବିଦ୍ୟାଧର—ସଂ. ବି (ଦ୍ୱନ୍ଦ୍ୱ)—ସିଦ୍ଧ ଓ ବିଦ୍ୟାଧର ନାମକ
Siddha bidyādhara ଦେବଯୋନି ଦ୍ୱୟ—Two classes of demi-gods.

ସିଦ୍ଧ ବିନାୟକ—ସଂ. ବି—ଗଣେଶଙ୍କ ମୂର୍ତ୍ତି ବିଶେଷ—An image
Siddha bināyaka of Ganeśa. [ଦ୍ର—ସିଦ୍ଧ ବିନାୟକଙ୍କ ସ୍ତୋତ୍ରପାଠ ପୂର୍ବକ ପୂଜା କଲେ ପୂଜକର ସମ୍ବତ୍ସର ମଧ୍ୟରେ କାମନା ସିଦ୍ଧି ହୁଏ ।]

ସିଦ୍ଧ ବୁଟୀ—ଦେ. ବି (ସଂ. ସିଦ୍ଧ+ବୁଟୀ)—ସିଦ୍ଧ ଯୋଗୀମାନଙ୍କ
Siddha buṭī ବ୍ୟବସ୍ଥିତ ରୋଗମାନଙ୍କ ଅବ୍ୟର୍ଥ ମହୌଷଧ—
সিদ্ধবুটী Never-failing medicine prescribed by
**सिद्धबुटी** saints for diseases.
[ଦ୍ର—ଏହିପରି ସିଦ୍ଧମନ୍ତ୍ର, ସିଦ୍ଧବଟିକା ଆଦି ଶବ୍ଦର ବ୍ୟବହାର ହୁଏ ।]

ସିଦ୍ଧ ମଠ—ସଂ. ବି—ସିଦ୍ଧ ପୁରୁଷଙ୍କ ଆଶ୍ରମ—
Siddha maṭha The Maṭha of a 'Siddha
সিদ্ধমঠ **सिद्धमठ** purusha'.

ସିଦ୍ଧ ମନୋରଥ—ସଂ. ବିଣ. ପୁ (ବହୁବ୍ରୀହି)—ସିଦ୍ଧକାମ (ଦେଖ)
Siddha manoratha Siddha kāma. (See)
(ସିଦ୍ଧ ମନୋରଥା—ସ୍ତ୍ରୀ)

ସିଦ୍ଧ ଯୋଗୀ—ସଂ. ବି. ପୁଂ—୧ । ସିଦ୍ଧିଲାଭ କରିଥିବା ଯୋଗୀ—
Siddha jogī 1. A Jogī who has attained success. ୨ । ମହାଦେବ (ହି. ଶ)—2. Śiba.

ସିଦ୍ଧ ରସ—ସଂ. ବି—ପାରଦ (ଜୟପାଳ)
Siddha rasa Mercury.

ସିଦ୍ଧ ରସାୟନ—ସଂ. ବି—ଯାବଜ୍ଜୀବନ ଓ ପ୍ରଭୂତ ଶକ୍ତିଦାତା ରସୌଷଧ-
Siddha rasāyana ବିଶେଷ—A medicinal preparation giving longevity and strength.

ସିଦ୍ଧ ଲକ୍ଷ(କ୍ଷ୍ୟ)—ସଂ. ବିଣ. ପୁଂ (ବହୁବ୍ରୀହି)—୧ । ଯେଉଁ ବ୍ୟକ୍ତି ଲକ୍ଷ୍ୟ-
Siddha laksha(kshya) ଭେଦରେ ଅବ୍ୟର୍ଥ—1. Of
(ସିଦ୍ଧଲକ୍ଷା[କ୍ଷ୍ୟା]—ସ୍ତ୍ରୀ) unerring aim. ୨ । ସିଦ୍ଧ ସଂକଳ୍ପ
(ଦେଖ)—2. Siddha saṅkalpa. (See)

ସିଦ୍ଧ ସଙ୍କଳ୍ପ—ସଂ. ବିଣ. ପୁଂ—ଯେଉଁ ବ୍ୟକ୍ତିର ସଙ୍କଳ୍ପ ସିଦ୍ଧ
Siddha saṅkalpa ହୋଇଅଛି—One who has
(ସିଦ୍ଧ ସଙ୍କଳ୍ପା—ସ୍ତ୍ରୀ) his desire fulfilled.

ସିଦ୍ଧ ସଲିଳ—ସଂ. ବି—୧ । କାଞ୍ଜିକା (ହାରକାଣ୍ଡ ଶେଷ)—1
Siddha salila Fermented rice water. ୨ । ସିଝା ପାଣି—2. Boiled water.

ସିଦ୍ଧ ସାଧକ—ସଂ. ବି—୧ । (କର୍ମଧା) ସିଦ୍ଧିପ୍ରାପ୍ତ ସାଧକ ବ୍ୟକ୍ତି—
Siddha sādhaka 1. An adept. ୨ । (ଷଷ୍ଠୀ ତତ୍) କଳ୍ପ ବୃକ୍ଷ (ହି. ଶ)—2. The mythological tree which fulfills a suitor's wish. ସଂ. ବିଣ.
(ସିଦ୍ଧ ସାଧିକା—ସ୍ତ୍ରୀ) ପୁଂ—ମନୋରଥ ପୂରଣକାରୀ—Fulfilling another's wishes.

ସିଦ୍ଧ ସାଧନ—ସଂ. ବି (ଷଷ୍ଠୀ ତତ୍)—୧ । ସିଦ୍ଧ ବସ୍ତୁର ସାଧନ—
Siddha sādhana 1. Solution of a solved matter. ୨ । ଗୌର ସର୍ଷପ—2. White rye. ୩ । ପ୍ରମାଣିତ ବିଷୟର ପୁନଃ ପ୍ରମାଣ—3. Proving of an already proved matter.

ସିଦ୍ଧ ସାଧିତ—ସଂ. ବିଣ. ପୁଂ—ଯେଉଁ ଚିକିତ୍ସକ ବ୍ୟବହାର ଦ୍ୱାରା
Siddha sādhita (ଶାସ୍ତ୍ର ଅଧ୍ୟୟନ ଦ୍ୱାରା ନୁହେଁ) ଚିକିତ୍ସା-ବିଦ୍ୟାରେ ନିପୁଣତା ଲାଭ କରିଅଛନ୍ତି (ହି. ଶ)—(a physician) Who has become an expert by practice (and not by the study of books).

ସିଦ୍ଧ ସିନ୍ଧୁ (ସରିତ୍)—ସଂ. ବି—୧ । ସ୍ୱର୍ଗ ଗଙ୍ଗା—1. The
Siddha sindhu (sarit) heavenly Ganges. ୨ । ଗଙ୍ଗା ନଦୀ (ହାରକାଣ୍ଡ ଶେଷ)—2. The Ganges.

ସିଦ୍ଧ ସେନ—ସଂ. ବି—କାର୍ତ୍ତିକେୟ; ଦେବ ସେନାପତି (ଶବ୍ଦ
Siddha sena ରତ୍ନାବଳୀ)—The Deity Kārttikeya.

ସିଦ୍ଧ ସେବିତ—ସଂ. ବିଣ. ପୁଂ—ସିଦ୍ଧ ବ୍ୟକ୍ତିମାନଙ୍କ ଦ୍ୱାରା ଉପାସିତ—
Siddha sebita Wrshipped by the 'Siddha'
(ସିଦ୍ଧ ସେବିତା—ସ୍ତ୍ରୀ) persons. ସଂ. ବି. ପୁଂ—ବଟୁକ ଭୈରବ—One of the attendants of Śiba.

**ସିଦ୍ଧ ସ୍ଥାଳୀ**—ସଂ. ବି—ସିଦ୍ଧ ଯୋଗୀମାନଙ୍କ ଭାଣ୍ଡ, ଯହିଁରୁ
Siddha sthāli ଆବଶ୍ୟକତା ଅନୁରୂପ ଭୋଜନ ସାମଗ୍ରୀ ବାହାରେ (ହି. ଶ)—A consecrated pot from which food for as many persons as required, comes out. [ଦ୍ର—କଥିତ ଅଛି ଯେ, ପାଣ୍ଡବମାନଙ୍କ ବନବାସ ସମୟରେ ବ୍ୟାସଦେବ ଦ୍ରୌପଦୀଙ୍କୁ ଗୋଟିଏ ସିଦ୍ଧସ୍ଥାଳୀ ଦେଇଥିଲେ । ବନବାସ କାଳରେ ପାଣ୍ଡବମାନଙ୍କ ନିକଟରେ ଉପସ୍ଥିତ ଅଭ୍ୟାଗତ-ମାନଙ୍କ ଖାଦ୍ୟ ସେହି ସ୍ଥାଳୀରୁ ମିଳୁଥିଲା ଓ କେହି ଉପବାସୀ ହୋଇ ପାଣ୍ଡବମାନଙ୍କ ନିକଟରୁ ଫେରୁ ନ ଥିଲେ । ]

**ସିଦ୍ଧହସ୍ତ**—ସଂ. ବିଣ. ପୁଂ (ବହୁବ୍ରୀହି)—କୌଣସି କର୍ମରେ ଅତି ପଟୁ—
Siddha hasta Very skilful in any work; profi-
(ସିଦ୍ଧହସ୍ତା—ସ୍ତ୍ରୀ) (ସିଦ୍ଧହସ୍ତତା—ବି) cient or adept in any work.

**ସିଦ୍ଧା**—ସଂ. ବିଣ. ସ୍ତ୍ରୀ ( ସିଦ୍ଧ + ଆ )—ସିଦ୍ଧର ସ୍ତ୍ରୀଲିଙ୍ଗ—Feminine
Siddhā of Siddha. ସଂ. ବି. ସ୍ତ୍ରୀ—୧ । ଅଷ୍ଟ ଯୋଗିନୀ ମଧ୍ୟରୁ ଏକ ଯୋଗିନୀ—1. Name of one of the eight attendants of Goddess Pārbatī. [ଦ୍ର—ଅଷ୍ଟ ଯୋଗିନୀଙ୍କର ନାମ, ଯଥା—ମଙ୍ଗଳା, ପିଙ୍ଗଳା, ଧନ୍ୟା, ଭ୍ରାମରୀ, ଭଦ୍ରିକା, ଉଲ୍କା, ସିଦ୍ଧା, ସଙ୍କଟା । ] ୨ । ଋଦ୍ଧି ନାମକ ଔଷଧି—2. A medicinal herb. ୩ । ସିଦ୍ଧାଙ୍ଗନା ( ଦେଖ )—3. Siddhāngana ( See ) ୪ । ଆର୍ଯ୍ୟାଛନ୍ଦର ଏକ ଭେଦ ( ହି. ଶ )—4. One of the variations of Ārjyā metre. ଦେ. ବି. ଓ ବିଣ—ସିଧା (ଦେଖ)—Sidhā (See)

**ସିଦ୍ଧାଇବା**—ଦେ. କ୍ରି—ସିଧାଇବା ( ଦେଖ )
Siddhāibā Sidhāibā ( See ).

**ସିଦ୍ଧାଙ୍ଗନା**—ସଂ. ବି ( ୬ଷ୍ଠୀ ତତ୍ )—ସିଦ୍ଧ ନାମକ ଦେବଯୋନି
Siddhāngana ଜାତୀୟା ସ୍ତ୍ରୀ—A female of the Siddha class of demigods.

**ସିଦ୍ଧାଙ୍ଗୀ**—ଦେ. ବି ( ସଂ. ସିଦ୍ଧାଙ୍ଗ )—ସିଦ୍ଧ ଅଙ୍ଗବିଶିଷ୍ଟ (ବ୍ୟକ୍ତି)—
Siddhāngī (a person) Having the body conse-
सिद्धाङ्गी crated by Joga. [ଉ—ମୁନି ସିଦ୍ଧାଙ୍ଗୀ ଅଧ ଗୋ
सिधांगी ବେଗି । ଅଠାଣୀ ସହସ୍ର କନ୍ୟା ଜବାନୁରାଗୀ—
ପ୍ରାଚୀ. ରହସ୍ୟମଞ୍ଜରୀ । ]

**ସିଦ୍ଧାଞ୍ଜନ**—ସଂ. ବି (୬ଷ୍ଠୀ ତତ୍; ସିଦ୍ଧପୁରୁଷମାନଙ୍କ ଅଞ୍ଜନ; ବା କର୍ମଧା)—
Siddhānjana ଯେଉଁ ଅଞ୍ଜନ ଆଖିରେ ଲଗାଇଲେ ଅଦୃଶ୍ୟ ବସ୍ତୁମାନ ଦେଖାଯାଏ—A consecrated collyrium, the user of which can see invisible things.

**ସିଦ୍ଧା ଦେବୀ**—ସଂ. ବି—ସିଦ୍ଧେଶ୍ୱରୀ ( ଦେଖ )
Siddhā debī Siddheswarī ( See )

**ସିଦ୍ଧାନ୍ତ**—ସଂ. ବି (ବହୁବ୍ରୀହି; ସିଦ୍ଧ ହୋଇଅଛି ଅନ୍ତ=ଶେଷ ଯାହାର)
Siddhānta —୧ । ମୀମାଂସା; ବିଚାରର ଶେଷ ଫଳ; ଉତ୍ତମରୂପେ ବିଚାର ପରେ ସ୍ଥିର କରାଯିବା ମତ—1. Final decision; conclusion; conclusion arrived at after due consideration. ୨ । ( ନ୍ୟାୟଶାସ୍ତ୍ର ) ପୂର୍ବ ପକ୍ଷ ମୀମାଂସାପୂର୍ବକ ସିଦ୍ଧପକ୍ଷ ସ୍ଥାପନ 2. ( Logic ) Arriving at a conclusion from predicate or data; logical conclusion. ୩ । ନବବିଧ ପ୍ରାଚୀନ ଜ୍ୟୋତିର୍ଗ୍ରନ୍ଥବିଶେଷ—3. Name of nine old Hindu astronomical treatises or systems. [ଦ୍ର—ନବସିଦ୍ଧାନ୍ତର ନାମ, ଯଥା—ବ୍ରହ୍ମସିଦ୍ଧାନ୍ତ, ସୂର୍ଯ୍ୟସିଦ୍ଧାନ୍ତ, ସୋମସିଦ୍ଧାନ୍ତ, ବୃହସ୍ପତିସିଦ୍ଧାନ୍ତ, ଗର୍ଗସିଦ୍ଧାନ୍ତ, ନାରଦସିଦ୍ଧାନ୍ତ, ପରାଶର ସିଦ୍ଧାନ୍ତ, ପୁଲସ୍ତ୍ୟସିଦ୍ଧାନ୍ତ ଓ ବଶିଷ୍ଠସିଦ୍ଧାନ୍ତ ।

ହିନ୍ଦୁ ଜ୍ୟୋତିଷରେ ୧୮ଟି ସିଦ୍ଧାନ୍ତ ଗ୍ରନ୍ଥ ଅଛି । ଯଥା—୧ ସୂର୍ଯ୍ୟ, ୨ ବ୍ରହ୍ମା, ୩ ବ୍ୟାସ, ୪ ବଶିଷ୍ଠ, ୫ ଅତ୍ରି, ୬ ପରାଶର, ୭ କଶ୍ୟପ, ୮ ନାରଦ; ୯ ଗର୍ଗ, ୧୦ ମରୀଚି, ୧୧ ମନୁ, ୧୨ ଅଙ୍ଗିରା, ୧୩ ଲୋମଶ ବା ରୋମକ, ୧୪ ପୌଲିଶ, ୧୫ ଚ୍ୟବନ, ୧୬ ଯବନ, ୧୭ ଭୃଗୁ, ୧୮ ଶୌନକ । ] ୪ । ( ନ୍ୟାୟଶାସ୍ତ୍ର, ଗୌତମ ସୂତ୍ର ) ତନ୍ତ୍ରାଧିକରଣାଭ୍ୟୁପଗମ ସଂସ୍ଥିତି—4. Settled doctrine in philosophy. [ ଦ୍ର—ନ୍ୟାୟଶାସ୍ତ୍ର ଅନୁସାରେ ସିଦ୍ଧାନ୍ତ ୪ ପ୍ରକାର । ଯଥା—

୧ । ସର୍ବତନ୍ତ୍ର ସିଦ୍ଧାନ୍ତ—ସବୁ ସମ୍ପ୍ରଦାୟର ପଣ୍ଡିତ-ମାନଙ୍କଦ୍ୱାରା ସମ୍ମତ ବା ସର୍ବସମ୍ମତ ସିଦ୍ଧାନ୍ତ ।

୨ । ପ୍ରତିତନ୍ତ୍ର ସିଦ୍ଧାନ୍ତ—କେତେକ ଶାଖାର ଦାର୍ଶନିକଙ୍କଦ୍ୱାରା ସ୍ୱୀକୃତ ଓ ଅନ୍ୟ ଶାଖାମାନଙ୍କଦ୍ୱାରା ଅସ୍ୱୀକୃତ ସିଦ୍ଧାନ୍ତ ।

୩ । ଅଧିକରଣ ସିଦ୍ଧାନ୍ତ—ଯେଉଁ ସିଦ୍ଧାନ୍ତକୁ ମାନିଲେ ତହିଁର ଅନୁସଙ୍ଗିକ ଅନ୍ୟ ସିଦ୍ଧାନ୍ତକୁ ମାନିବାକୁ ହୁଏ ।

୪ । ଅଭ୍ୟୁପଗମ ସିଦ୍ଧାନ୍ତ—ଯେଉଁ ସିଦ୍ଧାନ୍ତକୁ ସ୍ପଷ୍ଟରୂପେ ସ୍ୱୀକାର କରାଯାଏ ନାହିଁ, କିନ୍ତୁ ସବୁ ଅବସ୍ଥା ବିଚାର କଲେ ତାହା ପ୍ରକଟ ହୁଏ—ହି. ଶ । ]

୫ । ସମ୍ମତ ( ହି. ଶ )—5. Approval. ୬ । ନିର୍ଣ୍ଣୀତ ଅର୍ଥ ( ହି. ଶ )—6. Settled meaning or purport. ୭ । ମୁଖ୍ୟ ଉଦ୍ଦେଶ୍ୟ ବା ଲକ୍ଷ୍ୟ ( ହି. ଶ )—7. Principal or ultimate aim. ୮ । କୌଣସି ଶାସ୍ତ୍ରର ବା ବିଜ୍ଞାନର ଶାଖା ( ଯଥା—ଜ୍ୟୋତିଷ, ଗଣିତ ) ବିଷୟକ ତତ୍ତ୍ୱ ନିର୍ଣ୍ଣାୟକ ଗ୍ରନ୍ଥ—1. A treatise on a particular branch of knowledge. [ଯଥା—ସୂର୍ଯ୍ୟସିଦ୍ଧାନ୍ତ, ବ୍ରହ୍ମସିଦ୍ଧାନ୍ତ]
सिद्धान्त ଦେ. ବିଣ ( ସଂ. ସିଦ୍ଧାନ୍ତିତ )—୧ । ମୀମାଂସିତ—
सिधान्त 1. Settled; decided. ୨ । ନିଷ୍ପନ୍ନ—

2. Proficient. [ ଉ—ଯାଗେ ବାସ ଥିଲେ ଲୋକ ସିଦ୍ଧାନ୍ତ ହୋଇବେ—ପ୍ରାଚୀ· ବ୍ରହ୍ମବଇବର୍ତ୍ତପୁରାଣଗୀତା । ]

ସିଦ୍ଧାନ୍ତ କରିବା—ଦେ. କ୍ରି—ମୀମାଂସା କରିବା—To decide
Siddhānta karibā finally.
সিদ্ধান্ত করা सिधान्त करना

ସିଦ୍ଧାନ୍ତ କୌମୁଦୀ—ସଂ. ବି—ପ୍ରସିଦ୍ଧ ସଂସ୍କୃତ ବ୍ୟାକରଣ ଗ୍ରନ୍ଥ—
Siddhānta kaumudī A famous Sanskrit grammar. [ବି—ସିଦ୍ଧାନ୍ତ କୌମୁଦୀର ସୂତ୍ରମାନ ସଙ୍କଳିତ ହୋଇ ଲଘୁ ସିଦ୍ଧାନ୍ତ କୌମୁଦୀ ନାମରେ ଖଣ୍ଡିଏ କ୍ଷୁଦ୍ରତର ଗ୍ରନ୍ଥ ହୋଇଅଛି । ]

ସିଦ୍ଧାନ୍ତ ଦର୍ପଣ—ସଂ. ବି—ଖଣ୍ଡପଡ଼ାର ସ୍ୱର୍ଗୀୟ ମହାମହୋପାଧ୍ୟାୟ
Siddhānta darpana ଚନ୍ଦ୍ରଶେଖର ସାମନ୍ତ (ପଠାଣି ସାମନ୍ତ)ଙ୍କ କୃତ ସଂସ୍କୃତ ଜ୍ୟୋତିଷ ଗ୍ରନ୍ଥ (ଏହି ଗ୍ରନ୍ଥ ଲାଗି ଲେଖକ ଭାରତରେ ତଥା ପାଶ୍ଚାତ୍ୟ ଦେଶମାନଙ୍କରେ ଖ୍ୟାତ )—
Title of the Sanskrit astronomical treatise by the late Mahāmahopādhāya Chandrasekhara Sāmanta of Khundpara in Orissa.

ସିଦ୍ଧାନ୍ତ ପଞ୍ଚାନନ—ଦେ. ବି—ଶାସ୍ତ୍ରର ମୀମାଂସକ ପଣ୍ଡିତମାନଙ୍କ ଉପାଧି ବିଶେଷ—A title given
Siddhānta panchānana to Pandits.
সিদ্ধান্ত পঞ্চানন सिधान्त पंचानन

ସିଦ୍ଧାନ୍ତ ବାଗୀଶ, ସିଦ୍ଧାନ୍ତ ଭୂଷଣ } —ଅନ୍ୟରୂପ
ସିଦ୍ଧାନ୍ତ ରତ୍ନ, ସିଦ୍ଧାନ୍ତ ସାଗର }

ସିଦ୍ଧାନ୍ତ ମୁକ୍ତାବଳୀ—ସଂ. ବି—ନ୍ୟାୟଦର୍ଶନ ଗ୍ରନ୍ଥ ବିଶେଷ—
Siddhānta muktābalī Name of a treatise on the Nyāya Philosophy.

ସିଦ୍ଧାନ୍ତରେ ଉପନୀତ (ଉପସ୍ଥିତ) ହେବା—ଦେ. କ୍ରି—ଶେଷ ମୀମାଂସା
Siddhāntare upanīta (upasthita) hebā କରିବା—
সিদ্ধান্তে উপনীত হওয়া, সিদ্ধান্তে পৌঁছা To arrive at a
सिधान्तमें उपनीत होना conclusion; to come to a
(ସିଦ୍ଧାନ୍ତରେ ପହଞ୍ଚିବା—ଅନ୍ୟରୂପ) conclusion.

ସିଦ୍ଧାନ୍ତାଚାର—ସଂ. ବି—ତାନ୍ତ୍ରିକାଚାର ବିଶେଷ—A sort of
Siddhāntāchāra Tāntric service. [ବି—ଏଥିରେ ସାଧକ ଆପଣାକୁ ଦେବତା ବୋଲି କଳ୍ପନା କରି ଶୁଦ୍ଧ ଓ ଶାନ୍ତ ଚିତ୍ତରେ କବଚଣ୍ଠ ମନରେ ଦେବାଙ୍କୁ ପୂଜା କରେ ।]

ସିଦ୍ଧାନ୍ତି—ଗ୍ରା. ବି—ସିଦ୍ଧାନ୍ତ (ଦେଖ)—Siddhānta. ( See )
Siddhānti ( ଉ—ମହିମା ନାମଟ ଯେହୁ ମହାଦେବ ଜାତ, ମହାବ୍ରହ୍ମ ଶବ୍ଦରୁ ହୋଇଲା ସିଦ୍ଧାନ୍ତ । ପ୍ରାଚୀ. ବ୍ରହ୍ମକଳ୍ପପୁରାଣ, ଗୀତା ।)

ସିଦ୍ଧାନ୍ତିତ—ସଂ. ବିଣ (ସିଦ୍ଧାନ୍ତ+ଇତ)—ନିର୍ଣ୍ଣୀତ (ହ୍ର· ଶ)
Siddhāntita Ascertained.

ସିଦ୍ଧାନ୍ତୀ—ସଂ. ବିଣ. ପୁଂ ( ସିଦ୍ଧାନ୍ତ+ଇନ୍; ୧ମା· ୧ବ )—
Siddhāntī ସିଦ୍ଧାନ୍ତକାରୀ; ମୀମାଂସକ—Deciding; con-
(ସିଦ୍ଧାନ୍ତିନୀ—ସ୍ତ୍ରୀ) cluding. ସଂ. ବି—୧ । ତାର୍କିକ—
1. A reasoner. ୨ । ନୈୟାୟିକ—2. A logician.

ସିଦ୍ଧାନ୍ତୀୟ—ସଂ. ବିଣ (ସିଦ୍ଧାନ୍ତ+ଈୟ)—ସିଦ୍ଧାନ୍ତ ସମ୍ବନ୍ଧୀୟ—
Siddhāntīya Relating to Siddhānta.

ସିଦ୍ଧାନ୍ନ—ସଂ. ବି (ସିଦ୍ଧ=ପକ୍ୱ+ଅନ୍ନ)—୧ । ପକ୍ୱାନ୍ନ; ରନ୍ଧାଭାତ—
Siddhānna 1. Cooked rice. ୨ । ରନ୍ଧା ବା ସିଝା ଖାଦ୍ୟ—2. Cooked or boiled food. ପ୍ରାଦେଶିକ (ଗାଞ୍ଜାମର) ବି—ନିର୍ଦ୍ଦିଷ୍ଟ ଚାଉଳ, ଦୁଧ, ଖସା, ନଡ଼ିଆ ଏକତ୍ର ସିଦ୍ଧ କରି ଗଣେଶ ଚତୁର୍ଥୀଦିନ ଗଣେଶଙ୍କୁ ଦିଆଯିବା ଏକପ୍ରକାର ଭୋଗ—Fixed quantities of rice, milk, sesamum seeds and cocoanut boiled together and offered to the Deity Ganesa on the Ganesachaturthī festival.

ସିଦ୍ଧାପଗା—ସଂ. ବି (ସିଦ୍ଧ=ଆକାଶସ୍ଥ ଦେବଯୋନି ବିଶେଷ ବା ଋଷି
Siddhāpagā ମାନଙ୍କ ବ୍ୟବହୃତ ଆପଗା=ନଦୀ; ୬ଷ୍ଠୀ ତତ୍)—
୧ । ସୁର ନଦୀ; ସିଦ୍ଧ ଗଙ୍ଗା (ହେମଚନ୍ଦ୍ର)—1. The heavenly Ganges ୨ । ଗଙ୍ଗା ନଦୀ (ହ୍ର· ଶ)—2. The Ganges.

ସିଦ୍ଧାୟିକା—ସଂ. ବି. ସ୍ତ୍ରୀ—ବୌଦ୍ଧଗଣପୂଜିତା ଦେବୀ ବିଶେଷ—
Siddhāyikā Name of a Buddhist Goddess.

ସିଦ୍ଧାରି—ସଂ. ବି (ସିଦ୍ଧ+ଅରି)—ମନ୍ତ୍ର ବିଶେଷ (ଶବ୍ଦ କଳ୍ପଦ୍ରୁମ)—
Siddhāri Name of some mystic formula. [ବି—ଏହି ମନ୍ତ୍ର ଜପ କଲେ କାତର ବାନ୍ଧବମାନେ ବିନଷ୍ଟ ହୁଅନ୍ତି (ତନ୍ତ୍ରସାର) । ଅତଏବ ଏ ମନ୍ତ୍ର ଗ୍ରହଣ କରିବା ଉଚିତ ନୁହେଁ (ବିଶ୍ୱକୋଷ) ।]

ସିଦ୍ଧାର୍ଥ—ସଂ. ବିଣ. ପୁଂ—(ବହୁବ୍ରୀହି) ସିଦ୍ଧକାମ ( ଦେଖ )—
Siddhārtha Siddhakāma (See) ସଂ. ବି—୧ ।
( ସିଦ୍ଧାର୍ଥା—ସ୍ତ୍ରୀ) ବୁଦ୍ଧଦେବ; ଗୌତମ, ଶାକ୍ୟସିଂହ (ମେଦିନୀ)—
1. A name of Buddha. ୨ । ମହାବୀର ଜୈନଙ୍କ ପିତା; ଚତୁର୍ବିଂଶ ଅର୍ହତଙ୍କ ପିତା (ହ୍ର· ଶ)—2. Father of the Jaina saint Mahābīra. ୩ । ଶ୍ୱେତ ସର୍ଷପ (ଅମର); ଧଳା ସୋରିଷ—3. The white rye. ୪ । ଏକଜାତୀୟ ବଟ ବୃକ୍ଷ (ରାଜନିର୍ଘଣ୍ଟ)—4. A species of Banyan tree. ୫ । ପ୍ରସିଦ୍ଧ ଅର୍ଥ—5. Well-known meaning. ୬ । ରାଜା ଦଶରଥଙ୍କର ଏକ ମନ୍ତ୍ରୀ (ହ୍ର· ଶ)—6. Name of one of the ministers of Dasaratha. ୭ । ସ୍କନ୍ଦଙ୍କ ଗଣ ମଧ୍ୟରୁ ଏକ (ହ୍ର· ଶ)—7. One of the attendants of Skanda. ୮ । ଯେଉଁ ଗୃହର ଦକ୍ଷିଣ ଓ ପଶ୍ଚିମାଂଶରେ ବଡ଼ ଶାଳା ( ହଲ୍ ) ଥାଏ (ହ୍ର· ଶ)—8. A house containing big halls in its south and west.

| ୧ | ଇ | ଊ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଞ୍ଚ | ଇୟ | ଉଅ | ହ୍ମ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଉ | ରୁ | ଲୁ | ଯେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଙ୍କ | ନ୍ମ |

ସିଦ୍ଧାର୍ଥକ—ସଂ. ବି (ବୈଦ୍ୟକ)—ଶ୍ୱେତ ସର୍ଷପ; ଧଳା ସୋରିଷ; ସୁର—White rye.
Siddhārthaka

ସିଦ୍ଧାର୍ଥା—ସଂ. ବି—୧ । ଚତୁର୍ଥ ଅର୍ହତଙ୍କ ମାତା—1. Name of Siddhārthā the mother of the 4th Jaina saint. ୨ । ଶ୍ୱେତ ସର୍ଷପ (ହି. ଶ)—2. White rye.

ସିଦ୍ଧାଶ୍ରମ—ସଂ. ବି—୧ । (ନାମ) ବିଶ୍ୱାମିତ୍ରଙ୍କ ତପୋବନ—Siddhāśrama 1. Name of the hermitage of sage Biśwāmitra. [ଦ୍ର—ଏଠାରେ ବିଶ୍ୱାମିତ୍ର ଅନେକ ଋଷି ତପସ୍ୟା କରି ସିଦ୍ଧ ହୋଇଥିଲେ । ତାଡ଼କା ଓ ସୁବାହୁ ରାକ୍ଷସ ଏହି ଆଶ୍ରମରେ ଅତ୍ୟାଚାର କରିବାରୁ ବିଶ୍ୱାମିତ୍ର ରାମ ଲକ୍ଷ୍ମଣଙ୍କୁ ନେଇ ସେମାନଙ୍କ ଉପଦ୍ରବରୁ ଏ ବନକୁ ରକ୍ଷା କରାଇ ଏହିଠାରେ ଯଜ୍ଞ କରିଥିଲେ ।] ୨ । ସିଦ୍ଧପୁରୁଷମାନେ ଯେଉଁ ଆଶ୍ରମରେ ବାସ କରନ୍ତି—2. A hermitage where adepts in Joga reside. (ଦେଶଜ)—ଅଲେଖ ବ୍ରହ୍ମାବଧୂତ ଗୁରୁ ମହିମା ଗୋସାଇଁଙ୍କ ଦ୍ୱାରା ସ୍ଥାପିତ ପରମସନ୍ନ୍ୟାସୀମାନଙ୍କ ଆଶ୍ରମ—The Āśrama of recluses established by Mahimā Goswāmī, the founder of Alekha dharma. [ଦ୍ର—ସତ୍ୟମହିମାଧର୍ମୀ ଅବଧୂତାଶ୍ରମୀ ବଳ୍କଳଧାରୀ ପରମସନ୍ନ୍ୟାସୀମାନଙ୍କ ପନ୍ଥାକୁ ସିଦ୍ଧାଶ୍ରମ ପନ୍ଥା ବୋଲାଯାଏ । ପ୍ରଥମେ ସିଦ୍ଧଗୋବିନ୍ଦ ବାବା, ତତ୍ ପରେ ନୃସିଂହ ବାବା ପ୍ରଭୃତି ସିଦ୍ଧ ନନ୍ଦବାବାଙ୍କ ପର୍ଯ୍ୟନ୍ତ ବୟାନବେ ମୂର୍ତ୍ତି ଉକ୍ତ ପନ୍ଥାରେ ଭୁକ୍ତ ହୋଇଥିଲେ । ତନ୍ମଧ୍ୟରୁ ଚଉଷଠି ମୂର୍ତ୍ତି ସିଦ୍ଧଯୋଗୀ ପଦବାଚ୍ୟ ଅଟନ୍ତି । ଉକ୍ତ ସିଦ୍ଧପୁରୁଷମାନଙ୍କର ଅଲୌକିକ ମାହାତ୍ମ୍ୟ ଓଡ଼ିଶାରେ ସ୍ଥାନେ ସ୍ଥାନେ ପ୍ରକଟିତ ହୋଇଅଛି । ପୁନଶ୍ଚ ଏହି ସିଦ୍ଧାଶ୍ରମ ପନ୍ଥା ଗୁରୁ ମହିମା ଗୋସାଇଁଙ୍କ ଆଜ୍ଞାନୁସାରେ ସିଦ୍ଧ ନନ୍ଦବାବା ପ୍ରଭୃତିଙ୍କ ଦ୍ୱାରା ମହିମା ଗାଦିଠାରେ ପ୍ରବର୍ତ୍ତିତ ହୋଇ ସମୃଦ୍ଧି ଲାଭ କରିଅଛି ।

ଲେଖକ—ଅବଧୂତ ବିଶ୍ୱନାଥ ବାବା ।]

ସିଦ୍ଧାସନ—ସଂ. ବି (ଯୋଗୀ ତନ୍ତ୍ର)—ହଠଯୋଗ ସାଧକମାନଙ୍କର ଆସନ ବିଶେଷ—One of the seats assumed by the persons engaged in Haṭhajoga.
Siddhāsana
[ଦ୍ର—ମଳଦ୍ୱାର ଓ ମୂତ୍ରଦ୍ୱାରର ମଧ୍ୟସ୍ଥଳରେ ବାମ ଗୋଇଠିକୁ ଓ ଶିଶ୍ନର ଉପରେ ମୂଳରେ ଡାହାଣ ଗୋଇଠିକୁ ଲଗାଇ ପଦ୍ମାସନରେ ବସି ଦୁଇ ଭ୍ରୂର ମଧ୍ୟବିନ୍ଦୁ ପ୍ରତି ଦୃଷ୍ଟି ଦେବାକୁ ସିଦ୍ଧାସନ ବୋଲାଯାଏ—ହି. ଶ ।]

ସିଦ୍ଧି—ସଂ. ସ୍ତ୍ରୀ (ସିଧ୍ ଧାତୁ+ଭାବ. କ୍ତି)—୧ । ସମ୍ପାଦନ—1. Accomplishment. ୨ । ସଫଳତା; କାର୍ଯ୍ୟର ପୂର୍ଣ୍ଣତା; କୃତକାର୍ଯ୍ୟତା—2. Success; fulfilment.
Siddhi
୩ । ଫଳୋତ୍ପତ୍ତି—3. Fructification. ୪ । ନିଷ୍ପତ୍ତି—4. Final decision. ୫ । ମୋକ୍ଷ; ମୁକ୍ତି—5. Liberation; salvation; beatitude. ୬ । ଭାବନା ସିଦ୍ଧି; ମନୋବାଞ୍ଛାର ସଫଳତା—6. Fulfilment of one's desire or wish. (ଉ—ହରିଚନ୍ଦ୍ର ରାମାୟଣ ଏ ମୋ ବଡ଼ ସିଦ୍ଧି । ଉପେ. ବୈଦେହୀଶ-ବିଳାସ ।) ୭ । ବୃଦ୍ଧି—7. Increase. ୮ । ତପଃସାଧନ ଦ୍ୱାରା ପ୍ରାପ୍ତ ଅମାନୁଷିକ ଗୁଣ—8. Supernatural powers acquired by severe practice of asceticism. ୯ । ଐଶ୍ୱର୍ଯ୍ୟ—9. Divine power; supernatural power. ୧୦ । ଶୁଭ; ମଙ୍ଗଳ—10. Bliss. ୧୧ । ଜୟଲାଭ—11. Attainment of victory. ୧୨ । ଋଦ୍ଧି ନାମକ ଔଷଧି—12. Name of a rare medicinal herb. ୧୩ । ସମ୍ପତ୍ତି—13. Property. ୧୪ । ଜ୍ୟୋତିଃଶାସ୍ତ୍ରୋକ୍ତ ଯୋଗ ବିଶେଷ—14. Name of a kind of astrological conjuncton. ୧୫ । ଦୁର୍ଗା—15. Goddess Durgā. ୧୬ । ରାଜାଙ୍କ ତ୍ରିବିଧ ସିଦ୍ଧି—16. Kings's accomplishment or success. (ଦ୍ର—ଏହା ତ୍ରିବିଧ ସିଦ୍ଧି, ଯଥା—ପ୍ରଭାବ ସିଦ୍ଧି, ମନ୍ତ୍ରସିଦ୍ଧି ଓ ଉତ୍ସାହ ସିଦ୍ଧି ।) ୧୭ । (+କରଣ. କ୍ତି) କାଷ୍ଠ ପାଦୁକା—17. Wooden sandals. ୧୮ । ସିଦ୍ଧି; ଭାଙ୍ଗ; ବିଜୟା—18. A drinte made by grinding the leaves of Cannabis Sativa into a paste and the leaves themselves. ୧୯ । ଆଡ଼ମ୍ବର; ଘନଘଟା—19. Grandeur; grand display. ୨୦ । ଆଡ଼ମ୍ବରଯୁକ୍ତ କାର୍ଯ୍ୟ—20. Any matter full of grandeur. ୨୧ । ଆଡ଼ମ୍ବରମୟ କର୍ମପଦ୍ଧତି—21. Insignia; grand method; any mode which is full of display. ୨୨ । ଅଷ୍ଟୈଶ୍ୱର୍ଯ୍ୟ (ଦେଖ)—22. Ashṭaiśwarjya. (See) ୨୩ । ଅଷ୍ଟାଦଶ ସିଦ୍ଧି (ଦେଖ)—23. Ashṭādaśa siddhi (See) ୨୪ । ଲକ୍ଷ୍ୟ ଭେଦ ( ହି. ଶ )—24. Hitting at a target. ୨୫ । ପରିଶୋଧ (ହି. ଶ)—25. Liquidation. ୨୬ । ପ୍ରମାଣିତ ହେବା (ହି. ଶ)—26. The state of being proved. ୨୭ । ପରିପକ୍ୱତା (ହି. ଶ)—27. Full development. ୨୮ । ନିପୁଣତା; ଦକ୍ଷତା (ହି. ଶ)—28. Dexterity; skill. ୨୯ । ବୁଦ୍ଧି (ହି. ଶ)—29. Intelligence. ୩୦ । ଦକ୍ଷ-

'ସାଧାରଣ ଲୋକେ ଅପର ପୃଷ୍ଠାରେ ସ୍ତର ୧ଚକ୍ରର ଅକ୍ଷର ଓ ମାତ୍ରା ଏବଂ ୨ଚକ୍ରର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚକ୍ରର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହାଁର ବଦଳରେ ୨ ବା ୧ ଚକ୍ରର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜବାକୁ ହେବ। ଯଥା— 'ଗାଇ' ନ ମିଳିଲେ 'ଗାଈ'ଖୋଜିବେ; 'ମୃତ' ନ ମିଳିଲେ 'ମୃତ' ଖୋଜିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗ୍ରୀ' ନ ପାଇଲେ 'ଅଗ୍ନି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ

ପ୍ରଜାପତିଙ୍କର ଏକ କନ୍ୟା ଓ ଧର୍ମଙ୍କ ପତ୍ନୀ (ହ୍ରି· ଶ)—30. A daughter of Daksha Prajāpati. ୩୧। ଗଣେଶଙ୍କର ଦୁଇ ସ୍ତ୍ରୀ ମଧ୍ୟରୁ ଏକ (ହ୍ରି· ଶ)—31. One of the wives of God Ganeśa. ୩୨। ମେଣ୍ଢାଶିଙ୍ଗା ମନ୍ଦୁଇ (ହ୍ରି. ଶ)—32. Aconite.

ସିଦ୍ଧି ଦେ· ବି – ବାହାଦୁରୀ—Boasting. ( ଉ—ଚକ୍ରରୁ ସି-ସ୍ତ୍ରୀ ପୁଚ୍ଛ ଉଚ୍ଚକୁ ପୂଜା କଲେ, ଏହା ସିଦ୍ଧି କରି କହନ୍ତୁ ସିଦ୍ଧ କେତେ ଉଲ୍ଲେ। କୃଷ୍ଣସିଂହ· ମହାଭାରତ· ବନ।) ଦେ· ସୋପ ବି—ନିଶ୍ଚିତ—Sure. (ଉ—ବିନାଶ ହୋଇବା କଥା ମୋର ହେଲା ସିଦ୍ଧି। ଉଞ୍ଜ· ବୈଦେହୀଶବିଳାସ।)

ସିଦ୍ଧିଜ—ସ· ବି (ସିଦ୍ଧି+ଜନ୍. ଧାତୁ+କର୍ତ୍ତ୍ରି. ଅ)—ସିଦ୍ଧିରୁ ଜାତ—Siddhija Born of success.

ସିଦ୍ଧିଦ—ସ· ବି (ସିଦ୍ଧି+ଦା. ଧାତୁ+କର୍ତ୍ତ୍ରି., ଅ)—୧। ବଟୁକ Siddhida ଭୈରବ—1. Name of an attendant of Siba. ୨। ପୁତ୍ରଂଜୀବ ବୃକ୍ଷ (ହ୍ରି. ଶ)—2. The Putramjiba tree. ୩। ବଡ଼ ଶାଳଗଛ (ହ୍ରି. ଶ)—3. The big Shorea Robusta tree. ସ· ବିଣ, (ସିଦ୍ଧିଦା—ସ୍ତ୍ରୀ) ପୁଂ—ସିଦ୍ଧିଦାତା; ଯେ ସିଦ୍ଧି ବା ସଫଳତା ଦିଏ—Giving or awarding success.

ସିଦ୍ଧି ଦାତା—ସ· ବିଣ, ପୁଂ—ସିଦ୍ଧିଦ (ଦେଖ)—Siddhida. Siddhi data (See) ସ· ବି· ପୁଂ—ଗଣନାଥ; ଗଣେଶ— (ସିଦ୍ଧିଦାତ୍ରୀ—ସ୍ତ୍ରୀ) The God Ganeśa.

ସିଦ୍ଧିମନ୍ତ—ଦେ· ବିଣ (ସ· ସିଦ୍ଧିମାନ୍)—ଯେ ସିଦ୍ଧିଲାଭ କରିଅଛି—Siddhimanta One who has attained success. सिद्धिमन्त (ଉ—ପରଭୁ କେବେ ନ କରିବ ପରୁଷତ, सोद्धिमन्त ଏତେକ ଥିଲେ ବାଳପୁଣ୍ଡେ ସିଦ୍ଧିମନ୍ତ। କୃଷ୍ଣସିଂହ· ମହାଭାରତ· ଅଦି।)

ସିଦ୍ଧି ଯୋଗ—ସ· ବି—ଜ୍ୟୋତିଷୋକ୍ତ ତିଥି ବାର ଘଟିତ ଶୁଭଯୋଗ Siddhi jog ବିଶେଷ—An auspicious conjunction of some week days and tithis. [ବ୍ରି—ଶୁକ୍ରବାରରେ-ନନ୍ଦା ତିଥି, ବୁଧବାରରେ—ଭଦ୍ରା, ଶନିବାରରେ—ରିକ୍ତା, ମଙ୍ଗଳବାରରେ—ଜୟା ଓ ଗୁରୁବାରରେ—ପୂର୍ଣ୍ଣା ତିଥିମାନ ଯୁକ୍ତ ହେଲେ ଏହି ଯୋଗମାନଙ୍କୁ ସିଦ୍ଧି ଯୋଗ ବୋଲିଯାଏ—ଜ୍ୟୋତିଃସାଗର।]

ସିଦ୍ଧି ଯୋଗିନୀ—ସ· ବି ( ମ. ସ. ଲେ; ସିଦ୍ଧିଯୋଗିନୀ ଯୋଗିନୀ )—Siddhi jogini ୧। ଯୋଗିନୀ ଭେଦ—1. A class of attendants of Durgā. ୨। ଦକ୍ଷପ୍ରଜାପତିଙ୍କର ୫୦ ଜଣ କନ୍ୟା(ଅଗ୍ନି ପୁରାଣ)—2.Fifty daughters of Daksha. [ବ୍ରି—ଏହି ୫୦ ଜଣ ଯୋଗିନୀଙ୍କ ନାମ, ଯଥା— ସତୀ, ଜ୍ୟୋତି, ସ୍ମୃତି, ସ୍ୱାହା, ଅନସୂୟା, ସ୍ୱଧା, ପ୍ରୀତି, କ୍ଷମା, ସମ୍ଭୂତି, ସନ୍ନତି, ଅରୁନ୍ଧତୀ, କୀର୍ତ୍ତି, ଲକ୍ଷ୍ମୀ, ଧୃତି, ମେଧା, ପୁଷ୍ଟି, ଶ୍ରଦ୍ଧା, କ୍ରିୟା, ମତି, ବୁଦ୍ଧି, ଲଜ୍ଜା, ବପୁଃ, ଶାନ୍ତି, ତୁଷ୍ଟି, ସିଦ୍ଧି, ରତି, ଅବନ୍ତୀ, ବସୁ, ଯାମୀ, ଲମ୍ବା, ଭାନୁ, ମରୁତ୍ୱତୀ, ସଂକଳ୍ପା, ମୁହୂର୍ତ୍ତା, ସାଧ୍ୟା, ବିଶ୍ୱା, ଅଦିତି, ଦିତି, ଦନୁ, କାଳାଦନା, ଅଯୁଷା, ସିଂହିକା, ସୁରସା, କଦ୍ରୁ, ବିନତା, ସୁରଭି, ଖସା, କ୍ରୋଧା, ଇରା, ପ୍ରୋଧା। ଏମାନେ ସର୍ବଲୋକଙ୍କର ମାତା ଅଟନ୍ତି—ବହ୍ନି-ପୁରାଣ, ଗଣଭେଦ ନାମାଧ୍ୟାୟ; ଶବ୍ଦ କଳ୍ପଦ୍ରୁମ।

ମତାନ୍ତରରେ ଏମାନଙ୍କ ନାମ—ସତୀ, ଜ୍ୟୋତି, ସ୍ମୃତି, ସମ୍ଭୂତି, ସନ୍ନତି, ଅରୁନ୍ଧତୀ, କୀର୍ତ୍ତି, ଲକ୍ଷ୍ମୀ, ଧୃତି, ମେଧା, ପୁଷ୍ଟି, ଶ୍ରଦ୍ଧା, କ୍ରିୟା, ମତି, ବୁଦ୍ଧି, ଲଜ୍ଜା, ବପୁଃ, ଶାନ୍ତି, ତୁଷ୍ଟି, ସିଦ୍ଧି, ରତି, ବସୁ, ଯାମୀ, ଲମ୍ବା, ଭାନୁ, ମରୁତ୍ୱତୀ, ସଂକଳ୍ପା, ମୁହୂର୍ତ୍ତା, ସାଧ୍ୟା, ବିଶ୍ୱା, ଅଦିତି, ଦିତି, ଦନୁ, କାଳାଦନା, ଅଯୁଷା, ସିଂହିକା, ସୁରସା, କଦ୍ରୁ, ବିନତା, ସୁରଭି, ଖସା, କ୍ରୋଧା, ଇରା ଓ ପ୍ରୋଧା—ବିଶ୍ୱକୋଷ। ଚଉଷଠି ଯୋଗିନୀମାନଙ୍କ ସଂଖ୍ୟା ୬୪ ହୋଇଅଛି।]

ସିଦ୍ଧିରସ୍ତୁ—ଗ୍ରା· ବି ( ସ· ସିଦ୍ଧିରସ୍ତୁ )—୧। ଶିଶୁର ବିଦ୍ୟାରମ୍ଭ—Siddhi rarastu 1. The formal beginning of a सिद्धिरस्तु child to read and write. ୨। କୌଣସି सिधिरस्तु କାର୍ଯ୍ୟର ପ୍ରଥମ ଅରମ୍ଭ—2. The beginning of any thing.

ସିଦ୍ଧିରସ୍ତୁ—ସ· (ବାକ୍ୟ) (ସଂ· ବାକ୍ୟର ଅର୍ଥ—ସିଦ୍ଧି ଲାଭ ହେଉ)—Siddhirastu ୧। ବାଳକର ବିଦ୍ୟାରମ୍ଭ କାଳରେ ପିଲାର सिद्धिरस्तु ମୁଖୋଚ୍ଚାରିତ ଶବ୍ଦ—1. The word recited by सिधीरस्तु a biginner following the utterance of the Guru when the boy touches the chalk. [ ବ୍ରି—ବାଳକ ପ୍ରଥମେ ବିଦ୍ୟାରମ୍ଭ କଲାବେଳେ ଗୁରୁ ଭୂମିରେ ତିନୋଟି ମୁଣ୍ଡଲା କାଟି ସେହି ତିନୋଟି ମୁଣ୍ଡଲାରେ ଯଥାକ୍ରମେ ବ୍ରହ୍ମା, ବିଷ୍ଣୁ ଓ ମହେଶଙ୍କୁ କଳ୍ପନା କରି ସେହି ମୁଣ୍ଡଲା ଉପରେ ପିଲାର ହାତରେ ଥିବା ଖଡ଼ିକୁ ପିଲାର ହାତ ସହିତ ବୁଲାଇ ଅଣନ୍ତି ଏବଂ ମୁହଁରେ ଗୁରୁ ଓ ପିଲା ଏହି ବାକ୍ୟ ଉଚ୍ଚାରଣ କରନ୍ତି; ଅର୍ଥାତ୍ 'ହେ ଦେବ। ମୋର ବିଦ୍ୟାରେ ସିଦ୍ଧି ହେଉ।'] ୨। ଶିଶୁର ବିଦ୍ୟାରମ୍ଭ—2. The ceremony of an infant's first biginning to write. ୩। କୌଣସି କାର୍ଯ୍ୟର ପ୍ରଥମ ଅରମ୍ଭ—3. The biginning of any work. ୪। ସିଦ୍ଧି ଲାଭ ହେଉ—4. Success be attained.

ସିଦ୍ଧି ଲାଭ—ସଂ. ବି ( ୬ଷ୍ଠୀ ତତ୍ )—ସଫଳତା ପ୍ରାପ୍ତି—
Siddhi lābha Attainment of success.

ସିଦ୍ଧିଲି—ସଂ. ବି (ସିଦ୍ଧି+ଲ ଧାତୁ+କର୍ତ୍ତୃ.ଅ+ଈ)—କ୍ଷୁଦ୍ର ପିମ୍ପୁଡ଼ିକା;
Siddhili ସାନ ପିମ୍ପୁଡ଼ି ( ଶବ୍ଦକଳ୍ପଦ୍ରୁମ )—Tiny ants.

ସିଦ୍ଧୁ—ଦେ. ବି—ସିଦ୍ଧେଶ୍ୱରଙ୍କ ଡାକ ନାମ—Name for calling
Siddhu Siddheśwara.
[ ସିଦ୍ଧୁଆ, ସିଦ୍ଧେଇ—ଅନ୍ୟରୂପ ]

ସିଦ୍ଧେଶର—ଗ୍ରା. ବି—ସିଦ୍ଧେଶ୍ୱରଙ୍କ ଡାକ ନାମ—
Siddheśara Name for calling Siddheśwara.

ସିଦ୍ଧେଶ୍ୱର—ସଂ. ବି. ପୁଂ—୧ । ସିଦ୍ଧିଦାତା ପରମେଶ୍ୱର—1. God
Siddheśwara who crowns a person with success. ୨ । ଶିବଙ୍କ ମୂର୍ତ୍ତିବିଶେଷ—2. Name of an image of Śiba. ୩ । ମହାଯୋଗୀ ( ପ୍ରା. ଶ )—3. A great adept. ଦେ. ବି.
ସିদ্ধেশ্বর ପୁଂ—୧ । ଭୁବନେଶ୍ୱରରେ ପ୍ରତିଷ୍ଠିତ ଶିବଲିଙ୍ଗବିଶେଷ—
सिद्धेश्वर 1. Name of an image of Śiba at Bhubaneśwara. [ଦ୍ର—ଏ ମନ୍ଦିରରେ ସୁନ୍ଦର ସୂକ୍ଷ୍ମ ପ୍ରସ୍ତରର କାରୁକାର୍ଯ୍ୟ ଲକ୍ଷିତ ହୁଏ । ] ୨ । ପୁରୁଷଙ୍କ ନାମ—
2. A name given to males.

ସିଦ୍ଧେଶ୍ୱରୀ—ସଂ. ବି. ସ୍ତ୍ରୀ—ମୁଣ୍ଡମାଳା ତନ୍ତ୍ରଲିଖିତ ମହାବିଦ୍ୟା ବା
Siddheśwarī ଦୁର୍ଗାଙ୍କର ମୂର୍ତ୍ତିବିଶେଷ—Name of an image of Durgā. [ ଦ୍ର—ଏ ମନ୍ତ୍ରସିଦ୍ଧିପ୍ରଦା, ସିଦ୍ଧବିଦ୍ୟାଧରଗଣଯୁକ୍ତା, ଯୋଗିନୀ ଦ୍ୱାରା ଓ ଲକ୍ଷ୍ମୀ-
সিদ্ধেশ্বরী ଶୋଭିତା । ] ଦେ. ବି—୧ । ଗ୍ରାମଦେବତାବିଶେଷ—
सिद्धेश्वरी 1. Name of a popular village deity. ୨ । ସ୍ତ୍ରୀଙ୍କ ନାମ—2. A name given to females.

ସିଦ୍ଧୌଘ—ସଂ. ବି ( ସି +ଓଘ=ସମୂହ )—ତନ୍ତ୍ରୋକ୍ତ ଗୁରୁକ୍ରମ-
Siddhaugha ବିଶେଷ ବା ସଦ୍‌ଗୁରୁଗଣ—A succession of preceptors mentioned in the Tantras. [ ଦ୍ର—ଏମାନଙ୍କର ନାମ—ନାରଦ, କାଶ୍ୟପ, ଶମ୍ଭୁ, ଭାର୍ଗବ, କୁଳକୌଶିକ । ଏମାନେ ସଂଖ୍ୟାରେ ପାଞ୍ଚ ଜଣ । ]

ସିଧ୍ (ଧାତୁ)—ସଂ—୧ ।' ପାକ କରିବା; ସିଝାଇବା—1. To boil.
Sidh (root) ୨ । ରାନ୍ଧିବା—2. To cook. ୩ । ସମ୍ପାଦନ କରିବା—3. To accomplish. ୪ । ଗମନ କରିବା —4. To move.

ସିଧ(ଧା, ଧି, ଧୁ)—ଦେ. ବି. ପୁଂ ( ସଂ. ସିଦ୍ଧି )—ସିଦ୍ଧେଶ୍ୱରଙ୍କ ଡାକ
Sidha(dhā, dhi, dhu) ନାମ—Names for calling
(ସିଧୁଆ, ସିଧୁଅ, ସିଧେଇ—ଅନ୍ୟରୂପ) Siddheśwara.

ସିଧଶର—ଗ୍ରା. ବି—ସିଦ୍ଧେଶ୍ୱରଙ୍କ ଡାକ ନାମ—
Sidhaśara Name for caling Siddheśwara.

ସିଧା—ଦେ. ବି—୧ । ସିଡ଼ା ( ଦେଖ )—1. Sidā ( See ) ୨ ।
Sidhā ଏକପ୍ରକାର ଜଙ୍ଗଲୀ କାଠ ଗଛ—2. A timber tree;
সিধা सीधा Lagerstræmia Parviflora. ଦେ. ବଣ—ସିଡ଼ା ( ଦେଖ )—Sidā ( See )

ସିଧା ଆଙ୍ଗୁଠି—ଦେ. ବି—ବଙ୍କା କରିହେଉ ନ ଥିବା ଅଙ୍ଗୁଠି—An
Sidhā ānguṭhi unbent finger; a stiffened
সোজা আঙ্গুল सीधा उंगली finger.

ସିଧା ଅଙ୍ଗୁଠିରେ ଘିଅ ବାହାରେ ନାହିଁ—( ନ୍ୟାୟ )—ଯେଉଁପରି
Sidhā ānguṭhire ghia bāhāre nāhin̄ ଗୋଟିଏ ଘଡ଼ିରେ ଘିଅ ଥିଲେ ସେ ପାତ୍ରରେ ଅଙ୍ଗୁଠିକୁ ଭୁଡ଼ାଇ ଅଙ୍ଗୁଠିକୁ ବଙ୍କା ନ କରି ଘଡ଼ିରୁ ଉଠାଇ ଆଣିଲେ ଅଙ୍ଗୁଠିଦ୍ୱାରା ଘଡ଼ିରୁ ଘିଅ ଉଠି ଆସେ ନାହିଁ, ସେହିପରି ସରଳ ଓ ସ୍ପଷ୍ଟ ବ୍ୟବହାରକାରୀ ବ୍ୟକ୍ତି ଅନ୍ୟଠାରୁ ଧନାଦି ଲାଭ କରି ପାରେ ନାହିଁ—A proverb meaning 'A frank or simple person is hoodwinked in the world'.

ସିଧା(ଧେ)ଇବା—ଦେ. କ୍ରି—ସିଧା କରିବା; ସଳଖ କରିବା—
Sidhā(dhe)ibā To straighten.
সোজা করা सीधा करना

ସିଧାଏ—ଦେ. କ୍ରି. ବିଣ—ସଳଖେ ସଳଖେ; ସରଳରେଖା ମାର୍ଗରେ
Sidhāe —Straightway; in a straight iine.
সোজা, সোজাসোজি सीधे सीधे
( ସିଧାଏ ସିଧାଏ—ଅନ୍ୟରୂପ )

ସିଧା କଥା—ଦେ. ବି—୧ । ସରଳ କଥା; ସ୍ପଷ୍ଟ ବାକ୍ୟ—
Sidhā kathā 1. Frank or simple words. ୨ ।
সোজা কথা सीधी बात ଦୃଢ଼ କଥା—2. Plain truth.

ସିଧା କରିବା—ଦେ. କ୍ରି—୧ । ସଳଖିବା—1. To straighten.
Sidhā karibā ୨ । ଗଣ୍ଠି ପରି ସଳଖ ଓ ଟାଣୁଆ କରିବା;
সোজা করা ଲଠି ଦେବା—2 To stiffen; ୩ । ପ୍ରହାର ବା
सीधा करना ଦଣ୍ଡଦ୍ୱାରା ବାଟକୁ ଆଣିବା—2. To teach
( ସିଧା କରା[କେ]ଇବା—ଅନ୍ୟରୂପ ) a lesson.

ସିଧା ପଣ(ପଣିଆଁ)—ସଂ. ବି—ସରଳତା—Straightness.
Sidhā paṇa(paṇiān̄) সোজাপনা सीधापन

ସିଧା ବାଟ(ରାସ୍ତା)—ସଂ. ବି—ସଳଖ ବାଟ—Straight road.
Sidhā bāṭa(rāstā) সোজা রাস্তা सीधा रास्ता

ସିଧା ମଣି( ଣି, ନି )ଷ—ଦେ. ବି—ନିଷ୍କପଟ ବ୍ୟକ୍ତି—A simple
Sidhā maṇa( ṇi, ni )sha person.
সোজা মানুষ सीधा आदमी

ସିଧା ସଞ୍ଚା—ଦେ. ବି—ସିଡ଼ା ( ଦେଖ )
Sidhā sañchā Sidā ( See )

ସିଧା ସାମଗ୍ରୀ—ଦେ. ବି—ସିଡ଼ା ସାମଗ୍ରୀ ( ଦେଖ )
Sidhā sāmagrī Sidā sāmagrī ( See )

ସିଧା ସିଧା—ଦେ. କ୍ରି. ବିଣ—ସିଧାଏ ସିଧାଏ; ସଳଖେ ସଳଖେ—
Sidhā sidhā In a straight line; straightway.
সোজাসোজি सीधे सीधे

ସିଧି(ଧୁ)—ଦେ. ବି. ପୁଂ ( ଅପଭ୍ରଂଶ )—ସିଦ୍ଧେଶ୍ୱରଙ୍କ ଡାକ ନାମ—
Sidhi(dhu) Names for calling Siddheśwara.

ସିଦ୍ଧେ—( ସିଦ୍ଧଅ, ସିଧୁଅ—ଅନାଦରାର୍ଥକ ରୂପ )

ସିଧି—ଗ୍ରା· ବ ( ସଂ. ସିଦ୍ଧି )—ସିଦ୍ଧି ( ଦେଖ )—Siddhi (See)
Sidhi सिधि सिधी [ଉ—ବେଳ ଡମ୍ବୁ କୋଣେ ସିଧି ଅଛର ବସିବ—ପ୍ରାଚୀ· ଶ୍ରୀଗୁରୁଭକ୍ତିଗୀତା । ]

ସିଧି ବିଧି—ଦେ. ବ ( ସହଚର; ସଂ ସିଦ୍ଧି+ବିଧି )—ସିଦ୍ଧି; ଅଡମ୍ବର; ଘନଘଟା—Ado; grandeur; display.
Sidhi bidhi
जाकजमक सिधीविधी

ସିଧିରସ୍ତୁ—ଗ୍ରା. ବ ( ସଂ. ସିଦ୍ଧିରସ୍ତୁ )—ସିଦ୍ଧିରସ୍ତୁ ( ଦେଖ )
Sidhirarastu Siddhirastu ( See )

ସିଧିରସ୍ତୁ—ଗ୍ରା· ବ ( ସଂ. ସିଦ୍ଧିରସ୍ତୁ )—ସିଦ୍ଧିରସ୍ତୁ ( ଦେଖ )
Sidhirastu Siddhirastu ( See )

ସିଧ୍ମ(ଧ୍ମା, ଧ୍ମି)—ସଂ. ବ ( ସିଧ୍ ଧାତୁ+ମକ୍, ମିକ୍; ୧ମା. ୧ଦ )···
Sidhma(dhmā, dhmi) କଳାସ ରୋଗ ( ହେମଚନ୍ଦ୍ର ); ଛଉ ରୋଗ; ଶ୍ୱିତ୍ର—A disease; scurf; partial discolouration or whitening of the skin; albinism. [ ବି—ଏହା ଦୁଇ ପ୍ରକାର—ଶ୍ୱେତ ଓ ରୋହିତ । ଏ ରୋଗରେ ଦେହର ଚର୍ମ ଶ୍ୱେତ ବା ତାମ୍ର ବର୍ଣ୍ଣ ଦେଖାଯାଏ ଏବଂ ଦେହରୁ ଧୂଳି ବାହାରେ । ଏହା ଲାଉ ଫୁଲ ପରି ଓ ଛାତିରେ ପ୍ରଥମେ ମାଡ଼ିବା ଦେଖାଯାଏ । ଏହା ସପ୍ତମହାକୁଷ୍ଠାନ୍ତର୍ଗତ କ୍ଷୁଦ୍ରରୋଗ-ବିଶେଷ—ମାଧବକର । ] ସଂ· ବିଣ—ଶ୍ୱେତ ଚିହ୍ନ ବିଶିଷ୍ଟ ( ହ୍ର, ଶ )—Having white marks.

ସିଧ୍ମ ପୁଷ୍ପିକା—ସଂ· ବ—ଧଳା ଛଉ; ଶ୍ୱିତ୍ର; ଶ୍ୱେତକୁଷ୍ଠ—The white variety of scurf; albinism.
Sidhma pushpikā

ସିଧ୍ମଳ—ସଂ.ବିଣ.ପୁଂ (ସିଧ୍ମ+ଲା ଧାତୁ=ଗ୍ରହଣ କରିବା+କର୍ତ୍ତି.ଅ)—
Sidhmaḷa କଳାସୀ; ଛଉ ବା ଶ୍ୱିତ୍ର ରୋଗଗ୍ରସ୍ତ (ବ୍ୟକ୍ତି)—
(ସିଧ୍ମଳା—ସ୍ତ୍ରୀ) Suffering from Sidhma or scurf; albino.

ସିଧ୍ମଳା—ସଂ· ବ—୧ । ମତ୍ସ୍ୟ ବିକୃତି ( ମେଦିନୀ )—1. A disease
Sidhmaḷā of the fishes. ୨ । ଶୁଖୁଆ ( ହ୍ର. ଶ )—2. Dried fish, ସଂ. ବିଣ. ସ୍ତ୍ରୀ—ସିଧ୍ମଳର ସ୍ତ୍ରୀଲିଙ୍ଗ—Feminine of Sidhmaḷa.

ସିଧ୍ୟ—ସଂ. ବିଣ ( ସିଧ୍ ଧାତୁ+କର୍ତ୍ତି· ଯ )—କାର୍ଯ୍ୟସାଧକ—
Sidhya Causing accomplishment of work. ସଂ· ବ—ପୁଷ୍ୟାନକ୍ଷତ୍ର ( ଅମର )—The eighth lunar asterism. ଗ୍ରା. ବିଣ (ସଂ. ସିଦ୍ଧ)—ସିଦ୍ଧ (ଦେଖ) Siddha ( See )

ସିଧ୍ୟା—ଗ୍ରା· ବ—ସିଦ୍ଧିଅ; ସିଦ୍ଧେଶ୍ୱରର ଡାକ ନାମ—A name for
Sidhyā सिधु calling Siddheśwara.

ସିଧ୍ର—ସଂ. ବିଣ. ପୁଂ.( ସିଧ୍ ଧାତୁ+କର୍ତ୍ତି· ର )—ସାଧୁ; ଧର୍ମପରାୟଣ
Siddhra ( ଉଣାଦି କୋଷ )—Pious; religious.
( ସିଧ୍ରା—ସ୍ତ୍ରୀ ) ସଂ. ବ—ବୃକ୍ଷ ( ଉଣାଦି କୋଷ )—A tree.

ସିଧ୍ରକା—ସଂ. ବ ( ସିଧ୍ ଧାତୁ+ରକ୍+ଅ )—ବୃକ୍ଷବିଶେଷ (ଅମର, ଭରତ )—A kind of tree.
Sidhrakā

ସିଧ୍ରକା ବଣ—ସଂ· ବ (ସିଧ୍ରକା=ଏକପ୍ରକାର ବୃକ୍ଷ+ବନ; ବନ=
Sidhrakā baṇa ଦେବୋଦ୍ୟାନ (ତ୍ରିକାଣ୍ଡ ଶେଷ)—A garden of the Gods.

ସିନ୍—ବୈଦେ. ବ (ଇଂ. ସିନ୍)—୧ । ନାଟକର ଦୃଶ୍ୟ—1. The
Sin scene of a drama. ୨ । ରଙ୍ଗାଳୟର ପଟ—
सिन् सीन 2. The scene of a theatre, ୩ । (ସାଇନ୍)
साइन् साइन (ବୀଜଗଣିତ) ସାଇନ୍ ୨ (ଦେଖ)—3. (Algebra) Sāin 2, (See)

ସିନ୍‌କୋନା—ବୈଦେ· ବ ( ଇଂ. ସିନ୍‌କୋନା )—ସିଙ୍କୋନା
Sinkonā (ଦେଖ)—Sinkonā. (See)
सिन्कोना सिनकोना

ସିନ୍ ସିନ୍—ଦେ· ଅ (ଧ୍ୱନ୍ୟର୍ଥକ)—ଚିନ୍ ଚିନ୍ (ଦେଖ)
Sin sin चिन् चिन् Chin chin. (See)

ସିନ—ସଂ ବିଣ, ପୁଂ (ସି· ଧାତୁ=ବନ୍ଧନ କରିବା+କର୍ମ. ନ)—
Sin ୧ । ଶୁକ୍ଳ; ସାଦା; ଧଳା—1. White. ୨ । କାଣ; କଣା
(ସିନା—ସ୍ତ୍ରୀ) (ଶବ୍ଦ କଳ୍ପଦ୍ରୁମ)—2. One-eyed. ସଂ. ବ—୧ । ଗ୍ରାସ (ମୁଗ୍ଧବୋଧ ବ୍ୟାକରଣ)—1. Devouring. ୨ । ଶରୀର; ଦେହ (ସଂକ୍ଷିପ୍ତସାର)—2. Body.

ସିନା—ଦେ. ଅ (ସଂ· ନନୁ)—୧ । ମାତ୍ର; କେବଳ—1. Only.
Sinā (ଉ—ଗଲଣି ତ ଗଲ କଥାରେ ସଙ୍ଗାତ !
बइकि, बटे, बइतनय ଗୁପତେ ସିନା ମୁଁ ଉଡ଼େ ପଗୁରୁଛି
तो ବଳ ପଞ୍ଜରାରୁ ବ୍ୟଥା ।
କବିସୂର୍ଯ୍ୟ. ବଳୋଶ୍ରୀ ଚମ୍ପୂ, ଘ ଗୀତ ।)
ई ही ୨ । ଅବଧାରଣ ବା ନିଶ୍ଚୟାର୍ଥକ; ନିଶ୍ଚେ—2. Certainly. (ଉ—ତୁଳି ଦେବୁଁ ସିନା ଅମ୍ଭେ ଫଳ ବଳା । କବିସୂର୍ଯ୍ୟ. ବଳୋଶ୍ରୀ ଚମ୍ପୂ ଢ ଗୀତ ।) ୩ । (ସମ୍ଭାବନାର୍ଥକ) ସମ୍ଭବତଃ—3. Probably; me-
ना thinks. (ଉ—ରାଜା ରାଣୀଙ୍କର ଗାଧୁଆଁ ପାଇଁ ସେ ସିନା ପ୍ରସାଦ ଥିଲା ।
ରାଧାନାଥ. ପାର୍ବତୀ ।)
ई ୪ । (ଯୁକ୍ତି ବା ତର୍କ ସ୍ଥଳରେ ଏକପକ୍ଷବୋଧକ ସ୍ୱଭାବତଃ; ସାଧାରଣତଃ—4. Naturally; ordinarily. (ଉ—ଶିଷ୍ୟ ସିନା ଗୁରୁଙ୍କୁ ଡରେ, ଏବେ ଶିଷ୍ୟଙ୍କୁ ଗୁରୁ ଡରକାର ଦେଖାଗଲଣି ।) ୫ । ମାତ୍ରକ—5. Merely. (ଉ—ବୁଢ଼ାଯାଉଥାଏ ସିନା, ବୁଢ଼ା ବୁଢ଼ା କରି ପୁଚ୍ଛ ଦେଉଥିଲେ ଲଜ୍ଜା କ ହୋଇବ ସୁନା ? ଢଗ ।) ବୈଦେ. ବ—
सिना सीना (ଫା. ସିନା)—୧ । ଘୋଡ଼ାର ଛାତି (ଅଗ ଗୋଡ଼ ଓ ବେକ ମଝିରେ ଥିବା ଅଂଶ)—1. The breast or chest of a horse. ଦେ. ବ—୧ । ସିହ୍ନା; 'ସିଂହ' ନାମକ ବଂଶୋପାଧିର ଇଂରେଜି 'Sinha' ର ଉଚ୍ଚାରଣ—
सिं
सिनहा 1. Pronunciations of the family-title

'Sinha'. (ଢ଼—ଇଙ୍ଗ ସିନ୍ହା ।) ୨ । ଶ୍ରୀନିବାସର ଡାକ ନାମ—2. Name for calling Śrīnibāsa.

ସିନା ଜୋର୍—ବୈଦେ. ବ (ଫା.)—୧ । ମୁହଁ ଅଣ୍ଡ; ଢ଼ମ୍ଭିତା—Sinā jor 1. Effrontery. ୨ । ସାହସ—2 Courage. মুখসাপট ୩ । ମୁହଁ ଜୋର୍; ପାଟିର ବଳ—3. Loudness of सानाजोर the tongue.

ସିନାନ—ଗ୍ରା. ବ (ସଂ. ସ୍ନାନ)—ସ୍ନାନ; ଗାଧୋଇବା—Sināna সিনান सनान Bath.

ସିନାନ କରିବା—ଗ୍ରା କ୍ରି—ସ୍ନାନ କରିବା; ଗାଧୋଇବା—Sināna kariba To take a bath. সিনান করা सनान करना

ସିନାନ ଯାତ(ତ୍ରା)—ଗ୍ରା. ବ—ସ୍ନାନପୂର୍ଣ୍ଣିମା (ଦେଖ)—Sināna jāta(trā) Snāna pūrṇṇimā. (See) (ସିନାନ ଯାତ୍ରା, ସିନାନ ପୁନେଇଁ—ଅନ୍ୟରୂପ) সিনান যাত सनान जातरा

ସିନାନିଆ—ଗ୍ରା. ଗୁଣ (ସ. ସ୍ନାତ)—ସ୍ନାତ; ଯେ ଗାଧୋଇ ଅଛି—Sinānia স্নাত सनानकिया हुआ Bathed.

ସିନା ବନ୍ଦ—ବୈଦେ. ବ (ଫା.)—ଜେରବନ୍ଦ; ଘୋଡ଼ାର ବେକର Sinā band ଗୁହାରେ ଯେଉଁ ଯାଇଥିବା ଚମଡ଼ାର ଫିଟ, ଯାହା জেবৰন্দ ଷଣ୍ଢବାଟେ ଘୋଡ଼ାର ପେଟୀ ସଙ୍ଗେ ଲଗିଥାଏ ଓ ଯାହା सीनाबंद ପେଟୀ ସଙ୍ଗେ ଲମ୍ବ ଥିବାରୁ ଘୋଡ଼ା ବେକକୁ ବେଶୀ ଉଚ୍ଚକୁ ଉଠାଇପାରେ ନାହିଁ—A ring or thin balter of leather put round the neck of a horse; necktie of a horse.

ସିନି—ଦେ. ବ—୧ । ବିହାରର ବେଙ୍ଗଲ ନାଗପୁର ରେଲ୍‌ୱେର Sini ଗୋଟିଏ ଜଙ୍କସନ୍ ଷ୍ଟେସନ (ଏହି ଷ୍ଟେସନରୁ ଚକ୍ରଧରପୁର ସିନି ମଠରରେ ଯିବାକୁ ହୁଏ ।)—1. Sini, a junction सीनी station of the B. N. Ry in Bihar ୨ । ଶ୍ରୀନିବାସର ଡାକ ନାମ—2. Name for calling Śrīnibāsa.

ସିନିଅ(ହ) (ଇତ୍ୟାଦି)—ଗ୍ରା. ବ (ସ. ସ୍ନେହ)—ସ୍ନେହ ଇତ୍ୟାଦି Sinia(ha) (etc) (ଦେଖ)—Sneha etc. (See) (ଢ଼—সেনেহ କର ଭଲେ ଏତେ ସିନିଅ ଦେଖେଇ ହଉଥିଲ, ଏବେ सनेह ଉଉଲକୁ ମାମୁଘରକୁ ପଠାଇ ଦେଲ ।

ଗାଳବଣ୍ଣ. ପିଲାଙ୍କ ରାମାୟଣ ।)

ସିନିଅ(ଆ, ୟ, ୟା)ର୍—ବୈଦେ. ଗୁଣ (ଇଂ. ସିନିଅର୍)—Sinia(ā,ya,yā)r ୧ । ବୟୋଜ୍ୟେଷ୍ଠ—1. Senior in সিনিয়র age. ୨ । କର୍ମକ୍ଷେତ୍ରରେ ଉଚ୍ଚତର—2. Senior in सिनियर position. ବୈଦେ. ବ—୧ । କର୍ମକ୍ଷେତ୍ରରେ ଉଚ୍ଚତର ସହକର୍ମୀ—1. A senior colleague. ୨ । ବୟୋଜ୍ୟେଷ୍ଠ ବ୍ୟକ୍ତି—2. A person senior in age. ୩ । ଯେଉଁ ପୁରୁଣା ଓକିଲଙ୍କ ଅଧୀନରେ ନୂଆ ଓକିଲମାନେ କାମ ଶିଖନ୍ତି—3. A senior pleader.

ସିନିଆ—ଗ୍ରା. ବ (ଅନାଦରାର୍ଥକ)—ଶ୍ରୀନିବାସର ଡାକ ନାମ—Siniā Name for calling Śrīnibāsa.

ସିନୀ—ସ. ବଣ. ସ୍ତ୍ରୀ (ସିନ+ଈ)—'ସିନ' ଶବ୍ଦର ସ୍ତ୍ରୀଲିଙ୍ଗ—Sinī Feminine form of 'Sina'.

ସିନୀ ବାଲୀ—ସ. ବ (ବହୁବ୍ରୀହି; ସିନୀ=ଶ୍ୱେତା ଚନ୍ଦ୍ରକଳା+Sinī bāli ବଲ୍ ଧାତୁ=ଧାରଣ କରିବା+କର୍ତ୍ତ. ଅ+ସ୍ତ୍ରୀ. ଈ)—୧ । ଦୃଷ୍ଟେନ୍ଦୁକଳା ଅମାବାସ୍ୟା (ଅମର); ପ୍ରତିପଦ୍ କା ଚତୁର୍ଦ୍ଦଶୀଯୁକ୍ତା ଅମାବାସ୍ୟା; ଯେଉଁ ଅମାବାସ୍ୟାରେ ଚନ୍ଦ୍ର ସାମାନ୍ୟ ମାତ୍ର ଦେଖାଯାଏ—1. An Amābāsyā day of which a part is Chaturdaśī or Pratipad. ୨ । ବୈଦିକ ଦେବୀବିଶେଷ—2. Name of a Vedic Goddess. [ଢ଼—ଋଗ୍‌ବେଦରେ ଏ ପ୍ରଶସ୍ତକଟିବିଶିଷ୍ଟା, ସୁନ୍ଦର ଅଙ୍ଗୁଳିଭୂଷଣଯୁକ୍ତା ଓ ଗର୍ଭପ୍ରସବର ଅଧିଷ୍ଠାତ୍ରୀ ବୋଲି ବର୍ଣ୍ଣିତ ହୋଇଅଛନ୍ତି । ଅଥର୍ବବେଦରେ ଏହାଙ୍କୁ ବିଷ୍ଣୁଙ୍କ ପତ୍ନୀ ବୋଲି ବୋଲା ଯାଇଅଛି ।] ୩ । ଶୁକ୍ଳପକ୍ଷ ପ୍ରତିପଦା (ବିଶ୍ୱକୋଷ)—3. The Pratipadā of the bright lunar fortnight. ୪ । ଦୁର୍ଗା (ହ. ଶ)—4. Durgā. ୫ । ଅଙ୍ଗିରା ଋଷିଙ୍କର ଏକ ପତ୍ନୀ (ହ. ଶ)—5. Name of a wife of sage Angira. ୬ । ମାର୍କଣ୍ଡେୟ ପୁରାଣ ବର୍ଣ୍ଣିତ ନଦୀବିଶେଷ (ହ ଶ)—6. Name of a mythological river.

ସିନୁ—ଦେ. ବ(ଆଦରାର୍ଥକ)—ଶ୍ରୀନିବାସର ଡାକ ନାମ—Name for Sinu সিনু calling Śrinibāsa. (ସିନୁଆ, ସିନେଇ—ଅନ୍ୟରୂପ)

ସିନେ—ଗ୍ରାଦେ. ଅ—୧ । (କୌଣସି) ସେଠାରେ—1. There. Sine ୨ । (ବାଲେଶ୍ୱର ପାଠଣା) ସିନା—2. Too; even.

ସିନେଟ୍—ବୈଦେ. ବ (ଇଂ. ସିନେଟ୍)—୧ । ପ୍ରାଚୀନ ରୋମ୍ Sinet ସାମ୍ରାଜ୍ୟର ଶାସନ ସଭା—1. The senate of the সিনেট ancient Roman Empire. ୨ । ଆମେରିକା सिनेट ଯୁକ୍ତରାଜ୍ୟର ଶାସନ ସଭା—2. The senate of United States. ୩ । ବିଶ୍ୱବିଦ୍ୟାଳୟର କାର୍ଯ୍ୟନିର୍ବାହକ ସଭା—3. The senate of a University.

ସିନେଟ୍ ମିଟିଙ୍ଗ—ବୈଦେ. ବ (ଇଂ. ସିନେଟ୍ ମିଟିଂ)—ସିନେଟ୍ Sinet miting ସଭାର ଅଧିବେଶନ—Senate meeting. সিনেট মিটিঙ্গ सिनेट मीटिंग (ସିନେଟ୍ ମିଟିଂ-ଅନ୍ୟରୂପ)

ସିନେଟ୍ ମେମ୍ବର୍—ବୈଦେ. ବ—ବିଶ୍ୱବିଦ୍ୟାଳୟର ସଭ୍ୟ—Member Sinet membar of the senate of a University. সিনেট মেম্বর सिनेट मेंबर

ସିନେଟ୍ ସଭା—ଦେ. ବ (ଇଂ ସିନେଟ୍+ସ. ସଭା)—ସିନେଟ୍ Sinet sabhā (ଦେଖ)—Sinet (See) সিনেট সভা सीनेट सभा

**ସିନେଟ୍ ହଲ୍**—ବୈଦେ. ବି ( ଇଂ. ସିନେଟ୍ ହଲ୍ )—ସିନେଟ୍ ସଭ୍ୟର
Sinet hal ବଇଠକ ଘର—Senate hall.
সিনেট হল **सीनेट हाल**

**ସିନେଟର୍**—ବୈଦେ. ବି (ଇଂ. ସିନେଟର୍)—ପ୍ରାଚୀନ ରୋମ ସାମ୍ରାଜ୍ୟର
Sinetar ସିନେଟ୍ ସଭାର ସଭ୍ୟ—Senator of the
সিনেটর **सीनेटर** ancient Roman Empire.

**ସିନେମା**—ବୈଦେ. ବି ( ଇଂ. ସିନେମା )—ବାୟସ୍କୋପ୍ ( ଦେଖ )
Sinemā Bāyaskop ( See )
সিনেমা **सिनेमा**

**ସିନେମା କମ୍ପାନୀ**—ବୈଦେ. ବି ( ଇଂ ସିନେମା କମ୍ପାନୀ )—ଯେଉଁ
Sinemā kampāni କମ୍ପାନୀ ବା ଅନୁଷ୍ଠାନ ଚଳଚ୍ଚିତ୍ର ପ୍ରସ୍ତୁତ
সিনেমা কংপানী ବା ପ୍ରଦର୍ଶନ କରନ୍ତି—Cenema company.
**सिनेमा कम्पनी**

**ସିନେମା ଘର (ହାଉସ୍)**—ଦେ. ବି—ଯେଉଁ ଘରେ ଚଳଚ୍ଚିତ୍ର ପ୍ରଦର୍ଶିତ
Sinemā ghara (hāus) ହୁଏ—Sinema house.
সিনেমা ঘর **सिनेमा बाड़ी**

**ସିନେମା(ମେ)ଟୋଗ୍ରାଫ୍**—ବୈଦେ. ବି ( ଇଂ, ସିନେମାଟୋଗ୍ରାଫ୍ )—
Sinemā(me)tograph ଯେଉଁ ଯନ୍ତ୍ର ସାହାଯ୍ୟରେ ଚଳଚ୍ଚିତ୍ର
সিনেমাটোগ্রাফ ଦେଖାଇ ହୁଏ—Cenemetograph.
**सिनेमाटोग्राफ** [ ଦ୍ର—ଏହା ବର୍ତ୍ତମାନ ଉନ୍ନତ ଆକାର ଧାରଣ କରିଅଛି ଏବଂ ଛାୟାଚିତ୍ର ସାହାଯ୍ୟରେ ପରଦା ଉପରେ ପ୍ରତିଫଳିତ ଜୀବଜନ୍ତୁଙ୍କର ଓ ବ୍ୟକ୍ତିମାନଙ୍କ ଚିତ୍ରମାନ ପ୍ରଦର୍ଶିତ ହେବା ସଙ୍ଗେ ସଙ୍ଗେ ସେମାନଙ୍କ ଧ୍ୱନି ଦର୍ଶକମାନଙ୍କୁ ଶୁଣା ଯାଉଅଛି । ଏହା ବାୟସ୍କୋପ୍ ଓ ଗ୍ରାମୋଫୋନ୍‌ର ବୈଜ୍ଞାନିକ ସମବାୟ । ସିନେମାରେ ପ୍ରଦର୍ଶିତ ଜୀବଜନ୍ତୁ ଓ ବ୍ୟକ୍ତିମାନଙ୍କ ଚିତ୍ର ପ୍ରଦର୍ଶନ ସଙ୍ଗେ ସଙ୍ଗେ ସେମାନଙ୍କ ଧ୍ୱନି ଆଦି ଶୁଣା ଯିବାର ବ୍ୟବସ୍ଥାକୁ ଟକି ( Talkie ) କୁହାଯାଏ । ]

**ସିନେହ ( ଇତ୍ୟାଦି )**—ଗ୍ରା. ବି ( ସଂ. ସ୍ନେହ )—ସ୍ନେହ ଇତ୍ୟାଦି
Sineha ( etc ) ( ଦେଖ )—Sneha etc ( See )
সেনেহ **सनेह**

**ସିନେହୀ**—ଗ୍ରା. ବିଣ. ପୁଂ ଓ ସ୍ତ୍ରୀ ( ସଂ. ସ୍ନେହୀ )—ସ୍ନେହଶୀଳ—
Sinehi সেনেহী **सनेही** Affectionate, loving.

**ସିନ୍ତ୍(ନ୍ତି)ସିନ୍ତିଆ**—ଦେ. ବିଣ—ସନ୍ତସନ୍ତିଆ; ଜଳାର୍ଦ୍ର—
Sint(nti)sintiā সঁাত সেঁত **गीला** Moist.

**ସିନ୍ତା**—ପ୍ରାଦେ ( ସମ୍ବଲପୁର ) ଅ—ସେପରି
Sintā In that manner.

**ସିନ୍ତାଣ**—ଦେ. ବି—ସିନ୍ଥାଣ ( ଦେଖ )
Sintāṇa Sinthāṇa ( See )

**ସିନ୍ତି(ନ୍ଥି)**—ଦେ. ବି—୧ । ( ସଂ. ସୀମନ୍ତ )—ସିଁଥି ( ଦେଖ )—
Sinti(nthi) 1. Sinti ( See ) ୨ । ପ୍ରାଚୀନ କାଳରେ
সিঁথী **सउथ** ବ୍ୟବହୃତ ଯୁଦ୍ଧାସ୍ତ୍ରବିଶେଷ—2. A kind of weapon used in ancient days in battle.

**ସିନ୍ତି(ନ୍ଥି) ପାଟି**—ଦେ. ବି ( ସଂ. ସୀମନ୍ତ ପଟ୍ଟ )—ସୀମନ୍ତର ପଟ୍ଟାକାର
Sinti(nthi) pāṭi ସ୍ୱର୍ଣ୍ଣାଳଙ୍କାରବିଶେଷ; ଚେଉଙ୍ଗା—A gold
সিঁথীপাটি **सिउथ पाटी** plate worn on the hair
( ସିନ୍ତି[ନ୍ଥି]ପାଟିଅ—ଅନ୍ୟରୂପ ) over the forehead.

**ସିନ୍ତୁଲା** ଦେ. ବି ଓ ବିଣ ( ସଂ. ସନ୍ତୋଳନ )—ସନ୍ତୁଲା ( ଦେଖ )
Sintulā Santulā ( See )

**ସିନ୍ତୁଲା(ଲେ)ଇବା**—ଦେ. କ୍ରି—ସନ୍ତୁଲାଇବା ( ଦେଖ )
Sintulā(le)ibā Santulāibā ( See )

**ସିନ୍ତୁଲିବା**—ଦେ. କ୍ରି—ସନ୍ତୁଲିବା ( ଦେଖ )
Sintulibā Santulibā ( See )

**ସିନ୍ତୁଲି ହେବା**—ଦେ. କ୍ରି—ସନ୍ତୁଲି ହେବା ( ଦେଖ )
Sintuli hebā Santuli hebā ( See )

**ସିନ୍ଥା**—ପ୍ରାଦେ. ( ସିଂହଭୂମି ) ବି—ସିଁଥି ( ଦେଖ )
Sinthā সিঁথী **पाटी** Sinti ( See )

**ସିନ୍ଥାଣ(ଣି)**—ଦେ. ବି ( ସଂ. ସୀମନ୍ତ )—ମୁଣ୍ଡ ତଳେ ଦିଆଯିବା ତକିଆ
Sinthāṇa(ṇi) —A pillow for the head. [ ଦ୍ର—
বালিশ **सिरहाना** ଦେଖ ମୋହର ମୁଣ୍ଡ ଲମ୍ବୁଛି ତଳକୁ, ସିନ୍ଥାଣ ଘେନି ଦିଅ ଲଗାଇ ତାହାକୁ—କୃଷ୍ଣସିଂହ, ମହାଭାରତ-ଶଲ୍ୟ । ]

**ସିନ୍ଦ୍**—ଦେ. ବି (ନାମ) (ସଂ. ସିନ୍ଧୁ)—ସିନ୍ଧୁ ପ୍ରଦେଶ (ଦେଖ)
Sind Sindhu pradeśa. (See)

**ସି(ଛି)ନ୍ଦ୍ କନ୍ଦା**—ପ୍ରାଦେ (ଗଡ଼ଜାତ) ବି—ବଣ ଖଜୁରି ଗଛର କନ୍ଦା—
Si(chhi)nd kandā Tender edible and sweet substance found inside the trunk at the top of wild date palm trees (from where the branches shoot forth.)

**ସିନ୍ଦ୍‌ବାଦ୍**—ଦେ. ବି (ନାମ) (ଅ. ସିନ୍ଦ୍‌ବାଦ୍)—ଆରବ୍ୟୋପନ୍ୟାସରେ
Sind-bād ବର୍ଣ୍ଣିତ ଜଣେକ ନାବିକର ନାମ—Sindbad, the
সিন্দবাদ **सिन्दबाद्** sailor, in, the Arabian Nights.

**ସିନ୍ଦ(ନ୍ଧ)**—ଦେ. ବି—ସିନ୍ଧି (ଦେଖ)—Sindi. (See) ( ଉ—କେହି
Sinda(ndha) ଚୌର୍ଯ୍ୟେ ରତ, କେହି କୃତ୍ରିମ ମୁଦ୍ରଣେ, କୃତ୍ରିମ ଲେଖ୍ୟ ଲିଖନେ, ସିନ୍ଦେ କେହୁ ଅଛା । ରାଧାନାଥ-ମହାଯାତ୍ରା ।)

**ସିନ୍ଦି(ନ୍ଧି)**—ଦେ. ବି (ସଂ. ସନ୍ଧି—ଛିଦ୍ର)—ଚୋରି କରିବା ପାଇଁ ଚୋର
Sindi(ndhi) ଘରକୁ ପଶିବାକୁ କାନ୍ଥ କାଟି ଯେଉଁ ଗାତ
সিঁধ(দ) ବା ସୁଡ଼ଙ୍ଗ ଖୋଳେ—A tunnel dug through
**सेंध** a wall for housebreaking.

**ସିନ୍ଦି(ନ୍ଧି)ଆ**—ଦେ. ବି—୧ । ସିନ୍ଧିଆର (ଦେଖ)—Sindiāra.
Sindi(ndhi)ā (See) ୨ । ସିନ୍ଧି କରିବା ଲୋକ—2. House
সিন্দিআরা, সিঁধে(দে)ল breaker. ୩ । (ନାମ) (ପ୍ରବନ୍ଧ)
**सेंधदेनेवाला** ଭାରତର ମହାରଷ୍ଟ୍ରା ରାଜ୍ୟ ବିଶେଷ ଓ ତହିଁର ରାଜାଙ୍କ
সিন্ধিয়া উপাধি—3. The Sindhiā ( a Marhatta State
**सिन्धिया** and the title of its Chief.) [ଦ୍ର—ସିନ୍ଧିଆ

ରାଜ୍ୟର ଉତ୍ତରରେ ଚମ୍ବଲ୍ ଓ ଦକ୍ଷିଣରେ ନର୍ମଦା ନଦୀ । ଏହି ରାଜ୍ୟର ରାଜଧାନୀ ଗୋଆଲିଅର୍ ଅଟେ । ଶିବାଜୀଙ୍କ ପରେ ମରହଟ୍ଟାଙ୍କର ଏକାଧିପତ୍ୟ ଖଣ୍ଡ ଖଣ୍ଡ ହୋଇ ୫ ଗୋଟି ମରହଟ୍ଟା ରାଜ୍ୟର ସୃଷ୍ଟି ହୋଇଥିଲା । ଯଥା—

| ରାଜାଙ୍କ ଉପାଧି | ରାଜଧାନୀ |
|---|---|
| ୧ । ପେଶବା— | ପୁନା |
| ୨ । ଗାଇକବାଡ଼— | ବରୋଦା |
| ୩ । ସିନ୍ଧିଆ— | ଗୋଆଲିଅର୍ |
| ୪ । ହୋଲ୍କାର— | ଇନ୍ଦୋର |
| ୫ । ଭୋଁସ୍ଲା— | ନାଗପୁର |

ପ୍ରଥମେ ପେଶ୍ବା (ଅର୍ଥାତ୍. ମନ୍ତ୍ରୀ) ମରହଟ୍ଟାଙ୍କର ମନ୍ତ୍ରୀ ଥିଲେ । ପରେ ସେ ମରହଟ୍ଟା ରାଜ୍ୟର ରାଜା ହେଲେ ।

ପରବର୍ତ୍ତୀ ୪ ଗୋଟି ରାଜା ପ୍ରଥମେ ମରହଟ୍ଟା ରାଜାଙ୍କୁ ଅର୍ଥାତ୍ ପେଶ୍ବାଙ୍କୁ 'ଚଉଥ' ବା ପେଶକସ୍ ଦେଉଥିଲେ; କିନ୍ତୁ ପରେ ସେମାନେ ପେଶ୍ବାଙ୍କୁ ନ ମାନି ନିଜେ ସ୍ୱାଧୀନ ହେଲେ । ଏହି ପାଞ୍ଚଗୋଟି ମରହଟ୍ଟା ରାଜ୍ୟ ମଧ୍ୟରୁ ପେଶ୍ବାଙ୍କ ରାଜ୍ୟ ( ପୁନା ) ଓ ଭୋଁସ୍ଲାଙ୍କ ରାଜ୍ୟ (ନାଗପୁର) ଇଂରେଜମାନଙ୍କ ହସ୍ତଗତ ହୋଇଅଛି ଓ ଅନ୍ୟ ୩ ଜଣ ରାଜା (ସିନ୍ଧିଆ, ଗାଇକବାଡ଼୍ ଓ ହୋଲ୍କାର) ଏ ପର୍ଯ୍ୟନ୍ତ ଇଂରେଜ ସରକାରଙ୍କର ମିତ୍ରରାଜାରୂପେ ନିଜ ନିଜ ରାଜ୍ୟ ଶାସନ କରୁଅଛନ୍ତି । ସିନ୍ଧିଆ ରାଜ୍ୟର ମୃତ ରାଜା ଦଉଲତ୍ ରାଓ ସିନ୍ଧିଆଙ୍କ ବିଧବାରାଣୀଙ୍କ ଦ୍ୱାରା ପୋଷ୍ୟପୁତ୍ରରୂପେ ଗୃହୀତ ଜନକାଜୀ ସିନ୍ଧିଆଙ୍କୁ ଲର୍ଡ୍ ଓ୍ୱିଲିୟମ୍ ବେଣ୍ଟିକ୍ ରାଜଗାଦିରେ ବସାଇଥିଲେ । କିନ୍ତୁ ସେ ଅପୁତ୍ରକ ହୋଇ ମୃତ ହେବାରୁ ତାଙ୍କର ୧୨ ବର୍ଷର ବିଧବା ସ୍ତ୍ରୀ ଗୋଟିଏ ପୋଷ୍ୟପୁତ୍ର ଗ୍ରହଣ କଲେ ଏବଂ ଇଂରେଜଙ୍କ ସଙ୍ଗେ ଯୁଦ୍ଧ କଲେ । ଅବଶେଷରେ ମହାରାଜପୁର ଓ ପୁନିଆର ଯୁଦ୍ଧରେ ୧୮୪୩ ଖ୍ରୀ: ଅ: ରେ ଇଂରେଜମାନେ ସିନ୍ଧିଆଙ୍କ ସୈନ୍ୟମାନଙ୍କୁ ପରାସ୍ତ କରି ଉକ୍ତ ପୋଷ୍ୟପୁତ୍ର ନାବାଳଗ୍ ଜୟାଜୀ ସିନ୍ଧିଆଙ୍କୁ ରାଜା କରାଇଲେ । ସେହିକାଳରୁ ସିନ୍ଧିଆ ରାଜବଂଶଧରମାନେ ଇଂରେଜ ସରକାରଙ୍କ ମିତ୍ରରାଜାରୂପେ ନିଜ ରାଜ୍ୟ ଶାସନ କରୁଅଛନ୍ତି ।]

**ସିନ୍ଧ(ନ୍ଧି)ଆର(ରା,ଳ)**—ଦେ. ବି (ସଂ. ସନ୍ଧିଲା=ଗାତ)—ଯେଉଁ ଚୋର ସିନ୍ଧିଗାତ ଖୋଳି ଚୋରି କରେ—
Sindi(ndhi)āra(rā,ḷa)
ସିଁଧେ(ଦେ)ଲ Housebreaker, who breaks a house by digging a tunnel into a house.
ସେଁଧ କରନେବାଲା
ଦେ· ଵଣ—ଯେ ସିନ୍ଧି କରି ଚୋରି କରେ—House breaking (person).

**ସିନ୍ଧ କରିବା (କାଟିବା, ଖୋଳିବା)**—ଦେ· କ୍ରି—ଚୋରି କରିବା ପାଇଁ ବାହାରରୁ ଘର ଭିତରକୁ ସିନ୍ଧିଗାତ ଖୋଳିବା—To break into a house by boring a hole; to bore through the wall into a house.
Sindi karibā (kāṭibā, kholibā)
সিঁদ[ধ] কাটা
सेंध करना

**ସିନ୍ଧ କାଠି(ଠି)**—ଦେ. ବି—ସିନ୍ଧିଗାତ ଫୁଟାଇବା ପାଇଁ ଲୁହାର ଉପକରଣ ବା ଶାବଳ—House breaking tool.
Sindi kāṭi(ṭhi)
সিঁদ কাটি
सेंध काटी

**ସିନ୍ଧ ଗାଡ଼(ତ)**—ଦେ. ବି ( ସଂ. ସନ୍ଧି+ଗର୍ତ୍ତ )—ସିନ୍ଧି; ଘରର କାନ୍ଥରେ ସିନ୍ଧିଆର ଚୋରଙ୍କ ଖୋଳିଥିବା ଗର୍ତ୍ତ—Sindi hole; a hole bored through a wall by a house breaker.
Sindi gārḍa(ta)
সিঁদ[ধ],সিঁদ[ধ] গর্ত্ত
सेंध

**ସିନ୍ଧ ଫୁଟା(ଟେ)ଇବା**—ଦେ. କ୍ରି—ସିନ୍ଧ କରିବା (ଦେଖ)
Sindi phuṭā[ṭe]ibā Sindi karibā. (See)
সিঁদ[ধ] কাটা
सेंध फोड़ना

**ସିନ୍ଧ ମୁହଁ**—ଦେ. ବି (ସଂ. ସନ୍ଧି+ମୁଖ)—ସିନ୍ଧି ଗାତର ମୁଖ ବା ମୁଣ୍ଡ, ଯେଉଁଠାରେ ସିନ୍ଧଗାତ ଘରଭିତରକୁ ଫୁଟିଥାଏ—The mouth of a sindi hole; the place where the sindi-hole opens into the inside of a house.
Sindi muhañ
সিঁধে(দে)র মুখ
सेंधका मुँह

**ସିନ୍ଧି ମୁହଁକୁ ପେଲି ଦେବା**—ଦେ. କ୍ରି (ଲକ୍ଷଣାର୍ଥ)—ଯେଉଁଠାରେ ବିପଦର ଆଶଙ୍କା ଥାଏ, ସେପରି ସ୍ଥାନରେ କୌଣସି ବ୍ୟକ୍ତିକୁ ଉପସ୍ଥାପିତ କରିବା—To push a person to a place of imminent risk.
Sindi muhañku peli debā
সিঁধের মুখে ঠেলেদেওযা
सेंधका मुँह पर ढकेल देना
[ଦ୍ର—ଏପରି କହିବାର ତାତ୍ପର୍ଯ୍ୟ ଏହି ଯେ, ଘର ଭିତରେ ଥିବା ବ୍ୟକ୍ତିର ହାତୁଡ଼ିରେ ଯେବେ ସିନ୍ଧମୁହଁରେ ପ୍ରବେଶ କରିବା ବ୍ୟକ୍ତି ପଡ଼ିଯିବ, ତେବେ ତାହାକୁ ଗୃହସ୍ୱାମୀ ମାରି ପକାଇପାରେ ଏବଂ ସେତେବେଳେ ଘରର ବାହାରରେ ଥିବା ସଙ୍ଗୀ ଚୋର ଘର ଭିତରକୁ ପଶିଯାଇ ବିପନ୍ନ ସଙ୍ଗୀକୁ ସାହାଯ୍ୟ କରି ପାରିବେ ନାହିଁ ।]

**ସିନ୍ଦୁ(ନ୍ଧୁ)**—ଦେ· ବି—୧ । କୃପାସିନ୍ଧୁର ଡାକ ନାମ—1. Name for calling Kṛupāsindhu. ୨ । ( ସିନ୍ଦୁଅ, ସିନ୍ଧୁଅ—ଅନ୍ୟରୂପ ) ସିନ୍ଧୁ ଦେଶ ( ଦେଖ )—2. Sindhu deśa. (See) ୩ । ସିନ୍ଧୁ ନଦ (ଦେଖ)—3. Sindhu nada. (See)
Sindu(ndhu)
সিন্ধু
सिन्धु

**ସିନ୍ଦୁକ**—ସଂ. ବି (ସ୍ୟନ୍ଦ୍. ଧାତୁ+କନ୍ଥି, ଉକ)—ସିନ୍ଦୁବାର (ଦେଖ)—Sindubāra (See) ବୈଦେ. ବି ଅ· ସନ୍ଦୁକ୍)—ବଡ଼ ବାକ୍ସ; ଲୁହାର ବା କାଠର ମଞ୍ଜୁଷା—A chest (of wood or iron). [ଦ୍ର—ଏହାର ତଳ ଅଂଶଟି ଭୂଇଁ ଉପରେ ରଖାଯାଏ ଏବଂ ଉପରର ଢାଙ୍କଣି କବଜା ଓ ଶିକୁଳି ଲଗି ଉଠାଯାଏ ଓ ମୁଦାଯାଏ ।]
Sinduka
সিন্দুক
सन्दुक

**ସିନ୍ଦୁକ କ(କୁ)ଞ୍ଚି**—ଦେ. ବି—ସିନ୍ଦୁକ ଚାବି (ଦେଖ)
Sinduka ka(ku)ñchi Sinduka chābi. (See)
সিন্দুকের চাবি

**ସିନ୍ଦୁକ ଚାବି**—ଦେ. ବି—ସିନ୍ଦୁକରେ ପଡ଼ିଥିବା ତାଲାର ଚାବି—The key of the lock of a chest.
Sinduka chābi
সিন্দুকের চাবি
सन्दुककी चाभी

**ସିନ୍ଦୁକ ଡାଲ**—ଦେ. ବି—ସିନ୍ଦୁକର ଉପରେ ଥିବା ଢାଙ୍କୁଣୀ—
Sinduka dālā The upper lid of a chest.
সিন্দুকের ডালা सन्दुकका ढाला

**ସିନ୍ଧୁଦେଶ**—ସଂ. ବି—ସିନ୍ଧୁଦେଶ ( ଦେଖ )—Sindhu deśa
Sindu deśa সিন্দু দেশ, সিন্দু মুলক. ( See )
सिन्ध देश ( ସିନ୍ଧୁ ମୂଳକ—ଅନ୍ୟରୂପ )

**ସିନ୍ଦୁବାର**—ସଂ ବି ( ସ୍ୟନ୍ଦ୍ ଧାତୁ+ଉ. ଉ=ସିନ୍ଦୁ=ସ୍ୟନ୍ଦନ+
Sindubāra ବାର ଧାତୁ=ନିବାରଣ କରିବା+କର୍ତ୍ତୃ-ଅ; ଏହା
নিসিন্দা ସ୍ୟନ୍ଦନ ବା କଫକୁ ନିବାରଣ କରେ )—ନିର୍ଗୁଣ୍ଡୀ
( ସିନ୍ଦୁବାରକ—ଅନ୍ୟରୂପ ) ( ଦେଖ )—Nirguṇḍi (See)

**ସିନ୍ଦୁରି**—ଦେ. ବି ( ସଂ ସୁନ୍ଦର )—୧ । ସୁନ୍ଦର ସଂ. ବି ( ଦେଖ )
Sinduri 1. Sundara ( See ) ୨ । ସିନ୍ଦୂର ( ଦେଖ )—
सेंदुरी সিঁদুরে 2. Sindūri ( See )

**ସିନ୍ଦୁଳିବା**—ଦେ. କ୍ରି—ସିନ୍ଦୋଳିବା ( ଦେଖ )
Sindulibā Sindolibā ( See )

**ସିନ୍ଦୂର**—ସଂ . ବି ( ସ୍ୟନ୍ଦ୍ ଧାତୁ=କ୍ଷରଣ ହେବା+କର୍ତ୍ତୃ- ଉର; ଏହା
Sindūra ଦ୍ରାବିଡ଼ ଶବ୍ଦ; ଦ୍ରାବିଡ଼ରୁ ଏହା
ଅନ୍ୟ ସଂ. ନାମ—ନାଗ- ସଂସ୍କୃତରୁ ଆସିଅଛି )—୧ । ରକ୍ତବର୍ଣ୍ଣ
ରେଣୁ, ନାଗଗର୍ଭ, ସୀସକ, ଚୂର୍ଣ୍ଣବିଶେଷ—1. Vermillion;
ନାଗରେଣୁ, ବୀରରଜ, red lead; Plumbi Oxidum;
ଗଣେଶଭୂଷଣ, ସନ୍ଧ୍ୟାରାଗ, cinnabar. ୨ । ସିନ୍ଦୂର ବର୍ଣ୍ଣ—
ଶୃଙ୍ଗାରକ, ସୌଭାଗ୍ୟ, 2. Vermillion colour. ୩ ।
ଅରୁଣ, ମଙ୍ଗଲ୍ୟ । ନିର୍ଗୁଣ୍ଡୀ (ଦେଖ)—3. Nirguṇḍi
সিন্দূর सेंदुर ( See ) [ ଦ୍ର—ବର୍ତ୍ତମାନ ବଜା-
ତେ. ଚେନ୍ଦୁରମୁ ରରେ ବିକି ହେଉଥିବା ସିନ୍ଦୂର
ତା. ଚେନ୍ଦୁରମ୍ ( ଚୀନ ସିନ୍ଦୂର ) ବୈଜ୍ଞାନିକ ଉପା-
ଫା. ସିର୍ଙ୍ଗ୍ ୟରେ ପାରଦ ଓ ଗନ୍ଧକରୁ ପ୍ରସ୍ତୁତ
( vermillion ); କିନ୍ତୁ ପୂର୍ବେ ବୈଦ୍ୟଶାସ୍ତ୍ରୋକ୍ତ ସିନ୍ଦୂର ସୀସକଘଟିତ ଥିଲା ( minium ) । ଏ ସିନ୍ଦୂରର ରଙ୍ଗ ମାଟିଆ ବା ପଦ୍ମିକା ।

ସିନ୍ଦୂର ସଧବା ସ୍ତ୍ରୀଲୋକମାନଙ୍କର ଅଙ୍ଗ ଅଳଙ୍କାର ସାମଗ୍ରୀ । ପୁରାଣାଦି ( ଯଥା—କାଶୀଖଣ୍ଡ ୪ର୍ଥ ଅଧ୍ୟାୟ )ରେ ଲେଖା ଅଛି ଯେ, ସ୍ତ୍ରୀ ଭାଲରେ ସିନ୍ଦୂର ଧାରଣ କଲେ ପତିଙ୍କ ଆୟୁ ବଢ଼େ । ଓଡ଼ିଶାରେ ସଧବା ସ୍ତ୍ରୀଲୋକମାନେ କପାଳର ମଝିରେ ସିନ୍ଦୂର ବିନ୍ଦୁ ଓ ଟୋପା ଲଗାନ୍ତି, କିନ୍ତୁ ବଙ୍ଗଦେଶରେ ସଧବାମାନେ ସୁନ୍ଥାରେ ଲମ୍ବ କରି ସିନ୍ଦୂର ଗାର ଲଗାନ୍ତି ଓ ହାତରେ ପିନ୍ଧିଥିବା ଲୁହା ( ଲୁହା ଖଡ଼ୁ )ରେ ଟିକିଏ ସିନ୍ଦୂର ମାରି ଦିଅନ୍ତି । ସିନ୍ଦୂର ପିନ୍ଧିବା ( ଏବଂ ବଙ୍ଗଦେଶରେ ଲୁହା ଖଡ଼ୁ ଓ ଆମ ଦେଶରେ କାଚ ବା ଶଙ୍ଖା ) ସଧବାର ଚିହ୍ନ । 'ତୋର କାଚ ସିନ୍ଦୂର ବଜ୍ର ( ଅର୍ଥାତ୍ ଚିରସ୍ଥାୟୀ ) ହେଉ'—ଏହି ଆଶୀର୍ବାଦ ଅପେକ୍ଷା ସଧବା ପ୍ରତି ଅନ୍ୟ ଉଚିତର ଓ ମଙ୍ଗଳମୟ ଆଶୀର୍ବାଦ ଅଛି ନାହିଁ । ଦେବତା ( ଦେଖ ଓ ବିଶେଷତଃ ଗ୍ରାମଦେବୀ )ଙ୍କଠାରେ ବହୁ ପରିମାଣରେ ସିନ୍ଦୂର ବୋଳାଯାଏ । ସିନ୍ଦୂର ଚୂନା ଥିବାରୁ ତାହା ଦେହରେ ଲାଗି ରହିବା ପାଇଁ ତହିଁ ସଙ୍ଗେ ଘିଅ ଗୋଳା ଯାଏ । କେତେ ଅନାର୍ଯ୍ୟଙ୍କ ମଧ୍ୟରେ ଯୁବକ ବିବାହ ପାଇଁ ମନୋନୀତା ସ୍ତ୍ରୀର କପାଳରେ ସିନ୍ଦୂର ଲଗାଇ ଦିଏ । କେତେ ହିନ୍ଦୁମାନଙ୍କ ମଧ୍ୟରେ ବର କନ୍ୟାର କପାଳରେ ସିନ୍ଦୂର ଲଗାଇବାର ପ୍ରଥା ମଧ୍ୟ ଚଳେ । ସିନ୍ଦୂର ମଧ୍ୟ ଔଷଧରେ ବ୍ୟବହୃତ ହୁଏ । କୁକୁଡ଼ା ଅଣ୍ଡାର ଧଳା ସଙ୍ଗେ ସିନ୍ଦୂର ଗୋଳି ଘାଆ ଓ ଫିଟିକା ଉପରେ ଲଗାଇଲେ ବେଦନା ଓ ଫୁଲା କମି ଯାଏ ।

ବୈଦ୍ୟଶାସ୍ତ୍ରରେ ସିନ୍ଦୂରକୁ ସପ୍ତ ଉପଧାତୁ ମଧ୍ୟରେ ଗଣନା କରାଯାଏ । ଏହା ସୀସାର ଉପଧାତୁ । ଏହା ଉଷ୍ଣବୀର୍ଯ୍ୟ, ବିସର୍ପଘ୍ନ, ବିଷଦୋଷ ନାଶକ, କୁଷ୍ଠ ଓ ବ୍ରଣ-ଶୋଧକ । ଏହା ବିଷାକ୍ତ । ]

**ସିନ୍ଦୂର କଜ(ଜ୍ଜ୍ୱ)ଳ**—ଦେ· ବି ( ସନ୍ଧିଜ )—ସ୍ତ୍ରୀଲୋକମାନଙ୍କ ପ୍ରସା-
Sindūra kaja(jwa)ḷa ଧନର ଦୁଇଟି ସାମଗ୍ରୀ । ( ଯଥା—
সিঁদুর কাজল କପାଳରେ ଫୋଟାଯିବା ସିନ୍ଦୂର ଓ ଆଖିରେ
सेंदुर काजल ଘୋଳାଯିବା କଜ୍ଜ୍ୱଳ )—Vermillion ( for
( ସିନ୍ଦୂର କଜ୍ଜ[ଜ୍ୱ]ଳ—ସଂ. ରୂପ ) the brow ) and
collyrium (for the eyes) used by women.

**ସିନ୍ଦୂର କଳା**—ଦେ· ବି ( ସନ୍ଧିଜ )—କପାଳରେ ନାଲି ଟୋପି ଦେବା
Sindūra kaḷā ପାଇଁ ସିନ୍ଦୂର ଓ କଳା ଟୋପି ଦେବାପାଇଁ
সিঁদুরের উপরে কাল টিপ ଗୁରିକଳା—Vermillion [ red ]
सेंदुर काला and black mixture [black]
used for painting the forehead.

**ସିନ୍ଦୂର କଳି(ଳ୍ଲି)**—ଦେ· ବି—କପାଳରେ ଚିହ୍ନିତ କଳିକାକାରର
Sindūra kali(lli) ( ମୂଳ ମୋଟ, ଅଗ ସରୁ ) ସିନ୍ଦୂରର
সিঁদুর কলি ରେଖା—A bud-like line painted
सेंदुर कली vertically on the brow with
vermillion.

**ସିନ୍ଦୂର କାରଣ**—ସଂ. ବି ( ସିନ୍ଦୂର+କାରଣ=ହେତୁ; ସୀସକରୁ
Sindūra kāraṇa ସିନ୍ଦୂରର ଉତ୍ପତ୍ତି ହେବାରୁ ଏହି ନାମ
ହୋଇଅଛି )—ସୀସକ; ସୀସାଧାତୁ ( ହେମଚନ୍ଦ୍ର )—
Lead.

**ସିନ୍ଦୂର କୋ(କୌ)ଟା**—ଦେ· ବି ( କଣିଆଙ୍କ ବ୍ୟବହୃତ, କନ୍ଦାକୃତ
Sindūra ko(kau)ṭā ଶବ୍ଦ )—ସ୍ତ୍ରୀମାନଙ୍କର ସିନ୍ଦୂର ରଖିବା
সিঁদুর কৌটা ଉପଯୋଗୀ ରୁପାର ତିଆ ସୁନାର ବା—
सेंदुर ढ़ब्बा, सिंदुरकी डिबिया Metal case for keep-
ing vermillion,

**ସିନ୍ଦୂର ଗୋଲା**—ଦେ· ବି—ଛୋଟ ଗିନା; ଯେଉଁ ଗିନାରେ ସିନ୍ଦୂରକୁ
Sindūra golā ତେଲ ବା ଘିଅ ସଙ୍ଗେ ଗୋଳାନ୍ତି—A small
সিঁদুর গোলা বাটি dish or pot in which vermillion
सेंदुर घोरा is mixed with ghee or oil'

ସିନ୍ଦୂର ଘି(ଘେ)ନିବା—ଦେ. କି—କପାଳରେ ସିନ୍ଦୂର ଲଗାଇବା—
Sindūra ghi(ghe)nibā To put vermillion mark
সিঁদূর পরা सेंदुर लगाना on the forehead.
( ସିନ୍ଦୂର ନା(ଳି)ଇବ—ଗ୍ରାମ୍ୟରୂପ )

ସିନ୍ଦୂର ଟିକ୍(କି)ଲି—ଦେ. ବି ( ସଧବର )—ବାଳିକା ବା ସ୍ତ୍ରୀମାନେ
Sindūra ṭik-(ki)li କପାଳରେ ଯେଉଁ ସିନ୍ଦୂର ଓ ଟିକଲି
সিন্দুর টিপি ଲଗାନ୍ତି—Vermillion and metal tips
सेंदुर टिकुली worn on the forehead by females having husband and by girls.

ସିନ୍ଦୂର ଟୋପା—ଦେ. ବି—କପାଳରେ ଅଙ୍ଗୁଠିରେ ଅଗଦ୍ୱାରା ଚିହ୍ନିତ
Sindūra ṭopā ସିନ୍ଦୂରର ଗୋଲାକାର ଚିହ୍ନ—A circular
সিন্দুরের ফোঁটা mark with vermillion on the
सेंदुर ठोपा forehead made by the tip of the finger.

ସିନ୍ଦୂର ଟୋପା ଖେଳ—ପ୍ରାଦେ ( ଯାଜପୁର ) ବି—ବାଳକମାନଙ୍କର
Sindūra ṭopā khelā ଏକପ୍ରକାର ଖେଳ—A kind of play among the children. [ ବ୍ୟୁ—ଏ ଖେଳରେ ଜଣେ ପିଲାର ଆଖି ବୁଜା ହେବା ବେଳେ ତା ମୁଣ୍ଡରେ ଅନ୍ୟ ଏକ ପିଲା ସିନ୍ଦୂର ଟୋପା ମାରେ ତାହା ଉକ୍ତ ବାଳକ ଅନୁମାନ କରି କହେ । ]

ସିନ୍ଦୂର ଟୋପି—ଦେ. ବି—ସିନ୍ଦୂରର କ୍ଷୁଦ୍ର ଟୋପା ( ଟୋପାଠାରୁ
Sindūra ṭopi ସାନ)—A tiny mark of vermillion
সিন্দুরের টিপ छोटा सेंदुर ठोप on the forehead.

ସିନ୍ଦୂର ତିଳକ—ସଂ. ବି. ପୁଂ—୧ । (ବହୁବ୍ରୀହି; ସିନ୍ଦୂର ଅଛି ତିଳକ
Sindūra tiḻaka ଯାହାର ) ହସ୍ତୀ ( ମେଦିନୀ )—1. Ele-
(ସିନ୍ଦୂର ତିଳକା—ସ୍ତ୍ରୀ) phant. ୨ । ସିନ୍ଦୂରଦ୍ୱାରା କପାଳରେ ଅଙ୍କିତ ତିଳକ ( ଷ. ଶ )—2. Mark on the forehead drawn with vermillion.

ସିନ୍ଦୂର ତିଳକା—ସଂ. ବି. ସ୍ତ୍ରୀ (ବହୁବ୍ରୀହି)-୧ । ସଧବା ନାରୀ (ମେଦିନୀ)-
Sindūra tiḻakā 1. A woman having her husband living. [ ବ୍ୟୁ—କପାଳରେ ସିନ୍ଦୂର ଧାରଣ ସଧବାର ଚିହ୍ନ । ] ୨ । ହସ୍ତିନୀ—2. She-elephant.

ସିନ୍ଦୂର ଦାନ—ସଂ. ବି—ସିନ୍ଦୂର ବନ୍ଦନ ( ଦେଖ )—
Sindūra dāna Sindūra bandana (See)

ସିନ୍ଦୂର ଦେବା—ଦେ. କି—ଅନ୍ୟ ବ୍ୟକ୍ତିର ମୁଣ୍ଡରେ ସିନ୍ଦୂର ଟୋପା
Sindūra debā ଅଙ୍କନ କରିବା—To paint another's
সিন্দুর দেওয়া सेंदुर देना brow with vermillion.

ସିନ୍ଦୂର ପଦା—ଦେ. ବି ( ନାମ )—ସୁନ୍ଦର ପଦା ( ଦେଖ )
Sindūra padā Sundara padā ( See )

ସିନ୍ଦୂର ପାଟି—ଦେ. ବି—ସିନ୍ଦୂରଦ୍ୱାରା ଭ୍ରୂଲତା ଉପରେ କପାଳର
Sindūra pāṭi ଦୁଇ ପାର୍ଶ୍ୱରେ ଟଣା ଯାଇଥିବା ଚଉଡ଼ା ରେଖା ଦ୍ୱୟ
সিন্দুর পাতি —Two broad lines of vermillion
सेंदुर पाटी painted over the eyebrows.
( ସିନ୍ଦୂର ପାଟିଅ—ଅନ୍ୟରୂପ )

ସିନ୍ଦୂର ପେଡ଼ି—ଦେ. ବି-ସିନ୍ଦୂର ଫରୁଆ, କଜଳପାତି, ଆରସି, ପାନିଆ,
Sindūra peṛi ମହଣ, ଲୁଗା ପ୍ରଭୃତି ଅଳଙ୍କାର ଏବଂ ସ୍ତ୍ରୀମାନଙ୍କ ପ୍ରସାଧନ-
সিন্দুর চুপড়ি, ଦ୍ରବ୍ୟସମ୍ଭାର ରଖିବା ପାଇଁ ବେତର ବା କାଠର
সিন্দুর পাতিআ, ଛୋଟ ପେଡ଼ି—Small fancy boxes
সিন্দুর পেতো for keeping toilette requisites;
सेंदुर पौती toilet box. [ବ୍ୟୁ—ଏହା ପ୍ରତ୍ୟେକ ସଧବାଙ୍କ ସହରରେ ଓ ସମ୍ବଳ ଅଛି ।]

ସିନ୍ଦୂରପୁଷ୍ପୀ—ସଂ. ବି—ପୁଷ୍ପ ବୃକ୍ଷ ବିଶେଷ (ରାଜ ନିର୍ଘଣ୍ଟ)—
Sindūra pushpi A flower tree.
ସ. ପର୍ଯ୍ୟାୟ— [ବ୍ୟୁ—ଏହାର ଫୁଲ ରକ୍ତବର୍ଣ୍ଣ ବା ସିନ୍ଦୂର
ସିନ୍ଦୂରୀ, ବୀର ପୁଷ୍ପୀ, ବର୍ଣ୍ଣ ଥିବାରୁ ଏପରି ନାମକରଣ
ତୃଣପୁଷ୍ପୀ, କରଚ୍ଛଦା, ହୋଇଅଛି ।
ଶୋଣପୁଷ୍ପୀ, ଏଥିର ଗୁଣ—କଟୁତ୍ୱ, ଉଷ୍ଣତ୍ୱ
সিঁদুর পুষ্পী କଷାୟତ୍ୱ, ଶ୍ଳେଷ୍ମବାତଶିରୋରୋଗ ଓ
सेन्दुरिया, सदासुहागीन ଭୁତନାଶିତ୍ୱ, ରକ୍ତପିତ୍ତ ଗୁଣ । (ରାଜନିର୍ଘଣ୍ଟ)]
ପ୍ର. ଦେଖ

ସିନ୍ଦୂର ଫରୁଆ—ଦେ. ବି—ମାଇପଙ୍କ ରଖିବା ସିନ୍ଦୂର ଯେଉଁ ଛୋଟ
Sindūra pharuā କାଠ ଡବାରେ ରହେ—A small
সিন্দুর কৌটা circular wooden box for keeping
सेन्दुर डब्बा; सिंदो(धो)रा vermillion for the toilette.
[ବ୍ୟୁ—ବାଆଁ ମାଇପର କି ସମ୍ପତ୍ତି ?
ସିନ୍ଦୂର ଫରୁଆ କଜଳପାତି ।—ଲୋକ]

(ତୋ)ସିନ୍ଦୂର ବଜର(ବଜ୍ର)ହେଉ—ଦେ. ବାକ୍ୟ—ସଧବା ଓ କୁମାରୀ
Sindūra(bajara)bajra heu ପ୍ରତି ପ୍ରଯୁକ୍ତ ଆଶୀର୍ବାଦ;
(তোমার) সিন্দুর বজ্র হউক অর্থাৎ—'ତୁ ଚିରଦିନ ସଧବା ହୋଇ
(তোমার) সিন্দুর না মিলুক ବଞ୍ଚି ରହ'—ଏହିଭଳି ।
सेंदुर बजर हो A blessing to maidens and women who have their husbands living, meaning 'May the vermillion on your forehead be permanent as thunder', i e. 'May your husband live long.'
[(ତୋ)ସିନ୍ଦୂର ନ ଲିଭୁ—ଅନ୍ୟରୂପ ।]

ସିନ୍ଦୂର ବନ୍ଦନ—ସଂ. ବି—ବିବାହ ସମୟରେ କନ୍ୟାର କପାଳରେ ବା
Sindūra bandana ମାଙ୍ଗରେ ବରର ସିନ୍ଦୂର ଲଗାଇବା
ପ୍ରଥା । (ଷ. ଶ)—The custom of the bridegroom putting vermillion on the brow of the bride during marriage.

ସିନ୍ଦୂର ବିନ୍ଦୁ—ସଂ. ବି—ଲଲାଟରେ ଚିହ୍ନିତ ସିନ୍ଦୂରର କ୍ଷୁଦ୍ର ବିନ୍ଦୁ—
Sindūra bindu A small circlet of vermillion put on the forehead.

'ସିନ୍ଦୂର ବିନ୍ଦୁ ବିଧବା ଲଲାଟେ'—ସଂ ବାକ୍ୟ ( ନ୍ୟାୟ )—(ଅଲୀକ,
Sindūra bindurbidhabā lalāṭe ଅସାଧାରଣ, ଅସମ୍ଭବ
ବା ସମାଜ ବିରୁଦ୍ଧ କଥା ଦେଖିଲେ କୋଲାଯିବା ବାକ୍ୟ)—
(ବିଧବା କପାଳରେ ସିନ୍ଦୂର ଟୋପା ରହିବା ଯେପରି

ଅସାଧାରଣ, ( ସେହିପରି ) ଅସାଧାରଣ ଦୃଶ୍ୟ— A sentence applied on seeing any thing which is un-common or against social rules.

[ପ୍ର—ଏଥିର ପୂର୍ଣ୍ଣ ଶ୍ଳୋକ ଏହି—
ତୋୟନ୍ତି ଗ୍ରାଲେ ଚରନ୍ତିଗଜଂ=ସିନ୍ଦୂର ବନ୍ଦୁଃ
ଜା ରୌଦ୍ର ପାନା ମଧୁ ଯାମିଷଣୁ=ଅଧବା
ବସ୍ତ୍ର ନ ବଧନ୍ତ୍ରେ ଶଶିକଂ ମହେଶା=ଲକ୍ଷତେ
(ପ୍ରଥମ ୩ ପାଦର ପୂରଣ) ସିନ୍ଦୁରବନ୍ଦୁର୍ବିଧବାଲଲାଟେ ।

**ସିନ୍ଦୂର ମଥା**—ଦେ. ବି—ସିନ୍ଦୂରଦ୍ୱାରା ରଞ୍ଜିତ ମୁଖ ବା କପାଳ— Sindūra mathā Face (or brow) painted with vermillion. সিঁথীতেসিঁদুর सीउथमें सींदुर [ଉ—କଥାକେକଥାଏ ଭଲ ଘରକୁ ଉଲଣୀ ଗଲେ ସିନ୍ଦୂରମଥାଏ । —ଢଗ ।]

**ସିନ୍ଦୂର ମୁଣ୍ଡା**—ଦେ. ବଣ. ପୁଂ—୧ । ସିନ୍ଦୂରବର୍ଣ୍ଣ ମସ୍ତକବିଶିଷ୍ଟ— Sindūra mundā 1. Having vermillion-coloured head; having the head red as vermillion. সিঁদুর মুণ্ডি सेंदुर मुंडा ୨ । ସିନ୍ଦୂର ରଞ୍ଜିତ ମସ୍ତକ (ସିନ୍ଦୂର ମୁଣ୍ଡିଆ—ଅନ୍ୟରୂପ) ଯୁକ୍ତ—2. With the head (ସିନ୍ଦୂର ମୁଣ୍ଡୀ, ସିନ୍ଦୂର ମୁଣ୍ଡେଇ—ସ୍ତ୍ରୀ) painted with vermillion.

**ସିନ୍ଦୂର ମୁଣ୍ଡି**—ଦେ. ବଣ—ସିନ୍ଦୂର ମୁଣ୍ଡା ( ଦେଖ )—Sindūra mundā ( See ) Sindūra mundi ଦେ. ବି—ଏକ-ପ୍ରକାର ନାଲିମୁଣ୍ଡିଆ ଚଢ଼େଇ—A kind of red headed bird. সিঁদুর মুণ্ডি सेंदुर मुंडी [ଉ—ଚୌଦିଗେ ଶୁଭଇ ସିନ୍ଦୂରମୁଣ୍ଡିର ସ୍ୱାଗତ ରବ୍ରଜାସ୍ୟରେ—ରାଧାନାଥ, ଉର୍ବଶୀ ।] ( ସିନ୍ଦୂର ମୁଣ୍ଡିଆ—ଅନ୍ୟରୂପ ) [ପ୍ର—ଏହାର ଦେହ ଧୂସରବର୍ଣ୍ଣ ( ପାଉଁଶିଆ ) ଓ ମୁଣ୍ଡ ସିନ୍ଦୂର ପରି ନାଲି । ଓଡ଼ିଶାରେ ଏ ପକ୍ଷୀ ସବୁଠି ଦେଖାଯାଆନ୍ତି । ଶୀତର ଆଧିକ୍ୟ ହେଲେ ଏମାନେ 'ସତର, ସତର, ସତର' ରବରେ ବନ ଭୂମିକୁ ଝଙ୍କାରିତ କରନ୍ତି ।]

**ସିନ୍ଦୂର ମୁଣ୍ଡୀ**—ଦେ. ବଣ, ସ୍ତ୍ରୀ—୧ । ସିନ୍ଦୂର ମୁଣ୍ଡାର ସ୍ତ୍ରୀଲିଙ୍ଗ— Sindūra mundi 1. Feminine of Sindūra mundā (ସିନ୍ଦୂର ମୁଣ୍ଡେଇ—ସ୍ତ୍ରୀ) ୨ । ଯେଉଁ ସ୍ତ୍ରୀ କପାଳରେ ଅତ୍ୟଧିକ ସିନ୍ଦୂର ବୋଳିଥାଏ—2. (a woman) Who has smeared excessive vermillion on her forehead. ୩ । ସିନ୍ଦୂର ମୁଣ୍ଡି ( ଦେଖ )— 3. Sindūra mundi (See)

**ସିନ୍ଦୂର ରସ**—ସଂ. ବି—ରସସିନ୍ଦୂର ( ଦ୍ର. ଶ )— Sindūra rasa Sulphide of mercury.

**ସିନ୍ଦୂର ସିନ୍ଥି (ସୁନ୍ଥା, ମାଙ୍ଗ)**—ଦେ. ବି—ବନ୍ଦୀୟ ଦେଶର ସିନ୍ଦୂର ବୋଳା ଯାଇଥିବା ମଥା ରେଖା—The furrowed line of the parted hair over the brow besmeared with vermillion. Sindūra sinthi (sunthā, māṅga) সিঁদুর সিঁথী सेंदुर सिउथ, सिदुंर लगा हुआ मांग [ପ୍ର—ବଙ୍ଗଦେଶରେ ସଧବାମାନେ ସୁନ୍ଥାରେ ସିନ୍ଦୂର ରେଖା ଦେଇନ୍ତି ।]

**ସିନ୍ଦୁରା**—ଦେ. ବଣ ( ସଂ. ସିନ୍ଦୂର )—ସିନ୍ଦୂର ବର୍ଣ୍ଣବିଶିଷ୍ଟ— Sindurā Vermillion coloured সিঁদুরে सेंदुरा ( ସିନ୍ଦୂରିଆ—ଅନ୍ୟରୂପ ) ଦେ. ବି—୧ । ସିନ୍ଦୂର; ସୂର୍ଯ୍ୟୋଦୟ ପୂର୍ବରୁ ପୂର୍ବଗଗନରେ ଦେଖାଯିବା ରକ୍ତିମା; ଅରୁଣିମା—1. The red colour on the east seen before sunrise; the aurora before sunrise. অরুণোদয় सेंदुरी [ଉ—ସବୁଠୁ ବଡ଼ୁନେ ଥିଲା ପ୍ରାଚୀବାଳା ଉଦୟ-ଭୂଧରେ ବଧୂସୁ, ସମାଗମେ ଏବେ ଗଣ୍ଡେ ସୁନ୍ଦରୀର ଫିଟିଲା ଲଜ୍ଜସିନ୍ଦୁରା—ରାଧାନାଥ, ପାର୍ବତୀ ।] ୨ । ସିନ୍ଦୂର ବର୍ଣ୍ଣ— 2. Vermillion colour.

**ସିନ୍ଦୁରା ଫାଟିବା (ଉଇଁବା)**—ଦେ. ବି ( ସଂ. ସିନ୍ଦୂର+ଉଦୟ )— Sindurā phāṭibā (uiṅbā) ଅରୁଣୋଦୟ—The appearance of ruddiness on the eastern horizon before sunrise; dawning of the day; the breaking of the day. অরুণোদয় सेंदुर उगना [ଉ—ଫାଟୁଛି ନଦେ ସିନ୍ଦୁରା, ଲୁଡଅଛୁ କୁଆଁ ଉଗ୍ର—ଜଗନ୍ନାଥଙ୍କ ଘୋର କର୍ଣ୍ଣଜଣୀ ।]

**ସିନ୍ଦୂରି**—ଦେ. ବ ( ସଂ. ସିନ୍ଦୂରିତ )—ସିନ୍ଦୂର ବର୍ଣ୍ଣବିଶିଷ୍ଟ— Sindūri Vermillion coloured. ( ଉ—ସୁରକ୍ତ ସିନ୍ଦୂର ରସାଳ ଫଳ ଲକ୍ଷ୍ୟ ହୋଇବ—ରଞ୍ଜିଁ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ । ) সিঁদুরে सेंदुरी ଦେ. ବି—ସିନ୍ଦୁରା ( ଦେଖ )— Sindūrā ( See )

**ସିନ୍ଦୂରିଆ**—ଦେ. ବଣ ( ସଂ. ସିନ୍ଦୂରିତ )—ସିନ୍ଦୂର ବର୍ଣ୍ଣବିଶିଷ୍ଟ— Sindūria সিঁদুরে सेंदुरिया Vermillion coloured.

**ସିନ୍ଦୂରି ଆମ୍ବ**—ଦେ. ବି—ଯେଉଁ ଆମ୍ବର ଚୋପା ସିନ୍ଦୂର ବର୍ଣ୍ଣବିଶିଷ୍ଟ— Sindūri āmba Mango of which the peel is vermillion coloured. সিঁদুরে আম सिंदुरिआ आम

**ସିନ୍ଦୂରି ଉଇଁ(ଠି)ବା**—ଦେ. ବି—ସିନ୍ଦୁରା ଫାଟିବା ( ଦେଖ ) Sindūri uiṅ(ṭhi)bā Sindūrā phāṭibā ( See ) ( ସିନ୍ଦୂର ଫାଟିବା—ଅନ୍ୟରୂପ )

**ସିନ୍ଦୂରିତ**—ସଂ. ବଣ ( ସିନ୍ଦୂର=ରକ୍ତବର୍ଣ୍ଣ+ଇତ )—୧ । ସିନ୍ଦୂର ପରି ରକ୍ତବର୍ଣ୍ଣରେ ରଞ୍ଜିତ—1. Coloured red; tinged with red colour; vermillion-coloured. Sindūrita ( ଉ—ନବୂଳ ଂଶୁକ କୁସୁମ ମଣ୍ଡଳେ ସିନ୍ଦୂରିତ କଳସ୍ଥଳୀ—ରାଧାନାଥ, ପାର୍ବତୀ । ) ୨ । ସିନ୍ଦୂରଦ୍ୱାରା ରଞ୍ଜିତ—2. Painted with vermillion.

**ସିନ୍ଦୁରୀ**—ସଂ. ବି—୧ । ସିନ୍ଦୂରପୁଷ୍ପୀ ( ସ୍ୱକରକଣ୍ଟା ) ( ଦେଖ )— Sindūri 1. Sindūrapushpi (See) ୨ । ଧେରକା; ଗୋଲଦା ଘାସ ( ମେଦଗ )—2. A sweet scented

mint (herb). ୩ । ରକ୍ତଚେଲକା ( ମେଦଗା )—3. A herb. ୪ । ଧାତକୀ ( ମେଦଗା )—4. A red-flowered herb; Woodfordia Floribunda.

ସିନ୍ଦୋଟ୍—ପ୍ରାଦେ. ବ ( ସ୍ଥଗ )—ସ୍ତ୍ରୀମାନଙ୍କ ଯିବା ଆସିବା ପାଇଁ ବ୍ୟବହୃତ ଶାସନ ଗ୍ରାମର ପଛପଟେ ଥିବା ପଥ—( ସିନ୍ଦୋଟ୍ ବାଟ—ଅନ୍ୟରୂପ ) The path on the back-door side of a Śāsana village (in Rāhāṅgā of the Puri district), used by the pardanasin ladies while going from one village to another or from one part of it to another.
Sindot

ସିନ୍ଦୋଳିବା—ଦେ. କ୍ରି ( ସ. ସନ୍ଧାନ; ସନ୍ଧାନତ)—ଶ୍ରେଷ୍ଠ ଲଗାଥିବା ଦୁଇଟା ନଡ଼ିଆର ଉଭୟରୁ ଛଡ଼ାଯିବା ଭଳି ପତ୍ର ଅଂଶ-ଦ୍ୱୟକୁ ଏକତ୍ର ଗଣ୍ଠି ପକାଇ ଛନ୍ଦିବା—To join two rinded cocoanuts together by knotting together two thin flaps from the rinds of both. [ ବ୍ୟ—ଏପରି ଭାବରେ ଯୋଡ଼ା ଯୋଡ଼ା କରି ବହୁସଂଖ୍ୟକ ନଡ଼ିଆକୁ ବାଉଁଶ ଦେହରେ ଦୁଇପଟେ ପରି ଛନ୍ଦି ନିଆ ଯାଇ ପାରେ । ]
Sindolibā
ଯୋଡା ବାଁଧା
जोड़ना

ସିନ୍ଧ—ଦେ. ବ—ସିନ୍ଧୁପ୍ରଦେଶ—The Province of Sindh.
Sindh सिन्ध सिंध

ସିନ୍ଧ(ନ୍ଧି)—ଦେ. ବ (ସଂ ସନ୍ଧି)—ସିନ୍ଦ ( ଦେଖ )—Sindi (See) [ ଉ—ସି ବରଷ ଗ୍ରାମ ମଧ୍ୟରେ ଗୃହ ପାଞ୍ଚ ନମ୍ବର ସିନ୍ଧ ହୁଏ; କରୁ ଜେନା ମଲ୍ଲଭୂମିରେ କହ 'ଦୋଷ ନାହିଁ'—ଫକୀରମୋହନ. ଛ ମାଣ ଅଠଗୁଣ୍ଠ । ]
Sindha(ndhi)
सिँध, सिँद
सेंध

ସିନ୍ଧାଳ—ଦେ. ବ ଓ ବିଶ ( ସ. ସନ୍ଧିଲା )—ସିନ୍ଦିଆର ( ଦେଖ )
Sindhāla Sindiāra (See)

ସିନ୍ଧି ( ଇତ୍ୟାଦି )—ଦେ. ବ—ସିନ୍ଦି ଇତ୍ୟାଦି ( ଦେଖ )
Sindhi (etc) Sindi etc (See)

ସିନ୍ଧିଆ—ଦେ. ବ—ସିନ୍ଦିଆ ( ଦେଖ )—Sindiā (See) ( ଉ—ମହାରାଷ୍ଟ୍ରଦେଶର ସାରେନ୍ ସିନ୍ଧିଆ—ଋଧାନାଥ.)
Sindhiā

ସିନ୍ଧିଆର(ରା, ଳ)—ଦେ. ବ ଓ ବିଶ—ସିନ୍ଦିଆର ( ଦେଖ )
Sindhiāra(rā, la) Sindiāra (See)

ସିନ୍ଧି କାଠି—ଦେ. ବ—ସିନ୍ଦି କାଠି ( ଦେଖ )
Sindhi kāṭhi Sindi kāṭi (See)

ସିନ୍ଧି ଗାତ—ଦେ. ବ—ସିନ୍ଦି ( ଦେଖ )—Sindi (See) ( ଉ—ଅଟେ ସିନ୍ଧି ଗାତ ଖୋଳି ନେଉଥାଏ ଚୋରୁ—'ପ୍ରାଚୀ' ବ୍ରହ୍ମକୁରୁଷଣଗୀତା । )
Sindhi gāta

ସିନ୍ଧୀ—ଦେ. ବ—୧ । ସିନ୍ଧୁ ପ୍ରଦେଶ ଓ ତତ୍ସନ୍ନିହିତ କଚ୍ଛ ଆଦି ଅଞ୍ଚଳରେ ପ୍ରାୟ ୩୦ ଲକ୍ଷ ଲୋକଙ୍କ କଥିତ ଆର୍ଯ୍ୟଭାଷା—( ସିନ୍ଧୀ ଭାଷା—ଅନ୍ୟରୂପ) 1. An Indo-Aryan language spoken by about 30 lakhs of people in Sindh and Cutch etc. [ ବ୍ୟ—ଏ ଭାଷାରେ ଆରବୀ ଓ ଫାର୍ସୀ ଭାଷାର ଅନେକ ଶବ୍ଦ ବ୍ୟବହୃତ ହୁଏ ଓ ଏଥିର ଲିପି ଆରବୀ ଓ ଫାର୍ସୀ ଲିପି ପରି । ଏ ଭାଷାର ସିରୈକୀ, ଲସୀ ଓ ଥରେଲୀ ନାମକ ଛୋଟିଆ ମୁଖ୍ୟ ଭାଷା (dialect) ଅଛି—ହି. ଶ । ] ୨ । ସିନ୍ଧୁଦେଶବାସୀ ବ୍ୟକ୍ତି—2. An inhabitant of Sindh ୩ । ସିନ୍ଧୁ ଅଞ୍ଚଳର ଉତ୍କୃଷ୍ଟ ଘୋଡା—3. An excellent breed of horse found in Sindh. ଦେ. ବିଶ—ସିନ୍ଧୁଦେଶୀୟ—Relating to the country of Sindh.
Sindhī
सिन्धी, सिंधी

ସିନ୍ଧୁ—ସ. ବ (ସ୍ୟନ୍ଦ୍ ଧାତୁ=କ୍ଷରିତ ହେବା+ଉଣ୍ଣି, ଉ; ନିପାତନ )—୧ । ସମୁଦ୍ର; ସାଗର (ଅମର)—1. The sea; ocean. ୨ । ବମଥୁ; ବମନ (ମେଦଗା)—2. Vomiting. ୩ । ଦେଶ ବିଶେଷ; ସିନ୍ଧୁ ପ୍ରଦେଶ; (ମେଦଗା); ସିନ୍ଧୁ ପ୍ରଦେଶ (ଦେଖ)—3. The Sind Province. ୪ । ନଦ ବିଶେଷ; ସିନ୍ଧୁ ନଦ (ମେଦଗା) (ଦେଖ )—4. The Indus river. ୫ । ଗଜ ମଦ (ହେମଚନ୍ଦ୍ର)—5. The scented liquid flowing from the temples of elephants in rut. ୬ । ସିନ୍ଦୁବାର ବୃକ୍ଷ; ବେଗୁନିଆ ଗଛ (ଶବ୍ଦ ଚନ୍ଦ୍ରିକା); 'ନିର୍ଗୁଣ୍ଡୀ (ଦେଖ)—6. Nirgundī. (See) ୭ । ଶ୍ୱେତ ଟଙ୍କଣ (ରାଜନିର୍ଘଣ୍ଟ)—7. Borax. ୮ । ରାଗ ବିଶେଷ; ଭୈରବ ରାଗର ପୁତ୍ର; ସିନ୍ଧୁ ରାଗ ( ସଙ୍ଗୀତ ସିନ୍ଧୁ )—8. One of the airs of the Hindu music. [ବ୍ୟ—ଏହା ସମ୍ପୂର୍ଣ୍ଣ ଜାତିର ରାଗ । ଏହା ମାଳକୋଷ ରାଗର ପୁତ୍ର ବୋଲି କଥିତ । ଏଥିରେ ଗାନ୍ଧାର ଓ ନିଷାଦ, ଦୁଇ କୋମଳ ସ୍ୱର ଲାଗେ । ଏହା ଗାଇବା ସମୟ ଦିବା ୧୦ ଦଣ୍ଡ ଠାରୁ ୧୬ ଦଣ୍ଡ—ହି. ଶ ।] ୯ । ନଦୀ ( ମେଦଗା )—9. River. ୧୦ । ହସ୍ତୀ—10. Elephant, [ଉ—ବବର୍କ କେଶରୀ ପାଳରେ ଯେହ୍ନୁ, ଦବେଦଶ ସିନ୍ଧୁର ହୋଇଲି ସେହୁ । (୧ମ ଓ ୧୦ମ ଅର୍ଥ) ଉଞ୍ଜ. ବୈଦେହୀଶ ବିଳାସ ।] ୧୧ । (ନାମ) ଦଶରଥଙ୍କ ବାଣରେ ନିହତ ଅନ୍ଧମୁନିଙ୍କ ଏକମାତ୍ର ପୁତ୍ର—11. Name of the only son of a blind sage, killed by king Dasaratha's darts. ୧୨ । (ଲକ୍ଷଣାର୍ଥ) କୌଣସି ଗୁଣର ବା ପଦାର୍ଥର ଆଧାର ( ବ୍ୟକ୍ତି )—12. (a person who is) The receptacle of certain qualities or things. (ଉ—ସକଳ ଗୁଣଙ୍କର ସିନ୍ଧୁ, ମୁଖ ଦଶର ପୂର୍ଣ୍ଣ ଇନ୍ଦୁ । ଜଗନ୍ନାଥ. ଭାଗବତ ।) [ବ୍ୟ—ଯେଉଁ ଗୁଣର ଆଧାର, ସେହି ଗୁଣବାଚକ ଶବ୍ଦ ସିନ୍ଧୁ ଶବ୍ଦ ପୂର୍ବେ ଯୋଗ ହୁଏ । ଯଥା—କରୁଣା ସିନ୍ଧୁ, କୃପାସିନ୍ଧୁ, ଦୟାସିନ୍ଧୁ ଇତ୍ୟାଦି; ଏଠାରେ ସିନ୍ଧୁ ଶବ୍ଦର ଅର୍ଥ ସାଗର ।] ୧୩ । ଚାର ସଂଖ୍ୟା (ହି. ଶ)—13. The
Sindhu

number four. ୧୪ । ସାତ ସଂଖ୍ୟା (ହୃ. ଶ)—14. The number seven. ୧୫ । ବରୁଣ ଦେବତା (ହୃ. ଶ)—15. The Deity of the ocean. ୧୬ । ସିନ୍ଧୁ ପ୍ରଦେଶବାସୀ ବ୍ୟକ୍ତି (ହୃ. ଶ)—16. A resident of Sindh. ୧୭ । ଓଷ୍ଠର ଆର୍ଦ୍ରତା (ହୃ. ଶ)—17. The wetness of the lips. ୧୮ । ହାତୀର ଶୁଣ୍ଢରୁ ବୋହୁଥିବା ପାଣି (ଲାଳ) (ହୃ. ଶ)—18. The watery substance or saliva flowing from the trunk of the elephant. ୧୯ । (ନାମ) ଗନ୍ଧର୍ବମାନଙ୍କ ରାଜାବିଶେଷ (ହୃ. ଶ)—19. The name of a king of the Gandharbas. ଦେ. ବ—

ସିନ୍ଧୁ ୧ । (ପୁଂ)ବ୍ୟକ୍ତିଙ୍କ ନାମ—1. A name given to
ସିନ୍ଧୁ males. ୨ । କୃପାସିନ୍ଧୁ, କରୁଣାସିନ୍ଧୁ ଆଦିଙ୍କ ଡାକ ନାମ—2. A nickname of Kṛupāsindhu, etc.

ସିନ୍ଧୁଆ—ଦେ. ବ—୧ । (ପୁଂ; ଅନାଦରାର୍ଥକ) ସିନ୍ଧୁର ଡାକ ନାମ—
Sindhuā 1. Name for calling 'Sindhu'. ୨ । ଏକ
ସିନ୍ଧୁ ପ୍ରକାର ପାଟଲୁଗା—2. A kind of silk cloth.
ସିଂଧୁଆ (ବ—ବଲ୍ଲାଳ ବୋଲି ସିଦ୍ଧାଇ ଦୌତିଶେଯ୍ୟ ବସନ, ବ୍ୟାଘ୍ର ଚର୍ମ ଉପରେ ସିନ୍ଧୁଆ ଶଯ୍ୟାମାନ । ଉଜ. ବୈଦେହୀଶ ବିଳାସ ।) ବୋ. ବଣ—ସିନ୍ଧୁ ପ୍ରଦେଶ ସଂବନ୍ଧୀୟ—Relating to the Province of Sindh.

ସିନ୍ଧୁଆ ବାଘ—ପ୍ରାଦେ (ଗଞ୍ଜାମ) ବ—ଚିତ୍ରବିଚିତ୍ର ବାଘ—
Sindhuā bāgha Spotted panther; leopard.

ସିନ୍ଧୁକ (ଇତ୍ୟାଦି)—ବୈଦେ. ବ—ସିନ୍ଦୁକ ବୈଦେ. ବ ଇତ୍ୟାଦି
Sindhuka (etc) (ଦେଖ)—Sinduka etc. (See)
ସିନ୍ଦୁକ (ଭୃ—ସିନ୍ଧୁ ରତ୍ନାକର ବ୍ୟର୍ଥ, ସିନ୍ଧୁକେ ଏହାର ସାର୍ଥ ।
ସନ୍ଦୁକ ଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।) ସ. ବ—ନିର୍ଗୁଣ୍ଡି (ଦେଖ) (ହୃ. ଶ)—Nirgundi. (See)

ସିନ୍ଧୁ କନ୍ୟା (ପୁତ୍ରୀ, ଦୁହିତା, କନ୍ୟକା)—ସ. ବ (୬ଷ୍ଠୀ ତତ୍)—
Sindhu kanyā (putrī, duhitā, kanyakā) ଲକ୍ଷ୍ମୀ—Goddess Lakshmi.

ସିନ୍ଧୁ କଫ—ସ. ବ (୬ଷ୍ଠୀ ତତ୍)—ସମୁଦ୍ର ଫେନ (ଦେଖ)
Sindhu kapha Samudra phena. (See)

ସିନ୍ଧୁ କର—ସଂ. ବ—ଶ୍ୱେତ ଟଙ୍କଣ (ରାଜନିର୍ଘଣ୍ଟ)—
Sindhu kara Borax.

ସିନ୍ଧୁ ଖେଳ—ସଂ. ବ (ସିନ୍ଧୁ=ସିନ୍ଧୁ ନଦ+ଖିଲ. ଧାତୁ=କ୍ରୀଡ଼ା
Sindhu khela କରିବା+ଅଧି. ଅ) (ଯେଉଁଠାରେ ସିନ୍ଧୁନଦ କ୍ରୀଡ଼ା କରେ)—ସିନ୍ଧୁ ଦେଶ (ଶବ୍ଦ ରତ୍ନାବଳୀ)—The country of Sind.

ସିନ୍ଧୁ ଗଜ—ସଂ. ବ (ଆଧୁନିକ ନାମ; ସଂ. ସିନ୍ଧୁ+ଗଜ)—ଏକପ୍ରକାର
Sindhu gaja ସାମୁଦ୍ରିକ ଜୀବ; ଜଳଜନ୍ତୁ—The sea elephant; Macrorhinus Probescidecus. [ବୃ—ଏମାନେ ଦକ୍ଷିଣ ମହାସାଗରରେ ମିଳନ୍ତି; ଲମ୍ବରେ ୩୦ ଫୁଟ ପର୍ଯ୍ୟନ୍ତ ବଢନ୍ତି । ଏମାନଙ୍କ ଚର୍ବିରୁ ତେଲ ହୁଏ । ଅଣ୍ଡିରା ସିନ୍ଧୁଗଜଙ୍କ ନାକ ହାତୀଶୁଣ୍ଢ ପରି ଓ ୧ ଫୁଟ ଲମ୍ବ ।]

ସିନ୍ଧୁ ଘୋଟକ—ସଂ. ବ (ଆଧୁନିକ ନାମ; ସଂ. ସିନ୍ଧୁ+ଘୋଟକ)—
Sindhu ghoṭaka ୧ । ଶୀଲ୍ ଜାତୀୟ ଏକ ପ୍ରକାର ଜଳଚର ଜୀବ—1. Walrus; a marine animal; sea horse; Trichecus Rosmarus. [ବୃ—ଏମାନଙ୍କର ଆକୃତି ଘୋଡ଼ାପରି ବଡ଼ ଥିବାରୁ ଏପରି ନାମ ଦିଆଯାଇଅଛି । ଏମାନେ ଉତ୍ତର ସିନ୍ଧୁ (Arctic ocean) ରେ ଦେଖାଯାଆନ୍ତି । ଅଣ୍ଡିରା ଜୀବଙ୍କର ଉପର ପାଟିରୁ ତଳ ଆଡ଼କୁ ଦୁଇ ହାତ ଲମ୍ବର ଦୁଇଟି ଦାନ୍ତ ବାହାରି ଥାଏ । ଏମାନଙ୍କର ହାତ ଅଗ୍ରପଦ ଗୋଟି ଏବଂ ଗୋଡ଼ ପଶ୍ଚାଦ୍ଭିରେ ଯୁକ୍ତ ଥାଏ ।

ଅଧୁନା ସମୁଦ୍ରରେ ନାନା ପ୍ରକାର ଅଗ୍ରପଦବିଶିଷ୍ଟ ଜୀବଙ୍କୁ ଦୁଇଟି ଏହିପରି ନାମମାନ ଦିଆଯାଇ ଅଛି; ଯଥା—

ସିନ୍ଧୁ ଗଜ—Sea elephant.
ସିନ୍ଧୁ ସିଂହ—Sea lion.
ସିନ୍ଧୁ ବିଡ଼ାଳ—Sea otter.
ସିନ୍ଧୁ ଭଲ୍ଲୁକ—Sea bear.
ସିନ୍ଧୁ ବ୍ୟାଘ୍ର—Sea leopard.]

୨ । ଜଳ ଘୋଟକ; ଗଣ୍ଡାପରି; ମୁଖବିଶିଷ୍ଟ ସାମୁଦ୍ରିକ ଜୀବ ବିଶେଷ—2. Hippopotamus; Hipposamus Amphibius; the river horse. [ବୃ—ଏମାନେ ଗୁରୁ ଗୋଡ଼ ବିଶିଷ୍ଟ ଓ ଭୟଙ୍କର । ଆଫ୍ରିକା ଦେଶର ନଦୀମାନଙ୍କରେ ଏମାନେ ଅଧିକ ପରିମାଣରେ ଦୃଷ୍ଟିଗୋଚର ହୁଅନ୍ତି । ଏମାନେ ତୃଣଭୋଜୀ, ଘୁଷୁରିଜାତୀୟ ଓ ଏମାନଙ୍କ ଚର୍ମ ଖୁବ୍ ମୋଟ ।] ୩ । ସିନ୍ଧୁଦେଶୀୟ ଉତ୍କୃଷ୍ଟ ଅଶ୍ୱ—3. An excellent breed of horse of Sind.

ସିନ୍ଧୁଜ—ସଂ. ବଣ. ପୁ. (ସିନ୍ଧୁ+ଜନ୍. ଧାତୁ+କର୍ତ୍ତି. ଅ)—ସିନ୍ଧୁଜାତ
Sindhuja (ଦେଖ)—Sindhujāta. (See) ସଂ. ବ—
[ସିନ୍ଧୁଜା—ସ୍ତ୍ରୀ. ବଣ] ୧ । ସୈନ୍ଧବ ଲବଣ (ଅମର) (ଦେଖ)—Saindhaba labaṇa. (See) ୨ । ସିନ୍ଧୁଦେଶଜାତ ଲବଣ—2. Salt produced in the Sindh country. ୩ । ଚନ୍ଦ୍ର—3. The moon. ୪ । କର୍ପୂର—4. Camphor. ୫ । ଉଚ୍ଚୈଃଶ୍ରବା ଅଶ୍ୱ—5. Indra's horse. ୬ । ଶଙ୍ଖ (ହୃ. ଶ)—6. Conch shell. ୭ । ସୋହାଗା (ହୃ. ଶ)—7. Borax.

ସିନ୍ଧୁଜନ୍ମା—ସଂ. ବ (ସିନ୍ଧୁ+ଜନ୍ମନ୍; ୬ଷ୍ଠୀ. ବ)—୧ । ସୈନ୍ଧବ
Sindhujanmā ଲବଣ (ରତ୍ନମାଳା) (ଦେଖ)—1. Saindhaba labaṇa. (See) ୨ । ଚନ୍ଦ୍ରମା

( ହୁ° ଣ )—2. The moon. ସଂ. ବଣ—ସମୁଦ୍ରୋଦ୍ଭବ—Born of the sea.

ସିନ୍ଧୁଜା—ସଂ. ବଣ. ସ୍ତ୍ରୀ (ସିନ୍ଧୁଜ+ଆ) —'ସିନ୍ଧୁଜ'ର ସ୍ତ୍ରୀଲିଙ୍ଗ—
Sindhujā Feminine of 'Sindhuja' ସଂ. ବି. ସ୍ତ୍ରୀ—୧ । ଲକ୍ଷ୍ମୀ—1, Goddess Lakshmī. ୨ । ମୁକ୍ତା ଉତ୍ପାଦନକାରୀ ଶୁକ୍ତି (ହୁ. ଣ)—2. Pearl-oyster.

ସିନ୍ଧୁଜାତ—ସଂ. ବଣ. ପୁଂ—୧ । ସମୁଦ୍ର ଜାତ—1. Produced
Sindhu jāta from the sea. ୨ । ସିନ୍ଧୁଦେଶ ଜାତ—2. Of the Sind country. ସଂ. ବି—୧ । ସିନ୍ଧୁଦେଶୀୟ ଘୋଡ଼ା ( ହୁ. ଣ )—1. The excellent breed of horse of Sindh. ୨ । ମୋତି (ହୁ. ଣ) —2. Pearl.

ସିନ୍ଧୁଜାତ ଘୋଡ଼ା—ଦେ. ବି ( ସଂ. ସିନ୍ଧୁଜାତ+ଘୋଟକ )—ସିନ୍ଧୁ-
Sindhu jāti ghorḍā ଦେଶୀୟ ଉତ୍କୃଷ୍ଟ ଘୋଡ଼ା—
सैन्धव सिंधी घोड़ा A good breed of horse of Sindh.

ସିନ୍ଧୁଡ଼ା—ସଂ. ବି. ସ୍ତ୍ରୀ—ମାଲବ ରାଗର ଗୋଟିଏ ଭାର୍ଯ୍ୟା ( ସଙ୍ଗୀତ
Sindhuṛā ଦାମୋଦର)—One of the musical airs said to be a wife of Mālaba tune. [ ଦ୍ର—ମାଲବ ରାଗର ଭାର୍ଯ୍ୟାମାନଙ୍କ ନାମ—ଧାନୁସୀ, ମାଳଶ୍ରୀ, ରାମକିରୀ, ସିନ୍ଧୁଡ଼ା, ଅଶାବରୀ, ଭୈରବୀ । ]

ସିନ୍ଧୁ ତନୟା—ସଂ. ବି. ସ୍ତ୍ରୀ ( ୬ଷ୍ଠୀ ତତ୍ )—ସିନ୍ଧୁଜା ( ଦେଖ )
Sindhu tanayā Sindhujā ( See )

ସିନ୍ଧୁତମ ତୀର୍ଥ—ଦେ. ବି—ହିନ୍ଦୁମାନଙ୍କର ତୀର୍ଥବିଶେଷ—One of the
Sindhutama tīrtha sacred places of the Hindus; [ ଦ୍ର—ସିନ୍ଧୁତମ ତୀର୍ଥେ ଯୋଉଲେ ନର ଜାଣେ, ବହୁତ ସ୍ୱର୍ଣ୍ଣ ଦାନ ଫଳ ଲଭି ହୁଏ—କୃଷ୍ଣସିଂହ. ମହାଭାରତ. ବନ । ]

ସିନ୍ଧୁ ଦୁଲଣୀ(ଣୀ)—ଦେ, ବି. ସ୍ତ୍ରୀ—ସିନ୍ଧୁଜା; ଲକ୍ଷ୍ମୀ—Goddess
Sindhu dulaṇā(ṇi) Lakshmī.
सिन्धु दुलारी सिंधुकी दुलारी

ସିନ୍ଧୁ ଦେଶ—ସ.ବି—ଦେଶବିଶେଷ;ସିନ୍ଧୁ ନଦର ଦକ୍ଷିଣାଂଶର (ଅର୍ଥାତ୍
Sindhu desa ଯେଉଁ ଅଂଶରେ ସିନ୍ଧୁର ୫ଟି ଶାଖା ମିଳିତ ହୋଇ ଏକ ଧାରରେ ସମୁଦ୍ରକୁ ଯାଇଅଛି ତାହାର) ଉଭୟ ପାର୍ଶ୍ୱସ୍ଥ ଭୂଭାଗ—The Sind Province. [ଦ୍ର—ହାଇଦରାବାଦ ଓ ଭାରତର ପ୍ରସିଦ୍ଧ ବନ୍ଦର କରାଚୀ ଏହି ପ୍ରଦେଶରେ ଅବସ୍ଥିତ । ଏହା ପୂର୍ବେ ବୋମ୍ବେ ପ୍ରଦେଶର ଗୋଟିଏ ବିଭାଗ ଥିଲା ଏବଂ ଜଣେ ଚିଫ୍ କମିଶନରଙ୍କଦ୍ୱାରା ଶାସିତ ହେଉଥିଲା । ୧୯୩୬ ଏପ୍ରେଲ ମାସ ପହିଲା ତାରିଖରୁ ଏହା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହୋଇ ଜଣେ ଗଭର୍ଣ୍ଣରଙ୍କ ଦ୍ୱାରିକ ଶାସିତ ହେଉଅଛି । ଏହାର ଉତ୍ତରରେ ବେଲୁଚିସ୍ଥାନ ଓ ପଞ୍ଜାବ, ପୂର୍ବରେ ରାଜପୁତାନା, ଦକ୍ଷିଣରେ ସମୁଦ୍ର ଓ କଚ୍ଛ ଏବଂ ପଶ୍ଚିମରେ ବେଲୁଚିସ୍ଥାନ ଓ ଆରବ ଉପସାଗର । ବର୍ତ୍ତମାନ ଏହି ପ୍ରଦେଶର ସୁକୁର୍ ନଗରଠାରେ ଗଭର୍ଣ୍ଣମେଣ୍ଟ ଗୋଟିଏ ସେତୁ ( Barrage ) ବାନ୍ଧି କେନାଲଦ୍ୱାରା କ୍ଷେତକୁ ପାଣି ଯୋଗାଉ ଅଛନ୍ତି । ଏହାଦ୍ୱାରା ମରୁପ୍ରଦେଶ ଉର୍ବର ଭୂମିରେ ପରିଣତ ହୋଇ ଅଛି । ପ୍ରାଚୀନ ସିନ୍ଧୁଦେଶରେ ଜୟଦ୍ରଥ ରାଜା ଥିଲେ । ]

ସିନ୍ଧୁ ଦ୍ୱୀପ—ସ. ବି ( ନାମ )—ଭରତବଂଶୀୟ ଅଜମୀର ନାମକ
Sindhu dwipa ରାଜାଙ୍କ ପୁତ୍ର ଜହ୍ନୁ ମୁନିଙ୍କ ପୁତ୍ର; ମୁନିବିଶେଷ—Name of a sage, son of Jahnu. [ଦ୍ର—ଏ ଜନ୍ମତଃ କ୍ଷତ୍ରିୟ ହେଲେ; କିନ୍ତୁ ତପଃପ୍ରଭାବରୁ ବିଶ୍ୱାମିତ୍ରଙ୍କ ପରି ବ୍ରାହ୍ମଣତ୍ୱ ଲାଭ କରିଥିଲେ । ଏ ଯଜୁର୍ବେଦର ଗୁଡ଼ିଏ ମନ୍ତ୍ରର ଦ୍ରଷ୍ଟା ଥିଲେ । ]

ସିନ୍ଧୁ ନଦ—ସଂ. ବି—ଭାରତର ପଶ୍ଚିମ ପ୍ରାନ୍ତବର୍ତ୍ତୀ ପ୍ରସିଦ୍ଧ ନଦ—
Sindhu nada The river Indus. [ ଦ୍ର—ଏହା (ସିନ୍ଧୁ ନଦୀ—ଦେଶଜରୂପ) ହିମାଳୟର ଉତ୍ତରସ୍ଥ ମାନସରୋବରରୁ ବାହାରି ପଶ୍ଚିମ ବାଟେ ବୁଲି କାଶ୍ମୀରଦେଶ ବାଟ ଦେଇ ଦକ୍ଷିଣଗାମୀ ହୋଇ ଅନ୍ୟ ୫ଗୋଟି ନଦ(ଚେନାବ, ଝେଲମ୍, ରାବି, ସଟଲେଜ୍ ) ସଙ୍ଗେ ମିଳିତ ହୋଇ ପଞ୍ଜାବଦେଶ ବାଟେ ସିନ୍ଧୁଦେଶରେ ପ୍ରବାହିତ ହୋଇ ଆରବ ସାଗରରେ ପଡ଼ିଅଛି । ଏହି ପଞ୍ଚନଦର ପଶ୍ଚିମତମ ନଦ ସିନ୍ଧୁ ଏବଂ ପୂର୍ବତମ ନଦ ଶତଦ୍ରୁ ବା ସଟ୍ଲେଜ୍ ଅଟେ । ଡେରାଗାଜୀ ଖାଁ, ସକର, ହାଇଦରାବାଦ ସିନ୍ଧୁ ତଟବର୍ତ୍ତୀ ପ୍ରଧାନ ନଗର । ]

ସିନ୍ଧୁ ନନ୍ଦନ—ସଂ. ବି ( ୬ଷ୍ଠୀ ତତ୍ )—୧ । ଚନ୍ଦ୍ର (ବିକାଣ୍ଡଶେଷ)—
Sindhu nandana 1. The moon. ୨ । କର୍ପୂର—2. Camphor.

ସିନ୍ଧୁ ନନ୍ଦିନୀ (ନନ୍ଦନା)—ସ. ବି. ସ୍ତ୍ରୀ ( ୬ଷ୍ଠୀ ତତ୍ )—ଲକ୍ଷ୍ମୀ—The
Siddha nandinī(nandanā) Goddess Lakshmī.

ସିନ୍ଧୁ ନାଥ—ସଂ. ବି ( ୬ଷ୍ଠୀ ତତ୍ )—ସରିତ୍ପତି; ସାଗର; ସମୁଦ୍ର
Sindhn nāth ( ଶବ୍ଦ କଳ୍ପଦ୍ରୁମ )—The sea.

ସିନ୍ଧୁ ପିବ—ସଂ. ବି ( ସିନ୍ଧୁ+ପା ଧାତୁ+କର୍ତ୍ତୃ. ଅ; ଯେ ସମୁଦ୍ରକୁ ପାନ
Sindhu piba କରିଥିଲେ )—ଅଗସ୍ତ୍ୟ ଋଷି ( ହୁ. ଣ )—Sage Agastya.

ସିନ୍ଧୁ ପୁତ୍ର—ସ. ବି—୧ । ( ୬ଷ୍ଠୀ ତତ୍ ) ଚନ୍ଦ୍ର—1. The moon.
Sindhu putra ୨ । ମର୍କଟେନ୍ଦୁ ( ଶବ୍ଦଚନ୍ଦ୍ରିକା ); ତାଲ-ଛିନ୍ଦୁକ; ଏକପ୍ରକାର କେନ୍ଦୁ ଗଛ—2. Diospyrus Tomentosa ( tree).

ସିନ୍ଧୁ ପୁତ୍ରୀ—ସ. ବି. ସ୍ତ୍ରୀ ( ୬ଷ୍ଠୀ ତତ୍ )—ସିନ୍ଧୁଜା ( ଦେଖ )
Sindhu putrī Sindhujā ( See )

ସିନ୍ଧୁ ପୁଷ୍ପ—ସଂ ବି—୧ । ଶଙ୍ଖ ( ଶବ୍ଦଚନ୍ଦ୍ରିକା )—1. The conch.
Sindhu pushpa ୨ । କଦମ୍ବ ( ହୁ. ଣ )—2. Nuclea Kadamba ( tree ). ୩ । ବକୁଳ ( ହୁ. ଣ )—3. The Bakula tree.

ସିନ୍ଧୁ ପ୍ରଦେଶ—ସଂ• ବି—ସିନ୍ଧୁ ଦେଶ ( ଦେଖ )—Sindhu
Sindhu pradeśa deśa ( See ) [ ଦ୍ର—ପୂର୍ବେ ଏହା କମେ ପ୍ରଦେଶର ଗୋଟିଏ ବିଭାଗ ଥିଲା । ବର୍ତ୍ତମାନ ୧୯୩୭ ସାଲଠାରୁ ଏହା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହୋଇଅଛି । ]

ସିନ୍ଧୁ ଫଳ—ଦେ• ବି—ମୁକ୍ତା—Pearl. [ ଉ—ଲବୁଧାମ ନାସା
Sindhu phala ପୁଟ, ସିନ୍ଧୁ ଫଳ ଝଟ ଝଟ—ପ୍ରାଚୀ. ଇନ୍ଦୁମଞ୍ଜରୀ । ]

ସିନ୍ଧୁ ବାର—ସଂ• ବି—୧ । ନିର୍ଗୁଣ୍ଡୀ ( ଦେଖ )—1. Nirguṇḍī
Sindhu bāra ( See ) ୨ । ସିନ୍ଧୁଦେଶୀୟ ଉତ୍କୃଷ୍ଟ ଅଶ୍ୱ
ସିନ୍ଧବାରକ } ଅନ୍ୟରୂପ —2. An excellent breed of
ସିନ୍ଧୁବାରକ horse of Sindh. ୩ । ପାରସ୍ୟ ଦେଶୀୟ ଉତ୍କୃଷ୍ଟ ଅଶ୍ୱ ( ପ୍ରକୃତିବାଦ )—
3. An excellent breed of horse of Persia.

ସିନ୍ଧୁ ବେଲା—ସଂ• ବି ( ୬ଷ୍ଠୀ ତତ୍ )—ସାଗରକୂଳ—
Sindhu belā The sea shore.

ସିନ୍ଧୁ ବିଡ଼ାଳ—ସଂ. ବି—ସଂ. ବି ( ଅଧୁନିକ ନାମ )—ଏକପ୍ରକାର
Sindhu birḍāla କ୍ଷୁଦ୍ର ସିଲ୍ ମାଛ—Sea otter; Enhydris Marina. [ ଦ୍ର—ଏମାନେ ଉତ୍ତର ପ୍ରଶାନ୍ତ ମହାସାଗରରେ ବାସକରନ୍ତି । ]

ସିନ୍ଧୁ ବେଷଣ—ସଂ• ବି—ଗମ୍ଭାରୀ ବୃକ୍ଷ ( ଶବ୍ଦଚନ୍ଦ୍ରିକା )—
Sindhu beshaṇa Gmelina Arborea ( tree ).

ସିନ୍ଧୁ ବ୍ୟାଘ୍ର—ସଂ• ବି ( ଅଧୁନିକ ନାମ )—ଦେହରେ ବାଘ ପରି
Sindhu byāghra କଳା କଳା ଛୋଟି ଛୋଟି ଦାଗ ଥିବା ଏକପ୍ରକାର ସିଲ୍ ମାଛ—A kind of seal; the sea-leopard; Omorghinus Leptonya. [ ଦ୍ର—ଏମାନେ ଉତ୍ତର ଓ ଦକ୍ଷିଣ ମହାସାଗରରେ ଥାଆନ୍ତି । ]

ସିନ୍ଧୁ ଭଲ୍ଲୁକ—ସଂ ବି ( ଅଧୁନିକ ନାମ )—ଏକପ୍ରକାର ସିଲ୍ ମାଛ—
Sindhu bhalluka The sea bear; the ursine seal.

ସିନ୍ଧୁ ମନ୍ଥଜ—ସଂ• ବି—୧ । ସୈନ୍ଧବ ଲବଣ ( ରତ୍ନମାଳା ) (ଦେଖ)
Sindhu manthaja Saindhaba labaṇa ( See ) ୨ । ଅମୃତ—2. Nectar. ସଂ. ବିଣ—ସିନ୍ଧୁ ମନ୍ଥନରୁ ଜାତ—Produced from the ocean as a result of churning.

ସିନ୍ଧୁ ମନ୍ଥନ—ସଂ• ବି ( ୬ଷ୍ଠୀ ତତ୍ )—ସମୁଦ୍ର ମନ୍ଥନ ( ଦେଖ )
Sindhu manthana Samudra manthana (See)

ସିନ୍ଧୁର—ସଂ• ବି, ପୁଂ ( ସିନ୍ଧୁ=ମଦବାରି+ର ଅର୍ଥରେ, ର )—
Sindhura ୧ । ହସ୍ତୀ ( ହେମଚନ୍ଦ୍ର )—1. Elephant.
( ସିନ୍ଧୁରା—ସ୍ତ୍ରୀ ) [ ଉ—ପୁଣି କ ସିନ୍ଧୁ ମନ୍ଥିଲେ ଦେବେ, ସିନ୍ଧୁର କୁଳ ଜନମି ଏବେ, ଅବଶ୍ୟ ହୋଇ ଅସ୍ତ୍ରଅନ୍ତ ଅଭ ହଇଯେ—ଦ୍ୱିଜନାଥ. ସମରତରଙ୍ଗ । ] ୨ । ଅଠ ସଂଖ୍ୟା ( ହି. ଶ )—2. The number eight.

ସିନ୍ଧୁର ଦ୍ୱେଷୀ—ସଂ• ବି—ସିଂହ ( ଶବ୍ଦକଳ୍ପଦ୍ରୁମ ) -
Sindhura dweshī The lion.

ସିନ୍ଧୁର ବଦନ—ସଂ• ବି ( ବହୁବ୍ରୀହି )—ଗଜାନନ; ଗଣେଶ—
Sindhura badana The elephant-headed Deity
( ସିନ୍ଧୁରାନନ—ଅନ୍ୟରୂପ ) Gaṇeśa.

ସିନ୍ଧୁରା(ରୀ)—ସଂ• ବି—ରାଗିଣୀବିଶେଷ—A musical air. [ଦ୍ର—
Sindhurā(rī) ଏହା ସମ୍ପୂର୍ଣ୍ଣ ଜାତିର ଏକ ରାଗ ଓ ହିନ୍ଦୋଳ ରାଗର ପୁତ୍ର । ଏହା ବୀର ରସର ରାଗ । ଏଥିରେ ଋଷଭ ଓ ନିଷାଦ କୋମଳ ସ୍ୱର ଲାଗେ । ଏଥିର ଗାନର ସମୟ ଦିବା ୧୧ ଦଣ୍ଡଠାରୁ ୧୬ ଦଣ୍ଡ—ହି ଶ । ]

ସିନ୍ଧୁ ରାଗ—ସଂ. ବି—ସଙ୍ଗୀତର ରାଗବିଶେଷ ; କୈଶିକ ରାଗର ପୁତ୍ର
Sindhu rāga (ସଙ୍ଗୀତ ସିନ୍ଧୁ)—Name of a musical air. [ଦ୍ର—କୈଶିକ ରାଗର ପୁତ୍ରଗଣ, ଯଥା—ମାଧବ, ଶୋଭନ, ସିନ୍ଧୁ, ମାରୁ, ମେବାଡ଼, କୁନ୍ତଳ, କଳିଙ୍ଗ ଓ ସୋମ । ]

ସିନ୍ଧୁରାବ—ସଂ• ବି—ନିର୍ଗୁଣ୍ଡୀ (ଦେଖ) (ହି• ଶ)—
Sindhurāba Nirguṇḍī. (See)

ସିନ୍ଧୁଲତାଗ୍ର—ସଂ. ବି—ପ୍ରବାଳ; ପୋହଳା (ହି. ଶ)—
Sidhu latnāgra Coral.

ସିନ୍ଧୁ ଲବଣ—ସଂ. ବି—ସୈନ୍ଧବ ଲବଣ (ହି. ଶ)
Sindhu labaṇa Saindhaba labaṇa.

ସିନ୍ଧୁ ଶୟନ—ସଂ. ବି ( ବହୁବ୍ରୀହି )—କ୍ଷୀରୋଦଶାୟୀ; ବିଷ୍ଣୁ (ଶବ୍ଦ
Sindhu śayana କଳ୍ପଦ୍ରୁମ)—Bishṇu.
[ ସିନ୍ଧୁଶାୟୀ—ଅନ୍ୟରୂପ ]

ସିନ୍ଧୁ ସଙ୍ଗମ—ସଂ. ବି—୧ । ନଦୀ ବା ନଦ ଓ ସମୁଦ୍ରର ମିଳନ ସ୍ଥାନ
Sindhu saṅgama (ଭରତ)—1. The junction of a river with the sea. ୨ । ଦୁଇ ନଦ ବା ନଦୀର ସଙ୍ଗମ ସ୍ଥାନ—2. The junction of two rivers.

ସିନ୍ଧୁ ସମ୍ଭବ—ସଂ. ବିଣ• (ପୁଂ) ଓ ବି (ବହୁବ୍ରୀହି)—ସିନ୍ଧୁଜ (ଦେଖ)
Sindhu sambhaba Sindhuja. (See)

ସିନ୍ଧୁ ସମ୍ଭବା—ସଂ. ବିଣ. ସ୍ତ୍ରୀ ( ସିନ୍ଧୁସମ୍ଭବ+ଆ )—ସିନ୍ଧୁସମ୍ଭବର
Sindhu sambhabā ସ୍ତ୍ରୀଲିଙ୍ଗ—Feminine of Sindhusamhbaba. ସଂ. ବି—୧ । ଲକ୍ଷ୍ମୀ—1. Goddess Lakshmī. ୨ । ଫିଟିକିରି (ହି• ଶ)—2. Alum.

ସିନ୍ଧୁ ସିଂହ—ସଂ. ବି (ଅଧୁନିକ ନାମ)—ଏକ ପ୍ରକାର ସିଲ୍ ମାଛ—
Sindhu simha Sea lion; a species of seal. [ଦ୍ର—ଦକ୍ଷିଣ ଆମେରିକା ଉପକୂଳରୁ ପ୍ରଶାନ୍ତ ମହାସାଗର(Eumetopia Stelleri) ଉତ୍ତରରୁ ଜାପାନ ଓ କାଲିଫର୍ଣ୍ଣିଆ ଓ ସାନ୍‌ଫ୍ରାନ୍‌ସିସ୍‌କୋ ଉପକୂଳରେ (Zalophus Californianus)—ଏହି ଭିନ ସ୍ଥାନରେ ଭିନ ଭିନ ପ୍ରକାରର ସିନ୍ଧୁସିଂହ ଦେଖାଯାଆନ୍ତି । ]

ସିନ୍ଧୁ ସୁତ—ସଂ. ବି—ଶିବଙ୍କ ଦ୍ୱାରା ହତ ଜଳନ୍ଧର ଅସୁର (ହି. ଶ)—
Sindhu suta The demon Jalandhara.

ସିନ୍ଧୁସୁତା—ସଂ. ବି. ସ୍ତ୍ରୀ—୧ । ଲକ୍ଷ୍ମୀ—1. Goddess Lakshmī.
Sindhu sutā ୨। ସିପ; ଶାମୁକା—2. Pearl-oyster.

ସିନ୍ଧୁ ହସ୍ତୀ—ସଂ. ବି (ଅଧୁନିକ ନାମ)—ସିନ୍ଧୁ ଗଜ (ଦେଖ)
Sindhu hastī Sindhu gaja. (See)

ସିନ୍ଧୂପଳ—ସଂ. ବି (ସିନ୍ଧୁ+ଉପଳ)-ସୈନ୍ଧବ ଲବଣ (ହାରାବଳୀ)—
Sindhūpaḷa Rock-salt.

ସିନ୍ଧୂଦ୍ଭବ—ସଂ. ବି (୫ମୀ ତତ୍)—ସିନ୍ଧୁଜାତ; ସମୁଦ୍ରରୁ ଉତ୍ପନ୍ନ—
Sindhūdbhaba Produced from the ocean.
ସଂ. ବି—ସୈନ୍ଧବ ଲବଣ (ଶବ୍ଦମାଳା)—
Rock salt.

ସିନ୍ଧୋଟ—ପ୍ରାଦେ (ପୁରୀ·ବ୍ରାହ୍ମଣ) ବି—ପୁରୀଜିଲ୍ଲା ବ୍ରାହ୍ମଣ ବ୍ରାହ୍ମଣ ଶାସନ-
Sindhoṭa ମାନଙ୍କର (ଗ୍ରାମ ଦାଣ୍ଡରେ ପୁରୁଷମାନେ ଚଳପ୍ରଚଳ ହେଉଥିବାରୁ ) ସ୍ତ୍ରୀମାନଙ୍କର ଗ୍ରାମର ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ବା ଗ୍ରାମାନ୍ତରକୁ ଯିବା ପାଇଁ ଘରମାନଙ୍କ ବାଡ଼ିପଟରେ ପଡ଼ିଥିବା ରାସ୍ତା—The path running on the back door side of the rows of houses and used by the females of the Brahman villages of Puri district for going from one village to another.

ସିନ୍ନି—ବୈଦେ. ବି ( ଫା· ଶୀର୍‌=କ୍ଷୀର; ଫା. ଶୀରନୀ )—୧ । ମୁସଲ-
Sinni ମାନ୍‌ମାନଙ୍କର ପୀରଙ୍କୁ ଦେୟ ନୈବେଦ୍ୟ ଶର୍କରା—
সিন্নি 1. Sugar or sweetmeat offered to
सिरनी, सिन्नी Mohommedan saints. ୨ । ସତ୍ୟପୀର ବା ସତ୍ୟନାରାୟଣଙ୍କୁ ନୈବେଦ୍ୟ ଦିଆଯିବା ମିଷ୍ଟାନ୍ନ; ( ସତ୍ୟନାରାୟଣ ଦେଖ )—2. Sweetmeat offered to the Satyapīra Deity. [ଦ୍ର—ଏହା ଦୁଇ ପ୍ରକାରର, ଯଥା—କଞ୍ଚାସିନ୍ନି, ( ପାଚିଲା କଦଳୀ, ଗୁଡ଼, ଅଟା, ଚିନି ଓ ଦୁଧ ଚକଟା ) ଓ ପକ୍କା ସିନ୍ନି ( ଗୁଡ଼ର କୋରା କମ୍ବା ବୁନ୍ଦିଆ ) । ] ଦେ. ବି (ନାମ)—
সিনী ଶ୍ରୀନିବାସର ଡାକ ନାମ—
सिरनी Name for calling Śrīnibāsa.

ସିନ୍ନିଆ—ଦେ· ବି (ନାମ) (ଅନାଦରାର୍ଥକ)—ଶ୍ରୀନିବାସର ଡାକ ନାମ—
Sinniā Name for calling Śrīnibāsa.

ସିନ୍ୟ—ଗ୍ରା· ବି ( ସଂ. ସ୍ନେହ )—ସ୍ନେହ ( ଦେଖ )
Sinya Sneha ( See )

ସିପ—ଦେ. ବି ( ସଂ. ଶୁକ୍ତି; ପ୍ରା· ସିପ୍ପି )—ଶିପ ( ଦେଖ )
Sipa Śipa ( See )

ସିପଟି—ପ୍ରାଦେ· (ଗଞ୍ଜାମ) ବି—ଗଞ୍ଜାମର ତାରାତାରିଣୀଙ୍କ ମାଳୀଜାତୀୟ
Sipaṭi ଶୂଦ୍ର ସେବକ ଓ ପୂଜାହାରୀ—The Śūdras in service of the Tārātārinī Deity of Ganjam.

ସିପ ଚୂନ—ଦେ· ବି—ଶିପ ଚୂନ ( ଦେଖ )
Sipa chūna Śipa chūna ( See )

ସିପ ବୋତାମ—ଦେ. ବି—ଶିପ ବୋତାମ ( ଦେଖ )
Sipa botāma Śipa botāma ( See )

ସିପା—ଦେ. ବି—ସିପ ପରି ପତଳା ଓ ସେମଟା—Thin and ema-
Sipā ciated or shrunk like oyster shell.
সিপ্‌সিপা चिपटा (ସେପ୍‌ଟା—ଅନ୍ୟରୂପ)

ସିପା(ପେ)ଇ(ହି)—ବୈଦେ· ବି (ଫା. ସିପାହୀ)—୧। ସୈନିକ; ପଦାତିକ
Sipā(pe)i(hi) —1. Soldier; sepoy. [ଉ—ସିପାଇଏ
সিপাই सिपाही ଲଙ୍ଘାଇ ପର ହୃଦକୁ—କୃଷ୍ଣସିଂହ. ମହାଭାରତ, ଅଦ । ] ୨ । ଦେଶୀୟ ପଦାତିକ—2. An Indian soldier. ୩ । ଦେଶୀୟ କନଷ୍ଟବଲ—3. Indian constable. ୪ । ଚପରାଶୀ; ପିଅନ—4. Peon. ୫ । ଅସ୍ତ୍ରଶସ୍ତ୍ରଧାରୀ ପ୍ରହରୀ—5. Armed sentry. [ ଦ୍ର—ଏହି ଫାରସି ଶବ୍ଦ ଇଂରାଜୀରେ Sepoy ରୂପ ଧାରଣ କରିଅଛି । ]

ସିପାଇ ପଲଟଣ(ନ)—ବୈଦେ. ବି ( ଫା· ସିପାହୀ+ଇଂ. ପ୍ଲାଟୁନ୍ )—
Sipāi palaṭaṇ(na) ଦେଶୀୟ ସେନା—Indian army.
সিপাই পলটন सिपाही पलटन

ସିପା(ପେ)ଇବା—ଦେ. କ୍ରି—ଶିପାଇବା ( ଦେଖ )—
Sipā(pe)ibā Śipāibā ( See )
[ ସିପା(ପେ)ଇ ଯିବା—ଅନ୍ୟରୂପ ]

ସିପାଇ ବିଦ୍ରୋହ—ଦେ· ବି—୧୮୫୭ ସାଲରେ ଭାରତ ଅଧିକାରୀ
Sipāi bidroha ଇଂରାଜଙ୍କ ବିରୁଦ୍ଧରେ କେତେକ ଭାରତୀୟ
সিপাই বিদ্রোহ ସେନାଙ୍କର ଅସ୍ତ୍ର ଧାରଣ—The Indian
सिपाही बिद्रोह Sepoy Mutiny of 1857. [ଦ୍ର—ଇଂରାଜ ଇଷ୍ଟ ଇଣ୍ଡିଆ କୋମ୍ପାନୀଙ୍କ କର୍ମଚାରୀମାନଙ୍କ ବ୍ୟବହାରରେ ଅଯୋଧ୍ୟା, ଉତ୍ତର ପଶ୍ଚିମ, ଦିଲ୍ଲୀ, ଦାକ୍ଷିଣାତ୍ୟ ଓ ମହାରାଷ୍ଟ୍ରର ପଦଚ୍ୟୁତ ଓ ଖର୍ବୀକୃତ ରାଜାମାନେ ଇଂରାଜଙ୍କ ପ୍ରତି ଖାପ୍ପା ହୋଇଥିଲେ । ଏହି ସମୟରେ ଅତି ସାମାନ୍ୟ କାରଣରୁ ବଙ୍ଗ ଓ ଅଯୋଧ୍ୟାରେ ଦେଶୀୟ ସିପାହୀମାନଙ୍କ ମଧ୍ୟରେ ବିଦ୍ରୋହାଗ୍ନି ଜଳି ଉଠିଲା । ସିପାହୀମାନଙ୍କୁ ବନ୍ଧୁକ ଫାଏର କରିବା ନିମନ୍ତେ ଯେଉଁ ଟୋଟା (କାର୍ଟ୍ରିଜ୍) ଦିଆଗଲା, ତାହା ଦାନ୍ତରେ ଛିଣ୍ଡାଇ ବନ୍ଧୁକରେ ଦେବାକୁ ହୁକୁମ ହେଲା । ହିନ୍ଦୁ ଓ ମୁସଲମାନ ସିପାହୀମାନଙ୍କ ମନରେ ଧାରଣା ହେଲା ଯେ, ଏ ଟୋଟାରେ ଘୁଷୁରି ଚର୍ବି ଦିଆଯାଇଅଛି; ତେଣୁ ଏହା ହିନ୍ଦୁ ଓ ମୁସଲମାନଙ୍କ ଧର୍ମଶାସ୍ତ୍ର ଅନୁଯାୟୀ ଅସ୍ପୃଶ୍ୟ; ସରକାର ଏପରି ଟୋଟା ବ୍ୟବହାର କରିବାକୁ ବାଧ୍ୟ କରି ସେମାନଙ୍କ ଜାତି ନଷ୍ଟ କରିବାକୁ ବସିଅଛନ୍ତି । ଏହା ବଗୁଇ ସିପାଇମାନେ ସାହେବ କାପ୍ତାନ୍‌ମାନଙ୍କ ହୁକୁମ ମାନିଲେ ନାହିଁ । ଫଳରେ ୧୮୫୭ ସାଲରେ ଦିଲ୍ଲୀ ନିକଟସ୍ଥ ମିରଟରେ ପ୍ରଥମେ ସିପାହି ବିଦ୍ରୋହ ପ୍ରକାଶିତ ହେଲା । ସିପାଇମାନେ ଇଂରେଜ ସ୍ତ୍ରୀ, ପୁରୁଷ, ବାଳକ ବାଳିକା, ଯେଉଁଠାରେ ଯାହାକୁ ପାଇଲେ, ମାରି ପକାଇଲେ, ଘରଦ୍ୱାର ପୋଡ଼ି ଦେଲେ, ଜେଲ୍‌ଖାନା ଭାଙ୍ଗି କଏଦିମାନଙ୍କୁ ମୁକୁଳାଇ ଦେଲେ । ଏହା ପରେ ସେମାନେ ଦିଲ୍ଲୀ ଅଭିମୁଖେ ଅଗ୍ରସର ହେଲେ । ସେଠାରେ ପଦଚ୍ୟୁତ ବୃଦ୍ଧ ମୋଗଲ-

ସମ୍ରାଟ୍ ସାହା ଅଲମ ( ଯାହାଙ୍କୁ ଇଂରେଜମାନେ ପେନ୍‌ସନ୍ ଦେଇ ଦିଲ୍ଲୀରେ ରଖାଇ ଥିଲେ ) ବିଦ୍ରୋହୀମାନଙ୍କ ସଙ୍ଗେ ଯୋଗ ଦେଲେ ଏବଂ ସେଠାରେ ମଧ୍ୟ ସିପାହୀମାନେ ଇଂରାଜ ନରନାରୀଙ୍କୁ ହତ୍ୟା କଲେ ।

କାନପୁରଠାରେ ପେଶବା ବାଜି ରାଓଙ୍କ ପୁତ୍ର ନାନା ସାହେବ ବିଦ୍ରୋହୀ ସେନାମାନଙ୍କ ନାୟକ ହୋଇ ଶତ ଶତ ଇଂରେଜ ନରନାରୀଙ୍କୁ ହତ୍ୟା ଓ ବନ୍ଦୀ କଲେ । ଦିଲ୍ଲୀରେ ବିଦ୍ରୋହୀମାନେ ୪ ମାସ କାଳ ଅଧିକାର ସ୍ଥାପନ କଲେ ।

ଲକ୍ଷ୍ନୌରେ ମଧ୍ୟ ବିଦ୍ରୋହାଗ୍ନି ଜଳିଲା । ମରହଟ୍ଟା-ରାଜା ସିନ୍ଧିଆ ଓ ହୋଲକାରଙ୍କ ପଲଟଣମାନେ ମଧ୍ୟ ବିଦ୍ରୋହାଚରଣ କଲେ ।

ଏ ସମୟରେ ଭାଗ୍ୟକ୍ରମେ ଶିଖ ଓ ଗୁରଖା ପଲଟଣ-ମାନେ ଇଂରାଜ ସରକାରଙ୍କ ପ୍ରତି ଭକ୍ତ ଅଟଳ ରହିଥିଲେ । ସେନାପତି ହାଭେଲକ୍ ( General Havelock, afterwards Sir Henry Havelock ) କାନ-ପୁରରେ ନାନା ସାହେବଙ୍କୁ ପରାସ୍ତ କଲେ । ନାନା ସାହେବ ଅଯୋଧ୍ୟାକୁ ପଳାଇ ଯାଇ ଶେଷରେ ନେପାଳ ବନରେ ଲୁଚି ଶେଷ ଜୀବନ ଅତିବାହିତ କଲେ। ଇଂରାଜଙ୍କ ପକ୍ଷରେ ଅନ୍ୟାନ୍ୟ ସେନାପତି ( ଯଥା—ସେନାପତି କାମ୍ପବେଲ୍, ଅଉଟ୍‌ରାମ୍, ନିକଲ୍‌ସନ୍, ହିଉ୍‌ରୋଜ୍ ) କ୍ରମଶଃ ଭିନ୍ନ ଭିନ୍ନ ସ୍ଥାନର ବିଦ୍ରୋହୀମାନଙ୍କୁ ପରାସ୍ତ କରି ବିଦ୍ରୋହୀ-ମାନଙ୍କ ଅଧିକୃତ ସ୍ଥାନମାନ ଦଖଲ କଲେ । ମରହଟ୍ଟା ସିନ୍ଧିଆ ଓ ହୋଲକାର ରାଜାମାନେ କେବେ ବିଦ୍ରୋହୀ ହୋଇ ନ ଥିଲେ, କିନ୍ତୁ ସେମାନଙ୍କ ସୈନ୍ୟମାନେ ତାନ୍ତିଆ ଟୋପି ବା ତାନ୍ତିଅଣ୍ଟିଲ ନାମକ ଜଣେ ଖିଲ୍ ନେତାଙ୍କ ନେତୃତ୍ୱରେ ବିଦ୍ରୋହୀ ହୋଇଥିଲେ । ଅବଶେଷରେ ଇଂରାଜମାନେ ଦିଲ୍ଲୀ ଅଧିକାର କଲେ ଏବଂ ୧୮୫୮ ସାଲରେ ଏହି ବିଦ୍ରୋହାଗ୍ନି ପ୍ରଶମିତ ହେଲା ।

ଏହି ସିପାହୀ ବିଦ୍ରୋହ ପରେ ବିଲାତ ପାର୍ଲିଅମେଣ୍ଟ ଭାରତର ଶାସନଭାର ଇଷ୍ଟ ଇଣ୍ଡିଆ କମ୍ପାନୀର ବଣିକସଙ୍ଘଙ୍କ ହାତରେ ନ ରଖି ମହାରାଣୀ ଭିକ୍ଟୋରିଆଙ୍କୁ ଭାରତର ସମ୍ରାଜ୍ଞୀ ବୋଲି ଘୋଷଣା କଲେ ଏବଂ ଭାରତର ବଡ଼ ଲାଟ୍, ସମ୍ରାଜ୍ଞୀଙ୍କ ପ୍ରତିନିଧି ବା ଭାଇସ୍‌ରୟ୍ (Viceroy ) ଉପାଧି ଧାରଣ କଲେ । ୧୮୫୮ ସାଲରେ ଭାରତର ଗଭର୍ଣ୍ଣର ଜେନେରାଲ୍ ଲର୍ଡ କାନିଙ୍ଗ୍ ଭାଇସ୍‌ରୟ୍ ହେଲେ ଏବଂ ବିଦ୍ରୋହୀମାନଙ୍କୁ ସମ୍ରାଜ୍ଞୀଙ୍କ ଆଦେଶ ଅନୁସାରେ କ୍ଷମା ଦିଆଗଲା ଓ ମହାରାଣୀ ଭିକ୍ଟୋରିଆ ଗୋଟିଏ ଘୋଷଣା-ପତ୍ରଦ୍ୱାରା ଭାରତବାସୀଙ୍କୁ ଅଭୟ ପ୍ରଦାନ କଲେ । ]

**ସିପା(ପେ)ଇ ସରଦାର**—ବୈଦେ. ବି ( ଫା· )—ସିପାହୀମାନଙ୍କର **Sipā(pe)i saradāra** ନେତା—A Sirdar or captain ସିପାଈ ସର୍‌ଦାର **सिपाही सरदार** of Indian soldiers.

**ସିପା(ପେ)ଇ ସନ୍ତ୍ରୀ**—ବୈଦେ. ବି (ସଙ୍କର; ଫା. ସିପାହୀ; ଇଂ· ସେଣ୍ଟ୍ରୀ) **Sipā(pe)i santrī** —ସୈନିକ ଓ ରକ୍ଷୀ; ସଶସ୍ତ୍ର ସିପାହୀ— ସିପାଈ ସାନ୍ତ୍ରୀ **सिपाही सन्त्री** An armed sentinal.

**ସିପାଞ୍ଜି**—ଦେ· ବି—ସିମ୍ପାଞ୍ଜି (ଦେଖ) **Sipāñji** Simpāñji. (See)

**ସିପାର(ରି)ସ୍(ସି)**—ବୈଦେ· ବି ( ଫା, ସିଫାରିସ୍ )—ସୁପାରିସ୍ (ଦେଖ) **Sipāra(ri)s(si)** Supāris. (See)

**ସିପାଳ**—ଦେ. ବି—ଚିଲିକା କୂଳରେ ଜନ୍ମୁଥିବା ଘର ଛପରରେ **Sipāla** ବ୍ୟବହୃତ ଘାସ ବିଶେଷ—A species of grass, growing on the shore of the Chilkā lake and used in thatching houses.

**ସିପା(ପେ)ହି** (ଇତ୍ୟାଦି)—ବୈଦେ. ବି ( ଫା· ସିପାହ )—ସିପାଇ **Sipā(e)hi (petc)** ଇତ୍ୟାଦି (ଦେଖ)—Sipāi etc. (See)

**ସିପି**—ଦେ. ବି—ଶିପ (ଦେଖ) **Sipi** Sipa. (See).

**ସିପିଆ**—ଦେ. ବିଣ—ଶିପା (ଦେଖ)— **Sipiā** শিপ্‌,শিপা **सिपिया** Sipā. (See)

ସେପିଆ ବୈଦେ. ବି (ଇଂ. ସେପିଅ)-ଏକପ୍ରକାର ଫିକା କଳାରଙ୍ଗ— **सेपिया** Sepia colour.

**ସିପିଓ**—ବୈଦେ· ବି (ନାମ)—[ଲାଟିନ୍ ଶବ୍ଦ ସିପିଓ—ଯଷ୍ଟି; ଏହି **Sipio** ବଂଶର ଜଣେ ବ୍ୟକ୍ତି ସର୍ବଦା ତାଙ୍କ ବୃଦ୍ଧ ଅନ୍ଧ ପିତାଙ୍କର ସିପିଓ ଯଷ୍ଟିସ୍ୱରୂପ ହୋଇ ତାଙ୍କୁ ସର୍ବଦା ଚଳାଉଥିଲେ]— **सिपियो** ପ୍ରାଚୀନ ରୋମ୍‌ର ବିଖ୍ୟାତ ବଂଶ—Scipio ( a distinguished family of successive consuls and commanders) of ancient Rome. [ଦ୍ର—ଏହି ବଂଶର ଅନେକ ବିଖ୍ୟାତ ବ୍ୟକ୍ତି ରୋମ୍ ସାମ୍ରାଜ୍ୟର ବିଭିନ୍ନ ପ୍ରଦେଶକୁ ଶାସନକର୍ତ୍ତା ଓ ସେନାପତି-ରୂପେ ପ୍ରେରିତ ହୋଇ ସ୍ୱନାମପ୍ରସିଦ୍ଧ ହୋଇଥିଲେ ଏବଂ ତନ୍ମଧ୍ୟରୁ ଏହି ନାମଧାରୀ ଜଣେ ଆଫ୍ରିକା ଜୟ କରି (Scipio Africanus) ବିଶେଷ ଖ୍ୟାତିଲାଭ କରି ଥିଲେ । ସେ ଖ୍ରୀଷ୍ଟପୂର୍ବ ୧୮୪ ଅବ୍ଦରେ ମରିଥିଲେ ।]

**ସିପିବା**—ଦେ· ବି—ଶିପିବା (ଦେଖ)—Sipibā. (See) **Sipibā** [ସିପିସିବା—ଅନ୍ୟରୂପ]

**ସିପିହର ଶୁକୋ**—ଦେ. ବି ( ନାମ )—ମୋଗଲ ସମ୍ରାଟ୍ **Sipihara śuko** ସାହାଜାହାନଙ୍କର ଜନୈକ ପୁତ୍ର—A son ସିপিহৰ শুকো of Sāhājāhān, the Mogul Emperor. **सिपिहर सुको** [ଦ୍ର—ଏହାଙ୍କୁ ଅରଙ୍ଗଜେବ ହତ୍ୟା କରିଥିଲେ ।]

**ସିପୁଟି**—ଦେ. ବି· ପୁଂ—୧ । ବସ୍ତ୍ର ସିଇଁବା ଜାତି; ଦରଜି— **Siputi** 1. Tailor. [ ଦ୍ର—ଜାତିରେ ଅଛି ସିପୁଟି, ନାମ ଦର୍ଜି ତାହାର ପରମେଷ୍ଟି । ରାମଦାସ. ଦାର୍ଢ୍ୟଭକ୍ତି । ] ୨ । **दरजी** ଗଞ୍ଜାମ ଜିଲ୍ଲାର ତାରାତାରିଣୀଙ୍କ ସେବକ ଜାତି—2. The [ ସିପୁଟିଅଣୀ—ସ୍ତ୍ରୀ ] caste of temple servants of Goddess Tārātāriṇī in Ganjam.

**ସିପୁଲ୍ ବଇଠା**—ପ୍ରାଦେ. ( ଯାଜପୁର ) ବ—ପୂର୍ବେ ଚାଟଶାଳୀରେ
Sipul baiṭhā ଛାତ୍ରମାନଙ୍କୁ ଦିଆଯିବା ଦଣ୍ଡବିଶେଷ; କାନ୍ଥ
ଚଢ଼ଙ୍ଗା ( ଦଣ୍ଡ )—A kind of corporeal punishment formerly meted out to students of primary schools.

**ସିପ୍ର**—ସଂ. ବି. ( ସୃପ୍ ଧାତୁ=ଗମନ କରିବା+କର୍ତ୍ତି. ର; ନିପାତନ
Sipra ସିଦ୍ଧ )—୧ । ଚନ୍ଦ୍ର ( କିଁକାଣ୍ଡ ଶେଷ )—1. The moon. ୨ । ଘର୍ମ; ସ୍ୱେଦ ( ମେଦିନୀ )—2. Perspiration; sweat. ୩ । କାଳିକା ପୁରାଣୋକ୍ତ ଦେବସରୋବରବିଶେଷ—3. Name of a mythological tank described in the Kālikā Purāṇa

**ସିପ୍ରା**—ସଂ. ବି (ସିପ୍ର+ଆ; ଅନ୍ୟରୂପ 'ଶିପ୍ରା')—୧ । ଉଜ୍ଜୟିନୀ ସମୀପସ୍ଥ
Siprā ନଦୀ ବିଶେଷ (ମେଦିନୀ)—1. Name of a river passing by the country of Ujjain. [ ଦ୍ର—କାଳିକା ପୁରାଣ ୬୩ଶ ଅଧ୍ୟାୟରେ ଲେଖାଅଛି ଯେ, ବଶିଷ୍ଠ ଅରୁନ୍ଧତୀଙ୍କୁ ବିବାହ କରି ମାନସାଚଳରେ ସୁଖରେ ବାସ କଲେ ଏବଂ ସେହି ସମୟରୁ ଜଳଧାରା ନିର୍ଗତ ହୋଇ ହିମାଳୟ କନ୍ଦରରେ ଥିବା ସିପ୍ରା ସରୋବରରେ ପତିତ ହୋଇ ସେହିଠାରୁ ନଦୀ ଆକାରରେ ସିପ୍ରା ନାମରେ ପ୍ରବାହିତ ହେଲା । ଏହାର ଅଧୁନିକ ନାମ ସିପ୍ରା । ] ୨ । ସ୍ତ୍ରୀମାନଙ୍କ କଟିବନ୍ଧ (ହ୍ରୁ· ଶ)—2. Woman's girdle.

**ସିପାଇ**—ପ୍ରାଦେ (ଲିଖିଥ) ବ—ସିପାହି (ଦେଖ)
Siphāi Sipāi. (See)

**ସିଫାରି(ରି)ସ୍(ସି)**—ବୈଦେ· ବ ( ଫା. ସିଫାରିସ୍ )—ସୁପାରିସ୍
Siphāra(ri)s(si) (ଦେଖ)—Supāris. (See)

**ସିବନ୍ଦୀ**—ପ୍ରାଦେ (କଟକ) ବ—ସିପାହୀ—
Sibandī Sepoy.

**ସିବ୍ (ଧାତୁ)**—ସ—ସିଲାଇ କରିବା—
Sib (root) To sew.

**ସିବିର**—ସଂ. ବ (ସିଂ ଧାତୁ=ଗନ୍ଧ କରିବା+କର୍ତ୍ତି ବର)-ହସ୍ତୀ
Sibara (ଜଟାଧର)—The elephant.

**ସିବସ**—ସଂ. ବ—(ସିବଧାତୁ+କର୍ତ୍ତି ଅସ)—୧ । ବସ୍ତ୍ର (ହ୍ରୁ. ଶ)—
Sibasa 1. Cloth. ୨ । ପଦ୍ୟ; ଶ୍ଳୋକ (ହ୍ରୁ· ଶ)—2. Poem; couplet.

**ସିବାୟ(ଏ)**—ବୈଦେ. ଅ (ଫା· ସିଵା)—ଛଡ଼ା; ବ୍ୟତୀତ—
Sibāy(e) Without; besides; except. [ଦ୍ର—ଏ ସିବାଏ
ସେଓୟାମ୍ **सिवाय** ଠିକାରୁ ସୁଧ ଗୃହଅଣା ହିସାବେ ପାଇବ ।
ଫକୀରମୋହନ. ଛମାଣ ଆଠଗୁଣ୍ଠ ।]

**ସିବିତିକା ଫଳ**—ସଂ. ବ (ବୈଦ୍ୟକ)—କାବୁଲଦେଶୀୟ ଖାଦ୍ୟ ଫଳ-
Sibitikā phala ବିଶେଷ; ସେଓ ଫଳ—Apple; Pyrus
ଅନ୍ୟ ସଂସ୍କୃତ ନାମ— Malus. [ଦ୍ର—ଏହା କାନ୍ତିକ୍ରୃ,
ମୁଷ୍ଟି ପ୍ରମାଣ, ବଦର, ସେବ । ପିତ୍ତନାଶକ, ପୁଷ୍ଟିକାରକ, କଫ-
ସେଓ, ସେଉ ଜନକ, ଗୁରୁ, ମଧୁରରସ, ମଧୁର-
**सेब** ବିପାକ, ଶୀତବୀର୍ଯ୍ୟ, ରୁଚିକର ଓ
ଫା. ସେବ୍ ଶୁକ୍ରବର୍ଦ୍ଧକ ଅଟେ ।]
ଅ. ତୁଫାଇ

**ସିଭିଲ୍**—ବୈଦେ—୧ । ଦେଶ.ଜ—1. Civil. ୨ । ଉଚ୍ଚ—
Sibhil ସିଭିଲ୍ **सिभिल** 2. High.

**ସିଭିଲ୍ କୋଟ(ର୍ଟ)**—ବୈଦେ. ବ (ଇଂ· ସିଭିଲ୍ କୋର୍ଟ)—
Sibhil kot(rt) ଦେବାନୀ ଅଦାଲତ—
ସିଭିଲ୍ କୋର୍ଟ **सिविल कोर्ट** Civil Court.

**ସିଭିଲ୍ କୋଟ(ର୍ଟ) କମିଶନର୍**—ବୈଦେ. ବ (ଇଂ· ସିଭିଲ୍ କୋର୍ଟ
Sibhil kot(rt) kamiśanar କମିଶନର୍ ) —ପକ୍ଷମାନଙ୍କ
ସିଭିଲକୋର୍ଟ କମସନାବ ନିବାସସ୍ଥ ବିଷୟ ସରଜମିନରେ ତନ୍ନ ତନ୍ନ
**सिविलकोर्ट कमिसनर** କରି ମାପି ପରୀକ୍ଷା କରିବା ବା ଅଦାଲତରେ ଅନୁପସ୍ଥିତ ସାକ୍ଷୀଙ୍କ ସାକ୍ଷ ଗ୍ରହଣ କରିବା ବା ହିସାବପତ୍ର ପରୀକ୍ଷା କରିବା ପାଇଁ ନିଯୁକ୍ତ କର୍ମଚାରୀ—Civil Court Commissioner.

**ସିଭିଲ ଜେଲ୍**—ବୈଦେ. ବ (ଇଂ·—ଫେଜ୍‌ଦାରୀ କାର୍ଯ୍ୟରେ ଖାତକ-
Sibhil jel ମାନଙ୍କୁ ବନ୍ଦ କରାଯାଏ—Civil jail.
ସିଭିଲ୍ ଜେଲ **सिविल जेल**

**ସିଭିଲ୍ ସର୍ଜନ୍**—ବୈଦେ· ବ—ଡାକ୍ତର ସାହେବ; ଜିଲ୍ଲାର ସର୍ବୋଚ୍ଚ
Sibhil sarjan ଡାକ୍ତର—Civil Surgeon.
ସିଭିଲ୍ ସର୍ଜନ **सिविल सरजन**

**ସିଭିଲ୍ ସର୍ଭିସ୍**—ବୈଦେ. ବ (ଇଂ. ସିଭିଲ୍ ସର୍ଭିସ୍ )—ରାଜ୍ୟଶାସନ
Sibhil sarbhis ସମ୍ବନ୍ଧୀୟ ଉଚ୍ଚ ସରକାରୀ ଚାକିରି—
ସିଭିଲ୍ ସର୍ଭିସ **सिविल सरभिस्** Civil service.
(ସିଭିଲ୍(ଲି) ସରଭିସ୍(ସି)—ଅନ୍ୟରୂପ)

**ସିଭିଲିୟା(ଆ)ନ୍**—ବୈଦେ· ବ ( ଇଂ. ସିଭିଲିଅନ୍ )—ରାଜ୍ୟଶାସନ
Sibhiliyā(ā)n ସମ୍ବନ୍ଧୀୟ ଉଚ୍ଚ କର୍ମଚାରୀ—A civilian, a
ସିଭିଲିୟାନ୍ **सिभिलियन** member of the civil service.

**ସିମ୍ତି (ଇତ୍ୟାଦ)**—ଦେ. ଅ—ସେମିତି ଇତ୍ୟାଦ (ଦେଖ)
Sim-ti (etc) Semiti. etc (See)

**ସିମ୍(ମ,ମି)ଳା(ଲ)**—ଦେ. ବ (ନାମ)—୧ । ପଞ୍ଜାବ ପ୍ରଦେଶର
Sim(ma, mi)ḷā(lā) ଉତ୍ତରାଂଶ ଓ ଦିଲ୍ଲୀଠାରୁ ୩୦୦ ମାଇଲ
ସିମିଲା ଉତ୍ତରରେ ହିମାଳୟର ସାନୁରେ ଅବସ୍ଥିତ ଭାରତ
**सिमिला** ଗଭର୍ଣ୍ଣମେଣ୍ଟଙ୍କର ଓ ଭାଇସ୍‌ରାୟଙ୍କ ଗ୍ରୀଷ୍ମନିବାସ—1. Simla on the Himalayan slope; the summer capital of the Viceroy of India. [ଦ୍ର—ଏହା ସିଲ୍ଲନଦର ପୂର୍ବତମ ଶାଖା ଶତଲେଜ୍ ବା ଶତଦ୍ରୁ ନଦୀର ଦକ୍ଷିଣ କୂଳ ନିକଟରେ ଅବସ୍ଥିତ ଅଟେ । ଏହା ପଞ୍ଜାବ ପ୍ରଦେଶର ଗଭର୍ଣ୍ଣରଙ୍କର ମଧ୍ୟ ଗ୍ରୀଷ୍ମନିବାସ ଅଟେ । ] ୨ । କଲିକତାର ଗୋଟିଏ ଅଂଶ—2. Name of a part of the town of Cal-

cutta. [ ଦ୍ର—ଏଠାର ଢଡ଼ମାନେ ଦୁବେ ଅଭି ହୃଷ୍ଟ ପୁଷ୍ଟ ଲଗା ଦୃଶ୍ୟଥିଲେ । ]

ସିମ୍(ମି)ଲଆ—ଦେ. ବିଣ—ସିମ୍ଲା ସମ୍ବନ୍ଧୀୟ—
Sim(mi)liā Relating to Simla.
সিমিলাই सिमलिया (ଯଥା—ସିମ୍ଲିଆ ଗୁଦର)

ସିମ—ସ୍, ବିଣ ( ସି. ଧାତୁ=ବନ୍ଧନ କରିବା + କର୍ମ, ମନ୍ )—ସମସ୍ତ;
Sima ସକଳ ( ସିଦ୍ଧାନ୍ତ କୌମୁଦୀ )—Entire; all; whole.
সিম ଦେ. ବି ( ସ. ଶିମ୍ )—ଶିମ୍ ( ଦେଖ )
सेम Śimba ( See )

ସିମନ୍—ବୈଦେ. ବି ( ହେବ୍ରୁ. ସିମନ୍ )—ବାଇବଲ ଲେଖିତ ନାମ-
Siman ବିଶେଷ—A Biblical proper name; Simon.
সাইমন सिमन (ସାଇମନ୍—ଅନ୍ୟରୂପ)

ସିମନ୍ଥା(ସ୍ଥା)ନ—ଦେ. ବି—ଶିମସ୍ଥାନ ( ଦେଖ )
Simanthā(sthā)na Śimasthāna ( See )

ସିମସ୍ଥାନ—ପ୍ରାଦେ. ( ଗଞ୍ଜାମ ) ବି—ଶିମସ୍ଥାନ ( ଦେଖ )
Simasthāna Śimasthāna ( See )
( ସିମସ୍ଥାନମ୍—ଅନ୍ୟରୂପ )

ସିମାଇ—ଦେ. ବି—ସିମେଇ ( ଦେଖ )—Simei ( See )
Simāi ବୈଦେ. ବି ( ଫା. ସେମାହି )—ସିମାହି ( ଦେଖ )
Simāhi ( See )

ସିମା(ମେ)ଇ ଯିବା—ଦେ. କ୍ରି ( ସ. ଶିମ୍ )—ସେମ୍ପି ଯିବା; ଶୀର୍ଣ୍ଣ
Simā(me)i jibā ହୋଇଯିବା—To become emacia-
সিটীয়ে যাওয়া चिपटा होना ted.

ସିମାକ ଜୋଡ଼—ପ୍ରାଦେ. ( ଗଞ୍ଜାମ ) ବି—ବାଟି ବା କଉଡ଼ି ଖେଳରେ
Simāka jorda ବାଟିରେ ବାଟିକୁ ମାରିବା ସସ୍ତ ଅଘାତ—
[ ଗୋପୀନାଥ ନନ୍ଦ ]—A particular throw in the game of cowries.

ସିମା କୟାଁ—ପ୍ରାଦେ. ( ଗଞ୍ଜାମ ) ବି—ଶିମା କୟାଁ ( ଦେଖ )
Simā kayāñ Śimā kayāñ ( See )

ସିମାଦ୍ରି—ପ୍ରାଦେ. ( ଗଞ୍ଜାମ ) ବି ( ପୁଂ )—ସୀମାଚଳନାଥଙ୍କ ନାମାନୁ-
Simādri ସାରେ ଦିଆ ଯାଇଥିବା ନାମ—A name given
[ ସିମା, ସିମାଲୁ—ସ୍ତ୍ରୀଲୋକଙ୍କ ନାମ ] to males in Ganjam.
[ଦ୍ର—ଓଡ଼ିଶାରେ ଯେପରି ପୁଅର 'ଜଗନ୍ନାଥ' 'ଲୋକନାଥ' ନାମ ଦିଆଯାଏ, ଗଞ୍ଜାମ ଅଞ୍ଚଳର ତେଲୁଗୁ ଘରେ ଠିକ୍ ସେହିପରି ପୁଅ ପିଲାଙ୍କୁ 'ସିମାଦ୍ରି' ବା 'ସିମାଲୁ' ନାମ ଦିଆଯାଏ । ]

ସିମାଦ୍ରି ଆପୁର୍ଡୁ—ପ୍ରାଦେ. ( ଗଞ୍ଜାମ ) ବି—ବାସୁଆ ବଳଦ (ଦେଖ)
Simādri āpurdu Bāsuā balada ( See )
[ ସିମାଦ୍ରି ଅପଲ୍ଲା, ଅପଲ୍ଲା—ଅନ୍ୟରୂପ ]

ସିମାନା ( ଇତ୍ୟାଦି )—ଦେ. ବି—ସୀମାନା ଇତ୍ୟାଦି ( ଦେଖ )
Simānā ( etc ) S mānā etc ( See )

ସିମା ପାଇକେରା—ପ୍ରାଦେ. (ବାଲେଶ୍ୱର) ବି—ଏକପ୍ରକାର ଅତି ବଡ଼ ବନ୍ୟ
Simā pāikerā ଗଛ—A kind of very large wild tree. [ ଦ୍ର—ଏହାର ପତ୍ର ତେନ୍ତୁଳି ପତ୍ର ପରି; କିନ୍ତୁ ତେନ୍ତୁଳି ପତ୍ରଠାରୁ ବଡ଼ । ଏହାର ଫୁଲ ନାଲି । ]

ସିମା ଫୋର୍—ବୈଦେ. ବି ( ଇଂ. ସେମା ଫୋର୍ )—ରେଳ
Simā phor ଷ୍ଟେସନର ଦୁଇ ପାଖରେ ଖଣ୍ଡଦୂରରେ ଯୋଡ଼ା
সিমা ফোর ହୋଇଥିବା ସିଗ୍ନାଲ୍ ଖୁଣ୍ଟି—Semaphore;
सेमा फोर signal posts on both sides of a railway station. [ ଦ୍ର—ଏଥିରେ ଗୋଟିଏ ବାହୁ ଥାଏ; ତାହା ଉଠାଯାଏ ଓ ପକାଯାଏ ଏବଂ ରାତିରେ ଏଥିରେ ନାଲି କମ୍ପା ନେଳ ଆଲୁଅ ଦିଆଯାଏ । ]

ସିମା ଶିମ୍ବ—ପ୍ରାଦେ. ( ଗଡ଼ଜାତ ) ବି—ଏକପ୍ରକାର ଶିମ୍ବ ( ଖାଦ୍ୟ
Simā śimba ଲତା ଫଳ )—A kind of bean.

ସିମାହି—ବୈଦେ. ବି ( ଫା. ସେମାହି; ଫା. ସେ=ତିନି + ମାହି= 
Simāhi ମାସ )—ତ୍ରୈମାସିକ—Quarterly.
সেমাহী सिमाही

ସିମିତି—ଗ୍ରା. ଅ ( ତୁଳନାକର-ଜମିତି, ଇମିତି )—ସେମିତି ( ଦେଖ )
Simiti Semiti ( See )

ସିମିତିକା—ଦେ. ବିଣ—ସେମିତିକା ( ଦେଖ )—
Simitikā Sematikā ( See )
[ ସିମିତିକିଆ, ସିମିତିଆ—ଅନ୍ୟରୂପ ]

ସିମିଳି [ ଇତ୍ୟାଦି ]—ଦେ ବି ( ସ. ଶାଲ୍ମଳୀ )—ଶିମିଳି (ଦେଖ)
Simili [ etc ] Śimili etc ( See ). ପ୍ରାଦେ (ଉତ୍ତର ବାଲେଶ୍ୱର ) ବି ( ସ. ଶୈବାଳ )—ଶିଉଳି—Moss.

ସିମୁଣା—ପ୍ରାଦେ ( ଅଳ ) ବି—ସାନ ସଣ୍ଡାସି—
Simuṇā Small pincers.

ସିମେଇ—ଦେ. ବି ( ସଂ. ସେବକା; ସ. ଶିମ୍; ଏହାର ଅନୁକୃତ ଶିମ୍
Simei ପରି )—୧ । ଘିଅରେ ପୁଆ ହୋଇଥିବା ଶିମ୍
সিমাই, সেমই ଆକାରର ଲମ୍ବ ଲମ୍ବ ପତଳା ଗଜା—1. Slender
सेवँई bean-shaped sweetmeat. [ ଦ୍ର—ମଇଦାକୁ ଚକଟି ଲମ୍ବ ଲମ୍ବ କରି ଖରାରେ ଶୁଖାଇ ଶିମ୍ ପରି ଖଣ୍ଡ ଖଣ୍ଡ କରି କାଟି ଘିଅରେ ଏହାକୁ ଘୁଅଯାଏ; ଏହା ଦୁଇପ୍ରକାର—୧ । ଲୁଣିଆ ଓ ୨ । ଚିନି ପାଗ ଦିଆ ମିଠା । ] ୨ । ମଇଦାର ପିଣ୍ଡରୁ ପ୍ରସ୍ତୁତ ସୂତା ପରି ଖାଦ୍ୟ ବିଶେଷ—2. Vermicelli. ଦେ. ବିଣ ( ସ. ଶିମ୍ )
কোঁকড়া —ଶିମ୍ବ ପରି କ୍ଷୀଣ; ସେମଟା—Shrunken; ema-
सेमके जैसा ciated and lean ( like the bean ).

ସିମେଣ୍ଟ୍—ବୈଦେ. ବି (ଇଂ. ସିମେଣ୍ଟ୍)—ଘର ଆଦିର କାନ୍ଥ ଓ ତଳ
Siment ପଲସ୍ତରା କରିବାରେ ବ୍ୟବହୃତ ଏକପ୍ରକାର ମାଟି—
সিমেন্ট सिमेंट Cement.

ସିମ୍ପାଞ୍ଜି—ଦେ. ବି ( ଏହି ଶବ୍ଦ କଙ୍ଗୋ ଭାଷାର ନାମରୁ ଏ ଶବ୍ଦ
Simpānji ଗଢ଼ା )—୧ । ଆଫ୍ରିକାର ଜଙ୍ଗଲ ମଧ୍ୟରେ ବାସ
সিম্পাঞ্জি କରୁଥିବା ପୁଚ୍ଛହୀନ ଓ କେତେକାଂଶରେ ମନୁଷ୍ୟର
सिपांजा ଆକୃତବିଶିଷ୍ଟ ମର୍କଟ ବା ବଣମଣିଷ—1. Chimpa-

nzee; Anthropithems Troglodites. [ବ୍ରୁ—ଅନ୍ୟ ମାଙ୍କଡ଼ଙ୍କ ଅପେକ୍ଷା ଏ ମାଙ୍କଡ଼ ମନୁଷ୍ୟ ଅବୟବର ଅଧିକତର ନିକଟବର୍ତ୍ତୀ । ଏହା ଉଚ୍ଚତାରେ ୪ ଫୁଟ ପର୍ଯ୍ୟନ୍ତ ବଢ଼େ । 'ମାକଡ଼' ଶବ୍ଦ ତଳେ ଟିପ୍ପଣୀ ଦେଖ । ] ୨ । [ ଲକ୍ଷଣାର୍ଥ ] ସିମ୍ପାଞ୍ଜି ପରି ଅସୁନ୍ଦର ମନୁଷ୍ୟ—2. ( figurative ) A person of hideous appearance and proportions like the chimpanzee.

ସିମ୍ପିବା—ଦେ. କ୍ରି—ସିପି ଯିବା; ସେମିତି ଯିବା—
Simpibā To become shrunken.
সিটিয়েযাওয়া, সিটিপিটী चिपटान [ସିମ୍ପି ଯିବା—ଅନ୍ୟରୂପ]

ସିମ୍ବ(ମ)—ଦେ. ବ (ସଂ ସିମ୍ବୀ)—ଶିମ୍ବ (ଦେଖ)
Simba(ma) Śimba (See)

ସିମ୍ବ(ମ) ଖାଇ—ପ୍ରାଦେ (କୌଦ; ସମ୍ବଲପୁର; ଗଡ଼ଜାତ) ବ—
Simba(ma) khāi ନବାନ୍ନ ଉତ୍ସବ; ବର୍ଷରେ ପ୍ରଥମେ ଅମଳ ହେବା ଶସ୍ୟର ଚୁଡ଼ା, ଅନ୍ନ, ଖିର ଆଦି ଦେବତାଙ୍କୁ ନୈବେଦ୍ୟ କରାଯାଇ ଭୋଜନ କରିବାରୂପ ବାର୍ଷିକ ଉତ୍ସବ—The annual feast of taking the rice of the grains garnered first for the year. [ବ୍ରୁ—ଏ ଉତ୍ସବର ଅନ୍ୟ ନାମ ନୂଆଁଖିଆ । ଏ ଦିନ ଗ୍ରାମର ଉପକଣ୍ଠରେ ଥିବା ଗ୍ରାମଦେବତାଙ୍କ ଅସ୍ଥାନରେ ବା ଡମ୍ବ ଠାରେ ନୂଆ ଧାନର ଅନ୍ନ, ଗୋଲଗୁଡ଼, ଖିର, ଚୁଡ଼ା ଆଦି ଭୋଗ ଦିଆଯାଏ ଓ ତତ୍‌ପରେ ଗ୍ରାମବାସୀଙ୍କ ଘରେ ନୈବେଦ୍ୟ ଓ ନୂଆଁଖିଆ ଉତ୍ସବ ହୁଏ ।]

ସିମ୍ବା—ସଂ. ବ (ଅନ୍ୟରୂପ ଶିମ୍ବା)—୧ । ଶମୀଧାନ୍ୟ (ଦ୍ୱିରୂପ କୋଷ)—
Simbā 1. Leguminous grain. ୨ । ଶିମ୍ବ (ଦ୍ୱିରୂପ କୋଷ)—2. Bean.

ସିମ୍ବି—ସଂ. ବ (ଅନ୍ୟରୂପ ଶିମ୍ବି)—୧ । ଶିମ୍ବ (ଦ୍ୱିରୂପ କୋଷ)—
Simbi 1. Bean. ୨ । ନଖୀ ନାମକ ଗନ୍ଧଦ୍ରବ୍ୟ (ଶବ୍ଦକଳ୍ପଦ୍ରୁମ)—2. A scented herb.

ସିମ୍ବିଜା—ସଂ. ବ (ଅନ୍ୟରୂପ ଶିମ୍ବିଜା)—ଶମୀଧାନ୍ୟ; ଶିମ୍ବିଜ (ଭାବପ୍ରକାଶ)—Leguminous grains.
Simbijā

ସିମ୍ବୀ—ସଂ. ବ (ଅନ୍ୟରୂପ ଶିମ୍ବୀ) —୧ । ଶିମ୍ବ—1. Bean. ୨ । ଶମୀ
Simbī ଧାନ୍ୟ—2. Leguminous pods or grains. ୩ । କଣ୍ଟାରୀ (ଶବ୍ଦକଳ୍ପଦ୍ରୁମ); ବରଗୁଡ଼—
3. Vigna Catjong; Dolichus Synesis.

ସିଯ୍(ଯେ)ବାର୍—ଦେ. ବ—ଗୟାର ପଣ୍ଡାମାନଙ୍କର ବଂଶୋପାଧି
Sij(je)bār ବିଶେଷ—Family title of some Pandās of Gaya.
সিজবার् सिजबार
[ସିଯେଭ୍ୟର —ଅନ୍ୟରୂପ]

ସିୟାଲ(ଲି) (ଇତ୍ୟାଦି) —ଦେ. ବ—ଶିଆଳ ଇତ୍ୟାଦି (ଦେଖ)
Siyāla(li) (etc) Śiāla etc. (See)

ସିୟୁଣି—ପ୍ରାଦେ (ଗଞ୍ଜାମ) ବ—ଟୋକେଇ (ଗୋପୀନାଥ ନନ୍ଦ)—
Siyuṇi Basket.

ସିର୍—ପ୍ରାଦେ. (ସମ୍ବଲପୁର) ବ.—ମାଫିଦାର ବା ଲଖରାଜଦାରଙ୍କ ନିଜର
Sir ଚାଷ ଜମି—A permanent home farm of a proprietor or Maphidār or Lakharājadār.

ସିର୍‌କସ୍ତ—ବୈଦେ. ବ (ଫା. ସିକସ୍ତ)—ସିକସ୍ତ—(ଦେଖ)
Sir-kast Sikast (see)

ସିର୍‌କା—ବୈଦେ. ବ (ଫା)—ସିର୍କା ; ଗୁଡ଼ ଓ ଅନ୍ୟ ମିଷ୍ଟ ରସ
Sir-kā ସଢ଼ାଇଲେ ଯେଉଁ ଅମ୍ଳ ଉତ୍ପନ୍ନ ହୁଏ ; ମଦର କାଞ୍ଜି—
সিরকা Vinegar. [ବ୍ରୁ—ଆଖୁ, ଅଙ୍ଗୁର, ଜାମୁ ଆଦିର ରସକୁ
सिरका ଖରାରେ ରଖି ସଢ଼ାଇ ତାକୁ ଛାଣି ସିର୍‌କା କରାଯାଏ ।]

ସର୍‌ଖିସ୍ତ—ବୈଦେ. ବ (ଫା. ସୀର୍‌ଖୀସ୍ତ)—ଯବାସ ଶର୍କରା; ବୃକ୍ଷ-
Sir-khist ବିଶେଷର ଅଠାଳିଆ କମ୍ପା ଶ୍ୱେତବର୍ଣ୍ଣ ମିଷ୍ଟ ନିର୍ଯ୍ୟାସ—
সিরখিস্ত सीरखिस्त Manna.
[ବ୍ରୁ—ନାନା ବୃକ୍ଷରୁ ଏହି ନିର୍ଯ୍ୟାସ ମିଳେ । ଭାରତରେ ପଶ୍ଚିମ ହିମାଳୟର ବୃକ୍ଷବିଶେଷ [The common Ash, Fraxinus Floribunda ) ପ୍ରସିଦ୍ଧ । କୌଣସି କୌଣସି ବାର୍ଚ୍ଚ ଗଛ, ସରଳ ଗଛର ଡାଳରୁ ଓ ଅନ୍ୟ କେତେକ ଗଛରୁ ସିର୍‌ଖିସ୍ତ ମିଳେ । ଲୋକମାନେ ଡାଳକୁ କ୍ଷତ କରିବାରୁ ଏ ନିର୍ଯ୍ୟାସ ବାହାରେ—ଯୋଗେଶଚନ୍ଦ୍ର ।]

ସିର୍‌ଚ(ଚା)ନ୍ଦ—ଦେ. ବ—ହାତୀର କପାଳରେ ପିନ୍ଧାଯିବା ଅର୍ଦ୍ଧଚନ୍ଦ୍ରାକାର
Sir-cha(chā)nda ଅଳଙ୍କାର—A crescent-shaped
শিরচাঁদ सिरचांद ornament put on the brow of an elephant.

ସିର୍‌ଜନା—ପ୍ରାଦେ [ଲିଉଅ] ବ. [ଭୁଲ. ହୁ. ସିର୍‌ଜନା]—ସର୍ଜନା—
Sir-jinā Creation.

ସିର୍‌ପେ(ପେଁ)ଚ—ବୈଦେ. ବ (ଫା. ସର୍‌ପେଚ୍)·ଶିର୍‌ପେଚ୍ (ଦେଖ)
Sirpe(peñ)ch śir-pech. (See)

ସିର୍‌ଣି(ନି)—ବୈଦେ. ବ—ସିନ୍ନି (ଦେଖ)—Sinni. (See) ଦେ.
Sir-ṇi(ni) ବ—ଶ୍ରୀନିବାସର ଅନାଦରାର୍ଥକ ଡାକ ନାମ—Name-
[ସିଣ୍ଡି—ଅନ୍ୟରୂପ] for calling Śrinibāsa.
(ସିରଣି[ନି]ଆ, ସିଣ୍ଡିଆ—ଅନାଦରାର୍ଥରୂପ)

ସିର୍‌(ରୋ)ପା—ଦେ. ବ—ଶିର(ରୋ)ପା [ଦେଖ]
Sir-(ro)pā Śira(ro)pā. [See]

ସିର୍‌ଫାସି—ପ୍ରାଦେ [ଖଡ଼ଆଳ] ବ—୧ । ଦଉଡ଼ିର ଏକପ୍ରକାର
Sir-phāsi ଗଣ୍ଠି ବା ଫାସ [ଗଣ୍ଠିର ଏକ ଜାଗାକୁ ଟାଣି ଦେଲେ ତାହା ଫିଟିଯାଏ)—1. A kind of slip-knot. ୨ । ଗଳାରେ ଲଗାଇ ଆତ୍ମହତ୍ୟା କରିବା ପାଇଁ ବ୍ୟବହୃତ ଫାସ ଲଗା ଦଉଡ଼ି—2. Noosed rope used for committing suicide by slipping it round the neck.

ସିର୍ ସିର୍—ଦେ. ଅ—୧ । ସଲସଲ; ଦେହ ଉପରେ ହାଲୁକା ସୂତା ବା ପର ଅବା ଚଳାଇଲେ ଓ ପୋକ ଅବା ଗୁଲୁଗଲେ ଯେଉଁ ପର ଅନୁଭୂତ ହୁଏ—1. Light creeping sensation over the skin. ୨ । ଜ୍ୱରର ରୋଗାକ୍ରମଣ ଆଡିମୁଡି ହେଓ୍ୱା ପୂର୍ବରୁ ଦେହର ଅସୁସ୍ଥତା ବୋଧ ଅବସ୍ଥା—2. Sickly feeling before an attack of fever. ୩ । ବହୁ ଛେଚକୁଟି ହେବା ଅବସ୍ଥା; ଦେହ ହାତ ବୋଲେଇ ବନ୍ଦ ହେବା ଅବସ୍ଥା—3. Aching sensation throughout the body. ୪ । ରୋମ ଟାଙ୍କୁରିବା ଅବସ୍ଥା; ରୋମାଞ୍ଚ—4. Horripilation. ୫ । ଦେହ ଶୀତେଇବା ଓ ଥରକମ୍ପି କମ୍ପ ବା ଅବସ୍ଥା—5. Feeling of cold and shivering in the body.

Sir-sir

ସିର୍ ସିର୍ ସरसर

सिहरी, सिहरना

[ଦେହ] ସିର୍ ସିର୍ ହେବା—ଦେ. କ୍ରି—୧ । (ଦେହ) ସଲସଲ ହେବା; ଦେହ ଉପରେ ପିମ୍ପୁଡି ଗୁଲୁବାପର ଜଣା ଯିବା—1. (the body) To feel a creeping sensation on the skin. ୨ । (ଦେହ) ରୋଗାକ୍ରମଣ ପୂର୍ବରୁ ଅସୁସ୍ଥ ବୋଧ କରିବା—2. (the body) To feel sickly or feverish. ୩ । (ଦେହ) ଛେଚକୁଟି ହେବା—3. (the body) To have aching throughout the system. ୪ । (ଦେହ) ରୋମ ଟାଙ୍କୁରିବା—4. the body) To have horripilation. ୫ । (ଦେହ) ଶୀତେଇବା—5. (the body) To have a feeling of cold or shivering. ୬ । [ଲକ୍ଷଣାର୍ଥ] କୌଣସି ବ୍ୟକ୍ତି ଉପରେ ବିରକ୍ତିରେ ମୁଖଭଙ୍ଗୀ କରିବା ବା ଚଡ଼ିବା—6. To frown on a person.

Sir-sir hebā

ସିର୍ ସିର୍(ରେ)ଇବା, ସିର ସିରିବା, ସିର୍ ସିର୍(ରେ)ଇ ଉଠିବା, ସିର୍ ସିର୍(ତେ)ଇ ହେବା } ଅନ୍ୟରୂପ

(ଗା)ସିର୍ ସିର୍ କର୍ବା

सिहरना

ସିର—ସଂ. ବି [ ସି. ଧାତୁ=ବନ୍ଧନ କରିବା+କର୍ତ୍ତୃ. ର ]—ପିପ୍ପଳୀ ମୂଳ—The root of Piper Nigrum, ଦେ. ବି [ ସଂ. ସିର ]—ଶିରା; ନାଡ଼—Vein; artery.

Sira

ସିର सोर

ସିରତ୍—ପ୍ରାଦେ [ଛତିଶଗଡ଼] ବି—ସତ୍ୟ—Truth.

Sirat

ବିଣ—ସତ୍ୟ—True.

ସିର[ର୍]ତାଜ—ବୈଦେ. ବି [ଫା]—୧ । ମୁକୁଟ—1. Diadem. ୨ । ଶିରୋମଣି—2. A gem worn in the brow. ୩ । [ଲକ୍ଷଣାର୍ଥ] ଶ୍ରେଷ୍ଠ ବ୍ୟକ୍ତି—3. (figurative) Chief or preeminent person.

Sira(r)tāja

ସିରନା—ବୈଦେ. [ ବସ୍ତର ] ବି—ଗମ୍ଭାରି ଗଛ—Gmelina Arborea. (tree)

Siranā

ସିର[ର୍]ନାମା—ବୈଦେ. ବି—ଶିରୋନାମା [ ଦେଖ ]

Sira[r]nāmā Sironāmā [ See ]

ସିରମ—ବୈଦେ. ବି ( ଇଂ. ସିରମ୍ )—କଞ୍ଚା ମାଂସରୁ ବାହାରିବା ଧଳା ଲସା—Serum.

Siram ସିରମ सिरम

ସିର ସିର—ଦେ. କ୍ରି. ବିଣ—ଶିରା ପ୍ରଶିରାରେ; ଶିରେ ଶିରେ—Through every vein and artery.

Sira sira

ସିରସ୍ତା—ବୈଦେ. ବି [ ଫା. ସରିସ୍ତା ]—୧ । ସରକାରୀ କାଗଜ—1. Official record. ୨ । ଦପ୍ତର; ଲେଖା ପଢ଼ା ହେବା କାର୍ଯ୍ୟାଳୟ—2. Office where records are kept. ଦେ. ବି—ହାତୀକୁ ମଣ କରିବା—Breaking of an elephant.

Sirastā ସେରିସ୍ତା सरिस्ता সাযেস্তা सिरिस्ता

ସିରସ୍ତା କରିବା—ଦେ. କ୍ରି—ହାତୀକୁ ମଣ କରିବା—To train or break an elephant.

Sirastā kariba সায়েস্তা কৰা सिरिस्ता करना

ସିରସ୍ତାଦାର—ବୈଦେ. ବି ( ଫା. ସରିସ୍ତେଦାର୍ )—ଅଫିସ୍ ର ପ୍ରଧାନ କର୍ମଚାରୀ—Seristadar; the head of the ministerial officers of an office.

Sirastādār ସେରିସ୍ତାଦାର सरिस्तेदार

ସିରସ୍ତାଦାରି—ବୈଦେ. ବି ( ଫା )—ସିରସ୍ତାଦାରଙ୍କ କାର୍ଯ୍ୟ—The post or service of a Seristadar.

Sirastādari ସେରିସ୍ତାଦାରି सरिस्तेदारी

ସିରସ୍ତା ପତର—ଦେ. ବି ( ସହରରେ )—୧ । ସିରସ୍ତା ଅଫିସ—1. Office etc. ୨ । ସିରସ୍ତାର କାଗଜପତ୍ର—2. Office records.

Sirastā patara ସେରିସ୍ତା सरिस्ता पतर

ସିରସ୍ତା ପୂଜା—ଦେ. ବି—ସୁନିଆ ଓ ଶ୍ରୀପଞ୍ଚମୀ ଅବସରେ କାର୍ଯ୍ୟାଳୟର କାଗଜପତ୍ରର ପୂଜା—The worship of the records on Suniān or Śripanchamī.

Sirastā pūjā ସେରିସ୍ତା ପୂଜା सरिस्ता पूजा

ସିରା—ସଂ. ବି (ସି. ଧାତୁ=ବନ୍ଧନ କରିବା+କର୍ତ୍ତୃ. ର+ଆ)—୧। ନାଡ଼; ରକ୍ତବାହୀ ନାଡ଼ ( ଶିରାଧମନୀ )—1. Artery, vein. ୨ । ଅମ୍ବୁବାହନୀ; ବାରିବାହନାର୍ଥ ବ୍ୟବହୃତ ଚର୍ମମୁଣା, ଭିସ୍ତି—2.A water-carrier bag; bhisti. ଦେ. ବି—ଶିରା ( ଦେଖ )—Sirā ( See ). ପ୍ରାଦେ. ବି —୧। (ଗଞ୍ଜାମ; ତେଲିଙ୍ଗ ଶବ୍ଦ)—ମସି; ସ୍ୟାହି; କାଳି—1. Ink. ୨ । ( ସମ୍ବଲପୁର ) ଗିରି ଅବର ଟେଙ୍ଗ; କୂଟ—2. The summit of a mountain. ୩ । ( ଯାଜପୁର ) ଟୋକେଇ—3. Basket of wicker work.

Sirā

ସିରାଇ—ଦେ. ବି—୧ । ଶିରାଇ ( ଦେଖ )—1. Śirāi ( See ) ୨ । ସରାଇ ( ଦେଖ )—2. Sarāi ( See ). (ଉ—ଅଶୋକ ଯାତ୍ରୀମାନଙ୍କ ସୁବିଧା ସକାଶେ ପଥରେ ସ୍ଥାନେ ସ୍ଥାନେ ସିରାଇ ବସାଇଥିଲେ—ଲୁପାସିକ୍, ଉତ୍କଳ ଇତିହାସ ।)

Sirāi সবাই सराय

ସିରାଜ—ବୈଦେ· ବ—୧ । ( ଫା. ସିରାଜ ) ଏକପ୍ରକାର ମିଷ୍ଟ ଓ ମୃଦୁ
Sirāj¹ ମଦ୍ୟ—1. A kind of sweet and mild wine. ୨ । ( ଫା. ସିରାଜ୍ ) ପ୍ରଦୀପ—2. Lamp.
ଦେ. ବ. ପୁଂ—ମୁସଲମାନଙ୍କ ନାମ—
A name of Mahommedans.

ସିରାଜ ଉଦ୍(ଦ୍ଦି)ନ୍—ଦେ· ବ ( ନାମ )—୧ । ମୁସଲମାନଙ୍କ ନାମ—
Sirāj udi(ddi)n 1. A name of Mahommedan.
সিরাজ উদ্দিন males. ୨ । ଭାରତରେ ତ୍ରୟୋଦଶ ଶତା-
सिराजुद्दीन ବ୍ଦୀର ପ୍ରଥମ ଭାଗରେ ରାଜତ୍ୱ କରୁଥିବା ଦାସବଂଶୀୟ ମୁସଲମାନ୍ ରାଜା କୁତବୁଦ୍ଦିନଙ୍କର ଜଣେ ବଂଶଧର ରାଜା—
2. Name of one of the kings of the Slave Dynasty ( Mahommedan ) who ruled India in the 1st part of the 13th century.

ସିରାଜ୍ ଉଦ୍ଦୋ(ଦ୍ଦୌ)ଲା—ଦେ. ବ ( ନାମ ) ( ଫା. ସିରାଜ୍ ଉଦ୍ଦୌଲା;
Sirāj uddo(ddau)lā ସିରାଜ୍-ଉଦ୍-ଦଉଲା=ରାଜ୍ୟର ପ୍ରଦୀପ)
সিরাজ উদ্দৌলা —ବଙ୍ଗଳାର ଶେଷ ସ୍ୱାଧୀନ ନବାବ—
सिराजुद्दौला Seraj-ud-doula; the last in-
ସିରାଜ୍ ଦ(ଦ)ଲା } ଅନ୍ୟରୂପ dependent Nawab
ସିରାଜ୍ (ଜୁ)ଦୌ(ଦ୍ଦୌ)ଲା } of Bengal.
[ ଦ୍ର—ଏ ଅଲିବର୍ଦ୍ଦି ଖାଁଙ୍କ ଦୌହିତ୍ର । ଅଲିବର୍ଦ୍ଦି ଅପୁତ୍ରକ ହେବାରୁ ଏ ବଙ୍ଗ ନବାବଙ୍କ ରାଜଧାନୀ ମୁର୍ଶିଦାବାଦର ସିଂହାସନରେ ଖ୍ରୀ: ୧୭୫୬ ସାଲରେ ଅଧିଷ୍ଠିତ ହେଲେ । ଏହାଙ୍କର ବୟସ ସେତେବେଳେ ୧୭ ବର୍ଷ ମାତ୍ର ହୋଇ-ଥିଲା । ଏହି ସମୟରେ ମୋଗଲ୍ ବାଦଶାହାଙ୍କ କ୍ଷମତା କ୍ରମଶଃ କ୍ଷୀଣ ହୋଇ ଆସୁଥିଲା । ବଙ୍ଗଦେଶ ମୋଗଲ୍ ବାଦଶାହାଙ୍କ ଅଧୀନ ଏକ ସୁବା ବା ପ୍ରଦେଶ ଥିଲେହେଁ ଅଲିବର୍ଦ୍ଦି କାର୍ଯ୍ୟତଃ ବଙ୍ଗର ସ୍ୱାଧୀନ ନବାବ ହୋଇଥିଲେ । ଅଲିବର୍ଦ୍ଦି ଖାଁଙ୍କଠାରୁ ଅନୁମତି ନେଇ ଇଂରାଜ ଇଷ୍ଟ୍ ଇଣ୍ଡିଆ କମ୍ପାନୀ ସେମାନଙ୍କ କଲିକତା କୋଠିର ଅଧୀନତାରେ ପାଟଣା ଓ ଢାକାରେ ବାଣିଜ୍ୟ କୋଠି ଖୋଲିଥିଲେ ।

ସିରାଜ୍ ଉଦ୍ଦୌଲା ନବାବ ଗାଦିରେ ବସିବା ବେଳେ ଭାରତରେ ଇଂରାଜ ଓ ଫ୍ରେଞ୍ଚ୍ ଜାତିଙ୍କ ମଧ୍ୟରେ ଯୁଦ୍ଧ ହେବାର ଆଶଙ୍କା ଥିବାରୁ ଇଂରାଜମାନେ ଫ୍ରେଞ୍ଚ୍ ଆକ୍ରମଣରୁ କଲିକତାକୁ ରକ୍ଷା କରିବା ପାଇଁ ସେମାନଙ୍କର କଲିକତାସ୍ଥ କୋଠି ଓ ଫୋର୍ଟ୍ ଉଇଲିୟମ୍ ଦୁର୍ଗକୁ ନବାବଙ୍କ ବିନା ଅନୁମତିରେ ମରାମତି କଲେ । ନବାବ ଏହି ସମ୍ବାଦ ପାଇ ରାଗାନ୍ୱିତ ହୋଇ କଲିକତାସ୍ଥ ଦୁର୍ଗ ଆକ୍ରମଣ କରି ତତ୍ରତ୍ୟ ବନ୍ଦୀ କେତେକ ଇଂରାଜମାନଙ୍କୁ ଗୋଟିଏ ସଙ୍କୀର୍ଣ୍ଣ କାରାଗାରରେ ରାତିରେ ବନ୍ଦୀକରି ରଖିଲେ । ଏ ଗୃହରେ ପବନ ଯିବା ଆସିବାକୁ ଯଥେଷ୍ଟ ବାଟ ନ ଥିଲା । ସକାଳେ ଦେଖାଗଲା ଯେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ରୁଦ୍ଧ ହୋଇ ମରି ଯାଇ-ଥିଲେ । ଏହି ଘଟଣାକୁ ଇତିହାସରେ ଅନ୍ଧକୂପ ହତ୍ୟା (Tragedy of the Black-hole) ଲେଖା ଯାଇଅଛି । ମାନ୍ଦ୍ରାଜରେ ଥିବା ଇଂରାଜମାନେ ଏହି ସମ୍ବାଦ ଶ୍ରବଣରେ ଉତ୍ତେଜିତ ହୋଇ କ୍ଲାଇବଙ୍କ ନାୟକତ୍ୱରେ ସୈନ୍ୟ ସହିତ କଲିକତାକୁ ଆସି ସେଠାରୁ ମୁର୍ଶିଦାବାଦ ଆକ୍ରମଣ କରିବାକୁ ବାହାରିଲେ । ଏହା ଶୁଣି ସିରାଜ୍ ଉଦ୍ଦୌଲା କାଟରେ ପଲାସି ନାମକ କ୍ଷେତ୍ରରେ ସୈନ୍ୟ ସେନା ଉପସ୍ଥିତ ହେଲେ । ନବାବଙ୍କ ସେନାରେ ପଚାଶ ହଜାର ପଦାତିକ, ଅଠର ହଜାର ଅଶ୍ୱାରୋହୀ ଓ ୫୦ଟି ତୋପ ଥିଲା । ଇଂରାଜଙ୍କ ସେନାରେ ଏଗାର ଶହ ଇଂରାଜ ସୈନ୍ୟ, ଦୁଇ ହଜାର ଦେଶୀ ( ମାନ୍ଦ୍ରାଜୀ ) ସିପାହି ଓ ୧୦ଟି ମାତ୍ର ତୋପ ଥିଲା । ସିରାଜଙ୍କ ସେନାପତି ମୀର୍ ଜାଫରଙ୍କୁ ବଙ୍ଗର ନବାବରୂପେ ସିଂହାସନରେ ବସାଇବାର ଲୋଭ ଦେଖାଇ କ୍ଲାଇବ୍ ତାଙ୍କୁ କରଗତ କରି ନେଲେ ଏବଂ ପଲାସି ଯୁଦ୍ଧକ୍ଷେତ୍ରରେ (୧୭୫୭ ସାଲରେ ) ନବାବଙ୍କ ସୈନ୍ୟଙ୍କୁ ଆକ୍ରମଣ କଲେ । ନବାବଙ୍କ ସୈନ୍ୟମାନେ ଛତ୍ରଭଙ୍ଗ ଦେଇ ପଳାଇ ଗଲେ । ଫଳରେ କ୍ଲାଇବ୍ ଯୁଦ୍ଧରେ ଜୟୀ ହୋଇ ମୁର୍ଶିଦାବାଦକୁ ଅଗ୍ରସର ହେଲେ ଏବଂ ସେଠାରେ ମୀରଜା-ଫରଙ୍କୁ ବଙ୍ଗ ବିହାର ଓଡ଼ିଶାର ନବାବ ପଦରେ ବସାଇଲେ । ସିରାଜ ଉଦ୍ଦୌଲା ପଳାଇ ଗଲେ, କିନ୍ତୁ ମୀରଜାଫରଙ୍କ ପୁଅ ତାଙ୍କୁ ଧରାଇ ଆଣି ହତ୍ୟା କଲେ । ଏହି ଯୁଦ୍ଧ ଫଳରେ ମୀର୍ ଜାଫର୍ ଇଂରାଜମାନଙ୍କର ସମସ୍ତ କ୍ଷତି ପୂରଣ କଲେ ଓ କ୍ଲାଇବ୍ ପ୍ରଭୃତିଙ୍କୁ ପ୍ରଚୁର ଭେଟି ଦେଲେ । ପୁଣି ଇଂରେଜମାନଙ୍କୁ କଲିକତାର ଚତୁଃପାର୍ଶ୍ୱସ୍ଥ ଚବିଶ ପ୍ରଗଣାକୁ ଜାଗିରରୂପେ ଦେଲେ । ଫଳତଃ ପଲାସି ଯୁଦ୍ଧଠାରୁ ବଙ୍ଗଦେଶ ଇଂରାଜମାନଙ୍କ କରଗତ ହେଲା । ଶୁଣାଯାଏ ଯେ, ସିରାଜ ଉଦ୍ଦୌଲା ଅତ୍ୟାଚାରୀ ଥିଲେ ଏବଂ ଏହାଙ୍କ ଅତ୍ୟାଚାରପ୍ରପୀଡ଼ିତ ସାମନ୍ତ ରାଜା (ଯଥା—ନଦିଆର ରାଜା କୃଷ୍ଣଚନ୍ଦ୍ର), କୋଷାଧ୍ୟକ୍ଷ ଜଗତ୍ ସେଠ, କଲିକତାର ସେଠ ଉମିଚାନ୍ଦ) ଏହାଙ୍କୁ ସିଂହାସନଚ୍ୟୁତ କରିବାକୁ ଇଂରାଜମାନଙ୍କ ସହିତ ଷଡ଼ଯନ୍ତ୍ର କରିଥିଲେ । ]

ସିରାଜି—ବୈଦେ· ବ ( ଫା. ସିରାଜୀ )—ପାରସ୍ୟ ଦେଶୀୟ ଏକପ୍ରକାର
Sirāji ସୁମିଷ୍ଟ ଓ ମୃଦୁ ମଦ୍ୟ—A sweet and mild
সিরাজি wine of Persia. [ ଦ୍ର—ଏହାର ରଙ୍ଗ ଗୋଲାପୀ
सिराजी ଏବଂ ନିଶା ଚିତ୍ତଚାଞ୍ଚଲ୍ୟନାଶକ ଓ ଅନୁଗ୍ର ବୋଲି ପାରସ୍ୟ ସାହିତ୍ୟରେ ପ୍ରସିଦ୍ଧି ଅଛି । ]

ସିରାନ (ଇତ୍ୟାଦ)—ସ୍ତ୍ରୀ. ବ (ସଂ. ସ୍ନାନ)—ସିନାନ ଇତ୍ୟାଦ (ଦେଖ)
Sirāna (etc) Sināna etc ( See )

ସିରାନା—ଦେ. ବ (ସଂ. ଶିରଃସ୍ଥାନ)—ପଲଙ୍କର ମୁଣ୍ଡ ପାଖର ବାଡ଼—
Sirānā The railing attached to the head of
সিরানা सिराना a bedstead or couch

ସିର(ର)ପ୍—ବୈଦେ. ବ—ବୈଜ୍ଞାନିକ ପ୍ରଣାଳୀରେ କଦଳୀ, ଆମ୍ବ ଓ
Sirā(ra)p କମଳା ପ୍ରଭୃତି ଫଳରୁ ବାହାରିବା ରସ ବା ସାରାଂଶ
সিরাপ सिराप ସଙ୍ଗେ ମିଶ୍ରିତ ପ୍ରଚୀନକ—Syrup.

ସିରାମଇ—ଦେ. ବ (ସ. ଶିର+ଅମୟ)—ଶିରାମଇ (ଦେଖ)
Sirāmai Śirāmai. (See)

ସିରି—ପ୍ରାଦେ (ସମ୍ବଲପୁର) ବ—ସୂତା କାଟିବାରେ ବ୍ୟବହୃତ
Siri ତୁଳାର କଲଣା—Roll of cotton used for
शिबी Spinning thread; skein. ଦେ ବ—୧। ରାମାନୁଜ
सिरी ସମ୍ପ୍ରଦାୟର ବୈଷ୍ଣବମାନେ କପାଳରେ ତିଳକ ସଙ୍ଗେ
ଦେଉଥିବାର ନାଲି ବର୍ଣ୍ଣର ଚୂର୍ଣ୍ଣ— A red powder used by anchorites of the Rāmānuja sect to paint their forehead. ୨। ଶିରୀ ଇତ୍ୟାଦି (ଦେଖ)—2. Śiri etc (See)

ସିରକା—ବୈଦେ. ବ—ଶିର୍କା (ଦେଖ)—
Sirikā Śirkā (See)

ସିରଣି—ବୈଦେ ବ (ଫା. ସିର୍ନି)—ଶିରଣି (ଦେଖ)
Sirini śirini (See)

ସିରୟା—ଦେ. ବ (ନାମ)—ଶିରଥ (ଦେଖ)
Siriyā Śiriā (See)

ସିରସ—ବୈଦେ ବ (ଫା. ସିରେଶ୍)—ଗୋମେଷାଦିଙ୍କ ଚର୍ମ, ଖୁରୁ,
Sirisa ଶିଙ୍ଗ ଆଦି ଅଉଟା ହୋଇ ତିଆର କରାଯିବା ଏକପ୍ରକାର
सिबिस सरेस ଅଠା—Glue.
शिबीष शिरीष ଦେ ବ (ସ. ଶିରୀଷ)—ଶିରୀଷ (ଦେଖ)
Sirisha (See)

ସିରସ ଅଠା—ଦେ. ବ—୧। ଗୋମେଷାଦିଙ୍କ ଚର୍ମ, ଖୁରୁ, ଶିଙ୍ଗ ଆଦି
Sirisa athā ଅଉଟା ହୋଇ ପ୍ରସ୍ତୁତ କରାଯିବା ଏକପ୍ରକାର ଅଠା
सिबिश आंठा —1. Glue. [ଦ୍ର—ଏହା ଶୁଖାଯାଇ ରଖାଯାଇ ଥାଏ
सरेस ଓ ଏହାକୁ ପାଣିରେ ବତୁରାଇ କଥିଁରେ ଗରମ କଲେ ଯେଉଁ ଅଠା ହୁଏ, ସେଥିରେ କାଠ ଆଦି ଯୋଡ଼ା ହୁଏ।]
୨। ଶିରୀଷ ଗଛର ଅଠାକଅ ରସ; ଗୁନ୍ଦ ଅଠା—
2. Gum arabic.

ସିରସ କାଗଜ—ଦେ. ବ (ଫା. ସିରେଶ୍+ଫା. କାଗଜ)—କାଚକୁ
Sirisa kāgaja ବାଲିପରି ଚୂର୍ଣ୍ଣ କରି ତାକୁ ସିରସ ଅଠା ସାହାଯ୍ୟରେ
सिरिस कागज କାଗଜ ଉପରେ ବସାଇ ଶୁଖାଇ ତିଆର କରାଯିବା
सिरीस कागज କାଗଜ, ଯାହା ଦ୍ୱାରା କାଠ ପାଲିଶ ହୁଏ—
Glass paper. [ଦ୍ର—ଏହି କାଗଜରେ ଘଷି କାଠ ଓ ଧାତୁ ଦ୍ରବ୍ୟମାନ ପାଲିସ୍ କରାଯାଏ।]

ସିରି ସିରି—ଦେ. ଅ—ସିର୍ ସିର୍ (ଦେଖ)
Siri siri Śir sir (See)

(ଦେଖ) ସିରି ସିରି ହେବା—ଦେ. କ୍ରି—ସିର୍ ସିର୍ ହେବା (ଦେଖ)
Siri siri hebā Śir sir hebā (See)
(ସିରସିର[ରେ]ଇବା, ସିର ସିରିବା, ସିର ସିରା[ରେ]ଇ ଉଠିବା, ସିର ସିରା[ରେ]ଇ ହେବା—ଅର୍ଥସ୍ଥୁଳ)

ସିରୀ—ସ. ବ—୧। ତନ୍ତ (ହ. ଶ)—1. Weaver's loom. ୨।
Siri ଲାଙ୍ଗଳୀ; ଲାଙ୍ଗଳୀଗୁଳ୍ମ ଗୁଳ୍ମ (ହ. ଶ)—2. Wolfsbane (plant).

ସିର୍କସ୍ତ—ବୈଦେ ବ (ଫା. ଶିକସ୍ତ)—ଶିକସ୍ତ (ଦେଖ)
Sırkast Sıkast. (See)

ସିର୍କା—ବୈଦେ. ବ (ଫା)—ସିରକା (ଦେଖ)
Sirkā Sir-kā. (See)

ସିର୍କାସ୍ତ (ଇତ୍ୟାଦି)—ବୈଦେ. ବ (ଫା)—ଶିର୍କାସ୍ତ ଇତ୍ୟାଦି (ଦେଖ)
Sirkāst (etc) Śirkāst etc. (See)

ସିର୍ଜନ(ନା)—ଗ୍ରା ବ (ଅଶୁଦ୍ଧ 'ସୃଜନ'ର ବିକୃତ ଉଚ୍ଚାରଣ)—
Sirjana(nā) (ସ. ସର୍ଜନ) ସୃଷ୍ଟି; ସୃଷ୍ଟି—The creation.
সৃজন सिरजन

ସିଲ୍—ବୈଦେ. ବ (ଇଂ. ସୀଲ୍)—୧। ରାଜା ଆଦିଙ୍କ ନାମାଙ୍କିତ
Sil ମୋହର; ନାମାଙ୍କିତ ମୁଦ୍ରା [ଦ୍ର-ଏଥିରେ ଅକ୍ଷରଗୁଡ଼ିକ ଓଲଟା
সীল. ହୋଇ ଖୋଳା ହୋଇଥାଏ; ଲଫାଫାକୁ ଗରଲାଇ ଚିଠି ବା
सील ପାର୍ଶେଲ୍ ଉପରେ ଦେଇ ତା ଉପରେ ସିଲ୍ ଚାପି ଦେଲେ ସିଲ୍‌ର ଅକ୍ଷରଗୁଡ଼ିକ ସିଧା ଭାବରେ ଉଠେ। ରେଜିଷ୍ଟ୍ରୀ ଓ ଇନ୍‌ସିଓର୍ କରାଯିବା ଚିଠି ବା ପାର୍ଶେଲ ସିଲ୍ କରା ନ ହେଲେ ଡାକଘର ତାହା ଗ୍ରହଣ କରେ ନାହିଁ]—1. Seal. ୨। ନାମାଙ୍କିତ ମୋହର ଦ୍ୱାରା ଚିଠି ଉପରେ ବସାଯିବା ମୁଦ୍ରା —2. The seal put over a cover. ୩। (ଇଂ. Spelter) ଦସ୍ତା—3. Zinc. ବୈଦେ ବ (ଇଂ: ସୀଲ୍)
সীল —ଉତ୍ତର ଓ ଦକ୍ଷିଣର ଶୀତପ୍ରଧାନ ଅଞ୍ଚଳର ଉପକୂଳବର୍ତ୍ତୀ
सील ପ୍ରଶାନ୍ତ ଓ ଆଟଲାଣ୍ଟିକ୍ ସମୁଦ୍ରରେ ବିଚରଣ କରୁଥିବା ଏକପ୍ରକାର ଜଳଜନ୍ତୁ—The seal; Phoca Vitulina. [ଦ୍ର—ଏମାନଙ୍କ ମୁହଁ କୁକୁର ଓ ବିରାଡ଼ିଙ୍କ ମୁହଁପରି ଏବଂ ଏମାନଙ୍କ ମୁହଁରେ ବିରାଡ଼ି ଆଦିଙ୍କ ପରି ନିଶ ଅଛି। ସାଧାରଣତଃ ଏମାନଙ୍କର ନଖ ଓ ଅଙ୍ଗୁଠିଯୁକ୍ତ ହାତପରି ଦୁଇଟି ଡେଣା ଓ ଖୁବ ଚଉଡ଼ା ଗୋଟିଏ ବା ଯୋଡ଼ିଏ ଲାଞ୍ଜ ଥାଏ। ଏମାନେ ଅଗ ହାତ ବା ଡେଣା ଦ୍ୱାରା ସ୍ଥଳଭାଗ ଉପରକୁ ବହୁଦୂର ଯାଏ ଉଠି ଆସି ପାରନ୍ତି। ଭିନ୍ନ ଭିନ୍ନ ଜାତିର ଓ ଆକାରର ସିଲ୍‌ମାନଙ୍କର ସ୍ଥଳଚର ଭିନ୍ନ ଭିନ୍ନ ଜୀବଙ୍କ ସଙ୍ଗେ ସାଦୃଶ୍ୟ ଥିବା ଯୋଗୁଁ ସିନ୍ଧୁହସ୍ତୀ, ସିନ୍ଧୁବିଡ଼ାଲ, ସିନ୍ଧୁସିଂହ, ସିନ୍ଧୁବ୍ୟାଘ୍ର ଆଦି ନାମ ହୋଇଥାଏ। ଏମାନଙ୍କ ଚମଡ଼ା ଓ ଚର୍ବି ଯୋଗୁଁ ଲୋକେ ଏମାନଙ୍କୁ ଶିକାର କରନ୍ତି। କେତେକ ସିଲ୍‌ଙ୍କ ଦେହରେ ଖୁବ୍ ସୂକ୍ଷ୍ମ ଓ କୋମଳ ଲୋମ ଥାଏ। ସେହି ଲୋମରେ ପୋଷାକ କରାଯାଏ। ଉତ୍ତରମେରୁ ପ୍ରଦେଶରେ ବାସ କରୁଥିବା ଏସ୍କିମୋ ନାମକ ଜାତି ଏମାନଙ୍କୁ ଶିକାର କରନ୍ତି, କାରଣ ଏହା ସେମାନଙ୍କର ଏକମାତ୍ର ଖାଦ୍ୟ। ସେମାନେ କଞ୍ଚା ସିଲ ମାଂସ ଭକ୍ଷଣ କରନ୍ତି। ଛୋଟ ନୌକାରେ ଜଣେ ଏସ୍କିମୋ ବସି ସମୁଦ୍ରକୁ ଯାଏ ଓ ସିଲ୍‌କୁ ଦେଖିବା ମାତ୍ରେ ଏକପ୍ରକାର ବର୍ଚ୍ଛୀ ବା ତେଣ୍ଟା ତା ଉପରକୁ ଫିଙ୍ଗେ। ଉକ୍ତ ବର୍ଚ୍ଛୀର ବେଣ୍ଟ ଗୋଟିଏ ଦଉଡ଼ିରେ ଉକ୍ତ ଶିକାରୀର ହାତରେ ବନ୍ଧା ହୋଇଥାଏ। ସିଲ୍ ଦେହରେ ତେଣ୍ଟା ବିଦ୍ଧ ହେବା ପରେ ସେହି ଦଉଡ଼ି ଟାଣିବାଦ୍ୱାରା ସିଲ୍‌କୁ ଶିକାରୀ ନିକଟକୁ

ସିଲ ବଙ୍ଗୀୟ ବଂଶୋପାଧି ବିଶେଷ—A family title in Bengal. [ ବ୍ର—କଲିକତାର ପ୍ରସିଦ୍ଧ ସିଲବଂଶୀୟ ଜମିଦାରମାନଙ୍କର ବାର୍ଷିକ ବହୁ ଲକ୍ଷ ଟଙ୍କାର ଅୟବିଶିଷ୍ଟ ଜମିଦାରୀ ବଙ୍ଗ ଦେଶ ଭମାନ୍ତ ବ୍ୟାପ୍ତ ।] ପ୍ରାଦେ (ସମ୍ବଲପୁର, କଟ୍ଟର) ବ—ଶିଳ—Pasting stoneslab.
ସীল

ସିଲ୍ କ(ମା)ରବା—ଦେ॰ କ୍ରି—୧ । ଚିଠି ଅବା କାଗଜ ବନ୍ଦ କରି ବାକ୍ସ ବା ଅଦା ତା ଉପରେ ସେଥିରେ ନାମାଙ୍କିତ ମୋହର ବା ଜତୁମୁଦ ବସାଇବା—1. To seal a box or letter. [ବ୍ର—ଏପରି କଲେ ସିଲ୍ ର ଅଧିକାରୀ ଭିନ୍ନ ଅନ୍ୟ କେହି ତାଙ୍କ ଅଜ୍ଞାତସାରରେ ବାକ୍ସ ବା ଚିଠି ଖୋଲି ପାରିବେ ନାହିଁ ।] ୨ । ସରକାରୀ ଆଦେଶପତ୍ର ଆଦି ଉପରେ ହାକିମଙ୍କ ନାମଯୁକ୍ତ ମୋହର ଛାପିବା—2. To put a court's or official seal on any document.
Sil ka(mā)ribā
সিল ক(মা)রা
सील करना

ସିଲ୍ଚର—ଦେ॰ ବ (ନାମ)—ମଣିପୁର ରାଜ୍ୟର ପୂର୍ବବର୍ତ୍ତୀ ଅସାମର ଗୋଟିଏ ନଗର—Silchar (town) in Assam. [ବ୍ର—ଏଠାରେ ବ୍ରିଟିଶ ଭାରତର 'ଲୁସାଇ ପାହାଡ଼'ର ନିକଟବର୍ତ୍ତୀ ଗୋଟିଏ ମହକୁମା ବା ସବଡ଼ିଭିଜନ ଅଛି ।]
Sil-chara
সিলচর
सिलचर

ସିଲ୍(ଲି)ପଟ୍(ର୍)—ବୈଦେ. ବ ( ଇଂ. ସ୍ଲିପର୍ )—ରେଲ ଲାଇନ ତଳେ ଆଡ଼ ବାଗରେ ପକାଯିବା କାଠର ଖଣ୍ଡ—Railway sleepers.
Sil(li)paṭ(r)
সিলপট
सिलपट

ସିଲ୍(ଲି)ପଟ୍(ଟା)—ବୈଦେ. ବଣ ( ଇଂ. ସ୍ଲିପର୍ )—୧ । ସିଲ୍ପଟ୍ ପରି ସମତଳ ଓ ପତଳା—1. Level and thin like the body of a sleeper. ୨ । କାର୍ଶ୍ୟ; କ୍ଷୀଣ—2. Emaciated. [ବ୍ର—ଯେଉଁ ସ୍ତ୍ରୀଙ୍କ ସ୍ତନ ଉନ୍ନତ ନ ହୋଇ ବକ୍ଷସ୍ଥଳରେ ଲୀନପ୍ରାୟ ହୋଇଥାଏ ଏବଂ ଯେଉଁ ସ୍ତ୍ରୀଙ୍କ ଶରୀର ପାଶ ପଟିକା ଦେଖାଯାଏ, ତାହାଙ୍କ ବକ୍ଷସ୍ଥଳକୁ ସିଲ୍ପଟ୍ ସଙ୍ଗେ ତୁଳନା କରାଯାଏ ।]
Sil(li)paṭ(ṭā)
(ସିଲ୍[ଲି]ପଟିଆ—ଅନ୍ୟରୂପ)
সিলপট
सिलपट

ସିଲ୍ପା—ପ୍ରାଦେ. (ସମ୍ବଲପୁର) ବ—ଶିଳପୁଅ—Stone-pestle.
Silpā

ସିଲ୍ବ(ଭ)ର—ବୈଦେ. ବ—୧ । ( ଇଂ. ସିଲ୍ଭର୍ ) ରୌପ୍ୟ; ରୁପା—1. Silver. ୨ । (ଇଂ. ଜର୍ମାନ୍ ସିଲ୍ଭର୍) ରାସାୟନିକ ପ୍ରକ୍ରିୟାରେ ନିର୍ମିତ ଓ ରୁପାପରି ଦେଖାଯିବା ଏକପ୍ରକାର ଧାତୁ—2. German silver.
Silba(bha)r
সিলভর
सिलभर

ସିଲ୍ବ(ଭ)ର୍ ଜୁବ(ବୁ)ଲି—ବୈଦେ. ବ (ଇଂ. ସିଲ୍ଭର୍ + ଜୁବିଲି )—ରାଜାଙ୍କର ୨୫ ବର୍ଷ ରାଜତ୍ୱ ପୂରିବା ଉପଲକ୍ଷରେ ଅନୁଷ୍ଠିତ ଆନନ୍ଦୋତ୍ସବ—Silver-jubilee.
Silba(bha)r jubi(bu)li
সলভর জুবিলি
सिलभर जुबिली

ସିଲ୍ ମୁଦ—ଦେ. ବ (ଇଂ. ସୀଲ୍ + ସଂ. ମୁଦ୍ରା)—ଚିଠି ଆଦି ଲଫାପାରେ ବନ୍ଦ ହେବା ପରେ ତା ଉପରେ ସିଲ୍ ମାରିବା—Sealing of a closed cover.
Sil muda
সিল ছাপ
लाल मुहर

ସିଲ୍ ମୁଦି—ଦେ. ବ—ଯେଉଁ ଅଙ୍ଗୁରୀୟକରେ ବ୍ୟକ୍ତିବିଶେଷଙ୍କ ନାମ ଖୋଳା ହୋଇଥାଏ—A ring containing a name engraved on it; signet ring.
Sil mudi
সিল আঙটি
मोहरवाली अँगुठी

ସିଲ୍ ମୋହ(ହୋ)ର—ବୈଦେ. ବ (ଏକାର୍ଥକ ସହଚର; ଇଂ. ସିଲ୍ + ଅ. ମୁହର୍ = ମୁଦ୍ରା )—ନାମାଙ୍କିତ ମୁଦ୍ରା ବା ମୋହର—A seal.
Sil moha(ho)ra
সিল মোহর
सिल मोहर

ସିଲ୍ଲୋଡ଼ା—ପ୍ରାଦେ. ( କଟ୍ଟର ) ବ—ଶିଳୁପା; ଶିଳପୁଅ—Stone-pestle.
Sil-lorḍā

ସିଲ୍ ସିଲ—ବୈଦେ. ବ ( ଫା. )=ବ୍ୟବସ୍ଥା; ବନ୍ଦୋବସ୍ତ—Arrangement. ପ୍ରାଦେ ( ଛତିଶଗଡ଼ ) ବ—ପ୍ରବାଦ—Proverb; saying.
Sil-silā

ସିଲ୍ହଟ୍—ଦେ. ବ ( ନାମ )—ସିଲଟ୍ [ ଦେଖ ]
Sil-haṭ
Silaṭ [ See ]

ସିଲ—ପ୍ରାଦେ. ( ଗଞ୍ଜାମ ଓ ଗଡ଼ଜାତ ) ବ—ଶିଳ [ ଦେଖ ]—1. Śila [ See ] ୨ । ( ସମ୍ବଲପୁର ) ଶିଳ—2. A stone slab used as mortar. ଦେ. ୧ । ଶିଳ [ ଦେଖ ]—1. Śila [ See ] ୨ । ଶସ୍ତାପଣ—2. Cheapness, ୩ । ସୁବିଧା—3. Convenience. ଦେ. ବଣ—୧ । ଶସ୍ତା—1. Cheap. ୨ । ସୁବିଧାଜନକ—2. Convenient.
Sila
সুবিধা
सुविधा
শস্তা
सुविधाजनक

ସିଲ ( ଇତ୍ୟାଦ )—ପ୍ରାଦେ. ବ—ଶିଳ ଇତ୍ୟାଦ [ ଦେଖ ]
Sila ( etc )
Śila etc [ See ]

ସିଲଖ(ଖି)ଲା—ପ୍ରାଦେ. (କୈାଦ) ବ—ଶୃଙ୍ଖଳା—Method. [ବ୍ର—କାମଟା ସିଲଖିଲରେ ପଡ଼ୁନିବ ।]
Silakha(khi)lā

ସିଲଙ୍ଗ—ଦେ. ବ ( ନାମ )—ଅସାମ ପ୍ରଦେଶର ଲାଟ ସାହେବଙ୍କ ଗ୍ରୀଷ୍ମାବାସ ରାଜଧାନୀ—Shillonin Assam. [ବ୍ର—ଏହା ଖାସୀ ବା ଜଇନ୍ତିଆ ଜିଲ୍ଲାର ରାଜଧାନୀ ଏବଂ ପର୍ବତ ଉପରେ ଅବସ୍ଥିତ । ଏହି ପର୍ବତରୁ ଗୋଟିଏ ନଦୀ ବାହାରି ବ୍ରହ୍ମପୁତ୍ରରେ ମିଶିଅଛି ।]
Silaṅg
সিলঙ্গ
सिलांग

ସିଲଟ୍—ବୈଦେ. ବ ( ଇଂ. ସ୍ଲେଟ୍ )—ସ୍ଲେଟ୍ ପଥର; ପେନ୍ସିଲ୍ ରେ ଲେଖିବା ପାଇଁ ଶିଶୁମାନଙ୍କ ବ୍ୟବହୃତ କୃଷ୍ଣବର୍ଣ୍ଣ ପ୍ରସ୍ତରର ବା ମାଟିର ଫଳକ—Slate. ଦେ. ବ ( ନାମ )—ସିଲ୍ହଟ୍; ଅସାମ ପ୍ରଦେଶର ମଧ୍ୟବର୍ତ୍ତୀ ଗୋଟିଏ ଜିଲ୍ଲା ଓ ତହିଁର ରାଜଧାନୀ—Sylhet; a district and town in Assam. [ବ୍ର—ଏହା ନିକଟରେ ଗୋଟିଏ ନଦୀ ବହୁଥାଏ 'ବ୍ରହ୍ମପୁତ୍ର'ରେ ପଡ଼ୁଅଛି । ଏଠାରେ ପ୍ରଚୁର ପରିମାଣରେ ମିଠା କମଳାଲେମ୍ବୁ ମିଳେ ।] ଦେ. ବଣ—ସିଲଟି ( ଦେଖ )
Silaṭ
সিলেট
सिलेट
সিলহেট
सिलहट
Silaṭi ( See )

ସିଲଟ୍ (ଟି) କମଳା—ଦେ. ବି—ସିଲହଟ୍ ଅଞ୍ଚଳର ମିଠା ଲେମ୍ବୁ—
Silaṭ (ṭi) kamalā Sweet orange of Sylhet.
সিলহেট কমলা सिलहट कमला

ସିଲଟ୍ ଖଡ଼ି—ଦେ. ବି—ସିଲଟ୍ ପିନ୍‌ସିନ୍ (ଦେଖ)
Silaṭ khaṛi silaṭ pin-sin (See)
সিলেট পেনসিল सिलेट पेनसिल

ସିଲଟ୍ ପଟା—ଦେ. ବି—ସ୍ଲେଟ୍ ଫଳକ—Slate.
Silaṭ paṭā সিলেট सिलेट पटा

ସିଲଟ୍ ପି(ପେ)ନ୍(ନ)ସିନ୍(ଲ୍, ନି, ଲି)—ବୈଦେ. ବି (ଇଂ. Silat pi(pe)n(ni)sin(l, ni, li) ସ୍ଲେଟ୍ ପେନ୍‌ସିଲ୍)—
সিলেট পেনসিল सिलेट पेनसिल ୧। ସ୍ଲେଟ ଉପରେ ଲେଖିବା (ସିଲଟ୍ ପି[ପେ]ନ୍ସିନ୍[ଲ୍, ନି, ଲି]—ଅନ୍ୟରୂପ) ପାଇଁ ବ୍ୟବହୃତ ମାଟିର ଲେଖଣୀ—1. Slate-pencil. ୨। ଲେଖିବାର ଉପକରଣଦ୍ୱୟ-ସ୍ଲେଟ୍ ଓ ପେନ୍‌ସିଲ୍—
2. Slate and pencil.

ସିଲଟି—ଦେ. ବିଣ—ଅସାମର ସିଲହଟ୍ ଅଞ୍ଚଳର—Belonging to
Silaṭi to Sylhet. (ଯଥା—ସିଲଟି କମଳା।)
সিলহেটী सिलहटिया

ସିଲନ୍ଦ(ଧ)—ଫ. ବି—ଶିଲନ୍ଦ (ଦେଖ)
Silanda(ndha) silinda (See)

ସିଲା—ବୈଦେ. ବି (ଅ. ସିଲହ୍)—୧। ଜମିର ଡାଳା; ଜମିର ଖଣ୍ଡ—
Silā 1. A strip or plot of land. ୨। ଲମ୍ବ
କିতা କମ୍ ଚଉଡ଼ାବିଶିଷ୍ଟ ଲମ୍ବା ଖେତ; ପଟି—2. A long or,
কিতা thin strip of ୩। ଭାଗବାଣ୍ଟରେ ପ୍ରତ୍ୟେକ ଅଂଶୀଦାରର ହିସାବରେ ପଡ଼ିଥିବା ଜମିର ଅଡ଼ିଲ ଲମ୍ବା ପଟି—
3. A long strip or block of land allotted to each co-sharer in a partition. ଗ୍ରାଦେ. ବି—୧। (ବାଲେଶ୍ୱର) ଏକପ୍ରକାର ଲୁଣି ମାଛ—1. A species of sea-fish. ୨। (ଗଡ଼ଜାତ) କୋବି (ଦ୍ରଷ୍ଟବ୍ୟ. ବି.ବ୍ୟୁ.ଗୁଣ)—2. Cabbage.

ସିଲା(ଲେ)ଇ—ଦେ. ବି (ସଂ. ସିବ୍ ଧାତୁ)—
Silā(le)i ସୀବନ—Sewing.
সেলাই सीलाइ

ସିଲା(ଲେ)ଇ କରିବା—ଦେ. କ୍ରି—ସିଇଁବା—To sew.
Silā(le)i karibā সেলাই করা सीलाइ करना

ସିଲା(ଲେ)ଇ କଳ—ଦେ. ବି—ସିଇଁବା ପାଇଁ ବ୍ୟବହୃତ ଯନ୍ତ୍ର—
Silā(le)i kaḷa Sewing machine.
সেলাইএর কল सीलाइ कल

ସିଲାଉଆରି(ରୀ)—ବୈଦେ. ବିଣ(ଫା)—୧। ସିଲି ସମ୍ବନ୍ଧୀୟ—
Silāuār(ri) 1. Relating to strips or allotments.
কিতাওয়ারী ଦେ. କ୍ରି. ବିଣ—ସିଲା ସିଲା କରି—In strips.
कीतावार (ସିଲାଵାରି[ରି]—ଅନ୍ୟରୂପ)

ସିଲା ଉଆରି ଜରିବ—ବୈଦେ. ବି(ଫା)—ଡଳା ଡଳା କରି ମାପ; ଜମିର
Silā uāri jariba ଡଳା ଡଳା କରି ମାପିବା—The measrement of land by strips.
সিলা ওয়ারী জরিব
कितावार जरीब
ସିଲା ଉଆରି ମାପ, ସିଲା ବାରି ଜରିବ, ସିଲା ବାରି ମାପ } ଅନ୍ୟରୂପ

ସିଲା(ଲେ)ବସ୍—ବୈଦେ. ବି (ଇଂ. ସିଲାବସ୍)—ପାଠ୍ୟ ନିର୍ଘଣ୍ଟ;
Silā(le)bas ଶିକ୍ଷାବର୍ଷରେ ବର୍ତ୍ତିପକ୍ଷଙ୍କଦ୍ୱାରା ନିର୍ଦ୍ଧାରିତ ପାଠ୍ୟ
সিলেবস सिलेबस ସମ୍ବନ୍ଧୀୟ ପ୍ରକୋଷ୍ଠ ବା ତାଲିକା—Syllabus.

ସିଲି—ଗ୍ରାଦେ. (ସମ୍ବଲପୁର) ବି—ଶଗଡ଼ ଚକ—
Sili Cart-wheel.

ସିଲିକ୍—ବୈଦେ. ବି (ଇଂ. ସିଲ୍କ୍)—ସିଲ୍କ; ରେଶମ—Silk.);
Silik ବୈଦେ. ବିଣ—ରେଶମୀ—Silk (as in silk cloth);
[ ସିଲ୍କ—ଅନ୍ୟରୂପ ] silken.

ସିଲି ଗୁଡ଼ି—ଦେ. ବି (ନାମ)—ବଙ୍ଗ ଲାଟଙ୍କ ଗ୍ରୀଷ୍ମକାଳୀନ ଦାର୍ଜିଲିଙ୍ଗର
Sili gurdi ଯିବା ରେଳପଥର ଗୋଟିଏ ଷ୍ଟେସନ୍—Siliguri, a
সিলিগুড়ি सिलि गुडि railway station near Darjeeling.

ସିଲିଙ୍ଗ୍—ବୈଦେ. ବି (ଇଂ. ଶିଲିଙ୍ଗ୍)—ବିଲାତପ୍ରଚଳିତ ରୌପ୍ୟ
Siling ମୁଦ୍ରା—Shilling (coin.)
সিলিঙ্গ सिलिंग (ସିଲିଂ-ଅଶୁଦ୍ଧ ବନାନ)

ସିଲିନ୍ଦ(ଧ)—ଫ. ବି (ଅନ୍ୟରୂପ ଶିଳନ୍ଦ)—ଶିଲନ୍ଦ (ଦେଖ)
Silinda(ndha) Silinda. (See)

ସିଲିପ୍(ପି)—ବୈଦେ. ବି (ଇଂ. ସ୍ଲିପ୍)—କାଗଜର ଛୋଟ ଖଣ୍ଡ—
Silip(pi) Slip of paper.
সিল্প स्लीप

ସିଲିବ(ଭ)ର୍—ବୈଦେ. ବି—ସିଲ୍‌ବର୍ (ଦେଖ)
Siliba(bha)r Sil-bar. (See)

ସିଲି ସିଲି—ଦେ. ବିଣ ଓ କ୍ରି ବିଣ—ମୃଦୁ ମୃଦୁ (ପବନ)—Sweet
Sili sili and mild (breeze). [ ଯଥା—ସିଲିସିଲି ପବନ ଫୁରଫୁରେ ସନସନ ହିଲିକେଲିରେ। ଫକୀରମୋହନ, ଗଳ୍ପସ୍ୱଳ୍ପ।]

ସିଲେଇ (ଇତ୍ୟାଦି)—ଦେ. ବି—ସିଲାଇ ଇତ୍ୟାଦି (ଦେଖ)
Silei (etc) Silāi etc. (See)

ସିଲେକ୍ଟ୍—ବୈଦେ. ବି (ଇଂ. ସିଲେକ୍ଟେଡ୍)—ବଚାଚତ; ବଛା
Silekṭ ହୋଇ ଥିବା—Selected.
সিলেক্ট सिलेक्ट

ସିଲେକ୍ଟ କମିଟି—ବୈଦେ. ବି (ଇଂ. ସିଲେକ୍ଟ୍ କମିଟୀ)—କୌଣସି
Silekṭ kamiṭi ସଭାର ବହୁ ସଭ୍ୟଙ୍କ ମଧ୍ୟରୁ ବଛିଥିବା ବିଷୟର
সিলেক্টকমিটি ଆଲୋଚନାର୍ଥ ବଚାଚତ କେତେକ ସଭ୍ୟଙ୍କ ଦ୍ୱାରା
सिलेक्टकमिटि ଗଠିତ ସମିତି—Select committee.

ସିଲେକ୍ଟ କରିବା—ବୈଦେ. କ୍ରି.—ବଚାଚନ କରିବା—
Silekṭ karibā To select.
সিলেক্ট করা सिलेक्ट करना

ସିଲେକ୍ସନ୍—ବୈଦେ. ବ ( ଇଂ. ସିଲେକ୍ସନ୍ )—୧ । ବହୁ ଲୋକ Sileksan ବା ବସ୍ତୁ ମଧ୍ୟରୁ ବଛାବଛି—1. Selection. ୨। ବହୁ ସିଲେକ୍ସନ ପୁସ୍ତକରୁ ବା ଲେଖାରୁ ସଂଗୃହୀତ ଓ ଉଦ୍ଧାରିତ ସଙ୍କଳନ— सिलेक्सन 2. Selection of passages or extracts from various sources.

ସିଲେକ୍ସନ୍ କମିଟି—ବୈଦେ. ବ୍ରୁ (ଇଂ)—ଯେଉଁ କମିଟି କୌଣସି Sileksan kamiṭi କର୍ମ ପାଇଁ ବହୁ ପ୍ରାର୍ଥୀଙ୍କ ମଧ୍ୟରୁ ଉପଯୁକ୍ତ ସିଲେକ୍ସନ କମିଟି ବ୍ୟକ୍ତି ବାଛନ୍ତି—Selection committee. सिलेक्सन कमिटि

ସିଲେଟ୍ (ଇତ୍ୟାଦି)—ବେଦେ. ବ—ସିଲଟ ଇତ୍ୟାଦି (ଦେଖ) Sileṭ (etc) Silaṭ etc. (See)

ସିଲୋନ୍—ବୈଦେ. ବ (ନାମ) (ଇଂ. ସିଲୋନ୍; ଭୁଲ. ସଂ. ସିଂହଳ)— Silon ସିଂହଳଦ୍ୱୀପ; ଲଙ୍କା—Ceylon. ସିଲୋନ सिलोन

ସିଲ୍କ୍—ବୈଦେ. ବ ଓ ବଣ—ସିଲିକ୍ (ଦେଖ) Silk Silik. (See)

ସିଲ୍ପ(ଲ୍ପି)—ବେଦେ. ବ—ସିଲିପ୍ (ଦେଖ) Silp(lpi) Silip. (See)

ସିଲ୍ବର୍—ବୈଦେ. ବ—ସିଲ୍ ବର୍ (ଦେଖ) Silbhar Sil-bar. (See)

ସିଲ୍ଲ—ପ୍ରାଦେ (ଗଞ୍ଜାମ)—୧ । ବିଦାୟ—1. Leave to go Silla away. ୨ । ଅନୁମତି—2. Permission.

ସିଲ୍ଲ ହେବା—ପ୍ରାଦେ [ଗଞ୍ଜାମ] କି—ବିଦାୟ ଗ୍ରହଣ କରିବା— Silla hebā To take leave.

ସିଲ୍ଲିଙ୍ଗି ଦେବା—ପ୍ରାଦେ [ଜୟପୁର] କି. [ତେ. ସିଲ୍ଲିଂଗି]—ପାଙ୍ଗିବା Sillingi debā (ଦେଖ)—Pāngibā. (See)

ସିଲ୍ହକ—ସଂ. ବ—ଶିଳାରସ [ହି. ଶ] Silhaka Benzoin; styrax. [ ସିଲ୍ହ—ଅନ୍ୟରୂପ ]

ସିସ୍ (ଇତ୍ୟାଦି)—ଦେ. ବ (ଧ୍ୱନ୍ୟନୁକରଣ)—ଶିସ୍ ଇତ୍ୟାଦି (ଦେଖ) Sis (etc) Śis etc. (See)

ସିଶୁ(ଶୁ)—ଦେ. ବ [ ସଂ. ଶିଂଶପା ]—୧ । ଶିଶୁ୫ [ ଦେଖ ]— Siśu(su) 1. Śiśu 5. (See) ୨ । ଶିଂଶପା ଗଛ—2. The ଶିଶୁ शिशुक sissoo tree.

ସିଷର—ଦେ. ବ [ ସଂ. ଶୁଷିର]—ସିଟି; ସିଟି ମାରିବା ଯନ୍ତ୍ର— Sishara ସିଟି सिटी A whistle.

ସିଷାଧୟିଷା—ସଂ. ବ [ସାଧ୍ ଧାତୁ+ଇଚ୍ଛାର୍ଥେ ସନ୍+ଭାବ. ଅ+ Sishādhayishā ଆ]—ସାଧନ କରିବାର ଇଚ୍ଛା— A desire to accomplish.

ସିଷାଧୟିଷୁ—ସଂ. ବଣ [ସାଧ୍ ଧାତୁ+ଇଚ୍ଛାର୍ଥେ ସନ୍+କର୍ତ୍ତୃ. ଉ]—ସାଧନେଚ୍ଛୁ—Desirous of sishādhayishu accomplishing.

ସିଷୁମ୍ଣା(ମ୍ନା)—ଗ୍ରା. ବ [ପଦ୍ୟ]—ସୁଷୁମ୍ନା [ଦେଖ] Sishumuṇā(nā) Sushumṇā. [See]

ସୁଷୁମ୍ନା [ଦ୍ର—ପିଅଁଳା ଯମୁନା ନଦୀ ଅଟଇ, ସିଷୁମ୍ନା ସରସ୍ୱତୀ ସେ सिशुमणा ହୋଇ । ପ୍ରାଚୀ. ସରଳେ ଗୀତା ।]

ସିଷୁମ୍ନା(ମ୍ନା)—ଦେ. ବ [ପଦ୍ୟ]—ସୁଷୁମ୍ଣା [ଦେଖ] Sisbumnā(mnā) Sushumṇā. [See]

ସୁଷୁମ୍ନା [ଦ୍ର—ଇଅଁଳା ପିଅଁଳା ସିଷୁମ୍ନା ତିନ । ପ୍ରାଚୀ. ସରଳେ सिशुमणा ଗୀତା ।]

ସିସଲ—ବୈଦେ. ବ [ଆ. ସିଲ୍ ସିଜ୍ଲ]—୧ । ବ୍ୟବସ୍ଥା— Sisala 1. Arrangement. ୨ । ନିଷ୍ପତ୍ତି; ମୀମାଂସା— ବ୍ୟବସ୍ଥା 2. Decision. ବୈଦେ. ବଣ—ମୀମାଂସିତ— सिलसिला Decided; settled.

ସିସା (ଇତ୍ୟାଦି)—ଦେ. ବ [ସଂ. ସୀସକ]—ଶିଶା ଇତ୍ୟାଦି [ଦେଖ] Sisā (etc) Śisā etc. [See]

ପ୍ରାଦେ [କୌଦ] ବ—ଉଡ଼ନ୍ ପେନ୍ସିଲ୍—Wooden pencil.

ସି[ସିଂ,ସିଁ]ସି—ବୈଦେ. ବ [ପା. ଶିଶୀ]—ଶିଶି [ଦେଖ] Si[sim,siṅ]si Śiśi. [See]

ସିସି(ସେ)ରୋ—ବୈଦେ. ବ[ଲାଟିନ୍ ନାମ]—ରୋମର ସୁପ୍ରସିଦ୍ଧ ଦାର୍ଶନିକ Sisi(se)ro ପଣ୍ଡିତ ଓ ବାଗ୍ମିପ୍ରବର—The great orator ସିସୋରୋ Cicero. [ଦ୍ର—ଏହାଙ୍କର ଜନ୍ମ ଖ୍ରୀ: ପୂ: ୧୦୬ ଏବଂ ମୃତ୍ୟୁ सिसिरो ଖ୍ରୀ: ପୂ: ୪୩ ଅବ୍ଦରେ । ଏ ବ୍ୟବହାରଶାସ୍ତ୍ରବୃତ୍ତି ଅବଲମ୍ବନ କରି ନିଜ ବାଗ୍ମିତାର ଉନ୍ନତି ସାଧନାର୍ଥେ ଗ୍ରୀସ୍‌କୁ ଯାଇ ସେଠାରେ ବହୁ ପଣ୍ଡିତଙ୍କଠାରୁ ବାଗ୍ମିତା ଶିକ୍ଷା କରିଥିଲେ ଏବଂ ୫୦ ବର୍ଷ ବୟସରେ ରୋମ୍ ସାମ୍ରାଜ୍ୟର ଏକ ପ୍ରଦେଶର ଶାସନକର୍ତ୍ତା [Consul] ରୂପେ ମଫସଲକୁ ପ୍ରେରିତ ହେଲେ । ପରେ ଶତ୍ରୁମାନଙ୍କ ଚକ୍ରାନ୍ତରୁ ଭୟ ସ୍ୱଦେଶ ଛାଡ଼ି ପଳାଇଥିଲେ, କିନ୍ତୁ ପୁଣି ଦେଶକୁ ଫେରି ଆସିଲେ । ଏହାଙ୍କ ଶତ୍ରୁମାନେ ସିଜର୍‌ଙ୍କ ହତ୍ୟାକାଣ୍ଡରେ ଏ ଲିପ୍ତ ଥିବାର ପ୍ରମାଣିତ କରିବାରୁ ଏହାଙ୍କୁ ତତ୍କ୍ଷଣାତ ଦଣ୍ଡାଜ୍ଞା ହେଲା ଏବଂ ଏ ଦଣ୍ଡ ଏଡ଼ିବା ନିମନ୍ତେ ପଳାଇ ଯାଉ ଯାଉ ବାଟରେ ଶତ୍ରୁମାନେ ଏହାଙ୍କ ଶିରଚ୍ଛେଦନ କଲେ । ଏହାଙ୍କର ବାଗ୍ମିତାପୂର୍ଣ୍ଣ ବକ୍ତୃତାମାନ ଯାବତୀୟ ସଭ୍ୟ ଭାଷାରେ ଅନୁବାଦିତ ହୋଇ ୨୦୦୦ ବର୍ଷ ପରେ ମଧ୍ୟ ଆଜି ପଣ୍ଡିତମାନଙ୍କର ବହୁ ସମାଦର ଲାଭ କରୁଅଛି ।]

ସିସୃକ୍ଷା—ସଂ. ବ ( ସୃଜ୍ ଧାତୁ+ଇଚ୍ଛାର୍ଥେ ସନ୍+ଭାବ. ଅ+ଆ)— Sisṛukshā ସର୍ଜନ ବା ନିର୍ମାଣ କରିବାର ଇଚ୍ଛା— Desire to create.

ସିସୃକ୍ଷୁ—ସଂ. ବଣ ( ସୃଜ୍ ଧାତୁ+ଇଚ୍ଛାର୍ଥେ ସନ୍+କର୍ତ୍ତୃ. ଉ )— Sisṛukshu ସୃଷ୍ଟି କରିବାକୁ ଇଚ୍ଛୁକ; ନିର୍ମାଣ କରିବାକୁ ଅଭିଳାଷୀ —Desirous of creating.

ସିସୋଦୀୟ—ଦେ. ବଣ—ସିସୋଦୀୟା କୁଳର—Belonging to Sisodīya the Sisodiyā clan of the Rajputs. ସିସୋଦୀୟ सीसोदिय

**ସିଶୋଦୀୟା**—ଦେ· ବ—ସୁପ୍ରସିଦ୍ଧ ରାଜପୁତମାନଙ୍କର ଏକ ପ୍ରସିଦ୍ଧ
**Sisodiyā** ଶାଖା—A celebrated branch of the
সিসোদীয়া Rajputs. [ଦ୍ର—ରାଜପୁତନାର ସିଶୋଦ ନାମକ
सिसोदिया ସ୍ଥାନରେ ଏ ଶାଖାର ବ୍ୟକ୍ତିମାନେ ବହୁ ଦିନ ବାସ କରିଥିବାରୁ ଉକ୍ତ ସ୍ଥାନର ନାମ ଅନୁସାରେ ଏ ଶାଖାର ନାମ ହୋଇଅଛି । କ୍ଷତ୍ରିୟମାନଙ୍କ ମଧ୍ୟରେ ଏମାନଙ୍କ ପ୍ରତିଷ୍ଠା ସର୍ବୋଚ୍ଚ । ଚିତୋର ଏମାନଙ୍କ ପ୍ରାଚୀନ ରାଜଧାନୀ ଓ ଉଦୟପୁର ବର୍ତ୍ତମାନ ରାଜଧାନୀ । ଏମାନେ ସୂର୍ଯ୍ୟବଂଶୀୟ ରାଜା ରାମଚନ୍ଦ୍ରଙ୍କ ବଂଶଧର ବୋଲି କଥିତ । ଏମାନେ ପ୍ରଥମେ ଗୁଜୁରାଟର ବଲ୍ଲଭୀପୁରରେ ରାଜତ୍ୱ କରୁଥିଲେ, ପରେ ଚିତୋରର ପ୍ରାଚୀନ ରାଜାଙ୍କୁ ପରାସ୍ତ କରି ସେଠାରେ ରାଜ୍ୟ ସ୍ଥାପନ କଲେ । ମୁସଲମାନ୍ ଓ ମୋଗଲ୍ ରାଜତ୍ୱ କାଳରେ ମଧ୍ୟ ଚିତୋର ହିନ୍ଦୁ ରାଜଶକ୍ତିର ପ୍ରଧାନ ସ୍ଥାନ ଥିଲା । ଏ ବଂଶର ରାଜାମାନଙ୍କ ଉପାଧି ରାଣା । ରାଣା ସମର ସିଂହ, ରାଣା କୁମ୍ଭା, ରାଣା ସଂଗ୍ରାମ ସିଂହ ମୁସଲମାନଙ୍କ ସଙ୍ଗେ ବୀରତା ସହକାରେ ଯୁଦ୍ଧ କରିଥିଲେ । ରାଣା ପ୍ରତାପ ସମ୍ରାଟ୍ ଆକବରଙ୍କ ବଶ୍ୟତା ସ୍ୱୀକାର କରି ନଥିଲେ । ଉଦୟପୁର ରାଜ୍ୟ ( ୧୨୬୯୦ ବର୍ଗ ମାଇଲ, ଲୋକ ସଂଖ୍ୟା ୧୦ ଲକ୍ଷ )ର ମହାରାଣା ଏହି ବଂଶୀୟ ଅଟନ୍ତି—ହିନ୍ଦି ଶବ୍ଦସାଗର । ]

**ସିସ୍ତ**—ଦେ· ବ ( ସଂ. ଶସ୍ତ୍ର )—୧ । ଯନ୍ତ୍ରାଦି—1. Implements.
**Sista** ୨ । ଶସ୍ତ୍ର; ଉପାୟ—2. Means. ୩ । କାର୍ଯ୍ୟ ସାଧନର
यंत्र शस्त्र ଉପାୟ—3. Means employed for accomplishment of an end.

**ସିସ୍ତି**—ବୈଦେ. ବ ( ଫା. ସିସ୍ତୀ )—ମାପିବା ଚେନ୍ ସଙ୍ଗେ ଭୂମିରେ
**Sisti** ପୋତିବା ପାଇଁ ବ୍ୟବହାର କରାଯିବା ଲୁହାର ପିନ୍—
সিস্তি सिस्ती Iron pins used with the surveying chain.

**ସିସ୍ଟୁ**—ପ୍ରାଦେ (ଗଞ୍ଜାମ) ବ (ଇଂ· ସେସ୍)—ଭୂମିକର; ଖଜଣା—
**Sistu** Land cess.

**ସିହ୍‌ନିବା**—ପ୍ରାଦେ ( ସମ୍ବଲପୁର ) କ୍ରି—କ୍ଷୁଦ୍ର ପାତ୍ରରେ ଭର୍ତ୍ତି କରିବା—
**Sih-nibā** To ram in things together into a narrow receptacle.

**ସିହଳ**—ଦେ· ବ ( ସଂ. ଶୃଙ୍ଖଳ )—ଶିଅଳ ( ଦେଖ )
**Sihaḷa** Siaḷa ( See )

**ସିହା**—ବୈଦେ· ବ—୧ । ( ଫା· ସୀହା ) ଜମା ଖରଚ ବହି—
**Sihā** 1. Account book. [ ଦ୍ର—ଏହି ହିସାବ
সেহা सेहा ବହିରେ ଜମା ଓ ଖରଚ ଲେଖାଯାଏ । ]
সিয়া ୨ । ସିହା; ମୁସଲମାନମାନଙ୍କର ସମ୍ପ୍ରଦାୟବିଶେଷ—
सिहा 2. A sect of Mohommedans; the Sihā. [ ଦ୍ର— ମୁସଲମାନ ଧର୍ମାବଲମ୍ବୀମାନେ ପ୍ରଧାନ ଦୁଇ ସମ୍ପ୍ରଦାୟରେ ବିଭକ୍ତ; ଯଥା—ସିହା ଓ ସୁନ୍ନୀ । ଇସଲାମ ଧର୍ମର ନେତା ବା ଗୁରୁ(ଇମାମ୍) କିଏ, ଏହି ସଂବନ୍ଧରେ ଦୁଇ ସମ୍ପ୍ରଦାୟ ମଧ୍ୟରେ ମତଭେଦ ଅଛି । ସୁନ୍ନୀମାନେ କହନ୍ତି ଯେ, ଯାହାଙ୍କୁ ମୁସଲମାନ୍‌ମାନେ ନେତା ପଦରେ ମନୋନୀତ କରନ୍ତି ସେ 'ଇମାମ୍'; କିନ୍ତୁ ସିହାମାନେ କହନ୍ତି ଯେ, ମହମ୍ମଦଙ୍କ ଶିଷ୍ୟାନୁଶିଷ୍ୟ କାଳକ୍ରମେ 'ଇମାମ୍' ଅଟନ୍ତି । ସିହା ଓ ସୁନ୍ନୀମାନଙ୍କର ଆଇନ୍ ମଧ୍ୟ ଭିନ୍ନ । ସିହାମାନଙ୍କ ଆଇନ୍ କୋରାନ୍ ଓ ଶିଷ୍ୟାନୁଶିଷ୍ୟ କ୍ରମେ ପୁରୁଷପରଂପରା ଚଳିଥିବା ମହମ୍ମଦଙ୍କ ଉପଦେଶ ଉପରେ ପ୍ରତିଷ୍ଠିତ । କିନ୍ତୁ ସୁନ୍ନୀମାନଙ୍କ ଆଇନ ଏହି ଦୁଇ ଭିତ୍ତି, ପଣ୍ଡିତମାନଙ୍କର ଟୀକା ଓ ବ୍ୟକ୍ତିବିଶେଷଙ୍କର ସ୍ୱାଧୀନ ବିଚାର ଉପରେ ପ୍ରତିଷ୍ଠିତ ।

ମହମ୍ମଦୀୟ ହିଜରୀ ସନର ଦ୍ୱିତୀୟ ଶତାବ୍ଦୀରେ ମହମ୍ମଦଙ୍କ ଶିଷ୍ୟାନୁଶିଷ୍ୟକ୍ରମେ ୬ଷ୍ଠ ସ୍ଥାନୀୟ ଜଫର୍-ଅସ୍-ସାଦିକ୍ ସିହା ସମ୍ପ୍ରଦାୟର ପ୍ରତିଷ୍ଠା କରିଥିଲେ ।

ସିହାମାନଙ୍କର ମଧ୍ୟ ଅନେକଗୁଡିଏ ଉପସମ୍ପ୍ରଦାୟ ଅଛି; ଯଥା—ଆସ୍‌ନା ଆସାରିୟା ବା ଇମାମିୟା (ଏମାନେ ପୁଣି ଦୁଇ ଶ୍ରେଣୀରେ ବିଭକ୍ତ—ଅସୁଲି, ଆକ୍‌ବରୀ), ମୁତାଜାଲି, ଇସ୍‌ମାଇଲିଆ । ବୋମ୍ବେ ପ୍ରଦେଶର 'ଖୋଜା', 'ବୋରା' ଆଦିଙ୍କ ଛଡା ଭାରତର ଅଧିକାଂଶ ମୁସଲମାନ ସୁନ୍ନୀ ସମ୍ପ୍ରଦାୟଭୁକ୍ତ ।

ସିହା ଓ ସୁନ୍ନୀଙ୍କୁ ଚିହ୍ନିବାର ଗୋଟିଏ ସହଜ ଚିହ୍ନ ଏହି ଯେ, ସିହାମାନେ ନମାଜ୍ ପଢ଼ିଲା ବେଳେ ଦୁଇ ହାତକୁ ଦୁଇ କଡ଼ରେ ସିଧା କରି ଓହଳାଇ ରଖନ୍ତି; କିନ୍ତୁ ସୁନ୍ନୀମାନେ ଦୁଇ ହାତକୁ ସାମନା ପାଖରେ ଯୋଡ଼ି କରି ନମାଜ ପଢ଼ନ୍ତି ।

ସିହାମାନେ ମୃତ ବ୍ୟକ୍ତିର ସମଦୂରବର୍ତ୍ତୀ ସଗୋତ୍ର ( agnate, ଯଥା—ପୌତ୍ର ) ଓ ଅସଗୋତ୍ର ( cognate; ଯଥା—ଦୌହିତ୍ର )ମାନଙ୍କ ମଧ୍ୟରେ ସମ୍ପତ୍ତିକୁ ସମାନରୂପେ ବଣ୍ଟନ କରନ୍ତି । କିନ୍ତୁ ସୁନ୍ନୀମାନେ କେବଳ ସଗୋତ୍ର ପୁରୁଷ—ଉତ୍ତରାଧିକାରୀମାନଙ୍କ ମଧ୍ୟରେ ମୃତ ବ୍ୟକ୍ତିର ସମ୍ପତ୍ତି ବଣ୍ଟନ କରନ୍ତି ।

ସିହା ଓ ସୁନ୍ନୀ ଉଭୟଙ୍କ ମଧ୍ୟରେ ଏ ନିୟମ କେବଳ ନିମ୍ନଲିଖିତ ଉତ୍ତରାଧିକାରୀମାନଙ୍କ ପ୍ରତି ଖଟେ ନାହିଁ; ଯଥା—ମୃତ ବ୍ୟକ୍ତିର ପିତା, ମାତା, ପୁତ୍ର, କନ୍ୟା,
শিখ ସ୍ୱାମୀ ବା ସ୍ତ୍ରୀ । ] ଦେ. ବ ( ସଂ. ଶିଖା )—ଅଗ୍ରଭାଗ—
।লখা Top.

**ସିହାଇ**—ବୈଦେ. ବ ( ଫା. ସିହାଇ )—ସ୍ୟାହି; ଲେଖିବାର କାଳି;
**Sihāi** সেহাই सयाही ମସି—Writing ink.

**ସିହାଇ ଘଡ଼ି**—ଦେ. ବ—ମସ୍ୟାଧାର; କାଳି ଘଡ଼ି; ଦୁଆତ—Inkpot.
**Sihāi ghaṛdi** সেহাই দোয়াত दवात
( ସିହାଇ ଦୁଅତ—ଅନ୍ୟରୂପ )

**ସିହା ଉଆରିଜା**—ବୈଦେ· ବ ( ଜମିଦାରୀ ସିରସ୍ତା )—ଯେଉଁ ସିହାରେ
**Sihā uārijā** ଭିନ୍ନ ଭିନ୍ନ ଶ୍ରେଣୀର ଜମା ଓ ଖରଚମାନ ପୃଥକ
সিহা ওয়ারিজা ପୃଥକ୍ ହେଡିଙ୍ଗ୍ ତଳେ ଲେଖାଯାଏ—Account

ସେ ବାହିଜା book showing receipts and expe-
(ସିହା ଭାଉଚା—ଅନ୍ୟରୂପ) nditures entered under different items or headings.

ସିହା ଉଆସିଲ୍(ଲି) ବାକି—ଦେ. ବି (ଜମିଦାରୀ ସିରସ୍ତା)—ଜମି-
Sihā uāsil(li) bāki ଦାରୀ କାଗଜବିଶେଷ—A Zemi-
সিহা ওয়াসিল বাকি ndary account showing the
सिहा वसूल बाँकी current year's account of
(ସିହା ଭାସିଲ[ଲି] ବାକି—ଅନ୍ୟରୂପ) every tenant and respective due after deducting the payments made by the tenant. [ ଦ୍ର—ବର୍ଷକ ମଧ୍ୟରେ ପ୍ରଜା ଯେତେ ଖଜଣା ଦେଇଥାଏ, ଏଥିରେ ତାହା ଲେଖା ଯାଇ ଗତ ବର୍ଷର ହିସାବ ଗଚ୍ଛାଣ କରାଯାଇ ସନ ଅଖେରକୁ ଉକ୍ତ ପ୍ରଜା ଉପରେ କେତେ ବାକି ରହିଲା, ତାହା ଦେଖାଇ ଦିଆଯାଏ । ]

ସିହାଁ—ଦେ. ବି—ସିଆଁ (ଦେଖ)—
Sihān̐ Siān̐ (See)

ସିହାଁଇ(ଇଁ)ବା—ଦେ. କ୍ରି—ସିଆଁଇବା (ଦେଖ)
Sihān̐i(in̐)bā Siān̐ibā (See)

ସିହା କରିବା—ଦେ. କ୍ରି—୧ । ହିସାବ ବହିରେ ଜମା ଖରଚ ଲେଖିବା-
Sihā karibā 1. To enter receipts and expenses
সিহা করা in the account book. ୨ । ଜମା
सेहा करना ଧନକୁ ହିସାବରେ ଲେଖିବା—2. To enter a
(ସିହା ଚଢ଼ା[ଢ଼େ]ଇବା—ଅନ୍ୟରୂପ) receipt in the account book

ସି(ସିଂ, ସିଁ)ହାଣ(ଣା) (ଇତ୍ୟାଦି)—ଦେ. ବିଣ. ପୁଂ ଓ ସ୍ତ୍ରୀ (ସଂ.
Si(sim, sin̐)hāṇa(ṇ) ସନ୍ଧାନ)—୧ । ସିଆଣ(ଣା) (ଦେଖ)—
সয়ান सयाना 1. Siāṇa(ṇā) (See) [ ଦ୍ର—ସିହାଣ ବସ୍ତୁରେ ମୋତେ ନ କରିବ ଦୟା—ଉଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ । ] ୨ । ଶ୍ରେଷ୍ଠ—2. Best. [ ଦ୍ର—ଯୁଦ୍ଧରେ ଖେଳ ହୋଇ ବ୍ରହ୍ମାଣ୍ଡ ସିହାଣ । ରଖିଲେ ମାତ୍ର ପାଣ୍ଡ୍ୟ ନୃପତିଙ୍କ ପ୍ରାଣ—କୃଷ୍ଣସିଂହ. ମହାଭାରତ. କର୍ଣ୍ଣ । ]

ସି(ସିଂ, ସିଁ)ହାଣିଆ(ଆଁ) (ଇତ୍ୟାଦି)—ଦେ. ବିଣ. ପୁଂ ଓ ସ୍ତ୍ରୀ—
Si(sim, sin̐)hāṇiā(ān̐) (etc) ସିଆଣ ଇତ୍ୟାଦି (ଦେଖ)
Siāṇa etc (See). [ ଦ୍ର—ସେ ବ୍ରାହ୍ମଣ ଅଟନ୍ତି ଅଟେ ସିହାଣିଆଁ—କୃଷ୍ଣସିଂହ. ମହାଭାରତ ଆଦି । ]

ସିହାଣୀ—ଦେ. ବିଣ. ସ୍ତ୍ରୀ—'ସିହାଣ'ର ସ୍ତ୍ରୀଲିଙ୍ଗ—
Sihāṇi Feminine of 'Sihāṇa'.
(ଦ୍ର—ଅସତର୍କେ ଦେବେ ଦେଖିଲେ ସିହାଣୀ—ଜାଡ଼କୁ ସୁଗ-ଡରଲ । ଗୁଧାନାଥ. ଇଯାତିକେଶରୀ ।)

ସିହାଭୁକ୍ତ—ଦେ. ବିଣ—ସିହାରେ ଲେଖା ହୋଇଥିବା—
Sihābhukta Entered in the accounts.
সেহা ভুক্ত सेहाभुगतान

ସିହାର(ରା) ହାର—ଦେ. ବି—ଶିଂଘଡ଼ା ହାର (ଦେଖ)
Sihāra(rā) hāra Simghardā hāra. (See)

ସିହୁଣ୍ଡ—ସଂ. ବି—ସ୍ନୁହୀ ବୃକ୍ଷ (ଶବ୍ଦ ରତ୍ନାବଳୀ); ସିଝୁ (ଦେଖ)
Sihunda Sijhu. (See)

ସିହ୍ନା—ଗ୍ରା. ଅ—ସିନା (ଦେଖ)—Sinā. (See) (ଦ୍ର—ଲୁଚୁ ଲୁଚୁ
Sihnā ଲୁଚୁ ସିହ୍ନା ଅଛଇ ସେ ସୁଖ । ପ୍ରାଚୀ. ବୃନ୍ଦାବନଭୂଷଣ ଗୀତା ।)

ସିହ୍ଲ—ସଂ. ବି (ସିହ୍, ଧାତୁ=ସ୍ନିଗ୍ଧ ହେବା + କର୍ତ୍ତୃ. ଲ; ନିପାତନ)
Sihla ୧ । ଧୂପରେ ବ୍ୟବହୃତ ଗନ୍ଧଦ୍ରବ୍ୟ ବିଶେଷ
[ସିହ୍ଲକ—ଅନ୍ୟରୂପ] (ଶବ୍ଦ ରତ୍ନାବଳୀ); ଲୋବାନ; ଏକପ୍ରକାର
সিহ্লা ধুনা—1. Olibanum. ୨ । ଶିହ୍ଲକ—2. Liquid
शिलारस amber.
ଫା. ଶଲ୍ଲରସ, ଅ. ମୋଆଇଏ ସାଇଲ୍
ଅନ୍ୟ ସଂସ୍କୃତ ନାମ—ତୁରୁଷ୍କ, ପିଣ୍ଡକ, ଯାବନ, ପିଣ୍ୟାକ, କପିତୈଳ, କପିଜାତକ, କପିତୈଳ, ତୈଳାଖ୍ୟ, ଯାବ, ଯାବକ, ସଲ୍ଲକୀଦ୍ରବ, ଶିହ୍ଲକ, ପିଷ୍ଟକ,] ତୈଳପର୍ଣ୍ଣୀ, ବୃକଧୂପ, କୃତ୍ରଧୂପ ।

ସିହ୍ଲକୀ—ସଂ. ବି—ଶଲ୍ଲକୀ (ଦେଖ)
Sihlaki Sallkai. (See)
[ସିହ୍ଲଭୂମିକା—ଅନ୍ୟରୂପ] শলই, শলাই सलई, सलग

ସିହ୍ଲା(ଇତ୍ୟାଦି)—ବୈଦେ. ବି—ସିଲ୍ଲ ଇତ୍ୟାଦି (ଦେଖ)
Sihlā (etc) Silā. etc (See)

ସୀଉକାର—ଗ୍ରା. ବି (ସଂ. ସ୍ୱୀକାର)—୧ । ସ୍ୱୀକାର; ସମ୍ମତି—
Siukāra 1. Consent. [ ଦ୍ର—ତୁମ୍ଭର ସୀଉକାର ହେଲେ
স্বীকার ସିନା ଏହା । କୃଷ୍ଣସିଂହ. ମହାଭାରତ ବନ ।] ୨ । କରଣ
स्वीकार ସମାଜରେ ବିବାହ ପୂର୍ବରୁ ବରକନ୍ୟାଙ୍କ ସମ୍ବନ୍ଧରେ ଉଭୟ ପକ୍ଷ ର ସ୍ୱୀକୃତ ଲକ୍ଷଣ ଓ ଉତ୍ସବ—2. The ceremony of formal betrothal before marriage (amongst the Karaṇas of Orissa). ୩ । କରଣ ସମାଜର 'ସ୍ୱୀକାର' ଉତ୍ସବରେ କନ୍ୟାଘରୁ ବରଘରକୁ ପଠାଯିବା ଭେଟି—3. Sending of presents from the betrothed bride to the bridegroom.

ସୀଉକାର କରିବା—ଗ୍ରା. କ୍ରି—ସ୍ୱୀକାର କରିବା (ଦେଖ)
Siukāra karibā Swikāra karibā. (See)
স্বীকার করা स्वीकार करना

ସୀଉକାର ସନମତି—ଗ୍ରା. ବି (ସମ୍ମତି)—କରଣ ସମାଜରେ ବର ଓ
Siukāra sanamati କନ୍ୟାଙ୍କର ବିବାହ ବିଷୟରେ ଉଭୟଙ୍କ
স্বীকার সম্মতি ହେବା ପରେ ବର ପକ୍ଷ ଓ କନ୍ୟା ପକ୍ଷ ମଧ୍ୟରେ
स्वीकार सम्मति ଦିଆନିଆ ହେବା ଭେଟି—Mutual exchange of presents between the betrothed bride and the bridegroom.

ସୀଉକାରିଆ—ଦେ. ବି—କରଣ କୁଳରେ ବିବାହ ବିଷୟରେ ମଧ୍ୟସ୍ଥ
Siukāriā ହେବା ବ୍ୟକ୍ତି—The negotiator or middle-
ঘটক man in a marriage in the 'Karaṇa'
घटक society. (ଦ୍ର—କବେ ଚଳନ୍ତି, ଦୁ ସବୁ ସକଳ

ସାଜଲ କର ସାଇଲଣି ? ସୀତ୍କାରଅ ଏବୁ ପଡ଼ନ୍ତି ଯିବେ ପସ୍ତ । ଉତ୍କଳାଗ୍ରଚରଣ ଯୌତୁକ ।)

**ସୀକ୍ (ଧାତୁ)**—ସ—୧ । ସେଚନ କରିବା—1. To sprinkle.
**Sik (root)** ୨ । ସେକିବା—2. To foment.

**ସୀକର**—ସଂ. ବି ('ଶୀକର'ର ଅନ୍ୟରୂପ; ସୀକ୍. ଧାତୁ+କର୍ମ. ଅର)—
**Sikara** ୧ । ସୂକ୍ଷ୍ମ ଜଳବିନ୍ଦୁ—1. Spray; minute water-particles ୨ । ବାୟୁପ୍ରେରିତ ସୂକ୍ଷ୍ମ ଜଳକଣା—2. Minute particles or spray of water driven by the wind. ୩ । (+କଣ୍ଠିଅର) କୁଣ୍ଡାକୁଡ଼ା ବୃଷ୍ଟି—3. Drizzle; rain in minute drops ୪ । ବାୟୁ—4. Air; wind.

**ସୀକର ଶୀତ**—ସଂ. ବିଣ ( ତୃତୀୟା ତତ୍ )—୧ । ଜଳକଣା ଦ୍ୱାରା
**Sikara sita** ଶୀତଳ—1. Cooled with water spray. (ଉ—ତ୍ୱରିତ ବଧୂ ମୋହ କଳାଶ ଅଶେ, ସୀକର-ଶୀତ ବାୟୁ ପେଷିଲେ ପାଶେ । ମଧୁସୂଦନ. ସୀତା-କନବାସ [କବିତାବଳୀ] ।) ୨ । ଜଳକଣା ପରି ଶୀତଳ—2. Cool like spray.

**ସୀକାର**—ପ୍ରାଦେ (ଗଡ଼ଜାତ) ବି—୧ । ସ୍ୱୀକାର—1. Promise;
**Sikāra** agreement. ୨ । ମାଂସ—2. Meat. ୩ । ପାରିଧି—3. Hunting

**ସୀ(ତ୍ତ)**—ସଂ. ବି (ଧ୍ୱନ୍ୟନୁକରଣ)—ଜିହ୍ୱା ଓ ଦନ୍ତ ଦ୍ୱାରା ଉଚ୍ଚାରିତ
**Sit(ta)** ସୀତ୍ ଧ୍ୱନି—Whistling sound produced by the tongue and teeth

**ସୀତ୍(ତ)କାର**—ସଂ. ବି (ସୀତ୍, ସୀତ=ଅବ୍ୟକ୍ତ ମଧୁର ଧ୍ୱନି+କୃ,
**Sit-(ta)kāra** ଧାତୁ+ଭାବ. ଅ)—ଅବ୍ୟକ୍ତ ମୁଖଶବ୍ଦ ବିଶେଷ; [ସୀତ୍କୃତ(ତି)—ଅନ୍ୟରୂପ] ବରାଙ୍ଗନାମାନଙ୍କର ଜିହ୍ୱା ଓ ଦନ୍ତ ସାହାଯ୍ୟରେ ନିର୍ଗତ 'ସୀତ୍'ରୂପ ଅବ୍ୟକ୍ତ ଶବ୍ଦ; ଉତ୍ତମା ସ୍ତ୍ରୀଙ୍କର ରମଣାଦି କାଳରେ ଅନୁରାଗଜନିତ ସୁଖବ୍ୟଞ୍ଜକ ଅସ୍ଫୁଟ ମଧୁର ଶବ୍ଦ (ହେମଚନ୍ଦ୍ର)—Sweet whistling sound heard from the mouth of amorous women during orgasm in coition.

**ସୀତ୍କୃତ**—ସଂ. ବିଣ—କୃତ ସୀତ୍କାର—Making a whistling
**Sit-kṛuta** amorous sound during coition.
ସଂ. ବି—ସୀତ୍କାର (ଦେଖ)—Sit-kāra. (See)
(ସୀତକୃତ- ଅନ୍ୟ ବି, ରୂପ)

**ସୀତ(ତ୍ୟ)ୟା**—ଗ୍ରା. ବି (ଅଶୁଦ୍ଧ ଉଚ୍ଚାରଣ)—ସୀତା ଦେବୀ; ରାମପତ୍ନୀ—
**Sita(tya)yā** Sitā; the wife of Rāma. ( ଉ—ସୀତା ଅଶ୍ରମ କର ନାରାୟଣ, କହା ସୀତୟା ବ୍ରହ୍ମାଶ୍ରମ । ଜଗନ୍ନାଥ. ସୀତିୟା ଭାଗବତ ।) ଦେ. ବି—'ସୀତା'ର ଡାକ ନାମ—Nickname of 'Sitā'.

ସୀତ(ତ୍ୟ)ୟା ଠାକୁରାଣୀ, ସୀତ(ତ୍ୟ)ୟା ଦେବୀ, ସୀତ୍ୟା, ସୀତ୍ୟା ଦେବୀ, ସୀତ୍ୟା ଠାକୁରାଣୀ }—ଅନ୍ୟରୂପ

**ସୀତା**—ସଂ. ବି—[ସି. ଧାତୁ=(ଭୂମି) ଖନନ କରିବା+କର୍ମ. ତ,
**Sitā** +ଅ, ନିପାତନ); ଅନ୍ୟରୂପ ଶୀତା]—୧ । ଲଙ୍ଗଳ ପଦ୍ଧତି; ଲଙ୍ଗଳ ଦ୍ୱାରା ଭୂମିରେ ଖୋଳ ହୋଇଯିବା ଗାର; ଲଙ୍ଗଳଚାଳିତ ଗମ୍ଭୀର ରେଖା—1. Furrow made by the plough. ୨ । (+କଣ୍ଠିକ) ସ୍ୱର୍ଗଙ୍ଗା; ମନ୍ଦାକିନୀର ଶାଖା ବିଶେଷ—2. Name of a branch of the Ganges said to flow in the heaven. ୩ । ଲକ୍ଷ୍ମୀ (ଧ୍ୱନି ମଞ୍ଜରୀ)—3. The Goddess Lakshmi. ୪ । ଉମା; ପାର୍ବତୀ(ଧ୍ୱନିମଞ୍ଜରୀ)—4. Pārbati. ୫ । ଶସ୍ୟାଧି ଦେବତା (ଧ୍ୱନିମଞ୍ଜରୀ)—5. The Deity presiding over the corn. ୬ । ମଦିରା ( ରାଜନିର୍ଘଣ୍ଟ )—6. Wine. ୭ । ଗଙ୍ଗା ସ୍ରୋତ (ଶବ୍ଦମାଳା)—7. The current of the river Ganges. ୮ । (ନାମ) (ଅନ୍ୟ ସଂ. ନାମ—ବୈଦେହୀ; ମୈଥିଳୀ (ସୀତା ବା 'ସୀତାମୁଖ' ବା ଜାନକୀ, ଧରଣୀସୁତା, ଭୂମିସମ୍ଭବା ।] ଲଙ୍ଗଳପଦ୍ଧତିରୁ ମିଳିଥିବାରୁ ଏହି ନାମ ହୋଇଅଛି) ଜନକରାଜନନ୍ଦିନୀ ରାମଚନ୍ଦ୍ରଙ୍କ ପତ୍ନୀ—8. The wife of Rāmachandra. [ଦ୍ର—ମିଥିଳାଧିପ ଜନକ ଲଙ୍ଗଳଦ୍ୱାରା ଯଜ୍ଞଭୂମି ଚାଷ କରିବା ସମୟରେ ଲଙ୍ଗଳପଦ୍ଧତିରୁ ଗୋଟିଏ ଶିଶୁ କନ୍ୟାଙ୍କୁ ବୈଶାଖ ଶୁକ୍ଳ ନବମୀ (ରାମନବମୀ) ମଙ୍ଗଳବାର ମଧ୍ୟାହ୍ନରେ ପାଇଥିଲେ ଏବଂ 'ସୀତା'ରୁ ଏହାଙ୍କୁ ପାଇଥିବାରୁ ଏହାଙ୍କ ନାମ 'ସୀତା' ରଖିଲେ । ସୀତା ଅଯୋନି-ସମ୍ଭବା ବୋଲି ଖ୍ୟାତା । ସୀତା ଯୁବତୀ ହେବାରୁ ଜନକ ଗୋଟିଏ ଶିବଧନୁ ରଖି ଏହି ପଣ କଲେ ଯେ, ଯେଉଁ ବ୍ୟକ୍ତି ଉକ୍ତ ଧନୁକୁ ଆକର୍ଷଣ କରି ଅଧିଜ୍ୟ କରିବେ, ସେ ତାଙ୍କୁ ଉକ୍ତ କନ୍ୟା ସମର୍ପଣ କରିବେ । ଏହି ପଣ ଶୁଣି ନାନା ଦେଶରୁ ରାଜଗଣ ଉପସ୍ଥିତ ହେଲେ; କିନ୍ତୁ ଉକ୍ତ ଧନୁକୁ ଆକର୍ଷଣ କରିବା କଥା ଦୂରେ ଥାଉ, କେହି ତାକୁ ଭୂମିରୁ ଉଠାଇ ପାରିଲେ ନାହିଁ । ଏହି ସମୟରେ ବିଶ୍ୱାମିତ୍ର ଋଷି ତାଙ୍କ ଆଶ୍ରମରୁ ଅସୁରମାନଙ୍କୁ ଦୂର କରିବା ପାଇଁ ଦଶରଥଙ୍କ ନିକଟରୁ ରାମଚନ୍ଦ୍ରଙ୍କୁ ଓ ଲକ୍ଷ୍ମଣଙ୍କୁ ସଙ୍ଗରେ ଆଣିଥିଲେ । ସେହି ଧନୁର୍ଭଙ୍ଗ ସଭା ଦେଖିବା ପାଇଁ ବିଶ୍ୱାମିତ୍ର କୁମାରଦ୍ୱୟଙ୍କୁ ସଙ୍ଗରେ ନେଇ ମିଥିଳାକୁ ଆସିଥିଲେ । ସମବେତ ରାଜନ୍ୟବର୍ଗ ସେ ଧନୁକୁ ଉଠାଇ ନ ପାରିବାରୁ ରାମଚନ୍ଦ୍ର ଧନୁ ନିକଟରେ ଉପସ୍ଥିତ ହୋଇ ଧନୁକୁ ଟେକି ସେଥିରେ ଗୁଣ ଦେବା ପାଇଁ ଆକର୍ଷଣ କରୁ କରୁ ଧନୁଟି ଦୁଇ ଖଣ୍ଡ ହୋଇ ଭାଙ୍ଗିଗଲା । ଜନକ ଏଥିରେ ସନ୍ତୁଷ୍ଟ ହୋଇ ଦଶରଥଙ୍କୁ ଡକାଇ ସୀତାଙ୍କୁ ରାମଚନ୍ଦ୍ରଙ୍କ ହସ୍ତରେ ଏବଂ ତାଙ୍କର ଅନ୍ୟ କନ୍ୟା ଊର୍ମିଳା ଓ ଭ୍ରାତୃପୁତ୍ରୀ ମାଣ୍ଡବୀ, ଶ୍ରୁତକୀର୍ତ୍ତିଙ୍କୁ ଯଥାକ୍ରମେ ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନଙ୍କୁ ସମର୍ପଣ କଲେ । ସୀତାଙ୍କୁ ନେଇ ରାମଚନ୍ଦ୍ର ପିତାଙ୍କ ସହିତ ଅଯୋଧ୍ୟାକୁ ଫେରିଯିବା ସମୟରେ ବାଟରେ ପରଶୁରାମ ତାଙ୍କୁ ବାଧା ଦେବାକୁ ଚେଷ୍ଟା କରି ରାମଚନ୍ଦ୍ରଙ୍କ ଦ୍ୱାରା ପରାଜିତ ହୋଇ ସେଠାରୁ ପ୍ରସ୍ଥାନ କଲେ

ରାମଚନ୍ଦ୍ର ରାଜ୍ୟକୁ ଫେରିଯାଇ ସୀତାଙ୍କ ସହିତ ସୁଖରେ ରହିଲେ । ସୀତା ନିଜ ଗୁଣରେ ଶାଶୂ, ଶ୍ୱଶୁର, ସ୍ୱାମୀ ଓ ରାଜ୍ୟର ସମସ୍ତଙ୍କୁ ମୁଗ୍ଧ କଲେ । ଏହି ସମୟରେ ଦଶରଥ ବୃଦ୍ଧ ହେବାରୁ ରାମଚନ୍ଦ୍ରଙ୍କୁ 'ଯୌବରାଜ୍ୟ' ଦେବାପାଇଁ ଘୋଷଣା କରି ତନ୍ନିମିତ୍ତ ସମସ୍ତ ଆୟୋଜନ କଲେ । କିନ୍ତୁ ଉତ୍ସବର ପୂର୍ବଦିନ ରାତିରେ ମନ୍ଥରାନାମ୍ନୀ ଦାସୀର ପ୍ରରୋଚନାରେ ରାମଚନ୍ଦ୍ରଙ୍କ ବିମାତା ଭରତଜନନୀ କୈକେୟୀ ଦଶରଥଙ୍କୁ ଅଡ଼ଳରେ ପକାଇ ପୂର୍ବଅଙ୍ଗୀକୃତ ଦୁଇଟି ବର ଦେବା ପାଇଁ ସତ୍ୟ କରାଇ ନେଲେ ଯେ, ରାମଚନ୍ଦ୍ର ୧୨ ବର୍ଷକାଳ ବନବାସୀ ହେବେ ଓ ଭରତ ରାଜା ହେବେ । ରାମଚନ୍ଦ୍ର ପିତୃସତ୍ୟ ପାଳନାର୍ଥ ବନକୁ ବାହାରିଲେ ଏବଂ ପତିବ୍ରତା ସୀତା ଓ ଅଗ୍ରଜ ଆଜ୍ଞାବହ ଲକ୍ଷ୍ମଣ ମଧ୍ୟ ତାଙ୍କ ସହାଗମୀ ହେଲେ । ରାମଚନ୍ଦ୍ରଙ୍କ ବନଗମନରେ ଶୋକଗ୍ରସ୍ତ ହୋଇ ଦଶରଥ ପ୍ରାଣତ୍ୟାଗ କଲେ । ତେଣେ ରାମ, ସୀତା ଓ ଲକ୍ଷ୍ମଣ ୧୨ ବର୍ଷ ବନରେ ତପସ୍ୱିବେଶରେ ବନ୍ୟ ଫଳମୂଳ ଖାଇ କୁଟୀରରେ ବାସ କରି ରହିଲେ । ଏହି ସମୟରେ ରାକ୍ଷସୀ ସୂର୍ପଣଖାର ପ୍ରରୋଚନାରେ ଲଙ୍କାଧିପତି ରାବଣ ସୀତାଙ୍କୁ ଛଳବଳ ପ୍ରୟୋଗପୂର୍ବକ ରଥରେ ବସାଇ ଲଙ୍କାକୁ ନେଇଗଲେ । ରାମଚନ୍ଦ୍ର ସୀତାଙ୍କୁ ନ ଦେଖି ଉନ୍ମତ୍ତପ୍ରାୟ ହେଲେ ଏବଂ କିଷ୍କିନ୍ଧ୍ୟାରେ ବାନରରାଜ ସୁଗ୍ରୀବଙ୍କ ସଙ୍ଗେ ମିତ୍ରତା ସ୍ଥାପନ କରି ହନୁମାନଙ୍କୁ ପଠାଇ ସେ ତାଙ୍କୁ ରାବଣ ନେଇ ଲଙ୍କାଗଡ଼ରେ ଅଶୋକବନରେ ବନ୍ଦିନୀ କରି ରଖିଥିବା ଜାଣିଲେ । ତତ୍ପରେ ରାମଚନ୍ଦ୍ର ସୁଗ୍ରୀବଙ୍କ କପିସେନା ସହ ଲଙ୍କାକୁ ଯୁଦ୍ଧଯାତ୍ରା କଲେ ଏବଂ ସମୁଦ୍ରରେ ସେତୁବନ୍ଧ ବନ୍ଧାଇ ଲଙ୍କାରେ ପଶି ରାବଣଙ୍କୁ ଯୁଦ୍ଧରେ ନିହତ କରି ସୀତାଙ୍କ ଉଦ୍ଧାର କଲେ । ସୀତା ରାବଣଙ୍କଦ୍ୱାରା ନାନାପ୍ରକାରେ ପ୍ରଲୋଭିତା ହୋଇଥିଲେ ମଧ୍ୟ ନିଜ ସତୀତ୍ୱକୁ ଅକ୍ଷୁଣ୍ଣ ରଖି ପାରିଥିଲେ । ତଥାପି ଜନାପବାଦ ଆଶଙ୍କାରେ ରାମଚନ୍ଦ୍ର ଲଙ୍କାରେ ତାଙ୍କୁ ଅଗ୍ନିପରୀକ୍ଷା କରାଇବା ପରେ ଗ୍ରହଣ କଲେ ଓ ତାହା ପରେ ସ୍ୱଦେଶକୁ ଫେରିଲେ । ସେତେବେଳକୁ ବନବାସର ୧୨ ବର୍ଷ ଅତୀତ ହୋଇଥିଲା । ଅଯୋଧ୍ୟାରେ ସୀତା, ରାମ ଦୁହେଁ ସୁଖରେ କିଛିକାଳ ରହିବା ପରେ ସୀତା ଅନ୍ତଃସତ୍ତ୍ୱା ହେଲେ ଏବଂ ନିଜର ତପୋବନ ଦର୍ଶନଲାଳସା ସ୍ୱାମୀଙ୍କ ନିକଟରେ ପ୍ରକାଶ କଲେ । ଇତ୍ୟବସରରେ ରାବଣ ଦ୍ୱାରା ସୀତା ଅପହୃତା ହୋଇ ସେଠାରେ କେତେକାଳ ବାସ କରିଥିବା ଯୋଗୁଁ ତାଙ୍କ ଆଚରଣରେ କଳଙ୍କ ଲାଗିବାର ପ୍ରବାଦ ଲୋକମୁଖରେ ପ୍ରଚରିତ ହେବା ଶୁଣି ରାମଚନ୍ଦ୍ର ଜନାପବାଦକୁ ସମ୍ମାନ ପ୍ରଦର୍ଶନ କରି ପ୍ରାଣାଧିକା ସ୍ତ୍ରୀ ସୀତାଙ୍କୁ ବନଦର୍ଶନ ଛଳନାରେ ନିର୍ବାସିତା କରିବାକୁ ସ୍ଥିର କଲେ । ଶେଷରେ ଅଗ୍ରଜଙ୍କ ଆଦେଶରେ ଅନୁଜ ଲକ୍ଷ୍ମଣ ସୀତାଙ୍କୁ ନେଇ ବାଲ୍ମୀକି ମୁନିଙ୍କ ଆଶ୍ରମ ନିକଟରେ ଅରଣ୍ୟରେ ଏକାକିନୀ ଛାଡ଼ି ଦେଇ ଫେରିଆସିଲେ । ସୀତା ସେହିଠାରେ ନିଜର ଦୁର୍ଭାଗ୍ୟ କଥା ଜାଣି ପାରି ବହୁ ଶୋକ କରି ଶେଷରେ ବାଲ୍ମୀକିଙ୍କଠାରୁ ସାନ୍ତ୍ୱନା ପାଇ ତାଙ୍କ ଆଶ୍ରମରେ ଯାଇ ଭାଗ୍ୟ ଆଦରି ରହିଲେ । ସେହିଠାରେ ତାଙ୍କର ଯମଜ ପୁତ୍ର କୁଶ ଓ ଲବ ଜନ୍ମ ହେଲେ । ସେମାନେ ସେହି ଆଶ୍ରମରେ ବିଦ୍ୟା ଓ ଧନୁର୍ବେଦ ଶିକ୍ଷା କଲେ ଏବଂ ବାଲ୍ମୀକି ସ୍ୱରଚିତ ରାମାୟଣ କାବ୍ୟ କୁମାରଦ୍ୱୟଙ୍କୁ କଣ୍ଠସ୍ଥ କରାଇଲେ । ଅନନ୍ତର ରାମଚନ୍ଦ୍ରଙ୍କ ଅଶ୍ୱମେଧ ଯଜ୍ଞାନୁଷ୍ଠାନକୁ ନିମନ୍ତ୍ରିତ ମହର୍ଷି ବାଲ୍ମୀକିଙ୍କ ସଙ୍ଗେ ଆସିଥିବା ଉକ୍ତ କୁମାରଦ୍ୱୟ ସଭାସ୍ଥଳରେ ରାମାୟଣ ଆବୃତ୍ତି କଲେ । ଏହା ଶୁଣି ରାମଚନ୍ଦ୍ର ଅତ୍ୟନ୍ତ ମୁଗ୍ଧ ହେଲେ ଏବଂ ଋଷିଙ୍କ ମୁଖରୁ ସେ ଦୁଇ କୁମାରଙ୍କ ପରିଚୟ ପାଇ ଓ ସୀତାଙ୍କ ସତୀତ୍ୱ ବିଷୟରେ ମଧ୍ୟ ମୁନିଙ୍କଠାରୁ ଦୃଢ଼ ପ୍ରତିଜ୍ଞା ଶ୍ରବଣ କରି ସୀତାଙ୍କୁ ପୁନର୍ଗ୍ରହଣ କରିବା ପାଇଁ ସଂକଳ୍ପ କଲେ । ତତ୍ପରେ ରାମଚନ୍ଦ୍ର ସୀତାଙ୍କୁ ଅଯୋଧ୍ୟାକୁ ଅଣାଇଲେ; କିନ୍ତୁ ପ୍ରଜାମାନଙ୍କ ମନୋରଞ୍ଜନାର୍ଥ ତାଙ୍କୁ ପୁଣି ଥରେ ଅଗ୍ନିପରୀକ୍ଷା କରାଇବାକୁ ପ୍ରସ୍ତାବ କରିବାରୁ ସୀତା ତାଙ୍କ ମାତା 'ବସୁନ୍ଧରାଙ୍କୁ' କରୁଣ ସ୍ୱରରେ ପ୍ରାର୍ଥନା କଲେ, "ମା ! ତୁ ଏହିକ୍ଷଣି ଦ୍ୱିଧା ହୋଇଯାଇ ତୋ କନ୍ୟାକୁ କୋଳରେ ସ୍ଥାନ ଦେ ।" ଏହା କହିବା ମାତ୍ରେ ପୃଥିବୀପୃଷ୍ଠ ଫାଟି ଗଲା ଓ ସୀତା ତନ୍ମଧ୍ୟରେ ପ୍ରବେଶ କରି ଲୋକଚକ୍ଷୁର ଅନ୍ତର୍ହିତା ହୋଇଗଲେ ।

ସୀତାଙ୍କ ସତୀତ୍ୱ ଓ ପତିସେବା ଆଦି ଗୁଣ ଆଜି ପର୍ଯ୍ୟନ୍ତ ଭାରତ ଲଳନାଙ୍କର ଚରମ ଆଦର୍ଶରୂପେ ପୂଜିତ ହୋଇ ଆସୁଅଛି ।

ସୀତା ଦୁର୍ଗାଙ୍କର ଅବତାର ବୋଲି ମାର୍କଣ୍ଡେୟ ପୁରାଣାନ୍ତର୍ଗତ 'ଚଣ୍ଡୀ'ରେ ବର୍ଣ୍ଣିତ ହୋଇଅଛି ।] ଦେ· ବି—

সীতাভোগ ୧ । ସୀତାଭୋଗ (ଦେଖ)—1. Sitā bhoga.
सीताभोग (See) ୨ । ଗୁଡ଼ର—2. Molasses ( ଉ—
সীতা ରେ ରମା । ସୀତା ମାଧୁର୍ଯ୍ୟ ପରି ସୁଷମ । ଉଞ୍ଜ· କୋଟିବ୍ରହ୍ମାଣ୍ଡ
सीतिया ସୁନ୍ଦରୀ ।) ୩ । ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—3. A name given to females.

ସୀତା କାନ୍ତ(ନାଥ) —ସଂ· ତ୍ରି· ପୁଂ ( ୬ଷ୍ଠୀ ତତ୍ ) —ରାମଚନ୍ଦ୍ର— Sitākā nta(nātha) সীতাকান্ত सीताकान्त Rāma chandra. ଦେ· ବି· ପୁଂ—ଲୋକଙ୍କୁ ପ୍ରଦତ୍ତ ନାମ— A name given to males.

ସୀତା କୁଣ୍ଡ—ସଂ· ବି—ବିହାରର ମୁଙ୍ଗେରର ଜିଲ୍ଲାନ୍ତର୍ଗତ ଉଷ୍ଣ ପ୍ରସ୍ରବଣ ବିଶେଷ—Name of a hotspring in Monghyr in Bihār. [ଦ୍ର—ଏହି ସ୍ଥାନଟି ହିନ୍ଦୁମାନଙ୍କର ଗୋଟିଏ ପ୍ରଧାନ ତୀର୍ଥ ଅଟେ ।]

ସୀତା ଜନ୍ମବ୍ରତ—ସଂ· ବି—ବୈଶାଖ ଶୁକ୍ଳ ନବମୀ ଦିନ ସୀତାଙ୍କର Sitā janmabrata ପୂଜା ଓ ବ୍ରତ—A festival of (ସୀତାବ୍ରତ—ଅନ୍ୟରୂପ) worshipping Sitā on the

Rāma nabamī day. [ବ୍ରୁ—ବୈଶାଖ ଶୁକ୍ଳନବମୀ ଦିନ ଲଙ୍ଗଳ ଚକ୍ରଡରୁ ସୀତାଙ୍କୁ ରାଜା ଜନକ ପ୍ରାପ୍ତ ହୋଇ ଥିବାରୁ ଉକ୍ତ ଦିନ ଏହି ବ୍ରତଟି ହୁଏ ।]

**ସୀତା ଦେବୀ**—ସଂ. ବି (ଦେବୀ ସଦୃଶୀ ସୀତା)—ରାମଚନ୍ଦ୍ରଙ୍କ ପତ୍ନୀ—
Sītā debī The wife of Rāmachandra.

**ସୀତା ନବମୀ**—ସଂ. ବି—ସୀତା ଜନ୍ମବ୍ରତ (ଦେଖ)
Sītā nabamī Sītā janmabrata, (See)

**ସୀତା ପତି**—ସଂ. ବି ( ଷଷ୍ଠୀତତ୍ )—ରାମଚନ୍ଦ୍ର—
Sītāpati Rāma chandra,

**ସୀତା ପୁର**—ଦେ. ବି ( ନାମ )—ଯୁକ୍ତପ୍ରଦେଶାନ୍ତର୍ଗତ ଲକ୍ଷ୍ନୌର
Sīta pura ଉତ୍ତରସ୍ଥ ଗୋଟିଏ ଜିଲ୍ଲା ଓ ସହର—Sītāpur;
सीतापुर name of a district and town near
सीतापुर Lucknow in the United Provinces.

**ସୀତା ଫଳ**—ଦେ. ବି—ସିତାଫଳ (ଦେଖ)
Sītā phala Sītā phala. (see)

**ସୀତା ବିକ**—ସଂ. ବି—ସତୀଲକ (ରାସ୍ନାମୁଲୁଟ); ମାଷ; ବୃହ—
Sītā bika Kidney bean.

**ସୀତାବିଞ୍ଜ**—ଦେ. ବି (ନାମ)—କେନ୍ଦୁଝରର ପର୍ବତ ବିଶେଷ—
Sītā binja Name of a mountain in the Keonjhar State of Orissā. [ବ୍ରୁ—କେନ୍ଦୁଝର ଜିଲ୍ଲାର ସଦର ମହକୁମା [ସବ୍‌ଡିଭିଜନ୍] ପାଞ୍ଚପଡ଼ା ଦଣ୍ଡପାଟ ଅନ୍ତର୍ଗତ ଭୁଙ୍ଗୁଆପଶି ଗ୍ରାମ ନିକଟସ୍ଥ ସୀତାନାମ୍ନୀ ଗିରି-ନଦୀର ଉପକୂଳରେ ସୀତାବିଞ୍ଜ ପର୍ବତ ଅବସ୍ଥିତ । ଏହା କେନ୍ଦୁଝର ଗଡ଼ର ପୂର୍ବକୁ ୧୨ ମାଇଲ ମଧ୍ୟରେ ଅବସ୍ଥିତ; ଉଚ୍ଚତା ୨୨୦୦ ଫୁଟ୍ । ସ୍ଥାନୀୟ କିମ୍ବଦନ୍ତୀ ଅନୁ-ସାରେ ଏହି ସ୍ଥାନରେ ମହର୍ଷି ବାଲ୍ମୀକିଙ୍କ ଅଶ୍ରମ ଥିଲା । ବର୍ତ୍ତମାନ ମଧ୍ୟ ବାଲ୍ମୀକିଅଶ୍ରମ ନାମରେ ଗୋଟିଏ ଛୋଟ ପାହାଡ଼ ଏଠାରେ ଅଛି ଏବଂ ତହିଁରେ କେତେକ ଶିଳାଲିପି ଅଛି । ଏହି ପାହାଡ଼ ଦେହରେ ଗୋଟିଏ ଖୋଲ [କ୍ଷୁଦ୍ର ଗହ୍ୱର] ଅଛି । ତାକୁ ରାମତନୟ ଲବ କୁଶଙ୍କର ସୂତିକାଗାର କୁହାଯାଏ । ଏହି ଖୋଲକୁ ଲଗାଲଗି ହୋଇ ଆଉ ଗୋଟିଏ ଖୋଲ ଅଛି । ତହିଁରେ ତିନି ଗୋଟି ପ୍ରସ୍ତର ମୂର୍ତ୍ତି ଅଛି । ସ୍ଥାନୀୟ ଲୋକମାନେ ତନ୍ମଧ୍ୟରୁ ଗୋଟିକୁ ସୀତାଦେବୀ ଓ ଗୋଲାକୃତି କଳା ଚକ୍‌କଣ ପଥର ଦୁଇଟିକୁ କୁଶ ଓ ଲବ କହିଥାଆନ୍ତି ।

ଏହି ସ୍ଥାନର ଏକ ମାଇଲ ଦୂରରେ ସୀତାବିଞ୍ଜ ନାମରେ ଗୋଟିଏ ଗ୍ରାମ ଅଛି । ଏହି ଗ୍ରାମର ଭୁଙ୍ଗୁଆ [ଯେଉଁ ବ୍ୟକ୍ତି ଗ୍ରାମବାସୀମାନଙ୍କୁ ସେ କୌଣସି ସାମାଜିକ କାର୍ଯ୍ୟ ଉପଲକ୍ଷେ ତାକି ଏକତ୍ର କରେ] ଉକ୍ତ ସୀତାଦେବୀଙ୍କ ମୂର୍ତ୍ତିକୁ ପୂଜା କରୁଥିଲା । ପ୍ରତିଦିନ ଏକ ମାଇଲ ରାସ୍ତା ଚାଲି ଆସି ଏହି ପୂଜାବିଧି ସମାଧାନ କରିବା ତାହା ପକ୍ଷରେ କଷ୍ଟକର ହେବାରୁ ସେ ପ୍ରଥମେ ଏହି ସ୍ଥାନରେ ତାହାର କୁଟୀର ସ୍ଥାପନ କଲା । କ୍ରମେ ତାହାର ବଂଶ ବୃଦ୍ଧି ସଙ୍ଗେ ସଙ୍ଗେ ଏହା ବର୍ତ୍ତମାନ ଗୋଟିଏ ଗ୍ରାମରେ ପରିଣତ ହୋଇ ଭୁଙ୍ଗୁଆପଶି ନାମରେ ଅଭିହିତ ହେଉଅଛି । ତେଣୁ ଭୁଙ୍ଗୁଆପଶି ଗ୍ରାମଟି ସୀତାବିଞ୍ଜ ଗ୍ରାମର ସୃଷ୍ଟିର ବହୁକାଳ ପରେ ସ୍ଥାପିତ ।

ନିକଟବର୍ତ୍ତୀ ବହୁ ଗ୍ରାମରୁ ଯାତ୍ରୀମାନେ ଏଠାକୁ ପ୍ରତି ଗୁରୁବାର ଦିନ ଆସନ୍ତି । ରଜସଂକ୍ରାନ୍ତି ସମୟରେ ଏଠାରେ ତିନି ଦିନ ମେଳା ହୁଏ । ଯେଉଁ ସ୍ତ୍ରୀମାନଙ୍କର ସନ୍ତାନ ପ୍ରସବ କରିବାରେ ବିଳମ୍ବ ଦେଖାଯାଏ ସେମାନେ ଏଠାକୁ ଆସି ସୀତା ଦେବୀଙ୍କ ମୂର୍ତ୍ତିକୁ ପୂଜା କରନ୍ତି । ପ୍ରକୃତରେ ସେମାନେ ସନ୍ତାନ ପ୍ରସବ କରି ପାରିବେ କି ନାହିଁ, ଏହା ସ୍ଥିର କରିବା ନିମନ୍ତେ ଲବ କୁଶଙ୍କ ପ୍ରସ୍ତର ମୂର୍ତ୍ତି ଦୁଇଟିକୁ ଦୁଇ କାଖରେ ଧରି ସେହି ଠାକୁରାଣୀ ଥିବା ଗୁହାର ଗୁଡ଼ ପାଖରେ ବୁଲନ୍ତି । ଯେଉଁ ନାରୀ ଅବଲୀଳାକ୍ରମେ ସାତଥର ପରିକ୍ରମଣ କରି ପାରେ ତାହାର ବନ୍ଧ୍ୟାତ୍ୱ ପ୍ରତିପାଦିତ ହୁଏ । ଯେଉଁମାନେ ଦୁଇ ତିନିଥର ପରିକ୍ରମଣ କରି ଶ୍ରାନ୍ତ-କ୍ଳାନ୍ତ ହୋଇ ପଡ଼ନ୍ତି ସେମାନେ ଗର୍ଭଧାରଣ କରି ପାରିବେ ବୋଲି ସୂଚନା ମିଳେ । ଏହି ପରୀକ୍ଷା ଦେବା ନିମନ୍ତେ ଅନେକ ରମଣୀ ଏଠାକୁ ଆସିଥାନ୍ତି ।

ଉକ୍ତ ବାଲ୍ମୀକି ଅଶ୍ରମ ପାହାଡ଼ର ଅନତିଦୂରରେ ଆଉ ଦୁଇଗୋଟି କ୍ଷୁଦ୍ର ପାହାଡ଼ ଅଛି । ତହିଁମଧ୍ୟରୁ ଗୋଟିକୁ ରାବଣ ଛାୟା ଓ ଅନ୍ୟଟିକୁ ଭଣ୍ଡାରଘର କହନ୍ତି । ରାବଣ ଛାୟା ପାହାଡ଼ରେ ରାମ ରାବଣ ଯୁଦ୍ଧର ଚିହ୍ନମାନ ରହି ଅଛି । ସୀତା ଦେବୀ ମୂର୍ତ୍ତିଙ୍କ ଦେହରେ ଯେଉଁ ଚନ୍ଦନ ଦିଆ ଯାଏ ତାହା ପ୍ରକୃତ ଚନ୍ଦନ ନୁହେଁ । ଉକ୍ତ ଭଣ୍ଡାରଘର ପାହାଡ଼ରୁ ଦେହୁରି ( ପୂଜକ ) ଏକପ୍ରକାର ପଥର ଆଣି ତାକୁ ଚନ୍ଦନ ପରି ଘୋରି ଠାକୁରାଣୀଙ୍କ ଦେହରେ ଲଗାଏ । ସେହିଭଳି ପଥର ଅନ୍ୟ ଜାଗାରେ ମିଳେ ନାହିଁ ।

ଭଣ୍ଡାରଘର ପାହାଡ଼ରୁ ରାବଣ ଛାୟା ପାହାଡ଼କୁ ଯିବା ବାଟରେ ଇଷ୍ଟକୀ ସ୍ତୂପମାନ ରହିଅଛି । ସେ ସବୁ ଗୋଟିଏ ଦୁର୍ଗର ଭଗ୍ନାବଶେଷ ପରି ଜଣାଯାଏ—ସନ୍ଦର୍ଭ ଲେଖକ, ଶ୍ରୀ ବଂଶୀଧର ମହାନ୍ତି । ]

**ସୀତା ବ୍ରତ**—ସଂ. ବି—ସୀତା ଜନ୍ମ ବ୍ରତ ( ଦେଖ )
Sītā brata Sītā janma brata ( See )

**ସୀତା ଭୋଗ**—ଦେ. ବି—ସିତା ଭୋଗ ( ଦେଖ )
Sītā bhoga Sītā bhoga ( See )

**ସୀତା ମୁଖ**—ସଂ. ବି ( ନାମ ) ( ଦ୍ୱନ୍ଦ୍ୱ )—ଲଙ୍ଗଳ-ଚକ୍ରଡର ମଧ୍ୟଭାଗ—
Sītā mukha The inside of a furrow.

**ସୀତା ରାମ**—ସଂ. ବି ( ଦ୍ୱନ୍ଦ୍ୱ )—ସୀତା ଓ ରାମଚନ୍ଦ୍ର—Sīta and
Sītā rāma Rāmachandra. ଦେ. ବି. ପୁଂ—ଲୋକଙ୍କୁ
सीताराम ଦିଆଯିବା ନାମ—A name given to males.
सीता राम

**ସୀତାରାମପୁର**—ଦେ. ବି—ଇଷ୍ଟ ଇଣ୍ଡିଅନ୍ ରେଲ ଲାଇନ୍‌ର ଗୋଟିଏ
Sītārāmapura ଷ୍ଟେସନ—A station on the main

ସୀତାରାମପୁର line of E. I. Ry. from which a
सीतारामपुर line goes to Deoghar. [ବୃ—ଏହିଠାରୁ ବାବା ବୈଦ୍ୟନାଥ ବା ଦେଓଘରକୁ ଶାଖା ଲାଇନ୍ ଯାଇଅଛି । ]

**ସୀତା ଶାଳ**—ଗ୍ରା· ବି ( ଷିଂହଭୂମ ) ବି—ଏକପ୍ରକାର ଧାନ—
Sitā śāli A species of paddy.

**ସୀତକାର**—ଦେ. ବି ( ସଂ· ସୀତ୍କାର )—ସୀତ୍କାର ( ଦେଖ )—
Sitikāra Sit-kāra (See) [ ଉ—କାମକଳାରେ ରତନୁ
सीत्कार सीतकार ବୃଦ୍ଧି ପ୍ରେମାଙ୍କେ, କମ୍ପି ସୀତକାରେ ବୋଲ ନ ସୁଝେ—ଶିଶୁଶଙ୍କର· ଉଷାଅଭିଳାଷ । ]

**ସୀତ୍କାର**—ସ. ବି—ସୀତ୍କାର ( ଦେଖ )
Sitkāra Sit·kāra (See)
( ସୀତ୍କୃତ—ଅନ୍ୟରୂପ )

**ସୀତ୍କୃତ**—ସ. ବିଂ—ସୀତ୍କୃତ ( ଦେଖ )
Sitkṛuta Sit-kṛuta (See)
ସ. ବିଶ—ସୀତ୍କାର (ଦେଖ)—Sit-kāra (See)

**ସୀତ୍ୟ**—ସ. ବି ( ସୀତା=ଲଙ୍ଗଳ ପଦ୍ଧତି+ଯ )—୧ । ଧାନ୍ୟ
Sitya ( ହେମଚନ୍ଦ୍ର )—1. Paddy. ୨ । କୃଷ୍ଟକ୍ଷେତ୍ର; ଚଷ ହୋଇଥିବା ଜମି ( ଅମର )—
2. A ploughed field.

**ସୀତ୍ୟା**—ଗ୍ରା. ଚ. ସ୍ତ୍ରୀ ( ଅଶୁଦ୍ଧ ଉଚ୍ଚାରଣ )—୧ । ସୀତା—
Sityayā 1. Sitā, the wife of Rāmachandra.
सीता सीतिया ୨ । ସୀତାର ଡାକ ନାମ—
2. Nickname of Sitā.

**ସୀଦତି**—ସ. କ୍ରି (ସ.ସୀଦ୍ ଧାତୁ=ପୀଡ଼ା ପାଇବା+ବର୍ତ୍ତମାନ କାଳ, ଲଟ୍ ତି )—ପୀଡ଼ା ଭୋଗ କରୁଅଛି—Is suffering
Sidati (pain). [ ଉ—ଦାସବୃନ୍ଦେ ବୃଥା ସୀଦତି କାମ ବ୍ୟଗ୍ରେ—ପ୍ରାଚୀ· ରସକାବ୍ୟ । ]

**ସୀଦ୍ୟ**—ସ. ବି (ସିଂ ଧାତୁ+କରଣ· ଦ୍ୟ)—ଅଳସ୍ୟ (ଶବ୍ଦ କଲ୍ପଦ୍ରୁମ)—
Sidya Idleness.

**ସୀଧୁ**—ସ. ବି ( ସୀଧ୍ ଧାତୁ=ଶୋଭିବା+କର୍ମ. ଉ; ଉଣାଦିସିଦ୍ଧ; ଏହା ପାନ କଲେ କଢ଼ା ହୁଏ; ଅନ୍ୟରୂପ 'ଶୀଧୁ' ଓ
Sidhu 'ଶୀଧୂ' )—ପକ୍ୱ ଇକ୍ଷୁରସଜାତ ମଦ୍ୟ; ମଦିରା; ଅଖୁ ଗୁଡ଼ଜାତ ମଦ୍ୟ—Wine made from boiled sugarcane-juice; sugar from molasses. [ ବୃ—ଏହା ସ୍ୱରଗୁଣବଳବର୍ଦ୍ଧକ, ହୃଦ୍ୟ ଓ ବାତପିତ୍ତକର ଅଟେ । ଅପକ୍ୱ ଇକ୍ଷୁରସଜାତ ମଦ୍ୟକୁ ଶୀତରସ ବୋଲାଯାଏ । ]

**ସୀଧୁ ଗନ୍ଧ**—ସଂ. ବି ( ୬ଷ୍ଠୀ ତତ୍ )—୧ । ମଦ୍ୟଗନ୍ଧ—1. The
Sidhu gandha smell of wine. ୨ । (ବହୁବ୍ରୀହି; ସୀଧୁ ପରି ଗନ୍ଧ ଯାହାର ) ବକୁଳ ଫୁଲ—2. The Bakula flower. ୩ । ବକୁଳ ଗଛ ( ଶବ୍ଦରତ୍ନାବଳୀ )—
3. The Bakula tree.

**ସୀଧୁ ପୁଷ୍ପ**—ସ. ବି ( ବହୁବ୍ରୀହି )—୧ । କଦମ୍ବ ( ରାଜନିର୍ଘଣ୍ଟ )—
Sidhu pushpa 1. The Neuclea Kadamba tree.
୨ । ବକୁଳ; ବଉଳ ( ରାଜନିର୍ଘଣ୍ଟ )—
2. The Bakula tree.

**ସୀଧୁ ପୁଷ୍ପୀ**—ସ. ବି ( ବହୁବ୍ରୀହି )—ଧାତକୀ ( ଦେଖ )—A flow-
Sidhu pushpi ering plant; Woodfordia Floribunda.

**ସୀଧୁ ରସ**—ସଂ ବି ( ବହୁବ୍ରୀହି; ସୀଧୁ ପରି ରସ ଯାହାର )—ଅମ୍ବବୃକ୍ଷ—
Sidhu rasa Mango tree.

**ସୀଧୁ ସଞ୍ଜ୍ଞ**—ସ. ବି ( ସୀଧୁ+ସଞ୍ଜ୍ଞା ଯାହାର; ବହୁବ୍ରୀହି )—ବକୁଳ
Sidhu samjña ବୃକ୍ଷ ( ରାଜନିର୍ଘଣ୍ଟ )—
The Bakula tree.

**ସୀଧ୍ର**—ସ. ବି—୧ । ଅପାନ ( ଶବ୍ଦକଳ୍ପଦ୍ରୁମ ); ପ୍ରାଣବାୟୁବିଶେଷ;
Sidhra ଅଧୋବାୟୁ—1. One of the five vital airs of the body which passes hrough the anus.
୨ । ଗୁହ୍ୟଦ୍ୱାର—2. Anus.

**ସୀପ**—ସ. ବି—ପାତ୍ରୀ; ତର୍ପଣାଦି ପାଇଁ ବ୍ୟବହୃତ ଜଳପାତ୍ରବିଶେଷ
Sipa ( ଶବ୍ଦ କଲ୍ପଦ୍ରୁମ )—A small boat-shaped
কোষা, সীপ copper vessel used in pouring water
कोषा during the offering of water to the manes.

**ସୀବନ**—ସ. ବି ( ସୀବ୍ ଧାତୁ=ସିଲେଇ କରିବା+ଭାବ· ଅ )—୧ ।
Sibana ସିଲେଇ (ଅମର)—1. Sewing. ୨ । ସୂଚୀକର୍ମ—
2. Needle work. ୩ । ତନ୍ତୁ ସନ୍ତାନ; ବୁଣିବା; ବୁଣିବା ( ଶବ୍ଦ ରତ୍ନାବଳୀ )—3. Weaving.

**ସୀବନୀ**—ସ. ବି ( ସୀବ୍ ଧାତୁ+କରଣ· ଅନ+ସ୍ତ୍ରୀ. ଈ )—୧ ।
Sibani ସୂଚୀ; ଛୁଞ୍ଚ—1. Needle. ୨ । ( ବୈଦ୍ୟଶାସ୍ତ୍ର ପରିଭାଷା ) ଲିଙ୍ଗାଗ୍ରଠାରୁ ଲିଙ୍ଗ ମୂଳ ଓ କୋଷର ମଧ୍ୟଦେଇ ଗୁହ୍ୟଦ୍ୱାର ପର୍ଯ୍ୟନ୍ତ ସିଲେଇ ( ହେମଚନ୍ଦ୍ର )—
2. Sewing of the part between the end of the penis up to the anus after an operation for scrotal tumour. ୩ । ଲିଙ୍ଗମଣ୍ୟଧଃ ସୂତ୍ର—3. The vein or ridge running below the penis.

**ସୀମନ୍ତ**—ସ. ବି ( ସୀମନ୍=କେଶର ସୀମା+ଅନ୍ତ=ଶେଷ, ଉଣାଦି )—୧ । କେଶ ମଧ୍ୟରେ ରଚିତ ବର୍ତ୍ମ
Simanta ( ହେମଚନ୍ଦ୍ର ); କେଶବୀଥି; ସୁନ୍ଥା; ଶାଳଖ ଦ୍ୱାରା ବିଭକ୍ତ କେଶମଧ୍ଯ ରେଖା; କେଶରଚନାବିଶେଷ; ମାଙ୍ଗ—1. A mode of dressing the hair; the parting line between two tufts of combed hair; partition of the hair; a furrow done up on the head of women.
୨ । ସୀମନ୍ତୋନ୍ନୟନ ( ଦେଖ )—2. Simantonnayna. (See) ୩ । ଶୀର୍ଷ; ମସ୍ତକ—3. The head.

**ସୀମନ୍ତକ**—ସ. ବ (ସୀମନ୍ତ+କ; ଏହାକୁ ସଧବାମାନେ ସୀମନ୍ତରେ **Simantaka** ଗ୍ରହଣ କରନ୍ତି)—୧ । ସିନ୍ଦୂର (ରାଜନିର୍ଘଣ୍ଟ)—1. Vermillion. ୨ । ନରକବାସୀ (ହେମଚନ୍ଦ୍ର)—2. Certain beings said to inhabit the hell. [ ଦ୍ର—ଏମାନେ ସଙ୍ଖ୍ୟାରେ ୫ ଲକ୍ଷ ଥିବା କଥିତ ।] ୩ । (ସୀମନ୍ତ+କ); ସୀମନ୍ତ (ଦେଖ)—3. Simanta. ( See ) ୪ । ଅସ୍ଥିସଙ୍ଘାତ (ସୁଶ୍ରୁତ); ଅସ୍ଥିମାନଙ୍କ ମିଳନ ସ୍ଥଳ—4. The meeting place of bones. [ଦ୍ର—ଦେହସ୍ଥ ଅସ୍ଥି ସଙ୍ଖ୍ୟା ୩୦୦ ଓ ମତାନ୍ତରରେ ୩୦୬ । ସୀମନ୍ତକ ୧୪ଟି । ଅସ୍ଥିର ମିଳନ ସ୍ଥାନମାନ ସୀବନ୍ତ ଅର୍ଥାତ୍ ସିଲାଇ କରାଯାଏ ବୋଲି ଏହି ନାମ ଦିଆଯାଇଅଛି ।] ୫ । (ସୀମନ୍ତ+ବୈ. ଧାତୁ+କର୍ତ୍ତୃ. ଅ) ରକ୍ତସିନ୍ଦୂର—5. Vermillion.

**ସୀମନ୍ତ ମଣି**—ସଂ. ବ—ସ୍ତ୍ରୀଲୋକମାନେ ସୀମନ୍ତରେ ଯେଉଁ ମଣି ପିନ୍ଧନ୍ତି; **Simanta mani** ମଥାମଣି—An ornament for the Simanta.

**ସୀମନ୍ତ ରେଖା**—ସଂ. ବ. ସ୍ତ୍ରୀ—ସୂନ୍ଥା ଗାର—The parting line **Simanta rekha** dividing the hair on the head when combed. ସ. ବିଣ. ସ୍ତ୍ରୀ (ଲକ୍ଷଣାର୍ଥ)—ଶ୍ରେଷ୍ଠ—Best; paragon. [ଉ—ତାଙ୍କ ପଛେ ଯାଉଛନ୍ତି ଗଜେନ୍ଦ୍ରଗାମିନୀ ରମଣୀ-ସୀମନ୍ତରେଖା ସ୍ୱର୍ଣ୍ଣ ମଣ୍ଡିତଲେ । ରାଧାନାଥ. ମହାଯାତ୍ରା ]

**ସୀମନ୍ତିତ**—ସଂ. ବିଣ (ସୀମନ୍ତ+ସଞ୍ଜାତ ବା ବିଶିଷ୍ଟାର୍ଥେ ଇତ)—୧ । ସୀମନ୍ତ **Simantita** ବିଶିଷ୍ଟ (କେଶ); ମାଙ୍ଗ ବା ସୂନ୍ଥା କଟା ଯାଇ ଥିବା (କେଶ)—1. (a head) With hair parted in the middle. ୨ । ଦ୍ୱିଖଣ୍ଡିତ—2. Parted or divided into two.

**ସୀମନ୍ତିନୀ**—ସ. ବି. ସ୍ତ୍ରୀ (ସୀମନ୍ତ+ଅଛି ଅର୍ଥରେ ଇନ୍+ଈ, ଈ; **Simantini** ଯାହାଙ୍କର ସୀମନ୍ତ ଅଛି, ଅର୍ଥାତ୍ ଯେ କାଳରେ ସୂନ୍ଥା ପକାନ୍ତି)—୧ । ସ୍ତ୍ରୀ; ନାରୀ (ଅମର)—1. Woman. ୨ । ସୀମନ୍ତଧାରିଣୀ ସ୍ତ୍ରୀ; ସଧବା ସ୍ତ୍ରୀ (କାରଣ ସଧବାମାନେହିଁ ସୂନ୍ଥା କାଟିବାର ଓ ସୂନ୍ଥାରେ ସିନ୍ଦୂର ଦେବାର ଅଧିକାରିଣୀ)—2. A woman having her husband living. ସ. ବିଣ. ସ୍ତ୍ରୀ—[ସୀମନ୍ତୀ—ପୁଂ] ସୀମନ୍ତଧାରିଣୀ—(A woman) Having the dressed hair parted in the middle.

**ସୀମନ୍ତୀ**—ସ. ବିଣ. ପୁଂ (ଅଧୁନିକ ବ୍ୟବହାର; ସୀମନ୍ତ+ଅଛି ଅର୍ଥରେ, ଇନ୍; **Simanti** ୧ମା. ୧ବ)—ସୀମନ୍ତଧାରୀ; ଟେରି କାଟିବାବାଲା—(ସୀମନ୍ତିନୀ—ସ୍ତ୍ରୀ) Wearing the dressed hair parted in the middle. [ଦ୍ର—ଏହି ଶବ୍ଦ ସଂସ୍କୃତ ବ୍ୟାକରଣ ବିଧି ଅନୁସାରେ ଗଢ଼ା; କିନ୍ତୁ ପୂର୍ବକାଳରେ ପୁରୁଷମାନେ ସୂନ୍ଥା କାଟୁ ନ ଥିବାରୁ ଏ ଶବ୍ଦର ବ୍ୟବହାର ସଂସ୍କୃତ ଭାଷାରେ ନ ଥିଲା । ଅଧୁନାଲ ପାଶ୍ଚାତ୍ୟ ଶିକ୍ଷା ପ୍ରଭାବରୁ ବାବୁମାନେ ନାନା ଭଙ୍ଗୀରେ (ଦଶ ଅଣି, ଆଠ ଅଣି, ଛଅ ଅଣି, ବାର ଅଣି, ଷୋଳ ଅଣି ଇତ୍ୟାଦି ଅନୁପାତରେ) ମୁଣ୍ଡର ଆଗ ଓ ପଛ ବାଳକୁ କଙ୍କୁଆରେ କଟାଇ ସୂନ୍ଥା (ଫିରିଙ୍ଗି ବା ଟେରି) ପକାଇବାରୁ ଏହି ଶବ୍ଦର ଅଧୁନିକ ଯୁଗରେ ବ୍ୟବହାର ଅବଶ୍ୟକ ହୋଇ ଉଠିଅଛି ।] ଦେ. ବ (ସଂ. ସୀମନ୍ତ)—

**ସିଁଥା(ଥି)** ସୂନ୍ଥା; ଟେରି—The artistic parting of **सिंथ** the hair on the head. ( ଉ—ଶିରରେ ସିମନ୍ତୀ ମୋହନକାଳି ଅଛି ଶୋଭି । କେଶବ ପଟ୍ଟନାୟକ. କେଶବ

**सीमन्तिनी** ରାମାୟଣ. ଆଦି ।) ଦେ. ବ—ସ୍ତ୍ରୀ—ସୀମନ୍ତିନୀ; ସ୍ତ୍ରୀ—**सीमन्तिनी** Woman; lady. ( ଉ—ବସିଲେ ସୀମନ୍ତୀ ମନ ଦୁଃଖେ । ପ୍ରାଚୀନ ରସବାରିଧି )

**ସୀମନ୍ତୋନ୍ନୟନ**—ସ. ବ (ସୀମନ୍ତ=ସୂନ୍ଥା+ଉନ୍ନୟନ=ଉପରକୁ **Simantonnayana** ଉଠାଇବା; ୬ଷ୍ଠୀ ତତ୍)—୧ । ସୀମନ୍ତକୁ ଉର୍ଦ୍ଧ୍ୱକୁ ନେବାରୂପ କ୍ରିୟା; କେଶକୁ ଗୋଟାଇ ନେଇ ସୂନ୍ଥା ନ ପକାଇ ବାନ୍ଧିବା, ସୂନ୍ଥାକୁ ଉପରକୁ ଟେକି ନେଇ ବାଳ ବାନ୍ଧିବା—1. Tying of the hair of the head without parting it into ridges. ୨ । (ସପ୍ତମ୍ୟନ୍ତ ପଦାର୍ଥ ବହୁବ୍ରୀହି; ଯେଉଁ ସଂସ୍କାରରେ ସୀମନ୍ତର ବା ସୀମନ୍ତିତ କେଶର ଉନ୍ନୟନ କରାଯାଏ)—ଗର୍ଭିଣୀର ଗର୍ଭଧାରଣର ୪ର୍ଥ, ୬ଷ୍ଠ ବା ୮ମ ମାସରେ କର୍ତ୍ତବ୍ୟ ସଂସ୍କାର ବିଶେଷ; ଆପଣାର ଗର୍ଭିଣୀ ସ୍ତ୍ରୀଙ୍କ କେଶର ସୂନ୍ଥାକୁ ଭାଙ୍ଗି କେଶଯାକ ଗୋଟାଇ ବାନ୍ଧିବାରୂପ ପୁରୁଷ-କର୍ତ୍ତବ୍ୟ ସଂସ୍କାର; ହିନ୍ଦୁଙ୍କ ଦଶବିଧ ସଂସ୍କାର ମଧ୍ୟରୁ ତୃତୀୟ ସଂସ୍କାର—2. A ritual performed by the husband on the hair of a pregnant woman (on the 4th, 6th or 8th month of pregnancy) by combing the hair up without leaving a furrow. [ଦ୍ର—ଗର୍ଭର ତୃତୀୟ ମାସରେ ଅର୍ଥାତ୍ ଗର୍ଭାଧାନ ସଂସ୍କାର ପରେ ଗର୍ଭ ହେବା କଥା ସ୍ଥିର ହୋଇଗଲେ ଜଣା ପଡ଼ିଲେ ପୁଂସବନ ସଂସ୍କାର କରାଯାଏ । ତଦୁପରେ ଗର୍ଭର ୪ର୍ଥ, ୬ଷ୍ଠ ବା ଅଷ୍ଟମ ମାସରେ ସୀମନ୍ତୋନ୍ନୟନ ସଂସ୍କାର କରାଯାଏ । ସ୍ୱାମୀଙ୍କ ଅବିଦ୍ୟମାନତାରେ ଗର୍ଭିଣୀଙ୍କ ଭ୍ରାତା ବା ପିତା ଏ କ୍ରିୟା ଅନୁଷ୍ଠାନ କରିବେ । ନାରଦ ।

ଗର୍ଭ ସ୍ପନ୍ଦନକାଳଠାରୁ ପ୍ରସବକାଳ ପର୍ଯ୍ୟନ୍ତ ଏ ସଂସ୍କାର କର୍ତ୍ତବ୍ୟ ଓ ଯେତେ ଶୀଘ୍ର ଏହା ଅନୁଷ୍ଠିତ ହୁଏ, ସେତେ ଭଲ । ସ୍ୱାମୀ ହାତରେ ଗୋଟିଏ ଶର ବା କାଣ୍ଡ ଧରି ବେଦୋକ୍ତ ମନ୍ତ୍ର ଉଚ୍ଚାରଣପୂର୍ବକ ତାହା ଗର୍ଭିଣୀ ସ୍ତ୍ରୀଙ୍କ ସୀମନ୍ତର ମୂଳଦେଶରେ ଲଗାଇ ଉନ୍ନୟନ ଦ୍ୱାରା ସୀମନ୍ତର ଉଭୟ ପାର୍ଶ୍ୱସ୍ଥ ଦ୍ୱିଧାକୃତ କେଶକୁ ଏକତ୍ର କରି ପଛ ଆଡ଼କୁ ଟେକି ନେଇ ବାନ୍ଧି ଦିଅନ୍ତି ଏବଂ ଗର୍ଭିଣୀଙ୍କ କଣ୍ଠରେ ଉଦୁମ୍ବର ଫଳଗୁଚ୍ଛ ବାନ୍ଧି ଦିଅନ୍ତି । ଗର୍ଭାବସ୍ଥାରେ ଓ ବିଶେଷତଃ ଗର୍ଭ ଗୁରୁ ହେବା ଅବସ୍ଥାରେ ଗର୍ଭିଣୀଙ୍କ ସ୍ୱାମୀସହବାସ ତ୍ୟାଜ୍ୟ ଅଟେ ।

ସୀମନ୍ତିନୀମାନଙ୍କ ସୀମନ୍ତ ବିନ୍ୟାସ କାମିନୀଙ୍କ କମନୀୟତାକୁ ଓ ସ୍ୱାମୀଙ୍କ ଚକ୍ଷୁରେ ପ୍ରଲୋଭନୀୟତାକୁ ବୃଦ୍ଧି କରେ । ସୀମନ୍ତକୁ ଉନ୍ମୁକ୍ତ କରି କେଶଗୁଚ୍ଛକୁ ଏକାଠେଇଁ କରି ବାନ୍ଧିଲେ ସ୍ତ୍ରୀମାନଙ୍କ ମୁଖସୌନ୍ଦର୍ଯ୍ୟ ସୀମନ୍ତସଜ୍ଜିତ ମୁଖ ପରି ଅକ୍ଷୁଣ୍ଣ ଓ ରମଣୀୟ ହୁଏ ନାହିଁ । ଅତଏବ ଗର୍ଭଧାରଣର ଅନ୍ତ୍ୟଷ୍ଟ ଷଷ୍ଠମାସଠାରୁ ପ୍ରସବ ପର୍ଯ୍ୟନ୍ତ ଗର୍ଭିଣୀକର ସୀମନ୍ତୋନ୍ନୟନ ଦ୍ୱାରା ସ୍ୱାମୀଙ୍କ କାମପିପାସାରେ ବାଧା ଦେବା ବୋଧ ହୁଏ ଏହି 'ସୀମନ୍ତୋନ୍ନୟନ' ସଂସ୍କାରର ଗୂଢ଼ ଉଦ୍ଦେଶ୍ୟ ଥିଲା ।

ଆଜକାଲି ଏହି ବୈଦିକ ପ୍ରଥା ପ୍ରଚଳିତ ନାହିଁ । କେବଳ ଗର୍ଭଧାରଣର ୭ମ ବା ୯ମ ମାସରେ ଚଉଦ୍ରଶିଆ ପ୍ରଥା ହିନ୍ଦୁ ସମାଜରେ ପ୍ରଚଳିତ ଅଛି ।]

**ସୀମ ଲିଙ୍ଗ**—ସଂ. ବି (ସୀମନ୍+ଲିଙ୍ଗ)—ସୀମାଲିଙ୍ଗ (ଦେଖ)
**Sīma linga** Sīmālinga (See)
[ଦ୍ର—ଗ୍ରାମସ୍ଥ ଲୋକଗଣଙ୍କ ସମକ୍ଷରେ ଉଭୟ ପକ୍ଷ (ବାଦୀ ପ୍ରତିବାଦୀ)ଙ୍କ ଉପସ୍ଥିତିରେ ସାକ୍ଷୀମାନଙ୍କୁ ପଚାରି ସୀମଲିଙ୍ଗମାନ ସ୍ଥିର କରିବ—ମନୁ ୮।୨୫୪-୨୫୫ ।]

**ସୀମ ସ୍ଥାନ**—ଦେ. ବି (ସଂ. ସୀମନ୍+ସ୍ଥାନ)—୧ । ମୁଣ୍ଡ ତଳେ
**Sīma sthāna** ଦିଆଯିବା ତକିଅ—1. Pillow for the
ताकिया तकिआ head. ( ଉ—ଶିରକୁ ସୀମସ୍ଥାନ ଯୋଗାଇ କର୍ପୂରଧୂଳି ଶିଙ୍ଗା । ଭକ୍ତଚରଣ. ମଥୁରାମଙ୍ଗଳ ।)
माथा मस्तक ୨ । ମସ୍ତକ—2. Head.

**ସୀମା**—ସଂ. ବି (ସି, ଧାତୁ=ବନ୍ଧନ କରିବା+ମନ୍; ୧ମା. ୧ବ; ସ୍ତ୍ରୀ.
**Sīmā** ସୀମନ୍ ଶବ୍ଦର ପ୍ରଥମା ଏକବଚନରେ ହେବା ସୀମା ଶବ୍ଦ ପୁଂଲିଙ୍ଗ ଏବଂ ସୀମନ୍ ଶବ୍ଦରେ ଆ ପ୍ରତ୍ୟୟ ହୋଇ ନିଷ୍ପନ୍ନ ହେବା ସୀମା ଶବ୍ଦ ସ୍ତ୍ରୀଲିଙ୍ଗ)—୧ । ପ୍ରାନ୍ତ; ଅନ୍ତ; ଅବଧି—
1. Extremity. ୨ । ଶେଷ; ସମାପ୍ତି—2. End; finish. ୩ । ଗ୍ରାମାଦିର ଅବଧାରିତ ଅନ୍ତଭାଗ; ସରହଦ—
3. Border; the defined limit of a village or country; boundary. ୪ । ତୀର; ସମୁଦ୍ର-ବେଳା—4. Sea-shore. ୫ । କ୍ଷେତ୍ର—5. A field; plot of land. ୬ । ମର୍ଯ୍ୟାଦା; ସ୍ଥିତି—
6. The bounds of morality or decorum; limits of propriety; etiquette; good manners. ୭ । ରୀତି; ପ୍ରଥା; ବ୍ୟବହାର—
7. Usage; custom. ୮ । ମୁଷ୍କ; ଅଣ୍ଡକୋଶ—
8. The scrotum. ୯ । ନିକଟବର୍ତ୍ତୀ ପ୍ରଦେଶ—
9. Adjacent tract of land.

[ ଉ—ବାରି ନ ପାରି ରେ ବାରିଜାକ୍ଷି,
ବାରି ମଧ୍ୟେ ଭୁ ଥିଲୁ ବଳସି,
ଗୃହ ଉଷ୍ଣ ଯହୁଁ ଟଳେ ମସି,
ପଳାଇଣ ମଣ୍ଡିଦେଲୁ ମଣ୍ଡପ ସୀମାରେ—
ଭଳ କ୍ଷମାରେ
ଜଣା ନ ଥିଲି ମାଜଣା ହେବ ବୋଲି ଲେମା—
କବିସୂର୍ଯ୍ୟ. ସଙ୍ଗୀତ ।]

[ଦ୍ର—ମନ୍ୱାଦି ଧର୍ମଶାସ୍ତ୍ରରେ ଚତୁର୍ବିଧ ସୀମାର ଉଲ୍ଲେଖ ଅଛି । ଯଥା—ଜନପଦ ସୀମା, ଗ୍ରାମ ସୀମା, କ୍ଷେତ୍ର ସୀମା ଓ ଗୃହ ସୀମା । ଏହା ଛଡ଼ା ସୀମାର ପଞ୍ଚବିଧ ଲକ୍ଷଣ ମଧ୍ୟ ଶାସ୍ତ୍ରରେ କଥିତ ହୋଇଅଛି । ଯଥା—
୧ । ଧ୍ୱଜିନୀ—ବୃକ୍ଷାଦି ଚିହ୍ନିତ ସୀମା ।
୨ । ମତ୍ସ୍ୟିନୀ—ଜଳାଶୟ ଓ ନଦ୍ୟାଦି ଚିହ୍ନିତ ସୀମା ।
୩ । ନୈଧାନୀ—ଭୂମିତଳେ ପୋତା ହୋଇଥିବା ତୁଷ, ଅଙ୍ଗାରାଦି ଦ୍ୱାରା ଚିହ୍ନିତ ସୀମା ।
୪ । ଭୟବର୍ଜିତା—ଅର୍ଥୀ ଓ ପ୍ରତ୍ୟର୍ଥୀ ପରସ୍ପରଙ୍କ ସମ୍ମତିରେ କଳ୍ପିତ ସୀମା ।
୫ । ରାଜଶାସନନୀତା—ରାଜାଦେଶରେ କଳ୍ପିତ ସୀମା ।
ସୀମାବିବାଦର ମୀମାଂସା, ସୀମା ଲଙ୍ଘନର ଦଣ୍ଡ ଓ ସୀମାଲିଙ୍ଗ ବା ସୀମାଜ୍ଞାପକ ଚିହ୍ନ ସ୍ଥାପନ ପାଇଁ କାତ୍ୟାୟନ, ନାରଦ, ମନୁ, ମିତାକ୍ଷରା ପ୍ରଭୃତି ଧର୍ମଶାସ୍ତ୍ର-ମାନଙ୍କରେ ନାନାବିଧ ଉପଦେଶ ଲିପିବଦ୍ଧ ହୋଇଅଛି ।]

पास ଦେ. ଅ—ପାଖରେ; ନିକଟରେ; ଠାରେ—In; near.
काछे [ଉ—ନନ୍ଦ ରଜା ବୋଇଲେ ସେ ତ ରାଜଜେମା, ତନ୍ତ୍ର ସୃଷ୍ଟି କରି ନ ପଡ଼େ ତାର ସୀମା । କୃଷ୍ଣସିଂହ. ମହାଭାରତ
सीमा ବନ ।] ଦେ. ବି—ପାଖ; ନିକଟ—Nighness; proxi-
पास mity. [ଉ—ଗାବନ ଥିବାପାକ ରଜାଙ୍କୁ ମଣିମା, ବୋଲୁଥାନ୍ତି ମଲେ ନ ଯାନ୍ତି ତାଙ୍କ ସୀମା ।
କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।]

**ସୀମା ଅଙ୍ଗାର**—ପ୍ରାଦେ (ଗଞ୍ଜାମ) ବି—କୋଇଲା—
**Sīmā angāra** Coal.

**ସୀମା କାଉଁରିଆ**—ପ୍ରାଦେ (ଗଞ୍ଜାମ) ବି—ପଟଳ କାଉଁରିଆ —
**Sīmā kāunria** A red variety of jute plant.

**ସୀମା କୃଷାଣ**—ଦ. ବି—ସୀମା ସନ୍ନିହିତ କ୍ଷେତ୍ରକର୍ଷକ; ଚତୁଃସୀମା ଚାଷୀ—
**Sīmā krushāni** Persons cultivating lands on the boundary of any land.

**ସୀମା ଚଂକ୍ରମଣ**—ସ. ବି (୭ମୀ ତତ୍; ସୀମା+ଚଂକ୍ରମଣ)—ସୀମାରେ
**Sīmā chamkramana** ଭ୍ରମଣ; ଅନ୍ୟର ସୀମାଲଙ୍ଘନ—
Encroaching on the boundary of another.

**ସୀମାଚ(ଞ୍ଚ)ଳ**—ଦେ. ବି (ନାମ) (ସ. ସିଂହାଚଳ)—ଦାକ୍ଷିଣାତ୍ୟର
**Sīmācha(ñcha)la** ତୀର୍ଥ ବିଶେଷ—Sīmāchala—a
[ସୀମାଚଲମ୍—ଅପଭ୍ରଂଶ] shrine in South India in
सीमाचल the district of Vizag. [ଦ୍ର—ଏହା ଓ୍ୱାଲଟେୟାର
सीमा'चल ରେଳ୍ୱେ ଷ୍ଟେସନରୁ ମାନ୍ଦ୍ରାଜ ଲାଇନରେ ୨୩୨ ମାଇଲ ଦୂରରେ ଅବସ୍ଥିତ ୱାଲଟାୟାର୍ ଷ୍ଟେସନଠାରୁ ୮ ମାଇଲ ଦୂରରେ ପର୍ବତ ଉପରେ ଅବସ୍ଥିତ । ଏହି ପର୍ବତର ନାମ ସଂସ୍କୃତରେ ସିଂହାଚଳ ଓ ଭାଷାରେ ସୀମାଚଳ ଏବଂ ତେଲୁଗୀ ଭାଷାରେ ସୀମାଚଲମ୍ ଅଟେ । ଏହା କୈଳାସ ପର୍ବତର ଏକ ଅଂଶ ବୋଲି କଥିତ । ପାଷାଣ ନିର୍ମିତ ସହସ୍ରାଧିକ ସୁପ୍ରଶସ୍ତ ସୋପାନ ଅତିକ୍ରମ କରି ପର୍ବତୋପରିସ୍ଥ ମନ୍ଦିର ନିକଟକୁ ଯିବାକୁ ହୁଏ । ପର୍ବତ

ଶୃଙ୍ଗରୁ ଝରଣା ସମୂହ କମ୍ରରୁ ପ୍ରବାହିତ ହୋଇ ପର୍ବତ-ପାର୍ଶ୍ୱରେ ଓ ନିମ୍ନଦେଶରେ ଥିବା କ୍ଷେତ୍ରମାନଙ୍କରେ କଦଳୀ, ସପୁରି, କଇଥ, ଗୁଆ, ଆମ୍ବ, ଅମୃତଭଣ୍ଡା, ପଣସ ଆଦି ଫଳ ଓ ଚମ୍ପା, ଗୋଲାପ, କନିଅର ପ୍ରଭୃତି ପୁଷ୍ପମାନଙ୍କ ଦ୍ୱାରା ପର୍ବତକୁ ସୁଶୋଭିତ କରୁଅଛି । ଏହି ମନ୍ଦିରରେ ହିରଣ୍ୟକଶିପୁ-ହନ୍ତା ନୃସିଂହଙ୍କ ମୂର୍ତ୍ତି ପ୍ରତିଷ୍ଠିତ ଅଛନ୍ତି । ମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ଶତାଧିକ ପ୍ରସ୍ତର ସ୍ତମ୍ଭଯୁକ୍ତ ବହୁ ମୂର୍ତ୍ତି-ଶୋଭିତ ନାଟ-ମଣ୍ଡପ ଅଛି । କଥିତ ଅଛି ଯେ, ଭକ୍ତପ୍ରବର ପ୍ରହ୍ଲାଦ ସ୍ତବ କରିବାରୁ ଭଗବାନ୍ ନୃସିଂହମୂର୍ତ୍ତି ଧାରଣ କରି ଏହି ସ୍ଥାନରେ ଅବତୀର୍ଣ୍ଣ ହୋଇଥିଲେ । ଏହା "ବରାହ ନରସିଂହ" କ୍ଷେତ୍ର ବୋଲି ପ୍ରସିଦ୍ଧ । ମନ୍ଦିରର ଚତୁଃପାର୍ଶ୍ୱରେ ଶୂକର ଶାବକମାନେ ବିଚରଣ କରନ୍ତି ଏବଂ ସ୍ଥାନୀୟ ଲୋକେ ଏହି ଶୂକରମାନଙ୍କୁ ଘୃଣାଚକ୍ଷୁରେ ଦେଖନ୍ତି ନାହିଁ । ସୀମାଚଳରେ ଥିବା ମନ୍ଦିର ଉତ୍କଳର ରାଜା ଲାଙ୍ଗୁଲା ନରସିଂହଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା ଏବଂ ପରେ ବିଜୟନଗରର ମହାରାଜା କୃଷ୍ଣଦେବ ପ୍ରାୟ ୨୪୦ ବର୍ଷ ପୂର୍ବେ ଏହି ମନ୍ଦିରର ଜୀର୍ଣ୍ଣ ସଂସ୍କାର କରି ଦେବସେବା ପାଇଁ ବାର୍ଷିକ ୧୪ ହଜାର ଟଙ୍କା ଆୟର ଭୂମି ଛାଡ଼ି ଯାଇଅଛନ୍ତି । ବୈଶାଖ ଶୁକ୍ଳ ତୃତୀୟା (ଅକ୍ଷୟ ତୃତୀୟା) ଓ ଏକାଦଶୀ ଦିନ ଦେବଙ୍କର ବିଗ୍ରହର ଦର୍ଶନ ମିଳେ; ଅନ୍ୟ ସମୟରେ ବିଗ୍ରହର ସର୍ବାଙ୍ଗ ଚନ୍ଦନ ଲିପ୍ତ ଥାଏ । ମନ୍ଦିରର ଏକ ପାର୍ଶ୍ୱରେ ସୂର୍ଯ୍ୟଦେବଙ୍କର ସପ୍ତାଶ୍ୱଯୁକ୍ତ ପ୍ରସ୍ତରର ଶିଳ୍ପକଳାମଣ୍ଡିତ ରଥ ଶୋଭା ପାଉଅଛି ।

ମଦନମୋହନ ପଟ୍ଟନାୟକ—ତୀର୍ଥଦର୍ଶନ ।]

**ସୀମା ଚିହ୍ନ**—ସଂ. ବି—ସୀମାଲିଙ୍ଗ (ଦେଖ)
Sīmā chihna Sīmālinga. (See)

**ସୀମା ଚିହ୍ନିତ**—ସଂ. ବିଣ (୬ଷ୍ଠୀ ତତ୍)—ଯହିଁର ସୀମାରେଖା ଅଙ୍କିତ ହୋଇଅଛି—Having the boundary line demarcated.
Sīmā chihnita

**ସୀମା ଜ୍ଞାନ**—ସଂ. ବି(୬ଷ୍ଠୀ ବା ୭ମୀ ତତ୍)—ସୀମା ସମ୍ବନ୍ଧରେ ସ୍ଥିର ଧାରଣା
Sīmā jñāna —Knowledge about any boundary.

**ସୀମା ଜ୍ଞାପକ**—ସଂ. ବିଣ—ଯେଉଁ ପଦାର୍ଥଦ୍ୱାରା କୌଣସି ସ୍ଥାନର ସୀମା ଜଣା ପଡ଼େ—(A thing or mark) Indicating the boundary.
Sīmā jñāpaka

**ସୀମାତିକ୍ରମ**—ସଂ. ବି—ସୀମା ଲଙ୍ଘନ; ନିର୍ଦ୍ଧାରିତ ସୀମାକୁ ଟପିଯିବା—
Sīmātikrama Encroachment; going beyond
(ସୀମାତିକ୍ରମଣ, ସୀମାତିଲଙ୍ଘନ—ଅନ୍ୟରୂପ) the bounds.

**ସୀମାତୀତ**—ସଂ. ବିଣ(୨ମୀ ତତ୍)—୧ । ଯାହା ସୀମାରୁ ବାହାରି ପଡ଼ିଅଛି—
Sīmātīta 1. That wich is beyond the bound.
୨ । ଅସୀମ—2. Limitless.

**ସୀମା ନିରୂପଣ**—ସଂ. ବି (୬ଷ୍ଠୀ ତତ୍)—କୌଣସି ସ୍ଥାନର ସୀମାର ସ୍ଥିରୀକରଣ—Ascertainment of the
Sīmā nirūpaṇa

(ସୀମାନିର୍ଣ୍ଣୟ, ସୀମା ନିର୍ଦ୍ଦେଶ—ଅନ୍ୟରୂପ) boundary; settling
[ସୀମା ନିର୍ଣ୍ଣାୟକ, ସୀମା ନିର୍ଦ୍ଦେଶକ—ବିଣ] up of the limits.

**ସୀମା ନିର୍ଣ୍ଣୀତ**—ସଂ. ବିଣ (୩ୟା ତତ୍)—ସୀମା ଚିହ୍ନିତ (ଦେଖ)
Sīmā nirṇṇita Sīmā chihnita. (See)
(ସୀମା ନିର୍ଦ୍ଦିଷ୍ଟ—ଅନ୍ୟରୂପ)

**ସୀମାନା**—ଦେ. ବି ( ସଂ. ସୀମନ୍ )—ସରହଦ; ସୀମା—
Sīmānā সীমানা सीमाना Boundary.

**ସୀମାନା ସରହଦ୍(ଦ୍)**—ଦେ. ବି (ଏକାର୍ଥକ ସହଚର; ସଂ. ସୀମା; ଫା. ସରହଦ୍)—ସୀମା—Boundary.
Sīmānā sarahad(dd)
সীমানা সরহদ सरहद् सीमाना

**ସୀମାନ୍ତ**—ସଂ. ବି (ଏକାର୍ଥକ ସହଚର)—୧ । ସୀମା—1. Boundary. ୨ । ( ୬ଷ୍ଠୀ ତତ୍ ) ସୀମାର ବହିର୍ଭୂତ ନିକଟବର୍ତ୍ତୀ ଦେଶ—2. Frontier; a place adjoining the boundary. ସଂ. ବିଣ—୧ । ସୀମାର ଅନ୍ତର୍ଗତ ଶେଷଭାଗ—1. Last or extreme (part of a country on the boundary). ୨। ସୀମାର ବହିର୍ଭୂତ ନିକଟବର୍ତ୍ତୀ—2. Situated beyond the frontier and adjoining it.
Sīmānta

**ସୀମାନ୍ତର୍ଗତ**—ସଂ. ବିଣ ( ୬ଷ୍ଠୀ ତତ୍ )—ସୀମାମଧ୍ୟରେ ଅବସ୍ଥିତ—
Sīmāntargata Situated or included in the
(ସୀମାନ୍ତର୍ବର୍ତ୍ତୀ—ଅନ୍ୟରୂପ) boundary.

**ସୀମାନ୍ତ ଦେଶ**—ସଂ. ବି—୧ । କୌଣସି ଦେଶର ସୀମାକୁ ଲାଗିଥିବା ଦେଶ—[ ଦ୍ର—ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ ଭାରତ ଓ ଅଫଗାନିସ୍ଥାନ ମଧ୍ୟରେ ଅବସ୍ଥିତ ।] 1. The frontier Province [N. W. Frontier Province between India and Afganistan. ୨ । ଦୁଇ ଦେଶ ମଧ୍ୟସ୍ଥ ବିବାଦୀୟ ଭୂମି—
Sīmānta deśa
[ ସୀମାନ୍ତ ପ୍ରଦେଶ—ଅନ୍ୟରୂପ ]
2. Debatable land between two countries.

**ସୀମାନ୍ତ ନୀତି**—ସଂ. ବି ( ଅଧୁନିକ ବ୍ୟବହାର )—ସୀମାନ୍ତ ଦେଶରୁ ଅଧିକାର ବା ଶାସନ ସମ୍ବନ୍ଧୀୟ ରାଜନୀତି—
Sīmānta nīti
Frontier policy of the Government.

**ସୀମାନ୍ତ ବାଣିଜ୍ୟ**—ସଂ. ବି ( ଅଧୁନିକ ପ୍ରୟୋଗ )—ସୀମାନ୍ତ ପ୍ରଦେଶର ବାଣିଜ୍ୟ—Trade in the frontier.
Sīmānta bāṇijya

**ସୀମାନ୍ତର**—ସଂ. ବି ( କର୍ମଧା )—ଅନ୍ୟ ସୀମା—
Sīmāntara Another limit.

**ସୀମାବଚ୍ଛିନ୍ନ**—ସଂ. ବି ( ୩ୟା ତତ୍; ସୀମା + ଅବଚ୍ଛିନ୍ନ )—ସସୀମ, ନିର୍ଦ୍ଦିଷ୍ଟ ସୀମାଦ୍ୱାରା ଅବଦ୍ଧ—Bounded
Sīmābachchhinna
[ ସୀମାବଦ୍ଧ—ଅନ୍ୟରୂପ ] by fixed limits; limited.

**ସୀମା ବାଇଗଣ**—ଦେ. ବି (ବୈଦେଶିକ)—ଏକପ୍ରକାର ଗଛ ଓ ତାହାର ଫଳ—A kind of tree and its fruit. [ ଦ୍ର—ଏହି ଫଳ ଅମ୍ଳ, ମଧୁର ଓ ରୁଚିକର ।
Sīmā bāigaṇa

ଏହା ମେହ, ଅଗ୍ନିମାନ୍ଦ୍ୟ, ଶ୍ୱାସ ଓ ଇତ୍ୟାଦି ରୋଗରେ ହିତକର —ଦ୍ରବ୍ୟଗୁଣ, କଳ୍ପଦ୍ରୁମ ।]

ସୀମା ବାଦ(ବିବାଦ)—ସଂ. ବି—ଏକାଧିକ ବ୍ୟକ୍ତିଙ୍କ ମଧ୍ୟରେ ଘଟିବା
Sīmā bāda(bibāda) ସୀମା ସମ୍ବନ୍ଧୀୟ କଳହ—Boundary dispute. [ଦ୍ର—ସୀମାବିବାଦ ଉପରେ, ଅର୍ଥାତ୍ କେଉଁ କେଉଁ ପ୍ରମାଣ ଗ୍ରହଣପୂର୍ବକ ମୀମାଂସା କରାଯିବ, କେଉଁ ଶ୍ରେଣୀର ସାକ୍ଷୀ ଏଥିପାଇଁ ଆବଶ୍ୟକ ଓ ସୀମା ବିବାଦ ମୀମାଂସା ପରେ ସୀମା କିପରିଭାବରେ ଚିହ୍ନିତ କରବାକୁ ହେବ, ଏହାସବୁ (ଧର୍ମଶାସ୍ତ୍ର ଓ ସଂହିତା)ମାନଙ୍କରେ ବିଶେଷଭାବରେ ବର୍ଣ୍ଣିତ ହୋଇଅଛି ।]

ସୀମା ବିଲାତ—ପ୍ରାଦେ. (ଗଞ୍ଜାମ) ବି—ଇଂଲଣ୍ଡ—
Sīmā bilāta England.

ସୀମା ମଞ୍ଜୁଆତି—ଦେ. ବି (ବୈଦ୍ୟକ)—ଏକପ୍ରକାର ଗଛ—
Sīmā mañjuāti A kind of tree. [ଦ୍ର—ଏହାର ପତ୍ରର କ୍ୱାଥ ବାତବେଦନା ହରଣ କରେ । ଏହି ଗଛର ମୂଳକୁ ସୋରିଷ ତେଲରେ ଫୁଟାଇ ମୁଣ୍ଡରେ ମର୍ଦ୍ଦନ କଲେ ଉକୁଣି ମରନ୍ତି । ଏହାର ବୀଜ ଗଞ୍ଜାଇ ତୁଲ୍ୟ ମାଦକ ଓ ସାର୍ଦ୍ଧନାଶକ । ଅନେକ ରୋଗରେ ଏହାର ମୂଳ, ପତ୍ର ଓ ବୀଜ ବିଶେଷ ଉପକାରୀ—ଦ୍ରବ୍ୟଗୁଣ. କଳ୍ପଦ୍ରୁମ ।]

ସୀମା ରେଖା—ସଂ. ବି (ମ. ପ. ଲୋ; ସୀମା+ରେଖା)—ସୀମାଜ୍ଞାପକ
Sīmā rekhā ରେଖା—Boundary line.
सीमा रेखा सीमा रेखा [ସୀମା ଲାଇନ୍—ଦେ. ରୂପ]

ସୀମା ଲଙ୍ଘନ—ସଂ. ବି—୧ । ସୀମାକୁ ଡେଇଁଯିବା—1. Encroach-
Sīmā laṅghana ment. ୨ । (ଲକ୍ଷଣାର୍ଥ) ମର୍ଯ୍ୟାଦାର
[ସୀମା ଲଂଘୀ—ବିଣ. ପୁଂ] ଅତିକ୍ରମଣ—2. (figurative)
[ସୀମା ଲଂଘିନୀ—ବିଣ. ସ୍ତ୍ରୀ] Stepping beyond the bounds of etiquette.

ସୀମା ଲିଙ୍ଗ—ସଂ. ବି(ମ. ପ. ଲୋ)—୧ । ଦୁଇ କ୍ଷେତ୍ରର ବା ଗ୍ରାମାଦିର
Sīmā liṅga ନିର୍ଣ୍ଣିତ ସୀମାରେଖାକୁ ଦେଖାଇବା ପାଇଁ ସେହି ରେଖା ଉପରେ ବସାଯିବା ଚିହ୍ନ—1. Boundary mark. ୨ । ଯେଉଁ ବୃକ୍ଷାଦିଦ୍ୱାରା କୌଣସି ସ୍ଥାନର ସୀମା ସ୍ଥିର କରାଯାଇ ପାରେ—2. Landmark.

ସୀମା ଶୂନ୍ୟ(ହୀନ)—ସଂ. ବିଣ (୬ଷ୍ଠୀ ତତ୍)—ଅସୀମ,ଯାହାର ସୀମା ନାହିଁ
Sīmā śūnya(hīna) —Boundless; limitless.

ସୀମା ସନ୍ଧି—ସଂ. ବି (୬ଷ୍ଠୀ ତତ୍)—ସୀମା ରେଖା—
Sīmā sandhi Boundary line.

ସୀମା ସନ୍ନିହିତ—ସଂ. ବିଣ (୭ମୀ ତତ୍)—ସୀମାର ନିକଟବର୍ତ୍ତୀ—
Sīmā sannihita Adjoining the boundary.

ସୀମା ସରହଦ୍(ଦ୍ଦ)—ଦେ. ବି (ଏକାର୍ଥକ ସହଚର; ସଂ. ସୀମା+
Sīmā sarhad(d ଫା. ସରହଦ୍)—ସୀମା—Boundary.
सीमा सरहद सीमा सरहद्

ସୀମା ସ୍ଥାନ—ଦେ. ବି (ସଂ. ସୀମନ୍+ସ୍ଥାନ)—ମସ୍ତକ—Head. [ଉ-
Sīmā sthāna ଜାନୁରେ ରଖି ସୀମାସ୍ଥାନ । କେ ବସି ଗୃହସ୍ଥ
सीमास्थान मस्तक ଚରଣ—ଜଗନ୍ନାଥ. ଭାଗବତ ।]

ସୀମିକ—ସଂ. ବି (ସ୍ୟମ୍ ଧାତୁ+ଇକ; ସିଦ୍ଧାନ୍ତ କୌମୁଦୀ)—୧ ।
Sīmika ବୃକ୍ଷଭେଦ (ଶବ୍ଦସ୍ତୋମ)—1. A kind of tree. ୨ । ବଲ୍ମୀକ; ଗୃହ ଘରର ଓଳ (ସଂକ୍ଷିପ୍ତସାର)—2. Eaves of a thatched house. ୩ । ସୂକ୍ଷ୍ମ କୃମି ଜାତି (ସଂକ୍ଷିପ୍ତସାର)—3. A tiny worm.

ସୀର—ସଂ. ବି (ଷି. ଧାତୁ=ବନ୍ଧନ କରିବା+କର୍ତ୍ତି. ର; ଇ ସ୍ଥାନରେ
Sīra ଈ ଆଦେଶ)—୧ । ସୂର୍ଯ୍ୟ (ମେଦିନୀ)—1. The sun. ୨ । ହଳ; ଲଙ୍ଗଳ (ଅମର)—2. Plough. [ଉ—କଳ ଥିଲ ଭୂମେ, ଉଚ୍ଛେଦ ସୀରକୁ ଦୃଢ଼ ଆରମ୍ଭେ—ଉପେନ୍ଦ୍ର. ବୈଦେହୀଶବିଳାସ ।] ୩ । ଅର୍କ ବୃକ୍ଷ—3. Calotropis Gigantea (plant).

ସୀରକ—ସଂ. ବି (ସୀର=ଲଙ୍ଗଳ+ଉପମାନାର୍ଥେ. କ)—ଶିଶୁମାର
Sīraka (ଶବ୍ଦମାଳା)—The Gangetic purpoise or dolphin.

ସୀରଧ୍ୱଜ—ସଂ. ବି (ସୀର=ଲଙ୍ଗଳ+ଧ୍ୱଜ=ଚିହ୍ନ; ବହୁବ୍ରୀହି)—
Sīra dhwaja ଜନକ ରାଜା—King Janaka. [ଦ୍ର—ଏ ହ୍ରସ୍ୱରୋମ ରାଜାଙ୍କର ପୁତ୍ର । ଏ ପୁତ୍ରଲାଭ ନିମନ୍ତେ ଯଜ୍ଞ-ଭୂମି ଚଷା କରୁଥିଲେ ଲଙ୍ଗଳ ସିଅର ମଧ୍ୟରୁ ସୀତା ବାହାରିଲେ । ଏହାଙ୍କ ପୁତ୍ର ଭାନୁମାନ—ବିଷ୍ଣୁପୁରାଣ ।]

ସୀର ପାଣି—ସଂ. ବି (ସୀର=ଲଙ୍ଗଳ; ପାଣି=ହାତରେ ଯାହାର;
Sīra pāṇi ବହୁବ୍ରୀହି)—ବଳଦେବ (ଅମର)—Baladeba.

ସୀରୀ—ସଂ. ବି (ସୀର=ଲଙ୍ଗଳ+ ଅସ୍ତି ଅର୍ଥରେ ଇନ୍; ୧ମା. ୧ବ)—
Sīrī ୧ । ବଳଦେବ—1. Baladeba. ୨ । ଲଙ୍ଗଳ; ଲାଙ୍ଗଲଲତା (ଭାବପ୍ରକାଶ)—
2. Wolfsbane; Aconitum Napellus.

ସୀଲନ୍ଧ—ସଂ. ବି—ଶିଲିନ୍ଦ (ଦେଖ)—
Sīlandha Śilinda (See)

ସୀସ—ସଂ. ବି—ସୀସା ନାମକ ଏକପ୍ରକାର ଖନିଜ ପଦାର୍ଥ ବା ଧାତୁ—
Sīsa Lead; plumbum. [ଦ୍ର—ଅନ୍ୟ ଧାତୁ ଅପେକ୍ଷା ଏହା ଶୀଘ୍ର ତରଳି ଯାଏ ଓ ଏଥିରେ କଳଙ୍କୁରି ଲାଗେ ଓ ଗୁଡ଼ା ହୋଇ ହୁଏ ।
ସୀସକ, ସୀସପତ୍ରକ } ଅନ୍ୟରୂପ
ଓ. ସୀସା
सीसा
सीसक, सीसा
ତେ. ସିସମୁ, ଶଣି
ତା. ଶିଶ
ଫା. ସୁର୍ବ
ଅ, ରୁସାସୁଲ, ଅସ୍ରବ୍
ଅନ୍ୟ ସଂ. ଶବ୍ଦ—ବ୍ରଧ୍ନ, ବ୍ରଧ୍ନ, ବପ୍ର, ଯୋଗେଷ୍ଟ, ପିଚ୍ଚ, ଶିରବୃତ୍ତ, ନାଗ, ଗଣ୍ଡପଦଭବ, ଚୀନ, ଚୀନପିଷ୍ଟ, ତାରଶୁଦ୍ଧିକର,

ଏହା ବଙ୍ଗ ତୁଲ୍ୟ ଗୁଣକର ଓ ପ୍ରମେହ ରୋଗରେ ବିଶେଷ ଉପକାରୀ । ଏହାକୁ ଜାରଣ କରି ସେବନ କଲେ ଶତ ନାଗ ତୁଲ୍ୟ ବଳ, ରୋଗନାଶ, ଶରୀର ଦୃଢ଼ତ୍ୱ, ଅଗ୍ନିଦୀପ୍ତି ଓ କାମ ବୃଦ୍ଧି ହୁଏ ଏବଂ ଏହାଦ୍ୱାରା ବାର୍ଦ୍ଧକ୍ୟ ଓ ମୃତ୍ୟୁ ଦୂରୀଭୂତ ହୁଏ । ଅଜାରିତ ସୀସକ ସେବନ କଲେ କୁଷ୍ଠ, ଗୁଳ୍ମ, ଜ୍ୱର, ପ୍ରମେହ, ବାୟୁରୋଗ, ଅବସାଦ, ଶୋଥ ଓ ଭଗନ୍ଦର ଜନ୍ମେ ।

ସିନ୍ଦୂରକାରଣ, ବଙ୍ଗ, କୃଷ୍ଣମଲ, ପଦ୍ମ, ସ୍ୱର୍ଣ୍ଣାର, ଯବନେଷ୍ଟ, ଯବନେଷ୍ଟକ, ମୃଦୁକୃଷ୍ଣାୟସ, ସୁବର୍ଣ୍ଣକ, ବଧ୍ର, ପିଚ୍ଚିଟ, ପରିପିଷ୍ଟକ, ବପ୍ରୋବଙ୍ଗ, ସୁବର୍ଣ୍ଣାର, ତ୍ରପୁ, ବଧ୍ରକ, ଭୁଜଙ୍ଗ, ମହାବଳ, ଜଡ଼, ଭୁଜଙ୍ଗମ, ଉରଗ । ସୀସକକୁ ଜାରଣ କରି ଦୁଇପ୍ରକାର ଭସ୍ମ କରାଯାଏ; ଯଥା—ପୀତ ଭସ୍ମ —ଗୋଟିଏ ଲୌହ ପାତ୍ରରେ ମୃଦୁ ଜାଳରେ ଚଢ଼ାଇ ନ ଜରିବା ପର୍ଯ୍ୟନ୍ତ ଯବକ୍ଷାର ମିଶାଇ ଘାଣ୍ଟୁଥିବ । କୃଷ୍ଣଭସ୍ମ—ସୀସକକୁ କଡ଼ାଇରେ ତରଳାଇ ସେଥିରେ ଅଳ୍ପ ଅଳ୍ପ ମନଃଶିଳ ଚୂର୍ଣ୍ଣ ମିଶାଇ ଘାଣ୍ଟିବ ଏବଂ ଧୂଳି ପରି ଚୂର୍ଣ୍ଣ ହୋଇଗଲେ ତାକୁ ଶୀତଳ କରି ତହିଁରେ ଗନ୍ଧକ ଚୂର୍ଣ୍ଣ ମିଶାଇ ଟଲମ୍ବୁ ରସରେ ବାଟି ଗଜପୁଟରେ ପାକ କରିବ । ]

ସୀସା ( ଇତ୍ୟାଦି )—ଦେ. ବି ( ସଂ. ସୀସକ )—୧ । ଶିଷା ଇତ୍ୟାଦି (ଦେଖ)—1. Sisā etc (See) ୨ । ବନ୍ଦଶିର ଡୋରଣ୍ଡାଠାରୁ ଥୋପ ପର୍ଯ୍ୟନ୍ତ ପାଣି ଭିତରେ ଥିବା ଡୋରକୁ ସଳଖଭାବରେ ରଖିବା ପାଇଁ ବ୍ୟବହୃତ ହେବା ଭାର—2. Weight attached to the angling line a few inches above the float to keep the float erect on water. [ ଦ୍ର—ଏହା ସାଧାରଣତଃ ସୀସାରେ ନିର୍ମିତ ହୋଇଥାଏ । ]

Sisā (etc)

ସୀସା ଗୁଳି(ଲି)—ଦେ. ବି—୧ । ସୀସକରେ ପ୍ରସ୍ତୁତ ବାଣ୍ଟୁଳା—1. Lead balls. ୨ । ସୀସକ ପ୍ରସ୍ତୁତ ବନ୍ଧୁକର ଗୋଳା—2. Leaden balls for gun.

Sisā guli(li) (ସୀସା ଗୋଲା[ଳି]—ଅନ୍ୟରୂପ) সীসাগোলা सीसागोला

ସୀହୁଣ୍ଡ—ସ. ବି—ସେହୁଣ୍ଡ (ଦେଖ)

Sihunda Sehunda. (See)

ସୁ ( ଧାତୁ )—ସଂ—୧ । ପ୍ରସବ କରିବା—1. To bring forth; produce. ୨ । ଗତି କରିବା—2. To move.

Su (root)

ସୁ—ସଂ. ଅ (ଉପସର୍ଗପରେ ଏହା ଅନ୍ୟ ଶବ୍ଦ ପୂର୍ବେ ଯୁକ୍ତ ହୋଇ କମ୍ପ ଅର୍ଥମାନ ବୁଝାଏ )—A prefix indicating. ୧ । (କୁ—ବିପରୀତ) ଉତ୍କୃଷ୍ଟ; ଉତ୍ତମ—1. Good; excellent. [ଦ୍ର—ସୁଗନ୍ଧ, ସୁଚରିତ୍ର ।] ୨ । ସୁନ୍ଦର—2. Beautiful. (ଦ୍ର—ସୁଦର୍ଶନ, ସୁବଦନା, ସୁକେଶୀ ।) ୩ । ସାତିଶୟ; ଅତି; ଅତ୍ୟନ୍ତ—3. Very; much. (ଦ୍ର—ସୁଗାଢ଼ଣ, ସୁପକ୍ୱ, ସୁକୁମାର ।) ୪ । ସହଜ—4. Easy. (ଦ୍ର—ସୁପ୍ରସବ ।) ୫ । ଅନାୟାସରେ; ସହଜରେ—5. Easily. [ଦ୍ର—ସୁସାଧ୍ୟ, ସୁକର, ସୁଲଭ ।] ୬ । ଶୁଭକର; ମଙ୍ଗଳକର—6. Auspicious. [ ଦ୍ର—ସୁଲକ୍ଷଣ ] ୭ । ଭୃଢ଼—7. Excessive; furious. ୮ । ମନୋରମ—8. Charming. [ ଦ୍ର—ସୁଗନ୍ଧ ।] ୯ । ପୁଣ୍ୟ—9. Piety. [ ଦ୍ର—ସୁକୃତ । ] ୧୦ । ପୂଜା—10. Worship. ୧୧ । ଭର୍ତ୍ତର—11. Trust. ୧୨ । ଅନୁମତି—12. Permission. ୧୩ । ସମୃଦ୍ଧି—13. Prosperity; increase. ୧୪ । କୃଚ୍ଛ୍ର—14. Difficult. ସ. ବି—ଶୁଭ—Bliss.

Su

[ସୁସୁ—ଅନ୍ୟ ଅବ୍ୟୟରୂପ] ଦେ. ଅ(ଧ୍ୱନ୍ୟନୁକରଣ)—୧। ପବନର ସୋଁ ସୋଁ ଜୋରରେ ବହିବାର ଶବ୍ଦ—1. Hissing sound of blowing wind. ୨ । ସାପ ଗର୍ଜ୍ଜିବାର ଶବ୍ଦ—2. Hissing sound of snake. ଦେ.ବିଣ—ଉତ୍ତମ—Good.

सुसु सु सु

ସୁଅ—ଦେ. ବି (ସଂ. ସ୍ରୋତସ୍)—ନଦ୍ୟାଦିର ସ୍ରୋତ—Current of river etc.

Sua স্রোত सोता

(ନଈ) ସୁଅ ଦେବା—ଦେ. କ୍ରି—(ନଦୀ) ସ୍ରୋତଯୁକ୍ତ ହେବା—To flow with current.

(nai) (ନଈରେ ସୁଅ ପଡ଼ିବା, ସୁଅ ବୋହିବା—ଅନ୍ୟ କ. ରୂପ) স্রোতচলা सोता चलना

ସୁଅ ମୁହଁ—ଦେ. ବି (ସଂ. ସ୍ରୋତୋମୁଖ)—୧ । ସ୍ରୋତୋମୁଖ; ଯେଉଁଠାରେ ସ୍ରୋତର ବେଗ ଅତି ଅଧିକ—1. A place where the current is very swift. ୨ । (ଲକ୍ଷଣାର୍ଥ) ବିପଜ୍ଜନକ ସ୍ଥାନ—2. (figurative) Dangerous place.

Sua muhañ স্রোতের মুখ चलता सोत

ସୁଅ ମୁହଁକୁ ପେଲି ଦେବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ବିପଦକୁ ଠେଲି ଦେବା—To push a person to a place of danger.

Sua muhañku peli debā স্রোতের মুখে ঠেলে দেওয়া सोत मुँहमें ढकेलना

ସୁଅର୍ (ଇତ୍ୟାଦି)—ଦେ. ବି—ଶୁଅର୍ ଇତ୍ୟାଦି (ଦେଖ)

Suar (etc) Śuar etc. (See)

ସୁଆଇ—ଦେ. ବି—ସ୍ୱାଇ (ଇତ୍ୟାଦି)

Suāi Swāi. (See)

ସୁଆଇଁ—ଦେ. ବି—ସ୍ୱାଇଁ (ଦେଖ)

Suāiñ Swāiñ. (See)

ସୁଆଁ—ଦେ. ବି—୧ । ଶୁଆଁ (ଦେଖ)—1. Śuāñ. (See) ୨ । ସୋମଲତା (ଦେଖ)—2. Somalatā. (See) (ଦ୍ର—ଏ ବାହାରେ ସୁଆଁ ରେ ଚଳେ ସେହି ଯାଗ, ଦେବାକୁ ଅବକାଶମଣ୍ଡଳେ ମହାଭାଗ । କୃଷ୍ଣସିଂହ. ମହାଭାରତ. ଶାନ୍ତି ।)

Suāñ

ସୁଆଁ ଚାଉଳ—ଦେ. ବି—୧ । ଦାନାବିଶିଷ୍ଟ ଧଳା ଶସ୍ୟ—1. Panicum Frumentacium. (ଦ୍ର—ଏଥିର ଚଳ ଧାନଜାତୀୟ ଭିତରେ ଅନ୍ୟ ଶସ୍ୟଗୁଳ୍ମ ମାନଙ୍କ ମଧ୍ୟରେ ବଢ଼େ ।) ୨ । ଶୁଆଁ ଚାଉଳ (ଦେଖ)—2. Śuāñ chāula (See)

Suāñ chāula শামা सांवाचावल

ସୁଆଁ ଧାନ—ଦେ. ବି—ଶୁଆଁ ଧାନ (ଦେଖ)

Suāñ dhāna Śuāñ dhāna. (See)

ସୁଆଁ ନ(ଲ)ଇ—ଦେ. ବି—୧। ଶ୍ୟାମଲତା (ଦେଖ)—1. Syāmā-
Suāñ na(la)i lata (See). ୨। ବୃହତ୍ ଝଙ୍କାଳିଆ
ଶ୍ୟାମଲତା ଅରଣ୍ୟ ବୃକ୍ଷବିଶେଷ—2. Ichnocarpus
ශ্যামলতা Frutescens (Haines).

ସୁଆଁରିବା—ପ୍ରାଦେ. (ସମ୍ବଲପୁର) କି—ଅଙ୍ଗ ଘଷିବା—
Suāñriba To tenderly chafe or massage the body. ଦେ. କି—ମୁଣ୍ଡର କେଶକୁ ଅଙ୍ଗୁଳିଦ୍ୱାରା ଭାଗ ଭାଗ କରିବା—To divide the hair of the head into sheaves with the fingers.

ସୁଆଁ ଲତା—ଦେ. ବି (ସଂ. ସୋମଲତା)—୧। ସୋମଲତା (ଦେଖ)
Suāñ latā 1. Somalatā (See). ୨। ସୁଆଁ ନଇ (ଦେଖ)—2. Suāñ nai (See).

ସୁଆଁଳି—ପ୍ରାଦେ. (କଟକ) ବି—ପୁର ପିଠା—Sandwiched
Suāñli cake. ପ୍ରାଦେ. (ଛତ୍ରପୁର) ବି—ସରପୁଳି—A kind of pastry cake.

ସୁଆଁଶ—ଦେ. ବି (ସଂ. ସମ, ସଂବେଶ)—୧। ଭୂମିକୁ ସମତଳ
Suāñsa କରିବା କାର୍ଯ୍ୟ—1. The act of levelling the
समतल ground. ୨। ଜମିକୁ ସମତଳ କରିବା ଓ ଘର, କୋଠା
समतल ଆଦି ତୋଳିବା କାର୍ଯ୍ୟ; ରାଜମିସ୍ତ୍ରୀ କାମ—2. Act of a digger or a mason. ଦେ. ବିଣ—ସମତଳ କରି ଯାଇଥିବା (ଜମି)—Levelled (ground).

ସୁଆଁଶ କରିବା—ଦେ. କି (ସଂ. ସଂବେଶ)—୧। ଜମିକୁ ସମତଳ
Suāñsa kariba କରିବା—1. To level the ground.
समतल करना ୨। ମାଟି କାନ୍ଥକୁ କାଟି ସଳଖ କରିବା—2. To
समतल करना straighten a mud wall by cutting it.

ସୁଆଁଶ ପରୀକ୍ଷା(ଛା)—ଦେ. ବି (ସଂ. ସଂବେଶ+ପରୀକ୍ଷା)—ଯେଉଁ କର୍ମ-
Suāñsa parikshā(chhā) ଚାରୀ ଘରତୋଳାଳି ଟୁଲାଙ୍କର ଓ
तदारखकार ରାଜମିସ୍ତ୍ରୀଙ୍କ କାମ ତଦାରଖ କରେ—An officer
तदारख करनेवाला engaged to supervise the work of building and house construction.

ସୁଆଁଶିଆ—ଦେ. ବି. ପୁଂ—ମୁଲିଆ—A day labourer; a
Suāñsiā labourer engaged to help masons.
(ସୁଆଁଶେଇ, ସୁଆଁଶୀ, ସୁଆଁଶିଆଣୀ—ସ୍ତ୍ରୀ) [ ଦ୍ର—ଏମାନେ ଜମି
मजूर ଖୋଳିବା, ସମତୁଲ କରିବା, ଘର ଢୁଅଣି କରିବା ଓ ଘର
मजदूर ତିଆରି କରିବାରେ ନିଯୁକ୍ତ ହୁଅନ୍ତି ଏବଂ ରାଜମିସ୍ତ୍ରୀଙ୍କୁ ସାହାଯ୍ୟ କରନ୍ତି।]

ସୁଆଁଶିବା—ଦେ. କି—ଭୂମିକୁ କାଟି, ଚାଞ୍ଛି ସମତୁଲ କରିବା—
Suāñsiba To level up a ground.

ସୁଆଗ (ଇତ୍ୟାଦି)—ଦେ. ବି (ସଂ. ସୌଭାଗ୍ୟ)—ସୁହାଗ ଇତ୍ୟାଦି
Suāga (etc) (ଦେଖ)—Suhāga etc. (See) [ ଦ୍ର—ଦୁଅଗଣ୍ଡ ଶାଳୀ ବନେ କି ରଙ୍ଗ, ସୁଅଗ କି ଥିବା କନେ କି ସଙ୍ଗ ? କବିସୂର୍ଯ୍ୟ, ସଙ୍ଗୀତ।]

ସୁଆଗ ବୁଡ଼—ପ୍ରାଦେ (ଯାଜପୁର ଓ ଖଡ଼ଗ୍ରାମ) ବି—ବାଳିକାମାନଙ୍କର
Suāga burd ଓଷା ଓ ପୂଜା ବିଶେଷ—A kind of fasting and worship practised by girls.

ସୁଅଗ ସ୍ନାନ, ସୁଅଗ ସିନା[ସ୍ନା]ନ, ସୁଅଗ ସ୍ନାହାନ, ସୁଅଗ ସ୍ନାହା } ଅନ୍ୟରୂପ [ ଦ୍ର—ପିଲା ଦିନରୁ ଶାଶୁ ଘରକୁ ଯିବା ପର୍ଯ୍ୟନ୍ତ କନ୍ୟାମାନେ ଆଶ୍ୱିନ କୃଷ୍ଣ ଅଷ୍ଟମୀ (ବୁଢ଼ୀଗ୍ୟା ଓଷା) ଠାରୁ ମହାଅଷ୍ଟମୀ ପର୍ଯ୍ୟନ୍ତ ଭଲ ପାହାନ୍ତା କର୍ଦ୍ଦିଷ୍ଟ ସ୍ଥାନରେ ଜଳରେ ସ୍ନାନ କରି ସ୍ନାନଘାଟର ବାଲିରେ ସାତଗୋଟି ବାଲୁକା ମୂର୍ତ୍ତି କରି ଗୌରୀଙ୍କୁ ପୂଜା କରନ୍ତି ଓ ନୈବେଦ୍ୟ ସବୁ ସାଙ୍ଗରେ ଯାଇଥିବା ପିଲେମାନଙ୍କୁ ବାଣ୍ଟନ୍ତି। ସେମାନେ ଏହି ୧୫ ଦିନ ଗୀତ ବୋଲି ବଡ଼ ଆନନ୍ଦରେ ଥାଆନ୍ତି ଓ ମାଛ, ବାଇଗଣ, କଖାରୁ ଆଦି ଖାଆନ୍ତି ନାହିଁ। ଶେଷ ଦିନ (ଦୁର୍ଗାଷ୍ଟମୀରେ) ଭୋଗ ହୋଇଥିବା ନଡ଼ିଆକୁ ଭାଙ୍ଗି ପିଲାଙ୍କୁ ବାଣ୍ଟନ୍ତି ଓ ସ୍ନାନ କରିବା ସମୟରେ ଏହି ଗୀତ ବୋଲନ୍ତି—
'ବୁଡ଼, ବୁଡ଼, ଏହି ବୁଡ଼କ ସୁଅଗ ବୁଡ଼
ପର୍ବତଶିଖରୁ ! ମଧୁ ବରଷେ !
ଖଣ୍ଡପିଠା ଥଳ ବାଆଁଟା ରସେ—ଇତ୍ୟାଦି।'
ଓଷା କରିଥିବା ବାଳିକାମାନେ ଶେଷ ଦିନ ଭାତ ନ ଖାଇ ଜଳଖିଆ ଖାଆନ୍ତି। ସେମାନେ ସୌଭାଗ୍ୟବତୀ ଓ ସ୍ୱାମୀପ୍ରିୟା ହେବା ପାଇଁ ଏହି ବ୍ରତ ପାଳନ କରନ୍ତି।]

ସୁଆଗା—ଦେ. ବି. ଓ ବିଣ—ସୁହାଗା (ଦେଖ)
Suāgā Suhāgā (See)

ସୁଆଗିଆ(ହା)—ଦେ. ବିଣ. ପୁଂ—ସୁହାଗିଆ (ଦେଖ)
Suāgiā(hā) Suhāgiā (See)
(ସୁଅଗୀ, ସୁଅଗେଇ[ସ୍ତ୍ରୀ]—ଅନ୍ୟରୂପ)

ସୁଆଗିନୀ—ଦେ. ବିଣ ସ୍ତ୍ରୀ—ସୁହାଗିନୀ (ଦେଖ)—Suhāgini
Suāgini (ସୁଅଗୀ—ପୁଂ) (See)

ସୁଆଗୀ—ଦେ. ବିଣ. ପୁଂ. ଓ ସ୍ତ୍ରୀ—ସୁହାଗୀ (ଦେଖ)—Suhāgi
Suāgi (See) [ ଦ୍ର—କୃଷ୍ଣର ନଖ ଘାତ ଲାଗି। ନ ପୁଣ ହୋଇଛି ସୁଅଗୀ—ଜଗନ୍ନାଥ· ଭାଗବତ। ]

ସୁଅଙ୍ଗ—ଦେ. ବି (ସଂ. ଶୋଭାଙ୍ଗ=ଶୋଭାଯାର ପ୍ରଧାନ ଅଙ୍ଗ, କମ୍ବା
Suānga ସଂ, ସଂଢ, ସଂଗ, ସଙ୍ଗ, ସ୍ୱାଙ୍ଗ)—୧। ଅଭିନୟରେ
सं, सङ् ଓ ଯାତ୍ରାଦିରେ କୌଣସି ବ୍ୟକ୍ତିର ବେଶ ଆଦି ଗ୍ରହଣ
स्वाँग କରିଯିବା ଅଭିନୟ ଓ ନାଚ; ଦୃଶ୍ୟକାବ୍ୟାଦିର ଉତ୍ତର ଜନପ୍ରିୟ ଅଭିନୟ—1. Assuming the dress of any character in a play or dance; popular farce. ୨। ନାଟକୀୟ ବ୍ୟକ୍ତିଙ୍କ ରୂପ ଧାରଣ କରି ନୃତ୍ୟାଦି କରିବା ଅଭିନେତା—2. A mime. [ଦ୍ର—ଜଣେ ଜଣେ ଗୋଟିଏ ଗୋଟିଏ ସୁଅଙ୍ଗ—ରାଧାନାଥ· ଦରବାର।] ୩। ପ୍ରହସନ—3. Farce. ୪। ବହୁରୂପୀ ବେଶଧାରୀ ଅଭିନେତାମାନଙ୍କର ଯାତ୍ରା—4. Pantomi-

me. ୫ । କୌଣସି ବ୍ୟକ୍ତିର ବେଶ ଧରି କରିଥିବା ଅଭିନୟ—5. Theatrical acting of a person. ୬ । ଥଟ୍ଟା ତାମସା; ଫେରହସ୍ୟ; ଛଇ—6. Wit, joking; sport. ୭ । ( ଲକ୍ଷଣାର୍ଥ ) ଆଡ଼ମ୍ବରଯୁକ୍ତ କାର୍ଯ୍ୟ; ଘନଘଟା; ଆରମ୍ଭ—7. Ado; grand display. [ ଦ୍ର—ଯେଉଁ ଅଭିନୟରେ ସୁଆଙ୍ଗ ଅଧିକାହାରେ, ତାକୁ ଓଡ଼ିଶାରେ 'ପାଲା' ବା 'ଲୀଳା' ବୋଲିପାଏ । ଯଥା—କୃଷ୍ଣଲୀଳା; ଭରତଲୀଳା, ରାମଲୀଳା ]

ସୁଆଙ୍ଗ କରିବା(କାଢ଼ିବା)—ଦେ. କ୍ରି—୧ । କୌଣସି ବ୍ୟକ୍ତିର ଚରିତ୍ର Suāṅga kariba (kāṛhibā) ଅଭିନୟ କରିବା ପାଇଁ ସେହି ସଙ କବା ବ୍ୟକ୍ତିର ବେଶ ଧାରଣ କରିବା—1. To स्वाँग करना, स्वाँग निकालना assume the garb or mask of any character in a pantomime. (ସୁଅଙ୍ଗ ହେବା, ସୁଅଙ୍ଗ ସାଜିବା, ସୁଅଙ୍ଗ କାହାଡ଼ି କରିବା — ଅନ୍ୟରୂପ) ୨ । ସୁଅଙ୍ଗ ସମ୍ବଳିତ ଯାତ୍ରା କରିବା—2. To act a pantomime. ୩ । (ଲକ୍ଷଣାର୍ଥ) ବହ୍ୱାରମ୍ଭ ବା ଅଡ଼ମ୍ବର କରିବା—3. To make much ado about nothing. ୪ । (ଲକ୍ଷଣାର୍ଥ) ଗୋଟାଏ ନୂଆ କମ୍ମ ଲୋକାକର୍ଷକ କର୍ମ କରିବା—4. To do some thing new, so as to attract people.

ସୁଆଙ୍ଗିଆ—ଦେ. ବଣ. ପୁଂ—୧ । ସୁଅଙ୍ଗପ୍ରିୟ—1. Fond of Suāṅgiā pantomime. ୨ । ବହ୍ୱାରମ୍ଭ ପ୍ରିୟ—2. Fond (ସୁଅଙ୍ଗେଇ—ସ୍ତ୍ରୀ) of ado or display. ୩ । ଛଇଲ; ରଙ୍ଗ ବାବୁ स्वाँगकरनेवाला ରହସ୍ୟପ୍ରିୟ—3. Sportive, আমুদে, ভাঁড় दिल्लिगी बाज witty; humorous.

ସୁଆଙ୍ଗୀ—ଦେ. ବଣ. ପୁଂ ଓ ସ୍ତ୍ରୀ—ସୁଅଙ୍ଗିଆ (ଦେଖ) Suāṅgi Suāṅgiā. (See)

ସୁଆଦ—ଦେ. ବ (ସଂ. ସ୍ୱାଦ)—୧ । ରୁଚି; ସ୍ୱାଦ—1. Taste. Suāda (ଉ—ଅସ୍ଥାନ କରଣ ବାଳୀ ସୁଅଦ ବୁଝିଲେ । ହାରୀ. সাদ ନଳ ଚରିତ ।) ୨ । ସୁସ୍ୱାଦୁ; ମଧୁର ସ୍ୱାଦ—2. Sweet स्वाद् taste. (ଉ—ଖୁଅଦଣ୍ଡ ଭୁଆଁ ଖଣ୍ଡିପ କ୍ଷୀରରେ ସୁଅଦ ଥାଏ କି ଅଛି ? କବିସୂର୍ଯ୍ୟ. ସଙ୍ଗୀତ ।) ୩ । ( ଲକ୍ଷଣାର୍ଥ ) ମନୋରମତା—3. (figurative) Agreeableness; charm. ଦେ. ବଣ—୧ । ସୁସ୍ୱାଦୁ—1. Sweet to the taste. ୨ । ( ଲକ୍ଷଣାର୍ଥ ) ମନୋରମ—2. ( figurative ) Charming; agreeable. (ଉ—ପ୍ରୀତି ଘର କେ ସୁଅଦ ଗୋ । କବିସୂର୍ଯ୍ୟ. ସଙ୍ଗୀତ ।)

ସୁଆଦ ଚାଖିବା—ଦେ. କ୍ରି—ଜିଭରେ କୌଣସି ବସ୍ତୁର ସ୍ୱାଦ ମାତ୍ର Suāda chākhibā ଅନୁଭବ କରିବା—To taste any- চাখা thing; to have a taste of anything. स्वाद चखना

ସୁଆଦ ପାଇବା—ଦେ. କ୍ରି—କୌଣସି ବସ୍ତୁର ସ୍ୱାଦ ଅନୁଭବ କରିବା— Suāda pāibā To have the experience of স্বাদ পাওয়া स्वादपाना the taste of anything.

ସୁଆଦ ବାରିବା—ଦେ. କ୍ରି—କୌଣସି ବସ୍ତୁ ସୁସ୍ୱାଦୁ କି ଅସ୍ୱାଦୁ ଏହା Suāda bāribā ଜିଭଦ୍ୱାରା ପରୀକ୍ଷା କରିବା—To examine স্বাদচাখা the taste of anything by the tongue. चखकर देखना

ସୁଆଦ ଲାଗିବା—ଦେ କ୍ରି—ସୁସ୍ୱାଦୁ ବୋଧ ହେବା— Suāda lāgibā To taste sweet; to seem স্বাদ লাগা स्वाद लगना charming.

ସୁଆଦିଆ—ଦେ. ବଣ—୧ । ସ୍ୱାଦ ବିଶିଷ୍ଟ— Suādiā 1. Having a taste. (ଅସୁଆ—ଅନ୍ୟରୂପ) ୨ । ମଧୁର; ସୁସ୍ୱାଦୁ— স্বাদু सुस्वादु 2. Sweet; delicious.

ସୁଆଦୁ—ଦେ. ବ ( ସଂ. ସ୍ୱାଦୁ )—ସ୍ୱାଦ—Taste. ଦେ. ବଣ (ସଂ. Suādu স্বাদ सुस्वाद् ସ୍ୱାଦ )—ସୁଅଦିଆ—Sweet. স্বাদু सुस्वादु

ସୁଆଧୀନ—ପ୍ରାଦେ. ( ଲଉଥ ) ବଣ—ସ୍ୱାଧୀନ— Suadhīna Free; independent.

ସୁଆନନୀ—ଦେ. ବଣ—ସୁବଦନା; ସୁମୁଖୀ—( a woman ) Hav- Suānani ing a charming or beautiful face. সুবদনী [ ଉ—ସୁଆନନୀ ସମ୍ମୁଖରେ, କନ୍ଦର୍ପ ଦହେ ଅନ୍ତରେ— सुआननी ହାରୀ. ଉଷାବିଭ । ]

ସୁଆ(ଆଁ) ବାଲି—ଦେ. ବ ( ସଂ. ଶୁକ+ବାଳ )—ଶୁଆଁ ବାଲି Sua(āṅ) bāli . ( ଦେଖ )—Suāṅ bāli ( See ) শুআঁ পোকা सूआ ( ସୁଅ[ଆଁ]ବାଳ[ଡ଼ି]ଆ—ଅନ୍ୟରୂପ )

ସୁଆ(ଆଁ) ଭାତ—ଦେ. ବ—ଶ୍ୟାମାକ ଧାନର ଅନ୍ନ—The cooked Suā(āṅ) bhāta rice prepared from the grains শ্যামা চালের ভাত of Panicum Frumentacium साँवाँ भात [ ଉ—ଅଟଗା ନବାଙ୍କରେ ଦ୍ରୌଢେ ସୁଅ ଭାତ, ଦେଇଣ ସ୍ନାନ କଲେ ଦୁଅଇ ମୁକତ—କୃଷ୍ଣସିଂହ. ମହାଭାରତ. ବନ । ]

ସୁ(ସୋ)ଆ(ହା)ମ—ଦେ. ବ ( ସଂ. ଶାଲ୍ମଳକ )—ମଧ୍ୟ ଓ ପଶ୍ଚିମ Su(so)ā(hā)ma ଭାରତରେ ଜନ୍ମୁଥିବା କମ୍ପାଦ ବର୍ଗର ସଂ. ନା.ମ—ରୋହିତକ, ଏକପ୍ରକାର ଜଙ୍ଗଲି କାଠ ଗଛ— ରୋହୀତକ, ରୋହୀ, ରୋହଣ, A timber wood; Tecoma ଦାଡ଼ିମ ପୁଷ୍ପକ, ପ୍ଲୀହ ଶତ୍ରୁ, Andulata; Andersonia ଦାଡ଼ିମପୁଷ୍ପ, ରକ୍ତପୁଷ୍ପ, Rohitaka. [ଦ୍ର—ଏହାର କାଣ୍ଡ ମାଂସଦଳନ, ଯକୃଦ୍ଦେଷୀ, ସିଧା ଓ ବକଳ ନାଲିଆ । ଏଥିର କୂଟଶାଲ୍ମଳି, ଭୂଟଶାଲ୍ମଳି, ଗୋଟିଏ ଡେଙ୍ଗରେ ୩ ଠାରୁ ୬ ଏବାପ୍ରଦୂକ, ବିରେଚନ, ଯୋଡ଼ା ପର୍ଯ୍ୟନ୍ତ ପତ୍ର ଥାଏ । ଏହାର ଶାଲ୍ମଳିକ । ଫଳ ୧୨ ଇଞ୍ଚ ଲମ୍ବ ଓ ପାଚିଲେ রোডা, রোহনা, ୫ ଖଣ୍ଡ ହୋଇ ଫାଟିଯାଏ । ଏଥିର

କଡାବ, ରୋହାଣ'] ଖାଇ ରେପ୍‌ଟା ଓ ଫଳଯୁକ୍ତ । ଏହାର
ରୋହିଡା କାଠ ଶକ୍ତ ଥିବାରୁ ଲୋକେ ଏଥିରେ
ଲେ॰ ମ୍ନିଲୁମୋଲୁଗଟେଚ୍ଚୁ କବାଟ, ଖଟ ଆଦି ତିଆର କରନ୍ତି ।
ସାଧାରଣତଃ ଏହାର ମଞ୍ଜ କାଠ ନାଲି । ବନ୍ଧୁ ଏକ ଜାତିର କାଠର ମଞ୍ଜ ଧଳା । ଏଥିର ଛେଲିରୁ ଲାହି ହୁଏ । ଏହାର ଛେଲି କଟୁ, କଷାୟ ରସ, ପ୍ଳୀହାନାଶକ, ଗ୍ରହଣର ଓ ରକ୍ତ ପରିଷ୍କାରକ ଏବଂ ଯକୃତ୍, ଗୁଳ୍ମ, କୃମି, ବ୍ରଣ, ନେତ୍ରରୋଗ ଓ ଉଦର ରୋଗରେ ବିଶେଷ ଉପକାରୀ । ]

ସୁଅର୍(ର)—ଦେ. ବି—୧ । ସବାର୍ (ଦେଖ)—1. Sabār (See)
Suār(ra) ୨ । ଶୁଅର୍ ( ଦେଖ )—2. Śuar ( See )

ସୁଆର—ଦେ. ବି. ପୁଂ ( ସଂ. ସୂପକାର )—୧ । ଏକଜାତୀୟ ଅଶ୍ରୋତ୍ରିୟ
Suāra ପାଚକ ବ୍ରାହ୍ମଣ ( ପୁରୀ ବଡ଼ ଦେଉଳରେ ଏମାନେ ଭୋଗ
ସୋୟାବ ପ୍ରସ୍ତୁତ କରନ୍ତି )—A kind of low Brāhmaṇa
ସୂପକାର [ ଦ୍ର—ପଣ୍ଡା, ପୂଜାହାରୀ, ସୁଆର ବା ଦେଉଳରେ ବ୍ରାହ୍ମଣ ଏକ ଶ୍ରେଣୀର ଅନ୍ତର୍ଗତ । ଶ୍ରୋତ୍ରିୟ ବ୍ରାହ୍ମଣଙ୍କ ସଙ୍ଗେ ଏମାନଙ୍କର ବୈବାହିକ ସମ୍ବନ୍ଧ ହୁଏ ନାହିଁ—କୃପାସିନ୍ଧୁ, ଉତ୍କଳ ଇତିହାସ । ] ୨ । ସୁଆରୁଣୀ; ସୂପକାର; ପାଚକ—2. Cook. [ ଦ୍ର—ବିପ୍ରତି ବୋଇଲେ ଦେ । ସୁଆର ବ୍ରାହ୍ମଣ, ପଖୟେ ଦାଣ୍ଡ ନାହିଁ କେବଳ ଅପଣ—କୃଷ୍ଣସିଂହ, ମହାଭାରତ॰ ବିରାଟ । ] ୩ । ରାଜାଙ୍କ ଖାଦ୍ୟ ଓ ଦେବତାଙ୍କ ଭୋଗ ପାକକାରୀ ସେବକ—3. A cook of a king or an Idol. ୪ । (ଅଶ୍ୱବାର) ଅଶ୍ୱା-
ସଓୟାବ ରୋହୀ; ସବାର—4. Rider. [ ଦ୍ର—ଲକ୍ଷ ଘୋଡ଼ା
ସବାର ନବଗଜ ସୁଆର, ପ୍ରଚଣ୍ଡ ଜଳେ ପଥେ ଗୃହଦ୍ୱାର—ଅଭିମନ୍ୟୁ ସାମନ୍ତସିଂହାର, ବିଦଗ୍ଧଚିନ୍ତାମଣି । ]

ସୁଆର ପାଳି—ଦେ. ବି—ରାଜା ଓ ଦେବତାଙ୍କ ପାଇଁ ଅନ୍ନାଦି ପାକ କରିବା
Suāra pāḷi କ୍ରମରେ ସେବକର ନିର୍ଦ୍ଦିଷ୍ଟ ଦିନ—The turn
ସୋଯାବ ପାଲ of a cook to cook on certain days
ସୂପକାର पारी for a Raja or Idol.

ସୁଆର ପିଠା—ବି—ପୁରୀ ବଡ଼ଦେଉଳରେ ପ୍ରତିଦିନ ସଞ୍ଜ ଧୂପରେ
Suāra piṭhā ଭୋଗ ହେବା ନାନାପ୍ରକାର ପିଠା ମଧ୍ୟରେ ବଡ଼ ପିଠା—A cake offered to Lord Jagannātha at evenving daily.

ସୁଆର ବରତନ—ଦେ. ବି ( ସଂ. ସୂପକାର+ହି. ବର୍ତ୍ତନ )—
Suāra baratana ସୂପକାରର ନିର୍ଦ୍ଦିଷ୍ଟ ପାରିଶ୍ରମିକ—The
ସୋଯାବେବ বেতন fixed scale of remuneration of a
सूपकार वेतन cook. [ଦ୍ର—ପୁରୀର ଜଗନ୍ନାଥ ଓ ଭୁବନେ-
( ସୁଅର ବର୍ତ୍ତନ—ଅନ୍ୟରୂପ ) ଶ୍ୱରର ଲିଙ୍ଗରାଜ ମହାପ୍ରଭୁଙ୍କ ଅନ୍ନବ୍ୟଞ୍ଜନାଦି ରାନ୍ଧିବା ପାଇଁ ସୁଆରମାନଙ୍କର ପାରିଶ୍ରମିକର ରୀତି ପୂର୍ବ ବନ୍ଧ ଅନୁସାରେ ନିର୍ଦ୍ଦିଷ୍ଟ ଅଛି । ]

ସୁଆର ସେବକ—ଦେ. ବି—ଦେବତାଙ୍କର ପାଚକ ଭୃତ୍ୟ—
Suāra sebaka The cook of an Idol.
সোয়ার সেবক सूपकार सेवक

ସୁଆର ସେବା—ଦେ ବି—ଦେବତାଙ୍କ ଅନ୍ନପାକ କରିବାରୂପ ସେବା—
Suāra sebā The service of a cook of an Idol.
সোয়াব সেবা सूपकार सेवा

ସୁଆର ହେବା—ଦେ. କି—ସବାର ହେବା ( ଦେଖ )
Suāra hebā Sabāra hebā ( See )

ସୁଆରି—ଦେ. ବି ଓ ବିଣ—ସବାରି ( ଦେଖ )
Suāri Sabāri ( See )

ସୁଆ(ଆଁ)ରି—ଦେ. ବି ( ସଂ. ସୂପକାର )—ଏକପ୍ରକାର ପୁର ପିଠା—
Suā(āñ)ri A kind of cake with minced sweets
পুরপিঠা or pulse inside. ପ୍ରାଦେ. ( ସମ୍ବଲପୁର ) ବି—
पिरकिया ପୁର ଚାକଳି—A kind of thin flat sweet pastry bread fried in ghee.

ସୁଆ(ଆଁ)ରି[ଲି]ବା—ଦେ. କି ( ସଂ. ସ୍ତୋମ=ଗଦା )—୧ । ତୁଳାକୁ
Suā(āñ)ri[li]bā ପିଞ୍ଜିବା ଆ ଭଣିବା ଦେବାରୁ ଅଙ୍ଗୁଠିଦ୍ୱାରା
তুলা পেঁজা ତନ୍ତୁରି ତନ୍ତୁମାନଙ୍କୁ ପୃଥକ୍ ପୃଥକ୍ କରିବା—
तुमना, उधेड़ना 1. To card coarse cotton with the fingers. [ ଦ୍ର—ଏପରି କଲେ ତୁଳାରୁ ମଇଳା ଓ ଶକତ୍ତାଅଂଶମାନ ବାହାରି ଯାଏ ଓ ତାହା ଭଣିବାକୁ ସହଜ ହୁଏ । ] ୨ । ମୁଣ୍ଡର ବାଳକୁ ଅଙ୍ଗୁଳିଦ୍ୱାରା କେଶ କେଶ କରି ଅଲଗା କରିବା—2. To separate the hair of the head into sheaves with the fingers.

ସୁଆରୁଣୀ—ଦେ. ବି, ସ୍ତ୍ରୀ—୧ । ରାନ୍ଧୁଣୀ—1. A female cook.
Suāruṇī ୨ । ସୁଆରର ସ୍ତ୍ରୀ—2. Wife of a cook.
সোয়াবিনী सूपकारनी ( ସୁଆର—ପୁଂ )

ସୁଆ(ଆଁ)ରେ(ଲେ)ଇବା—ଦେ. କି—ସୁଆରିବା ( ଦେଖ )
Suā(āñ)re(le)ibā Suāribā ( See )

ସୁଆଲ୍ (ଇତ୍ୟାଦି)—ବୈଦେ. ବି(ଆରବୀ)—ସବାଲ୍ ଇତ୍ୟାଦି (ଦେଖ)
Suāl ( etc ) Sabāl etc ( See ) [ ଦ୍ର—ସୁଆଲରେ ଜବାବ ଦେଲି—ଫକୀରମୋହନ, ଛଅ ମାଣ ଆଠ ଗୁଣ୍ଠ । ]

ସୁଆଲି—ବୈଦେ. ବି(ଆରବୀ)—ସବାଲି (ଦେଖ)—Sabāli (See)
Suāli ( ସୁଆଲିଆ—ଅନ୍ୟରୂପ )

ସୁଆ(ଆଁ)ଳି—ଦେ. ବି—ଏକପ୍ରକାର ପୁର ଥିବା ପିଠା—A kind of
Suā(āñ)ḷi sandwiched cake. ପ୍ରାଦେ. (ଗଞ୍ଜାମ)
একপ্রকার পুর পিঠা ବି—ଖାଜା, ଚାକଳି—A sweet cake
पिरकिया without sandwich inside it.

ସୁଆଳି ଦେବା—ପ୍ରାଦେ. ( ବଲାଙ୍ଗିର ପାଟଣା ) କି—ଅଙ୍ଗମର୍ଦ୍ଦିବା—
Suaḷi debā To massage or chafe the limbs.

ସୁଆଳି ଲତା—ଦେ. ବି ( ସଂ. ସୁବହା )—ଔଷଧରେ ବ୍ୟବହୃତ ଲତା-
Suāḷi latā ବିଶେଷ; ଗୋଧାପଦୀ—A kind of creeper
স্ববহা used in medicine. [ ଦ୍ର—ଏହାର
गोधापदी लता ସଂସ୍କୃତ ନାମ 'ଗୋଧାପଦୀ', 'ସୁବହା'—ହରେକୃଷ୍ଣ ମିଶ୍ର, ଦ୍ରବ୍ୟଗୁଣ । ]

ସୁଆସୀ—ପ୍ରାଦେ. ( ଲହରା ) ବି—ସଧବା ସ୍ତ୍ରୀ—A housewife
Suāsī with her husband living.
( ସୁଅସେନ୍—ବହୁବଚନ )

ସୁଇ—ପ୍ରାଦେ॰ ବି—୧ । ( ବାଲେଶ୍ୱର ପ୍ରାନ୍ତ ଓ ସମ୍ବଲପୁର ) ଛୁଞ୍ଚ—
Sui 1. Needle. ୨ । ( ବାଲେଶ୍ୱର ପ୍ରାନ୍ତ ) କୁମ୍ଭାର—
2. Potter. ( ଭୂ—ସୁଇ ସୁମାର, ସବୁଠାରୁ ଠକ କହୋଇ କୁମାର - ପ୍ରବଚନ । ) ୩ । ( ବାମଣ୍ଡା ) ପକ୍ଷୀ ବିଶେଷ—3. The name of a bird. ୪ । (ଉତ୍ତର-ଗିରି ପାଠଣା) ସୁକିଏ (ମୁଦ୍ରା)—4. A four-anna bit. (ଭୂ—ସୁଇ ସୁଧ—ସୁକି ସୁଧ । )

ସୁଇଚ୍—ବୈଦେ. ବି ( ଇଂ. ସ୍ୱିଚ୍ )—କୌଣସି କଳ (ଯଥା—
Suich ବୈଦ୍ୟୁତିକ ଆଲୋକ, ପଙ୍ଖା ) ଅଦିକୁ ନିୟନ୍ତ୍ରିତ କରିବା
ସୁଇଚ ପାଇଁ ତାହା ସଙ୍ଗେ ଲଗିଥିବା ଗୁବ ( ଏହାକୁ ଟିପି ଦେବା
स्वीच ମାତ୍ରକେ ଏଥି ସମ୍ପୃକ୍ତ ଅଲୁଅ ଜଳି ଉଠେ ବା ପଙ୍ଖା
(ସ୍ୱିଚ୍—ଅନ୍ୟରୂପ) ଚଳେ । ଅନ୍ୟ ଅଡ଼ୁ ଟିପି ଦେଲେ କଳର ଗତି ବନ୍ଦ ହୁଏ)—A switch of an electric installation. [ଦ୍ର-ଏହି ଇଂରେଜି ଶବ୍ଦ ସଙ୍ଗେ ଅନେକ-ଗୁଡ଼ିଏ ଅନ୍ୟ ଇଂରେଜି ଶବ୍ଦ ମଧ୍ୟ ଭାଷାରେ ବ୍ୟବହୃତ ହେଉଛି । ଯଥା—ସୁଇଚ୍ ବୋର୍ଡ଼ (Switch board), ସୁଇଚ୍ ଲାଇଟ୍ (Switch light), ସୁଇଚ୍ ବେଲ୍ (Switch bell ), ସୁଇଚ୍ ରୋପ୍ ( Switch rope ) ]

ସୁଇଚ୍ କ(ମା)ରିବା—ଦେ॰ କି (ଇଂ. ସ୍ୱିଚ୍)—ବୈଦ୍ୟୁତିକ ଅଲୁଅ ବା
Suich ka(mā)ribā ଅନ୍ୟ ଯନ୍ତ୍ରକୁ ଚଳାଇବା ବା ବନ୍ଦ କରିବା
( ସ୍ୱିଚ୍ କରିବା—ଅନ୍ୟରୂପ ) ପାଇଁ ନିୟାମକ ଗୁବରେ ହାତ
ସୁଇଚ୍ କବା ମାରିବା—To switch the key of any
स्वीच करना electric light, fan etc.

ସୁଇଜର୍ ଲ(ଲା)ଣ୍ଡ—ଦେ. ବି (ନାମ) (ଇଂ. ସ୍ୱିଜର୍ ଲଣ୍ଡ)—
Suijer la(lā)nd ଅଲ୍ପସ୍ ପର୍ବତର ଉତ୍ତରରେ ଥିବା ୟୁରୋପର
सुईजर लाण्ड ପାର୍ବତ୍ୟ ରାଜ୍ୟବିଶେଷ ଓ ୟୁରୋପର କ୍ଷୁଦ୍ରତମ
सुईजर लैंड ରାଜ୍ୟ—Switzerland. [ଦ୍ର—ଏହି ରାଜ୍ୟର
ସ୍ୱିଜର୍ ଲ(ଲା)ଣ୍ଡ୍, ସୁଇଟ୍‌ଜର୍ ଲ(ଲା)ଣ୍ଡ୍, ସ୍ୱିଟ୍‌ଜର୍ ଲ(ଲା)ଣ୍ଡ୍ } 'ଜେନେଭା' ନଗର ଛାତ ଓ ଘଣ୍ଟା ଲାଗି ଜଗଦ୍ବିଖ୍ୟାତ ପୃଥିବୀରେ ପ୍ରସିଦ୍ଧ । ଏହି ରାଜ୍ୟ ଜର୍ମାନୀର ଦକ୍ଷିଣ ଓ ଇଟାଲୀର ଉତ୍ତରରେ ଅବସ୍ଥିତ । ଏଥିର ପଶ୍ଚିମରେ ଫ୍ରାନ୍ସ ଓ ପୂର୍ବରେ ଅଷ୍ଟ୍ରିୟା । ବର୍ଣ୍ଣ (Berne) ଏହାର ରାଜଧାନୀ । ଏ ଦେଶବାସୀଙ୍କୁ ସୁଇସ୍ (Swiss) ବୋଲାଯାଏ । ଏଥିରେ ପ୍ରଜାତନ୍ତ୍ର ଶାସନ ପ୍ରବର୍ତ୍ତିତ । ଏହାର ମନୋହର ଅଲ୍ପସ ପର୍ବତର ଓ ହ୍ରଦମାନଙ୍କ ଦୃଶ୍ୟ ଦେଖିବା ଲାଗି ବହୁ ସଂଖ୍ୟକ ଯାତ୍ରୀ ପ୍ରତିବର୍ଷ ଏଠାକୁ ଆସନ୍ତି । ]

ସୁଇଝିବା—ପ୍ରାଦେ (ଲରିଆ) କ୍ରି—ସୁଝିବା—
Suijh-bā To repay.

ସୁଇଡ୍—ବୈଦେ. ବି (ନାମ) (ଇଂ. ସ୍ୱିଡ)-ସ୍ୱଇଡେନ୍ ଦେଶବାସୀ—
Suid ସୁଇଡ୍ स्वीड A Swede.
(ସ୍ୱିଡ୍—ଅନ୍ୟରୂପ)

ସୁଇଡିଶ୍—ବୈଦେ॰ ବିଣ—( ଇଂ. ସ୍ୱିଡିଷ୍ )—ସ୍ୱଇଡେନ୍ ଦେଶ
Suidis ସମ୍ବନ୍ଧୀୟ—Swedish.
ସୁଇଡିଶ୍ स्वीडिष

ସୁଇଡେନ୍—ବୈଦେ॰ ବି (ନାମ) (ଇଂ) —ଇଉରୋପର ଶୀତପ୍ରଧାନ
Suiden ରାଜ୍ୟ ବିଶେଷ—Sweden. [ଦ୍ର - ଏହା ଇଉରୋପର
ସୁଇଡେନ୍ ଉତ୍ତର-ପଶ୍ଚିମ ପ୍ରାନ୍ତସ୍ଥ ନରୱେ ରାଜ୍ୟର ପୂର୍ବରେ
स्वीडेन ଅବସ୍ଥିତ । ଏହାର ପଶ୍ଚିମରେ ନରୱେ, ଉତ୍ତରରେ ଲାପ୍‌ଲାଣ୍ଡ, ପୂର୍ବରେ ବାଲ୍‌ଟିକ୍ ଓ ବୋଥନିଆ ଉପସାଗର ଏବଂ ଦକ୍ଷିଣରେ ବାଲ୍‌ଟିକ୍ ଉପସାଗର । ଏହା ରାଜାଙ୍କ ଦ୍ୱାରା ଶାସିତ । ଏଥିର ପ୍ରଧାନ ନଗର ଷ୍ଟକ୍‌ହଲ୍ମ୍ । ]

ସୁଇଲ୍—ପ୍ରାଦେ( କଳାହାଣ୍ଡି ପାଠଣା )ବି—୧ । ଧାନ ବୁହାଇ ନେବାର
Suil ଆଧାର—1. A receptacle for carrying paddy.
୨ । କାଉଁରିଆ—2. The stem of a jute plant shorn of its fibres.

ସୁଇସ୍—ବୈଦେ॰ ବିଣ॰ ( ନାମ ) ( ଇଂ. ସ୍ୱିସ୍ )—ସୁଇଜର୍‌ଲଣ୍ଡର
Suis ଅଧିବାସୀ—A Swiss. ଦେ. ବିଣ—ସୁଇଜର୍‌ଲଣ୍ଡ ଦେଶ
(ସ୍ୱିସ୍—ଅନ୍ୟରୂପ) ସମ୍ବନ୍ଧୀୟ—Swiss.
ସୁଇସ୍ स्वीस

ସୁଉ—ଦେ॰ ଅ ( ଧ୍ୱନ୍ୟର୍ଥ )—ସୁ ସୁ (ଦେଖ)
Su-u Su su. (See)
( ସୁଉ ସୁଉ—ଅନ୍ୟରୂପ )

ସୁଉଁ—ଦେ. ବି (ଧ୍ୱନ୍ୟର୍ଥକ)—ସୁଁ ସୁଁ (ଦେଖ)
Su-uñ Suñ suñ. (See)
( ସୁଉଁ ସୁଉଁ—ଅନ୍ୟରୂପ )

ସୁଉକା(କି) (ଇତ୍ୟାଦି)—ଦେ. ବି (ଫ. ଚଉକ୍ସ)—ସିଉକା ଇତ୍ୟାଦି
Su-ukā(ki) (etc) (ଦେଖ)—Siukā etc. (See)

ସୁଉକାର (ଇତ୍ୟାଦି)—ଗ୍ରା॰ ବି (ଫ.. ସ୍ୱୀକାର)—ସୀଉକାର ଇତ୍ୟାଦି
Su-ukāra (etc) (ଦେଖ)—Siukāra etc. (See)

ସୁଉସିବା—ଦେ. କି ( ଧ୍ୱନ୍ୟନୁକରଣ ) —କୌଣସି ବ୍ୟକ୍ତିକୁ ମାରିବା
Su-usibā ପାଇଁ ଅତି ଜୋର୍‌ରେ ଦଉଡ଼ି ଆସିବା—
ମାର୍‌ତେ ଦୌଡ଼ା To advance furiously towards a
झुकना person to strike a blow.

ସୁଏଜ୍—ଦେ॰ ବି (ନାମ)—ୟୁରୋପ ଓ ଆସିଆର ମଧ୍ୟବର୍ତ୍ତୀ ଯୋଜକ,
Suej (ବର୍ତ୍ତମାନ ଯାହା କେନାଲରେ ପରିଣତ ହୋଇ ଭୂମଧ୍ୟସାଗର
ସୁଏଜ୍ ଓ ଲୋହିତସାଗରକୁ ଯୋଗ କରୁଅଛି (ନଗର, ପ୍ରଣାଳୀ,
सुएज कେନାଲ୍ )—Suez (isthmus, canal, gulf and town.

ସୁଏଜ୍ କେନାଲ୍ ( ଖାଲ, ନାଳ )—ଦେ॰ ବି—ଭୂମଧ୍ୟସାଗର ଓ
Suej kenāl (khāla, nāla) ଲୋହିତସାଗରକୁ ଯୋଗ
ସୁଏଜ୍ କେନାଲ କରିଥିବା ନାଳ—Suez canal. [ ଦ୍ର—ଏହି
सुएज केनाल ନାଳ ଖୋଳା ହେବା ପୂର୍ବେ ସାହେବମାନେ ଭାରତକୁ ଜଳପଥରେ ଆସିବା ପାଇଁ ଆଫ୍ରିକାର ଉତ୍ତମାଶା ଅନ୍ତରୀପ (Cape of Good Hope) ବାଟେ ବୁଲି କରି ଆସୁଥିଲେ । ଏହି ନାଳକୁ ଜଣେ ଫରାସୀ ଇଞ୍ଜିନିଅର୍ ବୁଦ୍ଧି-ବଳରେ ଖୋଳାଇବାରୁ ଏହି ନାଳ ବାଟେ ସାହେବମାନେ ଭୂମଧ୍ୟସାଗରରୁ ଲୋହିତସାଗର ଓ ଆରବ ଉପସାଗର ବାଟେ ଭାରତକୁ ଆସୁଅଛନ୍ତି । ଏହି ନାଳ ବ ମାନ-

ଇଂରେଜଙ୍କ ଅଧିକୃତ । ଏହାର ଉତ୍ତର ପ୍ରାନ୍ତରେ ପୋର୍ଟ ସଇଦ୍ ଓ ଦକ୍ଷିଣରେ ସୁଏଜ୍ ନଗର ନାମକ ଦୁଇଟି ବନ୍ଦର ଅବସ୍ଥିତ ।]

[ମିଶ୍ର ଦେଶର ପ୍ରାଚୀନ ନରପତି ଫାରୱମାନଙ୍କ [Pharaohs] ସମୟରେ ଲୋହିତ ସାଗରଠାରୁ ନାଇଲ୍ [ନୀଳ] ନଦୀର ତ୍ରିକୋଣ ଭୂମି [ଡେଲଟା] ପର୍ଯ୍ୟନ୍ତ ଗୋଟିଏ କେନାଲ୍ ଖୋଲା ହୋଇଥିଲା । ଏହାର ପଥ ଅଳ୍ପ କିଛି ଚିହ୍ନ ବର୍ତ୍ତମାନ ରହିଅଛି । କିଛିକାଳ ପରେ ସେଥିରେ ବାଲି ଜମିଗଲା । ତତ୍ପରେ ପାରସୀକମାନେ ଅସି ବାଲି କଢ଼ାଇ କେନାଲର ପୁନର୍ପ୍ରତିଷ୍ଠା କରଥିଲେ । ଏମାନଙ୍କ ପରେ ଖ୍ରୀଷ୍ଟ ଶତାବ୍ଦୀ ଆରମ୍ଭର ପ୍ରାୟ ଦୁଇଶତ ବର୍ଷ ପୂର୍ବରୁ ମିଶରର ନରପତିମାନଙ୍କ ଦ୍ୱାରା କେନାଲ୍ ଖୋଲା ହେଲା । ତତ୍ପରେ ଆଉ ଥରେ ମିଶରର ମୁସଲମାନ୍ ଖଳିଫାମାନେ ଏହି କେନାଲକୁ ଖୋଲାଇଥିଲେ । କ୍ରମେ ଇତିମଧ୍ୟରେ ଅଧୁନାତନ ଧରଣର କେନାଲ୍ ଖୋଲା ହେଲା ଏବଂ ସେହି ପୁରାତନ କେନାଲଟି ଅସ୍ତେ ଅସ୍ତେ ଉଭେଇ ଗଲା ।

ପ୍ରାୟ ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ଫର୍ଡିନାଣ୍ଡ୍ ଡ ଲେସେପ୍‌ସ୍ (Ferdinand de Lesseps) ନାମକ ଜଣେ ଫରାସୀ ଇଞ୍ଜିନିଅର୍ ଅସୀମ ଉତ୍ସାହରେ ଗୋଟିଏ ନକ୍ସା ପ୍ରସ୍ତୁତକଲେ । ସେ କିଛିକାଳ ପରେ ମିଶରର ରାଜା ଖେଦିଭ୍ [Khedive] ଙ୍କ ସାହାଯ୍ୟ ଲାଭ କରିବାରେ କୃତକାର୍ଯ୍ୟ ହୋଇଥିଲେ । ୧୮୫୬ ଖ୍ରୀଷ୍ଟାବ୍ଦରେ ସୁଏଜ୍ କେନାଲ୍ କୋମ୍ପାନୀ ସ୍ଥାପିତ ହୋଇଥିଲା । କେନାଲ ଖନନପାଇଁ ଯେତେ ଟଙ୍କା ଦରକାର ହୋଇଥିଲା ସେଥିରୁ ଅଧେ ଫ୍ରାନ୍ସ ଓ ଅଧେ ଖେଦିଭ୍ ସାହାଯ୍ୟ କରିଥିଲେ । ଖେଦିଭ୍ କେନାଲ୍ ଖୋଲା କାର୍ଯ୍ୟରେ ଖୁବ୍ ସାହାଯ୍ୟ କରିଥିଲେ । ସେ ଖୋଲା କାର୍ଯ୍ୟ ପାଇଁ କୁଲି ଯୋଗାଉଥିଲେ । ସମସ୍ତ କାର୍ଯ୍ୟ ସମ୍ପୂର୍ଣ୍ଣ ହେବାକୁ ସାଢ଼େ ଦଶବର୍ଷ କାଳ ଲାଗିଥିଲା । ସାମ୍ରାଜ୍ଞୀ ଇଉଜିନ [Eugenie] ଙ୍କ ଦ୍ୱାରା ୧୮୬୯ ମସିହା ନଭେମ୍ବର ମାସ ୧୭ ତାରିଖ ଦିନ କେନାଲ୍ ଖୋଲାଗଲା । ୧୮୭୫ ମସିହାରେ ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ଡିସ୍‌ରେଲି [Disraeli] ଇଂରେଜମାନଙ୍କ ପାଇଁ ସମସ୍ତ ୪୦୦,୦୦୦ ଅଂଶ ମଧ୍ୟରୁ ଖେଦିଭ୍‌ଙ୍କ ଭାଗ ୧୭୬,୬୦୨ ଗୋଟି ଅଂଶ ୪୦ ଲକ୍ଷ ପାଉଣ୍ଡ୍ ମୂଲ୍ୟ ଦେଇ କିଣି ନେଲେ । ଅଳ୍ପଦିନେ ଏହି ଅଂଶ ଗୁଡ଼ିକର ମୂଲ୍ୟ ୩ କୋଟି ୬୬ ଲକ୍ଷ ୨୪ ହଜାର ୩୬୦ ପାଉଣ୍ଡକୁ ବଢ଼ିଗଲା ।

୧୮୮୮ ମସିହାରେ ଅନ୍ତର୍ଜାତୀୟ ଚୁକ୍ତିନାମା ଦସ୍ତଖତ ହୋଇଗଲା । ଏହା ଫଳରେ ସବୁ ଦେଶର ଯୁଦ୍ଧ ଜାହାଜ, ମାଲ ବୋଝାଇ ଜାହାଜ ଇତ୍ୟାଦି କି ଯୁଦ୍ଧ, କି ଶାନ୍ତି, ସମସ୍ତ ସମୟରେ ସୁଏଜ୍‌କେନାଲ୍ ମଧ୍ୟ ଦେଇ ଯାତାୟାତ କରିବା ପାଇଁ ଅନୁମତି ପାଇଲେ ।

ସୁଏଜ୍ କେନାଲ୍ ପୋର୍ଟସେଡ୍ ବନ୍ଦରଠାରୁ ସୁଏଜ୍ ବନ୍ଦର ପର୍ଯ୍ୟନ୍ତ ଏକ ଶତ ମାଇଲ ଲମ୍ବ । ପ୍ରଥମେ କେନାଲ୍‌ର ଓସାର ୭୨ ଫୁଟ ଥିଲା । ଏହା କ୍ରମେ ବୃଦ୍ଧି ପାଉଅଛି । ବର୍ତ୍ତମାନ କୌଣସିଠାରେ କେନାଲର ଓସାର ୧୩୫ ଫୁଟରୁ ଊଣା ନୁହେଁ । ସ୍ଥାନେ ସ୍ଥାନେ କେନାଲ୍‌ର ଓସାର ୧୯୬ ଫୁଟ୍ ଓ ବାଙ୍କ ମାନଙ୍କରେ ତାହାର ଓସାର ୨୫୦ ଫୁଟ୍ । ବର୍ତ୍ତମାନ କେନାଲ୍‌ର ଗଭୀରତା ପ୍ରାୟ ୪୦ ଫୁଟ୍ । ଯେଉଁ ଜାହାଜମାନ ୩୩ ଫୁଟରୁ କମ ଗଭୀର ଜଳରେ ଗତି କରିପାରେ, କେବଳ ଜାହାଜଗୁଡ଼ିକ କେବଳ କେନାଲ୍ ଭିତରେ ଯାତାୟାତ କରିବା ପାଇଁ ଅନୁମତି ପାଆନ୍ତି ।

ଏକା ସାଙ୍ଗରେ ଦୁଇଟି ଜାହାଜ କେନାଲ୍‌ରେ ଯାଇ ପାରେ ନାହିଁ । କେବଳ ଖୁବ୍ ଓସାରିଆ ଗ୍ରେଟ୍‌ବିଟର୍ ହ୍ରଦ ବ୍ୟତୀତ କେନାଲ୍‌ର ଅନ୍ୟ ଅଂଶମାନଙ୍କରେ ଗୋଟିଏ ଜାହାଜ କୂଳର ଦେହକୁ ଲାଗି ରହିଲେ ବିପରୀତ ଦିଗରୁ ଆସୁଥିବା ଜାହାଜ ଗଳିଯିବାକୁ ସ୍ଥାନ ପାଏ । କେନାଲ କୂଳରେ ତେର ଗୋଟି ସିଗ୍‌ନାଲ୍ ଷ୍ଟେଶନ୍ ଅଛି ।

ବଡ ବଡ ଜାହାଜମାନଙ୍କୁ କେନାଲ୍ ଭିତରେ ଘଣ୍ଟାରେ ପ୍ରାୟ ସାଢେ ଛଅ ମାଇଲ୍‌ରୁ ବେଶୀ ବେଗରେ ଚଳାଇବାର ନିୟମ ନାହିଁ । କେବଳ ଗ୍ରେଟ ବିଟର୍ ହ୍ରଦରେ ବେଶୀ ସ୍ଥାନ ଥିବାରୁ ଜାହାଜ ସେଠାରେ ଅଧିକ ବେଗରେ ଚାଲେ ।

ବଡ଼ ବଡ଼ ଜାହାଜଗୁଡ଼ିକୁ ଥରେ କେନାଲ୍‌ରେ ଯିବା ପାଇଁ ପ୍ରାୟ ୩ହଜାର ପାଉଣ୍ଡ୍ ମାସୁଲ ଦେବାକୁ ହୁଏ । ଜାହାଜକୁ କେନାଲ୍ ପାର ହେବା ନିମିତ୍ତ ବର୍ତ୍ତମାନ ପ୍ରାୟ ୧୨ ଘଣ୍ଟାରୁ ୧୫ ଘଣ୍ଟା ଲାଗେ । ଦିନରେ ପ୍ରାୟ ୧୬ଟି ଜାହାଜ ସୁଏଜ୍ କେନାଲ୍ ବାଟେ ଯାତାୟାତ କରେ । ସୁଏଜ୍ କେନାଲ୍ ବାଟେ ଯାତାୟାତ କରୁଥିବା ଜାହାଜ ଗୁଡ଼ିକ ଭିତରୁ ଶତକଡ଼ା ୫୫ଟି ଜାହାଜ ଇଂରେଜମାନଙ୍କର ।

ଏ ସନ୍ଦର୍ଭ P & O Company ଙ୍କ ପ୍ରକାଶିତ Suez Canal ଇଂରାଜି ପ୍ରବନ୍ଧର ଅବଲମ୍ବନରେ ଶ୍ରୀ ବସନ୍ତକୁମାର ବେଉରିଆଙ୍କ ଦ୍ୱାରା ଲିଖିତ ଓ ନବଭାରତ (୪।୧)ରେ ପ୍ରକାଶିତ ।]

**ସୁଏଜ୍ ନଗର ( ବନ୍ଦର )**—ଦେ. ବି—ସୁଏଜ୍ କେନାଲ୍‌ର ଦକ୍ଷିଣ Suej nagara (bandara) ପ୍ରାନ୍ତରେ ସୁଏଜ୍ ପ୍ରଣାଳୀରେ ସୁୟେଜ୍ ବନ୍ଦର ସୁଏଜନଗର ଅବସ୍ଥିତ ବନ୍ଦର—The port of Suez.

**ସୁଏଜ୍ ପ୍ରଣାଳୀ**—ଦେ. ବି—ଲୋହିତ ସାଗରର ଉତ୍ତର ପଶ୍ଚିମ Suej pranali କୋଣରେ ଥିବା ପ୍ରଣାଳୀ, ଯାହାର ଉତ୍ତର ସୁୟେଜ୍ ପ୍ରଣାଳୀ କୋଣରୁ ଭୂମଧ୍ୟସାଗରକୁ ନାଳ ଖୋଲା ହୋଇଅଛି— ସୁଏଜ ପ୍ରଣାଳୀ The bay of Suez.

ସୁଓର୍ (ଇତ୍ୟାଦି)—ଦେ ବି—ଶୁଅର୍ ଇତ୍ୟାଦି (ଦେଖ)
Suor (etc) Śuar etc. (See)

ସୁଂ (ସୁଁ)—ଦେ. ଅ (ଧ୍ୱନ୍ୟନୁକରଣ)—୧ । ଶରଦି ସମୟରେ ଶ୍ଲେଷ୍ମା-
Sum (suñ) ଯୁକ୍ତ ନାକରୁ ବାହାରିବା ଅନୁନାସିକ ଶବ୍ଦ—
(ସୁଁ ସୁଁ—ଅନ୍ୟରୂପ) 1. Nasal sound due to cold.
ସୁଁ ସୁଁ ୨ । ଶବେଇ ହୋଇ ଧୀରେ ଧୀରେ କାନ୍ଦିବାର ଶବ୍ଦ—
2. Sound of sighing cry. ୩ । ଶରଦିରେ ନାକ
ପୋଛିବାର ଶବ୍ଦ; ସଇଁ ସଇଁ—3. The sound of
clearing the nose affected with cold.

ସୁଂ(ସୁଁ)ଗା(ଘା)—ଦେ. ବି ଓ ବିଣ—ଶୁଙ୍ଘା (ଦେଖ)
Sum(suñgā (ghā) Śuṅgā. (See)

ସୁଂ[ସୁଁ]ଗା[ଗେ,ଘା,ଘେ]ଇବା—ଦେ. କ୍ରି—ଶୁଙ୍ଘାଇବା [ଦେଖ]
Sum[suñ]g[ge,ghā,ghe]ibā Śuṅgāibā [See]

ସୁଂ[ସୁଁ]ଗା[ଘା] ସୁଂ[ସୁଁ]ଗି[ଘି]—ଦେ. ବି—ଶୁଙ୍ଘାଶୁଙ୍ଘି [ଦେଖ]
Sum[suñ]g[ghā] sum[suñ]gi[ghi] Śuṅgāsuṅgi.
[See]

ସୁଂ[ସୁଁ]ଗି[ଘି]ବା—ଦେ. କ୍ରି—ଶୁଙ୍ଘିବା [ଦେଖ]
Sum[suñ]g[ghi]bā Śuṅgibā. [see]

ସୁଁ—ଦେ. ଅ [ପଞ୍ଚମୀ ବିଭକ୍ତି ଚିହ୍ନ]—୧ । ରୁ; ଠାରୁ—1. From;
Suñ since. [ଭୁ—ବଣ୍ଠିପିଲା ! ଏତେ ସୁଣ ବୋଲି ଛାଡ଼ି
ହଇତେ, ଥେକେ से ଥିଲୁ କି । ଦେଇସୁଁ ନ କହିଲ; ଫୁଲ ପତ୍ର ଭରି
ଟୋକେଇ ଧରି ଥିଲି କଣ୍ଠୁ ପଡ଼େଇଲି—ଛମ ।] ୨ । ସୁଂ
( ଦେଖ )—2. Sum ( See )

ସୁଁଆଁ (ଇତ୍ୟାଦି)—ଦେ. ବି—ସୁଅଁ ଇତ୍ୟାଦି (ଦେଖ)
Suñāñ (etc) Suāñ etc (See)

ସୁଁକାର—ଦେ. ବି—ନାକର ସୁଁ ସୁଁ ଶବ୍ଦ—
Suñkāra Nasal hissing sound.
ସୁଁକାର सुंकार

ସୁଁତ—ପ୍ରାଦେ. ( ଲକ୍ଷ୍ମୀ ) ବି ( ଭୂଲ. ହି. ସୂତା )—ସୂତା—
Suñta Thread.

ସୁଁଡା(ଥା) (ଇତ୍ୟାଦି)—ଗ୍ରା ବି—ସୁନ୍ଥା ଇତ୍ୟାଦି ( ଦେଖ )
Suñtā(thā) (etc) Sunthā etc ( See )

ସୁଁତା(ଥା)ଣି—ଦେ. ବି—ସୁନ୍ଥାଣି ( ଦେଖ )
Suñtā(thā)ṇi Sunthāṇi ( See )

ସୁଁଥାଣ(ଣି)—ଦେ. ବି—ସୁନ୍ଥାଣ ( ଦେଖ )
Suñthāṇa(ṇi) Sunthāṇa ( See )

ସୁଁ ସୁଁଆଁ (ୟାଁ)—ଦେ, ବିଣ, ପୁଂ—ଯେଉଁ ବ୍ୟକ୍ତି ସୁଁ ସୁଁ ଶବ୍ଦ କରେ—
Suñsuñāñ(yāñ) Making small nasal sounds.
ସୁଁ ସୁଁଯେ सुं सुं करने वाला (ସୁଁ ସୁଁ ଈ—ସ୍ତ୍ରୀ)

ସୁଁ ସୁଁ କାନ୍ଦିବା- ଦେ. କ୍ରି—ବଡ଼ ପାଟି ନ କରି, ଗୁପି ଗୁପି, ସୁଁ ସୁଁ
Suñ suñ kāndibā ଶବ୍ଦ କରି କାନ୍ଦିବା—To moan
ফুঁপিয়ে ফুঁপিয়ে কাঁদা with suppressed hissings.
सुसुक सुसुक रोना

ସୁଁ ସୁଁ ହେବା—ଦେ. କ୍ରି—୧ । ଶର୍ଦ୍ଦି ଯୋଗୁଁ ଅନୁନାସିକ ଶ୍ୱାସ-ଶବ୍ଦ
Suñ suñ hebā କରିବା—1. To make a nasal
ସୁଁ ସୁଁ କৰা sound of breathing. ୨ । ସବେଇ ହୋଇ
सुं सुं करना କାନ୍ଦିବା—2. To moan with sighs and
suppressed hissings.

ସୁକ୍[କୁ]ତ[ତା]ଲା[ଲ]—ଦେ. ବି—ଶୁକ୍ତଲା ( ଦେଖ )
Suk-[ku]ta[tā]lā[la] Śuk-talā ( See )

ସୁକ୍ତାନି—ଦେ. ବି ( ସଂ ସୁକ୍ତ )—ଶୁକ୍ତାନି ( ଦେଖ )
Suk-tāni Śuktāni ( See )

ସୁକ୍‌ପାଲ୍—ପ୍ରାଦେ. (ବସ୍ତର) ବି—ପାଲିଙ୍କି—
Suk-pāl Palanquin.

ସୁକ୍[କୁ]ସୁକ୍[କୁ] ( ଇତ୍ୟାଦି )—ଦେ. ବିଣ—ଶୁକ୍ ଶୁକ୍ ଇତ୍ୟାଦି
Suk-[ku]suk-[ku] ( etc ) ( ଦେଖ )—Śuk śuk etc
( See )

ସୁକ୍[କୁ]ସୁକା—ଦେ. ବିଣ ପୁଂ—ଶୁକ୍‌ଶୁକା (ଦେଖ)—Śuk-śukā
Suk-[ku]sukā (ସୁକ୍[କୁ]ସୁକଅ—ଅନ୍ୟରୂପ) ( See )
(ସୁକ୍[କୁ]ସୁକୀ, ସୁକ୍[କୁ]ସୁକେଇ—ସ୍ତ୍ରୀ)

ସୁକ—ଦେ. ବି—ସୁକୁମାରର ଡାକ ନାମ—Nickname for Suku.
Suka māra. ଗ୍ରା. ବି ( ସଂ. ଶୁକ; ପ୍ରା. ଶୁକ୍କ )—୧ । ଶୁକ
স্তকো ବି. ( ଦେଖ )—1. Śuka ( See ) ୨ । ( ସଂ.
सुक ସୁଖ ) ସୁଖ—2. Happiness. ୩ । ଆନନ୍ଦ—
3. Pleasure. ୪ । ସ୍ୱାସ୍ଥ୍ୟ—4. Health. ଗ୍ରା.
শুক্নো सुखा ବିଣ ( ସଂ. ଶୁଷ୍କ; ପ୍ରା. ଶୁକ୍କ )—ଶୁଖିଲା; ଶୁଷ୍କ—
Dry.

ସୁକଟ ( ଇତ୍ୟାଦି )—ଦେ. ବି—ସୁକୁଟ ଇତ୍ୟାଦି ( ଦେଖ )—
Sukaṭa ( etc ) Sukuṭa etc ( See ) [ଭି—ଯାହାର
ଥିବ ଚେତିବ ଅବଶ । ଦେଖିବ ତୁମ୍ଭେ ତାହାର ସୁକଟ—
ଜବସୁର୍ଯ୍ୟ ଗୀତ । ]

ସୁକଟାକ୍ଷା—ସଂ. ବିଣ(ବହୁବ୍ରୀହି; ସୁ+କଟାକ୍ଷ+ଅ)—ସୁଦୃଷ୍ଟା; ସୁନୟନା
Sukaṭākshā —( a woman ) Having charming
and ogling eyes. [ ଭି—ବଗଡ ଭୁ ହେଲ
କଣ । ବ୍ରହ୍ମାଣ୍ଡରେ ବ ରୂପରେ ଅଛ ସୁକଟାକ୍ଷା—ଭଞ୍ଜ.
ବୈଦେହୀଶବିଳାସ । ]

ସୁକଠିନ—ସଂ. ବିଣ—୧ । ଅତି କଠିନ; ଅତି ଦୃଢ଼—
Sukaṭhina 1. Very hard. ୨ । ଦୁଷ୍କର—
2. Very difficult.

ସୁକଣ୍ଟକା—ସଂ. ବି—ଘିକୁଆଁରୀ ( ଉଦ୍ଭିଦର୍ବିଶେଷ )—
Sukaṇṭakā The Indian aloe; Aloe Indica.

ସୁକଣ୍ଠ—ସଂ. ବି—ମଧୁର କଣ୍ଠ ସ୍ୱର—Sweet tone. ସଂ.
Sukaṇṭha ବିଣ. ପୁଂ ( ବହୁବ୍ରୀହି )—ଉତ୍ତମ ବା ମଧୁର
[ସୁକଣ୍ଠା—ସ୍ତ୍ରୀ. ବିଣ] କଣ୍ଠ ସ୍ୱରବିଶିଷ୍ଟ—Having a sweet
tone; sweet-toned; melodious.

ସୁକଣ୍ଠୀ—ଦେ. ବଣ. ସ୍ତ୍ରୀ ( ସଂ. ସୁକଣ୍ଠା )—୧ ମଧୁର ସ୍ୱରବିଶିଷ୍ଟା
Sukanṭhī (ସ୍ତ୍ରୀ)—1. ( a lady ) Having a
সুকণ্ঠি sweet tone. ୨ । ସୁନ୍ଦରକଣ୍ଠଯୁକ୍ତା—
सुकंठी 2. (a woman) Having a beautiful neck.

ସୁକଣ୍ଡୁ—ସଂ. ବ—କଣ୍ଡୁ ରୋଗ; କାଛୁ [ ଶବ୍ଦରତ୍ନାବଳୀ ]—
Sukaṇḍu Itches.

ସୁକନ୍ଦ—ସଂ. ବ—କଶେରୁ [ ରାଜନିର୍ଘଣ୍ଟ ]; ମୁଥା—
Sukanda Grass-root; Cyprus Rotunda.

ସୁକନ୍ଦକ – ସଂ. ବ—୧ । ପଲାଣ୍ଡୁ; ପିଆଜ—1. Onion. ୨ । ବାରାହୀ
Sukandaka କନ୍ଦ—2. A medicinal root bulb;
Disocorea. ୩ । ଧରଣୀ କନ୍ଦ—
3. A medicinal root bulb.

ସୁକନ୍ଦୀ – ସଂ. ବ —ଶୂରଣ; ଓଲୁଅ ( ରାଜନିର୍ଘଣ୍ଟ )—
Sukandī Wild taro; wild arum.

ସୁକନ୍ୟକ—ସଂ. ବଣ. ପୁଂ ( ବହୁବ୍ରୀହି; ସୁ+କନ୍ୟକା+ଅ )—
Sukanyaka ଯାହାର କନ୍ୟା ସୁନ୍ଦରୀ—Having a beauti-
[ସୁକନ୍ୟକା – ସ୍ତ୍ରୀ] ful daughter.

ସୁକନ୍ୟା—ସଂ. ବ ( କର୍ମଧା )—୧ । ସୁନ୍ଦରୀ କନ୍ୟା—1. A beauti-
Sukanyā ful girl. ୨ । (ନାମ) ଶର୍ଯ୍ୟାତି ରାଜାଙ୍କ କନ୍ୟା;
ଚ୍ୟବନ ଋଷିଙ୍କ ସ୍ତ୍ରୀ—2. Name of the wife of
Chyabana sage. [ ଉ—ସୁକନ୍ୟା ଚ୍ୟବନ
ସମୀପେ । ଶଠର ମନ ଅନୁରୂପେ—ଜଗନ୍ନାଥ. ଭାଗବତ ।]
[ଦ୍ର—ଶର୍ଯ୍ୟାତି ମୃଗୟା କାମନାରେ ଥରେ ସପରିବାରେ ଅରଣ୍ୟକୁ
ଯାଇଥିଲେ । ସୁକନ୍ୟା ମନ ଆନନ୍ଦରେ ବନରେ ବୁଲୁ
ବୁଲୁ ଗୋଟିଏ ଦୁଙ୍କା ମଧ୍ୟରେ ଜୁଳୁଜୁଳୁ ଦିଶୁଥିବା ଦୁଇଟି
ଉଜ୍ଜ୍ୱଳ ପଦାର୍ଥ ଲକ୍ଷ କରି ବାଳସୁଲଭ କୌତୁକ ବଶତଃ ସେ
ଦୁଇଟି ବସ୍ତୁକୁ କଣ୍ଟାଦ୍ୱାରା ଫୋଡ଼ି ଦେଲେ । ଦେଖାଗଲା
ଯେ, ଏ ଦୁଇଟି ଉଜ୍ଜ୍ୱଳ ବସ୍ତୁ ତପସ୍ୟାମଗ୍ନ ଚ୍ୟବନ ଋଷିଙ୍କର
ଦୁଇଟି ଚକ୍ଷୁ । ଚ୍ୟବନ ମୁନି ନିଜର ନୟନ ନାଶରେ କ୍ରୁଦ୍ଧ
ହୋଇ ଅଭିଶାପଦ୍ୱାରା ରାଜାଙ୍କ ସୈନ୍ୟଗଣର ମଳ ମୂତ୍ର ତ୍ୟାଗ
ବନ୍ଦ କରି ଦେଲେ । ରାଜା ଅନନ୍ୟୋପାୟ ହୋଇ
ଋଷିଙ୍କ ହସ୍ତରେ ସ୍ୱ କନ୍ୟା ସୁକନ୍ୟାଙ୍କୁ ଅର୍ପଣ କରି ଉକ୍ତ
ଶାପରୁ ନିଷ୍କୃତି ପାଇଲେ । ଚ୍ୟବନ ଅତ୍ୟନ୍ତ କୋପନ-
ପ୍ରକୃତି ଥିଲେହେଁ ସୁକନ୍ୟା ସ୍ୱୀୟ ପାତିବ୍ରତ୍ୟ ଓ ସେବାଦ୍ୱାରା
ସ୍ୱାମୀଙ୍କୁ ପରମ ପ୍ରୀତ କରାଇଲେ । ]

ସୁକନ୍ୟାକ—ସଂ. ବଣ. ପୁଂ ( ବହୁବ୍ରୀହି )—ସୁକନ୍ୟକ ( ଦେଖ )
Sukanyāka Sukanyaka ( See )
( ସୁକନ୍ୟାକା—ସ୍ତ୍ରୀ )

ସୁକର—ସଂ. ବଣ. ପୁଂ ( ସୁ+କୃ ଧାତୁ+କର୍ମ. ଅ )—୧ । ସୁସାଧ୍ୟ;
Sukara ସହଜସାଧ୍ୟ; ଅନାୟାସସାଧ୍ୟ—1. Easy of accom-
সুকর सुकर plishment. ୨ । ସୁଖକର—2. Pleasant.
[ଦୁଷ୍କର—ବିପରୀତ] ଦେ. ବଣ—ସୁନ୍ଦର—Beautiful. [ଉ—
କାହାରଲେ ସୁକର କଣ୍ଠର ପରକାର ଯେ—ଭଞ୍ଜ. ବୈଦେ-
শুকর ହୀଶବିଳାସ ।] ଗ୍ରା. ବ ( ସଂ. ଶୂକ )—ଶୂକର (ଦେଖ)
सुकर Śukara ( See )

ସୁକରଜା—ସଂ. ବଣ ( ବହୁବ୍ରୀହି; ସୁ+କରଜ+ଅ )—ସୁନଖୀ;
Sukarajā ସୁନ୍ଦର ନଖବିଶିଷ୍ଟା—[ a lady ] Having
beautiful nails. [ ଉ—ସୁକରଜା ମୋହ ପାରେ
ଶୁକ—ଭଞ୍ଜ. ପ୍ରେମସୁଧାନିଧି । ]

ସୁକରା—ସଂ. ବ. ସ୍ତ୍ରୀ ( ସୁକର+ଆ )—ସୁଶୀଳା ଗୋ; ଶାନ୍ତ ଗାଈ
Sukarā (ଅମର)—A meek cow.

ସୁକର୍ଣ୍ଣକ—ସଂ. ବଣ. ପୁଂ (ବହୁବ୍ରୀହି)—ସୁନ୍ଦର କର୍ଣ୍ଣଯୁକ୍ତ—
Sukarṇṇaka Having butiful ears.
(ସୁକର୍ଣ୍ଣିକା—ସ୍ତ୍ରୀ) ସଂ. ବ—ହସ୍ତିକନ୍ଦ (ଦେଖ)
Hastikanda (See)

ସୁକର୍ଣ୍ଣିକା—ସଂ. ବ—ମୂଷିକକର୍ଣ୍ଣୀ (ଶବ୍ଦରତ୍ନାବଳୀ); ମୂଷାକାନ;ବନ
Sukarṇṇikā ଶାକ ବିଶେଷ—Acalypba Indica.

ସୁକର୍ମ[ର୍ମ୍ମ]—ସଂ. ବ—୧ । ସୁନ୍ଦର କାର୍ଯ୍ୟ; ଉତ୍ତମ କାର୍ଯ୍ୟ—
Sukarma[rmma] 1. Good work. ୨ । ସତ୍କ୍ରିୟା;
ସତ୍‌କାର୍ଯ୍ୟ—2. Benevolent act. ସଂ. ବଣ—
ସତ୍କ୍ରିୟ (ବ୍ୟକ୍ତି)—( A man ) Performing
good acts.

ସୁକର୍ମ[ର୍ମ୍ମ] ସେବା—ସଂ. ବ—ଉତ୍ତମ କର୍ମ ସାଧନ; ଉତ୍ତମ ବା ହିତ
Sukarma[rmma] sebā କର୍ମ ସାଧିବାରେ ନିଜର
ନିୟୋଜନ—Performance of good acts.
(ଉ—ନ ଦେଇ ଅଦୃଷ୍ଟେ ମନ ଗୋ । କର୍ମମୟ ଭବେ
ସୁକର୍ମ ସେବାରେ ରତ ଥିବା ସଜ୍ଜନ ଗୋ—
ବାଳକୃଷ୍ଣ. ଫୁଲ ଚଉଳବେଣୀ ।)

ସୁକର୍ମା(ର୍ମ୍ମା)—ସଂ. ବଣ. ପୁଂ (ବହୁବ୍ରୀହି; ସୁ+କର୍ମନ୍; ୧ମା. ୧ବ)—
Sukarmā(rmmā) ୧ । ଶୋଭନ କର୍ମଶୀଳ; ସତ୍କ୍ରିୟ
(ହେମଚନ୍ଦ୍ର)—1. Performing good acts. ୨ ।
କର୍ମକ୍ଷମ; କାର୍ଯ୍ୟକୁଶଳ —2. Able; skilful. ସ. ବ—
୧। (ଜ୍ୟୋତିଷ) ବିଷ୍କମ୍ଭାଦି ସପ୍ତବିଂଶତି ଯୋଗାନ୍ତର୍ଗତ ସପ୍ତମ
ଯୋଗ—1. ( Astrology ) One of the 27
astrological conjunctions. [ ଦ୍ର—ଏଥିରେ
ଜାତ ହେବା ବ୍ୟକ୍ତି ପରୋପକାରୀ, କଳାକୁଶଳ, ହର୍ଷଯୁକ୍ତ,
ଯଶସ୍ୱୀ ଓ ସୁକର୍ମୀ ହୁଏ । କୋଷ୍ଠୀ ପ୍ରଦୀପ ।] ୨ । ବିଶ୍ୱ-
କର୍ମା ( ମେଦିନୀ )—2. The heavenly archi-
tect.

ସୁକଳ—ସଂ. ବ. ପୁଂ (ସୁ=ଅତ୍ୟନ୍ତ+କଲ୍. ଧାତୁ=ଶବ୍ଦ କରିବା+
Sukaḷa କର୍ତ୍ତୃ. ଅ )—ଦାତା ଓ ଭୋକ୍ତା; ଦାନ ଓ ଭୋଗରେ
(ସୁକଳା—ସ୍ତ୍ରୀ) ସମର୍ଥ ବ୍ୟକ୍ତି—A person who is a good
bestower and enjoyer of things. ସଂ. ବ—
(ବହୁବ୍ରୀହି; ସୁ=ଉତ୍ତମ ଅଟେ କଳ=ଧ୍ୱନି ଯାହାର)—
୧ । ମଧୁରସ୍ୱରରେ ଧ୍ୱନିକାରୀ—1. Making a sweet
sound. ୨। ଅବିକଳ—2. Exact. ୩। ଦାନଶୀଳ—
3. Generous; charitable.

**ସୁକଲ୍ୟ**—ଦେ. ଣ (ସଂ. ସୁକଲ;—ସୁକଲ (ଦେଖ)
Sukalya Sukala. (See)
ଦାତାଓ ଭୋଗୀ (ଉ—ସୁକଲ୍ୟ ଅଗଣ୍ୟ ମାନବ, ଭବ ମଭଏ
**दाता और भोगी** ଶୁଦ୍ଧବୋଧ। ଜଗନ୍ନାଥ. ଭାଗବତ।)

**ସୁକା(କି)**—ଦେ. ବ—୧। ସିକି—1. Four anna bit. ୨।
Sukā(ki) ଶୁକଦେବ ଓ ସୁକୁମାରର ଡାକ ନାମ—୨. Names
**शुका सुका** for calling Sukadeba and
(ସୁକାଇ, ସୁକଆ, ସୁକୁ, ସୁକୁଅ, ସୁକେଇ-ଅନ୍ୟରୂପ) Sukumāra.
ଦେ. ଣ—ଶୁକା (ଦେଖ)—Sukā. (See)

**ସୁକାଣ୍ଡ**—ସଂ. ବ—୧। (କର୍ମଧା) ସୁନ୍ଦର କାଣ୍ଡ—1. A beautiful
Sukāṇḍa trunk. ୨। (ବହୁବ୍ରୀହି) କାରବେଲ୍ଲ (ଶବ୍ଦକଳ୍ପଦ୍ରୁମ)
ଲତା—2. Hairy Memordica creeper and
its bitter fruit. ସଂ. ଣ (ବହୁବ୍ରୀହି)—
ସୁନ୍ଦର କାଣ୍ଡଯୁକ୍ତ (ବୃକ୍ଷାଦି)—Having a beautiful
trunk or stalk.

**ସୁକାଣ୍ଡିକା**—ସଂ. ବ—କାଣ୍ଡୀର ଲତା (ଶବ୍ଦକଳ୍ପଦ୍ରୁମ)—
Sukāṇḍikā A sort of creeper.

**ସୁକାଣ୍ଡୀ**—ସଂ. ଣ (ସୁ+କାଣ୍ଡ+ଇନ୍; ୧ମା. ୧ବ)—୧। ସୁନ୍ଦର
Sukāṇḍī କାଣ୍ଡଯୁକ୍ତ—1. Having a good trunk. ୨।
ଭ୍ରମର (ଶବ୍ଦକଳ୍ପଦ୍ରୁମ)—2. The black bee.

**ସୁକାନ୍(ନି)**—ବୈଦେ. ବ (ଫା. ସୁକାନ୍=ନୌକାର କର୍ଣ୍ଣ)—
Sukān(ni) ନୌକାର ଷଣ୍ଡ ମଙ୍ଗରେ ଥିବା କାଷ୍ଠମୟ ଦଣ୍ଡ ବା
ହାଲ ଯନ୍ତ୍ର—The helm of a boat. [ ଉ—ଜାହାଜ
**सुक्कान, पतवार** ସୁକାନରେ ଖାଲି ହାତ ପଡ଼ିଥାଏ, ସଲଖ
ଜାହାଜ ଧାଉଁଛି। ଫକୀରମୋହନ. ଗଳ୍ପସ୍ୱଳ୍ପ।]

**ସୁକାନ୍(ନି) ଧରିବା**—ଦେ. କି—ଡଙ୍ଗା ଅବର ମଙ୍ଗ ଧରିବା—
Sukān(ni) dharibā To steer the helm of a
ହାଲ ଧବା **सुकान पकड़ना** boat.

**ସୁକାନ**—ଦେ. ବ—ଚିଲିକାରେ ଯେଉଁ ଢଙ୍ଗାରେ ଲୋକମାନେ
Sukāna ଯାଆସ କରନ୍ତି—A kind of boat used in
**सुकान सुकान** carrying passengers across the
Chilka lake.

**ସୁକାନି**—ବୈଦେ. ବ ( ଫା. ସୁକାଣ=କର୍ଣ୍ଣଧାର )—ନୌକାର
Sukāni କର୍ଣ୍ଣଧାର; ମଙ୍ଗଧରୁ—The helmsman. (ଉ—
ମାଝି, କାଣ୍ଡାରୀ ......ଲୋକମାନେ ଅଭୁ ସୁକାନି ଅପଣା ଅପଣା
**सुक्कानि, पतवारिया** ଜାଗାରେ ଛିଡ଼ା ହୋଇଗଲେ। ଫକୀର-
ମୋହନ. ଗଳ୍ପସ୍ୱଳ୍ପ।) ପ୍ରାଦେ (ଉତ୍ତର ବାଲେଶ୍ୱର) ବ—
ସୁନୁସୁନିଆ—Marsibā Quadrifolia. (pot-
herb)

**ସୁକାନ୍ତ**—ସଂ. ବ. ପୁଂ—ସ୍ନେହଶୀଳ ସ୍ୱାମୀ—Loving husband.
Sukānta ଦେ. ବ. ପୁଂ—ଲୋକଙ୍କର ନାମ—
**सुकान्त सुकान्त** A name given to males.
( ସୁକାନ୍ତା—ସ୍ତ୍ରୀ )

**ସୁକାନ୍ତି**—ସଂ. ବ—୧। ସୁନ୍ଦର କାନ୍ତି—1. Beautiful lus-
Sukānti tre. ୨। (କାମ୍ବ) ମୁନି ବିଶେଷ—2. Name
of a sage. ( ଉ—ଏକାନ୍ତେ ସୁକାନ୍ତି ଉଗ୍ରତପା-ଗର-
ଶେ ଲବଦ୍ଧାର। ରାଧାନାଥ. ଚନ୍ଦ୍ରଭାଗା।) [ ଦ୍ର—ସୁକାନ୍ତି
ଋଷିଙ୍କ ତପଃ ପ୍ରଭାବରୁ ମହାନଦୀ ଜାତ ହୋଇଥିବା
ପୌରାଣିକ କିଂବଦନ୍ତୀ ଅଛି।] ୩। (କାମ୍ବ) ବିଦ୍ୟୁଜ୍ଜିହ୍ୱ
ରାକ୍ଷସର ଭଉଣୀ—3. Sister of the Rākshasa
Biddyujjihwa, who assumed the form
of Sitā by magic. (ଉ—ବାଞ୍ଛା ବହି ଭଲେ ଗତ
ସୁକାନ୍ତିର ଦେଳ ଭ୍ରାତ ମନାସି କାମ୍ୟର ଗର୍ଥେ ବାନ୍ଧି।
ଉପେ. ବୈଦେହୀଶବିଳାସ।) [ଦ୍ର—ଏହି ରାକ୍ଷସୀ ରାବଣର
ପ୍ରରୋଚନାରେ ମାୟାସୀତା ରୂପଧାରଣ କରିଥିଲା।]
ସଂ. ଣ. ପୁଂ ଓ ସ୍ତ୍ରୀ. ( ବହୁବ୍ରୀହି )—ସୁଶ୍ରୀକ; ସୁନ୍ଦର—
Beautiful (male and female). ( ଉ—ହେ
ଭଲ କହିଲ ବର କାହିଁ ଲକ୍ଷ୍ୟ ସୁକାନ୍ତିକ ଦେଇ ଭୁଲଇ।
ଉପେ. କୋଟିବ୍ରହ୍ମସୁନ୍ଦରୀ।)

**ସୁକାମା**—ସଂ. ଣ. ସ୍ତ୍ରୀ—ଶୋଭନ କାମଯୁକ୍ତା—Having a good
Sukāmā desire. ସଂ. ବ—ତ୍ରାୟମାଣା ( ଶବ୍ଦକଳ୍ପଦ୍ରୁମ );
बलाड़ मुब, बनभाङ्गिया ହିମାଳୟଦେଶୀୟ ଉଦ୍ଭିଦବିଶେଷ ଗୁଳ୍ମ—
**सुकामा** A plant; Thalictrum Falialosum.

**ସୁକାର**—ଦେ. ବ ସୁସୁ ଶବ୍ଦ—Hissing sound. ( ଉ—ଗର୍ଜନ
Sukāra ବ୍ୟାଙ୍କେ କର ସୁକାର ଶବଦ। କୃଷ୍ଣସିଂହ. ମହାଭାରତ
ଶୋଁ ଶୋଁ ବନ।) ଗ୍ରା. ବ (ସଂ. ସ୍ୱୀକାର)—ସ୍ୱୀକାର (ଦେଖ)—
**सुकार** Swīkāra. (See)

**ସୁକାଳ**—ସଂ. ବ (କର୍ମଧା)—୧। ସୁସମୟ—1. Good time. ୨।
Sukāḷa ରାଜ୍ୟରେ ସୁଭିକ୍ଷ ଅବସ୍ଥା—2. Time of plenty
in the country.

**ସୁକାଷ୍ଠକ**—ସଂ. ବ—୧। ଉତ୍କୃଷ୍ଟ ବା ସୁନ୍ଦର କାଷ୍ଠ—1. Excel-
Sukāshṭhaka lent or nice wood. ୨। ଦେବଦାରୁ
(ଶବ୍ଦକଳ୍ପଦ୍ରୁମ); ଦେବଦାରୁ—2. Pine wood.

**ସୁକାଷ୍ଠା**—ସଂ. ବ—୧। କଟୁକୀ; କଟୁକ (ଶବ୍ଦରତ୍ନାବଳୀ)—1. Black
Sukāshṭhā hellebore. ୨। କାଷ୍ଠ କଦଳୀ (ଶବ୍ଦ
ରତ୍ନାବଳୀ)—2. A sort of wild hard
plantain.

**ସୁକି**—ଦେ. ବ—୧। ସିକିକ; ଗୁର ଅଣା—1. Four anna bit.
Suki ୨। ଟଙ୍କାର ଏକ ଚତୁର୍ଥାଂଶ—2. ¼ of a rupee. ୩।
ସିକି ତୋଳାର ଏକ ଚତୁର୍ଥାଂଶ—3. ¼ of a tola in
**चौअन्नि, सुका** weight.

**ସୁକିନ୍ଦା**—ଦେ. ବ (କାମ୍ବ)—କଟକ ଜିଲ୍ଲାର ଯାଜପୁର ସବ୍‌ଡିଭିଜନ
Sukindā ଅନ୍ତର୍ଗତ ଗୋଟିଏ କିଲ୍ଲାଜାତ ଜମିଦାରୀ—The name
of an estate in the Cuttack district.
[ ଦ୍ର—ଅଷ୍ଟମ ଶତାବ୍ଦୀର ମଧ୍ୟଭାଗରେ ମଧ୍ୟପ୍ରଦେଶବାସୀ
ଯୋଗେନ୍ଦ୍ର ଭୂପତି ପୁରୀକୁ ଜଗନ୍ନାଥଙ୍କ ଦର୍ଶନ ପାଇଁ ଅସି
ଥିଲେ। ସେ ଏଠାରେ ରହି ଏହି କିଲ୍ଲାର ଉଦାଗାନ୍ତନ

ଅସଭ୍ୟ ଜାତିର ପ୍ରଧାନ କୃଷ୍ଣଚନ୍ଦ୍ର ଧୀରଙ୍କ କନ୍ୟାଙ୍କୁ ବିବାହ କରି ସୁକିନ୍ଦାର ରାଜା ହେଲେ । ତାଙ୍କ ସମୟରୁ ଅଦ୍ୟ ପର୍ଯ୍ୟନ୍ତ ସୁକିନ୍ଦାରେ ସର୍ବ ମୋଟ ୪୪ ଜଣ ରାଜା ହେଲେଣି ।

ଲେଖକ—ଶ୍ରୀ ଚନ୍ଦ୍ରଶେଖର ଦାସ ।]

ସୁକୁ—ଦେ· ବି (ନାମ)—୧ । (ପୁଂ) ସୁକୁମାରର ଡାକ ନାମ— Suku 1. (Masculine) Name for calling Sukumāra. ୨ । (ସ୍ତ୍ରୀ) ସୁକୁମାରୀର ଡାକ ନାମ— 2. (Feminine) Name for calling Sukumārī.

ସୁକୁଟ—ଦେ. ବି (ବ୍ୟଙ୍ଗାର୍ଥକ)—୧ । ତାଣ୍ଡବ; କଳକଳିଆ; ଅନର୍ଥ; Sukuṭa ଦ୍ୱନ୍ଦ୍ୱ—1. Any quarrel. [ଉ—ସେ ଗାଁରେ ଆଜି ମଜା ଅଛି ସୁକୁଟ ଲଗାଇଛି ।] ୨ । ଅଙ୍ଗଭଙ୍ଗୀ; ନାଚ; ନୃତ୍ୟ— झगड़ा 2. Dancing. [ଉ—ତା ଘରେ ସୁକୁଟ ଲଗିଛି ।] ଲାଞ୍ଛନା ୩ । ଲାଞ୍ଛନା; ହଇରାଣ—3. Being in trouble; दिक्कत harassment. [ ଯଥା—ତୁ ମୋ ସୁକୁଟ ଦେଖୁଛୁ ।]

ସୁକୁଟ ଦେଖିବା—ଦେ· କି—ସରଳ ଦୁଃଖ ବା ଲାଞ୍ଛନାଭୋଗକୁ Sukuṭa dekhibā ଅନ୍ୟର ସନ୍ତୋଷ ଦେଖିବା—To look मजादेखा complacently on another's troubles, to दिक्कत देखना gloat over another's misery.

ସୁକୁଟ ଲଗା(ଗେ)ଇବା—ଦେ· କି—ଅନର୍ଥ ବା କଳି ଉଠାଇବା— Sukuṭa lagā(ge)ibā To foment quarrel or मजा लागान, झगड़ा बाँधान झगड़ा लगाना trouble. (ସୁକୁଟ ଲଗାଇ ଦେବା—ଅନ୍ୟରୂପ)

ସୁକୁଟା [ଇତ୍ୟାଦି]—ଦେ. ବିଣ—ଶୁକୁଟା ଇତ୍ୟାଦି [ଦେଖ] Sukuṭā (etc) Śukuṭā etc. (See)

ସୁକୁଟି (ଇତ୍ୟାଦି)—ଦେ. ବିଣ ଓ ବି—୧ । ଶୁକୁଟି ଇତ୍ୟାଦି (ଦେଖ)- Sukuṭi (etc) 1. Śukuṭi etc. (See) ୨ । ଝିଅଙ୍କୁ ଦିଆଯିବା ଘରୋଇ ନାମ—2. Nickname of girls.

ସୁକୁତାନି—ଦେ. ବି (ଫ. ସୁଖ୍ତି)—ଶୁକ୍ତାନି (ଦେଖ) Sukutāni Śuktāni. (See)

ସୁକୁତୁଣୀ ପୂଜା—ଦେ· ବି—ଶୁବଚନୀ (ଦେଖ)—Śubachanī. Sukutuṇi pūjā (See) [ଉ—ଝିନାଥମେଳା, ସୁକୁତୁଣୀ ପୂଜା, [ସୁକୁତୁନୀ ପୂଜା—ଅନ୍ୟରୂପ] ଗ୍ରାମଦେବତା ମାନସିକ—ଦୁଇଜଣ ଯାକ ଢେର୍ ଢେର୍ ଧର୍ମକାର୍ଯ୍ୟ କଲେ । ଫକୀରମୋହନ. ଗଳ୍ପସ୍ୱଳ୍ପ । ]

ସୁକୁନ୍ଦକ—ସ. ବି—ପଲାଣ୍ଡୁ [ଶବ୍ଦ ରତ୍ନାବଳୀ]— Sukundaka Onion.

ସୁକୁନ୍ଦନ—ସ. ବି—ବର୍ବର ଚନ୍ଦନ [ରାଜ ନିର୍ଘଣ୍ଟ]— Sukundana A kind of sandal wood.

ସୁକୁ(ଖୁ)ମ—ଗ୍ରା. ବିଣ (ସ· ସୂକ୍ଷ୍ମ)—ସରୁ; ସୂକ୍ଷ୍ମ— Suku(khu)ma सरू सुक्ष्म Fine.

ସୁକୁମାର—ସ· ବି· ପୁଂ (କର୍ମଧା)—୧ । ଉତ୍ତମ ବାଳକ—1. Good Sukumāra boy. ୨ । ଅତି ଶିଶୁ—2. Infant; mere [ସୁକୁମାରୀ—ସ୍ତ୍ରୀ] child. ୩ । ପୁଣ୍ଡ୍ରେକ୍ଷୁ [ମେଦିନୀ]—3. A kind of sugarcane. ୪ । ବନଚମ୍ପକ (ରାଜନିର୍ଘଣ୍ଟ)—4. A sort of wild flower. ୫ । ଛିକ; ଛିଙ୍କ [ ରାଜ ନିର୍ଘଣ୍ଟ ]—5. Sneezing. ୬ । ଶ୍ୟାମକା; ସୁଆଁ ଧାନ [ରାଜନିର୍ଘଣ୍ଟ]—6. A wild grain; Panicum Frumentaceum. ୭ । ଅପାମାର୍ଗ [ବୈ. ଶ]—7. Acheranthes Aspera. (plant) ୮ । ତମାଖୁ ପତ୍ର [ବୈ. ଶ] —8. Tobacco leaf. ସ· ବିଣ—୧ । ଅତି କୋମଳ [ ଅମର ]— 1. Very soft; delicate; tender. ୨ । କୋମଳାଙ୍ଗଯୁକ୍ତ; ଯେ କଷ୍ଟ ସହିପାରେ ନାହିଁ—2. Incapable of bearing pain; delicate-bodied; tender-bodied. ୩ । ସୂକ୍ଷ୍ମ; ସରୁ—3. Fine. ୪ । ପତଳା—4. Slender. ଦେ. ବିଣ—୧ । କୋମଳ ସୁକୁମାର ଶରୀର ବିଶିଷ୍ଟ—1. Having a very tender सुकुमार body. [ଉ—ସହିଲେ ଦୁଃଖ ଏବେ ସୁକୁମାର ହୋଇ । କୃଷ୍ଣସିଂହ· ମହାଭାରତ, ବନ ।] ୨ । [ସ୍ତ୍ରୀ] ଯେ ଦୁଃଖ ବା କଷ୍ଟ ସହିପାରେ ନାହିଁ--2. Incapable of bearing pain and sorrow. [ ଉ—ଦଣ୍ଡେ ବସଇ ଦଣ୍ଡେ ଶୁଇ, ଅତି ସୁକୁମାର ଥିଲୀ । ଭୂପତି· ପ୍ରେମ ପଞ୍ଚାମୃତ ।]

ସୁକୁମାରକ—ସ. ବି (ସୁକୁମାର+ସ୍ୱାର୍ଥେ· କ)—ସୁକୁମାର (ଦେଖ) Sukumāraka Sukumāra. (See)

ସୁକୁମାର କଳା—ସ· ବି (ଅଧୁନାତନ ପ୍ରୟୋଗ)—ସୂକ୍ଷ୍ମ କଳା (ଦେଖ)— Sukumāra kaḷā Sūkshma kaḷā. (See) (ଉ— ସୁକୁମାର କଳା ସଙ୍ଗେ ଶସ୍ତ୍ରବିଦ୍ୟା ଶିଖିଥିଲ କଳାବତୀ । ରାଧାନାଥ. ଯଯାତି ।)

ସୁକୁମାର ବିଦ୍ୟା—ସ. ବି (ଅଧୁନାତନ ପ୍ରୟୋଗ)—କଳା ବିଦ୍ୟା— Sukumāra bidyā Arts.

ସୁକୁମାର ଶିଳ୍ପ—ସ. ବି (ଅଧୁନାତନ ବ୍ୟବହାର)—୧ । ସୂକ୍ଷ୍ମ କଳା Sukumāra śilpa ବିଦ୍ୟା—1. Fine arts. ୨ । ସାହିତ୍ୟାଦି ଶାସ୍ତ୍ର—2. Polite or elegant learning; belles lettres.

ସୁକୁମାରା—ସ· ବି (ସୁକୁମାର+ଆ)—୧ । ଜାତି; ଜାଇଫୁଲ— Sukumārā 1. One-pettaled Jasmine; Jasminum Grandiflorum. ୨ । ନବମାଲିକା; ଛଅଲୀ ଫୁଲ— 2. A kind of flower; Jasminum Arborescens. ୩ । କଦଳୀ—3. Banana; plantain. ୪ । ପୃକ୍କା; ପିଡ଼ଙ୍ଗ ଶାଗ—4. Trigonella Corniculata (pot herb). ୫ । ମାଳତୀ— 5. A creeper and its flower; echites.

ସୁକୁମାରଥ—ଦେ. ବଣ. ପୁଂ ଓ ସ୍ତ୍ରୀ (ସଂ. ସୁକୁମାର)—ସୁକୁମାର (ଦେଖ)—Sukumāra. (See)
Sukumāriā
সুকুমার सुकुमार

ସୁକୁମାରକା—ସଂ. ବ—କଦଳୀ ଗଛ (ବୃ. ଶ)
Sukumārikā Plantain tree.

ସୁକୁମାରୀ—ସଂ. ବ—୧ । ନବମାଳିକା (ସ୍ୱଜନ୍ତବର୍ଷ); ଜାଅଲି—
Sukumārī 1. A flower; Jasminum Arborescens. ୨ । ବନମଲ୍ଲିକା (ବୃ. ଶ)—2. Wild jasmine. ୩ । ବଡ଼ କଲରା (ବୃ. ଶ)—3. Big variety of memordica. ୪ । କଦଳୀ ଗଛ (ବୃ. ଶ)—4. Plantain tree. ୫ । ପୃକ୍କା; ପିତ୍ତଙ୍ଗ ଶାଗ (ବୃ.ଶ)—5. Trigonella Corniculata (herb) ୬ । କନ୍ୟା (ବୃ. ଶ); ବାଳିକା-6. Girl. ୭ । ଝିଅ (ବୃ. ଶ)-7. Daughter. ସ. ବଣ—ସୁକୁମାରର ସ୍ତ୍ରୀଲିଙ୍ଗ—
সুকুমারী Feminine of Sukumāra. ଦେ. ବ. ସ୍ତ୍ରୀ—
सुकुमारी, सुकुआंरी ୧ । କୋମଳାଙ୍ଗୀ ସ୍ତ୍ରୀ—1. A delicate-bodied woman. ୨ । ଯେଉଁ ସ୍ତ୍ରୀ ଶାରୀରିକ କଷ୍ଟ ସହିପାରେ ନାହିଁ—2. A woman who cannot bear physical pain. ୩ । ସ୍ତ୍ରୀ ଲୋକଙ୍କ ଦିଅଯିବା ନାମ—3. A name given to females.

ସୁକୁମାରେଇ—ଦେ. ବଣ. ସ୍ତ୍ରୀ—ସୁକୁମାରକା ସୁକୁମାରଥର ସ୍ତ୍ରୀଲିଙ୍ଗ—
Sukumārei The feminine form of Sukumāra or Sukumāriā.
সুকুমারী सुकुमारी

ସୁକୁର୍କୁର—ସଂ. ବ—ବାଳରୋଗବିଶେଷ ( ବୃ. ଶ )—
Sukurkura A kind of infantile disease.

ସୁକୁଳ—ସଂ. ବ—୧ । ଉତ୍ତମ କୁଳ ବା ବଂଶ—1. Good family.
Sukula ୨ । ଉଚ୍ଚବଂଶ-2. High family. ସଂ. ବଣ (ପୁଂ)—
(ସୁକୁଳା—ସ୍ତ୍ରୀ) ସଦ୍‌ବଂଶୋଦ୍ଭବ; କୁଳୀନ ( ବୃ. ଶ )—
Of noble birth.

ସୁକୁଲା—ଗ୍ରାଦେ. ( ଗଡ଼ଜାତ ) ବ—ସିଙ୍କୋଲା ( ଦେଖ )
Sukulā Sinkolā ( See )

ସୁକୃତ୍—ସଂ. ବଣ ( ସୁ+କୃ, ଧାତୁ+କର୍ତ୍ତି. କ୍ୱିପ୍ )—୧ । ପୁଣ୍ୟବାନ୍
Sukṛut ( କୃଧାବ )—1. Pious. ୨ । ଧାର୍ମିକ ( କିବାଣ୍ଡ ଶେଷ )—2. Godfearing. ୩ । ଉତ୍ତମ କାର୍ଯ୍ୟକାରୀ—3. Doing good acts.

ସୁକୃତ—ସଂ. ବଣ (ସୁ+କୃତ)—୧ । ସୁନ୍ଦରରୂପେ ନିର୍ମିତ; ସୁନିର୍ମିତ
Sukṛuta —1. Well made. ୨ । (ପୁଂ) ସୌଭାଗ୍ୟଶାଳୀ—
(ସୁକୃତା—ସ୍ତ୍ରୀ) 2. Prosperous. ୩ । ଭାଗ୍ୟବାନ୍—3. Fortunate; lucky. [ଉ—ଯାହାକୁ ବନ୍ଧୁ ଅନୁଭବ କରୁଛ କେଡ଼େ ସୁକୃତ ସେ ଲୋକ—ଗ୍ରାମ୍ୟ. ଏବହାରଥ । ] ୪ । ସୁସମ୍ପନ୍ନ—4. Well accomplished. ୫ । ସୁସଙ୍ଗତ—5. Proper; befitting. ୬ । (ବହୁବ୍ରୀହି; ସୁ—ଉତ୍ତମ ଅଟେ କୃତ—କର୍ମ ଯାହାର ) ପୁଣ୍ୟବାନ୍—6. Pious. ୭ । ଧାର୍ମିକ; ଧର୍ମଶୀଳ—7 Religious; godfearing. ସଂ. ବ—୧ । ପୁଣ୍ୟ ( ଅମର )—1. Peity. ୨ । ଧର୍ମ କାର୍ଯ୍ୟ—2. Religious act. ୩ । ସତ୍‌କର୍ମ—3. Act of religious merit; good act; virtuous act. ୪ । ଦୟା—4. Mercy; kindness. ୫ । ମଙ୍ଗଳ; ଶୁଭ (ମେଦିନୀ)—5. Bliss. ୬ । ପୁରସ୍କାର—6. Reward. ୭ । ସୌଭାଗ୍ୟ; ଭାଗ୍ୟ—7. Affluence; prosperity; good luck. [ ଉ—ସୁକୃତଟି ଯାହାର ହୋଇବ ଉଦୟ—କୃଷ୍ଣସିଂହ. ମହାଭାରତ. ବନ । ] ଦେ. ବ—୧ । ଶପଥ—1. Oath. [ଉ—
হলপ सौगन्ध
ବଳୁତ କହେ ମୁଁ ସୁକୃତ କରୁଛି ଛୋଡ଼ କୃତ ରସେ ମୋର ପ୍ରୀତି—ଭଞ୍ଜ. ବୈଦେହୀଶବିଳାସ । ] ୨ । ପୂର୍ବ ଜନ୍ମାର୍ଜିତ ପୁଣ୍ୟ—2. Piety due to religious acts performed in a previous life.
সুকৃত सुकृत

ସୁକୃତ ଅରଜିବା—ଦେ. କି—ପୁଣ୍ୟ ଅର୍ଜନ କରିବା—To earn
Sukṛuta arajibā religious merit by doing pious acts.
সুকৃত অর্জন করা सुकृत अरजना
( ସୁକୃତ ଅର୍ଜିବା—ଅନ୍ୟରୂପ )

ସୁକୃତ କରିବା—ଦେ. କି—୧ । ପୁଣ୍ୟ କରିବା; ଧର୍ମକାର୍ଯ୍ୟ କରିବା—
Sukṛuta kariba 1. To do pious work; to do acts of religious merit.
সুকৃত কর্যা - सुकृत करना
হলপ কপা सौगन्ध करना ୨ । ଶପଥ କରିବା—
2. To take oath.

ସୁକୃତ ପରିଣାମ(ଫଳ)—ସଂ. ବ (ଷଷ୍ଠୀ ତତ୍)—୧ । ପୁଣ୍ୟର ଫଳ—
Sukṛuta parināma(phala) 1. The result of pious act. ୨ । ବାଞ୍ଛିତ ସମ୍ପତ୍ତି; ଅଭିଳଷିତ ଐଶ୍ୱର୍ଯ୍ୟ—2. Wished-for bliss.

ସୁକୃତବନ୍ତ—ଦେ. ବଣ. ପୁଂ ( ସଂ. ସୁକୃତବତ୍ )—ସୁକୃତୀ (ଦେଖ)
Sukṛutabanta Sukṛutī ( See ) [ ଉ—ତୁମ୍ଭ ସର
সুকৃতবন্ত सुकृतवन्त
ସୁକୃତବନ୍ତ ହୋଇ କେହି—କୃଷ୍ଣସିଂହ. ମହାଭାରତ. ଅଦ । ]
(ସୁକୃତବନ୍ତୀ—ସ୍ତ୍ରୀ)

ସୁକୃତବାନ୍—ସଂ. ବଣ. ପୁଂ ( ସୁକୃତ+ଅସ୍ତି ଅର୍ଥରେ ବତୁ; ସୁକୃତବତ୍; ୧ମା. ୧ବ )—ସୁକୃତୀ ( ଦେଖ )
Sukṛutabān Sukṛutī ( See )
(ସୁକୃତବତୀ—ସ୍ତ୍ରୀ)

ସୁକୃତି—ସଂ. ବ ( ସୁ+କୃ ଧାତୁ+ଭାବ. ତି )—୧ । ପୁଣ୍ୟ—
Sukṛuti 1. Piety. ୨ । ସତ୍‌କର୍ମ—2. Act of religious merit. ୩ । ମଙ୍ଗଳ—3. Bliss. ୪ । ଅଦୃଷ୍ଟ; ଭାଗ୍ୟ—4. Luck. ଦେ. ବ ( ସ୍ତ୍ରୀ )—ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—
A name given to females.

ସୁକୃତୀ—ସଂ. ବଣ. ପୁଂ ( ସୁକୃତ+ଅସ୍ତି ଅର୍ଥେ, ଇନ୍; ସୁକୃତିନ୍; ୧ମା. ୧ବ)-୧ । ପୁଣ୍ୟବାନ୍—1. Pious. ୨ । ସତ୍‌କର୍ମକାରୀ
Sukṛutī
( ସୁକୃତିନୀ—ସ୍ତ୍ରୀ ) 2. Doing beneficient or good

acts. ୩ । ଧାର୍ମିକ—3. Religious ୪ । ଭାଗ୍ୟବାନ୍—4. Lucky; fortunate. ୫ । ଶୁଭଯୁକ୍ତ—5. Auspicious. ୬ । ବୁଦ୍ଧିମାନ୍ ( ହି. ଶ )—6. Intelligent.

ସୁକେତ—ସଂ. ବି—ସୂର୍ଯ୍ୟ ( ହି. ଶ )—
Suketa The sun.

ସୁକେତୁ—ସଂ. ବି ( ପୁଂ ) ( ନାମ )—୧ । ତାଡ଼କା ରାକ୍ଷସୀର ପିତା—
Suketu 1. Name of the father of demoness Tardakā. ୨ । ଚିତ୍ରକେତୁ ରାଜାଙ୍କ ନାମ (ହି. ଶ)—2. A name of king Chitraketu. ୩ । ସାଗରଙ୍କ ପୁତ୍ରଙ୍କ ନାମ ( ହି. ଶ )—3. Name of the son of Sāgara. ୪ । ନନ୍ଦିବର୍ଦ୍ଧନଙ୍କ ପୁତ୍ର ( ହି. ଶ )—4. Name of the son of Nandibarddhana. ୫ । ଯେଉଁ ବ୍ୟକ୍ତି ମନୁଷ୍ୟଙ୍କର ଓ ପକ୍ଷୀଙ୍କ ଭାଷା ବୁଝି ପାରେ (ହି. ଶ)—5. One who can understand the speech of men and birds.

ସୁକେଶ—ସଂ. ବିଣ. ପୁଂ ( ସୁ ଅଟେ କେଶ ଯାହାର; ବହୁବ୍ରୀହି )—
Sukesa ସୁନ୍ଦର କେଶବିଶିଷ୍ଟ—Having charming hair; fine-haired. ସଂ. ବି (ନାମ)—
ସୁକେଶା, ସୁକେଶୀ } ସ୍ତ୍ରୀ ଜଣେକ ଧର୍ମଶୀଳ ରାକ୍ଷସ—Name of a god-fearing demon. (ଦ୍ର—ଏ ବିଦ୍ୟୁତ୍‌କେଶ ରାକ୍ଷସଙ୍କ ପୁତ୍ର । ଗନ୍ଧର୍ବ କନ୍ୟା ଦେବବତୀଙ୍କ ସହିତ ଏହାଙ୍କର ବିବାହ ହୋଇଥିଲା । ମାଲ୍ୟବାନ୍, ସୁମାଲୀ ଓ ମାଲୀ ଏହାଙ୍କର ପୁତ୍ର ।)

ସୁକେଶର—ସଂ. ବି (ବହୁବ୍ରୀହି; ସୁ+କେଶର)—ବୀଜପୁର; ଟେଭ—
Sukesara Citrus.

ସୁକେଶା(ଶୀ)—ସଂ. ବିଣ. ସ୍ତ୍ରୀ ( ସୁକେଶ+ଆ; ଈ )—ସୁନ୍ଦର
Sukesā(sī) କେଶବିଶିଷ୍ଟା ( ସ୍ତ୍ରୀ )—(a woman) Having fine hair.

ସୁକେଶି—ସଂ. ବି ( ନାମ )—ସୁକେଶ ( ଦେଖ )
Sukeśi Sukeśa ( See )

ସୁକେଶୀ—ସଂ. ବି—(ମହାଭାରତୋକ୍ତ) ଜଣେ ସ୍ୱର୍ଗବେଶ୍ୟା; ଅପ୍ସରାବିଶେଷ—Name of a heavenly nymph.
Sukeśī ସଂ. ବିଣ, ସ୍ତ୍ରୀ—ଶୋଭନ କେଶଯୁକ୍ତା (ରମଣୀ)—Having charming hair (woman) ସଂ. ବିଣ. ପୁଂ (ସୁକେଶ+ଇନ୍; ୧ମା. ୧ବ)—ସୁନ୍ଦର
[ ସୁକେଶିନୀ—ସ୍ତ୍ରୀ ] କେଶଯୁକ୍ତ—Having fine hair. ଦେ.
ସୁକେଶୀ ବି. ସ୍ତ୍ରୀ—ଶୋଭନ କେଶଯୁକ୍ତା ପତ୍ନୀ—A wife
ସୁକେଶୀ having charming hair. [ଦ୍ର—ସରସ୍ୱତୀ ନଦୀରେ କାହାର ସୁକେଶୀ, ସ୍ନାନ କରୁଥିଲ ହୋଇଣ ମଦାଳସୀ । କୃଷ୍ଣସିଂହ, ମହାଭାରତ, ଶଲ୍ୟ ।]

ସୁକେସର—ସଂ. ବି (ବହୁବ୍ରୀହି)—ସିଂହ—
Sukesara Lion.

ସୁକୋମଳ—ସଂ. ବିଣ. ପୁଂ—ଅତି କୋମଳ—Very soft.
Sukomala [ସୁକୋମଳା—ସ୍ତ୍ରୀ]

ସୁକୋଲି—ସଂ. ବି—୧ । ଶୋଭନ ବଦରୀ—1. Beautiful
Sukoli jejube berry ୨ । କ୍ଷୀରକାକୋଲୀ (ରତ୍ନମାଳା)—2. A medicinal root found in the Himālayas, Coculus Indicus.

ସୁକୋଶକ—ସଂ. ବି—କୋଶାମ୍ର (ରାଜନିର୍ଘଣ୍ଟ); ଲକ୍ଷା ବୃକ୍ଷ; ରୁଦ୍ରାକ୍ଷ
Sukośaka ଗଛ—Wild olive; Eleocarpus Serratus.

ସୁକୌଶଳ—ସଂ. ବି—୧ । ଅତିଶୟ ନୈପୁଣ୍ୟ—1. Much skill.
Sukauśala ୨ । କୌଶଳପୂର୍ଣ୍ଣ ଉପାୟ—2. Tact.

ସୁକ୍କର୍ଦ୍ଦି ଚନ୍ଦନ—ସଂ. ବି ( ବୈଦ୍ୟକ )—ଯେଉଁ ଶ୍ରୀଖଣ୍ଡଚନ୍ଦନର ଡାଳ
Sukkardi chandana ବା ଗଛ ସ୍ୱୟଂ ଶୁଷ୍କ ହେବା ପରେ ସଂଗୃହୀତ ଦ୍ରବ୍ୟ—Sandal wood collected from the forest after it has withered from natural causes. [ ଦ୍ର—ଏହା ସୁଗନ୍ଧ, ତିକ୍ତ, ଶୀତଳ ଏବଂ ମୂତ୍ରକୃଚ୍ଛ୍ର, ରକ୍ତପିତ୍ତ ଓ ଦାହ ରୋଗରେ ଉପକାରକ । ]

ସୁକ୍ତ—ସଂ. ବି—ଏକପ୍ରକାର କାଞ୍ଜି—A kind of fermented
Sukta rice-water. [ଦ୍ର—ପ୍ରାଚୀନ କାଳରେ ପାଣିରେ ଘିଅ ବା ତେଲ, ଲୁଣ, କନ୍ଦ ବା ଫଳ ଆଦି ମିଳା ଯାଇ ସୁକ୍ତ ତିଆର ହେଉଥିଲା । ଏହା ରକ୍ତପିତ୍ତ ଓ କଫନାଶକ, ରୁଚିକର, ପାଚକ ଓ କୃମିନାଶକ—ହି. ଶ । ]

ସୁକ୍ତ(ଖ୍ତ, କ୍ତା, ଖ୍ତା)ଳା(ଲା)—ଦେ. ବି—ଶୁକ୍‌ତଳା ( ଦେଖ )
Sukta(khta, ktā, khtā)lā(lā) Suk-talā (See)

ସୁକ୍ତା—ସଂ. ବି—ତେନ୍ତୁଳି ( ହି. ଶ )—
Suktā Tamarind.

ସୁକ୍ତାନି—ଦେ. ବି ( ସଂ. ସୁକ୍ତ )—ଶୁକ୍ତାନି ( ଦେଖ )
Suktāni Śuktāni ( See )

ସୁକ୍ତି(ଖ୍ତି)—ଦେ. ବି—ଶୁକ୍ତି ( ଦେଖ )
Sukti(khti) Śukti ( See )

ସୁକ୍ରତୁ—ସଂ. ବିଣ—ଉତ୍ତମ କର୍ମକାରୀ ( ହି. ଶ ).
Sukratu Doing good acts.

ସୁକ୍ରତୂୟା—ସଂ. ବି—ଶୁଭ କର୍ମ କରିବାର ଇଚ୍ଛା ( ହି. ଶ )—
Sukratuyā Desire to do good acts.

ସୁକ୍ଷମ—ସଂ. ବିଣ (ପୁଂ) (ସୁ=ଅତ୍ୟନ୍ତ+କ୍ଷମ)—ଅତ୍ୟନ୍ତ ପାରଙ୍ଗମ—
Sukshama Very competent. ଗ୍ରା. ବିଣ (ସଂ. ସୂକ୍ଷ୍ମ)—
(ସୁକ୍ଷମା—ସ୍ତ୍ରୀ) ସୂକ୍ଷ୍ମ—Minute. [ଦ୍ର—ମାୟା ରଜ୍ଜୁକରି ମାନସେ ସୁଖମ ସୁକ୍ଷମ ମାନସେ ଭୁଅଇ ଯାଇ ସେ—ବିଶ୍ୱନାଥ, ବିଚିତ୍ର ରାମାୟଣ ।]

ସୁଖ୍—ଦେ. ବି ( ସଂ. ସୁଖ )—ସୁକ ( ଦେଖ )
Sukh Suka ( See )

ସୁଖ୍ ( ଧାତୁ )—ସଂ—ତୁଷ୍ଟ କରିବା—
Sukh ( root ) To please; to make happy.

ସୁଖ୍ ଦୁଖ୍—ପ୍ରାଦେ ( ସମ୍ବଲପୁର )ବି—ସୁଖ ଦୁଃଖ ( ଦେଖ)
Sukh dukh — Sukha dukha ( See)

ସୁଖ୍(ଖୁ) ସୁଖ୍(ଖୁ) (ଇତ୍ୟାଦି)—ଶୁକ୍ ଶୁକ୍ ଇତ୍ୟାଦି ( ଦେଖ )
Sukh-(khu) sukh(khu) (etc) — Śuk śuk etc (See)

ସୁଖ୍(ଖୁ)ସୁଖା—ଦେ. ବିଶ. ପୁଂ—ଶୁକ୍‌ଶୁକା ( ଦେଖ )—Śuk-śukā
Sukh(khu)sukhā (ସୁଖ୍[ଖୁ]ସୁଖିଆ—ଅନ୍ୟରୂପ) (See)
[ ସୁଖ୍(ଖୁ)ସୁଖୀ, ସୁଖ୍(ଖୁ)ସୁଖେଇ—ସ୍ତ୍ରୀ ]

ସୁଖ—ସଂ. ବି ( ସୁଖ୍ ଧାତୁ+ଭାବ. ଅ; କିମ୍ବା ସୁ=ଉତ୍ତମରୂପେ+ ଖନ୍ ଧାତୁ=ଖୋଳିବା+ଭାବ. ଅ )—୧ । ହର୍ଷ—Joy; delight. ୨ । ଆନନ୍ଦ; ମନର ପ୍ରୀତି—2. Happiness; pleasure. ୩ । ସ୍ୱାଚ୍ଛନ୍ଦ୍ୟ 3. Comfort; easiness of mind. ୪ । ( କର୍ତ୍ତୃ. ଅ ) ଜଳ—4. Water. ୫ । ସ୍ୱର୍ଗ ( ମେଦିନୀ )—5. Heaven. ୬ । ବୃଦ୍ଧି ନାମକ ଔଷଧ (ରାଜନିର୍ଘଣ୍ଟ)—6. A rare herb. ସଂ.ବିଶ—୧ । (+କର୍ତ୍ତୃ. ଅ ) ସୁଖଜନକ; ପ୍ରୀତିକର—1. Pleasant; causing happiness. ୨ । ପ୍ରିୟ—2. Dear; loved. ୩ । ମନୋହର—3. Charming; beautiful. ୪ । ( ସମାସରେ ) ସୁଖଯୁକ୍ତ; ସୁଖୀ; କଷ୍ଟରହିତ—4. ( in compound words ) Happy; painless. ( ଉ—ସୁଖ ପ୍ରସବ । ) ୫ । ମଧୁର—5. Sweet. ୬ । ସୁସ୍ଥତାଯୁକ୍ତ—6. Healthy.
Sukha
(ଦୁଃଖ—ବିପରୀତ)

ଗ୍ରା. ବି ( ସଂ. ଶୁଷ୍କ )—ଶୁଖ ( ଦେଖ )—Śukha ( See ) ଦେ. ବି—୧ । ସୁସ୍ଥତା; ଆରୋଗ୍ୟ; ସ୍ୱାସ୍ଥ୍ୟ—1. Health. ( ଉ—କଇଦ ତ ବଦ୍ୟାରେ ଦୁହିଇ ମୂରୁଖ । ବୋଇଲ ସେ ନଳଦ ବିନା ନାହିଁ ସୁଖ—କୃଷ୍ଣସିଂହ, ମହାଭାରତ ବନ । ) ୨ । ସୁଖକର ଅବସ୍ଥା—2. Happy condition. ( ଉ—ସୁଖ କହିବ କି ଦୁଖ କହିବ ? ଯାହା ଅଙ୍ଗେ ନଭେଇଛି ତାହା କହିବ-ତଗ । ] ଦେ. ବିଶ—ସୁସ୍ଥତାଯୁକ୍ତ ( ଶରୀର ଓ ମନ)—Healthy ( body and mind). (ଉ—ଆଜି ମୋ ଦେହ ବା ମନ ଭଲ ସୁଖ ନାହିଁ । ) ଗ୍ରା. ବିଶ (ସଂ. ଶୁଷ୍କ)—ଶୁଖ (ଦେଖ)—Sukha (See)
सुख
सुस्थ
(ଅସୁଖ, ବିସୁଖ—ବିପରୀତ)

ସୁଖାଇବା—ପ୍ରାଦେ (ବଲାଙ୍ଗିର ପାଟଣା) କ୍ରି—ସ୍ନେହ କରିବା—To love.
Sukhāibā

ସୁଖକର—ସଂ. ବିଶ. ପୁଂ (ସୁଖ+କୃ ଧାତୁ+କର୍ତ୍ତୃ. ଅ)—୧ । ସୁଖଜନକ—1. Pleasing. ୨ । ସୁକର (ଦୁର୍ଗାଦାସ)—2. Easy of accomplishment.
Sukha kara
(ସୁଖକରୀ—ସ୍ତ୍ରୀ)

ସୁଖ କରିବା—ଦେ. କ୍ରି—୧ । ( କୌଣସି ବ୍ୟକ୍ତି ଉପରେ ) ସନ୍ତୁଷ୍ଟ ହେବା—1. To be pleased with (a person). [ଉ—ଅର୍ଜୁନଙ୍କଠାରେ ବହୁତ ସୁଖ କଲେ । କୃଷ୍ଣସିଂହ. ମହାଭାରତ. ଅଦି ।] ୨ । ସୁଖ ଭୋଗ କରିବା—2. To enjoy happiness.
Sukha karibā
सुखकरा!
सन्तुष्ट होना

ସୁଖଗ—ସଂ. ବିଶ. ପୁଂ (ସୁଖ+ଗମ ଧାତୁ+କର୍ତ୍ତୃ. ଅ)—ସୁଖରେ ଗମନକର୍ତ୍ତା—Moving pleasantly or easily; of easy movement.
Sukhaga
(ସୁଖଗା—ସ୍ତ୍ରୀ)

ସୁଖଗମ(ମ୍ୟ)—ସଂ.ବିଶ (ସୁଖ+ଗମ ଧାତୁ+କର୍ମ ଅ;+ କର୍ମ. ଯ)—ସୁଗମ (ହି.ଶ)—Easily passable.
Sukhagama(mya)

ସୁଖ ଘର—ଦେ.ବିଶ ଓ ବି—ସୁଖଜନକ;ସୁଖଦାୟକାରୀ; ସୁଖର ଆକର—Pleasant, abode of pleasure [ଉ—କେବଳ ନାମ ରୂପ ଛୋର, ମୋର ପୁତ୍ରଙ୍କ ସୁଖ ଘର । ଜଗନ୍ନାଥ. ଭାଗବତ ।]
Sukha ghara
सुखजनक
सुख जनक, सुखमूल
(ସୁଖର ଘର—ଅନ୍ୟରୂପ)

ସୁଖଙ୍କର—ସଂ. ବିଶ. ପୁଂ [ସୁଖଂ=ସୁଖକୁ+କୃ ଧାତୁ+କର୍ତ୍ତୃ. ଅ]; ଅଲୁକ୍ ସମାସ]—ସୁଖକର; ଆନନ୍ଦକର; ପ୍ରୀତିଜନକ—Pleasant.
Sukhaṅkara
(ସୁଖଙ୍କରୀ—ସ୍ତ୍ରୀ)

ସୁଖଙ୍କରୀ—ସଂ. ବିଶ. ପୁଂ—'ସୁଖଙ୍କର'ର ସ୍ତ୍ରୀ—Feminine of Sukhaṅkari. ସଂ. ବି—ଜୀବନ୍ତୀ ବୃକ୍ଷ; (ରାଜ ନିର୍ଘଣ୍ଟ)—A kind of creeping medicinal plant; Celtis Orientalis.
Sukhaṅkarī

ସୁଖ ଚର—ସଂ. ବିଶ. ପୁଂ ( ସୁଖ+ଚର ଧାତୁ+କର୍ତ୍ତୃ. ଅ )—୧ । ସୁଖରେ ବିଚରଣକାରୀ—1. Walking with pleasure or ease. ୨ । (ଲକ୍ଷଣାର୍ଥ) ସୁଖୀ; ଆନନ୍ଦ ଭୋଗକାରୀ—2. Happy; (a man) enjoying happiness.
Sukha chara
(ସୁଖଚରୀ—ସ୍ତ୍ରୀ)

ସୁଖ ଚାର—ସଂ. ବି (ସୁଖ+ଚର ଧାତୁ+କର୍ତ୍ତୃ. ଅ)—୧ । ଶ୍ରେଷ୍ଠ ଅଶ୍ୱ (ଶବ୍ଦମାଳା)—1. An excellent horse. ୨ । ସୁଶିକ୍ଷିତ ଅଶ୍ୱ—2. A well-trained horse.
Sukha chāra

ସୁଖ ଚାରୀ—ଦେ. ବିଶ (ସଂ. ସୁଖଚର)—ସୁଖୀ—Happy. [ଉ—ଯେସନେ ବସ୍ତୁ ଆରେ କହ, ଦେବେ ସୁଅନ୍ତୁ ସୁଖଚାରୀ । ଜଗନ୍ନାଥ. ଭାଗବତ ।]
Sukha chārī
सुखचारी सुखी

ସୁଖ ଜନକ—ସଂ. ବିଶ. ପୁଂ ( ସୁଖ+ଜନ୍ ଧାତୁ+କର୍ତ୍ତୃ. ଅକ )—ଯାହା ସୁଖ ଦିଏ—Producing happiness.
Sukha janaka
(ସୁଖ ଜନିକା—ସ୍ତ୍ରୀ)

ସୁଖ ଜାତ—ସଂ. ବି ( ୬ଷ୍ଠୀ ତତ୍ )—ସୁଖ ସମୂହ—Various pleasures. ସଂ. ବିଶ (୫ମୀ ତତ୍)—୧ । ସୁଖରୁ ଜାତ—1. Born of happiness. ୨ । ( ବହୁବ୍ରୀହି; ସୁଖ ହୋଇଅଛି ଜାତ ଯାହାର)—ଜାତସୁଖ; ସୁଖୀ (ଭଟ୍ଟି, ପଞ୍ଚମସର୍ଗ)—2. Happy; made happy.
Sukha jāta

ସୁଖଞ୍ଜଣି—ଦେ. ବି ( ସଂ. ସୁଖଚିତ )—ସୁନ୍ଦର ରୂପେ ଗ୍ରଥିତ; ପରିପାଟୀରେ ଖଞ୍ଜା ହୋଇଥିବା; ସୁନ୍ଦର ଭାବରେ ଖଚିତ—Well-set. [ଉ—ଗ୍ରୀବରେ କଉସ୍ତୁଭ ମଣି ସୁବର୍ଣ୍ଣ ସୂତ୍ରେ ସୁଖଞ୍ଜଣି । ଜଗନ୍ନାଥ ଭାଗବତ ।]
Sukhañjaṇi
सुजड़ित
सुग्रथित

ସୁଖଦ—ସଂ. ବିଶ. ପୁଂ (ସୁଖ+ଦା ଧାତୁ+କର୍ତ୍ତୃ. ଅ)—ଯେ ଅନ୍ୟକୁ ସୁଖ ଦିଏ—Causing happiness. ସଂ. ବି—୧ । ବିଷ୍ଣୁ—1. An epithet of Bishṇu.
Sukhada
(ସୁଖଦା—ସ୍ତ୍ରୀ)

୨ । ଶୃଙ୍ଗାର ବା ସାରରସପ୍ରଧାନ ବଂଶତ୍ୟସର ସଂଯୁକ୍ତ ତାଳ ବଶେଷ (ସଙ୍ଗୀତ ଦାମୋଦର)—2. Name of a musical measure of 20 letters ୩ । ବିଷ୍ଣୁଙ୍କ ଅସନ ବା ଅସ୍ଥାନ ( ହ୍ର. ଶ )—3. The seat of Bishnu.

ସୁଖଦା—ସଂ. ବଣ. ସ୍ତ୍ରୀ ( ସୁଖଦ+ଅ )—'ସୁଖଦ'ର ସ୍ତ୍ରୀ ଲିଙ୍ଗ— Sukhadā Feminine of Sukbada.
[ଉ—ଭୁଙ୍ଗେ ଭାସ ଅଣି ଅଣି, କୋଳେ ଧର ଅଙ୍ଗ ଅଣିମାବ ସୁଖଦା ଭ୍ରମଣୀମଣି ହେ । ଉଞ୍ଜ. ପ୍ରେମସୁଧାନଧ ।]
ଘ. ବ—୧ । ସ୍ୱର୍ଗ ବେଶ୍ୟା; ଅପ୍ସରା (ଶବ୍ଦରତ୍ନାବଳୀ)— 1. Heavenly nymph. ୨ । ଶମୀ ବୃକ୍ଷ (ଦେଖ)— 2. Samī bruksha. (See) ୩ । ଗଙ୍ଗା ନଦୀ ହ୍ର. ଶ)—3. The river Ganges. ୪ । ଛନ୍ଦୋବଶେଷ (ହ୍ର. ଶ)—4. Name of a Sanscrit metre.

ସୁଖଦାଇ—ଦେ. ବ. ପୁଂ (ସ. ସୁଖଦାୟୀ) ସୁଖଦାୟୀ; ସୁଖଦ— Sukhadāyi Causing happiness. ସୁଖଦାୟୀ ସୁଖଦାଇ (ସୁଖଦାଇ[ଏ]ଣୀ—ସ୍ତ୍ରୀ)

ସୁଖଦାତା(ୟୀ)—ସଂ. ବ. ପୁଂ (ସୁଖ+ଦା. ଧାତୁ+କର୍ତ୍ତ୍ରି. ତୃ; ଣିନ୍; ୧ମା. ୧ବ)—ସୁଖଦ—Causing Sukhadātā(yī) happiness. (ସୁଖଦାୟକ—ଅନ୍ୟରୂପ)
[ସୁଖ ଦାତ୍ରୀ, ସୁଖଦାୟିନୀ, ସୁଖଦ ୟିକା —ସ୍ତ୍ରୀ]

ସୁଖଦାମା—ଦେ. ବଣ—ସୁଖଦାତା; ସୁଖଦ— Sukhadānī Causing happiness. ସୁଖଦାତା [ଉ—ସକଳ ବାଞ୍ଛା ସୁଖଦାମା, ତାହାଙ୍କୁ ହଳାଇ ସୁଖଦାତା ଗୋପିଣୀ । ଭୂପତି. ପ୍ରେମ ପଞ୍ଚାମୃତ ।]

ସୁଖ ଦୁଃଖ (ଇତ୍ୟାଦି)—ସଂ. ବ—ସୁଖ ଦୁଃଖ ଇତ୍ୟାଦି (ଦେଖ) Sukha duhkha (etc) Sukha dukha etc (See)

ସୁଖ ଦୁଖ—ଗ୍ରା. ବ (ସଂ. ସୁଖ+ଦୁଃଖ)—୧ । ସୁଖ ଓ ଦୁଃଖ— Sukha dukha 1. Happiness and sorrow; weal ସୁଖଦୁଖ and woe. ୨ । ସଂସାରରେ ସୁଖର ଓ ଦୁଃଖର ଅନୁଭୂତ— ସୁଖଦୁଖ 2. The weals and woes of the world. ୩ । ଦୁଇ ଜଣଙ୍କ ମଧ୍ୟରେ ନିଜ ନିଜର ସାଂସାରିକ ଭଲ ମନ୍ଦ ବିଷୟରେ କଥାଭାଷା—3. Talk between two about each other's worldly affairs.

ସୁଖ ଦୁଖ ହେବା—ଗ୍ରା. କ୍ରି—ନିଜର ସୁଖମୟ ଓ ଦୁଃଖମୟ Sukha dukha hebā ସାଂସାରିକ ଅନୁଭବ ବିଷୟରେ ଦୁଖ ସୁଖ ହଓୟା ପରସ୍ପର ସଙ୍ଗେ କଥାଭାଷା ହେବା—To talk ସୁଖ ଦୁଖ କହନା to each other about each other's weals and woes.

ସୁଖଦୁ(ଦୋ)ହ୍ୟା—ସଂ. ବ. ସ୍ତ୍ରୀ (ସୁଖ+ଦୁହ. ଧାତୁ+କର୍ମ. ଯ+ Sukha du(do)hyā ସ୍ତ୍ରୀ. ଅ)—ଯାହାକୁ [ସେଉଁ ଗାଈକୁ] ଅନାୟାସରେ ଦୁହିଁ ଯାଇପାରେ—Easily milked (cow). ସଂ. ବ. ସ୍ତ୍ରୀ—ସୁଖସନ୍ଦୋହ୍ୟା ଗୌ (ହେମଚନ୍ଦ୍ର); ସହଜରେ ଦୁହିଁ ହେଉଥିବା ଗାଈ— Easily milked cow.

ସୁଖ ଦେବା—ଦେ. କ୍ରି—ଅନ୍ୟ ବ୍ୟକ୍ତିକୁ ସୁଖୀ କରିବା— Sukha debā To cause another's happiness; to ସୁଖ ଦେଓୟା ସୁଖ ଦେନା make another happy.

ସୁଖ ଧାମ—ସଂ. ବ (୬ଷ୍ଠୀ ତତ୍; ସୁଖ+ଧାମନ୍)—୧ । ଯେଉଁଠାରେ Sukha dhāma ସର୍ବଦା ସୁଖ ବିରାଜ କରେ—1. Abode of happiness. ୨ । ବୈକୁଣ୍ଠ—2. Paradise. ସଂ. ବଣ—ସୁଖଦାୟକ ( ହ୍ର. ଶ )—Giving pleasure.

ସୁଖ ନାଶ—ସଂ. ବ (୬ଷ୍ଠୀ ତତ୍)—ସୁଖର ବିନାଶ ବା ଲୋପ— Sukha nāsa Destruction or disappearance of one's happiness.

ସୁଖ ନିଦ୍ରା—ସଂ. ବ (ମ. ପ. ଲୋ; ସୁଖ ସମ୍ପାଦକାନୁକୂଳା ନିଦ୍ରା)— Sukha nidrā ୧ । ଅଗ୍ରମରେ ହେବା ନିଦ୍ରା; କଷ୍ଟିନ୍ତ ବା ଗାଢ଼ (ସୁଖନିଦ୍ରିତ—ବଣ. ପୁଂ) ନିଦ୍ରା; ସୁନିଦ୍ରା—1. Sound sleep; [ସୁଖନିଦ୍ରିତା—ବଣ. ସ୍ତ୍ରୀ] slumber. ୨ । ଦୁଃସ୍ୱପ୍ନାଦି ଦ୍ୱାରା ବିକୃତ ହୋଇ ନ ଥିବା ନିଦ୍ରା—2. Undisturbed sleep.

ସୁଖ ପାଇବା—ଦେ. କ୍ରି—୧ । ସୁଖ ଭୋଗ କରିବା—1. To enjoy Sukha pāibā happiness. ୨ । (କୌଣସି ବ୍ୟକ୍ତିକୁ ବା ସୁଖପାଓୟା, ଭାଲବାସା ଜାଣିକୁ ) ସ୍ନେହ ବା ଅଦର ଚକ୍ଷୁରେ ସୁଖ ପାନା ଦେଖିବା—2. To like or love (a person or thing). [ଉ—କାହିଁ ଗଛ ବୋଲି ହସୁଥିଲି ଉଇନ୍ଦ୍ର ମୁଁ ଧୂଳିବ ସୁଖ ପାଇଲି ହେ ସ୍ୱଜନ । ବିଶ୍ୱନାଥ. ବିଚିତ୍ର ରାମାୟଣ ।]

ସୁଖ ପେୟ—ସଂ. ବଣ—ସୁପେୟ; ଯାହା ପିଇଲେ ସୁଖ ହୁଏ— Sukha peya Sweet to drink.

ସୁଖ ପ୍ରଦ—ସଂ. ବଣ. ପୁଂ (ସୁଖ+ପ୍ର+ଦା. ଧାତୁ+କର୍ତ୍ତ୍ରି. ଅ)— Sukha prada ଯେ ସୁଖ ଦାନ କରେ—Causing happi- [ସୁଖପ୍ରଦା—ସ୍ତ୍ରୀ] ness.

ସୁଖ ପ୍ରସବ—ସଂ. ବ(ମ.ପ.ଲୋ) —ସୁପ୍ରସବ; ସହଜରେ ସନ୍ତାନ ପ୍ରସବ— Sukha prasaba Easy delivery; painless delivery.

ସୁଖ ପ୍ରସବା—ସଂ. ବଣ. ସ୍ତ୍ରୀ (ବହୁବ୍ରୀହି)—ଯେଉଁ ସ୍ତ୍ରୀ କଷ୍ଟ ନ ପାଇ Sukha prasabā ପ୍ରସବ କରନ୍ତି (ହ୍ର. ଶ)—(a woman) Who has painless delivery.

ସୁଖ ବର୍ଚ୍ଚକ (ବର୍ଚ୍ଚଃ)—ସଂ. ବ-ସର୍ଜ୍ଜିକା କ୍ଷାର; ସାଜ ମାଟି (ଅମର)— Sukha barchchaka (barchchhāḥ) Carbonate of soda; Panjab salt; Rhe soil.

ସୁଖବାଇ—ଦେ. ବଣ—ସୁଖରେ ଉନ୍ମତ୍ତ ପ୍ରାୟ— Sukhabāi Maddened with happiness; intoxi- ସୁଖ ବେସେ ସୁଖସେ ଉନ୍ମତ୍ତ cated with pleasure.

ସୁଖ ବାସ—ସଂ. ବି (ବହୁବ୍ରୀହି)—ଡବଭୁଜ; ଶୀର୍ଣ୍ଣବୃନ୍ତ (ରତ୍ନମାଳା)—
Sukha bāsa Melon. ସଂ. ବିଣ—୧ । ଯେଉଁ ସ୍ଥାନରେ ନିବାସ ସୁଖକର (ବୃ. ଣ)—1. (a place) Where one feels happy to live. ୨ । ସୁଖମୟ ବାସସ୍ଥାନ—2. Blissful residence.

ସୁଖ ବାସନ—ସଂ. ବି—ମୁଖ ବାସନ ଗନ୍ଧ ଦ୍ରବ୍ୟ (ଶବ୍ଦରତ୍ନାବଳୀ)—
Sukha bāsana Spices and sweet scented articles used for chewing after meals.

ସୁଖ ବାସର—ସଂ. ବି (ମ. ପ. ଲୋ)—ଅନନ୍ଦଦାୟକ ଦିବସ—
Sukha bāsara A happy day.

ସୁଖ ବେଳ—ଦେ. ବି (ସଂ. ସୁଖବେଳା)—ସୁଖଭୋଗର କାଳ—
Sukha bela Time of happiness.
সুখের বেলা सुख समय [ସୁଖର ବେଳ—ଅନ୍ୟରୂପ]

ସୁଖ ବୋଧ—ସଂ. ବି (୬ଷ୍ଠୀ ତତ୍)—ସୁଖାନୁଭବ—
Sukha bodha Enjoyment of happiness.

ସୁଖ ବୋଧ୍ୟ—ସଂ. ବିଣ—ଯାହା ସହଜରେ ବୁଝା ଯାଏ, ସହଜବୋଧ୍ୟ;
Sukha bodhya ସୁବୋଧ—Easy; that which can be easily understood, easy of comprehension.

ସୁଖବୋଧ୍ୟ ରୀତି—ସଂ. ବି—୧ । ସୁବୋଧ ରଚନାରୀତିବିଶେଷ—1.
Sukha bodhya rīti Easy seyle of composition.
୨ । ରୀତି (ଦେଖ)—2. Riti, (See)
[ଉ—ଦନେ ଗୃହାଜନୁ ଫେରି ଅସି ପୁଅ
ଭୁଞ୍ଜି ଦେଲ୍ଲ ମାତା ପାଶେ
ଅଶ୍ରି ଥନ ଥନ ବଦନ ମଳିନ
ଭୁଣ୍ଡରେ କଥା ନ ଅସେ ।
ପୁଅକୁ ଅନାଇ ମାତା ଅଛ କ୍ଷଲେ
ସସ୍ତରନ୍ତି ବେଗେ ଦୁଃଖେ
କିପାଇଁ ରେ ଧନ ! ବିରସ ତୋ ମନ,
ହସ ନାହିଁ କିଆଁ ମୁଖେ ?"

ସୁଖ ଭକ୍ଷ—ସଂ. ବି—ଶ୍ୱେତଶିଗ୍ରୁ; ଧଳା ସଜନା (ବୃ. ଣ)—
Sukha bhaksha White flowered variety of Moringa tree.

ସୁଖ ଭକ୍ଷ୍ୟ—ସଂ. ବିଣ—ସୁଭକ୍ଷ୍ୟ; ଯାହା ଖାଇବାକୁ ସୁଖକର ହୁଏ—
Sukha bhakshya (a thing) Which can be eaten with pleasure; pleasant to eat.

ସୁଖ ଭଞ୍ଜ—ସଂ. ବି—ସଫେଦ ମରିଚ; ଧଳା ମରିଚ (ବୃ. ଣ)
Sukha bhañja White pepper.

ସୁଖଭଦ୍ରା—ସଂ. ବି—ଭଦ୍ରମୁଥା; ମୁସ୍ତକ ବିଶେଷ—
Sukha bhadrā Cyp ras Rotundus.
(ଉ—ଚମ୍ପା କାବେଶର ମଦନା ମାଧବୀ, ସୁଖଭଦ୍ରା ଲକ୍ଷ୍ମୀବୁଲୀ । ପ୍ର ଚା. ବୈଷ୍ଣବମଞ୍ଜୁଷା ।)

ସୁଖଭାକ୍—ସଂ. ବିଣ (ସୁଖ+ଭଜ୍. ଧାତୁ+କର୍ତ୍ତ୍ରି. ଣ୍ୱି; ସୁଖଭାକ୍,
Sukha bhāk ୧ମା. ୧ବ)—୧ । ସୁଖଭାଗୀ; ସୁଖର ଭାଗୀଦାର; ଯେ ଅନ୍ୟ ସଙ୍ଗେ ସୁଖକୁ ଭୋଗ କରେ—1. Enjoying or sharing pleasure with another. ୨ । ସୁଖଭୋଗୀ; ସୁଖୀ—2. Enjoying happiness; happy.

ସୁଖଭାଗୀ—ସଂ.ବିଣ.ପୁ (ସୁଖ+ଭଜ୍ ଧାତୁ+କର୍ତ୍ତ୍ରି. ଇନ୍; ୧ମା. ୧ବ)—
Sukha bhāgi ସୁଖଭାକ୍ (ଦେଖ)—Sukha bhāk (ସୁଖଭାଗିନୀ—ସ୍ତ୍ରୀ) (See) (ଉ—ଲକ୍ଷ୍ମୀକାନ୍ତଙ୍କ ଦେବକୁ ଲାଗି, ସର୍ବେ ହୋଇଲେ ସୁଖଭାଗୀ । ଜଗନ୍ନାଥ. ଭାଗବତ ।)

ସୁଖ ଭାନୁ—ସଂ. ବି (ରୂପକ କର୍ମଧା)—ସୁଖ ସୂର୍ଯ୍ୟ (ଦେଖ)
Sukha bhānu Sukha sūrjya (See)

ସୁଖ ଭୋଗ—ସଂ. ବି (୬ଷ୍ଠୀ ତତ୍)—ସୁଖ ବା ଅନନ୍ଦକୁ ଅନୁଭବ
Sukha bhoga କରିବା—Enjoyment of happiness.

ସୁଖ ଭୋଗୀ—ସଂ. ବି (ଉପପଦ ତତ୍)—ସୁଖ ଭାକ୍ (ଦେଖ)
Sukha bhogī Sukha bhāk (See)

ସୁଖ ଭୋଜନ—ସଂ. ବି—୧ । ସୁଖକର ପଦାର୍ଥ ଭୋଜନ—1. Par-
Sukha bhojana taking of dainty food. ୨ । ସନ୍ତୋଷଜନକ ଭୋଜନ—2. A hearty meal.

ସୁଖମୟ—ସଂ. ବି (ସୁଖ+ପ୍ରାଚୁର୍ଯ୍ୟାର୍ଥେ ମୟ)—ସୁଖରେ ପୂର୍ଣ୍ଣ—
Sukhamaya Full of pleasure or happiness.

ସୁଖ ମାରି—ପ୍ରାଦେ (ସମ୍ବଲପୁର) ବିଣ. ସ୍ତ୍ରୀ—ସୁକୁମାରୀ—
Sukha mārī (Girl) Of a delicate disposition of mind and body, tenderly brought up (girl).

ସୁଖମୁନିଆଁ—ବୈଦେ. ବି (ଫା)—ସ୍କନ୍ଧରବର ବନ୍ୟଲତା ବିଶେଷ;
Sukha muniāñ ଜଳମ୍ବାଦ ବର୍ଗର ଲତା—Scammony; सुखमुनिया Convolvulus Scammonia. [ଉ—ଏହାର ସୁଖମୁନିଆ ଡେରକୁ ଷତ କଲେ ଯେଉଁ ନିର୍ଯ୍ୟାସ ବାହାରେ, ତାହା ଡାକ୍ତରୀ ଔଷଧରେ ଲାଗେ । ଯୋଗେଶଚନ୍ଦ୍ର ।]

ସୁଖମୋଦା—ସଂ. ବି—ଶଲ୍ଲକୀ ୨, ୩ (ଦେଖ)
Sukhamodā Śallakī 2, 3 (See)

ସୁଖ ଯାଦୁ—ଦେ. ବି (ସଂ. ଶୁଷ୍କ+ଦଦ୍ରୁ)—ଚର୍ମରୋଗ ବିଶେଷ—
Sukha jādu Barber's itch; Sycosis ancementagra.
শুকনো দাদ सुखदाद्

ସୁଖ ଯାମିନୀ—ସଂ. ବି—ସୁଖ ରଜନୀ (ଦେଖ)
Sukha jāminī Sukha rajanī (See)

ସୁଖ ରଜନୀ—ସଂ. ବି (ମ. ପ. ଲୋ)—ସୁଖମୟୀ ରାତ୍ରି; ଯେଉଁ
Sukha rajanī ରାତିରେ ମନୁଷ୍ୟ ସୁଖଭୋଗ କରୁଥାଏ—
A night of pleasure; a night of happiness; a gala night.

ସୁଖର ପିଅ(ୟା)ରା—ଦେ. ବି—ଯେଉଁ ବ୍ୟକ୍ତି ମନୁଷ୍ୟର ସୁଖଭୋଗ
Sukhara piā(yā)rā ସମୟରେ ନିକଟରେ ଉପସ୍ଥିତ ହୁଏ, କିନ୍ତୁ ଦୁଃଖ ପଡ଼ିଲେ ଛାଡ଼ିଯାଏ—A friend or companion during one's happy days; a friend in prosperity (not in adversity); a summer friend.
ସୁଖର ପ୍ୟାରା } ସୁଖର ସ(ସା)ଙ୍ଗୀ } —ଅନ୍ୟରୂପ ସୁଖର ସାଥୀ }
সুখের পায়রা, সুখের সঙ্গী, সুখের সাথী
सुखका साथी

ସୁଖ ରବି—ସଂ. ବି (ରୂପକ କର୍ମଧା)—ସୁଖରୂପ ସୂର୍ଯ୍ୟ—
Sukha rabi Happiness compared to the sun.

ସୁଖ ରାତ୍ରି—ସଂ. ବି (ମ. ପ. ଲୋ)—୧ । ସୁଖ ରଜନୀ (ଦେଖ)—
Sukha rātri 1. Sukha rajanī (See) ୨ । ସୀପାନ୍ବିତ ଅମାବାସ୍ୟା ରାତ୍ରି; ଦେବାଳି ରାତି; କାର୍ତ୍ତିକ ଅମାବାସ୍ୟା ରାତି; ଲକ୍ଷ୍ମୀପୂଜା ରାତ୍ରି—2. The night of Kārttika new moon.

ସୁଖରେ—ଦେ·କ୍ରି·ବିଣ—୧। ସ୍ୱଇଚ୍ଛାରେ—1. Out of one's own
Sukhare accord. (ଉ—ଏହା ସୁଖରେ ଜାଣୁ ଘରକୁ ଏ ସୁଖে সুখমে ଯିବ । କୃଷ୍ଣସିଂହ. ମହାଭାରତ ବନ ।) ୨ । ସୁଖ ସହକାରେ—2. With happiness. ୩ । ସହଜରେ—3. Easily.

ସୁଖ ଲାଗିବା—ଦେ· କ୍ରି – ୧। ସୁଖଜନକ ବୋଧ ହେବା—1. To
Sukha lāgibā affect a person pleasantly. ୨ । ভাল লাগা ଅଚ୍ଛ ହେବା—2 To be liked by (a सुख लगना person).

ସୁଖ ଲାଭ—ସଂ. ବି (୬ଷ୍ଠୀ ତତ୍)—ସୁଖପ୍ରାପ୍ତି; ସୁଖଭୋଗ—
Sukha lābha Enjoyment or attainment of happiness.

ସୁଖ ଲେଶ—ସଂ. ବି (୬ଷ୍ଠୀ ତତ୍)—ଅଳ୍ପମାତ୍ର ସୁଖ; ସାମାନ୍ୟ ମାତ୍ର
Sukha leśa ସୁଖ—A little happiness; a whit or a bit of pleasure.

ସୁଖ ଶୟନ—ସଂ. ବି (ମ. ପ. ଲୋ)—ସୁଖନିଦ୍ରା (ଦେଖ)
Sukha śayana Sukha nidrā (See)

ସୁଖ ଶଯ୍ୟା—ସଂ. ବି (ମ. ପ. ଲୋ)—ସୁଖଜନକ ବିଛଣା—
Sukha śajyā Pleasant or comfortable bed.

ସୁଖ ଶାନ୍ତି—ସଂ. ବି (ଦ୍ୱନ୍ଦ୍ୱ)—ସୁଖ ଓ ଶାନ୍ତି—Pleasure and
Sukha śānti peace; peace and happiness.

ସୁଖ ଶ୍ରାବ୍ୟ—ସଂ. ବିଣ—ଶ୍ରୁତି ସୁଖକର; ସୁଶ୍ରାବ୍ୟ—
Sukha śrābya Sweet to the ear.

ସୁଖ ସଂଖାଳି—ଦେ.ବି—ସୁଖ ଦେବାର ଧନ ବା ରତ୍ନ ବା ବସ୍ତୁ ବା ବ୍ୟକ୍ତି
Sukha saṁkhāli —The treasure or jewel or সুখের নিধি सुखदेनेकी चीज thing or person that makes one happy or ministers to one's happiness.

ସୁଖ ସମ୍ବାଦ—ସଂ. ବି (ମ. ପ. ଲୋ)—ଶୁଭ ସମାଚାର; ସୁଖଜନକ
Sukha saṁbāda ସମ୍ବାଦ—Happy or pleasant news; good news.

ସୁଖ ସମ୍ଭୋଗ—ସଂ. ବି (୬ଷ୍ଠୀ ତତ୍)—ସୁଖଭୋଗ—
Sukha saṁbhoga Enjoyment of pleasure.

ସୁଖ ସନ୍ଦୁ(ନ୍ଦୋ)ହ୍ୟା—ସଂ. ବିଣ ଓ ବି (ସ୍ତ୍ରୀ)—ସୁଖ ଦୁହ୍ୟା (ଦେଖ)—
Sukha sandu(ndo)hyā Sukha duhyā (See)
(ସୁବ୍ରତା—ଅନ୍ୟରୂପ)

ସୁଖ ସମୁଦ୍ର—ସଂ. ବି (ରୂପକ)—ସୁଖ ସାଗର (ଦେଖ)
Sukha samudra Sukha sāgara (See)

ସୁଖ ସମୃଦ୍ଧି (ସମ୍ପଦ୍)—ସଂ. ବି (ଦ୍ୱନ୍ଦ୍ୱ)—ସୁଖ ଓ ଉନ୍ନତି—
Sukha samṛuddhi (sampad) Happiness and prosperity.

ସୁଖ ସମ୍ପଦ—ଦେ. ବି (ସଂ. ସୁଖ ସମ୍ପଦ୍)—ସୁଖ ସମୃଦ୍ଧି (ଦେଖ)
Sukha sampada Sukha samṛuddhi (See)

ସୁଖ ସଲିଳ—ସଂ. ବି (ମ. ପ. ଲୋ; ସୁଖପ୍ରଦ ସଲିଳ)—ଉଷ୍ଣଜଳ
Sukha salila (ବୈ, ଶ)—Warm water.

ସୁଖ ସାଗର—ସଂ. ବି (ରୂପକ କର୍ମଧା)—ସମୁଦ୍ର ସଙ୍ଗେ ତୁଳନା କରା-
Sukha sāgara ଯିବା ସୁଖ; ଅତ୍ୟନ୍ତ ସୁଖ—Ocean of (ସୁଖ ସିନ୍ଧୁ—ଅନ୍ୟରୂପ) happiness; much happiness compared to ocean.

ସୁଖ ସାଧ—ଦେ. ବି—୧ । ସୁଖ ପାଇବାର ଆଶା—1. Hope of
Sukha sādha happiness. ୨ । ସୁଖକର ଅଭିଳାଷ—সুখ সাধ सुख साध 2. A pleasant desire.

ସୁଖ ସାଧ୍ୟ—ଦେ ବିଣ—ସହଜସାଧ୍ୟ; ଅନାୟାସସାଧ୍ୟ—
Sukha sādhya Easy of accomplishment.

ସୁଖ ସୁପ୍ତ—ସଂ. ବିଣ—ସ୍ୱଚ୍ଛନ୍ଦ ଭାବରେ ନିଦ୍ରିତ—
Sukha supta Sleeping comfortably; enjoying a pleasant sleep.

ସୁଖ ସୁପ୍ତି—ସଂ. ବି (ମ.ପ.ଲୋ)—ସୁଖନିଦ୍ରା; ସୁନିଦ୍ରା—
Sukha supti Sound or undisturbed sleep.

ସୁଖ ସୂର୍ଯ୍ୟ—ସଂ. ବି (ରୂପକ)—ସୁଖ ରବି (ଦେଖ)
Sukha sūrjya Sukha rabi (See)

ସୁଖ ସେବା—ସଂ. ବି (୬ଷ୍ଠୀତତ୍)—ସୁଖଭୋଗ—
Sukha sebā Enjoyment of happiness.

ସୁଖ ସେବ୍ୟ—ସଂ ବିଣ—ସୁସେବ୍ୟ; ଅନାୟାସରେ ଯାହା ସେବନ କରା-
Sukha sebya ଯାଇ ପାରେ—Which can be easily enjoyed or eaten.

ସୁଖ ସ୍ପର୍ଶ—ସଂ. ବି (କର୍ମଧା)—ଆନନ୍ଦଜନକ ସ୍ପର୍ଶ; ପ୍ରୀତିପୂର୍ଣ୍ଣ ସ୍ପର୍ଶ—
Sukha sparśa Pleasant touch; happy touch. ସଂ. ବିଣ (ବହୁବ୍ରୀହି)—୧ । ଯାହାକୁ ସ୍ପର୍ଶ କଲେ ସୁଖ ହୁଏ—1. Pleasant to the touch. ୨ । ଅତି କୋମଳ—2. Very soft.

ସୁଖ ସ୍ମୃତି—ସଂ. ବି (୬ଷ୍ଠୀତତ୍)—ପୂର୍ବାନୁଭୂତ ସୁଖର ସ୍ମରଣ—
Sukha smṛuti Remembrance of past happiness; pleasant association.

ସୁଖ ସ୍ୱଚ୍ଛନ୍ଦତା—ସଂ. ବି (ଦ୍ୱନ୍ଦ୍ୱ)—ଆନନ୍ଦ ଓ ସ୍ୱଚ୍ଛତା—
Sukha swachchhandatā Happiness and (ସୁଖସ୍ୱାଚ୍ଛନ୍ଦ୍ୟ—ଅନ୍ୟରୂପ) comfort.

ସୁଖ ସ୍ୱପ୍ନ—ସଂ.ବି (ମ.ପ.ଲୋ)—୧। ସୁଖ ଜନକ ସ୍ୱପ୍ନ—1.Pleasant
Sukha swapna dream. ୨ । ସୁଖକର ବିଷୟର ସ୍ୱପ୍ନ—2. Dream of sweet things.

ସୁଖା—ସଂ. ବି (ସୁଖ+ଆ)—ବରୁଣପୁରୀ (ମେଦନୀ)—The abode
Sukhā of the Sea-god 'Baruṇa'. ସ୍ତ୍ରୀ. ବିଣ—ସୁଖୀ ଇତ୍ୟାଦି (ଦେଖ)—Sukhā etc (See)

ସୁଖା(ଖେ)ଇବା—ଗ୍ରା. କ୍ରି—ଶୁଖାଇବା (ଦେଖ)
Sukhā(khe)ibā Sukhāibā (See)

ସୁଖାଗମ—ସଂ. ବି (ସୁଖ+ଆଗମ; ୬ଷ୍ଠୀ ତତ୍)—ସୁଖଭୋଗର ସମସ୍ତ
Sukhāgama ଆସିବା—The attainment or beginning of happiness.

ସୁଖାଗାର—ସଂ. ବି—୧ । (ସୁଖ+ଆଗାର) ସୁଖଜନକ ଗୃହ—
Sukhāgāra 1. Pleasant or comfortable house.
(ସୁଖାଳୟ—ଅନ୍ୟରୂପ) ୨ । ସୁଖ ଉତ୍ପାଦକ ବିଷୟ—
2. A matter of pleasure.

ସୁଖାତକ—ଦେ. ବି—ଯେଉଁ ଋଣକର୍ତ୍ତା ଟଙ୍କା ଶୁଝିବାକୁ ମହାଜନକୁ
Sukhātaka ବହୁତ କଷ୍ଟ ଦିଏ ନାହିଁ—A good debtor.
सुखातक [ବି—ଉପସ୍ଥିତରେ ପ୍ରତ୍ୟେକ ଖାତକଙ୍କୁ 'ସୁଖାତକ'ରୂପ ଅନ୍ତ୍ୟାକ୍ଷରୁକା ବିଶେଷଣରେ ଅଳଂକୃତ କରି ଦଲିଲ ଲେଖାହୁଏ ।]

ସୁଖାଦ୍ୟ—ସଂ. ବି—ହିତକର ଓ ତୃପ୍ତିକର ଖାଦ୍ୟ—
Sukhādya Pleasant and beneficial food; sweet food.

ସୁଖାଧାର—ସ. ବି. (୬ଷ୍ଠୀ ତତ୍)—୧ । ସୁଖର ଆଧାର—1. The
Sukhādhāra receptacle of happiness. ୨ ।
ଯେଉଁଠାରେ ସବୁ ସୁଖ ମିଳେ—2. A place of happiness. ୩ । ସ୍ୱର୍ଗ (ଶବ୍ଦ ରତ୍ନାବଳୀ)—
3. Heaven.

ସୁଖାନ୍(ଇତ୍ୟାଦି)—ବୈଦେ. ବି.—ସୁକାନ୍ ଇତ୍ୟାଦି (ଦେଖ)
Sukhān (etc) Sukān etc (See).

ସୁଖାନି—ବେଦେ. ବି—ସୁକାନି (ଦେଖ)
Sukhāni Sukāni (See).

ସୁଖାନୁଭବ—ସ. ବି.—(୬ଷ୍ଠୀ ତତ୍) ସୁଖ ବୋଧ—
Sukhānubhaba Experience of pleasure.
(ସୁଖାନୁଭୂତି—ଅନ୍ୟରୂପ)

ସୁଖାନ୍ତ—ସ. ବି.—୧ । (୬ଷ୍ଠୀ ତତ୍) ସୁଖର ଅବସାନ—1. The
Sukhānta end of happiness. ୨ । (ବହୁବ୍ରୀହି)
(ଦୁଃଖାନ୍ତ ବିପରୀତ) (ଅଠୁନିକ) ଯେଉଁ ନାଟକର ଶେଷରେ ସୁଖଦାୟକ ଘଟଣା ଥାଏ—Comedy.

ସୁଖାନ୍ତର—ସ. ବି—ଅନ୍ୟ ସୁଖ—Another pleasure or
Sukhāntara happiness.

ସୁଖାନ୍ୱେଷଣ—ସ. ବି.—(୬ଷ୍ଠୀ ତତ୍) ସୁଖ ପାଇବାକୁ ଲୋଡ଼ିବା;
Sukhānweshaṇa ସୁଖ ଖୋଜିବା—Search after
(ସୁଖାନ୍ୱେଷୀ—ବିଣ. ପୁଂ) happiness.

ସୁଖାବତୀଶ୍ୱର—ସ. ବି.—୧ । ବୁଦ୍ଧ ଭେଦ (ହେମଚନ୍ଦ୍ର)—1. One
Sukhābatīśwara of the wise men before the
(ସୁଖାବତୀ ଦେବ—ଅନ୍ୟରୂପ) Buddha. ୨ । ବୁଦ୍ଧଦେବ—
2. The Buddha.

ସୁଖାବହ—ସ. ବିଣ.—(ସୁଖ+ଆବହ)—ସୁଖ ଦାୟକ—
Sukhābaha Pleasant; delightful.
(ଦୁଃଖାବହ—ବିପରୀତ)

ସୁଖାୟତ(ନ)—ସ.[ବି.—ସୁଶିକ୍ଷିତ ଅଶ୍ୱ (ଶବ୍ଦମାଳା)—A well-
Sukhāyata(na) trained horse.

ସୁଖାୟତନ—ସ.[ବି. (୬ଷ୍ଠୀ ତତ୍) ସୁଖାଧାର (ଦେଖ)
Sukhāyatana Sukhādhāra (See).

ସୁଖାର୍ଜିତ—ସ. ବିଣ. (୩ୟା ତତ୍)—ସହଜରେ ଉପାର୍ଜିତ—
Sukhārjita Easily earned.

ସୁଖାଶ—ସ. ବିଣ. ପୁଂ. (ବହୁବ୍ରୀହି; ସୁଖ+ଆଶା+ଅ)—ଶୋଭନ
Sukhāśa ଆଶାଯୁକ୍ତ—Having a good hope; hopeful; sanguine. ସ. ବି.—୧ । (ସୁଖ+ଅଶ= ଭୋଜନ) ସୁଖ ଭୋଜନ—1. A good meal; a hearty meal; a healthy meal. ୨ । ଗୁଜ୍ଜ ଜାତୀୟ ବୃକ୍ଷ (ମେଦିନୀ); ଏକପ୍ରକାର ବନ୍ଧନ କାଠର ଗଛ—2. A kind of timber tree. ୩ । ବରୁଣଦେବ—3. The God of the ocean. ୪ । ତରଭୁଜ—
4. Melon.

ସୁଖାଶା—ସ. ବି. (୬ଷ୍ଠୀ ତତ୍)—ସୁଖ ପାଇବାର ଆଶା—Hope
Sukhāśā Hope of happiness. (ଉ—ଯେଉଁ ସୁଖାଶାରେ ଏ ପାପ ସଂସାରେ ରହିବାକୁ ମନ ବଳଇ—ରାମଶଙ୍କର, ଥିଏଟର ସଙ୍ଗୀତ)—ସ. ବିଣ. ସ୍ତ୍ରୀ—ସୁଖାଶର ସ୍ତ୍ରୀଲିଙ୍ଗ—Feminine of sukhāśa.

ସୁଖାସନ—ସ. ବି. (ମ. ପ. ଲୋ)—୧ । ସୁଖଜନକ ଆସନ—
Sukhāsana 1. Comfortable seat. ୨ । ମୃତବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧକାଳରେ ଶଯ୍ୟା ଓ ଖଟ ଆଦିର ଦାନ—2. Gift of beddings to Brāhmaṇs during obsequal rites. ୩ । ପାଲ୍କି (ହି. ଶ)—3. Palki; sedan chair. ଦେ. ବି. ୧ । ବିଷ୍ଣୁଙ୍କ ଅନନ୍ତ-
सुखासन ଶୟନ—1. The sleep of Bishṇu on the
সুখাসন coil of the Bāsuki serpent during the dissolution of the universe. ୨ । (ସ. ସୁଖାଶ) ବରୁଣ ଦେବ—2. The God of the ocean. ୩ । ସମୁଦ୍ର; ସାଗର—3. The sea. [ଉ—ବିଶ୍ରାମକୁ ସୁଖାସନ ଦୂରେ ନୋହି । ଉଦ୍ଧ. ବୈଦେହୀଶବିଳାସ]

ସୁଖାସୀନ—ସଂ. ବିଣ. ପୁଂ.—ସୁଖରେ ଉପବିଷ୍ଟ—Seated com-
Sukhāsina (ସୁଖାସୀନା—ସ୍ତ୍ରୀ) fortably.

ସୁଖାସ୍ପଦ—ସ. ବି. (୬ଷ୍ଠୀ ତତ୍) ସୁଖାଧାର ୧, ୨ (ଦେଖ)
Sukhāspada Sukhādhāra 1, 2 (See)
(ସୁଖାକର—ଅନ୍ୟରୂପ)

ସୁଖିତ—ସ. ବିଣ.—(ସୁଖ+ଇତାଚ୍ ଅର୍ଥେ ଇତ)—ଆନନ୍ଦିତ;
Sukhita ଉତ୍ଫୁଲ୍ଲ—Pleased; delighted; comforted. [ଉ—ପରମ ସମ୍ପଦେ ସୁଖିତ । ଦୁଃଖରେ ହୋଇବ ଦୁଃଖିତ । ଜଗନ୍ନାଥ. ଭାଗବତ ।] ସ. ବି.
ସୁଖ—Happiness.

ସୁଖିତା (ତ୍ୱ)—ସ. ବି. (ସୁଖିନ୍+ଭାବ ତା, ତ୍ୱ)—ସୁଖୀ ହେବାର ଭାବ
Sukhitā (twa) ବା ଅବସ୍ଥା—The state of being happy.

ସୁଖିନୀ—ସ. ବିଣ. ସ୍ତ୍ରୀ ( ସୁଖିନ୍+ସ୍ତ୍ରୀ. ଈ )—ସୁଖୀର ସ୍ତ୍ରୀଲିଙ୍ଗ—
Sukhinī (ସୁଖୀ—ପୁଂ) Feminine of 'Sukhī.

ସୁଖୀ—ସ. ବିଣ. ପୁଂ. (ସୁଖ+ଅସ୍ତ୍ୟ ଅର୍ଥରେ ଇନ୍; ୧ମା. ୧ବ.)—
Sukhī ସୁଖ ବିଶିଷ୍ଟ; ଯେ ସୁଖ ଭୋଗ କରେ—Happy.

ସୁଖୁମ—ଗ୍ରା. ବିଣ. ( ସ. ସୂକ୍ଷ୍ମ )—ସୂକ୍ଷ୍ମ (ଦେଖ)—Sūkshma
Sukhuma सूक्ष्म, सूछम (See)

ସୁଖେ—ଦେ, କ୍ରି. ବିଣ,—୧ । ସୁଖ ସହକାରେ—1. Happily;
Sukhe सुखे सुखमें with pleasure. ୨ । ସହଜରେ, ଅନାୟାସରେ—2. Easily. [ ଉ—ସେ ଜମ୍ବୁ ବୃକ୍ଷତଳେ ଯେ ଯାହା କରୁରେ । ବସିବାଠାରେ ସୁଖେ ସେ ତା ଲଭପାରେ । କୃଷ୍ଣସିଂହ, ମହାଭାରତ, ସ୍ୱର୍ଗ ।]
୩ । ସ୍ୱଇଚ୍ଛାରେ; ସ୍ୱୟଂ; ସ୍ୱେଚ୍ଛାକ୍ରମେ—3. Of one's free will, voluntarily. [ଉ—ଅବଲେ ଅସୁରାର ସୁଖେ । ଖୋଜିବା ଅଛି କେଉଁ ମୁଖେ ?—ଭୂପତି, ପ୍ରେମପଞ୍ଚାମୃତ ।]
୪। ସ୍ୱାଚ୍ଛନ୍ଦ୍ୟରେ—4. Comfortably; easily. ୫ । ନିଜ କର୍ମର ଫଳରେ—5. As the consequence of one's own actions. (ଉ—ଶାସ୍ତ୍ର ତ ଲେଖିଅଛି ପରଠାରେ ପାପ, ସେ ଅବରେ ତା ସୁଖେ ଭୁଞ୍ଜଇ ସେ କ୍ଲେଶ । କୃଷ୍ଣସିଂହ. ମହାଭାରତ, ବନ ।]

ସୁଖୈଶ୍ୱର୍ଯ୍ୟ—ସ. ବି (ଦ୍ୱନ୍ଦ୍ୱ)—ସୁଖ ସମୃଦ୍ଧି (ଦେଖ)
Sukhaiswarjya Sukha samruddhi (See)

ସୁଖେଷ୍ଟ—ସ. ବି—ଶିବ (ହ. ଶ)
Sukheshta Siba.

ସୁଖୋତ୍ପାଦକ—ସ ବିଣ ପୁଂ—ଯେ (ଯେଉଁ ବ୍ୟକ୍ତି ବସ୍ତୁ ବା ଭାବନା ସୁଖ
Sukhotpādaka ଜନ୍ମାଏ)—Causing happiness. (ସୁଖୋତ୍ପାଦକା—ସ୍ତ୍ରୀ, ସୁଖୋତ୍ପାଦନ—ବି)"

ସୁଖୋତ୍ସବ—ସ. ବି (ଷଷ୍ଠୀ ତତ୍ ବା ମ. ପ. ଲୋ)—ଆନନ୍ଦୋତ୍ସବ—
Sukhotsaba Festivity. ସ. ବିଣ (ବହୁବ୍ରୀହି; ସୁଖ ଅଛି ଉତ୍ସବ ଯାହାର)—ପତି; ସ୍ୱାମୀ (ହିକାଣ୍ଡ ଶେଷ)—Husband.

ସୁଖୋଦକ—ସ. ବି—୧ । ସୁଖଜନକ ତପ୍ତଜଳ (ରତ୍ନମାଳା)—
Sukhodaka 1. Pleasant warm water. ୨ । ଈଷଦୁଷ୍ଣ (ସୁଖୋଷ୍ଣ—ଅନ୍ୟରୂପ) ଜଳ—2. Lukewarm water.

ସୁଖୋଦ୍ୟ—ସ. ବିଣ (ସୁଖ+ବଦ. ଧାତୁ+କର୍ମ. ଯ)—ସହଜରେ
Sukhodya ଉଚ୍ଚାରଣୀୟ—Easily pronounceable.

ସୁଖୋର୍ଜ୍ଜିକ—ସଂ. ବି—ସର୍ଜ୍ଜିକାକ୍ଷାର; ସାଜି ମାଟି—
Sukhorjjika Rhe-soil; natron.

ସୁଖ୍ୟାତି—ସଂ. ବି—୧ । ସୁଯଶ; ସୁପ୍ରସିଦ୍ଧି—1. Celebrity. ୨ ।
Sukhyāti ସୁନାମ—2. Good name or reputation. (ଅଖ୍ୟାତି—ବିପରୀତ) [ଅପଖ୍ୟାତି—ଦେଶଜ ବିପରୀତ]

ସୁଗ—ସଂ. ବିଣ. ପୁଂ (ସୁ+ଗମ୍ ଧାତୁ+କର୍ତ୍ତୃ. ଅ)—୧ । ସୁବୋଧ;
Suga ସୁଗମ—1. Easy to understand. ୨ । ସୁନ୍ଦର-(ସୁଗା—ସ୍ତ୍ରୀ) ଗାମୀ—Going beautifully. ସଂ. ବି—ବିଷ୍ଠା—Ordure. ପ୍ରାଦେ ( ଯାଜପୁର ) ବି—୧ । ମନୋଦୁଃଖ—1. Regret. ୨ । ଶୋକ—Sorrow.

ସୁଗଠ(ଢ଼)ଣ(ନ)—ଦେ. ବି ( ସଂ, ସୁଘଟନ )—ସୁନ୍ଦର ଗଢ଼ଣ—
Sugaṭha(ṛḍha)ṇa(na) Beautiful make or build.
सुगठन ଦେ. ବିଣ—ସୁନ୍ଦରରୂପେ ଗଢ଼ା—Well-made; सुघडपन, सुघडाइ beautifully proportioned; symmetrical.
सुघड़
[ ଦ୍ର—ଗଠନ ଶବ୍ଦ ସଂସ୍କୃତ ନୁହେଁ; କିନ୍ତୁ ବଙ୍ଗଳାର ଲେଖକମାନଙ୍କ ଅନୁକରଣରେ ଓଡ଼ିଆ ଲେଖକମାନେ ଗଠନ, ଗଠିତ, ସୁଗଠନ, ସୁଗଠିତ ଶବ୍ଦମାନ ବ୍ୟବହାର କରି ଆସିଅଛନ୍ତି ।]

ସୁଗଠିତ—ଦେ. ବିଣ—ସୁନ୍ଦରରୂପେ ଗଢ଼ା—
Sugaṭhita Symmetrically made; well done;
सुगठित सुघड़ well proportioned.

ସୁଗଣ—ସଂ. ବି—ସୁନ୍ଦର ଗଣକ (ସିଦ୍ଧାନ୍ତ କୌମୁଦୀ)—
Sugaṇ A good astrologer.

ସୁଗଣ୍ଠିଆ—ପ୍ରାଦେ (ଗଡ଼ଜାତ) ବି—ଏକ ଗୁଣ୍ଠେ ଭୂଇଁରେ ମାଡ଼
Sugaṇṭhiā ବଢ଼ିବା ଲତା ବିଶେଷ—A kind of creeper spreading over an area of one span. [ଦ୍ର—ଏହାର ପତ୍ର ମୂଷାକାନି ପତ୍ର ପରି । ଏହାର ଡେମ୍ଫ ନାହିଁ । ଏହା ପାଚନରେ ବ୍ୟବହୃତ ହୁଏ ।]

ସୁଗତ—ସଂ. ବିଣ ( ସୁ+ଗମ୍ ଧାତୁ+କର୍ତ୍ତୃ. ତ )—୧ । ସୁନ୍ଦର
Sugata ଗମନବିଶିଷ୍ଟ—1. Of good motion; of graceful movement. ୨ । ବୁଦ୍ଧଦେବ—2. The Buddha. ୩ । ବୌଦ୍ଧ (ହ. ଶ)—3. A Buddhist.

ସୁଗତି—ସଂ.ବି—୧ (ନାମ)ଅତୀତ କାଳର ବୌଦ୍ଧ ଯତି ବିଶେଷ (ହେମଚନ୍ଦ୍ର)—1. Name of a Buddhist saint of
Sugati yore. ୨ । ଗ୍ରନ୍ଥକାର ବିଶେଷ—2. Name of an ancient author. ୩ । ମୋକ୍ଷ ଗତି; ମୁକ୍ତି—3. Emancipation; beatitude.

ସୁଗନ୍ଧ—ସଂ. ବିଣ (ବହୁବ୍ରୀହି; ସୁଅଛି ଗନ୍ଧ ଯାହାର)—୧ । ଗନ୍ଧବହ;
Sugandha ସଦ୍‌ଗନ୍ଧମିଶ୍ରିତ; ସୁଗନ୍ଧିତ—1. Sweet-scented; scented with the smell of another article. ୨ । (ନ୍ୟାୟ) ଗନ୍ଧ ସମବାୟାତିରିକ୍ତ ସମ୍ବନ୍ଧାବ୍ୟ ସମ୍ବନ୍ଧବିଶିଷ୍ଟ—2. (Logic) Related with a relationship apart form the aggregate smell. [ଦ୍ର—ଯେଉଁ ସ୍ଥଳରେ କୌଣସି ପଦାର୍ଥ ସଙ୍ଗେ ଗନ୍ଧର ସମବାୟାତିରିକ୍ତ ସମ୍ବନ୍ଧ ଥାଏ, ଅର୍ଥାତ୍ ସହଜ ସମ୍ବନ୍ଧ ନ ଥାଏ, ସେଠାରେ 'ସୁଗନ୍ଧ' ପଦ

ହୁଏ ଏବଂ ଯେଉଁ ସ୍ଥଳରେ ସମବାୟ ସମ୍ବନ୍ଧ ଥାଏ, ସେଠାରେ 'ସୁଗନ୍ଧ' ପଦ ବ୍ୟବହୃତ ହୁଏ । ଯଥା—

ପୁଷ୍ପ ସଙ୍ଗେ ଗନ୍ଧର ସମବାୟ ସମ୍ବନ୍ଧ ଅଛି; ଅର୍ଥାତ୍ ପୁଷ୍ପ ନିଜେ ସୁଗନ୍ଧଯୁକ୍ତ; ଅତଏବ 'ସୁଗନ୍ଧି ପୁଷ୍ପ' ବୋଲିଯିବ ।

କିନ୍ତୁ ସୁବାସିତ ଜଳ ବା ଗନ୍ଧବାହୀ ବାୟୁ ସଙ୍ଗେ ଗନ୍ଧର ସମବାୟୀ ହେଲି ସମ୍ବନ୍ଧ ଅଛି; ଅର୍ଥାତ୍ ଜଳର ବା ବାୟୁର ସୁବାସ ନାହିଁ; ଏହା ଅନ୍ୟ ବସ୍ତୁର ସୁବାସ ଦ୍ୱାରା ସୁବାସିତ ହୁଏ । ଏଥିପାଇଁ 'ସୁଗନ୍ଧ ବାୟୁ' 'ସୁଗନ୍ଧ ଜଳ' ବୋଲିଯିବ]

ସଂ. ବି.—୧ । ( ଜର୍ମଧା )—ସୁବାସ; ମନୋହର ଗନ୍ଧ; ସୌରଭ—1. Sweet scent; sweet smell. ୨ । ( ବହୁବ୍ରୀହି )—ଚନ୍ଦନ ( ରାଜନିର୍ଘଣ୍ଟ )—2 Sandal wood. ୩। ନୀଳୋତ୍ପଳ (ରାଜନିର୍ଘଣ୍ଟ)—3 The blue water lily. ୪। ଗ୍ରନ୍ଥିପର୍ଣ୍ଣ; ଗଣ୍ଠିଅଳା ( ଭାବ ପ୍ରକାଶ )—4. A medicinal plant. ୫ । ଗନ୍ଧ ତୃଣ ( ରତ୍ନମାଳା ); ଧନହରୀ—5. A kind of sweet scented grass; Arodropogen Schoenanthus. ୬ । କ୍ଷୁଦ୍ର ଜୀରକ ( ରତ୍ନମାଳା )—6. Small variety of cumin seed. ୭ । ରକ୍ତଶିଗ୍ରୁ; ନାଲି ସଜନା (ରାଜନିର୍ଘଣ୍ଟ)—7. The red variety of horse radish. ୮ । ଗନ୍ଧକ (ରାଜନିର୍ଘଣ୍ଟ)—8. Sulphur. ୯ । ଚଣକ; ଚଣା ( ରାଜନିର୍ଘଣ୍ଟ )—9. Gram; chick pea. ୧୦ । ଭୂତୃଣ ( ରାଜନିର୍ଘଣ୍ଟ )—10. A kind of lemon-scented grass; Andropogen Citratus. ୧୧ । ଶ୍ରୀଖଣ୍ଡଚନ୍ଦନ ( ହି. ଶ. )—11. Srikhanda chandana. ୧୨ । ଶବରଚନ୍ଦନ ( ହି. ଶ. )—12. Sabara chandana. ୧୩ । ଗନ୍ଧରାଜ ଫୁଲ ( ହି. ଶ. )—13. Gandharaja flower. ୧୪ । ଧୁନା (ହି.ଶ)—14. Resin. ୧୫ । ଶାଳି ଧାନ୍ୟ; ବାସବଙ୍ଗା ଧାନ ( ହି. ଶ. )—15. Scented variety of paddy. ୧୬ । ମରୁବକ ( ହି. ଶ )—16. Marūbaka (See) ୧୭ । ମାଧବୀଲତା(ହି. ଶ) 17. Madhabi creeper. ୧୮ । କସେରୁ (ହି.ଶ)—18. Kaseru (See). ୧୯ । ସଫେଦ ଜୁଆର (ହି.ଶ) 19. White (millet grain). ୨୦। କେଅ (ହି.ଶ)—20. Pandanus Odoratissimus ( white-flowered variety).

ସୁଗନ୍ଧକ—ସଂ. ବି.—୧ । ରକ୍ତତୁଳସୀ ( ରତ୍ନମାଳା )—1. The red-leaved variety of the Basil plant. ୨ । ଗନ୍ଧକ (ରତ୍ନମାଳା)—2. Sulphur. ୩ । ନାଗରଙ୍ଗକ; ନାରଙ୍ଗ (ବୈଦ୍ୟକଶବ୍ଦସିନ୍ଧୁ)—3. Mild flavoured lemon. ୪ । କର୍କୋଟକ (ହେମଚନ୍ଦ୍ର); କାଙ୍କଡ଼—4. The edible cucurbitacious fruit of a wild creeper; Memordica Cochin Chenensis. ୫ । ଦ୍ରୋଣପୁଷ୍ପୀ; ଗଯୂସ (ହି. ଶ)—5. Gayusa (See) ୬ । ରକ୍ତଶାଳିଧାନ୍ୟ—6. A red variety of paddy.
Sugandhaka

ସୁଗନ୍ଧକେସର—ସଂ ବି—ରକ୍ତଶିଗ୍ରୁ (ହି. ଶ)—
Sugandha kesara The red variety of Moringa.

ସୁଗନ୍ଧଗନ୍ଧା—ସଂ ବି—ଦାରୁହରିଦ୍ରା—
Sugandhagandhā Dāruharidrā (See)

ସୁଗନ୍ଧଗଣ—ସଂ. ବି (ବୈଦ୍ୟଶାସ୍ତ୍ର)—କର୍ପୂର, କସ୍ତୁରୀ, ଲତାକସ୍ତୁରୀ, ଗନ୍ଧମାର୍ଜାରିବୀର୍ଯ୍ୟ (ଶାଳଅପଡ଼ମାଜୋଡ଼), ଗୈରକ, ଶ୍ରୀଖଣ୍ଡଚନ୍ଦନ, ପୀତଚନ୍ଦନ, ତିଲାକଷ୍ଠ, ରକ୍ତଚନ୍ଦନ, ପଦ୍ମକଚନ୍ଦନ, କୃଷ୍ଣାଗୁରୁ, ଦେବଦାରୁ, ପତଙ୍ଗ, ସରଳ, ତଗର, ଦ୍ରାକ୍ଷ, ଗୁଗୁଳ, ସରଳନିର୍ଯ୍ୟାସ, କୁନ୍ଦୁରୁ, ଶିଳାରସ, ଲୋବାନ, ଲବଙ୍ଗ, ଜାଇଫଳ, ଜାଇତ୍ରୀ, ଅଳାଇଚ, ଗୁଜରାଟ, ତାଳଚନ୍ଦନ, ତେଜପତ୍ର, ନାଗକେଶର, କୁରୁବେଲ, ବେଣାଚେର, ଗୋରୋଚନା, ନଖୀ, କେସର, ଜଟାମାଂସୀ, ନାଗରମୁଥା, ଅମ୍ବ ଅଦା ଆଦି ସୁଗନ୍ଧଦ୍ରବ୍ୟ (ହି. ଶ)—A number of scented articles used in medicine.
Sugandhaganạ

ସୁଗନ୍ଧ ଘଡ଼ି—ଦେ. ବି (ସଂ ସୁଗନ୍ଧ+ଘଟୀ)—ଯେଉଁ ଘଡ଼ିରେ ବା ଶିଶିରେ ଅତର ଆଦି ସୁଗନ୍ଧଦ୍ରବ୍ୟ ରଖାଯାଏ—
Sugandha ghardi
ସୁଗନ୍ଧପାତ୍ର सुगंधपात्र Scent bottle.
[ ଉ—ଫିଟି ନ ଥିବ ତାର ସୁଗନ୍ଧ ଘଡ଼ି—ଭଞ୍ଜ. ସୁବର୍ଣ୍ଣରେଖା ।]

ସୁଗନ୍ଧ ତୈଳ—ସଂ ବି—ସୁବାସିତ ତୈଳ; ବାସନା ତେଲ—
Sugandha taila Scented oil.

ସୁଗନ୍ଧ ତୈଳ ନିର୍ଯ୍ୟାସ—ସଂ. ବି—ଜବାଦ ନାମକ ଗନ୍ଧ ଦ୍ରବ୍ୟ ( ରାଜନିର୍ଘଣ୍ଟ )—
Sugandha taila nirjāsa
Name of a scented medicinal liquid.

ସୁଗନ୍ଧ ପତ୍ର—ସଂ. ବି—ରୁଦ୍ର ଜଟା ( ରାଜନିର୍ଘଣ୍ଟ ); ଈଶ୍ୱର ଜଟା—
Sugandha patra A plant with scented leaves.

ସୁଗନ୍ଧପତ୍ରା—ସଂ. ବି—୧ । ଶତାବରୀ (ହି. ଶ)—1. Asparargus Racemosa. ୨ । କ୍ଷୁଦ୍ର ଜାମ୍ବୁ (ହି.ଶ) 2. The small variety of black berry. ୩ । ବୃହତୀ (ହି. ଶ)—3. Solanum Indicum. ୪ । ଅପରାଜିତା (ହି. ଶ)—4. Clitoris flower. ୫ । ଜୀର (ହି. ଶ)—5. Cuminlseed. ୬ । ବାଡ଼ିଅଁଳା (ହି.ଶ.)—6. Sida Cordifolia. ୭ । ବୃଦ୍ଧଦାରକ (ହି.ଶ)—7. Bruddhadāraka (See)
Sugandhapatrā

୮ । ରୁଦ୍ର ଜଟା; ଈଶ୍ୱର ଜଟା ( ହ୍. ଶ. )—Iswarajatā (See)

ସୁଗନ୍ଧ ଭୂତୃଣ—ସଂ. ବି—ଗନ୍ଧ ତୃଣ ( ରାଜନିର୍ଘଣ୍ଟ ); ଧନିଆ—Sugandha bhūtṛṇa A scented grass; Andropogen Schoenanthus.

ସୁଗନ୍ଧିମୂଳା—ସଂ. ବି—୧ । ସ୍ଥଳପଦ୍ମିନୀ ( ରାଜନିର୍ଘଣ୍ଟ )—Sugandha mūlā 1. The plant of Hibiscus Mutabilis. ୨ । ରାସ୍ନା ( ରାଜନିର୍ଘଣ୍ଟ )—2. Vanda Roxburghii. ୩ । ଅଁଳା—3. Embelic myrobalan. ୪ । ଗନ୍ଧପଳାଶୀ ( ହ୍. ଶ )—4. Gandhapalāśī (See). ୫ । ଲବଲୀ; ନଅରକୋଳି (ହ୍. ଶ)—5. Na-ara koli (See)

ସୁଗନ୍ଧ ମୂଷିକ—ସଂ. ବି—ଚୁଚୁନ୍ଦ୍ରା—(ହ୍. ଶ) Mole; shrew. Sugandha mūshika

ସୁଗନ୍ଧରାଜ—ଦେ. ବି—ସୁଗନ୍ଧ ପୁଷ୍ପ ବିଶେଷ—A kind of scented Sugandharāja flower; Gardenia cape jasmine. गन्धराज सुगन्धराज

ସୁଗନ୍ଧଶାଳି—ସଂ. ବି ( ବୈଦ୍ୟକ )—ଶାଳିଧାନ୍ୟବିଶେଷ—A species Sugandhaśāli of winter paddy. [ ଗୁ—ଏହା (ଦେବଶାଳି—ଅନୁରୂପ) ମଧୁରରସ, ଲଘୁ, ସ୍ନିଗ୍ଧ, ରୁଚିକର, ଅଗ୍ନିବର୍ଦ୍ଧକ, ବଳକର, ପୁଷ୍ଟିକାରକ, ଶୁକ୍ରବର୍ଦ୍ଧକ ଓ ରୋଗୀଙ୍କ ପଥ୍ୟ । ]

ସୁଗନ୍ଧଶାଳୀ—ସଂ. ବିଶ. ପୁଂ ( ସୁଗନ୍ଧ+ଶାଳିନ୍; ୧ମା. ୧ବ )—Sugandhaśālī ସୁଗନ୍ଧବିଶିଷ୍ଟ; ଉତ୍ତମ ବାସଯୁକ୍ତ; ସୁବାସିତ—( ସୁଗନ୍ଧଶାଳିନୀ—ସ୍ତ୍ରୀ ) Sweet scented.

ସୁଗନ୍ଧ ଷଟ୍କ—ସଂ. ବି ( ବୈଦ୍ୟକ )—ଛଅଗୋଟି ସୁଗନ୍ଧିଦ୍ରବ୍ୟ, Sugandha shaṭ-ka ଯଥା—ଜାଇଫଳ, କକୋଳ (ଶୀତଳ ଚିନି), ଲବଙ୍ଗ, ଅଳେଇଚ, କର୍ପୂର ଓ ଗୁଆ (ହ୍. ଶ)—Six scented articles used in medicine.

ସୁଗନ୍ଧ ସ୍ଥଳ—ଦେ. ବି—ସୁଗନ୍ଧ ବସ୍ତୁ; ସୁବାସିତ ପଦାର୍ଥ—A sweet-Sugandha sthala scented thing; a thing hav- सुगन्ध वस्तु ing a very sweet scent ( ଯୁ—ଶାଳ सुगन्ध वस्तु ତରଣ ଲୁଟିଲ କୋମଳ । ପ୍ରଲମ୍ବ ଗହଳ ସୁଗନ୍ଧ ସ୍ଥଳ —ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । )

ସୁଗନ୍ଧା—ସଂ. ବି ( ସୁଗନ୍ଧ+ଆ )—୧ । ରାସ୍ନା ( ଅମର )—Sugandhā 1. Vanda Roxburghii. ୨ । ଶଟୀ; ଗନ୍ଧଶୁଣ୍ଠୀ (ଶବ୍ଦରତ୍ନାବଳୀ)—2. Alpine galanga; Curcuma zedoaria. ୩ । ସୁକ୍ଷ୍ମ; ପିତ୍ତଙ୍ଗ ଶାଗ ( ରାଜନିର୍ଘଣ୍ଟ )—3. Trigonella Corniculata. ୪ । ଗଙ୍ଗାପତ୍ରୀ ( ରାଜନିର୍ଘଣ୍ଟ )—4. A kind of scented herb. ୫ । ଶଲ୍ଲକୀ ( ରାଜନିର୍ଘଣ୍ଟ ) ବୃକ୍ଷ—5. Sallakī tree ( See ) ୬ । ମାଧବୀ ( ରାଜନିର୍ଘଣ୍ଟ )—6. A flowering creeper; Hiptage Madhablata. ୭ । ବନ୍ଧ୍ୟା କର୍କୋଟକ; ଅଶାଢୁଅ ( ରାଜନିର୍ଘଣ୍ଟ )—7. Capparis Acuminata; a kind of edible wild bitter fruit. ୮ । ରୁଦ୍ର ଜଟା ( ରତ୍ନମାଳା )—8. Uraria; Pica Aristolochia Indica. ୯ । ଶତପୁଷ୍ପା; ଶଲୁପ ( ରତ୍ନମାଳା )—9. Dill seed; Anethum Sowa. ୧୦ । ନାକୁଲୀ (ରତ୍ନମାଳା)—10. An esculent root; Ophioxylon Serpentinum. ୧୧ । ନବମଲ୍ଲିକା; କଅଳୀ (ରତ୍ନମାଳା )—11. Arabian jasmine, Jasminun Arboresecns. ୧୨ । ସ୍ୱର୍ଣ୍ଣଯୂଥିକା; ହଳଦିଆ ଜୁଇ (ରତ୍ନମାଳା)—12. Yellow variety of Jui. ୧୩ । ଅନନ୍ତା; ଚେମିଡ଼ଳିଇ (ରତ୍ନମାଳା)—13. A creeper; Hemidesmus Indicus. ୧୪ । ମାତୁଲିଙ୍ଗ ( ରତ୍ନମାଳା )—14 Lemon; citron. ୧୫ । ତୁଳସୀ ( ରତ୍ନମାଳା )—15. Basil (plant). ୧୬ । ନିର୍ଗୁଣ୍ଡି ( ହ୍. ଶ ) ( ଦେଖ )—16. Nirgundi ( See ) ୧୭ । ଏଲବାଳୁକ ( ହ୍. ଶ )—17. Elabāluka ( See ) ୧୮ । ସୋମରାଜି ( ହ୍. ଶ )—18. Somarāji ( See ) ପ୍ରାଦେ ( ଯାଜପୁର ) ବି—ଧୁଳଗ—Ocimum Basillicum; Ocimum canum.

ସୁଗନ୍ଧି—ସଂ.ବିଣ (ସୁଗନ୍ଧ+ଇ)—୧। ସୁଗନ୍ଧଯୁକ୍ତ;ସୁରଭିତ—1. Sweet-Sugandhi scented. (ଦ୍ର—ସୁଗନ୍ଧ ତଳେ ଟୀକା ଦେଖ ) ୨ । ଧାର୍ମିକ—2. Pious; religious ସଂ. ବି—୧ । ସୌରଭ; ସଦ୍‌ଗନ୍ଧ ( ଅମର )—1. Sweet smell. ୨ । ଆମ୍ରକାର; ଅମ୍ବ (ଶବ୍ଦଚନ୍ଦ୍ରିକା)—2. Mango. ୩ । ପରମାତ୍ମା ( ଶାକଟାୟନ )—3. The Divide Essence in man. ୪ । ଏଲବାଳୁକ ( ଅମର )—4. A kind of medicinal root. ୫ । ମୁଥା (ରାଜନିର୍ଘଣ୍ଟ)—5. Bulbous grass root. ୬ । କସେରୁ (ରାଜନିର୍ଘଣ୍ଟ )—6. Scrypus kysoor. ୭ । ଗନ୍ଧ ତୃଣ ( ରାଜନିର୍ଘଣ୍ଟ )—7. A variety of scented grass. ୮ । ଧନ୍ୟାକ; ଧନିଆ ( ରାଜନିର୍ଘଣ୍ଟ )—8. Coriander. ୯ । ପିପ୍ପଳୀ ମୂଳ (ରାଜନିର୍ଘଣ୍ଟ)—9. Piper root. ୧୦ । ବନତୁଳସୀ ( ଦେଖ ) ( ହ୍. ଶ )—10. Banatulasī ( See ) ୧୧ । ଅନନ୍ତମୂଳ ( ଦେଖ ) ( ହ୍. ଶ )—11. Anantamūla ( See )

ସୁଗନ୍ଧିକ—ସଂ. ବି—୧ । କହ୍ଲାର; କଇଁ ( ଶବ୍ଦରତ୍ନାବଳୀ )—Sugandhika 1. Water lily. ୨ । ପୁଷ୍କରମୂଳ ( ରାଜନିର୍ଘଣ୍ଟ )—2. The root of Alpotaris Auriculata. ୩ । ସୁରପର୍ଣ୍ଣୀ ( ଦେଖ ) ( ରାଜନିର୍ଘଣ୍ଟ )

3. Surapatrī (See) ୪ । ଉଶୀର; ବେଣାଚେର (ରାଜନିର୍ଘଣ୍ଟ)—4. Fragrant root of Benā grass. ୫ । ମହାଶାଳି (ହେମଚନ୍ଦ୍ର)—5. Coarse winter paddy. ୬ । ଲୁରୁସ୍କ; ଲୋବାନ (ରାଜନିର୍ଘଣ୍ଟ)—6. Olibanum. ୭ । ଗନ୍ଧକ (ରାଜମୁକୁଟ)—7. Sulphur. ୮ । କଳାଜିରା (ହୁ. ଶ)—8. Black cumin seed. ୯ । ଶିଳାରସ (ହୁ. ଶ)—9. Silārasa (See) ୧୦ । ବାସମତୀ ଚାଉଳ (ହୁ. ଶ)—10. Scented rice. ୧୧ । କଇଥ (ହୁ. ଶ.)—11. Elephant apple. ୧୨ । ପୁନ୍ନାଗ; ନାଗକେଶର (ହୁ. ଶ)—12. Mesua Ferra.

ସୁଗନ୍ଧି କୁସୁମ—ସଂ. ବି—୧ । ସଦ୍‌ଗନ୍ଧଯୁକ୍ତ ପୁଷ୍ପ—1. Sweet smelling flower.
Sugandhi kusuma
୨ । ପୀତ କରବୀର (ରାଜନିର୍ଘଣ୍ଟ)—2. The yellow variety of 'Karabira' flower. ୩ । ପୃକ୍କା (ହୁ. ଶ)—3. Trigonella Corniculata (herb).

ସୁଗନ୍ଧି କୁସୁମା—ସଂ. ବି—ପୃକ୍କା; ପିଡଙ୍ଗ ଶାଗ (ଜଟାଧର)—A pot-herb; Trigonella Corniculata.
Sugandhi kusumā

ସୁଗନ୍ଧିତ—ସଂ. ବିଣ (ସୁଗନ୍ଧ+ଇତ)—ସୁଗନ୍ଧଯୁକ୍ତ; ସୁଗନ୍ଧୀକୃତ; ସୁବାସିତ—Made fragrant; scented.
Sugandhita

ସୁଗନ୍ଧିତା—ସଂ. ବି—ସୌଗନ୍ଧ; ସୌରଭ (ହଳାୟୁଧ)—Fragrance.
Sugandhitā

ସୁଗନ୍ଧି(ନ୍ଧ) ତ୍ରିଫଳା—ସଂ. ବି—ଜାଇଫଳ, ପୂଗଫଳ ଓ ଲବଙ୍ଗ ଫଳକା ଫଳ (ରାଜନିର୍ଘଣ୍ଟ)—An aggregate of nutmeg, nut and cloves fruit.
Sugandhi(ndha)triphalā

ସୁଗନ୍ଧିନୀ—ସଂ. ବି—ଆରାମ ଶୀତଳା (ରାଜନିର୍ଘଣ୍ଟ)—A scented herb. ସଂ. ବିଣ—'ସୁଗନ୍ଧୀ'ର ସ୍ତ୍ରୀଲିଙ୍ଗ—Feminine of 'Sugandhī'.
Sugandhinī

ସୁଗନ୍ଧି ଫଳ—ସଂ. ବି—ଶୀତଳଚିନି; କବାବଚିନି (ହୁ. ଶ)—Cubeb.
Sugandhi phala

ସୁଗନ୍ଧିବର୍ଗ—ସଂ. ବି—ସୁଗନ୍ଧଗଣ (ଦେଖ)—Sugandhagaṇa (See)
Sugandhibarga

ସୁଗନ୍ଧି ମୂଳ—ସଂ. ବି—ଉଶୀର; ବେଣାମୂଳ (ରାଜନିର୍ଘଣ୍ଟ)—The fragrant root of Benā grass.
Sugandhi mula

ସୁଗନ୍ଧି ମୂଷିକା—ସଂ. ବି—ଛୁଚୁନ୍ଦରୀ; ଚୁଚୁନ୍ଦୁର (ରାଜନିର୍ଘଣ୍ଟ)—The mole; shrew.
Sugandhi mūshikā

ସୁଗନ୍ଧୀ—ସଂ. ବିଣ. ପୁଂ ଓ କ୍ଲୀ—(ସୁଗନ୍ଧ+କର୍ତ୍ତି ଇନ୍; ୧୨୦ ୧ବ)—ସୁଗନ୍ଧଯୁକ୍ତ; ସୁବାସବିଶିଷ୍ଟ—Sweet-smelling.
Sugandhī

ସୁଗନ୍ଧୀକୃତ—ସଂ. ବିଣ (ସୁଗନ୍ଧ+ଅଭୂତତଦ୍ଭାବେ ଚ୍ୱି+କୃ ଧାତୁ+ତ)—ଗନ୍ଧଯୁକ୍ତ କରାଯାଇଥିବା (ଗନ୍ଧଦ୍ରବ୍ୟ ବସ୍ତୁ)—Scented; made fragrant.
Sugandhīkruta

ସୁଗଭସ୍ତି—ସଂ. ବି (ବହୁବ୍ରୀହି)—ସପ୍ରିଥାନ (ହୁ. ଶ)—Lustrous.
Sugabhasti

ସୁଗମ୍ଭୀର—ସଂ. ବିଣ. ପୁଂ (ସୁ=ଅତ୍ୟନ୍ତ+ଗମ୍ଭୀର)—୧ । ଅତିଗଭୀର—1. Very deep. ୨ । ଅତଳସ୍ପର୍ଶ—2. Abysmal.
Sugabhira
(ସୁଗମ୍ଭୀରା—ସ୍ତ୍ରୀ; ସୁଗମ୍ଭୀରତା—ବି)

ସୁଗମ—ସଂ. ବିଣ. ପୁଂ (ସୁ=ସୁଖରେ+ଗମ୍ ଧାତୁ+କର୍ମ ଅ)—୧ । ସୁକର; ଅନାୟାସରେ କରଣୀୟ—1. Easy of accomplishment. ୨ । ଯେଉଁଠାକୁ ସହଜରେ ମନୁଷ୍ୟ ଯାଇପାରେ—2. Easily accessible. ୩ । ଯେଉଁବାଟେ ସହଜରେ ମନୁଷ୍ୟ ଯାଇ ପାରେ—3. Easily passable. ୪ । ସହଜରେ ଲଭ୍ୟ—4. Easily obtainable. ୫ । ଅନାୟାସବୋଧ୍ୟ ସୁଜ୍ଞେୟ—5. Easily comprehensible.
Sugama
[ସୁଗମା—ସ୍ତ୍ରୀ]
[ଦୁର୍ଗମ—ବିପରୀତ]
[ସୁଗମତା—ବି]

ସୁଗମ୍ଭୀର—ସଂ ବିଣ, ପୁଂ (ସୁ=ଅତ୍ୟନ୍ତ+ଗମ୍ଭୀର) ଅତ୍ୟନ୍ତ ଗାମ୍ଭୀର୍ଯ୍ୟଯୁକ୍ତ—Very grave.
Sugambhira
[ସୁଗମ୍ଭୀରା—ସ୍ତ୍ରୀ]

ସୁଗମ୍ୟ—ସଂ ବିଣ. ପୁଂ (ସୁ=ସହଜରେ+ଗମ୍ୟ)—ସୁଗମ (ଦେଖ)—Sugama (See)
Sugamya
[ସୁଗମ୍ୟା—ସ୍ତ୍ରୀ] [ଦୁର୍ଗମ୍ୟ—ବିପରୀତ]

ସୁଗର—ସଂ ବି—ହିଙ୍ଗୁଳ (ହୁ. ଶ)—Hingula (See)
Sugara

ସୁଗହନ—ସଂ ବିଣ (ସୁ=ଅତି+ଗହନ)—ନିରବକାଶ; ଅତି ନିବିଡ଼—Very dense. ସଂ ବି—(ସୁ=ଉତ୍ତମ+ଗହନ)—ଉତ୍ତମ ବା ସୁନ୍ଦର ବନ—Beautiful forest.
Sugahana

ସୁଗହନା—ସଂ. ବି—ବୃତ୍ତି (ଅମର); ଯଜ୍ଞ ସ୍ଥାନରେ ଅସ୍ପୃଶ୍ୟାଦି ବ୍ୟକ୍ତିମାନଙ୍କ ଦର୍ଶନନିବାରଣାର୍ଥ ଯେଉଁ (ସୁଗହନାବୃତ୍ତି—ଅନ୍ୟରୂପ) ନିରବକାଶ ବେଷ୍ଟନ ବା ବାଡ ଦିଆଯାଏ—A thick fence put round the sacrificial altar to keep it concealed from the view of untouchable persons.
Sugahanā

ସୁଗାଇବା—ପ୍ରାଦେ. (ଲରଥ) କ୍ରି—ସ୍ନେହ କରିବା—To love; to have attachment for.
Sugāibā

ସୁଗାଧ—ସଂ. ବିଣ—୧ । ଯେଉଁ ନଦୀରେ ସୁଖରେ ସ୍ନାନ କରାଯାଏ (ହୁ. ଶ)—1. (river) In which it is pleasant to bathe. ୨ । ଯେଉଁ ନଦୀକୁ ଲୋକ ସହଜରେ ପାର ହୋଇ ପାରନ୍ତି; ସୁଗାହ୍ୟ (ହୁ. ଶ)—2. (river) Which is easy to be crossed.
Sugādha

ସୁଗୁପ୍ତ—ସଂ.ବ (ସୁ+ଗୁପ୍ତ)—ଅତି ଗୁପ୍ତ—Very private;
Sugupta strictly confidential.

ସୁଗୁପ୍ତା—ସଂ. ବ—କପିକଚ୍ଛୁ; ବାଇଡଙ୍କ (ବୃ. ଶ)—
Suguptā Cowhage.

ସୁଗୃହ—ସଂ. ବ—୧। ସୁନ୍ଦର ଘର—1. A good house.
Sugṛuha ୨। (ବହୁବ୍ରୀହି; ସୁ=ସୁନ୍ଦର ଅଟେ ଗୃହ= ଘର ଯାହାର)—ଚଞ୍ଚୁସୂଚକ ପକ୍ଷୀ; ବାୟା ଚଢ଼େଇ—
2. The Bāyā bird; the tailor bird (which weaves its nest with its beak).
୩। ଏକପ୍ରକାର ହଂସ (ବୃ. ଶ)—3. A kind of drake.

ସୁଗୃହିଣୀ—ସଂ. ବ. ସ୍ତ୍ରୀ—ନାନା ସୁଗୁଣବିଶିଷ୍ଟା ଗୃହିଣୀ—
Sugṛuhiṇī A housewife with various good qualities.

ସୁଗୃହୀ—ସଂ.ବ. ପୁଂ (ସୁଗୃହ+ଇନ୍; ୧ମା. ୧ବ.)—୧। ସୁନ୍ଦର ଗୃହର
Sugṛuhī ସ୍ୱାମୀ (ବୃ. ଶ)—1. A man owning a good house. ୨। ସୁନ୍ଦରୀ ସ୍ତ୍ରୀର ସ୍ୱାମୀ—
2. A person who has a beautiful wife. ୩। ସୁଗୃହ (ଦେଖ)—3. Sugṛuha (See)

ସୁଗୃହୀତ—ସଂ ବଣ (ସୁ=ସୁନ୍ଦରରୂପେ+ଗୃହୀତ)—ସୁନ୍ଦରରୂପେ ଗୃହୀତ
Sugṛuhita —Well accepted.

ସୁଗୃହୀତ—ନାମା—ସଂ. ବଣ (ସୁଗୃହୀତ+ନାମନ୍; ୧ମା. ୧ବ).
Sugṛuhita nāmā ପୁଣ୍ୟ ଶ୍ଳୋକ; ପ୍ରାତଃସ୍ମରଣୀୟ (ବ୍ୟକ୍ତି); ଯେଉଁମାନଙ୍କ ନାମ ଧରିଲେ ଶୁଭ ଘଟେ ( ଯଥା—ନଳ, ଯୁଧିଷ୍ଠିର, ରାମଚନ୍ଦ୍ର ଇତ୍ୟାଦି )—
( persons ) The utterance of whose names brings bliss; of blessed memory.

ସୁଗୋଚର—ସଂ. ବଣ (ସୁ+ଗୋଚର)—ଉତ୍ତମରୂପେ ଗୋଚର—
Sugochara Well-known. ଦେ. ବଣ—
ସୁସ୍ପଷ୍ଟ ସାଫ ସୁସ୍ପଷ୍ଟ—Very clear; obvious.

ସୁଗୋଳ(ଲ)—ସଂ. ବ ( ସୁ+ଗୋଳ=ଗୋଲାକାର )—ସମ୍ୟକ୍‌ରୂପେ
Sugoḷa(la) ଗୋଲାକାର—Completely circular.

ସୁଗ୍ୟାଁ—ଗ୍ରା. ବଣ ( ପ୍ରାଚୀନ ପଦ୍ୟ ପ୍ରୟୋଗ )—( ସଂ. ସୁଜ୍ଞ )—ସୁଜ୍ଞ
Sugyañ ( ଦେଖ )—Sujña (See) ( ଦୃ—
ଏଥିଅନନ୍ତରେ ଶୁଣ ସାଧୁ ସୁଗ୍ୟାଁ ନର—ପ୍ରାଚୀ. ବ୍ରହ୍ମନାରୁପଣ ଗୀତା)

ସୁଗ୍ରନ୍ଥ—ସଂ. ବ—ଉତ୍ତମ ପୁସ୍ତକ—
Sugrantha A good book.

ସୁଗ୍ରନ୍ଥି—ସଂ. ବଣ ( ବହୁବ୍ରୀହି )—ସୁନ୍ଦର ଗ୍ରନ୍ଥିଯୁକ୍ତ—Having
Sugranthi good knots. ପୁଂ. ବ—ଚୋରକ ନାମକ ଗନ୍ଧଦ୍ରବ୍ୟ ( ରାଜନିର୍ଘଣ୍ଟ )—Name of a knotty sweet-scented herb.

ସୁଗ୍ରହ—ସଂ. ବ—ଫଳଜ୍ୟୋତିଷ ଅନୁସାରେ ଶୁଭଫଳଦ ଗ୍ରହ
Sugraha (ଯଥା—ବୃହସ୍ପତି, ଶୁକ୍ର)—(astrology)
Planet which grants good results.

ସୁଗ୍ରୀ—ଗ୍ରା. ବ. ( ନାମ )—'ସୁଗ୍ରୀବ'ର ଡାକ ନାମ—
Sugrī Popular name of Sugrība.
(ସୁଗ୍ରୀବର—ଅନ୍ୟରୂପ) ( ଦୃ—ବଢ଼ାଇଛନ୍ତି କୋପ, ସୁଗ୍ରୀ
ସୁଗ୍ରୀବ ସୁଗ୍ରୀ ହନୁ ଅମାପ, ଲକ୍ଷ୍ୟ ଦେଇ କ
ହାସେ ଯେ—ଭଞ୍ଜ. ବୈଦେହୀଶବିଳାସ । ) ( ଦୃ—
ସୁଗ୍ରୀବର, ବିଭୀଷଣ, ଜାମ୍ବବ, ମନ୍ତ୍ରୀ ସୁଷେଣ, ଅଙ୍ଗଦ,
ତାର ପିଅର, ରୁଷ କପି ଯେ ଅପାର—ବିଶ୍ୱନାଥ. ବିଚିତ୍ର ରାମାୟଣ । )

ସୁଗ୍ରୀବ—ସଂ. ବଣ. ପୁଂ ( ସୁ=ସୁନ୍ଦର ଅଟେ ଗ୍ରୀବା ଯାହାର;
Sugrība ବହୁବ୍ରୀହି )—ସୁନ୍ଦର ଗ୍ରୀବାବିଶିଷ୍ଟ—
(ସୁଗ୍ରୀବା, ସୁଗ୍ରୀବୀ—ସ୍ତ୍ରୀ) Having a beautiful neck.
ସଂ. ବ—୧। ବିଷ୍ଣୁଙ୍କ ୪ ଅଶ୍ୱ ମଧ୍ୟରୁ ଏକ ଅଶ୍ୱର ନାମ (ମେଦିନୀ)—1. Name of one of the 4 horses drawing the chariot of Bishṇu.
୨। ରାମାୟଣ ବର୍ଣ୍ଣିତ ଶ୍ରୀରାମମିତ୍ର କପୀଶ୍ୱର—
2. The name of the monkey-king of Kishkindhyā, the sworn friend of Rāmachandra. [ ଦ୍ର—ଏ ରୁକ୍ଷରାଜଙ୍କ ସ୍ତ୍ରୀଙ୍କ ଗର୍ଭରେ ସୂର୍ଯ୍ୟଙ୍କ ଔରସ ପୁତ୍ର । ଏହାଙ୍କ ଜ୍ୟେଷ୍ଠ ଭ୍ରାତା ବାଳି ରାଜା ଥିବା ସମୟରେ ମାୟାବୀ ଦୈତ୍ୟ ସଙ୍ଗେ ଯୁଦ୍ଧ କରୁ କରୁ ଏକ ଗୁହାରେ ପଶିଲେ ଏବଂ ସୁଗ୍ରୀବଙ୍କୁ ଗୁହାଦ୍ୱାର ଜଗାଇ ଗଲେ । ବାଳି ଏକ ବର୍ଷ କାଳ ଗୁହାରୁ ନ ଫେରିବାରୁ ସେ ମୃତ ହେବା ମନେ କରି ଉକ୍ତ ଦୈତ୍ୟଠାରୁ ନିବାରଣାର୍ଥ ସୁଗ୍ରୀବ ଉକ୍ତ ଗୁହାମୁଖକୁ ପଥର ଦ୍ୱାରା ରୁଦ୍ଧକରି ଫେରି ଆସି କିଷ୍କିନ୍ଧ୍ୟାର ରାଜା ହେଲେ । ଏକ ବର୍ଷ ପରେ ବାଳି ଉକ୍ତ ଦୈତ୍ୟକୁ ବଧ କରି ଫେରି ରୁଦ୍ଧଦ୍ୱାରକୁ ଠେଲି ବାହାରି ଆସି ସୁଗ୍ରୀବଙ୍କ ଉପରେ ରାଗାନ୍ୱିତ ହୋଇ ତାହାଙ୍କୁ କିଷ୍କିନ୍ଧ୍ୟାରୁ ତଡ଼ି ତାଙ୍କ ସ୍ତ୍ରୀ ରୁମାଙ୍କୁ ହରଣ କରି ନେବା ପରେ ରାମଚନ୍ଦ୍ର କିଷ୍କିନ୍ଧ୍ୟାରେ ପହଞ୍ଚିଲେ ଏବଂ ଏହାଙ୍କ ସଙ୍ଗେ 'ସଙ୍ଗାତ' ବସି ଏହାଙ୍କ ପ୍ରେରିତ ହନୁମାନଙ୍କ ଦ୍ୱାରା ସୀତାଙ୍କୁ ଲଙ୍କାରେ ଠାବ କରାଇଲେ ଓ ରାମଚନ୍ଦ୍ର ବାଳିଙ୍କୁ ବଧ କରି ରୁମାଙ୍କୁ ଉଦ୍ଧାର କଲେ ଏବଂ ବାଳିଙ୍କ ସ୍ତ୍ରୀ ତାରାଙ୍କ ସହିତ ସୁଗ୍ରୀବଙ୍କୁ ରାଜ୍ୟରେ ଅଭିଷିକ୍ତ କଲେ । ସୁଗ୍ରୀବ କୃତଜ୍ଞତାର ନିଦର୍ଶନସ୍ୱରୂପ କପି ସେନା ସହିତ ଲଙ୍କାକୁ ଯାଇ ରାମଚନ୍ଦ୍ରଙ୍କୁ ସାହାଯ୍ୟ କରିବାରେ ରାମଚନ୍ଦ୍ର ରାବଣକୁ ମାରି ସୀତାଙ୍କୁ ଉଦ୍ଧାର କଲେ । ସୁଗ୍ରୀବ ରାମଙ୍କ ସଙ୍ଗେ ଅଯୋଧ୍ୟାକୁ ମଧ୍ୟ ଗଲେ; ତତ୍ପରେ କିଷ୍କିନ୍ଧ୍ୟାକୁ ଫେରି ସେଠାରେ ରାଜତ୍ୱ କଲେ । ରାମଚନ୍ଦ୍ର ଦେହ ତ୍ୟାଗ

କରିବାକୁ ଉଦ୍ୟତ ହେବା ସମ୍ବାଦ ଶୁଣି ସୁଗ୍ରୀବ ବାଳିପୁତ୍ର ଅଙ୍ଗଦଙ୍କୁ ସ୍ୱରାଜ୍ୟରେ ବସାଇ ଅଯୋଧ୍ୟାକୁ ଗଲେ ଏବଂ ରାମଙ୍କ ଅନୁଗମନ କରି ଶରୀର ତ୍ୟାଗ କରି ସୂର୍ଯ୍ୟଙ୍କ ମଣ୍ଡଳରେ ପ୍ରବିଷ୍ଟ ହେଲେ—ରାମାୟଣ । ] ୩ । ଚଣ୍ଡୀ ବା ଦେବୀ ମାହାତ୍ମ୍ୟରେ ବର୍ଣ୍ଣିତ ଅସୁର ବିଶେଷ—3. Name of a demon described in the Chandī Purāṇa. [ ବି—ଚଣ୍ଡୀଙ୍କ ରୂପରେ ମୁଗ୍ଧ ହୋଇ ଶୁମ୍ଭାସୁରର ଭୃତ୍ୟ ଚଣ୍ଡ ଓ ମୁଣ୍ଡ ଅସି ଶୁମ୍ଭକୁ ଜଣାଇଲେ, "ଏ ସୁନ୍ଦରୀ ରମଣୀରତ୍ନକୁ ଆପଣଙ୍କ ପରି ସାରଜ୍ଞ ଗ୍ରହଣ କରିବା ଉଚିତ ।" ଶୁମ୍ଭ ଏହା ଶୁଣି 'ସୁଗ୍ରୀବ'ଙ୍କୁ ଦେବୀଙ୍କ ନିକଟକୁ ବିବାହ ପ୍ରସ୍ତାବ କରି ଦୂତରୂପେ ପଠାଇଥିଲେ । ସୁଗ୍ରୀବ ଯାଇ ହିମାଚଳରେ ଅବସ୍ଥିତା ଦେବୀଙ୍କ ଆଗରେ ଶୁମ୍ଭଙ୍କ ପରାକ୍ରମ ବର୍ଣ୍ଣନା କରି ଶୁମ୍ଭଙ୍କ ଦ୍ୱାରା ପ୍ରେରିତ ସମ୍ବାଦ ଦେବୀଙ୍କୁ ଦେବାରୁ ଦେବୀ କହିଲେ—"ଯେଉଁ ବୀର ମୋ ସଙ୍ଗେ ଯୁଦ୍ଧ କରି ମୋତେ ପରାସ୍ତ କରିବେ, ସେହି ଏକା ମୋ ପାଣି ଗ୍ରହଣ କରିବେ ବୋଲି ମୁଁ ପୂର୍ବରୁ ପ୍ରତିଜ୍ଞା କରିଅଛି । ଏ କଥା ତୁମ୍ଭେ ଯାଇ ତୁମ୍ଭ ପ୍ରଭୁଙ୍କୁ କହ ।" ଏହା ଶୁଣି ସୁଗ୍ରୀବ ଉପହାସ କରି କହିଲା—"ତୁମ୍ଭେ ସୁଖରେ ମୋ ପ୍ରଭୁଙ୍କ ପାଖକୁ ଯାଉନାହଁ; କିନ୍ତୁ ପରେ 'କେଶାକର୍ଷଣନିର୍ଧୂତଗୌରବା' ହୋଇ ଯିବ ।" ଦେବୀ ଏହା ଶୁଣି ନିଜ ପ୍ରତିଜ୍ଞା ଅବିଚଳିତ ରଖିବାର ଇଚ୍ଛା ପ୍ରକାଶ କରିବାରୁ ସୁଗ୍ରୀବ ଯାଇ ଶୁମ୍ଭଙ୍କୁ ଏ କଥା ଜ୍ଞାପନ କଲା ଏବଂ ତତ୍ପରେ ଯେଉଁ ଯୁଦ୍ଧ ହେଲା, ସେଥିରେ ଶୁମ୍ଭ, ନିଶୁମ୍ଭ ଓ ତାଙ୍କ ସେନାପତିମାନେ ନିହତ ହେଲେ—ଚଣ୍ଡୀ ୬ଷ୍ଠ ଅଧ୍ୟାୟ । ] ୪ । ବର୍ତ୍ତମାନ ଅବସର୍ପିଣୀ (ଯୁଗ)ର ନବମ ଜିନପିତା; ଅର୍ହତ୍ ପିତା (ହେମଚନ୍ଦ୍ର)—4. Name of the father of a Buddhist saint, ninth in order of the present age. ୫ । ଶିବ ( ଶବ୍ଦକଳ୍ପଦ୍ରୁମ )—5. God Śiva. ୬ । ଇନ୍ଦ୍ର ( ଶବ୍ଦକଳ୍ପଦ୍ରୁମ )—6. God Indra. ୭ । ରାଜହଂସ ( ଶବ୍ଦକଳ୍ପଦ୍ରୁମ )—7. Swan. ୮ । ପର୍ବତବିଶେଷ (ଶବ୍ଦକଳ୍ପଦ୍ରୁମ)—8. Name of a mountain. ୯ । ଅସ୍ତ୍ରବିଶେଷ ( ଶବ୍ଦକଳ୍ପଦ୍ରୁମ )—9. A kind of weapon. ୧୦ । ନାଗଭେଦ ( ଶବ୍ଦକଳ୍ପଦ୍ରୁମ )—10. A kind of serpent. ୧୧ । ଶଙ୍ଖ (ହି. ଶ )—11. Conch-shell. ଦେ. ବି—ଉତ୍ତମ ଗ୍ରୀବା—A beautiful neck. [ ଉ—ବସ୍ତ୍ର ଏହି ବୋଲିଣ ଭଣୀବର, ବଳମ୍ବାଗ ସୁଗ୍ରୀବ ସୁଗ୍ରୀବର—ଭଞ୍ଜ ବୈଦେହୀଶ-ବିଳାସ । ]

সুগ্রীব ସୁଗ୍ରୀବ

**ସୁଗ୍ରୀବା**—ସଂ. ବି ( କର୍ମଧା ) ସୁନ୍ଦର ଗ୍ରୀବା—A fine neck.
Sugribā ସଂ. ବିଂ. ସ୍ତ୍ରୀ. ( ସୁଗ୍ରୀବ+ଆ )—ସୁଗ୍ରୀବର ସ୍ତ୍ରୀଲିଙ୍ଗ—Feminine of Sugrība.

**ସୁଗ୍ରୀବୀ**—ସଂ. ବି ( ନାମ )—( ସୁଗ୍ରୀବ+ଈ )—ତାମ୍ରଗର୍ଭଜାତା
Sugribī କଶ୍ୟପ ଦୁହିତା [ ଗରୁଡ଼ପୁରାଣ ]—Name of the daughter of sage Kaśyapa through Tārā. [ ଦ୍ର—ତାମ୍ରାଙ୍କର ୬ଟି କନ୍ୟା; ଯଥା—ଶୁକୀ, ଶ୍ୟେନୀ, ଭାସୀ, ସୁଗ୍ରୀବୀ, ଶୁଚୀ ଓ ଗୃଧ୍ରିକା । ସୁଗ୍ରୀବୀଠାରୁ ପକ୍ଷୀମାନେ ଜନ୍ମ ଲଭିଥିଲେ । ] ସଂ. ବିଣ· ସ୍ତ୍ରୀ—ସୁଗ୍ରୀବର ସ୍ତ୍ରୀଲିଙ୍ଗ—Feminine of Sugrība.

**ସୁଗ୍ରୀବେଶ**—ସଂ. ବି ( ୬ଷ୍ଠୀ ତତ୍; ସୁଗ୍ରୀବ+ଈଶ )—ରାମଚନ୍ଦ୍ର ( ଶବ୍ଦ
Sugribeśa ରତ୍ନାବଳୀ )—A name of Rāmachandra.

**ସୁଗ୍ଲ**—ସଂ. ବିଣ ( ସୁ+ଗ୍ଲୈ ଧାତୁ=ଗ୍ଲାନି କରିବା+କର୍ତ୍ତ୍ରି. ଅ )—
Sugla ଅତ୍ୟନ୍ତ ଗ୍ଲାନିବିଶିଷ୍ଟ—Disconcerting, distressing.

**ସୁଘଟଣ**—ଦେ. ବି ଓ ବିଣ—ସୁଗଠନ ( ଦେଖ )—Sugaṭhana
Sughaṭaṇa ( See ). [ ଉ—କିତମ୍ବ ବିମ୍ବ ସୁଘଟଣ । ମଦନ ଦେବ ସିଂହାସନ—ଭୂପତି, ପ୍ରେମପଞ୍ଚାମୃତ । ]

**ସୁଘଟନ**—ସଂ. ବି—୧ । ଶୁଭଯୁକ୍ତ ଘଟନା—1. Auspicious
Sughaṭan event. ୨ । ସୌଭାଗ୍ୟ—2. Good luck. ଦେ. ବିଣ—ସୁନ୍ଦର—Beautiful [ ଉ—
স্থগঠন ସୁଘଟ୍ଟ ବର୍ଷାଣ ଭୀଷଣ ଖୁରି ସୁଘଟନ ମାଣ୍ଡିକ୍ୟେ ନିର୍ମିତ—ଭଞ୍ଜ · ବୈଦେହୀଶବିଳାସ । ]

**ସୁଘଟ୍ଟିତ**—ସଂ· ବିଣ—ସୁନ୍ଦରରୂପେ ସଜ୍ଜିତ—
Sughaṭṭita Nicely got up or arranged.

**ସୁଘଡ଼ି**—ଦେ. ବି—୧ । ସୁସମୟ—1. Good time. ୨ । ଶୁଭସମୟ
Sughaṛi —2. Auspicious time.
সুসময় ସୁଘଡ଼ୀ

**ସୁଘୋଷ**—ସଂ. ବିଣ ( ବହୁବ୍ରୀହି )—ସୁନ୍ଦର ସ୍ୱରବିଶିଷ୍ଟ—Having a
Sughosha good tune or voice. ସଂ. ବି—୧ । ନକୁଳଙ୍କ ଶଙ୍ଖର ନାମ—1. Name of the conch blown by Nakula. ୨ । ବାଦ୍ୟଯନ୍ତ୍ରବିଶେଷ ( ହି. ଶ )—2. A kind of musical instrument.

**ସୁଙ୍କେଇବା**—ପ୍ରାଦେ ( କଟକ ) କ୍ରି—ସଙ୍କେଇବା (ଦେଖ)
Suṅkeibā Saṅkeibā ( See )

**ସୁଙ୍ଗା(ଙ୍ଘା)**—ଗ୍ରା. ବି ଓ ବିଣ—ଶୁଙ୍ଗା ( ଦେଖ )
Suṅgā(ṅghā) Śuṅgā ( See )

**ସୁଙ୍ଗା(ଙ୍ଗେ, ଙ୍ଘା, ଙ୍ଘେ)ଇବା**—ଗ୍ରା· କ୍ରି—ଶୁଙ୍ଗାଇବା ( ଦେଖ )
Suṅgā(ṅge, ṅghā, ṅghe) ibā Śuṅgāibā ( See )

**ସୁଙ୍ଗା(ଙ୍ଘା)ସୁଙ୍ଗି(ଙ୍ଘି)**—ଗ୍ରା. ବି—ବିଶେଷଭାବରେ ଶୁଙ୍ଘିବା—
Suṅgā(ṅghā)suṅgi(ṅghi) To smell keenly.
শোঁকাশুঁকি ସୁଙ୍ଘାସୁଙ୍ଘୀ

**ସୁଙ୍ଗି(ଙ୍ଘି)ବା**—ଗ୍ରା. କ୍ରି—ଶୁଙ୍ଘିବା ( ଦେଖ )—Śuṅghibā ( See )
Suṅgi(ṅghi)bā [ ଉ—କରେ ଦେଲି ସୁଗନ୍ଧ ମଣ୍ଡା, ସୁଙ୍ଗନ୍ତେ ଭ୍ରମରମଣି ହୋଇଲି ମେଣ୍ଢା—ପ୍ରତାପ. ଶଶିସେଣା । ]

ସୁଚକ୍ଷୁଃ—ସଂ. ବିଣ ( ସୁଚକ୍ଷୁସ୍, ୧ମା. ୧ବ )—ସୁନ୍ଦର ଚକ୍ଷୁର୍ଯୁକ୍ତ—
Suchakshuh Fair-eyed. ସଂ. ବି—୧ । ଜ୍ଞାନୀ ( ଲାକ୍ଷଣିକ )—1. Fig. ୨ । ଶିବ ( ଭୂ. ଶ )—2. Siba.

ସୁଚଞ୍ଚୁକା—ସଂ. ବି—ଗଛା ଚଞ୍ଚୁ ଶାକ ( ଗ୍ରାମ୍ୟଜାତିର )—
Suchañchukā A kind of wild pot herb.

ସୁଚରିତ—ସଂ. ବି—୧ । ସଦାଚାର—1. Good conduct. ୨ ।
Sucharita ସଦ୍ବ୍ୟବହାର—2. Good behaviour.
(ସୁଚରିତା—ସ୍ତ୍ରୀ) ସଂ. ବିଣ. ପୁଂ ( ବହୁବ୍ରୀହି )—ସଚ୍ଚରିତ୍ର; ସତ୍-ସ୍ୱଭାବବିଶିଷ୍ଟ—Of good conduct or character.

ସୁଚରିତ୍ର—ସଂ. ବିଣ. ପୁଂ ( ବହୁବ୍ରୀହି )—ସଚ୍ଚରିତ୍ର—
Sucharitra Of good conduct.
(ସୁଚରିତ୍ରା—ସ୍ତ୍ରୀ) (ସୁଚରିତ୍ରତା—ବି) ସଂ. ବି ( କର୍ମଧା )—ଉତ୍ତମ ଚରିତ୍ର—Good conduct.

ସୁଚରିତ୍ରା—ସଂ. ବି. ସ୍ତ୍ରୀ—ସାଧ୍ୱୀ ନାରୀ—A chaste woman.
Sucharitrā ସଂ. ବିଣ. ସ୍ତ୍ରୀ—ସୁଚରିତ୍ରର ସ୍ତ୍ରୀଲିଙ୍ଗ—Feminine of Sucharitra.

ସୁଚର୍ମା—ସଂ. ବିଣ. ପୁଂ ( ବହୁବ୍ରୀହି; ସୁ+ଚର୍ମନ୍; ୧ମା. ୧ବ )—
Sucharmā ଶୋଭନ ଚର୍ମବିଶିଷ୍ଟ—Possessing a good or fair skin. ସଂ. ବି—ଭୂର୍ଜ ବୃକ୍ଷ—The Indian Birch tree.

ସୁଚା(ଚେ)ଇବା—ପ୍ରାଦେ ( ସମ୍ବଲପୁର ) କ୍ରି—ଚେତାଇବା—
Suchā(che)ibā To remind. ଦେ. କ୍ରି (ସଂ. ସୂଚନା)—ସୂଚନା କରିବା—To hint; to indicate.

ସୁଚାରୁ—ସଂ. ବିଣ ( ସୁ+ଚାରୁ )—ସୁମନୋହର; ଅତି ସୁନ୍ଦର—
Suchāru Very beautiful; handsome. ସଂ. ବି. (ସୁଚାରୁତା—ବି) ପୁଂ )—୧ । ରୁକ୍ମିଣୀଗର୍ଭଜାତ ଶ୍ରୀକୃଷ୍ଣଙ୍କ ଏକ ପୁତ୍ର ( ଭୂ. ଶ )—1. Name of a son of Śrikrushṇa. ୨ । ବିଶ୍ୱକ୍‌ସେନଙ୍କ ପୁତ୍ର (ଭୂ. ଶ)—2. The son of Biswaksena.

ସୁଚାରୁ ରୂପେ—ଦେ. କ୍ରି. ବିଣ—ସୁନ୍ଦରରୂପେ—Beautifully;
Suchāru rūpe सुचारुरूपे सुचारुरूपसे handsomely.

ସୁଚାଲ(ଲି)—ଦେ. ବି—୧ । ଉତ୍ତମ ଆଚରଣ; ସଦାଚାର—1. Good
Suchāl(li) conduct. ୨ । ଉତ୍ତମ ରୀତି—2. Good custom.
सुचाल

ସୁଚି—ଦେ. ବି ( ସଂ. ସୂଚି=ମୈଥୁନବିଶେଷ M. W. )—
Suchi ଶୃଙ୍ଗାରରସ—Amour; amorous passion.
শৃঙ্গার [ ଉ—ବାଳ୍ୟ ପାଶେ ଅବସାନ କରେ ଅଙ୍ଗ ତରଙ୍ଗ-
शृङ्गार ଭଙ୍ଗ ଭୁଲାଇ । ସୁଚିପଦବୀ ଯେ, କରିବାରୁ ବିଚକ୍ଷଣ—ସାମନ୍ତସିଂହାର ବଦନ୍ତଚନ୍ଦ୍ରାମଣି । ]

ସୁଚିକ୍କଣ—ସଂ. ବିଣ—୧ । ଅତି ଚିକ୍କଣ ବା ମସୃଣ—1. Very
Suchikkaṇa smooth. ୨ । ଖୁବ୍ ସ୍ନିଗ୍ଧ—2. Very
(ସୁଚିକ୍କଣତା—ବି) oily; glossy.

ସୁଚିତ—ଗ୍ରା. ବି—ସୁଚିତ୍ତ (ଦେଖ)—Suchitta (See) [ ଉ—
Suchita ସୁଚିତେ ପୁଣ ନୃପସ୍ୱଣ—ଭୂପତି. ପ୍ରେମପଞ୍ଚାମୃତ । ]

ସୁଚିତ୍ତ—ସଂ. ବି—ଭଲ ଚିତ୍ତ; ପ୍ରସନ୍ନ ମନ—Well-disposed
Suchittta mind; propitious mind. ସଂ. ବିଣ. ପୁଂ (ସୁଚିତ୍ତା—ସ୍ତ୍ରୀ) ( ବହୁବ୍ରୀହି )—୧ । ସ୍ଥିରଚେତାଃ—1. Of a calm mind. ୨ । ନିଶ୍ଚିନ୍ତ ( ଭୂ. ଶ )—2. Free from anxiety.

ସୁଚିତ୍ର—ସଂ. ବି—ସୁନ୍ଦର ଚିତ୍ର—Beautiful picture. ସଂ. ବିଣ
Suchitra —ସୁନ୍ଦରରୂପେ ଚିତ୍ରିତ; ଚିତ୍ରିତ—Beautifully painted; illustrated. ( ଉ—ଅହା କି ବିଚିତ୍ର, ଗଗନ ସୁଚିତ୍ର । ଚୂଳ୍ଳାବଳୀ, ଅପରୂପେ ଜଳ—ଗୋବିନ୍ଦ ରଥ. ପଦ୍ୟାବଳୀ ।)

ସୁଚିତ୍ରକ—ସଂ. ବିଣ—ସୁଚିତ୍ର ( ଦେଖ )—Suchitra (See)
Suchitraka ସଂ. ବି—୧ । ମତ୍ସ୍ୟରଙ୍କ; ମାଛରଙ୍କା ଚଢ଼େଇ (ଶବ୍ଦ ରତ୍ନାବଳୀ) —1. The king fisher bird. ୨ । ଚିତ୍ରସର୍ପ (ଶବ୍ଦ କଳ୍ପଦ୍ରୁମ); ଚିତ୍ର ସାପ—2. A kind of snake.

ସୁଚିତ୍ର ବୀଜା—ସଂ. ବି—ବିଡ଼ଙ୍ଗ ( ଗ୍ରାମ୍ୟ ଜାତିର )—Embellia
Suchitra bijā Ribes; Embellia Rebusta.

ସୁଚିତ୍ରା—ସଂ. ବି—'ସୁଚିତ୍ର'ର ସ୍ତ୍ରୀଲିଙ୍ଗ—Feminine of Suchitra.
Suchitrā ସଂ. ବି—୧ । ରାଧାଙ୍କ ସଖୀ ବିଶେଷ—1. Name of one of the companions of Rādhā. ୨ । ଚିର୍ଭଟା (ଗ୍ରାମ୍ୟ ଜାତିର); ଫୁଟି କାକୁଡ଼ି—2. A species of cucumber.

ସୁଚିତ୍ରିତ—ସଂ. ବିଣ—ସୁଚିତ୍ର (ଦେଖ)—Suchitra (See)
Suchitrita (ସୁଚିତ୍ରିତା—ସ୍ତ୍ରୀ)

ସୁଚିନ୍ତା—ସଂ. ବି (କର୍ମଧା)—ଉତ୍ତମ ଚିନ୍ତା—Good thought.
Suchintā (ଦୁଶ୍ଚିନ୍ତା—ବିପରୀତ)

ସୁଚିନ୍ତିତ—ସଂ. ବିଣ—ସମ୍ୟକ୍ ରୂପେ ଚିନ୍ତିତ—
Suchintita Well thought out.

ସୁଚିବା—ପ୍ରାଦେ. (ସମ୍ବଲପୁର) କ୍ରି (ଭୁଲ ହି. ସୂଚନା)—ବିଚାର କରିବା
Suchibā —To consider.

ସୁଚିର—ସଂ. ବିଣ—ଅତି ଦୀର୍ଘକାଳ—Very long time. ସଂ. ବିଣ
Suchira —୧ । ଅତି ଦୀର୍ଘକାଳ ସ୍ଥାୟୀ—1. Very long-lived. ୨ । ଚିରସ୍ଥାୟୀ—2. Permanent. ୩ । ପ୍ରାଚୀନ (ଭୂ. ଶ)—3. Ancient; old.

ସୁଚିର କେତୁ—ସଂ. ବି—ରେଶମୀ ପତାକା—Silken flag. [ ଉ—
Suchira ketu ବଡ଼ଶ୍ୱରେ ରଙ୍ଗ, ସୁଚିର କେତୁ କି, ଭୁଇଁ ଶୃଙ୍ଖଳୀ ନ ବଢେ । ଉଞ୍ଜ. ବୈଦେହୀଶବିଳାସ ।]

ସୁଚିରାୟୁଃ—ସଂ. ବି (ସୁଚିର+ଆୟୁସ୍; ୧ମା. ୧ବ; ବହୁବ୍ରୀହି)—
Suchirāyuh ଦେବତା; ଦେବ—Deity; divine being. ସଂ. ବିଣ—ଯେ ଦୀର୍ଘକାଳ ବଞ୍ଚେ; ଅତି ଦୀର୍ଘାୟୁଃ—Living for a very long time.

ସୁଚୁକ୍ରିକା—ସଂ ବି—ତେନ୍ତୁଳି (ହ. ଶ)—
Suchukrikā Tamarind.

ସୁଚୁଟୀ—ସଂ. ବି (ସୁ+ଚୁଟ୍ ଧାତୁ=ଛେଦନ କରିବା+କରଣ. ଅ+ସ୍ତ୍ରୀ. ଈ)—
Suchuṭi ୧ । ପଦାର୍ଥକୁ ଅଗ୍ନିରୁ ଉଠାଇବା ପାଇଁ ବ୍ୟବହୃତ ଲୌହର ଦ୍ୱିବାହୁକ ଯନ୍ତ୍ର; ଚିମୁଟା—1. A pair of tongs. ୨ । ସଣ୍ଢୁଅସି (ହ. ଶ)—2. Pincers.

ସୁଚେତା—ଦେ. ବିଣ (ସଂ. ସୁଚେତାଃ)—ସୁଚେତାଃ (ଦେଖ)
Suchetā Suchetāḥ (See)
ସୁଚେତ [ଉ—ଉଦର ଉଙ୍ଗୁର ଭାବ ଜାଣି ଯୁଧିଷ୍ଠିର, ଜବେଶିଣ
सुचेत ଥିଲେ ତହିଁ ସୁଚେତା ଶୁଣନ୍ତେ । ରାଧାନାଥ. ମହାଯାତ୍ରା]

ସୁଚେତାଃ—ସଂ. ବିଣ ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ସୁ+ଚେତସ୍; ୧ମା.୧ବ)
Suchetāh —୧ । ସୁହୃଦୟ; ସାଧୁ ହୃଦୟ ବିଶିଷ୍ଟ; ସୁଚିତ୍ତ—1. Having a broad mind; having a good mind. ୨ । ସତର୍କ; ଚେତାଳ—2. Vigilant; careful.

ସୁଚେଳ—ସଂ. ବି (କର୍ମଧା)—୧ । ସୁନ୍ଦର ବସ୍ତ୍ର—1. Beautiful
Suchela cloth. ୨ । ସରୁ ଲୁଗା—2. Fine cloth.
(ସୁଚେଳକ—ଅନ୍ୟରୂପ)

ସୁଛନ୍ଦ—ଗ୍ରା. ବି ଓ କ୍ରି. ବିଣ (ସଂ. ସ୍ୱଚ୍ଛନ୍ଦ)—ସ୍ୱଚ୍ଛନ୍ଦ (ଦେଖ)
Suchhanda सुच्छन्द Swachchhanda (See)
ସଂ. ବି—ସୁଗଢ଼ଣ—Beautiful make. ସଂ. ବିଣ—ସୁନ୍ଦର ଗଢ଼ଣଯୁକ୍ତ—Of beautiful make.

ସୁଚ୍ଛନ୍ଦୀ—ସଂ. ବି. ସ୍ତ୍ରୀ—ସିନ୍ଧୁ ନଦୀର ପୂର୍ବତମ ଶାଖା; ଶତଦ୍ରୁ ନଦୀ
Suchchhandī (ଶବ୍ଦ ରତ୍ନାବଳୀ)—The Sutlej river.

ସୁଜନ—ସଂ. ବି—୧ । ସଜ୍ଜନ; ସାଧୁ—1. Good or honest
Sujana man. ୨ । ଭଦ୍ର ବ୍ୟକ୍ତି—2. A gentleman.
(ଦୁର୍ଜନ—ବିପରୀତ) ପ୍ରାଦେ. (ଯାଜପୁର) ବି—ସଜନା (ଗଛ)—Horse radish (tree).

ସୁଜନତା—ସଂ. ବି (ସୁଜନ+ଭାବ. ତା)—୧ । ସଜ୍ଜନତା; ସୌଜନ୍ୟ—
Sujanatā 1. Civility. ୨ । ସାଧୁତା—2. Honesty.

ସୁଜ(ଜୁ)ନା—ପ୍ରାଦେ. (ଯାଜପୁର) ବି—ସଜନା (ଗଛ)—
Suja(ju)nā Horse radish (tree).

ସୁଜନ୍ମା—ସଂ. ବିଣ (ସୁ+ଜନ୍ମନ୍; ୧ମା. ୧ବ; ବହୁବ୍ରୀହି)—
Sujanmā ୧ । ବିବାହିତ ପତିଙ୍କ ଔରସ ଜାତ (ସନ୍ତାନ)—1. Legitimate (child). ୨ । ସଦ୍‌ବଂଶ ଜାତ—2. Of gentle or noble birth. ୩ । ସର୍ବଜନ୍ମା; ଅତି ସାଧୁ—3. Very good and noble.

ସୁଜୟ—ସଂ. ବିଣ (ସୁ+ଜି ଧାତୁ+କର୍ମ. ଅ)—ସୁଜେୟ (ଦେଖ)
Sujaya Sujeya (See)
(ଦୁର୍ଜୟ—ବିପରୀତ)

ସୁଜଳ—ସଂ. ବି—୧ । ସୁନ୍ଦର ଜଳ—1. Good water. ୨ ।
Sujala ପବିତ୍ର ଜଳ—2. Sacred water. ୩ । କମଳ; ପଦ୍ମ (ଶବ୍ଦ କଳ୍ପଦ୍ରୁମ)—3. Lotus. ସଂ. ବିଣ. ପୁଂ (ବହୁବ୍ରୀହି)—୧ । ସୁନ୍ଦର ଜଳଯୁକ୍ତ—1. Having
(ସୁଜଳା—ସ୍ତ୍ରୀ) good water. ୨ । ଯଥେଷ୍ଟ ଜଳଯୁକ୍ତ; ସୁଜଳବାନ୍—2. Abounding in water. [ଉ—............ସୁଜଳା ସୁଫଳା, ଏ ଶସ୍ୟ ଶ୍ୟାମଳା ଧରା ପର ହାତେ ଦେଇ । ରାଧାନାଥ. ମହାଯାତ୍ରା ।]

ସୁଜଳବାନ୍—ସଂ. ବିଣ. ପୁଂ (ସୁଜଳ+ବତ୍; ୧ମା. ୧ବ)—
Sujalabān ୧ । ପବିତ୍ର ଜଳଯୁକ୍ତ—1. Having sacred
(ସୁଜଳବତୀ—ସ୍ତ୍ରୀ) water. ୨ । ବିଶୁଦ୍ଧ ଜଳଯୁକ୍ତ—
(ସୁଜଳବତ—କ୍ଲୀବ) 2. Having pure water. ୩ । ସୁସ୍ୱାଦୁ ଜଳଯୁକ୍ତ— Having sweet water. ୪ । ଯଥେଷ୍ଟ ଜଳଯୁକ୍ତ—4. Having plenty of water.

ସୁଜଳ୍ପ—ସଂ. ବି (ବହୁବ୍ରୀହି)—ବାକ୍ୟ ବିଶେଷ; ସରଳତା, ସତ୍ୟ,
Sujalpa ଗାମ୍ଭୀର୍ଯ୍ୟ ଓ ସହୃଦୟତା ପୂର୍ଣ୍ଣ ଓ ଶିଷ୍ଟତାଯୁକ୍ତ ବାକ୍ୟ (ଉଜ୍ଜ୍ୱଳ ନୀଳମଣି)—Gentle and truthful words.

ସୁଜାଉଦ୍ଦୌଲ୍ଲା—ବୈଦେ. ବି (ନାମ)—ଅଯୋଧ୍ୟାର ଜଣେ କ ନବାବ—
Sujā uddaulā Name of a Nobab of Oudh.
सूजाउद्दौला सुजाउद्दौला [ଦ୍ର—ଏ ନବାବ୍ ଉଜିର୍ ସଫ୍‌ଦର୍‌ଙ୍କ ପୁତ୍ର । ଏହାଙ୍କ ପ୍ରକୃତ ନାମ ଜଲାଲ୍ ଉଦ୍ଦିନ୍ ହଏଦର୍ । ଏ ଖ୍ରୀ ୧୭୩୧ ରେ ଜନ୍ମଗ୍ରହଣ କରିଥିଲେ ଏବଂ ୧୭୫୩ ରେ ଅଯୋଧ୍ୟାର ସିଂହାସନ ଅଧିକାର କଲେ । ଏ ବଙ୍ଗଳାର ପଳାତକ ନବାବ ମିର୍‌କାସିମଙ୍କୁ ଆଶ୍ରୟ ଦେଇ ଇଂରେଜଙ୍କ ସଙ୍ଗେ ଯୁଦ୍ଧ କରି ପରାଜିତ ହୋଇ ପରେ ରୋହିଲା ଓ ମରହଟ୍ଟାମାନଙ୍କ ଆଶ୍ରୟ ନେଲେ । ଏ ପରେ ଇଂରେଜଙ୍କଠାରେ ଆତ୍ମସମର୍ପଣ କରିବାରୁ ଇଂରେଜମାନେ ପୁଣି ଏହାଙ୍କୁ ଅଯୋଧ୍ୟାର ନବାବ ପଦରେ ପ୍ରତିଷ୍ଠିତ କଲେ । ଏ ଖ୍ରୀ ୧୭୭୫ ରେ ପ୍ରାଣତ୍ୟାଗ କଲେ ।]

ସୁଜାକ୍—ବୈଦେ. ବି (ଫା)—ଔପସର୍ଗିକ ମେହ—
Sujāk A kind of gonorrohea.
सूजाक सुजाक

ସୁଜାଡ଼(ଢ଼)ିବା—ଦେ. କ୍ରି—ସଂଘାଡ଼ିବା ୩, ୪ (ଦେଖ)
Sujārdi(ri)bā Sanghārdibā 3, 4 (See)

ସୁଜାଣ—ଦେ. ବିଣ. ପୁଂ ଓ ସ୍ତ୍ରୀ (ସଂ. ସୁଜ୍ଞ)—୧ । ସୁଜ୍ଞ (ଦେଖ)—
Sujāṇa 1. Sujna (See) (ଉ—ବଶିଷ୍ଠାଦିଏ
सूजान सुजान(नी) ଅଜାଣ, ବଡ଼ ସୁଜାଣ ଭୁ—
ରଞ୍ଜ. ବୈଦେହୀଶବିଳାସ ।) ୨ । ଚତୁର—
2. Clever.

ସୁଜ୍ଞାନମଣି—ଦେ ବ. ସ୍ତ୍ରୀ—୧ । ସୁଜ୍ଞ ସ୍ତ୍ରୀ; ପଣ୍ଡିତା ସ୍ତ୍ରୀ—
Sujānamaṇi 1. A learned or considerate
ସୁପଣ୍ଡିତା सुजानमनी woman. ୨ । ଚତୁର ସ୍ତ୍ରୀ—
2. A clever woman.

ସୁଜାତ—ସଂ. ବଣ. ପୁଂ—ସୁଜନ୍ମା ( ଦେଖ )—Sujanmā (See)
Sujāta (ଦ୍ର—ସୁଜାତ ଦ୍ୱିଜ ଯେବେ ଗାୟତ୍ରୀ ପଢ଼େ ଉଚ୍ଚ-ଭକ୍ତିରେ । ମହାଭାରତ. ବନ ।)

ସୁଜାତା—ସଂ. ବ—୧ । ତୁବରୀ ( ଗନ୍ଧଦ୍ରବ୍ୟ ) (ଦେଖ)—
Sujātā Tubarī ( See ) ୨ । ଉଦ୍ଦାଲକ-କନ୍ୟା—2. Daughter of Sage Uddālaka.
୩ । ବୁଦ୍ଧଦେବଙ୍କ ବୁଦ୍ଧତ୍ୱ ପ୍ରାପ୍ତି ପରେ ତାଙ୍କୁ ନିଜ ଘରକୁ ଡାକି ଭୋଜନ କରାଇ ଥିବା ଜଣେ ଗ୍ରାମ୍ୟ କନ୍ୟା—
3. Name of a village maiden who led the Buddha at her house. ସଂ. ବଣ. ସ୍ତ୍ରୀ—'ସୁଜାତ'ର ସ୍ତ୍ରୀଲିଙ୍ଗ—Feminine of 'Sujāta'.

ସୁଜି—ଦେ. ବ ( ସଂ ସମୀଦ=ଗହମ ଅଟା; ଏଥିର ସଂସ୍କୃତ ନାମ ସମିତା—ଭାବପ୍ରକାଶ)—ଅଟାର ବା ମଇଦାର ଚୂର;
Suji
ସୁଜି सूजी ଚୋପା ଚୂର ତାକୁ ଚାଲୁଣିରେ ଚାଲିବା ପରେ ଯେଉଁ ଗଦଡା ବା କ୍ଷୁଦ୍ର ରହିଯାଏ - Semolina; grits; coarse flour; granules of wheat left after the flour is passed through the sieve.[ଦ୍ର—ଏଥିରେ ରୁଟି, ମହଣଭୋଗ ଓ ଖିରି ହୁଏ ।] ପ୍ରାଦେ (ସମ୍ବଲପୁର) ବ (ଭୁଲ ବ. ସୂଚୀ) ଛୁଞ୍ଚ—Needle.

ସୁଜନ —ଦେ. ବ (ସଂ. ସୁ+ଜାନ; ଫା. ସୋଜନ୍ଗ)—୧ । ଦୁଇ ପ୍ରସ୍ଥ
Sujin କନା ମଝିରେ ଖୁବ୍ ପତଳା ତୁଳା ରଖାଯାଇ ତା ଉପରେ
ସୋ(ସୁ)ଜନୀ ସୂଚୀଦ୍ୱାରା ନାନା ଚିତ୍ର କରାଯାଇଥିବା ଆସନ ବା
सुजनी ବିଛଣା ଗୁଦର—1. A very thin quilt with fine needlework and used as bedsheet. ୨ । ସୂଚୀକର୍ମଦ୍ୱାରା ଅଳଂକୃତ କାର୍ପାସ ବସ୍ତ୍ରର ଛୋଟ ଆସନ—2. A small sitting mat. [ଦ୍ର—ଏହା ପୁଷ୍ପାଞ୍ଚଳର ପିପିଲିର ଦରଜୀମାନେ କରନ୍ତି ।]

ସୁଜିହ୍ୱ—ସଂ. ବଣ. ପୁଂ (ବହୁବ୍ରୀହି; ସୁ+ଜିହ୍ୱା+ଅ)—୧ । ସୁନ୍ଦର
Sujihwa ଜିହ୍ୱାବିଶିଷ୍ଟ—1. Having a good tongue.
[ ସୁଜିହ୍ୱା—ସ୍ତ୍ରୀ ] ୨ । ମଧୁରଭାଷୀ (ବି. ଶ)—2. Sweet-speaking.

ସୁଜୀବନ୍ତୀ—ସଂ. ବ—ସ୍ୱର୍ଣ୍ଣଜୀବନ୍ତୀ—The yellow variety of
Sujībantī Jībantī. [ଦ୍ର—ବୈଦ୍ୟଙ୍କ ଅନୁସାରେ ଏହା ବଳ-
ଅନ୍ୟ ସଂ. ନାମ—ସ୍ୱର୍ଣ୍ଣଜୀବନ୍ତୀ, ସ୍ୱର୍ଣ୍ଣଲତା, ହେମବଲ୍ଲୀ, ହେମପୁଷ୍ପୀ, ହେମା, ସୌମ୍ୟା । } ଶାର୍ଙ୍ଗବର୍ଦ୍ଧକ, ନେତ୍ର ହିତକର, ବାତ, ରକ୍ତ, ପିତ୍ତ ଓ ଦାହ-ଦୂରକର—ବି. ଶ । ]
पीलीजीवन्ती

ସୁଜୀର୍ଣ୍ଣ—ସଂ. ବଣ—୧ । ଉତ୍ତମରୂପେ ଜୀର୍ଣ୍ଣ - 1. Well digested.
Sujīrṇṇa ୨ । ଅତ୍ୟନ୍ତ ଚିରା—2. Tattered. ୩ । ଖୁବ୍ ସରୁ; ଅତ୍ୟନ୍ତ ସରୁ—3. Too thin.

ସୁଜେୟ—ସଂ. ବଣ ( ସୁ=ସୁଖରେ+ଜେୟ=ଯାହାକୁ ଜୟ କରି
Sujeya ପାରିହେବ)—ଯାହାକୁ ଅତି ସହଜରେ ଜୟ କରାଯାଇ ପାରେ—Easily vanquished.

ସୁଜୋର୍—ଦେ. ବ—ଅତ୍ୟନ୍ତ ଜୋର୍—
Sujor Much strength or force,
সজোর सुजोर or emphasis.

ସୁଜୋରେ—ଦେ. କ୍ରି. ବଣ—ଖୁବ୍ ଜୋର୍ ରେ—
Sujore With great force,
সজোরে सुजोरसे or emphasis.

ସୁଜ୍ଞ - ସଂ. ବଣ. ପୁଂ—୧ । (ସୁ+ଜ୍ଞା ଧାତୁ=ଜାଣିବା+କର୍ତ୍ତି. ଅ)
Sujña ବିଜ୍ଞ; ପଣ୍ଡିତ; ବିଦ୍ୱାନ୍—1. Learned. ୨। ଅଭିଜ୍ଞ—
[ ସୁଜ୍ଞା—ସ୍ତ୍ରୀ ] 2. Experienced. ୩ । ସୁବିବେଚକ—
[ସୁଜ୍ଞତା(ତ୍ୱ)—ବ] 3. Considerate.

ସୁଜ୍ଞାତ - ସଂ ବଣ (ସୁ+ଜ୍ଞାତ)—୧ । ଉତ୍ତମରୂପେ ଜଣା—1. Well
Sujñāta known. ୨ । ସୁପରିଚିତ—2. Well acquainted.

ସୁଜ୍ଞାନ—ସଂ. ବ—୧ । ବ୍ରହ୍ମଜ୍ଞାନ—1. Spiritual knowledge.
Sujñāna ୨ । ଉତ୍ତମ ଜ୍ଞାନ—2. Thorough knowledge.

ସୁଜ୍ଞାନୀ—ସଂ. ବଣ—୧ । ବ୍ରହ୍ମଜ୍ଞାନୀ—1. A person having
Sujñānī spiritual knowledge. ଦେ. ବଣ—ଯେଉଁ
[ସୁଜ୍ଞାନୀ—ବ୍ୟତ୍ପତ୍ତି] ବ୍ୟକ୍ତି ଆପଣା ଜ୍ଞାନକୁ ପରର ଉପକାରରେ
সুজ্ঞানী ଲଗାଏ—Applying one's attainments or
सुज्ञानी knowledge for the benefit of others.

ସୁଜ୍ଞେୟ—ସଂ. ବଣ (ସୁ+ଜ୍ଞେୟ)—ଯାହା ସହଜରେ ଜଣାଯାଏ—
Sujñeya Easily comprehensible; easy of
[ଦୁର୍ଜ୍ଞେୟ—ବିପରୀତ] comprehension.

ସୁଝ(ଝା) (ଇତ୍ୟାଦି)—ଦେ. ବ ଓ ବଣ—ଶୁଝ(ଝା) ଇତ୍ୟାଦି (ଦେଖ)
Sujha(jhā) (etc) Śujha(jhā) etc (See)

ସୁଝା(ଝେ)ଇବା—ଦେ. କ୍ରି—୧ । ଶୁଝାଇବା (ଦେଖ)—
Sujhā(jhe)ibā 1. Śujhaibā (See)
সোঝা ୨ । ବୁଝାଇବା; ସମଝାଇବା—
सुझाना 2. To make one understand; to explain.

ସୁଝିବା—ଦେ. କ୍ରି—୧ । ଶୁଝିବା (ଦେଖ)—1. Śujhibā (See)
Sujhibā ୨ । ବୁଝିବା —2. To comprehend.
বোঝা बूझना

ସୁଝୀନ —ଦେ. ବଣ—ଅତି ସୂକ୍ଷ୍ମ—Too thin; very fine.
Sujhīna [ଦ୍ର—ଦିବ୍ୟ ଅଳଙ୍କାର ଯେ ସୁଝୀନ ବସନ ।
মসলিন महीन କୃଷ୍ଣସିଂହ. ମହାଭାରତ. ଅଦି ।]

ସୁଞ୍ଚି—ଦେ. ବ (ସଂ. ସୂଚୀ)—ସୂଚୀ; ଛୁଞ୍ଚ—
Sunchi ছুঁচ सुई Needle.

ସୁଟ୍ —ବୈଦେ. ବ (ଇଂ. ସୁଟ୍)—୧ । ପୋଷାକର ଗୋଟିଏ ସାଜ—
Suṭ 1. A suit of dress. [ ଦୃ—କୋଟ୍, ପେଣ୍ଟଲୁନ୍ ଓ
सूट् ଵେଷ୍ଟକୋଟ୍‌ରେ ଗୋଟିଏ ସୁଟ୍ ହୁଏ।] ୨ । ଅଳଙ୍କାରର
सूट ଏକ ସଜ—2. A set of ornaments. ୩ । ଦେବାନି
ମକଦ୍ଦମା—3. Suit; civil suit. ୪ । ବନ୍ଧୁକରେ
ଫାଏର୍ କରିବା—4. Shooting. ଦେ. ଅ (ଧ୍ୱନ୍ୟନୁକରଣ)—୧ । ବୋତଲର ଚେପି ବାହାରିବାର ଧୀର
[ସୁଟ୍‌ସାଟ୍, ସୁଟ୍ ସୁଟ୍—ଅନ୍ୟରୂପ] ଶବ୍ଦ—1. Sound of uncorking of bottles. ୨ । ଅଫିମର ଗୁଲି ବା ମଦକ
सूट ଫିସ୍‌ଫିସ୍ ହୁକ୍କା ଟାଣିବାର ଶବ୍ଦ; ଗୁଡ୍ ଗୁଡ୍ ସୁଟ୍—2. The
सुर्प sound of smoking opium bullets with the hookah. ୩ । ଅତ୍ୟନ୍ତ ଗୋପନରେ କଥାବାର୍ତ୍ତା କରିବାର ଶବ୍ଦ—3. Whispering sound.

ସୁଟ୍ କରିବା—ଦେ. କ୍ରି (ଇଂରାଜୀ ପଢ଼ୁଥିବା ବ୍ୟବହୃତ ଭାଷା; ଇଂ)—
Suṭ karibā ୧ । ବନ୍ଧୁକ ଫାଏର୍ କରିବା; ଲକ୍ଷ୍ୟ—1. To
सूट् करा shoot. ୨ । ଉପଯୋଗୀ ହେବା—2. To suit.
सूटकरना [ଉ ଏ ଜଳବାୟୁ ମତେ ସୁଟ୍ କରୁ ନାହିଁ।]

ସୁଟ୍ କେସ୍—ବୈଦେ. ବ (ଇଂ. ସୁଟ୍ କେସ୍)—ପୋଷାକ ଓ
Suṭ kes ଦୈନିକ ବ୍ୟବହାର୍ଯ୍ୟ ଦ୍ରବ୍ୟାଦି ରଖିବାର ବାକ୍ସ—
सुट्‌केस् सूटकेश Suit case.

ସୁଟ୍‌ସାଟ୍ କରିବା—ଦେ. କ୍ରି —କୌଣସି ଗୁପ୍ତ କଥାକୁ (କହୁଛେକ
Suṭ-sāṭ karibā କାନେ କାନେ କୁହାକୋହି ହେବାଦ୍ୱାରା)
প্রকাশ করা ପ୍ରକାଶ କରିବା; ଘୋଷ କରିବା—To whisper
गुपचुपसे प्रकट करना a thing abroad.

ସୁଟ୍‌ସାଟ୍ ନ କର୍ତ୍ତବ୍ୟଂ—ଦେ. ବାକ୍ୟ—ଏ ବିଷୟ ଅନ୍ୟତ୍ର ଅପ୍ରକାଶ୍ୟ;
Suṭ-sāṭ na karttabyam ଏ କଥା ଅନ୍ୟଠାରେ ପ୍ରକାଶ କରିବା ଉଚିତ ନୁହେଁ—Do not make this public.

ସୁଟ(ଠ)—ବୈଦେ. ବ (ଇଂ. ଶୁଟ୍)—୧ । କେନାଲରୁ କଢ଼ାଯାଇ ପାଣି
Suṭa(ṭha) ମଡ଼ାଇବା ପାଇଁ ପ୍ରସ୍ତୁତ କରାଯିବା ଛୋଟ ଶାଖା—
सुट् 1. Branch or distributary for irrigating
सूट lands from a larger canal. ୨ । କେନାଲରୁ କିଆରୀକୁ ପାଣି ନିବା ନିମନ୍ତେ କରା ଯାଇଥିବା ପୋଡ଼ା ମାଟିର ନଳା—2. Pipes of burnt clay used for conveying water from a canal to the field. [ ଦୃ—ଏ ଦେଶରେ କୃଷ୍ଣାଇମାନଙ୍କ ଉଆର କରିବା ସୁଟକୁ 'ଦେଶୀସୁଟ' ଓ ସ୍ୱର୍ଣ୍ଣଗଞ୍ଜ କଳ—ପୋଡ଼ା ସୁଟକୁ 'ସ୍ୱର୍ଣ୍ଣଗଞ୍ଜ ସୁଟ' ବୋଲଯାଏ । ସୁଟର ବ୍ୟାସ ଅନୁସାରେ ସୁଟର ଶ୍ରେଣୀବିଭାଗ ହୁଏ । ଯଥା — ଦୁଇ ଇଞ୍ଚିଆ ସୁଟ, ଛଅ ଇଞ୍ଚିଆ ସୁଟ ।]

ସୁଟା(ଠା)—ବୈଦେ. ବ (ଇଂ ଶୋଡ଼ା)—ଶୋଡ଼ା (ଦେଖ)—
Suṭā(ṭhā) Sorḍā (See) (ଦୃ—ବାଇସୁଠା) ।

ସୁଟ (ଧାତୁ)—ସ - ତାଚ୍ଛଲ୍ୟ ବା ଅନାଦର କରିବା—
Suṭṭa (root) To disregard; to slight.

ସୁଠାଣି—ଦେ. ବଣ (ସ. ସୁଷ୍ଠୁ), ସୁନ୍ଦର—Beautiful.
Suṭhāṇi (ଉ—ଭ୍ରୂଭଙ୍ଗଯୁଗଳ ସୁଠାଣି ଅଭଙ୍ଗରୂପ ପ୍ରଭୁ
सुठाम सुठार, सुठौना ଛବି—ଜଗନ୍ନାଥ ଭାଗବତ ।)

ସୁଠାମ—ଦେ. ବ ଓ ବଣ—ସୁଗଠନ (ଦେଖ)
Suṭhāma Sugaṭhana (See)
सुठाम सुठार

ସୁଡ୍(ଡ୍ରୁ)ସୁଡ୍(ଡ୍ରୁ)—ଦେ. ଅ (ଧ୍ୱନ୍ୟନୁକରଣ)—ପାଣିଆ ଦ୍ରବ୍ୟ
Surḍ-(rḍu)surḍ(rḍu) (ଯଥା—ପଖାଳ, ଦହି, ଡାଲି)
সুপসুপ सुड़सुड़, सुरसुर ଖାଇବା ଶବ୍ଦ - The sound of eating liquid things; smacking sound. (ଉ—ଭାତ ପକ୍ଷ ପାଣରେ ବମି ବଡ ବଡ଼ ଗୁଣ୍ଡା ସୁଡ୍‌ସୁଡ୍ ଶବ୍ଦରେ ଖାଇ ଦଣ୍ଡକ ମଧ୍ୟରେ ପତ୍ର ଖାଲି କରିଦେଲି—ଫକୀରମୋହନ ଛମାଣ ଆଠଗୁଣ୍ଠ ।)

ସୁଡଉଲ —ଦେ. ବଣ. ପୁଂ ଓ ସ୍ତ୍ରୀ—ସୁଗଠନ (ଦେଖ)—
Sudaula Sugaṭhana (See)
( ସୁଡୌଲ, ସୁଡୌଲିଆ, ଦୁଡଉଲିଆ—ଅନ୍ୟରୂପ )
সুডোল सुडौल

ସୁଡ(ଡ୍)କା—ପ୍ରାଦେ (ଗଡ଼ଜାତ) ବ ଓ ବଣ. ପୁଂ—ଷୋଡ଼ଗା (ଦେଖ)
Surḍ (rḍu)kā Sorḍakā (See)
[ ସୁଡ୍(ଡ୍)କୀ—ସ୍ତ୍ରୀ ]

ସୁଡ଼(ଡ୍)କିବା—ଦେ. କ୍ରି (ଧ୍ୱନ୍ୟନୁକରଣ)—ସୋଡକିବା; ସୁଡ ସୁଡ
Surḍa(rḍu)kibā ଶବ୍ଦ କରି ଜଳୀୟ ବା ଜଳମିଶ୍ରିତ ବସ୍ତୁ
সুপসুপ করা सुरकना ଖାଇବା—To eat liquid things with a smacking sound.

ସୁଡ(ଢ)ଙ୍ଗ—ଦେ. ବ (ସ. ସୁରଙ୍ଗ, ସୁରୁଙ୍ଗା—ବିମ୍ବଣ୍)—ପାହାଡ ବା
Surḍa(rḍha)ṅga ମାଟି ଉପରେ ଉପରେ ଦୂରକୁ ଖୋଳାଯାଇ—
সুড়ঙ্গ सुरंग ଥିବା ଲମ୍ବ ଗର୍ତ୍ତ—Tunnel.

ସୁଡା—ଦେ. ବ— ଶୁଡ଼ା (ଦେଖ)—
Surḍā Surḍā (See)

ସୁଡ଼ି ରାସ୍ତା—ପ୍ରାଦେ (ସିଂହଭୂମି) ବ—କେବଳ ମନୁଷ୍ୟ ଗୃହଲାଇନ ପଥ।
Surḍi rāstā Track; path way.

ସୁଡୀନ—ସଂ. ବ (ସୁ+ଡୀନ) — ପକ୍ଷୀଙ୍କ ଗତିବିଶେଷ
Suḍīna ("ଡୀନ" ଦେଖ)—A kind of bird's flight.

ସୁଢଙ୍ଗ—ଦେ. ବ—ଉତ୍ତମ ଭଙ୍ଗି—Good manner. ଦେ.
Sudhaṅga ବଣ—ସୁନ୍ଦର—Graceful.
সুঢপ सुढंग

ସୁଢଳ(ପ)—ଦେ. ବଣ—ସୁଗଠନ(ଦେଖ)—Sugaṭhana (See)
Surḍhaḷa(pa) (ଉ—ସରଳ ସୁଢଳ ଗୁରୁ ବପୁଯେଞ୍ଚେ
সুডৌল; সুঢপ ଶୋଭିବରଂପୀ—ସୁଧାକାଥ. ଭୂଷା ।) ଦେ. ବ
सुगठन, सुढर —ରୂପସୌନ୍ଦର୍ଯ୍ୟ; ସୁଷମା—Beauty of form; grace. [ ଉ—ଉଜ୍ଜ୍ୱଳ ଦର୍ପଣେ ଯେସନ୍ତେ ମୁଖର ସୁଢଳ—ପ୍ରାଚୀ· ଗୁରୁଭକ୍ତିଗୀତା । ]

ସୁଢଳ—ଦେ, ବି—୧ । ଦେବତା—1. Deity. ୨ । ମହାଦେବ; Sudhala ଶିବ—2. Siba. ଦେ· ଣ—ସୁଡୌଲ; ସୌଷ୍ଠବ ସୁଡୋଲ ସୁଢୌଲ, ସୁନ୍ଦର ସମ୍ପନ୍ନ—Symmetrical; graceful.

ସୁଢଳ ଦେବ—ଦେ· ବି—୧ । ବାମଣ୍ଡାର ପୂର୍ବତନ ଅଧୀଶ୍ୱର—Sudhala deba 1. Late Sir Basudeba Sudhala Deb; K. C. I. E. [ ଉ—ଏହାଙ୍କର ପୂର୍ଣ୍ଣ ନାମ ସର୍ ବାସୁଦେବ ସୁଢଳ ଦେବ କେ. ସି. ଆଇ. ଇ । ଏ ସାହିତ୍ୟରସିକ ଓ ପ୍ରଜାହିତୈଷୀ ଥିଲେ । ଏହାଙ୍କ ଅମଳରେ ଦେବଗଡ ବା ବାମଣ୍ଡା ଓଡ଼ିଆ ସାହିତ୍ୟାଲୋଚନାର ଗୋଟିଏ ପ୍ରସିଦ୍ଧ କେନ୍ଦ୍ର ହୋଇଥିଲା । ]

ରାଜା ସର୍ ବାସୁଦେବ ସୁଢଳ ଦେବ ( K. C. I.E) ଜନ୍ମ ୬।୫।୧୮୫୦—ଇହଲୀଳା ୧୫।୧।୧୯୦୩ ।

ବାମଣ୍ଡାର ସ୍ୱର୍ଗତ ନରପତି ସର୍ ବାସୁଦେବ ସୁଢଳ ଦେବ କେ. ସି. ଆଇ. ଇ ଙ୍କ ପବିତ୍ର ଜୀବନଗାଥା ସମଗ୍ର ଉତ୍କଳଖଣ୍ଡର ଅମୂଲ୍ୟ ସମ୍ପଦ । ତାଙ୍କର ବିରାଟ ବ୍ୟକ୍ତିତ୍ୱ ବଳରେ 'ଅଖ୍ୟାତ' ବାମଣ୍ଡା ନବଜୀବନ ଲାଭ କରିଅଛି, ଓ ନବଯୁଗର ଶିକ୍ଷା ଓ ସଭ୍ୟତା ଆଲୋକ ଲାଭ କରି ଉତ୍କଳର ରାଜ୍ୟମାନଙ୍କ ମଧ୍ୟରେ ସମୁଚ୍ଚ ଆସନର ଅଧିକାରୀ ହୋଇଅଛି । ବିଶେଷତଃ ନବଯୁଗର ଆଲୋକ-ବର୍ତ୍ତିକା ଧାରଣ କରି ଯେଉଁ ମହାପ୍ରାଣ କତିପୟ ବ୍ୟକ୍ତି ଉତ୍କଳର ଅଜ୍ଞାନାନ୍ଧକାର ନାଶ କରି ଉତ୍କଳରେ ନବ-ଯୁଗର ପ୍ରବର୍ତ୍ତନ କରିଅଛନ୍ତି, ସ୍ୱର୍ଗତ ସର୍ ବାସୁଦେବ ସେମାନଙ୍କ ମଧ୍ୟରେ ଅଗ୍ରଣୀ ଅଟନ୍ତି । ସର୍ ବାସୁଦେବ ଇଂରାଜୀ ଶିକ୍ଷା ଲାଭ କରି ନ ଥିଲେ; କିନ୍ତୁ ତାଙ୍କର ସହଜାତ ପ୍ରତିଭା ଏଡ଼େ ସମୁଜ୍ଜ୍ୱଳ ଥିଲା ଯେ, ବାମଣ୍ଡାର କ୍ଷୁଦ୍ର ପରିସର ଭିତରେ ସେ ଯେଉଁ ସବୁ ଅଭିନବ ସଂସ୍କାରମାନ ପ୍ରବର୍ତ୍ତିତ କରିଗଲେ, ରୁଷିଆ ଭଳିଆ ବିରାଟ ସାମ୍ରାଜ୍ୟର ଅଧିକାରୀ ହୋଇଥିଲେ, ତଦ୍‌ଦୃଷ୍ଟିରେ ତାଙ୍କ ଯଶଃ ସମ୍ରାଟ୍ ପିଟରଙ୍କ ଯଶଃଠାରୁ କୌଣସି ଅଂଶରେ ନ୍ୟୂନ ବିବେଚିତ ହୋଇ ନ ଥାନ୍ତା । ତାଙ୍କଠାରେ ଯୁଗପ୍ରବର୍ତ୍ତନୋଚିତ ତେଜଃ, ଓଜଃ ଓ ସାହସ ଥିଲା ଏବଂ ପୃଥିବୀର ଯେ କୌଣସି ଅଂଶରେ ଜନ୍ମ ଲାଭ କରିଥିଲେ ସେ ସେଠାରେ ନିଜର ଲୋକୋତ୍ତର ବ୍ୟକ୍ତିତ୍ୱ ପ୍ରତିଷ୍ଠା କରି ପାରି ଥାଆନ୍ତେ । ତାଙ୍କୁ ଲାଭ କରି ବାମଣ୍ଡା,'ବାମଣ୍ଡା' ହୋଇଅଛି ଓ ଉତ୍କଳ ଧନ୍ୟ ହୋଇଅଛି ।

ବାମଣ୍ଡାର ରାଜା ଶ୍ରୀ ବ୍ରଜସୁନ୍ଦର ଦେବ ୧୮୬୯ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କଲେ । ସେ ଅପୁତ୍ରକ ଥିବାରୁ ଜୀବଦ୍ଦଶାରେ ତାଙ୍କ ଅନୁଜ ବଡ଼କୁମାର ହରିହର ଦେବଙ୍କ ଏକ ମାତ୍ର ପୁତ୍ରଙ୍କୁ ଦତ୍ତକ ପୁତ୍ରରୂପେ ଗ୍ରହଣ କରି ତାଙ୍କୁ ଯୌବରାଜ୍ୟରେ ଅଭିଷିକ୍ତ କରି ଯାଇଥିଲେ । ତେଣୁ ବ୍ରଜସୁନ୍ଦର ଦେବଙ୍କ ମୃତ୍ୟୁ ପରେ ବାସୁଦେବ, ବାସୁଦେବ ସୁଢଳ ଦେବ ନାମ ଧାରଣ କରି ବାମଣ୍ଡା ସିଂହାସନରେ ଆସୀନ ହେଲେ । ସିଂହାସନାଧିକାର ବେଳକୁ ତାଙ୍କୁ ୧୮ ବର୍ଷ ମାତ୍ର ବୟସ ହୋଇଥିବାରୁ ହରିହର ଦେବ ତାଙ୍କର ରିଜେଣ୍ଟ୍ ବା ଅଭିଭାବକରୂପେ ରାଜ୍ୟ ଶାସନ କଲେ । ବ୍ରଜସୁନ୍ଦର ଦେବ କଳାହାଣ୍ଡିର ଭୂତପୂର୍ବ ମହାରାଜ ଉଦିତ ପ୍ରତାପ ଦେବଙ୍କ ସର୍ବଗୁଣାଲଙ୍କୃତା ରୂପଲକ୍ଷ୍ମୀ ମଧ୍ୟମା କନ୍ୟା ଗୌରରାଜକୁମାରୀଙ୍କ ସଙ୍ଗେ ବାସୁଦେବଙ୍କ ବିବାହ ସମ୍ବନ୍ଧ ସ୍ଥିର କରି ଯାଇଥିଲେ । ହରିହର ଦେବ ବାସୁଦେବଙ୍କୁ ଅନ୍ୟତ୍ର ବିବାହ କରିବାକୁ ଆଦେଶ ଦେବାରୁ ପୋଷକ ପିତାଙ୍କ ଆଦେଶକୁ ରାଜାଦେଶ ଜ୍ଞାନ କରି ସେ ଜନକଙ୍କ ଆଦେଶକୁ ଅବଜ୍ଞା କରି କଳାହାଣ୍ଡିର ରାଜ-ପରିବାରରେ ବିବାହ କଲେ ।

ରାଣୀ ଗୌରରାଜକୁମାରୀ ବାସୁଦେବଙ୍କର ଉପଯୁକ୍ତା ସହଧର୍ମିଣୀ ଥିଲେ । ବ୍ରଜସୁନ୍ଦର ଦେବଙ୍କ ଯତ୍ନରେ ବାସୁଦେବ ସକଳ ଶାସ୍ତ୍ରରେ ନିପୁଣ ହୋଇଥିଲେ । ଗୌରରାଜକୁମାରୀ ମଧ୍ୟ ସଂସ୍କୃତ ସାହିତ୍ୟରେ ପ୍ରବୀଣା ଓ ସଙ୍ଗୀତଜ୍ଞା ଥିଲେ । ଉଭୟେ ଉଭୟଙ୍କ ସାହଚର୍ଯ୍ୟରେ ଅନିର୍ବଚନୀୟ ଆନନ୍ଦରେ କାଳାତିପାତ କରୁଥିଲେ । ସ୍ୱାମୀଙ୍କ ଚିତ୍ତବିନୋଦନ ନିମନ୍ତେ ରାଣୀ ମହୋଦୟା ଅନେକ ସଂସ୍କୃତ ଶ୍ଳୋକ ରଚନା କରିଥିଲେ । ପୁନଶ୍ଚ ତାଙ୍କ ସ୍ୱରଲହରୀ ଏଡ଼େ ମଧୁର ଥିଲା ଯେ, କବିପ୍ରାଣ ବାସୁଦେବ ତହିଁରେ ବିମୁଗ୍ଧ ହୋଇ ଅପାର ଚିତ୍ତପ୍ରସାଦ ଲାଭ କରୁଥିଲେ ।

ବାମଣ୍ଡାର ବର୍ତ୍ତମାନ ଭକ୍ତୀୟ ପରବର୍ତ୍ତୀ ରାଜା ଓ କବି ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଏହି ଗୁଣବତୀ ରାଣୀଙ୍କ ଯୋଗ୍ୟ ତନୟ । ବାମଣ୍ଡା ରାଜସିଂହାସନରେ ବସି ରାଜ୍ୟ ଶାସନର ସମସ୍ତ ଦାୟିତ୍ୱ ସ୍ୱହସ୍ତରେ ଗ୍ରହଣ କଲାବେଳକୁ ବାମଣ୍ଡା ମଧ୍ୟଯୁଗର ନିବିଡ଼ ଅନ୍ଧକାରରେ ଲୁପ୍ତ ରହି-ଥିଲା । ରାଜା ବ୍ରଜସୁନ୍ଦର ଦେବ ସୁଶାସକ ଥିଲେ ସତ୍ୟ ନବନବୋନ୍ମେଷଶାଳିନୀ ପ୍ରଜ୍ଞାର ଅଧିକାରୀ ନ ଥିଲେ । କିନ୍ତୁ ବାସୁଦେବ ସୁଢଳ ଦେବ ଲୋକୋତ୍ତର ପ୍ରତିଭା ନେଇ ଜନ୍ମଗ୍ରହଣ କରିଥିଲେ । ରାଜଦଣ୍ଡ ଗ୍ରହଣ କଲା ମାତ୍ରେହିଁ ସେ ପ୍ରତିଭା ଆତ୍ମବିକାଶ ନିମନ୍ତେ କ୍ଷେତ୍ର ଲାଭ କରି ପ୍ରକଟିତ ହେବାରେ ଲାଗିଲା । ସେତେବେଳେ ବାମଣ୍ଡା ରାଜ୍ୟର ବାର୍ଷିକ ଆୟ ମୋଟେ ଟ ୬୦୦୦୯ ( ଛଅ ହଜାର ଟଙ୍କା ) ଥିଲା; କୌଣସି ରାଜକର୍ମଚାରୀ ଅଟେ ଟଙ୍କାରୁ ବେଶୀ ବେତନ ପାଉ ନ ଥିଲେ । ରାଜ-ହିସାବ ସୁଶୃଙ୍ଖଳଭାବରେ ରଖାଯାଉ ନ ଥିଲା । ଯାହା ଅବା ହିସାବପତ୍ର ରଖା ଯାଉଥିଲା, ସେ ସବୁ ତାଳପତ୍ରରେ ଲିଖିତ ହେଉଥିଲା ।

ରାଜା ବାସୁଦେବ ସୁଢଳ ଦେବ ଏ ସବୁର ସଂସ୍କାରରେ ବ୍ରତୀ ହୋଇ ନାନା ପରିବର୍ତ୍ତନ ସାଧନ କଲେ । ସେ ଆୟ-ବ୍ୟୟର ଗୋଟିଏ ବଜେଟ୍ ପ୍ରସ୍ତୁତ କରାଇ ତଦନୁଯାୟୀ ବ୍ୟୟ ନିୟନ୍ତ୍ରଣ କଲେ । ରାଜ୍ୟରେ ନୂଆ ରାଜସ୍ୱ ବନ୍ଦୋବସ୍ତ

କରାଇ ରାଜସ୍ୱ ସଂଗ୍ରହ କଲେ ଏବଂ କୃଷୀମାନଙ୍କ ଅବସ୍ଥା ଯେପରି ଉନ୍ନତ ହେବ ତନ୍ନିମନ୍ତେ ବ୍ୟବସ୍ଥା କରି ଅଧିକାରର ଗୁରୁତ୍ୱାନୁରୂପ କର୍ମଚାରୀମାନଙ୍କର ବେତନର ହାର ଧାର୍ଯ୍ୟ କଲେ । ଜଙ୍ଗଲ ବିଭାଗ, ପୁଲିସ ବିଭାଗ ଓ ବିଚାର ବିଭାଗ ସୁଶୃଙ୍ଖଳ ଭାବରେ ପ୍ରତିଷ୍ଠିତ ହେଲା । ବାସୁଦେବ ୧୮୬୯ ଖ୍ରୀଷ୍ଟାବ୍ଦରେ ସିଂହାସନାରୋହଣ କରିଥିଲେ । ସେତେବେଳେ ବାମଣ୍ଡା ରାଜ୍ୟର ଆୟ ଛଅ ହଜାର ଟଙ୍କା ମାତ୍ର ଥିଲା; କିନ୍ତୁ ୧୮୭୫ ଖ୍ରୀଷ୍ଟାବ୍ଦବେଳକୁ ବାସୁଦେବଙ୍କ ଅଧ୍ୟବସାୟ ଫଳରେ ବାମଣ୍ଡାର ବାର୍ଷିକ ଆୟ ଅଠର ହଜାର ଟଙ୍କାରେ ପରିଣତ ହେଲା । ପରବର୍ତ୍ତୀକାଳରେ ବାମଣ୍ଡାର ଯେଉଁ ଭୂୟସୀ ଉନ୍ନତି ସାଧିତ ହୋଇଥିଲା, ଏହା ତହିଁର ଅଗ୍ର ସୂଚନା କହିବାକୁ ହେବ । ଏହି ସମୟରୁ ବାମଣ୍ଡାର ଲୋକେ ବାସୁଦେବ ସୁବଳ ଦେବଙ୍କ କାର୍ଯ୍ୟକଳାପକୁ ଅତ୍ୟନ୍ତ ଆଶ୍ଚର୍ଯ୍ୟହୃଦୟରେ ଅନୁଧ୍ୟାନ କରିବାରେ ଲାଗିଲେ ।

ଏହି ସମୟରେ ବାସୁଦେବଙ୍କ ସହଧର୍ମିଣୀ ଗିରିରାଜ-କୁମାରୀ ବାମଣ୍ଡା ରାଜସଂସାରକୁ ଶୋକସାଗରରେ ନିମଜ୍ଜିତ କରି ଏବଂ ଅନୁରାଗୀ ପତିଙ୍କ ହୃଦପଦ୍ମ ଶତଧା ଚୂର୍ଣ୍ଣ କରି ସ୍ୱର୍ଗାରୋହଣ କଲେ । ସେତେବେଳେ ସଚ୍ଚିଦାନନ୍ଦ ଦୁଗ୍ଧ-ପୋଷ୍ୟ ଶିଶୁ । ମାତୃବିୟୋଗ ହେତୁରୁ ତାଙ୍କର ମଧ୍ୟ ଜୀବନସଙ୍କଟ ଉପସ୍ଥିତ ହେଲା ଏବଂ ବାସୁଦେବ ଭଗ୍ନ-ହୃଦୟ ହୋଇ ସଂସାରପ୍ରତି ବିରାଗୀ ହୋଇପଡ଼ିଲେ; ରାଜ-କାର୍ଯ୍ୟ ଓ ଶାସନ ଦାୟିତ୍ୱ ତାଙ୍କୁ ବିଷବତ୍ ପ୍ରତୀୟମାନ ହେଲା । ବଡ଼କୁମାର ନୀଳାମ୍ବର ଦେବଙ୍କ ପତ୍ନୀ ଓ ବାସୁଦେବଙ୍କ ଗର୍ଭ-ଧାରିଣୀ ପାର୍ବତୀ ଦେବୀଙ୍କ ହସ୍ତରେ ଶିଶୁ ସଚ୍ଚିଦାନନ୍ଦଙ୍କ ପାଳନଭାର ଅର୍ପଣ କରି ବାସୁଦେବ ଚିତ୍ତର ଗତି ପରିବର୍ତ୍ତନ ନିମନ୍ତେ ପର୍ଯ୍ୟଟନ ଉଦ୍ଦେଶ୍ୟରେ ବାମଣ୍ଡା ତ୍ୟାଗ କରି ବହିର୍ଗତ ହେଲେ ।

ଏଠାରେ ଏହା ଉଲ୍ଲେଖଯୋଗ୍ୟ ଯେ, ପଟ୍ଟମହିଷୀ ଗିରିରାଜକୁମାରୀ ଅତ୍ୟନ୍ତ ପ୍ରଜାବତ୍ସଳା ଥିଲେ । ବାମଣ୍ଡାରେ ଚିରନ୍ତନ ପ୍ରଥା ଥିଲା ଯେ, ରାଜାଙ୍କର ଉତ୍ତରାଧିକାରୀ ଜାତ ହେଲେ ପ୍ରତ୍ୟେକ ପ୍ରଜା ଶକ୍ତି ଅନୁସାରେ ରାଜାଙ୍କୁ ନଜରାନା ଦେବେ । ସଚ୍ଚିଦାନନ୍ଦଙ୍କ ଜନ୍ମ ହେଲା ମାତ୍ରେ, ସୂତିକାଗାରରେ ଥାଇ ସୁଦ୍ଧା ରାଣୀ ମହୋଦୟା ଅନୁରାଗୀ ପତିଙ୍କୁ ସାନୁନୟ ଅନୁରୋଧ କରି ଏ କୁତ୍ସିତ ପ୍ରଥା ରଦ କରାଇ ଦେଇଥିଲେ । ଏବଂବିଧ ଅଶେଷ ସୁଗୁଣର ଅଧିକାରିଣୀ ହୋଇ ସେ ସ୍ୱାମୀଙ୍କ ହୃଦୟରେ ଅଖଣ୍ଡ ଆଧିପତ୍ୟ ସ୍ଥାପନ କରିଥିଲେ । ତେଣୁ ତାଙ୍କ ସ୍ୱର୍ଗତ ମୂର୍ତ୍ତିର ବିରହରେ ବ୍ୟଥିତ ହୋଇ ରାଜା ବାସୁଦେବ ହୃଦୟ ବ୍ୟଥାର ଉପଶମ ନିମନ୍ତେ ପର୍ଯ୍ୟଟନ କରିବାକୁ ବାହାରିଲେ ।

ବାସୁଦେବ ସ୍ୱଭାବତଃ ବଡ଼ ଅନୁସନ୍ଧିତ୍ସୁ ଥିଲେ ଏବଂ ସର୍ବଦା ଶିକ୍ଷାର୍ଥୀମନୋଭାବ ଘେନି ସକଳ ସ୍ଥାନରୁ ଓ ସକଳ ପ୍ରକାର ଲୋକଙ୍କଠାରୁ ନାନା କଥା ଶିକ୍ଷା କରିବାରେ ମନୋଯୋଗୀ ଥିଲେ । ତେଣୁ ଆର୍ଯ୍ୟାବର୍ତ୍ତର ପ୍ରଧାନ ପ୍ରଧାନ ନଗର ଭ୍ରମଣ କରି ତତ୍ସଞ୍ଜାତ ଅଭିଜ୍ଞତା ଦ୍ୱାରା ସେ ନିଜ ରାଜ୍ୟର କିପରି ସର୍ବାଙ୍ଗୀନ ଉନ୍ନତି କରିବେ, ଏହି ଚିନ୍ତାହିଁ ଭ୍ରମଣକାଳଯାକ ତାଙ୍କ ମନକୁ ଆଲୋଡ଼ିତ କରୁଥିଲା । ସେ କଟକ, କଲିକତା, ବାରାଣସୀ, ଲକ୍ଷ୍ନୌ, ଦିଲ୍ଲୀ ପ୍ରଭୃତି ବହୁ ପ୍ରଧାନ ସ୍ଥଳୀ ଭ୍ରମଣ କରି ନାନା ବ୍ୟକ୍ତି ଓ ନାନା ଅନୁଷ୍ଠାନ ସହ ପ୍ରତ୍ୟକ୍ଷଭାବରେ ପରିଚିତ ହେଲେ । ତାଙ୍କର ଜ୍ଞାନ ଓ ଅଭିଜ୍ଞତାର ପରିସର ଯଥେଷ୍ଟ ବୃଦ୍ଧିପ୍ରାପ୍ତ ହେଲା ଓ ନିଜ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ସେ ସର୍ବଦା ସମସ୍ତଙ୍କଠାରୁ ଓ ସମସ୍ତ ସ୍ଥାନରୁ ସୂଚନା ଖୋଜି ବୁଲୁଥିବାରୁ ତାଙ୍କର ଏ ଦୀର୍ଘକାଳବ୍ୟାପୀ ପର୍ଯ୍ୟଟନ ବାମଣ୍ଡା ପକ୍ଷରେ ବହୁ ସଫଳପ୍ରସୂ ହେଲା ।

ପର୍ଯ୍ୟଟନରୁ ଫେରି ଆସିଲା ପରେ ପୁନଶ୍ଚ ଦାରପରିଗ୍ରହ କରିବା ନିମନ୍ତେ ବାସୁଦେବଙ୍କୁ ଅନେକ ବ୍ୟକ୍ତି ସନିର୍ବନ୍ଧ ଅନୁରୋଧ କଲେ ଏବଂ ଏହା ଫଳରେ ବାସୁଦେବ ମୟୂରଭଞ୍ଜ ରାଜ୍ୟର ଉରୁଆଁ ଜମିଦାରଙ୍କ ଦୁଇ କେମା ଓ ଖରସୁଆଁ ରାଜାଙ୍କ ଭଉଣୀ ଜେମା, ଏପରି ତିନି କନ୍ୟାଙ୍କର ପାଣିଗ୍ରହଣ କଲେ । ଏହି ସପତ୍ନୀମାନେ ପରସ୍ପରପ୍ରତି ଅନୁକୂଳା ହୋଇ ଈର୍ଷ୍ୟାପରାୟଣା ନ ହେବାରୁ ବାସୁଦେବଙ୍କ ପାରିବାରିକ ଜୀବନ ଅତ୍ୟନ୍ତ ମଧୁମୟ ହୋଇଥିଲା । ଏମାନେ ସଚ୍ଚିଦାନନ୍ଦଙ୍କୁ ଅମୃତରୂପ ସ୍ନେହ କରୁଥିଲେ ଏବଂ ସଚ୍ଚିଦାନନ୍ଦ ମଧ୍ୟ ଏମାନଙ୍କୁ ଜନନୀବତ୍ ଭକ୍ତି ଓ ଶ୍ରଦ୍ଧା କରିବାରେ ପଶ୍ଚାତ୍ପଦ ନ ଥିଲେ । ଏ ତିନି ରାଣୀ ଏଗାରଟି କନ୍ୟା ଓ ଅଠଟି ପୁତ୍ରଙ୍କର ଜନନୀ ହୋଇଥିଲେ । ବାସୁଦେବ ନିଜର କନ୍ୟାମାନଙ୍କୁ ଶିକ୍ଷିତା ଓ ସଙ୍ଗୀତାଦି କଳାନିପୁଣା କରି ତାଳଚେର, କେଣାଇ, ବସ୍ତର ପ୍ରଭୃତି ରାଜ୍ୟର ରାଜାମାନଙ୍କ ସହିତ ବିବାହ କରାଇ ଦେଇଥିଲେ ଏବଂ ବର୍ତ୍ତମାନ ସୁଦ୍ଧା ସେମାନେ ତତ୍ତତ୍ ରାଜ୍ୟମାନଙ୍କର ରାଜ୍ୟେଶ୍ୱରୀ, କିନ୍ତୁ ଦୁର୍ଭାଗ୍ୟବଶତଃ ବସ୍ତର, ଖଡ଼ିଆଳ, ପାଲଲହଡ଼ାର ରାଣୀ ଓ ନୂରଗୁଜାର ଯୁବରାଣୀ ସ୍ୱର୍ଗତା ହୋଇଅଛନ୍ତି । ପୁତ୍ରମାନଙ୍କୁ ଉଚ୍ଚ ଶିକ୍ଷା ଦେଇ ସେମାନଙ୍କୁ ମଧ୍ୟ ବାସୁଦେବ ଉପଯୁକ୍ତ ଭାବରେ ସଂସ୍ଥିତି ପ୍ରଦାନ କରି ଯାଇଅଛନ୍ତି । ଏହି ରାଜପୁତ୍ରମାନଙ୍କ ମଧ୍ୟରୁ ସ୍ୱର୍ଗତ ବଡ଼କୁମାର ବଳଭଦ୍ର ଦେବ ଉତ୍କଳଖଣ୍ଡରେ କବି ଓ ସାହିତ୍ୟିକ ଖ୍ୟାତି ଲାଭ କରିଅଛନ୍ତି । ପ୍ରଥମା ରାଣୀଙ୍କ ପୁତ୍ର ରାଜା ସଚ୍ଚିଦାନନ୍ଦଙ୍କ ଖ୍ୟାତି କଥା ବର୍ଣ୍ଣନା କରିବା ବାହୁଲ୍ୟ ମାତ୍ର । ତାଙ୍କୁ ସବୁ ଗୁଣରେ ଆଦର୍ଶ ପିତାଙ୍କର ଆଦର୍ଶ ପୁତ୍ର ବୋଲି ସ୍ୱୀକାର କରିବାକୁ ହେବ ।

ବାସୁଦେବ ପର୍ଯ୍ୟଟନରୁ ଫେରି ବାମଣ୍ଡାକୁ ତିନି ଗୋଟି ସବ୍‌ଡିଭିଜନରେ ବିଭକ୍ତ କଲେ । ସବ୍‌ଡିଭିଜନମାନଙ୍କର ନାମ ଦେବଗଡ଼, କୁଚିଣ୍ଡା ଓ ବରକୋଟ ରଖାହେଲା । ପ୍ରଥମୋକ୍ତ ସବ୍‌ଡିଭିଜନ ଦୁଇଟି ଦୁଇଜଣ ପ୍ରଥମ ଶ୍ରେଣୀର ମାଜିଷ୍ଟ୍ରେଟ ଓ ତୃତୀୟଟି ଜଣେ

ଦ୍ୱିତୀୟ ଶ୍ରେଣୀର ମାଜିଷ୍ଟ୍ରେଟ୍‌ଙ୍କ ଅଧୀନ ରଖାଗଲା; ମାଜିଷ୍ଟ୍ରେଟ୍‌ମାନେ ଦେବାନୀ ଫୌଜଦାରୀର ଉଭୟ ପ୍ରକାର ମକଦ୍ଦମା ବିଚାର କରିବାର ଅଧିକାର ପାଇଲେ । ଦେବଗଡ଼, କୁଚିଣ୍ଡା, ବାର୍କୋଟ, ନଇକୁଲ, ଗୌଡ଼ପଲ୍ଲୀ ଓ ଗୋବିନ୍ଦପୁର-ଠାରେ ଥାନାମାନ ଅବସ୍ଥାପିତ ହେଲା । ଅପିଲ ମକଦ୍ଦମା ସବୁର ଶୁଣାଣି ନିମନ୍ତେ ଦେବଗଡ଼ଠାରେ ଗୋଟିଏ ବିଚାରାଳୟ ସ୍ଥାପିତ ହେଲା । ଏଥି ପୂର୍ବରୁ ମକଦ୍ଦମା ସବୁର ବିଚାରରେ ନାନାପ୍ରକାର ବିଶୃଙ୍ଖଳା ଓ ଅଯଥା ବିଳମ୍ବ ଘଟୁଥିଲା । ସରକାରୀ କାର୍ଯ୍ୟାନୁଷ୍ଠାନମାନଙ୍କ ନିମନ୍ତେ ଦେବଗଡ଼, କୁଚିଣ୍ଡା ଓ ବାର୍କୋଟଠାରେ ସୁଦୃଶ୍ୟ ପକ୍କାଗୃହ-ମାନ ନିର୍ମାଣ କରାଗଲା । ବାମଣ୍ଡା ନବୀନ ଜୀବନର ସ୍ପନ୍ଦନ ଅନୁଭବ କଲା ।

ରାଜା ବାସୁଦେବ ଥରେ ଦାକ୍ଷିଣାତ୍ୟ ଭ୍ରମଣରେ ବାହାରି ନାଗପୁର, ନାସିକ, ପୁନା, ଅହମ୍ମଦାବାଦ, ବାଙ୍ଗାଲୋର, ତ୍ରିବାଙ୍କୁଡ଼, ତାଞ୍ଜୋର ଓ ମାନ୍ଦ୍ରାଜ ପ୍ରଭୃତି ସ୍ଥାନ ପରିଦର୍ଶନ କରି ଆସିଲେ ଏବଂ ପ୍ରତ୍ୟାବର୍ତ୍ତନ ପରେ ରାଜ୍ୟର ନାନାବିଧ ଉନ୍ନତି କରିବାରେ ମନୋନିବେଶ କଲେ । ସେ ବହୁ ଅନାବାଦୀ ଅଞ୍ଚଳ ଆବାଦ କରାଇ ତହିଁରେ ବହୁବିଧ ପ୍ରକାର ଫସଲ କରାଇଲେ, ଏବଂ କଥିତ ଅଛି, ସେ ୧୬୭ ପ୍ରକାର ଧାନ ଅଣାଇ ରାଜ୍ୟରେ ସେ ସବୁର ଚାଷ ପ୍ରବର୍ତ୍ତନ କରିଥିଲେ । ଜଙ୍ଗଲ କଟାଇ ବାସୁଦେବପୁର ନାମରେ ସେ ଗୋଟିଏ ବ୍ରାହ୍ମଣ ଶାସନ ସ୍ଥାପନ କରି ବ୍ରାହ୍ମଣମାନଙ୍କୁ "ଯାବଚ୍ଚନ୍ଦ୍ରାର୍କେ" ଭୋଗ କରିବାପାଇଁ ବହୁ ଭୂସମ୍ପତ୍ତି ଦାନ କରିଥିଲେ । ବାମଣ୍ଡାରେ ସେ ମିଠା କମଳା ଲେମ୍ବୁର ଚାଷ ପ୍ରଥମେ ଆରମ୍ଭ କରିଥିଲେ; ଏବଂ ବମ୍ବେଇ ଓ ପାଟନା ପ୍ରଭୃତି ସ୍ଥାନରୁ ନାନାପ୍ରକାର ଆମ୍ବ ଗଛର ଚାରା ଅଣାଇ ନିଜର ଆଦର୍ଶ ଉଦ୍ୟାନରେ ରୋପଣ କରାଇ ଥିଲେ । ତାଙ୍କ ଆଦେଶରେ ବାମଣ୍ଡାର ନାନା ସ୍ଥାନରେ ଅନେକ ଆଦର୍ଶ କୃଷିକ୍ଷେତ୍ର ଖୋଲା ଯାଇଥିଲା । ତତ୍କାଳୀନ ପଲିଟିକାଲ୍ ଏଜେଣ୍ଟ୍ ମହୋଦୟ ବାସୁଦେବଙ୍କ ଉଦ୍ୟାନ-ଶ୍ରୀତି ଦେଖି ସରକାରୀ ରିପୋର୍ଟରେ ତାଙ୍କର ଭୂୟସୀ ପ୍ରଶଂସା କରିଥିଲେ । ବଲମ ଫାର୍ମ୍‌ଠାରେ ଦୁଇଗୋଟି ଗିରିନଦୀର ଜଳକୁ ଅଟକାଇବା ନିମନ୍ତେ ବାସୁଦେବ ବହୁ ଅର୍ଥ ବ୍ୟୟରେ ବନ୍ଧ ପକାଇ ଜଳସେଚନ ସୌକର୍ଯ୍ୟ ନିମନ୍ତେ ଗୋଟିଏ ପ୍ରକାଣ୍ଡ ଜଳାଧାର ପ୍ରସ୍ତୁତ କରାଇଥିଲେ ।

ରାଜକୋଷରେ ଅର୍ଥବୃଦ୍ଧି ନିମନ୍ତେ ବାସୁଦେବ "ରାଜକୁମାର ସ୍ଲିପର୍ ୱାର୍କ୍‌ସ୍" ନାମକ କାରଖାନା ବସାଇଲେ । ଏ କାରଖାନାରେ କାଠ କରତ ହୋଇ ଦେଶ ବିଦେଶକୁ ବିକ୍ରୟ ନିମନ୍ତେ ପଠା ଯାଉଥିଲା ଏବଂ ବହୁ ଅର୍ଥ ବ୍ୟୟରେ ବିଲାତରୁ କାଠକରତ ଯନ୍ତ୍ର କଣା ହୋଇ ଆସିଥିଲା । ଏ କାରଖାନାରେ ବହୁତ ଲୋକ ନିଯୁକ୍ତ ହୋଇ ପାରୁଥିବାରୁ ବାମଣ୍ଡାର ମଜୁରିଆମାନଙ୍କୁ ଆଉ ବିଦେଶକୁ ଯିବାକୁ ପଡ଼ିଲା ନାହିଁ । କାରଖାନାର କାର୍ଯ୍ୟ ଦ୍ୱାରା ବହୁ ଲକ୍ଷ ଟଙ୍କା ଆୟ ହେଉଥିଲା, ଏବଂ ହାତୀ ଉପରେ ଟଙ୍କା ଲଦା ହୋଇ ବିଦେଶରୁ ଦେବଗଡ଼କୁ ଆସିବା ଦୃଶ୍ୟ ଦେଖି ପ୍ରଜାମାନେ ବାସୁଦେବଙ୍କ ବ୍ୟବସାୟ ବିଚକ୍ଷଣତାକୁ ଶତମୁଖରେ ପ୍ରଶଂସା କରୁଥିଲେ ।

ଦେଶର ଯେଉଁ ସବୁ ଜାଗାରେ ପର୍ବତରୂପ ପ୍ରତିବନ୍ଧକ ଥିବାରୁ ପଣ୍ୟଦ୍ରବ୍ୟ ଯାତାୟାତରେ ଅସୁବିଧା ହେଉଥିଲା, ଡାଇନାମାଇଟ୍ ସାହାଯ୍ୟରେ ସେ ପର୍ବତ ସବୁ ଉଡ଼ାଇ ଦେଇ ଗମନାଗମନୋପଯୋଗୀ ରାସ୍ତା କରାଇବାରେ ଇଞ୍ଜିନିୟରଙ୍କ ପରାମର୍ଶ ନ ନେଇ ନିଜେ ରାଜା ବାସୁଦେବ କପରି ଏ ଅସାଧ୍ୟସାଧନ କରିପାରିଲେ, ଏହା ବଡ଼ ବଡ଼ ସାହେବମାନେ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଯାଇଥିଲେ । ସରକାରଙ୍କ ବାର୍ଷିକ ଶାସନ ରିପୋର୍ଟରେ ବାସୁଦେବଙ୍କ କାର୍ଯ୍ୟର ମଧ୍ୟ ଯଥୋପଯୁକ୍ତ ପ୍ରଶଂସା ହୋଇଥିଲା ।

"ବାମଣ୍ଡା ଷ୍ଟେଟ୍ କାଉନ୍‌ସିଲ୍" ନାମରେ ୯ ଜଣ ସଭ୍ୟ-ବିଶିଷ୍ଟ ଗୋଟିଏ ବିଚାର ସଭା ପ୍ରତିଷ୍ଠିତ କରି ବାସୁଦେବ ତହିଁରେ ଅପିଲ୍ ମକଦ୍ଦମା ନିଷ୍ପତ୍ତି ହେବାର ବ୍ୟବସ୍ଥା କରି-ଥିଲେ ।

ବାସୁଦେବଙ୍କ ସମୟରେ ଗଡ଼ଜାତମାନଙ୍କରେ "ପାନ୍ତି" ନାମକ ଗୋଟାଏ ଟିକସ ପ୍ରଜାମାନଙ୍କଠାରୁ ଆଦାୟ କରା ଯାଉଥିଲା । ଏ ଟିକସ ଦ୍ୱାରା ବାଣିଜ୍ୟରେ ବାଧା ପଡ଼ୁଥିବାର ଦେଖି ବାସୁଦେବ ବାମଣ୍ଡାର ପ୍ରଜାଙ୍କୁ ଏ ଟିକସର କବଳରୁ ମୁକ୍ତ ରଖିଥିଲେ । ଏଥି ନିମନ୍ତେ ସରକାର ମଧ୍ୟ ବାସୁଦେବଙ୍କର ସାଧୁବାଦ କରିଥିଲେ ।

୧୮୮୩ ଖ୍ରୀଷ୍ଟାବ୍ଦରେ ଦେବଗଡ଼ଠାରେ ବାସୁଦେବ ଗୋଟିଏ ଦାତବ୍ୟ ଚିକିତ୍ସାଳୟ ଉଦ୍‌ଘାଟନ କରିଥିଲେ ଏବଂ ଏ ଅଭିନବ ଅନୁଷ୍ଠାନ ଦ୍ୱାରା ବାମଣ୍ଡାର ଦୁଃସ୍ଥ ରୋଗୀମାନଙ୍କର ଯଥେଷ୍ଟ ଉପକାର ହୋଇଥିଲା ।

ବାସୁଦେବ ବାମଣ୍ଡାର ପୁରାତନ ଜେଲ୍‌କୁ ଭଙ୍ଗାଇ ଦେଇ ଗୋଟିଏ ନୂଆ ପକ୍କା ଜେଲ୍ ନିର୍ମାଣ କରାଇଥିଲେ । ସରକାରଙ୍କ ବାର୍ଷିକ ଶାସନ ରିପୋର୍ଟରେ ଉଲ୍ଲେଖ ହୋଇ-ଥିଲା :—"ବଡ଼ ଆଶ୍ଚର୍ଯ୍ୟ କଥା, ରାଜପରିବାରର ଲୋକମାନେ ଏ ପର୍ଯ୍ୟନ୍ତ ଯେଉଁପରି ପକ୍କାଘରେ ରହି ପାରି ନାହାନ୍ତି, ବାମଣ୍ଡାର ରାଜା ବାମଣ୍ଡାର କଏଦୀମାନଙ୍କୁ ସେପରି ଘରେ ରଖାଇବାର ବ୍ୟବସ୍ଥା କରିଅଛନ୍ତି ।"

ବାସୁଦେବ ପୁଣି ନୂଆ କରି ରାଜବାଟୀ ନିର୍ମାଣ କରାଇଲେ ଏବଂ ରାଜକୁମାର ଉଚ୍ଚ ଇଂରାଜୀ ବିଦ୍ୟାଳୟ ନିମନ୍ତେ ଦୋମହଲା ପକ୍କା ତୋଳାଇଲେ । ଏହା ଛଡ଼ା ରାଜସରକାରଙ୍କ କଚେରୀ ଓ ପୁଲିସ୍ ଅଫିସରମାନଙ୍କ ନିମନ୍ତେ ଓ ଅନ୍ୟାନ୍ୟ ଅନୁଷ୍ଠାନ ପାଇଁ ଦେବଗଡ଼ରେ ଅନେକ ପ୍ରାସାଦ ନିର୍ମାଣ କରାଇ ଦେବଗଡ଼ର ଶୋଭାକୁ ଶତଗୁଣିତ କରି ଦେଲେ । ଏ ସବୁ ଉନ୍ନତି ଇଉରୋପୀୟ ଢଙ୍ଗରେ ହୋଇଅଛି ବୋଲି ସରକାରୀ ରିପୋର୍ଟରେ ମଧ୍ୟ ସ୍ୱୀକାର କରାଯାଇଥିଲା । ଏହା ଛଡ଼ା ବଲମରେ ଗୋଟିଏ ରାମଗୋବିନ୍ଦ ମନ୍ଦିର ଓ କୁଚିଣ୍ଡାରେ ଗୋଟିଏ ମସଜିଦ୍ ନିର୍ମିତ ହୋଇଥିଲା । ବାର୍କୋଟରେ ମଧ୍ୟ ରାଜସରକାରଙ୍କ ଅଫିସ୍ ନିମନ୍ତେ ପକ୍କାଘରମାନ ତିଆରି ହୋଇଥିଲା । ରାଜ୍ୟର ବିଭିନ୍ନ ଅଞ୍ଚଳକୁ ସୁଗମ୍ୟ ରାସ୍ତା ଦ୍ୱାରା ସଂଯୁକ୍ତ କରିବାରେ ରାଜା ବାସୁଦେବ ବହୁ ଶ୍ରମ କରିଥିଲେ । ଏପରି କି, ଏ ରାସ୍ତା ନିର୍ମାଣ ସମୟରେ ସେ ରାଜଧାନୀ ଛାଡ଼ି ବଣ ଜଙ୍ଗଲରେ ତମ୍ବୁ ପକାଇ ରଥ୍ୟା-ନିର୍ମାଣ କାର୍ଯ୍ୟ ସ୍ୱଚକ୍ଷୁରେ ପର୍ଯ୍ୟବେକ୍ଷଣ କରୁଥିଲେ । ସରକାରଙ୍କ ବାର୍ଷିକ ଶାସନ

ରିପୋର୍ଟରେ ଏ କଥା ମଧ୍ୟ ପ୍ରଶଂସାଗର୍ଭିକ ଭାଷାରେ ଉଲ୍ଲିଖିତ ରହିଅଛି ।

ବାମଣ୍ଡାରେ ରେଲ ଚଳାଇବା ନିମନ୍ତେ ବାସୁଦେବ ଅତ୍ୟନ୍ତ ଉଦ୍‌ବିଗ୍ନ ଥିଲେ । ବେଙ୍ଗଲ୍ ନାଗପୁର ରେଲବାଇ କମ୍ପାନୀଙ୍କୁ ସେ ଚିରକାଳପାଇଁ ୬୧୫ ଏକର ଜମି ଲିଖି ଦେଇ ତା ଉପରେ ରେଲ ଲାଇନ୍ ତିଆରି କରିବାକୁ ଅନୁମତି ପ୍ରଦାନ କରିଥିଲେ ।

ବାସୁଦେବ ନିଜ ରାଜ୍ୟରେ ଅବୈତନିକ ପ୍ରାଥମିକ ଶିକ୍ଷା ଦାନର ବ୍ୟବସ୍ଥା କରାଇ ଥିଲେ ଏବଂ ନିଜର ପୁତ୍ର କନ୍ୟା-ମାନଙ୍କର ଶିକ୍ଷା ନିମନ୍ତେ ରାଜବାଟୀରେ ଯେଉଁ ପ୍ରାଥମିକ ବିଦ୍ୟାଳୟ ସ୍ଥାପନ କରିଥିଲେ, କାଳକ୍ରମେ ତାହା ରାଜକୁମାର ହାଇ ସ୍କୁଲରେ ପରିଣତ ହେଲା । ସରକାରଙ୍କ ଅନୁମୋଦନ ସହିତ ଏ ବିଦ୍ୟାଳୟରେ ବଣାଇ ଓ ପାଲଲହଡ଼ାର ଭାଷୀ ରାଜାଦୁହେଁ ଉଚ୍ଚ ଶିକ୍ଷା ଲାଭ କରିଥିଲେ । ତଦାନୀନ୍ତନ ପଲିଟିକାଲ୍ ଏଜେଣ୍ଟ୍ ମହୋଦୟ ବାସୁଦେବଙ୍କ ଅସାଧାରଣ ଶିକ୍ଷା ପ୍ରୀତି ଦେଖି ତାଙ୍କୁ ଜଣେ ଆଦର୍ଶ ନରପତି ବୋଲି ଜ୍ଞାନ କରୁଥିଲେ । ପୂର୍ବେ କଥିତ ହୋଇଅଛି ଯେ,ବାସୁଦେବ ସଂସ୍କୃତରେ ଅସାଧାରଣ ପଣ୍ଡିତ ଓ ମାତୃଭାଷାରେ ପ୍ରତିଭାଶାଳୀ କବି ଥିଲେ । ତେଣୁ ତାଙ୍କ ରାଜସଭା ବହୁସଂଖ୍ୟକ ବିଦ୍ୱଜ୍ଜନଙ୍କ ଦ୍ୱାରା ସବୁବେଳେ ଶୋଭିତ ହୋଇ-ଥିଲା । ଶାସ୍ତ୍ରଚର୍ଚ୍ଚା ବାସୁଦେବଙ୍କର ପରମପ୍ରିୟ କାର୍ଯ୍ୟ ଥିଲା ଏବଂ ପ୍ରଜାମାନଙ୍କ ମଧ୍ୟରେ ସାହିତ୍ୟପ୍ରୀତି ଜାଗରୂକ କରିବା ନିମନ୍ତେ ୧୮୮୬ ଅବ୍ଦରେ ଦେବଗଡ଼ଠାରେ ସେ ଜଗନ୍ନାଥବଲ୍ଲଭ ପ୍ରେସ୍ ସ୍ଥାପନ କରି ତହିଁରୁ ସମ୍ବଲପୁର ହିତୈଷିଣୀ ନାମରେ ଖଣ୍ଡିଏ ସାହିତ୍ୟିକ ସମ୍ବାଦପତ୍ର ପ୍ରକାଶିତ କରାଇଲେ । ସମ୍ବଲପୁର ହିତୈଷିଣୀ ସେ ଯୁଗର ଅନେକ କବି ଓ ସାହିତ୍ୟିକଙ୍କୁ ଲୋକଲୋଚନର ଗୋଚରୀଭୂତ କରାଇଅଛି । ଓଡ଼ିଆ ସାହିତ୍ୟର ନବ ଯୁଗ ଗଠନରେ ମଧ୍ୟ ସମ୍ବଲପୁର ହିତୈଷିଣୀ କମ୍ କାର୍ଯ୍ୟ କରି ନାହିଁ । ଏଥିର ପ୍ରତ୍ୟେକ ସଂଖ୍ୟା ବାସୁଦେବଙ୍କ ଇଙ୍ଗିତ ଓ ଉପଦେଶରେ ବାହାରୁ ଥିଲା ଏବଂ ହିତୈଷିଣୀର ସାହିତ୍ୟସେବାରୁ ଆମ୍ଭେମାନେ ବେଶ ବୁଝିପାରୁ,ନବ ଯୁଗର ଓଡ଼ିଆସାହିତ୍ୟକୁ ଜନପ୍ରିୟ କରାଇବା ନିମନ୍ତେ ବାସୁଦେବ କିଅଣ କରି ଉତ୍କଳ ଭାରତୀଙ୍କୁ ସମୃଦ୍ଧ କରିବାରେ ସହାୟ ହୋଇଥିଲେ । "ଇନ୍ଦ୍ରଧନୁ" ଓ "ବିଜୁଳି" ସମରରେ ମାର୍ଜିତ ରୁଚିର ପକ୍ଷ ସମର୍ଥନ କରି ବାସୁଦେବ ଓଡ଼ିଆ ସାହିତ୍ୟର ଭବିଷ୍ୟତକୁ ବିମଳ ଜ୍ୟୋତିଃ ପ୍ରଦାନ କରି ଯାଇଅଛନ୍ତି ।

ବାସୁଦେବ ନିଜେ ଉଚ୍ଚ କୋଟୀର କବି ଥିଲେ ଏବଂ ନିଜେ,ଗୁଣୀ ଥିବାରୁ ଗୁଣ ଚିନ୍ତାଗ୍ରାହକ ମଧ ଥିଲେ । ବାମଣ୍ଡା "ବୁଧହଂସକେଳିସର" ରୂପେ ତାଙ୍କର ରାଜତ୍ୱକାଳରେ ଲୋକମୁଖରେ ପ୍ରଖ୍ୟାତ ହେଲା ।

ତାଙ୍କ ଅଲଙ୍କାର ବିଭବାନ୍ୱିତ ଚନ୍ଦ୍ରୋପୂଲା, ମୀରବାମା ଓ ଭକ୍ତିବାଦ କାବ୍ୟ ଉତ୍କଳ ସାହିତ୍ୟ ଭଣ୍ଡାରର ଗୋଟିଏ ଗୋଟିଏ ଅମୂଲ୍ୟ ରତ୍ନ । ଏ ସବୁ କାବ୍ୟ ରଚନା ଦ୍ୱାରା ବାସୁଦେବ ଯେଉଁ ଅଗାଧ ପାଣ୍ଡିତ୍ୟ, ରଚନାନୈପୁଣ୍ୟ ଓ କବି ଚାତୁରୀ ଦେଖାଇ ଯାଇଅଛନ୍ତି ତାହା ତାଙ୍କୁ ଯଶୋ-ଦେହରେ ଚିରକାଳ ଅମର କରି ରଖିବ । ଅଲଙ୍କାରଚନ୍ଦ୍ରିକା ନାମକ ତାଙ୍କ ସଙ୍କଳିତ ଗ୍ରନ୍ଥ ମଧ ଉତ୍କଳ ସାହିତ୍ୟକୁ ତାଙ୍କର ଗୋଟିଏ ମହାଦାନ ।

ବାମଣ୍ଡାରେ ଡାକଘରମାନ ସ୍ଥାପନ କରି ବାସୁଦେବ ଡାକ ବିଭାଗ ସ୍ଥାପନ କରିଥିଲେ ଏବଂ ତାଙ୍କ ନିଜର ପ୍ରତିମୂର୍ତ୍ତି ସହ ନାମାଙ୍କିତ ଷ୍ଟାମ୍ପ୍‌ମାନ ଚିଠି ଉପରେ ମରା ଯାଉଥିଲା । ବାମଣ୍ଡାର ବାହାରକୁ ଆସୁଥିବା ଚିଠିମାନଙ୍କରେ ଇଂରାଜ ସରକାରଙ୍କ ଷ୍ଟାମ୍ପ ବ୍ୟବହୃତ ହେଉଥିଲା । ପରେ ଦୁଇ-ପ୍ରକାର ଷ୍ଟାମ୍ପ୍ ବ୍ୟବହାର ଓ କର୍ତ୍ତୃତ୍ୱ ଯୋଗୁଁ ଅସୁବିଧା ଉପସ୍ଥିତ ହେବାରୁ ବାସୁଦେବଙ୍କ ପୂର୍ଣ୍ଣ ସମ୍ମତି ପାଇ ଭାରତ ସରକାର ବାମଣ୍ଡା ଡାକ ବିଭାଗର ସମସ୍ତ କର୍ତ୍ତୃତ୍ୱ ଗ୍ରହଣ କଲେ ଏବଂ ବିଭାଗ ସଂକ୍ରାନ୍ତ ସମସ୍ତ ଖର୍ଚ୍ଚ ମଧ୍ୟ ତୁଲାଇବାକୁ ସ୍ୱୀକୃତ ହେଲେ ।

ଡାକ ବିଭାଗ ସ୍ଥାପନ କରି ବାସୁଦେବ ଟେଲିଗ୍ରାଫ୍ ବିଭାଗ ବସାଇବାକୁ ଇଚ୍ଛୁକ ହେଲେ, କିନ୍ତୁ ଏ ବିଭାଗର କର୍ତ୍ତୃତ୍ୱ ସରକାର ତାଙ୍କ ହାତକୁ ଛାଡ଼ି ନ ଦେବାରୁ ତହିଁରୁ ସେ କ୍ଷାନ୍ତ ହୋଇ ସରକାରଙ୍କ ଅନୁମତି ସହ ଦେବଗଡ଼-ଠାରୁ ଗୋବିନ୍ଦପୁରଯାଏ ଆଠହଜାର ଟଙ୍କା ବ୍ୟୟରେ ଟେଲି-ଫୋନ୍ ଲାଇନ୍ ସ୍ଥାପନ କଲେ । ସେ ସମୟରେ, ସାରା ଭାରତବର୍ଷରେ ଏହା ଦୀର୍ଘତମ ଟେଲିଫୋନ୍ ଲାଇନ୍ ଥିଲା ବୋଲି କଲିକତାର ଷ୍ଟେଟ୍‌ସ୍‌ମ୍ୟାନ୍ ଖବରକାଗଜରେ ଲେଖା ହୋଇଥିଲା ।

ରାଜା ବାସୁଦେବ ବୁଝିଥିଲେ ଯେ, ମଦ୍ୟାଦି ମାଦକଦ୍ରବ୍ୟ ସେବନ ପ୍ରଜାଙ୍କର ସମସ୍ତପ୍ରକାର ଦୁଃଖର ନିଦାନ । ତେଣୁ ସେ ଅବକାରୀବିଭାଗ ଗଢ଼ି ତହିଁରୁ ରାଜକୋଷ ନିମନ୍ତେ ଆୟ କରାଇବା ପରିବର୍ତ୍ତେ ମାଦକଦ୍ରବ୍ୟ ବ୍ୟବହାର ନିବାରଣ ନିମନ୍ତେ କଠୋର ଆଇନ ପ୍ରଣୟନ କରିଥିଲେ । ଦେବ-ଗଡ଼କୁ କେନ୍ଦ୍ର କରି କେବଳ ଦଶ ମାଇଲ ମଧ୍ୟରେ ମଦ ଦୋକାନ ରହି ପାରିବ ଏବଂ ଅଫିମ ଖାଇବାକୁ ହେଲେ ଥାନାରେ ନାମ ଲେଖାଇ ତାହା ଆଣିବାକୁ କିଣିବାନିମନ୍ତେ ସେ ଆଦେଶ ପ୍ରଚାର କରିଥିଲେ ଏବଂ ଏ ଆଦେଶ ପାଳନର ବ୍ୟତିକ୍ରମ ଦେଖିଲେ ଦୋଷୀମାନଙ୍କୁ କଠୋର ଦଣ୍ଡ ଦେଉଥିଲେ ।

୧୮୯୭ ଅବ୍ଦରେ ପୁଣ୍ୟଶ୍ଳୋକା ମହାରାଣୀ ଭିକ୍ଟୋରିୟାଙ୍କ ରାଜତ୍ୱର ହୀରକ ଜୁବିଲି ଉତ୍ସବ ବାସୁଦେବ ମହା ସମାରୋହରେ ଅନୁଷ୍ଠିତ କରାଇଥିଲେ । ଗୋଟିଏ ସୁବର୍ଣ୍ଣ ମଞ୍ଜୁଷାରେ ମହାରାଣୀ ମହୋଦୟାଙ୍କୁ ସେହି ଉତ୍ସବ-ଉପଲକ୍ଷରେ ଯେଉଁ ଅଭିନନ୍ଦନପତ୍ର ପ୍ରଦାନ କରିଥିଲେ ତାହା ଭାରତ ସରକାର ଓ ବିଲାତ ସରକାରଙ୍କର ଭାରି ପସନ୍ଦ ହୋଇଥିଲା । ଏ ଉତ୍ସବର ଦିବସକୁ ଚିରସ୍ମରଣୀୟ କରିବା ନିମନ୍ତେ ରାଜାବାସୁଦେବ ଦେବଗଡ଼ଠାରେ ଗୋଟିଏ ପ୍ରକାଣ୍ଡ ପ୍ରାସାଦ ମଧ ନିର୍ମାଣ କରାଇଥିଲେ । ଦେବଗଡ଼ଠାରେ ସେ ଯେଉଁ ବିଜ୍ଞାନ ଗବେଷଣା ମନ୍ଦିର ଓ ମାନ ମନ୍ଦିର ନିର୍ମାଣ କରାଇଥିଲେ ସେଥିରେ ୧୫ ହଜାର ଟଙ୍କା ବ୍ୟୟିତ ହୋଇ-ଥିଲା । କଟକ କଲେଜର ଭୂତପୂର୍ବ ବିଜ୍ଞାନାଚାର୍ଯ୍ୟ ରାୟ ବାହାଦୁର ଯୋଗେଶଚନ୍ଦ୍ର ରାୟ ରାଜା ବାସୁଦେବଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ଏ ଦୁଇ ଅନୁଷ୍ଠାନର ପରିଚାଳନ ନିମନ୍ତେ ବାମଣ୍ଡାକୁ ଯାଇ ସାମୟିକ ନିର୍ଦ୍ଦେଶ ଦେଇ ଆସୁଥିଲେ । ଯୁବରାଜ

ସଚ୍ଚିଦାନନ୍ଦ ଏ ଅନୁଷ୍ଠାନମାନଙ୍କୁ ବିଜ୍ଞାନ ବିନୋଦ ନିମନ୍ତେ ବ୍ୟବହାର କରୁଥିଲେ ।

ଏହିପରି ନାନା ପ୍ରଜାହିତକର କାର୍ଯ୍ୟ କରି ଓଡ଼ିଶା ଓ ଛତିଶଗଡ଼ର କରଦରାଜାମାନଙ୍କ ମଧ୍ୟରେ ଆଦର୍ଶସ୍ଥାନୀୟ ହୋଇଥିବାରୁ ଗୁଣଗ୍ରାହୀ ଇଂରାଜ ସରକାର ୧୮୮୯ ଅବ୍ଦରେ ରାଜା ବାସୁଦେବଙ୍କୁ ସି. ଆଇ. ଇ. ଉପାଧିରେ ଭୂଷିତ କଲେ । ଓଡ଼ିଶା ଛତିଶଗଡ଼ ରାଜାମାନଙ୍କ ମଧ୍ୟରେ ଏ ଉପାଧି ପୂର୍ବରୁ ଆଉ କେହି ଲାଭ କରି ନ ଥିଲେ । ୧୮୯୫ ଅବ୍ଦ ବାମଣ୍ଡା ଇତିହାସରେ ଚିରସ୍ମରଣୀୟ, କାରଣ, ଏ ବର୍ଷରି ପ୍ରଥମ ଦିବସରେ ରାଜା ବାସୁଦେବ ସମ୍ରାଜ୍ଞୀ ପ୍ରଦତ୍ତ ସମୁଚ୍ଚ ଗୌରବସୂଚକ କେ. ସି. ଆଇ. ଇ. ଉପାଧିରେ ପୁନର୍ବାର ଭୂଷିତ ହୋଇ ଏକା ବାମଣ୍ଡାର କାହିଁକି ସମଗ୍ର ଉତ୍କଳର ମୁଖ ଉଜ୍ଜ୍ୱଳ କଲେ । ସେଯୁଗରେ ଏ ଉପାଧି ଲାଭ କମ୍ ସୁଗୁଣର ବା କମ୍ ଗୌରବର ପରିଚାୟକ ନ ଥିଲା । ବର୍ଷ କେତେକଟା ତଳେ ଯେଉଁ ବାମଣ୍ଡା "ଅଖୋଜ" ଉପାଧି ଛଡ଼ା ଅନ୍ୟ କୌଣସି ଉପାଧି ଲାଭ କରି ନ ଥିଲା, ସେହି ବାମଣ୍ଡା ଆଜି ବାସୁଦେବଙ୍କ ତୁଲ୍ୟ ଲୋକୋତ୍ତର ପ୍ରତିଭାବିଶିଷ୍ଟ ନରପତି ଲାଭ କରି ସମଗ୍ର ଉତ୍କଳ ଓ ଛତିଶ ଗଡ଼ ମଧ୍ୟରେ ସର୍ବପ୍ରଥମ କେ.ସି.ଆଇ.ଇ. ଉପାଧିର ଆଧାର ହୋଇ ବସିଲା । ୧୮୯୫ ଅବ୍ଦର ବାର୍ଷିକ ସରକାରୀ ରିପୋର୍ଟରେ ଉଲ୍ଲିଖିତ ଅଛି ଯେ, ଏ ଉପାଧି ରାଜା ବାସୁଦେବ ସୁଢଲଦେବଙ୍କୁ ତାଙ୍କର ବଂଶ-ଗୌରବ ଅଥବା ବିଭବ-ଶାଳିତା ଯୋଗୁଁ ଦିଆଯାଇ ନ ଥିଲା, ତାଙ୍କ ବ୍ୟକ୍ତିଗତ ଅସାଧାରଣ ଗୁଣ ଓ ପ୍ରତିଭାରେ ମୁଗ୍ଧ ହୋଇ ସମ୍ରାଜ୍ଞୀ ତାଙ୍କୁ ଏ ଉପାଧିରେ ବିଭୂଷିତ କରିବା ସମୁଚିତ ମନେ କରିଥିଲେ । ଓଡ଼ିଶା ଓ ଛତିଶଗଡ଼ର ତରୁଣ ନରପତିମାନେ ରାଜା ବାସୁଦେବଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ରାଜ୍ୟଶାସନରେ ତାଙ୍କ ପଦାଙ୍କାନୁସରଣ କଲେ ଏ ଗୌରବ ଯେ ସେମାନଙ୍କର ଲଭ୍ୟ ହୋଇ ପାରିବ ସରକାରୀ ରିପୋର୍ଟରେ ଏହା ମଧ୍ୟ ସ୍ପଷ୍ଟ ସୂଚିତ ହୋଇଥିଲା ।

୧୮୯୭ ଅବ୍ଦରେ ଫସଲ ନ ହେବାରୁ ବାମଣ୍ଡା ଓ ନିକଟବର୍ତ୍ତୀ ଗଡ଼଼ଜାତମାନଙ୍କରେ ଭୟଙ୍କର ଦୁର୍ଭିକ୍ଷ ଉପସ୍ଥିତ ହେଲା ଏବଂ ଦୁର୍ଭିକ୍ଷ ସହିତ ମହାମାରୀ ଉପସ୍ଥିତ ହେବାରୁ ବହୁସଂଖ୍ୟକ ଲୋକ ଅସହାୟ ଅବସ୍ଥାରେ ପ୍ରାଣତ୍ୟାଗ କଲେ । ସର୍ ବାସୁଦେବ ପ୍ରଜାମାନଙ୍କ ପ୍ରାଣ ରକ୍ଷା ନିମନ୍ତେ ବହୁବିଧ ଉପାୟରେ ସେମାନଙ୍କ ପାଇଁ ଅନ୍ନ ସଂସ୍ଥାନର ବ୍ୟବସ୍ଥା କରାଇଥିଲେ । ନିକଟବର୍ତ୍ତୀ ଗଡ଼ଜାତ-ମାନଙ୍କରେ ଶହ ଶହ ଲୋକ ଅନ୍ନାଭାବରେ ପ୍ରାଣତ୍ୟାଗ କରୁଥିଲେ ସୁଦ୍ଧା ସର୍ ବାସୁଦେବଙ୍କ ବିପଦକାଳୀନ ଜନକୋପମ କର୍ମତତ୍ପରତା ଓ ବାତ୍ସଲ୍ୟ ଯୋଗୁଁ ବାମଣ୍ଡା ନିରାପଦ ରହିଲା । ରାଜ୍ୟର ବାହାରକୁ ଧାନ ଯିବା ବନ୍ଦ କରି ଦିଆଗଲା, ରାଜଅମାରମାନଙ୍କରୁ ଧାନ ଅକାତରଭାବରେ କଢ଼ା-ଯାଇ ନାମ ମାତ୍ର ମୂଲ୍ୟରେ ବିକ୍ରୟ କରା ଗଲା ଓ ତାହା ଅକୁଳାନ ହେବାରୁ ମଧ୍ୟ ଧାନ ଋଣ କରି ଅଣାଯାଇ ଟଙ୍କାକୁ ଚଉଦ ସେର ଦରରେ ଦୁଃସ୍ଥ ପ୍ରଜାଙ୍କ ମଧ୍ୟରେ ବିକ୍ରି ଦିଆଗଲା । ଏତିକି ନୁହେଁ, ପ୍ରଜାମାନେ ସେ ବର୍ଷ ଋଣ ଶୁଝି ନ ପାରିବାରୁ ସେମାନଙ୍କୁ ଟ ୬୧୩୫୭।/ ଖଜଣା ମାଫ୍ ଦିଆଗଲା ।

ସର୍ ବାସୁଦେବ ନାରାୟଣ ଭକ୍ତ ଥିଲେ ଏବଂ ଗୋ-ବ୍ରାହ୍ମଣ ଏ ଦୁହିଁଙ୍କଠାରେ ତାଙ୍କର ଅଚଳା ଭକ୍ତି ଥିଲା । ନିଜ ରାଜ୍ୟରୁ ଗୋମେଷାଦିଙ୍କ ଚମଡ଼ା ବାହାରକୁ ପଠାଇବାକୁ ଅନୁମତି ଦେଇଥିଲେ ସେ ଅନେକ ଟଙ୍କା ଲାଭ କରି ପାରି ଥାଆନ୍ତେ । କିନ୍ତୁ ଅର୍ଥ ଲୋଭରେ ଲୋକେ ବିଷ ପ୍ରୟୋଗ କରି ଗୃହପାଳିତ ପଶୁଙ୍କ ଜୀବନ ନଷ୍ଟ କରିବେ, ଏହି ଆଶଙ୍କା କରି ସର୍ ବାସୁଦେବ ନିଜ ରାଜ୍ୟରେ ଚମଡ଼ା ବ୍ୟବସାୟ ବନ୍ଦ କରି ଦେଇଥିଲେ ।

୧୯୦୨ ଅବ୍ଦରେ ସେ ପୀଡ଼ିତ ହେଲେ ଓ ଚିକିତ୍ସା ନିମନ୍ତେ କଲିକତା ପ୍ରୟାଣ କଲେ । ସେଠାରେ ରୋଗୋପଶମ ପାଇଁ ବହୁବିଧ ଚେଷ୍ଟା କରାଗଲା ସତ୍ୟ, କିନ୍ତୁ ତାଙ୍କର ଅନ୍ତିମକାଳ ନିକଟବର୍ତ୍ତୀ ହୋଇଥିବାରୁ ସମସ୍ତ ଚେଷ୍ଟା ନିଷ୍ଫଳ ହେଲା । ୧୯୦୩ ମସିହା ନଭେମ୍ବର ୧୯ ତାରିଖ ଦିନ ସେ ଇହଧାମ ତ୍ୟାଗ କରି ସମଗ୍ର ଉତ୍କଳକୁ ଶୋକସାଗରରେ ଭସାଇ ଦେଇଗଲେ । ତାଙ୍କ ମୃତ୍ୟୁ ବାର୍ତ୍ତା ଲକ୍ଷ ଲକ୍ଷ ଉତ୍କଳବାସୀଙ୍କୁ ଅଶନିପାତ ସମାନ ବୋଧ ହେଲା ।

ବାମଣ୍ଡାର ତଥା ଉତ୍କଳଖଣ୍ଡର ନବଯୁଗ ପ୍ରବର୍ତ୍ତକମାନଙ୍କ ମଧ୍ୟରେ ସେ ଅଗ୍ରଣୀ ଥିଲେ ଏବଂ ତାଙ୍କ ତିରୋଧାନରେ ସମଗ୍ର ଓଡ଼ିଆଜାତି ଏକାନ୍ତ ହତାଶ ହୋଇ ପଡ଼ିଲା । ଲୋକୋତ୍ତର ପ୍ରତିଭା ଛଡ଼ା ଦୟାଦାକ୍ଷିଣ୍ୟାଦି ସହସ୍ର ସଦ୍‌ଗୁଣରେ ବିଭୂଷିତ ହୋଇଥିବାରୁ ସେ ସମଗ୍ର ଦେଶର ହୃଦୟରେ ସ୍ନେହପୂତ ଆସନରେ ସମାସୀନ ଥିଲେ । ତାଙ୍କ ଜୀବନଗାଥା ବା ସଦ୍‌ଗୁଣାବଳୀ କତିପୟ ପୃଷ୍ଠାରେ ବର୍ଣ୍ଣିତ ହେବା ଅସମ୍ଭବ । ବଙ୍ଗଭାଷାରେ ତାଙ୍କ ଜୀବନବୃତ୍ତାନ୍ତ ଲେଖକ ଶ୍ରୀ ଚଣ୍ଡୀଚରଣ ବନ୍ଦ୍ୟୋପାଧ୍ୟାୟ ତାଙ୍କ ବିଶାଳ ଗ୍ରନ୍ଥରେ ସୁଦ୍ଧା ସର୍ ବାସୁଦେବଙ୍କ ଗୁଣାବଳୀ ଯଥାଯଥ କୀର୍ତ୍ତନ କରିପାରିବାର ଅବକାଶ ପାଇ ନାହାନ୍ତି ବୋଲି ଆକ୍ଷେପ କରିଅଛନ୍ତି । ଏ ଅବସ୍ଥାରେ ତାଙ୍କ ଜୀବନ ବୃତ୍ତାନ୍ତ ଲେଖାରେ ହାତ ଦେଇ କର୍ତ୍ତବ୍ୟ ସାଙ୍ଗ କରିବାର ଆଶା ଯେ କୌଣସି ଲୋକ ପକ୍ଷରେ ଅମାର୍ଜନୀୟ ଧୃଷ୍ଟତାର ପରିଚାୟକ ।

ଓଡ଼ିଶାର କବିବର ରାଧାନାଥ ଓ ଭକ୍ତକବି ମଧୁସୂଦନ ପ୍ରଭୃତି ମହାମାନବ ସର୍ ସୁଢ଼ଲଙ୍କ ବିଷୟରେ ଯାହା ଯାହା ଲିପିବଦ୍ଧ କରି ଯାଇଅଛନ୍ତି, ତହିଁରୁ କିୟଦଂଶ ମାତ୍ର ଏଠାରେ ଉଦ୍ଧାର କରି ଆମ୍ଭେମାନେ କର୍ତ୍ତବ୍ୟ ଶେଷ କରିବୁଁ ।

କବିବର ରାଧାନାଥ ଲେଖିଥିଲେ, "ଜୀବନରେ ନାନା ଶ୍ରେଣୀର ଲୋକଙ୍କ ସହିତ ମୁଁ ଆଳାପ କରିଅଛି; କିନ୍ତୁ ସୁଢ଼ଲ ଦେବଙ୍କ ତୁଲ୍ୟ 'ସମତୁଲ' ପ୍ରକୃତିର ଲୋକ ମୁଁ ଅନ୍ୟ କୁତ୍ରାପି ଦେଖି ନାହିଁ । ମନରେ ସମସ୍ତ ବୃତ୍ତି ଅଛି; କିନ୍ତୁ ସମସ୍ତ ବୃତ୍ତିର ସେ ପ୍ରଭୁ । କୌଣସି ବୃତ୍ତି ଉଚ୍ଛୃଙ୍ଖଳ ହୋଇ ତାହାଙ୍କ ଉପରେ ପ୍ରଭୁତ୍ୱ କରିବ, ଏହା ତାଙ୍କ କୋଷ୍ଠୀରେ ନାହିଁ । କାର୍ଯ୍ୟପ୍ରଧାନ ଅଥଚ ଭାବପ୍ରଧାନ; ନାତିକୋମଳ ଅଥଚ ନାତିସହିଷ୍ଣୁ । ସ୍ଥାନ ଦେଖି ଗଣନାଶୀଳ, ସ୍ଥାନ ଦେଖି ମୁକ୍ତହସ୍ତ । ଗର୍ବ ନ ଥାଇ ତାଙ୍କର ଯଥେଷ୍ଟ ଆତ୍ମ-ମର୍ଯ୍ୟାଦା ଜ୍ଞାନ ଅଛି, କାହା ପ୍ରତି ସ୍ନେହ କଲେ ବୋଲି

ଯେ ତାହାର ଦୋଷ ପ୍ରତି ଅନ୍ଧ ହୋଇ ପଡ଼ବେ, ଏପର ନୁହେଁ । ଅଭଯୋକ୍ତାକୁ ଗୋଟିଏ କର୍ଣ୍ଣ ଦେଇ ଅନ୍ୟ କର୍ଣ୍ଣଟି ଅଭଯୁକ୍ତ ନମନ୍ତେ ମୁକ୍ତ ରଖିବାରେ ସେ ସର୍ବଦା ସତର୍କ । ଅନ୍ୟର ଉପଦେଶପ୍ରାର୍ଥୀ ହୋଇ ସୁଦ୍ଧା ନଜ ବୁଦ୍ଧିର ସ୍ୱାଧୀନତା ସେ ବସର୍ଜନ କରବାକୁ କଦାଚ ପ୍ରସ୍ତୁତ ନ ଥିଲେ । ତାଙ୍କର ନ୍ୟାୟବଣ୍ଡର ଜ୍ଞାନ ଓ କରୁଣାରେ ଜଡ଼ତ ଥିଲା । ତାଙ୍କର ଯଶରେ ଅଭରୁଚ ଥିଲା, କନ୍ତୁ ସେ ଯଶୋରଙ୍କ ନ ଥିଲେ । କୃତ୍ରିମ ଉପାୟରେ ଯଶଃ ପ୍ରଚ୍ୟର ନମନ୍ତେ ବା ଅଳୀକ ଯଶ ନମନ୍ତେ ତାଙ୍କର ଆକାଂକ୍ଷା ନ ଥିଲା । ତାଙ୍କର ଆମୋଦ ପ୍ରତି ବତୃଷ୍ଣା ନ ଥିଲା । ଜୀବନରେ ସର୍ବବଧ ଉନ୍ନତର ମୂଳ ଯେ ସ୍ୱାସ୍ଥ୍ୟ, ତାହାର କ୍ଷତ ନ କର ଯେତେଦୂର ଆମୋଦ ସମ୍ଭବ, ତାହାର ସୀମା ସେ ଅତକ୍ରମ କରୁ ନ ଥିଲେ । ଧର୍ମ, ଅର୍ଥ, କାମ ପ୍ରତି ତାଙ୍କର ସମାନ ଦୃଷ୍ଟି, କାହା ପ୍ରତି ଏକାସକ୍ତ ନ ଥିଲା; କାହା ପ୍ରତ ଔଦାସୀନ୍ୟ ମଧ୍ୟ ନ ଥିଲା । ଫଳତଃ—

ଧର୍ମାର୍ଥକାମାଃ ସମମେବ ସେବ୍ୟାଃ
ଯଃ ଏକସକ୍ତଃ ସ ନରୋ ଜଘନ୍ୟଃ ।

ସୁଡ଼ଳଦେବଙ୍କ ଜୀବନ ଏହ ଉକ୍ତିର ଗୋଟିଏ ପ୍ରକୃଷ୍ଟ ନଦର୍ଶନ । ଇଂରାଜୀଭାଷାରେ ଅନଭଜ୍ଞ ହୋଇ ମଧ୍ୟ ଇଉରୋପୀୟମାନଙ୍କ ନକଟରେ ସୁଡଳଦେବଙ୍କ ପ୍ରତଷ୍ଠା ଅଳ୍ପ ନ ଥିଲା । ଗଭର୍ଣ୍ଣମେଣ୍ଟଙ୍କଠାରୁ ସେ ଯେ ଉଚ୍ଚ ଉପାଧି ଲାଭ କରଅଛନ୍ତି ସେ ଉପାଧି ସେହ ପ୍ରତଷ୍ଠାର ପରମାପକ । କନ୍ତୁ ଏହା ବୋଲି ଇଉରୋପୀୟମାନଙ୍କ ସହିତ ଦେଶୀୟ ଲୋକଙ୍କର ପ୍ରକୃତ କରୂପ ସମ୍ବନ୍ଧ ଏବଂ ସେମାନଙ୍କ ସହିତ ସଂଶ୍ରବ ରଖିବା ଅପରହାର୍ଯ୍ୟ ଓ ସ୍ଥଳବଶେଷରେ ବାଞ୍ଛନୀୟ ହେଲେ ସୁଦ୍ଧା ସେ ସଂଶ୍ରବର ସୀମା କେଉଁଠାରେ ଏହା ବସ୍ମୃତ ହେବା ଲୋକ ସେ ନୁହନ୍ତି ।”

× × ×

“କହବା ବାହୁଲ୍ୟ ବାମଣ୍ଡାର ମହାରାଜ ଶ୍ରୀ ସୁଡ଼ଳଦେବଙ୍କ ରୁଚ ସ୍ୱତନ୍ତ୍ର । ତାଙ୍କର ପାଣ୍ଡିତ୍ୟ ତାଙ୍କ ରୁଚର ପ୍ରଭୁ । ସୁରୁଚର ସନାତନ ଗୁରୁ କାଳଦାସ, ମୁରାର ପ୍ରଭୃତଙ୍କ ଭକ୍ତ ହୋଇ ଗ୍ରାମ୍ୟ ଆମୋଦର ପକ୍ଷପାତୀ ହେବା ତାଙ୍କ ପକ୍ଷରେ ଅସମ୍ଭବ ।”

× × ×

“ବଘ୍ନ ସାଧାରଣ ଲୋକଙ୍କୁ ଭଗ୍ନୋଦ୍ୟମ ଓ ପଶ୍ଚାତ୍ପଦ କରେ । କେବଳ ଏକମାତ୍ର ପ୍ରତଭା ପ୍ରତକୂଳ ଦୈବହସ୍ତରୁ ସିଦ୍ଧିକୁ ଛଡ଼ାଇ ଆଣିବାକୁ ସମର୍ଥ । ସୁଡ଼ଳଦେବ ଆଦୌ ବଘ୍ନଦ୍ୱାରା ଭଗ୍ନୋତ୍ସାହ ହେବାର ପାତ୍ର ନ ଥିଲେ । ସୁଶିକ୍ଷା ଓ ଦେଶପର୍ଯ୍ୟଟନଦ୍ୱାରା ସେ ଉତ୍ତମରୂପେ ବୁଝିଥିଲେ ଯେ, ବଜ୍ଞାନ ସାହାଯ୍ୟରେ ସର୍ବବଧ ବୃହତ୍ତର ଅନୁଷ୍ଠାନରେ କୃତକାର୍ଯ୍ୟ ହେବା ସମ୍ଭବ । ସେଥିଯୋଗୁଁ ତାଙ୍କର ପ୍ରତଭା ସୁସମୟରେ ସର୍ବବଧ ସୁଅନୁଷ୍ଠାନ ପ୍ରତି ଅଗ୍ରସର ହେବାକୁ ଭୀତ ବା ପଶ୍ଚାତ୍ପଦ ହେଉ ନ ଥିଲା । ସେ କାର୍ଯ୍ୟର ପରମାଣ ଓ ନଜର ଶକ୍ତି ସାମର୍ଥ୍ୟ ଓଜନ କର କାର୍ଯ୍ୟରେ ହାତ ଦେଉଥିଲେ ଏବଂ ସର୍ବଦା କୃତକାର୍ଯ୍ୟତାର ଆନନ୍ଦ ଉପଭୋଗ କର କପର ସୁଖୀ ହେବାକୁ ହୁଏ, ଏହା ସେ ଜାଣିଥିଲେ ।”

---

ସର୍ ବାସୁଦେବ ସୁଡଳଙ୍କ ମୃତ୍ୟୁ ଉପଲକ୍ଷରେ ରାୟ ବାହାଦୁର ସ୍ୱର୍ଗତ ମଧୁସୂଦନ ରାଓ ଯେଉଁ “ଶୋକଲହରୀ” ପଦ୍ୟ ଲେଖିଥିଲେ ତାହା ଯଥାର୍ଥରେ ଉତ୍କଳୀୟ ପ୍ରତ୍ୟେକ ବ୍ୟକ୍ତିର ହୃଦୟର ଶୋକଲହରୀ । ଏଠାରେ ତାହା ଉଦ୍ଧାର କରାଗଲା ।

## ଶୋକଲହରୀ

—୧—

“କ ଘୋର ବାରତା ଅଜ ଅଶନ ନର୍ଘାତେ
ପଡ଼ିଲା ଏ ଉତ୍କଳ ଭବନେ
ବଦଳତ କ ଦାରୁଣ ଶୋକ-ଝଞ୍ଜାଘାତେ
ଶତ ଆଶା-ଲତା ହୃଦବନେ ।
ଉତ୍କଳ ଗଗନ ରବ ଦେବ ଶ୍ରୀ ସୁଡ଼ଳ
ଅସ୍ତମିତ ହବା ଦ୍ୱିପ୍ରହରେ
ଘୋର ଅନ୍ଧକାରେ ମଗ୍ନ କାତର ଉତ୍କଳ
ବକଳେ କାନ୍ଦଇ ଆର୍ତ୍ତସ୍ୱରେ ।
ପୂରୁବେ ପଶ୍ଚିମେ ଆଜ ବଳାପର ଧ୍ୱନ
କାନ୍ଦଇ ରେ ଉତ୍ତର ଦକ୍ଷିଣ
ଆକୁଳେ କାନ୍ଦଇ ସର୍ବ ଉତ୍କଳ ଅବନୀ
ତତ୍ପରହ ଶୋକେ ବମଳନ ।

—୨—

ସତେ କ ହେ ମହାରାଜ ଗଙ୍ଗବଂଶ ରବ
କୋଟି ନେତ୍ରନନ୍ଦନ ପ୍ରତମା
ବୁଧକୁଳ ମାନନୀୟ ମନୀଷୀ ସୁକବ
ସ୍ୱଦେଶର ଗୌରବ ଗରମା ।
ସତେ କ ହେ ପୁଣ୍ୟଶ୍ଳୋକ ପରଲୋକ ଦେଶେ
ମହା ପ୍ରସ୍ଥାନର ମହାପଥେ
ଗଲ ଚାଲି ଏ ସଂସାର ତେଜଣ ନମିଷେ
ସୁକୃତ ପୁଷ୍ପକ ପୁଣ୍ୟରଥେ ।

—୩—

ତେଜ ଶ୍ରୀ ସଚ୍ଚିଦାନନ୍ଦ ହୃଦୟ ନନ୍ଦନେ,
ତେଜ ପ୍ରିୟ ସୁତ ସୁତା ଜାୟା
ତେଜ ରାଜ୍ୟ ରାଜଦଣ୍ଡ ରାଜ ସିଂହାସନେ
ତେଜ ସଂସାରର ସର୍ବମାୟା ।
ଏ ମର୍ତ୍ତ୍ୟଧାମର ସୀମା ଲଙ୍ଘଣ କ୍ଷଣକେ
ଯାଉଅଛ ଚାଲି ମହାବାହୁ !
ସେ ଅଜ୍ଞାତ ଲୋକ ପରଲୋକେ କ ଛଟକେ
ଯହୁଁ କେହ ନ ବାହୁଡ଼େ ଆଉ ।
ଯାଉଅଛ ଚଳ ଦେବ ! ଚରକାଳ ପାଇଁ
ଦବ୍ୟଧାମ ଅମର ନଗରେ
ଏ ମର୍ତ୍ତ୍ୟନୟନ ଆଉ ବଲୋକବ ନାହିଁ
ବୀର୍ଯ୍ୟଦୀପ୍ତ ତବ କଳେବରେ ?

—୪—

ଶାଳପ୍ରାଂଶୁ ସେ ମୂରତ ସେ ବକ୍ଷ ବପୁଳ
ସେ ପ୍ରଶାନ୍ତ କରୁଣ ନୟନ
ସେ ଦବ୍ୟ ଆକାର ଯହିଁ ଏକାଧାରେ ମେଳ
ଭୀମକାନ୍ତ ଗୁଣ ଅଗଣନ ।

ଆଦାର ସଦ୍‌ଗୁଣ ପ୍ରାଜ୍ଞ    ଥିଲ ନରମଣି !
ଶାସ୍ତ୍ରେ ଅକୁଣ୍ଠିତା ତବ ବୁଦ୍ଧି
ଅନୁସର ଜ୍ଞାନଗର୍ଭ    କର୍ମର ସରଣୀ
ବିଶ୍ୱରେ ଲଭିଲ ମହା ସିଦ୍ଧି ।
ଧନ୍ୟ ଧନ୍ୟ ଯଶଜନ୍ମା !    ଜନ୍ମି ରାଜବଂଶେ
କ୍ଷଣସ୍ଥାୟୀ ମାନବ ଜନମେ
ମଣ୍ଡି ଅଛ ମର୍ଯ୍ୟାଦାର    ଯେଉଁ ଅବତଂସେ
ଯେଉଁ ମହା ପ୍ରଯ୍ନାସ ବିକ୍ରମେ,
ସେହି ମହା ପ୍ରଯ୍ନାସର    ପବିତ୍ର ଜୟମେ
ଥିଲ ତୁମେ ମହା କର୍ମବୀର
ଆଡ଼ମ୍ବରଶୂନ୍ୟ    ରାଜର୍ଷି ରାଜ୍ୟାଶ୍ରମେ
ଗୃହାଶ୍ରମେ ଆଦର୍ଶ ଗୃହୀର ।

୫

ରାଜକର୍ମ କୋଳାହଳ    ମଧ୍ୟେ ଥାଇ ସଦା
କେମନ୍ତେ ହେ କବି କର୍ମବୀର !
ଭେଟିଲ ସେବିଲ    ସେହି ଭାରତୀ ବରଦା
ସୌଭାଗ୍ୟେ ଲଭିଲ ତାଙ୍କ ବର ?
ରୁଚିର ସ୍ୱଭାବରାଜ୍ୟେ    ହେ ରସଜ୍ଞ କବି !
କାବ୍ୟର୍ରେ ସୌନ୍ଦର୍ଯ୍ୟନିଳୟେ
ଅନନ୍ଦେ ବିହରି    କେତେ ସୁମନୋଜ୍ଞ ଛବି
ଚିତ୍ରିଲ ସେ କଳ୍ପନାନିଚୟେ ।
ଉତ୍କଳର ସୁରଧୁନୀ    ଉତ୍କଳ ପାବନୀ
ମହାନଦୀ "ଚିତ୍ରୋତ୍ପଳା" ଚିତ୍ର
ଶ୍ରୀକରେ ଚିତ୍ରିଲ    ଚିତ୍ର ଦିବସ ରଜନୀ
ମହାନଦୀ ମହିମା ବିଚିତ୍ର ।
ଝାନ୍ସିରାଣୀ ଲକ୍ଷ୍ମୀ—    ବାଣୀ ଶୌର୍ଯ୍ୟ ସୁଚରିତ
ଶୁଣି ତବ କ୍ଷତ୍ରିୟ ଶୋଣିତ
ସରଗେ ଉଠିଲା ନାଚି    ତବ ବୀର ଚିତ୍ତ
ଗାଇଲ ହେ "ବୀରବାମା" ଗୀତ ।
ଉତ୍କଳ ସାହିତ୍ୟାକାଶେ    ଉଇଁ ଶୁଭକ୍ଷଣେ
ଭାଷା ଯୋଗେ ଭବିଷ୍ୟ ମିଳନେ
ସୂଚିଲ ହେ ଦୂରଦର୍ଶୀ !    ଅରୁଣ ଯେସନେ
ଦୂରେ ମାଧ୍ୟନ୍ଦିନ ଆଗମନେ ।
ସୁଧୀ କବିଜନେ ଅହା    କେତେ ସମାଦରି
କରିଅଛ ହେ ଗୁଣଗ୍ରାହକ !
ଗୁଣି ଗୁଣି ଗୁଣ ତବ    କେତେ ଗୁଣୀଙ୍କର
ବୁହାଇ ହେ ନୟନୁଁ ଲୋତକ ।

୬

ବାମଣ୍ଡା ଗୌରବ, ଦେବ !    ବାମଣ୍ଡା ମହିମା
ରାଜଧାନୀ ଦେବଗଡ଼ ଠେକ
ଉତ୍କଳଗୀର୍ବାଣବିଦ୍ୟା    ଗୌରବ ଗରିମା
ବଢ଼ାଇଲ ଭୂମିର ବିବେକ ।

ପ୍ରତି ଦିବସର ପ୍ରୀତି—    ପୂର୍ଣ୍ଣ ପ୍ରଯ୍ନାସରେ
ସେ ରାଜ୍ୟ ପାଳିଲ ସୁମଙ୍ଗଳେ
ତେଜ ତାକୁ ଅନ୍ତର୍ହିତ    ହେଲ କ୍ଷଣକରେ
ବିରାଜିଲ ଏବେ ଦେବଦଳେ ।
ଏବେ ତବ ଲୋକ ହୃଦ୍ୟ—    ସାଧନା ଗରିମା
ଲଭିଅଛି ଅପୂର୍ବ ମହିମା
ଦେବତ୍ୱରୀ ଯାଏ ତବ    ଜୀବନ ମାଧୁରୀ
ପ୍ରସାରିଛି ଲଭି ମର୍ତ୍ତ୍ୟ ସୀମା ।

୭

ବିରାଜ ବିରାଜ ଦେବ !    ଅମର ଭବନେ
ଶୁଭ୍ର ନବ ଦେବମୂର୍ତ୍ତି ଲଭି
ଉତ୍କଳର ଅଶ୍ରୁ ଧୌତ    ହୃଦୟଗଗନେ
ପ୍ରତିଫଳୁ ତବ ଦେବ ଛବି ।
ମହାମହେଶଙ୍କ    ଶ୍ରୀଚରଣ ଛାୟାତଳେ
ଲଭି ଦିବ୍ୟ ତେଜଃପୁଞ୍ଜ, କାନ୍ତି
ଲଗ୍ନ ହୋଇ ଜ୍ୟୋତିର୍ମୟ    ଦେବତାଙ୍କ ଦଳେ
ଗାଅ ଦେବ ଓଁ ସ୍ୱସ୍ତି ଶାନ୍ତି !
ସେହି ଶାନ୍ତି ମହାମନ୍ତ୍ର    ସେହି ସ୍ୱସ୍ତି ଗାନ
ସନ୍ତପ୍ତ ଏ ସଂସାର ଆଲୟେ
ସ୍ଫୁରୁ ନିତ୍ୟ ସ୍ଫୁରୁ ନିତ୍ୟ    ଅଭୟ ପ୍ରଦାନ
ମନୁଷ୍ୟର ହତାଶ ହୃଦୟେ ।
ସେ ସଙ୍ଗୀତ ମନ୍ଦାକିନୀ    କରୁ ମଧୁମୟ
ଲକ୍ଷ ଲକ୍ଷ ନକ୍ଷତ୍ରମଣ୍ଡଳ
ସେ ପରମ ଘୋଷଣାର    ଅମୃତ ଅଭୟ
ବ୍ୟାପୁ ବ୍ୟୋମ ବାୟୁ ଜଳ ସ୍ଥଳ ।"

୨ । ପୂର୍ବୋକ୍ତ ସର୍ ବାସୁଦେବ ସୁଢଳଦେବଙ୍କ ନାତି ରାଜା **ଦିବ୍ୟଶଙ୍କର ସୁଢ଼ଳଦେବ**—**2. Raja Dibyasankar Sudhala Deba of Bamra.**—୧୯୧୬ ମସିହାରେ ପିତାଙ୍କ ମୃତ୍ୟୁ ପରେ ରାଜା ଶ୍ରୀ ଶ୍ରୀ ଶ୍ରୀ ଦିବ୍ୟଶଙ୍କର ସୁଢ଼ଳଦେବ ବାମଣ୍ଡା ରାଜସିଂହାସନରେ ଅଭିଷିକ୍ତ ହୋଇ ରାଜ୍ୟ ଶାସନ ଆରମ୍ଭ କଲେ । ପୁଣ୍ୟଶ୍ଳୋକ ସର୍ ବସୁଦେବ ସୁଢଳଦେବ ଏହାଙ୍କ ଜନ୍ମ ସମୟରେ ଜୀବିତ ଥିଲେ ଓ ରାଜକୁମାରଙ୍କ ଜନ୍ମଜନିତ ରାଜପରିବାରର ଆନନ୍ଦପ୍ରକାଶ ନିମନ୍ତେ ଶତ ଶତ ମୁଦ୍ରା ସର୍ ବାସୁଦେବଙ୍କ ଆଦେଶରେ ଦାନରୂପ ଦିଆ ଯାଇଥିଲା ।

ରାଜା ସଚ୍ଚିଦାନନ୍ଦ ଏହାଙ୍କ ଉଚ୍ଚ ଶିକ୍ଷା ନିମନ୍ତେ ଅତ୍ୟନ୍ତ ଆବହିତ ଥିଲେ ଓ ବାମଣ୍ଡା ରାଜକୁମାର ହାଇ-ସ୍କୁଲରୁ ଏ ମାଟ୍ରିକୁଲେଶନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସାରି କଲିକତାର ସେଣ୍ଟ୍ ଜେଭିଅର୍ କଲେଜରେ ଉଚ୍ଚ ଶିକ୍ଷା ଲାଭ କରିଥିଲେ ।

୧୯୧୬ ମସିହା ନଭେମ୍ବର ୨୨ ତାରିଖ ଦିନ ବିହାର ଓଡ଼ିଶା ପ୍ରଦେଶର ମାନ୍ୟବର ଲେଫ୍‌ଟେନେଣ୍ଟ୍

ଗଭର୍ଣ୍ଣର୍ ମହୋଦୟ ଏହାଙ୍କୁ ସମ୍ବଲପୁରଠାରେ ଖିଲାତ୍ ପ୍ରଦାନ କରିଥିଲେ । ଖିଲାତପ୍ରଦାନକାଳୀନ ଭାଷଣରେ ଗଭର୍ଣ୍ଣର ମହୋଦୟ ବାମଣ୍ଡାରାଜପରିବାରର ଗୌରବ ବର୍ଣ୍ଣନ କରି ପିତା ଓ ପିତାମହଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ରାଜ୍ୟ ଶାସନ କରିବା ନିମନ୍ତେ ତରୁଣ ରାଜା ବିଦ୍ୟାଶଙ୍କରଙ୍କୁ ଉପଦେଶ ପ୍ରଦାନ କରିଥିଲେ । ସେହି ସୁଦିନକୁ ଚିରସ୍ମରଣୀୟ କରିବା ନିମନ୍ତେ ଯେ କୌଣସି ଜନହିତକର ନିର୍ମାଣରେ ଖର୍ଚ୍ଚ କରିବାକୁ ବଦାନ୍ୟ ବିଦ୍ୟାଶଙ୍କର ଗଭର୍ଣ୍ଣର୍ ମହୋଦୟଙ୍କ କରରେ ନଗଦ ପାଞ୍ଚ ଶହ ପାଉଣ୍ଡ (ଟ ୭,୫୦୦୯ ପ୍ରଦାନ କରିଥିଲେ ।

ରାଜା ବିଦ୍ୟାଶଙ୍କରଙ୍କ ରାଜତ୍ୱକାଳରେ ଇଉରୋପୀୟ ମହାସମର ଚାଲିଥିଲା ଏବଂ ଇଂରାଜ ସରକାରଙ୍କୁ ଯଥାଶକ୍ତି ଧନ ଜନ ଦେଇ ସାହାଯ୍ୟ କରିବା ସାମ୍ରାଜ୍ୟର ପ୍ରତ୍ୟେକ ରାଜଭକ୍ତ ପ୍ରଜା ସେତେବେଳେ ପରମପୁରୁଷାର୍ଥ ମଣୁଥିଲେ । ବାମଣ୍ଡା ରାଜବଂଶର ଚରିତ୍ରଗତ ଆଦର୍ଶ ରାଜଭକ୍ତିକୁ ଅକ୍ଷୁର୍ଣ୍ଣ ରଖି ରାଜା ବିଦ୍ୟାଶଙ୍କର ରାଜ୍ୟରୁ ୩ଲକ୍ଷ୯୨ହଜାର୫୦୦ ଟଙ୍କା ଯୁଦ୍ଧ ଋଣ ଉଠାଇ ତନ୍ମଧ୍ୟରୁ ଯୁଦ୍ଧ ଋଣ ଫଣ୍ଡକୁ ନିଜେ ୧୦ ହଜାର ଟଙ୍କା ଦାନ କରିଥିଲେ । ଏରୋପ୍ଲେନ୍ ଫଣ୍ଡକୁ ନଗଦ ୯ ହଜାର, ଅୱାରଡେ ଫଣ୍ଡକୁ ଟ ୫୫୭୫୯, ଦିଲ୍ଲୀର ସେଣ୍ଟ୍ ଜନ୍ ଆମ୍ବୁଲାନ୍ସ୍ ଫଣ୍ଡକୁ ଟ ୨୦୦୦୯ ଏବଂ ଇଂଲଣ୍ଡର ସର୍ବସାଧାରଣ ଯୁଦ୍ଧ ପାଣ୍ଠିକୁ ଟ୯୦୦୦୯ ତାଙ୍କଦ୍ୱାରା ପ୍ରଦତ୍ତ ହୋଇଥିଲା । ଏହାଛଡ଼ା ମେସୋପଟେମିଆକୁ ସେ ଟ ୪୮୪୦୯ ମୂଲ୍ୟର ଯୁଦ୍ଧୋପଯୋଗୀ ଉପକରଣମାନ ପଠାଇ ଯୁଦ୍ଧରେ ସାହାଯ୍ୟ ଦେବାକୁ ନିଜ ରାଜ୍ୟରୁ ଶତ ଶତ କୁଲି ପଠାଇଥିଲେ । କୁଲିମାନଙ୍କୁ ଉତ୍ସାହିତ କରିବା ନିମନ୍ତେ ସେ ପ୍ରତ୍ୟେକ କୁଲିକୁ ଟ ୨୦୯ ବୋନସ୍ ଓ ତତ୍‌ପରିବର୍ତ୍ତେ ଖୁଲାହଶେଷରେ ଜମିବାଡ଼ିର ସେହି ପରିମିତ ଖଜଣା ମାଫ୍ କରି ଦେଇଥିଲେ ।

ଏହି ବହୁମୂଲ୍ୟ ସାହାଯ୍ୟ ପାଇଁ ସଦାଶୟ ଇଂରାଜ ସରକାର ରାଜା ବିଦ୍ୟାଶଙ୍କରଙ୍କୁ ୧୯୧୯ ମସିହା ଜାନୁଆରୀ ପହିଲା ତାରିଖ ଦିନ ସି. ବି. ଇ. ଉପାଧିରେ ଭୂଷିତ କରିଥିଲେ ।

ରାଜା ବିଦ୍ୟାଶଙ୍କର ଦୟାର ମୂର୍ତ୍ତିମାନ୍ ବିଗ୍ରହ ଥିଲେ । ପ୍ରଜାବୃନ୍ଦଙ୍କ ଦୁଃଖ ଦେଖିଲେ ତାଙ୍କ ହୃଦୟ ବିଗଳିତ ହୋଇ ଯାଉଥିଲା । ୧୯୧୮ ମସିହାରେ ଯେତେବେଳେ ବାମଣ୍ଡାରେ ଦୁର୍ଭିକ୍ଷ ପଡ଼ିଥିଲା ସେତେବେଳେ ସଙ୍କଟ ସମୟରେ ପ୍ରଜାମାନଙ୍କ ପ୍ରାଣରକ୍ଷା କରିବାକୁ ରାଜା ବିଦ୍ୟାଶଙ୍କର ଚେଷ୍ଟିତ ହୋଇଥିଲେ । ସେ ରାଜ୍ୟର ରାଜ ଅମାରମାନ ଖୋଲିଦେଇ ଧାନ ବିତରଣ କରିବାକୁ ଆଦେଶ ଦେଲେ ଏବଂ ତାଙ୍କ ଆଦେଶରେ ଧାନ ଟଙ୍କାକୁ ୨୦ ସେର ଦରରେ ବିକ୍ରି ହେଲା । ଏ ଧାନ ଅକୁଲାନ ହେବାରୁ ବିଦେଶରୁ ବେପାରୀମାନଙ୍କଠାରୁ ୬ସେର ଦରରେ ଧାନ କିଣା ହୋଇ ତାହା ତାଙ୍କ ଆଦେଶରେ ୮ ସେର ଦରରେ ପ୍ରଜାମାନଙ୍କୁ ବିକ୍ରି କରାଗଲା । ଖାଦ୍ୟପଦାର୍ଥର ଏ ମହାର୍ଘ୍ୟ ସମୟରେ ହାତୀ ପୋଷିବା ଅନ୍ୟାୟ ଭାବି ଦୟାର୍ଦ୍ରହୃଦୟ ରାଜା ବିଦ୍ୟାଶଙ୍କର ଅନେକ ହାତୀଙ୍କୁ ବନ୍ଧନ-ମୁକ୍ତ କରି ବଣକୁ ଛାଡ଼ି ଦେଲେ । ଏ ଆଦର୍ଶ ହୃଦୟବତ୍ତା କେବଳ ପୁଣ୍ୟଶ୍ଳୋକ ବାସୁଦେବ ଓ ସଚ୍ଚିଦାନନ୍ଦଙ୍କ ବଂଶଧରଙ୍କଠାରେ ସମ୍ଭବ ଥିଲା ! ଅନ୍ୟତ୍ର ଏହା ପ୍ରାୟଶଃ ଦୁର୍ଲ୍ଲଭ ।

ରାଜା ବିଦ୍ୟାଶଙ୍କର ରାଜକୋଷରୁ ବହୁ ଅର୍ଥ ବ୍ୟୟ କରି ଏକାଧିକ କେନାଲ୍ ଓ ବହୁସଂଖ୍ୟକ ଜଳାଶୟ ଖୋଳାଇ ଥିଲେ । ତାଙ୍କ ସମୟରେ ପୁଲିସ୍ ବାରକ୍‌ସ୍ ପ୍ରଭୃତି ଅନେକ ସରକାରୀ ଭବନ ନୂଆ ହୋଇ ନିର୍ମିତ ହୋଇଥିଲା ।

ରାଜ୍ୟରେ ବସନ୍ତ ଓ ମହାମାରୀରୂପ ଜ୍ୱର ଉପସ୍ଥିତ ହେବାରୁ ଯେତେବେଳେ ଶହ ଶହ ଲୋକ ପ୍ରାଣତ୍ୟାଗ କଲେ ସେତେବେଳେ ରାଜା ବିଦ୍ୟାଶଙ୍କର ଜନକୋଚିତ ବାତ୍ସଲ୍ୟ ପ୍ରଦର୍ଶନପୂର୍ବକ ପ୍ରଜାମାନଙ୍କୁ ଚିକିତ୍ସିତ କରାଇଲେ । କଲିକତାରୁ ବହୁସଂଖ୍ୟକ ଡାକ୍ତର ଅଣାଗଲେ ଓ ଗ୍ରାମେ ଗ୍ରାମେ ବୁଲିବାକୁ ସେମାନଙ୍କୁ ଆଦେଶ ଦିଆଗଲା ଓ ରାଜାଦେଶରେ ବହୁ ସହସ୍ର ଟଙ୍କାର ଔଷଧ ଓ ପଥ୍ୟ କ୍ରୟ କରାଯାଇ ଦୁଃସ୍ଥ ପ୍ରଜାମାନଙ୍କ ମଧ୍ୟରେ ବିତରଣ କରାଗଲା । ରାଜା ବିଦ୍ୟାଶଙ୍କର ଅମରଧାମକୁ ପ୍ରୟାଣ କଲେଣି, କିନ୍ତୁ ସାରା ବାମଣ୍ଡା ତାଙ୍କର ଏହି ଅନୁପମ ଦୟାଳୁତାକୁ ଲୋତକ ବର୍ଷଣ କରି ସ୍ମରୁଅଛି ।

ରାଜା ସଚ୍ଚିଦାନନ୍ଦ ଦେବଗଡ଼ର ଡାକ୍ତରଖାନାକୁ ବଢ଼ାଇବାକୁ ମନସ୍ଥ କରିଥିଲେ, କିନ୍ତୁ ଅକାଳରେ ସ୍ୱର୍ଗଗାମୀ ହେବାରୁ ତାଙ୍କର ସେ ଅଭିଳାଷ ପୂର୍ଣ୍ଣ ହୋଇ ପାରି ନ ଥିଲା । ରାଜା ବିଦ୍ୟାଶଙ୍କର ପିତାଙ୍କର ସେ ଅଭିଳାଷ ପୂରଣ କରି ଓଡ଼ିଶାର ତଦାନୀନ୍ତନ ବିଭାଗୀୟ କମିସନର୍ ଲ୍ଲ' ମିସ୍ତୁଅର୍ ସାହେବଙ୍କଦ୍ୱାରା ଡାକ୍ତରଖାନାର ନୂଆ ପକ୍କାଘରର ଶୁଭ ଦିଆଇଥିଲେ ।

ପ୍ରଜାମାନଙ୍କର ଗତାୟାତର ସୁବିଧା ନିମନ୍ତେ ସେ ଅନେକ ନୂତନ ରାସ୍ତା ପ୍ରସ୍ତୁତ କରାଇଥିଲେ । ମହାପ୍ରାଣ ପିତୃଦେବଙ୍କ ସ୍ମୃତିରକ୍ଷାକଳ୍ପେ ସେ ଦେବଗଡ଼ରେ 'ରାଜା ସଚ୍ଚିଦାନନ୍ଦ ଲାଇବ୍ରେରୀ' ସ୍ଥାପନ କରିଥିଲେ । ଏ ଲାଇବ୍ରେରୀ ତଦାନୀନ୍ତନ ପୋଲିଟିକାଲ୍ ଏଜେଣ୍ଟ୍ ମିଷ୍ଟର୍ କବ୍‌ଡେନ୍ ରାମ୍‌ସେ ସି. ଆଇ. ଇ, ଆଇ. ସି. ଏସ୍‌ଙ୍କ କର୍ତ୍ତୃକ ଉଦ୍‌ଘାଟିତ ହୋଇଥିଲା ।

ରାଜା ବିଦ୍ୟାଶଙ୍କରଙ୍କ ଅମଳରେ ଉଚ୍ଚ ପ୍ରାଥମିକ ଓ ନିମ୍ନ ପ୍ରାଥମିକ ବିଦ୍ୟାଳୟମାନଙ୍କ ସଂଖ୍ୟା ଯଥେଷ୍ଟ ବଢି ଯାଇଥିଲା । ୧୯୦୨ ମସିହାରେ ବାମଣ୍ଡାରେ ୫୪ ମାତ୍ର ନିମ୍ନ ପ୍ରାଇମେରୀ ସ୍କୁଲ୍ ଥିବା ସ୍ଥଳେ ୧୯୧୯ରେ ତହିଁର ସଂଖ୍ୟା ୮୮ ହୋଇଥିଲା ।

୧୯୧୯ରେ ଇଉରୋପୀୟ ମହାଯୁଦ୍ଧ ଶେଷ ହେବାରୁ ବାମଣ୍ଡା ରାଜଧାନୀରେ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କ ଅଜସ୍ର ଅର୍ଥ ବ୍ୟୟ କରି ଶାନ୍ତି ମହୋତ୍ସବ କରାଇଥିଲେ । କେବଳ ଟ ୫୦୦୦ରେ ଲୁଗା ଲୋକଙ୍କ ମଧ୍ୟରେ ବିତରଣ କରା ଯାଇଥିଲା ଓ ନାନାପ୍ରକାରେ ଦୁଃଖୀଲୋକଙ୍କୁ ବହୁତ ସାହାଯ୍ୟ କରା ଯାଇଥିଲା ।

ରାଜା ସଚ୍ଚିଦାନନ୍ଦଙ୍କର ତୀର୍ଥଭ୍ରମଣ ଉଦ୍ଦେଶ୍ୟରେ ୧୯୧୯ ମସିହା ଡିସେମ୍ବର ୧୯ ତାରିଖ ଦିନ ବାମଣ୍ଡାରୁ ବହିର୍ଗତ ହୋଇଥିଲେ । ସେତେବେଳେ କେହି ଜାଣି ନଥିଲେ ଯେ, ଶୀଘ୍ର ଅପ୍ରତ୍ୟାଶିତଭାବରେ ଅଶନିପାତ ହେବ । ରାଜା ସଚ୍ଚିଦାନନ୍ଦଦେବ ୧୯୨୦ ମସିହା ଜାନୁଆରୀ ୧ ତାରିଖ ଦିନ ପ୍ରୟାଗଠାରେ ହଠାତ୍ ଲୋକାନ୍ତରିତ ହେଲେ । ମୃତ୍ୟୁ ବେଳକୁ ତାଙ୍କର ମୋଟେ ୨୯ ବର୍ଷ ବୟସ ହୋଇଥିଲା । ଏହି ଅଳ୍ପ ବୟସରେ ମୃତ୍ୟୁ ସେ ତାଙ୍କ ଉଜ୍ଜ୍ୱଳ ଭବିଷ୍ୟତ୍ ଜୀବନର ଏତେ ସୂଚନା ଦେଇଥିଲେ ଯେ, ଖାଲି ବାମଣ୍ଡାର ଲୋକେ କାହିଁକି, ସମଗ୍ର ଉତ୍କଳର ଲୋକେ ତାଙ୍କୁ ହରାଇ ନୈରାଶ୍ୟରେ ନିମଗ୍ନ ହେଲେ । ରାଜା ସଚ୍ଚିଦାନନ୍ଦଙ୍କର ହୃଦୟ ଦୟାରେ ପରିପୂର୍ଣ୍ଣ ଥିଲା । ପ୍ରଶସ୍ତ ହୃଦୟବତ୍ତାବଳରେ ସେ ସମଗ୍ର ଦେଶର ଶ୍ରଦ୍ଧା ଓ ଭକ୍ତି ଅର୍ଜ୍ଜନ କରିଥିଲେ । ତାଙ୍କ ଭଳି ମହାପ୍ରାଣ ମହାମନା ବ୍ୟକ୍ତିମାନଙ୍କ ଜୀବନ ଦୈର୍ଘ୍ୟରେ ମପାଯାଏ ନାହିଁ । ଗଣାଯାଏ ତାଙ୍କ ଭଳି ବ୍ୟକ୍ତିମାନଙ୍କ ଜୀବନର ପ୍ରକୃଷ୍ଟ ମାପକାଠି । ବିଧାତା ତାଙ୍କୁ ଅଳ୍ପାୟୁଃ କରି ଜନ୍ମ ଦେଇଥିଲେ । ଦୀର୍ଘାୟୁ ଲାଭ କରିଥିଲେ ସେ ବାସୁଦେବ-ସଚ୍ଚିଦାନନ୍ଦ-କୀର୍ତ୍ତିମାଳିନୀ ବାମଣ୍ଡା ଅବନୀର ଯେ କେତେ କଲ୍ୟାଣ ଉନ୍ନତି କରିଯାଇଥାଆନ୍ତେ ତାହା ଠିକ୍ କରି କହିବା ଏଠାରେ ଅସମ୍ଭବ । ତାଙ୍କ ଅପୂର୍ଣ୍ଣ ଜୀବନର ମହତ୍ତ୍ୱ ନିକଟରେ ଆମ୍ଭମାନଙ୍କ ମସ୍ତକ ଅବନତ । ପିତୃପିତାମହଙ୍କର ସେ ଥିଲେ ଉପଯୁକ୍ତ ଦାୟାଦ । ବାମଣ୍ଡା ତାଙ୍କୁ ଅକାଳରେ ହରାଇ ଯେଉଁ ଦୁଃସହ ଦୁଃଖରେ ମ୍ରିୟମାଣ ହୋଇପଡ଼ିଥିଲା ତାହା ତାଙ୍କର ସୁଯୋଗ୍ୟ ତନୟ ରାଜା ଭାନୁଗଙ୍ଗଦେବଙ୍କ ଦ୍ୱାରା ଲାଘବ ହୋଇଅଛି । ରାଜା ସଚ୍ଚିଦାନନ୍ଦଙ୍କର ସୌମ୍ୟକାନ୍ତି ମୂର୍ତ୍ତି ଭୁଲିଯିବାର ଜିନିଷ ନୁହେଁ । ତାଙ୍କ ହୃଦୟବତ୍ତା ଓ ଦୟାଳୁତା ଆଦର୍ଶସ୍ଥାନୀୟ ଓ ଓଡ଼ିଆଜାତିର ଅମୂଲ୍ୟ ସମ୍ପଦ ।

## ରାଜା ଶ୍ରୀ ଶ୍ରୀ ଶ୍ରୀ ଭାନୁଗଙ୍ଗ ତ୍ରିଭୁବନଦେବ

ରାଜା ଶ୍ରୀ ସଚ୍ଚିଦାନନ୍ଦ ତ୍ରିଭୁବନଦେବ O. B. E ଙ୍କ ଅକାଳ ମୃତ୍ୟୁ ପରେ ପ୍ରାୟ ପଞ୍ଚଦଶ ବର୍ଷକାଳ ବାମଣ୍ଡା କୋର୍ଟ ଅଫ୍ ୱାର୍ଡ୍‌ସଙ୍କ ପରିଚାଳନାଧୀନ ହୋଇ ରହିଥିଲା । ପ୍ରଜାଙ୍କ ମନର ଏହି ପଞ୍ଚଦଶବର୍ଷବ୍ୟାପୀ ରାଜବିରହ ଜନିତ ଶୋକ ଝଞ୍ଜାକୁ ନାଶ କରି ୧୯୩୫ ମସିହା ଜାନୁଆରୀ ମାସ ୧୭ ତାରିଖ ଦିନ ଗଙ୍ଗକୁଳଭାନୁ ରାଜା ଶ୍ରୀ ଶ୍ରୀ ଶ୍ରୀ ଭାନୁଗଙ୍ଗ ତ୍ରିଭୁବନଦେବ ବାମଣ୍ଡା ଗଗନକୁ ନିଜ ବିମଳ ଆଭାରେ ମଣ୍ଡିତ କରି ଉଦିତ ହେଲେ । ବାମଣ୍ଡା ନବୀନ ରାଜାଙ୍କୁ ପଞ୍ଚଦଶ ବର୍ଷ ହେଲା ଉପଯୁକ୍ତ କେଉଁଠି ଗୁହିଁ ରହିଥିଲା । ପରିଶେଷରେ ତାଙ୍କ ରାଜ୍ୟାଭିଷେକର ମଙ୍ଗଳମୟ ଦିନ ଉପସ୍ଥିତ ହେବାରୁ, ବାମଣ୍ଡା ରାଜ୍ୟ ଆନନ୍ଦ ସାଗରରେ ମଜ୍ଜିତ ହୋଇ ପୂର୍ବର ଦାରୁଣଶୋକକୁ ପାଶୋରି ଦେଲା ଏବଂ ସୁଯୋଗ୍ୟ ନବୀନ ନରପତିଙ୍କୁ ହୃଦୟରେ ଅସପତ୍ନ ଆସନ ପ୍ରଦାନ କରି ଧନ୍ୟ ହେଲା । ତରୁଣ ରାଜା ଶ୍ରୀ ଶ୍ରୀ ଶ୍ରୀ ଭାନୁଗଙ୍ଗଦେବଙ୍କ ରାଜତ୍ୱର ଗୁରି ପାଞ୍ଚ ମାତ୍ର ବର୍ଷ ଅତିକ୍ରାନ୍ତ ହୋଇଅଛି । କିନ୍ତୁ ଏହି ସ୍ୱଳ୍ପକାଳ ମଧ୍ୟରେ ତାଙ୍କ ରାଜତ୍ୱର ଉଜ୍ଜ୍ୱଳ ଭବିଷ୍ୟତର ଯେଉଁ ସବୁ ସ୍ପଷ୍ଟ ଅଗ୍ରସୂଚନା ମିଳିଅଛି, ତାହା ଦେଖି ସମଗ୍ର ଉତ୍କଳ ଆଶା କରୁଣି ଯେ— "ବୁଧ ହଂସ କେଳିସର" ବାମଣ୍ଡାର ପୂର୍ବାର୍ଜିତ ଗୌରବ, ଏହି ତରୁଣ ନୃପକେଶରୀଙ୍କ ଅମଳରେ ଶତଗୁଣିତ ହେବ । ପଦ୍ମରାଗ ମଣିର ଆକରରେ ପଦ୍ମରାଗମଣିହିଁ ଜନ୍ମଲାଭ କରିଥାଏ; ତହିଁରେ କାଚମଣିର ଜନ୍ମ ସର୍ବତୋଭାବରେ ଅସମ୍ଭବ ।

ରାଜା ଶ୍ରୀ ଶ୍ରୀ ଶ୍ରୀ ଭାନୁଗଙ୍ଗ ରାୟପୁର ରାଜକୁମାର କଲେଜରେ ଅଧ୍ୟୟନ କାଳରେ ନିଜ ପ୍ରତିଭାର ପରିଚୟ ପ୍ରଦାନ କରି ଅଧ୍ୟାପକ ଓ ସତୀର୍ଥମାନଙ୍କ ସମ୍ମାନ ଆକର୍ଷଣ କରିଥିଲେ । ତାଙ୍କ ବ୍ୟକ୍ତିଗତ ସୌଜନ୍ୟ ଓ ସହଜାତ ନିରଭିମାନ ଭାବ ଆଦର୍ଶସ୍ଥାନୀୟ ଅଟେ । ସେ ସମ୍ୟକ୍ କୃତିତ୍ୱ ସହିତ ରାଜକୁମାର କଲେଜର ଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ଏବଂ ସମ୍ବଲପୁରରେ କିଛିକାଳ ଅବସ୍ଥାନ କରି ଶାସନ କାର୍ଯ୍ୟ ଶିକ୍ଷା କରିଥିଲେ । ଏହି ଶିକ୍ଷାବସ୍ଥାରେ ମଧ୍ୟ ତାଙ୍କର ବିଚକ୍ଷଣତା ପ୍ରକଟିତ ହୋଇ ପଡ଼ିଥିଲା । ଗୁରି ପାଞ୍ଚ ବର୍ଷବ୍ୟାପୀ ରାଜତ୍ୱ କାଳ ମଧ୍ୟରେ ସେ କେତେ ସ୍ଥଳରେ ଓ ବହୁ କ୍ଷେତ୍ରରେ ଶାସନ ବିଚକ୍ଷଣତା ପ୍ରଦର୍ଶନ କରି ପ୍ରଜାମାନଙ୍କ ମନରେ ସମୁଚ୍ଚ ଆଶା ଜାଗରିତ କରିଅଛନ୍ତି ।

ରାଜା ଶ୍ରୀ ଶ୍ରୀ ଶ୍ରୀ ଭାନୁଗଙ୍ଗ ଦେବ ୧୯୩୭ ମସିହାରେ ଗାଦିନସୀନ ହେଲେ ଏବଂ ଦୈବାତ୍ ସେହି ବର୍ଷ ଶୁଭ-ଯୋଗରେ ସ୍ୱର୍ଗତ ସମ୍ରାଟ ପଞ୍ଚମ ଜର୍ଜ୍ଜଙ୍କ ରାଜତ୍ୱର ରଜତ-ଜୁବିଲି ଉତ୍ସବ ଇଂରାଜ ସାମ୍ରାଜ୍ୟତମାମ୍ ଅନୁଷ୍ଠିତ ହେଲା । ଏ ମହୋତ୍ସବକୁ ପାଳନ କରିବା ନିମନ୍ତେ ବାମଣ୍ଡା ରାଜ୍ୟରେ ଯେଉଁ ବିପୁଳ ଆୟୋଜନ କରାଯାଇଥିଲା, ତାହା ବିସ୍ମୃତ ହେବାକଥା ନୁହେଁ । ନାନାବିଧ ସାଜସଜ୍ଜା, ଯାତ୍ରା, ମହୋତ୍ସବ ଏବଂ ଅଲୋକ ସମ୍ଭାରର ପ୍ରାଚୁର୍ଯ୍ୟରେ ବାମଣ୍ଡା ରାଜଧାନୀ ଦେବଗଡ଼ ଦେବନଗରୀ ଅମରାବତୀର ଶୋଭା ଧାରଣ କରିଥିଲା । ଆବାଲବୃଦ୍ଧବନିତା ବାମଣ୍ଡାର ସମସ୍ତ ପ୍ରଜା-ପ୍ରିୟତମ ତରୁଣ ନୃପତି ଭାନୁଗଙ୍ଗଙ୍କୁ ଅଗ୍ରଣୀ କରି ମହାମାନ୍ୟ ସମ୍ରାଟ ମହୋଦୟଙ୍କର ଶୁଭ ଓ ଦୀର୍ଘ ଜୀବନ କାମନା କରିଥିଲେ ଏବଂ ଗୋଟିଏ ଉଦାର ଜଳ ଯାଇ ରାଜଭକ୍ତ ପ୍ରଜାମାନଙ୍କ ମଧ୍ୟରେ ଜୁବିଲି ପଦକ ବଣ୍ଟା

ହୋଇଥିଲା । ରାଜା ମହୋଦୟ ଉକ୍ତ ଜୁବିଲି ପାଣ୍ଠିକୁ ନଗଦ ପାଞ୍ଚ ହଜାର ମୁଦ୍ରା ଦାନ କରିଥିଲେ ଓ ଶତ ଶତ କଙ୍ଗାଳଙ୍କ ମଧ୍ୟରେ ରାଜାଦେଶରେ ଅମୁତକନ୍ତ ଖାଦ୍ୟ ଓ ବସ୍ତ୍ର ବିତରିତ ହୋଇଥିଲା । ପୁନଶ୍ଚ ଏ ମହୋତ୍ସବକୁ ଚିରସ୍ମରଣୀୟ କରିବା ନିମନ୍ତେ ଦେବଗଡ଼ରେ ଦୁଃସ୍ଥ କୁଷ୍ଠ-ରୋଗୀମାନଙ୍କ ଚିକିତ୍ସା ନିମନ୍ତେ ଗୋଟିଏ ପକ୍କା ଚିକିତ୍ସାଭବନ ନିର୍ମିତ ହୋଇଥିଲା ଏବଂ ମହାମାନ୍ୟ ଗଭର୍ଣ୍ଣର୍ ଜେନେରଲ୍‌ଙ୍କ ଏଜେଣ୍ଟ୍ କର୍ଣ୍ଣେଲ୍ ଏ. ଏସ୍., ମୀକ୍, ସି. ଏସ୍. ଆଇ ମହୋଦୟ ୧୯୩୬ ମସିହା ଜାନୁଆରୀ ୧୬ ତାରିଖ ଦିନ ଏ ଭବନର ଶୁଭ ଦେଇଥିଲେ । ଶୁଭ ଦେବା ସମୟରେ ରାଜା ଭାନୁଗଙ୍ଗଙ୍କ ଦୁଃସ୍ଥପ୍ରଜାପ୍ରୀତିରେ ଗଭୀର ସନ୍ତୋଷ ପ୍ରକାଶପୂର୍ବକ କର୍ଣ୍ଣେଲ୍ ମୀକ୍ ମହୋଦୟ କହିଥିଲେ ଯେ, ରାଜା ଭାନୁଗଙ୍ଗ ବାମଣ୍ଡାକୁ ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ୍ ଏଜେନ୍‌ସିର ରାଜ୍ୟମାନଙ୍କ ମଧ୍ୟରେ ପ୍ରଥମସ୍ଥାନୀୟ କରିବାକୁ ଯେ ଅଭିଳାଷୀ, ଏହା ତାଙ୍କର ଏ କୀର୍ତ୍ତି ସ୍ଥାପନଦ୍ୱାରା ସୂଚିତ ହେଉଅଛି ।

କ୍ୱେଟା ଭୂମିକମ୍ପରେ ଗୃହଶୂନ୍ୟ ଦୁଃସ୍ଥମାନଙ୍କ ସାହାଯ୍ୟ ନିମନ୍ତେ କରୁଣାର୍ଦ୍ରଚିତ୍ତ ରାଜା ମହୋଦୟ ମହାମାନ୍ୟ ବଡ଼ଲାଟ ମହୋଦୟଙ୍କ ନିବେଦନାନୁଯାୟୀ ନଗଦ ୫୦୦୦ ଟଙ୍କା ଦାନ କରିଥିଲେ ।

କୋର୍ଟ୍ ଅଫ୍ ୱାର୍ଡ଼ସ୍‌ଙ୍କ ପରିଚାଳନା ସମୟରେ ରାଜ ସରକାରଙ୍କ ଧାନ ଗୋଲା ଅନୁଷ୍ଠାନମାନ ରହିତ କରା ଯାଇଥିଲା । ପ୍ରଜା ସାଧାରଣଙ୍କର ଏତଦ୍ୱାରା ଅସୁବିଧା ହେଉଥିବା ଦେଖି ପ୍ରଜାପ୍ରାଣ ବାମଣ୍ଡା ନରେଶ ମହୋଦୟ ସେ ସବୁର ପୁନଃପ୍ରତିଷ୍ଠା ନିମନ୍ତେ ଆଦେଶ ପ୍ରଦାନ କରିଥିଲେ ।

ଦେବଗଡ଼ରେ ଅସଂଖ୍ୟ ଆଗନ୍ତୁକ ନାନା କାର୍ଯ୍ୟୋପଲକ୍ଷରେ ଆସି ଅବସ୍ଥାନ ନିମନ୍ତେ ଉପଯୁକ୍ତ ବାସଗୃହ ନ ପାଉଥିବା ଦେଖି ନବୀନ ନରେଶ ମହୋଦୟ ଦଶ ହଜାର ଟଙ୍କା ବ୍ୟୟରେ ଗୋଟିଏ ପ୍ରକାଣ୍ଡ ଧର୍ମଶାଳା ନିର୍ମାଣ କରାଯିବା ନିମନ୍ତେ ଆଦେଶ ଦେଇ ଅଛନ୍ତି; ଏହି 'ଧର୍ମଶାଳା ନିର୍ମାଣ' କାର୍ଯ୍ୟ ପୂର୍ଣ୍ଣ ହୋଇ ଆସିଲାଣି । ବାମଣ୍ଡାର ନବୀନ ନରେଶ ମହୋଦୟ କେବଳ ଯେ ବାମଣ୍ଡା ପ୍ରଜାଙ୍କ ସୁଖ ଓ ସୁବିଧା ନିମନ୍ତେ ବ୍ୟସ୍ତ, ତା ନୁହେଁ; ତାଙ୍କ ବିଶାଳ ହୃଦୟର କପାଟ ସମସ୍ତଙ୍କ ନିମନ୍ତେ ନିତ୍ୟ ଉନ୍ମୁକ୍ତ ।

ବାମଣ୍ଡାର ଯେଉଁ ପ୍ରଜାଗଣ ଯଥା ସମୟରେ ରାଜସ୍ୱ ଦେଇ ପାରନ୍ତି ନାହିଁ, ସେମାନଙ୍କଠାରୁ ବାକି ରାଜସ୍ୱ ଟଙ୍କାକେ ପଇସାଏ ସୁଧ ସହିତ ଆଦାୟ କରା ଯାଉଥିଲା । ନବୀନ ନରେଶ ଭାନୁଗଙ୍ଗ ସୁଧର ହାର ପଇସାକ ସ୍ଥଳରେ ପାହୁଲାଏ ଧାର୍ଯ୍ୟ କରି ପ୍ରଜାମାନଙ୍କର ଅଶେଷ ଆଶୀର୍ବାଦ ଅର୍ଜନ କରି ଅଛନ୍ତି । ଏ ବିଳାସପରତନ୍ତ୍ର ଯୁଗରେ ଅନ୍ୟତ୍ର ପ୍ରଜାଙ୍କ ରକ୍ତ ଶୋଷଣ ହେଉଥିବା ବେଳେ ତରୁଣ ବାମଣ୍ଡା ନୃପତିଙ୍କର ଏ ମହତ୍ ଆଦର୍ଶ ନିଶ୍ଚୟ ବିରାଟ ବ୍ୟକ୍ତିତ୍ୱ ଓ ବିଶାଳ ହୃଦୟବତ୍ତାର ପରିଚାୟକ ।

ସହଯୋଗ ଭିତ୍ତିରେ ଗ୍ରାମମାନଙ୍କରେ ଥିବା ପଡ଼ିଆ ଜମିମାନ ପ୍ରଜାମାନେ ଉଠିଆ କରି ତହିଁରୁ ଲବ୍ଧ ଆୟରେ ଗ୍ରାମର ଉନ୍ନତି କରନ୍ତୁ, ଏ ମର୍ମରେ ରାଜା ଶ୍ରୀ ଭାନୁଗଙ୍ଗ ଆଦେଶ ପ୍ରଚାର କରିଅଛନ୍ତି ଏବଂ ଏଥିର ଫଳରେ ହଜାର ହଜାର ଏକର୍ ପଡ଼ିଆ ଜମି ଉଠିଆ ହୋଇ ବାମଣ୍ଡା ରାଜ୍ୟର ଗ୍ରାମମାନଙ୍କର ସମୃଦ୍ଧି ବର୍ଦ୍ଧିତ ହେଉଅଛି । ଯେଉଁ ସବୁ ଗ୍ରାମ କ୍ରମ ବର୍ଦ୍ଧମାନ ଦାରିଦ୍ର୍ୟ ଦ୍ୱାରା ଅନ୍ତଃସାରଶୂନ୍ୟ ହୋଇ ଧ୍ୱଂସ ପଥରେ ଗତି କରୁଥିଲା ସେ ସବୁ ବର୍ତ୍ତମାନ ଉନ୍ନତି ପଥରେ ଧାବିତ ହୋଇ ତରୁଣ ନୃପକେଶରୀଙ୍କ ସୁବେଦୃଷ୍ଟି ଓ ପ୍ରଜା ବାତ୍ସଲ୍ୟ ତାରସ୍ୱରରେ ଘୋଷଣା କରୁଅଛି ।

ରାଜା ଭାନୁଗଙ୍ଗ ବାମଣ୍ଡା ପ୍ରଜାମାନଙ୍କୁ ଉଚ୍ଚ ଶିକ୍ଷା ଦେବାପାଇଁ ଭାରି ଅଭିଳାଷୀ । ଦରିଦ୍ରାବସ୍ଥାପନ୍ନ ମେଧାବୀ ଛାତ୍ରଗଣ ତାଙ୍କର ବିଶେଷ ଅନୁଗ୍ରହର ପାତ୍ର । ଚଳିତ ବର୍ଷ ଜଣେ ଛାତ୍ର ଷ୍ଟେଟ ପକ୍ଷରୁ ବୃତ୍ତି ପାଇ ଏମ୍. ଏ., ବି. ଏଲ ପଢ଼ୁ ଅଛନ୍ତି, ଜଣେ ଡାକ୍ତରୀ ପଢ଼ୁ ଅଛନ୍ତି, ଆଉ ଜଣେ ପଶୁ ଡାକ୍ତରୀ ଏବଂ ଜଣେ ଆଇ. ଏସ୍. ସି ପଢ଼ୁ ଅଛନ୍ତି ଏବଂ ଆଉ ଜଣେ କଟକ ଟ୍ରେନିଂ କଲେଜରେ ଡି. ଇଡ଼ି ପଢ଼ୁ ଅଛନ୍ତି; ଏମାନେ ଏ ସବୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଉଚ୍ଚ ଶିକ୍ଷା ଦ୍ୱାରା ବାମଣ୍ଡାର ମୁଖୋଜ୍ଜ୍ୱଳ ହେବ ବୋଲି ରାଜା ଭାନୁଗଙ୍ଗଙ୍କର କଳ୍ପନା ଅଟେ ।

ଦେଶର ଅଜ୍ଞତା ଦୂର କରିବାକୁ ରାଜା ଭାନୁଗଙ୍ଗଙ୍କର ପ୍ରବଳ ଇଚ୍ଛା । ଏତଦ୍ ବ୍ୟତୀତ ନିଜର ବ୍ୟକ୍ତିଗତ ତତ୍ତ୍ୱାବଧାନରେ ସେ ଦେବଗଡ଼ଠାରେ ଗୋଟିଏ ରାତ୍ରି ବିଦ୍ୟାଳୟ ବା Night School ଖୋଲି ଅଛନ୍ତି । ଏ ବିଦ୍ୟାଳୟରେ ମଜୁରିଆ ଓ ରାଜ ସରକାରର ନିମ୍ନ ନାଉକରଙ୍କ ଉପଯୁକ୍ତ ମାନେ ଶିକ୍ଷା ପାଇ ଆସୁଅଛନ୍ତି । ଏହିରୂପେ ସର୍ବାଗ୍ରେ ବାମଣ୍ଡା ରାଜଧାନୀ ଦେବଗଡ଼ରୁ ନିରକ୍ଷରତା ରୂପ ରାକ୍ଷସକୁ ଦୂର କରିବାକୁ ତରୁଣ ରାଜା ମହୋଦୟ ଦୃଢ଼ ସଂକଳ୍ପ ।

ବିଚାର ବିଭାଗକୁ ଶାସନ ବିଭାଗରୁ ପୃଥକ୍ କରି ସେ ବିଭାଗକୁ ସ୍ୱତନ୍ତ୍ର ଓ ସ୍ୱାଧୀନ କରିବା ପ୍ରତ୍ୟେକ ଆଦର୍ଶ ସରକାରଙ୍କ ମୁଖ୍ୟ ଲକ୍ଷ୍ୟ ମଧ୍ୟରୁ ଅନ୍ୟତମ । ତରୁଣ ନୃପତି ଭାନୁଗଙ୍ଗ ବାମଣ୍ଡାରେ ଏଥିର ସୂତ୍ରପାତ କରି ଷ୍ଟେଟ୍ ଜଜ୍ ପଦ ସୃଷ୍ଟି କରି ଅଛନ୍ତି । ସମସ୍ତ ପହିଲି ଅପିଲ ଏହି ଜଜ୍ ଦ୍ୱାରା ବିଚାର ହେବାର ବ୍ୟବସ୍ଥା କରା ଯାଇଅଛି ।

ପାଟଣା, ମୟୂରଭଞ୍ଜ, କେନ୍ଦୁଝର ପ୍ରଭୃତି ମୁଷ୍ଟିମେୟ କେତୋଟି ରାଜ୍ୟ ଛାଡ଼ି ଦେଲେ ଏ ଦିଗରେ ଅନ୍ୟ କୌଣସି ରାଜ୍ୟ ଏ ପର୍ଯ୍ୟନ୍ତ ଅଗ୍ରସର ହୋଇ ନାହାନ୍ତି ।

ତରୁଣ ନୃପତି ଭାନୁଗଙ୍ଗ ଉଚ୍ଚ ଶିକ୍ଷା ଲାଭ କରିଥିବାରୁ ଓ ନିଜେ ଜଣେ ଆଦର୍ଶବାଦୀ ଥିବାରୁ ଯୁଗୋପଯୋଗୀ ଉନ୍ନତି ପଥରେ ବାମଣ୍ଡା ତାଙ୍କ ରାଜତ୍ୱର ଏହି ଚାରି ବର୍ଷ ମଧ୍ୟରେ ଉନ୍ନତି ପଥରେ ଏତାଦୃଶ କ୍ଷିପ୍ରତା ସହିତ ଅଗ୍ରସର ହେଉଅଛି ।

ତରୁଣ ନୃପତି ଭାନୁଗଙ୍ଗଙ୍କ ପରି ବିନୟୀ ବ୍ୟକ୍ତିଙ୍କ ସଂଖ୍ୟା ରାଜନ୍ୟମଣ୍ଡଳୀରେ ବେଶୀ ନୁହେଁ ।

ତାଙ୍କପରି ମିଷ୍ଟଭାଷୀ ଓ ସ୍ୱଳ୍ପଭାଷୀ ଖୁବ୍ ବିରଳ । ସୌଜନ୍ୟରେ ତାଙ୍କୁ କେହି ହେଲେ ପରାଭୂତ କରି ପାରିବେ ନାହିଁ । ଅଯଥା ଆଡ଼ମ୍ବର ତାଙ୍କଠାରୁ ଅନାଦର ପାଇ ବୋଧ ହୁଏ, ଚିରବିଦାୟ ଗ୍ରହଣ କରିଅଛି । ସ୍ନାନ ପୂର୍ବରୁ ଦୈନିକ ମାର୍ଜନବେଳେ କୌଣସି ଆଗନ୍ତୁକଙ୍କୁ ଦର୍ଶନ ଦେଇ ତାଙ୍କ ସହିତ ଅକୁଣ୍ଠିତ କଥୋପକଥନ କରିବା ସାଧାରଣ ବା ସୁଲଭ ସୌଜନ୍ୟର ପରିଚାୟକ ନୁହେଁ । ସାଧାରଣ ପରିଚ୍ଛଦ ପରିଧାନ କରି ସେ ଯେତେବେଳେ ଲୋକଙ୍କ ସହିତ ମିଶନ୍ତି ତାଙ୍କ ସାରଲ୍ୟମୟ ବ୍ୟବହାର ଦେଖି କେହିହେଲେ କହିବ ନାହିଁ ଯେ, ସେ ସହସ୍ର ସହସ୍ର ଲୋକଙ୍କର ଭାଗ୍ୟବିଧାତା ବାମଣ୍ଡାଧିପତି । ବାମଣ୍ଡାର ପ୍ରଜାକୁଳ ତାଙ୍କଠାରୁ ଜନକ-ସୁଲଭ ବାତ୍ସଲ୍ୟ ଲାଭ କରି ଆଜି ଅସୀମ ସୁଖ ଅନୁଭବ କରୁଅଛନ୍ତି ଏବଂ ଦୀନତମ ପ୍ରଜା ସୁଦ୍ଧା ଆଜି ଅସଙ୍କୋଚରେ ରାଜ ସମକ୍ଷରେ ନିଜର ଗୁହାରି ଜଣାଇ ପ୍ରତିକାର ଲାଭ କରି ପାରୁଅଛି । ପ୍ରାଚ୍ୟପାଶ୍ଚାତ୍ୟ ଉଭୟ ଆଦର୍ଶ ରାଜା ଭାନୁଗଙ୍ଗଙ୍କ ଠାରେ ଯେଉଁ ସମଞ୍ଜସତା ସହି ବିଦ୍ୟମାନ, ସେ ସମଞ୍ଜସତା ଖୁବ୍ କମ୍ ନରପତି ହାସଲ୍ କରି ପାରି ଅଛନ୍ତି ।

ସ୍ୱର୍ଗତ ସର୍ ସୁଢ଼ଳ ଯେପରି ନିଶାର ଘୋର ବିରୋଧୀ ଥିଲେ, ତରୁଣ ଭାନୁଗଙ୍ଗ ମଧ୍ୟ ସେହିପରି ବା ତତୋଽଧିକ ବିରୋଧୀ । ନିଜର ଅନୁଚରମାନଙ୍କ ମଧ୍ୟରୁ କେହି ମାଦକ-ଦ୍ରବ୍ୟ ପ୍ରତି ଆସକ୍ତ ଥିବା ଜଣାପଡ଼ିଲେ ସେହି ମୁହୂର୍ତ୍ତରୁ ସେ କର୍ମଚ୍ୟୁତ ହୋଇ ଦଣ୍ଡିତ ହୋଇଥାଏ । ଏହାର ପଟାନ୍ତର ଅଛି କି ?

ରାଜା ଭାନୁଗଙ୍ଗ କଠୋର ବିଚାରକ ହେଲେ ସୁଦ୍ଧା ତାଙ୍କ ବିଚାର ସର୍ବଦା ଦୟାବିଜଡ଼ିତ ।

ଲୋକଙ୍କୁ ଉଚ୍ଚ ଶିକ୍ଷା ଦେଇ ରାଜ୍ୟର ବେକାର ସମସ୍ୟା ସୁସମାଧାନ କରିବା ନିମନ୍ତେ ରାଜା ଭାନୁଗଙ୍ଗ ନିରତ ଚିନ୍ତିତ ।

ତାଙ୍କ ବଦାନ୍ୟତାର ସୀମା ସ୍ଥିର କରିବା ଅସମ୍ଭବ । ଅଥଚ ଦକ୍ଷିଣ ହସ୍ତରେ ସେ ଯାହା ଦାନ କରନ୍ତି, ତାହା ବାମ ହସ୍ତ ଜାଣିବା ଦୁଷ୍କର । ତାଙ୍କର ମାର୍ଜିତ ରୁଚି ଅନନ୍ୟ-ସୁଲଭ । ଗ୍ରାମ୍ୟ ଆମୋଦ କଅଣ ସେ ଜାଣନ୍ତି ନାହିଁ । କୈଳାସଠାରେ ସେ ଯେଉଁ ଉପବନ ପ୍ରସ୍ତୁତ କରି-ଅଛନ୍ତି, ତାହା ଭୂକୈଳାସ ଆଖ୍ୟା ପାଇବା ଯୋଗ୍ୟ । ତାଙ୍କ ଆଦର୍ଶ ଗୋଶାଳା ଓ ଗୋରୁଙ୍କ ଚରା ଉତ୍ପାଦନ କରିବା ସେହି ତାଙ୍କ ପାଶ୍ଚାତ୍ୟ ଶିକ୍ଷାର ଜୀବନ୍ତ ଉଦାହରଣ ।

ଗୋଜାତିର ଉନ୍ନତି ନିମନ୍ତେ ଏବଂ ଜନସାଧାରଣଙ୍କୁ ସୁବିଧାରେ ଦୁଗ୍ଧ ଯୋଗାଇବା ନିମନ୍ତେ ସେ ଦେବଗଡ଼ରେ ଗୋଟିଏ ଆଦର୍ଶ ଗୋଶାଳା ସ୍ଥାପନ କରିଅଛନ୍ତି । ହରିଆନା ଗୋରୁ ଅଣାଯାଇ ସେଠାରେ ରଖା ଯାଇଅଛନ୍ତି ଏବଂ ଉତ୍କୃଷ୍ଟ ଷଣ୍ଢ ପ୍ରଜନନ ନିମନ୍ତେ ମଧ୍ୟ ଅଣା ହୋଇଅଛି । ଏହି ଗୋ-ଶାଳା ଉଦ୍‌ଘାଟନ କାର୍ଯ୍ୟ ଭାରତ ସରକାରଙ୍କ Animal Husbandry Expert Sir Cox Oles ଙ୍କ ଦ୍ୱାରା ୧୯୩୮ ଜାନୁଆରୀ ମାସରେ ସମ୍ପନ୍ନ ହୋଇଅଛି ।

କୁଟୀରଜାତ ଦ୍ରବ୍ୟର ଉନ୍ନତି ଓ ଗ୍ରାମ୍ୟ ହସ୍ତଶିଳ୍ପର ଉନ୍ନତି ନିମନ୍ତେ ଦେବଗଡ଼ରେ ପ୍ରତ୍ୟେକ ବର୍ଷ ପ୍ରଦର୍ଶନୀ କରିବାର ବ୍ୟବସ୍ଥା ହୋଇଅଛି ଏବଂ ୧୯୩୮ ର ପ୍ରଦର୍ଶନୀକୁ ପଲିଟିକେଲ ଏଜେଣ୍ଟଙ୍କ ସ୍ତ୍ରୀ ଉଦ୍‌ଘାଟନ କରିଥିଲେ ।

Dairy (ଗବ୍ୟଶାଳା) ର ଉନ୍ନତି ନିମନ୍ତେ ଏବଂ ତହିଁରେ ନୂତନ ଧରଣର କାର୍ଯ୍ୟପ୍ରଣାଳୀ ଚଳାଇବା ନିମନ୍ତେ ସେ ଇଉରୋପ ଯାତ୍ରା କରିଥିଲେ । ହଲାଣ୍ଡରେ ଗବ୍ୟଶାଳା ଉନ୍ନତ, ସେଠାର ପରିଚାଳନାର ପ୍ରଣାଳୀ ଦେଖିବା ନିମନ୍ତେ ସେ ସେଠାକୁ ଯାଇଥିଲେ ଏବଂ ୟୁରୋପ ଦର୍ଶନର ଫଳରେ ଷ୍ଟେଟର ଅନେକ ଭବିଷ୍ୟତ ଉନ୍ନତି ତାଙ୍କଦ୍ୱାରା ସାଧିତ ହେବ ବୋଲି ଆଶା କରାଯାଏ ।

ସେ ଗୋଟିଏ ଚିଡ଼ିଆଖାନା ସଂସ୍ଥାପିତ କରିଅଛନ୍ତି । ରାଜ-ନବରରେ ହାତୀ ଘୋଡ଼ା ପ୍ରଭୃତି ଯେତେ ପାଳିତ ଜୀବ ଅଛନ୍ତି, ସେ ସମସ୍ତଙ୍କ ଦିଥି ଦିଥି ସେ ସ୍ୱଚକ୍ଷୁରେ ଦେଖିଲେ ସନ୍ତୁଷ୍ଟ ହୁଅନ୍ତି । ଦେବଗଡ଼ରେ ତାଙ୍କ ଦୈନନ୍ଦିନ କାର୍ଯ୍ୟ-କଳାପର ଏହା ଗୋଟିଏ ଅପରିହାର୍ଯ୍ୟ ଅଙ୍ଗ ।

ପିତୃ ପିତାମହଙ୍କ କୀର୍ତ୍ତିକଳାପ ରକ୍ଷଣରେ ସେ ସର୍ବଦା ଅବହିତ । ରାଜକୁମାର ହାଇ ସ୍କୁଲ ଓ ସଚ୍ଚିଦାନନ୍ଦ ଲାଇବ୍ରେରୀ ଓ କ୍ଲବ୍‌ର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ସେ ଯଥେଷ୍ଟ ତତ୍ପରତା ପ୍ରଦର୍ଶନ କରିଅଛନ୍ତି ।

'ଉପହାର' ପତ୍ରିକା ତାଙ୍କର ସୃଷ୍ଟି । ତାଙ୍କର କଳା ଓ ସାହିତ୍ୟ ପ୍ରୀତି ଅସାଧାରଣ । ବାମଣ୍ଡା ନାଟକଦଳର ଅଭିନୟାଦି ତାଙ୍କର ପର୍ଯ୍ୟବେକ୍ଷଣରେ ଓ ଉପଦେଶ ଦ୍ୱାରା ହେଉଥିବାରୁ ତହିଁରୁ ତାଙ୍କ ଉଚ୍ଚ ମାର୍ଜିତ ରୁଚିର ସୁସ୍ପଷ୍ଟ ପରିଚୟ ମିଳେ ।

'ପ୍ରଭୁ ଭାନୁଗଙ୍ଗଙ୍କୁ ରାଜୋଚିତ ସକଳ ଗୁଣରେ ବିଭୂଷିତ କରି ସୁଢ଼ଳ—ସଚ୍ଚିଦାନନ୍ଦ—ଦିବ୍ୟଶଙ୍କର—କୀର୍ତ୍ତିଶାଳିନୀ ବାମଣ୍ଡା ଅବନୀକୁ ଯଥାର୍ଥ ଭାଗ୍ୟବତୀ କରିଅଛନ୍ତି ।

ରାଜା ଭାନୁଗଙ୍ଗଙ୍କ ସତୀ ସାଧ୍ୱୀ ସହଧର୍ମିଣୀ ଶ୍ରୀମତୀ ଜ୍ୟୋତିମଞ୍ଜରୀ ଦେବୀ ଆଦର୍ଶ ମହିଷୀ ଓ ଆଦର୍ଶ ପତିଙ୍କ ଆଦର୍ଶ ଜୀବନସଙ୍ଗିନୀ । ବାମଣ୍ଡାର ଏହି ଆଦର୍ଶ ରାଜ-ଦମ୍ପତି କନ୍ୟା ଓ କୁମାର ଲାଭ କରିଅଛନ୍ତି ।

ରାଜକୁମାର ଟିକାଏତ ଆୟୁଷ୍ମାନ୍ ଶ୍ରୀ ଶ୍ରୀ ପ୍ରଦୀପ୍ତଗଙ୍ଗଙ୍କ ଜନ୍ମ ଉପଲକ୍ଷରେ ଶ୍ରୀମାନ୍ ରାଜା ଶ୍ରୀ ଶ୍ରୀ ଶ୍ରୀ ଭାନୁଗଙ୍ଗ ତ୍ରିଭୁବନ ଦେବ ବିଶେଷ ଆନନ୍ଦ ଲାଭ କରି ପ୍ରଜାମାନଙ୍କୁ, ଅର୍ଦ୍ଧ ଲକ୍ଷ ଟଙ୍କା ରାଜସ୍ୱ ୧୯୩୭ ମସିହାର ରାଜସ୍ୱରୁ ମାଫି ଦେଇଅଛନ୍ତି ଏବଂ ଏକ ବର୍ଷ ନିମନ୍ତେ ମଧ୍ୟ ବଟି ମାଫି ଦେଇଅଛନ୍ତି । ଏଥିରେ ପ୍ରଜାକୁଳ ବିଶେଷ ସନ୍ତୁଷ୍ଟ ଓ ଆନନ୍ଦିତ ।

ଯୌବନ, ଧନ, ସମ୍ପତ୍ତି ଓ ପ୍ରଭୁତା ସହିତ ବିବେକତା ମଧ୍ୟ ଲାଭ କରିଥିବାରୁ ରାଜା ଶ୍ରୀ ଶ୍ରୀ ଶ୍ରୀ ଭାନୁଗଙ୍ଗ ଆଜି ଗଙ୍ଗବଂଶର ଭାସ୍ୱର ପ୍ରଦୀପ ଏବଂ ତାଙ୍କ କୀର୍ତ୍ତିର ଧବଳ ମୟୂଖମାଳାରେ ବାମଣ୍ଡା ଓ ତଥା ଉତ୍କଳ-ଖଣ୍ଡ ଧବଳୀକୃତ ।

ଗଭୀର "ପରିତାପର ବିଷୟ ଯେ, ରାଜା ଭାନୁଗଙ୍ଗଙ୍କ ଇଉରୋପ ଭ୍ରମଣ ସମୟରେ ରାଜ୍ୟ ଶାସନର ଭାର ବିଶ୍ୱସ୍ତ-ଚିତ୍ତରେ ସେ ଯାହାଙ୍କ ଉପରେ ଅର୍ପଣ କରିଥିଲେ, ସେ ଯେ

ରାଜାଙ୍କ ଅନୁପସ୍ଥିତିରେ ସ୍ୱକର୍ତ୍ତବ୍ୟ ସାଧନରେ କୃତିତ୍ୱ ଦେଖାଇ ଥିଲେ, ସେହି ଶ୍ରୀମାନ୍ ଅମରବଲ୍ଲଭ ଦେ ଏମ ଏ. ବି. ଏଲ. ବାମଣ୍ଡା ରାଜ୍ୟର ଜ୍ୟେଷ୍ଠ କୁମାର ରାଜା ସାହେବଙ୍କ ଇଉରୋପରୁ ପ୍ରତ୍ୟାଗମନର ଅବ୍ୟବହିତ ପରେ ଅକାଳରେ କାଳଗ୍ରାସରେ ପତିତ ହେଲେ । ସେ ଜଣେ ନିଷ୍ଠାପର ଦେଶ-ସେବକ, ସାହିତ୍ୟିକ ଓ ଧର୍ମପ୍ରାଣ ବ୍ୟକ୍ତି ଥିଲେ । ପ୍ରସିଦ୍ଧ ଇଂରାଜ ଗ୍ରନ୍ଥକାର କାର୍ଲାଇଲ୍ (Carlyle) ଙ୍କ Hero Worship ଗ୍ରନ୍ଥର ଅନୁବାଦ କରି ଅମରବଲ୍ଲଭ 'ଶାର-ପୂଜା' ନାମକ ଯେଉଁ ଓଡ଼ିଆ ପୁସ୍ତକ ଲେଖି ଯାଇଅଛନ୍ତି ତାହା ଓଡ଼ିଆ ସାହିତ୍ୟର ସମ୍ପଦରୂପେ ବିରାଜୁଥିବ । ତାଙ୍କ ଅକାଳବିୟୋଗରେ ରାଜା ଭାନୁଗଙ୍ଗ ତାଙ୍କ ରାଜସଭାର ଜଣେ ଯୋଗ୍ୟ ସଦସ୍ୟ ଏବଂ ଉତ୍କଳମାତା ଜଣେ ସୁସନ୍ତାନ ହରାଇଲେ ।

୩ । ବାମଣ୍ଡା ରାଜବଂଶରେ ଏକାଧିକ ପ୍ରୁଷ ଛଡ଼ା ରାଜାଙ୍କର ଉପାଧି— 3. One of the alternative titles of the Ruling Chiefs of Bamra state. [ଯଥା, ରାଜା ସର୍ ବାସୁଦେବ ସୁଢ଼ଳଦେବ, ତାଙ୍କ ପୁତ୍ର ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ତାଙ୍କ ପୁତ୍ର ରାଜା ଭାନୁ ଗଙ୍ଗ ତ୍ରିଭୁବନ ଦେବ) ।

ସୁଣ୍(ଣୁ) ସୁଣ୍(ଣୁ)—ଦେ. ଅ (ଧ୍ୱନ୍ୟନୁକରଣ)-ଶରଦଯୋଗୁଁ ଶିଙ୍ଘାଣିଯୁକ୍ତ Sun(nu) sun(nu) ନାକରୁ ବାହାରିବା ଶବ୍ଦ—Nasal ଶୁଁ ଙ୍ଗ୍‌ଁ ସରସର sound of a person suffering from cold.

ସୁଣ(ଣୁ)କା—ଦେ· ବିଣ—ଶରଦ ହେତୁ ଫୁଲିକା (ମୁହଁ); ଶୋଥଯୁକ୍ତ Sun(nu)kā (ମୁହଁ)—Swollen (through cold; said ଫେଁସୋ ସୁଜାହୁଆ of the face).

ସୁଣ୍ଣୁସୁଣିଆ—ଦେ. ବିଣ—୧ । ଶରଦଥ—1. Suffering Sun(nu) sunia from cold. ୨ । ସୁଣକା (ଦେଖ)—ଙ୍ଗ୍ କ୍ ଙ୍ଗୁକେ 2. Sun-kā (See) ଦେ· ବି—ଔଷଧି ଶାକବିଶେଷ; ସରସରିୟା ସୁନୁସୁନିଆ ଶାଗ—Marsiba Quadrifolia; a ସଂ· ସୁନିଷଣ୍ଣକ, ଶିତିବାର, pot-herb. [ଦ୍ର—ଏହାକୁ ଖାଇଲେ ମେଧାବୃଦ୍ଧି, ଚକ୍ଷୁସ୍ୱୀ । ନିଦ ହେଉ ନ ଥିଲେ ସୁନିଦ୍ରା ହୁଏ । ଶୁସ୍ନିଶାକ ଏହା ଜଳର ନିକଟବର୍ତ୍ତୀ ବାଲିରେ ବା ଶିରିୟାରୀ; सुसना शाग ବାଲିଥ ମାଟିରେ ଜନ୍ମେ । ଏଥିର ପତ୍ର ତେ· ସୁନିଷଣ୍ଣମକେଶାବମ୍ ଠିକା ପରି ଚେକା ଚେକା ।]

ସୁଣ୍ଠା (ଇତ୍ୟାଦି)—ଦେ· ବିଣ (ସଂ. ଶୁଣ୍ଠୀଯୁକ୍ତ; ପ୍ରା. ଶୁଣ୍ଠାଅ)—ଶୁଣ୍ଠା Sunthā (etc) ଇତ୍ୟାଦି (ଦେଖ)—Sunthā etc (See)

ସୁଣ୍ଠି—ଦେ. ବି—ଶୁଣ୍ଠି (ଦେଖ) Sunthi Śunthi (See)

ସୁଣ୍ଠିଆ—ଦେ· ବିଣ. ପୁଂ—ଶୁଣ୍ଠିଆ (ଦେଖ) Sunthiā [ ସୁଣ୍ଠେଇ—ସ୍ତ୍ରୀ ] Śunthiā (See)

ସୁତ୍—ପ୍ରାଦେ. ବି—୧ । (ସମ୍ବଲପୁର; ଭୁଲିଅ ବା ତନ୍ତୀଙ୍କ ଭାଷା; ଭୁଲି Sut ହି. ସୂତ୍) (ସଂ. ସୂତ୍ର)—ସୂତା; ସୂତ୍ର—1. Thread ୨ । (ବଲାଙ୍ଗିର; ପାଟଣା) କୁଲା—2. Winnowing tray.

ସୁତ୍‌ଘାଇ—ପ୍ରାଦେ (ସମ୍ବଲପୁର) ବି—ବିଲର ଜଳାଧାରରେ ପାଣିପଶିବା Sut-ghāi ପାଇଁ ଖୋଳାଯାଇଥିବା ଛୋଟ ନାଳଥା— A narrow channel dug in paddy fields to lead water into a water pool dug therein.

ସୁତୁଲି—ଦେ· ବି—ସୁତୁଲି (ଦେଖ) Sut-li Sutuli (See)

ସୁତ—ସଂ. ବି. ପୁଂ (ସୁ ଧାତୁ=ପ୍ରସବ କରିବା+କର୍ମି. ତ)— Suta ୧ । ପୁତ୍ର; ତନୟ (ଅମର)—1. Son· ୨ । ରାଜପୁତ୍ର (ଅମର)—2. Prince· ୩ । (ଫଳିତ ଜ୍ୟୋତିଷ) ଜନ୍ମ କୁଣ୍ଡଳୀରେ ଲଗ୍ନର ପଞ୍ଚମସ୍ଥାନ (ହ. ଶ)—3. (astrology) The 5th house from the Lagna. ୪ । ଦଶମମନୁଙ୍କ ପୁତ୍ର (ହ· ଶ)—4. The son of the 10th Manu· ସଂ· ବିଣ, ପୁଂ—୧ । ଜାତ; ଉତ୍ପନ୍ନ—1. Born. ୨ । ସମ୍ବନ୍ଧ—2. Related. ୩ । ନିଷ୍ପୀଡ଼ିତ—3. Pressed. ପ୍ରାଦେ (ବାଲେଶ୍ୱର) ବି— ଶୋଥ ରୋଗ—Dropsy.

ସୁତକ—ସଂ· ବି· ପୁଂ ସୁତ+ସ୍ୱାର୍ଥେ· କ)—ପୁତ୍ର—Son. Sutaka (ସୁତକା, ସୁତିକା—ସ୍ତ୍ରୀ)

ସୁତକ—ସଂ. ବି (ସୁତ+କ)—ଜନନାଶୌଚ; ଜାତାଶୌଚ; ଶିଶୁର ଜନ୍ମାବଧି Sutaka ୧୧ ଦିନ ପର୍ଯ୍ୟନ୍ତ ଶିଶୁର କୁଟୁମ୍ବମାନଙ୍କୁ ଲାଗିବା (ସୁତକାଶୌଚ—ଅପଭ୍ରଂଶ) ଅଶୌଚ—Impurity which attaches to the kinsmen of a baby for some 11 days after its birth. ଦେ· ବି— ସୂତିକା ୧ । ସୁତିକା ରୋଗ (ଦେଖ)—1. Sūtikā roga सूतिका रोग (See) ୨ । ଶୁତକ ଇତ୍ୟାଦି (ଦେଖ)— 2. Śutaka etc (See)

ସୁତକ ପୋଡ଼ା—ଦେ. ବି—ଶୁତକ ପୋଡ଼ା (ଦେଖ) sutaka pordā Śutaka pordā. (See)

ସୁତକା—ସଂ. ବି· ସ୍ତ୍ରୀ (ସୁତକ+ଆ)—ସୁତକର ସ୍ତ୍ରୀଲିଙ୍ଗ; କନ୍ୟା— Sutakā (feminine of Sutaka) Daughter.

ସୁତଜୀବକ—ସଂ. ବି—ପୁତ୍ରଜୀବକ ବୃକ୍ଷ (ରାଜନିର୍ଘଣ୍ଟ)— Sutajībaka Callicarpa Arborea (tree)

ସୁତ ନିର୍ବିଶେଷରେ—ଦେ. କ୍ରି. ବିଣ—ପୁତ୍ର ପ୍ରତି ଯେଉଁପରି Suta nirbiseshare ବ୍ୟବହାର, ପାଳନ, ସ୍ନେହ ବା ଦୃଷ୍ଟି सुत निर्विशेषे କରାଯାଏ, ସେହିପରି—Like a son. (ଉ— लड़केकेजैसे ସେ ପରର ଶିଶୁଟିଏ ପାଇ ତାକୁ ସୁତ ନିର୍ବିଶେଷରେ ପାଳନ କରୁଅଛନ୍ତି ।)

ସୁତନୁ—ସଂ. ବି (କର୍ମଧା)—୧ । ସୁନ୍ଦର ଦେହ—1. Nice or Sutanu beautiful body· ୨ । କୃଶାଙ୍ଗ—2. A lean or slender body. ୩ । (ସ୍ତ୍ରୀ) ନାରୀ (ରାଜନିର୍ଘଣ୍ଟ)— 3. A woman. (ଉ—ତା ଏଥିରେ କରିଚ ଜଣେ ଧନୁ ଧନୁ, ଧାଇଁଛି ସଙ୍ଗେ ସେନା ଅନେକ ସୁତନୁ । କୃଷ୍ଣସିଂହ. ମହାଭାରତ. ବନ ।) ୪ । (ପୁଂ) ଗନ୍ଧର୍ବ-

ବିଶେଷ (ହି. ଶ)—4. Name of a Gandharba
୫ । (ପୁଂ) ଉଗ୍ରସେନଙ୍କର ଏକପୁତ୍ର (ହି. ଶ)—
5. Name of a son of Ugrasena. ୬ । (ପୁଂ)
ମର୍କଟ ବିଶେଷ (ହି. ଶ)—6. Name of a monkey.
୭ । (ସ୍ତ୍ରୀ) ବସୁଦେବଙ୍କର ଏକ ଉପପତ୍ନୀ (ହି. ଶ)—
7. Name of a concubine of Basudeba.
୮ । (ସ୍ତ୍ରୀ) ଉଗ୍ରସେନଙ୍କର ଏକ କନ୍ୟା (ହି. ଶ)—
8. Name of a daughter of Ugrasena.
୯ । (ସ୍ତ୍ରୀ) ଅକ୍ରୂରଙ୍କ ପତ୍ନୀ (ହି ଶ)—9. Name of a
wife of Akrura. ୧୦ । (ସ୍ତ୍ରୀ) କୃଶାଙ୍ଗୀ ସ୍ତ୍ରୀ (ହି
ଶ)—10. A delecate—bodied lady. ସ. ବିଣ.
ପୁଂ (ବହୁବ୍ରୀହି)—୧ । ସୁନ୍ଦର ଅଙ୍ଗବିଶିଷ୍ଟ—
ସୁତନ୍, ସୁତନୁ—ସ୍ତ୍ରୀ] 1. Beautiful; graceful. [ଉ—
ସେହି ବସନ ସୁତନୁ ତନୁରେ କ ମୋ ତନୁ ସହେ
ମିଶାଇବି । ଉଜ. ପ୍ରେମ ସୁଧାନିଧି ।] ୨ । [ସ୍ତ୍ରୀ] ସୁନ୍ଦରୀ;
ଯେଉଁ ସ୍ତ୍ରୀର ସର୍ବାବୟବ ସୁନ୍ଦର; କୃଶାଙ୍ଗୀ—2. Slender-
bodied (woman).

ସୁତନ୍ତୁ—ସ. ବି—୧ । ଶିବ (ହି. ଶ)—1. Siba. ୨ । ବିଷ୍ଣୁ (ହି.
Sutantu ଶ)—2. Bishṇu. ୩ । ଦାନବ ବିଶେଷ (ହି. ଶ)—
3. Name of a demon.

ସୁତନ୍ତ୍ର—ସ. ବି—୧ । ସୁନ୍ଦର ତନ୍ତ୍ର—1. A good wire or str-
Sutantra ing. ୨ । ସୁଶାସନ—2. Nice administra-
tion ୩ । ସୁଶୃଙ୍ଖଳା—3. Nice method or
arrangement.

ସୁତନ୍ତ୍ରି—ସ. ବି—ବୀଣା ଅବା ଯନ୍ତ୍ରର ଉତ୍କୃଷ୍ଟ ବାଦକ (ହି. ଶ)—
Sutantri An expert musician.

ସୁତନ୍ତ୍ରିତ—ସ. ବିଣ (ସୁତନ୍ତ୍ର+ଇତ)—୧ । ସୁଶୃଙ୍ଖଳାଯୁକ୍ତ—
Sutantrita 1. Nicely arranged; methodical.
୨ । ସୁଶାସିତ—2. Well governed.

ସୁତନ୍ତ୍ରୀ—ସ. ବି—ମଧୁର ସ୍ୱରଯୁକ୍ତ ବୀଣା—
Sutantri A sweet-tuned harp.

ସୁତପ—ସ. ବି—ସୋମପାନକାରୀ ବ୍ୟକ୍ତି—
Sutapa A drinker of Soma juice.

ସୁତପଃ—ସ. ବି (କର୍ମଧା; ସୁ+ତପସ୍)—ଉତ୍ତମ ତପସ୍ୟା—
Sutapah Rigid or excellent penance.

ସୁତପାଃ—ସ. ବି—୧ । (ସୁ+ତପସ୍; ୧ମା, ୧ବ; ବହୁବ୍ରୀହି)—
Sutapāḥ ୧ । ଉଗ୍ରତପା ମୁନି—1. A sage observing
rigid penance. ୨ । ମୁନି; ତପସ୍ୱୀ—2. An as-
cetic. ୩ । (ସୁ+ତପ୍. ଧାତୁ+ଅସ୍) ସୂର୍ଯ୍ୟ; ତପନ—
3. The sun. ୪ । ରୋଚ୍ୟ ମୁନିଙ୍କର ଏକ ପୁତ୍ର—
4. Name of a son of sage Rochya. ୫ ।
ବିଷ୍ଣୁ (ହି. ଶ)—5. Bishṇu.

ସୁତପାଦିକା—ସ. ବି—ଛୋଟ ହଂସପାଦିକା ଗୁଳ୍ମ—
Sutapādikā Small species of Hamsa
pādikā plant.

ସୁତପେୟ—ସ. ବି—ଯଜ୍ଞରେ ସୋମରସ ପାନ (ହି. ଶ)—
Sutapeya Drinking of Soma juice during
vedic sacrifice.

ସୁତବତୀ—ସ. ବିଣ. ସ୍ତ୍ରୀ (ସୁତ+ଅସ୍ତ୍ୟର୍ଥରେ ବତ୍+ସ୍ତ୍ରୀ. ଈ)—
Sutabatī ପୁତ୍ରବତୀ; ଯାହାର ପୁତ୍ର ଥାଏ—(a woman)
(ସୁତବାନ୍—ପୁଂ) Having a son.

ସୁତ ବସ୍କରା—ସ. ବିଣ. ସ୍ତ୍ରୀ. (ସୁତ+ବସ୍କର)—ସପ୍ତ ପୁତ୍ର ପ୍ରସୂ
Suta baskarā (ବୈଦିକ ଶବ୍ଦ)—(a woman)
Who has given birth to seven sons.

ସୁତ ଯାଗ—ସ. ବି (ମ. ପ. ଲୋ)—ପୁତ୍ରେଷ୍ଟି ଯଜ୍ଞ—Vedic
Suta jāga sacrifice for getting a son.

ସୁତବା—ପ୍ରାଦେ. (କଟକ) କ୍ରି—ଶୋଇବା—To sleep.
Sutabā

ସୁତର୍—ପ୍ରାଦେ. (ସମ୍ବଲପୁର) ବିଣ.—ସରଳ—Simple.
Sutar

ସୁତର—ଦେ. ବି. (ସ. ସୂତ୍ର)—୧ । ଛନ୍ଦ; କୌଶଳ—1. Skill;
Sutara artifice, trick. ୨ । ଉପାୟ—2. Means.
सूत्र कौशल सुयोग ୩ । ଜବର; କାର୍ଯ୍ୟ ସାଧନର ଗୁପ୍ତ ପ୍ରଣାଳୀ;
ରହସ୍ୟ—3. Secret mode or means o
contrivance of accomplishing an object;
key. ୪ । ସୁଯୋଗ—4. Opportunity. ୫ ।
ସୁବିଧା—5. Convenience. ୬ । ଗୁପ୍ତ ମନ୍ତ୍ରଣା;
ଗୋପନରେ ପରାମର୍ଶ—6. Secret advice. ୭ ।
ସ୍ୱାସ୍ଥ୍ୟ—7. Health. ସ. ବିଣ.—୧ । ସୁବିଧା-
ଜନକ—1. Convenient. ୨ । ସୁଯୋଗ ଯୁକ୍ତ—
(ଅସୁତର—ବିପରୀତ) 2. Opportune. ୩ । ସୁସ୍ଥ—
3. Healthy. ୪ । ସହଜରେ ତରଣୀୟ (ନଦୀ)—
4. (a river) Which can be easily crossed.
ପ୍ରାଦେ. (ସାଟୀ) ବିଣ.—ଶାନ୍ତ—Mild; peaceful.

ସୁତର ଉଣ୍ଡିବା (ଖୋଜିବା)—ଦେ. କ୍ରି—ସୁଯୋଗ ଅନ୍ୱେଷଣ କରିବା—
Sutara uṇḍibā (khojibā) To search for an
सूत्र खोजा सुयोग ढूंढना opportunity.

ସୁତର କରିବା—ଦେ. କ୍ରି—୧ । ଶୁଭୁରିବା; କୌଣସି ବ୍ୟକ୍ତିକୁ
Sutara karibā ଗୋପନରେ ପରାମର୍ଶ ଦେବା—1. To
सूत्रकरना गुप्तविचारदेना give secret advice. ୨ ।
ଗୋପନରେ ଉତ୍ତେଜିତ କରିବା—2. To secretly
(ସୁତରକାରୀ—କର୍ତ୍ତୃବାଚକ ବି.) instigate (a person).

ସୁତ(ତୁ)ର(ରୁ)ଣୀ—ପ୍ରାଦେ (ସମ୍ବଲପୁର, ବଲାଙ୍ଗିର, ପଡ଼ିଆ)—
Suta(tu)ra(ru)ṇī ବି. ସ୍ତ୍ରୀ—୧ । ଯେଉଁ ସ୍ତ୍ରୀ କୌଶଳରେ
ସୁଖ ପ୍ରସବ କରାଇପାରେ—1. Accoucheuse; a
midwife. ୨ । କୁଟ୍ଟି—2. A panderess.

**ସୁତର ପଡ଼ିବା**—ଦେ. କ୍ରି—ଗଣ୍ଡ ଘଟିବା; ସୁଯୋଗ ଘଟିବା—The
Sutara paṭibā happening of an opportunity.
(ସୁତର ଲଗିବା—ଅନ୍ୟରୂପ) सूत्रघटा (पड़ा)
सुयोग होना

**ସୁତର ପାଇବା**—ଦେ. କ୍ରି—୧ । ସୁଯୋଗ ପାଇବା—1. To
Sutara pāibā get an opportunity. ୨ । ଉପାୟ
सुयोग पाओया पाइबा—2. To find out a means.
सुयोग पाना ୩ । କାର୍ଯ୍ୟ ସାଧନର ଗୁପ୍ତ ପ୍ରଣାଳୀ ବା ରହସ୍ୟ
ଅବଗତ ହେବା—3. To know the secret of
or the key to any matter.

**ସୁତର ବତା(ତେ)ଇବା**—ଦେ. କ୍ରି-ଗୁପ୍ତ ରହସ୍ୟ କହି ଦେବା—To
Sutara batā(te)ibā divulge the secret or key
सूत्रकाँश करिया देओया कौशल बताना to a matter.

**ସୁତର ଲଗା(ଗେ)ଇବା**—ଦେ. କ୍ରି—୧ । ସୁତର କରିବା (ଦେଖ)
Sutara lagā(ge)ibā 1. Sutara kariba (See)
सूत्र करा ୨ । କୌଶଳ କରିବା—2. To make a secret
कौशल लगाना (ସୁତରଲଗିବା—ବିଶେଷରୂପ) contrivance.

**ସୁତର ସାତର**—ଦେ. ବି (ସହଚର)—ସୁତୁର ସାତର (ଦେଖ)
Sutara sātara Sutura sātara (See)

**ସୁତରା**—ଦେ. ବିଣ—୧ । କୌଶଳ ପୂର୍ଣ୍ଣ—1. Full of artifice.
Sutarā ୨ । ସୁନ୍ଦର—2. Beautiful. ୩ । ସୁଯୋଗ ପୂର୍ଣ୍ଣ—
परिस्कार 3. Opportune. ୪ । ସୁବିଧାଜନକ—4. Con-
सुथरा venient. ୫ । ସୁପରିଷ୍କୃତ—5. Neat and clean;
well cleansed.

**ସୁତରା(ରେ)ଇବା**—ଦେ. କ୍ରି—୧ । ସୁତର ଲଗାଇବା (ଦେଖ)
Sutarā(re)ibā 1. Sutara lagāibā (See)
फुसलाना ୨ । ଫୁସୁଲେଇବା; ଛଳକୌଶଳରେ ମନାଇବା;
कौशल लगाना ଭଣ୍ଡାଇବା—2. To inveigle; to in-
duce by tricks.

**ସୁତରା ସୁତରି**—ଦେ, ବି—ସୁତୁରା ସୁତୁରି (ଦେଖ)
Sutarā sutari Suturā suturi (See)

**ସୁତରାଂ**—ସଂ. ଅ (ସୁ+ତରମ୍)—୧ । ଅତଏବ; ଫଳତଃ—
Sutarāṁ 1. Therefore; consequently. ୨ । ଅଗତ୍ୟା—
2. Having no other alternative. ୩ ।
ଅବଶ୍ୟ—3. Positively; certainly ୪ । ଅତ୍ୟନ୍ତ
—4. Much. ୫ । ନିର୍ଦ୍ଧାରିତ; ନିର୍ଣ୍ଣୀତ—5. Ascer-
tained. ୬ । ଔଚିତ୍ୟ—6. Propriety. ୭ ।
ଅପିଚ; ଏବଂ ମଧ୍ୟ (ପ୍ର. ଗ)—7. And also.

**ସୁତରେ ସୁତରେ**—ଦେ. କ୍ରି. ବିଣ—୧ । ଗଣ୍ଡ ଗାଣ୍ଡରେ; ଛଳ
Sutare sutare କୌଶଳରେ—1. Skilfully; tactfully.
सूत्रे सूत्रे; फिकिरे फाकिरे कौशलसे ୨ । ଗୋପନରେ—
2. Secretly. ୨ । ଦେ.(ବାଲେଶ୍ୱରପାଠଣା) କ୍ରି. ବିଣ-
ସିଧା ସିଧା—In a straight forwardmanner;
straightly.

**ସୁତର୍କାରି**—ସଂ ବି,—ଦେବଦାଳୀ ଲତା (ଶ୍ରଜକର୍ଦ୍ଦ୍ଧ)—Bristly
Sutarkāri luffa; Luffa Luffa Echinate; Andro-
pogen Serratue.

**ସୁତର୍ଦ୍ଦ(ର୍ଦ୍ଦ)ନ**—ସଂ. ବି.—କୋକିଳ (ବିକାଣ୍ଡ ଶେଷ)—Indian
Sutardda(rda)na cuckoo.

**ସୁତଳ**—ସଂ. ବିଣ. —(ସୁ=ଶୋଭନ+ତଳ ଯାହାର; ବହୁବ୍ରୀହି)—
Sutala ସୁନ୍ଦର ତଳ ବିଶିଷ୍ଟ—Having a good surface.
ସଂ. ବି.—୧ । ସାତ ପାତାଳ ମଧ୍ୟରୁ ଏକ ପାତାଳର ନାମ—
1 The name of one of the nether-
regions of Hindu mythology. ୩ ।
ଅଟ୍ଟାଳିକାର ସବୁ ନିମ୍ନ ତଳ—3. The lowest floor
of a multi-storied building. ୪ । ଅଟ୍ଟାଳିକାର
ମୂଳ ଗୃହ ନ —4. The foundation of a
building.

**ସୁତଲି**—ଦେ. ବି—ସୁତୁଲି (ଦେଖ)
Sutali Sutuli (See)

**ସୁତ ଶ୍ରେଣୀ**—ସଂ ବି—ମୂଷିକ ପର୍ଣ୍ଣୀ (ଅମର) (ଦେଖ)
Suta śreṇī Mūshika parṇī (See)

**ସୁତହିବୁକ ଯୋଗ**—ସଂ. ବି (ଜ୍ୟୋତିଷ)—ବିବାହ ସଂକ୍ରାନ୍ତୀୟ ଶୁଭ
Sutahibuka joga ଯୋଗ ବିଶେଷ—An auspicious
conjunction of planets in a marriage-
calculation. [ବି—ବିବାହ କାଳରେ ଲଗ୍ନରେ ବା
ଲଗ୍ନର ଚତୁର୍ଥ, ପଞ୍ଚମ,ନବମ ବା ଦଶମ ସ୍ଥାନରେ ବୃହସ୍ପତି
ବା ଶୁକ୍ର ଥିଲେ, ଏହି ଯୋଗ ଘଟେ । ଏହି ଯୋଗ
ଘଟିଲେ ବିବାହକାଳୀନ ଲଗ୍ନର ଯାବତୀୟ ଦୋଷ
ନଷ୍ଟଯାଏ ।]

**ସୁତା**—ସଂ. ବି. ସ୍ତ୍ରୀ (ସୁତ+ସ୍ତ୍ରୀ, ଆ)—୧ । କନ୍ୟା; ଦୁହିତା—
Sutā 1. Daughter. ୨ । ନୃପ କନ୍ୟା—2. A prin-
(ସୁତ—ପୁଂ) cess. ୩ । ଦୁରାଲଭା (ଶଙ୍ଖ ଚନ୍ଦ୍ରିକା) (ଦେଖ)—
सुतो, सुता 3. Durālabhā (See) ଦେ. ବି (ସଂ. ସୂତ୍ର)—
सूता ସୂତା ଇତ୍ୟାଦି (ଦେଖ)—Sūtā etc (See).

**ସୁତାତ୍ମଜ**—ସଂ. ବି. ପୁଂ (ଷଷ୍ଠୀ ତତ୍)—୧ । ପୁତ୍ରର ପୁତ୍ର; ନାତି; ପୌତ୍ର
Sutātmaja —1. Son's son. ୨ । ଦୌହିତ୍ର—
(ସୁତାତ୍ମଜା—ସ୍ତ୍ରୀ) 2. Daughter's son.

**ସୁତାନ**—ସଂ. ବି— (ସୁ+ତାନ)—ସୁମଧୁର ସ୍ୱର—Sweet tone,
Sutāna melodious tune.

**ସୁତାର**—ପ୍ରାଦେ. (ମେଦିନୀପୁର) ବି (ସଂ.ସୂତ୍ରକାର; ଭୂଲ. ବଂ. ସୁତାର)
Sutāra —୧ । ବଢ଼େଇ—1. Carpenter. ୨ । ଶିଳ୍ପକର—
2. Artisan.
ସଂ. ବିଣ—୧ (ସୁ+ତାର)—ଅତ୍ୟନ୍ତ ଉଜ୍ଜ୍ୱଳ (ପ୍ର.ଗ)-
1. Very bright. ୨ । ଅତ୍ୟୁଚ୍ଚ (ପ୍ର. ଗ)-
2. Very high. ୩ । ଯାହାର ଆଖିର ପିତୁଳା
ସୁନ୍ଦର (ପ୍ର. ଗ.)—3 Having fine pupils of
the eyes.

ସୁତାରକ—ସଂ. ବିଣ. ପୁଂ.—ଶୋଭନ ତାରକା ଯୁକ୍ତ—
Sutāraka Having beautiful stars.
( ସୁତାରକା—ସ୍ତ୍ରୀ )

ସୁତାରକା—ସଂ. ବି.—ଚତୁର୍ବିଂଶତି ବୁଦ୍ଧ ଶାସନାନ୍ତର୍ଗତ ଦେବତା-
Sutārakā ବିଶେଷ ( ହେମଚନ୍ଦ୍ର )—Name of a Buddhist Deity. ସଂ. ବିଣ. ସ୍ତ୍ରୀ—'ସୁତାରକ'ର ସ୍ତ୍ରୀଲିଙ୍ଗ—Feminine of 'Sutāraka'.

ସୁତାରା—ସଂ. ବି—୧ । (ସାଂଖ୍ୟ)—ନଅପ୍ରକାର ତୁଷ୍ଟି ମଧ୍ୟରୁ ଏକ (ହୁଂସ)
Sutārā 1. (Sāṁkhya philosophy) One of the 9 kinds of contentment. ୨ । ( ସାଂଖ୍ୟ )—ଆଠପ୍ରକାର ସିଦ୍ଧିରୁ ଏକ—2. (Sāṁkhya)—One of the 8 kinds of success. [ ଦ୍ର—ଗୁରୁଙ୍କଠାରୁ ଅଧୀତ ଶାସ୍ତ୍ରର ପ୍ରକୃତ 'ଅର୍ଥ ବୁଝିବା ଏହି ସିଦ୍ଧି ଅଟେ ।]

ସୁତାର୍ଥୀ—ସଂ. ବିଣ. ପୁଂ—ପୁତ୍ର କାମନାକାରୀ—
Sutārthī Desiring to have a son.
( ସୁତାର୍ଥିନୀ—ସ୍ତ୍ରୀ )

ସୁତା ସୁତ—ସଂ. ବି. ପୁଂ (୬ଷ୍ଠୀ ତତ୍; ସୁତା+ସୁତ)—ଦୌହିତ୍ର—
Sutā Suta Daughter's son.
( ସୁତା ସୁତା—ସ୍ତ୍ରୀ )

ସୁତି—ପ୍ରାଦେ (ଲଟ୍‌ଆ) ବି. ପୁଂ—ଅଣନାତି; ନାତିର ପୁଅ—
Suti Great grandson.

ସୁତିକା—ସଂ. ବି. ସ୍ତ୍ରୀ (ସୁତକ+ସ୍ତ୍ରୀ. ଅ)—କନ୍ୟା—
Sutikā Daughter.
ଦେ. ବି—୧ । (ସଂ. ସୂତକ)—ସୂତକ ଅଶୌଚ (ଦେଖ)—
1. Sūtaka aśauoha (See). ୨ । ( ସଂ. (ସୁତ୍ତକଅ—ଅନ୍ୟ ଦେ.ରୂପ) ସୂତିକା) ସୂତିକା ରୋଗ (ଦେଖ)
সুতকাশৌচ সূতিকা 2. Sūtikā roga (See)

ସୁତିକା ଘର—ଦେ. ବି (ସଂ. ସୂତିକାଗାର)—ସୂତିକାଗାର; ଯେଉଁ
Sutikā ghara ଘରେ ସ୍ତ୍ରୀମାନେ ସନ୍ତାନ ପ୍ରସବ କରନ୍ତି—
সুতিকাঘব सूतिकाघर A lying-in room.

ସୁତିକାଣ୍ଡ—ପ୍ରାଦେ (ସମ୍ବଲପୁର) ବି—ଏକପ୍ରକାର ଶର—
Suti kāṇḍ A kind of arrow.
[ସୁତିକାଂଡ୍—ଅନ୍ୟରୂପ]

ସୁତିକ୍ତ—ସଂ. ବି—ପର୍ପଟ (ଗୁଳ୍ମବର୍ଗୀୟ) (ଦେଖ)—
Sutikta Parpaṭa (See)
ସଂ. ବିଣ—ଅତ୍ୟନ୍ତ ପିତା—Very bitter.

ସୁତିକ୍ତକ—ସଂ. ବି—୧ । ପାରିଭଦ୍ର; ପାଲଧୁଆ ( ଲତାଧର )—
Sutiktaka 1. The coral-flower tree. ୨ । ଭୂନିମ୍ବ ( ଶବ୍ଦରତ୍ନାବଳୀ )—2. A medicinal bitter plant; Gentiana Chirata. ୩ । କ୍ଷେତପାପଡ଼ା ( ହୁ. ଶ )—3. Kshetapāparḍā (See)

ସୁତିକ୍ତା—ସଂ. ବି—୧ । କୋଷାତକୀ (ଗୁଳ୍ମବର୍ଗୀୟ); ପିତା ତରଡ଼ା—
Sutiktā 1. Luffa Acutangula. ୨ । ଶଲ୍ଲକୀ ( ହୁ. ଶ ) (ଦେଖ)—2. Śallakī (See)

ସୁତିନୀ—ସଂ. ବିଣ. ସ୍ତ୍ରୀ ( ସୁତିନ୍+ସ୍ତ୍ରୀ. ଈ )—(ସୁତୀ ଶବ୍ଦର ସ୍ତ୍ରୀଲିଙ୍ଗ)
Sutinī ପୁତ୍ରବତୀ—( a woman ) Having son.

ସୁତୀ—ସଂ. ବିଣ (ସୁତ+ଈ)—୧ । ସୁତେଚ୍ଛୁ (ଶବ୍ଦକଳ୍ପଦ୍ରୁମ)—
Sutī 1. Desirous of having a child. ୨ । ପୁତ୍ରବତ୍ ଆଚରଣକାରୀ ( ମୁଗ୍ଧବୋଧ )—2. Behaving like a son. ୩ । ( ପୁଂ )
[ସୁତିନୀ—ସ୍ତ୍ରୀ] [ସୁତ+ଇନ୍; ୧ମା. ୧ବ) ସୁତବାନ୍; ପୁତ୍ରବାନ୍-3. Having a son; being the father of a son.

ସୁତୀକ୍ଷ୍ଣ—ସଂ. ବିଣ—ଅତିଶୟ ତୀକ୍ଷ୍ଣ—Very sharp. ସଂ. ବି—
Sutīkshṇa ୧ । ଶୋଭାଞ୍ଜନ [ଜଟାଧର]; ସଜନା—1. The Indian horse radish. ୨ । ଶ୍ୱେତଶିଗ୍ରୁ—(ଗୁଳ୍ମବର୍ଗୀୟ)—2. The white variety of horse radish. ୩ । (ନାମ) ଶରଭଙ୍ଗ ମୁନିଙ୍କ ଆଶ୍ରମ ନିକଟରେ ଆଶ୍ରମ କରିଥିବା ମୁନିବିଶେଷ (ଭଟ୍ଟି ଭାରବ୍ୟ ୪ର୍ଥ ସର୍ଗ)—3. Name of a sage. [ଦ୍ର—ଏ ଅଗସ୍ତ୍ୟ ମୁନିଙ୍କ ଭାଇ; ରାମଙ୍କ ବନବାସକାଳରେ ଏ ରାମଚନ୍ଦ୍ରଙ୍କୁ ଭେଟିଥିଲେ [ହୁ. ଶ]

ସୁତୁଙ୍ଗ—ସଂ. ବିଣ—ଅତି ଉଚ୍ଚ—Very high. ସଂ. ବି—
Sutuṅga ୧ । ନାରିକେଳ ବୃକ୍ଷ (ତ୍ରିକାଣ୍ଡଶେଷ)—1. Cocoanut
[ଅନ୍ତ୍ୟତୁଙ୍ଗ—ଅନ୍ୟରୂପ] tree. ୨ । (ଜ୍ୟୋତିଷ) ଗ୍ରହମାନଙ୍କର ଉଚ୍ଚାଂଶ ବିଶେଷ—2. A certain high altitude of planets.

ସୁତୁର—ଗ୍ରା. ବି ଓ ବିଣ (ସଂ. ଚତୁର)—ସୁତର (ଦେଖ)
Sutura Sutara. (See)

ସୁତୁର ସାତର—ଦେ. ବି (ସତ୍ତର)—୧ । ଫନ୍ଦିଫାନ୍ଦି; କଳକୌଶଳ;
Sutura sātara ନାନା ଉପାୟ—1. Artifices.
ফিকিব ফাকিব कलकौशल ୨ । ସୁବିଧା; ସୁଯୋଗ—2. Opportunity.

ସୁତୁରା—ଦେ, ବିଣ—ସୁତରା (ଦେଖ)
Suturā Sutarā (See)

ସୁତୁରା(ରେ)ଇବା—ଦେ. କ୍ରି—ସୁତରାଇବା (ଦେଖ)—
Suturā(re)ibā Sutarāibā (See)
ପ୍ରାଦେ (ଗାଞ୍ଜାମ) କ୍ରି—ଲକ୍ଷ୍ୟ କରିବା—To aim.

ସୁତୁରା ସୁତୁରି—ଦେ. ବି—୧ । ନାନା କୌଶଳ ପ୍ରୟୋଗ—
Suturā suturi 1. Employment of various
ফিকিবি ফাকিব artifices. ୨ । ଗୋପନରେ ପରାମର୍ଶ—
कौशलप्रयोग, गुप्तविचार 2. Secret consultation.
୩ । ଗୋପନରେ ପରସ୍ପର ସନ୍ଧାପୂର୍ବକ ମୀମାଂସା—

3. Mutual understanding in secret. ୪ । ସୁସ୍ଥୁ ସୁସ୍ଥୁ; ଭଣ୍ଡିବା—4. Inveigling.

ସୁତୁରୁ—ପ୍ରାଦେ (ଗଡଜାତ) ବ—ଯେ ଟୀକା ଦଏ—
Suturi Vaccinator.

ସୁତୁରୁଣୀ—ପ୍ରାଦେ (ଗଡଜାତ, ସମ୍ବଲପୁର, କଳାହାଣ୍ଡିର ପାଟଣା) ବ. ସ୍ତ୍ରୀ—
Suturuṇī ସୁତରଣୀ (ଦେଖ)—Sutaraṇī (See)

ସୁଁତୁରେ ସୁତୁରେ—ଦେ· କ୍ରି· ବଣ—ସୁତ୍ରେ ସୁତ୍ରେ (ଦେଖ)
Suture suture Sutre sutre (See)

ସୁତୁର୍ଣ୍ଣୀ—ପ୍ରାଦେ (ଗଞ୍ଜାମ) ବ· ସ୍ତ୍ରୀ—ଧାଈ—
Suturṇṇī Mid-wife.

ସୁତୁଲି—ଦେ. ବ (ସ. ସୂତ୍ର; ଏହା ସୂତ୍ରର ସରୁ; କମ୍ପା ସ. ସୂତ୍ରାଳକ=ସୂତ୍ରସଦୃଶ )—୧ । ସରୁ ଦଉଡ଼ି—
Sutuli
ସୁତଲି, ସୁତୁଲି 1. Tender string. ୨ । ମୋଟ ସୂତା—
सुतुली 2. Thick thread [ଦ୍ର—ସୁତୁଲି ସୂତା ଅପେକ୍ଷା ମୋଟ ଓ ଦଉଡ଼ି ଅପେକ୍ଷା ସରୁ ।]୩ । କବାଟୁଡାରେ ବନ୍ଧା ହୋଇଥିବା ସରୁ ଦଉଡ଼ି—3. A tender rope of cotton threads. ଦେ. ବଣ—ସୂତ୍ର ନିର୍ମିତ—Made of thread. (ଦ୍ର—ସୁତୁଲି ସରୁ ।)

ସୁତେକର—ସ. ବ—ଋତ୍ୱିକ୍ (ହି. ଶ)
Sutekara Sacrificial priest.

ସୁତେଜନ—ଦେ. ବ—୧ । ଧନୁର୍ବୃକ୍ଷ (ଭୂକଦମ୍ବ); ଧାମଣ ବା ଧାମଣ ଗଛ—1. A timber tree; Cordia
Sutejana
Macleodiea. ୨ । ସୁତୀକ୍ଷ୍ଣ ଶର (ହି· ଶ)—2. Very sharp arrow. ସ. ବଣ—ସୁତୀକ୍ଷ୍ଣ (ହି· ଶ)—Very sharp.

ସୁତେଜାଃ—ସ. ବଣ—ଶୋଭନ ତେଜୋଯୁକ୍ତ—Very bright. ସ. ବ—୧ । ଅତୀତକଳୀୟ ଅର୍ହନ୍ଭେଦ (ହେମଚନ୍ଦ୍ର)—
Sutejāh
1. A Buddhist monk of the past era. ୨ । ଅଦତ୍ୟବଲ୍ଲୀ (ରାଜନିର୍ଘଣ୍ଟ); ମଣ୍ଡୁକପର୍ଣ୍ଣୀ; ଅଣଗୋଧଳା ଗୁଳ୍ମ—2. Cleome Viscosa (plant).

ସୁତୈଲା—ସ. ବ—ମହାଜ୍ୟୋତିଷ୍ମତୀ (ରାଜନିର୍ଘଣ୍ଟ)—
Sutailā A sort of phosphorescent plant.

ସୁତୋଷ—ସଂ. ବ—ସନ୍ତୋଷ (ହି, ଶ)—Satisfaction. ସଂ.
Sutosha ବଣ· ପୁଂ—ସନ୍ତୁଷ୍ଟ (ହି· ଶ)—Satisfied.
(ସୁତୋଷା—ସ୍ତ୍ରୀ)

ସୁତ୍ୱା—ସଂ. ବଣ (ସୁତ୍ୱନ୍ ଶବ୍ଦ ୧ମା. ୧ବ; ସୁ. ଧାତୁ=ପ୍ରସବ କରିବା+କର୍ତ୍ତୃ· କନ୍ ( କ୍ୱନିପ୍ ), ନିପାତନ)—
Sutwā
ପଞ୍ଚସ୍ନାନାନ୍ତେ; ସୋମପାନକାରୀ (ଭରତ)—One who has drunk the Soma juice after a sacrificial bath.

ସୁତ୍ୟା—ସଂ· ବ—ଯଜ୍ଞାର୍ଥ ସୋମରସ ବାହାର କରିବାପାଇଁ ନିର୍ଦ୍ଦିଷ୍ଟ
Sutya ଦିବସ (ହି· ଶ)—A day fixed for pressing out Soma juice for sacrifice.

ସୁତ୍ର (ଇତ୍ୟାଦି)—ଦେ. ବ (ସଂ, ସୂତ୍ର)—ସୁତର ଇତ୍ୟାଦି (ଦେଖ)—
Sutra (etc) Sutara etc (See) ଦେ· ବଣ—୧। ସୁନ୍ଦର—
सूत्र 1. Fine. ୨ । ସୁବିଧାଜନକ—2. Convenient. ୩ । ରୁଚିକର—3. Tasteful.
सुघड़

ସୁତ୍ରା—ଦେ. ବଣ—ସୁତରା (ଦେଖ)
Sutrā Sutarā (See)

ସୁତ୍ରା(ତ୍ରେ)ଇବା—ଦେ. କ୍ରି—ସୁତରାଇବା (ଦେଖ)
Sutrā(tre)ibā Sutarāibā (See)

ସୁତ୍ରାମା—ସଂ. ବ (ସୁ+ତ୍ରୈ. ଧାତୁ=ତ୍ରାଣ କରିବା+କର୍ତ୍ତୃ· ମନ୍;
Sutrāmā ସୁତ୍ରାମନ୍ ଶବ୍ଦ ୧ମା. ୧ବ)—ଦେବରାଜ; ଇନ୍ଦ୍ର—The God Indra. ସଂ. ବଣ—ଉତ୍ତମରୂପେ ତ୍ରାଣକାରୀ (ହି. ଶ)—Delivering excellently.

ସୁତ୍ରା ସୁତ୍ରି—ଦେ· ବ—ସୁତୁରୀ ସୁତୁରି (ଦେଖ)
Sutrā sutri Suturā suturi (See)

ସୁତ୍ରେ ସୁତ୍ରେ—ଦେ. କ୍ରି· ବଣ—୧ । ଙ୍ଗଙ୍ଗରେ ଙ୍ଗଙ୍ଗରେ; କୌଶଳ
Sutre sutre କରି; କଳକୌଶଳ ପ୍ରୟୋଗପୂର୍ବକ—1. By
सूत्रे सूत्रे employing tricks and stratagems.
कौशलसे ୨ । ଗୋପନରେ—2. Secretly.

ସୁଥା—ଦେ. ବ (ସଂ· ସୀମନ୍ତ)—ସୁନ୍ଥା; କଙ୍କତିକାଦ୍ୱାରା ଦୁଇ ପାଖ କରି
Suthā ଯାଇଥିବା କେଶ ବିନ୍ୟାସ—Mode of parting (ସୁଥାଣି—ଅନ୍ୟରୂପ) the hair in the middle of the head.
सीन्हि सीउंथ

ସୁଥାରେନ—ପ୍ରାଦେ (ସମ୍ବଲପୁର ବ. ସ୍ତ୍ରୀ—ଧାଈ; ଧାଣୀ —
Suthāren Nurse; midwife.
(ସୁଥୁଆରେନ୍—ଅନ୍ୟରୂପ)

ସୁଥିଆର—ପ୍ରାଦେ· (ସମ୍ବଲପୁର) ବ—ଟୀକା ଦେବା ବ୍ୟକ୍ତି—
Suthiāra A vaccinator.

ସୁଦ୍ (ଇତ୍ୟାଦି)—ଦେ. ବ· ବଣ ଓ କ୍ରି·ବଣ—ଶୁଦ୍ ଇତ୍ୟାଦି (ଦେଖ)
Sud (etc) Śud etc. (See)

ସୁଦ (ଇତ୍ୟାଦି)—ଦେ. ବ—ଶୁଦ ଇତ୍ୟାଦି ( ଦେଖ )
Suda (etc) Śuda etc ( See )

ସୁଦଂଷ୍ଟ୍ର—ସ. ବଣ. ପୁଂ—ଶୋଭନଦନ୍ତବିଶିଷ୍ଟ—Having fine
Sudaṁsṭra teeth.ସଂ. ବ-୧ । (ନାମ) କୃଷ୍ଣଙ୍କର ଏକ ପୁତ୍ର—
(ସୁଦଂଷ୍ଟ୍ରା—ସ୍ତ୍ରୀ) 1. A son of Krushṇa. ୨ । (ନାମ) ଶମ୍ବରର ଏକ ପୁତ୍ର—2. A son of Sambara.

ସୁଦକ୍ଷ—ସଂ. ବଣ. ପୁଂ—ସୁନିପୁଣ; ଅତି ପାରଗ—
Sudaksha Very skilful; expert.
( ସୁଦକ୍ଷା—ସ୍ତ୍ରୀ ) ( ସୁଦକ୍ଷତା—ବ )

ସୁଦକ୍ଷିଣ—ସଂ. ବଣ ( ବହୁବ୍ରୀହି; ସୁ=ଉତ୍ତମ ହୋଇଅଛି ଦକ୍ଷିଣା=
Sudakshiṇa ନୈପୁଣ୍ୟ ଯାହାର )—୧ । ଉଦାର; ବଦାନ୍ୟ—
(ସୁଦକ୍ଷିଣା-ସ୍ତ୍ରୀ) 1. Liberal; magnanimous; generous. ୨ । ଉତ୍ତମ ପ୍ରକୃତିବିଶିଷ୍ଟ—2. Noble-minded. ୩ । ଉତ୍ତମ ଦକ୍ଷିଣାଯୁକ୍ତ—3. Accompanied by noble

gifts or presents. [ ଉ—ସୁଦକ୍ଷିଣ ହୋମ; ସୁଦକ୍ଷିଣ ପକ୍ଷ ।] ସଂ. ବ—୧ । (ନାମ) ବିଦର୍ଭର ରାଜା-ବିଶେଷ—1. Name of a king of Bidarbha. ୨। (ନାମ) ଅଗସ୍ତ୍ୟ ଋଷିଙ୍କ ପୁତ୍ର-2. Name of a sage. [ ଉ—ବଙ୍କ ସବଙ୍କ ସୁଦକ୍ଷିଣ । ବୋଇଲେ ଶୁଣ ତପଧନ । ଭକ୍ତ. ବୈଦେହୀଶବିଳାସ । ] ୩ । (ନାମ) ପୌଣ୍ଡ୍ରକ ରାଜାଙ୍କ ପୁତ୍ର ( ହ୍ର. ଶ )—3. A son of king Paundraka.

ସୁଦକ୍ଷିଣା—ସଂ. ବିଣ. ସ୍ତ୍ରୀ ( ସୁଦକ୍ଷିଣ+ଅ )—ସୁଦକ୍ଷିଣର ସ୍ତ୍ରୀଲିଙ୍ଗ—
Sudakshiṇā Feminine of Sudakshiṇa. ସଂ. ବ—୧ । ଉତ୍ତମ ଦକ୍ଷିଣା; ପର୍ଯ୍ୟାପ୍ତ ଦକ୍ଷିଣା—1. Noble gift or present. ୨ । ( ସ୍ତ୍ରୀ ) ଉଦାରସ୍ୱଭାବା ସ୍ତ୍ରୀ—2. Noble-minded woman. ୩ । (ସ୍ତ୍ରୀ) ସୂର୍ଯ୍ୟବଂଶୀୟ ଦିଲୀପ ରାଜାଙ୍କ ପତ୍ନୀ—3. Name of the queen of king Dilipa of the Solar dynasty. ୪ । ଶ୍ରୀକୃଷ୍ଣଙ୍କର ଜଣେ ପତ୍ନୀ—4. One of the wives of Śrikrushna.

ସୁଦ ଖାଇବା—ଦେ. କି ( କ୍ରିୟାର୍ଥକ )—୧ । ମୂଳ ଧନ ପାଇଁ Suda khāibā ଖାତକଠାରୁ ସୁଦ ନେବା—1. To realise interest on money lent. ୨ । ଖାତକଙ୍କ ଠାରୁ ସୁଦ ଅସୁଲ କରି ଖାଇବା ଜୀବାବ କରିବା—2. To live on usury.
সুদ খাওয়া
सूद खाना

ସୁଦ ଖିଆ—ଦେ.ବ. ଓ ବିଣ ପୁଂ (କ୍ରିୟାର୍ଥକ)—୧ । ଯେଉଁ ବ୍ୟକ୍ତି ଅଧିକରୁ Suda khiā ଅଧିକମାଣରେ ସୁଦ ନିଏ—1. A usurer. ୨ । ମାହାଜନୀର ସୁଦ ଯାହାର ଖାଇବା—2. A professional moneylender.
সুদখোর
सूदखोर
( ସୁଦ ଖୋର, ସୁଦ ଖୋରିଆ—ଅନ୍ୟରୂପ )
(ସୁଦଖାଇ, ସୁଦଖୋରୀ, ସୁଦ ଖୋରଣୀ, ସୁଦଖୋରେଣି —ସ୍ତ୍ରୀ)

ସୁଦଗ୍ଧିକା—ସଂ. ବ—ଦଗ୍ଧା ନାମକ ଗୁଳ୍ମ ( ରାଜନିର୍ଘଣ୍ଟ ); ଚଣ୍ଡାଳୁଣୀ Sudagdhikā ନାମକ ଗୁଳ୍ମ—A medicinal plant; Euparveiflora.

ସୁଦଗ୍ରାହୀ—ଦେ. ବିଣ—ଯେ ମୂଳଧନ ପାଇଁ ଖାତକଠାରୁ ସୁଧ ନିଏ—Sudagrāhi One who takes interest on money advanced as loan. [ ଉ—ସୁଦଗ୍ରାହୀ ଅଳ୍ପ ବସ୍ତୁର ସଙ୍ଗେ ସଇ । ବେଶ୍ୟା ଅଳ୍ପ ହୋଏ ସାର୍ଥିର ନାଗବାସୀ—କୃଷ୍ଣସିଂହ. ମହାଭାରତ. ଶାନ୍ତି । ]
সুদগ্রাহী
सूदग्राही

ସୁଦଣ୍ଡ—ସଂ. ବ—୧ । ବେତ ( ରାଜନିର୍ଘଣ୍ଟ )—
Sudaṇḍa 1. Cane; ratan.
୨ । ଉତ୍ତମ ଯଷ୍ଟି—2. A good stick.

ସୁଦଣ୍ଡିକା—ସଂ. ବ—ଗୋରକ୍ଷୀ ନାମକ ଗୁଳ୍ମ ( ରାଜନିର୍ଘଣ୍ଟ ); Sudaṇḍikā ନାଗବଳା; ଗଉଡ଼ତ—Sida Spinosa.

ସୁଦତ୍—ସଂ. ବିଣ. ପୁଂ (ସୁ+ଦନ୍ତ)-ସୁନ୍ଦର ଦନ୍ତବିଶିଷ୍ଟ (ବ୍ୟକ୍ତି) (ହ୍ର. ଶ)-
Sudat ( a person ) Having good teeth.

ସୁଦତୀ—ସଂ. ବିଣ. ସ୍ତ୍ରୀ ( ସୁଦତ୍+ଈ )—ସୁଦତ୍ ଶବ୍ଦର ସ୍ତ୍ରୀଲିଙ୍ଗ—
Sudatī Feminine of Sudat.
ସଂ. ବ—୧ । ସୁଦତୀ ସ୍ତ୍ରୀ—1. A beautiful woman. ୨ । ଉତ୍ତମ ବା ସୁନ୍ଦର ଦନ୍ତବିଶିଷ୍ଟା ସ୍ତ୍ରୀ—2. A woman having beautiful teeth.

ସୁଦନ୍ତ—ସଂ. ବ—୧ । ଶୋଭନ ଦନ୍ତ—1. Nice teeth. ୨ । Sudanta ନଟ ( ଶବ୍ଦକଳ୍ପଦ୍ରୁମ )—2. An actor. ୩ । ନର୍ତ୍ତକ ( ହ୍ର. ଶ )—3. A dancer.

ସୁଦନ୍ତୀ—ସଂ. ବ—୧ । ( ସ୍ତ୍ରୀ ) ଦିଗ୍‌ହସ୍ତୀବିଶେଷ (ଶବ୍ଦକଳ୍ପଦ୍ରୁମ)—Sudantī 1. The name of a mythological female elephant guarding the quarters of the globe. ୨ । (ପୁଂ) ଉତ୍ତମ ବା ଶ୍ରେଷ୍ଠ ହସ୍ତୀ—2. An excellent elephant. ୩। (ସ୍ତ୍ରୀ) ହସ୍ତିନୀ (ହ୍ର. ଶ)—3. A female elephant. ଦେ. ବିଣ—ଉତ୍ତମ ଦନ୍ତବିଶିଷ୍ଟା (ସ୍ତ୍ରୀ)—A woman having nice teeth. [ଉ—ବଦନ୍ତି ଭାବେ ସୁଦନ୍ତୀ ସୁଦନ୍ତ-ପଂକ୍ତି— ଭକ୍ତ. ବୈଦେହୀଶବିଳାସ । ]
সুদন্তী
सुदन्ती

ସୁଦମ—ସଂ. ବ (ସୁ=ଅନାୟାସରେ+ଦମ୍ ଧାତୁ+କର୍ମ. ଅ)—Sudama ଅନାୟାସରେ ଦମନୀୟ ବା ଶାସନୀୟ—Easily controllable.

ସୁଦମନ—ସଂ. ବ—ଆମ୍ର; ଅମ୍ବ ବୃକ୍ଷ ( ହ୍ର. ଶ )—
Sudamana The mango tree.

ସୁଦ ମୂଳ—ଦେ. ବ—ସୁଧ ଓ ମୂଳ; କଳନ୍ତର ଓ ଅସଲ—
Suda mūla Interest and capital.
সুদ মূল, সুদ আসল सूद मूल

ସୁଦୟେ—ଗ୍ରା. ବିଣ—ସଦୟ—Kind. [ଉ—ଏକ ଦାନ ଏକ ପୁଣ୍ୟ Sudaye ଏକାନ୍ତେ ସୁଦୟେ । ପ୍ରାଚୀ. ବ୍ରହ୍ମନିରୂପଣ. ଗୀତା ।]
সদয় सदय

ସୁଦରଶନ—ଗ୍ରା. ବ—୧ । ସୁଦର୍ଶନର ଡାକ ନାମ—1. Name Sudaraśana for calling 'Sudarśana. ୨ । ସୁଦର୍ଶନ (ଦେଖ)—2. Sudarśana (See) [ଉ—ସୁଦର୍ଶନ ଶ୍ରୀ ସୁଦରଶନକୁ ଡାହୁଁକି କଲେ ଦରଶନ । ଲୁପ୍ତ. ପ୍ରେମପଞ୍ଚାମୃତ ।]
ସୁଦ(ଦୁ)ସ(ର),
ସୁଦ(ରୁ)ଶନ } ଅନ୍ୟରୂପ
সুদর্শন सुदर्शन

ସୁଦର୍ଭ—ସଂ. ବିଣ (ବହୁବ୍ରୀହି)—ସୁନ୍ଦର କୁଶଯୁକ୍ତ—
Sudarbha Having good 'Kuśa' grass.
( ସୁଦର୍ଭା—ସ୍ତ୍ରୀ )

ସୁଦର୍ଶ—ସଂ. ବିଣ ( ସୁ+ଦୃଶ୍ ଧାତୁ+କର୍ମ. ଅ )—ପ୍ରିୟଦର୍ଶନ; Sudarśa ସୁଦୃଶ୍ୟ (ଦୁର୍ଗାଦାସ)—Decent; beautiful.
( ସୁଦର୍ଶା—ସ୍ତ୍ରୀ )

ସୁଦର୍ଶନ—ସଂ. ବ—୧ । ବିଷ୍ଣୁଙ୍କ ଚକ୍ରର ନାମ—1. Name of the Sudarśana circular weapon or discus of 'Bishṇu'. [ ବ—ସୁଦର୍ଶନରେ ଲିଖିତ ଅଛି ଯେ, ମହାଦେବଙ୍କ ଅଦେଶ ଅନୁସାରେ ବିଶ୍ୱକର୍ମା ସବୁ ଦେବତାଙ୍କର ତେଜରୁ ସାର ଗ୍ରହଣ ପୂର୍ବକ ଏ ଚକ୍ର ତିଆର

କର ମହାଦେବଙ୍କୁ ଦେଇଥିଲେ । ଦୈତ୍ୟମାନଙ୍କ ବିନାଶାର୍ଥ ମହାଦେବ ଏହି ଚକ୍ରକୁ ବିଷ୍ଣୁଙ୍କୁ ଅର୍ପଣ କଲେ । ଏହାର ଅରର ସଂଖ୍ୟା ବାର । ଏହା ଷଟ୍‌କୋଣ ଓ ବଳୟକ୍ଷୟ ସଂଯୁକ୍ତ । ବିଷ୍ଣୁ ମନ୍ଦିରର ଚୂଡ଼ାରେ ଏହି ଚକ୍ରର ଧାତୁମୟ ମୂର୍ତ୍ତି ରଖାଯାଏ । ପୁରୀର ବଡ଼ଦେଉଳରେ 'ଚତୁର୍ଦ୍ଧା ମୂର୍ତ୍ତି' ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ଚକ୍ର ବିରାଜିତ ଅଛି । ଚତୁର୍ଭୁଜ ବିଷ୍ଣୁ ଗୋଟିଏ ହାତରେ ସର୍ବଦା ଏହି ଚକ୍ରକୁ ଧାରଣ କରନ୍ତି ଏବଂ ଏହାଦ୍ୱାରା ଦୁଷ୍ଟ ଦଳନ ଓ ଶିଷ୍ଟ ପାଳନ କରନ୍ତି ।]

୨ । ଚକ୍ରଚିହ୍ନିତ ଶାଳଗ୍ରାମବିଶେଷ [ଶାଳଗ୍ରାମ ଦେଖ]—2. Name of a species of Sālagrāma. ୩ । ହସ୍ତିବିଶେଷ—3. Name of an elephant mentioned in the Rāmāyana. [ଦ୍ର—ଲଙ୍କା ଯୁଦ୍ଧରେ ମହୋଦର ନାମକ ରାକ୍ଷସ ଏହି ହସ୍ତୀ ଉପରେ ଚଢ଼ି ଯୁଦ୍ଧ କରିଥିଲା ।] ୪ । ସୁମେରୁ (ମେଦିନୀ)-4. Name of the mythological north polar mountain. ୫। ଜମ୍ବୁ ବୃକ୍ଷ [ମେଦିନୀ]-5. Blackberry tree. [ଭୂ ୫ ଓ ୬]-ବେଳାରେ ସ୍ୱର୍ଣ୍ଣିସରର ସୁଦର୍ଶନ ପ୍ରାୟେ, ବକାଣି ପ୍ରଚେତା ନାମୁ ସୁଦର୍ଶନ ପାଏ—ଭଞ୍ଜ ବୈଦେହୀଶ-ବିଳାସ ।] ୬ । ଉତ୍ତମ ଦର୍ଶନ—6. Nice vision. ୭ । ସୁଦର୍ଶନା ୨ [ଦେଖ]—7. Sudarśana2 (See) ୮ । ବର୍ତ୍ତମାନ ଅବସର୍ପିଣୀର ଅଷ୍ଟାଦଶ ଜୈନ ମୁନିଙ୍କ ପିତା; ବ୍ରତ୍ତହ୍ର୍ତ୍ତି ପିତା; ଜିନମାନଙ୍କର ଦେବତାବିଶେଷ—8. Name of a Buddhist Deity, the father sage Brutta. ୯ । ଶିବ ( ହି. ଶ )—9. Śiba. ୧୦ । ( ନାମ ) ଅଗ୍ନିଙ୍କର ଏକ ପୁତ୍ର ( ହି. ଶ )—10. A son of the Fire-god. ୧୧ । (ନାମ) ବିଦ୍ୟାଧରବିଶେଷ ( ହି. ଶ )—11. Name of a Bidyādhara. ୧୨ । ମତ୍ସ୍ୟ [ହି. ଶ]—12. Fish. ୧୩ । [ ନାମ ] ଦଧୀଚିଙ୍କର ଏକ ପୁତ୍ର [ ହି.ଶ ]—13. Name of a son of Dadhīchi. ୧୪ । [ ନାମ ] ଭରତଙ୍କର ଏକ ପୁତ୍ର [ ହି. ଶ ]—14. Name of a son of Bharata. ୧୫ । ଗୃଧ୍ର [ ହି. ଶ. ]—15. Vulture. ୧୬ । ଛଅଟି ଗଣ୍ଠି ବିଶିଷ୍ଟ ସନ୍ନ୍ୟାସୀଙ୍କର ଦଣ୍ଡ-ବିଶେଷ [ ହି. ଶ. ]—16. A staff with six knots used by the Sannyāsis. [ ଦ୍ର—ଭୂତ ପ୍ରେତଙ୍କ ଆକ୍ରମଣରୁ ନିଜକୁ ରକ୍ଷା କରିବା ପାଇଁ ସନ୍ନ୍ୟାସୀମାନେ ଏ ଦଣ୍ଡକୁ ଆପଣା ପାଖରେ ରଖନ୍ତି [ହି. ଶ.]

ସୁଦର୍ଶନ ସୁଦର୍ଶନ ଦେ, ବି. ପୁଂ—ଲୋକଙ୍କ ନାମ—A name given to males.

ସୁଦର୍ଶନ ଚକ୍ର—ସଂ. ବି—ବିଷ୍ଣୁଙ୍କ ଚକ୍ର; ସୁଦର୍ଶନ ଚକ୍ର ୧ (ଦେଖ)—
Sudarśana chakra The discus or weapon of Bishṇu.

ସୁଦର୍ଶନ ଚୂର୍ଣ୍ଣ—ସଂ. ବି (ବୈଦ୍ୟକ)—ଭାବପ୍ରକାଶୋକ୍ତ ଜ୍ୱର ରୋଗହର ଚୂର୍ଣ୍ଣ ବିଶେଷ—Name of a febrifuge powder.
Sudarśana chūrṇṇa
[ଦ୍ର—ତ୍ରିକଟୁ, ତ୍ରିଫଳା ଆଦି ୫୬ଟି ପଦାର୍ଥ ସମ ଭାଗରେ ଚୂର୍ଣ୍ଣ ହୋଇ ଏହି ଚୂର୍ଣ୍ଣ ପ୍ରସ୍ତୁତ କରାଯାଏ ଏବଂ ଏହା ଶୀତଳ ଜଳସହ ସେବ୍ୟ; ଜ୍ୱର, କାଶ, ଶ୍ୱାସ, ପାଣ୍ଡୁ, ହୃଦ୍‌ରୋଗ, ଶୂଳ ଆଦି ରୋଗରେ ଏହା ଉପକାରୀ ।]

ସୁଦର୍ଶନ ଦ୍ୱୀପ—ସଂ. ବି—ଜମ୍ବୁ ଦ୍ୱୀପ (ହି. ଶ)—Name of one of the seven islands of Hindu mythology.
Sudarśana dwīpa

ସୁଦର୍ଶନ ପଟ୍ଟନାୟକ—ଦେ. ବି ( ନାମ )—ପ୍ରାଚୀନ ଓଡ଼ିଆ କବି-ବିଶେଷ—An ancient poet of Orissa.
Sudarśana paṭṭanāyaka
[ଦ୍ର—ଏହି କବି 'କୁଞ୍ଜ ମିଳନ ଚଉତିଶା' ଲେଖିଥିଲେ । ଜଗବନ୍ଧୁ. ପ୍ରାଚୀନ ଉତ୍କଳ । ]

ସୁଦର୍ଶନ ସରଃ—ସଂ. ବି—ରାମାୟଣ ବର୍ଣ୍ଣିତ ସ୍ୱର୍ଣ୍ଣ କେଶର ରଞ୍ଜିତ ରକ୍ତ-ପଦ୍ମବିଶିଷ୍ଟ ସରୋବରବିଶେଷ—Name of a tank mentioned in the Rāmāyana.
Sudarśana sarah
[ ଦ୍ର—ଏହା ଋଷଭ ପର୍ବତରେ ଅବସ୍ଥିତ । ]

ସୁଦର୍ଶନା—ସଂ. ବିଣ. ସ୍ତ୍ରୀ ( ସୁଦର୍ଶନ + ଆ )—ସୁଦର୍ଶନର ସ୍ତ୍ରୀଲିଙ୍ଗ—
Sudarśanā Feminine of Sudarśana.

| | |
|---|---|
| ଅନ୍ୟ ସଂ. ନାମ—ସୋମ-ବଲ୍ଲୀ, ଚକ୍ରାଙ୍ଗୀ, ମଧୁପର୍ଣ୍ଣିକା, ଚକ୍ରାଙ୍ଗୀ; ବୃଷକର୍ଣ୍ଣୀ, ଦଧ୍ୟାଣୀ | ସଂ. ବି. ସ୍ତ୍ରୀ—୧ । ସୁନ୍ଦରୀ ନାରୀ—1. A beautiful woman. |
| ପର୍ଯ୍ୟାୟଶବ୍ଦ, ଭାରତୀ ପୁଷ୍ପୀ ସୁଦର୍ଶନା | ୨ । ( ବୈଦ୍ୟକ ) ଗୁଳ୍ମବିଶେଷ—2. A medicinal plant. [ ଦ୍ର—ଏହା ମଧୁରତିକ୍ତରସ, ଉଷ୍ଣ, ଓ କଫ, ଶୋଥ, ରକ୍ତ ଓ ବାତ |

ନାଶକ ଏବଂ ବିଷନାଶକ ଅଟେ । ଏହା ସୁପରିଚାରୀ ବନସ୍ପତି । ଏହା ଶ୍ଳେଷ୍ମନାଶକ; ପତ୍ର ତ୍ରିକୋଣାକାର ଓ ଗୋଲାକାର । ଏଥିର ଫୁଲ ନାନା ରଙ୍ଗର ଓ ଗୁଚ୍ଛ ଗୁଚ୍ଛ ହୋଇ ଫୁଟେ । ]
୩ । ଏକ ପ୍ରକାର ମଦିରା (ହି. ଶ)—3. A kind of wine. ୪ । (ନାମ) ଜଣେ ଗନ୍ଧର୍ବୀ (ହି. ଶ)—4. Name of a Gandharba female. ୫। ପଦ୍ମ-ସରୋବର (ହି. ଶ)—5. A tank full of lotus. ୬ । ଜମ୍ବୁ ବୃକ୍ଷ (ହି. ଶ)— 6. Blackberry tree. ୭ । ଇନ୍ଦ୍ରପୁରୀ; ଅମରାବତୀ (ହି. ଶ)—7. The court of Indra. ୮ । ଶୁକ୍ଳ ପକ୍ଷ ରାତ୍ରି (ହି. ଶ)—8. A night of bright lunar fortnight. ୯ । ଆଜ୍ଞା; ଆଦେଶ (ହି. ଶ)—9. Order.

ସୁଦର୍ଶନିଆ—ଦେ. ବି [ଅନାଦରାର୍ଥକ]—ସୁଦର୍ଶନର ଡାକ ନାମ—
Sudarśaniā Name for calling 'Sudarśana'

ସୁଦର୍ଶନୀ—ସଂ. ବି [ସୁଦର୍ଶନ + ଈ]—ଅମରାବତୀ; ଇନ୍ଦ୍ରପୁରୀ—
Sudarśanī The city or court of Indra.

ସୁଦଳ—ସଂ. ବି—୧ । କ୍ଷୀରମୋରଟ ନାମକ ଲତା (ରତ୍ନମାଳା)—
Sudala 1. Name of a medicinal creeper. [ଦ୍ର—
ଅନ୍ୟ ସଂସ୍କୃତ ନାମ—କ୍ଷୀରବିଦ୍ରୁ, କ୍ଷୀରକ, କ୍ଷୀରମୋରଟ, କର୍ଣ୍ଣପୁଷ୍ପ, ପିଲୁପର୍ଣ୍ଣ, ମଧୁସ୍ରବ, ଘନମୂଳ, ଦୀର୍ଘମୂଳ, ସ୍ନୁହୁଷ, କ୍ଷୀରପୁଷ୍ପ । ଏହା ମଧୁରକଷାୟରସ, ବଳକର, ଶୁକ୍ରବର୍ଦ୍ଧକ ଏବଂ ପିତ୍ତ, ଦାହ ଓ ଜ୍ୱରର ଶାନ୍ତିକାରକ ଅଟେ ।]
୨ । ମୁଚକୁନ୍ଦ (ବୃ. ଶ) (ଦେଖ)—2. Muchakunda (See) ୩ । ସେନା (ବୃ. ଶ)—3. Army. ସଂ. ବିଣ—
ସୁନ୍ଦର ଦଳବିଶିଷ୍ଟ—Having good leaves or petals.

ସୁଦଳା—ସଂ. ବି. ସ୍ତ୍ରୀ—୧ । ଶାଳପର୍ଣ୍ଣୀ (ଶବ୍ଦକଳ୍ପଦ୍ରୁମ) (ଦେଖ)—
Sudalā 1. Śālaparṇṇī (See) ୨ । ଛତୁଣୀ (ଶବ୍ଦକଳ୍ପଦ୍ରୁମ); ଶତପତ୍ରୀ; ସେବତୀ ଫୁଲ—2. Cabbage-rose; Rosa Centi flora. ସଂ. ବିଣ. ସ୍ତ୍ରୀ—ସୁଦଳର ସ୍ତ୍ରୀଲିଙ୍ଗ—Feminine of Sudala.

ସୁଦଶା—ସଂ. ବି—୧ । ଉତ୍ତମ ଦଶା—1. Good condition or
Sudaśā state. ୨ । ଶୁଭଗ୍ରହଜନିତ ଜୀବନର ଉତ୍ତମ ଦଶା—2. Good condition of a person due to auspicious planets. ୩ । ସୁଦଶାବ୍ରତ (ଦେଖ)—3. Sudaśābrata (See)

ସୁଦଶା ବ୍ରତ—ସଂ. ବି—ପଦ୍ମପୁରାଣୋକ୍ତ ବ୍ରତ ବିଶେଷ—Name of a
Sudaśā brata religious fast observed if any Thursday falls on any 10th day of a bright fortnight. [ଦ୍ର—ଯେଉଁକି ମାସର ଶୁକ୍ଳ-ଦଶମୀ ଦିନ ଗୁରୁବାର ପଡ଼ିଲେ ଏ ବ୍ରତ କରାଯାଏ । ଏ ବ୍ରତରେ ଲକ୍ଷ୍ମୀପୂଜା କରାଯାଏ । ଏ ବ୍ରତ କଲେ ମନୁଷ୍ୟର ସୌଭାଗ୍ୟ ବଢ଼େ । ଏବ୍ରତରେ ଗୋଟିଏ ସୂତାରେ ୧୦ଟି ଗଣ୍ଠି ପକାଇ ବ୍ରତଧାରୀ ବ୍ୟକ୍ତି ତାହା ବାହୁରେ ଧାରଣ କରନ୍ତି । ୨ ବର୍ଷରେ ଏହା ଉଦ୍‌ଯାପନ କରାଯାଏ । ସାଧାରଣତଃ ସ୍ତ୍ରୀ ଲୋକମାନେ ଏହି ବ୍ରତ କରନ୍ତି ।] ଦେ. ବି—ସୁଦଶାବ୍ରତ କରିବା ବ୍ୟକ୍ତିଙ୍କ ବାହୁରେ ବନ୍ଧାଯିବା ୧୦ଟି ଗଣ୍ଠିଯୁକ୍ତ ସୂତ୍ର—A string with 10 knots tied round the arm of a person observing the 'Sudaśā brata.'

ସୁଦା—ପ୍ରାଦେ (ଅଠମଲ୍ଲିକ) ବି—୧ । ଅଠମଲ୍ଲିକର ସୁଦା ଜାତୀୟ
Sudā ଲୋକଙ୍କ ଭାଷା—1. Oriya spoken by the Sudās of the Āthamallik State. ୨ । ଅଠମଲ୍ଲିକ ଅଧିବାସୀ ଅନାର୍ଯ୍ୟ ଜାତି ବିଶେଷ—2. A class of non-aryans residing in the Athmallik State.

ସୁଦାତା—ସଂ. ବିଣ. ପୁଂ—୧ । ବିଶେଷ ଦାନଶୀଳ—1. Very
Sudātā bountiful. ୨ । ସତ୍‌କାର୍ଯ୍ୟରେ ଦାନଶୀଳ—2. Liberal in praiseworthy objects.

ସୁଦାନ୍ତ—ସଂ. ବି (ନାମ)—ଶାକ୍ୟମୁନିଙ୍କ ଶିଷ୍ୟ ବିଶେଷ (ତ୍ରିକାଣ୍ଡଶେଷ)—
Sudānta Name of a disciple of the Buddha.
(ସୁଦାନ୍ତା—ସ୍ତ୍ରୀ. ବିଣ) ସଂ. ବିଣ. ପୁଂ—ଅତି ଶାନ୍ତ (ବ୍ୟକ୍ତି)—Very peaceful and quiet (person).

ସୁଦାମ—ସଂ. ବି—(ନାମ) ଦ୍ୱାଦଶ ଗୋପାଳ ମଧ୍ୟରୁ ଜଣେ ଗୋପାଳ;
Sudāma ବାରସୁତ (ଦେଖ)—Bārasuta (See) ଦେ. ବି—୧ । ସୁଦାମା (ଦେଖ)—1. Sudāmā (See) ୨ । (ସୁଦାମଚନ୍ଦ୍ର, ସୁଦାମଚରଣ—ଅନ୍ୟ ଦେ ରୂପ) ପୁରୁଷଙ୍କ ନାମ—2. A name given to males.

ସୁଦାମଚନ୍ଦ୍ର ପଟ୍ଟନାୟକ—ଦେ. ବି (ନାମ)—ଜନୈକ ସ୍ୱର୍ଗତ ସ୍ୱନାମ-
Sudāmachandra paṭṭanāyaka ଧନ୍ୟ ବ୍ୟକ୍ତି—Name of a late famous man of Orissa. [ଦ୍ର—ଏ 'ଓଡ଼ିଶାର ସର୍ବପ୍ରଥମେ ଶିବପୁର ଇଞ୍ଜିନିୟରିଙ୍ଗ୍ କଲେଜରୁ ପ୍ରଶଂସାସହିତ ଉତ୍ତୀର୍ଣ୍ଣ ହୋଇଥିଲେ । ଉକ୍ତ କଲେଜରେ ଏହାଙ୍କର ପଟୁଆ ଥିଲା । ଏହାଙ୍କର କେତେକ ଚିତ୍ର ଉକ୍ତ କଲେଜରେ ଆଦର୍ଶ ଚିତ୍ରରୂପେ ଗୃହୀତ ହୋଇ ରଖା ଯାଇଥିଲା । ଏ ସ୍ୱନାମଧନ୍ୟ ସ୍ୱର୍ଗତ ବିଚିତ୍ରାନନ୍ଦଙ୍କର ଜାମାତା ଓ ସ୍ୱର୍ଗୀୟ ଚତୁର୍ଭୁଜ ପଟ୍ଟନାୟକଙ୍କର ଅଗ୍ରଜ ଥିଲେ । ଏହାଙ୍କର ବାସସ୍ଥାନ ଭଦ୍ରଖ । ସ୍ୱର୍ଗୀୟ ଓକିଲ ସତ୍ୟବ୍ରତ ପଟ୍ଟନାୟକ ଏହାଙ୍କ ପୁତ୍ର ଥିଲେ ।]

(ରାୟବାହାଦୁର) ସୁଦାମଚରଣ ନାୟକ—ଦେ. ବି (ନାମ)—ଜନୈକ
(Rāyabāhādura) Sudāmacharaṇa ସ୍ୱର୍ଗତ ପ୍ରସିଦ୍ଧ nāyaka ବ୍ୟକ୍ତି—The late Rai Bahadur Sudam Charan Naik. [ଦ୍ର—ଏହାଙ୍କର ଜନ୍ମ-ସ୍ଥାନ ଭଦ୍ରଖ; ଏ କ୍ଷତ୍ରିୟ ବା କରଣବଂଶୀୟ ଥିଲେ । ଏ ପ୍ରଥମେ ଡେପୁଟି କଲେକ୍ଟର ହୋଇ ରାୟବାହାଦୁର ନନ୍ଦକିଶୋର ଦାସଙ୍କ ପରେ ଓଡ଼ିଶା କରଦରାଜ୍ୟମାନଙ୍କର ସୁପରିଣ୍ଟେଣ୍ଡେଣ୍ଟଙ୍କ ସହକାରୀ (Personal Assistant) କର୍ମଚାରୀରୂପେ ଗଡ଼ଜାତର ଶାସନ ବିଭାଗର ଭାର ନେଇଥିଲେ । ଏହାଙ୍କ କାର୍ଯ୍ୟକୁଶଳତାରେ ଗଭର୍ଣ୍ଣମେଣ୍ଟ ସନ୍ତୁଷ୍ଟ ହୋଇ ଏହାଙ୍କୁ 'ରାୟବାହାଦୁର' ଉପାଧି ଦେଇ ଥିଲେ । ଏହାଙ୍କ ସାହିତ୍ୟାନୁରାଗ, ଦେଶପ୍ରୀତି, ଗୁଣ-ଗ୍ରାହିତା ଓ ମହାନୁଭବତା ସମସ୍ତଙ୍କୁ ମୁଗ୍ଧ କରିଥିଲା । ଏହାଙ୍କର ଏକମାତ୍ର ପୁତ୍ର ଏହାଙ୍କ ମୃତ୍ୟୁ ପୂର୍ବରୁ ପରଲୋକ ଗମନ କରିଥିଲେ ଏବଂ ଏହାଙ୍କର ତିନିଜଣ ଜାମାତା (କଟକର ଜମିଦାର ବାବୁ ବିଜୟସୁନ୍ଦର ଦାସ ବି. ଏ., ସମ୍ପାଦକ 'ମୁକୁର'; ସବ୍‌ଡେପୁଟି ଗୋପାଳଚରଣ ପଟ୍ଟନାୟକ ବି. ଏ. ଓ ଗଞ୍ଜାମର ଓକିଲ ବାବୁ ଲଳିମୋହନ ପଟ୍ଟନାୟକ ବି. ଏଲ୍.) ବର୍ତ୍ତମାନ ଅଛନ୍ତି । ଏହାଙ୍କ ବଂଶର ଅନେକଗୁଡ଼ିଏ ବ୍ୟକ୍ତି

ଉଧ୍ୱସ୍ତମେଷ୍ଟଙ୍କ ଅଧୀନ ଭିନ୍ନ ଭିନ୍ନ ପଦରେ ନିଯୁକ୍ତ ଥିଲେ । ପେନ୍‌ସନ୍ ଗ୍ରହଣ କରି ରାୟବାହାଦୁର ଗୌରୀଶଙ୍କରଙ୍କ ପରେ ଏ କିଛିକାଳ 'ଉତ୍କଳଦୀପିକା'ର ସମ୍ପାଦକରୂପେ ଓ କଟକ ପ୍ରିଣ୍ଟିଙ୍ଗ୍ କମ୍ପାନୀର ପରିଚାଳନଭାର ଗ୍ରହଣ କରି ଥିଲେ । ଏହାଙ୍କର ମୃତ୍ୟୁ ୧୯୨୪ ଖ୍ରୀଷ୍ଟାବ୍ଦରେ ହୋଇଥିଲା ।]

ସୁଦାମା—ସଂ ବିଣ (ସୁ+ଦା ଧାତୁ+କର୍ତ୍ତ୍ରି. ମନ୍; ସୁଦାମନ୍ ଶବ୍ଦ ୧ମା. Sudāmā ୧ବ)-ଅତିଶୟ ଦାନଶୀଳ (ପ୍ର. ଶ)--Very liberal. ସଂ ବି, ପୁଂ—୧ । ମେଘ (ମେଦିନୀ)- 1. Cloud. ୨ । ସମୁଦ୍ର (ଶବ୍ଦରତ୍ନାବଳୀ)—2. The sea. ୩ । ଐରାବତ (ତ୍ରିକାଣ୍ଡ ଶେଷ)—3. Indra's elephant. ୪ । (ସୁ ଅଛି ଦାମନ୍=ମାଳା ଯାହାର) ପର୍ବତ (ମେଦିନୀ)—4. Mountain. ୫ । ଶ୍ରୀକୃଷ୍ଣସଖା ଗୋପବିଶେଷ (ଶବ୍ଦ ରତ୍ନାବଳୀ) 5. Name of a cowherd. [ଦ୍ର—ଏ ଶ୍ରୀକୃଷ୍ଣସହଚର ଦ୍ୱାଦଶ ଗୋପାଳଙ୍କ ମଧ୍ୟରୁ ଜଣେ ।] ୬ । ଶ୍ରୀକୃଷ୍ଣଙ୍କ ବାଲ୍ୟ ସହଚର ଜନୈକ ଦରିଦ୍ର ବ୍ରାହ୍ମଣ— 6. Name of a poor Brahman who had been a playmate and classmate of Srīrukshṇa. [ଦ୍ର—ଏ ପିଲାଦିନେ ଶ୍ରୀକୃଷ୍ଣଙ୍କ ସଙ୍ଗେ ସାନ୍ଦୀପନି ମୁନିଙ୍କ ଆଶ୍ରମରେ ବିଦ୍ୟାଶିକ୍ଷା କରିଥିଲେ । ଏ ଶ୍ରୀକୃଷ୍ଣଙ୍କର ଜଣେ ପ୍ରଧାନ ଭକ୍ତ ଓ ସର୍ବଦା ଶ୍ରୀକୃଷ୍ଣଙ୍କଠାରେ ଚିତ୍ତବୃତ୍ତି ଅର୍ପଣ କରିଥିଲେ । ଅତି ଅଭାବଗ୍ରସ୍ତ ହେବାରୁ ସ୍ତ୍ରୀଙ୍କ ଐକାନ୍ତିକ ଅନୁରୋଧରେ ଏ ଦ୍ୱାରକା ରାଜଧାନୀରେ ରାଜା ହୋଇଥିବା ସମୟରେ ଶ୍ରୀକୃଷ୍ଣଙ୍କ ନିକଟକୁ ଗଲେ । ଶ୍ରୀକୃଷ୍ଣଙ୍କୁ ଉପହାର ଦେବା ପାଇଁ ସ୍ତ୍ରୀ ଗଣ୍ଠିଏ ଖୁଦଭଜା ଏହାଙ୍କୁ ଦେଇଥିଲେ । ଶ୍ରୀକୃଷ୍ଣ ସୁଦାମାଙ୍କଠାରୁ ସେ ଖୁଦଭଜାଗଣ୍ଠିକ ଅତି ସ୍ନେହସହିତ ଗ୍ରହଣ କରି ଏହାଙ୍କ ଦାରିଦ୍ର୍ୟ ମୋଚନ କଲେ । କିନ୍ତୁ ଏ ଧନ ସମ୍ପତ୍ତିରେ ମୁଗ୍ଧ ନ ହୋଇ ଶ୍ରୀକୃଷ୍ଣଙ୍କଠାରେ ଭକ୍ତିବର ପ୍ରାର୍ଥନା କଲେ । ଅଦ୍ୟାବଧି ଏହାଙ୍କ ଗୃହ 'ସୁଦାମା-ପୁରୀ' ନାମରେ ହିନ୍ଦୁଙ୍କର ଗୋଟିଏ ତୀର୍ଥ ହୋଇଅଛି ।] ୭ । (ଲକ୍ଷଣାର୍ଥ) କୁଚେଲ ବ୍ରାହ୍ମଣ; ମଳିନବସ୍ତ୍ରଧାରୀ ବ୍ରାହ୍ମଣ—7. A Brahmana wearing dirty cloth. ୮ । କେକୟ ନଗରରୁ ଅଯୋଧ୍ୟାକୁ ଆସିବା ପଥରେ ଥିବା ପର୍ବତ ବିଶେଷ—8. Name of a mountain near Ajodhyā. [ଦ୍ର—ଏ ପର୍ବତରେ ବିଷ୍ଣୁଙ୍କ ପାଦଚିହ୍ନ ଥିଲା ।] ୯ । ରାମାୟଣ ଅଯୋଧ୍ୟାକାଣ୍ଡ ବର୍ଣ୍ଣିତ ନଦୀ-ବିଶେଷ—9. Name of a river mentioned in the Rāmāyāṇa. ୧୦ । (ନାମ) ଶ୍ରୀକୃଷ୍ଣଙ୍କ ମଥୁରା ଗମନ ସମୟରେ ତାଙ୍କୁ ମଥୁରାରେ ଭେଟିଥିବା କଂସର ମାଳି (ପ୍ର. ଶ)—10. Name of the gardener of Kamsa who encountered Srikṛushṇa at Mathurā. ୧୧ । (ନାମ) ଗନ୍ଧର୍ବ ବିଶେଷ (ପ୍ର. ଶ)— 11 Name of a Gandharba.

ସୁଦାମା ଦେ. ବି. ପୁଂ—'ସୁଦାମ'ର ଡାକ ନାମ—
सुदामा Name for calling 'Sudāma'.

ସୁଦାମାପୁରୀ—ଦେ. ବି—( ନାମ )—ତୀର୍ଥବିଶେଷ—Name of a Sudāmā puri place of pilgrimage
ସୁଦାମାପୁରୀ सुदामापुरी [ଦ୍ର—ଏଠାରେ କେଦାରେଶ୍ୱର ମହାଦେବଙ୍କ ମନ୍ଦିର ଓ ସୁଦାମା ମନ୍ଦିର ବିଦ୍ୟମାନ—ଶ୍ରୀକୃଷ୍ଣ ଭକ୍ତ ସୁଦାମାଙ୍କ ନାମାନୁସାରେ ଆଧୁନିକ ପୋର-ବନ୍ଦର ନାମକ ସହରର ନାମ ସୁଦାମାପୁରୀ ରହିଥିଲେ—ମଦନମୋହନ ପଟ୍ଟନାୟକ ତୀର୍ଥଦର୍ଶନ ।]

ସୁଦାୟ—ସଂ ବି ( କର୍ମଧା; ସୁ+ଦାୟ )—୧ । ଉତ୍ତମ ଦାନ— Sudāya 1. A good gift. ୨ । ଯୌତୁକ ଉପହାର; ଦେୟ ଯୌତୁକାଦି (ଭରତ); ପିତୃମାତୃଭର୍ତ୍ତୃ-କୁଳରୁ ବିବାହିତା କନ୍ୟାକୁ ଦିଆଯିବା ଧନାଦି ଉପହାର-Gifts given to a bridegroom by the families of her father, mother and husband. ୩ । ଉପନୟନରେ ବ୍ରହ୍ମଚାରୀଙ୍କୁ ଦିଆଯିବା ଭିକ୍ଷା (ପ୍ର. ଶ)—3. Alms given to a Brahma-chārī on the Upanayana altar. ୪ । (ବହୁବ୍ରୀହି)—ସୁଦାୟଦାନକାରୀ ବ୍ୟକ୍ତି ( ପ୍ର. ଶ )— 4. A person who bestows the above gifts.

ସୁଦାରୁଣ—ସଂ ବିଣ—ଅତି ଦାରୁଣ ବା କ୍ରୂର— sudāruṇa Very cruel or fierce.

ସୁଦାସ—ସଂ ବି—୧ । (ନାମ)—ଦିବୋଦାସଙ୍କ ପୁତ୍ର (ପ୍ର. ଶ)— Sudāsa I. Son of Dibodāsa. ୨ । (ନାମ) ଋତୁପର୍ଣ୍ଣଙ୍କ ପୁତ୍ର ( ପ୍ର. ଶ )—2. Son of Ṛutuparṇna. ୩ । (ନାମ) ଚ୍ୟବନଙ୍କ ପୁତ୍ର ( ପ୍ର. ଶ )— - Son of Chyabana. ୪ । ( ନାମ ) ବୃହଦ୍ରଥଙ୍କ ପୁତ୍ର ( ପ୍ର. ଶ )—4. Son of Bṛuhadratha.

ସୁଦି—ଦେ. ବି—୧। ସୁଦାମ ଓ ସୁଦର୍ଶନର ଡାକନାମ—1. Name Sudi for calling Sudāma and Sudarśana (ସୁଦିଆ, ସୁଦେଇ—ଅନ୍ୟରୂପ)
୨ । (ହିନ୍ଦୀରୁ ଅନୁକୃତ; ସଂ. ସିତ=ଶୁକ୍ଲ)—ଚାନ୍ଦ୍ର ମାସର ଶୁକ୍ଲପକ୍ଷ—2. The bright fort-( ଶୁଦି—ଋପାନ୍ତର ) night of a lunar month.
ସୁଦି सुदी ଦେ. ବିଣ—ଶୁକ୍ଲପକ୍ଷୀୟ— Relating to the bright lunar fortnight. [ଦ୍ର—ମାରୱାଡ଼ି ଓ ପଶ୍ଚିମାମାନେ ସେମାନଙ୍କର ଦିନ, ଗଣନାରେ ଏହି ଦୁଇ ଶବ୍ଦ ବ୍ୟବହାର କରନ୍ତି

ଯଥା—
୩ । କାର୍ତ୍ତିକ ସୁଦ=କାର୍ତ୍ତିକମାସର ଶୁକ୍ଳପକ୍ଷ ତୃତୀୟା ।
୪ । ଭାଦ୍ରସୁଦ=ଭାଦ୍ରମାସର କୃଷ୍ଣପକ୍ଷ ଚତୁର୍ଥୀ । ]

ସୁଦିନ—ସଂ. ବି—୧ । ଶୁଭ ଦିନ—1. Auspicious day.
Sudina ୨ । ଶୁଭକାର୍ଯ୍ୟ କାମରେ ପ୍ରଶସ୍ତ ଦିବସ—2. A proper time for performing certain works. ୩ । ସୁସମୟ—3. Good and favourable time. ସଂ. ବିଣ—ପ୍ରଶସ୍ତ (ସିଦ୍ଧାନ୍ତକୌମୁଦୀ)—Proper; auspicious.

ସୁଦିନାହ—ସଂ. ବି—ପ୍ରଶସ୍ତ ଦିବସ; ପୁଣ୍ୟାହ—A proper or
Sudināha auspicious day.

ସୁଦିବ—ସଂ. ବି (ସୁ+ଦିବ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ ଅ)—
Sudiba ଅତି ଉଜ୍ଜ୍ୱଳ (ହ୍ବି. ଶ.)—Very bright or shining.

ସୁଦିହ—ସଂ. ବିଣ—୧ । ସୁତୀକ୍ଷ୍ଣ (ହ୍ବି. ଶ) (ଯଥା—ଦନ୍ତ)—
Sudiha 1. Very sharp. ୨ । ଖୁବ୍ ଉଜ୍ଜ୍ୱଳ (ହ୍ବି. ଶ)—2. Very bright.

ସୁଦୀନ—ସଂ. ବିଣ. ପୁଂ (ସୁ+ଦୀନ)—ଅତ୍ୟନ୍ତ ଦରିଦ୍ର—
Sudīna (ସୁଦୀନା—ସ୍ତ୍ରୀ) Very poor.

ସୁଦୀର୍ଘ—ସଂ ବିଣ (ସୁ+ଦୀର୍ଘ)—ଅତି ଦୀର୍ଘ—Very long.
Sudīrgha ସଂ. ବି—ଚଚିଣ୍ଡା (ହ୍ବି. ଶ); ଛଚିଣ୍ଡା—Snake gourd

ସୁଦୀର୍ଘ ଘର୍ମା—ସଂ. ବି (ବୈଦ୍ୟକ)—ଅସନପର୍ଣ୍ଣୀ (ଶବ୍ଦଚନ୍ଦ୍ରିକା)
Sudīrgha gharmā ଲତା—Name of a creeper.

ସୁଦୀର୍ଘଫଳିକା—ସଂ ବି-ବାର୍ତ୍ତାକୀବିଶେଷ; ଲାଉକର ବାଇଗଣ (ରତ୍ନମାଳା)
Sudīrgha phalikā A species of long brinjal.
ସୁଦୀର୍ଘଫଳିକା

ସୁଦୀର୍ଘା—ସଂ. ବି—ଚୀନା କର୍କଟୀ (ରାଜନିର୍ଘଣ୍ଟ)—
Sudīrghā A species of long cucumber.

ସୁଦୁଃଖିତ—ସଂ. ବି. ପୁଂ—ଅତିଶୟ ଦୁଃଖିତ—
Sudubkhita (ସୁଦୁଃଖିତା—ସ୍ତ୍ରୀ) Very sorry.

ସୁଦୁରା(ରି)—ଦେ. ବି—ସୁଦର୍ଶନର ଡାକନାମ—
Sudurā(ri) Name for calling Sudarśana.
(ସୁଦୁରିଆ—ଅନ୍ୟରୂପ)

ସୁଦୁ(ଧୁ)ରା(ରେ)ଇବା—ଦେ. କ୍ରି—ଶୁଧୁରାଇବା (ଦେଖ)
Sudu(dhu)ra(re)ibā Sudhurāibā (See)

ସୁଦୁ(ଧୁ)ରିବା—ଦେ. କ୍ରି—ଶୁଧୁରିବା (ଦେଖ)
Sudu(dhu)ribā Sudhuribā(See)

ସୁଦୁରୀ—ଗ୍ରା. ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—
Suduri A name given to females.

ସୁଦୁର୍ଲଭ—ସଂ. ବିଣ. ପୁଂ (ସୁ=ଅତି+ଦୁର୍ଲଭ)—ଅତି ଦୁର୍ଲଭ; ଅତ୍ୟନ୍ତ
Sudurlabha ଦୁଷ୍ପ୍ରାପ୍ୟ—Very rare.
(ସୁଦୁର୍ଲଭା—ସ୍ତ୍ରୀ)

ସୁଦୁଶ୍ଚର—ସଂ. ବିଣ (ସୁ=ଅତ୍ୟନ୍ତ+ଦୁଶ୍ଚର)—ଅତି ଦୁର୍ଗମ; ଅତି
Suduśchara ଦୁଃଖରେ ଚରଣୀୟ; ସୁଦୁସ୍ତର—Very difficult to pass or perform.

ସୁଦୁଷ୍କର—ସଂ. ବିଣ (ସୁ+ଦୁଷ୍କର)—୧ । ଅତି କଷ୍ଟସାଧ୍ୟ—
Sudushkara 1. Very difficult to perform. ୨ । ଅତି କ୍ଳେଶକର—2. Very painful.

ସୁଦୁସ୍ତର—ସଂ. ବିଣ (ସୁ+ଦୁର୍+ତୃ ଧାତୁ+କର୍ମ ଅ)—ଅତିଦୁଃଖରେ
Sudustara ତରଣୀୟ—Very difficult to pass or cross

ସୁଦୁସ୍ତ୍ୟଜ—ସଂ. ବିଣ (ସୁ+ଦୁର୍+ତ୍ୟଜ ଧାତୁ+କର୍ମ ଅ)—ଅତି
Sudustyaja ଦୁଃଖରେ ତ୍ୟାଜ୍ୟ—Which can be relinquished with much difficulty.

ସୁଦୂର—ସଂ. ବିଣ—ଅତି ଦୂରରେ ଅବସ୍ଥିତ; ଅତି ଦୂରବର୍ତ୍ତୀ—
Sudūra Very far; very distant.

ସୁଦୂରଗାମୀ—ସଂ. ବିଣ.ପୁଂ (ସୁଦୂରଗାମିନ୍ ୧ମା. ୧ବ)—ବହୁଦୂରଗାମୀ
Sudūragāmi Going to a long distance.
(ସୁଦୂରଗାମିନୀ—ସ୍ତ୍ରୀ)

ସୁଦୂର ପରାଜି(ହ)ତ—ସଂ. ବିଣ—୧ । ଅତି ଦୂରରେ ପରାଜିତ—
Sudūra parāji(ha)ta 1. Vanquished a long way off; defeated at a distance. [ଦ୍ର—ଶତ୍ରୁ ପାଖରେ ଆସି ପହଞ୍ଚିବା ଆଗରୁ ବହୁ ଦୂରରୁ ପରାସ୍ତ ହୋଇ ଏଣେତେଣେ ପଳାଇ ଯାଇଥିବା ଅବସ୍ଥାରେ ଏ ଶବ୍ଦର ବ୍ୟବହାର ହୋଇଥାଏ ।] ୨ । ସମ୍ପୂର୍ଣ୍ଣରୂପେ ପରାଜିତ—2. Totally vanquished. ୩ । ଚିର ଧ୍ୱସ୍ତ—3. Destroyed or ruined for ever. ୪ । ସମ୍ପୂର୍ଣ୍ଣରୂପେ ଅସମ୍ଭବ—4. Totally impossible. [ଯଥା—ଓଡ଼ିଆ ଭାଷାର ଶବ୍ଦକୋଷ ସଙ୍କଳନକାରୀଙ୍କ ପକ୍ଷରେ ଗ୍ରନ୍ଥ ପ୍ରକାଶ କରି ଜୀବନ ଜୀବିକା ନିର୍ବାହ କରିବା ଆଶା ସୁଦୂରପରାହତ ।]

ସୁଦୃକ୍—ସଂ. ବିଣ. ପୁଂ. ଓ ସ୍ତ୍ରୀ (ବହୁବ୍ରୀହି, ସୁ+ଦୃକ୍ ଯାହାଙ୍କର)—
Sudṛuk ସୁନୟନ; ସୁନ୍ଦର ନୟନଯୁକ୍ତ—Having graceful eyes. | ସଂ. ବି—ସୁନେତ୍ରା ସ୍ତ୍ରୀ—A beautiful woman.

ସୁଦୃଢ଼—ସଂ. ବିଣ. ପୁଂ—ଅତି ଦୃଢ଼; ଗାଢ଼—Very strong
Sudṛurdha or firm.
(ସୁଦୃଢ଼ା—ସ୍ତ୍ରୀ) (ସୁଦୃଢ଼ତା—ବି)

ସୁଦୃଶା—ଦେ. ବି ଓ ବିଣ. ସ୍ତ୍ରୀ (ସଂ ସୁଦୃକ୍)—ସୁଦୃକ୍ (ଦେଖ)
Sudṛusā Sudṛuk (See)

ସୁଦୃଶ୍ୟ—ସଂ.ବିଣ. ପୁଂ (ବହୁବ୍ରୀହି; ସୁ+ଦୃଶ୍ୟ)—ସୁନ୍ଦର; କମନୀୟଦର୍ଶନ-
Sudṛusya Beautiful; fine-looking.
(ସୁଦୃଶ୍ୟା—ସ୍ତ୍ରୀ)

ସୁଦୃଷ୍ଟି—ସଂ. ବି (କର୍ମଧା)—୧ । ଉତ୍ତମ ଦୃଷ୍ଟି—1. Good
Sudrushti vision or sight. ୨ । ଅନୁଗ୍ରହଦୃଷ୍ଟି

ଦୃଷ୍ଟି—2. Kind or favourable look. ୩ । ( ବହୁବ୍ରୀହି )—ଗୃଧ୍ର ( ହି ଶ )—3. Vulture. (ଭ—ବାଳୁଡ଼ିଲେ ରଷି ଅମୃତକୁ ଗ୍ରାସି ବସିଲେ ସୁଦୃଗ—ଭଞ୍ଜ, ବୈଦେହୀଶ ବିଳାସ ।)

ସଂ. ବଣ (ବହୁବ୍ରୀହି)—ଦୂରଦର୍ଶୀ (ହି. ଶ)—Having a long eyesight.

**ସୁଦେଇ**—ଦେ. ବ (ଆଦରାର୍ଥକ)—ସୁଦର୍ଶନର ଡାକ ନାମ—
Sudei Name for calling 'Sudarśana'.

**ସୁଦେବୀ**—ଦେ. ବ—ଫିଗୁର କଣ୍ଟା ଗୁଳ୍ମ—A kind of thorny
Sudebī plant; Caparis Separia.
আঁকোড় [ଭ—ଅଛ୍ଚ ସୁଦେବୀ, ସୁଣ ଭୁଙ୍ଗବଦ୍ୟା ଜାଗ୍ରଣେ । ଭଞ୍ଜ. ଫିବିଙ୍କ ପ୍ରେମସୁଧାନିଧି ।]

**ସୁଦେଶ**—ସଂ. ବ—୧ । ଉତ୍ତମ ଦେଶ—1. A good country.
Sudeśa ୨ । ଉତ୍ତମ ସ୍ଥାନ—2. A good place.

**ସୁଦେଷ୍ଣ**—ସଂ. ବଣ. ପୁଂ (ନାମ)—ରୁକ୍ମିଣୀ ଗର୍ଭଜାତ ଶ୍ରୀକୃଷ୍ଣଙ୍କ ପୁତ୍ର
Sudeshṇa (ହି. ଶ)—Name of a son of Śrīkrushṇa.

**ସୁଦେଷ୍ଣା**—ସଂ. ବ. ସ୍ତ୍ରୀ (ନାମ)—୧ । ବିରାଟ ରାଜାଙ୍କ ସ୍ତ୍ରୀ ଓ କୀଚକର
Sudeshṇā ଭଗିନୀ, ଯାହାଙ୍କ ନିକଟରେ ଦ୍ରୌପଦୀ ପାଣ୍ଡବମାନଙ୍କ ଅଜ୍ଞାତବାସ ସମୟରେ ସୈରିନ୍ଧ୍ରୀ ରୂପେ ଆଶ୍ରୟ ନେଇଥିଲେ । 1. Name of the queen of 'Birāṭa' king and sister of Kichaka. ୨ । ବଳିଙ୍କ ସ୍ତ୍ରୀ (ହି. ଶ) —2. Name of the wife of Bali.

**ସୁଦେହ**—ସଂ. ବ (କର୍ମଧା)—ସୁନ୍ଦର ଶରୀର—
Sudeha Beautiful body.
(ସୁଦେହା—ସ୍ତ୍ରୀ.ବଣ) ସଂ. ବଣ.ପୁଂ(ବହୁବ୍ରୀହି)—କମନୀୟ ଶରୀରବିଶିଷ୍ଟ—Having a beautiful body.

**ସୁଦୈବ**—ସଂ. ବ—୧ । ସୌଭାଗ୍ୟ (ହି. ଶ)—1. Good for-
Sudaiba tune. ୨ । ଉତ୍ତମ ସଂଯୋଗ—2. Good combination.

**ସୁଦୋହା(ଘା)**—ସଂ. ବଣ. ସ୍ତ୍ରୀ (ସୁ+ଦୁହ୍ ଧାତୁ=କର୍ମ. ଅ+ସ୍ତ୍ରୀ. ଆ)
Sudohā(ghā) —ଯେଉଁ ଗାଈକୁ ସହଜରେ ଦୁହିଁ ହୋଇପାରେ—Easily milched (cow).

**ସୁଦ୍ଧା**—ଦେ. ଅ (ସଂ. ସାର୍ଦ୍ଧଂ)—୧ । ପର୍ଯ୍ୟନ୍ତ—1. Upto. (ଯଥା—
Suddhā ଅଦ୍ୟସୁଦ୍ଧା) ୨। ସମେତ—2. Including. (ଯଥା—
ପର୍য্যন্ত তক ସର୍ବସୁଦ୍ଧା) ୩ । ମଧ୍ୟ—3. Also; even.
সমেত সুদ্ধা মধ্য ভী

**ସୁଦ୍ୟୁମ୍ନ**—ସଂ. ବ—ବୈବସ୍ୱତ ମନୁଙ୍କ ପୁତ୍ର; ଇଡ଼ ନାମକ ରାଜା—
Sudyumna Name of a son of 'Baibaswata Manu'; king Irḍa.
[ଦ୍ର—କଥିତ ଅଛି ଯେ, ହିମାଳୟରେ ପାର୍ବତୀଙ୍କ ସହ ହରଙ୍କର ରତିକ୍ରୀଡ଼ା ହେଉଥିବା ସମୟରେ ସୁଦ୍ୟୁମ୍ନ ସେଠାରେ ମୃଗୟା ଲାଗି ପହଞ୍ଚିଲେ ଏବଂ ମହାଦେବଙ୍କ ଶାପଫଳରେ ସେ ସ୍ତ୍ରୀ ରୂପରେ ପରିଣତ ହୋଇ ଅରଣ୍ୟରେ ବୁଲିଲେ । ବୁଲି ବୁଲି ବୁଧଙ୍କ ସଙ୍ଗେ ତାଙ୍କର ଭେଟ ହେଲା ଓ ବୁଧଙ୍କ ଔରସରେ ଏହାଙ୍କ ଗର୍ଭରୁ ପୁରୁରବା ଜାତ ହେଲେ । ପରେ ବୁଧଙ୍କ ଆରାଧନାରେ ତୁଷ୍ଟ ହୋଇ ମହାଦେବ ଦୟା କରିବାରୁ ଏ ପୁଣି ପୁରୁଷ ରୂପରେ ପରିଣତ ହେଲେ । ଅଗ୍ନିପୁରାଣ ସାଗରୋପାଖ୍ୟାନ ।]

**ସୁଧ୍** (ଇତ୍ୟାଦି)—ଦେ. ବ ଓ କି. ବଣ—ଶୁଧ୍ ଇତ୍ୟାଦି (ଦେଖ)
Sudh Śudh etc. (See)

**ସୁଧ** (ଇତ୍ୟାଦି)—ଦେ. ବ—ଶୁଧ ଇତ୍ୟାଦି (ଦେଖ)
Sudha (etc) Śudha etc.

**ସୁଧନ୍ୱା**—ସଂ. ବ. ପୁଂ [ସୁ+ଧନୁସ୍ (ଧନୁସ=ଧନ୍ୱନ୍) ବହୁବ୍ରୀହି;
Sudhanwā ସୁନ୍ଦର ଧନୁ ଅଛି ଯାହାର; ସୁଧନ୍ୱନ୍ ୧ମା. ଏ]—
୧ । ଶ୍ରେଷ୍ଠ ଧାନୁଷ୍କ; ଉତ୍କୃଷ୍ଟ ଧନୁର୍ଦ୍ଧର (ମେଦିନୀ)—1. An excellent archer; a master bowman. ୨ । ବିଶ୍ୱକର୍ମା (ମେଦିନୀ)—2. The Divine Architect. ୩ । ଜନୈକ ନୃପ—3. Name of a king.

[ଦ୍ର—ଭଦ୍ରାବତୀପୁରରେ ହଂସଧ୍ୱଜ ନାମରେ ଜଣେ ରାଜା ଥିଲେ । ସେ ନିଜେ ପରମ ବୈଷ୍ଣବ ଏବଂ ତାଙ୍କର ଦୁଇ ପୁତ୍ର ସୁରଥ ଓ ସୁଧନ୍ୱା ମଧ୍ୟ ଠିକ୍ ସେହିପରି ବିଷ୍ଣୁଭକ୍ତ ଥିଲେ ।

ଯୁଧିଷ୍ଠିରଙ୍କ ସଙ୍କଳ୍ପିତ ଅଶ୍ୱମେଧ ଯଜ୍ଞର ଅର୍ଜୁନରକ୍ଷିତ ଅଶ୍ୱ ନାନା ଦେଶ ଭ୍ରମଣ କରି ଏହି ଭଦ୍ରାବତୀପୁରରେ ଆସି ପହଞ୍ଚିଲା । ବିଷ୍ଣୁଭକ୍ତ ହଂସଧ୍ୱଜ,କୃଷ୍ଣଙ୍କ ଦର୍ଶନଲାଭର ମହାସୁଯୋଗ ଉପସ୍ଥିତ ହେବା ଦେଖି, ଉକ୍ତ ଅଶ୍ୱକୁ ବନ୍ଧନ କଲେ; କେବଳ ଏତିକି ନୁହେ, ସେ କୃଷ୍ଣସଖା ଅର୍ଜୁନଙ୍କୁ ଧରିବାଲାଗି ପ୍ରସ୍ତୁତ ହେଲେ; ଯୁଦ୍ଧ ଲାଗି ବିପୁଳ ଆୟୋଜନ ହେଲା । ରାଜା ଘୋଷଣା କଲେ, ଯେ ଅର୍ଜୁନଙ୍କ ବିରୁଦ୍ଧରେ ଯୁଦ୍ଧରେ ଯୋଗଦାନ ନ କରିବ, କାଳଅଗ୍ନିରେ ହେଲେ ସୁଦ୍ଧା ତାହାକୁ ତପ୍ତତୈଳପୂର୍ଣ୍ଣ କଟାହରେ ନିକ୍ଷେପ କରାଯିବ ।

ହରିଭକ୍ତ ନୃପକୁମାର ସୁଧନ୍ୱା ମଧ୍ୟ ଯୁଦ୍ଧ ଲାଗି ସମୁତ୍ସୁକ ହେଲେ; ଯୁଦ୍ଧାର୍ଥ ପ୍ରସ୍ତୁତ ହୋଇ ଭାର୍ଯ୍ୟା ଓ ଜନନୀଙ୍କ ସଙ୍ଗେ ଦେଖା କରିବାକୁ ଗଲେ । ପତ୍ନୀଙ୍କ ନିକଟରୁ ବିଦାୟ ନେଇ ଆସୁ ଆସୁ କିଛି ବିଳମ୍ବ ହୋଇଗଲା ।

ଏଣେ ଯଥାସମୟରେ ଯୁଦ୍ଧକୁ ଉପସ୍ଥିତ ହେବା ନ ଦେଖି ହଂସଧ୍ୱଜ ପୂର୍ବ ପ୍ରତିଜ୍ଞାନୁସାରେ ସୁଧନ୍ୱାଙ୍କୁ ତପ୍ତ ତୈଳପୂର୍ଣ୍ଣ କଟାହରେ ନିକ୍ଷେପ କରିବାକୁ ଆଦେଶ ଦେଲେ ।

କୃଷ୍ଣଭକ୍ତ ସୁଧନ୍ୱା ପିତୃ ଆଦେଶ ପାଳନ କରିବାରେ ବିଚଳିତ ହେଲେ ନାହିଁ । ତାହାଙ୍କୁ ତପ୍ତତୈଳ କଟାହରେ ନିକ୍ଷିପ୍ତ କରାଗଲା । କିନ୍ତୁ ଭକ୍ତକୁ ବିଷ୍ଣୁ ରକ୍ଷା କଲେ । କିଛିକ୍ଷଣ ପରେ ସୁଧନ୍ୱା କୃଷ୍ଣନାମ

ମୁଖରେ ଉଚ୍ଚାରଣ କରୁ କରୁ ଉକ୍ତ ତପ୍ତ କଟାହରୁ ବାହାରିଲେ । ଏହା ଦେଖି ସମସ୍ତେ ବିସ୍ମିତ ହେଲେ ।

ତତ୍ପରେ ଯୁଦ୍ଧ ଆରମ୍ଭ ହେଲା । ଅର୍ଜୁନ କୌଣସି-ରୂପେ ସୁଧନ୍ୱାଙ୍କୁ ପରାଜିତ କରି ପାରିଲେ ନାହିଁ । ସୁଧନ୍ୱାଙ୍କ ବାଣାଘାତରେ ଅର୍ଜୁନଙ୍କ ରଥ ବହୁଦୂର ଛିଟିକିବାରୁ ଅର୍ଜୁନ କାତରସ୍ୱରରେ କୃଷ୍ଣଙ୍କୁ ଧ୍ୟାନ କଲେ । ଶେଷରେ କୃଷ୍ଣଙ୍କ କୌଶଳରେ ସୁଧନ୍ୱାଙ୍କ ମସ୍ତକ ଦେହରୁ ଚ୍ୟୁତ ହୋଇ କୃଷ୍ଣଙ୍କ ପଦକମଳରେ ପଡ଼ି ହରିନାମ ଉଚ୍ଚାରଣ କଲା । ଏହିପରି ସୁଧନ୍ୱାଙ୍କର ମୁକ୍ତି ହେଲା ।

ସନ୍ଦର୍ଭଲେଖକ—ଶ୍ରୀ ଜଗନ୍ନାଥ ତ୍ରିପାଠୀ ବି· ଏ·]

୪ । ଅନନ୍ତଦେବ; ଶେଷଦେବ—4. An incarnation of Bishṇu in the shape of serpent. ୫ । ସୂର୍ଯ୍ୟଙ୍କ କନ୍ୟା ତପତୀଙ୍କ ଗର୍ଭଜାତ କୁରୁଙ୍କ ସନ୍ତାନ (ହୃ. ଶ)—5. Name of a son of Kuru. ୬ । ବିଷ୍ଣୁ (ହୃ. ଶ)—6. Bishṇu. ୭ । ବିଦୁର (ହୃ· ଶ)—7. Bidura. ୮ । ଅଙ୍ଗିରସ (ହୃ. ଶ)-8. Angirasa. ୯ । ସୁଧନ୍ୱାଚାର୍ଯ୍ୟ (ହୃ. ଶ) (ଦେଖ) 9. Sudhanwāchārjya (See)

ସୁଧନ୍ୱାଗୂର୍ଯ୍ୟ—ସଂ ବି—ବ୍ରାତ୍ୟ ବୈଶ୍ୟଙ୍କ ( ଅର୍ଥାତ ଯେଉଁ ବୈଶ୍ୟଙ୍କର Sudhanwāchārjya ବ୍ରତ ହୋଇ ନଥାଏ ତାଙ୍କ) ଔରସରେ ସବର୍ଣ୍ଣା ସ୍ତ୍ରୀଗର୍ଭଜାତ ଜାତି (ମନୁ ୧୦ମ ଅଧ୍ୟାୟ)—The son of a fallen Baiśya (i e, a Baiśya who had not had his investiture) through a woman of the same caste.

ସୁଧର(ରେ)ଇବା—ଦେ· କ୍ରି—ଶୁଧୁରାଇବା (ଦେଖ) Sudharā(re)ibā Śudhurāibā (See)

ସୁଧରଣ—ଦେ· ବି—ଶୁଧରଣ (ଦେଖ) Sudharāṇa Śudharāṇa (See)

ସୁଧର୍ମ—ସଂ· ବି—୧ । ( ନାମ ) ଜିନ ଗଣାଧିପବିଶେଷ—Sudharma 1. Name of a Jaina saint. [ଦ୍ର—ଏ ମହାବୀରଙ୍କ ଦଶ ଶିଷ୍ୟ ମଧ୍ୟରୁ ଜଣେ (ହୃ ଶ) ।] ୨ । ( ନାମ ) କିନ୍ନରରାଜବିଶେଷ (ହୃ. ଶ.)—2. Name of a king of the Kinnaras. ୩ । ଉତ୍ତମ ଧର୍ମ; ପୁଣ୍ୟ କର୍ତ୍ତବ୍ୟ କର୍ମ ( ହୃ. ଶ. )—3. Good work; pious duty. ଦେ. ବିଣ ( ସଂ. ସୁଧର୍ମା ) -ସୁଧାର; ଶାନ୍ତ, ଯେ ଦୁଷ୍ଟ ନୁହେ—Mild; gentle.

ସୁଧର୍ମା—ସଂ. ବିଣ (ସୁ+ଧର୍ମନ୍; ୧ମା. ୧ବ)—୧ । (ପୁଂ) ଅତି ଧାର୍ମିକ; Sudharmā ଧର୍ମିଷ୍ଠସ୍ୱରୂପ—1. Very pious. ସଂ. ବି—୧ । (ପୁଂ) କୁଟୁମ୍ବୀ (ଭୂଶାବ୍ଦକୋଷ), କୁଟୁମ୍ବପାଳକ ଗୃହସ୍ଥ (ହୃ ଶ)—1. The head of a family; a householder. ୨ । (ସ୍ତ୍ରୀ) ଦେବସଭା; ଇନ୍ଦ୍ରଙ୍କ ସଭା—2. Name of the court of God Indra where the gods assemble for deliberation and sport. ୩ । (ପୁଂ) ଶେଷ ଜୈନଙ୍କର ଜନୈକ ଶିଷ୍ୟ; ଜୈନମାନଙ୍କର ଗଣାଧିପ ବିଶେଷ (ହୃ. ଶ) - 3. Name of a disciple of the last Jaina saint· ୪ । (ପୁଂ) କ୍ଷତ୍ରିୟ (ହୃ. ଶ) —4. A Kshatriya. ୫ । (ନାମ) ଦଶାର୍ଣ୍ଣର ଜଣେ ରାଜା (ହୃ· ଶ )—5. Name of a king of Daśārṇṇa. ଦେ. ବିଣ — ୧ । ନମ୍ର; ଶାନ୍ତ—

ସୁଶୀଳ
ସୁଶୀଲ, ସଦ୍ 1. Mild; meek. [ଦ୍ର – ସୁଧର୍ମା ଗାଈର ବାଛୁରି ମରେ ।] ୨ । ସୁଶୀଳ—2. Well disposed; of good nature.

ସୁଧର୍ମା ଗାଈ—ଦେ. ବି—ଶାନ୍ତ ସ୍ୱଭାବଯୁକ୍ତା ଗାଭୀ; ଯେଉଁ ଗାଈଠାରୁ Sudharmā gāī ଦୁଧ ଦୁହିଁବାକୁ କିଛି କଷ୍ଟ ହୁଏ ନାହିଁ, ଠାଣ୍ଡା ଗାଈ ଅର୍ଥାତ୍ ଯେ ଦୁଧ ଦୁହିଁଲାବେଳେ ଦୁଷ୍ଟାମି କରେ ନାହିଁ— ସଦ୍ ଗାଯ A meek milch-cow.

ସୁଧର୍ମା ଗାଈର ବାଛୁରି ମରେ—ଦେ ପ୍ରବଚନ, ନ୍ୟାୟ—ସୁଶୀଳା ଗାଈ-Sudharmā gāira bāchhuri mare ଠାରୁ ଦୁଧ ଦୁହିଁ ଗଲା-ବେଳେ ସେ ଦୁଷ୍ଟାମି କରେ ନାହିଁ; ଏଥିପାଇଁ ଲୋକେ ତାଠାରୁ ଦୁଧ ନିଃଶେଷ କରି ଦୁହିଁ ନିଅନ୍ତି । ଫଳରେ ଦୁଧ ଦୁହାଁସରିଲା ପରେ ତା ନିଜ ବାଛୁରୀର ପିଇବା ପାଇଁ ଗାଈ ଠାରେ ଅଳ୍ପେ ଦୁଧ ନ ଥାଏ । ତେଣୁ ଉକ୍ତ ଗାଈର ବାଛୁରି ମାଆଠାରୁ ଦୁଧ ପିଇବାକୁ ନ ପାଇବାରୁ ମରିଯାଏ । ଶାନ୍ତଶୀଳ ବ୍ୟକ୍ତିର କୋମଳ ବ୍ୟବହାରର ଲୋକେ ଅସଦ୍-ବ୍ୟବହାର କରନ୍ତି ଓ ତାହାର ଫଳରେ ସେ କଷ୍ଟ ଭୋଗ କରେ । ଏହି ଭାବାର୍ଥରେ ଏ ପ୍ରବଚନ ବୋଲାଯାଏ ।

ଅତି ମଧ୍ୟ ଧର୍ମିଷ୍ଠ ବ୍ୟକ୍ତିର ଅନିଷ୍ଟ ଘଟିଲେ ଲୋକେ ଏ ପ୍ରବଚନ ବ୍ୟବହାର କରନ୍ତି—]

A proverb meaning "The calf of meek cow starves".

ସୁଧର୍ମୀ—ସ. ବି· ସ୍ତ୍ରୀ—୧ । (ସୁଧର୍ମ+ଈ) (ସ୍ତ୍ରୀ) ଦେବସଭା (ଅମର Sudharmī ଟୀକା)—1. Name of Indra's court. ୨ । (ପୁଂ) (ସୁଧର୍ମ+ଇନ୍; ୧ମା. ୧ବ) ଧର୍ମପରାୟଣ (ହୃ. ଶ)—2. Pious.

ସୁଧା—ସ. ବି (ସୁ=ସୁଖରେ+ଧେ· ଧାତୁ=ପାନ କରିବା+କର୍ମ. ଅ Sudhā +ଆ; ଯାହା ସୁଖରେ ପାନ କରାଯାଏ) — ୧ । ଅମୃତ (ଅମର); ପୀୟୂଷ —1. Nectar; ambrosia. ୨ । ଲେପନ (ମେଦିନୀ)—2. Anointing; smearing. ୩ । ଚୂନ (ମେଦିନୀ); କଲିଚୂନ—3. Lime; quick-lime· (ଉ—ରସ ଘରୁଁ ଯାଉ ବ, ସୁଧ ରେ ଲେପିତ—କୃଷ୍ଣସିଂହ. ମହାଭାରତ, ବନ ।) ୪ । ମୂର୍ବ୍ବା (ମେଦିନୀ) ମୁରୁଗା ଗୁଳ୍ମ—4. Sansveira Zeylanica

plant. ୫ । ସ୍ନୁହୀ; ସିହୁଗଛ (ମେଦିନୀ)—5. Euphorbia tree. ୬ । ଗଙ୍ଗା (ମେଦିନୀ)—6. The Ganges. ୭ । ଇଷ୍ଟକା; ଇଟା—7. Brick. ୮ । ବିଦ୍ୟୁତ୍ (ଧ୍ୱନିମଞ୍ଜରୀ)—8. Lightning; electricity. ୯ । ରସ (ଧ୍ୱନିମଞ୍ଜରୀ)—9. Juice. ୧୦ । ତୋୟ; ଜଳ (ଧ୍ୱନିମଞ୍ଜରୀ)—10. Water. ୧୧ । ଧାତ୍ରୀ; ଆମଳକ; ଅଁଳା (ଧ୍ୱନିମଞ୍ଜରୀ)—11. Phylanthus Emblica. ୧୨ । ହରୀତକୀ; ହରିଡ଼ା (ଶବ୍ଦଚନ୍ଦ୍ରିକା)—12. Myrobalan. ୧୩ । ଶାଳପର୍ଣ୍ଣୀ (ରାଜନିର୍ଘଣ୍ଟ)—13. A medicinal plant. ୧୪ । ପୁଷ୍ପରସ; ମକରନ୍ଦ—14. The juice or honey from flowers. ୧୫ । ଜ୍ୟୋତ୍ସ୍ନା; ଚନ୍ଦ୍ରିକା—15. Moon-beam. ୧୬ । ମଦ୍ୟ; ମଦିରା—16. Wine. ୧୭ । ଦୁଗ୍ଧ (ହି. ଶ)—17. Milk. ୧୮ । ଅରକ (ହି. ଶ)—18. Essence. ୧୯ । ପୃଥିବୀ (ହି. ଶ)—19. The earth. ୨୦ । ବିଷ; ହଳାହଳ (ହି. ଶ)—20. Poison. ୨୧ । ଗୁଳୁଚ (ହି ଶ)—21. Tinaspora Cordifolia (creeper). ୨୨ । ରୁଦ୍ରଙ୍କ ସ୍ତ୍ରୀ (ହି. ଶ)—22. Wife of the Rudra Deity. ୨୩ । ପୁତ୍ରୀ (ହି. ଶ)—23. Daughter. ୨୪ । ବଧୂ (ହି. ଶ)—24. Daughter-in-law. ୨୫ । ଧାମ; ଘର (ହି. ଶ)—25. Residence. ୨୬ । ମଧୁ (ହି. ଶ)—26. Honey.

ସୁଧାଂଶୁ—ସଂ. ବି (ସୁଧା=ଅମୃତ ପରି ଅଂଶୁ=କିରଣ ଯାହାର; Sudhāṁśu ବହୁବ୍ରୀହି)—୧ । ହିମାଂଶୁ; ଚନ୍ଦ୍ର; ଚନ୍ଦ୍ରମା—1. The moon. ୨ । କର୍ପୂର—2. Camphor.

ସୁଧାଂଶୁ ତୈଳ—ସଂ. ବି—କର୍ପୂର ତୈଳ (ରାଜ ନିର୍ଘଣ୍ଟ)—Sudhāṁśu taila Camphor oil.

ସୁଧାଂଶୁ ରତ୍ନ (ରକ୍ତ)—ସଂ. ବି—ମୌକ୍ତିକ; ମୁକ୍ତା (ରାଜନିର୍ଘଣ୍ଟ)—Sudhāṁśu ratna(rakta) Pearl.

ସୁଧାଂଶୁ ଶେଖର—ସଂ. ବି. ପୁଂ ( ବହୁବ୍ରୀହି; ସୁଧାଂଶୁ=ଚନ୍ଦ୍ର ଅଟନ୍ତି Sudhāṁśu śekhara ଶେଖର=ଶିରୋଭୂଷଣ ଯାହାଙ୍କର)—ଶଶିଶେଖର; ମହାଦେବ—God Śiva. ଦେ. ବି (ପୁଂ)—ଲୋକଙ୍କୁ ଦିଆଯିବା ନାମ—A name given to males.

ସୁଧା(ଧେ)ଇବା—ଦେ. କ୍ରି—ଶୁଧାଇବା (ଦେଖ) Sudhā(dhe)ibā Śudhāibā (See)

ସୁଧା କଣ୍ଠ—ସଂ. ବି (ବହୁବ୍ରୀହି)—କୋକିଳ (ହି. ଶ)—Sudhā kaṇṭha The Indian cuckoo.

ସୁଧାକର—ସଂ. ବି (ସୁଧା=ଅମୃତ+ଆକର=ଉତ୍ପତ୍ତିସ୍ଥାନ, ୬ଷ୍ଠୀ Sudhākara ତତ୍ )—ଚନ୍ଦ୍ର—The moon. ଦେ. ବି. ସୁଧାକର ସୁଧାକର ପୁଂ—ଲୋକଙ୍କ ନାମ—A name given to males.

ସୁଧାକର ଦ୍ୱିବେଦୀ—ଦେ. ବି—୧ । ସ୍ୱର୍ଗତ ବିଖ୍ୟାତ ଗାଣିତିକ Sudhākara dwibedī ପଣ୍ଡିତ—1. A late famous mathematician. [ ଦ୍ର—ଏହାଙ୍କର ଜନ୍ମ ୧୮୬୦ ଖ୍ରୀଷ୍ଟାବ୍ଦରେ । ଏ ଇଂରାଜୀ ଓ ସଂସ୍କୃତ ଗଣିତରେ ପାରଦର୍ଶୀ ହୋଇ ଇଉରୋପୀୟ ଗଣିତ ଅବଲମ୍ବନରେ ଗଣିତ ଓ ଜ୍ୟୋତିଷ ଆଦିର ଅନେକ ସଂସ୍କୃତ ଗ୍ରନ୍ଥ ରଚନା କରିଥିଲେ । ଏହାଙ୍କ କୃତ 'ଗଣିତତରଙ୍ଗିଣୀ' ନାମକ ଜ୍ୟୋତିଷଗ୍ରନ୍ଥ ଅତି ପ୍ରସିଦ୍ଧ । ଏ କାଶୀ ସଂସ୍କୃତକଲେଜର ପ୍ରଧାନ ଗଣିତ ଅଧ୍ୟାପକ ଥିଲେ । ଏ ଦୃକ୍ ଗଣିତର ଐକ୍ୟ ଅବଲମ୍ବନ କରି ସ୍ପଷ୍ଟଗ୍ରହ ସାଧନୋପଯୋଗୀ ସାରଣୀ ପ୍ରସ୍ତୁତ କରିଥିଲେ । ଏ ବ୍ରହ୍ମସିଦ୍ଧାନ୍ତର ପ୍ରକାଶିକା ନାମକ ଏକ ଟୀକା କରିଥିଲେ । ଏହି ସବୁ ପାଣ୍ଡିତ୍ୟପୂର୍ଣ୍ଣ କାର୍ଯ୍ୟପାଇଁ ଏ ସରକାରଙ୍କଠାରୁ 'ମହାମହୋପାଧ୍ୟାୟ' ଉପାଧି ପାଇଥିଲେ । ] ୨ । ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀର ପ୍ରସିଦ୍ଧ ଜ୍ୟୋତିଷାଚାର୍ଯ୍ୟ—2. Name of an astrologer of the 10th century A. D. [ ଦ୍ର—ଏହି ସୁଧାକର ଦ୍ୱିବେଦୀଙ୍କ ବିଷୟ ମହିତ ଚନ୍ଦ୍ରଶେଖର ମିଶ୍ରଙ୍କ ପ୍ରଣୀତ ସାମନ୍ତ ଚନ୍ଦ୍ରଶେଖରଙ୍କ ଜୀବନୀ ଗ୍ରନ୍ଥର ୫ମ ପୃଷ୍ଠାରେ ଲେଖାଅଛି—

"ପଣ୍ଡିତ ସୁଧାକର ଦ୍ୱିବେଦୀ ଦଶମ ଶତାବ୍ଦୀର ଲୋକ ଥିବାର ଅନୁମିତ ହୁଏ; କାରଣ ତାହାଙ୍କ "ଗଣକତରଙ୍ଗିଣୀ" ବା 'ମୁଞ୍ଜଲା' ଖ୍ରୀଷ୍ଟାବ୍ଦ ୯୩୨ରେ ପ୍ରଣୀତ ହୋଇଥିଲା ।]

ସୁଧାକାର—ସଂ. ବି—୧ । କାନ୍ଥ ଆଦିକୁ ଚୂନ ଧଳା କରିବାବାଲା Sudhākāra (ହି. ଶ)—1. A person who white-washes walls etc. ୨ । ରାଜମିସ୍ତ୍ରୀ (ହି. ଶ)—2. Mason.

ସୁଧାକୋଷ—ସଂ. ବି (୬ଷ୍ଠୀ ତତ୍; କର୍ମ୍ମ ମ. ପ. ଲୋ ସୁଧା+କୋଷ)—Sudhā kosha ଅମୃତର ବା ଅମୃତମୟ ଭଣ୍ଡାର—The store of nectar. (ଯ—ବସୁଧାରେ ସୁଧାକୋଷ ବୋଲାଇ, ଶ୍ରୀଫଳ ପ ଭଫଳ କରାଇ—ଭଞ୍ଜ, କୋଟବ୍ରହ୍ମାଣ୍ଡସୁନ୍ଦରୀ ।)

ସୁଧାକ୍ଷାଳିତ—ସଂ. ବିଣ (୩ୟା ତତ୍) ଚୂନଦ୍ୱାରା ଧଉଳା ହୋଇଥିବା Sudhākshālita (ହି. ଶ)—Whitewashed.

ସୁଧାଖଡ଼ି—ପ୍ରାଦେ (ଗଞ୍ଜାମ) ବି ( ବୈଦ୍ୟକ )—ବନ୍ୟ ଗୁଳ୍ମବିଶେଷ Sudhā khaṛdi ଖଡ଼ିସିଜୁ (ଦେଖ )—A wild plant. [ଦ୍ର—ଏହା ଉଷ୍ଣ, କଟୁ, ମଳରୋଧକ ଓ ଉଦରଜ୍ୱାଳା-ନାଶକ ଅଟେ—ଦ୍ରବ୍ୟଗୁଣ-କଳ୍ପଦ୍ରୁମ ।]

ସୁଧା ଘଟ—ସଂ. ବି—୧। ଅମୃତପୂର୍ଣ୍ଣ କଳସ—1. A pitcher full Sudhā ghaṭa of nectar. ୨ । ଚନ୍ଦ୍ର (ହି. ଶ)-2. The moon.

ସୁଧାଙ୍ଗ—ସଂ. ବି (ବହୁବ୍ରୀହି; ସୁଧା ଅଛି ଅଙ୍ଗରେ ଯାହାର)—ଚନ୍ଦ୍ର—Sudhāṅga The moon.

ସୁଧାଜୀବୀ—ସଂ. ବି. ପୁଂ (ସୁଧା=ଚୂନକାମ+ଜୀବ୍ ଧାତୁ+କର୍ତ୍ତୃ ଇନ୍; Sudhājībī ୧ମା ୧ବ)—୧ । ରାଜ ମିସ୍ତ୍ରୀ—1. A mason. ୨ । ସୁଧା ଲେପକ ( ଜାତିବିଶେଷ )—2. A white washer.

ସୁଧା ଝର—ଦେ. ବି—୧। ସୁଧାଧାର; ଅମୃତର ଧାର—1. A flow Sudhā jhara of nectar. ୨। ଅମୃତସ୍ରାବୀ ଝରଣା—ସୁଧାଝର ସୁଧାଝର 2. A spring of nectar.

ସୁଧାଝରି—ଦେ. ବି—୧ । ସୁଧା ପାତ୍ର (ଦେଖ)—1. Sudhāpātra Sudhā jhari (See) (ଜ—ଚନ୍ଦ୍ରରୁ ଚ୍ୟୁତ ସୁଧାଝରି ଚରଣ୍ଡୁ ଫିଡର ମୁଖେ ଭରି—ଜବହର୍ଷ କଲୋଗ ଚମ୍ପୁ ଠ ଗୀତ ।)

ସୁଧାତୁ—ସଂ. ବି—ସ୍ୱର୍ଣ୍ଣ (ହି. ଶ)—Sudhātu Gold.

ସୁଧାତୁଦକ୍ଷିଣ—ସଂ. ବିଣ (ବହୁବ୍ରୀହି)—ଯେଉଁ ବ୍ୟକ୍ତି ଯଜ୍ଞାଦିରେ ସ୍ୱର୍ଣ୍ଣ Sudhātudakshiṇa ଦକ୍ଷିଣା ଦିଅନ୍ତି—(a person) Bestowing gold as Dakshiṇā in vedic sacrifice.

ସୁଧା ଦୀଧିତି—ସଂ. ବି (ବହୁବ୍ରୀହି)—ସୁଧାଂଶୁ; ଚନ୍ଦ୍ର—Sudhā didhiti The moon.

ସୁଧା ଧବଳ – ସଂ. ବିଣ—୧ । ଚୂନ ବା ଚନ୍ଦ୍ରକିରଣ ପରି ଧଳା—Sudhā dhabaḷa 1. White as lime or moonlight. ୨ । ଚୂନ ବୋଳା ବା ଧଉଳା ହୋଇଥିବା—2. White washed.

ସୁଧା ଧବଳିତ(ଧୌତ)—ସଂ.ବିଣ (୩ୟା ତତ୍)—ଚୂନ ଲିପା ହେବାରୁ Sudhā dhabaḷita(dhauta) ଧଳା ହୋଇଥିବା—White washed.

ସୁଧାଧାର—ସଂ. ବି (୬ଷ୍ଠୀ ତତ୍, ସୁଧା+ଆଧାର=ସ୍ଥାନ, ଅଥବା Sudhādhāra ସୁଧା+ଆ+ଧୃ ଧାତୁ=ଧରିବା+କର୍ତ୍ତୃ ଅ)—୧ । ଅମୃତ ପାତ୍ର—1. A vessel of nectar. ୨ । ଚନ୍ଦ୍ର—2. The moon.

ସୁଧା ଧାର—ସଂ. ବି (୬ଷ୍ଠୀ ତତ୍)—ଅମୃତର ଧାର—A flow of Sudhā dhārā nectar. [ଜ—ସୁଧାରସ ସୁଧାଧାର ଧାରପାନ ନବରଧା—ଶୃଙ୍ଖଳା ।]

ସୁଧା ନିଧି—ସଂ. ବି (୬ଷ୍ଠୀ ତତ୍; ସୁଧା+ନିଧି=ସ୍ଥାନ)—୧ । ଚନ୍ଦ୍ର Sudhānidhi (ଶବ୍ଦରତ୍ନାବଳୀ)—1. The moon. ୨ । ସମୁଦ୍ର (ହି. ଶ)—2. The ocean.

ସୁଧାପୟଃ—ସଂ. ବି ( ୬ଷ୍ଠୀ ତତ୍; ସୁଧାପୟସ୍; ୧ମା ୧ବ )—Sudhāpayaḥ ସିଜୁକ୍ଷୀର ( ଶବ୍ଦକଳ୍ପଦ୍ରୁମ )—The juice of 'Sijhu' tree.

ସୁଧା ପାଣି— ସଂ. ବି (ସୁଧା+ପାଣି=ହସ୍ତ; ବହୁବ୍ରୀହି)—ଧନ୍ୱନ୍ତରି—Sudhā pāṇi The Divine Physician.

ସୁଧା ପାତ୍ର - ସଂ. ବି—ଅମୃତ ରହିବା ପାତ୍ର—Sudhā pātra A receptacle for nectar.

ସୁଧା ପାନ – ସଂ. ବି ( ୬ଷ୍ଠୀ ତତ୍ )—ଅମୃତ ପିଇବା—Sudhā pāna Drinking of the nectar.

ସୁଧା ପାଷାଣ—ସଂ. ବି (ମ. ପ. ଲୋ)—ଫୁଲଖଡ଼ି; ଚକ୍‌ଖଡ଼ି—Sudhā pāshāṇa Chalk.

ସୁଧାବର୍ଷୀ—ସଂ. ବିଣ (ସୁଧା+ବୃଷ୍ ଧାତୁ=ବର୍ଷିବା+କର୍ତ୍ତୃ ଇନ୍; Sudhābarshī ସୁଧାବର୍ଷିନ୍ ଶବ୍ଦର ୧ମା ୧ବ)—( ସୁଧାବର୍ଷିଣୀ – ସ୍ତ୍ରୀ ) ଯେ ସୁଧା ବର୍ଷଣ କରେ—Raining nectar. ସଂ. ବି—୧ । ବ୍ରହ୍ମା (ହି. ଶ.) 1. Brahmā. ୨ । ଏକ ବୁଦ୍ଧଙ୍କ ନାମ (ହି. ଶ )—2. Name of a Buddhist saint. ୩ । ଚନ୍ଦ୍ର; ସୁଧାକର—3. The moon.

ସୁଧାବାସ—ସଂ. ବି—୧ । (ଷଷ୍ଠୀ ତତ୍; ସୁଧା=ଅମୃତ+ଆବାସ= Sudhābāsa ସ୍ଥାନ)—ଚନ୍ଦ୍ର—The moon. ୨ । ସୁଧାବାସା (ଦେଖ )—2. Sudhābāsā (See) ୩ । ଚୂର୍ଣ୍ଣମୟ ଗୃହ—3. white wasted house.

ସୁଧାବାସା—ସଂ. ବି—ତ୍ରପୁଷୀ (ରାଜନିର୍ଘଣ୍ଟ); କାକୁଡ଼ି—Sudhābāsā Cucumber.

ସୁଧା ଭାଣ୍ଡ—ସଂ. ବି (ଷଷ୍ଠୀ ତତ୍)—ସୁଧାପାତ୍ର (ଦେଖ) Sudhābhāṇḍa Sudhāpātra (See)

ସୁଧାଭିତ୍ତି—ସଂ. ବି (ମ. ପ. ଲୋ )—ଚୂନ ସଫେଦ କରା ଯାଇଥିବା Sudhā bhitti କାନ୍ଥ (ହି.ଶ)—Whitewashed wall.

ସୁଧାଭୁକ୍(ଭୋଜୀ)—ସଂ. ବି ( ସୁଧା+ଭୁଜ୍ ଧାତୁ+କର୍ତ୍ତୃ କ୍ୱିପ୍; ସୁଧା Sudhābhuk(bhojī) ଭୁଜ୍; ସୁଧା+ଭୁଜ ଧାତୁ+କର୍ତ୍ତୃ ଇନ୍ ଶବ୍ଦ ୧ମା ୧ବ )—ଦେବତା—Deity.

ସୁଧାଭୃତ—ସଂ. ବି (ସୁଧା+ଭୃ ଧାତୁ+ଅଧି ତ)—୧ । ଚନ୍ଦ୍ର (ମେଦିନୀ) Sudhābhṛuti 1. The moon. ୨ । ଯଜ୍ଞ (ମେଦିନୀ) (ସୁଧାଭୃ—ଅନ୍ୟରୂପ) 2. Vedic sacrifice.

ସୁଧାମ—ସଂ. ବି — ୧ । ଉତ୍ତମ ଧାମ—1. A good abode. Sudhama ୨। ଚନ୍ଦ୍ରମା (ହି.ଶ)—2.The moon. ୩। ପ୍ରାଚୀନ ଋଷିବିଶେଷ—3 Name of an ancient saint.

ସୁଧା ମଧୁର—ସଂ. ବିଣ—ଅମୃତ ପରି ମିଠା—Sudhā madhura Sweet as nectar.

ସୁଧାମୟ—ସଂ. ବିଣ (ସୁଧା+ପ୍ରାଚୁର୍ଯ୍ୟାର୍ଥେ ମୟ)—୧। ଅତି ମଧୁର—Sudhāmaya 1. Very sweet. ୨ । ଅମୃତପୂର୍ଣ୍ଣ—[ସୁଧାମୟୀ—ସ୍ତ୍ରୀ. ବିଣ] 2. Full of nectar. ୩ । ଚୂର୍ଣ୍ଣମୟ—3. Full of quick-line. ସଂ. ବି—ଭୂପାଳଭବନ; ରାଜଭବନ (ଶବ୍ଦରତ୍ନାବଳୀ)—A palace.

ସୁଧା ମୟୂଖ—ସଂ. ବି (ବହୁବ୍ରୀହି)—ସୁଧାକର; ଚନ୍ଦ୍ର—Sudhā mayūkha The moon.

[ଉ—ଭଲ ମାନୁଷ ଦେଖ, ମୁଖ ସୁଧାମୟୂଖ । କବିସୂର୍ଯ୍ୟ ବଳଦେବ ଚମ୍ପୂ ଗୀତ ।]

ସୁଧା ମୁଖ—ସଂ. ବି (ମଧ୍ୟପଦଲୋପୀ କର୍ମଧାରୟ)—ସୁଧାପୂର୍ଣ୍ଣ ମୁଖ; ସୁନ୍ଦର
Sudhā mukha ମୁଖ—A face as sweet as nectar. ସଂ. ବିଣ. ପୁଂ (ବହୁବ୍ରୀହି)—ଯାହାର ମୁଖ
[ସୁଧାମୁଖୀ—ସ୍ତ୍ରୀ] ଅମୃତ ପରି ମନୋରମ—Having a beautiful face; sweet-faced.

ସୁଧାମୁଖୀ—ସଂ. ବିଣ. ସ୍ତ୍ରୀ—'ସୁଧାମୁଖ'ର ସ୍ତ୍ରୀଲିଙ୍ଗ—Feminine of
Sudhāmukhī 'Sudhā mukha'. ସଂ. ବି. ସ୍ତ୍ରୀ—ଅପ୍ସରା-
सुधामुखी সুধামুখী ବିଶେଷ (ହେ. ଶ)—Name of a heavenly nymph. ଦେ. ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—A name given to females.

ସୁଧାମୂଳୀ—ସଂ. ବି—ସାଲମ୍ ମିଶ୍ରି (ଦେଖ)
Sudhāmulī Sālam miśrī (See)

ସୁଧା ମୋଦକ—ସଂ. ବି—ଯବାସ ଶର୍କରା (ରାଜ ନିର୍ଘଣ୍ଟ); ଦୁରାଲଭାରୁ
Sudhā modaka ପ୍ରସ୍ତୁତ ଗୁଡ଼—Molasses prepared from Fagonia Arabica.

ସୁଧାଯୋନି—ସଂ. ବି (ବହୁବ୍ରୀହି)—ଚନ୍ଦ୍ରମା (ହେ. ଶ)—
Sudhājoni The moon.

ସୁଧାର—ଦେ. ବିଣ (ସଂ. ସୁଧାର)—ଶୁଧାର ( ଦେଖ )
Sudhāra Śudhāra ( See )
सुधार ଦେ. ବି—ସଂସ୍କାର; ସଂଶୋଧନ; ସୁଧାରିବା କର୍ମ—
সুধার Reform; reformation.
(ସୁଧାରିଆ—ଅନ୍ୟ. ବିଣ. ରୂପ) [ଉ—ସୁଧାର କାନୁନ କମିଟି ।]
(ସୁଧାରୀ, ସୁଧାରେଇ—ସ୍ତ୍ରୀ. ବିଣ)

ସୁଧା ରଶ୍ମି—ସଂ. ବି (ବହୁବ୍ରୀହି)—ଚନ୍ଦ୍ର (ହେ. ଶ)—
Sudhā raśmi The moon.

ସୁଧାରା—ସଂ. ବି—ଉତ୍ତମ ରୀତି—Good method. ଦେ. ବିଣ—
Sudhārā ୧ । ଉତ୍ତମ ବ୍ୟକ୍ତି—1. Good person. ୨ ।
सुधारा সুধারা ସରଳ (ବ୍ୟକ୍ତି)—2. Frank (person).

ସୁଧାରିଆ—ଦେ. ବିଣ. ( ପୁଂ ଓ ସ୍ତ୍ରୀ )—୧ । ଉତ୍ତମ (ବ୍ୟକ୍ତି)—
Sudhāriā 1. Good (peraon). ୨ । ଶାନ୍ତଶିଷ୍ଟ (ବ୍ୟକ୍ତି)
सुधार সুধারা —2. Calm and quiet (person).

ସୁଧାରିବା—ଦେ. କ୍ରି—ଶୁଧୁରାଇବା ( ଦେଖ )—Śudhurāibā
Sudhāribā ( See ) [ଉ—ମୁଁ ଆପଣାକୁ ସୁଧାର ପାରନ୍ତି, सुधवान କେହି କହି ଭୟ କରେ ନାହିଁ । ଗାଲବଣ୍ଠ ପିଲଙ୍କ
সুধারনা ରମାୟଣ ।]

ସୁଧା ଲେପ—ଦେ. ବି (ଶିଳ୍ପ ଶାସ୍ତ୍ର)—୧ । ଲାଖ, ଦେବଦାରୁ ଗଛର
Sudhā lepa ନିର୍ଯ୍ୟାସ (ଝୁଣା), ଗୁଗ୍ଗୁଳ, ଗୃହଧୂମ (ଅଳନ୍ଧୁ)
सुधालेप ମଦନ ଫଳର (ବା କଷା ବଇଁଥର), ବେଲର ଓ କେନ୍ଦୁର
সুধালেপ ଅଠା ମିଶ୍ରିତ ଏକ ପ୍ରକାର ଲେପ—1. A kind of mixture of made of lac, resin, soot and gum of wood apple, bael and kendu fruits laid on stones. ୨। ମଞ୍ଜିଷ୍ଠାର ଓ ହରଡ଼ାର ସଦ୍ୟ ଅଠା ମିଶ୍ରିତ ଲେପ—2. A layer made of gums of myrobalam and Indian madder [ଉ—ଏହା କୋଠାର ଓ ଦେଉଳର କାନ୍ଥରେ ଲିପିଲେ ତାହା ବହୁକାଳ ସ୍ଥାୟୀ ହୁଏ ।] ୩। ଘରେ ଚୂନ ଲିପିବା—3. Plastering the walls of a house with slaked lime. ୪ । କାନ୍ଥରେ କଲିଚୂନ ଦ୍ୱାରା ସଫେଦ କରିବା— 4. The white washing of het walls of a house.

ସୁଧାଲୋକ—ପ୍ରାଦେ. (ଲରିଅ) ବି (ଭୁଲ. ଏହି ଅର୍ଥରେ ହେ. ସୁଧାର
Sudhāloka ଅଦମୀ)—ସାଦାସିଧା ଲୋକ—A simple guileless person.

ସୁଧା ଶାଳୀ—ଦେ. ବି. ସ୍ତ୍ରୀ—ଅମୃତମୟୀ ସ୍ତ୍ରୀ; ଅମୃତ ଭାଷିଣୀ ସ୍ତ୍ରୀ—
Sudhā śāḻī A woman as sweet as nectar; sweet-speaking woman. [ଉ—ଯହୁଁ ବୃଷଭାନୁ ବାଳୀ, ଅଗେ କହେ ସୁଧାଶାଳୀ, ଜଣାଇ କୃଷ୍ଣ ବେଦନା ଅତି ବିନୋଇ । ପ୍ରାଚୀ. ରସବାରିଧି ।]

ସୁଧା ସମୁଦ୍ର—ସଂ, ବି—ସୁଧା ସିନ୍ଧୁ ( ଦେଖ )
Sudhā samudra Sudhā sindhu ( See )

ସୁଧା ସିକ୍ତ—ସଂ. ବିଣ (ତୃତୀୟା ତତ୍)—ଅମୃତ ଛିଞ୍ଚା ହୋଇଥିବା—
Sudhā sikta Sprinkled with nectar.

ସୁଧା ସିତ—ସଂ. ବି—ସୁଧା ଧବଳ (ଦେଖ)
Sudhā sita Sudhā dhabaḻa ( See )

ସୁଧା ସିନ୍ଧୁ—ସଂ. ବି (ମ. ପ. ଲୋ. କର୍ମଧାରୟ; ସୁଧାପୂର୍ଣ୍ଣ ସିନ୍ଧୁ )—
Sudhā sindhu ଅମୃତ ସମୁଦ୍ର; ହିନ୍ଦୁ ପୁରାଣୋକ୍ତ ସପ୍ତସାଗରରୁ ଅନ୍ୟତମ—A sea of nectar.

ସୁଧାସୂ—ସଂ. ବି (ସୁଧା+ସୁ ଧାତୁ+କର୍ତ୍ତି କ୍ୱିପ୍)—ସୁଧା ଭୃତି ( ଦେଖ )
Sudhāsū Sudhā bhṛuti ( See )

ସୁଧା ସୂତି—ସଂ. ବି (ସୁଧା+ସୂ ଧାତୁ+କର୍ତ୍ତି. କ୍ତି)—୧ । ଚନ୍ଦ୍ର
Sudhā sūti (ଶବ୍ଦ ରତ୍ନାବଳୀ)—1. Moon. ୨ । ପଦ୍ମ (ଶବ୍ଦ ରତ୍ନାବଳୀ)—2. Lotus. ୩ । ଯଜ୍ଞ—3. Vedic sacrifice.

ସୁଧାସ୍ପର୍ଦ୍ଧୀ—ସଂ. ବିଣ ପୁଂ (ସୁଧା+ସ୍ପର୍ଧ ଧାତୁ+କର୍ତ୍ତି. ଇନ୍; ୧ମା
Sudhāsparddhī ୧ବ; ଉପପଦ ତତ୍ପୁରୁଷ)—ଅମୃତତୁଲ୍ୟ
[ସୁଧାସ୍ପର୍ଦ୍ଧିନୀ—ସ୍ତ୍ରୀ] [ଯଥା—ଭାଷଣ, ବଚନ, କଥା)—
Comparable to nectar; defying nectar in sweetness.

ସୁଧାସ୍ରବା—ସଂ. ବିଣ ( ସୁଧାସ୍ରବତ୍ ଶବ୍ଦ ୧ମା., ୧ବ )—୧ । ଯହିଁରୁ
Sudhāsrabā ସୁଧା ଝରୁଥାଏ—1. From which nectar oozes. ୨ । ସୁଧାବର୍ଷୀ ( ଦେଖ )—2. Sudhā barshī (See) ସଂ. ବି—୧ । ପ୍ରତିଜିହ୍ୱା; ଘଣ୍ଟିକା

[ବି କାଣ୍ଡଶେଷ]—1. The soft palate; epiglottis. ୨ । ରୁଦନ୍ତୀଗୁଲ୍ମ—[ଶବ୍ଦକଳ୍ପଦ୍ରୁମ] (ଦେଖ)—2 Rudanti gulma (See)

ସୁଧାସ୍ରବା—ସଂ. ବି [ ବୈଦ୍ୟକ ]—ରୁଦନ୍ତୀ ଗୁଲ୍ମ ( ଦେଖ )—
Sudhāsrabī Rudanti gulma (See)

ସୁଧା ହର(ହୃତ୍)—ସଂ. ବି [ସୁଧା+ହୃ ଧାତୁ+କର୍ତ୍ତି ଅ; କର୍ତ୍ତି କ୍ୱିପ୍]—
Sudhā hara(hrut) ଗରୁଡ; ପକ୍ଷିରାଜ (ଶବ୍ଦରତ୍ନାବଳୀ)—Garuda, the king of birds.

ସୁଧି—ପ୍ରାଦେ [ଲଉଅ] ବି—ସିଦ୍ଧି—
Sudhi Siddhi; success.

ସୁଧିତ – ସଂ, ବିଣ—୧ । ସୁବ୍ୟବସ୍ଥିତ [ହ. ଶ]—1. Well disposed or arranged. ୨ । ଅମୃତ ସଦୃଶ [ହ. ଶ]—2. Similar to nectar.
Sudhita

ସୁଧିତି—ସଂ. ବି [ସୁ+ଧା ଧାତୁ=ଧାରଣ କରିବା+କର୍ମ ତି ]—
Sudhiti ୧ । ଅସ୍ତ୍ରବିଶେଷ, କୁଠାର—1. An axe. ୨ । ସ୍ୱଧିତି [ ବାଚସ୍ପତ୍ୟ ] [ ଦେଖ ]—2. Swadhiti (See)

ସୁଧୀ—ସଂ. ବି [ସୁ+ଧୀ=ବୁଦ୍ଧି ଯାହାର; ବହୁବ୍ରୀହି]— ୧ । [ ପୁଂ ଓ ସ୍ତ୍ରୀ] ପଣ୍ଡିତ [ଅମର]—1. A learned man.
Sudhi ୨ । [କର୍ମଧା]—ବିଚକ୍ଷଣ ବୁଦ୍ଧି—2. Intelligence. [ଦ୍ୱିର୍ଭା—ବହୁବ୍ରୀହି ବଶ] ବିଣ [ପୁଂ ଓ ସ୍ତ୍ରୀ]—୧ । ବୁଦ୍ଧିମାନ୍; ବିଚକ୍ଷଣ; ଚତୁର—1. Intelligent. ୨ । ଧାର୍ମିକ—2. Pious.

ସୁଧୀର—ସଂ. ବିଣ. ପୁଂ [ସୁ+ଧୀର]—୧ । ଅତି ଧୀର; ଅତ୍ୟନ୍ତ ନମ୍ର—
Sudhira 1. Very mild or meek. ୨ । ସୁଶୀଳ—
[ସୁଧୀରା—ସ୍ତ୍ରୀ] 2. Of good conduct. ୩ । ଅତି
[ ସୁଧୀରତା—ବି ] ଧୈର୍ଯ୍ୟଶୀଳ—3. Very patient.
सुधीरता **सुधीरता** ଦେ. ବି—ଅତି ଧୀରତା; ସୁଶୀଳତା—
Gentleness. [ଉ—ପଯ୍ୟୋଧି ଭୂଲେ ସେ ଗମ୍ଭୀର ... ର କନକ ଭୂଧର – ଜଗନ୍ନାଥ ଭାଗବତ ।]

ସୁଧୁ—ଦେ. ଅ [ବଙ୍ଗଳା ଠୁ ଅନୁକୃତ. ସଂ. ଶୁଦ୍ଧ]—୧ । ପୂର୍ଣ୍ଣରୂପେ—
Sudhu 1. Completely; totally. ୨ । କେବଳ—
सुधु **सुध** 2. Only; merely.

ସୁଧୁରା(ରେ)ଇବା—ଦେ. କ୍ରି—ଶୁଧୁରାଇବା [ଦେଖ]—
Sudhurā(re)ibā Sudhurāibā (See)

ସୁଧୁରଣା—ଦେ. ବି—ଶୁଧୁରଣା [ଦେଖ]
Sudhurāṇa Sudhurāṇa (See)

ସୁଧୁରିବା—ଦେ. କ୍ରି—ଶୁଧୁରିବା [ଦେଖ]—Sudhuribā (See)
Sudhuribā [ ଉ—ଏଣିକି କହିବା ଭଲ ସୁଧୁରିଯାଉ—ଫକୀରମୋହନ ଗଳ୍ପସ୍ୱଳ୍ପ ।]

ସୁଧୂପକ—ସଂ. ବି—ଶ୍ରୀବେଷ୍ଟ [ହ. ଶ] [ଦେଖ]
Sudhūpaka Sribeshta (See)

ସୁଧୂମ୍ୟ—ସଂ. ବି—ସ୍ୱାଦୁ ନାମକ ଗନ୍ଧଦ୍ରବ୍ୟ [ଶବ୍ଦକଳ୍ପଦ୍ରୁମ]—
Sudhūmya Name of a scent.

ସୁଧୋଦ୍ଭବ—ସଂ. ବି [ ସୁଧା+ଉଦ୍ଭବ]—ଧନ୍ୱନ୍ତରି [ବି କାଣ୍ଡଶେଷ ]—
Sudhodbhaba The Divine Physician. [ଦ୍ର—ସମୁଦ୍ର ମନ୍ଥନ କାଳରେ ଧନ୍ୱନ୍ତରି ସୁଧା ଭାଣ୍ଡ ଧାରଣ କରି ସମୁଦ୍ରରୁ ବାହାର ଥିଲେ ।]

ସୁଧୋଦ୍ଭବା—ସଂ. ବି—ହରୀତକୀ [ବି କାଣ୍ଡଶେଷ]—
Sudhodbhabā Myrobalan.

ସୁଧ୍ୟ (ଇତ୍ୟାଦି)—ଗ୍ରା ବି. ଓ ବିଣ [ସଂ. ଶୁଦ୍ଧ]—ଶୁଧ୍ୟ ଇତ୍ୟାଦି [ଦେଖ]
Sudhya (etc) Sudhya etc (See)

ସୁନ୍‌ତାନ୍(ନି)—ବୈଦେ. ବି—ସୁଲ୍‌ତାନ [ଦେଖ]
Sun-tān(ni) Sul-tān (See)

ସୁନ୍‌ସାନ୍—ଦେ. ବିଣ [ସଂ, ଶୂନ୍ୟ+ସ୍ଥାନ]-୧ । ଲୋକଶୂନ୍ୟ (ସ୍ଥାନ)—
Sun-sān 1. Lonely. ୨ । କୋଳାହଳରହିତ—
शून्य,चुपचाप **सुनसान** 2. Calm and quiet. ୩ । ମୌନାବଲମ୍ବୀ—3. Silent.

ସୁନ୍‌ସୁନିଆ(ଆଁ)—ଦେ. ବି—ଶୁନ୍‌ଶୁନିଆ [ଦେଖ]
Sun-suniā(ān) Sunisuniā (See)

ସୁନ୍‌ହଟ—ଦେ, ବି [ନାମ]—ହରିବଂଶ ଓ ଭାଗବତରେ ବର୍ଣ୍ଣିତ ପ୍ରାଚୀନ
Sun-hata ଶୋଣିତପୁର ବା ଶୋଣିତପୁର—
सुनहट **सुनहट** Ancient Sonitapura described in Haribamsa and Bhāgabata, near modern Balasore. (ଉ—ଏଠାରେ ଭୂପାଶେଶ୍ୱର ଭଗ୍ନାବଶେଷ ଅଦ୍ୟାବଧି ଅଛି । କବିବର ଦ୍ୱାରକା ନାଥଙ୍କ ପ୍ରସିଦ୍ଧ 'ଉଷା' କାବ୍ୟ ଏହି କିମ୍ବଦନ୍ତୀ ଉପରେ ପ୍ରତିଷ୍ଠିତ । ଏହା ବାଲେଶ୍ୱର ନଗରର ଅଦୂରରେ ଅବସ୍ଥିତ । ]

ସୁନ—ଦେ. ବି—୧ । ( ସଂ, ଶୂନ୍ୟ ) ଶୁନ ( ଦେଖ )—1. Suna
Suna (See) ୨ । ( ସଂ. ସୂନୁ ) ପୁତ୍ର—2. Son. [ ଉ—
सुनु ଏତେ ବୋଲି କୋଠିକ କାଳଙ୍କ ଇନ୍ଦ୍ରସୁନ—ଶ୍ରୀଗାମ୍ଭୀ
**सुन** ନୃସିଂହପୁରାଣ । ]

ସୁନଜର—ଦେ. ବି ( ସଂ. ସୁ+ଫା. ନଜର୍ )—୧ । ସୁଦୃଷ୍ଟି; ଅନୁଗ୍ରହ
Sunajara ଦୃଷ୍ଟି—1. Favourable look. ୨ । ଦୟାପୂର୍ଣ୍ଣ
सुनजर **सुनजर** ଦୃଷ୍ଟି—2. Kind look.

ସୁନ(ନ୍ନ)ତ୍—ବୈଦେ. ବି ( ଆ. ସୁନ୍ନତ୍ )—୧ । ମୁସଲମାନ୍ ବାଳକ-
Suna(nna)t ମାନଙ୍କର ଲିଙ୍ଗାଗ୍ରଚର୍ମଚ୍ଛେଦରୂପ ସଂସ୍କାର—
सुनत **सुन्नत** 1. The ceremony of removing the foreskin of Muslim boys. [ ଦ୍ର—ବ୍ରାହ୍ମଣ ବାଳକଙ୍କ ଉପନୟନ ଭଳି ଅତି ସଂସ୍କାର ପର୍ବ ମୁସଲମାନ୍ ବାଳକଙ୍କ ଲିଙ୍ଗାଗ୍ରଭାଗକୁ ଘୋଡାଇଥିବା ଚର୍ମକୁ ଛେଦ ସାହାଯ୍ୟରେ କାଟି ଦେବା ଗୋଟିଏ ସଂସ୍କାର । ସ୍ୱାସ୍ଥ୍ୟ ଦୃଷ୍ଟିରେ ଦେଖିବାକୁ ଗଲେ ଏହି ଚର୍ମାବରଣ ମଧ୍ୟରେ ମଇଳା ଜମି ଯାଇ ଦୁର୍ଗନ୍ଧ ଅତି ନାନା ରୋଗ ସୃଷ୍ଟି କରେ ଏବଂ ବାଲ୍ୟକାଳରେ ସୁନତ୍ କରିବାଦ୍ୱାରା ସେ ଆଶଙ୍କା ଦୂର ହୁଏ । ] ୨ । ( ଆ. ସୁନ୍ନତ୍ ) ମୁସଲମାନମାନଙ୍କ ଧର୍ମପ୍ରବର୍ତ୍ତକ ଇଶ୍ୱରପ୍ରେରିତ ହଜରତ୍ ମହମ୍ମଦଙ୍କ ମୁଖରୁ ଶୁଣିଥିବା କଥା ତାଙ୍କୁ ଦେଖିଥିବା କାର୍ଯ୍ୟଦ୍ୱାରା ପ୍ରକାଶ

କର ଯାଇଥିବା କମ୍ବଦନ୍ତୀମୂଳକ ଅଗୂର—2. Traditions handed down from the Prophet Mohammad by any person who saw or heard him. [ ଦ୍ର—ଏହି କମ୍ବଦନ୍ତୀର ଅନ୍ୟ ନାମ 'ହାଦିସ୍' ଓ ସୁନ୍ନୀମାନେ ଏହି କମ୍ବଦନ୍ତୀଦ୍ୱାରା ପରିଚାଳିତ ହୁଅନ୍ତି ।

ମୁସଲମାନ୍‌ମାନଙ୍କ ଲିଙ୍ଗାଗ୍ର ଚ୍ଛେଦନ ବିଧି ଗୋଟିଏ ସୁନ୍ନିତ୍ ବା ମହମ୍ମଦଙ୍କ ପ୍ରକାଶିତ କମ୍ବଦନ୍ତୀମୂଳକ ଅଗୂର ଅଟେ । ମହମ୍ମଦ ଜନ୍ମ ହେଲାବେଳେ ତାଙ୍କର ଲିଙ୍ଗାଗ୍ରରେ ଆବରକଚର୍ମ ନ ଥିଲା । ଏଥିରୁ ମୁସଲମାନ୍‌ମାନେ ମନେ କରନ୍ତି ଯେ, ମାତୃଗର୍ଭରୁ ତାଙ୍କ ଲିଙ୍ଗାଗ୍ର ଚର୍ମ ଛେଦିତ ହୋଇ-ଥିଲା । ଏହି କମ୍ବଦନ୍ତୀକୁ ଅବଲମ୍ବନ କରି ମୁସଲମାନ୍ ବାଳକମାନଙ୍କର ସୁନତ୍ କରାଯାଏ । ]

ସୁନ(ନ୍ନ)ତି—ଦେ. ବିଣ—୧ । ସୁନତ୍ ସମ୍ବନ୍ଧୀୟ—1. Relating Suna(nna)ti to Sunat. ୨ । ଯେଉଁ ବ୍ୟକ୍ତିର ସୁନତ୍ सुनति सुनति ସଂସ୍କାର ହୋଇଅଛି—2. ( a person ) (ସୁନତିଆ ଅନ୍ୟ ରୂପ) Who has already undergone the ceremony of Sunat. ସଂ. ବି ( ସୁ =ଉତ୍ତମ+ନତି=ନମ୍ରତା )—ଅତ୍ୟନ୍ତ ନମ୍ରତା—Great humility.

ସୁନନ୍ଦ—ସଂ. ବିଣ. ପୁଂ ( ସୁ+ନନ୍ଦ୍ ଧାତୁ. ଣିଜନ୍ତ=ନନ୍ଦି ଧାତୁ+ Sunanda କର୍ତ୍ତ୍ରି, ଅ )—୧ । ଆନନ୍ଦଜନକ—1. Pleasant. (ସୁନନ୍ଦା—ସ୍ତ୍ରୀ) ୨ । ସୁନ୍ଦର ଓ ଆନନ୍ଦଦାୟକ—2. Nice and pleasing. ସଂ. ବି—୧ । (ନାମ) ବଳଭଦ୍ରଙ୍କ ମୁଷଳ—1. The lethal weapon of Balabhadra. ୨ । ( ନାମ ) ଶ୍ରୀକୃଷ୍ଣଙ୍କ ପାର୍ଶ୍ୱଚର ଗୋପବିଶେଷ - 2. Name of a companion of Srikrushna. ୩ । ଦ୍ୱାଦଶବିଧ ରାଜଗୃହ ମଧ୍ୟରୁ ଏକତମ—3. One of the twelve classes of royal rooms for a king's residence. [ ଦ୍ର—ଏହାର ଦୈର୍ଘ୍ୟ ସ୍ୱୟଂ ରାଜାଙ୍କ ହାତର ମାପରେ ୫୧ ହାତ ଓ ପ୍ରସ୍ଥ ୪୦ ହାତ କରାଯାଏ । ଏଥିର ଦ୍ୱାର ୨୦ଟି । ଏ ଗୃହ ରକ୍ତବର୍ଣ୍ଣ ଚର୍ଚ୍ଚିତ ଓ ରକ୍ତପଟ୍ଟବସ୍ତ୍ର ମଣ୍ଡିତ; ଏଥିର ଅଧିଦେବତା ମଙ୍ଗଳ । ଏପରି ଗୃହରେ ରାଜା ବାସ କଲେ ସାର୍ଘାୟୁ ହୁଅନ୍ତି । ଏ ଗୃହର ଅନ୍ୟ ନାମ 'ସୁନ୍ଦର'—ଯୁକ୍ତି-କଳ୍ପତରୁ । ]

ସୁନନ୍ଦନ—ସଂ. ବି (କର୍ମଧା )—୧ । ସୁପୁତ୍ର (ଦେଖ)—1. Suputra Sunandana ( See ) ୨ । ଶ୍ରୀକୃଷ୍ଣଙ୍କ ପୁତ୍ରବିଶେଷ—2. Name of a son of Srikrushna.

ସୁନନ୍ଦା—ସଂ. ବିଣ. ସ୍ତ୍ରୀ. ( ସୁନନ୍ଦ+ଆ )—ସୁନନ୍ଦର ସ୍ତ୍ରୀଲିଙ୍ଗ—Sunandā Feminine of Sunanda. ସଂ. ବି. ସ୍ତ୍ରୀ—୧ । ଉମା; ପାର୍ବତୀ ( ମେଦିନୀ )—1. Pārbati. ୨ । ଗୋରୋଚନା (ମେଦିନୀ)—2. A yellow pigment derived from dead cows. ୩ । ନାରୀ (ଶବ୍ଦ)—3. Woman. ୪ । ଉମାଙ୍କର ଜଣେ ସଖୀଙ୍କ ନାମ ( ଶବ୍ଦମାଳା )—4. Name of a companion of Pārbatī. ୫ । ଅର୍କପତ୍ରୀ ଗୁଳ୍ମ ( ହେମମାଳା ); ଇଶଲାଙ୍ଗଲଆ ବା ଲାଙ୍ଗଲଆ ଗୁଳ୍ମ; କୁଆଁମଇଡା ? (ଜଗନ୍ନାଥ ହରେକୃଷ୍ଣ ମିଶ୍ରଙ୍କ ଦ୍ରବ୍ୟଗୁଣ )—5. A plant; Gloriosa Superba. ୬ । ( ନାମ ) ଇନ୍ଦୁମତୀଙ୍କ ସ୍ୱୟମ୍ବର କାଳରେ ତାଙ୍କ ସଙ୍ଗେ ରାଜସଭାକୁ ଯାଇଥିବା ସଖୀଙ୍କ ନାମ—6. Name of the maid servant who accompanied the princess Indumatī to the Swayambara gathering. ୭ । କୃଷ୍ଣଙ୍କର ଜଣେ ପତ୍ନୀ (ହି. ଶ)—7. Name of a wife of Srīkrushna. ୮ । ବାଲିଙ୍କ ମାତା ( ହି. ଶ )—8. Name of the mother of Bāli. ୯ । ଚେଦିରାଜ ସୁବାହୁଙ୍କ ଭଉଣୀ (ହି. ଶ)—9. Sister of king Subāhu. ୧୦ । ଭରତଙ୍କ ସ୍ତ୍ରୀ (ହି. ଶ)—10. Wife of Bharata. ୧୧ ଧଳା ଗାଈ ( ହି ଶ )—11. White cow. ଦେ. सुनन्दा सुनन्दा ବି—କୃଷ୍ଣଙ୍କର ଅଷ୍ଟ ପଟ୍ଟମହିଷୀଙ୍କ ମଧ୍ୟରୁ ଏକତମା—One of the eight principal queens of Srīkrushna. [ଦ୍ର—ମିତ୍ରବିନ୍ଦା ସୁନନ୍ଦା ଶବ୍ଦାବଳୀ—ପ୍ରାଚୀ. ରହସ୍ୟମଞ୍ଜରୀ । ]

ସୁନପୁର—ଗ୍ରା. ବି (ମାଦଳାପାଞ୍ଜି)—ସୋନପୁର (ଦେଖ) Sunapura Sonapura ( See )

ସୁନଫା—ସଂ. ବି—ଜ୍ୟୋତିଷୋକ୍ତ ଯୋଗବିଶେଷ—One of the Sunaphā astrological conjunctions of planets. [ ଦ୍ର—ରବି ଛଡ଼ା ଅନ୍ୟ କୌଣସି ଗ୍ରହ ଚନ୍ଦ୍ରର ଦ୍ୱିତୀୟରେ ରହିଲେ 'ସୁନଫା' ଓ ଦ୍ୱାଦଶରେ ରହିଲେ 'ଅନଫା' ଯୋଗ ହୁଏ । ଚନ୍ଦ୍ରର ଦ୍ୱିତୀୟ ଓ ଦ୍ୱାଦଶରେ ରବି ଭିନ୍ନ ଅନ୍ୟଗ୍ରହ ଥିଲେ 'ଦୁରୁଧୁରା' ଯୋଗ ହୁଏ । ଚନ୍ଦ୍ରର ଉଭୟ ପାର୍ଶ୍ୱରେ ଗ୍ରହ ନ ଥିଲେ 'କେମଦ୍ରୁମ' ଯୋଗ ହୁଏ । ଚନ୍ଦ୍ରର କେନ୍ଦ୍ରରେ ଗ୍ରହ ଯୁକ୍ତ ହେଲେ କେମଦ୍ରୁମ ଯୋଗ ହୁଏ ନାହିଁ । କେହି କେହି'ମାନଙ୍କ ମତରେ ଚନ୍ଦ୍ର ଥିବା ନବାଂଶର କେନ୍ଦ୍ରସ୍ଥ ନବାଂଶରେ ଗ୍ରହ ରହିଲେ କେମଦ୍ରୁମ ଯୋଗ ଭଙ୍ଗ ହୁଏ । ମାତ୍ର ଏହି ଯୁକ୍ତି ଠିକ୍ ନୁହେଁ—(ଶ୍ରୀ ବାଇବୋଲ ଜ୍ୟୋତିଷ ବିଶାରଦ) ।]

ସୁନୟ—ସଂ. ବି—ସୁନୀତି (ଦେଖ) Sunaya Sunīti (See)

ସୁନୟନ—ସଂ. ବି—୧ । (କର୍ମଧା) ସୁନ୍ଦର ଚକ୍ଷୁ—1. Beautiful Sunayana eye. ୨ । (ବହୁବ୍ରୀହି) ମୃଗ (ଶବ୍ଦଚନ୍ଦ୍ରିକା)—(ସୁନୟନା—ସ୍ତ୍ରୀ. ବିଣ) 2. Deer. ସଂ. ବିଣ. ପୁଂ (ବହୁବ୍ରୀହି)-ସୁନ୍ଦର ନୟନବିଶିଷ୍ଟ; ସୁଲୋଚନ—Having beautiful eyes.

ସୁନୟନା—ସଂ ବଣ. ସ୍ତ୍ରୀ (ସୁନୟନ+ଆ)—'ସୁନୟନ'ର ସ୍ତ୍ରୀଲିଙ୍ଗ;
Sunayanā ସ୍ତ୍ରୀଲିଙ୍ଗ—Feminine of 'Sunayana'.
ସଂ ବି. ସ୍ତ୍ରୀ—ନାରୀ (ସୁନ୍ଦର ନୟନ)—Woman.

ସୁନଶୁନିଆ (ଆଁ)—ଦେ° ବି—ସୁନିଶୁନିଆ (ଦେଖ)
Sunashuniā(an) Sunishuniā. (See)

ସୁନସ—ସଂ. ବଣ. ପୁଂ (ସୁ+ନାସା; ବହୁବ୍ରୀହି)—ସୁନ୍ଦର ନାସିକାବିଶିଷ୍ଟ
Sunasa (ବି. ଣ)—Having a fine nose.
(ସୁନସା—ସ୍ତ୍ରୀ)

ସୁନା—ଦେ° ବି (ସଂ. ସ୍ୱର୍ଣ୍ଣ)—୧ । ପ୍ରସିଦ୍ଧ ହଳଦିଆ ଧାତୁ; ସ୍ୱର୍ଣ୍ଣ—
Sunā 1. Gold. [ଦ୍ର—ବୈଦ୍ୟଶାସ୍ତ୍ର ଅନୁସାରେ ଏହା ମଧୁର-
ସଂ. ପର୍ଯ୍ୟାୟ—ସ୍ୱର୍ଣ୍ଣ, ସୁବର୍ଣ୍ଣ, କନକ, ହିରଣ୍ୟ, ହେମ, ହାଟକ, ତପନୀୟ, ଗାଙ୍ଗେୟ, କଳଧୌତ, କାଞ୍ଚନ, ଚାମୀକର, ଶାତକୁମ୍ଭ, କାର୍ତ୍ତସ୍ୱର, ଜମ୍ବୁନଦ, ଜାମ୍ବୁନଦ; ଜାତରୂପ, ମହାରଜତ ।
সোনা; सुना
सोना
ତିକ୍ତକଷାୟରସ, ମଧୁରବିପାକ, ଶୀତବୀର୍ଯ୍ୟ, ପିଚ୍ଛିଳ, ଗୁରୁପାକ, ପୁଷ୍ଟିକର, ମେଧାବର୍ଦ୍ଧକ, ବାକ୍ୟର ଶୁଦ୍ଧିକାରକ, ଉତ୍ସାହବର୍ଦ୍ଧକ, ଆୟୁ ଓ ସ୍ମୃତିବର୍ଦ୍ଧକ ଏବଂ ବିବିଧ ରୋଗର ଉପଶମକର । ଜାରିତସ୍ୱର୍ଣ୍ଣ ଓ ସ୍ୱର୍ଣ୍ଣ-ଘଟିତ ଔଷଧ ଓ ସ୍ୱର୍ଣ୍ଣଭସ୍ମ ଆୟୁର୍ବେଦରେ ଗୋଟିଏ ପ୍ରଧାନ ରସାୟନ ଅଟେ ।] ୨ । ସୁନାପରି ମୂଲ୍ୟବାନ୍ ବସ୍ତୁ—2. Anything as valuable as gold. ୩ । ଉତ୍ତମ ବାଳକ ବା ବାଳିକା—3. A good boy or girl. ୪ । ଶିଶୁ ଓ ପ୍ରଣୟିମାନଙ୍କ ପ୍ରତି ସ୍ନେହ ସମ୍ବୋଧନ—4. An endearing address to a child or one's sweetheart. (ଉ—ସତେ କି ହିଁ ଛୁଆଇଛ ଅମ୍ବର, ସୁନାପୁଅ ପରି । ଭକ୍ତ କବି ମଧୁସୂଦନ ।) ୫ । (ଶିଶୁରଞ୍ଜନ ଭାଷା) ପୁଂ ଶିଶୁର ଲିଙ୍ଗ; ଗୁଡ଼ି—5. (A term of the nursery) An euphemistic term used for the penis of a child. ୬ । (ସ୍ତ୍ରୀ) ସ୍ତ୍ରୀଙ୍କ ନାମ—6. A name given to females. ୭ । (ସ୍ତ୍ରୀ) ସ୍ୱର୍ଣ୍ଣମୟୀ ଓ ସୁନାମଣିର ଡାକ ନାମ—7. Name for calling 'Swarṇnamayī' and 'Sunāmaṇi'. ୮ । (ପୁଂ) ପୁରୁଷଙ୍କୁ ଦିଆଯିବା ନାମ—8. A name given to males.
ଦେ. ବଣ (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ)—୧ । ସ୍ୱର୍ଣ୍ଣନିର୍ମିତ—1. Made of gold. (ଯଥା—ସୁନା ମୁଦି ।) ୨ । ସୁନାପରି ବର୍ଣ୍ଣବିଶିଷ୍ଟ—2. Of golden colour. (ଉ—ସୁନାବେଙ୍ଗ; ସୁନାମୃଗ ।) ୩ । ଉତ୍ତମ; ସୁଶୀଳ (ବାଳକ ବା ବାଳିକା)—3. Good (child). (ଉ—ସୁନାପୁଅ; ସୁନାଝିଅ ।)

ସୁନା ଅସରପି(ଫି)—ଦେ° ବି (ସଂ ସ୍ୱର୍ଣ୍ଣ+ପା° ଅଶ୍ରଫୀ=ସ୍ୱର୍ଣ୍ଣମୁଦ୍ରା)—
Sunā asarapi(phi) ସୁନାର ମୋହର ବା ମୁଦ୍ରା—
মোহর सोना असरफी Gold coin.

ସୁନା(ନେ)ଇ—ଦେ. ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ ବିଶେଷ—
Sunā(ne)i A name given to females.
(କୁମେଇ—ଡ଼ାକନାଉ)

ସୁନାକର—ଦେ. ବି° ପୁଂ—ଲୋକଙ୍କ ନାମ—
Sunākara A name given to males.

ସୁନା କାକ(କେ)ରା(ରି)—ଦେ. ବି—ସ୍ତ୍ରୀମାନଙ୍କ ମସ୍ତକରେ କେଶ ଉପରେ
Sunā kāka(ke)rā(ri) ଲଗାଯିବା କାକର ପିଠା ବା ପତ୍ରଚନ୍ଦ୍ର ଆକୃତିବିଶିଷ୍ଟ ସ୍ୱର୍ଣ୍ଣଅଳଙ୍କାର-A circular bit of gold, 3 to 4 inches in diameter, used as an ornament for the hair. [ଦ୍ର—ଏହାକୁ ଅବସ୍ଥାପନ୍ନ ଦକ୍ଷିଣୀ ସ୍ତ୍ରୀମାନେ କେଶ ଉପରେ ଅଳଙ୍କାରସ୍ୱରୂପ ପିନ୍ଧନ୍ତି । ଏହାର କମ୍ପଦେଶରେ ହୁକ୍ ବା କିଳିକ ଲଗାଯାଇ ତାହାକୁ କେଶ ସଙ୍ଗେ ସଂଲଗ୍ନ କରାଯାଇ-ଥାଏ । ଏଥିର ବ୍ୟାସ ୩।୪ ଇଞ୍ଚ ପର୍ଯ୍ୟନ୍ତ ହୁଏ ।]

ସୁନା କୁକୁଡ଼ା ଉଡ଼ା(ଡ଼େ)ଇବା—ପ୍ରାଦେ° (ବାଙ୍କି) କି—ଯଶସ୍ୱୀ
Sunā kukurḍā urḍā(rḍe)ibā ହେବା; କୌଣସି କାର୍ଯ୍ୟରେ କୃତକାର୍ଯ୍ୟ ହେବା—To win laurels; to be successful in an undertaking or enterprise.

ସୁନା କୂପ—ଦେ. ବି—୧। ସୁନାର କୂଅ—1. A well of gold.
Sunā kūpa (ଉ—ଅବଳ ଦେଖ ସୁନାକୂଅ, ପାତାଳଭେଦୀ ଯେ ସୋନାକୁୟା ସ୍ୱରୂପ । ଯଶୋବନ୍ତ. ପ୍ରେମଭକ୍ତି. ବ୍ରହ୍ମଗୀତା ।)
सोनाकूप ୨ । ପୁରୀର ଜଗନ୍ନାଥ ଦେଉଳର ବେଢ଼ା ଭିତରେ ଶୀତଳା ଦେବୀଙ୍କ ଦେଉଳ ଆଗରେ ଥିବା କୂଅ—2. A well inside the compound of the Temple of Jagannath at Puri in front of the Sitalā Idol. [ଦ୍ର—ସ୍ନାନପୂର୍ଣ୍ଣିମା ଦିନ ଦେବବିଗ୍ରହମାନଙ୍କୁ ସେହି କୂପର ଜଳରେ ସ୍ନାନ କରାନ୍ତି, ବର୍ଷସାକ ସେ କୂଅ ବନ୍ଦ ଥାଏ ।]

ସୁନାକୃତ—ସଂ. ବି—କର୍ପୂରିକ (ଶଙ୍ଖଚନ୍ଦ୍ରିକା) ବଳାହଳଦୀ—
Sunākruta A kind of Zedoaria.

ସୁନା ଖିଲ—ଦେ. ବି—ଏକପ୍ରକାର ସରୁ ଧାନ—
Sunā khila A kind of fine paddy.

ସୁନାଗର—ସଂ. ବି. ପୁଂ (ସୁ+ନାଗର)—ଉତ୍ତମ ନାଗର—
Sunāgara A good gallant.
(ସୁନାଗରୀ—ସ୍ତ୍ରୀ)

ସୁନାଗରୀ—ଦେ° ବି—୧ । ସ୍ୱର୍ଣ୍ଣନିର୍ମିତ ଗର୍ବ ବା ଘଟ—1. A golden
Sunāgarā pitcher. ୨ । ସ୍ୱର୍ଣ୍ଣପୂର୍ଣ୍ଣ ଗରା—
(ସୁନାଗରଆ—ଅନ୍ୟରୂପ) 2. A metal pitcher
সোনা কলসি, সোনাঘড়া सोनागगरा filled with gold.
୩ । ଉତ୍ତମ ନାଗରା ବା ଉତ୍କୃଷ୍ଟ ନାଗରା ବାଦ୍ୟଯନ୍ତ୍ର—
3. Excellent drum.

ସୁନାଗୋରୀ—ଦେ. ବି. ସ୍ତ୍ରୀ—ସୁନା ପରି ଗୌରବର୍ଣ୍ଣବିଶିଷ୍ଟା ରମଣୀ—
Sunāgorī A woman having golden
সোনাগোরী सोनागोरी complexion.
(ଉ—ସୁନାଗୋରୀ ତୁ ଏକା ଥିଲା—କବିସୂର୍ଯ୍ୟ ସଙ୍ଗୀତ ।)

ସୁନା ଚମ୍ପା—ଦେ. ବି—ସ୍ୱର୍ଣ୍ଣ ଚମ୍ପା; ସ୍ୱର୍ଣ୍ଣନିର୍ମିତ ଚମ୍ପକ—
Sunā champā A champaka flower made of
সোনা চাঁপা सोना चंपा gold.

ସୁନା ଚିତା—ଦେ. ବି—କପାଳରେ ଚିତା ଦେଇବା ପରି ଅଠା ମାରି
Sunā chitā ଚିପିବାପାଇଁ ବ୍ୟବହୃତ ସ୍ୱର୍ଣ୍ଣଖଣ୍ଡ—
সোনা টীপ सोना टीका A circular bit
of gold stuck to the forehead,
[ଦୃ—ଏହାକୁ ସ୍ତ୍ରୀମାନେ ଉତ୍ସବ ଉପଲକ୍ଷରେ ପିନ୍ଧନ୍ତି ।]

ସୁନା ଚେନ୍—ଦେ. ବି (ସଂ. ସ୍ୱର୍ଣ୍ଣ+ଇଂ. ଚେନ୍)—ସୁନାର ଶିକୁଳି—
Sunā chen Gold chain.
[ ସୁନା ଚଇ(ନ)ନ୍—ଅନ୍ୟରୂପ ]
সোনা চেন सोना चैन

ସୁନା ଛା(ଉ)ଣି—ଦେ. ବିଣ—ଉପରେ ସୁନା ପତ୍ର ମଡ଼ା ଯାଇଥିବା—
Sunā chhā-ā(u)ṇi Overlaid with a gold.
ସୁନାଛୁଅଣି } ସୁନାଛୁଆଁ }—ଅନ୍ୟରୂପ (ଉ—ହାତ ଦାଣ୍ଡରେ ସୁନା ଛାଅଣି ଦେବା ନ୍ୟାୟ—ଛଗ ) ଦେ. ବି—
সোনায় মোড়া सोना छावनी ସୁନା ଛାଉଁବା; ଉପରେ
ସୁନା ପତ୍ର ମଡ଼ାଇବା—Overlaying with gold leaf.

ସୁନାଜଙ୍ଘ(ଘା,ଘି)-ଦେ. ବି—କୁଳେଚରବର୍ଗର ୬ହାତ ଉଚ୍ଚ ପକ୍ଷିବିଶେଷ-
Sunājangha (ṅghā, ṅghi) The painted stork,
সোনাজঙ্ঘা Pseudotantalus Leucocephalus. [ଦୃ—
ଏ ପକ୍ଷୀର ଦେହ ଧଳା, ପୁଚ୍ଛ କଳାମିଶା ସବୁଜ, ଅଣ୍ଟା
ନାଲିଙ୍ଗ ବର୍ଣ୍ଣ ଓ ଗୋଡ଼ ହଳଦିଆ ।]

ସୁନା ଜୁଇ—ଦେ. ବି—ସ୍ୱର୍ଣ୍ଣ ଜୁଇ (ଦେଖ)
Sunā jui Swarṇṇa jui (See)

ସୁନା ଝିଅ—ଦେ. ବି. ସ୍ତ୍ରୀ ( ଶିଶୁରଞ୍ଜନ ପଦ, ବାଳିକାକୁ ସ୍ନେହ
Sunā jhia ସମ୍ବୋଧନ )—ଉତ୍ତମ ବା ସୁଶୀଳା ବାଳିକା—
লক্ষী মেয়ে ( a term of the nursery ) A good
सोना लड़की girl.

ସୁନାଦ—ସଂ. ବି—ଶଙ୍ଖ ( ତ୍ରି. ଶ )—Conch. ସଂ. ବିଣ—ସୁନ୍ଦର
Sunāda ନାଦବିଶିଷ୍ଟ—Having an excellent tone.

ସୁନା ଦ(ଦେ)ହ—ଦେ. ବି—୧ । ସୁନା ପରି ବର୍ଣ୍ଣକାନ୍ତି ଗୌର ଶରୀର
Sunā di(de)ha —1. A body having a golden
সোনার গা coloured skin. ୨ । ମୂଲ୍ୟବାନ୍ ଓ ସୁସ୍ଥ ଶରୀର
सोना देह —2. Valuable and healthy body.
[ ଉ—ସୁନା ଦେହ ଚୂନା କଲ ନ ଜାଣି—ସଙ୍ଗୀତ । ]

ସୁନା ଦ(ଦେ)ହ ଚୂନା(ମାଟି) କରିବା—ଦେ. କ୍ରି—୧ । ଶରୀରକୁ
Sunā di(de)ha chūnā (māṭi) kariba ନଷ୍ଟ କରିବା
সোনার দেহ মাটি করা —1. To ruin one's body.
सोना देहको चूना करना; ୨ । ନିଜର ସ୍ୱାସ୍ଥ୍ୟକୁ ନଷ୍ଟ କରିବା—
2. To ruin one's health. ୩ । ନିଜକୁ କଳଙ୍କିତ
କରିବା—3. To stain one's self.

ସୁନା ଦୂବ—ଦେ. ବି ( ଦେଶିଅ ଶବ୍ଦ )—ଦୂବ କେଶ୍ ପରି ବଣୁଥିବା
Sunā dūba ଜୁଡ଼ାରେ ଖୋସା ଯିବା ସୁନା ଅଳଙ୍କାରବିଶେଷ—
সোনার ঘাস A kind of gold ornament resembl-
सोना दूब ing a bunch of Duba grass, worn
on the chignon.

ସୁନା ନାକୀ—ଦେ. ବିଣ. ସ୍ତ୍ରୀ—୧ । ଯେଉଁ କନ୍ୟାର ନାକ ସୁନା ପରି
Sunā nākī ସୁନ୍ଦର—1. ( a girl ) Having the nose
সোনা নাকী as nice as gold. ୨ । ଯେଉଁ ସ୍ତ୍ରୀ ନାକରେ
सोना नाकी ସୁନାର ଅଳଙ୍କାର ପିନ୍ଧିଥାଏ—2. (a woman)
[ ସୁନା ନାକେଇ—ସ୍ତ୍ରୀ ] Wearing gold nose rings.
[ ଉ—ବାହାଣୀଙ୍କର ସୁନା ନାକୀ ଝିଅର କଥା । ]

ସୁନା ପଇତା—ଦେ. ବି—ସୁନାର ତାରରେ ତିଆରି ଯଜ୍ଞୋପବୀତ
Sunā paitā ଆକାରର ସୂତ୍ର—Golden thread to be
সোনার পইতা used as a Brahman's Paitā. [ଦୃ—
सोना जनेऊ ଏହାକୁ ଦେବତାଙ୍କ ଗଳାରେ ପିନ୍ଧାନ୍ତି । ରାଜା-
ମାନେ ମଧ୍ୟ ଏହା ପୁଣ୍ୟାହବିଶେଷ ଆଦି ଉତ୍ସବରେ
ପିନ୍ଧନ୍ତି । ]

ସୁନା ପାଗ—ଦେ. ବି—ସ୍ୱର୍ଣ୍ଣ ନିର୍ମିତ ଉଷ୍ଣୀଷ ବା ପଗଡ଼ି—A pugree
Sunā pāga of gold. [ ଉ—ଅଗ—ସୁନା ପାଗ, ପଛ—
সোনার পাগড়ী ଗୁହ ପୋଛ, ମଝି—ମର୍ଦ୍ଦଗାଲ—ଶିଶୁରଞ୍ଜନ ପଦ]
सोना पगड़ी

ସୁନା ପାଣି—ଦେ. ବି—କୌଣସି ପଦାର୍ଥକୁ ଗିଲ୍ଟ କରିବା ପାଇଁ ବା
Sunā pāṇi ସୁନେଲି ରଙ୍ଗ ମଡ଼ାଇବା ପାଇଁ ବ୍ୟବହୃତ ସ୍ୱର୍ଣ୍ଣ
সোনার জল ବର୍ଣ୍ଣର ଏକପ୍ରକାର ଦ୍ରବ୍ୟ—Golden paint
सोनेकी पानी or water colour.

ସୁନା ପାତିଆ—ପ୍ରାଦେ ( ବାଲେଶ୍ୱର ) ବି—୧ । ସୁନାର ପାତିଆ ଭଳି
Sunā pātiā ଲମ୍ବା ମତ୍ସ୍ୟବିଶେଷ—1. A kind of long
সোনার পাত fish looking like a slender and
सोनाका वर्क thin strip of gold. [ ଦୃ—ଏହି ମାଛ
ଖୁବ୍ କ୍ୱଚିତ୍ ଦେଖିବାକୁ ମିଳେ । ] ୨ । ସୁନାର
ଖୁବ୍ ପତଳା ପତ୍ର—2. A thin strip of gold.

ସୁନା ପୁଅ—ଦେ. ବି. ପୁଂ—୧ । (ବାଳକ ପ୍ରତି ସ୍ନେହ ସମ୍ବୋଧନ)—
Sunā pua ଚେଙ୍କା ପୁଅ—1. A fondled boy. ୨ ।
লক্ষী ছেলে; আদুরে ছেলে ( ଶିଶୁରଞ୍ଜନ ପଦ ) ଉତ୍ତମ ସୁଶୀଳ
सोना लड़का ବାଳକ—2. (a term of the nursery)
A good boy. ୩ । ( ଲକ୍ଷଣାର୍ଥ ) ସର୍ବତ୍ର ଅଦୃତ
ବ୍ୟକ୍ତି—3. A person who is fondled and
petted everywhere. ୪ । ପ୍ରୀତି ପାତ୍ର—
4. Pet or favoured one. [ଉ—ଯେ ଖୋସାମତ
କଲ, ସେ ହେଲ ସୁନା ପୁଅ । ]

(ସେଠାରେ) ସୁନା ଫଳିବା—ଦେ. ବି—ସ୍ୱର୍ଣ୍ଣର ବା ଧନର ଉତ୍ପାଦନ— Sunā phaḷibā Production of gold or riches.
সোনা ফলা सोना फलना

ସୁନା ଫୁଟି ଅଗାଡ଼ି ହେବା (ନ୍ୟାୟ) ଦେ. ପ୍ରବଚନ—ପ୍ରଥମରେ ଭଲ ଫଳର ଆଶା ଥିବା ଠାରେ ଶେଷରେ ନଷ୍ଟଫଳ ହେବା—Sunā phuṭi agāṛdi hebā (nyāya) (analogy) To turn into ashes after promise or hope of golden result.

ସୁନା ବଳା—ପ୍ରାଦେ. ( ଘାଉଳିଭ ) ବି—ଶଗଡ଼ ଚକର ବାଇଁ ବା ଭୂମ୍ବ ଉପରେ ଲଗାଯିବା ଲୁହାର ପାତଳା— Sunā baḷā Thin ring put round the nave of a cart wheel.
সোনাব বালা सोनेका बाला
ଦେ. ବି—୧ । ସୁନା ପୁଅ (ଦେଖ)—1. Sunā pua (See) ୨ । ସୁନାର ତିଆରି ବଳା ବା କଡ଼ୁ—2. Gold bangle.

ସୁନା ବେଙ୍ଗ—ଦେ. ବି—ସୁନା ପରି ହଳଦିଆ ଓ ଚିକ୍କଣ ଚର୍ମବିଶିଷ୍ଟ ଏକପ୍ରକାର ବେଙ୍ଗ—A yellow smooth-skinned species of frog.
Sunā beṅga
সোনা বেঙ पीला बेंग
[ଦ୍ର—ଏହାର ଦେହର ବର୍ଣ୍ଣ ସୁନା ପରି ଦିଶେ ।]

ସୁନା ବେଶ—ଦେ. ବି—ଗୁଣ୍ଡିଚା ଘରେ ବାହୁଡ଼ା ଯାତ୍ରାରେ ଜଗନ୍ନାଥ ବଳଭଦ୍ରଙ୍କ ରଥମାନ ସିଂହଦ୍ୱାରକୁ ଫେରି ଆସିବା ପରେ ଦେବବିଗ୍ରହମାନଙ୍କର ସ୍ୱର୍ଣ୍ଣାଭରଣରେ ଯେଉଁ ବେଶ ହୁଏ—The dress of gold worn by the idols of the Jagannātha temple of Puri after the cars have returned from Gundichā ghara to the lion's gate.
Sunā beśa
সোনার বেশ सोना वेश
[ଦ୍ର—ଏ ବେଶକୁ ଦର୍ଶନ କରିବା ପାଇଁ ବହୁ ଯାତ୍ରୀ ରୁଣ୍ଡ ହୁଅନ୍ତି ।]

ସୁନାଭ—ସଂ. ବି (ସୁ+ନାଭି)—୧ । ହିମାଳୟର ପୁତ୍ର; ମୈନାକ ପର୍ବତ (କିଳାଣ୍ଡ ଶେଷ)—1. The Maināka mountain. ୨ । ସୁଦର୍ଶନ ଚକ୍ର (ହ. ଶ)—2. Bishṇu's discus. ୩ । (ନାମ) ଧୃତରାଷ୍ଟ୍ରଙ୍କର ଏକ ପୁତ୍ର (ହ. ଶ)—3. Name of a son of Dhṛutarāshṭra. ୪ । (ନାମ) ବରୁଣଙ୍କର ଏକ ମନ୍ତ୍ରୀ (ହ. ଶ)—4. Name of a minister of Baruṇa. ୫ । (ନାମ) ଗରୁଡ଼ଙ୍କର ଏକ ପୁତ୍ର (ହ. ଶ)—5. Name of a son of Garuṛḍa. ୬ । ଅସ୍ତ୍ରମାନଙ୍କରେ ପ୍ରୟୋଗ କରାଯିବା ମନ୍ତ୍ରବିଶେଷ (ହ. ଶ)—6. An esoteric formula applied to weapons. ସଂ. ବିଣ—ସୁନ୍ଦର ନାଭିବିଶିଷ୍ଟ (କେ) Having a beautiful navel.
Sunābha

ସୁନା ଭସ୍ମ—ଦେ. ବି—ସ୍ୱର୍ଣ୍ଣ ଭସ୍ମ; ଜାରିତ ସ୍ୱର୍ଣ୍ଣର ପାଉଁଶ—Gold oxide.
Sunā bhasma
সোনা ভস্ম सोना भस्म
[ଦ୍ର—ଏହା ଔଷଧରେ ଲାଗେ । କବିରାଜମାନେ ନାନା ଉପାୟରେ ସୁନାକୁ ଭସ୍ମ କରନ୍ତି । ସବୁ ଧାତୁର ଭସ୍ମ ହୁଏ । ସାଧାରଣତଃ ଦୁଇ ପ୍ରଣାଳୀରେ ଏହା ହୁଏ । ଗୋଟିଏ ହେଉଛି ମାରଣ ଓ ଅନ୍ୟଟି ପୁଟ ମାରଣ ହେଉଛି ମାରଣରେ ଏକ ଦିନରେ ଭସ୍ମ ପ୍ରସ୍ତୁତ ହୁଏ ମାତ୍ର ପୁଟ ମାରଣରେ ବହୁ ଦିନ ଲାଗେ । ପୁଟ ଯୋଗେ ହୋଇଥିବା ପ୍ରସ୍ତୁତ ଭସ୍ମ ବେଶି ଫଳପ୍ରଦ । ପ୍ରଥମେ ସୁନାକୁ ଶୋଧନ କରାଯାଏ । ସୁନାକୁ ଉତ୍ତପ୍ତ କରି ତେଲରେ ପକାଇ, ପୁଣି ଉତ୍ତପ୍ତ କରି ଦହିରେ ପକାଇ, ପୁଣି ଉତ୍ତପ୍ତ କରି ଗୋମୂତ୍ରରେ ପକାଇ ପୁଣି ଉତ୍ତପ୍ତ କଲେ ଏହା ଶୋଧିତ ହୁଏ । ଏହି ଶୋଧିତ ସୁନାକୁ ପଞ୍ଚଗବ୍ୟ ପରି ରସ ସହିତ ଖଲରେ ମର୍ଦ୍ଦନ କରି ଅଗ୍ନି ମଧ୍ୟରେ ଦେଇ ଦିଆଯାଏ । ଏହିପରି ସାତ ଦିନ ଭିନ୍ନ ଭିନ୍ନ ସାତ ପ୍ରକାର ପତ୍ରର ରସରେ ପାକ କଲେ ଶେଷ ଦିନ ସୁନା ଭସ୍ମ ପ୍ରସ୍ତୁତ ହୁଏ । ଏହି ପତ୍ରମାନଙ୍କର ନାମ ବୈଦ୍ୟଶାସ୍ତ୍ରମାନଙ୍କରେ ଦିଆଯାଇଅଛି । ସୁନା ଭସ୍ମ ବହୁ ଔଷଧରେ ବ୍ୟବହୃତ ହୁଏ ।]

ସୁନା ଭାତ—ଦେ. ବି—ମୂଲ୍ୟବାନ୍ ଅନ୍ନ—Valuable food.
Sunā bhāta
সোনার ভাত सोना भात
(ଭ—ଏଥିରୁ ଅଧିକ ଭଲ ହେଲା କଥା କାହିଁ; ଆଉ କେଉଁ ଅଛି କହ ସୁନା ଭାତ ଖାଇ—କୃଷ୍ଣସିଂହ. ମହାଭା. ଉ ପର୍ବ ।)

ସୁନାମ—ସଂ. ଦ (ସୁ+ନାମନ୍; ସୁ=ଉତ୍ତମ ହୁଏ ନାମ ଯଦ୍ୱାରା)—୧ । ସୁଖ୍ୟାତି; ଯଶ—1. Good repute; good name. ୨ । ପ୍ରଶଂସା—2. Praise.
Sunāma

ସୁନାମଉଡ଼ (ମୋହ[ହୋ]ର)—ଦେ. ବି—(ସଂ. ସ୍ୱର୍ଣ୍ଣ+ମୁ. ଟ)—୧ । ସୁନାର ମୁକୁଟ—1. A gold crown. ୨ । (ସଂ. ସ୍ୱର୍ଣ୍ଣମୁଦ୍ରା) ସ୍ୱର୍ଣ୍ଣମୁଦ୍ରା—2. Gold coin.
Sunā maurḍa(moha[ho]ra)
সোনা মৌব सोनामौर
মোহর सोना मोहर

ସୁନା ମକା(କେ)ଇ—ଦେ. ବି (ସ ସ୍ୱର୍ଣ୍ଣପତ୍ରିକା)—କଣ୍ଟକାଦିବର୍ଗର କ୍ଷୁଦ୍ରବୃକ୍ଷବିଶେଷ—Senna Cassia Augustifolia.
Suna makā(ke)i
(ସୁନାମଖି, ସୁନାମାଖି—ଅନ୍ୟରୂପ)
সোনামুখী
सोनामकी, सनायकापत्ती
ମ. ସୋନାମୁଖୀ
ସଂ. ପର୍ଯ୍ୟାୟ-କଲ୍ୟାଣୀ, ଚିହ୍ନପତ୍ରୀ
ତେଲେଗୁ, ସୁନାମକା
[ଦ୍ର—ଏହାର ପତ୍ର ତେନ୍ତୁଳି ପତ୍ର ପରି, କଣ୍ଟା ଥାଏ; ଫୁଲର ବର୍ଣ୍ଣ ସୁନେଲି । ଦକ୍ଷିଣ ଭାରତରେ ଏ ଗଛ ବୁଦି ହୁଏ ଓ ଅନ୍ୟାନ୍ୟ ଜଙ୍ଗଲରେ ଏ ଗଛ ହୁଏ । ଏ ଗଛର ପତ୍ର ମୃଦୁବିରେଚକ । ଏହା ମଳରୋଧ, ଅଗ୍ନିମାନ୍ଦ୍ୟ, ପ୍ଲୀହା ଓ ଯକୃତ୍ ବୃଦ୍ଧି, ଅର୍ଶ ଇତ୍ୟାଦିର ନିରାମୟ ଔଷଧରେ ଲାଗେ ।]

ସୁନାମଣି—ଦେ. ବି, ସ୍ତ୍ରୀ—୧ । ସ୍ତ୍ରୀଲୋକଙ୍କ ନାମ—1. A name given to female. ୨ । (ଶିଶୁଲୋକ ଭାଷା) ପ୍ରିୟପାତ୍ର ଶିଶୁ ବାଳକମାନଙ୍କ ଜନନେନ୍ଦ୍ରିୟ; ଭି—2. (A term of the nursery) An euphemistic term used for the penis of a pet male-child.
Sunāmaṇi
সোনামণি
सोनामनी

ସୁନା ମଣ୍ଡା—ଦେ ବଣ (ସଂ, ସ୍ୱର୍ଣ୍ଣମଣ୍ଡିତ)—ସ୍ୱର୍ଣ୍ଣ ଭୂଷିତ; ସୁନାରେ ଛାଉଣି
Sunā mandā ହୋଇଥିବା—Adorned or overlaid
সোনায় মোড়া with gold. [ ଉ—ସୁନାମଣ୍ଡାପୃଷ୍ଠ ଧନୁକୁ କହି
सोनामढ़ा हुआ କରେ । କୃଷ୍ଣସିଂହ· ମହାଭାରତ· ବନ । ]

ସୁନାମ ଦ୍ୱାଦଶୀ—ସଂ, ବ—ଅଗ୍ନିପୁରାଣୋକ୍ତ ଦ୍ୱାଦଶ ମାସର ଶୁକ୍ଳ-
Sunāma dwādaśī ଦ୍ୱାଦଶୀରେ କରିବା ବିଷ୍ଣୁପୂଜାରୂପ
ବ୍ରତ—A vow of worshipping Bishṇu on
the 12th day of every bright lunar fortnight of the year. [ଦ୍ର—ଏଥିରେ କାମଫଳଲାଭ
ହୁଏ ଓ ସୁନାମ ବା ଯଶଃପ୍ରାପ୍ତି ହୁଏ । ଅଗ୍ରହାୟଣ ମାସର
ଶୁକ୍ଳ ଦ୍ୱାଦଶୀରେ ଏ ବ୍ରତ ଆରବ୍ଧ ହୁଏ ।]

ସୁନାମ ସଂ· ବଣ (ବହୁବ୍ରୀହି; ସୁ+ନାମନ୍; ୧ମା· ୧ବ)—ଯଶସ୍ୱୀ—
Sunāmā Celebrated; famous. ସଂ. ବ—୧ । (ନାମ)—
କଂସର ଆଠଭାଇ ମଧ୍ୟରୁ ଏକ (ହ. ଶ)—1. One of
Kaṁsa's eight brothers. ୨।(ନାମ) ସ୍କନ୍ଦାନୁଚର
ବିଶେଷ (ହ. ଶ — 2. Name of an attendant
of Skanda, ୩ । (ନାମ) ବୈନତେୟଙ୍କର ଏକ ପୁତ୍ର
(ହ. ଶ)—3. Name of a son of Garurda.
୪ । (ନାମ) ସୁକେତୁଙ୍କର ଏକ ପୁତ୍ର (ହ. ଶ)—
4. Name of a son of Suketu.

ସୁନାମିକା—ସଂ ବ—ତ୍ରାୟମାଣା ଲତା (ହ· ଶ)
Sunāmikā Thalictrum Faliolosum (creeper).

ସୁନାମୁଖୀ- ପ୍ରାଦେ (ଲବଣ) ବ—ସୁନାମକେଇ —
Sunāmukhī Cassia Augustifolia.

ସୁନା ମୁଗ—ଦେ, ବ—ଏକପ୍ରକାର ମୁଗ (ମୁଗ ଦେଖ)—A species
Sunā muga of mung pulse; Phaseolus Aurea.
সোনা মুগ [ଦ୍ର—ଏହା ଈଷତ୍ ହଳଦିଆ ଥିବାରୁ ଏଥିର ନାମ-
सोना मूंग କରଣ ଏପରି ହୋଇଅଛି । ଏହି ମୁଗର ଡାଲି ଅତ୍ୟନ୍ତ
ସୁସ୍ୱାଦୁ ବୋଲି ଅଦ୍ଭୁତ ।]

ସୁନା ମୁଦି—ଦେ. ବ ( ସଂ· ସ୍ୱର୍ଣ୍ଣ+ମୁଦ୍ରିକା )—ସୁନାରେ ତିଆରି ମୁଦି;
Sunā mudi ସ୍ୱର୍ଣ୍ଣନିର୍ମିତ ମୁଦ୍ରିକା—A gold ring.
সোনার আংটি सोना अंगूठी

ସୁନା ମୁଦିଆ - ଦେ. ବ ( ସଂ· ସ୍ୱର୍ଣ୍ଣ ମୁଦ୍ରିକା )—୧ । ଯେଉଁ ବ୍ୟକ୍ତି
Suna mudiā ସୁନା ମୁଦି ପିନ୍ଧିଥାଏ—1. ( a person );
সোনার আংটি পরা Wearing a golden ring. ୨ ।
सोना अंगूठी वाला (ଲକ୍ଷଣାର୍ଥ) ବଡ଼ଲୋକ—2. (figurative) Rich man. [ ଉ—ସୁନା ମୁଦିଆ ହାତରୁ
ଠାକୁର ଖାଇଲେ ଗଙ୍ଗାସ୍ନାନର ଫଳ ମିଳେ—ଢଗ । ]

ସୁନା ମୁହିଁ କଣ୍ଟିଆ—ପ୍ରାଦେ· ( ବାଲେଶ୍ୱର ) ବ—ମତ୍ସ୍ୟବିଶେଷ—
Sunā muhiṅ kanṭiā A kind of fish. [ ଦ୍ର—ଏହି
ଜାତୀୟ କଣ୍ଟିଆ ସାଧାରଣତା ୫ ଇଞ୍ଚରୁ ଅଧିକ ବଡ଼ ହୁଅନ୍ତି
ନାହିଁ । ଏ ମାଛର ମୁହଁ ଓ ପିଠି ନିକଟସ୍ଥ ଅଂଶ ସୁନା ପରି
ଚକ୍ ଚକ୍ ଦିଶେ । ]

ସୁନାମ୍ନୀ—ସଂ· ବ. ସ୍ତ୍ରୀ—ଦେବକୀ; ବସୁଦେବ ପତ୍ନୀ—
Sunāmnī A wife of Basudeba,

ସୁନାୟକ—ସଂ· ବ· ପୁଂ—୧ । ନାଟକ ଉପନ୍ୟାସ କାବ୍ୟାଦିର ଉତ୍ତମ
Sunāyaka ନାୟକ—1. An excellent hero of a
(ସୁନାୟିକା—ସ୍ତ୍ରୀ) romance, ୨ । ସ୍କନ୍ଦାନୁଚରବିଶେଷ ( ହ·
ଶ)—2. Name of an attendant of Skanda.
୩ । ( ନାମ ) ବୈନତେୟଙ୍କ ପୁତ୍ରବିଶେଷ ( ହ. ଶ )—
3 Name of a son of Garurda. ୪ । (ନାମ)
ଦୈତ୍ୟବିଶେଷ ( ହ· ଶ )—
4. Name of a demon.

ସୁନାର—ଦେ. ବ ( ସଂ· ସ୍ୱର୍ଣ୍ଣକାର )—ସୁନାରି ( ଦେଖ )—Sunāri
Sunāra ( See ) [ ଉ—ସୁଇ ସୁନାର ସୁଆର, ଏ ତିନିହେଁ
সোনার सोनार ଜାହାର—ପ୍ରବଚନ । ]
ସଂ· ବ—୧ । ଶୁନୀସ୍ତନ୍ୟ; କୁକୁରୀ ଦୁଗ୍ଧ ( ମେଦିନୀ )—
1. Dog's milk. ୨ । ସର୍ପାଣ୍ଡ ( ମେଦିନୀ )—
2. Serpent's egg. ୩ । କଳବିଙ୍କ ( ମେଦିନୀ );
ଘରଚଟିଆ ଚଢେଇ—3. The house-sparrow.

ସୁନାର(ରି) ଘାଇ—ପ୍ରାଦେ· ( ବାଲେଶ୍ୱର ) ବ—ହଳଦିଆ ରଙ୍ଗର
Sunāra(ri) ghāi ଏକଜାତୀୟ ବାଉଁଶ—
A kind of yellow bamboo.

ସୁନା ରାଗଡ଼ା—ପ୍ରାଦେ· ( ଗଡ଼ଜାତ ) ବ—ବନ୍ୟ ବୃକ୍ଷବିଶେଷ—
Sunā rāgardā A kind of wild tree. [ ଦ୍ର—
ଏହା ୬।୭ ହାତ ଉଚ୍ଚ । ଏଥିର ମୂଳ ବାଟି କରି ବାତଫୁଲା
ଓ ରକ୍ତ ଗଡ଼ଥିବା ଅଙ୍ଗରେ ବୋଳ ଦେଲେ ଉପକାର
ହୁଏ । ]

ସୁନାରି—ଦେ. ବ—୧। (ସଂ. ସ୍ୱର୍ଣ୍ଣକାର) ବଣିଆ—1. Goldsmith.
Sunāri [ ଉ—ଲୋପାମୁଦ୍ରା ଦେଖିଣ
সোনার, স্যাকরা ସନ୍ତୋଷ ହୋଇଲେ, ସୁନାରିକି ଡାକିଣ
सोनार ଗଢ଼ାଅ ବୋଇଲେ—କୃଷ୍ଣସିଂହ·ମହା-
সোনালু, বাঁধারলাঠি, ଭାରତ· ବନ । ] ୨ । ( ସଂ·
বানরলাঠি; সোন্দাল, ସ୍ୱର୍ଣ୍ଣାଙ୍ଗ; ସୁବର୍ଣ୍ଣକ ) ଆରଗ୍ବଧ
সোণালু ଗଛ; ସୁନାରି ଗଛ—2. A tree;
आमलतास Casoia Fistula. [ ଦ୍ର—
ଅ· ଓ ଫା· ଖୟାର୍ ସମର ଏହାର ଫୁଲ ସୁନେଲି ରଙ୍ଗ ଥିବାରୁ
ଅ. ଫଲୁସ୍ ଏପରି ନାମ ହୋଇଅଛି । ବୈଦ୍ୟ-
ତେ· କେଲିଠ୍ରୁ, ରେଲିକାୟୁ, ଶାସ୍ତ୍ର ଅନୁସାରେ ଏହା ଗୁରୁ, ମଧୁର,
କେଲି ଶୀତଳ ଓ ସୁଖରେଚକ । ଏହା
ସଂ· ନାମ—ଚତୁରଙ୍ଗୁଳ, ଜ୍ୱର, ହୃଦ୍‌ରୋଗ, ପିତ୍ତ, ରକ୍ତ, ବାତ,
ଆରେବତ, ବ୍ୟାଧିଘାତ, ଉଦାବର୍ତ୍ତ ଓ ଶୂଳ ରୋଗରେ ଉପ-
ଆରଗ୍ବଧ; ସମ୍ପାକ, ରାଜବୃକ୍ଷ, କାରୀ । ଏହାର ପତ୍ର ରେଚକ ଓ
କୃତମାଲ, ସ୍ୱର୍ଣ୍ଣାଙ୍ଗ, ସୁବର୍ଣ୍ଣକ, କଫମେଦହର । ଏହାର ଫୁଲ ସୁସ୍ୱାଦୁ,
ସ୍ୱର୍ଣ୍ଣଭୂଷଣ, ଜ୍ୱରାନ୍ତକ, କୁଷ୍ଠ- ତିକ୍ତ, ଶୀତବୀର୍ଯ୍ୟ ଓ ମଳସଂଗ୍ରାହକ ।
ସୂଦନ, ଦୀର୍ଘଫଳ, ସ୍ୱର୍ଣ୍ଣପୁଷ୍ପ । ଏହାର ଫଳ (ଚୁଇଁ) ଅତ୍ୟନ୍ତ ଲମ୍ବା ।

ଏହା ବରେଚକ, ରୁଚକର ଓ କୁଷ୍ଠପିତ୍ତକଫନାଶକ । ମଜ୍ଜା ବା ଫଳର ଶଠା ମଧୁରବିପାକ, ସ୍ନିଗ୍ଧ, ଅଗ୍ନିବର୍ଦ୍ଧକ, ରେଚକ ଏବଂ ପିତ୍ତବାୟୁନାଶକ ।

ଏହା କଞ୍ଚନାର ବର୍ଗର ଛୋଟ ତରୁ । ଏହାର ପତ୍ର ପକ୍ଷାକାର; ଫୁଲର ରଙ୍ଗ ସୁନେଲି । ଗ୍ରୀଷ୍ମକାଳରେ ଏଥିରେ ଫୁଲ ଫୁଟେ । ଫୁଲ ମଧ୍ୟରେ ୩ଟି ସାର୍ଘ ପୁଂକେଶର ଓ ଫୁଲର ଗର୍ଭନାଳ ୪ ଅଙ୍ଗୁଳ ପର୍ଯ୍ୟନ୍ତ ଲମ୍ବ । ଏହାର ଫଳ (ଛୁଇଁ) ଲମ୍ବରେ ୧୍ୟ ହାତ ପର୍ଯ୍ୟନ୍ତ ହୁଏ । ଏହା ଗୋଲ ଓ ଗାଢ଼ ରକ୍ତବର୍ଣ୍ଣ । ଏଥିର କାଠ ନାଲି ଓ ଦୃଢ଼ । ଏଥିର ଛେଲିଦିହା ପାଣି ଦ୍ୱାରା ଚମଡ଼ା କଷା ହୁଏ । ]

**ସୁନାର ବଣିଆ**—ଦେ· ବି ( ସଂ· ସ୍ୱର୍ଣ୍ଣକାର+ବଣିକ୍ )—ସ୍ୱର୍ଣ୍ଣକାର
Sunāri baniā ବଣିଆ—Goldsmith. [ଦ୍ର—ଓଡ଼ିଶାରେ
ସୋନার বেনে ବଣିଆମାନେ ଦୁଇ ଶ୍ରେଣୀର; ଯଥା—ସୁନାର ବଣିଆ
सोनार ( ଯେଉଁମାନେ ସୁନା ରୁପାର କାମ କରନ୍ତି ) ଓ ପୋଟଳ ବଣିଆ ( ଯେଉଁମାନେ ଔଷଧ ମଲ୍ଲଜାଦି ବିକ୍ରି କରନ୍ତି ) । ଏମାନେ ଜାତିରେ ବୈଶ୍ୟ ଏବଂ ଏମାନଙ୍କ ଘରେ ବିଧବା ବିବାହ ( ଦୁତିଅ ) ପ୍ରଥା ନାହିଁ । ]

**ସୁନାରୀ**—ସଂ· ବି· ସ୍ତ୍ରୀ ( ସୁ+ନାରୀ )—୧ । ଉତ୍ତମା ସ୍ତ୍ରୀ—1. An
Sunāri excellent woman. ୨ । ରସିକା ସ୍ତ୍ରୀ—
সোন্দাল 2. Voluptuous lady. ଦେ· ବି—୧ । ( ସଂ·
आमलतास ସ୍ୱର୍ଣ୍ଣାଙ୍ଗ; ସୁବର୍ଣ୍ଣକ ) ସୁନାରି ୨ ( ଦେଖ )—
সোনাবেনে 1. Sunāri 2 ( See ) ୨ । ସୁନାର ବଣିଆ—
सोनार 2. Goldsmith. ( ଦ୍ର—( ସଂ, ୧ ଓ ଦେ· ୨ )—ବିଚ୍ଛେଦକ ମୁଁ ସୁନାରୀ ଲେଖି ଦବଦକ ଯେ— ଭଞ୍ଜ· ବୈଦେହୀଶବିଳାସ । )

**ସୁନା(ନେ)ଲି**—ଦେ· ବିଣ—୧ । ସ୍ୱର୍ଣ୍ଣବର୍ଣ୍ଣବିଶିଷ୍ଟ—1. Of yellow
Suna(ne)li colour. ୨ । ସ୍ୱର୍ଣ୍ଣ ରଞ୍ଜିତ—2. Painted
সোনালি with gold. ୩ । ଗିଲ୍ଟି କରା—3. Gilded;
सुनहला gilt. ୪ । ସ୍ୱର୍ଣ୍ଣସମ୍ବନ୍ଧୀୟ—4. Golden.

**ସୁନାଳ**—ସଂ· ବି—ରକ୍ତ କମଳ ( ହ· ଶ )—
Sunāla The red water-lily.

**ସୁନାଳକ**—ସଂ· ବି—ଅଗସ୍ତ୍ୟ ବୃକ୍ଷ ( ହ· ଶ )—
Sunālaka Sesbania Grandflora tree.

**ସୁନାଲି**—ପ୍ରାଦେ (ବସ୍ତର) ବି—ସୁନାର ୨ (ଦେଖ)—Sunāri 2
Sunāli (See) ଦେ· ବିଣ—୧ । ସୁନାସମ୍ବନ୍ଧୀୟ·
সোনালি सुनहला 1. Golden-
୨ । ସୁନା ପରି ବର୍ଣ୍ଣବିଶିଷ୍ଟ—2. Gold-hued.

**ସୁନା(ନେ)ଲି କାଳି**—ଦେ·ବି—ସ୍ୱର୍ଣ୍ଣ ବର୍ଣ୍ଣର ମସୀ—
Suna(ne)li kāli Golden ink.
সোনালি স্যাই सुनहली सयाही

**ସୁନା(ନେ)ଲି ରଙ୍ଗ**—ଦେ· ବି—ସ୍ୱର୍ଣ୍ଣବର୍ଣ୍ଣବିଶିଷ୍ଟ ରଙ୍ଗ—
Sunā(ne)li ranga Golden colour or paint.
সোনালি রঙ सुनहला रंग

**ସୁନାଶୀ(ସୀ)ର**—ସଂ· ବି [ସୁ=ଉତ୍ତମ+ନାଶୀ(ସୀ)ର=ପୁରୋବର୍ତ୍ତୀ
Sunāśi(si)ra ସୈନ୍ୟ ଯାହାର; ଅନ୍ୟରୂପ ଶୁନାଶୀ(ସୀ)ର]—
প্রধানযোদ্ধা प्रधानयोद्धा ୧ । ଇନ୍ଦ୍ର ( ଅମର)—
1. The God Indra. ୨ । ଦେବତା (ହ.ଶ)—
2. Deity. ଦେ· ବି—ପ୍ରଧାନ ଯୋଦ୍ଧା—
Great warrior. (ଦ୍ର—ବସଇ ସୁନାସୀରେକ ଡହିଁ, ଏବେକେ ସୁନାସୀରରେ ଶୋହି, ଏପରି ହୋଇ ଚଳଇଥିଁ, କେବଳ ବର୍ଣ୍ଣ ଯେ—ଭଞ୍ଜ· ବୈଦେହୀଶ- ବିଳାସ ।)

**ସୁନାସ**—ଦେ· ବିଣ (ସୁଂ) (ସଂ· ସୁନାସିକ) ସୁନାସିକ ବା ସୁନ୍ଦର ନାସିକା
Sunāsa ଯୁକ୍ତ—Having a beautiful nose.
ଦେ· ବି (ସଂ· ସୁନାସା) ସୁନ୍ଦର ନାସିକା—Nice nose.
(ଦ୍ର—କରଯୁଗଳ ବନ୍ଧୁ ଅଂସ, ଉନ୍ନତ ସୁନ୍ଦର ସୁନାସ—
সুনাসা सुनास ଜଗନ୍ନାଥ· ଭାଗବତ ।)

**ସୁନାସା**—ସଂ· ବି—ସୁନାସିକ (ଦେଖ)
Sunāsā Sunāsika (See)

**ସୁନାସିକ**—ସଂ· ବିଣ· ପୁଂ । (ବହୁବ୍ରୀହି)—ସୁନ୍ଦର ନାସିକାଯୁକ୍ତ—
Sunāsika Having beautiful nose.
(ସୁନାସିକା—ସ୍ତ୍ରୀ)

**ସୁନାସିକା**—ସଂ· ବି· ୧ । (କର୍ମଧା)—ସୁନ୍ଦର ନାକ—1. A beauti-
Sunāsikā ful nose. ୨ । କାକନାସା ( ରାଜ ନିର୍ଘଣ୍ଟ )—
কাকঠুঁটি, কোআঠুঁঠি 2. A kind of plant;Solanum
कोआठूंठी Indicum. ସଂ· ବିଣ· ସ୍ତ୍ରୀ—ସୁନ୍ଦର
ଅନ୍ୟ ସଂ·ନାମ—କାକନାସା, ନାସା ବିଶିଷ୍ଟା — (a woman)
କାକାଙ୍ଗୀ, କାକତୁଣ୍ଡ ଫଳା Having a beautiful nose.

**ସୁନି**—ବୈଦେ· ବି. (ଅ. ସୁନ୍ନୀ)—ମୁସଲମାନ୍ ସମ୍ପ୍ରଦାୟ ବିଶେଷ—
Suni The Sunnis; a sect of Mohammedans.
সুন্নি; सुन्नि
(ଦ୍ର—ମୁସଲମାନ୍ମାନେ ଦୁଇ ସଂପ୍ରଦାୟରେ ବିଭକ୍ତ—ସିଆ ଓ ସୁନି । ସିଆମାନେ କହନ୍ତି ଯେ, ହଜରତ୍ ମହମ୍ମଦଙ୍କ ଶିଷ୍ୟାନୁଶିଷ୍ୟ ଓ ବଂଶଧରମାନେ ପୁରୁଷାନୁକ୍ରମେ ମୁସଲମାନ୍ମାନଙ୍କର ଇମାମ୍ ବା ଧର୍ମଗୁରୁ ଅଟନ୍ତି । ସୁନିମାନେ କହନ୍ତି ଯେ, ମୁସଲମାନମାନଙ୍କ ନିର୍ବାଚିତ ବ୍ୟକ୍ତି ଧର୍ମଗୁରୁ ବା ଇମାମ୍ ପଦର ଉପଯୁକ୍ତ ଅଟନ୍ତି । ଏହି ମତଭେଦରୁ ପ୍ରଥମେ ଏ ଦୁଇଟି ସଂପ୍ରଦାୟ ସୃଷ୍ଟ ହୋଇଥିଲେ ଏବଂ କ୍ରମେ କ୍ରମେ ଏମାନଙ୍କ ଧର୍ମଶାସ୍ତ୍ର, ଆଚାର ବ୍ୟବହାର, ନ୍ୟାୟଭାଗ ଓ ସାମାଜିକ ରୀତି ସବୁ ପୃଥକ୍ ହୋଇ ଯାଇଅଛି; ଯଥା—ସିଆମାନେ (୧) କୋରାନ୍ ଓ (୨) ହଜରତ୍ ମହମ୍ମଦଙ୍କର ବଂଶଧରମାନଙ୍କ ଦ୍ୱାରା ପ୍ରଚଳିତ ଶୁଦ୍ଧ (ଅଖ୍ୟାୟିକା)କୁ ଧର୍ମଶାସ୍ତ୍ର ବୋଲି ମାନନ୍ତି ଏବଂ ଇମାମଙ୍କ ଦ୍ୱାରା ଅନୁମୋଦିତ ହୋଇ ନ ଥିବା ମୀମାଂସାକୁ ମାନନ୍ତି ନାହିଁ । କିନ୍ତୁ ସୁନିମାନେ (୧) କୋରାଣ, (୨) ସୁନତ୍ ବା ହାଦିସ୍ (ମହମ୍ମଦଙ୍କୁ ଦେଖିଥିବା ବା ତାଙ୍କଠାରୁ ଶୁଣିଥିବା ବ୍ୟକ୍ତିଙ୍କ ଦ୍ୱାରା ପ୍ରଚଳିତ କଂବଦନ୍ତୀ), (୩) ଇଜ୍‌ମାଉଲ୍‌ଉମ୍ମତ୍

(ମହମ୍ମଦଙ୍କ ପ୍ରଧାନ ଶିଷ୍ୟ ବା ଖଲିଫାମାନଙ୍କ କୃତ ଟୀକା) ଓ (୪) କିୟାସ୍ (ନିଜର ବିବେଚନାମୂଳକ ମୀମାଂସା) କୁ ମାନନ୍ତି । ସୁନ୍ନି ସଂପ୍ରଦାୟ ସିଆ ସଂପ୍ରଦାୟର ବହୁଦିନ ପରେ ପ୍ରତିଷ୍ଠିତ ହୋଇଥିଲା । ସୁନ୍ନିମାନଙ୍କ ଧର୍ମଶାସ୍ତ୍ର ଅନୁସାରେ ମୃତ ବ୍ୟକ୍ତିର ସଗୋତ୍ର (agnate) ବଂଶଧର ବିଦ୍ୟମାନ ଥିଲେ ଅସଗୋତ୍ର (cognate) ବଂଶଧରମାନେ ତାଙ୍କ ସମ୍ପତ୍ତିର ଉତ୍ତରାଧିକାରୀ ହୋଇ ନ ପାରନ୍ତି । କିନ୍ତୁ ଏହି ନିୟମ ମୃତବ୍ୟକ୍ତିଙ୍କ ପିତା, ମାତା, ପୁତ୍ର, କନ୍ୟା, ସ୍ୱାମୀ ବା ସ୍ତ୍ରୀଙ୍କ ପ୍ରତି ଖଟେ ନାହିଁ ।

ସୁନ୍ନି ସଂପ୍ରଦାୟ ପୁଣି ୪ଟି ଉପସଂପ୍ରଦାୟରେ ବିଭକ୍ତ; ଯଥା—୧ । ହନାଫି, ୨ । ସାଫେଇ, ୩ । ମାଲିକ୍, ୪ । ହାନ୍ବଲ । ଭାରତର ସୁନ୍ନିମାନେ ପ୍ରଧାନତଃ ହନାଫି ଶ୍ରେଣୀଭୁକ୍ତ ।

ସିଆମାନେ ନମାଜ ପଢ଼ିଲାବେଳେ (ପ୍ରାର୍ଥନା କଲାବେଳେ) ଦୁଇ ହାତକୁ କଡ଼ପଟରେ ତଳକୁ ଲମ୍ବାନ୍ତି; କିନ୍ତୁ ସୁନ୍ନିମାନେ ଦୁଇ ହାତକୁ ଆଗରେ ଯୋଡ଼ିକରି ନମାଜ୍ ପଢ଼ନ୍ତି । ହନାଫି ଓ ସାଫେଇମାନେ ନମାଜ୍ ପଢ଼ିଲାବେଳେ ଆମୀନ୍ (ଇଂ. Amen=ତଥାସ୍ତୁ) ଶବ୍ଦ ଉଚ୍ଚାରଣ କରନ୍ତି ।

ଅଳ୍ପଦିନ ହେଲା ଭାରତୀୟ ସୁନ୍ନିମାନଙ୍କ ମଧ୍ୟରେ ଘଇର୍ ମୁକାଲ୍ଲିଦନ୍ ନାମକ ଅନ୍ୟ ଗୋଟିଏ ଉପସଂପ୍ରଦାୟ ସୃଷ୍ଟି ହୋଇଅଛି । ଏମାନଙ୍କୁ ଅନ୍ୟ ମୁସଲମାନ୍‌ମାନେ 'ଓହାବି' ନାମରେ ଡାକନ୍ତି ।

ଗୁଜରାଟର ଧନ୍ଧୁକା ତାଲୁକରେ ରାଜପୁତ୍‌ମାନେ ମୁସଲମାନ୍ ଧର୍ମ ଗ୍ରହଣ କରି ସୁନ୍ନି ସଂପ୍ରଦାୟର 'ବୋରା' ଓ ବ୍ରୋଚ୍ ଜିଲ୍ଲାର ରାଜପୁତ୍‌ମାନେ 'ଗେରସିଆ' ଶ୍ରେଣୀଭୁକ୍ତ ହୋଇଅଛନ୍ତି ।] ଦେ. ବି (ନାମ)—୧ (ସ୍ତ୍ରୀ) ସୁନାମଣି ନାମ୍ନୀ ସ୍ତ୍ରୀର ନାମ—1. (Feminine) Name for calling Sunāmaṇi. ୨ । (ପୁଂ) ସୁନାମଣି ନାମକ ପୁରୁଷର ଡାକ ନାମ—2. (Masculine) Name for calling Sunāmaṇi.

**ସୁନିଆ(ଆଁ)**—ଦେ. ବି (ସଂ. ସ୍ୱର୍ଣ୍ଣ) – ସ୍ୱର୍ଣ୍ଣମୁଦ୍ରା; ମହର; ମୋହର — **Suniā(āṅ)** Gold coin. (ଉ—ସହସ୍ରେ ସୁନିଆରେ ଗୀତାଟାଏ
মোহর **স্বর্ণমুদ্রা** ଅଛି, ସବୁ ରତ୍ନମାନଙ୍କେ ଭୂଷିତ ହୋଇଛି ।
କୃଷ୍ଣସିଂହ. ମହାଭାରତ, ସଭା ।
ନାଟର ଯେନ ଯେବେ ଅସିବ ସୁନିଅ, ତେବେ ତାକୁ ଦେଖିଲେ ହୋଇବ ମୁଁ କଅଁ । କୃଷ୍ଣସିଂହ. ମହାଭାରତ. ଶାନ୍ତି ।]

ବୈଦେ. ବି (ଅ. ସନ୍-ଏ-ନଓ=ନବବର୍ଷ)—ଭାଦ୍ରମାସ ଶୁକ୍ଳ ଦ୍ୱାଦଶୀ; ଓଡ଼ିଆ ସନର ଓ ପୁରୀ ରାଜାଙ୍କ ଅଙ୍କର ପରିବର୍ତ୍ତନ ଦିବସ—The 11th of the light-fortnight of Bhādra month. [ଦ୍ର—ଏ ଦିନ ଓଡ଼ିଶାର ରାଜା ଓ ଜମିଦାରଙ୍କ ସିରସ୍ତାରେ ନୂତନ ଅଙ୍କ ବା ସନ ଆରମ୍ଭ ହୁଏ । ରାଜା ଓ ଜମିଦାରମାନେ ସେ ଦିନ ସିରସ୍ତା ପୂଜା କରନ୍ତି ଏବଂ ପ୍ରଜାମାନେ ଜମିଦାରଙ୍କୁ ଭେଟି ଓ ସଲାମି ଦିଅନ୍ତି । ବର୍ତ୍ତମାନ 'ପ୍ରଜାମଣ୍ଡଳ'ର ଅଧିକାରୀମାନେ ଏ ଭେଟି ଓ ସଲାମି ବନ୍ଦ କରିବାକୁ ସଂକଳ୍ପ କରି ଅଛନ୍ତି । ପୂର୍ବତନ ରାଜାଙ୍କ ନାମାଙ୍କିତ ସ୍ୱର୍ଣ୍ଣମୁଦ୍ରା (ସୁନିଆଁ) ବନ୍ଦ ପାଇ ନୂଆ ରାଜାଙ୍କ ନାମାଙ୍କିତ ନୂତନ ମୁଦ୍ରା ଚଳିବା ବିଧିରୁ ବୋଧ ହୁଏ ଏହି ଶବ୍ଦର ସୃଷ୍ଟି ହୋଇଅଛି ('ସନ' ତଳେ ନୋଟ ଦେଖ) ।

ଓଡ଼ିଆ ସନର ଓ ପୁରୀ ରାଜାଙ୍କ ଅଙ୍କର ମାସର ଓ ଦିବସର ଗଣନା ସୌର ମାସର ଗଣନ କ୍ରମେ ହୁଏ; କିନ୍ତୁ ସନ ବା ଅଙ୍କ ଚାନ୍ଦ୍ର ଭାଦ୍ରମାସର ଦ୍ୱାଦଶୀଠାରୁ ଗଣନା କରାଯାଏ । ଏହି 'ସୁନିଆ' ପୂଜା ଓ ଗଣନା ଓଡ଼ିଶାର ବିଶେଷତ୍ୱ । ଏହା ଓଡ଼ିଆମାନଙ୍କ ନବ ବର୍ଷାରମ୍ଭ ।] ୩ । (ପୁଂ) ସୁନାମଣି ନାମକ ପୁରୁଷର ଡାକ ନାମ—3. (Masculine) Name for calling a person named Sunāmaṇi.

**ସୁନିଆ(ଆଁ) ପୂଜା** ଦେ. ବି—ରାଜା ଓ ଜମିଦାରମାନେ ସୁନିଆ ଦିନ
**Suniā(āṅ) pūjā** ବେଦୀରେ ବସି ଗଣପତି, ସରସ୍ୱତୀ, ଲକ୍ଷ୍ମୀ
পুণ্যাহ ଆଦି ଦେବତାଙ୍କୁ ଓ ସିରସ୍ତାକୁ ଯେଉଁ ପୂଜା କରନ୍ତି—A ceremonial worship done by a Rājā or Zamindar on the Suniā day. [ଦ୍ର—ପ୍ରତ୍ୟେକ ଜମିଦାର ବା ରାଜା ସେ ଦିନ ଗୋଟିଏ ପୁରୁଣା ସ୍ୱର୍ଣ୍ଣମୁଦ୍ରା ବା ଟଙ୍କା (ଯାହା ବଂଶାନୁକ୍ରମେ ସଞ୍ଚିତ ହୋଇଥାଏ ଓ ସୁନିଆ ଦିନ ପୂଜା କରାଯାଏ)କୁ ମଧ୍ୟ ପୂଜା କରନ୍ତି ।]

**ସୁନିଆ(ଆଁ) ବେଦୀ**—ଦେ. ବି—ଯେଉଁ ବେଦିକା ଉପରେ ବସି ସୁନିଆଁ
Suniā(āṅ)bedī ଦିନ ରାଜା ଓ ଜମିଦାରମାନେ
পুণ্যাহবেদী ସିରସ୍ତା ପୂଜା କରନ୍ତି—An altar on which the Rājās and Zamindars perform the Suniā ceremony.

**ସୁନିଆ(ଆଁ) ଭେଟି**—ଦେ. ବି—ରାଜ୍ୟର ପ୍ରଜା ଓ କାରିଗରମାନେ
Suniā(āṅ) bheṭi ରାଜାଙ୍କୁ ସୁନିଆ ଦିନ ଦେବା ଧନ ଓ
পুণ্যাহভেট ଦ୍ରବ୍ୟାଦି ଉପଢୌକନ—Present of articles made by a rayat or artisan or subject to a Rājā or Zamindar on the Suniā day.

**ସୁନିଆ(ଆଁ) ସଲାମି**—ଦେ. ବି—ରାଜକର୍ମଚାରୀ ଓ ପ୍ରଜାମାନେ ସୁନିଆ ଦିନ
Suniā(āṅ) salāmi ରାଜାଙ୍କୁ ଯେଉଁ ଧନ ଉପଢୌକନ
পুণ্যাহসেলামি ବା ନଜରାନା ଦିଅନ୍ତି—A present or nuzzerana given to a Rāja by the officers and subjects on the Suniā day.

ସୁନିଦ୍ର—ସଂ. ବଣ ପୁଂ (ସୁ+ନିଦ୍ରା+ଅ; ବହୁବ୍ରୀହି)—ଉତ୍ତମରୂପେ
Sunidra ଶୋଇଥିବା; ଗାଢ଼ ନିଦ୍ରିତ—Well slept
(ସୁନିଦ୍ରିତ—ଅନ୍ୟରୂପ) (ସୁନିଦ୍ରା, ସୁନିଦ୍ରିତା—ସ୍ତ୍ରୀ)

ସୁନିଦ୍ରା—ସଂ. ବ—ସ୍ୱପ୍ନ ବା ଜାଗରଣରହିତ ନିଦ୍ରା; ଗାଢ଼ ନିଦ୍ରା—
Sunidrā Sound sleep; sleep undisturbed by dream or waking. ସଂ. ବଣ. ସ୍ତ୍ରୀ—ସୁନିଦ୍ରର ସ୍ତ୍ରୀଲିଙ୍ଗ—Feminine of Sunidra.

ସୁନିନଦ—ସଂ. ବଣ. ପୁଂ—ସୁନ୍ଦର ନାଦକାରୀ (ହି. ଶା)—
Suninada Emitting a good or sweet sound.
(ସୁନିନଦା—ସ୍ତ୍ରୀ)

ସୁନିପୁଣ—ସଂ. ବଣ. ପୁଂ—ସୁଦକ୍ଷ; ଅତି ନିପୁଣ ବା ଚତୁର—
Sunipuna Very skilful; expert.
(ସୁନିପୁଣା—ସ୍ତ୍ରୀ) (ସୁନିପୁଣତା—ବ)

ସୁନି ମୁଗ—ଦେ. ବ—୧ । ସୁନା ମୁଗ (ମୁଗ ଦେଖ)—1. A species
Suni muga of Mung pulse. ୨ । ହାଞ୍ଚି ମୁଗ;
সোনা মুগ सोना मूग (ମୁଗ ଦେଖ)—2. A kind of Mung pulse.

ସୁନିୟମ—ସଂ. ବ—୧ । ଉତ୍ତମ ନିୟମ—1. A good rule.
Suniyama ୨ । ସୁଶୃଙ୍ଖଳା—2. Good method.

ସୁନିର୍ଦ୍ଦିଷ୍ଟ—ସଂ. ବଣ—୧ । ସୁସ୍ଥିର—1. Well fixed. ୨ ।
Sunirddishṭa ଉତ୍ତମରୂପେ ନିର୍ଦ୍ଦିଷ୍ଟ ବା ସ୍ଥିରୀକୃତ—2. Well ascertained. ୩ । ନିତ୍ୟ—3. Perpetual.

ସୁନିର୍ଦ୍ଧାରିତ—ସଂ. ବଣ—୧ । ଉତ୍ତମରୂପେ ସ୍ଥିରୀକୃତ—1. Well
Sunirddhārita ascertained. ୨ । ସୁନିଶ୍ଚିତ (ଦେଖ)—2. Sunischita (See)

ସୁନିର୍ମଳ—ସଂ. ବଣ—ଅତି ନିର୍ମଳ—
Sunirmala Very clear or pellucid.

ସୁନିର୍ମିତ—ସଂ. ବଣ—୧ । ଉତ୍ତମରୂପେ ନିର୍ମିତ—1. Well made.
Sunirmita ୨ । ସୁନ୍ଦରରୂପେ ପ୍ରସ୍ତୁତ—2. Nicely made.

ସୁନିର୍ଯ୍ୟା(ର୍ଯ୍ୟା)ସା—ସଂ. ବ—ଜିଙ୍ଗିଣୀ ବୃକ୍ଷ (ଭାବପ୍ରକାଶ); ଶାଲ୍ମଳୀ-
sunirjā(rjyā)sā ଜାତୀୟ ବୃକ୍ଷବିଶେଷ—A tree;
গুলহলি Odina Wodier. [ବୃ—ଏହା
जिंगिनी ମଧୁର-କଷାୟ-କଟୁ-ରସ, ଉଷ୍ଣବୀର୍ଯ୍ୟ,
ଅନ୍ୟ ସଂସ୍କୃତ ନାମ— ବ୍ରଣଶୋଧକ । ଏହା ବ୍ରଣ, ହୃଦ୍‌ରୋଗ,
ଝିଙ୍ଗିକା, ଝିଙ୍ଗିକା, ଝିଙ୍ଗୀ, ବାୟୁ ଓ ଅତିସାର ନାଶକ; ଶାଲ ଓ
ପ୍ରମୋଦନୀ, ସୁଡ଼ମଣ୍ଡଳିକା ଶାଲର ଅନ୍ୟାନ୍ୟ ଗୁଣ ଏ ବୃକ୍ଷରେ ଅଛି ।]

ସୁନିଶ୍ଚୟ—ସଂ. ବଣ (ସୁ+ନିଶ୍ଚୟ)—ସୁନିଶ୍ଚିତ (ଦେଖ)
Sunischaya Sunischita (See)

ସୁନିଶ୍ଚିତ—ସଂ. ବଣ—୧ । ଅତି ନିଶ୍ଚିତ—1. Very sure or
Sunischita certain; absolutely certain. ୨ । ସୁନିର୍ଦ୍ଧାରିତ—2. Well ascertained. ସଂ. ବ. ବୁଦ୍ଧବିଶେଷ (ହିକାଣ୍ଡଶେଷ)—Name of a Buddhist saint.

ସୁନିଷ—ସଂ. ବ—ସୁନିଷଣ୍ଣକ (ଦେଖ)
Sunisha Sunishaṇṇaka (See)

ସୁନିଷଣ୍ଣକ—ସଂ. ବ (ସୁ+ନି+ସଦ୍ ଧାତୁ+କର୍ତ୍ତୃ. କ+ସ୍ୱାର୍ଥେ-କ
Sunishaṇṇaka ସୁ+ନିଷଣ୍ଣକ=ସୁନିଦ୍ରାକାରକ;
(ସୁନିଷଣ୍ଣ—ଅନ୍ୟରୂପ) (ଏହା ନିଦ୍ରାକାରକ) ସୁନିଷୁନିଆ (ଦେଖ) Sunishuniā (See)

ସୁନିଷୁନିଆ(ଆଁ)—ଦେ. ବ (ସଂ. ସୁନିଷଣ୍ଣକ)—ଜଳଜନ୍ମଜାତ
.Sunishuniā(āṅ) ଅମ୍ଳସ୍ୱାଦ ଶାକବିଶେଷ—
সুষুনিশাক Marsilea Quadrifolia; a
चट्टंगन, शेपत्ति, चोपतिआ, potherb. [ ବୃ—ଏହାର
सुसना, शिरियारी ଡେଙ୍ଗ ଖୁବ୍ ପତଳ ସରୁ ଓ ଲମ୍ବ ।
ମ. କୁରୁଡ଼ୁଆବଡେ ଡେଙ୍ଗରେ ୪ଟି ପତ୍ର ବା ପାଖୁଡ଼ା
ଫା. ଅଂଜଗ୍, କୁଖେମେ ଅଂଜଗ୍ ଥାଏ । ସନ୍ଧ୍ୟା ହେଲେ ପତ୍ର ମୁଦ୍ରି
ଆ. ଅଂଜର, ବକୁଲଲ୍ ଅଂଜର୍ ହୋଇଯାଏ । ଏହି ଶାଗ ପୋଖରୀ
ତେ. ସୁନିସନ୍ନୀ ମକେଶାକମୁ ଓ ନଈ ଆଦିର କୂଳରେ ଓଦା
ସଂ. ପର୍ଯ୍ୟାୟ—ସୁନିଷ, ସୁନିଷଣ୍ଣ, ଓ କାଦୁଅ ଭୂଇଁରେ ଜନ୍ମେ
ସୁନିଷଣ୍ଣକ, ଶିତିବାର, ଶିତିବାରକ, ଏବଂ ଏହାକୁ ଖାଇଲେ ସୁନିଦ୍ରା
ସ୍ୱସ୍ତିକ, ଶ୍ରୀବାରକ, ସୂଚୀପତ୍ର ହୁଏ ।
ପର୍ଣ୍ଣିକ, କୁକ୍କୁଟ, ଶିଖୀ, ଚତୁଷ୍ପତ୍ରୀ, ଏହା ଶୀତବୀର୍ଯ୍ୟ, ମଳ-
ବନ୍ଧକ, ଗୁରୁ ସଂଗ୍ରାହକ, ଅବଦାହୀ, ଲଘୁ,
କଷାୟ, ମଧୁର, ରୁକ୍ଷ, ଅଗ୍ନିଦୀପକ, ରୁଚିକର, ବାଜୀକର, ମେଧାଜନକ, ରସାୟନ ଓ ନିଦ୍ରାକାରକ ।
ଏହା ମେଦୋରୋଗ, ଜ୍ୱର, ଶ୍ୱାସ, କୁଷ୍ଠ, ମେହ, ଭ୍ରମ ଓ ଦାହ ରୋଗରେ ଉପକାରୀ । ଏହା ରକ୍ତ ପିତ୍ତ ରୋଗୀ ପକ୍ଷରେ ବିଶେଷ ଅପକାରକ ।)

ସୁନିଷ୍ଟପ୍ତ—ସଂ. ବଣ (ସୁ+ନିର+ତପ୍ ଧାତୁ=ଗରମ କରିବା+
Sunishṭapta କର୍ତ୍ତୃ ତ; ସନ୍ଧି ଯୋଗୁଁ 'ତ' ସ୍ଥାନରେ 'ଟ' ଆଦେଶ)—ଅତି ଉତ୍ତପ୍ତ; ଅତିଶୟ ଗରମ—Very hot; scorched; much heated.

ସୁନିସ୍ତ୍ରିଂଶ—ସଂ. ବ—ଧାରୁଆ ଖଣ୍ଡା (ହି. ଶ)—
Sunistrimśa A sharp sword.

ସୁନୀଚ—ସଂ. ବଣ—ଅତ୍ୟନ୍ତ ନୀଚ—
Sunīcha Very low.
(ସୁନୀଚତା[ତ୍ୱ]—ବ)

ସୁନୀତ—ସଂ. ବ—୧ । ବୁଦ୍ଧିମତ୍ତା (ହି. ଶ)—1. Intelligence.
Sunīta ୨ । ନୀତିମତ୍ତା (ହି. ଶ)—2. Morality. ୩ । (ନାମ) ସୁବଳଙ୍କ ପୁତ୍ର ସ୍ୱବିଶେଷ—3. Name of a son of king Subala.

ସୁନୀତ—ସଂ. ବ (ସୁ+ନୀ ଧାତୁ+ଭାବ କ୍ତ)—୧ । ଉତ୍ତମ ନୀତ—
Suniti 1. Good morals. ୨ । ଉତ୍ତମ ନିୟମ—2.Good rule. ୩ । ନ୍ୟାୟସଙ୍ଗତ ଆଇନ୍—3. Just law. ୪ । ଉତ୍କୃଷ୍ଟ ଉଦ୍ଦେଶ୍ୟ; ସାଧୁ ଉଦ୍ଦେଶ୍ୟ—4. Good policy. ୫ । ଉତ୍ତମ ଆଚରଣ—5. Good conduct. ୬ । ଉତ୍ତମ ବ୍ୟବହାର—6 Good manners. ୭ । (ବହୁବ୍ରୀହି) (ନାମ)—ଉତ୍ତାନପାଦ ରାଜାଙ୍କର ପ୍ରଥମା ସ୍ତ୍ରୀ; ଧ୍ରୁବଙ୍କ ମାତା ('ଧ୍ରୁବ' ଦେଖ)—7. Name of the mother of Dhruba. ୮ । ଶିବ (ହି. ଶ)—8. Siba. ସଂ. ବଣ ( ବହୁବ୍ରୀହି; ସୁ=ଉତ୍ତମ ଅଟେ ନୀତ ଯାହାର)—ଉତ୍ତମ ନୀତବିଶିଷ୍ଟ; ନୀତମାନ୍—Of good morals or policy or conduct.

ସୁନୀତ ନନ୍ଦନ—ସଂ. ବ (୬ଷ୍ଠୀ ତତ୍)—ଧ୍ରୁବ ( ଦେଖ )
Suniti nandana Dhruba ( See )

ସୁନୀଥ—ସଂ. ବଣ. ପୁଂ ( ସୁ+ନୀ ଧାତୁ+କର୍ତ୍ତୃ. ଥ )—ଧର୍ମଶୀଳ
Sunitha (ଜଣାଦ କୋଷ)—Pious. ସଂ. ବ—(ସୁନୀଥା—ସ୍ତ୍ରୀ) ବ୍ରାହ୍ମଣ (ସଂଷିପ୍ତ ସାର)—1. A Brāhmana. ୨ । (ନାମ) କୃଷ୍ଣଙ୍କର ଏକ ପୁତ୍ର—2. Name of a son of Krushna. ୩ । ଶିଶୁପାଳଙ୍କ ଏକ ନାମ—3. A name of Sisupāla.

ସୁନୀଳ—ସଂ. ବଣ—ଅତ୍ୟନ୍ତ ନୀଳ—Very blue. ସଂ. ବ—୧ ।
Sunila ଲାମଜ୍ଜକ (ଶବ୍ଦ କଳ୍ପଦ୍ରୁ); ଗନ୍ଧବେଣା; ଧଳସି—(ସୁନୀଳା—ସ୍ତ୍ରୀ) 1. A kind of scented grass; Juncus Odoratus. ୨ । ଦାଡ଼ିମ (ଶବ୍ଦକଳ୍ପଦ୍ରୁ)—2. Pomegranate.

ସୁନୀଳକ—ସଂ. ବ—୧ । ନୀଳ ଭୃଙ୍ଗରାଜ (ଶବ୍ଦକଳ୍ପଦ୍ରୁ)—1. The
Sunilaka blue species of "Bhrungarāja." ୨ । ନୀଳ ରତ୍ନ; ନୀଳା ( ଶବ୍ଦକଳ୍ପଦ୍ରୁ )—2. Sapphire.

ସୁନୀଳା—ସଂ. ବ (ସୁନୀଳ+ଆ)—୧ । ଅତସୀ—1. Linseed. ୨ ।
Sunilā ବନ୍ଧୁକାନ୍ତା; ନୀଳ ଅପରାଜିତା—2. The blue clitoris flower and creeper. ୩ । ଜବଣୀ ତୃଣ (ଶବ୍ଦକଳ୍ପଦ୍ରୁ);ରଜିକା ତୃଣ—3. A kind of grass.

ସୁନୁ—ସଂ. ବ [ସୁ+ନୌ; ଶୋଭନା ନୌ=ନୌକା ଯହିଁରେ
Sunu (ଦୁର୍ଗାଦାସ)]—ଜଳ—Water. ପ୍ରାଦେ (ବାଲେଶ୍ୱର) ବ—ମତ୍ସ୍ୟ ବିଶେଷ—A kind of fish.

ସୁନୁତ୍—ବୈଦେ. ବ (ଅ. ସୁନ୍ନତ୍)—ସୁନତ୍ ( ଦେଖ )
Sunut Sunat ( See )

ସୁନୁତ—ଦେ. ବଣ—ସୁନତ ( ଦେଖ )
Sunuti (ସୁନୁତଅ—ଅନ୍ୟରୂପ) Sunati ( See )

ସୁନୁରି—ପ୍ରାଦେ. (ଗଡ଼ଜାତ) ବଣ—ସୁନାଲି—
Sunuri Golden.

ସୁନୁରି କନ୍ୟାରି—ପ୍ରାଦେ. (ଗଡ଼ଜାତ) ବ—ହଳଦିଆ କନିଅର (ଗଛ
Sunuri kanyāri ଓ ଫୁଲ)—Yellow or bastard oleander (tree and flower ).

ସୁନୁରି କନିଅର—ପ୍ରାଦେ (ଗଞ୍ଜାମ) ବ—କନିଅର (ଦେଖ)
Sunuri kaniara Kaniara (See)

ସୁନୁଲି—ଦେ. ବଣ (ସଂ. ସ୍ୱର୍ଣ୍ଣ)—ସୁନାଲି (ଦେଖ)
Sunuli Sunāli (See)

ସୁନୁଷୁନିଆ(ଆଁ)—ଦେ. ବ (ସଂ. ସୁନିଷଣ୍ଣକ)—ସୁନିଷୁନିଆ (ଦେଖ)
Sunushuniā(āñ) Sunishuniā (See)

ସୁନୃତ—ଦେ. ବଣ ( ସଂ. ସୂନୃତ)—ସତ୍ୟ ଓ ପ୍ରିୟ—True and
Sunruta amiable. (ଉ—ସୁନୃତ ବାକ୍ୟ ସୁଧାଧାର ମନକୁ ହୃଦୀ ନୃପବର—ଜଗନ୍ନାଥ ଭାଗବତ ।) [ ଦ—ସଂସ୍କୃତ ଭାଷାରେ 'ଋତ' ଶବ୍ଦର ଅର୍ଥ ସତ୍ୟ, ନ+ଋତ='ଅନୃତ' ଶବ୍ଦର ଅର୍ଥ ମିଥ୍ୟା । ହିତୋପଦେଶରେ ବିଷ୍ଣୁଶର୍ମା ('ବାକ୍‌ଚତୁର୍ଥୀ ଚ ସୁନୃତା') 'ସୁନୃତା' ଶବ୍ଦ ସତ୍ୟ ଓ ପ୍ରିୟ କଥା ଅର୍ଥରେ ପ୍ରୟୋଗ କରିଅଛନ୍ତି । ଏହିଭଳି ପ୍ରୟୋଗ ପ୍ରାମାଦିକ ପରି ମନେହୁଏ । କୌଣସି ଅଭିଧାନରେ 'ସୁନୃତ' ଶବ୍ଦର ପ୍ରୟୋଗ ଦେଖାଯାଏ ନାହିଁ ।

ସୁନେଇ ପୁତଲି—ପ୍ରାଦେ ( ସମ୍ବଲପୁର ) ବ—ଖଟାଶପତନ—
Sunei putali Civet cat; Viverra Gunda.

ସୁନେଇ—ଦେ. ବ. ସ୍ତ୍ରୀ ( ସଂ. ସ୍ୱର୍ଣ୍ଣ )—୧ । ସ୍ତ୍ରୀମାନଙ୍କ ନାମ—
Sunei 1. A name given to females. (ଉ—ସୁନେଇ ବେଲଚି ମାକଡ଼,ରୁପେଇ କାଟେ କାପଡ଼—କାହାଣୀର ଗୀତ ।) ୨ । ସୁନାମଣିନାମ୍ନୀ ସ୍ତ୍ରୀର ଡାକନାମ-2. Name for calling a woman named Sunāmani.

ସୁନେତ୍ର—ସଂ. ବ—ସୁନ୍ଦର ନୟନ—Nice or beautiful eye.
Sunetra ସଂ. ବଣ. ପୁଂ (ବହୁବ୍ରୀହି)'ସୁନ୍ଦରନୟନବିଶିଷ୍ଟ (ସୁନେତ୍ରା, ସୁନେତ୍ରୀ-ସ୍ତ୍ରୀ) Having graceful eyes.

ସୁନେପାଳି—ସଂ. ବ ( ବୈଦ୍ୟକ )—ପିଣ୍ଡଖର୍ଜୁରବିଶେଷ; ଛୁଆଡ଼—
Sunepāli A species of sweet date; the fruit of Phoenia Dactylifera. (ଦ୍ର—ଏହା ଭାରତର ପଶ୍ଚିମ ସଂ. ପର୍ଯ୍ୟାୟ—ମୃଦୁଲା, ଦେଶମାନଙ୍କରେ ଜନ୍ମେ । ଏହା ଜଳସ୍ଥାନଫଳା ମଧୁର ରସ, ମଧୁର ବିପାକ, ଶୀତବୀର୍ଯ୍ୟ ସ୍ନିଗ୍ଧ, ଗୁରୁପାକ, ତୃପ୍ତିକର, ତୁଟଦଳକ, ପୁଷ୍ଟିକାରକ, ବଳବର୍ଦ୍ଧକ, ଶୁକ୍ରଜନକ ଏବଂ ଶ୍ରାନ୍ତି, ଭ୍ରାନ୍ତି, ଦାହ, ମୂର୍ଚ୍ଛା ଓ ରକ୍ତ ପିତ୍ତ ରୋଗରେ ଉପକାରକ ।]

ସୁନେଲି—ଦେ. ବଣ (ସଂ. ସ୍ୱର୍ଣ୍ଣ)—ସୁନାଲି (ଦେଖ)
Suneli Sunāli (See)

सुनालि सुनहली

ସୁନୌ—ସଂ. ବଣ (ବହୁବ୍ରୀହି; ସୁ+ନୌ)—ସୁନ୍ଦର ନୌକାବିଶିଷ୍ଟ
Sunau (ଶବ୍ଦ କଳ୍ପଦ୍ରୁମ)—Having good or excellent boats.

**ସୁନ୍ତୁ(ନ୍ଥୁ) ପୁନ୍ତୁ(ନ୍ଥୁ)**—ଦେ· ବଣ ସଂ. ସଂତପ୍ତ)—ସନ୍ତପନ୍ତ (ଦେଖ)
Suntu(nthu)puntu(nthu) Santapanta (See)

**ସୁନ୍ଥା**--ଦେ. ବି (ସଂ. ସୀମନ୍ତ)—ସିଁଥି (ଦେଖ)
Sunthā Siṅthi (See)

**ସୁନ୍ଥା କାଟିବା**—ଦେ· କ୍ରି—କେଶକୁ ପାନିଅନ୍ତ୍ରାରା ଦୁଇଫାଳ କରି ମଝିଣ
Sunthā kāṭibā ଆବଦ୍ଧାର ଚକ୍କଣ କରି ସୀମନ୍ତ ରଚନା କରିବା—
ସୁନ୍ଥା ନକା(କେ)ଢ଼ିବା } —ଅନ୍ୟରୂପ
ସୁନ୍ଥ ପାଡ଼(ରି)ବା }
सीँथिकाटा
सिंथ फारना
To part the hair in the middle into braid with the comb and causing the hair to stick to the head with wax or pomatum.

**ସୁନ୍ଥାଣ(ଣି)**—ଦେ. ବି (ସଂ. ସୀମନ୍ତ)—୧ । ସିଁଥି (ଦେଖ)—
Sunthāṇa(ṇi) 1. Siṅthi (See) ୨ । ମୁଣ୍ଡତଳର ତକିଆ—
सिथान बालिस्ता 2. Pillow for the head.

[ ଢ଼—ବାରୁ ଶ୍ରମ ଯହିଁରେ ସୁଯୋଧନ ପ୍ରାଣ, କଥକୁ ନେଲ ତାହା କରଣ ସୁନ୍ଥାଣ । କୃଷ୍ଣସିଂହ. ମହାଭାରତ. ବନ ।]

**ସୁନ୍ଥାଣି**—ଦେ. ବି—ଶବଦାହାର୍ଥ ଚୁଲିର ବା ଅଗ୍ନିବେଶର ତଳେ ଅଡ଼
Sunthāṇi କାଗରେ ଦିଆଯିବା କାଠର ଦୁଇଟି ଗଣ୍ଡି—Two
सिथानी big pieces or logs of wood laid at the
मानिकथंब base of a funeral pyre.

**ସୁନ୍ଥାଣି କଣ୍ଟା**—ପ୍ରାଦେ (ଗଡ଼ଜାତ)—ଧରମ କଣ୍ଟା (ଦେଖ)
Sunthāṇi kanṭā Dharama kanṭā (See)

**ସୁନ୍ଥାଣି କାଠି**—ପ୍ରାଦେ (ଗଞ୍ଜାମ ଓ ଘୁମସର)—ଶଗଡ଼ର ଜୁଆଳ—
Sunthāṇi kāṭhi The yoke of a bullock cart.

**ସୁନ୍ଥାଣୁ**—ଦେ. ବି—ତକିଆ—Pillow. [ ଢ଼—ପେଣ୍ଡା କସା-
Sunthāṇu ଟିକିରେ ଶେଯକୁ ପକାଇ । ଶୋଇଲେ ମୁଣ୍ଡ ଟିକି
सिथान्‌ बालिस्ता ସୁନ୍ଥାଣୁଟି ଦେଇ—କୃଷ୍ଣସିଂହ. ମହାଭାରତ. ଶଲ୍ୟ । ]

**ସୁନ୍ଦ୍ ( ଧାତୁ )**—ସ—ଶୋଭା ପାଇବା—
Sund ( root ) The look fair.

**ସୁନ୍ଦ**—ସଂ. ବି ( ସୁନ୍ଦ୍ ଧାତୁ+କର୍ତ୍ତୃ. ଅ )—୧ । (ନାମ) ରାକ୍ଷସବିଶେଷ;
Sunda ତାଡ଼କା ରାକ୍ଷସୀର ସ୍ୱାମୀ; ମାରୀଚ ରାକ୍ଷସର ପିତା—
1. Name of the husband of the demoness Tārdakā and father of Māricha. ( ଦ୍ର—ଏହାର ପିତା ନିସୁନ୍ଦ ଓ ସହୋଦର ଭାଇର ନାମ ଉପସୁନ୍ଦ । ଏ ଦୁଇଭାଇ ବଣାମିତ୍ରଙ୍କ ଯଜ୍ଞରେ ବିଘ୍ନ କରୁଥିଲେ । ରାମଚନ୍ଦ୍ର ଏହାଙ୍କୁ ପରାସ୍ତ କରିଥିଲେ । ତିଲୋତ୍ତମା ଅପ୍ସରାକୁ ଲାଭ କରିବା ପାଇଁ ଦୁହେଁ ପ୍ରତିଦ୍ୱନ୍ଦ୍ୱୀ ହୋଇ ପରସ୍ପର ଯୁଦ୍ଧ କରି ମଲେ—ହି. ଶ । ) ୨ । ( ନାମ ) ରାମଚନ୍ଦ୍ରଙ୍କ ସଙ୍ଗେ ଲଙ୍କା ଯାଇଥିବା ବାନର-ଯୋଦ୍ଧାବିଶେଷ —2, Name of one of the monkey warriors who accompanied Rāma to Ceylon. ୩ । ବିଷ୍ଣୁ ( ହି. ଶ )—3.Bishṇu.

**ସୁନ୍ଦର**—ସଂ. ବିଣ (ସୁନ୍ଦ୍ ଧାତୁ + କର୍ତ୍ତୃ. ଅର; କିମ୍ବା ସୁ+ଦୃ ଧାତୁ=
Sundara ଅଦର କରିବା+କର୍ମ. ଅ; ଯାହାକୁ ଅତି ଅଦର (ସୁନ୍ଦରୀ—ସ୍ତ୍ରୀ) କରାଯାଏ; ନ ଅଗମ)—୧ । ମନୋହର; ରମଣୀୟ; (ଅସୁନ୍ଦର, କୁତ୍ସିତ—ବିପରୀତ) ମନୋରମ; ରୁଚିକର; ମନୋ-
ଏହି ଶବ୍ଦର ପର୍ଯ୍ୟାୟ—
ରୁଚିର, ଚାରୁ, ସୁଷମ, ମନୋଜ୍ଞ, ସାଧୁ, ଶୋଭନ, କାନ୍ତ, ରୁଚ୍ୟ, ମନୋରମ, ମନୋରମ୍ୟ, ମନୋହର, ମଞ୍ଜୁ, ମଞ୍ଜୁଳ, ସୌମ୍ୟ, ଭଦ୍ରକ, ରମଣୀୟ, ରମଣୀୟକ, ରାମଣୀୟକ, ବନ୍ଧୁର, ପେଶଳ, ପେଷଳ, ବାମ, ରାମ, ଅଭିରାମ, ନନ୍ଦିତ, ସୁମନ, କଲ୍ୟ, ହାରି, ଅଭିରୂପ, ହବ୍ୟ, ସୁରୂପ, ରୁଚକର, ସୁଶ୍ରୀ ।
ମୋହକର; ପ୍ରିୟଦର୍ଶନ—1. Charming; beautiful; nice; handsome; sweet. ୨ । ଉତ୍କୃଷ୍ଟ—2. Excellent ୩ । ପ୍ରୀତି ଉତ୍ପାଦକ—3. Pleasing. ୪ । ଅଚ୍ଛା; ଉତ୍ତମ—4. Good. [ଦ୍ର—ସୁନ୍ଦର ଶବ୍ଦର ଅର୍ଥ ମନୋରମ । ଯାହା ରୂପ ଦ୍ୱାରା ଚକ୍ଷୁକୁ ତୃପ୍ତ କରେ, ଯାହା ଶବ୍ଦ ଦ୍ୱାରା କର୍ଣ୍ଣକୁ, ସ୍ୱାଦ ଦ୍ୱାରା ଜିହ୍ୱାକୁ, ସ୍ପର୍ଶ ଦ୍ୱାରା ସ୍ପର୍ଶେନ୍ଦ୍ରିୟକୁ, ବାସ ଦ୍ୱାରା ନାସିକାକୁ, ସୁଗୁଣ ଦ୍ୱାରା ମନକୁ ତୃପ୍ତ କରେ, ତା ପ୍ରତି 'ସୁନ୍ଦର' ଶବ୍ଦ ପ୍ରୟୋଗ କରାଯାଏ । ସୁନ୍ଦରର ଭିନ୍ନ ଭିନ୍ନ ଭାବବ୍ୟଞ୍ଜକ କେତେକ ପ୍ରକାର 'ମନୋରମତା'ର ଭାବ ନିମ୍ନଲିଖିତ ପଦରେ ପ୍ରକାଶିତ ହୋଇଅଛି—

"ଟୋକାଙ୍କୁ ସୁନ୍ଦର ବସନ୍ତ ପଞ୍ଚମୀ,
ଟୋକୀଙ୍କି ସୁନ୍ଦର ନେତ ।
ବୁଢ଼ୀଙ୍କି ସୁନ୍ଦର ଶ୍ରୀହି ଦାମୋଦର,
ବୁଢ଼ାଙ୍କୁ ସୁନ୍ଦର ଶୀତ ।"

"କହି ଜାଣିଲେ କଥା ସୁନ୍ଦର
ବାନ୍ଧି ଜାଣିଲେ ମଥା ସୁନ୍ଦର ।"]

ସଂ. ବି—୧ । (ପୁଂ) (ସୁ=ଉତ୍ତମ ରୂପେ+ଦୃ ଧାତୁ= ବିଦାରଣ କରିବା+କର୍ତ୍ତୃ. ଅ; ଯାହା ମନକୁ ବିଦାରି ପକାଏ)—ମଦନ; କାମଦେବ—1. Cupid. ୨ । ବୃକ୍ଷ ବିଶେଷ; ସୁନ୍ଦରୀ କାଠର ଗଛ; ଘାଟଲାଦ ବର୍ଗର ବନ୍ୟ ତରୁ—2. A tree; Heritiera Minor. [ ଦ୍ର—ଏହାର କାଠ ନାଲି ଓ ଦୃଢ଼ । ଏହା ଗଙ୍ଗାନଦୀର ମୁହାଣ, ବ୍ରହ୍ମ, ମାଳୟ ଦ୍ୱୀପର ସମୁଦ୍ରକୂଳରେ ଜନ୍ମେ; ଏଥିର କାଠ ଜାଳେଣି କାଠରୂପେ କଲିକତାରେ ବିକ୍ରୀ ହୁଏ ଓ ଭଲ ନଉଲ । ଗଙ୍ଗା ମୁହାଣର ଭୂମି ଏହି ଗଛର ଆଧିକ୍ୟ ଯୋଗୁଁ 'ସୁନ୍ଦରବନ' ନାମ ଧାରଣ କରିଅଛି । ] ୩ । ରାମାୟଣର ପଞ୍ଚମ ଖଣ୍ଡ; ସୁନ୍ଦର କାଣ୍ଡ—3. Title of the fifth book of the Rāmāyaṇa. ୪ । ଲଙ୍କାର ପର୍ବତବିଶେଷ ( ହି. ଶ )—4. Name of a
सुन्दर
सुन्दर
mountain of Ceylon. ଗ୍ରା· ବି—୧ । ଶୋଭା—1. Grace. ( ଢ଼—କେ କହୁ ତାହାଙ୍କ ସୁନ୍ଦର—ଚାରୀ· ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ।) ୨ । ସୌନ୍ଦର୍ଯ୍ୟ—2. Beauty. ( ଢ଼—ଦଶ ଦାସ ଜନ ବ୍ରହ୍ମବେଳେ ।

ସୁନ୍ଦରେ ତ୍ରିଭୁବନ ଗଞ୍ଜେ—ଜଗନ୍ନାଥ. ଭାଗବତ । )
ସିଂନ୍ଦୁର ୩ । ( ସଂ. ସିନ୍ଦୂର ) ସିନ୍ଦୂର ( ଦେଖ )—Sindūra
सिंदूर ( See ) ଦେ. କ୍ରି. ବିଣ ( ସଂ, ସୁନ୍ଦରଂ )—୧ । ସୁନ୍ଦରରୂପେ—1. Beautifully; nicely, ୨ । ଉତ୍କୃଷ୍ଟରୂପେ—2. Excellently. ୩ । ସହଜରେ—3. Easily. [ ଉ—ଅମେ ଭଲ ଜଣ ସୁନ୍ଦର ଏ କୋଠିରିରେ ଚଳାଚଳ ହୋଇ ପାରିବା । ]

ସୁନ୍ଦର କଜ(ଜ୍ଜ, ଜ୍ୱ, ଜ୍ଜ୍ୱ)ଳ—ଗ୍ରା· ବି—ସିନ୍ଦୂର କଜଳ ( ଦେଖ )
Sundara kaja (jja, jwa, jjwa)la Sindūra kajala ( See )

ସୁନ୍ଦର କାଣ୍ଡ—ସଂ. ବି—ରାମାୟଣର ପଞ୍ଚମକାଣ୍ଡ (ଲଙ୍କାର ସୁନ୍ଦର ପର୍ବତର
Sundara kāṇḍa ନାମରୁ ଏହି ନାମ)—Title of the 5th book of the Rāmāyaṇa.

ସୁନ୍ଦର ଗୟା—ପ୍ରାଦେ· ( ପୁରୀ ) ବି—ବଡ଼ କଣ୍ଟକହୀନ ବାଉଁଶବିଶେଷ,
Sundara gayā ସୁନ୍ଦରଗୟାଇ ବାଉଁଶ—A species of bamboo; Bambusa Vulgaris ( Haines ).
ସୁନ୍ଦର ଗଇଁଆ / ସୁନ୍ଦର ଗୋଇଁ } ଅନ୍ୟରୂପ

ସୁନ୍ଦର ଗୁଣ୍ଡି—ଦେ· ବି—କମଳା ଗୁଣ୍ଡି ( ଦେଖ )
Sundara guṇḍi Kamalā guṇḍi ( See )

ସୁନ୍ଦରତା(ତ୍ୱ)—ସଂ· ବି ( ସୁନ୍ଦର+ଭାବ· ତା, ତ୍ୱ ସୌନ୍ଦର୍ଯ୍ୟ )—
Sundaratā(twa) ସୌନ୍ଦର୍ଯ୍ୟ--Beauty; grace.

ସୁନ୍ଦରପଣ—ଦେ· ବି—ସୌନ୍ଦର୍ଯ୍ୟ—Beauty. [ ଉ—ସୁନ୍ଦରପଣର
Sundarapaṇa ଠାକୁର ନାହିଁ । କହି ଗଡ଼ିଥିଲା ସାପ ଗୁଡ଼ୁଛି
सुन्दर पना सुन्दरपन; सुन्दरताई; सुन्दरापा ଲଗାଇ—ଉଇ ]
( ସୁନ୍ଦରପଣିଆ—ଅନ୍ୟରୂପ )

ସୁନ୍ଦରପଦା—ଦେ· ବି—ଭୁବନେଶ୍ୱର ନିକଟବର୍ତ୍ତୀ ଗ୍ରାମବିଶେଷ—
Sundarapadā Name of a village near Bhubaneswara. [ଦ୍ର—ଏ ଗ୍ରାମ ସ୍ୱର୍ଗତ ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣଙ୍କ ଜନ୍ମସ୍ଥାନ ।]

ସୁନ୍ଦର ବଣ(ନ)—ଦେ· ବି ( ନାମ )—( ଏଠାରେ ସୁନ୍ଦର କାଠର
Sundara baṇa(na) ବହୁ ବୃକ୍ଷ ଥିବାରୁ ଏହି ନାମ ) ଗଙ୍ଗା-
सुन्दर बन ନଦୀର ମୁହାଣରେ ନିମ୍ନ ଭୂମିରେ ଥିବା ବିସ୍ତୃତ ଅରଣ୍ୟ—
सुन्दर बन The Sunderbans, the deltaic forest at the mouth of the Ganges. [ଦ୍ର—ଗଙ୍ଗା ( ହୁଗୁଳି ) ଓ ବ୍ରହ୍ମପୁତ୍ର ( ପଦ୍ମା ) ମିଳିତ ହୋଇ ମେଘନା ମୁହାଣ ନାମ ଧାରଣ କରି ବଙ୍ଗୋପସାଗରରେ ପଡ଼ିଥିବା ଅଞ୍ଚଳକୁ ସୁନ୍ଦରବଣ ବୋଲାଯାଏ । ଏହା ଚବିଶ ପରଗନା, ଖୁଲନା ଓ ବାଖରଗଞ୍ଜ ଜିଲ୍ଲାମାନଙ୍କ ଦକ୍ଷିଣରେ ଅବସ୍ଥିତ । ଏ ନଦୀଦ୍ୱୟ ବହୁ ଶାଖା ହୋଇ ସମୁଦ୍ରରେ ପଡ଼ିଅଛି । ସୁନ୍ଦରବଣ ପଶ୍ଚିମରେ ହୁଗୁଳିନଦୀର ମୁହାଣଠାରୁ ପୂର୍ବରେ ମେଘନାର ମୁହାଣ ପର୍ଯ୍ୟନ୍ତ ବିସ୍ତୃତ । ଏଥିର ବୃହତ୍ତମ ଦୈର୍ଘ୍ୟ ( ପୂର୍ବ-ପଶ୍ଚିମ ) ୧୬ ମାଇଲ ଓ ବୃହତ୍ତମ ପ୍ରସ୍ଥ ( ଉତ୍ତର-ଦକ୍ଷିଣ ) ୮୧ ମାଇଲ ଏବଂ କ୍ଷେତ୍ରଫଳ ୬୫୬୬ ବର୍ଗମାଇଲ । ଏହି ଅଞ୍ଚଳର ଶାସନ ଭାରତଙ୍କ କମିଶନରଙ୍କଠାରେ ନ୍ୟସ୍ତ । ଏହା ବିସ୍ତୀର୍ଣ୍ଣ ଜଳାଭୂମି ଓ ଅରଣ୍ୟାଗ୍ନ ଅଟେ । ଏ ଅଞ୍ଚଳର ସ୍ଥାନେ ସ୍ଥାନେ ପରିତ୍ୟକ୍ତ ବସତବାଟୀ, ବନ୍ଧାଘାଟ ଓ ଇଟା କାମର ଧ୍ୱଂସାବଶେଷ ଦେଖାଯାଏ; କିନ୍ତୁ ଏହିର ବହୁ ଇତିହାସ ଅଜ୍ଞାଯାଏ ମିଳ ନାହିଁ । ଏହି ବିସ୍ତୀର୍ଣ୍ଣ ଭୂଖଣ୍ଡ ସମୁଦ୍ର ଓ ନଦୀ ଜଳଦ୍ୱାରା ଧୌତ ହୋଇ ସମୁଦ୍ରବାହିତ ବାଲୁକାସ୍ତରପାତଦ୍ୱାରା କ୍ରମଶଃ ଉଚ୍ଚ ହେଉଅଛି । ଏ ଅଞ୍ଚଳ ଛୋଟ ବଡ଼ ବହୁ ଦ୍ୱୀପ ଓ ଉପଦ୍ୱୀପରେ ପୂର୍ଣ୍ଣ । ଏହି ଭୀଷଣ ଅରଣ୍ୟାଗାରରେ ବ୍ୟାଘ୍ର, ବନ୍ୟମହିଷ, ବରାହ, ଗଣ୍ଡାର, ନାନାଜାତୀୟ ମୃଗ, ପକ୍ଷୀ, ବିଷଧର ସର୍ପ ଓ ଜଳରେ ମତ୍ସ୍ୟ, କୁମ୍ଭୀର, ହାଙ୍ଗର ପ୍ରଭୃତି ଅଛନ୍ତି । ବହୁ ଲୋକ ଜଙ୍ଗଲ କାଟି ଓ ନିମ୍ନ ଜମିକେ ବନ୍ଧ ପକାଇ ସହସ୍ର ସହସ୍ର ଏକର୍ ଜମି ଅବାଦ କରିଅଛନ୍ତି ଓ ଜମି ପାଇଁ ଗଭର୍ଣ୍ଣମେଣ୍ଟଙ୍କୁ ୪ ଲକ୍ଷ ଟଙ୍କା ରାଜସ୍ୱ ମିଳୁଅଛି । ଜଳାଭୂମିରେ ଲୋକେ ଖୁଣ୍ଟ ପୋତି ଓ ଉଚ୍ଚ ମୃତ୍ତିକାସ୍ତୂପ ସ୍ଥାପନ କରି ଘର କରୁଅଛନ୍ତି । ଏ ଅଞ୍ଚଳରେ ସୁନ୍ଦରୀ ନାମକ ବୃକ୍ଷ କାଠ ବହୁ ପରିମାଣରେ ମିଳେ—ବିଶ୍ୱକୋଷ । ]

ସୁନ୍ଦର ବଦନ—ସଂ. ବି ( କର୍ମଧା )—ସୁନ୍ଦର ମୁଖ—Beautiful
Sundara badana face. ସଂ. ବିଣ. ପୁଂ (ବହୁବ୍ରୀହି)—
ସୁନ୍ଦର ମୁଖ / ସୁନ୍ଦରାନନ } ଅନ୍ୟରୂପ ସୁନ୍ଦର ମୁଖବିଶିଷ୍ଟ—Having a beautiful face.
( ସୁନ୍ଦରବଦନା, ସୁନ୍ଦରମୁଖୀ, ସୁନ୍ଦରାନନା—ସ୍ତ୍ରୀ. ବିଣ )

ସୁନ୍ଦରବଦନୀ—ଦେ. ବିଣ· ସ୍ତ୍ରୀ (ସଂ· ସୁନ୍ଦର ବଦନା) —ସୁନ୍ଦରମୁଖୀ ସ୍ତ୍ରୀ—
Sundara badanī ( a woman ) Having a beautiful face.
सुन्दर बदनी सुन्दर बदनी ( ସୁନ୍ଦରମୁହୀଁ—ଅନ୍ୟରୂପ )

ସୁନ୍ଦରବର—ସଂ. ବିଣ—ଅତି ସୁନ୍ଦର—Very beautiful.
Sundarabara [ ଉ—ସୁନ୍ଦରବର ତୋ ଭ୍ରମର । ତୁଳସୀ ମାଳ ଲମ୍ବେ ଉର—ଜଗନ୍ନାଥ· ଭାଗବତ । ] ସଂ. ବି—ସୁନ୍ଦର ଜ୍ୱାଇଁ—A beautiful bridegroom.

ସୁନ୍ଦର ମାଧୋ(ଧେ)ଇ—ଦେ: ବି—ଏକପ୍ରକାର ସରୁ ଧାନ—
Sundara mādho(dhe)i A species of fine paddy.

ସୁନ୍ଦରମ୍ମନ୍ୟ—ସଂ. ବିଣ. ପୁଂ (ସୁନ୍ଦରଂ+ମନ୍ ଧାତୁ+କର୍ତ୍ତୃ ଖ)—ସେ
Sundarammanya ଆପଣାକୁ ସୁନ୍ଦର ବୋଲି ମନେକରେ—
(ସୁନ୍ଦରଂମନ୍ୟ—ଅନ୍ୟରୂପ) Thinking one's self as beautiful.

ସୁନ୍ଦର ଶାଳି—ପ୍ରାଦେ (ସିଂହଭୂମ) ବି—ଏକପ୍ରକାର ଧାନ—
Sundara śāli A species of paddy.

ସୁନ୍ଦରା(ରି) (ଇତ୍ୟାଦି)—ଦେ.ବି—୧ । (ସଂ. ସିନ୍ଦୂର)-ସିନ୍ଦୁରା ଇତ୍ୟାଦି
Sundarā(ri)ato (ଦେଖ)—1. Sindūrā etc (See).
୨ । ପାଇକ ଓ ଖଣ୍ଡାଏତମାନଙ୍କର ବଂଶୋପାଧିବିଶେଷ—

2. A family title of Khandāyats and Paiks. ୩। ଶୂଦ୍ରଜାତିବିଶେଷ—3. A kind of Sūdra caste.

ସୁନ୍ଦରାନନ୍ଦ—ଦେ· ବି. ପୁଂ— ଲୋକଙ୍କ ନାମ—
Sundarānanda A name given to males.

ସୁନ୍ଦର କାଣ୍ଡ—ଦେ. ବି (ସଂ ସୁନ୍ଦର କାଣ୍ଡ)—ରାମାୟଣର ସାତକାଣ୍ଡରୁ
Sundarā kanda ଏକତମ—One of the seven cantos of the Rāmāyaṇa.

ସୁନ୍ଦରୀ(ରି) ସୁନା—ଦେ. ବିଣ ସ୍ତ୍ରୀ. (ବ୍ୟଙ୍ଗ)—ସ୍ତ୍ରୀଲୋକଙ୍କପ୍ରତି ବ୍ୟଙ୍ଗରେ
Sundarā(ri)sunā ପ୍ରଯୁକ୍ତ ଶବ୍ଦ—A term of
সুন্দর সোনা सुन्दरी सोना gibe applied to females.

ସୁନ୍ଦରି—ଦେ· ବି—୧। ସୁନ୍ଦର ସଂ. ବି ୨ [ ଦେଖ ]—
Sandari 1. Sundara Sans 2 (See)
সুন্দরি सुन्द्रि ୨। ନଦୀ ମୁହାଣ ଅଞ୍ଚଳରେ ଜନ୍ମିବା ଏକପ୍ରକାର ଗଛ—2. A kind of tree; Heritiera Minor. [ଦ୍ର—ଏହା ୩୦।୪୦ ଫୁଟ ଉଚ୍ଚ ହୁଏ; ଏହାର କାଠ ନାଲି। ଏହା କଲିକତାରେ ଜାଳେଣି କାଠରୂପେ ବ୍ୟବହାର ହୁଏ; ଏହା ସୁନ୍ଦରବଣରେ ବେଶି ଜନ୍ମେ।] ସଂ. ସ୍ତ୍ରୀ (ସମ୍ବୋଧନ)—'ସୁନ୍ଦରୀ'ର ସମ୍ବୋଧନ—Vocative case of Sundarī.

ସୁନ୍ଦରିଆ—ଦେ· ବିଣ—୧। ସିନ୍ଦୁରିଆ (ଦେଖ)—1. Sindūriā
Sundariā (See) ୨। ସୁନ୍ଦର—2. Beautiful.
সুন্দর सुंदरिआ ୩। ସୁନ୍ଦର ଓ କ୍ଷୁଦ୍ର—3. Nice and small.

ସୁନ୍ଦରିଗୁଆଁ—ଦେ. ବି—ବନ୍ୟବୃକ୍ଷବିଶେଷ—
Sundariguān A wild tree; Sonneratia Acida.

ସୁନ୍ଦରିମା—ସଂ· ବି [ସୁନ୍ଦର+ଭାବେ ଇମନ୍]—ସୁନ୍ଦରତ୍ୱ; ସୌନ୍ଦର୍ଯ୍ୟ—
Sundarimā Beauty. [ଉ—ବଧୂଙ୍କ. ଉନ୍ମେ ଜୃମ୍ଭଣୀ ସୁନ୍ଦରିମା ହାଣ—ଭଞ୍ଜ. ବୈଦେହୀଶବିଳାସ।] [ଦ୍ର—ସଂସ୍କୃତ ଭାଷାରେ ସୌନ୍ଦର୍ଯ୍ୟ ଅର୍ଥରେ ସୁନ୍ଦରିମା ଶବ୍ଦର ବ୍ୟବହାର ଦେଖା ଯାଏ ନାହିଁ।]

ସୁନ୍ଦରୀ—ସଂ.ବିଣ· ସ୍ତ୍ରୀ—ସୁନ୍ଦରର ସ୍ତ୍ରୀଲିଙ୍ଗ-Feminine of Sundara.
sundari ସଂ. ବି—୧। ରୂପଲାବଣ୍ୟସମ୍ପନ୍ନା ସ୍ତ୍ରୀ [ଭରତ] ସୁରୂପା ସ୍ତ୍ରୀ—1. A beautiful woman. ୨। ସୁନ୍ଦର ନାମକ ତରୁ [ ସୁନ୍ଦର ସଂ· ବି. ୨ ଦେଖ]—2. A tree; Heritiera Minor. ୩। ହରିଦ୍ରା [ଶବ୍ଦଚନ୍ଦ୍ରିକା]; ହଳଦୀ—3. Turmeric. ୪। ତ୍ରିପୁରସୁନ୍ଦରୀ; ଦଶମହାବିଦ୍ୟାଅନ୍ତର୍ଗତ ଦେବୀବିଶେଷ [ତନ୍ତ୍ରସାର] 4. One of the ten Tantric forms of Durgā or Dasamahābidyā. ୫। ତନ୍ତ୍ରୋକ୍ତ ଯୋଗିନୀବିଶେଷ—5. An attendant of Pārbati who is worshipped by persons for the attainment of bliss. [ଦ୍ର—ସଦ୍‌ଗୁରୁଙ୍କ ଉପଦେଶ ଅନୁସାରେ ତନ୍ତ୍ରୋକ୍ତ ପ୍ରଣାଳୀରେ ଏ ଯୋଗିନୀଙ୍କ ପୂଜା ଅର୍ଦ୍ଧ କରାଯାଏ । ଉକ୍ତ ଘୃତ ଉପକରଣ ଓ ତେଲ ଓ ସମିଧ ଦ୍ୱାରା ଏବଂ ଯୋଗିନୀଙ୍କ ମନ୍ତ୍ରରେ ହୋମ କଲେ ଯଥାକ୍ରମେ ବାଗୀଶତ୍ୱଲାଭ, ତ୍ରିଭୁବନ ବଶୀକରଣ, ପରରାଜ୍ୟ ଓ ଦୁର୍ଗ ଜୟ, ମୃତ୍ୟୁଭୟ ନିବାରଣ, ଧନଲାଭ, ଶତ୍ରୁଉନ୍ମୂଳନ, ଦୁଷ୍ପାପନାଶ ହୁଏ । ଅକ୍ଷମାଳା ଦ୍ୱାରା ନିର୍ଦ୍ଦିଷ୍ଟସଂଖ୍ୟକ ଜପ କଲେ ସ୍ୱର୍ଗମର୍ତ୍ତ୍ୟର ନରନାରୀ ବଶୀଭୂତ ହୁଅନ୍ତି; ଗୋରୋଚନା ପ୍ରଭୃତି ଦ୍ୱାରା ଚକ୍ର ଅଙ୍କିତ କରି ଜପ କଲେ ଇପ୍ସିତା ରମଣୀ ବଶୀଭୂତା ହୁଅନ୍ତି ଓ ସାଧକ କାମଦେବଙ୍କ ପରି ରୂପବାନ୍, ସର୍ବସୌଭାଗ୍ୟଯୁକ୍ତ ଓ ସର୍ବଲୋକବଶକାରୀ ହୁଅନ୍ତି । ପାଞ୍ଚପ୍ରକାର ସୁନ୍ଦରୀଙ୍କ ପୂଜା ପାଇଁ ପାଞ୍ଚ ପ୍ରକାର ମନ୍ତ୍ର ତନ୍ତ୍ରରେ ନିର୍ଦ୍ଦିଷ୍ଟ ଅଛି । ପଞ୍ଚ ସୁନ୍ଦରୀଙ୍କ ନାମ—ଭୂଷା, ସୃଷ୍ଟି, ସ୍ଥିତି, ସଂହୃତି ଓ ନିରାଖ୍ୟା । (ବିଶ୍ୱକୋଷ) ଏହାଙ୍କୁ ସାଧନ କଲେ ସାଧକ ଧନଭୋଗ, କାମଭୋଗ, ଇଷ୍ଟଭୋଗରେ ତୃପ୍ତିଲାଭ କରେ।] ୬। ଅର୍ଦ୍ଧସମବୃତ୍ତିବିଶେଷ (ବୃତ୍ତରତ୍ନାକର ବଙ୍ଗଳା ଅଭିଧାନ)—6. Name of a part of a circle. ଦେ. ବି· ସ୍ତ୍ରୀ—୧। ସ୍ତ୍ରୀ-
সুন্দরী सुन्द्री ଲୋକଙ୍କ ନାମ—1. A name given to females. ୨। ଶ୍ରଦ୍ଧା, ରମା, ଶ୍ୟାମା, ବାମା ଆଦି ଶବ୍ଦ ସଙ୍ଗେ ଯୁକ୍ତ ହୋଇ ସ୍ତ୍ରୀମାନଙ୍କୁ ଦିଆଯିବା ନାମ-2. A name added to Ramā, Shyāmā, Śraddhā, Bāmā etc. and given to females, ୩। ଦୃଢ଼ କାଷ୍ଠ ବୃକ୍ଷବିଶେଷ—3. A hard wood tree; Heritiera Minor. [ ଦ୍ର—ଏ ବୃକ୍ଷ ସୁନ୍ଦରବଣ, ବ୍ରହ୍ମଦେଶ ଓ ମାଲୟ ଉପଦ୍ୱୀପର ସମୁଦ୍ରକୂଳରେ ଜନ୍ମେ । ଏହାର କାଠ ନାଲି । ଏହାର ପ୍ରଧାନ ମୂଳ ଖୁବ୍ ବଢ଼େ; କିନ୍ତୁ 'ମରେଇ' ନାମକ ଏକ ସାମୁଦ୍ରିକ ଜାତ ଗଛର ଚେରକୁ କାଟି ପକାଇବାରୁ ଏ ଗଛ ସମୁଦ୍ରକୂଳକୁ ମାଡ଼ିଯାଏ ନାହିଁ । ଏଥିପାଇଁ ଚଳମାନରେ ଢଗ ଅଛି—

"ସୁନ୍ଦର ଗଛ କହେ
ମୁଁ ସାଗରକେ ସମୁଦ୍ର ଟପିବି ।
ମରେଇ କହେ—
ମୁଁ ନ ଥିଲେ ।"

ଏ ଗଛର କାଠ ଦୃଢ଼ ଥିବାରୁ ଏଥିରେ ସଗଡ଼, ଗାଡ଼ି, ଘରର ଉପକରଣ ଓ ସାଜସଜ୍ଜା ତିଆରି ହୁଏ । ଏ କାଠ ଭଲ ଜାଳେଣି କାଠରୂପେ ବ୍ୟବହୃତ ହୁଏ । (ସୁନ୍ଦର ସଂ· ବି. ୨ ଦେଖ ।)

ସୁନ୍ଦରୀ ଚମ୍ପା—ଦେ.ବି—ସ୍ତ୍ରୀଲୋକଙ୍କ ପ୍ରତି ପ୍ରଯୁକ୍ତ ବ୍ୟଙ୍ଗୋକ୍ତିବିଶେଷ—
Sundarī champā A term applied to females
সুন্দরী চাঁপা सुन्द्री चंपा in gibe.

ସୁନ୍ଦରେଶ୍ୱର—ସଂ· ବି—ଶିବମୂର୍ତ୍ତିଭେଦ ( ଶବ୍ଦକୋଷ )—
Sundareśwara An idol of Śiba.

'ସାଧାରଣ ଲୋକେ ଅପର ପୃଷ୍ଠାରେ ସ୍ୱତନ୍ତ୍ର ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ଦେଖିଲେ 'ଗାଢ଼'ଖୋଜିବେ; 'ମୂଢ' ନ ମିଳିଲେ 'ମୃଢ଼' ଖୋଜିବେ; 'ବଧୂ' ନ ମିଳିଲେ 'ବଧୂ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍'ଦେଖିବେ

ସୁନ୍ଦା —ଦେ· ବି—ମଥାଘଷା; ନାନା ଔଷଧି ଦ୍ରବ୍ୟ ମିଶ୍ରିତ କୁଟା ମସଲା —
Suudā A scented mixture for washing the hair.

ସୁନ୍ଦାତ୍ମଜ—ସଂ· ବି ( ୬ଷ୍ଠୀ ତତ୍; ସୁନ୍ଦ+ଅତ୍ମଜ )—ମାରୀଚ; ରାକ୍ଷସ-
Sundātmaja ବିଶେଷ—A demon. [ ଉ—ବୋଲେ ସୁନ୍ଦାତ୍ମଜ ଭୁ ରାଜାଧିରାଜ କି ଦେବ ତୋତେ ମୁଁ—ଭଞ୍ଜ, ବୈଦେହୀଶବିଳାସ । ] [ ଦ୍ର—ଏ ସୀତା ହରଣ ସମୟରେ ରାବଣର ପ୍ରରୋଚନାରେ ସୁବର୍ଣ୍ଣ ମାୟାମୃଗ ରୂପ ଧାରଣ କରିଥିଲା । ଏ ତାଡ଼କାର ପୁତ୍ର । ]

ସୁନ୍ଦାରି—ପ୍ରାଦେ. ( ଲଣ୍ଡଣ ) ବି—ସୁନାରି ବଣିଆ—
Sundārī Goldsmith.

ସୁନ୍ଦେରି—ଗ୍ରା. ( ଇତର ) ବିଣ. ସ୍ତ୍ରୀ ( ସଂସ୍କୃତ ସୁନ୍ଦରୀର ମୂର୍ଖ ଲୋକଙ୍କ
Sunderī ଅଶୁଦ୍ଧ ଉଚ୍ଚାରଣ )—ସୁନ୍ଦରର ସ୍ତ୍ରୀଲିଙ୍ଗ—Feminine of Sundara. ଗ୍ରା. ( ଇତର ) ବି. ସ୍ତ୍ରୀ—
স্যুন্দরী
সুনরী ସୁରୂପା ସ୍ତ୍ରୀ—A beautiful woman.

ସୁନ୍ନତ୍(ଇତ୍ୟାଦି)—ବୈଦେ. ବି (ଆ. ସୁନ୍ନତ୍)—ସୁନତ୍ ଇତ୍ୟାଦି (ଦେଖ)
Sunnat (etc) Sunat etc ( See )

ସୁନ୍ନି—ବୈଦେ· ବି ( ଅ. ସୁନ୍ନୀ )—ସୁନି ( ଦେଖ )
Sunni Suni ( See )

ସୁନ୍ୱନ୍—ସଂ.ବିଣ,ପୁଂ (ସୁ· ଧାତୁ+କର୍ତ୍ତି.ବତ୍; ସୁନ୍ୱତ୍ ଶବ୍ଦ ୧ମା.୧ବ)—
Sunwan ଯଜ୍ଞକର୍ତ୍ତା; ଯଜ୍ୱୀ ( ସିଦ୍ଧାନ୍ତ କୌମୁଦୀ )—A performer of Vedic sacrifice.

ସୁନ୍ଭ୍ (ଧାତୁ)—ସଂ.—ଦୀପ୍ତି ବା ଶୋଭା ପାଇବା—
Sun-bh ( root ) To shine.

ସୁପ୍—ବୈଦେ· ବି ( ଇଂ· ସୁପ୍ )—ସୋରୁଆ; ମାଂସର ଝୋଳ—
Sup सूप सोरबा Soup.

ସୁପ୍—ସଂ—୧ । ( ବ୍ୟାକରଣ ) ( ୭ମୀ ବିଭକ୍ତି ବହୁବଚନର ପ୍ରତ୍ୟୟ
Sup ସୁ )—ଲିଙ୍ଗୋତ୍ତର ପ୍ରଯୁଜ୍ୟମାନ ପ୍ରତ୍ୟୟବିଶେଷ—1. Some inflections used to denote the 7th case plural. ୨ । ( ବ୍ୟାକରଣ ) ଏକବିଂଶତି ବିଭକ୍ତିର ସଂଜ୍ଞା—2. The definition of the 21 inflections of nouns and adjectives. [ ଦ୍ର—ଏ ଶବ୍ଦର ବ୍ୟବହାର ସଂସ୍କୃତ ବ୍ୟାକରଣରେ ଚଳେ ।
ପାଣିନି ଆଦି ବ୍ୟାକରଣର ମତରେ ଶବ୍ଦର ୧ମା ଠାରୁ ୭ମୀ ବିଭକ୍ତି ପର୍ଯ୍ୟନ୍ତ ୧ ବଚନ, ଦ୍ୱିବଚନ ଓ ବହୁବଚନରେ ଯେଉଁ ୨୧ଟି ପ୍ରତ୍ୟୟ ହୁଏ ତାହାକୁ ସୁପ୍ ବୋଲାଯାଏ । ପ୍ରଥମା ବିଭକ୍ତି ଏକବଚନରେ ପ୍ରତ୍ୟୟ 'ସୁ' ଓ ୭ମୀ ବିଭକ୍ତି ବହୁବଚନରେ ପ୍ରତ୍ୟୟ 'ସୁପ୍'ର ଶେଷ ଅକ୍ଷରଦ୍ୱାରା ଏ ପଦ ଗଢ଼ା ହୋଇଅଛି । ସଂସ୍କୃତର ଶବ୍ଦରେ ସୁପ୍ ପ୍ରତ୍ୟୟ ଓ ଧାତୁରେ 'ତିଙ୍' ପ୍ରତ୍ୟୟ ନ ହେଲେ ପଦ ହେବ ନାହିଁ । ]

ସୁପ୍ତି—ଦେ. ବି ( ସଂ. ସ୍ୱପ୍ ଧାତୁଜ ସୁପ୍ତ )—ସପାଟି; ଶେଯ; ଗଦି—
Sup-ti Cushion or quilt used as bed.
शेज सेज ( ସୁପ୍ତି—ଅନ୍ୟରୂପ )

ସୁପ୍‌ତିଙନ୍ତ—ସଂ. ( ଦ୍ୱନ୍ଦ୍ୱ )—ସୁପ୍ ପ୍ରତ୍ୟୟ ଓ ତିଙନ୍ତ ପ୍ରତ୍ୟୟ—
Sup-tiṅanta The inflections of nouns and of verbs.

ସୁପକ୍ୱ—ସଂ. ବିଣ—୧ । ଉତ୍ତମରୂପେ ପାଚିଥିବା—1. Fully ripe.
Supakwa ୨ । ଉତ୍ତମରୂପେ ରନ୍ଧା ହୋଇଥିବା—2. Well
( ସୁପକ୍ୱତା—ବି ) cooked. ୩ । ଉତ୍ତମରୂପେ ସିଝିଥିବା—3. Well boiled. ୪ । ଉତ୍ତମରୂପେ ପରିଣତ—4. Fully mature. ସଂ. ବି—ସୁଗନ୍ଧ ଅମ୍ବ—Sweet-scented mango.

ସୁପକ୍ଷ—ସଂ· ବିଣ ( ବହୁବ୍ରୀହି; ସୁ+ପକ୍ଷନ୍ )—ସୁନ୍ଦର ପକ୍ଷବିଶିଷ୍ଟ—
Supaksha ( ସୁପକ୍ଷା—ସ୍ତ୍ରୀ ) Having fine feather.

ସୁପକ୍ଷିଣ—ଦେ. ବି ( ସଂ. ସୁ+ପକ୍ଷିନ୍ )—ଉତ୍ତମ ଶର—Excellent
Supakshiṇa arrow [ ଉ—ବଳସ୍ତ ଦାଶରଥି ବଳରେ
तीव उत्तम शर दाशरथी छेदले ସୁପକ୍ଷିଣ ପେଷି ସେ—ଭଞ୍ଜ· ବୈଦେହୀଶବିଳାସ । )

ସୁପକ୍ଷ୍ମା—ସଂ. ବିଣ ( ପୁଂ ଓ ସ୍ତ୍ରୀ ) ( ବହୁବ୍ରୀହି; ସୁ+ପକ୍ଷ୍ମନ୍ )—ସୁନ୍ଦର
Supakshmā ପକ୍ଷ୍ମ ବିଶିଷ୍ଟ—Having fine eyelids.

ସୁପଚ—ସଂ. ବିଣ ( ସୁ+ପଚ୍ ଧାତୁ+କର୍ମ. ଅ )—ଲଘୁପାକ—
Supacha Easily digestible. ସଂ· ବି (+କର୍ତ୍ତି. ଅ)—ଉତ୍କୃଷ୍ଟ ପାଚକ—A good cook.

ସୁପଟ—ପ୍ରାଦେ. ( ପାଟଣା ) ବିଣ—ସୁନ୍ଦର—Beautiful. ସଂ. ବି.
Supaṭa (କର୍ମଧା)—ସୁନ୍ଦର ବସ୍ତ୍ର (ହ୍ର· ଶ)—Fine cloth.
(ସୁପଟା—ସ୍ତ୍ରୀ) ସଂ. ବିଣ· ପୁଂ (ବହୁବ୍ରୀହି)—ସୁନ୍ଦର ବସ୍ତ୍ର ବିଶିଷ୍ଟ (ହ୍ର. ଶ)—Having good cloth.

ସୁପଣ(ଣେ, ନ, ନେ, ଲ, ଲେ)ଖା—ଗ୍ରା. ବି ( ସଂ. ଶୂର୍ପଣଖା )—
Supaṇa(ṇe, na, ne, la, le)khā ଶୂର୍ପଣଖା ( ଦେଖ )
Sūrpaṇakhā ( See )

ସୁପତ୍ର—ସଂ. ବିଣ (ବହୁବ୍ରୀହି)—୧ । ସୁନ୍ଦର ପତ୍ରଯୁକ୍ତ—1. Having
Supatra beautiful leaves. ୨ । ସୁନ୍ଦର ପକ୍ଷଯୁକ୍ତ—2. Having nice wings. ୩ । ସୁନ୍ଦର ବାହନଯୁକ୍ତ—3. Having excellent conveyance. ସଂ. ବି—୧ । ତେଜପତ୍ର ( ଶବ୍ଦ ଚନ୍ଦ୍ରିକା )—1. Cassia Cinnamon leaves. ୨ । ଅଦିତ୍ୟ ପତ୍ର (ରାଜନିର୍ଘଣ୍ଟ)—2. A kind of plant. ୩ । ପଲ୍ଲିବାହ ତୃଣ (ରାଜନିର୍ଘଣ୍ଟ)—3. A kind of grass. ୪ । ଇଙ୍ଗୁଦୀ (ହ୍ର. ଶ)—4. Balanites Roxburghii. ୫ । ପୌରାଣିକ ପକ୍ଷିବିଶେଷ (ହ୍ର. ଶ)—5. Name of a mythological bird.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଢ଼ | ଇୟ୍ | ଉଅ | ଢ |
| ୨ | ଈ | ଊ | ରୁ | ଲୁ | ୟେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ | ଇଅ | ଢ଼ | ନ |

ସୁପତ୍ରକ—ସଂ. ବ—ଶିଗ୍ରୁ (ବୃକ୍ଷ ବର୍ଗୀୟ); ସଜନା—
Supatraka The Moringa tree.

ସୁପତ୍ରା—ସଂ. ବ (ବୈଦ୍ୟକ)—୧ । ରୁଦ୍ରଜଟା (ବୃକ୍ଷବର୍ଗୀୟ) (ଦେଖ)
Supatrā 1. Rudrajaṭā ( See ) ୨ । ଶତାବରୀ (ବୃକ୍ଷବର୍ଗୀୟ) ( ଦେଖ )—2. Śatābarī ( See ) ୩ । ପାଲକ୍ୟ (ବୃକ୍ଷବର୍ଗୀୟ) (ଦେଖ)—3. Pālakya ( See ) ୪ । ଶମୀ (ବୃକ୍ଷବର୍ଗୀୟ) (ଦେଖ)—4. Śamī ( See ) ୫ । ଶାଲପର୍ଣ୍ଣୀ (ବୃକ୍ଷବର୍ଗୀୟ) ( ଦେଖ )—5 Śalaparṇī ( See ).

ସୁପତ୍ରିକା—ସଂ. ବ—୧ । ଜତୁକା (ବୃକ୍ଷବର୍ଗୀୟ) ( ଦେଖ )
Supatrikā 1. House bat. ୨ । ପର୍ପଟୀ (ହ୍ରି. ଶ) (ଦେଖ) 2. Parpaṭī ( See )

ସୁପତ୍ରିତ—ସଂ. ବଣ (ସୁପତ୍ର+ଯୁକ୍ତାର୍ଥେ ଇତ)—୧ । ପକ୍ଷ ବିଶିଷ୍ଟ—
Supatrita 1. Feathered. ୨ । ଶର ବିଶିଷ୍ଟ—2. Having arrows.

ସୁପତ୍ରୀ—ସଂ. ବ (ସୁପତ୍ର+ଈ)—ଗଙ୍ଗାପତ୍ରୀ (ହ୍ରି. ଶ) ( ଦେଖ )
Supatrī Gaṅgāpatrī ( See )
ସଂ. ବଣ ( ସୁପତ୍ର+ଇନ୍; ୧ମା, ୧ବ )—ସୁପତ୍ରିତ ( ଦେଖ )—Supatrita ( See )

ସୁପଥ—ସଂ. ବ—୧ । ସଦାଚାର—1. Good conduct. ୨ ।
Supatha ସନ୍ମାର୍ଗ—2. Good ways. ୩ । ସତ୍ ପ୍ରଣାଳୀ—3. Good means. ୪ । ସୁନ୍ଦର ପଥ—4. Good road. ୫ । ଏକ ବର୍ଣ୍ଣବୃତ୍ତ (ହ୍ରି. ଶ)—5. Name of a metre. [ବ୍ୟୁ—ଏଥିରେ ଏକ ଭଗଣ, ଏକ ନଗଣ, ଏକ ଭଗଣ ଏବଂ ୨ଟି ଗୁରୁବର୍ଣ୍ଣ ଥାଏ (ହ୍ରି. ଶ)] ସଂ. ବଣ—ସୁନ୍ଦର ପଥଯୁକ୍ତ—Having good road.

ସୁପଥ୍ୟ—ସଂ. ବଣ—ଲଘୁପାକ ପଥ୍ୟ; ଯାହା ଖାଇଲେ ଦେହ ସୁସ୍ଥ ହୁଏ
Supathya —Easily digestible. ସଂ. ବ—୧ । ରୋଗୀର ହିତକର ଆହାର—1. Suitable food for an invalid. ୨ । ଉତ୍ତମ ଖାଦ୍ୟ—2. Excellent food. ୩ । ଲଘୁ ଆହାର—3. Light food. ୪ । ଆମ୍ବ (ହ୍ରି. ଶ)—4. Mango.

ସୁପଥ୍ୟା—ସଂ. ବ—୧ । ଶ୍ୱେତ ଚିଲ୍ଲୀ ( ବୃକ୍ଷବର୍ଗୀୟ ); ଧଳା ବଥୁଆ
Supathyā ଶାଗ—1. The white variety of pot herb; Chenopodium. ୨ । ନାଲି ବଥୁଆ ଶାଗ ( ହ୍ରି. ଶ )—2. The red variety of Chenopodium.

ସୁପନ୍ଥ(ନ୍ଥା)—ଦେ. ବ—ସୁପଥ ( ଦେଖ )
Supantha(nthā) Supatha ( See )

ସୁପଦ୍ମ—ସଂ. ବ—୧ । ସୁନ୍ଦର ପଦ୍ମ—1. A beautiful lotus.
Supadma ୨ । ପଦ୍ମନାଭ ଦତ୍ତକୃତ ବାଲବୋଧ ସଂସ୍କୃତ ବ୍ୟାକରଣର ନାମ—2. The title of a Sanskrit grammar by Padmanābha Dutta.
ସଂ. ବଣ—ଶୋଭନ ପଦ୍ମଯୁକ୍ତ—Having fine lotus.

ସୁପଦ୍ମା—ସଂ. ବ—ବଚ ( ଶବ୍ଦଚନ୍ଦ୍ରିକା )—The sweet flag;
Supadmā Acorus Calamus.

ସୁପନେଖା—ଗ୍ରା. ବଣ. ସ୍ତ୍ରୀ. (ସଂ. ସୂର୍ପଣଖା)—ରୋଗ ଯୋଗୁଁ ଯାହାର
Supanekhā ନାକ ଏକାବେଳକେ ଖସି ଯାଇଛି—
(ସୁପନେଖୀ—ସ୍ତ୍ରୀ) Having the nose entirely
ସুপণখা शूपनेखा gone owing to disease.
ଗ୍ରା. ବ. ସ୍ତ୍ରୀ—ସୂର୍ପଣଖା (ଦେଖ)—Sūrpaṇakhā (See)

ସୁପରଦ୍—ବୈଦେ. ବ (ଫା. ସୁପର୍ଦ୍)—ସୁପର୍ଦ୍ (ଦେଖ)—
Suparad Supard (See)

ସୁପରଦାଣ୍ଟ—ବୈ: ବ ଗ୍ରା ଇଂ. ସୁପରିଣ୍ଟେଣ୍ଡେଣ୍ଟ୍ )—ତତ୍ତ୍ୱାବଧାରକ;
Suparadanṭa ସୁପରିଣ୍ଟେଣ୍ଡେଣ୍ଟ୍—Superintendent.
সুপারিন্টেণ্ডেণ্ট सुपरेन्ट, सुपरदंट

ସୁପର୍(ର)ବା(ଭା)ଇଜର୍—ବୈଦେ. ବ (ଇଂ. ସୁପର୍‌ଭାଇଜର୍ )—
Supar(ra)bā(bhā)ijar କାର୍ଯ୍ୟର ତତ୍ତ୍ୱାବଧାନକାରୀ କର୍ମଚାରୀ—
সুপরভাইজর सुपरभाईज़र Supervisor.

ସୁପର୍ ରୟା(ୟେ)ଲ୍—ବୈଦେ ବ (ଇଂ) (ଛାପାଖାନା)—୨୨ ଇଞ୍ଚ
Super rayā(ye)l ଓସାର ଓ ୨୯ ଇଞ୍ଚ ଲମ୍ବ ଆକାରର
সুপারবয়াল सुपररयल मुद्रणार्थ କାଗଜ—
Super-royal (printing paper)

ସୁପରିଣ୍ଟେଣ୍ଡେଣ୍ଟ—ବୈଦେ. ବ (ଇଂ. ସୁପରିଣ୍ଟେଣ୍ଡେଣ୍ଟ)—୧ । କୌଣସି
Suparintendent ବିଭାଗର ସମସ୍ତ ଭାରପ୍ରାପ୍ତ ବ୍ୟକ୍ତି—
ସୁପରେଣ୍ଟେଣ୍ଡେଣ୍ଟ } —ଅନ୍ୟରୂପ ମାନଙ୍କ ଉପରିସ୍ଥ କର୍ମଚାରୀ—
ସୁପରଦାଣ୍ଟ } 1. Superintendent.
সুপারিন্টেনডেন্ট सुपरिंटेंडेंट ୨ । ରାଜାଙ୍କ ନାବାଳକ ସମୟରେ ଗଡ଼ଜାତ ରାଜ୍ୟର ଶାସନାର୍ଥ ନିଯୁକ୍ତ ସରକାରୀ କର୍ମଚାରୀ-2. Superintendent of a Feudatory State during the minority or other incapacity of the Ruling Chief.

ସୁପର୍ଣ୍ଣ—ସଂ. ବଣ (ସୁ=ସୁନ୍ଦର+ପର୍ଣ୍ଣ=ପକ୍ଷ ଯାହାର)—୧ । ସୁନ୍ଦର-
Suparṇṇa ପତ୍ରବିଶିଷ୍ଟ—1. Having beautiful
( ସୁପର୍ଣ୍ଣୀ—ସ୍ତ୍ରୀ ) leaves. ୨ । ସୁନ୍ଦର ପକ୍ଷବିଶିଷ୍ଟ—2. Having beautiful wings.
ସଂ. ବ—୧ । ପକ୍ଷିରାଜ ଗରୁଡ଼ ( ଅମର )—1. Garurda, the king of birds. [ ବ୍ୟୁ—ଅମୃତ ହରଣ କଲାବେଳେ ଗରୁଡ଼ ବଜ୍ର ଦ୍ୱାରା ଆହତ ହୋଇ ସୁଦ୍ଧା ହାସ୍ୟମୁଖରେ କହିଲେ, 'ଦେଖ, ଦେବରାଜ ! ବଜ୍ରାଘାତରେ ମୋର କଛି ଅନିଷ୍ଟ ହୋଇ ନାହିଁ, ତଥାପି

ବଳ୍‌ର ସମ୍ମାନ କମିବ ମୁଁ ଗୋଟିଏ ପକ୍ଷ ପରିତ୍ୟାଗ କରୁ- ଅଛି । ଏହି ପକ୍ଷଟିକୁ ସୁନ୍ଦର ଦେଖି ଦେବତାମାନେ ଗରୁଡଙ୍କୁ 'ସୁପର୍ଣ୍ଣ' ନାମ ଦେଲେ' ।] ୨ । ସ୍ୱର୍ଣ୍ଣଚୂଡ଼ ପକ୍ଷୀ (ମେଦିନୀ)—2. A species of fowl. ୩ । କୃତମାଲକ ବୃକ୍ଷ (ମେଦିନୀ); ଆରଗ୍ୱଧ; ସୁନାରି ଗଛ—3. A tree; Cassia Fistula. ୪ । କୁକ୍କୁଟ—4. Cock. ୫ । ପକ୍ଷୀ (ହ୍ର. ଶ)—5. Bird. ୬ । କିରଣ (ହ୍ର. ଶ)—6. Ray. ୭ । ବିଷ୍ଣୁ (ହ୍ର. ଶ)—7. Bishnu. ୮ । ଅଶ୍ୱ (ହ୍ର. ଶ)—8. Horse. ୯ । ବ୍ୟୂହ ରଚନା-ବିଶେଷ (ହ୍ର. ଶ)—9. A kind of battle array. ୧୦ । ନାଗକେଶର (ହ୍ର. ଶ)—10. Mesua Ferra. ୧୧ । ସୁନ୍ଦର ପତ୍ର—11. Nice leaf.

**ସୁପର୍ଣ୍ଣକ**—ସଂ. ବି—୧ । ଆରଗ୍ୱଧ ବା ସୁନାରି ଗଛ (ରତ୍ନମାଳା)—1. A tree; Cassia Fistula.
Suparnnaka
୨ । ସପ୍ତଚ୍ଛଦ ( ଛତାଧର ) (ଦେଖ)—2. Sapta chchhada (See): ୩ । ଗରୁଡ଼—3. The King of birds. ସଂ. ବିଣ—୧ । ସୁନ୍ଦରପତ୍ରବିଶିଷ୍ଟ—1. Having nice leaves. ୨ । ସୁନ୍ଦର ପକ୍ଷ-ବିଶିଷ୍ଟ—2. Having nice feathers.

**ସୁପର୍ଣ୍ଣ କେତୁ**—ସଂ. ବି (ବହୁବ୍ରୀହି; ସୁପର୍ଣ୍ଣ = ଗରୁଡ଼ ଅଛେ କେତୁ = ପତାକାରେ ଯାହାଙ୍କର )—୧ । ଗରୁଡ଼ଧ୍ୱଜ; ବିଷ୍ଣୁ (ହଳାୟୁଧ)—1. Bishnu. ୨। ଶ୍ରୀକୃଷ୍ଣ (ହ୍ର. ଶ)—2. Srikrushna.
Suparnna ketu

ସୁପର୍ଣ୍ଣଧ୍ୱଜ, ସୁପର୍ଣ୍ଣବାହନ, ସୁପର୍ଣ୍ଣଯାନ, ସୁପର୍ଣ୍ଣାସନ } —ଅନ୍ୟରୂପ

**ସୁପର୍ଣ୍ଣା**—ସଂ. ବିଣ, ସ୍ତ୍ରୀ—ସୁପର୍ଣ୍ଣର ସ୍ତ୍ରୀଲିଙ୍ଗ—Feminine of Suparnna. ସଂ. ବି. ସ୍ତ୍ରୀ—
Suparnnā
୧ । ପଦ୍ମିନୀ (ଶବ୍ଦମାଳା); ପଦ୍ମବୃକ୍ଷ—1. Lotus plant. ୨ । ଗରୁଡ଼ ଜନନୀ; ବିନତା—2. Name Garurda's mother.

**ସୁପର୍ଣ୍ଣାଖ୍ୟ**—ସଂ. ବି—ନାଗକେଶର ( ବୃକ୍ଷବିଶେଷ ) [ ଦେଖ ]—Nāgakesara (See)
Suparnnākhya

**ସୁପର୍ଣ୍ଣାଣ୍ଡ**—ସଂ. ବି—ଶୂଦ୍ରାମାତା ଓ ସୂତ ପିତାଙ୍କଠାରୁ ଜାତ ସନ୍ତାନ—A son of a Sudra mothe and Sūta father.
Suparnnānda

**ସୁପର୍ଣ୍ଣିକା**—ସଂ. ବି—୧ । ସ୍ୱର୍ଣ୍ଣଜୀବନ୍ତୀ [ ରାଜନିର୍ଘଣ୍ଟ ] [ଦେଖ]—1. Swarnnajibanti (See)
Suparnnikā
୨। ପଳାଶୀ [ରାଜନିର୍ଘଣ୍ଟ] [ଦେଖ]—2.Palāsi (See) ୩ । ଶାଳପର୍ଣ୍ଣୀ(ରାଜନିର୍ଘଣ୍ଟ) (ଦେଖ)—Sālaparnni(See) ୪ । ରେଣୁକା (ରାଜନିର୍ଘଣ୍ଟ)(ଦେଖ)—4.Rzuukā (See) ୫ । ବାଗୁଚି (ରାଜନିର୍ଘଣ୍ଟ) (ଦେଖ)—Baguchi (See).

**ସୁପର୍ଣ୍ଣୀ**—ସଂ. ବି. ସ୍ତ୍ରୀ ( ସୁପର୍ଣ୍ଣ + ଈ )—୧ । ପଦ୍ମିନୀ—1. The lotus plant. ୨ । ବିନତା; ଗରୁଡ଼ ମାତା—2. The mother of Garurda, the King of birds. ୩ । ମାଈ ପକ୍ଷୀ (ହ୍ର. ଶ)—3. A she-bird. ୪ । ପଳାଶୀ (ଦେଖ) (ହ୍ର. ଶ)—4. Palāsi (See) ୫ । ରାତ୍ରି; ରାତି (ହ୍ର. ଶ)—5. Night. ୬ । ରେଣୁକା (ଦେଖ) (ହ୍ର. ଶ)—6. Renukā (See) ୭ । ଅଗ୍ନିଙ୍କ ସପ୍ତଜିହ୍ୱା ମଧ୍ୟରୁ ଏକ (ହ୍ର. ଶ)—7. One of the 7 tongues of the Fire. ୮ । ଗରୁଡ଼ (ହ୍ର. ଶ)—8. Garurda.
Suparnni

**ସୁପର୍ଣ୍ଣେୟ**—ସଂ. ବି. ପୁଂ ( ସୁପର୍ଣ୍ଣୀ + ଅପତ୍ୟାର୍ଥେ. ଏୟ )—ଗରୁଡ଼—Garurda.
Suparnneya ( ସୁପର୍ଣ୍ଣୀ ତନୟ—ଅନ୍ୟରୂପ )

**ସୁପର୍ଦ୍ଦ (ର୍ଦ୍ଦ)**—ବୈଦେ. ବି (ଉଚ୍ଚାରଣ)(ଫା. ସୁପର୍ଦ୍ଦ)—କୌଣସି ବିଷୟ ବା ମକଦ୍ଦମା ବା ଅସାମୀକୁ ଅନ୍ୟ ବ୍ୟକ୍ତିଙ୍କ ନିକଟକୁ ବନ୍ଦୋବସ୍ତ କରିବା ବା ରକ୍ଷଣ ନିମନ୍ତେ ପ୍ରେରଣ—Commitment consignment. ( ଉ—ଦଉର ସୁପର୍ଦ୍ଦ, ଫଉଜଦାରୀ ସୁପର୍ଦ୍ଦ । )
Supard(rdd)
সোপর্দ
सुपुर्द

**ସୁପର୍ଦ୍ଦଣ୍ଟ**—ଗ୍ରା. ବୈଦେ. ବି (ଇଂ. ସୁପରଇଣ୍ଟେଣ୍ଡେଣ୍ଟ) —ସୁପରଇଣ୍ଟେଣ୍ଡେଣ୍ଟ (ଦେଖ)—Suparintendent ( See )
Supardant

**ସୁପର୍ବ(ର୍ବ)**—ସଂ. ବି (ସୁ + ପର୍ବନ୍; କର୍ମଧା)—ସୁନ୍ଦର ପର୍ବ—A nice internode. ସଂ. ବିଣ—ସୁନ୍ଦର ପର୍ବ-ବିଶିଷ୍ଟ—Having good internodes.
Suparba(rbba)

**ସୁପର୍ବା(ର୍ବା)**—ସଂ. ବିଣ ( ବହୁବ୍ରୀହି; ସୁ + ପର୍ବନ୍; ୧ମା. ୧ବ.)—୧ । ସୁନ୍ଦର ପର୍ବଯୁକ୍ତ—Having nice internodes. ୨ । (ସ୍ତ୍ରୀ) ସୁପର୍ବର ସ୍ତ୍ରୀଲିଙ୍ଗ —2, Feminine of Suparba. ସଂ. ବି—୧ । ଦେବତା ( ଅମର )—1. Deity; heavenly beings. ୨ । ବାଣ ( ମେଦିନୀ )—2. Arrow. ୩ । ବଂଶ; ବାଉଁଶ (ମେଦିନୀ)—3. Bamboo. ୪ । ଧୂମ (ମେଦିନୀ)—4. Smoke. ୫ । ଶ୍ୱେତ ଦୁବା ( ରାଜନିର୍ଘଣ୍ଟ )—5. The white variety of Doob grass
Suparbā(rbbā)

**ସୁପର୍ବା(ର୍ଭା)ଇଜର୍**—ବୈଦେ. ବି (ଇଂ.) ସୁପରଭାଇଜର୍ (ଦେଖ)—Suparbhāijar (See)
Suparbā(bhā)ijar

**ସୁପଳାୟିତ**—ସଂ. ବିଣ. ପୁଂ—ଯେ ସୁବ୍ୟବସ୍ଥାରେ ବା ଶତ୍ରୁର ଅଗୋଚରରେ ପଳାଇଅଛି—Safely run away
Supalāyita
[ ସୁପଳାୟିତା—ସ୍ତ୍ରୀ ]

**ସୁପା**—ପ୍ରାଦେ (ପାଟଣା) ବି (ସଂ. ସୂର୍ପ)—କୁଲା—Winnowing fan.
Supā

**ସୁପାକେ**—ଦେ. କ୍ରି. ବିଣ—୧ । ସୌଭାଗ୍ୟରୁ; ସୁଯୋଗରୁ—1. Fortunately; on account of good luck
Supāke
সুযোগে
सुयोगसे
୨ । ଅନୁଗ୍ରହରୁ; ପ୍ରସାଦରୁ—2. By the favour of ( ଉ—ବିଷ୍ଣୁ ଚରିତ ତୁମ୍ଭ ମୁଖେ, ଶୁଣିଲି ଅଦ୍ଭୁତ ସୁପାକେ । )

ସୁପାକ୍ୟ—ସଂ. ବି.—କୃତ୍ରିମ ଲବଣ ( ରାଜନିର୍ଘଣ୍ଟ )—
Supākya A kind of foetid-smelling salt.

ସୁପାତି—ଦେ. ବି ( ସଂ. ସୁ+ପାତି ଧାତୁ=ପକାଇବା )—
Supāti ଶେଯ, ସୁଶଯ୍ୟା; କୋମଳ ଶଯ୍ୟା—
ସୁଶଯ୍ୟା सुशय्या Soft bed or quilt
[ଉ—ପାରୁ ମିଳବ ପଲଙ୍କ ସୁପାତି, ତାର ଉପରି ଶଯ୍ୟାରେ କାହିଁ ମନ୍ତ—ଦନାଇ ଦାସ, ଗୋପୀଭୂଷା । ]

ସୁପାତ୍ର—ସଂ. ବି (ସୁ=ଉତ୍ତମ+ପାତ୍ର=ଭାଜନ )—୧ । ଯୋଗ୍ୟ
Supātra ବ୍ୟକ୍ତି—1. A fit person. ୨ । ଉତ୍ତମ (ଅପାତ୍ର, କୁପାତ୍ର—ବିପରୀତ) ଆଧାର—2. Good receptacle.

ସୁପର(ରି)ସ(ସି)—ବୈଦେ. ବି(ଫା. ସିଫାରିସ୍)—କୌଣସି ବ୍ୟକ୍ତିକୁ
Supāra(ri)s(si) ଅନୁଗ୍ରହ ଦେଖାଇବା ପାଇଁ ଅନ୍ୟ ବ୍ୟକ୍ତିକୁ
ସুপারিস सिपारिस ଅନୁରୋଧ—
Recommendation.

ସୁପାରା—ଦେ. ବି—ଲିଙ୍ଗର ଅଗ୍ର; ଚର୍ମହୀନ ଓ ଗୁବାକାକୃତି ଲିଙ୍ଗାଗ୍ର-
Supārā The nut of the penis; glans
ସুপুরী सुपारा penis.

ସୁପାରି—ଦେ. ବି ( ସଂ. ଶଫୁର ବା ସୁପୁର )—୧ । ଗୁବାକ; ଗୁଆ—
Supāri 1. Betel nut; areca nut. ୨ । (ଗୁଆ ପରି
ସুপা(পু)রি ଆକୃତି ବିଶିଷ୍ଟ ଥିବାରୁ) ଲିଙ୍ଗର ଅଗ୍ର; ଲିଙ୍ଗର
सुपारि ଚର୍ମହୀନ ଅଗ୍ରଭାଗ—2.The nut of the penis;
ଫା. ସୋପିଲ୍ glans-penis.
ଅ. ସେପିଲ୍ ତେ. ସୋକାକାଯ୍କା

ସୁପାରିସି(ସ୍) ଚିଠି—ଦେ. ବି—ଯେଉଁ ଚିଠିରେ ଅନ୍ୟ ବ୍ୟକ୍ତି ପାଇଁ
Supārisi(s) chiṭhi ଅନୁଗ୍ରହ ପ୍ରାର୍ଥନା କରି ଯାଇଥାଏ—
সুপারিসি চিঠি Recommendatory letter; recom-
सिफारिस चिट्ठी mendation letter.

ସୁପାର୍ଶ୍ୱ—ସଂ. ବି—୧ । ସପ୍ତମ ଜୈନ ମୁନି; ଚତୁର୍ବିଂଶତି ତୀର୍ଥଙ୍କର
Supārswa ଅନ୍ତର୍ଗତ ଅର୍ହତ୍ ବିଶେଷ ( ହେମଚନ୍ଦ୍ର )—
1. One of the 24 classes of the Buddhist saints. ୨ । ପ୍ଲକ୍ଷ ବୃକ୍ଷ (ରାଜନିର୍ଘଣ୍ଟ)—
2. A tree; Ficus Infectoria. ୩ । (ନାମ) ସମ୍ପାତି-
ପୁତ୍ରପକ୍ଷୀବିଶେଷ (ରାମାୟଣ, କିଷ୍କିନ୍ଧ୍ୟା କାଣ୍ଡ)—3.Name of a mythological bird, son of Sampāti.
୪ । ଗର୍ଦ୍ଦଭାଣ୍ଡ (ହେ. ଶ) ବୃକ୍ଷ—4. The tulip tree.
୫ । (ନାମ) ଶ୍ରୁତାୟୁଙ୍କ ପୁତ୍ର—5. Name of a son.
(ସୁପାର୍ଶ୍ୱା—ସ୍ତ୍ରୀ) Srutāyu-ସ,ବିଣ.ପୁଂ—ସୁନ୍ଦର ପାର୍ଶ୍ୱ ବିଶିଷ୍ଟ—
Having good sides or flanks.

ସୁପାର୍ଶ୍ୱକ—ସଂ. ବି—୧ । ଚତୁର୍ବିଂଶତି ସଂଖ୍ୟା ଅର୍ହତ୍ ଅନ୍ତର୍ଗତ ଅର୍ହତ୍
Supārśwaka ବିଶେଷ—1. One of the 24 classes of the future Buddhist saints. ୨। ଗର୍ଦ୍ଦଭାଣ୍ଡ ବୃକ୍ଷ (ଅମର); ଏକପ୍ରକାର ଅଶ୍ୱତ୍ଥ ଗଛ; ପଳାଶ ଓ ସପ୍ତ ଗଛ—
2. The tulip tree.

ସୁପାଳକ—ଦେ. ବି—ଧାନ ଆଦି ଫସଲ ଜନ୍ମିବା ଉପଯୁକ୍ତ ସମୟରେ
Supālaka ବର୍ଷା ଆଦି ହେବାର ଅବସ୍ଥା—Happening of
সুপালক seasonable rain conducive to the
सुसमय growth of paddy and other crops.

ସୁପିଙ୍ଗଳା—ସଂ. ବି—୧ । ଜୀବନ୍ତୀ (ରାଜନିର୍ଘଣ୍ଟ)—1. A kind
Supingalā of creeping herb; Celtes Orientalis.
୨ । ଜ୍ୟୋତିଷ୍ମତୀ (ରାଜନିର୍ଘଣ୍ଟ)—2. A luminous wild plant; Cardiospermum Helicacabum; Balloon vine.

ସୁପିର୍ଦ୍ଦନ—ସଂ. ବି—ହାତ ଘଷିବା; ଅଙ୍ଗମର୍ଦ୍ଦନ—
Supirdana Massage of the limbs.

ସୁପୀତ—ସଂ. ବି—୧ । ଗର୍ଜ୍ଜର; ଗାଜର ( ରାଜନିର୍ଘଣ୍ଟ )—
Supīta 1. Turnip. ୨ । ପୀତଝିଣ୍ଟୀ—2. Yellow-flowered variety of Barleria. ଦେ. ବିଣ—
୧ । ଉତ୍ତମ ରୂପେ ପିଅ ଯାଇଥିବା—1. Well drunk
୨ । ଗାଢ଼ ହଳଦିଆ—2. Deep yellow.

ସୁପୀନ—ସଂ. ବିଣ (ସୁ+ପୀନ)—ଅତି ସ୍ଥୂଳ ବା ମୋଟ—
Supīna Very stout.

ସୁପୀବା—ସଂ.ବି ପୁଂ (ସୁପୀବନ୍ ଶବ୍ଦ; ସୁ+ପା ଧାତୁ+କର୍ତ୍ତୃ ବନ୍ )—
Supībā ଉତ୍ତମ ରୂପେ ପାନକାରୀ ବ୍ୟକ୍ତି; ଶୋଭନ ପାନକର୍ତ୍ତା
(ମୁଗ୍ଧ ବୋଧ)—Excellent drinker.

ସୁପୁଂସୀ—ସଂ. ବି. ସ୍ତ୍ରୀ (ସୁ+ପୁମସ୍+ଈ. ଈ)—ଯେଉଁ ସ୍ତ୍ରୀଙ୍କ ପତି
Supumsī ସୁପୁରୁଷ—(a woman) Having an excellent person as her husband.

ସୁପୁଟ—ସଂ. ବି—କୋଲକନ୍ଦ; ବିଷ୍ଣୁକନ୍ଦ (ରାଜନିର୍ଘଣ୍ଟ)—
Supuṭa A kind of bulbous root.

ସୁପୁଟା—ସଂ. ବି—ସେବତୀ ( ହେ. ଶ )—
Supuṭā Musk rose.

ସୁପୁତ—ଗ୍ରାଦେ. (ସମ୍ବଲପୁର) ବି. ( ସଂ. ସୁପୁତ୍ର )(ଭୁଲ-ହିନ୍ଦୀ ସପୁତ୍ )
Suput —ସୁପୁତ୍ର; ଯୋଗ୍ୟ ପୁତ୍ର; କୁଳୋଜ୍ଜ୍ୱଳକାରୀ ପୁତ୍ର—
Worthy scion of a family.

ସୁପୁତ୍ର—ସଂ. ବି. ପୁଂ—୧ । ଯୋଗ୍ୟ ପୁତ୍ର—1. A worthy son.
Suputra ୨ । ପିତାମାତାଙ୍କ ପ୍ରତି ଭକ୍ତିମାନ୍ ପୁତ୍ର—
(କୁପୁତ୍ର—ବିପରୀତ) 2. A devoted son. ୩ । (ବୈଦ୍ୟକ)
ତିଳକ ବୃକ୍ଷ—3.The Tilaka tree. ସ. ବିଣ. ପୁଂ
(ସୁପୁତ୍ରା—ସ୍ତ୍ରୀ. ) —ଯୋଗ୍ୟପୁତ୍ରବାନ୍ (ବ୍ୟକ୍ତି)—Having a worthy son.

ସୁପୁତ୍ରିକା—ସଂ. ବି—ଜତୁକା ଲତା (ରାଜନିର୍ଘଣ୍ଟ); ପର୍ପଟୀ—
Suputrikā A kind of creeper.
(ସୁପୁତ୍ରକ—ପୁଂବିଣ) ସଂ.ବିଣ. ସ୍ତ୍ରୀ—୧। ଯୋଗ୍ୟ ପୁତ୍ରବତୀ (ହେ. ଶ)
—1. (a woman) Having a worthy son.
୨ । ସୁନ୍ଦର କନ୍ୟାବିଶିଷ୍ଟା—2. Having a fine daughter.

ସୁପୁନେଖା—ଗ୍ରା. ବିଣ. ପୁଂ ଓ ସ୍ତ୍ରୀ—ସୁପନେଖା ( ଦେଖ )
Supunekhā Supanekhā ( See )
(ସୁପୁନେଖୀ—ସ୍ତ୍ରୀ)

ସୁପୁର—ସଂ. ବି—ଗୁବାକ; ଗୁଆ—
Supura Areca nut.
ସୁପୁଲଭ—ପ୍ରାଦେ. (ସୁରୀ; ଗଡ଼ଜାତ) ବି—ମଙ୍ଗଳ; ସୁଖ—
Supulabha Bliss; happiness; good.
ସୁପୁଷ୍କରା—ସଂ. ବି—ସ୍ଥଳପଦ୍ମ; ସ୍ଥଳ କମଳ; (ରାଜନିର୍ଘଣ୍ଟ)—
Supushkarā A flower; Hibiscus Mutabilis.
ସୁପୁଷ୍ପ—ସଂ. ବି—୧ । ସୁନ୍ଦର ପୁଷ୍ପ—1. A nice flower, ୨ । Supushpā ଲବଙ୍ଗ (ଶବ୍ଦ ଚନ୍ଦ୍ରିକା)—2. Cloves (spice). ୩ । ଅତୁଲ୍ୟ ( ରାଜନିର୍ଘଣ୍ଟ )—3. Name of a plant. ୪ । ପୌଣ୍ଡରୀକ (ରାଜନିର୍ଘଣ୍ଟ); ଏକ ପ୍ରକାର ପଦ୍ମ ମୂଳ—4. The root stock of Nymphea Lotus. ୫ । ସ୍ତ୍ରୀମାନଙ୍କ ରଜଃ (ଶବ୍ଦ କଳ୍ପଦ୍ରୁମ)—5. Menses. ୬ । ତୂଳ; ତୁତ୍‌କୋଳି ଗଛ—6. Mulberry. ୭ । ରକ୍ତ ପୁଷ୍ପକ; ପାଲଟୁଆ ଗଛ (ଶବ୍ଦ ରତ୍ନାକର)—7. The Indian coral tree. ୮ । ଶିରୀଷ (ରାଜନିର୍ଘଣ୍ଟ)—8. Acacia Lebbek. ୯ । ହରିଦ୍ରୁ (ରାଜନିର୍ଘଣ୍ଟ); ଦାରୁ ହରିଦ୍ରା; ଦାରୁହଳଦୀ—9. Berberis Asiatica. ୧୦ । ରାଜତରୁଣୀ (ରାଜନିର୍ଘଣ୍ଟ); ସ୍ବର୍ଣ୍ଣଜାତୀ—10. Jasminum Grandiflorum. ୧୧ । ମୁଚୁକୁନ୍ଦ—11. Pterospermum Acerefolium. ୧୨ । ଶ୍ୱେତ ଅର୍କ—12. White Calotropis Gigantea. ୧୩ । ପଳାଶାଣ୍ଡୁ ( ବୈଦ୍ୟକ ନିର୍ଘଣ୍ଟ )—13. The tulip tree. ୧୪ । ଦେବଦାରୁ ( ହି. ଶ )—14. Pine tree. ୧୫ । ବଡ଼ ସେବତୀ ( ହି. ଶ )—15. The larger variety of musk rose.
ସୁପୁଷ୍ପୀ—ସଂ. ବି—୧ । ଶ୍ୱେତାପରାଜିତା ( ରାଜନିର୍ଘଣ୍ଟ ) ( ଦେଖ )—
supushpī 1. Śwetāparājitā ( See ) ୨ । କଦଳୀ—2. Plantain. ୩ । ଶତପୁଷ୍ପୀ; ଶତୁପ ( ହି. ଶ )—3. Dill seed. ୪ । ଭୂବଦାରକ ( ହି. ଶ )—4. Melina Asiatica. ୫ । ଦ୍ରୋଣପୁଷ୍ପୀ ( ବୈଦ୍ୟ-କୋଷ)—5. Leucas Cephalotus.
ସୁପୂର—ସଂ. ବି—୧ । ବୀଜପୁର (ରାଜନିର୍ଘଣ୍ଟ); ଟେଭ—1. Lemon;
Supūra citrus. ୨ । ( ସୁ+ପୂର ) ଉତ୍ତମ ପ୍ରବାହ; ଖରସ୍ରୋତ—2. Rapid current. ସଂ. ବିଣ—ସହଜରେ ପୂର୍ଣ୍ଣ ହେବା ଯୋଗ୍ୟ ( ହି. ଶ )—
Capable of being easily filled up.
ସୁପୂରକ—ସଂ. ବି—୧ । ବକପୁଷ୍ପ ( ରାଜନିର୍ଘଣ୍ଟ ) ( ଦେଖ )—
Supūraka 1. Bakapushpa ( See ). ୨ । ବୀଜପୂର; ଟେଭ ( ହି. ଶ )—2. Citrus.
ସୁପେଦାର କଣ୍ଠି—ପ୍ରାଦେ. ( ସଂହକୁମି ) ବି—କେବଳରେ ଠିକ୍ ବଣ୍ଡ
Supedāra kanṭhi ଭଳେ ଖିଆଯିବା ସୁନାର ତେଳ୍ କଣ୍ଠି—
A graduated necklace of solid gold beads. [ ବ୍ର—ଏହାର ଦାନାମାନ ମଝିରୁ କ୍ରମଶଃ ଶ୍ରେଷ୍ଠ ହୋଇଥାଏ । ]
ସୁପେଶ—ସଂ. ବିଣ—ଶୋଭନରୂପ; ସୁନ୍ଦର ( ଭାଗବତ )—
Supeśa Beautiful; graceful.
ସୁପ୍ତ—ସଂ. ବିଣ. ପୁଂ ( ସ୍ୱପ୍ ଧାତୁ=ଶୋଇବା+କର୍ତ୍ତି. ତ )—୧ ।
Supta ନିଦ୍ରିତ; ଶୟିତ—1. Sleeping; asleep. ୨ । (ସୁପ୍ତ—ବି) ଇନ୍ଦ୍ରିୟଜ୍ଞାନଶୂନ୍ୟ—2. Unconscious. ୩ । (ସୁପ୍ତା—ସ୍ତ୍ରୀ ବିଣ) ସ୍ୱକାର୍ଯ୍ୟାକ୍ଷମ (ଉତ୍କୋଷ)—3. Unable to do one's work. ସଂ. ବି ( +ଭାଗବତ )—ନିଦ୍ରା; ଶୟନ—Sleep.
ସୁପ୍ତ ଘାତକ—ସଂ. ବିଣ. ପୁଂ (ସୁପ୍ତ=ନିଦ୍ରିତ+ଘାତକ=ହିଂସାକାରୀ)
Supta ghātaka —୧ । ହିଂସ୍ର ( ବୈକାଶ୍ରେଣୀ )—
(ସୁପ୍ତ ଘାତକା—ସ୍ତ୍ରୀ) 1. Murderous; mischievous. ୨ । ନିଦ୍ରିତ ପ୍ରାଣୀର ହତ୍ୟାକାରୀ ( ହି. ଶ )—
2. Killing an animal while asleep.
ସୁପ୍ତ ଜନ—ସଂ. ବି—୧ । ( କର୍ମଧା ) ନିଦ୍ରିତ ବ୍ୟକ୍ତି—1. Sleeping
Supta jana person. ୨ । ( ବହୁବ୍ରୀହି; ସୁପ୍ତ ହୁଅନ୍ତି ଜନମାନେ ଯେଉଁବେଳେ ) ଅର୍ଦ୍ଧରାତ୍ର ( କଠାଧର )—
2. Mid-night.

ସୁପ୍ତ ଜ୍ଞାନ (ବିଜ୍ଞାନ)—ସଂ. ବି—ସ୍ୱପ୍ନ ( କଠାଧର )—
Supta jñāna ( bijñāna ) Dream.
ସୁପ୍ତ ପ୍ରବୁଦ୍ଧ—ସଂ. ବିଣ. ପୁଂ—ଯେ ଶୋଇ କରି ବର୍ତ୍ତମାନ ନିଦରୁ
Supta prabuddha ଉଠିଅଛି—One who has just
( ସୁପ୍ତ ପ୍ରବୁଦ୍ଧା—ସ୍ତ୍ରୀ ) waken up from sleep.
ସୁପ୍ତ ପ୍ରଳପିତ—ସଂ. ବି—ବାଳବଳାଇବା ( ହି. ଶ )—
Supta pralapita Talking during sleep; sleep-raving
ସୁପ୍ତ ସୁପ୍ତ—ସଂ. ବିଣ. ପୁଂ (ପ୍ରଥମେ ସୁପ୍ତ ଓ ପରେ ସୁପ୍ତ )—ଯେ ଥରେ
Supta supta ନିଦ୍ରାରୁ ଉଠି ପୁଣି ଶୋଇଛି—One who has
(ସୁପ୍ତ ସୁପ୍ତା—ସ୍ତ୍ରୀ) gone to sleep after waking up.
ସୁପ୍ତାଙ୍ଗ—ସଂ. ବି ( କର୍ମଧା )—ନିଶ୍ଚେଷ୍ଟ ଅଙ୍ଗ—
Suptānga Inert limb.
ସୁପ୍ତି—ସଂ. ବି ( ସ୍ୱପ୍ ଧାତୁ+ଭାବ. ତି )—୧ । ନିଦ୍ରା—1. Sleep.
Supti ୨ । ଶୟନ; ଶୋଇବା—2. Sleeping. ୩ । ସ୍ୱପ୍ନ—3. Dream. ୪ । ବିଶ୍ରମ୍ଭ; ବିଶ୍ୱାସ; ପ୍ରତ୍ୟୟ (ହି. ଶ)—4. Confidence; trust. ୫ । ଅଙ୍ଗର ନିଶ୍ଚେଷ୍ଟତା ( ହି. ଶ )—5. Inertness of a limb.
ସୁପ୍ତୋତ୍ଥିତ—ସଂ. ବିଣ. ପୁଂ (କର୍ମଧାରୟ; ପ୍ରଥମେ ସୁପ୍ତ, ପରେ ଉତ୍ଥିତ)
Suptotthita —ନିଦ୍ରାରୁ ଉଠିଥିବା—Awaken after
( ସୁପ୍ତୋତ୍ଥିତା—ସ୍ତ୍ରୀ ) sleep.
ସୁପ୍ରକେତ—ସଂ. ବିଣ. ପୁଂ—୧ । ଜ୍ଞାନବାନ୍ ( ହି. ଶ )—1. Wrise
Supraketa ୨ । ବୁଦ୍ଧିମାନ୍ (ହି. ଶ)—2. Intelligent.
( ସୁପ୍ରକେତା—ସ୍ତ୍ରୀ )

ସୁପ୍ରଚେତା—ସଂ. ବିଣ ( ସୁପ୍ରଚେତସ୍ ; ୧ମା ୧ବ )—ଅତି ବୁଦ୍ଧିମାନ୍—
Supracheta Very intelligent.
( ସୁପ୍ରଜ୍ଞ—ଅନ୍ୟରୂପ )

ସୁପ୍ରଜାତ—ସଂ. ବିଣ. ପୁଂ—ବହୁ ସନ୍ତାନବାନ୍ (ହ୍ର. ଶ) – Having
Suprajata many children.
( ସୁପ୍ରଜାତା—ସ୍ତ୍ରୀ )

ସୁପ୍ର(ପ୍ରି)ଡ(ଦ)ଣ୍ଟ—ବୈଦେ. ବି (ଇଂ)—ସୁପରିଣ୍ଟେଣ୍ଡେଣ୍ଟ୍ (ଦେଖ)
Supra(pri)da(da)nta Superintendent (See)

ସୁପ୍ରଣାଳୀ—ସଂ. ବି—ସୁନିୟମ ( ଦେଖ
Supranali Suniyama ( See )

ସୁପ୍ରତର—ସଂ. ବିଣ—ସହଜରେ ତରଣୀୟ—Capable of being
Supratara ( ସୁପ୍ରତରା—ସ୍ତ୍ରୀ ) easily crossed over.

ସୁପ୍ରତିଜ୍ଞ—ସଂ. ବିଣ. ପୁଂ ( ସୁ+ପ୍ରତିଜ୍ଞା+ଅ; ବହୁବ୍ରୀହି )—ଦୃଢ-
Supratijña ପ୍ରତିଜ୍ଞ [ ହ୍ର. ଶ ] —Resolute.
( ସୁପ୍ରତିଜ୍ଞା—ସ୍ତ୍ରୀ )

ସୁପ୍ରତିଭା—ସଂ. ବି—୧ । ମଦିରା ( ଶବ୍ଦକଳ୍ପଦ୍ରୁମ )—1. Wine. ୨ ।
Supratibha ମାର୍ଜିତ ବା ଉଜ୍ଜ୍ୱଳ ବୁଦ୍ଧି—2. Bright
intellect; sharp intelligence.

ସୁପ୍ରତିଷ୍ଠ—ସଂ. ବିଣ (ବହୁବ୍ରୀହି; ସୁ=ଉତ୍ତମ ଅଛି ପ୍ରତିଷ୍ଠା ଯାହାର)—
Supratishtha ଯଶସ୍ୱୀ; ସୁଖ୍ୟାତ—Famous; reputed.
( ସୁପ୍ରତିଷ୍ଠା—ସ୍ତ୍ରୀ. ବିଣ ) ସଂ. ବି—ବ୍ୟୂହ ରଚନାବିଶେଷ—
A kind of battle array.

ସୁପ୍ରତିଷ୍ଠା—ସଂ. ବି—୧ । ସୁଖ୍ୟାତି; ଯଶଃ—1. Good reputa-
Supratishtha tion. ୨ । ପଞ୍ଚାକ୍ଷରବୃତ୍ତବିଶିଷ୍ଟ ବୈଦିକ
ଛନ୍ଦୋବିଶେଷ—2. A vedic metre of 5
letters. [ ଦ୍ର—ଏହା ଦ୍ୱିବିଧ – ପଙ୍କ୍ତି ଓ ପ୍ରତିଷ୍ଠା ]
ସଂ. ବିଣ. ସ୍ତ୍ରୀ—ସୁପ୍ରତିଷ୍ଠର ସ୍ତ୍ରୀଲିଙ୍ଗ—
Feminine of Supratishtha.

ସୁପ୍ରତିଷ୍ଠିତ—ସଂ. ବିଣ – ୧ । ଉତ୍ତମରୂପେ ପ୍ରତିଷ୍ଠିତ—1. Well
Supratishthita established. ୨ । ସୁଖ୍ୟାତିଯୁକ୍ତ—
2. Famous. ସଂ. ବି—୧ । ଉଡ଼ୁମ୍ବର ବୃକ୍ଷ ( ଶବ୍ଦ-
କଳ୍ପଦ୍ରୁମ )—1. The fig tree. ୨ । ଯୋଗର
ସମାଧିବିଶେଷ ( ହ୍ର. ଶ )—2. A kind of Samadhi
in Joga.

ସୁପ୍ରତୀକ—ବି ପୁଂ. ( ବହୁବ୍ରୀହି, ସୁ+ପ୍ରତୀକ=ଅଙ୍ଗ ଯାହାର )—
Supratika ୧ । (ନାମ) ଈଶାନ କୋଣର ଦିଗ୍‌ଗଜ (ଅମର)—
(ସୁପ୍ରତୀକମା—ସ୍ତ୍ରୀ) 1. Name of the mythological
elephant guarding the N. E.
corner. [ ଦ୍ର—ଭଗ କରି ଯେ ନେବା ଇଚ୍ଛା ତୋର,
ସୁପ୍ରତୀକ ଦେଣ୍ଟ ଭୁ ଗଜ ରୂପ ଧର—କୃଷ୍ଣସିଂହ. ମହାଭାରତ
ଅଦ ।] ୨ । ଶିବ; ମହାଦେବ ( ଶବ୍ଦକଳ୍ପଦ୍ରୁମ )—
2. Siba. ୩ । କାମଦେବ ( ଶବ୍ଦକଳ୍ପଦ୍ରୁମ )—
3. Cupid. ୪ । ଶୋଭନ ଅଙ୍ଗ—4. Nice limb.

(ସୁପ୍ରତୀକା—ସ୍ତ୍ରୀ ବିଣ) ସଂ. ବିଣ. ପୁଂ—ଶୋଭନାଙ୍ଗବିଶିଷ୍ଟ—
Having graceful limbs.

ସୁପ୍ରତୀତ—ସଂ. ବିଣ ( ସୁ+ପ୍ରତୀତ )—୧ । ଉତ୍ତମରୂପେ ଜ୍ଞାତ—
Supratita 1. Well-known. ୨ । ସମ୍ପୂର୍ଣ୍ଣରୂପେ
ପ୍ରମାଣିତ—2. Well-proved.

ସୁପ୍ରଦଦି—ସଂ. ବିଣ.—ବଡ଼ ଦାତା—
Supradadi Bountiful.

ସୁପ୍ରଦର୍ଶ—ସଂ. ବିଣ ପୁଂ—ପ୍ରିୟଦର୍ଶନ—Graceful to look
Supradarsa [ ସୁପ୍ରଦର୍ଶା, ସୁପ୍ରଦର୍ଶନା—ସ୍ତ୍ରୀ ] at.
( ସୁପ୍ରଦର୍ଶନ—ଅନ୍ୟରୂପ )

ସୁପ୍ରଦୋହା—ସଂ. ବିଣ. ସ୍ତ୍ରୀ—ଯେଉଁ ଗାଈକୁ ଦୁହିଁବା ସହଜ (ହ୍ର. ଶ)-
Supradoha Easily milked (cow).

ସୁପ୍ରନ୍ଡଣ୍ଟ—ବୈଦେ. ଗ୍ରା. ବି (ଇ ଗ୍ରାଜ ଶବ୍ଦର ଅଶୁଦ୍ଧ ଉଚ୍ଚାରଣ—(ଇଂ. ସୁପରିଣ୍ଟେଣ୍ଡେଣ୍ଟ୍)—
Supran-danta
ସୁପରିଣ୍ଟେଣ୍ଡେଣ୍ଟ୍ ( ଦେଖ )—
Superintendent (See)

ସୁପ୍ରଭ—ସଂ. ବିଣ. ପୁଂ (ବହୁବ୍ରୀହି; ସୁ ଅଛି ପ୍ରଭା ଯାହାର)—ସ୍ୱଚ୍ଛ-
Suprabha ପ୍ରଭାଯୁକ୍ତ—Effulgent; resplendent.
(ସୁପ୍ରଭା—ସ୍ତ୍ରୀ)

ସୁପ୍ରଭା—ସଂ. ବିଣ. ସ୍ତ୍ରୀ—ସୁପ୍ରଭର ସ୍ତ୍ରୀଲିଙ୍ଗ—Feminine of
Suprabha Suprabha. ସଂ. ବି. ସ୍ତ୍ରୀ—୧ ।
ସୋମରାଜି ( ଦେଖ )—1. Somaraji (See)
୨। ଅଗ୍ନିଙ୍କର ଏକ ଜିହ୍ୱା—2. One of the tongues
of Agni. ୩ । ସ୍କନ୍ଦଙ୍କର ଏକ ମାତୃକା—3. Name
of a Matruka of Skanda.

ସୁପ୍ରଭାତ—ସଂ. ବି ( କର୍ମଧା )—୧ । ଶୁଭସୂଚକ ପ୍ରଭାତ—
Suprabhata 1. An auspicious morning.
[ଦ୍ର—ବାମନପୁରାଣର ୧୪ଶ ଅଧ୍ୟାୟୋକ୍ତ ଗୋଟିଏ ଶ୍ଳୋକ
ରାତିରେ ଶୋଇବାବେଳେ ପାଠ କଲେ ମନୁଷ୍ୟର ଦୁଃସ୍ୱପ୍ନ-
ନାଶ ହୋଇ ସବିଶେଷରେ ସୁପ୍ରଭାତ ହୁଏ ବୋଲି ଲେଖା
ଅଛି । ଏଥିରେ "ବ୍ରହ୍ମା ମୁରାରି ସ୍ତ୍ରିପୁରାନ୍ତକାରୀ, ଭାନୁଃ ଶଶୀ
ଭୂମିସୁତୋ ବୁଧଶ୍ଚ; ଗୁରୁଶ୍ଚ ଶୁକ୍ରଃ ଶନି ରାହୁ କେତୁ,
କୁର୍ବନ୍ତୁ ସର୍ବେ ମମ ସୁପ୍ରଭାତଂ" ଏହିପରି ଅନେକ ଶ୍ଳୋକ
ଅଛି ।] ୨। ମେଘାଦିବର୍ଜିତ ପ୍ରଭାତ—2. A cloudless
or clear morning. ୩ । ପ୍ରଭାତକାଳରେ
ପାଠ୍ୟ ଶ୍ଳୋକ—3. Morning prayer. ଦେ. ଅ—
( ଅବ୍ୟୟ )—ପ୍ରଭାତକାଳୀନ ଅଭିବାଦନ—Good
morning! ସଂ. ବିଣ—୧ । ଅତିଶୟ ପ୍ରଭାଯୁକ୍ତ—
1. Effulgent. ୨ । ଶୁଭସୂଚକ ପ୍ରଭାତଯୁକ୍ତ (ଦିବସ)-
( ସୁପ୍ରଭାତା—ସ୍ତ୍ରୀ ) 2. (Day) Having an auspicious
morning.

ସୁପ୍ରଭାତା—ସଂ. ବିଣ—ସୁପ୍ରଭାତଯୁକ୍ତା(ରାତି)—(night) Followed
Suprabhata by a good morning.
ସଂ. ବି—ଭାଗବତ ୫ମ ସ୍କନ୍ଧ ୨୦ଶ ଅଧ୍ୟାୟରେ ବର୍ଣ୍ଣିତ

୭ ଗୋଟି ମହାନଦୀ ମଧ୍ୟରୁ ଗୋଟିଏ—One of the 7 great rivers mentioned in the Bhāgabata. [ଦ୍ର—ଏହି ୭ ଗୋଟି ମହାନଦୀର ନାମ । ଯଥା— ଅରୁଣା, ସୃମଣା, ଅଙ୍ଗିରସୀ, ସାବିତ୍ରୀ, ସୁପ୍ରଭାତା, ଋତମ୍ଭରା ଓ ସତ୍ୟମ୍ଭରା ।)

ସୁପ୍ରଯୁକ୍ତ—ସଂ ବିଣ—ଶୋଭନପ୍ରୟୋଗବିଶିଷ୍ଟ—
Suprajukta Well employed or directed.

ସୁପ୍ରଯୁକ୍ତ ଶର—ସଂ ବିଣ. ପୁଂ (ବହୁବ୍ରୀହି)—ବାଣବେ ସିଦ୍ଧହସ୍ତ; ଶର-
Suprajukta śara ନିକ୍ଷେପରେ ନିପୁଣ ବା ଦକ୍ଷ— Expert or skilful in archery. ସଂ ବି. (କର୍ମଧାରୟ)-ଉତ୍ତମରୂପେ ପ୍ରୟୋଗ କରାଯାଇଥିବା ବାଣ- An arrow throuwn excellently.

ସୁପ୍ରୟୋଗ—ସଂ. ବି—୧ । ଉତ୍ତମ ପ୍ରୟୋଗ—1. Good
Suprayoga application. ୨ । ଉତ୍ତମ କ୍ଷେପ—
(ସୁପ୍ରଯୁକ୍ତ—ବିଣ) 2. A good throw. ସଂ ବିଣ ( ବହୁବ୍ରୀହି )—୧ । ଉତ୍ତମ ପ୍ରୟୋଗବିଶିଷ୍ଟ— 1. Having an exeellent application or throw. ୨ । ସୁପ୍ରଯୁକ୍ତ—2. Well thrown.

ସୁପ୍ରୟୋଗ ନିପୁଣ(ବିଜ୍ଞ)—ସଂ ବିଣ (ପୁଂ) (୭ମୀ ତତ୍)—ଭଲରୂପେ
Suprayoga nipuṇa(bijña) ପ୍ରୟୋଗକରିବାରେ ଅଭିଜ୍ଞ—
[ସୁପ୍ରୟୋଗନିପୁଣା(ବିଜ୍ଞା)—ସ୍ତ୍ରୀ] Expert or skilful
ସୁପ୍ରୟୋଗନୈପୁଣ୍ୟ / ସୁପ୍ରୟୋଗବିଜ୍ଞାନ }—ବି in excellent application or throw.

ସୁପ୍ରୟୋଗ ବିଶିଖ—ସଂ ବିଣ ପୁଂ (ବହୁବ୍ରୀହି)—ସୁଶିକ୍ଷିତ ବାଣମୋଚକ
Suprayoga biśikha —Skilful in archery.
(ସୁପ୍ରୟୋଗବିଶିଖା—ସ୍ତ୍ରୀ)

ସୁପ୍ରଲମ୍ଭ—ସଂ ବିଣ ( ସୁ+ପ୍ର+ଲଭ୍ ଧାତୁ+କର୍ମ ଅ )—
Supralambha ସୁଲଭ୍ୟ ( ସିଦ୍ଧାନ୍ତକୌମୁଦୀ )— Easily available.

ସୁପ୍ରଲାପ—ସଂ. ବି (କର୍ମଧା)—ସୁବଚନ—
Supralāpa Good words.

ସୁପ୍ରଶସ୍ତ—ସଂ. ବିଣ—ଅତି ବିସ୍ତୃତ; ସୁବିସ୍ତୃତ—
Supraśasta Very wide; very spacious.

ସୁପ୍ରସଙ୍ଗ—ସଂ. ବି—ଉତ୍ତମ ବିଷୟର ଚର୍ଚ୍ଚା—Discussion of
Suprasaṅga good matters.

ସୁପ୍ରସନ୍ନ—ସଂ. ବିଣ. (ପୁଂ)—ଅତ୍ୟନ୍ତ ପ୍ରସନ୍ନ—
Suprasanna Very favourable.
(ସୁପ୍ରସନ୍ନା—ସ୍ତ୍ରୀ) ସଂ. ବି—କୁବେର (ଶବ୍ଦମାଳା)—
(ସୁପ୍ରସନ୍ନତା—ବି) The God of riches.

ସୁପ୍ରସନ୍ନକ—ସଂ. ବି—୧ । କୃଷ୍ଣାର୍ଜ୍ଜକ ( ରାଜନିର୍ଘଣ୍ଟ )—1. The
Suprasannaka black ginger plant. ୨ । ଏକ ପ୍ରକାର କଳା ତୁଳସୀ—2. A plant; the black wild basil plant.

ସୁପ୍ରସବ—ସଂ. ବି—ସୁଖରେ ସନ୍ତାନ ଜନ୍ମ କରିବା—An easy or
Suprasaba painless delivery.

ସୁପ୍ରସରା—ସଂ. ବି—ପ୍ରସାରଣୀ ଲତା (ରାଜନିର୍ଘଣ୍ଟ) ( ଦେଖ )
Suprasarā Prasāriṇi latā ( See )

ସୁପ୍ରସାଦ—ସଂ. ବି—୧ । ସୁପ୍ରସନ୍ନତା; ଅତ୍ୟନ୍ତ ପ୍ରସନ୍ନତା—
Suprasāda 1. Much favour; great favour.
୨ । (ବହୁବ୍ରୀହି) ଶିବ; ମହାଦେବ (ହିକାଣ୍ଡ ଶେଷ) — 2. Siba.

ସୁପ୍ରସିଦ୍ଧ—ସଂ. ବିଣ. (ପୁଂ)—ସୁବିଖ୍ୟାତ; ସୁବିଦିତ; ସର୍ବତ୍ର ପ୍ରସିଦ୍ଧ—
Suprasiddha Well known; celebrated.
(ସୁପ୍ରସିଦ୍ଧା—ସ୍ତ୍ରୀ) (ସୁପ୍ରସିଦ୍ଧି—ବି)

ସୁପ୍ରିମ୍ କୋର୍ଟ(ଟ୍)—ଦେଶିଦେ. ବି ( ଇଂ. ସୁପ୍ରିମ୍ କୋର୍ଟ )—
Suprim kot(rt) କଲିକତାରେ ଇଂରାଜ ଇଷ୍ଟ ଇଣ୍ଡିଆ କମ୍ପାନିଙ୍କର ପ୍ରଥମ ପ୍ରତିଷ୍ଠିତ ଦେବାନି **सुप्रिम कोट** ଅଦାଲତ—The Supreme Court of Calcutta under the East India Company. [ଭି—ସୁପ୍ରିମ୍ କୋର୍ଟରେ ଅପୀଲ୍ କରି ଖଲାସ କରାଇ ଦେବି—ଫକୀରମୋହନ, ଛମାଣ ଅଠଗୁଣ୍ଠ । ] [ ଦ୍ର—ଏହି ଅଦାଲତ ପ୍ରଥମେ ସଦର ଦେବାନୀ ଅଦାଲତ ଥିଲା, ପରେ ସୁପ୍ରିମ୍ କୋର୍ଟ୍ ହେଲା; ବର୍ତ୍ତମାନ କଲିକତା ହାଇକୋର୍ଟରେ ପରିଣତ ହୋଇଅଛି । ]

ସୁପ୍ରିୟ—ସଂ. ବିଣ (ପୁଂ)—ଅତି ପ୍ରିୟ—Much loved, beloved.
Supriya ( ସୁପ୍ରିୟା—ସ୍ତ୍ରୀ )

ସୁଫଳ—ସଂ. ବି ( କର୍ମଧା )—୧ । ସୁନ୍ଦର ଫଳ—1. Good fruit.
Suphala ୨ । ଅନନ୍ତରଜନକ ଶେଷ ଫଳ—2. Good result. ୩ । କାର୍ଯ୍ୟସିଦ୍ଧି—3. Success. ୪ । ବରକୋଳି; ବଦର ( ରାଜନିର୍ଘଣ୍ଟ )—4. The jujube. ୫ । ମୁଦ୍ଗ ( ରାଜନିର୍ଘଣ୍ଟ )—5. A kind of pulse; Phaseolus Mungo. ୬ । ଶ୍ରୀଫଳ, ବେଲ ( ରାଜନିର୍ଘଣ୍ଟ )—6. The Marmalus fruit. ୭ । କପିତ୍ଥ; କଇଥ ( ଶବ୍ଦଚନ୍ଦ୍ରିକା )—7. Wood apple. ୮ । ଦାଡ଼ିମ୍ବ ( ରାଜନିର୍ଘଣ୍ଟ )—9. Pomegranate. ୯ । କର୍ଣ୍ଣିକାର—9. Bastard oleander. ସଂ. (ସୁଫଳା—ସ୍ତ୍ରୀ) ବିଣ ( ବହୁବ୍ରୀହି )—୧ । ଉତ୍ତମ ଫଳଯୁକ୍ତ— 1. Accompanied with good result or fruit. ୨ । କାର୍ଯ୍ୟସିଦ୍ଧିଯୁକ୍ତ—2. Blessed with success. ୩ । ସୁନ୍ଦର ଫଳ ଉତ୍ପାଦକ— 3. Producing good fruit.

ସୁଫଳା—ସଂ. ବିଣ ( ବହୁବ୍ରୀହି )—ସୁଫଳର ସ୍ତ୍ରୀଲିଙ୍ଗ—Feminine
Suphalā of Suphala. [ ଉ—ସୁଜଳା ସୁଫଳା; ଏ, ଶସ୍ୟଶ୍ୟାମଳା ଧରା ପର ହାତେ ଦେଇ—ସ୍ୱାଧୀନାଥ-ମହାଯାତ୍ରା । ] ସଂ. ବି—୧ । ଇନ୍ଦ୍ରବାରୁଣୀ; ମହାକାଳ ( ରାଜନିର୍ଘଣ୍ଟ )—1. Colocynth. ୨ । କୁଷ୍ମାଣ୍ଡୀ ( ରାଜନିର୍ଘଣ୍ଟ )—2. A kind of pumpkin.

୩ । ଗାମ୍ଭାରୀ; ଗମ୍ଭାରୀ (ଶବ୍ଦକଳ୍ପଦ୍ରୁମ)—3. A timber tree; Gmelina Arborea. ୪ । କଦଳୀ (ଶବ୍ଦକଳ୍ପଦ୍ରୁମ)—4. Banana. ୫ । କପିଳଦ୍ରାକ୍ଷା; ଦ୍ରାକ୍ଷାବିଶେଷ (ଶବ୍ଦକଳ୍ପଦ୍ରୁମ)—5. A sort of grape.

ସୁଫାର(ରି)ଶ୍—ବୈଦେ. ବି (ଫା.)—ସୁପାରସ୍ (ଦେଖ)
Suphāra(ri)s Supāras (See).

ସୁଫୁଲବ—ପ୍ରାଦେ (ସୁଖ) ବି. ଓ ବିଣ—ସୁଖ; ସୌଭାଗ୍ୟ; ମଙ୍ଗଳ;
Suphulaba ଶୁଭ—Happiness; good fortune; bliss.

ସୁଫେଦ୍—ବୈଦେ. ବିଣ (ଫା)—ସଫେଦ୍ (ଦେଖ)
Suphed Saphed (See)

ସୁଫେନ—ସ. ବି—ସମୁଦ୍ରଫେନ (ଦେଖ)
Suphena Samudraphena (See)

ସୁବ—ଗ୍ରା. ବି—ସ୍ରୁବ (ଦେଖ)—Sruba (See) ଗ୍ରା. ବି ଓ
Suba ବିଣ—ଶୁଭ (ଦେଖ)—Śubha (See)
ଶুভ शुभ

ସୁବଂଶ—ସ. ବି—୧ । ଉତ୍ତମ ବଂଶ—1. Good family. ୨ ।
Subamśa (ନାମ) ଭାଗବତ ଅନୁସାରେ ବସୁଦେବଙ୍କ ଏକ ପୁତ୍ର (ହି. ଶ)—2. Name of a son of Basudeba.

ସୁବଂଶେକ୍ଷୁ—ସ. ବି—ଧଳା ଆଖୁ (ହି. ଶ)—
Subamśekshu White sugarcane.

ସୁବକ୍ତା(ବାଗ୍ମୀ)—ସ. ବି. ପୁଂ—ବାଗ୍ମୀ—Orator.
Subaktā(bāgmī) (ସୁବକ୍ତ୍ରୀ, ସୁବାଗ୍ମିନୀ—ସ୍ତ୍ରୀ)

ସୁବକ୍ତ୍ର—ସ. ବି (କର୍ମଧା)—୧ । ସୁନ୍ଦର ମୁଖ—1. A nice face.
Subaktra ୨ । ବନବର୍ବରୀ (ଶବ୍ଦକଳ୍ପଦ୍ରୁମ)—2. A kind of wild basil plant. ୩ । ଶିବ (ହି. ଶ)—3. Śiba. ୪ । (ନାମ) ସ୍କନ୍ଦଙ୍କ ଅନୁଚରବିଶେଷ (ହି. ଶ)—4. Name of an attendant of Skanda. ୫ । ଦନ୍ତବକ୍ତ୍ରଙ୍କର ଏକ ପୁତ୍ର (ହି. ଶ)—5. Name of a son of Dantabaktra. ସ. (ସୁବକ୍ତ୍ରା—ସ୍ତ୍ରୀ ବିଣ) ବିଣ. ପୁଂ (ବହୁବ୍ରୀହି)—ସୁନ୍ଦର ମୁଖଯୁକ୍ତ—Having a nice face.

ସୁବକ୍ଷଃ—ସ. ବିଣ (ବହୁବ୍ରୀହି; ସୁ+ବକ୍ଷସ୍)—ସୁନ୍ଦର ବା ବିଶାଳ
Subakshaḥ ବକ୍ଷୋବିଶିଷ୍ଟ—Having a broad breast.

ସୁବକ୍ଷା—ସ. ବି (ନାମ)—ମୟଦାନବଙ୍କ କନ୍ୟା ଓ ବିଭୀଷଣଙ୍କ ଓ
Subakshā କୁମ୍ଭକର୍ଣ୍ଣଙ୍କ ମାତା (ହି. ଶ)—
Name of the daughter of demon Maya.

ସୁଖବର—ଗ୍ରା. ବି—୧ । ଶୁଭ ଖବର—1. Good news. ୨ ।
Sukhabara କନ୍ୟାର ସ୍ତ୍ରୀକର ପ୍ରଥମ ରଜୋଦର୍ଶନ ସମ୍ବାଦ—
শুভ খবর सुखबर 2. The news of person's girl-wife having attained puberty.

ସୁବଚନ—ସ. ବି (କର୍ମଧା)—ସୁନ୍ଦର ବଚନ—
Subachana Sweet or nice words.
(ସୁବଚନା—ସ୍ତ୍ରୀ. ବିଣ) ସ. ବିଣ ପୁଂ (ବହୁବ୍ରୀହି)—ସୁନ୍ଦର ବଚନଯୁକ୍ତ—Sweet speaking.

ସୁବଚଣୀ—ଗ୍ରା. ବି. ସ୍ତ୍ରୀ (ସ. ଶୁଭଚଣ୍ଡୀ)—ଶୁଭଚଣ୍ଡୀ (ଦେଖ)—
Subachaṇī Śubhachaṇḍī (See) ଦେ. ବିଣ
সুবচনী वचनी ସ୍ତ୍ରୀ—ସୁବଚନର ସ୍ତ୍ରୀଲିଙ୍ଗ—
Feminine of Subachana.

ସୁବଚ୍ଚଃ—ସ. ବି. ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ସୁ+ବଚସ୍; ୧ମା ୧ବ)—
Subachāḥ ବାଗ୍ମୀ—Orator.

ସୁବର୍ଡ଼ି(ର୍ଡ଼ି)ନେଟ୍—ବୈଦେ. ବିଣ (ଇଂ)—ସବଡ଼ିନେଟ୍ (ଦେଖ)—
Subardi(rdi)net Sabardinet (See)

ସୁବର୍ଡ଼ି(ର୍ଡ଼ି)ନେଟ୍ ଜଜ୍—ବୈଦେ. ବି (ଇଂ)—ସବଡ଼ିନେଟ୍ ଜଜ୍;
Subardi(rdi)net jaj ସବଜଜ୍—Subordinate Judge; Sub-judge;
সবার্ডীনেট জজ सबडिनेट जज

ସୁବର୍ଡ଼ିନେଟ୍ ସିଭିଲ୍ ସର୍ଭିସ୍—ବୈଦେ. ବି (ଇଂ)—ସବ୍‌ଅଡିନେଟ୍
Subardinet sibhil sarbhis ସିଭିଲ ସର୍ଭିସ—Subordinate civil service.
সবার্ডীনেট সীভীল সর্ভিস
सबडिनेट सिभिल सर्भिस

ସୁବଦନ—ସ. ବିଣ. ପୁଂ (ବହୁବ୍ରୀହି)—ସୁନ୍ଦର ମୁଖବିଶିଷ୍ଟ—
Subadana Fairfaced. ସ. ବି—ବନତୁଳସୀ—Wild basil plant.
(ସୁବଦନା—ସ୍ତ୍ରୀ ବିଣ) (ସୁବଦନା—ଦେ. ସ୍ତ୍ରୀ)

ସୁବ ଦେବା—ଗ୍ରା. କ୍ରି—ଶୁଭ ଦେବା (ଦେଖ)
Suba debā Śubha debā (See)

ସୁ(ସୋ)ବ(ଭ)ନ୍ ଅ(ଆ)ଲ୍ଲା—ବୈଦେ. ଅ (ଅ. ସୁବହାନ୍ ଅଲ୍ଲା)—
Su(so)b(bha)n a(ā)llā (ହର୍ଷ ବା ଆଶ୍ଚର୍ଯ୍ୟ ପ୍ରକାଶ କରିବା
শোভন আল্লা ପାଇଁ ମୁସଲମାନଙ୍କ ବ୍ୟବହୃତ ବାକ୍ୟ)—
सुबहन अल्ला ୧ । ବାଃ ବାଃ ।—1. Well done !. ୨ । ଧନ୍ୟ ଧନ୍ୟ ।—2. Bravo !

ସୁବନ—ସ. ବି (ସୁ ଧାତୁ=ପ୍ରସବ କରିବା+କର୍ତ୍ତ୍ରି. ଅନ)—୧ ।
Subana ସୂର୍ଯ୍ୟ (ଉଣାଦି କୋଷ)—1. The sun. ୨ । ଅଗ୍ନି (ଉଣାଦି କୋଷ)—2. Fire. ୩ । ଚନ୍ଦ୍ର (ଶବ୍ଦକଳ୍ପଦ୍ରୁମ)—3. The moon. ଗ୍ରା. ବି ଓ ବିଣ—ସୁବନ୍ୟ (ଦେଖ)—Subanya (See)

ସୁବନ୍ଧ—ସ ବି (ସୁ ଅଟେ ବନ୍ଧ ଯାହାର; ବହୁବ୍ରୀହି)—୧ । ତିଳ;
Subandha ରାଶୀ (ଶବ୍ଦଚନ୍ଦ୍ରିକା)—1. Sessamum seed. ୨ । ଯତ୍ନ—2. Care.

ସୁବନ୍ୟ—ଗ୍ରାମ୍ୟ. ବି (ସ. ସୁବର୍ଣ୍ଣ)—ସୁବର୍ଣ୍ଣ; ସୁନା—Gold. ଗ୍ରା.
Subanya ବିଣ—ସୁନ୍ଦର ବର୍ଣ୍ଣବିଶିଷ୍ଟ—Of nice colour.
সুবন্ন सुवन्य, सुबना (ସୁବନ—ଅନ୍ୟରୂପ)

ସୁବ ପକା(କେ)ଇବା—ଦେ. କ୍ରି—ଶୁଭ ପକା(କେ)ଇବା (ଦେଖ)
Suba pakā(ke)ibā Śubha pakā(ke)ibā (See)

ସୁବପୁଃ—ସ. ବିଣ. ପୁଂ ଓ ସ୍ତ୍ରୀ (ସୁ+ବପୁସ୍; ବହୁବ୍ରୀହି)—ସୁନ୍ଦର
Subapuḥ ଦେହବିଶିଷ୍ଟ—Having a good body.

ସୁବୟା—ସଂ. ବି. ସ୍ତ୍ରୀ ( ସୁ+ବୟସ୍ )—ପ୍ରୌଢ଼ା ସ୍ତ୍ରୀ ( ହି ଶ )—
Subayā A grown up or middle-aged woman.

ସୁବରନ—ଦେ. ବି ( ପଦ୍ୟ; ସଂ. ସୁବର୍ଣ୍ଣ )—୧ । ସୁନା—1. Gold.
Subarana ୨ । ସୁନ୍ଦର ଶରୀର-ବର୍ଣ୍ଣ—2. Beautiful
স্ববরন সুবরন complexion. [ଉ—ସୁବରନକୁ ଚୋରିବ, ସୁବରନ ସର ଲୋହିଣ ଅନଳେ ବନ୍ଧୁରି ତାର ଶରୀର—ବେଶପୂର୍ଣ୍ଣ. ଜୁଗ୍ମାଗୀତ । ]

ସୁବର୍ଚ୍ଚକ—ସଂ. ବି—ସାଜିମାଟି (ଜଟାଧର) ( ଦେଖ )—
Subarchchaka Sajimāṭi ( See )

ସୁବର୍ଚ୍ଚଳ—ସଂ. ବି—କଳାଲୁଣ ( ହି. ଶ )—
Subarchchala Black salt.

ସୁବର୍ଚ୍ଚଳା—ସଂ. ବି. ସ୍ତ୍ରୀ(ସୁ+ବର୍ଚ୍ଚ ଧାତୁ+ଅଳ+ଆ)—୧। ସୂର୍ଯ୍ୟ ପତ୍ନୀ
Subarchchalā ( ହରିବଂଶ ୧୧ଶ ) -1. Name of a wife of the Sun god. ୨ । ଅତସି (ଶବ୍ଦମାଳା) ( ଦେଖ )—2. Atasī ( See ). ୩ । ସୂର୍ଯ୍ୟମୁଖୀ ( ଫୁଲ ) ( ଶବ୍ଦକଳ୍ପଦ୍ରୁମ ) ( ଦେଖ )—3. Sūrjya-mukhī ( See ). ୪ । ଅପରୋଶିଆ ( ରାଜନିର୍ଘଣ୍ଟ ) ( ଦେଖ )—4. Aparorishia ( See ) ୫ । ବ୍ରାହ୍ମୀ ( ରାଜନିର୍ଘଣ୍ଟ ) ( ଦେଖ )—5. Brāhmī ( See ) ୬ । ଦେଶବିଶେଷ ( ଶବ୍ଦ କଳ୍ପଦ୍ରୁମ )—6. Name of a country.

ସୁବର୍ଚ୍ଚାଃ—ସଂ. ବିଶେ. ପୁଂ ଓ ସ୍ତ୍ରୀ ( ସୁ=ଶୋଭନ+ବର୍ଚ୍ଚସ୍=ତେଜ
Subarchchāḥ ଯାହାର; ବହୁବ୍ରୀହି )—ଶୋଭନ ତେଜୋବିଶିଷ୍ଟ; ତେଜସ୍ବୀ—Resplendent. ସଂ. ବି. ପୁଂ—୧ । (ନାମ) ଗରୁଡ଼ଙ୍କ ଏକ ପୁତ୍ର (ହି. ଶ)—1. The name of a son of Garurda. ୨ । ସ୍କନ୍ଦଙ୍କ ଏକ ପାରିଷଦଙ୍କ ନାମ—2. Name of a courtier of Skanda. ୩ । ଧୃତରାଷ୍ଟ୍ରଙ୍କ ଏକ ପୁତ୍ରର ନାମ—3. Name of a son of Dhṛutarāshṭra. ୪ । ଦଶମ ମନୁଙ୍କ ଏକ ପୁତ୍ର ( ହି. ଶ )—4. Name of a son of the 10th Manu.

ସୁବର୍ଚ୍ଚିକ—ସଂ. ବି—ସ୍ବର୍ଜ୍ଜିକା କ୍ଷାର ( ରାଜନିର୍ଘଣ୍ଟ ); ସାଜିମାଟି —
Subarchchika Natron.

ସୁବର୍ଚ୍ଚିକା—ସଂ ବି—୧ । ଜତୁକା ( ରାଜନିର୍ଘଣ୍ଟ ) ( ଦେଖ )—
Subarchchikā 1. Jatukā ( See ) ୨ । ସର୍ଜ୍ଜୀ; ସାଜିମାଟି—2. Rhesoil.

ସୁବର୍ଚ୍ଚୀ—ସଂ. ବି ( ସୁ+ବର୍ଚ୍ଚ୍+ଇନ୍=ସୁବର୍ଚ୍ଚିନ୍; ୧ମା. ୧ବ )—
Subarchchī ସ୍ବର୍ଜିକାକ୍ଷାର ( ରାଜନିର୍ଘଣ୍ଟ )—Natron.

ସୁବର୍ଣ୍ଣ - ସଂ. ବି ( ସୁ ଅଟେ ବର୍ଣ୍ଣ ଯାହାର; ବହୁବ୍ରୀହି)—୧। ପ୍ରସିଦ୍ଧ ହରିଦ୍ରା-
Subarnna ବର୍ଣ୍ଣ ବହୁମୂଲ୍ୟ ଧାତୁ; ସୁନା—1. Gold; Aurum.
সোনা [ଦ୍ର—ବୈଦ୍ୟଶାସ୍ତ୍ର ଅନୁସାରେ ଏହାର ଗୁଣ :—ସ୍ନିଗ୍ଧତ୍ବ,
सोना କଷାୟତ୍ବ, ତିକ୍ତତ୍ବ, ମଧୁରତ୍ବ, ଦୋଷ-
ଫା. ଜର୍‌ଜର୍ ତ୍ରୟନାଶକତ୍ବ, ଶୀତତ୍ବ, ସ୍ବାଦୁତ୍ବ,
ଅ. ଜହବ୍ ରସାୟନତ୍ବ, ରୁଚିକାରକତ୍ବ, ଚକ୍ଷୁଷ୍ୟତ୍ବ, ଆୟୁଷ୍ୟତ୍ବ, ପ୍ରଜ୍ଞାବଳବୀର୍ଯ୍ୟସ୍ମୃତି-କାରିତ୍ବ । ଏହା ଦେହରେ ଧାରଣ କଲେ କାନ୍ତି ବଢ଼େ, ଦୁରିତ କ୍ଷୟ ହୁଏ ଓ ଲକ୍ଷ୍ମୀବୃଦ୍ଧି ହୁଏ ।

ସୁବର୍ଣ୍ଣଖଣ୍ଡ ସହିତ ଜଳଦାନ କଲେ ନାନା ଦୁରିତ ଓ ପାପ କ୍ଷୟ ହୁଏ ।

ଅଗ୍ନିରେ ପୋଡ଼ିଲେ ଏଥିର ଜ୍ୟୋତି ବଢ଼େ । ଯେଉଁ ସୁବର୍ଣ୍ଣ ପୋଡ଼ିଲେ ରକ୍ତବର୍ଣ୍ଣ, ଛେଦିଲେ ଶ୍ବେତବର୍ଣ୍ଣ ଓ ଘଷିଲେ କୁଙ୍କୁମ ପରି ଦେଖାଯାଏ ତାହା ଉତ୍କୃଷ୍ଟ । ସୁବର୍ଣ୍ଣକୁ ଜାରିତ କରି ଭସ୍ମ କଲେ ଓ ଔଷଧରେ ପ୍ରୟୋଗ କଲେ ଏହା ଦେହର ନାନା ଅବାଧ ରୋଗ ନିବାରଣ କରେ । ସୁନାରେ ଛୁରୀ ଘଷିଲେ ଘଇର ଓ ଭାର ହୁଏ ।]

ଅନ୍ୟ ବସ୍ତୁତ ନାମ—
କନକ, ହିରଣ୍ୟ, ହେମ, ହାଟକ, ତପନୀୟ, ଶାତକୁମ୍ଭ, ଗାଙ୍ଗେୟ, ଭର୍ମ, କର୍ବୁର, ଚାମୀକର, ଜାତରୂପ, କାଞ୍ଚନ, ମହାରଜତ, ରୁକ୍ମ, କାର୍ତ୍ତସ୍ବର, ଜାମ୍ବୁନଦ, ଅଷ୍ଟାପଦ (ଅମର), ଶାତକୌମ୍ଭ, ରୁଗ୍ମ (ଅମର ଟୀକା), ଭଦ୍ର, ଭୂରି, ପିଞ୍ଜର, ଦ୍ରବଣ, ଗୈରିକ, ଗୃହେୟ, ଉଜ୍ଜ୍ବଳ, ଚନ୍ଦ୍ର, କଳଧୌତ (ଜଟାଧର), ଅଭ୍ରକ, ଅଗ୍ନିବୀଜ, ଲୋହବର, ଉଜ୍ଜ୍ବଳକ, ସ୍ପର୍ଶମଣିପ୍ରଭ, ମୁଖ୍ୟଧାତୁ (ଶବ୍ଦ ରତ୍ନାବଳୀ), ଉଜ୍ଜ୍ବଳ, କଲ୍ୟାଣ, ମନୋହର, ଅଗ୍ନିଶିଖ, ଅଗ୍ନି, ସୁପ୍ରଭ, ପିଞ୍ଜାନ, ଅପିଞ୍ଜର, ତେଜ, ସାପ୍ତ, ଅଗ୍ନିଭ, ସାପ୍ତକ, ମଙ୍ଗଳ, ସୌମଙ୍ଗକ, ଭଙ୍ଗାର, ଜାମ୍ବବ, ଆଗ୍ନେୟ, ଜମ୍ବୁ, ଅଗ୍ନିଶିଖ (ଶବ୍ଦ କଳ୍ପଦ୍ରୁମ), ସ୍ବର୍ଣ୍ଣ ।

୨ । କିମ୍ବା; ୧୬ ମଷା ବା ଅଶୀତି ରତିକା ପରିମିତ ସ୍ବର୍ଣ୍ଣ (ଅମର)—2. Gold weighing 80 grains. ୩ । କର୍ଷ ପରିମିତ ସୁବର୍ଣ୍ଣ (ଲୀଳାବତୀ, ମେଦିନୀ)—3. Gold weighing one Karsha. ୪। କର୍ଷ ପରିମାଣ(ବୈଦିକ ପରିଭାଷା)—4. A standard weight of one Karsha. ୫ । ଯଜ୍ଞ ବିଶେଷ ( ମେଦିନୀ )—5. Name of a Vedic sacrifice. ୬ । ଧତୁରା (ଅମର) ( ଦେଖ)—6. Dhaturā. (See) ୭ । କଣ-ଗୁଗୁଳ (ରାଜ ନିର୍ଘଣ୍ଟ)—7. A species of Bdellium. ୮ । ସମ୍ପତ୍ତି; ଧନ—8. Riches ୯ । ସ୍ବର୍ଣ୍ଣମୁଦ୍ରା; ମୋହର 9. Good coin. ୧୦ । ସୁନ୍ଦର ବର୍ଣ୍ଣ (ଶବ୍ଦ ରତ୍ନାବଳୀ)—10. Fine colour. (ଉ—ବ୍ୟବସ୍ଥିତେ ଦୁର୍ବର୍ଣ୍ଣ କରିଦେଲ ସୁବର୍ଣ୍ଣ ପାରସ ମଣି ଘନ ଘନ ସେ । ଉପେ. ବୈଦେହୀଶବିଳାସ ।) ୧୧ । ଦଶ ମଷା ଓଜନର ପ୍ରାଚୀନ କାଳର ଏକ ସ୍ବର୍ଣ୍ଣ ମୁଦ୍ରା (ହି.ଶ)—11. An ancient gold coin weighing 10 Masās. ୧୨ । ସ୍ବର୍ଣ୍ଣ ଗୈରିକ (ହି. ଶ)—12. Yellow ochre. ୧୩ । ହରିଚନ୍ଦନ (ହି. ଶ)—13. Yellow sandal wood. ୧୪ । ନାଗ କେଶର (ହି. ଶ)—14. Mesua Ferra. ୧୫। ହଳଦୀ (ହି. ଶ)—15. Turmeric. ୧୬ । ହଳଦିଆ ଧାତୁର (ହି. ଶ) 16. Yellow-flowered Dhatura. ୧୭ । ହଳଦିଆ ସୋରିଷ (ହି. ଶ)—17, Yellow rye.

୧୮ । (ନାମ) ଦଶରଥଙ୍କର ଏକ ମନ୍ତ୍ରୀ (ହ୍ରି. ଶ)— 18. Name of a minister of King Daśaratha. ୧୯ । (ନାମ) ମୁନି ବିଶେଷ (ହ୍ରି. ଶ)— 19. Name of an ancient sage. ବି. ଣ— ୧ । ସୁନ୍ଦର ବର୍ଣ୍ଣବିଶିଷ୍ଟ—1. Of nice colour. ୨ । ସୁନାପରି ବର୍ଣ୍ଣବିଶିଷ୍ଟ—2. Of golden colour. ୩ । (ଅନ୍ୟ ଶବ୍ଦ ସଙ୍ଗେ ସମାସରେ) ସୁନାରେ ତିଆରି— 3. Made of gold. ଦେ· ବି—୧ । ଉତ୍ତମ ଅକ୍ଷର— 1. Good letters. [ ଦ୍ର—ବାଣିଜ୍ୟ କରିବା ଲୋକ ସୁବର୍ଣ୍ଣରେ ନାଶ ହୋଇବ କହାହା । ଉକ୍ଷ୍ମ. ବୈଦେଶ୍ୱାଶଂକାଶ ।] ୨ । ଉତ୍ତମ ଜାତି—2. Good caste.

ସ୍ବବର୍ଣ
ସୁବର୍ଯାଁ

ସୁବର୍ଣ୍ଣକ—ସଂ. ବି (ସୁବର୍ଣ୍ଣ+କ)—୧ । ସୁନା—1. Gold. ୨ । Subarṇṇaka ପିତ୍ତଳ—2. Brass. ୩ । ସୁନା ଓଜନର ପ୍ରାଚୀନମାନ ବିଶେଷ; ୧କର୍ଷ—3. A standard of weight of gold. ୪ । ସୁନାସୁ ଗଛ (ଦେଖ)— 4. Cassia Fistula. ୫ । ସ୍ୱର୍ଣ୍ଣକ୍ଷୀରୀ ( ଦେଖ ) (ହ୍ରି· ଶ) – 5. Swarṇṇa kshīrī (See) ସଂ· ୍ବେ—ସୁବର୍ଣ୍ଣ (ଦେଖ) —Subarṇṇa (See)

ସୁବର୍ଣ୍ଣ କଦଳୀ (ଫଳ)—ସଂ· ବି—କଦଳୀ ବିଶେଷ; ଚମ୍ପାକଦଳୀ— Subarṇṇa kadaḷī (phaḷā) A kind of sweet-scented banana or plantain eaten when ripe. [ ଦ୍ର—ଏହାର ଗୁଣ—ମଧୁରତ୍ୱ, ହିମତ୍ୱ, ଅଳ୍ପ ପରିମାଣରେ ଖାଇଲେ ପାଚକାରିତ୍ୱ, ତୃଷ୍ଣାଦାହନାଶିତ୍ୱ, କଫାବହତ୍ୱ ଗୁରୁତ୍ୱ, ବୃଷ୍ୟକାରିତ୍ୱ (ରାଜନିର୍ଘଣ୍ଟ) ।]
ଅନ୍ୟ ସଂ. ନାମ— କନକମୋଚ୍, ପୀତା, ଚମ୍ପକରମ୍ଭା, ସୁବର୍ଣ୍ଣକା, ସୁଭଗା, ହେମଫଳା, ସ୍ୱର୍ଣ୍ଣଫଳା, କନକରମ୍ଭା, ପୀତରମ୍ଭା, ଗୌର. ଗୌରରମ୍ଭା, କାଞ୍ଚନ କଦଳୀ, ସ୍ୱରୁଚିପ୍ରିୟ ।

ସୁବର୍ଣ୍ଣ କମଳ (ପଦ୍ମ) – ସଂ· ବି - ରକ୍ତବର୍ଣ୍ଣ ପଦ୍ମ; ନୀଳକଇଁ— Subarṇṇa kamaḷa (padma) The red lotus or lily.

ସୁବର୍ଣ୍ଣ କର୍ଷ – ସଂ. ବି—୧୬ ମଷା ଓଜନର ପ୍ରାଚୀନ ସ୍ୱର୍ଣ୍ଣମାନ— Subarṇṇa karsha A standard of weight of gold in ancient times.

ସୁବର୍ଣ୍ଣ କାର ( କର୍ତ୍ତା, କୃତ )—ସଂ ବି—ସ୍ୱର୍ଣ୍ଣକାର; ସୁନାରବଣିଆ (ଜାତିଭେଦ)— Subarṇṇa kara (karttā; kṛut) Goldsmith.

ସୁବର୍ଣ୍ଣକୁଲି - ସଂ· ବି—ମହା ଜ୍ୟୋତିଷ୍ମତୀ (ରାଜନିର୍ଘଣ୍ଟ) (ଦେଖ) Subarṇṇakulī Mahājyotishmatī. (See)

ସୁବର୍ଣ୍ଣ କେତକୀ—ସଂ. ବି—କେତକୀ ଫୁଲ ଓ ଗଛ—The yellow-flowered variety of Subarṇṇa ketakī Paddanus Odoratissimus. [ ଦ୍ର—ଏହା କେଉଡା, କେୟା ଇତ୍ୟାଦି, ଲୁଣଗନ୍ଧ, ତଣ୍ଡୁଳକର ।] ଦେ· ବି—କେତକୀ; ପୀତକେତକୀ ଏକପ୍ରକାର ସରୁଧାନ—A species of fine paddy. [ଦ୍ର—ଏଥିର ଗୁଣ ଝଳା ଓ ଲମ୍ବ ।]
ଫା· ବଉଳ.
ଅ. କାୟ
ଜେ. ମୋଗଲଭେଟ୍ଟ

ସୁବର୍ଣ୍ଣ କେଶରୀ—ଦେ· ବି (ନାମ)—ଓଡ଼ିଶାର କେଶରୀ ବଂଶର ଶେଷ Subarṇṇa keśarī ରାଜା—The last king of the 'Keśarī' dynasty of Orissa. [ଦ୍ର—ଏହାଙ୍କର ଅନ୍ୟ ନାମ ସିଦ୍ଧେଶ୍ୱର କେଶରୀ ବା ଶୂନ୍ୟ କେଶରୀ । ଏ ୧୧୪୧ ରୁ ୧୧୭୧ ଶକାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଜଗବନ୍ଧୁ· ପ୍ରାଚୀନ ଉତ୍କଳ ।]

ସୁବର୍ଣ୍ଣ ଖଚିତ—ସଂ· ବିଣ ( କୃଗମ୍ୟା ତତ୍ )—ସ୍ୱର୍ଣ୍ଣ ଜଡିତ; ଯାହାର Subarṇṇa khachita ମଝିରେ ମଝିରେ ସୁନା ବସା ହୋଇଅଛି—(ornament etc) Set with gold.

ସୁବର୍ଣ୍ଣ ଗୈରିକ—ସଂ· ବି—୧ । ଗୈରିକ ଭେଦ; ବନ ମାଟି; ହଳଦିଆ Subarṇṇa gairika ଗେରୁ—1. A sort of yellow earth; yellow ochre. [ ଦ୍ର—ଏଥିର ଗୁଣ—ମଧୁରତ୍ୱ, ଶୀତତ୍ୱ, କଫଘ୍ନତ୍ୱ, ବ୍ରଣରୋପଣତ୍ୱ, ବସ୍ତ୍ରେ ଚାର୍ଦ୍ରୋଗ୍ନିଦାହଘ୍ନତ୍ୱ ( ରାଜନିର୍ଘଣ୍ଟ) । ଏହାର ଚୂର୍ଣ୍ଣ ମଧୁ ସହିତ ଲେହନ କଲେ ଗ୍ରୀଷ୍ମମାନଙ୍କର ହିକ୍କା ଅଶ୍ରୁ ପ୍ରଶମିତ ହୁଏ ।] ୨ । ରାଙ୍ଗ ଗେରୁ (ହ୍ରି. ଶ)—2. Red ochre.
ଅନ୍ୟ ସଂ. ନାମ—ସ୍ୱର୍ଣ୍ଣଧାତୁ, ସୁରକ୍ତକ, ସନ୍ଧ୍ୟାଭ୍ର, ବଭ୍ରୁ ଧାତୁ, ଶିଳା ଧାତୁ
ଓ. ହଳଦିଆ ଗେରୁ
ହଳଦେ ଗୀବୀମାଟି
पीतगेरु

ସୁବର୍ଣ୍ଣ ଗୌର—ସଂ. ବିଣ—ସୁନା ପରି ଗୌର ବର୍ଣ୍ଣ ଶରୀର ବିଶିଷ୍ଟ— Subarṇṇa gaura With the skin of the colour of gold. (ସୁବର୍ଣ୍ଣ ଗୌରୀ—ସ୍ତ୍ରୀ)

ସୁବର୍ଣ୍ଣଘ୍ନ – ସଂ. ବି ( ସୁବର୍ଣ୍ଣ+ହନ୍ ଧାତୁ+କର୍ତ୍ତି. କୃପ୍ )— Subarṇṇaghna ରଙ୍ଗା ଧାତୁ (ହ୍ରି. ଶ) —Tin.

ସୁବର୍ଣ୍ଣ ଚୌର (ସ୍ତେୟୀ)—ସଂ. ବି—ସୁନା ଚୋର; ସୁନା ଚୋରି କରିବା Subarṇṇa chauṛa(steyī) ବ୍ୟକ୍ତି—One who steals gold.

ସୁବର୍ଣ୍ଣ ଚୌର୍ଯ୍ୟ(ସ୍ତେୟ)—ସଂ. ବି—ସୁନା ଚୋରି କରିବା—Theft Subarṇṇa chauṛjya(steya) of gold.

ସୁବର୍ଣ୍ଣ ଜାତି—ସଂ. ବି—ହଳଦିଆ ଜାଇ ଫୁଲ—A sort of Subarṇṇa jāti yellow jasmine.

ସୁବର୍ଣ୍ଣ ଜୀବକ—ସଂ. ବି (ସୁବର୍ଣ୍ଣ+ଜୀବ୍ ଧାତୁ=ବଞ୍ଚିବା+କର୍ତ୍ତି. ଣକ୍ Subarṇṇa jībika +ସ୍ୱାର୍ଥେ· କ)—୧ । ସୁନାସୁ ବଣିଆ— 1. Goldsmith. [ଦ୍ର—ପଦ୍ମପୁରାଣ ସ୍ୱର୍ଗଖଣ୍ଡରେ ଲେଖା ଅଛି ଯେ—

ଗାନ୍ଧିକ—ଗନ୍ଧ, ଚନ୍ଦନ ଧୂପାଦି ଦ୍ରବ୍ୟ ବିକ୍ରୟ କାରକ; ଗନ୍ଧ ବଣିଆ ।

ଶାଙ୍ଖିକ—ସୂକ୍ଷ୍ମ ଚୂଡ଼ିମାନଙ୍କୁ ଶଙ୍ଖ ଯୋଗାଇବା ବ୍ୟକ୍ତି; ଶଙ୍ଖାରୀ ।

କାଂସ୍ୟକ—କଂସା ଭଳିଆ ଜଳ ପାତ୍ର; କଂସାରି ।]

ମଣି କାରକ—ମଣିମୁକ୍ତା ବଣିକସୁ କହାଯାଏ ।
ସୁବର୍ଣ୍ଣ କାରକ—ସୁନାରୁ ବଣିଆ ।
ଏ ପାଞ୍ଚ ଜାତିକୁ ବଣିଆ ବୋଲଯାଏ ।] ୨ । ସ୍ୱର୍ଣ୍ଣ ବ୍ୟାପାରକାରୀ ପ୍ରାଚୀନ ବର୍ଣ୍ଣସଙ୍କର ଜାତି ବିଶେଷ (ହି. ଶ) —2. An ancient hybrid caste dealing in gold.

ସୁବର୍ଣ୍ଣ ତଟିନୀ—ଦେ. ବି—ସୁବର୍ଣ୍ଣ ରେଖା ନଦୀ—The river Subarnna taṭinī Subarnnarekhā. [ଉ—ବ୍ରାହ୍ମଣୀ, ବୈତରଣୀ, ସୁବର୍ଣ୍ଣ ତଟିନୀ, କଲାଙ୍ଗୀ ଏ ଶୁଭ ଦେଶଙ୍କ ଭଗିନୀ । ରାଧାନାଥ. ନନ୍ଦକେଶରୀ ।]

ସୁବର୍ଣ୍ଣ ଦୀଧିତି—ସଂ. ବି ( ସୁବର୍ଣ୍ଣ ପରି ଦୀଧିତି=କିରଣ ଯାହାର )—Subarnna dīdhiti ଅଗ୍ନିଦେବ—The God of fire. [ଉ—ଏକ ଏକ କରି ଦେବ ସୁବର୍ଣ୍ଣଦୀଧିତି, ସୌରିଙ୍କ ଚାହାଁଇ ଦେଇ କହିଲେ ଏସନ । ରାଧାନାଥ. ମହାଯାତ୍ରା ।]

ସୁବର୍ଣ୍ଣ ଦ୍ୱୀପ(ଭୂମି)—ସଂ. ବି— ସୁମାତ୍ରା ଦ୍ୱୀପର ପ୍ରାଚୀନ ନାମ(ହି.ଶ)—Subarnna dwipa(bhūmi) The ancient name of Sumatra island.

ସୁବର୍ଣ୍ଣ ଧେନୁ—ସଂ. ବି—ଦାନାର୍ଥ ସ୍ୱର୍ଣ୍ଣ ନିର୍ମିତ ଗୋ ମୂର୍ତ୍ତି—Subarnna dhenu An image of cow prepared for giving to Brahmans.

ସୁବର୍ଣ୍ଣ ପକ୍ଷ—ସଂ. ବି—୧ । ସୁନାର ତିଆରି ପକ୍ଷ—1. Golden Subarnna paksha wing. ୨ । (ବହୁବ୍ରୀହି) ଗରୁଡ଼ (ହି. ଶ)—2. Garurda. ସଂ. ବିଣ. (ବହୁବ୍ରୀହି)—ସୁନାର ପକ୍ଷ ବିଶିଷ୍ଟ—Golden-winged.

ସୁବର୍ଣ୍ଣ ପଦ୍ମା—ସଂ.ବି(ବହୁବ୍ରୀହି;ସୁବର୍ଣ୍ଣ+ପଦ୍ମ+ଆ)ସ୍ୱର୍ଗଗଙ୍ଗା (ହି.ଶ)—Subarnna padmā The heavenly Ganges.

ସୁବର୍ଣ୍ଣ ପୁର—ଦେ. ବି—୧ । କଟକ ଜିଲ୍ଲାର ବାଙ୍କି ଅନ୍ତର୍ଗତ ଗୋଟିଏ Subarnna pura ବଡ଼ ଗ୍ରାମ—1. Name of a village स्वर्ण पुर of Bānki of the district of Cuttack. सुवर्णपुर [ଦ୍ର—ଏହା ଅଂଶୁପା ହ୍ରଦ ନିକଟରେ ଅବସ୍ଥିତ । ଅଂଶୁପା ହ୍ରଦରେ ଯେତେ ପଦ୍ମଫୁଲ ଓ ଶିଂଘଡ଼ା ଅଛି, ଅନ୍ୟତ୍ର ତାହା ଦେଖାଯାଏ ନାହିଁ । ଶଙ୍କରୀ ମୁଣ୍ଡିଆ ଏହାର ଭିତରେ ଦଣ୍ଡାୟମାନ ।] ୨ । ସୋନପୁର ( ଦେଖ )—2. Sonapura ( See )

ସୁବର୍ଣ୍ଣ ପୁଷ୍ପ—ସଂ. ବି—ବଡ଼ ସେବତୀ ଫୁଲ; ରାଜତରୁଣୀ (ରାଜନିର୍ଘଣ୍ଟ)—Subarnna pushpa The large muskrose.

ସୁବର୍ଣ୍ଣ ପ୍ରତିମା—ସଂ. ବି ( ମ. ପ. ଲୋ )—ସ୍ୱର୍ଣ୍ଣ ନିର୍ମିତ ମୂର୍ତ୍ତି—Subarnna pratimā Golden image.

ସୁବର୍ଣ୍ଣ ପ୍ରସର(ବ)—ସଂ. ବି—ଏଲବାଲୁକ ( ଦେଖ ) Subarnna prasara(ba) Elabāluka ( See )

ସୁବର୍ଣ୍ଣ ପ୍ରସୂ—ସଂ. ବିଣ ( ସୁବର୍ଣ୍ଣ+ପ୍ର+ସୂ ଧାତୁ+କର୍ତ୍ତ୍ରି. କ୍ୱିପ୍ )—Subarnna prasū ଯାହା ସୁନା ଉତ୍ପାଦନ କରେ—Producing gold.

ସୁବର୍ଣ୍ଣ ବଣିକ୍—ସଂ. ବି ( ସୁବର୍ଣ୍ଣ+ବଣିକ୍; ୧ମା. ୧ବ )—୧ । ସୁନାରୀ Subarnna baṇik ବଣିଆ—1. Goldsmith. ୨ । ହୀନ ସୋନାର ବେନେ ବର୍ଣ୍ଣସଙ୍କର ଜାତିବିଶେଷ—2. A hybrid caste. [ ଦ୍ର—ଏମାନେ ଅମ୍ବଷ୍ଠ ମାତା ଓ ବୈଶ୍ୟ ପିତାଠାରୁ ଜାତ ସନ୍ତାନ ଓ ମତାନ୍ତରରେ କାଂସ୍ୟକାର ପିତା ଓ ମଣିକାର ମାତାଙ୍କଠାରୁ ଜାତ ସନ୍ତାନ । ]

ସୁବର୍ଣ୍ଣ ବର୍ଣ୍ଣ—ସଂ. ବି ( ମ. ପ. ଲୋ; ସୁବର୍ଣ୍ଣ ସଦୃଶ ବର୍ଣ୍ଣ )—୧ । ସୁନା Subarnna barnna ପରି ବର୍ଣ୍ଣ ବା ରଙ୍ଗ—1. Golden colour. ୨ । ( ବହୁବ୍ରୀହି ) ବିଷ୍ଣୁ ସହସ୍ରନାମୋକ୍ତ ବିଷ୍ଣୁଙ୍କର ଗୋଟିଏ ନାମ—2. A name of Bishnu. (ସୁବର୍ଣ୍ଣ ବର୍ଣ୍ଣା – ସ୍ତ୍ରୀ) ବିଣ ପୁଂ (ବହୁବ୍ରୀହି)—ସୁନା ପରି ବର୍ଣ୍ଣବିଶିଷ୍ଟ; ହେମାଙ୍ଗ; ସୁନେଲି—Of golden colour.

ସୁବର୍ଣ୍ଣ ବର୍ଣ୍ଣା—ସଂ. ବିଣ—ସୁବର୍ଣ୍ଣ ବର୍ଣ୍ଣର ସ୍ତ୍ରୀଲିଙ୍ଗ—Feminine of Subarnna barnnā Subarnna barnna. ବି – ( ବହୁବ୍ରୀହି )—ହରିଦ୍ରା; ହଳଦୀ—Turmeric.

ସୁବର୍ଣ୍ଣ ବିନ୍ଦୁ—ସଂ. ବି—ବିଷ୍ଣୁ ( ହେମଚନ୍ଦ୍ର )—Subarnna bindu A name of Bishnu.

ସୁବର୍ଣ୍ଣ ଭସ୍ମ—ସଂ. ବି—ସ୍ୱର୍ଣ୍ଣ ଭସ୍ମ ( ଦେଖ )—Subarnna bhasma Swarnna bhasma (See)

ସୁବର୍ଣ୍ଣମୟ—ସଂ. ବି (ସୁବର୍ଣ୍ଣ+ବିକାରାର୍ଥରେ ମୟ)—୧ । ସ୍ୱର୍ଣ୍ଣନିର୍ମିତ—Subarnnamaya 1. Made of gold. ୨ । ସୁବ-( ସୁବର୍ଣ୍ଣମୟୀ—ସ୍ତ୍ରୀ ) ର୍ଣ୍ଣରେ ପୂର୍ଣ୍ଣ—2. Full of gold.

ସୁବର୍ଣ୍ଣ ମାକ୍ଷୀ(ମାକ୍ଷିକ)—ଦେ. ବି—ସ୍ୱର୍ଣ୍ଣମାକ୍ଷିକ (ଦେଖ) Subarnna mākshī(mākshika) Swarnna mākshika ( See )

ସୁବର୍ଣ୍ଣ ମାସକ—ସଂ. ବି—ପ୍ରାଚୀନ କାଳରେ ସୁନା ଓଜନ କରିବାର ବାର Subarnna māsaka ଧାନ ଓଜନର ମାନବିଶେଷ ( ହି. ଶ ) —An ancient standard of weight for gold.

ସୁବର୍ଣ୍ଣ ମିତ୍ର—ସଂ. ବି (୬ଷ୍ଠୀ ତତ୍; ଏଥିର ସହାୟତାରେ ସୁନା ତରଳ Subarnna mitra ରହିଥାଏ )—ସୁହାଗା—Borax.

ସୁବର୍ଣ୍ଣମୁଖୀ—ଦେ. ବି—ପ୍ରାଚୀନ ଅର୍ଣ୍ଣବପୋତବିଶେଷ ( ଭାରତୀୟ Subarnnamukhī ପ୍ରାଚୀନ ଜାହାଜ )—Name of an स्वर्णमुखी ancient Indian ship.

ସୁବର୍ଣ୍ଣ ମୁଣ୍ଡି—ପ୍ରାଦେ (ଗଡ଼ଜାତ) ବି—କଳରବକାରୀ ପକ୍ଷିବିଶେଷ—Subarnna mundi A kind of sweet-singing (ସୁନା ମୁଣ୍ଡି—ଅନ୍ୟରୂପ) bird. [ ଦ୍ର—ଏହି ପକ୍ଷୀର ନାମରୁ ବାମଣ୍ଡାର ସୁନାମୁଣ୍ଡା ପର୍ବତର ନାମ ହୋଇଅଛି । ଏହି ପକ୍ଷୀର ମୁଣ୍ଡ ହଳଦିଆ ।—ବଳଭଦ୍ର. ଗ୍ରନ୍ଥାବଳୀ । ]

ସୁବର୍ଣ୍ଣ ମୋଚ୍ଚ(ରମ୍ଭା)—ସଂ. ବି—ସୁବର୍ଣ୍ଣ କଦଳୀ (ଦେଖ)—Subarnna mochā(rambhā) Subarnna kadalī ( See )

ସୁବର୍ଣ୍ଣ ଯୂଥିକା(ଯୂଥୀ)—ସଂ. ବି—ପୀତବର୍ଣ୍ଣ ଯୂଇଫୁଲ; ପୀତଯୂଥୀ; ସ୍ୱର୍ଣ୍ଣଯୂଇ; ହଳଦିଆ ଯୁଇ—
Subarṇṇa jūthikā(jūthī) Yellow species of Jasminum Revolutum. [ ଦ୍ର—
ଅନ୍ୟ ସଂ. ନାମ—ସୁଗନ୍ଧା, ହେମଯୂଥିକା, ଯବଗାଷ୍ଠା, ହେମପୁଷ୍ପିକା, ରକ୍ତଗନ୍ଧା, ଶିଖଣ୍ଡୀ, ନାଗପୁଷ୍ପିକା, ହରିଣୀ, ପୀତମଲ୍ଲୀ, ପୀତିକା, କନକପୁଷ୍ପ, ମନୋହରା, ଗନ୍ଧାଢ୍ୟା
ଏଥିର ଗୁଣ ସ୍ୱାଦୁତ୍ୱ, ଶିଶିରତ୍ୱ, ପିତ୍ତଦାହତୃଷାନିବାରକତ୍ୱ, କଫଦୋଷନାଶକତ୍ୱ, ବ୍ରଣାସ୍ରମୂତ୍ର ବସ୍ତିଶିରୋରୋଗନାଶକତ୍ୱ—ଭାବପ୍ରକାଶ, ରାଜନିର୍ଘଣ୍ଟ । ]
पीतयुई, स्वर्णयुई सोनजुही

ସୁବର୍ଣ୍ଣରୂପ୍ୟକ—ସଂ. ବି—ସୁମାତ୍ରା ଦ୍ୱୀପର ପ୍ରାଚୀନ ନାମ ( ହି. ଶ )—
Subarṇṇarūpyaka An ancient name of Sumatra island.

ସୁବର୍ଣ୍ଣରେଖା—ଦେ. ବି—୧ । ଓଡ଼ିଶା ମଧ୍ୟ ଦେଇ ପ୍ରବାହିତ ହୋଇଥିବା ନଦୀବିଶେଷ—1. Name of a river flowing through Orissa. [ ଦ୍ର—
Subarṇṇarekhā
स्वर्णरेखा
सुबर्णरेखा
ଏହା ଛୋଟନାଗପୁରରୁ ବାହାରି ମାନଭୂମ, ସିଂହଭୂମି ଓ ବାଲେଶ୍ୱର ଜିଲ୍ଲାରେ ପ୍ରବାହିତ ହୋଇ ବଙ୍ଗୋପସାଗରରେ ପଡ଼ିଅଛି । ପୂର୍ବେ ଏହାର ବାଲିରୁ ସୁନା ମିଳୁଥିବାରୁ ଏହାର ଏହି ନାମ ହୋଇଅଛି । ଜଳେଶ୍ୱର ଏହି ନଦୀତୀରରେ ଅବସ୍ଥିତ । ] ୨ । ଓଡ଼ିଶା ଉପକୂଳର ପ୍ରାଚୀନ ବନ୍ଦରବିଶେଷ—2. Name of an ancient sea port in the coast of Orissa. ୩ । ଗଞ୍ଜାମ ଜିଲ୍ଲାରେ ମିଳୁଥିବା ସିନ୍ଦୂରା ଆମ୍ବବିଶେଷ—3. Name of a reddish coloured mango produced in Ganjām. ୪ । ଉପେନ୍ଦ୍ର ଭଞ୍ଜକୃତ କ୍ଷୁଦ୍ର କାବ୍ୟ ବିଶେଷ —4. Name of a small poem by Bhañja.

ସୁବର୍ଣ୍ଣରେତା—ସଂ. ବି (ସୁବର୍ଣ୍ଣରେତସ୍; ୧ମା. ୧ବ)—ଶିବ (ହି. ଶ)
Subarṇṇaretā —Śiba.

ସୁବର୍ଣ୍ଣରୋମା—ସଂ. ବି (ବହୁବ୍ରୀହି, ସୁବର୍ଣ୍ଣ ପରି ରୋମର ବର୍ଣ୍ଣ ଯାହାର)—
Subarṇṇaromā ମେଣ୍ଢା ( ହି. ଶ )—Ram. ସଂ. ବିଣ—ପୀତାଭ ଲୋମବିଶିଷ୍ଟ—
Having golden wool or fleece.

ସୁବର୍ଣ୍ଣଲତା—ସଂ. ବି—ଜ୍ୟୋତିଷ୍ମତୀଲତା ( ଦେଖ ) ( ହି. ଶ )
Subarṇṇalatā Jyotishmatilatā ( See )

ସୁବର୍ଣ୍ଣଶ୍ରୀ—ସଂ ବି (ନାମ)—ଆସାମ ପ୍ରଦେଶରେ ବହୁଥିବା ବ୍ରହ୍ମପୁତ୍ରର
Subarṇṇa śri ମୁଖ୍ୟ ଶାଖା ନଦୀ (ହି. ଶ)—[ଆଧୁନିକ ନାମ ସୋନାଇ ]—Name of a tributary of the Brahmaputra river flowing through Assam.

ସୁବର୍ଣ୍ଣସିଦ୍ଧ—ସଂ. ବିଣ. ପୁଂ (ବହୁବ୍ରୀହି)—ଯେ ଇନ୍ଦ୍ରଜାଲ ବଳରେ ସୁନା
Subarṇṇasiddha ପ୍ରାପ୍ତ କରିପାରେ ( ହି. ଶ )—
One who can secure or create gold through magic.
[ସୁବର୍ଣ୍ଣସିଦ୍ଧା—ସ୍ତ୍ରୀ]

ସୁବର୍ଣ୍ଣ ସୁଯୋଗ—ଦେ. ବି [ଆଧୁନିକ;ଇଂରାଜୀ ଅନୁବାଦ]-ଉତ୍କୃଷ୍ଟ ସୁବିଧା—
Subarṇṇa sujoga Golden opportunity.
स्वर्णसुयोग सुबर्नसुयोग

ସୁବର୍ଣ୍ଣା—ସଂ. ବିଣ. ସ୍ତ୍ରୀ—ସୁବର୍ଣ୍ଣର ସ୍ତ୍ରୀଲିଙ୍ଗ—Feminine of
Subarṇṇā Subarṇṇa. ବି—୧ । କୃଷ୍ଣାଗୁରୁ (ମେଦିନୀ) (ଦେଖ)—1. Krushnāguru (See). ୨ । ବାଡ଼ିଅଁଳା (ଶବ୍ଦଚନ୍ଦ୍ରିକା) (ଦେଖ)—2. Bārdi-aaṅlā (See). ୩ । ସ୍ୱର୍ଣ୍ଣକ୍ଷୀରୀ [ ରାଜନିର୍ଘଣ୍ଟ ]—3. Gamboje thistle. ୪ । ହରିଦ୍ରା; ହଳଦୀ [ରାଜନିର୍ଘଣ୍ଟ]—4 Turmeric. ୫ । ଇନ୍ଦ୍ରବାରୁଣୀ [ହି. ଶ ]—5. Colocynth. ୬ । [ନାମ]—ଅଗ୍ନିଙ୍କର ସାତ ଜିହ୍ୱା ମଧ୍ୟରୁ ଏକ [ ହି. ଶ ]—6. One of the seven tongues of the Fire god. ୭ । [ନାମ] ଇକ୍ଷ୍ୱାକୁଙ୍କ କନ୍ୟା ଓ ସୁହୋତ୍ରଙ୍କ ସ୍ତ୍ରୀ (ହି. ଶ )—7. Name of the wife of king Suhotra.

ସୁବର୍ଣ୍ଣାକର—ସଂ. ବି [ଷଷ୍ଠୀ ତତ୍; ସୁବର୍ଣ୍ଣ+ଆକର] ସୁନାର ଖଣି—
Subarṇṇākara Gold mine.

ସୁବର୍ଣ୍ଣାଖ୍ୟ—ସଂ. ବି—୧ । ନାଗକେଶର [ ରତ୍ନମାଳା ]—
Subarṇṇākhya 1. Mesua-Ferra ( tree and flower ). ୨ । ଧୂସ୍ତୁର ଗଛ ( ଶବ୍ଦକଳ୍ପଦ୍ରୁମ )—2. Thorn apple; Dhatura Fastuosa.

ସୁବର୍ଣ୍ଣାଭ—ସଂ. ବିଣ. ପୁଂ ( ବହୁବ୍ରୀହି; ସୁବର୍ଣ୍ଣ+ଆଭା+ଅ )—
Subarṇṇābha ସୁନାପରି ଆଭାବିଶିଷ୍ଟ—Shining like gold. ସଂ. ବି—ରାଜାବର୍ତ୍ତ ମଣି (ହି. ଶ)—
(ସୁବର୍ଣ୍ଣାଭା—ସ୍ତ୍ରୀ) A kind of yellow gem.

ସୁବର୍ଣ୍ଣାର—ସଂ ବି—ରକ୍ତକାଞ୍ଚନ ବୃକ୍ଷ (ହି. ଶ)
Subarṇṇāra The red-flowered Bouhenia (tree).

ସୁବର୍ଣ୍ଣାହ୍ୱା—ସଂ. ବି—ସ୍ୱର୍ଣ୍ଣଯୂଥିକା—The yellow flowering
Subarṇṇāhwā Jūi shrub and its flower.

ସୁବର୍ଣ୍ଣୀ—ସଂ. ବି—ଅଶ୍ୱକର୍ଣ୍ଣୀ (ରାଜନିର୍ଘଣ୍ଟ); ମୂଷାକାଣୀ; ମୂଷାର କାନ
Subarṇṇi ଭଳି ପାଣ୍ଡୁଆବିଶିଷ୍ଟ ଏକପ୍ରକାର ଜଳଜ ଶାକ ବା ଦଳ—Ipomoea Renniformis (aquatic plant).

ସୁବୟାଃ—ସଂ. ବି. ସ୍ତ୍ରୀ (ସୁ+ବୟସ୍; ୧ମା. ୧ବ)—ପ୍ରୌଢ଼ା ସ୍ତ୍ରୀ—
Subayāh A woman of middle age.

ସୁବର୍ତ୍ତୁ(ର୍ତ୍ତୁ)ଳ—ସଂ. ବିଣ—ଅତି ଗୋଲ—Very circular.
Subarttu(rtu)la ବି—ତରଭୁଜ (ବୈଦ୍ୟକ)—
Water melon.

ସୁବଳ—ସଂ. ବି. ପୁଂ—ଶ୍ରୀକୃଷ୍ଣଙ୍କ ବାଲ୍ୟସଖା ଗୋପବାଳକଙ୍କର ନାମ—
Subala Name of one of the playmates of
सुबल Srikrushṇa. ଦେ. ବି. ପୁଂ—ଲୋକଙ୍କ ନାମ—
सुबल A name given to males.

ସୁବଳୟ—ସ. ବି—ସୁନ୍ଦର ବଳୟ—A nice wristlet.
Subalaya ଦେ. ବି—ସୁବଳୟା (ଦେଖ)—Subalayā. (See)

ସୁବଳୟା—ଦେ. ବି (ସ. ସୁବେଳ)—ସମୁଦ୍ରକୂଳସ୍ଥ ଲଙ୍କାର ଉତ୍ତର Subalayā ଅଂଶର ପାହାଡ଼—Name of a mountain (ସୁବଳୟାଗିରି—ଅନ୍ୟରୂପ) in Ceylon where Rāmachandra took up his quarter. [ ଯୁ—ରାମଚନ୍ଦ୍ର ସେତୁବନ୍ଧ ଦ୍ୱାରା ସମୁଦ୍ର ପାର ହୋଇ କପି ସେନା ସହିତ ଏଠାରେ ଅବସ୍ଥାନ କରିଥିଲେ ।]

ସୁବଳିତ—ଦେ. ବଣ—୧ । ସୁନ୍ଦର ଓ ବର୍ତ୍ତୁଳାକାର—Graceful Subalita and round. (ଉ—ସୁବଳିତ ରମ୍ଭା ଊରୁ ଅଦ୍ଭୁତ ଦୁକୂଳେ । ସ୍ୱଧାନାଥ, ମହାଯାତ୍ରା ।) ୨ । ସୁନ୍ଦର—2. Beautiful; graceful. ( ଉ—ବଳନ ବାହୁ ସୁବଳିତ । ଲୁପ୍ତ ପ୍ରେମ ଅଶ୍ରାମୁତ ।) ସ. ବଣ. (ସୁ+ବଳ+ଯୁକ୍ତାର୍ଥେ. ଇତ)—ବଳବିଶିଷ୍ଟ—Strong.

ସୁବଲ୍ଲି (ଲ୍ଲୀ)—ସଂ ବି—୧ । ସୋମରାଜୀ (ଅମର ଭରତ); ବାକୁଚି—suballi (llī) 1. Serratula Anthelmintica. ୨ । (ସୁବଲ୍ଲିକା—ଅନ୍ୟରୂପ) କଟୁକୀ ( ହି. ଶ ) (ଦେଖ)—2. Kaṭuki (See) ୩ । ସୁବଦାର୍ଣ୍ଣୀ ଲତା (ହି. ଶ)—3. A herbarious creeper.

ସୁବସନ—ସଂ ବି—ସୁନ୍ଦର ବସ୍ତ୍ର—Nice cloth. ବଣ. ପୁଂ—Subasana (କର୍ମଧା) ସୁନ୍ଦର ବସ୍ତ୍ରଧାରୀ—Wearing nice (ସୁବସନା—ସ୍ତ୍ରୀ. ବଣ) cloth.

ସୁବସନ୍ତ—ସଂ. ବି—୧ । ସୁଜାତୀୟ ଅର୍ଥାତ୍ ସାମାନ୍ୟ କଷ୍ଟପ୍ରଦ ବସନ୍ତ Subasanta ରୋଗ—1. Mild form of small pox. ୨ । ମନୋରମ ବସନ୍ତ କାଳ—2. Charming spring season. ୩ । ଚୈତ୍ରାବଳୀ (ତିଥିବିଶେଷ); ବାସନ୍ତୀ, ଚୈତ୍ରପୂର୍ଣ୍ଣିମା—3. The fullmoon of 'Chaitra'. ୪ । ଚୈତ୍ର ପୂର୍ଣ୍ଣିମାରେ ଅନୁଷ୍ଠେୟ ମଦନୋତ୍ସବ—4. A feast in honour of Cupid held on Chaitra fullmoon.

ସୁବସନ୍ତକ—ସଂ. ବି—୧ । ବାସନ୍ତୀ; ମଦନୋତ୍ସବ; ଚୈତ୍ରାବଳୀ Subasantaka (ମେଦିନୀ)—1. The fullmoon of the month of 'Chaitra'. ୨ । କାଅଳ (ଲତା ଓ ଫୁଲ) (ହି. ଶ)—2. Jasminum Arborescens.

ସୁବସନ୍ତା—ସଂ. ବି—୧ । ମାଧବୀ ଲତା (ହି. ଶ)—1. Mādhabī Subasantā creeper. ୨ । ଜାଇ ଫୁଲ; ଜାଇ ଫୁଲ (ହି.ଶ)—2. Single-large-petalled Jasmine.

ସୁବହ—ସଂ. ବଣ—(ସୁ=ସୁଖରେ+ବହ୍ ଧାତୁ+କର୍ମ. ଅ)—Subaha ୧ । ସୁଖବାହ୍ୟ; ଯାହା ଅନାୟାସରେ ବହନ (ସୁବହା—ସ୍ତ୍ରୀ) କରାଯାଏ—1. Easily bearable. ୨ । (+ (ଦୁର୍ବହ—ବିପରୀତ) କର୍ତ୍ତୃ. ଅ) ଅବଲୀଳା କ୍ରମେ ବହନକ୍ଷମ—2. Capable of easily bearing or carrying. ୩ । ଧୈର୍ଯ୍ୟବାନ୍ (ହି. ଶ)—3. Patient. ସଂ. ବି—ଏକପ୍ରକାର ବାୟୁ (ହି.ଶ)—A kind of wind.

ସୁବହା—ସଂ. ବଣ. ସ୍ତ୍ରୀ ( ସୁବହ+ଆ )—ସୁବହର ସ୍ତ୍ରୀଲିଙ୍ଗ—Subahā Feminine of 'Subaha'. ବି—୧ । ଶେଫାଳିକା (ଅମର); ଗଙ୍ଗଶିଉଳି—1. Night-flowering Jasmine. ୨ । ଏଲାପର୍ଣ୍ଣୀ; ରାସ୍ନା (ଅମର)—2. Vanda Roxburghi. ୩ । ଶଲ୍ଲକୀ; ଲୋବାନ୍ (ମେଦିନୀ)—3. Indian olibanum. ୪ । ବୀଣା—4. Harp. ୫ । ତ୍ରିବୃତ୍; ଭଦୁଡ଼ି (ଶବ୍ଦଚନ୍ଦ୍ରିକା; ଭରତ )—5. Operculina Turpethum; Ipomoea Turpethum. ୬ । ଗୃଧ୍ର ଜଟା; ଝିଣ୍ଟିର ଜଟା (ରାଜନିର୍ଘଣ୍ଟ)—6. Cock'scomb; Celosia Cristata (a plant). ୭ । ହଂସପଦୀ (ରାଜନିର୍ଘଣ୍ଟ); ଗୋଧାପଦୀ—7. Maiden hair fern; Vitis Pedata. ୮ । ଦୃଶ୍ଲୀ; ତାଳମୂଳୀ (ଅମର)—8. Asparagus Sarmentosus. ୯ । ଗାଳ ସିନ୍ଦୁବାର; ଗାଳ ବେଗୁନିଆ ( ଅମର )—9. Vitex Trifolia. ୧୦ । କୁଆମଇତା (ହରେକୃଷ୍ଣ ଦ୍ରବ୍ୟ ଗୁଣ)--10. Cephalandra Indica (Kirtikar). ୧୧ । ଗନ୍ଧନାକୁଳୀ; ନକୁଳକନ୍ଦ (ହି. ଶ)—11. A kind of herbarious root.

ସୁବା—ବୈଦେ. ବି ( ଆ. ସୁବାହ୍ )—୧ । ଶାସନ ବିଭାଗ; ରାଜ୍ୟର Subā ପ୍ରଦେଶ—1. A province. [ ଯୁ—ମୋଗଲ ସুবা ରାଜତ୍ୱରେ ବଙ୍ଗ ବିହାର ଓ ଓଡ଼ିଶା ଗୋଟିଏ ସୁବାର सूबा ଅଧୀନ ଥିଲା ।] ୨ । ସାହେବ ଶବ୍ଦ ସହିତ ନିରର୍ଥକ ସହଚରରୂପେ ବ୍ୟବହୃତ ହେ—2. A word used as a meaningless compound with the word Sāheb, meaning etc.

ସୁବାକ—ଦେ. ବି ( ସଂ. ସୁ+ବାକ୍ )—ଋଷିବିଶେଷ—Name of Subāka a sage. ( ଉ—ଉର୍ଦ୍ଧ୍ୱରେତା ଯେ ହୋତ୍ର সুবাক सुवाक ବାହନ ସୁବାକ—କୃଷ୍ଣସିଂ. ମହାଭାରତ. ବନ । )

ସୁବାକ୍ୟ—ସଂ. ବି—୧ । ଉତ୍ତମ ବାକ୍ୟ—1. Good speech. Subākya ୨ । ମଧୁର ବାକ୍ୟ—2. Sweet speech. ସଂ. (ସୁବାକ୍ୟା—ସ୍ତ୍ରୀ) ବଣ. ପୁଂ—୧ । ମଧୁରଭାଷୀ ( ହି. ଶ ]—1. Sweet of speech. ୨ । ସୁବାଗ୍ମୀ ( ହି. ଶ )—2. Very eloquent.

ସୁବାଟ—ଦେ. ବି—ସୁପଥ ( ଦେଖ )
Subāṭa Supatha ( See )

ସୁବାଦାର୍—ବୈଦେ. ବି ( ଅ. ସୁବେଦାର୍ )—୧ । ଗୋଟିଏ ସୁବାର Subādār ଅର୍ଥାତ୍ ପ୍ରଦେଶର ବା ରାଜ୍ୟର ବିଭାଗର ଶାସନ- সুবাদার କର୍ତ୍ତା—1. The Governor of a Province. सूबेदार ( ଉ—ତ୍ରିକାଳ ସନ୍ଧ୍ୟାରେ ଆଶୀର୍ବାଦ କରି ଜମି ଭୋଗ ଦଖଲ କରିବା କାମନ୍ତେ ମରହଟ୍ଟା ସୁବାଦାର୍

ଉମ୍ନାଗାହିଁଥ ସନନ୍ଦ ଦେଇଅଛନ୍ତି—ଫକୀରମୋହନ-ଲିମାଣ ଅଠଗଡ଼।) ୨। ଦେଶୀୟ ପଲ୍‌ଟଣ ବା ସିପାହିମାନଙ୍କ ସରଦାରଙ୍କ ଉପାଧି—2. Subadar; a title given to an Indian captain of soldiers. ୩। ପୁଲିସ୍‌ ବା ମିଲିଟେରି ପୋଲିସ କନଷ୍ଟବଲମାନଙ୍କ ସର୍ଦ୍ଦାର—3. A Head-constable of the military police; head warder.

ସୁବାଦାର୍‌ ମେ(ମା)ଜର୍‌—ବୈଦେ. ବି (ଅ. ସୁବେଦାର ଓ ଇଂ. ମାଜର୍‌) Subādār me(mā)jar ଭାରତୀୟ ସୈନ୍ୟବିଭାଗର କାପ୍ତାନଙ୍କ ସୁବাদার মেজব উପାଧି ବିଶେଷ—A title given to सूवेदार मेजर Indian Captains of the Indian army; Subadar major.

ସୁବାଦାରି—ବୈଦେ. ବି—ସୁବାଦାରର କାର୍ଯ୍ୟ ବା ପଦବୀ—Subādāri The position or office of a সুবাদারি सूवेदारि Subadar.

ସୁବାଦାରିଆ—ଦେ. ବିଣ—ସୁବାଦାର୍‌ ସମ୍ବନ୍ଧୀୟ—Subādāriā Relating to Subadar. সুবাদরি सूवेदारका

ସୁବାନି—ଦେ. ବି—ହାତି ମାହୁନ୍ତଙ୍କୁ ରାଜଦତ୍ତ ଉପାଧି—A title Subāni given by a Rājā to an elephant-সুবানি सूवानी driver.

ସୁବାମତି—ଦେ. ବିଣ—ସାଧାରଣ—Ordinary. [ଉ—×××ଲାଭ କଥାରୁ ପୁଚ୍ଛା, ମୁନସି ଜମାଦାର ବରକନ୍ଦାଜ Subāmati ସବାରେ ନେବାରତ ସୁବାମତି କଥା। ଫକୀରମୋହନ-সাধাবণ साधारण ଲିମାଣ. ଅଠଗଡ଼।]

ସୁବାସ—ସଂ. ବି (ସୁ+ବାସ)—୧। ସୁନ୍ଦର ବସ୍ତ୍ର—1. A nice Subāsa cloth. ୨। ସୁଗନ୍ଧ; ସୌରଭ—2. Sweet scent; fragrance. ୩। ସୁନ୍ଦର ଗୃହ—3. A nice house. ୪। ସୁଖରେ ବାସ କରିବା—4. Comfortable living. ୫। ଶିବଙ୍କର ଏକ ନାମ (ହ. ଶ)—5. A name of Śiba. ବିଣ—ସୁଗନ୍ଧଯୁକ୍ତ—Sweet-scented; fragrant. [ଦ୍ର—ସୁବାସ ଶବ୍ଦର ବିଶେଷ୍ୟରେ ପ୍ରଥମୋକ୍ତ ୩ ଅର୍ଥ ଓ ବିଣରେ ଶେଷୋକ୍ତ ଅର୍ଥକୁ ଲକ୍ଷ୍ୟ କରି ଏହି ପଦଟି ରଚିତ ହୋଇ-ଅଛି—ଯେଉଁ ଦିନୁ ହେଲା ସୁବାସ (ବିଣ) ନାସ (ନସ୍ୟ), ସେହିଦିନୁଁ ଗଲା (ହେଲା) ସୁବାସ (ସୁଗନ୍ଧ ଗ୍ରାହିତା) ନାଶ, ସୁବାସ (ସୁନ୍ଦର ବସ୍ତ୍ର) ନାଶ, ସୁବାସ (ସୁନ୍ଦର ଗୃହ) ନାଶ]
সুবাস ଦେ. ବି. ପୁଂ—ପୁରୁଷଙ୍କ ନାମ—A name given सुवास to males.

ସୁବାସକ—ସଂ. ବି—ତରଭୁଜ (ହ. ଶ)—Subāsaka Water melon.

ସୁବାସନ—ଦେ. ବିଣ—ସୁବାସିତ—Scented. [ଉ—ଦିବ୍ୟ ବସନ Subāsana ବାସୀମାନ, ଉଦ୍ଧୁଳି ଗନ୍ଧେ ସୁବାସନ। ଜଗନ୍ନାଥ-সুবাসিত ଭାଗବତ।] ସଂ. ବି. ପୁଂ (ନାମ)—ଦଶମ ମନୁଙ୍କର सुवासित ଏକ ପୁତ୍ର—Name of a son of the 10th Manu.

ସୁବାସ ନାଶ—ସଂ. ବି (୬ଷ୍ଠୀ ତତ୍‌)—୧। ସୁଗନ୍ଧର ବିନାଶ—Subāsa nāśa 1. Disappearance of good smell. ୨। ସୁନ୍ଦର ଗୃହର ବିନାଶ—2. Spoiling of a good house. ୩। ସୁନ୍ଦର ବସ୍ତ୍ରର ନାଶ—3. Spoiling of a good cloth.

ସୁବାସ ନାସ—ଦେ. ବି—ସୁବାସିତ ନସ୍ୟ—Subāsa nāsa Sweet scented snuff. সুবাস নস্য सुवास हुलास

ସୁବାସ ବାସ—ଦେ. ବି—୧। ସୁଗନ୍ଧ—1. Sweet smell. ୨। Subāsa bāsa ସୁଗନ୍ଧ ଗ୍ରହଣ—2. Smelling of sweet সুবাস বাস smell. ୩। ସୁବାସିତ ବସ୍ତ୍ର—3. Perfumed सुवास वास cloth. [ଉ—ଯେଉଁ ଦିନୁ ହେଲ ସୁବାସ ନାସ ସେହି ଦିନୁ ଗଲା ସୁବାସ ବାସ, ସୁବାସ ବାସ, ସୁବାସ ବାସ—ଉଭ।]

ସୁବାସର—ସଂ. ବି—ସୁଦିନ—A good or agreeable day. Subāsara

ସୁବାସରା—ସଂ. ବି (ବୈଦ୍ୟକ)—ଚନ୍ଦ୍ରଶୂର; ହାଲିମ—Subāsarā Common cress.

ସୁବାସାଃ—ସଂ. ବିଣ (ପୁଂ ଓ ସ୍ତ୍ରୀ) (ବହୁବ୍ରୀହି; ସୁବାସସ୍‌ ଃ ମା.ୠବ)—Subāsāḥ ସୁନ୍ଦର ବସ୍ତ୍ର ବିଶିଷ୍ଟ—Having good cloth. (ସୁବାସା—ଦେ, ରୂପ)

ସୁବାସିତ—ସଂ. ବିଣ (ସୁବାସ+ସଞ୍ଜାତ ଅର୍ଥରେ ଇତ)—୧। ସୁବାସ Subāsita ଯୁକ୍ତ; ସୌରଭ ଯୁକ୍ତ—1. Fragrant; sweet-smelling. ୨। ସୁଗନ୍ଧୀକୃତ; ଯାହାକୁ (ତୈଳାଦି) ବାସଯୁକ୍ତ କରି ଯାଇଅଛି—2. Scented.

ସୁବାସିନୀ—ସଂ. ବିଣ. ସ୍ତ୍ରୀ (ସୁବାସ+ଅସ୍ତି ଅର୍ଥରେ ଇନ୍‌+ସ୍ତ୍ରୀ+ଈ)—Subāsinī ସୁବାସୀର ସ୍ତ୍ରୀଲିଙ୍ଗ—Feminine of Subāsī. ବି—୧। ସୁବାସଯୁକ୍ତା ରମଣୀ—1. A woman from whose body a sweet smell emanates. ୨। ଚିରଣ୍ଟୀ; ଚିରକାଳ ପିତାଳୟବାସିନୀ ବିବାହିତା କନ୍ୟା (ଅମର)—2. A married girl who always resides in her father's house. ୩। ବିଗତବୟାଃ ବା ପ୍ରୌଢ଼ା ସ୍ତ୍ରୀ—3. A middle-aged woman. ୪। ଚିରକାଳ ପିତାଳୟବାସିନୀ ବିବାହିତା ବା ଅବିବାହିତା ସ୍ତ୍ରୀ—4. A woman married or single who resides in her father's house (Apte). ୫। ସମ୍ଭ୍ରାନ୍ତ ବଂଶୀୟା ଅଧବା ସ୍ତ୍ରୀଲୋକଙ୍କ ପ୍ରତି ବ୍ୟବହୃତ ସମ୍ଭାଷଣ—5. A term of courtesy for a respectable woman whose husband is alive (M. W.).

୬ । ସଧବା ସ୍ତ୍ରୀଲୋକ ( ହି. ଶ )—6. A lady whose husband is alive. [ ଦ୍ର—କେହି କେହି କହନ୍ତି ଓଡ଼ିଆ 'ଭୁଆସୁଣୀ' ଶବ୍ଦ ଏହି ଶବ୍ଦର ଅପଭ୍ରଂଶ; ମାତ୍ର ପ୍ରକୃତରେ ଭୁଆସୁଣୀ ଶବ୍ଦ ସଂସ୍କୃତ 'ବହୁସୂନୁ' ( ଅର୍ଥାତ୍ ଯେ ଅନେକଥର ପୁତ୍ରବତୀ ହୁଏ ) ଶବ୍ଦର ଅପଭ୍ରଂଶ ପରି ଜଣାଯାଏ ।]

ସୁବାସୀ—ସଂ. ବିଣ ( ସୁ+ବାସ+ଇନ୍; ୧ମା. ୧ବ )—୧ । ସୁଖରେ
Subāsi ବାସ କରୁଥିବା—1. Residing or living comfortably. ୨ ।ସୌରଭମୟ—2. Scented; fragrant. ୩ । ସୁନ୍ଦର ବାସଯୁକ୍ତ—3. Having a good scent. ୪ । ସୁନ୍ଦର ଗୃହରେ ବାସ କରୁଥିବା—4. Dwelling in a comfortable or respectable abode ( M. W, ). ଦେ. ବି. ପୁଂ ଓ ସ୍ତ୍ରୀ—ପୁରୁଷ ଓ ସ୍ତ୍ରୀଲୋକଙ୍କ ନାମ—A name given to males and females.

ସୁବାହ—ସଂ. ବି—୧ । ଉତ୍ତମ ଘୋଡ଼ା ( ହି. ଶ )—1. A good
Subāha horse. ୨ । ( ନାମ ) ସ୍କନ୍ଦଙ୍କ ଅନୁଚରବିଶେଷ ( ହି. ଶ )—2. Name of an attendant of Skanda. ସଂ. ବିଣ—୧ । ସୁନ୍ଦର ଅଶ୍ୱବିଶିଷ୍ଟ—1. Having good horse. ୨ । ( ସୁ+ବହ ଧାତୁ+କର୍ମ. ଅ ) ସହଜରେ ବହନ ଯୋଗ୍ୟ—2. Capable of being easily carried.

ସୁବାହୁ—ସଂ. ବ. ବିଣ ( ବହୁବ୍ରୀହି )—ସୁନ୍ଦର ବାହୁବିଶିଷ୍ଟ—
Subāhu Having nice arms.
ସଂ. ବି—୧ । ଉତ୍ତମ ବା ସୁନ୍ଦର ବାହୁ—1. Fine arm. ୨ । (ନାମ) ସ୍କନ୍ଦଙ୍କର ଜଣେ ପାର୍ଷଦ (ହି.ଶ)—2. Name of a courtier of Skanda. ୩ । (ନାମ) ଧୃତରାଷ୍ଟ୍ରଙ୍କ ପୁତ୍ର ଓ ଚେଦିର ରାଜା (ହି. ଶ)—3. Name of a son of Dhṛutarāshṭra. ୪ । ( ନାମ ) ଶ୍ରୀକୃଷ୍ଣଙ୍କ ଏକ ପୁତ୍ର—4. Name of a son of Śrikṛushṇa. ୫ । ବିଶ୍ୱାମିତ୍ରଙ୍କ ତପୋଭଗ୍ନକାରୀ ମାରୀଚର ସହଚର ରାକ୍ଷସ—5. Name of a demon. ୬ । ଦଶରଥଙ୍କର ସାରଥିର ନାମ—6. Name of a charioteer of Daśaratha. ୭ । ଶତ୍ରୁଘ୍ନଙ୍କର ଗୋଟିଏ ପୁତ୍ରର ନାମ—7. Name of a son of Śatrughna. ( ଉ—ସୁବାହୁ ଶ୍ରୁତସେନ ବୀର, ହୋଇବେ ଶତ୍ରୁଘ୍ନ କୁମର—ଜଗନ୍ନାଥ. ଭାଗବତ । ) ୮ । ପ୍ରାଚୀନ ଭାରତର ଜନୈକ ରାଜା, କୁବଳୟାଶ୍ୱଙ୍କ ପୁତ୍ର—8. Name of an ancient king of India, son of Kubaḷayāśwa. (ଉ—ସୁବାହୁଙ୍କ ରାଜ୍ୟକୁ ଗଲେ ଭୀମ ହୋଇ—କୃଷ୍ଣସିଂହ. ମହାଭାରତ. ବନ । )

ସୁବିକଟ—ସଂ. ବିଣ—ଅତି ଭୟଙ୍କର—
Subikaṭa Very frightful.

ସୁବିକ୍ରମ(ବିକ୍ରାନ୍ତ)—ସଂ. ବିଣ. ପୁଂ—ଅତି ପରାକ୍ରମୀ—Very valiant
Subikrama(bikrānta) ( ସୁବିକ୍ରମା[ବିକ୍ରାନ୍ତା]—ସ୍ତ୍ରୀ )—

ସୁବିକ୍ଳବ—ସଂ. ବିଣ—ଅତି ବିହ୍ୱଳ—
Subikḷaba Much perturbed.

ସୁବିଖ୍ୟାତ—ସଂ. ବିଣ—ଅତ୍ୟନ୍ତ ପ୍ରସିଦ୍ଧ—
Subikhyāta Very celebrated.

ସୁବିଗ୍ରହ—ସଂ. ବି—ସୁନ୍ଦର ଦେହ—Graceful body. ସଂ. ବିଣ
Subigraha ପୁଂ—ସୁନ୍ଦର ଶରୀରବିଶିଷ୍ଟ—
(ସୁବିଗ୍ରହା—ସ୍ତ୍ରୀ) Having a graceful body.

ସୁବିଚାର—ସଂ. ବି—୧ । ଉତ୍ତମ ବିଚାର; ନ୍ୟାଯ୍ୟବିଚାର—1. Just
Subichāra consideration; just decision. ୨ । ( ନାମ ) ଶ୍ରୀକୃଷ୍ଣଙ୍କର ଏକ ପୁତ୍ର ( ହି. ଶ )—2. Name of a son of Śrikṛushṇa

ସୁବିଚାରକ—ସଂ. ବିଣ. ପୁଂ—ନ୍ୟାଯ୍ୟବିଚାରକାରୀ ( ବ୍ୟକ୍ତି )—
Subichāraka (a judge) Who judges rightly; discriminating (judge).

ସୁବିଚାରିତ(ବିବେଚିତ)—ସଂ. ବିଣ—ଉତ୍ତମ ରୂପେ ବିଚାର କରାଯାଇ
Subichārita (bibechita) ଥିବା—Well considered.

ସୁବିଜ୍ଞ—ସଂ. ବିଣ. (ପୁଂ)—ଉତ୍ତମ ରୂପେ ବିଜ୍ଞ—Very wise or
Subijña experienced.
(ସୁବିଜ୍ଞା—ସ୍ତ୍ରୀ) (ସୁବିଜ୍ଞତା—ବି)

ସୁବିଜ୍ଞାନ—ସଂ. ବିଣ—ସହଜରେ ଜ୍ଞେୟ ( ହି. ଶ )—1. Easily
Subejñāna knowable. ୨ । ଅତିଶୟ ବୁଦ୍ଧିମାନ୍ (ହି. ଶ)—2. Very intelligent.

ସୁବିଜ୍ଞେୟ—ସଂ. ବିଣ—ସହଜରେ ଯାହା ଜଣାଯାଇ ପାରେ—Easily
Subijñeya knowable. ସଂ. ବି—ଶିବ ( ହି. ଶ )—Śiba

ସୁବିତ—ସଂ. ବିଣ—୧ । ଯାହା ସହଜରେ ପହଞ୍ଚି ଯାଇ ପାରେ—
Subita 1. Easily reachable. ୨ । ସହଜରେ ପ୍ରାପ୍ୟ—2, Easily attainable.

ସୁବିତତ—ସଂ. ବିଣ—ସୁବିସ୍ତୃତ—
Subitata Extensive; well spread.

ସୁବିତା(ଧା)—ଗ୍ରା. ବି ( ସଂ. ସୁବିଧା )—ସୁବିଧା—Convenience.
Subitā(dhā) ବିଣ—୧ । ସୁବିଧାଜନକ—1. Convenient.
স্বীধা सुमिता
শোভীত ୨ । ( ସଂ. ଶୋଭିତ ) ମନୋରମ; ଶୋଭାଯୁକ୍ତ—
सुहावना 2. Beautiful; nice.

ସୁବିତ୍ତ—ସଂ. ବି—୧ । ଉତ୍ତମ ମାର୍ଗରେ ଅର୍ଜିତ ବା ପ୍ରାପ୍ତଧନ—
Subitta Honestly acquired wealth.
(ସୁବିତ୍ତା—ସ୍ତ୍ରୀ) ସଂ. ବିଣ. ପୁଂ—ପ୍ରଚୁର ଧନୀ (ହି. ଶ)—Very rich.

ସୁବିଦ୍—ସଂ. ବି. ପୁଂ ଓ ସ୍ତ୍ରୀ (ସୁ+ବିଦ୍ ଧାତୁ+କର୍ତ୍ତୃ. କ୍ୱିପ୍)—
Subid ୧ । ପଣ୍ଡିତ—1. A learned man. ୨ । ଗୁଣଯୁକ୍ତା ନାରୀ—2. A virtuous woman.

ସୁବିଦ ସଂ. ବି. ପୁଂ (ସୁ+ବିଦ୍ ଧାତୁ+କର୍ତ୍ତୃ. ଅ)—୧ । ପଣ୍ଡିତ
Subida (ସୁସ୍ପୃଷ୍ଟ)—1. A learned man. ୨ । କଞ୍ଚୁକୀ;
(ସୁବିଦା—ସ୍ତ୍ରୀ) ଅନ୍ତଃପୁର ରକ୍ଷକ—2. The keeper of a seraglio. ୩ । ତିଳକ ପୁଷ୍ପବୃକ୍ଷ (ବୃ. ଶ)—3. A kind of flowering tree.

ସୁବିଦତ୍-ସଂ ବି (ସୁବିଦ୍=ପଣ୍ଡିତ+ଅତ୍ ଧାତୁ=ସତତ ଗମନ
Subidat କରିବା+କର୍ତ୍ତୃ. କ୍ୱିପ୍)—ରାଜା (ସୁସ୍ପୃଷ୍ଟ)-A king.

ସୁବିଦତ୍ର- ସଂ. ବି (ସୁ+ବିଦ୍. ଧାତୁ+କର୍ତ୍ତୃ. ଅତ୍ର)—୧ । କୁଟୁମ୍ବ -
Subidatra 1. Kinsman; kindred. ୨ । (+ଜ୍ଞାନ. ଅର୍ଥ) ଜ୍ଞାନ (ବୃ. ଶ)—2. Knowledge. ୩ । କୃପା; ଦୟା (ବୃ. ଶ)—3. Kindness; mercy. ୪ । (+ କର୍ମ. ଅର୍ଥ) ଧନ; ସମ୍ପତ୍ତି (ବୃ. ଶ)—4. Riches. ସଂ. ବିଣ—୧ । ଅତ୍ୟନ୍ତ ସାବଧାନ (ବୃ. ଶ)—1 Very careful. ୨ । ମହାଶୟ (ବୃ. ଶ)—2 Magnanimous; large-hearted. ୩ । ଉଦାର (ବୃ. ଶ)—3. Liberal-minded. ୪ । ଦୟାଳୁ (ବୃ. ଶ)—4. Kind.

ସୁବିଦଲ୍ଲ -ସଂ. ବି (ସୁ+ବିଦ୍. ଧାତୁ+ଅଲ୍ଲ, କିମ୍ବା ସୁବିଦ୍+ଲ୍ଲ
Subidalla ଧାତୁ=ଉପଭୋଗ କରିବା+କର୍ତ୍ତୃ. ଅ)—୧। ଅନ୍ତଃପୁର (ସୁସ୍ପୃଷ୍ଟ)—1. Harem; female apartment. ୨ । କଞ୍ଚୁକୀ—2. A male servant who is in charge of a harem.

ସୁବିଦଲ୍ଲା(ଳା)—ସଂ. ବି. ସ୍ତ୍ରୀ (ସୁବିଦଲ୍ଲ+ଆ) - ଭର୍ତ୍ତାନାରୀ; ବିବାହିତା
Subidallā(ḷā) ସ୍ତ୍ରୀ—A married woman.

ସୁବିଦିତ—ସଂ. ବି—ସୁପରିଜ୍ଞାତ; ଉତ୍ତମରୂପେ ଜ୍ଞାତ—
Subidita Well known.

ସୁବିଦ୍ୟ—ସଂ. ବିଣ. ପୁଂ (ସୁ+ବିଦ୍ୟା+ଅ; ବହୁବ୍ରୀହି)—ସୁବିଜ୍ଞ ପଣ୍ଡିତ
Subidya Very learned.

ସୁବିଦ୍ୟା—ସଂ. ବି—ଉତ୍ତମ ବିଦ୍ୟା; ଉଚ୍ଚ ବିଦ୍ୟା—Good or
Subidyā high learning. ସଂ. ବିଣ. ସ୍ତ୍ରୀ—ସୁବିଦ୍ୟର ସ୍ତ୍ରୀଲିଙ୍ଗ—Feminine of Subidya.

ସୁବିଧ—ସଂ.ବିଣ. ପୁଂ (ସୁ+ବିଧା+ଅ; ବହୁବ୍ରୀହି)—ସୁଶୀଳ (ବୃ. ଶ)-
Subidha (ସୁବିଧା—ସ୍ତ୍ରୀ) Of good nature.

ସୁବିଧା—ସଂ ବି (ସୁ+ବିଧା=ପ୍ରକାର)—୧ । ଉତ୍ତମ ପ୍ରକାର—
Subidhā 1. Good sort or mode. ୨ । ସଦୁପାୟ—2. Good or effectual or honest means. ସଂ ବିଣ. ସ୍ତ୍ରୀ—ସୁବିଧର ସ୍ତ୍ରୀଲିଙ୍ଗ—Feminine of
ସୁବିଧା ସୁବିଧା, সুবিধা Subicha. ଦେ. ବି—୧ । ସୁଯୋଗ; ସୁଯୋଗ—1. Opportunity; occasion; advantage ୨ । ସ୍ୱାଚ୍ଛନ୍ଦ୍ୟ—2. Comfort; convenience. ୩ । ଉପାୟ—3. Means.

ସୁବିଧା କରିବା—ଦେ. କ୍ରି.—୧ । ସୁଯୋଗ ଘଟାଇବା—
Subidhā karibā 1. To arrange for a
सुविधाकरना সুবিধা করনা suitable opportunity. ୨ । ସ୍ୱାଚ୍ଛନ୍ଦ୍ୟ ଘଟାଇବା—2. To make comfortable arrangements.

ସୁବିଧାଜନକ—ଦେ. ବିଣ—୧ । ଯାହା ସୁଯୋଗ ଘଟାଏ—
Subidhajanaka 1. Opportune. ୨ । ସ୍ୱଚ୍ଛନ୍ଦ
सुविधाजनक সুবিধাজনক ସ୍ୱାଚ୍ଛନ୍ଦ୍ୟ ଘଟେ—2 Convenient.

ସୁବିଧାନ -ସଂ. ବି (ସୁ+ବିଧାନ)—ଉତ୍ତମ ନିୟମ ବା ବ୍ୟବସ୍ଥା—
Subidhāna Good rule or arrangement.
(ସୁବିହିତ—ବି)

ସୁବିଧି—ସଂ. ବି (ସୁ+ବିଧି)—୧ । ଉତ୍ତମ ବିଧି—1. Nice or
Subidhi good rule. ୨ । (ନାମ)—ବର୍ତ୍ତମାନ ଅବସର୍ପିଣୀର ଜୈନ ଅର୍ହତ୍ ବିଶେଷ (ହେମଚନ୍ଦ୍ର)—2. Name of a Jaina saint.

ସୁବିନୀତ—ସଂ ବିଣ. ପୁଂ (ସୁ+ବିନୀତ)—ଅତ୍ୟନ୍ତ ବିନୟଯୁକ୍ତ—
Subinita Very gentle.
(ସୁବିନୀତା—ସ୍ତ୍ରୀ) (ଅବିନୀତ, ଦୁର୍ବିନୀତ—ବିପରୀତ)

ସୁବିନୀତା—ସଂ ବିଣ. ସ୍ତ୍ରୀ - ସୁବିନୀତର ସ୍ତ୍ରୀଲିଙ୍ଗ -Feminine of
subinitā 'Subinita ବି: ସ୍ତ୍ରୀ ସୁଶୀଳ ଗାଈ; ସୁଧୀର ଗାଈ—A meek cow.

ସୁଶୁଭା—ଗ୍ରା. କ୍ରି (ସଂ. ଶ୍ରୁ ଧାତୁ; ପ୍ରା ସୁଣ୍ ଧାତୁ)—ଶୁଭିବା; ଶୁଣାଯିବା-
Subhā To be heard.
सुनाजाना সুনাজানা

ସୁବିମଳ—ସଂ ବିଣ—ଅତି ନିର୍ମଳ—
Subimala Very clear.

ସୁବିଶାଳ—ସଂ ବିଣ—ଅତି ବିଶାଳ—
Subiśāla Very extensive.

ସୁବିସ୍ତା—ଗ୍ରା. ବି (ସଂ ସୁବିଧା)—ସୁବିଧା (ଦେଖ)
Subistā Subidhā (See)
सुविधा সুবিধা

ସୁବିସ୍ତାରିତ—ସଂ ବିଣ—ଅତି ବିସ୍ତାରିତ—
Subistarita Much extended.
(ସୁବିସ୍ତୃତ—ଦେ. ରୂପ)

ସୁବିସ୍ତୀର୍ଣ୍ଣ—ସଂ ବିଣ—ଅତି ବିସ୍ତୀର୍ଣ୍ଣ—
Subistirnna Very wide.

ସୁବିସ୍ତୃତ—ସଂ ବିଣ—ଅତି ବିସ୍ତୃତ -
Subistruta Very extensive; much extended.

ସୁବୀଜ—ସଂ. ବି—୧ । ସୁନ୍ଦର ବୀଜ—1. Nice seed. ୨ । ଅଙ୍କୋ-
Subija ଦ୍ଗମକ ବୀଜ—2. A seed which succeeds in sprouting. ୩ । ବେଣାଚେରର (ରାଜ ନିର୍ଘଣ୍ଟ)—3. The root of the Benā grass. ବିଣ—(ସୁବୀଜା—ସ୍ତ୍ରୀ) ସୁନ୍ଦର ବୀଜଯୁକ୍ତ—Having nice seeds.

ସୁବୀର—ସଂ. ବି—୧ । ଦେଶ ବିଶେଷ; ସିନ୍ଧୁନଦ ସନ୍ନିକଟସ୍ଥ ଦେଶ—
Subira 1. Name of a country. ୨ । ଉତ୍କୃଷ୍ଟ ବୀର ବା ଯୋଦ୍ଧା—2. A great hero or warrior. ୩ । ସ୍କନ୍ଦଙ୍କର ଏକ ନାମ (ହ. ଶ)—3. A name of Skanda. ୪ । ଶିବଙ୍କର ଏକ ନାମ (ହ. ଶ)—4 A name of Siba. ୫ । ଶିବଙ୍କର ଏକ ପୁତ୍ର (ହ. ଶ)—5. A son of Siba. ୬ । ଶିବିଙ୍କର ଏକ ପୁତ୍ର (ହ. ଶ —6. A son of king Sibi. ୭ । ଏକ-ପ୍ରକାର ବୃକ୍ଷ (ହ. ଶ) 7. Name of a wild tree.

ସୁବୀରକ—ସଂ. ବି—୧ । ସୌବୀରାଞ୍ଜନ (ଶବ୍ଦ ଚନ୍ଦ୍ରିକା) (ଦେଖ)—
Subiraka 1 Saubirānjana (See). ୨ । ବଦରୀ; ବରକୋଳି (ହ. ଶ)—2. Jujube. ୩ । ଏକପ୍ରକାର ବୃକ୍ଷ (ହ. ଶ)—3. Name of a wild tree.

ସୁବୀରଜ—ସଂ. ବି—ସୌବୀରାଞ୍ଜନ (ଦେଖ)
Subiraja Saubirānjana (See)

ସୁବୀରାମ୍ଳ—ସଂ. ବି—କାଞ୍ଜିକ (ଜଟାଧର); ଯବର ବା ଗହମର କାଞ୍ଜି—
Subirāmla Fermented barley or wheat gruel. [ଦ୍ର—ସୌବୀରକ ତଳେ ନୋଟ ଦେଖ ।]

ସୁବୀର୍ଯ୍ୟ—ସଂ. ବି—୧ । ଉତ୍ତମ ବୀର୍ଯ୍ୟ—1. Good matter or
Subirjya semen. ୨ । ସନ୍ତାନୋତ୍ପାଦନସମର୍ଥ ବୀର୍ଯ୍ୟ—2. Productive semen. ୩ । ଉଚ୍ଚବଂଶୀୟ ବ୍ୟକ୍ତିଙ୍କ ବୀର୍ଯ୍ୟ—3. The semen of a man of a great family. ୪ । ବଦରୀ ଫଳ (ଜଟାଧର)—4. The
[ସୁବୀର୍ଯ୍ୟା—ସ୍ତ୍ରୀ. ବିଣ] Jujube berry. ସଂ. ବିଣ. ପୁଂ—ମହାଶକ୍ତି ବା ବଳଶାଳୀ—Very mighty.

ସୁବୀର୍ଯ୍ୟା—ସଂ. ବି—୧ । ବନ କାର୍ପାସୀ; ବଣ କପା ( ଶବ୍ଦ
Subirjyā ରତ୍ନାବଳୀ)—1. The wild cotton plant. ୨ । ବଡ଼ ଶତାବରୀ (ହ. ଶ)—2. The larger variety of Asparagus. ୩ । ନାଡ଼ୀ ହିଙ୍ଗୁ; ହିଙ୍ଗୁ-ବିଶେଷ ( ବୈଦ୍ୟକ )—3. Dikamali gum; Gummy Gardenia. ସଂ. ବିଣ. ସ୍ତ୍ରୀ—ସୁବୀର୍ଯ୍ୟର ସ୍ତ୍ରୀଲିଙ୍ଗ—Feminine of Subirjya.

ସୁବୁଦ୍ଧି—ସଂ. ବି ( କର୍ମଧା )—୧ । ସଦ୍‌ବୁଦ୍ଧି; ଉତ୍ତମ ବୁଦ୍ଧି—
Subuddhi 1. Good intellect. ୨ । ସୁମତି; ଭଲ (ଲୁକୁଡ଼ି—ବ୍ୟବହାର) କାର୍ଯ୍ୟରେ ମତି—2. Inclination to do good acts. ବିଣ—୧ । ଉତ୍ତମ ବୁଦ୍ଧି ବିଶିଷ୍ଟ; ସୁନ୍ଦର ବୁଦ୍ଧିଯୁକ୍ତ—1. Possessing good intellect; of good intellect. ୨ । ବୁଦ୍ଧିମାନ—2. Intelligent. ୩ । ସତ୍ ସ୍ୱଭାବ—3. Of good nature. ଦେ. ବି—୧ । ଖଣ୍ଡାଏତ ଓ ତେଲିଙ୍କର ବଂଶୋପାଧି ବିଶେଷ—1. A family title of Oilmen and Khandāyets. [ଦ୍ର—ବାଲିର ବେଦ୍ୟେଶ୍ୱରରେ ତେଲି ଜାତୀୟ ସୁବୁଦ୍ଧି ଉପାଧିଧାରୀ ମହାଜନ ଓ ଜମିଦାର ବାସ କରନ୍ତି ।] ୨ । ରାଜଦତ୍ତ ଉପାଧି-ବିଶେଷ—2. A title bestowed by kings.

ସୁବୁଦ୍ଧି ଶିରୋମଣି—ଦେ. ବି—ନବଦ୍ୱୀପର ଜ୍ୟୋତିଃଶାସ୍ତ୍ରାନୁଶୀଳନରେ
Subuddhi siromani ପ୍ରଖ୍ୟାତ ବଂଶର ଆଦିପୁରୁଷ—Name of the ancestor of a famous family of astrologers of 'Nabadwipa'. [ଦ୍ର—ଏହାଙ୍କର ପ୍ରପୌତ୍ର ଗୋକୁଳାନନ୍ଦ ବିଦ୍ୟାମଣି ମହାରାଜ କୃଷ୍ଣଚନ୍ଦ୍ରଙ୍କଠାରୁ ବୃତ୍ତି ପାଇ ଆପଣାର ଜନ୍ମ-ସ୍ଥାନ ଯଶୋହର ଜିଲ୍ଲାର ଚୌଗାଛ ଗ୍ରାମରୁ ଆସି ନଦିଆରେ ରହୁଥିଲେ ।]

ସୁବୁଧି—ଗ୍ରା. ବି ଓ ବିଣ ( ସୁବୁଦ୍ଧିର ଅଶୁଦ୍ଧ ଉଚ୍ଚାରଣ )—ସୁବୁଦ୍ଧି
Subudhi (ଦେଖ)—Subuddhi ( See )

ସୁବୁଧିଆ—ଗ୍ରା. ବିଣ. ପୁଂ—ସୁବୁଦ୍ଧି ( ଦେଖ )
Subudhiā Subuddhi ( See )
(ସୁବୁଧୀ—ସ୍ତ୍ରୀ) सुबुद्धि सुबुद्धिवाला

ସୁବୁଧି କଇଁ—ଦେ. ବି—ନେଳୀ କଇଁ ଫୁଲ; ନୀଳୋତ୍ପଳ—
Subudhi kain The blue water-lily.
नील शालूक नील कुमुद

ସୁବୃତ୍ତ—ସଂ. ବିଣ (ସୁ=ଉତ୍ତମ + ବୃତ୍ତ=ଚରିତ ଯାହାର; ବହୁବ୍ରୀହି)-
Subrutta ୧ । ସମ୍ପୂର୍ଣ୍ଣ ବୃତ୍ତେ ଗୋଲ; ସୁବର୍ତ୍ତୁଳ—
(ସୁବୃତ୍ତା—ସ୍ତ୍ରୀ) 1. Fully circular. ୨। ସୁନ୍ଦର ଓ ବର୍ତ୍ତୁଳ—
ଲୁକୁଡ଼ି } ବ୍ୟବହାର
ଦୁର୍ବୃତ୍ତ }
2. Fine and circular. ୩ । (ପୁଂ) ସଚ୍ଚରିତ—3. Of good conduct. ୪। (ପୁଂ) ସତ୍ ସ୍ୱଭାବ; ସାଧୁ—4. Of good nature; saintly. ବି—ଶୂରଣ ( ରାଜନିର୍ଘଣ୍ଟ ); ଓଲଅ—Wild arum.

ସୁବୃତ୍ତା—ସଂ. ବିଣ—ସୁବୃତ୍ତର ସ୍ତ୍ରୀଲିଙ୍ଗ—Feminine of Subrutta.
Subruttā ବିଣ—୧ । ଶତପତ୍ରୀ (ରାଜନିର୍ଘଣ୍ଟ); ସେବତୀ ଫୁଲ 1. The musk rose. ୨ । କାକଲୀ ଦ୍ରାକ୍ଷା—2. A species of circular grape. ୩ । (ନାମ) ଅପ୍ସରୋବିଶେଷ—3. Name of a heavenly nymph. ୪ । ପ୍ରତ୍ୟେକ ଚରଣରେ ୧୯ ଅକ୍ଷର ବିଶିଷ୍ଟ ବୃତ୍ତ ବିଶେଷ (ହ. ଶ)—4. Name of a Sanskrit metre. [ଦ୍ର—ଏଥିର ୧ମ, ୭ମ, ୮ମ, ୯ମ, ୧୦ମ, ୧୧ଶ, ୧୬ଶ, ୧୭ଶ ବର୍ଣ୍ଣ ଗୁରୁ (ହ. ଶ)]

ସୁବୃତ୍ତି—ସଂ. ବି (କର୍ମଧା)—୧ । ସୁନ୍ଦର ବା ଉତ୍ତମ ବା ପବିତ୍ର ଜୀବିକା—
Subrutti 1. A good or high or pure occupation. ୨ । ଉତ୍ତମ ବୃତ୍ତି ବୃତ୍ତ—2. Good or noble inclination. ୩ । ସଦାଚାର (ହ. ଶ)—3. Approved conduct. ୪ । ସଚ୍ଚରିତ ( ହ. ଶ )—4. Good conduct. ସଂ. ବିଣ (ପୁଂ ଓ ସ୍ତ୍ରୀ)—୧ । ପବିତ୍ର ଜୀବିକାବାନ—1. Of good or honest livelihood. ୨ । ସଚ୍ଚରିତ—2. Of good conduct.

ସୁବୃଦ୍ଧ—ସଂ. ବିଣ (ପୁଂ)—୧ । ଅତ୍ୟନ୍ତ ବୃଦ୍ଧ—1. Very old.
Subṛuddha ୨। ଅତି ପ୍ରାଚୀନ—2. Very old; ancient.
(ସୁବୃଦ୍ଧା—ସ୍ତ୍ରୀ) ସଂ. ବି ( ନାମ )—ଦକ୍ଷିଣ ଦିଗ୍‌ଗଜର ନାମ—
Name of the mythological elephant guarding the south.

ସୁବେ—ବୈଦେ. ବି ( ଅ )—ସନ୍ଦେହ—
Sube Suspicion; doubt.
সোবে सुभा

ସୁବେ କରିବା—ଦେ. କ୍ରି—ସନ୍ଦେହ କରିବା—
Sube kariba To suspect.
সোবে কৰা सुभा करना

ସୁବେଗା—ସଂ. ବି—ମହା ଜ୍ୟୋତିଷ୍ମତୀ (ରାଜନିର୍ଘଣ୍ଟ) ( ଦେଖ )
Subegā Mahājyotiṣmatī ( See )

ସୁବେଣୀ—ଦେ. ବି—୧ । ଉତ୍ତମ କେଶବିଶିଷ୍ଟା ସ୍ତ୍ରୀ—1. A
Subeṇī woman having graceful hair on
স্থবেণী her head. ୨। ସ୍ତ୍ରୀ; ନାରୀ—2. Woman
सुवेणी [ଉ—ବୃନ୍ଦ୍ୟକ୍ତିଙ୍କୁ ନିବେଣୀକି ଯାଇ ଏକ ସୁବେଣୀକି ବୁଡ଼ାଇ ମାୟା ଜାନକୀ କରୁ । ଭଞ୍ଜ. ବୈଦେହୀଶବିଳାସ ।)

ସୁବେଦ—ସଂ. ବିଣ (ପୁଂ) (ସୁ+ବିଦ ଧାତୁ+କର୍ତ୍ତ୍ରି. ଅ)—୧ । ଅଧ୍ୟାତ୍ମ-
Subeda ଶାସ୍ତ୍ରରେ ପାରଙ୍ଗମ (ହ୍ରି. ଶ)—1. Proficient in spiritual or estoric knowledge. ୨ । ବେଦ ପାରଗ—2. Versed in the Bedas.

ସୁବେଦାର୍ (ଇତ୍ୟାଦି)—ବୈଦେ. ବି—ସୁବାଦାର୍ ଇତ୍ୟାଦି ( ଦେଖ )
Subedār (etc) Subedār etc. ( See )

ସୁବେଦୀ—ଦେ. ବିଣ. (ସଂ. ସୁବେଦ)—ବେଦପାରଗ (ବ୍ରାହ୍ମଣ)—
Subedī a Brāhmaṇa) Well versed in the Bedas.
স্থবেদী सुवेदी

ସୁବେଦୀ ଗୋସା(ସେ)ଇଁ(ବ୍ରାହ୍ମଣ, ବିପ୍ର)—ଦେ. ବି—ବେଦପାରଗ,
Subedī gosā(se)iñ(brāhmaṇa, bipra) ଅଗ୍ରଚରିତ୍ର
স্থবেদী গোসাই ବ୍ରାହ୍ମଣ—A Brāhmaṇa well ver-
सुवेदी गोसाइँ sed in the Bedas and of approved conduct.

ସୁବେଧ—ଦେ. ବିଣ—ଅତି ଗାଢ଼—Very sound. [ଉ—ତାର
Subedha ହିରଦେ ଗୁରୁ ମନୋରଥ ତହିଁ ସମାନ ସୁବେଧ ସୁରତ
गाढ़ बहुत मोटा ଶିଶୁଶଙ୍କର. ଉଷାଭିଳାଷ ।]

ସୁବେ ବରାତ୍ ବୈଦେ. ବି (ପା)—ସବେ ବରାତ୍ ( ଦେଖ )
Sube barāt Sabe barāt ( See )
(ସୁବେରାତ୍—ଅନ୍ୟରୂପ)

ସୁବେଳ—ସଂ.ବି(ବହୁବ୍ରୀହି. ସୁ+ସୁନ୍ଦର ଅଟେ ବେଳା ଯାହାର)—ଲଙ୍କାର
Subeḷa ନିକଟସ୍ଥ ପର୍ବତ ( ହେମଚନ୍ଦ୍ର ) - The Sanscrit name of a mountain in Ceylon. [ବୃ—ଏହା ଲଙ୍କାରେ ଅବସ୍ଥିତ ଓ ଦୁଇ ଯୋଜନ ବିସ୍ତୃତ । ରାମଚନ୍ଦ୍ର କପିସେନା ସହ ଏହା ନିକଟରେ ରହିଥିଲେ ଓ ଏହା ଉପରେ ଆରୋହଣ କରି ଲଙ୍କାପୁରୀର ଦର୍ଶନ କରି ବିସ୍ମୟମୁଗ୍ଧ ହୋଇଥିଲେ । ଏହି ପର୍ବତରେ ଲୁଚି ରହି ରାବଣର ଅନୁଚର ଶାର୍ଦ୍ଦୁଳ ନାମକ ରାକ୍ଷସ ଓ ୧୦ ଜଣ ଅନୁଚର ରାମଚନ୍ଦ୍ରଙ୍କ ସୈନ୍ୟବଳ ପର୍ଯ୍ୟବେକ୍ଷଣ କରି ରାବଣକୁ ଜଣାଇଥିଲେ । ] ବିଣ—୧ । ପ୍ରଣତ; ଶାନ୍ତ ( ମେଦିନୀ )—1. Meek; mild. ୨ । ବହୁତ ନଇଁ ଥିବା ( ହ୍ରି. ଶ )—2. Much bent. ଦେ. ବି—
স্থবেলা सुलमय ସୁବେଳା ( ଦେଖ )—Subeḷā ( See )

ସୁବେଳା—ସଂ. ବି ( କର୍ମଧା )—୧ । ଶୁଭଯୁକ୍ତ ସମୟ—1. Auspi-
Subeḷā cious time. ୨ । ଉପଯୁକ୍ତ କାଳ—2. Proper time. ୩ । ସୁବିଧାଜନକ ମୁହୂର୍ତ୍ତ—3. Opportune moment

ସୁବେଶ—ସଂ. ବି—୧ । ସୁନ୍ଦର ବେଶ—1. Nice dress. ୨ ।
Subeśa ସୁନ୍ଦର ପରିଚ୍ଛଦ ଓ ସଜ୍ଜା—2. Nice toilet. ୩ । ଶ୍ୱେତେକ୍ଷୁ ( ରାଜନିର୍ଘଣ୍ଟ )—3. The white variety of sugarcane. ବିଣ—୧ । ( ବହୁବ୍ରୀହି; ସୁ ଅଟେ
(ସୁବେଶା—ସ୍ତ୍ରୀ) ବେଶ ଯାହାର) ସୁନ୍ଦର ବେଶଯୁକ୍ତ—1. Having a good dress; well dressed. ୨ । ସୁନ୍ଦର; ରୂପବାନ୍ ( ହ୍ରି. ଶ )—2. Beautiful.

ସୁବେଶିନୀ—ସଂ. ବିଣ. ସ୍ତ୍ରୀ ( ସୁବେଶ+ଇନ୍+ସ୍ତ୍ରୀ. ଈ )—ସୁବେଶୀର
Subeśinī ସ୍ତ୍ରୀଲିଙ୍ଗ—Feminine of Subeśī.

ସୁବେଶୀ—ସଂ. ବିଣ. ପୁଂ ( ସୁବେଶ+ଇନ୍; ୧ମା. ୧ବ )—ସୁବେଶ-
Subeśī ଧାରୀ—Well dressed

ସୁବୋଧ—ସଂ. ବିଣ (ବହୁବ୍ରୀହି; ସୁ ଅଟେ ବୋଧ ଯାହାର)—୧ । ସୁବୁଦ୍ଧି;
Subodha ସଦ୍‌ବୁଦ୍ଧି ବିଶିଷ୍ଟ—1. Intelligent. ୨ । ଅତି ବୁଦ୍ଧିମାନ—2. Very intelligent. ୩ । ତୀକ୍ଷ୍ଣ
(ସୁବୋଧା—ସ୍ତ୍ରୀ) ବୁଦ୍ଧି ବିଶିଷ୍ଟ—3. Sharp of intellect.
ଦୁର୍ବୋଧ } ବିପରୀତ ବିଣ ୪ । ଶିଷ୍ଟ; ନମ୍ର—4. Gentle; mild.
ଅବୋଧ } ବି—୧ । ସୁବୁଦ୍ଧି—1. Good inclination. ୨ । ସୁଜ୍ଞାନ—2. Good knowledge. ୩ । ନିଦ୍ରାରୁ ଜାଗରଣ—3. Awakening.

ସୁବୋଧ୍ୟ—ସଂ. ବିଣ ( ସୁ+ବୁଧ୍ ଧାତୁ+କର୍ମ. ଯ )—୧ । ଯାହା
Subodhya ସହଜରେ ବୁଝି ହୁଏ; ସୁଖବୋଧ୍ୟ—1. Capable
[ ଦୁର୍ବୋଧ୍ୟ—ବିପରୀତ ] of being easily understood.
[ ସୁବୋଧ୍ୟା—ସ୍ତ୍ରୀ ] ୨ । ଯାହାଙ୍କୁ ସହଜରେ ନିଦ୍ରାରୁ ଉଠାଇ ଦିଆଯାଇ ପାରେ—2. One who can be awakened easily from sleep.

ସୁବ୍ୟକ୍ତ—ସଂ. ବିଣ—୧ । ସୁପ୍ରକାଶିତ—1. Clearly expressed;
Subyakta patent. ୨ । ପ୍ରକଟିତ—2. Explicit. ୩ । ସୁସ୍ପଷ୍ଟ—3. Very clear.

ସୁବ୍ୟବସ୍ଥ—ସଂ. ବିଣ ( ବହୁବ୍ରୀହି; ସୁ+ବ୍ୟବସ୍ଥା+ଅ )—ସୁନ୍ଦରରୂପେ
Subyabastha ବ୍ୟବସ୍ଥାଯୁକ୍ତ—Well arranged; nicely got up.
[ ସୁବ୍ୟବସ୍ଥା—ସ୍ତ୍ରୀ ]

**ସୁବ୍ୟବସ୍ଥା**—ସଂ. ବି—ଉତ୍ତମ ବ୍ୟବସ୍ଥା—Good or nice arrangement.
Subyabasthā ସଂ. ବିଣ. ସ୍ତ୍ରୀ—ସୁବ୍ୟବସ୍ଥର ସ୍ତ୍ରୀଲିଙ୍ଗ—Feminine of Subyabastha.

**ସୁବ୍ୟବସ୍ଥିତ**—ସଂ. ବି ( ସୁ+ବି+ଅବ+ସ୍ଥା ଧାତୁ+କର୍ମ. ତ )—
Subyabasthita ଉତ୍ତମରୂପେ ବ୍ୟବସ୍ଥାଯୁକ୍ତ—Well arranged.

**ସୁବ୍ରତ**—ସଂ. ବିଣ ( ବହୁବ୍ରୀହି )—୧ । ଶୋଭନ ବ୍ରତାନୁଷ୍ଠାତା; ବିଧିଅନୁସାରେ ବ୍ରତପାଳନକାରୀ—1. Carrying out
Subrata
[ ସୁବ୍ରତା—ସ୍ତ୍ରୀ ] a vow nicely or rigidly. ୨ । ଧର୍ମପରାୟଣ—2. Pious. ୩ । ଶାନ୍ତ ବା ନମ୍ର ( ପଶୁ ଯଥା—ଘୋଡ଼ା, ଗୋରୁ ) [ ବୁ. ଶ ]—3. Meek ( animal ). ବି - ୧ । ଉତ୍ତମ ବ୍ରତ—1. A good religious vow. ୨ । ( ନାମ ) ବର୍ତ୍ତମାନ ଯୁଗର ବିଂଶ ଜିନ—2. The 20th Jaina saint of the present era. ୩ । (ନାମ) ଭବିଷ୍ୟତ୍ କାଳର ଏକାଦଶ ଜୈନ ମୁନି—3. Name of the 11th Jaina saint of the future era. ୪ । (ନାମ) ସ୍କନ୍ଦଙ୍କର ଏକ ଅନୁଚର ( ବୃ. ଶ )—4. Name of an attendant of Skanda. ୫ । ( ନାମ ) ଏକ ପ୍ରଜାପତିଙ୍କ ନାମ [ ବୃ ଶ ]—5. Name of a progenitor of mankind. ୬ । ( ନାମ ) ରୋଚ୍ୟମନୁଙ୍କର ଏକ ପୁତ୍ର ( ବୃ. ଶ )—6. A son of Rochyamanu. ୭ । ( ନାମ ) ଉଶୀନରଙ୍କ ଏକ ପୁତ୍ର ( ବୃ ଶ )—7. A son of Uśīnara. ୮ । ( ନାମ ) ପ୍ରିୟବ୍ରତଙ୍କ ଏକ ପୁତ୍ର ( ବୃ. ଶ )—8. A son of Priyabrata. ୯ । ବ୍ରହ୍ମଚାରୀ ( ବୃ. ଶ )—9. A Brahmachārī.

**ସୁବ୍ରତା**—ସଂ. ବିଣ. ସ୍ତ୍ରୀ—ସୁବ୍ରତର ସ୍ତ୍ରୀଲିଙ୍ଗ—Feminine of
Subratā Subrata. ବି—୧ । ଗୁଣବତୀ ଓ ସାଧ୍ୱୀ ସ୍ତ୍ରୀ—1. A chaste and good woman. ୨ । ସୁଦୋହ୍ୟା ଗୋ—2, A cow which is easily milched. ୩ । ଗନ୍ଧପଲଶୀ, ଗନ୍ଧଶୁଣ୍ଠୀଭେଦ ( ବୈଦ୍ୟକ )—3. A species of scented medicinal root. ୪ । (ନାମ) ଦକ୍ଷଙ୍କର ଏକ କନ୍ୟା —4. Name of a daughter of Daksha. ୫ । (ନାମ) ଅପ୍ସରାବିଶେଷ—5. Name of a heavenly nymph. ୬ । ( ନାମ ) ବର୍ତ୍ତମାନ କଳ୍ପର ପଞ୍ଚଦଶ ଅର୍ହତଙ୍କ ମାତା—6. Name of the mother of the 15th Buddhist saint of the present Kalpa.

**ସୁବ୍ରହ୍ମଣ୍ୟ**—ସଂ. ବି—୧ । ନିଷ୍ଠାପର ବ୍ରହ୍ମବାଦୀ—1. A sincere
Subrahmaṇya worshipper of the Brahma. ୨ । କାର୍ତ୍ତିକେୟ—2. God Kārttikeya. ୩ । ବିଷ୍ଣୁ (ବୃ. ଶ)—3. Bishṇu. ୪ । ଶିବ (ବୃ. ଶ)—4. Śiba. ଦେ. ବି—୧ । ( ସଂ. ସୁବ୍ରାହ୍ମଣ )

**ସୁବ୍ରାହ୍ମଣ**
**ସୁବ୍ରହ୍ମଣ୍ୟ**
**ସୁବ୍ରହ୍ମଣ୍ୟ**
ସୁବ୍ରାହ୍ମଣ ( ଦେଖ )—1. Subrāhmaṇa ( See ) ୨ । ( ପୁଂ ) ଦକ୍ଷିଣାତ୍ୟରେ ପୁରୁଷଙ୍କୁ ପ୍ରଦତ୍ତ ନାମ—2. A name given to males in the Deccan; Subramanya.

**ସୁବ୍ରହ୍ମଣ୍ୟ କ୍ଷେତ୍ର**—ଦେ ବି—ମାନ୍ଦ୍ରାଜପ୍ରଦେଶର ଦକ୍ଷିଣ କାନଡ଼ାରେ
Subrahmaṇya kshetra ଥିବା ହିନ୍ଦୁ ତୀର୍ଥ (ବୃ ଶ)—Name of a place of Hindu pilgrimage in south Kanara in Madras Presidency.

**ସୁବ୍ରହ୍ମ ବାସୁଦେବ**—ସଂ ବି ବ୍ରହ୍ମରୂପ ବସୁଦେବସୁତ (ଭଗବାନ୍ ବିଷ୍ଣୁ);
Subrahma bāsudeba ଶ୍ରୀକୃଷ୍ଣ—Śrīkrushṇa, who is an incarnation of the Divine Soul.

**ସୁବ୍ରାହ୍ମଣ**—ସଂ ବି—ଅତ୍ୟନ୍ତ ଧର୍ମନିଷ୍ଠାଦିଯୁକ୍ତ ବ୍ରାହ୍ମଣ—
Subrāhmaṇa A very good and pious Brāhmaṇa.

**ସୁଭକ୍ଷ(କ୍ଷ୍ୟ)**—ସଂ ବି—ସୁଖଭକ୍ଷ୍ୟ—
Subhaksha(kshya) Easily eatable.

**ସୁଭଗ**—ସଂ ବିଣ (ବହୁବ୍ରୀହି: ସୁ+ଭଗ=ଐଶ୍ୱର୍ଯ୍ୟ, ଐଶ୍ୱର୍ଯ୍ୟ ଯାହାର)—
Subhaga ୧ । ଶୋଭନ ଐଶ୍ୱର୍ଯ୍ୟାଦିଯୁକ୍ତ; ସୌଭାଗ୍ୟ-
(ସୁଭଗା—ସ୍ତ୍ରୀ) ଯୁକ୍ତ—1. Affluent. ୨ । ଭାଗ୍ୟବାନ୍—2. Fortunate; lucky. ୩ । ପ୍ରିୟ—3. Dear. ୪ । ସୁନ୍ଦର; ସୁନ୍ଦର; ପ୍ରିୟଦର୍ଶନ—4. Beautiful. ୫ । ମନୋରମ—5. Charming. ୬ । ସୁଖଦ; ଆନନ୍ଦଦାୟକ (ବୃ. ଶ)—6. Delightful. ବି—୧ । ଟଙ୍କଣ; ଟାଙ୍କଣା ( ସ୍ୱଜନକର୍ଣ୍ଣ )—1. Alum. ୨ । ଚମ୍ପକ (ସ୍ୱଜନକର୍ଣ୍ଣ)-2. The Champaka flower. ୩ । ଅଶୋକ—3. The Asoka tree. ୪ । ରକ୍ତଝିଣ୍ଟୀ; ରକ୍ତାମ୍ଳାନ; ଅଁଳେଇ ଫୁଲ ଗଛ—4. Red-flowered species of Barleria plant. ୫ । ଶୈଳେୟ; ଶିଳାରସ (ବୃ. ଶ)—5. Parmalia Perlata. ୬ । ଗନ୍ଧକ (ବୃ. ଶ)—6. Sulphur. ୭ । ଶିବ (ବୃ. ଶ)—7. Śiba. ୮ । (ନାମ) ସୁବଳଙ୍କର ଏକ ପୁତ୍ର (ବୃ. ଶ)—9. Name of a son of Subala. ୯ । ଜ୍ୟୋତିଷ ମତରେ ଯେଉଁ କାର୍ଯ୍ୟଦ୍ୱାରା ଲୋକ ସୌଭାଗ୍ୟଶାଳୀ ହୁଏ (ବୃ. ଶ)—9. An act which makes one affluent.

**ସୁଭଗମ୍ଭାବୁକ**—ସଂ ବି. ପୁଂ (ସୁଭଗଂ+ଭୂ ଧାତୁ+କର୍ତ୍ତୃ ଉକ; ଅଲୁକ୍
Subhagambhābuka ସମାସ —ଯେ ବର୍ତ୍ତମାନ ସୁଭଗ
(ସୁଭଗମ୍ଭାବୁକା—ସ୍ତ୍ରୀ) ହୋଇଅଛି—One who has
(ସୁଭଗଂଭାବୁକ—ଅନ୍ୟରୂପ) turned out to be beautiful or fortunate.

**ସୁଭଗମ୍ମନ୍ୟ**—ସଂ ବିଣ. ପୁଂ (ସୁଭଗଂ+ମନ ଧାତୁ+କର୍ତ୍ତୃ ଯ)—ଯେ
Subhagammanya ଆପଣାକୁ ସୁଭଗ (ସୁନ୍ଦର ବା ପ୍ରିୟ)
(ସୁଭଗମ୍ମନ୍ୟା—ସ୍ତ୍ରୀ) ବୋଲି ମନେକରେ—One who

(ସୁଭଗଂମନ୍ୟ—ଅନ୍ୟଭୂତ) thinks himself beautiful or lucky.

ସୁଭଗସେନ—ବୈ. ବି (ନାମ)—ଅଲେକ୍‌ଜାଣ୍ଡରଙ୍କ ଭାରତ ଆକ୍ରମଣ
Subhagasena ସମୟରେ ପଶ୍ଚିମ ଭାରତର ଏକପ୍ରାନ୍ତର ଶାସକ (ହି. ଶ)—The Governor of a part of Western India when Alexander the Great invaded India.

ସୁଭଗା—ସଂ. ବିଣ. ସ୍ତ୍ରୀ ( ସୁଭଗ+ଆ )—୧ । ସୁଭଗର ସ୍ତ୍ରୀଲିଙ୍ଗ—
Subhagā 1. Feminine of Subhaga. ୨ । ସୌଭାଗ୍ୟବତୀ; ଅତି ପ୍ରିୟା (ଭାର୍ଯ୍ୟା)—2. (a wife) Much loved by the husband. ୩ । ସୁନ୍ଦରୀ ( ସ୍ତ୍ରୀ )—3. Beautiful (woman). ବି—୧ । ବୈବର୍ତ୍ତୀ (ରାଜନିର୍ଘଣ୍ଟ); କୈବର୍ତ୍ତୀମୁସ୍ତକ—1. A variety of bulbous grass-root. ୨ । ଶାଳପର୍ଣ୍ଣୀ ( ରାଜନିର୍ଘଣ୍ଟ )—2 Sālaparṇṇī (See) ୩ । ହରିଦ୍ରା (ରାଜନିର୍ଘଣ୍ଟ)—3. Turmeric. ୪ । ନୀଳ ଦୁବ (ରାଜନିର୍ଘଣ୍ଟ)—4. Blue doob grass. ୫ । ତୁଳସୀ ( ରାଜନିର୍ଘଣ୍ଟ ) - 5. The holy Basil plant. ୬ । ପ୍ରିୟଙ୍ଗୁ ( ରାଜନିର୍ଘଣ୍ଟ )—6. Agalia Roxburghiana (fragrant creeper). ୭ । କସ୍ତୁରୀ ( ରାଜନିର୍ଘଣ୍ଟ ) – 7. Musk. ୮ । ସୁବର୍ଣ୍ଣ କଦଳୀ (ରାଜନିର୍ଘଣ୍ଟ) (ଦେଖ) 8. Subarṇṇa kadalī (See) ୯ । ବନମଲ୍ଲୀ ( ଶବ୍ଦରତ୍ନାବଳୀ )—9. Wild Jasmine. ୧୦ । ପତିଙ୍କ ପ୍ରିୟା ସ୍ତ୍ରୀ; ସୌଭାଗ୍ୟବତୀ ସ୍ତ୍ରୀ—10. A wife who is very much loved and fondled by her husband. ୧୧ । ପାଞ୍ଚ ବର୍ଷ ବୟସ୍କା କୁମାରୀ ( ହି. ଶ )—11 A maid 5 years old. ୧୨ । (ନାମ)—ସ୍କନ୍ଦଙ୍କର ଏକ ମାତୃକା (ହି. ଶ)—12. Name of a foster-mother of Skanda. ୧୩ । ରାଗିଣୀ-ବିଶେଷ (ହି. ଶ)—13. Name of a musical air. ୧୪ । ଜାତି ପୁଷ୍ପ [ହି. ଶ]; ଜାଇ ଫୁଲ [ହି. ଶ]—14. Large-petalled jasmine.

ସୁଭଗାନନ୍ଦନାଥ—ସଂ. ବି—କାଳୀପୂଜା ପ୍ରଚଳନରେ ତାନ୍ତ୍ରିକମାନଙ୍କ
Subhagānandanātha ପୂଜିତ ଭୈରବବିଶେଷ [ହି. ଶ]—Name of a Bhairaba.

ସୁଭଗାସୁତ—ସଂ ବି—ସୁଭଗାର ପୁତ୍ର—The son of a woman
Subhagā suta who is much loved by her husband.

ସୁଭଙ୍ଗ—ସଂ ବି—ନାରକେଳ ବୃକ୍ଷ [ଜଟାଧର]—
Subhaṅga Cocoanut tree.

ସୁଭଟ—ସଂ. ବି. ପୁଂ—ମହାନ୍ ଯୋଦ୍ଧା [ହି ଶ]—
Subhaṭa A great warrior.

ସୁଭଟ୍ଟ—ସଂ ବି. ପୁଂ—ମହାପଣ୍ଡିତ ବ୍ୟକ୍ତି (ହି ଶ)—
Subhaṭṭa A very learned man.

ସୁଭଦ୍ର—ସଂ ବିଣ ପୁଂ [ ସୁ+ଭଦ୍ର=ମଙ୍ଗଳ ଅର୍ଥ ଯହାର ]—
Subhadra ୧ । ସୁମଙ୍ଗଳଯୁକ୍ତ—1. Auspicious. [ସୁଭଦ୍ରା—ସ୍ତ୍ରୀ] ୨ । ସୌଭାଗ୍ୟଶାଳୀ —2. Lucky; fortunate. ସଂ ବି—୧ । ବିଷ୍ଣୁ [ଶବ୍ଦମାଳା]—1. Bishṇu. ୨ । ରାଜଭେଦ [ହେମଚନ୍ଦ୍ର]; ନୃପତିବିଶେଷ—2. Name of a king of ancient India. ୩ । ଲଙ୍କାର ସମୁଦ୍ରଉପକୂଳସ୍ଥ ଚତୁର୍ଦ୍ଦିଗରେ ଶତଯୋଜନବିସ୍ତୃତ ବହୁଶାଖାବିଶିଷ୍ଟ ପୌରାଣିକ ବଟ ବୃକ୍ଷର ନାମ—3. Name of a mythological banyan tree in ancient Ceylon. [ଦ୍ର—ଏହାଙ୍କ ଗରୁଡ଼ ଗୋଟିଏ ମହାକାୟ ହସ୍ତୀକୁ ଓ କଚ୍ଛପକୁ ଗ୍ରହଣ କରି ଭକ୍ଷଣାର୍ଥେ ଏ ବୃକ୍ଷର ଶାଖାରେ ଯାଇ ବସିଥିଲେ ।] ୪ । ସନତ୍‌କୁମାରଙ୍କର ଏକ ନାମ [ହି. ଶ]—4. A name of Sanat-kumāra. ୫ । [ନାମ] ବସୁଦେବଙ୍କ ଔରସରେ ପୌରବୀଗର୍ଭଜାତ ସନ୍ତାନ [ହି.ଶ] - 5.The name of Basudeba's son. ୬ । ନାମ] ଶ୍ରୀକୃଷ୍ଣଙ୍କର ଏକ ପୁତ୍ର [ହି. ଶ]—6. Name of a son of Srīkṛushṇa. ୭ । [ନାମ] ପ୍ଲକ୍ଷଦ୍ୱୀପର ଅନ୍ତର୍ଗତ ଏକ ବର୍ଷର ନାମ [ ହି. ଶ ]—7. Name of a part of the mythological Plaksha island. ୮ । କଲ୍ୟାଣ [ହି. ଶ]—8. Bliss. ୯ । ସୌଭାଗ୍ୟ [ହି. ଶ]—9. Good fortune.

ସୁଭଦ୍ରକ—ସଂ. ବି (ସୁଭଦ୍ର+କ)—୧ । ଦେବରଥ (ଶବ୍ଦରତ୍ନାବଳୀ)-
Subhadraka 1. Divine or aerial car of the gods. ୨ । ବ୍ୟୋମଯାନ; ବେଲୁନ—2. Aeroplane; balloon ୩ । ବେଲ୍ଲ ବୃକ୍ଷ ( ଶବ୍ଦଚନ୍ଦ୍ରିକା)—3. The Marmalos tree.

ସୁଭଦ୍ରା—ସଂ. ବିଣ. ସ୍ତ୍ରୀ ( ସୁଭଦ୍ର+ଆ )—ସୁଭଦ୍ରର ସ୍ତ୍ରୀଲିଙ୍ଗ—
Subhadrā Feminine of Subhadra. ବି. ସ୍ତ୍ରୀ (ନାମ)—୧ । ଅର୍ଜୁନଙ୍କ ଦ୍ୱିତୀୟା ପତ୍ନୀ; ଶ୍ରୀକୃଷ୍ଣଙ୍କ ବୈମାତ୍ରେୟ ଭଗିନୀ; ବସୁଦେବଙ୍କ ଔରସରେ ରୋହିଣୀଗର୍ଭଜାତା କନ୍ୟା-1. Name of the second wife of Arjuna. [ ଦ୍ର—ଏ ଯୁବତୀ ହେବା ପରେ ଅର୍ଜୁନଙ୍କ ଦୃଷ୍ଟିରେ ପଡ଼ିବାରୁ ସେ ଏହାଙ୍କ ରୂପରେ ମୁଗ୍ଧ ହୋଇ ଶ୍ରୀକୃଷ୍ଣଙ୍କ ପରାମର୍ଶ ଅନୁସାରେ ଏହାଙ୍କୁ ହରଣ କରି ବିବାହ କଲେ । ଏହାଙ୍କ ଗର୍ଭରୁ ଅର୍ଜୁନଙ୍କ ଔରସରେ ଅଭିମନ୍ୟୁ ଜନ୍ମ ହୋଇଥିଲେ । ପାଣ୍ଡବମାନଙ୍କ ବନବାସ କାଳରେ ସୁଭଦ୍ରା ପୁତ୍ର ସହିତ ପିତୃଗୃହରେ ଅବସ୍ଥାନ କଲେ । କୁରୁକ୍ଷେତ୍ର ଯୁଦ୍ଧରେ ଅଭିମନ୍ୟୁଙ୍କ ମୃତ୍ୟୁରେ ଏ ଅତି ଶୋକସନ୍ତପ୍ତା ହୋଇଥିଲେ; କିନ୍ତୁ ଅଭିମନ୍ୟୁଙ୍କ ସ୍ତ୍ରୀ ଉତ୍ତରାଙ୍କ ଗର୍ଭରୁ ପରୀକ୍ଷିତ ଜନ୍ମ ହେବାରୁ ଏ କଥଞ୍ଚିତ

ସାନ୍ତ୍ୱନା ଲାଭ କଲେ । ପାଣ୍ଡବମାନେ ମହାପ୍ରସ୍ଥାନ କରିବାରୁ ସୁଭଦ୍ରା ପୌତ୍ର ପରୀକ୍ଷିତଙ୍କ ସଙ୍ଗେ ହସ୍ତିନାରେ ରହି ଶେଷ ଜୀବନ ତପସ୍ୟାରେ କଟାଇଥିଲେ । ] ୨ । ଦୁର୍ଗାଙ୍କର ଏକ ରୂପ (ହି. ଶ)—2. One of the forms of Durgā. ୩ । ସଙ୍ଗୀତରେ ଏକ ଶ୍ରୁତିର ନାମ (ହି. ଶ)- 3. Name of a musical Śruti. ୪ । (ନାମ) ଅନିରୁଦ୍ଧଙ୍କ ସ୍ତ୍ରୀ (ହି. ଶ)—4. Name of the wife of Aniruddha. ୫ । (ନାମ) ବଳିଙ୍କ କନ୍ୟା ଓ ଅବହିତଙ୍କ ସ୍ତ୍ରୀ ହି. ଶ)—5. Name of a daughter of Bali. ୬ । ଶାରିବା (ହି. ଶ)—6. Hemidesmus Indicus. ୭ । ଗମ୍ଭାରୀ [ହି. ଶ] 7. Gmelina Arborea. ୮ । ଦୁବ୍ବାଜାତୀୟ ଘାସ [ହି. ଶ]— 8. A kind of grass.

স্ুভদ্রা সুভদ্রা ଦେ. ବି—୧ । ପୁରୀରେ ଜଗନ୍ନାଥ ଓ ବଳଦେବଙ୍କ ପ୍ରତିମା ମଧ୍ୟରେ ପ୍ରତିଷ୍ଠିତା ବିଗ୍ରହ ମୂର୍ତ୍ତି—1. Name of the idol placed between the idols of Jagannatha and Balabhadra in the temple at Puri. ୨ । ସ୍ତ୍ରୀଲୋକଙ୍କ ନାମ— 2. A name given to females.

ସୁଭଦ୍ରାଣୀ—ସଂ. ବି—ହାଏମ୍ବୁନ୍ତୀ (ରତ୍ନମାଳା); ଭଦଭଦାଲିଆ ନାମକ ଗୁଳ୍ମ Subhadrāṇi —Thalictrum Foliolosum (a plant).

ସୁଭଦ୍ରା ହରଣ—ସଂ. ବି—ଅର୍ଜୁନଙ୍କ ଦ୍ୱାରା ବିବାହ ନିମନ୍ତେ ଶ୍ରୀକୃଷ୍ଣଙ୍କ ପରାମର୍ଶରେ ସୁଭଦ୍ରାଙ୍କର ସ୍ଥାନାନ୍ତରୀକରଣ—The forcible removal of Subhadrā by Arjuna for marrying her.
Subhadrā haraṇa

ସୁଭଦ୍ରେଶ—ସଂ. ବି (୬ଷ୍ଠୀ ତତ୍; ସୁଭଦ୍ରା+ଈଶ=ସ୍ୱାମୀ)-ଅର୍ଜୁନ— Arjuna.
Subhadreśa

ସୁଭସତ୍ତରା—ସଂ. ବି. ସ୍ତ୍ରୀ—ସୁଭଗା ସ୍ତ୍ରୀ (ହି. ଶ)— A lady very much loved by her husband.
Subhasattarā

ସୁଭଗ—ସଂ. ବିଣ. ପୁଂ—ଭାଗ୍ୟବାନ୍ (ହି. ଚ)— Fortunate.
Subhāga
(ସୁଭଗା—ସ୍ତ୍ରୀ)

ସୁଭାଗୀ—ଦେ. ବିଣ. ସ୍ତ୍ରୀ (ସଂ. ସୁଭଗା)—ସୌଭାଗ୍ୟବତୀ— Fortunate; lucky (woman).
Subhāgi

সুভগা সুহাগিন ସଂ. ବି—ସୁଭଗା ସ୍ତ୍ରୀ—A greatly loved wife (ଉ—କଲ୍ୟାଣ କଲେ ସେ ଜନ୍ମାଏ ପୁଅ ତ ସୁଭାଗୀ ତାହାର ଶୋଭାଗୀ—ଭଞ୍ଜ କୋଟିବ୍ରହ୍ମାଣ୍ଡ-

সুভাগী সুভাগী ସୁନ୍ଦରୀ । ) ଦେ. ବିଣ (ପୁଂ)— ସୌଭାଗ୍ୟବାନ୍—Fortunate.

ସୁଭାଗ୍ୟ—ସଂ. ବି—ଉତ୍ତମ ଭାଗ୍ୟ—Good luck ସଂ ବିଣ. ପୁଂ —(ବହୁବ୍ରୀହି)—ଅତି ଭାଗ୍ୟବାନ୍— Very fortunate.
Subhāgya
(ସୁଭାଗ୍ୟା—ସ୍ତ୍ରୀ)

ସୁଭାଞ୍ଜନ—ସଂ, ବି—ଶୋଭାଞ୍ଜନ ବୃକ୍ଷ (ଭରତ, ଦ୍ୱିରୂପକୋଷ)—ସଜନା—The Indian horse-radish tree.
Subhāñjana

ସୁଭାନ୍ ଅ(ଆ)ଲ୍ଲା—ବୈଦେ. ଅ—ସୁବନ୍‌ଅଲ୍ଲା (ଦେଖ)
Subhān a(ā)llā Suban-allā (See)

ସୁଭାଷିତ—ସଂ ବି—୧ । ସୁନ୍ଦର କଥା; ସୂକ୍ତି—1. Nice speech. ୨ । ବୁଦ୍ଧଭେଦ (ତ୍ରିକାଣ୍ଡଶେଷ)— 2. Name of a Buddhist saint. ବିଣ—ସୁନ୍ଦରରୂପେ କଥିତ—Nicely spoken.
Subhāshita

ସୁଭାଷୀ—ସଂ, ବିଣ, ପୁଂ (ସୁ+ଭାଷ ଧାତୁ+ଣିନି, କର୍; ୧ମା, ୧ବ)—ମଧୁରଭାଷୀ—Sweet-speaking.
Subhāshi
(ସୁଭାଷିଣୀ—ସ୍ତ୍ରୀ)

ସୁଭାସ—ସଂ, ବିଣ—ବିଶେଷ ପ୍ରକାଶମାନ (ହି. ଶ)— Very lustrous.
Subhāsa
(ସୁଭାସା—ସ୍ତ୍ରୀ)

ସୁଭିକ୍ଷ—ସଂ. ବି (ସୁ+ଭିକ୍ଷ୍ ଧାତୁ+ଅଧି. ଅ)—୧ । ଯେଉଁ କାଳରେ ଭିକ୍ଷୁକର ଭିକ୍ଷା ସୁଲଭ - 1. A time of plenty (when beggars get plenty of alms easily). ୨ । ସୁଲଭ ଭୈକ୍ଷ ଦ୍ରବ୍ୟ— 2. Cheap articles of alms. ୩ । ଯେଉଁ କାଳରେ ଦେଶରେ ଶସ୍ୟାଦି ଖାଦ୍ୟ ପ୍ରଚୁର ପରିମାଣରେ ମିଳେ—3. A time when the necessaries of life are cheap and plentiful.
Subhiksha
(ଦୁର୍ଭିକ୍ଷ—ବିପରୀତ)

ସୁଭିକ୍ଷା—ସଂ, ବି—ଧାତୁ ପୁଷ୍ପିକା (ଅମର); ଧାଇ ଫୁଲ—Woodfordia Floribunda; Grislea Tomentosa (Apte) (M. W.)
Subhikshā

ସୁଭିତା—ଗ୍ରା. ବି (ସଂ, ସୁବିଧା)—ସୁବିଧା—Convenience. ବିଣ—୧ । ସୁବିଧାଜନକ—1. Convenient. ୨ । (ସଂ, ଶୋଭିତ) ଶୋଭାଯୁକ୍ତ—2. Resplendent.
Subhitā
স্ুবিধা
সুমীতা শোভিত শোভাযুক্ত

ସୁଭୀମ—ସଂ, ବିଣ—ଅତି ଭୀଷଣ (ହି. ଶ)— Very fierce.
Subhīma
(ସୁଭୀମା—ସ୍ତ୍ରୀ)

ସୁଭୀରକ—ସଂ. ବି—ପଳାଶ ବୃକ୍ଷ (ହାରାବଳୀ)— Butea Frondosa (tree).
Subhiraka

ସୁଭୁଜ—ସଂ, ବିଣ, ପୁଂ (ବହୁବ୍ରୀହି)—ସୁନ୍ଦର ବାହୁ ବିଶିଷ୍ଟ— Having good hands or arms.
Subhuja
(ସୁଭୁଜା—ସ୍ତ୍ରୀ)

ସୁଭୂ—ସଂ. ବି (ସୁ+ଭୂ ଧାତୁ+କର୍ତ୍ତି, କ୍ୱିପ୍)—ଉତ୍କୃଷ୍ଟ ଭୂମି— Excellent soil. ବିଣ—୧ । ଉତ୍କୃଷ୍ଟ ଭୂମି ସମ୍ବନ୍ଧୀୟ - 1. Relating to excellent soil. ୨ । ସୁଜନ୍ମା (ମୁଗ୍ଧବୋଧ) (ଦେଖ)—2. Sujanmā (See)
Subhū

ସୁଭୂତି—ସଂ ବି—୧ । କୁଶଳ; ସେମ; ମଙ୍ଗଳ ( ହି. ଶ )—
Subhūti 1. Bliss. ୨ । ଉନ୍ନତି (ହି. ଶ.)—2 Advancement.

ସୁଭୂତିକ—ସଂ. ବି ( ସୁ+ଭୂତି=ମଙ୍ଗଳ+କ )—ବେଲବୃକ୍ଷ (ଗୁଣ
Subhūtika ଜର୍ଣ୍ଣେ); ବେଲ ଗଛ—The Bilwa tree.

ସୁଭୂମ—ସଂ. ବି (ନାମ)—ଜୈନମାନଙ୍କ ଅଷ୍ଟମ ଚକ୍ରବର୍ତ୍ତୀ କାର୍ତ୍ତବୀର୍ଯ୍ୟ
Subhūma (ହେମଚନ୍ଦ୍ର)—Name of the 8th Emperor of the Jainas; Kārtabirjya.

ସୁଭୂଷଣ—ସଂ. ବି—ସୁନ୍ଦର ଅଳଙ୍କାର—Beautiful ornament.
Subhūshana ସଂ. ବିଣ. ପୁଂ (ବହୁବ୍ରୀହି)—ସୁନ୍ଦର ଅଳଙ୍କାରରେ
(ସୁଭୂଷଣା—ସ୍ତ୍ରୀ) ଭୂଷିତ—Decked with dainty ornament.

ସୁଭୃଶ(ଷ)—ସଂ. ବିଣ ଓ ବିଣ ଓ କ୍ରି. ବିଣ—ଅତିଶୟ—Very
Subhrusa(sha) much. ବିଣ—ସମଧିକ—Excessive.

ସୁଭୈକ୍ଷ—ଦେ. ବି (ସଂ. ସୁଭିକ୍ଷ)—ସସ୍ତା କାଳ—A time when
Subhaiksha the necessaries of life are cheap
ସୁଭିକ୍ଷ ସୁଭିକ୍ଷ and plentiful.

ସୁଭୋଗ୍ୟ—ସଂ. ବିଣ—ଉତ୍ତମ ରୂପେ ଭୋଗ କରିବା ଯୋଗ୍ୟ—
Subhogya Enjoyable with ease.
(ସୁଭୋଗ୍ୟା—ସ୍ତ୍ରୀ)

ସୁଭୌମ—ସଂ. ବି (ନାମ)—ଜୈନଙ୍କ ଚକ୍ରବର୍ତ୍ତୀ କାର୍ତ୍ତବୀର୍ଯ୍ୟଙ୍କ ପୁତ୍ର—
Subhauma Son of the Jaina emperor Kārttabirjya's son. [ଦ୍ର—ଜୈନ ହରିବଂଶରେ ଲେଖାଅଛି ଯେ, ପରଶୁରାମ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନଙ୍କୁ ବଧ କରିବା ପରେ କାର୍ତ୍ତବୀର୍ଯ୍ୟପତ୍ନୀ ଶିଶୁ ସୁଭୌମଙ୍କୁ ନେଇ କୃଷିକାଶ୍ରମକୁ ଗଲେ । ସେଠାରେ ରହି ସୁଭୌମ ବୟଃପ୍ରାପ୍ତ ହୋଇ ପିତୃହତ୍ୟାର ପ୍ରତିଶୋଧ ନେବା ପାଇଁ ଏକୋଇଶଥର ପୃଥିବୀକୁ ବ୍ରାହ୍ମଣଶୂନ୍ୟ କରି କ୍ଷତ୍ରିୟଙ୍କ ପ୍ରାଧାନ୍ୟ ପୃଥିବୀରେ ପ୍ରତିଷ୍ଠିତ କଲେ—ହି ଶ]

ସୁଭ୍ରୂ—ସଂ. ବିଣ. ସ୍ତ୍ରୀ ( ସୁ=ସୁନ୍ଦର+ଭ୍ରୂ ଯାହାର; ବହୁବ୍ରୀହି )—
Subhrū ସୁନ୍ଦର ଭ୍ରୂଯୁକ୍ତା (ନାରୀ)—(a woman) Having
(ସୁଭ୍ରୂକ—ପୁଂ) nice-eye brows. ବି. ସ୍ତ୍ରୀ—୧ । ସୁନ୍ଦରୀ ନାରୀ—1. A beautiful woman; a lovely woman. ୨ । ନାରୀ; ସ୍ତ୍ରୀ (ଜଟାଧର)—2. Woman. [ଦ୍ର—ଏହି ଶବ୍ଦର ସମ୍ବୋଧନ ଏକ ବଚନରେ ରୂପ 'ସୁଭ୍ରୂ'; କିନ୍ତୁ ବଚ୍ଚି, କାଳିଦାସ ଓ ଭବଭୂତି ଆଦି କବିମାନେ ଏ ଶବ୍ଦର ସଂମ୍ବୋଧନ ଏକ ବଚନରେ 'ସୁଭ୍ରୁ' ଆକାର ବ୍ୟବହାର କରି ଅଛନ୍ତି । ଯଥା କୁମାର ସମ୍ଭବ ୫।୪୩; ମାଳବିକାଗ୍ନିମିତ୍ର ୩।—ଅପ୍ସେ ।]

ସୁମ୍ଭା—ପ୍ରାଦେ (ମେଦିନୀପୁର) ବି—ବନାରୀ ଦଉଡ଼ି—Rope made
Sum-bhā of Pollindium Augustifolium or Ischaemum Augustifolium grass.

ସୁମ—ସଂ. ବି (ବହୁବ୍ରୀହି; ସୁ=ସୁନ୍ଦର+ମା=ଲକ୍ଷ୍ମୀ ବା ଶୋଭା
Suma ଯାହାର)—୧ । ପୁଷ୍ପ; ଫୁଲ (ଭରତ)—1. Flower. ୨ । ଚନ୍ଦ୍ର (ଶବ୍ଦଚିନ୍ତାମଣି)—2. The moon. ୩ । ନଭଃ; ଆକାଶ; ଗଗନ (ଶବ୍ଦଚିନ୍ତାମଣି)—3. The sky

ସୁମିତ୍ରା ଦେ. ବି. ସ୍ତ୍ରୀ—ସୁମତୀ ଓ ସୁମିତ୍ରାର ଡାକ ନାମ—
ସୁମ Name for calling women named Sumati or Sumitrā. ବିଣ ( ସଂ. ଶୋଭା )—କୃପଣ—
ସୁମ Miserly. ଦେଶଜ. ବି(ଫା. ଶୁମ୍=ନଖ)—ଘୋଡ଼ା ଆଦି
ଟାପ ପଶୁଙ୍କ ନଖ—The nail or hoof of horse and other animals.

ସୁମଖାରା—ବୈଦେ. ବି (ଫା)—ଯେଉଁ ଘୋଡ଼ାର ଚୋଟଏ ଆଖିର
Sumakhārā ପୁଅ ଖରାପ ହୋଇଥାଏ—A horse with
ସୁମଖାରା ସୁମଖାରା one defective eye-ball.

ସୁମଙ୍ଗଳ—ସଂ. ବି—୧ । ଅତ୍ୟନ୍ତ ମଙ୍ଗଳ ବା ଶୁଭ—1. supreme
Sumangala bliss. ୨ । ଏକପ୍ରକାର ବିଷ (ହି. ଶ)—2. A
(ସୁମଙ୍ଗଳା—ସ୍ତ୍ରୀ. ବିଣ) kind of poison. ବିଣ—୧ । ଅତି ଶୁଭଦାୟକ—1. Very auspicious. ୨ । ଅତି କ୍ଷେମଯୁକ୍ତ—2. Very blissful.

ସୁମଙ୍ଗଳା—ସଂ. ବିଣ. ସ୍ତ୍ରୀ ( ସୁମଙ୍ଗଳ+ଆ )—ସୁମଙ୍ଗଳର ସ୍ତ୍ରୀଲିଙ୍ଗ—
Sumangalā Feminine of Sumangala. ବି—୧ । ବାଯୁଷୋଲୀ (ଭରତ); ଏକପ୍ରକାର ଘାସ (ହି. ଶ); (ହିନ୍ଦୀ) ମକଡ଼ା ଘାସ (ହି ଶ)—1. Name of a grass. ୨ । କାମାଖ୍ୟାଦେଶୀୟ ନଦୀବିଶେଷ—2. Name of a river in Assam. [ ଦ୍ର—ଏହା ହିମାଳୟରୁ ବାହାରି ମଣିକୂଟ ପର୍ବତର ପୂର୍ବ ବାଟେ କାମାଖ୍ୟା ଦେଶ ମଧ୍ୟରେ ବହି ଯାଇଅଛି । ଯେଉଁ ବ୍ୟକ୍ତି ମଣିକୂଟ ପାହାଡ଼କୁ ଚଢ଼ି ଏ ନଦୀକୁ ଦେଖେ ସେ ଗଙ୍ଗାସ୍ନାନ ଫଳ ପାଏ—କାଳିକା ପୁରାଣ । ] ୩ । ଅର୍ହତ୍ ମାତା ( ହେମଚନ୍ଦ୍ର )—
3. The mother of a Buddhist saint.

ସୁମତ—ସଂ. ବିଣ ( ସୁ+ମନ୍ ଧାତୁ+କର୍ମ. ତ )—୧ । ସୁବୁଦ୍ଧିଶାଳୀ—
Sumata 1. Having good intelligence. ୨ । ବନ୍ଧୁତ୍ୱ; ମୈତ୍ରୀ—2. Having friendship. ୩ । ପ୍ରିୟ—3. Dear.

ସୁମ(ମ୍)ତରାଶ୍—ବୈଦେ. ବି ( ଫା. ସୁମ୍ତରାସ୍ )—ଘୋଡ଼ାଙ୍କ ନଖ
Suma(m-)tarās କାଟିବାର ଛୁରି—A knife for cutt-
ସୁମତରାଶ ସୁମତରାଶ ing the nail of horses.

ସୁମତି—ସଂ. ବି (କର୍ମଧା)—୧ । ସୁବୁଦ୍ଧି ( ଦେଖ )—1. Subuddhi
Sumati (See) ୨ । ଦୟା; ଅନୁଗ୍ରହ—2. Favour; kindness. ୩ । ଭକ୍ତି (ହି. ଶ)—3. Devotion ୪ । (ବହୁବ୍ରୀହି) ମଇନା; ସାରିକା (ହି. ଶ)—4. Myna bird. ୫ । ମେଳ ( ହି. ଶ )—5. Agreement. ୬ । (ପୁଂ) (ନାମ) ବର୍ତ୍ତମାନ କାଳର ପଞ୍ଚମ ଜୈନମୁନି (ହେମଚନ୍ଦ୍ର)—6. Name of the 5th Jaina saint of the present era. ୭ । (ନାମ) (ପୁଂ)-ଭୂତକାଳର ଜୈନମୁନିବିଶେଷ (ହେମଚନ୍ଦ୍ର)

7. Name of a Jaina saint of the past era. ୮ । (ନାମ) ସ୍ତ୍ରୀ—କଳିଯୁଗର ବିଷ୍ଣୁ ଅବତାରଙ୍କ ମାତା; କଳ୍କି ମାତା; ବିଷ୍ଣୁଯଶା ନୃପଙ୍କ ପତ୍ନୀ 8. Mother of the Kalki incarnation of Bishnu. ୯ । (ନାମ) ସ୍ତ୍ରୀ—ଶ୍ରୀକୃଷ୍ଣଙ୍କ ପରମଭକ୍ତ ସୁଦାମା ବ୍ରାହ୍ମଣଙ୍କ ସ୍ତ୍ରୀଙ୍କ ନାମ—9. Name of the wife of Sudāmā. ୧୦ । (ନାମ) ସ୍ତ୍ରୀ—ପ୍ରାଚୀନ ରାଜା ସଗରଙ୍କ ପତ୍ନୀ (ହ୍ରି. ଶ)—10. Name of the wife of king Sagara. ୧୧ । (ନାମ) ପୁଂ—ଭରତଙ୍କର ଏକ ପୁତ୍ର (ହ୍ରି. ଶ)—11. Name of a son of Bharata. ୧୨ । [ନାମ] ପୁଂ—ଜନମେଜୟଙ୍କ ଏକ ପୁତ୍ର [ହ୍ରି. ଶ]—12. Name of a son of Janamejaya. ୧୩ । [ନାମ] (ପୁଂ-ସୂତଙ୍କ ଏକ ପୁତ୍ର ବା ଶିଷ୍ୟଙ୍କ ନାମ-13. Name of a son or disciple of Sage Sūta. ବିଣ—୧ । [ ବହୁବ୍ରୀହି ] ସୁନ୍ଦର ମତିଯୁକ୍ତ; ସୁବୁଦ୍ଧିଯୁକ୍ତ—1. Intelligent. ୨ । ସୁନ୍ଦରପ୍ରକୃତିକ—2. Of good nature. [ଉ—ବୃଥେ ଶୁଣିବା ହେଉ ସୁମତି—ଭଞ୍ଜ. ବୈଦେହୀଶବିଳାସ ।] ଦେ. ବି. ସ୍ତ୍ରୀ—ସ୍ତ୍ରୀମାନଙ୍କ ନାମ A name given to females.

**ସୁମଦ**—ସଂ. ବିଂ. ପୁଂ [ବହୁବ୍ରୀହି]—ମଦୋନ୍ମତ୍ତ; ମତୁଆଲ [ହ୍ରି. ଶ]—
Sumada Intoxi cated. ସଂ. ବି. ପୁ—ଶ୍ରୀରାମଚନ୍ଦ୍ରଙ୍କ (ସୁମଦା—ସ୍ତ୍ରୀ) ବାନର ସେନାପତି ବିଶେଷ [ହ୍ରି. ଶ]—Name of a monkey comander of Rama's army.

**ସୁମଦନ**—ସଂ. ବି—ଆମ୍ବୃକ୍ଷ [ରାଜନିର୍ଘଣ୍ଟ]—
Sumadana Mango tree.

**ସୁମଦର**—ଗ୍ରା. ବି (ସଂ. ସମୁଦ୍ର)—ସମୁଦ୍ର—
Sumadara समुन्दर समुंदर, सुमंदर Sea.
(ସୁମଦ୍ର—ଅନ୍ୟରୂପ)

**ସୁମଦାତ୍ମଜା**—ସଂ. ବି—ଅପ୍ସରା (କିଂକାଣ୍ଡ ଶେଷ)—
Sumadātmajā A heavenly nymph.

**ସୁମଧୁର**—ସଂ. ବିଣ—ଅତ୍ୟନ୍ତ ମଧୁର—Very sweet. ବି-୧ । ଅତି
Sumadhura ମଧୁର ବାକ୍ୟ (ହେମଚନ୍ଦ୍ର)—1. Very (ସୁମଧୁରା—ସ୍ତ୍ରୀ) sweet words. ୨ । ଖାବଶାକ; ଖାବଳୀ (ରାଜନିର୍ଘଣ୍ଟ)—2. Celtis Orientallis (a herb).

**ସୁମଧ୍ୟମ (ମଧ୍ୟ)**—ସଂ. ବିଣ. ପୁଂ (ବହୁବ୍ରୀହି; ସୁ ଅଟେ ମଧ୍ୟମ=କଟି
Su madhyama (madhya) ଯାହାର)—ସୁନ୍ଦର ବା ସରୁ (ସୁମଧ୍ୟମା—ସ୍ତ୍ରୀ) କଟିବିଶିଷ୍ଟ—Having a beautiful or slender waist.

**ସୁମଧ୍ୟମା (ମଧ୍ୟା)**—ସଂ.ବିଣ. ସ୍ତ୍ରୀ (ସୁମଧ୍ୟମ+ଆ)—ସୁମଧ୍ୟମର ସ୍ତ୍ରୀଲିଙ୍ଗ—
Su madnyamā (madhyā) Feminine of Sumadhyama. ବି—୧ । କ୍ଷୀଣକଟି ସ୍ତ୍ରୀ—1. A slender-waisted woman. ୨ । ସୁନ୍ଦରୀ ସ୍ତ୍ରୀ—2. A graceful woman.

**ସୁମନ**—ଦେ. ବି (ସଂ. ସୁମନସ୍, ସୁମନାଃ)—୧ । ସୁମନାଃ; ପୁଷ୍ପ;
Sumana ଫୁଲ—1. Flower. ୨ । ଉତ୍ତମ ମନ—2. Good mind. (ଉ—[୧+୨] ଉଛଳ ଧ୍ୱନିରେ ଖେଳ ସୁମନ ଭ୍ରମରେ ମେଳ ଦଶରଥ ଏମନ୍ତ କହିଲେ । ଭଞ୍ଜ. ବୈଦେହୀଶବିଳାସ ।) ୩ । ପଣ୍ଡିତ—3. Learned man. ୪ । ଦେବତା—4. Deity. ବିଣ—୧ । ରସିକ—1. Witty; humorous. ୨ । ସରସ-ମନୋଯୁକ୍ତ-2. Of amiable frame of mind. ୩ । ହୃଷ୍ଟ; ଆନନ୍ଦିତ—3. Glad; cheerful; pleased. (ଉ—ଦଶରଥ ରାମଙ୍କ ମୁଖ ଚାହିଁଲେ; ସେହି କାଳେ କଲେ ସେ ହୋଇଣ ସୁମନ । କୃଷ୍ଣସିଂହ. ମହାଭାରତ. ବନ ।) ୪ । ପ୍ରସନ୍ନଚେତାଃ—4. Gracious-minded. ସଂ. ବି (ସୁ+ମନ୍, ଧାତୁ=ବୋଧ କରିବା+କର୍ମଂ ଅ)—୧ । ଗୋଧୂମ; ଗହମ (ଅମର)—1. Wheat. ୨ । ଧସ୍ତୁର; ଧତୁରା (ଶବ୍ଦମାଳା)—2. Dhatura plant; Datura Fastosa. ସଂ. ବିଣ—ଅତି ମନୋହର (ଶବ୍ଦ ଚନ୍ଦ୍ରିକା)—Very amiable; very charming.

**ସୁମନଃ**—ସଂ. ବି (ସୁମନସ୍ ଶବ୍ଦ)—୧ । (କର୍ମଧା) ସରସ ମନ—
Sumanaḥ 1. Witty mind. ୨ । ପ୍ରସନ୍ନ ମନ—2. Favourable disposition. ଦେ. ବି—୧ । (ସୁମନସ୍ ଶବ୍ଦ, ସୁ ପୂର୍ବ ମନସ୍ ସହିତରେ ୧ମା. ୧ବ; ସୁମନାଃ)—ପୁଷ୍ପ; ଫୁଲ—1. Flower. ୨ । ପଣ୍ଡିତ—2. Learned man. ୩ । ଦେବତା—3. Deity.

**ସୁମନଃ ପତ୍ରିକା(ପତ୍ର)**—ସଂ. ବି—ଜାଗ ପତ୍ରିକା, ଜାଇତ୍ରି (ରାଜ-
Sumanaḥ patrikā(patra) ନିର୍ଘଣ୍ଟ)—Mace (spice).

**ସୁମନଃ ଫଳ**—ସଂ. ବି—୧ । ଜାଗ ଫଳ; ଜାଇଫଳ (ରାଜନିର୍ଘଣ୍ଟ)—
Sumanaḥ phala 1. Nutmeg. ୨ । କପିତ୍ଥ ବୃକ୍ଷ (ଶବ୍ଦ ଚନ୍ଦ୍ରିକା)—2. The wood apple tree.

**ସୁମନଃ ଶର**—ସଂ. ବି (ବହୁବ୍ରୀହି; ସୁମନସ୍=ପୁଷ୍ପରେ ରଚିତ ଧନୁ
Sumanaḥ śara ଯାହାର)—ସୁମନ ଶର (ଦେଖ)
Sumana śara ( See )

**ସୁମନ ଦୀପ**—ଦେ. ବି (ସଂ. ସୁମନଃ+ଦୀପ)—ଦେବ ଦୀପ (ଦେଖ)
Sumana dipa Deba dipa ( See ) [ଉ—ସ୍ୱାନେ ଅଛିର ଶୀଘ୍ର ଜାତ ମୋ ରାମାର ମାର ତେଜେ ସୁମନ ଦୀପର ପର—ଭଞ୍ଜ. ପ୍ରେମସୁଧାନିଧି ।]

**ସୁମନ ଶର(ଚାପ)**—ଦେ. ବି (ସଂ. ସୁମନଃ ଶର)—ପୁଷ୍ପଧନ୍ୱା; କାମ;
Sumana śara(chāpa) କନ୍ଦର୍ପ - Cupid. (ଉ—ସୁମନ ଶର ମୋତେ ଚକ୍ଷୁ ମନ୍ଦିବ ସୁମନ ଶରେ—ଭଞ୍ଜ. ପ୍ରେମସୁଧାନିଧି) सुमन शर

ସୁମନସ୍—ସଂ. ବି—ସୁମନାଃ ( ଦେଖ )—
Sumanas Sumanah ( See )

ସୁମନସ—ଦେ. ବି ( ସଂ. ସୁମନସ୍ ) —୧ । ପୁଷ୍ପସମୂହ—
Sumanasa 1. A collection or multitude
सुमनस of flowers. ୨ । ( ସଂ. ସୁମନସ୍ ) ଦେବତା—
सुमनस 2. Deity. ୩ । ପଣ୍ଡିତ—3. A learned man.
( ଉ—ବାକ୍ୟରେ ଭାର ବର ସୁମନସ ବର—ଉଞ୍ଜ. ବୈଦେହୀଶବିଳାସ । ) ୪ । ପ୍ରସନ୍ନ ଚିତ୍ତ—4. Delighted heart. ୫ । ଉତ୍ତମ ମନ—5. Good mind. ( ଉ—ବଣା ଯେ ସୁମନସେ ସୁମନ ସୁମନସେ ଛାଡ଼ିଲ ନ ଛାଡ଼ିଲ ମୁଣ୍ଡ—ଉଞ୍ଜ. ବୈଦେହୀଶବିଳାସ । )

ସୁମନସ ପଦ୍ଧତି—ଦେ. ବି ( ସଂ. ସୁମନସ୍=ଦେବତା+ପଦ୍ଧତି=
Sumanasa paddhati ମାର୍ଗ; ଦେବମାର୍ଗ )—୧ । ନକ୍ଷତ୍ର-
सुमन पद्धति ପଥ—1. The milky way. ୨ । (ସଂ. ସୁମନସ୍
सुमन पद्धति =ଫୁଲ + ପଦ୍ଧତି = ଶ୍ରେଣୀ ) ପୁଷ୍ପମାଳା—
2. Flower-garland. ( ଉ—ବନ୍ଧୁରିବ ସୁମନସ ପଦ୍ଧତି ଅଦ୍ଭୁତ—ଉଞ୍ଜ. ବୈଦେହୀଶବିଳାସ । )

ସୁମନସ୍କ—ସଂ. ବିଣ. ପୁଂ (ସୁ+ମନସ୍+କ; ବହୁବ୍ରୀହି)—୧ । ପ୍ରସନ୍ନ;
Sumanaska ତୁଷ୍ଟ ( ହି. ଶ )—1. Pleased. ୨ । ସୁଖୀ
( ହି. ଶ )—2. Happy.

ସୁମନା—ଦେ. ବି ( ସଂ. ସୁମନସ୍ ଶବ୍ଦର ୧ମା. ୧ବ; ସୁମନାଃ )—
Sumanā ସୁମନାଃ (ଦେଖ)—Sumanāh ( See ) (ଉ—
सुमना सुमना ତାହାଙ୍କର ହିଅ ନାମ ଅଟେ ସୁକନ୍ୟା, ଦେଖିଲେ ତାଙ୍କୁ ବଶ ହୋଇବେ ସୁମନା—କୃଷ୍ଣସିଂହ. ମହାଭାରତ. ବନ । ) ସଂ. ବି—ଜାଇ ଫୁଲ—One-petalled or great-flowered large jasmine (Apte). ( ଉ—ସୁମନା-ବାମିନୀ ଭଣ୍ଡ ସୁମନା । ନାଗ-ନାଗରୀ ଶିରୋମଣି ସିନା—ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ । ) ଦେ. ବିଣ ( ସଂ. ସୁମନାଃ )—ସୁମନାଃ ( ଦେଖ )—
Sumanāh ( See )

ସୁମନାଃ—ସଂ. ବିଣ. ପୁଂ. ସ୍ତ୍ରୀ ( ବହୁବ୍ରୀହି; ସୁ+ମନସ୍; ସୁମନସ୍; ୧ମା.
Sumanāh ୧ବ )—୧ । ମହାମନା; ଉଦାରଚେତା—
1. Magnanimous; liberal-minded; benevolent ( Apte ). ୨ । ଆନନ୍ଦଯୁକ୍ତ; ହୃଷ୍ଟ—
2. Joyous; delighted. ୩ । ପ୍ରୀତିଯୁକ୍ତ—
2. Loving; affectionate. ୪ । ସୁନ୍ଦର—
4. Graceful. ସଂ. ବି—୧ । ଦେବତା ( ଅମର )—
1. Deity. ୨ । ପଣ୍ଡିତ (ମେଦିନୀ)—2. Learned man. ୩ । ପୂତିକରଞ୍ଜ ( ଶବ୍ଦମାଳା )—3. Pūtikarañja ( See ). ୪ । ଜାଇଫଳ ବୃକ୍ଷ; ଜାଇଫୀ ଗଛ ( ଶବ୍ଦରତ୍ନାବଳୀ )—4. The nutmeg tree. ୫ । ନିମ୍ବ ( ରାଜନିର୍ଘଣ୍ଟ )—5. The Nima tree. ୬ । ସେବତୀ; ଶତପତ୍ରୀ (ରାଜନିର୍ଘଣ୍ଟ)—5. Muskrose. ୭ । ମହାକରଞ୍ଜ ( ରାଜନିର୍ଘଣ୍ଟ )—7. Pongamia Indica ( tree ). ୮ । ଗୋଧୂମ; ଗହମ ( ରାଜନିର୍ଘଣ୍ଟ )—8. Wheat. ୯ । ( ସୁ=ପ୍ରଶସ୍ତ+ମନସ୍ ଯୁକ୍ତ ଯାହାଦ୍ୱାରା, ବହୁବ୍ରୀହି) ପୁଷ୍ପ (ମେଦିନୀ)-9. Flower. ୧୦ । ମାଳତୀ ଫୁଲ ( ମେଦିନୀ )—10. A kind of Jasmine. ୧୧ । କବରୀ ଗୋ; ଚମରୀ ଗୋ ( ହି. ଶ )—11. Yak. ୧୨ । ( ନାମ ) କୈକେୟୀଙ୍କ ବାସ୍ତବିକ ନାମ ( ହି. ଶ )—12. The actual name of Kaikeyī. ୧୩ । ( ନାମ ) ଦମଘୋଷଙ୍କ ପତ୍ନୀ (ହି. ଶ )—13. Name of the wife of Dama. ୧୪ । ( ନାମ ) ମଧୁଙ୍କ ପତ୍ନୀ ଓ ବୀରବ୍ରତଙ୍କ ମାତା (ହି. ଶ )—14. Name of the wife of Madhu. ୧୫ । ଜାଇ ଫୁଲ ( ହି. ଶ )—15. Large-petalled jasmine. [ ଦ୍ର—ସଂସ୍କୃତରେ ସୁମନସ୍ ଶବ୍ଦ ନିତ୍ୟ ବହୁବଚନାନ୍ତ, କେବେ କେବେ ଏକବଚନାନ୍ତ ମଧ୍ୟ ହୁଏ । ] ୧୬ । ପ୍ରିୟା—16. One's beloved lady. ( ଉ—କହନ୍ତି ସୁମନା ହାତେ, ବିଟ ମଧୁଲିଟ ବ୍ରାତେ—ଉଞ୍ଜ. ବୈଦେହୀଶବିଳାସ । )

ସୁମନା ସୁମନା—ଦେ. ବି—ଦେବପୁଷ୍ପ; ଲବଙ୍ଗ—Cloves. (ଉ—
Sumanā sumanā ବଇଦେହୀ ସୁମନା ସୁମନା ଏ ସୁରଭି ।
लवङ्ग ବଇଦେହୀ ସୁମନା ସୁମନା ଏ ସୁରଭି—ଉଞ୍ଜ. ବୈଦେହୀଶ-
लवंग ବିଳାସ । )

ସୁମନୋଜ୍ଞ—ସଂ. ବିଣ. ପୁ—ଅତି ସୁନ୍ଦର—
Sumanojñya Very lovely.
[ସୁମନୋଜ୍ଞା—ସ୍ତ୍ରୀ]

ସୁମନୋତ୍ତରା—ସଂ. ବି. ସ୍ତ୍ରୀ—ରାଜାମାନଙ୍କ ଅନ୍ତଃପୁରସ୍ଥା ସ୍ତ୍ରୀ (ହି. ଶ)—
Sumanottarā A woman living in the harem of kings.

ସୁମନୋରଜଃ—ସଂ ବି (ଷଷ୍ଠୀ ତତ୍; ସୁମନସ୍+ରଜସ୍; ସୁମନୋରଜସ୍
Sumanorajah ୧ମା ୧ବ )—ପୁଷ୍ପପରାଗ—
The pollen of flowers.

ସୁମନୌକା—ସଂ. ବି. (ଷଷ୍ଠୀ ତତ୍; ସୁମନ+ଓକସ୍; ୧ମା ୧ବ)—
Sumanauka ସ୍ୱର୍ଗ (ହି. ଶ)—Heaven, the abode of the gods.

ସୁମନ୍ତ ପଟ୍ଟ(ଟ୍ଟ)ନାୟକ—ଦେ. ବି [ସୁମନ୍ତ]—ଗଡ଼ଜାତର ରାଜାଙ୍କଦ୍ୱାରା
Sumanta paṭa(ṭṭa)nāyaka କରଣଙ୍କୁ ପ୍ରଦତ୍ତ ଉପାଧି-ବିଶେଷ—A title given to some Karaṇas in the Orissa States by the Rajas.

ସୁମନ୍ତର—ଗ୍ରା. ବି (ସଂ. ସୁମନ୍ତ୍ର) —ସୁମନ୍ତ୍ର (ଦେଖ)
Sumantara Sumantra (See).
सुमन्त्र सुमन्तर

ସୁମନ୍ତୁ—ସଂ. ବି ( ନାମ )—୧ । ଅଥର୍ବ ବେଦର ଶାଖାପ୍ରବର୍ତ୍ତକ
Sumantu ଓ ସ୍ମୃତି ପ୍ରଣେତା ମୁନିବିଶେଷ.
( ଭାଗବତ )—1. Name of a sage
[ ଦ୍ର—ଏ ବେଦବ୍ୟାସଙ୍କ ଶିଷ୍ୟ ଥିଲେ ।

ଏହାଙ୍କ ନାମ ସ୍ମରଣ କଲେ ଉପରେ ବଜ୍ର ପଡ଼େ ନାହିଁ ।] ୨ । ଜହ୍ନୁଙ୍କର ଏକ ପୁତ୍ର—2. Name of a son of sage Jahnu. ୩ । ଉତ୍କୃଷ୍ଟ ଉପଦେଶକ—3. A good adviser (Apte) ବଣ—(ସୁ=ଅତି+ମନ୍ତୁ=ଅପରାଧ ଯାହାର )—୧ । ଅତ୍ୟପରାଧୀ—1. Very sinful or offending. ୨ । ଅତି ନିନ୍ଦନୀୟ—2. Very blameable (Apte) ୩।(ସୁ+ମନ୍ ଧାତୁ+କର୍ତ୍ତି· ତୁ) ଉତ୍ତମ ଉପଦେଶକାରୀ— 3. Advising well (Apte).

ସୁମନ୍ତ୍ର—ସଂ· ବି—୧ । ବିଷ୍ଣୁଙ୍କ କଳ୍କିଅବତାରରେ କଳ୍କି ଦେବଙ୍କର Sumantra ଜ୍ୟେଷ୍ଠଭ୍ରାତା ତିନି ଜଣଙ୍କ ମଧ୍ୟରୁ ଜଣେ— 1. Name of one of the three elder brothers of the Kalki incarnation of Bishnu. [ଦ୍ର—ଅନ୍ୟ ଦୁଇ ଭାଇଙ୍କ ନାମ କବି ଓ ପ୍ରାଜ୍ଞ । କଳ୍କିପୁରାଣ ] ୨ । ଦଶରଥଙ୍କ ମନ୍ତ୍ରୀବିଶେଷ ଓ ସାରଥି—2. Name of a minister and charioteer of king Daśaratha. (ଦ୍ର—ବଶୀ ବଶିଷ୍ଠ ଜାବାଲି ବାମଦେବ କଶ୍ୟପ ସୁମନ୍ତ୍ର ସେନ । ଉଞ୍ଜ· ବୈଦେହୀଶବିଳାସ ।) ୩ । (ନାମ) ଅନ୍ତରୀକ୍ଷଙ୍କର ଏକପୁତ୍ର (ହି· ଶ)—3. Name of a son of Antariksha.

ବିଚାରଶୀଳ ଦେ. ବିଣ—ବିଚକ୍ଷଣ—Considerate. (ଦ୍ର—ବିଚାରବାଲା ବିବେକ ସୁମନ୍ତ୍ର ସୁମନ୍ତ୍ରଭ ଥିଲ ଯାଇ । ଉଞ୍ଜ. ବୈଦେହୀଶବିଳାସ ।)

ସୁମନ୍ଥନ—ସଂ· ବି ୦ । ( କର୍ମଧା ) ଉତ୍ତମ ମନ୍ଥନ—I. Thorough sumanthana churning. ୨ । (ବହୁବ୍ରୀହି) ମନ୍ଦର ପର୍ବତ (ହି. ଶ)-2. The Mandara mountain.

ସୁମନ୍ଦ—ସଂ. ବିଣ—ଅତି ମୃଦୁ— Sumanda Very mild.

ସୁମନ୍ୟୁ—ସଂ. ବି—୧ । ( ନାମ ) ପରଶୁରାମଙ୍କ ଶିଷ୍ୟବିଶେଷ— Sumanyu 1. Name of a disciple of Paraśurāma. (ଦ୍ର—ସୁମନ୍ୟୁ ନାମରେ ପରଶୁ ରାମ ଶିଷ୍ୟ ପ୍ରବର । ରାଧାନାଥ· ଚନ୍ଦ୍ରଭାଗା ।) ୨ । ଗନ୍ଧର୍ବ ବିଶେଷ (ହି.ଶ)— 2. Name of a Gandharba. ସଂ· ବିଣ—ଅତି କ୍ରୋଧୀ (ହି. ଶ)—Very fiery-tempered.

ସୁମ ଫଟା(ଫାଟ)—ଦେ. ବି (ଫା. ସୁମ୍+ଓ. ଫାଟ, ଫଟା)— Suma phaṭā(phāṭa) ଘୋଡ଼ାଙ୍କ ଖୁରା ଫାଟିଯିବା ରୋଗ-ସୁମଫାଟା ବିଶେଷ—A disease affecting the hoofs of ସୁମଫଟା horses.

ସୁମର—ସଂ. ବି (ସୁ+ମୃ ଧାତୁ+ଅ)—୧ । ବାୟୁ (ହି· ଶ)— Sumara 1. Air. ୨ । ସହଜ ମୃତ୍ୟୁ (ହି· ଶ)—2. Easy or painless death.

ସୁମରଣ—ସଂ. ବି—ସୁନ୍ଦର ବା ସୁଖମୟ ମୃତ୍ୟୁ; ଯେଉଁ ମୃତ୍ୟୁରେ ମୃତ Sumararaṇa ବ୍ୟକ୍ତି ଦୁଃଖ ପାଏ ନାହିଁ—A painless death. ଦେ. ବି—ସୁମରଣା (ଦେଖ)—Sumaraṇā (See)

ସୁମରଣା—ଦେ· (ପ୍ରାଚ୍ୟ) ବି (ସଂ. ସ୍ମରଣ)—ସ୍ମରଣ (ଦେଖ)— Sumaraṇā Smaraṇa (See) (ଦ୍ର—ମନେ ମୋତେ ମଧ୍ୟ ସ୍ମରণ ସୁମରଣା କରିବ ସୁମରଣା । କୃଷ୍ଣସିଂହ· ମହାଭାରତ ବନ ।)

ସୁମରଣୀ—ଦେ. ବିଣ (ସଂ. ସ୍ମରଣୀୟ)—ସ୍ମରଣୀୟ (ଦେଖ)— Sumaraṇi Smaraṇiya (See) ଦେ. ବି—ଦେବତାଙ୍କ ଛୋଟି ଜପମାଳା ନାମ ଜପିବା ପାଇଁ ବ୍ୟବହୃତ ୨୭ଟି ଦାନା ଥିବା ସୁମରଣୀ ଜପମାଳା—A rosary of 27 beads. [ଦ୍ର—ଏଥିରେ ୪ଥର ଜପ କଲେ ଜପସଂଖ୍ୟା ୧୦୮ ହୁଏ ।] (ଦ୍ର—ପ୍ରାତଃ ସୁମରଣୀ ଏହି । ଉଞ୍ଜ· କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।)

ସୁମରା—ଦେ. ବି (ସଂ. ସ୍ମୃ· ଧାତୁ )—ସ୍ମରଣ— Sumarā Remembrance. ସ୍ମରা ସୁମରନ

ସୁମରା(ରେ)ଇବା—ଦେ. କ୍ରି (ସୁମରିବା କ୍ରିୟାର ଣିଜନ୍ତରୂପ)—ସ୍ମରଣ Sumarā(re)ibā କରାଇବା—To remind; to cause. ସ୍মরণ করান to remember. ( ଦ୍ର—ଦୁର୍ଯୋଧନ ଶୋଲେ ସୁମରন করানা ବୋଲିବା ବଚନକୁ, ତଦାରେ ଶ୍ରୀମ ସୁମରାଇଲେ ତାହାଙ୍କୁ । କୃଷ୍ଣସିଂହ· ମହାଭାରତ ଦ୍ରୁ ।)

ସୁମରିବା—ଦେ. କ୍ରି (ସଂ. ସ୍ମୃ· ଧାତୁ)—ସ୍ମରଣ କରିବା – Sumaribā To remember. ସ୍মরণকরা ସୁମରনা

ସୁମ ଶାୟକ—ସଂ. ବି—୧ । (ମ, ସ· ଲୋ) ପୁଷ୍ପରଚିତ ଧନୁ— Suma śāyaka 1. A bow made of flowers. ୨ । (ବହୁବ୍ରୀହି) ପୁଷ୍ପଧନ୍ୱା; କାମଦେବ—2. Cupid.

ସୁମ ଶୁଖା—ଦେ· ବି—ଘୋଡାଙ୍କ ଖୁରା ଶୁଖିଯିବା ରୋଗ-ବିଶେଷ— Suma śukhā A horse-disease in which the ସୁମଶুকা ସୁମସୁଖଡ଼ା hoofs become shrunken.

ସୁମା—ଦେ· ବି (ସଂ. ସୁମ=କୁସୁମ ସଙ୍ଗେ ଆ ଯୋଗକରି ସ୍ତ୍ରୀଲିଙ୍ଗ Sumā ଭାବ ପ୍ରଣୋଦନାର୍ଥ ବ୍ୟବହୃତ )—କୁସୁମ; ପୁଷ୍ପ— ଫୁଲ Flower. (ଦ୍ର—ସୁମା ସୁନ୍ଦରୀକୁ ଛବିକ କହୁଲେ, ଭାଇ ଫୁଲ ସୁମନେ ସେ ଯେବେ ଅବତ୍ୱେଲେ । ଅଜ୍ଞାତ· ପ୍ରୀତିଦର୍ପଣ ।)

ସୁମାତ୍ରା—ଦେ. ବି—ପୂର୍ବ ଭାରତୀୟ ବା ମାଳୟ ଦ୍ୱୀପପୁଞ୍ଜ ମଧ୍ୟରୁ Sumātrā ଏକ ଦ୍ୱୀପ—Sumātrā; name of an ସୁমাত্রা island in the Indian archipelago. [ଦ୍ର—ସୁମାତ୍ରା ଏହା ମାଳୟ ଉପଦ୍ୱୀପର ଦକ୍ଷିଣ ଓ ମାଲକ୍କା ପ୍ରଣାଳୀର ଅପର ପାଖରେ; ଏହାର ମଧ୍ୟରେ ବିଷୁବରେଖା ଯାଇଅଛି । ଏହା ବୋର୍ଣ୍ଣିଓ ଦ୍ୱୀପର ପଶ୍ଚିମ ଓ ଯାବା ଦ୍ୱୀପର ଉତ୍ତରରେ ଅବସ୍ଥିତ । ପୂର୍ବେ କଳିଙ୍ଗ ଦେଶୀୟ ବଣିକମାନେ ଜଳପଥରେ ଯାଇ ସେଠାରେ ବାଣିଜ୍ୟ ଓ ଧର୍ମପ୍ରଚାର କରୁଥିଲେ ।]

ସୁମାନସ—ସଂ. ବଣ. ପୁଂ (ସୁ+ମାନସ; ବହୁବ୍ରୀହି)—ସହୃଦୟ—
Sumānasa Magnanimous.
( ସୁମାନସା—ସ୍ତ୍ରୀ )

ସୁମାନିକା—ସଂ. ବି—ପ୍ରତ୍ୟେକ ଚରଣରେ ସାତ ଅକ୍ଷର ଥିବା ବୃତ୍ତ-
Sumānikā ବିଶେଷ (ହ୍ରି. ଶ)—Name of a Sanscrit metre. [ ଦ୍ର—ଏଥିର ୧ମ, ୩ୟ, ୫ମ ଓ ୭ମ ବର୍ଣ୍ଣ ଲଘୁ । ]

ସୁମାନୀ—ସଂ. ବଣ. ପୁଂ ( ସୁମାନିନ୍; ୧ମା. ୧ବ )—ଅତି ଅଭିମାନୀ ( ହ୍ରି.
Sumānī ( ସୁମାନିନୀ—ସ୍ତ୍ରୀ ) ଶ )—Very egoistic.

ସୁମାୟ —ସଂ. ବଣ. ପୁଂ ( ସୁ+ମାୟା+ଅ )—୧ । ଅତ୍ୟନ୍ତ ବୁଦ୍ଧିମାନ୍
Sumāya ( ହ୍ରି. ଶ )—1. Very intelligent. ୨ ।
(ସୁମାୟା—ସ୍ତ୍ରୀ) ମାୟାଯୁକ୍ତ ( ହ୍ରି. ଶ )—2. Illusive; illusory.

ସୁମାର୍(ରି)—ବୈଦେ. ବି ( ଫା. ସୁମାର )—୧ । ସଂଖ୍ୟା—
Sumār(ri) 1. Number. ୨ । ଗଣନା—2. Counting.
सुमार्[रि] सुमार

ସୁମାରି କରିବା—ଦେ. କ୍ରି—ଗଣିବା—To count.
Sumāri karibā सुमारि करा सुमारी करना

ସୁମାଳିନୀ—ସଂ. ବି—ପ୍ରତି ଚରଣରେ ଛଅଟି ବର୍ଣ୍ଣ ଥିବା ବୃତ୍ତବିଶେଷ
Sumālinī ( ହ୍ରି. ଶ )—1. Name of a Sanscrit metre. [ ଦ୍ର—ଏଥିର ୨ୟ ଓ ୫ମ ବର୍ଣ୍ଣ ଲଘୁ; ଅନ୍ୟ ବର୍ଣ୍ଣମାନ ଗୁରୁ । ] ୨ । ଗନ୍ଧର୍ବୀବିଶେଷ (ହ୍ରି. ଶ)—2. Name of a Gandharba-female

ସୁମାଳୀ—ସଂ. ବି. ( ନାମ )—୧ । ସୁକେଶ ନାମକ ଧର୍ମିଷ୍ଠ ରାକ୍ଷସଙ୍କ
Sumālī ପୁତ୍ର; ରାବଣଙ୍କ ମାତାମହ—1. Name of the maternal grandfather of Rābaṇa. [ ଦ୍ର—ଏହି ରାକ୍ଷସ ଏହାଙ୍କ ଭ୍ରାତା ମାଳୀ ଓ ମାଲ୍ୟବାନଙ୍କ ସଙ୍ଗେ ତପସ୍ୟା କରି ବ୍ରହ୍ମାଙ୍କ ବରରେ ବ୍ରହ୍ମାଣ୍ଡରେ ଅଜେୟ ହୋଇଥିଲେ । ଏହି ୩ ଭ୍ରାତାଙ୍କ ଆଦେଶରେ ବିଶ୍ୱକର୍ମା ଲଙ୍କା ନିର୍ମାଣ କଲେ । ଏମାନେ ଦେବତାମାନଙ୍କୁ ଉତ୍ପୀଡ଼ନ କରିବାରୁ ବିଷ୍ଣୁ ଏହାଙ୍କୁ ପରାସ୍ତ କଲେ, ତେଣୁ ଏମାନେ ପଳାଇ ଯାଇ ପାତାଳରେ ଲୁଚିଲେ ସୁମାଳୀ କୁବେରଙ୍କ ପିତା ବିଶ୍ରବାଙ୍କୁ ଆପଣା କନ୍ୟା କୈକସୀ ବା କୈକେଶୀଙ୍କୁ ବିବାହ ଦେଲେ । ବିଶ୍ରବାଙ୍କ ଔରସରେ କୈକସୀଙ୍କ ଗର୍ଭରୁ ରାବଣ, କୁମ୍ଭକର୍ଣ୍ଣ, ଶୂର୍ପଣଖା ଓ ବିଭୀଷଣ ଜାତ ହେଲେ । ରାବଣ ତପସ୍ୟା କରି ବ୍ରହ୍ମାଙ୍କଠାରୁ ବର ପାଇ ଦେବତା-ମାନଙ୍କୁ ଜିଣି ଲଙ୍କା ଅଧିକାର କରି ରାଜତ୍ୱ କଲେ ଓ ତାଙ୍କ ସଙ୍ଗେ ସୁମାଳୀ ଆସି ରହିଲେ । ରାବଣ ଦିଗ୍‌ବିଜୟ କରିବାରୁ ଲଙ୍କାରୁ ଅନ୍ୟତ୍ର ଯାଇଥିବା ସମୟରେ ଅଷ୍ଟମ ବସୁ ସାବିତ୍ରଙ୍କଦ୍ୱାରା ସୁମାଳୀ ହତ ହେଲେ ।] ୨ । (ନାମ) ବାନରବିଶେଷ(ହ୍ରି. ଶ)—2. Name of a monkey.

ସୁ(ସୋ)ମାଲି —ବୈଦେ. ବି(ଫା. ସୁମାଲ୍)-(ନାମ) ସୋମାଲି; ଅଫ୍ରିକାର
Su(so)māli ଉତ୍ତର ପୂର୍ବ ଉପକୂଳରେ ଓ ଏଡେନ୍‌ରେ ବାସ କରୁଥିବା କୃଷ୍ଣକାୟ ଆରବ ଜାତିବିଶେଷ—The
सोमाली
सोमाली Somalis inhabiting the north-east corner of Africa. [ ଦ୍ର—ଏମାନଙ୍କ ପୂର୍ବପୁରୁଷ-ମାନେ ନିଗ୍ରୋ ଥିଲେ । ଆରବ ଜାତିମାନେ ଏମାନଙ୍କ ପୂର୍ବ-ପୁରୁଷଙ୍କୁ ଦକ୍ଷିଣ ଆଫ୍ରିକାରୁ ଆଣିଥିଲେ । ଏମାନେ ଅସଭ୍ୟ ଅବସ୍ଥାରେ ଅଛନ୍ତି । ]

ସୁ(ସୋ)ମାଲି ଲାଣ୍ଡ—ବୈଦେ. ବି (ଫା. ସୁମାଲ୍+ଇଂ. ଲାଣ୍ଡ )—
Su(so)māli lānd ଅଫ୍ରିକାର ଉତ୍ତର ପୂର୍ବ ଉପକୂଳରେ ସୋମାଲି ଜାତିଙ୍କ ଅଧ୍ୟୁଷିତ ଅଞ୍ଚଳ—Somaliland. [ ଦ୍ର—ଏଥିର ଉତ୍ତରାଂଶ ଇଂରେଜଙ୍କ ଅଧିକୃତ (British Somaliland ) ଓ ପଶ୍ଚିମାଂଶ ଇଟାଲିର ଅଧିକୃତ ( Italian Somaliland ) ଅଟେ । ]

ସୁମିତ୍ର—ସଂ. ବି—୧ । ଉତ୍ତମ ବା ଉପକାରୀ ମିତ୍ର—1. A good
Sumitra friend. ୨ । ( ନାମ ) ଇକ୍ଷ୍ୱାକୁ ବଂଶୀୟ ଅନ୍ତିମ ରାଜା ସୁରଥଙ୍କ ପୁତ୍ର (ବିଷ୍ଣୁପୁରାଣ)—2. Name of the son of Suratha, the last king of the Ikshwāku dynasty. ୩ । ( ନାମ ) ବର୍ତ୍ତମାନ ଯୁଗର ବିଂଶ ଅର୍ହତ୍ ସୁବ୍ରତଙ୍କ ପିତା ( ହେମଚନ୍ଦ୍ର )—3. Name of Subāta, the 20th Jaina saint of the modern era. ୪ । ( ନାମ ) ଶ୍ରୀକୃଷ୍ଣଙ୍କ ଏକ ପୁତ୍ର—4. Name of a son of Srikrushṇa. ୫ । (ନାମ) ଅଭିମନ୍ୟୁଙ୍କ ସାରଥି—5. Name of the charioteer of Abhimanyu. ୬ । ( ନାମ ) ବୃଷ୍ଣିଙ୍କର ଏକ ପୁତ୍ର—6. A son of Brushṇi. ୭ । ( ନାମ ) ମେବାର ରାଣାବଂଶର ସ୍ଥାପୟିତା—7. The progenitor of the Ranas of Mewar. [ ଦ୍ର—ଭାଗବତରେ ଏହାଙ୍କ ଉଲ୍ଲେଖ ଅଛି । ଏ ସୌରବଂଶର ଅନ୍ତିମ ରାଜା ଥିଲେ । କର୍ଣ୍ଣେଲ୍ ଟଡ୍ ରାଜସ୍ଥାନ ଗ୍ରନ୍ଥରେ ଏହାଙ୍କୁ ବିକ୍ରମାଦିତ୍ୟଙ୍କ ସମସାମୟିକ ବୋଲି ଲେଖିଅଛନ୍ତି । ଏ ସୌରବଂଶରୁ ରାଜ-ପୁତାନାକୁ ଯାଇ ସେଠାରେ 'ରାଣା' ବଂଶର ପ୍ରତିଷ୍ଠା କରିଥିଲେ—ହ୍ରି. ଶ । ] ସଂ. ବଣ. ପୁଂ—ଉତ୍ତମ ମିତ୍ରବିଶିଷ୍ଟ —Having good friend.

ସୁମିତ୍ରଭୂ—ସଂ. ବି ( ନାମ )—୧ । ସଗର ନାମକ ଜୈନମାନଙ୍କ ଜୈନ ଚକ୍ରବର୍ତ୍ତୀ
Sumitrabhū ଚକ୍ରବର୍ତ୍ତୀ—1. Name of a Jaina Emperor. ୨ । ବର୍ତ୍ତମାନ ଅବସର୍ପିଣୀର ବିଂଶ ଅର୍ହତ୍ ( ହ୍ରି. ଶ )—2. Name of the 20th Jaina saint of the present era.

ସୁମିତ୍ରା—ସଂ. ବି. ସ୍ତ୍ରୀ (ସୁ+ମିତ୍ର+ଆ)—୧ । ଦଶରଥଙ୍କ ତୃତୀୟା
Sumitrā ରାଣୀ; ଶତ୍ରୁଘ୍ନ ଓ ଲକ୍ଷ୍ମଣଙ୍କ ମାତା—1. Name of the mother of Satrughna and Lakshmaṇa [ ଦ୍ର—ଏହି ଦଶରଥଙ୍କ ତୃତୀୟା ପତ୍ନୀ । କୌଶଲ୍ୟା ଓ କୈକେୟୀଙ୍କୁ ଦଶରଥ ଯେଉଁ ଚରୁଅନ୍ନ ଦେଇଥିଲେ, ସେ

ଦୁହେଁ ଚରୁଭାଗରୁ ଅଂଶରୁ ଏକ ଏକ ଭାଗ କାଢ଼ି ଏହାଙ୍କୁ ଦେଲେ; ତାହା ଖାଇବାରୁ ଏହାଙ୍କ ଗର୍ଭରୁ ଲକ୍ଷ୍ମଣ ଓ ଶତ୍ରୁଘ୍ନ ଯାଆଁଳା ପୁଅ ଜନ୍ମି ଥିଲେ । ରାମଙ୍କ ସଙ୍ଗେ ଲକ୍ଷ୍ମଣ ବନବାସ ଗଲାରୁ ଓ ଦଶରଥଙ୍କ ମୃତ୍ୟୁ ହେବାରୁ ଏ ଅତି ଦୁଃଖରେ ଥିଲେ ଓ ରାମଙ୍କର ବନବାସରୁ ଫେରିବା ପରେ ଏ ସୁଖରେ କାଳ କଟାଇଲେ । ରାମଙ୍କ ସଙ୍ଗେ ବନକୁ ଯିବାରୁ ଏ ଲକ୍ଷ୍ମଣଙ୍କୁ ଅନୁମତି ଦେଇଥିଲେ ଏବଂ ଲକ୍ଷ୍ମଣଙ୍କୁ ଏହି ଉପଦେଶ ଦେଇଥିଲେ, 'ରାମଙ୍କୁ ପିତା, ଓ ସୀତାଙ୍କୁ ମାତା ବୋଲି ଜ୍ଞାନ କରି ଚଳିବୁ ।' କୌଶଲ୍ୟାଙ୍କ ମୃତ୍ୟୁ ପରେ ଏହାଙ୍କର ଦେହାନ୍ତ ହୋଇଥିଲା । ] ୨ । ( ନାମ ) ମାର୍କଣ୍ଡେୟଙ୍କ ମାତା—2. Mother of sage Mārkaṇḍeya. ଦେ, ବି· ସ୍ତ୍ରୀ—ସ୍ତ୍ରୀମାନଙ୍କ

ସୁମିତ୍ରା
सुमित्रा

ନାମ—A name given to females.

ସୁମିତ୍ର୍ୟ—ସ. ବଣ. ପୁଂ (ସୁମିତ୍ର+ଯ)—ଉତ୍ତମ ମିତ୍ର ବିଶିଷ୍ଟ
Sumitrya (ହି· ଶ)—Having good friend.
( ସୁମିତ୍ର୍ୟା—ସ୍ତ୍ରୀ )

ସୁମୁଖ—ସ. ବି (କର୍ମଧା)—୧ । ସୁନ୍ଦର ମୁଖ—1. Nice face, ୨ ।
Sumukha ( ବହୁବ୍ରୀହି ) ରତିଶାସ୍ତ୍ରବର୍ଣ୍ଣିତ ନଖକ୍ଷତବିଶେଷ (ଶବ୍ଦ ରତ୍ନାବଳୀ)—2. Name of a kind of scratch with the nails. ୩ । (ନାମ) ଗରୁଡ଼ଙ୍କର ଏକ ପୁତ୍ର (ଶବ୍ଦ ରତ୍ନାବଳୀ)—3. Name of a son of 'Garurda'. ୪ । ଗଣେଶ (ଶବ୍ଦ ରତ୍ନାବଳୀ)—4. God Ganeśa, ୫ । ଶାକଭେଦ ( ଶବ୍ଦ ରତ୍ନାବଳୀ)—5. Name of a potherb. ୬। ନାଗଭେଦ ( ଶବ୍ଦ ରତ୍ନାବଳୀ )—6. Name of a serpent. [ ବୃ—ଏ ଐରାବତ ବଂଶୋଦ୍ଭବ ଆର୍ଯ୍ୟକଙ୍କ ପୁତ୍ର । ଏ ମାତଳୀ-କନ୍ୟା ଗୁଣକେଶୀର ପାଣିଗ୍ରହଣ କରିଥିଲେ । ଏକଦା ଗରୁଡ଼ ଏହାଙ୍କୁ ଖାଇବାକୁ ସ୍ଥିର କଲାରୁ ଏ ଇନ୍ଦ୍ରଙ୍କ ଶରଣ ନେଲେ । ବିଷ୍ଣୁଙ୍କ ଅଦେଶରେ ଇନ୍ଦ୍ର ଏହାଙ୍କୁ ଦୀର୍ଘାୟୁ ଦେଲେ । କିନ୍ତୁ ଗରୁଡ଼ ନିଜର ବଳ ଦେଖାଇବାକୁ ଯାଇ ବିଷ୍ଣୁଙ୍କ ସମ୍ମୁଖରେ ଇନ୍ଦ୍ରଙ୍କୁ ନିନ୍ଦା କରିବାରୁ ଓ ବିଷ୍ଣୁ ଗରୁଡ଼ର କାନ୍ଧରେ ନିଜର ବାହୁ ରଖିବାରୁ ଗରୁଡ଼ ସେ ବାହୁର ଭାରରେ ମୃତବତ୍ ହୋଇ ବିଷ୍ଣୁଙ୍କୁ ସ୍ତବ କଲେ । ବିଷ୍ଣୁ ପ୍ରୀତ ହୋଇ ଗରୁଡ଼ଙ୍କ ଦୋଷ କ୍ଷମା କଲେ ଏବଂ ନିଜ ପାଦ ଦ୍ୱାରା ଏ ନାଗକୁ ଗରୁଡ଼ଙ୍କ ବକ୍ଷସ୍ଥଳକୁ ପକାଇଦେଲେ । ସେହି ଦିନଠାରୁ ଗରୁଡ଼ ଓ ସୁମୁଖଙ୍କ ମଧ୍ୟରେ ବନ୍ଧୁତା ହେଲା ।] ୭। ପଣ୍ଡିତ (ବିଶ)—7. Learned man. ୮ । ସିତାର୍ଜ୍ଜକ (ରାଜନିର୍ଘଣ୍ଟ) ( ଦେଖ )—8. Sitārjjaka (See) ୯ । ବନ ବର୍ବରିକା (ରାଜ ନିର୍ଘଣ୍ଟ)—9. The wild black basil plant. ୧୦ । ଶିବ (ହି· ଶ)—10. Śiba. ୧୧ । (ନାମ) ଦ୍ରୋଣଙ୍କର ଏକ ପୁତ୍ର—11. A son of Droṇa. ୧୨ । କିନ୍ନରମାନଙ୍କ ରାଜା (ହି· ଶ)—12. The king of the Kinnaras. ୧୩ । ଜଳପକ୍ଷୀ ବିଶେଷ (ହି· ଶ)—13. A kind of aquatic bird. ୧୪ । ରାଜ ସର୍ଷପ; ରାଇ ସୋରିଷ (ହି· ଶ)—14. Rye. ବଣ—୧ । ଯାହାର ମୁଖ ବା (ସୁମୁଖା[ଖୀ]—ସ୍ତ୍ରୀ) ଅଗ୍ରଭାଗ ସୁନ୍ଦର ଥାଏ ବା ସାମନା ସୁନ୍ଦର—1. Having a nice mouth or front. ୨ । (ବହୁବ୍ରୀହି) ପୁଂ ସୁନ୍ଦର ମୁଖ ବିଶିଷ୍ଟ—2. Having a nice face. ୩ । ସୁନ୍ଦର—3. Beautiful. ୪ । ପ୍ରସନ୍ନ; ଅନୁକୂଳ (ହି. ଶ)—4. Favourable. (ଦୃ—ଜାଣିଛି ଚତୁର ମୁଖ ଚତୁରେ ସୁମୁଖ । ଉପ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।) ୫ । କୃପାଳୁ (ହି. ଶ)—5. Kind.

ସୁମୁଖ
सन्मुख

ଗ୍ରା. ବି ଓ ବଣ—(ସ. ସମ୍ମୁଖ) ସମ୍ମୁଖ (ଦେଖ)—Sammukha (See)

ସୁମୁଖା—ସ· ବଣ. ସ୍ତ୍ରୀ (ସୁମୁଖ+ଆ)—ସୁମୁଖର ସ୍ତ୍ରୀଲିଙ୍ଗ; ଚନ୍ଦ୍ରମୁଖୀ—
Sumukhā (Feminine of Sumukha); Fair-faced (woman). ବି· ସ୍ତ୍ରୀ—୧ । ସୁନ୍ଦରୀ ନାରୀ—1. A beautiful woman. ୨ । ଦର୍ପଣ [ଶବ୍ଦ କଳ୍ପଦ୍ରୁମ]—2. Mirror.

ସୁମୁଖା ସୁମୁଖୀ—ଦେ. ବଣ ଓ କ୍ରି ବଣ (ସ. ସମ୍ମୁଖ)—ପରସ୍ପରର
Sumukhā sumukhī ସମ୍ମୁଖବର୍ତ୍ତୀ; ସାମନା ସାମନି—
सुमुखासुमुखी आमनेसामने Facing each other.

ସୁମୁଖୀ—ସ. ବି. ସ୍ତ୍ରୀ—୧ । ସୁମୁଖା; ସୁନ୍ଦରୀ ସ୍ତ୍ରୀ—1. A beautiful
Sumukhi woman. ୨ । ଏକାଦଶାକ୍ଷର ଛନ୍ଦୋବିଶେଷ—2. A Sanscrit metre of 11 syllables. [ବୃ—ଏଥିର ପ୍ରଥମ, ଅଷ୍ଟମ ଓ ଏକାଦଶ ବର୍ଣ୍ଣ ଲଘୁ, ଅନ୍ୟ ବର୍ଣ୍ଣମାନ ଗୁରୁ—ହି, ଶ ] ୩ । ସଙ୍ଗୀତରେ ଏକ ପ୍ରକାର ମୂର୍ଚ୍ଛନା (ହି. ଶ)—3. A kind of modulation in music. ୪ । (ନାମ) ଅପ୍ସରା-ବିଶେଷ (ହି· ଶ)—4. Name of an Apsarā. ୫ । ନୀଳ ଅପରାଜିତା (ହି. ଶ)—5. The blue-flowered Clitoris creeper. ୬ । ଶଙ୍ଖପୁଷ୍ପୀ (ହି. ଶ)—6. Śaṅkhapushpī (See) ବଣ—ସୁମୁଖା (ଦେଖ)—Sumukhā (See)

ସୁମୁଦ(ନ୍ଦ)ର—ଗ୍ରା· ବି—ସମୁଦ୍ର—
Sumuda(nda)ra Ocean.
ସମୁଦ୍ଦୂର समुंदर

ସୁମୁଦି—ପ୍ରାଦେ (ମେଦିନୀପୁର) ବି—ସମୁଦି (ଦେଖ)
Sumudi Samudi (See)

ସୁମୁରା—ପ୍ରାଦେ (ଉତ୍ତର ବାଲେଶ୍ୱର) ବି—ହାଣ୍ଡିଫୁଟା ଦେଖ
Sumurā Hāṇḍiphuṭā See)

ସୁମୁରି କରିବା—ପ୍ରାଦେ ( ଉତ୍ତର ବାଲେଶ୍ୱର କ୍ରି—ସନ୍ତୋଳିବା
Sumuri karibā (ଦେଖ)—Santolibā (See)
[ଯଥା—ମ'ଛ ସୁମୁରି କର କଣ୍ଟିକା ]

ସୁମୂର୍ତ୍ତି—ଗ୍ରା· ବ (ସଂ· ସ୍ମୃତି)—୧ । ସ୍ମୃତିଶାସ୍ତ୍ର; ଧର୍ମଶାସ୍ତ୍ର—
Sumurti 1. Hindu code of law. ( ଭୃ—ବନସ୍ତ୍ରୀ
ସ୍ମୃତି ଦାଣୀ ପ୍ରକାରେ ଶାସିବା ଯାଉ, କଣା କେଉଁ ବିଦ୍ୟା ଅବ
ସୁମୁରତୀ, ସୁମୃତି ସୁମୂର୍ତ୍ତି ସାର । ଭଞ୍ଜ· ବୈଦେହୀଶବିଳାସ । )
ସ୍ମୂର୍ତ୍ତି ୨ । ଧର୍ମଶାସ୍ତ୍ର—2. Scripture. ୩ । ସଂସ୍କୃତ
ସମୂର୍ତ୍ତି ଶ୍ଳୋକ—3. Sanscrit sloka. [ ଦ୍ର—ଏହି ଶବ୍ଦ ସଙ୍ଗେ ସହଚରରୂପେ ପୁରାଣ, ଶାସ୍ତ୍ର (ଶାସ୍ତ୍ର, ଶାସ୍ତ୍ର), ଶ୍ଳୋକ (ଶୋଲକ) ଅବ ଶବ୍ଦମାନ ବ୍ୟବହୃତ ହୁଏ ।] ୪ । (ସଂ· ସୁମୂର୍ତ୍ତି) ସୁନ୍ଦରରୂପ—4. Beautiful appearance. ବଣ—ସୁମୂର୍ତ୍ତି; ସୁନ୍ଦର ରୂପବିଶିଷ୍ଟ—Of a good shape.

ସୁମୁଷ୍ଟି—ସଂ· ବ—ମହାନିମ୍ବ (ବୃ· ଶ)
Sumushti Melia Azadirichtatree.

ସୁମୁହିଁ—ଗ୍ରା· ବଣ· ସ୍ତ୍ରୀ—ସୁମୁଖୀ; ସୁନ୍ଦରୀ—Beautiful. [ଭୃ—
Sumuhin ଅଟେ ଜନମେଜୟ ଏ ରୂପରେ କହି, ଗଲେ ପର୍ଣ୍ଣ-
ସ୍ମୁଖୀ କୁଟୀକ ବୈଶିଷ୍ଟ୍ୟ ସୁମୁହିଁ । କୃଷ୍ଣସିଂହ· ମହାଭାରତ· ବନ ।]
ସୁମୁହୀ ବ—ସୁମୁଖୀ ସ୍ତ୍ରୀ; ସୁନ୍ଦରୀ ସ୍ତ୍ରୀ—Beautiful woman. [ଭୃ—ବୋଲବେଲେ ସୁମୁହିଁ ଅଳ୍ପର ମୁହିଁ, ବହୁ ଶୀକର ଛାଡ଼ିଲି ଭୂହ । ଭଞ୍ଜ· ବୈଦେହୀଶବିଳାସ ।]

ସୁମୂର୍ତ୍ତି—ସଂ· ବ—୧ । (କର୍ମଧା) ସୁନ୍ଦର ମୂର୍ତ୍ତି—1. A nice
Sumurtti shape. ୨ । ଶିବଙ୍କର ଏକ ଗଣ (ବୃ· ଶ)—
ସ୍ମୂର୍ତ୍ତି 2. A class of Siba's retinue. ବଣ—
ସୁମୁରତୀ (ବହୁବ୍ରୀହି) ସୁନ୍ଦର ମୂର୍ତ୍ତିଯୁକ୍ତ—Having a nice shape. ଗ୍ରା· ବ (ସଂ·ସ୍ମୃତି)—ସ୍ମୃତିଶାସ୍ତ୍ର—Hindu code of law. (ଭୃ—ବିଚାର ଭଣେ ମାରୁଛ ବହୁଲ ଏତେ ସୁମୂର୍ତ୍ତି ଶୁଭିରେ ଏ କଥା ଶୁଣା ନାହିଁ । ଭଞ୍ଜ· ବୈଦେହୀଶବିଳାସ ।)

ସୁମୂଳ—ସଂ· ବ—୧ । (ବହୁବ୍ରୀହି) ଶ୍ୱେତ ଶିଗ୍ରୁ (ଗୁଳ ଜାତିଷ୍ଣ)—
Sumula 1. The white variety of horse radish. ୨ । ଉତ୍ତମ ମୂଳ—2. Good root. ବଣ (ବହୁବ୍ରୀହି )—ସୁନ୍ଦର ମୂଳଯୁକ୍ତ—Having a good
(ସୁମୂଳା—ସ୍ତ୍ରୀ· ବଣ) root.

ସୁମୂଳକ—ସଂ· ବ—ଗର୍ଜ୍ଜର (ଗୁଳ ଜାତିଷ୍ଣ); ଗାଜର—
Sumulaka Carrot.

ସୁମୂଳା—ସଂ· ବଣ· ସ୍ତ୍ରୀ (ସୁମୂଳ+ଅ)—ସୁମୂଳର ସ୍ତ୍ରୀଲିଙ୍ଗ—
Sumula Feminine of Sumula. ବ—୧ । ଶାଳପର୍ଣ୍ଣୀ (ଗୁଳ ଜାତିଷ୍ଣ) (ଦେଖ)—1. Salaparnni (See) ୨ । ପୃଶ୍ନିପର୍ଣ୍ଣୀ (ଗୁଳ ଜାତିଷ୍ଣ) (ଦେଖ)—2. Prusniparnni.

ସୁମୃତ—ଗ୍ରା· ବ ଓ ବଣ—ସୁମୂର୍ତ୍ତି (ଦେଖ)
Sumruti Sumurti (See)

ସୁମେଖଳ—ସଂ· ବଣ (ବହୁବ୍ରୀହି)—ସୁନ୍ଦର ମେଖଳା ଯୁକ୍ତ—Having
Sumekhala a nice belt or girdle. ବ—ମୁଞ୍ଜ (ଗୁଳ
(ସୁମେଖଳା—ସ୍ତ୍ରୀ· ବଣ) ଜାତିଷ୍ଣ) (ଦେଖ)—Munja (See)

ସୁମେଚକ—ସଂ ବ (ବୈଦ୍ୟକ)—ଶ୍ୟାମଲତା; କଳା ଦାନା—
Sumechaka Ipomœa Hederacea (plant and seed).

ସୁମେଧାଃ—ସଂ· ବଣ (ବହୁବ୍ରୀହି; ସୁ+ମେଧସ୍; ୧ମା, ୧ବ)—ସୁନ୍ଦର
Sumedhah ମେଧା ବା ବୁଦ୍ଧିବିଶିଷ୍ଟ; ବୁଦ୍ଧିମାନ୍—Of good
(ସୁମେଧସୀ—ସ୍ତ୍ରୀ) intelligence; sharp of intellect.
[ସୁମେଧା—ଦେ·ରୂପ] ସଂ· ବ—୧ । (ନାମ) ଚକ୍ଷୁଷମନ୍ୱନ୍ତରର ଏକ ଋଷି (ବୃ· ଶ)—1. Name of an ancient sage. ୨ । ପଞ୍ଚମ ମନ୍ୱନ୍ତରର ବଶିଷ୍ଟ ଦେବତା—2. Name of the special Deity of the 5th Manwantara. ୩ । ପିତୃଲୋକଙ୍କ ଗଣ ବିଶେଷ—3. Name of a class of deceased ancestors. ୪ । ଜ୍ୟୋତିଷ୍ମତୀ ଲତା (ବୃ· ଶ)—4. Jyotishmati lata ( See ).

ସୁମେଧ୍ୟ—ସଂ· ବଣ—ସୁପବିତ୍ର; ଅତି ପବିତ୍ର—
Sumedhya Very pure.
(ଅମେଧ୍ୟ—ବିପରୀତ) [ସୁମେଧ୍ୟା—ସ୍ତ୍ରୀ]

ସୁମେରୁ—ସଂ· ବ—୧ । ପୁରାଣୋକ୍ତ ଭୂମଧ୍ୟସ୍ଥ ପର୍ବତ ବିଶେଷ; ମେରୁ
Sumeru ଗିରି—1. The Meru mountain of mythological fame. [ଦ୍ର—ଭାଗବତ ଅନୁସାରେ ଏହା ପର୍ବତରାଜ । ପୌରାଣିକ ଭୂମଣ୍ଡଳର ସାତଦ୍ୱୀପ ମଧ୍ୟରୁ ଜମ୍ବୁଦ୍ୱୀପର ୯ ଗୋଟି ବର୍ଷ ମଧ୍ୟରୁ ଇଳାବୃତ୍ତ ନାମକ ଅଭ୍ୟନ୍ତରସ୍ଥ ବର୍ଷରେ ଏ ପର୍ବତ ଅବସ୍ଥିତ । ଏହା କନକମଣ୍ଡିତ ଥିବାରୁ ଏହାର ନାମ ହେମାଦ୍ରି । ଏହାର ସାନୁରେ ନାନା ରତ୍ନ ଥିବାରୁ ଏହାର ନାମ ରତ୍ନସାନୁ । ଏହାର ଶୃଙ୍ଗରେ ଦେବତାମାନେ ବିହାର କରୁଥିବାରୁ ଏହାର ନାମ ସୁରାଳୟ, ଅମରାଦ୍ରି । ଏହା ପୃଥିବୀରେ ଥିବାରୁ ଏହାର ନାମ ଭୂସ୍ୱର୍ଗ । ଏହାର ଉଚ୍ଚତା ୮୪ ହଜାର ଯୋଜନ । ଏଥି ମଧ୍ୟରୁ ଭୂତଳରେ ୧୬ ହଜାର ଯୋଜନ ଅଛି । ଏହାର ଶୃଙ୍ଗ ୩ ଗୋଟି । ଏହାର ମଧ୍ୟମ ଶୃଙ୍ଗ ସ୍ଫଟିକ ଓ ବୈଦୁର୍ଯ୍ୟମୟ, ପୂର୍ବଶୃଙ୍ଗ ଇନ୍ଦ୍ରନୀଳମୟ ଓ ପଶ୍ଚିମ ଶୃଙ୍ଗ ମାଣିକ୍ୟମୟ । ଭାଗବତ ୫।୨୧, ମତ୍ସ୍ୟପୁରାଣ ୧୫, ନୃସିଂହ ପୁରାଣ ୩୦ ଓ କୂର୍ମପୁରାଣ ୪୩ଶ ଅଧ୍ୟାୟରେ ଏ ପର୍ବତର ବିବରଣ ଅଛି । ଏହି ପର୍ବତର ପୂର୍ବରେ ଦେବଧାନୀ ନାମକ ଇନ୍ଦ୍ରପୁରୀ, ପଶ୍ଚିମରେ କମ୍ପ୍ଳୋଚନୀ ନାମକ ବରୁଣପୁରୀ ଓ ଉତ୍ତରରେ ବିଭାବରୀ ନାମକ ସୋମପୁରୀ ଅଛି । ଏହାର ପୂର୍ବପାର୍ଶ୍ୱ ଶ୍ୱେତବର୍ଣ୍ଣ, ପଶ୍ଚିମ ପୀତ, ଉତ୍ତର ରକ୍ତବର୍ଣ୍ଣ ଓ ଦକ୍ଷିଣ ପାର୍ଶ୍ୱ ଅନ୍ଧକାରମୟ । ଏହାର ପଶ୍ଚିମରେ ଭଦ୍ରାଶ୍ୱ, ଭାରତ ଓ କେତୁମାଲଦେଶ, ଉତ୍ତରରେ କୁରୁଦେଶ ଅଛି ।] ୨ । (ଭୂଗୋଳ) ପୃଥିବୀର ଉତ୍ତର କେନ୍ଦ୍ର; ଉତ୍ତର ମେରୁ; ଉତ୍ତର ଧ୍ରୁବ—2. ( Geography ) The north pole of the globe. [ଦ୍ର—ଦକ୍ଷିଣ କେନ୍ଦ୍ରକୁ କୁମେରୁ ବୋଲାଯାଏ ।] ୩ । ଜପମାଳାର ମଧ୍ୟସ୍ଥ ଗୁଣ୍ଡିକା; ମେରୁ—3. The central bead of a

rosary. ୪ । ଶିବଙ୍କର ଏକ ନାମ (ହ. ଶ)—4. A name of Siba.

ସୁମେରୁ ବୃତ୍ତ—ଦେ. ବ (ଭୂଗୋଳ)—ପୃଥିବୀର ଉତ୍ତର କେନ୍ଦ୍ରଠାରୁ Sumeru brutta ଅକ୍ଷାଂଶ ୬୬॥ ଡିଗ୍ରୀ ଦୂରରେ ଗୋଲକର ସুমেরু বৃত্ত ଚତୁର୍ଦ୍ଦିଗରେ ବେଢ଼ିଥିବା କଳ୍ପିତ ବୃତ୍ତ ବା ରେଖା—सुमेरु वृत्त (Geography) The Arctic circle. [ ଦ୍ର—ଏହି ରେଖା ଓ ସୁମେରୁ ମଧ୍ୟରେ ଉତ୍ତର ଶୀତକଟିବନ୍ଧ ଅବସ୍ଥିତ । ]

ସୁମେରୁ ଶୃଙ୍ଗ—ସ. ବ—ପୁରାଣୋକ୍ତ ସୁମେରୁ ପର୍ବତର ତିନିଗୋଟି ଶୃଙ୍ଗ Sumeru srunga (ଯହିଁରେ ଦେବତାମାନେ ବିହାର କରନ୍ତି)—The three peaks of the mythological Sumeru mountain.

ସୁମେରୁ ମହାସାଗର (ସମୁଦ୍ର, ସାଗର)—ଦେ. ବ (ଭୂଗୋଳ)—Sumeru mahāsāgara (samudra; sagara) ଉତ୍ତର সুমেরু মহাসাগর ମେରୁକୁ ବେଢ଼ିଥିବା ମହାସାଗର; ଉତ୍ତର सुमेरु महासागर ମେରୁ ମହାସାଗର—( Geography ) The Arctic ocean.

ସୁମ୍ପଲୁଣ୍ଠ—ସ. ବ—କର୍ପୂରବିଶେଷ (ଶବ୍ଦଚନ୍ଦ୍ରିକା)—Sumpaluntha Camphor.

ସୁମ୍ବ—ପ୍ରାଦେ (ଗଡ଼ଜାତ) ବ—କାଶ ତୃଣ—Sumba A kind of grass; Sachcharum Spontanacium.

ସୁମ୍ଭ—ସ. ବ (ନାମ)—୧ । ଦେଶ ବିଶେଷ—1. Name of a Sumbha country. ୨ । ସୁମ୍ଭଦେଶବାସୀ ବ୍ୟକ୍ତି—2. An inhabitant of the 'Sumbha' country. ପ୍ରାଦେ (ଗଡ଼ଜାତ)—ସୁମ୍ବ (ଦେଖ)—Sumba (See)

ସୁମ୍ହା—ପ୍ରାଦେ (ସମ୍ବଲପୁର) ବ—ସୁମ୍ହା (ଦେଖ) Sumbhā Sum-hā (See)

ସୁଯଜ୍ଞ—ସ. ବଣ, ପୁଂ ( ବହୁବ୍ରୀହି )—ଉତ୍ତମତା ବା ସଫଳତା Sujajña ସହକାରେ ଯଜ୍ଞ ସମ୍ପାଦନକାରୀ—Performing a Jajña well. ସ.ବ (କର୍ମଧା)—୧ । ଉତ୍ତମ ଯଜ୍ଞ—1. Good Jajña. ୨ । (ବହୁବ୍ରୀହି) (ନାମ) ଆକୁତି ଗର୍ଭଜାତ ରୁଚି ପ୍ରଜାପତିଙ୍କ ପୁତ୍ର (ହ. ଶ)—2. A son of Ruchi. ୩ । ( ନାମ ) ବଶିଷ୍ଠଙ୍କ ଏକ ପୁତ୍ର—3. A son of Basishtha. ୪ । ଧ୍ରୁବଙ୍କର ଏକ ପୁତ୍ର—4. A son of Dhruba. ୫ । ଉଶୀନରର ଏକ ରାଜା—5. Name of a king of Usinara.

ସୁ(ସୂ)ୟା—ଦେ. ବ—ସ୍ନେହ—Affection. Su(sū)yā ( ଉ—ହେତ ମଣି ସେ ଅନୁସୂୟା । ସୁୟା ଭାବ ଶେଷ স্নেহ स्नेह ଦେହେ ପ୍ରୀତି ହୃଦୟା—ଅଭିମନ୍ୟୁ, ବିଦଗ୍ଧଚିନ୍ତାମଣି )

ସୁଯାତ୍ର—ସ. ବଣ ( ବହୁବ୍ରୀହି; ସୁ+ଯାତ୍ରା=ଗତି+ଅ )—ମନୋହର Sujātra ଗତିବିଶିଷ୍ଟ—Having a nice motion. ବ—(ସୁଯାତ୍ରା—ସ୍ତ୍ରୀ.ବଣ) ସୂର୍ଯ୍ୟ—The sun.

ସୁଯାତ୍ରା—ଦେ. ବ—ଶୁଭ ଯୋଗରେ ଯାତ୍ରା—An auspicious Sujātrā starting. [ଦ୍ର—ଯେଉଁ ଯାତ୍ରାରେ ଅନୁକୂଳ ବାୟୁ সুযাত্রা ସମୟରେ ଶୁଭଲକ୍ଷଣମାନ ଦେଖାଯାଏ ଓ ଯେଉଁ सुयात्रा ଯାତ୍ରାରେ କୌଣସି ବାଧାବିଘ୍ନ ଘଟେ ନାହିଁ ଏବଂ ଯେଉଁ ଯାତ୍ରାର ଫଳ ଶୁଭ ହୁଏ । ]

ସୁଯାମୁନ—ସ. ବ ( ସୁ+ଯମୁନା+ଅ )—୧ । ବିଷ୍ଣୁ (ହେମଚନ୍ଦ୍ର); Sujāmuna ବିଷ୍ଣୁସହସ୍ରନାମୋକ୍ତ ବିଷ୍ଣୁଙ୍କର ନାମ—1. A name of Bishnu. ୨ । ବତ୍ସରାଜ ( ହେମଚନ୍ଦ୍ର ); ବାରସୁତ ( ଦେଖ )—Bārasuta (See) ୩ । ରାଜପ୍ରାସାଦ ( ହେମଚନ୍ଦ୍ର )—3. Royal building; palace. ୪ । ଅଦ୍ରିବିଶେଷ ( ହେମଚନ୍ଦ୍ର )—4. Name of a mountain. ୫ । ମେଘବିଶେଷ ( ମେଦିନୀ )—5. Name of a cloud.

ସୁଯୁକ୍ତି—ସ. ବ (କର୍ମଧା)—ସୁନ୍ଦର ଯୁକ୍ତି—Sujukti Nice argument.

ସୁଯୁଦ୍ଧ—ସ. ବ—୧ । ଧର୍ମଯୁଦ୍ଧ (ହ. ଶ)—1. Righteous war. Sujuddha ୨ । ନ୍ୟାୟସଙ୍ଗତ ଯୁଦ୍ଧ ( ହ. ଶ )—2. War carried on properly.

ସୁୟେଜ୍—ବୈଦେ. ବ ( ନାମ )—ସୁଏଜ୍ (ଦେଖ)—Suyej Suej ( See )

ସୁଯୋଗ—ସ. ବ ( କର୍ମଧା )—୧ । ଉତ୍ତମ ଯୋଗ—1. Nice Sujoga conjunction. ୨ । ଶୁଭକର ଯୋଗ—2. Auspi-(ଦୁର୍ଯୋଗ—ବିପରୀତ) cious conjunction. ୩ । ଉତ୍ତମ ଅବସର—3. Nice or good opportunity. ୪ । ଉପଯୁକ୍ତ ଅବସର—4. Suitable opportunity ୫ । ସୌଭାଗ୍ୟ—5. Good luck. (ଉ—ଘୁମାଇବାର ସମ୍ଭାବନା ନାହିଁକି ଆମ୍ଭ ସୁଯୋଗ ବିନା ବଞ୍ଚି ଅଛୁ ରେ—ବିବସୂର୍ଯ୍ୟ, କପୋତାକ୍ଷ ର ଗୀତ । ) ୬ । ମଙ୍ଗଳକର ସାହଚର୍ଯ୍ୟ; ଶୁଭକର ମିଳନ ବା ସଙ୍ଗ—6. Good company or association.

ସୁଯୋଗକୁ—ଦେ. କ୍ରି. ବିଣ—ସୌଭାଗ୍ୟକ୍ରମେ—Sujogaku Fortunately; luckily. সুযোগক্রমে सुयोगसे ( ସୁଯୋଗକ୍ରମେ—ଅନ୍ୟରୂପ )

ସୁଯୋଗ୍ୟ—ସ. ବିଣ. ପୁଂ—ଅତିଶୟ ଉପଯୁକ୍ତ—Very able or Sujogya ( ସୁଯୋଗ୍ୟା—ସ୍ତ୍ରୀ ) fit. ( ସୁଯୋଗ୍ୟତା—ବ ) ( ଅଯୋଗ୍ୟ—ବିପରୀତ )

ସୁଯୋଧନ—ସ. ବ. ପୁଂ ( ସୁ+ଯୁଧ୍ ଧାତୁ+କର୍ତ୍ତ୍ରି, ଅନ )—ଦୁର୍ଯ୍ୟୋ-Sujodhana ଧନଙ୍କ ନାମାନ୍ତର—A name of Durjyodhana. ( ଉ—ଉହବଶରୁ ଅଣ ବସୁ ହେଲେ ସୁଯୋଧନ—ଗ୍ରଧାନାଥ, ମହାଯାତ୍ରା । )

ସୁର୍ ( ଧାତୁ )—ସ—୧ । ଦୀପ୍ତି ପାଇବା; ଶୋଭା ପାଇବା—1. To Sur ( root ) shine. ୨ । ଐଶ୍ୱର୍ଯ୍ୟଯୁକ୍ତ ହେବା—2. To prosper. ୩ । ଆଧିପତ୍ୟ କରିବା—3 To rule; to exercise mastery.

ସୁର୍—ଦେ, ବ ( ସଂ. ସ୍ୱର )—୧ । ଶବ୍ଦ; ଧ୍ୱନି—1. Sound.
Sur　୨ । ସଙ୍ଗୀତର ରାଗ ବା ତାନ—2. Tune, ୩ ।
ସୁର ସूर ବଙ୍ଗୀୟ ବଂଶୋପାଧିବିଶେଷ—3. A family title in
সোর Bengal, ବୈଦେ. ବ—୧ । ( ଫା. ସୁର୍ ) ସୋଷ୍;
सूर ଚେତନା—1. Consciousness. ୨ । ( ଫା, ସୁର୍ )
সুরু সুরু ଆରମ୍ଭ—2. Beginning.

ସୁର୍କି(ଖି)—ବୈଦେ. ବ ( ଫା. ସୁର୍ଖୀ )—ସୁରୁକି ( ଦେଖ )
Sur-ki(khi)　Suruki ( See )

ସୁର୍କିବା—ପ୍ରାଦେ. ( ସମ୍ବଲପୁର ) ବ—୧ । ଶୋଷିବା—1. To
Sur-kibā　suck; to imbibe. ୨ । ସୋଢ଼କିବା—
2. To gulp with a gusto.

ସୁର୍କୁଟା (ଇତ୍ୟାଦି)—ଦେ. ବିଣ—ସୁରୁକୁଟା ଇତ୍ୟାଦି (ଦେଖ)
Sur-kuṭā (etc)　Surukuṭā etc ( See )

ସୁର୍କୁଟିବା—ପ୍ରାଦେ (ଗାଡଣା) କି—ଶୁଙ୍ଘିବା—
Sur-kuṭibā　To smell.

ସୁର୍ଖୁର୍—ଦେ. ବିଣ ଓ କି. ବିଣ—ସୁରୁଖୁରୁ (ଦେଖ)
Sur-khur　Surukhur (See)

ସୁର୍ଖୁରିଆ—ଦେ. ବିଣ—ଶାନ୍ତଶିଷ୍ଟ—
Sur-khuriā　ଶାନ୍ତଶିଷ୍ଟ सुरखुर　Very meek.
(ସୁର୍ଖୁରୀ, ସୁରୁଖୁରେଇ—ସ୍ତ୍ରୀ)

ସୁର୍ଗୁନା—ପ୍ରାଦେ (ସମ୍ବଲପୁର) ବ—ଶାଗୁଣା—
Sur-gunā　Vulture.

ସୁର୍ଗୁଜା—ଦେ. ବ (ନାମ)—ମଧ୍ୟ ପ୍ରଦେଶର ବର୍ତ୍ତମାନ ଇଷ୍ଟର୍ଣ୍ଣ ଷ୍ଟେଟସ୍
Sur-gujā　ଏଜେନ୍ସିର ଅନ୍ତର୍ଗତ ଗୋଟିଏ ଦେଶୀୟ ରାଜ୍ୟ—
সুরগুজা　1. The name of a State in the
सुरगुजा　Central Province included in the
present Eastern States Agency; Surguja.
୨ । ସରଗୁଜା, ଯାଶପୁର, ଉଦୟପୁର ଆଦି ଅଞ୍ଚଳରେ ପ୍ରଚଳିତ ଛତିଶଗଡ଼ୀ ଭାଷାର ଉପଭାଷା—2. A form of Chhatisagarḍi dialect of Eastern Hindi spoken in Surgujā, Jāspur, Udaipur etc.

ସୁର୍ଜୁନା—ପ୍ରାଦେ (ସମ୍ବଲପୁର) ବ—ସର୍ଜନ—
Sur-junā　Creation.

ସୁର୍ତା—ପ୍ରାଦେ (ଯାଶପୁର) ବ—ଚେତା—
Sur-tā　Sense; consciousness.

ସୁର୍ତି—ଦେ. ବ—ସୁରୁତି (ଦେଖ)
Sur-ti　Suruti (See)

ସୁର୍ ଦାସ—ଦେ. ବ (ସଂ. ସୁର+ଦାସ)—ସୁରଦାସ (ଦେଖ)
Sur-dāsa　Sura dāsa (See)
সুর দাস　सूर दास

ସୁର୍ମା—ବୈଦେ. ବ (ଫା)—ସୁରୁମା (ଦେଖ)
Sur-mā　Surumā (See)

ସୁର୍ ଯିବା—ପ୍ରାଦେ (ଗାଡଣା) କି—ଶୀଘ୍ର ବା ପ୍ରତ୍ୟୁଷରେ ଖାଇବା—
Sur-jibā　To take one's meal at an early hour of the day.

ସୁର୍(ରୁ)ସାର୍—ଦେ. ବ (ସଂ. ସ୍ୱର ସହିତ ଇତ୍ୟର୍ଥରେ ସହିତ)—
Sur(ru)sār　ସୋରଶବ୍ଦ; ସାଢ଼ାଶବ୍ଦ; କୌଣସି ପ୍ରକାରର ଧ୍ୱନି—
সাড়াশব্দ　आवाज　Any sound. ବିଣ—ସର୍ବତ୍ର
প্রকটিত　ପ୍ରକାଶିତ; ପ୍ରଚାରିତ; ପ୍ରକଟ ହୋଇଥିବା—
प्रघट, प्रगट　Published abroad; made public.

ସୁର୍(ରୁ)ସାର୍ କରିବା—ଦେ. କି—୧ । ଶବ୍ଦ କରିବା—1. To
Sur(ru)sār karibā　make a sound. ୨ । କୌଣସି ଗୁପ୍ତ
আবাজ করা　ବିଷୟକୁ ସାଧାରଣରେ ପ୍ରକାଶ କରିବା—2. To
प्रगट करना　make a matter public; to divulge a matter.

ସୁର୍ଶିଆ ମାଲ୍—ପ୍ରାଦେ (ସମ୍ବଲପୁର) ବ—ସୁର୍ଶିଆ ମାଲ୍ (ଦେଖ)
Sur-shiā māl　Surshiā māl (See)

ସୁର—ସଂ. ବ. ପୁଂ(ସୁ. ଧାତୁ=ଅଧିପତ୍ୟ କରିବା+କର୍ତ୍ତୃ.ର; ଅମ୍ବା ସୁର୍.
Sura　ଧାତୁ+କର୍ତ୍ତୃ. ଅ)—୧ । ଦେବ (ଅମର)—1. Deity;
(ସୁରୀ—ସ୍ତ୍ରୀ)　the gods. ୨ । ସୂର୍ଯ୍ୟ—2. The sun.
[ଅସୁର—ବିପରୀତ] ୩ । ସୁଧୀଜନ; ପଣ୍ଡିତ—3. Learned
man. ୪ । ମୁନି; ଋଷି (ହି. ଶ)—4. Sage; seer.
সুর　ଦେ. ବ ( ସଂ. ସ୍ୱର )—୧ । କଣ୍ଠସ୍ୱର; ରବ—
सुर　1. Sound issuing from the throat; tone.
୨ । ଧ୍ୱନି—2. Sound. (ଯଥା—ବଡ଼ା ସୁର, ଚଢ଼ାସୁର, ମିଠାସୁର, ଖାଦ୍‌ସୁର (ଖାଦ୍‌ସୁର), ଉଲ୍ଲାସ ର, ମୈତ୍ରସୁର, କାଙ୍ଗାସୁର ଇତ୍ୟାଦି ।) ୩ । ସଙ୍ଗୀତର ସ୍ୱର—3. The scales of music; tune. ( ଯଥା—ଉଦାରାସୁର ତାରାସୁର, କାଗାସୁର, ଅନୁଦାତ୍ତ ସୁର, ସମାଗସୁର, ବିକାଗସୁର) ୪ । ସୁରରାଜ, ସୁରପତି, ସୁରେନ୍ଦ୍ର ଡାକନାମ—4. Name for calling Surarāja, Surapati, Surendra. ୫ । ସୁରଲୋକ; ଦେବଲୋକ—5. The place of the gods, ବୈଦେ. ବ (ଫା)—ସୁର୍ (ଦେଖ)—Sur (See) ପ୍ରାଦେ. (ଛତିଶଗଡ଼) ବ—ଘୁଷୁରି ( ତୁଳ. ହି. ସୁଅର୍ )—Hog.

ସୁର କରି—ସଂ. ବ ( ୬ଷ୍ଠୀ ତତ୍ )—ଦେବତାମାନଙ୍କ ହସ୍ତୀ; ଐରାବତ
Sura kari　ଗଜ—The mythological elephant of
[ ସୁରକରୀନ୍ଦ୍ର, ସୁରହସ୍ତୀ—ଅନ୍ୟରୂପ ]　the heaven.

ସୁର କାରୁ—ସଂ. ବ ( କର୍ମଧାରୟ; ସୁର ବା ଦେବତାମାନଙ୍କ ମଧ୍ୟରେ
Sura kāru　କାରୁ=କାରିଗର )—ବିଶ୍ୱକର୍ମା—
The Divine Architect.

ସୁର କାର୍ମୁକ—ସଂ. ବ—ଇନ୍ଦ୍ର ଧନୁ [ ହି. ଶ ]—
Sura kārmuka　Rainbow.

ସୁର କାଷ୍ଠ—ସଂ. ବ—ଦେବଦାରୁ [ ହି. ଶ ]—
Sura kāshṭha　Pine.

ସୁରକ୍ତ—ସ. ବଣ ( ସୁ+ରକ୍ତ )—୧ । ଉତ୍ତମରୂପେ ରଞ୍ଜିତ—
Surakta 1. Nicely painted. ୨ । ସୁନ୍ଦର ରକ୍ତବର୍ଣ୍ଣ-ବିଶିଷ୍ଟ—2. Of nice red colour. ୩ । ଅତିଶୟ ଅନୁରକ୍ତ—3 Much attached. ୪ । ସୁମଧୁର—4. Very sweet. ୫ । ସୁଶ୍ରାବ୍ୟ; ଶ୍ରବଣ ସୁଖକର—5. Sweet to the ear. ୬ । ଯାହାର କଣ୍ଠଧ୍ୱନି ମଧୁର—6. Having a sweet tone.

ସୁରକ୍ତକ—ସ. ବ—୧ । କୋଷାମ୍ର ( ଶବ୍ଦକଳ୍ପଦ୍ରୁମ ); କୁସୁମଗଛ—
Suraktaka The mulberry tree. ୨ । ସ୍ୱର୍ଣ୍ଣଗୈରିକ [ ଶବ୍ଦକଳ୍ପଦ୍ରୁମ ]—2. Yellow chalk.

ସୁରକ୍ଷିତ—ସ. ବଣ—ଉତ୍ତମରୂପେ ରକ୍ଷିତ—
Surakshita Well preserved.

ସୁର ଖଣ୍ଡନିକା(ମଣ୍ଡଳିକା)—ସ. ବ ( ସୁର=ଦେବତା+ଖଣ୍ଡ୍ ଧାତୁ
Sura khandanikā(mandalikā) +ଅନ+ଇକ+ଆ )—ବୀଣାଭେଦ [ ଶବ୍ଦରତ୍ନାବଳୀ ]—A sort of harp. [ ଦ୍ରୁ—ଏ ଯନ୍ତ୍ରରେ ଗୋଟିଏ ଘଟା ଉପରେ ତାର ଟଣା ଯାଇଥାଏ; ଭୂମି ଉପରେ ରଖି ଏହାକୁ ମିଜ୍‌ରାବ୍ ଦ୍ୱାରା ବଜାଇବାକୁ ହୁଏ—ହି. ଶ । ]

ସୁର ଗଜ—ସ. ବ—ଐରାବତ ହସ୍ତୀ [ ହି. ଶ ]—
Sura gāja Indra's elephant.

ସୁରଗଣ୍ଡ—ସ. ବ—ବ୍ରଣରୋଗବିଶେଷ ( ଶବ୍ଦକଳ୍ପଦ୍ରୁମ )—A sort
Suraganda বাজগাঁড় of boil or tumour ( a disease ),

ସୁର ଗୁରୁ—ସ. ବ ( ୬ଷ୍ଠୀ ତତ୍ )—୧ । ବୃହସ୍ପତି; ଦେବତାମାନଙ୍କ
Sura guru ଗୁରୁ—1. Bruhaspati; the preceptor of the gods. ୨ । ବୃହସ୍ପତି ଗ୍ରହ—
2. Jupiter ( planet ).

ସୁର ଗ୍ରାମଣୀ—ସ. ବ ( ସୁରମାନଙ୍କର ଗ୍ରାମଣୀ=ଅଗ୍ରଣୀ )—ଇନ୍ଦ୍ର
Sura grāmani [ହିକାଣ୍ଡ ଶେଷ]—Indra (the leader (ସୁରାଗ୍ରଣୀ—ଅପଭ୍ରଂଶ) of the gods).

ସୁରଙ୍ଗ—ସ. ବ ( ସୁ+ରଙ୍ଗ )—୧ । ନାଗରଙ୍ଗ; ନାରଙ୍ଗ—
Suranga 1. A kind of orange. ୨ । ବିବର; ସୁଡ଼ଙ୍ଗ; ଲମ୍ବଗର୍ତ୍ତ ( ଶବ୍ଦକଳ୍ପଦ୍ରୁମ ); ଭୂମି ତଳେ ତଳେ ଖୋଳାଯିବା ପଥଣୀ;—2. Tunnel; trench. ୩ । ହିଙ୍ଗୁଳ ( ଶବ୍ଦକଳ୍ପଦ୍ରୁମ )—3. Vermillion. ୪ । ପତଙ୍ଗ ( ଶବ୍ଦକଳ୍ପଦ୍ରୁମ ); ବକମକାଠ—4. Sappan wood. ୫ । ସୁନ୍ଦର ରଙ୍ଗ—5. Nice colour. ( ଉ—ସୁରଙ୍ଗ ଦେଖି ଜିଣିଥିଲ ଯନ୍ତୁ, ଇନ୍ଦ୍ର ବକ୍ତ୍ର ମାଇଲ ଭୂମ୍ବ ଭିନୁ—ବିଶ୍ୱନାଥ. ବିଚିତ୍ର ରାମାୟଣ । ) ୬ । ସିନ୍ଧ ଗାତ ( ହି. ଶ )—6. Hole bored into a house by a house breaker. ସ. ବଣ—୧ । ସୁରକ୍ତ; ସୁନ୍ଦର ରକ୍ତବର୍ଣ୍ଣବିଶିଷ୍ଟ—1. Of nice red colour. ୨ । ସୁରଞ୍ଜିତ—2. Nicely painted. ଦେ. ବଣ—ଅତ୍ୟନ୍ତ ଛଟକଯୁକ୍ତ—
सुरङ्ग कुतकयुक्त Very frolicsome. [ ଦ୍ରୁ—ଗୋଶାଳଚ ଖଞ୍ଜିଖଚ କୁରଙ୍ଗ ଅଣି । ସୁରଙ୍ଗ କରିଚ ଖଡ ଦେଖି ବେ ପୁଣି—ଜୋଡିବ୍ରହ୍ମାଣ୍ଡ ସୁନ୍ଦରୀ । ]

ସୁରଙ୍ଗଦ—ସ.ବ (ସୁରଙ୍ଗ+ଦା. ଧାତୁ+କର୍ତ୍ତ୍ର.ଅ)—ପତଙ୍ଗ; ବକମକାଠ
Surangada ( ଶବ୍ଦକଳ୍ପଦ୍ରୁମ )—Sappan wood.

ସୁରଙ୍ଗ ଧାତୁ—ସ. ବ—ଗୈରିକ ( ଶବ୍ଦକଳ୍ପଦ୍ରୁମ ); ଗେରୁମାଟି—
Suranga dhātu Red chalk.

ସୁରଙ୍ଗଯୁକ୍—ସ. ବ ( ସୁରଙ୍ଗ=ସୁଡ଼ଙ୍ଗ, ବିବର+ଯୁଜ୍ ଧାତୁ+କର୍ତ୍ତ୍ର.
Surangajuk କ୍ୱିପ୍; ସୁରଙ୍ଗଯୁଜ୍ ଶବ୍ଦ; ୧ମା, ୧ବ )—ଯେଉଁ ବ୍ୟକ୍ତି ସୁରଙ୍ଗ କାଟି ଘର ଭିତରେ ପଶେ; ସିନ୍ଧିଆଳ—A thief who steals by boring a tunnel into the house.

ସୁରଙ୍ଗରେ—ଦେ. କ୍ରି. ବଣ—କୌତୁକରେ—Gaily.
Surangare ( ଉ—ବହୁରେ ଯୂଥପତି ଗଠଣ ଉଚ୍ଚସ୍ତରେ
सुरङ्गे कौतुकसे ରଣାଙ୍ଗଣେ ସୁରଙ୍ଗରେ । ଉଡ଼. ବୈଦେହୀଶ ବିଳାସ । )

ସୁରଙ୍ଗା—ସ. ବ (ସୁରଙ୍ଗ+ଆ)—୧ । ସିନ୍ଧଗାତ (ହଳାୟୁଧ)—
Surangā 1.A hole bored into a house by a house-breaker. ୨ । କୈବର୍ତ୍ତିକା; ଦେଉଟିଅ ମୁଥା (ଶବ୍ଦକଳ୍ପଦ୍ରୁମ)—2. A sort of bulbous grass root.

ସୁରଙ୍ଗି—ଦେ. ବ—ଗଞ୍ଜାମ ଜିଲ୍ଲାର ଜମିଦାରୀ ବିଶେଷ—Name of
Surangi an estate in the Ganjam district.
सुरंगी [ଦ୍ରୁ—ଏଥିର ସ୍ୱର୍ଗତ ରାଜା ଚନ୍ଦ୍ରଚୂଡ଼ାମଣି ହରିଚନ୍ଦନଦେବ
সুরংগী ଉତ୍କଳ ସାହିତ୍ୟ ସେବାରେ ସୁପରିଚିତ । ] ବଣ—ସୁରକ୍ତ (ଦେଖ)—Surakta (See)

ସୁର(ରି)ଙ୍ଗି କମଳା—ଦେ. ବ (ଗଞ୍ଜାମର ସୁରଙ୍ଗି ରାଜ୍ୟର
Sura(ri)ngi kamalā ନାମାନୁସାରେ )—ଗଞ୍ଜାମ ଓ ବିଶାଖାପଟ୍ଟଣାର ସମୁଦ୍ର ଶାରବର୍ତ୍ତୀ ଉଦ୍ୟାନଖଣ୍ଡ ଅଞ୍ଚଳରେ ଉତ୍ପନ୍ନ ହେବା କମଳାଲେମ୍ବୁ—A species of deep yellow or reddish orange. [ଦ୍ରୁ—ଏହା ମିଠା ଓ ନାଲି ଅଟେ ।]

ସୁରଙ୍ଗିକା—ସ. ବ (ସୁରଙ୍ଗ+କ+ଆ)—ମୂର୍ବା—
Surangikā The bow-string grass.

ସୁରଙ୍ଗୀ—ସ. ବ (ସୁରଙ୍ଗ+ଈପ୍; ୧ମା. ୧ବ)—୧ । କାକନାସା (ଶବ୍ଦକଳ୍ପଦ୍ରୁମ); କଣ୍ଟକାରୀଜାତୀୟ ଫଳଯୁକ୍ତ ଲତା—
Surangī 1. Solanum Indicum (plant). ୨ । ରକ୍ତ ଶୋଭାଞ୍ଜନ (ରତ୍ନମାଳା); ନାଲି ସଜନା—2. The red variety of horse-radish. ୩ । ପୁନ୍ନାଗ (ହି. ଶ)—3. Punnāga.

ସୁର ଚଢ଼ା(ଢ଼େ)ଇବା—ଦେ. କ୍ରି—୧ । ଧ୍ୱନିକୁ ଉଚ୍ଚତର କରିବା—
Sura chardhā(rdhe)ibā 1. To raise the tone.

ସୁରଚଢ଼ାନ ୨ । ଯନ୍ତ୍ରରୁ ଉତ୍ପାଦିତ ସ୍ୱରକୁ ଉଚ୍ଚତର କରିବା—
सुरचढ़ाना 2. To raise the tune of a musical instrument to a higher pitch. ୩ । ବେହେଲା ଓ ସୀତାର ଆଦିର ତାରକୁ ଠିକ୍ ସ୍ୱରଯୁକ୍ତ କରିବା—3. To regulate the tune of a musical instrument; to set a musical instrument to tune.

ସୁର ଗୁପ—ସଂ. ବି—ଇନ୍ଦ୍ରଧନୁ—
Sura chāpa Rainbow.

ସୁରୁଜ୍—ପ୍ରାଦେ (ଉତ୍ତରଖଣ୍ଡ) ବି—ସୂର୍ଯ୍ୟ—
Suruj The sun.

ସୁରଜଃଫଳ—ସଂ. ବି (ବହୁବ୍ରୀହି; ସୁରଜସ୍ + ଫଳ)—ପଣସ ବୃକ୍ଷ—
Surajah phala The jack fruit tree.

ସୁରଜନୀ—ସଂ. ବି (ସୁ + ରଜନୀ)—୧ । ସୁନ୍ଦର ରାତ୍ରି—
Surajani 1. A nice night.
୨ । ରାତ୍ରି (ଶବ୍ଦ ଚନ୍ଦ୍ରିକା)—2. Night.

ସୁର ଜ୍ୟେଷ୍ଠ—ସଂ. ବି (୭ମୀ ତତ୍; ସୁରମାନଙ୍କ ମଧ୍ୟରେ ଜ୍ୟେଷ୍ଠ)—
Sura jyeshṭha ବ୍ରହ୍ମା (ଅମର)—Brahmā.

ସୁରଞ୍ଜନ—ସଂ. ବି—ଗୁଆକ ବୃକ୍ଷ (ହିକାଣ୍ଡ ଶେଷ)—
Surañjana The areca nut tree.

ସୁରଞ୍ଜିତ—ସଂ. ବିଣ (ସୁ + ରଞ୍ଜିତ)—ସୁନ୍ଦର ରଙ୍ଗରେ ରଞ୍ଜିତ—
Surañjita Nice coloured; nicely painted.

ସୁରଟ—ଦେ ବି (ସୁରଟ୍ ବା ସୌରାଷ୍ଟ୍ର ଦେଶର ନାମରୁ)—ରାଗିଣୀ
Suraṭa ବିଶେଷ)—Name of a musical note. [ଦ୍ର—(ସୁରଟ ମଲ୍ଲାର—ଅନ୍ୟରୂପ) ଏହା ରାତ୍ରିର ପ୍ରଥମ ଓ ଦ୍ୱିତୀୟ
सुरट सुरट ପ୍ରହରରେ ଗେୟ, ସପ୍ତସ୍ୱରବିଶିଷ୍ଟ ଓ ଏକ ଅଧିକା କୋମଳସ୍ୱରଯୁକ୍ତ ।]

ସୁରତ(ଥ)—ବୈଦେ. ବି (ଫା)—୧ । ଢାଞ୍ଚ; ପ୍ରଣାଳୀ—
Surat(th) 1. Fashion; mode; manner. ୨ । ଦେହର
सूरत ଚେହେରା; ମୁଖଭଙ୍ଗୀ—2. The appearance of
सूरत the body. ୩ । ଅବସ୍ଥା—3. Condition. ୪ । ଆକୃତି—4. Form; shape. ବିଣ—୧ । ମିଷ୍ଟ; ମଧୁର—1 Sweet. ୨ । ସୁନ୍ଦର, ମନୋଜ୍ଞ—2. Beautiful. ୩ । କାରଣ—3. By reason of; by means of. ଦେ· କ୍ରି. ବିଣ (କଚରୀଆ)—୧ । ଅବଲମ୍ବନ କରି; ଉପରେ—1 On the basis of. ୨ । କାରଣରୁ—2. On account of; owing to.

ସୁରତ୍ ବଦଳା(ଳେ)ଇବା—ଦେ. କ୍ରି—ଅନ୍ୟ ରୂପ ବା ଚେହେରା ଧାରଣ
Surat badaḷā(ḷe)ibā କରିବା—To change one's
सूरत् बदलान सुरत बदलाना shape or appearance.

ସୁରତ୍‌ରେ—ଦେ. କ୍ରି. ବିଣ (କଚରୀଆ) କ୍ରି · ବିଣ—ସୁରତ୍ (ଦେଖ)
Surat-re Surat (See)

ସୁରତ୍ ହ(ହା)ରାମ—ବୈଦେ. ବିଣ (ଫା)—ଯେଉଁ ବ୍ୟକ୍ତି ଦେଖିବାକୁ
Surat-ha(hā)rām ସୁନ୍ଦର କିନ୍ତୁ ଅନ୍ତରରେ କ୍ରୂର; ବିଷକୁମ୍ଭ
सूरत्‌हाराम सुरतहराम ପୟୋମୁଖ ସଦୃଶ ବ୍ୟକ୍ତି—
A person who is cruel at heart, but nice in appearance.

ସୁରତ୍‌ହାଲ୍—ବୈଦେ. ବି (ଫା; କଚରୀଆ)—୧ । ମୃତବ୍ୟକ୍ତିର ଦେହର
Surat-hāl ବା ଶବର ଅବସ୍ଥା—1. The condition of a
(ସୁରଥାଲ୍—ଅନ୍ୟରୂପ) dead body. ୨ । ସରେଜମିନ
सूरत्‌हाल सुरतहाल ତଦନ୍ତ—2. Local investigation; inquest.

ସୁରତ୍‌ହାଲ୍ ରିପୋର୍ଟ୍—ଦେ. ବି (କଚରୀଆ) (ଫା ଓ ଇଂ)—୧ । ମୃତ
Surat-hāl ripoṭ ବ୍ୟକ୍ତିର ଦେହ ପରୀକ୍ଷା କରି ଡାକ୍ତର ବା
(ସୁରଥାଲ୍ ରିପୋର୍ଟ୍—ଅନ୍ୟରୂପ) ପୁଲିସ ଯେଉଁ ରିପୋର୍ଟ ଦିଅନ୍ତି—
सूरतहाल रिपोर्ट सुरतहाल रिपोट 1. Inquest report on the condition of a dead body.
୨ । ସରେଜମିନ ତଦନ୍ତ ରିପୋର୍ଟ—2. A report of the result of a local investigation.

ସୁରତ—ସଂ. ବି (ସୁ + ରମ୍ ଧାତୁ + ଭାବ. ତ)—ରତିକ୍ରିୟା; ମୈଥୁନ;
Surata ସ୍ତ୍ରୀ ପୁରୁଷ ସଙ୍ଗମ—Copulation; coition. ବିଣ.
(ସୁରତା—ସ୍ତ୍ରୀ· ବିଣ) ପୁଂ (ସୁ + ରମ୍· ଧାତୁ + କର୍ତ୍ତ୍ରି· ତ)—
୧ । ଅତ୍ୟନ୍ତ ଅନୁରକ୍ତ—1. Much attached to; enamoured of. ୨ । ଦୟାଳୁ—2. Kind. ୩ ।
शूरत्व ଅତି କୃପାଳୁ—3. Very merciful. ଦେ· ବିଣ—
सूरत्व (ସଂ. ଶୂରତ୍ୱ) ଶୂରତ୍ୱ; ବଳଶୂରତା; ବଳବତ୍ତ୍ୱଶକ୍ତି ଅ
(ଗୋପୀନାଥ ନନ୍ଦ)—Strength; might. ବୈଦେ, ବି (ଫା)—ସୁରତ୍ (ଦେଖ)—Surat (See)

ସୁରତ ଖେଦ (ଗ୍ଲାନି)—ସଂ. ବି (ମ. ପ· ଲୋ; ସୁରତଜନିତ ଖେଦ)—
Surata kheda (glāni) ସୁରତ ଶ୍ରମ (ଦେଖ)—
Surata śrama (See)

ସୁରତ ଗୋପନା—ସଂ. ବି ଓ ବିଣ. ସ୍ତ୍ରୀ—ସୁରତି ଗୋପନା (ଦେଖ)
Surata gopanā Surati gopanā (See)

ସୁରତ ତାଳୀ—ସଂ· ବି. ସ୍ତ୍ରୀ—୧ । ଦୂତୀ (ମେଦିନୀ)—1. A
Surata tāḷi female go-between. ୨ ।
ଶିରଃସ୍ରଜ୍; ଶିରଃସ୍ଥିତ ମାଳା—2. A chaplet for the head.

ସୁରତ ପ୍ରସଙ୍ଗ—ସଂ· ବି—୧ । ରତିକ୍ରିୟା—1. Act of copulation. ୨ । ରତି ସମ୍ବନ୍ଧେ ଗଳ୍ପ—
Surata prasaṅga 2. Talk about copulation.

ସୁରତ(ତି) ବିଚିତ୍ରା—ସଂ. ବି. ସ୍ତ୍ରୀ (ବହୁବ୍ରୀହି; ସୁରତ ଅଟେ ବିଚିତ୍ର
Surata(ti) bichitrā ଯାହାର; ସୁରତ + ବିଚିତ୍ର + ଆ)—
ଶୃଙ୍ଗାରପ୍ରଧାନ ମଧ୍ୟାନାୟିକା ମଧ୍ୟରୁ ଏକ ପ୍ରକାର ନାୟିକା; ଯେଉଁ ମଧ୍ୟାନାୟିକାର ରତିକ୍ରିୟା ବିଚିତ୍ର ଅଟେ—
A lady or heroine of love stories whose coition is wunderful. [ଦ୍ର—ମଧ୍ୟାନାୟିକାଙ୍କ

ସୁର ଶ୍ରେଣୀ ଯଥା—ଅରୂଢ଼ଯୌବନା, ପ୍ରଗଲ୍ଭବଚନା, ପ୍ରାଦୁର୍ଭୂତଯୌବନା ଓ ସୁରତବଚନା—ହି. ଶ।] ସଂ. ବଣ. ସ୍ତ୍ରୀ—ଅଦ୍ଭୁତ ରତିକ୍ରୀଡ଼ାକାରିଣୀ (ସ୍ତ୍ରୀ)—(a woman) Of wonderful coition.

ସୁର ତରଙ୍ଗିଣୀ—ସଂ. ବ (୬ଷ୍ଠୀ ତତ୍)—ଗଙ୍ଗା ନଦୀ—
Sura tarangini The river Ganges.
ଦେ. ବ, ସ୍ତ୍ରୀ—ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—
A name given to females.

ସୁର ତରୁ—ସଂ. ବ—୧ । ନନ୍ଦନ କାନନର ତରୁ—1. A tree of
Sura taru the heaven. (ଉ—ଶଙ୍କ ହୋଇ ସୁରତରୁ କୁସୁମ ବାଞ୍ଛିଲୁ ବେ । ଉପେନ୍ଦ୍ର. ଲାବଣ୍ୟବତୀ.୯.ଗୀତ ।) [ଦ୍ର—କଳ୍ପତରୁ, ମନ୍ଦାର, ପାରିଜାତ, ସନ୍ତାନ ଓ ହରିଚନ୍ଦନ, ଏମାନେ ନନ୍ଦନ କାନନର ତରୁ ଅଟନ୍ତି । ] ୨। ସ୍ୱର୍ଗର କଳ୍ପତରୁ—2. The wish-bearing tree of the heaven. ୩। ସୁନ୍ନାଗ—3. Mast wood; Calophyllum Inophyllum. (ଉ—ସୁରତରୁ କୁଞ୍ଜେ ମଞ୍ଜୁଳ ମୋର ମୈତ୍ରେୟୀ ତ । ରାଧାନାଥ. ଚନ୍ଦ୍ରଭାଗା ।)

ସୁରତ ଶ୍ରମ—ସଂ. ବ (ମ. ପ. ଲୋ; ସୁରତଜନିତ ଶ୍ରମ)—ରମଣଜନିତ
Surata śrama ପରିଶ୍ରମ—Exertion due to cohabitation.

ସୁରତ ସୁଖ—ସଂ. ବ (ମ. ପ. ଲୋ; ସୁରତଜନିତ ସୁଖ)—ରତିଜନିତ
Surata sukha ଆନନ୍ଦ—Pleasure derived from coition.

ସୁରତ ସ୍ୱେଦ—ସଂ. ବ (ମ. ପ. ଲୋ; ସୁରତଜନିତ ସ୍ୱେଦ)—ରତିଶ୍ରମ
Surata sweda ଜନିତ ଘର୍ମ—Perspiration due to the strain of cohabitation.

ସୁରତା—ସଂ. ବଣ. ସ୍ତ୍ରୀ (ସୁରତ+ଆ)—ସୁରତର ସ୍ତ୍ରୀଲିଙ୍ଗ—
Suratā Feminine of Surata. ବ—୧ । ( ସୁର+ଭାବାର୍ଥେ. ତା) ଦେବତ୍ୱ (ମେଦିନୀ)—1. Divinity.
୨ । (+ସମୂହାର୍ଥେ. ତା) ସୁର ବା ଦେବସମୂହ—
2. A gathering of the gods.

ସୁରତା(ତୁ)ଙ୍ଗ—ସଂ. ବ—ସୁରପୁନ୍ନାଗ (ଗଜନିର୍ଘଣ୍ଟ) (ଦେଖ)
Suratā(tu)nga Surapunnāga (See)

ସୁରତାନ୍ତ—ସଂ. ବ (୬ଷ୍ଠୀ ତତ୍; ସୁରତ+ଅନ୍ତ)—ରତିର ଶେଷ—
Suratānta The end of coition.

ସୁରତି—ସଂ. ବ (ସୁ+ରମ୍ ଧାତୁ=ରମଣ କରିବା+ଭାବ. ତି)—
Surati ରତି; ସୁରତ; ମୈଥୁନ—Copulation. ବୈଦେ. ବ—
ସୁରତି ସୁର୍ତ୍ତି (ଦେଖ)—Surti (See) ଦେ. ବ—ସୁରୁତି (ଦେଖ)
ସୁରତି Suruti (See).

ସୁରତି ଗୋପନା—ସଂ. ବ ଓ ବଣ (ସ୍ତ୍ରୀ)—ଯେଉଁ ନାୟିକା ନାୟକ
Surati gopanā ସଙ୍ଗେ କୃତ ରତିକ୍ରୀଡ଼ା ବିଷୟ ଆପଣା ସଖୀମାନଙ୍କଠାରୁ ଲୁଚାଏ (ହି. ଶ)—A woman who conceals the fact of her amorous dalliance from her companions.

ସୁର ତୋଷକ—ସଂ. ବଣ—ଦେବତାମାନଙ୍କ ପ୍ରୀତିକାରକ—
Sura toshaka Pleasing to the gods.
(ସୁରତୋଷିକା—ସ୍ତ୍ରୀ) ବ—କୌସ୍ତୁଭମଣି (ଶବ୍ଦ ରତ୍ନାବଳୀ)—
The gem worn by Bishnu.

ସୁରତ୍ନ—ସଂ. ବ—୧ । ଉତ୍ତମ ରତ୍ନ—1. Excellent gem.
Suratna ୨ । ସୁନା (ହି. ଶ)—2. Gold. ୩ । ମାଣିକ୍ୟ (ହି. ଶ)—3. Ruby. ସଂ. ବଣ—୧ । ସର୍ବଶ୍ରେଷ୍ଠ (ହି. ଶ)—1. Superior to all others. ୨ । ଉତ୍ତମ ରତ୍ନଯୁକ୍ତ—2. Having good gems.

ସୁରଥ—ସଂ. ବ (ସୁ ଅଟେ ରଥ ଯାହାର)—୧ । ଚୈତ୍ରବଂଶ ସମ୍ଭୂତ
Suratha ଚନ୍ଦ୍ରବଂଶୀୟ ରାଜା—1. Name of a king of the Lunar dynasty. [ ଦ୍ର—ଚନ୍ଦ୍ରଙ୍କ ଔରସରେ ଗୁରୁପତ୍ନୀ ତାରାଙ୍କ ଗର୍ଭରୁ ବୁଧ ଜନ୍ମିଥିଲେ । ବୁଧଙ୍କଠାରୁ ଚୈତ୍ର ଓ ଚୈତ୍ରଙ୍କଠାରୁ ସୁରଥ ଜନ୍ମିଥିଲେ । ଏ ଶତ୍ରୁମାନଙ୍କ ଦ୍ୱାରା ରାଜ୍ୟଭ୍ରଷ୍ଟ ହୋଇ ତପୋବନକୁ ଗଲେ । ସେଠାରେ ଗୋଟିଏ ଗୃହତ୍ୟାଗୀ ବୈଶ୍ୟ (ସମାଧି ନାମକ)କୁ ଭେଟି ମେଧା ନାମକ ମୁନିଙ୍କଠାରୁ ସଂସାରର ମହାମାୟା ବା ଦୁର୍ଗାଙ୍କ ବୃତ୍ତାନ୍ତ ଓ ଦେବୀଙ୍କ କର୍ତ୍ତୃକ ମଧୁକୈଟଭ, ମହିଷାସୁର, ରକ୍ତବୀଜ, ଶୁମ୍ଭ, ନିଶୁମ୍ଭ ଆଦି ରାକ୍ଷସମାନଙ୍କ ବଧର ବିବରଣ ଶୁଣି ପୃଥିବୀରେ ପ୍ରଥମେ ମୃଣ୍ମୟୀ ପ୍ରତିମାସ୍ଥାପନ କରି ଶାରଦୀୟ ଦୁର୍ଗା ପୂଜା ଆରମ୍ଭ କଲେ ଏବଂ ଦେବୀଙ୍କ ବରରେ ନଷ୍ଟରାଜ୍ୟ ପ୍ରାପ୍ତ ହୋଇ ଦେହାନ୍ତେ ସ୍ୱର୍ଗକୁ ଗଲେ । ଏ ପରଜନ୍ମରେ ସାବର୍ଣ୍ଣି ମନୁରୂପେ ଜାତ ହେଲେ । (ମାର୍କଣ୍ଡେୟ ପୁରାଣୋକ୍ତ ଦେବୀ. ମାହାତ୍ମ୍ୟ ବା ଚଣ୍ଡୀରେ ଏବଂ ବ୍ରହ୍ମବୈବର୍ତ୍ତ ପୁରାଣର ପ୍ରକୃତି ଖଣ୍ଡରେ ଏ ବିଷୟ ବର୍ଣ୍ଣିତ ହୋଇଅଛି) ।

ସୁରଥଙ୍କ ପୁତ୍ର ଜୟଦ୍ରଥଙ୍କ ଜନ୍ମକାଳରେ ଦୈବବାଣୀ ହୋଇଥିଲା ଯେ, ନବଜାତ କୁମାର ଗୁଣୀ ଓ ଶତ୍ରୁହନ୍ତା ହେବ । ତାହା ଶୁଣି ସୁରଥ କହିଥିଲେ, 'ଯେ ଜୟଦ୍ରଥଙ୍କ ମୁଣ୍ଡ କାଟି ଭୂତଳରେ ପକାଇ ଦେବ, ତାର ଶିର ଶତଧା ଛିନ୍ନ ହେବ, ଭଗବାନ ଶ୍ରୀକୃଷ୍ଣଙ୍କର ଆଦେଶ ଅନୁସାରେ ମହାଭାରତ ଯୁଦ୍ଧରେ ଅର୍ଜୁନ ଜୟଦ୍ରଥଙ୍କର ମୁଣ୍ଡ କାଟି ଅର୍ଘ୍ୟ ଦେବାକାଳରେ ସୁରଥଙ୍କ ଅଞ୍ଜଳିରେ ତାହାକୁ ପକାଇ ଦେଲେ । ସୁରଥଙ୍କ ହାତରୁ ଜୟଦ୍ରଥଙ୍କ ମୁଣ୍ଡ ଭୂତଳରେ ଖସି ପଡ଼ିବାରୁ ସୁରଥଙ୍କ ମୁଣ୍ଡ ଶତଧା ଛିନ୍ନ ହୋଇଗଲା; ଯଥା—

ସୁରଥ ଥିଲା ତପସ୍ୟାରେ
ତା ପୁତ୍ର ମୁଣ୍ଡ ନେଇ କରେ
କପଟେ ନାଶ ତାକୁ କଲେ
ଦୁରନ୍ତ କର୍ମ କେ ବୋଇଲେ ।

ପ୍ରାଚୀ. ପୂର୍ଣ୍ଣତମ ଚନ୍ଦ୍ରୋଦୟ ।]

୨ । (ନାମ) ଦ୍ରୁପଦଙ୍କ ଏକପୁତ୍ର (ହି. ଶ)—2. Name of a son of Drupada. ୩ । (ନାମ) ଜୟଦ୍ରଥଙ୍କ

ଏକ ପୁତ୍ର (ହ୍ରି. ଶ)—3. Name of a son of Jayadratha. ୪। ଜନମେଜୟଙ୍କ ଏକ ପୁତ୍ର (ହ୍ରି.ଶ)—4. Name of a son of Janamejaya ୫। (ନାମ) ଚମ୍ପକପୁରର ରାଜା ହଂସଧ୍ୱଜଙ୍କ ପୁତ୍ର—5. Name of the son of Rajā Haṁsadhwaja. ବଣ— ସୁନ୍ଦର ରଥ ବିଶିଷ୍ଟ—Having a nice car.

ସୁର ଦାରୁ—ସଂ. ବି (୬ଷ୍ଠୀ ତତ୍)—ଦେବଦାରୁ (ରତ୍ନମାଳା)—
Sura dāru The pine or cedar.

ସୁର ଦାସ—ଦେ. ବି—୧। ଅନ୍ଧ—1. Blind man. ୨। କଣା—
Sura dāsa 2. One-eyed person. ୩। (ନାମ) ପ୍ରସିଦ୍ଧ
सूरदास ସ୍ୱର୍ଗୀୟ ହିନ୍ଦୀ କବି—3. Name of a celebrated
सुर दास Hindi poet. [ ବି—ଏ ଦିଲ୍ଲୀ ନିକଟବର୍ତ୍ତୀ ସିହ୍ରୀ ନାମକ ଗ୍ରାମରେ ବ୍ରାହ୍ମଣକୁଳରେ ଜନ୍ମଗ୍ରହଣ କରିଥିଲେ। ଏ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର କବି। ଭାରତର ଶେଷ ସ୍ୱାଧୀନ ସମ୍ରାଟ ପୃଥ୍ୱୀରାଜଙ୍କ ରାଜସଭାର କବି 'ଚନ୍ଦ'ଙ୍କର ଏ ବଂଶଧର ଥିଲେ। ଏ ବାଲ୍ୟକାଳରେ ଯମୁନା ତୀରବର୍ତ୍ତୀ ଗୌଘାଟ ଗ୍ରାମରେ ଥିବା ମାତୁଳାଳୟରେ ରହି ସଂସ୍କୃତ ଓ ପାରସୀ-ଭାଷାରେ ପାଣ୍ଡିତ୍ୟ ଲାଭ କରିଥିଲେ। ଏହାଙ୍କ ପିତାଙ୍କ ନାମ ରାମଚନ୍ଦ୍ର। ଏହାଙ୍କର ଆଉ ଛଅ ଭାଇ ଥିଲେ ଓ ସେମାନେ ତଦାନୀନ୍ତନ ଦିଲ୍ଲୀର ଲୋଦୀବଂଶୀୟ ମୁସଲମାନ୍ ସମ୍ରାଟଙ୍କ ଅଧୀନ ସୈନିକ କର୍ମ କରି ବାବରଙ୍କ ସହ ଯୁଦ୍ଧରେ ହତ ହୋଇଥିଲେ। ଏ ସର୍ବକନିଷ୍ଠ ଥିଲେ ଓ ଅନ୍ଧ ଥିବାରୁ ସୈନ୍ୟ ବିଭାଗରେ ପଶି ପାରି ନ ଥିଲେ। ଏହାଙ୍କର ଅନ୍ୟ ନାମ ସୂର୍ଯ୍ୟଦାସ, ସୂରଦାସ, ସୁରଶ୍ୟାମ, ସୂର୍ଯ୍ୟଚନ୍ଦ୍ର। ଏ ଜନ୍ମାନ୍ଧ ନ ଥିଲେ। ପିଲଦିନୁଁ ଏ ଧର୍ମାନୁରାଗୀ ଥିଲେ ଓ ପ୍ରତିଦିନ ଦେବଦର୍ଶନାର୍ଥ ଗୋଟିଏ ଦେଉଳକୁ ଆସି ସେଠାରେ ଗୋଟିଏ ସୁନ୍ଦରୀ ଯୁବତୀ ପଣ୍ଡିଆଣୀଙ୍କୁ ଦେଖି ତାହାଙ୍କ ରୂପରେ ମୁଗ୍ଧ ହେଲେ ଓ ପଣ୍ଡିଆଣୀ ମଧ୍ୟ ଏହାଙ୍କ ରୂପରେ ମୁଗ୍ଧା ହେଲେ। ଏହି ସମୟରେ ପଣ୍ଡିଆଣୀ ଏହାଙ୍କ ନିକଟକୁ ଆସି ଠିଆ ହେବା ସମୟରେ ଦେଖିଲେ ଯେ, ଦେବ ପ୍ରତିମା ଜଳି ଯାଉଅଛନ୍ତି। ଏହା ଦେଖି ପଣ୍ଡିଆଣୀ ସେଠାରୁ ପଳାଇଲେ ଓ ସୁରଦାସ ତାଙ୍କ ପଛରେ 'ଗୋଟିଏ ମାତ୍ର ଭିକ୍ଷା' ଏହି ବାକ୍ୟ ଚିତ୍କାର କରି କରି ଗୋଡ଼ାଇଲେ। ପାଉ ଯାଉ ଭୀଷଣ ଅରଣ୍ୟ ମଧ୍ୟରେ ସମ୍ମୁଖରେ ଅଗ୍ନି ଜଳୁଥିବା ଦେଖି ପଣ୍ଡିଆଣୀ ଠିଆ ହେଲେ ଓ ସୁରଦାସ 'ଗୋଟିଏ ମାତ୍ର ଭିକ୍ଷା' ଏହି ବାକ୍ୟ ଚିତ୍କାର କରି ତାଙ୍କ ନିକଟରେ ପଡ଼ିଥିଲେ। ପଣ୍ଡିଆଣୀ ତାଙ୍କୁ ପଚାରିଲେ 'କି ଭିକ୍ଷା ମାଗୁଛ?' ସୁରଦାସ କହିଲେ 'ଏ ଚକ୍ଷୁ ମୋର ପରମ ଶତ୍ରୁ; ତୁମେ କଣ୍ଟା ଆଣି ମୋର ଏହି ଆଖି ଦିଓଟିକୁ ଫୁଟାଇ ଦିଅ, ମୁଁ ଏହି ଭିକ୍ଷା ମାଗୁଅଛି।' ପଣ୍ଡିଆଣୀ ନିକଟବର୍ତ୍ତୀ ଜଙ୍ଗଲରୁ କଣ୍ଟା ଆଣି ସୁରଦାସଙ୍କ ଆଖି ଦିଓଟି ଫୁଟାଇ ଦେଲେ ଓ ସେହିଦିନୁ ସେ ଅନ୍ଧ ହେଲେ। ସୁର ଦାସ ଅନ୍ଧ ଥିବା ବିଷୟ ଭାରତପ୍ରସିଦ୍ଧ ଥିବାରୁ ଉତ୍ତର ଓଡ଼ିଶାରେ ମଧ୍ୟ ଅନ୍ଧ ଗାୟକ, ଭିକ୍ଷୁକ ଓ ସାଧୁମାନଙ୍କୁ ଲୋକେ ସୁରଦାସ ନାମରେ ଡାକନ୍ତି। କଥୋପକଥନରେ ମଧ୍ୟ 'କି ଅନ୍ଧ, ନାଁ ସୁରଦାସ?' ବୋଲି ଲୋକେ କହି ଥାଆନ୍ତି। ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ ସୁରସାଗର ବା ସୁରସାଗରାବଳୀରେ ହିନ୍ଦୀ ଭାଷାରେ ଭାଗବତ କଥା ପଦ୍ୟରେ ବର୍ଣ୍ଣିତ ହୋଇଅଛି। ଏ ଗ୍ରନ୍ଥକୁ ସେ ୬୨ ବର୍ଷ ବୟସରେ ସମାପ୍ତ କରିଥିଲେ। ଏହା ଛଡ଼ା ସାହିତ୍ୟଲହରୀ ନାମକ ଖଣ୍ଡିଏ ଗ୍ରନ୍ଥ ସେ ୧୫୧୩ ଖ୍ରୀଷ୍ଟାବ୍ଦରେ ରଚନା କରିଥିଲେ। ହିନ୍ଦୀ-ଭାଷାରେ କବିଙ୍କ ମଧ୍ୟରେ ତାଙ୍କୁ ସୂର୍ଯ୍ୟ ଓ ତୁଳସୀଦାସଙ୍କୁ ଚନ୍ଦ୍ରଙ୍କ ସଙ୍ଗେ ତୁଳନା କରାଯାଏ। ତାଙ୍କ କବିତାରେ ସମ୍ରାଟ ଆକବର ମୁଗ୍ଧ ହୋଇ ତାଙ୍କୁ 'ମନସବ୍' (ମାସିକ ୭୦୦ ଟଙ୍କାର ବୃତ୍ତି) ଦେଇଥିଲେ ଓ ଉକ୍ତ ଧନ ସେ ଗରିବ, ଦୁଃଖୀଙ୍କୁ ବିତରଣ କରୁଥିଲେ। ତାଙ୍କର କବିତାରେ ଆବାଳବୃଦ୍ଧବନିତା ସମସ୍ତେ ମୁଗ୍ଧ। ଓଡ଼ିଶାରେ ଓ ବଙ୍ଗ ଦେଶରେ ତାଙ୍କର କେତେଗୋଟି ହିନ୍ଦୀ ସଙ୍ଗୀତ ଗାୟକମାନେ ଗାଇଥାନ୍ତି।

[ଭାରତୀୟ ପତ୍ରିକାରୁ ଉଦ୍ଧୃତ]

୪। ଭୀମ ଭୋଇଙ୍କର ଗୁରୁଦତ୍ତ ନାମ—4. The name given to Bhīma Bhoi by his preceptor. [ବି—ଭୀମଭୋଇ ରେଢ଼ାଖୋଲ ରାଜ୍ୟର ଅନ୍ତର୍ଗତ ଗ୍ରାମଡିହ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ସେ ଜାତିରେ କନ୍ଧ ଓ ଜନ୍ମରୁ ଅନ୍ଧ ଥିଲେ। ଗୁରୁ ମହିମାଗୋସାଇଁଙ୍କ ଅନୁଗ୍ରହରୁ ତାଙ୍କ ଚକ୍ଷୁକୁ ଦେଖାଗଲା। ସେ ମହିମାଗୋସାଇଁଙ୍କଠାରୁ ମହିମାଧର୍ମର ଉପଦେଶ ଗ୍ରହଣ କରିଥିଲେ ଏବଂ ଗୁରୁଙ୍କ ଦୟାରେ ଶ୍ରୀମଙ୍କଠାରେ ଅଲୌକିକ କବିତାଶକ୍ତି ପ୍ରକାଶ ପାଇଲା। ସ୍ତୁତି ଚିନ୍ତାମଣି, ବ୍ରହ୍ମନିରୂପଣ, ଶ୍ରୁତିନିଷେଧ ନିର୍ବେଦସାଧନା ପ୍ରଭୃତି ଗ୍ରନ୍ଥ ତାଙ୍କ ରଚିତ। ତାହାଙ୍କ ଭଜନ ଓ ଜଣାଣମାନଙ୍କରେ ମହିମାଧର୍ମ ଓ ମହିମାଗୋସାଇଁଙ୍କ ଲୀଳା-ବିବରଣ ପ୍ରଥମେ ପ୍ରକାଶିତ ହୋଇଥିଲା। ଭୀମ ଭୋଇ କେତେକ ଦିନ ରେଢ଼ାଖୋଲରେ ରହି ତତ୍ପରେ ସେ ସ୍ଥାନ ତ୍ୟାଗ କରି ସ୍ୱର୍ଣ୍ଣପୁର (ସୋନପୁର) ଅନ୍ତର୍ଗତ ଖଲିଆପାଲି ଗ୍ରାମରେ ଗୋଟିଏ ମଠ ନିର୍ମାଣ କରାଇ ଗୃହସ୍ଥାଶ୍ରମୀ ହୋଇ ରହିଥିଲେ। ସେ ଅଞ୍ଚଳର ସାଧାରଣ ଲୋକେ ଭୀମ ଭୋଇଙ୍କୁ ମହାପୁରୁଷ ଜ୍ଞାନ କରି ତାହାଙ୍କଠାରୁ ଧର୍ମ ଉପଦେଶ ଗ୍ରହଣ କରି ତାଙ୍କ ସେବା ପୂଜାରେ ରତ ରହୁଥିଲେ। ସେହି ମଠରେ ଭୀମ ଭୋଇ ମାନବଲୀଳା ସମ୍ବରଣ କରିଥିଲେ। ବର୍ତ୍ତମାନ ସେ ସ୍ଥାନରେ ତାଙ୍କର ଗୋଟିଏ ସମାଧି ମନ୍ଦିର ଓ ମଠ ରହିଅଛି।

ସଙ୍କଳନ ଲେଖକ—ଅବଧୂତ ଶ୍ରୀ ବିଶ୍ୱନାଥ ବାବା।]

ସୁର ଦୀର୍ଘିକା—ସଂ. ବି (୬ଷ୍ଠୀ ତତ୍)—ମନ୍ଦାକିନୀ; ସ୍ୱର୍ଗଙ୍ଗା (ଅମର)—
Sura dīrghikā The Ganges said to flow in the heaven.

ସୁର ଦୁନ୍ଦୁଭି—ସଂ. ବି—୧ । ଦେବତାମାନଙ୍କ ଦୁନ୍ଦୁଭି ବାଦ୍ୟ—
Sura dundubhi 1. The trumpet of the gods.
୨ । ତୁଳସୀଗୁଳ୍ମ ( ରାଜନିର୍ଘଣ୍ଟ )—
2. The holy Basil plant.

ସୁରଦ୍ୱିଟ୍—ସଂ. ବିଣ. ପୁଂ ( ସୁର+ଦ୍ୱିଷ୍ ଧାତୁ=ହିଂସା କରିବା+
Suradwit କର୍ତ୍ତୃ. କ୍ୱିପ୍; ସୁରଦ୍ୱିଷ୍; ୧ମା. ୧ବ )—ଦେବ-
ଦ୍ୱେଷୀ—Malignant to the gods. ବି. ପୁଂ—
୧ । ଅସୁର—1. Demon. ୨ । ଦେବ ଶତ୍ରୁ—
2. Enemy of the gods.

ସୁର ଦ୍ୱିପ—ସଂ. ବି ( ୬ଷ୍ଠୀ ତତ୍ )—ଦେବହସ୍ତୀ; ଐରାବତ ( ଶବ୍ଦ-
Sura dwipa କଳ୍ପଦ୍ରୁମ )—The elephant of Indra.

ସୁର ଦ୍ରୁମ—ସଂ. ବି—୧ । ସୁରତରୁ ( ଦେଖ )—1. Surataru
Suradruma ( See ). ୨ । ଦେବନଳ ( ରାଜନିର୍ଘଣ୍ଟ )—
2. Name of a reed plant.

ସୁର ଧନୁଃ(ଧ୍ୱଜ, କେତୁ)—ସଂ. ବି ( ୬ଷ୍ଠୀ ତତ୍ )—ଇନ୍ଦ୍ରଧନୁ—
Sura dhanuh(dhwaja, ketu) Rainbow.
[ ସୁରଧନୁ—ଦେ. ରୂପ ]

ସୁର ଧାମ(ନଗର)—ସଂ. ବି (ସୁରଧାମନ୍; ୬ଷ୍ଠୀ ତତ୍ )—ଦେବଲୋକ;
Sura dhāma(nagara) ସ୍ୱର୍ଗ—Heaven.

ସୁର ଧୁନୀ(ନଦୀ, ନିମ୍ନଗା)—ସଂ. ବି ( ୬ଷ୍ଠୀ ତତ୍; ସୁର=ଦେବତା+
Sura dhūnī(nadī, nimnagā) ଧୁନୀ=ନଦୀ )—୧ ।
ଗଙ୍ଗାନଦୀ—1. The river Ganges. ୨ । ସ୍ୱର୍ଗଙ୍ଗା
—2. The Ganges said to flow in heaven.

ସୁର ଧୂପ—ସଂ. ବି—ରାଳ ( ରାଜନିର୍ଘଣ୍ଟ ); ଝୁଣା—
Sura dhūpa Resin.

ସୁର ଧେନୁ—ସଂ. ବି. ସ୍ତ୍ରୀ ( ୬ଷ୍ଠୀ ତତ୍ )—କାମଧେନୁ—The
Sura dhenu mythological cow granting whatever is desired.

ସୁର ନନ୍ଦା—ସଂ. ବି ( ନାମ )—ନଦୀବିଶେଷ (ଶବ୍ଦରତ୍ନାବଳୀ)—
Sura nandā Name of a river.

ସୁର ନାଥ(ନାୟକ)—ସଂ. ବି ( ୬ଷ୍ଠୀ ତତ୍ )—ଇନ୍ଦ୍ର—
Sura nātha(nāyaka) Indra.

ସୁରନାଳ—ସଂ. ବି—ଦେବନାଳ ( ରାଜନିର୍ଘଣ୍ଟ )—
Suranāla Name of a reed plant.

ସୁରନିର୍ଗନ୍ଧ—ସଂ. ବି—ପତ୍ରକ ( ରାଜନିର୍ଘଣ୍ଟ ); ତେଜପତ୍ର—
Suranirgandha Cassia leaf.

ସୁର ନିଳୟ—ସଂ. ବି ( ୬ଷ୍ଠୀ ତତ୍; ଦେବତାମାନଙ୍କ ବାସସ୍ଥାନ )—
Sura nilaya ସୁମେରୁ ପର୍ବତ—
The mythological Sumeru mountain.

ସୁରପ—ପ୍ରାଦେ (ଲକ୍ଷଅ) ବି ଓ ବିଣ—ପୋଷ; ପାଣିଭୂତ କରତଳରେ
Surap ସମ୍ଭାଳିବା ବସ୍ତୁର ପୂର୍ଣ୍ଣ ପରିମାଣ—One handful
(of any thing). [ ଯଥା—ସୁରପେ ଚାଉଳ । ]

ସୁର ପତି—ସଂ. ବି ( ୬ଷ୍ଠୀ ତତ୍ )—ଦେବରାଜ; ଇନ୍ଦ୍ର ( ଅମର )—
Sura pati Indra.

ସୁରପତ୍ରୀ(ର୍ଣ୍ଣ)—ସଂ. ବି ( ବୈଦ୍ୟକ )—ସୁଗନ୍ଧପତ୍ର ଶାକବିଶେଷ—
Surapatrī(rnna) A sweet-smelling herb.
ଅନ୍ୟ ସଂ. ନାମ— [ ଗୁ—ଏହା କଟୁ, ତିକ୍ତ, ପାଚକ,
ଦେବପର୍ଣ୍ଣୀ, ସାରପର୍ଣ୍ଣୀ, କର୍ଣ୍ଣିକର, ବାଳରୋଗରେ ହିତକର;
ସୁଗନ୍ଧକ, ମାଚୀପତ୍ର, କୃମି, ଶ୍ୱାସ, କଫ, କାସ ଓ ବାୟୁ-
ସୂକ୍ଷ୍ମପତ୍ର, ଦେବାର୍ହ, ଗନ୍ଧପତ୍ରକ ନାଶକ । ]
माचिपत्री, पानमोवी; ହିନ୍ଦୀ ସୁରପର୍ଣ ମ. ସୁରପର୍ଣ୍ଣୀ

ସୁରପର୍ଣ୍ଣିକ—ସଂ. ବି—ସୁରପୁନ୍ନାଗ ( ରାଜନିର୍ଘଣ୍ଟ ); ଭୁରସଳା—
Suraparnnika A sweet-scented flowering tree
Ochrocarpus Longifolinus

ସୁରପର୍ଣ୍ଣିକା—ସଂ. ବି—ପୁନ୍ନାଗ ( ହେମଚନ୍ଦ୍ର ) ( ଦେଖ )
Suraparnnikā Punnāga ( See )

ସୁରପା—ପ୍ରାଦେ ( ଲକ୍ଷଅ ) ବି—ଘୋଣ୍ଟିକା—One draught (of
Surapā drinkable food ). [ ଉ—ମଂଗଳା ଭାତ
ସୁରପା ଏ—ଲକ୍ଷଅ ପ୍ରଚଳନ । ]

ସୁର ପାଦପ—ସଂ. ବି—ସୁରତରୁ (ଦେଖ)
Sura pādapa Surataru ( See )

ସୁରପୁନ୍ନାଗ—ସଂ. ବି—ଭୁରସଳା ଗଛ—Ochrocarpus Longi-
Surapunnāga folinus. [ ଗୁ—ଏହାର ଗୁଣ
ଅନ୍ୟ ସଂ. ନାମ—ସୁରପର୍ଣ୍ଣିକ, ପୁନ୍ନାଗବତ୍, ଏହି ଗଛ ପୁନ୍ନା ଗ
ନମେରୁ, ସୁରେଷ୍ଟ, ସୁରତାଙ୍ଗ ନାଗାପ୍ୟ, କିନ୍ତୁ ପୁନ୍ନାଗ ଅପେକ୍ଷା ଡେଙ୍ଗା
सुलतानिचांपा ଓ ସରୁ; ଫୁଲ ଧଳା ଓ ଖୁବ ପାଖୁଡ଼ିଆ
सुलतानचंपा ଓ ବଡ଼ ତେଜସ୍କୁଲ । ସତ୍ୟବାଦୀ
ଗୋପୀନାଥଙ୍କ ମନ୍ଦିର ସଂଲଗ୍ନ ବକୁଳବନରେ ଏ ଗଛ
ଅନେକ ମନକୁ ଉଠିଅଛି । ]

ସୁର ପୁର(ପୁରୀ)—ସଂ. ବି—ଅମରାବତୀ; ଇନ୍ଦ୍ରପୁରୀ—The capital
Sura pura(purī) of the gods in heaven.

ସୁର ପୁରୋଧା—ସଂ. ବି ( ୬ଷ୍ଠୀ ତତ୍ )—ବୃହସ୍ପତି; ସୁରଗୁରୁ—
Sura purodhā Bruhaspati, the preceptor of the gods.

ସୁର ପ୍ରିୟ—ସଂ. ବିଣ (ପୁଂ)—୧ । ଦେବତାମାନଙ୍କ ପ୍ରିୟ—1. Loved
Sura priya by the gods ୨ । ଯେ ଦେବତାମାନଙ୍କୁ ସ୍ନେହ
[ସୁରପ୍ରିୟା—ସ୍ତ୍ରୀ] କରେ—2. Fond of the gods. ବି—
୧ । ଅଗସ୍ତ୍ୟବୃକ୍ଷ ( ରାଜନିର୍ଘଣ୍ଟ )—2. Sesbania
Grandiflora. ୨ । କଙ୍କୋଳ—2. Cubeb
pepper. ୩ । ଇନ୍ଦ୍ର—3. Indra. ୪ । ବୃହସ୍ପତି—
4. The preceptor of the gods.

ସୁରପ୍ରିୟା—ସଂ. ବିଣ. ସ୍ତ୍ରୀ—ସୁରପ୍ରିୟର ସ୍ତ୍ରୀଲିଙ୍ଗ—Feminine of
Surapriyā Surapriya. ସଂ. ବି. ସ୍ତ୍ରୀ—୧ । ଜାଗାପୁଷ୍ପ—
1. Long-petalled jasmine. ୨ । ଚମ୍ପାକଦଳୀ
(ହ. ଶ)—2. A kind of banana;

ସୁର ବଧୂ(ବନିତା; ଲଳନା)—ସଂ. ବି—ଦେବ ସ୍ତ୍ରୀ—The wife of
Sura badhu(banitā, lalanā) one of the gods.

ସୁର ବର—ସଂ. ବି ( ୭ମୀ ତତ୍ )—ଇନ୍ଦ୍ର—
Sura bara Indra.

ସୁର ବର୍ତ୍ମ—ସଂ. ବ ( ୭ମୀ ତତ୍ )—ଦେବପଥ; ଆକାଶ (ଅମର)—
Sura barttma The sky.

ସୁର ବଲ୍ଲଭା—ସଂ. ବ—ଶ୍ୱେତଦୁବ୍ୱା (ରାଜନିର୍ଘଣ୍ଟ)—A bleached
Sura ballabha variety of doob grass.

ସୁର ବଲ୍ଲୀ—ସ. ବ—ତୁଳସୀ (ରାଜନିର୍ଘଣ୍ଟ)—
Sura balli The Holy Basil plant.

ସୁର ବସ୍ତ୍ର—ସ.ବ—ବଲ୍କଲନିର୍ମିତ ବସ୍ତ୍ର—Cloth made of bark;
Sura bastra bark used as cloth.

ସୁର ବାରି—ସଂ ବ—ଗଙ୍ଗା—The Ganges. (ଏ -ଭୂତ ଅମୃତ
Sura bāri ଧୌତ ହେଉ, ଯେଉଁ ସୁରଭି ସୁର ବାରି —ଜଗନ୍ନାଥ
ଭାଗବତ।]

ସୁର ବୀଥୀ—ସ. ବ—ନକ୍ଷତ୍ରମାର୍ଗ (ହୁ. ଶ)—
Surabīthi The milky way.

ସୁର ବାଳା—ସ ବ—୧ । ଦେବବାଳା; ଦେବ ସ୍ତ୍ରୀ—1. Goddess;
Sura bālā wife of one of the gods.
(ସୁରବାଳୀ—ଦେ. ରୂପ) ୨ । ଅପ୍ସରା—2. Heavenly
सुरबाला सुरबाला nymph. ଦେ. ବ—
ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—A name given to
females.

ସୁର ବୀର—ବଂ.ବଣ (ଏକତର ଶବ୍ଦ) (ସଂ ଶୂର=ବୀର)—୧। ବଳୁଆ-
Sura bīra 1. Strong. ୨ । ସାହସୀ—2. Brave.
सुरबीर सुरबीर ୩। ଯେ ନିଜର ବଳ ଦେଖାଏ—
3. Displaying one's prowess. ସ. ବ—
(୭ମୀ ତତ୍) ଇନ୍ଦ୍ର (ହୁ. ଶ)—Indra.

ସୁରବୀର ହେବା—ଦେ. କ୍ରି—୧ । ନିଜର ବଳ ଦେଖାଇ ହେବା—
Surabīra hebā 1. To display one's prowess.
सुरबीर हओया सुरबीर होना ୨ । ନିଜର ବଳ୍ପ ଅପରିମିତ
ଅସ୍ଫାଳନ କରିବା—2. To boast of one's
prowess.

ସୁରବୁଲି—ଦେ. ବ—ସୁରୁବୁଲି (ଦେଖ)
Surabuli Surubuli (See)

ସୁର ବୃକ୍ଷ—ସ. ବ—କଳ୍ପତରୁ (ହୁ. ଶ)—
Sura bruksha The mythological tree of plenty.

ସୁର ବେଶ୍ମ—ସଂ. ବ (ସୁରବେଶ୍ମନ୍; ୧ମା. ୧ବ)—ସ୍ୱର୍ଗ (ହୁ ଶ) –
Sura beśma Heaven.

ସୁର ବୈରୀ ରିପୁ—ସ.ବ (୬ଷ୍ଠୀ ତତ୍)—ଅସୁର—
Sura bair (ripu) Demon.

ସୁରଭି—ସଂ. ବ (ସୁ+ରଭ୍. ଧାତୁ+କ୍ତି. ଇ)—୧ । ସୌରଭ;
Surabhi ସୁଗନ୍ଧ (ଅମର)—1. Sweet scent. ୨ । ଚମ୍ପକ
(ମେଦିନୀ)—2. The Champaka tree. ୩ ।
ବସନ୍ତ ଋତୁ (ମେଦିନୀ)—3. The spring season.
୪ । ଜାଇଫଳ ବୃକ୍ଷ (ମେଦିନୀ)—4. The nut-meg
tree. ୫ । ଶମୀ ବୃକ୍ଷ (ରାଜନିର୍ଘଣ୍ଟ)—5. The
spung tree; Prosopis Spicigera. ୬ । କଦମ୍ବ
ବୃକ୍ଷ (ରାଜନିର୍ଘଣ୍ଟ)—6. Neuclea Kadamba.
୭ । ଶଲ୍ଲକୀ ଗୁଗ୍ଗୁଲ (ରାଜନିର୍ଘଣ୍ଟ)—7. A kind of
bdellium. ୮ । ଗନ୍ଧ ତୃଣ (ରାଜନିର୍ଘଣ୍ଟ)—
8. Lemon-scented grass. ୯ । ବକୁଳ ବୃକ୍ଷ
(ରାଜନିର୍ଘଣ୍ଟ)—9. Bakula tree. ୧୦ । ଝୁଣା; ଧୂଳ
(ରାଜନିର୍ଘଣ୍ଟ)—10. Resin. ୧୧ ଚୈତ୍ର ମାସ (ଧରଣୀ)
—11. The month of Chaitra. ୧୨ । ଧୀର;
ପଣ୍ଡିତ (ଧରଣୀ)—12. A learned man. ୧୩ ।
ଗନ୍ଧ ଫଳ (ଶବ୍ଦ ରତ୍ନାବଳୀ) (ଦେଖ)—13. Gandha
phala (See) ୧୪ । ବର୍ବର ଚନ୍ଦନ (ବୈଦ୍ୟକ)—
14. A species of sandal. ୧୫ । ମୁରା; ମୁରାମାଂସୀ
(ମେଦିନୀ)—15. Murraya Grofica (Scented
herb). ୧୬ । ଲଘୁ ବନତୁଳସୀ (ଭାବପ୍ରକାଶ ଦ୍ରବ୍ୟଗୁଣ)—
16. A sort of wild sweet Basil plant
Ocimum Gratissimum. ୧୭ । ଶଲ୍ଲକୀ (ମେଦିନୀ);
ଲୋବାନ—17. Olibanum. ୧୮ । ବନମଲ୍ଲିକା
(ରାଜନିର୍ଘଣ୍ଟ)—18. Wild jasmine. ୧୯ ।
ତୁଳସୀ (ରାଜନିର୍ଘଣ୍ଟ)—19. Holy Basil plant.
୨୦ । ପାଶୀ (ରାଜନିର୍ଘଣ୍ଟ); ଲତା ବିଶେଷ—
20. A kind of creeper. ୨୧ । ରକ୍ତ ଝଣ୍ଟା
(ରାଜନିର୍ଘଣ୍ଟ)—21. Cock'scomb; Celosia
Cristata. ୨୨ । ସ୍ୱର୍ଣ୍ଣ (ଶବ୍ଦରତ୍ନାବଳୀ)—
22. Gold. ୨୩ । ଗନ୍ଧକ (ଶବ୍ଦରତ୍ନାବଳୀ); ଗନ୍ଧକ—
23. Sulphur. ୨୪ । ପୃଥିବୀ; ଧରଣୀ—24. The
earth. ୨୫ । ଗୋରୁ (ଧରଣୀ)—25. The
cow. ୨୬ । ଗୋମାତା; ଗୋରୁମାନଙ୍କର ଅଧିଷ୍ଠାତ୍ରୀ—
26. The progenitress of the cow kind.
[ଦ୍ର—ସୁରଭି ଦକ୍ଷପ୍ରଜାପତିଙ୍କର ଏକ କନ୍ୟା । ମହର୍ଷି
କଶ୍ୟପଙ୍କ ସହିତ ଏହାଙ୍କର ବିବାହ ହୋଇଥିଲା ଏବଂ
ଏହାଙ୍କ ଗର୍ଭରୁ ପୃଥିବୀର ଯାବତୀୟ ଚତୁଷ୍ପଦ ଜନ୍ତୁ
ଜନ୍ମିଥିଲେ । ଏ ପାତାଳରେ ବରୁଣାଳୟରେ ବାସ
କରୁଥିଲେ । ଏହାଙ୍କ ସ୍ତନରୁ ସର୍ବଦା କ୍ଷୀରଧାରା ବହୁଥିଲା;
ଏହି କ୍ଷୀରଧାରାକୁ କ୍ଷୀରୋଦସାଗର ନାମକ ସରୋବରର
ଉତ୍ପତ୍ତି । ଏହି କ୍ଷୀରୋଦସାଗରରୁ ଚନ୍ଦ୍ର, ଲକ୍ଷ୍ମୀ, ଅମୃତ ଓ
ପିତୃଗଣଙ୍କ ସୁଧା ଜନ୍ମ ହୋଇଥିଲେ । ଏହାଙ୍କୁ ପୂଜା କଲେ
ପୂଜକ ସର୍ବକାମପ୍ରାପ୍ତ ହୁଅନ୍ତି । ଏହାଙ୍କ କନ୍ୟା ଓ ବର୍ଣ୍ଣିସୁ
ଋଷିଙ୍କ ହୋମଧେନୁ ନନ୍ଦିନୀଙ୍କୁ ବଶିଷ୍ଠ ଓ ସୁରଭି ପୂଜା
କରି ରଘୁଙ୍କ ପୁତ୍ରରୂପେ ପ୍ରାପ୍ତ ହୋଇଥିଲେ ।
ବ୍ରହ୍ମବୈବର୍ତ୍ତ ପୁରାଣ ପ୍ରକୃତିଖଣ୍ଡରେ ୪୭ ଅଧ୍ୟାୟରେ
ଗୋବର୍ଦ୍ଧନ-ଭଗବାନ ସମ୍ବନ୍ଧରେ ଲେଖା ଅଛି ଯେ ଶ୍ରୀକୃଷ୍ଣ
ଏକଦିନ ଗୋପାଙ୍ଗନାମାନଙ୍କ ସହ ବନରେ ସଙ୍ଗିନୀମାନଙ୍କ
ସଙ୍ଗେ କ୍ରୀଡା କରୁଥିଲେ । ସେତେବେଳେ ତାଙ୍କର କ୍ଷୀରପାନ

-ପର -ଇଚ୍ଛା ହେଲା ଏବଂ ତତ୍କ୍ଷଣାତ୍ ସ୍ୱଧାନାଥଙ୍କ ବାମପାର୍ଶ୍ୱରୁ ସବତ୍ସା ସୁରଭି ଧେନୁଙ୍କର ଅବିର୍ଭାବ ହେଲା। ସୁଦାମ ନାମକ ଗୋପବାଳକ ରତ୍ନଭାଣ୍ଡରେ ଏହାଙ୍କଠାରୁ ଦୁଗ୍ଧ ଦୋହନ କଲେ ଓ ସ୍ୱଧାନାଥ ସେହି କବୁଷ୍ଣ ଦୁଗ୍ଧ ପାନକରି ତୃପ୍ତି ଲାଭ କଲେ। ଦୁଗ୍ଧ ଦୋହନ କାଳରେ ଦୁଧ ଭାଣ୍ଡରୁ ଛଳୁକି ପଡ଼ିଲା ଓ ତଦ୍ଦ୍ୱାରା ଗୋଲୋକରେ ଶତଯୋଜନ ବିସ୍ତୃତ କ୍ଷୀର ସରୋବର ଉତ୍ପନ୍ନ ହେଲା। ଏହା ରାଧିକା ଓ ଗୋପୀନାଥଙ୍କର କ୍ରୀଡ଼ା ସରୋବର। ପରେ ଭଗବାନଙ୍କ ଇଚ୍ଛାରେ ସୁରଭିଙ୍କ ଲୋମକୂପରୁ ଲକ୍ଷ କୋଟି କାମଧେନୁ ଉତ୍ପନ୍ନ ହେଲେ। ସାପାନ୍ବିତା ଅମାବାସ୍ୟାର ପର ଦିନ ଓ ମହାଲୟରେ କୋଜାଗରୀ ବା କୁମାର ପୂର୍ଣ୍ଣିମା ଦିନ ଗୋଅଧିକାରୀ ବ୍ୟକ୍ତିମାନେ ସୁରଭିଙ୍କ ପୂଜା କରିବେ—ବିଶ୍ୱକୋଷ।]

୨୭। କାର୍ତ୍ତିକେୟଙ୍କ ମାତୃକା ବିଶେଷ—27. Name of a foster mother of Kārttikeya. ୨୮। ସୁରା; ମଦ—28. Wine. ୨୯। ସୁଗନ୍ଧ ଦ୍ରବ୍ୟ (ପ୍ରକୃତିବାଦ)—29. A scented article. ୩୦। ବୀର (ବିଶ୍ୱକୋଷ)—30. A hero. ୩୧। ବଳବାଜୁକ (ବିଶ୍ୱକୋଷ) ବିଷ—31. Wolfsbane. ୩୨। ମହାଭୂତ ବଚ (ବିଶ୍ୱକୋଷ) 32. A kind of achorus root. ୩୩। ଯଜ୍ଞ ଯୂପର ସ୍ଥାପନା ସମୟରେ ପ୍ରଜ୍ୱଳିତ ଅଗ୍ନି ( ହି. ଷ )—33. Name of the fire ignited on the occasion of setting a Jajña Jūpa.

ବିଣ—୧। ସୁଗନ୍ଧ ବିଶିଷ୍ଟ—1. Sweet-scented. ୨। ପ୍ରିୟ—2. Beloved. ୩। ବିଦ୍ୱାନ୍; ପଣ୍ଡିତ—3. Learned. ୪। ମନୋହର—4. Charming. ( ଦ୍ର—କଲିଦେଶୀ ସୁମନା ଏ ସୁମନା ସୁରଭି। କଲିଦେଶୀ ସୁମନା ସୁମନାଏ ସୁରଭି— ଉପ. ବୈଦେହୀଶବିଳାସ। ) ୫। ବିଖ୍ୟାତ—5. Famous. ୬। ଧାର୍ମିକ—6. Pious. ୭। ଉତ୍ତମ; ଶ୍ରେଷ୍ଠ ( ହି. ଷ )—7. Good; excellent. ୮। ଗୁଣବାନ୍ (ହି. ଶ)—8. Endowed with good qualities.

ସୁରଭିକା—ସଂ. ବି ( ସୁରଭି+କ+ଆ )—ସ୍ୱର୍ଣ୍ଣ କଦଳୀ; ଚମ୍ପା କଦଳୀ
Surabhikā ( ରାଜନିର୍ଘଣ୍ଟ )—A species of scented banana.

ସୁରଭିକାନ୍ତା—ସଂ. ବି—ବାସନ୍ତୀ ପୁଷ୍ପ ବୃକ୍ଷ; କଅଁଳ ( ହି, ଶ )—
Surabhikāntā Jasminum Arborescens.

ସୁରଭି ଗନ୍ଧ—ସଂ. ବିଣ ( ବହୁବ୍ରୀହି )—ସୁବାସବିଶିଷ୍ଟ—Fragrant,
Surabhi gandha ସଂ. ବି—ତେଜପତ୍ର ( ହି. ଶ )—
Cassia leaf.

ସୁରଭିଗନ୍ଧା—ସଂ. ବି—ଜାଇଫୁଲ ( ହି. ଶ ) ( ହିନ୍ଦୀ ଚମେଲୀ )—
Surabhigandhā Catalonian jasmine. ସଂ. ବିଣ. ସ୍ତ୍ରୀ—ସୁରଭିଗନ୍ଧର ସ୍ତ୍ରୀଲିଙ୍ଗ—Feminine of Surabhigandha.

ସୁରଭି ଗନ୍ଧି—ସଂ. ବିଣ—ମନୋହର ଗନ୍ଧଯୁକ୍ତ—
Surabhi gandhi Fragrant; sweet-scented.

ସୁରଭିଚ୍ଛଦ—ସଂ. ବି ( ବହୁବ୍ରୀହି )—କପିତ୍ଥ—
Surabhichchhada Wood apple.

ସୁରଭିତ—ସଂ. ଣ ( ସୁରଭି+ଇତ; ଅଥବା ସୁ+ରଭ ଧାତୁ=ଭୂଷ୍ଣୁ
Surabhita ହେବା+କର୍ମ କ୍ତ )—୧। ସୌରଭଯୁକ୍ତ; ସୁଗନ୍ଧ-
(ସୁରଭିତା—ସ୍ତ୍ରୀ) ବିଶିଷ୍ଟ—1. Scented; fragrant. ୨। ପ୍ରସିଦ୍ଧ; ଖ୍ୟାତ—2. Renowned; celebrated.

ସୁରଭି ତନୟ(ପୁତ୍ର)—ସଂ, ବି. ପୁଂ—ଅଣ୍ଡିରା ଗୋରୁ; ଷଣ୍ଢ—
Surabhi tanaya(putra) Bullock; bull.
( ସୁରଭି ତନୟା, ସୁରଭି ପୁତ୍ରୀ—ସ୍ତ୍ରୀ )

ସୁରଭିତା—ସଂ. ବିଣ. ସ୍ତ୍ରୀ ( ସୁରଭିତ+ଆ )—ସୁରଭିତର ସ୍ତ୍ରୀଲିଙ୍ଗ—
Surabhitā Feminine of Surabhita. ବି ( ସୁରଭି +ଭାବ. ତା )—ସୌରଭ; ସୁଗନ୍ଧ—
Scent; fragrance.

ସୁରଭି ତ୍ୱକ୍—ସଂ. ବି ( ସୁରଭି+ତ୍ୱଚ୍; କର୍ମ. ଧ )—ଗୁଡ଼ତ୍ୱକ୍;
Surabhi twak ବଡ଼ ଅଳାଇଚ—Cardamum.

ସୁରଭି ତ୍ରିଫଳା—ସଂ. ବି—ସୁଗନ୍ଧ ତ୍ରିଫଳା ( ରାଜନିର୍ଘଣ୍ଟ )—
Surabhi triphalā Aggregate of 3 scented fruits.

ସୁରଭି ଦାରୁ(ଦାରୁକ)—ସଂ. ବି—ସରଳ ବୃକ୍ଷ; ଦେବଦାରୁ ( ରାଜ-
Surabhi dāru(dāruka) ନିର୍ଘଣ୍ଟ )—The pine tree; Pinus Longifolia.

ସୁରଭି ନିମ୍ବୁ—ସଂ. ବି ( ବୈଦ୍ୟକ )—ସୁଗନ୍ଧ ନେମ୍ବୁବିଶେଷ—
Surabhi nimbu A sort of fragrant lemon.
ବବସ୍ବଙ୍ଗ। [ ଦ୍ର—ଏହା ଅମ୍ଳମଧୁର, ତୃଷ୍ଣାର୍ତ୍ତି,
हरिकेटनिम ରୁଚିକର, ମୁଖର ଦୁର୍ଗନ୍ଧ ନାଶକ, ଚପ-
ମ. ଜାହନମ୍ବୁ ପିତ୍ତ ବର୍ଦ୍ଧକ ଓ ବାୟୁନାଶକ। ]
ତେ. ଜନବେପଚେଟ୍ଟୁ ତା. କଲବେମ୍ବୁ

ସୁରଭିପତ୍ରା—ସଂ. ବି ( ବହୁବ୍ରୀହି )—୧। ଜମ୍ବୁ ବୃକ୍ଷ ( ରାଜନିର୍ଘଣ୍ଟ )—
Sruabhipatrā 1. The black berry tree. ୨। ମହାଜମ୍ବୁ; ରାଜଜମ୍ବୁ; ଗୋଲାପଜାମୁ ( ବୈଦ୍ୟକ )—
2. Rose-berry.

ସୁରଭି ବର—ଦେ. ବି—୧। ବୃଷଭ—1. Bull. ୨। ଜାଇଫଳ
Surabhi bara ବୃକ୍ଷ—2. The nutmeg tree. [ ଦ୍ର—
सुरभिवर सुरभिवर ଭଣି ସୁରଭିବରେ ସେ ଅଛି ଶୀଘ୍ର ହୋଇ।
ଉପ. ବୈଦେହୀଶ ବିଳାସ।]

ସୁରଭି ବଲ୍କଳ—ସଂ. ବି ( ବହୁବ୍ରୀହି )—ଗୁଡ଼ତ୍ୱକ୍; ଡାଳଚିନି (ଶବ୍ଦ
Surabhi balkala ଚନ୍ଦ୍ରିକା)—Cinnamon.

ସୁରଭି ବାଣ—ସଂ. ବି (ବହୁବ୍ରୀହି)—କାମଦେବ (ଶବ୍ଦ କଳ୍ପଦ୍ରୁମ)—
Surabhi bāṇa. Cupid.

ସୁରଭି ମଞ୍ଜରୀ—ସଂ. ବି (ବହୁବ୍ରୀହି)—ଶ୍ୱେତ ତୁଳସୀ (ହି. ଶ)—
Surabhi mañjari The white-flowered variety of Holy Basil plant.

ସୁରଭି ମାସ—ସଂ. ବି—ଚୈତ୍ର ମାସ—
Surabhi māsa The month of Chaitra.

ସୁରଭି ମୁଖ—ସଂ. ବି (୬ଷ୍ଠୀ ତତ୍)—ବସନ୍ତଋତୁର ଆରମ୍ଭ—
Surabhi mukha The beginning of the spring Season.

ସୁରଭି ସମୟ—ସଂ. ବି—ବସନ୍ତ କାଳ—
Surabhi samaya The spring season.

ସୁରଭିସୁବା—ସଂ. ବି—ଶଲ୍ଲକୀ; ଲୋବାନ୍—
Surabhisubā Olibanum.

ସୁରଭୀ—ସଂ. ବି (ସୁରଭି+ଈ)—୧ । ସୁଗନ୍ଧ; ସୌରଭ (ଦ୍ର. ଶ)—
Surabhī 1. Fragrance; sweet scent. ୨ । ଗାଈ (ଦ୍ର. ଶ)—2. Cow. ୩ । କପିକଚ୍ଛୁ (ଦ୍ର. ଶ)—3. Cow-hage. ୪ । ବନତୁଳସୀ (ଦ୍ର. ଶ)—4. The wild Basil plant. ୫ । ରୁଦ୍ରଜଟା (ଦ୍ର. ଶ) (ଦେଖ)—5. Rudrajaṭā (See). ୬ । ବଚ-ନାଗ (ଦ୍ର. ଶ)—6. Wolfsbane. ୭ । ମାଠଆ ଶାଗ (ଦ୍ର. ଶ)—7. A kind of potherb. ୮ । ସୁଗନ୍ଧିତ ଶାଳିଧାନ୍ୟ; ବାସବନ୍ତ ଧାନ (ଦ୍ର. ଶ)—8. Scented winter rice. ୯ । ମୁରମାଂସୀ (ଦ୍ର. ଶ)—9. Murraya Grofica. ୧୦ । ରାସ୍ନା (ଦ୍ର. ଶ)—10 Vanda Roxburghii. ୧୧ । ଚନ୍ଦନ—11. Sandal. ୧୨ । ଶଲ୍ଲକୀ; ଲୋବାନ—12. Olibanum. ୧୩ । ଗୋମାତା; ଗୋଜାତିର ଆଦିମାତା—13. Name of the original mother of the cow kind. [ ଦ୍ର—ସୁରଭି ଶବ୍ଦ କୋଡ଼ି ଦେଖ । ]

ସୁରଭୀରସା—ସଂ. ବି—ଶଲ୍ଲକୀ ବୃକ୍ଷ ( ଯହିଁରୁ ଲୋବାନ )—The tree
Surabhīrasā from which olibanum is got.

ସୁର ଭୂମି—ସଂ. ବି (୬ଷ୍ଠୀ ତତ୍)—ଦେବଭୂମି; ସ୍ୱର୍ଗ—
Surabhūmi Heaven; the abode of the gods.

ସୁର ଭୂରୁହ—ସଂ. ବି—୧ । ଦେବଦାରୁ ଗଛ ( ଜୀବପ୍ରକାଶ )—
Sura bhūruha 1. The pine. ୨ । କଳ୍ପତରୁ (ଦ୍ର ଶ)—2. The heavenly tree of plenty.

ସୁର ଭୂଷଣ—ସଂ. ବି—ଦେବ ପ୍ରତିମାଙ୍କ ପାଇଁ ୪ ହାତ ଲମ୍ବ ଓ ୧୦୦୮
Sura bhūshaṇa ଦାନା ଥିବା ମୋତି ହାର (ଦ୍ର. ଶ)—A pearl necklace for idols, 4 cubits long and contaning 1008 pearls.

ସୁର ଭୋଗ—ସଂ. ବି (୬ଷ୍ଠୀ ତତ୍)—ଅମୃତ (ଦ୍ର. ଶ)—
Sura bhoga Nectar.

ସୁର ଭୋଗ୍ୟ—ସଂ. ବିଣ—ଦେବ ଭୋଗ୍ୟ; ଦେବତାଙ୍କ ଭୋଗ ପାଇଁ
Sura bhogya ଉପଯୁକ୍ତ—Fit for being enjoyed by the gods.

ସୁରମ—ସଂ. ବିଣ (ସୁ+ରମ୍ ଧାତୁ+କର୍ତ୍ତୃ. ଅ)—ଅତି ରମଣୀୟ—
Surama Very charming.

( ସୁରମଣ, ସୁରମଣୀୟ—ଅନ୍ୟରୂପ ) ( ସୁରମା—ସ୍ତ୍ରୀ )

ସୁରମଇ କଲମ—ବୈଦେ. ବି (ଫା)—ସୁରମଚୁ (ଦେଖ)
Suramai kalama Suramachū (See)
সুরমই কলম सुरमाइ कलम

ସୁରମଚୁ—ବୈଦେ. ବି (ଫା)—ଆଖିରେ ସୁରମା ଲଗାଇବା ପାଇଁ ବ୍ୟବହୃତ
Suramachū କାଠି—A pick with which colly-
সুরমচু सुरमचू rium is applied to the eyes.

ସୁରମା—ବୈଦେ. ବି (ଫା. ସୁର୍ମହ୍)—ସୁରୁମା (ଦେଖ)—
Suramā Surumā (See) ସଂ. ବିଣ. ସ୍ତ୍ରୀ—ସୁରମର ସ୍ତ୍ରୀଲିଙ୍ଗ—Feminine of Surama.

ସୁର ମଣ୍ଡଳ—ସଂ. ବି (୬ଷ୍ଠୀ ତତ୍)—୧ । ଦେବତାମାନଙ୍କର
Sura maṇḍala ମଣ୍ଡଳ—1. A circle formed by the gods. ୨ । ସୁର ଖଣ୍ଡନିକା (ଦେଖ) 2. Sura khaṇḍanikā (See)

ସୁର ମନ୍ତ୍ରୀ—ସଂ. ବି (୬ଷ୍ଠୀ ତତ୍)—ବୃହସ୍ପତି—
Sura mantrī Bṛuhaspati.

ସୁର ମନ୍ଦିର—ସଂ. ବି (୬ଷ୍ଠୀ ତତ୍)—ଦେବମନ୍ଦିର—
Sura mandira Temple.

ସୁରମା ଦାନ(ନୀ)—ବୈଦେ. ବି (ଫା. ସୁର୍ମହ୍ଦାନ୍) (ବଣିଅଗ୍ରନ୍ଥ)—
Suramā dān(nī) ଆଖିରେ ଲଗାଇବା ସୁରମାକୁ ରଖିବା ପାଇଁ
সুরমাদান ବ୍ୟବହୃତ ରୂପାର ପାତ୍ରବିଶେଷ—A silver recep-
सुरमादानी tacle for keeping the soothing powder for the eye.

ସୁରମାନୀ—ସଂ. ବିଣ, ପୁଂ (ସୁର+ମନ ଧାତୁ+କର୍ତ୍ତୃ. ଇନ୍; ସୁରମାନିନ୍;
Suramānī ୧ମା. ୧ବ.)—ଯେ ଆପଣାକୁ ଦେବତା ଜ୍ଞାନ
( ସୁରମାନିନୀ—ସ୍ତ୍ରୀ ) କରେ (ଦ୍ର. ଶ)—Imagining oneself to be a god.

ସୁର ମୃତ୍ତିକା—ସଂ. ବି—ସୌରାଷ୍ଟ୍ରୀ; ସୌରାଷ୍ଟ୍ର ମୃତ୍ତିକା; ଗୋପୀଚନ୍ଦନ—
Sura mṛutikā A sort of fragrant earth or clay with which marks are put on the forehead.

ସୁର ମେଦା—ସଂ. ବି—ମହାମେଦା ( ରାଜନିର୍ଘଣ୍ଟ ) (ଦେଖ)
Sura medā Mahāmedā (See)

ସୁରମ୍ୟ—ସଂ. ବିଣ (ସୁ+ରମ୍ୟ)—ଅତି ରମଣୀୟ—
Suramya ( ସୁରମ୍ୟା—ସ୍ତ୍ରୀ ) Very charming.

ସୁର ଯାନ—ସଂ. ବି—ଦେବତାମାନଙ୍କ ବ୍ୟବହୃତ ରଥ—
Sura jāna A car used by the gods.

ସୁରଜା(ଯ୍ୟ)ଲା—ବୈଦେ. ବି (ବଙ୍ଗଳା)—ପଠାଣମାନଙ୍କ ଉପାଧିବିଶେଷ
Surajā(yā)lā ( [illegible] )—A title of Pathans. [ ଦ୍ର—[illegible] [illegible] ]

ସୁର ଯୁବତୀ(ଯୋଷିତ୍)—ସଂ. ବି. ସ୍ତ୍ରୀ—ଅପ୍ସରା—
Sura jubati(joshit) Heavenly nymph.

ସୁରରାୟ(ଏ)—ଦେ. ବି (ସଂ. ସୁରରାଜ)—ଇନ୍ଦ୍ର—
Surarāya(e) सुरराय सुरराय Indra.

ସୁରରାଜ(ଜ୍)—ସଂ. ବି (୬ଷ୍ଠୀ ତତ୍)—ଦେବରାଜ; ଇନ୍ଦ୍ର—
Surarāja(j) Indra. ଦେ. ବି. ପୁଂ—ପୁରୁଷଙ୍କ ନାମ—
सुरराज सुरराज A name given to males.

ସୁର ରିପୁ—ସଂ. ବି (୬ଷ୍ଠୀ ତତ୍)—ଅସୁର—
Sura ripu Demon.

ସୁରର୍ଷଭ—ସଂ. ବି (୭ମୀ ତତ୍; ସୁର+ଋଷଭ)—୧ । ଇନ୍ଦ୍ର—
Surarshabha 1. Indra. ୨ । ମହାଦେବ—2. Siba.

ସୁରର୍ଷି—ସଂ. ବି (ସୁର+ଋଷି)—ଦେବର୍ଷି—A class of sages.
Surarshi [ କ୍ର—ନାରଦ, ତୁମ୍ବୁରୁ, କୋଲାହଳ ଆଦ—ଅମର. ଭରତ । ] [ ଦ୍ର—ଋଷିମାନଙ୍କର ଉଚ୍ଚ ଉଚ୍ଚ ଶ୍ରେଣୀ ବର୍ଣ୍ଣନା କରାଯାଇଅଛି । ଯଥା—ବ୍ରହ୍ମର୍ଷି, ଦେବର୍ଷି, ରାଜର୍ଷି, ମହର୍ଷି, ପରମର୍ଷି, କାଣ୍ଡର୍ଷି, ଶ୍ରୁତର୍ଷି । ]

ସୁର ଲକ୍ଷ୍ମୀ—ସଂ. ବି (୬ଷ୍ଠୀ ତତ୍)—ସୁରଶ୍ରୀ (ଦେଖ)—
Sura lakshmi Surasri (See)

ସୁର ଲତା—ସଂ. ବି—ମହା ଜ୍ୟୋତିଷ୍ମତୀ (ରାଜ ନିଘଣ୍ଟୁ) (ଦେଖ)
Sura latā Mahā jyotishmati (See)

ସୁରଳା—ସଂ. ବି (ସୁର+ଲା ଧାତୁ=ଦାନ କରିବା+କର୍ତ୍ତୃ. ଅ+
Suralā ଆ)—୧ । ଗଙ୍ଗା ନଦୀ (ହାରାବଳୀ)—1. The Ganges. ୨ । ନଦୀ ବିଶେଷ (ଶବ୍ଦ ଚନ୍ଦ୍ରିକା)—2. Name of a river.

ସୁର ଲାସିକା—ସଂ. ବି (୬ଷ୍ଠୀ ତତ୍)—୧ । ବଂଶୀ ଧ୍ୱନି—1. The
Sura lāsikā sound of the flute. ୨ । (ବହୁବ୍ରୀହି) ବଂଶୀ (ହି. ଶ)—2. Flute.

ସୁର ଲୋକ—ସଂ. ବି (ମ. ପ. ଲୋ; ସୁରମାନଙ୍କ ଅଧିଷ୍ଠିତ ଲୋକ)—
Sura loka ଦେବ ଲୋକ; ସ୍ୱର୍ଗ—The heaven.

ସୁର ଶତ୍ରୁ—ସଂ. ବି (୬ଷ୍ଠୀ ତତ୍)—ଅସୁର—
Sura satru Demon.

ସୁର ଶୟନୀ—ସଂ. ବି—ଆଷାଢ଼ ଶୁକ୍ଳ ଏକାଦଶୀ; ବିଷ୍ଣୁଙ୍କ ଶୟନ
Sura sayani ଏକାଦଶୀ (ହି. ଶ)—The eleventh day of the bright lunar fortnight of Ashārdha (when Bishnu goes to sleep).

ସୁର ଶାଖୀ—ସଂ. ବି—ସୁର ତରୁ (ଦେଖ)
Surs sākhi Sura taru (See)

ସୁର ଶିଖ—ଦେ. ବି—ଇନ୍ଦ୍ର—Indra. [ ଉ—ଉଦଅନ୍ତେ ତାଙ୍କୁ
Sura sikha ପୁଚ୍ଛିଲେ ସୁରଶିଖ, ଅସିଲଟି କି ତୁମ୍ଭେ ବାଟେ ଲଭ ସୁଖ । କୃଷ୍ଣସିଂହ, ମହାଭାରତ, ବନ । ]

ସୁର ଶିଳ୍ପୀ—ସଂ. ବି—ବିଶ୍ୱକର୍ମା—
Sura silpi The Divine Architect.

ସୁର ଶୈବଳିନୀ—ସଂ. ବି—ସୁର ଧୁନୀ; ଗଙ୍ଗା—
Sura saibalini The Ganges.

ସୁରଶ୍ରୀ—ସଂ. ବି (୬ଷ୍ଠୀ ତତ୍)—ଦେବତାମାନଙ୍କର ଶ୍ରୀ ବା
Sura sri ସୌନ୍ଦର୍ଯ୍ୟ—The prosperity or effulgence of the gods.

ସୁର ଶ୍ରେଷ୍ଠ—ସଂ. ବି (୭ମୀ ତତ୍; ସୁରମାନଙ୍କ ମଧ୍ୟରେ ଶ୍ରେଷ୍ଠ)—
Sura sreshtha ୧ । ସୁରଜ୍ୟେଷ୍ଠ; ବ୍ରହ୍ମା—1. God 'Brahmā'. ୨ । ବିଷ୍ଣୁ (ହି. ଶ)—2. Bishnu. ୩ । ଶିବ 3. Siba. ୪ । ଗଣେଶ (ହି. ଶ)—4. Ganesa. ୫ । ଇନ୍ଦ୍ର (ହି, ଶ)—5. Indra.

ସୁରଶ୍ରେଷ୍ଠା—ସଂ. ବି. ସ୍ତ୍ରୀ (ସୁରଶ୍ରେଷ୍ଠ+ଆ)—ବ୍ରାହ୍ମୀ (ରାଜନିର୍ଘଣ୍ଟ)
Surasreshthā (ଦେଖ)—Brāhmi (See)

ସୁରଷ—ପ୍ରାଦେ (ଗଞ୍ଜାମ) ବି—ସୋରଷ—
Surash Mustard seed.

ସୁରସ—ସଂ. ବିଣ (ବହୁବ୍ରୀହି; ସୁ ଅଛି ରସ=ସ୍ୱାଦ ଯାହାର)—
Surasa ୧ । ସ୍ୱାଦୁ; ମଧୁର; ମିଷ୍ଟ—1. Sweet. ୨ । (ସୁରସା—ସ୍ତ୍ରୀ) (କାବ୍ୟ) ରସଯୁକ୍ତ—2. Full of noble sentiments. ୩ । ରସମୟ—3. Juicy. ୪ । ସୁନ୍ଦର; ମନୋହର (ହି ଶ)—4. Beautiful. ବି—୧ । ବୋଳ (ରାଜନିର୍ଘଣ୍ଟ); ଗନ୍ଧବୋଳ—1. Myrrh, gum myrrh. ୨ । ତ୍ୱଚ (ରାଜନିର୍ଘଣ୍ଟ); ଗୁଡ଼ତ୍ୱକ୍; ଡାଲଚିନି—2. Cinnamon. ୩ । ଗନ୍ଧ ତୃଣ (ରାଜନିର୍ଘଣ୍ଟ)—3. A species of scented grass. ୪ । ବଲ୍କଲ; ଗଛର ଛାଲ (ହାରାବଳୀ)—4. Bark of trees. ୫ । ତୁଳସୀ (ମେଦିନୀ)—5. The holy Basil. ୬ । ଶ୍ୱେତପୁଷ୍ପ ତୁଳସୀବିଶେଷ (ବୈଦ୍ୟକ)—6. A white-flowered Basil plant. [ ଗୁ—ଏହାର ନାମାନ୍ତର ସର୍ବୀର । ଏହା କଟୁତିକ୍ତ, ରୁଚିକାରି, ଅଗ୍ନିବର୍ଦ୍ଧକ, ରୁଚିକର, ବାତଶ୍ଳେଷ୍ମାନାଶକ, ପିତ୍ତବର୍ଦ୍ଧକ, ଶ୍ୱାସ, କାଶ, ପାର୍ଶ୍ୱଶୂଳ, ଜ୍ୱର, ବିଷଦୋଷ ଓ ଶାଦ ଦୌର୍ଗନ୍ଧର ଶାନ୍ତିକାରକ । ] ୭ । ସିନ୍ଧୁବାର (ଶବ୍ଦରତ୍ନାବଳୀ); ବେଗୁନିଆ—7. Vitex Trifolia. ୮ । ମୋଚରସ (ରାଜନିର୍ଘଣ୍ଟ); ଶିମିଳି ଅଠା—8. The gum Bombax Malabarica. ୯ । ତେଜପତ୍ର (ହି. ଶ)—9. Cassia leaf. ୧୦ । ପୀତଶାଳ (ହି. ଶ) (ଦେଖ)—10. Pitasāla

सुरस (See) ଦେ. ବି—୧ । ଅମୃତ—1. Nectar.
सुरस ୨ । ପ୍ରୀତି; ଶୃଙ୍ଗାରରସ—2. Cohabitation. (ଉ—ସ୍ୱର୍ଗ ସୁରସ ଭୋଗକୁ ଚନ୍ଦ୍ରମା ପୂର୍ଣ୍ଣି । ଭାବେ, ଭାବେ ଯଥା ତଥା ନୃପନନ୍ଦନ—ଭଞ୍ଜ. ପ୍ରେମସୁଧାନିଧି । ]

ସୁର ସଖା—ସଂ. ବି—ଇନ୍ଦ୍ର (ହି. ଶ)—
Sura sakha Indra.

ସୁର ସଦ୍ମ(ସଦନ)—ସଂ. ବି (୬ଷ୍ଠୀ ତତ୍; ସୁର+ସଦ୍ମନ୍; ଦେଖ ୧୦)—ସ୍ୱର୍ଗ—The heaven.
Sura sadma(sadana)

ସୁର ସମିଧ—ସଂ. ବି—ଦେବଦାରୁ ( ବୃ ଶ )—
Sura samidh Pinus Longifolius.

ସୁର ସରଣୀ—ସଂ. ବି ( ୬ଷ୍ଠୀ ତତ୍ )—ଆକାଶ; ଗଗନ—
Sura sarani The sky.

ସୁର ସରିତ୍—ସଂ. ବି ( ୬ଷ୍ଠୀ ତତ୍ )—ଗଙ୍ଗା ( ଜଟାଧର )—
Sura sarit The Ganges.
[ ସୁରସରିତ—ଦେ. ରୂପ ] [ ଉ—ପାଶେ ଥିଲେ ସୁରସରିତ । ବଲଇ କି ତହିଁ ଗୃହକ ଚିତ୍ତ—ସଙ୍ଗୀତ ।]

ସୁର ସର୍ଷପକ—ସଂ. ବି—ଦେବ ସର୍ଷପ ( ରାଜନିର୍ଘଣ୍ଟ )—
Sura sarshapaka A species of mustard seed.

ସୁରସା—ସଂ. ବିଣ, ସ୍ତ୍ରୀ (ବହୁବ୍ରୀହି; ସୁରସ+ଆ)—ସୁରସର ସ୍ତ୍ରୀଲିଙ୍ଗ—
Surasā Feminine of Surasa. ବି—୧ । ପର୍ଣ୍ଣାସ; ଶ୍ୱେତପୁଷ୍ପଯୁକ୍ତ ତୁଳସୀ [ ଶବ୍ଦରତ୍ନାବଳୀ ]—1. The white Basil; the white-flowered Basil plant. ୨ । ତୁଳସୀ [ ମେଦିନୀ ]—2. The holy Basil plant. ୩ । ମେଦିନୀ; ପୃଥିବୀ—3. The earth. ୪ । ଯୁଇ ଫୁଲ ଓ ଗୁଳ୍ମ—4. Jui (flower and plant). ୫ । ନାଗମାତା [ ମେଦିନୀ ]—5. Name of the mother of serpents.
ଦ୍ର—ଏ ସମୁଦ୍ରରେ ରହୁଥିଲେ; ହନୁମାନ୍ ସୀତାଙ୍କୁ ଠାବ କରିବାକୁ ସମୁଦ୍ରକୁ ଡେଇଁଲା ବେଳେ ଏ ଦେବ ଗନ୍ଧର୍ବଙ୍କ ଅନୁରୋଧରେ ରାକ୍ଷସୀ ରୂପ ଧାରଣ କରି କ୍ଷଣକାଳ ହନୁମାନଙ୍କ ବଳ ପରୀକ୍ଷା କରିବା ପାଇଁ ହନୁମାନଙ୍କୁ ବାଧା ଦେଇଥିଲେ । ହନୁମାନ୍ ଅତି କ୍ଷୁଦ୍ର ରୂପ ଧାରଣ କରି ଏହାଙ୍କ ପେଟରେ ପଶି ପୁଣି ବାହାରି ପଡ଼ିଲେ । ଏହା ଦେଖି ସୁରସା ପ୍ରୀତା ହେଲେ—ବାଲ୍ମୀକି ରାମାୟଣ ।]
୬ । ମିଶ୍ରେୟା ( ଶବ୍ଦଚନ୍ଦ୍ରିକା ); ପାନମହୁରି—6. Aniseed. ୭ । ଚନ୍ଦ୍ରିକା [ ରତ୍ନମାଳା ]; ଚନ୍ଦ୍ରଶୂର; ହାଲିମ—7. Common cress. ୮ । ବ୍ରାହ୍ମୀ [ ରତ୍ନମାଳା ]—8. A medicinal herb. ୯ । ଛନ୍ଦୋବିଶେଷ [ ହଳାୟୁଧ ]—9 Name of a Sanscrit metre. ୧୦ । ମହା ଶତାବରୀ [ ରାଜନିର୍ଘଣ୍ଟ ]; ଛତଉରିର ପ୍ରକାର ଭେଦ—10. Asparagus Racemosus. ୧୧ । ଦୁର୍ଗା [ ଶବ୍ଦ କଳ୍ପଦ୍ରୁମ ]—11. Goddess Durgā. ୧୨ । ଭଗବତ ପଞ୍ଚମ ସ୍କନ୍ଧୋକ୍ତ ନଦୀଭେଦ [ ଶବ୍ଦ କଳ୍ପଦ୍ରୁମ )—12. Name of a river. ୧୩ । ଲଣ୍ଡାବଗୁଲି ( ଦେଖ )—13. Landābaguli (See). ୧୪ । ରମ୍ଭା ( ହି. ଶ)—14. Randa Roxburghii. ୧୫ । ଅପ୍ସରାବିଶେଷ [ ହି. ଶ ]—15. Name of a heavenly nymph. ୧୬ । ଶ୍ୱେତ ତ୍ରିବୃତ୍ [ ହି. ଶ ]—16. The white variety of Tribrut. ୧୭ । ଶଲ୍ଲକୀ [ ହି. ଶ ]—17. Olibanum. ୧୮ । ନିର୍ଗୁଣ୍ଡୀ [ ହି. ଶ ] ( ଦେଖ )—18. Nirgundi (See). ୧୯ । ବୃହତୀ [ ହି ଶ ] ( ଦେଖ )—19. Bruhati (See). ୨୦ । କଣ୍ଟକାରୀ [ ହି. ଶ ] ( ଦେଖ )—20. Kantakāri (See). ୨୧ । ଅଙ୍କୁଶର ଅଗ୍ରରେ ଥିବା ସୂକ୍ଷ୍ମ ଅଂଶ [ ହି. ଶ ]—21. The sharp point at the end of a goad. ଦେ ବିଣ ସ୍ତ୍ରୀ— ରସିକା—( female ) Versed in sentimental aspects. [ ଉ—ନବ ସୁରସାରେ ରମା, ନବ ସୁରସାରେ । ତୁ ପରି ମୋ ଅଙ୍କ କଳା ନ ବସୁ ରସା ରେ—କବିସୂର୍ଯ୍ୟ. ସଙ୍ଗୀତ ।]

ସୁରସାଳ—ସଂ. ବିଣ—୧ । ଉତ୍ତମ ରସଯୁକ୍ତ—1. Very juicy;
Surasāla luscious. ୨ । ଅତି ମଧୁର ରସ ପୂର୍ଣ୍ଣ—2. Full of sweet juice.

ସୁରସାଷ୍ଟ—ସଂ.ବି (ସୁରସ+ଅଷ୍ଟ=ରସଯୁକ୍ତ ଆଠଗୋଟି ଦ୍ରବ୍ୟ) —ବୈଦ୍ୟ-
Surasāshta ଶାସ୍ତ୍ରୋକ୍ତ ବୃକ୍ଷମାନଙ୍କ ଗଣବିଶେଷ—A group of 8 trees, classified in the Hindu medical books. [ ଦ୍ର—ଏହି ୮ ଗୋଟିର ନାମ ଯଥା—ନିମ୍ବ ବାରଙ୍ଗୀ, ତୁଳସୀ, ବ୍ରାହ୍ମୀ, ବୃହତୀଦ୍ୱୟ, କଣ୍ଟକାରିକା, ସୁରକର୍ଣ୍ଣିକା । ]

ସୁରସିକ—ସଂ. ବିଣ. ପୁଂ —୧ । ଉତ୍ତମ ରସଜ୍ଞ—1. Well versed
Surasika in tender sentiments. ୨। ଉତ୍ତମ ରସଗ୍ରାହୀ (ସୁରସିକା—ସ୍ତ୍ରୀ) —2.Very capable of comprehending tender sentiments. ୩ । ମଧୁରାଳାପୀ—3. Sweet in conversation. ୪ । ଅତ୍ୟନ୍ତ ରସିକ—4. Very witty or gallant.

ସୁର ସିଂଙ୍ଗ(ଙ୍ଗି, ଙ୍ଘ, ଙ୍ଘି, ହ)—ଦେ. ବି (ସଂ. ଶୂର ଓ ସିଂହ)—ଗଡ଼ଜାତର
Sura simnga(ngi,ngha,nghi,ha) କରଣ ଓ ପାଇକମାନଙ୍କୁ ରାଜଦତ୍ତ ଉପାଧି ବିଶେଷ (ଗୋପୀନାଥ ନନ୍ଦ) —
A title given by Rajas to Karanas and Pāikas of the Oriya States.

ସୁର ସିନ୍ଧୁ—ସଂ. ବି—ସୁରଧୁନୀ; ଗଙ୍ଗା (ଶବ୍ଦ କଳ୍ପଦ୍ରୁମ)—
Sura sindhu The Ganges.

ସୁରସୀ—ଦେ. ବିଣ—ସୁରସିକ; ଉତ୍ତମ ରସଜ୍ଞ—Well-versed in
Surasi tender sentiments. [ ଉ—ତୋ ଗାତ୍ରେ ଲେପିବ ଅଟେ ସୁରସି । ରାଧାନାଥ. କବିତା ।]

ସୁର ସୁନ୍ଦର—ସଂ. ବିଣ. ପୁଂ—ଦେବତାଙ୍କ ପରି ଅତି ସୁନ୍ଦର—
Sura sundara Very beautiful.

ସୁର ସୁନ୍ଦରୀ—ସଂ. ବି. ସ୍ତ୍ରୀ ( ୬ଷ୍ଠୀ ତତ୍; ସୁରମାନଙ୍କର ସୁନ୍ଦରୀ=ନାରୀ)
Sura sundari —୧। ଦେବକନ୍ୟା; ଦେବୀ—1.A Goddess ୨ । ସ୍ୱର୍ବେଶ୍ୟା; ଅପ୍ସରା (ଶବ୍ଦ କଳ୍ପଦ୍ରୁମ) —2. The heavenly nymphs. ୩। ଦୁର୍ଗା (ଶବ୍ଦ କଳ୍ପଦ୍ରୁମ)—3. Goddess Durgā. ୪ । ( ତନ୍ତ୍ର ) ଯୋଗିନୀ ବିଶେଷ; ଶ୍ରୀ ସୁନ୍ଦରୀ (ଶବ୍ଦ କଳ୍ପଦ୍ରୁମ)—4. Name of a Jogini worshipped by the Tāntrikas.

୫ । ବିଦ୍ୟୁତ୍ (ଶବ୍ଦ କଳ୍ପଦ୍ରୁମ —5. Lightning.
୬ । ଏକପ୍ରକାର ମାଛ (ଶବ୍ଦ କଳ୍ପଦ୍ରୁମ — 6. A kind of fish.

**ସୁରା**—ସଂ. ବି (ସୁର. ଧାତୁ=ଶୋଭା ପାଇବା+କର୍ତ୍ତୃ. ଅ+ଆ; କିମ୍ବା. ସୁ. Surā ଧାତୁ=ପ୍ରସବ କରିବା+କର୍ତ୍ତୃ ର+ଆ) —୧ । ମଦିରା; ମଦ୍ୟ 1. Wine; distilled spirit. [ ଦ୍ର—ତରଳ ଦ୍ରବ୍ୟକୁ ପାତ୍ରରେ ସଢ଼ାଇବା ପରେ ଉକ୍ତଦ୍ରବ୍ୟ ଫେନଯୁକ୍ତ Fomented) ହୋଇଗଲେ ତାକୁ ଜାଳ ଉପରେ ବସାଇ ବକଯନ୍ତ୍ର ଦ୍ୱାରା ତହିଁରୁ ଯେଉଁ ଦ୍ରବ ଚୁଆଯାଏ ତାକୁ ସୁରା କହନ୍ତି ।

ଅନ୍ୟ ସଂ. ନାମ—ମଦ୍ୟ, ବାରୁଣୀ, ଇରା, ମଦ୍ୟାନନ୍ଦା, ହଲି, କାରଣ, ମାଣିକା, ଅମୃତା, ମାଧବୀ, ମଦ୍ୟ, ମଦନା, ମୋଦନା, ମଧୁ, କଲ୍ମଷ୍ୟ, ଦେବସୃଷ୍ଟା, କାମିନୀ, ପ୍ରିଶୀ । ସରାପ, ମଦ

ହି. ଦାରୁ, ସରାବ
ପା. ସରୱ
ଅ. ଖମର

ବୈଦ୍ୟଶାସ୍ତ୍ରରେ ସୁରାର ଉପାଦାନ ଓ ପ୍ରସ୍ତୁତ କରିବାର ପ୍ରକ୍ରିୟା-ଭେଦରେ ନାନା ପ୍ରକାର ନାମକରଣ ହୋଇଅଛି ।

ଯଥା—
ଗୌଡ଼ୀ—(ଗୁଡ଼ ଓ ଧାତକୀ ଫୁଲରୁ ଉତ୍ପନ୍ନ)
ପୈଷ୍ଟୀ—(ତଣ୍ଡୁଳ ଆଦି ଶସ୍ୟରୁ ଉତ୍ପନ୍ନ)
ମାଧ୍ୱୀ—(ମଧୁ ଓ ଅନ୍ୟ ପୁଷ୍ପ ରସରୁ ପ୍ରସ୍ତୁତ)
କାଦମ୍ବରୀ—(ନାନା ଉପାଦାନରୁ ପ୍ରସ୍ତୁତ)
ମାଦୁଙ୍ଗ—(କେଳିଲ ଫୁଲରୁ ପ୍ରସ୍ତୁତ)
ମୈରେୟୀ—(କେଳିମୂଳ, ବରକୋଳି ଓ ଶର୍କରାରୁ ପ୍ରସ୍ତୁତ)
ମାର୍ଦ୍ଦିକ—(ଦ୍ରାକ୍ଷା ଫଳରୁ ପ୍ରସ୍ତୁତ)

ମନୁସଂହିତାରେ ସୁରାକୁ ତିନି ଶ୍ରେଣୀରେ ବିଭକ୍ତ କରାଯାଇଅଛି । ଯଥା—
ଗୌଡ଼ୀ—ଗୁଡ଼ରୁ ଉତ୍ପନ୍ନ
ପୈଷ୍ଟୀ—ତଣ୍ଡୁଲାଦି ଶସ୍ୟରୁ ଉତ୍ପନ୍ନ
ମାଧ୍ୱୀ—ମଧୁ ଓ ଅନ୍ୟାନ୍ୟ ପୁଷ୍ପରସରୁ ଉତ୍ପନ୍ନ ।

ଏହା ମାଦକତା ଶକ୍ତିବିଶିଷ୍ଟ । ବ୍ରାହ୍ମଣମାନଙ୍କ ପକ୍ଷରେ ଏହାର ପାନ ନିଷିଦ୍ଧ । ସୁରାପାୟୀ ବ୍ରାହ୍ମଣ ପ୍ରାୟଶ୍ଚିତ୍ତାର୍ହ । ସୁରାପାନ ମହାପାପ । ସୁରାପାନ କଲେ ବିକଳତା, ବଚନ-ସ୍ଖଳନ, ଗତିସ୍ଖଳନ, ଲଜ୍ଜାହୀନତା, ମାନଚ୍ୟୁତି, ପ୍ରେମାଧିକ୍ୟ ଓ ଭ୍ରମ ଘଟେ । ବୈଦ୍ୟଶାସ୍ତ୍ର ଅନୁସାରେ ଏହା ଗୁରୁପାକ, ମଳରୋଧକ, ବଳକର, ସ୍ତନ୍ୟବର୍ଦ୍ଧକ, ପୁଷ୍ଟିକର, ମେଦୋକର, କଫଜନକ ଓ ଗୁଲ୍ମ, ଅର୍ଶ, ଶୋଥ, ମୂତ୍ରକୃଚ୍ଛ୍ର ଆଦି ବ୍ୟାଧିନାଶକ ।]

୨ । ମଦ୍ୟପାନ ପାତ୍ର—2. Wine-glass. ୩ । ସର୍ପିଣୀ—3. A female serpent. ୪ । ଜଳ (ହେ. ଚ)—4. Water. ୫ । ସର୍ପ (ହେ. ଚ)—5. Serpent. ବିଣ (ସୁ=ଶୋଭନ+ରା=ଧନ ଯାହାର ଅଛି)—ଧନବାନ୍; ଧନୀ—Rich. ଦେ. ବି— ୧ । (ସଂ. ସ୍ପୃହା ସ୍ପୃହା ସ୍ପୃହା) 1. Hankering after a thing. ୨ । ସୁରଙ୍ଗଡ଼ି ସୁରେଇବା ପାଇ ଡାକ —2. Name for calling Suresa and Suraja. ବୈଦେ. ବି (ଅ)—ମୁସଲମାନ ଧର୍ମଗ୍ରନ୍ଥ କୋରାନ୍‌ର ଶ୍ଳୋକ ବା ସ୍ତୋତ୍ର—A couplet or hymn of the Koarn.

ସ୍ପୃହା
ସ୍ପୃହା
ସୁବ
ସୁର
ସୁରା ସୁରା

**ସୁରାହି**—ବୈଦେ. ବି. ( ପା )—ସୋରେଇ; ଲମ୍ବ ମୁଖଯୁକ୍ତ ଗୋଲ ଜଳ ଭାଣ୍ଡ—A long-necked round water-jug. ସୁରହି (ଦେଖ) —Surāhi (See)
Surāi
ସୋବାଇ ସୁରାହୀ

**ସୁରା(ରେ)ଇବା**—ଦେ. କ୍ରି—(ସଂ. ସ୍ପୃହ ଧାତୁ)—୧ । ସୁଲୁଲୁ ହେବା—1. To be tickled. ୨ । (ସଂ. ସ୍ପୃହ ଧାତୁ; ଲାଳ ବା ରଣ)—ସ୍ପୃହାଯୁକ୍ତ ହେବା; ଲାଳାୟିତ ହେବା— (The mouth) To hanker after; to water after a thing.
Sura(re)iba
ଆକୁଳା, ଫରକନା
ଲାଲାୟିତ ହওয়া ଲାଲାୟିତ ହୋନା

**ସୁରାକ୍(ଖ)**—ବୈଦେ. —(କଚରୀ) (ପା ସୁରାକ୍=ଛିଦ୍ର; ତୁର୍କୀ= ସୁରାଗ୍=ସୂତ୍ର ବା ସନ୍ଧାନ)—୧ । ଅନୁସନ୍ଧାନ କରାଯାଉଥିବା କୌଣସି ବିଷୟର ସୂତ୍ର; ପତ୍ତା—1. Trace of anything which is being investigated; clue. ୨। ଅନୁସନ୍ଧାନ —2. Investigation. ୩ । ଇସାରା; ଅଭ୍ରୁ—3. A nod; a sign; hint; indication.
Surāk(kh)
ସুরাক্ সুরাख

**ସୁରାକ୍(ଖ)କରିବା**—ଦେ. କ୍ରି (କଚରୀ) କୌଣସି ବିଷୟର ଅନୁସନ୍ଧାନ କରିବା—To investigate into a matter.
Surāk(kh)karibā
सन्धानकरা सुराखकरना
[ସୁରାକ୍(ଖ) ନେବା—(ଅନ୍ୟରୂପ)

**ସୁରାକ୍(ଖ)ଦେବା**—ଦେ. କ୍ରି(କଚରୀ)—କୌଣସି ଗୁପ୍ତ ବିଷୟର ସନ୍ଧାନ ବା ସୂତ୍ର କହିଦେବା—To give the clue to a matter.
Surak(kh)debā
সুবাক্ দেওয়া सुरखदेना

**ସୁରାକ୍(ଖ) ପାଇବା**—ଦେ. କ୍ରି—(କଚରୀ)—କୌଣସି ବିଷୟର ସୂତ୍ର ପାଇବା—To get at or find out the clue of a matter.
Surāk(kh)pāibā
সুবাক্ পাওয়া सुराखपाना

**ସୁରାକ୍(ଖ) ସନ୍ଧାନ**—ଦେ.ବି—(କଚରୀ)—(ପା.ସୁରାଖ୍+ସଂ.ସନ୍ଧାନ, ଏକାର୍ଥକ ସମାସ) —କୌଣସି ବିଷୟର ସନ୍ଧାନ ବା ସୂତ୍ର—Clue to anything.
Surāk(kh) sandhāna
সুবাক্ সন্ধান सुराखसंधान

**ସୁରାକତ୍**—ବୈଦେ. ବି (ଅ. ସିରାକତ୍)—୧ । ସମ୍ପର୍କ—1. Connection. ୨ । ଯୋଗ; ସଂଯୋଗ—2. Conjunction; union.
Surākat
সুবাকৎ संपर्क, शराकत

**ସୁରାକର**—ସଂ. ବି (ସୁରା+କୃ. ଧାତୁ+ଅଧି. ଅ)—୧ । ମଦ୍ୟୋତ୍ପତ୍ତି-ସ୍ଥାନ; ଯେଉଁ ବସ୍ତୁରୁ ମଦ୍ୟ ପ୍ରସ୍ତୁତ ହୁଏ—1. An article or thing from which wine is got. ୨ । ନାରିକେଳ ବୃକ୍ଷ (ଶବ୍ଦ କଳ୍ପଦ୍ରୁମ)—2. Coconut tree. [ଦ୍ର—ମାନ୍ଦ୍ରାଜ ଅଞ୍ଚଳରେ ନଡ଼ିଆ ଗଛର ଅନୁସ୍ଫୁଟିତ ପୁଷ୍ପକୋଷର ଅଗଭାଗ କାଟିଲେ ତହିଁରୁ

ଯେଉଁ ରସ ଝରେ, ତାହା ଔଷଧରୂପ ବ୍ୟବହୃତ ହୁଏ। ରଘୁବଂଶରେ ମଧ୍ୟ ରଘୁଙ୍କ ଯୋଦ୍ଧାମାନେ ଦାକ୍ଷିଣାତ୍ୟରେ 'ନାରିକେଳାସବ' ପାନ କରୁଥିବା କଥାର ଉଲ୍ଲେଖ ଅଛି।]

ସୁରକି—ବିଦେ. ବିଣ (କଟକୀୟ) (ଫା॰ ସୁରଘୀ)—ଅନୁସନ୍ଧାନ ବିଷୟରେ ଦକ୍ଷ—Skilful in finding out a clue.
Surāki
সুবাকি, সন্ধানী सुराखी
(ସୁରକିଆ—ଅନ୍ୟରୂପ)

ସୁରାଗ—ସଂ. ବି—ସୁନ୍ଦର ରଙ୍ଗ—Beautiful colour.
Surāga

ସୁରାଗ ରଞ୍ଜିତ—ସଂ. ବିଣ—ସୁନ୍ଦର ବର୍ଣ୍ଣରେ ରଞ୍ଜିତ—Nicely painted or coloured.
Surāga rañjita

ସୁରାଗାର—ସଂ. ବି (ସୁର+ଅଗାର)—୧। ଦେବ ମନ୍ଦିର—1. Temple. ୨। (ସୁରା+ଅଗାର)—ସୁରାବିକ୍ରୟ ଶାଳା—2. Tavern.
Surāgāra

ସୁରାଗ୍ରହ—ସଂ. ବି (ସୁରା+ଗ୍ରହ ଧାତୁ+କର୍ତ୍ତୃ. ଅ)—ମଦ୍ୟ ପାତ୍ର—Wine cup.
Surāgraha

ସୁରାଙ୍ଗନା—ସଂ. ବି (୬ଷ୍ଠୀ ତତ୍)—୧। ଦେବାଙ୍ଗନା; ଅପ୍‌ସରା—1. The heavenly nymphs. ୨। ଦେବତାମାନଙ୍କ ସ୍ତ୍ରୀ—2. Wife of one of the gods.
Surāṅganā

ସୁରାଚାର୍ଯ୍ୟ—ସଂ. ବି (ସୁର+ଆଚାର୍ଯ୍ୟ; ୬ଷ୍ଠୀ ତତ୍)—ସୁରଗୁରୁ; ବୃହସ୍ପତି (ଅମର)—Bṛuhaspati, the preceptor of the gods; Jupiter.
Surāchārjya

ସୁରାଜକ—ସଂ. ବି—ଭୃଙ୍ଗରାଜ (ଶବ୍ଦମାଳା) (ଦେଖ) Bhṛuṅgarāja (See)
Surājaka

ସୁରାଜା—ସଂ. ବି (ସୁ+ରାଜନ୍)—ଉତ୍ତମ ରାଜା (ମୁଗ୍ଧବୋଧ)—A good king.
Surājā

ସୁରାଜି—ଦେ. ବି (ସଂ. ସୁ ଓ ଫା. ରାଜୀ)—ସ୍ୱେଚ୍ଛା; ନିଜର ସ୍ୱାଧୀନ ଇଚ୍ଛା—One's free will.
Surāji
स्वाजि स्वराजी

ସୁରାଜୀବ—ସଂ. ବି (ସୁରା+ଆଜୀବ=ଜୀବିକା ଯାହାର)—ଶୌଣ୍ଡିକ; ଶୁଣ୍ଡୀ—A wine trader; distiller.
Surājība

ସୁରାଜୀବୀ—ସଂ. ବି (ସୁରା+ଆଜୀବ୍ ଧାତୁ+କର୍ତ୍ତୃ. ଇନ୍)—ଶୌଣ୍ଡିକ; ଶୁଣ୍ଡୀ (ହେମଚନ୍ଦ୍ର)—A wine merchant; a distiller of wine.
Surājībī

ସୁରାଜ୍ୟ—ସଂ. ବି—୧। ଉତ୍ତମ ରାଜ୍ୟ—1. A good kingdom. ୨। ଯେଉଁ ରାଜ୍ୟରେ ପ୍ରଜାଙ୍କ ହିତ ପ୍ରତି ଦୃଷ୍ଟି ରଖାଯାଏ ଓ ଯେଉଁଠାରେ ସୁଖ ଓ ଶାନ୍ତି ବିରାଜି ଥାଏ (ପୂ. ଶ) 2. A kingdom governed for the benefit of the ruled and where happiness and peace reign. ଦେ. ବି—ସ୍ୱରାଜ୍ୟ (ଦେଖ) Swarājya (See
Surājya
स्वाज्य सुराज्य

ସୁରାଟ୍—ଦେ. ବି (ସଂ. ସୌରାଷ୍ଟ୍ର)—୧। ଭାରତର ପଶ୍ଚିମ ଉପକୂଳସ୍ଥ ଗୋଟିଏ ଜିଲ୍ଲା, ନଗର ଓ ବନ୍ଦର; ସୁରଟ—1. Name of a district, town and port in West India. [ଦ୍ର—ଏ ନଗର କମ୍ପେ, ପ୍ରତେଶଗୁଲ୍ଲ ଓ ଭାପ୍ତୀ ନଦୀର ମୁହାଣରେ ଅବସ୍ଥିତ। ଇଂରାଜ ଇଷ୍ଟ ଇଣ୍ଡିଆ କୋମ୍ପାନୀ ଏଠାରେ ପ୍ରଥମେ ବାଣିଜ୍ୟ କୋଠି ସ୍ଥାପନ କରିଥିଲେ।] ୨। (ସଂ. ସୁ ଓ ରାଷ୍ଟ୍ର)—ଉତ୍ତମ ରାଜ୍ୟ; ଉତ୍ତମ ଦେଶ—2. A good country or kingdom.
Surāṭ
সুরাট
सुराट
সুৱাজ
सुराज

ସୁରାଟୀ—ଦେ. ବିଣ—ସୁରଟ ଦେଶୀୟ—Of or pertaining to 'Surāt.' ବି—ସୁରଟମଲ୍ଲାର; ରାଗିଣୀ ବିଶେଷ—Name of a musical tune.
Surāṭi
সুৰাটী सुराटी

ସୁରାଦ୍ରି—ସଂ ବି (୬ଷ୍ଠୀ ତତ୍)—ସୁମେରୁ ପର୍ବତ—The mythological Sumeru mountain.
Surādri

ସୁରାଧାନୀ—ସଂ. ବି (ସୁରା+ଆଧାନୀ)—ସୁରା ରଖାଯିବାର ଛୋଟ କଳସ; ଝୁରି—A small wine-pitcher.
Surādhānī

ସୁରାଧିପ—ସଂ. ବି (୬ଷ୍ଠୀ ତତ୍)—ଇନ୍ଦ୍ର—Indra.
Surādhipa (ସୁରାଧୀଶ—ଅନ୍ୟରୂପ)

ସୁରାଧ୍ୟକ୍ଷ—ସଂ. ବି (୬ଷ୍ଠୀ ତତ୍; ସୁର+ଅଧ୍ୟକ୍ଷ)—୧। ବ୍ରହ୍ମା (ହେ-ଶ)—1. Brahmā. ୨। ଶିବ (ପୂ.ଶ)—2. Śiba. ୩। ଶ୍ରୀକୃଷ୍ଣ (ପୂ. ଶ)—3. Śrīkṛushṇa.
Surādhyaksha

ସୁରାଧ୍ୱଜ—ସଂ. ବି—ମଦ୍ୟପାନକାରୀ ବ୍ୟକ୍ତିର କପାଳରେ ପ୍ରାଚୀନ କାଳରେ ତାତିଲା ଲୁହାରେ ଦାଗ ଦିଆ ଯାଉଥିବା ମଦ୍ୟପାତ୍ରର ଚିହ୍ନ (ପୂ. ଶ)—The figure of a wine-cup marked on the brow of a wine drinker with red hot iron as a punishment.
Surādhwaja

ସୁରାନକ—ସଂ. ବି (୬ଷ୍ଠୀ ତତ୍; ସୁର+ଆନକ)—ଦେବତାମାନଙ୍କ ନାଗରା—Drum of the gods.
Surānaka

ସୁରାନୀକ—ସଂ. ବି (୬ଷ୍ଠୀ ତତ୍; ସୁର+ଅନୀକ)—ଦେବ ସେନା—The army of the gods.
Surānīka

ସୁରାପ—ସଂ. ବି. ପୁଂ (ସୁରା+ପା ଧାତୁ+କର୍ତ୍ତୃ. ଅ)—୧। ସୁରାପାୟୀ ବ୍ୟକ୍ତି—1. A person who drinks wine. ୨। ମଦୁଆ ବ୍ୟକ୍ତି—2. A drunkard ୩। ମଦ୍ୟ ରକ୍ଷକ—3. A person who stores wine ସଂ. ବିଣ. ପୁଂ—୧। ମଦ୍ୟପାୟୀ; ମଦୁଆ—1. Addicted to drink. ୨। ବୁଦ୍ଧିମାନ; ମନୀଷୀ (ପୂ. ଶ)—2. Intelligent.
Surāpa
(ସୁରାପା—ସ୍ତ୍ରୀ)

ସୁରାପଗା—ସଂ. ବି. ସ୍ତ୍ରୀ (ସୁର=ଦେବ+ଆପଗା=ନଦୀ)—ସୁରଧୁନୀ; ଗଙ୍ଗା—The river Ganges.
Surāpagā

ସୁରା ପାତ୍ର—ସଂ. ବି—ମଦଭାଣ୍ଡ; ମଦ୍ୟପାତ୍ର—A receptacle for wine; wine cup.
Surā pātra

ସୁରା ପାନ(ଣ)—ସଂ. ବି (୬ଷ୍ଠୀ ତତ୍)—୧। ମଦ୍ୟ ପାନ; ମଦ ପିଇବା—1. Drinking of wine. ୨।
Surā pāna(ṇa)

ଅବଦଂଶ; ଗଝ୍ଟ (ହି. ଶ)—2. Any relishable thing eaten by drinkers of wine.

ସୁରାପାନୋଦ୍ଦୀପ୍ତ—ସଂ. ବିଣ. ପୁଂ (୬ଷ୍ଠୀ ଓ ତୃତୀୟା ତତ୍) —ସୁରାପାନ
Surāpānoddipta ଯୋଗୁଁ ଉତ୍ତେଜିତ—Intoxicated with wine.
(ସୁରାପାନୋଦ୍ଦୀପ୍ତା—ସ୍ତ୍ରୀ)

ସୁରାପାୟୀ—ସଂ. ବିଣ ଓ ବି. ପୁଂ—(ସୁରାପାୟିନ୍ ଶବ୍ଦ; ସୁରା+ପା. ଧାତୁ
Surāpāyi +ଣିନି. ଭକ୍)—ସୁରପ; ଯେ ମଦ୍ୟପାନ କରେ—
(ସୁରାପାୟିନୀ—ସ୍ତ୍ରୀ) One who drinks wine.

ସୁରାପୀତ—ସଂ. ବିଣ. ପୁଂ (ବହୁବ୍ରୀହି; ପୀତ ହୋଇ ଅଛି ସୁରା ଯାହା
Surāpita ଦ୍ୱାରା )—ଯେ ମଦ ପିଇଅଛି—Drunk.
(ସୁରାପୀତା—ସ୍ତ୍ରୀ)

ସୁରାପୀଥ—ସଂ. ବି—ସୁରାପାନ (ହି. ଶ)—
Surāpitha Drinking of wine.

ସୁରାବ୍ଧି—ସଂ. ବି ( ମ. ପ. ଲୋ; ସୁରାପୂର୍ଣ୍ଣ ଅବ୍ଧି )—ପୌରାଣିକ ସାତ
Surābdhi ସମୁଦ୍ର ମଧ୍ୟରୁ ତୃତୀୟ ସମୁଦ୍ର—One of the seven mythological oceans surrounding the earth

ସୁରାଭାଗ—ସଂ. ବି ( ୬ଷ୍ଠୀ ତତ୍ )—୧ । ସୁରାମଣ୍ଡ; ସୁରାର ଅଗ୍ରଭାଗ
Surābhāga ବା ସର ( ଶବ୍ଦଚନ୍ଦ୍ରିକା )—1. The scum of wine. ୨ । ସୁରାଭାଣ୍ଡ ( ହି. ଶ )—
2 Wine vessel.

ସୁରାଭାଣ୍ଡ—ସଂ. ବି ( ୬ଷ୍ଠୀ ତତ୍ )—ମଦ୍ୟଭାଣ୍ଡ; ସୁରା ପାତ୍ର—
Surā bhānda A receptacle for wine.

ସୁରା ମଣ୍ଡ—ସଂ. ବି—ସୁରାର ଅଗ୍ରଭାଗ ଶବ୍ଦଚନ୍ଦ୍ରିକା); ସୁରା ଉପରେ ପଡ଼ି
Surā manda ଥିବା ସର—The scum of wine.

ସୁରା ମତ୍ତ—ସଂ. ବିଣ. ପୁଂ ( ୩ୟା ତତ୍ )—ମାତାଲ—
Surā matta Intoxicated with wine.
[ ସୁରାମତ୍ତା—ସ୍ତ୍ରୀ ] (ସୁରାମତ୍ତତା—ବି)

ସୁରାମେହ—ସଂ. ବି—ଏକ ପ୍ରକାର ମେହ ରୋଗ—A kind of
Surā meha gonorrhœa. [ବି—ଏଥିରେ ରୋଗର ପ୍ରସ୍ରାବ ସୁରା ପରି ମାଟିଆ ବା ଈଷତ୍ ରକ୍ତବର୍ଣ୍ଣ ହୁଏ । କାଚ ବୋତଲରେ ଏ ପ୍ରସ୍ରାବକୁ ରଖିଲେ ତାହାର କମ୍ନାଂଶ ଗାଢ଼ ଓ ଊର୍ଦ୍ଧ୍ୱାଂଶ ପତଳା ଦେଖାଯାଏ—ହି. ଶ ।]

ସୁରା ରାଣୀ—ସଂ. ବି—ଦେବମାତା; ଅଦିତି (ହି. ଶ)
Surā rāni The mother of the gods.

ସୁରାରାତି—ସଂ. ବି ( ସୁର+ଅରାତି; ୬ଷ୍ଠୀ ତତ୍ )—ଦେବତାମାନଙ୍କ
Surārāti ଅରି; ଅସୁର—Demon.
[ ସୁରାରି—ଅନ୍ୟରୂପ ]

ସୁରାରି ହନ୍ତା—ସଂ ବି (୬ଷ୍ଠୀ ତତ୍; ସୁରାରିହନ୍ତୃ ଶବ୍ଦ; ୧ମା. ୧ବ)—
Surāri hantā ଦୈତ୍ୟାରି; ବିଷ୍ଣୁ ( ଅ ବ ତକ୍ତ)—
(ସୁରାରିଘ୍ନ—ଅନ୍ୟରୂପ) An epithet of Bishnu.

ସୁରାର୍ଦ୍ଦନ—ସଂ. ବି ( ସୁର+ଅର୍ଦ୍ଦନ=ଦେବ ପୀଡ଼କ )—ଅସୁର
Surārddana (ହି. ଶ)—A demon.

ସୁରାର୍ହ—ସଂ. ବି (୬ଷ୍ଠୀ ତତ୍; ସୁର=ଦେବ+ଅର୍ହ=ଯୋଗ୍ୟ)—
Surārha ୧ । ହରିଚନ୍ଦନ (ରାଜନିର୍ଘଣ୍ଟ)—1. A species of sandal. ୨ । ସ୍ୱର୍ଣ୍ଣ (ଶବ୍ଦ କଳ୍ପଦ୍ରୁମ)—2. Gold. ୩ । କୁଙ୍କୁମାଗୁରୁ ଚନ୍ଦନ (ହି. ଶ)—3. Another kind of sandal.

ସୁରାଳ—ସଂ. ବି—ଧୂନା (ହି. ଶ)—
Surala Resin.

ସୁରାଳୟ—ସଂ. ବି ( ୬ଷ୍ଠୀ ତତ୍ )—୧ । ସୁମେରୁ (ଅମର) (ଦେଖ)—
Surālaya 1. Sumeru. ୨ । (ସୁର+ଆଳୟ) ଦେବତାମାନଙ୍କ ଗୃହ; ଦେବମନ୍ଦିର—2. Temple ୩ । (ସୁରା + ଲୟ) ମଦ୍ୟଶାଳା—3. A distillery.

ସୁରାଳିକା—ସଂ. ବି—ସପ୍ତଲା ନାମକ ବନ୍ୟ ଲତା—A kind of
Surālikā wild creeper. [ବି—ଏହାର ପତ୍ର ଖଇର ପତ୍ର ଅପେକ୍ଷା ବଶିଷ୍ଠ ଓ କ୍ଷୁଦ୍ର ତର । ଏଥିର ଛୁଇଁ ହଳଦିଆ ଓ ଚେପ୍ଟା; ମଞ୍ଜି କଳା, ମଞ୍ଜିରୁ ହଳଦିଆ ରସ ବାହାରେ । ବୈଦ୍ୟକ ମତରେ ଏହା ଲଘୁ, ତିକ୍ତ ଓ କଟୁ । ଏହା କଫ, ପିତ୍ତ, କଣ୍ଠୁ, ବ୍ରଣ ଓ ଶୋଥ ନାଶକ ଅଟେ—ହି. ଶ ।]

ସୁରାବ—ସଂ. ବି—୧ । ଉତ୍ତମ ଧ୍ୱନି—1. Good sound. ୨ । ଏକ
Surāba ପ୍ରକାର ଘୋଡ଼ା (ହି. ଶ)—2. A species of horse.

ସୁରାବନି—ସଂ. ବି—୧ । ଦେବମାତା; ଅଦିତି (ହି. ଶ)—1. Aditi;
Surābani the mother of the gods. ୨ । ପୃଥିବୀ (ହି. ଶ)—2. The earth.

ସୁରାବାସ—ସଂ. ବି (୬ଷ୍ଠୀ ତତ୍ ସୁର+ଆବାସ)—ସୁମେରୁ ପର୍ବତ—
Surābāsa The mythological Sumeru mountain.
[ସୁରାଶ୍ରୟ—ଅନ୍ୟରୂପ]

ସୁରାଭୃତ୍—ସଂ. ବି—ସୂର୍ଯ୍ୟ [ହି. ଶ
Surābrutta The sun.

ସୁରାଷ୍ଟ୍ର—ସଂ. ବି ( ସୁ=ଉତ୍ତମ+ରାଷ୍ଟ୍ର=ରାଜ୍ୟ )—୧ । ସୁରଟ
Surāstra (ଦେଖ)—1. Surāt (See) [ବି—ଜାହା କାହା [ସୌରାଷ୍ଟ୍ର—ବିଣ] ମତରେ ଏହା ପ୍ରାଚୀନ ସୁରଟ, କାହା କାହା ମତରେ କାଠିଆ ବାଡ଼—ହି. ଶ ।] ୨ । (ନାମ) ରାଜା ଦଶରଥଙ୍କର ଏକ ମନ୍ତ୍ରୀ—2. Name of a minister of Daśaratha.

ସୁରାଷ୍ଟ୍ରଜ—ସଂ. ବିଣ [ସୁରାଷ୍ଟ୍ର+ଜନ୍. ଧାତୁ+କର୍ତ୍ତି. ଅ]—ସୁରାଷ୍ଟ୍ର
Surāshtraja ଦେଶ ଜାତ—Produced in Surat. ବି—
[ସୁରାଷ୍ଟ୍ରଜା—ସ୍ତ୍ରୀ] ୧ । ଭୂବରକା [ଅମର]; ବନ ତୁଳସୀ—1. A sort of wild Basil. ୨ । କୃଷ୍ଣମୁଦ୍ଗ [ରାଜ ନିର୍ଘଣ୍ଟ] କଳାମୁଗ—2. A species of Phasoelus Moonga (grain). ୩ । ଗୋପୀ ଚନ୍ଦନ; ସୌରାଷ୍ଟ୍ର ମୃତ୍ତିକା (ହି. ଶ)—3. A kind of yellow arth. ୪ । ନାଲି କୋଳଥ [ହି. ଶ]—4. Red

horse-gram. ୪ । ଏକ ପ୍ରକାର ବିଷ [ହ୍ର. ]—5. A kind of poison.

ସୁରାଷ୍ଟ୍ରଜା—ସଂ. ବଣ, ସ୍ତ୍ରୀ—ସୁରାଷ୍ଟ୍ରଜର ସ୍ତ୍ରୀଲିଙ୍ଗ—Feminine of Surāstraja.
Surāshṭraja. ବି. ସ୍ତ୍ରୀ—୧ । ଭୁବଣ୍ଡ (ରାଜନିର୍ଘଣ୍ଟ); ଲଣ୍ଡାବଗୁଲ୍ମ—1. A sort of wild Basil plant. ୨ । ସୌରାଷ୍ଟ୍ରୀ; ସୌରାଷ୍ଟ୍ର ମୃତ୍ତିକା (ବୈଦ୍ୟକ)—2. A sort of fragrant earth.

ସୁରାଷ୍ଟ୍ରୋଦ୍ଭବା—ସଂ. ବି—ଫିଟ୍କିରି [ହ୍ର. ଶ].
Surāstrodbhabā Alum.

ସୁରା ସନ୍ଧାନ—ସଂ. ବି [୬ଷ୍ଠୀ ତତ୍ ]—ସଢ଼ା ପାଇଥିବା ଦ୍ରବ୍ୟରୁ ଯନ୍ତ୍ର
Surā sandhāna ସାହାଯ୍ୟରେ ସୁରା ବାହାର କରିବା କ୍ରିୟା—Distillation of wine.

ସୁରାସବ—ସଂ. ବି—୧ । ଗୁଡ଼ଲ ପିଠୁଆ ଇତ୍ୟାଦିରୁ ବକ ଯନ୍ତ୍ରଦ୍ୱାରା
Surāsaba ଚୁଆଁ ହୋଇ ବାହାର କରାଯିବା ମଦ; ଅରକ୍ଷି—1. Distilled spirit or wine. ୨ । ସୁରାଠାରୁ ଅଧିକ ମାଦକତା ଶକ୍ତିଯୁକ୍ତ ଅସବ ବା ଅରକ୍ଷି ବିଶେଷ—2. A very intoxicating spirit (like wine). [ଦ୍ର—ବୈଦ୍ୟଶାସ୍ତ୍ର ଅନୁସାରେ ଏହା ତୀକ୍ଷ୍ଣ, ମୁଖପ୍ରିୟ, ରୁଚିକର, ବାୟୁନାଶକ, ମୂତ୍ରବର୍ଦ୍ଧକ, କଫବାୟୁନାଶକ । ଏହାର ମାଦକତା ବହୁକ୍ଷଣ ସ୍ଥାୟୀ ।]

ସୁରା ସମୁଦ୍ର (ସାଗର)—ସଂ. ବି—ସୁରାବ୍ଧି (ଦେଖ)
Surā samudra Surābdhi (See)

ସୁରାସୁର—ସଂ. ବି (ସୁର+ଅସୁର; ଦ୍ୱନ୍ଦ୍ୱ)—ଦେବତା ଓ ଦାନବ—
Surāsur Gods and demons.

ସୁରା ସେବନ—ସଂ. ବି (୬ଷ୍ଠୀ ତତ୍)—ସୁରାପାନ (ଦେଖ)
Surā sebana Surāpāna (See)

ସୁରା ସେବୀ—ସଂ. ବଣ, ପୁଂ ( ସୁରା ସେବନ୍ ଶବ୍ଦ; ସୁରା+ସେବ୍ ଧାତୁ
Surā sebī +କର୍ତ୍ତୃ. ଇନ୍ )—ସୁରାପାୟୀ ( ଦେଖ )
( ସୁରା ସେବିନୀ—ସ୍ତ୍ରୀ ) Surāpāyī ( See )

ସୁରାହା—ଦେ. ବି ( ସଂ. ସୁ ଓ ଫା. ରାହ୍ )—୧ । ସୁପଥ—1. Good
Surāhā road. ୨ । ସୁମାର୍ଗ; ସତ୍ପଥ—2. Good ways.
ସুরাহা ୩ । ସୁବିଧା—3. Convenience. ୪ । ଶୁଭଲକ୍ଷଣ
सुराह —4. Auspicious or good sign.

ସୁରାହି—ବୈଦେ. ବି (ଫା)—୧ । ଲମ୍ବ ମୁଖଯୁକ୍ତ ଗୋଲାକାର ଜଳପାତ୍ର
Surāhi —1. A long-necked round water-jug.
সোরাই, কুজো [ଦ୍ର—ଖରାଦିନେ ଏଥିରେ ପାଣି ରଖି ଏ ପାତ୍ରକୁ ମୁକ୍ତ
सुराही, कुजा ବାୟୁରେ ରଖି ଦେଲେ ମାଠିଆ ଅପେକ୍ଷା ଏଥିରେ ପାଣି ବେଶି ଥଣ୍ଡା ହୁଏ ।] ୨ । ( ବଣିଆ ଶବ୍ଦ ) ବାଜୁ ଅଧରୁ ଲଟକି ଥିବା ଥୋପି ଉପରେ ଲଗାଯିବା ରୁପାର ବା ସୁନାର ସୁରାହି ଆକୃତି ବିଶିଷ୍ଟ ଅଳଙ୍କାର—2. A surahi-shaped gold or silver ornament attached to the upper side of the tassels of the Bāju. ୩ । (ଦରଜିଙ୍କ ଶବ୍ଦ) ଚନ୍ଦ୍ରାତପ ଅଧରେ ସିଲାଇ କରାଯିବା ସୁରାହି ଆକାରର କନା—3. A sorai-shaped bit of cloth sewn on shamianas. ୪ । ହୁକାର ନଳର ସୁରାହି ଆକୃତିବିଶିଷ୍ଟ ଅଗ୍ରଭାଗ ( ଯହିଁ ଉପରେ ଚିଲମ ବସାଯାଏ)—4. The sorahi-shaped top of the tube of a hookah.

ସୁରାହ୍ୱ—ସଂ. ବି (ସୁର+ଆ+ହ୍ୱେ ଧାତୁ=ଡାକିବା+କରଣ. ଅ)—
Surāhwa ୧ । ଦେବଦାରୁ [ ଶବ୍ଦରତ୍ନାବଳୀ ]—1. Pine tree ୨ । ଦାରୁହରିଦ୍ରା; ଦାରୁହଳଦ [ରାଜନିର୍ଘଣ୍ଟ]—2. Cascinium Fenestratum. ୩ । ମରୁବକ [ରାଜନିର୍ଘଣ୍ଟ ]; ମରୁଆ ଗଛ—3. Origanum Marjoram.

ସୁରି—ସଂ. ବଣ ( ସୁ+ରା+ଇ=ଶୋଭନ ଧନବାନ୍—ମୁଗ୍ଧବୋଧ
Suri ବ୍ୟାକରଣ )—ଖୁବ୍ ଧନୀ—Very rich.
সুর सुर ଦେ. ବି—ସୁରରାଜ, ସୁରେଶ, ସୁରେନ୍ଦ୍ର, ସୂର୍ଯ୍ୟମଣିଙ୍କ ଡାକ ନାମ—Name for calling Surarāja, Sureśa, Surendra, Sūrjyamaṇi

ସୁରିବା—ଦେ. କ୍ରି (ସଂ. ସ୍ଫୁର୍ ଧାତୁ)—୧ । ସ୍ଫୁରିବା; ସ୍ପନ୍ଦିତ ହେବା—
Suribā 1. To tickle; to throb; to vibrate.
সুরা फरकना [ ଯଥା—ମୋ ଅକ୍ଷି ସୁରୁଛି । ]
লালাযিত হওয়া ୨ ( ସଂ. ସ୍ପୃହ୍ ଧାତୁ ) (ଇଚ୍ଛା, ପାଟି) ସ୍ପୃହାଯୁକ୍ତ
लालायित होना ହେବା; ଲାଳାୟିତ ହେବା; ସୋରେଇବା—2. To be watering after; to hanker after. [ ଯଥା—ଖାଇବା ପଦାର୍ଥ ଦେଖି ମୋ ତୁଣ୍ଡ ସୁରୁଛି । ] ୩ । ଅନୁରାଗଯୁକ୍ତ ହେବା—3. To be attached to any person or thing. ୪ ।
সুরা (ସଂ. ସ୍ଫୁର୍ ଧାତୁ) (କଥା) ବାକ୍ୟସ୍ଫୂର୍ତ୍ତି ହେବା; ପଇଟିବା—
बात निकलना 4. To come to the tip of one's tongue. [ ଯଥା—ମୋ ତୁଣ୍ଡରୁ କଥା ସୁରୁ ନାହିଁ ।]

ସୁରୀ—ସଂ. ବି—୧ । ( ସୁର+ଈ, କମ୍ବା ସୁର୍ ଧାତୁ=ପାପ ପାଇବା+
Surī କର୍ତ୍ତୃ. ଈ)—ସୁରା (ଦେଖ)—1. Surā (See) ୨। (ସ୍ତ୍ରୀ) ( ସୁର+ଈ ) ଦେବପତ୍ନୀ ( ହ୍ର. ଶ )—2. Wife of one of the gods. [ଦ୍ର—ବହୁଧାଳୟ ଜଗତ ସ୍ତୁତି ନାସି ସୁରୀ, ଚାନ୍ଦ୍ର ସୁମନା ମନମୋହନ ଛବି ଯାହାର—ଭଞ୍ଜ. ବୈଦେହୀଶବିଳାସ । ]

ସୁରୁ—ବୈଦେ. ବି ( ଅ )—ଆରମ୍ଭ—Beginning. ପ୍ରାଦେ-
Suru ( ସମ୍ବଲପୁର; ବଲାଙ୍ଗିର ପାଟଣା ) ବଣ—ସାନ; ଟିକି
সুরু सुरू ( ପିଲା )—Very young (said of children); tiny.

ସୁରୁଆ—ବୈଦେ. ବି (ଆ. ସୋର୍ବା)—ମାଂସର ଝୋଳ; କ୍ୱାଥ; ମାଂସର
Suruā ଅର୍କ—Soup of meat. [ ଦ୍ର—ସୁରୁଆ ତିଆରି
সুরুয়া କରିବା ଲାଗି ଅତି ଶୁଦ୍ଧ, ଛିଦ୍ରଶୂନ୍ୟ ବୋତଲ ଆକାରର ପାତ୍ର
शो(सु)रवा ଆବଶ୍ୟକ । ଏଥିରେ କୁକୁଡ଼ା ଛେଳି ବା ଛୁଆଡ଼ା ମାଂସ ରଖି ଟିପି ବନ୍ଦ କରି ଏହାକୁ ଜଳପୂର୍ଣ୍ଣ ହାଣ୍ଡିରେ ଝୁଲାଇ ରଖି, ହାଣ୍ଡି ତଳେ ବହୁକ୍ଷଣ ଜାଳ ଦେଲେ ବୋତଲ ଗରମ ହୋଇ ଏହା ମଧ୍ୟସ୍ଥ ମାଂସରୁ ଅଳ୍ପ ତରଳ ପଦାର୍ଥ ବାହାରେ ।

ମାଂସକୁ ପିଙ୍ଗି ଦେଇ ଏହୁ ପାଣି ବା ସୁରୁଅକୁ ସେବନ କଲେ ଖୁବ୍ ବଳ ହୁଏ । ]

ସୁରୁ କରିବା—ଦେ. କ୍ରି—କୌଣସି କାର୍ଯ୍ୟ ଆରମ୍ଭ କରିବା—
Suru karibā To begin any work.
শুরু করা सुरु करना

ସୁରୁକା—ବୈଦେ. ବି (ଫା. ସରୋକା; ଶବ୍ଦକଳ୍ପ)—ସରୋକା; ସମ୍ପର୍କ—
Surukā Connection; relationship.
সুরুকা सरोकार

ସୁରୁକି(ଖି)—ବୈଦେ, ବି (ଫା. ସୁର୍ଖ; ସୁରଖୀ)—ଚୂନ ସଙ୍ଗେ ମିଶା
Suruki(khi) ଯିବା ପାଇଁ ଚୂର୍ଣ୍ଣ କରାଯିବା ଇଟା; ଇଷ୍ଟକ ଚୂର୍ଣ୍ଣ—
সুরকি(খি) Powdered brick or brick dust inten-
सुरखी ded to be used as mortar when mixed with lime.

ସୁରୁକୁଟା—ଦେ. ବିଣ ପୁଂ (ସଂ. ଶୁଷ୍କୀକୃତ)—୧। କ୍ଷୀଣଗାତ୍ର—1. Lean-
Surukuṭā bodied. ୨ । ଶୀର୍ଣ୍ଣ—2. Emaciated; withered.
( ସୁରୁକୁଟିଆ—ଅନ୍ୟରୂପ )
( ସୁରୁକୁଟୀ; ସୁରୁକୁଟେଇ—ସ୍ତ୍ରୀ )

ସୁରୁକୁଟା ମୁରୁକୁଟା—ଦେ. ବିଣ (ସଂ. ଶୁଷ୍କ ଓ ମର୍କଟ; ସହଚର ଶବ୍ଦ)—
Surukuṭā murukuṭā ଶୁଷ୍କ ଶୀର୍ଣ୍ଣ—Withered and
(ସୁରୁକୁଟିଆ ମୁରୁକୁଟିଆ—ଅନ୍ୟରୂପ) lean; lean and
(ସୁରୁକୁଟୀ ମୁରୁକୁଟୀ, ସୁରୁକୁଟେଇ ମୁରୁକୁଟେଇ-ସ୍ତ୍ରୀ) emaciated.

ସୁରୁକୁଟି—ଦେ. ବି—ଜଳଜ ଶାକବିଶେଷ—A species of
Surukuṭi aquatic herb. [ ବି—ଏହାର ମୂଳ କନ୍ଦମୂଳ ବା ମୂଳା ପରି । ଏହୁ ମୂଳକୁ କଞ୍ଚା ବା ସିଝାଇ ଖାଆନ୍ତି । ଏହା ଶିଶୁମାନଙ୍କ ଝାଡ଼ାରୋଗରେ ଖୁଆଇଲେ ଉପକାର ହୁଏ । ଏହାର ପତ୍ରର ଲମ୍ବ ୫ ଇଞ୍ଚ ଓ ଚଉଡ଼ା ୧ ଇଞ୍ଚ । ଏ ଗଛର କାଣ୍ଡ ନାହିଁ । ]

ସୁରୁକୁଟେଇବା—ଦେ. କ୍ରି—ଶୁଷ୍କଶୀର୍ଣ୍ଣ ହେବା—The wither;
Surukuṭeibā to become emaciated.
( ସୁରୁକୁଟେଇ ଯିବା—ଅନ୍ୟରୂପ )

ସୁରୁଖୁର୍(ରୁ)—ଦେ. ବିଣ (ସଂ. ସ୍ୱଚ୍ଛରୁ; ତୁଳ. ଫା. ସୁର୍ଖରୁ=କାନ୍ତି-
Surukhur(ru) ବାନ୍; ପ୍ରଫୁଲ୍ଲିତ; ସମ୍ମାନିତ )—୧ । ବାଧା-
সুবিধা ରହିତ—1. Free from obstacles. ୨ ।
সুরখুর(ু) ଜଟିଳତା; ଗୋଳମାଳରହିତ—2. Free from complications. ୩ । ଶାନ୍ତ; ସୁଶୀଳ—3. Meek; good. ୪ । ସ୍ୱଚ୍ଛରୁ; ଶୋଭନ; ସୁନ୍ଦର; ସୁଦୃଶ୍ୟ—4. Beautiful. ୫ । ସହଜ—5. Easy. କ୍ରି, ବିଣ—୧ । ସ୍ୱଚ୍ଛରୂପେ; ସୁନ୍ଦରରୂପେ—1. Beautifully. [ ଉ—ସୁରୁଖୁରୁ ଚଳିବ ସଂସାର, ସୃଭାବତା ଆଗ ପଛ ହେଲେ ଘର ଘର ଲେ ବୋଲଇ ।—ବାଳକୃଷ୍ଣ. ଅକାଳ ବୋଲଇ ।] ୨ । ନିର୍ବିଘ୍ନରେ—2. Easily. ୩ । ନିର୍ବିଘ୍ନରେ—3. Without any let or hindrance. [ ଉ—କାମଦାମ ସବୁ ସୁରୁଖୁରୁରେ ହୋଇ ଯାଉଛି—ଉକାଶ. ରତ୍ନମାଳା । ]

ସୁରୁଖୁରିଆ—ଦେ. ବିଣ, ପୁଂ ଓ ସ୍ତ୍ରୀ—୧। ଶାନ୍ତ; ସୁଶୀଳ—1. Meek;
Surukhuriā mild. ୨। ଯେ ଦୁଷ୍ଟ ନୁହେଁ—2. One who
শান্তশিষ্ট सुरखुरिया is not wicked.
( ସୁରୁଖୁରୀ—ସ୍ତ୍ରୀ )

ସୁରୁଖୁରୁରେ—ଦେ, କ୍ରି. ବିଣ—ସୁରୁଖୁର୍ ( ଦେଖ )
Surukhurure Surakhur ( See )

ସୁରୁଗୁଡ଼ା—ଦେ, ବିଣ, ପୁଂ ଓ ସ୍ତ୍ରୀ (ସଂ. ଶୀର୍ଣ୍ଣକାୟ)—୧ । ଅତି କ୍ଷୀଣ-
Surugurdā କାୟ—1. Very lean. ୨ । ଶୀର୍ଣ୍ଣ—
রোগাপটকা 2. Emaciated. ୩ । ହ୍ରସ୍ୱଶରୀରଯୁକ୍ତ; ବାମନ—
दुबला पतला 3. Dwarfish.
( ସୁରୁଗୁଡ଼ିଆ—ଅନ୍ୟରୂପ ) ( ସୁରୁଗୁଡ଼ୀ—ସ୍ତ୍ରୀ )

ସୁରୁଗୁଲି—ପ୍ରାଦେ. ( ଗଞ୍ଜାମ ) ବି—ସୁରୁବୁଲି ( ଦେଖ )
Suruguli Surubuli ( See )

ସୁରୁଙ୍ଗ—ସଂ. ବି—ଶୋଭାଞ୍ଜନ; ଶଜନା (ଶବ୍ଦମାଳା)—The Indian
Suruṅga horse radish tree.

ସୁରୁଙ୍ଗା—ସଂ. ବି—ସୁରଙ୍ଗା ( ଜଟାଧର ) ( ଦେଖ )
Suruṅgā Suraṅga ( See )
ଦେ. ବି—ଚିଲିକା ହ୍ରଦରେ ମିଳୁଥିବା ଏକପ୍ରକାର ମାଛ—
A kind of fish ( in the Chilka ).

ସୁରୁଙ୍ଗାହି—ସଂ. ବି ( ସୁରୁଙ୍ଗା + ଅହି )—ସିନ୍ଧଳ ଚୋର; ସୁରଙ୍ଗଯୁକ୍
Suruṅgāhi ଅଧଶ୍ଚୌର; ଭୂକମ୍ପିଲ ( ଶବ୍ଦରତ୍ନାବଳୀ )—
A house breaker, who bores a tunnel into a house.

ସୁରୁଚ—ଗ୍ରା. ବି ( ସଂ. ସ୍ରୁଚ )—ସ୍ରୁକ୍ ( ଦେଖ )—Sruk (See)
Surucha ସଂ. ବି—ଉଜ୍ଜ୍ୱଳ ପ୍ରକାଶ; ଦୀପ୍ତି ( ହ. ଶ )—
Luminosity; bright display. ସଂ. ବିଣ—
ସୁନ୍ଦର ପ୍ରକାଶବିଶିଷ୍ଟ ( ହ. ଶ )—
Finely luminous or bright.

ସୁରୁଚି—ସଂ. ବି ( କର୍ମଧା )—୧ । ଶୋଭନରୁଚି; ଅଶ୍ଳୀଳତା ବର୍ଜିତ
Suruchi ରୁଚି—1. Good taste; taste free from obscenity. ୨ । ଅତ୍ୟନ୍ତ ପ୍ରସନ୍ନତା ( ହ. ଶ )—2. Much favourableness. ୩ । ( ନାମ; ସ୍ତ୍ରୀ ) ଧ୍ରୁବଙ୍କ ବିମାତା—3. Step-mother of Dhruba. ୪ । (ପୁଂ) ଗନ୍ଧର୍ବରାଜବିଶେଷ—4. Name of a king of the Gandharbas. ୫ । (ନାମ) ଯକ୍ଷବିଶେଷ—5. Name of a Jaksha. ବିଣ—୧ । ଶୋଭନ ରୁଚିବିଶିଷ୍ଟ—1. Of good taste. ୨ । ରୁଚିକର; ସୁନ୍ଦର—2. Tasteful.

ସୁରୁଚିମାନ୍—ସଂ. ବି ( ରୁଚିମତ୍ ଶବ୍ଦ; ସୁରୁଚି + ମତ୍ )=ଶୋଭନ
Suruchimān ରୁଚିସମ୍ପନ୍ନ—Of polished taste.

ସୁରୁଚିର—ସଂ. ବିଣ—୧ । ମନୋହର—1. Charming. ୨ ।
Suruchira ଦୀପ୍ତିଶାଳୀ; ଉଜ୍ଜ୍ୱଳ—2. Bright.
( ସୁରୁଚିରା—ସ୍ତ୍ରୀ ) (ସୁରୁଚିରତା—ବି)

**ସୁରୁଚି ସଙ୍ଗ(ମ୍ମ)ତ**—ସଂ. ବି—ଶୋଭନ ରୁଚିର ଅନୁମୋଦିତ—Of
Suruchi sanga(mma)ta polished taste; approved by good taste; tasteful.

**ସୁରୁଜ**—ସଂ. ବିଣ. ପୁଂ ( ବହୁବ୍ରୀହି; ସୁ+ରୁଜ )—ରୁଗ୍ଣ; ପୀଡ଼ିତ
Suruja ( ହି, ଣ )—Ill. ଗ୍ରା° ବି—୧ । ( ସଂ· ସୂର୍ଯ୍ୟ )
सूज्ज **सुरुज** ସୂର୍ଯ୍ୟ ଇତ୍ୟାଦି ( ଦେଖ )—1. Sūrjya etc (See) ୨ । ( ପୁଂ ) ସୂର୍ଯ୍ୟମଣି ନାମକ ପୁରୁଷର ଡାକ ନାମ—Nickname for Sūrjyamaṇi.

**ସୁରୁଜମଣି**—ଗ୍ରା. ବି ( ପୁଂ ଓ ସ୍ତ୍ରୀ )—ସୂର୍ଯ୍ୟମଣି ନାମକ ପୁରୁଷର ଓ
Surujamaṇi ସ୍ତ୍ରୀର ଡାକ ନାମ—Nickname for
सूज्जमनी **सुरुजमनी** Sūrjyamani.

**ସୁରୁଜମୁଖୀ**—ଗ୍ରା· ବି ( ସଂ. ସୂର୍ଯ୍ୟମୁଖୀ —ସୂର୍ଯ୍ୟମୁଖୀ ( ଦେଖ )—
Surujamukhī Sūrjyamukhī ( See )
सूज्जमुखी **सुरुजमुखी**

**ସୁରୁଜି**—ଗ୍ରା, ବି ( ସ୍ତ୍ରୀ )—ସୂର୍ଯ୍ୟମଣି ନାମ୍ନୀ ସ୍ତ୍ରୀର ଡାକ ନାମ—
Surujī Nickname for Sūrjyamaṇi.
सूर्जी **सुरुजमनी**

**ସୁରୁଟି**—ଦେ· ବି (ବଣିଅ ଶବ୍ଦ)—ରାଜା ବା ଠାକୁରଙ୍କ ଆଗରେ ରଖିବା
Suruṭi ପାଇଁ ବ୍ୟବହୃତ ଗୁନ୍ଥାମୁଠି ପର ମୟୂରପୁଚ୍ଛଗୁଚ୍ଛବିଶିଷ୍ଟ ରୁପାର ବଇଠି—A silver holder for holding a bound bunch of peacock tail put before a Raja or an idol.

**ସୁରୁଣ**—ପ୍ରାଦେ· ( ବଲାଙ୍ଗିର ପାଠଣା ) ବି—ସ୍ମରଣ—
Suruṇa Recollection; reminding.

**ସୁରୁତ**—ପ୍ରାଦେ ( ବଲାଙ୍ଗିର ପାଠଣା ) ବି ଓ ବିଣ —ସ୍ୱାଦ—
Suruta Taste.

**ସୁରୁତା**—ପ୍ରାଦେ· (ବଲାଙ୍ଗିର ପାଠଣା) ବି—୧ । ( ତୁଳ· ହି. ସରୌତା;
Surutā ସରୋତା ) ଗୁଆକାତି—1. Nut-cracker.
୨ । ସ୍ମରଣ—2. Remembrance.

**ସୁରୁତା କରିବା**—ପ୍ରାଦେ· (ବଲାଙ୍ଗିର ପାଠଣା) କ୍ରି—ସ୍ମରଣ କରିବା—
Surutā kariba To recollect; to remember.

**ସୁରୁତି**—ବୈଦେ. ବି ( ଟେଣ୍ଡିଗୀର୍ )—ଭାଗ୍ୟ ପରୀକ୍ଷାବିଶେଷ; ସୁରତ୍;
Suruti ଲଟେରୀ—Lottery. ଦେ·ବି (ସଂ. ସୁରାଷ୍ଟ୍ର ଦେଶୀୟ ନାମ
सुर्ति ସୁରତ (Surat)ରୁ; ଏହା ପ୍ରଥମେ ସୁରତ ଦେଶରେ ଆବିଷ୍କୃତ
जूआ ହୋଇ ଥିବାରୁ)—ପାନ ସଙ୍ଗେ ଖିଆଯିବା ପାଇଁ କାଶୀ,ଗୁଜରାଟ,
सुर्ति ବମ୍ବେ, କଲିକତା ଆଦିରେ ପ୍ରସ୍ତୁତ ଏକ ପ୍ରକାର ତମାଖୁର ଚୂର୍ଣ୍ଣ
**सुरती, खैनी** —A preparation from tobacco
सुर्ति chewed with betel. [ଦ୍ର—ଏହା ପାନ ସଙ୍ଗେ ଗୁଣ୍ଡି
**सम्रुती** ପରି ବ୍ୟବହୃତ ହୁଏ ।] ଗ୍ରା. ବି. (ସଂ. ଶ୍ରୁତି; ସ୍ମୃତି)—ପୁରାଣ; ଧର୍ମଶାସ୍ତ୍ର ଆଦି—Scripture; religious tract.

**ସୁରୁଦ୍ରି**—ସଂ. ବି—ଶତଦ୍ରୁ ନଦୀର ଏକ ନାମ (ହି. ଶ)—
Surudri A name of the Sutlej river.

**ସୁରୁନୁଣି**—ପ୍ରାଦେ (ସମ୍ବଲପୁର) ବି—ସାନ ଝିଅ; ସାନ ଟୋକୀ—
Surunūnī A very young girl.
[ଉ—ମାଗୁର ମାଛର ମୁଣ୍ଡ ଭେପଠା, ଟେଙ୍ଗଣା ମାଛର କଣ୍ଟା, ଅମ ସୁରୁନୁଣି ସପୁର ଅଣ୍ଟା, ଯେଉଁ ଦେଖି ହୋଷା ମଠା—ଛନ୍ଦ ।]

**ସୁରୁପୁଅ**—ପ୍ରାଦେ. ( ସମ୍ବଲପୁର ) ବି—୧ । କୋଡ଼ପୋଛା ପୁଅ—
Suru pua 1. Parents' last son. ୨ । ଦୁଗ୍ଧ ପୋଷ୍ୟ ବାଳକ; ଶିଶୁ ବାଳକ—2. A male-child.

**ସୁରୁବ**—ଗ୍ରା· ବି (ସଂ· ସ୍ରୁବ)—ସ୍ରୁବ ( ଦେଖ )
Suruba Sruba ( See )

**ସୁରୁବୁଲି**—ଦେ. ବି—୧ । ( ସଂ. ଚିର ବଲ୍ଲି ବା ଚିରବଲ୍ଲୀ)—ଲୁଗା ବା
Surubuli ସୂତା ରଙ୍ଗାଇବାରେ ବ୍ୟବହୃତ ଅଚ୍ଛୁକାଦି ବର୍ଗର
सुवबली ଯୈତପାପଡ଼ା ପରି ଗୁଳ୍ମ ବିଶେଷ—1. Olden-
**चिरवल, सुरबुली** landia Umbellata; Morenda Tincoria. [ଦ୍ର—ଏ ଗୁଳ୍ମ ବଙ୍ଗ ଦେଶଠାରୁ ସିଂହଳ ପର୍ଯ୍ୟନ୍ତ ଭାରତର ବାଲିଆ ଭୂମିରେ ସ୍ୱତଃ ଜାତ ହୁଏ ଏବଂ ୬ ମାସ ମାତ୍ର ବଞ୍ଚେ । ଏହାର ଚେରର ଛାଲରୁ ସୁନ୍ଦର ନାଲି ରଙ୍ଗ ବାହାରେ । ଏହି ନାଲି ରଙ୍ଗରେ ଚୁବୁଲି ସାଢ଼ିର ଧଡ଼ିର ସୂତା ରଙ୍ଗାଯାଏ । ମଛଲିପଟଣା ଆଦି ସମୁଦ୍ରଉପକୂଳସ୍ଥ ବାଲିଆ ମାଟି ଥିବା ଅଞ୍ଚଳରେ ଏ ଗଛର କୃଷି କରାଯାଏ । ଏଥିର ମଞ୍ଜି ଆଷାଢ଼ ମାସରେ ବୁଣାଯାଏ (ହି. ଶବ୍ଦସାଗର)

ଡାକ୍ତର ସୁଧାଚରଣ ପଣ୍ଡା କହନ୍ତି ଯେ, ଚିଲିକା ମଧ୍ୟସ୍ଥ କେତେକ ଦ୍ୱୀପରେ ପୂର୍ବେ ଏକ ପ୍ରକାର ଘାସ ମିଳୁଥିଲା । ଏହି ଘାସମୂଳରୁ ରଙ୍ଗ ତିଆର ହେଉଥିଲା । ସେହି ରଙ୍ଗ ସୁରୁବୁଲି ଲୁଗାରେ ଦିଆ ଯାଉଥିଲା । ବର୍ତ୍ତମାନ ବିଦେଶୀ ରଙ୍ଗର ପ୍ରଚୁର ଯୋଗୁଁ ଏ ରଙ୍ଗର ଆମଦାନି ବନ୍ଦ ହୋଇଅଛି ।] ୨ । ଚିଲିକା ମଧ୍ୟସ୍ଥ ଦ୍ୱୀପରେ ମିଳିବା ଏକ ପ୍ରକାର ଘାସ ( ଏଥିର ଚେରକୁ ସିଝାଇଲେ ନାଲି ରଙ୍ଗ ବାହାରେ)—2. A kind of grass found on some of the islands of the Chilka lake. ୩ । (ଏ ସାଢ଼ିର ଧଡ଼ି ସୁରୁବୁଲି ଚେରରୁ ବାହାରିବା ରଙ୍ଗରେ ରଙ୍ଗା ଯାଇଥିବାରୁ) ଅଳ୍ପ ସ୍ତ୍ରୀ ଲୋକମାନଙ୍କ ପିନ୍ଧିବା ଦେଶୀ ନାଲିଧଡ଼ିଆ ଏକ ପ୍ରକାର ଧଳା ଶାଢ଼ୀ—3. A species of red bordered white cloth for females. [ଦ୍ର—ଏଥିର ଧଡ଼ି ୪।୬ ଅଙ୍ଗୁଳ ଚଉଡ଼ା ଓ ଧଡ଼ି ତଳେ କୁମ୍ଭ ବା କାଙ୍ଗୁରା ପଡ଼ି ଥାଏ ଏବଂ ଏହାର ମଝିଣା ୧୪ ହାତ ପର୍ଯ୍ୟନ୍ତ ବ୍ୟାପି ଥାଏ ।]

**ସୁରୁବେଲି**—ପ୍ରାଦେ. (ଚିଲିକା ଅଞ୍ଚଳ) ବି—୧ । ଏକପ୍ରକାରର ସିପ—
Surubeli 1. A kind of shell. ୨ । ସୁରୁବୁଲି ୨।୩ (ଦେଖ)—2. Surubuli 2-3 (See)

ସୁରୁମଇ କଲମ—ବୈଦେ॰ ବି—ସୁରମଇ କଲମ (ଦେଖ)
Surumai kalama Suramai kalama (See)
( ସୁରୁମ୍ଚୁ—ଅନ୍ୟରୂପ )

ସୁରୁମା—ବୈଦେ॰ ବି ( ଫା. ସୁର୍ମହ୍ )——୧ । ଆଖିରେ ଅଞ୍ଜନାର୍ଥ
Surumā ବ୍ୟବହୃତ କଳାଗୁଣ୍ଡ ବିଶେଷ—1. Galena; a
सूर्मा black powder used as a paint for the
सुरमा eye. ୨ । ରସାଞ୍ଜନ—2. Sulphurette of antimony used as collyrium; stilenite. [ଦ୍ର—ଆଣ୍ଟିମନି ନାମକ ଧାତୁ ଓ ଗନ୍ଧକ ମିଶ୍ରିତ ଏ ନୀଳବର୍ଣ୍ଣ ଖଣିଜ ଦ୍ରବ୍ୟ ପାରସ୍ୟ, ପଞ୍ଜାବ ଓ ବ୍ରହ୍ମଦେଶରେ ମିଳେ । ଏହାର ଚୂର୍ଣ୍ଣ ଚକ୍ଷୁର ଅଞ୍ଜନ ରୂପେ ବ୍ୟବହୃତ ହୁଏ । ବଜାରରେ ଯାହା 'ସୁରୁମା' ବା ସୁର୍ମି ନାମରେ ବିକା ଯାଏ ତାହା ସୀସା ଓ ଗନ୍ଧକର ମିଶ୍ରଣ (galene). ଏହା କାବୁଲ ଓ ବୋଖାରାରୁ ଆସେ । ଛାପାଖାନାରେ ବ୍ୟବହୃତ ସୀସା ଅକ୍ଷର (ଟାଇପ୍)କୁ ଦୃଢ଼ କରିବା ପାଇଁ ଏହା ସୀସାରେ ମିଶାଯାଏ ।]

ସୁରୁମାଦାନ(ଣି)—ବୈଦେ ବି (ଫା.ସୁରମହ୍‌ଦାନ୍)—ସୁରୁମା ରଖିବାର
Surumādān(ni) ଛୋଟ ଶିଶି—A small phial for
सूर्मादान सुरमादान(नी) keeping galena.

ସୁରୁ(ର)ମା ସଫେଦ୍—ବୈଦେ॰ ବି (ଫା)— ୧ । ଏକ ପ୍ରକାର ଖଣିଜ
Suru(ra)mā saphed ପଦାର୍ଥ—1. Gypsum. [ଦ୍ର—
सफेद सूर्मा ଏହାର ବର୍ଣ୍ଣ ଧଳଦିଆ ମିଶା ଧଳା; ଇଲେକ୍ଟ୍ରୋ-
सुरमा सफेद ଟାଇପ୍ ବା ରବର୍ ମୋହରର ଛାଞ୍ଚ କରିବା ପାଇଁ
(ସୁର୍ମୀ ସଫେଦ୍—ଅନ୍ୟରୂପ) ପାରିସ୍ ପ୍ଲାଷ୍ଟର୍ (Plaster of Paris) ଏଥିରୁ ତିଆର କରାଯାଇ ପାରେ । ସାଧାରଣତଃ ଏତଦ୍ୱାରା ସୀସାର ଓ ଅନ୍ୟ ଧାତୁର ଦ୍ରବ୍ୟମାନ ଯେ ଢ଼ଳାଯାଏ ହି. ଶ] ୨। ଚିକ୍କଣ ପଥର ଧଳା ଖଣିଜ ପଦାର୍ଥ ବିଶେଷ—2. A kind of white mineral. [ଦ୍ର—ଏହା କାବୁଲ ଅଞ୍ଚଳର ପାହାଡ଼ମାନଙ୍କରେ ମିଳେ । ଆଖିର ଜଳା ଖୋଡ଼ାରେ ଓ ମେହ ଆଦି ରୋଗରେ ଏହା ଉପକାରୀ । ହି. ଶ

ସୁରୁଷୋ—ପ୍ରାଦେ (ବଲାଙ୍ଗିର ପାଟଣା) ବି ( ଭୁଲ. ହି॰ ସରସୋଁ । )—
Surusho ସୋରିଷ—Mustard seed.

ସୁରୁସୁରୁ—ଦେ. ଅ ( ଧ୍ୱନ୍ୟନୁକରଣ )—୧ । ଜଳର ଅତି କ୍ଷୀଣ
Surusuru ଧାରରେ ଦେଖା କ୍ରମେ ପତନ ହେବାର ଶବ୍ଦ—
सुर्‌सुर् 1. Low sound or gurgling of water
सुरसुर dropping in a very slender line.
୨ । ସୁଲୁସୁଲୁ (ଦେଖ)—2. Sulusulu (See) [ଭ୍ର—ସୁରୁସୁରୁ ସ୍ଥଳେ ଯେବେ ଦେବାଲେ କାନ୍ଦାରେ, ପ୍ରସରେ ମଳୟ ସ୍ରୋତ ପରିମଳ ସଖା । ରାଧାନାଥ॰ ମହାଯାତ୍ରା ।]
ପ୍ରାଦେ॰ (ପାଟଣା) ବିଣ (ବହୁବଚନ)—ସାନ ସାନ—Small (plural).

ସୁରୁହା—ଗ୍ରା. ବି ( ସଂ. ସ୍ପୃହା )—ସ୍ପୃହା ( ଦେଖ )
Suruhā Spṛuhā ( See )

ସୁରୂପ—ସଂ. ବି—୧ । ଶୋଭନ ରୂପ; ସୁନ୍ଦର ରୂପ—1. Charming
Surūpa or beautiful form. ୨ । ତୁଳା ଫଳ (ସୁଶ ଜର୍ଦ୍ଧ)—2. Balance. ୩ । ଶିବ (ହ. ଶ)—3. A name of Śiba. ୪ । କାର୍ପାସ (ହ. ଶ)—4. Cotton. ୫ । ପରିଷାଶ୍ୱତ୍ଥ (ହ. ଶ)—5. A kind of tree. ୬ । କାମଦେବ (ହ. ଶ)—6. Cupid personified. ୭ । ଅଶ୍ୱିନୀକୁମାର ଦ୍ୱୟ (ହ. ଶ)—7. The twin sons of Aświnī. ୮ । ନକୁଳ ପାଣ୍ଡବ (ହ. ଶ)—୫. The 4th Pāndaba brother. ୯ । ପରୁରବା (ହ. ଶ)—9. Parurabā. ୧୦ । ନଳକୁବର (ହ. ଶ)—10. Nalakūbara. ୧୧ । ଶାମ୍ବ (ହ. ଶ)—11. Śāmba. ବିଣ—୧ । (ବହୁବ୍ରୀହି) ଶୋଭନରୂପ
(ସୁରୂପା—ସ୍ତ୍ରୀ) ବରିଷ୍ଠ; ରୂପବାନ୍—1. Charming, beautiful; symmetrical. ୨ । ବିଦ୍ୱାନ୍ (ହ. ଶ)—2. Learned. ୩ । ବୁଦ୍ଧିମାନ (ହ. ଶ)—3. Intelligent.

ସୁରୂପା—ସଂ. ବିଣ. ସ୍ତ୍ରୀ (ସୁରୂପ+ଆ)—ସୁରୂପର ସ୍ତ୍ରୀଲିଙ୍ଗ; ସୁନ୍ଦରୀ—
Surūpā Feminine of 'Surūpa'. ବି—୧ । ଶାଲପର୍ଣ୍ଣୀ (ସୁଶ ଜର୍ଦ୍ଧ) (ଦେଖ)—1. Śālaparṇnī (See) ୨ । ଭାର୍ଗୀ (ସୁଶଜର୍ଦ୍ଧ) (ଦେଖ)—2. Bhārgi (See) ୩ । ସୁନ୍ଦରୀ ସ୍ତ୍ରୀ—3. Beautiful woman. ୪ । ରୂପା—4. Silver. (ଦ୍ର—[୩+୪] ବିରହ ସୁତଯୋଗ ସତ ସୁରୂପା । ଭଞ୍ଜ॰ ବୈଦେହୀଶବିଳାସ ।) ୫ । ସେବତୀ (ହ. ଶ)—5. Muskrose. ୬ । ବାର୍ଷିକୀ ମଲ୍ଲିକା (ହ. ଶ)—6. Jasminum Sambac.

ସୁରୂହକ—ସଂ॰ ବି (ସୁ+ରୁହ୍॰ ଧାତୁ+କର୍ତ୍ତ୍ରି. ଅକ; ଯାହା ଉପରେ
Surūhaka ସୁଖରେ ଆରୋହଣ କରାଯାଏ)—ଗର୍ଦ୍ଦଭ (ହେମଚନ୍ଦ୍ର); ଖଚର—Mule.

ସୁରେଇ—ବୈଦେ॰ ବି (ଫା)—ସୁରାଇ (ଦେଖ)—Surāi (See)
Surei ପ୍ରାଦେ (ଗଞ୍ଜାମ) ବି—ଝରି—A spouted jug.

ସୁରେଖ—ସଂ. ବିଣ ( ସୁ+ରେଖା )—୧ । ସୁନ୍ଦର ରେଖାଯୁକ୍ତ—
Surekha 1. Having beautiful lines. ୨ । ସୁନ୍ଦର—
(ସୁରେଖା—ସ୍ତ୍ରୀ) 2. Beautiful. ( ଦ୍ର—ସୁନ୍ଦର ସସ୍ମିତ ହାସ ମୁଖ, କୁଟିଳ କୁନ୍ତଳ ସୁରେଖ । ଜଗନ୍ନାଥ. ଭାଗବତ । )
ଦେ. ବି—ଗଞ୍ଜପା ସାରର ସୂର୍ଯ୍ୟରଙ୍ଗ—A pale blue colour used in painting the 'sun' cards of 'Ganjapā'.

ସୁରେଖା—ସଂ. ବିଣ. ସ୍ତ୍ରୀ—ସୁରେଖର ସ୍ତ୍ରୀଲିଙ୍ଗ—Feminine of
Surekhā Surekha. ସଂ. ବି—୧ । ସୁନ୍ଦର ରେଖା—1. Good line. ୨ । ହାତଗୋଡ଼ରେ ଥିବା ଶୁଭସୂଚକ ରେଖା (ହ. ଶ)—2. Auspicious lines in the hands and feet. ଦେ. ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—A name given to females.

ସୁରେଖିତ—ବି. ବିଣ—ଉତ୍ତମରୂପେ ରେଖା ଟଣା ଯାଇଥିବା—
Surekhita ସୁରେখাঙ্কিত सुरेखित Well-lined.
(ଉ—ସୁରେଖିତ ଅଳଙ୍କାରଭାଷଣ ଦେଖିଲେ ରଞ୍ଜଇ ମନ । ପ୍ରାଚୀ, ଇସବାଭୁଥ ।)

ସୁରେଜ୍ୟ—ସଂ. ବି. ପୁଂ ( ସୁର+ଇଜ୍ୟ=ପୂଜ୍ୟ )—ସୁରଗୁରୁ;
Surejya ବୃହସ୍ପତି—Bruhaspati, the preceptor of the gods. ବିଣ. ପୁଂ (ଷଷ୍ଠୀ ତତ୍)—ଦେବତାମାନଙ୍କ (ସୁରେଜ୍ୟା—ସ୍ତ୍ରୀ) ପୂଜ୍ୟ; ଦେବପୂଜ୍ୟ—Adorable or honoured by the gods.

ସୁରେଜ୍ୟା—ସଂ. ବିଣ, ସ୍ତ୍ରୀ—ସୁରେଜ୍ୟର ସ୍ତ୍ରୀଲିଙ୍ଗ—Feminine of
Surejyā Surejya. ବି—୧ । ତୁଳସୀ (ପ୍ରଚଳିତ ଶବ୍ଦ)—
1. The holy Basil plant. ୨ । ବ୍ରାହ୍ମୀ (ଦ୍ର.ଶ)—
2. Brāhmi (See)

ସୁରେଣୁ—ସଂ. ବି—୧ । ତ୍ରସରେଣୁ (ଦ୍ର. ଶ)—1. Particle or
Surenu speck of dust. ୨ । (ପୁଂ) (ନାମ) ଏକ ପ୍ରାଚୀନ ରାଜା (ଦ୍ର. ଶ)—2. Name of a king of ancient India. ୩ । (ସ୍ତ୍ରୀ) ତ୍ୱଷ୍ଟାଙ୍କ କନ୍ୟା ଓ ବିବସ୍ୱାନ୍‌ଙ୍କ ପତ୍ନୀ—3. Name of a wife of Bibaswān. ୪ । (ସ୍ତ୍ରୀ) ପୌରାଣିକ ନଦୀ ବିଶେଷ—
4. Name of mythological river.

ସୁରେତର—ସଂ. ବି ( ୫ମୀ ତତ୍; ସୁର+ଇତର)—ଅସୁର (ଦ୍ର. ଶ)
Suretara Demon.

ସୁରେତା—ସଂ. ବିଣ (ସୁ+ରେତସ୍; ବହୁବ୍ରୀହି; ୧ମା. ୧ବ)—ବହୁ-
Suretā ବୀର୍ଯ୍ୟବାନ୍, ବା ସାମର୍ଥ୍ୟବାନ୍ (ଦ୍ର. ଶ)—
Very mighty.

ସୁରେନ୍ଦ୍ର—ସଂ. ବି. ପୁଂ (୭ମୀ ତତ୍; ସୁର+ଇନ୍ଦ୍ର)—୧ । ଦେବେନ୍ଦ୍ର;
Surendra ବାସବ; ଇନ୍ଦ୍ର; ଦେବରାଜ—1. Indra; the king of the gods. ୨। ଲୋକପାଳ; ରାଜା(ଦ୍ର.ଶ)—
সুরেন্দ্র 2. King. ଦେ. ବି. ପୁଂ—ଲୋକଙ୍କ ନାମ—A name
सुरेन्द्र given to males.

ସୁରେନ୍ଦ୍ର କନ୍ଦ—ସଂ. ବି—ଜଙ୍ଗଲୀ ଓଲଅ (ଦ୍ର. ଶ)—
Surendra kanda Wild arum.
( ସୁରେନ୍ଦ୍ରକନ୍ଦ—ଅନ୍ୟରୂପ )

ସୁରେନ୍ଦ୍ର କୁମାର—ସଂ. ବି. ପୁଂ (୬ଷ୍ଠୀ ତତ୍)—ଇନ୍ଦ୍ରଙ୍କ ପୁତ୍ର—
Surendra kumāra The son of Indra. ଦେ.ବି. ପୁଂ—
ଲୋକଙ୍କ ନାମ—A name given to males.

ସୁରେନ୍ଦ୍ର ଗୋପ—ସଂ. ବି—ଇନ୍ଦ୍ରଗୋପ ପୋକ (ଦ୍ର. ଶ)—
Surendra gopa Cochineal insect.

ସୁରେନ୍ଦ୍ର ଚାପ—ସଂ. ବି—ଇନ୍ଦ୍ରଧନୁ—
Surendra chāpa Rainbow.

ସୁରେନ୍ଦ୍ରଜିତ—ସଂ. ବି (ସୁରେନ୍ଦ୍ର=ଇନ୍ଦ୍ର+ଜି, ଧାତୁ=ଜୟ
Surendrajit କରିବା+କର୍ତ୍ତୃ. କ୍ୱିପ୍)—୧ । ଇନ୍ଦ୍ରଜିତ୍; ରାବଣର ପୁତ୍ର; ମେଘନାଦ—1. Name of a son of 'Rābana'. ୨ । ଗରୁଡ଼ ( ବୃକ୍ଷାୟୁଧ )—
2. Garurda; the king of birds.

ସୁରେନ୍ଦ୍ରନାଥ ବନ୍ଦ୍ୟୋପାଧ୍ୟାୟ—ଦେ. ବି (ନାମ)—କଲିକତାର ପ୍ରସିଦ୍ଧ
Surendranātha bandopāddyāya ସ୍ୱର୍ଗୀୟ ବକ୍ତା ଓ ଦେଶ-
ସୁରେନ୍ଦ୍ରନାଥ ବାନାର୍ଜି } —ଅନ୍ୟରୂପ ହିତୈଷୀ—Name of
ସୁରେନ୍ଦ୍ରନାଥ ବାନୁର୍ଜି } the late famous patriot and orator of Bengal. [ ବ୍ର— ଏହାଙ୍କର ଜନ୍ମ ଖ୍ରୀ. ୧୮୪୮ ଓ ମୃତ୍ୟୁ ୧୯୨୫ ସାଲରେ; ଏ କଲିକତାରୁ ବି, ଏ ପାଶ୍ କରି ସିଭିଲ୍ ସର୍ଭିସ୍ ପରୀକ୍ଷା ଦେବା ପାଇଁ ବିଲାତ ଯାଇଥିଲେ ଓ ପରୀକ୍ଷା ପାଇଁ ନିର୍ଦ୍ଦିଷ୍ଟ ବୟସରୁ ଏହାଙ୍କ ବୟସ ଅଳ୍ପ ଥିବାରୁ ପ୍ରଥମେ ଗୋଳମାଳ ଘଟିଥିଲା; କିନ୍ତୁ ପରେ ଏ ଉକ୍ତ ପରୀକ୍ଷାରେ ପାଶ୍ କରି କେତେକ ଦିନ ସିଲହଟ୍‌ରେ ଅସିଷ୍ଟାଣ୍ଟ୍ ମାଜିଷ୍ଟ୍ରେଟ୍ ହୋଇ ପରେ ଉକ୍ତ ପଦରୁ ଅନ୍ତର ହୋଇଥିଲେ । ପରେ କଲିକତାର କେତେକ କଲେଜରେ ପ୍ରଫେସର କରି ସ୍ୱୟଂ ରିପନ୍ କଲେଜ୍ ନାମକ ଗୋଟିଏ କଲେଜ୍ ପ୍ରତିଷ୍ଠା କଲେ । ଏ ଛାତ୍ରମାନଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ ଓ ଛାତ୍ରମାନେ ମଧ୍ୟ ଏହାଙ୍କୁ ଦେବତା ତୁଲ୍ୟ ଭକ୍ତି କରୁଥିଲେ । ଏ ଇଣ୍ଡିଆନ୍ ଆସୋସିଏସନ୍ ନାମକ ଗୋଟିଏ ରାଜନୈତିକ ସମିତି ସ୍ଥାପନ କରି ଭାରତୀୟମାନଙ୍କ ରାଜନୈତିକ ଅଧିକାର ପାଇଁ ଆନ୍ଦୋଳନ କରିଥିଲେ । ଏ 'ବେଙ୍ଗଲୀ' ନାମକ ଗୋଟିଏ ଇଂରାଜୀ ସମ୍ବାଦପତ୍ର ସମ୍ପାଦନ କରୁଥିଲେ । ଭାରତରେ ଏ ଜଣେ ଅସାଧାରଣ ବାଗ୍ମୀ ଥିଲେ । ଭାରତବାସୀଙ୍କ ସ୍ୱାୟତ୍ତଶାସନାଦି ଅଧିକାର ପାଇଁ ଭାରତବ୍ୟାପୀ ନାନା ଆନ୍ଦୋଳନରେ ଏ ଅଗ୍ରଣୀ ହୋଇଥିଲେ ଓ ଏହି ଆନ୍ଦୋଳନ ପ୍ରସଙ୍ଗରେ ଇଂଲଣ୍ଡକୁ ଯାଇ ସେଠାରେ ମଧ୍ୟ ବକ୍ତୃତା କରିଥିଲେ । ବଙ୍ଗକୁ ଗଭର୍ଣ୍ଣମେଣ୍ଟ ୧୯୦୬ ସାଲରେ ଦୁଇଟି ପ୍ରଦେଶରେ ବିଭକ୍ତ କରିବା ଯୋଗୁଁ ଭାରତବ୍ୟାପୀ ଯେଉଁ ଆନ୍ଦୋଳନ ହୋଇଥିଲା, ସେଥିରେ ଏ ଜଣେ ପ୍ରଧାନ ନେତା ଥିଲେ । ଏ ଗଭର୍ଣ୍ଣମେଣ୍ଟଙ୍କ ଆଦେଶ ବିରୁଦ୍ଧରେ ବରିଶାଲର ପ୍ରାଦେଶିକ ସମ୍ମେଳନକୁ ଚଳାଇ ଥିବାରୁ ଗଭର୍ଣ୍ଣମେଣ୍ଟଙ୍କଦ୍ୱାରା ଧୃତ ହୋଇ ଦଣ୍ଡିତ ହୋଇଥିଲେ, କିନ୍ତୁ ହାଇକୋର୍ଟରେ ଅପିଲ କରି ଖଲାସ ହେଲେ । ସ୍ୱଦେଶୀ ଅନ୍ଦୋଳନ ସମେତ ବଙ୍ଗଦେଶର ସମସ୍ତ ରାଜନୈତିକ ଆନ୍ଦୋଳନରେ ଏ ନିର୍ଭିକଭାବରେ ଯୋଗ ଦେଇ ୫୦ ବର୍ଷକାଳ ଦେଶ-ସେବାରେ ଜୀବନକୁ ଉତ୍ସର୍ଗ କରିଥିଲେ । ଏ ମଧ୍ୟ ଭାରତୀୟ କଂଗ୍ରେସର ଜଣେ ପ୍ରଧାନ କର୍ମୀ ଥିଲେ; ବଡ଼ ଲାଟ ଓ ଛୋଟ ଲାଟଙ୍କ ବ୍ୟବସ୍ଥାପକ ସଭାରେ ଏକାଧିକ ଥର ମେମ୍ବର ହୋଇଥିଲେ ଏବଂ ମଣ୍ଟେଗୁ-ଚେମ୍ସ୍‌ଫୋର୍ଡ୍ ଶାସନ ସଂସ୍କାର ପ୍ରବର୍ତ୍ତିବା ପରେ ଏ ବଙ୍ଗପ୍ରଦେଶର ପ୍ରଥମ ମନ୍ତ୍ରୀ ହୋଇଥିଲେ । ]

ସୁରେନ୍ଦ୍ର ପୂଜ୍ୟ—ସଂ. ବିଣ. ପୁଂ ( ଷଷ୍ଠୀ ତତ୍ )—ଇନ୍ଦ୍ରଙ୍କ ପୂଜନୀୟ—
Surendra pūjya Adorable by Indra. ସଂ. ବି—
ବୃହସ୍ପତି—Bruhaspati.

ସୁରେନ୍ଦ୍ର ବଜ୍ରା—ସଂ. ବି - ବର୍ଣ୍ଣବୃତ୍ତବିଶେଷ; ଇନ୍ଦ୍ରବଜ୍ରା—Name of Surendra bajrā a Sanscrit metre. [ ବି—ଏଥିରେ ଦୁଇ ତଗଣ, ଏକ ଜଗଣ ଓ ଦୁଇଟି ଗୁରୁ ବର୍ଣ୍ଣ ଥାଏ । ]

ସୁରେନ୍ଦ୍ରବତୀ—ସଂ. ବି. ସ୍ତ୍ରୀ—ଶଚୀ; ଇନ୍ଦ୍ରାଣୀ ( ହି. ଶ )—Surendrabati The wife of Indra.

ସୁରେନ୍ଦ୍ର ବଟ—ସଂ. ବି—ଗୁଆଗଛ (ବିକାଣ୍ଡ ଶେଷ); ଏକପ୍ରକାର ଗୁଆ—Surendra baṭa A species of areca nut.

ସୁରେଭ—ସଂ ବି—୧ । ରଙ୍ଗ ନାମକ ଧାତୁ ( ତ୍ରିକାଣ୍ଡ ଶେଷ ); Surebha ଟିଣ—1. Tin; a metal. ୨ । ଦେବହସ୍ତୀ (ହି' ଶ )—2. An elephant used by the gods.

ସୁରେଶ—ସଂ ବି (ସୁର+ଈଶ; ୬ଷ୍ଠୀ ତତ୍)—୧ । ସୁରେନ୍ଦ୍ର (ଦେଖ)—Sureśa 1. Surendra ( See ) ୨ । ଶିବ (ହି. ଶ)—2. Śiba. ୩ । ବିଷ୍ଣୁ ( ହି. ଶ )—3. Bishṇu. ୪ । ଲୋକପାଳ ( ହି. ଶ )—4. The guardian Deities of the world. ଦେ. ବି. ( ପୁଂ )—ଲୋକଙ୍କ ନାମ—A name given to males.

ସୁରେଶ ଚନ୍ଦ୍ର (ପ୍ରସାଦ)—ଦେ. ବି ( ପୁଂ )—ଲୋକଙ୍କ ନାମ—Sureśa chandra (prasāda) A name given to সুবেশচন্দ্র (প্রসাদ) सुरेशचन्द्र (प्रसाद) males.

ସୁରେଶଚନ୍ଦ୍ର ବିଶ୍ୱାସ—ଦେ. ବି ( ନାମ )—ଜନୈକ ସ୍ୱର୍ଗତ ଖ୍ୟାତନାମା Sureśachandra biśwāsa ବଙ୍ଗୀୟ ବୀରପୁରୁଷ—Name of a late celebrated hero of Bengal. [ ବି—ଏ ବଙ୍ଗର କୃଷ୍ଣନଗରରେ ୧୮୬୧ ଖ୍ରୀ:ରେ ଜନ୍ମ ଗ୍ରହଣ କରିଥିଲେ ଓ ୧୯୦୫ରେ ପ୍ରାଣତ୍ୟାଗ କଲେ । ଏ କଲେଜରେ ପଢ଼ିବା ଅବସ୍ଥାରେ ଘରବାର ତ୍ୟାଗ କରି ଖ୍ରୀଷ୍ଟାନ ହୋଇଥିଲେ । ଏ ଇଂଲଣ୍ଡ, ଇଉରୋପ ଓ ଅମେରିକାର ନାନା ଦେଶ ବୁଲି ସର୍କସରେ ପଶୁମାନଙ୍କୁ ଶାସନ କରିବାରେ ବିଶେଷ ପଟୁତା ଦେଖାଇ ପରେ ଦକ୍ଷିଣ ଆମେରିକାର ବ୍ରାଜିଲ ରାଜ୍ୟରେ ସେନାବିଭାଗରେ ପ୍ରବେଶ କରି 'କର୍ପୋରାଲ' ଠାରୁ 'ଫାଷ୍ଟ ଲେଫ୍ଟନେଣ୍ଟ' ପଦ ପର୍ଯ୍ୟନ୍ତ ଉନ୍ନତି ଲାଭ କରିଥିଲେ । ଏ ବ୍ରାଜିଲ ଦେଶବାସୀ ଜଣେ ଶ୍ୱେତାଙ୍ଗ ଚିକିତ୍ସକଙ୍କ କନ୍ୟାଙ୍କୁ ବିବାହ କରି ଦକ୍ଷିଣ ଅମେରିକା ସ୍ଥିତ ରିଓ ଡି ଜେନେରୋ ନଗରରେ ୪୪ ବର୍ଷ ବୟସରେ ପରଲୋକ ଗମନ କଲେ । ଏ ଅଶ୍ୱ ଚିକିତ୍ସା ଓ ବିବିଧ ବିଜ୍ଞାନରେ ପାରଦର୍ଶୀ ଥିଲେ । ବିଦେଶରେ ଯୁଦ୍ଧବିଦ୍ୟାରେ ପାରଦର୍ଶିତା ଲାଭ କରି ବିଦେଶୀୟ ଗଭର୍ଣ୍ଣମେଣ୍ଟଠାରୁ ଉଚ୍ଚ ସୈନିକ ସମ୍ମାନ ଲାଭ କରିବାରେ ଏ ଭାରତବାସୀଙ୍କ ମଧ୍ୟରେ ଅଗ୍ରଗଣ୍ୟ । ]

ସୁରେଶଚନ୍ଦ୍ର ସମାଜପତି—ଦେ. ବି (ନାମ)—ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ Sureśachandra samājapati ସ୍ୱର୍ଗତ ଜ୍ୟେଷ୍ଠ ଜାମାତା—The late eldest son-in-law of Īśwara-chandra Bidyāsāgara ( a Bengalee author and writer ). [ ବି—ଏ ବଙ୍ଗର ଜଣେ ପ୍ରସିଦ୍ଧ ଗ୍ରନ୍ଥକାର, ପଣ୍ଡିତ ଓ ଲେଖକ, ବଙ୍ଗର ପ୍ରସିଦ୍ଧ 'ସାହିତ୍ୟ' ନାମକ ମାସିକ ପତ୍ରିକାର ଓ 'ବସୁମତୀ' ନାମକ ସାପ୍ତାହିକ ପତ୍ରିକାର ସମ୍ପାଦକ ଓ ସୁକ୍ରିପୂର୍ଣ ଲେଖକ ଓ ବକ୍ତା ଥିଲେ । ଏହାଙ୍କ ରଚନା ଅତି ମଧୁର ଓ ସରସ । ]

ସୁରେଶପ୍ରସାଦ ସର୍ବାଧିକାରୀ—ଦେ. ବି (ନାମ)—ବଙ୍ଗର ପ୍ରସିଦ୍ଧ ସ୍ୱର୍ଗୀୟ Sureśaprasāda sarbādhikārī ଡାକ୍ତର—Name of a late famous doctor of Bengal. [ ବି—ଏହାଙ୍କର ପିତା ମଧ୍ୟ ଜଣେ ଡାକ୍ତର ଥିଲେ । ଏ ବାଲ୍ୟକାଳରୁ ଅତି ବୁଦ୍ଧିମାନ ଥିଲେ । କଲିକତା ମେଡିକାଲ କଲେଜରୁ ଉତ୍ତୀର୍ଣ୍ଣ ହୋଇ ଏ ଅସ୍ତ୍ର ଚିକିତ୍ସାରେ ଅଲୌକିକ କୃତିତ୍ୱ ଦେଖାଇ ଇଉରୋପୀୟ ଗୁରୁମାନଙ୍କୁ ବିମୁଗ୍ଧ କରିଥିଲେ । ବିଲାତର ପ୍ରସିଦ୍ଧ ଡାକ୍ତରମାନେ ମୁକ୍ତକଣ୍ଠରେ ଏହାଙ୍କର ନୈପୁଣ୍ୟକୁ ପ୍ରଶଂସା କରୁଥିଲେ ।

ଏହାଙ୍କ ଚେଷ୍ଟାରେ ଡାକ୍ତର ନୀଳରତନ ସରକାର ପ୍ରମୁଖ ପ୍ରସିଦ୍ଧ ଚିକିତ୍ସକଗଣଙ୍କଦ୍ୱାରା ବଙ୍ଗରେ ଗୋଟିଏ ବେସରକାରୀ ଡାକ୍ତରୀ କଲେଜ ( College of Surgeons and Physicians of Bengal ) ପ୍ରତିଷ୍ଠିତ ହୋଇ ଭାରତବିଖ୍ୟାତ ହୋଇଅଛି । ଏ ଅସ୍ତ୍ରଚିକିତ୍ସା ଓ ଔଷଧଚିକିତ୍ସାରେ ସମାନ ଭାବରେ ପାରଙ୍ଗମ ଥିଲେ । ଏବଂ କଲିକତା ବିଶ୍ୱବିଦ୍ୟାଳୟର ଫେଲୋ ଓ ସିଣ୍ଡିକେଟ୍‌ର ମେମ୍ବର ମଧ୍ୟ ଥିଲେ ।]

ସୁରେଶୀ—ସଂ. ବି (ସୁର+ଈଶୀ)—ଦୁର୍ଗା—Sureśī Durgā.

ସୁରେଶ୍ଚନ୍ଦ୍ର—ଗ୍ରା. ବି—ସୁରେଶ ଚନ୍ଦ୍ର ନାମର ଅଶୁଦ୍ଧ ବନାନ ଓ Sureśchandra ଉଚ୍ଚାରଣ—Incorrect spelling of সুবেশ্চন্দ্র सुरेश चन्द्र the name Sureśa chandra.

ସୁରେଶ୍ୱର—ସଂ ବି. ପୁଂ ( ୬ଷ୍ଠୀ ତତ୍ )—୧ । ସୁରେନ୍ଦ୍ର ( ଦେଖ ) Sureśwara 1. Surendra ( See ) ୨ । ମହାଦେବ; ଶିବ—2. God; Śiba. ୩ । ବ୍ରହ୍ମା ( ହି. ଶ )—3. Brahmā.

ସୁରେଶ୍ୱର ରତ୍ନ—ସଂ ବି. ପୁଂ (୬ଷ୍ଠୀ ତତ୍)—ଇନ୍ଦ୍ର ନୀଳମଣି (ଦେଖ) Sureśwara ratna Indra nīlamaṇi ( See )

ସୁରେଶ୍ୱରୀ—ସଂ. ବି ( ୬ଷ୍ଠୀ ତତ୍ )—୧ । ଦୁର୍ଗା—1. Goddess Sureśwarī Durgā. ୨ । ସ୍ୱର୍ଗଗଙ୍ଗା (ଶବ୍ଦ ରତ୍ନାବଳୀ)—2. The Ganges of the heaven. ୩ । ଲକ୍ଷ୍ମୀ (ହି. ଶ)—3. Lakshmī. ୪ । ରାଧା (ହି. ଶ)—4. Rādhā.

ସୁରେଷ୍ଟ—ସଂ. ବି ( ୬ଷ୍ଠୀ ତତ୍; ସୁର=ଦେବ+ଇଷ୍ଟ=ପୂଜିତ )—Sureshṭa ୧ । ବକ ବା ବଗଫୁଲ ବା ଅଗସ୍ତି ଗଛ—1. Sesbania Grandifloria. ୨ । ଶାଳ (ବୃକ୍ଷ ବର୍ଣ୍ଣିତ)—2. The Sal tree. ୩ । ସୁରପୁନ୍ନାଗ (ବୃକ୍ଷ ବର୍ଣ୍ଣିତ); ହୁଲିଅଳା—3. Ochrocarpus Longifolius (flowering tree). ୪ । ଶିବମଲ୍ଲୀ (ବୃକ୍ଷ

କର୍ଣ୍ଣ); ବଡ଼ ବଉଳ ଫୁଲର ଗଛ (ଚୁ. ଗ) — 4. The large-flowered variety of Bakula.

ସୁରେଷ୍ଟା — ସଂ. ବି. ସ୍ତ୍ରୀ ... + ଆ) — ବ୍ରାହ୍ମୀ (ଶାକବର୍ଣ୍ଣ) (ଦେଖ)
Sureshta — Prahmi (See)

ସୁରେ ସୁରେ — ପ୍ରାଦେ (କଲଗଙ୍ଗ ... ) କ୍ରି. ବିଣ — ଅଳ୍ପ ଦୂରରେ
Sure sure — At a short distance; at short distances.

ସୁରେହା — ଗ୍ରା. ବି (ସଂ. ସ୍ପୃହା) — ସ୍ପୃହା; ଲାଳସା — Hankering.
Sureha — ବିଣ — ସୁରେହି (ଦେଖ) — Surehi (See)
স্পৃহা स्पृहा

ସୁରେହି — ଗ୍ରା. ବିଣ. ପୁଂ (ସଂ. ସ୍ପୃହା) — ୧ । ସ୍ପୃହାଯୁକ୍ତ; ଲାଳାୟିତ —
Surehi — 1. Hankering after a thing. ୨ । ଅନୁରାଗଯୁକ୍ତ — 2. Attached to; addicted to.
স্পৃহাযুক্ত स्पृहायुक्त (ସୁରେହୀ — ସ୍ତ୍ରୀ) ୩ । ସୁରାଇ (ଦେଖ) 3. Surai (See)

ସୁରେଇବା — ଦେ. କ୍ରି — ସୁରେଇବା (ଦେଖ)
Surehiba — Sureiba (See)

ସୁରେଇ — ସଂ. ବି (ସୁ + ରୈ = ଧନ ଯାହାର) — ଐଶ୍ୱର୍ଯ୍ୟଶାଳୀ; ଧନୀ —
Surai — Rich; affluent. ବୈଦେ. ବି — ସୁରାଇ (ଦେଖ)
সোরাই सुराही — Surai (See)

ସୁରେଚନା — ସଂ. ଚ. ସ୍ତ୍ରୀ (ନାମ) — କାର୍ତ୍ତିକେୟଙ୍କର ଏକ ମାତୃକା —
Surochana — Name of a mother of Karttikeya.

ସୁରୋତ୍ତମ — ସଂ. ବିଣ (ସୁର + ଉତ୍ତମ; ୭ମୀ ତତ୍) — ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ —
Surottama — Chief amongst the gods.
ବି — ୧ । ସୂର୍ଯ୍ୟ (ଶବ୍ଦକଳ୍ପଦ୍ରୁମ) — 1. The sun. ୨ । ବିଷ୍ଣୁ (ବୁ. ଶ) — 2. Bishnu.

ସୁରୋତ୍ତର — ସଂ. ବି — ଚନ୍ଦନ (ଶବ୍ଦଚନ୍ଦ୍ରିକା) —
Surottara — Sandal.

ସୁରୋଦ — ସଂ. ବି (ମ. ଷ. କ୍ଳେ; ସୁରା + ଉଦ = ଜଳ) — ହିନ୍ଦୁ ପୁରାଣୋକ୍ତ ସୁରା ସମୁଦ୍ର — The mythological ocean of wine.
Suroda
(ସୁରୋଦକ, ସୁରୋଦଧି — ଅନ୍ୟରୂପ)

ସୁରୋମା — ସଂ. ବିଣ (ପୁଂ ଓ ସ୍ତ୍ରୀ) (ସୁ + ରୋମନ୍; ୧ମା. ୧ବ) —
Suroma — ଉତ୍ତମ ବା ସୁନ୍ଦର ଲୋମବିଶିଷ୍ଟ — Having good fur. ସଂ. ବି - ଯଜ୍ଞବିଶେଷ (ହ ଶ) —
A kind of vedic sacrifice.

ସୁରୌକା — ସଂ. ବି (୬ଷ୍ଠୀ ତତ୍; ସୁର + ଓକସ୍ = ଗୃହ; ସୁରୌକସ୍;
Suraukā — ୧ମା. ୧ବ) — ୧ । ସ୍ୱର୍ଗ — Heaven. ୨। ଦେବମନ୍ଦିର — 2. Temple.

ସୁର୍କା(ର୍ଖା) — ବୈଦେ. ବି (ଫା. ସୁର୍ଖ୍ = ନାଲିଆ) — ନାଲି ରଙ୍ଗର ପାରା —
Surkā(rkhā) — Pigeon of red colour.
সুর্কাপায়রা सुर्खा

ସୁର୍କି — ବୈଦେ. ବି — (ଫା. ସୁର୍ଖୀ = ଇଟାଗୁଣ୍ଡି) — ସୁରୁକି (ଦେଖ)
Surki — Suruki (See)

ସୁର୍କୁଟା (ଇତ୍ୟାଦ) — ଦେ. ବିଣ — ସୁରୁକୁଟା ଇତ୍ୟାଦ (ଦେଖ)
Surkuṭā (etc) — Surukuṭā etc (See)

ସୁର୍ଗୁଡ଼ା — ଦେ. ବିଣ — ସୁରୁଗୁଡ଼ା (ଦେଖ)
Surgurdā — Surugurdā (See)

ସୁର୍ଚ - ଗ୍ରା. ବି (ସଂ. ସ୍ରୁଚ) — ସ୍ରୁଚ (ଦେଖ)
Surcha — Srucha (See)

ସୁର୍ତା — ପ୍ରାଦେ. (ଗଞ୍ଜାମ) ବି (ଭୁଲ. ହ୍ରୀ. ସରୌତା) — ଗୁଆକାଟି — ...
Surtā — Nut-cracker.

ସୁର୍ତା କରିବା — ପ୍ରାଦେ. (କଲଗଙ୍ଗ ପାଠଶା) କ୍ରି (ସଂ. ସ୍ମୃତି) —
Surtā kariba — ମନେ କରିବା — To recollect.
মনে করা याद करना

ସୁର୍ତି — ବୈଦେ. ବି (ପର୍ତୁଗୀଜ୍) — ସୁରୁତି (ଦେଖ)
Surti — Suruti (See)

ସୁର୍ବ — ଗ୍ରା. ବି (ସଂ. ସ୍ରୁବ) — ସ୍ରୁବ (ଦେଖ)
Surba — Sruba (See)

ସୁର୍ବୁଲି — ଦେ. ବି — ସୁରୁବୁଲି (ଦେଖ)
Surbuli — Surubuli (See)

ସୁର୍ମା (ଇତ୍ୟାଦ) — ବୈଦେ. ବି — ସୁରୁମା ଇତ୍ୟାଦ (ଦେଖ)
Surmā (etc) — Surumā etc (See)

ସୁର୍ଷି — ଦେ. ବି (ସଂ. ସୁର୍ଷିର) — କୁହୁଣ୍ଡା; କବାଟର ଶିକୁଳିକୁ ଚଉକାଠରେ ଅଟକାଇବା ପାଇଁ ବ୍ୟବହୃତ ଅର୍ଦ୍ଧଚନ୍ଦ୍ରାକୃତି ଲୌହ — The semi-circular bit or loop of iron to which the chain of a door or box is attached when the door or box is closed; staple.
Surshi
সুর্ষি कुलावा

ସୁର୍ଷିଆ ମାଳ — ପ୍ରାଦେ. (ସମ୍ବଲପୁର) ବି — ସୋରିଷିଆ ମାଳ; ସୋରିଷ ପରି ଛୋଟ ଦାନାଯୁକ୍ତ ହାର — A necklace with small beads like mustard seeds.
Surshiā māl

ସୁର୍ଷୋ — ପ୍ରାଦେ. (କଲଗଙ୍ଗ ପାଠଶା) ବି — ୧ । ସୋରିଷ ତେଲ —
Sursho — 1. Mustard oil. ୨ । ସୋରିଷ — 2. Mustard seed.

ସୁର୍ସାର୍ — ଦେ. ବି ଓ ବିଣ — ସୁର୍‌ସାର୍ (ଦେଖ)
Sursār — Sur-sār (See)

ସୁର୍ସୁର(ରୁ) — ଦେ. ଅ — ସୁରୁସୁରୁ (ଦେଖ)
Sursur(ru) — Surusuru (See)

ସୁଲ୍‌କି — ପ୍ରାଦେ. (ସମ୍ବଲପୁର) ବି — ୧ । ସଙ୍କୀର୍ଣ୍ଣସ୍ଥାନ — 1. Narrow place. ୨ । ଦୁଇ ଘରର ମଝିରେ ଥିବା ଗଳି ବା ସନ୍ଧି — 2. A narrow lane or space between two houses.
Sul-ki

ସୁଲ୍‌ଖୁଲ୍ — ଗ୍ରା. ବିଣ — ସୁରୁଖୁରୁ (ଦେଖ)
Sul-khul — Surukhuru (See)

ସୁଲ୍‌ତାନ୍ — ବୈଦେ. ବି (ଆ) — ସୁଲତାନ୍ (ଦେଖ)
Sul-tān — Sulatān (See)

ସୁଲ୍‌ତାନା — ବୈଦେ. ବି (ଫା) — ସୁଲତାନା (ଦେଖ)
Sul-tānā — Sulatānā (See)

ସୁଲ୍‌ତାନି (ଇତ୍ୟାଦ) — ବୈଦେ. ବି ଓ ବିଣ (ଫା) — ସୁଲତାନି ଇତ୍ୟାଦ (ଦେଖ) — Sulatāni etc (See)
Sul-tāni (etc)

ସୁଲ୍‌ସୁଲ୍—ଦେ. ଅ—ସୁଲୁସୁଲୁ (ଦେଖ)
Sul-sul    Sulusulu ( See )

ସୁଲ୍‌ସୁଲି—ପ୍ରାଦେ. (ସମ୍ବଲପୁର) ବ—ସଙ୍କୀର୍ଣ୍ଣ ପଥ—
Sul-suli    A narrow path or way.

ସୁଲ୍‌ସୁଲେଇବା—ପ୍ରାଦେ (ସମ୍ବଲପୁର) କ୍ରି—କୁଣ୍ଡେଇବା—To
Sul-suleibā    scratch for the purpose of relieving itching.

ସୁଲ—ପ୍ରାଦେ (ବାଲେଶ୍ୱର) ବ—୧ । ସୋଲ—1. Indian
Sula    cork plant; Aechynomene Aspera.
[ଉ—ସୁଲ ଜଣ ନାଁ, ପୋଖରୀରେ ହୁଏ; ଚୁନା ଚକୁଳି ପିଠା ହୁଏ—ଫକୀରମୋହନ. ଗଳ୍ପସ୍ୱଳ୍ପ ।] ୨ । ସୁଲକ୍ଷଣା ବା ସୁଲୋଚନା ନାମକ ସ୍ତ୍ରୀର ଡାକ ନାମ—2. Nick-name of a woman named Sulakshaṇā or Sulochanā.

ସୁଲ(ଲି) (ଇତ୍ୟାଦି)—ଗ୍ରା. ବ—ଶୁଲ (ଳି) ଇତ୍ୟାଦି (ଦେଖ)
Sula(li) (etc)    Sula(li) etc. ( See )

ସୁଲକ୍ଷଣ—ସଂ. ବ (କର୍ମଧା)—୧ । ଉତ୍ତମ ଲକ୍ଷଣ—1. Good or
Sulakshaṇa    characteristic sign. ୨ । ଶୁଭସୂଚକ
(ସୁଲକ୍ଷଣା—ସ୍ତ୍ରୀ)    ଲକ୍ଷଣ—2. Auspicious sign. ବଣ. ପୁଂ (ବହୁବ୍ରୀହି)—୧ । ଶୁଭ ବା ଉତ୍ତମ ଲକ୍ଷଣଯୁକ୍ତ—1. Having auspicious or characteristic signs. ୨ । ଭାଗ୍ୟବାନ୍ (ହି. ଶ)—2. Fortunate.

ସୁଲକ୍ଷଣ ବନ୍ତ—ଦେ. ବଣ (ସଂ. ସୁଲକ୍ଷଣବାନ୍)—ସୁଲକ୍ଷଣଯୁକ୍ତ—
Sulakhaṇa banta    Having good signs.
(ସୁଲକ୍ଷଣବନ୍ତୀ—ସ୍ତ୍ରୀ)

ସୁଲକ୍ଷଣା—ସଂ. ବଣ. ସ୍ତ୍ରୀ (ସୁଲକ୍ଷଣ+ସ୍ତ୍ରୀ. ଆ)—ସୁଲକ୍ଷଣର ସ୍ତ୍ରୀଲିଙ୍ଗ—
Sulakshaṇā    Feminine of Sulakshaṇa.
ବ. ସ୍ତ୍ରୀ (ନାମ)—ଉମାଙ୍କର ସଖୀବିଶେଷ—Name of a female companion of Pārbati in her girl-hood. ଦେ. ବ. ସ୍ତ୍ରୀ—ସ୍ତ୍ରୀ ଲୋକଙ୍କ ନାମ—A name given to females.

ସୁଲକ୍ଷଣାକ୍ରାନ୍ତ—ସଂ. ବଣ (ତୃତୀୟା ତତ୍)—ସୁଲକ୍ଷଣ ଦ୍ୱାରା ଯୁକ୍ତ—
Sulakshaṇākrānta    Having good or auspicious signs.
(ସୁଲକ୍ଷଣାକ୍ରାନ୍ତା—ସ୍ତ୍ରୀ)

ସୁଲକ୍ଷଣା ଦେଈ—ଦେ. ବ (ନାମ)—ଢେଙ୍କାନାଳର ସୁଯୋଗ୍ୟ ସନ୍ତାନ
Sulakshaṇā dei    ସ୍ୱର୍ଗୀୟ ଦାମୋଦର ପଟ୍ଟନାୟକଙ୍କ ମାତା—
Name of the Oriya authoress of a poem Pārijāta Mālā. [ଦ୍ର—ଏ ବଇଶଦୁଲରେ ଜନ୍ମିଥିଲେ । ଏହାଙ୍କ ରଚିତ 'ପାରିଜାତମାଳା' ନାମକ କବିତା-ପୁସ୍ତକରେ ଶ୍ରୀ ଜଗନ୍ନାଥ ଦେବଙ୍କ ଲୀଳା ଓ ଉତ୍ସବ ଅଦ୍ଭୁତ ବର୍ଣ୍ଣିତ ହୋଇଅଛି । ଏହି ପୁସ୍ତକଟି ଭକ୍ତିରସରେ ପୂର୍ଣ୍ଣ ।]

ସୁଲକ୍ଷଣୀ—ଦେ. ବଣ. ସ୍ତ୍ରୀ (ସଂ. ସୁଲକ୍ଷଣା)—୧ । ସୁଲକ୍ଷଣ ଯୁକ୍ତା (ସ୍ତ୍ରୀ)—
Sulakshaṇi    1. (female) Having good signs.
সুলক্ষণী    [ଉ—ଦୁଃଖରେ ତୁମ୍ଭ ପର ରହିଲେ ସୁଲକ୍ଷଣୀ ।
सुलक्षणी    କୃଷ୍ଣସିଂହ. ମହାଭାରତ. ଅଦ ।] ୨ । ସୌଭାଗ୍ୟବତୀ—
2. Fortunate (woman). ବ—ସ୍ତ୍ରୀ ଲୋକଙ୍କ ନାମ—A name given to females.

ସୁଲକ୍ଷ୍ମୀ—ଦେ. ବଣ. ସ୍ତ୍ରୀ—ସୌଭାଗ୍ୟବତୀ—Fortunate. [ଉ—
Sulakshmī    ସୁଲକ୍ଷ୍ମୀ ଝିଅ ନବଯୁବା, ଚୋରେ ସେ କରୁଥାଇ ସେବା । ଦ୍ୱାରୀ. ଭଗ୍ନ ମାହାତ୍ମ୍ୟ ।]

ସୁଲଗ୍ନ—ସଂ. ବ—ଉତ୍ତମ ବା ଶୁଭ ଲଗ୍ନ—Good or auspicious
Sulagna    Lagna. ସଂ. ବଣ (ବହୁବ୍ରୀହି)—୧ । ଉତ୍ତମ ଲଗ୍ନଯୁକ୍ତ—1. Having auspicious Lagna. ୨ । ଅତି ଦୃଢ଼ ରୂପେ ଲଗ୍ନ ବା ସଂଯୁକ୍ତ—2. Very firmly attached.

ସୁଲଚନା—ଗ୍ରା. ବ. ସ୍ତ୍ରୀ—ସୁଲୋଚନାର ଅଶୁଦ୍ଧ ଉଚ୍ଚାରଣ—
Sulachanā    Wrong pronunciation of the name Sulochanā.

ସୁଲତାନ୍—ବୈଦେ. ବ. ପୁଂ (ଆରବୀ ଓ ଫାର୍ସୀ ସୁଲ୍‌ତାନ୍ ଶବ୍ଦ; ଏ
Sulatān    ଶବ୍ଦ ସଂସ୍କୃତରେ 'ସୁରତ୍ରାଣ' ଆକାର ଧାରଣ କରିଅଛି)
(ସୁଲତାନା—ସ୍ତ୍ରୀ)    —୧ । ମୁସଲ୍‌ମାନ୍ ସମ୍ରାଟ୍; ବାଦ୍‌ଶାହା—
সুলতান    1. Mahomedan name for an emperor;
सुलतान    Sultan. [ଦ୍ର—ତୁର୍କୀର ପୂର୍ବତନ ସମ୍ରାଟଙ୍କୁ ସୁଲତାନ୍ ବୋଲି ଡାକୁଥିଲେ । ଏ ଶବ୍ଦ ଇଂରାଜୀ ଭାଷାରେ ଅବିକଳ ହୋଇ ଚଳେ ।] ୨ । ମୁସଲ୍‌ମାନ୍‌ମାନଙ୍କ ନାମବିଶେଷ—2. A name given to Mahomedan males.

ସୁଲତାନତ୍—ବୈଦେ. ବ (ଫା. ସୁଲ୍‌ତାନତ୍)—୧ । ସୁଲତାନଙ୍କ
Sulatānat    ଅଧିକାର ବା ଅବସ୍ଥା ବା ପଦ—1. Sovereignty;
সুলতানী    sultanate. ୨ ସାମ୍ରାଜ୍ୟ—2. Empire.
सुलतानी

ସୁଲତାନା—ବୈଦେ. ବ. ସ୍ତ୍ରୀ (ଫା)—୧ । ସମ୍ରାଟ୍ ପତ୍ନୀ—1. Wife
Sulatānā    of the emperor. ୨। ସମ୍ରାଜ୍ଞୀ—2. Empress.
সুলতানা सुलताना

ସୁଲତାନି—ବୈଦେ. ବ (ଫା)—ସୁଲତାନଙ୍କ କର୍ମ ବା ପଦବୀ—
Sulatāni    Sovereignty. ବଣ—୧ । ସୁଲତାନ୍ ସମ୍ବନ୍ଧୀୟ
সুলতানী    —1. Relating to Sultan. ୨ । ସୁଲତାନଙ୍କ
सुलतानी    ଯୋଗ୍ୟ—2. Befitting a Sultan.

ସୁଲତାନିଆ—ଦେ. ବଣ (ଫା. ସୁଲତାନୀ)—ସୁଲତାନ ସମ୍ବନ୍ଧୀୟ—
Sulatāniā    Relating to Sultans.
সুলতানি सुलतानी

ସୁଲତାନି ଚମ୍ପା—ଦେ. ବ (ଅକ୍ଷରିକ ଅର୍ଥ-ସମ୍ରାଟ୍ ଯୋଗ୍ୟ ଚମ୍ପକପୁଷ୍ପ)-
Sultāni champā    ୧। ସୁରପୁନ୍ନାଗ ବୃକ୍ଷ ଓ ଫୁଲ; ଭୁରଅନା—
সুলতানি চাঁপা    1. Ochrocarpus Longifolius (tree.)
सुलतानीचंपा    ୨। ପୁନ୍ନାଗ; ପୁନ୍ନାଗ (ଗଛ ଓ ଫୁଲ)—2. Mast-wood; Alexandrian laurel.

ସୁଲ(ଲ୍)ଫା—ବୈଦେ. ବ (ଫା. ସୁଲ୍‌ଫହ୍)—ସେଉଁ ଧୂଆଁ ପତ୍ରକୁ
Sula(l)phā    ଗଞ୍ଜେଇ ପରି ବଳି କରି ଚିଲମରେ ଭରି ଧୂମ୍ର ପାନ

ତାମାଖ କଚଡ଼ା ଏ—Tobacco leaves which are
**सुलफा** crushed and put in the chilam and smoked.

ସୁଲଭ—ସ. ବଣ ( ସୁ=ସହଜରେ+ଲଭ୍ ଧାତୁ+କର୍ମ. ଅ )—
Sulabha ୧ । ଅନାୟାସଲଭ୍ୟ; ସହଜପ୍ରାପ୍ୟ—1. Easily
(ସୁଲଭା—ସ୍ତ୍ରୀ) available. [ଦୃ—ଗଙ୍ଗା ଯମୁନାଙ୍କ ସଙ୍ଗମେ
(ଦୁର୍ଲଭ—ବିପରୀତ) ଯେ ବୃନ୍ଦଭୂ, ତାଣ ସବୁ କଥା ସୁଲଭ ତାହୁ
[ସୁଲଭତା(ତ୍ୱ)—ବ] ଅଛୁ । କୃଷ୍ଣସିଂହ ମହାଭାରତ. ବନ ।] ୨ ।
ସସ୍ତା—2. Cheap. [ଦୃ—ଏ ସକାଶେଁ ସମସ୍ତଙ୍କୁ ଦେଲେ
ସେ ସୁଲଭ । କୃଷ୍ଣସିଂହ. ମହାଭାରତ. ସଭା ।] ୩ । ଅଯତ୍ନ-
ସିଦ୍ଧ—3. Easily accomplished. ୪ । ସହଜ—
ଶୁଭ 4. Easy. ଦେ. ବଣ—୧ । ଶୁଭସୂଚକ—
**सुखकर** 1. Auspicious. ୨ । ସୌଭାଗ୍ୟମୟ—2. Lucky.
୩ । ସୁଖକର; ସୁଖଦାୟକ—3. Pleasant. [ଦୃ—
ପିତା ମାତା ତୋର ଭାଇ ବାନ୍ଧବ, ସବୁର ଦୁଲଂଁ ଅଛି
ଶୋଭା ସୁଲଭ—ଭଗ ।] ବ—୧ । ସୌନ୍ଦର୍ଯ୍ୟ; ଶୋଭା—
**सुन्दरता** 1. Beauty. [ଦୃ—ଏଥ ସକାଶେଁ ଟୁକ ଅଗୃତ ହୋଇ
ନଦ, ଭାଙ୍ଗି ଦେଲ ଚନ୍ଦ୍ର ନଇଦ ସୁଲଭ । କୃଷ୍ଣସିଂହ. ମହା-
ଭାରତ. ବନ ।] ୨ । ସୁଖ—2. Pleasure; happi-
ସୁଖ ness. [ଦୃ—ଏବେ ତୁମ୍ଭେ ପଇଲୁ ପାଇ ସୁଖ ଲଭ,
**सुख** ମୋ ଶିଷ୍ୟମାନଙ୍କର କରାଇ ସୁଲଭ । କୃଷ୍ଣସିଂହ. ମହାଭାରତ. ଶଲ୍ୟ ।]

ସୁଲଭା—ସ. ବ ( ବୈଦ୍ୟକ ) ( ସୁଲଭ+ଆ )—୧ । ତୁଳସୀ—
Sulabhā 1. The holy basil plant. ୨ । ମାଷପର୍ଣ୍ଣୀ
(ଦେଖ)—2. Māsaparnṇī ( See ) ୩ । ଧୂମ୍ର-
ପତ୍ରୀ; ତମାଖୁ—3. Tobacco. ୪ । ମଲ୍ଲିଫୁଲ (ହି.
ଶ )—4. Jasminun Zambac. ୫ । ( ନାମ )
ବୈଦିକ କାଳର ଏକ ବ୍ରହ୍ମବାଦିନୀ ସ୍ତ୍ରୀ ( ହି. ଶ )—
5. Name of a spiritualist lady of the
vedic age. ସ. ବଣ. ସ୍ତ୍ରୀ—ସୁଲଭର ସ୍ତ୍ରୀଲିଙ୍ଗ—
Feminine of Sulabha.

ସୁଲଭେତର—ସ. ବଣ—୧ । ଦୁର୍ଲଭ—1. Not easily avail-
Sulabhetara able. ୨ । କଠିନ—2. Difficult. ୩ ।
ମହାର୍ଘ—3. Dear ( in price ).

ସୁଲଭ୍ୟ—ସ. ବଣ ( ସୁ+ଲଭ ଧାତୁ+କର୍ମ. ଯ )—ସୁଲଭ—
Sulabhya Easily attainable.
( ସୁଲଭ୍ୟା—ସ୍ତ୍ରୀ ) (ସୁଲଭ୍ୟତା—ବ)

ସୁଲଳିତ—ସ. ବଣ—୧ । ଅତି ସୁନ୍ଦର—1. Very beautful.
Sulalita ୨ । ଅତି ମଧୁର—2. Very sweet. ୩ । ଅତି
(ସୁଲଳିତା—ସ୍ତ୍ରୀ) କୋମଳ—3. Very soft. ୪ । ଅତ୍ୟନ୍ତ
(ସୁଲଳିତତ୍ୱ—ବ) ଶ୍ରୁତିମଧୁର—4. Very sweet to the ear.

ସୁଲା—ବୈଦେ. ବ ( କଚେରୀ ) ( ଅ. ସୁଲହ୍ )—୧ । ବିବାଦର
Sulā ଅପୋଷ ମୀମାଂସା—1. Amicable settlement
ସୁଲା of a dispute. ୨ । ଦୁଇ ରାଜାଙ୍କ ମଧ୍ୟରେ ସନ୍ଧି—
**सुलह** 2. Treaty.

ସୁଲଗି—ଦେ. ବ—୧ । ଭଲ ଦ୍ରବ୍ୟ—1. Good thing. ୨ ।
Sulāgi ପ୍ରୟୋଜନୀୟ ଦ୍ରବ୍ୟ—2. Useful article. [ଦୃ—
ଭାଲ ଜିନିଶ ସୁଲଗି କଲର ପ୍ରାଏ ଅସତ୍ତ୍ୱର ଗର୍ବ, ସୁଲଗି ପକାଇ
**अाच्छी चीज** ସେ ଅଲଗି ରଖେ ସବୁ—ପ୍ରାଚୀ. ଉତ୍ତରୀୟମଞ୍ଜରୀ । ]

ସୁଲାନାମା—ବୈଦେ. ବ ( କଚେରୀ ) ( ଫା. ସୁଲହ୍ ନାମହ୍ )—
Sulānāmā ୧ । ରଫାନାମା—1. Deed of amicable
ସୁଲାନାମା settlement. ୨ । ସନ୍ଧିପତ୍ର—
**सुलह नामा** 2. A document embodying a treaty.

ସୁଲା ମାଉଁସ—ପ୍ରାଦେ. ( କଳାହାଣ୍ଡିର ପାଟଣା ) ବ—ଶୁଖା ହୋଇଥିବା
Sulā māuṅsa ମାଂସ—Dried meat.

ସୁଲିଆ—ଦେ. ବ (ନାମ)—ଓଡ଼ିଶାର ନୟାଗଡ଼ର ପର୍ବତବିଶେଷ—Name of a
Suliā hill of Nayagarh State of Orissa. [ଦୃ—
ଏହା ନୟାଗଡ଼ ରାଜ୍ୟରେ ଅବସ୍ଥିତ । ଏହାର ଉଚ୍ଚତା
୨୨୩୯ ଫୁଟ୍ । ]

ସୁଲୁଆ—ପ୍ରାଦେ. ( ବୌଦ୍ଧ ) ବ—ଶୁଖିଲା ବାଇଗଣ—
Suluā Dried brinjal.

ସୁଲୁକା(କେ)ଇବା—ଦେ. କି—୧ । କାନ ମଧ୍ୟରେ କୁଟା ବା ପର
Suluka(ke)ibā ପକ୍ଷୀର ପର ପୂରାଇ ସଲସଲ କରିବା—1. To
ସୁଲକାନ tickle the ear with a feather. ୨ । ଉସୁ-
**सुलगाना** କାଇବା; କୌଣସି କଥାର ପ୍ରସଙ୍ଗକୁ ଉତ୍ଥାପନ କରିବା—
2. To initiate a controversy or discus-
sion. ୩ । ଗୋପନରେ ଉତ୍ତେଜିତ କରିବା—
3. To instigate a person secretly. ୪ ।
କାଠ ଅଗରେ ନିଆଁ ଧରାଇବା; ଜଳାଇବା—
4. To ignite ( wood ).

ସୁଲୁକିବା—ଦେ. କି ( ସ. ସୁ+ଲଗ୍ନ )—୧ । ( କାନ ଭିତର ) ସଲ
Sulukibā ସଲ ହେବା—1. (the ear-hole) To have a
ସୁଲକା tickling sensation. ୨ । ଉତ୍ତେଜିତ ହେବା
**सुलगना** —2. To be irritated. ୩ । ( କାଠରେ
ନିଆଁ ଧରିବାରୁ ତାହା ) ଜଳିବା—
3. To become ignited.

ସୁଳୁ(ଲୁ)ଖୁଳୁ(ଲୁ)—ଗ୍ରା. ବଣ—ସୁରୁଖୁରୁ ( ଦେଖ )—
Suḷu(lu)khuḷu(lu) Surukhuru ( See )

ସୁଲୁଙ୍ଗା—ଦେ. ବଣ—ଫୁଲିବା; ଶୋଥରେ ଫୁଲିବା ପରି (ମୁହଁ)—
Sulungā ଫୁଲା **सूजा** Swollen.

ସୁଲୁପ—ବୈଦେ. ବ ( ଇଂ. ସ୍ଲୁପ୍; ଡଚ୍, ସ୍ଲୁଅପ୍ )—ଏକ ମାସ୍ତୁଲିଆ
Sulup ଛୋଟ ଜାହାଜ—Sloop; one-masted ship.
ସୁଲୁପ [ ଦୃ—ଓଡ଼ିଶାରେ ବାଲେଶ୍ୱର ଉପକୂଳରେ ୧୦୦ ବର୍ଷ
**सुलुप** ପୂର୍ବେ ଜାହାଜ କାରବାର ଚଳୁଥିବା ବେଳେ ଏ ଶବ୍ଦ
ବ୍ୟବହୃତ ହେଉଥିଲା । ]

ସୁଲୁପୀ—ଦେ. ବି—ଦେବୀବିଶେଷ—1. Name of a popular
Sulupi Goddess. ୨ । ଯୋଗିନୀବିଶେଷ—2. Name of
ସୁଲୁପୀ a Jogini. [ ଦ୍ର—୬୪ ଜଣ ବାଳକା ଏକତ୍ର
ସୁଲୁପୀ ହେବା ଦେଖି ବର୍ଷୀୟସୀମାନେ ସେମାନଙ୍କୁ ଲକ୍ଷ୍ୟ କରି
ଉପ ବୋଲନ୍ତି—ଉଲୁପୀ, ସୁଲୁପୀ, କାଢଣଙ୍କ, ଖାଣ୍ଡି
କଳା । ]

ସୁଲୁସୁଲୁ(ଲୁ)—ଦେ. ଅ ( ଧ୍ୱନ୍ୟନୁକରଣ )—୧ । ପବନର ଧୀର-
Sulusul(lu) ଭାବରେ ବହିବାର ଅବସ୍ଥା ଓ ଶବ୍ଦ—1. The
সবসব state and sound of mild blowing of breeze.
धीरे धीरे [ ଦ୍ର—ସୁଲୁ ସୁଲୁ ପଶି ବହୁଛି ପବନ ଫୁଲରୁ ବାଟଗି
କରି—ନନ୍ଦକିଶୋର, ନିର୍ଝରିଣୀ ।] ୨ । ସଲ୍‌ସଲ୍ (ଦେଖ)
2. Sal-sal ( See )

ସୁଲୁସୁଲା(ଲେ)ଇବା—ଦେ.କ୍ରି—କାନରେ ବା ନାକରେ ପକ୍ଷୀର ପର ବା
Sulusulā(le)ibā କାଠି ପୂରାଇ ସଲସଲ କରିବା—To tickle
সুবসুব কবা the ear or nostril with a feather.
सुलुगाना

ସୁଲୁସୁଲା(ଲେ)ଇ ହେବା—ଦେ. କ୍ରି—(କାନ ଅବବ ଅଭ୍ୟନ୍ତରରେ)
Sulusulā (le)i hebā ସଲସଲ ବା ଚଲ୍ ଅନୁଭୂତ ହେବା—
সুবসুব কবা सुलसुलाना To feel ticklish

ସୁଲୁସୁଲିଆ—ଦେ. ବିଣ—ଧୀରଭାବରେ ବହୁଥିବା ( ପବନ )—.
Sulusuliā Mild ( breeze ). [ଯଥା—ସୁଲୁସୁଲିଆ ପ'ଅ ।]
ফুবফুবে धीरे धीरे चलने वाला

ସୁଲୂ—ସଂ. ବିଣ ( ପୁଂ ଓ ସ୍ତ୍ରୀ ) ( ସୁ+ଲୂ ଧାତୁ=ଛେଦନ କରିବା+
Sulū କର୍ତ୍ତି. କ୍ୱିପ୍ )—ଉତ୍କୃଷ୍ଟ ରୂପେ ଛେଦନକାରୀ—
Cutting excellently.

ସୁଲେ—ବୈଦେ ବି ( ଚଳିତ ) ( ଆ. ସୁଲହ୍ )—୧ । ବିବାଦର
Sule ଅପୋଷ ମୀମାଂସା; ରଫା—1. Amicable settle-
সোলে ment of a dispute ୨ । ଦୁଇ ରାଜାଙ୍କ ମଧ୍ୟରେ
सुलह ସନ୍ଧି—2. Treaty between two kings.

ସୁଲେଇ—ଦେ. ବି— ୧ । ଏକପ୍ରକାର ଜଳଚର ବିଷାକ୍ତ ଜୀବ—
Sulei 1. A species of aquatic poisonous ani-
mal. ୨ । ( ସଂ. ସୁଲୋଚନା ) ସ୍ତ୍ରୀଲୋକଙ୍କୁ ଦିଆଯିବା
ନାମ—2. A name given to females.

ସୁଲେଖକ—ସଂ. ବି. ପୁଂ—୧ । ଶ୍ରେଷ୍ଠ ଲିପିକର—1. Excellent
Sulekhaka writer. ୨ । ଉତ୍କୃଷ୍ଟ ପ୍ରବନ୍ଧରଚୟିତା—
(ସୁଲେଖିକା—ସ୍ତ୍ରୀ) 2. A good composer or author.

ସୁଲେନାମା—ବୈଦେ. ବି (ଚଳିତ) ( ପା=ସୁଲହ୍‌ନାମହ୍ )—
Sulenāmā ୧ । ରଫାନାମା; ଦୁଇ ଜଣଙ୍କ ବିବାଦର ଅପୋଷରେ
সুলেনামা ନିଷ୍ପତ୍ତି ହେବାର ନିଦର୍ଶନସ୍ୱରୂପ ଲେଖାଯିବା ଦଲିଲ—
सुलहनामा 1. A document embodying the terms
of an amicable settlement; deed of
compromise. ୨ । ସନ୍ଧି ପତ୍ର—2. A document
embodying a treaty.

ସୁଲେମାନ୍—ବୈଦେ. ବି (ଫା)—୧ । ମୁସଲମାନୀ ନାମ—1. A
Sulemān name given to Mahomedans;
সুলেমান্ Suleman. ୨ । ଇହୁଦୀମାନଙ୍କର ଏକ ପ୍ରାଚୀନ
सुलेमान ସମ୍ରାଟ୍—2. Suleman, an ancient Jewish
Emperor. [ଦ୍ର—ଏହାଙ୍କ ଜନ୍ମ ଖ୍ରୀ. ପୂର୍ବ ୧୦୩୩ ରେ
ଓ ମୃତ୍ୟୁ ଖ୍ରୀ. ପୂର୍ବ ୯୭୫ ରେ ହୋଇଥିବା କଥିତ ।
ଏହାଙ୍କୁ ଇହୁଦୀମାନେ ଜଣେ ଈଶ୍ୱରପ୍ରେରିତ ଦୂତ ବୋଲି
ମାନନ୍ତି । ଦେବତା, ପଶୁ ଓ ପକ୍ଷୀ ପକ୍ଷୀମାନଙ୍କୁ ଏ ବଶ
କରିଥିଲେ—ହି, ଶ ।] ୩ । ବେଲୁଚିସ୍ଥାନ ଓ ପଞ୍ଜାବର
ମଧ୍ୟରେ ଥିବା ଏକ ପର୍ବତଶ୍ରେଣୀ—3. The Suleman
range of hills between the Punjab and
Beluchistan.

ସୁଲେମାନୀ—ବୈଦେ. ବିଣ (ଫା)—ସୁଲେମାନ୍ ସମ୍ବନ୍ଧୀୟ—Relating
Sulemānī to Suleman. ବି—୧ । ଧଳା ଆଖି ଥିବା
সুলেমানী ଘୋଡ଼ା (ହି. ଶ)—1. A horse with white
सुलेमानी eyes. ୨ । ଅଂଶତଃ ଧଳା ଓ ଅଂଶତଃ କଳା ଏକ
ପ୍ରକାର ରତ୍ନ (ହି. ଶ)—2. A kind of gem
partly white and partly black.

ସୁଲେମାନୀ ନୁ(ଲୁ)ଣ—ବୈଦେ. ବି (ଫା. ସୁଲେମାନୀ ଓ ସଂ. ଲବଣ)—
Sulemānī nu(lu)ṇa (ଆରବୀ ବୈଦ୍ୟଶାସ୍ତ୍ରରେ ବ୍ୟବହୃତ)
সুলেমানীনুণ ଏକ ପ୍ରକାର ଔଷଧ ଲବଣ—Sulemāni salt
सुलेमानी नमक prescribed by Arabian medical
books.

ସୁଲୋକ—ସଂ. ବି—ସ୍ୱର୍ଗ (ହି. ଶ)
Suloka Heaven.

ସୁଲୋଚନ—ସଂ. ବିଣ. ପୁଂ (ବହୁବ୍ରୀହି)—ସୁନେତ୍ର; ସୁନ୍ଦର ନୟନ ବିଶିଷ୍ଟ
Sulochana —Having beautiful eyes. ବି—୧ ।
(ସୁଲୋଚନା—ସ୍ତ୍ରୀ. ବିଣ) ମୃଗ; ହରିଣ (ରାଜ ନିର୍ଘଣ୍ଟ)—1. Deer.
୨ । ଦୁର୍ଯ୍ୟୋଧନ (ଶବ୍ଦ କଳ୍ପଦ୍ରୁମ)—2. A name of
Durjyodhana. ୩ । ଚକୋର (ହି, ଶ)—
3. Coccyster bird. ୪ । (ନାମ) ରୁକ୍ମିଣୀଙ୍କ
ପିତା (ହି ଶ)—4. Name of Rukmiṇī's
father. ପ୍ରାଦେ. ( ଚଳିତ ) ବି—ଚଶମା—
Spectacles.

ସୁଲୋଚନା—ସଂ. ବିଣ. ସ୍ତ୍ରୀ (ସୁଲୋଚନ+ଆ)—ସୁଲୋଚନର ସ୍ତ୍ରୀଲିଙ୍ଗ—
Sulochanā Feminine of Sulochana. ବି—୧। (ନାମ)
ପଦ୍ମପୁରାଣୋକ୍ତ ମାଧବରାଜ ପତ୍ନୀ—1. Name of the
queen of King Mādhaba ( described
in Padmapurāṇa). [ ଦ୍ର—ଏ ପୁଷ୍କର ଦ୍ୱୀପର
ଗୁଣାକର ରାଜାଙ୍କ କନ୍ୟା । ଏହାଙ୍କୁ ମାଧବରାଜା ଗାନ୍ଧର୍ବ
ବିଧିରେ ବିବାହ କରିଥିଲେ । ଏ ଆଦର୍ଶପତ୍ନୀରୂପେ
ବିଖ୍ୟାତା—[ପଦ୍ମ ପୁରାଣ. କ୍ରିୟା ଯୋଗସାର ।] ୨। (ନାମ)
ଅପ୍ସରୋବିଶେଷ ( ହି. ଶ )—2. Name of a

heavenly nymph. ୩ (ନାମ) ବାସୁକୀଙ୍କ କନ୍ୟା ଓ ମେଘନାଦଙ୍କ ସ୍ତ୍ରୀ ( ବ୍ର. ଶ )—3. Name of a daughter of Bāsuki and wife of Meghanāda.

ସୁଲୋଚନା ଦେ. ବ—ସ୍ତ୍ରୀମାନଙ୍କ ନାମ—
**ସୁଲୋଚନା** A name given to females.

ସୁଲୋଚନା ଦେଈ—ଦେ. ବି. ସ୍ତ୍ରୀ (ନାମ)—ବାମଣ୍ଡା ଷ୍ଟେଟର ଜଣେ କବୟିତ୍ରୀ
Sulochanā dei ଓ ଲେଖିକା—A female poet and writer of the Bāmrā State (still living). [ବ୍ରୁ—ଏ ବାମଣ୍ଡା ରାଜ-ମୁଦ୍ରାଯନ୍ତ୍ରର ସ୍ୱର୍ଗତ ମାନେଜର ଶ୍ରୀ ସାନନ୍ଦଙ୍କ ଗଡ଼ନାୟକଙ୍କ କନ୍ୟା । ସ୍ୱର୍ଗତ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଓ ରାଣୀ ଶ୍ରୀମତୀ ଉମାରୁଧର ପ୍ରିୟା ମହାଦେବୀଙ୍କ ସାହାଯ୍ୟରେ ଏ ଦେବଗଡ଼ ରାଜଧାନୀରେ ଶିକ୍ଷାଲାଭ କରିଥିଲେ ଓ ବାମଣ୍ଡାର କନ୍ୟାମାନଙ୍କ ମଧ୍ୟରେ ପ୍ରଥମେ ମିଡ଼ିଲ ଭର୍ଣ୍ଣାକୁଲାର୍ ପରୀକ୍ଷାରେ ଉତ୍ତୀର୍ଣ୍ଣା ହୋଇଥିଲେ । ଘରେ ବଙ୍ଗଳା ଓ ଓଡ଼ିଆ ଉଭୟ ପୁସ୍ତକମାନ ପାଠ କରି ଏ ବହୁଜ୍ଞାନାର୍ଜ୍ଜନ କରିଅଛନ୍ତି । ଅବକାଶରଞ୍ଜନ (କବିତା), ଚନ୍ଦ୍ରକାନ୍ତ (ଗଦ୍ୟ ଓ ପଦ୍ୟ), ବନମୋହିନୀ (ଗଦ୍ୟ ଓ ପଦ୍ୟ), ଦମୟନ୍ତୀ (ଗଦ୍ୟ), ସାବିତ୍ରୀ (ଗଦ୍ୟ), ବିବାହମଙ୍ଗଳ ଆଦି କେତେଗୁଡ଼ିଏ ପୁସ୍ତକ ଏ ରଚନା କରିଅଛନ୍ତି । ବର୍ତ୍ତମାନ ସେ ତାଙ୍କ ଗ୍ରାମ ବାମଣ୍ଡା ରାଜ୍ୟର ସନ୍ନିକଟରେ ବାସ କରୁଅଛନ୍ତି । ୧୯୩୮ ସାଲ ଫେବ୍ରୁୟାରି ମାସରେ ଭାଷାକୋଷ ସଙ୍କଳନକ ତାଙ୍କର ମଫସଲରେ ଥିବା ଘରକୁ ଯାଇ ତାଙ୍କୁ ଭେଟିଥିଲେ । ସେ ବାମଣ୍ଡା ରାଜଦରବାରରୁ 'କବିତା ମନୋରମା' ଉପାଧି ପାଇ ଅଛନ୍ତି । ଲେଖିବା ବିଷୟରେ ସୁଲୋଚନା ବାମଣ୍ଡାର ଗୌରବ ବୋଲି ବାମଣ୍ଡାର ରାଜ ପିତାମହୀ ଶ୍ରୀମତୀ ଉମାରୁଧର ପ୍ରିୟାଦେବୀ ପ୍ରକାଶ କରିଅଛନ୍ତି । ଏ ୧୯୯୮ ସାଲରେ ଜନ୍ମଗ୍ରହଣ କରିଥିଲେ । ବର୍ତ୍ତମାନ ଏହାଙ୍କର ବୟସ ୪୦ ବର୍ଷ ।]

ସୁଲୋମଶା—ସଂ. ବି—କାକଜଂଘା ( ରାଜନିର୍ଘଣ୍ଟ ); ଏକପ୍ରକାର ପୋକ-
Sulomaśā ଶୁଂଘା—Lea Hirta ( a herb ).

ସୁଲୋମା—ସଂ. ବି—୧ । ତାମ୍ରବଲ୍ଲୀ ( ରାଜନିର୍ଘଣ୍ଟ )—1. A herb.
Sulomā ୨ । ମାଂସରୋହା ( ରାଜ ନିର୍ଘଣ୍ଟ )—
2. Another herb.

ସୁଲୋହକ—ସଂ. ବି ( ସୁ=ଉତ୍ତମ + ଲୋହ + କ )—ପିତ୍ତଳ—
Sulohaka Brass.

ସୁଲୋହିତ—ସଂ. ବିଣ—ମନୋହର ରକ୍ତବର୍ଣ୍ଣବିଶିଷ୍ଟ—Of charming
Sulohita ( ସୁଲୋହିତା—ସ୍ତ୍ରୀ ) red colour.

ସୁଲୋହିତା—ସଂ. ବି. ସ୍ତ୍ରୀ—ଅଗ୍ନିଙ୍କ ସପ୍ତଜିହ୍ୱା ମଧ୍ୟରୁ ଏକ—
Sulohitā One of the 7 tongues of the Fire-god
ସଂ. ବିଣ. ସ୍ତ୍ରୀ—ସୁଲୋହିତର ସ୍ତ୍ରୀ ଲିଙ୍ଗ—
Feminine of Sulohita.

ସୁଲ୍ତାନ୍ ( ନା, ନି ) ( ଇତ୍ୟାଦି )—ବୈଦେ. ବି ଓ ବିଣ—ସୁଲତାନ୍
Sultān( nā, ni ) ( etc ଇତ୍ୟାଦି ( ଦେଖ )—
Sulatān etc ( See )

ସୁଶକ(କ୍ୟ)—ସଂ. ବିଣ (ସୁ + ଶକ୍ ଧାତୁ + କର୍ମ. ଅ; ଯ)—ସୁକର—
Suśaka(kya) Easily performable.

ସୁଶକ୍ତ—ସଂ. ବିଣ. ପୁଂ – ଖୁବ୍ ଶକ୍ତିଶାଳୀ—
Suśakta (ସୁଶକ୍ତା—ସ୍ତ୍ରୀ) Very potent.

ସୁଶବୀ—ସଂ. ବି—୧ । କଳାଜିରା ( ବୈ. ଶ )—1. Black cumin-
Suśabī seed. ୨ । କଲରା ( ବୈ. ଶ )—2. Memordica. ୩ । କରଞ୍ଜ ( ବୈ. ଶ)—3. Pongamia Glabra (tree).

ସୁଶବ୍ଦ—ସଂ. ବି—ମନୋହର ଶବ୍ଦ—Sweet or fine sound.
Suśabda ସଂ. ବିଣ—ମନୋହର ଧ୍ୱନିକାରୀ—Making or
(ସୁଶବ୍ଦା—ସ୍ତ୍ରୀ. ବିଣ) emitting a sweet sound.

ସୁଶରଣ୍ୟ—ସଂ. ବି—ମହାଦେବ ( ବୈ. ଶ )—
Suśaranya Śiba

ସୁଶରୀର—ସଂ. ବି—ଉତ୍ତମ ବା ସୁନ୍ଦର ଦେହ—Good or fine
Suśarīra body. ସଂ. ବିଣ. ପୁଂ—ସୁନ୍ଦର ଶରୀରବିଶିଷ୍ଟ—
( ସୁଶରୀରା—ସ୍ତ୍ରୀ ) Fine-bodied.

ସୁଶର୍ମା—ସଂ. ବିଣ. ପୁଂ. ଓ ସ୍ତ୍ରୀ ( ସୁ=ଶୋଭନ + ଶର୍ମନ୍=ସୁଖ ଯାହାର,
Suśarmā ବ୍ରୀ. ସ. )—ଶୋଭନ ସୁଖବିଶିଷ୍ଟ—Happy.
ସଂ. ବି—୧ । ନିନ୍ଦିତ ବ୍ରାହ୍ମଣବିଶେଷ—1. A class of bad Brāhmaṇas. [ ବ୍ରୁ—ଏମାନେ ଦୁର୍ମେଧା, ପାପାତ୍ମା, ବେଦ ବିଦ୍ୟାରେ ଅଜ୍ଞ ଓ କ୍ରୂରକର୍ମୀ ଅଟନ୍ତି—ପଦ୍ମପୁରାଣ ଉତ୍ତରଖଣ୍ଡ ।] ୨। ରାଜବିଶେଷ; ପ୍ରାଚୀନ ତ୍ରିଗର୍ତ୍ତ ଦେଶର ରାଜା—2.Name of a king of ancient Trigartta country. [ ବ୍ରୁ—କୀଚକଙ୍କଦ୍ୱାରା ବିରାଟ ରାଜା ଏହାଙ୍କ ରାଜ୍ୟରୁ ଅଧିକାର କରିଥିବାରୁ ଏ ଦୁର୍ଯ୍ୟୋଧନଙ୍କ ଶରଣାପନ୍ନ ହୋଇଥିଲେ । କୀଚକଙ୍କ ମୃତ୍ୟୁ ପରେ ଏ ଦୁର୍ଯ୍ୟୋଧନଙ୍କୁ ଉତ୍ତେଜିତ କରି ବିରାଟଙ୍କ ଗାଈମାନଙ୍କୁ ହରଣ କରିବାକୁ ଯାଇ ବିରାଟ ରାଜାଙ୍କୁ ବନ୍ଦୀ କଲେ, କିନ୍ତୁ ଛଦ୍ମବେଶୀ ଭୀମଙ୍କଦ୍ୱାରା ପରାଜିତ ହୋଇ ପଳାଇ ଆସିଲେ । କୁରୁକ୍ଷେତ୍ରରେ ଏ କୌରବଙ୍କ ପକ୍ଷ ଅବଲମ୍ବନ କରି ଦଶମ ଦିବସରେ ଅର୍ଜ୍ଜୁନଙ୍କଦ୍ୱାରା ନିହତ ହେଲେ । ]

ସୁଶଲ୍ୟ—ସଂ. ବି—ଖଦିର ( ରାଜନିର୍ଘଣ୍ଟ )—
Suśalya Catechu.

ସୁଶାକ—ସଂ. ବି—୧ । ଅର୍ଦ୍ରକ ( ରାଜନିର୍ଘଣ୍ଟ ); ଅଦା—1. Ginger.
Suśāka ୨ । ଚଞ୍ଚୁ; ଲାଲ୍ ଏରଣ୍ଡ ( ରାଜନିର୍ଘଣ୍ଟ )—2. Red variety of castor oil-seed plant. ୩ । ଭେଣ୍ଡି (ରାଜନିର୍ଘଣ୍ଟ) —3. Lady's finger. ୪ । ତଣ୍ଡୁଳୀୟ ( ରାଜନିର୍ଘଣ୍ଟ ); ଲେଉଟିଆ ଶାଗ—4. A kind of pot-herb; Amaranthus Polygamus.

ସୁଶାନ୍ତ—ସଂ. ବଣ. ପୁଂ—ଅତି ଶାନ୍ତ—Very meek.
Susānta ( ସୁଶାନ୍ତା—ସ୍ତ୍ରୀ )

ସୁଶାନ୍ତା—ସଂ. ବି. ସ୍ତ୍ରୀ—ଶଶିଧ୍ୱଜ ରାଜପତ୍ନୀ—Name of the wife
Susāntā of king Śasidhwaja. [ ଭୃ—ଏ ଅତ୍ୟନ୍ତ କୃଷ୍ଣଭକ୍ତିପୂର୍ଣ୍ଣା ଥିଲେ ଓ କଲ୍କୀଙ୍କ ସଙ୍ଗେ ଯୁଦ୍ଧ କରିବାକୁ ସ୍ୱାମୀଙ୍କୁ ନିଷେଧ କରିଥିଲେ—କଲ୍କୀପୁରାଣ । ]
ସଂ. ବଣ. ସ୍ତ୍ରୀ—ସୁଶାନ୍ତର ସ୍ତ୍ରୀ ଲିଙ୍ଗ—
Feminine of Susānta.

ସୁଶାସନ—ସଂ. ବି—୧ । ନ୍ୟାୟସଙ୍ଗତ ଶାସନ—1. Just or
Susāsana righteous rule. ୨ । ଉତ୍ତମରୂପେ ଦମନ; ନିୟନ୍ତ୍ରଣ—2. Efficient controlling; discipline.

ସୁଶାସିତ—ସଂ. ବଣ—୧ । ନ୍ୟାୟ ମାର୍ଗରେ ଶାସିତ—1. Justly
Susāsita ruled. ୨ । ସୁନ୍ଦର ରୂପେ ଦମିତ—2. Well
(ସୁଶାସିତା—ସ୍ତ୍ରୀ) controlled; kept under discipline.

ସୁଶାସ୍ୟ—ସଂ. ବଣ. ପୁଂ—ସହଜରେ ଶାସନୀୟ—
Susāsya Easily governable.
(ସୁଶାସନୀୟ—ଅନ୍ୟରୂପ) (ସୁଶାସ୍ୟା, ସୁଶାସନୀୟା—ସ୍ତ୍ରୀ)

ସୁଶିକ୍ଷା—ସଂ. ବି—୧ । ଉତ୍ତମ ଅଧ୍ୟୟନ—1. Good learning
Susikshā or education. ୨ । ଉତ୍ତମ ଉପଦେଶ—2. Good advice. ୩ । ସୁନ୍ଦର ଅଭ୍ୟାସ—3. Good habit or training.

ସୁଶିକ୍ଷିତ—ସଂ. ବଣ. ପୁଂ—ଉତ୍ତମ ରୂପେ ଶିକ୍ଷା ପ୍ରାପ୍ତ—
Susikshita Well educated; well trained.
(ସୁଶିକ୍ଷିତା—ସ୍ତ୍ରୀ)

ସୁଶିଖ—ସଂ. ବଣ (ବହୁବ୍ରୀହି; ସୁ ଅଟେ ଶିଖା ଯାହାର)—ଉତ୍ତମ ଶିଖାଯୁକ୍ତ—Having a good flame or pigtail.
Susikha
(ସୁଶିଖା—ସ୍ତ୍ରୀ. ବଣ) ବି—ଅଗ୍ନି (ଜଟାଧର)—Fire.

ସୁଶିଖା—ସଂ. ବି—୧ । ମୟୂର ଶିଖା (ଶବ୍ଦକଳ୍ପଦ୍ରୁମ)—1. The tail-
Susikhā feather of a peacock. ୨ । ମୟୂରଶିଖା ଗୁଳ୍ମ—2. Celesia Cristala herb.
ସଂ. ବଣ. ସ୍ତ୍ରୀ—ସୁଶିଖର ସ୍ତ୍ରୀ ଲିଙ୍ଗ—
Feminine of Susikha.

ସୁଶୀତ—ସଂ. ବଣ—ଅତିଶୟ ଶୀତଳ ବା ଥଣ୍ଡା—Very cold. ବି—
Susīta ୧ । ପୀତ ଚନ୍ଦନ (ଶବ୍ଦଚନ୍ଦ୍ରିକା)—1. The yellow variety of sandal. ୨ । କ୍ଷୁଦ୍ରପ୍ଲକ୍ଷ (ଶବ୍ଦାର୍ଣ୍ଣବ)—2. A small variety of Plaksha tree ୩ । ଜଳବେତସ ( ହ୍ଥ. ଶ )—3. Water-ratan. ୪ । ଲେଡ଼ୀ—4. Lady's only.

ସୁଶୀତଳ—ସଂ. ବି—୧ । ଗନ୍ଧତୃଣ (ରତ୍ନମାଳା)—1. A fragrant
Susītala species of grass. ୨ । ନାଗ ଦମନୀ (ହ୍ଥ. ଶ)—2. Indian wormwood ୩ । ଶ୍ୱେତ ଚନ୍ଦନ (ହ୍ଥ. ଶ)—3. The white sandal wood. ବଣ (ସୁଶୀତଳା—ସ୍ତ୍ରୀ. ବଣ) —ସୁଶୀତ (ଦେଖ)—Susīta (See)

ସୁଶୀତଳା—ସଂ. ବଣ. ସ୍ତ୍ରୀ—ସୁଶୀତଳର ସ୍ତ୍ରୀ ଲିଙ୍ଗ—
Susītala Feminine of Susītala.
ସଂ. ବି—କାକୁଡ଼ି—Cucumber.

ସୁଶୀତା—ସଂ. ବି—୧ । ଶତପତ୍ରୀ ( ଶବ୍ଦଚନ୍ଦ୍ରିକା ); ସେବତୀ ଫୁଲ—
Susītā 1. Cabbage-rose; musk rose. ୨ । ସ୍ଥଳକମଳ (ହ୍ଥ. ଶ)—2. Hibiscus Mutabilis.

ସୁଶୀବିକା—ସଂ. ବି—କନ୍ଦ ବିଶେଷ; ବାରାହୀକନ୍ଦ ( ଶବ୍ଦ ଚନ୍ଦ୍ରିକା )—
Susībikā A species of herbarious bulbous root; Dioscorea.

ସୁଶୀ(ଷୀ)ମ—ସଂ. ବି—୧ । ଶୀତଗୁଣ; ଶୈତ୍ୟ; ଶୀତଳତା—
Susī(shī)ma 1. Coolness. ୨ । ଚନ୍ଦ୍ରକାନ୍ତ ମଣି (ହ୍ଥ. ଶ)—2. Moon stone. ୩ । ଏକ ପ୍ରକାର ସର୍ପ—3. A kind of serpent. ବଣ—୧ । ଶୀତଳ—1. Cool. ୨ । ମନୋଜ୍ଞ (ହ୍ଥ. ଶ)—2. Beautiful.

ସୁଶୀଳ—ସଂ. ବଣ. ପୁଂ ( ବହୁବ୍ରୀହି )—୧ । ସଚ୍ଚରିତ୍ର; ସତ୍ସ୍ୱଭାବଶିଷ୍ଟ—1.Of good conduct or nature.
Susīla
(ସୁଶୀଳା—ସ୍ତ୍ରୀ. ବଣ) ୨ ବିନୀତ; ନମ୍ର (ହ୍ଥ. ଶ)—2. Humble. ବି. ପୁଂ—ସଦ୍ଗୁଣସମ୍ପନ୍ନ ଜନୈକ ପ୍ରାଚୀନ ଭାରତୀୟ ରାଜା; ଶୈଳରାଜ—Name of a king of ancient India. ଦେ. ବି. ପୁଂ—ପୁରୁଷଙ୍କ ନାମ—
सुशील A name given to males ଦେ. ବଣ—ଅତ୍ଥ
सुशील
कठिन ଟାଣୁଆ; ଅତି କଠିନ—Very hard. [ଭ—ତୁହର
कठिन ଅସମ୍ଭାଳ ଭାଳ ଛୁଦ କ ସୁଶୀଳ, ଶୀଳ ହେଲ ଅଛ ନୋହୁ ପାଳ ପାଳ । ଭଞ୍ଜ, ପ୍ରେମସୁଧାନିଧି ।]

ସୁଶୀଳତା(ତ୍ୱ)—ସଂ. ବି—୧ । ସତ୍ ଚରିତ୍ରତା—1. Goodness
Susīlatā(twa) of disposition or nature. ୨ । ବିନୟ; ନମ୍ରତା—2. Humility.

ସୁଶୀଳା—ସଂ. ବଣ. ସ୍ତ୍ରୀ—ସୁଶୀଳର ସ୍ତ୍ରୀ ଲିଙ୍ଗ—Feminine of
Susīlā 'Susīla'. ବି—୧ । (ନାମ)—ଶ୍ରୀକୃଷ୍ଣଙ୍କର ଅଷ୍ଟ ମହିଷୀଙ୍କ ମଧ୍ୟରୁ ଏକତମା—1. Name of one of the 8 queens of 'Śrīkrushna'. ୨ । (ନାମ) ଯମ ଭାର୍ଯ୍ୟା—2. The name of the wife of the King of death. ୩ । (ନାମ) ରାଧାଙ୍କର ଏକ ଅନୁଚରୀ ( ହ୍ଥ. ଶ )—3. Name of a female companion of Rādhā. ଦେ. ବି. ସ୍ତ୍ରୀ—ସ୍ତ୍ରୀ-
सुशीला सुशीला ଲୋକଙ୍କ ନାମ—A name given to females.

ସୁଶୃଙ୍ଖଳ—ସଂ. ବଣ—( ବହୁବ୍ରୀହି; ସୁ+ଶୃଙ୍ଖଳା+ଅ )—
Susrunkhala ୧ । ସୁନିୟମିତ—1. Well regulated
(ସୁଶୃଙ୍ଖଳା—ସ୍ତ୍ରୀ) ୨ । ଉତ୍ତମରୂପେ ବ୍ୟବସ୍ଥିତ—2. Well
(ସୁଶୃଙ୍ଖଳ—ବିଶେଷ୍ୟ) arranged. ୩ । ସୁସଜ୍ଜିତ—3.
(ସୁଶୃଙ୍ଖଳତା—ବି) Nicely equipped.

ସୁଶୃଙ୍ଖଳା—ସଂ. ବି—୧ । ଉତ୍ତମ ବନ୍ଦୋବସ୍ତ ବା ବ୍ୟବସ୍ଥା—Susṛunkhalā 1. Nice arrangement. ୨ । ସୁନ୍ଦର ନିୟମ—2. Good rule. ବିଣ. ସ୍ତ୍ରୀ—ସୁଶୃଙ୍ଖଳର ସ୍ତ୍ରୀଲିଙ୍ଗ—Feminine of Susṛunkhala.

ସୁଶୃଙ୍ଗ—ସଂ. ବିଣ. ପୁଂ—(ବହୁବ୍ରୀହି)—ସୁନ୍ଦର ଶୃଙ୍ଗ ବିଶିଷ୍ଟ—Susṛunga Having beautiful peak or horn. (ସୁଶୃଙ୍ଗା—ସ୍ତ୍ରୀ)

ସୁଶୃତ—ସଂ. ବିଣ—ଅତି ଉଷ୍ମ (ବ୍ୟୁ. ଶ)—Very hot Susṛuta

ସୁଶେକ୍—ଗ୍ରାଦେ (ଲିଖିଆ) ବି ( ଧ୍ୱନ୍ୟନୁକରଣ )—ସବା କାନ୍ଦଣା, Susek ଶବେଇ ହୋଇ କାନ୍ଦିବା; ସୁଁ ସୁଁ ହୋଇ କାନ୍ଦିବା—Weeping with bated sighs; whimper.

[ସୁଶୋଭ]ନ—ସଂ. ବି—ଅତି ସୁନ୍ଦର—Very beautiful. Susobhana [ସୁଶୋଭନା—ସ୍ତ୍ରୀ]

ସୁଶୋଭିତ—ସଂ. ବିଣ—୧ । ଅତିଶୟ ଶୋଭାଯୁକ୍ତ—1. Very Susobhita graceful. ୨ । ସୁସଜ୍ଜିତ—2. Handsomely decorated. ୩ । ସୁନ୍ଦରରୂପେ ପ୍ରକାଶିତ—3. Elegantly embellished. ଦେ. ବି—ସୌନ୍ଦର୍ଯ୍ୟ—Beauty. [ଉ—ବନ୍ଧୁ ଉକ୍ତି । ବନ୍ଦେଇ ଶୋଭା ସୁନ୍ଦରତା ମୟୂରା ସୁଶୋଭିତ । ଉଞ୍ଜ, କୈଦେସ୍ପଣ୍ଣବିଳାସ]

ସୁଶ୍ରାବ୍ୟ—ସଂ. ବିଣ—ଶୁଣିବାକୁ ମଧୁର; ଶ୍ରୁତିମଧୁର—Sweet to Susrābya (ଦୁଃଶ୍ରାବ୍ୟ—ବିପରୀତ) hear. (ସୁଶ୍ରାବ୍ୟତା—ବି)

ସୁଶ୍ରୀ—ସଂ. ବିଣ—ପୁ. ଓ ସ୍ତ୍ରୀ (ବହୁବ୍ରୀହି)—ଶ୍ରୀମାନ୍; ସୁନ୍ଦର ଶୋଭାଯୁକ୍ତ—Susrī (ସୁଶ୍ରୀକ—ଅନ୍ୟରୂପ) Handsome; beautiful. (ସୁଶ୍ରୀକା—ଅନ୍ୟ ସ୍ତ୍ରୀ. ରୂପ)

ସୁଶ୍ରୀକା—ସଂ. ବି—ସହଳା (ଗ୍ରାଜକର୍ଣ୍ଣ)—Porcupine. ସଂ. ବିଣ. Susrīkā ସ୍ତ୍ରୀ—ସୁଶ୍ରୀକର ସ୍ତ୍ରୀଲିଙ୍ଗ—Feminine of Susrīka.

ସୁଶ୍ରୁତ—ସଂ. ବିଣ—୧ । (ସୁ+ଶ୍ରୁତ=ବେଦ; ବହୁବ୍ରୀହି)—ବେଦରେ Susruta ପାରଙ୍ଗମ; ବେଦବିଶାରଦ—Well versed in the Bedas. ୨ । ଉତ୍ତମରୂପେ ଶୁଣା ଯାଉଥିବା—2. Distinctly heard. ୩ । ପ୍ରସିଦ୍ଧ—3. Celebrated. ବି—୧ । ହିନ୍ଦୁ ଚିକିତ୍ସା-ଶାସ୍ତ୍ର ପ୍ରଣେତା ଓ ବିଶ୍ୱାମିତ୍ର ମୁନିଙ୍କ ପୁତ୍ର—1. Name of the son of sage Biswāmitra, the author of the well-known treatise on Hindu medicine. [ବ୍ର—ଏ କାଶୀକୁ ଯାଇ ଧନ୍ୱନ୍ତରିଙ୍କ ଅବତାର କାଶୀରାଜ ଦିବୋଦାସଙ୍କଠାରୁ ଚିକିତ୍ସାଶାସ୍ତ୍ର ଶିକ୍ଷା କରିଥିଲେ ] ୨ । (ଦ୍ୱାପରଯୁଗରେ) ସୁଶ୍ରୁତ ଋଷିଙ୍କ ପ୍ରଣୀତ ସୁଶ୍ରୁତ ସଂହିତା ନାମକ ଚିକିତ୍ସାଗ୍ରନ୍ଥ ବିଶେଷ—2. Name of the medicinal treatise by sage 'Susruta' (in the Dwāpara age).

ସୁଶ୍ରୁତ ସଂହିତା—ସଂ. ବି—ସୁଶ୍ରୁତ ଋଷିଙ୍କ ସଙ୍କଳିତ ଚିକିତ୍ସାଗ୍ରନ୍ଥ—Sasruta samhitā Title of the medical work by Susruta.

ସୁଶ୍ରୋଣି—ସଂ. ବିଣ. ସ୍ତ୍ରୀ—ସୁନ୍ଦର ନିତମ୍ବବତୀ (ସ୍ତ୍ରୀ) (ବ୍ୟୁ. ଶ)—Susroṇi (a woman) With nice buttocks.

ସୁଶ୍ଳିଷ୍ଟ—ସଂ. ବିଣ—ଦୃଢ଼ରୂପେ ସଂଯୁକ୍ତ; ଉତ୍ତମରୂପେ ଲଗ୍ନ ବା ଯୁକ୍ତ—Suslishta Well-united; well attached.

ସୁଶ୍ଳୋକ—ସଂ. ବିଣ. ପୁଂ (ବହୁବ୍ରୀହି)—୧ । ପୁଣ୍ୟଶ୍ଳୋକ; ପୁଣ୍ୟକୀର୍ତ୍ତି Susloka (ବ୍ୟୁ. ଶ)—1. Of pious memory. (ସୁଶ୍ଳୋକା—ସ୍ତ୍ରୀ) ୨ । ସୁପ୍ରସିଦ୍ଧ (ବ୍ୟୁ. ଶ)—2. Celebrated.

ସୁଷବୀ—ସଂ. ବି (ସୁ+ସୁ ଧାତୁ=ପ୍ରେରଣ କରିବା+କର୍ମ ଅ+ଈ)—Sushabī ୧ । କାରବେଲ୍ଲ ( ଅମର ); କଲରା—1. Hairy memordica. ୨ । କୃଷ୍ଣ ଜୀରକ ( ମେଦିନୀ ); କଳା ଜୀରା—2. Black variety of cumin seed; Nigella Sativa. ୩ । କ୍ଷୁଦ୍ର କାରବେଲ୍ଲ ( ରାଜନିର୍ଘଣ୍ଟ ); ଛୋଟ କଲରା—3. Small-fruited variety of hairy memordica.

ସୁଷମ—ସଂ. ବିଣ (ସୁ+ସମ; ଷତ୍ୱବିଧାନ ଅନୁସାରେ ସ ସ୍ଥାନରେ Sushama ଷ )—୧ । ଅତି ସମାନ—1. Equal (ସୁଷମତା—ବି) in all respects; symmetrical. (ସୁଷମା—ସ୍ତ୍ରୀ) ୨ । ଶୋଭନ; ସୁନ୍ଦର—2. Charming; beautiful. ଗ୍ରା. ବି (ପଦ୍ୟ) ସୁଷମା; ଶୋଭା; ସୌନ୍ଦର୍ଯ୍ୟ—Beauty. (ଉ—ମଦନ ସହିତ ଗୃହୀ ସୁଷମ—ଅନୁପମକ୍ୟ ବିଦଗ୍ଧଚିନ୍ତାମଣି ।)

ସୁଷମା—ସଂ. ବି—୧ । ପରମା ଶୋଭା; ସୌନ୍ଦର୍ଯ୍ୟ—1. Beauty; Sushamā grace; exquisite beauty. ୨ । ସୁନ୍ଦର ସମତା—2. Symmetry. ୩ । ପ୍ରତି ଚରଣରେ ୧୦ଟି ଅକ୍ଷର ଥିବା ବର୍ଣ୍ଣ ବୃତ୍ତବିଶେଷ—3. Name of a Sanscrit metre. [ ବ୍ର—ଏଥିର ୧ମ, ୪ର୍ଥ, ୮ମ ଓ ୧୦ମ ବର୍ଣ୍ଣ ଗୁରୁ, ଅନ୍ୟ ବର୍ଣ୍ଣମାନ ଲଘୁ—ବ୍ୟୁ. ଶ) -ସଂ. ବିଣ. ସ୍ତ୍ରୀ—ସୁଷମର ସ୍ତ୍ରୀଲିଙ୍ଗ—Feminine of Sushama.

ସୁଷି—ସଂ. ବି—୧ । ଶୁଷି (ଭରତ); ମୁଣ୍ଡିକାଠ ମଧ୍ୟରେ ଥିବା ଲମ୍ବ ଛିଦ୍ର—Susli A hole running through the length of a log of wood. ୨ । ଛିଦ୍ର; ରନ୍ଧ୍ର—2. Hole. ୩ । ବଂଶୀବିଶେଷ ( ପ୍ରକୃତିବାଦ )—3. A kind of flute. ଗ୍ରାଦେ ( ବଲାଙ୍ଗୀର-ପାଟଣା ) ବି—ଗଛର ମଞ୍ଜା—The pith of a tree.

ସୁଷିକ—ସଂ. ବି—ଶୀତଳତା (ବ୍ୟୁ. ଶ)—Coolness. ସଂ. ବିଣ. Sushika ଶୀତଳ (ବ୍ୟୁ. ଶ)—Cool.

ସୁଷିବା—ଗ୍ରାଦେ (ସମ୍ବଲପୁର ଓ ବାଲେଶ୍ୱର) କ୍ରି—ଶୋଷିବା—Sushibā To suck.

ସୁଷିର—ସଂ. ବି ( ସୁଷି+ର ଧାତୁ+କର୍ତ୍ତୃ ଅ )—୧ । ଛିଦ୍ର,—
Sushira 1. Hole. ୨ । ବାଉଁଶ (ହି. ଶ)—
2. Bamboo. ୩ । ବେତ ( ହି. ଶ )—
3. Ratan; cane. ୪ । ଅଗ୍ନି (ହି. ଶ)—4 Fire;
୫ । ମୂଷିକ (ହି. ଶ)—5. Mouse, ୬ । ବାୟୁ-
ପୂରିତ ସଙ୍ଗୀତଯନ୍ତ୍ର (ହି.ଶ)—6. A wind instru-
ment. ୭ । ବାୟୁମଣ୍ଡଳ (ହି. ଶ)—7. The air.
୮ । ଲବଙ୍ଗ [ହି. ଶ]—8. Cloves. ୯ । କାଠ—
[ହି. ଶ]—9. Wood. ସଂ. ବିଣ —ଛିଦ୍ରଯୁକ୍ତ [ହି.ଶ].
Having hole

ସୁଷିରା—ସଂ. ବି—୧ । [ବୈଦ୍ୟକ] ନଳକା ନାମକ ଉଦ୍ଭିଦ ଗନ୍ଧ-
Sushirā ଦ୍ରବ୍ୟ ଓ ତହିଁର ଲତା; ବିଦ୍ରୁମ ଲତା [ହି.ଶ]
1. A scented herb. ୨ । ନଦୀ [ହି. ଶ]—
2. River.

ସୁଷିମ—ସଂ. ବିଣ—୧ । ଶୀତଗୁଣ ଯୁକ୍ତ (ଅମର)—1. Cool.
Sushima ୨ । ମନୋଜ୍ଞ—2. Beautiful.
ବି—୧ । ଚନ୍ଦ୍ରକାନ୍ତ ମଣି (ଜଟାଧର)—1. A gem;
moon stone. ୨ । ସର୍ପବିଶେଷ (ମେଦିନୀ)—
2. A species of serpent. ୩ । ସ୍ୱର୍ଣ୍ଣ; ସୁନା—
3. Gold.

ସୁଷୁ—ସଂ. ବି (ଧ୍ୱନ୍ୟନୁକାରୀ)—ଅବ୍ୟକ୍ତ ଶବ୍ଦ—
Sushu A very soft hissing sound.

ସୁଷୁପୁ—ସଂ. ବିଣ (ସ୍ୱପ୍ ଧାତୁ+ଇଚ୍ଛାର୍ଥେ ସନ୍+ଉ,, ସୁସୁପ୍ସ ଶବ୍ଦ)
Sushupu —୧ । ଶୋଇବାକୁ ଇଚ୍ଛୁକ ( ହି. ଶ )—
1. Desirous of sleep. ୨ । ନିଦ୍ରାତୁର (ହି.ଶ)—
2. Sleepy; feeling sleepy.

ସୁଷୁପ୍ତ—ସଂ. ବିଣ ( ସୁ+ସ୍ୱପ୍ ଧାତୁ+କର୍ତ୍ତୃ. ତ )—୧ । ଗଭୀର
Sushupta ନିଦ୍ରାଗ୍ରସ୍ତ—1. Profoundly asleep. ୨ ।
(ସୁପ୍ତପ୍ରା—ସ୍ତ୍ରୀ) ଅଜ୍ଞ; ଆତ୍ମବୋଧ ଶୂନ୍ୟ—2. Devoid of self-
consciousness. ବି—( +ଭାବ. ତ ) ସୁଷୁପ୍ତି;
ଗଭୀର ନିଦ୍ରା—Profound sleep.

ସୁଷୁପ୍ତି—ସଂ. ବି ( ସୁ+ସ୍ୱପ୍ ଧାତୁ+ଭାବ. ତି )—୧ । ସୁନିଦ୍ରା;
Sushupti ଘୋର ନିଦ୍ରା—1. Slumber; profound
sleep; sound sleep. [ ଦ—ଯେଉଁ ନିଦ୍ରାରେ
ପ୍ରାଣୀର କୌଣସି ବାହ୍ୟଜ୍ଞାନ ବା କାମନା ନ ଥାଏ ଓ
ଯହିଁରେ କୌଣସି ସ୍ୱପ୍ନ ଦେଖାଯାଏ ନାହିଁ ତାକୁ ସୁଷୁପ୍ତି
ବୋଲଯାଏ । ] ୨ । (ପାତଞ୍ଜଳ ଦର୍ଶନ) ଚିତ୍ତବୃତ୍ତି
ବା ଅନୁଭୂତିବିଶେଷ—2.(Pātanjala philosophy)
A kind of mental experience. [ ଦ୍ର—ଏ
ଅବସ୍ଥାରେ ଜୀବ କଚ୍ୟୈକ୍ରନ୍ତୁକୁ ପ୍ରାପ୍ତ ହେଇଥାଏ, କିନ୍ତୁ
ଜୀବର ବ୍ରହ୍ମ ପ୍ରାପ୍ତି ବିଷୟରେ ଜ୍ଞାନ ନ ଥାଏ—ହି.
ଶ । ସୁଷୁପ୍ତି ଅବସ୍ଥାରେ ମନୁଷ୍ୟ ସ୍ୱର୍ଗଲୋକରେ ବିଚରଣ
କରେ—ବେଦାନ୍ତ ]

ସୁଷୁପ୍ସୁ(ପ୍ସୁ)—ସଂ. ବିଣ ( ସ୍ୱପ୍ ଧାତୁ+ଇଚ୍ଛାର୍ଥେ ସନ୍+ଅ, ଉ)—
Sushupsa(psu) ଶୋଇବାକୁ ଇଚ୍ଛୁକ ( ହି. ଶ )—
Desirous of sleep.

ସୁଷୁପ୍ସା—ସଂ. ବି ( ସ୍ୱପ୍ ଧାତୁ+ଇଚ୍ଛାର୍ଥେ ସନ୍+ଅ —ଶୋଇବାକୁ
Sushupsā ଇଚ୍ଛା ( ହି. ଶ )—Desire to sleep.

ସୁଷୁମ୍ଣା(ଳା)—ସ୍ତ୍ରୀ. ବି ( ସଂ. ସୁଷୁମ୍ନା )—ସୁଷୁମ୍ଣା ( ଦେଖ )—
Sushumṇā(ṇā) Sushumnā ( See ) [ଦ୍ର—ତାହାକୁ
ସୁଷୁମ୍ନା ସୁଷୁ(ଷ)ମନା ସୁଷୁମ୍ନା ଚାହୁ—ପଶୋବନ୍ତଂ ପ୍ରେମଭକ୍ତି
ବ୍ରହ୍ମଗୀତା । ]

ସୁଷୁମ୍ନା(ମ୍ନା)—ସଂ. ବି ( ସୁଷୁ=ଅବ୍ୟକ୍ତ ଶବ୍ଦ+ମ୍ନା ଧାତୁ=ଅଭ୍ୟାସ
Sushumṇā(mnā) କରିବା+କର୍ତ୍ତୃ. ଅ+ଆ )—୧ ।
( ଯୋଗଶାସ୍ତ୍ର ) ମେରୁଦଣ୍ଡରେ ଥିବା ଇଡ଼ା ଓ ପିଙ୍ଗଳା ନାଡ଼ୀ
ମଧ୍ୟସ୍ଥ ନାଡ଼ୀବିଶେଷ—1. A vein or artery
running along the backbone between
the two other veins Irḍā and Piṅgalā.
[ ଦ୍ର—ନାସିକାର ବାମ ଭାଗରେ ଇଡ଼ା; ଦକ୍ଷିଣ ଭାଗରେ
ପିଙ୍ଗଳା ଓ ମଧ୍ୟଭାଗ ( ବ୍ରହ୍ମରନ୍ଧ୍ର ) ରେ ସୁଷୁମ୍ନା ପ୍ରବାହିତ ।
ଇଡ଼ା ଚନ୍ଦ୍ରସ୍ୱରୂପା, ପିଙ୍ଗଳା ସୂର୍ଯ୍ୟସ୍ୱରୂପା ଓ ସୁଷୁମ୍ଣା
ତ୍ରିଗୁଣାତ୍ମିକା ବା ମତାନ୍ତରରେ ଅଗ୍ନିସ୍ୱରୂପା—ହି. ଶ । ]
୨ । (ବୈଦ୍ୟକ) ନାଭିର ମଧ୍ୟସ୍ଥ ଓ ଶରୀରର ଅନ୍ୟ ନାଡ଼ୀ-
ମାନଙ୍କଦ୍ୱାରା ବେଷ୍ଟିତ ନାଡ଼ୀବିଶେଷ ( ହି. ଶ )—
2. One of the veins inside the navel.

ସୁଷୁରୀ—ଦେ. ବି ( ସଂ. ସୁଷିର, କ୍ରମା ସୁ+ସୁର )—୧ । ଏକପ୍ରକାର
Sushurī ବଂଶୀ—1. A kind of flute. ୨। ସିଟି ମାରିବା
ସୀଟି ସୁଷିର ଯନ୍ତ୍ର—2. Whistle.

ସୁଷେଣ—ସଂ. ବି ( ବହୁବ୍ରୀହି; ସୁ+ସେନା; ସୁ ଅଛେ ସେନା ଯାହାର )
Sushena —୧ । ବିଷ୍ଣୁ—1. A name of Bishnu. ୨।
(ନାମ) ମର୍କଟବିଶେଷ; ବାଲିରାଜାଙ୍କ ଶ୍ୱଶୁର; ତାରାଙ୍କ ପିତା—
2 Name of a monkey who was also a
physician and the father of Tārā, wife
of Bāli. [ ଦ୍ର—ଏ ଯୁଦ୍ଧବିଦ୍ୟା ଓ ଚିକିତ୍ସା ବିଦ୍ୟାରେ
ଅତ୍ୟନ୍ତ ନିପୁଣ ଥିଲେ । ରାବଣର ଶକ୍ତିଦ୍ୱାରା ଲକ୍ଷ୍ମଣ
ଅଚେତନ ହୁଅନ୍ତେ ଏହାଙ୍କ ପରାମର୍ଶରେ ହନୁମାନ ଔଷଧ
ଆଣିବାରୁ ଲକ୍ଷ୍ମଣ ବଞ୍ଚିଲେ । ଏ ଅଶ୍ୱିନୀକୁମାରଙ୍କର, ମତା-
ନ୍ତରରେ ବରୁଣଙ୍କର, ମତାନ୍ତରରେ ଧନ୍ୱନ୍ତରିଙ୍କର ପୁତ୍ର
ଥିଲେ । ଏ ବାଲିଙ୍କ ଶ୍ୱଶୁର ଓ ସୁଗ୍ରୀବଙ୍କ ବୈଦ୍ୟ ଥିଲେ ।
ରାମ-ରାବଣ ଯୁଦ୍ଧ ସମୟରେ ଏ ରାମଚନ୍ଦ୍ରଙ୍କୁ ବହୁ ସାହାଯ୍ୟ
କରିଥିଲେ ।] ୩ । କରମର୍ଦ୍ଦକ; କରଦା କୋଳି ଗଛ—
3. Name of a tree; Carissa Caranda.
[ଦ୍ର—କେ ବୋଲେ ଆସମ ସମ ସୈନ୍ୟ ଯସବ, କଞ୍ଚନ
ତାଲମ୍ବ ସୁଷେଣାଦ ଥିବାଏ । ଉପ. ବୈଦେହୀଶବିଳାସ ।]
୪ । ବେତସ ଲତା—4. Ratan cane. ୫ ।
(ନାମ) ଶ୍ରୀକୃଷ୍ଣଙ୍କର ଏକ ପୁତ୍ର (ହି. ଶ)—5. A son of

Srikrushna. ୬ । (ନାମ) ପରୀକ୍ଷିତଙ୍କର ଏକ ପୁତ୍ର (ପୁ. ଶ)—6. A son of King Parikshita. ୭ । (ନାମ) ବସୁଦେବଙ୍କର ଏକ ପୁତ୍ର ( ପୁ. ଶ )—7. A son of Basudeba. ୮ । (ନାମ) ଶମ୍ବରର ଏକ ପୁତ୍ର (ପୁ. ଶ)—8. A son of Sambara demon. ୯ । (ନାମ) ଦ୍ୱିତୀୟ ମନୁଙ୍କ ଏକ ପୁତ୍ର (ପୁ. ଶ) —9. A son of the 2nd Manu. ୧୦। (ନାମ) ଗନ୍ଧର୍ବ ବିଶେଷ—10. Name of one of the Gandharbas. ୧୧। (ନାମ) ଯକ୍ଷ ବିଶେଷ (ପୁ.ଶ)—11. Name of a Jaksha. ୧୨ । (ନାମ) ନାଗାସୁର ବିଶେଷ (ପୁ. ଶ)—12. Name of a Nāga demon.

ସୁଷେଣିକା—ସଂ. ବି—କୃଷ୍ଣ ତ୍ରିବୃତା ( ଅମର )· ଶ୍ୟାମାତ୍ରିବୃତ୍; କଳା ତିଉଡ଼ି—A black variety of Ipomœa Turpethum.
Sushenikā

ସୁଷେଣୀ—ସଂ· ବି—ତ୍ରିବୃତ୍; ତିଉଡ଼ି (ରାଜନିର୍ଘଣ୍ଟ)—Ipomœa Turpethum.
Susheni

ସୁଷୋମା—ସଂ. ବି—ନଦୀ ବିଶେଷ (ଭାଗବତ)—Name of a river mentioned in the Bhāgabata.
Sushomā

ସୁଷ୍ଠୁ—ସଂ. ଅ ( ସୁ+ସ୍ଥା ଧାତୁ+କ୍ତୁ. ଡ଼ )—୧ । ସୁନ୍ଦର ରୂପେ—1. Well; excellently, ୨ । ସତ୍ୟ—2. True. ୩ । ଶ୍ରେଷ୍ଠ—3. Excellent; pre-eminent. ୪ । ଅତିଶୟ—4, Very; much. ୫ । ଯଥାଯୋଗ୍ୟ—5. Proper. ୬ । ସୁନ୍ଦର—6. Beautiful.
Sushṭhu

ସୁଷ୍ଠୁତା(ତ୍ୱ)—ସଂ.ବି (ସୁଷ୍ଠୁ+ଭାବ· ତା)—୧। ମଙ୍ଗଳ; କଲ୍ୟାଣ (ହି· ଶ)—1. Bliss. ୨ । ସୌଭାଗ୍ୟ (ହି ଶ) —2. Good fortune; prosperity. ୩ । ସୁନ୍ଦରତା (ହି· ଶ)—3. Beauty; grace.
Sushṭhutā(wa)

ସୁଷ୍ମ—ସଂ. ବି—୧ । ରଜ୍ଜୁ (ସ୍ୱାମୀ)—1. Rope. ୨ । ବେତସ (ରାଜନିର୍ଘଣ୍ଟ)—2. Cane; ratan, ୩ । କରମର୍ଦ୍ଦିତ (ଅମର); କେରେଣ୍ଡା କୋଳି—3. A kind of a plum; Carissa Caranda.
Sushma

ସୁସ୍ତା—ପ୍ରାଦେ (ଲରଥ) କ୍ରି. ବିଣ—ଧୀରେ ଧୀରେ—Slowly.
Sus-tā

ସୁଁ ସୁଁ—ଦେ. ( ଧ୍ୱନ୍ୟନୁକରଣେ ) ଅ—୧ । ଶର୍ଦ୍ଦି ହୋଇଁ ନାକରୁ ବାହାରିବା ଅନୁନାସିକ ଶବ୍ଦ—1. Nasal sound due to cold. ୨ । ଶନୈଃ କରି କାନ୍ଦିବାର ଶବ୍ଦ—2. Sound of slow sighing cry; whining whimpering sound.
Suñ suñ
स्ूँ स्ूँ
सूँ सूँ

ସୁଁ ସୁଁଆଁ—ଦେ. ବିଣ (ପୁଂ)—ଯେଉଁ ବ୍ୟକ୍ତି ସର୍ବଦା ଶର୍ଦ୍ଦି ହୋଇ ନାକଦ୍ୱାର ସୁଁ ସୁଁ ଶବ୍ଦ କରେ—A person who always suffers from cold and emits a nasal sound on account of mucus in the nasal passage.
Suñ suñāñ
(ସୁଁ ସୁଁଇଁ—ସ୍ତ୍ରୀ)
शर्दि नेको
सूँ सूँ करने वाला

ସୁସଂବାଦ—ସଂ. ବି—ଶୁଭବାର୍ତ୍ତା; ସୁସମାଚାର—Good news.
Susambāda
(ଦୁଃସଂବାଦ—ବିପରୀତ)

ସୁସଂଯତ—ସଂ. ବିଣ ( ସୁ+ସମ୍+ଯମ୍ ଧାତୁ+କର୍ମ. ତ )—୧ । ଦୃଢ଼ବଦ୍ଧ—1. Well attached. ୨ । ଯଥାବିଧି ନିୟମିତ—2. Well regulated. ୩ । ଯଥାବିଧି ସଂଯମ ବିଶିଷ୍ଟ—3. Well kept under control; well disciplined.
Susamjata
(ସୁସଂଯତା—ସ୍ତ୍ରୀ)

ସୁସଂସ୍କୃତ—ସଂ, ବିଣ—୧ । ଉତ୍ତମ ରୂପେ ପକ୍ୱ ବା ସିଦ୍ଧ—1. Well-boiled. ୨ । ଘୃତାଦି ଦ୍ୱାରା ପ୍ରଯତ୍ନ ସଂସ୍କୃତ (ବ୍ୟଞ୍ଜନାଦି)—2. Well seasoned and fried (curry). ୩ । ଯାହାର ଉତ୍ତମ ରୂପେ ସଂସ୍କାର କରି ଯାଇଅଛି—3. Thoroughly repaired.
Susamskruta

ସୁସାଁ—ପ୍ରାଦେ· (ଗଞ୍ଜାମ) ବି—ଶୋଷ—Thirst.
Susañ

ସୁସଙ୍ଗ—ସଂ. ବି—୧ । ଉତ୍ତମ ସଙ୍ଗ—1. Good company ୨ । ସାଧୁଙ୍କ ସଙ୍ଗ—2. Companionship of good people.
Susanga
[ସୁସଙ୍ଗତ—ଅନ୍ୟରୂପ]

ସୁସଙ୍ଗତ—ସଂ· ବିଣ (ସୁ+ସଙ୍ଗତ)—୧ । ଉତ୍ତମ ରୂପେ ଯୁକ୍ତିଯୁକ୍ତ—1. Fairly reasonable. ୨ । ସୁଯୋଗ୍ୟ—2. Very fit. ୩ । ନିତ୍ୟ—3. Permanent. ୪ । ଅତି ଉଚିତ—4. Very proper.
Susangata
(ସୁସଙ୍ଗତ—ବି)

ସୁସଜ୍ଜ—ସଂ· ବିଣ ( ବହୁବ୍ରୀହି; ସୁ+ସଜ୍ଜା+ଅ )—ଉତ୍ତମରୂପେ ସଜ୍ଜିତ ବା ଅଳଙ୍କୃତ—Well adorned or equipped nicely fitted.
Susajja
[ସୁସଜ୍ଜିତ—ଅନ୍ୟରୂପ]
(ସୁସଜ୍ଜା—ସ୍ତ୍ରୀ)

ସୁସଜ୍ଜା—ସଂ. ବିଣ· ସ୍ତ୍ରୀ ( ସୁସଜ୍ଜ+ଆ )—ସୁସଜ୍ଜର ସ୍ତ୍ରୀ ଲିଙ୍ଗ—Feminine of Susajja ସଂ. ଦ୍ରବି—ଉତ୍ତମ ସଜ୍ଜା—Nice equipment.
Susajjā

ସୁସଜ୍ଜୀକୃତ—ସଂ. ବିଣ. ପୁଂ ( ସୁ+ସଜ୍ଜୀକୃତ )—ଯାହା ଉତ୍ତମ ରୂପେ ସଜ୍ଜିତ ବା ଅଳଂକୃତ କରି ଯାଇଅଛି—Recently decorated well by another person.
Susajjīkruta
(ସୁସଜ୍ଜୀକୃତା – ସ୍ତ୍ରୀ)
(ସୁସଜ୍ଜୀକରଣ—ବି)

ସୁସଜ୍ଜୀଭୂତ—ସଂ· ବିଣ ପୁଂ. ( ସୁ+ସଜ୍ଜୀଭୂତ )—ଯାହା ବା ଯେ ପୂର୍ବେ ସୁସଜ୍ଜିତ ନ ଥିଲା ଓ ବର୍ତ୍ତମାନ ନିଜେ ସୁସଜ୍ଜିତ ହୋଇଅଛି—Recently well equipped or adorned himself.
Susajjībhūta
(ସୁସଜ୍ଜୀଭାବ—ବି, ସୁସଜ୍ଜୀଭୂତା —ସ୍ତ୍ରୀ.ବିଣ)

ସୁସଞ୍ଚ—ଦେ. ବିଣ (ସ. ସୁସଜ୍ଜ)—୧ । ଅତି ସୁନ୍ଦର—1. Very nice. ୨ । ସଜ୍ଜିତ; ପ୍ରସ୍ତୁତ—2. Fitted; prepared. [ଭି-ବନ୍ଧାରକୁ ସୁସଞ୍ଚ ସମନପୁର, ମଞ୍ଚ ତେଜିଣ ପୂର୍ବ ପଦ୍ମ ମୁଖ । ଉପେ· ବୈଦେହୀଶ ବିଳାସ ।]
Susañcha
परमसुन्दर
खुबसुरत

ସୁସଞ୍ଚିତ—ସଂ. ବିଣ—ଉତ୍ତମ ରୂପେ ବା ଯତ୍ନପୂର୍ବକ ସାଇତା ହୋଇଥିବା
Susañchita —Well stored; stored with care.
(ସୁସଞ୍ଚୟ—ବି)

ସୁସଞ୍ଚିବା—ଦେ. କ୍ରି—ଯତ୍ନପୂର୍ବକ ବା ଉତ୍ତମରୂପେ ସଞ୍ଚୟ କରିବା—
Susañchibā To store carefully. [ଉ—ଏ ଧନ ଦ୍ରବ୍ୟ ସଞ୍ଚଯକବା ସୁସଞ୍ଚିଲେ, ସନ୍ତ୍ରିର ପାଇ ଅବ୍ଭକାଳେ । ପ୍ରାଚୀ· କର୍ଣ୍ଣ
संचयकरना ମାହାତ୍ମ୍ୟ ।]

ସୁସତ୍ୟା—ସଂ. ବି· ସ୍ତ୍ରୀ—ଜନକ ସ୍ରଜାଙ୍କର ଏକ ଭାର୍ଯ୍ୟା (କାଳକା-
Susatyā ପୁରାଣ)—A wife of king Janaka.

ସୁସବୀ—ସଂ. ବି—ସୁଷବୀ (ସସ୍ ମୂଳ୍ଚ) (ଦେଖ)
Susabī Sushabī (See)

ସୁସମୟ—ସଂ. ବି—୧ । ସୁଖର ସମୟ—1. Happy time. ୨ ।
Susamaya ସୁଦିନ—2. Good day. ୩ । ସୁଭିକ୍ଷ କାଳ—3. Time of plenty.

ସୁସମାଚାର—ସଂ. ବି—ସୁସମ୍ବାଦ; ଉତ୍ତମ ସମ୍ବାଦ; ଶୁଭ ଖବର—
Susamāchāra Good news.
[ଉ—"ବହୁ ଅଣ ସ୍ୱଦେଶୁ ସୁସମାଚାର
ଲଭିବ ନାହିଁ ଅଲ୍ପ ଦର୍ଶନ ପାଇ ।"
କବାସିତର ବଳାପ—ମଧୁସୂଦନ ।]
ଦେ. ବି—ଖ୍ରୀଷ୍ଟାନ୍ ଧର୍ମପୁସ୍ତକରେ ଭିନ୍ନ ଭିନ୍ନ ଅଂଶରେ ଲିପିବଦ୍ଧ ହୋଇଥିବା ଧର୍ମ-ସଂବାଦ ଯଥା—ମାଥିଉ, ଲ୍ୟୁକ୍, ଜନ୍ ଆଦି ମହର୍ଷିଙ୍କ ଲିଖିତ ସୁସମାଚାର )—Relations recorded in the Bible; the Epistles in the Bible (e. g. Luke, Mathew, John etc).

ସୁସମୃଦ୍ଧ—ସଂ. ବିଣ—ଅତ୍ୟନ୍ତ ସମୃଦ୍ଧିଶାଳୀ—Very prosperous.
Susamṛudha (ସୁସମୃଦ୍ଧି—ବି)

ସୁସମେ—ଦେ. ଅ (ସଂ ସୁଷମ)—ସମାନ; ସଦୃଶ—Like; similar.
Susame [ଉ—ଭୂଲନ୍ତୁ ଜଗତେ ଯେଣ ସଙ୍ଗତରେ ସୁସମେ ନ
समान, सुसमे समान ମିଳେ କର । ଭଞ୍ଜ. ବୈଦେହୀଶବିଳାସ ।]

ସୁସମ୍ପତ୍(ଦ୍)—ସଂ. ବି—ସୌଭାଗ୍ୟ (ତ୍ରିକାଣ୍ଡ ଶେଷ)—
Susampat(da) Good fortune; prosperity.

ସୁସମ୍ପନ୍ନ—ସଂ. ବିଣ—ଉତ୍ତମରୂପେ କୃତ୍ସ୍ନ; ସୁନିଷ୍ପନ୍ନ—
Susampanna Well accomplished.
(ସୁସମ୍ପାଦନ—ବି) (ସୁସମ୍ପାଦିତ—ଅନ୍ୟରୂପ)

ସୁସମ୍ବର—ଦେ. ବି—୧ । ଶିଶୁମାର (ଦେଖ)—1. Śiśumāra
Susambara (See) ୨ । ରକ୍ତଖାଇ (ଦେଖ)—2. Raktakhāi (See)

ସୁସମ୍ବାଦ—ସଂ. ବି—ଆନନ୍ଦଜନକ ଖବର—
Susambāda Happy news.

ସୁସହ—ସଂ. ବିଣ (ସୁ+ସହ୍. ଧାତୁ+କର୍ମ. ଅ)—ଅନାୟାସରେ
Susaha ସହନୀୟ; ସୁଖସହ୍ୟ—Easily bearable. ସଂ
[ସୁସହା—ସ୍ତ୍ରୀ. ବିଣ] ବି—ଶିବଙ୍କର ଏକ ନାମ (ହ. ଶ)—
(ଦୁଃସହ—ବିପରୀତ) A name of Śiba.

ସୁସାଧ୍ୟ—ସଂ. ବିଣ (ସୁ+ସାଧ୍. ଧାତୁ+କର୍ମ. ଯ)—ସୁକର; ଅନାୟାସ-
Susādhya ସାଧ୍ୟ; ସହଜରେ ସାଧନୀୟ—Easily accomplishable.
[ଦୁଃସାଧ୍ୟ—ବିପରୀତ]
(ସୁସାଧନ; ସୁସାଧନା—ବି) (ସୁସାଧନୀୟ—ଅନ୍ୟରୂପ)

ସୁସାର—ସଂ. ବିଣ (ବହୁବ୍ରୀହି; ସୁ+ସାର)—୧ । ଶ୍ରେଷ୍ଠ—
Susāra lent. ୨ । ସର୍ବୋତ୍କୃଷ୍ଟ—2. Superior to all ଅତ୍ୟନ୍ତ ସାରବିଶିଷ୍ଟ—3. Substantial; having good essence or sap. ୪ । ସୁଦୃଢ଼—4. Very strong. ବି—୧ । ଉତ୍ତମ ସାର—1. Good essence, sap or substance. ୨ । ସାରବତ୍ତା—2. Competence (M. W) ୩ । (ବହୁବ୍ରୀହି, ସୁ+ସାର ଯାହାର) ରକ୍ତଖଦିର (ରାଜନିର୍ଘଣ୍ଟ)—3. Red catechu. ୪ । ଇନ୍ଦ୍ରନୀଳମଣି (ହ· ଶ)—4. Sapphire. ଦେ. ବିଣ—୧ । ପ୍ରଚୁର; ଯଥେଷ୍ଟ—
यथेष्ट 1. Enough; sufficient. ୨ । ଅତ୍ୟନ୍ତ ଆଦରଯୁକ୍ତ—
पूरा, सुधार 2. Very fond. ୩ । ଉତ୍ତମ—3. Good. ୪ । ୪। ସହଜ—4. Easy. ୫। ସଚ୍ଚରିତ୍ର (ବାଳକ)—5. Of good conduct (boy). ୬ । ଦୋଷମୁକ୍ତ—6. Free from defects. ୭ । ସୁସ୍ଥ; ସୁସ୍ଥଭାବଯୁକ୍ତ (ଶରୀର)—7. Healthy (body). ୮ । ରୋଗମୁକ୍ତ (ଦେହ)—8. Cured; recovered from illness. ୯ । ମରାମତି କରାଯାଇଁ ସଜଡ଼ା ଯାଇଥିବା—9. Repaired; set right

ସୁସାର ବଚନ—ଦେ· ବି·—ମିଠା କଥା—Sweet words.
Susāra bachana ପ୍ରାଦେ (ଗଡ଼ଜାତ)ବି—ଫୋର୍ଫୋଅକଥା—
मिष्टिकथा मीठीबात Bold language, outspokenness.

ସୁସାରବତ୍—ସଂ. ବି—ସ୍ଫଟିକ (ତ୍ରିକାଣ୍ଡଶେଷ);
Susaārabat Quartz.

ସୁସାରିବା—ଦେ. କ୍ରି—୧ । ଅସୁସ୍ଥ ଦେହକୁ ସୁସ୍ଥାବସ୍ଥାକୁ ଆଣିବା—
Susāribā 1.To restore to health. ୨ । ଦୋଷମୁକ୍ତ
स्वस्थ्यान सुधारना କରିବା—2. To free from defects.

ସୁସାରରେ—ଦେ. କ୍ରି. ବିଣ—୧ । ଉତ୍ତମରୂପେ—Goodly; well.
Susārare ୨ । ନିର୍ଦ୍ଦୋଷ ରୂପେ—2. Faultlessly. ୩ ।
उत्तमरूपे अच्छीतरह ଅତ୍ୟନ୍ତ ଆଦର ସହକାରେ—3. With great fondness. [ଉ—ଯେତେ ସଖୀଏ ବକ୍ତାମଣି ଥବା ମୋ କରେ ଦେଲୁ ସୁସାରରେ । କବିସୂର୍ଯ୍ୟ କଶୋରଚନ୍ଦ୍ର ଗୀତ ।] ୪ । ବିନା ଆପତ୍ତିରେ—4. Without any objection. [ଉ—ରାଜା ଅଷ୍ଟଦୁର୍ଗରୁ ଏ ଭାଷାରେ, ରହେ ଏବେ ବନେ ହେଉ ସୁସାରେ । କବିସୂର୍ଯ୍ୟ—କଶୋରଚନ୍ଦ୍ର ର ଗୀତ ।]

ସୁସିକତା—ସଂ.ବି.—(ସୁ+ସିକତା) ୧ । ଉତ୍ତମ ବାଲୁକା—1 Good
Susikstā sand. ୨ । ଶର୍କରା(ରାଜନିର୍ଘଣ୍ଟ)—2 Molasses, ୩ । ଚିନି (ହ ଶ)—3 White sugar.

ସୁସିଦ୍ଧ—ସଂ. ବଣ—୧ । ଉତ୍ତମରୂପେ ସିଦ୍ଧ ବା ପକ୍ୱ (ଅନ୍ନାଦି)—
Susiddha 1. Well boiled; well dressed (food).
୨ । ଉତ୍ତମରୂପେ ସଫଳ (ଉଦ୍ଦେଶ୍ୟ, କର୍ମ)—2. Well successful (work, aim). ୩ । (ବିଦ୍ୟା, ତପସ୍ୟା, ଯୋଗ ସାଧନାଦିରେ) ଉତ୍ତମରୂପେ ସିଦ୍ଧିଲାଭ କରିଥିବା (ବ୍ୟକ୍ତି)—3. Adept; well proficient.

ସୁସିଦ୍ଧି—ସଂ. ବି—ସାହିତ୍ୟର ଅଳଙ୍କାର ବିଶେଷ—
Susiddhi Name of a rhetorical figure.
[ଦ୍ର—ଯେଉଁଠାରେ ଜଣେ ମନୁଷ୍ୟର ପରିଶ୍ରମର ଫଳ ଅନ୍ୟ ଲୋକ ଭୋଗ କରେ ସେଠାରେ ଏହି ଅଳଙ୍କାର ହୁଏ—ହି. ଶ ।]

ସୁସିର—ସଂ. ବି—ବାଗ୍ଭଟ ଅନୁସାରେ ଦାନ୍ତମୂଳର ସରସା ରୋଗ—
Susira A disease of the gum.
[ଦ୍ର—ଏ ରୋଗରେ ଦାନ୍ତମୂଳ ଫୁଲିଯାଏ ଓ ଖୁବ୍ ଦରଜ ହୁଏ; ଦାନ୍ତମୂଳରୁ ବହୁତ ରକ୍ତ ବହେ ଓ ଦାନ୍ତମୂଳର ମାଂସ କଟିଯାଏ ବା ଖସିପଡ଼େ; ପିତ୍ତ ଓ ରକ୍ତ କୁପିତ ହେବାରୁ ଏ ରୋଗ ହୁଏ —ହି ଶ ।]

ସୁସୀତା—ସଂ. ବି—ଶତପତ୍ରୀ; ସେବତୀ (ହି. ଶ)
Susitā Musk rose.

ସୁସୀମା—ସଂ ବି (ନାମ)—ବୃଷ୍ଟିର୍ଦ୍ଧନ୍ୱାତୀ. ଷଷ୍ଠ ଜିନଙ୍କ ଜନନୀ—
Susimā Name of th mother of the sixth Jaina saint.

ସୁସୁ—ଦେ. ଅ (ଧ୍ୱନ୍ୟନୁକରଣ)—୧ । ପବନର ଜୋର୍‌ରେ ବହିବାର ଶବ୍ଦ—1. The hissing sound of blowing wind. ୨ । ସର୍ପ ଗର୍ଜନର ଶବ୍ଦ—2. The hissing sound of a snake. ୩ । ଓଠଦ୍ୱାରା ସିଟି ମାରିବାର ଶବ୍ଦ—3. The sound of whistling with the lips.
Susu
শোঁশোঁ
सर सर
খোঁস্‌খোস্ सुसू

ସୁସୁନି(ଣ୍ଡି)—ଗ୍ରାଦେ (ମେଦିନୀପୁର ଓ ବାଲେଶ୍ୱର) ବି—(ସଂ. ସୁନିଷଣ୍ଣକ; ତୁଳ—ବ. ସୁସନେ)—ସୁନିଷୁନିଆ (ଦେଖ)—
Susuni(ndi) Sunishuniā (See)

ସୁସୁମାର—ଦେ. ବି (ସଂ. ଶିଶୁମାର)—ଶିଶୁମାର (ଦେଖ)
Susumāra Gangetic porpoise.
শিশুমার, শুশুক सूसमार, सू(सूँ)स

ସୁସୁର ପ୍ରିୟା—ସଂ. ବି—ଜାତିପୁଷ୍ପ (ଦେଖ) (ହି. ଶ)—
Susura priyā Jāti pushpa (See)

ସୁସୂକ୍ଷ୍ମ—ସଂ. ବଣ—ଅତି ସୂକ୍ଷ୍ମ—Very minute; ବି—ପରମାଣୁ (ହି. ଶ)—Molecule.
Susūkshma

ସୁସୂକ୍ଷ୍ମ ପତ୍ର—ସଂ. ବି—ଜଟାମାଂସୀ (ହି. ଶ)—
Susūkshma patra Indian spikenard.

ସୁସୌଭଗ—ସଂ ବି—ଦାମ୍ପତ୍ୟ ସୁଖ (ହି. ଶ)—
Susaubhaga Conjugal happiness.

ସୁସ୍କନ୍ଦନ—ସଂ. ବି—ବବୁଲ ବୃକ୍ଷ (ହି. ଶ)—
Suskandana Acacia Arabica (tree).

ସୁସ୍କିବା—ଗ୍ରାଦେ (ଲରଥ) କ୍ରି, (ତୁଳ. ହି. ସୁସୁକ୍‌ନା)—ସବେଇ ସବେଇ କାନ୍ଦିବା—To cry with bated sobs; to whimper.
Suskibā

ସୁସ୍ତ—ଗ୍ରା· ବଣ (ସଂ· ସୁସ୍ଥ)—୧ । ସୁସ୍ଥ—1. Healthy. ୨ । ନିଶ୍ଚିନ୍ତ; ଚିନ୍ତାଶୂନ୍ୟ—2. Free from anxiety. ବି—୧ । ସୁସ୍ଥତା—1. Health. ୨ । ସୁଖ—2. Happiness. ୩ । ସ୍ୱଚ୍ଛନ୍ଦତା—3. Comfort. ବୈଦେ, ବଣ (ଫା. ସୁସ୍ତ)—୧ । ଦୁର୍ବଳ—1. Weak; devoid of strength. ୨ । ଶକ୍ତି ବା ଲକ୍ଷ୍ମୀ ଅବ ଯୋଗ୍ୟ ହିସୁଡ଼ ବା ନିସ୍ତେଜ—2. Shorn of vigour. ୩ । ଯାହାର ବେଗ ପ୍ରବଳତା, ଗତି ଅବ ମନ୍ଦ ହୋଇ ଯାଇଅଛି; ମାନ୍ଦା—3. With one's motion slackened. ୪ । ଅଳସ; ଆଳସ୍ୟପରାୟଣ—4. Idle; lazy. ୫ । ମନ୍ଥର—5. Slow; slothful. ୬ । ଶିଥିଳ—6. Slack. ୭ । ଦୀର୍ଘସୂତ୍ରୀ—7. Dilatory.
Susta
সুস্থ
सुस्थ
সুস্ত
सुस्त

ସୁସ୍ତନା - ସଂ· ବଣ ଓ ବି, ସ୍ତ୍ରୀ (ବହୁବ୍ରୀହି; ସୁ+ସ୍ତନ+ଅ)—
Sustanā ୧ । ସୁନ୍ଦର ସ୍ତନବିଶିଷ୍ଟା ନାରୀ (ହି. ଶ)—
1. A woman with charming breasts.
୨ । ପ୍ରଥମ ଥର ରଜସ୍ୱଳା ହୋଇଥିବା ସ୍ତ୍ରୀ (ହି. ଶ)—
2. A girl who has had her first menstruation.

ସୁସ୍ତା—ଗ୍ରାଦେ. (ବାଲେଶ୍ୱର) ବି—କ୍ଷୁଦ୍ର ମତ୍ସ୍ୟ ବିଶେଷ—
Sustā A kind of small fish.

ସୁସ୍ତାଇବା—ଗ୍ରାଦେ. (ଲରଥ) କ୍ରି· (ତୁଳ. ହି. ସୁସ୍ତାନା)—
Sustāibā ଥକା ମାରିବା; ଶ୍ରମ ମେଣ୍ଟାଇବା—To refresh oneself after fatigue.

ସୁସ୍ତି—ଗ୍ରା. ବଣ ଓ ବି—ସୁସ୍ତ (ଦେଖ)—Sust (See). ବୈଦେ. ବଣ (ଫା. ସୁସ୍ତ)—୧ । ଅଲସୁଆ—1. Lazy; idle. ୨ । ଦୀର୍ଘସୂତ୍ରୀ; ମନ୍ଥର—2. Slow; dilatory. ୩ । ଶିଥିଳ—3. Slack. ବି—୧ । ବିଶ୍ରାମ—1. Rest. ୨ । ଆଳସ୍ୟ—2. Idleness. ୩ । ମନ୍ଥରପଣ—3. Slowness. ୪ । ଶିଥିଳତା—4. Slackness ୫ । ଦୀର୍ଘସୂତ୍ରିତା—5. Dilatoriness.
Susti
আলসে
सुस्त

ସୁସ୍ଥ—ସଂ. ବଣ (ତ୍ରି) (ସୁ+ସ୍ଥା. ଧାତୁ+କର୍ତ୍ତୃ· ଅ)—୧ । ସ୍ୱାସ୍ଥ୍ୟଯୁକ୍ତ; ନୀରୋଗ—1. Healthy; hale; free from sickness. ୨ । ସୁସ୍ଥିର—2. Calm; fixed ୩ । ସ୍ୱଚ୍ଛନ୍ଦ—3. Easy; comfortable. ୪ । ସୁଖୀ—4. Happy. ୫ । ନିଶ୍ଚିନ୍ତ—5. Free from anxiety. ୬ । ସୁନ୍ଦର—6. Beautifu ୭ । ଉତ୍ତମ ରୂପେ ସ୍ଥିତ (ହି· ଶ)—7. Well placed; well situated.
Sustha
(ସୁସ୍ଥା—ସ୍ତ୍ରୀ
[ସୁସ୍ଥତା(ତ୍ୱ)—ବି]
[ବିପରୀତ—ଅସୁସ୍ଥ]

ସୁସ୍ଥକାୟ—ସଂ. ବି (କର୍ମଧା)—ସୁସ୍ଥ ଦେହ—Healthy body.
Susthakāya ବଣ (ତ୍ରି) (ବହୁବ୍ରୀହି)—ଯାହାର ଦେହରେ

(ସୁସ୍ଥ ଦେହ, ସୁସ୍ଥ ଶରୀର—ଅନ୍ୟରୂପ) ରୋଗ ନାହିଁ—Healthy.
(ସୁସ୍ଥକାୟା, ସୁସ୍ଥ ଦେହା, ସୁସ୍ଥ ଶରୀରା—ସ୍ତ୍ରୀ)

ସୁସ୍ଥ ଚିତ୍ତ—ସଂ. ବିଣ. ପୁଂ (ବହୁବ୍ରୀହି)—ପ୍ରସନ୍ନଚିତ୍ତ; ସୁଖୀ—
Sustha chitta Of easy mind; delighted.
( ସୁସ୍ଥଚିତ୍ତା – ସ୍ତ୍ରୀ )
[ ସୁସ୍ଥଚେତାଃ, ସୁସ୍ଥମନାଃ—ଅନ୍ୟ ପୁଂ ଓ ସ୍ତ୍ରୀରୂପ ]

ସୁସ୍ଥତା(ତ୍ୱ)—ସଂ. ବି (ସୁସ୍ଥ+ଭାବ ତା; ତ୍ୱ)—୧ । ନୀରୋଗତା—
Susthatā(twa) 1. Good health; freedom from illness. ୨ । ସ୍ୱଚ୍ଛନ୍ଦତା—2. Comfort. ୩ । ସୁଖ—3. Happiness. ୪ । ସୁସ୍ଥିରତା—4. Calmness. ୫ । କୁଶଳ; କ୍ଷେମ ( ହି. ଶ )—5. Weal; bliss. ୬ । ଆନନ୍ଦ (ହି. ଶ)—6. Joy.

ସୁସ୍ଥି—ବୈଦେ, ବି ଓ ବିଣ—ସୁସ୍ଥ (ଦେଖ)
Susthi Susta (See)

ସୁସ୍ଥିତ—ସଂ. ବିଣ. ପୁଂ—୧ । ଉତ୍ତମରୂପେ ଅବସ୍ଥିତ—Well situa-
Susthita ted; well positioned. ୨ । ସୁସ୍ଥ (ହି. ଶ)—
(ସୁସ୍ଥିତା—ସ୍ତ୍ରୀ) 2. Healthy. ୩ ଭାଗ୍ୟବାନ୍ (ହି. ଶ)—
[ସୁସ୍ଥିତତା(ତ୍ୱ), ସୁସ୍ଥିତି—ବି] 3. Fortunate. ୪ । ପ୍ରସନ୍ନ, ଆନନ୍ଦିତ—4. Delighted. ସ. ବି—୧ । ଯେଉଁ ବାସ୍ତୁର ବା ଘରର ଚାରି ପାଖରେ ରାସ୍ତା ବା ମାର୍ଗ ଥାଏ (ହି. ଶ)—1. A homestead or house having roads on all sides. ୨ । ଘୋଡ଼ାଙ୍କର ଏକ ରୋଗ (ହି. ଶ)— 2. A kind of horse-disease [ଦ୍ର—ଏ ରୋଗଗ୍ରସ୍ତ ଘୋଡ଼ା ସବୁବେଳେ ହେଁ ହେଁ ହେଉ. ଥାଏ ଓ ଅପ । ଦେହକୁ ଅପେ ଦେଖୁଥାଏ—ହି ଶ ।] ୩ । (ନାମ) ଜୈନାଚାର୍ଯ୍ୟ ବିଶେଷ (ହି. ଶ)— 3. Name of a Jaina preceptor.

ସୁସ୍ଥିର—ସ. ବିଣ ପୁଂ—୧ । ଅତି ସ୍ଥିର—1 Very calm. ୨ ।
Susthira ଅଚଳ ଦୃଢ଼ୀଭୂତ—2. Fixed. ୩ । ସୁନିଶ୍ଚିତ—
(ସୁସ୍ଥିରା—ସ୍ତ୍ରୀ) 3. Certain.

ସୁସ୍ଥିରା—ସ. ବିଣ. ସ୍ତ୍ରୀ—ସୁସ୍ଥିରର ସ୍ତ୍ରୀଲିଙ୍ଗ—Feminine of
Susthirā Susthira. ସ. ବି—ରକ୍ତବାହକ ଶିରା (ହି. ଶ)—
Blood vessels.

ସୁସ୍ନା—ସଂ. ବି—ଶମୀଧାନ୍ୟ ଭେଦ (ଶବ୍ଦକଳ୍ପଦ୍ରୁମ); ଖେସାରି—
Susnā A kind of pulse, Lathegra Sativus.

ସୁସ୍ନାତ—ସଂ. ବିଣ (ପୁଂ) ( ସୁ+ସ୍ନାତ )—୧ । ଯଜ୍ଞଶେଷରେ
Susnāta ସ୍ନାନକାରୀ—1. One who had his sacrificial
(ସୁସ୍ନାତା—ସ୍ତ୍ରୀ) bath. ୨ । ସୁନ୍ଦରରୂପେ କୃତସ୍ନାନ—
2. Well-washed. ୩ । ମାଙ୍ଗଲ୍ୟ ଦ୍ରବ୍ୟ ବା ସର୍ବୌଷଧି ମିଶ୍ରିତ ଜଳଦ୍ୱାରା କୃତସ୍ନାନ—3. Bathed with medicated or auspicious ingredients mixed in water. ବି (ସୁ+ସ୍ନା ଧାତୁ+ଭାବ. ତ) —ସୁସ୍ନାନ (ଦେଖ)—Susnāna (See)

ସୁସ୍ନାନ—ସଂ. ବି—୧ । ଉତ୍ତମ ସ୍ନାନ—1. A good bath; a
Susnāna thorough bath. ୨। ଯଜ୍ଞାନ୍ତ ସ୍ନାନ; ଅବଭୃଥ—
2. Bath after a Vedic sacrifice. ୩ । ସର୍ବୌଷଧି ମିଶ୍ରିତ ଜଳରେ ସ୍ନାନ—3. Bath with medicated water.

ସୁସ୍ନିଗ୍ଧ—ସଂ. ବିଣ—୧ । ଅତି ସ୍ନିଗ୍ଧ—1. Very smooth. ୨ ।
Susnigdha ଅତି ମୃଦୁ—2. Very mild. ୩ । ଅତି
(ସୁସ୍ନିଗ୍ଧତା—ବି) ମଧୁର—3. Very sweet. ୪। ସୁଶୀତଳ—
4. Agreeably cool.

ସୁସ୍ନେହା—ଦେ. ବିଣ. ସ୍ତ୍ରୀ—ଉତ୍ତମ ସ୍ନେହବିଶିଷ୍ଟା; ସ୍ନେହବତୀ—Very
Susnehā स्नेहवती सुस्नेहा affectionate (woman),
(ସୁସ୍ନେହୀ—ପୁଂ. ଓ ସ୍ତ୍ରୀ—ଅନ୍ୟରୂପ) (ଟି—ବହୁ ଯାହା ତାହା ସୁଦେହା ସୁସ୍ନେହା ଜାଣି ତ ଥିବୁ ଅବଶ୍ୟ । ଉଜ୍ଜ. ବୈଦେହୀଶ ବିଳାସ । )

ସୁସ୍ପଷ୍ଟ—ସଂ. ବିଣ—୧ । ଅତିଶୟ ସ୍ପଷ୍ଟ—1. Very clear. ୨ ।
Suspashṭa ସୁବ୍ୟକ୍ତ—2. Well evident.
(ସୁସ୍ପଷ୍ଟତା—ବି)

ସୁସ୍ୱଧା—ସଂ. ବିଣ—୧ । କଲ୍ୟାଣ; ମଙ୍ଗଳ (ହି. ଶ)—
Suswadhā 1. Bliss; weal.
୨ । ସୌଭାଗ୍ୟ (ହି. ଶ) —2. Good fortune.

ସୁସ୍ୱନ—ସଂ. ବିଣ (ବହୁବ୍ରୀହି)—୧ । ଉତ୍ତମ ବା ମଧୁର ଧ୍ୱନିଯୁକ୍ତ—
Suswana 1. Having good or sweet sound.
୨ । ଖୁବ୍ ଉଚ୍ଚ (ହି. ଶ)—2. Very high. ୩ । ସୁନ୍ଦର (ହି. ଶ)—3. Charming. ସ. ବି—ଶଙ୍ଖ (ହି. ଶ)—
Conch.

ସୁସ୍ୱପ୍ନ—ସ. ବି—୧ । ଶୁଭସୂଚକ ସ୍ୱପ୍ନ—1. Dream which
Suswapna augers well. ୨ । ଆନନ୍ଦଦାୟକ ସ୍ୱପ୍ନ—
(ଦୁଃସ୍ୱପ୍ନ—ବିପରୀତ) 2. Pleasant dream. ୩ । ଶିବ (ହି. ଶ)—3. Siba.

ସୁସ୍ୱର—ସ. ବି—୧ । ମଧୁର ସ୍ୱର—1. Sweet tune. ୨ । ମଧୁର
Suswara କଣ୍ଠସ୍ୱର—2. Sweet tone. ୩ । ଉଚ୍ଚ ଓ ସ୍ପଷ୍ଟ
(ସୁସ୍ୱରା—ସ୍ତ୍ରୀ) ସ୍ୱର—3. Loud and clear sound. ସ. ବିଣ. ପୁଂ (ବହୁବ୍ରୀହି)—୧ । ସୁନ୍ଦର ସ୍ୱର ଉତ୍ପାଦନକାରୀ (ଯନ୍ତ୍ର)—1. Emitting sweet tune; melodious. ୨ । ମଧୁର କଣ୍ଠସ୍ୱରବିଶିଷ୍ଟ; ସୁକଣ୍ଠ—2. Having medious tone. ୩ । ଉଚ୍ଚସ୍ୱର ବିଶିଷ୍ଟ—3. Loud-voiced. (Apte)

ସୁସ୍ୱରୀ—ଦେ. ବି (ସଂ. ସୁସ୍ୱର)—ମୁଖଦ୍ୱାରା ବାଦ୍ୟ ବିଶେଷ—
Suswari An instrument blown by the mouth.
सुस्वरी सुसुरी

ସୁସ୍ମିତ—ଦେ. ବିଣ. ପୁଂ (ବହୁବ୍ରୀହି; ସୁ ଅଟେ ସ୍ମିତ ଯାହାର)—ସୁନ୍ଦର
Susmita ହାସ୍ୟଯୁକ୍ତ; ହସହସମୁହାଁ—Sweetly smil-
(ସୁସ୍ମିତା—ସ୍ତ୍ରୀ) ing; having a smiling face.

**ସୁସ୍ମିତା**—ସ. ବ. ସ୍ତ୍ରୀ—ସୁହାସ୍ୟମୁଖୀ ସ୍ତ୍ରୀ; ସୁନ୍ଦର ଈଷଦ୍ଧାସ୍ୟଯୁକ୍ତା ସ୍ତ୍ରୀ—Susmitā A sweet smiling woman; a woman with a pleased or smiling countenance (Apte), ସଂ. ବିଣ. ସ୍ତ୍ରୀ—ସୁସ୍ମିତର ସ୍ତ୍ରୀଲିଙ୍ଗ—Feminine of Susmita.

**ସୁହରନ୍**—ବୈଦେ. ବି (ଇଂ. ସୁହର୍ନ୍)—ଯୋତା ମଧ୍ୟକୁ ଗୋଡ଼ର Suharan ଗୋଇଠିକୁ ସହଜରେ ପୁରାଇବା ପାଇଁ ବ୍ୟବହୃତ (ସୁହର୍ଣ୍ଣ—ଅନ୍ୟରୂପ) ଶିଂଘର ବଙ୍କା ଓ ଖାଲୁଆ ପାତଆ—ସୁହବନ୍ सुहरन Shoe-horn.

**ସୁହସ୍ତ**—ସ. ବି—୧ । ସୁନ୍ଦର ହାତ—1. Graceful hand. ୨ । Suhasta ଦାନଶୀଳ ହସ୍ତ—2. Bounteous hand. ୩ । (ସୁହସ୍ତା—ସ୍ତ୍ରୀ) ଶୁଭସୂଚକ ହସ୍ତ—3. Auspicious hand. ୪ । (ନାମ) ଧୃତରାଷ୍ଟ୍ରଙ୍କ ଏକ ପୁତ୍ର—4. A son of Dhrutarāshtra. ସ. ବିଣ. ପୁଂ (ବହୁବ୍ରୀହି)—୧ । ସୁନ୍ଦର ହସ୍ତବିଶିଷ୍ଟ—1. Having dainty hands ୨ । ଶୁଭସୂଚକ ହସ୍ତବିଶିଷ୍ଟ—2. Having auspicious hands.

**ସୁହସ୍ତି(ସ୍ତୀ)**—ସ. ବି—(ନାମ) ବୌଦ୍ଧ ବିଶେଷ (ହେମଚନ୍ଦ୍ର); Suhasti(stī) ଜୈନାଚାର୍ଯ୍ୟ ବିଶେଷ—Name of a Jaina monk.

**ସୁହା**—ଦେ. ବି (ସ. ସହ୍. ଧାତୁ)—ସହ୍ୟ କରିବା—Suhā ସହା, ସହନ सहना Bearing; enduring.

**ସ୍ୱାହା** ଗ୍ରା. ବି (ସ. ସ୍ୱାହା)—ସ୍ୱାହା (ଦେଖ) स्वाहा Swāhā (See)

**ସୁହାଇବା**—ଦେ. କ୍ରି (ସଂ. ସହ୍ ଧାତୁର ଣିଜନ୍ତ)—୧ । ସହିବା କ୍ରିୟାର Suhāiba ଣିଜନ୍ତରୂପ—1. To cause to bear. [ ଉ—ସହାନା ସୁହାଇଲ ସର୍ବୀମାନଙ୍କ ପରିହାସ । କୃଷ୍ଣସିଂହ- ମହାଭାରତ. सहाना ବନ ।] ୨ । ସହ୍ୟ ହେବା; ସୁହାଯିବା—2. To be endured or borne. (ଉ—ଜନନୀଙ୍କୁ ଗୋଳପାଣି ସୁହାଏ । ଭଗ ।)

**ସୁହାଗ**—ଦେ. ବି ( ସଂ. ସୌଭାଗ୍ୟ; ପ୍ରା. ସୋହଗ୍ଗ)—୧ । ଅତି Suhāga ସ୍ନେହ—1. Excessive fondness or ସୋହାଗ affection. (ଉ—ଦେଖ ଗୋ ମୁରଲୀର ଭାଗ୍ୟ, ଅଧିକେ सुहाग କୃଷ୍ଣର ସୁହାଗ । ଜଗନ୍ନାଥ- ଭାଗବତ ।) ୨ । ସ୍ତ୍ରୀର ସୌଭାଗ୍ୟ ବା ପତିପ୍ରିୟା ହେବା ଅବସ୍ଥା—2. The state of a woman being loved and fondled by her husband.

**ସୁହାଗ କରିବା**—ଦେ. କ୍ରି—ଅତି ସ୍ନେହ କରିବା—Suhāga kariba To fondle; to dote for. ସୋହାଗ କରା सुहाग करना

**ସୁହାଗ କାଢ଼ିବା**—ଦେ. କ୍ରି (ବ୍ୟଙ୍ଗ୍ୟ)—ଅତି ସ୍ନେହଭାବ Suhāga kārdhibā ଦେଖାଇବା—To make a show ସୋହାଗ କାଡ଼ାନ, ସୋହାଗ ଦେଖାନ of great fondling सुहाग निकालना

**ସୁହାଗା**—ଦେ. ବି (ସଂ. ସୁଭଗ; ସୌଭାଗ୍ୟ)—ଟଙ୍କଣ; ଟାଙ୍ଗଣା—Suhāgā Borax; Sodas Biboras. [ବି—ଏହା ଜଳ ସୋହାଗା ସନ୍ନିଧାନରେ ଜାତ କ୍ଷାରବିଶେଷ । କାଶ୍ମୀର ଦେଶର सुहागा, टङ्कण ଉଷ୍ଣ ପ୍ରସ୍ରବଣର ଜଳରୁ ଗନ୍ଧକ ଓ ସୁହାଗା ମିଳେ । ସଂ. ପର୍ଯ୍ୟାୟ—ଲୌହଦ୍ରାବୀ, ଟଙ୍କଣ, ସୁଭଗ, ସ୍ୱର୍ଣ୍ଣପାଚକ, ରସଶୋଧନ, କନକକ୍ଷାର, ସୌଭାଗ୍ୟ, ଧାତୁଦ୍ରାବକ, କ୍ଷାର— ମ. ସବାଗୀ, ଟଙ୍କଣକ୍ଷାର ଫା. ତିଂଗାର ଆ. ବୁରକ ଢେ. ଏଲଗରମ୍ ତିବ୍ବତର ହ୍ରଦଜଳରୁ ସୁହାଗା ମିଳେ । ସୁନାରେ ବା ରୁପାରେ ସୁହାଗା ମିଶାଇ ନିଆଁରେ ରଖିଲେ ଶୀଘ୍ର ଅଳୁଡ଼ି ହୋଇଯାଏ । ଏହା ଔଷଧରେ ଲାଗେ । ଲୁଗାର ରଙ୍ଗକୁ ପକ୍କା କରିବାକୁ ରଙ୍ଗମିଶା ପାଣିରେ ସୁହାଗା ଦିଆଯାଏ ଏବଂ ଲୁହା ଓ ପିତ୍ତଳକୁ ଝାଳିବାରେ ସୁହାଗା ଲାଗେ । ଘୋଡ଼ାମାନଙ୍କର ଜାବନରେ ଏହାର ପୁଟ ଦେଲେ ତାହା ଉପକାରୀ ହୁଏ । ବୈଦ୍ୟଶାସ୍ତ୍ରମତରେ ଏହା ଅଗ୍ନିବର୍ଦ୍ଧକ, କଫ ଓ ରଜୋପ୍ରବର୍ତ୍ତକ, ବଳକାରକ, ମୂଢ଼ ଗର୍ଭକର୍ଷକ ଓ ଚିତ୍ତୋଦ୍ବେଗକ ।] ବିଣ—ସୁହାଗିଆ (ଦେଖ)—Suhāgiā (See)

**ସୁହାଗା ଖଇ**—ଦେ. ବି—ନିଆଁରେ ପୋଡ଼ାଯିବା ଯୋଗୁଁ ଖଇପରି Suhāgā khai ଫୁଲିଥିବା ଟାଙ୍ଗଣା—Borax which ସୋହାଗା ଖଇ सुहागा लावा becomes swollen being heated.

**ସୁହାଗିଆ(ହା)**—ଦେ. ବିଣ. ପୁଂ—ସୁହାଗୀ (ଦେଖ) Suhāgiā(hā) Suhāgī (See) (ସୁହାଗୀ, ସୁହାଗେଣି—ସ୍ତ୍ରୀ)

**ସୁହାଗିନୀ**—ଦେ. ବିଣ. ସ୍ତ୍ରୀ—୧ । ସ୍ନେହଶୀଳା—1. Affection Suhāginī ate. (ଉ—ରୂପ ଯୌବନ ଗୁଣ ସବୁ, ଭାଜନ ସୋହାଗୀ, ସୋହାଗୀନୀ ସୁହାଗିନୀ ସବୁ । ଭୂପତି. ପ୍ରେମ सुहागिनी ପଞ୍ଚାମୃତ । ] ୨ । ଅତିଶୟ ସ୍ନେହଶୀଳା—2. Doting; fond. ଦେ. ବି ସ୍ତ୍ରୀ—୧। ସୁଭଗା ସ୍ତ୍ରୀ—1. A beloved wife. ୨ । ପତିବିଶିଷ୍ଟା ସ୍ତ୍ରୀ—2. A woman whose husband is living.

**ସୁହାଗୀ**—ଦେ. ବିଣ (ପୁଂ ଓ ସ୍ତ୍ରୀ)—୧ । ଯାହାକୁ ଅତିଶୟ ସ୍ନେହ କରାSuhāgī ଯାଏ; ସ୍ନେହପାତ୍ର—Unduly fondled. [ଉ—ସୋହାଗୀ ଲୋହୀ କୃଷ୍ଣର ମୁରଲିକପଣେ ସବେ ସୁହାଗୀ ମନେ ମନେ—ଭୂପତି ପ୍ରେମପଞ୍ଚାମୃତ ।] ୨ । ଯେ ଅତି ସ୍ନେହ କରେ—2. Doting; fond. ୩ । ସ୍ନେହଶୀଳ—3. Loving; affectionate. [ ଦ୍ର—ଏ ଶବ୍ଦ ଅନ୍ୟ ବ୍ୟକ୍ତିବାଚକ ଶବ୍ଦ ସଙ୍ଗେ ଯୁକ୍ତ ହୁଏ । ଯଥା—ଘରଭା-ସୁହାଗୀ; ଝିଅ-ସୁହାଗୀ ଇତ୍ୟାଦି । ] ପ୍ରାଦେ (ଗଡ଼ଜାତ) ବି—ରାଜା ସେବକ ରଖିଥିବା ଦାସୀଜାତି ବିଶେଷ ଅନୁରକ୍ତ ଉପପତ୍ନୀ—The beloved concubine of a Rāja

ସୁହାଗେଇ ହେବା—ଦେ. କ୍ରି (ସ୍ତ୍ରୀ ପକ୍ଷରେ)—୧। ସ୍ୱାମୀ-ସ୍ନେହ ଲାଭ
Suhāgei hebā କରିବା ପାଇଁ ଲାଳାୟିତା ହେବା—1. To hanker after a husband's fondling or caressing. ୨। ସ୍ୱାମୀ ତାଙ୍କ ପ୍ରତି ବିଶେଷ ଅନୁରକ୍ତ ଅଛନ୍ତି ବୋଲି ଦେଖାଇ ହେବା ବା କହି ବୁଲିବା—2. To show or boast to people that one's husband is very fond of her.

ସୁହା ଯି(ହେ)ବା—ଦେ. କ୍ରି (ସଂ. ସହ)—ସହିବାର କର୍ମବାଚ୍ୟରୂପ—
Suhā ji(he)bā The passive form of Sahibā. সহ্যহওযা सहाजाना ସହ୍ୟ ହେବା—To be borne or endured. [ଉ—ତାହା ମଧ୍ୟ ମୋହର ଦେହ ସୁହାଗିଲା—କୃଷ୍ଣସିଂହ ମହାଭାରତ ବନ।]

ସୁହାରା—ଦେ. ବି—ଛୁଆଁରା (ଦେଖ)—
Suhārā Chhuānrā (See)

ସୁହାସ(ସ୍ୟ)—ସଂ. ବି—୧। ମଧୁର ହାସ୍ୟ—1. Sweet laugh.
Suhāsa(sya) ୨। ମୃଦୁହାସ—2. Smile. ସଂ. ବିଣ. [ସୁହାସା(ସ୍ୟା)—ସ୍ତ୍ରୀ ବିଣ] ପୁଂ—୧। ମଧୁର ହାସ୍ୟଯୁକ୍ତ—Sweetly laughing. ୨। ମୃଦୁହାସବିଶିଷ୍ଟ—2. Smiling.

ସୁହାସିନୀ—ସଂ. ବିଂ. ସ୍ତ୍ରୀ (ସୁହାସ+ଇନ୍+ସ୍ତ୍ରୀ ଈ)—୧। ସୁନ୍ଦର ହାସ୍ୟ-
Suhāsini ଯୁକ୍ତା—1. (woman) Having a smiling face. ୨। ପ୍ରସନ୍ନବଦନା—2. Having a cheerful face. ୩। ମୃଦୁହାସ୍ୟକାରୀ—3. Smiling. (ଉ—ସୁହାସିନୀ ଉଷାଦେବୀ ଅଲୋକ-ନନ୍ଦନୀ ବନେ ଉଲ୍ଲାସେ ଯେବେ ଭୋର ପଦତଳେ—ମଧୁସୂଦନ କବିତା)

ସୁହାସୀ—ସଂ. ବିଣ. ପୁଂ (ସୁହାସ+ଇନ୍; ୧ମା ୧ବ)—ସୁହାସିନୀର
Suhāsi ପୁଂଲିଙ୍ଗ—Masculine of Suhāsini.
ଦେ. ବିଣ. ସ୍ତ୍ରୀ (ସଂ. ସୁହାସା)—ସୁହାସିନୀ (ଦେଖ)—Suhāsini (See)

ସୁହିତ—ସଂ. ବିଣ (ସୁ+ଧା ଧାତୁ+କର୍ତ୍ତୃ ତ)—୧। ତୃପ୍ତ; ସନ୍ତୁଷ୍ଟ
Suhita (ଶବ୍ଦ)—1. Satisfied; pleased. ୨। (+କର୍ମ ତ) ଉଚିତ (ଶବ୍ଦ)—2. Proper. ୩। [+କର୍ତ୍ତୃ ତ]—ଅତି ହିତ—3. Very beneficial. ୪। ସାଧିତ; କୃତ [ପ୍ରାକୃତବାଦ]—4. Done; accomplished. ୫। ଉପଯୋଗୀ [ହି. ଶ]—5. Suitable.

ସୁହିତା—ସଂ. ବି—୧। ଅଗ୍ନିଙ୍କ ସପ୍ତ ଜିହ୍ୱା ମଧ୍ୟରୁ ଏକତମ [ଜଟାଧର]-
Suhitā 1. Name of one of the seven tongues of fire. ୨। ରୁଦ୍ରଜଟା (ହି. ଶ) (ଦେଖ)—2. Rudrajaṭā (See)

ସୁହୁଜେ—ପ୍ରାଦେ [ଲିଉଅ କି. ବିଣ—ସହଜେ—
Suhuje Easily.

ସୁହୃତ(ଦ୍)—ସଂ. ବି [ବହୁବ୍ରୀହି; ସୁ=ଶୋଭନ+ହୃତ୍=ହୃଦୟ;ଯାହାର]
Suhṛut(d) —୧। ମିତ୍ର—1. Friend. ୨। ସଦାନୁଗତ ସଙ୍ଗୀ; ପ୍ରକୃତ ବନ୍ଧୁ—2. A true or constant friend. ୩। ସଖା—3. A boon companion. ୪। ଅନ୍ତରଙ୍ଗ ବନ୍ଧୁ—4. Intimate friend; bosom friend. ୫। [ ଜ୍ୟୋତିଷ ]—ଲଗ୍ନର ଚତୁର୍ଥ ବା ମିତ୍ର ସ୍ଥାନ—5. (Astrology) The 4th house from the 'Lagna.' ସଂ. ବିଣ—ଉତ୍ତମହୃଦୟବିଶିଷ୍ଟ [ ହି. ଶ ]—Good-hearted.

ସୁହୃଦୟ—ସଂ ବିଣ. ପୁଂ (ବହୁବ୍ରୀହି; ସୁ ଅଟେ ହୃଦୟ ଯାହାର)—
Suhṛudaya ୧। ହୃଦୟାଳୁ; ପ୍ରଶସ୍ତମନାଃ; ସହୃଦୟ; ଉଦାର-(ସୁହୃଦୟା—ସ୍ତ୍ରୀ) ଚେତାଃ—1. Noble-hearted, magnanimous. ୨। ଶୁଦ୍ଧ ଚିତ୍ତ—2. Pure-minded. ୩। ସ୍ନେହଶୀଳ (ହି. ଶ)—3. Affectionate.

ସୁହୃଦ୍ବର—ସଂ. ବି. ପୁଂ (୭ମୀ ତତ୍; ସୁହୃଦ୍+ବର)—୧। ବନ୍ଧୁଶ୍ରେଷ୍ଠ
Suhṛudbara —1. Chief friend. ୨। ଅତି ଉତ୍ତମ (ସୁହୃଦ୍ବରା—ସ୍ତ୍ରୀ) ବନ୍ଧୁ—2. Very good friend.

ସୁହୋତା—ସଂ. ବି ଓ ବିଣ. ପୁଂ (ସୁହୋତୃ, ୧ମା. ୧ବ)—ଉତ୍ତମରୂପେ
Suhotā ହବନକାରୀ—Excellently performing vedic (ସୁହୋତ୍ରୀ—ସ୍ତ୍ରୀ) sacrifice.

ସୁହୋତ୍ର—ସଂ. ବି. ପୁଂ (ନାମ)—୧। ଚନ୍ଦ୍ରବଂଶୀୟ ବୃହଦ୍ଧନୁ ରାଜାଙ୍କର
Suhotra ପୁତ୍ର (ମହାଭାରତ; ହରିବଂଶ)—1. Name of a prince of the Lunar dynasty. ୨। ସହ-ଦେବଙ୍କ ଏକ ପୁତ୍ର (ହି. ଶ)—2. A son of Sabadeba. ୩। ଧୃତରାଷ୍ଟ୍ରଙ୍କ ଏକ ପୁତ୍ର (ହି. ଶ)—3. A son of Dhrutarāshṭra. ୪। ବୈଦିକ ଋଷିବିଶେଷ (ହି. ଶ)—4. Name of a Vedic sage. ୫। ଦୈତ୍ୟବିଶେଷ (ହି. ଶ)—5. Name of a demon.

ସୁହ୍ମ—ସଂ. ବି (ସୁହ୍ମ ଧାତୁ=ପ୍ରୀତି ପାଇବା+କର୍ତ୍ତୃ. ଅ)—୧।
Suhma ପ୍ରାଚୀନ ଦେଶବିଶେଷ—1. Name of an ancient country. [ ଦ୍ର—ଗୌଡ଼ ଦେଶର ପଶ୍ଚିମରେ ଏହା ଅବସ୍ଥିତ ଥିଲା (ହି. ଶ); କେହି କେହି ଇଉରୋପୀୟ ପଣ୍ଡିତ ଏହାକୁ ଆଧୁନିକ ତିପୁରା ଓ ଅରାକାନ୍ ପ୍ରଦେଶ ବୋଲି ଅନୁମାନ କରନ୍ତି; ଉତ୍କଳର ଉତ୍ତରାଂଶରେ ଅବସ୍ଥିତ ତାମ୍ରଲିପ୍ତ (ତମଲୁକ) ନଗର ସୁହ୍ମର ଅନ୍ତର୍ଗତ ଥିଲା ବୋଲି କେହି କେହି କହନ୍ତି।] ୨। ସୁହ୍ମ ଦେଶବାସୀ ପ୍ରାଚୀନ ଯବନ ଜାତିବିଶେଷ—2. A class of Jabanas of the Suhma country. ଦେ. ବି ଓ ବିଣ—ସୁମ (ଦେଖ)—Suma (See).

ସୂ ( ଧାତୁ )—ପ—୧ । ପ୍ରସବ କରିବା—1. To give birth to.
Sū ( root ) ୨ । ପୀଡ଼ନ କରିବା—2. To oppress.
୩ । ଉତ୍ପନ୍ନ ହେବା—3. To be born.

ସୂ—ସ. ବି ( ସୂ ଧାତୁ+ଭାବ. କ୍ୱିପ୍ )—୧ । ସୂତି; ପ୍ରସବ—
Sū 1. Bringing forth of a child. ୨ । କ୍ଷେପ—
2. Entrusting; throwing. ବିଣ—( ସ୍ତ୍ରୀ. ଓ ପୁଂ )—୧ । ପ୍ରସୂ; ଯେ ପ୍ରସବ କରେ—1. Bringing forth or giving birth to children. ୨ । ଉତ୍ପାଦକ—2. Producing.

ସୂକ—ସ. ବି ( ସୂ ଧାତୁ=ପ୍ରସବ କରିବା+କର୍ତ୍ତି. କ୍ୱିପ୍+ସ୍ୱାର୍ଥେ
Sūka କ )—୧ । ବାଣ ( ମେଦିନୀ )—1. Arrow. ୨ ।
ବାତ; ପବନ ( ମେଦିନୀ )—2. Air; wind. ୩ ।
ଉତ୍ପଳ; ପଦ୍ମ ( ମେଦିନୀ )—3. Lotus.

ସୂକର—ସ. ବି ( ପୁଂ ) ( ଶୂକରର ଅନ୍ୟରୂପ )—୧ । ଶୂକର ଇତ୍ୟାଦି
Sūkara (ଦେଖ); ଘୁଷୁରି (ଶବ୍ଦ ରତ୍ନାବଳୀ)
ପ୍ରଥମାର୍ଥରେ ଅନ୍ୟ ସ. ନାମ— —1. Hog. ୨ । କୁମ୍ଭକାର
ଶୂକର, ଦଂଷ୍ଟ୍ରୀ, ଭୂଦାର, (ଶବ୍ଦ ରତ୍ନାବଳୀ )—2. Potter,
ସ୍ଥୂଳନାସିକ,ଦନ୍ତାୟୁଧ,ବକ୍ରବକ୍ତ୍ର, ୩ । ମୃଗଭେଦ ( ଜଟାଧର )—
ପାର୍ଶ୍ୱଚର, ଅଷ୍ଟକର୍ଣ୍ଣ, ଭୂକ୍ଷିତ, 3. A species of deer. ୪ ।
ଗୃଷ୍ଟିରୋମା, ମୁଖଲାଙ୍ଗୂଳ । ଧଳା ଧାନ (ହି.ଶ)—4. A white
(ସୂକରୀ—ସ୍ତ୍ରୀ) variety of paddy. ୫ । ନରକ
ବିଶେଷ—5. Name of a part of hell.

ସୂକର କନ୍ଦ—ସ. ବି—ବାରାହୀକନ୍ଦ; ଭୂଇଁ କଖାରୁ ( ହି. ଶ )—
Sūkara kanda Disocorea (root-bulb).

ସୂକର କ୍ଷେତ୍ର—ସ. ବି—ମଥୁରା ଜିଲ୍ଲାରେ ଅଳକାନନ୍ଦ ସୋରୋ ନାମରେ
Sūkara kshetra ପ୍ରସିଦ୍ଧ ହିନ୍ଦୁମାନଙ୍କ ତୀର୍ଥବିଶେଷ (ହି.ଶ)—
Name of an ancient place of Hindu pilgrimage.

ସୂକରପାଦିକା—ସ. ବି—୧ । କପିକଚ୍ଛୁ; ବାଇଡଙ୍କ ( ହି. ଶ )—
Sūkarapādikā 1. Cowhage. ୨ । ଶିମ୍ବ ( ହି. ଶ )—
2. Bean.

ସୂକରୀ—ସ. ବି ( ସୂକର+ଈ )—୧ । (ସ୍ତ୍ରୀ) ମାଈ ଘୁଷୁରି—1. A
Sūkarī female hog; sow. ୨ । ବରାହାକ୍ରାନ୍ତା (ଦେଖ)
( ହି. ଶ )—2. Barāhakrāntā ( See ) ୩ ।
ବାରାହୀକନ୍ଦ ( ହି. ଶ )—3. Disocorea ୪ । ଦେବୀ;
ଦେବୀବିଶେଷ (ହି. ଶ )—4. A popular Goddess.
୫ । ପକ୍ଷିବିଶେଷ ( ହି. ଶ )—5. Name of a species of birds.

ସୂକ୍ତ—ସ. ବି ( ସୁ=ଶୋଭନ+ଉକ୍ତ=ଉକ୍ତି ବିଶିଷ୍ଟ )—୧ ।
Sūkta ବେଦୋକ୍ତ ସ୍ତୋତ୍ର ମନ୍ତ୍ରାଦି—1. Vedic hymns and incantations. [ଦ୍ର—ଋଗ୍ବେଦର ଅଗ୍ନିସୂକ୍ତ—
'ଅଗ୍ନି ମୀଳେ' ଇତ୍ୟାଦି । ଋଗ୍ବେଦର ପୁରୁଷ ସୂକ୍ତ—
'ସହସ୍ର ଶୀର୍ଷା' ଇତ୍ୟାଦି । ଋଗ୍ବେଦର ଦେବୀ ସୂକ୍ତ—
'ଅହଂରୁଦ୍ରେଭିଃ' ଇତ୍ୟାଦି । ଋଗ୍ବେଦର ଶ୍ରୀ ସୂକ୍ତ—
'ହିରଣ୍ୟବର୍ଣ୍ଣାଂ' ଇତ୍ୟାଦି । ଋଗ୍ବେଦର ରାତ୍ରି ସୂକ୍ତ—
'ରାତ୍ରି ବ୍ୟଖ୍ୟଦାୟତୀ' ଇତ୍ୟାଦି । ଋଗ୍ବେଦର ଗଣେଶ ସୂକ୍ତ
—'ଆତୂନ ଇନ୍ଦ୍ର' ମନ୍ତ୍ର । ଋଗ୍ବେଦର ସରସ୍ୱତୀ ସୂକ୍ତ—
'ଇୟମଦଦାଦ୍ ରଭସ' ଇତ୍ୟାଦି । ଏହିପରି ଋଗ୍ବେଦରେ
ସହସ୍ର ସୂକ୍ତ ଅଛି ।] ୨ । ଉତ୍ତମ ଭାଷଣ; ସଦ୍ବଚନ
(ହି. ଶ)—2. Good speech. ୩। ମହାପୁରୁଷମାନଙ୍କ
ବାକ୍ୟ (ହି.ଶ)—3. Saying of great men. ସ.
ବିଣ—ଉତ୍ତମ ରୂପେ କଥିତ—Excellently uttered or spoken.

ସୂକ୍ତା—ସ. ବି (ସୁ+ଉକ୍ତ+ଆ)—ଶାରିକା; ମଇନା (ବିହଙ୍ଗ ବିଶେଷ)
Sūktā —The hill-myna bird.
(ଅନ୍ୟ ସ. ନାମ—ମଦନଶଳାକା, ଚାରୁଗୀ,
ଚତଣ୍ଡା, ଶାରିକା)

ସୂକ୍ତି—ସ. ବି (ସୁ+ଉକ୍ତି)—ସୂକ୍ତ ( ଦେଖ )
Sūkti Sūkta ( See )

ସୂକ୍ତିକ—ସ. ବି—ଏକ ପ୍ରକାର ଝାଞ୍ଜ ବା କରତାଳ (ହି. ଶ)—
Suktika A kind of cymbals.

ସୂକ୍ଷ୍ମ—ସ. ବିଣ ( ସୂଚ୍ ଧାତୁ=ସୂଚନା କରିବା+କର୍ମ. ମକ୍ )—
Sūkshma ୧ । ଅତି ଅଳ୍ପ—1. Very little. ୨। କ୍ଷୁଦ୍ର—
(ସୂକ୍ଷ୍ମା—ସ୍ତ୍ରୀ) 2. Small; fine; minute. ୩ । କ୍ଷୁଦ୍ର—
(ସୂକ୍ଷ୍ମ[କ୍ଷ୍ମ]ମ - ଗ୍ରାମ୍ୟ ରୂପ) 3. Diminutive. ୪ । କ୍ଷୀଣ; ସରୁ;
(ସ୍ଥୂଳ—ବିପରୀତ) ପତଳା—4. Slender; thin. ୫ । ସଙ୍କୀର୍ଣ୍ଣ
[ସୂକ୍ଷ୍ମତା(ତ୍ୱ)—ବି] —5. Narrow. ୬ । ଅତୀନ୍ଦ୍ରିୟ; ଇନ୍ଦ୍ରିୟମାନଙ୍କର ଅଗୋଚର—6. Imperceptible to the senses; subtle; atomic. ୭। ଅଭିନିବେଶ ଯୁକ୍ତ—
7. Sharp; attentive. ୮ । ପ୍ରକୃତ; ସତ୍ୟ—
8. Accurate, correct. ୯ । ସୂକ୍ଷ୍ମବୁଦ୍ଧିଯୁକ୍ତ—
9. Discerning. ବି—୧ । ଅଣୁ ( ମେଦିନୀ )—
1. Atom. ୨। କତକ ବୃକ୍ଷ (ମେଦିନୀ); ନିର୍ମଳୀ ଗଛ—
2. Strychnos Potatorum ( tree ); clearing nut tree. ୩ । ଅଧ୍ୟାତ୍ମବସ୍ତୁ; ପରବ୍ରହ୍ମ—3. The Essential Soul of the universe. ୪ । ଅଧ୍ୟାତ୍ମ ବିଦ୍ୟା—4. Metaphysics. ୫ । କାପଟ୍ୟ—
5. Crookedness. ୬। ଛଳ;କୈତବ—6. Deceit; subtlity. ୭ । କାବ୍ୟାଲଙ୍କାର ବିଶେଷ—7. A figure of speech. [ଦ୍ର—ଏହା ଚତୁରସ୍ତ୍ରୀଭାବକୁ ଓ
ଇଙ୍ଗିତାକୃତି ଚେଷ୍ଟିତ ଅଟେ; ଏଥିରେ ଚତୁରବ୍ୟକ୍ତି ସୂକ୍ଷ୍ମ
ଚେଷ୍ଟା ଦ୍ୱାରା ଲକ୍ଷିତ କରାଇବା ବିଷୟ ବର୍ଣ୍ଣିତ ହୋଇଥାଏ—ହି. ଶ] ୮ । ଲିଙ୍ଗ ଶରୀର (ହି. ଶ)—8. The subtle frame in which the soul is settled; etheric body of a being. ୯ । ଶିବ (ହି. ଶ)—9. Siba. ୧୦ । ଦାନବ ବିଶେଷ (ହି. ଶ)—
10. Name of a demon. ୧୧ । ଜୀରକ; ଜୀରା
(ହି.ଶ)—11. Cumin seed. ୧୨ । ଅରଣ୍ଡକ; ସଠୀ.

(ହି. ଶ)—12. Soap-nut. ୧୩ । ପୂଗ; ଗୁଆ (ହି. ଶ)—13. Betel-nut. ୧୪ । ଦେହର ଲୋମ କୂପ ବାଟେ ଶରୀରରେ ପ୍ରବେଶ କରିବା ଔଷଧ (ହି. ଶ)—14. Medicine which is administered through the pores of the skin.

ସୂକ୍ଷ୍ମ କଳା—ସଂ. ବି (ଆଧୁନିକ ପ୍ରୟୋଗ)—ଅନୁଧ୍ୟାନଯୋଗ୍ୟ Sūkshma kalā ସୁନ୍ଦର କଳା—Fine arts. (ଯଥା—ସୂକ୍ଷ্ম কলা सूक्ष्म कला ସଙ୍ଗୀତ, ନୃତ୍ୟ, ଚିତ୍ରବିଦ୍ୟା ଆଦି)

ସୂକ୍ଷ୍ମ କୋଣ—ସଂ. ବି (ଜ୍ୟାମିତି)—ସମକୋଣ ବା ୯୦ ଡିଗ୍ରୀରୁ କମ୍ Sūkshma koṇa କୋଣ—(geometry) Acute angle. (ସ୍ଥୂଳ କୋଣ—ବିପରୀତ) সূক্ষ্ম কোণ सूक्ष्म कोण

ସୂକ୍ଷ୍ମ କୋଣୀ—ଦେ. ବଣ (ଜ୍ୟାମିତି)—ସୂକ୍ଷ୍ମ କୋଣବିଶିଷ୍ଟ—Sūkshma koṇī Acute-angled. সূক্ষ্ম কোণী सूक्ष्म कोणी

ସୂକ୍ଷ୍ମକୋଣୀ ତ୍ରିଭୁଜ—ଦେ. ବି (ଜ୍ୟାମିତି)—ଯେଉଁ ତ୍ରିଭୁଜର ତିନି Sūkshmakoṇī tribhuja ଗୋଟିଯାକ କୋଣ ସୂକ୍ଷ୍ମକୋଣ সূক্ষ্মকোণী ত্রিভুজ ଅଟେ—Acute-angled triangle. सूक्ष्म कोणी त्रिभुज

ସୂକ୍ଷ୍ମ ତଣ୍ଡୁଳ—ସଂ. ବି—୧ । ସରୁ ବା ବାରିକ୍ ଚାଉଳ—1. Fine Sūkshma taṇḍula rice. ୨ । ପୋସ୍ତଦାନା (ହି. ଶ)—2. Poppy seed. ୩ । ଝୁଣା (ହି. ଶ)—3. Resin.

ସୂକ୍ଷ୍ମ ତଣ୍ଡୁଳା—ସଂ. ବି (ବହୁବ୍ରୀହି)—୧ । ପିପ୍ପଳୀ—Sūkshma taṇḍulā 1. Long pepper. ୨ । ଝୁଣା (ହି. ଶ)—2. Resin.

ସୂକ୍ଷ୍ମ ଦର୍ଶନ—ସଂ. ବି—ଅନ୍ତନିବେଶଯୁକ୍ତ ଦୃଷ୍ଟି—Sūkshma darśana Insight; discernment. সূক্ষ্ম দর্শন ଦେ. ବି—ଅତି କ୍ଷୁଦ୍ର ବସ୍ତୁର ଦର୍ଶନ—सूक्ष्म दर्शन Seeing of minute things.

ସୂକ୍ଷ୍ମଦର୍ଶନ(କ) ଯନ୍ତ୍ର—ଦେ. ବି—ଅଣୁବୀକ୍ଷଣ ଯନ୍ତ୍ର—Sūkshmadarśana(ka) jantra Microscope. সূক্ষ্মদর্শনযন্ত্র सूक्ष्मदर्शन यन्त्र

ସୂକ୍ଷ୍ମଦର୍ଶୀ—ସଂ. ବଣ (ସୂକ୍ଷ୍ମଦର୍ଶିନ୍ ଶବ୍ଦ; ୧ମା· ୧ବ; ସୂକ୍ଷ୍ମ+ଦୃଶ୍ Sūkshmadarśī ଧାତୁ=ଦେଖିବା+ଣିନ୍. ଉପ୍)—[ସୂକ୍ଷ୍ମଦର୍ଶିନୀ—ସ୍ତ୍ରୀ] ୧ । ବିଚକ୍ଷଣ; ଅତିଶୟ ବୁଦ୍ଧିମାନ୍—(ସୂକ୍ଷ୍ମଦର୍ଶିତା—ବି) 1. Very sharp-witted. ୨। ଦୂରଦର୍ଶୀ; ସୂକ୍ଷ୍ମ ମତି; ତତ୍କାଳଧୀ; ପ୍ରତ୍ୟୁତ୍ପନ୍ନମତି—2. Having presence of mind.

ସୂକ୍ଷ୍ମ ଦୃଷ୍ଟି—ସଂ. ବି—ଅତି ସୂକ୍ଷ୍ମ ବିଷୟ ପ୍ରତି ଦୃଷ୍ଟି ବା ଅନ୍ତନିବେଶ—Sūkshma drushṭi Sharp insight. ସଂ. ବଣ· ପୁଂ ଓ ସ୍ତ୍ରୀ—ସୂକ୍ଷ୍ମ ଦୃଷ୍ଟିବିଶିଷ୍ଟ—Sharp-sighted.

ସୂକ୍ଷ୍ମଦେହୀ—ଦେ. ବଣ—ଅଣୁବୀକ୍ଷଣ ଯନ୍ତ୍ର ବିନା ଦେଖା ନ ଯିବା କ୍ଷୁଦ୍ର Sūkshmadehī (ଜୀବ)—Microscopic (animals); সূক্ষ্মদেহী (animals) which can not be seen सूक्ष्मदेही without a microscope; having a very diminutive body. ବି—୧ । ଅତି ସୂକ୍ଷ୍ମଜୀବ—1. The infusoria. ୨ । ପରମାଣୁ (ହି. ଶ)—2. Molecule.

ସୂକ୍ଷ୍ମ ପତ୍ର—ସଂ. ବି (ବହୁବ୍ରୀହି; ସୂକ୍ଷ୍ମ ଅଟେ ପତ୍ର ଯାହାର)—Sūkshma patra ୧ । ଧନ୍ୟାକ (ରାଜ ନିର୍ଘଣ୍ଟ); ଧନିଆ—1. Coriander. ୨ । ବନଜୀରକ (ରାଜ ନିର୍ଘଣ୍ଟ)—2. Wild cumin seed. ୩ । ବବୁର ଗଛ (ଶବ୍ଦ ଚନ୍ଦ୍ରିକା)—3. Acacia tree. ୪ । ବନ· ବର୍ବରୀ (ରାଜନିର୍ଘଣ୍ଟ); ଲଣ୍ଡାକସ୍ତୁରୀ—4. Wild variety of Basil plant. ୫ । ଦେବସର୍ଷପ (ରାଜ-ନିର୍ଘଣ୍ଟ)—5. A species of mustard. ୬ । ଲଘୁ ବଦର (ରାଜ ନିର୍ଘଣ୍ଟ)—6. A species of Jujube. ୭ । ସୁରପର୍ଣ୍ଣୀ (ରାଜ ନିର୍ଘଣ୍ଟ)—7. A tree. ୮ । କ୍ଷୁଦ୍ର ଜମ୍ବୁ; ବନଜାମ୍ବୁ (ବୈଦ୍ୟକ)—8. A species of wild blackberry. ୯ । ଲୋହିତେକ୍ଷୁ (ରାଜ-ନିର୍ଘଣ୍ଟ)—9. The red variety of sugar-cane. ୧୦ । କୁକୁନ୍ଦର (ରାଜ ନିର୍ଘଣ୍ଟ)—10. Blumea Odorata (plant). ୧୧ । ଦୁରାଳଭା (ହି. ଶ)—11. Alhagi Maurorum (plant). ୧୨ । ମାଷ (ହି. ଶ); ବିରି—12. Phaseolus Radiatus. ୧୩ । ଅର୍କପର୍ଣ୍ଣୀ (ହି. ଶ.) (ଦେଖ)—13. Arkaparṇnā (See)

ସୂକ୍ଷ୍ମପତ୍ରିକା—ସଂ. ବି—୧ । ଶତପୁଷ୍ପା (ରାଜ ନିର୍ଘଣ୍ଟ); ଶଲୁପ—Sūkshma patrikā 1. Dill seed. ୨ । ଶତାବରୀ (ରାଜ-ନିର୍ଘଣ୍ଟ)—2. Asparagus Racemosus. ୩ । ଲଘୁ ବ୍ରାହ୍ମୀ (ରାଜ ନିର୍ଘଣ୍ଟ)—3. A short of potherb. ୪ । ଦ୍ରୁପୋଦିକା (ରାଜ ନିର୍ଘଣ୍ଟ); ସାନ ପୋଇ—4. A sort of Basella creeper. ୫ । ଦୁରାଳଭା (ରାଜ ନିର୍ଘଣ୍ଟ)—5. Fogonia Arabica; Alhagi Maurorum. ୬ । ଅକାଶ ମାଂସୀ (ରାଜ ନିର୍ଘଣ୍ଟ)—6. A medicinal plant.

ସୂକ୍ଷ୍ମପର୍ଣ୍ଣୀ—ସଂ· ବି—୧ । ଗୁଡ଼ୂଚୀ (ରାଜ ନିର୍ଘଣ୍ଟ); ଗଳୁଚି; Sūkshmaparṇṇā ଗୁଡୁଚି—1. Combus Cordifolia (Creeper). ୨ । ବୃହଦାରକ (ହି. ଶ)—2. Melina Asiatica. ୩ । ବୃହତୀ (ହି. ଶ)—3. Solanum Xanthocarpum.

ସୂକ୍ଷ୍ମପର୍ଣ୍ଣୀ—ସଂ. ବି—ରାମତୁଳସୀ ବୃକ୍ଷ (ଶବ୍ଦଚନ୍ଦ୍ରିକା); ଗୁଡୁଚୀ—Sūkshmaparṇṇī Combus Cordifolia (creeper). (ଅନ୍ୟ ସଂ ନାମ—ଗ୍ରନ୍ଥିଭୂତ, ପଦ୍ମପୁଷ୍ପା, ଉର୍ଣ୍ଣନାଭା, ବଜ୍ରାଙ୍ଗା, ନାଗଦନ୍ତିକା, କାଣ୍ଡଳୀ, ଫଣିଜ୍ଝକ)। रामतुलसी

ସୂକ୍ଷ୍ମପୁଷ୍ପା(ଷ୍ପୀ)—ସଂ. ବି ( ବୈଦ୍ୟକ )—ଯବଚିକ୍ତା; ଭୂଇଁଲମ୍ବ; ଶ୍ୱେତ
Sūkshmapushpā(shpī) ବନବନା; ଏକପ୍ରକାର ଚରେଇଡା; କାଳମେଘ ଭୁଇଁନିମ —Andropogen Paniculata

ସୂକ୍ଷ୍ମଫଳା—ସଂ. ବି—୧ । ଭୂମ୍ୟାମଳକୀ; ଭୁଇଁଅଁଳା (ଋତୁମାଳା) —
Sūkshmaphalā 1. Phyllanthus Niruri (a herb). ୨ । ତାଳିସପତ୍ର ( ହି. ଶ ) ( ଦେଖ )—2. Tālisa-patra ( See ) ୩ । ମହାଜ୍ୟୋତିଷ୍ମତୀ ଲତା ( ହି. ଶ ) ( ଦେଖ)—3. A phosphorescent plant.

ସୂକ୍ଷ୍ମ ବଦରୀ—ସଂ. ବି—ଭୂବଦରୀ ( ରାଜନିର୍ଘଣ୍ଟ ); ଭୁଇଁବରକୋଳି—
Sūkshma badarī A small variety of jujube.

ସୂକ୍ଷ୍ମବଲ୍ଲୀ—ସଂ. ବି—୧ । ତାମ୍ରବଲ୍ଲୀ; କରୁକା (ରାଜନିର୍ଘଣ୍ଟ ); ପର୍ପଟୀ—
Sūkshmaballī 1. A kind of plant; Oldenlandia Biflora. ୨ । ଲଘୁ କାରବେଲ୍ଲ ( ହି. ଶ ); ଦୁଇଁ-କଲରା—2. Small variety of memordica.

ସୂକ୍ଷ୍ମ ବସ୍ତ୍ର—ସଂ. ବି— ପତଳା ଲୁଗା; ସରୁ ଲୁଗା —
Sūkshma bastra Fine cloth.

ସୂକ୍ଷ୍ମ ବିଚାର—ସଂ. ବି—୧ । ଅଭେଦବିବେଚନାୟୁକ୍ତ ବିଚାର—1. Dis-
Sūkshma bichāra cernment. ୨। ନ୍ୟାଯ୍ୟ ବିଚାର—2. Just consideration.

ସୂକ୍ଷ୍ମ ବୀଜ—ସଂ. ବି—ପୋସ୍ତଦାନା ( ହି. ଶ ) —
Sūkshma bīja Poppy seed.

ସୂକ୍ଷ୍ମ ବୁଦ୍ଧି(ମତି)—ସଂ.ବି(କର୍ମଧା)—ତୀକ୍ଷ୍ଣ ବୁଦ୍ଧି—Sharp intellect.
Sūkshma buddhi(mati) ବିଣ (ପୁଂ ଓ ସ୍ତ୍ରୀ) (ବହୁବ୍ରୀହି)— ତୀକ୍ଷ୍ଣଧୀ—Keen-witted.

ସୂକ୍ଷ୍ମଭୂତ—ସଂ. ବି—ଆକାଶାଦି ପଞ୍ଚ ସ୍ଥୂଳମହାଭୂତର ସୂକ୍ଷ୍ମାଂଶ—
Sūkshmabhūta Atoms of the five elements of nature; five elementary particles of matter. [ ଦ୍ର—ସାଂଖ୍ୟଦର୍ଶନ ମତରେ ପଞ୍ଚତନ୍ମାତ୍ର ( ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ) ପୃଥକ୍ ପୃଥକ୍ ସୂକ୍ଷ୍ମଭୂତ ଅଟନ୍ତି । ଏହି ପଞ୍ଚତନ୍ମାତ୍ରରୁ ପଞ୍ଚ ମହାଭୂତର ଉତ୍ପତ୍ତି ହୋଇଅଛି । ପଞ୍ଚୀକୃତ ହେବା ପରେ ଆକାଶାଦି ଭୂତଙ୍କୁ ସ୍ଥୂଳଭୂତ ବୋଲାଯାଏ—ହି. ଶ । ]

ସୂକ୍ଷ୍ମ ମକ୍ଷିକ—ସଂ. ବି. ପୁଂ—ମଶକ ( ରାଜନିର୍ଘଣ୍ଟ ); ମଶା—Gnat.
Sūkshma makshika [ ସୂକ୍ଷ୍ମମକ୍ଷିକା—ସ୍ତ୍ରୀ ]

ସୂକ୍ଷ୍ମ ମୂଳା—ସଂ. ବି—୧ । ଜୟନ୍ତୀ ( ରାଜନିର୍ଘଣ୍ଟ ) ( ଦେଖ )—
Sūkshma mūlā 1. Jayantī ( See ) ୨ । ବ୍ରାହ୍ମୀ (ହି. ଶ ) ( ଦେଖ )—2. Brāhmī ( See )

ସୂକ୍ଷ୍ମ ଶରୀର—ସଂ. ବି—ପଞ୍ଚ ପ୍ରାଣ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ,
Sūkshma śarīra ମନ ଓ ବୁଦ୍ଧି, ଅସ୍ମାର ଭୋଗସାଧକ (ସ୍ଥୂଳ ଶରୀର—ଭୂପରୀତ) ଏହି ସପ୍ତଦଶ ତତ୍ତ୍ୱର ସମୂହ; ଅସ୍ମାର ୧୭ ଗୋଟି ଅବୟବ; ଲିଙ୍ଗଦେହ—The sentient soul according to Theosophy; the causal body. [ ଦ୍ର—ସାଂଖ୍ୟଦର୍ଶନ ମତରେ ଶରୀର ଦୁଇ ପ୍ରକାରର, ଯଥା—ସ୍ଥୂଳ ଶରୀର ଓ ସୂକ୍ଷ୍ମ ଶରୀର । ହାତ, ଗୋଡ଼, ମୁଣ୍ଡ, ଉଦରାଦି ଅଙ୍ଗବିଶିଷ୍ଟ ଶରୀର ସ୍ଥୂଳ ଶରୀର ଅଟେ । ପରନ୍ତୁ ଏହି ସ୍ଥୂଳଶରୀର ନଷ୍ଟ ହୋଇଯିବା ପରେ ଏହି ପ୍ରକାର ଅନ୍ୟ ଏକ ଶରୀର ରହିଥାଏ, ଯାହା ଉକ୍ତ ୧୭ ତତ୍ତ୍ୱରେ ନିର୍ମିତ । ଏହାକୁ ସୂକ୍ଷ୍ମ ଶରୀର କହନ୍ତି । ଏହା ମଧ୍ୟ ବୋଲାଯାଏ ଯେ, ଯେତେବେଳେ ପର୍ଯ୍ୟନ୍ତ ଅସ୍ମାର ମୁକ୍ତି ହୁଏ ନାହିଁ, ସେ ପର୍ଯ୍ୟନ୍ତ ଏହି ସୂକ୍ଷ୍ମ ଶରୀରର ସଂସାରରେ ଗମନାଗମନ କରିବାକୁ ହେଉଥାଏ । ସ୍ୱର୍ଗ ଓ ନରକ ଆଦିର ଭୋଗ ମଧ୍ୟ ଏ ସୂକ୍ଷ୍ମ ଶରୀରକୁ କରିବାକୁ ପଡ଼େ—ହି. ଶ । ]

ସୂକ୍ଷ୍ମ ଶର୍କରା—ସଂ. ବି—ବାଲୁକା ( ରାଜନିର୍ଘଣ୍ଟ—
Sūkshma śarkarā Sand.

ସୂକ୍ଷ୍ମ ଶାଳି—ସଂ. ବି—୧ । ସରୁ ଶାରଦ ଧାନ—1. Fine variety
Sūkshma śāli of winter paddy. ୨ । ଅଣୁଧାନ୍ୟ-ବିଶେଷ—2. A sort of minute grain. [ଦ୍ର—ଏଥିର ଗୁଣ ସୁମଧୁରତ୍ୱ, ଲଘୁତ୍ୱ, ପିତ୍ତଦାହନାଶିତ୍ୱ ।]

ସୂକ୍ଷ୍ମ ଷଟ୍‌ଚରଣ—ସଂ. ବି—ପକ୍ଷ୍ମୟୁକ ( ରାଜନିର୍ଘଣ୍ଟ ); ଅକ୍ଷିପତାର
Sūkshma shaṭ-charaṇa ଚମଉକୁଣୀ—
Lice adhering to the eye-lashes.

ସୂକ୍ଷ୍ମା—ସଂ. ବିଣ ( ସୂକ୍ଷ୍ମ + ଆ )—ସୂକ୍ଷ୍ମର ସ୍ତ୍ରୀଲିଙ୍ଗ—Feminine
Sūkshmā of Sūkshma. ବି—୧ । ଯୂଥିକା; ଜୁଇଫୁଲ ( ଶବ୍ଦଚନ୍ଦ୍ରିକା )—1. A sort of jasmine. ୨ । ମଲ୍ଲିକା; ମଲ୍ଲୀଫୁଲ—2. Jasminum Sambac. ୩ । ବାଲୁକା; ବାଲି ( ରାଜନିର୍ଘଣ୍ଟ )—3. Sand. ୪ । କ୍ଷୁଦ୍ରୈଲା ( ରାଜନିର୍ଘଣ୍ଟ ); ଗୁଜରାଟି—4. The white species of cardamum. ୫ । ଶବ୍ଦ-ପ୍ରବୃତ୍ତିବିଶେଷ; ଶବ୍ଦର ସୂକ୍ଷ୍ମାର୍ଥ—5. An attribute of words; connotation of words. ୬ । ମୁଷଳୀ ( ହି. ଶ ) ( ଦେଖ )—6. Mūsalī ( See ) ୭ । ବିଷ୍ଣୁଙ୍କର ଏକ ଶକ୍ତି ( ହି. ଶ )—
7. One of the Śaktis of Bishṇu.

ସୂକ୍ଷ୍ମାଂଶ—ସଂ. ବି ( କର୍ମଧା )—ଅତି ସରୁ ଅଂଶ—
Sūkshmāṁsa Atomic particle.

ସୂକ୍ଷ୍ମାଗ୍ର—ସଂ. ବି( କର୍ମଧା )—ଅତି ତୀକ୍ଷ୍ଣ ଅଗ୍ରଭାଗ; ଅସ୍ତ୍ରାଦିର ମୁନ୍ଦଅଁ
Sūkshmāgra ଧାର; ମୁନ—Fine sharp edge. ସଂ. ବିଣ(ବହୁବ୍ରୀହି)—ମୁନିଆ ( ଅସ୍ତ୍ରାଦି )—Fine-pointed.

ସୂକ୍ଷ୍ମାନୁ(ତି)ସୂକ୍ଷ୍ମ—ସଂ. ବିଣ—୧ । ସୂକ୍ଷ୍ମାନୁସୂକ୍ଷ୍ମ—1. Thorough.
Sūkshmānu(ti)sūkshma ୨ । ଅତି ସୂକ୍ଷ୍ମ—
2. Very fine; molecular.

ସୂକ୍ଷ୍ମୈଲା—ସଂ. ବି—ଛୋଟ ଅଳାଇଚ; ଗୁଜରାଟି—The small
Sūkshmailā cardamum; Ellettaria Cardamomum. [ ଦ୍ର—ଏହା ମଧୁରତିକ୍ତ,

ଅନ୍ୟ ସଂ.—ବହୁଳା, ଗନ୍ଧଫଳା, ଜାଗୃହୀ, ତ୍ରୁଟି, ସୂକ୍ଷ୍ମା, ଉପକୁଞ୍ଚିକା, ଦ୍ରାବିଡ଼ୀ, | ଶୀତଶର୍କରା, ଲଘୁପାକ, ରୁଚିକାରକ, କଫହର, ଶ୍ୱାସକାସ ବି, ବାୟୁନାଶକ

ଚୋରମୀ, ଦ୍ରାବଡ଼ୀ । ଓ ଶ୍ୱାସ, କାଶ, ଅର୍ଶଃ ଓ ମୂତ୍ରକୃଚ୍ଛ୍ର
গুজরাটি, এলাচ, ছোট এলাচ ରୋଗରେ ଉପକାରୀ । ଏହା ଛଡ଼ା
छोटी ईलाईची ବଡ଼ ଅଳାଇଚର ଗୁଣମାନ ଏଥିରେ
ଚେ. ଚନ୍ଦ୍ରସୁବାକୁଲୁ, ଏଲକାୟୁ ଅଛି । ]

ସୂଚ୍ (ଧାତୁ)—ସ—୧ । ଜ୍ଞାପନ କରିବା—1. To intimate. ୨ । Sūch (root) କହିବା—2. To speak out. ୩ । ସୂଚନା କରିବା—3. To hint. ୪ । ସଙ୍କେତ କରିବା—4. To indicate by signs. ୫। ହିଂସନ କରିବା—5. To take revenge. ୬ । ଆବିଷ୍କାର କରିବା—6. To discover. ୭ । ଅଭିନୟ କରିବା—7. To act a part. ୮ । ଦୋଷ ଦେଖାଇବା—8. To find fault with.

ସୂଚ—ସ. ବି—କୁଶାଙ୍କୁର—
Sūcha The tender sprouts of Kuśa grass.

ସୂଚକ—ସଂ. ବିଣ. ପୁଂ (ସୂଚ୍. ଧାତୁ ଣିଚ୍=ସୂଚି. ଧାତୁ= Sūchaka ଜଣାଇବା+କର୍ତ୍ତୃ. ଅକ)—୧ । ଯାହା କୌଣସି (ସୂଚିକା—ସ୍ତ୍ରୀ) ବିଷୟର ସୂଚନା କରେ—1. Indicating, hinting. ୨ । କଥକ—2. Speaking. ୩ । ଜ୍ଞାପକ—3. Informing. ୪ । ଯାହା ପୂର୍ବରୁ କୌଣସି ବିଷୟର ସୂଚନା କରେ—4. Indicative of. ବି—୧ । ପିଶୁନ (ଅମର; ଶବ୍ଦରତ୍ନାବଳୀ); ଚୁଗୁଲିଆ—1. A backbiter; slanderer. ୨ । ଗୁପ୍ତଚର; ଚରବିଶେଷ; ଦୂତ ଗୁପ୍ତଚର—2. A spy; an informer. ୩ । ସୀବନ ଯନ୍ତ୍ର (ମେଦିନୀ)—3. Sewing machine. ୪ । ସୂଚୀ; ଛୁଞ୍ଚ—4. Needle. ୫ । କୁକୁର ( ମେଦିନୀ )—5. Dog. ୬ । ବିଡ଼ାଳ (ମେଦିନୀ) 6—Cat. ୭ । କାକ ( ମେଦିନୀ )—7. Crow. ୮ । ସୂତ୍ରଧର; ସୂତ୍ରଧାର (ହେମଚନ୍ଦ୍ର)—8. Stage-manager. ୯ । ବଢ଼େଇ (ହେମଚନ୍ଦ୍ର)—9. Carpenter. ୧୦ । ପିଶାଚ (ଶବ୍ଦରତ୍ନାବଳୀ)—10. An evil spirit. ୧୧ । ସିଦ୍ଧ (ଶବ୍ଦରତ୍ନାବଳୀ)—11. A class of aerial beings. ୧୨ । ବୁଦ୍ଧ (ଶବ୍ଦରତ୍ନାବଳୀ)—12. The Buddha. ୧୩ । କଥକ ( ହେମଚନ୍ଦ୍ର )—13. A speaker. ୧୪ । ସୂକ୍ଷ୍ମଶାଳୀ ( ସ୍ୱର୍ଣ୍ଣକାର୍ଷ )—14. A fine grain. ୧୫ । ଦଳପତି—15. Leader of a gang. ୧୬ । ବିଲୁଆ (ହି. ଶ)—16. Jackal. ୧୭ । ବାରଣ୍ଡା ( ହି. ଶ )—17. Varanda. ୧୮ । ଅଲଗଡ଼ା; ରେଲିଙ୍ଗ୍ ଦ୍ୱାରା ବେଷ୍ଟିତ ସ୍ଥଳ ( ହି. ଶ )—18. Railed enclosure. ୧୯ । ଦରଜୀ (ହି. ଶ)—19. Tailor. ୨୦ । ଖଳ ବ୍ୟକ୍ତି (ହି. ଶ)—20. A wicked person. ୨୧ । ଉଚ୍ଚ କାନ୍ଥ (ହି. ଶ)—21. High wall. ୨୨ । ଅୟୋଗବ-ମାତା ଓ କ୍ଷତ୍ରିୟ-ପିତାଙ୍କଠାରୁ ଉତ୍ପନ୍ନ ପୁତ୍ର (ହି. ଶ)—22. Son born of a Ayogaba mother & Kshatriya father.
সূচক सूचक ଦେ. ବି—ଜ୍ଞାପକ ଲକ୍ଷଣ—Indicative sign.

ସୂଚନ(ନା)—ସ. ବି ( ସୂଚ୍ ଧାତୁ+ଣିଚ୍, ଅନ )—୧ । ଜ୍ଞାପନ—Sūchana(nā) 1. Indication. ୨ । ସଙ୍କେତ ବା ଚିହ୍ନ ଦ୍ୱାରା ଜଣାଇବା—2. Indicating by signs; hinting. ୩ । କଥନ—3. Speaking. ୪ । ହିଂସନ—4. Taking revenge. ୫ । ଅଭିନୟ—5. Acting. ୬ । ଦୋଷ ଆବିଷ୍କରଣ; ଦୋଷ ଦେଖାଇବା—6. Finding fault. ୭ । ବିଦ୍ଧ କରିବା; ଫୋଡ଼ିବା; ବେଧନ—7. Piercing. ୮ । ସୁଗନ୍ଧ ବିସ୍ତାର କର୍ମ (ହି. ଶ)—8. The act of diffusing fragrance. ୯ । କୌଣସି ବିଷୟର ପୂର୍ବାଭାସ—9. Preliminary indication; hint. ୧୦ । ବିଜ୍ଞାପନ—10. Notifying. ୧୧ । ହିଂସା (ହି. ଶ)—11. Envy; bitterness.

ସୂଚନୀୟ—ସ. ବିଣ ( ସୂଚ୍ ଧାତୁ+କର୍ମ. ଅନୀୟ )—ସୂଚିତ ହେବାର Sūchanīya ଯୋଗ୍ୟ—Fit to be indicated or hinted.

ସୂଚା(ଚେ)ଇବା—ଦେ. କ୍ରି—୧ । ସୂଚିବା କ୍ରିୟାର ଣିଜନ୍ତ ରୂପ—Sūchā(che)ibā 1. Causative of Sūchibā. ୨। ସୂଚିବା
সূচান सूचित कराना (ଦେଖ) — 2. Sūchibā ( See )

ସୂଚି—ସ. ବି (ସିବ୍ ଧାତୁ—ସିଲାଇ କରିବା+କରଣ, ଚି; ନିପାତନ) Sūchi —୧ । ବେଧନୀ; ସୀବନୀ; ଛୁଞ୍ଚ—1. Needle. ୨ । ନୃତ୍ୟଭେଦ (ହେମଚନ୍ଦ୍ର); ଏକ ପ୍ରକାର ନୃତ୍ୟ—2. A sort of dance. ୩ । ସୂକ୍ଷ୍ମ ଅଗ୍ରଭାଗ; ଶିଖା (ଶବ୍ଦକୋଷ)—3. Pointed top; fine point. ୪। ନର୍ତ୍ତକମାନଙ୍କର କର ଓ ଅଙ୍ଗାଦି ଦ୍ୱାରା ଅଭିନୟ; ଗୀତର—4. Indicating of the purport of a song by signs made by the hands and limbs; mime. ୫ । କେତକୀ ଫୁଲ ( ହି. ଶ )—5. The yellow-fl wered Pandanus Odoratissimus. ୬ । ସେନାବ୍ୟୂହ ବିଶେଷ (ହି. ଶ)—6. A kind of battle-array. [ଦ୍ର—ଏଥିରେ କୁଶଳ ଓ ବର୍ମିତ ସେନାଙ୍କୁ ଅଗରେ ରଖାଯାଏ ଓ ଅନ୍ୟମାନଙ୍କୁ ପଛରେ ରଖାଯାଏ—ହି. ଶ) ୭ । କାଠଗଡ଼ା; ଅଲଗଡ଼ା (ହି. ଶ)—7. Railed enclosure. ୮ । କବାଟର ଛିଟକିଣି (ହି. ଶ)—8. The bolt of a door. ୯ । ନିଷାଦ ପିତା ଓ ବୈଶ୍ୟା ମାତାଙ୍କଠାରୁ ଜାତ ସନ୍ତାନ (ହି. ଶ)—9. The son of a Nishāda father and Baiśya mother. ୧୦। ମୈଥୁନ ବିଶେଷ (ହି.ଶ)—10. A mode of coition. ୧୧ । ଶୂର୍ପକାର (ହି.ଶ)—11. The manufacturer of winnowing

fan. ୧୨ । କୁଶ (ବୃ. ଶ)—12 Kuśa grass. ୧୩ । ଦୃଷ୍ଟି (ବୃ. ଶ)—13. Sight; vision. ୧୪ । (ସୂଚ୍ ଧାତୁ=ସୂଚନା କରିବା+କରଣ. ଇ)—ପୁସ୍ତକସ୍ଥ ବିଷୟର ସୂଚୀପତ୍ର; ଘାଟ—14. Indication of the contents of a book; index. ୧୫ । ତାଲିକା (ବୃ. ଶ)—15. List.

ସୂଚକ—ସ. ବି. ପୁଂ (ସୂଚି+ସ୍ୱାର୍ଥେ କ)—ସୂଚିକର୍ମକାରୀ; ଦରଜି—
Sūchika A tailor.
(ଅନ୍ୟ ସ. ନାମ—ସୌଚିକ, ସୌଚି, ତୁନ୍ନବାୟ, ସୂଚିଧର୍)
(ସୂଚିକା—ସ୍ତ୍ରୀ)

ସୂଚି କର୍ମ—ସ. ବି—୧ । ସିଲାଇକାମ—1. Sewing. ୨ । ବସ୍ତ୍ର
Sūchi karma ଉପରେ ଛୁଞ୍ଚିଦ୍ୱାରା କରାଯିବା କାରୁକାର୍ଯ୍ୟ—
2. Fine needle work done on cloth.

ସୂଚିକା—ସ.ବିଶ. ସ୍ତ୍ରୀ (ସୂଚକ+ଆ)—ସୂଚକର ସ୍ତ୍ରୀଲିଙ୍ଗ; ଜ୍ଞାପିକା—
Sūchikā (Feminine of Sūchaka) Indicating (female) ସ. ବି (ସ୍ତ୍ରୀ)—୧ । (ସୂଚକ+ଆ)—ଦରଜିଆଣୀ—1. A female tailor. ୨ । (ସୂଚି+କ+ଆ)—ଛୁଞ୍ଚି; ସୂଚି—2. Needle. ୩ । ହାତୀର ଶୁଣ୍ଢ—3. The trunk of elephant. ୪ । କେତକୀ (ବୃ. ଶ)—4. Yellow-flowered Pandanus. ୫ । ଅପ୍ସରାବିଶେଷ (ବୃ. ଶ)—5. Name of a heavenly nymph.

ସୂଚିକାଧର—ସ. ବି (ସୂଚିକା ଅଟେ ଅଧର ଯାହାର)—ହସ୍ତୀ (ଶବ୍ଦମାଳା)-
Sūchikādhara Elephant.

ସୂଚିକାପୁଷ୍ପ—ସ. ବି—ସୂଚିପୁଷ୍ପ (ଦେଖ)—
Sūchikā pushpa Sūchipushpa (See)

ସୂଚିକାଭରଣ—ସ. ବି—ସନ୍ନିପାତରେ ପ୍ରଯୁଜ୍ୟ ଅଳ୍ପ ମାତ୍ରାରେ
Sūchikābharana ସେବ୍ୟ ଔଷଧବିଶେଷ (ଭୈଷଜ୍ୟ_
(ସୂଚିକାଭରଣ ରସ—ଅନ୍ୟରୂପ) ରତ୍ନାବଳୀ)—
A sort of medicinal preparation administered in minute doses.
[କ୍ରି—ସର୍ପବିଷ ଓ ପାରଦ ଚୂର୍ଣ୍ଣ କରି ଯୋଜଣୀଦ୍ୱାରା ମୁଦ୍ରା କାଚ ବୋତଲରେ ପୂରାଇ ମନ୍ଦ ମନ୍ଦ ଜଳୁଥିବା ଅଗ୍ନିରେ ତୁଇ ପ୍ରହରକାଳ ପୁଟପାକ କରାଯାଏ; ତହିଁରୁ ବାଷ୍ପରୂପେ ଯାହା ଉଠି ବୋତଲରେ ଓ ଯୋଜଣୀରେ ଲାଗିଯାଏ ତାକୁ ସଂଗ୍ରହ କରାଯାଏ । ଏହା ସନ୍ନିପାତ ରୋଗୀ ଓ ସର୍ପଦଷ୍ଟ ବ୍ୟକ୍ତି ଠାରେ ପ୍ରୟୋଗ କଲେ ଅଶୁଫଳ ଫଳେ । ବୋତଲର ଦେହରେ ଲାଗିଥିବା ପଦାର୍ଥ ଛୁଞ୍ଚି ମୁନରେ ଲାଗି ଆସିଲେ ଔଷଧ ପ୍ରସ୍ତୁତ ହେଲା ବୋଲି ଜଣାଯାଏ । ଏଥି ଯୋଗୁ ଏହାର ନାମ ହୋଇଅଛି । ସନ୍ନିପାତ, ବିସୂଚିକା ସର୍ପଦଂଶନ ଯୋଗୁଁ ରୋଗୀର ଅନ୍ତିମ ଅବସ୍ଥା ଉପସ୍ଥିତ ହେଲେ ଏ ଔଷଧର ପ୍ରୟୋଗ କରାଯାଏ । ମୃତପ୍ରାୟ ରୋଗୀର ମୁଣ୍ଡରେ ଗୋଟିଏ ଛୋଟ ଛିଦ୍ର କରି ସେହି ଛିଦ୍ରରେ ଛୁଞ୍ଚି ମୁନଦ୍ୱାରା ଏ ଔଷଧ ପୂରାଇ ଦିଆଯାଏ । ଏ ଔଷଧ ଦ୍ୱାରା ଭଲ ନ ହେଲେ ରୋଗୀର ମରଣ ଅବଧାର୍ଯ୍ୟ । ଏ ଔଷଧ ପ୍ରୟୋଗ କରିବା ଦ୍ୱାରା ରୋଗୀର ଶରୀର ଅତ୍ୟ ଗରମ ହୋଇଯାଏ ଓ ଏଥିପାଇଁ ବହୁ ଶୀତଳ ଉପଚାର କରିବାକୁ ହୁଏ । ଏ ଔଷଧ ପ୍ରସ୍ତୁତ କରିବା ପାଇଁ ଉପର୍ଯ୍ୟୁକ୍ତ ପ୍ରଣାଳୀ ଛଡ଼ା ଅନ୍ୟ ପ୍ରଣାଳୀମାନ ଅଛି :—

୧ । ପାରା, ଗନ୍ଧକ, ସୀସା, କାଠବିଷ ଓ ଜଲା ନାଗସାପର ଗରଳକୁ ଖଲ କରି ଯଥାକ୍ରମେ ରୋହୁ ମାଛର, ମଇଁଷିର, ମୟୂରର, ଛେଳିର ଓ ଘୁଷୁରିର ପିତ୍ତରେ ତାହାକୁ ଭାବନା କରି ସୋରିଷ ପରି ବଟିକା ପ୍ରସ୍ତୁତ କରାଯାଏ ।

୨ । କାଠବିଷ, ସାପ ଗରଳ, ଦାରୁମୁଷ୍ଟି, ପ୍ରତ୍ୟେକ ଏକ ଭାଗ, ହିଙ୍ଗୁଳ ୩ ଭାଗ, ଏ ସବୁକୁ ଖଲ ଯଥାକ୍ରମେ ରୋହୁ ମାଛର, ମଇଁଷିର, ମୟୂରର, ଛେଳିର ଓ ଘୁଷୁରିର ପିତ୍ତରେ ୧ ଦିନ ଭାବନା କରି ସୋରିଷ ପରି ବଟିକା ତିଆରି କରାଯାଏ—ବୃ. ଶ. ]

ସୂଚିକାମୁଖ—ସ. ବି—(ବହୁବ୍ରୀହି; ସୂଚିକା=ଛୁଞ୍ଚି ପରି ମୁଖ ଯାହାର)
Sūchikāmukha ୧ । ଶଙ୍ଖ—1. Conch shell.
୨ । ଛୁଚୁନ୍ଦ୍ରା—2. Mole. ୩ । ମୂଷିକ; ମୂଷା—3. Rat; mouse. ୪ । (ଷଷ୍ଠୀ ତତ୍)—ଛୁଞ୍ଚିର ମୁହଁ; ଛୁଞ୍ଚିର କଣା—4. The mouth or eye of a needle.

ସୂଚିଘନ—ବି ବିଣ—ଲମ୍ବା ଓ ମୁନିଆ; ଗୋଜିଆ; ଚୂଳିଆ—
Sūchighana Conical; long and sharp pointed.
सूतीक्ष्ण, छूँचाल नोकदार

ସୂଚିତ—ସ. ବିଣ (ସୂଚ୍ ଧାତୁ. ଣିଚ୍+କର୍ମ. ତ)—୧ । ଜ୍ଞାପିତ—
Sūchita 1. Indicated; intimated. ୨ । ପ୍ରସ୍ତାବିତ—(ସୂଚକ[ନା]—ଦ୍ର) 2. Proposed. ୩ । ସଙ୍କେତାଦି ଦ୍ୱାରା ଜ୍ଞାପିତ—3. Hinted at; indicated by signs. ୪ । କଥିତ—4. Spoken. ୫ । ହିଂସିତ—5. Avenged; hurt. ୬ । ଖୁବ୍ ଉପଯୁକ୍ତ (ବୃ. ଶ)—6. Very fit.

ସୂଚିତବ୍ୟ—ସ ବିଣ (ସୂଚ୍ ଧାତୁ+କର୍ମ. ତବ୍ୟ)—ସୂଚିତ ହେବାର
Sūchitabya ଯୋଗ୍ୟ—Fit to be hinted at,
(ସୂଚ୍ୟ, ସୂଚୟିତବ୍ୟ—ଅନ୍ୟରୂପ) requiring to be indicated.

ସୂଚିତାର୍ଥ—ସ. ବି (କର୍ମଧା)—ବ୍ୟଞ୍ଜନା ଦ୍ୱାରା ପ୍ରକାଶିତ ଶବ୍ଦାର୍ଥ—
Suchitārtha Suggested meaning of a word.

ସୂଚି ଦଳ (ପତ୍ର, ପତ୍ରକ)—ସ. ବି—୧ । ଶିରିଆରି; ସୁନିଷଣ୍ଣକ (ଭାବ
Sūchi dala (patra, patraka) ପ୍ରକାଶ);ସୁନିସୁନିଆ ଶାଗ—
1. Marselea Quadrifolia (a pot herb).
୨ । ଏକ ପ୍ରକାର ଆଖୁ (ବୃ. ଶ)—2. A kind of

sugarcane. ୩ । ସୂଚୀପତ୍ର (ଦେଖ)—3. Sūchī-patra (See)

ସୂଚି ପାଶ—ସଂ. ବ (ଷଷ୍ଠୀ ତତ୍)—ଛୁଞ୍ଚିର କଣା—
Sūchi pāśa The eye of a needle.

ସୂଚି ପୁଷ୍ପ—ସଂ. ବ—କେତକୀ ବୃକ୍ଷ (ଜୀବାଧର);କିଆ ଗଛ—
Sūchi pushpa The yellow-flowered screw pine; Pandanus Odoratissimus.

ସୂଚି ବ(ର)ଦନ—ସଂ. ବ (ବହୁବ୍ରୀହି)—୧ । ନକୁଳ; ନେଉଳ (ରାଜନିର୍ଘଣ୍ଟ)—1. Ichneumon. ୨ ।
Sūchi ba(ra)dana
ମଶକ; ମଶା (ରାଜନିର୍ଘଣ୍ଟ)—2. Mosquito.

ସୂଚିବା—ଦେ. କ୍ରି (ପଦ୍ୟ)—୧ । ସୂଚନା କରିବା-1 To
sūchibā indicate. ୨ । ସଙ୍କେତାଦିଦ୍ୱାରା ଜ୍ଞାପନ କରିବା—
2. To hint at a thing. [ଦୃ—ତୋ ଠାରେ ନଣ୍ଡା ସ୍ନେହ ସେହି ସୂଚେ । ରାଧାନାଥ. ମେଘଦୂତ । ]
স্মচনাদেওয়া ୩ । ଗୋପନରେ କୌଣସି ବିଷୟ କହିବା—3. To
सूचना देना speak a thing secretly. ୪ । (ମନ୍ଦାର୍ଥ)
କାନରେ କହିଦେବା; ଫୋଡ଼ି ଦେବା—4. To whisper a thing to the ears of another (bad sense).

ସୂଚିବାନ୍—ସଂ. ବ. ପୁଂ (ସୂଚି+ବତ୍; ୧ମା. ୧ବ)—ଗରୁଡ଼ (ଶବ୍ଦରତ୍ନାବଳୀ)—The mythological king of birds.
Sūchibān

ସୂଚିଭେଦ୍ୟ—ସଂ. ବଣ (ତୃତୀୟା ତତ୍)—୧ । ଯାହା ସୂଚିଦ୍ୱାରା
Sūchibhedya ଭେଦନ କରାଯାଇ ପାରେ—1. Fit to be pierced with a needle. ୨ । ଘନ; ଗାଢ଼ (ଅନ୍ଧକାର)—2. Dense (darkness).

ସୂଚିଭେଦ୍ୟ ଅନ୍ଧକାର—ସ. ବ—ଘନ ଅନ୍ଧକାର ( ଏପରି ଅନ୍ଧକାର
Sūchibhedya andhakāra ଯେ, ତାକୁ ଛୁଞ୍ଚିଦ୍ୱାରା ଫୋଡ଼ି
সূচিভেদ্য অন্ধকার ହୋଇପାରେ ବୋଲି କହିଲେ ଅତ୍ୟୁକ୍ତି
सूचिभेद्यअंधकार ହେବ ନାହିଁ )—Dense darkness.

ସୂଚିମଲ୍ଲିକା—ସ. ବ—ନବମଲ୍ଲିକା, ନିଆଳି ଫୁଲ ( ହି. ଶ ) ( ଦେଖ )
Sūchi mallikā Niāli ( See )

ସୂଚି ମାଛି ପରୀକ୍ଷ( କ୍ଷା )—ଦେ. କ୍ରି—ତନ୍ନ ତନ୍ନ କରି ପରୀକ୍ଷା
Sūchi māchhi pariksha(kshā) karibā
তন্ন তন্ন করিয়া দেখা, খুঁটিনাটি করিয়াদেখা Scrutiny.
चतुरकरदेखना [ ଉ—ସେଠାବରେ ସୂଚମାଛି ପରୀକ୍ଷ କରିଲ—ପ୍ରାଚୀ. ବୃନ୍ଦାବନଭୂଷଣଗୀତା ; ]

ସୂଚିମୁଖ—ସଂ. ବ ( ବହୁବ୍ରୀହି )—୧ । ହୀରକ ( ହେମଚନ୍ଦ୍ର ); ହୀରା—
Sūchimukha 1. Diamond. ୨ । ଶ୍ୱେତକୁଶ (ରାଜନିର୍ଘଣ୍ଟ);
ଧଳାକୁଶ—2. White variety of kuśa grass. ୩ । ମୂଷିକ ( ହେମଚନ୍ଦ୍ର ); ମୂଷିକ—3. Mouse. ୪ । ଚୁଚୁନ୍ଦ୍ରା—4. Shrew; mole. ୫ । ବ୍ୟୂହବିଶେଷ—5. A kind of battle-array. ୬ । ଛୁଞ୍ଚିରେ ଛିଦ୍ର ( ହି. ଶ )—6. The eye of a needle.

ସୂଚିରୋମା—ସଂ. ବ ( ବହୁବ୍ରୀହି; ସୂଚୀ+ରୋମନ୍; ୧ମା. ୧ବ )—
Sūchiromā ୧ । ଶୂକର—1. Hog. ୨ । ବରାହ—
2. Wild hog; boar. ବଣ. ପୁଂ ଓ ସ୍ତ୍ରୀ—ଛୁଞ୍ଚି ପରି ଲୋମବିଶିଷ୍ଟ—Having bristles; needle-haired.

ସୂଚିଶାଲି—ସ. ବ—ଖୁବ୍ ସରୁ ଶାରଦ ଧାନ ( ହି. ଶ )—
Sūchiśāli Very fine winter paddy.

ସୂଚି ଶିଖା—ସ. ବ ( ଷଷ୍ଠୀ ତତ୍ )—ଛୁଞ୍ଚିର ମୁନ—
Sūchi śikhā The sharp point of a needle.

ସୂଚି ସୂତ୍ର—ସ. ବ—୧ । ( ମ. ସ. ଲେ ) ଛୁଞ୍ଚିର ଛିଦ୍ରରେ ପୂରାଯାଇଥିବା
Sūchi sūtra ସୂତା—1. Thread passed through the eye of a needle. ୨ । (ଦ୍ୱନ୍ଦ୍ୱ) ଛୁଞ୍ଚି ଓ ସୂତା—
2. Needle and thread.

ସୂଚୀ (ଇତ୍ୟାଦି)—ସ. ବ ( ସୂଚ+ଈ )—୧ । ସୂଚି ଇତ୍ୟାଦି (ଦେଖ)
Sūchī (etc) Sūchi etc ( See ) ୨ । ( ଉପକୃଷ୍ଟ )
ଯେଉଁ ସାକ୍ଷୀ ବିନା ସମନରେ ଆସି ସାକ୍ଷ ଦିଏ ( ହି. ଶ )—
2. A witness who gives evidnece without being summoned. ୩ । ( ସୁଶ୍ରୁତ ) ଶସ୍ତ୍ରର କ୍ଷତ ସ୍ଥାନକୁ ସିଲାଇ କରିବା ପାଇଁ ବ୍ୟବହୃତ ଛୁଞ୍ଚି ( ହି. ଶ )—3. Surgeon's needle. ୪ । (ସଂ ସୂଚିନ୍; ୧ମା. ୧ବ. ପୁଂ ) ଚର; ଭେଦିଆ ( ହି. ଶ )—4. Spy; informer. ୫ । (ପୁଂ) ପିଶୁନ; ଚୁଗୁଲିଆବ୍ୟକ୍ତି (ହି. ଶ)—5. Backbiter. ୬ । (ପୁଂ) ଖଳ ବ୍ୟକ୍ତି; ଦୁଷ୍ଟ ବ୍ୟକ୍ତି (ହି. ଶ)—6. A wicked person. ସଂ. ବଣ. ପୁ—୧ । ସୂଚନାକାରୀ—1. Indicating. ୨ । ଚୁଗୁଲିଆ—2. Backbiting. ୩ । ଖଳ—
3. Wicked; depraved.

ସୂଚୀକ—ସ. ବ (ସୂଚୀ+କ)—ଯେଉଁ ଜନ୍ତୁର ଜାକୁଡ଼ ଛୁଞ୍ଚି ପରି ମୁନିଆ
Sūchīk (ହି. ଶ) ( ଯଥା—ମଶା )—
Animals having needle-like tongues.

ସୂଚୀ କଟାହ ନ୍ୟାୟ—ସଂ. ନ୍ୟାୟ—ପ୍ରଥମେ ସ୍ୱଳ୍ପାୟାସସାଧ୍ୟ ସୂଚୀ
Sūchī kaṭāha nyāya କର୍ମୀଣ କରି ସାରି ପରେ ବହ୍ୱାୟାସସାଧ୍ୟ କଟାହ କର୍ମୀଣ କରିବା ନ୍ୟାୟ; ବହୁଶ୍ରମସାଧ୍ୟ କାର୍ଯ୍ୟ ସ୍ଥଗିତ ରଖି ଅଳ୍ପଶ୍ରମସାଧ୍ୟ କାର୍ଯ୍ୟ କରିବା ନ୍ୟାୟ—
(Analogy) Deferring a difficult matter till the completion of an easy one.

ସୂଚୀ କର୍ମ—ସଂ: ବ—ସୂଚି କର୍ମ ( ଦେଖ )
Sūchī Karma Sūchi karma ( See )

ସୂଚୀ ଜୀବୀ—ସଂ. ବ. ପୁଂ ( ସୂଚୀ+ଜୀବ୍ ଧାତୁ+ଣିନ୍. ଇନ୍; ୧ମା. ୧ବ )—ଦରଜୀ—Tailor.
Sūchī jībī
[ ସୂଚୀ ଜୀବନୀ—ସ୍ତ୍ରୀ ]

ସୂଚୀ ଦଳ—ସଂ. ବ—ସୂଚି ଦଳ (ଦେଖ)—Suchi daḷa (See)
Sūchī daḷa

ସୂଚୀ ପତ୍ର (ପତ୍ରକ)—ସଂ. ବି—୧ । ସୂଚି ଦଳ (ଦେଖ)—1. Sūchi
Sūchī patra (patraka) daļa (See) ୨ । ପୁସ୍ତକସ୍ଥ ବିଷୟର ସଂକ୍ଷିପ୍ତ ସୂଚନା ବା ତାଲିକା ଯେଉଁ ପୃଷ୍ଠାରେ ଲେଖା ହୋଇଥାଏ—2. An index to a book; table of contents. ୩ । ବ୍ୟବସାୟୀଙ୍କ ଦୋକାନରେ ଥିବା ଜିନିଷ ଆଦିର ନାମ, ବିବରଣ ଓ ମୂଲ୍ୟର ତାଲିକା ଯେଉଁ ବହିରେ ଥାଏ (ଦ୍ର. ଶ)—3. Catalogue or price-list of a trader or shopkeeper.

ସୂଚୀପତ୍ରା—ସଂ. ବି—ଗଣ୍ଡଦୂର୍ବା ( ରାଜନିର୍ଘଣ୍ଟ )—
Sūchipatrā A sort of knotted grass.

ସୂଚୀପଦ୍ମ—ସଂ. ବି—ବ୍ୟୂହବିଶେଷ ( ଦ୍ର. ଶ )—
Sūchīpadma A kind of bettle-array.

ସୂଚୀ ପୁଷ୍ପ—ସଂ. ବି—ସୂଚିପୁଷ୍ପ (ଦେଖ)
Sūchīpushpa Sūchipushpa ( See )

ସୂଚୀ ବକ୍ତ୍ର—ସଂ. ବି ( ନାମ )—୧ । ସ୍କନ୍ଦଙ୍କ ଅନୁଚରବିଶେଷ ( ଦ୍ର. ଶ )—1. Name of a companion of Skanda. ୨ । ଅସୁରବିଶେଷ ( ଦ୍ର. ଶ )—2. Name of a demon. ସଂ. ବିଣ. ପୁଂ ( ବହୁବ୍ରୀହି )—ଛୁଞ୍ଚି ପରି ମୁହଁ ବା ଥାଟି ଯାହାର—Having the mouth or face pointed like the needle.
Sūchi baktra

ସୂଚୀବକ୍ତ୍ରା—ସଂ. ବିଣ. ସ୍ତ୍ରୀ—ସୂଚୀବକ୍ତ୍ରର ସ୍ତ୍ରୀଲିଙ୍ଗ—Feminine of
Sūchībaktrā Suchībaktra. ସଂ. ବି—ବୈଦ୍ୟକ ମତରେ ୨୦ ପ୍ରକାର ଯୋନି ରୋଗରୁ ଏକତମଦ୍ୱାରା ଅତ୍ୟନ୍ତ ଅତି ସୂକ୍ଷ୍ମମୁଖ ଯୋନି ( ଯାହା ପୁରୁଷସଙ୍ଗମାର୍ଥ ଏକାନ୍ତ ଅଯୋଗ୍ୟ ) [ ଦ୍ର. ଶ ]—A very narrow mouthed vagina which is totally unfit for cohabitation.

ସୂଚୀ ବଦନ—ସଂ. ବି—ସୂଚି ବଦନ ( ଦେଖ )—
Sūchī badana Sūchi badana ( See )

ସୂଚୀଭେଦ୍ୟ—ସଂ. ବିଣ—ସୂଚିଭେଦ୍ୟ ( ଦେଖ )—
Sūchībhedya Sūchibhedya ( See )

ସୂଚୀମୁଖ—ସଂ. ବି—୧ । ସୂଚିମୁଖ ( ଦେଖ )—1. Suchimukha
Sūchīmukha ( See ) ୨ । ନରକବିଶେଷ ( ଦ୍ର. ଶ )—2. Name of a part of the hell. ୩ । ହୀରକ ( ଦ୍ର. ଶ )—3. Diamond.

ସୂଚୀରୋମା—ସଂ. ବି ଓ ବିଣ—ସୂଚିରୋମା ( ଦେଖ )
Sūchīromā Sūchiromā ( See )

ସୂଚ୍ୟ—ସଂ. ବିଣ ( ସୂଚ ଧାତୁ + କର୍ମ. ଯ )—ସୂଚିତବ୍ୟ ( ଦେଖ )
Sūchya Sūchitabya ( See )

ସୂଚ୍ୟଗ୍ର—ସଂ. ବି ( ୬ଷ୍ଠୀ ତତ୍ )—୧ । ଛୁଞ୍ଚିର ଅଗ—1. The fine
Sūchyagra point of a needle. ୨ । କୁଶ—2. The Kuśa grass.

ସୂଚ୍ୟଗ୍ର ପରିମିତ—ସଂ. ବିଣ—୧ । ଛୁଞ୍ଚିର ଅଗଦ୍ୱାରା ଯେତେ ସ୍ଥାନ
Sūchyagra parimita ଅଧିକୃତ ହୋଇପାରେ—1. Measured by the fine point of a needle. ୨ । ଅତି ସୂକ୍ଷ୍ମ—2. Minutest. [ ଯଥା—ଦୁର୍ଯ୍ୟୋଧନ କହିଲେ ଯେ, ବିନା ଯୁଦ୍ଧରେ ମୁଁ ପାଣ୍ଡବମାନଙ୍କୁ ସୂଚ୍ୟଗ୍ର ପରିମିତ ସ୍ଥାନ ଛାଡ଼ି ଦେବି ନାହିଁ । ]

ସୂଚ୍ୟଗ୍ରବତ୍—ସଂ.ବିଣ—ଛୁଞ୍ଚିର ଅଗ ପରି—Like the fine point
Sūchyagrabat of a needle-

ସୂଚ୍ୟଗ୍ର ସ୍ତମ୍ଭ—ସଂ. ବି—ମୀନାର; ସୂଚାଗ୍ର ସ୍ତମ୍ଭ ( ଦ୍ର. ଶ )—
Sūchyagra stambha Minaret; a column having the top formed like a needle.

ସୂଚ୍ୟଗ୍ର ସ୍ଥୂଳକ—ସଂ. ବି—୧ । ତୃଣବିଶେଷ; କୁଶ ଘାସ; ଦର୍ଭ—
Sūchyagra sthūlaka 1. The Kuśa grass; Andropogen Nordeides. ୨ । କୁଣ ଘାସ ( ଦ୍ର. ଶ )—2. A kind of needle-pointed grass.

ସୂଚ୍ୟାକାର—ସଂ. ବିଣ ( ବହୁବ୍ରୀହି )—ଛୁଞ୍ଚି ପରି ଲମ୍ବ, ସରୁ ଓ ମୁନିଆ
Sūchyākāra —Long, slender and sharp-pointed like the needle.

ସୂଚ୍ୟାର୍ଥ—ସଂ.ବି ( କର୍ମଧା;ସୂଚ୍ୟ+ଅର୍ଥ )—ଶବ୍ଦର ବ୍ୟଞ୍ଜନା ଶକ୍ତିଦ୍ୱାରା
Sūchyārtha ଜ୍ଞେୟ ଅର୍ଥ ( ଦ୍ର. ଶ )—Suggestive meaning of a word.

ସୂଚ୍ୟାସ୍ୟ—ସଂ. ବି ( ବହୁବ୍ରୀହି; ସୂଚୀ+ଆସ୍ୟ )—ସୂଚିମୁଖ (ଦେଖ)
Sūchyāsya Suchimukha ( See )

ସୂଚ୍ୟାହ୍ୱ—ସଂ. ବି—ସୁନିଷଣ୍ଣକ ଶାକ ( ଦ୍ର. ଶ )—
Sūchyāhwa Marselia Quadrifolia ( herb ).

ସୂତ୍କାର—ସଂ. ବି ( ସୂତ୍=ଅନୁକରଣ ଶବ୍ଦ + କାର )—ଶୀତ୍କାର;
Sūt-kāra ଅନୁକରଣ ଶବ୍ଦବିଶେଷ—A whistling or hissing sound.

ସୂତ୍ପର—ସଂ. ବି—ସୁରାସନ୍ଧାନ ( ଶବ୍ଦରତ୍ନାବଳୀ )—
Sūt-para Fermentation of wine.

ସୂତ—ସଂ. ବିଣ ( ସୂ ଧାତୁ=ଉତ୍ପନ୍ନ ହେବା + କର୍ତ୍ତୃ. ତ )—୧ ।
Sūta ପ୍ରସୂତ; ଉତ୍ପାଦିତ ( ମେଦିନୀ )—1. Produced;
(ସୂତା—ସ୍ତ୍ରୀ) brought forth. ୨ । ପ୍ରେରିତ (ମେଦିନୀ)—2. Sent forth. ବି—୧ । ସାରଥି ( ମେଦିନୀ )—1. Charioteer. ୨ । ସୂର୍ଯ୍ୟ—2. The sun. ୩ । ପାରଦ ( ଅମର )—3. Mercury. ୪ । ସ୍ତୁତିପାଠକ; ବନ୍ଦୀ; ମାଗଧ; ଭଟ୍ଟ ( ମେଦିନୀ )—4. A herald; panegyrist. ୫ । ସଙ୍କର ଜାତିବିଶେଷ; ବ୍ରାହ୍ମଣୀ ଗର୍ଭରୁ କ୍ଷତ୍ରିୟ ଔରସଜାତ ସନ୍ତାନ (ମେଦିନୀ)—5. A caste begotten by a Kshatriya on a Brāhmaṇa girl. [ ଦ୍ର—ଏ ଜାତିର ଜୀବିକା ସାରଥ୍ୟପଣ । ] [ ଦ୍ର—ବ୍ରାହ୍ମଣୀ ସ୍ତ୍ରୀଠାରେ କ୍ଷତ୍ରିୟଠାରୁ ଜନ୍ମିଲେ ସୂତ । ବୋଲ୍ଲଏଟି ତା ନାମ ଜଗତରେ ସୂତ—କୃଷ୍ଣସିଂହ. ମହାଭାରତ. ଅନୁଶାସନ ।] ୬ । ରଥକାର ବା ସୂତ୍ରଧର—6. Carpenter or car-maker. ୭ । ( ନାମ ) ନୈମିଷାରଣ୍ୟବାସୀ ପୁରାଣବକ୍ତା ଜନୈକ ମୁନି ( ଏ ବିଷୟ-

ପ୍ରିୟଙ୍କ ପୁତ୍ର ଥିଲେ—ହି. ଶ )—7. Name of a sage who propounded the Purānas. to the sages. ୮ । ପୁରାଣବକ୍ତା; ପୌରାଣିକ ( ହି. ଶ )—8. The reciter of mythologies.

ସୂତକ—ସଂ. ବି ( ସୂତ+କ )—୧ । ଜନ୍ମ (ମେଦିନୀ)—1. Birth.
Sūtaka ୨ । ଜନନାଶୌଚ; ଜାତକଅ—2. Impurity which affects the kinsmen of new-born baby. ୩ । ପାରଦ ( ମେଦିନୀ )—3. Mercury; quick silver. ୪ । ମରଣା ଶୌଚ ( ହି. ଶ )—4. Impurity affecting the kinsmen of a deceased. ୫ । ସୂର୍ଯ୍ୟ ବା ଚନ୍ଦ୍ରର ଗ୍ରହଣ—5. Solar or lunar eclipse.

ସୂତକା—ସଂ. ବି ( ସୂତକ+ଅ )—ସୂତିକା ( ଦେଖ )
Sūtakā Sūtikā (See)

ସୂତକାଗାର—ସଂ. ବି—ସୂତିକାଗୃହ ( ଦେଖ )
Sūtakāgāra Sūtikāgruha ( See )

ସୂତକାନ୍ନ—ସଂ.ବି—ଜନନାଶୌଚ ଦୂଷିତ ବ୍ୟକ୍ତିର ବା ଲୋକ ପରିବାରର
Sūtakānna ଅନ୍ନାଦି—Rice etc cooked by a family affected by Sutakāsaucha.

ସୂତକାଶୌଚ—ସଂ. ବି ( ମ. ଧ. କର୍ମ; ସୂତକ ହେତୁ ଅଶୌଚ )—
Sūtakāsaucha ଜନନାଶୌଚ;ସନ୍ତାନ ଜନ୍ମ ହେତୁ ଅଶୌଚ—Impurity which affects the kinsmen of a new-born baby. [ ଦ୍ର—କନ୍ୟା ବା ପୁତ୍ର ଜନ୍ମିଲେ ସପିଣ୍ଡମାନଙ୍କର ସମ୍ପୂର୍ଣ୍ଣ ଅଶୌଚ ହୁଏ । ପୁତ୍ର ଓ କନ୍ୟା ଜନ୍ମିଲେ ବ୍ରାହ୍ମଣମାନଙ୍କର ୧୦ ଦିନ ଓ ଶୂଦ୍ରମାନଙ୍କର ୧ ମାସ ଅଶୌଚ ହୁଏ । ]

ସୂତକୀ—ସଂ. ବିଣ. ପୁଂ (ସୂତକ+ଇନ୍; ୧ମା. ୧ବ)—୧ । ଜନନା-
Sūtakī ଶୌଚ ଯୋଗୁ ଅଶୁଚ ( ବ୍ୟକ୍ତି ବା ପରିବାର )—
(ସୂତକିନୀ—ସ୍ତ୍ରୀ) 1. ( a person or family ) Affected by impurity due to a birth in the family. ୨ । ମରଣାଶୌଚ ଯୋଗୁ ଅଶୁଚ ( ବ୍ୟକ୍ତି ବା ପରିବାର ) [ ହି. ଶ ]—2. ( a person or family ) Affected by impurity due to a death in the family.

ସୂତଗ୍ରାମଣୀ—ସଂ. ବି. ପୁଂ—ଗ୍ରାମର ମୁଖ୍ୟ ବ୍ୟକ୍ତି [ହି. ଶ]—
Sūtagrāmaṇī The headman of a village.

ସୂତ ଗୃହ—ଦେ. ବି—ସୂତିକା ଗୃହ ( ଦେଖ )
Sūta gruha Sūtikā gruha ( See )

ସୂତ ତନୟ(ପୁତ୍ର, ପୁତ୍ରକ, ନନ୍ଦନ)—ସଂ. ବି—୧ । ( ସୂତ=ସୂର୍ଯ୍ୟଙ୍କ
Sūta tanaya(putra, putraka, nandana) ତନୟ, କମ୍ବା
( ସୂତକ—ଅନ୍ୟରୂପ ) ଅଧିରଥ ନାମକ ସୂତଦ୍ୱାରା ପାଳିତ ତନୟ) ସୂର୍ଯ୍ୟଙ୍କ ଔରସଜାତ କୁନ୍ତୀଙ୍କ କାନୀନ ପୁତ୍ର କର୍ଣ୍ଣ—1. The famous warrior Karṇṇa. ୨ । କୀଚକ ( ହି. ଶ )—2. Kīchaka.

ସୂତବଶା—ସଂ. ବି—ଗାଈ ( ହି. ଶ )—
Sūtabaśā Cow.

ସୂତରାଟ୍—ସଂ. ବି (ସୂତରାଜ୍ ଶବ୍ଦ; ୧ମା. ୧ବ)—ପାରଦ (ରାଜନିର୍ଘଣ୍ଟ)-
Sūtarāt Mercury.

ସୂତଲି—ଦେ. ବି—ସୁତୁଲି ( ଦେଖ )
Sūtali Sutuli ( See )

ସୂତା—ସଂ, ବିଣ, ସ୍ତ୍ରୀ ( ସୂତ+ସ୍ତ୍ରୀ. ଆ )—୧ । ସୂତର ସ୍ତ୍ରୀଲିଙ୍ଗ—
Sūtā 1. Feminine of Suta. ୨ । ପ୍ରସୂତା ( ସ୍ତ୍ରୀ )—2. ( a woman ) Who has been delivered of a child. ବି. ସ୍ତ୍ରୀ—ନବ ପ୍ରସୂତା ସ୍ତ୍ରୀ ( ଯାହାର ପ୍ରସବଠାରୁ ୧୦ ଦିନ ଗତ ହୋଇ ନାହିଁ )—A woman who has recently been delivered of a child. ୨ । ସୂତିକା ରୋଗ (ଦେଖ)—2. Sūtikā roga ( See )

ସୁତୋ / सुता ଦେ. ବି (ସଂ. ସୂତ୍ର)—୧ । ସୂତ୍ର—1. Thread; yarn. ୨ । ଅଣ୍ଟା ସୂତା—2. Waist-chain. ୩ । ସରୁ ଦଉଡ଼ି—3. A slender rope. ୪ । ଏକ ଇଞ୍ଚର ଅଠ ଭାଗରୁ ଏକ ଭାଗ—4. One-eighth of an inch ( linear measure ). ୫ । ତୁଳାରୁ କଳା ଯାଇଥିବା ସୂତ୍ର—5. Cotton thread. ୬ । ବଢ଼େଇ ଓ କରତିମାନେ କାଠ ଆଦି ଉପରେ ଚିହ୍ନ ଦେବା ପାଇଁ କଳା ବା ଚକ୍ ଖଡ଼ିରେ ରଞ୍ଜିତ ଯେଉଁ ସୂତ୍ର ବ୍ୟବହାର କରନ୍ତି—6. A string saturated with chalk or black used by carpenters and sawyers to mark timbers. ୭ । ରାଜମିସ୍ତ୍ରୀଙ୍କ ବ୍ୟବହୃତ ଓଳମ ସୂତା—7. Plumb line of masons.

ସୂତା ଆଳୁ—ପ୍ରାଦେ ( ଗଡ଼ଜାତ ) ବି—ଏକପ୍ରକାର ବନ୍ୟ ସରୁ ମୂଳ-
Sūtā ālu ବିଶିଷ୍ଟ ଆଳୁ—A kind of wild slender yam. [ ଦ୍ର—ଏହାକୁ ଜଙ୍ଗଲୀମାନେ ଖୋଳି ଖାଆନ୍ତି । ]

ସୂତାଏ—ଦେ. କ୍ରି. ବିଣ—୧ । ସୂତା ପରିମାଣରେ—1. To the
Sūtāe breadth of ⅛th of an inch. ୨ । ସୂତା ପରି
এক সুতা ଖୁବ୍ ସରୁଭାବରେ—2. Very delicately. ୩ ।
एक सुता ଅତି ମୃଦୁଭାବରେ—3. Very tenderly. ୪ ।
ସାମାନ୍ୟ ମାତ୍ର—4. Very slightly. ଦେ ବିଣ—ଏକ ସୂତା ପରିମିତ—Measuring an eighth of an inch. ଦେ. ବି—ଏକ ସୂତା ପରିମାଣ—Measurement of ⅛th of an inch.

ସୂତା କଟା—ଦେ. ବି—ତୁଳାରୁ ସୂତା କଳିବା—Spinning of
Sūtā kaṭā thread; spinning. [ ଉ—ସୁରୁଖୁରୁ
সুতোকাটা ଚଳିବ ସଂସାର, ସୂତା କଟା ଅଛି ପରି ହେଲେ
सुता कातना ଘରେ ଘର ଲେ ହୋଇଲି—ବାଲକୃଷ୍ଣ. ଅଚାଳ ହୋଇଲ । ]

ସୂତା କଣ୍ଡା(କାଣ୍ଡିଆ)—ଦେ· ବି ( ସଂ, ସୂତ୍ର ଓ କାଣ୍ଡ )—ତନ୍ତରେ
Sūtā kaṇḍā(kāṇḍiā) ବୁଣିବା ପାଇଁ ନାଠିରେ ଗୁଡ଼ା
সুতোর ডাণ্ডা ହୋଇଥିବା ସୂତାର କଡ଼ା—A bundle of
नरी thread twisted round a reel, ready for weaving.

ସୂତା କାଟିବା—ଦେ· କ୍ରି—ତୂଳାକୁ ଧୁଣି ସେଥିରୁ କଳଣା କରି ଅରଟ
Sūtā kāṭibā ବା ତାକୁଡ଼ ସାହାଯ୍ୟରେ ତୂଳାର ସୂକ୍ଷ୍ମ ତନ୍ତୁ-
সুতোকাটা ମାନଙ୍କରୁ ସୂତ୍ର ପ୍ରସ୍ତୁତ କରିବା—To spin
सूता कातना thread from cotton.

ସୂତା କିନାରି—ପ୍ରାଦେ. (ବାଲେଶ୍ୱର) ବଣ—ଯାହାର (ସେହି ଗୁଡ଼ିର)
Sūtā kināri ମୋଡ଼ା ହୋଇଥିବା ଧଡ଼ି ମଧ୍ୟରେ ସୂତା ଥାଏ—
(a paper kite) Having thread twisted into its upturned rim.

ସୂତା ଖିଅ—ଦେ. ବି (ସଂ. ସୂତ୍ର+ଖ ଢିଙ୍କା)—ସୂତ୍ରର ଗୋଟିଏ ସରୁ
Sūtā khia —One string of thread.
সুতোর খী सूता तागा

ସୂତା ଗଣ୍ଠି—ଦେ. ବି (ସଂ. ସୂତ୍ର+ଗ୍ରନ୍ଥି)—ସୂତ୍ରରେ ପଡ଼ିଥିବା ଗଣ୍ଠି-
Sūtā ganṭhi A knot of thread.
সুতারগাঁইট सूता गाँठ

ସୂତା ଗାଣ୍ଠି—ଦେ. ବି—ବହୁତ ସୂତା ଏକତ୍ର ବନ୍ଧା ହୋଇଥିବା ବଡ଼
Sūtā gānṭhi କଡ଼ା—A big package or bundle of
সুতার গাঁঠি सूतागाँट yarn or thread.

ସୂତା ଛାଡ଼ିବା (ଦେବା, ବଢ଼ାଇବା)—ପ୍ରାଦେ· (ବାଲେଶ୍ୱର) କ୍ରି—
Sūtā chhāṛdibā (debā, bardhāibā) ଗୁଡ଼ିକୁ ବହୁ
ଉଚ୍ଚକୁ ଉଠାଇବା ପାଇଁ ଲଟେଇରେ ଗୁଡ଼ା ହୋଇଥିବା
ସୂତାକୁ ଫିଟାଇ ଦେବା—To let out the string
of a kite so that the kite may fly high.

ସୂତା ଜାଲ—ପ୍ରାଦେ (ବାଲେଶ୍ୱର) ବି—କପାର ସୂତାରେ ତିଆରି ଜାଲ-
Sūtā jāla ବିଶେଷ—A kind of net made of thread.

ସୂତା ଧରିବା—ପ୍ରାଦେ (ବାଲେଶ୍ୱର) କ୍ରି—ଗୁଡ଼ି କଟିଗଲେ ଉକ୍ତ ଗୁଡ଼ି
Sūtā dharibā ସହିତ ଲଗି ଥିବା ସୂତା ଏବଂ ଲଟେଇ ଦେହରେ
ଲାଗିଥିବା ସୂତା ଭୂମିରେ ପଡ଼ିବା ମାତ୍ରକେ ତାହାକୁ
ଲଟେଇରେ ଗୁଡ଼ାଇ ଦେବା—To wind up the
string of a kite after it is cut by another kite.

ସୂତା ନ ଚାଲିବା—ପ୍ରାଦେ. ( ବାଲେଶ୍ୱର ) ବି—ଗୁଡ଼ିର ପେଞ୍ଚ ବସିବା
Sūtā na chālibā ପରେ କୌଣସି କାରଣରୁ ଦୁଇ ଗୁଡ଼ିର
ସୂତା ମଧ୍ୟରେ ଗଣ୍ଠି ପଡ଼ିବା ଯୋଗୁଁ ସୂତା ଅଚଳ ହେବା—
The string of two flying kites becoming
under-knotted and incapable of being
worked. [ ଦ୍ର—ଯେତେବେଳେ ଗୋଟିଏ ଗୁଡ଼ିର
ସୂତା ଛାଡ଼ିଲେ ଅନ୍ୟ ଗୁଡ଼ିର ସୂତା ଯଦି ଛଡ଼ା ନ ଯାଏ,
ତେବେ ପ୍ରଥମ ଗୁଡ଼ିର ସୂତା ଓହ୍ଲା ପଡ଼େ; କାରଣ,
ସେପରି ଅବସ୍ଥାରେ ଦୁଇଟି ଯାକ ଗୁଡ଼ିର ଜୋର୍ ଦ୍ୱିତୀୟ
ଗୁଡ଼ିର ସୂତା ଉପରେ ଆସି ପଡ଼େ । ଏହି ଅବସ୍ଥାକୁ ପ୍ରଥମ
ଗୁଡ଼ିର ସୂତା ନ ଚାଲିବା କହନ୍ତି । ]

ସୂତା ନାଗ—ଦେ· ବି—ସୂତା ପରି ଲମ୍ବ ଓ କାନକଟା ପରି ସରୁ ଏକ-
Sūtā nāga ଜାତୀୟ ସର୍ପ—A kind of very slender
সরু সাপ serpent. [ ଦ୍ର—ଏ ପ୍ରାୟ ଏକ ହାତ ଲମ୍ବ ହୁଏ,
ଏ ସାମାନ୍ୟ ବିଷଧର । ଏହାର ମୁଣ୍ଡ ଉପରେ ଗୋଟିଏ
ଟୋପି ପରି ଆବରଣ ଥାଏ । ଏମାନେ ବର୍ଷା ଦିନେ
ବାହାରେ ଥାଆନ୍ତି ଓ ଗାଛର ଫଳକୁ ଭଣା କରି ଖାଆନ୍ତି । ]

ସୂତା ଭାଙ୍ଗିଯିବା—ପ୍ରାଦେ· (ବାଲେଶ୍ୱର ) କ୍ରି—ଛତେଇବା ( ଦେଖ )
Sūtā bhāṅgijibā Chhateibā ( See )

ସୂତା ମସିଣା(ସଉପ, ସପ)—ଦେ. ବି—ମୋଟା ଦାନ୍ତଡ଼ାରେ ବୁଣା ନ
Sūtā masiṇā (saupa, sapa) ହୋଇ ତୂଳାର ସୂତାରେ
সুতা সপ, সুতোর মাদুর ବୁଣା ଯାଇଥିବା ସରୁ ମସିଣା—A thin
सुतेकी चटाई mat woven with thread. [ ଦ୍ର—
ଏହାକୁ ବଡ଼ଲୋକମାନେ ଗ୍ରୀଷ୍ମ ଦିନରେ ଶେଯ ଉପରେ
ପକାଇ ଶୁଅନ୍ତି । ତୂଳା ଶେଯ ତୁଳନାରେ ଏହା ଦେହକୁ
ଶୀତଳ ଲାଗେ । ]

ସୂତାର୍—ପ୍ରାଦେ, ( ମେଦିନୀପୁର ଓ ବାଲେଶ୍ୱର ) ବି ( ତୁଳ· ବଂ. ସୁ-
Sūtār [ଛୁ]ତାର୍ )—( ସଂ. ସୂତ୍ରଧର)—ବଢ଼େଇ—Carpenter,
ପ୍ରାଦେ. ( ସମ୍ବଲପୁର ) ବି—ଟୀକା ଦିଆ—
Vaccinator.

ସୂତାରି—ପ୍ରାଦେ· ( ସମ୍ବଲପୁର ) ବି—ଟୀକା ଦିଆ—
Sūtāri Vaccinator.

ସୂତା ଲୁଗା—ତୂଳାର ସୂତାରେ ବୁଣା ହୋଇଥିବା ଲୁଗା—Cloth
Sūtā lugā woven with cotton thread.
সুতি কাপড় सूता कपड़ा

ସୂତି—ସଂ. ବି ( ସୂ· ଧାତୁ+ଭାବ· ତି )—୧ । ଜନନ; ଜନ୍ମ—
Suti 1. Birth. ୨ । ( +କର୍ମ· ତି ) ସନ୍ତାନ—
2. Child. ୩ । ( ସିବ୍ ଧାତୁ+ଭାବ. ତି ) ସୀବନ;
ସେଲାଇ—3. Sewing. ୪ । ସୂଚୀ କାର୍ଯ୍ୟ—
4. Needle work. ୫ । ( +ଅପାଦାନ· ତି )
ଉତ୍ପତ୍ତିର ସ୍ଥାନ ବା କାରଣ ( ସ୍ତ୍ରୀ· ଣ )—5. Place or
cause of birth; origin. ୬ । ( +ଭାବ· ତି )
ଫଳର ବା ଫସଲର ଉତ୍ପତ୍ତି ( ସ୍ତ୍ରୀ· ଣ )—6. Production of fruit or crop. ୭ । ଯଜ୍ଞାର୍ଥ ସୋମରସ
ବାହାର କରିବା କର୍ମ ( ସ୍ତ୍ରୀ. ଣ )—7. The act of
extacting the soma juice for a vedic
sacrifice. ୮ । ( ନାମ ) ବିଶ୍ୱାମିତ୍ରଙ୍କର ଏକ ପୁତ୍ର
( ପୁ· ଣ )—8. A son of sage Biswāmitra.
୯ । ହଂସ ( ପୁ· ଣ )—9. Gander; drake. ସ୍ତ୍ରୀ.

ସୂତି, ସୂତୀ ବିଣ (ସଂ ସୂତ୍ର)—୧ । ସୂତ୍ର ନିର୍ମିତ—1. Made of yarn. ୨ । କପା ସୂତା ନିର୍ମିତ—2. Made of cotton thread.

ସୂତଅ—ଦେ. ବି (ସଂ ସୂତ୍ର)—ନାଅ ବା ଡଙ୍ଗା; ଉଜାଣିକୁ ଟାଣିନେବା ପାଇଁ ବ୍ୟବହୃତ ଲମ୍ବ ଦଉଡ଼ି—Long rope for towing a boat.
Sutia
ଗୁଣ ଦଡ଼ି ରସ୍ସୀ

ସୂତିକା—ସଂ ବି (ସୂତିକ+ଆ)—୧ । ନବ ପ୍ରସୂତା ସ୍ତ୍ରୀ; ପୋଷଣଅଲା ସ୍ତ୍ରୀ—1. A woman who has been recently delivered of a child. ୨ । ସୂତିକା ରୋଗ (ଦେଖ)—2. Sutika roga (See) ୩ । ନବ ପ୍ରସୂତା ଗାଈ (ହୁ. ଶ)—3. Recently calved cow
Sutika

ସୂତିକାଗାର—ସଂ ବି (ସୂତିକା+ଅଗାର)—ପ୍ରସବ ଗୃହ; ଅନ୍ତୁଡ଼ିଶାଳ; ଯେଉଁଠାରେ ପ୍ରସୂତି ପିଲା ଜନ୍ମ କରେ—A lying-in room.
Sutikagara

ସୂତିକାଗୃହ, ସୂତିକାଗେହ, ସୂତିକାଶାଳା, ସୂତିକାବାସ, ସୂତିକା ଭବନ } ଅନ୍ୟରୂପ

ସୂତିକା ଗ୍ରହଣୀ—ସଂ ବି—ସୂତିକା ରୋଗଜନିତ ନବପ୍ରସୂତିର ଗ୍ରହଣୀ ରୋଗ—Chronic dysentery or diarrhoea which attacks a woman after delivery.
Sutika grahani
ସୂତିକା ଖାଡ଼ା, ସୂତିକା ହଗା } ଦେ. ରୂପ

ସୂତିକା ଜ୍ୱର—ସଂ ବି—ପ୍ରସବ କାଳରେ ଧାଈମାନଙ୍କର ଅସାବଧାନତା ବା ବ୍ୟବହୃତ ବସ୍ତ୍ର ଅତି ମଇଳା ଥିବା ଯୋଗୁଁ ପ୍ରସୂତିର ଗର୍ଭରେ ବିଷ ପ୍ରବେଶ କରିବା ଯୋଗୁଁ ପ୍ରସବର ୫।୭ ଦିନ ମଧ୍ୟରେ ପ୍ରସୂତିଙ୍କୁ ଯେଉଁ ମାରାତ୍ମକ କମ୍ପଜ୍ୱର ହୁଏ [ ତାହାର ସାଧାରଣ ନାମ. ପ୍ରସୂତିଜ୍ୱର ]—Puerperal fever; puerperal sepsis.
Sutika jwara

ସୂତିକା ରୋଗ—ସଂ ବି—ନବପ୍ରସୂତା ସ୍ତ୍ରୀଙ୍କର ବ୍ୟାଧିବିଶେଷ—A disease attacking some women after delivery. [ ଦ୍ର—ଏ ରୋଗ ଅତି କଷ୍ଟସାଧ୍ୟ ହୁଏ । ପ୍ରସବାନ୍ତେ ପ୍ରସୂତିଙ୍କ ଯତ୍ନ ଭଲ ନ ହେଲେ, ପଥ୍ୟ ଠିକ ନ ହେଲେ ଗୁରୁପାକ ଦ୍ରବ୍ୟର ଭୋଜନ ହେଲେ ଓ ଦେହରେ ଥଣ୍ଡା ଲାଗିଲେ ଏ ରୋଗ ହୁଏ । ପ୍ରଥମେ ଜ୍ୱର ହୁଏ, ତା ପରେ ଅତିସାର, ଶୋଥ, ପେଟଫମ୍ପା, ପେଟମରୁ ବା ଶୂଳ, ଅଗ୍ନିମାନ୍ଦ୍ୟ, ଘର୍ମ, ଦୁର୍ବଳତା, ଗୋଡ଼ ହାତ ଓ ଦେହ ଫୁଲା, କାଶ,ଜ୍ୱର ଓ ରକ୍ତହୀନତା ଜନ୍ମେ ଓ ଏହା ସମସ୍ତେ ସମସ୍ତେ ବହୁବର୍ଷ ବ୍ୟାପି ରହି ଶେଷରେ ରୋଗୀଙ୍କର ମୃତ୍ୟୁ ଘଟାଏ ।]
Sutika roga

ସୂତି କାଳ(ବେଳା)—ସଂ ବି—ସନ୍ତାନ ଜନ୍ମ ହେବାର ସମୟ ବା ମୁହୂର୍ତ୍ତ—The moment or time when a child is born.
Suti kala(bela)

ସୂତିକା ଷଷ୍ଠୀ—ସଂ ବି—୧ । ସୂତିକାଗାରରେ ନବଜାତ ସନ୍ତାନର ଜନ୍ମର ଷଷ୍ଠ ଦିବସରେ ପୂଜିତା ଦେବୀବିଶେଷ; ଷଷ୍ଠୀ ଦେବୀ; ଷଠୀବୁଢ଼ୀ—1. The Goddess who looks after the safety of infants and is worshipped on the sixth day of a birth. ୨ । ଷଠୀଘର; ଜନ୍ମର ଷଷ୍ଠ ଦିନ କରାଯିବା ଉତ୍ସବ (ହୁ.ଶ)—2. The festival observed on the sixth day of a child's birth.
Sutika shashthi

ସୂତି ଗୃହ(ଭବନ, ଶାଳା, ବାସ)—ସଂ ବି—ସୂତିକାଗାର (ଦେଖ) Sutikagara (See)
Suti gruha(bhabana, sala, basa)

ସୂତି ମାରୁତ(ବାତ)—ସଂ ବି—ପ୍ରସବ ବେଦନା; ପ୍ରସବକାଳୀନ ଶୂଳ (ହୁ. ଶ)—Throes of child-birth.
Suti maruta(bata)

ସୂତି ମାସ—ସଂ ବି—( ଏଥିର ନାମାନ୍ତର ବୈଜନନ—ଅମର ) ପ୍ରସବ ମାସ; ଗର୍ଭାଧାନର ନବମ ବା ଦଶମ ମାସ—The 9th or 10th month of pregnancy, which is the time of delivery.
Suti masa

ସୂତୀ—ସଂ ବି. ସ୍ତ୍ରୀ (ସୂତ+ଈ)—ସୂତ ପତ୍ନୀ (ହୁ. ଶ)—The wife of a sūta.
Suti

ସୂତ୍ତର—ସଂ ବିଣ (ସୁ+ଉତ୍ତର)—ଖୁବ୍ ଶ୍ରେଷ୍ଠ (ହୁ ଶ)—Very excellent. ସଂ ବି—ଉତ୍ତମ ବା ଯୋଗ୍ୟ ଉତ୍ତର—Good or fitting reply.
Suttara

ସୂତ୍ତି—ପ୍ରାଦେ (ବାଲେଶ୍ୱର) ବି—ବନସିରେ ମାଛ ଧରିବା ପାଇଁ ବ୍ୟବହୃତ ଖୁବ୍ ମୋଟା ଏବଂ ଶକ୍ତ ସୂତାର ଅଧିକ ଲମ୍ବା [ସୂତ୍ରଣ—ଅନ୍ୟରୂପ] ଡୋର—A thick angling string. [ଦ୍ର—ଏଥିରେ ଖଣ୍ଡିଏ ବଡ଼ ଗୋଲ କାଠ ବନସି କଣ୍ଟାରେ ଖାଅଲା ମାଛ କମ୍ପା ସେହିପରି ଅନ୍ୟ କୌଣସି ଥୋପ ଗୁନ୍ଥି ମାଛ ଧରିବା ଲାଗି ପାଣି ଉପରକୁ ପକାଇ ଦିଆଯାଏ । ଏହାକୁ ବନସିଖଡ଼ାରେ ବାନ୍ଧିବା ଦରକାର ହୁଏ ନାହିଁ ।]
Sutti

ସୂତ୍ଥାନ—ସଂ ବି (ସୁ+ଉତ୍ଥାନ)—ସୁନ୍ଦର ଉତ୍ଥାନ—Nice arising. ବିଣ—( ବହୁବ୍ରୀହି; ସୁ ଅଟେ ଉତ୍ଥାନ ଯାହାର )—୧ । ଚତୁର (ଅମର)—1. Smart; clever. ୨ । କର୍ମଦକ୍ଷ; ପଟୁ—2. Skilful.
Sutthana

ସୂତ୍ୟଶୌଚ—ସଂ ବି (ମ. ପ. ଲୋ; ସୂତି=ପ୍ରସବଜନିତ ଅଶୌଚ)—ସୂତିକାଶୌଚ (ଦେଖ) Sutikasaucha (See)
Sutyasaucha

ସୂତ୍ୟା—ସଂ ବି (ସୁ ଧାତୁ+ଭାବ. ଯ+ଆ)—୧ । ଯଜ୍ଞାନ୍ତ ସ୍ନାନ (ଭରତ)—1. Bath taken after a vedic sacrifice. ୨ । ସୋମରସ ପାନ (ଭରତ)—2. Drinking of the soma juice. ୩ । ସୋମରସ ବାହାର କରିବା କର୍ମ (ହୁ. ଶ)—3. The extraction of the Soma juice for vedic sacrifice.
Sutya

ସୂତ୍ର (ଧାତୁ)—ସ—ଗ୍ରନ୍ଥନ କରିବା; ଗୁନ୍ଥିବା—To lay or string through.
Sutra (root)

ସୂତ୍ର—ସଂ. ବି ( ସିବ୍ ଧାତୁ=ସିଲାଇ କରିବା+କରଣ. ତ୍ର; ଯାହାଦ୍ୱାରା
Sūtra ସିଲାଇ କରାଯାଏ, କିମ୍ବା ସୂତ୍ର ଧାତୁ+କରଣ. ଅ )—
୧ । ସରୁ ବା ସୂକ୍ଷ୍ମ ରଜ୍ଜୁ, ସୂତା—1. Thread. ୨ ।
ତନ୍ତୁ—2. Fibre. ୩ । ଯାହାଦ୍ୱାରା ଲୁଗା ବୁଣାଯାଏ; ବସ୍ତ୍ରାରମ୍ଭକ—3. Yarn. ୪ । ଡୋରି; ସରୁ ସୂତା—4. String. ୫ । ବ୍ୟବସ୍ଥାର ଓ ଶାସ୍ତ୍ରର ସୂଚନା ଗ୍ରନ୍ଥ ( ମେଦିନୀ )—5. A treatise indicating the scriptures and the law books. ୬ । ବ୍ୟବସ୍ଥା, ବ୍ୟାକରଣ, ଦର୍ଶନାଦି ଶାସ୍ତ୍ରପ୍ରଣେତାଙ୍କର ପ୍ରଥମ ପ୍ରଣୀତ ସଂକ୍ଷିପ୍ତ ବାକ୍ୟ; ସାରଗର୍ଭିତ ସଂକ୍ଷିପ୍ତ ପଦ—6. Aphorism; terse sentence conveying a rule in any branch of knowledge ( e. g. grammar; logic, law, philosophy ). ୭ । ବିଷୟ-ନିର୍ଦ୍ଦେଶ—7. Indication of the contents. ୮ । ନାଟ୍ୟଶାସ୍ତ୍ରର ଉପକ୍ରମ; ନାଟକର ପ୍ରସ୍ତାବନା—8. Indication of the contents of a drama; a prologue. ୯ । ବିଜ୍ଞାନାଦି ଶାସ୍ତ୍ରବିଷୟକ ସଂକ୍ଷିପ୍ତ ନିୟମ—9. Axiom; a rule of science or grammar. ୧୦ । ଯଜ୍ଞସୂତ୍ର; ପଇତା—10. A Brahman's sacred thread. ୧୧ । ପ୍ରାଚୀନ କାଳର ମାନବିଶେଷ ( ହି. ଶ )—11. A unit standard of measurement of ancient times. ୧୨ । ରେଖା ( ହି. ଶ )—12. Line. ୧୩ । କଟିସୂତ୍ର; କଟି ଭୂଷଣ ( ହି. ଚ )—13. A string worn round the waist. ୧୪ । କାରଣ; ନିମିତ୍ତ; ମୂଳ ( ହି. ଶ )—14. Cause; root. ୧୫ । ପତ୍ତା; ସୁରାକ୍ ( ହି. ଶ )—15. Trace; clue. ୧୬ । ବୁଢ଼ିଆଣୀ ସୂତା—16. Spider's thread. ୧୭ । ତାର—17. Wire ( M. W. ). ଦେ, ବି ଓ ବିଣ—ସୁତର ( ଦେଖ )—Sutara ( See ) [ ଦ୍ର—ସୂତ୍ର ଗୁଣ୍ଡିବା, ସୂତ୍ର କରିବା, ସୂତ୍ର ପାଇବା ଇତ୍ୟାଦି ଦେଶଜ ଶବ୍ଦମାନଙ୍କ ପାଇଁ ସୁତର ତଳେ ଜୋଡ଼ ଦେଖ । ]

ସୂତ୍ରକ—ସଂ. ବି ( ସୂତ୍ର+କ )—୧ । ସୂତ୍ର ( ଦେଖ )—1. Sūtra
Sūtraka See ) ୨ । ଅଟାରେ ବା ମଇଦାରେ ତିଆରି ସରୁ ସୂତା ଭଳି ଖାଦ୍ୟ ( ହି. ଶ )—2. Vermicelli.

ସୂତ୍ର କଣ୍ଠ—ସଂ. ବି. ପୁଂ ( ବହୁବ୍ରୀହି; ସୂତ୍ର ଅଛି କଣ୍ଠରେ ଯାହାର )—
Sūtra kantha ୧ । ବିପ୍ର; ବ୍ରାହ୍ମଣ ( ମେଦିନୀ )—1. A Brāhmana. ୨ । ଖଞ୍ଜରୀଟ; ଖଞ୍ଜନ ପକ୍ଷୀ (ମେଦିନୀ)—2. The wagtail bird. ୩ । କପୋତ (ମେଦିନୀ)—3. Dove.

ସୂତ୍ର କର୍ମ—ସଂ. ବି ( ସୂତ୍ର+କର୍ମନ୍; ୬ଷ୍ଠୀ. ତତ୍ )—୧ । ବଢ଼େଇ
Sūtra karma କାମ ( ହି. ଶ )—1. Carpentry.
୨ । ରାଜକାମ ( ହି. ଶ )—'. Mason's work.

ସୂତ୍ର କାର(କୃତ୍)—ସଂ. ବି—୧ । ସୂତ୍ରର ପ୍ରଣୟନକର୍ତ୍ତା; ସୂତ୍ରରଚୟିତା
Sūtra kāra(krut) —1. The author of aphorisms or rules of a treatise. ୨ । ବଢ଼େଇ ( ହି. ଶ ) —2. Carpenter. ୩ । ତନ୍ତୀ ( ହି. ଶ )— 3. Weaver. ୪ । ବୁଢ଼ିଆଣୀ ( ହି. ଶ )— 4. Spider.

ସୂତ୍ର କୋଣ—ସଂ. ବି ( ବହୁବ୍ରୀହି; ସୂତ୍ର ଅଛି କୋଣରେ ଯାହାର )—
Sūtra kona ଡମରୁ ( ହାରାବଳୀ; ତ୍ରିକାଣ୍ଡଶେଷ )—
A slender-waisted double-mouthed small drum shaped like an hour-glass.

ସୂତ୍ରକ୍ରୀଡ଼ା—ସଂ. ବି—ସୂତ ସାହାଯ୍ୟରେ କରାଯିବା ୬୪ କଳାର
Sūtra krirda ଅନ୍ତର୍ଗତ କ୍ରୀଡ଼ାବିଶେଷ ( ହି. ଶ )—
A kind of game with thread considered as one of the fine arts in India.

ସୂତ୍ର ଗଣ୍ଡିକା—ସଂ. ବି—ତନ୍ତୁବାୟର ଉପକରଣ ବିଶେଷ; ଏଷଣୀ (ଶବ୍ଦ-
Sūtra gandikā ମାଳା); ମାକୁ—The weaver's shuttle.

ସୂତ୍ରଗ୍ରହ—ସଂ. ବିଣ (ସୂତ୍ର+ଗ୍ରହ ଧାତୁ+କର୍ତ୍ତ୍ରି. ଅ)—ଯେ ସୂତ୍ର ଧାରଣ
Sūtragraha ବା ଗ୍ରହଣ କରେ(ହି. ଶ)—Holding thread.

ସୂତ୍ରଣ—ସଂ. ବି (ସୂତ୍ର ଧାତୁ+ଭାବ. ଅନ)—୧ । ସୂତ୍ର ରଚନ କରିବା
Sūtrana କର୍ମ ( ହି. ଶ )—1. The act of composing aphorisms. ୨ । ସୂତା କାଟିବା କର୍ମ ( ହି. ଶ )— 2. Spinning. ୩ । ଗୁନ୍ଥିବା—3. Stringing ( M. W ).

ସୂତ୍ର ତନ୍ତୁ—ସଂ. ବି—ସୂତ୍ର; ସୂତା ( ହାରାବଳୀ )—
Sūtra tantu Thread; string.

ସୂତ୍ର ତର୍କୁଟୀ—ସଂ. ବି—ତାକୁଡ଼ି ( ଜଟାଧର )—
Sūtra tarkutī Spindle.

ସୂତ୍ର ଧ(ଧା)ର—ସଂ. ବି (ସୂତ୍ର+ଧୃ ଧାତୁ+କର୍ତ୍ତ୍ରି. ଅ)—୧ । ନାଟକା-
Sūtra dha(dhā)ra ଭିନୟ ଆରମ୍ଭ ହେବା ପୂର୍ବରୁ ଯେଉଁ ନାଟ୍ୟକାର ରଙ୍ଗଭୂମିକୁ ଆସି ଦର୍ଶକମାନଙ୍କୁ ନାଟକୀୟ କଥାର ସୂଚନା ଦିଅନ୍ତି; ନାଟ୍ୟପ୍ରସ୍ତାବକ—1. An actor who appears on the stage and indicates the contents of the drama; stage manager. ୨ । ବଢ଼େଇ—2. Carpenter. [ ଦ୍ର—ଏ ବର୍ଣ୍ଣକମୀ ଔରସରେ ଶୂଦ୍ରା ଗର୍ଭଜାତ ସନ୍ତାନ—ବ୍ରହ୍ମବୈବର୍ତ୍ତ ପୁରାଣ । ] ୩ । ଶଚୀପତି; ଇନ୍ଦ୍ର—3. God Indra. ୪ । ସୂତ୍ରକାର ( ଦେଖ )—4. Sutrakāra ( See )

ସୂତ୍ରଧାରୀ—ସଂ. ବିଣ. ପୁଂ ( ସୂତ୍ରଧାରିନ୍; ୧ମା. ଏକ )—ଯଜ୍ଞୋପବୀତ
Sūtradhārī ଧାରଣକାରୀ—Wearing the sacred thread. ସଂ. ବି—ଅଭିନୟର ସୂତ୍ରଧର ( ହି. ଶ )— Stage manager.

ସୂତ୍ର ପାତ—ଦେ. ବି ( ରାଜ, ବଢ଼େଇ ଓ କାରିଗରମାନେ କାମ ଆରମ୍ଭ
Sūtra pāta କରିବା ପୂର୍ବରୁ ସୂତା ଧରି କାର୍ଯ୍ୟ ପାଇଁ ମାପ କର-
ସୂତ୍ରପାତ ବାରୁ ଏହି ଅର୍ଥ )—୧ । କୌଣସି ବିଷୟର ଆରମ୍ଭ;

सूत्रपात କାର୍ଯ୍ୟାରମ୍ଭ—1. Beginning or commencement of any thing. [ ଉ—କସେ ଗୁହ କଗ୍ରହର ସୂତ୍ରପାତ ହୋଇ, ଏହିରୂପେ ତ୍ରିକ ରଜ୍ଞ ହେଲେ ଅର୍ଥ ଜାଡ଼—ସ୍ୱାଧୀନାଥ ମହାପାତ୍ର । ] ୨ । କାର୍ଯ୍ୟର ପ୍ରାଥମିକ ସୂଚନା—2. Preliminary indication of a work. ସଂ ବ—ମାପିବା ସୂତାଦ୍ୱାରା ମାପ କରିବା—Applying the measuring line (M. W).

ସୂତ୍ର ପୁଷ୍ପ—ସଂ ବ ( ସୂତ୍ର ହିଁ ପୁଷ୍ପରୁ ଯାହାର )—କାର୍ପାସ; କପା
Sūtra pushpa ( ବିକାଶ ଶେଷ )—Cotton.

ସୂତ୍ର ପ୍ରୋତ—ସଂ, ବିଣ (ବସ୍ତ୍ର ତତ୍ତ୍ୱ)—ସୂତାଦ୍ୱାରା ଗୁନ୍ଥା ବା ସଂଲଗ୍ନ—
Sūtra prota Fastened with wires (M. W)

ସୂତ୍ର ବାପ—ସଂ ବ ( ୬ଷ୍ଠୀ ତତ୍ତ୍ୱ )—ବୟନ; ଲୁଗା ଅଦ ବୁଣିବା କର୍ମ
Sūtra bāpa ( ହି. ଶ )—Weaving.

ସୂତ୍ର ବୀଣା—ସଂ, ବ—ପ୍ରାଚୀନ ବୀଣାଭେଦ; ଲାଉଡ଼ିଆ ( ବାଦ୍ୟବଳୀ )—
Sūtra bīṇā A sort of harp used in ancient time. [ ଦ୍ର—ଏଥିରେ ଧାତବ ତାର ପରିବର୍ତ୍ତେ ସୂତ୍ରର ବ୍ୟବହାର ହେଉଥିଲା—ହି. ଶ । ]

ସୂତ୍ର ବେଷ୍ଟନ—ସଂ ବ—୧ । (ବହୁବ୍ରୀହି) ତନ୍ତୁବାୟୋପକରଣ; ତାସଣ;
Sūtra beshṭana ଶସର; ସାକୁ—1. A shuttle. ୨ । (ଷଷ୍ଠୀ ତତ୍ତ୍ୱ) ବୟନ (ହି· ଶ)—2. Weaving. ୩ । (ବହୁବ୍ରୀହି) ତନ୍ତ—3. Loom.

ସୂତ୍ରଭିତ(ଦ୍)—ସଂ ବ ( ସୂତ୍ର+ଭିଦ୍ ଧାତୁ+କର୍ତ୍ତି. କ୍ୱିପ୍; ଯେ
Sūtrabhit(d) ସୂତ୍ରଦ୍ୱାରା ଭେଦ କରେ )—ଶୌଚିକ ( ଶବ୍ଦରତ୍ନାବଳୀ ); ଦରଜି—A tailor.

ସୂତ୍ରମଧ୍ୟଭୂ—ସଂ. ବ—ଯକ୍ଷଧୂପ ( ଶବ୍ଦଚନ୍ଦ୍ରିକା ); ଶଲ୍ଲକୀନିର୍ଯ୍ୟାସ —
Sūtramadhyabhū A sort of incense.

ସୂତ୍ର ଯନ୍ତ୍ର—ସଂ, ବ—ସୂତ୍ରବେଷ୍ଟନ କାଷ୍ଠ ( ଶବ୍ଦମାଳା ); ତନ୍ତ —
Sūtra jantra Loom.

ସୂତ୍ରଳା—ସଂ. ବ ( ସୂତ୍ର+ଲା ଧାତୁ=ଗ୍ରହଣ କରିବା+କର୍ତ୍ତି. ଅ )—
Sūtrālā ୧ । ତର୍କୁଟୀ; ଟାକୁଡ଼ି—1. Spindle. ୨ । ଭୂଲାର ବଳକା—2. A skein or roll of cotton for spinning.

ସୂତ୍ରଶାଖ—ସଂ ବ ( ବହୁବ୍ରୀହି, ସୂତ୍ର ଅଟେ ଶାଖା ଯାହାର )—ଶରୀର
Sūtrasākha ( ହି. ଶ )—Body.

ସୂତ୍ରାଙ୍ଗ—ସଂ. ବ—ଉତ୍ତମ କଂସା ( ହି. ଶ )—
Sūtrānga Excellent bellmetal.

ସୂତ୍ରାମା—ସଂ ବ ( ସୁ=ଉତ୍ତମରୂପେ+ତ୍ରୈ ଧାତୁ=ପାଳନ କରିବା
Sūtrāmā +କର୍ତ୍ତି. ମନ୍; ୧ମା. ୧ବ )—ଇନ୍ଦ୍ର ( ଅମର )—Indra.

ସୂତ୍ରାଳୀ—ସଂ. ବ ( ସୂତ୍ର+ଅଳୀ )—୧ । ଗଳସୂତ୍ର; ଗଳମେଖଳ—
Sūtrālī 1. A string used as ornament for the neck. ୨ । ମାଳା ( ହି. ଶ )—2. Garland.

ସୂତ୍ରିତ—ସଂ. ବିଣ (ସୂତ୍ର ଧାତୁ+କର୍ମ. ତ)—୧ । ଗୁନ୍ଥା ହୋଇଥିବା—
Sūtrita 1. Strung (M. W). ୨ । ବ୍ୟବସ୍ଥିତ—2. Arranged ( M. W ). ୩ । ସୂତ୍ରରୂପେ ଲିଖିତ ବା କଥିତ—3. Prescribed or delivered in aphorisms ( M. W ).

ସୂତ୍ରୀ—ସଂ, ବିଣ ( ସୂତ୍ର+ଇନ୍; ୧ମା. ୧ବ )—ସୂତ୍ରବିଶିଷ୍ଟ—
Sūtrī Fibrous. ବ—କାକ ( ତ୍ରିକାଣ୍ଡ ଶେଷ )—Crow.

ସୂତ୍ରୀୟ—ସଂ. ବିଣ ( ସୂତ୍ର+ଇୟ )—ସୂତ୍ର ସମ୍ବନ୍ଧୀୟ—
Sūtrīya Relating to sūtra.

ସୂତ୍ରେ—ଦେ· କ୍ରି. ବିଣ—କୌଶଳରେ—With great tact;
Sūtre tactfully. [ ଉ—ବୋଇଲେ ଶୂରେ ସୂତ୍ରେ ଫିକିବେ ଭଞ୍ଜ ଭୂପାଳ ସୂତ୍ରେ ସାର୍ଦ୍ଧସୂତ୍ରେ ବଚନ ହୋଇଲ—
कौशलसे ଭଞ୍ଜ. ବୈଦେହୀଶବିଳାସ । ]

ସୂତ୍ରେଇବା—ଦେ· କ୍ରି—ସୁତରାଇବା ( ଦେଖ )
Sūtreibā Sutarāibā ( See )

ସୂତ୍ରେ ସୂତ୍ରେ—ଦେ. କ୍ରି. ବିଣ—ସୁତ୍ରେ ସୁତ୍ରେ ( ଦେଖ )
Sūtre sūtre Sutre sutre ( See )

ସୂଦ ( ଧାତୁ )—ସଂ—୧ । ବଧ କରିବା—1. To kill; to
Sūda ( root ) slaughter. ୨ । ନାଶ କରିବା—2. To destroy. ୩ । ହିଂସା କରିବା—3. To hurt; to injure.

ସୂଦ—ସଂ. ବ ( ସୂଦ ଧାତୁ; ବିକଳ୍ପ=ସୂଦ ଧାତୁ=ନାଶ କରିବା+
Sūda କର୍ତ୍ତି. ଅ; ଯେ କ୍ଷୁଧା ନାଶ କରେ )—୧ । ସୂପକାର ( ଅମର ); ସୁଆର; ପାଚକ—1. Cook. ୨ । (+କର୍ମ. ଅ) ବ୍ୟଞ୍ଜନ ( ଅମର )—2. Curry. ୩ । ଝୋଲ; ସୂପ ( ଭରତ )—3. Soup. ୪ । ସାରଥ୍ୟ (ଜୟପାଳ)—4. Charioteership. ୫ । ଅପରାଧ; ଦୋଷ ( ଜୟପାଳ )—5. Crime; delinquency. ୬ । ପାପ ( ଜୟପାଳ )—6. Sin. ୭ । ଲୋଧ୍ର (ଜୟପାଳ)—7. Simplocos Racemosa.

ସୂଦନ—ସଂ. ବ. ( ସୂଦ୍. ଧାତୁ=ବଧ କରିବା+ଭାବ. ଅନ )—
Sūdana ୧ । ହନନ; ମାରଣ; ମାରିବା—1. Killing, slaughtering. ୨। କ୍ଷେପଣ—2. Throwing; consigning. ୩ । ଅଙ୍ଗୀକରଣ—3. Agreeing, ବିଣ (+କର୍ତ୍ତି. ଅନ)—( ଏହା ଅନ୍ୟ ନାମବାଚକ ଶବ୍ଦ ସଙ୍ଗେ ବ୍ୟବହୃତ ହୋଇ ବିଶେଷଣ ରୂପ ଧାରଣ କରେ । ଯଥା—ମଧୁସୂଦନ, କେଶୀସୂଦନ) ନାଶକାରୀ, ମାରକ; ହତ୍ୟାକାରୀ—Destructive of. ଦେ. ବ—ପାନ;
भक्षण ଭକ୍ଷଣ—Drinking; eating. ( ଉ—ଯେ କାଳେ
मत्तण ଝାଳେ ବଦନ, ବ ଶୋଭା କଞ୍ଜବଦନ ଅଳକ ମଧୁସୂଦନ ମଧୁସୂଦନ । ଭଞ୍ଜ. ପ୍ରେମ ସୁଧାନିଧି ।)

ସୂଦଶାଳା—ସଂ. ବ—ପାକଶାଳା (ହେମଚନ୍ଦ୍ର)—
Sūdsālā Kitchen.

ସୂଦ ଶାସ୍ତ୍ର—ସଂ. ବି—ପାକଶାସ୍ତ୍ର—The science of cooking;
Sūda śāstra culinary art.

ସୂଦାଧ୍ୟକ୍ଷ—ସଂ. ବି. ପୁଂ—ପାକଶାଳାଧ୍ୟକ୍ଷ (ହେମଚନ୍ଦ୍ର)—
Sūdādhyaksha Chief cook; head cook.
(ଅନ୍ୟ ସଂ ନାମ—ପୌରୋଗବ, ସୁପ୍ରୋଗବ)

ସୂଦିତ—ସଂ. ବିଣ (ସୁଦ୍ ଧାତୁ+କର୍ମ. ତ)—୧ । ଆହତ—
Sūdita 1. Wounded. ୨ । ବିନଷ୍ଟ—2. Destroyed.
୩ । ନିହତ—3. Killed.

ସୂନ—ସଂ. ବି (ସୂ ଧାତୁ=ପ୍ରସବ କରିବା+ଭାବ ତ)—୧ । ପ୍ରସବ
Sūna (ଶବ୍ଦ, ମେଦିନୀ)—1. Birth. ୨ । (+କର୍ମ. ତ) ପୁଷ୍ପ
(ଶବ୍ଦ, ମେଦିନୀ)—2. Flower. ବିଣ—୧ । ବିକସିତ;
ପ୍ରସ୍ଫୁଟିତ (ଶବ୍ଦ, ମେଦିନୀ)—1. Full blown; with
expanded petals. ୨ । ଜାତ (ମୁଗ୍ଧବୋଧ)—
2. Born. ୩ । ଶୂନ୍ୟ; ଖାଲି; ରିକ୍ତ (ପ୍ରାକୃତବାଦ)—
3. Empty.

ସୂନବାନ୍—ସଂ ବିଣ ପୁଂ ( ସୂନବତ୍ ଶବ୍ଦ; ସୂ ଧାତୁ+କର୍ତ୍ତୃ. ତବତ୍
Sūnabān ୧ମା. ୧ବ)—ଜାତ (ମୁଗ୍ଧବୋଧ)—Born.
(ସ୍ତ୍ରୀ ନବତୀ—ସ୍ତ୍ରୀ)

ସୂନ ଶର—ସଂ. ବି—୧ । କୁସୁମଶର; କାମଦେବଙ୍କ ଧନୁ—1. The
Sūna śara flowery bow of cupid. ୨ । (ବହୁବ୍ରୀହି)
କାମଦେବ—2 Cupid personified.

ସୂନା—ସଂ. ବି ( ସୂ ଧାତୁ=ପ୍ରସବ କରିବା+କର୍ମ. ତ+ସ୍ତ୍ରୀ. ଆ )—
Sūnā ୧ । ପୁତ୍ରୀ; କନ୍ୟା ( ମେଦିନୀ )—1. Daughter.
୨ । (+ଅଧି. ଅ)—ବଧ ସ୍ଥାନ (ମେଦିନୀ)—2. Place
of slaughter. ୩ । ଗଳଶୁଣ୍ଡିକା ( ମେଦିନୀ );
ଘଣ୍ଟିକା—3. The uvula. ୪ । ମୃଗମାଂସ ବିକ୍ରୟ
(ହଳିପ୍ରସାଦ)—4. Sale of meat of beasts.
୫ । ମୃଗପକ୍ଷି-ବଧ ସ୍ଥାନ (ହଳିପ୍ରସାଦ); କଂସେଇଖାନା—
5. Slaughter-house. ୬ । ମାଂସ ବିକ୍ରୟ (ହଳିପ୍ର-
ସାଦ)—6. Sale of meat. ୭ । ପ୍ରାଣିହତ୍ୟାର ବା
ଜୀବହିଂସାର ଉପକରଣ; ଗୃହସ୍ଥର ନିତ୍ୟ ବ୍ୟବହାର୍ଯ୍ୟ ୫ଟି
ବସ୍ତୁ—7. Five household articles or uten-
sils which cause slaughter of animals.
(ଦ୍ର—ଗୃହସ୍ଥର ୫ଗୋଟି ଉପକରଣରେ ଅଜ୍ଞାତସାରଭାବରେ
ଛୋଟ ପତଙ୍ଗାଦି ଜନ୍ତୁ ଜୀବହିଂସା ବା ପ୍ରାଣିହତ୍ୟା
ହୁଏ । ଏହି ୫ ଗୋଟି ବସ୍ତୁକୁ ପଞ୍ଚସୂନା ବୋଲାଯାଏ ।
ଯଥା—ଚୁଲି; ଶିଳ, ଶିଳପୁଅ ଓ ଚକି; ଝାଡୁ ଓ ପଇଁସ;
ଉଦୁଖଳ ମୁଷଳ ବା ଢିଙ୍କି; ହାଣ୍ଡି ମାଟିଆ ରଖିବାର ପିଣ୍ଡି ।
ଗୃହସ୍ଥ ପ୍ରତିଦିନ 'ପଞ୍ଚଯଜ୍ଞ' ଦ୍ୱାରା ଏହି ପଞ୍ଚସୂନାଜନିତ
ପାପରୁ ମୁକ୍ତିଲାଭ କରେ ।) ୮ । ହତ୍ୟା ( ହି. ଶ )—
8. Slaughter.

ସୂନା ଦୋଷ—ସଂ. ବି—ଚୁଲି, ଚକି ଓ ଶିଳ, ଢିଙ୍କି, ଝାଡୁ ଓ ପାଣି
Sūnā dosha ମାଟିଆ ଆଦି ରଖିବା ପିଣ୍ଡି ଆଦି ଯୋଗୁଁ ଗୃହସ୍ଥ
ଯେଉଁ ଅଜ୍ଞାନକୃତ ଜୀବହିଂସା କରେ ତଜ୍ଜନିତ ଦୋଷ ବା
ପାପ—Sin committed by a householder by
the daily use of five domestic articles.

ସୂନିକ—ସଂ. ବି ( ସୂନା+ଇକ )—୧ । ମାଂସ ବିକ୍ରୟକାରୀ ବ୍ୟକ୍ତି (ହ'
Sūnika ଶ)—1. Seller of meat. ୨ । ବ୍ୟାଧ—
2. Hunter. ୩ । କଂସେଇ—3. Butcher.

ସୂନ୍ମଦ—ସଂ. ବି ( ସୁ+ଉନ୍ମଦ )—୧ । ଉନ୍ମତ୍ତ ( ଭରତ )—
Sūnmada 1. Maddened; insane. ୨ । ଉନ୍ମଦିଷ୍ଣୁ
( ଭରତ )—2. Intoxicated.

ସୂନ୍ମାଦ—ସଂ. ବିଣ ( ବହୁବ୍ରୀହି; ସୁ+ଉନ୍ମାଦ )—ପାଗଳ; ଉନ୍ମାଦ
Sūnmāda ରୋଗବିଶିଷ୍ଟ ( ରମାନାଥ )—
Insane; lunatic.

ସୂପ୍—ବୈଦେ. ବି ( ଇଂ )—ମାଂସାଦିର ଝୋଳ ବା ଅଣ; ସୁରୁଆ—
Sūp सूप शोरबा Soup

ସୂପ—ସଂ. ବି ( ସୁ ଧାତୁ=ପ୍ରସବ କରିବା+କର୍ମ. ପ )—୧ । ଝୋଳ;
Sūpa ଡାଲିର ଅଣ—1. Soup. ୨ । ମୁଗ, ମସୁର ଆଦିର
ଡାଲି, ବ୍ୟଞ୍ଜନବିଶେଷ—2. Soup of pulse. [ଦ୍ର—
ମୁଗ ଆଦିକୁ ଭଗଣ୍ଡି, ପାଣିରେ ସିଝାଇ ଲୁଣ, ଅଦା, ହେଙ୍ଗୁ
ଆଦି ଦେଇ ପ୍ରସ୍ତୁତ କରିବା ବ୍ୟଞ୍ଜନକୁ ସୂପ ବୋଲାଯାଏ ।
ଏହା ବଳକାରକ,ରୁଚ ଓ ଶୀତଳ । ଚୋପା ଛଡ଼ା ଡାଲିର ସୂପ
ଲଘୁପାକ ।] ୩ । ସୂଦ ( ମେଦିନୀ ) ୧ ( ଦେଖ )—
3. Sūda ( See ) ୪ । ଭାଣ୍ଡ ( ଶବ୍ଦରତ୍ନାବଳୀ );
ବାସନ—4. Receptacle; utensil. ୫ । ବାଣ;
ଶାୟକ ( ଶବ୍ଦରତ୍ନାବଳୀ )—5. Arrow. ୬ । ପାଚକ
( ହି. ଶ )—6. Cook. ୭ । ଡାଲି ଆଦିର ପାଣି ବା
ଅଣ—7. The water or soup of boiled
pulse.

ସୂପକାର—ସଂ. ବି. ପୁଂ ( ସୂପ+କୃ. ଧାତୁ+କର୍ତ୍ତୃ. ଅ )—୧ ।
Sūpakāra ପାଚକ—1. Cook. ୨ । ଶୂଦ୍ରପାକୋପଜୀବୀ
(ସୂପକାରୀ—ସ୍ତ୍ରୀ) (ବ୍ରହ୍ମବୈବର୍ତ୍ତ)—2. The cook of a Śūdra
(ଅନ୍ୟ ସଂ. ନାମ—ବଲ୍ଲବ, ଆରାଳିକ, ଆନ୍ଧସିକ, ସୂଦ, ଔଦନିକ,
ଗୁଣ, ପାଚକ, ପାକୁକ, ଭକ୍ଷ୍ୟକାର ।)

ସୂପ ଧୂପନ(କ)—ସଂ. ବି ( ଏହାଦ୍ୱାରା ସୂପ ବାସିତ ଯାଇଥିବାରୁ )—
Sūpa dhūpana(ka) ହିଙ୍ଗୁ ( ତ୍ରିକାଣ୍ଡ ଶେଷ )—
Asafoetida

ସୂପପର୍ଣ୍ଣୀ—ସଂ. ବି—ମୁଦ୍‌ଗପର୍ଣ୍ଣୀ (ରତ୍ନମାଳା) (ଦେଖ)
Sūpaparṇṇī Mudgaparṇṇī ( See )

ସୂପ ଶାସ୍ତ୍ର—ସଂ. ବି—ପାକ ଶାସ୍ତ୍ର—
Sūpa śāstra The art of cooking.

ସୂପ ଶ୍ରେଷ୍ଠ—ସଂ. ବି—ମୁଦ୍‌ଗ; ମୁଗ ( ରାଜନିର୍ଘଣ୍ଟ )—
Sūpa śreshṭha A pulse.

ସୂପ ସ୍ଥାନ(ଶାଳା)—ସଂ. ବି—ପାକଶାଳା ( ହି. ଶ )—
Sūpa sthāna(śālā) Kitchen.

ସୁପାଙ୍ଗ—ସଂ, ବ (୬ଷ୍ଠୀ ତତ୍)—ହିଙ୍ଗୁ ( ରାଜନିର୍ଘଣ୍ଟ )—
Sūpānga Asafœtida.

ସୁପୋଦନ—ସଂ. ବ ( ଦ୍ୱନ୍ଦ୍ୱ; ସୂପ+ଓଦନ )—ଡାଲି ଓ ଭାତ ( ହି
Sūpodana ଶ)—Dal and boiled rice.

ସୂମ—ସଂ. ବ (ସୂ ଧାତୁ+କର୍ତ୍ତୃ. ମ)—୧ । କ୍ଷୀର; ଦୁଗ୍ଧ [ମେଦିନୀ]—
Sūma 1. Milk. ୨ । ଆକାଶ [ ମେଦିନୀ ]—2. Sky. ୩ । ଜଳ [ ଶବ୍ଦରତ୍ନାବଳୀ ]—3. Water. ୪ । ସ୍ୱର୍ଗ [ ହି. ଶ ]—4. Heaven. ବୈଦେ. ଵିଣ

କୃପଣ ସୁମ (ଅ, ସୁମ୍=ଅଶୁଭ)—କୃପଣ—Niggardly.

ସୂୟ—ସଂ. ବ (ସୁ ଧାତୁ=ପ୍ରସବ କରିବା+ଭାବ ଅ)—୧। ସୋମରସ
Sūya ବାହାର କରିବା କର୍ମ [ ହି. ଶ ]—1. The act of pressing out the Soma juice for vedic sacrifice. ୨ । ଯଜ୍ଞ [ ହି. ଶ ]—
2. Vedic sacrifice.

ସୂର୍ (ଧାତୁ)—ସଂ—୧ । ବଧ କରିବା—1. To kill. ୨ । ସ୍ତମ୍ଭିତ
Sūr(root) କରିବା—2. To stop.

ସୂର—ସଂ. ବ (ସୂ=ପ୍ରସବ କରିବା+କର୍ତ୍ତୃ. ର)—୧। ସୂର୍ଯ୍ୟ [ଅମର]
Sūra —1. The sun. ୨ । ଅର୍କ ବୃକ୍ଷ [ଅମର]—2. Calotropis Gigantea ( a plant ). ୩ । ବର୍ତ୍ତମାନ ଅବସର୍ପିଣୀର ସପ୍ତଦଶ ଅର୍ହତ୍ କୁନ୍ଥୁଙ୍କ ପିତା—3. Name of the father of the Buddhist saint of the present age. ୪। (ସୁର ଧାତୁ+କର୍ତ୍ତୃ, ଅ ) ପଣ୍ଡିତ ( ଶବ୍ଦକଳ୍ପଦ୍ରୁମ )—4. Learned man. ୫ । ଶୂର; ବୀର—5. Hero. ୬ । ମସୁର ( ହି. ଶ )—
6. A kind of lentil.

ସୂରଜ୍—ପ୍ରାଦେ· ( ଉତ୍ତରଭାରତ ) ବ ( ତୁଳ· ହି. ସୂରଜ୍ )—ସୂର୍ଯ୍ୟ—
Sūraj The sun.

ସୂରଜ୍ ଫୁଲ୍—ପ୍ରାଦେ ( ପାଟଣା କଲିକତାର ) ବ—ସୂର୍ଯ୍ୟମୁଖୀ ଫୁଲ—
Sūraj phul The sun-flower.

ସୁର(ରୁ)ଜ(ଜୀ) (ଇତ୍ୟାଦି)—ଗ୍ରା.ବ (ସ, ସୂର୍ଯ୍ୟ)—ସୂର୍ଯ୍ୟ (ର୍ଯ୍ୟୀ) ଇତ୍ୟାଦି
Sūra(ru)ja(jī) (etc) (ଦେଖ)—Sūrjya (rjī)etc (See)

ସୂର(ରି)ଞ୍ଜାନ୍—ବୈଦେ. ବ ( ଫା, ସୁରଂଜାନ୍ ) —ଔଷଧରେ ବ୍ୟବହୃତ
Sūra(ri)ñjān ଗୁଳ୍ମବିଶେଷ—Name of a medicinal plant. [ ଦ୍ର—ଏଥିର ପିଆଜ ସଦୃଶ ମୂଳ ଔଷଧରେ ଲାଗେ । ଏହା କେଶର ( କାଫ୍ରାନ୍ )—ଜାତୀୟ ଗୁଳ୍ମ । ପଶ୍ଚିମ ହିମାଳୟର ସମଶୀତୋଷ୍ଣ ଅଞ୍ଚଳରେ ପର୍ବତର ଚାଳୁରେ ଘାସ ମଧ୍ୟରେ ଏ ଗୁଳ୍ମ ମନକୁ ଉଠେ ଓ ଏହା ଏକସହସ୍ର ଫୁଟ ପର୍ଯ୍ୟନ୍ତ ଉଚ୍ଚ ହୋଇ ବଢ଼େ । ପାରସ୍ୟ ଦେଶରେ ମଧ୍ୟ ଏ ଗୁଳ୍ମ ଜନ୍ମେ । ଏଥିର ପତ୍ର ଅତି ଅଳ୍ପ ଓ ତାହା ଫୁଲ ସହିତ ବାହାରେ । ଫୁଲ ଲମ୍ବ ଓ ଚେଙ୍ଗ-ବିଶିଷ୍ଟ । ମୂଳରେ ରସୁଣଠାରୁ ବଡ଼ କନ୍ଦ ଥାଏ । ଏଥିର କନ୍ଦ କଡ଼ୁଆ ଓ ମିଠା ଭେଦରେ ଗୁଳ୍ମ ଦୁଇ ପ୍ରକାରର । ମିଠା କନ୍ଦ ପାରସ୍ୟରୁ ଏ ଦେଶକୁ ଆସେ ଓ ଔଷଧରୂପେ ଖିଆଯାଏ । କଡ଼ୁଆ କନ୍ଦ ତେଲ ଆଦିରେ ମିଶା ଯାଇ ଦେହରେ ମର୍ଦ୍ଦନ କରାଯାଏ । ଏଥିର ଖାଇ ବିଷାକ୍ତ ଥିବାରୁ ଏଥିର ମାତ୍ରା ବଡ଼ ସାବଧାନତା ସହକାରେ ରୋଗୀକୁ ଦିଆଯାଏ । ଯୁନାନୀ ଚିକିତ୍ସା ଅନୁସାରେ ସୁରଞ୍ଜାନ୍ ରୁକ୍ଷ, ରୁଚିକର ଓ ବାତ, କଫ, ପାଣ୍ଡୁ, ପ୍ଲୀହା, ସନ୍ଧିବାତ ରୋଗ ଦୂର କରେ—ହି. ଶ । ]

ସୂରଣ—ସ. ବ (ସୁର ଧାତୁ+କର୍ତ୍ତୃ. ଅନ)—୧ । ଶୂରଣ, ଓଲଅ—
Sūraṇa 1. Wild taro. ୨ । ବେଣା ମୂଳ (ପ୍ରକୃତିବାଦ)—
(ଗୁରଣ—ଅନ୍ୟରୂପ) 2. The root of Benā.
(ପ୍ରଥମ ଅର୍ଥରେ ଅନ୍ୟ ସଂ ନାମ—ସୁରକନ୍ଦ,କନ୍ଦଲ, ଅର୍ଶୋଘ୍ନ ।)

ସୂରତ—ସ. ବିଣ. ପୁ ( ସୁ+ରମ୍ ଧାତୁ+କର୍ତ୍ତୃ. ତ; ସୁ ସ୍ଥାନରେ ସୂ
Sūrata ଆଦେଶ )—ଅତି କୃପାଳୁ (ଅମର)—Very merciful.
(ସୂରତା—ସ୍ତ୍ରୀ)

ସୂର ଦାସ—ସ. ବ ( ୬ଷ୍ଠୀ ତତ୍ )—ପଣ୍ଡିତମାନଙ୍କ ଭୃତ୍ୟ—The
Sūra dāsa servant of learned men. ଦେ. ବ—
ସୁର ଦାସ ୧ । ( କବି ସୁରଦାସ ଅନ୍ଧ ଥିବାରୁ ) ଅନ୍ଧ ବ୍ୟକ୍ତି—
ସୁର ଦାସ 1. A blind person. ୨ । ଅନ୍ଧ ଗାୟକ—
2. A blind singer. ୩ । (ନାମ) ଉତ୍ତର ଭାରତର ପ୍ରସିଦ୍ଧ ସ୍ୱର୍ଗୀୟ କୃଷ୍ଣଭକ୍ତ କବି—3. Suradāsa,the late celebrated poet of North India.

[ ଦ୍ର—ଏ ତୁଳସୀ ଦାସଙ୍କ ପରି ଭାରତ ବିଖ୍ୟାତ ଶ୍ରେଷ୍ଠ ହିନ୍ଦୀ କବିରୂପେ ଅମର ହୋଇଅଛନ୍ତି । ଏ କୃଷ୍ଣଲୀଳା ସମ୍ବନ୍ଧେ ବହୁ ସହସ୍ର ପଦ ସମ୍ବଳିତ 'ସୁରସାଗର' ନାମକ କାବ୍ୟ ରଚନା କରିଥିଲେ । ଏ ଆକବର ସମ୍ରାଟଙ୍କ ସମସାମୟିକ ଥିଲେ । ଏହାଙ୍କ ଜନ୍ମ ୧୫୪୦ ସମ୍ବତ୍‌ରେ । ଏ ସାରସ୍ୱତ ବ୍ରାହ୍ମଣ ଥିଲେ । ଏହାଙ୍କ ପିତାଙ୍କ ନାମ ରାମ ଦାସ । ଜନଶ୍ରୁତି ଅଛି ଯେ, ଏ ଜନ୍ମାନ୍ଧ ଥିଲେ । କିନ୍ତୁ ଅନ୍ୟ ଏକ କମ୍ବଦନ୍ତୀ ଅଛି ଯେ, ଜଣେ ପରସ୍ତ୍ରୀଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହେବାରୁ, ଏହା ନିଜର ଚକ୍ଷୁଦ୍ୱୟ ଯୋଗୁଁ ଘଟିଥିବା ଉପଲବ୍ଧି କରି ନିଜର ଆଖି ଦୁଇଟିକୁ ଏ ନିଜେ ଫୁଟାଇ ଦେଇଥିଲେ । ଏ ନିଜ ଗ୍ରନ୍ଥରେ ଏକ ସ୍ଥାନରେ ଲେଖିଅଛନ୍ତି ଯେ, ଏ ଚନ୍ଦବରଦାଇ ନାମକ ବିଖ୍ୟାତ ହିନ୍ଦୀ ମହାକବିଙ୍କର ବଂଶଧର ଥିଲେ ଓ ଏହାଙ୍କର ଆଉ ଛଅ ଭାଇ ଥିଲେ । ଏହାଙ୍କ ଜନ୍ମ ସ୍ଥାନ ଦିଲ୍ଲୀ ନିକଟସ୍ଥ ସୀହୀ ଗ୍ରାମରେ ଥିବା କଥିତ । ଏ ଆଠ ବର୍ଷ ବୟସରେ 'ବ୍ରତ' ହୋଇ ପିତାମାତାଙ୍କ ସଙ୍ଗେ ମଥୁରା ତୀର୍ଥକୁ ଯାଇ ସେଇଠାରେ କୃଷ୍ଣଭକ୍ତ ହୋଇ ରହିଗଲେ, ଆଉ ଘରକୁ ଫେରି ଆସିଲେ ନାହିଁ । ଏ ବୃନ୍ଦାବନ ନିକଟସ୍ଥ ଗୋକୁଳରେ ଶ୍ରୀନାଥଜୀଙ୍କ ମନ୍ଦିରରେ ରହି ପଦମାନ ରଚନା କରିବାରେ ଲାଗିଲେ । ବିଠ୍ଠଳନାଥ ନାମକ ଗୁରୁଙ୍କଠାରୁ ଏ କୃଷ୍ଣମନ୍ତ୍ର ଗ୍ରହଣ କରିଥିଲେ ଓ ଆଗ୍ରା ଏବଂ ମଥୁରା ମଧ୍ୟବର୍ତ୍ତୀ ଗଉଘାଟ ନାମକ ସ୍ଥାନରେ ରହୁଥିଲେ । ଏ

କେବଳ 'ବ୍ରଜଭାଷା'ରେ ପଦ୍ୟାବଳୀ ରଚନା କରିଥିଲେ । ତୁଳସୀ ଦାସ କବି ଅବଧୀ (ଅଯୋଧ୍ୟା ପ୍ରଚଳିତ ଭାଷା) ଓ ବ୍ରଜ ଭାଷାରେ କବିତା ରଚନା କରିଥିଲେ । ଏହାଙ୍କର ଅନ୍ୟ ଗୋଟିଏ ଗ୍ରନ୍ଥ 'ସାହିତ୍ୟଲହରୀ' । ଏହାଙ୍କ କବିତା ଶୃଙ୍ଗାର ଓ ବାତ୍ସଲ୍ୟ ରସରେ ପୂର୍ଣ୍ଣ । କଥିତ ଅଛି ଯେ, ଅକବର ଏହାଙ୍କ ଗାନ ଶୁଣିବାକୁ ଏହାଙ୍କୁ ଫତେପୁର ସିକ୍ରିଠାକୁ ଡକାଇ ଥିଲେ କିନ୍ତୁ ଏ ନ ଯିବାରୁ ଅକବର ଏହାଙ୍କୁ ଦେଖିବାକୁ ତାନସେନଙ୍କ ସଙ୍ଗେ ଛଦ୍ମବେଶରେ ମଥୁରାକୁ ଯାଇ ଏହାଙ୍କ ଗାନ ଶୁଣିଥିଲେ—ହି. ଶ । ]

ସୂରମୁଖୀ—ସଂ. ବି—୧ । ସୂର୍ଯ୍ୟମୁଖୀ କାଚ ( ହି. ଶ )—1. Double
Sūramukhī convex lens. ୨ । ସୂର୍ଯ୍ୟକାନ୍ତ ମଣି (ହି. ଶ )—2. A kind of precious stone. ୩ । ସୂର୍ଯ୍ୟମୁଖୀ ଫୁଲ ( ହି. ଶ )—3 The sunflower.

ସୂର ସୁତ—ସଂ. ବି. ପୁଂ ( ୬ଷ୍ଠୀ ତତ୍ )—୧ । ଶନିଗ୍ରହ—1. The
Sūra suta planet Saturn. ୨ । ସୁଗ୍ରୀବ—
2. Sugrība ( monkey king ).

ସୂର ସୁତା—ସଂ. ବି. ସ୍ତ୍ରୀ ( ୬ଷ୍ଠୀ ତତ୍ )—ଯମୁନା—
Sūra sutā The river Jamunā.

ସୂର ସୂତ—ସଂ. ବି ( ୬ଷ୍ଠୀ ତତ୍, ସୂର୍ଯ୍ୟଙ୍କର ସାରଥି )—ଅରୁଣ—
Sūra sūta The dawn ( personified ).

ସୂରା—ବୈଦେ. ବି ( ଅ )—କୋରାନର ଶ୍ଳୋକ ବା ପ୍ରକରଣ—
Sūrā सूरा سورة Section of the Quoran.

ସୂରି—ସଂ. ବି ( ସୂ ଧାତୁ + କର୍ତ୍ତୃ. ଇ )—୧ । ପଣ୍ଡିତ ( ଅମର )—
Sūri 1. Learned man. ୨ । ସୂର୍ଯ୍ୟ (ଭଣାଦକୋଷ)—
2. The sun. ୩ । କବି—3. Poet. ୪ । ଯାଦବବିଶେଷ—4. Name of a member of the Jadu dynasty. ୫ । କୃଷ୍ଣ ( ପ୍ରକୃତିବାଦ )—
5. A name of Krushna. ୬ । (ନାମ) ଜୈନ ଗୁରୁବିଶେଷ (ପ୍ରକୃତିବାଦ)—6. Name of a Jaina preceptor. ୭ । ବୃହସ୍ପତି ( ହି. ଶ )—
7. A name of Bruhaspati.

ସୂରୀ—ସଂ. ବି ( ସୂ ଧାତୁ + କର୍ତ୍ତୃ. ଈ )—୧ । ( ପୁଂ ) ଜ୍ଞାନୀ
Sūrī ବ୍ୟକ୍ତି—1. Wise man. ୨ । ( ପୁଂ ) ପଣ୍ଡିତ—
2. A learned man. ୩ । (ସ୍ତ୍ରୀ) ବିଦୁଷୀ; ପଣ୍ଡିତା—
3. A learned woman. ୪ । କୁନ୍ତୀ (ହି. ଶ)—
4. Kuntī. ୫ । ରାଜସର୍ଷପ ( ରତ୍ନମାଳା ); ରାଇଜୋରଷ—5. A kind of rye. ୬ । ପୁରୋହିତ—
6. A priest ( Apte ). ୭ । ଜୈନ ପଣ୍ଡିତଙ୍କୁ ଦିଆଯିବା ଉପାଧି ( ଯଥା—ମଲ୍ଲିନାଥ ସୂରୀ )—7. A title of respect given to Jaina Pandits. ବିଣ ( ପୁଂ. ଓ ସ୍ତ୍ରୀ )—୧ । ଜ୍ଞାନୀ—1. Wise.
୨ । ବିଦ୍ୱାନ୍—2. Learned.

ସୂରୁଜ୍—ପ୍ରାଦେ. ( ସମ୍ବଲପୁର ) ବି—ସୂର୍ଯ୍ୟ—
Sūruj The sun.

ସୂରୁଜ (ଇତ୍ୟାଦି)—ଗ୍ରା. ବି (ସଂ. ସୂର୍ଯ୍ୟ)—୧ ସୂର୍ଯ୍ୟ ଇତ୍ୟାଦି (ଦେଖ)
Sūruja (etc) 1. Sūrjya etc ( See ) ୨ । ଗଞ୍ଜପା ଖେଳରେ ବ୍ୟବହୃତ ଖାଦରେ ଦିଆଯିବା ରଙ୍ଗବିଶେଷ ( ଚାଳ ଓ ଶଙ୍ଖ ବାଟି କଇଥ ଅଠା ମିଶାଇ କରାଯିବା ରଙ୍ଗ )—2. A pale blue paint used in painting the cards of the game of Gañjapā. ୩ । ସୂର୍ଯ୍ୟମଣିର ଡାକ ନାମ—3. Name for calling Sūrjyamaṇi.

ସୂରୁଜ ବନ୍ଧୁ—ଗ୍ରା. ବି—ସୂର୍ଯ୍ୟ ବନ୍ଧୁ; ମହାପ୍ରସାଦ ବନ୍ଧୁ—
Sūruja bandhu God-friend.

ସୂର୍କ୍ଷ(ର୍କ୍ଷ୍ୟ) (ଧାତୁ)—ସଂ.—୧ । ଅନାଦର କରିବା—1. To disre-
Sūrksha(rkshya) (root) gard; to slight. ୨ । ଈର୍ଷା କରିବା—2. To spite. ୩ । ସମ୍ମାନ କରିବା—
3. To respect; to honour (Apte).

ସୂର୍କ୍ଷ(ର୍କ୍ଷ୍ୟ)ଣ—ସଂ. ବି ( ସୂର୍କ୍ଷ୍ ଧାତୁ + ଭାବ. ଅନ )—ଅନାଦର—
Sūrksha(rkshya)ṇa Disregard; disrespect; slight.

ସୂର୍କ୍ଷ୍ୟ—ସଂ. ବି—ମାଷ; ମୁଗ ( ଶବ୍ଦରତ୍ନାବଳୀ )—
Sūrkshya A pulse; Phaseolus Radiatus.

ସୂର୍ପ—ସଂ. ବି ( ଶୂର୍ପର ଅନ୍ୟରୂପ )—୧ । ଶୂର୍ପ (ଦେଖ)—1. Śurpa
Sūrpa ( See ) ୨ । ( ବୈଦ୍ୟକ ) ଦ୍ରୋଣ ପରିମାଣ; ଦ୍ୱିଦ୍ରୋଣ ପରିମାଣ—2. A unit of measure of quantity.

ସୂର୍ପଣ(ଣ)ଖା—ସଂ. ବି. ସ୍ତ୍ରୀ ( ଶୂର୍ପଣଖାର ଅନ୍ୟରୂପ )—ଶୂର୍ପଣଖା
Sūrpaṇa(ṇa)khā ( ଦେଖ )—Śurpaṇakhā ( See )
( ସୂର୍ପଣଖୀ—ଗ୍ରାମ୍ୟ. ରୂପ )

ସୂର୍ପୀ—ସଂ. ବି. ସ୍ତ୍ରୀ ( ଶୂର୍ପୀର ଅନ୍ୟରୂପ )—ଶୂର୍ପୀ; କୁଲେଇ; ଛୋଟ
Sūrpī କୁଲା—A small winnowing tray.

ସୂର୍ମ୍ମୀ(ର୍ମ୍ମୀ, ର୍ମି, ର୍ମୀ)—ସଂ. ବି ( ଶୂର୍ମିର ଅନ୍ୟରୂପ )—୧ । ଲୌହର
Sūrmmi(rmmi, rmi, rmi) ବା ଧାତୁର ମୂର୍ତ୍ତି—1. An image made of iron or other metal ( Apte ). ୨ । ଲୌହ ନିର୍ମିତ ସ୍ତ୍ରୀ ମୂର୍ତ୍ତି ( ହି. ଶ )—
2. The image of a woman made of iron. [ ଦ୍ର—ମନୁସଂହିତାରେ ଲେଖା ଅଛି ଯେ, ଗୁରୁପତ୍ନୀହରଣ ବା ବ୍ୟଭିଚାର କରିଥିବା ବ୍ୟକ୍ତି ନିଜର ପାପ ପ୍ରକାଶ କରି ଉତପ୍ତ ଲୌହଶଯ୍ୟାରେ ଶୋଇ କମ୍ବା ଉତପ୍ତ ସୂର୍ମ୍ମୀକୁ ଆଲିଙ୍ଗନ କରି ମୃତ ହେଲେ, ଉକ୍ତ ପାପରୁ ମୁକ୍ତ ହୁଏ—ମନୁ—୧୧।୧୦୩ । ] ୩ । ଘରର ଖୁମ୍ବ; ସ୍ତମ୍ଭ—
3. The pillar of a house [ Apte ] ୪ । ପାଣିର ନଳ (ହି. ଶ )—4. Water-pipe; water-tube. ୫ । ଉଜ୍ଜ୍ୱଳ୍ୟ—5. Radiance; lustre [ Apte ]. ୬ । ଅଗ୍ନିର ବା ଆଲୋକର ଶିଖା—
6. Flame [ Apte ].

ସୂର୍ମ୍ମୀ ଯନ୍ତ୍ର—ସଂ. ବି—ଭୃଷ୍ଟ ଯଜୁର୍ବେଦୋକ୍ତ କାଳଦାୟକବିଶେଷ; ଏକ
Sūrmī jantra ପ୍ରକାର ବନ୍ଧୁକ—A sort of gun used in the vedic age. [ ଦ୍ର—ଏଥିର ଲୌହ ନଳର

ମଧ୍ୟ ଦେଇ ଉତ୍ତପ୍ତ ସୀସକ ପିଣ୍ଡ ବାହାର ଶତ୍ରୁଙ୍କୁ ଦହୁଥିଲ ।] ଦେ· ୫—ଜଳଦ୍ୱାର ପାଣି ନେବା ହେବା କଳ—Appliance for carrying water through pipes or tubes.

ସୂର୍ଯ୍ୟ(ର୍ଯ୍ୟ)—ସଂ. ବି. ପୁଂ (ସୃ, ଧାତୁ=ଗମନ କରିବା+କର୍ତ୍ତୃ. ଯ; ଯେ Sūrjya(rja) ଗତି କରେ ବା ସୁର+ସ୍ୱାର୍ଥେ. ଯ)— ସୂର୍ଯ୍ୟା; ସୂର୍ଯ୍ୟୀ, ସୂର୍ଯ୍ୟାଣୀ, ସୂର୍ଯ୍ୟାଣୀ } ସ୍ତ୍ରୀ ୧ । ରବି; ଦିବାକର—1. The sun. [ ଦ୍ର—ପୁରାଣ ମତରେ କଶ୍ୟପ ମୁନିଙ୍କ ଔରସରେ ଉତ୍ପତ୍ନୀ ଅଦିତିଙ୍କ ଗର୍ଭରୁ ଏହାଙ୍କ ଜନ୍ମ । ଏଥିପାଇଁ ଏହାଙ୍କର ଏକ ନାମ ଆଦିତ୍ୟ । ପୁରାଣ ମତରେ ଏ ସପ୍ତାଶ୍ୱଯୁକ୍ତ ରଥରେ ଆକାଶ ମାର୍ଗରେ ବିଚରଣ କରନ୍ତି ଓ ପୂର୍ବଦିଗରେ ଉଦୟାଚଳରେ ଉଇଁ ପଶ୍ଚିମରେ ଅସ୍ତାଚଳରେ ଅସ୍ତ ହୁଅନ୍ତି । ଅରୁଣ ଏହାଙ୍କର ସାରଥି । ଏ ବିଶ୍ୱକର୍ମାଙ୍କ କନ୍ୟା ସଂଜ୍ଞାଙ୍କର ପାଣିଗ୍ରହଣ କରିଥିଲେ ଓ ସଂଜ୍ଞାଙ୍କ ଗର୍ଭରୁ ବୈବସ୍ୱତମନୁ ଓ ଯମ ଏ ଦୁଇଟି ପୁତ୍ର ଓ ଯମୁନା ନାମରେ ଗୋଟିଏ କନ୍ୟା ଜନ୍ମିଥିଲେ । ଅନନ୍ତର ସଂଜ୍ଞା ସୂର୍ଯ୍ୟଙ୍କ ତେଜ ସମ୍ଭାଳି ନ ପାରି ଛାୟାନାମ୍ନୀ ଗୋଟିଏ ସ୍ତ୍ରୀ ସୃଜନ କରି ତାଙ୍କୁ ସୂର୍ଯ୍ୟଙ୍କ ଅଜାଣନ୍ତରେ ତାଙ୍କ ନିକଟରେ ନିଜର ବଦଳରେ ରଖି ଦେଇ ପିତୃଗୃହକୁ ପଳାଇଲେ । ସୂର୍ଯ୍ୟ ଛାୟାଙ୍କୁ ସ୍ୱପତ୍ନୀ ସଂଜ୍ଞା ବୋଲି ବିଚାରି ତାଙ୍କ ସଙ୍ଗେ ବାସ କଲେ । ଛାୟାଙ୍କ ଗର୍ଭରୁ ଶନି ନାମକ ପୁତ୍ର ଓ ତପତୀନାମ୍ନୀ କନ୍ୟା ଜନ୍ମ ହେଲେ । ଘଟଣାକ୍ରମରେ ସୂର୍ଯ୍ୟ ପରେ ଜାଣି ପାରିଲେ ଯେ, ସଂଜ୍ଞା ପଳାଇ ଯାଇଅଛନ୍ତି ଓ ସଂଜ୍ଞାଙ୍କୁ ସୂର୍ଯ୍ୟ ଖୋଜିବାକୁ ବାହାରିଲେ । ଏଣେ ସଂଜ୍ଞା କିଛି ଦିନ ପିତୃଗୃହରେ ରହିବା ପରେ ସ୍ୱାମୀଙ୍କ ନିକଟକୁ ଫେରି ଯିବା ପାଇଁ ବିଶ୍ୱକର୍ମା ସଂଜ୍ଞାଙ୍କ ସଙ୍ଗେ ବିଶେଷ କଳହ କରିବାରୁ ସେ ସେଠାରୁ ପଳାଇ ଗୋଟିଏ ଅଶ୍ୱିନୀ (ଘୋଟକୀ) ରୂପ ଧାରଣ କରି 'ଉତ୍ତର କୁରୁ' ଦେଶରେ ବିଚରଣ କଲେ । ସୂର୍ଯ୍ୟ ଏହା ଜାଣି ପାରି ଅଶ୍ୱ ବେଶ ଧାରଣ କରି ସଂଜ୍ଞାଙ୍କୁ ଭେଟିଲେ ଓ ତାଙ୍କ ଔରସରେ ସଂଜ୍ଞାଙ୍କ ଗର୍ଭରୁ ଅଶ୍ୱିନୀକୁମାରଦ୍ୱୟ ଜନ୍ମିଲେ । ପରେ ବିଶ୍ୱକର୍ମା ସୂର୍ଯ୍ୟଙ୍କ ଅସହନୀୟ ତେଜକୁ କୁନ୍ଦାରେ ଘଷି ହ୍ରାସ କରି ଦେବାରୁ ସଂଜ୍ଞା ଆସି ପୁଣି ସୂର୍ଯ୍ୟଙ୍କ ସଙ୍ଗେ ବାସ କଲେ ଓ ପରେ ସୂର୍ଯ୍ୟଙ୍କ ଔରସରେ କପିରାଜ ବାଲି ଓ ସୁଗ୍ରୀବ ଜନ୍ମ ହେଲେ । କୁମାରୀ କୁନ୍ତୀଙ୍କ କାନ ବାଟେ ସୂର୍ଯ୍ୟଙ୍କ ଔରସରେ କର୍ଣ୍ଣ ଜନ୍ମ ହେଲେ । ରାବଣ ତ୍ରିଲୋକବିଜୟ ଉପଲକ୍ଷରେ ସୂର୍ଯ୍ୟଲୋକରେ ଉପସ୍ଥିତ ହେବାରୁ ସୂର୍ଯ୍ୟ ଚକ୍ରାନ୍ତରେ ରାବଣ ନିକଟରେ ପରାଜୟ ସ୍ୱୀକାର କଲେ । ଏକଦା ଜମଦଗ୍ନି ସ୍ୱପତ୍ନୀ ରେଣୁକାଙ୍କ ସହିତ ନର୍ମଦା ତଟରେ ଦିବାମୈଥୁନରେ ରତ ଥିବା ସମୟରେ ସୂର୍ଯ୍ୟ ବ୍ରାହ୍ମଣ ରୂପରେ ସେଠାରେ ଉପସ୍ଥିତ ହୋଇ ତାଙ୍କ ମୈଥୁନରେ ବାଧା ଦେବାରୁ ଜମଦଗ୍ନି ସୂର୍ଯ୍ୟଙ୍କୁ ଶାପ ଦେଲେ ଯେ, ତୁମ୍ଭେ ରାହୁଗ୍ରସ୍ତ ହେବ । ସେହି ଶାପ ଯୋଗୁଁ ସୂର୍ଯ୍ୟ ରାହୁଗ୍ରସ୍ତ ହୁଅନ୍ତି ।

ବେଦ ମତରେ ବ୍ରାହ୍ମଣମାନେ ସନ୍ଧ୍ୟା କରିବା ସମୟରେ ସୂର୍ଯ୍ୟମଣ୍ଡଳର ମଧ୍ୟବର୍ତ୍ତୀ ସରସିଜାସନ ସନ୍ନିବିଷ୍ଟା ନାରାୟଣଙ୍କ ଧ୍ୟାନ କରନ୍ତି । ଗାୟତ୍ରୀ, ସାବିତ୍ରୀ ଓ ସରସ୍ୱତୀ ଦେବୀମାନେ ମଧ୍ୟ ସୂର୍ଯ୍ୟମଣ୍ଡଳମଧ୍ୟସ୍ଥା ଅଟନ୍ତି । ବ୍ରାହ୍ମଣମାନଙ୍କର ଗାୟତ୍ରୀ ମନ୍ତ୍ର କେବଳ ସୂର୍ଯ୍ୟଙ୍କୁ ନାରାୟଣରୂପରେ କଳ୍ପନା କରି ସ୍ତବ କରିବାର ମନ୍ତ୍ର ଅଟେ ।

ସୂର୍ଯ୍ୟଙ୍କର ୧୨ ମାସରେ ପୂଜନୀୟ ରୂପ ଓ ନାମ—

ମାର୍ଗଶିର—ମିତ୍ର,
ପୌଷ—ବିଷ୍ଣୁ, ସନାତନ,
ମାଘ—ଅରୁଣ,
ଫାଲ୍‌ଗୁନ—ସୂର୍ଯ୍ୟ,
ଚୈତ୍ର—ବେଦାଙ୍ଗ,
ବୈଶାଖ—ଭାନୁ,
ଜ୍ୟେଷ୍ଠ—ଇନ୍ଦ୍ର,
ଆଷାଢ଼—ରବି,
ଶ୍ରାବଣ—ଗଭସ୍ତି,
ଭାଦ୍ର—ଯମ,
ଆଶ୍ୱିନ—ସ୍ୱର୍ଣ୍ଣରେତାଃ,
କାର୍ତ୍ତିକ—ଦିବାକର,
ଅଧିମାସ—ପୁରୁଷ
(ଆଦିତ୍ୟହୃଦୟ) ।

ଜ୍ୟୋତିଷ ମତରେ ସୂର୍ଯ୍ୟ ବା ରବି ନବଗ୍ରହମାନଙ୍କ ମଧ୍ୟରେ ପ୍ରଥମ ଗ୍ରହ ବା ଗ୍ରହରାଜ ଅଟନ୍ତି । ଏହାଙ୍କ ଦଶାର ପରିମାଣ ୬ ବର୍ଷ ।

ଆଧୁନିକ ବିଜ୍ଞାନ ମତରେ ସୂର୍ଯ୍ୟ ଘୂର୍ଣ୍ଣାୟମାନ ଧାତବ ବାଷ୍ପର ସମଷ୍ଟି । ଏ ନିଜର ଅକ୍ଷରେ ଘୂରେ ଓ ଏକ ସ୍ଥାନରେ ଅବସ୍ଥିତ ଥାଏ । ଏହାର ଗୁରୁଆକର୍ଷଣେ ପୃଥିବୀ ଆଦି ଯାବତୀୟ ଗ୍ରହ ଓ ଉପଗ୍ରହମାନେ ନିଜ ନିଜ କକ୍ଷରେ ବୁଲୁ ଅଛନ୍ତି । ସୂର୍ଯ୍ୟ ଏମାନଙ୍କଠାରୁ ବହୁ ସହସ୍ର କୋଟି ମାଇଲ୍ ଦୂରରେ ଅବସ୍ଥିତ । ପୃଥିବୀ ମଧ୍ୟ ନିଜ କକ୍ଷରେ ବୁଲୁଅଛି । ସୂର୍ଯ୍ୟ ପୃଥିବୀଠାରୁ ବହୁ ସହସ୍ର କୋଟି ମାଇଲ୍ ଦୂରରେ ଅବସ୍ଥିତ । ପୃଥିବୀ ମଧ୍ୟ ନିଜ ଅକ୍ଷରେ ଘୂରି ଘୂରି ସୂର୍ଯ୍ୟ ଚାରିପାଖେ ୩୬୫ ଦିନରେ ଥରେ ବୁଲି ଆସେ । ପୃଥିବୀ ନିଜର ଅକ୍ଷ ଉପରେ ଦିବସରେ ଥରେ ବୁଲିବା ଅବସ୍ଥାରେ ଯେଉଁ ଅଂଶ ସୂର୍ଯ୍ୟାଲୋକରେ ଆଲୋକିତ ହୁଏ ତହିଁରେ ଦିନ ଓ ଯେଉଁ ଅଂଶ ସୂର୍ଯ୍ୟର ବିପରୀତ ଦିଗରେ ଥାଏ ତହିଁର ରାତି ହୁଏ । ସୂର୍ଯ୍ୟର ଆଲୋକ ଚନ୍ଦ୍ର ଉପରେ ପଡ଼ି ପ୍ରତିଫଳିତ ହୋଇ ପୃଥିବୀରେ ଜ୍ୟୋତ୍ସ୍ନାରୂପରେ ପଡ଼େ ।

ଆଧୁନିକ ବୈଜ୍ଞାନିକମାନେ ସ୍ଥିର କରିଅଛନ୍ତି ଯେ, ସୂର୍ଯ୍ୟ ପୃଥିବୀଠାରୁ ୯ କୋଟି ୨୫ ଲକ୍ଷ ମାଇଲ ଦୂରରେ ଅବସ୍ଥିତ । ଏହାର ବ୍ୟାସ ପୃଥିବୀର ବ୍ୟାସଠାରୁ ୧୦୮ ଗୁଣ, ଅର୍ଥାତ୍ ·୪ ଲକ୍ଷ ୩୩ ହଜାର କ୍ରୋଶ ଅଟେ । ଘନଫଳ ହିସାବରେ ସୂର୍ଯ୍ୟ ଯେତେ ସ୍ଥାନ ଅଧିକାର କରିଅଛି ୧୨ ଲକ୍ଷ ୫୦ ହଜାରଟି ପୃଥିବୀ ସେତିକ ସ୍ଥାନ ଅଧିକାର କରିବ । ସୂର୍ଯ୍ୟଙ୍କ ଦେହର ଉପାଦାନର ଗୁରୁତ୍ୱ ପୃଥିବୀର ଏକ ଚତୁର୍ଥାଂଶ, ଅର୍ଥାତ୍ ସୂର୍ଯ୍ୟଙ୍କ ଉପାଦାନ ପୃଥିବୀର ଉପାଦାନ ଅପେକ୍ଷା ଖୁବ୍ ପତଳା । ଏହା ତରଳ ଜ୍ୱଳନ୍ତ ବସ୍ତୁ ଅଟେ । ଏଥିର ତାପ ୨୦ହଜାର ଡିଗ୍ରୀ । ସୂର୍ଯ୍ୟର ଦେହରେ ଅନେକ କଳା ଦାଗ ଅଛି । ଏକ ନିର୍ଦ୍ଦିଷ୍ଟ ନିୟମ ଅନୁସାରେ ଏ ଦାଗମାନଙ୍କର କ୍ଷୟବୃଦ୍ଧି ଘଟେ । ଏ ଦାଗମାନ ବଢ଼ି ଗଲେ ପୃଥିବୀରେ ଚୁମ୍ବକକ୍ଷେତ୍ରିତ କ୍ଷୋଭ ବଢ଼ିଯାଏ ଓ ବେଶି ବୈଦ୍ୟୁତିକ କାଣ୍ଡମାନ ଘଟିଥାଏ । ଏହି ଦାଗମାନଙ୍କ କ୍ଷୟବୃଦ୍ଧି ସଙ୍ଗେ ପୃଥିବୀରେ ବର୍ଷାର ସମ୍ବନ୍ଧ ଅଛି ବୋଲି କେତେକ ବୈଜ୍ଞାନିକ କହନ୍ତି । ସୂର୍ଯ୍ୟ ସୌରଜଗତ୍‌ର କେନ୍ଦ୍ର ଓ ଏହାର ଚାରିପାଖେ ପୃଥିବୀ, ଶୁକ୍ର, ଶନି, ମଙ୍ଗଳ, ବୃହସ୍ପତି, ବୁଧ ଓ ଅନ୍ୟାନ୍ୟ ଗ୍ରହ ନିରନ୍ତର ବୁଲୁଅଛନ୍ତି । ପ୍ରାୟ ସବୁ ସଭ୍ୟ ପ୍ରାଚୀନ ଜାତିଙ୍କ ମଧ୍ୟରେ ସୂର୍ଯ୍ୟ ଦେବତାରୂପେ କଳ୍ପିତ ହୋଇଥିଲେ ଓ ତାଙ୍କୁ ଉପାସନା କରାଯାଉଥିଲା । ପ୍ରାଚୀନ ଅସିରୀୟ, ମେକ୍‌ସିକୋବାସୀ, ଭାରତୀୟ ଓ ପାରସିକମାନେ ସୂର୍ଯ୍ୟ ପୂଜା କରୁଥିଲେ । ହିନ୍ଦୁମାନଙ୍କ ମତରେ ସୂର୍ଯ୍ୟ ସାତ ଘୋଡ଼ା ଯୋଗ୍ୟ ଏକଚକ୍ରବିଶିଷ୍ଟ ରଥରେ ଯିବା ଆସିବା କରନ୍ତି—ହି· ଶ ।

ଓଡ଼ିଶାର କୋଣାର୍କରେ ଲାଙ୍ଗୁଳା ନରସିଂହ ଦେବ ସୂର୍ଯ୍ୟମନ୍ଦିର ତୋଳାଇଥିଲେ । ତହିଁର ଭଗ୍ନାବଶେଷ ଅଦ୍ୟାବଧି ବିଦ୍ୟମାନ । କଥିତ ଅଛି ଯେ, ଶାମ୍ବ ଏହିଠାରେ ସୂର୍ଯ୍ୟ ପୂଜା କରି କୁଷ୍ଠରୋଗରୁ ମୁକ୍ତିଲାଭ କରିଥିଲେ ।

ସୂର୍ଯ୍ୟଙ୍କର ନାମାନ୍ତର :—

ସୂର, ସୂର୍ଯ୍ୟ, ଆଦିତ୍ୟ, ଦିବାକର, ଅହସ୍କର, ଭାସ୍କର, ପ୍ରଭାକର, ବିଭାକର, ବିବସ୍ୱାନ୍, ଭାସ୍ୱାନ୍, ସପ୍ତାଶ୍ୱ, ହରିଦଶ୍ୱ, ଅର୍କ, ମାର୍ତ୍ତଣ୍ଡ, ଉଷ୍ଣରଶ୍ମି, ମିହିର, ଦ୍ୟୁମଣି, ତରଣି, ମିତ୍ର, ଚିତ୍ରଭାନୁ, ବିରୋଚନ, ବିଭାବସୁ, ଗ୍ରହପତି, ତ୍ୱିଷାଂପତି, ବ୍ରଧ୍ନ, ଦ୍ୱାଦଶାତ୍ମା, ହରିଦଶ୍ୱ, ଅରୁଣ, ଅହର୍ପତି, ଭାନୁ, ହଂସ, ସହସ୍ରାଂଶୁ, ତପନ, ସବିତା, ରବି, ଦିନକର, ଉଗ୍ରାର୍ଚ୍ଚି, ମରୀଚିମାଳୀ, ଚଣ୍ଡକର, ଶୂର, ଭଗ, ବୁଧ୍ନ, ପଦ୍ମିନୀବଲ୍ଲଭ, ହରି, ଦିନମଣି, ଶ୍ରୋଂଶୁ, ସପ୍ତସପ୍ତି, ଗଭସ୍ତିମାନ୍, ଅଂଶୁମାଳୀ, କାଶ୍ୟପେୟ, ଖଗ, ଭାନୁମାନ୍, ଲୋକଲୋଚନ, ପଦ୍ମବନ୍ଧୁ, ଜ୍ୟୋତିଷ୍ମାନ୍, ଅବ୍ୟଥ, ତାପନ, ଚିତ୍ରରଥ, ଖମଣି, ଦିବାମଣି, ଗଭସ୍ତିହସ୍ତ, ହେଳ, ପତଙ୍ଗ, ଅର୍ଚ୍ଚି, ଦିନପ୍ରଣୀ, ବେଦୋଦୟ, କାଳକୃତ୍, ଗ୍ରହରାଜ, ତମୋନୁଦ, ରସାଧାର, ପ୍ରତିଦିବା, ଇନ, ଜଗଚ୍ଚକ୍ଷୁଃ, ତ୍ୱଦ୍ୟୋତ, ଲୋକବାନ୍ଧବ, ପଦ୍ମିନୀକାନ୍ତ, ଅଂଶୁହସ୍ତ, ପଦ୍ମପାଣି, ହିରଣ୍ୟରେତା, ପୀତ, ହିମାରାତି, ଗୋପତି, କୁଞ୍ଜର, ଧ୍ୱାନ୍ତାରି, ସ୍କନ୍ଦ, ଗଭସ୍ତି, ତମୋପହ, ଅଦ୍ରି, ଜ୍ୟୋତିଃପୀଥ, କର୍ମସାକ୍ଷୀ, ଜଗତ୍ପ୍ରାଣ । ] ୨ । ତାମ୍ର—2. Copper. ୩ । ବାର ସଂଖ୍ୟା ( ଆଦିତ୍ୟଙ୍କ ସଂଖ୍ୟା ୧୨ ଥିବାରୁ ) ( ହି. ଶ )—3. The number twelve. ୪ । ଅର୍କଗୁଳ୍ମ ( ହି. ଶ )—4. Calotropis Gigantea plant. ୫ । (ନାମ) ବଳିଙ୍କର ଏକ ପୁଅ ( ହି. ଶ )—5. Name of a son of Bali. ଦେ. ବି ( ବଣିଆ ଶବ୍ଦ )—୧ । ସ୍ତ୍ରୀମାନଙ୍କ ତାଳୁ ଉପରେ ପିନ୍ଧାଯିବା ସୁନାପଟ୍ଟରେ ନକାସି ହୋଇଥିବା ଗୋଲାକୃତି ଅଳଙ୍କାର—1. A circular gold ornament for the crown of the head of females. ୨ । ଏକକଉଡ଼ା କଉଡ଼ିର ୧୨ ଭାଗରୁ ୧ ଭାଗ—2. One twelfth of a cowri.

ସୂର୍ଯ୍ୟ ଉଠି(ଇଁ)ବା—ଦେ. କ୍ରି—ସୂର୍ଯ୍ୟୋଦୟ ହେବା—
Sūrjya uṭhi(iṅ)bā Sunrise; the rising of the sun.
সূর্য উদয় হওয়া सूर्य उगना

ସୂର୍ଯ୍ୟ ଉଦିବା—ପ୍ରାଦେ· ( ସମ୍ବଲପୁର ) କ୍ରି—ସୂର୍ଯ୍ୟୋଦୟ ହେବା—
Sūrjya udibā The rising of the sun.

ସୂର୍ଯ୍ୟ କମଳ—ସଂ· ବି—ସୂର୍ଯ୍ୟମୁଖୀ ଫୁଲ ( ହି· ଶ )—
Sūrjya kamaḷa The sunflower.

ସୂର୍ଯ୍ୟ କର—ସଂ. ବି ( ୬ଷ୍ଠୀ ତତ୍ )—ସୂର୍ଯ୍ୟଙ୍କ କିରଣ; ଖର—
Sūrjya kara Sun's rays.

ସୂର୍ଯ୍ୟକାନ୍ତ—ସଂ. ବି ( ବହୁବ୍ରୀହି; ସୂର୍ଯ୍ୟ ଅଟେ କାନ୍ତ=ପ୍ରିୟ ଯାହାର )
Sūrjyakānta —୧ । ମଣିବିଶେଷ; ଆତସମଣି—1. A species of precious gem. ( ଦ୍ର—ଏହାକୁ ସୂର୍ଯ୍ୟଙ୍କ କିରଣରେ ଧରିଲେ ଏଥିରୁ ନିଆଁ ପଡ଼େ । ଏହାର ଗୁଣ—ଉଷ୍ଣତ୍ୱ, ନିର୍ମଳତ୍ୱ, ରସାୟନତ୍ୱ, ବାତଶ୍ଲେଷ୍ମହରତ୍ୱ, ମେଧ୍ୟତ୍ୱ । ଏହାକୁ ପୂଜା କଲେ ସୂର୍ଯ୍ୟଦେବ ତୁଷ୍ଟ ହୁଅନ୍ତି—ରାଜନିର୍ଘଣ୍ଟ ।)
ଅନ୍ୟ ସଂ. ନାମ—ସୂର୍ଯ୍ୟମଣି, ସୂର୍ଯ୍ୟାଶ୍ମା, ଦହନୋପମ, ତପନମଣି, ତାପନ, ରବିକାନ୍ତ, ଦୀପ୍ତୋପଳ, ଅଗ୍ନିଗର୍ଭ, ଜ୍ୱଳନାଶ୍ମା, ଅର୍କୋପଳ, ସୂରମଣି, ଆତସମଣି ।
୨ । ଦ୍ୱିକୁବ୍ଜବିଶିଷ୍ଟ କାଚ ( ହି. ଶ )—2. Double-convex lens. ( ଦ୍ର—ଏହାକୁ ସୂର୍ଯ୍ୟକିରଣରେ ଧରିଲେ ନିଆଁ ବାହାରେ ।) ୩ । ସ୍ଫଟିକ (ହଳାୟୁଧ)—3. Crystal; quartz.
୪ । ଆଦିତ୍ୟପର୍ଣ୍ଣୀ; ପୁଷ୍ପବୃକ୍ଷବିଶେଷ ( ଶବ୍ଦଚନ୍ଦ୍ରିକା )—4. A flowering plant. ଦେ· ବି, ପୁଂ—
ଅନ୍ୟ ସଂ· ନାମ—ସୂର୍ଯ୍ୟମଣି ପୁଷ୍ପବଲ୍ଲୀ, ପତଙ୍ଗପୁଷ୍ପ, ଆଦିତ୍ୟପର୍ଣ୍ଣୀ

ସୂର୍ଯ୍ୟକାନ୍ତ ପୁରୁଷଙ୍କ ନାମ—A name given
**सूर्यकान्त** to males.

ସୂର୍ଯ୍ୟ କାଳ—ସଂ. ବି—ଦିବସ ( ଶବ୍ଦଚନ୍ଦ୍ରିକା )—
Sūrjya kāla Day time.

ସୂର୍ଯ୍ୟ କାଳାନଳ ଚକ୍ର—ସଂ. ବି ( ଫଳିତ ଜ୍ୟୋତିଷ )—ନରମାନଙ୍କ
Sūrjya kālānala chakra ଶୁଭାଶୁଭ ଜାଣିବା ନିମନ୍ତେ ଅଙ୍କିତ
ଚକ୍ରବିଶେଷ—An astrological figure.

ସୂର୍ଯ୍ୟକୁମାର ସର୍ବାଧିକାରୀ—ଦେ. ବି ( ନାମ )—ବଙ୍ଗୀୟ ସ୍ୱର୍ଗତ ପ୍ରସିଦ୍ଧ
Sūrjyakumāra sarbādhikārī ଡାକ୍ତର—Name of a late famous doctor of Bengal. ( ଦ୍ର—ଏ ୧୮୩୨ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ଏ କଲିକତା ମେଡିକାଲ୍ କଲେଜରୁ ପାଶ୍ କରି ସୈନିକ ବିଭାଗରେ ଡାକ୍ତର କର୍ମ କରୁଥିଲେ । ଏହାଙ୍କର ଗାଜିପୁରରେ ଅବସ୍ଥାନ କାଳରେ ଏ ୧୮୫୭ ସାଲର ସିପାହୀ ବିଦ୍ରୋହର ସୂଚନା ପାଇ ସ୍ଥାନୀୟ ଇଂରେଜ କର୍ମଚାରୀମାନଙ୍କୁ ସାବଧାନ କରାଇ ବିପଦରୁ ରକ୍ଷା କରିଥିଲେ । ଲକ୍ଷ୍ନୌ ଉଦ୍ଧାର କାଳରେ ଏ ଇଂରେଜ ସେନାଙ୍କ ସଙ୍ଗରେ ଥିଲେ । ଏ ସେନାବିଭାଗରେ ' ବ୍ରିଗେଡ୍ ସର୍ଜନ୍ ' ଉପାଧି ପାଇଥିଲେ । କେତେକ ଉଚ୍ଚପଦସ୍ଥ ଶ୍ୱେତାଙ୍ଗ ସୈନିକ କର୍ମଚାରୀ ଏହାଙ୍କ ପ୍ରତି ଈର୍ଷାପରବଶ ହୋଇଥିଲେହେଁ ଏହାଙ୍କର କିଛି ଅନିଷ୍ଟ କରି ପାରି ନ ଥିଲେ । ଶେଷରେ ଏ ସୈନିକ ବିଭାଗର କାର୍ଯ୍ୟ ତ୍ୟାଗ କରି ପ୍ରଥମେ ଶ୍ରୀରାମପୁରରେ ଓ ପରେ କଲିକତାରେ ସ୍ୱାଧୀନ ଚିକିତ୍ସା ବ୍ୟବସାୟ କରି ଚିକିତ୍ସାପ୍ରବୀଣତା, ଦାନଶୀଳତା ଓ ସାହିତ୍ୟସେବାଦ୍ୱାରା ଖ୍ୟାତ ହୋଇଥିଲେ । ଏହାଙ୍କ ଉପାର୍ଜିତ ଅର୍ଥ ଦେଶସେବା ଓ ଦରିଦ୍ର ରୋଗୀଙ୍କ ସେବାରେ ବ୍ୟୟିତ ହେଉଥିଲା । ଏ ଭାରତର ସବୁ ଅଞ୍ଚଳ ଓ ବ୍ରହ୍ମଦେଶ ପର୍ଯ୍ୟଟନ କରିଥିଲେ । ଓଡ଼ିଶାର ପ୍ରସିଦ୍ଧ ନଅଙ୍କ ସମୟରେ ଏ ଓ ଏହାଙ୍କ ବଡ଼ ଭାଇ ପ୍ରସନ୍ନକୁମାର ଅକାତର ଅର୍ଥ ବ୍ୟୟ କରି ବହୁ ପ୍ରାଣୀଙ୍କ ଜୀବନ ରକ୍ଷା କରିଥିଲେ । ଏହାଙ୍କର ଦୁଇ ପୁତ୍ର ଦେବପ୍ରସାଦ ଓ ସୁରେଶପ୍ରସାଦ । )

ସୂର୍ଯ୍ୟ କ୍ଷୟ—ସଂ. ବି—ସୂର୍ଯ୍ୟମଣ୍ଡଳ ( ହି. ଶ )—
Sūrjya kshaya The orb of the sun.

ସୂର୍ଯ୍ୟ ଗ୍ରହ—ସଂ. ବି—୧ । ନବଗ୍ରହ ମଧ୍ୟରୁ ପ୍ରଥମ ଗ୍ରହ; ସୂର୍ଯ୍ୟ—
Sūrjya graha 1. The sun as a first planet. ୨ । ସୂର୍ଯ୍ୟଗ୍ରହଣ—2. Solar eclipse ୩ । ରାହୁ—3. Rāhu; the ascending node. ୪ । କେତୁ—4. Ketu; the descending node. ୫ । ଜଳସିକ୍ତ ତଳଭାଗ ( ପ୍ରକୃତିବାଦ )—
5. The bottom of a pitcher.

ସୂର୍ଯ୍ୟ ଗ୍ରହଣ—ସଂ. ବି—ସୂର୍ଯ୍ୟୋପରାଗ—Solar eclipse. (ଦ୍ର—
Sūrjya grahaṇa ହିନ୍ଦୁପୁରାଣ ମତରେ ରାହୁଦ୍ୱାରା ସୂର୍ଯ୍ୟଙ୍କ ଗ୍ରାସ ହେଲେ ସୂର୍ଯ୍ୟଗ୍ରହଣ ହୁଏ; କିନ୍ତୁ ଆଧୁନିକ ବିଜ୍ଞାନର ସିଦ୍ଧାନ୍ତ ଅନୁସାରେ ସୂର୍ଯ୍ୟ ଓ ପୃଥିବୀ ମଧ୍ୟରେ ଚନ୍ଦ୍ର ଅବସ୍ଥିତ ହେଲେ ଚନ୍ଦ୍ରର ଛାୟାଦ୍ୱାରା ସେହି ଅବସ୍ଥାରେ ତତ୍କାଳ ସବାଂଶେ ସୂର୍ଯ୍ୟ ଦେଖାଯାଏ ନାହିଁ । )

ସୂର୍ଯ୍ୟଜ—ସଂ. ବି. ପୁଂ—୧ । ସୁଗ୍ରୀବ ବାନର ( ଜଟାଧର )—
Sūrjyaja 1. Sugrība, the monkey king. ୨ । ଶନି ଗ୍ରହ—2. The planet Saturn. ୩ । ଯମ—3. The Hindu God of death. ୪ । କର୍ଣ୍ଣରାଜା—4. King Karṇṇa. ୫ । ସାବର୍ଣ୍ଣି ମନୁ—
5. Sābarṇṇi Manu.

ସୂର୍ଯ୍ୟଜା—ସଂ. ବି. ସ୍ତ୍ରୀ—ଯମୁନା ନଦୀ ( ହେମଚନ୍ଦ୍ର )—
Sūrjyajā The river Jamunā.

ସୂର୍ଯ୍ୟ ତନୟ (ନନ୍ଦନ)—ସଂ. ବି. ପୁଂ—୧ । ଶନିଗ୍ରହ—1. The
Sūrjya tanaya (nandana) planet Saturn. ୨ । ଯମ—2. The God of death. ୩ । ସାବର୍ଣ୍ଣିମନୁ—3. A progenitor of mankind. ୪ । କର୍ଣ୍ଣ ରାଜା—4. King Karṇṇa. ୫ । ସୁଗ୍ରୀବ—5. Sugrība, the monkey king. ୬ । ଅଶ୍ୱିନୀକୁମାରଦ୍ୱୟ—6. The twin Aswinīkumāras. ୭ । ବରୁଣ ( ହି. ଶ )—7. The Sea-god.

ସୂର୍ଯ୍ୟ ତନୟା (ନନ୍ଦନା)—ସଂ. ବି. ସ୍ତ୍ରୀ—୧ । ଯମୁନା ନଦୀ—1. The
Sūrjya tanayā (nandanā) river Jamunā. ୨ । ତପତୀ—2. Tapatī, another daughter of the Sungod.

ସୂର୍ଯ୍ୟ ନାଡ଼ୀ—ସଂ. ବି—ଇଡ଼ାନାଡ଼ୀ—The vein running
Sūrjya nāṛī along the right side of the vertebral column and making the breath escape through the right nostril. [ ଦ୍ର—ସ୍ୱରୋଦୟ ଶାସ୍ତ୍ର ମତରେ ଏହି ନାଡ଼ୀରେ ନିଶ୍ୱାସ ବହୁଥିବା ବେଳେ ଭୋଜନ କରିବ ଓ ଶୟନ କରିବ । ସ୍ୱରୋଦୟ ଦେଖ । ]

ସୂର୍ଯ୍ୟ ପକ୍ୱ—ସଂ. ବି ( ଅସ୍ୱା ତତ୍ ବା ମ୍ ଅ. ବୋ; ସୂର୍ଯ୍ୟୋତ୍ତାପ ପକ୍ୱ)—
Sūrjya pakwa ସୂର୍ଯ୍ୟପାଗୀ ( ଦେଖ )—
Surjyapāgī ( See )

ସୂର୍ଯ୍ୟପତ୍ର – ସଂ.ବି—୧। ଅଣସୋରିଷିଆ ଗୁଳ୍ମ; ଆଦିତ୍ୟଭକ୍ତା (ରାଜନିର୍ଘଣ୍ଟ)
Sūrjyapatra —1. A plant; Cleomi Viscosa. ୨ । ଅର୍କ ଗୁଳ୍ମ ( ହି. ଶ )—
2. Calotropis Gigantea.

ସୂର୍ଯ୍ୟପରାଗ – ଦେ. ବି ( ସଂ. ସୂର୍ଯ୍ୟୋପରାଗ )—ସୂର୍ଯ୍ୟଗ୍ରହଣ—
Sūrjyaparāga Solar eclipse.

ସୂର୍ଯ୍ୟପର୍ବ—ସଂ. ବି—ସୂର୍ଯ୍ୟର ଏକ ନୂଆ ରାଶିରେ ପ୍ରବେଶ କରିବା
Sūrjyaparba ସମୟ—The time of the sun's entering into a new sign of the zodiac

ସୂର୍ଯ୍ୟପର୍ଣ୍ଣୀ—ସଂ. ବି—୧ । ମୁଦ୍ଗପର୍ଣ୍ଣୀ ( ଦେଖ )—1. Mudga-
Sūrjyaparṇṇī parṇṇī ( See ) ୨ । ମାଷପର୍ଣ୍ଣୀ (ଦେଖ)
2. Māshaparṇṇī ( See )

ସୂର୍ଯ୍ୟପାଗୀ—ଦେ. ଗଣ ( ସଂ. ସୂର୍ଯ୍ୟପକ୍ୱ )—ଖରାରେ କିଛିକାଳ ରଖା
Sūrjyapāgī ଯାଇ ପାକ କରା ଯାଇଥିବା—Prepared after
সূর্য্য পাক being exposed to the heat of the sun
सूर्य पाक for some time. [ ଦ୍ର—ଆଚାର, କାଞ୍ଜି ଆଦିକୁ ଖରାରେ ରଖି ପାକ କରାଯାଏ । ]

ସୂର୍ଯ୍ୟ ପାଦ—ସଂ. ବି ( ୬ଷ୍ଠୀ ତତ୍ )—ସୂର୍ଯ୍ୟକିରଣ ( ପ୍ର. ଶ )—
Sūrjya pāda The rays of the sun.

ସୂର୍ଯ୍ୟ ପୁତ୍ର (ସୁତ)—ସଂ. ବି. ପୁଂ—ସୂର୍ଯ୍ୟତନୟ ( ଦେଖ )
Sūrjya putra (suta) Surjyatanaya ( See )

ସୂର୍ଯ୍ୟପୁତ୍ରୀ (ସୁତା)—ସଂ. ବି. ସ୍ତ୍ରୀ—୧ । ସୂର୍ଯ୍ୟ ତନୟା ( ଦେଖ )—
Sūrjya putrī (sutā) 1. Sūrjya tanayā ( See )
୨ । ବିଦ୍ୟୁତ୍ ( ପ୍ର. ଶ )—2. Lightning.

ସୂର୍ଯ୍ୟ ପୁରାଣ—ସଂ. ବି—ସୌରପୁରାଣ, ଉପପୁରାଣବିଶେଷ—
Sūrjya purāṇa Name of a minor Purāṇa.
[ ଦ୍ର—ଏଥିରେ ସୂର୍ଯ୍ୟଙ୍କ ମାହାତ୍ମ୍ୟ ବର୍ଣ୍ଣିତ—ପ୍ର. ଶ । ]

ସୂର୍ଯ୍ୟ ପୂଜକ—ସଂ. ବି—ସୂର୍ଯ୍ୟୋପାସକ—Worshipper of the
Sūrjya pūjaka Sun god. [ ଦ୍ର—ପାରସୀମାନେ ସୂର୍ଯ୍ୟପୂଜକ ଅଟନ୍ତି । ]

ସୂର୍ଯ୍ୟ ପୂଜା—ସଂ. ବି—ସୂର୍ଯ୍ୟଦେବଙ୍କ ଉପାସନା—
Sūrjya pūjā Worship of the Sungod.

ସୂର୍ଯ୍ୟପ୍ରଭ—ସଂ. ବିଣ. ପୁଂ ( ବହୁବ୍ରୀହି; ସୂର୍ଯ୍ୟ+ପ୍ରଭା )—ସୂର୍ଯ୍ୟ ପରି
Sūrjyaprabha ଜ୍ୟୋତିଷ୍ମାନ୍—Radiant like the sun.
( ସୂର୍ଯ୍ୟପ୍ରଭା—ସ୍ତ୍ରୀ )

ସୂର୍ଯ୍ୟପ୍ରଭବ—ସଂ. ବିଣ. ପୁଂ—ସୂର୍ଯ୍ୟଙ୍କଠାରୁ ଜାତ—
Sūrjyaprabhaba Born of the Sungod.
( ସୂର୍ଯ୍ୟପ୍ରଭବା—ସ୍ତ୍ରୀ )

ସୂର୍ଯ୍ୟଫଣି ଚକ୍ର—ସଂ. ବି—ସର୍ବ କାର୍ଯ୍ୟ ଶୁଭାଶୁଭଜ୍ଞାପକ ଜ୍ୟୋତିଷୋକ୍ତ
Sūrjyaphaṇi chakra ଚକ୍ରବିଶେଷ ( ସ୍ୱରୋଦୟ )—
A sort of astrological figure.

ସୂର୍ଯ୍ୟ ବଂଶ—ସଂ. ବି—ସୂର୍ଯ୍ୟଙ୍କଠାରୁ ଜାତ ସନ୍ତାନପରମ୍ପରାକ୍ରମ ବଂଶ—
Sūrjya baṁśa The solar dynasty of kings of India. [ ଦ୍ର—ପରମେଶ୍ୱରଙ୍କଠାରୁ ବ୍ରହ୍ମା, ବ୍ରହ୍ମାଙ୍କଠାରୁ ମରୀଚି, ମରୀଚିଙ୍କ ପୁତ୍ର କଶ୍ୟପ, କଶ୍ୟପଙ୍କ ପୁତ୍ର ସୂର୍ଯ୍ୟ, ସୂର୍ଯ୍ୟଙ୍କ ପୁତ୍ର ବୈବସ୍ୱତ ମନୁ ( ଏ ସତ୍ୟଯୁଗରେ ଭାରତର ରାଜା ଥିଲେ । ) ଏହାଙ୍କ ପୁତ୍ର ଇକ୍ଷ୍ୱାକୁ ଓ ତାହାଙ୍କ ବଂଶଧରମାନେ [ ଯଥା—ଦିଲୀପ, ଅଜ, ରଘୁ ଓ ଦଶରଥ ) ତ୍ରେତାଯୁଗରେ ରାଜା ହେଲେ । ତ୍ରେତା ଓ ଦ୍ୱାପର ସନ୍ଧିରେ ଦଶରଥଙ୍କ ପୁତ୍ର ରାମଚନ୍ଦ୍ର ଜନ୍ମ ହେଲେ । ତାହାଙ୍କ ପୁତ୍ର କୁଶ ଓ ତାଙ୍କ ବଂଶଧରମାନେ କଳିଯୁଗର ସହସ୍ର ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କଲେ ।

ଭାରତର ଦୁଇ ପ୍ରାଚୀନ ରାଜବଂଶ ( ଚନ୍ଦ୍ରବଂଶ ଓ ସୂର୍ଯ୍ୟବଂଶ ) ମଧ୍ୟରୁ ଏହା ଏକତର । ଜନକ ରାଜା (ମତାନ୍ତରରେ) ଚନ୍ଦ୍ରବଂଶୀୟ ଥିଲେ । ବିବାହ ସୂତ୍ରରେ (ଜନକଙ୍କ କନ୍ୟାମାନଙ୍କ ସହିତ ଦଶରଥଙ୍କ ପୁତ୍ରମାନଙ୍କ ବିବାହଦ୍ୱାରା) ଚନ୍ଦ୍ର ଓ ସୂର୍ଯ୍ୟବଂଶ ମିଳିତ ହେଲେ ।

## ସୂର୍ଯ୍ୟ ଓ ଚନ୍ଦ୍ରବଂଶର ବଂଶବୃକ୍ଷ—

( ରାୟବାହାଦୁର ବ୍ରଜକିଶୋର ଦାସଙ୍କ ଭାଗବତ ନବମସ୍କନ୍ଧର କ୍ରୋଡ଼ପତ୍ର ରୁ ଉଦ୍ଧୃତ । )




ଇକ୍ଷ୍ୱାକୁ
ବିକୁକ୍ଷି
ନିମି
କକୁତ୍ସ୍ଥ
୧୫ ପୁରୁଷ ବ୍ୟବଧାନ
ମାନ୍ଧାତା
୬ ପୁରୁଷ ବ୍ୟବଧାନ
ସତ୍ୟବ୍ରତ (ତ୍ରିଶଙ୍କୁ)
ହରିଶ୍ଚନ୍ଦ୍ର
୮ ପୁରୁଷ ବ୍ୟବଧାନ
ସଗର
୨ ପୁରୁଷ ବ୍ୟବଧାନ
ଦିଲୀପ
ଭଗୀରଥ
୧୩ ପୁରୁଷ ବ୍ୟବଧାନ
ଜନକ
ଖଟ୍ୱାଙ୍ଗ
ଦୀର୍ଘବାହୁ
ରଘୁ
ଅଜ
ଦଶରଥ
୧୯ ପୁରୁଷ ବ୍ୟବଧାନ
ସୀରଧ୍ୱଜ
ରାମଚନ୍ଦ୍ର = ସୀତା
ଲବ
କୁଶ
୧୮ ପୁରୁଷ ବ୍ୟବଧାନ
ମରୁ
(କଲାପି ଗ୍ରାମେ ଯୋଗସ୍ଥ; ଭବିଷ୍ୟତ୍ ସୂର୍ଯ୍ୟବଂଶର ପ୍ରକାଶକ ।
ଏଠାରୁ ୩୪ ପୁରୁଷ ଉତ୍ତାରୁ ଏ ବଂଶର ଲୋପ)
ଇଳାକନ୍ୟା = ବୁଧ
ପୁରୁରବା
ଆୟୁ
ବିଜୟ
ନହୁଷ
୯ ପୁରୁଷ ବ୍ୟବଧାନ
ଯଯାତି
ଗାଧି
ଯଦୁ
ଅନୁ
ପୁରୁ
ବିଶ୍ୱାମିତ୍ର
ସତ୍ୟବତୀ
(ପତି ଋଚି)
କ୍ରୋଷ୍ଟୁ
୧୧ ପୁରୁଷ ବ୍ୟବଧାନ
୧୪ ପୁରୁଷ ବ୍ୟବଧାନ
୨୯ ପୁରୁଷ ବ୍ୟବଧାନ
ବଳି (ଶେଷରେ ଦୀର୍ଘତମା)
ଦୁଷ୍ମନ୍ତ
ଜମଦଗ୍ନି
ସାତ୍ୱତ
ଭରତ
ପରଶୁରାମ
ବୃଷ୍ଣି
ଅନ୍ଧକ
୯ ପୁରୁଷ ବ୍ୟବଧାନ
୧୧ ପୁରୁଷ ବ୍ୟବଧାନ
ଅଙ୍ଗ ବଙ୍ଗ କଳିଙ୍ଗ ଶୁହ୍ମ ପୌଣ୍ଡ୍ର ଓଡ୍ର
( ଏମାନେ ପୂର୍ବାଞ୍ଚଳରେ ସ୍ୱ ସ୍ୱ ନାମେ ରାଜ୍ୟମାନ
ସ୍ଥାପନ କଲେ )
ଶୂର
ଆହୁକ
ଭରଦ୍ୱାଜ
(ଦତ୍ତକପୁତ୍ର)
ଦେବକ
ଉଗ୍ରସେନ
୬ ପୁରୁଷ ବ୍ୟବଧାନ
ବସୁଦେବ = ଦେବକୀ
କଂସ
କୁରୁ
ବଳରାମ
ଶ୍ରୀକୃଷ୍ଣ
୧୧ ପୁରୁଷ ବ୍ୟବଧାନ
ପ୍ରତୀପ
ଶାନ୍ତନୁ
ଦେବାପି
( ଉତ୍ତରର କଲାପି ଗ୍ରାମରେ ଯୋଗସ୍ଥ;
ଭବିଷ୍ୟତ୍ ଚନ୍ଦ୍ରବଂଶର ପ୍ରକାଶକ )
ଭୀଷ୍ମ
(ବ୍ରହ୍ମଚାରୀ)
ଧୃତରାଷ୍ଟ୍ର
ପାଣ୍ଡୁ
ଶତପୁତ୍ର
(ଭାରତ ଯୁଦ୍ଧେ ହତ)
ଯୁଧିଷ୍ଠିର
ଭୀମ
ଅର୍ଜୁନ
ନକୁଳ
ସହଦେବ
ଅଭିମନ୍ୟୁ
ପରୀକ୍ଷିତ
ଜନମେଜୟ
୨୨ ପୁରୁଷ ଉତ୍ତାରୁ ଏ ବଂଶର ଲୋପ ।

ସୂର୍ଯ୍ୟବଂଶିକ—ଦେ, ବଣ—୧ । ସୂର୍ଯ୍ୟବଂଶ ସମ୍ବନ୍ଧୀୟ—1. Relating
Sūrjyabamśika to solar dynasty. ୨ । ସୂର୍ଯ୍ୟ-
সূর্য্যবংশীয ବଂଶୋଦ୍ଭବ—2. Born of the solar dyna-
सूर्यवंशी sty. [ ଦ୍ର—ବାସ ଯେ ସ୍ଥାନେ କଣିକ, ବାସରେ
ସୂର୍ଯ୍ୟବଂଶିକ, ବନେ ଦକ୍ଷିଣ ମୁଖରେ, ବହାର ଶରେ ସେ ।
ଇଛ· ବୈଦେଶ୍ଚିଗ୍ଧବଳାସ । ]

ସୂର୍ଯ୍ୟ ବଂଶୀ (ବଂଶୀୟ, ବଂଶ୍ୟ)—ସଂ ବଣ. ପୁଂ—ସୂର୍ଯ୍ୟବଂଶିକ (ଦେଖ)
Sūrjya bamsī (bamśīya, bamśya) Sūrjya-
bamśika ( See )
( ସୂର୍ଯ୍ୟବଂଶିକା, ସୂର୍ଯ୍ୟବଂଶୀୟା, ସୂର୍ଯ୍ୟବଂଶ୍ୟା—ସ୍ତ୍ରୀ )

ସୂର୍ଯ୍ୟ ବନ୍ଧୁ—ଦେ. ବ—ମହାପ୍ରସାଦ ବନ୍ଧୁ; ଧର୍ମବନ୍ଧୁ—
Sūrjya bandhu God-relation.

ସୂର୍ଯ୍ୟବନ୍ଧୁତା—ଦେ· ବ—ମହାପ୍ରସାଦ ବନ୍ଧୁତା—
Sūrjyabandhutā God relationship.

ସୂର୍ଯ୍ୟବଲ୍ଲୀ—ସ. ବ—ଅର୍କପୁଷ୍ପିକା ବୃକ୍ଷ ( ରତ୍ନମାଳା ); ସୂର୍ଯ୍ୟମୁଖୀ
Sūrjyaballī ଫୁଲ—The sunflower·

ସୂର୍ଯ୍ୟବଲ୍ଲଭା—ସ.ବ—୧। ଅଣସୋରଷିଅ—1. Cleome Viscosa.
Sūrjyaballabhā ୨ । ପଦ୍ମ ( ହୁ. ଶ )—2. Lotus.

ସୂର୍ଯ୍ୟ ବାଉଳି—ଦେ. ବ ( କଣିଥ ଶବ୍ଦ )—ଡଳ କାନରେ ପିନ୍ଧାଯିବା
Sūrjya bāuli ସୁନାର ଅଳଙ୍କାର ବିଶେଷ—Name of a
gold ornament for the ear. [ ଦ୍ର—ଏଥିରେ
ଭାଗ ଚନ୍ଦ୍ର ( କଳ୍ପିତ ସୂର୍ଯ୍ୟ ) ଯର ଚକଣ୍ଡ ଲଗିଥାଏ । ]

ସୂର୍ଯ୍ୟ ବାର (ବାସର)—ସଂ. ବ—ରବିବାର—
Sūrjya bāra (bāsara) Sunday.

ସୂର୍ଯ୍ୟ ବିମ୍ବ—ସଂ. ବ ( ୬ଷ୍ଠୀ ତତ୍ )—ସୂର୍ଯ୍ୟଙ୍କ ମଣ୍ଡଳ—
Sūrjya bimba The orb of the sun.

ସୂର୍ଯ୍ୟ ବିଲୋକନ—ସଂ. ବ—ଶିଶୁର ୪ ମାସ ବୟସରେ
Sūrjya bilokana ପ୍ରଥମ ସୂର୍ଯ୍ୟ ଦର୍ଶନରୂପ ମାଙ୍ଗଳିକ କର୍ମ (ହୁ.
ଶ )—The ceremonial of looking at the sun
on the 4th month of a child's birth·

ସୂର୍ଯ୍ୟ ବୁଡ଼ିବା—ଦେ. ବ—ସୂର୍ଯ୍ୟର ଅସ୍ତ ହେବା—
Sūrjyā burdibā The setting of the sun.
সূর্য্য ডোবা सूर्यास्त

ସୂର୍ଯ୍ୟ ବୃକ୍ଷ—ସଂ. ବ—ଅର୍କଗଛ ( ହୁ. ଶ )—
Sūrjya bṛuksha Calotropis Gigantea ( plant ).

ସୂର୍ଯ୍ୟ ବେଶ୍ମ—ସଂ. ବ ( ୬ଷ୍ଠୀ ତତ୍; ସୂର୍ଯ୍ୟବେଶ୍ମନ୍; ୧ମା. ୧ବ )—
Sūrjya beśma ସୂର୍ଯ୍ୟମଣ୍ଡଳ—The orb of the sun.

ସୂର୍ଯ୍ୟ ବ୍ରତ—ସଂ. ବ—୧ । ସୂର୍ଯ୍ୟପୂଜାରୂପ ବ୍ରତ—1. The vow
Sūrjya brata of worshipping the sun.
୨ । ସୋମନାଥ ବ୍ରତ ( ଦେଖ )—
2. Somanātha brata ( See )

ସୂର୍ଯ୍ୟଭକ୍ତ—ସ. ବ. ପୁଂ—୧ । ସୂର୍ଯ୍ୟୋପାସକ—1. A devotee
Sūrjyabhakta of the Sungod. ୨ । ବନ୍ଧୁକ ପୁଷ୍ପ;
(ସୂର୍ଯ୍ୟଭକ୍ତକ—ଅନ୍ୟରୂପ) ( ମେଦନୀ ), ଦୀପହରିଆ ଫୁଲ; ବଧୁଲି
ଫୁଲ—2. Pentapetes Phoenicea (flower).

ସୂର୍ଯ୍ୟଭକ୍ତା—ସ. ବ—୧। ସୁବର୍ଚ୍ଚଳା; ସୂର୍ଯ୍ୟମୁଖୀ ଗଛ—1. The sun
Sūrjya bhaktā flower. ୨ । ଅଣସୋରଷିଅ (ଗୁଳ୍ମ)—
2. Cleomi Viscosa ( plant ).

ସୂର୍ଯ୍ୟ ମଇତ୍ର—ଦେ. ବ—ସୂର୍ଯ୍ୟବନ୍ଧୁ ( ଦେଖ )—
Sūrjya maitra Sūrjyabandhu ( See ).
সূর্য্যবন্ধু सूर्य बंधु

ସୂର୍ଯ୍ୟମଣି—ସ. ବ—ସୂର୍ଯ୍ୟକାନ୍ତ (ଦେଖ)—Sūrjyakānta (See)
Sūrjyamaṇi ଦେ. ବ. ସ୍ତ୍ରୀ ଓ ପୁଂ—ସ୍ତ୍ରୀ ଓ ପୁରୁଷଙ୍କୁ ଦିଆ-
ଯିବା ନାମ—A name given to males and
females.

ସୂର୍ଯ୍ୟମଣି ଚ୍ୟାଉପଟ୍ଟନାୟକ—ଦେ. ବ ( ନାମ )—ସ୍ୱର୍ଗତ ଉତ୍କଳୀୟ
Sūrjyamaṇi chyāupaṭṭanāyaka କବିବିଶେଷ—Name
ot an Oriya poet of the 18th century.
[ ଦ୍ର—ଏ ଢାଞ୍ଚରେ କବଣ ଥିଲେ; ୧୭୭୮ ଖ୍ରୀଷ୍ଟାବ୍ଦରେ
ଗଞ୍ଜାମଜିଲ୍ଲା ଘୁମୁସର ରାଜ୍ୟରେ ଜନ୍ମଗ୍ରହଣ କରିଥିଲେ ।
ଏ ଅତି ସରଳଭାଷାରେ ଅଧ୍ୟାତ୍ମରାମାୟଣ ଲେଖି ଯାଇ-
ଅଛନ୍ତି—ଭାରଣୀ, ଉତ୍କଳ ସାହିତ୍ୟ ଇତିହାସ । ]

ସୂର୍ଯ୍ୟମଣି ପାଟମହାଦେଈ(ବୀ)—ଦେ· ବ (ନାମ)—ପୁରୀ ଗଜପତି ରାଜ-
Sūrjyamaṇī pāṭa mahādei(bī) ବଂଶର ଜଣେକା ସ୍ୱର୍ଗତା
ରାଜମାତା—A dowager Ranee of the Gaja-
patı dynasty of Puri, the great grand
mother of the present Gajapati Raja
Ramachandra Deba.
[ଦ୍ର—ଏ ପୁରୀର ରାଜା । ବୀରକିଶୋର ଦେବଙ୍କ ମାତା,
ସ୍ୱର୍ଗତ ମୁକୁନ୍ଦ ଦେବଙ୍କ ପିତାମହୀ ଓ ବର୍ତ୍ତମାନ ଶ୍ରୀ ରାମଚନ୍ଦ୍ର
ଦେବଙ୍କ ପ୍ରପିତାମହୀ ଥିଲେ । ଏ ଅତି ବୃଦ୍ଧା ହୋଇ ୧୮୯୭
ସାଲରେ ସ୍ୱର୍ଗଗାମିନୀ ହେଲେ; ଗଭର୍ଣ୍ଣମେଣ୍ଟ ପୁରୀମନ୍ଦିରକୁ
ଖାସ୍ ତତ୍ତ୍ୱାଧୀନ କରିବାରୁ ଏ ଗଭର୍ଣ୍ଣମେଣ୍ଟଙ୍କ ସଙ୍ଗେ
ମକଦ୍ଦମାରେ ହାଇକୋର୍ଟ ପର୍ଯ୍ୟନ୍ତ ଲଢ଼ି ମନ୍ଦିରରେ
ପୁରୀ ରାଜାମାନଙ୍କର ପୁରୁଷାନୁକ୍ରମ ପରିଚାଳନାଧିକାର
ପ୍ରତିଷ୍ଠିତ କରିବାରେ ସମର୍ଥା ହୋଇଥିଲେ । ]

ସୂର୍ଯ୍ୟମଣି ଫୁଲ—ଦେ. ବ—ବଧୁଲି ଫୁଲ—
Sūrjyamaṇi phula Pentapetes Phoenicia·
বাঁধুলি दुपहरिया

ସୂର୍ଯ୍ୟ ମଣ୍ଡଳ—ସଂ.ବ (୬ଷ୍ଠୀ ତତ୍)—ସୂର୍ଯ୍ୟଙ୍କ ପରିବେଷ ବା ପରିଧି—
Sūrjya maṇḍala The orb of the sun; the sun's
ଅନ୍ୟ ସଂ—ପରିବେଶ, ପରିଧି, disc.
ଉପସୂର୍ଯ୍ୟକମଣ୍ଡଳ

ସୂର୍ଯ୍ୟମୁଖୀ—ସ· ବ—ଅଣସୋରଷିଅ; ଚନ୍ଦ୍ରଶାକବିଶେଷ—Cleom
Sūrjyamukhī Viscosa. ଦେ· ବ ( ସ. ସୂର୍ଯ୍ୟ
হুড়হুড়ে, শুলটে +ମୁଖ; ଏ ଫୁଲ ସୂର୍ଯ୍ୟଙ୍କ ଆଡ଼େ ମୁଖ
हुरहुर କରିଲ ଫୁଟୁଥିବାରୁ )—ଏକପ୍ରକାର
ହଳଦିଆ ଫୁଲ ଓ ତାହାର ଗଛ—

The sun flower; Helianthus Annuus.

ସୂର୍ଯ୍যমুখী, বাধাপদ্ম ସୁରଜମୁଖୀ ଫା. ଗୁଲ୍ ଆଫ୍ତାବ୍ ପରସ୍ତ ଅ. ଅର୍ଦେଇନ୍ ତେ. ସୂର୍ଯ୍ୟକାନ୍ତିପୁ ତ. ସୂର୍ଯ୍ୟଫୁଲବଲ୍ଲୀ ସଂ ନାମ—ଅବନ୍ତ୍ୟ- ତଲ୍ଳା, ବରଦା, ସୁବର୍ଚ୍ଚଳ, ସୂର୍ଯ୍ୟଲତା, ଅର୍କକାନ୍ତା, ଭାସ୍ୱରେଷ୍ଟା, ବତାନ୍ତା, ସୂତେଜା, ସୌମ୍ୟ, ଅର୍କହିତା।

[ ଦ୍ର—ଏହା ସୋମରାଜ୍ୟାଦି ବର୍ଗର ଉଦ୍ଭିଦବର୍ଗଜାତ ବର୍ଷଜୀବୀ ସୁପ (ଗୁଳ୍ମ)। ଏହାର ପୁଷ୍ପମଞ୍ଜରୀ ଓ ଗାଢ଼ ହଳଦିଆ। ଏ ଫୁଲ ବ୍ୟାସରେ ପ୍ରାୟ ୬ ଇଞ୍ଚ ପର୍ଯ୍ୟନ୍ତ ବଡ଼େ। ସୂର୍ଯ୍ୟାସ୍ତ ପୂର୍ବରୁ ଏ ଫୁଲ ତଳକୁ ଝୁଙ୍କି ପଡ଼େ ଓ ସୂର୍ଯ୍ୟୋଦୟ ପରେ ଉପରକୁ ଉଠି ଯାଏ। କୁଏନ୍‌ସାଙ୍କ ମତରେ ଏ ଫୁଲଗୁଡ଼ିକ ସର୍ବପ୍ରଥମେ ଆମେରିକାରୁ ଆସିଥିଲା। ଏ ଗଛ ଦୂଷିତ ବାୟୁକୁ ଶୁଦ୍ଧ କରେ ବୋଲି କହନ୍ତି।

ଏ ଫୁଲ ଦୁଇ ପ୍ରକାରର; ଯଥା ଶ୍ୱେତ ଓ ପୀତ।

ଶ୍ୱେତ ସୂର୍ଯ୍ୟମୁଖୀ—ଶୀତବୀର୍ଯ୍ୟ, ରୁକ୍ଷ, ମଧୁରବିପାକ, ସାରକ, ଗୁରୁ, କ୍ଷାର କଟୁରସ, ବସ୍ତ୍ର, କଫ ଓ ବାତନାଶକ (ଶ୍ୱେତଫୁଲର ପର୍ଯ୍ୟାୟ ସୂର୍ଯ୍ୟଭକ୍ତା, ସୁବର୍ଚ୍ଚଳା, ବରଦା, ବଦର, ସୂର୍ଯ୍ୟାବର୍ତ୍ତା, ରବିପ୍ରୀତା।

ପୀତ ସୂର୍ଯ୍ୟମୁଖୀ—(ସଂ ସ୍ୱର୍ଣ୍ଣଲତା)। ଏହା ତିକ୍ତକଷାୟରସ, କଟୁ, ଉଷ୍ଣବୀର୍ଯ୍ୟ, ସାରକ, ରୁକ୍ଷ, ଲଘୁ ଓ କଫ, ରକ୍ତପିତ୍ତ, ଶ୍ୱାସ, କାସ, ଅରୁଚି, ଜ୍ୱର, ବିସ୍ଫୋଟ, କୁଷ୍ଠ, ମେହ, ବସ୍ତିଦୋଷ, ଯୋନିବ୍ୟାପତ୍, କୃମି ଓ ପାଣ୍ଡୁରୋଗ ନାଶକ। ]

ସୂର୍ଯ୍ୟ ରଶ୍ମି—ସଂ. ବି(୬ଷ୍ଠୀ ତତ୍)—ସୂର୍ଯ୍ୟଙ୍କ କିରଣ—The rays
Sūrjya rasmi of the sun [ ଦ୍ର—ସୂର୍ଯ୍ୟଙ୍କୁ ହିନ୍ଦୁପୁରାଣରେ ସପ୍ତାଶ୍ୱବାହନ ବୋଲି ଯାଇଅଛି। ଆଧୁନିକ ବିଜ୍ଞାନଦ୍ୱାରା ପ୍ରମାଣିତ ହୋଇଅଛି ଯେ ସୂର୍ଯ୍ୟରଶ୍ମି ୭ ଗୋଟି ମୌଳିକ ବର୍ଣ୍ଣର ସମନ୍ୱୟ ଅଟେ। ଯଥା—

୧। ବାଇଗଣୀ—( Violet )
୨। ନେଳୀ—( Indigo )
୩। ଶ୍ୟାମଳ—( Blue )
୪। ଶାଗୁଆ—( Green )
୫। ହଳଦିଆ—( Yellow )
୬। ନାରଙ୍ଗୀ—( Orange )
୭। ନାଲି—( Red )। ]

ସୂର୍ଯ୍ୟ ଲତା—ସଂ ବି—୧। ଅବନ୍ତ୍ୟଭକ୍ତା (ଗଜଭକ୍ଷ୍ୟ); ଅଣ-
Sūrjya latā ସୋରିଷିଆ—1. Cleome Viscosa.
୨। ସୂର୍ଯ୍ୟମୁଖୀ ( ଦେଖ )—
2. Sūrjyamukhi ( See )

ସୂର୍ଯ୍ୟ ଲୋକ—ସଂ ବି—୧। ସୌରଭୁବନ; ସୂର୍ଯ୍ୟଭକ୍ତ, ପୁଣ୍ୟଶୀଳ
Sūrjya loka ଓ ଯୁଦ୍ଧରେ ମୃତ ବ୍ୟକ୍ତିମାନଙ୍କର ମୃତ୍ୟୁପରେ ପାରଲୌକିକ ବାସସ୍ଥାନ—1. The abode of the sun worshippers after death. ୨। ସୌରଜଗତ୍—

2. The universe of which the sun is the centre; the solar system.

ସୂର୍ଯ୍ୟ ଶିଷ୍ୟ—ସଂ. ବି. ପୁଂ—୧। ଯାଜ୍ଞବଲ୍କ୍ୟ ଋଷି ( ବ୍ରି. ଶ. )—
Sūrjya sishya 1. Jājnabalka sage. ୨। ଜନକ ରାଜର୍ଷି ( ବ୍ରି. ଶ )—2. King Janaka.

ସୂର୍ଯ୍ୟ ସଂକ୍ରମଣ (ସଂକ୍ରାନ୍ତି, ସଂକ୍ରମ) ବି—ସୂର୍ଯ୍ୟର ଏକରାଶିରୁ ଅନ୍ୟ
Sūrjya samkramana (samkrānti, samkrama)
ରାଶିକୁ ଗମନ—The transition of the sun from one zodiacal sign to another.
(ସୂର୍ଯ୍ୟ ସଙ୍କ୍ରମଣ [ସଙ୍କ୍ରାନ୍ତି, ସଙ୍କ୍ରମ]—ଅନ୍ୟରୂପ)

ସୂର୍ଯ୍ୟସଂଜ୍ଞ—ସଂ ବି ( ସୂର୍ଯ୍ୟ+ସଂଜ୍ଞା; ବହୁବ୍ରୀହି )—୧। କୁଙ୍କୁମ
Sūrjyasamjna ( ତ୍ରିକାଣ୍ଡ ଶେଷ )—1. Saffron ୨। ଅର୍କଗଛ ( ହେ. ଶ )—2. Calotropis Gigantea. ୩। ତାମ୍ର ( ହେ. ଶ )—3. Copper. ୪। ଏକପ୍ରକାର ମାଣିକ୍ୟ ( ହେ. ଶ )—4. A kind of ruby.

ସୂର୍ଯ୍ୟସାବର୍ଣ୍ଣି—ସଂ. ବି—ମାର୍କଣ୍ଡେୟ ପୁରାଣ ଅନୁସାରେ ଅଷ୍ଟମ ମନୁଙ୍କ
Sūrjya sābarnni ନାମ—Name of the eighth Manu. [ ଦ୍ର—ଏ ସୂର୍ଯ୍ୟଙ୍କ ଔରସରେ ଛାୟାଙ୍କ ଗର୍ଭରୁ ଉତ୍ପନ୍ନ ହୋଇଥିଲେ। ଦେବୀମାହାତ୍ମ୍ୟ (ଚଣ୍ଡୀ)ରେ ଲିଖିତ ସୁରଥ ରାଜା ପରଜନ୍ମରେ ସାବର୍ଣ୍ଣି ମନୁ ହୋଇଥିବା କଥିତ। ]

ସୂର୍ଯ୍ୟ ସାରଥି—ସଂ. ବି ( ୬ଷ୍ଠୀ ତତ୍ )—ଅରୁଣ—
Sūrjya sārathi The dawn ( personified).

ସୂର୍ଯ୍ୟ ସିଦ୍ଧାନ୍ତ—ସଂ. ବି- ହିନ୍ଦୁ ଜ୍ୟୋତିଷର ପ୍ରଧାନ ଗ୍ରନ୍ଥ—Name
Sūrjya siddhānta of a famous ancient Sanscrit treatise on astrology. [ ଦ୍ର—ସୂର୍ଯ୍ୟସିଦ୍ଧାନ୍ତ ଗ୍ରନ୍ଥ ଅତି ପ୍ରାଚୀନ। ବର୍ତ୍ତମାନ ମିଳୁଥିବା ଗ୍ରନ୍ଥରେ ଅନେକ ଭାଗ ପ୍ରକ୍ଷିପ୍ତ ଓ କେତେକାଂଶ ଲୁପ୍ତ ହୋଇ ବହୁ ପ୍ରକାର ସୂର୍ଯ୍ୟସିଦ୍ଧାନ୍ତ ଗ୍ରନ୍ଥ ଦେଖିବାକୁ ମିଳେ। ସତ୍ୟଯୁଗର ଶେଷରେ ମୟ ନାମକ ଅସୁର ଏହି ସିଦ୍ଧାନ୍ତ ବୋଧ ନିମିତ୍ତ ସୂର୍ଯ୍ୟଦେବଙ୍କର ଆରାଧନା କରିଥିଲେ। ସେଥିରେ ସୂର୍ଯ୍ୟଦେବ ପ୍ରୀତ ହୋଇ ମୟାସୁରଙ୍କୁ ଏହି ସକଳ ତତ୍ତ୍ୱବୋଧ କରାଇଥିଲେ। ଏଥିରେ ଗ୍ରହମାନଙ୍କର ଗତି, ସ୍ଥିତି, ଭୂଗୋଳ ବର୍ଣ୍ଣନ ଇତ୍ୟାଦି ସିଦ୍ଧାନ୍ତର ସମସ୍ତ ବିଷୟ ପୁଙ୍ଖାନୁପୁଙ୍ଖ ବିଚାର କରାଯାଇଅଛି। ଆରବୀମାନେ ଏହି ସିଦ୍ଧାନ୍ତକୁ ଅବଲମ୍ବନ କରି 'ଅର୍କନ୍' ନାମକ ଜ୍ୟୋତିଷ ଗ୍ରନ୍ଥ ରଚନା କରିଥିଲେ। ବର୍ତ୍ତମାନ ମିଳୁଥିବା ସୂର୍ଯ୍ୟସିଦ୍ଧାନ୍ତ ବରାହଙ୍କ ସଙ୍କଳିତ—ସନ୍ଦର୍ଭ ଲେଖକ, ବାଇକୋଳ ମହାପାତ୍ର ଜ୍ୟୋତିଷବିଶାରଦ। ]

ସୂର୍ଯ୍ୟ ସୂକ୍ତ—ସଂ. ବି—ସୂର୍ଯ୍ୟଦେବଙ୍କ ସ୍ତୁତି ସମ୍ବଳିତ ଋଗ୍ବେଦର ସୂକ୍ତ
Sūrjya sukta ବିଶେଷ—Name of a vedic prayer to the Sungod

ସୂର୍ଯ୍ୟ ସ୍ତବରାଜ—ସଂ. ବି—ଶାମ୍ବପୁରାଣୋକ୍ତ ସୂର୍ଯ୍ୟଙ୍କର ଏକବିଂଶ ନାମ
Sūrjyastabarāja ସମ୍ବଳିତ ସ୍ତୋତ୍ର—Title of a hymn of the Sungod containing 21 names of the sun. [ ଦ୍ର—ଏ ସ୍ତବକୁ ସୂର୍ଯ୍ୟଦେବ ଶାମ୍ବକୁ ଉପଦେଶ ଦେଇଥିଲେ ଓ ଶାମ୍ବ ଏହା ପ୍ରତିଦିନ ତ୍ରିସନ୍ଧ୍ୟାରେ ପାଠ କରି କୁଷ୍ଠ ରୋଗ ମୁକ୍ତ ହୋଇଥିଲେ । ]

ସୂର୍ଯ୍ୟ ସ୍ୱର—ଦେ. ବି—୧ । ଶରୀରରେ ଥିବା ବାୟୁବିଶେଷ (ଏ ପୁରୁଷ
Sūrjya swara ଓ ଏହାର ବର୍ଣ୍ଣ ଶ୍ୱେତ ଅଟେ )—A kind of wind which is circulated in the human body.
୨ । ସୂର୍ଯ୍ୟନାଡ଼ୀ ( ଦେଖ )—
2. Surjyanārdi ( See )
[ ଉ—ଶୁଣ ଶାଜମ୍ବରୀ ସୂର୍ଯ୍ୟସ୍ୱରର ବେଭାର କରିବ କର୍ମମାନ କହୁଛୁ ଏ ସଂସାର—ଶିବସ୍ୱରୋଦୟ । ]

ସୂର୍ଯ୍ୟ ହାର—ଦେ. ବି ( ବଣିଅଶବ୍ଦ )—ଅଣ୍ଟାରେ ପିନ୍ଧା ଯିବା ପାଇଁ
Sūrjya hāra ସୁନାର ବା ରୂପାର ଏକପ୍ରକାର ତାରକଶି
ସୂର୍ଯ୍ୟହାର ଅଳଙ୍କାର—A kind of gold or silver waist-
सूर्यहार chain with filagree works thereon.

ସୂର୍ଯ୍ୟ ହୃଦୟ—ସଂ. ବି—ଆଦିତ୍ୟହୃଦୟ; ସୂର୍ଯ୍ୟଦେବଙ୍କ ସ୍ତବବିଶେଷ
Sūrjya hrudaya ( କୂର୍ମପୁରାଣ, ଗରୁଡ଼ପୁରାଣ )—
Name of a hymn to the Sungod.

ସୂର୍ଯ୍ୟା(ର୍ଯ୍ୟା)—ସଂ. ବି ( ସୂର୍ଯ୍ୟ+ଆ )—୧ । ସୂର୍ଯ୍ୟପତ୍ନୀ; ସଂଜ୍ଞା
Sūrjya(rjā) ( ଶବ୍ଦରତ୍ନାବଳୀ )—1. The wife of the Sungod. ୨ । ଇନ୍ଦ୍ରବାରୁଣୀ ( ରାଜନିର୍ଘଣ୍ଟ ); ମହାକାଳ ଲତା—2. Colocynth. ୩ । ନବୋଢା; ନବବଧୂ (ଶବ୍ଦରତ୍ନାବଳୀ)—3. A bride; a newly married girl. ୪ । ସୂର୍ଯ୍ୟଙ୍କ ତନୟା—4. The daughter of the Sungod (Apte). ୫ । ଔଷଧ—5. Drug ( Apte ). ୬ । ସୂର୍ଯ୍ୟଙ୍କ ବିବାହ ସମ୍ବନ୍ଧୀୟ ସ୍ତୋତ୍ରବିଶେଷ—6. The hymn about the marriage of Sungod (Apte ). ଦେ. ବି ( ପୁଂ )—ସୂର୍ଯ୍ୟମଣିର ଅନାଦରାର୍ଥକ ଡାକ ନାମ—
Name for calling Sūrjyamaṇi in contempt.

ସୂର୍ଯ୍ୟା(ର୍ଯ୍ୟା)ଣୀ—ସଂ. ବି. ସ୍ତ୍ରୀ ( ସୂର୍ଯ୍ୟ+ସ୍ତ୍ରୀ. ଅଣ )—ସୂର୍ଯ୍ୟପତ୍ନୀ;
Sūrjyā(rjā)ṇi ସଂଜ୍ଞା—The wife of the Sungod.

ସୂର୍ଯ୍ୟାତପ—ସଂ. ବି ( ୬ଷ୍ଠୀ ତତ୍; ସୂର୍ଯ୍ୟ+ଆତପ )—ଖରା—
Sūrjyātapa The glare of the sun; sunshine.

ସୂର୍ଯ୍ୟାତ୍ମଜ—ସଂ. ବି- ପୁଂ ( ୬ଷ୍ଠୀ ତତ୍; ସୂର୍ଯ୍ୟ+ଆତ୍ମଜ )—ସୂର୍ଯ୍ୟ-
Sūrjyātmaja ତନୟ ( ଦେଖ )—
Sūrjya tanaya ( See ).

ସୂର୍ଯ୍ୟାତ୍ମଜା—ସଂ. ବି. ସ୍ତ୍ରୀ (୬ଷ୍ଠୀ ତତ୍)—ସୂର୍ଯ୍ୟତନୟା (ଦେଖ)
Sūrjyātmajā Sūrjyatanayā (See)

ସୂର୍ଯ୍ୟାପୀଡ଼—ସଂ. ବି (ନାମ)—ପରୀକ୍ଷିତଙ୍କ ଏକ ପୁତ୍ର (ହି. ଶ)
Sūrjyāpirda Name of a son of Parikshita.

ସୂର୍ଯ୍ୟାବର୍ତ୍ତ(ର୍ତ୍ତା)—ସଂ. ବି (ସୂର୍ଯ୍ୟ+ଆ+ବୃତ୍. ଧାତୁ=ବୁଲିବା+
Sūrjyābartta(rttā) କର୍ତ୍ତୃ. ଅ+ଆ; ଯାହା ସୂର୍ଯ୍ୟଙ୍କ ଆଡ଼କୁ ମୁହଁ ବୁଲାଏ)—୧ । ସୂର୍ଯ୍ୟମୁଖୀ ଫୁଲ—1. The sunflower; Helianthus Annuus. ୨ । ଅଣ-ଲୋଭଣିଆ ଗୁଳ୍ମ—2. Cleome Viscosa plant. ୩ । ଗଜପିପ୍ପଳୀ (ହି. ଶ)—3. Pothos Officinalis (creeper). ୪ । ଅର୍ଦ୍ଧକପାଳବଥା ରୋଗ—4. Megrim. [ଦ୍ର—ଏ ବଥା ରୋଗ ସୂର୍ଯ୍ୟୋଦୟବେଳେ ପ୍ରତିଦିନ ଆରମ୍ଭ ହୁଏ ଓ ସୂର୍ଯ୍ୟର ଗତି ସଙ୍ଗେ ବୃଦ୍ଧି ପାଇ ଦ୍ୱିପ୍ରହର ପରେ କମି କମି ସୂର୍ଯ୍ୟାସ୍ତବେଳେ ବନ୍ଦ ହୋଇଯାଏ । ]

ସୂର୍ଯ୍ୟାୟାମ—ସଂ. ବି (୬ଷ୍ଠୀ ତତ୍)—ସୂର୍ଯ୍ୟାସ୍ତ ସମୟ (ହି. ଶ)—
Sūrjyāyāma The time of sunset.

ସୂର୍ଯ୍ୟାର୍ଘ୍ୟ—ସଂ. ବି (ମ. ପ. ଲୋ)—ସୂର୍ଯ୍ୟଦେବଙ୍କ ଉଦ୍ଦେଶ୍ୟରେ ମନ୍ତ୍ର
Sūrjyārghya ପାଠପୂର୍ବକ ଦିଆଯିବା ଜଳ—Oblation of water made to the Sungod.

ସୂର୍ଯ୍ୟାୟଣ ବାର—ଦେ. ବି—ରବିବାର—Sunday. [ ଉ—
Sūrjyāṇa bāra ସୂର୍ଯ୍ୟାୟଣ ବାରରେ ଯେ ପୃଥ୍ୱୀତତ୍ତ୍ୱଜ୍ଞାନ,
ରବିବାର ମଙ୍ଗଳବାରରେ ଅଗ୍ନିତତ୍ତ୍ୱ ପରମାଣ ।
रविवार ପ୍ରାଚୀ. ଶିବ ସ୍ୱରୋଦୟ ।]

ସୂର୍ଯ୍ୟାଶ୍ମା—ସଂ. ବି (ସୂର୍ଯ୍ୟ+ଅଶ୍ମନ୍; କର୍ମ. ଧା)—ସୂର୍ଯ୍ୟକାନ୍ତ ମଣି—
Sūrjyāśmā A precious gem.

ସୂର୍ଯ୍ୟାଶ୍ୱ—ସଂ. ବି—ସୂର୍ଯ୍ୟଙ୍କ ରଥରେ ଲାଗିଥିବା ୭ ଗୋଟି ଅଶ୍ୱ—
Sūrjyaśwa The seven horses yoked to the chariot of the Sungod.

ସୂର୍ଯ୍ୟାସ୍ତ—ସଂ. ବି (୬ଷ୍ଠୀ ତତ୍)—ସୂର୍ଯ୍ୟର ପଶ୍ଚିମ ଦିଗରେ ବୁଡ଼ିଯିବା,
Sūrjyāsta ସୂର୍ଯ୍ୟର ଅସ୍ତ ଗମନ—Sunset; setting
(ସୂର୍ଯ୍ୟୋଦୟ—ବିପରୀତ) of the sun.

ସୂର୍ଯ୍ୟାହ୍ୱ—ସଂ. ବିଣ ( ସୂର୍ଯ୍ୟ+ଆହ୍ୱା=ନାମ; ବହୁବ୍ରୀହି )—
Sūrjyāhwa ସୂର୍ଯ୍ୟନାମଧାରୀ—Bearing the name of 'Sūrjya'. ବି—୧ । ତାମ୍ର (ତ୍ରିକାଣ୍ଡ ଶେଷ)—1. Copper. ୨ । ଅର୍କ ଗୁଳ୍ମ ( ରାଜନିର୍ଘଣ୍ଟ )—2. Calotropis Gigantea (plant). ୩। ମହେନ୍ଦ୍ର-ବାରୁଣୀ (ହି. ଶ)—3. The large variety of Colocinth.

ସୂର୍ଯ୍ୟେନ୍ଦୁ ସଙ୍ଗମ—ସଂ. ବି (ଦ୍ୱନ୍ଦ୍ୱ, ୬ଷ୍ଠୀ ତତ୍)—ସୂର୍ଯ୍ୟ ଓ ଚନ୍ଦ୍ରର
Sūrjyendu saṅgama ମେଳନ; ଅମାବାସ୍ୟା (ଯେଉଁ ତିଥିରେ ସୂର୍ଯ୍ୟ ଓ ଚନ୍ଦ୍ର ଏକ ରାଶିରେ ଥାଆନ୍ତି)—The change of the moon; the day on which the moon and the sun are in the same sign of the zodiac.

ସୂର୍ଯ୍ୟୋଢ଼—ସଂ. ବି (ସୂର୍ଯ୍ୟ+ବହ୍. ଧାତୁ+କର୍ମ. ତ; ସୂର୍ଯ୍ୟ ଯାହାକୁ
Sūrjyordha ବହନ କରି ଆଣନ୍ତି)—୧ । ସୂର୍ଯ୍ୟାସ୍ତକାଳରେ ଅଗତ

ଅତିଥି (ହେମଚନ୍ଦ୍ର); ଯେଉଁ ଅତିଥି ସୂର୍ଯ୍ୟାସ୍ତ ପରେ ଆସି କୌଣସି ଗୃହସ୍ଥଙ୍କ ଘରେ ପହଞ୍ଚ ଯାଆନ୍ତି—1. An unexpected guest who arrives at sunset. ୨ । ଅସ୍ତଗତ ସୂର୍ଯ୍ୟ (ବିଷ୍ଣୁ ପୁରାଣ)—2. The sun which has set. ୩ । ସୂର୍ଯ୍ୟାସ୍ତ ସମୟ (ହି. ଶ)—3. The time of sunset.

ସୂର୍ଯ୍ୟୋତ୍ଥାନ—ସଂ. ବି (୬ଷ୍ଠୀ ତତ୍)—୧ ସୂର୍ଯ୍ୟୋଦୟ—1. Sunrise. ୨ । (ମଧ୍ୟାହ୍ନ ପୂର୍ବରୁ) ସୂର୍ଯ୍ୟର ଆକାଶମାର୍ଗରେ କ୍ରମଶଃ ଉପରକୁ ଉଠିବା—2. The rising of the sun and higher in the sky (in the forenoon).
Sūrjyotthāna

ସୂର୍ଯ୍ୟୋଦୟ—ସଂ. ବି (୬ଷ୍ଠୀ ତତ୍)—୧ । ପୂର୍ବ ଦିଗରେ ସୂର୍ଯ୍ୟର ପ୍ରକାଶ—2. Sunrise. ୨ । ସୂର୍ଯ୍ୟର ପୂର୍ବ ଦିଗରେ ଉଦିବା ସମୟ—1. The time of sunrise.
Sūrjyodaya

ସୂର୍ଯ୍ୟୋଦୟ ଗିରି—ସଂ. ବି (୬ଷ୍ଠୀ ତତ୍)—ଉଦୟାଚଳ—
Sūrjyodaya giri The mythological mountain from behind which the sun rises.

ସୂର୍ଯ୍ୟୋପରାଗ—ସଂ. ବି ( ୬ଷ୍ଠୀ ତତ୍ )—ସୂର୍ଯ୍ୟଗ୍ରହଣ; କେତୁଦ୍ୱାରା ସୂର୍ଯ୍ୟର ଗ୍ରାସ—Solar eclipse.
Sūrjyoparāga

ସୂର୍ଯ୍ୟୋପସ୍ଥାନ—ସଂ. ବି ( ସ. ପ. ଲେ )—ପ୍ରାତଃକାଳ, ମଧ୍ୟାହ୍ନ ଓ ସୂର୍ଯ୍ୟାସ୍ତ କାଳରେ ସୂର୍ଯ୍ୟଙ୍କ ଆଡ଼କୁ ମୁହଁ ବୁଲାଇ ଏକ ଗୋଡ଼ରେ ଦଣ୍ଡାୟମାନ ଭକ୍ତଙ୍କ ଦ୍ୱାରା ସୂର୍ଯ୍ୟଦେବଙ୍କର ଉପାସନା (ହି. ଶ)—The rite of turning the face towards the sun (at sunrise, noon and sunset) and praying to the Sungod by standing on one leg.
Sūrjyopsthāna

ସୂର୍ଯ୍ୟୋପାସକ—ସଂ. ବି. ପୁଂ ( ୬ଷ୍ଠୀ ତତ୍ )—ସୂର୍ଯ୍ୟପୂଜକ—
Sūrjyopāsaka Worshipper of the Sun-god. ( ସୂର୍ଯ୍ୟୋପାସିକା—ସ୍ତ୍ରୀ )

ସୂର୍ଯ୍ୟୋପାସନ(ନା)—ସଂ.ବି (୬ଷ୍ଠୀ ତତ୍ )—ସୂର୍ଯ୍ୟଦେବଙ୍କର ଉପାସନା ବା ପୂଜା—Worship of the Sungod.
Sūrjopāsana(nā)

ସୂଷ୍ ( ଧାତୁ )—ସଂ—ପ୍ରସବ କରିବା—
Sūsh ( root ) To bring forth ( Apte ).

ସୂଷଣା—ସଂ. ବି. ସ୍ତ୍ରୀ ( ସୂଷ୍ ଧାତୁ+କର୍ତ୍ତ୍ରି. ଅନ+ଆ )—ମାତା—
Sūshaṇā A mother ( Apte ).

ସୂଷ୍ୟନ୍ତୀ—ସଂ. ବି. ସ୍ତ୍ରୀ ( ସୂଷ୍ ଧାତୁ+କର୍ତ୍ତ୍ରି. ଶତୃ+ଈ )—ଆସନ୍ନପ୍ରସବା ସ୍ତ୍ରୀ—A woman about to be confined; parturient woman (Apte).
Sūshyati

ସୃ ( ଧାତୁ )—ସଂ—୧ । ଗତି କରିବା—1. To move. ୨ । ଦଉଡ଼ିବା—2. To run ( Apte ). ୩ । ଆକ୍ରମଣ କରିବାକୁ ଅଗ୍ରସର ହେବା—3. To rush at ( Apte ). ୪ । ( ପବନ, ଜଳ ) ବହିବା—4. To blow ( as the wind ); to flow ( as the water ) ( Apte ).
Sṛu ( root )

ସୃକ୍ (ଗ୍, ଟ୍, ଡ୍)—ସଂ. ବି. ପୁଂ ( ସୃଜ୍ ଧାତୁ+କ୍ୱିପ୍; ସୃକ୍ ଶବ୍ଦ; ୧ମା. ୧ବ )—ସୃଷ୍ଟିକର୍ତ୍ତା (ସିଦ୍ଧାନ୍ତକୌମୁଦୀ)
Sṛuk (g, ṭ, ṛḍ) The creator of. [ଦ୍ର—ଏହା ଅନ୍ୟ ଶବ୍ଦ ପରେ ଯୁକ୍ତ ହୁଏ; ଯଥା—ବିଶ୍ୱସୃକ୍ । ]

ସୃକ—ସଂ. ବି ( ସୃ ଧାତୁ+କର୍ତ୍ତ୍ରି. କ )—୧ । କୈରବ ( ସିଦ୍ଧାନ୍ତକୌମୁଦୀ); କଇଁଫୁଲ—1. Water lily. ୨ । ବାଣ ( ସିଦ୍ଧାନ୍ତକୌମୁଦୀ)—2. Arrow. ୩ । ପଦ୍ମ (ସିଦ୍ଧାନ୍ତକୌମୁଦୀ )—3. Lotus. ୪ । ବାୟୁ ( ସିଦ୍ଧାନ୍ତକୌମୁଦୀ )—4. Air. ୫ । ଶୂଳ; ଭଲ୍ଲାଦି (ହି. ଶ)—5 Javelin. ୬ । ବଜ୍ର—6. Thunderbolt ( Apte ).
Sṛuka

ସୃକଣ୍ଡୁ—ସଂ. ବି—କଣ୍ଡୁ ରୋଗ ( ଶବ୍ଦରତ୍ନାବଳୀ ); କାଛୁ କୁଣ୍ଡିଆ—
Sṛukaṇḍu Itches; scab.

ସୃକାଳ ( ଇତ୍ୟାଦି )—ସଂ. ବି ( ସୃ ଧାତୁ+କର୍ତ୍ତ୍ରି. କାଳ )—ସୃଗାଳ; ଶୃଗାଳ; ବିଲୁଆ—Jackal (Apte). ୨ । ଶୃଗାଳ ଇତ୍ୟାଦି ( ଦେଖ )—2. Sṛugāla etc ( See )
Sṛukāla(etc)

ସୃକ୍କ—ସଂ. ବି ( ସୃଜ୍ ଧାତୁ=ସୃଷ୍ଟି କରିବା+କର୍ତ୍ତ୍ରି କନ୍; ସୃକ୍କନ ଶବ୍ଦ; ୧ମା.୧ବ; ସୃଜ୍ ଧାତୁ+କ)—ସୃକ୍କଣୀ (ଭରତ) ( ଦେଖ )—Sṛukkaṇī ( See )
Sṛukka

ସୃକ୍କଣୀ—ସଂ. ବି ( ସୃଜ୍ ଧାତୁ=ସୃଷ୍ଟି କରିବା+କର୍ତ୍ତ୍ରି. କନନ୍+ସ୍ତ୍ରୀ. ଈ; ଏହା ଲଳାଦି ସୃଜନ କରୁଥିବାରୁ )—ଦୁଇ ଓଷ୍ଠର ପ୍ରାନ୍ତ ଭାଗ ( ଭରତ ); ଓଷ୍ଠଦ୍ୱୟର ବାମ ଓ ଦକ୍ଷିଣ ପ୍ରାନ୍ତ—The right and left corners of the lips; the ends of the lips.
Sṛukkaṇī

ସୃକ୍କନ—ଦେ. ବି ( ସଂ. ସୃକ୍କଣୀ )—ସୃକ୍କଣୀ ( ଦେଖ )—
Sṛukkana Sṛukkaṇī See ) [ ଉ—ପ୍ରଳୟ ଅଗ୍ନି ପରି ଜଳୁଛି ନୟନ । ଦେଉଛି ଜିଭେ ଲହ ଲହ ତା ସୃକ୍କନ—କୃଷ୍ଣସିଂହ, ମହାଭାରତ. ବନ । ]

ସୃକ୍କି(କ୍କୀ)—ସଂ.ବି (ସୃଜ୍ ଧାତୁ+କର୍ତ୍ତ୍ରି କ;କନ୍ )—ସୃକ୍କଣୀ (ଦେଖ)
Sṛukki(kkī) Sṛukkaṇī ( See )

ସୃକ୍କିଣୀ—ସଂ. ବି ( ସୃଜ୍ ଧାତୁ+କର୍ତ୍ତ୍ରି. ଇନ୍+ଈ )—ସୃକ୍କଣୀ ( ଦେଖ )—Sṛukkaṇī ( See )
Sṛukkiṇī

ସୃକ୍ୱ—ସଂ. ବି ( ସୃଜ୍ ଧାତୁ+କର୍ତ୍ତ୍ରି ବ )—ସୃକ୍କଣୀ ( ଦେଖ )—
Sṛukwa Sṛukkaṇī ( See )

ସୃକ୍ୱ(କ୍ୱ)ଣୀ—ସଂ. ବି ( ସୃଜ୍ ଧାତୁ+କନନ୍+ସ୍ତ୍ରୀ, ଈ )—ସୃକ୍କଣୀ ( ଦେଖ )—Sṛukkaṇī ( See )
Sṛukwa(kwi)ṇi

ସୃକ୍ୱି(କ୍ୱୀ)—ସଂ. ବି ( ସୃଜ୍ ଧାତୁ+କର୍ତ୍ତ୍ରି. ବ;+ଈ )—ସୃକ୍କଣୀ (ଦେଖ) Sṛukkaṇī ( See )
Sṛukwi(kwi)

ସୃଗ—ସଂ. ବି ( ସୃ ଧାତୁ=ଗତି କରିବା+କର୍ତ୍ତ୍ରି. ଗ )—ଭିନ୍ଦିପାଳ—
Sṛuga A small javelin thrown from the hand; a sling ( Apte ).

ସୃଗାଳ (ଇତ୍ୟାଦି)—ସଂ. ବି. ପୁଂ (ସୃଜ୍ ଧାତୁ=ସୃଷ୍ଟି କରିବା+
Sṛugāla(etc) କର୍ତ୍ତୃ. କାଳ)—ଶୃଗାଳ ଇତ୍ୟାଦି (ଦେଖ), ବିଲୁଆ
(ସୃଗାଳକ—ଅନ୍ୟରୂପ) ଜମ୍ବୁକ—Jackal; Śṛugāla etc
(ସୃଗାଳକା, ସୃଗାଳୀ—ସ୍ତ୍ରୀ) (See)

ସୃଗାଳିକା—ସଂ. ବି. ସ୍ତ୍ରୀ ( ସୃଗାଳ+କ+ଅ )—
Sṛugālikā ୧ । ମାଈ ବିଲୁଆ—1. A female jackal.
୨ । ଭୂଇଁକଖାରୁ ( ହ୍ର. ଶ )—2. Diascorea. ୩ ।
ପଳାୟନ ( ହ୍ର. ଶ )—3. Fleeing away. ୪ ।
ଦଙ୍ଗା ଫିସାଦ; ହଙ୍ଗାମ ( ହ୍ର. ଶ )—4. Affay;
(ସୃଗାଳୀ—ଅନ୍ୟରୂପ) breach of the peace.)

ସୃଜ୍ ( ଧାତୁ )—ସଂ—୧ । ସୃଷ୍ଟି କରିବା—1. To create. ୨ ।
Sṛuj (root) ସନ୍ତାନ ଜନ୍ମ କରିବା—2. To beget; to
procreate (Apte). ୩ । ମୁକ୍ତ କରିବା—3. To
release; to loose ( Apte ). ୪ ।
ଉପରେ ଲଗାଇବା; ବୋଳିବା—4. To put on;
to place on; to apply (Apte ) ୫ । (ସ୍ବେଦ-
ବାଦ ) ତ୍ୟାଗ କରିବା—5. To emit; to shed;
to pour out ( Apte ). ୬ । ( ଶରାଦି ) ଫିଙ୍ଗିବା;
କ୍ଷେପଣ କରିବା—6. To throw; to discharge
( Apte ). ୭ । ତ୍ୟାଗ କରି ଚାଲିଯିବା—
7. To quit; to a bandon ( Apte );

ସୃଜକା କ୍ଷାର—ସଂ. ବି—ସର୍ଜ୍ଜିକା କ୍ଷାର ( ରମାନାଥ ) ( ଦେଖ )
Sṛujakā kshāra Sarjakī kshāra ( See )

ସୃଜନ—ଦେ. ବି ( ସଂ. ସର୍ଜ୍ଜନ )—ସର୍ଜ୍ଜନ; ସୃଷ୍ଟି—Creating.
Sṛujana [ ଦ୍ର—ଏ ଶବ୍ଦ ବଙ୍ଗରେ ଓ ଉତ୍କଳରେ ସାଧୁ
সৃজন সৃজন ଭାଷାରେ ବହୁଳ ବ୍ୟବହୃତ ହୋଇଅଛି, ମାତ୍ର ଏହା
ବ୍ୟାକରଣ ବିରୁଦ୍ଧ ପ୍ରୟୋଗ; ବ୍ୟାକରଣର ନିୟମାନୁସାରେ
(ସୃଜ୍ ଧାତୁ ଭାବବାଚ୍ୟରେ ଅନ ପ୍ରତ୍ୟୟ ହେଲେ) 'ସର୍ଜ୍ଜନ'
ପଦ ସିଦ୍ଧ ଅଟେ । ]

ସୃଜୟ—ସଂ. ବି—ପକ୍ଷୀବିଶେଷ ( ହ୍ର, ଶ )—
Sṛujaya A species of bird.

ସୃଜୟା—ସଂ. ବି—ନୀଳମକ୍ଷିକା ( ହ୍ର. ଶ )—
Sṛujayā The blue bottle.

ସୃଜିକା କ୍ଷାର—ସଂ. ବି—ସାଜିମାଟି—
Sṛujikā kshāra Natron; alkali ( Apte).

ସୃଜିବା—ଦେ. କ୍ରି (ପଦ୍ୟ)—(ସଂ. ସୃଜ୍ ଧାତୁ)—ସୃଷ୍ଟି କରିବା—
Sṛujibā সৃজন করা সৃজনা To create.
(ଭ—ଶତ ଶତ ଜପନ୍ତାଭ ସୃଜିବେ ବ୍ରାହ୍ମଣେ ।
ରଘୁନାଥ. ମହାଯାତ୍ରା ।)

ସୃଜ୍ୟ—ସଂ. ବିଣ. ପୁଂ (ସୃଜ୍ ଧାତୁ+କର୍ମ, ଯ)—ସର୍ଜ୍ଜନୀୟ—
Sṛujya Fit or about to be created etc.

ସୃଞ୍ଜୟ—ସଂ. ବି. ବି (ନାମ)—୧ । ଶ୍ୱିତ୍ୱ ନାମକ ରାଜାଙ୍କ ପୁତ୍ର—
Sṛuñjaya 1. Name of a son of King Świt wa
of ancient India. [ ଦ୍ର—ଏ ସ୍ୱକନ୍ୟାକୁ
ନାରଦଙ୍କୁ ପ୍ରଦାନ କରିଥିଲେ । ନାରଦଙ୍କ ବରରେ
ଏହାଙ୍କର 'ସୁବର୍ଣ୍ଣଷ୍ଠୀବି' ନାମକ ପୁତ୍ର ଜନ୍ମିଥିଲେ । କିନ୍ତୁ
ଉକ୍ତ ପୁତ୍ରଙ୍କୁ ଦସ୍ୟୁମାନେ ଅପହରଣ କରି ନେଲେ; ପରେ
ନାରଦଙ୍କ ବରରେ ଏ ଉକ୍ତ ପୁତ୍ରଙ୍କୁ ପାଇଥିଲେ । ] ୨ ।
(ନାମ) ମନୁଙ୍କର ଏକ ପୁତ୍ର (ହ୍ର.ଶ)—2. Name of a
son of Manu. ୩ । (ନାମ) ଏକ ପୌରାଣିକ ରାଜବଂଶ,
ଯହିଁରେ ଧୃଷ୍ଟଦ୍ୟୁମ୍ନ ଜନ୍ମିଥିଲେ (ହ୍ର. ଶ)—3. A line
of kings in which Dhṛushṭadyumna
was born. ୪ । (ନାମ) ଯଯାତିବଂଶୀୟ କାଳନର
ରାଜାଙ୍କ ଏକ ପୁତ୍ର (ହ୍ର. ଶ)—4. Name of a son
of Kālanara.

ସୃଣି—ସଂ. ବି (ସୃ. ଧାତୁ=ଗମନ କରିବା+କର୍ତ୍ତୃ, ନି)—୧ । ଅଙ୍କୁଶ
Sṛuṇi ( ଅମର ); ହାତୀଅଙ୍କୁଶ—1. A hook used to
(ସୃଣୀ—ଅନ୍ୟରୂପ) goad an elephant. ୨ । ଶତ୍ରୁ (ଶବ୍ଦ-
ମାଳା)—2. Enemy. ୩ । ଚନ୍ଦ୍ର—3. The moon
(Apte).

ସୃଣିକା—ସଂ. ବି (ସୃ. ଧାତୁ+କର୍ମ. ଣିକ+ଆ)—୧ । ଲାଳ—
Sṛuṇikā 1. Saliva. ୨ । ଛେପ; ଥୁକ—2. Spitte
(Apte).

ସୃଣୀ—ସଂ. ବି (ସୃଣି+ଈ)—ଅଙ୍କୁଶ—
Sṛuṇī A hook.

ସୃଣୀକ—ସଂ. ବି (ସୃ, ଧାତୁ+କର୍ତ୍ତୃ. ଣୀ. କ)—୧ । ବାୟୁ (ହ୍ର. ଶ)—
Sṛuṇīka 1. Air. ୨ । ଅଗ୍ନି (ହ୍ର. ଶ)—2. Fire. ୩ ।
(ସୃଣୀକା—ସ୍ତ୍ରୀ) ବଜ୍ର (ହ୍ର. ଶ)—3. Thunder bolt. ୪ ।
(ପୁଂ) ଉନ୍ମତ୍ତ ବ୍ୟକ୍ତି (ହ୍ର. ଶ)—1. A maddened
person.

ସୃଣୀକା—ସଂ. ବି (ସୃଣୀ+କ+ଆ)—୧ । ଲାଳ (ରାମାଶ୍ରୟୀ)—
Sṛuṇīkā 1. Saliva. ୨ । (ସ୍ତ୍ରୀ) ଉନ୍ମତ୍ତ ସ୍ତ୍ରୀ—2. A
maddened woman.

ସୃତ—ସଂ. ବିଣ (ସୃ. ଧାତୁ+କର୍ତ୍ତୃ. ତ)—୧ । ଗତ—1. Gone;
Sṛuta moved. ୨ । ବିଗତ; ଅତୀତ—2. Past.

ସୃତା—ସଂ. ବି—୧ । ଗମନ କରିବା (ହ୍ର. ଶ)—1. Going. ୨ ।
Sṛutā ପଳାୟନ (ହ୍ର. ଶ)—2. Fleeing away.

ସୃତି—ସଂ. ବି (ସୃ. ଧାତୁ+ଭାବ. ତି)—୧ । ଗମନ—1. Going.
Sṛuti ୨ । (+ଅଧିକରଣ. ତି) ମାର୍ଗ—2. Road; path.
୩ । (+କରଣ. ତି) ଜନ୍ମ (ହ୍ର. ଶ)—3. Birth.
୪ । (ଭାବ. ତି) ଅପାଙ୍ଗକରଣ; ହିଂସନ—4. Hurt-
ing; injuring (Apte)

ସୃତ୍ୱର—ସଂ. ବିଣ (ସୃ, ଧାତୁ+କର୍ତ୍ତୃ. ବର)—ଗମନକାରୀ; ଗତିଶୀଳ
Sṛutwara (ମୁଗ୍ଧବୋଧ)—Moving.

ସୃତ୍ୱରୀ—ସଂ. ବିଣ. ସ୍ତ୍ରୀ (ସୃତ୍ୱର+ସ୍ତ୍ରୀ. ଈ)—ସୃତ୍ୱରର ସ୍ତ୍ରୀଲିଙ୍ଗ—
Sṛutwarī Feminine of Sṛutwara. ଦ ସ୍ତ୍ରୀ—

୧ । ମାତା (ସଂଜ୍ଞିପ୍ତସାର) — 1. Mother. ୨ । ନଦୀ—
2. River; stream (Apte)

ସୃଦର—ସଂ. ବି (ସୃ. ଧାତୁ+କର୍ତ୍ତୃ. ଦର)—ସର୍ପ (ସିଦ୍ଧାନ୍ତକୌମୁଦୀ)—
Sṛudara Serpent.

ସୃଦାକୁ—ସଂ. ବି.ପୁଂ (ସୃ. ଧାତୁ + କର୍ତ୍ତୃ; ଅକୁ; ଦ ଆଗମ)—୧। ବାୟୁ
Sṛudāku (ମେଦିନୀ)—1. Wind. ୨ । ବଜ୍ର (ମେଦିନୀ)—
2. Thunder. ୩ । ଅଗ୍ନି (ମେଦିନୀ)—3. Fire. ୪ ।
ପ୍ରତିସୂର୍ଯ୍ୟକ; ସୂର୍ଯ୍ୟମଣ୍ଡଳ (ମେଦିନୀ)—4. Sun's disc.
୫ । ମୃଗ (ସଂକ୍ଷିପ୍ତସାର)—5. Deer. ୬ । ବନାଗ୍ନି
(ହି. ଶ)—6. Forest fire. ୭ । (ସ୍ତ୍ରୀ) ନଦୀ (ଉଣାଦି
କୋଷ)—7. River. ୮ । ଗୋଧି (ହି. ଶ)—
8. Varanus Salvator.

ସୃପ୍ (ଧାତୁ)—ସଂ—୧ । ଗତି କରିବା—1. To move. ୨ । ଧୀରେ
Sṛup (root) ଧୀରେ ଗତି କରିବା; ଗଡ଼ି ଗଡ଼ି ଗତି କରିବା—
2. To creep; to crawl; to glide gently.
(Apte)

ସୃପ—ଗ୍ରା. ବି (ସଂ. ଶୂର୍ପ)—କୁଲା—Winnowing tray.
Sṛupa (ଦ୍ର—ପଦସାଦି ସାଦରେ ଭୁ ଦୋଷୀ ଥିଲେ ପ୍ରକାଶ ସିଦ୍ଧ
କୁଲୋ, କୁଲା ସୁପ ଶୂପରେ । ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।)

ସୃପମା—ସଂ. ବି (ସୃପ୍. ଧାତୁ+କର୍ତ୍ତୃ. ଅମକ୍; ସୃପମକ୍; ୧ମା. ୧ବ)—
Sṛupamā ୧ । ସର୍ପ (ହି. ଶ)—1. Serpent ୨ । ଶିଶୁ
(ହି. ଶ)—2. Infant. ୩ । ତପସ୍ୱୀ (ହି. ଶ)—
3. An anchorite.

ସୃପାଟ(ଟୀ)—ସଂ. ବି (ସୃପ୍. ଧାତୁ+କର୍ତ୍ତୃ. ଅଟ; ଈ)—୧ । ପରିମାଣ
Sṛupāṭa(ṭī) ଭେଦ (ଭରତ)—1. A unit of measure.
୨ । ରକ୍ତଧାର (ଗୋବର୍ଦ୍ଧନ)—2. A flow of
blood. ୩ । ଫୁଲର ତଳେ ଥିବା କ୍ଷୁଦ୍ର ପତ୍ର (ହି. ଶ)
3. Little leaves below a flower.

ସୃପାଟିକା—ସଂ. ବି (ସୃ ଧାତୁ+ପାଟ+କର୍ତ୍ତୃ. କ+ଆ)—ପକ୍ଷୀ ଥଣ୍ଟ
Sṛupāṭikā Beak of birds.

ସୃପ୍ର—ସଂ; ବି (ସୃପ୍ ଧାତୁ+କର୍ତ୍ତୃ. ର)—୧ । ଚନ୍ଦ୍ର (ଉଣାଦିକୋଷ)
Sṛupra —1. The moon. ୨ । ମଧୁ (ହି. ଶ)—
2. Honey. ସ. ବିଣ—୧ । ଚିକ୍କଣ; ସ୍ନିଗ୍ଧ (ହି. ଶ)—
1. Smooth; glossy. ୨ । ଖସଡ଼ା (ହି. ଶ)—
2. Slippery.

ସୃ ସୃଂଭ୍ (ଧାତୁ)—ସ. ବି—ହିଂସା କରିବା—
Sṛu(sṛum)bh (root) To injure; to hurt.

ସୃମର—ସ. ବି (ସୃ ଧାତୁ+ମର)—୧ । ପଶୁବିଶେଷ—1. A kind
Sṛumara of beast. ୨ । ବାଳମୃଗ (ଶବ୍ଦକଳ୍ପଦ୍ରୁମ)—
2. A young deer. ୩ । ଅସୁରବିଶେଷ (ହି.ଶ)—
3. Name of a demon. ବିଣ (ତ୍ରି)—ଗମନଶୀଳ
—Moving.

ସୃଷ୍ଟ—ସ. ବିଣ (ସୃଜ୍ ଧାତୁ+କର୍ମ. ତ)—୧ । ରଚିତ; ନିର୍ମିତ—
Sṛushṭa 1. Created. ୨ । କୃତ—2. Done. ୩ ।
(ସୃଷ୍ଟି—ବି) ଯୁକ୍ତ (ମେଦିନୀ)—3. Joined. ୪ । ବହୁଳ
(ମେଦିନୀ)—4. Excessive; numerous. ୫। ନିଶ୍ଚିତ
(ମେଦିନୀ)—5. Ascertained; determined.
୬। ତ୍ୟକ୍ତ (ମେଦିନୀ)—6. Abandoned. ୭ । ଭୂଷିତ
(ଅଜୟ)—7. Adorned. ୮ । ଉତ୍ପନ୍ନ (ହି. ଶ)
—8. Produced: ୯ । ବହିର୍ଗତ; ଉତ୍ସୃଷ୍ଟ—
9. Emitted; given out. ୧୦ । ଢଳା ହେବା;
ଢଳା ହେବା — 10. Poured out (Apte).
୧୧ । ମୁକ୍ତ—11. Let loose (Apte). ୧୨ । ନିକ୍ଷିପ୍ତ
—12. Discharged. ସ. ବି—ଛଦନ୍ଦକ; ଢେଙ୍କ
(ହି. ଶ)—Diospyrus Glutinosa(tree).

ସୃଷ୍ଟ ମାରୁତ—ସ.ବିଣ (ବହୁବ୍ରୀହି; ସୃଷ୍ଟ ହୁଏ ମାରୁତ ଯାହାଦ୍ୱାରା)—
Sṛushṭa māruta (ସନ୍ତ୍ରତ) ପେଟ୍ରେ ଔଷଧଦ୍ୱାରା ଉଦରସ୍ଥ ବାୟୁ
ବାହାର ଯାଏ—(medicine) Causing the wind
inside the belly to be emitted or discharged.

ସୃଷ୍ଟି—ସ, ବି (ସୃଜ୍ ଧାତୁ+ଭାବ. ତି)—୧ । ନିର୍ମାଣ; ରଚନା—
Sṛushṭi 1. Creating; building; making. ୨ ।
ନିସର୍ଗ; ସ୍ୱଭାବ —2. Nature. ୩ । (+କର୍ମ. ତି)
ବ୍ରହ୍ମାଣ୍ଡ; ବିଶ୍ୱ; ଜଗତ—3. Creation; universe.
୪ । ଶିଳ୍ପ—4. Handicraft; manufacture.
୫ । (+ଭାବ. ତି) ଦାନଶୀଳତା (ହି. ଶ)—
5. Liberality; bounty. ୬ । (+କର୍ମ. ତି)
ଗମ୍ଭାରି ଗଛ (ହି. ଶ)—6. Gmelina Arborea
tree. ୭ । ଯଜ୍ଞବେଦୀ ନିର୍ମାଣାର୍ଥ ବ୍ୟବହୃତ ଏକପ୍ରକାର
ଇଷ୍ଟକ (ହି. ଶ)—7. A kind of brick used
for raising a sacrificial alter. ୮ । (+ଭାବ
ତି) ମୋଚନ—8. Letting loose; emission.
୯ । ଦାନ— 9. Giving away; a gift (Apte).
ଦେ. ବି (ପ୍ରାଚୀନ ସାହିତ୍ୟ)—୧ । ସମୂହ—
1. Multitude; myriads. [ ଦ୍ର—ଯେଉଁପେ
କରନ୍ତି କବଡ଼ା ମାସେ ସୃଷ୍ଟି । ସେଉଁପେ ବାହାର ମୋ
ଧନୁ ଶର ସୃଷ୍ଟି—କୃଷ୍ଣସିଂହ. ମହାଭାରତ. ବନ । ]
୨ । ସମାଜ; ସାମାଜିକ ରୀତି ନୀତି—
2. Society; social customs and rules.

ସୃଷ୍ଟିକର୍ତ୍ତା—ସ. ବି. ପୁଂ—୧ । ବ୍ରହ୍ମା—1. Brahmā; the
Sṛushṭi karttā Creator. ୨ । ପରମେଶ୍ୱର—
2. God.

ସୃଷ୍ଟିକୃତ—ସ. ବି—୧ । ସୃଷ୍ଟିକର୍ତ୍ତା (ହି. ଶ)—1. Creator.
Sṛushṭikrut ୨ । ଯେଉଁପାପଡ଼ା (ହି. ଶ)—
2. Umeria parviflora (Apte).

ସୃଷ୍ଟିକୌଶଳ—ସ. ବି (୬ଷ୍ଠୀ ତତ୍)—ସୃଷ୍ଟିଚାତୁର୍ଯ୍ୟ (ଦେଖ)
Sṛushṭi kauśala Sṛushṭichāturjya (See)

ସୃଷ୍ଟି କ୍ରମ—ସଂ; ବି (୬ଷ୍ଠୀ ତତ୍)—ଜଗତର କ୍ରମବିକାଶ—The gradual evolution of the creation. [ଦ୍ର—ଭାଗବତ ଅନୁସାରେ ସୃଷ୍ଟିକ୍ରମ ଏହିପରି—କାଳ, କର୍ମ ଓ ସ୍ୱଭାବବଶତଃ ଗୁଣକ୍ଷୋଭ ଉପସ୍ଥିତ ହୁଅନ୍ତେ ମହତ୍ତତ୍ତ୍ୱର ଆବିର୍ଭାବ ହେଲା; ତହିଁରୁ ଅହଙ୍କାର ଜାତ ହେଲା। ସେ ଅହଙ୍କାର ଗୁଣଭେଦରେ, ସତ୍ତ୍ୱଗୁଣରୁ ମନ ଓ ଇନ୍ଦ୍ରିୟ ଅଧିଷ୍ଠାତୃ ଦେବତା, ରଜୋଗୁଣରୁ ଦଶ ଇନ୍ଦ୍ରିୟ ଏବଂ ତମୋଗୁଣରୁ ପଞ୍ଚତନ୍ମାତ୍ର ଓ ପଞ୍ଚ ମହାଭୂତରୂପେ ପରିଣତ ହେଲା। ଏହି ତତ୍ତ୍ୱସମସ୍ତ ଭଗବାନଙ୍କ ଦ୍ୱାରା ଅନୁପ୍ରାଣିତ ହୁଅନ୍ତେ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ସୃଷ୍ଟ ହୋଇ ବିରାଟ ପୁରୁଷରୂପେ ପ୍ରକାଶିତ ହେଲା।]
Srushti krama

ସୃଷ୍ଟି କ୍ରିୟା—ସଂ, ବି (୬ଷ୍ଠୀ ତତ୍)—ବିଶ୍ୱନିର୍ମାଣ କ୍ରିୟା—
Srushti kriyā The act of creating the universe.

ସୃଷ୍ଟି ଚାତୁର୍ଯ୍ୟ—ସଂ, ବି (୬ଷ୍ଠୀ ତତ୍)—୧। ନିର୍ମାଣକୌଶଳ—
Srushti chāturjya 1. Skill in creation. ୨। ବିଶ୍ୱ ସୃଷ୍ଟି କରିବାର ନୈପୁଣ୍ୟ—2. Skill in the creation of the universe

ସୃଷ୍ଟି ଛଡ଼ା—ଦେ· ବିଣ (ମଧ୍ୟପଦ)—୧। ଦୁନିଆରୁ ବହିର୍ଭୂତ; ଅଲୌକିକ—1. Extraordinary.
Srushti chhardā
सृष्टि छाडा ୨। ଅସ୍ୱାଭାବିକ—2. Unnatural; abnormal.
**दुनियासे बाहार** [ଦ୍ର—ସୃଷ୍ଟିଛଡ଼ା ଗୋଡଠାରେ ଦୁର୍ଯ୍ୟୋଗୀର ବାଡ଼। ନନ୍ଦକିଶୋର· ଶୀତାବକନକାବ।]

ସୃଷ୍ଟିଦା—ସଂ ବି—ଋଦ୍ଧି ନାମକ ଔଷଧ—
Srushtidā A kind of rare herb,

ସୃଷ୍ଟି ନାଶ—ସଂ, ବି (୬ଷ୍ଠୀ ତତ୍)—ବିଶ୍ୱର ଧ୍ୱଂସ—
Srushti nāsa The destruction of the universe.

ସୃଷ୍ଟିନୈପୁଣ୍ୟ—ସଂ. ବି (୬ଷ୍ଠୀ ତତ୍)—ସୃଷ୍ଟିଚାତୁର୍ଯ୍ୟ (ଦେଖ)
Srushti naipunya Srushtichāturjya (See)

ସୃଷ୍ଟିପ୍ରଦା—ସଂ. ବି—ଗର୍ଭଦାତ୍ରୀ କ୍ଷୁପ (ରାଜନିର୍ଘଣ୍ଟ); ପୁତ୍ରଞ୍ଜୀବ ବୃକ୍ଷ—
Srushtipradā Nagera Putranjiba (a medicinal bush).

ସୃଷ୍ଟି ପ୍ରଳୟ—ସଂ. ବି (୬ଷ୍ଠୀ ତତ୍)—ସୃଷ୍ଟି ନାଶ—Dissolution of the universe.
Srushti pralaya

ସୃଷ୍ଟି ବାହାର—ଦେ· ବିଣ—ସୃଷ୍ଟି ଛଡ଼ା (ଦେଖ)
Srushti bāhāra Srushti chhardā (See)
[ଦ୍ର—ତାଙ୍କ ସାଙ୍ଗ ସୃଷ୍ଟି ବାହାର, କାଳା ବାହୁ ଥାଇ ଗଲେ ବଡ଼ଲୁ ହାତ। ରଞ୍ଜ· ପ୍ରେମସୁଧାନିଧି।]

ସୃଷ୍ଟି ବୁଡ଼ା—ଦେ. ବିଣ—୧। ସର୍ବନାଶକାରୀ—1. Causing utter ruination. ୨। ସମାଜ ବିପ୍ଳବକାରୀ—2. Bringing about convulsions in society.
Srushti burdā
सर्वनेशे
**सृष्टि डुबानेवाला**

ସୃଷ୍ଟି ବୁଡ଼ିବା—ଦେ. କ—୧। ସର୍ବନାଶ ଘଟିବା—1. Being undone; utter ruination.
Srushti burdibā
सर्वनाश हओया [ଦ୍ର—ସ୍ୱପ୍ନ ନୋହିବ ଥାଇ ମରିଲେ ସେ ସୃଷ୍ଟି ବୁଡ଼ିବଟି ନୋହିବ। ରଞ୍ଜ. ପ୍ରେମସୁଧାନିଧି।]
**दुनिया डुबना**
୨। ସମାଜରେ ଉପ୍ଳବର ବିପ୍ଳବ ଉପସ୍ଥିତ ହେବା; କୁଳଧର୍ମର ଲୋପ—2. Fierce revolution in society.

ସୃଷ୍ଟି ରକ୍ଷଣ(ରକ୍ଷା)—ସଂ· ବି (୬ଷ୍ଠୀ ତତ୍)—ଜଗତର ରକ୍ଷା ବା ପାଳନ—Preservation of the creation.
Srushti rakshana(rakshā)

ସୃଷ୍ଟି ସଂହାର—ସଂ. ବି (୬ଷ୍ଠୀ ତତ୍)—ସୃଷ୍ଟି ନାଶ—Dissolution of the universe.
Srushti samhāra

ସୃଷ୍ଟି ସ୍ଥିତି ପ୍ରଳୟ—ସଂ. ବି (ଦ୍ୱନ୍ଦ୍ୱ)—ଜଗତର ସୃଷ୍ଟି, ରକ୍ଷଣ ଓ ପ୍ରଳୟ—The creation, preservation and dissolution of the universe.
Srushti sthiti pralaya

ସୃ (ଧାତୁ)—ସଂ—ହିଂସା କରିବା—
Srū (root) To spite; to injure.

ସେ—ଦେ. ସର୍ବ (ସଂ ତଦ୍ ଶବ୍ଦ; ପୁଂ=ସଃ; ସ୍ତ୍ରୀ. ସା; କ୍ଳୀବ—ତତ୍)
Se —୧। (ପୁଂ. ସ୍ତ୍ରୀ ଓ କ୍ଳୀ) ତାହା; ସେହି; ନିର୍ଦ୍ଦିଷ୍ଟ ବସ୍ତୁ ବା (ଏ - ବିପରୀତ) ବ୍ୟକ୍ତି—1. He, she or that. ୨। ଅନୁପସ୍ଥିତ ବ୍ୟକ୍ତି ବା ବସ୍ତୁ—2.That (absent person or thing). [ଦ୍ର—ଅନୁପସ୍ଥିତ ବା ପ୍ରସଙ୍ଗର ଦୂରବର୍ତ୍ତୀ ବ୍ୟକ୍ତିଙ୍କୁ ବା ବସ୍ତୁକୁ 'ସେ' ବୋଲଯାଏ। ଉପସ୍ଥିତ ବା ପ୍ରସଙ୍ଗସମ୍ପୃକ୍ତ ବ୍ୟକ୍ତିଙ୍କୁ ବା ବସ୍ତୁକୁ "ଏ" ବୋଲଯାଏ।]
से
**वह** 

ସେ ଅବଧି—ଦେ.ଅ—ତଦବଧି;ସେହି ସମୟଠାରୁ—
Se abadhi From that time.
से अवधि **उस समयसे**

ସେଆ(ୟା)ର୍—ବୈଦେ. ବି (ଇଂ, ସେଅର୍)—ସମ୍ପତ୍ତିର ବା ବ୍ୟବସାୟ ସ୍ୱତ୍ୱରେ ଅଂଶ—Share.
Seā(yā)r
सेयार **सेयार**

ସେଆର୍ ବସିବା—ଦେ. କ୍ରି—କୌଣସି ବ୍ୟବସାୟରେ ବା ବ୍ୟୟରେ (ଏକାଧିକ ବ୍ୟକ୍ତି) ଭାଗିଦାର ହେବା—To go into shares in anything with others.
Seār basibā
सेयार बसा
**सेयारदार होना**

ସେଆର୍ ହୋଲ୍ଡ(ଲ୍ଡା)ର୍—ବୈଦେ· ବି (ଇଂ)—ଅଂଶଭାଗୀ; ଅଂଶୀଦାର—Share holder; cosharer.
Seār holda(ldā)r
सेयार होलडार **सेयार होल्डार**

ସେଇ—ଦେ. ସର୍ବ (ସଂ. ତଦ୍ ଓ ହି)—ସେ; ସେହି; ନିର୍ଦ୍ଦିଷ୍ଟ ବ୍ୟକ୍ତି ବା ବସ୍ତୁ—He, she or that; the very; the same; self-same. [ଦ୍ର—ସେଇ ଗାଣ୍ଡୀବ ସେଇ ହାତ, ସେଇ ଗାଣ୍ଡୀବ ଏବେ ମାଥ—ତଗ।] [ଦ୍ର—ଅନୁପସ୍ଥିତ ବା ପ୍ରସଙ୍ଗର ଦୂରବର୍ତ୍ତୀ ବ୍ୟକ୍ତି ବା ବସ୍ତୁକୁ ସେଇ ବୋଲଯାଏ।] ଗ୍ରା. ବି—ସ୍ୟାହି; କାଳି; ମସି—Ink.
Sei
(ବିପରୀତ—ଏଇ)
सेई **वहि**
कालि
**सयाही**

ସେଇଅ(ଯ୍ୱା)—ଦେ. ସଂ—୧ । ତାହାହିଁ—1. That much. ୨।
Seiā(yā) ସେହିତା—2. The same. [ଉ—ତାହା ଥେଇଅ,
(ଏଇଅ—ବିପରୀତ) ଯାହା କରୁଥିଲ ସେଇଅ—ତଗ ।]
তাই वही

ସେଇ କ୍ଷ(କ୍ଷି, ଖି)ଣି—ଦେ. ଅ (ସଂ. ତତକ୍ଷଣଂ)—୧ । ତତ୍‌କ୍ଷଣାତ୍—
Sei ksha(kshi, khi)ṇi 1. Immediately; at
তক্ষুনী once. ୨ । ସେଇ ସମୟରେହିଁ—
उसी समय 2. Then and there.
[ସେଇ କ୍ଷ( କ୍ଷି, ଖି )ଣିକା, ସେଇ ଛଣା, ସେଇ ଛଣିକା,
ସେଇ ଛୁଣି(ଣୁ), ସେଇ ଛ(ଛୁ)ଣି(ଣୁ)କା]—ଅନ୍ୟରୂପ

ସେଇ ଘଡ଼ି—ଦେ. ବି—୧ । ସିହାଇ ଘଡ଼; ମସ୍ୟାଧାର—1. Inkpot
Sei gharḍi ୨ । ସେହି ସମୟ—2. That hour.
দোয়াত मसिहानी

ସେଇଟା—ଦେ. ସଂ (ଅନାଦରାର୍ଥକ)—ସେହି ଗୋଟାକ; ସେହି ବ୍ୟକ୍ତି
Seiṭā ବା ବସ୍ତୁଟା—That person or thing (in
(ଏଇଟା—ବିପରୀତ) contempt) সেটা, সেইটা वही

ସେଇଟି—ଦେ. ସଂ (ଆଦରାର୍ଥକ)—୧। ସେହି ବସ୍ତୁ ବା ବ୍ୟକ୍ତିଟି—
Seiṭi 1. That person or thing (in fondness.) ୨ ।
সেটি, সেইটি वहीସେଇତ; ତାହାହିଁ—2. The very same.

ସେଇଠଉଁ—ଦେ. ଅ—ସେଇଠୁଁ ( ଦେଖ )
Seiṭhaun̄ Seiṭhun̄ ( See )
(ଏଇଠଉଁ—ବିପରୀତ)

ସେଇଠା—ଦେ. ସଂ (ସଂ. ତତ୍ ଓ ସ୍ଥାନ)—ସେହି ସ୍ଥାନ—
Seiṭhā That place.
(ଏଇଠା—ବିପରୀତ) সেথা वह स्थान

ସେଇଠାକୁ—ଦେ. ଅ—ସେଠାକୁ; ସେ ସ୍ଥାନକୁ—
Seiṭhāku To that place.
(ଏଇଠାକୁ—ବିପରୀତ) সেথায় उसस्थानको

ସେଇଠାରୁ—ଦେ. ଅ—୧ । ସେହି ସ୍ଥାନରୁ—1. Thence.
Seiṭhāru ୨। ସେହି କାଳରୁ—2. From that time.
(ଏଇଠାରୁ—ବିପରୀତ) সেথাথেকে उसस्थानसे

ସେଇଠାରେ—ଦେ. ଅ—ସେଠାରେ; ସେ ସ୍ଥାନରେ—
Seiṭhāre There; at that place.
(ଏଇଠାରେ—ବିପରୀତ) সেথায় उसस्थानमे

ସେଇଠି(ଠିଁ)—ଦେ. ଅ—ସେହି ସ୍ଥାନରେ; ସେହିଠାରେ—
Seiṭhi(ṭhin̄) There.
(ଏଇଠି—ବିପରୀତ) সেথায় उसस्थानमें

ସେଇଠିକା—ଦେ. ବଣ—ସେହି ସ୍ଥାନର; ତତ୍ରତ୍ୟ—Of that place.
Seiṭhikā সেথাকার उसस्थानका
( ସେଇଠିକାର—ଅନ୍ୟରୂପ )
( ଏଇଠି, ଏଇଠିକାର—ବିପରୀତ )

ସେଇଠିକି—ଦେ. ଅ—ସେଠାକୁ; ସେହି ସ୍ଥାନକୁ—To that place.
Seiṭhiki সেখানে उसस्थानको
( ଏଇଠିକି—ବିପରୀତ )

ସେଇଠୁ(ଠୁଁ)—ଦେ. ଅ—୧ । ସେଠାରୁ; ସେହି ସ୍ଥାନରୁ—1. Thence;
Seiṭhu(ṭhun̄) from that place. ୨ । ତତ୍ପରେ—
সেথাথেকে, তারপর 2. Thereafter; after that.
उसस्थानसे, उसकाबाद [ ଏଇଠୁଁ—ବିପରୀତ ]

ସେଇତ—ଦେ. ସଂ—ସେ ନିଶ୍ଚୟ; ସେଇ—The very same
Seita [ ଉ—ସେଇତ ସେଇ, ସେଇ ଥିଲେ ସେଇ ଦୁଅନ୍ତା
সেইত वहितो ସେଇ—ଜାଆଁ ଦଅ । ]
[ ଏଇତ—ବିପରୀତ ]

ସେଇତା—ଦେ. ସଂ—ତାହାହିଁ—That only; the same.
Seitā তাই वही [ ଏଇତା—ବିପରୀତ ]

ସେଇଥିକି—ଦେ. ଅ—୧ । ସେହି କାମକୁ—1. For that pur-
Seithiki pose. ୨ । ସେହି କାରଣରୁ—2. There-
সেইজন্যে उसकेलिये, उसकारनसे fore.
ସେଇଥିପା(ପାଁ)ଇଁ, ସେଇଥିଲଗି,
ସେଇଥିଯୋଗୁଁ( ଗୁଁ, ଗେ ) } ଅନ୍ୟରୂପ
[ ଏଇଥିକି—ବିପରୀତ ]

ସେଇଥି(ଥୁ)ରୁ—ଦେ. ଅ—୧ । ସେଇ କାରଣରୁ—1. Therefore.
Seithi(thu)ru ୨ । ତତ୍ପରେ—2. After that. ୩ ।
সেই কারণে, তারপর, তাইথেকে ତହିଁରୁ—3. From that
उस कारनसे, उसके बाद, उससे

ସେଇଥିରେ—ଦେ. ଅ—ସେଥିରେ; ତହିଁରେ—In that. [ଉ—
Seithire ତାଙ୍କୁ ଯେ ଯାହା କହେଇଲ, ସେ ସେହିଥିରେ ଅଳଲେ
তাতে उसमें କୁନ୍ତଳାକୁମାରୀ. ନଅଭୁଣ୍ଡି । ]
[ ଏଇଥିରେ—ବିପରୀତ ]

ସେଇ ଦୁଆତ—ଦେ. ବି—ସିହାଇ ଘଡ଼—Inkpot.
Sei duāta দোয়াত मसिहनी

ସେଇନା(ଲା)ଗି—ଗ୍ରା. ଅ—ସେଇଯୋଗୁଁ ( ଦେଖ )—
Seinā(lā)gi Seijogun̄ ( See ).
সেইজন্য उसलिये

ସେଇ ନା(ଲା)ଗେ—ଗ୍ରା. ଅ—ସେଇଲଏ ( ଦେଖ )—
Sei nā(lā)ge Seilāe ( See)
তখনি उसी समय

ସେଇପରି—ଦେ. ବଣ—ତତ୍‌ସଦୃଶ—Like that.
Seipari সেই রকম उसके जैसे
ସେହିପରି, ସେଇପରିକା,
ସେହିମିତି, ସେହିମିତକା } ଗ୍ରାମ୍ୟରୂପ
[ସେଇମଳକା, ସେଇମତ, ସେଇମତକା—ଅନ୍ୟରୂପ ]

ସେଇ ଯୋଗୁଁ(ଗେ)—ଦେ. ଅ—ସେହି କାରଣରୁ—For that rea-
Sei jogun̄(ge) son; owing to that.
সেইজন্যে उसकारणसे
[ ସେଇପାଇଁ, ସେଇଲଗି—ଅନ୍ୟରୂପ ]

ସେଇ ଲଏ(ଗେ)—ଦେ. ଅ ( ସଂ. ତତ୍ ଓ ଲଗ୍ନ )—ତତ୍‌କ୍ଷଣାତ୍;
Seilāe(ge) ସେହିକ୍ଷଣରେ—Instantaneously; at once
তখনি उसीवक्त immediately. [ ଉ—ମୋ ଘର
[ଏଇଲଏ, ଏଇଲଗେ—ବିପରୀତ] ଲଙ୍କାପୁର,କୋହବା କାଗଜନ,
ଘର ଗିଲବା ସେଇଲଗେ ଲୋ—କବିସୂର୍ଯ୍ୟ. ସଙ୍ଗୀତ । ]

ସେଉ(ଓ)—ଦେ. ବ ( ସଂ ସେବ; ଫା. ସେଓ୍ )—ସିଓ ଫଳ;
Seu(o) କାଶ୍ମୀରଦେଶଜାତ ଖାଦ୍ୟଫଳବିଶେଷ
ସଂ. ନାମ—ସେବ, ସେବ, —Apple; Pyrus Malus.
ସେବଗୁଡ଼ାଫଳ, [ ଦ୍ର—ଏହା ବହୁତ ଶୀତପ୍ରଧାନ-
ସିଂହଗୁଡ଼ାଫଳ ଦେଶୀୟ ଫଳ । ଏ ଗଛ ବହୁକାଳ
ଆପେଲ୍, ସେଉ ହେଲା ଭାରତକୁ ଅଣାଯାଇ କାଶ୍ମୀର,
सेव ପଞ୍ଜାବ, କୁମାଉନ, ଗଢ଼ୱାଲ,କାଙ୍ଗଡ଼ା
ଆଦି ଅଞ୍ଚଳରେ କୃଷି କରାଯାଇ ବହୁଳ ଫଳୁଅଛି ଓ ଭାରତରେ ଅନ୍ୟ ଅଞ୍ଚଳକୁ ଏ ଫଳ ପଠାଯାଇ ବିଦେଶୀ ଖାଦ୍ୟ ଫଳରୂପେ ବିକି ହେଉଅଛି । ବ୍ରହ୍ମଦେଶର ଖାସିଆ ପାହାଡ଼ରେ ଜଙ୍ଗଲୀ ସେଓ ଫଳେ; କିନ୍ତୁ ଏହା ଅଖାଦ୍ୟ । ]

ଏ ଗଛର ପତ୍ର ଈଷତ୍ ବୃତ୍ତାକାର ଓ ଦେଖିବାକୁ ଶ୍ୱେତାଭ ଓ ଏଥିରେ ଲୋମ ଥାଏ । ଫୁଲ ଈଷତ୍ ଶ୍ୱେତ ଲୋହିତାଭ ଓ ଧଳା । ଫଳ ପାଚିଗଲେ ଈଷତ୍ ହଳଦିଆ ଓ କେତେକ ଫଳ ତୋଫା ନାଲି ହୁଏ । ଏ ପାଚିଲା ଫଳ ଭିତରର ଶସ ଖାଇବାକୁ ଈଷତ୍ ମିଠା ଓ କୋମଳ ଅଥଚ ଟାଣୁଆ । ଦନ୍ତହୀନ ବ୍ୟକ୍ତି ଏହାକୁ ଦାନ୍ତପାଟିରେ ଚିପି ଦେଲେ ଏହା ମିଳାଇ ଯାଏ । କେତେକ ଫଳରେ ଟିକେ ଅପେକ୍ଷା ଖଟା ସ୍ୱାଦ ବେଶି ଥାଏ । ଏ ଗଛ ଫଗୁଣଠାରୁ ବୈଶାଖ ପର୍ଯ୍ୟନ୍ତ ଫୁଲ ଧରେ ଓ ଜ୍ୟେଷ୍ଠରେ କଷି ଧରେ ଓ ଭାଦ୍ର ମାସରେ ଫଳ ଉତ୍ତମରୂପେ ପାଚି ଯାଏ । ଭାବପ୍ରକାଶ ଅନୁସାରେ ଏ ଫଳ ବାତପିତ୍ତ ନାଶକ, ପୁଷ୍ଟିକର, କଫଜନକ, ମଧୁରବିପାକ, ଶୀତଳ ଓ ଶୁକ୍ରକର । ଶ୍ରୀ: ସପ୍ତଦଶ ଶତାବ୍ଦୀରେ ରଚିତ ଭାବପ୍ରକାଶର ପୂର୍ବବର୍ତ୍ତୀ କୌଣସି ସଂସ୍କୃତ ବୈଦ୍ୟକ ଗ୍ରନ୍ଥରେ ଏ ଫଳର ନାମୋଲ୍ଲେଖ ନାହିଁ —ହ୍ର. ଶ । ]

ସେଉଟା—ଦେ. ସ୍ୱ ( ଅନାଦରାର୍ଥକ )—ସେହି ବ୍ୟକ୍ତି ବା ବସ୍ତୁଟା—
Seuṭā That person or thing; ( used in contempt.
সেটা वह
(ସେଉଟି—ଆଦରାର୍ଥକ) (ଏଉଟା—ବିପରୀତ)

ସେଁ—ଦେ. ଅ ( ଧ୍ୱନ୍ୟନୁକରଣ )—୧ । ତାତିଲା ଧାତୁ ଉପରେ ପାଣି
Señ ପଡ଼ିଲେ ଯେଉଁ ଶବ୍ଦ ଜାତ ହୁଏ—1. Hissing sound
ছুঁক छन of water dropped on a hot metal.
( ସେଁ ସେଁ—ଅନ୍ୟରୂପ ) ୨ । ମନ୍ଦ ଅଗ୍ନି ଉପରେ ବହୁକ୍ଷଣ ଜଳକୁ ଗରମ କଲେ ତହିଁରୁ ଜାତ ଶବ୍ଦ—2. Feeble simmering sound made by water boiled long over slow fire. ୩ । ଜଳ ଉପରେ ଜଳ ଫୁଟିବା ପୂର୍ବରୁ ହେବା କ୍ଷୀଣ ଶବ୍ଦ—3. Simmering sound of water which is beginning to boil. ୪ । ସୁଁ ସୁଁ ଠାରୁ ଉଚ୍ଚତର ଶବ୍ଦ—
4. Sound louder than 'Suñ Suñ.'

ସେଁଇ(ଇ)ବା—ଦେ. କ୍ରି ( ସଂ ସିବ୍ ଧାତୁ )—ସିଲାଇ କରିବା—
Señi(i) ba সিআঁ सीना To sew.

ସେଁତର(ରେ)—ପ୍ରାଦେ ( ଭଦ୍ରକ ) ଅ—୧ । ସେଥିରେ—1. In
Señtara(re) that. ୨ । ତହିଁରେ—
2. In that matter.

ସେଁତରା ( ଇତ୍ୟାଦି )—ଦେ. ବ—ସନ୍ତରା ଇତ୍ୟାଦି ( ଦେଖ )—
Señtarā (etc ) Santarā etc ( See )

ସେଁତସେଁତିଆ—ଦେ. ବି—ସନ୍ତସନ୍ତିଆ ( ଦେଖ )
Señtaseñtiā Santasantiā ( See)

ସେଁତା—ପ୍ରାଦେ (ସମ୍ବଲପୁର) ସ୍ୱ—ସେନ୍ତା ( ଦେଖ )
Señtā Sen-tā (See )

ସେଁପୁଟ—ପ୍ରାଦେ. ( ଲହିଆ ) ବ—ଦୀର୍ଘଶ୍ୱାସ—
Señputa Sigh.

ସେଁପୁଟ ସେଁପୁଟ ହେବା—ପ୍ରାଦେ. ( ବଲାଙ୍ଗିର ପାଟଣା ) କ୍ରି—ଅଣନିଶ୍ୱାସୀ ହେବା—
Señputa señputa hebā
To feel choked.

ସେଁର୍ରା—ପ୍ରାଦେ. ( ବଲାଙ୍ଗିର ପାଟଣା ) ବିଣ—ନିର୍ଲଜ୍ଜ—
Señrrā Shameless.

ସେଁ ସୁରକୁଟୀ—ପ୍ରାଦେ. (ଯାଜପୁର ) ବ—ଜଳୀୟ ଔଷଧି ବୃକ୍ଷବିଶେଷ—
Señ surkuṭi A kind of aquatic medicinal plant.

ସେଁସେଁଇୟାଁ—ଦେ. ବିଣ, ପୁଂ—ସେଁ ସେଁ ଶବ୍ଦ କରୁଥିବା—
Señseñiyāñ Making a simmering sound.
শুঁশুঁয়ে छन छनकरने वाला
[ ସେଁସେଁୟାଁ—ଅନ୍ୟରୂପ ସେଁସେଁଇଁ—ସ୍ତ୍ରୀ ]

ସେକ(ଖ)—ବୈଦେ. ବ (ଫା. ଶେଖ୍)—୧ । ମୁସଲମାନଙ୍କର ସାମାଜିକ
Sek(kh) ଶାଖା ଗତ ଉପାଧିବିଶେଷ—1. Shaikh; a social
সেখ सेख title of one branch of Mahomedans.

[ ଦ୍ର—ଏହି ପଦ ନାମ ପୂର୍ବରେ ଲାଗେ । ଯଥା—ସେକ୍ ସିରାଜ ଉଦ୍ଦିନ୍ । ଭାରତକୁ ଆସିଥିବା ମୁସଲମାନମାନଙ୍କୁ ସେକ, ସୟଦ, ମୋଗଲ, ପଠାଣ, ଏହି ଚାରି ଶ୍ରେଣୀରେ ବିଭକ୍ତ କରି ଭାରତବାସୀମାନେ ପୂର୍ବେ ଡାକୁଥିଲେ । ]
୨ । ମୁସଲମାନ୍ ସାମନ୍ତ ନୃପତି ବା ଜମିଦାର ବା ଧନୀମାନଙ୍କ ଉପାଧି—2. A title of Mahomedan Feudatory Chiefs or rich Mahomedans.

ସେକ(ଖ)ଚିଲ ( ଇତ୍ୟାଦି )—ଦେ. ବ ଓ ବିଣ—ସେଙ୍କଚିଲ ଇତ୍ୟାଦି
Sek[kh]-chili (etc) [ ଦେଖ ]—Señkachili etc
[ ସେକ(ଖ)ଚିଲିଆ—ଅନ୍ୟରୂପ ] [ See ]

ସେକ୍ସ୍‌ପିଅର୍—ଦେ. ବ (ଇଂ. ନାମ)—ସେକ୍ସ୍‌ପିଅର୍ ( ଦେଖ )
Sek-s-piar Seks-piar ( See )

ସେକ୍ ହା[ହେ, ହ୍ୟା]ଣ୍ଡ—ବୈଦେ. ବ ( ଇଂ. ଶେକ୍ ହାଣ୍ଡ୍ )—
Sek hā[he, hyā]nd ବନ୍ଧୁମାନଙ୍କର ମିଳନ ସମୟରେ ପରସ୍ପର
সেক্ হ্যাণ্ড ସମ୍ବର୍ଦ୍ଧନା କରିବା ସୂଚକ କରତଳମର୍ଦ୍ଦନ—

सेक हैंयाड Shake-hand; mutual shaking of hands when two friends meet.

ସେକ୍ [ଧାତୁ]—ପ—ଗତି କରିବା—
Sek [root]: To move.

ସେକ—ପ. ବି (ସଂ. ସିଚ୍ ଧାତୁ+ଭାବ ଅ)—ଛେଚା; ସେଚନ; ଜଳ ଅଦି
Seka ଛିଞ୍ଚିବା—Sprinkling. ଦେ. ବି ( ସଂ. ସ୍ୱିଦ୍ ଧାତୁ
সেক सेंक, सेंक ହିନ୍ଦୀ ସେଙ୍କ୍ ଧାତୁ=ଜାଳିବା; ତତାଇବା )—
୧ । ଦେହ ଅଙ୍ଗରେ ଅନ୍ୟ ଉଷ୍ଣବସ୍ତୁ ସାହାଯ୍ୟରେ ଉତ୍ତାପ ପ୍ରୟୋଗ କରିବା; ସ୍ୱେଦନ; ସେକିବା କର୍ମ—1. Fomenting; warming; toasting. ୨ । ବାଉଁଶ ବଙ୍କା ହୋଇଥିଲେ ବଙ୍କା ସ୍ଥାନର ବାଙ୍କର ଭିତର ପାଖକୁ କଟୁରିରେ ହାଣି ଉକ୍ତ ବାଉଁଶକୁ ସଳଖି ଦେଇ ସେହି ହଣା ଯାଗାରେ ଖଣ୍ଡିଏ କାମଚୁଷ୍ଟ କାଷ୍ଠଖଣ୍ଡ ଲଗାଇବା କ୍ରିୟା—2. An operation for straightening a bent piece of bamboo by making a cut inside the bend and driving a wedge into the split part. ୩ । କୌଣସି କଠିନ ବସ୍ତୁ [ ଯଥା—ରୁଟି, ବାଉଁଶ ବା ବେତ ବାଡ଼ି ] କୁ ଅଗ୍ନି ଉପରେ ଧରି ତାକୁ ଉତ୍ତପ୍ତ କରିବା—
3. Heating of any solid thing.

ସେକ[କେ]ଣ୍ଡ୍—ବୈଦେ. ବି ( ଇଂ. ସେକଣ୍ଡ୍=୨ୟ ଚପଳ ସମୟ)—
Seka(ke)ṇḍ ୧ । ଏକ ମିନିଟ୍‌ର ୬୦ ଅଂଶରୁ ଏକ ଅଂଶ ଏକ
সেকেণ্ড ଘଣ୍ଟାର ୩୬୦୦ ଅଂଶରୁ ଏକ ଅଂଶ—1. Second
सेकण्ड (time). [ ଦ୍ର—୧ ଘଣ୍ଟା=୬୦ ମିନିଟ୍, ୧ ମିନିଟ୍=୬୦ ସେକଣ୍ଡ୍ । ] ୨ । ଏକ ସମକୋଣରେ ୩୨୪୦୦୦ ଭାଗରୁ ଏକଭାଗ—2. Second ( of an angle ). [ ଦ୍ର—ସମକୋଣ=୯୦ ଡିଗ୍ରୀ, ୧ ଡିଗ୍ରୀ =୬୦ ମିନିଟ୍, ୧ ମିନିଟ୍=୬୦ ସେକଣ୍ଡ୍ । ] ବିଣ—ଦ୍ୱିତୀୟ—Second. [ଯଥା—ସେକଣ୍ଡ୍ କ୍ଲାସ୍, ସେକଣ୍ଡ୍ କ୍ୱାର୍ଟର୍ ପରୀକ୍ଷା । ]

ସେକ(କେ)ଣ୍ଡ୍ ଇଅର୍ କ୍ଲାସ୍—ବୈଦେ. ବି (ଇଂ)—(ବିଦ୍ୟାଳୟାଦିର)
Seka(ke)ṇḍ iar klās ଦ୍ୱିତୀୟ ବାର୍ଷିକ ଶ୍ରେଣୀ—The
সেকেণ্ড ইয়ৰ ক্লাস second year class (of a college
सेकण्ड ईयर क्लास etc).

ସେକ(କେ)ଣ୍ଡ୍ କଣ୍ଟା—ବେ. ବି (ଇଂ. ସେକେଣ୍ଡ୍+ସଂ. କଣ୍ଟକ)—
Seka(ke)ṇḍ kaṇṭā ସେକଣ୍ଡ୍ ହାଣ୍ଡ୍ ( ଦେଖ )—
Sekaṇḍ hāṇḍ ( See )

ସେକ(କେ)ଣ୍ଡ୍ କ୍ଲାସ୍—ବୈଦେ. ବି (ଇଂ)—୧ । ସ୍କୁଲର ଦ୍ୱିତୀୟ ଶ୍ରେଣୀ
Seka(ke)ṇḍ klās —1. Second class of a school.
সেকেণ্ড ক্লাস ୨ । ଥିଏଟରର ଦର୍ଶକ ଓ ରେଲର ବା ଜାହାଜର
सेकण्ड क्लास ଯାତ୍ରୀମାନଙ୍କ ପ୍ରଥମ ଶ୍ରେଣୀର ନିମ୍ନତର ଶ୍ରେଣୀ—
2. Second class of a railway carriage or theatre or ship. [ ଦ୍ର—ଏହି ଇଂରାଜୀ ସେକଣ୍ଡ୍ ଶବ୍ଦ ସଙ୍ଗେ ଅନେକଗୁଡ଼ିଏ ଇଂରାଜୀ ଶବ୍ଦ ଲଗି ଓଡ଼ିଆ ଭାଷାରେ ବ୍ୟବହୃତ ହେଉଛି । ଯଥା ସେକଣ୍ଡ୍ ମାଷ୍ଟର, ସେକଣ୍ଡ୍ ବେଲ୍, ସେକଣ୍ଡ୍ ଇଅର୍, ଇତ୍ୟାଦି । ]

ସେକ(କେ)ଣ୍ଡ୍ ହାଣ୍ଡ୍—ବୈଦେ. ବି (ଇଂ)—ଘଣ୍ଟାର ସେକଣ୍ଡ୍ ଜ୍ଞାପକ ସରୁ
Seka(ke)ṇḍ hāṇḍ ଶଳାକା—The second hand of a
সেকেণ্ড হাণ্ড clock or watch. ବିଣ—ଥରେ ବ୍ୟବହାର
सेकेंड हैंयाड କରିସିବା ପରେ ବିକ୍ରି କରିବା ପାଇଁ ଉପସ୍ଥିତ ବା ବିକ୍ରିତ (ଦ୍ରବ୍ୟ)—Second hand ( article ); ( an article which has been once used before its intended sale or gift.

ସେକ(କେ)ଣ୍ଡା, ଣ୍ଡେ)ରୀ—ଦେ. ବିଣ (ଇଂ. ସେକଣ୍ଡାରୀ)—ପ୍ରାଥମିକ
Seka(ek)ṇḍa(ṇḍā, ṇḍe)ri (ଶିକ୍ଷା)ର ପରବର୍ତ୍ତୀ ଓ ଉଚ୍ଚ (ଶିକ୍ଷା)
সেকেণ্ডৰী ର ପୂର୍ବବର୍ତ୍ତୀ—Secondary (education).
सेकेंडरी

ସେକ(କେ)ଣ୍ଡରୀ ସ୍କୁଲ୍—ବୈଦେ. ବି (ଇଂ)—ଯେଉଁ ବିଦ୍ୟାଳୟରେ
Seka(ke)ṇḍari skul ପ୍ରାଥମିକ ଶିକ୍ଷାର ପରବର୍ତ୍ତୀ ଶିକ୍ଷା ଦିଆଯାଏ
(ସେକଣ୍ଡରୀ ବିଦ୍ୟାଳୟ—ଅନ୍ୟରୂପ) —Secondary school.
সেকেণ্ডৰী স্কুল [ଦ୍ର—ମିଡ଼ିଲ୍ ଭର୍ଣ୍ଣାକୁଲର୍, ମିଡ଼ିଲ୍ ଇଂଲିଶ୍ ବା
सेकेंडरी स्कूल ମାଇନର୍ ସ୍କୁଲ୍ ଓ ହାଇ ସ୍କୁଲ୍‌କୁ ସେକଣ୍ଡରୀ ସ୍କୁଲ୍ କୁହାଯାଏ । ]

ସେକ(କୁ)ତୁଣୀ—ଦେ. ବି. ସ୍ତ୍ରୀ—ଯେଉଁ ସ୍ତ୍ରୀ ନବଜାତ ଶିଶୁକୁ ଓ ମାତାକୁ
Seka(ku)tuṇī ଅନ୍ତୁଡ଼ିଶାଳରେ ସେକୁ ଥାଏ—A woman
দাই or nurse who foments the baby and
सेंकनेवाली the newly delivered mother.

ସେକ ଦେବା—ଦେ. କ୍ରି—୧ । ସେକିବା ( ଦେଖ )—1. Sekibā
Seka debā (See) ୨ । ବଙ୍କା ବାଉଁଶର ବାଙ୍କିଥିବା ଅଂଶର
সেক দেওয়া ପେଟରେ କଟୁରିରେ କଣ୍ଟେ ମାରି ତାକୁ ସଳଖ
सेंक देना କରିବା—2. To straighten a bent bamboo by driving a wedge into a split cut in the concave part.

ସେକନ୍ଦର୍—ବୈଦେ. ବି (ନାମ) (ଗ୍ରୀକ୍—ସେକନ୍ଦର୍; ଇଂ. ଆଲେକ୍-
Sekandar ଜାଣ୍ଡର୍ )—ଖ୍ରୀଷ୍ଟପୂର୍ବ ଚତୁର୍ଥ
[ସେକନ୍ଦର୍ ବାଦସା(ସାହା)—ଅନ୍ୟରୂପ] ଶତାବ୍ଦୀରେ ଭାରତକୁ
সেকন্দৰ ଆକ୍ରମଣ କରିଥିବା ଗ୍ରୀସ୍ ଦେଶର ମହାବୀର ରାଜା;
सिकन्दर ଅଲେକ୍‌ଜାଣ୍ଡର୍—Alexander the Great
[ଦ୍ର—ଏ ଜଣେ ପ୍ରଧାନ ବୀର ଥିଲେ । ଏ ବହୁଦେଶ ଜୟ କରି ଶେଷରେ ଭାରତକୁ ଆସିଥିଲେ । ପଞ୍ଜାବର ଅନେକ ରାଜ୍ୟ ଜୟ କରିବା ପରେ ପୁରୁ ନାମକ ଜଣେ ରାଜା ତାଙ୍କୁ ବାଧା ଦେଲେ, ମାତ୍ର ପରାଜିତ ହେଲେ । ଏହାଙ୍କର ସୈନ୍ୟମାନେ ଆଉ ଆଗକୁ ଯିବାକୁ ଅନିଚ୍ଛା ପ୍ରକାଶ କରିବାରୁ ଏ ବାଧ୍ୟ ହୋଇ ନିଜ ଦେଶକୁ ଫେରି ଯିବା ସମୟରେ ବାଟରେ ପ୍ରାଣତ୍ୟାଗ କଲେ । ]

ସେକନ୍ଦର୍ ସାହ(ହା)—ଦେ. ବି (ନାମ)—ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀର
Sekandar sāh(hā) ବଙ୍ଗର ଜଣେକ ସ୍ୱାଧୀନ ମୁସଲମାନ୍

সেকন্দর সাহ্ ରାଜା—Name of a Mahomedan
सिकन्दर साह king of Bengal.
[ଦ୍ର—ଏ ସମ୍ସୁଦ୍ଦିନ୍ ଇଲୟାସଙ୍କ ପୁତ୍ର । ଏ ୧୩୬୧ରେ ରାଜା ହୋଇଥିଲେ ଓ ଗୌଡ଼ଠାରୁ ପାଣ୍ଡୁଅଠାକୁ ରାଜଧାନୀ ଉଠାଇ ନେଇଥିଲେ; ସେଠାରେ ସୁପ୍ରସିଦ୍ଧ ଆଦିନା ମସ୍ଜିଦ୍ ନିର୍ମାଣ କରିଥିଲେ । ଏହାଙ୍କ ଅମଳରେ ଅନେକ ବଙ୍ଗୀୟ ହିନ୍ଦୁ ମୁସଲମାନ୍ ଧର୍ମ ଗ୍ରହଣ କରିଥିଲେ । ଏହାଙ୍କର ବିଦ୍ରୋହୀ ଜ୍ୟେଷ୍ଠପୁତ୍ରଙ୍କୁ ଏ ଦମନ କରିବାକୁ ଯାଇ ଯୁଦ୍ଧରେ ପ୍ରାଣତ୍ୟାଗ କଲେ । ]

ସେକନ୍ଦରାବାଦ୍—ଦେ. ବି (ନାମ)—ସେକନ୍ଦରଙ୍କ ନାମରେ ନାମ-
Sekandarābād କରଣ ହୋଇଥିବା ପଞ୍ଜାବର ଗୋଟିଏ
সেকন্দরাবাদ ନଗର—Secunderabad; a town
सिकन्दराबाद in the Punjab.

ସେକନ୍ଦରୀ—ଦେ. ବିଣ—ସେକନ୍ଦର୍ ବାଦ୍ସାହଙ୍କ ରାଜତ୍ୱକାଳୀନ—
Sekandarī Relating to the time of Alexander
সেকন্দরী सिकन्दरी the Great.

ସେକ ପାତ୍ର (ଭାଜନ)—ସଂ. ବି—ସେଉଣୀ; ସେଣା; କ୍ଷେତକୁ ପାଣି
Seka pātra (bhājana) ବୁହାଇବା ପାଇଁ ବ୍ୟବହୃତ ପାତ୍ର; ଯେଉଁ ପାତ୍ରଦ୍ୱାରା ଏକ ସ୍ଥାନରୁ ପାଣିକୁ ଉଠାଇ ଦୂରକୁ ପକାଇବାକୁ ହୁଏ—A baling basket used for irrigating fields.

ସେକମିଶ୍ରାନ୍ନ—ସଂ. ବି—ଦଧି ମିଶ୍ରିତ ଅନ୍ନ (ହ. ଶ)—
Sekamisrānna Food mixed with curds.

ସେକରା—ପ୍ରାଦେ (ବାଲେଶ୍ୱର ଓ ମେଦିନୀପୁର) ବି (ସଂ. ସ୍ୱର୍ଣ୍ଣକାର;
Sekarā ମୂଳ, ବଂ. ସେକରା)—ସ୍ୱର୍ଣ୍ଣକାର; ବଣିଆ—
Goldsmith.

ସେକା—ଦେ. ବି (ସଂ. ସ୍ୱିଦ୍ ଧାତୁ)—ସେକ; ସେକିବା କ୍ରିୟା—
Sekā Act of fomenting or toasting. ବିଣ—
সেকা ସେକଦ୍ୱାରା ଉତ୍ତପ୍ତ କରାଯାଇଥିବା—Heated.
से(सै)कना (ସେକା ସେକ—ଅନ୍ୟରୂପ)

ସେକାଇବା—ଦେ. କ୍ରି—ସେକିବା କ୍ରିୟାର ଣିଜନ୍ତରୂପ—
Sekāibā The causative form of Sekibā.
সেকান से(सें)काना

ସେକାଇ ହେବା—ଦେ. କ୍ରି—ନିଜର ଦେହକୁ ଅନ୍ୟ ବ୍ୟକ୍ତିଙ୍କ
Sekāi hebā ସାହାଯ୍ୟରେ ସେକ ଦିଆଇବା—To cause
সেক দেওয়ান one's body to be fomented by
सेकाना another.

ସେ କାଳ—ଦେ. ବି (ସଂ. ତତ୍କାଳ)—୧ । ସେ ସମୟ—1. That
Se kāla time. ୨ । ପୂର୍ବକାଳ; ଅତୀତକାଳ—2. The
সেকাল उस वखत past. ୩ । ବହୁ ପୂର୍ବର କାଳ—
সেকালের 3. Time long past. ବିଣ—ସେକାଳର:
उस समयका ପୂର୍ବକାଳର; ପୂର୍ବକାଳୀନ—Of the past. [ଉ ସେକାଳ ପଖାଳ ଅଉ ନାହିଁ—ଢଗ ।]

ସେକାଳର—ଦେ. ବିଣ—୧ । ସେହି ସମୟର—1. Of that
Sekāḷara time. ୨ । ପୂର୍ବକାଳର; ଅତୀତକାଳର—
সেকেলে, সেকেলের 2. Of the past. ୩ । ପ୍ରାଚୀନ;
उस समयका ପୁରାତନ—3. Old; ancient. ୪ । ମରହଟ୍ଟିଆ—
(ସେକାଳିଆ—ଅନ୍ୟରୂପ) 4. Obsolete; old fashioned; antique.

ସେକା ହେ(ଯି)ବା—ଦେ. କ୍ରି—ସେକିବାର କର୍ମବାଚ୍ୟ—
Sekā he(ji)bā Passive voice of the verb Sekibā.
সেক দেওয়ান सेका जाना

ସେକିବା—ଦେ. କ୍ରି (ସଂ. ସ୍ୱିଦ୍ ଧାତୁ; ସଂ. ସ୍ୱେଷଣ=ଜଳାଇବା;
Sekibā ତତାଇବା)—୧ । ନିଆଁଦ୍ୱାରା ତାପ ପ୍ରୟୋଗ କରିବା—
সেকা 1. To heat over a fire. ୨ । ଦେହରେ
सेकना, सेंकना ଉତ୍ତପ୍ତ ଜଳ ବା ବସ୍ତ୍ରାଦିଦ୍ୱାରା ତାପ ପ୍ରୟୋଗ କରିବା—2. To foment. ୩ । ସେକ ଦେବା ୨ (ଦେଖ)—3. Seke debā 2 (See) ୪ । ରୁଟି ଆଦିକୁ ବଡ଼ ନିଆଁ ଉପରେ ଦେଖାଇ ଗରମ କରିବା—4. To toast; to scorch.

ସେକିମ୍ (ଇତ୍ୟାଦି)—ବୈଦେ. ବିଣ—ସିକିମ୍ ଇତ୍ୟାଦି (ଦେଖ)
Sekim (etc) Sikim etc (See)

ସେକିମ—ସଂ. ବି (ସିକ୍ ଧାତୁ+କର୍ମ. ଇମ)—ମୂଳକ; ମୂଳା (ହେମଚନ୍ଦ୍ର)
Sekima —Radish. ସଂ. ବିଣ—୧ । ସିକ୍ତ; ସେଚିତ ହୋଇ-ଥିବା—1. Sprinkled. ୨ । ଗଳା ହୋଇଥିବା (ଲୁହା) (ହ. ଶ)—2. Molten.

ସେକି ହେବା—ଦେ. କ୍ରି—ନିଜେ ନିଜେ ଅଗ୍ନି ଆଦିର ଉତ୍ତାପଦ୍ୱାରା
Seki hebā ନିଜର ଦେହରେ ତାପ ଲଗାଇବା—To warm
সেক দেওয়া सेकना up one's self by fomentation.

ସେକ୍ଷି(ଖୀ)—ଦେ. ବି (ପା. ସେଖ୍ ସଙ୍ଗେ ଓଡ଼ିଆ ଇ ପ୍ରତ୍ୟୟ)—
Sekī(khī) ୧ । ସେକ ପଣିଆ—1. The state of being
সেখপনা a Sheikh. ୨ । ଭଦ୍ରତା; ଭଦ୍ରବଂଶୀୟତା—
सेखी 2. Gentility; nobility. ୩ । ଧନବତ୍ତ୍ୱ; ବଡ଼ଲୋକୀ—3. The state of being a rich man.

ସେକ୍ଷି(ଖୀ) ଜାହିର(ରି) କରିବା—ଦେ. କ୍ରି—୧ । ନିଜର ଭଦ୍ରବଂଶୀୟତା
Sekī(khī) jāhir(ri) karibā ବା ଧନବତ୍ତ୍ୱ ବା ବାହାଦୁରୀକୁ
বনিয়াদি চাল দেখান ବାକ୍ୟରେ ପ୍ରକାଶ କରିବା ବା କହି ହେବା—
सेखी हाँकना To parade or boast of one's heri-
ସେକ୍ଷି ବଢାଇବା, } ଅନ୍ୟରୂପ dity or gentility or
ସେକ୍ଷି ବଢାଇ ହେବା } riches. ୨ । ଫାଙ୍କିଲାମି କରିବା—2. To brag or boast of one's excellence.

**ସେକେ ସେକେ**—ଦେ, ଅ—ଥରେ ଥରେ—One at a time; Seke seke each one by turn. [ ଉ—ପୁଣି ସନ୍ତି ବାବେ ବାବେ ଲୋକେ ଅଗ ଦୁଃଖକୁ । ସେଣୁ ସେକେ ସେକେ ଲାଗୁ एक एकबार ଦଅନ୍ତି—ବ୍ରଜନାଥ• ସମରତରଙ୍ଗ । ]

**ସେକ୍ତା**—ସଂ. ବଣ. ପୁଂ ( ସେକ୍ତୃ ଶବ୍ଦ; ସିଚ୍ ଧାତୁ + କର୍ମ. ତୃ )—Sekta १ । ସେଚନକାରୀ—1. Sprinkling (person). (ସେକ୍ତ୍ରୀ—ସ୍ତ୍ରୀ) ୨ । ଗର୍ଭସେଚକାରୀ—2. Putting or depositing the semen for the first time in the womb of the wife.

**ସେକ୍ତ୍ର**—ସଂ. ବ ( ସିଚ୍ ଧାତୁ + କରଣ. ତ୍ର )— ଚେଙ୍ଗ ପାତ୍ର; ସେଣୀ Sektra ( ବିଷ୍ଣୁକୌମୁଦୀ )—The basket used for baling out water.

**ସେ କ୍ଷଣ(ଣି)**—ଦେ. କି • ବଣ (ସଂ• ତତ୍କ୍ଷଣ)—ସେଇକ୍ଷଣି; ତତ୍କ୍ଷଣାତ୍ Se kshaṇa(ṇi) —At once; then and there; immeତଥୁନି एका एका diately. [ ଉ—ନମସ୍କାର କରଣ ସେହିକ୍ଷଣେ ସେ ଗଲେ—କୃଷ୍ଣସିଂହ. ମହାଭାରତ. ବନ ।] ( ସେକ୍ଷଣି, ସେକ୍ଷଣିକା, ସେକ୍ଷିଣିକା—ଅନ୍ୟରୂପ )

**ସେକ୍ରେଟ(ଟା, ଟେ)ରୀ**—ବୈଦେ• ବ ( ଇଂ• ସେକ୍ରେଟାରୀ )—୧ । ସଭା Sekreta(ṭā, ṭe)ri ଆଦିର ସମ୍ପାଦକ—1, Secretary of ସେକ୍ରেটাৰী an association. ୨ । ସରକାରୀ ଶାସନ ଆଦି सेक्रेटरी ବିଭାଗର ଉପରସ୍ଥ କର୍ମଚାରୀ—2. Secretary of any Government Department. ୩ । ରାଜା ଓ ଉଚ୍ଚପଦସ୍ଥ ବ୍ୟକ୍ତିଙ୍କ ଆଦେଶ ଅନୁସାରେ ପତ୍ରାଦି ବ୍ୟବହାର କରିବା ପାଇଁ ନିଯୁକ୍ତ କର୍ମଚାରୀ— 3. Secretary of Rajas and highly placed personages.

**ସେକ୍ରେଟ(ଟା, ଟେ)ରୀ ଅଫ୍ ଷ୍ଟେଟ୍ ଫର୍ ଇଣ୍ଡିଆ**—ବୈଦେ• ବ (ଇଂ)— Sekreta(ṭā, ṭe)ri aph shteṭ phar indiā ବିଲାତ ସେক্ৰেটাৰি অফ্ ষ্টেট ପାର୍ଲିଆମେଣ୍ଟରେ ଭାରତ ଶାସନ ବିଭାଗର सेक्रेटरी अफ् स्टेट ଭାରପ୍ରାପ୍ତ କର୍ମଚାରୀ—Secretary of State for India. [ଦ୍ର—ଏହାଙ୍କୁ ସାହାଯ୍ୟ କରିବା ପାଇଁ ଗୋଟିଏ ସମିତି ବା କାଉନ୍‌ସିଲ୍ ଅଛି । ସେ ଉକ୍ତ କାଉନ୍‌ସିଲ୍‌ର ପରାମର୍ଶରେ ଯାହା କରନ୍ତି ତାହା Secretary of State for India in Council ସଭାଧିଷ୍ଠିତ ସେକ୍ରେଟେରୀ ଅଫ୍ ଷ୍ଟେଟ୍‌ଙ୍କ କର୍ମ ବୋଲାଯାଏ ।]

**ସେକ୍ରେଟା(ଟେ)ରିଏଟ୍**—ବୈଦେ. ବ ( ଇଂ• ସେକ୍ରେଟାରିଏଟ୍ )—ଏକ Sekretā(ṭe)riet ବା ବହୁ ସେକ୍ରେଟେରୀଙ୍କ କାର୍ଯ୍ୟାଳୟ ବା সেক্ৰেটেৰিয়েট ଅଫିସ—Secretariate. सेक्रेटेरियट

**ସେକ୍‌ସ୍ଟନ୍**—ବୈଦେ, ବ ( ଇଂ )— ଖ୍ରୀଷ୍ଟିଆନ୍‌ମାନଙ୍କର ଗୀର୍ଜା ଘରର Sek-s-ṭan ଜିମାଦାର୍; ପାଦ୍ରୀଙ୍କ ପାର୍ଶ୍ୱଚର ଓ କବର ଖନନକାରୀ সেক্‌সটন্ କର୍ମଚାରୀ—Sexton of a church. सेक्सटन

**ସେକ୍‌ସ୍ଟାଣ୍ଟ୍**—ବୈଦେ, ବ (ଇଂ)—ବୃତ୍ତର ଏକ ଷଷ୍ଠାଂଶ ବୃତ୍ତଖଣ୍ଡ-Sek-s-ṭanṭ ସମ୍ବଳିତ ବୈଜ୍ଞାନିକ ଯନ୍ତ୍ର ବିଶେଷ, ଯାହାର সেক্‌সটাণ্ট ସାହାଯ୍ୟରେ କୌଣିକ ଦୂରତ୍ୱ ସ୍ଥିର କରାଯାଏ— सेक्सटंट Sextant (instrument).

**ସେକ୍‌ସ୍ ପିଅର୍**—ଦେ. ବ (ଇଂ. ନାମ,—ଇଂଲଣ୍ଡର ସର୍ବଶ୍ରେଷ୍ଠ କବି ଓ Sek-s-piar ନାଟ୍ୟକାର—William Shakespeare the সেক্সপিঅৰ্ greatest English poet. सक्स पीयर [ଦ୍ର—ଏ ୧୫୬୪ ଖ୍ରୀଷ୍ଟାବ୍ଦରେ ଜନ୍ମ ଗ୍ରହଣ କରି ୧୬୧୬ ରେ ପ୍ରାଣତ୍ୟାଗ କରିଥିଲେ । ଏ ୩୭ଖଣ୍ଡ ନାଟକ ପ୍ରଣୟନ କରିଥିଲେ । ଏ ରଚିତ ନାଟକମାନ ରଙ୍ଗଭୂମିରେ ଅଭିନୟ କରୁଥିଲେ । ଏହାଙ୍କ ରଚନାରେ ଓ ମାନବ ପ୍ରକୃତି ବର୍ଣ୍ଣନାରେ ସମଗ୍ର ଜଗତ ମୁଗ୍ଧ ।]

**ସେକ୍‌ସନ୍**—ବୈଦେ. ବ (ଇଂ)—୧ । ଅଂଶ—1. Section. ୨ । Seksan ବିଦ୍ୟାଳୟର ଏକ ଶ୍ରେଣୀର ବିଭିନ୍ନ ଭାଗ—2. Secসেক্‌সন্ tion of a class of an institution. सेक्सन ୩ । ପୂର୍ତ୍ତ ଆଦି ବିଭାଗର ନିମ୍ନତମ ଅଞ୍ଚଳ—3. The lowest administrative division of the Public works or other Department. ୪ । କୋଠା ଆଦି କନ୍‌ସ୍ଟ୍ରକ୍‌ସନ୍‌ର ତଳଚିତ୍ର ବା ଗ୍ରାଉଣ୍ଡ ପ୍ଲାନ୍‌ର ନିର୍ଦ୍ଦିଷ୍ଟ ଅଂଶକୁ ଗୋଟିଏ ରେଖା ଦ୍ୱାରା କାଟି ସେହି କଟା ସ୍ଥାନରେ କୋଠାକୁ ଛେଦନ କଲେ ଯେଉଁ ଘର ଦେଖା ଯାଆନ୍ତା ତାହାର ଚିତ୍ର—4. The map of a section of a building or other construction of which a ground plan has been prepared.

**ସେକ୍‌ସନ୍ ଅଫିସର୍**—ବୈଦେ• ବ (ଇଂ)—ବାରିକ୍ ମିସ୍ତ୍ରୀ ଇଲାକାର Sek-san aphisar ନିର୍ଦ୍ଦିଷ୍ଟ ସେକ୍‌ସନ୍‌ର ଭାରପ୍ରାପ୍ତ କର୍ମଚାରୀ— সেক্‌সন্ আফিসৰ Section Officer of P. W. D; an सेक्सन आफिसर Overseer or Sub-overseer in charge of a Section of P. W D.

**ସେଖ୍ (ଇତ୍ୟାଦି)**—ବୈଦେ. ବ—ସେକ୍ ଇତ୍ୟାଦି ( ଦେଖ ) Sekh (etc) Sek etc. (See)

**ସେଖୁଟେ**—ପ୍ରାଦେ. (ବାଲେଶ୍ୱର ପାଟଣା) ଅ—ସେ ପାଖରେ— Sekhute In that side.

**ସେଗବ**—ସଂ. ବ—କଙ୍କଡ଼ା ଛୁଆ (ହ. ଶ)— Segaba The young ones of crabs.

**ସେଗୁନ**—ଦେ. ବ ( ଶାଗୁଆନର ଇଂରାଜୀ ଉଚ୍ଚାରଣ )—ଶାଗୁଆନ Segun (ଦେଖ)—Śāguāna ( See ) সেগুন सेगुन

**ସେଘେନ**—ଦେ. ଅ—ସେଥିପାଇଁ—For that. [ଉ—ସୁତ ସୁତ Segheni ଦର୍ପ ଅଳ୍ପ ନ ଜାଣଇଁ, ଆମ୍ଭ ସଙ୍ଗେ ସେ ସେଘେନ সেই জন্য ବିବାଦ କରଇ । କୃଷ୍ଣସିଂହ. ମହାଭାରତ• ବନ ।] उसलिये

ସେଙ୍କ(ଙ୍ଖ)—ଦେ. ବ—ସେଙ୍କ୍ ଚିଲି ( ଦେଖ )
Seṅk (ṅkh) Seṅk chili ( See )
ଧଣ—ସେଙ୍କ୍ ଚିଲିଅ (ଦେଖ)—Seṅk chilia (See)

ସେଙ୍କ(ଙ୍ଖ) ଚିଲି—ଦେ. ବ (ସ. ଶୋଚନ୍ତ ପକ୍ଷୀ ଅନ୍ୟ ପକ୍ଷୀମାନଙ୍କଠାରୁ
Seṅk(ṅkh) chili ଚତୁରତା । ପ୍ରବାଦ ମତ୍ସ୍ୟ ଆଦ ଝାମ୍ପି ନେବାରୁ
चालाकी ଙ୍କୋଚନ୍ତ ଶବ୍ଦରୁ ଏ ଶବ୍ଦର ଭବ ଅସିଅଛି)—୧ ।
सेखचिल्ली ଟୁଞ୍ଜିତା, ଚତୁରତା; ଧୂର୍ତ୍ତତା—1. Slyness; cunning. ୨ । ପ୍ରଗଲ୍ଭତା—2 Boastfulness; over forwardness; bragging. ଢଣ (ପୁଂ ଓ ସ୍ତ୍ରୀ)—ସେଙ୍କ ଚିଲିଅ (ଦେଖ)—Seṅk chilia ( See )

ସେ(ସି)ଙ୍କ(ଙ୍ଖ) ଚିଲିଆ—ଦେ. ବ—( ସ୍ତ୍ରୀ ଓ ପୁଂ )—୧ । ଧୂର୍ତ୍ତ;
Se(si)ṅk(ṅkh)chilia ଚତୁର—1. Sly; cunning;
चालाकी ୨ । ପାଚିଲ୍—2. Boastful; over forward;
सेखचिल्ली braggart

ସେଙ୍କା—ଗ୍ରା. ବ—୧ । (ସ. ଶଙ୍କା) ଶଙ୍କା ( ଦେଖ )—1. Śaṅkā
Seṅkā ( See ) ୨ । (ସ. ସଙ୍କୋଚ) ସଙ୍କୋଚ ( ଦେଖ )
Saṅkocha ( See )

ସେଙ୍କା(ଙ୍କେ)ଇବା—ଗ୍ରା. କ୍ରି—୧ । ସେଙ୍କିବାର ଣିଜନ୍ତରୂପ—
Seṅkā(ṅke)ibā 1. Causative form of Seṅkibā
शंका देओआन ୨ । ଶଙ୍କିତ କରାଇବା; ଧକା ଦେବା—2. To
सङ्कित कराना frighten. ୩ । ତେଙ୍ଗାଇବା; ଦ୍ରୁମ୍ରିତ କରିବା
—3. To oppress.

ସେଙ୍କିବା—ଦେ. କ୍ରି ( ସ. ଶଙ୍କା )—୧ । ଶଙ୍କିତ ହେବା—1. To
Seṅkibā be frightened. ୨ । ( ସ. ସଙ୍କୋଚ; ତୁଳ
शङ्कित हओया ଇଂ. ଶ୍ରିଙ୍କ୍ ) କୌଣସି କାର୍ଯ୍ୟ କରିବାକୁ ପଶ୍ଚାତ୍ପଦ
सङ्कित होना ହେବା—2. To shrink from doing a thing. ୩ । ମାନ୍ୟଜନଙ୍କୁ ବା ଗୁରୁଙ୍କୁ ବା ପ୍ରଭୁଙ୍କୁ ଦେଖି ଲଜ୍ଜାରେ ବା ଭୟରେ ଜଡ଼ୀଭୂତ ହେବା—3. To shrink before one's superior, owing to fear or awe

ସେଙ୍ଗା—ପ୍ରାଦେ. ( ବଲାଙ୍ଗିର ପାଟଣା ) ବ—ଛୁଇଁ—
Seṅgā Legumen.

ସେଙ୍ଗେଲ୍—ପ୍ରାଦେ. ( ବଲାଙ୍ଗିର ପାଟଣା, କୋନ୍ଧ ଭାଷା )—ଜୁଇ—
Seṅgel Fire.

ସେଚକ—ସ. ବ. ପୁଂ ( ସିଚ୍ ଧାତୁ + କର୍ତ୍ତୃ. ଅକ )—୧ । ସେଚନକାରୀ
Sechaka ବ୍ୟକ୍ତି (ମେଦିନୀ)—1. Sprinkler. ୨ । ମେଘ
(ସେଚକା—ସ୍ତ୍ରୀ. ଢଣ) (ମେଦିନୀ)—2. Cloud. ସ. ବିଂ. ପୃ.—
ସେଚନକାରୀ—Sprinkling.

ସେଚନ—ସ. ବ ( ସିଚ୍ ଧାତୁ+ଭାବ. ଅନ )—୧ । ସେକ; ପାଣି
Sechana ଅଦ ଛିଞ୍ଚିବା—1. Sprinkling. ୨ । କ୍ଷେତ୍ରରେ ପାଣି ମଡ଼ାଇବା—2. Irrigation of a field for raising a crop. ୩ । କ୍ଷରଣ—3. Oozing. ୪ । ଅଭିଷେକ ( ହ୍ର. ଶ )—4. Shower-bath. ୫ । ଧାତୁକୁ ଛାଞ୍ଚିବା କାମ (ହ୍ର. ଚ)—5. Melting and moulding of metal; casting of metal. ୬ । ( + କରଣ. ଅନ ) ନୌକା ଭିତରୁ ଜଳ ସେଚିଣ କାଢ଼ିବା ପାତ୍ର ( ମେଦିନୀ )—6. A pot for baling out water from inside a boat. ୭ । ସେଣା—7. A basket for baling out water from a tank. ୮ । ଜଳ ସେଚନ କରିବା ବାଲ୍ଟି—8. Sprinkling bucket (Apte).

ସେଚନକ—ସ. ବ ( ସେଚନ + କ )—ଅଭିଷେକ—
Sechanaka Ceremonial shower-bath.

ସେଚନ ଘଟ—ସ. ବ ( ମ. ପ. ଲୋ )—ଯେଉଁ ଘଟରେ ଥିବା ପାଣି
Sechana ghaṭa ଘଟର ମୁହଁ ବାଟେ ଛିଞ୍ଚା ଯାଏ—A pitcher with which water is sprinkled.
[ ଦ୍ର—ଏହାଠାରୁ ସେଚନ ପାତ୍ର, ସେଚନ କଳସ ଅଦ ଶବ୍ଦ ହୁଏ । ]

ସେଚନୀ—ସ. ଚ. ସ୍ତ୍ରୀ ( ସେଚନ+ସ୍ତ୍ରୀ. ଈ )—ସେଚନ କରିବା ପାତ୍ର;
Sechanī ସେଣା—A basket for baling out water.

ସେଚନୀୟ—ସ. ବି ( ସିଚ୍ ଧାତୁ+କର୍ମ. ଅନୀୟ )—ସେଚନ
Sechanīya କରିବା ଯୋଗ୍ୟ—
Fit to be sprinkled or irrigated.

ସେଜକେ—ପ୍ରାଦେ. ( ପାଟଣା ) ଅ—ସେଠାକୁ—
Sej-ke To that place.

ସେଜ (ଇତ୍ୟାଦ)—ଦେ. ବ ( ସ. ଶଯ୍ୟା )—ଶେଜ ଇତ୍ୟାଦ (ଦେଖ)
Seja (etc) Śeja etc. (See)

ସେଜାଇବା—ଦେ. କ୍ରି ( ସ. ଶଯ୍ୟା; ସଜ୍ଜିତ )—୧ । ଶଯ୍ୟାକୁ ସଜ୍ଜିତ
Sejāibā କରିବା—1. To arrange or prepare the
साजान bed for a person. ୨ । ସଜ୍ଜିତ କରିବା—
सजाना 2. To arrange. ୩ । ଶେଜାଇବା ( ଦେଖ )
3. Śejāibā ( See )

ସେଜି—ପ୍ରାଦେ. (ଗଞ୍ଜାମ) ବ (ସ. ସଜ୍ଜାମ)—ଘରଚାଳର ଛପରରେ ପଡ଼ିବା
Seji ରୁଅ ଅଦ ( ଗୋପୀନାଥ ନନ୍ଦ ); ଘରଚାଳର ବଇମ—
The framework of a thatched roof.

ସେଟ୍—ବୈଦେ. ବ ( ଇଂ )—୧ । ବହୁ ଅଳଙ୍କାରର ସଜ ବା ମେଳ—
Seṭ 1. A set of ornaments. ୨ । ଅସ୍ତ୍ରଯନ୍ତ୍ରାଦର
सेट ସଜ—2. A set of instruments. ୩ । ପୋଷାକ
सेट ର ସାଜ—3. A set of dress. ୪ । ବହୁ ଖଣ୍ଡ ବା ଭାଗବିଶିଷ୍ଟ ଗ୍ରନ୍ଥର ଏକ ସାଜ—4. A set of books. ବୈଦେ. ଢଣ—କ୍ରମାନୁସାରେ ବସା ଯାଇଥିବା ବା ଖଞ୍ଜା ଯାଇଥିବା ( ଯନ୍ତ୍ର )—
Well set; regulated; put into order.

ସେଟ୍ କରିବା—ଦେ. କ୍ରି—ଯନ୍ତ୍ରାଦିକୁ ସୁବ୍ୟବସ୍ଥାରେ ଖଞ୍ଜିବା—To set
Seṭ karibā or regulate any instrument
सेट करा सेट करना or machine.

ସେଟ୍ ସ୍କୋ(ସ୍କ୍ୱା)ୟାର୍—ବୈଦେ ବ ( ଇଂ ସେଟ୍ ସ୍କ୍ୱାୟାର୍ )— Set sko(skwā)yār କଳ୍ପାରେ ରେଖା ଓ ସମକୋଣ କାଟିବା ସେଟ ସ୍କোয়াব ପାଇଁ ବ୍ୟବହୃତ ତ୍ରିକୋଣାକାର ଏ ଖଣ୍ଡି କାଷ୍ଠ सेट स्कोयार ବା ଧାତୁ ଫଳକ—Set-square.

ସେଟ—ସଂ ବ—ଏକ ପ୍ରାଚୀନ ଓଜନ ବା ମାନ ( ହୃ ଶ )— Seta An ancient standard of weight or measure.

ସେଟର୍—ବୈଦେ. ବ ( ଇଂ )—ଏକପ୍ରକାର ଶିକାରି କୁକୁର— Setar Setter, a kind of dog. [ ଦ୍ର—ଏମାନେ সেটর सेटर ଗଛ ଉପରେ ବା ଅନ୍ତରାଳରେ ଥିବା ଚଢେଇ ଆଦିଙ୍କୁ ଲକ୍ଷ କରି ସେହିଠାରେ ବସି ରହି ଶିକାରୀଙ୍କୁ ଏଥିର ସଙ୍କେତ ଦିଅନ୍ତି । ]

ସେଟଲ୍—ବୈଦେ. ବଣ (ଇଂ. ସେଟ୍ଲ୍ କ୍ରିୟାରୁ ଉତ୍ପନ୍ନ; ବଣ. ସେଟ୍ଲ୍‌ଡ) Setal —ଚୁକ୍ତିଦ୍ୱାରା ସ୍ଥିରୀକୃତ; ନିର୍ଦ୍ଧାରିତ—Settled by সেটল contract. ବ ( ଇଂ. ସେଟ୍ଲ୍‌ମେଣ୍ଟ )—୧ । ଚୁକ୍ତି- सेटल ମତେ ସ୍ଥିରୀକରଣ—1. Settling of a contract ୨ । କୌଣସି ବିଷୟର ଶେଷ ମୀମାଂସା— 2. Final settlement of a matter.

ସେଟଲ୍ କରିବା—ଦେ. କ୍ରି (ଇଂ. କ୍ରିୟା ସେଟ୍ଲ୍)—୧ । ଚୁକ୍ତି Setal kariba ମୁତାବକ କୌଣସି ବିଷୟ ମୀମାଂସା সেটল করা କରିବା—1. To settle a contract. ୨ । सेटल करना ଚୁକ୍ତି କରିବା—2. To settle; to contract. ୩ । ହିସାବ ନିକାଶ କରିବା—3. To settle an account.

ସେଟଲ୍‌ମେଣ୍ଟ—ବୈଦେ. ବ (ଇଂ.ସେଟ୍ଲ୍‌ମେଣ୍ଟ)—ଭୂମିକର ବନ୍ଦୋବସ୍ତ; Setal-ment ଭୂମିକର ସ୍ଥିରୀକରଣାର୍ଥ ଜମିଦାର ଓ ପ୍ରଜାଙ୍କ ଜମି, (ସେଟ୍ଲ୍‌ମେଣ୍ଟ—ଅପଭ୍ରଂଶ) ଜମା, ସମ୍ପର୍କ ଓ ବାଧ୍ୟବାଧକତା ଓ ସ୍ୱତ୍ୱ সেটলমেন্ট লିପିବଦ୍ଧ କରିବା ପାଇଁ ସରକାରଙ୍କ ଅବଲମ୍ବିତ सेटलमेंट ଅନୁସନ୍ଧାନ ପ୍ରଣାଳୀ—Revenue settlement operation undertaken by the Government for settlement of land revenue and preparation of record-of-rights. [ଦ୍ର—ଏହି ଶବ୍ଦ ସଙ୍ଗେ ଓଡ଼ିଆ ଭାଷାରେ ଅନେକଗୁଡ଼ିଏ ଇଂରାଜୀ ଓ ଫାରସୀ ଶବ୍ଦ ପ୍ରବେଶ କରିଅଛି ଓ ଇଂରାଜୀ ଭାଷାରେ ମଧ୍ୟ ଅନେକଗୁଡ଼ିଏ ଫାରସୀ ଶବ୍ଦ ପ୍ରବେଶ କରିଅଛି—

(ଫା) ଦଶସାଲା ସେଟଲ୍‌ମେଣ୍ଟ—Decennial settlement.

(ଇଂ) ରିଭିଜନ୍ ସେଟଲ୍‌ମେଣ୍ଟ—Revisional settlement.

(ଇଂ) ରେକର୍ଡ—Record.

(ଫା) ଖାନାପୁରୀ—Khanapuri.

(ଫା) ଖସଡ଼ା—Khasra.

(ଇଂ) ଆଟେଷ୍ଟେସନ୍—Attestation.

(ଫା) ଯାଞ୍ଚ—Janch.

(ଫା) ଅମୀନ—Amin.

(ଇଂ) ଇନ୍‌ସ୍ପେକ୍ଟର—Inspector.

(ଇଂ) ସୁପରଭାଇଜର—Supervisor.

(ଫା) ପଟୱାଲ, ପତାଲ—Pertal.

(ଫା) ବଦର—Bother.

(ଫା) ରାଜି ବଦର—Rāzi bother.

(ଫା) କବୁଲିୟତ୍—Kabuliyat.

(ଇଂ) ଫାଇନାଲ୍ ପବ୍ଲିକେସନ୍—Final publication.

(ଇଂ) ସର୍ଭେ—Survey.

(ଇଂ) ସର୍ଭେ(ଭ)ୟର ବା ସର୍ଭେ( ର୍ଭେ )ଅର୍—Surveyor.

(ଇଂ) ଏକର୍—Acre.

(ଇଂ) ଡ(ଡେ)ସିମଲ୍—Decimal.

(ଫା) ମିଲାନ୍ ଖସଡ଼ା—Milan khasra.

(ଇଂ) ହେଡ୍ ଅଫିସ୍—Head office.

(ଫା) ଜରିବ—Jarib; measurement.

(ଇଂ) ଏରିଆ—Area.

(ଇଂ) ଏକର୍ କୋମ୍—Acre comb.

(ଇଂ) ସ୍କେଲ୍—Scale.

(ଇଂ) କମ୍ପାସ୍—Compass (divider).

(ଇଂ) ବାଉଣ୍ଡେରୀ, ବାଣ୍ଡୋରୀ—Boundary.

(ଇଂ) ପ(ପା)ର୍ଚ୍ଚା; ପାରଚ୍ଛ—Parcha, (Parchment).

(ଇଂ) ସ୍ଲିପ୍—Slip. ]

ସେଟଲ୍‌ମେଣ୍ଟ ଅଫି(ଫି)ସ୍(ସି)—ବୈଦେ. ବ (ଇଂ. ସେଟ୍ଲ୍‌ମେଣ୍ଟ Setal-ment api(phi)s(si) ଅଫିସ୍ )—ସେଟଲ୍‌ମେଣ୍ଟ সেটলমেন্ট আফিস ଅଫିସରଙ୍କ କଚେରି—Settlement office. सेटलमेंट ऑफिस

ସେଟଲ୍‌ମେଣ୍ଟ ଅଫିସର୍—ବୈଦେ· ବ (ଇଂ· ସେଟ୍ଲ୍‌ମେଣ୍ଟ ଅଫିସର୍)— Setal-ment apbisar ସେଟଲ୍‌ମେଣ୍ଟ ବିଭାଗର ସର୍ବୋଚ୍ଚ সেটলমেন্ট আফিসর্ ହାକିମ—Settlement Officer. [ଦ୍ର— सेटलमेंट ऑफिसर ଏହାଙ୍କ ଅଧସ୍ତନ ହାକିମଙ୍କୁ ଆସିଷ୍ଟାଣ୍ଟ ସେଟଲ୍‌ମେଣ୍ଟ ଅଫିସର୍—Assistant Settlement Officer କୁହାଯାଏ ।]

ସେଟଲ୍‌ମେଣ୍ଟ କା(କ୍ୟା,କେ)ମ୍ପ—ବୈଦେ. ବ [(ଇଂ. ସେଟ୍ଲ୍‌ମେଣ୍ଟ Setal-ment kā(kyā,ke)mp କାମ୍ପ )—ମଫସଲର ଭିନ୍ନ সেটলমেন্ট ক্যাম্প ଭିନ୍ନ ସ୍ଥାନରେ ସେଟଲ୍‌ମେଣ୍ଟ କାମ ତଦାରଖ କରିବା सेटलमेंट कैम्प କର୍ମଚାରୀମାନଙ୍କୁ ସଙ୍ଗରେ ନେଇ ବାର୍ଯ୍ୟ କରୁଥିବା ହାକିମଙ୍କ ଛାଉଣୀ—Camp of an official of the Settlement Department.

ସେଟଲ୍‌ମେଣ୍ଟ ନକ୍ସା — ବୈଦେ· ବ (ଇଂ. ସେଟ୍ଲମେଣ୍ଟ + ଫା. ନକ୍ସା)— Setal-ment naksā ସେଟ୍ଲମେଣ୍ଟ ହାକିମଙ୍କ କର୍ତ୍ତୃକ ଅନୁସାରେ (ସେଟଲ୍‌ମେଣ୍ଟ ମା[ମେ]ପ—ଅନ୍ୟ ଇଂ. ରୂପ) କରଯାଇଥିବା ଜମିର ନକ୍ସା—Settlement-map.
ସେଟଲମେଂଟ ନକ୍ସା
सेटलमेंट नक्सा

ସେଟଲ୍‌ମେଣ୍ଟ ପଟ୍ଟା(ଟ୍ଟା)—ଦେ. ବ (ଇଂ. ସେଟ୍ଲମେଣ୍ଟ + ସଂ. ପଟ୍ଟ)— Setal-ment patā(ṭṭā) ସେଟ୍ଲମେଣ୍ଟ ହାକିମଙ୍କ ଦ୍ୱାର କର୍ତ୍ତୃକ ପ୍ରସ୍ତୁତ ହୋଇଥିବା ଭୂସ୍ୱତ୍ୱ ଲିପି—Settlement record-of-rights. [ ଦ୍ର—ଏହାର ମୂଳ ଲେଖା ମହକୁମା ମହାଫିଜ ଖାନାରେ ରହେ ଓ ଗୋଟିଏ ନକଲ ଜମିଦାରଙ୍କୁ ଓ ଗୋଟିଏ ନକଲ ପ୍ରଜାଙ୍କୁ ଦିଆଯାଏ ।]
ସେଟଲମେଣ୍ଟ ପାଟ୍ଟା
सेटलमेंट पट्टा

ସେଟଲ୍‌ମେଣ୍ଟ ପ(ପା)ରଚ୍ଚା—ବୈଦେ. ବ (ଇ.. ସେଟ୍ଲମେଣ୍ଟ + ଇଂ. Setal-ment pa(pā)rachā ପାର୍ଚ୍ଚ୍‌ମେଣ୍ଟ)—ଭୂସ୍ୱତ୍ୱ ଲିପିର (ସେଟଲମେଣ୍ଟ ପରଚା, ସେଟଲମେଣ୍ଟ ପାର୍ଚା—ଅନ୍ୟରୂପ) ସଙ୍କ୍ଷେପ ଶେଷରେ ପ୍ରକାଶିତ ହେବା ପୂର୍ବରୁ ପ୍ରଜାଙ୍କୁ ଓ ଭୂମ୍ୟଧିକାରୀଙ୍କୁ ହାଲ୍ ଜଣାଇ ଦେବା ପାଇଁ ସେଥିରୁ ଦିଆ ଯାଉଥିବା ଚିଟା କାଗଜ ସ୍ଲିପ— Slips of paper or notes supplied to the raiyats and the landowners (containing a memo of the holdings) before final publication.
ସେଟଲମେଣ୍ଟ ପାର୍ଚା
सेटलमेंट पर्चा

ସେଟଲ୍‌ମେଣ୍ଟିଆ—ଦେ. ବିଣ—୧ । ସେଟଲ୍‌ମେଣ୍ଟ ବିଭାଗରେ କାମ Setal-mentiā କରୁଥିବା (କର୍ମଚାରୀ)—1. Serving in the Settlement Department. ୨ । ସେଟ୍ଲମେଣ୍ଟ ସମ୍ବନ୍ଧୀୟ—2. Relating to Settlement.
ସେଟଲମେଣ୍ଟି
सेटलमेंटवाला

ସେଟଲ୍‌ମେଣ୍ଟୁ—ପ୍ରାଦେ (ଗଞ୍ଜାମ) ବୈଦେ· ବ—(ତେଲୁଗୁମାନଙ୍କର Setalmentu ଶବ୍ଦର ଶେଷ ଅକ୍ଷରର 'ଅ' ସ୍ଥାନରେ 'ଉ' ଉଚ୍ଚାରଣ ଜନିତ ଅଭ୍ୟାସର ଅନୁକରଣ; ଇଂ. ସେଟ୍ଲମେଣ୍ଟ)— ୧ । ସେଟଲ୍‌ମେଣ୍ଟ (ଦେଖ)—1. Setalment (See) ୨ । ଚୋର, ଦସ୍ୟୁ ଆଦି ଅପରାଧୀ ଜାତିମାନଙ୍କୁ ରାତିରେ ଚୋରି କରିବାର ସୁବିଧା ନ ଦେବା ଉଦ୍ଦେଶ୍ୟରେ ଗଭର୍ଣ୍ଣମେଣ୍ଟ ସ୍ଥାନେ ସ୍ଥାନେ ସେମାନଙ୍କ ପାଇଁ ଯେଉଁ ଉପନିବେଶ ପ୍ରତିଷ୍ଠା କରିଅଛନ୍ତି—2. Settlement of the members of some criminal tribes, at certain places, started by the Government (with a view to keeping watch over their movements during the night).

ସେଟା—ଗ୍ରା. ସର୍ବ ( ଅନାଦରାର୍ଥକ )—ସେଇଟା ( ଦେଖ )— Setā Seitā (See) ପ୍ରାଦେ ( ପାଟଣା ) ଅ— ସେଇଥି—The same.

ସେଟି —ଦେ· ସର୍ବ (ଅନାଦରାର୍ଥକ)—ସେଇଟି (ଦେଖ)—Seiṭi (See) Seṭi [ଦେହ ନର୍ମଳ ଜାତ ହେବୁ, ଭବସାଗର ପାର ସେତୁ— ଜଗନ୍ନାଥ, ଭାଗବତ ।] ବୈଦେ. ବ (ଇଂ· ସେଟ୍ଟି)— ଦୁଇ ଜଣଙ୍କର ବସିବା ପାଇଁ ବ୍ୟବହୃତ ଓ ଅଉଜିବା ପାଇଁ ପଛଆଡ଼େ ଡାଡ଼ା ଥିବା ଚଉକି ବା ସୋଫା —Settee.
সেট্টি
सेट्टी

ସେଟିକୁ—ପ୍ରାଦେ (ବାଲେଶ୍ୱର) ଅ—ସେଠାକୁ— Seṭiku To that place.

ସେଟୁ—ସଂ· ବ—ତରଭୁଜ ଫଳ (କଠାଧର)— Seṭu Water melon.
ଅନ୍ୟ ସ. ନାମ—ତେଲାନ, ଚନ୍ଦ୍ରଫଳ, ମୁଖାସ, ସ୍ୱର୍ଣ୍ଣଚେମିଷ, ଲତାପନସ, ନାଗାମ୍ବ ।

ସେଟ୍ (ଇତ୍ୟାଦି) – ସେଟଲ୍ ଇତ୍ୟାଦି (ଦେଖ) Setl (etc) Setal etc. (See).

ସେଠ(ଇତ୍ୟାଦି)—ଦେ. ବ (ସ. ଶ୍ରେଷ୍ଠୀ)—ଶେଠ ଇତ୍ୟାଦି (ଦେଖ) Setha (etc) Setha etc. (See).

ସେଠଉଁ —ଦେ. ସର୍ବନାମ (ସ. ତତ୍ସ୍ଥାନାତ୍)—୧ । ସେହି ସ୍ଥାନରୁ— Sethaun 1. Thence; from that place, ୨, ଅ—ତା ପରେ— Then; thereafter.
(ଏଠଉଁ—ବିପରୀତ)
সেথাথেকে
वहाँसे

ସେଠା—ଦେ. ସର୍ବ ( ସ. ତତ୍ ଓ ସ୍ଥାନ )—ସେହି ସ୍ଥାନ— Sethā That place, ବିଣ—ସେ ସ୍ଥାନର— Of that place.
সেথা
वहाँ
(ଏଠା—ବିପରୀତ)

ସେଠାଇଁ[-ଏଁ]—ଦେ, ଅ (ସ. ତତ୍ ସ୍ଥାନେ)—୧ । ସେ ସ୍ଥାନରେ— Sethāiñ(eñ) 1. There; at that place, ( ଏଠାଇଁ—ବିପରୀତ ) ୨ । ତାହାଠାରେ— 2. At him or her. ୩ । ତାଙ୍କ ନିକଟରେ—3. Near him or her.
সেথায
वहाँपर

ସେଠାକା(ର)—ଦେ ବିଣ—୧ । ସେହି ସ୍ଥାନର—1. Of that Sethākā(ra) place. ୨ । ସେହି ଦେଶର— 2. Of that country.
[ଠାକାର—ଅନ୍ୟରୂପ]
[ଏଠାକା—ବିପରୀତ]
সেথাকাব
वहाँका

ସେଠାକୁ—ଦେ· ସର୍ବନାମ—ସେ ସ୍ଥାନକୁ— Sethāku To that place.
সেথায়
वहाँ

ସେଠାନେ—ପ୍ରାଦେ [ସମ୍ବଲପୁର] ସର୍ବନାମ [ସ. ତତ୍ ଓ ସ୍ଥାନେ]— Sethāne ୧ । ସେଠାରେ; ତହିଁ—1. There. ୨ । ସେଠାକୁ— 2. To that place.

ସେଠାବେଣ—ଦେ ସର୍ବ (ପ୍ରାଚୀନ ପ୍ରୟୋଗ,ପଦ୍ୟ)-ସେଠାରେ—There, Sethābeṇa [ଦ୍ର—ଚୁକାଣ ହେଲେ ସେଠାବେଣ—ପ୍ରାଚୀ. ପୂର୍ଣ୍ଣଚନ୍ଦ୍ରମଣ୍ଡଳ ।]
(ସେଠାବେ – ଅନ୍ୟରୂପ)
সেথায
वहाँ

ସେଠାରୁ—ଦେ. ସର୍ବନାମ—୧ । ସେ ସ୍ଥାନରୁ—1. Thence; from Sethāru that place ୨ । ତା ପରେ—ସେଥାଥେকে वहाँसे 2. After that.

ସେଠାରେ—ଦେ. ସର୍ବନାମ—ସେ ସ୍ଥାନରେ—There. Sethāre সেথায वहाँपर (ଏଠାରେ—ବ୍ୟସ୍ତ)

ସେଠି (ଠିଁ)—ଦେ. ଅ—ସେହି ସ୍ଥାନରେ—There; at that Sethi (thiñ) place. ଦେ. ବ—ଧୋବା ଜାତିର ଉପାଧି—[ଏଠି (ଠିଁ) ବ୍ୟସ୍ତ] Family title of the washer-সেথায वहाँपर man caste.

ସେଠିକା—ଦେ. ବଣ—ସେହି ସ୍ଥାନର—Of that place. Sethikā সেথাকার वहाँका (ସେଠିକାର—ଅନ୍ୟରୂପ) (ଏଠିକା, ଏଠିକାର—ବ୍ୟସ୍ତ)

ସେଠି(ଠି)ଁକି—ଦେ. ସର୍ବନାମ—ସେଠାକୁ; ସେ ସ୍ଥାନକୁ—Sethi(thiñ)ki To that place. (ଏଠିକି ବ୍ୟସ୍ତ) সেথায়; वहाँ

ସେଠୁ(ଠୁଁ)—ଦେ. ସର୍ବ—୧ । ସେହି ସ୍ଥାନରୁ—1. Thence. Sethu(thuñ) ୨ । ତତ୍ପରେ — 2. There-after. [ଏଠୁ (ଠୁଁ)—ବ୍ୟସ୍ତ] সেথাথেকে वहाँसे

ସେଠେ(ଠେଁ)ଇଁ—ଦେ. ସର୍ବ—ସେହି ସ୍ଥାନରେ—There; at Sethe(then)iñ সেথায; वहाँ that place. [ଏଠେ(ଠେଁ)ଇଁ—ବ୍ୟସ୍ତ]

ସେଡ଼(ଢ଼)—ବୈଦେ. ବ (ଜାହାଜଅ ଶବ୍ଦ;ଇଂ ସେଲ୍)ଜାହାଜର ପାଲ—Serda(rdha) পাল पाल The sail of a ship.

ସେଡ଼(ଢ଼)ଖାନା—ବୈଦେ. ବ (ଜାହାଜଅ ଶବ୍ଦ)—(ଇଂ. ସେଲ୍ + Serda(rdha)khānā ଫା. ଖାନାହ୍)—ଜାହାଜର ଯେଉଁ পালখানা, सेढ़खाना କୋଠରିରେ ପାଲମାନ ବ୍ୟବହୃତ ନ ହେଲାବେଳେ ରଖାଯାଇ ଥାଏ ବା ତିଆର ହୁଏ—The cabin of a ship where the sails when not in use are stored or where they are made.

ସେଡ଼(ଢ଼) ହଙ୍କାରିବା—ଦେ. କ୍ରି (ଜାହାଜଅ ଶବ୍ଦ)—୧ । ଜାହାଜର Serda(rdha) hankāriba ପାଲକୁ ଟାଣିବା—1. To পালউডান(টানা) सेढ़सपटना draw up the sails of a ship. ୨ । ପାଲଟଣା ଜାହାଜକୁ ଗତି କରିବାକୁ ଛାଡ଼ିବା—2. To set sail.

ସେଡି—ଦେ. ବ—(ଜାହାଜଅ ଭାଷା)—ଡଙ୍ଗାରୁ ତଳକୁ ଓ ତଳୁ Serdi ଡଙ୍ଗା ଉପରକୁ ଯିବା ପାଇଁ ପକାଯିବା ପଟା—The সিঁড়ী सीढ़ी plank used for embarking or disembarking.

ସେଡ଼ିକି—ଦେ. ଅ—୧ । ତେତିକି; ତେତେବଡ଼—1. So big. Serdiki ୨ । ସେହିପରି; ସେହି ପ୍ରକାରେ—2. Such; in ততবড়; इतनाबड़ा such manner. ୩ । ତେତେ ଉଚ୍ଚ—3. So high.

ସେଡୁ(ଢୁ)ଅ—ଦେ. ବ—(ସଂ. ସେତୁ, ସେତୁ)—ଛୋଟ ସେଣୀ; Serdu(rdhu) ବଡ଼ ସେଣୀରେ ଜଳାଶୟରୁ ଜଳ ଉତ୍ତୋଳନ সেউঁতী; ডোলচী, डोहँदी ହୋଇ ସେହି ମଧ୍ୟସ୍ଥ ପଟଣୀରେ ଜମା ହେଲେ ଉକ୍ତ ପଟଣୀରୁ ସେହି ଯନ୍ତ୍ର ସାହାଯ୍ୟରେ ଦୁଇ ହାତ ଦ୍ୱାର ପାଣିକୁ କିଆରି ମଧ୍ୟକୁ ଫିଙ୍ଗାଯାଇ ଛଞ୍ଚାଯାଏ—A small wooden spoon-like tray for throwing water from channels into the fields for irrigation. [ବି—ଏହି ଯନ୍ତ୍ର କାଠରେ ତିଆରି । ଏହାର ଗୋଟିଏ ପାଖରେ ହତା ବା ବେଣ୍ଟ ଲାଗିଥାଏ । ଏହାର ଲମ୍ବ ଦେଢ଼ ହାତ ଓ ଚଉଡ଼ା ଆଠ ଇଞ୍ଚ । ଏହା ନୌକା ପରି ଗୋଲା ହୋଇଥାଏ ଏବଂ ଏଥିର ଅଗପାଖ ଖୋଲା ଥାଏ; ଗୋଲ ପାଖର ଦୁଇ ଦିଗରେ ଡୋରି ଲାଗିଥାଏ । ମନୁଷ୍ୟ ଗୋଟିଏ ହାତରେ ସେଡୁଅର ବେଣ୍ଟକୁ ଧରେ ଓ ଅନ୍ୟ ହାତରେ ସେଡୁଅର ନାକରେ ଲାଗିଥିବା ଦଉଡ଼ି ଦୁହିଁକି ଧରି ପଟଣୀରୁ ପାଣିକୁ ଉଠାଇ କିଆରି ମଧ୍ୟକୁ ଫୋପାଡ଼େ । ]

ସେ(ସି)ଡୁ(ଢୁ)ଆ—ଦେ. ବଣ—ସିଡ଼ି ପରି ସରୁଆ—Thin or nar-Se(si)rdu(rdhu)ā row as a ladder. ବ (ନାମ)—କାଠ-সিঁড়ীর মতন ଯୋଡ଼ି ନଦୀରୁ କଟକର ୧ ମାଇଲ ପୂର୍ବରେ ବାହାରି सीढ़ीके जैसे ଥିବା ନଦୀ ( ଏହା ସିଡ଼ି ପରି ସରୁଆ ଥିବାରୁ)—Name of a branch of the Kāthajordi river, a mile to the east of the Cuttack town.

ସେଡୁଟାଏ—ଦେ. ବଣ ଓ ସର୍ବ (ଅନାଦରାର୍ଥକ)—୧ । ତେତେ Serdutāe ବଡ଼—1. So big. ୨ । ତେତେ ଉଚ୍ଚ—ততবড়টা उतनाबड़ा 2. So high. [ସେଡୁଟିଏ—ଆଦରାର୍ଥକ] [ଏଡୁଟାଏ—ବ୍ୟସ୍ତ]

ସେଡ଼େ—ଦେ. ବଣ, କ୍ରି. ବଣ, ବଣର ବଣ—୧ । ସେତେବଡ଼—Serde 1. So big. ୨ । ସେଡ଼େ ଉଚ୍ଚ—2. So high. ୩ । ততবড় इतनाबड़ा ସେତେ ପରିମିତ—3. So much. [ ଏଡ଼େ—ବ୍ୟସ୍ତ ]

ସେଡେଃଠାଏ—ଦେ. ବଣ ଓ ସର୍ବ (ଅନାଦରାର୍ଥକ)—୧ । ତେଡ଼େ Serdetāe ବଡ଼—1. So big. ୨ । ତେତେ ଉଚ୍ଚ—ততবড उतनाबड़ा 2. So high. [ ସେଡେଃଟିଏ—ଆଦରାର୍ଥକ ] [ ଏଡେଃଠାଏ—ବ୍ୟସ୍ତ ]

ସେଡ଼େବଡ଼—ଦେ. ବଣ—ତେଡ଼େ ବଡ଼; ତାହା ପରି ବଡ଼—So big. Serde barda [ ବ୍ୟ—ଏହିପରି ସେଡ଼େ ଖାନ, ସେଡ଼େ ଲମ୍ବା, ততবড় इतनाबड़ा ସେଡ଼େ ମୋଟା ଆଦି ହୁଏ । ] [ ଏଡ଼େବଡ଼—ବ୍ୟସ୍ତ ]

ସେଣ—ଦେ. ସଙ୍ଗ ( ସଂ ତତ୍ ଓ ସ୍ଥାନ )—୧ । ସେହି ସ୍ଥାନ; ତେଣ—
Seṇa সেদিগ, সেথা, 1. That place. ୨ । ସେହି ଦିଗ—
ওখান वहाँ, उधर (ଏଣ—ବିପରୀତ) 2. That quarter.
ওখানকার वहाँका ଵଣ—ସେହି ସ୍ଥାନର; ତେଣର—Of that
সেন place. ୨ ( ସଂ ସେନ )—ଉତ୍କଳବାସୀ ବଙ୍ଗାଳୀ
सेन ତନ୍ତୀଙ୍କ ବଂଶୋପାଧିବିଶେଷ—A family-title of
Bengalee weavers settled for generations in Orissa. ( ଦ୍ର—ଏମାନେ ବଙ୍ଗୀୟ ସେନ ଉପାଧିଧାରୀ । ଏମାନଙ୍କ ପୂର୍ବପୁରୁଷମାନେ ଓଡ଼ିଶାକୁ ବହୁ ପୁରୁଷରୁ ଆସି ବର୍ତ୍ତମାନ ଓଡ଼ିଆଙ୍କ ସହିତ ମିଶି ଯାଇ ଗ୍ରହଣ କରିଅଛନ୍ତି ଓ ସେଣ ଉପାଧି ଗ୍ରହଣ କରିଅଛନ୍ତି । ]

ସେଣକା—ଦେ. ଵଣ ( ସଂ ତତ୍ ଓ ସ୍ଥାନ )—୧ । ସେ ସ୍ଥାନର—
Seṇaka 1. Of that place. ୨ । ସେହି ଦିଗର—
ওখানকার, সেখানকার वहाँका 2. Of that quarter.
( ସେଣକାର—ଅନ୍ୟରୂପ ) (ଏଣକା—ବିପରୀତ)

ସେଣ(ଣି)କୁ—ଦେ· ଅ—ସେଣିକି ( ଦେଖ )—
Seṇa(ṇi)ku Seniki (See)

ସେଣା—ଦେ. ବି ( ସଂ ଶ୍ୟେନ )—୧ । ଶ୍ୟେନ; ଛଞ୍ଚାଣ ପକ୍ଷୀ—
Seṇā 1. Hawk. [ ଦ୍ର—ସେଣାପକ୍ଷୀ ପ୍ରାୟେ ଯେସନ୍ତି
বাজপাখী ଗଗନଗଛ—ସାରଳା. ମହାଭାରତ, ଆଦି ।] ୨ ।
बाज ( ସଂ ସେଚନୀ ) ବାଉଁଶ ପାତିଆରେ ତିଆରି ଏକପ୍ରକାର
ଜଳବାହୀ ଯନ୍ତ୍ର—2. A basket made of split bamboo for baling out water from
সিঅনী tanks.

ସେଣିକା—ଦେ. ଵଣ ( ସଂ ତତ୍ ଓ ସ୍ଥାନ )—୧ । ତେଣିକାର;
Seṇikā ସେହି ଅଡ଼ର—1. Of that side. ୨ । ସେହି
ওখানকার, সেখানকার ସ୍ଥାନର—2. Of that place.
वहाँका ( ସେଣିକାର—ଅନ୍ୟରୂପ )

ସେଣିକି—ଦେ. ଅ—୧ । ତେଣିକି; ସେହି ଅଡ଼କୁ—1. To that
Seṇiki সেখানে side. ୨ । ସେହି ସ୍ଥାନକୁ—
वहा সেদিগে उधर 2. To that place. ୩ । ସେହି
ଦିଗକୁ—3. To that direction. ୪ । ସେହି
ଦିଗରେ—4. In that direction. (ଦ୍ର—ବୋହୂ-
ଗଲ ପାଣି ଯାଇ ସେଣିକି । ବଳାଇଲା ପାଣି ଉଠୁ ଏଣିକି—
তার পর, ওর পর उसके बाद ଇତି ।) ୫ । ତା ପରେ—
5. Thereafter.

ସେଣୁ—ଦେ. ସଙ୍ଗ—୧ । ସେହି ସ୍ଥାନରୁ; ତେଣୁ—
Seṇu 1. Therefrom
সেখানথেকে, उधरसे ୨ । ସେହି ଦିଗରୁ; ସେହିଅଡ଼ୁ—
( ଏଣୁ—ବିପରୀତ ) 2. From that side
সেইজন্যে ୩ । ତେଣୁ; ସେହି ଯୋଗୁଁ; ସେହି କାରଣରୁ—
उसका वास्ते 3. Therefore.

ସେଣେ—ଦେ· ଅ—୧ । ସେଠାରେ; ସେହି ସ୍ଥାନରେ—1. There.
Seṇe সেখানে वहाँ ୨ । ସେହି ଅଡ଼ରେ—
( ଏଣେ—ବିପରୀତ ) 2. In that side.
সেদিগে उधर ୩ । ସେହି ଦିଗରେ—3. In that direction.
୪ । ବିପରୀତ ଦିଗରେ—4. In opposite direction.
୫ । ପକ୍ଷାନ୍ତରରେ—5. On the other hand.
୬ । କୌଣସି ବ୍ୟକ୍ତିଙ୍କ ଅନୁପସ୍ଥିତିରେ—6. In one's absence; behind one's back

ସେଣ୍ଟ—ବୈଦେ. ବି ( ଇଂ )—୧ । ସାଧୁ ବ୍ୟକ୍ତି; ମହାତ୍ମା; ଖ୍ରୀଷ୍ଟାନ
Sent ଶାସ୍ତ୍ର ଲିଖିତ ଧର୍ମପ୍ରାଣ ବ୍ୟକ୍ତି, ଯେ ଧର୍ମରକ୍ଷାର୍ଥ ପ୍ରାଣ
সেন্ট सेंट ଦେବା ପାଇଁ କୁଣ୍ଠିତ ହୁଅନ୍ତି ନାହିଁ—1. Saint.
( ଯଥା—ସେଣ୍ଟ ପଲ୍, ସେଣ୍ଟ ପିଟର୍, ସେଣ୍ଟ ଜର୍ଜ । )
୨ । ( ଲାଟିନ୍ ସେଣ୍ଟ=ଶତ )—ସିଂହଳ ଆଦି ଦେଶ
ପ୍ରଚଳିତ ଟଙ୍କାର ଶତାଂଶ ମୂଲ୍ୟର ତାମ୍ର ମୁଦ୍ରା—
2. Cent; a copper coin representing $\frac{1}{100}$ of a rupee. ୩ । ଆମେରିକା ଇଉନାଇଟେଡ଼୍ ଷ୍ଟେଟ୍ସ ବା ଯୁକ୍ତରାଜ୍ୟରେ ପ୍ରଚଳିତ ମୁଦ୍ରାବିଶେଷ (ରୌପ୍ୟ-ମୁଦ୍ରା ଡୋଲାରର $\frac{1}{100}$ ଅଂଶ )—3. A United State's coin, the hundredth part of a dollar. ( ଦ୍ର—ପୂର୍ବେ ଏହା ତମ୍ବାରେ ହେଉଥିଲା, ବର୍ତ୍ତମାନ ଏହା ତମ୍ବା, ଟିଣ, ଦସ୍ତା ମିଶ୍ରିତ ଧାତୁ(Bronze) ରେ ତିଆରି ହେଉଅଛି । ) ୪ । ଶତ; ଶହେ—
4. Hundred. ( ଯଥା—ପର୍ ସେଣ୍ଟ, ସେଣ୍ଟ ପର୍ ସେଣ୍ଟ ) ପ୍ରାଦେ ( ଗଞ୍ଜାମ )—ଏକ ଏକରର $\frac{1}{100}$ ଅଂଶ ଜମି; ଏକ ଡେସିମିଲ୍ ( ଜମି )—Hundredth part of an acre; one decimal (of land).

ସେଣ୍ଟ ଅପ୍—ବୈଦେ. ଵଣ ( ଅଧୁନାତନ ସ୍କୁଲ ପ୍ରଚଳିତ ଶବ୍ଦ ) (ଇଂ)—
Sent ap ମାଟ୍ରିକୁଲେସନ୍, ଆଇ. ଏ, ବି· ଏ. ଇ ଆଦି ପରୀକ୍ଷା
সেন্ট অপ ପାଇଁ ଅନୁଷ୍ଠିତ ଟେଷ୍ଟ ବା ବଛାବଛି ପରୀକ୍ଷାର ଫଳ
सेंट अप ପ୍ରତି ଦୃଷ୍ଟି ଦିଆ ଯାଇ ଯେଉଁ ଛାତ୍ରକୁ ବା ଛାତ୍ରୀକୁ ଉକ୍ତ
ପରୀକ୍ଷାମାନ ଦେବା ପାଇଁ ମନୋନୀତ କରାଯାଏ—
(a student) Sent up for a final examination in consideration of the result of the preliminary test examination.

ସେଣ୍ଟ ପର୍ ସେଣ୍ଟ—ବୈଦେ. ଵଣ ( ଇଂ, ଇଂଲଣ୍ଡରେ ପ୍ରଚଳିତ ଲାଟିନ୍
Sent par sent ଶବ୍ଦଦ୍ୱୟ )—ଶତକଡ଼ା ଶହେ; ଶହେ ଜଣ
সেন্ট পর সেন্ট सेन्टपरसेन्ट ମଧ୍ୟରେ ସମସ୍ତେ—
Cent per cent.

ସେଣ୍ଟ ଜର୍ଜ—ଦେ. ବି ( ଇଂ ନାମ )—ଇଂଲଣ୍ଡ ସ୍ୱଜାତିର ରକ୍ଷାକର୍ତ୍ତା
Sent Jarj ପୌରାଣିକ ସାଧୁଙ୍କ ନାମ—Saint George,
সেন্ট জর্জ सन्टजर्ज the patron saint
of England. [ ଦ୍ର—ଏ ସୋଡ଼ାରେ ଚଢ଼ି

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ଚକ୍ଟିତ ଅକ୍ଷର ଓ ମାତ୍ରା ଏବଂ ୨ଚକ୍ଟିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଟିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚକ୍ଟିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ'ଖୋଜିବେ; 'ମୂଚ' ନ ମିଳିଲେ 'ମୂଚ' ଖୋଜିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଗା' ନ ପାଇଲେ'ଅର୍ଗ୍ଗା' ଦେଖିବେ;'ଅଲବଟ' ନ ପାଇଲେ 'ଅଲ୍‌ବଟ'ଦେଖିବେ

ଚଡ଼ହୋଇ ପଡ଼ିଥିବା ଗୋଟିଏ ଅସୁରକୁ ବର୍ଚ୍ଛାଦ୍ୱାରା ବିନାଶ କରିଥିଲେ ଓ ଏଥିଯୋଗୁଁ ଏହାଙ୍କର ଅସୁରବିନାଶ-କାଳୀନ ଚିତ୍ର ଇଂଲଣ୍ଡର ସ୍ୱର୍ଣ୍ଣ ମୁଦ୍ରାରେ ଛପା ହୋଇ ଆସୁଅଛି ଓ ଏହାଙ୍କ ସ୍ମରଣାର୍ଥ ଇଂରାଜମାନେ ମାନ୍ଦ୍ରାଜର ଦୁର୍ଗକୁ ଫୋର୍ଟ୍ ସେଣ୍ଟ୍ ଜର୍ଜ୍ ନାମ ଦେଇଥିଲେ । ]

ସେଣ୍ଟ୍ ପଲ୍—ବୈଦେ. ବି ( ଇଂ. ନାମ )—ଖ୍ରୀଷ୍ଟ ଧର୍ମଶାସ୍ତ୍ର ଲିଖିତ ଜଣେ ମହାତ୍ମା—Saint Paul. [ ଦ୍ର—ଏହାଙ୍କ ନାମରେ ଇଂଲଣ୍ଡର ପ୍ରଧାନ ଗିର୍ଜାର ନାମକରଣ ହୋଇଅଛି । ] ଏ ଶବ୍ଦକୁ ଓଡ଼ିଆ ଖ୍ରୀଷ୍ଟାନ୍‌ମାନେ ସେଣ୍ଟ୍ ପାଉଲ୍ ବୋଲି ମଧ୍ୟ ଉଚ୍ଚାରଣ କରିବା ଦେଖାଯାଏ । ]
Sent pal
ସେଣ୍ଟପଲ
सेन्टपल

ସେଣ୍ଟ୍ ପିଟର୍—ବୈଦେ. ବି ( ରୁଷ୍ ନାମ )—ରୁଷିଆର ରକ୍ଷାକର୍ତ୍ତା ଜଣେ ପୌରାଣିକ ମହାତ୍ମା—Saint Peter, the patron saint of Russia.
Sent pitar
ସେଣ୍ଟପିଟର
सेन्टपिटर

ସେଣ୍ଟ ପିଟର୍ସ୍‌ବର୍ଗ୍—ଦେ.ବି (ନାମ)—ରୁଷିଆର ରାଜଧାନୀ ପେଟ୍ରୋଗ୍ରାଡ଼ର ପୂର୍ବ ନାମ ଓ ଏକ ପ୍ରଦେଶର ନାମ—Saint Petersburg, the old name of Petrograd, the capital of Russia and of a Province.
Sent-pitars-barg
ସେଣ୍ଟପିଟାର୍ସବର୍ଗ
सेन्टपिटर्सबर्ग

ସେଣ୍ଟ ବାର୍ଣ୍ଣାଡ ପାଶ୍—ବୈଦେ. ବି (ଇଂ)—ଅଲପ୍ସ ପର୍ବତର ଗିରିସଙ୍କଟ ବିଶେଷ—Saint Bernard Pass. ( ସେଣ୍ଟବାର୍ଣ୍ଣାଡ଼ ଗିରିସଙ୍କଟ—ଦେ. ରୂପ ) [ଦ୍ର— ଏହା ଇଟାଲୀରୁ ସୁଇଜର୍‌ଲଣ୍ଡକୁ ଯିବା ପାଇଁ ଦୁର୍ଗମ ଗିରିସଙ୍କଟ । ଏହି ବାଟେ ଯିବା ଆସିବା ଯାତ୍ରୀମାନେ ବରଫରେ ପୋତି ହୋଇ ମରିଯିବାର ଆଶଙ୍କା ଥିବାରୁ ସେଠାରେ ପୂର୍ବକାଳରୁ ଗୋଟିଏ ଖ୍ରୀଷ୍ଟାନ୍ ମଠ ଅଛି । ଏହି ମଠରେ ଶୃଙ୍ଖଳ ଶିକ୍ଷିତ କୁକୁର ( Saint Bernard dogs ) ଅଛନ୍ତି । ସେମାନେ ଦିନଯାକ ଏହି ଗିରିସଙ୍କଟରେ ବୁଲି ମନୁଷ୍ୟ ଦେହର ବାସନା ବାରି ନିଜର ଗୋଡ଼ର ନଖ ଦ୍ୱାରା ବରଫକୁ ଖୋଳି ତହିଁର ବରଫରେ ପୋତି ହୋଇ ଯାଇ ଅବଶ ହୋଇଥିବା ଯାତ୍ରୀମାନଙ୍କ ଖୋଜ ବାହାର କରିଆଣି ପିଠିରେ ବସାଇ ମଠଠାରୁ ନେଇ ଆସନ୍ତି ଓ ମଠବାସୀ ବୈରାଗୀମାନେ ଏହି ଯାତ୍ରୀମାନଙ୍କୁ ପାନ-ଭୋଜନାଦି ଦେଇ ତାଜା କରନ୍ତି । ]
sent bārnnārd pās
ସେଣ୍ଟବାର୍ଣାଡ ପାଶ
सन्टबार्नार्ड पाश

ସେଣ୍ଟ ଭିନ୍‌ସେଣ୍ଟ୍—ଦେ. ବି (ନାମ)—ବ୍ରିଟିଶଅଧିକୃତ ୱେଷ୍ଟଇଣ୍ଡିଜ୍‌ର ଦ୍ୱୀପବିଶେଷ—Isle of Saint Vincent in the West Indies.
Sent bhin-sent
ସେଣ୍ଟ ଭିନସେଣ୍ଟ
सेन्टभिनसन्ट

ସେଣ୍ଟ୍ ହେଲେନା—ଦେ. ବି (ନାମ)—ଦକ୍ଷିଣ ଆଫ୍ରିକାର ପଶ୍ଚିମରେ ଦକ୍ଷିଣ ଅଟ୍‌ଲାଣ୍ଟିକ୍ ମହାସାଗରସ୍ଥ ବ୍ରିଟିଶ୍ ଅଧିକୃତ ଦ୍ୱୀପ-ବିଶେଷ—The Island of Saint Helena [ଦ୍ର— ସେଠାରେ ନେପୋଲିୟନ୍ ବନ୍ଦୀ ହୋଇଥିଲେ । ]
Sent helena
ସେଣ୍ଟ ହେଲେନା
सेन्टहेलेना

ସେଣ୍ଟର୍—ବୈଦେ. ବି (ଇଂ)—୧ । ବୃତ୍ତର କେନ୍ଦ୍ର—1. Center of a circle. ୨ । ବହୁ ସ୍ଥାନର ପରୀକ୍ଷାର୍ଥୀ ଠିକ ପରୀକ୍ଷା ଦେବାପାଇଁ ନିର୍ଦ୍ଧାରିତ କେନ୍ଦ୍ରସ୍ଥଳ—2. A centre for holding an examination; examination center.
Sentar
ସେଣ୍ଟର
सेन्टर

ସେଣ୍ଟିଗ୍ରାମ୍—ବୈଦେ. ବି (ଇଂ)—ଇଂରାଜୀ ଔଷଧର ଓଜନ 'ଗ୍ରାମ୍'ର $\frac{1}{100}$; ଏକ ଗ୍ରେନ୍‌ର ·୧୫୪୩୨—Centigramme.
Sentigrām
ସେଣ୍ଟିଗ୍ରାମ
सेन्टीग्राम

ସେଣ୍ଟିଗ୍ରେଡ୍—ବୈଦେ. ବି (ଇଂ)—୧୦୦ ଭାଗରେ ବିଭକ୍ତ ଥର୍ମମିଟର୍ ବା ଶରୀରର ତାପମାନ ଯନ୍ତ୍ର—Centigrade thermometer. [ଦ୍ର—ଏଥିର କଳରେ ଜଳ ବରଫହେବା ବେଳେ ପାରା ରହିବା ସ୍ଥାନରେ ୦ [ଶୂନ୍ୟ] ଡିଗ୍ରୀ ଓ ଜଳ ଫୁଟି ବାଷ୍ପ ହେବା ବେଳେ ପାରା ରହିବା ସ୍ଥାନରେ ୧୦୦ ଡିଗ୍ରୀ ଚିହ୍ନ ଦିଆ ଯାଇଥାଏ । ଏହି ତାପ-ମାନ ଯନ୍ତ୍ରକୁ ମନୁଷ୍ୟର କାଖ ସନ୍ଧି ଓ ପାଟିରେ ପୂରାଇଲେ ପାରା କଳରେ ଯେତେ ଡିଗ୍ରୀରେ ଥାଏ, ଉକ୍ତ ବ୍ୟକ୍ତିର ସେତେ ଡିଗ୍ରୀ ଜର ହୋଇଅଛି ବୋଲିଯାଏ । ]
Sentigred
ସେଣ୍ଟିଗ୍ରେଡ
सेन्टीग्रड

ସେଣ୍ଟିମେ(ମି)ଟର୍—ବୈଦେ. ବି (ଇଂ)—ଫ୍ରେଞ୍ଚ୍ ଲମ୍ବ ମାପର ପରିମାଣ-ବିଶେଷ; ଏକ ମିଟର୍‌ର $\frac{1}{100}$; ୧ ଇଞ୍ଚର ·୩୯୩୭—Centimeter.
Senti me(mi)tar
ସେଣ୍ଟିମିଟର
सेन्टीमिटर

ସେଣ୍ଟୀ(ଣ୍ଠୀ)—ଗ୍ରା. ବି ( ଅଶ୍ଳୀଳ ) ( ଭୁଲ. ସଂ. ଶିଶ୍ନଶବ୍ଦୋତ୍ପନ୍ନ ଶିଶ୍ନିକା; ଭୁଲ. ଗ୍ରୀକ୍ କ୍ଲାଇଟୋରିସ୍ )—ସଂ. ନାମ—ଯୋନିମଣି, ଯୋନିଲିଙ୍ଗ, ଭଗାଙ୍କୁର; ସ୍ତ୍ରୀ ଜନନେନ୍ଦ୍ରିୟ ମଧ୍ୟସ୍ଥ କୋମଳ ମାଂସପିଣ୍ଡ; ଯୋନ୍ୟଙ୍କୁର ( ଯାହା ସାମାନ୍ୟ ପରିମାଣରେ ଉପରକୁ ଉଠି-ଥାଏ )—The clitoris [ ଦ୍ର—ପୁରୁଷର ଲିଙ୍ଗ ପରି ଏହା ସ୍ତ୍ରୀମାନଙ୍କର କାମୋତ୍ତେଜକ । ଅଧୁନା ( ୧୯୩୮ ସେପ୍ଟେମ୍ବର୍ ମାସରେ ) ପ୍ରକାଶିତ 'ଦମୟନ୍ତୀ'ଙ୍କ ପ୍ରଣୀତ 'ବିବାହ ପରେ' ନାମକ ଯୌନବିଜ୍ଞାନ ବିଷୟକ ଗ୍ରନ୍ଥରେ 'ଶିଶ୍ନ' ଶବ୍ଦୋତ୍ପନ୍ନ 'ଶିଶ୍ନିକା' ଶବ୍ଦ ଏହି ଅର୍ଥରେ ବ୍ୟବହୃତ ହୋଇଅଛି । ଏହା ସ୍ତ୍ରୀମାନଙ୍କ ପକ୍ଷରେ ପୁରୁଷର ଶିଶ୍ନର ସମ କାମୋତ୍ତେଜକକାରୀ ଅଟେ । ]
senti(nthi)
କୌଟ
टना, टनी, टीटा

| ୧ | ଇ | ଉ | ଋ,ଌ | ଠ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଢ଼ | ଇୟ | ଉଅ | ଋ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତ ବର୍ଣ୍ଣ | ଅନୁ. ର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଘ | ସ | ଗଁ | ଇଅ | ଢ଼ | ନ୍ଦୁ |

ସେଣ୍ଟୁ—ପ୍ରାଦେ. ( ଗଞ୍ଜାମ ) ବି—ଏକ ଏକର୍ ଭୂମିର ଡେସିମଲ୍ ବା
Senṭu ଶତାଂଶ—Decimal or one hundredth part of an acre of land.

ସେଣ୍ଟୁଲୁ—ପ୍ରାଦେ. ( ଗଞ୍ଜାମ ) ବି—ସେଣ୍ଟୁ; ଡେସିମଲ (ଜମି)—
Senṭulu Decimal (of land).

ସେଣ୍ଟ୍ରା(ଣ୍ଟ୍ରା)ଲ୍—ବୈଦେ. ବିଣ ( ଇଂ )—କେନ୍ଦ୍ରିକ—Central.
Senṭra(nṭrā)l [ ଦ୍ର—ଏହା ଅନ୍ୟ ଇଂରାଜୀ ଶବ୍ଦ ପୂର୍ବେ
সেণ্ট্রাল सेण्ट्रल ଯୁକ୍ତ ହୁଏ । ଯଥା—ସେଣ୍ଟ୍ରାଲ୍ କଲେଜ୍, ସେଣ୍ଟ୍ରାଲ୍ ଜେଲ୍, ସେଣ୍ଟ୍ରାଲ୍ ଡିଭିଜନ୍, ସେଣ୍ଟ୍ରାଲ୍ ଷ୍ଟୋର୍ସ]

ସେଣ୍ଟ୍ର(ଣ୍ଟ୍ରା)ଲ୍ ହିନ୍ଦୁ କଲେଜ୍—ବୈଦେ· ବି ( ନାମ )—ସ୍ୱର୍ଗତା
Senṭra(nṭrā)l hindu kalej ଆନିବେସାଣ୍ଟଙ୍କ ପ୍ରତିଷ୍ଠିତ ବନାରସ (କାଶୀ)ସ୍ଥ ଉଚ୍ଚ ବିଦ୍ୟାଳୟ—The Central Hindu College of Benares ( started by the late Anne Besant). [ ଦ୍ର—ଏଥିର ସଂକ୍ଷିପ୍ତ ବିବରଣ ପାଇଁ ପଣ୍ଡିତ ନୀଳମଣି ଦାଶଙ୍କ 'ହିମାଳୟ ପଥେ' ଗ୍ରନ୍ଥ ଦ୍ରଷ୍ଟବ୍ୟ । ]

ସେଣ୍ଡ(ଣ୍ଢ)—ଦେ. ବି—୧ । ସେଣ ( ଦେଖ ) —1 Seṇa [ See ]
Senḍa(nḍha) ୨ । ଶେଣ୍ଡ(ଣ୍ଢ) ଇତ୍ୟାଦି [ ଦେଖ ]—
2. Shenḍa(nḍha) etc [ See ]

ସେଣ୍ଡା(ଣ୍ଢା)—ଦେ. ବି—ବେକ ମୁଣ୍ଡା; ବେକର ପୃଷ୍ଠଭାଗ—
Senḍā(nḍhā) The nape of the neck.
ঘাড় गर्दन

ସେ(ସେଁ)ତଖାନା—ବୈଦେ· ବି ( ଆ. ସେହତ୍+ଫା. ଖାନା; ସେହତ୍=ଆରାମ, ସୁଖ, ରୋଗମୁକ୍ତ )—୧ । ପାଇଖାନା—1. Latrine; privy. ୨ । ମଳ-
Se(señ)tkhānā
সেৎখানা
सेहतखाना ମୂତ୍ର ଓ ସ୍ନାନାଦି କରିବା ପାଇଁ ଜାହାଜରେ ଓ ରେଳ ଗାଡ଼ିରେ ଥିବା ଛୋଟ କୋଠରି—
2. Lavatory in a ship or railway train.

ସେତ (ଇତ୍ୟାଦି)—ଦେ. ବିଣ (ସଂ. ଶ୍ୱେତ)—ଶେତ ଇତ୍ୟାଦି (ଦେଖ)
Seta (etc) Śeta etc ( See )

ସେତକ—ଦେ. ସର୍ବ—ସେତିକି ପରିମାଣ ବା ସଂଖ୍ୟା—So much, that much (in quantity or number)
Setaka
ততটা उतना

ସେତରଙ୍ଗ(ଙ୍ଗି, ଞ୍ଜ, ଞ୍ଜି)—ଦେ. ବି—ସତରଙ୍ଗ ( ଦେଖ )—
Setaraṅga(ṅgi, ñja, ñji) Sataraṇga ( See )
[ ସେତରଞ୍ଜ (ଞ୍ଜି, ଙ୍ଗ, ଙ୍ଗି)—ଅନ୍ୟରୂପ ]

ସେତା (ଇତ୍ୟାଦି)—ଦେ. ବିଣ (ସଂ· ଶ୍ୱେତ)—ଶେତା ଇତ୍ୟାଦି (ଦେଖ)
Setā (etc) Śetā etc ( See )

ସେତାଙ୍କ—ପ୍ରାଦେ. ( ସମ୍ବଲପୁର ) ସର୍ବ—ତାହାଙ୍କ—
Setāṅka His.

ସେତାର୍—ବୈଦେ. ବି ( ଫା· ସିତାର୍ )—ସିତାର୍ ( ଦେଖ )
Setār Sitār ( See ) [ ଉ—ସୁକଣ୍ଠ ସେତାର-ତାର ଝଙ୍କାରେ ମଧୁପ ଉଡ଼ି ଉଡ଼ି—ଚିନ୍ତାମଣି, ବିକ୍ରମାଦିତ୍ୟ ।]

ସେତାରୀ—ଦେ. ବି ( ପ୍ରାଚୀନ ଓଡ଼ିଆ )—ତମ୍ବୁ ( ମାଦଳା ପାଞ୍ଜି )—
Setārā তাম্বু तम्बू Camp.

ସେତାରୀ—ବୈଦେ· ବିଣ, ଓ ବି ( ଫା. ସିତାରୀ )—ସିତାର ବଜାଇ-
Setārī ବାରେ ଦକ୍ଷ ବ୍ୟକ୍ତି—A person who can play on guitar.
সেতারী सितारी
[ ସେତାରିଆ—ଦେ. ରୂପ ]

ସେତି - ଗ୍ରା. ସର୍ବ—ସେଟି; ସେଇଟି—That; that very thing
Seti [ ଉ—ଏଥି ଯେତେକ ଦ୍ରବ୍ୟ ହୋନ୍ତି । ସକଳ ବସ୍ତୁ
সেইটি वही ଭୋଗ ସେତି—ଯଶୋବନ୍ତ, ପ୍ରେମଭକ୍ତି· ବ୍ରହ୍ମଗୀତା।]

ସେତିକି—ଦେ. ସର୍ବ—ସେତିକି ପରିମାଣ; ତେତିକ; ତେତେ ପରିମାଣ—
Setiki That much; so much. ବିଣ—ସେତିକି ପରିମିତ—
ততটা उतनाही That much of.
[ ଏତିକ—ତୁଳନୀୟ ]

ସେତିକି ବେଳ—ଦେ· ବି—ସେତିକି ସମୟ; ତେତିକ ବେଳ—That time.
Setiki beḷa সেই সময় उस समय

ସେତିକି ବେଳକୁ—ଦେ. ଅ—ସେହି ସମୟସୁଦ୍ଧା—By that time.
Setiki beḷaku সেই সময়ে उस वख्तमें

ସେତିକି ବେଳୁଁ—ଦେ. ଅ—ସେହି ସମୟରୁ—Since then.
Setiki beḷuñ তখন থেকে उस समयसे

ସେତିକି ବେଳେ—ଦେ. ଅ—ସେହି ସମୟରେ—
Setiki beḷe At that time; then.
সেই সময়ে उस समयमें

ସେତୁ—ସଂ· ବି ( ସି· ଧାତୁ=ବନ୍ଧନ କରିବା+କରଣ· ତୁ )—
Setu ୧ । ଜଳ ବନ୍ଧାଇବା ପାଇଁ ନିର୍ମିତ ବନ୍ଧ; ହୁଡ଼ା; ଆଡ଼ବନ୍ଧ—1. Embankment; dyke; high bank; dam. ୨ । ପୋଲ; ଶଙ୍କ—2, A bridge. ୩ । ନଈ ପାର ହେବା ପାଇଁ ନିର୍ମିତ ବନ୍ଧ—3· Causeway; mole across a river. ୪। କ୍ଷେତର ହିଡ଼; ଆଳି (ଅମର)—4, Ridge of a field. ୫ । ମର୍ଯ୍ୟାଦା; ସୀମା—5. Boundary; limit· ୬ । ପ୍ରଣବ; ଓଁକାର ( ହ. ଶ)—6. The mystic syllable 'Om'. ୭ । ଟୀକା; ବ୍ୟାଖ୍ୟା ( ହ. ଶ )—7. Annotation; key. ୮ । ବରୁଣ ବୃକ୍ଷ ( ହ· ଶ )—
8. Cratœva Aurifolia (wild tree ).

ସେତୁକ—ସଂ· ବି ( ସି ଧାତୁ+କର୍ତ୍ତୃ. ତୁ+କ )—୧ । ବରୁଣ ବୃକ୍ଷ
Setuka ( ଶବ୍ଦରତ୍ନାବଳୀ )—1. Cratœva Aurifolia

( a wild tree ). ୨ । ବନ୍ଧ ( ଦ୍ର. ଶ )—
2. Dam; dyke. ୩ । ପୋଲ ( ଦ୍ର. ଶ )—
3. Bridge.

ସେତୁକୃତ—ଦେ. ବିଣ ( ସଂ ସେତୁକୃତ୍ )—ସେତୁ ବନ୍ଧନକାରୀ—
Setukruta Constructing an embankment.
[ ଦ୍ର—ବିଶାଳ ଜାନୁ ସେତୁକୃତ ଦଶାସ୍ୟ ଜଘାନ ଜଂଘା ପ୍ରଚାରୁ—ଉଞ୍ଜ. ବୈଦେହୀଶବିଳାସ । ]

ସେତୁ ପତି—ଦେ. ବି—ଦାକ୍ଷିଣାତ୍ୟର ମଦୁରା ଜିଲ୍ଲାର ଅନ୍ତର୍ଗତ ରାମନାଦ
Setu pati ରାଜ୍ୟର ରାଜାଙ୍କ ବଂଶାନୁଗତ ଉପାଧି—The family title of the Raja of Ramnad estate in South India.

ସେତୁ ବନ୍ଧ—ସଂ. ବି—୧। ନଦୀ ବା ସମୁଦ୍ର ପାର ହେବା ପାଇଁ ପଥରରେ
Setu bandha ବା ମାଟିରେ ନିର୍ମିତ ବନ୍ଧ—1. A dyke or bank aocross a river or sea. ୨ । ସେତୁ ( ଦେଖ )—2. Setu ( See ). ୩ । ( ବହୁବ୍ରୀହି; ସେତୁ ହୋଇଅଛି ବନ୍ଧ ଯାହାର ) ଭାରତର ଦକ୍ଷିଣ ପୂର୍ବ କୋଣ ରାମେଶ୍ୱରଠାରୁ ଲଙ୍କାର ଉତ୍ତର ପଶ୍ଚିମ କୋଣ ମାନାର ପର୍ଯ୍ୟନ୍ତ ଲମ୍ବିଥିବା ମାନାର୍ ଉପସାଗରରେ ଥିବା ପ୍ରାଚୀନ ବନ୍ଧର ଭଗ୍ନାବଶିଷ୍ଟ ଆକାରର ଖଣ୍ଡ ଖଣ୍ଡ ପାହାଡ଼ ଶ୍ରେଣୀ—3. Adam's bridge between Rāmeśwar in India and Mannar in Ceylon. ୪ । ସୀତାଙ୍କ ଉଦ୍ଧାରାର୍ଥ ରାମଚନ୍ଦ୍ରଙ୍କ ଆଦେଶରେ ଭାରତବର୍ଷରୁ ଲଙ୍କାକୁ ପାର ହୋଇ ଯିବା ନିମନ୍ତେ ରଚିତ ରାମାୟଣବର୍ଣ୍ଣିତ ପଥରର ଭାସମାନ ପୋଲ—4. The stone bridge described in the Rāmāyaṇa to have been floated on the sea between India and Ceylon. [ ଦ୍ର—କଥିତ ଅଛି ଯେ, ସୀତାଙ୍କୁ ଲଙ୍କାରୁ ଉଦ୍ଧାର କରିବାକୁ ଯାଉଥିବା ବାନରସେନାମାନଙ୍କର ପାର ହେବା ପାଇଁ ରାମଚନ୍ଦ୍ରଙ୍କ ଆଦେଶରେ ହନୁମାନ୍, ନଳ, ନୀଳ ଆଦି ବାନର୍ମାନେ ଭାସମାନ ପଥର ଆଦି ଦ୍ୱାରା ଏହି ସେତୁବନ୍ଧ ବାନ୍ଧିଥିଲେ, ଏବଂ ଲଙ୍କାରୁ ସୀତାଙ୍କୁ ନେଇ ଫେରି ଆସିବା ସମୟରେ କାଳେ ଏହି ବନ୍ଧ ବାଟେ ରାକ୍ଷସମାନେ ଭାରତକୁ ଆସିବେ, ଏହି ଆଶଙ୍କାରେ ରାମଚନ୍ଦ୍ର ଉକ୍ତ ସେତୁବନ୍ଧକୁ ମଝେ ମଝେ କାଟି ଦେଇ ଆସିଥିଲେ ଓ ଏହା ଏ ପର୍ଯ୍ୟନ୍ତ ହିନ୍ଦୁମାନଙ୍କର ଗୋଟିଏ ପ୍ରଧାନ ତୀର୍ଥରୂପେ ପରିଗଣିତ ହେଉଅଛି । ଏହି ସେତୁବନ୍ଧ ବସ୍ତୁତଃ ଗୋଟିଏ ସମୁଦ୍ରସ୍ଥିତ ପାହାଡ଼ର ଶ୍ରେଣୀ ଅଟେ ଓ ଏହା ସ୍ଥାନେ ସ୍ଥାନେ ଅଗଭୀର ସମୁଦ୍ରରେ ବୁଡ଼ି ଅଛି ଓ ସ୍ଥାନେ ସ୍ଥାନେ ଦ୍ୱୀପରୂପେ ସମୁଦ୍ର ଉପରକୁ ଉଠିଅଛି । ଏହି ସେତୁବନ୍ଧର ଉତ୍ତର ସୀମାରେ ରାମେଶ୍ୱର ତୀର୍ଥରେ ରାମନାଥ ଶିବଲିଙ୍ଗ ଅଛନ୍ତି ଏବଂ ଦକ୍ଷିଣ ସୀମାରେ ମାନାର୍ ନଗର ଅଛି । ଉକ୍ତ ରାମନାଥ ହିନ୍ଦୁମାନଙ୍କର ଭାରତର ଚତୁର୍ଦ୍ଦିଗବର୍ତ୍ତୀ ୪ ପୁଣ୍ୟ ଧାମ ମଧ୍ୟରୁ ଏକତମ ।]

ସେତୁ ବନ୍ଧନ—ସଂ. ବି ( ୬ଷ୍ଠୀ ତତ୍ )—ନଦୀ ବା ସମୁଦ୍ର ଉପରେ ବନ୍ଧ
Setu bandhana ବା ପୋଲ ବାନ୍ଧିବା—Laying of a bank or bridge across a river or sea.

ସେତୁବନ୍ଧ ରାମେଶ୍ୱର—ଦେ. ବି—ସେତୁବନ୍ଧ ତଳେ ଟୀକା ( ଦେଖ )
Setubandha rāmeśwara Notes under Setu bandha ( See )

ସେତୁ ବାନ୍ଧିବା—ଦେ. କି—ନଦୀ ଆଦି ଉପରେ ପୋଲ ନିର୍ମାଣ କରିବା
Setu bāndhibā —To lay a bridge or bank
সেতু বাঁধা सेतु बाँधना across a river or sea.

ସେତୁ ବୃକ୍ଷ—ସଂ. ବି—ବରୁଣ ବୃକ୍ଷ ( ରାଜନିର୍ଘଣ୍ଟ )—
Setu bruksha Cratoeva Aurifolia ( tree ).

ସେତୁ ଭେଦ(ଭଙ୍ଗ)—ସଂ. ବି ( ୬ଷ୍ଠୀ ତତ୍ )—ଭଗ୍ନ ହୋଇଥିବା
Setu bheda (bhanga) ପୋଲର ଭାଙ୍ଗିଯିବା ( ଦ୍ର. ଶ )—The dismantling of a bridge or dyke.

ସେତୁ ଭେଦୀ—ସଂ. ବି—ଦନ୍ତୀବୃକ୍ଷ ( ଶବ୍ଦଚନ୍ଦ୍ରିକା )—Croton
Setu bhedī Polyandrum ( a medicinal plant ).

ସେତୁ ଶୈଳ—ସଂ. ବି—ଦୁଇ ଦେଶର ବା ରାଜ୍ୟର ସୀମାରେ ଥିବା
Setuśaila ପର୍ବତ ବିଶେଷ ( ଦ୍ର. ଶ )—A mountain standing on the boundary of two countries.

ସେତେ—ଦେ. ସର୍ବନାମ ଅବ୍ୟୟ—ସେହି ପରିମାଣ—
Sete That much.
ততটা उतना

ସେତ୍ର—ସଂ. ବି (ସି. ଧାତୁ=ବନ୍ଧନ କରିବା+କରଣ. ତ୍ର)—ନିଗଡ଼;
Setra ବେଡ଼ି—Chain.

ସେଥିକି(କୁ)—ଦେ. ସର୍ବ—୧ । ସେହି ବିଷୟକୁ ବା ପ୍ରତି—1. To
Sethiki(ku) that matter. ୨ । ତନ୍ନିମିତ୍ତ—2. For
সেইজন্য उसवास्ते that.

ସେଥି ପା(ପେ)ଇଁ ( ଲାଗି )—ଦେ. ସର୍ବ—୧ । ତନ୍ନିବନ୍ଧନ—
Sethi pā(pe)iṅ (lāgi) 1. Owing to that. ୨ ।
[ସେଥି ପା(ପେ)ଇଁ—ଅନ୍ୟରୂପ] ତନ୍ନିମିତ୍ତ—2. For that.
তারজন্যে, ওবজন্যে ୩ । ସେହି କାରଣରୁ—3. Therefor
उसकेलिये for that reason.

ସେଥିର୍ ଲାଗି—ପ୍ରାଦେ. ସମ୍ବଲପୁର. ଅ—ସେଥିପାଇଁ (ଦେଖ)
Sethir lāgi Sethi pāiṅ (See)

ସେଥି(ଥୁ)ରୁ—ଦେ. ସର୍ବ—୧ । ତହିଁରୁ—1. Form that. ୨ ।
Sethi(thu)ru ସେହି କାରଣରୁ—2. Therefore, owing to that. ୩ । ତତ୍ପରେ—
তাইথেকে, সেইথেকে
उससे 3. After that.

ସେଥିରେ—ଦେ. ସର୍ବ—୧ । ତହିଁରେ—1. In that. ୨ । ସେହି
Sethire ବିଷୟରେ—2. In respect of that matter.
তাতে, ওতে उसमें

ସେଥ୍ର—ପ୍ରାଦେ [ଲିଖିତ] ଅ—ଅଗ ଥର—
Sethra In the previous or first occasion.

ସେଦ୍ଧବ୍ୟ—ସଂ ଣ (ଷିଧ୍ ଧାତୁ+କର୍ମ. ତବ୍ୟ)—୧ । ନିବାରଣ
Seddhabya ହେବାର ଯୋଗ୍ୟ—1, Fit to be prevented
(ସେଧନୀୟ—ଅନ୍ୟରୂପ) or prohibited. ୨ । ଯାହା ନିବାରଣ
ବା ନିଷିଦ୍ଧ ହେବ—2, About to be prohibited,

ସେଧ—ସ. ବ (ସିଧ୍ ଧାତୁ+ଭାବ. ଅ)—୧ । ନିଷେଧ—
Sedha 1, Prohibition. ୨ । ନିବାରଣ—2. Prevention,

ସେଧକ—ସ. ଣ. ପୁଂ (ସିଧ ଧାତୁ+କର୍ତ୍ତୃ.ଅକ )—୧ । ନିବାରଣକାରୀ
Sedhaka —1. Preventing, ୨ । ପ୍ରତିରୋଧକ (ହି. ଣ)—
(ସେଧିକା—ସ୍ତ୍ରୀ) 2. Obstructing.

ସେଧା—ସ. ବ—ଝିଙ୍କ ( ହି. ଶ )—
Sedhā Porcupine.

ସେନ୍—ପ୍ରାଦେ. (ସମ୍ବଲପୁର ) ସର୍ବ—ସେଠାରେ; ସେହିଠାରେ; ତହିଁ—
Sen In that place or direction; there. ଦେ.
সেন ବ ( ସ. ସେନ୍ )—ବଙ୍ଗୀୟ କାୟସ୍ଥ ଓ ବୈଦ୍ୟଙ୍କ
सेन ବଂଶୋପାଧିବିଶେଷ—Family-title of some
Bengalee Kāyasthas and Baidyas

ସେନ୍‌କେ—ପ୍ରାଦେ. ( ବଲାଙ୍ଗିର ପାଠଣା ) ସର୍ବ—ସେଠାକୁ—
Sen-ke To that place

ସେନ୍‌ତା—ପ୍ରାଦେ. ( ସମ୍ବଲପୁର ) ଅ ( ତୁଲ. କେନ୍‌ତା, ଏନ୍‌ତା )—
Sen-tā ୧ । ସେହିପରି; ତଥା—1. In that manner.
୨ । ତାଦୃଶ—2. Similar to that.
(ସେନ୍ତା—ଅନ୍ୟରୂପ) ୩ । ତାହାହିଁ—3. That also; that too.

ସେନ—ସଂ ବ ( ସି. ଧାତୁ=ବନ୍ଧନ କରିବା+କର୍ତ୍ତୃ. ନ )—୧ । ବୀର;
Sena ଶୂର—1. A hero; a warrior. [ଯଥା—
ଭୀମସେନ । ) ୨ । ଦଳପତି; ଅଧିନାୟକ; ନାୟକ—
2. A leader. ୩ । ଦଳର ପ୍ରଧାନ ବ୍ୟକ୍ତି—
3. Headman. ୪ । ରାଜା; ଭୂପତି—4. King.
୫ । (+କର୍ମ. ନ ) ଶରୀର ( ହି. ଶ )—5. Body.
୬ । ଜୀବନ ( ହି. ଶ )—6. Life. ସ. ଣ—
୧ । ସନାଥ ( ହି. ଶ )—1. Having a lord.
୨ । ଅଣ୍ରିତ; ଅଧୀନ ( ହି. ଶ )—2. Subservient;
dependent. ଦେ. ବ—୧ । ବଙ୍ଗଦେଶର ବୈଦ୍ୟ
ଓ କାୟସ୍ଥ ଜାତିଙ୍କ ବଂଶୋପାଧିବିଶେଷ—1. Family-title of some Bengalee Kāyasthas and
Baidyas. ୨ । ବଙ୍ଗରେ ଖ୍ରୀଷ୍ଟୀୟ ୧୧ଶ ଠାରୁ ୧୪ଶ
ଶତାବ୍ଦୀ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ପ୍ରାଚୀନ ରାଜବଂଶବିଶେଷ—2. Family-title of some Rajas of
ancient Bengal ୩ । ବଙ୍ଗଦେଶର କେତେକ
ତନ୍ତୀଙ୍କ ବଂଶୋପାଧି—3. Family-title of some
weavers in Bengal. [ ଦ୍ର—ଏହି ସେନ
ଉପାଧିଧାରୀ ତନ୍ତୀମାନେ ବଙ୍ଗଦେଶରୁ ଆସି ବହୁପୁରୁଷାବଧି
ଓଡ଼ିଶାରେ ରହିଅଛନ୍ତି ଓ ବର୍ତ୍ତମାନ ଓଡ଼ିଆରେ ତାଙ୍କର
ଉପାଧି ସେଣ ବା ସେଣ୍ଠ ବା ସେଣ୍ ହୋଇଅଛି । ]

ସେନ ଗୁପ୍ତ—ଦେ. ବ—ବଙ୍ଗୀୟ ବୈଦ୍ୟମାନଙ୍କର ବଂଶୋପାଧିବିଶେଷ—
Se na gupta Family-title of some Baidyas
of Bengal.

ସେନ ଗୁପ୍ତ ଯତୀନ୍ଦ୍ରମୋହନ—ଦେ. ବ—ବଙ୍ଗର ପ୍ରସିଦ୍ଧ ନେତା ସ୍ୱର୍ଗତ
Sena gupta jatindramohana ଦେଶପ୍ରିୟ ଯତୀନ୍ଦ୍ରମୋହନ
ସେନ ଗୁପ୍ତ—The late celebrated J. M. Sen
Gupta, one of the leaders of Bengal.
[ ଦ୍ର—୧୮୮୫ ଖ୍ରୀଷ୍ଟାବ୍ଦରେ ଚଟ୍ଟଗ୍ରାମ ଜିଲ୍ଲାର ବର୍ତ୍ତମା
ଗ୍ରାମରେ ଶ୍ରୀଯୁକ୍ତ ଯତୀନ୍ଦ୍ରମୋହନ ସେନ ଗୁପ୍ତ ଜନ୍ମଗ୍ରହଣ
କରିଥିଲେ । ତାଙ୍କର ପିତା ଯାତ୍ରାମୋହନ ସେନ ଗୁପ୍ତ
ଗତ ଶତାବ୍ଦୀର ବଙ୍ଗର ଜଣେ ବିଖ୍ୟାତ ନେତା ଥିଲେ ।
ଯତୀନ୍ଦ୍ର କଲିକତାର ବ୍ରହ୍ମବିଦ୍ୟାଳୟ, ଚଟ୍ଟଗ୍ରାମ କଲେଜ ଏଟ
ସ୍କୁଲ, ହେୟାର ସ୍କୁଲ ଏବଂ ପ୍ରେସିଡେନ୍ସି କଲେଜରେ
ଶିକ୍ଷା ଶେଷ କରି ୧୯୦୪ ସାଲ ଅଗଷ୍ଟ ମାସରେ ବିଲାତ
ଯାତ୍ରା କରି କେମ୍ବ୍ରିଜର ଡାଉନିଙ୍ଗ୍ କଲେଜରେ ଶିକ୍ଷାଲାଭ
କଲେ ଓ ୧୯୦୮ରେ ବି. ଏ. ଏବଂ ୧୯୦୯ ସାଲରେ
ବାରିଷ୍ଟରୀ ଶେଷ ପରୀକ୍ଷା ପାସ୍ କଲେ । ସେ ମିସ୍ ନେଲୀ ଗ୍ରେ
ନାମ୍ନୀ ଇଂରାଜୀ କୁମାରୀଙ୍କ ପାଣିଗ୍ରହଣ କରିଥିଲେ ।

ଭାରତକୁ ଫେରିଆସି ସେ ୧୯୧୦ ସାଲରେ କଲିକତା
ହାଇକୋର୍ଟର ଅଡ୍‌ଭୋକେଟ୍ ହେଲେ ଏବଂ କେତେକ
ବର୍ଷ ପର୍ଯ୍ୟନ୍ତ ଫୌଜଦାରୀ ମକଦ୍ଦମାରେ ଖୁବ୍ ପ୍ରସିଦ୍ଧତା
ଦେଖାଇଥିଲେ । କମ୍ପେଇରେ ବାରିନ୍ଦ୍ର ନରହତ୍ୟା ମକଦ୍ଦମାରେ
ତାଙ୍କୁ ନିଯୁକ୍ତ କରାଯାଇଥିଲା ।

୧୯୧୦ ସାଲରୁ ସେ ବଙ୍ଗଦେଶର ରାଜନୀତିକ ଜୀବନରେ
ଅଗ୍ରଣୀରୂପେ ଦଣ୍ଡାୟମାନ ହୋଇଥିଲେ । ୧୯୧୧ ସାଲରେ
ଫରିଦପୁରଠାରେ ଅନୁଷ୍ଠିତ ବଙ୍ଗୀୟ ପ୍ରାଦେଶିକ ସମ୍ମେଳନୀରେ
ସେ ଯୋଗଦାନ କରିଥିଲେ ଏବଂ ସମ୍ମେଳନୀର ଆଗାମୀ
ବୈଠକକୁ ଚଟ୍ଟଗ୍ରାମକୁ ଆହ୍ୱାନ କରିଥିଲେ । ୧୯୧୨
ସାଲରେ ଚଟ୍ଟଗ୍ରାମର ସମ୍ମେଳନୀରେ ଯେଉଁ ଅଧିବେଶନ
ହେଲା, ତାହାଙ୍କର ପିତା ତହିଁର ଅଭ୍ୟର୍ଥନା ସମିତିର
ସଭାପତି ହୋଇଥିଲେ ଏବଂ ୧୯୨୨ ସାଲରେ ସେହି
ଚଟ୍ଟଗ୍ରାମରେ ଯେଉଁ ଅଧିବେଶନ ହୋଇଥିଲା, ସେଥିରେ
ଯତୀନ୍ଦ୍ରମୋହନ ସଭାପତି ହୋଇଥିଲେ । ୧୯୨୧ ସାଲରେ
ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ସେ ଓକିଲତି
ବ୍ୟବସାୟ ପରିତ୍ୟାଗ କଲେ । ୧୯୨୧ ସାଲ ଅପ୍ରେଲ
ମାସରେ ସେ ଚଟ୍ଟଗ୍ରାମର ବର୍ମା ଅଏଲ୍ କମ୍ପାନୀରେ କାମ
କରୁଥିବା ମୂଲିଆମାନଙ୍କ ଧର୍ମଘଟର ପରିଚାଳନା କରିଥିଲେ ।
କୌଣସି ସାଧାରଣ ସଭା ନ କରିବା ଲାଗି ବା କୌଣସି
ଶୋଭାଯାତ୍ରାରେ ଅଗ୍ରଣୀ ନ ହେବା ଲାଗି ସେଠାର

ମାଜିଷ୍ଟ୍ରେଟ୍ ତାଙ୍କ ଉପରେ ନୋଟିସ୍ ଜାରି କଲେ । ସେ ଏହି ଆଦେଶ ପାଳନ ନ କରିବାରୁ ତାଙ୍କୁ ଗିରଫ୍ କରାଗଲା । ଶେଷରେ ଉକ୍ତ ଧର୍ମଘଟ ସାଲିସଦ୍ୱାରା ମୀମାଂସିତ ହେଲା । ୧୯୨୧ ସାଲ ମଇ ୨୮ ତାରିଖରେ ଶ୍ରୀଯୁକ୍ତ ସେନ ଗୁପ୍ତ ଆଉ ଗୋଟିଏ ଧର୍ମଘଟର ଆୟୋଜନ କଲେ । ଏହା ଗୌହାଟି ଏବଂ ଇସ୍ତଗଞ୍ଜଠାରୁ ଚଟ୍ଟଗ୍ରାମ ପର୍ଯ୍ୟନ୍ତ ବିସ୍ତୃତ ହେଲା ଏବଂ ଏଥିରେ ଆସାମ ବଙ୍ଗ ରେଲୱେର କାମ କରୁଥିବା ୧୪ ହଜାର ମୂଲିଆ ସଂପୃକ୍ତ ହେଲେ । ଏହି ଧର୍ମଘଟ ପ୍ରାୟ ୩ ମାସ କାଳ ରହିଲା ଏବଂ ଧର୍ମଘଟକାରୀଙ୍କ ଭରଣ ପୋଷଣ ପାଇଁ ଶ୍ରୀଯୁକ୍ତ ସେନ ଗୁପ୍ତଙ୍କୁ ୪୦ ହଜାର ଟଙ୍କା ଋଣ କରିବାକୁ ପଡ଼ିଥିଲା । ଯୁଲାଇ ୪ ତାରିଖରେ ସେ ପୁଣି ଗିରଫ୍ ହୋଇଥିଲେ ଏବଂ ହାଜତରେ ଦୁଇ ତିନି ଦିନ ରହିଥିଲେ । ଅକ୍ଟୋବର ୨୦ ତାରିଖରେ ପୁଲିସ୍‌ଠାରୁ ଅନୁମତି ନ ନେଇ ଚଟ୍ଟଗ୍ରାମରେ ଗୋଟିଏ ଶୋଭାଯାତ୍ରା କରିଥିବାରୁ ସେ ଏବଂ ଅନ୍ୟ ୧୭ ଜଣ ୩ ମାସ ଲେଖାଏଁ ସଶ୍ରମ କାରାଦଣ୍ଡ ପାଇଲେ । ଜେଲ୍‌ରୁ ମୁକ୍ତ ହେବା ପରେ ଅତ୍ୟନ୍ତ ଅଭାବରେ ପଡ଼ିବାରୁ ସେ ପୁଣି ଓକିଲାତି ପେଶାରେ ପଶିବାକୁ ବାଧ୍ୟ ହୋଇଥିଲେ ।

୧୯୨୨ ସାଲରେ ସେ ଭାରତୀୟ ଜାତୀୟ କଂଗ୍ରେସର କାର୍ଯ୍ୟକାରୀ ସଭାର ଜଣେ ସଭ୍ୟ ହୋଇଥିଲେ । ଯେତେବେଳେ ଦେଶବନ୍ଧୁ ଚିତ୍ତରଞ୍ଜନ ସ୍ୱରାଜ୍ୟ ଦଳ ଗଠନ କରିଥିଲେ, ସେତେବେଳେ ସେ ତହିଁରେ ଯୋଗ ଦେଇ ଥିଲେ ଏବଂ ବଙ୍ଗଦେଶର ସ୍ୱରାଜ ଦଳର ସମ୍ପାଦକ ହୋଇଥିଲେ ।

ଦେଶବନ୍ଧୁଙ୍କ ବିୟୋଗ ପରେ ଶ୍ରୀଯୁକ୍ତ ସେନ ଗୁପ୍ତ କଲିକତା କର୍ପୋରେସନ୍‌ର ମେୟର୍ ପଦରେ ପ୍ରତିଷ୍ଠିତ ହେଲେ । ଏହି କାର୍ଯ୍ୟ ସେ ସୁରୁଚିରୂପେ ଚଳାଇଥିଲେ । ୧୯୨୭ ସାଲରେ ମାନ୍ଦ୍ରାଜରେ କଂଗ୍ରେସର ଅଧିବେଶନରେ ଯୋଗ ଦେବାକୁ ଯାଇ ସେ ସେଠାରେ ଜାତୀୟ ପତାକା ଉତ୍ତୋଳନ କରିଥିଲେ ।

ସେ ବରିଶାଲରେ ଅନୁଷ୍ଠିତ ପ୍ରାଦେଶିକ କନ୍‌ଫରେନ୍‌ସ୍‌ରେ ସଭାପତି ହୋଇଥିଲେ ।

କଲିକତାରେ ମେହନ୍ତରମାନେ ଧର୍ମଘଟ କରିବାଦ୍ୱାରା ସେହି ଗରିବ ଲୋକମାନଙ୍କର ଅନେକ କ୍ଷତି ହେଉଥାଏ ଏବଂ କଲିକତାବାସୀମାନଙ୍କର ମଧ୍ୟ ବହୁତ ଅସୁବିଧା ହେଉଥାଏ । ଯତୀନ୍ଦ୍ରମୋହନ ବହୁ ଚେଷ୍ଟାଦ୍ୱାରା ଏହି କଠିନ ସମସ୍ୟାର ସନ୍ତୋଷଜନକ ସମାଧାନ କରିଇ ପାରିଥିଲେ । ତାଙ୍କ ସହଧର୍ମିଣୀ ନେଲି ସେନ ଗୁପ୍ତ ଇଂରେଜ୍ ମହିଳା ହୋଇ ସୁଦ୍ଧା ସ୍ୱାମୀଙ୍କ ଜାତୀୟ ସମରରେ ଏବଂ ଭାରତୀୟମାନଙ୍କ ପକ୍ଷରେ ପ୍ରାଣପଣେ ଲଢ଼ିଥିଲେ ଓ ସେ ଭାରତୀୟ ମହିଳାମାନଙ୍କ ପୋଷାକ ପରିଧାନ କରୁଥିଲେ ।

୧୯୩୦ ସାଲରେ ଶ୍ରୀଯୁକ୍ତ ସେନ୍‌ଗୁପ୍ତ ଡାକ୍ତରମାନଙ୍କ ପରାମର୍ଶରେ ସ୍ୱାସ୍ଥ୍ୟୋନ୍ନତି ଲାଗି ବିଲାତ ଯାତ୍ରା କରିଥିଲେ । ତାହାଦ୍ୱାରା ତାଙ୍କର ପ୍ରକୃତ ସ୍ୱାସ୍ଥ୍ୟର ଉନ୍ନତି ହେଉଥିଲା । ମାତ୍ର, ଯେତେବେଳେ ଶୁଣିଲେ ଯେ, ମହାତ୍ମା ଗାନ୍ଧି, ଜହରଲାଲ ନେହେରୁ ଓ ସୁଭାଷଚନ୍ଦ୍ର ବୋଷ ବନ୍ଦୀ ହୋଇ ଅଛନ୍ତି ଏବଂ ଦେଶରେ ପୁଣି ଆଇନ୍ ଅମାନ୍ୟ ଆନ୍ଦୋଳନ ଚାଲିଛି, ସେତେବେଳେ ସେ ଆଉ ବିଲାତରେ ରହି ପାରିଲେ ନାହିଁ । ୧୯୩୨ ସାଲ ଜାନୁଆରି ୨୦ ତାରିଖ ସକାଳେ ସେ ଭାରତରେ ପଦାର୍ପଣ କରିବା ମାତ୍ରକେ ତାହାଙ୍କୁ ଗିରଫ୍ କରାଯାଇ ୟାରବାଦା ଜେଲ୍‌କୁ ପଠାଗଲା । ତାଙ୍କର ରକ୍ତଚାପ ପୁଣି ବଢ଼ିବାରୁ ତାଙ୍କୁ ଦାର୍ଜିଲିଙ୍ଗ ଜେଲ୍‌କୁ ପଠାଗଲା । ସେଠାରୁ ଅଲିପୁର ଜେଲ୍‌କୁ ତାଙ୍କୁ ନିଆଯାଇଥିଲା । ତତ୍ପରେ କଲିକତା ମେଡ଼ିକାଲ୍ କଲେଜ୍ ହାସ୍‌ପାତାଲରେ ୬ ମାସ ରହିବା ପରେ ତାହାଙ୍କୁ ରାଞ୍ଚି ପଠାଗଲା ।

୧୯୩୩ ସାଲ ଯୁଲାଇ ୨୨ ତାରିଖରେ ଦେଶଗୌରବ ୪୮ ବର୍ଷ ବୟସରେ ପରଲୋକ ଗମନ କଲେ ।

ସନ୍ଦର୍ଭ ଲେଖକ—ଶ୍ରୀ ଜଗନ୍ନାଥ ଷଡ଼ଙ୍ଗୀ, ବି. ଏ., ବି. ଟି. ।]

ସେନ ବଂଶ—ସଂ. ବି—ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀଠାରୁ ୧୪ଶ ଶତାବ୍ଦୀ
Sena bamsa ପର୍ଯ୍ୟନ୍ତ ବଙ୍ଗରେ ରାଜତ୍ୱ କରୁଥିବା ରାଜାମାନଙ୍କ
সেনবংশ ବଂଶ—The name of a family of kings
सेनवंश who reigned in Bengal from the 11th to the 14th Century A. D. [ଦ୍ର—ସେନ ବଂଶରେ କେତେ ଜଣ ପ୍ରଖ୍ୟାତ ରାଜା ଥିଲେ । ଏହି ବଂଶର ବଲ୍ଲାଳ ସେନ ବଙ୍ଗୀୟ ବ୍ରାହ୍ମଣ, ବୈଦ୍ୟ ଓ କାୟସ୍ଥ ସମାଜରେ କୌଳିନ୍ୟ ପ୍ରଥାର ସୃଷ୍ଟି କରିଥିଲେ ଓ 'ଦାନସାଗର' ନାମକ ସୁପ୍ରସିଦ୍ଧ ସ୍ମୃତିଗ୍ରନ୍ଥ ରଚନା କରିଥିଲେ । ରାଢ଼ (ବର୍ତ୍ତମାନ ବର୍ଦ୍ଧମାନ ବିଭାଗ), ବରେନ୍ଦ୍ର (ରାଜସାହି), ବାଗଡ଼ (ପ୍ରେସିଡେନ୍‌ସି ବିଭାଗ), ବଙ୍ଗ (ଢାକା ଓ ଚଟ୍ଟଗ୍ରାମ), ମିଥିଲା (ଉତ୍ତର ବିହାର), ଏପରି ୫ ଭାଗରେ ବଙ୍ଗ ରାଜ୍ୟକୁ ବିଭକ୍ତ କରି, ନବଦ୍ୱୀପ, ଗୌଡ଼ ଓ ସୁବର୍ଣ୍ଣଗ୍ରାମରେ ଏ ସ୍ଥାନିୟ ରାଜଧାନୀ କରିଥିଲେ ।

ସୁବଳଚନ୍ଦ୍ର ।]

ସେନ(ନ୍)ସ(ସେ)ସ୍—ବୈଦେ. ବି (ଇଂ)—ସେନ୍ସସ୍ (ଦେଖ)
Sena(n)sa(se)s Sensas (See)

ସେନା—ସଂ. ବି. ସ୍ତ୍ରୀ (ସି. ଧାତୁ=ବନ୍ଧନ କରିବା+କର୍ତ୍ତୃ. ନ+ଆ; Sena ଶତ୍ରୁକୁ ବନ୍ଧନ କରୁଥିବାରୁ; ବମ୍ବା ସ+ଇନ=ପ୍ରଭୁ; ଅନ୍ୟ ସଂ. ନାମ—ଚତୁରଙ୍ଗ, ରାଜାଙ୍କ ସହିତ ରହୁଥିବାରୁ)—
ବଳ, ଧ୍ୱଜିନୀ, ବାହିନୀ, ପୃତନା, ଅନୀକିନୀ, ଚମୂ, ସୈନ୍ୟ, ବରୁଥିନୀ, ଅନୀକ, ଚକ୍ର, ବାହନା, ଶ୍ରୁଚିନୀ, ଦ୍ଧବଛିୟୁ ।

୧ । ସୈନ୍ୟ; ଫଉଜ; ଦେଶରକ୍ଷା, ରାଜ୍ୟରକ୍ଷା ଓ ଶତ୍ରୁଙ୍କୁ ଆକ୍ରମଣ କରିବା ପାଇଁ ସଂଗୃହୀତ ଓ ସଜ୍ଜିତ ଯୋଦ୍ଧୃଦଳ; ପଲଟଣ—1. Army. [ଦ୍ର—ହିନ୍ଦୁମାନଙ୍କର ସେନାର ଅଷ୍ଟ

ଅଙ୍ଗ (ଚତୁରଙ୍ଗ) ଥିଲା । ଯଥା—ହସ୍ତୀ, ଅଶ୍ୱ, ରଥ, ପଦାତି । ସୈନ୍ୟମାନଙ୍କ ସଂଖ୍ୟା ଅନୁସାରେ ସେନାଦଳର ଭିନ୍ନ ଭିନ୍ନ ନାମ ମଧ୍ୟ ଥିଲା । ମହାଭାରତର ସଭା ପର୍ବରେ ନାରଦ ଯୁଧିଷ୍ଠିରଙ୍କୁ ଉପଦେଶ ଦେଇ ଯାଇ ଅଛନ୍ତି ଯେ, ରାଜା ସେନାମାନଙ୍କୁ ନିଯୁକ୍ତିରୂପେ ବେତନ ପାଉଣା ହେବା ମାତ୍ରେ ବେତନ ଦେବେ । ଚତୁରଙ୍ଗ ବଳର ଅତିରିକ୍ତ ସେନାଙ୍କୁ ପୁଣି ଚାରିଭାଗରେ ବିଭକ୍ତ କରାଯାଇ ଥିଲା, ଯଥା—୧ । ବିଷ୍ଟି (ସୈନ୍ୟଙ୍କର ଓ ଯୁଦ୍ଧୋପକରଣ ବହନ କରି ଯଥାସ୍ଥାନରେ ପହଞ୍ଚାଇବା), ୨ । ନୌକା (ଯୁଦ୍ଧୋପଯୋଗୀ ଜାହାଜ ବ୍ୟବସ୍ଥା), ୩ । ଚର (ବିପକ୍ଷଙ୍କ ସମ୍ବାଦ ସଂଗ୍ରହ କରି ସ୍ୱପକ୍ଷକୁ ଜଣାଇବା) ଓ ୪ । ଦେଶିକ (ସୈନ୍ୟ ଯେଉଁସ୍ଥାନରେ ପହଞ୍ଚୁଥିଲେ ସେଠାର ସ୍ଥାନୀୟ ବ୍ୟକ୍ତିମାନଙ୍କ ଦ୍ୱାରା ସୈନ୍ୟଙ୍କ ସହାୟତା କରିବା) । ସେନାର ଶ୍ରେଷ୍ଠ ଶ୍ରେଷ୍ଠ ଦଳଙ୍କୁ ଗୁଳ୍ମ ବୋଲାଯାଉଥିଲା—ହି· ଶ ]

୨ । (ନାମ) ବର୍ତ୍ତମାନ ଅବସର୍ପିଣୀର ତୃତୀୟ ଅର୍ହତ୍ ଶମ୍ଭବଙ୍କ ମାତା—2. Name of the mother of the 3rd Jaina saint of the present era. ୩ । ଭଲ୍ଲାସ୍ତ୍ର; ବରଛା (ହି· ଶ)—3. Spear. ୪। ଇନ୍ଦ୍ରଙ୍କ ବଜ୍ର (ହି. ଶ)—4. Indra's thunderbolt. ୫ । ଇନ୍ଦ୍ରାଣୀ—5. The wife of Indra.

ସେନା କକ୍ଷ—ସଂ. ବି (୬ଷ୍ଠୀ ତତ୍)—ସେନାର ପାର୍ଶ୍ୱ ବା କଡ଼ (ହି. ଶ)
Senā kaksha The flank of an army.

ସେନା ଗୋପ—ସଂ. ବି (୬ଷ୍ଠୀ ତତ୍)—ସେନାର ରକ୍ଷକ ବା ଏହିରୂପଙ୍କ ବିଶେଷଙ୍କ ଉପାଧି (ହି· ଶ)—The title of
Sena gopa one of the generals or captains of an army

ସେନାଗ୍ର—ସଂ. ବି (୬ଷ୍ଠୀ ତତ୍; ସେନା+ଅଗ୍ର)—ସେନାମୁଖ; ସେନାର ଅଗ୍ରରେ ଥିବା ସୈନ୍ୟଦଳ—The advance
Senāgra guard of an army.
[ସେନାମୁଖ—ହିନ୍ଦୀବାର]

ସେନାଙ୍ଗ—ସଂ· ବି (୬ଷ୍ଠୀ ତତ୍)—ସେନାର ୪ ଗୋଟି ଅଙ୍ଗ—
Senānga The 4 component parts of an army.
[ଯଥା—ହସ୍ତୀ—ହସ୍ତ୍ୟାରୋହୀ ସେନା,
ଅଶ୍ୱ—ଅଶ୍ୱାରୋହୀ ସେନା,
ରଥ—ରଥାରୋହୀ ସେନା,
ପଦାତି—ପଦଗୃହ ସେନା ]

ସେନାଚର—ସଂ· ବଣ (ସେନା+ଚର୍· ଧାତୁ+କର୍ତ୍ତି. ଅ)—
Senāchara ସୈନ୍ୟାନୁଗାମୀ; ସୈନ୍ୟ ସହ ଗମନ କରୁଥିବା—Accompanying an army. ବି—ସୈନ୍ୟଭୁକ୍ତ ବ୍ୟକ୍ତି—A person enrolled as a member of the force.

ସେନାଜୀବ(ବୀ)—ସଂ. ବି (ସେନା+ଜୀବ. ଧାତୁ+କର୍ତ୍ତି· ଅ; +ଇନ୍;
Senājiba(bi) ୧ମା.୧ବ)—ସୈନିକ; ସିପାହୀ;ଯୋଦ୍ଧା (ହି.ଶ)—A soldier.

ସେନାଧିପ—ସଂ· ବି. ପୁଂ (୬ଷ୍ଠୀ ତତ୍; ସେନା+ଅଧିପ)—ସେନାପତି—
Senādhipa General; commander.
[ସେନାଧିକାରୀ, ସେନାଧ୍ୟକ୍ଷ, ସେନାଧୀଶ, ସେନାଧିନାଥ, ସେନାଧିନାୟକ, ସେନାଧକ୍ଷ—ଅନ୍ୟରୂପ]

ସେନା ନାୟକ—ସଂ· ବି (୬ଷ୍ଠୀ ତତ୍)—ସେନାପତି; ବାହିନୀପତି—
Senā nāyaka A general; a commander.
সেনা নায়ক ଦେ. ବି—ଭାରତୀୟ ପଦାତିକ ସେନା ଦଳର ସର୍ଦ୍ଦାର;
सेनानायक ନାୟକ—A Naik; the captain of a body of Indian foot soldiers.

ସେନା ନିବାସ(ନିବେଶ)—ଦେ. ବି (୬ଷ୍ଠୀ ତତ୍)—ସେନ୍ୟମାନଙ୍କ
Senā nibāsa(nibesa) ରହିବା ସ୍ଥାନ; ଛାଉଣି; ଛାଉଣି—The camp of an army; barracks; cantonment. [ ଦ୍ର—ଅସ୍ଥାୟୀ ସେନାନିବାସକୁ କ୍ୟାମ୍ପ ବା ଛାଉଣି ଏବଂ ସ୍ଥାୟୀ ସେନାନିବାସକୁ ବାରିକ୍ସ ବୋଲିଯାଏ ।

ବୃହତ୍ ସଂହିତାରେ ଉପଦେଶ ଅଛି ଯେ, ଯେଉଁ ସ୍ଥାନରେ ପାଂଶୁ, ଅଙ୍ଗାର, କୋଇଲା, ହାଡ଼, ତୁଷ, କେଶ, ଗର୍ତ୍ତ, ଲୁଣୀମାଟି, କଙ୍କଡ଼ା, ହଂସକଳୁ, ମୂଷାଗାତ, ଉଇ ଢିଙ୍କା ନ ଥିବ ଓ ଯେଉଁ ସ୍ଥାନର ଭୂମି ଘନ, ଚିକ୍କଣ, ସୁଗନ୍ଧିତ, ମଧୁର ଓ ସମତଳ ହୋଇଥିବ, ଏପରି ସ୍ଥାନରେ ରାଜା ସେନାନିବାସ ରଚନା କରାଇବେ—ହି· ଶ ।]

ସେନାନୀ—ସଂ, ବି (ସେନା+ନୀ ଧାତୁ=ନେବା+କର୍ତ୍ତି. କ୍ୱିପ୍)—
Senāni ୧ । ସେନାପତି; ସୈନ୍ୟାଧ୍ୟକ୍ଷ—1. Commander; general. ୨ । କାର୍ତ୍ତିକେୟ (ଦେବସେନାର ସେନାପତି)—2. God Kārttikeya, the commander of the army of the gods. ୩ । (ନାମ) ଏକ ରୁଦ୍ରଙ୍କ ନାମ (ହି. ଶ)—3. Name of one of the Rudra Deities. ୪ । (ନାମ) ଧୃତରାଷ୍ଟ୍ରଙ୍କର ଏକ ପୁତ୍ର (ହି. ଶ)—4. Name of a son of Dhrutarāshtra. ୫ । (ନାମ) ଶମ୍ବର ଦୈତ୍ୟର ଏକ ପୁତ୍ର (ହି. ଶ)—5. Name of a son of demon Śambara. ୬ । ଏକପ୍ରକାର ଘରୋ ଖେଳ (ହି. ଶ)—6. A kind of indoor game.

ସେନାପଟା—ଦେ. ବି—ଜଗନ୍ନାଥ ମହାପ୍ରଭୁଙ୍କ ପ୍ରତିମାର ପୃଷ୍ଠଭାଗରେ
Senāpatā ଲାଗିଥିବା କାଠର ପଟା—A plate of wood attached to the back of the image of Lord Jagannātha.

ସେନାପତି—ସଂ· ବି (୬ଷ୍ଠୀ ତତ୍)—୧ । ସେନାନୀ; ସୈନ୍ୟାଧ୍ୟକ୍ଷ—
Senāpati 1. A commander; a general. [ ଦ୍ର—ମତ୍ସ୍ୟପୁରାଣ ରାଜଧର୍ମ ୧୮୯ ଅଧ୍ୟାୟରେ ସେନାପତିଙ୍କ ଅବଶ୍ୟକ ଲକ୍ଷଣମାନ ଲିପିବଦ୍ଧ ହୋଇଅଛି । ଯଥା—କୁଳୀନ, ଶୀଳସମ୍ପନ୍ନ, ଧନୁର୍ବେଦବିଶାରଦ, ହସ୍ତ୍ୟଶ୍ୱ-

ଶାସ୍ତ୍ରରେ କୁଶଳ, ମଧୁରଭାଷୀ, ନମ୍ରଭାବ, ଶତ୍ରୁଜୟ, ଚକଶାସ୍ତ୍ର-ଶାସ୍ତ୍ରଜ୍ଞ, ସ୍ୱାମିଭକ୍ତ, ଶାସ୍ତ୍ରଜ୍ଞ, ଶସ୍ତ୍ରଜ୍ଞ, ରଣବଦ୍ୟାପଟୁ, ସୁଧୀର ବ୍ରାହ୍ମଣଙ୍କୁ ବା କ୍ଷତ୍ରିୟଙ୍କୁ ରଜା ସେନାପତି ପଦରେ ବରଣ କରିବେ । ] ୨ । କାର୍ତ୍ତିକେୟ—2. God Kārttikeya.

ସେନାପତି — ଦେ. ବ—୧ । ଖଣ୍ଡାଏତଙ୍କ ବଂଶୋପାଧିବିଶେଷ—1. Family title of some Khandāyetas. ୨ । ବଳଭଦ୍ର ଗୋତ୍ରୀ ବା ମସ୍ତାନ ବ୍ରାହ୍ମଣଙ୍କର ବଂଶୋପାଧିବିଶେଷ—2. A family title of some Māstāna Brāhmaṇas.

ସେନାପତ୍ୟ—ସଂ. ବି—୧ । (ସେନାପତି+ଯ) ସେନାପତିଙ୍କ କର୍ମ ବା
Senāpatya ଅଧିକାର ( ହି. ଶ )—1. Generalship; commandership of an army. ୨ । ଆଧୁନିକ ସମୟର ଘଟନା ଯେଉଁ ଆବଶ୍ୟକ ନୂତନ ଅର୍ଥ ) ( ୬ଷ୍ଠୀ ତତ୍; ସେନା+ଅପତ୍ୟ) ଅତକାଲି ଯୁଦ୍ଧ ସମୟରେ ସେନାମାନେ କୌଣସି ସ୍ଥାନରେ ଛାଉଣୀ ପକାଇ ସେଠାରେ ସ୍ଥାନୀୟ ମହିଳାମାନଙ୍କସଙ୍ଗେ ପ୍ରଣୟ ଓ କାମବୃତ୍ତି ଚରିତାର୍ଥ କରିବା ଫଳରେ ଜାତ ସନ୍ତାନ – War baby; child begotten from women of places of encampment of an army as a result of love-intrigues of the soldiers.

ସେନା ପାଳ—ସଂ. ବ ( ପୁଂ )—୧ । ସୈନ୍ୟପାଳକ—1. The
Sena pāla maintainer of an army. ୨ । ସେନାଧିପ; ସେନାପତି—2. A commander; a general. [ଉ—ହେଲ ରାଜାମାନଙ୍କ ମଧ୍ୟେ ସେନାପାଳ—କୃଷ୍ଣସିଂହ] ମହାଭାରତ ସଭା ।

ସେନା ପୃଷ୍ଠ—ସଂ. ବ (୬ଷ୍ଠୀ ତତ୍)—ସେନାର ପଚଭାଗ—
Senā prushṭha The vanguard or rear of an army

ସେନାବାସ—ସଂ. ବ (୬ଷ୍ଠୀ ତତ ସେନା+ଆବାସ)—୧। ସେନା ନିବାସ
Senābāsa (ଦେଖ)—1. Senā nibāsa (See) ୨ । ଛାଉଣୀ; ତମ୍ବୁ ( ହି. ଶ )—2. Tent.

ସେନାବାହ—ସଂ. ବ (ସେନା+ବହ ଧାତୁ+କର୍ତ୍ତୃ. ଅ )—ସେନାପତି
Senabāha ( ହି. ଶ )—General.

ସେନା ବ୍ୟୂହ(ବିନ୍ୟାସ, ସଜ୍ଜା)—ସଂ. ବ ( ୬ଷ୍ଠୀ ତତ୍ )—ଯୁଦ୍ଧ ପାଇଁ
Senā byūha(binyāsa,sajjā) ଭିନ୍ନ ଭିନ୍ନ ସ୍ଥାନରେ ଓ ଦାଉ ଜାଗାମାନଙ୍କରେ ସେନାର ଭିନ୍ନ ଭିନ୍ନ ଅଙ୍ଗର ବା ଅଂଶର କୌଶଳପୂର୍ଣ୍ଣ ସ୍ଥାପନ—Battle array.

ସେନା ମୁଖ—ସଂ. ବ ( ୬ଷ୍ଠୀ ତତ୍ )—୧ । ସେନାର ଅଗ୍ରଭାଗ—
Sena mukha 1. The advance guard of an army. ୨ । ୩ ହସ୍ତୀ, ୯ ଅଶ୍ୱ, ୩ ରଥ ଓ ୧୫ ପଦାତି, ଏପରି ୩୦ ଜଣ ସମ୍ବଳିତ ସେନାଦଳ ( ଅମର )—2. A company of 30 soldiers,—consisting of 3 elephants, 9 cavalry, 3 chariots and 15 foot soldiers [ ଦ୍ର—ମହାଭାରତରେ ୯ ହସ୍ତୀ, ୨୮ ଅଶ୍ୱ, ୯ ରଥ ଓ ୪୫ ପଦାତି ସମ୍ବଳିତ ସେନାଦଳକୁ ସେନାମୁଖ ବୋଲାଯାଏ—ହି. ଶ । ] ୩ । ଟିକିର ୩ଗୁଣ ବା ୧୬୫ ଜଣ ପଦାତିକ ସୈନ୍ୟ—3. A body of 165 foot soldiers. [ ଉ—ଗଲୁ ଛନ ଗୁଣରେ ସେନାମୁଖ ଖ୍ୟାତ—କୃଷ୍ଣସିଂହ, ମହାଭାରତ, ଉଦ୍‌ଯୋଗ । ] ୪ । ପୁରଦ୍ୱାରର ସମ୍ମୁଖବର୍ତ୍ତୀ ପଥ ( ଶବ୍ଦକଳ୍ପଦ୍ରୁମ )—4. The road passing in front of the gate of a town.

ସେନା ରକ୍ଷ(ରକ୍ଷକ)—ସଂ. ବ—୧ । ସୈନ୍ୟମାନଙ୍କୁ ଜଗିବା ପ୍ରହରୀ—
Senā raksha(rakshaka) 1. A sentinel. ୨। ସୈନିକ —2. A soldier

ସେନୁ—ପ୍ରାଦେ· (କୌଧରାଜ୍ୟ ଓ ପାଟଣା) ଅ—ସେଠାରୁ—
Senu From that place.

ସେନେ—ପ୍ରାଦେ. ( କୌଧ ଓ ପାଟଣା ) ଅ—ସେହ—
Sene That.

ସେନେଁ—ପ୍ରାଦେ, ( କୌଧ ଓ ପାଟଣା ) ଅ—ସେଠାରେ—
Seneñ There; in that place.

ସେନେଟ୍ ( ଇତ୍ୟାଦ )—ବୈଦେ. ବ—ସିନେଟ୍ ଇତ୍ୟାଦ (ଦେଖ)
Senet ( etc ) Sinet etc ( See )

ସେନେହ—ଗ୍ରା· ( ପଦ୍ୟ ) ବ ( ସଂ. ସ୍ନେହ )—ସ୍ନେହ ( ଦେଖ )—
Seneha Sneha ( See ) [ ଉ—ସେନେହେ ସରୋବର ଜଳେ । ମୁଁ ଥିଲି ଗୋପୀ ମୀନ ମେଳେ—ଭୂପତି, ପ୍ରେମପଞ୍ଚାମୃତ । ]

ସେନେହା—ଗ୍ରା. ବିଣ, ପୁଂ—ସେନେହୀ (ଦେଖ )—
Senehā Senehi ( See )
ବ—( ପ୍ରାଚୀନ ପଦ୍ୟ ); ( ସଂ. ସ୍ନେହ )—ସ୍ନେହ—
Love. [ ଉ—ପଳାଇ ନ ସମ୍ଭାଳୁ ତାହା । ଭେମନ୍ତ କୃଷ୍ଣର ସେନେହା—ଜଗନ୍ନାଥ, ଭାଗବତ । ]

ସେନେହୀ – ଗ୍ରା. ବିଣ ( ପୁଂ. ଓ ସ୍ତ୍ରୀ ) ( ସଂ. ସ୍ନେହୀ )—ସ୍ନେହଶୀଳ—
Senehī Affectionate; loving. [ ଉ—ବନ୍ଧୁର ପଣରେ ହୋଇ ଉଦତ ସେନେହୀ—ଭଞ୍ଜ, ବୈଦେହୀଶବିଳାସ । ]
ସେନହୀ सनेही

ସେନୋ—ପ୍ରାଦେ. ( ବଲାଙ୍ଗିର ପାଟଣା ) ବ—ସ୍ନେହ—
Seno Love; affection.

ସେନ୍ଖାନା—ବୈଦେ. ବ (ଆ. ସେହତ୍‌ଖାନା)—ସେତ୍‌ଖାନା (ଦେଖ)
Sent-khānā Set-khānā ( See

ସେନ୍ତ ସେନ୍ତିଆ—ଦେ· ବିଣ—ସନ୍ତସନ୍ତିଆ ( ଦେଖ )
Sent sentiā Santasantiā ( See )

ସେନ୍ତରା (ଇତ୍ୟାଦ)—ଦେ· ବିଣ ଓ ବ—ସନ୍ତରା ଇତ୍ୟାଦ (ଦେଖ)
Sentarā ( etc ) Santarā etc ( See )

ସେନ୍ତା—ଦେ. ବ· ପୁ—ଅପତ୍ୟଜୀବୀ ଲୋକଙ୍କ ନାମ—A name
Sentā given to males whose elders had predeceased them at their birth.
( ସେନ୍ତୁଅ—ଅନ୍ୟରୂପ ) ( ସେନ୍ତୀ, ସେନ୍ତେଇ—ସ୍ତ୍ରୀ ) ପ୍ରାଦେ. ( ସମ୍ବଲପୁର ଓ ଗଡ଼ଜାତ ) ଅ—ସେନ୍ତା ( ଦେଖ )—Sen-tā ( See )

ସେନ୍ତି(ନ୍ଥି)—ଦେ. ବ (ସଂ. ଶ୍ରୀମନ୍ତ)—ସିଁଥି (ଦେଖ)
Senti(nthi) Siñti (See)

ସେନ୍ତ୍ରି—ବୈଦେ. ବ (ଇଂ. ସେଣ୍ଟ୍ରୀ)—ପ୍ରହରୀ; ପହରା ଦେଉଥିବା
Sentri ସଶସ୍ତ୍ର ସୈନିକ—Sentry; armed watchman.

ସେନ୍ଦୁର—ପ୍ରାଦେ· (ବଲାଙ୍ଗିର ପାଟଣା) ବ (ଭୂଲ. ହି. ସେଁଦୁର)—
Sendur ସିନ୍ଦୁର—Vermilion.

ସେନ୍ଦ୍ରିୟ—ସଂ. ବଣ (ସହାର୍ଥ ବହୁବ୍ରୀହି; ସ+ଇନ୍ଦ୍ରିୟ)—୧। ଇନ୍ଦ୍ରିୟ
Sendriya ବିଶିଷ୍ଟ—1. Having organs of sense.
୨। ପୁଂସ୍ତ୍ୱବିଶିଷ୍ଟ (ଛୁ. ଶ)—
2. Virile; having virility.

ସେନ୍ସସ୍—ବୈଦେ. ବ (ଇଂ)—ଜନ ସୁମାରି; ସରକାରଙ୍କଦ୍ୱାରା କରା-
Sensas ଯିବା ରାଜ୍ୟର ଲୋକସଂଖ୍ୟା ଗଣନା କ୍ରିୟା—Census.
সেন্সস সেন্সস

ସେପ୍ଟିକ୍—ବୈଦେ. ବଣ (ଡାକ୍ତରୀ ଭାଷା) (ଇଂ)—୧। ପଚନଶୀଳ
Sep-ṭik (ଘାଅ ଅର୍ଥ)—1. Septic. ୨। ଯାହା ଘାଅ
সেপটিক ଅଧିକ ପଚାଇ ଦିଏ—2. Promoting putre-
सेप्टीक faction of sores etc

ସେପ୍ଟେମ୍ବର—ବୈଦେ.ବ (ଇଂ ଲାଟିନ୍ ସେପ୍ଟେମ୍=ସ ସପ୍ତନ୍=ସାତ;
Sep-ṭembar —ପୂର୍ବେ ରୋମ୍‌ରେ ପ୍ରଚଳିତ ମାସଗଣନା
সেপ্টেম্বর सितंबर ଅନୁସାରେ ଏହା ସପ୍ତମ ମାସ ଥିବାରୁ)
(ସେପ୍ଟେମ୍ବର—ଅନ୍ୟରୂପ) ପାଶ୍ଚାତ୍ୟ ମାସ ଗଣନାରେ ନବମ ମାସ;
ଅଗଷ୍ଟ ମାସର ପରବର୍ତ୍ତୀ ଓ ଅକ୍ଟୋବର ମାସର ପୂର୍ବବର୍ତ୍ତୀ
ମାସ; ଓଡ଼ିଆ ଭାଦ୍ରବ ଓ ଆଶ୍ୱିନ ମାସ—September.

ସେପଟା—ବୈଦେ. ବ (ବୈଦ୍ୟକ) (ଇଂ. ସାପୋଟା)—ସୁସ୍ୱାଦୁ
Sepaṭā ଫଳବିଶେଷ; ସପେଟା—A species of fruit
সপেটা सपेटा Achras Sapota. [ଗୁ—ଏହା ମଧୁର, ପିତ୍ତ-
ନାଶକ ଓ ପୁଷ୍ଟିକର—ଦ୍ରବ୍ୟଗୁଣ. କଳ୍ପଦ୍ରୁମ।]

ସେପତ୍ତନି—ଦେ. ବ (ଫା· ସେ=ତୃତୀୟ ଓ ସଂ. ପତ୍ତନ)—ଦର-
Sepattani ପତ୍ତନିଦାରଠାରୁ ଗୃହୀତ ପତ୍ତନ—An underte-
সেপত্তনী . nure under a Darpattanidār.

ସେପତ୍ତନିଦାର—ଦେ. ବ—ଦରପତ୍ତନି ଅଧୀନ ପତ୍ତନିଦାର—
Sepattanidār An undertenure-holder under
সেপত্তনীদার a Darapattani.

ସେ ପରା—ଦେ. ବଣ—୧। ତତ୍‌ସଦୃଶ—1. Similar to it; like
Se parā him, her or it. ୨। ସେ ପ୍ରକାରର—
সেই রকম, ওবকমাবি 2. Of that kind. ୩। ତାର ପରି;
वैसा ଅତି ଉତ୍କୃଷ୍ଟ—3. Excellent. ୪। ଅତୁଳନୀୟ—
4. Incomparable. ଅ—ସେପରି; ସେହିପରି—
In that manner.

ସେପରି—ଦେ. ଅ—୧। ତତ୍‌ସଦୃଶ—1. Like that. ୨। ସେହି
Separi সেই রকম वैसा ପ୍ରକାରେ—2. In that way.

ସେ ପାଇଁ—ଗ୍ରା. ଅ—ସେଥିପାଇଁ (ଦେଖ)
Se pāiñ Sethipāiñ (See)

ସେପାୟା(ହ୍ୟା)—ବୈଦେ. ବ (ଫା)—ତ୍ରିପାଦ; ତିନଗୋଡ଼ିଆ
Sepāyā(hyā) କାଷ୍ଠାସନ—Tripod; tepoy.
সেপায়া, তেপায়া तपाई

ସେପିଆ—ବୈଦେ. ବ (ଇଂ)—ଚିତ୍ରାଙ୍କନରେ ବ୍ୟବହୃତ ଗାଢ଼ କଳା
Sepiā সেপিয়া सेपिया ରଙ୍ଗ—Sepia (colour).

ସେ ପୁର(ରୀ)—ଦେ. ବ—ଯମପୁର—The abode of Death.
Se pura(ri) ও পুরী सपुर

ସେ ପୁରକୁ ଯିବା—ଦେ. କ୍ରି - ମରିଯିବା—To die. [ ଉ—
Sepuraku jibā ବୁଢ଼ୀଅ ସେପୁରକୁ ଗଲା—ଜଳନ୍ତାଭୂମାଣ୍ଡ.
ওপুরীতে যাওয়া मर जाना; उसपुर पर जाना ଜଅନ୍ତ୍ରୀ।]

ସେଫ୍—ବୈଦେ. ବ (ଇଂ)—ଧନ ଅଥବା ବହୁମୂଲ୍ୟ ପଦାର୍ଥକୁ ଚୋରି ଓ ଅଗ୍ନି
Seph ଆଦିରୁ ନିରାପଦ ରଖିବା ପାଇଁ ଅପ୍ରଭେଦ୍ୟ ଲୁହାର
সেফ सेफ ମଜବୁତ ସିନ୍ଦୁକ—Ironsafe.

ସେଫ୍‌ଟି ପିନ୍—ବୈଦେ. ବ (ଇଂ)—କବଜା ଲଗା ଏକପ୍ରକାର
Seph-ṭi pin ଧାତୁମୟ ପିନ୍, ଯଦ୍ୱାରା କେଶ, ବସ୍ତ୍ର ଆଦିକୁ
সেফটী পীন सेफटी पीन ଏକତ୍ର ଲଗାଇ ରଖାଯାଇ ପାରେ—
Safety pin.

ସେଫ୍‌ଟି ଫାଷ୍ଟ—ବୈଦେ. ବ (ଇଂ. ସେଫ୍‌ଟୀ+ଫାର୍ଷ୍ଟ=ଏଥିର
Seph-ṭi phāsht ଅର୍ଥ ବିପଦରୁ ଦୂରରେ ରହିବା ପ୍ରଥମ
সেফটী ফাষ্ট ଆବଶ୍ୟକ)—ରେଳଗାଡ଼ି ଓ ଅପଦଜନକ କଳ-
सेफटी फाष्ट କାରଖାନା ନିକଟରେ ଚଲାପ୍ରଚଳ ହେବା ସମୟରେ
ସାବଧାନ ହେବା ପାଇଁ ଲୋକମାନଙ୍କୁ ସତର୍କ କରିବା
ନିମନ୍ତେ ଅଧୁନାତନ ଆନ୍ଦୋଳନ—The Safety first
movement recently started to warn
people to look to their own safety while
going about railway trains and dan-
gerous machines.

ସେଫ୍‌ଟି ଭଲ୍‌ଭ—ବୈଦେ. ବ (ଇଂ)—ବାଷ୍ପୀୟ କଳ ଆଦିରେ ବାଷ୍ପର
Seph-ṭi bhālbh ବେଗ ବେଶି ହୋଇଗଲେ ଅଧିକା ବାଷ୍ପ
সেফটী ভাল্‌ভ ଓ ଏହିଁ ବାହାର ଯିବା ପାଇଁ ଉକ୍ତ କଳରେ ଲାଗିଥିବା
सेफटी भाल्व କବାଟି—Safety valve.

ସେଫ୍‌ଟି ଲ୍ୟାମ୍ପ—ବୈଦେ. ବ (ଇଂ)—କୋଇଲା ଖଣି ମଧ୍ୟରୁ ବାହାରୁ-
Seph-ṭi lāmp ଥିବା ଜ୍ୱଳନଶୀଳ ବାଷ୍ପ ଖଣିରେ କାମ କରୁଥିବା
সেফটি ল্যাম্প ବ୍ୟକ୍ତିଙ୍କଦ୍ୱାରା ଆଲୋକାର୍ଥ ବ୍ୟବହୃତ ଲ୍ୟାମ୍ପରେ ଥିବା
सेफटी लैंप ଆଲୋକରେ ଲାଗି ଜଳି ନ ଉଠିବା ପାଇଁ ତାର ବେଢ଼ା
ଆଲୋକବିଶିଷ୍ଟ ଲ୍ୟାମ୍ପ—Safety lamp.

ସେଫ୍‌ଟି ରେ(ରେ)ଜର୍—ବୈଦେ. ବ (ଇଂ)—ଯେଉଁ କ୍ଷୁରଦ୍ୱାରା କର-
Seph-ṭi ra(re)jar ଜଦସ୍ତବରେ କ୍ଷୌର କର୍ମ ସମାହିତ ହୁଏ—
সেফটি রাজর सेफटी रैजर Safety razor.

ସେଫ—ସଂ. ବ (ଶେଫର ରୂପାନ୍ତର)—ଶିଶ୍ନ; ଲିଙ୍ଗ (ଜନନେନ୍ଦ୍ରିୟ)—
Sepha Penis.

ସେଫାଳିକା—ସଂ. ବ (ଶେଫାଳିକାର ରୂପାନ୍ତର)—ଶେଫାଳିକା (ଦେଖ)
Sephālikā Sephālikā (See)

ସେଫ୍ଟି ( ଇତ୍ୟାଦି )—ବୈଦେ. ବି (ଇଂ)—ସେଫ୍ଟି ଇତ୍ୟାଦି (ଦେଖ) Sephti ( etc ) Seph-ti etc ( See ) সেফ্টি सेफ्टी

ସେବ୍ (ଧାତୁ)—ସଂ—୧ । ସେବନ କରିବା; ଭୋଗ କରିବା—Seb (root) 1. To enjoy. ୨ । ଖାଇବା—2. To partake of. ୩ । ପରିଚର୍ଯ୍ୟା କରିବା—3. To serve. ୪ । ବ୍ୟବହାର କରିବା; ଉପଭୋଗକରିବା—4. To use; ( Apte ) ୫ । ସମ୍ଭୋଗ-କରିବା—5. To enjoy carnally (Apte) ୬ । ବାସ କରିବା; ବାହାରୁ କରିବା—6. To inhabit; to frequent (Apte). ୭ । ଚର୍ଚ୍ଚା ବା ଅଧ୍ୟୟନ କରିବା—7. To practise, to cultivate (Apte). ୮ । ଜଗିବା—8. To watch; to guard (Apte).

ସେବ—ସଂ. ବି (ସେବ୍ ଧାତୁ + କର୍ମ. ଅ)—୧ । ସେଓ ଫଳ (ଭୂଲ. ଫା. ସେଓ୍); ( ଭାବପ୍ରକାଶ )—1. Apple; Pyrus Malus. ୨ । (+ଭାବ. ଅ) ସେବା (ଦେଖ)-2. Sebā (See). ଦେ. ବି. ସ୍ତ୍ରୀ ( ସେବତୀ )—ସେବତୀର ଡାକ ନାମ—Nickname for Sebati.

ସେବକ—ସଂ. ବିଣ. ପୁଂ (ସେବ୍ ଧାତୁ + କର୍ତ୍ତୃ ଅକ)-୧ । ସେବାକାରୀ Sebaka 1. Rendering service; serving. [ସେବ(ବି)କା—ସ୍ତ୍ରୀ] ୨। ପରିଚର୍ଯ୍ୟାକାରୀ- 2. Tending. ୩ । ଧାରାମତେ କୌଣସି କର୍ମାବଲମ୍ବନକାରୀ ( ଯଥା—ସାହିତ୍ୟ ସେବକ )—3. Following an occupation regularly. ୪ । ଭୋଗକାରୀ—4. Enjoying. ବି—୧ । ପ୍ରସେବକ (ମେଦିନୀ); ବୀଣାପ୍ରାନ୍ତସ୍ଥ ବକ୍ର କାଷ୍ଠ; ବୀଣାପ୍ରାନ୍ତରେ ଥିବା ଅଲାବୁ ଫଳକ—1. The gourd attached to the end of a harp. ୨ । ଥୋଳକିଆ; ମୁଣି—2. A wallet made of rags. ୩ । (ଷୀବ୍ ଧାତୁ=ସିଲାଇ କରିବା + କର୍ତ୍ତୃ. ଅକ )—ସୀବନ କର୍ତ୍ତା; ଦରଜି—3. Sewer; tailor. ୪ । ପରିଚାରକ; ଦାସ; ଭୃତ୍ୟ; ଗୋଇଠିଆ—4. Servant. ୫ । ପରିଚର୍ଯ୍ୟାକାରୀ ବ୍ୟକ୍ତି; 5- Attendant. ୬ । ଭକ୍ତ ( ହ. ଶ. )—6. A devotee. ୭ । ଉପାସକ; ଆରାଧକ (ହ. ଶ)-7. Worshipper; a votary. ୮ । ( କୌଣସି ବସ୍ତୁର ) ବ୍ୟବହାରକାରୀ ବ୍ୟକ୍ତି ( ହ. ଶ )—8. The user of a certain thing. ୯। ଧାରାବାହିକ ରୂପେ କୌଣସି କର୍ମ ଅବଲମ୍ବନକାରୀ ବ୍ୟକ୍ତି—9. Regularly following or devoted to an occupation. ୧୦। (+କର୍ମ. ଅକ)—ବୋରା, ବସ୍ତା (ହ. ଶ)—10. Sack; gunny bag (Apte) ୧୧ । (ସେବ୍ ଧାତୁ + କର୍ତ୍ତୃ. ଅକ) ଦେବତାଙ୍କ ପୂଜା ଅର୍ଚ୍ଚନା କରିବା ବ୍ୟକ୍ତି; ପୂଜାରୀ—11. A person who regularly performs the worship and rituals of a Deity. [ଦ୍ର—ପୁରୀର ଜଗନ୍ନାଥଙ୍କର ସେବକମାନେ ଦେବତାଙ୍କର ଭିନ୍ନ ଭିନ୍ନ କାର୍ଯ୍ୟ କରନ୍ତି ଅନୁସାରେ ୩୬ଟି ଶ୍ରେଣୀରେ ବିଭକ୍ତ—ସେମାନଙ୍କୁ ଛତିଶା ନିଯୋଗ ବୋଲି-ଯାଏ, ସାଧାରଣତଃ ଶିବ ଓ ବିଷ୍ଣୁଙ୍କ ମନ୍ଦିରରେ ଦୁଇ ଜାତିର ସେବକ ଦେଖା ଯାଆନ୍ତି ଯଥା—ବ୍ରାହ୍ମଣ (ପଣ୍ଡା ବା ପୁଆରି) ଓ ଶୂଦ୍ର (ମାଳି, ବଡ଼ୁ ବା ମଲିଅ) । ]

[ ଦ୍ର—କ୍ରମରେ ତ୍ସେବକ ଶବ୍ଦ ସଂଯୁକ୍ତ କେତେକ ଶବ୍ଦ ଦିଆଗଲା—

ଉପାଙ୍ଗିଆ ସେବକ—ଦେ. ବି—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରରେ ଉପାଙ୍ଗ ନାମକ ଏକ ପ୍ରକାର ବାଜା ବଜାଇବା ସେବକ ବିଶେଷ—ଜଗବନ୍ଧୁ. ପ୍ରାଚୀନ ଉତ୍କଳ ।

ଗ୍ରାମ ସେବକ—ଦେ. ବି—ଗ୍ରାମବାସୀଙ୍କର ସେବାକାରୀ ଭୃତ୍ୟ—ଭଣ୍ଡାରୀ, ଧୋବା ଆଦି ।

ଚରଣ ସେବକ, ପାଦ ସେବକ—ସଂ. ବି—ପାଦ ସେବା କରିବା ଭୃତ୍ୟ ।

ଜୟମଙ୍ଗଳ ଅଲଗି ସେବକ—ଦେ. ବି—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ଅଲଗି କରିବା ସେବକ ।

ଦର୍ପଣିଆ ସେବକ—ଦେ. ବି—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସ୍ନାନ ସମୟରେ ଆଗରେ ଦର୍ପଣ ଧରିବା ସେବକବିଶେଷ ।

ଦେବ ସେବକ—ସଂ. ବି—ଦେବତାଙ୍କ ସେବାକାରୀ ବ୍ୟକ୍ତି ।

ଧ୍ୱଜଧରା ସେବକ—ଦେ. ବି—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ମୁଖଶୋଚ ବେଳେ ଗରୁଡ଼ଧ୍ୱଜ, ତାଳଧ୍ୱଜ, ଆଦି ଧରିବା ସେବକ ।

ପଣ୍ଡା ସେବକ ଦେ. ବି—ପଣ୍ଡାଜାତୀୟ ଦେବପୂଜକ ।

ପତ୍ରିବଡୁ ସେବକ—ଦେ. ବି—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ପୂଜାର ସମସ୍ତ ଉପକରଣ ପଣ୍ଡାମାନଙ୍କୁ ବଢ଼ାଇ ଦେବା ସେବକ—ଜଗବନ୍ଧୁ. ପ୍ରାଚୀନ ଉତ୍କଳ ।

ପାଣି ଅପଟ ସେବକ—ଦେ. ବି—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବା-ପୂଜା ନିମନ୍ତେ ପାଣି ଯୋଗାଇବା ସେବକ ।

ପାଳିଆ ସେବକ—ଦେ. ବି—ଯେଉଁ ସେବକଙ୍କର ଦେବସେବାରେ ପାଳିର ଦିନ ପଡ଼ିଥାଏ ।

ପୁରାଣପଣ୍ଡା ସେବକ—ଦେ. ବି—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରରେ ପୁରାଣ ପାଠ କରିବା ସେବକବିଶେଷ —ଜଗବନ୍ଧୁ. ପ୍ରାଚୀନ ଉତ୍କଳ ।

ପ୍ରସାଦ ବଡୁ ସେବକ—ଦେ. ବି—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ପ୍ରସାଦ ନେଇ ଗଜପତି ରାଜାଙ୍କ ଉତ୍ସବରେ ପହଞ୍ଚାଇବା କାମ କରିବା ସେବକ ।

ଫୁଲ ବଡୁ ସେବକ—ଦେ. ବି—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଫୁଲ ପ୍ରସାଦ ନେଇ ଗଜପତି ମହାରାଜାଙ୍କ ନଅରରେ ପହଞ୍ଚାଇବା ସେବକ—ଜଗବନ୍ଧୁ. ପ୍ରାଚୀନ ଉତ୍କଳ ।

ବଢ଼ୁ ସେବକ—ଦେ ବ (ସଂ ବଟୁ ଓ ସେବକ)—ଭୁବନେଶ୍ୱରସ୍ଥ ଲିଙ୍ଗରାଜ ମହାପ୍ରଭୁଙ୍କ ସ୍ନାନ ଜଳ ଓ ଫୁଲ ବେଲପତ୍ର ଯୋଗାଉଥିବା ବଢ଼ୁ ସେବକ।

ବନ୍ଧୁଆ ଯୋଗାଣ ସେବକ—ଦେ. ବ—ଠାକୁରଙ୍କ ଲାଗି ପାନଶୀଳ ସଂଗ୍ରହ କରି ଆଣି ଭଣ୍ଡାର ନାୟକଙ୍କୁ ଯୋଗାଇବା ସେବକ।

ବମାନବଢ଼ୁ ସେବକ—ଦେ. ବ—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମାମାନଙ୍କୁ ଯାତ୍ରାଦି ସମୟରେ ବହନ କରୁଥିବା ବିମାନକୁ ଜାକେଇବା ଓ ଫୁଲ ପାଣି ଅଦ ଲାଗି କରୁଥିବା ସେବକ।

ବ୍ରାହ୍ମଣ ସେବକ—୧। ସ ବ—ବ୍ରାହ୍ମଣଜାତୀୟ ଦେବସେବକ।

୨। ଦେ. ବ—ଭୁବନେଶ୍ୱର ଲିଙ୍ଗରାଜଙ୍କ ସୂପକାର ବ୍ରାହ୍ମଣଜାତୀୟ ସେବକ।

ଭଡର ଗରୁବଢ଼ୁ—ଦେ. ବ—ଆବଶ୍ୟକ ବେଳେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ଧାଡ଼ି ଧରି ଝଣ୍ଟିବା ସେବକ।

ଜଗବନ୍ଧୁ ପ୍ରାଚୀନ ଉତ୍କଳ।

ମହାସୁଆର, ସୁଆର ସେବକ—ଦେ. ବ (ସଂ ସୂପକାର ସେବକ)—ପୁରୀ ଓ ଭୁବନେଶ୍ୱରରେ ବଢ଼ିବାର ଦେବଙ୍କ ଅନ୍ନପାକକାରୀ ବ୍ରାହ୍ମଣ ସେବକ।

ମାଳି ସେବକ—ଦେ. ବ (ସଂ ମାଳାକାର ସେବକ)—ଦେବଙ୍କୁ ଫୁଲ ଯୋଗାଇବା ଶୂଦ୍ର ମାଳାକାରଜାତୀୟ ସେବକ।

ଯୋଗାଡ଼ମଜା ସେବକ—ଦେ. ବ—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ବାସନ ମାଜିବା ସେବକ।

ରାଜ ସେବକ—ସ. ବ—ରାଜାଙ୍କର ଭୃତ୍ୟ।

ଶୂଦ୍ର ସେବକ—ସ. ବ—ଶୂଦ୍ରଜାତୀୟ ଦେବସେବକ।

ସାହିତ୍ୟ ସେବକ—ଦେ. ବ—ଧାରାବାହିକ ସାହିତ୍ୟଚର୍ଚ୍ଚା କରୁଥିବା ବ୍ୟକ୍ତି।

ସୁଆର ବଢ଼ୁ ସେବକ—ଦେ. ବ—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଭୋଗ ପରେ ମନ୍ଦିରର ଚଟାଣକୁ ପାଣି ପକାଇ ଧୋଇବା, ପାଡ଼ାଜା ପକାଇବା, ଧୂପ ଓ ଅଲଟ ପାଇଁ କାଆଁ ଓ ଅଳେକ ଆଣି ଦେବା ଏବଂ ପଣ୍ଡାମାନଙ୍କୁ ଅଲଟ କାଠି, ଧୂପଦାନୀ ଆଦ ବଢ଼ାଇ ଦେବା ସେବକ।

ଜଗବନ୍ଧୁ ପ୍ରାଚୀନ ଉତ୍କଳ।

ସୁଦୁ ସୁଆର ସେବକ—ଦେ. ବ—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଭୋଗ ପାଇଁ ମୁଗ ରଗଡ଼ିବା, ପରିବା କାଟିବା, ପାଚିଲାକଦଳୀ ପ୍ରଭୃତ ଆଣି ଦେବା ଏବଂ ପଞ୍ଚାମୃତ ଯୋଗାଇବା ଇତ୍ୟାଦ କାର୍ଯ୍ୟ କରିବା ସେବକ—ଜଗବନ୍ଧୁ ପ୍ରାଚୀନ ଉତ୍କଳ।

ସ୍ୱେଚ୍ଛାସେବକ—ଦେ. ବ—ଯେ ନିଜ ଇଚ୍ଛାରେ କୌଣସି ସେବାକାର୍ଯ୍ୟ ଗ୍ରହଣ କରି ଥାଆନ୍ତି।

ହାଣ୍ଡୋଳା ବଢ଼ୁ ସେବକ—ଦେ. ବ—ଦେବବିଗ୍ରହଙ୍କ ହାଣ୍ଡୋଳା ବା ଦୋଳା ଜାକେଇବା ସେବକ।]

ସେବକ ଜାଗିର—ଦେ. ବ—ସେବକାନ୍ ଜାଗିର (ଦେଖ)
Sebaka jāgiri Sebakān jāgiri (See)

ସେବକ ନିଯୋଗ—ଦେ. ବ—ଭିନ୍ନ ଭିନ୍ନ ଶ୍ରେଣୀର ସେବକମାନଙ୍କର
Sebaka nijoga ଗୋଷ୍ଠୀ ବା ସମାଜ—A society of different classes of Sebaks. [ଦ୍ର—ଭିନ୍ନ ଭିନ୍ନ ସେବକଶ୍ରେଣୀଙ୍କର ଭିନ୍ନ ଭିନ୍ନ ନିଯୋଗ ଅଛି। ଉକ୍ତ ନିଯୋଗ ଦ୍ୱାରା ଉକ୍ତ ଦଳର ସାମାଜିକ ନିୟମମାନ ପରିଚାଳିତ ହୁଏ।]

ସେବକ ବରତନ (ବର୍ତ୍ତନ)—ଦେ. ବ—ସେବକଙ୍କୁ ଦେୟ ଉତ୍କୃତ
Sebaka baratana (bartana) ସେବାର ପାରିଶ୍ରମିକ—
সেবক বেতন Wages given to a servant for
सेवकबेतन service rendered.

ସେବକ ବ୍ରାହ୍ମଣ—ସ. ବ—ଦେଉଳିଆ ବା ପଣ୍ଡା ବ୍ରାହ୍ମଣ;
Sebaka brāhmana କନିଷ୍ଠଶ୍ରେଣୀର ବ୍ରାହ୍ମଣ—
Brāhmans who serve as worshippers to idols and are deemed lower than others.

ସେବକା—ସ. ବ. ସ୍ତ୍ରୀ (ସେବକ + ଆ)—ସେବକର ସ୍ତ୍ରୀଲିଙ୍ଗ—
Sebakā Feminine of 'Sebaka'.

ଦେ. ବିଣ—ସେବକାର (ଦେଖ)—Sebakāra (See)

ସେବକାଧମ—ସ. ବ ପୁଂ (୭ମୀ ତତ୍) (ବିନୟୋକ୍ତି)—ଅଧମ ସେବକ—
Sebakādhama An humble servant; most
(ସେବକାଧମା—ସ୍ତ୍ରୀ) humble servant.

ସେବକାନ୍—ଦେ. ବ (ବହୁବଚନ)—ସେବକମାନେ—
Sebakān A number of 'Sebakas'.
সেবকেরা सेवकान्

ସେବକାନ୍ ଜାଗିର—ଦେ. ବ—ଦରମା ପରିବର୍ତ୍ତେ ସେବକଙ୍କୁ ଦିଆ
Sebakān jāgiri ଯାଇଥିବା ବୃତ୍ତି—Service tenure
চাকবান জাগিবি given to a servant in lieu of pay.
सेवकान जागीर

ସେବକାନ୍ ନିଷ୍କର—ଦେ. ବ—ସେବା କରିବା ଯୋଗୁଁ ସେବକ ଯେଉଁ
Sebakān nishkara ଜମିର ଖଜଣା ମାଫ ପାଇଥାଏ—Hol-
নিষ্কর চাকবান ding granted to a Sebaka free of
सेवकान निष्कर rent.

ସେବକାନୁସେବକ—ସ. ବ—ଅତି ହୀନ ବ୍ୟକ୍ତି (ଯେ ଆପଣଙ୍କର
Sebakānusebaka ସେବକର ସେବକ ହେବାର ଉପଯୁକ୍ତ)—
One who is fit to be the servant to your servant.

ସେବକାର—ଦେ. ବିଣ—୧। ସେହି ସମୟର—1. Of that time
Sebakāra ୨। ଅତୀତକାଳର—2. Of the past.
তখনকাৰ ୩। ଅତି ପୁରାତନ—3. Very old.
उस समयका

ସେବକାଲୁ—ସ. ବ—୧। ଜଣାଭଙ୍ଗା ବୃକ୍ଷ (ଶବ୍ଦଚନ୍ଦ୍ରିକା); ବୁଦ୍ଧ-
Sebakālu ଯେୟା ବୃକ୍ଷ—1. A kind of wild tree.
୨। ଦୁଧିଅମେଣ୍ଡି ଲତା; ଦୁଗ୍ଧିକା; ଇକ୍ଷୁଦୁଗ୍ଧା ଲତା—
2. Oxystelma Esculentum (creeper)

ସେବକୀ—ଗ୍ରା. ବି· ସ୍ତ୍ରୀ ( ସେବକୀର ଅଶୁଦ୍ଧ ଉଚ୍ଚାରଣ )—ସେବକା
Sebakī (ଦେଖ)—Sebakā ( See ) [ ଉ—ଚନ୍ଦ୍ରାନେ
সেবিকা ଏକ ସ୍ଵଜନ ଭଗ୍ନୀ ହେବ କା । କନ୍ଦ୍ରିଁ ଭୂମି ଗୃହ ଜାତ
सेविका, सेवकी ହଳମା ସେବକୀ—ଭଞ୍ଜ. ବୈଦେହୀଶବିଳାସ । ]
(ସେବକମା—ଅନ୍ୟ ଅଶୁଦ୍ଧରୂପ)

ସେବତୀ—ସଂ· ବି—୧ । ଶତପତ୍ରୀ—1. Muskrose; Rosa Moschata; the garden daisy ( Kritikar ); Crysthemum (large ); Coronaria. [ଦ୍ର—ବୈଦ୍ୟଶାସ୍ତ୍ର ମତରେ ଏହା ହିମା, ହୃଦ୍ୟା, ଗ୍ରାହଣୀ, ଶୁକ୍ରଳା, ଲଘୁ, ତିକ୍ତା, କଟୁ, ପାଚନୀ ଓ ଦୋଷତ୍ରୟ ଓ ରକ୍ତଦୁଷ୍ଟିକୃତ୍ ଓ ବର୍ଣ୍ଣକରୀ । ] ୨। ସ୍ତ୍ରୀଲୋକଙ୍କ ନାମ—2. A name given to females. ଦେ. ବି —ସ୍ତ୍ରୀଲୋକମାନଙ୍କ ମଧ୍ୟରେ ପରସ୍ପର ବସାଇବା ବନ୍ଧୁତା—A god-frendship set up between females. [ ଦ୍ର—ସ୍ତ୍ରୀମାନେ ପରସ୍ପର ମହାପ୍ରସାଦ, ତୀର୍ଥଜଳ, ତୀର୍ଥ ମୃତ୍ତିକା, ପୁଷ୍ପ ଆଦ ଦେଇ ହୋଇ ସେହି ସେହି ନାମର ଧର୍ମବନ୍ଧୁତା ସ୍ଥାପନ କରନ୍ତି । ]
Sebatī
ଅନ୍ୟ ସ—ଶତପତ୍ରୀ, ତରୁଣୀ, ସେମନ୍ତୀ, କର୍ଣ୍ଣିକା, ଚାରୁକେଶରା, ସେବନ୍ତୀ, ମହାକୁମାରୀ, ଗନ୍ଧାଢ୍ୟା, ଲକ୍ଷପୁଷ୍ପା, ଅତିମଞ୍ଜୁଳା, ଭୃଙ୍ଗବଲ୍ଲଭ ।
সেউঁতী, গুলদাউদী, सेवती, सेवतीगोलाप
गुलचिनी, सेवती गोलाप
ତେ. ଚାମନ୍ତି

ସେବତୀ ଫୁଲ—ଦେ· ବି—୧ । ସେବତୀ ( ଦେଖ )—1. Sebatī ( See ) ୨ । ( ବଶିଷ ଶଢ ) ସ୍ତ୍ରୀଲୋକମାନଙ୍କ ବାଳରେ ଖୋସାଯିବା ପାଇଁ ସେବତୀ ଫୁଲ ପରି କାରୁକାର୍ଯ୍ୟବିଶିଷ୍ଟ ସୁନାର ବା ରୁପାର ଅଳଙ୍କାରବିଶେଷ —2. Name of an ornament of gold or silver for the hair.
Sebatī phula
সেউঁতী
सेवती फूल

ସେବତୀ ମାଳଥା—ଦେ· ବି—ସେବତୀ ଫୁଲରେ ଗୁନ୍ଥା ହୋଇଥିବା ମାଳ ବା ହାର—A garland of Sebatī flowers.
Sebatī mānāā
সেউঁতী মালা सेवती माला
[ ଉ—ଗୁନ୍ଥିଥିବ ଯେବେ ମୁଁ ସେବତୀ ମାଳଥ, ତା ଦେଖିଲେ କଥିଲ ଜନକଙ୍କର ହିଆ—କୃଷ୍ଣସିଂହ. ମହାଭାରତ. ବନ୍ତ । ]

ସେବଧି—ସଂ· ବି ( ସେବ=ସେବା+ଧା ଧାତୁ+କର୍ତ୍ତି. ଇ )—
Sebadhi କୁବେରଙ୍କ ନିଧି;—ରତ୍ନ, ଶଙ୍ଖ, ପଦ୍ମାଦି—
The gams of God Kubera.

ସେବନ—ସଂ. ବି ( ସୀବ୍ ଧାତୁ+ଭାବ· ଅନ )—୧ । ବସ୍ତ୍ରାଦି ସୀବନ;
Sebana ସିଲାଇ କରିବା—1, Sewing. ୨ । ( ସେବ୍ ଧାତୁ +ଭାବ. ଅନ ) ସେବା କରିବା; ପରିଚର୍ଯ୍ୟା—2. Serving. ୩ । ଆରାଧନ; ଉପାସନା, ପୂଜନ—3. Worshipping. ୪ । ଉପଭୋଗ—4. Enjoyment. ୫ । ଭୋଜନ—5. Eating; partaking of. ୬ । ଚର୍ଚ୍ଚା; ଅଭ୍ୟାସନ—6. Practising; cultivatin ୭ । ସମ୍ଭୋଗ—7. Enjoying carnally ( Apte ). ୮ । ବାସ କରିବା; ବଢାଇ—8. Dwelling in; frequenting ( Apte ). ୯ । (+କର୍ମ. ଅନ) ବୋରା; ବସ୍ତା ( ହି. ଶ )—9. Sack.
ସେବିତ, ସେବ୍ୟ, ସେବନୀୟ } ବିଣ

ସେବନ କରିବା—ଦେ. କ୍ରି—୧ । ସେବା କରିବା; ପରିଚର୍ଯ୍ୟା କରିବା—
Sebana karibā 1. To serve; to tend. [ ଉ—ଅସ୍ତ୍ର ଆୟୁଧ କରେ ଛନ୍ତି । ସେବକ ସେବନ କରନ୍ତି—ଜଗନ୍ନାଥ. ଭାଗବତ । ] ୨ । ( ଔଷଧାଦି ) ଖାଇବା—2. To take ( medicine ); to partake of. ୩ । ( ବାୟୁ ) ସେବନ କରିବା; (ବାୟୁକୁ) ଦେହରେ ଉପଭୋଗ କରିବା—3. To take ( in airing ) to enjoy. ୪ । ( ଖରା ) ପୋଇଁବା—4, To bask ( in the sun ). ୫ । ( ମଦ୍ୟ ) ପାନ କରିବା—5. To drink ( wine ). ୬ । ( ଦେବତାଙ୍କୁ ) ଉପାସନା କରିବା—6. To worship ( a Deity ).
সেবা কৰা सेवन करना

ସେବନା—ସଂ. ବି ( ସେବନ+ଆ )—ଉପାସନା—
Sebanā Worshipping.

ସେବନୀ—ସଂ. ବି ( ସିବ୍ ଧାତୁ+କରଣ. ଅନ+ଈ )—ସୂଚୀ; ଛୁଞ୍ଚି—
Sebanī Needle.

ସେବନୀୟ—ସଂ. ବି (ସେବ୍ ଧାତୁ+କର୍ମ. ଅନୀୟ)—ସେବନ ଯୋଗ୍ୟ—
Sebanīya 1. Fit to be enjoyed. ୨ । ଭୋଗ୍ୟ—2. Enjoyable. ୩ । ଉପାସ୍ୟ—3. Adorable; worshipable.

ସେବା—ସଂ. ବି ( ସେବ୍ ଧାତୁ+ଭାବ· ଅ+ଆ )—୧ । ପରିଚର୍ଯ୍ୟା—
Sebā 1. Serving. ୨ । ଦାସ୍ୟ—2. Service, servitude. ୩ । ଆରାଧନା; ଉପାସନା—3. Worshipping; rendering homage. [ ଦ୍ର—ସେବା ୫ ପ୍ରକାର—୧ । ମଧୁର ( ଗୋପୀମାନଙ୍କର ), ୨ । ସଖ୍ୟ ( ଦାମ, ସୁଦାମାଦିଙ୍କର ), ୩ । ବତ୍ସଳ ( ନନ୍ଦ ଯଶୋଦାଙ୍କର), ୪ । ଦାସ୍ୟ (ଗରୁଡ଼, ହନୁମାନ ପ୍ରଭୃତିଙ୍କର), ୫ । ଶାନ୍ତ(ଯୋଗୀ ଓ ଋଷିଙ୍କର ) ଯଥା—ମଧୁର ଭକ୍ତି ସଖା ଦେଖ । ବତ୍ସଳ ଦାସ ଶାନ୍ତ ଦେନ ॥ ଏ ଉପାସନା ପଞ୍ଚ ବିଧ । ବୋଲିଣ କହନ୍ତି ବୁଧ—ପ୍ରାଚୀ. ପୁରୁଷୋତ୍ତମ ଚନ୍ଦ୍ରୋଦୟ । ] ୭ । ଧାରାବାହିକ ଚର୍ଚ୍ଚା—7. Practice; exercise ( Apte ). ୮ । ( କୌଣସି କାର୍ଯ୍ୟ ପ୍ରତି ) ଅନୁରକ୍ତି—8. Fondness or attachment for; devotion or addiction to. ୯ । ( କୌଣସି ସ୍ଥାନରେ ) ବାସ ବା ବଢାଇବ—9. Frequenting; moving about; living in ( Apte ). ୧୦ । ସମ୍ଭୋଗ—
ସେବିତ, ସେବ୍ୟ, ସେବନୀୟ } ବିଣ

10. Carnal enjoyment. ୧୧ । (+ଭରିଣ· ଅ +ଅ ) ଗୁହୁବାକ୍ୟ—
11. Flattery; coaxing words (Apte).

ସେବାଇ(ଏ, ୟ)ତ—ଦେ. ବ ( ସ. ସେବକ୍ତା )—୧ । ସେବକ; Sebāi(e, ya)ta ଦେବତାଙ୍କ ସେବାକାରୀ—1. Person সেবায়ত सेवायत performing the services of a ସେବେଇତ, ସେବୈତ } ଅନ୍ୟରୂପ Deity. ୨ । ମନ୍ଦିରର ସେବକ ଭୃତ୍ୟ—2. Temple servant. ୩ । ଗ୍ରାମଲୋକଙ୍କ ସେବାକାରୀ ଭଣ୍ଡାରୀ ଓ ଧୋବା—3. Village servant ( e. g. barber, washerman etc ).

ସେବାଇ(ଏ, ୟ)ତ ମାର୍‌ଫତ୍‌ଦାର୍—ଦେ. ବ ( ଯବନର ଶବ୍ଦ )—Sebāi(e, ya)ta mār-phat-dār ଦେବତାଙ୍କର ସେବକ সেবায়ত মারফতদার ଗୃହର ଓ ସେବା କାର୍ଯ୍ୟ ଚଳାଇ ରଖିବା सेवायत मारफतदार ପାଇଁ ନିଯୁକ୍ତ ବ୍ୟକ୍ତି—Servants and trustees of a Deity.

ସେବାଇ( ଏ, ୟ, ୟି, ୟେ )ତି—ଦେ. ବ—ସେବାଇତର କାର୍ଯ୍ୟ—Sebāi(e, ya, yi, ye)ti Sebāyetship; the duty or সেবায়তি सेबायती post of a temple-servant.

ସେବାଏ(ୟ, ୟେ)—ବୈଦେ· ଅ ( ଫା. ସ ବା )—ଛଡ଼ା; ବ୍ୟତୀତ—Sebāe(ya, ye) Beside; except. ব্যতীত सिवा, सेवाय

ସେବା କରିବା—ଦେ· କ୍ରି—ସେବନ କରିବା ( ଦେଖ ) Sebā karibā Sebana karibā (See)

ସେବା କାକୁ—ସ. ବ ( ମ. ଷ. ଲେ )—ସେବା କରିବା ସ ମୟରେ Sebā kāku ସେବକଙ୍କ କଣ୍ଠସ୍ୱରର ପରିବର୍ତ୍ତନ (କେତେବେଳେ ଉଚ୍ଚ, କେତେବେଳେ ନୀଚ, କେତେବେଳେ କୋମଳ କେତେବେଳେ ମଧୁର ) ( ହୁ. ଣ )—Modulation or change of voice during service (Apte).

ସେବାକାରୀ—ସ· ବଣ ଓ ବ ( ପୁଂ ) ( ସେବାକାରିନ୍ ଶବ୍ଦ )—ସେବକ Sebākāri ( ଦେଖ )—Sebaka ( See ) ( ସେବାକାରିଣୀ—ସ୍ତ୍ରୀ )

ସେବା ଖଞ୍ଜା—ଦେ. ବ—ଦେବସେବା ନିମନ୍ତେ ନିର୍ଦ୍ଦିଷ୍ଟ ସମ୍ପତ୍ତି—Sebā khanjā Endowment for the service of a দেবোত্তর देवोत्तर Deity.

ସେବା ଖଟିବା—ଦେ କ୍ରି—କୌଣସି ବ୍ୟକ୍ତିଙ୍କର ସେବା କରିବା—Sebā khatibā To render personal service to a সেবা করা सेवा करना person. [ ଉ—ଦୁରୁ ଡାକୁଥାନ୍ତି ଯାମିକ ଭଟ । ଅଛି ପଦ୍ମ ଭୁମ୍ଭେ ତା ସେବା ଖଟ—କବିସୂର୍ଯ୍ୟ. ବଳଭଦ୍ର । ]

ସେବା ଦାସୀ—ଦେ· ବ ( ସେବା ନିମିତ୍ତ ରକ୍ଷିତା ଦାସୀ)—୧ । ଦେବ-Sebā dāsi ସେବା ପାଇଁ ରକ୍ଷିତା ଦାସୀ—1. Maid serসেবা দাসী vants entertained in a temple for सेवा दासी performing the services of Idols, ୨ । ପ୍ରଭୁଙ୍କର ସେବାକାରିଣୀ ଦାସୀ—2. A maid servant engaged for serving a master. [ ଉ—ଏ କଣ କହନ୍ତ ସେବାଦାସୀ ଥିଲା ଦେବ ଉଦ୍ଧବେ ଭୁମ୍ଭର—ଶଙ୍କରାମଣି. ରକ୍ମମାହାତ୍ମ୍ୟ । ] ୩ । ଦାକ୍ଷିଣାତ୍ୟରେ ମନ୍ଦିରମାନଙ୍କରେ ରକ୍ଷିତା ଅବିବାହିତା ରମଣୀ ଓ କନ୍ୟାଙ୍କ; ଜଗନ୍ନାଥ ଦେଉଳର ମାହାରୀ—3. Damsels and unmarried girls kept in temples for dancing before the Idol. ୪ । ଉପଭୋଗାର୍ଥ ରକ୍ଷିତା ସ୍ତ୍ରୀ—4. A concubine. ୫ । କୌଣସି କୌଣସି ସମ୍ପ୍ରଦାୟ ଭୁକ୍ତ ବୈଷ୍ଣବଙ୍କର ରକ୍ଷିତା ଅଙ୍ଗଲଗା ମାତାଜୀ—5. Concubines entertained by a sect of Baishnabas for administering to the personal comforts and animal wants of the latter.

ସେବା ଧର୍ମ—ସ. ବ ( ରୂପକ )—୧ । ଅବଶ୍ୟକର୍ତ୍ତବ୍ୟରୂପେ ଗୃହୀତ Sebā dharma ସେବା କର୍ମ—1. The duty of service. ୨ । ସେବକର କର୍ତ୍ତବ୍ୟ କର୍ମ—2. The duties or ଅଙ୍ଗ—obligations of a Sebaka.

ସେବା ବୃତ୍ତି—ସ· ବ ( ରୂପକ )—ଜୀବିକାର୍ଥ ଗୃହୀତ ସେବା କର୍ମ—Sebā brutti Service taken as a profession. ସ. ବଣ ପୁଂ ଓ ସ୍ତ୍ରୀ (ବହୁବ୍ରୀହି)—ଯାହାର ଯାହାର ଜୀବିକା Having service as a profession.

ସେବା ବ୍ରତ—ସ. ବ—ପରୋପକାର ଓ ପରିଚର୍ଯ୍ୟାରୂପ ନିୟମ—Sebā brata Religious vow taken for rendering service to humanity or to a Deity or to a cause.

ସେବା ମନ୍ଦିର—ଦେ. ବ—ସେବାଶ୍ରମ ( ଦେଖ ) Sebā mandira Sebāśrama ( See )

ସେବାୟୁଧ—ଦେ· ବ—ସେବା ନିମନ୍ତେ ଅବଶ୍ୟକ ଦ୍ରବ୍ୟଜାତ—Sebāyudha Articles required for performing সেবায়ুধ सेवा सामग्री different kinds of services. [ ଉ—ଦିବ୍ୟ ବେଶ ସର୍ବ ରାଣୀ ଯାକ ଯେତେ ପରିଜନ ସେବାୟୁଧ କରେ ଘେନି ସର୍ବେ ଚଳାୟେ—ପ୍ରାଚୀ.ରତ୍ନବ୍ୟମଞ୍ଜରୀ ।]

ସେବାର୍ହ—ସ. ବଣ(ସେବା+ଅର୍ହ ଧାତୁ+କର୍ତ୍ତୃ· ଅ)—ସେବାର ହେବାର Sebārha ଯୋଗ୍ୟ—Fit to be worshipped. ( ସେବାର୍ହା—ସ୍ତ୍ରୀ )

ସେବାଶ୍ରମ—ସ. ବ—ଯେଉଁ ଅଶ୍ରମରେ ସେବକମାନେ ନାନାପ୍ରକାରେ Sebāśrama ଦେଶସେବା ଓ ଦରିଦ୍ରସେବା କରନ୍ତି—সেবাশ্রম सेवाश्रम A place where volunteers serve the country and the poor.

ସେବା ସଙ୍ଘ—ସ· ବ ( ମ. ଘ. ଲେ; ସେବା ନିମନ୍ତେ ପ୍ରତିଷ୍ଠିତ ସଙ୍ଘ )—Sebā samgha ଦେଶ ସେବା ପାଇଁ ଗଢ଼ା ସମାଜ—A league সেবা সংঘ सेवा संघ formed for social service.

ସେବା ଶୁଶ୍ରୂଷା—ସଂ. ବି (ଏକାର୍ଥକ ସହଚର)—କୌଣସି ବ୍ୟକ୍ତିଙ୍କର ବା
Sebā śuśrūshā ରୋଗୀର ପରିଚର୍ଯ୍ୟା—
'Nursing of a patient or person

ସେବା ସମର୍ପଣ—ସଂ. ବି—ଦେବ ମୂର୍ତ୍ତିଙ୍କ ନୀତି ପରିଚାଳନ କରିବା ପାଇଁ
Sebā samarpaṇa କୌଣସି ବ୍ୟକ୍ତିଙ୍କ ହସ୍ତରେ ଦେବତାଙ୍କ
সেবা সমর্পণ ସେବାର ଅର୍ପଣ—Consignment or gift
सेबा समर्पण of the service of a Deity to a person in trust.

ସେବାସମର୍ପଣ ପତ୍ର—ଦେ. ବି (କଚେରୀ)—ଯେଉଁ ଦଲିଲ ଦ୍ୱାରା ଜଣେ
Sebāsamarpaṇa patra ବ୍ୟକ୍ତି ଦେବତାଙ୍କ ସେବାକୁ
সেবাসমর্পণপত্র सेबासमर्पनपत्र ଅନ୍ୟ ବ୍ୟକ୍ତିଙ୍କ
ଠାରେ ଅର୍ପଣ କରେ—A trust deed conveying the service of an Idol to another person.

ସେବାସି—ଗ୍ରା. ବି—ସେବକ (ଦେଖ)—
Sebāsi Sebaka (See).

ସେବି—ସଂ. ବି—୧ । ସେଉଫଳ—1. Apple. [ଦ୍ର—ଏହା ବାତ-
Sebi ପିତ୍ତହର, ଗୁରୁ, ବୃଂହଣ, ବଳକର, କଫକର, ରୁଚ୍ୟ ଓ
ପାକରେ ସ୍ୱାଦୁ ।] ୨ । ବଦରଫଳ;ବରକୋଳି(ହି .ଶ.)-
Jujube (Apte) tree and berry.

ସେବିକା—ଦେ. ବଣ. ସ୍ତ୍ରୀ (ସଂ. ସେବକା)—ସେବକର ସ୍ତ୍ରୀଲିଙ୍ଗ—
Sebikā Feminine of'Sebaka' [ଦ୍ର—ସେବକର ସ୍ତ୍ରୀ-
সেবিকা सेबिका ଲିଙ୍ଗରୂପ ସଂସ୍କୃତ ବ୍ୟାକରଣ
ଅନୁସାରେ ସେବକା ଅଟେ,କିନ୍ତୁ ଭାଷାରେ କେହି କେହି
ସେବକୀ ଓ ସେବିକା ଲେଖନ୍ତି; କିନ୍ତୁ ଏହା ବ୍ୟାକରଣ-
ବିରୁଦ୍ଧ ବ୍ୟବହାର ।] ସଂ.ବି—ପକ୍ୱାନ୍ନ ବିଶେଷ;ସିମେଇ—
সেমই सेव, सेवई Vermicelli.
[ଦ୍ର—ମଇଦାରୁ ବଳ ଏଥିରୁ ବଡ ସରୁ ସରୁ ଲମ୍ବ
ଖଣ୍ଡମାନ କରି ତାକୁ ଖରାରେ ଶୁଖାଇ ଦୁଗ୍ଧ, ଶର୍କରା ଓ
ଘୃତରେ ମୃଦୁ ଅଗ୍ନିରେ ପାକ କରି ଏହା ପ୍ରସ୍ତୁତ କରାଯାଏ
(ଭାବପ୍ରକାଶ) । ଏହା ତର୍ପଣୀ, ବଲ୍ୟ, ଗୁର୍ବୀ, ପିତ୍ତ-
ଶାଳାପହା, ଗ୍ରାହିଣୀ, ସନ୍ଧିକୃତ, ରୂଚ୍ୟ । ଏହାକୁ ଅତି
ମାତ୍ରାରେ ଖାଇବ ନାହିଁ । ଅନ୍ୟ ଏକପ୍ରକାର ଖୁବ୍ ସରୁ
ଲମ୍ବା ଲମ୍ବା ସିମେଇ ତିଆରି କରାଯାଏ । ମଇଦାକୁ ବା ବୁଟ
ବେସନକୁ ପାଣିରେ ଚକଟି ଛାଲଚଟୁ ଉପରେ ଲେଉଟରେ
ତାକୁ ମଳିଲେ ଛାଲଚଟୁର ଛିଦ୍ର ବାଟେ ସରୁ ସୂତା ପରି
ବାହାରୁଥିବା ଖଣ୍ଡମାନ କଡ଼ାଇ ଉପରେ ଫୁଟୁଥିବା ଘିଅରେ
ବା ତେଲରେ ପକ୍ୱ ହୁଏ । ଏହାକୁ ଭୁଜିଆ ସିମେଇ
କୁହାଯାଏ ।]

ସେବି(ଭି)ଙ୍ଗ୍—ବୈଦେ.ବି(ଇଂ)—ବ୍ୟୟରୁ ଉଦ୍ୱୃତ୍ତ ଧନର ସଞ୍ଚୟ—
Sebi(bhi)ṇg Saving of money.
সেভিঙ্‌ শৈবিंग [ସେବିଂ (ଇଂ)—ଅଶୁଦ୍ଧ ଉଚ୍ଚାର]

ସେବି(ଭି)ଙ୍ଗସ୍ ବା(ବ୍ୟା,ବେ)ଙ୍କ—ବୈଦେ. ବି, (ଇଂ)—ଯେଉଁ ଠାରେ
Sebi(bhi)ṇg-s|ba(byā,be)ṇk ଲୋକେ ନିଜ ନିଜର ଉଦ୍ୱୃତ୍ତ
সেভিঙ্‌স্ ব্যাঙ্ক सविंगवैंक ଧନକୁ ଭବିଷ୍ୟତ ପାଇଁ
ଗଚ୍ଛିତ ରଖନ୍ତି ଓ ଆବଶ୍ୟକ ପଡ଼ିଲେ ସେଠାରୁ ଧନ ଆଣି
ପାରନ୍ତି (ଏଥିରେ କିଛି ସୁଧ ମଧ୍ୟ ମିଳେ)—Savings bank.

ସେବିତ—ସଂ. ବଣ (ସେବ୍ ଧାତୁ+କର୍ମ. ତ)—୧ । ସମୁପାସିତ;
Sebita ଅଗ୍ରାଧିତ; ପୂଜିତ—1. Worshipped.
(ସେବିତା—ସ୍ତ୍ରୀ. ବଣ) ୨ । ଉପଭୁକ୍ତ—2. Enjoyed;
partaken of. ୩ । ଅଧ୍ୟୁଷିତ—3.Inhabited.
[ଉ—ସିନ୍ଧୁ, ବ୍ୟାଘ୍ର, ମୃଗରେ ସେବିତ ହୋଇଅଛୁ—
କୃଷ୍ଣସିଂହ. ମହାଭାରତ ବନ ।] ୪ । ଆଶ୍ରିତ; ଯାହାଙ୍କଠାରୁ
ଆଶ୍ରୟ ନିଆ ଯାଇଅଛି—4. Resorted to. ୫ । ରକ୍ଷିତ
5. Protected. ୬ । ଅଭ୍ୟସ୍ତ—6. Practised.
୭ । ବ୍ୟବହୃତ—7. Used. ୮ । ଯାହାଙ୍କର ସେବା
ବା ପରିଚର୍ଯ୍ୟା କରା ଯାଇଅଛି—8. Served; looked
after; tended. ସଂ. ବି—ସେବି (ଦେଖ) (ହି. ଶ)—
Sebi (See).

ସେବିତବ୍ୟ—ସଂ. ବଣ. ପୁଂ—୧ । (ସେବ ଧାତୁ+କର୍ମ. ତବ୍ୟ)—ସେବିତ
Sebitabya ହେବା ଯୋଗ୍ୟ—Fit to be served,
tended, worshipped etc. ୨ । (ସିବ ଧାତୁ+
କର୍ମ. ତବ୍ୟ) ସିଲେଇ କରାଯିବା ଯୋଗ୍ୟ (ହି. ଶ)—
(ସେବିତବ୍ୟା—ସ୍ତ୍ରୀ) 2. Fit to be sewn.

ସେବିତା—ସଂ. ବଣ—୧ । (ସ୍ତ୍ରୀ) (ସେବିତ+ଆ)—ସେବିତର ସ୍ତ୍ରୀଲିଙ୍ଗ.
Sebitā Feminine of Sebita. ୨ । (ପୁଂ)
(ସେବ ଧାତୁ+କର୍ତ୍ତୃ ତୃ; ୧ମା. ୧ବ)—ସେବାକାରୀ—
(ସେବିତ୍ରୀ—ସ୍ତ୍ରୀ) Performing service etc.
ସଂ. ବି—୧ । (ପୁଂ) ସେବକ (ଦେଖ) Sebaka (See)
୨ । (କ୍ଲୀ) (ସେବକ୍+ଭାବ ତା)—ସେବକର କର୍ମ—
Servitude

ସେବି ଫଳ—ସଂ. ବି—ସେବି (ଦେଖ)
Sebi phala Sebi (See);

ସେବିବା—ଦେ. କ୍ରି (ସଂ.ସେବଧାତୁ) (ପଦ୍ୟ)—୧। ସେବା କରିବା;ଭଜିବା—
Sebibā 1. To serve.[ଉ—ନୋହିଲେ ଅବା ଅନ ନୃପଙ୍କ
সেবাকরা ସେବକ । କୃଷ୍ଣସିଂହ. ମହାଭାରତ. ବନ ।) ୨ । (ତୀର୍ଥାଦିକୁ)
सेवना ଯିବା—2.To go to;to frequent.(ଉ—ନାନା ତୀର୍ଥ
ସେବି, ଶୁରେ ଆସିଣ ମିଳିଲେ । ରାଧାନାଥ. ମହାଯାତ୍ରା ।]

ସେବୀ—ସଂ. ବଣ. ପୁଂ (ସେବିନ୍ ଶବ୍ଦ; ସେବ୍ ଧାତୁ+କର୍ତ୍ତୃ. ଇନ୍; ୧ମା
Sebī ୧ବ)—ଯେ ସେବା କରେ; ସେବକ (ଦେଖ) —One
(ସେବିନୀ—ସ୍ତ୍ରୀ) who enjoys or partakes of a thing.
[ଦ୍ର—ଏହା ଅନ୍ୟ ଶବ୍ଦ ସହିତ ସମାସରେ ଯୁକ୍ତ ହୁଏ ।
ଯଥା—ଅହିଫେନସେବୀ, ମାଦକସେବୀ ଇତ୍ୟାଦି ।]

ସେବେ—ଦେ. ଅ—୧ । ସେକାଳରେ—1. At that time.
Sebe ୨ । ପୂର୍ବେ—2. In the past.
সেকালে उस समयमें

ସେବେଟି—ଗ୍ରା. ବି (ସଂ. ସେବତୀ ଶବ୍ଦର ଅଶୁଦ୍ଧ ଉଚ୍ଚାରଣ)—
Sebeti ସେବତୀ (ଦେଖ)—Sebati (See)

ସେବ୍ୟ—ସଂ ବିଣ ( ସେବ୍ ଧାତୁ+କର୍ମ· ଯ)—ସେବଣୀୟ; ସେବାର୍ହ
Sebya (ସେବ ଧାତୁର ସମସ୍ତ ଅର୍ଥ ଦେଖ)—Fit to
(ସେବ୍ୟା—ସ୍ତ୍ରୀ) be enjoyed or worshipped. etc.
ବି—୧ । ବୀରଣ ମୂଳ; ବେଣାଚେର—1. The root of the 'Beṇā' grass. ୨ । ଅଶ୍ୱତ୍ଥ ବୃକ୍ଷ (ରାଜ-ନିର୍ଘଣ୍ଟ)—2. Ficus Religiosa tree. ୩ । ହିଜଳ ବୃକ୍ଷ (ଶବ୍ଦ ରତ୍ନାବଳୀ)—3. Barringtonia Acutangulia. ୪ । ସେବକର ପ୍ରଭୁ—4 The master of a servant (Apte). ୫ । ଲାମଜ୍ଜକ ତୃଣ (ବୈ. ଶ) – 5. A kind of grass. ୬ । ରକ୍ତଚନ୍ଦନ (ବୈ. ଶ)—6. Sappan wood. ୭। ସୁଗନ୍ଧବାଳା; ହ୍ରୀବେର (ବୈ· ଶ)—7. Pavonia Odorata. ୯ । ସାମୁଦ୍ର ଲବଣ (ବୈ. ଶ)—9. Sea salt. ୧୦। ଜଳ (ବୈ. ଶ)—10. Water. ୧୧ । ଜଳପକ୍ଷି ବିଶେଷ (ବୈ. ଶ) (ହଂସ-ଗୌରେୟା ପକ୍ଷୀ)—11. A kind of aquatic bird.

ସେବ୍ୟକ—ଦେ. ବି— ( ବୈଦ୍ୟକ, ସଂ. ସେବ୍ୟ ) — ବେଣା-
Sebyaka ଚେର—The root of Beṇā grass.
সেব্যক,বেঁণার মূল खसखस

ସେବ୍ୟ ସେବକ—ସଂ. ବି ପୁଂ—(ପୁଂ)—ଦ୍ୱିବଚନ—ପ୍ରଭୁ ଓ ଭୃତ୍ୟ—
Sebya sebaka Master and servant.
(ସେବ୍ୟା ସେବିକା—ସ୍ତ୍ରୀ)

ସେବ୍ୟା—ସଂ. ବି. ସ୍ତ୍ରୀ—୧ । ବନ୍ଦାବୃକ୍ଷ (ଶବ୍ଦ ରତ୍ନାବଳୀ) ବନ୍ଦାକ;
sebyā ମଳଙ୍ଗ—1. A parasitic plant; Loranthus Longifolius· ୨ । ଅଁଳା; ଅମଳକୀ (ବୈ. ଶ)—2.Embelic Myrobalan· ୩ । ଏକ ପ୍ରକାର ଜଙ୍ଗଲି ଧାନ (ବୈ· ଶ)—3. A kind of wild paddy. ସଂ· ବିଣ.ସ୍ତ୍ରୀ—ସେବ୍ୟଶବ୍ଦର ସ୍ତ୍ରୀଲିଙ୍ଗ—Feminine of Sebya·

ସେ ଭଳି—ଦେ. ଅ—୧ । ସେହି ପ୍ରକାରର; ସେପରି—1.Of that
Se bhaḷi kind or nature. ୨ । ତାହାରି ସମାନ—2 Like
সেবকম that; similar to that. (ଉ—ସେ ଭଳି ସେବକ
उसतरह ଆଉ ନ ଦେଖି ଭାରତେ, ଭାରତୀ ସେ ସାର୍ଥା ଏବେ ଧରନ୍ତୁ ଶାରଦେ । ରାଧାନାଥ — ମହାଯାତ୍ରା ।)

ସେଭିଙ୍ଗ୍ସ ବା(ବ୍ୟା,ବେ)ଙ୍କ୍—ବୈଦେ· ବି (ଇଂ)—ଡାକଘରେ ଏକ
Sebhings bā(byā,be)ṅk ବିଭାଗ କିମ୍ବା ଅନ୍ୟ ବାଙ୍କ୍,
সেভিঙ্গ্স ব্যাঙ্ক ଯହିଁରେ ଲୋକେ ଆପଣାର ଇଚ୍ଛାନୁଯାୟୀ ଧନ ଜମା
सेविंगबैंक ରଖନ୍ତି ଓ ଆବଶ୍ୟକବେଳେ ଅଣନ୍ତି ଏବଂ ଟଙ୍କା ଯେତେ ଦିନ ଜମା ରହେ ସେତେଦିନ ପାଇଁ ଜମା ଟଙ୍କାର କିଛି ସୁଧ ପାଆନ୍ତି—Savings Bank· [ ଉ—ଡାକ ଘରର ସେଭିଙ୍ଗ୍ସ୍ ବାଙ୍କ୍ ଘୋଷ୍ଟାଲ୍ ସେଭିଙ୍ଗ୍ସ୍ ବାଙ୍କ୍ Postal Savings Bank କହନ୍ତି ।]

ସେମଏ—ବୈଦେ. ବି ( ଫ୍ରେଞ୍ଚ୍— ସାମୋଏ ) — ଏକପ୍ରକାର
Semae ଇଉରୋପୀୟ ଛେଳି—Chamoise. [ ଉ—ଏହାର
সেময় ଚମଡ଼ା ଅତି ନରମ । ଚଶମା ଓ ଗହଣା ଆଦିକୁ ସୁନ୍ଦରରୂପେ
सेमये ପାଲିସ୍ କରିବା ପାଇଁ ଏହା ବ୍ୟବହୃତ ହୁଏ ।]

ସେମଏ ଲେଦର୍(ଚମଡ଼ା)—ବୈଦେ. ବି ( ଫ୍ରେଞ୍ଚ୍. ସାମୋଏ+ଇଂ.
Semae ledar(chamaṛā) ଲେଦର୍)—ସେମଏ ଛେଳିର ଚର୍ମ—
Chamois leather.
সেময় লেদব सेमय लेदर

ସେମଠା—ଦେ. ବିଣ ( ସଂ· ଶୀର୍ଣ୍ଣ କମ୍ପା ଶିମ୍ ? )—୧ । ଶୁଖିଯାଇ କ୍ଷୀଣ
Semaṭā ବା ଶୀର୍ଣ୍ଣ ହୋଇଥିବା; ଜୀର୍ଣ୍ଣ ଶୀର୍ଣ୍ଣ—1. Emaciat-
(ସେମଠୀ—ସ୍ତ୍ରୀ) ed; withered. ୨ । କ୍ଷୀଣକାୟ—2 Thin;
সিটকান सिकुडा lean.

ସେମଠା(ଟେ)ଇବା—ଦେ· କ୍ରି—୧। ସେମଟିବା କ୍ରିୟାର ଣିଜନ୍ତ ରୂପ—
Semaṭā(ṭe)ibā 1. Causative from of Semaṭibā.
সিটাকে দেওয়া ୨ । ଶୀର୍ଣ୍ଣ କରିବା—2. To cause to
सिकुडाना become lean.

ସେମଟିବା—ଦେ. କ୍ରି—ଜୀର୍ଣ୍ଣ ଶୀର୍ଣ୍ଣ ହେବା—
Semaṭibā To become lean and thin.
(ସେମିଟିଥିବା—ଅନ୍ୟରୂପ) সিটিকা सिकुडना

ସେ ମ(ମି, ମେ)ତି—ଗ୍ରା. ଅ—୧ । ସେପରି; ତେମନ୍ତ; ସେହିପରି—
Se ma(mi me)ti 1. Like that. ୨ । ତଦ୍ରୂପ—
ସେମନ୍ତ(ନ୍ତି) } ଅନ୍ୟରୂପ 2. Similarly. ୩। ସେହି ପ୍ରକାରେ—
ସେମତେ } 3. In that manner. [ଉ—ସ୍ୱପ୍ନ
তেমন ସଙ୍ଗେ କହିଲି ମୋତେ ସେ ସେମତି । କୃଷ୍ଣସିଂହ, ମହା-
वैसा ଭାରତ, ସଭା ।]

ସେମ(ମି, ମେ)ତିକା—ଗ୍ରା· ଅ—ତେମନ୍ତ; ତେମନ୍ତ; ସେହି ପ୍ରକାରର
Sema(mi, me)tikā —Of that kind; similar to
[ସେଂ(ମି, ମେ)ତିକିଆ—ଅନ୍ୟରୂପ] that.
সেই রকম वैसा

ସେ ମାଡାରେ—ଗ୍ରା ଅ—୧ । ସେହି ଯୋଗୁଁ; ସେହି ହେତୁରୁ—
Se māḍāre 1. For that reason. ୨ । ସେହି
সেই জন্য ସମ୍ପର୍କରେ—2. In that connection.
उस कारणसे

ସେମାଫୋର୍—ବୈଦେ· ବି ( ଇଂ ) ( ରେଳ ବ୍ୟବହୃତ ଶବ୍ଦ )—
Semāphor ରେଳ ଷ୍ଟେସନର ଶେଷଭାଗରେ ପୋତା ହୋଇ-
সিমা ফোব্ ଥିବା ସୂଚକ ଖୁଣ୍ଟି; ସିଗ୍ନାଲ୍ ଖୁଣ୍ଟି—
सेमाफोर Railway signal post; semaphore.

ସେମାନେ—ଦେ. ସର୍ବ (ସଂ. ତତ୍ ଶବ୍ଦ; ବହୁବଚନ)—
Semāne ନିର୍ଦ୍ଦିଷ୍ଟ ବ୍ୟକ୍ତିମାନେ—They.
তাহারা वे सब

ସେମାହି—ବୈଦେ. ବିଣ (ଫା. ସେ=ତିନି+ମାହ୍=ମାସ+ଇ)—
Semāhi ତ୍ରୈମାସିକ—Quarterly. ବି—ତିନିମାସ କାଳ—
সেমাহি Quarter; a period of three months.
सेमाही

ସେମି—ବୈଦେ• ଷ୍ଟ (ଇଂ. ଅନ୍ୟ ଇଂରାଜୀ ଶବ୍ଦ ସଙ୍ଗେ ବ୍ୟବହୃତ, Semi ଯଥା—ସେମିକୋଲନ୍, ସେମି ସର୍କଲ୍, ସେମି ଅଫି- ସେମି **सेमी** ସିଅଲ୍ )—ଅର୍ଦ୍ଧ—Half.

ସେମି ଅଫିସିଅଲ୍—ବୈଦେ• ବିଣ (ଇଂ)—କର୍ମଚାରୀମାନଙ୍କ ମଧ୍ୟରେ Semi aphisial ଚଳିବା କର୍ମସଂକ୍ରାନ୍ତ ଓ ଘରୋଇ ମିଶା (ଚିଠି ସେମି ଅଫିସିଅଲ୍ ଆଦି)—Semi official. **सेमि आफिशियल**

ସେମିକୋଲନ୍—ବୈଦେ. ବି (ଇଂ)—ରଚନାରେ ଭାବପ୍ରକାଶର ସମାପ୍ତି Semikolan ହୋଇ ନ ଥିବା ବାକ୍ୟ ପରେ ବ୍ୟବହୃତ ଚିହ୍ନ— ସେମିକୋଲନ୍ **सेमीकोलन** Semicolan.

ସେମିଜ୍(ଜି)—ବୈଦେ• ବି (ଇଂ. ଫ୍ରେଞ୍ଚ ସେମିଜ୍)—ସ୍ତ୍ରୀଲୋକମାନଙ୍କ Semij(ji) ଦ୍ୱାରା ପିନ୍ଧାଯିବା ଏକ ପ୍ରକାର ଲମ୍ବାକୁର୍ତ୍ତି—Chemise. ସେମିଜ୍ [ଦ୍ର—ଏହା ବେକ ପାଖରୁ ଆଣ୍ଠୁ ତଳକୁ ନଳିହାଡ଼ **सेमीज** ପର୍ଯ୍ୟନ୍ତ ଲମ୍ବିଥାଏ ଓ ଏଥିରେ ହାତ ନ ଥାଏ କିମ୍ବା ବାହୁ ପର୍ଯ୍ୟନ୍ତ ଅସ୍ତିନ୍ ଥାଏ । ଏହାକୁ ପିନ୍ଧି ଏହା ଉପରେ ଭାରତୀୟ ସ୍ତ୍ରୀମାନେ ଶାଢ଼ୀ ପିନ୍ଧନ୍ତି ।]

ସେମିଟିକ୍—ବୈଦେ. ବିଣ (ହେବ୍ରୁ ସେମ୍ ନାମରୁ)—ହେବ୍ରୁ ଜାତୀୟ Semitik ସେମ୍ ନାମକ ବ୍ୟକ୍ତିଙ୍କ ବଂଶଧର ଓ ସେମାନଙ୍କ ସେମିଟିକ ଭାଷା ସମ୍ବନ୍ଧୀୟ—Relating to the descen- **सेमिटिक** dants of Shem and their language; Semitic. ବି—୧ । ମନୁଷ୍ୟମାନଙ୍କର ଆଧୁନିକ ବର୍ଗର ଶାଖା ବିଶେଷ—1. A branch of the people of the world according to the modern classification; the Semitic branch of humanity. [ଦ୍ର—ଏହି ବର୍ଗରେ ପ୍ରାଚୀନ ଓ ଆଧୁନିକ ଇହୁଦୀ, ଆରବୀ, ସୀରୀୟ, ମିଶ୍ର ଦେଶୀୟ ଆଦି ଲୋହିତ ସାଗରର ଉପକୂଳବାସୀ ଜାତିମାନେ ଅନ୍ତର୍ଭୁକ୍ତ । ମୋଶେ, ଯୀଶୁ, ମହମ୍ମଦ୍ ଏହି ବର୍ଗରେ ଜନ୍ମିତ । ଏ ବର୍ଗ ଆର୍ଯ୍ୟ ବର୍ଗଙ୍କଠାରୁ ପୃଥକ୍ । ଦ୍ର. ଶ] ୨ । ଉପର୍ଯ୍ୟୁକ୍ତ ବର୍ଗର ବ୍ୟକ୍ତିମାନଙ୍କ କଥିତ ଭାଷାମାନ—2. Thee Smitic languages. [ଦ୍ର—ଇବ୍ରାନୀ, ଆରବୀ, ଆସୀରୀୟ, ଫିନିସୀୟ ଭାଷାମାନ ଏହି ବର୍ଗର ଅନ୍ତର୍ଗତ । ଏହା ଆର୍ଯ୍ୟ- ବର୍ଗୀୟ ଭାଷାମାନଙ୍କଠାରୁ ପୃଥକ୍ । ଦ୍ର. ଶ]

ସେମି(ମେ)ଟି ଯିବା—ଦେ. କ୍ରି—ସେମିଟିବା ( ଦେଖ ) Semi(me)ti jibā Semitibā ( See )

ସେମିନା(ନେ)ରୀ—ବୈଦେ. ବି (ଇଂ)—ବିଦ୍ୟାଳୟ; ବିଦ୍ୟାଳୟ— Seminā(ne)rī Seminary. (ଯଥା—ମୋଶେନ୍ମ ସେମିନାରୀ **सेमीनरी** ସେମିନାରୀ ।)

ସେମି ସର୍କଲ୍—ବୈଦେ• ବି (ଇଂ)—ବୃତ୍ତାର୍ଦ୍ଧ— Semi sark-l Semicircle. (ସେମି ସର୍କ୍—ଅନ୍ୟରୂପ) ସେମି ସାର୍କଲ **सेमी सर्कल**

ସେମୀ—ପ୍ରାଦେ (ଗଡ଼ଜାତ) ବି ( ତୁଳ. ହି• ସେମ୍, ସେମା=ଶିମ୍ )— Semī ଶିମ୍—Bean.

ସେମେଇ—ଦେ. ବି—ସିମେଇ ( ଦେଖ ) Semei Simei ( See )

ସେମୁଏଲ୍—ଦେ. ବି (ହେବ୍ରୁ, ନାମ)—ସାମୁଏଲ୍ ( ଦେଖ ) Semuel Sāmuel ( See

ସେମ୍ବର—ପ୍ରାଦେ (ବସ୍ତର) ବି—ପାଲଧୁଆ ଗଛ— Sembara The Indian coral tree.

ସେମ୍ବି—ପ୍ରାଦେ (ସମ୍ବଲପୁର) ବି (ପ୍ର. ଶିମ୍)—ଶିମ୍— Sembi Bean.

ସେୟା—ଗ୍ରା. ସବ | ସେଇଆ ( ଦେଖ ) Seyā Seiā ( See )

ସେର୍—ବୈଦେ. ବି ( ଫା. ସେର୍=ବ୍ୟାଘ୍ର )—ମୁସଲମାନମାନଙ୍କ Ser ନାମ ପୂର୍ବରେ ବସିବା ସାହସବ୍ୟଞ୍ଜକ ଉପାଧିବିଶେଷ— ସେର **शेर** A title prefixed to names of Mahomedans indicating might or heroism (literally, a tiger).

ସେର୍ ଅ(ଆ)ଲି—ଦେ. ବି (ନାମ)—ଅଫଗାନସ୍ଥାନବାସୀ ଜନୈକ ଅପ- Ser a(ā) li(lī)—Sher Ali, name of an assassin of ସେରଆଲି Lord Mayo in the Andamans in 1872. **शेरआली** [ଦ୍ର—ଭାରତର ବଡ଼ଲାଟ ଲର୍ଡ଼ ମେୟୋ ଆଣ୍ଡାମାନ (ସେର୍ ଅଫଗାନ୍—ଅନ୍ୟରୂପ) ଦ୍ୱୀପ (କଳାପାଣି)କୁ ପରିଦର୍ଶନ କରିବାକୁ ଯାଇଥିବା ସମୟରେ ସେଠାରେ ନରହତ୍ୟା ଦୋଷରେ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ଭୋଗ କରୁଥିବା ଏହି ବ୍ୟକ୍ତି ୧୮୭୨ ସାଲରେ ବଡ଼ଲାଟଙ୍କ ଦେହରେ ଛୁରୀ ଭୁଷି ତାଙ୍କୁ ମାରି ପକାଇଥିଲେ । ଏ ବ୍ୟକ୍ତି ଅଫଗାନସ୍ଥାନବାସୀ, ବହୁକାଳରୁ ପେଶାବାରରେ ଇଂରାଜ ସେନାପତିଙ୍କର ଅଶ୍ୱାରୋହୀ ଅର୍ଦ୍ଦଲି ( Orderly ) କାର୍ଯ୍ୟ କରୁଥିଲା । ପରେ ଏ ନରହତ୍ୟା ଅପରାଧରେ ଅପରାଧୀ ହୋଇ ଆଣ୍ଡାମାନ ଦ୍ୱୀପରେ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ଭୋଗ କରୁଥିବା ଅବସ୍ଥାରେ ବଡ଼ଲାଟଙ୍କୁ ହତ୍ୟା କଲା ଓ ଏଥିର ଦଣ୍ଡସ୍ୱରୂପ ଫାଶୀ ପାଇଲା ।]

ସେରନା—ପ୍ରାଦେ ( ସମ୍ବଲପୁର ) ବି—ସେରଣା ମାଛ— er-nā A kind of fresh water fish

ସେର୍ ପେଟିବା—ପ୍ରାଦେ ( ଗଞ୍ଜାମ ) କ୍ରି—ଲୁଚିଯିବା; ଲୁଚିଯିବା— Ser petibā To hide oneself, to lay hidden.

ସେର୍ବବର୍—ବୈଦେ. ବି ( ଫା. ବବୁରବାଲ ପର କେଶରଯୁକ୍ତ Ser-babbar ବ୍ୟାଘ୍ର )—ସିଂହ—Lion. ସେରବବର **शेरबबर**

ସେର୍ଷ—ପ୍ରାଦେ ( ଖଡ଼ିଅଳ ) ବି ( ସଂ. ସର୍ଷପ )—ସୋରିଷ— Ser-sha Mustard seed.

ସେର୍ଷାଁ—ପ୍ରାଦେ ( ଲହରା ) ବି - ସୋରିଷ— Sershañ Mustard seed.

ସେର୍ଷୋ—ପ୍ରାଦେ• ( ଗଡ଼ଜାତ, ଖଡ଼ିଅଳ ଓ ସମ୍ବଲପୁର ) ବି— Ser-sho ସୋରିଷ—Mustard seed.

ସେର୍ ସାହା—ଦେ. ବ ( ଫା. ନାମ )—ଭାରତରେ ପଠାଣ ସାମ୍ରାଜ୍ୟର ପୁନଃ ସ୍ଥାପନ କର୍ତ୍ତା—Name of an invader who re-established the Pathan empire in North India; Sher Saha.
Ser sāhā
সেবসাহা
शेरशाह
[ ଦ୍ର—ଏ ଅଫଗାନ୍‌ବଂଶୀୟ ଥାଇ ବାବରଙ୍କ ଅଧୀନ ବହାରର ଜଣେ ଜାଗିରଦାର ଥିଲେ । ବାବରଙ୍କ ମୃତ୍ୟୁ ପରେ ଏ ହୁମାୟୁନଙ୍କ ସଙ୍ଗେ ଯୁଦ୍ଧ କରି କୌଶଳରେ ହୁମାୟୁନଙ୍କୁ ଶୋଣ ଓ ଗଙ୍ଗା ନଦୀ ସଙ୍ଗମ ଚଉସାଠାରେ ଓ କାନ୍ୟକୁବ୍ଜଠାରେ ୧୫୩୯ ଖ୍ରୀଷ୍ଟାବ୍ଦରେ ଧ୍ୱସ୍ତ କରି ଦିଲ୍ଲୀର ସିଂହାସନରେ ନିଜକୁ ସମ୍ରାଟ୍ ଘୋଷଣା କରି ୧୫୪୦ଠାରୁ ୧୫୪୫ ପର୍ଯ୍ୟନ୍ତ ସମ୍ରାଟ୍ ହେଲେ ଓ ହୁମାୟୁନ୍ ପାରସ୍ୟକୁ ପଳାଇଲେ । ଏହାଙ୍କ ମୃତ୍ୟୁ ପରେ ଏହାଙ୍କ ପୁତ୍ର ଇସ୍ଲାମ୍ ବା ସେଲିମ୍ ସାହା ୧୫୫୨ ପର୍ଯ୍ୟନ୍ତ ଓ ସେଲିମଙ୍କ ଭାଇ ଅଦିଲ୍ ସାହା ୧୫୫୫ ପର୍ଯ୍ୟନ୍ତ ଓ ଅଦିଲ୍ ସାହାଙ୍କର ଜଣେ ଭଣଜା ତାପରେ କେତେକ ମାସ ପର୍ଯ୍ୟନ୍ତ ସମ୍ରାଟ୍ ହେଲା ପରେ ହୁମାୟୁନ୍ ପାରସ୍ୟରୁ ସୈନ୍ୟ ସଂଗ୍ରହ କରି ପୁଣି ଦିଲ୍ଲୀର ସମ୍ରାଟ୍ ହେଲେ । ସେର୍ ସାହା ତାଙ୍କ ରାଜତ୍ୱ କାଳରେ ଅନେକ ଦେଶହିତକର କାର୍ଯ୍ୟ କରିଥିଲେ । ସେ ରାସ୍ତାର ଦୁଇ ପାର୍ଶ୍ୱରେ କୂଅ ଖୋଳି, ଗଛ ପୋତି, ଘଟ (ସରାଇ) ଛାଉଣି କରି ଅନେକଗୁଡ଼ିଏ ସଡ଼କ ତିଆର କରାଇ ଥିଲେ ଏବଂ ଏହି ରାସ୍ତା ବାଟେ ରାଜକୀୟ ଡାକ ଯିବା ଆସିବା କରୁଥିଲା । ଇନ୍ଦ୍ରପ୍ରସ୍ଥ ବା ଦିଲ୍ଲୀରେ ସେର୍ ସାହା ଚୋଟିଏ ବଡ଼ ମସ୍‌ଜିଦ୍ ତାଙ୍କ ନାମରେ ନିର୍ମାଣ କରାଇ ଥିଲେ । ମାଲବାର ଓ ମେବାରର ରାଜପୁତଙ୍କ ସଙ୍ଗେ ସେର୍ ସାହା ଯୁଦ୍ଧରେ ବ୍ୟାପୃତ ଥାଇ ତହିଁର ଅଧିକାର କରିଥିଲେ, କିନ୍ତୁ ବୁନ୍ଦେଲଖଣ୍ଡସ୍ଥ କାଲିଞ୍ଜର ଦୁର୍ଗ ଅବରୋଧ କରିବା ସମୟରେ ୧୫୪୫ ରେ ନିହତ ହେଲେ ।]

ସେର୍ ସେଟା—ପ୍ରାଦେ (ଲଉଅ) ବ—ଶୁଖି ଯାଉଥିବା ଘାଆ ଉପରର ଖୋଲପା—Stiff slough formed on a convalescent sore.
Ser-setā

ସେର—ଦେ. ବ ( ସଂ ଶରକ )—ଶେର (ଦେଖ)—Sera (See).
Sera ପ୍ରାଦେ ( ଯାଜପୁର ) ବ—ମାର୍ଗଶିର ମାସ ଗୁରୁବାରବ୍ରତ କରାଯିବା ଲକ୍ଷ୍ମୀ ପୂଜା; ମାଣବସା—The worship of Goddess Lakshmī in the shape of a measuring pot filled with paddy on a Thursday of the month of 'Mārgasira'. ପ୍ରାଦେ ( ସିଂହଭୂମି ) ବ—୮୦ ତୋଳା ଓଜନ—A weight of 80 tolās or rupees.
সেব शेर

ସେ ରଙ୍ଗେ—ପ୍ରାଦେ ( ବଲାଙ୍ଗିର ପାଟଣା ) କ୍ରି. ବିଣ—ସମ୍ପୂର୍ଣ୍ଣଭାବେ—Completely; in full measure. ଦେ. ଅ—ସେ ପ୍ରକାରେ—In that manner.
Se-range

ସେରଡ଼ା—ଦେ. ବ—ଚିଲିକାହ୍ରଦର ଏକପ୍ରକାର ଲୁଣି ମାଛ—A species of salt water fish (found in the Chilka lake).
Serardā

ସେର(ରେ)ଣା—ଦେ. ବ ( ସଂ. ଶରଣା )—ଷାରଣା ମାଛ—Barbus Sarana ( fish ).
Sera(re)nā
সবলপুঁটী
शहला
[ଦ୍ର—ଏହା ଛୋଟ କେଉଣ୍ଟି ଅନୁରୂପ ବିଶିଷ୍ଟ, କିନ୍ତୁ ଛୋଟ କେଉଣ୍ଟିଠାରୁ ପତଳା; ଏହା ମଧୁର ଜଳରେ ବାସ କରେ ଓ ୧୫ ଇଞ୍ଚ୍ ପର୍ଯ୍ୟନ୍ତ ବଢ଼େ ।]

ସେରନ୍ତା—ଦେ. ବିଣ. ପୁଂ ଓ ସ୍ତ୍ରୀ [ସଂ. ସ୍ନେହ; ସ୍ନେହବର୍ଦ୍ଧିତ)—ଗେହ୍ଲା; ଅତ୍ୟଧିକ ଆଦରରେ ଲାଳିତପାଳିତ ( ସନ୍ତାନ )—Much fondled (child). [ଉ—ସେରନ୍ତା ହୋଇ କ ଘର କରିବେ ?—ପ୍ରାଚୀ ରହସ୍ୟମଞ୍ଜରୀ ।]
Serantā
ସେରନ୍ତୀ }
ସେରନ୍ତେଇ } —ସ୍ତ୍ରୀଲିଙ୍ଗର ଅନ୍ୟରୂପ
আদুৰে
दुलार(रा)

ସେରନ୍ତେଇ ହେବା—ଦେ. କ୍ରି—ଅତ୍ୟଧିକ ସ୍ନେହ ପାଇବାର ଲକ୍ଷଣ ପ୍ରକାଶ କରିବା—To make a show of one's being fondled.
Serantei hebā
আদর দেখান
दुलारपन दिखलाना

(ତାର)ସେର ପୂରିଲା—ଦେ. ବାକ୍ୟ—ବିଧିନିର୍ଦ୍ଧାରିତ ଆୟୁଷ୍କାଳ ଶେଷ ହେଲା; ମରଣ ସମୟ ଉପସ୍ଥିତ ହେଲା—The appointed time (of death) is come; one's preordained time of dissolution is at hand. [ ଉ—ଦେଖୁ ଦେଖୁ ସେର ପୂରିଲା । ଦୁର୍ଲଭ ମାନବ ଜନ୍ମ ବୃଥା ସରିଲା—ଶାଳମଣି ମିଶ୍ର, ଅସ୍ମ-ନିବେଦନ । ]
Sera pūrilā
পবমাই ফুবাল
आयु शेषहुआ

ସେର ବସିବା—ପ୍ରାଦେ ( ଯାଜପୁର ) ବ—ମାଣବସା; ସେର ( ଦେଖ )
Sera basibā Sera ( See )

ସେରସ୍ତା (ଇତ୍ୟାଦି)—ବୈଦେ. ବ—ସିରସ୍ତା ଇତ୍ୟାଦି (ଦେଖ)
Serastā (etc) Sirastā etc (See)

ସେରା—ପ୍ରାଦେ. ( ସମ୍ବଲପୁର ଓ ଗଡ଼ଜାତ ) ବିଣ—ସେହିଗୁଡ଼ିକ—Those. ପ୍ରାଦେ ( ସିଂହଭୂମି ) ବ—୨୫ ଠାରୁ ୩୦ ତୋଳା ଓଜନ—A standard weight of 25 to 30 Tolās.
Serā

ସେରାଳ—ସଂ ବ—ଫିକା ହଳଦିଆ ବର୍ଣ୍ଣ ( ହ. ଶ )—Faint yellow colour. ସଂ ବିଣ—ଫିକା ହଳଦିଆ (ହ. ଶ)—Faint yellow; yellowish.
Serāla

ସେରାହ—ସଂ, ବ—ଦୁଧ ପରି ଧଳା ଘୋଡ଼ା ( ହ. ଶ )—Milk-white horse.
Serāha

ସେରଫ୍—ବୈଦେ. ବ ( ଇଂ )—କଲିକତା ଆଦି ରାଜଧାନୀରେ ଥିବା ମିଉନିସିପାଲିଟିର ଚେୟାରମ୍ୟାନ୍—Sheriff.
Seriph
সেবিফ
शेरिफ

ସେରୁ—ସଂ. ବଣ—ବନ୍ଧନକାରୀ ( ହ. ଣ )—
Seru Binding.

ସେରୁଗ୍ରହ—ସଂ.ବ—ଯେଉଁ ଧଳା ଘୋଡ଼ାର ମୁଣ୍ଡରେ ଦାଗ ଥାଏ (ହ.ଶ)
Serurāha —A white horse having a mark on the head.

ସେରେ—ଦେ. ବ ଓ ବଣ—ଏକସେର ପରିମାଣ—One seer.
Sere একসের एकसेर

ସେର୍ଣ୍ଣା(ର୍ନା)—ପ୍ରାଦେ ( ସମ୍ବଲପୁର ) ବ—ସେରଣା ( ଦେଖ )
Sernnā(rnā) Seranā ( See )

ସେଲ୍—ବୈଦେ. ବ ( ଇଂ )—୧ । ବିକ୍ରି—1. Sale. ୨ । ଅଦାଲତ ଆଦେଶରେ କରାଯିବା ଡାକ ନିଲାମ—2. Auction sale. ୩ । ଗୋଳା ମାରିବାର ଅସ୍ତ୍ର ପୂର୍ଣ୍ଣ ବାରୁଦ ଗୋଳା—3. Shell ( of a cannon ). ୪ । ଜେଲଖାନାରେ ଜଣେ ମାତ୍ର କଏଦୀକୁ ବନ୍ଦ କରି ରଖାଯିବା ପାଇଁ ନିର୍ଦ୍ଦିଷ୍ଟ ସ୍ୱତନ୍ତ୍ର କୋଠରି—4. Cell or small room for one person in a Jail
S l
সেল
सेल

ସେଲ୍ ଖତମ୍ କରିବା—ଦେ. କି ( କତରଥ ) ( ଇଂ. ସେଲ୍ ଓ ଆ. ଖତମ୍ )—ପ୍ରକାଶ୍ୟ ଡାକ ନିଲାମରେ ସର୍ବୋଚ୍ଚ ଡାକଦାତାକୁ ଗ୍ରହଣ କରି ସର୍ବୋଚ୍ଚ ଡାକଦାତା କ୍ରେତାଙ୍କ ନାମ ଘୋଷଣା କରିବା—To conclude an auction sale by proclaiming the name and call of the highest bidder.
Sel khatam karibā
সেল খতম করা
सेल खतम करना

ସେଲ୍ ଡେଟ୍—ବୈଦେ. ବ ( କତରଥ ) ( ଇଂ )—ଅଦାଲତ ଆଦେଶରେ ସମ୍ପତ୍ତିର ପ୍ରକାଶ୍ୟ ନିଲାମ କରିବା ପାଇଁ ପୂର୍ବରୁ ନିର୍ଦ୍ଧାରିତ ଓ ଘୋଷିତ ଦିବସ—Sale date.
Sel det
সেল্ ডেট
सेल डेट
( ସେଲ୍ ତାରିଖ[ଖ]—ଅନ୍ୟରୂପ )

ସେଲ୍ ପ୍ରୋକ୍ଲାମେସନ୍—ବୈଦେ. ବ ( କତରଥ ) ( ଇଂ )—କୌଣସି ସମ୍ପତ୍ତିର ନିଲାମ ହେବା ପାଇଁ ପୂର୍ବରୁ ପ୍ରକାଶିତ ସରକାରୀ ଆଦେଶପତ୍ର ବା ନିଲାମ ଇସ୍ତାହାର—Sale proclamation.
Sel proklāmesan
সেল প্রোক্লামেসন
सेल प्रोक्लामेसन

ସେଲ୍ ଫରଦ୍—ବୈଦେ. ବ (କତରଥ) (ଇଂ ସେଲ୍ ଓ ଫା. ଫର୍ଦ୍)—କୌଣସି ସମ୍ପତ୍ତିର ଅଦାଲତ ଆଦେଶରେ ପ୍ରକାଶ୍ୟ ନିଲାମ କରାଯିବା ସମୟରେ ନିଲାମ ଦର ଡାକ ଡାକଲେ ଓ କେତେ କେତେ ମୂଲ୍ୟରେ ଡାକଲେ ଏହା ନିଲାମ କରିବା ହାକମ ଯେଉଁ କାଗଜରେ ଲେଖନ୍ତି—Sale sheet.
Sel pharad
সেল ফর্দ
सेल फर्द
( ସେଲ୍ ଫର୍ଦ୍—ଅନ୍ୟରୂପ )
( ସେଲ୍ ସିଟ୍—ଇଂ. ରୂପ )

ସେଲ୍ ରଦ୍(ଦ୍)—ବୈଦେ. ବ ( କତରଥ ) ( ଇଂ. ସେଲ୍ ଓ ଆ. ରଦ୍ )—ସମ୍ପତ୍ତିର ନିଲାମ ହେବା ପରେ ଉପଯୁକ୍ତ ହାକମଙ୍କଦ୍ୱାରା ଆଇନସଙ୍ଗତ କାରଣରୁ ଉକ୍ତ ନିଲାମର ଖଣ୍ଡନ—The setting aside of a sale; annulment of a sale.
Sel.rad(dd)
সেল্ বদ্
सेल रद्द

ସେଲ୍ ଲିଷ୍ଟ(ଷ୍ଟି)—ବୈଦେ. ବ ( କତରଥ ) ( ଇଂ )—ନିଲାମ ହୋଇଥିବା ବା ନିଲାମରେ ଉଠିଥିବା ସମ୍ପତ୍ତି ମାନଙ୍କର ତାଲିକା—Sale list.
Sel lisht(sht) সেল লিষ্ট सेल लिस्ट

ସେ ଲଗେ—ପ୍ରାଦେ (ବାଲଙ୍ଗିର ପାଟଣା) ଅ—ସେହି ସ୍ଥାନରେ—
Se lage In that place; there.

ସେଲମ୍—ଦେ. ବ ( ଆ. ଚେଲମ୍ )—ଦାକ୍ଷିଣାତ୍ୟରେ ନିର୍ମିତ ଭଲ ଭିଣା ଅତି ସୂକ୍ଷ୍ମ କାର୍ପାସ ବସ୍ତ୍ର—A fine kind of cotton cloth woven in South India.
Selam সেলম चेलम

ସେଲା—ପ୍ରାଦେ. ( ଲଦିଆ ) ସର୍ବ—ସେହିଟା—
Selā That.

ସେଲାଇ ( ଇତ୍ୟାଦି )—ଦେ. ବ [ ବଙ୍ଗଳା ଉଚ୍ଚାରଣରୁ ଅନୁକୃତ]—
Selāi ( etc ) ସିଲାଇ ଇତ୍ୟାଦି ( ଦେଖ )—
Silāi etc ( See )

ସେ ଲାଗି—ଦେ. ଅ—ସେଥିପାଇଁ; ସେଥିଯୋଗୁଁ—
Se lāgi For that; owing to that.
সেইজন্য उसकेलिए

ସେ ଲାଗେ—ଦେ. ଅ—(ସଂ ତତ୍ ଲଗ୍ନେ)—ସେହିକ୍ଷଣେ,ତତ୍‌କ୍ଷଣାତ୍—
Se lāge Immediately; at once; in that very moment.
তখনি उस समय

ସେଲା ବର୍ଦାର୍—ବୈଦେ. ବ (ଫା. ସିଲହ୍=ଅସ୍ତ୍ର+ବର୍ଦାର୍ = ଧାରୀ )—ଅସ୍ତ୍ରଧାରକ ସିପାହୀ—A soldier or peon armed with weapons.
Selā bar-dār
সেলাববদাব্
शेलाबरदार

ସେଲାମ୍ (ଇତ୍ୟାଦି)—ବୈଦେ. ବ (ବଙ୍ଗଳା ଉଚ୍ଚାରଣର ଅନୁକରଣ)—
Selām ( etc ) ସଲାମ୍ ଇତ୍ୟାଦି ( ଦେଖ )
Salām etc ( See )

ସେଲାମତ୍—ବୈଦେ. ବ ( ବଙ୍ଗଳା ଉଚ୍ଚାରଣର ଅନୁକରଣ )—
Selāmat ସଲାମତ୍ ( ଦେଖ )—Salāmat ( See )

ସେଲାମି—ବୈଦେ. ବଣ ଓ ବ ( ବଙ୍ଗଳା ଉଚ୍ଚାରଣର ଅନୁକରଣ )—
Selāmi ସଲାମି ( ଦେଖ )—Salāmi ( See )

ସେଲି—ଦେ. ବ [ ସଂ. ଚେଲ ]—ସୂକ୍ଷ୍ମ ବସ୍ତ୍ର ବା ପୋଷାକବିଶେଷ—
Seli চেলি चेल A sort of fine cloth or dress.
[ ଦ୍ର—ସିପାଇ ବେଶ ସେଲି ଅଙ୍ଗରେ ବେଢେ ଭଲ—କୃଷ୍ଣ-
ସିଂହ. ମହାଭାରତ. ଆଦି ।] ବୈଦେ. ବ [ଇଂ. ନାମ]
—ଇଂଲଣ୍ଡର ଜଣେ ପ୍ରଧାନ ସ୍ୱର୍ଗତ କବି—
Shelley; a late famous poet of England.
সেলি
शेलि

ସେଲିବିସ୍—ବୈଦେ. ବ ( ନାମ )—ଭାରତୀୟ ଦ୍ୱୀପପୁଞ୍ଜର ଅନ୍ତର୍ଗତ ଓ ବୋର୍ଣ୍ଣିଓ ଦ୍ୱୀପର ପୂର୍ବରେ ଅବସ୍ଥିତ ଦ୍ୱୀପ ଓ ସମୁଦ୍ର—Celebes (island and sea) in the Indian archipelago. [ଦ୍ର—ଏହି ଦ୍ୱୀପର ଉତ୍ତରରେ ଥିବା ଉପସାଗରକୁ ସେଲିବିସ୍ ଉପସାଗର ବୋଲାଯାଏ ।]
Selibis
সেলিবিস্
सेलिबिस

ସେଲିମ୍—ବୈଦେ. ବ (ଫା. ନାମ)—୧ । ସେରସାହାଙ୍କ ଦ୍ୱିତୀୟ ପୁତ୍ର-
Selim 1. The second son of Sher Saha who

ସେଲିମ reigned at Delhi for 9 years till 1554.
सलीम [ଦ୍ର—ଏ ଦିଲ୍ଲୀରେ ଖ୍ରୀ. ୧୫୪୫ ରୁ ୧୫୫୪ ପର୍ଯ୍ୟନ୍ତ ଭାରତ ସମ୍ରାଟ୍ ହୋଇ ସୁନାମରେ ରାଜ୍ୟ ଶାସନ କରିଥିଲେ ।]
୨ । ମୋଗଲ ସମ୍ରାଟ୍ ଅକବରଙ୍କ ଜ୍ୟେଷ୍ଠ ପୁତ୍ରଙ୍କର ପ୍ରଥମ ନାମ—2. The first name of Emperor Jahangir. [ଦ୍ର—ଅକବରଙ୍କ ମୃତ୍ୟୁପରେ ୧୬୦୫ ସାଲରେ ଏ 'ଜାହାଙ୍ଗୀର୍' ନାମ ଗ୍ରହଣ ପୂର୍ବକ ଭାରତ ସମ୍ରାଟ୍ ହୋଇଥିଲେ ।]

ସେଲୁ(ଲ୍ୟୁ)କସ୍—ବୈଦେ. ବି ( ନାମ )—ଭାରତବିଜୟୀ ମହାବୀର Selu(lyu)kas ସିକନ୍ଦରଙ୍କ ସେନାପତି—Nikator Selu- ସେলুকস্ cus; the name of a general of Alexander सेलूकस the Great who formed alliance with Chandragupta and ceded to him the Provinces west of the Indus, conquered by the Greeks.
[ଦ୍ର—ଏ ସିକନ୍ଦରଙ୍କ ମୃତ୍ୟୁ ପରେ ଖ୍ରୀଷ୍ଟପୂର୍ବ ୩୨୩ ଅବ୍ଦରେ ସିକନ୍ଦରଙ୍କ ବିଜିତ ଭାରତବର୍ଷର ରାଜା ହେଲେ ହେଲେ ଏବଂ ଭାରତ ଆକ୍ରମଣରେ ଅକୃତକାର୍ଯ୍ୟ ହୋଇ ଚନ୍ଦ୍ରଗୁପ୍ତଙ୍କ ସହିତ ସନ୍ଧି ସ୍ଥାପନ କଲେ । ଏ ସିନ୍ଧୁ ନଦୀର ପଶ୍ଚିମରେ ଥିବା ଗ୍ରୀକ୍ ଅଧିକୃତ ପ୍ରଦେଶମାନଙ୍କୁ ଚନ୍ଦ୍ରଗୁପ୍ତଙ୍କୁ ଛାଡି ଦେଇ ତତ୍ପରିବର୍ତ୍ତେ ଚନ୍ଦ୍ରଗୁପ୍ତଙ୍କଠାରୁ ଖ୍ରୀଷ୍ଟପୂର୍ବ ୩୧୨ ରେ ୫୦୦ ଗୋଟି ହାତୀ ଗ୍ରହଣ କରିଥିଲେ ।]

ସେ(ସା)ଲୁନ୍—ବୈଦେ. ବି ( ଇଂ ଓ ଫ୍ରେଞ୍ଚ୍ )—ଜାହାଜରେ ଏବଂ Se(sā)lun ରେଲରେ ଉଚ୍ଚ ଶ୍ରେଣୀର ଯାତ୍ରୀମାନଙ୍କ ବ୍ୟବହାର ସେলুন্ ନିମନ୍ତେ ସୁସଜ୍ଜିତ କୋଠରି—Saloon in a ship सेलून or railway train.

ସେଲେଖାନା—ବୈଦେ. ବି (ଫା. ସିଲହ୍+ଖାନା)—ଅସ୍ତ୍ରାଗାର— Selekhanā Arsenal; armoury.
সেলখানা सेलखाना

ସେଲେଟ୍ (ଇତ୍ୟାଦି)—ବୈଦେ. ବି—ସିଲଟ୍ ଇତ୍ୟାଦି ( ଦେଖ ) Selet (etc) Silat etc. ( See )

ସେଲ୍ଫ ଷ୍ଟାର୍ଟର୍—ବୈଦେ. ବି (ଇଂ)—ମଟର ଗାଡ଼ିବିଶେଷ (ଯହିଁରେ Selph stārtar ଡ୍ରାଇଭର୍ ତାଙ୍କ ଆସନରେ ବସି ଗୋଟିଏ ବଟନ୍ ଟିପିଦେଲେ ସେ ଗାଡ଼ି ଗତି କରେ)—A self- সেল্ফ ষ্টার্টার starter motor car.
सेल्फ स्टार्टर

ସେସ୍—ବୈଦେ. ବି (ଇଂ)—ଶୁଳ୍କ; ରାଜକୀୟ କର—Cess. [ଦ୍ର— Ses ଗଭର୍ଣ୍ଣମେଣ୍ଟଙ୍କୁ ବା ରାଜାଙ୍କୁ ଦେୟ ଜମିର ଖଜଣା ବା সেস্ ରାଜସ୍ୱ ଛଡ଼ା ବିଶିଷ୍ଟ ରାଜକୀୟ କାର୍ଯ୍ୟ ନିର୍ବାହାର୍ଥ (ଯଥା— सेस् ଶିକ୍ଷା, ରାସ୍ତା, ଡାକ, ପୂର୍ତ୍ତି ଆଦି କାମ ପାଇଁ) ଭୂମ୍ୟଧିକାରୀ ଓ ପ୍ରଜାମାନଙ୍କଠାରୁ ଯେଉଁ ଶୁଳ୍କ ଗଭର୍ଣ୍ଣମେଣ୍ଟ ବା ରାଜା ଆଦାୟ କରନ୍ତି ତାକୁ ସେସ୍ ବୋଲାଯାଏ ଚମ୍ପାରଣରେ ଏହାକୁ ସିସ୍ତୁ କହନ୍ତି ।]

ସେସ୍ ପିଟ୍—ବୈଦେ. ବି (ଇଂ)—ଘର, ଖଟା ଓ ପାଇଖାନାରୁ ବୋହିଯିବା ମଇଳା ପାଣି ଜମା ହେବାପାଇଁ ନିର୍ମିତ ପକ୍କା Ses pit (ସେସ୍ ପୁଲ୍—ଅନ୍ୟରୂପ) କୁଣ୍ଡ—Cesspit;cesspool. সেশ্ পিট্ [ଦ୍ର—ଏଥିର ପରିଷ୍କାର ପାଇଁ ଗୃହ ସ୍ୱାମୀ ମିଉନିସି- सेसपीट ପାଲିଟିକୁ ଅଧିକା ସେସ୍ ଦିଅନ୍ତି ।]

ସେଶନ୍—ବୈଦେ. ବି (ଇଂ)—୧ । ସେଶନ୍ସ ( ଦେଖ ) Sesan 1. Sesans ( See ) সেসন্ ୨ । ବିଦ୍ୟାଳୟର ପାଠବର୍ଷ—2. The session सेशन of a school. ୩ । ଲାଟ ସଭା ଆଦିର ବୈଠକ— 3. Session of a Legislative Council. [ ଦ୍ର—ନ୍ୟାୟାଳୟ, ପାର୍ଲିଆମେଣ୍ଟ, ବ୍ୟବସ୍ଥାପକ ସଭା ଆଦିରେ ଏକାଦିକ୍ରମେ କିଛିଦିନ କାଳ ଧରି ଅଧିବେଶନ ଚାଲିଲେ ଉକ୍ତ ଅଧିବେଶନକୁ ସେସନ୍ ବୋଲାଯାଏ ।]

ସେଶନ୍ସ—ବୈଦେ. ବି (ଇଂ)—ଗୁରୁତର ଫୌଜଦାରୀ ମାମଲା (ଯଥା— Sesans ନରହତ୍ୟା, ଗୁରୁତର ଆଘାତ, ଡକାଇତି)ମାନଙ୍କ ବିଚାର (ସେଶିଅନ୍—ଗଞ୍ଜାମୀ ରୂପ) କରିବା ପାଇଁ ପ୍ରତିଷ୍ଠିତ ଅଦାଲତ, সেসন্স্ ଦଉରା—Sessions. [ଦ୍ର—ଏ ଅଦାଲତରେ ଜଜଙ୍କ सेशन्स ସହିତ ମଫସଲମାନଙ୍କ ଭିତରେ ଜଣ ଜୁରି ବା ଆସେସର ବସି ମକଦ୍ଦମାମାନଙ୍କ ବିଚାର କରନ୍ତି ।]

ସେସନ୍ସ(ନ୍) କେସ୍—ବୈଦେ. ବି (ଇଂ) (କଚରା)—ସେସନ୍ସ ମକଦ୍ଦମା Sesans(n) kes ( ଦେଖ )—Sesans makadamā ( See )

ସେଶନ୍ସ(ନ୍) କୋର୍ଟ୍(ଟ)—ବୈଦେ. ବି—ସେଶନ୍ସରେ ବିଚାର୍ଯ୍ୟ ମକଦ୍ଦମା Sesans(n) kot(rt) ବିଚାର କରିବାକୁ ଭାରପ୍ରାପ୍ତ ଅଦାଲତ ବା (ସେଶନ୍ ଅଦାଲତ—ଅନ୍ୟରୂପ) କଚେରୀ—Sessions court. সেসন্স্ কোর্ট্ court of sessions.
सेशन्स कोर्ट

ସେଶନ୍ସ(ନ୍) ଜଜ୍—ବୈଦେ. ବି ( ଇଂ )—ଜିଲ୍ଲାର ସର୍ବ ପ୍ରଧାନ Sesans(n) jaj ଫୌଜଦାରୀ ବିଚାରପତି—Sessions Judge; সেসন জজ্ [ଦ୍ର—ସାଧାରଣତଃ ଫୌଜଦାରୀ ମୋକଦ୍ଦମାକୁ सेशन जज ମାଜିଷ୍ଟ୍ରେଟ ବିଚାର କରନ୍ତି ଓ ଉକ୍ତ ମାଜିଷ୍ଟ୍ରେଟମାନଙ୍କ (ସେଶିଅନ ଜଡଜି—ଗଞ୍ଜାମୀ ରୂପ) ବିଚାର ବିରୁଦ୍ଧରେ ସେଶନ୍ସ ଜଜ୍ଙ୍କ ନିକଟରେ ଅପିଲ୍ ହୁଏ । ଗୁରୁତର ଫୌଜଦାରୀ ମକଦ୍ଦମା (ଯଥା—ମଣିଷମାରୁ, ନରହତ୍ୟା, ଗର୍ଭପାତ, ଘର ପୋଡ଼ି, ଡକାଇତି)ମାନଙ୍କରେ ମାଜିଷ୍ଟ୍ରେଟମାନେ ପ୍ରଥମେ ଅନୁସନ୍ଧାନ ପୂର୍ବକ ତଦନ୍ତ କଲା ପରେ ଅପରାଧୀକୁ ସେଶନ୍ସ କୋର୍ଟକୁ ବିଚାର ନିମନ୍ତେ ପଠାନ୍ତି । ସେସନ୍ ଜଜ୍ଙ୍କ ସଙ୍ଗେ ସର୍ବସାଧାରଣଙ୍କ ମଧ୍ୟରୁ ମନୋନୀତ ଏକାଧିକ ବ୍ୟକ୍ତି (ଜୁରି ବା ଆସେସର) ବସି ସେଶନ୍ ମକଦ୍ଦମା ବିଚାର କରନ୍ତି । ଓଡ଼ିଶାରେ ଯେଉଁ ଯେଉଁ ଜିଲ୍ଲାରେ ସେଶନ୍ ମକଦ୍ଦମାମାନ ଘଟେ, ସେଶନ୍ ଜଜ୍ ସେହି ସେହି ଜିଲ୍ଲାର ରାଜଧାନୀକୁ ଯାଇ ସେଠାରେ ବୈଠକ କରି ଉକ୍ତ ମକଦ୍ଦମାମାନ ବିଚାର କରନ୍ତି ।]

ସେସନ୍ସ(ନ୍) ବିଚାର—ବୈଦେ. ବି—ସର୍ବସାଧାରଣଙ୍କ ମଧ୍ୟରୁ ନିର୍ବାଚିତ Sesans(n) bichāra ଏକାଧିକ ( ୨ ଠାରୁ ୧୨ ସଂଖ୍ୟକ)

সেসন্স বিচাব ବ୍ୟକ୍ତିଙ୍କ ସଙ୍ଗେ ସେସନ୍ ଜଜ୍‌ଙ୍କଦ୍ୱାରା ଗୁରୁତର
**सेशन विचार** ଫଉଜଦାରୀ ମକଦମାର ବିଚାର—Sessions trial.

ସେସନ୍ସ(ନ୍) ମକଦ(ଦ୍ଦ)ମା—ବୈଦେ· ବି—ସେସନ୍ ଅଦାଲତର ବିଚାର୍ଯ୍ୟ
Sesans(n) makada(dda)mā ଗୁରୁତର ଫଉଜଦାରି ମକଦମା
সেসন্স মকদমা —Serious criminal cases triable
**सेशन मुकदमा** by the sessions court.

ସେସନ୍ସ (ନ) ସୁପରଦ—ବୈଦେ· ବି (ଇଂରାଜୀ)—ଦାଉରା ସୁପର୍ଦ୍ଦ;
Sesans(n) suprada ଗୁରୁତର ଫଉଜଦାରୀ ମକଦମାମାନଙ୍କର
ସେସନ୍ସ(ନ୍) ସୁ(ସୋ)ପର୍ଦ୍ଦ } —ଅନ୍ୟରୂପ ପ୍ରଥମେ ମାଜିଷ୍ଟ୍ରେଟ୍‌ଙ୍କ ଦ୍ୱାରା
ସେସନ୍ସ(ନ୍) ସମର୍ପଂ } ତଦନ୍ତ ହେବା ପରେ
সেসন্স সোপর্দ আସାମୀ ଅପରାଧ କରିଥିବାର ସମ୍ଭାବନା ଦେଖାଗଲେ
**सेशन सपुर्द** ଉକ୍ତ ମକଦମାର ଶେଷ ବିଚାର ପାଇଁ ମାଜିଷ୍ଟ୍ରେଟଙ୍କ ଦ୍ୱାରା
ଉକ୍ତ ଆସାମୀଙ୍କୁ ସେସନ୍ ଜଜ୍‌ଙ୍କ କୋର୍ଟ୍‌କୁ ପ୍ରେରଣ—
Commitment of an accused to the sessions after preliminary enquiry by a magistrate.

ସେ ସରି—ଦେ· ଅ—୧। ସେ ପର୍ଯ୍ୟନ୍ତ—
Sesari সেপর্য্যন্ত **वहाँतक** 1. Till then.
( ସେ ସରିକି—ଅନ୍ୟରୂପ ) ୨। ସେ ଅବସ୍ଥା—2. That condition.

ସେହା (ଇତ୍ୟାଦି)—ବୈଦେ· ବି—(ବଙ୍ଗଳା ଉଚ୍ଚାରଣର ଅନୁକୃତ)—
Sehā (etc) ସିହା ଇତ୍ୟାଦି (ଦେଖ)—Sihā etc (See)

ସେହି—ଦେ· ସର୍ବ (ସଂ· ତଦ୍ ଶବ୍ଦଜ 'ସଃ')—ସେ (ସ୍ତ୍ରୀ· ପୁଂ ଓ
Sehi କ୍ଲୀବ)—He, she or it. [ ଉ—ଗୁରୁଙ୍କଠାରେ ଭକ୍ତି
সে କରିଥାନ୍ତି ସେହି । କୃଷ୍ଣସିଂହ· ମହାଭାରତ· ଅାଦି ।] ୨।
**वह** (ସଂ· ତଦ୍ହି) ନିର୍ଦ୍ଦିଷ୍ଟ ବସ୍ତୁ ବା ବ୍ୟକ୍ତି; ସେ ଏକା; ନିଶ୍ଚୟ ସେ
তাহা ବା ତାହା—2. That only; certainly he, she
**वही** or it; a certain person or thing. ୩। ଅନୁପସ୍ଥିତ
ବ୍ୟକ୍ତି ବା ବସ୍ତୁ—3. That person or thing

କାଳି ବୈଦେ· ବି (ଫା· ସିହାଇ)—ସିହାଇ; ସ୍ୟାଇ; କାଳି—
**स्याही** Ink.

ସେହି (ଇତ୍ୟାଦି)—ଦେ· ସର୍ବନାମ—ସେଇ ଇତ୍ୟାଦି (ଦେଖ)
Sehi (etc) Sei etc (See)

ସେହି ଖନ—ପ୍ରାଦେ· (ଲରିଆ) କ୍ରି· ବିଣ—ସେହିକ୍ଷଣି—
Sehi khan At that moment; immediately,
ସେହି କ୍ଷ(ଖି,ଛି ଛୀ)ଣି ସେହି କ୍ଷ (ଖି ଛି ଛୀ)ଣିକା - ଅନ୍ୟରୂପ at once.

ସେହି ସଜରେ—ଦେ· କ୍ରି· ବିଣ—୧। ତତ୍କ୍ଷଣାତ୍—1. At once;
Sehi sajare suddenly. [ ଉ—ଏହା କହି ସେହି
তখনি ସଜରେ ପାଣ୍ଡୁସୁତେ । ଧାଇଁଲେ ଜୟଦ୍ରଥ ଯଉ-
**उसी हालतमें** ଥିବା ପଥେ—କୃଷ୍ଣସିଂହ· ମହାଭାରତ· ବନ ।]
୨। ଅଲକ୍ଷିତ ପ୍ରଣାଳୀରେ—2. In a secret manner. [ ଉ—ଉଦାହ ! ସେହି ସଜରେ । ଥାଣୀ ପଶିଗଲା ତାଳସଜରେ—ଶିଶୁରଞ୍ଜନ ପଦ ।]

ସେହୁ—ଦେ· ସର୍ବ (ପଦ୍ୟ) ପୁଂ ଓ ସ୍ତ୍ରୀ (ସଂ· ସଃ+ହି; ପ୍ରା· ସୋହି)—
Sehu ନିର୍ଦ୍ଦିଷ୍ଟ ବ୍ୟକ୍ତି—A certain person. [ ଉ—
সেই ତାହାଙ୍କୁ ସେହୁ ସେବା କଲେ ଅହର୍ନିଶ—କୃଷ୍ଣସିଂହ·
**वही** ମହାଭାରତ· ଆଦି ।]

ସେହୁଣ୍ଡ—ସଂ· ବି—ପତ୍ରର ସିହୁଃ ମନସା ସିଜୁ—Uphorbia Nerrifolia [ ଗୁ—ଏହା କଟୁରସ,
Sehuṇḍa
ଅନ୍ୟ ସ—ସିଂହତୁଣ୍ଡ, ଗୁରୁପାକ, ତୀକ୍ଷ୍ଣ, ବିରେଚକ, ଅଗ୍ନି-
ବଜ୍ରୀ, ବଜ୍ରଦ୍ରୁମ, ସୁଧା, ବର୍ଦ୍ଧକ ଏବଂ କଫ, ବାୟୁ, ଆମଦୋଷ,
ସମନ୍ତଦୁଗ୍ଧା, ସ୍ନୁକ୍, ସ୍ନୁହୀ, ଶୂଳ, ଉଦରାଧ୍ମାନ, ଉଦର ରୋଗ,
ଗୁଡ଼ା । ଗୁଲ୍ମ, ଅଷ୍ଠୀଳା, ପ୍ଲୀହା, ଯକୃତ୍, ଜ୍ୱର,
मनसा सीज ପାଣ୍ଡୁ, ଶୋଥ, ଅର୍ଶଃ, କୁଷ୍ଠ, ଉନ୍ମାଦ
**सेहुण्ड, थुहर, सिज** ବ୍ରଣ, ମେହ, ଅଶ୍ମରୀ, ମେଦୋ ଦୋଷ-
ଅ· ଜକୁମ୍ ଓ ବିଷଦୋଷର ଶାନ୍ତିକାରକ ।
ଏହାର ପତ୍ରର ରସ ବାହ୍ୟ ପ୍ରୟୋଗରେ ଶୋଥରେ ବିଶେଷ ଉପକାରୀ ।
ଏ ଗଛର କ୍ଷୀର ( ଅଠା ) କଟୁରସ, ଉଷ୍ଣବୀର୍ଯ୍ୟ, ଲଘୁପାକ, ସ୍ନିଗ୍ଧ ଏବଂ ଗୁଲ୍ମ, କୁଷ୍ଠ ଓ ଉଦର ରୋଗରେ ଉପକାରକ ।]

ସେହୁଲ—ପ୍ରାଦେ ( ସମ୍ବଲପୁର ) ବି—ସେଉଳ ମାଛ—
Sehula Ophiceplasus Striatus fish.

ସେ ହେଲା—ପ୍ରାଦେ ( ଲରିଆ ) ସର୍ବ—ସେହିଟା—
Se helā That.

ସେହ୍ନା—ଦେ· ବି (ସଂ· ସନ୍ନାହ)—୧। କବଚ; ସାଞ୍ଜୁ—1. Armour;
Sehnā coat of mail. [ ଉ—ବଳୀଶୀର୍ଣ୍ଣ କଲ ସେହ୍ନା ଅଙ୍ଗେ,
সাঁজোয়া **सनाह** ଦେଖି ଧାଇଁଲି ଅତି ବେଗେ । ଜଗନ୍ନାଥ· ଭାଗବତ]
স্নেহ **स्नेह** ୨। ( ସଂ· ସ୍ନେହ ) ସ୍ନେହ—2. Affection.
সহায় **सहाय** ୩। ସହାୟ—3. Help. [ ଉ—କାହିଁ ଲୋଡେ ନୋହୁଛୁ ସେହ୍ନା—ପାନକୃଷ୍ଣ· ଉଷାକଲ୍ଲୋଳ ।]
ବିଣ—ସ୍ନେହୀ—Loving; affectionate.

ସୈ—ବୈଦେ· ବି ( ଫା )—ସହି ( ଦେଖ )
Sai Sahi ( See )

ସୈଂ(ସୈଁ)ତିରିଶ(ଶି)—ଦେ· ବି ଓ ବିଣ ( ସଂଖ୍ୟାବାଚକ ) ( ସଂ· ସପ୍ତ-
Saim(saiñ)tirisa(Si) ତ୍ରିଂଶତ୍; ପାଲି—ସତ୍ତତିସତି, ପ୍ରା·
সায়ঁত্রিস ସତ୍ତୀସଇ )—ତିରିଶଠାରୁ ସାତ ଅଧିକ—
**सैंतीस** Thirty seven.
( ସୈଂ[ସୈଁ]ତି[ତ୍ରି]ଶ[ଶି]—ଅନ୍ୟରୂପ )

ସୈଂ(ସୈଁ)ତିରିଶାଶଏ(ହେ)—ଦେ· ବି ଓ ବିଣ ( ସଂଖ୍ୟାବାଚକ )
Saim(saiñ)tirisāsae(he) ( ସଂ· ସପ୍ତତ୍ରିଂଶତ୍+ଶତ )—
একশ সায়ত্রিশ ଏକଶହ ସୈଂତିରିଶ—One hundred and
**एकसौ सैंतीस** thirty seven.
[ ସୈଂ(ସୈଁ)ତ(ତ୍ରି)ଶାଶଏ(ହେ)—ଅନ୍ୟରୂପ ]

ସୈଂଦୁର—ସଂ· ବିଣ—ସୈନ୍ଦୂର ( ଦେଖ )
Saimdūr Saindūra ( See )

ସୈଂଧବ (ଇତ୍ୟାଦ)—ସ. ବ ଓ ବଣ—ସୈନ୍ଧବ ଇତ୍ୟାଦ (ଦେଖ)
Saiṁdhaba ( etc ) Saindhaba etc (See)

ସୈଂହ—ସ. ବଣ ( ସିଂହ+ସମ୍ବନ୍ଧାର୍ଥେ ଅ )—୧ । ସିଂହସମ୍ବନ୍ଧୀୟ—
Saiṁha 1. Leonine; relating to lion. ୨ । ସିଂହ ସଦୃଶ—2. Similar to a lion.

ସୈଂହଳ—ସ. ବଣ ( ସିଂହଳ+ସମ୍ବନ୍ଧାର୍ଥେ ଅ )—୧ । ସିଂହଳଦ୍ୱୀପ ସମ୍ବନ୍ଧୀୟ—1. Ceylonese. ୨ । ସିଂହଳ-
Saiṁhala
(ସୈଂହଳୀ—ସ୍ତ୍ରୀ) ଦ୍ୱୀପଜାତ—2. Produced in Ceylon.

ସୈଂହଳୀ ପିପ୍ପଳୀ—ସ. ବ—ଏକପ୍ରକାର ପିପ୍ପଳୀ—A kind of long
Saiṁhalī pippalī pepper. [ ଦ୍ର—ବୈଦ୍ୟକ
ଅନ୍ୟ ନ—ସୈଂହଳୀ, ସର୍ପଦଣ୍ଡୀ, ସର୍ପାକ୍ଷୀ, ଭିକ୍ଷୁଟା, ପାକଣ, ତୈଳିକା, ବହୁଭୂମିକା, ଲମ୍ବାଙ୍ଗା, ତାମ୍ରା, ଅଦ୍ରକା, ସିଂହଳସ୍ଥା,
ମତରେ ଏହା କଟୁରସ, ଉଷ୍ଣବୀର୍ଯ୍ୟ, ଅଗ୍ନିବର୍ଦ୍ଧକ, କୋଷ୍ଠଶୋଧକ, ଏବଂ କଫ, ଶ୍ୱାସ, ବାତ ଓ କୃମି-ନାଶକ । ]
ଙ୍ଗଳଲ, ଲମ୍ବଦଣ୍ଡା, ଙ୍ଗବନେତ୍ରୀ, ଙ୍ଗବାଲ୍, ଙ୍ଗଲୁମ୍ଟୀ ।
सिंहली पीपल ମ. ସ୍ୱଳ୍ପ ପିପ୍ପଳୀ କର୍ଣ୍ଣାଟୀ. କାହୁ ପିପଲୀ ।

ସୈଂହିକ—ସ. ବ. ପୁଂ ( ସିଂହିକା+ଅପତ୍ୟାର୍ଥେ ଅ )—
Saiṁhika ସିଂହିକା ପୁତ୍ର; ରାହୁଗ୍ରହ—The Ascending
(ସୈଂହିକେୟ—ଅନ୍ୟରୂପ) Node; the Dragon's head.

ସୈକତ - ସଂ. ବଣ ( ସିକତା=ବାଲି+ବହୁଳାର୍ଥେ ଅ )—୧ ।
Saikata ସିକତିଲ; ସିକତାବହୁଳ; ବାଲୁକାମୟ ( ସ୍ଥାନ ); ବାଲିଆର ( ଭୂମି )—1. Sandy; full of sand ( soil ). ୨ । ବାଲିରେ ତିଆର—2. Made of sand. ବ—୧ । ନଦୀର ବା ସମୁଦ୍ରର ବାଲୁକାମୟ ତଟ; ପୁଳିନ ( ଅମର )—1. Sandy shore of a river or sea coast. ୨ । ବାଲିଅମାଟି ( ହ୍ର. ଶ )—2. Sandy soil.

ସୈକତଚର—ସଂ. ବଣ. ପୁଂ (ସୈକତ+ଚର ଧାତୁ+କର୍ତ୍ତୃ. ଅ)—
Saikatachara ସୈକତରେ ବିଚରଣକାରୀ—Walking
(ସୈକତଚରୀ—ସ୍ତ୍ରୀ) or moving in the sandy coast.

ସୈକତ ବାହିନୀ—ସଂ. ବଣ. ସ୍ତ୍ରୀ—ବାଲୁକାମୟ ତଟର ମଧ୍ୟ ଦେଇ
Saikata bāhinī ପ୍ରବାହିତା (ନଦୀ)—(river) Flowing through sandy soil

ସୈକତ ଭୂମି—ସଂ. ବ—୧ । ବାଲୁକାମୟ ଭୂମି—1. Sandy
Saikata bhūmi soil. ୨ । ବାଲୁକାମୟ ତଟ—
2. Sandy coast.

ସୈକତିକ—ସଂ. ବଣ. ପୁଂ (ସିକତା+ଇକ)—୧ । ଶ୍ରମଜୀବୀ—1. A
Saikatika labourer. ୨ । ସନ୍ଦେହଜୀବୀ ( ମେଦିନୀ )—
2. Living a life full of doubt. ୩ । ସନ୍ଦେହାନ—3. Doubting. ୪ । ସିକତା ସମ୍ବନ୍ଧୀୟ—
4. Sandy. ୫ । ସୈକତ ସମ୍ବନ୍ଧୀୟ—5. Relating to Saikata. ବ—୧ । କ୍ଷପଣକ—
1 A Buddhist ascetic. ୨ । ଯାତ୍ରାକାଳରେ ହାତରେ ବନ୍ଧାଯିବା ମଙ୍ଗଳ ସୂତ୍ର ( ମେଦିନୀ )—2. An auspicious string tied on the arm before beginning a journey. ୩ । ସାଧୁ; ସନ୍ନ୍ୟାସୀ (ହ୍ର. ଶ)—3. An ascetic.
(ସୈକତିକା—ବଣ. ସ୍ତ୍ରୀ)

ସୈକତିଲ—ସ. ବଣ ( ସିକତା+ଇଲ; ଅଥବା ସିକତିଲ+ସ୍ୱାର୍ଥେ
Saikatila ଅ )—ସିକତାମୟ; ବାଲୁକାମୟ—Sandy.

ସୈକତୀ—ସ. ବଣ. ପୁଂ—ସୈକତଯୁକ୍ତ; ବାଲୁକାମୟ (କୂଳ) (ହ୍ର. ଶ)
Saikatī —Sandy ( shore )
( ସୈକତିନୀ—ସ୍ତ୍ରୀ )

ସୈକତେଷ୍ଟ—ସ. ବ ( ସୈକତ=ବାଲୁକାମୟ ସ୍ଥାନ+ଇଷ୍ଟ=ପ୍ରିୟ;
Saikateshṭa ବହୁବ୍ରୀହି)—ଅଦ୍ରକ; ଅଦା ( ଶବ୍ଦକଳ୍ପଦ୍ରୁମ )—
Ginger. [ ଦ୍ର—ଏହା ବାଲୁକାମୟ ଭୂମିରେ ଉଠିଥାଏ । ] ବଣ—ବାଲୁକାମୟ ସ୍ଥାନ ଯାହାକୁ ପ୍ରୀତିକର ବୋଧହୁଏ—Fond of sandy soil.

ସୈକାରିଆ—ଦେ. ବଣ—ସହକାରିଆ (ଦେଖ)
Saikāriā Sahikāriā (See)

ସୈଗୋ—ପ୍ରାଦେ (ବସ୍ତର) ବଣ—ଅଖଣ୍ଡ—
Saigo Undivided; unbroken.

ସୈତବାହିନୀ—ସ. ବ (ସିତ=ଶୁଭ୍ର+ବହ୍ ଧାତୁ+ଇନ୍+ଈ)—
Saitabāhinī ବାହୁଦା; ନଦୀବିଶେଷ—Name of a river issuing from Himalayas.

ସୈତମ୍ବା(ମ୍ମା)—ପ୍ରାଦେ (ସିଂହଭୂମ) ବ—ପିଜୁଳି—
Saitambā(mmā) Guava.

ସୈତାନ୍ ( ଇତ୍ୟାଦ )—ବୈଦେ. ବ—ସଇତାନ୍ ଇତ୍ୟାଦ ( ଦେଖ )
Saitān ( etc ) Saitān etc ( See )

ସୈତାନି (ଇତ୍ୟାଦ)—ବୈଦେ. ବ ଓ ବଣ—ସଇତାନି ଇତ୍ୟାଦ (ଦେଖ)
Saitāni (etc) Saitāni etc ( See )

ସୈ(ସୈଁ)ତିରିଶ—ଦେ. ବ ଓ ବଣ (ସ. ସପ୍ତତ୍ରିଂଶତ୍; ପ୍ରା. ସତ୍ତ୍ୱୀସଇ)
Sai(saiṅ)tirisa —ସପ୍ତତ୍ରିଂଶ; ୩୭—Thirty seven.
सायँत्रिश सैंतिस 37.

ସୈଦ୍—ବୈଦେ. ବ ( ଅ )—ସୈୟଦ୍ ( ଦେଖ )
Said Saiyad See )

ସୈନ[ନ୍]—ଦେ, ବ ( ପଦ୍ୟ ) ( ସ. ସୈନ୍ୟ )—୧ । ସୈନ୍ୟ
Saina[n] ( ଦେଖ )—1. Sainya ( See ) [ ଦ୍ର—
ସେନା ସୈନ, ଫଉଜ ଚେତଣେ କାଢିଲେ ଲୁଦ୍ର ଦର୍ପିତ । ତା ଦେଖି ବେଗେ ଦେବ ମୁନି—ଜଗନ୍ନାଥ. ଭାଗବତ । ] ୨ । କୌଣସି ବ୍ୟକ୍ତିଙ୍କ ସଙ୍ଗରେ ଅସିଥିବା ବହୁ ଅନୁଚର—
2. A large body of followers or attendants accompanying a person.

ସୈନ ସାମନ୍ତ—ଦେ. ବ ( ସହଚର ଶବ୍ଦ; ସ. ସୈନ୍ୟ ଓ ସାମନ୍ତ )—
Saina sāmanta ୧ । ରାଜାଙ୍କ ସଙ୍ଗେ ଯିବା ସେନା ଓ
সৈন্য সামন্ত ସର୍ଦ୍ଦାର ଆଦ—1. Soldiers and noblemen
सैनसामन्त accompanying a king. ୨ । ବହୁ ସଂଖ୍ୟକ ଅନୁଚର—2. A large body of attendants.

ସୈନାନ୍ୟ—ସଂ. ବି ( ସେନାନୀ+ଭାବାର୍ଥେ ଯ )—ସେନାପତିତ୍ୱ ( ହି. Sainānya ଶ )—Generalship.

ସୈନାପତ୍ୟ—ସଂ. ବିଣ ( ସେନାପତି+ସମ୍ବନ୍ଧାର୍ଥେ ଯ )—ସେନାପତି Saināpatya ସମ୍ବନ୍ଧୀୟ—Relating to a general. ବି ( +ଭାବ ଓ କର୍ମ. ଯ )—ସେନାଧକ୍ଷତା—Generalship; the position of a commander.

ସୈନିକ—ସଂ. ବି ( ସେନା+ଇକ )—୧ । ସୈନ୍ୟଦଳଭୁକ୍ତ ବ୍ୟକ୍ତି; Sainika ଯୋଦ୍ଧୃପୁରୁଷ—1. Warrior; soldier. ୨ । ପ୍ରହରୀ—2. Sentry; sentinel; a guard. ୩ । ସେନାରକ୍ଷକ—3. Captain of soldiers. ୪ । ସେନା ଶ୍ରେଣୀ—4. A row or line of soldiers. ୫ । ମିଳିତ ହସ୍ତ୍ୟଶ୍ୱରଥପଦାତି—5. An army consisting of 4 kinds of soldiers. ୬ । କୌଣସି ପ୍ରାଣୀକୁ ବଧ କରିବା ପାଇଁ ନିଯୁକ୍ତ ବ୍ୟକ୍ତି ( ହି. ଶ )—6. A person engaged to kill any living being. ୭ । (ନାମ) ଶମ୍ବରାସୁର ଦୈତ୍ୟର ଏକ ପୁତ୍ର ( ହି. ଶ )—7. Name of son of demon Śambara. ବିଣ—ସେନାସମ୍ବନ୍ଧୀୟ—Relating to an army; military; martial.

ସୈନିକ ପୁରୁଷ—ସଂ. ବି—ଯୋଦ୍ଧା; ଯୋଦ୍ଧୃପୁରୁଷ— Sainika purusha Warrior; soldier.

ସୈନିକ ବେଶ—ସଂ. ବି ( ୬ଷ୍ଠୀ ତତ୍ )—ଯୋଦ୍ଧାର ପୋଷାକ— Sainika bēsa Military dress.

ସୈନ୍ଦୁର—ସଂ. ବିଣ (ସିନ୍ଦୁର+ଅ)—୧ । ସିନ୍ଦୁର ରଞ୍ଜିତ (ହି. ଶ)— Saindūra 1. Painted with vermillion. ୨ । ସିନ୍ଦୁର ପରି ବର୍ଣ୍ଣବିଶିଷ୍ଟ ( ହି. ଶ )— 2. Vermillion-coloured.

ସୈନ୍ଧବ—ସଂ. ବିଣ ( ସିନ୍ଧୁ+ଭବାର୍ଥେ ଅ )—୧ । ସମୁଦ୍ରଜାତ— Saindhaba 1. Produced from the sea. ୨ । ସିନ୍ଧୁଦେଶଜାତ—2. Produced in the Sindh country. ୩ । ସିନ୍ଧୁ ସମ୍ବନ୍ଧୀୟ—3. Relating to the sea or Sindh country. ବି—୧ । ସିନ୍ଧୁଦେଶଜାତ ଉତ୍କୃଷ୍ଟ ଅଶ୍ୱ—1. A breed of excellent horses of the Sind Province. ୨ । ସିନ୍ଧୁନଦ ନିକଟସ୍ଥ ଦେଶର ଉତ୍କୃଷ୍ଟ ଲବଣବିଶେଷ—2. Rock salt; a kind of salt got from the Sindh country; sodium sulphate.

ଅନ୍ୟ ସଂ—ଶୀତଶିବ, ମାଣିମନ୍ଥ, ସିନ୍ଧୁଜ, ବଶିର, ସିନ୍ଧୁଦେଶଜ, ମାଣିବନ୍ଧ, ନାଦେୟ, ଶିବ, ସିନ୍ଧୁ, ଶିବାତ୍ମଜ, ପଥ୍ୟ, ଶିତଶିବ ।

[ ଦ୍ର—ସୈନ୍ଧବ ଲବଣ ସିନ୍ଧୁଦେଶର ବା ପଞ୍ଜାବର ଓ କୋହାଟର ଖଣିରୁ ମିଳେ । ଏହା ବିଶୁଦ୍ଧ ଲବଣ । ଏଥିରେ ୯୯ ଭାଗ ଲବଣ ଓ ୧ ଭାଗ କ୍ଷାର ଥାଏ । ଏହା ବୃଷ୍ୟ, ଚକ୍ଷୁଷ୍ୟ, ପାଚନ, ରୁଚିକର, ନେତ୍ର ହିତକର, ସ୍ୱାଦୁ, ତ୍ରିଦୋଷଘ୍ନ ଓ ଲଘୁ । ]

ସୈନ୍ଧବ ଲବଣ—ସଂ. ବି—ସିନ୍ଧୁଦେଶର ପର୍ବତଜାତ ଲବଣବିଶେଷ— Saindhaba labaṇa Rock salt. [ଦ୍ର—ସୈନ୍ଧବ ତଳେ ଲୋଡ଼ ଦେଖ । ]

ସୈନ୍ଧବୀ—ସଂ. ବି. ସ୍ତ୍ରୀ—ରାଗିଣୀବିଶେଷ—Name of a musical Saindhabī tune. [ ଦ୍ର—ଏହା ସମ୍ପୂର୍ଣ୍ଣ ଜାତିର ରାଗିଣୀ ଓ ଭୈରବ ରାଗର ପୁତ୍ରବଧୂରୂପେ କଳ୍ପିତ । ଏହା ଦିବସର ଦ୍ୱିତୀୟ ପ୍ରହରର ଦ୍ୱିତୀୟ ଘଡ଼ିରେ ଗେୟ—ହି ଶ । ] ବିଣ. ସ୍ତ୍ରୀ—ସିନ୍ଧୁଦେଶୀୟା—( female ) Pertaining to Sindh. [ ଉ—ହେମ ସାରସକେ ଗାଢ଼େ ବାନ୍ଧି ସୈନ୍ଧବୀ; ଅଧର ସୈନ୍ଧବୀ ଚମ୍ପୂ—ରାଧାନାଥ. ମହାଯାତ୍ରା ।

ସୈନ୍ଧୀ—ସଂ. ବି ( ସିନ୍ଧୁ+ଇ )—ତାଳାଦିରସ ଜନିତମାଦ; ତାଡ଼ି— Saindhi Intoxicating juice of palm etc; toddy. ଅନ୍ୟ ସଂ. ନାମ—ହାଲା [ଦ୍ର—ବୈଦ୍ୟକ ମତରେ ଏହା ଶୀତଳ, କଷାୟ ଅମ୍ଳ ଓ ପିତ୍ତଦାହନାଶକ ଓ ବାତବର୍ଦ୍ଧକ ।]

ସୈନ୍ୟ—ସଂ. ବି (ସେନା+ସ୍ୱାର୍ଥେ ଯ)—୧ । ଯୁଦ୍ଧକାମୀ, ଅସ୍ତ୍ରଧାରୀ Sainya ବ୍ୟକ୍ତି; ଯୋଦ୍ଧା; ସିପାହୀ—1. Soldier. ୨ । ସେନାଦଳ; ପଲ୍ଟଣ (ହି. ଶ)—2 A body of soldiers. ୩ । ପ୍ରହରୀ ହି. ଶ)—3. Sentry. ୪ । ଶିବିର; ଛାଉଣୀ (ହି. ଶ)—4. Camp. ୫ । ଶ୍ରେଣୀବଦ୍ଧ ଯୋଦ୍ଧୃବୃନ୍ଦ; ସମବେତ ସେନା—5. Army; a troop or company of armed soldiers arrayed for fighting. [ ଦ୍ର—ପୂର୍ବକାଳରେ ଯୁଦ୍ଧରେ ମିଳିତ ହସ୍ତୀ, ଅଶ୍ୱ, ରଥ ଓ ପଦାତି ଏହି ଚତୁରଙ୍ଗ ବଳକୁ ସେନା ବା ବଳ ବୋଲଯାଉଥିଲା ।

ଏହି ସେନାରେ ଏକଦେଶୀଭୂତ ଯୋଦ୍ଧୃବୃନ୍ଦଙ୍କୁ ସୈନ୍ୟ ବା ସୈନିକ ବୋଲଯାଉଥିଲା । ସୈନ୍ୟମାନଙ୍କୁ ହିନ୍ଦୁମାନେ ଛଅ ଶ୍ରେଣୀରେ ବିଭକ୍ତ କରିଥିଲେ । ଯଥା—

୧ । ମୌଳ, ୨ । ଭୃତ୍ୟ, ୩ । ସୁହୃତ୍, ୪ । ଶ୍ରେଣୀ, ୫ । ଦ୍ୱିଷତ୍, ୬ । ବନ୍ୟ । ] ସଂ. ବିଣ—ସେନାସମ୍ବନ୍ଧୀୟ (ହି. ଶ)—Relating to the army or soldiers. ଦେ, ବି—ସମୂହ; ଏକ ଜାତୀୟ ଅନେକ— Many of the same kind; a multitude. [ଉ—ଅନୁକୂଳ ହୋଇଣ ବହିବ ପବନ, ପଛେ ଥିବେ ବକଗୃଧ୍ରସୈନ୍ୟ । କୃଷ୍ଣସିଂହ. ମହାଭାରତ. ଶାନ୍ତିପର୍ବ ।]

ସୈନ୍ୟ
सैन

ସୈନ୍ୟ କକ୍ଷ—ସଂ. ବି (୬ଷ୍ଠୀ ତତ୍)—ସେନାର ପାର୍ଶ୍ୱ— Sainya kaksha The flank of an army.

ସୈନ୍ୟ କ୍ଷୋଭ—ସଂ. ବି (୬ଷ୍ଠୀ ତତ୍ ବା ୭ମୀ ତତ୍)—ସେନାଙ୍କ Sainya kshobha ବିଦ୍ରୋହ (ହି. ଶ)—Mutiny amongst soldiers.

ସୈନ୍ୟ ଚାଳନ—ସଂ. ବି (୬ଷ୍ଠୀ ତତ୍)—୧ । ଯୁଦ୍ଧାର୍ଥ ସଜ୍ଜିତ ସୈନ୍ୟ- Sainya chālana ମାନଙ୍କ ଗତିବିଧିର ନିୟନ୍ତ୍ରଣ—

1. Directing the movements of an army. ୨ । ସେନାକୁ ଆଗକୁ ବା ପଛକୁ ଚଳାଇବା—2. Causing the army to advance or move.

ସୈନ୍ୟ ଦଳ—ସଂ. ବି—ସୈନ୍ୟମାନଙ୍କର ଏକତ୍ର ସମାବେଶ—
Sainya dala A company of soldiers.

ସୈନ୍ୟ ପତି (ନାୟକ, ପାଳ)—ସଂ. ବି—ସେନାପତି—
Sainya pati (nāyaka, pāla) General.

ସୈନ୍ୟ ପରିଚାଳନ—ସଂ. ବି—ସୈନ୍ୟ ଚାଳନ (ଦେଖ)
Sainya parichālana Saiyna chālana (See)

ସୈନ୍ୟ ପୃଷ୍ଠ—ସଂ. ବି ( ୬ଷ୍ଠୀ ତତ୍ ) —ସମ୍ମିଳିତ ସୈନ୍ୟମାନଙ୍କର
Sainya prushtha ପଶ୍ଚାଦ୍ଭାଗ (ଯେଉଁଠାରେ ରାଜା ନିଜେ ଥାଇ ଆଦେଶ ଦ୍ୱାରା ସେନା ଚାଳନ କରନ୍ତି)—The rear of an army.

ସୈନ୍ୟ ବଳ—ସଂ. ବି—୧ । ( ରାଜାଙ୍କର ) ସୈନ୍ୟରୂପ ଶକ୍ତି ବା
Sainya bala ସମତା—1. The strengh of an army. ୨ । (ଏକାର୍ଥକ ସହଚର) ସମ୍ମିଳିତ ସୈନିକଦଳ—2. Collected troops.

ସୈନ୍ୟ ବାସ(ନିବାସ)—ସଂ. ବି (୬ଷ୍ଠୀ ତତ୍)—ଶିବିର; ଛାଉଣୀ—
Sainya bāsa(nibāsa) Camp.

ସୈନ୍ୟ ବିଭାଗ—ସଂ ବି (୬ଷ୍ଠୀ ତତ୍)—ରାଜକାର୍ଯ୍ୟ ବିଭାଗ ବିଶେଷ;
Sainya bibhāga ସୈନ୍ୟମାନଙ୍କର ଯାବତୀୟ କାର୍ଯ୍ୟର ତତ୍ତ୍ୱ ଯେଉଁ ବିଭାଗ ନିଏ—The Army Department.

ସୈନ୍ୟ ବ୍ୟୂହ—ସଂ. ବି ( ୬ଷ୍ଠୀ ତତ୍ )—ଯୁଦ୍ଧାର୍ଥ ସଜ୍ଜିତ ଓ ନିର୍ଦ୍ଦିଷ୍ଟ
Sainya byūha ପ୍ରଣାଳୀରେ ସମାବେଶିତ ସୈନ୍ୟଦଳ—Battle array.

ସୈନ୍ୟ ସଞ୍ଚାଳନ—ସଂ. ବି ( ୬ଷ୍ଠୀ ତତ୍ )—ସୈନ୍ୟ ଚାଳନ (ଦେଖ)
Sainya sanchālana Sainya chālana (See)

ସୈନ୍ୟ ସମାବେଶ—ସଂ. ବି ( ୬ଷ୍ଠୀ ତତ୍ )—୧ । ଯୁଦ୍ଧ ବା ଅନ୍ୟ
Sainya samābesa ଉଦ୍ଦେଶ୍ୟରେ ସୈନ୍ୟମାନଙ୍କର ସମ୍ମିଳନ—1. The disposition of an army. ୨ । ସୈନ୍ୟ-ବ୍ୟୂହ—2. Military array; arrangement of troops in battle order.

ସୈନ୍ୟ ସାମନ୍ତ—ସଂ. ବି (ଦ୍ୱନ୍ଦ୍ୱ)—ରାଜାଙ୍କ ସଙ୍ଗେ ଯୁଦ୍ଧଭୂମିରେ ଉପସ୍ଥିତ
Saiyna sāmanta ବା କୌଣସି ସ୍ଥାନକୁ ଯାଉଥିବା ସୈନ୍ୟଦଳ ଓ ଅଧୀନ ରାଜଗଣ—An army and Feudatory Chiefs accompanying a king.

ସୈନ୍ୟାଗ୍ର—ସଂ ବି (୬ଷ୍ଠୀ ତତ୍)—ସମ୍ମିଳିତ ସେନାଦଳର ଅଗପାଖ—
Sainyāgra The front of an army.
(ସୈନ୍ୟ ଶିରଃ—ଅନ୍ୟରୂପ)

ସୈନ୍ୟାଧ୍ୟକ୍ଷ—ସଂ. ବି ( ୬ଷ୍ଠୀ ତତ୍ )—ସେନାପତି; ସେନାନାୟକ—
Sainyādhyaksha Commander or general of an army.
(ସୈନ୍ୟାଧିପତି—ଅନ୍ୟରୂପ)

ସୈପ(ପି,ଫ,ଫି)ନ—ବୈଦେ. ବି (ଇଂ)—ସଇପନ୍ (ଦେଖ)—
Saipa(pi,pha,phi)n Saipan (See).

ସୈବାଳ—ସଂ. ବି (ଅନ୍ୟରୂପ ଶୈବାଳ; ସେବା+ଅଳ ଧାତୁ=ଭୂଷିତ
Saibāla କରିବା+କର୍ତ୍ତୃ. ଅ )—ଶୈବାଳ; ଶିଉଳ—Moss.

ସୈମନ୍ତିକ—ସଂ. ବିଣ ( ସୀମନ୍ତ+ଇକ )—ସୀମନ୍ତସମ୍ବନ୍ଧୀୟ—
Saimantika Relating to the parting of the hair in the middle of the forehead. ବି—ସିନ୍ଦୂର (ଏହା ସୀମନ୍ତରେ ଦିଆଯାଉଥିବାରୁ)—Vermillion.

ସୈୟଦ୍—ବୈଦେ. ବି ( ଆ )—୧। ମୁସଲମାନଧର୍ମପ୍ରବର୍ତ୍ତକ ହଜରତ
Saiyad ମହମ୍ମଦଙ୍କ ଦୌହିତ୍ର ଅଲିଙ୍କ ପୁତ୍ର ହୁସେନଙ୍କ
ସୈୟଦ सैयद् ବଂଶଧରମାନଙ୍କର ବଂଶୋପାଧି—1. Syed; a family-title of a Mahomedan descended from the daughter's son of Prophet Mahammad. [ଦ୍ର—ଏହା ନାମ ପୂର୍ବ୍ବେ ଲାଗେ । ଯଥା—ସୈୟଦ୍ ସାଲବର୍ ଅଲ୍ଲୀ ।] ୨। ଉଚ୍ଚବଂଶୀୟ ମୁସଲମାନମାନଙ୍କର ବଂଶୋପାଧିବିଶେଷ—2. A family-title of Muslim nobles. [ ଦ୍ର—ପୂର୍ବ୍ବେ ଭାରତବାସୀମାନେ ଭାରତକୁ ଆକ୍ରମଣ କରିବା ମୁସଲମାନ-ମାନଙ୍କୁ ୪ ଶ୍ରେଣୀରେ ବିଭକ୍ତ କରୁଥିଲେ;—ସେଖ୍, ସୈୟଦ୍, ମୋଗଲ୍, ପଠାଣ; କିନ୍ତୁ ଏ ବିଭାଗ ଧର୍ମ ବା ସାମ୍ପ୍ରଦାୟିକ ବିଭାଗ ନୁହେଁ ।]

ସୈର୍—ବୈଦେ. ବି (ଫା. ସାଏର୍)—ସଇର୍ (ଦେଖ)—
Sair Sair (See).
(ସୈରାତ୍, ସୈରାତ୍ ଜମା—ଅନ୍ୟରୂପ)

ସୈର(ନ୍ଧ୍ର)ନ୍ଧ୍ର—ସଂ. ବି. ପୁଂ (ସ୍ୱୈର=ଇଚ୍ଛାମତ+ଧୃ ଧାତୁ=ଧାରଣ
Saira(ri)ndhra କରିବା+କର୍ତ୍ତୃ. ଅ, ନିପାତନ; କିମ୍ବା ସୀର=
[ସୈର(ନ୍ଧ୍ର)ନ୍ଧ୍ରୀ—ସ୍ତ୍ରୀ] ଲଙ୍ଗଳ+ଧୃ ଧାତୁ+କର୍ତ୍ତୃ. ଅ, ନିପାତନ. ୧ । କୃଷକ; ଚଷା—1. A cultivator; a husbandman. ୨ । ଗୃହଦାସ; ଗୃହକର୍ମକାରୀ ଭୃତ୍ୟ (ବୃ. ଶ)—2. A menial domestic servant. ୩। ଦସ୍ୟୁପିତା ଓ ଅଯୋଗବଜାତୀୟା ମାତାଙ୍କଠାରୁ ଉତ୍ପନ୍ନ ସଙ୍କରଜାତିବିଶେଷ (ବୃ. ଶ)—3. Name of a low caste hybrid.

ସୈର(ନ୍ଧ୍ର)ନ୍ଧ୍ରୀ—ସଂ. ବି. ସ୍ତ୍ରୀ (ସୈରନ୍ଧ୍ର, ସୈରିନ୍ଧ୍ର+ଈ)—୧ । ଶିଳ୍ପ-
Sair(ri)ndhri କର୍ମ ଓ ବେଶଭୂଷା କର୍ମରେ ଦକ୍ଷା, ପର-
[ସୈର(ନ୍ଧ୍ର)ନ୍ଧ୍ରିକା—ଅନ୍ୟରୂପ] ଗୃହସ୍ଥିତା ସ୍ୱବଶା ଭୃତ୍ୟା; ଆୟା; ଅନ୍ୟଗୃହସ୍ଥିତା ସ୍ୱତନ୍ତ୍ରା ଶିଳ୍ପକାରିଣୀ—1. A female ( skilled in various arts and toilette) artisan in the service of a rich householder or Raja; an āyāh. ୨ । କୃଷାଣୀ—2. A female of the cultivator class. ୩ । ବର୍ଣ୍ଣସଙ୍କର ସୈରନ୍ଧ୍ରଜାତୀୟା ସ୍ତ୍ରୀ (ଦେଖ)—3. A woman of the Sairandhra caste. ୪ । ଦ୍ରୌପଦୀ (ପାଣ୍ଡବମାନେ ବିରାଟଗୃହରେ

ଅଜ୍ଞାତବାସ କରୁଥିବାବେଳେ ଦ୍ରୌପଦୀ ଆପଣାର ଏହି ନାମରେ ପରିଚୟ ଦେଇ ବିରାଟରାଜୀ ସୁଦେଷ୍ଣାଙ୍କ ଅନୁଚରୀ ହୋଇଥିଲେ)—4. The assumed name of Draupadī while living incognito in the harem of the king of Birāṭa. ୫। ଅନ୍ତଃପୁର ପରିଚାରିକା; ମହଲ୍ଲିକା [ ତ୍ରି. ଶ ]—5. A maid servant of the harem. ୬। ବର୍ଣ୍ଣସଙ୍କରସମ୍ଭୂତା ସ୍ତ୍ରୀ ( ମେଦିନୀ )—6. A woman of hybrid parentage.

ସୈରିକ—ସଂ. ବିଣ ( ସୀର=ଲାଙ୍ଗଳ+ଇକ )—ଲାଙ୍ଗଳ ସମ୍ବନ୍ଧୀୟ—
Sairika Relating to the plough. ବି—୧। ହଳୁଆ; ଯେ ହଳ ବୁଲାଏ—1. Ploughman. ୨। ଚଷା; କୃଷକ—2. Cultivator; husbandman. ୩। ହଳୁଆ ଗୋରୁ—3. A plough-bullock. ୪। ଆକାଶ [ ତ୍ରି. ଶ ]—4. The sky.

ସୈରିଭ—ସଂ. ବି ( ସୀର=ଲାଙ୍ଗଳ+ଇଭ )—୧। ( ପୁଂ ) ମହିଷ
Sairibha [ ଅମର ]—1. Buffalce. ୨। ସ୍ୱର୍ଗ [ ହିକାଣ୍ଡ
[ ସୈରିଭୀ—ସ୍ତ୍ରୀ ] ଶେଷ ]—2. Heaven.

ସୈରୀୟ—ସଂ ବି ( ସ୍ୱୈର=ସ୍ୱଇଚ୍ଛାରେ ଅର୍ଥାତ୍ ବିନା କୃଷିରେ+ଈୟ,
Sairiya କର୍ତ୍ତାଦେ )—ଝିଣ୍ଟି; ବାଣକେରଣ୍ଡା [ ଶବ୍ଦମାଳା, ଭରତ ]—Barlaria Cristata. [ ଦ୍ର—ଏହା ତିକ୍ତ,

ଝିଣ୍ଟି, ଶ୍ୱେତ ଝିଣ୍ଟି
कटसरैया
ମ. କୋରଣ୍ଟା

ବାୟୁ, ରକ୍ତଦୋଷ, କଫ, କଣ୍ଡୁ ଓ ବିଷନାଶକ, ଛକ୍ତି ମଧୁରରସ, ଉଷ୍ଣବୀର୍ଯ୍ୟ ଓ ଦନ୍ତର ଦୃଢ଼ତାକାରକ, ସ୍ନିଗ୍ଧ ଓ କେଶରଞ୍ଜକ ।

ଫୁଲର ବର୍ଣ୍ଣଭେଦରେ ସୈରୀୟ ୪ ପ୍ରକାରର । ଯଥା—
୧। ଶ୍ୱେତ ସୈରୀୟ—ଧଳା ଫୁଲ ବାଣକେରେଣ୍ଡା । ଅନ୍ୟ ସଂ—ସୈରେୟ, ସୈରୀୟକ, ସୈରେୟକ, ଶ୍ୱେତପୁଷ୍ପ, ବାଣସାରିକା, କଟସାରିକା, ସହାଚର, ସହଚର, ଝିଣ୍ଟୀ ।
୨। ପୀତ ସୈରୀୟ—[ ହଳଦିଆ ଫୁଲ ]। ଅନ୍ୟ ସଂ—କୁରଣ୍ଟକ, ଦାସୀ, ଅର୍ତ୍ତଗଳ ।
୩। ରକ୍ତ ସୈରୀୟ—[ ନାଲି ଫୁଲ ]। ଅନ୍ୟ ସଂ—କୁରୁବକ, ଓଡ଼ଆଅଁଲେଇ ଫୁଲ ।
୪। ନୀଳ ସୈରୀୟ—[ ନେଳି ଫୁଲ]। ଅନ୍ୟ ସଂ—ବାଣା, ଗଳ । ]

ସୈରୀୟକ—ସଂ. ବି ( ସୈରୀୟ+ସ୍ୱାର୍ଥେ କ )—ସୈରୀୟ [ ଦେଖ ]
Sairiyaka Sairiya [ See ]

ସୈରେୟ—ସଂ. ବି ( ସ୍ୱୈର+ଏୟ+କ )—ସୈରୀୟ [ ଦେଖ ]
Saireya Sairiya [ See ]
( ସୈରେୟକ—ଅନ୍ୟରୂପ )

ସୈଲଗ—ସଂ. ବି—ଡକାଏତ ( ତ୍ରି. ଶ )—
Sailaga A dacoit.

ସୈଲାବ—ପ୍ରାଦେ. ( ବାଲେଶ୍ୱର ) ବି ( ଭୁଲ. ଫା. ସୈଲ୍ଲାବ—ଧୋଇଆ
Sailāb! ଜମି )—ଅନେକ ଦିନ ବ୍ୟାପି ହେବା ବର୍ଷା, ଝଡ଼ ଓ ତୋଫାନ—Hurricane accompanied with rain continuing for many days. [ ଦ୍ର—ଉତ୍କଳର ନଅଙ୍କ ଦୁର୍ଭିକ୍ଷର ପରବର୍ଷ ( ଅର୍ଥାତ୍ ୧୮୬୭ ସାଲରେ ) ହୋଇଥିବା ବଡ଼ ଝଡ଼, ତୋଫାନର ଏହି ନାମ । ]

ସୈଶ—ବୈଦେ. ବି ( ଫା. ସାଇସ୍ )—ସଇଶ [ ଦେଖ ]
Saisa Saisa [ See ]

ସୈଶି—ଦେ. ବି—ସଇଶି [ ଦେଖ ]
Saisi Saisi [ See ]

ସୈଶିଆ—ବୈଦେ. ବିଣ—ସଇଶିଆ [ ଦେଖ ]
Saisiā Saisiā [ See ]

ସୈସ—ସଂ. ବିଣ ( ସୀସ+ଅ )—ସୀସାଧାତୁ ସମ୍ବନ୍ଧୀୟ ( ତ୍ରି. ଶ )—
Saisa Relating to lead ( metal ); leaden.

ସୈ ସଙ୍ଗାତ—ଦେ. ବି—ସହି ସଙ୍ଗାତ [ ଦେଖ ]
Sai sangāta Sahi sangāta [ See ]

ସୈହ—ଗ୍ରା. ବି ( ସଂ. ସହ୍ୟ; ସହ୍ୟର ଅଶୁଦ୍ଧ ଉଚ୍ଚାରଣ )—ସହ୍ୟ
Saiha [ଦେଖ ]—Sahya [ See ]

ସୋ ( ଧାତୁ )—ସଂ—୧। ବିନାଶ କରିବା; ମାରିବା—1. To kill.
So ( root ) ୨। ସମାପ୍ତ କରିବା—2. To finish.

ସୋଆଗ ( ଇତ୍ୟାଦି )—ଦେ. ବି—ସୁହାଗ ଇତ୍ୟାଦି [ ଦେଖ ]
Soāga ( etc ) Suhāga [ See ]

ସୋଆଗା—ଦେ. ବି—ସୁହାଗା [ ଦେଖ ]
Soāgā Suhāgā [ See ]

ସୋଆଗୀ—ଦେ. ବିଣ ( ସ୍ତ୍ରୀ ଓ ପୁଂ )—ସୁହାଗୀ ( ଦେଖ )
Soāgi Suhāgi ( See )
(ସୋହାଗେଇ—ଅନ୍ୟ ସ୍ତ୍ରୀ. ରୂପ) (ସୋଅଗିଆ—ଅନ୍ୟ ପୁଂ. ରୂପ)

ସୋଆଗେଇ ହେବା—ଦେ. କ୍ରି—ସୁହାଗେଇ ହେବା ( ଦେଖ )
Soāgei hebā Suhāgei hebā ( See )

ସୋଇ—ଦେ. ବି—୧। ଏକପ୍ରକାର ରୋହିମାଛ—1. A species of
Soi Rohi fish. [ ଦ୍ର—ଏମାନେ ଆକୃତିରେ ରୋହିମାଛଠାରୁ ସାନ ଓ ଏମାନଙ୍କ ବର୍ଣ୍ଣ ଫିକା । ଏମାନଙ୍କ ପିତ୍ତ କଫ ଓ ସନ୍ନିପାତ ରୋଗୀକୁ ଖୁଆଇବାକୁ ହୁଏ । ] ୨। [ ସ୍ତ୍ରୀ ] କାହାଣୀ ବର୍ଣ୍ଣିତ ରାଜାଙ୍କର ଦ୍ୱିତୀୟା ରାଣୀ—2. The name of the king's less honored wife in the folktales) ( ଦ୍ର—କାହାଣୀରେ ଏ ରାଣୀ ରାଜାଙ୍କ ଅନାଦରଭାଜନ ହୋଇ ନାନାବିଧ କଷ୍ଟ ଓ ଅପମାନ ଭୋଗ କରନ୍ତି । ]

ସୋଇଁ—ଗ୍ରା. ବି (ସଂ ସ୍ୱାମୀ)—ସୁଆଇଁ; କେତେକ ଚଷା, ଶୂଦ୍ର ଓ ମସ୍ତାନ
Soiñ ବ୍ରାହ୍ମଣଙ୍କର ବଂଶୋପାଧିବିଶେଷ—Family-title of some Sūdras and Mastāna Brāhmaṇas.

ସୋଇ ବଡ଼ନ୍ତି—ପ୍ରାଦେ (ବାଲେଶ୍ୱର) ବି—ସ୍ୱାଇ ବା ସୁଅଇ ବା ¼
Soi bardbanti ସୁଦ ହାରରେ ଧାନ କରଜ ଦଅଯିବା ସର୍ତ୍ତଦ୍ୱାରା ଅଦାୟ ହେବା ସୁଧ—Interest accruing on paddy lent at the rate of ¼ or 25 per cent per annum interest. [ଉ—ଧାନ ବର୍ଷକୁ ସୋଇ ବଢ଼ନ୍ତିରୁ ବେଶି ନୁହେଁ—ଫକୀରମୋହନ ମାନ୍ତି]

ସୋଇଲ୍—ଦେ· ବି ( ଜାହାଜୀଆ ଶବ୍ଦ ) ଦକ୍ଷିଣ ଦିଗ—
Soil The south point of the mariner's compass (nautical term).

ସୋଅବତ୍ (ଇତ୍ୟାଦି)—ବୈଦେ· ବି ସୋହବତ ଇତ୍ୟାଦି (ଦେଖ)
So-abat (etc) Sohabat etc (See)

ସୋଁ—ଦେ ( ଧ୍ୱନ୍ୟନୁକରଣ ) ଅ—ପବନ ବହିବାର ବା ଜୋରରେ
Soñ ନିଶ୍ୱାସ ମାରିବାର ଶବ୍ଦ—The sound of
(ସୋଁ ସୋଁ—ଅନ୍ୟରୂପ) loud hissing.
সোঁসোঁ सनसन [ ବି—ଏହା ସୁଁ ସୁଁ ଠାରୁ ଉଚ୍ଚରେ ଧ୍ୱନି ।]

ସୋଇଁ—ଗ୍ରା. ବି—ସୋଇଁ (ଦେଖ)
Soiñ Soiñ (See)

ସୋଁଟା—ଦେ. ବିଣ ଓ ବି—ସୋଟା ( ଦେଖ )
Sonta Soṭā ( See )
ବୈଦେ (ଇଂ ସୋଡା) ପ୍ରାଦେ (ମେଦିନୀପୁର) ବି—ସୋଡ଼ା—
Soda.

ସୋଁଠା(ଟା)—ଦେ.ବି (ସଂ·ଶୁଣ୍ଡ )—ସୁନା ବା ରୁପାର ଏକପ୍ରକାର ଲମ୍ବ
Soñṭhā(ṭā) ଓ ମୋଟ ବାଡ଼ି—A sort of long and
সোঁটা thick stick made of gold or silver.
सोंटा ୨ । ସୋଟା(ଠା) ( ଦେଖ )—2. Soṭā(ṭhā) (See)
[ବି—ଦରବାର ଓ ଶୋଭାଯାତ୍ରାରେ ରଜା ଆଦିଙ୍କ ଆଗେ ଆଗେ ଏ ଯଷ୍ଟି ବାହକ କର୍ମଚାରୀମାନେ ଚାଲନ୍ତି । ଏହା ସୁନାରେ ବା ରୁପାରେ ତିଆରି ହୁଏ ।]

ସୋଁଠା(ଟା) ବର୍ଦାର୍—ଦେ. ବି—ରଜା ଆଦିଙ୍କ ସବାରୀ ସଙ୍ଗେ
Soñṭhā(ṭā) bar-dār ଚାଲୁଥିବା ସୋଁଠାଧାରୀ ଭୃତ୍ୟ—
Carriers of long and thick sticks accompanying a Raja in a procession.

ସୋଁବାର (ଇତ୍ୟାଦି)—ଗ୍ରା· ବି—ସୋମବାର ଇତ୍ୟାଦି ( ଦେଖ )
Soñbāra (etc) Somabāra etc. ( See )

ସୋଃ—ସଂ. ବି. ସ୍ତ୍ରୀ (ସୋ ଧାତୁ+ଡୃସ)—ପାର୍ବତୀ (ଶବ୍ଦ କଳ୍ପଦ୍ରୁମ)-
Soh Goddess Pārbatī.

ସୋ କେଶ୍—ବୈଦେ· ବି (ଇଂ)—ମନୋହର ଓ ଅଳଙ୍କାର ଦୋକାନ-
So kes ମାନଙ୍କର ଦୋକାନରେ ରଖିଥିବା କାଚର ବାକ୍ସ
সো কেশ্ (ପଦ୍ମରେ ବନ୍ଦ ହୋଇ ରହିଥିବା ପଣ୍ୟଦ୍ରବ୍ୟମାନ
सोकेश ଦର୍ଶକଙ୍କୁ ପ୍ରଦର୍ଶିତ ହୁଏ)—A show case.

ସୋଖ୍ତା—ଦେ· ବି ( ସଂ· ଶୋଷକ)—ବ୍ଲଟିଂ କାଗଜ—
Sokh-tā Blotting paper.
সোখ্তা, ব্লটিঙ্গ सोखता, सयाहि सोख

ସୋଗତ—ଦେ. ବି [ସଂ. ସ୍ୱଗୋତ୍ର (ଗୋପୀନାଥ ନନ୍ଦ), କମ୍ବା ସ୍ୱାଗତ)—
So-gata ୧ । ସ୍ନେହ—1. Affection. ୨ । ଆପଣା ଗୋତ୍ର-
স্নেহ 2. One's gotra. ବିଣ—ସ୍ନେହୀ—Affectionate.
स्नेह

ସୋଗଲ ରେଖା—ପ୍ରାଦେ (ଗଞ୍ଜାମ) ବି—କାନର ଅଳଙ୍କାର ବିଶେଷ—
Sogala rekhā A sort of ear-ring.

ସୋଗା—ପ୍ରାଦେ. (ଜୟପୁର) ବି—ଛୋରା—
Sogā Dagger.

ସୋଚଳ(ଲ)—ଦେ· ବି ( ସଂ· ସୌବର୍ଚ୍ଚଳ )—ସୌବର୍ଚ୍ଚଲ; ଖାରଲୁଣ
Sochala(la) A kind of salt; chloride of
সচল sodium mixed with sulphate of soda
काला नमक, सोंचल and potassium.

ସୋଚା(ଚେ)ଇବା—ଦେ· କ୍ରି—୧ । ସୂଚିବା ( ଦେଖ )
Sochā(che)ibā 1. Suchibā ( See )
সোচান ୨ । ଶୋକାକୁଳ କରାଇବା—
सूचना 2. To cause sorrow.
শোকাকুল করা सो(सु)चाना

ସୋଚିବା—ଦେ. କ୍ରି—୧ । ସୂଚିବା ( ଦେଖ )—1. Sūchibā
Sochibā (See) ୨ । ଶୋକ କରିବା—2. To grieve;
সোচা, মনে করা to be sorrowful. ୩ । ପସ୍ତାଇବା—
सोचना पस्तान सोक करना, पस्ताना 3. To repent.

ସୋଜ—ପ୍ରାଦେ. (ସମ୍ବଲପୁର) କ୍ରି· ବିଣ—ବୃଥା—
Soj In vain.

ସୋଜ—ସଂ. ବି· ପୁଂ (ସୋ=ପାର୍ବତୀ+ଜନ୍ ଧାତୁ+କର୍ତ୍ତୃ. ଅ)—
Soja ଗଣେଶ—God Gaṇeśa.

ସୋଜା—ଦେ. ବିଣ ( ସଂ. ସହଜ; କମ୍ବା ଶୁଦ୍ଧ; କମ୍ବା ଋଜୁ; ବଙ୍ଗଳାରୁ
Sojā ଅନୁକୃତ)—୧ । ସରଳ; ସିଧା; ସଳଖ—
সোজা 1. Straight. ୨ । ସହଜ—2. Easy, ୩ ।
सीधा, सोझा ସରଳ; ନିଷ୍କପଟ—3. Frank.

ସୋଜା ସୁ(ସୋ)ଜି—ଦେ· କ୍ରି. ବିଣ (ବଙ୍ଗଳାରୁ ଅନୁକୃତ)—
Sojā su(so)ji ସିଧାଏ ସିଧାଏ—Straightway.
সোজা সুজি सिधासिधि

ସୋଜି—ପ୍ରାଦେ. (ଗଞ୍ଜାମ) ବି—ସୁଜି—
Soji Semola; coarse wheaten flour.

ସୋଝ (ଇତ୍ୟାଦି)—ଦେ· ବି—ଶୁଝ ଇତ୍ୟାଦି ( ଦେଖ )
Sojha (etc) Sujha etc. ( See )

ସୋଟ(ଠ)—ଦେ. ବିଣ (ମୋଟ ଶବ୍ଦ ସହିତ ଜନର୍ଥକ ସହଚର ରୂପେ
Soṭa(ṭha) ବ୍ୟବହୃତ)—ମୋଟ; ଶ୍ରେଷ୍ଠ; ସ୍ଥୂଳକାୟ—
মোটা সোটা Thick; stout. (ଯଥା—ମୋଟ ସୋଟ,
मोटा सोटा ଶ୍ରେଷ୍ଠ ଶୋଠ) ବି—ସୁଟ ( ଦେଖ )—Suṭa
( See )

ସୋଟା(ଠା)—ଦେ. ବିଣ (ମୋଟା ଓ ଶ୍ରେଷ୍ଠା ସଙ୍ଗେ ଜନର୍ଥକ ସହଚର
Soṭā(ṭhā) ରୂପେ ବ୍ୟବହୃତ)—୧ । ମୋଟା—1. Thick.
মোটা ୨ । ସ୍ଥୂଳକାୟ—2. Stout. ବି (ସଂ. ଯଷ୍ଟା କମ୍ବା
मोटा सोटा ପା. ସୋଠା=ଠେଙ୍ଗା)—୧ । ଲଠି; ଠେଙ୍ଗା; ସ୍ଥୂଳ

ଦଣ୍ଡ—1. A thick stick. ୨ । ରାଜଦଣ୍ଡ; ରାଜ୍ୟ-
ସେଁାଟା, সোটা ଶାସନାଧିକାର ସୂଚକ ଦଣ୍ଡ (ଯାହାକୁ ରାଜା ଓ
सोंटा ମହନ୍ତମାନଙ୍କ ଗହଣରେ ସୋଟାବର୍‌ଦାର୍‌ମାନେ ବହନ
କରନ୍ତି)—2. Mace; one of the insignia of
সোডা सोडा royalty or majesty.—ବୈଦେ. ବ (ଇଂ.
ସୋଡ଼ା)—ସୋଡ଼ା—Soda.

ସୋଟା(ଠା) ବର୍‌ଦାର୍—ଦେ. ବ—ରାଜା ଓ ମହନ୍ତଆଦିଙ୍କ ଗହଣରେ
Soṭā(ṭhā) bar-dār ସୋଟା ବା ସ୍ଥୂଳଦଣ୍ଡ ବହନ କରି
সোটাবরদার सोटावरदार ଚାଲିବା ଭୃତ୍ୟ—
Mace-bearer in the retinue of kings, Mahants and other high personages.

ସୋଟା(ଠା) ବାଡ଼ି—ଦେ. ବ ( ସମାହାର ଶବ୍ଦ )—ଠେଙ୍ଗା ଓ ଲଟି—
Soṭā(ṭhā) bāṛi Sticks thick and thin.
সোটা লাঠি सोटाडंडा

ସୋଟୀ(ଠୀ)—ଦେ. ବଣ. ସ୍ତ୍ରୀ—(ମୋଟୀ ଶବ୍ଦ ସଙ୍ଗେ ଉତ୍ତରଶବ୍ଦରୂ-
Soṭī(ṭhī) ରୂପେ ବ୍ୟବହୃତ ) ୧। ସୋଟା ଶବ୍ଦର ସ୍ତ୍ରୀଲିଙ୍ଗ—
মোটী मोटीसोटी 1. Feminine of 'Soṭā' & a companion word of 'Moṭī'. ୨। ସ୍ଥୂଳକାୟା—
2. Corpulent or stout (female).

ସୋଡ଼କା—ଦେ. ବ ( ସଂ. ସୁର+କ୍ରିୟା )—( ଧ୍ୱନ୍ୟନୁକରଣ )—
Soṛakā ୧ । ହାପୁରିବା; ପାନୀୟ ଖାଦ୍ୟ (ଯଥା—ଦହି
হাপবান सुरकाइ ଆଦି)କୁ ଦୁଇ ଓଠ ଦ୍ୱାରା
ସଡ଼୍ ସଡ଼୍ ଶବ୍ଦପୂର୍ବକ ଶୋଷିବା—1. (onomatopoeic) Gulping down of a liquid food through the lips by making smacking
হাপরা सुरक सुरक sounds. ୨ । ଥରେ
ହାପୁଡ଼ିବାଦ୍ୱାରା ଯେତେ ପରିମିତ ପାନୀୟ ଖାଦ୍ୟ ପାଟି
ଭିତରକୁ ଯିବ; ଢୋକଡ଼ା—2. A quantity of liquid food which can enter into the mouth with one gulping. [ଉ—ମାଗିଥିଲି
ତିଅଣ ସୋଡ଼କାଏ—ଜନ ] ବଣ. ପୁଂ— ୧ । ଯେ
(ସୋଡ଼କୀ—ସ୍ତ୍ରୀ) ସୋଡ଼କାପ୍ରଣାଳୀରେ ଖାଦ୍ୟ ଖାଏ—
[illegible]रकनेवाला 1. Eating liquid food by making smacking sound. [ବି—ଏହା ଅନ୍ୟ
ଶବ୍ଦ ସହିତ ବ୍ୟବହୃତ ହୁଏ । ଯଥା—ଦହି ସୋଡ଼କା ।]
ঁডউঁড়ে सरसरकरनेवाला ୨ । ଯେ ପାଟି ବା ନାକ
ଦ୍ୱାରା ସଡ଼ ସଡ଼ ଶବ୍ଦ କରେ—2. Making a smacking or gurgling sound through the throat or the nostrils. [ବି—ତୋଣ୍ଟିରେ
ବା ନାକରେ ବହୁପରିମିତ ଶ୍ଳେଷ୍ମା ପୂର୍ଣ୍ଣ ଥିଲେ
ନିଶ୍ୱାସ ମାରିବାବେଳେ ଏହି ଶବ୍ଦ ହୁଏ । ଯଥା—ନାକ
ସୋଡ଼କା ।]

ସୋଡ଼କା(କେ)ଇବା—ଦେ. କ୍ରି—୧ । ହାପୁଡ଼ିବା; ପାନୀୟଦ୍ରବ୍ୟକୁ
Soṛakā(ke)ibā ସଡ଼ ସଡ଼ଶବ୍ଦପୂର୍ବକ ପାଟି ମଧ୍ୟକୁ
হাপবান सुरुकना, सुरकना ଶୋଷିବା—
1. To take liquid food into the mouth
উড উড় করা सरसर करना with a smacking gulp.
୨ । ନାକ ବା ତଣ୍ଟିଦ୍ୱାରା ଘଡ଼ ଘଡ଼ ଶବ୍ଦ କରିବା—
2. To emit a smacking or gurgling sound through the nostrils or the throat.

ସୋଡ଼କାଏ—ଦେ. ବ. ଓ ବଣ. ଓ କ୍ରି. ବଣ—ଥରେ ସୋଡ଼କିବାପାଇଁ
Soṛakāe ଉପଯୁକ୍ତପରିମାଣର ( ପାନୀୟ ଖାଦ୍ୟ );
এক হাপবা एक सुरक ଢୋକଡ଼ାଏ—
( A quantity of liquid food ) Just sufficient to be taken into the mouth with one smacking gurgle. (ଉ—ମାଗିଥିଲି
ତିଅଣ ସୋଡ଼କାଏ—ଜନ ।)

ସୋଡ଼କିବା—ଦେ. କ୍ରି—ସୋଡ଼କାଇବା ୧ ( ଦେଖ )—
Soṛakibā Soṛakāibā 1 ( See ) ( ଉ—
[ସୋଡ଼କେଦେ(କେ)ବା—ଅନ୍ୟରୂପ] ପୋଷକର ସୋଡ଼କିଦେଲେ
ମଦଗରିଭୁ—କୃଷ୍ଣସିଂ. ମହାଭାରତ ଅଦ ।)

ସୋଡ଼କୀ—ଦେ. ବଣ. ସ୍ତ୍ରୀ-୧ । ଯେ କୌଣସି ପାନୀୟ ବସ୍ତୁକୁ ସୋଡ଼କାଇ
Soṛakī କରି ଖାଏ—1. (a woman) Habituated to
सुरकनेवाला eating things with a smacking sound.
[ବି—ଏହି ଶବ୍ଦ ଅନ୍ୟ ଶବ୍ଦ ସହିତ ଲାଗେ । ଯଥା—
ঘডঘডে सरसर करनेवाला ଦହିସୋଡ଼କୀ । ]
୨ । ଯେ ସଡ଼ ସଡ଼ ଶବ୍ଦ କରେ—2. Emitting a smacking or gurgling sound. ( ଉ—
ସିଙ୍ଘାଣିନାକୀ ଦହିସୋଡ଼କୀ ଅଁଠା ଘରର ଖାଏ—
ଜନ ।)

ସୋଡ଼ା(ଡ଼ା)—ବୈଦେ. ବ (ଇଂ)—୧ । ସର୍ଜିକା କ୍ଷାର—1. Soda;
Soṛā(ḍā) bicarbonate of Soda. ୨ ।
সোডা सोडा ସୋଡ଼ା ଉଆଟର୍ ( ଦେଖ )—
2. Soṛā uāṭar (See).

ସୋଡ଼ା(ଡ଼ା) ଉଆଟର୍ (ୱାଟର୍)—ବୈଦେ. ବ ( ଇଂ )—ସୋଡ଼ା ଓ
Soṛā(ḍā) uāṭar(wāṭar) କାର୍ବନ୍ ଗ୍ୟାସ୍ ମିଶ୍ରିତ ଜଳ—
সোডা ওয়াটর सोडा वाटर Soda water. [ବି—ଏହା
ପାନକଲେ ଉଦରରୁ ବାୟୁ ବାହାରି ହୋଇ ବାହାରିଯାଏ
ଓ ଖାଦ୍ୟ ଜୀର୍ଣ୍ଣ ହୁଏ । ]

ସୋଡ଼ା(ଡ଼ା) ଏସିଡ୍—ବୈଦେ. ବ (ଇଂ)—ସୋଡ଼ା ଓ କାର୍ବନ୍ ଏସିଡ୍
Soṛā(ḍā) esiḍ ମିଶ୍ରଣରେ ପ୍ରସ୍ତୁତ ଓ ଖାଦ୍ୟଜୀର୍ଣ୍ଣକର
সোডা এসিড় सोडाएसिड ଏକପ୍ରକାର ଚୂର୍ଣ୍ଣ—
Soda acid; carbonic acid and soda.
[ବି—ଏହା ପାଣିରେ ପକାଇଲେ ପାଣି ଥଣ୍ଡାହୋଇ ମଧ୍ୟ
ଭର୍ ଭର୍ ହୋଇ ଉଛୁଳିଉଠେ ।]

ସୋଡା(ଡା) କାଚ —ଗ୍ରାଦେ (ଗଞ୍ଜାମ) ବ—ସୋଡ଼ା ୱାଟର୍ ବୋତଲ—
Sordā(ḍā) kācha Sodawater bottle.

ସୋଡା (ଡି,ଡି,ଡା) ବାଇକାର୍ବ —ବୈଦେ.ବ (ଇଂ)—ଡାକ୍ତରୀ ଚିକିତ୍ସାବିଶେଷ
Sordā(ṛdi,di,dā) bāikārb —Sodium
সোডবাইকার্ব सोडाबाइकार्ब bicarbonate; sodi bicarb;
(ସୋଡ଼ାବାଇକାର୍ବନେଟ୍—ଅନ୍ୟରୂପ) bicarbonate of soda.
[ ଦ୍ର—ଏଥିରେ ସୋଡ଼ା ଓ କାର୍ବନ ଏସିଡ୍ ମିଶ୍ରିତ ଥିବାରୁ ଏହାକୁ ଅଜୀର୍ଣ୍ଣରୋଗରେ ଔଷଧରୂପେ ଡାକ୍ତରମାନେ ବ୍ୟବହାର କରନ୍ତି ।)

ସୋଡା(ଡା) ନେ(ଲେ)ମ(ମୋ)ନେଟ୍(ଡ୍)—ବୈଦେ. ବ ଇଂ. (ସଙ୍କରଶବ୍ଦ)—ସୋଡ଼ାମିଶ୍ରିତ ଜଳ
Sordā(ḍā) ne(le)ma(mo)net(d)
সোডালেমনেড सोडालेमनेट ଓ ଲେମ୍ବୁ ଅର୍କମିଶ୍ରିତ ସୋଡ଼ା ପାଣି—Soda water and lemonade.
(ଦ୍ର—ସୋଡ଼ା ୱାଟର୍ ଖାଇବାକୁ ଟିକିଏ କଟୁ ଲାଗେ, କିନ୍ତୁ ଲେମନେଡ଼୍ ଖାଇବାକୁ ମିଠା ଲାଗେ ।)

ସୋଡିଅ(ୟ)ମ୍—ବୈଦେ.ବ (ଇଂ)—ପଦାର୍ଥବିଜ୍ଞାନ ଅନୁସାରେ ମୌଳିକ
Sodi(ya)m ଦ୍ରବ୍ୟବିଶେଷ—Sodium.
সোডিয়ম सोडियम

ସୋଡି ବାଇକାର୍ବ —ବୈଦେ. ବ (ଇଂ. ସୋଡିଅମ୍ ଓ ବାଇକାର୍ବନେଟ୍
Sodi bāikārb ଶବ୍ଦର ସାଙ୍କେତିକ)—ସୋଡ଼ା ବାଇକାର୍ବ—
সোডি বাইকার্ব Sodi bicarb; bicarbonate of soda,
सोडि बाइकार्ब (abbreviation of sodium bicarbonate).

ସୋଡ୍ରୁଅ—ଦେ. ବ—ସେଡ୍ରୁଅ (ଦେଖ)
Sordua हाथा Serdua (See)

ସୋଢ—ସଂ. ବିଣ. ପୁଂ (ସହ୍ ଧାତୁ+କର୍ମ. ତ)—୧ । ଯାହା ସହ୍ୟ କରାଯାଇଅଛି—1. Borne. ୨ । କ୍ଷାନ୍ତ (ଅମର); କ୍ଷମାଶୀଳ
Sordha
(ସୋଢା—ସ୍ତ୍ରୀ) —2. Forgiving. ୩ । ଦୁଃଖାଦି ସହନଶୀଳ (ଶାଳକଣ୍ଠ)—3. Able to bear pain; forbearing.

ସୋଢବ୍ୟ—ସଂ. ବ ( ସହ୍ ଧାତୁ+କର୍ମ. ତବ୍ୟ )—ସହ୍ୟ; ସହନୀୟ—
Sordhabya Bearable.

ସୋଢା—ସଂ. ବିଣ. ପୁଂ (ସହ୍ ଧାତୁ+କର୍ତ୍ତି. ତୃ=ସୋଢୃ, ୧ମା. ୧ବ)
Sordhā —୧ । କ୍ଷମାଯୁକ୍ତ; କ୍ଷମାଶୀଳ (ମେଦିନୀ)—1. For-
(ସୋଢ୍ରୀ—ସ୍ତ୍ରୀ) giving. ୨ । ସହନଶୀଳ—2. Able to bear pain; forbearing. ୩ । ଶକ୍ତ; ସମର୍ଥ (ମେଦିନୀ)—3. Capable; able. ୪ । (ସ୍ତ୍ରୀ) ସୋଢର ସ୍ତ୍ରୀଲିଙ୍ଗ—4. Feminine of Sordha.
ବୈଦେ. ଗ୍ରା. ବ—ସୋଡ଼ା (ଦେଖ)—Sordā (See)

ସୋଢା ଖାର—ଦେ. ବ (ବୈଦ୍ୟକ)—ସାଚିକ୍ଷାର (ଦେଖ)
Sordhā khāra Sāchikshāra (See)

ସୋଢୁଅ—ଗ୍ରାଦେ (ସାଜପୁର) ବ—ସେଢୁଅ (ଦେଖ)
Sordhua Serdua (See)

ସୋଣ(ନ)—ଦେ. ବ ( ସଂ. ଶୋଣ )—ଶୋଣନଦୀ; ଗଙ୍ଗାର ଉପନଦୀ-
Sona (na) ବିଶେଷ—The river Sone; a tributary
শোণ शोण of the Ganges.

ସୋଣି—ଗ୍ରା. ବ ( ସଂ. ଶୋଣିତ )—ଶୋଣିତ; ରକ୍ତ—
Soni শোণি शोणि Blood.
( ସୋଣିତ—ଅନ୍ୟ ଅଶୁଦ୍ଧ ରୂପ )

ସୋତ୍କ—ସଂ. ବିଣ ପୁଂ ( ସ+ଉତ୍କ )—ଉତ୍କଣ୍ଠା ପୂର୍ଣ୍ଣ ( ହ ଶ )—
Sot-ka Full of anxiety.
(ସୋତ୍କା—ସ୍ତ୍ରୀ)

ସୋତ୍କଣ୍ଠ—ସଂ. ବିଣ. ପୁଂ(ସହାର୍ଥ ବହୁବ୍ରୀହି; ସ=ସହିତ+ଉତ୍କଣ୍ଠା)—
Sot-kantha ଉଦ୍‌ବିଗ୍ନ; ଉତ୍କଣ୍ଠାଯୁକ୍ତ; ଉନ୍ମନାଃ—Anxious;
(ସୋତ୍କଣ୍ଠା—ସ୍ତ୍ରୀ) concerned.

ସୋତ୍କର୍ଷ—ସଂ. ବିଣ ( ସହାର୍ଥ ବହୁବ୍ରୀହି )—ଉତ୍କର୍ଷଯୁକ୍ତ; ଉତ୍କୃଷ୍ଟ—
Sot-karsha Excellent; having excellence.

ସୋତ୍ପ୍ରାସ—ସଂ. ବ ( ସହାର୍ଥ ବହୁବ୍ରୀହି, ସ+ଉତ୍ପ୍ରାସ=ପରିହାସ;
Sot-prāsa ରୂଢ଼ି )—୧ । ସଶବ୍ଦ ହାସ୍ୟ ( ଶବ୍ଦରତ୍ନାବଳୀ )—
1. Loud laugh. [ ଦ୍ର—ହାସ୍ୟ ଅନେକ ପ୍ରକାର, ଯଥା—ସୋତ୍ପ୍ରାସ, ଆଚ୍ଛୁରିତକ, ଅବଚ୍ଛୁରିତକ, ଅଟ୍ଟହାସ୍ୟ, ମହାହାସ, ହାସ, ପ୍ରହାସ—ଶବ୍ଦରତ୍ନାବଳୀ । ] ୨ । ପ୍ରିୟ ବାକ୍ୟ; ଖୋସାମଦ—2. Flattery. ୩ । ଈଷଦ୍ଧାସଯୁକ୍ତ ବାକ୍ୟ—3. Words accompanied with smile. ୪ । ଶ୍ଳେଷ ବାକ୍ୟ—4. Jocular words.
ବିଣ—୧ । ବୁଦ୍ଧିଯୁକ୍ତ—1. Intelligent. ୨ । ପରିହାସଯୁକ୍ତ—2. Jestful; jocular. ୩ । ଅତିରଞ୍ଜିତ ( ହ. ଶ )—3. Exaggerated ୪ । ବ୍ୟଙ୍ଗ୍ୟଯୁକ୍ତ ( ହ. ଶ )—4. Ironical.

ସୋତ୍ସଙ୍ଗ—ସଂ. ବିଣ. ପୁଂ (ସ+ଉତ୍ସଙ୍ଗ)—ଶୋକାକୁଳ (ହ.ଶ)—
Sot-sanga Sorrowing; grieved.
(ସୋତ୍ସଙ୍ଗା—ସ୍ତ୍ରୀ)

ସୋତ୍ସବ—ସଂ.ବିଣ. ପୁଂ (ସ+ଉତ୍ସବ)—୧। ଉତ୍ସବଯୁକ୍ତ—1. Fes-
Sot-saba tive. ୨ । ପ୍ରଫୁଲ୍ଲ (ହ. ଶ )—2. Delighted.
[ସୋତ୍ସବା—ସ୍ତ୍ରୀ]

ସୋତ୍ସୁକ—ସଂ. ବିଣ (ସ.+ଉତ୍ସୁକ)—୧ । ଉତ୍କଣ୍ଠିତ (ହ. ଶ)—
Sot-suka 1. Anxious ( Apte ). ୨ । ଅନୁତପ୍ତ—
2. Regretful ( Apte ). ୩ । ଦୁଃଖିତ—
3. Repining ( Apte ). ୪ । ଶୋକାକୁଳ—
4. Sorrowful ( Apte ).
(ସୋତ୍ସୁକା—ସ୍ତ୍ରୀ) (ସୋତ୍ସୁକ—ଅନ୍ୟରୂପ)

ସୋତ୍ସେକ—ସଂ. ବିଣ. ପୁଂ ( ସ+ଉତ୍ସେକ )—ଗର୍ବୀ ( ହ. ଶ )—
Sot-seka (ସୋତ୍ସେକା—ସ୍ତ୍ରୀ) Proud.

ସୋତ୍ସେଧ—ସଂ. ବିଣ ( ସହାର୍ଥ ବହୁବ୍ରୀହି; ସ+ଉତ୍ସେଧ )—
Sot-sedha ଉନ୍ନତ—Raised; elevated; high; lofty.

ସୋତ—ପ୍ରାଦେ. ( ସିଂହଭୂମି ) ବ ( ସଂ. ସ୍ରୋତ )—ବର୍ଷା ପାଣି ବୋହି
Sota ଯିବା ପାଇଁ କଟା ଯାଇଥିବା ନାଳ—
Drains for rain-water.

ସୋଥ ( ଇତ୍ୟାଦି )—ଗ୍ରା. ବ—ଶୋଥ ଇତ୍ୟାଦି (ଦେଖ)
Sotha ( etc ) Śotha etc (See)

ସୋଦୟ—ସଂ. ବ (ସ+ଉଦୟ)—୧ । ବୃଦ୍ଧିଯୁକ୍ତ—1. Accompa-
Sodaya nied with increase or rising. ୨ । ସୁଧ ସମେତ—2. Accompanied or together with interest.

ସୋଦର—ସଂ. ବି. ପୁ. ( ବହୁବ୍ରୀହି; ସ+ଉଦର=ଜନ୍ମସ୍ଥାନ )—୧ ।
Sodara ସହୋଦର; ଭାଇ—1. Brother. ୨ । ଏକ
ସୋଦରା } ସ୍ତ୍ରୀ
ସୋଦରୀ } ଗର୍ଭଜାତ ସନ୍ତାନ; ଏକୋଦର ଭାଇ—2. Uterine brother. ୨। (ଲକ୍ଷଣାରେ) (ଭାଇ ପରି) ଉପକାରୀ ବା ସହାୟକ ବ୍ୟକ୍ତି; ତ୍ରାତା; ଅଶ୍ରୁପୋଛା—2. A beneficial and helpful person (like one's brother). [ଯି—ତୁ ନାଥ କରୁଣାସାଗର । ଦୁଃଖୀ ଦରିଦ୍ରଙ୍କ ସୋଦର—ଜଗନ୍ନାଥ. ଭଜନ ।] ସଂ; ବଣ, ପୁ.—୧ । ଏକଗର୍ଭୋତ୍ପନ୍ନ—Uterine; born of the same mother ଦେ. ବଣ—
ସ୍ନେହୀ
स्नेही
୧ । ବତ୍ସଳ—1. Loving; affectionate. [ଯଥା—ତୁ ଅଟୁ ଶରଣ-ସୋଦର ] ୨ । ଆତ୍ମୀୟ; ବନ୍ଧୁ—2. Friend. [ —ଏଣୁ ଏ କୋପ ତୁ ସମ୍ବର । ତୁ ନାଥ ଜଗତ ସୋଦର—ଜଗନ୍ନାଥ. ଭଗବତ । ] ୩ । ସମାନ; ତୁଲ୍ୟ—3. Like. [ଯି—କଠିନ ବର୍ତ୍ତୁଳ ହେଲା ଶ୍ରୀଫଳ ସୋଦର—ମାନକୃଷ୍ଣ, ଉପଦେଶକ୍ଲୋକ । ]

ସୋଦରିମା—ସଂ. ବ ( ସୋଦର+ଭାବ. ଇମନ୍; ୧ମା. ୧ବ )—
Sodarimā ସୋଦରର ଭାବ; ଭାଇପଣିଆ—Brotherliness.

ସୋଦର୍ଯ୍ୟ—ସ. ବ. ପୁ. (ସୋଦର+ସ୍ୱାର୍ଥେ. ଯ)—ସୋଦର (ଦେଖ)
Sodarjya Sodara ( See )
(ସୋଦର୍ଯ୍ୟା—ସ୍ତ୍ରୀ)

ସୋଦ୍ବେଗ—ସ. ବଣ. ପୁ. (ସହାର୍ଥ ବହୁବ୍ରୀହି; ସ+ଉଦ୍ବେଗ)—
Sodbega ଉଦ୍ବିଗ୍ନ—Anxious; eager.
(ସୋଦ୍ବେଗା—ସ୍ତ୍ରୀ)

ସୋଦ୍ରମା—ଗ୍ରା. ବ (ସ. ସୋଦରିମା)—ସୋଦରିମା; ଭ୍ରାତୃଭାବ—
Sodrimā Brotherliness.
সোদরিমা भाइचारा

ସୋଧନ—ଦେ. ବ—ଶୋଧନ ( ଦେଖ )
Sodhana Śodhana ( See )

ସୋଧ୍ (ଇତ୍ୟାଦି)—ଦେ. ବଣ ଓ ବଣର ବଣ—ଶୋଧ୍ ଇତ୍ୟାଦି
Sodh (etc) (ଦେଖ)—Śodh etc ( See )

ସୋଧା (ଇତ୍ୟାଦି)—ଦେ. ବ—ଶୋଧା ଇତ୍ୟାଦି ( ଦେଖ )
Sodhā (etc) Śodhā etc. ( See )

ସୋଧି (ଇତ୍ୟାଦି)—ଦେ. ବ—ଶୋଧି ଇତ୍ୟାଦି ( ଦେଖ )
Sodhi (etc) Śodhi etc. ( See )

ସୋଧିବା(ଇତ୍ୟାଦି)—ଦେ. କ୍ରି—ଶୋଧିବା ଇତ୍ୟାଦି ( ଦେଖ )
Sodhibā (etc) Śodhibā etc. ( See )

ସୋଧୁଅ—ଦେ. ବ—୧ । ଚାଉଳ ଓ ଗୁଡ଼ ଲବଙ୍ଗ ଦ୍ୱାରା ପ୍ରସ୍ତୁତ ଏକପ୍ରକାର
Sodhua ପିଠା—1. A kind of cake. ୨ । ଚାଉଳ
ପିଠୁଳି
पिठार
ବାଟି କରି ପିଠଉ ପାଣିପାଣିଆ କରି କାନ୍ଥ ଆଦିରେ ଚିତା ଦେବା ପାଇଁ ବ୍ୟବହୃତ ତରଳୀଯ ଦ୍ରବ୍ୟ ବିଶେଷ—2. A liquid made by pesting rice and used in painting on walls. ୩ । ପିଠା ଆଦି କରିବାପାଇଁ ଚାଉଳବଟା ପିଠଉ—3. Rice-paste for preparing pastry cakes.

ସୋନ୍—ଦେ. ବ—୧ । ସୋଣ ୧ ( ଦେଖ )—1. Sona 1 (See)
Son ୨ । ଅଳଙ୍କାରରେ ବସାଯିବା ସୁନାର ବା ରୂପାର ଗୋଟି ଗୁଥ—2. Minute globules of silver or gold set on ornaments.
ପ୍ରାଦେ. (ଛତିଶଗଡ଼) ବ—ସ୍ୱର୍ଣ୍ଣ—Gold. (ତୁଳ. ଏହି ଅର୍ଥରେ ହିନ୍ଦୀ ସୋନା)

ସୋନପୁର—ଦେ. ବ (ସ. ସ୍ୱର୍ଣ୍ଣ ଓ ପୁର)—୧ । ଉତ୍କଳର ପଶ୍ଚିମାଞ୍ଚଳସ୍ଥ
Sonapura ଗୋଣ୍ଡ଼ ଦେଶୀୟ ରାଜ୍ୟ ଓ ତାହାର ରାଜଧାନୀ —1. Name of a Ruling State and its chief town to the west of Orissa. [ଯି—ସୋନପୁରର ରାଜାମାନେ ଚଉହାନ ବଂଶୋଦ୍ଭବ; ମାତ୍ର ଏମାନେ ଶକ୍ତିପୂଜା କରନ୍ତି । ସୁବର୍ଣ୍ଣମେରୁ ମହାଦେବଙ୍କ ନାମାନୁସାରେ ଏ ସ୍ଥାନର ନାମ 'ସୁବର୍ଣ୍ଣମେରୁ' ବା 'ସୋନପୁର' ହୋଇଅଛି ଏ ରାଜାମାନଙ୍କ ରାଜଚିହ୍ନ ଚକ୍ର । (ଜଗବନ୍ଧୁ. ପ୍ରାଚୀନ ଉତ୍କଳ ।)

ଏ ରାଜ୍ୟର ଉତ୍ତରରେ ସମ୍ବଲପୁର ଜିଲ୍ଲା, ପୂର୍ବରେ ରେଢ଼ାଖୋଲ ଓ ଆଠମଲ୍ଲିକ, ଦକ୍ଷିଣରେ ବୌଦ୍ଧ ଓ ପଶ୍ଚିମରେ ପାଟନା ରାଜ୍ୟ । ଏହାର ରାଜଧାନୀ ସୋନପୁର ମହାନଦୀ ଓ ଦକ୍ଷିଣ ଦିଗରୁ ଆସି ପଡ଼ିଥିବା ଶାଖା ତେଲ ନଦୀର ସଙ୍ଗମ ସ୍ଥଳରେ ଅବସ୍ଥିତ ମହାନଦୀ କୂଳରେ ସୋନପୁରଠାରୁ ୨୦ ମାଇଲ୍ ଉତ୍ତରରେ ସମ୍ବଲପୁର ନଗର ଅବସ୍ଥିତ । ସୋନପୁର ରାଜ୍ୟ ପୂର୍ବେ ମଧ୍ୟପ୍ରଦେଶର 'ଛତିଶ ଗଡ଼ଜାତ'ର ଅନ୍ତର୍ଭୁକ୍ତ ଥାଇ ଓଡ଼ିଶାର 'ଅଠର ଗଡ଼ଜାତ'ର ବହିର୍ଭୂତ ଥିଲା; କିନ୍ତୁ ସମ୍ବଲପୁର ଅଞ୍ଚଳ ଓଡ଼ିଶାର ରାଜନୀତିକ ସୀମାଭୁକ୍ତ ହେବା ସମୟରୁ ଏହି ରାଜ୍ୟ ଓଡ଼ିଶା ଗଡ଼ଜାତର ଅନ୍ତର୍ଭୁକ୍ତ ହେଲା ଓ ବର୍ତ୍ତମାନ ନବ ଓଡ଼ିଶା ପ୍ରଦେଶର ବହିର୍ଭୂତ । ଏହା ବର୍ତ୍ତମାନ ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ୍ ଏଜେନ୍ସି ବିଭାଗର 'ଓଡ଼ିଶା ଷ୍ଟେଟ୍‌ସ୍'ର ଅନ୍ତର୍ଗତ ରାଜ୍ୟ ହୋଇଅଛି । ଏହି ରାଜ୍ୟର ବର୍ତ୍ତମାନ ମହାରାଜା ସୁଧାଂଶୁ ଶେଖର ସିଂହ ଦେବଙ୍କ ପିତା ସ୍ୱର୍ଗତ ଶ୍ରୀ ସାର୍ ବୀର-ମିତ୍ରୋଦୟ ଧର୍ମସିଂହ ଦେବ କେ. ସି, ଅଇ. ଇ. ଧର୍ମନିଷ୍ଠ

ଜ୍ଞାନଗୁଣାକର ସ୍ୱୀୟ ବଦାନ୍ୟତା, ଧର୍ମଶୀଳତା, ବିଦ୍ୟାନୁରାଗ, ସାହିତ୍ୟସେବା, ରାଜଭକ୍ତି ଓ ପାଣ୍ଡିତ୍ୟାଦି ଗୁଣରେ ଉତ୍କଳରେ ଓ ଭାରତରେ ସର୍ବତ୍ର ସୁପରିଚିତ ଓ ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ବିଶେଷ ରୂପେ ସମ୍ମାନିତ ହୋଇଥିଲେ । ଏହାଙ୍କ ଅମଳରେ 'ମହାରାଜା' ଉପାଧି ଏହାଙ୍କର ବଂଶଗତ ଉପାଧି ରୂପେ ସରକାର ମଞ୍ଜୁର କରି ଅଛନ୍ତି । ଓଡ଼ିଆ ଭାଷାର ଓ ସାହିତ୍ୟର ଉନ୍ନତି କାମନାରେ ଏ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆରେ ଏମ୍. ଏ. ପର୍ଯ୍ୟନ୍ତ ଶିକ୍ଷା ଦିଆଯିବା ପାଇଁ ସ୍ଥାୟୀ ବ୍ୟବସ୍ଥା କରି ଯାଇ ଅଛନ୍ତି ଓ ଏହାଙ୍କର ସହଧର୍ମିଣୀ ମହାରାଣୀ ଶ୍ରୀମତୀ ପାର୍ବତୀ ଦେବୀ କଟକ ରେଭେନ୍ସା କଲେଜରେ ଓଡ଼ିଆ ଶିକ୍ଷାର ପ୍ରସାର ପାଇଁ ବହୁ ସହସ୍ର-ମୁଦ୍ରା ଦାନ କରି ଅଛନ୍ତି । ସ୍ୱର୍ଗତ ମହାରାଜ ନିଜେ ଅନେକ-ଗୁଡ଼ିଏ ପୁସ୍ତକ ରଚନା ଓ ଅନୁବାଦ କରିଥିଲେ ଓ ଏହାଙ୍କ ଆନୁକୂଲ୍ୟରେ ପ୍ରାଚୀନ ଓ ଆଧୁନିକ ଉତ୍କଳ ସାହିତ୍ୟରୁ ନିର୍ବାଚିତ ଗଦ୍ୟ ଓ ପଦ୍ୟ ଅଂଶମାନ ସଙ୍କଳନ କରି Selections from Oriya Literature ୩ ଖଣ୍ଡ ଶ୍ରୀଯୁକ୍ତ ବିଜୟଚନ୍ଦ୍ର ମଜୁମଦାର ସଙ୍କଳନ କଲେ; ଏତଦ୍ୱାରା ଉତ୍କଳ ସାହିତ୍ୟରେ ଗୋଟିଏ ସ୍ଥାୟୀ କୀର୍ତ୍ତି-ସ୍ତମ୍ଭ ସ୍ଥାପିତ ହୋଇଅଛି । ସ୍ୱର୍ଗତ ମହାରାଜଙ୍କର ଉତ୍କଳ ଭାଷା ଛଡ଼ା, ହିନ୍ଦି, ସଂସ୍କୃତ, ବଙ୍ଗଳା ଆଦି ବହୁ ଭାଷାରେ ପାଣ୍ଡିତ୍ୟ ଥିଲା । ବିହାରୋତ୍କଳରେ ପ୍ରତ୍ନତତ୍ତ୍ୱ ଗବେଷଣା କାର୍ଯ୍ୟରେ ମହାରାଜା ବିଶେଷ ଯତ୍ନବାନ୍ ଥିଲେ । ଦେଶ-ସେବା ସଙ୍ଗେ ନିଜ ରାଜ୍ୟର ବୈଷୟିକ, ବ୍ୟାବସାୟିକ ଓ ଶାସନଗତ ଉନ୍ନତିରେ ସ୍ୱର୍ଗତ ମହାରାଜ ସର୍ବଦା ବ୍ରତୀ ଥିଲେ ।] ୨ । ପାଟନା ରାଜଧାନୀର ନିକଟସ୍ଥ ପ୍ରସିଦ୍ଧ ମେଳାର ସ୍ଥାନ (ସୋନପୁର ମେଳା ଦେଖ)—2. Name of a place near Patna in Bihar.

ସୋନପୁର ମେଳା—ଦେ. ବି—ବିହାର ପ୍ରଦେଶର ରାଜଧାନୀ ପାଟନା
Sonapura melā ନିକଟସ୍ଥ ସୋନପୁରଠାରେ ହେବା ପ୍ରସିଦ୍ଧ ମେଳା—The celebrated annual fair held at Sonepur near Patna.

[ ଦ୍ର—ବିହାରର ରାଜଧାନୀ ପାଟଣା ନିକଟବର୍ତ୍ତୀ ଗଣ୍ଡକୀ ନଦୀ ଗଙ୍ଗାରେ ପଡ଼ିବାସ୍ଥାନର ନିକଟସ୍ଥ (ପାଟନା ସହରର ବିପରୀତ ଦିଗରେ ୩୨ ମାଇଲ୍) ସୋନପୁର ନାମକ ସ୍ଥାନରେ ଏହି ମେଳା ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣିମା ଦିନ ବସେ । ଏହାକୁ ହରିହର ଛତ୍ର ମେଳା ବୋଲାଯାଏ । ଏହା ପୂର୍ଣ୍ଣିମାର ପ୍ରାୟ ୧୫ ଦିନ ପୂର୍ବରୁ ବସେ ଓ ପୂର୍ଣ୍ଣିମାର ୧୫ ଦିନ ପରେ ଭାଙ୍ଗେ । ସୁତରାଂ ଏହି ମେଳା ମାସେ କାଳ ରହେ । ଏପରି ବଡ଼ ମେଳା ଭାରତରେ ଅଦ୍ୱିତୀୟ । ଗଙ୍ଗା ଓ ଗଣ୍ଡକୀ ସଙ୍ଗମରେ ସ୍ନାନଯୋଗ ଏ ସମୟରେ ପଡ଼େ । ଏଠାରେ ସ୍ନାନ କରିବା ଲାଗି ବହୁ ସହସ୍ର ସାଧୁ ସନ୍ନ୍ୟାସୀ ଏଠାକୁ ଆସନ୍ତି । ଏହାକୁ ଇଂରେଜିରେ Sonepur Fair କହନ୍ତି । ଶତ ଶତ ହସ୍ତୀ, ଅଶ୍ୱ, ସହସ୍ର ସହସ୍ର ଗାଈ, ବଳଦ ବିକ୍ରୟ ନିମିତ୍ତ ଏଠାକୁ ଆସନ୍ତି । ଏମାନଙ୍କ ରହିବା ଲାଗି ଭିନ୍ନ ଭିନ୍ନ ସ୍ଥାନ ନିର୍ଦ୍ଦିଷ୍ଟ ହୋଇଥାଏ । ଏତେ ବହୁତ ହାତୀ, ଘୋଡା, ଗାଈ ଏକ ସ୍ଥାନରେ ଦେଖିବା ଭାରତରେ ଅନ୍ୟତ୍ର ସମ୍ଭବ ନୁହେ । ଲେଖକ ଏହି ମେଳା ଦେଖିଅଛି । କ୍ଷୁଦ୍ର ହାତୀଛୁଆ ଠାରୁ ଆରମ୍ଭ କରି ଅତ୍ୟନ୍ତ ବୃଦ୍ଧହାତୀ ପର୍ଯ୍ୟନ୍ତ ଏଠାକୁ ବିକ୍ରୀ ହେବା ପାଇଁ ଆସନ୍ତି । ଯେ ବୁଢ଼ାହାତୀ କିଣନ୍ତି ସେ କେବଳ ଏହାର ବହୁମୂଲ୍ୟ ହାଡ ଓ ଦାନ୍ତ ପାଆନ୍ତି । ଏ ମେଳାକୁ ଭାରତର ଭିନ୍ନ ଭିନ୍ନ ସ୍ଥାନରୁ ଅନେକ ଲୋକ ଉତ୍କୃଷ୍ଟ ବଳଦ ଓ ଉତ୍କୃଷ୍ଟ ଗାଈ ଓ ଉତ୍କୃଷ୍ଟ ଘୋଡ଼ା କିଣିନେବା ଲାଗି ଆସନ୍ତି । ଭାରତର ପ୍ରତ୍ୟେକ ଅଂଶରୁ ଏବଂ ଭାରତର ବାହାରୁ ମଧ୍ୟ ଲୋକେ ଏହି ମେଳାକୁ ଆସନ୍ତି । ଅନେକ ସାହେବ, ମେମ୍ ଏ ମେଳାକୁ ଦେଖିବାଲାଗି ଯାଆନ୍ତି । ନାନା ଜାତୀୟ ପଶୁ, ପକ୍ଷୀ ବ୍ୟତୀତ ସବୁପ୍ରକାର କଳପ୍ରସୂତ ଓ ହସ୍ତ ନିର୍ମିତ ଶିଳ୍ପ ବସ୍ତୁମାନ ଏଠାକୁ ବିକ୍ରୀ ନିମିତ୍ତ ଆସିଥାଏ । ବହୁତ ହୋଟେଲ୍, ମିଷ୍ଟାନ୍ନଦୋକାନ, ସିନେମା, ଥିଏଟର୍ ଆମୋଦ ଲାଗି ସର୍ବଦା ଉନ୍ମୁକ୍ତ ଥାଏ । ଯେଉଁମାନେ ପାଟନାରୁ ଯାଆନ୍ତି ସେମାନେ ଷ୍ଟୀମର୍‌ରେ ଗଙ୍ଗା ପାରି ହେବା ପରେ ରେଲରେ ବସନ୍ତି । କେବଳ ଏହି ମେଳା ଲାଗି ଗୋଟିଏ ସାମୟିକ ରେଲଲାଇନ୍ ଗଙ୍ଗା ବାଲିରେ ନିର୍ମିତ ହୁଏ ଓ ଏହା ଷ୍ଟୀମର୍ ଘାଟଠାରୁ ଯାତ୍ରୀମାନଙ୍କୁ ଏହି ମେଳା ପର୍ଯ୍ୟନ୍ତ ନେଇଯାଏ । ବହୁତ ସଶସ୍ତ୍ର ପୁଲିସ ଓ ସେବାସଂଘର ସ୍ୱେଚ୍ଛାସେବକ ଶାନ୍ତିରକ୍ଷା ଓ ଯାତ୍ରୀମାନଙ୍କୁ ନାନାରୂପେ ସାହାଯ୍ୟ କରନ୍ତି ।

ସନ୍ଦର୍ଭ ଲେଖକ—
ଶ୍ରୀ ଜଗନ୍ନାଥ ନନ୍ଦପାଠୀ, ବି. ଏ., ବି. ଟି । ]

ସୋନଭଦ୍ରା—ଦେ· ବି—ଶୋଣ (ଦେଖ)
Sonabhadrā Śoṇa (See)

ସୋନହ—ସଂ. ବି—ଲସୁନ; ରସୁଣ (ଶବ୍ଦ ରତ୍ନାବଳୀ)—
Sonaha Garlic.

ସୋନାରଙ୍ଗ—ଦେ. ବି—ଆରଣ୍ୟବୃକ୍ଷ ବିଶେଷ—
Sonāraṅga Sonāraṅga Kukurbichā; Grewia Hirsuta (wild tree).

ସୋନାଲି—ଦେ. ବି (ବଙ୍ଗଳାରୁ ଅନୁକୃତ)—୧ । ସୁବର୍ଣ୍ଣ ମଣ୍ଡିତ—
Sonāli 1. Set with gold. ୨। ସ୍ୱର୍ଣ୍ଣବର୍ଣ୍ଣ ବିଶିଷ୍ଟ; ସୁନେଲି—
সোনালী 2. Of golden colour. ୩ । ସୁବର୍ଣ୍ଣମୟ—
ସୁ(ସୋ)ନହଲା 3. Golden.

ସୋନ୍ନା—ପ୍ରାଦେ ( ମେଦିନାପୁର ) ବି—(ସଂ. ସନ୍ଦଂଶ)—ସଣ୍ଡୁଆସି;
Sonnā ବଣିଆର ଚିମୁଟା—Pincers.

ସୋନ୍ମାଦ—ସଂ. ବିଣ (ସହାର୍ଥ ବହୁବ୍ରୀହି; ସ+ଉନ୍ମାଦ)—
Sonmāda ୧। ଉନ୍ମାଦଗ୍ରସ୍ତ; ଉନ୍ମତ୍ତଚିତ୍ତ—1. Maddened;
(ସୋନ୍ମାଦା—ସ୍ତ୍ରୀ) become insane; suffering from brain derangement. ୨ । ମତ୍ତ—2. Intoxicated.

ସୋପ୍—ବୈଦେ· ବି (ଇଂ.)—ସାବୁନ୍—
Sop সোপ্ सोप Soap.

ସୋପ୍‌ଷ୍ଟୋନ୍—ପ୍ର.ଦେ (କେନ୍ଦୁଝର) ବି—ଖଡ଼ିପଥର—
Sop-shṭon Soap-stone.
[ଦ୍ର—ଏହା ଇଷତ୍ ଧଳା । ଏଥିରେ ସୁନ୍ଦର ପଥୁରି, ଥାଳ, ଗ୍ଲାସ୍, ଡିବା ପ୍ରସ୍ତୁତ ହୁଏ ।
କ୍ଷେତ୍ରମୋହନ· କେନ୍ଦୁଝର ଭୂଗୋଳ ।]

ସୋପକରଣ—ସଂ. ବିଣ (ସହାର୍ଥେ· ବହୁବ୍ରୀହି; ସ+ଉପକରଣ)—
Sopakaraṇa ଉପକରଣ ବିଶିଷ୍ଟ—Having the materials.

ସୋପକାର—ସଂ· ବିଣ ( ସହାର୍ଥ ବହୁବ୍ରୀହି; ସ +ଉପକାର )—
Sopakāra ଉପକାରଯୁକ୍ତ—Accompanied with benefit.

ସୋପଧ—ସଂ. ବି (ସ+ଉପଧା)—ସଚ୍ଛଦ୍ମଦାନ; ଅନ୍ୟ ଲୋକଙ୍କୁ ଶୁଣାଇ
Sopadha କରି ଲୋକସମ୍ଭାବନାର୍ଥ କରାଯିବା ଦାନ (ଶୁଦ୍ଧି-ତତ୍ତ୍ୱ)—A donation or gift given with a view to court public applause.

ସୋପପ୍ଲବ—ସଂ. ବି (ସହାର୍ଥ ବହୁବ୍ରୀହି; ସ+ଉପପ୍ଲବ=ରାହୁ)—
Sopaplaba ରାହୁଗ୍ରସ୍ତ (ଚନ୍ଦ୍ର ବା ସୂର୍ଯ୍ୟ)—The sun or moon undergoing an elcipse.

ସୋପବାସ—ସଂ· ବିଣ (ପୁଂ) (ସହାର୍ଥ ବହୁବ୍ରୀହି; ସ+ଉପବାସ)—
Sopabāsa ଉପବାସଯୁକ୍ତ; ଉପବାସୀ—Fasting.
(ସୋପବାସା—ସ୍ତ୍ରୀ)

ସୋପବୀତ—ସଂ· ବିଣ. ପୁଂ (ସହାର୍ଥ ବହୁବ୍ରୀହି; ସ+ଉପବୀତ)—ପଇତା
Sopabīta ପରିହିତ—Wearing or bearing the sacred thread.

ସୋପରଦ୍(ଦ୍ଦ)—ବୈଦେ· ବିଣ—ସୁପରଦ୍ (ଦେଖ)—
Soparad(dd) Suparad (See)
[ସୋପର୍ଦ୍ଦ(ର୍ଦ୍ଦ)—ଅନ୍ୟରୂପ]

ସୋପାକ—ସଂ. ବି—୧ । [ଶ୍ୱପାକର ଅନ୍ୟରୂପ (ଶବ୍ଦକଳ୍ପଦ୍ରୁମ)]—
Sopāka ଶ୍ୱପକ୍ (ଦେଖ)—1. Śwapak (See).
[ଦ୍ର—ଚଣ୍ଡାଳ ପିତା ଓ ପୁକ୍କସଜାତୀୟା ମାତା ଗର୍ଭୋତ୍ପନ୍ନ ସନ୍ତାନଙ୍କୁ ସୋପାକ କୁହାଯାଏ ( ହି· ଶ )—୨ । ବନୌଷଧି ବିକ୍ରେତା ( ହି· ଶ )—2. A seller of herbs

ସୋପାଧି—ସଂ. ବିଣ (ସ+ଉପାଧି)—୧ । ଉପାଧିଯୁକ୍ତ—1. Titled.
Sopādhi ୨ । ପ୍ରତିଦାନପ୍ରତ୍ୟାଶାପ୍ରଣୋଦିତ (ଦାନାଦି)—
( ସୋପାଧିକ—ଅନ୍ୟରୂପ ) 2. (gift etc) Done with a view to getting something in return.

ସୋପାନ—ସଂ. ବି (ସହ+ଉପ=ଊର୍ଦ୍ଧ୍ୱ+ଅନ୍ ଧାତୁ=ଗମନ କରିବା
Sopāna +କରଣ ଅ)—୧ । ଅଧିରୋହଣୀ; ସିଡ଼ୀ; ପାବଚ୍ଛ; ପାହାଚ—1. Steps ଦ୍ର—ଇଷ୍ଟକ ବା ପାଷାଣ ଦ୍ୱାରା ନିର୍ମିତ ଅଧିରୋହଣୀକୁ ସୋପାନ (ପାହାଚ) ଓ କାଷ୍ଠବଂଶାଦି ନିର୍ମିତ ଅଧିରୋହଣୀକୁ ନିଃଶ୍ରେଣୀ ବା ଅଧିରୋହଣୀ ( ନିଶୁଣି ) କୁହାଯାଏ—ଶବ୍ଦରତ୍ନାବଳୀ । ]
୨ । କ୍ରମଶଃ ଉଚ୍ଚ ବା ନିମ୍ନକୁ ଥିବା ସ୍ତରମାନ—
2. Gradually high or low layers; grade.
ସୁଲଭ सुलभ ଦେ· ବିଣ—ସୁଲଭ; ଅନୁକୂଳ; ପ୍ରସନ୍ନ—Favourable. (ଦ୍ର—ଯାନର ବାଲିକି କେ ବୋଲେ କରି ନାହିଁ ମୁଁ ଯାନ, ଯାନ ଭାଙ୍ଗି ଭାଙ୍ଗି ହାଥ ଗୋ ମୋତେ ହୋଇ ସୋପାନ—କନ୍ଧାର ବୋଲି ।]

ସୋପାନ ପରମ୍ପରା(ଶ୍ରେଣୀ)—ସଂ. ବି—ବହୁ ପାବଚ୍ଛଯୁକ୍ତ ଅଧିରୋହଣୀ—
Sopāna paramparā(śreṇi Flight of steps.
[ସୋପାନାବଳି(ଳୀ)—ଅନ୍ୟରୂପ]

ସୋପେନ୍‌ହାଉଆର୍—ଦେ. ବି ( ଜର୍ମାନ୍ ନାମ)—ଜର୍ମାନଦେଶୀୟ
Sopen-hāuār ଜଣେ କି ସ୍ୱର୍ଗତ ସଂସ୍କୃତ ପଣ୍ଡିତ—
সোপেন্‌হাউআৰ सोपेनहाउआर Arthur Schopenhour; late famous German philosopher. [ଦ୍ର—ଏହାଙ୍କର ଜନ୍ମ ଖ୍ରୀ ୧୭୮୮ ରେ ଓ ମୃତ୍ୟୁ ଖ୍ରୀ ୧୮୬୦ ରେ । ଏ ଜଗତର ଦୁଃଖବାଦ (Pessimism) ର ଜଣେ ପ୍ରଧାନ ବ୍ୟାଖ୍ୟାତା ଥିଲେ । ଏ ଉପନିଷଦ ପାଠ କରି କହିଥିଲେ ଯେ, ଏହା ମତେ ଜୀବନରେ ଶାନ୍ତି ପ୍ରଦାନ କରୁଅଛି ଓ ମୃତ୍ୟୁ ପରେ ଶାନ୍ତି ପ୍ରଦାନ କରିବ ।]

ସୋଫ(ଫେ)ଦ୍—ଗ୍ରା· ବିଣର ବିଣ—[ ଫା. ସଫେଦ୍‌ର ଅଶୁଦ୍ଧ
Sopha(phe)d ଉଚ୍ଚାରଣ]—ସମ୍ପୂର୍ଣ୍ଣରୂପେ—Fully
বিলকুল बिलकुल [ଯଥା—ସୋଫଦ୍ ଧଳା, ସୋଫେଦ୍ କଳା ଇତ୍ୟାଦି ।]

ସୋବତ—ବୈଦେ, ବି [ଆ. ସୋହବତ]—୧ । ସହବାସ—
Sobat 1. Living together. ୨ । ସଂସର୍ଗ—
সোহবত सोहबत 2. Intimate connection. ୩ । ସଙ୍ଗ—3. Companionship, ୪ । ବନ୍ଧୁତା—4. Friendship. ୫ । ମୈଥୁନ; ଯୌନ ସଙ୍ଗମ—5. Cohabitation. ୬ । (ଫା. ମୋହବତ୍) ବନ୍ଧୁଜନଙ୍କ ଉପରୋଧ ବା ଚକ୍ଷୁଲଜ୍ଜା—6. Sensitiveness to the feelings or requests of friends.

ସୋବତିଆ—ଦେ· ବିଣ· ପୁଂ—୧ । ଯେଉଁ ବ୍ୟକ୍ତି ସାଙ୍ଗସୁଖ ବା ବନ୍ଧୁ-
Sobatiā ମାନଙ୍କ ସଙ୍ଗେ ସର୍ବଦା ଚଳିବାକୁ ସୁଖ ପାଏ—
সোহবতী सोहबतकरनेवाला Loving company of friends. ୨ । ଯେଉଁ ବ୍ୟକ୍ତି ବନ୍ଧୁମାନଙ୍କର ଅନୁରୋଧ ଉପରୋଧ ଭାଙ୍ଗି ପାରେ ନାହିଁ—2. Obliging to friends.
[ସୋହବତୀ (ପୁଂ ଓ ସ୍ତ୍ରୀ)—ଅନ୍ୟରୂପ]

ସୋବାକ—ସଂ. ବି—ସୁହାଗା (ହି. ଶ)—
Sobāka Borax.

ସୋବାଳ—ସଂ. ବଣ—ଧୂମ୍ରବର୍ଣ୍ଣବିଶିଷ୍ଟ (ହି. ଶ.)
Sobāla Having the colour of smoke,

ସୋବି(ଭି)ତା—ତ୍ରା· ବଣ (ସଂ· ସୁବିଧା)—ସୁବିଧାଜନକ—
Sobi(bhi)tā সুবিধা सुबीता Convenient.
ବି—ସୁବିଧା—Convenience.

ସୋବେ(ଭେ)—ବୈଦେ. ବି (ଫା. ସୁବେ)—୧ । ସୁବେ (ଦେଖ)—
Sobe(bhe) 1. Sube (See) ୨ । ସନ୍ଦେହ—
সকাল सुबह 2. Suspicion; doubt.
সন্দেহ सुभा

ସୋଭାଞ୍ଜନ—ସଂ. ବି—ଶୋଭାଞ୍ଜନର ରୂପାନ୍ତର (ଭରତ)—ଶୋଭାଞ୍ଜନ
Sobhānjan (ଦେଖ)—Śobhānjana (See)

ସୋଭିଏଟ୍—ବୈଦେ. ବି (ଇଂ)—ରୁଷିଆ ଦେଶରେ ଜାରଙ୍କ ରାଜତ୍ୱ
Sobhiet ପରେ ପ୍ରଚଳିତ ସାଧାରଣତନ୍ତ୍ର ଶାସନ—Soviet
সোভিয়েট सोभियट (of modern Russia).

ସୋମ—ସଂ· ବି (ସୁ. ଧାତୁ=ପ୍ରସବ କରିବା+କର୍ତ୍ତି· ମ; ଯାହା
Soma ଅମୃତ ପ୍ରସବ କରେ)—୧ । (ପୁଂ) ଚନ୍ଦ୍ର (ଅମର)—
1. The moon. [ଦ୍ର—ବ୍ରହ୍ମାଙ୍କ ମାନସପୁତ୍ର ଅତ୍ରିଙ୍କ ପୁତ୍ର ସୋମ । ଏ ଦକ୍ଷଙ୍କର ୨୭ଟି କନ୍ୟା (ନକ୍ଷତ୍ର)ଙ୍କୁ ବିବାହ କରିଥିଲେ । ଏହି ୨୭ ପତ୍ନୀଙ୍କ ମଧ୍ୟରେ ରୋହିଣୀ ଶ୍ରେଷ୍ଠା । ସୋମ ଅନ୍ୟ ସ୍ତ୍ରୀମାନଙ୍କୁ ଅନାଦର କରି ରୋହିଣୀଙ୍କଠାରେ ଆସକ୍ତ ହେବାରୁ ସେମାନେ ଦକ୍ଷଙ୍କ ନିକଟରେ ଅଭିଯୋଗ କଲେ । ଦକ୍ଷଙ୍କ ଶାପରେ ସୋମ ବିନାଶପ୍ରାପ୍ତ ହେବାରୁ ସମଗ୍ର ବ୍ରହ୍ମାଣ୍ଡ ଉଚ୍ଛନ୍ନ ହେବାକୁ ବସିଲା । ଦେବତାମାନେ ଏହା ଦେଖି ବିଷ୍ଣୁଙ୍କ ଶରଣ ପଶିଲେ ଓ ବିଷ୍ଣୁଙ୍କ ଆଜ୍ଞାରେ ଦେବାସୁରମାନେ ସମୁଦ୍ରକୁ ମନ୍ଥନ କରିବାରୁ ସମୁଦ୍ରରୁ ସୋମ (ଚନ୍ଦ୍ର)ପୁଣି ଜାତ ହେଲେ । ସୋମଙ୍କର ୧୬ କଳା ମଧ୍ୟରୁ ପୂର୍ଣ୍ଣିମା ପରଠାରୁ ଅମାବାସ୍ୟା ପର୍ଯ୍ୟନ୍ତ ଗୋଟିଏ ଗୋଟିଏ କଳାକୁ ଦେବତାମାନେ ପାନ କରନ୍ତି ଓ ଶେଷରେ ଗୋଟିଏ କଳା ରହିଯାଏ; ତାହା ଯାଇ ସୂର୍ଯ୍ୟମଣ୍ଡଳରେ ପଶିଯାଏ; ଏବଂ ଶୁକ୍ଳପକ୍ଷରେ ସୂର୍ଯ୍ୟ ପ୍ରତିରାତିରେ ସୋମଙ୍କଠାରେ ଗୋଟିଏ ଲେଖାଏଁ କଳା ଯୋଗ କରି ପୂର୍ଣ୍ଣିମା ସୁଦ୍ଧା ସୋମଙ୍କୁ ପୂର୍ଣ୍ଣ ୧୬ କଳାଯୁକ୍ତ କରନ୍ତି । ସୋମ ବାୟୁକୋଣ, ସ୍ତ୍ରୀ, ବୈଶ୍ୟଜାତି, ସତ୍ତ୍ୱଗୁଣ, ଲବଣରସ, ମୃଗଶିର ନକ୍ଷତ୍ର ଓ ସମୁଦ୍ରମାନଙ୍କରେ ଅଧିପତି ଅଟନ୍ତି । ପୁରାଣ ମତରେ ଏହାଙ୍କ ଶରୀର ଏକହସ୍ତପ୍ରମାଣ, ପରିଧାନ ଶ୍ୱେତବସ୍ତ୍ର, ବର୍ଣ୍ଣ ଶୁକ୍ଳ; ଏହାଙ୍କର ଏକ ହସ୍ତରେ ବର ନାମକ ଅସ୍ତ୍ର ଓ ଅନ୍ୟ ହସ୍ତରେ ଗଦା । ଏହାଙ୍କ ରଥର ଅଶ୍ୱସଂଖ୍ୟା ୧୦ । ଏ ଶ୍ୱେତପଦ୍ମମଧ୍ୟସ୍ଥିତ, ଉମାଧିଦୈବତ, ଜଳ ପ୍ରତ୍ୟାଧି- ଦୈବତ ଓ ସୂର୍ଯ୍ୟାଭିମୁଖ । ସୋମ ଔଷଧିମାନଙ୍କୁ ପୁଷ୍ଟ କରନ୍ତି । ଏହି ଔଷଧିକୁ ଗାଭୀମାନେ ଭକ୍ଷଣ କରି ଦୁଗ୍ଧ ଦିଅନ୍ତି । ଏହି କ୍ଷୀର ଅମୃତରୂପ ଧାରଣ କରିବାରୁ ବ୍ରାହ୍ମଣମାନେ ଏତଦ୍ୱାରା ହୋମ (ଯଜ୍ଞ) କରନ୍ତି ଓ ହୋମଦ୍ୱାରା ସୋମଙ୍କର କଳାମାନ ବୃଦ୍ଧି ହୁଏ ଓ ଉକ୍ତ କଳାମାନଙ୍କୁ ଦେବତାମାନେ ପାନ କରି ଜୀବନଧାରଣ କରନ୍ତି । ସୋମଙ୍କ ଔରସରେ ଗୁରୁପତ୍ନୀ ତାରାଙ୍କ ଗର୍ଭରୁ ବୁଧଗ୍ରହ ଜନ୍ମ ହୋଇଥିଲେ । ସୋମ ସମ୍ବନ୍ଧେ ଅନ୍ୟ ଜ୍ଞାତବ୍ୟ ବିଷୟ ପାଇଁ ଚନ୍ଦ୍ର ତଳେ ଟୀକା ଦେଖ ।] ୨ । (କ୍ଲୀ) ସ୍ୱର୍ଗ (ଶବ୍ଦ କଳ୍ପଦ୍ରୁମ)—2. Heaven. ୩ । (ପୁଂ) କର୍ପୂର (ଅମର)—3. Camphor. ୪ । (କ୍ଲୀ) କାଞ୍ଜିକ (ଶବ୍ଦ କଳ୍ପଦ୍ରୁମ)—4. Fermented rice water. ୫ । (ପୁଂ) ବାନର (ମେଦିନୀ)—5. Monkey. ୬ । (ପୁଂ) କୁବେର ( ମେଦିନୀ )—6. The God of riches. ୭ । (ପୁଂ) ଯମ (ମେଦିନୀ)—7. The God of death. ୮ । (ପୁଂ) ବାୟୁ (ମେଦିନୀ)—8. The wind; air. ୯ । (ପୁଂ) ବସୁଭେଦ (ମେଦିନୀ)—9. One of the 8 Basu class of Deities. ୧୦ । (ପୁଂ) ଜଳ (ମେଦିନୀ)—10. Water. ୧୧ । (ପୁଂ) ସୋମଲତା (ମେଦିନୀ)—11. The Soma creeper. ୧୨ । (ପୁଂ) ଶିବ [ଉଣାଦିକୋଷ]—12. God Śiba. ୧୩ । [ପୁଂ] ଦୀଧିତି; କିରଣ [ମେଦିନୀ]—13. Ray or beam of light. ୧୪ । [ପୁଂ] ଦିବ୍ୟୌଷଧି [ହେମ- ଚନ୍ଦ୍ର]—14, A heavenly herb. ୧୫ । [ପୁଂ] ସୋମଲତାର ରସ [ହେମଚନ୍ଦ୍ର]—15, The juice of the Soma plant. ୧୬ । [ପୁଂ]ଅମୃତ [ଶବ୍ଦ କଳ୍ପଦ୍ରୁମ] —16. Nectar. ୧୭ । [ପୁଂ] ପର୍ବତ ବିଶେଷ [ଶବ୍ଦ- କଳ୍ପଦ୍ରୁମ ] ସୋମଗିରି (ଦେଖ)—17, Name of a mythological mountain. ୧୮ । ବୈଦିକ କାଳରେ ଆରାଧିତ ଦେବବିଶେଷ (ହି.ଶ)—18. One of the Vedic Deities. [ଦ୍ର—ଋଗ୍ବେଦରେ ଏହାଙ୍କର ଅନେକ ସ୍ତୁତି ଅଛି । ଇନ୍ଦ୍ର ଓ ବରୁଣଙ୍କ ପରି ଏହାଙ୍କର ମାନବୀୟ ରୂପ କଳ୍ପିତ ହୋଇ ନ ଥିଲା । ଏ ସୂର୍ଯ୍ୟଙ୍କ ପରି ପ୍ରକାଶମାନ, ବହୁ ବେଗବାନ୍, ଜେତା, ଯୋଦ୍ଧା । ଏ ଅନ୍ନ, ସମ୍ପତ୍ତି ଓ ଗୋଧନଦାନକାରୀ ବୋଲି କଳ୍ପିତ । ଏ ଇନ୍ଦ୍ରଙ୍କ ସଙ୍ଗେ ଇନ୍ଦ୍ରଙ୍କ ରଥରେ ବସି ଯୁଦ୍ଧକୁ ଯାଉଥିଲେ ଓ କେଉଁ କେଉଁ ସ୍ଥଳରେ ଏ ଇନ୍ଦ୍ରଙ୍କ ସାରଥି ଥିଲେ ବୋଲି କଳ୍ପିତ । ଆର୍ଯ୍ୟମାନଙ୍କ ଇରାଣୀ ଶାଖାର ବ୍ୟକ୍ତି- ମାନେ ମଧ୍ୟ ଏହାଙ୍କୁ ପୂଜା କରୁଥିଲେ । ଜେନ୍ଦାବେସ୍ତା ଗ୍ରନ୍ଥରେ ଏହାଙ୍କ ନାମ ହଓମ ବା ହୋମ ହୋଇଅଛି— [ହି ଶ] । ଅଥର୍ବବେଦରେ ଓ ଶତପଥବ୍ରାହ୍ମଣରେ ସୋମ ଦେବତାଙ୍କୁ ଚନ୍ଦ୍ର ବୋଲି ଯାଇଅଛି—[ ବିଶ୍ୱକୋଷ ]। ୧୯ । ସୋମବାର [ ହି. ଶ ]—19. Monday. ୨୦ । ଯଜ୍ଞାର୍ଥ ସୋମରସ ଚୂର୍ଣ୍ଣିତକରି ବାହାର କରିବାର ଦିନ [ହି· ଶ]—20. The day when the juice of the Soma creeper used to be pressed out for Vedic sacrifice ୨୧ । ସୋମଯଜ୍ଞ (ହି. ଶ); ଯେଉଁ ଯଜ୍ଞରେ ସୋମରସ ଆହୁତି ଦିଆଯାଏ—21. Vedic sacrifice in

which the Soma juice is offered unto the fire. ୨୨ । ପିତୃମାନଙ୍କର ଏକ ବର୍ଗ (ହି. ଶ)· 22. A class of the departed souls of the ancestors. ୨୩ । ତେଜ (ହି ଶ)—23. Water in which rice has been boiled ୨୪ । ହନୁମାନଙ୍କ ମତରେ ମାଳକୋଶ ରାଗରେ ଏକ ପୁତ୍ର; ରାଗିଣୀ-ବିଶେଷ (ହି. ଶ)—24. Name of a secondary tune in Hindu music. ୨୫ । ବିବାହିତ ପତି (ହି. ଶ)—25. One's married husband. ୨୬ । ଯଜ୍ଞ ସାମଗ୍ରୀ (ହି. ଶ)—26. Materials or ingredients for a Jajna. ୨୭ । ସ୍ତ୍ରୀରୋଗ-ବିଶେଷ; ସୋମ ରୋଗ (ଦେଖ) (ହି. ଶ)—27. A female disease; the whites. ବିଣ—

ସୋମ ୧ । ଶ୍ୱେତ; ଧଳା—1. White. ୨ । ମନୋହର; सुन्दर—2. Beautiful. ଦେ. ବ—୧ । ଉତ୍ତର

उत्तरदिशा ଦିଗ—1. The north. (ଉ—ସୋମେ ଦୃଷ୍ଟା ଅନିରୁଦ୍ଧ ଦେଖ ଗୋ ସଖି । ପ୍ରାଚୀ· ଉଦ୍ଧବସୀମନ୍ତସ୍ତ୍ର ।) ୨ । ଶୁଆଁ ଲଇ (ଦେଖ)—2. Suān lai (See) [ ଉ—ବାଡ଼ି-ମାନଙ୍କରେ ଫୁଟିଛି ସୋମ ଫୁଲ ଧବଳ । ମଧୁସୂଦନ. ଛନ୍ଦମାଳା ।] ବୈଦେ. ବିଣ (ଫା· ସୁମ୍)—କୃପଣ; କାଞ୍ଚି—

कृपण सोम Miserly; close-fisted.

ସୋମ କ୍ଷୟ—ସଂ. ବି (୬ଷ୍ଠୀ ତତ୍)—ଅମାବାସ୍ୟା—
Soma kshaya Change of the moon.

ସୋମକ୍ଷୀରା(ରୀ)—ସଂ. ବି—୧ । ସୋମଲତା (ଦେଖ)—1. Soma latā (See) ୨ । ସୋମରାଜୀ (ଦେଖ)—2 Soma-rāji (See)

ସୋମଗନ୍ଧକ—ସଂ. ବି—ରକ୍ତପଦ୍ମ (ହି. ଶ)
Somagandhaka The red lotus.

ସୋମଗର୍ଭ—ସଂ. ବି (ବହୁବ୍ରୀହି; ସୋମ ଅଛନ୍ତି ଗର୍ଭରେ ଯାହାର)—
Somagarbha ବିଷ୍ଣୁ (ବିକାଣ୍ଡ ଶେଷ)—Bishnu.

ସୋମଗା—ସଂ· ବି—ସୋମରାଜୀ (ଦେଖ)
Somagā Somarāji (See)

ସୋମ ଗିରି—ସଂ. ବି—ଉତ୍ତର ସମୁଦ୍ରସ୍ଥିତ ଦେବଗଣଙ୍କର ଅଗମ୍ୟ ଓ
Soma giri ଅଲଂଘ୍ୟ ପୁରାଣୋକ୍ତ ପର୍ବତ—1. Name of a mythological impenetrable mountain in the Northern ocean. ୨ । (ରାମାୟଣ କିଷ୍କିନ୍ଧ୍ୟାକାଣ୍ଡ ବର୍ଣ୍ଣିତ) ଦେବାଧିଦେବ ଶଙ୍କରଙ୍କ ଅଳୟ; ପୃଥିବୀର ଉତ୍ତର ସୀମାନ୍ତରେ ଅବସ୍ଥିତ ପର୍ବତ—2. Name of a mountain said to be on the northern frontier of the Universe. ୩ । ସୁମେରୁସ୍ଥ ଚନ୍ଦ୍ର-ପ୍ରତିଫଳିତ ଚନ୍ଦ୍ରାଲୋକ (ବିଶ୍ୱକୋଷ); ମେରୁଜ୍ୟୋତି (ହି. ଶ)—3. Aurora Borialis.

ସୋମ ଗୃଷ୍ଟିକା—ସଂ. ବି—ଶ୍ୱେତ କୁଷ୍ମାଣ୍ଡ ଲତା (ହି· ଶ)
Soma grushtikā The white gourd creeper.

ସୋମ ଗ୍ରହ—ସଂ. ବି—୧ । ଚନ୍ଦ୍ରଗ୍ରହ—1. The planet Moon.
Soma graha ୨ । ଚନ୍ଦ୍ରଗ୍ରହଣ (ହି. ଶ)—2. Lunar eclipse. ୩ । ଅଶ୍ୱରୋଗ ବିଶେଷ (ବିଶ୍ୱକୋଷ)—3. A disease of the horse. [ଦ୍ର—ଏ ରୋଗଗ୍ରସ୍ତ ଅଶ୍ୱ କଷ୍ଟେ, ଅଳ୍ପ ମାତ୍ର ଭୋଜନ କରେ, ଗାତ୍ର ପ୍ରସାରଣ କରି ଶୟନ କରେ; ଅଶ୍ୱର ଅଙ୍ଗମାନ ଶୀତଳ ହୁଏ—ବିଶ୍ୱକୋଷ ।]

ସୋମ ଘୃତ—ସଂ. ବି—ବୈଦ୍ୟଶାସ୍ତ୍ରୋକ୍ତ ପ୍ରକ୍ରିୟାରେ ପ୍ରସ୍ତୁତ ସ୍ତ୍ରୀରୋଗ ଓ
Soma ghruta ରେତୋଦୋଷ ପ୍ରଶମକ ଘୃତବିଶେଷ—A kind of medicinal ghee.

ସୋମ ଚମସ—ସଂ· ବି (ମ· ପ. ଲୋ)—ସୋମରସ ପାନକରିବା ପାତ୍ର—
Soma chamasa A goblet for drinking the Soma juice.

ସୋମଜ—ସଂ. ବିଣ (ସୋମ+ଜନ୍· ଧାତୁ+କର୍ତ୍ତୃ. ଅ)—ଚନ୍ଦ୍ରଠାରୁ
Somaja ଜାତ—Born from the moon. ବି—୧ । ଦୁଗ୍ଧ (ହେମଚନ୍ଦ୍ର)—1. Milk. ୨ । ଗଜ (ତ୍ରିକାଣ୍ଡ)—2. Elephant. ୩ । ବୁଧ ଗ୍ରହ—3. The planet Mercury.

ସୋମତ(ଇତ୍ୟାଦି)—ବୈଦେ. ଗ୍ରା. ବି (ଫା. ସୋହବତ୍)—ସୋହବତ
Somat(etc) ଇତ୍ୟାଦି (ଦେଖ)—Sohabat etc (See)

ସୋମ ତୀର୍ଥ—ସଂ. ବି—ପ୍ରଭାସ ତୀର୍ଥ (ତ୍ରିକାଣ୍ଡ ଶେଷ); ଭାରତର ପଶ୍ଚିମ
Soma tirtha ପ୍ରଦେଶସ୍ଥ ତୀର୍ଥ ବିଶେଷ—Name of a place of pilgrimage in Western India [ଦ୍ର—ଏଠାରେ ସୋମ ବା ଚନ୍ଦ୍ର ସର୍ବକାଳ ତପସ୍ୟା କରି ଯକ୍ଷ୍ମାରୋଗମୁକ୍ତ ହୋଇ ସ୍ୱୀୟ ପ୍ରଭାକୁ ପୁନଃପ୍ରାପ୍ତ ହୋଇ ଥିବାରୁ ଏ ତୀର୍ଥକୁ ସୋମତୀର୍ଥ ବୋଲାଯାଏ । ବୈଶାଖ ମାସ ଶୁକ୍ଳପକ୍ଷ ଦ୍ୱାଦଶୀଦିନ ଏ ଘାଟରେ ସ୍ନାନ କଲେ ମହାପୁଣ୍ୟ ଲାଭ ହୁଏ । ଏହି ସ୍ଥାନ ବର୍ତ୍ତମାନ ବମ୍ବେଇ ପ୍ରେସିଡେନ୍ସି କାଣାଡ଼ା ଉପକୂଳର ବନ୍ଦର ବା ପିଣ୍ଡପୁରୀ ନାମକ ସ୍ଥାନ ନିକଟରେ ଅବସ୍ଥିତ—ବିଶ୍ୱକୋଷ ।] ( ଉ—ଜମ୍ବୁକୂଳରେ ଯେ ସୋମତୀର୍ଥ ବହୁଛନ୍ତି, ତହିଁରେ ସ୍ନାନ କଲେ ଜନମ ତୁଟନ୍ତି । କୃଷ୍ଣସିଂହ. ମହାଭାରତ. ବନ । )

ସୋମତ୍ତ—ଦେ. ବିଣ (ବଙ୍ଗଳାରୁ ଅନୁକୃତ, ସଂ· ସମର୍ଥ)—୧ । (ସ୍ତ୍ରୀ)
Somatta ଗୃହ ସଂସାର କରିବାକୁ ସମର୍ଥ; ଯେ ଜ୍ଞାନ ପାଇଛି;

सोमत्त ଯୌବନବତୀ; ବଡ଼ ହୋଇ (କନ୍ୟା)—1. A young and

समर्थ matured (girl)· ୨ । (ପୁଂ ଓ ସ୍ତ୍ରୀ) ହୃଷ୍ଟପୁଷ୍ଟ—2.

हृष्टपुष्ट stout and strong; buxom· ୩ । ଯୁବା—

युवा 3. Young· [ ଯଥା—ସୋମତ୍ତ· ଅଣ୍ଡିରା, ସୋମତ୍ତ ଝିଅ ।]

ସୋମ ଦତ୍ତ—ସଂ. ବି (ନା.ମ)—ପ୍ରାଚୀନ ଭାରତର ଜଣେ ରାଜା—
Soma datta Name of a king of ancient India. [ ଦ୍ର—ଏହାଙ୍କ ପିତା ବାହ୍ଲିକ ଓ ପୁତ୍ର ଭୂରିଶ୍ରବା । ଦେବକରାଜକନ୍ୟା ଦେବକୀଙ୍କ ସ୍ୱୟମ୍ବର ସଭାରେ ଏ ଉପସ୍ଥିତ ଥିଲେ; ଯଦୁବଂଶୀୟ ଶୂର ଶିନି ବସୁଦେବଙ୍କ ପାଇଁ ଦେବକୀଙ୍କୁ ବଳପୂର୍ବକ ହରଣ କରିବାକୁ ଉଦ୍ୟତ ହେବାରୁ

ଏ ଶିଳକ୍କୁ ବାଧା ଦେଲେ, କନ୍ତୁ ପରସ୍ତ ହୋଇ ସଙ୍ଗରେ ଶିଳକଠାରୁ ଘୋଡଠା ଖାଇଲେ । ଏହି ଅପମାନରେ ଏ ମ୍ରିୟମାଣ ହୋଇ ତପସ୍ୟା କଲେ ଓ ମହାଦେବଙ୍କଠାରୁ ବର ପାଇଲେ ଯେ, ଏହାଙ୍କ ପୁତ୍ର ଶିଳକ ପୌତ୍ରଙ୍କୁ ପରସ୍ତ କର ଗୋଘଠା ମାରବେ । ମହାଭାରତ ଯୁଦ୍ଧରେ ଏ କୌରବମାନଙ୍କ ପକ୍ଷରେ ଯୁଦ୍ଧ କର ଚତୁର୍ଦ୍ଦଶ ଦବସର ନଶାଯୁଦ୍ଧରେ ଶାତ୍ୟକକଦ୍ୱାର୍ ନହତ ହୋଇଥିଲେ । ]

ସୋମ ଦେ(ଦୈ)ବତ—ସଂ.ବଣ—ଯାହାର ଅଧିଷ୍ଠାତ୍ରୀ ଦେବତା ସୋମ—
Soma de(dai)bata Having soma as its titular Deity. ସଂ. ବଣ—ମୃଗଶିର ନକ୍ଷତ୍ର—The 5th asterism.

ସୋମ ଧାରା—ସଂ. ବ (୬ଷ୍ଠୀ ତତ୍; ସୋମଙ୍କର ଧାରା=ପଥ)—ଆକାଶ
Soma dhārā (ନିକାଣ୍ଡ ଶେଷ)—The sky.

ସୋମନାଥ—ସଂ. ବ (ନାମ)—ଗୁଜରାଟ ପ୍ରଦେଶର ନଗରବଶେଷ ଓ
Somanātha ସେଠାରେ ପ୍ରତିଷ୍ଠିତ ଶିବଲିଙ୍ଗଙ୍କ ନାମ—
Name of a town and an idol of Śiba in Gujerat. [ଦ୍ର—ଏହି ନଗର ଦେଉପତ୍ତନ, ପ୍ରଭାସ-ପତ୍ତନ ଓ ବେରବେଲପତ୍ତନ ନାମରେ ମଧ ଖ୍ୟାତ । ଏହା ବୋମ୍ବାଇ ପ୍ରେସିଡ଼େନ୍ସି ଅଧୀନ କାଠିୟାବାଡ଼ ଅନ୍ତର୍ଗତ ଯୁନାଗଡ଼ ରାଜ୍ୟର ଅନ୍ତର୍ଗତ ଗୋଟିଏ ପ୍ରାଚୀନ ନଗର । ଏ ନଗର ସୋମନାଥ ଦେବଙ୍କ ମନ୍ଦର ନମନ୍ତେ ଖ୍ୟାତ । ଏହି ମନ୍ଦରରେ ଭଗବାନ୍ ଶିବଙ୍କର [ସୋମନାଥଙ୍କର] ଲିଙ୍ଗମୂର୍ତ୍ତି ପ୍ରତିଷ୍ଠିତ ଅଛି । ଏହାର ପଶ୍ଚିମରେ ଭାଟକୁଣ୍ଡ ନାମକ ଜଳାଶୟ ଅଛି । ପ୍ରବାଦଅଛି, ଶ୍ରୀକୃଷ୍ଣ ଏହାର ଜଳରେ ଜଳକ୍ରୀଡ଼ା କରୁଥିଲେ । ଗିର୍ଣ୍ଣାର ନାମକ ଶୈଳ ଏହି ମନ୍ଦରଠାରୁ ବହୁ ଦୂରବର୍ତ୍ତୀ । ଏ ଶିବ ମୂର୍ତ୍ତି ବହୁମୂଲ୍ୟ ପ୍ରସ୍ତରରେ ନର୍ମିତ ହୋଇଥିଲା । ଏହାକୁ ଖ୍ରୀ ୧୦୨୪ ରେ ମାମୁଦ୍ ଗଜନୀ ବଧ୍ୱସ୍ତ କର ମନ୍ଦରରେ ସଞ୍ଚିତ ବହୁ ଧନ-ରତ୍ନ ଲୁଣ୍ଠନ କର ସ୍ୱଦେଶକୁ ନେଇଯିବା ପରେ ଏହାର ଅଧିକାଂଶ ପ୍ରସ୍ତର ଗଜନୀର ଜୁମା ମସଜିଦ୍ କାର୍ଯ୍ୟରେ ଲଗ ହୋଇଥିଲା । ଗଜନୀକୁ ଫେରଯିବା ବେଳେ ମାମୁଦ୍ ଏ ଦେଶବାସୀ ଦେବଶର୍ମୀ ନାମକ ଜଣେ ବ୍ରାହ୍ମଣଙ୍କୁ ଏଠାର ଶାସନକର୍ତ୍ତା ନଯୁକ୍ତ କରଗଲେ । ଖ୍ରୀ ୧୧୬୮ରେ କୁମାରପାଳ ପୁନର୍ନିର୍ମାଣ କଲେ । ଗୁଲ୍‌କ୍ୟପତ ଭୂଷ୍ଟ ଭୀମଜ ତାହାକୁ ତତ୍ପରେ ସୋମନାଥ ଉଦ୍ଧାର କଲେ । ଏହା ପରେ ରାଠୋରବଂଶୋଦ୍ଭବ ବଜକୁବଂଶୀୟଗଣ ସୋମନାଥ ଅଧିକାର କଲେ । କନ୍ତୁ ଖ୍ରୀ ୧୩୦୦ ରେ ପୁନର୍ବାର ଆଲଉଦ୍ଦୀନ୍ ଖିଲ୍‌ଜୀ ସୋମନାଥ ଅଧିକାର କର ମୁସଲମାନ୍ ରାଜ୍ୟ ପ୍ରତିଷ୍ଠା କଲେ । ମୋଗଲ ସାମ୍ରାଜ୍ୟର ଧ୍ୱଂସ ହେବା ପରେ ଭନ୍ନ ଭନ୍ନ ସମୟରେ ମାଂଗ୍ରୋଲ୍‌ର ସେଖ୍‌ଗଣ ଏବଂ ପୋରବନ୍ଦରର ରାଣାଗଣ ସୋମନାଥରେ ରାଜତ୍ୱ କରୁଥିଲେ । ଅବଶେଷରେ ଜୁନାଗଡ଼ର ନବାବ ଏହା ଅଧିକାର କଲେ ଏବଂ ସେହି ସମୟରୁ ଏହ ନବାବବଂଶୀୟମାନଙ୍କ ଶାସନାଧୀନ ଅଛି । (ମାମୁଦ୍ ଗଜନୀ ଦେଖ) । ସୋମନାଥ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ମଧ୍ୟରୁ ଏକତମ ।] ଦେ. ବ. (ପୁଂ)—ଲୋକଙ୍କ ନାମ—
A name given to males.

ସୋମନାଥ ବ୍ରତ—ସଂ. ବ—ଭାଦ୍ର ଶୁକ୍ଳଷଷ୍ଠୀଠାରୁ ଆଶ୍ୱିନ ଶୁକ୍ଳ ଦଶମୀ
Somanātha brata ମଧ୍ୟରେ ପଡ଼ିବା ପ୍ରତି ସୋମବାର ଦନ ସୂର୍ଯ୍ୟପୂଜାରୂପ ବ୍ରତ—A religious vow observed every year on Mondays of the period from 'Bhādra śukla shashṭhi' to "Āswina śukla daśamī".

ସୋମନାଥ ସିଂହ ଭୂପ—ଦେ. ବ (ନାମ)—ପ୍ରାଚୀନ ଉତ୍କଳର କବ-
Somanātha simha bhūpa ବଶେଷ—Name of a poet of ancient Utkal. [ଦ୍ର—ଏ କବ 'ସଙ୍ଗୀତ-ମାଳା' ନାମକ ପୁସ୍ତକ ଲେଖିଯାଇଅଛନ୍ତି । ଜଗବନ୍ଧୁ. ପ୍ରାଚୀନ ଉତ୍କଳ ।]

ସୋମନାଥି—ପ୍ରାଦେ(କେନ୍ଦୁଝର)ବ—କେନ୍ଦୁଝରର ଅନାର୍ଯ୍ୟଜାତିଙ୍କ ପୂଜତ
Somanāthi ଦେବତା ବଶେଷ—A Deity worshipped by the non-aryans of the Keonjhar State. [ଦ୍ର—ଏହିପର ପାଟଖଣ୍ଡା, ଗ୍ରାମକାଣ୍ଡ ବା ମହାଖାର,ନାମଧାରୀ ଦେବତାମାନଙ୍କୁ କେନ୍ଦୁଝରର ଅନାର୍ଯ୍ୟ-ମାନେ ପୂଜା କରନ୍ତି । ]

ସୋମପ(ପା)—ସଂ. ବ. ପୁଂ (ସୋମ+ପା. ଧାତୁ+କର୍ତ୍ତି. ଅ; କ୍ୱପ୍)—
Somapa(pā) ୧ । ଯାଗରେ ସୋମରସ ପାନକାରୀ ବ୍ରାହ୍ମଣ—
1. A Brahman who drinks the Soma juice in a vedic sacrifice.
୨ । ପିତୃ ବଶେଷ—2. A class of the souls of the deceased ancestors.

ସୋମପୀତ—ସଂ.ବ (ସୋମ+ପା. ଧାତୁ+ଭାବ.ତ+ଇନ୍;ସୋମପୀତନ୍;
Somapīti ୧ମା. ୧ବ)—ସୋମପ (ଅମର) (ଦେଖ)—
Somapa (See)

ସୋମପୀଥୀ—ସଂ. ବ (ସୋମ+ପା. ଧାତୁ+ଇନ୍; ନପାତନ; ସୋମ-
Somapīthī ପିଥିନ୍, ୧ମା. ୧ବ)—ସୋମପ [ଶବ୍ଦ କଲ୍ପଦ୍ରୁମ] (ଦେଖ)—Somapa (See)

ସୋମ ପ୍ରଦୋଷ –ସଂ. ବ—ସୋମବାର ବ୍ରତ [ଦେଖ] [ହିଂ ଶ]
Soma pradosha Somabāra brata [See]

ସୋମ ବଂଶ—ସଂ. ବ—ପ୍ରାଚୀନ ଭାରତର ରାଜବଂଶବଶେଷ; ଚନ୍ଦ୍ରବଂଶ—
Soma bamśa Name of a royal dynasty of ancient India; the lunar dyansty. [ଦ୍ର—ଏହି ବଂଶରୁ ଯୁଧିଷ୍ଠିର ଜନ୍ମିଥିଲେ । ପୁରାଣରେ ଲେଖା ଅଛି ଯେ, ବ୍ରହ୍ମା ନାରାୟଣଙ୍କ ପୁତ୍ର । ବ୍ରହ୍ମାଙ୍କ ପୁତ୍ର ଅତ୍ରି । ଅତ୍ରିଙ୍କ ପୁତ୍ର ସୋମ । ସୋମ ଓ ବୃହସ୍ପତିଙ୍କ ପତ୍ନୀ ତାରାଙ୍କଠାରୁ ବୁଧ ଜାତ ହେଲେ । ବୁଧଙ୍କ ପୁତ୍ର ପୁରୁରବା । ପୁରୁରବାଙ୍କଠାରୁ ଉର୍ବଶୀଙ୍କ ଗର୍ଭରୁ ୬ ପୁତ୍ର ଜନ୍ମିଲେ ଓ. ସେହିମାନଙ୍କ ପୁତ୍ର ଓ କନ୍ୟା ପରମ୍ପରାଙ୍କ ବଂଶର ଭନ୍ନ ଭନ୍ନ ଶାଖାରେ ବଶ୍ୱାମିତ୍ର, କନ୍ୟା ସତ୍ୟବତୀ, ଯମଦଗ୍ନି, ପରଶୁ-ରାମ, ନହୁଷ, ଯଯାତି, ଦୁଷ୍ମନ୍ତ, ଭରତ, ଉଗ୍ରସେନ, ପାଣ୍ଡୁ, ବସୁଦେବ, ବୃଷ୍ଣି, ସାତ୍ୟକ, ସଞ୍ଜୟ, କୃଷ୍ଣ, ବଳରାମ, ଧୃତରାଷ୍ଟ୍ର, ପାଣ୍ଡବ,

କୌରବ, ଜନମେଜୟ, ଦୁଷ୍ମନ୍ତ, ଭରତ, ଭୀମସେନ, ଅଭିମନ୍ୟୁ, ପରୀକ୍ଷିତ ଆଦି ଜନ୍ମିଥିଲେ—ଗରୁଡ଼ ପୁରାଣ ।] ଦେ. ବି—ପ୍ରାଚୀନ ଉତ୍କଳର କେଶରୀ ବଂଶ—The Kesarī dynasty of ancient Utkala. [ଦ୍ର—ଏମାନେ ଖ୍ରୀ: ନବମ ଓ ଦଶମ ଶତାବ୍ଦୀରେ ରାଜତ୍ୱ କରୁଥିଲେ ।]

ସୋମବଂଶୀୟ ରାଜା—ଦେ. ବି—ଖ୍ରୀ: ଏକାଦଶ ଶତାବ୍ଦୀରେ ଉତ୍କଳରେ Somabamśīya rājā ରାଜତ୍ୱ କରୁଥିବା ରାଜବଂଶ—Kings of the Soma dynasty who ruled Utkala in the 11th century A. D. making Cuttack their capital. [ଦ୍ର—କଟକ ଏମାନଙ୍କର ରାଜଧାନୀ ଥିଲା । ଗଙ୍ଗବଂଶୀୟ ରାଜାମାନେ ସୋମବଂଶୀୟ ଥିବା କଥିତ ।]

ସୋମ ବନ୍ଧୁ—ସଂ. ବି (ବହୁବ୍ରୀହି)—୧ । କୁମୁଦ (ଶବ୍ଦରତ୍ନାବଳୀ)—Soma bandhu 1. The water lily. ୨ । ସୂର୍ଯ୍ୟ (ଜ୍ୟୋତିଷତତ୍ତ୍ୱ)—2. The sun. ୩ । ବୁଧ ଗ୍ରହ (ଜ୍ୟୋତି-ତତ୍ତ୍ୱ)—3. The planet Mercury.

ସୋମବଲ୍କ—ସଂ. ବି—୧ । ଶ୍ୱେତ ଖଦିର ( ଅମର, ମେଦିନୀ ); ଧଳାଖଇର—1. White variety of catechu. ୨ । କଟ୍‌ଫଳ ( ଅମର, ମେଦିନୀ ); କାଫଳ—2. Myrica Sapida. ୩ । କରଞ୍ଜ (ଜଟାଧର)—3. Pongamia tree. ୪ । ଗୁଠା କରଞ୍ଜ (ରାଜନିର୍ଘଣ୍ଟ)—4. Name of a wild tree. ୫ । ବବୁର ଗଛ ( ଶବ୍ଦକୋଷ )—5. Acacia Arabica.

ସୋମ ବଲ୍ଲରୀ—ସଂ. ବି—ସୋମଲତା ( ଦେଖ )—1. Somalatā Soma ballarī (See) ୨ । ବ୍ରାହ୍ମୀଶାକ ( ଦେଖ )—2. Brāhmīśāka ( See )

ସୋମ ବଲ୍ଲିକା—ସଂ. ବି—୧ । ସୋମରାଜୀ ( ଅମର ) ( ଦେଖ )—Soma ballikā 1. Somarājī (See) ୨ । ସୋମଲତା ( ଭରତ ) ( ଦେଖ )—2. Somalatā ( See )

ସୋମ ବଲ୍ଲୀ—ସଂ. ବି—୧ । ଗୁଳୁଚି ( ଅମର )—1. Tinaspora Soma balli Cordifolia. ୨ । ସୋମଲତା ( ଭରତ )—2. The moon plant. ୩ । ସୋମରାଜୀ ( ଶବ୍ଦରତ୍ନାବଳୀ ); ବାକୁଚୀ—3. Serratula Anthelmintica. ୪ । ପାତାଳ ଗରୁଡ଼ୀ ( ରାଜନିର୍ଘଣ୍ଟ )—4. Cogenaria Vulgaris. ୫ । ବ୍ରାହ୍ମୀ ( ରାଜନିର୍ଘଣ୍ଟ ); ଥାଲକୁଡ଼ୀ—5. Indian pennywort. ୬ । ସୁଦର୍ଶନା ( ରାଜନିର୍ଘଣ୍ଟ ); ସନ୍ଧ୍ୟାଗୁଳଞ୍ଚ—6. Tinospora Tomentosa.

ସୋମ ବାର (ବାସର)—ସଂ. ବି—ଚନ୍ଦ୍ରବାସର; ସୋମଗ୍ରହଙ୍କ ଭୋଗ୍ୟ Soma bāra (bāsara) ଦିବସ; ସପ୍ତାହର ଏକତମ ଦିନ; ରବିବାରର ପରବର୍ତ୍ତୀ ଓ ମଙ୍ଗଳବାରର ପୂର୍ବବର୍ତ୍ତୀ ଦିବସ—Monday. [ଦ୍ର—ସୋମବାର ସପ୍ତାହର ଗୋଟିଏ ଶୁଭଦିନ । ଏ ଦିନ କ୍ଷୌର, ଅଳଙ୍କାର ଧାରଣ, ରାଜଦର୍ଶନ, ନାମକରଣ, କର୍ଣ୍ଣବେଧ, ଅନ୍ନପ୍ରାଶନ, ବାଣିଜ୍ୟାଦି କରାଯାଏ । ସୋମବାରର ପ୍ରଥମ ପ୍ରହର ବାରବେଳା ଓ ଦ୍ୱିତୀୟ ଓ ସପ୍ତମ ଯାମାର୍ଦ୍ଧ କାଳବେଳା ଅଟେ ।

ସୋମବାର ଦିନ ଅମାବାସ୍ୟା ହେଲେ ଏହା ଶୁଭଜନକ ଅଶୁଭ୍ୟୁ ଛିଣ୍ଡି ହୁଏ । ସୋମବାରରେ ବିଦ୍ୟାରମ୍ଭ ଓ ପୂର୍ବଦିଗକୁ ଯାତ୍ରା ନିଷିଦ୍ଧ । ସୋମବାରରେ ପ୍ରଥମ ରଜୋଦର୍ଶନ ହେଲେ ବାଳିକା ପତିବ୍ରତା ହୁଏ ।

ଜ୍ୟୋତିଷମତରେ ସୋମବାରରେ ଜାତ ବ୍ୟକ୍ତି ସୁନ୍ଦର, ମେଧାବୀ ଓ ଶ୍ଳେଷ୍ମାଧିକପ୍ରକୃତି, ସ୍ଥିରସ୍ୱଭାବ ଓ ଧନଶାଳୀ ହୁଏ । ସୋମବାର ଅମାବାସ୍ୟା ପଡ଼ିଲେ ସେ ଦିନ ସ୍ନାନ ଦାନାଦି ପୁଣ୍ୟପ୍ରଦ । ସୋମବାର ଦିନ ଚନ୍ଦ୍ରଗ୍ରହଣ ( ଓ ରବିବାର ସୂର୍ଯ୍ୟଗ୍ରହଣ ) ହେଲେ 'ଚୂଡ଼ାମଣି' ନାମକ ଶୁଭଯୋଗ ହୁଏ । ରବି ଓ ସୋମବାର ଦିନ ପୂର୍ଣ୍ଣାତିଥି (ପଞ୍ଚମୀ, ଦଶମୀ, ଅମାବାସ୍ୟା ବା ପୂର୍ଣ୍ଣିମା ) ହେଲେ ଯାତ୍ରା ପକ୍ଷରେ ଶୁଭଫଳଦ ସିଦ୍ଧ ଯୋଗ ହୁଏ । ଶୁକ୍ର ଓ ସୋମବାର ଭଦ୍ରା ( ଦ୍ୱିତୀୟା, ଦ୍ୱାଦଶୀ ବା ସପ୍ତମୀ ) ତିଥି ହେଲେ ପାପଯୋଗ ହୁଏ । ସୋମବାର ଏକାଦଶୀ ହେଲେ ଅଶୁଭ । ଦିନଦଗ୍ଧା ଓ ସେ ଦିନ କୃତ୍ତିକା ନକ୍ଷତ୍ର ହେଲେ ଅଶୁଭ । ମାସଦଗ୍ଧା ହୁଏ—ଶବ୍ଦକୋଷ ।] ଦେ. ବି—ସୋମବାର ବ୍ରତ ( ଦେଖ )—Somabāra brata (See)

ସୋମବାର ବ୍ରତ—ସଂ. ବି—ପ୍ରତି ସୋମବାରରେ ଉପବାସପୂର୍ବକ Somabāra brata ସାୟଂକାଳକର୍ତ୍ତବ୍ୟ ଶିବଦୁର୍ଗାପୂଜାରୂପ ବ୍ରତବିଶେଷ—A religious vow and fasting observed on every Monday. [ଦ୍ର—ଏ ବ୍ରତକୁ ବ୍ରହ୍ମଚାରୀ, ଗୃହସ୍ଥ, କନ୍ୟା, ସଭର୍ତ୍ତୃକା ସ୍ତ୍ରୀ, ସମସ୍ତଙ୍କର କରିବାର ବିଧି ଅଛି । ଏଥିରେ ଐଶ୍ୱର୍ଯ୍ୟଲାଭ, ମନୋରଥସିଦ୍ଧି ଓ ପାପଦୂର ହୁଏ ।

ଏହି ବ୍ରତର ବିଷୟ ସ୍କନ୍ଦପୁରାଣ ବ୍ରହ୍ମୋତ୍ତରଖଣ୍ଡ ଅଷ୍ଟମ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ଏଥିର କଥା ଏହି :—ଆର୍ଯ୍ୟାବର୍ତ୍ତରେ ଚିତ୍ରଧର୍ମା, ମଦ୍ରଦେଶରେ ଚିତ୍ରବର୍ମା, ନାମକ ଏକ ରାଜା ଥିଲେ । ତାଙ୍କର ପୁତ୍ର ନ ଥିଲେ; ତାଙ୍କର ଗୋଟିଏ କନ୍ୟା ହେଲା । ଉକ୍ତ ରାଜା ଅତ୍ୟନ୍ତ ଦୁଃଖୀ ଥିବାରୁ କନ୍ୟାର ଜାତକ ଗଣନାରୁ ଦେଖାଗଲା ଯେ, କନ୍ୟାଟି ୧୪ ବର୍ଷ ବୟସରେ ବିଧବା ହେବ । କନ୍ୟା ଏହା ଶୁଣି ଯାଜ୍ଞବଲ୍କ୍ୟ ମୁନିଙ୍କ ସ୍ତ୍ରୀ ମୈତ୍ରେୟୀଙ୍କୁ ପଚାରିବାରୁ ସେ ତାଙ୍କୁ ଏହି ବ୍ରତ କରିବାକୁ କହିଲେ ଓ ଏ ବ୍ରତ ପାଳନ କରି କନ୍ୟା ବୈଧବ୍ୟ ଦଶାରୁ ମୁକ୍ତ ହେଲା ।] ଦେ. ବି—କାର୍ତ୍ତିକ, ବୈଶାଖ ଓ ମାଘ ମାସର ପ୍ରତି ସୋମବାରରେ ସୋମବାର ବ୍ରତ ଦିନଯାକ ଉପବାସ ରହି ସନ୍ଧ୍ୟାକୁ ହବିଷ୍ୟାନ୍ନ ଭୋଜନରୂପ ଲୌକିକ ବ୍ରତ—A fast observed on the Mondays of the months of Kārttika, Baiśākha and Māgha. [ ଦ୍ର—

ଏ ବ୍ରତରେ ଶିବଙ୍କ ପୂଜା କରାଯାଏ । ଦୁଃସ୍ୱପ୍ନ ଦୋଷରୁ ମୁକ୍ତ ହେବା ପାଇଁ, କୌଣସି ଶିବଲିଙ୍ଗଙ୍କୁ ମାନସିକ କରି ମଧ୍ୟ ଏ ବ୍ରତ କରାଯାଏ ।]

ସୋମବାରିଆ—ଦେ. ବି, ପୁଂ—୧ । ସୋମବାରବ୍ରତ ପାଳନ Somabāriā କରିବା ବ୍ୟକ୍ତି—1. A person observing (ସୋମବାରେଇ—ସ୍ତ୍ରୀ) the Somabāra fasting. ୨ । ସୋମବାରୀ ସୋମବାରରେ ଜନ୍ମ ହେବା ବ୍ୟକ୍ତି—2. A person सोमबारिआ who has taken his birth on Monday. ଦେ· ବିଣ—ସୋମବାର ସମ୍ବନ୍ଧୀୟ—(ସୋମବାରିଆଣୀ—ସ୍ତ୍ରୀ) Relating to Monday.

ସୋମ ବିକ୍ରୟୀ—ସଂ· ବି· ପୁଂ (ସୋମ+ବି+କ୍ରୀ, ଧାତୁ+କର୍ତ୍ତୃ. ଇନ୍; Soma bikrayī ୧ମା· ୧ବ)—ସୋମଲତାରସ ବିକ୍ରୟକାରୀ—A person who sells the juice of Soma creeper. [ ଦ୍ର—ମନୁ ଲେଖି ଅଛନ୍ତି ଯେ ସୋମବିକ୍ରୟୀ ବ୍ରାହ୍ମଣ ଦାନର ଅଯୋଗ୍ୟ ଅଟନ୍ତି ।]

ସୋମ ବୃକ୍ଷ—ସଂ. ବି—୧ । କଟ୍ ଫଳବୃକ୍ଷ; କାଫଳ ଗଛ (ରତ୍ନମାଳା)—Soma bruksha 1. Myrica Sapida (tree). ୨। ଶ୍ୱେତ ଖଦିର (ରାଜନିର୍ଘଣ୍ଟ); ଧଳାଖଇର—2. The white variety of catechu.

ସୋମଭୂଃ—ସଂ. ବି (ସୋମଙ୍କଠାରୁ ଭୂଃ=ଉତ୍ପତ୍ତି ଯାହାର; ବହୁବ୍ରୀହି)—Somabhūh ୧ । ସୋମପୁତ୍ର; ବୁଧଗ୍ରହ—1. The planet Mercury. ୨ । ଜୈନରାଜ ଭେଦ—2. Name of a Jaina king. ବିଣ—ସୋମବଂଶୋଦ୍ଭବ—Born of the Lunar Dynasty.

ସୋମ ମଣି—ସଂ. ବି (ମ.ପ. ଲୋ; ସୋମଙ୍କ ପ୍ରିୟମଣି)-ଚନ୍ଦ୍ରକାନ୍ତମଣି—Soma mani The moon-stone; a kind of gem.

ସୋମ ଯାଗ(ଯଜ୍ଞ, ମଖ)—ସଂ. ବି ସୋମଲତା ରସ ପାନାଙ୍ଗକ ବୈଦିକ Soma jāga(jajna, makha) ଯଜ୍ଞବିଶେଷ—A sort of (ସୋମେଜ୍ୟା—ଅନ୍ୟରୂପ) vedic sacrifice. [ ଦ୍ର—ବ୍ରହ୍ମବୈବର୍ତ୍ତ ପୁରାଣର କୃଷ୍ଣଜନ୍ମଖଣ୍ଡ ୬୦ ଅଧ୍ୟାୟରେ ଏ ଯାଗର ବିଧି ବର୍ଣ୍ଣିତ ହୋଇଅଛି । ଏହି ଯଜ୍ଞଦ୍ୱାରା ବ୍ରହ୍ମହତ୍ୟା ପାପ ମୋଚନ ହୁଏ । ଯାଜକ ପ୍ରଥମ ବର୍ଷ ସୋମଲତା ରସ ପାନ, ଦ୍ୱିତୀୟ ବର୍ଷ କେବଳ ଫଳ ଭୋଜନ ଓ ତୃତୀୟ ବର୍ଷ କେବଳ ଜଳପାନ କରି ଏ ଯାଗ ୩ ବର୍ଷରେ ଶେଷ କରନ୍ତି । ଯେଉଁ ବ୍ୟକ୍ତିଙ୍କର ୩ ବର୍ଷର ପୁରୁଣା ଧାନ ଘରେ ବ୍ୟୟିତ ନ ହୋଇ ସଞ୍ଚିତ ଥିବ, ସେ ଏହି ଯାଗ କରି ୩ ବର୍ଷର ସଞ୍ଚିତ ଧାନକୁ ଅନ୍ନ ଓ ଦକ୍ଷିଣାରୂପେ ବାଣ୍ଟିବେ ।]

ସୋମ ଯାଜୀ—ସଂ. ବି. ପୁଂ ( ସୋମ+ଯଜ୍ ଧାତୁ+କର୍ତ୍ତୃ· ଇନ୍, ୧ମା ୧ବ)—ସୋମଯାଗ କର୍ତ୍ତା—Somajāji A person who performs the Somajāga.

ସୋମଯାଜୀ ପୁର—ଦେ· ବି—ପୁରୀ ଜିଲ୍ଲାର ସତ୍ୟବାଦୀ ନିକଟବର୍ତ୍ତୀ ରାହାଙ୍ଗ Somajāji pura ବ୍ରାହ୍ମଣ ଶାସନ ମଧ୍ୟରୁ ଏକତମ—Name of a Brāhmana village (in Rāhāngā pergunna) in the Puri district.

ସୋମ ଯୋନି—ସଂ. ବି—୧ । ଚନ୍ଦନବିଶେଷ ( ଶବ୍ଦଚନ୍ଦ୍ରିକା ); ପୀତ Soma joni ଚନ୍ଦନ ( ହି.ଶ )—1. A (ଅନ୍ୟ ନା—ତୈଲପର୍ଣ୍ଣିକ, species of excellent ଶିଳୋଦ୍ଭବ) sandal wood. [ ଦ୍ର—ଏହା ଅତ୍ୟନ୍ତ ଶୀତଳ ଅଟେ । ] ୨ । ଦେବତା ( ହି· ଶ )—2. Deity. ୩ । ବ୍ରାହ୍ମଣ ( ହି· ଶ )—3. A Brāhmana.

ସୋମରାଜ—ଦେ· ବି ( ସଂ. ସୋମରାଜୀ )—ସୋମରାଜୀ ( ଦେଖ )—Somarāja Somarāji ( See ) ସଂ· ବି—ଚନ୍ଦ୍ର, ( ହି. ଶ )—The moon.

ସୋମରାଜିକା—ସଂ· ବି—ସୋମରାଜୀ [ଶବ୍ଦରତ୍ନାବଳୀ] ( ଦେଖ ) Somarājikā Somarāji ( See )

ସୋମରାଜୀ—ସଂ. ବି ( ସୋମ=ଶ୍ୱେତ+ରାଜ୍ ଧାତୁ=ଦୀପ୍ତି ପାଇବା+ Somarāji କର୍ତ୍ତୃ· ଇନ୍; ସୋମରାଜିନ୍; ୧ମା. ୧ବ )—ଔଷଧିବିଶେଷ; ବାକୁଚ—(ଅନ୍ୟ ନା—ଅବଲ୍ଗୁଜ, ବାକୁଚୀ, ସୋମରାଜ, ସୁପର୍ଣ୍ଣିକା, ଶଶିଲେଖା, ସିତା, କୃଷ୍ଣଫଳା, ସୋମା, ସୋମବଲ୍ଲୀ, କାଳମେଷୀ, ବାଗୁଜା, କାଳୁଜା, କୁଷ୍ଠଘ୍ନୀ, ସୁବଲ୍ଲୀ, ସୋମବଲ୍କିକା, ପୂତିଫଳା, ଅବଲ୍ଗୁଜା, ଚନ୍ଦ୍ରଲେଖା । सोमराज, बाकुचि; हाकुचि; हाकुच; बाकुचि, बावचि, बकुचि ମ. ବାଳେ ଜାସ ତେ. ଭପିତୋଗେ, କେଲବଏଲେ ଏ, ବାବଶାଲୁ ।) Serratula Anthelmintica ( plant ). [ ଦ୍ର—ଏହା ଯୋକଣ୍ଡା ବର୍ଗର ଗ୍ରାମ୍ୟ ବର୍ଷାୟୁଷ ଶାକ । ଏହାର ପତ୍ର ଏକୋତ୍ତର, ଦନ୍ତୁର । ଏହାର ଡାଙ୍ଗରେ ଧଳା ରେଖା ଅଛି । ମଞ୍ଜରୀର ସବୁ ଫୁଲ ଏକ ପ୍ରକାର । ଫଳ ବା ବୀଜ ଅଠ ଦଶ ଶିରାଯୁକ୍ତ ଓ କୃଷ୍ଣବର୍ଣ୍ଣ । ଏହା ଜାପାନରେ ଦେଖାଯାଏ । ଏହା ମଧୁର ତିକ୍ତରସ, କଟୁବିପାକ, ରସାୟନ, ବିଷ୍ଟମ୍ଭନାଶକ, ଶୀତଳ, ରୁଚିକର, ସାରକ, ରୁଚ୍ୟ ଓ ହୃଦ୍ୟ । ଏହା ଶ୍ଳେଷ୍ମା, ରକ୍ତପିତ୍ତ, ଶ୍ୱାସ, କୁଷ୍ଠ, ମେହ, ଜ୍ୱର ଓ କୃମିନାଶକ । ସୋମରାଜୀ ମଞ୍ଜି—ପିତ୍ତବର୍ଦ୍ଧକ, କଟୁରସ, କେଶ-ହିତକର ଓ ଚର୍ମର ଉପକାରକ । ଏହି ଶାକ କୁଷ୍ଠ, କଫ, ବାୟୁ, ବମି, ଶ୍ୱାସ, କାଶ, ଶୋଥ, ଅମ ଓ ପାଣ୍ଡୁରୋଗର ପ୍ରଶମକ ।]

ସୋମରାଜୀ ତୈଳ—ସଂ· ବି—କୁଷ୍ଠାଦି ଚର୍ମରୋଗରେ ଉପକାରୀ Somarāji taila ଆୟୁର୍ବେଦୋକ୍ତ ତୈଳବିଶେଷ—Name of a medicinal oil for skin diseases.

ସୋମ ରୋଗ—ସଂ· ବି—୧ । ସ୍ତ୍ରୀରୋଗବିଶେଷ; ସ୍ତ୍ରୀମାନଙ୍କର ମୂତ୍ରାତିସାର Soma roga ରୋଗ—1. A female disease like diabetes. [ ଦ୍ର—ଏହି ରୋଗରେ ସବୁ ଦେହସ୍ଥ ଜଳୀୟପଦାର୍ଥ ମୂତ୍ରରୂପେ ଅତ୍ୟଧିକ ପରିମାଣରେ

ନିର୍ଗତ ହୁଏ । ଏଥିରେ ଶିରୋବ୍ୟଥା, ମୁଖର ଓ ତାଲୁର ଶୁଷ୍କତା, ମୂର୍ଚ୍ଛା, ଜୃମ୍ଭା, ପ୍ରଳାପ, ଭୋଜନରେ ଓ ପାନରେ ଅତୃପ୍ତି ହୁଏ । (ସୋମର ଅର୍ଥ ଜଳ । ସ୍ତ୍ରୀମାନଙ୍କ ଦେହରୁ ପ୍ରସ୍ରାବଦ୍ୱାରା ବିଶେଷ ଜଳ କ୍ଷୟ ହେବାରୁ ଏହି ନାମ ହୋଇଅଛି) । ଏହା ଅତ୍ୟଧିକ ସହବାସ, ଅତି ଶୋକ ଓ ଅତି ଶ୍ରମରୁ ଜନ୍ମେ । ଏହା ସ୍ତ୍ରୀମାନଙ୍କର ମୂତ୍ରାତିସାର ରୋଗ । ଏ ରୋଗରେ ମୂତ୍ରମାର୍ଗରେ ସ୍ୱଚ୍ଛ, ନିର୍ମଳ, ବେଦନାହୀନ, ନିର୍ଗନ୍ଧି, ଶୀତଳ, ଶ୍ୱେତବର୍ଣ୍ଣ ସ୍ରାବ ନିର୍ଗତ ହୁଏ । (ଭାବ-ପ୍ରକାଶ) ।] ୨ । ବହୁମୂତ୍ରରୋଗ—2. Diabetes.

ସୋମ ଲତା—ସଂ. ବି—ଅର୍କାଦିବର୍ଗର ବନ୍ୟ ଗୁଳ୍ମ, ପଦ୍ମପ୍ରାନ ଲତା—
Soma latā — Ascelpias Acida or Sarcostemma Brevistigma; the moon plant; Sarcostemma Viminale.
[ଅନ୍ୟ ନାମ—ସୋମବଲ୍ଲୀ, ସୋମା, ଗୁଳ୍ମ, ଗୁଲ୍ମବଲ୍ଲୀ, ଯଜ୍ଞଶ୍ରେଷ୍ଠା, ଯଜ୍ଞାଙ୍ଗା, ଶଣା, ଦ୍ୱିଜପ୍ରିୟା, ଧନୁର୍ଲତା, ଯଜ୍ଞବଲ୍ଲୀ, ଦ୍ୱିଜପ୍ରିୟା, ସୋମକ୍ଷୀର(ରୀ) ମହାଗୁଲ୍ମା]
ସୋମ लता
सोम लता
ତେଲୁଗୁ—ପୁଲ୍ଲତିଗେ, ପୁଲ୍ଲିଚୋଗେ] [ବି—ଏହାର ଡେଙ୍ଗ ହଳଦିଆ ଓ ଚାରି ଅଙ୍ଗୁଠି ପରି ମୋଟା । ଏହାର ପତ୍ର ଅତ୍ୟନ୍ତ ଛୋଟ, ଥିବାରୁ ଦୂରରୁ ଦେଖାଯାଏ ନାହିଁ; ଫୁଲ ଧଳା ଓ ଗନ୍ଧହୀନ; ଏକସଙ୍ଗେ ୮।୧୦ ଗୋଟି ଫୁଲ ଧରେ; ଫୁଲର ଆକାର ଅର୍କଫୁଲ ପରି, କ୍ଷୀର ଈଷତ୍ ଅମ୍ଳ । ଛୋଟନାଗପୁର ଓ ଓଡ଼ିଶାରେ ଏହି ଲତା ଦେଖାଯାଏ ।

ଏହା ତ୍ରିଦୋଷଘ୍ନ, କଟୁ, ତିକ୍ତ ଓ ରସାୟନ, ପିତ୍ତ-ଦାହହର, କାନ୍ତିବର୍ଦ୍ଧକ, ମେଧାଜନକ ।

ପୂର୍ବେ ଯଜ୍ଞରେ ଏହି ଲତାର ରସକୁ ଋଷିମାନେ ପାନ କରୁଥିଲେ ଓ ଦେବତାଙ୍କୁ ଦେଉଥିଲେ । ଏହି ଲତାରେ ୧୫ଟି ଛୋଟ ପତ୍ର ଥାଏ । ଚନ୍ଦ୍ରକଳାର ବୃଦ୍ଧି ଅନୁସାରେ ଏହାର ଗୋଟିଏ ଲେଖାଁଏ ପତ୍ର ଉଦ୍ଗତ ହୁଏ ଓ ହ୍ରାସ ଅନୁସାରେ ଗୋଟିଏ ଲେଖାଁଏ ପତ୍ର ଝଡ଼େ । ସୋମଲତା ଚବିଶ ପ୍ରକାରର । ତନ୍ମଧ୍ୟରୁ ଯାହାର ଗନ୍ଧ ଘୃତ ପରି ତାହାର ନାମ ଅଂଶୁମାନ; ଯାହାର କନ୍ଦ କଦଳୀ କନ୍ଦ ପରି ତାହାର ନାମ ରଜତପ୍ରଭ; ଲସୁଣ ପତ୍ର ପରି ଯାହାର ପତ୍ର ତାହାର ନାମ ମୁଞ୍ଜବାନ୍; ଯାହାର ବର୍ଣ୍ଣ ସ୍ୱର୍ଣ୍ଣବର୍ଣ୍ଣ ଓ ଯାହା ଜଳରେ ଉତ୍ପନ୍ନ ହୁଏ ତାହାର ନାମ ଚନ୍ଦ୍ରମା; ଯେଉଁ ଲତା ସାପଚାଲି ପରି ତାହାର ନାମ ଗରୁଡ଼ାହୃତ ଓ ଶ୍ୱେତାକ୍ଷ; ଅବଶିଷ୍ଟ ସମସ୍ତ ଜାତିର ଲତାର ୧୫ ଗୋଟି ପତ୍ର ଓ ପତ୍ରର ପୂର୍ବୋକ୍ତ ହ୍ରାସବୃଦ୍ଧି ଲକ୍ଷିତ ହୁଏ । ନାମଭେଦ ଓ ରୂପଭେଦ ହେଲେ ମଧ୍ୟ ଗୁଣ ସମସ୍ତଙ୍କର ସମାନ । ମହେନ୍ଦ୍ର, ମଳୟ, ଶ୍ରୀପର୍ବତ, ଦେବଗିରି, ହିମାଳୟ, ପାରିପାତ୍ର, ସହ୍ୟ ଓ ବିନ୍ଧ୍ୟପ୍ରଭୃତି ପର୍ବତରେ ଏବଂ କାଶ୍ମୀର ଦେଶସ୍ଥ କ୍ଷୁଦ୍ର ମାନସରୋବରରେ ଏ ଲତାର ଉତ୍ପତ୍ତି ହୁଏ ବୋଲି ଶାସ୍ତ୍ରମାନଙ୍କରେ ଲେଖା ଅଛି । ବେଦ ଅତି ପ୍ରାଚୀନ ଗ୍ରନ୍ଥମାନଙ୍କରେ ସୋମ ଲତାର ବହୁ ଉଲ୍ଲେଖ ଅଛି । ଏଥିର ରସ ହଳଦିଆ ଓ ମାଦକ । ଏହାକୁ ବୈଦିକ ଋଷିମାନେ ପାନ କରୁଥିଲେ ଓ ଏହା ପାନ କଲେ ଜରା, ମୃତ୍ୟୁ, ପାପ ଓ ବ୍ୟାଧିରୁ ମୁକ୍ତି ମିଳୁଥିଲା ଓ ଏହା ଅମୃତ ସମ ବୋଲି ବର୍ଣ୍ଣିତ ହୋଇଅଛି । ଚରକ ଓ ସୁଶ୍ରୁତ ଗ୍ରନ୍ଥରେ ଏ ଲତାର ଓ ରସର ଉଲ୍ଲେଖ ଅଛି; କିନ୍ତୁ ସେ ଗ୍ରନ୍ଥଦ୍ୱୟର ରଚନା ସମୟରୁ ଏହା ଦୁଷ୍ପ୍ରାପ୍ୟ ହୋଇଥିବା ଜଣାଯାଏ । ବର୍ତ୍ତମାନ କାଳରେ ଏବମ୍ବିଧ ଗୁଣବିଶିଷ୍ଟ ଲତା ଦୁର୍ଲଭ । ଚନ୍ଦ୍ରଙ୍କ ତିଥି ଅନୁସାରେ ସୋମ ଲତାର ବୃଦ୍ଧି ଓ କ୍ଷୟ ହେଉଥିବା ଦୃଷ୍ଟିରେ ଋଷିମାନେ ଚନ୍ଦ୍ରଙ୍କୁ ସୋମ ଲତାର ଅଧିଦେବତା ରୂପେ କଳ୍ପନା କରିଥିଲେ ।]
ଦେ. ବି.—ଶୁଆଁ ଲଇ ଲତା (ଦେଖ)—
Suan lai (See).

ସୋମ ଲତିକା—ସଂ. ବି—ଗୁଡୁଚୀ (ଶବ୍ଦକଳ୍ପଦ୍ରୁମ)
Soma latikā — Tinaspora Cordifolia.

ସୋମ ଶକଳା—ସଂ. ବି—ଶଶାଣ୍ଡୁଲୀ (ଶବ୍ଦକଳ୍ପଦ୍ରୁମ); ଏକପ୍ରକାର
Soma śakalā — କାକୁଡ଼ି—A sort of cucumber.

ସୋମ ସଂଜ୍ଞ—ସଂ. ବି (ବହୁବ୍ରୀହି; ସୋମ+ସଂଜ୍ଞା+ଅ)—କର୍ପୂର
Soma samjña — (ରତ୍ନମାଳା)—Camphor.

ସୋମ ସାର—ସଂ. ବି—୧ । ଶ୍ୱେତ ଖଦିର (ଶବ୍ଦକଳ୍ପଦ୍ରୁମ)—
Soma sāra — 1. White catechu. ୨ । ବବୁର ଗଛ (ଵୈ. ଶ)—2. Acacia Arabica.

ସୋମ ସିଦ୍ଧାନ୍ତ—ସଂ. ବି—୧ । ବୁଦ୍ଧଭେଦ (ଜଟାଧର)—1. The
Soma siddhānta — name of a Buddhist saint.
୨ । ଚନ୍ଦ୍ରପ୍ରୋକ୍ତ ଜ୍ୟୋତିଷଗ୍ରନ୍ଥ ବିଶେଷ; ହିନ୍ଦୁ ଜ୍ୟୋତିଷୋକ୍ତ ପଞ୍ଚସିଦ୍ଧାନ୍ତ (ସୂର୍ଯ୍ୟସିଦ୍ଧାନ୍ତ, ସୋମସିଦ୍ଧାନ୍ତ, ଆର୍ଯ୍ୟସିଦ୍ଧାନ୍ତ, ଲୋମଶ ସିଦ୍ଧାନ୍ତ, ବ୍ରହ୍ମ ସିଦ୍ଧାନ୍ତ) ମଧ୍ୟରୁ ଏକତମ—2.One of the Hindu astronomical treatises. ୩ । (ସ+ଉମା+ଅ=ସୋମ=ମହାଦେବ; ତତ୍କୃତ ସିଦ୍ଧାନ୍ତ=ତନ୍ତ୍ର ବିଶେଷ)—ମହାଦେବଭାଷିତ ତନ୍ତ୍ରଶାସ୍ତ୍ର ବିଶେଷ—3. Name of a Tantric treatise. ୪ । ଶ୍ରୀକୃଷ୍ଣ ମିଶ୍ରକୃତ ପ୍ରବୋଧଚନ୍ଦ୍ରୋଦୟ ନାଟକର କାପାଳିକ ବେଶଧାରୀ ଅଭିନେତା—4. Name of an actor in the Sanscrit drama, called Prabodha Chandrodaya.' ୫ । ଶୈବ ମତାବଲମ୍ବୀ ପଣ୍ଡିତ ବିଶେଷ—5. Name of a Pandit professing the Saiba faith.

ସୋମ ସିଦ୍ଧାନ୍ତୀ—ସଂ. ଵଣ. ପୁଂ (ସୋମ ସିଦ୍ଧାନ୍ତ+ଇନ୍; ୧ମା. ୧ବ)—ସୋମ ସିଦ୍ଧାନ୍ତ ବେତ୍ତା—Versed
Soma siddhānti — in Somasiddhānta.

ସୋମ ସୁତ୍(ତ)—ସଂ. ବି (ସୋମ+ସୁ. ଧାତୁ=କ୍ଷେପଣ କରିବା+
Soma sut(ta) — କର୍ତ୍ତୃ. କ୍ୱିପ୍; ବନ୍; ସୋମସୁତ୍ ୧ମା. ୧ବ)—ଯେଉଁ ବ୍ୟକ୍ତି ଯଜ୍ଞ ହୋମ ସୋମଲତା ରସ ଆହୁତି ଦିଅନ୍ତି—A priest whose duty is to offer the Soma juice unto the fire in a vedic sacrifie.

ସୋମ ସୁତ—ସଂ. ବି. ପୁଂ (୬ଷ୍ଠୀ ତତ୍)—ବୁଧଗ୍ରହ—
Soma suta The planet Mercury.

ସୋମସୁତା—ସଂ. ବି. ସ୍ତ୍ରୀ (୬ଷ୍ଠୀ ତତ୍)—ରେବା ବା ନର୍ମଦା ନଦୀ—
Somasutā The river Nerbudda.
(ସୋମୋଦ୍ଭବା—ଅନ୍ୟରୂପ)

ସୋମ ସୁତି( ତ୍ୟା )—ସଂ. ବି—ସୋମଲତାକୁ ଚିପୁଡ଼ି ଯଜ୍ଞାର୍ଥ ରସ
Soma suti(tyā) ବାହାର କରିବା କ୍ରିୟା (ବୃ. ଶ)—The act of pressing out the juice of the Soma creeper for Jajña.

ସୋମ ସୂତ୍ର—ସଂ. ବି—ପ୍ରଣାଳ; ଶିବଲିଙ୍ଗ ସମୀପସ୍ଥ ଜଳନିଃସରଣ ମାର୍ଗ
Soma sūtra ବା ନଳା (ବୃ ଶ)—The channel at the mouth of the 'Sakti' of a "Sibalinga" through which the bath-water of the image of Siba flows out. ୨. ବି—ଗାଡୁକକୁଣ୍ଡ—The pit for holding such bath water. [ ଉ—ଜଳଣା କରିବୁ ନାହିଁ ସୋମସୂତ୍ର ପ୍ରାନ୍ତେ—ପାନକୁଷ୍ଣ. ଭସକକ୍ଷୋଳ । ]

ସୋମା—ସଂ. ବି (ସୋମ+ଆ)—୧ । ସୋମଲତା (ଦେଖ)—
Somā 1. Somalatā ( See ) ୨ । ଅପ୍ସରୋବିଶେଷ (ବୃ. ଶ)—2. Name of a heavenly nymph. ୩ । ମାର୍କଣ୍ଡେୟ ପୁରାଣୋକ୍ତ ନଦୀବିଶେଷ (ବୃ. ଶ)—3. Name of a mythological river.

ସୋମାଖ୍ୟ—ସଂ ବି ( ସୋମ+ଆଖ୍ୟା+ଅ )—ରକ୍ତକୈରବ (ରତ୍ନ-
Somākhya ମାଳା ); ରକ୍ତ କଇଁ—The red water-lily.

ସୋମାଭା—ସଂ. ବି. ସ୍ତ୍ରୀ—୧ । ( ବହୁବ୍ରୀହି; ସୋମ+ଆଭା+ଅ )—
Somābhā ଚନ୍ଦ୍ରାବଳୀ (ଭକ୍ତିରସାମୃତସିନ୍ଧୁ)—1. A female companion of Rādhā. [ ଉ—ରାଧା ସୋମାଭା ବେନି ପାଶେ । ଅଶ୍ୱିନ ନକ୍ଷତ୍ର ବେଶେ—ପ୍ରାଚୀ. ପୁର୍ଷୋତ୍ତମ ଚନ୍ଦ୍ରୋଦୟ । ] ୨ । (୬ଷ୍ଠୀ ତତ୍) ଚନ୍ଦ୍ରକିରଣ (ବୃ. ଶ)—2. The rays of the moon.

ସୋମାୟନ—ସଂ. ବି—୨୨ ଦିନ ଗୋଦୁଗ୍ଧ ପାନ ଓ ୩ ଦିନ ଉପବାସ
Somāyana କରିଯିବା, ଏପରି ଏକମାସକାଳ କରଣୀୟ ବ୍ରତ-ବିଶେଷ—A kind of religious vow observed by subsisting on cow's milk for 27 days and fasting for 3 days. [ ବ୍ର—ଯାଜ୍ଞବଲ୍କ୍ୟ-ସ୍ମୃତି ଅନୁସାରେ ବ୍ରତକାରୀ ପ୍ରଥମ ୭ ଦିନ ଗାଈର ୪ ସ୍ତନରୁ, ଦ୍ୱିତୀୟ ସପ୍ତାହରେ ୩ ସ୍ତନରୁ, ତୃତୀୟ ସପ୍ତାହରେ ୨ ସ୍ତନରୁ ଓ ପରବର୍ତ୍ତୀ ୬ ଦିନ ୧ ସ୍ତନରୁ ଦୁହାଁଯିବା ଦୁଗ୍ଧ ମାତ୍ର ପାନ କରିବେ ଓ ଶେଷରେ ୩ ଦିନ ନିର୍ଜଳ ଉପବାସ କରିବେ—ବୃ. ଶ । ]

ସୋମାରୁଦ୍ର—ସଂ ବି ( ସୋମ+ରୁଦ୍ର; ଦ୍ୱନ୍ଦ୍ୱ )—ସୋମ ଦେବତା
Somārudra ଓ ରୁଦ୍ର ଦେବତା—
The two Deities Soma and Rudra.

ସୋମାର୍ଦ୍ଧ—ସଂ. ବି ( ୬ଷ୍ଠୀ ତତ୍; ସୋମ+ଅର୍ଦ୍ଧ )—ଅର୍ଦ୍ଧଚନ୍ଦ୍ର—
Somārddha Halfmoon.

ସୋମାର୍ଦ୍ଧଧାରୀ—ସଂ. ବିଣ. ପୁଂ ( ସୋମାର୍ଦ୍ଧ+ଧୃ ଧାତୁ+କର୍ତ୍ତୃ. ଇନ୍;
Somārddhadhārī ୧ମା. ୧ବ )—ମସ୍ତକରେ ଅର୍ଦ୍ଧଚନ୍ଦ୍ର
(ସୋମାର୍ଦ୍ଧଧାରିଣୀ—ସ୍ତ୍ରୀ) ଧାରଣକାରୀ—Holding the half-moon on the head or brow ସଂ. ବି. ପୁଂ—ଶିବ—Siba.

ସୋମାଳ—ସଂ. ବିଣ ( ସୋମ+ଅଲ୍ ଧାତୁ=ଭୂଷିତ କରିବା+କର୍ତ୍ତୃ.
Somāḷa ଅ )—କୋମଳ ( ହେମଚନ୍ଦ୍ର )—Soft.

ସୋମାଳକ—ସଂ ବି—ପୁଷ୍ପରାଗମଣି ( ବୃ. ଶ )—
Somāḷaka Topaz ( gem ).

ସୋମାଷ୍ଟମୀ—ସଂ. ବି—ସୋମବାର ଦିନ ଅଷ୍ଟମୀ ତିଥି ହେଲେ କରାଯିବା
Somāshṭamī ବ୍ରତ ( ଶବ୍ଦକୋଷ )—A religious vow observed if a monday falls on the 8th day of a lunar fortnight.

ସୋମାହ—ସଂ. ବି ( ସୋମ+ଅହନ୍ )—ସୋମବାର ( ଦେଖ )
Somāha Somabāra ( See )

ସୋମାହୁତି—ସଂ. ବି—୧ । ଭାର୍ଗବ ଋଷି ( ବୃ. ଶ )—1. Sage
Somāhuti Bhārgaba. ୨ । ସୋମରସଦ୍ୱାରା ଆହୁତି ( ବୃ. ଶ )—2. Offering of the Soma juice unto the fire.

ସୋମେଶ୍ୱର—ସଂ. ବି—୧ । ( ସୋମଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇ-
Someśwara ଥିବାରୁ ) କାଶୀର ଶିବଲିଙ୍ଗବିଶେଷ—1. Name of an image of Siba at Benares. ୨ । (ନାମ) ପ୍ରାଚୀନ କବିବିଶେଷ (ଶବ୍ଦକୋଷ)—2. Name of an ancient poet. ୩ । ( ନାମ ) ସଙ୍ଗୀତ ଶାସ୍ତ୍ରର ଅଗ୍ରଣୀବିଶେଷ ( ବୃ. ଶ )—3. Name of an expert in music. ୪ । ( ନାମ ) ସର୍ବଦର୍ଶନ ସଂଗ୍ରହର ଉପୋଦ୍ଘାତ ଦର୍ଶନରେ ଉଲ୍ଲିଖିତ ଦାର୍ଶନିକବିଶେଷ ( ଶବ୍ଦକୋଷ )—4. Name of an ancient Indian philosopher. ୫ । ( ନାମ ) ନୈୟାୟିକ ନ୍ୟାୟସୁଧା ଗ୍ରନ୍ଥରଚୟିତା—5. Name of the author of a treatise on philosophy. ୬ । ( ନାମ ) ତନ୍ତ୍ରାଲୋକ ଓ ପଞ୍ଚବିଂଶିକା ନାମକ ଗ୍ରନ୍ଥଦ୍ୱୟର ରଚୟିତା ( ଶବ୍ଦକୋଷ )—6. Name of a Tantric writer. ୭ । ( ନାମ ) ଯୋଗେଶ୍ୱରାଚାର୍ଯ୍ୟଙ୍କ ଶିଷ୍ୟ ଶବ୍ଦାର୍ଥ ସମୁଚ୍ଚୟ ଗ୍ରନ୍ଥ ପ୍ରଣେତା ( ଶବ୍ଦକୋଷ )—7. Name of a lexicographer. ୮ । ( ନାମ ) ବୈଦିକସୂକ୍ତ ଭୂତ ସିଦ୍ଧାନ୍ତ ସଂଗ୍ରହର ଟୀକାକାର ( ଶବ୍ଦକୋଷ )—8. Name of an annotator. ୯ । ( ନାମ ) କୁମାରିଲଭଟ୍ଟଙ୍କ ତନ୍ତ୍ରବାର୍ତ୍ତିକର ବ୍ୟାଖ୍ୟାନକର୍ତ୍ତ୍ୟ-କାରିଣୀ ଟୀକାର ଗ୍ରନ୍ଥକାର ( ଶବ୍ଦକୋଷ )—9. Name of another commentator. ୧୦ । ଶ୍ରୀକୃଷ୍ଣଙ୍କର ଏକ ନାମ—10. A name of Srikrushna.

୧୧ । ସୋମନାଥ (ବ୍ରି. ଶ) (ଦେଖ)—11. Somanātha

ସୋମେଶ୍ୱର ( See )· ଦେ· ବି—୧ । କୋଶଳର ଜନୈକ ସୋମ
सोमेश्वर ବଂଶୀୟ ରାଜା—1· Name of a king of the Soma dynasty who ruled in Kosala. [ ବି—ଏ ମହାରାଜାଧିରାଜ ସୋମବଂଶୀ ଉଦ୍ୟୋତକେଶରୀଙ୍କ ପରେ କୋଶଳରେ ରାଜତ୍ୱ କରୁଥିଲେ । ତାଙ୍କ ରାଜତ୍ୱରେ ନିର୍ମିତ ସୋମେଶ୍ୱର ମନ୍ଦିର ପାଟଣାଷ୍ଟେଟ ଅନ୍ତର୍ଗତ ରାଣୀପୁର ଝରିଅଲ ନାମକ ବହୁ ପ୍ରାଚୀନ ସାଧୁର୍ଶୋଭିତ ସ୍ଥାନରେ ଅଦ୍ୟାପି ବିଦ୍ୟମାନ ।

ସୋମବଂଶର ସୋମେଶ୍ୱରଙ୍କ ଛଡ଼ା କୋଶଳ ବା ପାଟଣା ଓ ସୋନପୁର ଅଞ୍ଚଳରେ ଚୈଳବଂଶୀୟ 'ସୋମେଶ୍ୱର' ନାମକ ଦୁଇ ଜଣ ରାଜା ରାଜତ୍ୱ କରୁଥିଲେ—କେଦାରନାଥ, ମହାପାତ୍ର । ] ୨ । ପାଟଣାରାଜ୍ୟାନ୍ତର୍ଗତ ରାଣୀପୁର ଝରିଅଲରେ ପ୍ରତିଷ୍ଠିତ ଶିବଲିଙ୍ଗ—2. Name of an idol of Śiba in the Patna state.

ସୋମୋଦ୍ଭବ—ସଂ, ବିଣ· ପୁଂ(ବହୁବ୍ରୀହି; ସୋମଙ୍କଠାରୁ ଉଦ୍ଭବ ଯାହାର)
Somodbhaba —ସୋମଙ୍କଠାରୁ ଜାତ—Born of Soma.
(ସୋମୋଦ୍ଭବା—ସ୍ତ୍ରୀ) ବି· ପୁଂ—୧ । ବୁଧଗ୍ରହ—1. Planet Mercury. ୨ । ଶ୍ରୀକୃଷ୍ଣଙ୍କର ଏକ ନାମ ( ଚନ୍ଦ୍ରମା ଉପୂକ୍ଷକାସ୍ତ) ( ହ· ଶ )—
2. A name of Śrikrushna.

ସୋମୋଦ୍ଭବା—ସଂ. ବି. ସ୍ତ୍ରୀ—ରେବା ବା ନର୍ମଦା ନଦୀ (ଅମର)—
Somodbhabā The Nerbudda river.
ସଂ. ବିଣ. ସ୍ତ୍ରୀ—ସୋମୋଦ୍ଭବର ସ୍ତ୍ରୀଲିଙ୍ଗ—Feminine of Somodbhaba.

ସୋମୋଦ୍ର—ଗ୍ରା· ବି (ମାଦଳା ପାଞ୍ଜି)—ସମୁଦ୍ର—
Somodra Ocean.
ସମଦ୍ଦ୍ଦର समुंद्र

ସୋମ୍ୟ—ସଂ· ବିଣ (ସୋମ+ଯ)—୧ । ସୋମ ସମ୍ବନ୍ଧୀୟ—
Somya 1. Relating to Soma· ୨ । ସୋମଯୁକ୍ତ (ହି. ଶ)—2· Having Soma. ୩ । ସୋମପାନର ଯୋଗ୍ୟ (ହି. ଶ)—3. Entitled to or fit for drinking Soma juice. ୪ । ସୋମ ରସର ଅଗ୍ନିରେ ଦେବାବାଲା (ହି. ଶ)—4. (a person or priest) Offering the Soma juice unto fire.

ସୋୟଂ—ଗ୍ରା. ଅ (ସ୍ୱୟଂର ଅଶୁଦ୍ଧ ଉଚ୍ଚାରଣ)—ସ୍ୱୟଂ—
Soyam Self; personally.
ସ୍ୱୟং स्वयं

ସୋୟମ୍—ବେଦେ. ବିଣ (ଫା)—୧ । ତୃତୀୟ—1. Third. ୨ ।
Soyam ତୃତୀୟ ଶ୍ରେଣୀର (ଜମି)—2. Of the third class
ସোয়ম (land)· [ବି—ଓଡ଼ିଶାର ଆବକ ରାଜସ୍ୱ ବନୋବସ୍ତରେ
सोयम ଜମିମାନଙ୍କୁ ଉର୍ବରତା ଦୃଷ୍ଟିରେ—
ଅଉଲ୍ (୧ମ ଶ୍ରେଣୀର ବା ଉତ୍କୃଷ୍ଟ),
ଦୋୟମ୍ (୨ୟ ଶ୍ରେଣୀର),
ସୋୟମ୍ (୩ୟ ଶ୍ରେଣୀର),
ଚହାରମ୍ (୪ର୍ଥ ଶ୍ରେଣୀର),
ଏହିପରି ଶ୍ରେଣୀବିଭାଗ କରାଯାଉଥିଲା ।]

ସୋର୍—ବେଦେ. ବି—୧ । ( ଇଂ ନାମ ) ସାର୍‌ଜନ୍ ସୋର୍; ଭାରତର
Sor ଜନୈକ ଗଭର୍ଣ୍ଣର୍ ଜେନେରଲ୍—1. Sir John Shore, a
সোর্ Governer General of India; Lord
सोर Teignmouth.
[ବି—ଏ ଖ୍ରୀ: ୧୭୯୩ରୁ ୧୭୯୮ ପର୍ଯ୍ୟନ୍ତ ଗଭର୍ଣ୍ଣର୍ ଜେନେରଲ୍ ହୋଇଥିଲେ । ଏହାଙ୍କର ଅନ୍ୟ ନାମ ଲର୍ଡ୍ ଟେନ୍ ମାଉଥ । ଏହାଙ୍କ ଅମଳରେ ବନାରସ ରାଜ୍ୟ ଇଷ୍ଟ୍ ଇଣ୍ଡିଆ କୋମ୍ପାନୀଙ୍କ ଖାସ୍ ଦଖଲରେ ଆସିଥିଲା ଏବଂ ଆଲ୍ଲାହାବାଦ ଖାସ୍ ଦଖଲରେ ଆସିଥିଲା । ] ୨ । (ଫା· ଶୋର୍) କୋଲାହଳ; ଶୋଘା—2· Noise (ତୁଳ· ସଂ. ସ୍ୱର)— ୩ । (ଇଂ) ସମୁଦ୍ର ଆଦିର ତଟ; କୂଳ—3. Shore. ୪ । (ଫା. ସୁର) ଚେତନାବସ୍ଥା—4. Conscious condition.

ସୋର୍ କରିବା—ଦେ. କ୍ରି—୧ । ଗୋଳ କରିବା—1. To make
Sor karibā a noise. ୨ । ହୋ ଉଠାଇବା—2· To
সোর গোলকরা raise a hue and cry. ୩ । ପାଟି
शोर मचाना କରିବା—3. To make a loud voice. ୪ । ଦେ କରିବା—4. To make a sound. ୫ । କୌଣସି ବିଷୟ ସାଧାରଣରେ ପ୍ରକାଶ କରିବା; ସ୍ପଷ୍ଟ କରିବା—5. To publish a matter broadcast.

ସୋର୍ ଗୋଳ—ଦେ· ବି (ସହଚର ଶବ୍ଦ; ସଂ.ସ୍ୱର ଓ ଫା. ଗୋଲ୍)—
Sor gola ଗୋଲମାଲ ଗଣ୍ଡଗୋଳ—Noise; ado.
সোর গোল शोरगो(गु)ल

ସୋର୍ ଶବଦ—ଦେ. ବି (ସହଚର ଶବ୍ଦ, ସଂ. ସ୍ୱର ଓ ଶବ୍ଦ)—କୌଣସି
Sor śabada ପ୍ରକାରର ଶବ୍ଦ—Any sound or noise.
সোর শব্দ सोरगुल
( ସୋରୁ ଶବ୍ଦ—ଅନ୍ୟରୂପ )

ସୋର୍ ସାର୍—ଦେ. ବି ( ନିରର୍ଥକ ଦ୍ୱିତୀୟ ସହଚର ଶବ୍ଦ )—ସୋର୍
Sor sār ଶବଦ (ଦେଖ)—Sor śabada (See)

ସୋର୍ ହଜିବା—ଦେ. କ୍ରି—ଚୈତନ୍ୟଲୋପ ହେବା—
Sor hajibā Losing or loss of consciousness.
বেহুঁশ হওয়া चेत होना

ସୋର୍ ହେବା—ଦେ. କ୍ରି—୧ । ଜ୍ଞାନଲାଭ ହେବା—1. Regaining or revival of consciousness.
Sor hebā ଦେ, ଚୈତନ୍য হওয়া କ୍ରି ( କୌଣସି ବିଷୟ)—ସ୍ପଷ୍ଟ ହେବା—To be
चेत होना published; to become public.
রটিয়া যাওয়া शोरहोना

ସୋର—ଦେ. ବି (ସଂ. ସ୍ୱରର ଅଶୁଦ୍ଧ ଉଚ୍ଚାରଣ)—୧ । ସ୍ୱର; ଶବ୍ଦ—
Sora 1. Sound. ୨ । ବାଦ୍ୟାଦିର ଶବ୍ଦ—2. Tone of
সোর musical instrument. ୩ । ଗଣ୍ଡଗୋଳ; ଗୋଳମାଳ—

स्वर 3. Noise. ୪ । ସୋର୍ (ଦେଖ)—4. Soro (See)
होंश ୫ । ସ୍ମରଣ—5. Recollection. ବୈଦେ. ବ (ଫା. ସୁର୍)
होश, सूर ହୋସ୍; ଚେତ୍; ଜ୍ଞାନ)—Consciousness. ସଂ.
୮—ବକ୍ରଗତି (ହ୍ରି. ଣ)—Tortuous motion.

ସୋରକ—(ଅର୍ବାଚୀନ) ସଂସ୍କୃତ. ବ—ସୋରା (ବୈଦ୍ୟକୋଷ)—
Soraka Saltpetre.
[ଦ୍ର—ପ୍ରାଚୀନ ସଂସ୍କୃତ ଅଭିଧାନରେ ଏ ଶବ୍ଦ ମିଳେ ନାହିଁ ବୋଲି ଡାକ୍ତର ଉଦୟଚାନ୍ଦ ଦତ୍ତ ତାଙ୍କ ରଚିତ Materia Medica of the Hindus (ହିନ୍ଦୁଙ୍କ ଭୈଷଜ୍ୟ ବିଜ୍ଞାନ ଗ୍ରନ୍ଥରେ ଲେଖିଅଛନ୍ତି ।]

ସୋରଟ(ଠ) ମଲ୍ଲା(ହ୍ଲା)ର—ଦେ. ବ—ସମ୍ପୂର୍ଣ୍ଣ ଜାତିର ରାଗ ବିଶେଷ—
Sorata(tha) mallā(hlā)ra Name of musical tune.
सुरट मल्लार [ଦ୍ର—ଏଥିରେ ସବୁ ଶୁଦ୍ଧସ୍ୱର ଲାଗେ—ହ୍ର. ଣ ।]
सोरठ मल्लार

ସୋରଡ଼ା—ପ୍ରାଦେ (ଗଞ୍ଜାମ) ବ. (ଧ୍ୱନ୍ୟନୁକରଣ)—୧ । ସୋଡ଼କା
Sorardā (ଦେଖ)—1 Sordakā (See) ୨ । ଗଞ୍ଜାମର
(ସୋରଡ଼ୀ—ସ୍ତ୍ରୀ) ଗୋଟିଏ ଗ୍ରାମ—2. Name of a village
in Ganjam. ବିଣ—ସୋଡ଼କା ( ଦେଖ )—
Sordakā (See)

ସୋରଡ଼ିବା—ପ୍ରାଦେ (ଗଞ୍ଜାମ) କ୍ରି. ( ଧ୍ୱନ୍ୟନୁକରଣ )—ସୋଡ଼କିବା
Sorardibā (ଦେଖ)—Sordakibā (See)

ସୋରଣ—ସଂ. ବିଣ—ଈଷତ୍ କଷା, ମିଠା ଖଟା ଓ ଲୁଣିଆ ହେବାରୁ
Sorana ରୁଚିକର (ହ୍ର. ଣ)—Palatable owing to being a little astringent, sweet, sour and saline.

ସୋରଣା—ପ୍ରାଦେ ( ଗଡ଼ଜାତ ) ବ—୧ । ସାନ ସନ୍ତୁଆସି—
Soranā 1. Small pincers. ୨ । ନାକୁଆସି—
2. Pincers used by barbers to draw out the furs from the nostrils.

ସୋର(ରୋ)ତ—ଗ୍ରା. ( ଗଦ୍ୟ ) ବ. ( ସ. ସ୍ରୋତ )—ସ୍ରୋତ—
Sora(ro)ta স্রোত सोत Current.
(ଉ—ପଡ଼ିଅଛି ତହିଁ ଯେ ସୋରତର ବେଳା, ପାର ହେବାପାଇଁ ବ ଭାବେ ଶବ ଭେଳା—କୃଷ୍ଣସିଂହ ମହାଭାରତ ଦ୍ରୋଣ ।]

ସୋରସ(ସୋ)ତି—ଗ୍ରା. ବ ( ସ. ସରସ୍ୱତୀ ଶବ୍ଦର ଅଶୁଦ୍ଧ ଉଚ୍ଚାରଣ )-
Sorasa(so)ti ସରସ୍ୱତୀ ( ଦେଖ )—Saraswati
সরস্বতী सरोसती (See).

ସୋରା—ବୈଦେ. ବ (ଫା: ଶୁର. ସ. କ୍ଷାର, ସୁବର୍ଚ୍ଚିକା ଓ ସର୍ଜିକା କ୍ଷାର
Sorā ୧ । ଯବକ୍ଷାର; ଭୂପୃଷ୍ଠରୁ ଜାତ କ୍ଷାରବିଶେଷ—
সোরা शोरा 1. Saltpetre; Potassium nitrate; nitrate of potash. [ ଦ୍ର—
ଇଉରୋପ, ଆମେରିକା, ମଧ୍ୟଏସିଆ, ପାରସ୍ୟ, ଚୀନ, ଭାରତବର୍ଷରେ ପ୍ରାୟ ସବୁଠି ଓ ବିଶେଷତଃ ବଡ଼ାଳରେ ଓ ଆମେରିକାର କର୍ଣ୍ଣାଟନ ... ଅଞ୍ଚଳମାନଙ୍କରେ ମାଟି ଉପରେ ଜୁଆଳିଆ ଫୁଟିଲା ପରି ଏ କ୍ଷାରର ସ୍ତର ଦେଖାଯାଏ । ଏହି ସ୍ତର (ସାକ୍ରମାଟି)କୁ ପାଣିରେ ଗୋଳି ତାକୁ ମାଟିଆ ପାତ୍ରରେ ଛାଳିଦେଇ ତଳେ ବସିବା ଅଂଶକୁ ଖରାରେ ବା ନିଆଁ ଦ୍ୱାରା ଶୁଖାଇଲେ ସୋରା ମିଳେ । ସୋରା ସହିତ ଗନ୍ଧକ ଓ କୋଇଲାଗୁଣ୍ଡ ମିଶାଯାଇ ବାରୁଦ ପ୍ରସ୍ତୁତ କରାଯାଏ ।] ୨ ।
ସୋଡ଼ା (ଦେଖ)—2. Sordā (See). ୩ । ( ସ.
नव लर ସର ) ହାର ଅଦର ସରୁ—
3. A string of beads etc. ୪ । ସୋରହୋରା;
ଜମି ଅଦର ଲମ୍ବ ପଟି—4. A long strip of land.
୫ । ଲେମ୍ବୁ ଅଦର ଚ(ଚ୍ଛ)ରୁଡ଼ା ବା ଫାଳ—
5. One strip of lemon. ୬ । କରମଙ୍ଗା, ଅମୃତଭଣ୍ଡା, ବୋଇତକଖାରୁ ଆଦି ଉପରେ ଶିରା ଥିବା ଫଳର ଦୁଇଟି ଶିରା ମଧ୍ୟରେ ଥିବା ଲମ୍ବ ଚରୁଡ଼ା—
6. A long ridged portion or strip of a corrugated fruit (e. g. carrambola, red gourd) from the stem of the fruit to its end. ପ୍ରାଦେ ( ପାଟଣା ) ବ—ସ୍ମରଣ—
Recollection

ସୋରା(ରେ)ଇ—ବୈଦେ. ବ (ଫା—ସୁରାହି) ସୁରାଇ (ଦେଖ)
Sorā(re)i Surāi (See)

ସୋରା(ରେ)ଇବା—ଦେ. କ୍ରି ( ସ. ସ୍ମୃ ଧାତୁ କର୍ମ୍ମ ଣିଚ୍ ଧାତୁ )—ସୁରାଇବା ( ଦେଖ )—
Sorā(re)ibā Surāibā (See)

ସୋରାକ୍(ଖ୍)(ଇତ୍ୟାଦି)—ବୈଦେ. ବ.—ସୁରାକ୍ ଇତ୍ୟାଦି (ଦେଖ)
Sorāk(kh)(etc) Surāk etc (See)

ସୋରା କ୍ଷାର—ଦେ. ବ (ବୈଦ୍ୟକ)—ଯବକ୍ଷାର—
Sorā kshāra Potassium nitrate; saltpetre.
সোরাক্ষার शोरा

ସୋରାଜାନ—ଦେ. ବ ( ବିଜ୍ଞାନପରିଭାଷା)—ଯବକ୍ଷାରଜାନ ବାଷ୍ପ—
Sorājāna Nitrogen.
সোরাজান शोराजान

ସୋରା ଝଲକା—ପ୍ରାଦେ. (ଗଞ୍ଜାମ ) ବ—ଉପର କାନର ଫାସିଆ (ଯହିଁରୁ
Sorā jhalakā ସୋରା ସୋରା ଝଞ୍ଜିର ଓହ୍ଲାଇ ଥାଏ )—
An ear—ornament worn on the upper part of the ear and from which hang chained pendants.

ସୋରାବାସ—ଦ୍ର.ବ—ଲୁଣ ମିଶା ଯାଇ ନ ଥିବା ମାଂସର ସୋରୁଆ(ହ୍ର.ଣ)-
Sorābāsa Soup of meat not seasoned with salt.

ସୋରାଷ୍ଟ୍ରିକ—ସ. ବ—ସୌରାଷ୍ଟ୍ରିକ (ବୈଦ୍ୟକୋଷ) (ଦେଖ)
Sorāshtrika Saurāshtrika (See)

ସୋରି—ଦେ. ବ—ସୋରା ୩ (ଦେଖ)—Sorā 3 (See) [ଉ—
Sori ବନ୍ଧୁ ଭୁମ ସୋ ଗଳ ଲୁଣଣ ମୋତି ସୋରି ଦ୍ୱାରି ପାଣୋର ଚେ—ବନବର୍ଣ୍ଣ, ସଙ୍ଗୀତ ।]

ସୋରିବା—ଦେ. କ୍ରି—ସୁରିବା (ଦେଖ)—
Soribā Suribā ( See )
ସୋରିଷ—ଦେ. ବି ( ସଂ. ସର୍ଷପ )—ସର୍ଷପ; ତୈଳବୀଜବିଶେଷ—
Sorisha Indian rape; mustard; Brassia Papus;
সরিষা सरसों Sinapis Nigra. [ ଦ୍ରୁ—ସର୍ଷପ ଶବ୍ଦ ଦେଖ । ]

ସୋରିଷ ତେଲ(ମାଲପା)—ଦେ. ବି—ସର୍ଷପ ତୈଳ—
Sorisha tela(mālapā) Mustard oil.
সরিষা তেল सरसों का तेल
ସୋରିଷା—ଦେ. ବିଣ—୧ । ସୋରିଷ ପରି ଆକୃତିବିଶିଷ୍ଟ—1. Hav-
Sorishā ing the shape of a mustard. ୨। ସୋରିଷର
সরিষা सरसों के जसे ବର୍ଣ୍ଣବିଶିଷ୍ଟ—2. Mustard-col-
(ସୋରିଷିଆ—ଅନ୍ୟରୂପ) oured. ବି—୧। ସୋରିଷ ପରି ଛୋଟ
ଦାନା ଥିବା ହାରବିଶେଷ—1. Necklace consisting
of mustard like-beads. ୨ । କବାଟ ଅଧରେ
ଲଗିଥିବା ଏକପ୍ରକାର କଣ୍ଟା—2. A kind of nail
for doors. ୩ । କବାଟରେ ବା ସିନ୍ଦୁକ ଅଧରେ ମରା
ଯାଇଥିବା କୁଣ୍ଡଳୀ—3. Staple of a door.
স্ুবসো কুলাঘা

ସୋରିଷା କଣ୍ଠି (ମାଳ,ମାଳି,ହାର)—ଦେ.ବି—ସୋରିଷପରି କ୍ଷୁଦ୍ର ଦାନା-
Sorishā kanthi (māla,māli, hāra) ଯୁକ୍ତ କଣ୍ଠାଭରଣ—
সরিসা হাব कंठी A necklace of mustard-shaped beads.
ସୋରିଷିଆ (ଇତ୍ୟାଦି)—ଦେ. ବିଣ ଓ ବି—ସୋରିଷା ଇତ୍ୟାଦି (ଦେଖ)
Sorishiā (etc) Sorishā etc (See)
ସୋରିଷିଆ ଗୋଧି—ଦେ. ବି—ଏକପ୍ରକାର ହଳଦିଆ ଓ ସୋରିଷ ପରି
Sorishiā godhi ଫୁଟୁଫୁଟିକିଆ ଚମଡ଼ାଯୁକ୍ତ ଗୋଧି—A species
গোসাপ विषखपरा of iguana. [ ଦ୍ରୁ—ଏ ଶ୍ରେଣୀର ଗୋଧିଙ୍କ ବିଷ ମାରାତ୍ମକ । ଅନ୍ୟ ପ୍ରକାରର ଗୋଧିକୁ ମାଟିଆ ଗୋଧି ବୋଲାଯାଏ । ]

ସୋରିହା—ଗ୍ରା. ବି ଓ ବିଣ—ସୋରେହା (ଦେଖ)
Sorihā Sorehā (See)
ସୋରୀ—ଗ୍ରା. ବି. ସ୍ତ୍ରୀ—ସରସ୍ୱତୀ ନାମ୍ନୀ ସ୍ତ୍ରୀର ଡାକ ନାମ—
Sorī Nickname for Saraswati
ସୋରୁଅ—ଦେ. ବି—ପାଚିଲା ପଣସ ବା ପାଚିଲା ତାଳର ଚକଟା ରସ—
Sorua The kneaded juice of a ripe jackfruit or ripe palm.
সত্ব रस

ସୋରୁଆ—ବୈଦେ. ବି ( ପା. ସୋର୍ବା )—ମାଂସର ଝୋଳ—
Sruā সুরুয়া सोरवा Meat soup.
ସୋ ରୁମ୍—ବୈଦେ. ବି (ଇଂ) —ଦୋକାନମାନେ ଯେଉଁ ଘରେ ପଣ୍ୟ-
So rum ଦ୍ରବ୍ୟମାନ ଲୋକଙ୍କୁ ଦେଖାଇବା ପାଇଁ ସଜାଇ ରଖନ୍ତି—
সোরুম शोरुम Show room.
ସୋରେ ଅ—ଗ୍ରା. ବାକ୍ୟ (ସଂ.ସ୍ୱ- ଅ)—ଅବଧାନମାନେ ଭୂମିରେ
Sore a ପିଲାଙ୍କୁ ସ୍ୱରବର୍ଣ୍ଣର 'ଅ' ଅକ୍ଷରକୁ ଖଡ଼ିରେ ଭୂଇଁରେ ଲେଖା-
ଇଲାବେଳେ ଡାକିବା ପଦ—The first vowel letter 'a' called out by the teacher while causing the beginner to write it on the ground with chalk and repeat it.
সবে অ स्वर अ
ସୋରେ ଆ—ଦେ. ବାକ୍ୟ—୧ । ଅବଧାନମାନେ ଭୂମିରେ ପିଲ-
Sore ā ମାନଙ୍କୁ'ଆ' ଅକ୍ଷର ପଢ଼ାଇବା ବାକ୍ୟ-1. The second
সবে আ vowel letter 'ā' called out by the teacher
स्वर आ while causing the beginner to write it on the ground with chalk, ୨ । ସୋରେହା ( ଦେଖ )—2 Sorehā (See).
ସୋରେହା—ଦେ. ବି ( ସଂ. ସ୍ପୃହା )—୧ । ସ୍ପୃହା; ଆଗ୍ରହ; ଲାଳସା—
Sorehā 1. Eagerness; hankering. ୨ । ସ୍ନେହ—
স্পৃহা स्पृहा 2. Affection; liking [ ଦ୍ରୁ—ମୋତେ ଯାହା କି ଦର୍ଶାଇଲ ମୁଁ ବଖାଣିଲି ତାହା । ଯାହାର ବଳ୍ଲଭ ରୂପେ ସେମନ୍ତ ସୋରେହା—ପ୍ରାଚୀ. ଲବଣ୍ୟବତୀ ।] ବିଣ. ପୁଂ—ସ୍ପୃହାଯୁକ୍ତ; ଅନୁରାଗଯୁକ୍ତ—Eager or hankering; attached to; doting on.
ସୋରେହିବା—ଦେ. କ୍ରି—କୌଣସି ଦ୍ରବ୍ୟ ପ୍ରତି ସ୍ପୃହାଯୁକ୍ତ ହେବା—
Sorehiba To hanker after a thing.
স্পৃহাযুক্ত হওয়া स्पृहायुक्त होना
ସୋରୋ—ଦେ. ବି (ନାମ) ବାଲେଶ୍ୱରର ଗୋଟିଏ ଥାନାର ଓ ଗ୍ରାମର
Soro ନାମ—Name of a village and police station in the district of Balasore.
ସୋର୍ଣ୍ଣ—ସ. ବିଣ ( ସହାର୍ଥ ବହୁବ୍ରୀହି; ସ+ଊର୍ଣ୍ଣା )—ଊର୍ଣ୍ଣାବିଶିଷ୍ଟ—
Sornna Having wool; wooly.
ସୋର୍ଣ୍ଣ ଭ୍ରୂ—ସଂ. ବିଣ ( ପୁଂ ଓ ସ୍ତ୍ରୀ ) ( ବହୁବ୍ରୀହି; ସୋର୍ଣ୍ଣ+ଭ୍ରୂ )—
Sornna bhrū ଯେଉଁ ବ୍ୟକ୍ତିର ଦୁଇ ଭ୍ରୂଲତା ମଧ୍ୟରେ ଲୋମ ବା ଲୋମର ଭଉଁରି ଥାଏ ( ହ୍ର. ଶ )—( a person ) Having downs or downy whorl between the two eyebrows.
ସୋର୍ମି—ସ. ବିଣ ( ସହାର୍ଥ ବହୁବ୍ରୀହି; ସ+ଊର୍ମି )—ଊର୍ମି ବା
Sormmi ଲହଡ଼ିବିଶିଷ୍ଟ ( ଶବ୍ଦକୋଷ )—
Having waves; wavy.
ସୋଲ୍—ବୈଦେ. ବି ( ଇଂ )—୧ । ଜୋତାର ଗୋଇଠିର ଚମଡ଼ା—
Sol 1. The heel of a shoe. ୨ । ଜୋତାର ତଳ
সোল सोल ଚମଡ଼ା; ତଳା—2. The sole of a shoe.
ସୋଲ୍ ଟଂ ପୋଲ୍ ଟଂ—ଦେ. ଅ—ଓଲଟ ପାଲଟ—Tupsy turvy,
Sol-tam pol-tam [ ଦ୍ରୁ—ସୋଲ୍ଟ. ପୋଲ୍ଟଂ ସାତ୍‌ଖଡ଼ା —ଛଗ । ]
ওলট পালট उलट पलट
( ସୋଲଟ ପୋଲଟ, ସୋଲ୍ଟ ପୋଲ୍ଟ—ଅନ୍ୟରୂପ )
ସୋଲ(ହ୍ଲ, ହ୍ଲା ଇତ୍ୟାଦି)—ଦେ. ବି—ଶୋଲ ଇତ୍ୟାଦି (ଦେଖ)—
Sola(hla, hlā) etc Sola etc (See).
ସୋଲ—ସ. ବି—୧ । ( ଶୀତଳତା; ଥଣ୍ଡାପଣ ( ହ୍ର. ଶ. )—
Sola 1. Coolness. ୨ । ସ୍ୱାଦ ( ହ୍ର. ଶ. )—

2. Taste. ସଂ. ବିଣ । ୧ ଶୀତଳ; ଥଣ୍ଡା (ହି. ଶ)- 1. Cold. ୨ । ସ୍ୱାଦବିଶିଷ୍ଟ (ହି. ଶ)— 2. Having a taste.

ସୋଲ (ଇତ୍ୟାଦି)—ଗ୍ରା. ବି. ଓ ବିଣ—ଷୋଳ ଇତ୍ୟାଦି (ଦେଖ)— Sola (etc) Shola etc (See)

ସୋଲ(ଲା)ଙ୍କ(ଙ୍କି)—ଦେ. ବି—ଉତ୍ତର ଭାରତର ପ୍ରାଚୀନ କ୍ଷତ୍ରିୟ Sola(lā)ṅka(ṅki) ରାଜବଂଶବିଶେଷ—Name of a celebrated Kshatriya royal family of North India. [ଦ୍ର—ଖ୍ରୀଷ୍ଟାବ୍ଦ ୭୦୦ଠାରୁ ୧୨୦୦ ପର୍ଯ୍ୟନ୍ତ ଅନେକ ଶିଳାଲେଖ ଓ ତାମ୍ରପତ୍ର ଆଦିରୁ ଏ ବଂଶ ଚନ୍ଦ୍ରବଂଶୀୟ ଓ ପାଣ୍ଡବଙ୍କ ବଂଶଧର ଥିବାର ପ୍ରମାଣ ମିଳେ । ବହୁକାଳ ଏ ବଂଶ ଗୁଜରାଟରେ ରାଜତ୍ୱ କରୁଥିଲେ । କିନ୍ତୁ 'ପୃଥ୍ୱୀରାଜ ରାସୋ' ଆଦି ପରବର୍ତ୍ତୀକାଳର ଗ୍ରନ୍ଥରେ ଲେଖା ଅଛି ଯେ, ଏ ବଂଶର ଆଦିପୁରୁଷ ଚାଲୁକ୍ୟ ଆବୁ ପର୍ବତରେ ବଶିଷ୍ଠ ଋଷିଙ୍କ ଯଜ୍ଞ କୁଣ୍ଡରୁ ଉତ୍ପନ୍ନ ହୋଇଥିଲେ । କଥିତ ଅଛି ଯେ, ପ୍ରଥମେ ସୋଲଙ୍କିମାନଙ୍କ ରାଜ୍ୟ ଅଯୋଧ୍ୟାରେ ଥିଲା । ତତ୍ପରେ ସେ ବଂଶ ଦକ୍ଷିଣଦେଶକୁ ଗଲେ ଓ ସେଠାରୁ ପୁଣି ଗୁଜରାଟ, କାଠିଆବାଡ଼, ରାଜପୁତାନା ଓ ବଘେଲଖଣ୍ଡରେ ରାଜ୍ୟ କଲେ । ଉତ୍ତରଭାରତରେ ଯେତେବେଳେ ହର୍ଷବର୍ଦ୍ଧନ ରାଜତ୍ୱ କରୁଥିଲେ, ସେ ସମୟରେ ଦକ୍ଷିଣରେ ସୋଲଙ୍କି ସମ୍ରାଟ ଦ୍ୱିତୀୟ ପୁଲକେଶୀ ରାଜତ୍ୱ କରୁଥିଲେ ଓ ସେ ହର୍ଷବର୍ଦ୍ଧନଙ୍କୁ ପରାସ୍ତ କରିଥିଲେ । ରୀମା ରାଜ୍ୟର ବଘେଲ ବଂଶ ଏହି ସୋଲଙ୍କି ବଂଶର ଏକ ଶାଖା । ଓ ଏ ଅଗ୍ନିବଂଶୀୟ ବୋଲି ଖ୍ୟାତ (ହି. ଶ) ।]

ସୋଲନ୍—ଦେ. ବି (ଗ୍ରୀକ୍ ନାମ)—ପ୍ରାଚୀନ ଗ୍ରୀସ୍‌ର ରାଜଧାନୀ ଆଥେନ୍ସର Solan ପ୍ରସିଦ୍ଧ ବ୍ୟବସ୍ଥାପକ ଓ ଗ୍ରୀସ୍‌ର ତତ୍‌କାଳୀନ ୭ ଜଣ ସୋଲନ ସୋଲନ ମହାପଣ୍ଡିତଙ୍କ ମଧ୍ୟରୁ ଏକତମ— Solon the Wise; the great philosopher and legislator of Athens. [ଦ୍ର—ଏହାଙ୍କର ଜନ୍ମ ଖ୍ରୀ. ପୂ. ୬୩୦ ଓ ମୃତ୍ୟୁ ଖ୍ରୀ. ପୂ. ୫୫୯ । ଏ ବହୁ ଦେଶ ଭ୍ରମଣ କରି ଜାତୀୟ ଗୌରବୋଦ୍ଦୀପକ କବିତା ରଚନା କରି ଜନ୍ମଭୂମି ସାଲେମିସ୍ ଦ୍ୱୀପକୁ ବଇରୀଙ୍କ ହସ୍ତରୁ ମୁକ୍ତ କରାଇଥିଲେ । ଏ ଜଣେ ଦାର୍ଶନିକ ଓ ଜ୍ଞାନୀ ଥିଲେ । ଏହାଙ୍କର ଗୋଟିଏ ଉକ୍ତି ଓଡ଼ିଆ ଭାଗବତର 'ପ୍ରାଣୀର ଭଲ ମନ୍ଦ ଜାଣି, ମରଣ କାଳେ ତାହା ଜାଣି' ଉକ୍ତିର ଭାବାର୍ଥଦ୍ୟୋତକ । ଏହାଙ୍କ ପ୍ରଣୀତ ବ୍ୟବସ୍ଥା (ଆଇନ)ର ସାରବତ୍ତା ସଭ୍ୟଜଗତକୁ ମୁଗ୍ଧ ଓ ଚମତ୍କୃତ କରିଅଛି ।]

ସୋଲ(ଲୁ)ପ—ବୈଦେ. ବି (ଇଂ. ସ୍ଲୁପ୍)—ଛୋଟ ଜାହାଜ— Sola(lu)pa A small ship; sloop. (ଉ— ସ୍ଲୁପ ସୋଲପ ଗଢ଼ ଗଗଡ଼ ଚଳବା ନୁହଁ, ସୋଲପ ପରି ମଣକ୍ତୁ ବହିଁ, ଉମ୍ଭମାନଙ୍କୁ ବୋଲନ୍ତୁ ଦେଖ, ବୋହିବ ଏହି ଯେ—ବ୍ରଜନାଥ. ସମରତରଙ୍ଗ ।)

ସେଲରି—ଦେ. ବି (ନାମ)—ଖୋରଧାର ବାଣପୁର ଅଞ୍ଚଳରେ ଅବସ୍ଥିତ Solari ଚିଲିକାହ୍ରଦ ଗର୍ଭବର୍ତ୍ତୀ ଗୋଟିଏ ପାହାଡ଼— Name of a hill in Banpur in the Khurda Subdivision on the shore of the Chilka lake.

ସୋଲା—ଦେ. ବି. (ହିନ୍ଦୀ; ସଂ. ଚଣକ)—ବୁଟ; ଚଣା— Solā Gram; chickpea; Cicer Arietinum ছোলা चना, बूट ଦେ. ବିଣ—ଶୋଲ ପରି ହାଲୁକା—As light as cork. ପ୍ରାଦେ হালকা (ଗଞ୍ଜାମ) ବି—ଗଞ୍ଜାମ ଅଞ୍ଚଳରେ ପ୍ରଚଳିତ ଶସ୍ୟ ଓ हलका ତୈଳାଦିର ମାପବିଶେଷ; ୧୬ ତୋଳା ଓଜନ—A unit of voluminal measure in Ganjam [ଦ୍ର—ଅଡ଼ା ତଳେ କୋଠ ଦେଖ ।]

ସୋଲା ଚଣା—ଦେ. ବି—ସୋଲା (ଦେଖ)— Solā chaṇā Solā (See)

ସୋଲେ—ବୈଦେ. ବି (କଚେରୀ; ଫା. ସୁଲ୍‌ହ୍)—ସୁଲେ (ଦେଖ)— Sole Sule (See).

ସୋଲେନାମା—ବୈଦେ. ବି(କଚେରୀ; ଫା. ସୁଲ୍‌ହ୍‌ନାମା)—ସୁଲେନାମା Solenāmā (ଦେଖ)—Sulenāmā (See).

ସୋଲୋପ୍—ବୈଦେ. ବି (ଇଂ)—ପାହାଡ଼ଆଦି କା କ୍ରମନିମ୍ନ ସ୍ଥାନ; Solop ଗଡ଼ାଣି—A slope. ବିଣ—ଗଡ଼ାଣିଆ; କ୍ରମନିମ୍ନ— ଢାଲୁ ढलोप Sloping; slanting.

ସୋଲ୍ଲାସ—ସଂ. ବିଣ. ପୁଂ (ସହାର୍ଥ ବହୁବ୍ରୀହି; ସ+ଉଲ୍ଲାସ)—ଉଲ୍ଲାସ- Sollāsa ଯୁକ୍ତ; ଉଲ୍ଲସିତ—Delighted, (ସୋଲ୍ଲାସା—ସ୍ତ୍ରୀ)

ସୋଲ୍ଲୁଣ୍ଠ—ସଂ. ବିଣ ପୁଂ(ସହାର୍ଥ ବହୁବ୍ରୀହି, ସ+ଉଲ୍ଲୁଣ୍ଠ=ପରିହାସ)— Solluntha 1. Jocular; jestive. ୨ । ପାର୍ଶ୍ୱପରିବର୍ତ୍ତନାଦି ଯୁକ୍ତ—2. Accompanied with rolling on the sides. ସଂ. ବି—ସୋଲ୍ଲୁଣ୍ଠନ (ଦେଖ)— (ସୋଲ୍ଲୁଣ୍ଠା—ସ୍ତ୍ରୀ. ବିଣ) Sollunṭhana (See)

ସୋଲ୍ଲୁଣ୍ଠନ—ସଂ. ବି (ସ+ଉଲ୍ଲୁଣ୍ଠନ; ସହାର୍ଥ ବହୁବ୍ରୀହି)— Sollunṭhana ୧ । ପରିହାସଯୁକ୍ତ ବାକ୍ୟ—1. Jestive words; redicule. ୨ । (ଅଳଙ୍କାର) ବ୍ୟାଜସ୍ତୁତି; ବ୍ୟଙ୍ଗ୍ୟ—2. Ironical praise. ୩ । ସ୍ତୁତିପୂର୍ବକ ଉପହାସ (ଜଟାଧର)—3. Satire; sarcasm; irony (Apte).

ସୋଲ୍ଲୁଣ୍ଠୋକ୍ତି—ସଂ. ବି—ବ୍ୟଙ୍ଗୋକ୍ତି— Sollunṭhokti Irony; ironical expression.

ସୋସିର(ରି)—ଦେ. ବିଣ(ସଂ. ସଦୃଶ; ଭୁଲ ଓଡ଼ିଆ ଦୋସର; ସରଶା)— Sosira(ri) ୧ । ସରି; ସଦୃଶ—1. Similar. ୨ । ସରସା; सरिस ସମାନ—2. Equal.

ସୋସିର(ରା,ରି)—ଦେ. ବି(ସଂ ଶୁଷିର)—ଓଠଦ୍ୱୟ, ଦନ୍ତପାଟିର ପବନ ଦ୍ୱାରା Sosira(rā ri) ଉତ୍ପାଦିତ ଧ୍ୱନି; ସୁଷିର-ବାଜା—A whistle. ସିଟି सुसकारी

ସୋସାଇଟ୍(ଟି)—ବୈଦେ, ବ (ଇଂ)—୧ । ସମାଜ—1. Society.
Sosāiṭ(ṭi) ୨ । କୋଅପରେଟିଭ୍ ସୋସାଇଟି—2. Co operative Society. ୩ । ଥିଓଜଫିକାଲ୍ ସୋସାଇଟି,
সোসাইটি ବ୍ରହ୍ମବିଦ୍ୟା ସମିତି—3. The Theosophical Society.
सोसाइटी

[ ଦ୍ର—କଅଣ ? ରୁଷ୍ ଦେଶର ବ୍ରହ୍ମବିଦ୍ୟା ମାଡ଼ାମ୍ ବ୍ଲାଭାଟ୍ସ୍କୀ ନାମ୍ନୀ ମହିଳା ଏବଂ ଅମେରିକା ଯୁକ୍ତରାଜ୍ୟର କର୍ଣ୍ଣେଲ୍ ଅଲ୍‌କଟ୍ ସାହେବ ପ୍ରଥମେ ୧୮୭୫ ଖ୍ରୀଷ୍ଟାବ୍ଦରେ ଆମେରିକାର ନିଉୟର୍କ୍ ସହରରେ ବ୍ରହ୍ମବିଦ୍ୟା ସମିତି (Theosophical Society) ସ୍ଥାପନ କରିଥିଲେ । ଏହି ସମିତି ଏବଂ ବ୍ରହ୍ମବିଦ୍ୟା ସମ୍ପର୍କରେ ଇଂରେଜୀ ଭାଷାରେ ବହୁସଂଖ୍ୟକ ପୁସ୍ତକ ଲିଖିତ ହୋଇଅଛି । ମାତ୍ର ଭାରତୀୟ ଭାଷାମାନଙ୍କରେ ସେପରି ପୁସ୍ତକମାନଙ୍କର ସଂଖ୍ୟା ଅଳ୍ପ । ବର୍ତ୍ତମାନ ପୃଥିବୀର ପ୍ରାୟ ଅଧିକାଂଶ ଦେଶରେ ଏହି ସମିତି ସ୍ଥାପିତ ହୋଇଅଛି ଏବଂ ସେହି ସେହି ଦେଶମାନଙ୍କରେ ଯେତେ ସମିତି ଅଛି ସେମାନଙ୍କର ଗୋଟିଏ ଲେଖାଏଁ କେନ୍ଦ୍ର ଅଛି । ଉଦାହରଣ ସ୍ୱରୂପ, ଭାରତବର୍ଷରେ ବନାରସ ବା କାଶୀ ଏ ଦେଶର ସମିତି-ମାନଙ୍କର କେନ୍ଦ୍ର । ପୁଣି ସମସ୍ତ ପୃଥିବୀର ସମିତିମାନଙ୍କର କେନ୍ଦ୍ର (Head quarters) ଏହି ଭାରତ ବର୍ଷର ମାନ୍ଦ୍ରାଜ ସହରର ଆଡୟାର୍ ନାମକ ସ୍ଥାନରେ ସ୍ଥାପିତ ।

ବ୍ରହ୍ମବିଦ୍ୟା କୌଣସି ବ୍ୟକ୍ତିକୁ କୌଣସି ଅନ୍ଧବିଶ୍ୱାସ ଉପରେ ପ୍ରତ୍ୟୟ ସ୍ଥାପନ କରିବାକୁ କହେ ନାହିଁ; କାରଣ, ଏହା କହେ ଯେ, ପ୍ରତ୍ୟେକ ବ୍ୟକ୍ତିଙ୍କଠାରେ ଏପରି ଶକ୍ତି ନିହିତ ଅଛି, ଯାହା ଜାଗରିତ ହେଲେ ସେ ପ୍ରତ୍ୟେକ ସତ୍ୟ ନିଜେ ଦେଖି ପାରିବେ ଓ ପରୀକ୍ଷା କରି ପାରିବେ । ସାଧାରଣ ଭାଷାରେ ଆମ୍ଭେମାନେ କହୁଁ, ମନୁଷ୍ୟର ଆତ୍ମା ଅଛି । ମାତ୍ର ବ୍ରହ୍ମବିଦ୍ୟା କହେ, ମନୁଷ୍ୟହିଁ ଆତ୍ମା । ଏହାର ଦେହ ବା ଶରୀର ଅଛି । ଅଧିକ ଠିକ୍ ଭାବରେ କହିଲେ, ମନୁଷ୍ୟର ଅନେକ ଦେହ ଅଛି । ଏଥିମଧ୍ୟରୁ କେବଳ ସ୍ଥୂଳ ଶରୀରଟି ସାଧାରଣ ଦେଖି ପାରନ୍ତି । ଅନ୍ୟ ଶରୀରଗୁଡ଼ିକ କେବଳ ସାଧକ ମନୁଷ୍ୟମାନେ ଦେଖି ପାରନ୍ତି । ଏହି ଭିନ୍ନଭିନ୍ନ ଶରୀରଦ୍ୱାରା ମନୁଷ୍ୟ ଭିନ୍ନ ଭିନ୍ନ ଲୋକରେ ଯାତାୟାତ କରେ । ଏହି 'ଲୋକ'ଗୁଡ଼ିକ ଗୋଟିକ ଉପରେ ଗୋଟିଏ ସ୍ଥାପିତ ନୁହେଁ; ମାତ୍ର ସମସ୍ତେ ଏକାବେଳକେ ଏହିଠାରେ ଆମ୍ଭମାନଙ୍କ ନିକଟରେ ଉପସ୍ଥିତ । ସାଧାରଣ ଲୋକେ କେବଳ ସ୍ୱର୍ଗଲୋକ ଭୂର୍ଲୋକକୁ ଜାଣି ପାରନ୍ତି; କେବଳ ସ୍ୱପ୍ନରେ ସମୟ ସମୟରେ ଭୁବର୍ଲୋକର ଆଭାସ ପାଆନ୍ତି । ଯାହାକୁ ମୃତ୍ୟୁ କହନ୍ତି ତାହା କେବଳ ଏହି ସର୍ବ-ନିମ୍ନ ଭୂର୍ଲୋକ ସମ୍ପର୍କୀୟ ଜଡ଼ଦେହର ପରିତ୍ୟାଗ । ଯେଉଁପରି ମନୁଷ୍ୟ ଗୋଟିଏ ପୋଷାକ ଖୋଲି ପୋଷାକ ଦେଲେ ତାହାର ଜଡ଼ଦେହର କୌଣସି ପରିବର୍ତ୍ତନ ହୁଏ ନାହିଁ, ସେହିପରି ମୃତ୍ୟୁ ସମୟରେ ଜଡ଼ ବା ସ୍ଥୂଳ ଦେହ ପରିତ୍ୟାଗ-ଦ୍ୱାରା ଆତ୍ମାର କୌଣସି ପରିବର୍ତ୍ତନ ଘଟେ ନାହିଁ । ଏହା ଅନୁମାନ ନୁହେଁ, ମାତ୍ର ସାଧକ ଓ ସିଦ୍ଧ ମହାତ୍ମାମାନଙ୍କର ସାକ୍ଷାତ୍ ପରିଦର୍ଶନ ଓ ପରୀକ୍ଷାସିଦ୍ଧ ।

ଯେଉଁମାନଙ୍କର ସୂକ୍ଷ୍ମଦୃଷ୍ଟି ଲାଭ ହୋଇଅଛି ସେମାନେ ଅନୁସନ୍ଧାନଦ୍ୱାରା ଜାଣି ଅଛନ୍ତି ଯେ, ମନୁଷ୍ୟ ସ୍ୱୟଂ ଭଗବାନଙ୍କଠାରୁ ପ୍ରଥମେ ଆସିଅଛି ଏବଂ ଦୀର୍ଘକାଳବ୍ୟାପୀ କ୍ରମବିକାଶ ଦ୍ୱାରା ବର୍ତ୍ତମାନ ଅବସ୍ଥାରେ ପହଞ୍ଚିଅଛି ଓ କ୍ରମ-ବିକାଶ ଦ୍ୱାରା ପୁଣି ଭଗବାନଙ୍କଠାରେ ଯାଇ ପହଞ୍ଚିବ । ଏହି କ୍ରମବିକାଶ ଦୁଇ ପ୍ରକାର । ଆତ୍ମାର କ୍ରମବିକାଶ ଓ ବାହ୍ୟ ଆକାରର ବା ଶରୀରର କ୍ରମବିକାଶ । ଏଥିରୁ ଆମ୍ଭେମାନେ ଜାଣୁ ଯେ, ମାନବାତ୍ମାର ଜୀବନକାଳ ଅତ୍ୟନ୍ତ ଦୀର୍ଘ, ଏବଂ ଯାହାକୁ ଆମ୍ଭେମାନେ ଜୀବନ ବୋଲି କହୁଁ, ତାହା ସେହି ମହାଜୀବନର ଗୋଟିଏ ଦିନ ମାତ୍ର । ମନୁଷ୍ୟ ଏହିପରି ଅନେକ ଦିନ ବଞ୍ଚିଅଛି ଏବଂ ଭବିଷ୍ୟତରେ ମଧ୍ୟ ଅନେକ ଦିନ ବଞ୍ଚିବ ।

ସିଦ୍ଧପୁରୁଷମାନେ ବର୍ତ୍ତମାନ ସୁଦ୍ଧା ପୃଥିବୀରେ ଅଛନ୍ତି ଏବଂ ସେମାନଙ୍କ ସଂସ୍ପର୍ଶରେ ଆସିବା ଓ ସେମାନଙ୍କଠାରୁ ଉପଦେଶ ପାଇବା ଯେ ସମ୍ଭବ, ଏହା ବ୍ରହ୍ମବିଦ୍ୟାର ଅଦ୍ଭୁତ ଗୋଟିଏ ସୁସମ୍ବାଦ । ଏହି ପୃଥିବୀ ଅନିୟମିତ ଭାବରେ ଅସହାୟତା ଆଡ଼କୁ ପ୍ରଧାବିତ ହେଉ ନାହିଁ । ମାତ୍ର ଏହାର ଉନ୍ନତି ଦେବନିର୍ଦ୍ଦିଷ୍ଟ ଏକ ଋଷିସଂଘ ଦ୍ୱାରା ସୁବନ୍ଦୋ-ନିୟନ୍ତ୍ରିତ ।

ଯେଉଁମାନେ ଏ ସବୁ ବିଷୟ ବୁଝି ପାରନ୍ତି ସେମାନେ କ୍ରମବିକାଶର ଏହି ମୃଦୁଗତିରେ ସନ୍ତୁଷ୍ଟ ନ ହୋଇ ସିଧା ରାସ୍ତା ଅନ୍ୱେଷଣ କରନ୍ତି ଏବଂ ଲାଭ ମଧ୍ୟ କରନ୍ତି । ଏହି ପଥରେ ପଥିକ ହେବା ଯେ କଷ୍ଟସାଧ୍ୟ, ଏହା ବୋଲିବା ବାହୁଲ୍ୟ । ଏହି ପଥରେ ଯାଇ ଯେଉଁମାନେ ମୁକ୍ତିଲାଭ କରନ୍ତି ସେମାନେ ଏହି ବିଶାଳ କାର୍ଯ୍ୟ-ନିର୍ଘଣ୍ଟ ବୁଝି ପାରନ୍ତି ଏବଂ ଉପରିଲିଖିତ ଋଷିସଂଘ ସହିତ ସହଯୋଗ କରି ସୃଷ୍ଟିର କ୍ରମବିକାଶରେ ସାହାଯ୍ୟ କରି ପାରନ୍ତି ।

ପୂର୍ବେ କୁହାଯାଇଅଛି ଯେ, ବ୍ରହ୍ମବିଦ୍ୟା କାହାରିକୁ କୌଣସି ବିଷୟ ଅନ୍ଧଭାବରେ ବିଶ୍ୱାସ କରିବାକୁ କହେ ନାହିଁ । ମାତ୍ର ଯେ ବ୍ରହ୍ମବିଦ୍ୟା ପ୍ରଥମେ ଅଧ୍ୟୟନ କରିବାକୁ ଆରମ୍ଭ କରିବେ, ସେ ତ ସବୁ ବିଷୟ ଅନୁଭୂତିଦ୍ୱାରା ଜାଣି ନ ଥିବେ । ସୁତରାଂ, ସେ ଅନ୍ୟମାନଙ୍କର ଅନୁଭୂତିସିଦ୍ଧ ସତ୍ୟ ଗୁଡ଼ିକୁ ସମ୍ଭବ ବୋଲି ପ୍ରଥମେ ଗ୍ରହଣ କରିବେ ଏବଂ ତଦନୁ-ଯାୟୀ କାର୍ଯ୍ୟ କରିବା ଲାଗି ସର୍ବଦା ଚେଷ୍ଟା କରିବେ; ମାତ୍ର ନିଜ ଜୀବନରେ ଅନୁଭୂତ ନ ହେବାଯାଏ କୌଣସି ବିଷୟ ବିଶ୍ୱାସ କରିବାକୁ ସେ ବାଧ୍ୟ ନୁହନ୍ତି ।

ବ୍ରହ୍ମବିଦ୍ୟା କାହାରିକୁ ତାଙ୍କର ନିଜ ଧର୍ମ ଛାଡ଼ି ଅନ୍ୟ ଧର୍ମ ଗ୍ରହଣ କରିବାକୁ ଉପଦେଶ ଦିଏ ନାହିଁ; ପକ୍ଷାନ୍ତରେ ତାଙ୍କ ନିଜ ଧର୍ମକୁ ତାଙ୍କୁ ବିଶଦ ଭାବରେ ବୁଝାଇ ଦିଏ । ସେ

ବ୍ରହ୍ମବିଦ୍ୟା ପଢ଼ିବା ପୂର୍ବରୁ ତାଙ୍କର ନିଜ ଧର୍ମକୁ ଯେପରି ବୁଝୁଥିଲେ ତଦପେକ୍ଷା ଭଲଭାବରେ ବୁଝି ପାରିବେ ଓ ଭଲ ଭାବରେ କାର୍ଯ୍ୟ କରିବେ; ଯେଉଁଥିରେ ତାଙ୍କର ବିଶ୍ୱାସ ହେଉ ନ ଥିଲା ତହିଁରେ ଦୃଢ଼ ବିଶ୍ୱାସ ହେବ ।

ଏହା ବିଜ୍ଞାନ ଶାସ୍ତ୍ର ପରି ପ୍ରତ୍ୟେକ ସତ୍ୟକୁ ବାରଂବାର ପରୀକ୍ଷା ଓ ପରିଦର୍ଶନ କରି ଗ୍ରହଣ କରେ । ଏହିପରି ଭାବରେ ପ୍ରକୃତିର ଭିନ୍ନ ଭିନ୍ନ ଲୋକ (planes) ଏବଂ ଜୀବନରେ ଓ ମୃତ୍ୟୁ ପରେ ମାନବର (ଆତ୍ମାର) ଚୈତନ୍ୟ ସମ୍ବନ୍ଧରେ ନାନାବିଧ ଅନୁସନ୍ଧାନ କରି ଏହା ନାନା ସତ୍ୟରେ ଉପନୀତ ହୋଇଅଛି । ମାତ୍ର କୌଣସିଟି ଅନୁମାନ ନୁହେ—ମହାତ୍ମାମାନଙ୍କର ପ୍ରତ୍ୟକ୍ଷ ଅନୁଭୂତ ।

ବ୍ରହ୍ମବିଦ୍ୟାର ଉପଦେଶ :--

୧ । ମନୁଷ୍ୟର ଆତ୍ମା ଅମର । ଯେଉଁ ବସ୍ତୁର ବିକାଶ ଓ ସୌନ୍ଦର୍ଯ୍ୟର ସୀମା ନାହିଁ ତାହାର ଭବିଷ୍ୟତ୍ ଯାହା, ମନୁଷ୍ୟ ଆତ୍ମାର ଭବିଷ୍ୟତ୍ ତାହା ।

୨ । ଯେଉଁ ଶକ୍ତି ଆମ୍ଭମାନଙ୍କୁ ଜୀବନ ପ୍ରଦାନ କରେ ତାହା ଆମ୍ଭମାନଙ୍କ ଭିତରେ ଅଛି, ବାହାରେ ଅଛି, ତାହା ଅମର, ଚିରମଙ୍ଗଳମୟ । ତାକୁ କେହି ଦେଖି ପାରେ ନାହିଁ, ଶୁଣି ପାରେ ନାହିଁ କିମ୍ବା ଘ୍ରାଣ କରି ପାରେ ନାହିଁ । କେବଳ ଯାହାର ଅନୁଭୂତ କରିବା ପାଇଁ ଇଚ୍ଛା ଥାଏ, ସେ ସମ୍ୟକ୍ ଚେଷ୍ଟାଦ୍ୱାରା ସେହି ଶକ୍ତିର ଅନୁଭୂତି ଲାଭ କରି ପାରେ ।

୩ । ପ୍ରତ୍ୟେକ ଲୋକ ନିଜର ଭାଗ୍ୟବିଧାତା, ନିଜର କର୍ମ ଲାଗି ଦାୟୀ, ସୁତରାଂ ନିଜ ସୁଖ ଦୁଃଖର ସ୍ରଷ୍ଟା ।

୪ । ଏକ, ଅନନ୍ତ ସର୍ବବ୍ୟାପୀ ପରମେଶ୍ୱରଙ୍କ ସମ୍ବନ୍ଧରେ ଆମ୍ଭେମାନେ ବର୍ତ୍ତମାନ ଅବସ୍ଥାରେ କିଛି ଜାଣି ପାରିବା ନାହିଁ । ଅସୀମକୁ ଧାରଣା କରିବା ବର୍ତ୍ତମାନ ଅବସ୍ଥାରେ ଅସମ୍ଭବ । କେବଳ ଏତିକି ଜାଣିବା—ସେ ଅଛନ୍ତି ।

ତାଙ୍କ ଭିତରେ ଅଗଣିତ ବ୍ରହ୍ମାଣ୍ଡ ଓ ପ୍ରତ୍ୟେକ ବ୍ରହ୍ମାଣ୍ଡରେ ଅଗଣିତ ସୌର ଜଗତ୍ ଅଛି । ପ୍ରତ୍ୟେକ ସୌର ଜଗତ୍ ଗୋଟିଏ ମହାଶକ୍ତିଶାଳୀ ଦେବଙ୍କ ପ୍ରକଟୀଭୂତ । ଏହାଙ୍କୁ ଆମ୍ଭେମାନେ ସୂର୍ଯ୍ୟଦେବତା ବା ସୂର୍ଯ୍ୟନାରାୟଣ କହୁଥାଉଁ । ସାଧାରଣତଃ ଈଶ୍ୱର କହିଲେ ଯାହା ବୁଝୁଁ ଆମ୍ଭମାନଙ୍କ ପକ୍ଷରେ ସେ ତାହାହିଁ ଅଟନ୍ତି । ସେ ସମସ୍ତ ସୌର ଜଗତରେ ବ୍ୟାପ୍ତ । ତାଙ୍କ ବିରହିତ ବସ୍ତୁ ସୌର ଜଗତରେ ନାହିଁ । ତଥାପି ସେ ସୌର ଜଗତ୍ ଉପରେ ଓ ବାହାରେ ଥାନ୍ତି ।

ତାଙ୍କର ଉଚ୍ଚତର ଜୀବନ ବିଷୟରେ ଆମ୍ଭେମାନେ କିଛି ଜାଣୁ ନାହିଁ । ମାତ୍ର ତାଙ୍କର ଯେଉଁ ଅଂଶ ଏହି ସୌର ଜଗତକୁ ପ୍ରାଣ ଦାନ କରିଅଛି, ସେ ଅଂଶ ସମ୍ବନ୍ଧରେ କିଛି ଜାଣି ପାରିବା । ଆମ୍ଭେମାନେ ତାଙ୍କୁ ଦେଖି ପାରିବା ନାହିଁ, ମାତ୍ର ତାଙ୍କର ଶକ୍ତିର କାର୍ଯ୍ୟ ଦେଖି ପାରିବା ।

ସେ ନିଜ ରୂପରୁ ଏହି ପ୍ରକାଣ୍ଡ ସୌର ଜଗତ୍ ଉତ୍ପାଦନ କରିଅଛନ୍ତି । ଆମ୍ଭେମାନେ ସମସ୍ତେ ତାଙ୍କର କଳା ଏବଂ ଶେଷରେ ତାଙ୍କ ମଧ୍ୟକୁ ଫେରିଯିବା ।

ସେ କେଉଁ ଉଚ୍ଚରେ ଅଛନ୍ତି, ତାହା ଆମ୍ଭମାନଙ୍କର ବୁଦ୍ଧିର ଅଗମ୍ୟ । ମାତ୍ର ତାଙ୍କର ଯେଉଁ ଶକ୍ତି ଜଡ଼-ଜଗତରେ କାର୍ଯ୍ୟ କରେ ତାହା ସର୍ବଦା ତ୍ରିବିଧ । ସୁତରାଂ ସବୁ ଧର୍ମରେ ତାଙ୍କର ତିନି ମୂର୍ତ୍ତି କଳ୍ପିତ ହୋଇଅଛି; ତିନି ମୂର୍ତ୍ତି, ମାତ୍ର ଏକ ଈଶ୍ୱରଙ୍କର ତିନି ଭିନ୍ନ ଭିନ୍ନ ଦୃଶ୍ୟ । ଏହି ତ୍ରିବିଧ ଶକ୍ତିଦ୍ୱାରା ସୌର ଜଗତର ଓ ମାନବର କ୍ରମବିକାଶ ସାଧିତ ହେଉଅଛି । ଏହି କ୍ରମବିକାଶହିଁ ତାଙ୍କର ଇଚ୍ଛା ।

ସୂର୍ଯ୍ୟଦେବଙ୍କର ସାତ ଜଣ ମନ୍ତ୍ରୀ ଅଛନ୍ତି । ଯେତେ କ୍ରମ-ବିକାଶ ତାଙ୍କଠାରୁ ଆସୁଅଛି ସେ ସମସ୍ତ ଏହି ସାତ ଜଣ ମଧ୍ୟରୁ କାହାର ନା କାହାର ମଧ୍ୟ ଦେଇ ଆସୁଅଛି ।

ଆମ୍ଭମାନଙ୍କ ପୃଥିବୀରେ ସୂର୍ଯ୍ୟଦେବତାଙ୍କର ଭାଗବତ-ବର୍ତ୍ତିତ ସନତ୍‌କୁମାର ନାମକ ଜଣେ ପ୍ରତିନିଧି ଅଛନ୍ତି । ଆମ ପୃଥିବୀରେ ଯେତେ କ୍ରମବିକାଶ ହେଉଅଛି ସେ ସବୁ ତାଙ୍କଦ୍ୱାରା ପରିଚାଳିତ । ସେ ରାଜା ଏବଂ ଭିନ୍ନ ଭିନ୍ନ ବିଭାଗ ଲାଗି ତାଙ୍କ ତଳେ ମନ୍ତ୍ରୀ ସବୁ ରହିଅଛନ୍ତି, ଯାହାଙ୍କ ଅଧୀନରେ ଶିକ୍ଷା ଓ ଧର୍ମବିଭାଗ ସ୍ଥାପିତ; ସେ ନିଜେ କିମ୍ବା ତାଙ୍କର କୌଣସି ଶିଷ୍ୟ ନୂତନ ଧର୍ମ ସ୍ଥାପନ କରିବାଲାଗି ସମୟ ସମୟରେ ଦେହଧାରଣ କରନ୍ତି ।

ସବୁ ଧର୍ମ ଏକାଂ ମହାପୁରୁଷଙ୍କଦ୍ୱାରା ସ୍ଥାପିତ ହୋଇଥିବାରୁ ଏକ ସାଧାରଣ ସତ୍ୟ ଉପରେ ପ୍ରତିଷ୍ଠିତ । କେବଳ ସଭ୍ୟତା ଓ କ୍ରମବିକାଶର ପାର୍ଥକ୍ୟ ହେତୁ ଭିନ୍ନ ଭିନ୍ନ ଧର୍ମର ବାହ୍ୟ ଆବରଣ ଭିନ୍ନ ଭିନ୍ନ ଦେଖାଯାଏ । ଏପରିକି, କେତେକ ଧର୍ମ ପରସ୍ପର ବିରୋଧୀ ହେବା ପରି ଜଣା-ଯାଏ । ମାତ୍ର ସବୁ ଧର୍ମର ଅନ୍ତର୍ନିହିତ ସତ୍ୟ ଏକ; କାରଣ, ସବୁ ଧର୍ମର ସ୍ରୋତ ଏକ ଉତ୍ସରୁ ଆସିଅଛି ।

ମାନବ ଜାତିର ଆଦିମ ଅବସ୍ଥାରେ ଋଷିଙ୍କର କର୍ମ-କର୍ତ୍ତାମାନେ ପୃଥିବୀର ବାହାରୁ ଆଣୀତ ହୋଇଥିଲେ । ମାତ୍ର ମନୁଷ୍ୟମାନେ ଯେତେବେଳେ ସେହି ଉଚ୍ଚ ଜ୍ଞାନର ଓ ଶକ୍ତିର ଅଧିକାରୀ ହୋଇ ପାରିଲେ ସେତେବେଳେ ସେମାନଙ୍କୁ ସେହି ସବୁ ପଦରେ ନିଯୁକ୍ତ କରାଗଲା । ସେହି ପଦ ଲାଭ କରିବାକୁ ମନୁଷ୍ୟକୁ ଆଧ୍ୟାତ୍ମିକ ଜଗତର ଉଚ୍ଚସ୍ତରକୁ ଯିବାକୁ ପଡ଼େ । ସେ ଅବସ୍ଥା ପ୍ରାପ୍ତ ହେଲେ ମନୁଷ୍ୟକୁ ଜୀବନ୍ମୁକ୍ତ ବୋଲାଯାଏ । ବୌଦ୍ଧ ଧର୍ମଶାସ୍ତ୍ରରେ ତାହାଙ୍କୁ ଅଶେଖ ବୋଲାଯାଏ । ଇଂରାଜୀରେ (Adept) ଅଡେପ୍ଟ୍ ବୋଲାଯାଏ । ସେମାନେ ମାନବର କ୍ରମବିକାଶର ଶେଷ ସୀମାରେ ପହଞ୍ଚି ଅଛନ୍ତି । ମାତ୍ର ସେମାନଙ୍କର କ୍ରମ-ବିକାଶ ଦେବତ୍ୱ ପ୍ରାପ୍ତି ପର୍ଯ୍ୟନ୍ତ ଚାଲିଥାଏ ।

ବହୁତ ମହାପୁରୁଷ ଏ ଅବସ୍ଥା ପ୍ରାପ୍ତ ହୋଇଅଛନ୍ତି । ସେମାନେ କୌଣସି ବିଶେଷ ଜାତିର ନୁହନ୍ତି । ମାତ୍ର

ପୃଥିବୀର ପ୍ରାୟ ସବୁ ପ୍ରଧାନ ପ୍ରଧାନ ଜାତିରୁ ଉଠିଅଛନ୍ତି । ସେମାନେ ଅଦମ୍ୟ ସାହସ ଓ ଚେଷ୍ଟାଦ୍ୱାରା ପ୍ରକୃତିର ଦୁର୍ଭେଦ୍ୟ ଦୁର୍ଗ ସବୁ ଜୟ କରି ତାହାର ଅନ୍ତରତମ ସତ୍ୟ ସବୁ ଲାଭ କରିଅଛନ୍ତି । ସେମାନଙ୍କ ମଧ୍ୟରେ ବିଭାଗ ବଣ୍ଟା ହୋଇଅଛି ଏବଂ ପ୍ରତ୍ୟେକ ବିଭାଗର କାର୍ଯ୍ୟ ଭିନ୍ନ ଭିନ୍ନ । ମାତ୍ର ସବୁ ସମୟରେ ସେମାନଙ୍କ ମଧ୍ୟରୁ କେତେଜଣ ଏହି ପୃଥିବୀର ସମ୍ପର୍କରେ ଥାଆନ୍ତି ଓ ଋଷିସଙ୍ଘର ସଭ୍ୟସ୍ୱରୂପେ ଏହି ପୃଥିବୀର କାର୍ଯ୍ୟମାନ ପରିଦର୍ଶନ କରନ୍ତି ।

ଏହି ଋଷିସଙ୍ଘର ସଭ୍ୟମାନେ ସ୍ଥୂଳଦେହରେ ନ ଥିବାରୁ ଏକ ସ୍ଥାନରେ ସେମାନଙ୍କର ରହିବା ଆବଶ୍ୟକ ହୋଇ ନ ଥାଏ । ସେମାନେ ପୃଥିବୀର ଭିନ୍ନ ଭିନ୍ନ ସ୍ଥାନରେ ଥାଇସୁଦ୍ଧା ଅନାୟାସରେ ପରସ୍ପର ମଧ୍ୟରେ ସର୍ବଦା ଭାବର ଆଦାନ-ପ୍ରଦାନ କରି ପାରନ୍ତି । ଯେ କୌଣସି ଲୋକ ସେମାନଙ୍କ ମଧ୍ୟରୁ କାହାର ମନୋଯୋଗ ଆକର୍ଷଣ କରି ପାରନ୍ତି । ମାତ୍ର ତାଙ୍କର ମନୋଯୋଗ ଆକର୍ଷଣ କରିବା ପାଇଁ ଉପଯୁକ୍ତ ହେବା ଆବଶ୍ୟକ । ଯେ ଏହି ବିଗରେ ଚେଷ୍ଟା କରିବେ ତାଙ୍କର ଚେଷ୍ଟାକୁ କାଳେ କେହି ଦୃଷ୍ଟି ଦେଖିବେ ନାହିଁ,କାହାର ଏପରି ଆଶଙ୍କା କରିବାର ଆବଶ୍ୟକତା ନାହିଁ। କାରଣ,କେତେକ ଜୀବନ୍ମୁକ୍ତ ପୁରୁଷ ଅଚଳପ୍ରଜ୍ଞ ଲୋକଙ୍କୁ ପାଇଲେ ତାଙ୍କୁ ଶିଷ୍ୟ ( ଚେଲା ) କରିବାକୁ ଇଚ୍ଛୁକ । ଏହି କେତେକ ଜୀବନ୍ମୁକ୍ତ ପୁରୁଷଙ୍କୁ ଗୁରୁ ( ଇଂରାଜୀରେ ମାଷ୍ଟର୍—Master) ବୋଲାଯାଏ । ଏହି ଗୁରୁଙ୍କୁ ଲକ୍ଷ୍ୟ କରି ଆମ୍ଭମାନଙ୍କ ଶାସ୍ତ୍ରରେ ଉପଦେଶ ଅଛି :—

"ଅଜ୍ଞାନତିମିରାନ୍ଧସ୍ୟ ଜ୍ଞାନାଞ୍ଜନଶଲାକୟା ।
ଚକ୍ଷୁରୁନ୍ମୀଲିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ ॥"

ଯେଉଁ ମାଡାମ୍ ବ୍ଲାଭାଟ୍ସ୍କିଙ୍କ ନାମ ଏହି ଗ୍ରନ୍ଥ ଆରମ୍ଭରେ ଲେଖା ହୋଇଅଛି, ସେ ଏହିପରି କୌଣସି ପୁରୁଷଙ୍କ ଚେଲା ବା ଶିଷ୍ୟା ଥିଲେ । ସେହି ମହାତ୍ମାମାନଙ୍କ ଯେଉଁ ଜ୍ଞାନପ୍ରଚାର ଲାଗି ଭୂମଣ୍ଡଳରେ ଅବତୀର୍ଣ୍ଣ ହୋଇଥିଲେ ତାହା ସମ୍ୟକ୍ ସଫଳତା ଲାଭ କରିଅଛି । ତାହାଙ୍କଦ୍ୱାରା ସ୍ଥାପିତ ବ୍ରହ୍ମବିଦ୍ୟା ସମିତି (ଥିଓଜଫିକାଲ୍ ସୋସାଇଟି) ପାଠିଏ ବର୍ଷ ମଧ୍ୟରେ ପୃଥିବୀର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଶାଖା ପ୍ରଶାଖା ବିସ୍ତାର କରି ଦିନକୁଦିନ ଉନ୍ନତି ମାର୍ଗରେ କ୍ଷିପ୍ରଗତିରେ ପ୍ରଧାବିତ ହେଉଅଛି । ପୃଥିବୀର ନାନା ଭାଷାରେ ବ୍ରହ୍ମବିଦ୍ୟା ସମ୍ବନ୍ଧୀୟ ପୁସ୍ତକମାନ ଲିଖିତ, ମୁଦ୍ରିତ ଓ ପ୍ରଚାରିତ ହେଉଅଛି । ସହସ୍ର ସହସ୍ର ନରନାରୀ ଏହି ପବିତ୍ର କାର୍ଯ୍ୟରେ ମନ ପ୍ରାଣ ଢାଳି ଦେଇ ନିଜ ନିଜର ଜୀବନକୁ ସାର୍ଥକ କରୁଅଛନ୍ତି । ସବୁ ଦେଶରେ ଏହାର ଆଦର୍ଶ ବଢୁଅଛି ।

ଯେଉଁ ପନ୍ଥା ଅବଲମ୍ବନ କଲେ ଗୁରୁଙ୍କ କୃପା-ଲାଭ ହୋଇ ପାରିବ ତାହା ଅତ୍ୟନ୍ତ କଠିନ । ବୋଧହୁଏ ଆଉ ସେପରି କଠିନ କିଛି ପନ୍ଥା ଏ ଜଗତରେ ନାହିଁ । ଏ ପନ୍ଥାରେ ସିଦ୍ଧି ସୁନିଶ୍ଚିତ; ତେବେ ତାହା କେତେ କାଳରେ ଲାଭ ହେବ, ତାହା କେହି କହି ପାରିବେ ନାହିଁ । ପୁଣି ସାଂସାରିକ କାର୍ଯ୍ୟରେ ମୁକ୍ତହସ୍ତ ଅଛି ହେଲେ ଚଳିବ ନାହିଁ, ଅସକ୍ତିରହିତ ହେବାକୁ ହେବ । ପର ସେବା ଓ ସ୍ୱାର୍ଥତ୍ୟାଗ ଏ ପନ୍ଥାର ପ୍ରଧାନ କର୍ତ୍ତବ୍ୟ ।

ଯେଉଁ ସ୍ୱର୍ଗତ ମହାପୁରୁଷ ( ବିଶପ୍ ଲେଡ୍ ବିଟର୍ )ଙ୍କ ଗ୍ରନ୍ଥରୁ ଏହି ଗ୍ରନ୍ଥର ଅଧିକାଂଶ ଅନୁବାଦିତ, ସେ କିଛିକାଳ ଏହି ପନ୍ଥାରେ କାର୍ଯ୍ୟ କରିବା ପରେ କେତେକ ଜଣ ଗୁରୁଙ୍କ ସଂସର୍ଗରେ ଆସିଥିଲେ । ସେମାନଙ୍କଠାରୁ ଅନେକ ଶିକ୍ଷା ପାଇ ପରେ ସେ ନିଜେ ସେମାନଙ୍କର ଶିକ୍ଷା ସବୁ ପରୀକ୍ଷା ଦ୍ୱାରା ପ୍ରମାଣିତ କରି ପାରିଲେ ।

ଏହି ଗୁରୁମାନଙ୍କର ଶିଷ୍ୟ ହେବା ପ୍ରତ୍ୟେକ ବ୍ରହ୍ମବିଦ୍ୟା-ପାଠକଙ୍କର ଚରମ ଲକ୍ଷ୍ୟ ହେବା ଉଚିତ । ସେ ସୌଭାଗ୍ୟ ଲାଭ କରିବା ଲାଗି ଅଦମ୍ୟ ସଙ୍କଳ୍ପ ଓ ସାଧନା ଆବଶ୍ୟକ । ଶ୍ରୀ ଜଗନ୍ନାଥ ତ୍ରିପାଠୀ, ବି. ଏ., ବି. ଟି.ଙ୍କ 'ବ୍ରହ୍ମବିଦ୍ୟା ପରିଚୟ' ଗ୍ରନ୍ଥରୁ ଗୃହୀତ । ]

**ସୋସିଅଲିଜମ୍**—ବିଦେ. ବି (ଇଂ)—ସମାଜତନ୍ତ୍ର ବା ସାମ୍ୟବାଦ ନାମକ Sosiălij-m ମତବାଦ; ଆଧୁନିକ ରାଜନୀତିକ ମତବାଦ ବିଶେଷ—ସୋସିଆଲିଜ୍‌ମ୍ Name of a modern political creed; **सोसिआलिज़म्** socialism. [ଦ୍ର—ସମାଜରେ ବଡ଼ଲୋକଙ୍କର ବେଶୀ ଧନୀ ହେବା ଅବସ୍ଥାର ଓ ଗରିବ ଲୋକଙ୍କ ନିର୍ଦ୍ଧନ ଅବସ୍ଥାର ଲୋପକରି ତହିଁ ପରିବର୍ତ୍ତେ ଦେଶରେ ଥିବା ସବୁଧନ ଓ ସମ୍ପତ୍ତିକୁ ସବୁ ଲୋକଙ୍କ ମଧ୍ୟରେ ସମାନ ଭାଗରେ ବାଣ୍ଟି ଦେଇ ଜଗତକୁ ସ୍ୱର୍ଗରାଜ୍ୟରେ ପରିଣତ କରିବା ଏ ମତବାଦର ଚରମ ଲକ୍ଷ୍ୟ ଅଟେ । ଏ ମତବାଦୀମାନେ ନାନା ଆନ୍ଦୋଳନ ଓ ବକ୍ତୃତା ଆଦି କରି ଜଗତରୁ ରାଜା,ଜମିଦାର, ସେଠ ଓ ଧନପତିମାନଙ୍କ ଉଚ୍ଛେଦ ସାଧନ କରିବାକୁ ଲୋକଙ୍କୁ ଉପଦେଶ, ଉତ୍ତେଜନା ଓ ମନ୍ତ୍ରଣା ଦେବାରେ ଲାଗିଛନ୍ତି ଓ ସାମ୍ୟବାଦ ବଲସେଭିବାଦ (bolshivism) ଧାରଣ କରୁଅଛି । ]

**ସୋସିଅଲିଷ୍ଟ**—ବିଦେ. ବି ଓ ବିଣ ( ଇଂ )—ସମାଜତାନ୍ତ୍ରିକ; Sosiălisht ସୋସିଅଲିଜମ୍ ମତବାଦୀ ବ୍ୟକ୍ତି—ସୋସିଆଲିଷ୍ଟ **सोसिआलिस्ट** Socialist.

**ସୋହଂ**—ସଂ. ବାକ୍ୟ (ସଃ=ସୋ+ଅହଂ=ମୁଁ; ସନ୍ଧିଦ୍ୱାରା ସଃ ଓ Soham ଅହଂ ମିଳଯାଇ ସୋଽହଂ ପଦ ହେଲା । ସୋ ଏବଂ ହଂ (ସୋଽହଂ, ସୋଽହମସ୍ମି—ଅନ୍ୟରୂପ) ମଧ୍ୟରେ ୧ ବା ଲୁପ୍ତ ଅକାର ରହିଲା । ଏଥିର ଅର୍ଥ:—ସେ ମୁଁ ଅଟେ, ଅର୍ଥାତ୍ ଈଶ୍ୱର ବା ପରମାତ୍ମା ମୋ ଭିତରେ ଅଛନ୍ତି; ଅର୍ଥାତ୍, ଈଶ୍ୱର ଓ ସୃଷ୍ଟି ଏକ ଅଟେ, ଅର୍ଥାତ୍ ଈଶ୍ୱର ବା ପରମାତ୍ମା ଉତ୍ସୃଷ୍ଟ ପ୍ରତ୍ୟେକ ବ୍ୟକ୍ତିରେ ବା ବସ୍ତୁରେ ବିଦ୍ୟମାନ)—The elementary principle of Pantheism, meaning 'God is myself; God is present in the creation; the Divine Essence pervades

the universe. [ଦ୍ର—ଏହା ବେଦାନ୍ତ ଦର୍ଶନର ଅଦ୍ୱୈତବାଦର ମୌଳିକ ପ୍ରତିଜ୍ଞା। ଜୀବାତ୍ମା ଓ ପରମାତ୍ମା ଏକ; ବ୍ରହ୍ମ ଓ ମୁଁ ଅଭିନ୍ନ।]

ସୋହର୍ଡ—ଦେ. ବଣ (ସଂ. ସୁଗ୍ରଥିତ)—ସୁଗଠିତ; ସୌଷ୍ଠବଯୁକ୍ତ—
Soharda ସୁগঠিত सुगठित Symmetrical.
[ଉ—ସୋହର୍ଡ଼ ସୁନ୍ଦର ନାଥ ଜଗତମୋହନ।
ସାରଳା. ମହାଭାରତ. ଅଦି।]

ସୋହତ—ଦେ. ବ (ପ୍ରାଚୀନ ପ୍ରୟୋଗ)—୧। (ସଂ. ସହରପତି)—
Sohati ସମୁଦ୍ର—1. The sea. ୨। (ସଂ. ସମୁଦ୍ର समुद्र (ସୌଭାଗ୍ୟ)—ସୌଭାଗ୍ୟ—2. Fortune.
ସୁହାগ सुहाग (ଉ—ମାନବ ଯେ କାଳେ ସୋହତରେ ଫୁଟି
ସ୍রোত सोता ଫୁଲେଇ ବୁଥଇ ଘଡ଼ିଚକ୍ରଗାଇଁ—
ଅଜ୍ଞସୁତଜ୍ଞ. ଶେଷବନ୍ଦୀ।) ୩। (ସଂ. ସ୍ରୋତ)—
ସ୍ରୋତ—3. Current. (ଉ—ସୋହତରେ ପଡ଼
ଅସେ କାଳନ୍ଦୀରେ ଭାସି—ପ୍ରାଚୀ. ବୃନ୍ଦାବନରୂପଣ ଗୀତା।)
ପ୍ରାଦେ (ବାଲେଶ୍ୱର) ବ—ନଦୀ—River.

ସୋହତ୍ର—ଗ୍ରା. ବ (ସଂ. ସମୁଦ୍ର)—ସମୁଦ୍ର—The sea. (ଉ—
Sohatra ସୋହତ୍ର ଜଳେ ଯେସନେ ଭାସଇ
ସମুদ্র समुद्र ଛଟପଟେ—ସାରଳା ମହାଭାରତ. ଅଦି।)

ସୋହଦ୍ର—ଗ୍ରା. ବ (ସଂ. ସମୁଦ୍ର)—୧। ସୋହତ୍ର (ଦେଖ)—
Sohadra 1. Sohatra (See). ୨। ସୋହୋଦ୍ର (ଦେଖ)
2. Sohodra (See).

ସୋହବତ୍—ବୈଦେ. ବ (ଫା)—ସୋବତ୍ (ଦେଖ)—
Sohabat Sobat (See).

ସୋହବତି—ବୈଦେ. ବଣ—ସୋବତି (ଦେଖ)—
Sohabati Sobati (See).
(ସୋହବତିଆ—ଦେଶଜରୂପ)

ସୋହମତ୍—ବୈଦେ. ବ (ଫା)—ସୋବତ୍ (ଦେଖ)—
Sohamat Sobat [See].

ସୋହମତି—ବୈଦେ. ବଣ—ସୋବତି (ଦେଖ)—
Sohamati Sobati (See).
(ସୋହମତିଆ—ଦେଶଜରୂପ)

ସୋହରତ୍—ବୈଦେ. ବ (ଫା)—୧। ଘୋଷଣା—Publication.
Soharat ୨। ଢୋଲ ବା ନାଗରା ବଜାଇବା ଦ୍ୱାରା
সোহবত शोहरत କରାଯିବା ଘୋଷଣା—
2. Publication of any matter by beat of drum.

ସୋହାଇବା—ଦେ. କ୍ରି—ସୁହାଇବା (ଦେଖ)—
Sohāibā Suhāibā (See).

ସୋହାଗ (ଇତ୍ୟାଦି)—ଦେ. ବ—ସୁହାଗ ଇତ୍ୟାଦି (ଦେଖ)—
Sohāga (etc) Suhāga etc (See).

ସୋହାଗା—ଦେ. ବ—ସୁହାଗା (ଦେଖ)—
Sohāgā Suhāgā (See).

ସୋହାଗିଆ—ଦେ. ବଣ. ପୁଂ—ସୁହାଗୀ (ଦେଖ)—
Sohāgiā Suhāgī (See).
[ସୋହାଗେଇ(ଣି)—ସ୍ତ୍ରୀ]

ସୋହାଗିନୀ—ଦେ. ବଣ, ସ୍ତ୍ରୀ ସୁହାଗିନୀ (ଦେଖ)—
Sohāginī Suhāginī (See).

ସୋହାଗୀ—ଦେ. ବଣ (ପୁଂ ଓ ସ୍ତ୍ରୀ)—ସୁହାଗୀ (ଦେଖ)—
Sohāgī Suhāgī (See).

ସୋହାରା—ଦେ. ବ—ଛୁଆରା (ଦେଖ)—
Sohārā Chhuārā (See.)

ସୋହିନୀ—ଦେ. ବ (ସଂ. ଶୋଭନା)—ରାଗିଣୀ ବିଶେଷ—
Sohinī Name of a musical tune.
সোহিনী शोभनी [ଦ୍ର—ଏହା ଷଡ଼୍‌ସ୍ୱରବିଶିଷ୍ଟ
ବସନ୍ତ ରାଗିଣୀ। ଏହା ରାତ୍ରିର ଶେଷ ଓ ଅର୍ଥ ପ୍ରହରରେ ଗେୟ।]

ସୋହି—ଦେ. ବ. ସ୍ତ୍ରୀ—ସୋଇ (ଦେଖ)—
Sohī Soi (See)

ସୋହୋର୍ଡ—ଦେ. ବଣ—ଶୋଭନ—Beautiful. (ଉ—
Sohorda ଜୟ ହୁ ବଡା ତବ ବସ୍ତ୍ର କଟଡା ଜୟ
শোভন शोभन ସୋହୋର୍ଡ଼ ଫଣୀ ଗିରିବା ମୋଡ଼।
ପ୍ରାଚୀ ଉତ୍କଳସ୍ୟମନ୍ତକମଣି।]

ସୋହୋଦ୍ର—ଗ୍ରା. ବ (ପ୍ରାଚୀନ ପଦ୍ୟ) (ସଂ. ସହୋଦର; ସୋଦର)—
Sohodra ସହୋଦର; ଏକ ଗର୍ଭଜାତ ଭ୍ରାତା—
সহোদর सहोदर Uterine brother.
ବଣ—(ସଂ. ସୁହୃଦ୍) ୧। ସୁହୃଦ୍ ସମ୍ବନ୍ଧୀୟ—1. Relating to suhrud. ୨। ସାକ୍ଷାତ୍ ସମ୍ବନ୍ଧରେ ସମ୍ପର୍କିତ—
2. Directly related. (ଉ—ସୋହୋଦ୍ର ମାଇଁକି ହରିଲେ, ଭଉଣୀ ସଙ୍ଗେ ଘର କଲେ—ପ୍ରାଚୀ. କାର୍ତ୍ତିକମାହାତ୍ମ୍ୟ।)

ସୋହୋରା—ପ୍ରାଦେ (ଜୟପୁର) ବ—ଚୂଡ଼ା, ମୁଢ଼ି, ଲିଆ ଆଦି ତିଆରି
Sohorā କରବା ଯାଣିଥିବା ଶୂଦ୍ର ଜାତି ବିଶେଷ—A class of Sūdras who prepare flattened rice, parched rice etc and from whose hands high caste people do not drink water.

ସୋଲ୍କା—ଦେ. ବଣ—ଶୋଲପରି ହାଲୁକା—As light as cork;
সোলা ବ—୧। ସୋଲ; ବୁଟ—1. Gram; chick-
हौला pea. ୨। ଶୋଲ (ଇତ୍ୟାଦି)—2. Aeschynomene.
সোলা ୩। (ପାନବରଜ) ପାନଲତାର ଏକ ରୋଗ ବିଶେଷ—3. A
बुण्ट, चना disease of betel plant. [ଦ୍ର—ଖରା ଦିନରେ ପାନଲତାର ମୂଳରେ ବହୁପରିମାଣରେ ଜଳ ଦେବା ଦ୍ୱାରା ମାଟି ସର୍ବଦା ଘସଘସିଆ ରହି ପାନଲତା. ଶୁଖି ହଳଦିଆ ହୋଇ ବର୍ଷା ଋତୁରେ ତଳିର ଭୁଇଁ ଏକାବେଳକେ ବନ୍ଦ ହୋଇଯାଏ।]

ସୋହ୍ଲେନାମା—ବୈଦେ. ବ (କଚରଥ) 'ଫା)—ସୁଲେନାମା (ଦେଖ)
Sohlenāmā Sulenāmā (See)

ସୌଆ (ଇତ୍ୟାଦ)—ଦେ. ବ ଓ ବଣ—ସଉଆ ଇତ୍ୟାଦ (ଦେଖ)
Sauā (etc) Sauā etc (See)

ସୌଆର୍—ବୈଦେ. ବ—(ଫା)—ସଉଆର୍ (ଦେଖ)
Sauār Suār (See)

ସୌଆରି—ବୈଦେ. ବ (ଫା)—ସବାରି (ଦେଖ)
Sauāri Sabāri (See)

ସୌଆଲ୍ (ଇତ୍ୟାଦ)—ସବାଲ୍ ଇତ୍ୟାଦ (ଦେଖ)
Saual (etc) Sabāl etc (See)

ସୌକ୍(ଖ) (ଇତ୍ୟାଦ)ଦେ· ବ ଓ ବଣ—ସଉକ୍ (ଖ) ଇତ୍ୟାଦ (ଦେଖ)
Sauk(kh) (etc) Sauk(kh) etc (See)

ସୌକତ ଅଲି—ବୈଦେ· ବ (ନାମ)—ମହମ୍ମଦଅଲଙ୍କ ଭାଇ; ଭାରତର
Saukata ali ଖିଲାଫତ୍ ଆନ୍ଦୋଳନର ନେତା ଦୁଇ ଭାଇଙ୍କ
ସୌକତଆଲି ମଧ୍ୟରୁ ଜଣେ—One of the Mahomedan
सौकतअलि brothers who were the leaders of the Khillafat movement in India in the 20th century.
[ଦ୍ର—ଏ ୧୯୩୮ ସାଲ ଶେଷାଂଶରେ ମୃତ ହେଲେ।]

ସୌକନ୍ୟ—ସ. ବଣ (ସୁକନ୍ୟା+ସମ୍ବନ୍ଧେ. ଅ)—ସୁକନ୍ୟା ସମ୍ବନ୍ଧୀୟ—
Saukanya Relating to Sukanyā· ( ଦ୍ର—ଏ୦।୧ରେ ସୌକନ୍ୟଚରତ ସମାପ୍ତ, ଦ୍ୱାଦଶ ଛନ୍ଦ କୃଷ୍ଣସିଂହ ଜଣଛନ୍ତି। କୃଷ୍ଣସିଂହ. ମହାଭାରତ. ବନ।]

ସୌକର—ସ. ବ (ସୂକର+ସମ୍ବନ୍ଧେ. ଅ)—ସୂକର ସମ୍ବନ୍ଧୀୟ (ଶବ୍ଦ-
Saukara କଳ୍ପଦ୍ରୁମ)—Relating to pig.

ସୌକରିକ—ସ. ବ ( ସୂକର+ଇକ )—ବ୍ୟାଧ; ଶିକାରୀ (ଶବ୍ଦ
Saukarika କଳ୍ପଦ୍ରୁମ)—A hunter.

ସୌକର୍ଯ୍ୟ—ସ· ବ (ସୁକର+ଭାବ· ଯ)—୧ । ସୁକରତା; ସୁସାଧ୍ୟତା—
Saukarjya 1. State of being easy of execution; feasibility. ୨ । ଅନାୟାସ—2. Easiness; facility. ୩ । କୌଶଳ—3. Skill, ୪ । (ସୂକର+ଭାବେ. ଯ) ସୂକରତ୍ୱ—4. State of being a pig.

ସୌକି(ଖି)—ଦେ· ବ ଓ ବଣ—ସଉକି (ଦେଖ)
Sauki(khi) Sauki (See)
(ସୌକି[ଖି]ନ୍[ନି]—ଅନ୍ୟରୂପ)

ସୌକିନ୍ ସେନା—ଦେ. ବ—ସଉଖିନ୍ ସେନା (ଦେଖ)
Saukin senā Saukhin Senā (See)

ସୌକୁମାର୍ଯ୍ୟ - ସ. ବ ( ସୁକୁମାର=ଅତି ମୃଦୁ+ଭାବ. ଯ )—
Saukumārjya ୧। ସୁକୁମାରତା; ମୃଦୁତା; କୋମଳତା—1. Softness; delicacy. ୨ । ଯୌବନ—2 Youth.

ସୌକ୍ଷ୍ମ୍ୟ—ସ ବ (ସୂକ୍ଷ୍ମ+ଭାବ. ଯ)—ସୂକ୍ଷ୍ମତା—
Saukshmya Tenderness; minuteness; delicacy.

ସୌଖଶାୟନିକ—ସ. ବ. ପୁଂ (ସୁଖଶୟନ+ଇକ; ଯେଉଁ ବ୍ୟକ୍ତି
Saukha śāyanika ସୁଖଶୟନ ବିଷୟ ଜିଜ୍ଞାସା କରେ)—
ସୌଖ ସୁପ୍ତିକ } —ଅନ୍ୟରୂପ ବୈତାଳିକ; ସ୍ତୁତିପାଠକ—
ସୌଖ ଶାୟିକ } A herald or person (whose duty it was to sing songs to rouse a sleeping king early every morning). ବଣ. ପୁଂ—ସୁଖଶୟନ ଜିଜ୍ଞାସୁ—Enquiring after one's sound sleeping.

ସୌଖିକ—ସଂ. ବଣ ( ସୁଖ+ଇକ )—୧ । ସୁଖ ସମ୍ବନ୍ଧୀୟ—
Saukhika 1. Relating to pleasure (Apte).
(ସୌଖୀୟ—ଅନ୍ୟରୂପ) ୨ । ସୁଖମୟ; ସୁଖଜନକ—
[ସୌଖିକ, ସୌଖୀୟୀ—ସ୍ତ୍ରୀ] 2. Pleasant; delightful (Apte).

ସୌଖୀନ—ସଂ. ବଣ· ପୁ' (ସୁଖ+ସମ୍ବନ୍ଧେ· ଈନ)—୧ । ସୁଖାର୍ଥୀ;
Saukhīna (ମହାଭାରତ; ରାଜଧର୍ମ) ସୁଖେଚ୍ଛୁ—1. Desiring
(ସୌଖୀନା—ସ୍ତ୍ରୀ) happiness· ୨ । ସଉକିନ୍; ବିଳାସୀ—2. Luxury-loving.

ସୌଖୀନତା—ସଂ. ବ—ବିଳାସିତା; ବାବୁଗିରି—
Saukhīnatā Foppery; luxuriousness; gallantry.

ସୌଖ୍ୟ—ସଂ. ବ (ସୁଖ+ଭାବ. ଯ)—୧ । ସୁଖ—1. Happiness.
Saukhya ୨ । ଆନନ୍ଦ—2· Pleasure. ୩ । ସୁଖୀ ହେବାର ଭାବ—3. The state of being happy or
स्वस्थ सौख्य comfortable. ଦେ. ବଣ—ସୁସ୍ଥ—Hale. (ଉ—ଖଣକେ ଜ୍ଞାନ ପାଇ ସୌଖ୍ୟ ହୋଇ ମୁହିଁ । କୃଷ୍ଣସିଂହ. ମହାଭାରତ. ବନ।)

ସୌଗତ—ସଂ· ବ (ସୁଗତ+ସ୍ୱାର୍ଥେ· ଅ)—୧ । ବୁଦ୍ଧ ବିଶେଷ
Saugata (ହେମଚନ୍ଦ୍ର)—1, Name of a Buddhist saint. ୨ । ବୌଦ୍ଧ; ଶୂନ୍ୟବାଦୀ—2. A Buddhist. ୩ । ବୌଦ୍ଧମାନଙ୍କ ସମ୍ପ୍ରଦାୟ ବିଶେଷ—3. A sect or school of the Buddhists. [ଦ୍ର—ବୌଦ୍ଧମାନେ ୪ ସମ୍ପ୍ରଦାୟ ବା ଶ୍ରେଣୀରେ ବିଭକ୍ତ ହୋଇଥିଲେ; ଯଥା—ମାଧ୍ୟମିକ, [ସୌଗତ] ବା ସୌତ୍ରାନ୍ତିକ, ଯୋଗାଚାର ଓ ବୈଭାଷିକ—Apte । ] ୪ । ନାସ୍ତିକ ବ୍ୟକ୍ତି—4 An atheist.

ସୌଗତିକ—ସଂ. ବ (ସୁଗତ+ସମ୍ବନ୍ଧେ. ଇକ)—୧ । ବୁଦ୍ଧ ବିଶେଷ
Saugatika (ଶବ୍ଦ କଳ୍ପଦ୍ରୁମ)—1. Name of a Buddhist saint. ୨ । ବୌଦ୍ଧ ସନ୍ନ୍ୟାସୀ—3. Buddhist monk. ୩ । ସନ୍ନ୍ୟାସୀ ବ୍ରାହ୍ମଣ—2. A Brahman recluse. ୪ । ସନ୍ଦେହ [ ପ୍ରକୃତିବାଦ ]—4. Doubt. ୫ । ଈଶ୍ୱରଙ୍କଠାରେ ବିଶ୍ୱାସର ଅଭାବ [ପ୍ରକୃତିବାଦ]—5. Absence of faith in God. ୬। ନାସ୍ତିକତା [ ପ୍ରକୃତିବାଦ ]—5. Atheism. ୭ । ବୌଦ୍ଧ ସମ୍ପ୍ରଦାୟବିଶେଷ—
7. A sect of Buddhists ( Apte ).

ସୌଗନ୍ଧ—ସଂ ବି ( ସୁଗନ୍ଧ + ସ୍ୱାର୍ଥେ ଅ )—୧ । କତ୍ତୃଣ (ଶବ୍ଦରତ୍ନାବଳୀ); ଏକପ୍ରକାର ସୁଗନ୍ଧ ତୃଣ; ଧନ୍ଦଣୀ—1. Andropogen Schoenanthus, a kind of scented grass. [ ବୃ—ପତ୍ରର ଶ୍ୱେତ ବଡ଼ ଭେଦରେ ଏହା ଦୁଇ ପ୍ରକାରର । ୧. ଶୁଦ୍ରପର୍ଣ୍ଣୀ ସୌଗନ୍ଧ କଷାୟତିକ୍ତରସ, କଟୁବିପାକ; ହୃଦ୍‌ରୋଗ, କଣ୍ଠରୋଗ, ପିତ୍ତ, ରକ୍ତଦୋଷ, ଶୂଳ, କାସ ଓ ଜ୍ୱରନାଶକ । ୨ । ସ୍ଥୂଳପର୍ଣ୍ଣୀ ସୌଗନ୍ଧ କଟୁତିକ୍ତରସ, ଉଷ୍ଣବୀର୍ଯ୍ୟ, ତୃଷ୍ଣା, ଅଜୀର୍ଣ୍ଣ ଓ ଭୂତଗ୍ରହାବେଶରେ ଉପକାରକ । ]

Saugandha

ଅନ୍ୟ ସଂ ନାମ—କତ୍ତୃଣ, ରୌହିଷ, ଦେବଜଗ୍ଧ, ସୌଗନ୍ଧିକ, ଭୂତିକ, ଧ୍ୟାମ, ରୌହ, ଶ୍ୟାମକ, ଧୂମଗନ୍ଧିକ

ବା. ରାମକପୁର

ହି. रोहिस, शेघिया, गन्धेजघाँस

ତେ. କାମଂଚଗଡ୍ଡି, ଭୂତୀକୃଣ

ଫା. ଖବାଲ୍ ମାମୁନ୍

ମ. ଲହାଳୁରୋହସ,

କଗୁଗଞ୍ଜନ

ଅ. ଅଜଖର

୨ । ସୁଗନ୍ଧ ହେବାର ଅବସ୍ଥା—2. The state of being scented. ୩ । ସୌରଭ; ସୁଗନ୍ଧ—3. Fragrance. ବିଣ—ଶୋଭନ ଗନ୍ଧଯୁକ୍ତ—Sweet-scented; fragrant.

ସୌଗନ୍ଧିକ—ସ. ବିଣ ( ସୁଗନ୍ଧ + ଇକ )—ସୌଗନ୍ଧ ( ଦେଖ )—Saugandhika Saugandha (See) ବି—୧ । ସୌଗନ୍ଧ; କତ୍ତୃଣ [ ଅମର ]—1. A species of sweet scented grass; Andropogen Scheonanthus. ୨ । ଗନ୍ଧକ [ ଅମର ]—2. Sulpher. ୩ । ଶୀତାଂଶୁ ତୈଳ; କାଜୁପୁଟୀ ତେଲ ( ବୈଦ୍ୟକ )—3. The oil of kajuputi. ୪ । ଶ୍ୱେତକହ୍ଲାର; କଇଁ [ ଅମର ]—4. Nymphea lotus (white); white water lily. ୫ । ଗନ୍ଧବଣିକ୍ ( ଶବ୍ଦକଳ୍ପଦ୍ରୁମ ); ପୋଟଳ ବଣିଆ—5. Apothecary; druggist; a person dealing in herbs, spices and scents. ୬ । ନୀଳୋତ୍ପଳ ( ରାଜନିର୍ଘଣ୍ଟ )—6. The blue variety of nymphea lotus. ୭ । ପଦ୍ମରାଗ ମଣି [ ମେଦିନୀ ]—7. A species of gem; ruby.

ସୌଗନ୍ଧିକା—ସଂ ବି (ସୌଗନ୍ଧିକ + ଆ)—ପଦ୍ମଭେଦ [ମହାଭାରତ]—Saugandhikā A species of lotus.

ସୌଗନ୍ଧ୍ୟ—ସ. ବି ( ସୁଗନ୍ଧ + ଯ )—୧ । ସୁଗନ୍ଧଯୁକ୍ତ ଅବସ୍ଥା—Saugandhya 1. The state of being scented. ୨ । ସୁଗନ୍ଧ; ସୌରଭ—2. Fragrance; sweet smell. ୩ । ସୁଗନ୍ଧ ଦ୍ରବ୍ୟ—3. Scented article; a scent.

ସୌଗମ୍ୟ—ସଂ ବି ( ସୁଗମ + ଭାବ. ଯ )—ସୁଗମତା; ସହଜତା—Saugamya Ease; facility ( Apte ).

ସୌଚି—ସ. ବି. ପୁଂ ( ସୂଚୀ + ଜୀବକାର୍ଥେ ଇ )—ସୌଚିକ [ ଶବ୍ଦରତ୍ନାବଳୀ ] ( ଦେଖ )—Sauchi Sauchika ( See )

ସୌଚିକ—ସ. ବି. ପୁଂ ( ସୂଚୀ + ଜୀବକାର୍ଥେ ଇକ )—ସୂଚୀକର୍ମୋପଜୀବୀ; ଦରଜି [ଶବ୍ଦରତ୍ନାବଳୀ]—Sauchika A tailor.

ଅନ୍ୟ ସ. ନାମ—ତୁନ୍ନବାୟ, ସୂଚିକ, ସୌଚି, ସୂଚୀଵାନ୍

ସୌଜନ୍ୟ—ସଂ ବି ( ସୁଜନ + ଭାବେ. ଯ )—୧ । ସୁଜନତା—Saujanya 1. Goodness of manners. ୨ । ଭଦ୍ରତା; [ ଅସୌଜନ୍ୟ—ବିପରୀତ ] ଶିଷ୍ଟାଚାର—2. Civility; urbanity. ୩ । ସଦ୍‌ବ୍ୟବହାର—3. Gentlemanly behaviour.

ସୌଜନ୍ୟ କ୍ରୀତ—ସ ବିଣ. ପୁ ( ଗମ୍ୟ ତତ୍ )—କୌଣସି ବ୍ୟକ୍ତିର ପ୍ରଦର୍ଶିତ ଭଦ୍ରତା ବା ଶିଷ୍ଟାଚାରଦ୍ୱାରା ବଶୀଭୂତ [ସୌଜନ୍ୟକ୍ରୀତା—ସ୍ତ୍ରୀ]—Saujanya krita Charmed or enamoured by the civility or gentlmanly behaviour of a person.

ସୌଣ୍ଡୀ—ସ. ବି—ପିପ୍ପଳୀ [ ଶବ୍ଦଚନ୍ଦ୍ରିକା ]—Saundī Black pepper.

ସୌତ ଭାଇ—ପ୍ରାଦେ. ( ବସ୍ତର ) ବି ( ତୁଳ. ହି. सौतेला भाई )—Sauta bhāi ସାବତ ଭାଇ—Step brother.

ସୌତ ମାୟ୍ ଆ) - ପ୍ରାଦେ ( ବସ୍ତର ) ବି—ସାବତ ମାଆ—Sauta māya(ā) Step mother.

ସୌତୁଣୀ ( ଇତ୍ୟାଦି )—ଦେ. ବି. ସ୍ତ୍ରୀ—ସଉତୁଣୀ ଇତ୍ୟାଦି (ଦେଖ) Sautunī (etc) Sautunī etc ( See ).

ସୌତ୍ୟ—ସ. ବି ( ସୂତ + ଯ )—ସାରଥ୍ୟ; ସାରଥିପଣ—Sautya The office of a charioteer [Apte].

ସୌତ୍ର—ସ. ବିଣ ( ସୂତ୍ର + ଅ )—୧ । ସୂତ୍ରସମ୍ବନ୍ଧୀୟ—Sautra 1. Relating to sūtra. ୨ । ସୂତ୍ରାନୁସାରୀ—[ସୌତ୍ରିକ—ଅନ୍ୟରୂପ] 2. Following or according to the aphorisms. ବି—୧ । ବ୍ରାହ୍ମଣ ( ଯଜ୍ଞସୂତ୍ର ଧାରଣ କରିଥିବାରୁ )—1. Brāhmana. ୨ । ସୌତ୍ର ଧାତୁ [ ଦେଖ ]—2. Sautra dhātu [ See ]

ସୌତ୍ର ଧାତୁ—ସ. ବି ( ବ୍ୟାକରଣ ) ଶବ୍ଦପ୍ରୟୋଗାର୍ଥ ଧାତୁର Sautra dhātu ଗଣବିଶେଷ; ଗଣପାଠୋକ୍ତ ଧାତୁ ସହ ବ୍ୟାକରଣ ଗ୍ରନ୍ଥ ମଧ୍ୟରେ ଯେଉଁ ଧାତୁର ପ୍ରୟୋଗ ଦେଖାଯାଏ ନାହିଁ । କିନ୍ତୁ ଶବ୍ଦବିଶେଷର ସାଧନାର୍ଥ ସ୍ୱୀକୃତ ବ୍ୟାକରଣ ସୂତ୍ର ଅନୁସାରେ ଗଢ଼ା ଧାତୁ—[ grammar ] A root coined and formed extempore for manufacturing a particular word by following the grammatical aphorisms for the formation of roots, though such root is not to be found in the list of different classes [ Gaṇas ] of roots mentioned in grammatical treatises, nor can be conjugated like a regular verb. [ ବୃ—ସୌତ୍ର ଧାତୁ ଯଥା—ଉନ୍ ଧାତୁ = ଗତି କରିବା; ଉନ୍-

ଧାତୁ=ଅଘାତ କରିବା; ତ୍ରୁ ଧାତୁ=ଦ୍ରୁତଗତି କରିବା। ୪୨ ଗୋଟି ସୌତ୍ର ଧାତୁ ଗଢ଼ିବା ପାଇଁ ସଂସ୍କୃତ ବ୍ୟାକରଣରେ ସ୍ୱତନ୍ତ୍ର ସୂତ୍ରମାନ ଅଛି। ଏହି ସୌତ୍ର ଧାତୁମାନଙ୍କ ସାହାଯ୍ୟରେ ଶବ୍ଦମାନ ଗଢ଼ାଯାଏ। ମର୍କଟ ଶବ୍ଦ ମର୍କ ନାମକ ସୌତ୍ର ଧାତୁରୁ ନିଷ୍ପନ୍ନ। ସଂସ୍କୃତଅନ୍ୟାନ୍ୟ ଧାତୁ ପରି ଏହି ଧାତୁର ରୂପ ହୁଏ ନାହିଁ, କିମ୍ବା ଏହା ବ୍ୟାକରଣରେ କୌଣସି ଗଣର ଅନ୍ତର୍ଗତ ନୁହେ। ଆଉ ମଧ୍ୟ ଏହାର ଅନ୍ୟତ୍ର ବ୍ୟବହାର ନାହିଁ, କେବଳ ଦେହେତେ-ଗୁଡ଼ିଏ ଶବ୍ଦସାଧନ ପାଇଁ ଏହି ସୌତ୍ର ମର୍କ୍ ଧାତୁ ଗତି କରିବା ଅର୍ଥରେ ବ୍ୟବହୃତ ହୁଏ—ପଣ୍ଡିତ କୁଳମଣି ଦାଶ।]

ସୌତ୍ରାନ୍ତିକ—ସଂ. ବି—ବୌଦ୍ଧ ସମ୍ପ୍ରଦାୟବିଶେଷ—Name of a
Sautrāntika school of the Buddhists

ସୌତ୍ରାମଣୀ—ସଂ. ବି (ସୁତ୍ରାମା=ଇନ୍ଦ୍ର+ଅନ+ଈ; ନିପାତନ)—
Sautrāmaṇī ଯାଗବିଶେଷ—Name of a vedic sacrifice. [ ଦ୍ର—ଯଜୁର୍ବେଦର କାଣ୍ୱଶାଖାର ୨୧। ୨୨।୨୩ରେ ଏହି ଯାଗର ମନ୍ତ୍ର ଓ ବିଧି ଲେଖାଅଛି ଏବଂ ଏହି ଯାଗର କ୍ରମ କାତ୍ୟାୟନ ସୂତ୍ର ଭାଷ୍ୟରେ ଲେଖାଅଛି ଯେ, "ସ ଏତଂ ମହାକ୍ରତୁଂ ଅପଶ୍ୟାତ୍" ଏହି ପ୍ରକୃତି-ପ୍ରତ୍ୟୟଦ୍ୱାରା ସୌତ୍ରମଣୀ ଶବ୍ଦ ନିଷ୍ପନ୍ନ ହୋଇଅଛି। ଏହି ଯାଗରେ ମନ୍ତ୍ର ପାଠପୂର୍ବକ ସୁରାସନ୍ଧାନ କରିବାକୁ ହୁଏ। ଏହି ଯାଗର ଋଷି ପ୍ରଜାପତି, ଦେବତା ସୁରା, ଛନ୍ଦ—ଅନୁଷ୍ଟୁପ।]

ସୌତ୍ରିକ—ସଂ. ବି (ସୂତ୍ର+ଇକ)—୧। ତନ୍ତୁବାୟ; ତନ୍ତୀ (ହି.
Sautrika ଶ)—1. A weaver. ୨। ବୁଣା ହୋଇଥିବା ବସ୍ତ୍ର (ହି. ଶ)—2. A woven thing.

ସୌଦର୍ଯ୍ୟ—ସଂ. ବିଣ (ସୋଦର+ଯ)—ସହୋଦରସମ୍ବନ୍ଧୀୟ—
Saudarjya Relating to uterine brother. ସଂ. ବି—ସହୋଦରତା—The state of being a uterine brother.

ସୌଦା (ଇତ୍ୟାଦି)—ବୈ.ଦେ. ବି (ଅ. ସୌଦା)—ସଉଦା ଇତ୍ୟାଦି
Saudā (etc) (ଦେଖ)—Saudā etc (See)

ସୌଦାଗର—ବୈଦେ. ବି (ଫା)—ସଉଦାଗର (ଦେଖ)
Saudāgara Saudāgara (See)

ସୌଦାଗରି(ଇତ୍ୟାଦି)—ବୈଦେ.ବି ଓ ବିଣ(ଫା)—ସଉଦାଗରି ଇତ୍ୟାଦି
Saudāgari (etc) (ଦେଖ)—Saudāgari etc (See)

ସୌଦାଗରିଆ—ଦେ. ବିଣ—ସଉଦାଗରିଆ (ଦେଖ)
Saudāgariā Saudāgariā (See)

ସୌଦା ପତର(ପତ୍ର)—ଦେ. ବି—ସଉଦାପତର (ଦେଖ)
Saudā patara (patra) Saudāpatara (See)

ସୌଦାମନୀ—ସଂ. ବି. ସ୍ତ୍ରୀ (ସୁଦାମନ୍=ପର୍ବତ+ଅ+ଈ; ପର୍ବତର
Saudāmanī ଝଟକମୟ ପ୍ରାନ୍ତରୁ ଉତ୍ପନ୍ନ; କିମ୍ବା ଶୃଙ୍ଗମୟ ପ୍ରାନ୍ତରୁ ଉତ୍ପନ୍ନ; କିମ୍ବା ସୁଦାମନ୍=ଐରାବତ ହସ୍ତୀ+ଈ; ଅର୍ଥାତ୍ ମେଘରୁ ଜାତ; କିମ୍ବା ସୁଦାମନ୍=ମାଳ+ତତସଦୃଶ ଅର୍ଥରେ+ଈ; ଅର୍ଥାତ୍ ମାଳାକାର)—୧। ବିଦ୍ୟୁତ୍; ବିଜୁଳି (ଶବ୍ଦରତ୍ନାବଳୀ)—1. Lightning. ୨। ଜଣେ ଅପ୍ସରାର ନାମ (ମେଦିନୀ)—2. Name of a heavenly nymph. ୩। ବିଦ୍ୟୁଦ୍-ଭେଦ; ଏକପ୍ରକାର ବିଜୁଳି; ମାଳାକାର ବିଜୁଳି (ମେଦିନୀ)—3. A kind of lightning which flashes like a garland. ଦେ. ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—A name given to females.
सौदामनी
सौदामनी
[ସୌଦାମଣୀ—ଗ୍ରାମ୍ୟରୂପ]

ସୌଦାମନି—ସଂ, ବି. ସ୍ତ୍ରୀ (ସୁଦାମନ୍+ଈ; ନିପାତନ)—୧। ବିଦ୍ୟୁତ୍;
Saudāmini ବିଜୁଳି—Lightning. ୨। ତଡ଼ିଦ୍‌ଭେଦ (ହେମଚନ୍ଦ୍ର)—2. A kind of lightning. ୩। ଅପ୍ସରୋଭେଦ (ହେମଚନ୍ଦ୍ର)—3. Name of a heavenly nymph. ୪। ଦେଶ-ବିଶେଷ (ଅଜୟ)—4. Name of a country. ଦେ. ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—A name given to females.
[ସୌଦାମ୍ନୀ—ଅନ୍ୟରୂପ]
सौदामिनी
सौदामिनी

ସୌଦାୟିକ—ସଂ. ବି (ସୁ=ଉତ୍ତମ+ଦାୟ=ଧନ+ଇକ)—(ସ୍ମୃତି
Saudāyika ବା ଦ୍ୱନ୍ଦ୍ୱ ଅଇକ) ପିତୃମାତୃ-ଭର୍ତ୍ତୃକୁଳଲବ୍ଧ ସ୍ତ୍ରୀ-ଧନ; ବିବାହ କାଳରେ ବା ପରେ ବା ପୂର୍ବରୁ ପିତୃକୁଳରୁ ଓ ମାତୃକୁଳରୁ ସ୍ତ୍ରୀ ଯେଉଁ ଧନ ପାଆନ୍ତି ଓ ବିବାହପରେ ସ୍ୱାମୀକୁଳରୁ ଯେଉଁ ସମ୍ପତ୍ତି ପାଆନ୍ତି (କାତ୍ୟାୟନ)—Wealth or property got by a woman as gift from her parents, paternal and maternal relatives, husband and husbands relative's. [ ଦ୍ର—ଏହି ସୌଦାୟିକ ଧନରେ ସ୍ତ୍ରୀଙ୍କର ସ୍ୱତନ୍ତ୍ର ଅଧିକାର ଅଛି। ଏହାକୁ ସ୍ତ୍ରୀ ସ୍ୱାମୀଙ୍କ ବିନା ଅନୁମତିରେ ବିକ୍ରୟ ବା ଦାନ ବା ଦାୟବଦ୍ଧ ବା ହସ୍ତାନ୍ତର କରି ପାରନ୍ତି [କାତ୍ୟାୟନ ସ୍ମୃତି]।]

ସୌଦାସ—ସଂ. ବି (ନାମ) (ସୁଦାସ+ଅ)—ଇକ୍ଷ୍ୱାକୁବଂଶୀୟ
Saudāsa ଅଯୋଧ୍ୟାଧିପତି—Name of a king of an-cient Ajodhyā. [ ଦ୍ର—ଏହାଙ୍କ ବିଷୟ ଭାଗବତ ନବମ ସ୍କନ୍ଧରେ ବର୍ଣ୍ଣିତ ହୋଇ ଅଛି; ଏ ସୁଦାସଙ୍କ ପୁତ୍ର ଓ ଋତୁପର୍ଣ୍ଣଙ୍କ ପୌତ୍ର ଥିଲେ।]
ଅନ୍ୟ ନାମ—କଳ୍ମାଷପାଦ,

ସୌଧ—ସଂ. ବିଣ (ସୁଧା+ସମ୍ବନ୍ଧାର୍ଥେ, ଅ)—୧। ସୁଧା ସମ୍ବନ୍ଧୀୟ—
Saudha 1. Relating to Sudhā. ୨। (ସୁଧା=ଚୂନ+ସଂସର୍ଗାର୍ଥେ. ଅ) ଚୂନନିର୍ମିତ—2. Made of lime. ୩। ଚୂର୍ଣ୍ଣଧବଳିତ—3. Whitewashed with lime. ବି—୧। କୋଠା; ଇଷ୍ଟକାଦି ନିର୍ମିତ ଭବନ; ପ୍ରାସାଦ; ହର୍ମ୍ୟ; ଅଟ୍ଟାଳିକା—1. Building; pucca house. ୨। ରାଜସଦନ [ଅମର]—2. Palace; mansion. ୩। ରୌପ୍ୟ [ରାଜନିର୍ଘଣ୍ଟ]—
[ସୌଧୀ—ସ୍ତ୍ରୀ]

3. Silver. ୪ । ଦୁଗ୍ଧପାଷାଣ [ଶ୍ରୀକଣ୍ଠକର୍ଣ୍ଣ]; ଦୁଧଖଡ଼ି, ଚକ୍ ଖଡ଼ି—4. Chalk-stone. ୫ । ସୁଧାଧବଳିତ ଗୃହ—5. A white-washed house.

ସୌଧକାର—ସଂ. ବି—ରାଜମିସ୍ତ୍ରୀ [ହି. ଶ]
Saudhakāra A mason; a builder.

ସୌଧ କିରୀଟୀ—ସଂ. ବିଣ (ସୌଧକିରୀଟିନ୍ ଶବ୍ଦ; ରୂପକ; ସୌଧରୂପ କିରୀଟ
Saudha kiriṭī ଅଛି ଯାହାର, ସୌଧକିରୀଟ+ଅସ୍ତି ଅର୍ଥରେ [ସୌଧକିରୀଟିନୀ—ସ୍ତ୍ରୀ] ଇନ୍, ୧ମା· ୧ବ)—ସୌଧମାନ ଯାହାର [ଯେଉଁ ନଗରର ବା ପୁରର] କିରୀଟ ବା ମୁକୁଟରୂପେ ଶୋଭା ପାଉଥାଏ—A town or place ornamented with buildings [compared to a crown on the head.]

ସୌଧ ଚୂଡ଼ା—ସଂ· ବି ( ୬ଷ୍ଠୀ ତତ୍ )—କୋଠାର ଅଗ୍ରଭାଗ—The
Saudha chūrdā top of a building; a terrace.
( ସୌଧ ଗ୍ର—ଅନ୍ୟରୂପ )

ସୌଧ ପୃଷ୍ଠ—ସଂ· ବି (୬ଷ୍ଠୀ ତତ୍)—କୋଠାର ଉପର; କୋଠାର ଛାତ
Saudha prushṭha —The roof of a building.

ସୌଧ ବାସ—ସଂ. ବି—ଅଟ୍ଟାଳିକା; ହର୍ମ୍ୟ—
Saudha bāsa A palatial building (Apte).

ସୌଧମୟ—ସଂ. ବିଣ ( ସୌଧ+ମୟ )—କୋଠାମାନଙ୍କରେ ପୂର୍ଣ୍ଣ—
Saudhamaya Full of buildings; abounding in mansions.

ସୌଧ ମାଳା—ସଂ. ବି ( ୬ଷ୍ଠୀ ତତ୍ )—ପ୍ରାସାଦଶ୍ରେଣୀ—
Saudha mālā A row of buildings.

ସୌଧ ଶିଖର—ସଂ. ବି ( ୬ଷ୍ଠୀ ତତ୍ )—କୋଠାର ଊର୍ଦ୍ଧ୍ୱଦେଶ;
Saudha śikhara ସୌଧଚୂଡ଼ା—The top of a building.

ସୌଧାକର—ସଂ. ବିଣ ( ସୁଧାକର+ଅ )—ଚନ୍ଦ୍ରସମ୍ବନ୍ଧୀୟ—
Saudhākara Relating to the moon; lunar.

ସୌଧାତ—ସଂ. ବି—ବ୍ରାତ୍ୟବ୍ରାହ୍ମଣ ଓ ବ୍ରାହ୍ମଣୀଙ୍କଠାରୁ ଉତ୍ପନ୍ନ ଜାତିବିଶେଷ
Saudhāta ଜାତିଭ୍ରଷ୍ଟ ସ୍ତ୍ରୀ ଓ ବ୍ରାହ୍ମଣ ପୁରୁଷଜାତ ସନ୍ତାନ ( ହ୍ର. ଶ )—Name of a hybrid caste.

ସୌଧାର—ସଂ. ବି—ନାଟକର ଚତୁର୍ଦ୍ଦଶ ଭାଗରୁ ଏକଭାଗ ( ଶବ୍ଦ-
Saudhāra କଳ୍ପଦ୍ରୁମ )—One fourteenth part of a drama.

ସୌଧାରୂଢ଼—ସଂ. ବିଣ. ପୁଂ ( ୭ମୀ ତତ୍ )—କୋଠା ଉପରେ ଉଠି-
Saudhārūrdha ଥିବା—Standing on the top of a (ସୌଧାରୂଢ଼ା—ସ୍ତ୍ରୀ) (ସୌଧାରୋହଣ—ବି) building.

ସୌଧାଲ—ସଂ· ବି (ସୌଧ+ଅଲ)—ଶିବ ମନ୍ଦିର (ଶବ୍ଦକଳ୍ପଦ୍ରୁମ)—
Saudhāla A Śiba's temple.

ସୌଧୋପରି—ସଂ. ଅ (୭ମୀ ତତ୍)—କୋଠା ଉପରେ—
Saudhopari On a building.

ସୌନ—ସଂ. ବିଣ ( ସୂନା+ଅ )—ବଧଭୂମି ସମ୍ବନ୍ଧୀୟ—Relating
Sauna to a slaughter house ( Apte ) ୨ । (ସୌନୀ—ସ୍ତ୍ରୀ· ବିଣ) ଜୀବବଧ ସମ୍ବନ୍ଧୀୟ—2. Relating to butchery ( Apte ). ସଂ· ବି—କଂସେଇଦ୍ୱାରା ହତ ଜୀବର ମାଂସ—Butcher's meat ( Apte ).

ସୌନଧର୍ମ୍ୟ—ସଂ. କ୍ଳ (ସୌନଧର୍ମ+ଯ)—ଭୟଙ୍କର ବା ମାରାତ୍ମକ
Saunadharmya ଶତ୍ରୁତା—A state of deadly hostility ( Apte ).

ସୌନନ୍ଦ—ସଂ· ବି (ସୁନନ୍ଦ+ଅ)—ବଳଦେବଙ୍କ ମୂଷଳ (ହେମଚନ୍ଦ୍ର)
Saunanda The name of the mace carried by Baladeba.

ସୌନନ୍ଦୀ—ସଂ. ବି. ପୁଂ (ସୌନନ୍ଦ+ ଅସ୍ତି ଅର୍ଥରେ ଇନ୍; ୧ମା. ୧ବ)
Saunandī —ବଳଦେବ—Baladeba.

ସୌନିକ—ସଂ· ବି· ପୁଂ ( ସୂନା=ବଧଭୂମି+ଇକ )—୧ । ପଶୁଘାତି-
Saunika ମାଂସ ବ୍ୟବସାୟୀ—1. A dealer in meat. ( ଶୌନିକ—ଅନ୍ୟରୂପ ) ୨। ବ୍ୟବସାୟାର୍ଥ ଜୀବବଧକାରୀ—2. A butcher ( Apte ). ଅନ୍ୟ ସଂ—ବୈତଂସିକ, ମାଂସିକ, କୌଟିକ

ସୌନ୍ଦ—ସଂ· ବି ପୁଂ ( ସୁନ୍ଦ+ଅପତ୍ୟାର୍ଥେ. ଅ )—ମାରୀଚ ରାକ୍ଷସ—
Saunda The demon Mārīcha.

ସୌନ୍ଦର୍ଯ୍ୟ—ସଂ· ବି ( ସୁନ୍ଦର+ଭାବ. ଯ )—୧ । ସୁନ୍ଦରତା—
Saundarjya 1. Beauty. ୨ । ସୁଠାମତା—2. Grace. ୩। ଅଙ୍ଗପ୍ରତ୍ୟଙ୍ଗମାନଙ୍କର ଯଥୋଚିତ ସନ୍ନିବେଶଜନିତ ଶୋଭା; ସୁଶ୍ରୀକତା—3. Symmetry of form of the several limbs of the body. [ ଦ୍ର—ଉଜ୍ଜ୍ୱଳ ନୀଳମଣି ଗ୍ରନ୍ଥର ଲକ୍ଷଣ—ଅଙ୍ଗପ୍ରତ୍ୟଙ୍ଗକାନାଂ ଯଃ ସନ୍ନି-ବେଶୋ ଯଥୋଚିତଃ, ସୁଶ୍ଲିଷ୍ଟଃ ସନ୍ଧିବନ୍ଧଃ ସ୍ୟାତ୍ ତତ୍-ସୌନ୍ଦର୍ଯ୍ୟ ମୁଦାହୃତମ୍ । ]

ସୌନ୍ଦର୍ଯ୍ୟ ଗର୍ବ—ସଂ, ବି ( ମ. ପ. ଲୋ; ସୌନ୍ଦର୍ଯ୍ୟଜନିତ ଗର୍ବ )—
Saundarjya garba ନିଜର ସୌନ୍ଦର୍ଯ୍ୟ ଯୋଗୁଁ ମନରେ (ସୌନ୍ଦର୍ଯ୍ୟ ଗର୍ବିତ—ପୁଂ. ବିଣ) ଜନ୍ମିବା ଅହଙ୍କାର—Pride of ( ସୌନ୍ଦର୍ଯ୍ୟ ଗର୍ବିତା—ସ୍ତ୍ରୀ· ବିଣ) having a graceful form.

ସୌନ୍ଦର୍ଯ୍ୟ ଗୌରବ - ସଂ· ବି (ମ· ପ. ଲୋ; ସୌନ୍ଦର୍ଯ୍ୟଜନିତ ଗୌରବ)
Saundarjya gauraba —ସୌନ୍ଦର୍ଯ୍ୟ ଗର୍ବ ( ଦେଖ )—1. Saundarjya garba ( See ). ୨ । ( ୬ଷ୍ଠୀ ତତ୍ ) ସୌନ୍ଦର୍ଯ୍ୟର ମହିମା—2. The majesty of beauty.

ସୌନ୍ଦର୍ଯ୍ୟ ପୂର୍ଣ୍ଣ—ସଂ· ବିଣ—ସୌନ୍ଦର୍ଯ୍ୟମୟ ( ଦେଖ )
Saundarjypūrṇṇa Saundarjyamaya ( See )

ସୌନ୍ଦର୍ଯ୍ୟ ପ୍ରିୟ—ସଂ· ବିଣ· ପୁଂ ( ବହୁବ୍ରୀହି; ସୌନ୍ଦର୍ଯ୍ୟ ଅଟେ ପ୍ରିୟ
Saundarjya priya ଯାହାର )—ଯେ ସୌନ୍ଦର୍ଯ୍ୟ ଦେଖିବାରୁ ସୁଖ ପାଏ—Aesthetic; fond of beauty.

ସୌନ୍ଦର୍ଯ୍ୟ ପ୍ରିୟତା—ସଂ· ବି—ସୁନ୍ଦରପଣ ଦେଖିବା ପାଇଁ ଔତ୍ସୁକ୍ୟ—
Saundarjya priyatā Aesthetic faculty; love of beauty.

ସୌନ୍ଦର୍ଯ୍ୟ ମୟ—ସଂ· ବିଣ—ଶୋଭାମୟ; ସର୍ବାଙ୍ଗସୁନ୍ଦର—
Saundarjya maya Very beautiful; full of grace.
( ସୌନ୍ଦର୍ଯ୍ୟମୟୀ—ସ୍ତ୍ରୀ )

ସୌନ୍ଦର୍ଯ୍ୟ ଲାଭ—ସଂ. ବି—ନାରୀର ସୁନ୍ଦର ହେବା ଅବସ୍ଥାର ପ୍ରାପ୍ତି—
Saundarjya lābha Attainment of grace or beauty.

ସୌନ୍ଦର୍ଯ୍ୟ ଲିପ୍ସା—ସଂ. ବି—୧ । ସୁନ୍ଦର ହେବାର ବାସନା—1. The
Saudarjya lipsā desire to be beautiful. ୨ । ସୌନ୍ଦର୍ଯ୍ୟ ଅନୁଭବ କରିବାର ଅଭିଳାଷ—2. The (ସୌନ୍ଦର୍ଯ୍ୟ ଲିପ୍ସୁ—ବିଣ) desire to appreciate beauty

ସୌନ୍ଦର୍ଯ୍ୟାଧାର—ସଂ. ବିଣ ( ୬ଷ୍ଠୀ ତତ୍ )—ଅତି ସୁନ୍ଦର; ଅତି
Saundarjyādhāra ଶୋଭାମୟ—Very beautiful; graceful.

ସୌପର୍ଣ୍ଣ—ସଂ ବି (ସୁପର୍ଣ୍ଣ+ସ୍ୱାର୍ଥେ.ଅ)—୧। ମରକତ (ରାଜନିଘଣ୍ଟୁ)—
Sauparnna 1. Emerald. ୨ । ଶୁଣ୍ଠୀ (ରାଜନିଘଣ୍ଟୁ)—2. A species of dry ginger. ୩ । (ସୁପର୍ଣ୍ଣୀ=ବିନତା+ଅପତ୍ୟାର୍ଥେ. ଅ, ଅଥବା ସୁପର୍ଣ୍ଣ=ଗରୁଡ଼+ସ୍ୱାର୍ଥେ. ଅ)—ଗରୁଡ଼ (ହେମଚନ୍ଦ୍ର)—3. The mythological king of birds. ସଂ. ବିଣ—ସୁପର୍ଣ୍ଣ ସମ୍ବନ୍ଧୀୟ—Relating to 'Suparnna'.

ସୌପର୍ଣ୍ଣାଂଶୁ—ସଂ. ବି(ବହୁବ୍ରୀହି)—ମରକତମଣି; ଗାରୁଡ଼ମଣି—
Sauparnnāmsu Emerald.

ସୌପର୍ଣ୍ଣୀ—ସଂ. ବି—ପାତାଳ ଗରୁଡ଼ୀ ଲତା (ରାଜନିଘଣ୍ଟୁ)—
Sauparnni Cululus Villosus; Congenaria Vulgaris (a creeper).

ସୌପର୍ଣ୍ଣେୟ—ସଂ. ବି. ପୁଂ (ସୁପର୍ଣ୍ଣୀ=ବିନତା+ଅପତ୍ୟାର୍ଥେ ଏୟ)—
Sauparnneya ୧ । ଗରୁଡ଼ (ହେମଚନ୍ଦ୍ର)—1. Garurda, the king of birds. ୨ । ଗାୟତ୍ର୍ୟାଦି ଛନ୍ଦୋଗଣ (ଅଗ୍ନିପୁରାଣ)—2. The vedic metres, Gāyatri etc.

ସୌପ୍ତିକ—ସଂ. ବି ( ସୁପ୍ତ=ନିଦ୍ରା+ଇକ )—୧ । ରାତ୍ରିଯୁଦ୍ଧ—
Sauptika 1. Battle during the night, ୨ । ରାତ୍ରି ମାରଣ—2. Murder during night. ୩ । ଶୋଇଥିବା ବ୍ୟକ୍ତିମାନଙ୍କୁ ରାତ୍ରରେ ଆକ୍ରମଣ—3. Night attack; murderous attack on sleeping man (Apte). ୪। ମହାଭାରତର ପର୍ବବିଶେଷ—4. The title of one of the 18 books of the Mahābhārata.
[ଦ୍ର—ମହାଭାରତର (୧୮) ପର୍ବମାନଙ୍କର ନାମ ଯଥା—ଆଦି, ସଭା, ବନ, ବିରାଟ, ଉଦ୍ୟମ ବା ଉଦ୍ଯୋଗ, ଭୀଷ୍ମ, ଗୁରୁ ବା ଦ୍ରୋଣ, ରବିଜ ବା କର୍ଣ୍ଣ, ଅଦ୍ରକ ବା ଶଲ୍ୟ, ସୌପ୍ତିକ, ସ୍ତ୍ରୀ, ଶାନ୍ତି, ଅନୁଶାସନ, ଅଶ୍ୱମେଧ, ଆଶ୍ରମବାସ, ମୂଷଳ, ମହାପ୍ରସ୍ଥାନ, ସ୍ୱର୍ଗାରୋହଣ।
ମହାଭାରତ ଯୁଦ୍ଧ ଶେଷ ହେବା ପରେ କୁରୁବଂଶୀୟ ସାରମାନେ ପାଣ୍ଡବଙ୍କ ଶିବିରରେ ପ୍ରବେଶ କରି ରାତ୍ରିରେ ମହାଭାରତ ଯୁଦ୍ଧରୁ ବଞ୍ଚିଥିବା କୃତବର୍ମା, ଅଶ୍ୱତ୍ଥାମା ଓ କୃପଙ୍କୁ ହତ୍ୟା କରିଥିବାର ବିଷୟ ସୌପ୍ତିକ ପର୍ବରେ ବର୍ଣ୍ଣିତ ହୋଇଅଛି ।] ବିଣ—ସୁପ୍ତି ସମ୍ବନ୍ଧୀୟ—Relating to sleep.

ସୌପ୍ତିକ ବଧ—ସଂ. ବି—୧ । ଶୋଇଥିବା ବ୍ୟକ୍ତିମାନଙ୍କୁ ରାତ୍ରିରେ
Sauptika badba ଆକ୍ରମଣ ପୂର୍ବକ ହତ୍ୟା—1. Nocturnal attack & slaughter of a sleeping person or persons (Apte). ୨ । କୁରୁକ୍ଷେତ୍ର ଯୁଦ୍ଧ ପରେ କୌରବ ସାରଙ୍କ ଦ୍ୱାରା ରାତ୍ରିରେ ପାଣ୍ଡବ ସାରମାନଙ୍କ ହତ୍ୟା—2. [The great necturnal slaughter of the surviving Pāndaba warriors by the Kauraba warriors

ସୌବ—ସଂ. ବି ( ସ୍ୱ+ଅ )—୧ । ସ୍ୱୀୟ; ସ୍ୱକୀୟ; ସ୍ୱସମ୍ବନ୍ଧୀୟ (ମୁଗ୍ଧ-
Sauba ବୋଧ)—1. Relating to self. ୨ । ସ୍ୱର୍ଗରେ ଭବ (ମୁଗ୍ଧବୋଧ)—2. Existing or produced in heaven. ୩। ରାଜ୍ୟ ଶାସନ (ଶବ୍ଦ କଳ୍ପଦ୍ରୁମ)—3. Administration. ୪ । ରାଜାଜ୍ଞା—4. Royal order; command. ୫। ଘୋଷଣା ପତ୍ର—5. A proclamation.

ସୌବଗ୍ରାମିକ—ସଂ. ବି ( ସ୍ୱଗ୍ରାମ+ଇକ )—ସ୍ୱଗ୍ରାମୋଦ୍ଭବ ବସ୍ତୁ (ମୁଗ୍ଧ-
Saubagrāmika ବୋଧ ବ୍ୟାକରଣ)—Any article produced in one's own village.

ସୌବର—ସଂ. ବିଣ ( ସ୍ୱର+ଅ )—ସ୍ୱର ସମ୍ବନ୍ଧୀୟ (ମୁଗ୍ଧବୋଧ
Saubara ବ୍ୟାକରଣ)—Relating to sound, tune or vowel.

ସୌବର୍ଗ—ସଂ. ବି (ସ୍ୱର୍ଗ+ଅ)—ସ୍ୱର୍ଗ ସମ୍ବନ୍ଧୀୟ—Heavenly.
Saubarga ବି—ଦେବ; ସୁର—Deity.

ସୌବର୍ଚ୍ଚଳ—ସଂ.ବି (ସୁବର୍ଚ୍ଚଳ=ଦେଶବିଶେଷ+ଜାତାର୍ଥେ ଅ)—୧ ।
Saubarchchala ପଞ୍ଚଲବଣ ମଧ୍ୟରୁ ଏକତମ; ସୁବର୍ଚ୍ଚଳ ଦେଶଭବ ଲବଣ; ସଚଳଲବଣ—1.A kind of salt; sochal salt; sodium chloride; unaqua. [ଦ୍ର—ଏହା ରୁଚକର, ଉଷ୍ଣବୀର୍ଯ୍ୟ, ନିର୍ମଳ, କଟୁ ଓ ଗୁଲ୍ମଶୂଳବିବନ୍ଧନାଶକ, କଣ୍ଠର ଶିଦ୍ଧିକର, ଲଘୁ, ବାୟୁନାଶକ; ଭେଦକ, ଅଗ୍ନିଦୀପକ, ପାଚକ, ଉଦ୍ଗାର ଶୁଦ୍ଧିକାରକ ।] ୨ । ସାଜ ମାଟି (ହି. ଶ)—2. Natron (Apte)
ଅନ୍ୟ. ସ—ଅକ୍ଷ, ରୁଚକ, କୃଷ୍ଣଲବଣ, ତିଲକ, ହୃଦ୍ୟଗନ୍ଧକ, ରୁଚ୍ୟ, କୌଦ୍ରବକ, ଅକ୍ଷ୍ୟ ।
ସଚଲନୂନ
चोहारकोड़ा, नमकसोंचा
ଫା. ନମକ୍ ସିୟା
ଆ. ମଲ୍ଲ ହୁଲଜ ଯାଯ୍

ସୌବର୍ଣ୍ଣ—ସଂ. ବିଣ (ସୁବର୍ଣ୍ଣ+ସମ୍ବନ୍ଧେ. ଅ)—୧ । ସୁବର୍ଣ୍ଣ ସମ୍ବନ୍ଧୀୟ—
Saubarnna 1. Golden. ୨ । ସୁବର୍ଣ୍ଣ ବର୍ଣ୍ଣଯୁକ୍ତ—2. Of (ସୌବର୍ଣ୍ଣୀ, ସୌବର୍ଣ୍ଣା—ସ୍ତ୍ରୀ) golden colour. ୩ । ଭର୍ତ୍ତି ବା ବା ୧୬ ମଷା ପରିମିତ ସୁବର୍ଣ୍ଣ ସମ୍ବନ୍ଧୀୟ—3. Relating to a fixed weight of gold. ୪ । (+ବିକାରାର୍ଥେ. ଅ) ସ୍ୱର୍ଣ୍ଣନିର୍ମିତ; ସୁବର୍ଣ୍ଣମୟ—4. Made

of gold. ସଂ. ବ (+ସ୍ୱାର୍ଥେ. ଅ)—୧। ସୁବର୍ଣ୍ଣ; ସୁନା (ହି. ଶ)—1. Gold. ୨। ଏକ କର୍ଷ ବା ୧୬ ମଷା ପରିମିତ ସୁନା (ହି. ଶ)—2. A quantity of gold weighing one Karsha.

ସୌବର୍ଣ୍ଣ ଭେଦନୀ—ସଂ. ବ—ପ୍ରିୟଙ୍ଗୁ (ଶବ୍ଦମାଳା)—
Saubarnna bhedini Priyangu (See)

ସୌବର୍ଣ୍ଣ ଶିଳାଜତୁ—ସଂ. ବ—ସୁବର୍ଣ୍ଣବର୍ଣ୍ଣଯୁକ୍ତ ବା ସୋଫା ନାଲି
Saubarnna silajatu ଶିଳାଜତୁ—Asphalt of golden colour. [ବି—ଶିଳାଜତୁ ୪ ପ୍ରକାର; ଯଥା—ସୌବର୍ଣ୍ଣ, ରାଜତ, ତାମ୍ର ଓ ଆୟସ। ସୌବର୍ଣ୍ଣ ଶିଳାଜତୁ ଜବାପୁଷ୍ପ ସଦୃଶ ବର୍ଣ୍ଣବିଶିଷ୍ଟ, କଟୁତିକ୍ତ ମଧୁରରସ, ଶୀତସ୍ପର୍ଶ ଓ କଟୁବିପାକ।]

ସୌବର୍ଣ୍ଣିକ—ସଂ. ବ (ସୁବର୍ଣ୍ଣ+ଇକ)—ସ୍ୱର୍ଣ୍ଣକାର; ବଣିଆ (ହି. ଶ)—
Saubarnnika A goldsmith. ସଂ. ବଣ—ଏକ କର୍ଷ ବା ୧୬ ମଷା ଓଜନର (ହି. ଶ)—Weighing 1 Karsha.

ସୌବଲ—ସଂ. ବି. ପୁଂ (ସୁବଲ=ଗାନ୍ଧାର ଦେଶର ଜଣେ ରାଜା+
Saubala ଅପତ୍ୟାର୍ଥେ. ଅ)—ଶକୁନି; ଦୁର୍ଯ୍ୟୋଧନଙ୍କ ମାମୁଁ—(ସୌବଲକ, ସୌବଲେୟ—ଅନ୍ୟରୂପ) Sakuni; the maternal uncle of 'Durjyodhana.'

ସୌବଲୀ—ସଂ. ବି. ସ୍ତ୍ରୀ (ସୁବଲ+ଅପତ୍ୟାର୍ଥେ. ଅ+ସ୍ତ୍ରୀ ଈ)—
Saubali ଧୃତରାଷ୍ଟ୍ରଙ୍କ ପତ୍ନୀ ଗାନ୍ଧାରୀ—A name of [ସୌବଲେୟୀ—ଅନ୍ୟରୂପ] Gandhari.

ସୌବଶ୍ୟ—ସଂ. ବ—ଘୋଡ଼ଦୌଡ଼ (ହି. ଶ)
Saubasya Horse race.

ସୌବସ୍ତିକ—ସଂ. ବଣ (ସ୍ୱସ୍ତି+ଇକ)—୧। ସ୍ୱସ୍ତି ସମ୍ବନ୍ଧୀୟ—
Saubastika 1. Relating to Swasti. ୨। ଆଶୀର୍ବାଦ [ସୌବସ୍ତିକୀ—ସ୍ତ୍ରୀ. ବଣ] ସମ୍ବନ୍ଧୀୟ—2. Benidictory (Apte) ବ—୧। (ସ୍ୱସ୍ତିବାଚନ କରୁଥିବାରୁ) ପୁରୋହିତ—1. A priest. ୨। ସ୍ୱସ୍ତିବାଚକ—2. One who recites benedictory mantras.

ସୌବାଧ୍ୟାୟିକ—ସଂ. ବଣ. ପୁଂ (ସ୍ୱାଧ୍ୟାୟ+ଇକ)—ସ୍ୱାଧ୍ୟାୟୀ; ବେଦ-
Saubadhyayika ପାଠନିରତ—Engaged in the (ସୌବାଧ୍ୟାୟିକୀ—ସ୍ତ୍ରୀ) study of the Bedas.

ସୌବାସ୍ତବ—ସଂ. ବଣ (ସୁବାସ୍ତୁ+ଅ)—୧। ସୁନ୍ଦରବାସ୍ତୁ ସମ୍ବନ୍ଧୀୟ—
Saubastaba 1. Relating to a fine building-site. (ସୌବାସ୍ତବୀ—ସ୍ତ୍ରୀ) ୨। ଉତ୍ତମବାସ୍ତୁଉପରେ ନିର୍ମିତ [ଗୃହାଦି]—2. (house) Built on a good site; pleasantly situated (Apte).

ସୌବିଦ—ସଂ. ବ ପୁଂ (ସୁ+ବିଦ୍ ଧାତୁ+କର୍ତ୍ତ୍ରି. ଅ)—ଅନ୍ତଃପୁରରକ୍ଷକ
Saubida ଭୃତ୍ୟ (ଅମର); କଞ୍ଚୁକୀ—A servant who guards the harem.

ସୌବିଦଲ୍ଲ—ସଂ. ବି. ପୁଂ (ସୁ+ବିଦ୍ ଧାତୁ=ଜାଣିବା+କର୍ତ୍ତ୍ରି ଅ=
Saubidalla ସୁବିଦ=ପଣ୍ଡିତ; ସୁବିଦ+ଅଲ୍ ଧାତୁ=ଗମନ (ସୌବିଦଲ୍ଲକ; ସୌବିଦ—ଅନ୍ୟରୂପ) କରିବା+କ୍ୱିପ୍=ସୁବିଦଲ୍=ନୃପତି; ସୁବିଦଲ୍+ଲା ଧାତୁ=ଗ୍ରହଣ କରିବା+କର୍ତ୍ତ୍ରି ଅ=ସୁବିଦଲ୍ଲ=ଅନ୍ତଃପୁର+ନିଯୁକ୍ତାର୍ଥେ: ଅ; ଯାହାଙ୍କୁ
ଅନ୍ୟ ସଂ—କଞ୍ଚୁକୀ, ସ୍ଥାପତ୍ୟ, ସୁପଦ, ସୁବିଦ।
ରାଜାମାନେ ଅନ୍ତଃପୁରରକ୍ଷା କରିବାପାଇଁ ନିଯୁକ୍ତ କରନ୍ତି)—ଅନ୍ତଃପୁରରକ୍ଷକ; କଞ୍ଚୁକୀ; ମହଲ୍ଲରକ୍ଷକ; ବନ୍ଧୁଃସଂରକ୍ଷଣକାରିଣୀ ସ୍ତ୍ରୀମାନଙ୍କ ପ୍ରେରକ ବେତ୍ରଧର ଭୃତ୍ୟ—A servant watching the female apartments and the maids of a king.

ସୌବୀର—ସଂ. ବ (ସୁବୀର=ସିନ୍ଧୁନଦ ନିକଟସ୍ଥ ଦେଶବିଶେଷ+
Saubira ଅ)—୧। ବଦର; ବରକୋଳି (ରତ୍ନମାଳା)—1. The jujube berry. ୨। ସୌବୀରକ; କାଞ୍ଜିକା—2. Fermented gruel. [ବି—ଯବ, ଗୋଧୂମ ଆଦିକୁ ସିଝାଇ ବା କଞ୍ଚାଅବସ୍ଥାରେ ପାଣିରେ ସଢ଼ାଇ ଏହି କାଞ୍ଜି କରାଯାଏ। ଏହା ଗ୍ରହଣୀ, ଅର୍ଶଃ, କଫ, ଉଦାବର୍ତ୍ତ, ଶୂଳ ଓ ଅଗ୍ନିମାନ୍ଦ୍ୟନାଶକ, ଭେଦୀ ଓ ପାଚକ।] ୩। ସ୍ରୋତାଞ୍ଜନ ସୌବୀରାଞ୍ଜନ (ଅମର)—3. A kind of collyrium. ୪। ସୁବୀର; ଦେଶ ବିଶେଷ (ମେଦିନୀ); ସିନ୍ଧୁନଦ ସନ୍ନିକଟସ୍ଥ ଦେଶ ବିଶେଷ—4. Name of a country near the Indus. ୫। ସୁବୀର ପ୍ରଦେଶବାସୀ ବ୍ୟକ୍ତି (ହି. ଶ.)—5. An inhabitant of the Subira country. ୬। ସୁବୀରପ୍ରଦେଶର ରାଜା (ହି: ଶ)—6. A king of the Subira country.

ସୌବୀରକ—ସଂ. ବ—(ସୌବୀର+ସ୍ୱାର୍ଥେ. କ)—କାଞ୍ଜିକାବିଶେଷ;
Saubiraka ସୁବୀରାମ୍ଳ; ଯବ ଓ ଗହମରୁ ପ୍ରସ୍ତୁତ କାଞ୍ଜି—1. A kind of fermented barley gruel. [ବି—ତୁଷୋତ୍ଥ, ତୁଷୋଦକ, ସୌବୀରାମ୍ଳ] ଯବ ବା ଗହମକୁ ୮ଗୁଣ ପାଣିରେ ବତୁରାଇ ସଢ଼ାଇଲେ ଯେଉଁ କାଞ୍ଜି ହୁଏ ତାକୁ ସୌବୀରକ କହନ୍ତି।
ଅନ୍ୟ ସଂ—ସୁବୀରାମ୍ଳ, ଗୋଧୂମ ସମ୍ଭବ, ଯବାମ୍ଳଜ, ସବୋତ୍ଥ, ସୌବୀର।
ଏହା ଅମ୍ଳ, କେଶ୍ୟ, ବଲକାରକ, ଅଗ୍ନିବର୍ଦ୍ଧକ, ମଲଭେଦକ, ଜରନାଶକ, ସନ୍ତର୍ପଣ; ଏହା ମସ୍ତକଦୋଷ, କଫ, ଶୈତ୍ୟଜ, ଅସ୍ଥିଶୂଳ, ଅର୍ଶଃ ଓ ଗ୍ରହଣୀନାଶକ—ରାଜନିର୍ଘଣ୍ଟ। ସୁବୀର ଦେଶବାସୀ ଏ କାଞ୍ଜିକୁ ଭଲ ଖୁବ ପାନ କରୁଥିଲେ—ହି ଶ।] ୨। ବଦର ବୃକ୍ଷ; ବରକୋଳି ଗଛ—2. The jujube berry tree. ୩। ସୌବୀରାଞ୍ଜନ (ଦେଖ)—3. Saubiranjana. (See) ୪। ଜୟଦ୍ରଥଙ୍କର ଏକ ନାମ—4. A name of Jayadratha (Apte).

ସୌବୀର ପାଷାଣ—ଦେ· ବି· (ବୈଦ୍ୟକ)—ପାଷାଣବିଶେଷ
Saubira pāshāṇa (ଦ୍ରବ୍ୟଗୁଣ କଳ୍ପଦ୍ରୁମ)—A kind stony of poison. [ ଦ୍ର—ଏହାର ଶୋଧନ ବିଧି ଦାରୁମୂଷୀର ଶୋଧନବିଧି ତୁଲ୍ୟ । ]

ସୌବୀର ବଦର—ଦେ· ବ (ବୈଦ୍ୟକ)—ମିଠା ଓ ବଡ଼ ବର-
Saubirā badara କୋଳି; ପାଟଣାଇ ବରକୋଳି—A sort of big and sweet jujube berry.
নাবকেলীকুল, পাটনাইকুল काशीबेर ( ଦ୍ର—ଏହା ମଧୁରରସ, ଶୀତଳ, ଗୁରୁପାକ, ପୁଷ୍ଟିକର, ଶୁକ୍ରବର୍ଦ୍ଧକ, ମଳଭେଦକ; ଏହା ବାୟୁ, ପିତ୍ତ, ତୃଷ୍ଣା, ରକ୍ତ ଓ କ୍ଷତ ରୋଗରେ ହିତକର । )

ସୌବୀର ସାର—ସଂ. ବ—ସୌବୀରାଞ୍ଜନ ( ଦେଖ )
Saubira sāra Saubirānjana (See)

ସୌବୀରାଞ୍ଜନ—ସଂ· ବ (ସୌବୀର=ଦେଶବିଶେଷ; ତଜ୍ଜାତ ଅଞ୍ଜନ)—
Saubirānjana ଶୁକ୍ଳସ୍ରୋତାଞ୍ଜନ; ଔଷଧରୂପେ ପ୍ରଯୁକ୍ତ ଅଞ୍ଜନବିଶେଷ; ଶ୍ୱେତସୁରୁମା—Sulphuret of antimony. [ ଦ୍ର—ଶ୍ୱେତବର୍ଣ୍ଣ ବା ପାଣ୍ଡୁର ଅଞ୍ଜନକୁ ସୌବୀରାଞ୍ଜନ ବୋଲାଯାଏ । ସୌବୀରାଞ୍ଜନ ବଲ୍ମୀକଶିଖର ତୁଲ୍ୟ ଆକୃତିବିଶିଷ୍ଟ । ଏହାକୁ ଭାଙ୍ଗି ଦେଲେ ଅଭ୍ୟନ୍ତରରେ ଅଞ୍ଜନ ସଦୃଶ ଆଭା ପ୍ରକାଶ ପାଏ ଓ ଘର୍ଷଣ କଲେ ଗେରୁ ମାଟିର ବର୍ଣ୍ଣ ତୁଲ୍ୟ ହୁଏ ।
ଅନ୍ୟ ସଂ—ଅଞ୍ଜନ, ବାରିସମ୍ଭବ, କପୋତକ, ଯାମୁନ, ଓ କୃଷ୍ଣ ଅଞ୍ଜନର ନାମ ନାଦେୟ, ମେଚକ, ସ୍ରୋତଜ, ଦୃଷ୍ଟିଦ, ନୀଳ, ସୁବୀରଜ, ନୀଳାଞ୍ଜନ,ଚକ୍ଷୁଷ୍ୟ, କପୋତାଞ୍ଜନ
नीलांजन सुफेदसुर्मा
ଫା· ସୁରମା, ସୋଖବୁର୍ମା, ଅସ୍ମାହାଗ
ଅ· ବ୍ଲୁହଲର ସମୁଦ
ତେ· ସୌବୀରାଞ୍ଜନ
ଏହା ମଧୁରକଷାୟରସ, ଚକ୍ଷୁର ହିତକର, କଫ ପିତ୍ତ ନାଶକ, ଶୀତବୀର୍ଯ୍ୟ, ଲେଖନଗୁଣଯୁକ୍ତ, ସ୍ନିଗ୍ଧ, ଧାରକ; ଏହା ବମି, ବିଷ, କ୍ଷୟ ଓ ରକ୍ତଦୋଷନାଶକ । ସୌବୀରାଞ୍ଜନ ଓ ସ୍ରୋତାଞ୍ଜନ ସମଗୁଣବିଶିଷ୍ଟ କିନ୍ତୁ ସ୍ରୋତାଞ୍ଜନ ଶ୍ରେଷ୍ଠ । ]

ସୌବୀରାମ୍ଳ—ସଂ. ବ—ଯବର ବା ଗହମର କାଞ୍ଜି—
Saubirāmla Fermented barley or wheat water.

ସୌବୀରକ—ସଂ· ବ—ବରକୋଳି ଗଛ ଓ କୋଳି—
Saubirika Jujube plant and berry

ସୌବୀରୀ—ସଂ. ବ—୧ । ସଙ୍ଗୀତର ମୂର୍ଚ୍ଛନା ବିଶେଷ—1. One of saubiri the musical flourishes. [ ଦ୍ର—ଏଥିର ସ୍ୱରଗ୍ରାମ—ମପଧନିସରେଗ ନିସରେଗ ମପଧନିସରେ ଗମ—ହ· ଶ ] ୨ । ସୌବୀର ରାଜକୁମାରୀ—A princess of the Saubira country.

ସୌବୀର୍ଯ୍ୟ—ସଂ. ବ· (ସୁବୀର+ଭାବ. ଯ)—୧ । ସୁବୀରତା—Great Saubirjya heroism ୨ । ( ସୌବୀର+ଯ ) ସୌବୀର ଦେଶର ରାଜା ( ହ· ଶ· ) A king of Saubira.

ସୌବ୍ରତ୍ୟ—ସଂ. ବ. (ସୁବ୍ରତ+ଯ)—୧ । ଏକନିଷ୍ଠା ଭକ୍ତି ( ହ· ଶ.)
Saubratya 1. Devotion ୨ । ଆଜ୍ଞାପାଳନ ( ହ· ଶ· )—Obedience.

ସୌଭ—ସଂ. ବ—ହରିଶ୍ଚନ୍ଦ୍ରପୁର ( ହିତାଣ୍ଡ ଶେଷ )—The capital
saubha of king Harischandra, said to have been suspended (ଜନ୍ତାଧର) in the sky. [ ଦ୍ର—ଏହା ଶୂନ୍ୟ ବା ଆକାଶରେ ଝୁଲୁଥିଲା ବୋଲି ବର୍ଣ୍ଣିତ ହୋଇଅଛି । ]
ଅନ୍ୟ ସ. ନାମ—କାମଗ୍ରହପୁର

ସୌଭଗ—ସଂ· ବ ( ସୁଭଗ+ଭାବ, ଅ )—ସୁଖ; ସୁଖଭୋଗ—
Saubhaga Bliss; happiness; enjoyment of bliss or happiness. [ ଉ—ଭୋଗ, ସୌଭଗ ତ୍ୟାଗ ନାଶ । ଏ ସବୁ ଜାଣ ମୋର ଅଂଶ—ଜଗନ୍ନାଥ, ଭାଗବତ ]

ସୌଭଦ୍ର—ସଂ. ବ. ପୁଂ ( ସୁଭଦ୍ରା+ଅପତ୍ୟାର୍ଥେ. ଅ )—ସୁଭଦ୍ରା ପୁତ୍ର;
Saubhadra ଅଭିମନ୍ୟୁ—Abhimanyu, the son of Subhadrā by Arjuna. ବିଣ—ସୁଭଦ୍ରା ସମ୍ବନ୍ଧୀୟ—Relating to Subhadrā.

ସୌଭଦ୍ରେୟ—ସଂ. ବ· ପୁଂ ( ସୁଭଦ୍ରା+ଅପତ୍ୟାର୍ଥେ ଏୟ )—୧ ।
Saubhadreya ସୁଭଦ୍ରାପୁତ୍ର; ଅଭିମନ୍ୟୁ—1. Abhimanyu the son of Subhadrā. ୨ । ବିଭୀତକ ବୃକ୍ଷ; ବାହାଡ଼ା ଗଛ—The Beleric myrobalan tree.

ସୌଭରି—ସଂ. ବ (ନାମ)—ଜନୈକ ମୁନି—Name of a sage.
Saubhari [ ଦ୍ର—ଏ ତପଶ୍ଚରଣଦ୍ୱାରା ବିଶେଷ ଆତ୍ମୋନ୍ନତି ଲାଭ କରି ପରେ ଗୃହସ୍ଥାଶ୍ରମରେ ପ୍ରବେଶ କରିବାକୁ ଇଚ୍ଛୁକ ହୋଇ ରାଜା ମାନ୍ଧାତାଙ୍କ କନ୍ୟାଙ୍କ ପାଣିଗ୍ରହଣପ୍ରାର୍ଥୀ ହୋଇ ମାନ୍ଧାତାଙ୍କ ନିକଟରେ ଉପସ୍ଥିତ ହେବାରୁ, ଯେଉଁ କନ୍ୟା ଏହାଙ୍କୁ ମନୋନୟନ କରିବେ, ରାଜା ତାହାଙ୍କୁ ମୁନିଙ୍କୁ ପ୍ରଦାନ କରିବେ ବୋଲି କନ୍ୟାମାନଙ୍କ ନିକଟକୁ ଏହାଙ୍କୁ ପଠାଇ ଦେଲେ । ଏ ତପୋବଳରେ ଦିବ୍ୟ ରୂପ ଧାରଣ କରି କନ୍ୟାମାନଙ୍କ ନିକଟରେ ଉପସ୍ଥିତ ହେବାରୁ ରାଜାଙ୍କର ସମସ୍ତ କନ୍ୟା ଏହାଙ୍କୁ ବରମାଲ୍ୟ ପ୍ରଦାନ କଲେ । ଏ ସେହି କନ୍ୟାମାନଙ୍କୁ ପତ୍ନୀରୂପେ ପାଇ ସଂସାରୀ ହେଲେ ଓ ତପୋବଳରେ ଅତୁଳ ଐଶ୍ୱର୍ଯ୍ୟର ଅଧିକାରୀ ହୋଇ ବହୁ ପୁତ୍ର କନ୍ୟା ଲାଭ କଲେ । କେତେକାଳ ସଂସାରୀ ହୋଇ ପୁଣି ଏ ତପଶ୍ଚରଣ କରି ଇହଧାମ ତ୍ୟାଗ କଲେ । ]

ସୌଭାଗିନେୟ—ସଂ. ବ. ପୁଂ ( ସୁଭଗା+ଅପତ୍ୟାର୍ଥେ ଏୟ )—ସୁଭଗା
Saubhāgineya କାମିନୀଙ୍କ ପୁତ୍ର; ସୌଭାଗ୍ୟବତୀଙ୍କ ତନୟ—(ସୌଭାଗିନେୟୀ—ସ୍ତ୍ରୀ) The son of a lucky woman; the son of an adored or favourite wife.

ସୌଭାଗୀ—ଦେ. ବିଣ ( ସଂ. ସୌଭାଗ୍ୟବତୀ )—ସୁଭଗା; ଭାଗ୍ୟବତୀ—
Saubhāgi Fortunate; lucky (woman). (ଉ—ଏ ସୁଭାଗୀ, সোহাগী ମଣ୍ଡ ତୋର ପାଦ ଲାଗି । ଯେମନ୍ତ ହୋଇ ସୌଭାଗୀ—ଜଗନ୍ନାଥ. ଭାଗବତ । )
भागवती

ସୌଭାଗ୍ୟ—ସଂ. ବ (ସୁଭଗ+ଭାବ. ଯ)—୧ । ଶୁଭାଦୃଷ୍ଟ—1. Good
Saubhāgya luck; good fortune. ୨ । ସୌନ୍ଦର୍ଯ୍ୟ; (ଦୁର୍ଭାଗ୍ୟ—ବିପରୀତ) ଶୋଭା—2. Beauty; grace. ୩ । ପ୍ରିୟତ୍ୱ—3. The state of being loved (ଦ୍ର—ଭାର୍ଯ୍ୟା ସ୍ୱାମୀଙ୍କ ପ୍ରିୟ ହେଲେ ଓ ସ୍ୱାମୀ ଭାର୍ଯ୍ୟାଙ୍କ ପ୍ରିୟ ହେଲେ;

ଉଭୟଙ୍କର ସେହି ଅବସ୍ଥାକୁ ସୌଭାଗ୍ୟ ବୋଲଯାଏ—ଅପ୍ଟେ । ] ୪ । ଶୁଭ; ମଙ୍ଗଳ—4. Blessedness; auspiciousness (Apte). ୫ । ମନୋହାରିତ୍ୱ—5. Charm (Apte) ୬ । ମହିମା—6. Grandeur; sublimity [Apte] ୭ । ସ୍ନେହ—7. Affection [Apte] ୮ । ଅନୁଗ୍ରହ—8. Favour [Apte]. ୯ । ଶୁଭକାମନା; ଅଭିନନ୍ଦନ—9. Goodwishes; congratulation [Apte]. ୧୦ । ଅବୈଧବ୍ୟ; ସଧବାପଣ—10. The auspicious state of wifehood [as opposed to widowhood] [Apte]. ୧୧ । ଜ୍ୟୋତିଷୋକ୍ତ ଶୁଭଯୋଗବିଶେଷ—11. Name of one of the auspicious astrological conjunctions. [ଦ୍ର—ଏହା ଜ୍ୟୋତିଷୋକ୍ତ ୨୭ଟି ଯୋଗ ମଧ୍ୟରୁ ଚତୁର୍ଥ ଯୋଗ । ଏ ଯୋଗରେ ଯାତ୍ରା ଆଦି ଶୁଭଜନକ ଓ ଏ ଯୋଗରେ ଜନ୍ମ ହେଲା ବ୍ୟକ୍ତି ସୌଭାଗ୍ୟଶାଳୀ ହୁଅନ୍ତି । ] ୧୨ । (ସ୍ତ୍ରୀ ପକ୍ଷରେ) ସ୍ୱାମୀଙ୍କ ପ୍ରିୟତ୍ୱ; ସୁଭଗତ୍ୱ—12. The state of being the beloved or fondled wife of the husband. ୧୩ । ସିନ୍ଦୂର ( ସ୍ତ୍ରୀଳକର୍ଣ୍ଣ )—13. Vermillion; red lead. ୧୪ । ଟଙ୍କଣ ( ସ୍ତ୍ରୀଳକର୍ଣ୍ଣ )—14. Borax. ୧୫ । ସୌଭାଗ୍ୟ ବ୍ରତ—15. Saubhāgya brata [See]

**ସୌଭାଗ୍ୟକରଣ ବ୍ରତ**—ସଂ. ବି—ସୌଭାଗ୍ୟ ବ୍ରତ (ଦେଖ)—Saubhāgyakaraṇa brata Saubhāgya brata [See]

**ସୌଭାଗ୍ୟ କ୍ରମେ (ବଶତଃ)**—ଦେଂ କ୍ରି, ବିଣ—ଶୁଭାଦୃଷ୍ଟର ଫଳରେ—Saubhāgya krame(basatah) Luckily; fortunately. সৌভাগ্যক্রমে सौभाग्यक्रमे

**ସୌଭାଗ୍ୟ ଗର୍ବ**—ସଂ. ବି—ନିଜର ଅଦୃଷ୍ଟ ଭଲ ବୋଲି ମନରେ ଜାତ Saubhāgya garba ଅହଙ୍କାର—Pride due to (ସୌଭାଗ୍ୟଗର୍ବିତ—ବିଣ) a person being lucky.

**ସୌଭାଗ୍ୟ ଗୌରବ**—ସଂ. ବି—୧ । ସୌଭାଗ୍ୟ ଗର୍ବ (ଦେଖ)—Saubhāgya gauraba 1. Saubhāgya garba (See) ୨ । ସୌଭାଗ୍ୟଜନିତ ମହତ୍ତ୍ୱ—2. Greatness arising from good fortune.

**ସୌଭାଗ୍ୟ ଚିନ୍ତାମଣି**—ସଂ. ବି ( ନାମ )—ଆୟୁର୍ବେଦୋକ୍ତ ସୌଭାଗ୍ୟ Saubhāgya chintāmaṇi (ବାହାଡ୍ରା) ଆଦି ବଟିକା ଔଷଧ (ବଟିକା)ବିଶେଷ—Name of a medicinal pill. [ଦ୍ର—ଏହା ସେବନ କଲେ ଶୂଳ, ଶ୍ୱାସ, ମୂର୍ଚ୍ଛା, ଅରୁଚି, ତୃଷା, ଜ୍ୱର ଓ ବିବୋଷ, ଅତି ସ୍ୱେଦ, ଘୋର ନିଦ୍ରା ଆଦି ଦୂର ହୁଏ—ସାରକୌମୁଦୀ ।]

**ସୌଭାଗ୍ୟ ଚିହ୍ନ**—ସଂ. ବି (୬ଷ୍ଠୀ ତତ୍)—୧ । ଶୁଭାଦୃଷ୍ଟର ଲକ୍ଷଣ—Saubhāgya chihna 1. Any mark of good fortune. ୨ । ସଧବାର ଚିହ୍ନ (ଯଥା—କପାଳରେ ସିନ୍ଦୂର, ହାତରେ ଶଙ୍ଖ )—2. Indication of wifehood.

**ସୌଭାଗ୍ୟଜନ୍ମା**—ସଂ. ବିଣ (ବହୁବ୍ରୀହି; ସୌଭାଗ୍ୟ+ଜନ୍ମନ୍, ୧ମା. ୧ବ) Saubhāgyajanma —ଯେଉଁ ବ୍ୟକ୍ତି ସୌଭାଗ୍ୟ ଯୋଗରେ ଜନ୍ମ ହୋଇ ଥାଏ—A person who is born during the 'Saubhāgyajoga.

ସୌଭାଗ୍ୟଜନ୍ମା ସୁଭଗୋ ମନୁଷ୍ୟଃ
ସ୍ତ୍ରୀଣାଂ ପ୍ରିୟୋ ଜନାନାଂ ଧନବାନ୍ ଗୁଣଜ୍ଞଃ
ଉଦାରଚେତା ବଳବାନ୍ ବିବେକୀ
ମହାଉମାଙ୍କା ପ୍ରିୟଭୂଷଣଶ୍ଚ—କୋଷ୍ଠୀପ୍ରଦୀପ ।)

**ସୌଭାଗ୍ୟ ତନ୍ତୁ(ସୂତ୍ର)**—ସଂ. ବି (ମ. ପ. ଲୋ)—ବିବାହ ସମୟରେ Saubhāgya tantu(sūtra) କନ୍ୟାର ଗଳାରେ ବର ଯେଉଁ ମଙ୍ଗଳ ସୂତ୍ର ବାନ୍ଧି ଦିଅନ୍ତି ଓ ଯାହା ବିଧବା ହେବା ପର୍ଯ୍ୟନ୍ତ ସ୍ତ୍ରୀ ଧାରଣ କରନ୍ତି—The marriage-string put round the neck of the bride by the bridegroom and which she wears till widowhood (Apte).

**ସୌଭାଗ୍ୟ ତୃତୀୟା**—ସଂ. ବି—ଭାଦ୍ର ଶୁକ୍ଳ ତୃତୀୟା; ହାଳ ତୃତୀୟା; Saubhāgya tṛutiya ଗୌରୀ ବ୍ରତ—The 3rd day of the bright fortnight of Bhādra. [ ଦ୍ର—ଏ ଦିନ ଉମା, ମହେଶ୍ୱର, ଗଣେଶ, ସରସ୍ୱତୀ ଓ ବିଷ୍ଣୁଙ୍କର ପୂଜା ହୁଏ । ଏହି ବ୍ରତ କଲେ ପୁରୁଷମାନେ ସୁଭଗ ଓ ସ୍ତ୍ରୀମାନେ ସୁଭଗା ହୁଅନ୍ତି । ଆମ ଦେଶରେ ସ୍ତ୍ରୀମାନେ ଏ ଦିନ ନିର୍ଜଳ ଉପବାସ କରନ୍ତି । ସ୍ତ୍ରୀମାନଙ୍କର ଏହି ବ୍ରତ କରିବାର ଫଳ—
ଉମାଂ ଶିବଂ ଗଣେଶଂ ଚ ବିଧିବତ୍ ପୂଜୟନ୍ତି ଯାଃ
ଗୌରୀବରପ୍ରସାଦେନ ସର୍ବଂ ସୌଭାଗ୍ୟମାପ୍ନୁୟୁଃ ।]

**ସୌଭାଗ୍ୟ ଦେବତା**—ସଂ. ବି—ଇଷ୍ଟଦେବତା—Saubhāgya debatā Tutelary Deity (Apte).

**ସୌଭାଗ୍ୟ ପତି**—ସଂ. ବି—ମହାଦେବ (ଯେ ଭକ୍ତଙ୍କୁ ସୌଭାଗ୍ୟ ଦାନ Saubhāgya pati କରନ୍ତି) ( ଶବ୍ଦ ପୁରାଣ )—God Śiba who bestows good luck on his devotees. [ଦ୍ର—ସୌଭାଗ୍ୟବ୍ରତରେ 'ଓ ସୌଭାଗ୍ୟପତୟେ ସ୍ୱାହା' ମନ୍ତ୍ରରେ ମହାଦେବଙ୍କ ଉଦ୍ଦେଶ୍ୟରେ ମଧୁଘୃତମିଶ୍ରିତ ତିଳଦ୍ୱାରା ହୋମ କରାଯାଏ]

**ସୌଭାଗ୍ୟବତୀ**—ସଂ. ବିଣ. ସ୍ତ୍ରୀ ( ସୌଭାଗ୍ୟବତ୍+ଈ )—୧ । Saubhāgyabati ସୌଭାଗ୍ୟବାନ୍‌ର ସ୍ତ୍ରୀଲିଙ୍ଗ—1. Feminine of Saubhāgyabān. ୨ । ସୁଭଗା; ଅବୈଧବ୍ୟ (ସ୍ତ୍ରୀ)—2. Unwidowed (wife) (Apte); (a woman) whose husband is living.

ସୌଭାଗ୍ୟବାନ୍—ସଂ ବଣ ପୁଂ (ସୌଭାଗ୍ୟବତ୍ ଶବ୍ଦ; ୧ମା ୧ ବଚନ
Saubhāgyabān ସୌଭାଗ୍ୟ+ଅସ୍ତି ଅର୍ଥରେ ବତ୍)—
(ସୌଭାଗ୍ୟବତୀ—ସ୍ତ୍ରୀ) ସୌଭାଗ୍ୟଶାଳୀ (ଦେଖ)—
(ସୌଭାଗ୍ୟବନ୍ତ—ଦେ. ରୂପ) Saubhāgyasāli (See)

ସୌଭାଗ୍ୟ ବିଲୋପୀ—ସ ବିଂ. ପୁ (ସୌଭାଗ୍ୟ+ବି+ଲୁପ୍ ଧାତୁ+କର୍ତ୍ତ୍ରି
Saubhāgya bilopī ଇନ୍; ୧ମା ୧ବ)—ସୌଭାଗ୍ୟ ବା
(ସୌଭାଗ୍ୟବିଲୋପିନୀ—ସ୍ତ୍ରୀ) ଶୋଭା ନାଶକାରୀ (କାଳଦାସ)—
Marring or inpairing beauty.

ସୌଭାଗ୍ୟ ବ୍ରତ—ସଂ. ବି—୧। ସୌଭାଗ୍ୟ ତୃତୀୟାରେ କର୍ତ୍ତବ୍ୟ ବ୍ରତ—
Saubhāgya brata 1. A religious vow observed on the day of Saubhāgya Trutiyā
୨। ବରାହପୁରାଣୋକ୍ତ ବ୍ରତବିଶେଷ-2 Name of a religious vow prescribed in Barāha Purana
[ଦ୍ର—ଫାଲ୍‌ଗୁନ ଶୁକ୍ଳ ତୃତୀୟାଦିନ ଉମାମହେଶ୍ୱର ଓ ଲକ୍ଷ୍ମୀନାରାୟଣଙ୍କୁ ଏକ ଦେବଦମ୍ପତିରୂପେ କଳ୍ପନା କରି ତାଙ୍କ ଆଗରେ ମଧୁଦ୍ରୁତ ମିଶ୍ରିତ ତିଳତ୍ରାସ 'ଓଁ ସୌଭାଗ୍ୟ ପତୟେ ସ୍ୱାହା' ମନ୍ତ୍ର ବୋଲି ହୋମ କରିବ ଓ ଭୂମି ଉପରେ ଅଷାର, ଲବଣ ଓ କାଂସ୍ୟ ହୀନ ଗୋଧୂମାନ୍ନ ଭୋଜନ କରିବ। ପରବର୍ତ୍ତୀ ଅଷାଢ଼ ଓ କାର୍ତ୍ତିକମାସ ଶୁକ୍ଳ ତୃତୀୟାଦିନ ଏହିପରି କରିବ। ମାଘ ଶୁକ୍ଳ ତୃତୀୟାଦିନ ସୁବର୍ଣ୍ଣର ହରଗୌରୀ ମୂର୍ତ୍ତି ଓ ସଲକ୍ଷ୍ମୀକ ବିଷ୍ଣୁମୂର୍ତ୍ତି ତିଆରି କରି ତାହା ବ୍ରାହ୍ମଣଙ୍କୁ ଦାନ କରିବ ଓ ଯଥାକ୍ରମେ ମଧୁ, ଘୃତ, ତିଳତୈଳ, ଗୁଡ଼, ଲବଣ, ଗୋକ୍ଷୀରପୂର୍ଣ୍ଣ ୬ ଗୋଟି ପାତ୍ର ବ୍ରାହ୍ମଣଙ୍କୁ ଦାନ କରିବ।
ବରାହ ପୁରାଣ।]

ସୌଭାଗ୍ୟଲକ୍ଷ୍ମୀ—ସଂ. ବି—୧। ଶ୍ରୀସୂକ୍ତର ଅଧିଷ୍ଠାତ୍ରୀ ଦେବୀ; ସୌଭାଗ୍ୟ
Saubhāgya lakshmī ଦାତ୍ରୀ ଲକ୍ଷ୍ମୀ—1. The Goddess bestowing good fortune. ୨। ସୌଭାଗ୍ୟରୂପିଣୀ ଲକ୍ଷ୍ମୀ—2. Good luck personified ୩। ମହତୀ ଶୋଭା—3. A great beauty or charm.

ସୌଭାଗ୍ୟଶାଳୀ—ସଂ. ବଣ (ସୌଭାଗ୍ୟଶାଳିନ୍ ଶବ୍ଦ; ସୌଭାଗ୍ୟ+
Saubhāgyasāli ଅସ୍ତି ଅର୍ଥରେ ଶାଳିନ୍)—ଯାହାର ଭାଗ୍ୟ
(ସୌଭାଗ୍ୟଶାଳିନୀ—ସ୍ତ୍ରୀ) ସୁପ୍ରସନ୍ନ; ସୁଭଗ; ଭାଗ୍ୟବାନ୍—
Fortunate; lucky.

ସୌଭାଗ୍ୟ ଶୁଣ୍ଠି—ସଂ, ବି—ସ୍ତ୍ରୀରୋଗ ଓ ବାତରୋଗ ପାଇଁ ଆୟୁ-
Saubhāgya sunthi ର୍ବେଦୋକ୍ତ ମିଶ୍ର ଚୂର୍ଣ୍ଣ ବା ମୋଦକ
(ସୌଭାଗ୍ୟ ଶୁଣ୍ଠିଖଣ୍ଡ—ଅନ୍ୟରୂପ) ବିଶେଷ—[ଦ୍ର—ଏଥିରେ ଶୁଣ୍ଠିଭାଗ ଅଧିକ ଥାଏ।]—Name of a medicinal preparation for certain female diseases and also for rheumatism.

ସୌଭାଗ୍ୟ ସୂର୍ଯ୍ୟ—ସଂ. ବି (ରୂପକ)—ସୂର୍ଯ୍ୟଙ୍କ ସଙ୍ଗେ ତୁଳନା କରାଯିବା
Saubhāgya sūrjya ସୌଭାଗ୍ୟ—Good luck compared to the sun in grandeour.

ସୌଭାଗ୍ୟ ହୀନ—ସ. ବଣ. ପୁଂ (ଷଷ୍ଠୀ ତତ୍)—ଯାହାର ସୌଭାଗ୍ୟ
Saubhāgya hīna ନାହିଁ ବା ଲୁପ୍ତ ହୋଇଅଛି; ହୀନଭାଗ୍ୟ;
(ସୌଭାଗ୍ୟହୀନା—ସ୍ତ୍ରୀ) ଦୁର୍ଭଗ—Unfortunate; unlucky.

ସୌଭାଞ୍ଜନ—ସଂ ବି—ଶୋଭାଞ୍ଜନ ବୃକ୍ଷ (ଭରତ); ସଜନା ଗଛ—
Saubhānjana The horse radish tree.

ସୌଭାସିକ—ସଂ. ବଣ (ସୁ+ଭାସ+ଇକ)—ସମୁଜ୍ଜ୍ୱଳ (ହି. ଶ)—
Saubhāsika Very bright; dazzling.

ସୌଭିକ—ସଂ. ବି, ପୁଂ—ଇନ୍ଦ୍ରଜାଲିକ (ହାରାବଳୀ)—
Saubhika A conjurer; magician; juggler.

ସୌଭିକ୍ଷ—ସଂ. ବଣ (ସୁଭିକ୍ଷ+ଅ)—ସୁଭିକ୍ଷ ବା ସୁସମୟ ଅନୟନ
Saubhiksha କାରୀ (ହି.ଶ)—Bringing good time.

ସୌଭିକ୍ଷ୍ୟ—ସଂ. ବି (ସୁଭିକ୍ଷ+ଯ)—ଦୁର୍ଭିକ୍ଷ; ଖାଦ୍ୟ ପଦାର୍ଥର ପ୍ରଚୁରତା
Saubhikshya (ହି. ଶ)—Sufficiency of food stuffs.

ସୌଭ୍ରାତ୍ର—ସଂ. ବି (ସୁଭ୍ରାତୃ+ଭାବ. ଅ)—ସୁଭ୍ରାତୃତ୍ୱ; ଭାଇମାନଙ୍କ
Saubhrātra ମଧ୍ୟରେ ପରସ୍ପର ପ୍ରୀତି—Brotherly feeling; mutual attachment amongst brothers; good brotherhood; fraternity (Apte).

ସୌମନସ—ସଂ. ବଣ (ସୁମନସ୍+ଅ)—୧। ପୁଷ୍ପସମ୍ବନ୍ଧୀୟ—
Saumanasa 1. Relating to flower; floral.
ସୌମନସା } —ସ୍ତ୍ରୀ ୨। ମନୋହର; ରୁଚିକର (ହି. ଶ)—
ସୌମନସୀ } 2. Agreeable; charming.
ସଂ. ବି—୧। ପ୍ରଫୁଲ୍ଲିତା; ଅହ୍ଲାଦ (ହି.ଶ)—1. Delight. ୨। ଦୟା; ଅନୁଗ୍ରହ—2. Benevolence, kindliness of spirits (Apte). ୩। ଆନନ୍ଦ; ସନ୍ତୋଷ—3. Pleasure; satisfaction (Apte) ୪। (ନାମ) ପଶ୍ଚିମ ଦିଗର ହାତୀ (ହି, ଶ)—4. Name of the elephant guarding the west. ୫। ଜାଇଫଳ (ହି. ଶ)—5. Nutmeg. ୬। ଅସ୍ତ୍ର ସଂହାରବିଶେଷ (ହି. ଶ)—6. A kind of withdrawal of the potency of a weapon. ୭। ପର୍ବତବିଶେଷ (ହି. ଶ)—7. Name of a mountain.

ସୌମନସା—ସଂ. ବି (ସୁମନସ୍+ଅ)—୧। ଜାଇପତ୍ରୀ; ଜାଇ.
Saumanasā (ଗୁଜରଟ୍ଟୀ)—1. Mace. (spice)
(ସୌମନସାୟନୀ—ପ୍ରଥମ ଅର୍ଥରେ ଅନ୍ୟରୂପ) ୨। ରାମାୟଣ ବର୍ଣ୍ଣିତ ନଦୀବିଶେଷ (ହି. ଶ)—2. Name of a river mentioned in the Rāmāyaṇa.

ସୌମନସ୍ୟ—ସଂ. ବି (ସୁମନସ+ଭାବ. ଅ)—୧। ମନର ପ୍ରସନ୍ନତା,
Saumanasya ସନ୍ତୋଷ; ଚିତ୍ତପ୍ରସାଦ—1. Content-
(ସୌମନସ୍ୟ—ବିପରୀତ) ment; happy condition of mind; satisfaction; pleasure. ୨। ପ୍ରେମ; ପ୍ରୀତି; ସ୍ନେହ—2. Love; affection. ୩। ଶ୍ରାଦ୍ଧରେ

ପିଣ୍ଡଦାନାନନ୍ତର ଶ୍ରାଦ୍ଧବ୍ରାହ୍ମଣଙ୍କ ହସ୍ତରେ ପୁଷ୍ପଦାନ ମନ୍ତ୍ର (ଏହା ଦ୍ୱାରା ଦାତା ଓ ଗ୍ରହୀତାଙ୍କର ସୌମନସ୍ୟ ବା ମନର ପ୍ରସାଦ ଜନ୍ମିଥାଏ )—3. Name of a formula uttered while presenting flowers to the Brāhmaṇa who takes meal on the Srād-dha-plate. ୪ । ପିଣ୍ଡଦାନାନନ୍ତର ଶ୍ରାଦ୍ଧ ବ୍ରାହ୍ମଣଙ୍କ ହସ୍ତରେ ପୁଷ୍ପ ଦାନ—4. Present of flowers to the Srāddha Brāhmaṇa after the offer-ing of Piṇḍa.

ସୌମନସ୍ୟାୟିନୀ—ସଂ. ବି (ସୌମନସ୍ୟ=ମନର ପ୍ରସନ୍ନତା+ଆ ଉପସର୍ଗ Saumanasyāyinī +ଇ. ଧାତୁ+ଣିନ୍. ଅନ+ସ୍ତ୍ରୀ. ଈ; ଯାହା ମନରେ ପ୍ରସନ୍ନତା ଆଣେ )—ମାଳତୀ ପୁଷ୍ପ ( କଳିକା ଶେଷ )—The bud of the Mālatī flower.

ସୌମନା—ସଂ. ବି—୧ । ( ନାମ ) ଉଦୟାଚଳର ଗୋଟିଏ ଶୃଙ୍ଗର Saumanā ନାମ—1. Name of a peak of the mythological Udayagiri mountain. [ଦ୍ର—ପୂର୍ବେ ବିଷ୍ଣୁ ତ୍ରୈଲୋକ୍ୟ ଆକ୍ରମଣ କାଳରେ ଗୋଟିଏ ପଦ ଏହି ଶୃଙ୍ଗରେ ଓ ଅନ୍ୟ ପଦଟି ସୁମେରୁ ଶୃଙ୍ଗରେ ରଖି ଠିଆ ହୋଇଥିଲେ । ] ୨ । ଫୁଲ ( ହି. ଶ )—2. Flower. ୩ । କଳିକା ( ହି. ଶ )—3. Bud. ୪ । ଦିବ୍ୟାସ୍ତ୍ରବିଶେଷ ( ହି. ଶ )—4. Name of divine weapon.

ସୌମାୟନ—ସଂ. ବି (ସୋମ+ପୁତ୍ରାର୍ଥେ ଅୟନ)—ସୋମ ପୁତ୍ର ବୁଧଗ୍ରହ Saumāyana The planet Mercury.

ସୌମିକ—ସଂ. ବିଣ (ସୋମ+ଇକ)—୧ । ସୋମ ବା ଚନ୍ଦ୍ରସମ୍ବନ୍ଧୀୟ Saumika 1. Relating to the moon; lunar. ୨ । ସୋମରସସମ୍ବନ୍ଧୀୟ—2. Relating to the Soma juice. ୩ । ସୋମ ଯଜ୍ଞସମ୍ବନ୍ଧୀୟ—3. Relating to the Soma sacrifice. ୪ । ଚାନ୍ଦ୍ରାୟଣବ୍ରତକାରୀ (ବ୍ୟକ୍ତି) ( ହି. ଶ )—4. (a person) Observing the Chāndrā-yana penance. ୫ ବି. ସୋମରସ ରଖିବାପାତ୍ର (ହି.ଶ) A receptacle for containing the Soma juice.

ସୌମିକୀ—ସଂ. ବି—୧ । ଯଜ୍ଞଶୀୟ ଇଷ୍ଟି (ହେମଚନ୍ଦ୍ର); ଯାଗବିଶେଷ—Saumikī 1. A kind of vedic sacrifice. ୨ । ଯଜ୍ଞାର୍ଥ ସୋମରସ ଚିପୁଡ଼ିବା କର୍ମ ( ହି. ଶ )—2. The pressing of the Soma juice for vedic sacrifice.

ସୌମିତ୍ର(ତ୍ରି)—ସଂ. ବି. ପୁଂ (ସୁମିତ୍ରା=ଦଶରଥପତ୍ନୀ+ଅପତ୍ୟାର୍ଥେ ଅ; Saumitra(tri) +ଇ )—୧ । ସୁମିତ୍ରାପୁତ୍ର; ଲକ୍ଷ୍ମଣ—1. Lakshmaṇa. [ ଦ୍ର—ଅଗ୍ରଜ ଅଜ୍ଞାବହ ସୌମିତ୍ରି ରଥୀ—ମଧୁସୂଦନ'ସୀତାବନବାସ ।] ୨ । ଶତ୍ରୁଘ୍ନ—2. Satrughna.

ସୌମେଚକ—ସଂ. ବି (ସୁମେଚକ+ଅ)—ସୁନା; ସୁବର୍ଣ୍ଣ (ହି. ଶ)—Saumechaka Gold (Apte).

ସୌମେଧିକ—ସଂ. ବିଣ (ସୁମେଧା+ଇକ)—୧ । ଶୋଭନମେଧାସମ୍ବନ୍ଧୀୟ Saumedhika 1. Relating to sharp intellect. ୨ । ପ୍ରଖରବୁଦ୍ଧିସମ୍ପନ୍ନ—2. Sharp of intellect. ୩ । ଦିବ୍ୟଜ୍ଞାନସମ୍ପନ୍ନ—3. Having occult or supernatural knowledge. ବି—ସିଦ୍ଧ ତାପସ—A person who has attained success in penance; seer; sage.

ସୌମେରୁକ—ସଂ. ବିଣ ( ସୁମେରୁ+କ )—ସୁମେରୁସମ୍ବନ୍ଧୀୟ—Saumeruka Relating to Sumeru. ( ସୌମେରୁକା—ସ୍ତ୍ରୀ. ବିଣ ) ବି—ସୁବର୍ଣ୍ଣ ( ରାଜନିର୍ଘଣ୍ଟ )—Gold.

ସୌମ୍ୟ—ସଂ. ବି (ସୋମ+ଯ)—୧ । ବୁଧଗ୍ରହ; ଚନ୍ଦ୍ରପୁତ୍ର (ଅମର)—Saumya 1. The planet Mercury. ୨ । ବିପ୍ର; ବ୍ରାହ୍ମଣ (ଶବ୍ଦମାଳା)—2. Brahman. [ ଦ୍ର—ଏ ଶବ୍ଦଦ୍ୱାରା ବ୍ରାହ୍ମଣଙ୍କୁ ସମ୍ବୋଧନ କରାଯାଏ ।] ୩ । ସୋମ ଯଜ୍ଞ—3. The Soma sacrifice. ୪ । ଉଦୁମ୍ବର ବୃକ୍ଷ (ରାଜନିର୍ଘଣ୍ଟ)—4. A sort of fig. ୫ । ବୃଷ, କର୍କଟ, କନ୍ୟା, ବୃଶ୍ଚିକ, ମକର ଓ ମୀନରାଶିଗଣ (ଜ୍ୟୋତିଷତତ୍ତ୍ୱ)—(ହି. ଶ)—5. Six particular signs of the Zodiac. ୬ । ଯଜ୍ଞର ଯୂପକାଷ୍ଠର କମ୍ପରେ ୧୫ ଅରତ୍ନି ପରିମିତ ଭୂଖଣ୍ଡ—6. A given area of land under the Jūpa pillar of a sacri-fice. ୭ । ସୌମ୍ୟକୃଚ୍ଛ୍ର ବ୍ରତ (ଦେଖ)—7. Saumya kṛuchchhra brata (See) ୮ । (ସଂ. ରେ ବହୁ-ବଚନରେ 'ସୌମ୍ୟାଃ'ରୂପେ ବ୍ୟବହୃତ) ଇଲ୍ୱଳା, କାଳ-ପୁରୁଷର ଶିରୋଦେଶରେ ଅବସ୍ଥିତ ୫ ଗୋଟି ତାରାଙ୍କ ଏକତ୍ର ନାମ (ବିଶ୍ୱ, ହେମଚନ୍ଦ୍ର); ମୃଗଶିରା ନକ୍ଷତ୍ର (ହି. ଶ)—8. A name given to the 5 stars (in plural) situate on the top of the Orion constellation; the Orion's head. ୯ । ଭକ୍ତ; ଉପାସକ (ହି. ଶ)—9. Worshipper; devotee. ୧୦ । ବାମ ହସ୍ତ (ହି. ଶ)—10. The left hand. ୧୧ । (ଆୟୁର୍ବେଦ) ରକ୍ତବର୍ଣ୍ଣରେ ପରିଣତ ହେବା ପୂର୍ବରୁ ରକ୍ତର ଅବସ୍ଥା; ରସ (ହି. ଶ)—11. Serum. ୧୨ । ପିତ୍ତ (ହି. ଶ)—12. Bile; gastric juice (Apte). ୧୩ । ମାର୍ଗଶିର ମାସ (ହି. ଶ)—13. The month of Mārgaśira. ୧୪ । ବାମ ନେତ୍ର (ହି. ଶ)—14. The left eye. ୧୫ । କରତଳର ମଧ୍ୟସ୍ଥଳ (ହି. ଶ)—15. The middle of the palm ୧୬ । ପିତୃଗଣ ବିଶେଷ [ହି. ଶ]—16. A class of the Pitrus or the manes. ୧୭ । ଜ୍ୟୋତିଷୋକ୍ତ

୬୦ ବର୍ଷ ମଧ୍ୟରୁ ଏକ (ହ୍ରି. ଶ)—17. One of the 60 astrological years. [ବି—ଏ ବର୍ଷ ଅନାବୃଷ୍ଟି, ମୂଷିକ ଓ ଶଲଭମାନଙ୍କ ଉପଦ୍ରବ, ରୋଗବୃଦ୍ଧି ଓ ରାଜାମାନଙ୍କ ମଧ୍ୟରେ ଶତ୍ରୁତା ହୁଏ—ହ୍ରି. ଶ ।] ୧୮ । ପୌରାଣିକ ଦ୍ୱୀପବିଶେଷ—18. Name of a mythological island. ବିଣ—୧। ମୃଦୁ; ଅନୁଗ୍ର—(ସୌମ୍ୟତା[ତ୍ୱ]—ବି) 1. Mild; gentle. ୨ । ଶାନ୍ତମୂର୍ତ୍ତି—[ସୌମ୍ୟା—ସ୍ତ୍ରୀ] 2. Of calm appearance or shape ୩ । ପ୍ରସନ୍ନ—3. Favourable. ୪ । ମନୋଜ୍ଞ; ସୁନ୍ଦର—4. Charming; graceful. ୫ । ନିପୁଣ; ଦକ୍ଷ—5. Skilful. ୬ । ସୋମଦେବତ—6. Having 'Soma' or 'Chandra' as the presiding Deity. ୭ । ଶୁଭ—7. Auspicious (Apte) ୮ । ଉଜ୍ଜ୍ୱଳ—8. Bright; brilliant (Apte) ୯ । ସୋମ ସମ୍ବନ୍ଧୀୟ—9. Relating to Soma.

ସୌମ୍ୟକୃଚ୍ଛ୍ର ବ୍ରତ—ସଂ. ବି—ପ୍ରାୟଶ୍ଚିତ୍ତ ବା ବ୍ରତ ବିଶେଷ (ପ୍ରାୟଶ୍ଚିତ୍ତ
Saumyakrchchhra brata ଭକ୍ଷ )—A sort of expiation or religious vow.
[ବି—ଏଥିରେ ପ୍ରତିଦିନ ଯଥାକ୍ରମେ ପିଣ୍ୟାକ=ରାଶି ପିଡ଼ିଆ, ଆଚାମ=ଭାତର ପେଜ, ତକ୍ର=ଦହି, ଅମ୍ବୁ=ଜଳ ଓ ଶକ୍ତୁ=ଛତୁଆ ଖାଇବାକୁ ହୁଏ ଓ ଷଷ୍ଠଦିନ ଉପବାସ କରିବାକୁ ହୁଏ । (ଗରୁଡ଼ ପୁରାଣ) ।
ଅନ୍ୟ ଉକ୍ତ ପ୍ରାୟଶ୍ଚିତ୍ତର ନାମ ଯଥା—ପ୍ରାଜାପତ୍ୟ, ସାନ୍ତପନ, ଶିଶୁକୃଚ୍ଛ୍ର, ପରାକ, ଅତିକୃଚ୍ଛ୍ର, ପର୍ଣ୍ଣକୃଚ୍ଛ୍ର ସୌମ୍ୟ ବା ସୌମ୍ୟକୃଚ୍ଛ୍ର, କୃଚ୍ଛ୍ର, ଅତିକୃଚ୍ଛ୍ର ।]

ସୌମ୍ୟ ଗନ୍ଧ(ନ୍ଧୀ)—ସଂ. ବି—ଶତପତ୍ରୀ (ରାଜନିର୍ଘଣ୍ଟ); ସେବତୀ ଫୁଲ—
Saumya gandha(ndhi) Muskrose.

ସୌମ୍ୟ ଗ୍ରହ—ସଂ. ବି—ଶୁଭ ଗ୍ରହ—
Saumya graha Auspicious planet.
[ପାପଗ୍ରହ—ବିପରୀତ] [ବି—ପୂର୍ଣ୍ଣଚନ୍ଦ୍ର, ପାପଗ୍ରହଯୁକ୍ତ ବୁଧ, ବୃହସ୍ପତି ଓ ଶୁକ୍ରଙ୍କୁ ସୌମ୍ୟଗ୍ରହ ବୋଲାଯାଏ ।]

ସୌମ୍ୟ ଜ୍ୱର—ସଂ. ବି—ବାତପିତ୍ତ ବା ବାତକଫର ପ୍ରକୋପଜନିତ
Saumya jwara ଜ୍ୱର—A kind of fever. [ବି—ଏଥିରେ କେବେ କେବେ ଜ୍ୱରର ତାପ ବେଶୀ ହୁଏ, କେବେ କେବେ କମିଯାଏ—ହ୍ରି. ଶ ।]

ସୌମ୍ୟତରା—ସଂ ବି. ସ୍ତ୍ରୀ—ଦୁର୍ଗାଙ୍କର ନାମବିଶେଷ (ଦେବୀମାହାତ୍ମ୍ୟ)—
Saumyatara A name of Durgā.

ସୌମ୍ୟଦର୍ଶନ—ସଂ. ବିଣ. ପୁଂ—(ବହୁବ୍ରୀହି) ସୁଦର୍ଶନ—
Saumyadarśana Of lovely appearance.
(ସୌମ୍ୟଦର୍ଶନା—ସ୍ତ୍ରୀ)

ସୌମ୍ୟ ଧାତୁ—ସଂ. ବି—କଫ (ରାଜନିର୍ଘଣ୍ଟ)—
Saumya dhātu Phlegm; mucus.

ସୌମ୍ୟ ଧ୍ରୁବ—ସଂ. ବି—ଉତ୍ତର ମେରୁ ଉପରେ ଥିବା ଧ୍ରୁବ ତାରା—
Saumya dhurba The Pole star.
(ସୌମ୍ୟ ଧ୍ରୁବ ତାରା—ଅନ୍ୟରୂପ) [ବି—ଏହି ଧ୍ରୁବ ତାରାକୁ ଆମ୍ଭେମାନେ ଦେଖି ପାରୁଁ ଏବଂ ଏହାକୁ ଦେଖି ନାବିକ-(ବିପରୀତ—ଯାମ୍ୟଧ୍ରୁବ) ମାନେ ଦିଙ୍ନିର୍ଣ୍ଣୟ କରନ୍ତି ।]

ସୌମ୍ୟ ବାର(ବାସର)—ବୁଧବାର—
Saumya bāra(bāsara) Wednesday.

ସୌମ୍ୟ ଭାବ—ସଂ. ବି—୧ । ଶାନ୍ତଭାବ—1. Calm or mild
Saumya bhāba condition. ୨ । ପ୍ରସନ୍ନଭାବ—2. Favourable condition. ୩ । ସାଧୁଭାବ—3. Goodness.

ସୌମ୍ୟ ମୂର୍ତ୍ତି—ସଂ. ବି (କର୍ମଧା)—୧ । ସୁନ୍ଦର ରୂପ—
Saumya mūrtti 1. Graceful form.
(ସୌମ୍ୟ ରୂପ—ଅନ୍ୟରୂପ) ୨ । ଶାନ୍ତ ମୂର୍ତ୍ତି—2. Calm or placid form. ବିଣ (ବହୁବ୍ରୀହି) ସୁଦୃଶ୍ୟବପୁଃ; ଶାନ୍ତ ବା ସୁନ୍ଦର ଆକୃତିବିଶିଷ୍ଟ—Having a graceful form.

ସୌମ୍ୟା—ସଂ. ବିଣ. ସ୍ତ୍ରୀ (ସୌମ୍ୟ+ସ୍ତ୍ରୀ ଆ)—ସୌମ୍ୟର ସ୍ତ୍ରୀଲିଙ୍ଗ—
Saumyā Feminine of Saumya.
ବି—୧ । ଦୁର୍ଗା (ଦେବୀମାହାତ୍ମ୍ୟ)—1. Goddess Durgā. ୨ । ମହେନ୍ଦ୍ରବାରୁଣୀ (ରାଜନିର୍ଘଣ୍ଟ)—2. A kind of big Mahākāla creeper and its fruit; Trichosanthes Palmata. ୩ । ରୁଦ୍ର ଜଟା (ରାଜନିର୍ଘଣ୍ଟ)—3. Uraria Picta (a plant). ୪ । ମହାଜ୍ୟୋତିଷ୍ମତୀ (ରାଜନିର୍ଘଣ୍ଟ)—4. A wild plant (the buds of which make a bursting sound) ୫ । ମଧୁପର୍ଣ୍ଣୀ; ପାତାଳଗରୁଡ଼ୀ ଲତା—5. A kind of medicinal creeper. ୬ । ଗୁଞ୍ଜା; କାଇଞ୍ଚ (ରାଜନିର୍ଘଣ୍ଟ)—6. Abrus Pracatorius; a small pealike black-headed red berry enclosed in pod. ୭ । ଶାଳପର୍ଣ୍ଣୀ (ରାଜନିର୍ଘଣ୍ଟ) (ଦେଖ)—7. Sālaparṇi (See). ୮ । ମଲ୍ଲିକା (ରାଜନିର୍ଘଣ୍ଟ)—8. Arabian Jasmine. ୯ । ବ୍ରାହ୍ମୀ (ରାଜନିର୍ଘଣ୍ଟ) (ଦେଖ)—9. Brāhmi (See). ୧୦ । ଶଟି (ରାଜନିର୍ଘଣ୍ଟ) (ଦେଖ)—10. Śaṭi (See) ୧୧ । ମୁକ୍ତା (ହ୍ରି. ଶ.)—11. Pearl. ୧୨ । ମୃଗଶିର ନକ୍ଷତ୍ର (ହ୍ରି. ଶ.)—12. The Orion's head (constellation).

ସୌଯବସ—ସଂ. ବି—ତୃଣର ପ୍ରଚୁରତା (ହ୍ରି. ଶ)—
Saujabasa Abundance of grass.

ସୌର—ସଂ. ବିଣ (ସୂର=ସୂର୍ଯ୍ୟ+ସମ୍ବନ୍ଧାର୍ଥେ ଅ)—୧ । ସୂର୍ଯ୍ୟସମ୍ବନ୍ଧୀୟ
Saura 1. Relating to the sun; solar.
୨ । ସୂର୍ଯ୍ୟଙ୍କଠାରୁ ଜାତ—2. Born of the sun. ୩ । (ସୁର+ଅ)—ଦେବସମ୍ବନ୍ଧୀୟ—Relating to the gods. ବି (ସୂର+ଅପତ୍ୟାର୍ଥେ ଅ)—୧ । (ସୂର୍ଯ୍ୟ-

ପୁତ୍ର) ଶନୈଶ୍ଚର—1. Planet Saturn ୨ । ଯମ—2. The God of death. ୩ । ବୈବସ୍ୱତମନୁ—3. Name of Manu or Progenitor of man-kind. ୪ । (କୁନ୍ତୀଙ୍କ କାନୀନ ପୁତ୍ର) ରାଜା କର୍ଣ୍ଣ—4 Kin · Karna. ୫ । ବାଳି ଓ ସୁଗ୍ରୀବ—5. Name of the monkey kings Bāli and Sugriva. ୬ । ଜୁମୁରୁ ବୃକ୍ଷ (ବ ଳଗଣ୍ଡୁ)—6. A tree, Zanthoxylum Alatum. ୭ । ସୂର୍ଯ୍ୟୌଦ-ୟଣି ଭଗା-ଛିନ୍ନ ମାସ, ସୌରମାସ; ଯେଉଁ କାଳ (୩୦$\frac{5}{12}$ ଦିନ) ମଧ୍ୟରେ ସୂର୍ଯ୍ୟ ଗୋଟିଏ ରାଶିକୁ ଅତିକ୍ରମ କରନ୍ତି—7. A solar month of 30$\frac{5}{12}$ days. ୮ । ସୂର୍ଯ୍ୟୋପାସକ; ସୂର୍ଯ୍ୟଭକ୍ତ—8. A devotee or worshipper of the Sungod. ୯ । ତନ୍ତ୍ରୋକ୍ତ ଗୁରୁ ବିଶେଷ (ତନ୍ତ୍ରଶାସ୍ତ୍ର) 9. A class of Tantric preceptors. [ ଦ୍ର—ତନ୍ତ୍ର ଅନୁସାରେ କମ୍ବୋଜ ୭ ଗୋଷ୍ଠ ଗୁରୁ ମଧ୍ୟମ ଶ୍ରେଣୀରେ ଅଛନ୍ତି; ଯଥା—ସୌଦ, ଶାଲ୍ମୋଭିକ, ସୌର, ମଗଧ, କେରଳ, କୋଶଳ, ଦଶାର୍ଣ୍ଣ ।] ୧୦ । ମଗ ବ୍ରାହ୍ମଣ—10. The class of Brahmins of the Maga country. ୧୧ । ଦକ୍ଷିଣ ଚକ୍ଷୁ (ହ୍ମ. ଶ)—11. The right eye. ୧୨ । ଧନିଆ (ହ୍ମ. ଶ)—12. Coriander. ୧୩ । (ନପ) ବିଂଶ କଳ୍ପ (ହ୍ମ. ଶ)—13. The name of the 20th Kalpa. ୧୪ । (ନପ) ବେଦ ସାମଭେଦ ନାମ (ହ୍ମ. ଶ)—14. Name of a Vedic hymn.

ସୌର କର ସଂ. ବ (କର୍ମଧା)—ସୂର୍ଯ୍ୟଙ୍କ କିରଣ—
Saura kara Sun's rays.

ସୌର ଗଣନା ସଂ. ବ (କର୍ମଧା)—ସୂର୍ଯ୍ୟଙ୍କ ଗତି ବା ଅବସ୍ଥିତି
Saura gaṇanā ଅନୁସାରେ କରାଯିବା ଗଣନା—Calculation made according to the position or movement of the sun

ସୌରଜ—ସଂ. ବିଣ (ସୌରି+ଜନ୍ ଧାତୁ+କର୍ତ୍ତୃ. ଅ)—ସୋରଠାରୁ
Sauraja ଜାତ—Born of Sauri. ବ—୧ । ଜୁମୁରୁ ବୃକ୍ଷ [ବ୍ରଜଗଣ୍ଡୁ]—1. Zanthoxylum Alatum. ୨ । ଧନିଆ; ଧନିଅ [ହ୍ମ. ଶ] - 2. Coriander.

ସୌର ଜଗତ୍—ସଂ.ବ—ଏକ ସୂର୍ଯ୍ୟ ଓ ତାହାର ଚାରିଆଡ଼େ ଘୂରୁଥିବା ଗ୍ରହ
Saura jagat ଓ ଉପଗ୍ରହାଦିର ମଣ୍ଡଳ - The solar system. [ଦ୍ର—ସୂର୍ଯ୍ୟ ସୌର ଜଗତର କେନ୍ଦ୍ରସ୍ୱରୂପ । ଏହାର ଆକର୍ଷଣଦ୍ୱାରା ତାହାର ଗ୍ରହ, ଉପଗ୍ରହ, ଧୂମକେତୁ ସୂର୍ଯ୍ୟର ଚାରିଆଡ଼େ ସାର୍ବଦା ଘୂରୁଥିବା ଭ୍ରମଣ କରନ୍ତି । ପୃଥିବୀ ମଧ୍ୟ ଗୋଟିଏ ଗ୍ରହ; ବ୍ରହ୍ମାଣ୍ଡରେ ବହୁ ସୌର ଜଗତ ଅଛି ।]

ସୌରଣ—ସଂ. ବିଣ (ସୂରଣ+ଅ)—ସୂରଣ ବା ଓଲୁଅ ସମ୍ବନ୍ଧୀୟ—
Saurana Relating to the wild arum.

ସୌରତ ସଂ. ବିଣ (ସୁରତ+ଅ)—ରତିକ୍ରୀଡ଼ା ସମ୍ବନ୍ଧୀୟ—
Saurata Relating to coition; venal.
ସଂ. ବ—ସୁରତ; ରତିକ୍ରୀଡ଼ା—Copulation.

ସୌରତ୍ୟ—ସଂ. ବ [ସୁରତ+ଯ]—ରତିସୁଖ; ସମ୍ଭୋଗ—
Sauratya Copulation; sexual enjoyment.

ସୌର ଦିନ (ଦିବସ)—ସଂ.ବ—ଏକଦିନର ସୂର୍ଯ୍ୟୋଦୟଠାରୁ ଅପରଦିନର
Saura dina (dibasa) ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ୨୪ ଘଣ୍ଟା ବା ୬୦ ଦଣ୍ଡ କାଳ—A solar day of 24 hours or 60 dandas

ସୌରଧ୍ରୀ—ସଂ. ବ—ଏକ ପ୍ରକାର ତମ୍ବୁରା ବା ସିତାର (ହ୍ମ. ଶ)
Sauradhri A kind of guitar.

ସୌର ନକ୍ତ—ସଂ. ବ—ବ୍ରତ ବିଶେଷ—Name of a religious
Saura nakta vow. [ ଦ୍ର—ହସ୍ତାନକ୍ଷତ୍ରଯୁକ୍ତ ରବିବାରରେ ଏ ବ୍ରତ କରିବାର ବିଧି । ଦେବୋତ୍ଥାନକାଳର ଉତ୍ତରାର ଦ୍ୱିଗୁଣ ପରିମିତ ଛାୟା ଭୂମିରେ ପଡ଼ିବା ଅବସ୍ଥାରେ ସୂର୍ଯ୍ୟ ଥିବାବେଳେ ଏ ବ୍ରତ କରି ଦିନଯାକ ଉପବାସ ରହି ସୂର୍ଯ୍ୟ ପୂଜା କରି ରାତିରେ ଖାଇବାକୁ ହୁଏ—ନୃସିଂହପୁରାଣ ।]

ସୌରପତ—ସଂ. ବ—ସୂର୍ଯ୍ୟୋପାସକ( ହ୍ମ. ଶ )—
Saurapata Worshipper of the Sun.

ସୌର ପରିକର—ସଂ. ବ (କର୍ମଧା—ସୌରଜଗତ୍ (ଦେଖ)
Saura parikara The solar system.

ସୌର ବତ୍ସର (ବର୍ଷ, ସମ୍ବତ୍ସର)—ସଂ. ବ (କର୍ମଧା)—୩୬୫ ଦିନ
Saura batsara (barsha, sambatsara) ଓ ପ୍ରାୟ ୬ ଘଣ୍ଟା କାଳ ବିଶିଷ୍ଟ ବର୍ଷ; ଯେତିକି ସମୟ ମଧ୍ୟରେ ପୃଥିବୀ ଥରେ ସୂର୍ଯ୍ୟର ଚାରିଆଡ଼େ ବୁଲି ଆସେ, ସୂର୍ଯ୍ୟର ଦ୍ୱାଦଶ ରାଶିକୁ ଥରେ ଭୋଗ କରିବା ଅବଚ୍ଛିନ୍ନ କାଳ—A solar year of 365$\frac{1}{4}$ days । ଦ୍ର—ସୌର ବର୍ଷର ଗଣନା ଏକ ମେଷ ସଂକ୍ରାନ୍ତିଠାରୁ ପରବର୍ତ୍ତୀ ମେଷ ସଂକ୍ରାନ୍ତିର ପୂର୍ବ ଦିନ ପର୍ଯ୍ୟନ୍ତ କରାଯାଏ ।]

ସୌରଭ—ସଂ. ବ (ସୁରଭି+ଷ୍ଣ. ଅ)—୧ । ସୁଗନ୍ଧ, ସୁବାସ—
Saurabha 1. Sweet scent; fragrance. ୨. ସୌନ୍ଦର୍ଯ୍ୟ—2. Beauty. ୩ । ସୌଗନ୍ଧ୍ୟ—3. The state of being fragrant. ୪ । କୁଙ୍କୁମ (ଦେଖ) (ଦେଶ), ଜାଫ୍ରାନ କେଶର—4. Kunkuma (See), saffrom. ୫ । ଗୁଣଗୌରବ (ମେଦିନୀ)—5. Greatness of good qualities. ୬ । ଝୁଣା; ଝୁଣା (ବ୍ରଜଗଣ୍ଡୁ)—6. Resin. ୭ । ଜୁମୁରୁ ବୃକ୍ଷ ଓ ଏହି ଗନ୍ଧ ଦ୍ରବ୍ୟ (ହ୍ମ. ଶ)—7. Xanthoxylum Alatum (a tree) and the scented article got from it. ୮ । ଆମ୍ବ (ହ୍ମ. ଶ)—8. Mango. ୯ । ଧନିଆ (ହ୍ମ. ଶ)—9. Coriander. ୧୦ । ସାମ ବିଶେଷ [ହ୍ମ. ଶ]—10. Name of a Vedic hymn. ସଂ. ବିଣ—୧ । ସୁଗନ୍ଧିତ [ହ୍ମ. ଶ]—1. Sweet scented. ୨ । ସୁରଭି ଗାଈଠାରୁ ଉତ୍ପନ୍ନ

[ହ୍ରି. ଶ]—2 Produced from the divine cow Surabhi

ସୌରଭକ—ସଂ. ବ [ସୌରଭ+କ]—୧ । ସୌରଭ (ଦେଖ)—
Saurabhaka 1. Saurabha (See) ୨ । ବର୍ଣ୍ଣବୃତ୍ତି ଭେଦ—2. Name of a syllabic metre. [ବ୍ର—ଏହାର ପ୍ରଥମ ଚରଣରେ ସଗଣ, ଜଗଣ, ସଗଣ ଓ ୧ ଲଘୁ, ଦ୍ୱିତୀୟ ଚରଣରେ ନଗଣ, ସଗଣ, ଜଗଣ ଓ ୧ଗୁରୁ, ତୃତୀୟ ଚରଣରେ ନଗଣ, ନଗଣ, ଭଗଣ ଓ ୧ଗୁରୁ, ଚତୁର୍ଥ ଚରଣରେ ସଗଣ, ଜଗଣ, ସଗଣ, ଜଗଣ ଓ ୧ଗୁରୁବର୍ଣ୍ଣ ଥାଏ— ହ୍ରି. ଶ ।]

ସୌରଭମୟ—ସଂ. ପ୦—୧ । ସୁବାସ ବିଶିଷ୍ଟ—1. Fragrant;
Saurabhamaya sweet smelling. ୨ । ସୁଗନ୍ଧିତ—
(ସୌରଭମୟ ଲୀ—ଅ. ପ୍ରୟୋ) 2. Sweet scented.
[ସୌରଭମୟୀ, ସୌରଭମୟାଙ୍ଗୀ—ସ୍ତ୍ରୀ]

ସୌରଭ ରାଶି—ସଂ. ବ (ଷଷ୍ଠୀ ତତ୍)—ପ୍ରଚୁର ସୁଗନ୍ଧ—
Saurabha rāsi Much fragrance.
(ସୌରଭ ସମୁଦ୍ର, ସୌରଭ ସମ୍ଭାର—ଅନ୍ୟରୂପ)

ସୌରଭାନ୍ୱିତ—ସଂ. ବିଣ (ସୌରଭ+ଅନ୍ୱିତ; ତୃତୀୟା ତତ୍)—
Saurabhānwita ସୌରଭଯୁକ୍ତ; ସୁବାସିତ Sweet-scented.

ସୌରଭିତ—ସଂ. ବିଣ (ସୌରଭ+ଇତ)—ସୌରଭଯୁକ୍ତ; ସୁବାସିତ—
Saurabhita Sweet scented.

ସୌରଭେୟ ସଂ. ବିଣ (ସୁରଭି+ଏୟ)—ସୁରଭି ସମ୍ବନ୍ଧୀୟ—
Saurabheya Relating to Surabhi (cow and
(ସୌରଭେୟୀ—ସ୍ତ୍ରୀ) fragrance). ବି. ପୁଂ (ସୁରଭି+
[ସୌରଭେୟକ—ଅନ୍ୟରୂପ] ଅପତ୍ୟାର୍ଥେ. ଏୟ)—ବୃଷ; ଷଣ୍ଢ (ଅମର)—Bull.

ସୌରଭେୟୀ—ସଂ. ବ (ସୌରଭେୟ+ସ୍ତ୍ରୀ. ଈ)—୧ । ଗାଈ; ଗାଭୀ
Saurabheyī (ଅମର)—1. Cow. ୨ । ସୁରଭି ଗାଭୀର କନ୍ୟା ନନ୍ଦିନୀ—2. The cow Nandini, daughter of Surabhi. ସଂ. ବିଣ. ସ୍ତ୍ରୀ—ସୌରଭେୟର ସ୍ତ୍ରୀଲିଙ୍ଗ—Feminine of Saurabheya.

ସୌରଭ୍ୟ—ସଂ. ବ (ସୁରଭି+ଭାବ. ଯ)—୧ । ସୁବାସ; ସୁଗନ୍ଧ
Saurabhya (ମେଦିନୀ)—1. Sweet scent; fragrance. ୨ । ସୌଗନ୍ଧ୍ୟ—2. The state of being fragrant. ୩ । ମନୋଜ୍ଞତା; ସୌନ୍ଦର୍ଯ୍ୟ (ମେଦିନୀ)—3. Beauty; grace. ୪ । ଗୁଣ ଗୌରବ (ମେଦିନୀ)—4. Greatness of good qualities. ୫ । କୁବେର (ଶବ୍ଦ ରତ୍ନାବଳୀ)—5. The God of wealth. ୬ । ପ୍ରସିଦ୍ଧି (ହ୍ରି. ଶ)—6. Celebrity; fame.

ସୌର ମଣ୍ଡଳ—ସଂ. ବ—୧ । ସୂର୍ଯ୍ୟମଣ୍ଡଳ—1. The sun's disc.
Saura mandala ୨ । ସୌର ଜଗତ୍—2. The solar system.

ସୌର ମାନ—ସଂ. ବିଣ (ସୌର+ମାନ=ପରିମାଣ)—ସୌରଗଣନା ବା
Saura māna ସୂର୍ଯ୍ୟ ଗତି ଦ୍ୱାରା ପରିମିତ (ବର୍ଷ, ମାସ, ଦିବସ)—
Calculated by the solar measurement or movement.

ସୌର ମାସ—ସଂ.ବ—ସୂର୍ଯ୍ୟଙ୍କର ଏକ ରାଶିକୁ ଭୋଗ କରିବାର ଅବଚ୍ଛିନ୍ନ
Saura māsa କାଳ (୩୦$\frac{1}{12}$ ଦିନ)—A solar month
(30$\frac{1}{12}$ days. [ବ୍ର—ଆମ୍ଭେମାନେ ସୌରମାସ) ଅନୁସାରେ ମାସର ଦିନସବୁ ଗଣନା କରୁଁ; ଯଥା—ମକର ବା ମାଘ ୧ ଦିନ, ୨ ଦିନ, ୩ ଦିନ; କିନ୍ତୁ ପୂର୍ବେ ବୈଦିକ ତ୍ରେତା ଓ ସିଦ୍ଧାନ୍ତ ଉଭୟ ଯୁଗରେ ଚାନ୍ଦ୍ରମାସ ଅନୁସାରେ ଦିନ ଗଣନା କରାଯାଉଥିଲା । କେହି କେହି ଅମାବାସ୍ୟାର ପର ଦିନ ପ୍ରତିପଦ୍‌ଠାରୁ ମାସର ପ୍ରଥମ ଦିନ ଗଣନ୍ତି (ଗୌଣଚାନ୍ଦ୍ର); କେହି ପୂର୍ଣ୍ଣିମା ବାଦି ପ୍ରତିପଦ୍ ଦିନ ଠାରୁ ଗଣନ୍ତି (ମୁଖ୍ୟ-ଚାନ୍ଦ୍ର) ।

ଭାରତର ଦକ୍ଷିଣାଞ୍ଚଳରେ (ଯଥା—ମାରବାଡ଼ମାନେ) ଶୁକ୍ଳ ଓ କୃଷ୍ଣପକ୍ଷର ତିଥି ସଂଖ୍ୟା ଅନୁସାରେ ତାରିଖ ଗଣନା କରନ୍ତି (ଯଥା—କାର୍ତ୍ତିକ ସୁଦି ୩=କାର୍ତ୍ତିକ ଶୁକ୍ଳ-ପକ୍ଷ ତୃତୀୟା) ।

ମୁସଲମାନ୍‌ମାନଙ୍କର ମାସ, ବର୍ଷ ଓ ଦିନ ଗଣନା ଚାନ୍ଦ୍ର-ମାନ କ୍ରମେ ହୁଏ । ମୁସଲମାନ୍‌ମାନେ ଅମାବାସ୍ୟା ପରେ ପ୍ରଥମ ଚନ୍ଦ୍ରଦର୍ଶନ ସନ୍ଧ୍ୟାଠାରୁ (ଗୌଣ ଚାନ୍ଦ୍ରମାନ କ୍ରମେ) ମାସ ଗଣନା ଆରମ୍ଭ କରନ୍ତି ।

ଆମ୍ଭେମାନେ ସୂର୍ଯ୍ୟୋଦୟ ଠାରୁ ଦିନ ଗଣନା କରୁଁ । ଇଂରାଜମାନେ ରାତି ୧୨ଟା ଘଣ୍ଟାଠାରୁ ଦିନ ଗଣନା କରନ୍ତି ।]

ସୌର ସମ୍ୱତ୍ସର—ସଂ. ବ—ସୌର ବତ୍ସର (ଦେଖ)
Saura sambatsara Saura batsara (See)

ସୌର ସିଦ୍ଧାନ୍ତ—ସଂ. ବ—ସୂର୍ଯ୍ୟ ସିଦ୍ଧାନ୍ତ (ଦେଖ)
Saura siddhānta Sūrjya siddhānta (See)

ସୌରସେନ—ସଂ. ବ—ସ୍କନ୍ଦ; କାର୍ତ୍ତିକେୟ—
Saurasena Name of God Kārttikeya.

ସୌରସେନୀ—ଦେ. ବିଣ—ମଥୁରାଞ୍ଚଳ ବାସୀ—Inhabiting
Sauraseni Mathurā. (ବ୍ର—ଅପଭ୍ରଂଶ ଭବତି ସୋରସେନୀ ସୌରସେନୀ ସାରେ, ଶାଣିତ ପାଣିତ ଅବି ବୈଭୂତେ सौरसेनी ଆସ୍ଥାଳ । ସ୍ୱଧାନାଥ. ମହାଯାତ୍ରା ।)

ସୌରସେୟ—ସଂ. ବ. ପୁଂ (ସୁରସା+ଅପତ୍ୟାର୍ଥେ. ଏୟ)—ସ୍କନ୍ଦ;
Sauraseya କାର୍ତ୍ତିକେୟ—Kārttikeya.

ସୌର ସୈନ୍ଧବ—ସଂ. ବିଣ (ସୁରସିନ୍ଧୁ+ଅ)—ଗଙ୍ଗା ସମ୍ବନ୍ଧୀୟ—
Saura saindhaba Relating to the Ganges. ବ—
୧ । ଗଙ୍ଗାପୁତ୍ର—1. The son of the Ganges. ୨ । ଭୀଷ୍ମ—2. Bhishma. ୩ । (ସୌର=ସୂର୍ଯ୍ୟ+ସୈନ୍ଧବ=ଘୋଟକ) ସୂର୍ଯ୍ୟଙ୍କ ରଥଟାଣୁଥିବା 'ସପ୍ତ ଘୋଟକ—3. The seven horses drawing the chariot of the Sun god.

ସୌରସ୍ୟ—ସଂ ବି (ସୁରସ+ଯ) – ସୁରସତା—
Saurasya Juiciness.

ସୌରାଜ୍ୟ—ସଂ ବି (ସୁ+ରାଜନ୍+ଗତ୍ୟର୍ଥେ ଯ)—୧ । ସାଧୁ ରାଜାଙ୍କ ଯୁକ୍ତ ହୋଇଥିବା (ଦେଶର) ଅବସ୍ଥା—1. The state of being governed by a good king. ୨ । ସୁଶାସନ; ଶ୍ରେଷ୍ଠ ରାଜତ୍ୱ; ଉତ୍ତମ ରାଜତ୍ୱ ବା ଶାସନ—2. Good government; a reign of good administration.
saurājya

ସୌରାବ- ସଂ ବି—ଲୁଣିଆ ଝୋଳୁଅ (ଦ୍ର· ଶ)
Saurāba Saline soup.

ସୌରାଷ୍ଟ୍ର—ସଂ ବି (ସୁରାଷ୍ଟ୍ର+ସ୍ୱାର୍ଥେ ଅ)—୧ । ସୁରାଷ୍ଟ୍ର ବା ସୁରାଟ ଦେଶ (ଗୁଜରାଟ); ଅଧୁନାତନ କାଠିଆବାଡ଼—1. The country round Surat. [ଦ୍ର—ଏହା ଗୁଜରାଟ – କାଠିଆବାଡ଼ର ପ୍ରାଚୀନ ନାମ—ବି· ଶ ।] ୨ । ସୁରାଷ୍ଟ୍ର-ଦେଶୀୟ ଲୋକ—2. A man of the Surat country. ୩ । କୁନ୍ଦୁରକ; କୁନ୍ଦୁରୁଖୋଟ (ରାଜନିର୍ଘଣ୍ଟ); ଶଲ୍ଲକୀନିର୍ଯ୍ୟାସ; ଲୋବାନ୍—3. Olibanum. ୪ । କାଂସ୍ୟ; କଂସା (ଶବ୍ଦ କଳ୍ପଦ୍ରୁମ)—4. Bell metal. ୫ । ବର୍ଣ୍ଣବୃତ୍ତ ବିଶେଷ (ଦ୍ର· ଶ)—5. Name of a syllabic metre. ବିଣ—(ସୌରାଷ୍ଟ୍ରୀ - ସ୍ତ୍ରୀ) ୧ । ସୁରାଷ୍ଟ୍ର ଦେଶଜାତ—1. Produced in or got from Surat. ୨ । ସୁରାଷ୍ଟ୍ର ଦେଶ ସମ୍ବନ୍ଧୀୟ—2. Relating to the Surat country.
Saurāṣṭra
[ସୌରାଷ୍ଟ୍ରେୟ—ବିଣ. ଅନ୍ୟରୂପ]

ସୌରାଷ୍ଟ୍ରକ—ସଂ ବି (ସୌରାଷ୍ଟ୍ର+କ)—୧ । ପଞ୍ଚଲୌହ; ପଞ୍ଚଧାତୁ (ଯଥା—ସୁନା, ରୁପା, ତମ୍ବା, ରଙ୍ଗ, ସୀସା) (ହେମଚନ୍ଦ୍ର)—1. The five metals, viz, gold, silver, copper, tin and lead. ୨ । ବିଷ ବିଶେଷ (ଦ୍ର. ଶ)—2. A kind of poison. ସଂ ବିଣ—ସୁରାଷ୍ଟ୍ରଦେଶ ସମ୍ବନ୍ଧୀୟ—Relating to the Surat country.
Saurāshṭraka

ସୌରାଷ୍ଟ୍ର ମୃତ୍ତିକା—ଦେ. ବି—ସୌରାଷ୍ଟ୍ରୀ (ଦେଖ)
Saurāshṭra mruttikā Saurāshṭrī (See)

ସୌରାଷ୍ଟ୍ରା—ସଂ ବି (ସୌରାଷ୍ଟ୍ର+ଅ)—୧ । ତୁବରୀ (ରାଜନିର୍ଘଣ୍ଟ) (ଦେଖ)—1. Tubārī (See) ୨ । ହରଡ଼—2. Cajanus Indicus (a pulse). ୩ । ସୌରାଷ୍ଟ୍ରୀ—(ଦେଖ)—3. Saurāshṭrī (See) ୪ । ବବୁରୀ; ବଣ-ତୁଳସୀ; ଲଣ୍ଡାବୁଲ—Wild basil plant.
Saurāshṭrā

·ସୌରାଷ୍ଟ୍ରିକ—ସଂ ବିଣ (ସୁରାଷ୍ଟ୍ର+ଇକ)—ସୁରାଷ୍ଟ୍ରଦେଶୀୟ—Relating to the Surat country. ବି—ବିଷଭେଦ (ଶବ୍ଦ ରତ୍ନାବଳୀ)—A sort of poisonous root. [ଦ୍ର—ଏହା ସୁରାଷ୍ଟ୍ର ଦେଶରେ ଜାତ ଏକ ପ୍ରକାର ବିଷମୟ ମୂଳ । ଏଥିର ପତ୍ର ପଳାଶ ପତ୍ରପରି । ଏ ମୂଳ କୃଷ୍ଣାଗୁରୁ ପରି କଳା ଓ କନ୍ଦପରି ଦେଖେଶା ଓ ବିସ୍ତୃତ—ଦ୍ର. ଶ ।]
Saurāshṭrika

ସୌରାଷ୍ଟ୍ରୀ—ସଂ, ବିଣ (ସୌରାଷ୍ଟ୍ର+ଈ)—ସୌରାଷ୍ଟ୍ରର ସ୍ତ୍ରୀଲିଙ୍ଗ—Feminine of 'Saurāshṭra'. ବି—ସୌରାଷ୍ଟ୍ର-ଦେଶୀୟ ସୁଗନ୍ଧ ମୃତ୍ତିକା; ଗୋପୀଚନ୍ଦନ—A kind of fragrant earth of Surat. [ଦ୍ର—ଏହାକୁ ହିନ୍ଦିରେ ଗୋପୀଚନ୍ଦନ କହନ୍ତି ଓ ଏହା କପାଳରେ ଦେବଙ୍କରେ ଲେପାଯାଏ । ଏହା ମଧ୍ୟ ଔଷଧରେ ଲାଗେ । ସିନ୍ଦୂରର ଯେଉଁ ଗୁଣ ଏହାର ସେହି ଗୁଣ । ଏହାର ଅଭାବରେ ପଙ୍କର ଉପରସ (ଅର୍ଥାତ୍ ଶୁଖିଲା ପଙ୍କ ଉପରେ ପଡ଼ିବା ସାର) ପ୍ରୟୋଗ କରାଯାଏ । ଏହା କଫ, ପିତ୍ତ ବିସର୍ପ ଓ ବ୍ରଣନାଶକ ।]
Saurāshṭrī
ଅନ୍ୟ ସଂ. ନାମ—ଆଢ଼କୀ, କାଙ୍କ୍ଷୀ, ମୃତ୍ସ୍ନା, କାଶୀ, ପର୍ପଟୀ, କାଳିକା, ସତୀ, ତୁବରୀ, କାଚ୍ଛୀ, ମୃତାଳକ, ତୁବରୀକା, ଅଢ଼କା, ସୁରମୃତ୍ତିକା ।

ସୌରାସ୍ତ୍ର · ସଂ. ବି (କର୍ମଧା)—ଦିବ୍ୟାସ୍ତ୍ର ବିଶେଷ (ଦ୍ର ଶ)
Saurāstra A kind of divine weapon.

ସୌରି—ସଂ. ପୁ (ସୂର=ସୂର୍ଯ୍ୟ+ଅପତ୍ୟାର୍ଥେ ଇ)—୧ । ଯମ—1. The God of death. ୨ । ଶନି (ଅମର)—2. Planet Saturn. ୩ । ଅସନ ବୃକ୍ଷ (ରାଜନିର୍ଘଣ୍ଟ)—3. Indian kino tree. ୪ । ଆଦିତ୍ୟଭକ୍ତା, ଅଣସୋରଷା (ରାଜନିର୍ଘଣ୍ଟ)—4. Polanisia Icosandra; Cleome Viscosa (plant) ୫ । ରାଜା କର୍ଣ୍ଣ—5. King Karṇa. ୬ । ସୁଗ୍ରୀବ—6. Sugrība, the monkey king. ଦେ. ବି—(ପୁଂ ଓ ସ୍ତ୍ରୀ)—ଲୋକଙ୍କୁ ଦିଆଯିବା ନାମ—A name given to males and females.
Sauri

ସୌରିକ—ସଂ. ବି (ସୁର+ଇକ)—୧ । ସ୍ୱର୍ଗ (ଶବ୍ଦ ରତ୍ନାବଳୀ)—1. Heaven. ୨ । (ସୁରା+ଇକ) ସୁରାବିକ୍ରୟକର୍ତ୍ତା; ଶୁଣ୍ଡି—2. Wine seller. ୩ । (ସୌରି+ସ୍ୱାର୍ଥେ କ) ଶନିଗ୍ରହ (ଶବ୍ଦ କଳ୍ପଦ୍ରୁମ)—3. Planet saturn. ସଂ. ବିଣ—୧ । ସ୍ୱର୍ଗୀୟ (ଦ୍ର· ଶ)—1. Heavenly. ୨ । ସୁରା ବା ମଦ୍ୟ ସମ୍ବନ୍ଧୀୟ (ଦ୍ର. ଶ)—2. Relating to wine. ୩। ମଦ୍ୟପାନାର୍ଥ କରାଯାଇଥିବା (ଋଣ)(ଦ୍ର· ଶ)—3. (debt) Incurred for drinking wine.
Saurika

ସୌରି ବାସର (ବାର)—ସଂ. ବି—ଶନିବାର—
Sauri bāsara (bāra) Saturday.

ସୌରି ମଣି (ରତ୍ନ)—ସଂ. ବି (ମ. ପ. ଲୋ) (ଶନିଗ୍ରହଙ୍କ ପ୍ରିୟରତ୍ନ)—ନୀଳମଣି (ରାଜନିର୍ଘଣ୍ଟ)—Sapphire.
Sauri maṇi (ratna)

ସୌରୀ—ସଂ. ବି. ସ୍ତ୍ରୀ (ସୂର=ସୂର୍ଯ୍ୟ+ଅପତ୍ୟାର୍ଥେ ଅ+ଈ, ଈ)—୧ । ସୂର୍ଯ୍ୟଙ୍କ କନ୍ୟା; ଯମୁନା—1. River Jamunā, the daughter of the Sun-god. ୨ । ସୂର୍ଯ୍ୟଙ୍କ ସ୍ତ୍ରୀ; ଛାୟା; କୁରୁଙ୍କ ମାତା (ଦ୍ର. ଶ)—2. Wife of the Sun god. ୩ । ଗାଈ (ଦ୍ର. ଶ)—3. Cow. ୪ । ଆଦିତ୍ୟଭକ୍ତା; ଅଣିସୋରିଷିଆ ଗୁଳ୍ମ—4. Cleome Viscosa (plant).
Saurī

ସୌର୍ଯ୍ୟ—ସଂ. ବଣ (ସୌର+ଯ) —୧ । ସୂର୍ଯ୍ୟ ସମ୍ବନ୍ଧୀୟ (ମୁଗ୍ଧ-
**Sauriya** ବୋଧ)—1. Solar. ୨ । ସୂର୍ଯ୍ୟଙ୍କର ହିତକର
(ମୁଗ୍ଧବୋଧ)—2. Beneficial to the sun. ସ.ବି—
୧ । ବିଷାକ୍ତ ନିର୍ଯ୍ୟାସ ସ୍ରାବୀ ବୃକ୍ଷବିଶେଷ (ହି. ଶ)—
1. A tree exuding a kind of poisonous
gum. ୨ । ଉକ୍ତ ବୃକ୍ଷରୁ ବାହାରେ ବିଷାକ୍ତ ଅଠା (ହି.ଶ)—
2. Poisonous gum from the said tree.

ସୌରେୟ—ସଂ. ବି—ଶ୍ୱେତ ହିଣ୍ଟିଗୁଳ୍ମ; ଧଳାଫୁଲଯୁକ୍ତ
**Saureya** ବାସବେରେଣ୍ଡା—The white-flowered
[ ସୌରେୟକ—ଅନ୍ୟ .ର ] variety of Barlera
ଅନ୍ୟ ସ ନାମ—କଟସାରିକା, Cristata plant. [ଦ୍ର—ଏହା
କଟସାରିକା, ଶ୍ୱେତପୁଷ୍ପ, କଫ, ବାତରକ୍ତ, କଣ୍ଡୁ ଓ ବିଷ-
ସୌରେୟା, ସହଚର, ସହାଚର, ନାଶକ । ଏହା ତିକ୍ତ, ଉଷ୍ଣ, ମଧୁର,
ଝିଣ୍ଟି । ଦନ୍ତ୍ୟ, ସ୍ନିଗ୍ଧ ଓ କେଶରଞ୍ଜକ
**श्वेतबांटि सफेदकटसरैया** (ଭବପ୍ରକାଶ) ।]
ମ. କୋରେଣ୍ଟା

ସୌର୍ଜ୍ୟ(ର୍ଯ୍ୟ)—ସଂ. ବଣ (ସୂର୍ଯ୍ୟ, ସୂର୍ଯ୍ୟ+ଅ)—ସୂର୍ଯ୍ୟ ସମ୍ବନ୍ଧୀୟ
**Sauja(rjya)** (ହି. ଶ)—Solar. ସଂ. ବି—୧ । ଶନିଗ୍ରହ—
1. The planet Saturn. ୨ । (ନାମ) ହିମାଳୟର
ଦୁଇଟି ଶୃଙ୍ଗର ନାମ (ହି ଶ)—2. Name of two
peaks of the Himalayas. ୩ । (ନାମ) ସଂବତ୍ସର
ବିଶେଷ [ହି. ଶ]—3. Name of an astrological year.

ସୌର୍ଜୀ(ର୍ଯୀ) —ସଂ. ବି (ସୌର୍ଯ୍ୟ+ଇନ୍; ୧ମା. ୧୧)—ହିମାଳୟ
**Sau ji( ji)** ପର୍ବତ—The Himalayas.

ସୌର୍ଯୋ(ର୍ଯ୍ୟୋ)ଦୟିକ—ସଂ. ବ (ସୂର୍ଯ୍ୟୋଦୟ+ଇକ)—
**Saurjo[rjyo]dayika** ସୂର୍ଯ୍ୟୋଦୟ ସମ୍ବନ୍ଧୀୟ (ହି. ଶ)—
Relating to sunrise.

ସୌଲକ୍ଷଣ୍ୟ—ସଂ. ବି.(ସୁଲକ୍ଷଣ+ଯ)—ସୁଲକ୍ଷଣତା (ହି. ଶ)—
**Saulakshanya** The state of being of good sign.

ସୌଲଭ୍ୟ—ସଂ. ବି (ସୁଲଭ+ଯ)—୧ । ସୁଲଭତା (ହି. ଶ)—
**Saulabhya** 1. Cheapness. ୨ । ଅନାୟାସଲଭ୍ୟତା
2. The state of being easy of attainment.

ସୌଲ୍ୱିକ—ସଂ. ବି—ତାମ୍ରକୁଟ୍ଟକ (ଅମରଟୀକା) ଥଟାରି (ହି. ଶ)—
**Saulwika** Copper smith.

ସୌଶମ୍ୟ—ସଂ. ବ (ସୁଶମ+ଯ)—ସୁଶମତା; ସୁଶାନ୍ତି (ହି. ଶ)—
**Sausamya** Utter or good peace.

ସୌଶୀଲ୍ୟ—ସଂ. ବ (ସୁଶୀଳ+ଯ)—ସୁଶୀଳତା; ସାଧୁତା (ହି. ଶ)—
**Sausilya** Uprightness.

ସୌଶ୍ରବସ—ସଂ. ବ (ସୁଶ୍ରବସ୍+ଅ)—ସୁଯଶ; ସୁଖ୍ୟାତି (ହି. ଶ)—
**Sausrabasa** Good reputation.

ସୌଶ୍ରେୟ—ସଂ. ବ (ସୁଶ୍ରୀ+ଅ) ଐଶ୍ୱର୍ଯ୍ୟ; ବୈଭବ—
**Sausreya** Prosperity; splendour

ସୌଷିର—ସଂ. ବ (ସୁଷିର+ଅ)—୧ । ଦାନ୍ତମାଢ଼ିର ରୋଗବିଶେଷ—
**Saushira** A disease of the jaws. [ଦ୍ର—ଏ ରୋଗରେ
କଫ ଓ ରକ୍ତର ପ୍ରକୋପରୁ ଦାନ୍ତମାଢ଼ି ଫୁଲି ଦରଜ ହୁଏ
ଓ ବହୁତ ଲାଳ ଗଳେ—ହି. ଶ ।] ୨ । ବାୟୁବାଦିତ ଯନ୍ତ୍ର
(ଯଥା—ବଂଶୀ, ଭେରୀ, ମହୁରୀ) (ହି ଶ)—
2. Wind instrument.

ସୌଷିର୍ଯ୍ୟ—ସଂ. ବ (ସୁଷିର+ଯ)—୧ । ଛିଦ୍ରବିଶିଷ୍ଟତା (ହି. ଶ)—
**Saushirjya** 1. Porousness. ୨ । ଫୋମ୍ପଳ (ହି. ଶ)—
2. Hollowness.

ସୌଷ୍ଠବ—ସଂ. ବ (ସୁଷ୍ଠୁ+ଭାବେ. ଅ)—୧ । ଆଧିକ୍ୟ; ଅତିଶଯ୍ୟ—
**Saushthaba** 1. Excess; abundance. ୨ । ସୁରୂପତା;
ସୌନ୍ଦର୍ଯ୍ୟ; ସୁଗଠନ; ସୁଡୌଲପଣ—2. Symmetry; grace. ୩ । ପ୍ରଶଂସନୀୟତା—3. Praiseworthiness. ୪ । ଉତ୍କୃଷ୍ଟତା—4. Excellence.
୫ । ନାଟକାଙ୍ଗ ବିଶେଷ (ଶବ୍ଦକଳ୍ପଦ୍ରୁମ) —5. A part
of a drama. ୬ । ଲଘୁତା; ଶୀଘ୍ରତା; ଫୁର୍ତ୍ତି—
6. Smartness. ୭ । ଶରୀରର ନୃତ୍ୟକାଳୀନ ମୁଦ୍ରା-
ବିଶେଷ (ହି. ଶ)—7. A particular dancing
posture of the body.

ସୌସାଦୃଶ୍ୟ—ସଂ. ବ (ସୁସଦୃଶ+ଭାବ. ଯ)—ସମ୍ପୂର୍ଣ୍ଣ ସାଦୃଶ୍ୟ; ଉତ୍ତମ
**Sausádrusya** ମେଳ—Equality; good similarity.

ସୌସୁରାଦ—ସଂ. ବ—ବସ୍ତିରେ ଜନ୍ମିବା ଏକ ପ୍ରକାର ପୋକ (ହି. ଶ)
**Sausuráda** A kind of maggots or insects
growing in foeces.

ସୌସ୍ଥିତ୍ୟ—ସଂ. ବ (ସୁସ୍ଥିତ+ଯ)—୧ । ସୁସ୍ଥିତି (ହି ଶ)—
**Sausthitya** 1. Good position. ୨ । ଗ୍ରହମାନଙ୍କର
ଶୁଭ ଅବସ୍ଥିତି (ହି. ଶ)—2. Auspicious position of planets. [ଦ୍ର—ବୃହତ ସଂହିତାରେ
ଲେଖାଅଛି ଯେ ଗ୍ରହମାନଙ୍କର ସୌସ୍ଥିତ୍ୟ ଦେଖି ରାଜା
ଶତ୍ରୁକୁ ଆକ୍ରମଣ କଲେ ଅଳ୍ପ ବଳଶାଳୀ ହେଲେ ମଧ୍ୟ ବହୁ
ଶତ୍ରୁଧନ ଲାଭ କରନ୍ତି—ହି. ଶ ।]

ସୌସ୍ଥିର୍ଯ୍ୟ—ସଂ. ବ (ସୁସ୍ଥିର+ଯ)—ସୁସ୍ଥିରତା—
**Sausthirjya** The state of being very calm or settled.

ସୌସ୍ନାନିକ—ସଂ. ବ (ସୁସ୍ନାନ+ଇକ)—ଯଜ୍ଞାନ୍ତସ୍ନାନ ସଫଳ ହେଲା କି
**Sausnánika** ନାହିଁ, ବୋଲି ପ୍ରଶ୍ନ (ହି. )—A questioning as to the success of a bath after
a vedic sacrifice.

ସୌସ୍ୱର୍ଯ୍ୟ—ସଂ. ବ (ସୁସ୍ୱର+ଯ)—ସୁସ୍ୱରତା (ହି. ଶ)—
**Sauswarjya** The state of being sweet-tuned.

ସୌହାର୍ଦ୍ଦ—ସଂ. ବ (ସୁହୃଦ୍+ଅ)—୧ । ସୁହୃଦ୍ ପୁତ୍ର; ମିତ୍ରଙ୍କ ପୁତ୍ର—Sauhārdda 1. The son of one's friend. ୨ । ସୌହାର୍ଦ୍ଦ୍ୟ (ଦେଖ)—2. Sauhārddya (See)

ସୌହାର୍ଦ୍ଦ୍ୟ—ସ. ବ (ସୁହୃଦ୍+ଭାବ. ଯ)—୧ । ସଖ୍ୟ; ମୈତ୍ରୀ—Sauhārddya 1. Friendship. ୨ । ଘନିଷ୍ଠ ବନ୍ଧୁତା—2. Intimate friendship. ୩ । ସ୍ନେହ—3. Affection; attachment.

ସୌହାର୍ଦ୍ଦ୍ୟ ବନ୍ଧନ—ସଂ. ବ (ରୂପକ)—ମିତ୍ରତାରୂପ ବନ୍ଧନ—Sauhārddya bandhana Tie of friendship.

ସୌହାର୍ଦ୍ଦ୍ୟ ସଂସ୍ଥାପନ (ସ୍ଥାପନ)—ସଂ. ବ—ବନ୍ଧୁତାର ପ୍ରତିଷ୍ଠା—Sauhārddya saṁsthāpana(sthāpana) The setting up of a friendship.

ସୌହିତ୍ୟ—ସଂ. ବ (ସୁହିତ+ଭାବ. ଯ)—୧ । ତୃପ୍ତି (ଅମର)—Sauhitya 1. Contentment; sateity; satisfaction. ୨ । ପର୍ଯ୍ୟାପ୍ତ ଓ ତୃପ୍ତିକର ଭୋଜନ—2. A full meal; a meal to one's satisfaction. ୩ । ପୂର୍ଣ୍ଣତା—3. Fullness; completion (Apte). ୪ । ଅନୁକୂଳତା—4. Friendliness (Apte)

ସୌହୃଦ(ଦ୍ୟ)—ସଂ. ବ (ସୁହୃଦ୍+ଭାବ. ଅ; ଯ)—ସୌହାର୍ଦ୍ଦ୍ୟ (ଦେଖ) Sauhṛuda(dya) Sauhārddya (See) (ସୌହୃଦସ୍ୟ—ଅନ୍ୟରୂପ)

ସ୍କଟ୍—ବୈଦେ. ବ (ଇଂ)—୧ । ସ୍କଟ୍ଲଣ୍ଡ ଦେଶୀୟ ଲୋକ—1. A Skaṭ Scot; a native of Scotland. ୨ । [ନାମ] ସର୍ ସ୍କଟ୍ ୱାଲ୍ଟର୍ ସ୍କଟ୍ ନାମକ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀର ସ୍କଟ୍ ବ୍ରିଟେନ୍ର ଜଣେ ପ୍ରଧାନ କବି ଓ ଉପନ୍ୟାସ ଲେଖକ—2. Sir Walter Scott; the famous British poet and novelist of the 18th and 19th centuries.

[ଦ୍ର—ସର୍ ୱାଲ୍ଟର୍ ସ୍କଟ୍ ୧୭୭୧ ସାଲରେ ସ୍କଟ୍ଲଣ୍ଡର ରାଜଧାନୀ ଏଡିନ୍‌ବର୍ଗ ନଗରରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟାବସ୍ଥାରେ ସେ ଛୋଟା ହୋଇଥିଲେ, ମାତ୍ର ତୀକ୍ଷ୍ଣ ବୁଦ୍ଧି-ମତ୍ତାର ପରିଚୟ ଦେଇଥିଲେ । ଯୌବନର ପ୍ରାରମ୍ଭରେ ବିଦ୍ୟାଳୟରେ ଅଧ୍ୟୟନ ଶେଷ ପରେ, ଅର୍ଥୋପାର୍ଜ୍ଜନ କରିବା ପାଇଁ ସେ ନକଲ୍ ନବିସ୍ ହୋଇ ଏକ ବୈଠକରେ ୧୨୦ ଫୁଲ୍‌ସ୍କାପ୍ ପୃଷ୍ଠା ଲେଖି ପାରୁଥିଲେ । ତାଙ୍କର ଅଦ୍ଭୁତ ସ୍ମରଣଶକ୍ତି ଥିଲା । ସେ ଲାଟିନ୍, ଇଟାଲିଆନ୍, ଫ୍ରାନ୍ସ ପ୍ରଭୃତି ଅନେକଗୁଡ଼ିଏ ଭାଷା ଶିଖିଥିଲେ, ଏବଂ ଇତିହାସ, ବିଶେଷତଃ ଯୁଦ୍ଧବର୍ଣ୍ଣନାମାନ ମନୋନିବେଶପୂର୍ବକ ପଢ଼ିଥିଲେ । ସେ ଓକିଲାତି ବ୍ୟବସାୟ କରିଥିଲେ; ମାତ୍ର ସାହିତ୍ୟର ଆକର୍ଷଣ ବଳବତ୍ତର ହେବାରୁ ତାହା ପରିତ୍ୟାଗ କଲେ । ସେ ପ୍ରଥମେ ଅନେକଗୁଡ଼ିଏ କବିତା ଲେଖିଥିଲେ । ସେଥିମଧ୍ୟରୁ କେତେକ ଇଂରାଜୀ ସାହିତ୍ୟରେ ଅତୁଳନୀୟ; (ଯଥା—Lay of the last ministrel, Marmion, The Lady of the Lake). ମାତ୍ର ତାଙ୍କର ଉପନ୍ୟାସଦ୍ୱାରା ଇଂରାଜୀ ସାହିତ୍ୟଜଗତରେ ନବଯୁଗର ଅବତାର ହୋଇଥିଲା । ତାଙ୍କର Waverly novels ନାମକ ଉପନ୍ୟାସ ଇଂରାଜୀ ଭାଷାର ଅମୂଲ୍ୟରତ୍ନ । କତିପୟ ସ୍ୱଦେଶୀୟ ପୁସ୍ତକ ଲେଖି ସେ ୧୮୩୨ ସାଲରେ ପ୍ରାଣତ୍ୟାଗ କଲେ ।

ସନ୍ଦର୍ଭ ଲେଖକ—ଶ୍ରୀ ଜଗନ୍ନାଥ ତ୍ରିପାଠୀ ।]

ସ୍କଟ୍ଲ(ଲା)ଣ୍ଡ—ବୈ. ବ (ଇଂ, ନାମ)—ଇଂଲଣ୍ଡର ଉତ୍ତରକୁ ଲାଗିଥିବା Skaṭ-la(lā)nd ଦେଶ—Scotland. [ଦ୍ର—ଇଂଲଣ୍ଡ ଓ ସ୍କଟ୍‌ଲାଣ୍ଡ୍ ସ୍କଟ୍ଲଣ୍ଡ ଗୋଟିଏ ଦ୍ୱୀପ; ଏଥିର ପଶ୍ଚିମରେ ଆୟ୍-ସ୍କଟ୍ ଲେଣ୍ଡ ର୍ଲଣ୍ଡ ଦ୍ୱୀପ ଅଛି । ଇଂଲଣ୍ଡ, ସ୍କଟ୍ଲଣ୍ଡ ଓ ଆୟର୍ଲଣ୍ଡକୁ ଗ୍ରେଟ୍‌ବ୍ରିଟେନ୍ କୋଲଯାଏ । ଇଂଲଣ୍ଡ ଓ ସ୍କଟ୍ଲଣ୍ଡକୁ ଚେଭିଅଟ୍ ପାହାଡ଼ (Cheviot hills) ଭିନ୍ନ କରିଅଛି । ସ୍କଟ୍ଲଣ୍ଡରେ ବହୁ ପାହାଡ଼ ଓ ଜଳାଶୟ ଅଛି ଓ ଏହାର ଉପକୂଳରେ ବହୁ ଦ୍ୱୀପ ଅଛି । ଏ ଦେଶର ପ୍ରାକୃତିକ ଦୃଶ୍ୟ ଅତି ମନୋହର । ଗ୍ଲାସ୍‌ଗୋ, ଆବର୍ଡ଼ୀନ୍, ଏଡିନ୍‌ବର୍ଗ, ଡଣ୍ଡୀ ଆଦି ଏଥିର ପ୍ରଧାନ ନଗରମାନ ଅଟନ୍ତି ।]

ସ୍କନ୍ଦ(ନ୍ଦ)ଧାତୁ—ସ—୧ । ଡେଇଁ କରି ଚାଲିବା—1. To move by Skad(nd) root leaps. ୨ । ଗମନ କରିବା—2. To go. ୩ । ଗତି କରିବା—3. To move. ୪ । ଶୋଷଣ କରିବା—4. To suck out. ୫ । ରେଚନ କରିବା; ଅଜାଡ଼ିବା—5. To empty; to pour out. ୬ । ଡେଇଁବା; ଲମ୍ଫ ଦେବା—6. To leap; to jump. ୭ । ଉଲ୍ଲମ୍ଫନ କରିବା; ଉପରକୁ ଡେଇଁବା—7. To rise; to jump upwards (Apte). ୮ । ଉଚ୍ଛୁଳିବା—8. To be spilled (Apte) ୯ । ଧ୍ୱଂସପ୍ରାପ୍ତ ହେବା—9. To perish (Apte).

ସ୍କନ୍ଦ—ସ. ବି. ପୁଂ (ସ୍କନ୍ଦ୍ ଧାତୁ=ଗମନ କରିବା+ଭାବ. ଅ)—Skanda ୧ । ଗତି—1. Motion; movement. ୨ । (+କର୍ତ୍ତୃ. ଅ) କାର୍ତ୍ତିକେୟ; ଶିବଙ୍କ ପୁତ୍ର—2. Kārttikeya. [ଦ୍ର—କାଳିକାପୁରାଣ ୨୭ ଅଧ୍ୟାୟରେ ଏହାଙ୍କ ଜନ୍ମବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି ।] ୩ । ନୃପତି (ଜଟାଧର)—3. King. ୪ । ଶରୀର (ତ୍ରିକାଣ୍ଡ ଶେଷ)—4. Body. ୫ । ପାରଦ (ରାଜନିର୍ଘଣ୍ଟ)—(ସ୍କନ୍ଧ—ବଣ) 5. Mercury. ୬ । ନଦୀତଟ (ଶବ୍ଦକଳ୍ପଦ୍ରୁମ)—6. The bank of a river. ୭ । ବିଦ୍ୱାନ୍; ପଣ୍ଡିତ [ଶବ୍ଦ କଳ୍ପଦ୍ରୁମ]—7. Learned man. ୮ । କ୍ରୂର ବାଳଗ୍ରହବିଶେଷ [ଶବ୍ଦ କଳ୍ପଦ୍ରୁମ]—8. An evil supernatural agency attacking child-

ren; an infantile disease. [ ବ୍—ସ୍କନ୍ଦଗ୍ରହ ବାଳକଙ୍କୁ ଆଶ୍ରୟ କଲେ ବାଳକ କେତେବେଳେ ଉଦ୍‌ବିଗ୍ନ ଓ କେତେବେଳେ ତ୍ରାସଯୁକ୍ତ ହୋଇ ରୋଦନ କରେ ଏବଂ ନଖ ଓ ଦାନ୍ତଦ୍ୱାରା ନିଜର ବା ଧାତ୍ରୀର ଗାତ୍ର ବିଦାରଣ କରେ; ଊର୍ଦ୍ଧ୍ୱଦିଗକୁ ଦୃଷ୍ଟି କରେ; ଦାନ୍ତ ଘଷେ; ଅର୍ତ୍ତନାଦ ଓ ଓଷ୍ଠଦଂଶନ କରେ; ପୂର୍ବପରି ଆହାର କରିପାରେ ନାହିଁ । ଶିଶୁର ଜୃମ୍ଭା, ବଳହ୍ରାସ, ଦେହର ମଳିନତା, ଜ୍ଞାନାବରୋଧ, ଭ୍ରୂଦ୍ୱୟର କମ୍ପନ, ପୁନଃ ପୁନଃ ଫେନୋଦ୍ଗମ, ଅତ୍ୟନ୍ତ ନିଦ୍ରାନାଶ, ସ୍ୱରଭଙ୍ଗ, ଅତିସାର ଏବଂ ଶରୀରରେ ମତ୍ସ୍ୟ ଓ ରକ୍ତପରି ଦୁର୍ଗନ୍ଧ ହୁଏ ।

ବିଶେଷ ଲକ୍ଷଣ—ସ୍କନ୍ଦଗ୍ରହପୀଡ଼ିତ ବାଳକର ଅଙ୍ଗ ଶିଥିଳ, ରକ୍ତଗନ୍ଧଯୁକ୍ତ ହୁଏ ଏବଂ ସେ ସ୍ତନ୍ୟପାନରୁ ବିରତ ହୁଏ; ତାହାର ମୁଖ ବକ୍ର, ନୟନ ଅବିରତ, ନେତ୍ର ଜଳପ୍ଲାବିତ, ହସ୍ତଦ୍ୱୟ ମୁଷ୍ଟିବଦ୍ଧ ଓ କଠିନ ହୁଏ ଏବଂ ସେହି ବାଳକ ଉଦ୍‌ବିଗ୍ନ ହୋଇ ଅଳ୍ପ ଅଳ୍ପ ରୋଦନ କରେ—ବୈଦ୍ୟକୋଷ ।] ୯ । ଶିବ—9. Siba (Apte). ୧୦ । ଚତୁର ବ୍ୟକ୍ତି—10. A clever man. ଗ୍ରା. ବି—(ସଂ. ସ୍କନ୍ଧ) [ ଭାଗବତର ] ଖଣ୍ଡ; ସ୍କନ୍ଧ—
One volume of 'Bhāgabat'.

ସ୍କନ୍ଦ ଅପସ୍ମାର—ଦେ. ବି—ବାଳରୋଗ ବିଶେଷ—Name of an Skanda apasmāra infantile disease. [ବ୍—ସ୍କନ୍ଦଙ୍କ (ସ୍କନ୍ଦାପସ୍ମାର—ସଂ. ରୂପ) ଅଙ୍ଗରେ ଗ୍ରହଣରୂପ ହୋଇ, ରହିଲ ସ୍କନ୍ଦ ଅପସ୍ମାର ନାମ ବହି । କୃଷ୍ଣସିଂହ. ମହାଭାରତ. ବନ ।] [ବ୍— ଦାପସ୍ମାରରେ ଶିଶୁ ଅଚେତ ହୋଇଯାଏ, ତା ମୁହଁରୁ ଫେଣ ବାହାରେ । ଚୈତନ୍ୟଲାଭ କରିବା ପରେ ସେ ହାତ ଗୋଡ଼ ଛାଟେ ଓ ହାଇ ମାରେ; ଶିଶୁର ଶରୀରରୁ ରକ୍ତ ଓ ପୂଜର ଗନ୍ଧ ବାହାରେ—ହୃ: ଶ: ।]

ସ୍କନ୍ଦକ—ସଂ. ବି ଓ ବିଣ (ସ୍କନ୍ଦ୍ ଧାତୁ+କର୍ତ୍ତୃ. ଅକ)—୧। ଲମ୍ଫକାରୀ—Skandaka 1. One who leaps. ୨ । ସୈନ୍ୟ—
2. A soldier (Apte).

ସ୍କନ୍ଦ ଗ୍ରହ—ସଂ. ବି—ସ୍କନ୍ଦ ୮ (ଦେଖ)
Skanda graha Skanda 8 (See)

ସ୍କନ୍ଦନ—ସଂ. ବି (ସ୍କନ୍ଦ୍ ଧାତୁ+ଭାବ. ଅନ)—୧ । ଗମନ; ଗତି—Skandana 1. Going; motion. ୨ । କ୍ଷରଣ—2. Oozing. ୩ । ରେଚନ—3. Emptying. ୪ । ଶୋଷଣ—4. Sucking. ୫ । ଶୀତଳ ପ୍ରୟୋଗଦ୍ୱାରା ରକ୍ତକ୍ଷରଣ ବନ୍ଦ କରିବା—5. The suppression of bleeding by cold application [Apte]. ୬ । କୋଷ୍ଠତାରଲ୍ୟ—6. Purging; looseness of the bowels [Apte]. ୭ । ଶୁଖିଯିବା—
7. Drying up.

ସ୍କନ୍ଦ ପୁତ୍ର—ସଂ. ବି—ଚୋର (ମୁଗ୍ଧବୋଧ)—
Skanda putra A thief.

ସ୍କନ୍ଦ ପୁରାଣ—ସଂ. ବି—ପୁରାଣ ବିଶେଷ—Name of a Purāṇa-Skanda purāṇa [ବ୍—ସ୍କନ୍ଦ ପୁରାଣରେ ସନତ୍‌କୁମାର ସଂହିତା, ସୂତ ସଂହିତା, ଶଙ୍କର ସଂହିତା, ବୈଷ୍ଣବ ସଂହିତା, ବ୍ରାହ୍ମ ସଂହିତା, ସୌର ସଂହିତା ନାମକ ୬ଟି ସଂହିତା ଅଛି ଓ ମାହେଶ୍ୱର ଖଣ୍ଡ, ବୈଷ୍ଣବ ଖଣ୍ଡ, ବ୍ରହ୍ମ ଖଣ୍ଡ, କାଶୀ ଖଣ୍ଡ, ରେବା ଖଣ୍ଡ, ତାପୀ ଖଣ୍ଡ ଓ ପ୍ରଭାସ ଖଣ୍ଡ ଅଛି ଓ କେତେକ ମାହାତ୍ମ୍ୟ ଅଛି । ଏ ପୁରାଣର କାଶୀ ଖଣ୍ଡ ଅନ୍ୟ ଖଣ୍ଡମାନଙ୍କ ଅପେକ୍ଷା ପ୍ରସିଦ୍ଧ (ହି. ଶ) । ଏଥିର ଉତ୍କଳ ଖଣ୍ଡରେ ଉତ୍କଳର ତୀର୍ଥମାନଙ୍କ ଉଲ୍ଲେଖ ଅଛି । ଏ ପୁରାଣର ଶ୍ଳୋକ ସଂଖ୍ୟା ୮୧୧୦୦ । ଏହା ବ୍ୟାସଦେବଙ୍କ ସଙ୍କଳିତ ।]

ସ୍କନ୍ଦଫଳା—ସଂ. ବି—ଖଜୁରି ଗଛ (ହି. ଶ)—
Skandaphalā Date palm.

ସ୍କନ୍ଦର—ଦେ. ବି—ଅଲେକ୍‌ଜାଣ୍ଡର୍; ସିକନ୍ଦର—Alexander. Skandara सीकन्दर; सिकन्दर [ବ୍—ମଣ୍ଡବେଳେ ବିଷ— ବିଜୟୀ ସ୍କନ୍ଦର—ରାଧାନାଥ. ଦରବାର । ]

ସ୍କନ୍ଦ ଷଷ୍ଠୀ—ସଂ. ବି—ଚୈତ୍ର ମାସ ଶୁକ୍ଳ ଷଷ୍ଠୀ—The sixth day Skanda shashṭhi of the bright fortnight of Chaitra. [ ବ୍—ଷଷ୍ଠୀ ଦିନ ସ୍କନ୍ଦ ତ ଅଭିଷେକ ହେଲେ, ଏଣୁ ସ୍କନ୍ଦ ଷଷ୍ଠୀକୁ ସମସ୍ତେ ପୂଜିଲେ । କୃଷ୍ଣସିଂହ, ମହାଭାରତ. ବନ ।] [ବ୍—ଏ ଦିନ ବ୍ରହ୍ମାଙ୍କ ଦ୍ୱାରା କାର୍ତ୍ତିକେୟ ଦେବତାମାନଙ୍କ ସେନାପତି ପଦରେ ଅଭିଷିକ୍ତ ହୋଇଥିଲେ ।)

ସ୍କନ୍ଦାଂଶକ—ସଂ. ବି—ପାରଦ (ଶିବ ବୀର୍ଯ୍ୟ)—Mercury; quick-Skandāmsaka silver.

ସ୍କନ୍ଦିତ—ସଂ. ବିଣ (ସ୍କନ୍ଦ ଧାତୁ+କର୍ତ୍ତୃ ତ)—୧ । ଉଛୁଳି ଯାଇଥିବା—Skandita 1. Spilt. ୨ । ପତିତ—2. Fallen. ୩ ।
ସ୍ଖଳିତ—3. Slipped

ସ୍କନ୍ଦୋଳ—ସଂ. ବିଣ—ଶୀତଳ (ହି. ଶ)—Cold; cool. ସଂ. ବି—Skandola ଶୀତଳତା—(ହି. ଶ)—Coldness.

ସ୍କନ୍ଧ—ସଂ. ବି (କ=ମସ୍ତକ, କଂ=ମସ୍ତକକୁ+ଧା. ଧାତୁ=ଧାରଣ Skandha କରିବା+କର୍ତ୍ତୃ. ଅ, କ୍ରମାଗତ, କ ସ୍ଥାନରେ ସ୍କ; ଅନ୍ୟ ସ ନାମ—ଭୁଜଶିରଃ, ଯାହା ମସ୍ତକକୁ ଧାରଣ କରେ)—ଅଂସ, କାନ୍ଧ, ଦୋଃଶିଖର । ୧ । କାନ୍ଧ; ବେକର ତଳ—
1. Shoulder. ୨ । କାୟ; ଦେହ; ଗଣ୍ଡି; ମସ୍ତକଛଡ଼ା ଦେହର ଅନ୍ୟ ଅଂଶ—2. The trunk of the body. ୩ । ବୃକ୍ଷର ଗଣ୍ଡି; ତରୁର ମୂଳଠାରୁ ଶାଖା ବାହାରିବା ଅଂଶ ପର୍ଯ୍ୟନ୍ତ ଅଂଶ (ଶବ୍ଦ ରତ୍ନାବଳୀ); ବୃକ୍ଷର ଅନ୍ୟ ସ ନାମ—ପ୍ରକାଣ୍ଡ, କାଣ୍ଡ, ଦଣ୍ଡ । କାଣ୍ଡ—3. The trunk of a tree; stem. ୪ । ନୃପତି (ମେଦିନୀ)—4. King. ୫ । ସେନାଧ୍ୟକ୍ଷ—5. Commander or general of an army. ୬ । ସମ୍ପରାୟ; ଯୁଦ୍ଧ (ମେଦିନୀ)—6. Battle. ୭ । ବ୍ୟୂହ

(ହେମଚନ୍ଦ୍ର)—7. Battle array. ୮ । ପଥ ( ଶବ୍ଦ ରତ୍ନାବଳୀ)—9. Road; way. ୯ । ଛନ୍ଦୋବିଶେଷ (ମେଦିନୀ)—9. Name of a Sanscrit metre. ୧୦ । ଗ୍ରନ୍ଥ ପରିଚ୍ଛେଦ—10. Chapter of a book. [ଯଥା—ଭାଗବତର ୧୨ ସ୍କନ୍ଧ ।] ୧୧ । କକୁଦ; ଷଣ୍ଢର ଚୂଳ—11. The tuft of flesh on the shoulder of a bull. ୧୨ । ବୌଦ୍ଧମତେ ଜ୍ଞାନର ପଞ୍ଚ ଅଂଶ—12. Five component parts of knowledge according to Buddhist philosophy.

[ଦ୍ର—ରୂପ ସ୍କନ୍ଧ—ବିଷୟ ପ୍ରପଞ୍ଚ,
ବେଦନା ସ୍କନ୍ଧ—ବିଷୟଜ୍ଞାନ ପ୍ରପଞ୍ଚ,
ବିଜ୍ଞାନ ସ୍କନ୍ଧ—ଆଲୟବିଜ୍ଞାନ ପ୍ରପଞ୍ଚ,
ସଂଜ୍ଞା ସ୍କନ୍ଧ—ନାମ ପ୍ରପଞ୍ଚ,
ସଂସ୍କାର ସ୍କନ୍ଧ—ବାସନା ପ୍ରପଞ୍ଚ ।

ବୌଦ୍ଧମାନେ ଏ ପାଞ୍ଚଗୋଟି ସ୍କନ୍ଧର ଅତିରିକ୍ତ ଆତ୍ମାର ପୃଥକ୍ ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ—ହି. ଶ ।] ୧୩ । ଅଭିଷେକ ସାମଗ୍ରୀ—13 Articles required for coronation. ୧୪ । ସେନା ବିଭାଗ—14. Division of an army. ୧୫ । କ୍ରୌଞ୍ଚବକ—15. A kind of crane. ୧୬। ବୁଦ୍ଧ—16. Buddha. ୧୭ । ସମୂହ—17. Multitude. ୧୮ । ଯୁକ୍ତି—18. Argument. ୧୯ । ନିର୍ଦ୍ଦିଷ୍ଟ କାର୍ଯ୍ୟ—19. Appointed work. ୨୦ । ବିଜ୍ଞ ପ୍ରାଚୀନ ମନୁଷ୍ୟ—20. A wise old man. ୨୧ । ପଣ୍ଡିତ—21. A learned man. ୨୨ । ଶିକ୍ଷକ—22. Teacher. ୨୩ । ( ଦର୍ଶନ ଶାସ୍ତ୍ର ) ପଞ୍ଚେନ୍ଦ୍ରିୟର ପଞ୍ଚ ବିଷୟ, ରୂପ ରସ ଗନ୍ଧ ଶବ୍ଦ ଓ ସ୍ପର୍ଶ—23. (Hindu philosophy) Objects of the five senses(namely,-shape taste, smell, sound and touch). ୨୪ । ଡାଳ; ଶାଖା ( ହି. ଶ )—24. Branch. ୨୫ । ରାଜା ( ହି. ଶ )—25. King. ୨୬ । ଯୁଦ୍ଧ ( ହି. ଶ )—26. Battle. ୨୭ । ରାଜ୍ୟାଭିଷେକର ଉପଯୋଗୀ ବସ୍ତୁ ( ଯଥା—ଜଳ, ଛତ୍ର ) ( ହି. ଶ )—27. Articles required for an installation. ୨୮ । ସନ୍ଧି; ରାଜିନାମା (ହି. ଶ)—28. Treaty; compromise. ୨୯ । କଙ୍କପକ୍ଷୀ; ଧଳା ଚିଲ ( ହି. ଶ )—29. White kite. ୩୦ । ଆର୍ଯ୍ୟାଛନ୍ଦର ଏକପ୍ରକାର ( ହି. ଶ )—30. A class of Ārjyā metre.

ସ୍କନ୍ଧ ଚାପ—ସଂ. ବି ( ଯାହା ସ୍କନ୍ଧକୁ ଚାପ ଦିଏ; ବହୁବ୍ରୀହି )—ବହଙ୍ଗିକା; Skandha chāpa ବଂଶାଦି ନିର୍ମିତ ଶିକ୍ୟାଧାର; ବାହୁଙ୍ଗୀ—A bamboo for carrying on the shoulders loads suspended at both ends.

ସ୍କନ୍ଧଜ—ସଂ ବି ( ସ୍କନ୍ଧ=ତରୁର ସ୍କନ୍ଧ ବା ଗଣ୍ଡିରୁ ଜାତ )—୧ । ଶଲ୍ଲକୀ; Skandhaja ଝୁଣା ( ହେମଚନ୍ଦ୍ର )—1. Resin. ୨ । ବଟ ବା ବରଗଛ ( ବୈଦ୍ୟକ )—2. The banyan tree.

ସ୍କନ୍ଧତରୁ—ସଂ. ବି—୧ । ନାରିକେଳ ବୃକ୍ଷ ( ରାଜନିର୍ଘଣ୍ଟ )—Skandhataru 1. Cocoanut tree. ୨ । ଉଡ଼ୁମ୍ବର ବୃକ୍ଷ ( ଶବ୍ଦଚନ୍ଦ୍ରିକା )—2. A sort of fig tree.

ସ୍କନ୍ଧ ଦେଶ(ପ୍ରଦେଶ)—ସଂ. ବି—୧। ଅଂସ; କାନ୍ଧ—1. Shoulder. Skandha desa(pradesa) ୨ । ହାତୀର କାନ୍ଧ (ଯେଉଁଠାରେ ମାହୁନ୍ତ ବସେ ), ବଳଦ ଆଦିଙ୍କ କାନ୍ଧ ( ଯେଉଁଠାରେ ଜୁଆଳି ଲଗେ )—2. The shoulder of an elephant or bullock.

ସ୍କନ୍ଧ ପରିନିର୍ବାଣ—ସଂ. ବି—ବୌଦ୍ଧମାନଙ୍କ ମତରେ ଶରୀରର ୫ ଗୋଟି Skandha parinirbāṇa ସ୍କନ୍ଧ ( ରୂପ, ରସ, ଗନ୍ଧ, ଶବ୍ଦ, ସ୍ପର୍ଶ )ର ନାଶ ); ମୃତ୍ୟୁ ( ହି. ଶ )—Death.

ସ୍କନ୍ଧ ପୀଠ—ସଂ. ବି ( ଷଷ୍ଠୀ ତତ୍ ) —କାନ୍ଧର ହାଡ଼ ( ହି. ଶ )—Skandha pīṭha Shoulder blade; shoulder bone.

ସ୍କନ୍ଧଫଳ—ସଂ. ବି ( ବହୁବ୍ରୀହି; ସ୍କନ୍ଧରେ ଫଳ ଫଳେ ଯାହାର )—Skandhaphala ୧ । ନାରିକେଳ ବୃକ୍ଷ—1. Cocoanut tree. ୨ । ଉଡ଼ୁମ୍ବର ବୃକ୍ଷ ( ହି. ଶ )—2. Fig tree.

ସ୍କନ୍ଧଫଳା—ସଂ. ବି—ଖର୍ଜୁରୀ; ଖର୍ଜୁର—Skandhaphalā Date palm.

ସ୍କନ୍ଧବନ୍ଧନା—ସଂ. ବି—ମଧୁରିକା (ଶବ୍ଦଚନ୍ଦ୍ରିକା); ପାନମହୁରି—Skandhabandanā Aniseed.

ସ୍କନ୍ଧବାହ—ସଂ. ବି ( ସ୍କନ୍ଧ+ବହ୍ ଧାତୁ+କର୍ତ୍ତୃ. ଅ; ଅଣ )—Skandhabāha ସ୍କନ୍ଧଦ୍ୱାରା ଶକଟାଦି ବହନକାରୀ ବଳଦ—Cart-bullock. ବିଣ—ଭାରବହନକାରୀ—Carrying load on the shoulder.
ଅନ୍ୟ ସଂ—ସ୍କନ୍ଧିକ, ଶଙ୍କୁ, ଶୃଙ୍ଗୀ, ଗୌରଷ, ଦୂର୍ତ୍ତିଲ ।
[ସ୍କନ୍ଧବାହକ—ଅନ୍ୟରୂପ]

ସ୍କନ୍ଧମଲ୍ଲକ—ସଂ. ବି—କଙ୍କପକ୍ଷୀ ( ହେମଚନ୍ଦ୍ର )—Skandhamallaka Heron.

ସ୍କନ୍ଧରୁହ—ସଂ. ବି (ସ୍କନ୍ଧ+ରୁହ୍ ଧାତୁ+କର୍ତ୍ତୃ. ଅ)—ବଟବୃକ୍ଷ (ରାଜନିର୍ଘଣ୍ଟ )—Skandharuha Banyan rree.

ସ୍କନ୍ଧ ଶାଖା—ସଂ. ବି ( ସ୍କନ୍ଧରୁ ଜାତ ଶାଖା )—ବୃକ୍ଷର ପ୍ରଧାନ ଶାଖା Skandha śākhā [ଅମର]—The main branch of a tree.
(ଅନ୍ୟ ସଂ. ନାମ—ଶାଳା)

ସ୍କନ୍ଧ ଶୃଙ୍ଗ—ସଂ. ବି ( ସ୍କନ୍ଧ ଅଡ଼କୁ ବାଗେଇ ଥାଏ ଶୃଙ୍ଗ ଯାହାର )—Skandha śṛuṅga ମହିଷ [ଶବ୍ଦକଳ୍ପଦ୍ରୁମ]—Buffalo.

ସ୍କନ୍ଧା—ସଂ. ବି ( ସ୍କନ୍ଧ+ଆ )—୧ । ଶାଖା; ଡାଳ [ଶବ୍ଦକଳ୍ପଦ୍ରୁମ]—Skandhā 1. Branch. ୨ । ଲତା [ଶବ୍ଦକଳ୍ପଦ୍ରୁମ]—2. Creeper.

ସ୍କନ୍ଧାଗ୍ନି—ସଂ. ବ—ବଡ଼ କାଠଗଣ୍ଡିମାନଙ୍କ ଜାତ ଅଗ୍ନି [ବିକାଣ୍ଡଶେଷ]—
Skandhāgni Fire of big logs of wood.
( ସ୍କନ୍ଧାନଳ—ଅନ୍ୟରୂପ

ସ୍କନ୍ଧାବାର—ସଂ. ବ (ସ୍କନ୍ଧ=ରାଜା, ସୈନ୍ୟ+ଆ+ବୃ ଧାତୁ+କର୍ତ୍ତୃ, ଅ,
Skandhābāra ଯାହା ରାଜାଙ୍କୁ ବା ସୈନ୍ୟଙ୍କୁ ଆବରଣ ବା ରକ୍ଷା
କରେ )—୧ । ସେନା; ସୈନ୍ୟଦଳ—1. Army. ୨ ।
ରାଜଧାନୀ—2. Capital of a king. ୩ । କଟକ;
ନଗର—3. City; town. ୪ । ଶିବିର; ସେନା-
ନିବାସ—4. Cantonment. ୫ । ରାଜାଙ୍କ ଶିବିର
( ହ. ଶ )—5. The camp of a king.

ସ୍କନ୍ଧିକ—ସଂ. ବ (ସ୍କନ୍ଧ+ଇକ)—୧ । ସ୍କନ୍ଧବାହକ; ଶଗଡ଼ଟଣା ବଳଦ·
Skandhika 1. Cart-bullock. ୨ । ବଳଦ; ବୃଷ (ହ. ଶ)
—2. Bullock; bull.

ସ୍କନ୍ଧୀ—ସଂ. ବଣ. ପୁଂ(ସ୍କନ୍ଧ+ଇନ୍; ୧ମା. ୧ବ)—ସ୍କନ୍ଧଯୁକ୍ତ—Having
Skandhi shoulder. ବ—ବୃକ୍ଷ ( ଭଦ୍ରମାଲା )—
(ସ୍କନ୍ଧିନୀ ସ୍ତ୍ରୀ. ବଣ) Tree.

ସ୍କନ୍ଧେମୁଖ—ସଂ. ବଣ. ପୁଂ (ବହୁବ୍ରୀହି, ଅଲୁକ୍)—କାନ୍ଧ ଉପରେ ଯାହାର
Skandhemukha ମୁଖ ଅବସ୍ଥିତ (ହ. ଶ)—Having the
( ସ୍କନ୍ଧେମୁଖା—ସ୍ତ୍ରୀ ) face fixed to the shoulders.
ସଂ. ବ—ସ୍କନ୍ଦଙ୍କ ଅନୁଚରବିଶେଷ ( ହ. ଶ )—
Name of an attendant of Skanda.

ସ୍କନ୍ଧ୍ୟ—ସଂ. ବଣ [ସ୍କନ୍ଧ+ଯ]—୧ । ସ୍କନ୍ଧ ସମ୍ବନ୍ଧୀୟ—1. Relating
Skandhya to the shoulders. ୨ । ସ୍କନ୍ଧର ସମାନ [ହ.
ଶ ]—2. Equal to or as high as the
shoulders.

ସ୍କନ୍ନ—ସଂ. ବଣ (ସ୍କଦ ବା ସ୍କନ୍ଦ୍ ଧାତୁ+କର୍ତ୍ତୃ ତ)—୧ । ସ୍ଖଳିତ; ଚ୍ୟୁତ
Skanna [ଟମର]—1. Separated; fallen. ୨ । ଗତ (ଶବ୍ଦ
କଳ୍ପଦ୍ରୁମ)—2. Gone. ୩ । ଶୁଷ୍କ [ଶବ୍ଦ କଳ୍ପଦ୍ରୁମ]—
3. Dry. ୪ । କ୍ଷରିତ—4. Oozing.

ସ୍କବ୍ଧ— ସଂ. ବଣ [ସ୍କମ୍ଭ୍ ଧାତୁ+କର୍ମ୍ମ, ତ]—୧ । ଠେକାଯାଇଥିବା—
Skabdha 1. Supported; propped (Apte) ୨। ବନ୍ଦ;
ସ୍ଥଗିତ—2. Stopped (Apte).

ସ୍କଭ୍(ମ୍ଭ୍) [ଧାତୁ]—ସଂ—୧ । ସ୍ତମ୍ଭନ କରିବା—1. To stop. ୨ ।
Skabh(mbh) [root] ରୁଦ୍ଧ କରିବା—2. To restrain.
୩ । ସର୍ଜନ କରିବା—3. To create (Apte). ୪ ।
ବାଧା ଦେବା—4. To hinder; to obstruct; to
impede ( Apte ). ୫ । ଠେକ ଧରିବା—5. To
prop up; to support [Apte].

ସ୍କଭନ—ସଂ. ବ (ସ୍କଭ୍ ଧାତୁ+କରଣ, ଅନ)—ଶବ୍ଦ [ହ. ଶ]
Skabhana Sound.

ସ୍କମ୍ଭ—ସଂ. ବ [(ସ୍କମ୍ଭ୍, ଧାତୁ+କର୍ତ୍ତୃ, ଅ)—୧ । ସ୍ତମ୍ଭ; ଖୁମ୍ବ—
Skambha 1. Pillar. ୨ । ଠେକ—2. Support; prop;
stay; fulcrum [Apte]. ୩ । ପରମେଶ୍ୱର—
3. The Supreme Being [Apte].

ସ୍କମ୍ଭନ—ସଂ. ବ [ସ୍କମ୍ଭ୍ ଧାତୁ+ଭାବ, ଅନ]—୧ । ଠେକ ଧରିବ
Skambhana କର୍ମ—1. The act of supporting
[Apte] ୨ । [+କର୍ତ୍ତୃ, ଅନ] ଠେକ—2. Prop;
support [Apte].

ସ୍କମ୍ଭସର୍ଜନୀ—ସଂ. ବ—କାହୁଲ; ବଳଦଗାଡ଼ିର ଯୁଆଳିର ଦୁଇ ମୁଣ୍ଡରେ
Skambhasarjani ଥିବା ଯେଉଁ କିଲା ବା ଖୁଣ୍ଟି ଯୋଗୁଁ
ବଳଦଙ୍କ କାନ୍ଧ ଏଣେତେଣେ ଘୁଞ୍ଚିଯାଏ ନାହିଁ [ହ. ଶ]—
Pins attached to the ends of the yoke of
a bullock cart to keep the shoulders of
the bullocks fixed to their places.

ସ୍କଲ[ଲା]ର୍‌ଶିପ୍—ବୈଦେ, ବ [ ଇଂ ]—ଛାତ୍ରବୃତ୍ତି; ପରୀକ୍ଷାରେ
Skala[lā]r-sip [ପାରଦର୍ଶିତାସହ ଉତ୍ତୀର୍ଣ୍ଣ ହେବା ଛାତ୍ରକୁ ଉଚ୍ଚତର
स्कलर्‌शीप शिक्षा କରିବା ପାଇଁ ଅର୍ଥ ସାହାଯ୍ୟସ୍ୱରୂପ ନିର୍ଦ୍ଦିଷ୍ଟ କାଳ
ନିମନ୍ତେ ଦିଆଯିବା ବୃତ୍ତି – Scholarship; a stipend
granted to a passed student for
prosecuting higher studies.

ସ୍କାଇ—ବୈଦେ, ବ [ଡେନ୍‌ମାର୍କଦେଶୀୟ ଭାଷା—ସ୍କାଇ ବା ସ୍କି]—ବରଫ
Skāi ଉପରେ ଗୋଡ଼କୁ ଖସାଇ ଖସାଇ ଗତି କରିବା ନିମନ୍ତେ
[ ସ୍କି—ଅନ୍ୟରୂପ ] ବ୍ୟବହୃତ ଏକପ୍ରକାର ପାଦ ଯୋତା—
स्काइ স্কাই Ski; Scandinavian snow shoe.
[ଦ୍ର—ଅନ୍ୟ ଦେଶରେ ମଧ୍ୟ ସ୍ତ୍ରୀପୁରୁଷମାନେ ବ୍ୟାୟାମ
ବା କ୍ରୀଡ଼ା ପାଇଁ ଏ ଜୋତା ଗୋଡ଼ରେ ଲଗାଇ ବରଫ
ଉପରେ ଗୋଡ଼ ଖସାଇ ଖସାଇ ଗତି କରୁଅଛନ୍ତି ।]

ସ୍କାଇ ଲାଇଟ୍—ବୈଦେ, ବ (ଇଂ)—କୋଠାଘରର ଛାତରେ ବା ଛାତ
Skāi lāit ପାଖରେ ଲାଗିଥିବା କାଚର ଝରକା, ଯେଉଁ ବାଟେ
स्काइ लाइट् স্কাই লাইট ଘର ଭିତରକୁ ଆକାଶରୁ ଆଲୁଅ
ପଶେ—Skylight.

ସ୍କାଉଟ୍—ବୈଦେ. ବ (ଇଂ)—୧ । ବାଳଚର—1. Scout. ୨ । ବଏ
Skāuṭ ସ୍କାଉଟ୍ (ଦେଖ)—2. Bæskāuṭ (See)
स्काउट् স্কাউট

ସ୍କାଉଟ୍ ମାଷ୍ଟର୍—ବୈଦେ. ବ (ଇଂ)—ବାଳଚରମାନଙ୍କ ସର୍ଦ୍ଦାର ବା ବଡ଼
Skāuṭ māsṭar ଗୁରୁ—Scout master.
स्काउट् मास्टर् স্কাউট মাষ্টর

ସ୍କାଉଟ୍ ରାଲି—ବୈଦେ. ବ(ଇଂ)—ବାଳଚରମାନଙ୍କ ସମ୍ମେଳନ—
Skāuṭ rāli Scout rally.
स्काउट् राली স্কাউট র‍্যালী

ସ୍କାଣ୍ଡିନେଭିଆ—ବୈଦେ. ବ—ନରୱେ ଓ ସ୍ୱିଡେନ୍ ସମ୍ବଳିତ ଉପଦ୍ୱୀପ—
Skāndinebhiā Scandinavia.
स्काण्डिनेभिआ স্কাণ্ডীনেভিয়া

ସ୍କାନ୍ଦ—ସଂ. ବ (ସ୍କନ୍ଦ+ଅ)—ସ୍କନ୍ଦପୁରାଣ ( ଦେଖ )—Skanda-
Skānda purāṇa (See) ସଂ. ବଣ—୧ । ସ୍କନ୍ଦ ସମ୍ବନ୍ଧୀୟ—
[ସ୍କାନ୍ଦୀ—ସ୍ତ୍ରୀ. ବଣ] 1. Relating to Skanda. ୨ । ଶିବ
ସମ୍ବନ୍ଧୀୟ—2. Relating to Śiba. (Apte).

ସ୍କିମ୍—ବୈଦେ· ବ (ଇଂ)—କୌଣସି କାର୍ଯ୍ୟ ଅଗ୍ରେ ପୂର୍ବରୁ କଳ୍ପିତ ବା
Skim ସ୍କୀମ ସ୍कीम ସୂଚିତ କର୍ତ୍ତବ୍ୟ—Scheme·

ସ୍କୁ (ଧାତୁ)—ସଂ—୧ । ଉଦ୍ଧୃତ କରିବା—1. To take out. ୨ ।
Sku (root) ଅପ୍ଲାବନ କରିବା—2. To inundate· ୩ ।
ଲୁଦ୍‌ଲୁଦ ଯିବା; ଡେଇଁବା—3. To go by jumps; to leap; to bound (Apte). ୪
ଉତ୍ତୋଳନ କରିବା—4. To raise; to lift (Apte).
୫ । ଘୋଡ଼ାଇ ପକାଇବା—5. To cover; to overspread (Apte).

ସ୍କୁନ୍ଦ୍(ନ୍ଦ) (ଧାତୁ)—ସଂ—୧ । ଅପ୍ଲାବନ କରିବା—1. To in
Skud(nd) (root) undate. ୨ । ଲୁଦିବା; ଡେଇଁବା—
2. To leap; to jump; to spring up· ୩ । ଡେଇଁ ଗୁଳିବା—3· To frisk. ୪ । ଉତ୍ତୋଳନ କରିବା—
4. To raise; to lift (Apte).

ସ୍କୁମ୍ଭ୍ ( ଧାତୁ )—ସ—ରୋଧନ କରିବା—To restrain; to
Skun-bh (root) stop; to hinder. (Apte)
(ସ୍କୁମ୍ନ ଧାତୁ—ଅନ୍ୟରୂପ)

ସ୍କୁପ୍—ବୈଦେ· ବ (ଇଂ-ସ୍କ୍ରୁ)—ପେଚ କଣ୍ଟା—
Skup ସ୍କ୍ରୁପ୍, ଇସ୍କ୍ରୁପ୍ स्क्रूप Screw.

ସ୍କୁଲ୍—ବୈଦେ· ବ(ଇଂ)—(ଆଧୁନିକ ଙ୍ଗରେ ଚାଳିତ) ବିଦ୍ୟାଳୟ—
Skul School (conducted on modern
ଇସ୍କୁଲ स्कूल lines) [ଦ୍ର—ଏହି ଶବ୍ଦକୁ ସାଧାରଣତଃ
'ଇସ୍କୁଲ' ବୋଲି ଉଚ୍ଚାରଣ କରାଯାଏ । ଏହି ଇଂରାଜୀ ଶବ୍ଦ
ସଙ୍ଗେ ସଂଯୁକ୍ତ ଅନେକଗୁଡ଼ିଏ ଇଂରାଜୀ ଶବ୍ଦ ଆମ ଭାଷାରେ
ବ୍ୟବହୃତ ହେଉଛି; ଯଥା—
ଇଞ୍ଜିନିଅରିଙ୍ଗ୍ ସ୍କୁଲ୍, ସର୍ଭେ ସ୍କୁଲ, ମେଡ଼ିକାଲ୍
ସ୍କୁଲ୍, ମାଇନର୍ ବା ମିଡ଼ିଲ୍ ଇଙ୍ଗ୍‌ଲିଶ୍ ସ୍କୁଲ୍, ଭର୍ଣ୍ଣାକୁଲାର୍
ସ୍କୁଲ୍, ପ୍ରାଇମେରୀ ସ୍କୁଲ୍, ଅପର୍ (ଉଚ୍ଚ) ପ୍ରାଇମେରୀ ସ୍କୁଲ୍,
ଲୋଅର୍ (ନିମ୍ନ) ପ୍ରାଇମେରୀ ସ୍କୁଲ୍, ଗା(ଗୋ)ର୍ଲ୍ସ ସ୍କୁଲ୍,
ଟ୍ରେନିଙ୍ଗ୍ ସ୍କୁଲ୍, ସେକେଣ୍ଡାରୀ ସ୍କୁଲ୍, ହାଇ ସ୍କୁଲ୍, ନର୍ମାଲ୍
ସ୍କୁଲ, ଆର୍ଟ୍ ସ୍କୁଲ୍, ମଡେଲ୍ ସ୍କୁଲ୍, ଟେକ୍‌ନିକାଲ୍ ସ୍କୁଲ୍ ।
ଏସବୁ ଇଂରାଜୀ ଶବ୍ଦ ମାନଙ୍କର କେତେକ ଶବ୍ଦର
ସାଙ୍କେତିକରୂପମାନ ମଧ୍ୟ ଚଳେ । ଯଥା—
ଏଚ୍, ଇ· ସ୍କୁଲ୍—ହାଇ ଇଙ୍ଗ୍‌ଲିଶ୍ ସ୍କୁଲ୍
ନି· ପ୍ରା· ସ୍କୁଲ୍—ନିମ୍ନ ପ୍ରାଇମେରୀ ସ୍କୁଲ୍ ।
ଏଲ୍· ପି ବା ଲୋ· ପ୍ରା· ସ୍କୁଲ୍—ଲୋଅର ପ୍ରାଇମେରୀ ସ୍କୁଲ୍ ।
ୟୁ· ପି, ବା ଉ· ପ୍ରା· ସ୍କୁଲ—ଅପର ପ୍ରାଇମେରୀ ବା ଉଚ୍ଚ ପ୍ରାଇମେରୀ ସ୍କୁଲ ।
ଏମ୍·ଇ· ବା ମି·ଇ· ସ୍କୁଲ୍—ମିଡ଼ିଲ୍ ଇଙ୍ଗ୍‌ଲିଶ୍ ସ୍କୁଲ୍ ।
ସ୍କୁଲ୍ ଶବ୍ଦ ପରେ ମଧ୍ୟ ଇଂରାଜୀ ଶବ୍ଦମାନ ଲାଗେ । ଯଥା—
ସ୍କୁଲ୍ ବୁକ୍, ସ୍କୁଲ୍ ମାଷ୍ଟର୍ ଇତ୍ୟାଦି ।]

ସ୍କୁଲ୍ (ଇତ୍ୟାଦି) —ଶ୍କୁଲ୍ ଇତ୍ୟାଦି (ଦେଖ)
Skul (etc) Shkul etc (See)

ସ୍କୁଲ୍ ଇନ୍ସପେକ୍ଟର୍—ବୈଦେ· ବ (ଇଂ)—ବିଦ୍ୟାଳୟ ପରିଦର୍ଶକ
Skul inspektar ପ୍ରଧାନ କର୍ମଚାରୀ—Inspector of
স্কুলইন্সপেক্টার schools· [ଦ୍ର—ଏହିପରି ସ୍କୁଲ୍ ସବ୍‌ଇନ୍ସପେକ୍ଟର୍,
स्कूल इन्सपेक्टर ସ୍କୁଲ ଡେପୁଟି ଇନ୍ସପେକ୍ଟର୍, ସ୍କୁଲ ମେଡ଼ିକାଲ୍
ଅଫିସର୍ ଇତ୍ୟାଦି ହୁଏ ।]

ସ୍କୁଲ୍ ଫାଇନାଲ୍—ବୈଦେ· ବ (ଇଂ, ସ୍କୁଲ୍ ଫାଇନାଲ୍ ଏକ୍‌ଜାମିନେ-
Skul phāināl ସନ୍) —ଯେଉଁ ଛାତ୍ର ପାଶ୍ କରି କଲେଜରେ
স্কুল ফাইনাল ପଢ଼ିବାକୁ ଇଚ୍ଛୁକ ନ ଥାନ୍ତି ସେମାନଙ୍କ ପାଇଁ
स्कूलफाइनाल ନିର୍ଦ୍ଧାରିତ ମାଟ୍ରିକୁଲେସନ୍ ପରୀକ୍ଷା—
The School-final examination.

ସ୍କୁଲ୍ ବୁକ୍—ବୈଦେ· ବ (ଇଂ)—ବିଦ୍ୟାଳୟର ପାଠ୍ୟ ପୁସ୍ତକ—
Skul buk Text book·
স্কুলবুক स्कूलबुक

ସ୍କୁଲ୍‌ବୁକ୍ କମିଟି—ବୈଦେ· ବ (ଇଂ)—ପାଠ୍ୟପୁସ୍ତକ ନିର୍ବାଚକ ସମିତି—
Skul buk kamiti School-book Committee.
স্কুলবুক কমীটি स्कूलबुककमीटी

ସ୍କୁଲ୍ ବୁକ୍ ସୋସାଇଟି—ବୈଦେ· ବ ( ଇଂ )—ସ୍କୁଲମାନଙ୍କର
Skul buk sosāiti ପାଠ୍ୟପୁସ୍ତକମାନ ପ୍ରକାଶ କରିବା ପାଇଁ
স্কুলবুক্ সোসাইটি ପ୍ରତିଷ୍ଠିତ ସଂଘ—
स्कूलबुक सोसाइटी School book Society.

ସ୍କୁଲ୍ ଲିଭିଙ୍ଗ୍ ସାର୍ଟିଫିକେଟ୍—ବୈଦେ· ବ—( ଇଂ )—ସ୍କୁଲର
Skul libhing sārtiphiket ଉଚ୍ଚତମ ଶ୍ରେଣୀ ପର୍ଯ୍ୟନ୍ତ
স্কুল লীভীঙ্গ সার্টিফীকেট ପଢ଼ି ଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ
स्कूललिभिंग सार्टीफिकेट ହୋଇ ଛାତ୍ର ସ୍କୁଲ ତ୍ୟାଗ କରିବା-
କାଳରେ କର୍ତ୍ତୃପକ୍ଷଙ୍କ ଦ୍ୱାରା ଉକ୍ତଛାତ୍ରକୁ ପ୍ରଦତ୍ତ ସାର୍ଟିଫିକେଟ୍—
School-leaving certificate.

ସ୍କ୍ରୁ(ସ୍କ୍ରୁ)—ବୈଦେ· ବ (ଇଂ)—ପେଚକଣ୍ଟା—
Skru(skru) Screw.
স্ক্রু स्क्रू
( ସ୍କୃ—ଅଶୁଦ୍ଧରୂପ )

ସ୍କ୍ରୁ(ସ୍କ୍ରୁ)ଡ୍ରାଇଭର୍—ବୈଦେ· ବ· (ଇଂ)—ପେଚକସ୍; ପେଚକଣ୍ଟାକୁ
Skru(skru)drāibhar କାଢ଼ିବା ଓ ବସାଇବା ପାଇଁ
স্ক্রু ড্রাইভার स्क्रू ड्राइभार ବ୍ୟବହୃତ ଯନ୍ତ୍ର—
Screw driver.

ସ୍କେଟ୍—ବୈଦେ· ବ (ଇଂ)—ବରଫ ଉପରେ ଶୀଘ୍ରଗତିରେ ଚାଲିବା
Sket ପାଇଁ ତଳପା ଲମ୍ବ କରି ଯାଇଥିବା
স্কেট स्केट ଏକପ୍ରକାର କାଠର ଜୋତା—
A skate

ସ୍କେଟିଙ୍ଗ୍—ବୈଦେ. ବ (ଇଂ)— ବରଫ ଉପରେ ସ୍କେଟ୍ ମାଡ଼ି
Sketing ଚଲାଇବା—Skating. ବଣ. ଯାହା
स्केटिंग **स्केटिंग** ସାହାଯ୍ୟରେ ସ୍କେଟିଙ୍ଗ୍ କରାଯାଏ—
Useful or used in skating
(ଯଥା—ସ୍କେଟିଙ୍ଗ୍ ଜୋତା)

ସ୍କେଲ୍—ବୈଦେ. ବ (ଇଂ)—୧ । ବଡ଼ ଖେତ୍ର ଅବସ୍ଥ ନକ୍ସାରେ
Skel ଉଠାଇବା ପାଇଁ ବ୍ୟବହୃତ ଆନୁପାତିକ ପରିମାଣ—
स्केल **स्केल** 1 Scale. ୨ । ଯେଉଁ
ଉଲ ଉଲ ପରିମାଣ ଓ ଅଙ୍କଚିହ୍ନିତ ଫଳକ (ପଟା) ଦ୍ୱାରା
ନକ୍ସାରେ ଥିବା କ୍ଷେତ୍ରକୁ ମାପ କରି ଭୂମିରେ ମିଳାଇବାକୁ
ହୁଏ; କିଂବା ଭୂମିର ମାପକୁ ନକ୍ସାରେ ମିଳାଇବାକୁ ହୁଏ—
2. A scale or protractor; a surveyor's
scale. ୩ । କ୍ରମପଦ୍ଧତି; କ୍ରମୋଚ୍ଚ ବା କ୍ରମନିମ୍ନ
ରେଟ୍—3. Scale; rate.

ସ୍କୋଟିକା—ସ. ବ—ପକ୍ଷିବିଶେଷ (ଚିକାଣ୍ଡଶେଷ); ଖଞ୍ଜନକା ପକ୍ଷୀ—
Skotika Name of a bird; the blue
jay.

ସ୍କ୍ୱାୟାର୍—ବୈଦେ. ବ (ଇଂ. ସ୍କ୍ୱାୟାର୍; ଏ ସ୍କ୍ୱାୟାର୍)—୧ ।
Skwāyār ପୂର୍ବକାଳରେ ଇଂଲଣ୍ଡର ନାଇଟ୍‌ମାନଙ୍କ ସହଚର—
स्क्वायार **स्क्वायार** 1. Squire. ୨ ।
ବର୍ତ୍ତମାନ ଭଦ୍ରଲୋକ ଓ ସାହେବମାନଙ୍କ ନାମ ପରେ
ଲିଖିବା ଉପାଧି—2. Esquire. [ଦ୍ର—ଏଥିର
ସାଙ୍କେତିକ Esq. ସାହେବ ବା ସାହେବୀ ଭଦ୍ରଲୋକଙ୍କ
ନାମ ପୂର୍ବେ ମିଷ୍ଟର୍ (Mr) ଲାଗେ, କିଂବା ପରେ ସ୍କ୍ୱାୟାର୍
(Esq) ଯୁକ୍ତ ହୁଏ ।]

ସ୍ଖଦ୍(ଧାତୁ)—ସ—୧ । ବିଦାରଣ କରିବା—1. To pierce
Skhad(root) to split. ୨ । ହିଂସା କରିବା-
2. To assault; to beat; to kill. ୩ । ଅତ୍ୟାଚାର
କରିବା—3. To oppress

ସ୍ଖଦନ—ସ. ବ (ସ୍ଖଦ୍ ଧାତୁ+ଭାବ ଅନ)—୧ । ବିଦାରଣ; ଫାଡ଼ିବା
Skhadana ଚିରିବା—1. Piercing; splitting;
tearing. ୨ । ସ୍ଥୈର୍ଯ୍ୟ—2. Calmness.
୩ । ପାଟନ—3. Cleaving. ୪ । ହିଂସନ—
4. Killing; hurting. ୫ । କଷ୍ଟଦେବା; ଉତ୍ପୀଡ଼ନ—
5. Giving pain; oppressing.

ସ୍ଖଲ(ଧାତୁ)—ସ—୧ । ଚଳିତ ହେବା—1. To move. ୨ ।
Skhala(root) ସ୍ଥାନଚ୍ୟୁତ ହେବା—2. To move
from one's position. ୩ । ପଡ଼ିବା;
ଖସିଯିବା—3. To fall down; to slip; to
stumble.

ସ୍ଖଲନ—ସ. ବ (ସ୍ଖଲ୍ ଧାତୁ+ଭାବ. ଅନ)—୧ । ଚ୍ୟୁତି; ପତନ—
Skhālana 1. Falling down. ୨ । ଗୋଡ଼ ଖସି ପଡ଼ି
(ସ୍ଖଳିତ—ବଣ) ଯିବା—2. Slipping. ୩ । ସ୍ୱସ୍ଥାନଚ୍ୟୁତି—
3. Loss of one's own position; removal
from a place. ୪ । ଝୁଣ୍ଟି କରି ପଡ଼ିଯିବା—4. Falling down by slipping; stumbling; tripping. ୫ । ଧକ୍କା—5. Push; concussion. ୬ । ନିୟମ ଲଙ୍ଘନ—6. Transgression of rules. ୭ । ପ୍ରତିଘାତ-7. Counter-stroke. ୮ । ମୋଚନ—8. Emission. ୯ । ବାର୍ଦ୍ଧକ୍ୟ, ରୋଗ ବା ଭ୍ରମବଶତଃ ବାକ୍ୟର ଅର୍ଦ୍ଧ ବା ଭ୍ରାନ୍ତ ଉଚ୍ଚାରଣ; ଖନାଇବା—9. Slip of the tongue; stammering (due to old age or disease). ୧୦ । ବଦଳିବା—10. Alteration. ୧୧ । ବିଫଳ ହେବା—11. Becoming futile; frustration. ୧୨ । ଭ୍ରାନ୍ତି—12. Mistake; delusion. ୧୩ । ବିରୁଦ୍ଧାଚରଣ—13. Acting in opposition. ୧୪ । ନ୍ୟାୟରୁ, ଧର୍ମରୁ ବା ଶାସ୍ତ୍ରମାର୍ଗରୁ ଚ୍ୟୁତି—14. Transgression from the path of justice or morality. ୧୫ । ଆଚରିତ ବ୍ରତାଦିର ଭଙ୍ଗ—15. Infringement of the penance or austerity undertaken by a person.

ସ୍ଖଳିତ—ସ. ବଣ (ସ୍ଖଲ୍ ଧାତୁ+କର୍ତ୍ତୃ. ତ)—୧ । ପତିତ—1. Fallen
Skhalita down. ୨ । ମୁକ୍ତ; ଚ୍ୟୁତ—2. Emitted. ୩ ।
ଗୋଡ଼ ଖସିଯାଇ ପଡ଼ିଯାଇଥିବା—3. Slipped. ୪ ।
ସ୍ଥାନଚ୍ୟୁତ; ବିଚଳିତ—4. Displaced; removed
form one's place. ୫ । ବିଫଳୀଭୂତ—5. Frustrated; become futile. ୬ । ପ୍ରତିହତ—
6. Counter-struck. ୭ । ଅର୍ଦ୍ଧୋଚ୍ଚାରିତ—
7. Half-uttered. ୮ । ଝୁଣ୍ଟି କରି ପଡ଼ିଯାଇଥିବା—
8. Stumbled; tripped. ବ—(+ଭାବ. ତ)—
୧ । କୂଟଯୁଦ୍ଧାଦିଦ୍ୱାରା ଯୁଦ୍ଧମର୍ଯ୍ୟାଦାରୁ ସ୍ଖଳନ; ଛଳ
(ମେଦିନୀ)—2. Transgression from the rules
of fair fight. ୨ । ସ୍ଖଳନ—2. Slipping. ୩ ।
ପତନ—3. Fall. ୪ । ଭୁଲ; ଭ୍ରାନ୍ତି—4. Error. ୫ ।
ଉଚ୍ଚାରଣରେ ଭ୍ରାନ୍ତି—5. Slip of the tongue.

ସ୍ଖଳିତ ବଚନ—ସ. ବ—(କର୍ମଧା) ଅର୍ଦ୍ଧୋଚ୍ଚାରିତ ବାକ୍ୟ—Half
Skhalita bachana uttered or stammered words.
(ସ୍ଖଳିତବଚନା—ସ୍ତ୍ରୀବଣ.) କି.ବଣ.ପୁଂ—ଖନା—Stammering.

ସ୍ଟକ୍ (ଇତ୍ୟାଦି)—ବୈଦେ. ବ (ଇଂ)—ଷ୍ଟକ୍ ଇତ୍ୟାଦି (ଦେଖ)
Stak (etc) ष्टक् **स्टाक्** Shtak etc (See)
[ଦ୍ର—ସ୍ଟ, ସ୍ଟା, ସ୍ଟି, ସ୍ଟୁ, ସ୍ଟେ, ସ୍ଟୋ, ସ୍ଟ୍ର ଅଦ୍ୟାକ୍ଷର ଯୁକ୍ତ
ଶବ୍ଦମାନଙ୍କ ପାଇଁ ଏ ଭାଷାକୋଷରେ ଷ୍ଟ, ଷ୍ଟା, ଷ୍ଟି, ଷ୍ଟୁ,
ଷ୍ଟେ, ଷ୍ଟୋ, ଷ୍ଟ୍ର ଅଦ୍ୟାକ୍ଷର ଯୁକ୍ତ ଶବ୍ଦମାନ ଦେଖ ।]

ସ୍ଟଲ୍—ବୈଦେ. ବ (ଇଂ)—୧ । ଘୋଡ଼ାମାନଙ୍କ ରହିବାର ଘର—
Stal 1. Stall. ୨ । ପଣ୍ୟଦ୍ରବ୍ୟ ରଖିବାର ଛୋଟ ଘର—2. A
ष्टल् **स्टाल** stall for keeping merchandise etc.

ଷ୍ଟିଚଙ୍ ମେସିନ୍—ବୈଦେ. ବ (ଫା)—ଲୁଗା ତାର ଦ୍ୱାରା ବନ୍ଧ
Stiching mesin ସିଲାଇ କରିବା କଳ—Stitching
ଷ୍ଟିଚିଙ୍ଗ୍ ମେସୀନ୍ स्टिचिं मैसीन machine.

ଷ୍ଟେଜ୍—ବୈଦେ, ବ (ଇଂ)—୧ । ନାଟ୍ୟଶାଳାର ବା ଥିଏଟରର ବା
Stej ସର୍ବସ୍ୱର ରଙ୍ଗମଞ୍ଚ—1. Theatrical or other
ଷ୍ଟେଜ୍ स्टेज stage. ୨ । ବକ୍ତୃତା ଆଦି କରିବାର ମଞ୍ଚ—
2. A stage for lecturing. ୩ । (ପୂର୍ବକାଳୀନ)
ଭାଡ଼ା ଘୋଡ଼ାଗାଡ଼ି ଅଦଳ ବଦଳ ମଞ୍ଜିଲ୍—3. The stage
for conveyance of passengers in old times.

ଷ୍ଟେଜ୍ କୋଚ୍—ବୈଦେ. ବ (ଇଂ)—ମଟର୍ ବା ରେଲ ଆଦିର ପ୍ରଚଳନ
Stej koch ପୂର୍ବେ ମନୁଷ୍ୟ ଆଦିଙ୍କୁ ମଞ୍ଜିଲ୍ଦ୍ୱାରା ବହନ କରୁଥିବା
ଷ୍ଟେଜ୍ କୋଚ स्टेज कोच ଘୋଡ଼ାଗାଡ଼ି—Stage coach.

ଷ୍ଟେଜ୍ ମା (ମ୍ୟା, ମେ) ନେଜର୍—ବୈଦେ. ବ (ଇଂ)—ରଙ୍ଗମଞ୍ଚର
Stej mā(myā, me)nejar ବ୍ୟବସ୍ଥାପକ—Stage
ଷ୍ଟେଜ୍ ମ୍ୟାନେଜାର स्टेज मेनेजर manager.

ଷ୍ଟେଜିଙ୍ଗ୍ ବଙ୍ଗଲା(ଲୋ)—ବୈଦେ. ବ (ଇଂ)—ରେଲ, ମଟର୍ ଆଦିର
Stejing baṅgalā(lo) ପ୍ରଚଳନ ପୂର୍ବେ ମଞ୍ଜିଲ୍ଦ୍ୱାରା ବାହୁତ
ଷ୍ଟେଜିଙ୍ଗ ବଙ୍ଗଲୋ स्टेजिंबङ्गलो ଲୋକମାନଙ୍କ ବିଶ୍ରାମାର୍ଥ ପ୍ରସ୍ତୁତ କୋଠି
—Staging bungalow.

ଷ୍ଟ୍ରବେରି—ବୈଦେ. ବ (ଇଂ)—ଏକପ୍ରକାର ସୁଖାଦ୍ୟ ଇଉରୋପୀୟ
Straberi ଫଳ—Strawberry.
ଷ୍ଟ୍ରବେରି स्ट्रबेरी

ସ୍ତକ୍(ଧାତୁ)—ସଂ—ପ୍ରତିଘାତ କରିବା—
Stak (root) To counterstrike.

ସ୍ତଙ୍କୁ—ସଂ. ବ—ପ୍ରାଚୀନ କାଳରେ ବ୍ୟବହୃତ ଏକପ୍ରକାର ଆନଦ୍ଧ ବାଦ୍ୟ
Staṅku (ହି. ଶ)—A kind of ancient drum.

ସ୍ତନ୍ଭ୍ (ଧାତୁ)—ସଂ—୧ । ସ୍ତମ୍ଭନ କରିବା—1. To benumb
Stan-bh (root) ୨ । ଅଟକ କରିବା—2. To restrain.

ସ୍ତନ୍ (ଧାତୁ)—ସଂ—୧ । (ମେଘ)ଶବ୍ଦ କରିବା; (ମେଘ) ଗର୍ଜନ କରିବା
Stan (root) 1. To roar (said of thunder).
୨ । ଶବ୍ଦ କରିବା—2. To make a sound

ସ୍ତନ—ସଂ. ବ (ସ୍ତନ୍ ଧାତୁ=ଶବ୍ଦ କରିବା+କର୍ତ୍ତ୍ରି. ଅ; ଏଥିରୁ ଦୁଧ
Stana ବୁହାଁ ହେବା ବେଳେ ଶବ୍ଦ ହେବାରୁ)—
ଅନ୍ୟ ସଂ ନାମ—କୁଚ, ୧ । କୁଚ; ପୟୋଧର; ସ୍ତ୍ରୀମାନଙ୍କ ଛାତିରେ
ଉରଜ, ବକ୍ଷୋଜ, ଉଠିବା ମାଂସପିଣ୍ଡଦ୍ୱୟ (ଯହିଁରେ ଗର୍ଭଜାତ
ପୟୋଧର, ଉରସିଜ, ଶିଶୁର ଖାଦ୍ୟପାଇଁ ଦୁଗ୍ଧ ସଞ୍ଚିତ ଥାଏ)—
ବକ୍ଷୋରୁହ 1. Female breast. [ଦ୍ର—
ସାଧାରଣ ଭାଷାରେ ଏହାକୁ ଦୁଧ, ଓ ମମା ବୋଲୁଥାଏ । ]
୨ । ପହ୍ନା; ଉଧ—2. Udder. ଦେ. ବ (ସଂ. ସ୍ତନ୍ୟ)
ଥନ स्तन ସ୍ତନକ୍ଷରିତ ଦୁଗ୍ଧ; ସ୍ତନ୍ୟ—Milk.

ସ୍ତନ କୀଳ—ସଂ. ବ—ସ୍ତ୍ରୀମାନଙ୍କ ସ୍ତନରେ ହେବା ଏକପ୍ରକାର ବ୍ରଣ (ହି.
Stana kīḷa ଶ)—A kind of boil on the breast of females.

ସ୍ତନ ଚୂଚୁକ—ସଂ.ବ (ଷଷ୍ଠୀ ତତ୍)—ସ୍ତନର ବର୍ତ୍ତୁଳାକୃତି ଅଗ୍ର; ସ୍ତନର
Stana chūchuka ଭୁଣ୍ଡି—Nipple.

ସ୍ତନଥ(ଥୁ)—ସଂ. ବ (ସ୍ତନ୍ ଧାତୁ+ଭାବ. ଅଥ, ଅଥୁ)—(ସିଂହ ଆଦିଙ୍କ)
Stanatha(thu) ଗର୍ଜନ (ହି. ଶ)—Roar.

ସ୍ତନ ଦାତ୍ରୀ—ଦେ.ବ. ସ୍ତ୍ରୀ—ଶିଶୁକୁ ଦେଇଁ ସ୍ତ୍ରୀ ଆପଣା ସ୍ତନ୍ୟ ପାନ କରାନ୍ତି
Stana dātrī—A woman who suckles an infant.

ସ୍ତନନ—ସଂ. ବ (ସ୍ତନ୍ ଧାତୁ+ଭାବ. ଅନ)—୧ । ରବ; ଧ୍ୱନି—
Stanana 1. Sound. ୨ । ମେଘ ଧ୍ୱନି—2. Roar of
thunder. ୩ । ଆର୍ତ୍ତଧ୍ୱନି; କ୍ରନ୍ଦନ ଧ୍ୱନି—
3. Piteous sound; cry of distress.

ସ୍ତନନ୍ଧୟ—ସଂ. ବିଣ. ପୁଂ (ସ୍ତନଂ=ସ୍ତନକୁ+ଧେ. ଧାତୁ=ପାନ କରିବା
Stanandhaya +କର୍ତ୍ତ୍ରି. ଅ)—ସ୍ତନ୍ୟପାୟୀ; ଅଳ୍ପ ଶିଶୁ;
(ସ୍ତନନ୍ଧୟୀ[ୟୀ]—ସ୍ତ୍ରୀ) ଦୁଗ୍ଧପୋଷ୍ୟ—Sucking (child).
ପ୍ରଥମ ଅର୍ଥରେ ଅନ୍ୟ ସଂ—ଡିମ୍ଭ, ବ—୧ । ସ୍ତନ୍ୟପାୟୀ ଶିଶୁ; ଯେଉଁ
ଉତ୍ତାନଶୟ (ପୁଂ), ଡିମ୍ଭା, ଶିଶୁ ମାଆଙ୍କଠାରୁ ଦୁଧ ଖାଇବା
ଉତ୍ତାନଶୟା (ସ୍ତ୍ରୀ) ଛାଡ଼ି ନ ଥାଏ; ଅଳ୍ପ ଶିଶୁ—
1. An infant at the breast; a child which is not yet weaned. ୨ । ବାଛୁରି (ହି.
ଶ)—2. A calf.

ସ୍ତନପ—ସଂ. ବିଣ ଓ ବ, ପୁଂ(ସ୍ତନ+ପା ଧାତୁ=ପିଇବା+କର୍ତ୍ତ୍ରି. ଅ)—
Stanapa ସ୍ତନନ୍ଧୟ (ଦେଖ)—Stanandhaya (See)
(ସ୍ତନପାୟୀ—ଅନ୍ୟପ୍ରକାର ରୂପ) (ସ୍ତନପା—ସ୍ତ୍ରୀ)
(ସ୍ତନପାୟିନୀ—ଅନ୍ୟ ସ୍ତ୍ରୀ ବିଣ)

ସ୍ତନ ପାନ—ସଂ. ବ—ସ୍ତନ୍ୟପାନ (ହି. ଶ); ସ୍ତନରୁ ଦୁଧ ପିଇବା—
Stana pāna Sucking of the milk from a woman's breast.

ସ୍ତନପାୟିକା—ସଂ.ବିଣ ଓ ସ୍ତ୍ରୀ—ସ୍ତନନ୍ଧୟୀ; ଅଳ୍ପ ଶିଶୁ ବା ଦୁଗ୍ଧପୋଷ୍ୟା
Stanapāyikā ବାଳିକା—A sucking girl.

ସ୍ତନ ବିଦ୍ରଧି—ସଂ. ବ—ସ୍ତନରୋଗ (ଦେଖ)
Stana bidradhi Stanaroga (See)

ସ୍ତନ ବୃନ୍ତ—ସଂ. ବ (ଷଷ୍ଠୀ ତତ୍)—ସ୍ତନମୁଖ (ଦେଖ)
Stana brunta Stanamukha (See)

ସ୍ତନ ଭବ—ସଂ. ବିଣ—ସ୍ତନଜାତ—Born of the breast. ବ—
Stana bhaba ରତିବନ୍ଧବିଶେଷ (ସ୍ମରଦୀପିକା)—A posture
in coition. (ଦ୍ର—ସ୍କନ୍ଧଂପାଦଦ୍ୱୟଂ ମଧ୍ୟେ ତୁ କୃତ୍ୱା
ଯୋଷିତ୍ପଦଦ୍ୱୟଂ । ସ୍ତନୌ ଧୃତ୍ୱା ରମେଦ୍କାମୀ, ବନ୍ଧଃ
ସ୍ତନଭବଃ ସ୍ମୃତଃ—ସ୍ମରଦୀପିକା ।)

ସ୍ତନଭର—ସଂ. ବିଣ. ପୁଂ—ସ୍ତ୍ରୀମାନଙ୍କ ପରି ସ୍ଥୂଳ ସ୍ତନବିଶିଷ୍ଟ (ପୁରୁଷ)
Stanabhara (କିଞ୍ଚିତ୍ଲେଷ)—(a man) Having
plump feminine breasts. ସଂ, ବ—୧ । ସ୍ଥୂଳ
ବା ପୁଷ୍ଟ ସ୍ତନ (ହି. ଶ)—1. Plump breast.
୨ । ସ୍ତ୍ରୀଙ୍କ ପରି ସ୍ଥୂଳ ସ୍ତନବିଶିଷ୍ଟ ପୁରୁଷ (ହି. ଶ) -
2. A man having feminine breasts

ସ୍ତନ ଭରା—ଦେ. ବଣ—ସ୍ତନଭାରଦ୍ୱାରା ଅକ୍ରାନ୍ତ—Troubled by
Stanabharā the weight of her breasts. [ଦୃ—
स्तनभरा स्तनभरा ଗାଣ୍ଡିଏ ସ୍ତନଭର ହୋଇ । ଉର୍ଦ୍ଧ୍ୱେ ନ ପାରନ୍ତି
ଶୋଇ—ଜଗନ୍ନାଥ· ଭାଗବତ । ]

ସ୍ତନ ଭାର—ସଂ. ବି (୬ଷ୍ଠୀ ତତ୍)—ସ୍ଥୂଳ ସ୍ତନର ବୋଝ—
Stana bharā Weight of big breasts.

ସ୍ତନଭାର ନମ୍ର(ତ)—ସଂ. ବଣ ( ୬ଷ୍ଠୀ ଓ ୫ମୀ ତତ୍)—ସ୍ତନର ଭାର
Stanabhāra namra(ta) ଯୋଗୁଁ ଅଗକୁ ଝୁଙ୍କି ପଡ଼ିଥିବା
[ସ୍ତନଭାର ବିନମ୍ର(ତ)—ଅନ୍ୟରୂପ] ( ଦେହ ବା ଅବୟବ )—
ସ୍ତନଭାର ନମ୍ରା[ତା] } ସ୍ତ୍ରୀ ( body or limb ) Leaning
ସ୍ତନଭାର ବିନମ୍ରା[ତା] } to the front owing to
the weight of big breasts.

ସ୍ତନ ମଣ୍ଡଳ—ସଂ· ବି—ସ୍ତନର ପରିଧି ବା ଚକଡ଼ା—The circum-
Stana maṇḍala ference of the breast.

ସ୍ତନ ମୁଖ—ସ ବି (୬ଷ୍ଠୀ ତତ୍)—ସ୍ତନାଗ୍ର; ଚୁଚୁକ (ହେମଚନ୍ଦ୍ର); ଦୁଧର
Stana mukha ଭୂଣ୍ଡି—Nipple.

ସ୍ତନୟିତ୍ନୁ—ସଂ· ବି ( ସ୍ତନ୍ ଧାତୁ+ଣିଜନ୍ତ=ସ୍ତନ ଧାତୁ=ଶବ୍ଦ କରିବା
Stanayitnu +କର୍ତ୍ତୃ. ଇତ୍ନୁ; ଯାହା ଶବ୍ଦ କରେ )—୧ । ମେଘ
(ଅମର)—1. Cloud. ୨ । ମୁସ୍ତକ; ମୁଥା (ଅମର)—
2. Grass root. ୩ । ମେଘ ଧ୍ୱନି ( ମେଦିନୀ )—
3. Roar of thunder clouds. ୪ । ବିଦ୍ୟୁତ
( ଶବ୍ଦରତ୍ନାବଳୀ )—4. Lightning. ୫ । ମୃତ୍ୟୁ
(ହେମଚନ୍ଦ୍ର)—5. Death. ୬ । ରୋଗ (ହେମଚନ୍ଦ୍ର)
—6. Disease.

ସ୍ତନ ରୋଗ—ସଂ. ବି—( ଗର୍ଭିଣୀ ଓ ପ୍ରସୂତିଙ୍କ ) ସ୍ତନରେ ଜାତ ହେବା
Stana roga ରୋଗ; ଥନଫୁଲା—Disease of the female
breast; tumour on the breast; mammites.
[ ଦ୍ର—ଏ ରୋଗରେ ସ୍ତନକୁ ରକ୍ତ ଗଳି ତାହା ଫୁଲିଯାଏ
ଓ ପାଚେ । ]

ସ୍ତନ ରୋହିତ—ସଂ. ବି—ସ୍ତନର ଅଗ୍ରଭାଗର ଚାରିଆଡ଼େ ଦୁଇ ଅଙ୍ଗୁଳି
Stana rohita ପରିମିତ ଅଂଶ ( ସୁ. ଶ )—The part of
the female breast which is about one
inch around the nipple.

ସ୍ତନ ଶିଖା—ସଂ· ବି ( ୬ଷ୍ଠୀ ତତ୍ )—ସ୍ତନମୁଖ (ହେମଚନ୍ଦ୍ର) [ଦେଖ]
Stana śikhā Stanamukha [ See ]

ସ୍ତନ ଶୋଷ—ସଂ· ବି—ଏକପ୍ରକାର ରୋଗ, ଯହିଁରେ ସ୍ତନ ଶୁଖିଯାଏ [ସୁ.
Stanaśosha ଶ]—A kind of disease in which
the female breasts wither and go dry.

ସ୍ତନହରା—ଦେ· ବି ( ସଂ· ସ୍ତନ୍ୟହରା )—ସ୍ତନରୋଗ [ ଦେଖ ]
Stanaharā स्तनैली Stanaroga [ See

ସ୍ତନାଗ୍ର—ସଂ· ବି ( ୬ଷ୍ଠୀ ତତ୍ )—ସ୍ତନମୁଖ [ ଦେଖ ]
Stanāgra Stanamukha [ See ]

ସ୍ତନାନ୍ତର—ସଂ. ବି ( ୬ଷ୍ଠୀ ତତ୍; ଦୁଇ ସ୍ତନର ଅନ୍ତର ବା ମଧ୍ୟଭାଗ )—
Stanāntara ୧ । ହୃଦୟ—1. The breast. ୨ । ସ୍ତନ
ଦ୍ୱୟର ମଧ୍ୟବର୍ତ୍ତୀ ସ୍ଥାନ—2. The part between
the two female breasts. ୩ । ସ୍ତ୍ରୀମାନଙ୍କର ବୈଧବ୍ୟ
ଲକ୍ଷଣବିଶେଷ; ଦୁଇ ସ୍ତନ ମଧ୍ୟରେ ଥିବା ସମତଳ ଚର୍ମ-
ବିଶେଷ [ଯାହା ଥିଲେ ସ୍ତ୍ରୀ ବିଧବା ହୁଏ]—3. A sign
appearing in females, consisting of a
level part between the two breasts of
some women ( indicative of the posses-
scr becoming a widow)

ସ୍ତନାଭୁଜ—ସଂ. ବଣ ଓ ବି ( ସ୍ତନ+ଅ+ଭୁଜ୍ ଧାତୁ+କର୍ତ୍ତୃ· ଅ )—
Stanābhuja ସ୍ତନ୍ୟପାୟୀ ଜୀବ—Mammal.

ସ୍ତନାଭୋଗ—ସଂ. ବଣ ( ସ୍ତନ+ଅଭୋଗ )—ସ୍ତନଭର [ ଦେଖ ]—
Stanābhoga Stanabhara [ See ] ବି—ସ୍ତନର ସ୍ଥୂଳତା
ବା ପରିପୂର୍ଣ୍ଣତା—Fullness or full develop-
ment of the female breasts.

ସ୍ତନିତ—ସଂ. ବି ( ସ୍ତନ୍ ଧାତୁ+ଣିଜନ୍ତ=ସ୍ତନି ଧାତୁ+ଭାବ. ତ )—
Stanita ୧ । ମେଘ ଗର୍ଜନ ( ଅମର )—1. Rumbling of
thunder-cloud. ୨ । ବଜ୍ରଧ୍ୱନି—2. Thunder-
clap. ୩ । କରତାଳି ଶବ୍ଦ ( ଶବ୍ଦ କଳ୍ପଦ୍ରୁମ )—
3. Sound of clapping. ୪ । ରତି ଶବ୍ଦ (ଜ୍ଞାନେନ୍ଦ୍ର)—
4. Sound produced by copulation. ବଣ—
୧ । ( କର୍ମ· ତ ) ଶବ୍ଦିତ—1. Sounding. ୨ ।
(+କର୍ତ୍ତୃ. ନତ) ଶବ୍ଦକାରକ; ଗର୍ଜନକାରୀ—
2. Roaring.

ସ୍ତନିତଫଳ—ସଂ. ବି—ବିକଙ୍କତ ବୃକ୍ଷ [ ରାଜନିର୍ଘଣ୍ଟ ]; ଭଇଁଷ କୋଳି
Stanitaphala ଗଛ—Flacourtia Ramontchi ( a
plum-bearing plant ).

ସ୍ତନ୍ୟ—ସଂ. ବି ( ସ୍ତନ+ଭବାର୍ଥେ, ଯ )—୧ । ସ୍ତନରୁ ଉଦ୍ଭୂତ ଦୁଗ୍ଧ;
Stanya ଦୁଧ—1. Milk. ୨ । ମାତୃସ୍ତନଜାତ ଦୁଗ୍ଧ—
2. Milk from the mother's breast.
ବଣ—ସ୍ତନସମ୍ବନ୍ଧୀୟ—
Relating to the female breast.

ସ୍ତନ୍ୟଜୀବୀ—ସଂ. ବଣ· ପୁଂ ( ସ୍ତନ୍ୟଜୀବିନ୍ ଶବ୍ଦ, ସ୍ତନ୍ୟ+ଜୀବ୍ ଧାତୁ
Stanyajībī +କର୍ତ୍ତୃ. ଇନ୍ )—ସ୍ତନନ୍ଧୟ [ ଦେଖ ]—
[ ସ୍ତନ୍ୟଜୀବିନୀ—ସ୍ତ୍ରୀ ] Stanandhaya [ See ]

ସ୍ତନ୍ୟଦା—ସଂ, ବଣ, ସ୍ତ୍ରୀ—୧ । ଯେଉଁ ସ୍ତ୍ରୀର ସ୍ତନରୁ ଦୁଧ ବାହାରେ—
Stanyadā 1. (a woman) Having breasts full of
(ସ୍ତନ୍ୟଧାତ୍ରୀ—ଅନ୍ୟରୂପ) milk. ୨ । ପିଲାକୁ ଯେ ଦୁଧ ପିଆଇ
ଥାଏ—2. Suckling.

ସ୍ତନ୍ୟ ଦାନ—ସଂ. ବି—ନିଜ ସ୍ତନରୁ ଶିଶୁକୁ ଦୁଧ ପିଆଇବା—
Stanya dāna Suckling a child.

ସ୍ତନ୍ୟପ—ସଂ. ବଣ ଓ ବି (ପୁଂ)—ସ୍ତନପ (ଦେଖ)
Stanyapa Stanapa (See)
[ସ୍ତନ୍ୟପା—ସ୍ତ୍ରୀ] (ସ୍ତନ୍ୟପାୟୀ—ଅନ୍ୟ ପୁଂ. ବିରୂପ)
[ସ୍ତନ୍ୟପାୟିନୀ—ଅନ୍ୟ ସ୍ତ୍ରୀ. ବିଣ ରୂପ]

ସ୍ତନ୍ୟ ପାନ—ସଂ. ବି (୬ଷ୍ଠୀ ତତ୍)—ମାତୃ ସ୍ତନରୁ ଦୁଧ ପିଇବା—
Stanya pāna Sucking from the mother's breast.

ସ୍ତନ୍ୟପାୟୀ—ସଂ. ବିଣ. ପୁଂ—(ସ୍ତନ୍ୟପାୟିନ୍ ଶବ୍ଦ; ସ୍ତନ୍ୟ+ପା. ଧାତୁ+
Stanyapāyi କର୍ତ୍ତୃ. ଇନ୍)—ଯେ ମାତୃସ୍ତନ୍ୟ ପାନ କରେ—
Feeding on the mother's milk; breast-fed. ବି—ଯେଉଁଜନ୍ତୁମାନେ ଶିଶୁ ଅବସ୍ଥାରେ ମାତୃସ୍ତନ୍ୟ ପାନ କରନ୍ତି — Mammals; the mammalia.

ସ୍ତନ୍ୟ ବୃଦ୍ଧି —ସଂ. ବି—ଔଷଧ ପ୍ରୟୋଗ ବା ଖାଦ୍ୟ ଦ୍ୱାରା ନବପ୍ରସୂତା
Stanya bṛuddhi ମାତାଙ୍କ ସ୍ତନରେ ଶିଶୁ ପାଇଁ ଦୁଧ ବଢ଼ିବା —
Increase of milk in the mother's breast.

ସ୍ତନ୍ୟ ରୋଗ—ସଂ. ବି—ଅସୁସ୍ଥା ମାତାଙ୍କ ସ୍ତନ୍ୟ ପାନ କରିବା ଯୋଗୁ
Stanya roga ଶିଶୁର ଜାତ ହେବା ରୋଗ (ବୃ. ଶ)—
Infantile illness due to sucking a sick mother.

ସ୍ତନ୍ୟା—ସଂ. ବିଣ. ସ୍ତ୍ରୀ (ସ୍ତନ୍ୟ+ଆ)—ସ୍ତନ୍ୟର ସ୍ତ୍ରୀଲିଙ୍ଗ—
Stanyā Feminine of Stanya.
ସଂ. ବି—କଳମ ଶାଗ (ବୃ. ଶ)—Ipomœa Aquatica, a herb.

ସ୍ତବ—ସଂ. ବି (ସ୍ତୁ. ଧାତୁ=ପ୍ରାର୍ଥନା କରିବା; ସ୍ତୁତି କରିବା+
Staba ଭାବ. ଅ)—୧ । ସ୍ତୁତି; ପ୍ରଶଂସା; ଗୁଣକୀର୍ତ୍ତନ—
(ସ୍ତୁତ—ବିଣ) 1. Praise; eulogy. ୨ । ଈଶପ୍ରାର୍ଥନା; ସ୍ତୋତ୍ର—2. Prayer; hymn.

ସ୍ତବକ—ସଂ. ବି (ସ୍ଥା. ଧାତୁ=ଥିବା, ରହିବା+କର୍ତ୍ତୃ. ଅବକ,
Stabaka ନିପାତନ)—୧ । ଫୁଲ ଆଦିର ଗୁଚ୍ଛ; ଗୁଚ୍ଛକ; ଗୁଚ୍ଛ—
1. Cluster or bunch of flowers etc. ୨ । ଫୁଲର ତୋଡ଼ା—2. A bouquet ୩ । ସମୂହ (ଶବ୍ଦକଳ୍ପଦ୍ରୁମ)—3. Multitude; collection. ୪ । ଗ୍ରନ୍ଥ ପରିଚ୍ଛେଦ (ଶବ୍ଦ କଳ୍ପଦ୍ରୁମ)—4. Chapter of a book. ୫ । (ସ୍ତୁ ଧାତୁ+କର୍ମ. ଅକ) ସ୍ତବ (ଦେଖ)—
(ସ୍ତବକା—ସ୍ତ୍ରୀ ବିଣ) 5. Staba (See) ବିଣ. ପୁଂ (+କର୍ତ୍ତୃ. ଅକ). ସ୍ତବକାରକ—Praying.

ସ୍ତବ କରିବା-ଦେ. କ୍ରି-୧ । ଦେବତାଙ୍କର ବା ଈଶ୍ୱରଙ୍କର ଗୁଣଗାନପୂର୍ବକ
Staba karibā ପ୍ରାର୍ଥନା କରିବା—1. To utter hymns
स्तव करा or prayers to God or to Deities. ୨ ।
स्तव करना ପ୍ରଶଂସା ଗାନ କରିବା—2. To eulogise; to praise. ୩ । ଖୋସାମଦ କରିବା—3. To flatter.

ସ୍ତବକ ସ୍ତନ—ସଂ. ବି (ରୂପକ ସମାସ)—ସ୍ତନ ସଙ୍ଗେ ତୁଳନା କରିଯିବା
Stabaka stana (ଅଶୋକ) ପୁଷ୍ପାଦିର ଗୁଚ୍ଛ—A bunch of flowers (e. g. Asoka) compared with to the female breast. [ଉ ସ୍ତବକସ୍ତନରେ ନମ୍ର ଅଶୋକବଲ୍ଲରୀ—ମଧୁସୂଦନ. କବିତା ।]

ସ୍ତବକିତ—ସଂ ବିଣ (ସ୍ତବକ+ସଂଜାତାର୍ଥେ. ଇତ)—ଗୁଚ୍ଛୀକୃତ; ତୋଡ଼ା
Stabakita କରାଯାଇଥିବା—Made into a bunch or nosegay.

ସ୍ତବ କୀର୍ତ୍ତନ (ଗାନ; ଗାୟନ) - ସଂ. ବି-ମହିମା କଥନ ବା ପ୍ରଶଂସାଗାନ-
Staba kirttana (gāna; gāyana) Singing the praise or eulogy of; eulogising.

ସ୍ତବଥ—ସଂ. ବି (ସ୍ତୁ. ଧାତୁ+ଭାବ. ଅଥ)—ସ୍ତୁତି; ସ୍ତବ; (ବୃ. ଶ)—
Stabatha Prayer; hymn.

ସ୍ତବଦ(ଧ)—ଗ୍ରା. ବିଣ (ପଦ୍ୟରେ) (ସଂ. ସ୍ତବ୍ଧ)—୧ । ସ୍ତବ୍ଧ (ଦେଖ)—
Stabada(dha) 1. Stabdha (See). ୨ । ନିଶ୍ଚଳ —
स्तवध 2. Motionless. ୩ । ନିଃଶବ୍ଦ—3. Quiet; silent.
स्तवघ
[ ଉ—ଜଳ ସବୁ ପ୍ରାଣୀଙ୍କର ସ୍ତବଧ ଯେ କାଳ—କୃଷ୍ଣସିଂହ, ମହାଭାରତ. ଆଦି । ] [ ଉ—ବୋଲି ପିଥିଆ ଏ ସେ ଶବଦ ବଦନେ କହିବାକୁ ମୁଁ ସ୍ତବଦ ହୋଇ ଗୋ—ଭଞ୍ଜ. ବୈଦେହୀଶବିଳାସ । ]

ସ୍ତବନ—ସଂ. ବି ( ସ୍ତୁ. ଧାତୁ+ଭାବ. ଅନ )—୧ । ସ୍ତବ କରିବା;
Stabana ପ୍ରଶଂସା ଗାନ—1. Eulogising. ୨ । ସ୍ତୁତି କରିବା—2 Uttering of hymns.

ସ୍ତବନୀୟ—ସଂ. ପୁଂ ବିଣ (ସ୍ତୁ. ଧାତୁ+କର୍ମ. ଅନୀୟ)—୧ । ଯାହାଙ୍କୁ ସ୍ତବ
Stabaniya କରିବା ଉଚିତ—1. Deserving to be
(ସ୍ତବିତବ୍ୟ—ଅନ୍ୟରୂପ) eulogised. ୨ । ପ୍ରଶଂସନୀୟ—
(ସ୍ତବନୀୟା, ସ୍ତବିତବ୍ୟା—ସ୍ତ୍ରୀ) 2. Praiseworthy

ସ୍ତବ ପ୍ରିୟ—ସଂ. ବିଣ ( ବହୁବ୍ରୀହି; ସ୍ତବ ପ୍ରିୟ ଯାହାଙ୍କର )—ଯେ ସ୍ତୁତ
Stabapriya ହେବାକୁ ଭଲ ପାଆନ୍ତି—Loving to be eulogised. ସଂ. ବି—ବିଷ୍ଣୁସହସ୍ରନାମୋକ୍ତ ବିଷ୍ଣୁଙ୍କ ନାମ—A name of Bishṇu.

ସ୍ତବରକ—ସଂ. ବିଣ (ପୁଂ)—ଆବରକ ( ଶବ୍ଦକଳ୍ପଦ୍ରୁମ ); ବେଷ୍ଟନୀ—
Stabaraka Covering; fencing.

ସ୍ତବରାଜ—ସଂ. ବି ( ୬ଷ୍ଠୀ ତତ୍ )—ଶ୍ରେଷ୍ଠ ସ୍ତବ—
Stabarāja Chief, principal or great hymn.

ସ୍ତବ ସ୍ତୁତି—ସଂ. ବି ( ଏକାର୍ଥ ଶବ୍ଦଦ୍ୱୟ )—ପ୍ରାର୍ଥନା ଓ ଗୁଣଗାନ—
Staba stuti Eulogy and prayer; hymn and praise.

ସ୍ତବିତବ୍ୟ—ସଂ. ବିଣ ( ସ୍ତୁ. ଧାତୁ+କର୍ମ. ତବ୍ୟ )—୧ । ସ୍ତୁତ
Stabitabya ହେବା ଯୋଗ୍ୟ—1. Fit to be prayed to. ୨ । ପ୍ରଶଂସନୀୟ—2. Praiseworthy.

ସ୍ତବିତା—ସଂ. ବିଣ. ଓ ବି. ପୁଂ ( ସ୍ତୁ. ଧାତୁ+କର୍ତ୍ତୃ. ତୃ=ସ୍ତବିତୃ; ୧ମା.
Stabitā ଏକ )—୧ । ସ୍ତବକାରୀ—1. Praying.
(ସ୍ତବିତ୍ରୀ—ସ୍ତ୍ରୀ) ୨ । ପ୍ରଶଂସାକାରୀ—2. Praising.

ସ୍ତବିବା—ଦେ. କ୍ରି ( ପଦ୍ୟ )—ସ୍ତବ କରିବା; ସ୍ତୁତି କରିବା-To utter
Stabibā hymns or prayers to God or to Deities.
स्तव करा [ ଉ—ଇଷ୍ଟଦେବେ ସ୍ତବ ଏହିରୂପେ ଯୁବା ତନ୍ତ୍ରା
स्तव करना କଲେ—ରାଧାନାଥ. ଉଷା । ]

ସ୍ତବେଷ୍ୟ(ଯ୍ୟ)—ସଂ. ବ ( ସ୍ତୁ· ଧାତୁ=ସ୍ତବ କରିବା+କର୍ମ· ଏଷ୍ୟ; Stabeshya(jya) ଇଜ୍ୟ )—ଇନ୍ଦ୍ର ( ଭଣାଦ କୋଷ )—God Indra.

ସ୍ତବ୍ଧ—ସଂ. ବଣ ( ସ୍ତନ୍ଭ୍ ଧାତୁ+କର୍ତ୍ତୃ. ତ )—୧ । ନିଷ୍ପନ୍ଦ; ନିଶ୍ଚଳ; Stabdha ସ୍ଥିରଗମ୍ଭୀର—1. Unmoving; calm; motionless. ( ସ୍ତବ୍ଧତା, ସ୍ତବ୍ଧତ୍ୱ—ବ ) ୨ । ଜଡ଼ୀଭୂତ—2. Dull; ( ସ୍ତବ୍ଧା—ସ୍ତ୍ରୀ ) rigid. ୩ । ବନ୍ଦ କରାଯାଇଥିବା; ସ୍ତମ୍ଭିତ—3. Stopped. ୪ । ଅବଶୀଭୂତ—4. Paralysed. ୫ । ଦୂରୀକୃତ—5. Removed. ୬ । ମୂର୍ଚ୍ଛିତ—6. Fainted. ୭ । କାଲ; ଭାବେଦା; ବଧିର—7. Deaf; deafened. ୮ । ଗର୍ବିତ—8. Arrogant; proud. ୯ । ଦୃଢ଼; ସ୍ଥିର ( ହ୍ରି. ଶ )—9. Fixed. ୧୦ । ଅଳସ ( ହ୍ରି. ଶ )—10. Idle; lazy; slothful. ୧୧ । ଦୁରାଗ୍ରହୀ (ହ୍ରି· ଶ)—11. Headstrong. ୧୨ । ମାନ୍ଦା ( ହ୍ରି. ଶ )—12. Sluggish; dull. ସଂ. ବ—ବଂଶୀର ଛଅଗୋଟି ଦୋଷ ମଧ୍ୟରୁ ଏକ, ଯହିଁର ଫଳରେ ବଂଶୀର ସ୍ୱର ଧୀମା ବା ମାନ୍ଦା ହୁଏ ( ହ୍ରି· ଶ )—One of the six defects of a flute, viz. when the sound becomes dull.

ସ୍ତବ୍ଧ କର୍ଣ୍ଣ – ସଂ.ବ—ସ୍ଥିର ଊର୍ଦ୍ଧ୍ୱ କର୍ଣ୍ଣ—Rigid erect ear. [ଦ୍ରି—Stabdha karnna ଯେଉଁ କାନ ଏଣେ ତେଣେ ଚଳନ ହୋଇ ପାରେ ନାହିଁ । ] ବଣ. ପୁଂ—ସ୍ଥିର ଊର୍ଦ୍ଧ୍ୱକର୍ଣ୍ଣବିଶିଷ୍ଟ—(ସ୍ତବ୍ଧକର୍ଣ୍ଣୀ-ସ୍ତ୍ରୀ ବଣ) Having rigid and inflexible ears.

ସ୍ତବ୍ଧ ପାଦ—ସଂ. ବଣ. ପୁଂ. (ବହୁବ୍ରୀହି)—ଖଞ୍ଜ; ପଙ୍ଗୁ; ଲେଙ୍ଗଡ଼ା (ହ୍ରି. ଶ) Stabdha pāda —Lame. ( ସ୍ତବ୍ଧପାଦା—ସ୍ତ୍ରୀ ) ( ସ୍ତବ୍ଧପାଦତା—ବ )

ସ୍ତବ୍ଧ ମତି (ଧି, ବୁଦ୍ଧି)—ସଂ. ବ (କର୍ମଧା )—ମନ୍ଦ ବୁଦ୍ଧି, ଜଡ଼ବୋଧତା—Stabdha mati[dhi, buddhi] Stupidity. ସଂ. ବଣ. ପୁ ଓ ସ୍ତ୍ରୀ (ବହୁବ୍ରୀହି)—ମନ୍ଦବୁଦ୍ଧି—Stupid.

ସ୍ତବ୍ଧ ମେଢ୍ର—ସଂ. ବଣ . ପୁଂ (ବହୁବ୍ରୀହି)—କ୍ଳୀବ; ନପୁଂସକ (ହ୍ରି·ଶ)—Stabdha medhra Eunoch; neuter.

ସ୍ତବ୍ଧରୋମା—ସଂ· ବ ( ବହୁବ୍ରୀହି; ସ୍ତବ୍ଧ+ରୋମନ୍=ଲୋମ, ସ୍ତବ୍ଧ-Stabdharomā ରୋମନ୍. ୧ମା. ୧ବ )—ବରାହ; ଶୂକର—Boar; hog. ସଂ· ବଣ—ଯାହାର ରୋମ ଠିଆ ହୋଇ ଥାଏ—Having the hairs of the body rigid and erect.

ସ୍ତବ୍ଧୀଭୂତ—ସଂ ବଣ ( ସ୍ତବ୍ଧ+ଅଭୂତତ ଭାବେ ଚ୍ୱି [ଈ]+ଭୂତ )—Stabdhībhūta ନିଷ୍ପନ୍ଦୀଭୂତ—Made dull; paralysed. [ସ୍ତବ୍ଧୀଭୂତା—ସ୍ତ୍ରୀ]

ସ୍ତବ୍ୟ—ସଂ. ବଣ ପୁଂ (ସ୍ତୁ ଧାତୁ+କର୍ମ. ଯ)—୧ । ସ୍ତବନୀୟ—Stabya 1. Deserving to be prayed to. ୨। ପ୍ରଶଂସ୍ୟ—[ସ୍ତବ୍ୟା—ସ୍ତ୍ରୀ] 2. Praiseworthy. ସଂ· ବ—ବିଷ୍ଣୁଙ୍କ ସହସ୍ର ନାମ ମଧ୍ୟରୁ ଏକତମ—One of the names of Bishnu.

ସ୍ତଭ୍ (ଧାତୁ)—ସଂ—ସ୍ତମ୍ଭନ କରିବା—To stop. Stabh (root) (ସ୍ତନଭ୍ ଧାତୁ—ଅନ୍ୟରୂପ)

ସ୍ତଭ—ସଂ. ବ (ସ୍ତନଭ୍· ଧାତୁ+କର୍ତ୍ତୃ. ଅ)—ଛାଗ; ଛେଳି—Stabha Goat.

ସ୍ତମ୍ବ—ସଂ. ବ (ସ୍ଥା· ଧାତୁ+କର୍ତ୍ତୃ· ଅମ୍ବ, ନିପାତନ)—୧ । ଗୁଚ୍ଛ Stamba (ଅମରଟୀକା)—1. Cluster; bunch. ୨। ତୃଣାଦିର ଗୁଚ୍ଛ—2. Bundle or sheaf of grass or grain. ୩ । ତୃଣ—3. Grass. ୪। କାଣ୍ଡହୀନ ବୃକ୍ଷ—4. Trunkless plant. ୫। ଗୁଳ୍ମ—5. Shrub. ୬ । ବିଟପ ( ଜଟାଧର ); ଶାଖା—6. Branch shoot of a tree. ୭। ସ୍ତମ୍ଭ (ଦେଖ)—7. Stambha (See). ୮। (+କରଣ· ଅ) ହସ୍ତିବନ୍ଧନ ସ୍ତମ୍ଭ—8. The post to which an elephant is tied. ୯। (+ଭାବ, ଅ) ଅଜ୍ଞାନ ଅବସ୍ଥା—9. The state of being unconscious; stupefaction. ୧୦ । ବୁଦା—10. Bush; thicket (Apte). ୧୧ । ପର୍ବତ—11. Mountain (Apte) ୧୨ । ରୋହିତକ ବୃକ୍ଷ (ହ୍ରି. ଶ)—12. Rohitaka (See ୧୩ । ପର୍ବତ ବିଶେଷ (ହ୍ରି ଶ)—13. Name of a mountain.

ସ୍ତମ୍ବକରି—ସଂ. ବ (ସ୍ତମ୍ବ +କୃ. ଧାତୁ+କର୍ତ୍ତୃ.ଇ)—୧। ଧାନ୍ୟ(ଅମର)—Stambakari 1. Paddy. ୨ । ଶସ୍ୟ—2. Grains; pulses.

ସ୍ତମ୍ବକାର—ସଂ. ବ (ସ୍ତମ୍ବ=ଗୁଚ୍ଛ+କୃ. ଧାତୁ+କର୍ତ୍ତୃ. ଅ)—ଗୁଚ୍ଛ-Stambakāra କାରକ; ଯେ ଗୋଛାକାରେ—One who binds into sheaves.

ସ୍ତମ୍ବଘନ—ସଂ. ବ (ସ୍ତମ୍ବ+ହନ୍· ଧାତୁ+କର୍ତ୍ତୃ. ଅ)—୧ । ତୃଣାଦି Stambaghana ଛେଦନ କରିବା ଉପଯୋଗୀ ଦାଆ ପ୍ରଭୃତି ଅସ୍ତ୍ର—1. A hoe or sickle for cutting corn.
ସ୍ତମ୍ବଘ୍ନ, ସ୍ତମ୍ବଘାତ, ସ୍ତମ୍ବହନନ, ସ୍ତମ୍ବହନନୀ, ସ୍ତମ୍ବୀ } ଅନ୍ୟରୂପ
୨। କୋଦାଳ—2. Hoe; rake. ୩। ଘାସ କାଟୁଥି (ହ୍ରି. ଶ)—3. Grass mower.

ସ୍ତମ୍ବପୁ—ସଂ, ବ—ସ୍ଥାନଭେଦ; ତାମ୍ରଲିପ୍ତ; ତମଲୁକ—Name of Stambapu the ancient town; called Tamluk [ସ୍ତମ୍ବପୁର—ଅନ୍ୟରୂପ] [ଦ୍ରି—ଏହାର ପର୍ଯ୍ୟାୟ—ତାମ୍ରଲିପ୍ତ, ଦାମଲିପ୍ତ, ତାମଲିପ୍ତୀ, ତମାଳିକା, ବିଷ୍ଣୁଗୃହ, ବେଲାକୂଳ, ଭୁଣ୍ଡନ—ହେମଚନ୍ଦ୍ର ।]

ସ୍ତମ୍ବେରମ—ସଂ· ବ (ଅଲୁକ୍; ସ୍ତମ୍ବେ=ସ୍ତମ୍ବରେ ଅର୍ଥାତ୍ ବନ୍ଧନ ସ୍ତମ୍ଭରେ Stamberama +ରମ୍ ଧାତୁ=କ୍ରୀଡ଼ା କରିବା+କର୍ତ୍ତୃ. ଅ)—ହସ୍ତୀ; ହାତୀ [ଅମର]—Elephant.

ସ୍ତମ୍ଭ୍ (ଧାତୁ)—୧ । ରୋଧନ କରିବା—1. To stop; To arrest; Stambh (root) ୨ । ଦୃଢ଼ ବା ଜଡ଼ କରିବା—2. To stiffen or to make firm. ୩ । ଜଡ଼ୀଭୂତ ବା ନିଶ୍ଚଳ କରିବା—3. To stupefy; to paralyse.

ସ୍ତମ୍ଭ—ସଂ, ବି (ସ୍ତମ୍ଭ୍ ବା ସ୍ତମ୍ଭ୍. ଧାତୁ + ଭାବ. ଅ)—୧ । ଜଡ଼ଭାବ;
Stambha ଶୁଷ୍କପର ନିଶ୍ଚଳ ଭାବରେ ଅବସ୍ଥାନ; ନିଶ୍ଚଳତା—
[ସ୍ତବ୍ଧ—ବିଣ] 1. Motionlessness; stillness. ୨ । ନିଶ୍ଚେଷ୍ଟତା—2. Rigidity; dullness; numbness; paralysis. ୩ । (+କର୍ତ୍ତୃ. ଅ) ଖୁଣ୍ଟ, ଖମ୍ବ—3. Pillar; post; column. ୪ । ଦେହର ନିଶ୍ଚେଷ୍ଟତାରୂପ ବିକାର ବିଶେଷ (ଦୃ-ଏହା ରୋଗରୁ, ଭକ୍ତିରୁ ଓ ପ୍ରେମରୁ ଘଟେ । ଭୟ, ହର୍ଷ, ଆଶ୍ଚର୍ଯ୍ୟ, ବିଷାଦ ଓ ଅମର୍ଷ ଯୋଗୁଁ ଚେଷ୍ଟାର ଯେଉଁ ପ୍ରତିଘାତ ଜାତ ହୁଏ ତାହାର ନାମ ସ୍ତମ୍ଭ । ଅଷ୍ଟସାତ୍ତ୍ୱିକଭାବ ମଧ୍ୟରୁ ଏହା ଗୋଟିଏ)—
4. Paralysis. ୫ । ଗଛର ଗଣ୍ଡି—5. Trunk of a tree. ୬ । ଦେହର ଅଚୈତନ୍ୟଜନିତ ସ୍ଥିରାବସ୍ଥା—6. Rigidity of the body due to fit. ୭ । (+ଭାବ ଅ) ପ୍ରତିବନ୍ଧ-7. Obstacle; obstruction. ୮ । ଇନ୍ଦ୍ରଜାଲଦ୍ୱାରା ଚେଷ୍ଟାରୋଧ—8. Stopping of action or movement by magic. ୯। ରୋଧ—9. Stopping. ୧୦। ରୋଗାଦି ହେତୁ ଅଜ୍ଞାନ ଅବସ୍ଥା—10. Unconciousness due to disease. ୧୧ । ( +କରଣ ଅ ) ଠେକ—11. Prop; fulcrum [Apte]. ୧୨ । ନିର୍ବୋଧପଣ—12. Stupidity (Apte).

ସ୍ତମ୍ଭକ—ସଂ. ବିଣ, ପୁଂ (ସ୍ତମ୍ଭ ଧାତୁ+କର୍ତ୍ତୃ. ଅକ)—ସ୍ତମ୍ଭକର (ଦେଖ)
Stambhaka (ସ୍ତମ୍ଭିକା—ସ୍ତ୍ରୀ) Stambhakara (See)

ସ୍ତମ୍ଭକର—ସଂ. ବିଣ ପୁଂ-୧ । ଯେ ଜଡ଼ କରେ—1. Paralysing,
Stambhakara benumbing (Apte) ୨ । ରୋଧ—
(ସ୍ତମ୍ଭକରୀ—ସ୍ତ୍ରୀ) କାରୀ—2. Obstructing (Apte). ୩ । ଯାହା ସ୍ତମ୍ଭ କରେ—3. Causing stambha. ୪ । ସହବାସ କାଳରେ ଶୁକ୍ର ସ୍ଖଳନ ନ କରାଇବା (ଔଷଧ)—4. (medicine) Which delays the discharge of semen during coition. ୫। ମଳାବରୋଧକାରୀ—5. Astringent; causing costiveness.

ସ୍ତମ୍ଭକୀ—ସଂ. ବି (ସ୍ତମ୍ଭକିନ୍ ଶବ୍ଦ ୧ମା, ୧ ବଚନ)—ପ୍ରାଚୀନ ଅନଦ୍ଧ
Stambhaki ବାଦ୍ୟଯନ୍ତ୍ରବିଶେଷ (ଶବ୍ଦ କଳ୍ପଦ୍ରୁମ)—A sort of musical instrument covered over with skin, used in ancient times.

ସ୍ତମ୍ଭନ—ସଂ. ବି (ସ୍ତମ୍ଭ ଧାତୁ+ଭାବ. ଅନ )—୧ । ଜଡ଼ୀକରଣ—
Stambhana 1. Paralysing; benumbing; making
(ସ୍ତବ୍ଧ—ବିଣ) inert. ୨ । ତନ୍ତ୍ରୋକ୍ତ ଷଟ୍କର୍ମାନ୍ତର୍ଗତ ଅଭିଚାର କର୍ମ; କୌଣସି ବ୍ୟକ୍ତିର କର୍ମେନ୍ଦ୍ରିୟର ଚଳନରହିତୀକରଣ—2. Paralysing the limbs and activity of a person by magic; suppression of the functions of a person's faculties by charms. [ଦ୍ର—ଏହାକୁ ସାଧାରଣ ଭାଷାରେ "ବନ୍ଧନ" କହିବା କହନ୍ତି; ଏହି ଅଭିଚାର ଯାହା ପ୍ରତି ପ୍ରଯୋଜିତ ହୁଏ ତାହାର କାର୍ଯ୍ୟଶକ୍ତିର ରୋଧ ହୁଏ. ୩ । (+କର୍ତ୍ତୃ. ଅନ) କାମଦେବଙ୍କ ପଞ୍ଚବାଣ ମଧ୍ୟରୁ ଏକତମ—3. One of the five arrows of the God Cupid. [ଦ୍ର—କାମଦେବଙ୍କ ପଞ୍ଚବାଣର ନାମ ଯଥା—ଉନ୍ମାଦନ, ଶୋଷଣ, ତାପନ, ସ୍ତମ୍ଭନ ଓ ସମ୍ମୋହନ । )
୪ । (+ଭାବ. ଅନ) ଅବରୋଧ—4. Obstruction: siege. ୫ । ଜଡ଼ ହୋଇଯିବା—5. Becoming inert. ୬ । ସ୍ଥିରୀକରଣ—6. Settling. ୭ । ନିବାରଣ—7. Prevention. ୮ । ରକ୍ତପ୍ରବାହର ଗତିରୋଧ—8. Stopping the flow of blood. ୯ । ଜଡ଼ୀକରଣ ସାଧନ; ଯାହା ଦ୍ୱାରା ଜଡ଼ କରାଯାଏ—9. Appliance for making inert rigid or benumbed. ୧୦ । ଦୃଢ଼ୀକରଣ—10. Strengthening; making rigid. ୧୧ । (+କରଣ ଅନ ) ଠେକ;—11. Prop; stay; support—୧୨ । (+ଭାବ ଅନ)—ଶୁକ୍ର ସ୍ଖଳନର ରୋଧ (ହି. ଶ)—12. Causing retention of seminal discharge. ୧୩ । (+କରଣ ଅନ) ରମଣରେ ଶୁକ୍ର ସ୍ଖଳନ କରାଇବା ଔଷଧ (ହି. ଶ)—13. Any medicine which delays seminal discharge. ୧୪ । ମଳାବରୋଧକ ଔଷଧ(ହି.ଶ)—14. Astringent medicine.

ସ୍ତମ୍ଭନୀ—ସଂ ବି ( ସ୍ତମ୍ଭନ+ଈ )—ଏକପ୍ରକାର ଇନ୍ଦ୍ରଜାଲ (ହି. ଶ)—
Stambhani A kind of magic.

ସ୍ତମ୍ଭନୀୟ—ସଂ. ବିଣ [ ସ୍ତମ୍ଭ ଧାତୁ+କର୍ମ. ଅନୀୟ ]—୧ । ସ୍ତମ୍ଭିତ
Stambhaniya ହେବା ଯୋଗ୍ୟ—1. Fit to be restrained or stopped, delayed etc. ୨ । ଯାହାକୁ ସ୍ତମ୍ଭିତ କରାଯିବ—2. Going to be stopped etc.

ସ୍ତମ୍ଭବୃତ୍ତି—ସଂ. ବି—ପ୍ରାଣାୟାମର ଅଙ୍ଗବିଶେଷ, କୁମ୍ଭକ (ହି. ଶ )—
Stambhabrutti The art of stopping the breath during breath exercise

ସ୍ତମ୍ଭି—ସଂ. ବି ( ସ୍ତମ୍ଭ ଧାତୁ+କର୍ତ୍ତୃ. ଇ)—ସମୁଦ୍ର ( ହି. ଶ)—
Stambhi The sea.

ସ୍ତମ୍ଭିକା—ସଂ. ବି ( ସ୍ତମ୍ଭ+କ+ଆ )—୧ । ଖଟିଆ, ଖଟ ଆଦିର
Stambhikā ଗୋଡ଼ ( ହି. ଶ )—1. The posts of a bedstead, chair etc. ୨ । ଛୋଟ ଖୁମ୍ବ; ଖୁଣ୍ଟି.—2. Small pillar or post.

ସ୍ତମ୍ଭିତ—ସଂ. ବି ( ସ୍ତମ୍ଭ ଧାତୁ ଣିଚ=ସ୍ତମ୍ଭି ଧାତୁ+କର୍ମ. ତ )—
Stambhita ୧ । ଜଡ଼ୀଭୂତ—1. Paralysed; benumbed. ୨ । ନିବାରିତ—2. Prevented. ୩ । ରୁଦ୍ଧ; ବନ୍ଦ କରି ଯାଇଥିବା; ସ୍ଥଗିତ—3. Stopped; restrained. ୪ । ଦୃଢ଼ୀଭୂତ—4. Strengthened; made rigid. ୫ । କଠିନୀକୃତ—5. Made

immoveable; astounded. ୬ । ସ୍ଥିରୀକୃତ—6. Fixed.

ସ୍ତମ୍ଭି ଦେବା—ଦେ. କ୍ରି (ସଂ. ସ୍ତମ୍ଭ ଧାତୁ)—ସ୍ତମ୍ଭନ କରିବା—
Stambhi debā To render motionless.
স্তম্ভন করা [ଉ—ଇନ୍ଦ୍ର କ୍ରୋଧ ହୋଇ ଅସନ୍ତେ ବଜ୍ର ଧରି,
स्तम्भन करना ତାଙ୍କ ହାତ ସ୍ତମ୍ଭି ଦେଲେ ଉପଶାନ୍ତି । କୃଷ୍ଣସିଂହ. ମହାଭାରତ. ବନ ।]

ସ୍ତମ୍ଭିନୀ—ସଂ. ବିଣ. ସ୍ତ୍ରୀ (ସ୍ତମ୍ଭିନ୍+ଈ)—ସ୍ତମ୍ଭୀର ସ୍ତ୍ରୀ ଲିଙ୍ଗ—
Stambhini Feminine of Stambhi.
ସଂ. ବି—ଯୋଗ ଶାସ୍ତ୍ର ଅନୁସାରେ ୫ ଗୋଟି ଧାରଣା ମଧ୍ୟରୁ ଗୋଟିଏ (ହି. ଚ)—One of the 5 Dhāraṇā in Joga

ସ୍ତମ୍ଭୀ—ଦେ. ବିଣ—ଜଡ଼; ସ୍ଥିର; ନିଶ୍ଚଳ—Motionless, [ଉ—କେ
Stambhī କେଜାଣେ ଲୁହ ପକାଏ । କେ ସ୍ତମ୍ଭୀ ହୁଏ । ବଇଦେ—
স্তম্ভী स्तम्भी ପାଳକୃଷ୍ଣ. ଭବକଲ୍ଲୋଳ ।] ସଂ. ବିଣ ପୁଂ (ସ୍ତମ୍ଭ+ଇନ୍
ଏମା. ତ)—୧ । ସ୍ତମ୍ଭଯୁକ୍ତ—1. Pillared ୨ ।
ସ୍ତମ୍ଭକର ( ଦେଖ )—2. Stambhakara ( See )
ସଂ. ବି—ସମୁଦ୍ର ( ହି. ଶ )—The sea.

ସ୍ତମ୍ଭୀଭୂତ—ସଂ. ବିଣ (ସ୍ତମ୍ଭ+ଭୂ ଧାତୁ+ଚ୍ୱି [ ଈ ]+କର୍ତ୍ତୃ. ତ)—
Stambhībhūta ୧ । ଜଡ଼ୀଭୂତ—1. Petrified become motionless; paralysed.
୨ । ନିଶ୍ଚଳ—2 Become rigid.

ସ୍ତର—ସଂ. ବି (ସ୍ତୃ ଧାତୁ=ବିଛାଇବା+କର୍ମ. ଅ)—୧ । ଥାକ,ଭୂମି
Stara ଅବର ଉପର୍ଯ୍ୟୁପରି ନିହିତ ପଦାର୍ଥ - 1. Layer stratum. ୨ । ଶଯ୍ୟା; ଖଟ—2. Bed.

ସ୍ତରଣ—ସଂ. ବି (ସ୍ତୃ ଧାତୁ+ଭାବ. ଅନ)—୧ । ବିସ୍ତାରିବା ବା ବିଛାଇବା
Staraṇa କର୍ମ—1. The act of spreading. ୨ ।
( +କର୍ମ. ଅ ) ଶଯ୍ୟା, ବିଛଣା—2. Bedding. ୩ ।
ପଲସ୍ତରା—3. Plaster.

ସ୍ତରଣୀୟ—ସଂ. ବିଣ ( ସ୍ତୃ ଧାତୁ+କର୍ମ ଅନୀୟ )—ବିସ୍ତୃତ ହେବା
Staraṇiya ଯୋଗ୍ୟ—Deserving to be spread.
[ ସ୍ତର୍ଯ୍ୟ—ଅନ୍ୟରୂପ ]

ସ୍ତରି(ରୀ)ମା—ସଂ. ବି (ସ୍ତୃ ଧାତୁ+କର୍ମ ଇମନ୍; ୧ମା. ୧ବ)—ଖଟ; ଶଯ୍ୟା
Stari(rī)mā [ଭୂଣାଦକୋଷ]—Bed

ସ୍ତରୀ—ସଂ. ବି ( ସ୍ତୃ ଧାତୁ+କର୍ତ୍ତୃ. ଈକ୍; ୧ମା. ୧ବ )—ଧୂମ; ଧୂଆଁ—
Starī Smoke.

ସ୍ତରୁ—ସଂ. ବି (ସ୍ତୃ ଧାତୁ+କର୍ତ୍ତୃ. ଉ)—ଶତ୍ରୁ; ବୈରୀ . ହି. ଶ ]—
Staru Enemy.

ସ୍ତାବ—ସଂ, ବି ( ସ୍ତୁ ଧାତୁ+ଭାବ ଅ )—ସ୍ତବ ( ଦେଖ )—Staba
Stāba ( See ) ସଂ. ବିଣ—ସ୍ତାବକ ( ଦେଖ )
Stābaka ( See )

ସ୍ତାବକ—ସଂ. ବିଣ ପୁଂ (ସ୍ତୁ ଧାତୁ+କର୍ତ୍ତୃ ଅକ)-ସ୍ତବକାରୀ - Praising;
Stābaka praying. ସଂ ବି—୧ । ସ୍ତୁତିପାଠକ ବ୍ୟକ୍ତି—1. A panegyrist. ୨ । ତୋଷାମଦକାରୀ; ଖୁସାମଦିଆ ବ୍ୟକ୍ତି—2. A flatterer.

ସ୍ତାବଲ—ବୈଦେଶି. ବି ( ଇଂ. ଷ୍ଟେବ୍‌ଲ୍ )—ଅଶ୍ୱଶାଳା; ଘୋଡ଼ାଶାଳ -
Stābal আস্তাবল स्तबल Stable

ସ୍ତାବ୍ୟ—ସଂ. ବିଣ ( ସ୍ତୁ ଧାତୁ+କର୍ମ. ଯ )—ସ୍ତବନୀୟ ( ଦେଖ )
Stābya Stabaniya ( See )

ସ୍ତିମ୍ ( ଧାତୁ )—ଦି°—ଆର୍ଦ୍ର ହେବା; କ୍ଳିନ୍ନ ହେବା—
Stim ( root ) To become wet.

ସ୍ତିମି—ସଂ. ବି ( ସ୍ତିମ୍ ଧାତୁ+କର୍ତ୍ତୃ. ଇ )—୧ । ପୁଷ୍ପଗୁଚ୍ଛ ( ହି. ଶ );
Stimi ସ୍ତବକ—1. A bunch of flowers. ୨ । ସମୁଦ୍ର ( ହି. ଶ )—2. The sea. ୩ । ପ୍ରତିବନ୍ଧକ; ଅବରୋଧ ( ହି. ଶ )—3. Obstruction.

ସ୍ତିମିତ—ସଂ. ବିଣ ( ସ୍ତିମ୍ ଧାତୁ କ୍ଳିନ୍ନ ହେବା+କର୍ତ୍ତୃ. ତ )—୧ ।
Stimita ଆର୍ଦ୍ର; ସିକ୍ତ—1. Moistened; wet. ୨ । ସ୍ଥିର; ନିଶ୍ଚଳ—2. Motionless; fixed; steadfast. ୩ । ଶାନ୍ତ ( ହି. ଶ )—3. Calm. ୪ । ପ୍ରସନ୍ନ; ସନ୍ତୁଷ୍ଟ ( ହି. ଶ )—4. Satisfied. ବି—( + ଭାବ. ତ )—୧ । ଜଡ଼ତା—1. Rigidity. ୨ । ନିଶ୍ଚଳତା—2. Motionlessness. ୩ । ଆର୍ଦ୍ରତା—3. Wetness.

ସ୍ତିମିତ ଦୃଷ୍ଟି—ସଂ. ବି—ଏକଦୃଷ୍ଟି; ଏକଦିଗକୁ ନିଶ୍ଚଳ ଦୃଷ୍ଟି—
Stimita drushti Eyesight fixed to one side, fixed gaze. ସଂ. ବିଣ, ପୁଂ ଓ ସ୍ତ୍ରୀ-ସ୍ତିମିତନୟନ [ଦେଖ] Stimitanayana(See)

ସ୍ତିମିତ ନୟନ(ନେତ୍ର, ଲୋଚନ)—ସଂ. ବି (କର୍ମଧା)—ଏକଦୃଷ୍ଟିଯୁକ୍ତ
Stimita nayana (netra, locchana) ଚକ୍ଷୁ; ସ୍ଥିରଚକ୍ଷୁ—Steadfast eye. ସଂ. ବିଣ. ପୁଂ ( ବହୁବ୍ରୀହି )—ସ୍ଥିର ଦୃଷ୍ଟିଯୁକ୍ତ—Having fixed gaze.
[ ସ୍ତିମିତନୟନା(ନେତ୍ରା, ଲୋଚନା)—ସ୍ତ୍ରୀ ]

ସ୍ତିର—ଗ୍ରା ବିଣ ( ସଂ. ସ୍ଥିର )—ସ୍ଥିରୀକୃତ ( ଦେଖ )—Sthiri
Stira kruta ( See ) ବି—ସ୍ଥିରୀକରଣ ( ଦେଖ ) Sthirikaraṇa (See)

ସ୍ତିରି(ରୀ, ରୀଲ)—ଗ୍ରା. ବି (ସଂ. ସ୍ତ୍ରୀ)—୧ । ଭାର୍ଯ୍ୟା; ସ୍ତ୍ରୀ—1. Wife.
Stiri(rī, rlā) [ଉ—ପାଣିବୁହାଳୀଙ୍କ ମୁଣ୍ଡରେ ତୋଷା,
ସ୍ତିରୀଲ } ଘର ସ୍ତିରି ଯେବେ ହୋଇ ଯୁଂସା; କହେ ଦଳେଇ
ସ୍ତିରି } ଏ ପସରପସା—ଦଳେଇ ଦାସଙ୍କ ପଦ୍ୟ ।] ୨ ।
স্ত্রী स्त्री ନାରୀ; ସ୍ତ୍ରୀ—2. Woman.

ସ୍ତିରି(ରୀ)ସ୍ୱଭାବ—ଗ୍ରା. ବି—ସ୍ତ୍ରୀମାନଙ୍କର ସ୍ୱଭାବଜ ଋତୁ—
Stiri(rī)swabhāba Menstruation (which
স্ত্রীস্বভাব स्त्रीस्वभाव is natural to females).

ସ୍ତୀର୍ବି—ସଂ ବି (ସ୍ତୃ ଧାତୁ+କର୍ତ୍ତୃ. ଇ)—୧। ନଭଃ; ଆକାଶ (ହରିପ୍ରସାଦ)-
Stīrbi 1. Sky ୨ । ରୁଧିର (ହରିପ୍ରସାଦ)—2. Blood ୩ । ତୃଣ—3. Grass. ୪ । ଅଧ୍ୱର୍ଯ୍ୟୁ; ଯଜୁର୍ବେଦଜ୍ଞ ଋତ୍ୱିକ୍—4. A priest versed in the

Jajurbeda. ୫ । ଯଜୁଃ; ଜଳ—5. Water. ୬ । ଶତ୍ରୁ—6. Enemy, adversary. ୭ । ଶରୀର (ହି. ଶ)—7. Body. ୮ । ଭୟ (ହି. ଶ)—8. Fear. ୯ । ଇନ୍ଦ୍ର (ହି. ଶ.)—9. Indra.

ସ୍ତୁ (ଧାତୁ)—ସଂ—୧ । ସ୍ତବ କରିବା—1. To pray. ୨ । ପ୍ରଶଂସା
Stu (root) କରିବା—To praise; to eulogise.

ସ୍ତୁକ—ସଂ. ବି. ପୁଂ [ସ୍ତୁ ଧାତୁ+କର୍ମ. କ]—ସନ୍ତାନ; ଅପତ୍ୟ [ହି. ଶ]-
Stuka (ସ୍ତୁକା—ସ୍ତ୍ରୀ) Offspring.

ସ୍ତୁଚ୍ (ଧାତୁ)—ସଂ—ପ୍ରସନ୍ନ କରିବା—To cause to be favour-
Stuch (root) able; to please.

ସ୍ତୁଟି—ସଂ. ବି—ଭରଦ୍ୱାଜ ପକ୍ଷୀ [ହି. ଶ]—
Stuti The skylark.

ସ୍ତୁତ—ସଂ. ବିଣ [ସ୍ତୁ ଧାତୁ+କର୍ମ. କ]—୧। ପ୍ରଶଂସିତ—1. Praised;
Stuta eulogised. ୨ । ଯାହାଙ୍କୁ ସ୍ତୁତି କରା-
[ ସ୍ତୁତା—ସ୍ତ୍ରୀ] ଯାଇଥାଏ—2. Prayed; to whom
(ସ୍ତୁତି—ବି prayer is offered. ୩ । ଝରୁଥିବା (ହି. ଶ)—
3. Oozing. ସ. ବି (+ଭାବ କ)—୧। ସ୍ତବ; ସ୍ତୁତି (ହି. ଶ)—1. Hymn. ୨। ମହାଦେବ (ହି ଶ)—2. Siba. ୩ । ପ୍ରଶଂସା—3. Praise.

ସ୍ତୁତସ୍ତୋମ—ସଂ ବିଣ ପୁଂ—ପ୍ରଶଂସିତ [ହି. ଶ.]-
Stutastoma [ସ୍ତୁତସ୍ତୋମା—ସ୍ତ୍ରୀ] Praised.

ସ୍ତୁତି—ସଂ ବି—[ ସ୍ତୁ ଧାତୁ+କରଣ. ତି ]—୧ । ସ୍ତବ [ଅମର]—
Stuti Prayer; hymn. [ତି—ପ୍ରାଣିଙ୍କ ଦୋଷ ନ ଦେଖନ୍ତି,
[ସ୍ତୁତ—ବିଣ] ସ୍ତୁତିରେ ହରଷ ହୁଅନ୍ତି—
ଜଗନ୍ନାଥ ଭାଗବତ ।] ୨। (ଭାବ.ତି) ପ୍ରଶଂସା; ଗୁଣକୀର୍ତ୍ତନ—
2. Eulogy; praise. ୩। (କର୍ମ. ତି) (ପୁଂ) ସହସ୍ର-
ନାମୋକ୍ତ ବିଷ୍ଣୁଙ୍କର ନାମ—3. One of the names of Bishnu. ୪ । (ସ୍ତ୍ରୀ) ଦୁର୍ଗା—4. The Goddess Durga.

ସ୍ତୁତି ପାଠ—ସ. ବି (୬ଷ୍ଠୀ ତତ୍)—ପ୍ରଶଂସା ଗାନ—
Stuti pāṭha Eulogising; panegyrics.

ସ୍ତୁତି ପାଠକ—ସ. ବି. ପୁଂ—ଭାଟ; ବନ୍ଦୀ; ମାଗଧ; ଯେଉଁମାନେ ରାଜାଙ୍କ
Stuti pāṭhaka ନିକଟରେ ରାଜାଙ୍କର ଯଶୋଗାନ କରନ୍ତି
(ଅମର)—Panegyrist; herald; an encomiast.

ସ୍ତୁତି ପ୍ରିୟ—ସ. ବିଣ. ପୁଂ (ବହୁବ୍ରୀହି)—ଯେ ନିଜର ପ୍ରଶଂସା ଶୁଣି ଖୁସି
Stuti priya ହୁଅନ୍ତି—Fond of praise or adula-
(ସ୍ତୁତିପ୍ରିୟା—ସ୍ତ୍ରୀ) (ସ୍ତୁତିପ୍ରିୟତା—ବି) tion.

ସ୍ତୁତି ବାକ୍ୟ (ବାଣୀ; ବଚନ)—ସ. ବି—ପ୍ରଶଂସାବାକ୍ୟ—
Stuti bākya (bāṇī; bachana) Eulogy; laudatory expression.

ସ୍ତୁତି ବାଦ—ସ. ବି ( ସ୍ତୁତି=ସ୍ତବ+ବାଦ=ବାକ୍ୟ )—୧ ।
Stuti bāda ପ୍ରଶଂସାବାଦ; ପ୍ରଶଂସାସୂଚକ ବାକ୍ୟ; ଗୁଣଗାନ—1. Eulogy; panegyric. ୨ । ଚାଟୁବାକ୍ୟ—2. Flattery.

ସ୍ତୁତିବାଦକ—ସଂ. ବିଣ. ପୁଂ (ସ୍ତୁତି+ବଦ୍ ଧାତୁ+କର୍ତ୍ତୃ. ଅକ)—୧ ।
Stuti bādaka ପ୍ରଶଂସାକାରୀ—1. Praising. ୨ ।
( ସ୍ତୁତିବାଦିକା—ସ୍ତ୍ରୀ ) ଚାଟୁକାରୀ—2. Flattering.

ସ୍ତୁତି ବ୍ରତ—ସଂ. ବି. ପୁଂ ( ସ୍ତୁତି ଅଟେ ବ୍ରତ ଯାହାର, ବହୁବ୍ରୀହି )—
Stuti brata ସ୍ତୁତିପାଠକ; ଭାଟ—Panegyrist.

ସ୍ତୁତ୍ୟ—ସଂ. ବିଣ (ସ୍ତୁ ଧାତୁ+କର୍ମ. ଯ)—ସ୍ତବର ଯୋଗ୍ୟ; ସ୍ତବନୀୟ;
Stutya ପ୍ରଶଂସନୀୟ—Deserving praise.

ସ୍ତୁନକ—ସଂ. ବି—ଛାଗ (ଭରତ)—
Stunaka Goat.

ସ୍ତୁନଭ୍ (ଧାତୁ)—ସଂ ( ସୌତ୍ର ଧାତୁ )—୧ । ରୋଧନ କରିବା—
Stunabh (root) 1. To restrain; to stop. ୨ । ଆବରଣ କରିବା—2. To cover; to enshroud.

ସ୍ତୁବିବା—ଦେ. କ୍ରି (ପଦ୍ୟ) (ସଂ. ସ୍ତୁ ଧାତୁ)—ସ୍ତୁତି ବା ସ୍ତବ କରିବା—
Stubibā To praise; to pray.

ସ୍ତୁବି—ସଂ. ବିଣ ( ସ୍ତୁ ଧାତୁ+କର୍ତ୍ତୃ ବି)—ବିଂ, ବି—୧ । ସ୍ତବକାରୀ;
Stubi ସ୍ତାବକ; ଉପାସକ; ପୂଜକ—
1. Worshipper. ୨ । (+ଅଧିକରଣ. ବି)—
ଯଜ୍ଞ (ହି. ଶ)—2. Vedic sacrifice.

ସ୍ତୁବେଯ୍ୟ—ସ. ବି. ପୁଂ—ଇନ୍ଦ୍ର (ହି. ଶ)—
Stubejya Indra.

ସ୍ତୁଭ (ଧାତୁ)—ସ—ରୋଧ କରିବା—
Stubh (root) To stop; to restrain.

ସ୍ତୁଭ—ସ. ବି (ପୁଂ)—୧ । ଛାଗ (ଭରତ)—1. Goat. ୨ । ଅଗ୍ନି-
Stubha ବିଶେଷ (ହି. ଶ)—2. A kind of fire.
(ସ୍ତୁଭୀ—ସ୍ତ୍ରୀ) (ସ୍ତୁଭକ—ଅନ୍ୟରୂପ)

ସ୍ତୁଷେୟ୍ୟ—ସଂ. ବିଣ—୧ । ସ୍ତୁତ୍ୟ; ପ୍ରଶଂସନୀୟ ( ହି. ଶ )—
Stushejya 1. Praiseworthy. ୨ । ଉତ୍ତମ (ହି.ଶ) 2. Good.

ସ୍ତୂପ୍ (ଧାତୁ)—ସଂ—ଗଦା କରିବା—
Stūp (root) To heap up.

ସ୍ତୂପ—ସଂ. ବି (ସ୍ତୂପ୍ ଧାତୁ+କର୍ମ. ଅ)—୧ । ମୃଦାଦି କୂଟ; ମାଟିର ବା
Stūpa ଅନ୍ୟ ଦ୍ରବ୍ୟର ଗଦା; ରାଶୀକୃତ ମୃତ୍ତିକାଦି (ଅମର)-
1. Heap of earth etc. ୨ । ମାଟିର ଢିପ—
2. A mound of earth. ୩ । ସଙ୍ଘାତ (ସଂକ୍ଷିପ୍ତସାର)-
3. Collection. ୪। ବଳ; ସୈନ୍ୟ—4. Army. ୫ । ନିଷ୍ପ୍ରୟୋଜନତା—5. Absence of use; uselessness. ୬ । ମାଟି, ପଥର, ଇଟା ଆଦିରେ ନିର୍ମିତ ଢିପ, ଯହିଁ ତଳେ ବୁଦ୍ଧଦେବଙ୍କର ବା କୌଣସି ବୌଦ୍ଧ ମହାତ୍ମାଙ୍କ ଅସ୍ଥି, ଦନ୍ତ, କେଶ ଆଦି ସ୍ମୃତିଚିହ୍ନ ରକ୍ଷିତ ହୋଇଥାଏ (ହି. )—6. A mound of earth or

masonry inside which is preserved some of the Buddhistic relics. ଦେ. ବି—
ସ୍ତୂପ ସ୍तूप ବୌଦ୍ଧମାନଙ୍କର ପୁରାତନ ମଠର ଭଗ୍ନାବଶେଷର ଅବସ୍ଥିତିସୂଚକ ମୃତ୍ତିକାର ଗଦା—A mound of earth indicating the existence of an old Buddhistic monastery at the site.

ସ୍ତୂପାକାର—ସଂ. ବିଣ (ବହୁବ୍ରୀହି, ସ୍ତୂପ ହୋଇଥିବା ଆକାର ଯାହାର)-
Stūpākāra ରାଶୀକୃତ—Heaped up.

ସ୍ତୂପୀକୃତ—ସଂ. ବିଣ [ସ୍ତୂପ+ଅଭୂତ ତଦ୍ଭାବେ ଚ୍ୱି (ଈ)+କୃତ]—
Stūpīkruta Heaped up.

ସ୍ତୂୟମାନ—ସଂ. ବିଣ. ପୁଂ (ସ୍ତୁ ଧାତୁ+କର୍ମ ଶାନଚ୍=ଆନ)—
Stūyamana ଯାହାଙ୍କୁ ସ୍ତବ କରି ଯାଉଅଛି—
(ସ୍ତୂୟମାନା—ସ୍ତ୍ରୀ) One who is being praised or eulogised or prayer to.

ସ୍ତୃ(ଧାତୁ)—ସଂ—୧ । ବିସ୍ତାରିବା—1. To spread out. ୨ ।
Stṛu (root) ଆଚ୍ଛାଦନ କରିବା—2. To spread over.

ସ୍ତୃକ୍ଷ୍(ଧାତୁ)—ସଂ—ଗତି କରିବା—
Stṛuksh (root) To move.

ସ୍ତୃତ- ସଂ ବି ( ସ୍ତୃ ଧାତୁ+କର୍ମ ତ )—୧ । ଆଚ୍ଛାଦିତ—
Struta 1. Spread over, covered.
୨ । ବିସ୍ତୃତ—2. Spread.

ସ୍ତୃତି—ସଂ. ଡ ( ସ୍ତୃ ଧାତୁ+ଭାବ ତି )—୧ । ବିସ୍ତୃତି—
Strụti 1. Spreading. ୨ । ଆଚ୍ଛାଦନ—2. Covering.

ସ୍ତୃନ୍(ଧାତୁ)—ସଂ—ପ୍ରୀତି ରକ୍ଷା କରିବା—
Strun(root) To preserve friendship.

ସ୍ତୃହ୍ (ଧାତୁ)—ସଂ—ବଧ କରିବା—
Strụh (root) To kill.

ସ୍ତୄ (ଧାତୁ)—ସଂ—ବିସ୍ତାରିବା—
Strū (root) To spread out.

ସ୍ତେନ୍ (ଧାତୁ)—ସଂ. ବି—ଚୋରି କରିବା—
Sten (root) To steal.

ସ୍ତେନ—ସଂ. ବି [ସ୍ତେନ୍ ଧାତୁ+ଭାବ ଅ]—୧ । ସ୍ତେୟ; ଚୌର୍ଯ୍ୟ;
Stena ଚୋରି ( ଭରତ ); ପରସ୍ୱାପହରଣ—
1. Stealing. ୨ । [ +କର୍ତ୍ତୃ ଅ ] ତସ୍କର; ଚୋର ( ଅମର )-2. Thief. ୩ । ପରଦ୍ରବ୍ୟାପହାରକ-3. Dishonest remover of other people's property. ୪ । ଦେବତାଙ୍କୁ ନିବେଦନ ନ କରି ଯେ ଅନ୍ନାଦି ଭୋଜନ କରେ (ଭଗବଦ୍ଗୀତା)—4. A person who eats food without offering it to God. । ୫ ଚୋର ନାମକ ଗନ୍ଧଦ୍ରବ୍ୟ—5. A medicinal scent.

ସ୍ତେପ୍ (ଧାତୁ) —ସ—୧ । କ୍ଷେପଣ କରିବା—1. To throw.
Step (root) ୨ । ଝରିବା—2. To ooze (Apte).

ସ୍ତେମ —ସ. ବି (ସ୍ତିମ୍ ଧାତୁ+ଭାବ. ଅ)—ଆର୍ଦ୍ରୀଭାବ—
Stema Moisture; wet condition.
[ ସ୍ତିମିତ—ବିଣ ].

ସ୍ତେୟ—ସଂ. ବି (ସ୍ତେନ୍ ଧାତୁ+ଭାବ. ଯ)—ଚୌର୍ଯ୍ୟ; ଚୋରି;
Steya ପରଦ୍ରବ୍ୟାପହରଣ—Stealing, ସ. ବିଣ (+କର୍ମ. ଯ)
—୧। ଅପହୃତ (ଦ୍ରବ୍ୟ) ( ବୃ. ଶ )—1. Stolen. ୨ ।
ଅପହରଣୀୟ—2. Capable of being stolen.

ସ୍ତେୟୀ—ସ. ବି. ପୁଂ (ସ୍ତେୟ+ଇନ୍ ୧ମା, ୧ବ)—୧ । ଚୋର—
Steyī 1. Thief. ୨ । ସ୍ୱର୍ଣ୍ଣକାର; ବଣିଆଁ (ଶବ୍ଦକଳ୍ପଦ୍ରୁମ)—
[ସ୍ତେୟିନୀ—ସ୍ତ୍ରୀ ] 2. Goldsmith. ୩ । ବନମୂଷିକ—3. Wild rat; mouse.

ସ୍ତୈନ—ସ. ବି (ସ୍ତେନ+ଭାବ.ଅ)—୧। ଚୌର୍ଯ୍ୟ, ଚୋରି(ଅମର, ଭରତ)
Staina —1. Stealing. ୨ । (ସ୍ତେନ୍ ଧାତୁ+କର୍ତ୍ତୃ ଅ)—
ଚୋର—2. Thief; robber (Apte).

ସ୍ତେନ ନିଗ୍ରହ—ସ, ବି (୬ଷ୍ଠୀ ତତ୍) — ୧। ଚୋରମାନଙ୍କୁ ଦଣ୍ଡ ଦେବା—
Stena nigraha 1. Punishment of thieves (Apte).
୨ । ଚୋରି ଅପରାଧ ବନ୍ଦ କରିବା—2. Suppression of theft (Apte).

ସ୍ତୈନ୍ୟ—ସ. ବି (ସ୍ତେନ+ସ୍ୱାର୍ଥେ.ଯ)—୧। ଚୋର (ଶବ୍ଦରତ୍ନାବଳୀ)—
Stainya 1. Thief. ୨ । ( +ଭାବ. ଅ ) ଚୌର୍ଯ୍ୟ—
2. Theft; robbery [Apte].

ସ୍ତୈମିତ୍ୟ—ସ. ବି (ସ୍ତିମିତ+ଭାବ. ଯ)—ଜଡ଼ତା (ବାଚସ୍ପତ୍ୟ)—
Staimitya Rigidity; numbness.

ସ୍ତୋକ—ସ. ବିଣ (ସ୍ତୁଚ୍ ଧାତୁ+କର୍ମ. ଅ)—୧ । ଅଳ୍ପ; ଈଷତ୍; ଅତି
Stoka ସାମାନ୍ୟ (ଅମର)—1. Little; slight. [ ଉ—
ମହା ସତ୍ତ୍ୱବନ୍ତ ଅଟନ୍ତି ଯେତେ ଲୋକ, ପଢ଼ିଲେ କ୍ଳେଶ
ତାଙ୍କୁ ମଣନ୍ତି ସେ ସ୍ତୋକ । କୃଷ୍ଣସିଂହ. ମହାଭାରତ.
ବନ ।] ୨ । କ୍ଷୁଦ୍ର—2. Short (Apte). ୩ । ଅଳ୍ପ-
ସଂଖ୍ୟକ—3. Few (Apte). ୪ । ନୀଚ—4. Low; abject (Apte). ସ. କ୍ରି. ବିଣ—ଅଳ୍ପେ ଅଳ୍ପେ—
Little by little. ବି-୧ । ଚାତକ ପକ୍ଷୀ (ମେଦିନୀ)—
1. The pied-crested coccyster. ୨ । ଜଳବିନ୍ଦୁ
(ଶବ୍ଦକଳ୍ପଦ୍ରୁମ)—2. A drop of water. ୩ । ଟିକିଏ
ମାତ୍ର—3. A little (Apte).

ସ୍ତୋକକ—ସ. ବି (ସ୍ତୋକ+ସ୍ୱାର୍ଥେ, କ)—ଚାତକ ପକ୍ଷୀ—
Stokaka The pied-crested coccyster bird.

ସ୍ତୋକ କାୟ—ସ.ବିଣ, ପୁଂ [ବହୁବ୍ରୀହି]—କ୍ଷୁଦ୍ର ଶରୀରବିଶିଷ୍ଟ, ଗେଡ଼ା—
Stoka kāya Short-bodied; dwarfish.
[ସ୍ତୋକକାୟା—ସ୍ତ୍ରୀ] [ସ୍ତୋକ କାୟତା—ବି]

ସ୍ତୋକକୃଷ୍ଣ—ଦେ. ବି—ଗୋପପୁରରେ ଥିବା କୃଷ୍ଣଙ୍କର ସଙ୍ଗାତ—[ଦ୍ର—
Stokakṛushṇa ମଥୁରାଗମନବେଳେ ଏହାଙ୍କ ହସ୍ତରେ କୃଷ୍ଣ ବଂଶୀ
ସ୍ତୋକକୃଷ୍ଣ ଦେଇ ଯାଇଥିଲେ ।]—One of the playmates
स्तोककृष्ण of Śrīkṛushṇa in Gopapura. [ ଉ—

ସୁସରଲେ ସ୍ତୋକକୃଷ୍ଣ, ଜାଣିଲ୍ପ ପ୍ରଭୁଙ୍କ ମନ, ମିଳଲ୍ଲ ଆସି ବହନ, ଭୁଞ୍ଜନ୍ତ ହୋଇ । ପ୍ରାଚୀ• ରହସ୍ୟମଞ୍ଜରୀ ।]

ସ୍ତୋକ ବାକ୍ୟ—ବେ. ବ (ସଂ. ସ୍ତୋକ; ସ୍ତୋମ=ସ୍ତବ; ସଂ. ସ୍ତାବକ)—
Stoka bākya ୧ । ପ୍ରଶଂସାବାଚକ ବା ତୋଷାମଦିଆ କଥା—
स्तोकवाक्य 1. Flattering words. ୨ । ଭୁଲଣିଆ କଥା—
खुसामदी बात 2. Inveigling words.

ସ୍ତୋକ ମାତ୍ର—ବେ. ବ ଓ ବଣ—ସାମାନ୍ୟ ମାତ୍ର; ଥୋଡ଼ାଏ—
Stoka mātra A little.
सामान्यमात्र थोड़ासा

ସ୍ତୋକ ରଟ—ସଂ. ବ (୬ଷ୍ଠୀ ତତ୍)—ଶୃତକ ଧ୍ୱନି—
Stoka raṭa The twitter of the bird coccyster.

ସ୍ତୋତକ—ସଂ. ବ—୧ । ଶୃତକ (ହ୍ରୁ ଶ)—1. Coccyster bird.
Stotaka ୨ । ବସ୍ତନାଗ ବିଷ (ହ୍ରୁ. ଶ)—
2. A kind of poison.

ସ୍ତୋତବ୍ୟ—ସଂ. ବ (ସ୍ତୁ. ଧାତୁ+କର୍ମ. ତବ୍ୟ)—ସ୍ତୁତ୍ୟ; ସ୍ତବନୀୟ—
Stotabya Fit to be prayed to.

ସ୍ତୋତା—ସଂ. ବଣ. ପୁଂ (ସ୍ତୁ. ଧାତୁ+କର୍ତ୍ତୃ. ତୃ ୧ମା. ୧ବ)—ସ୍ତୁତିକାରକ; ସ୍ତବକାରକ—Praying; eulogising.
Stotā
(ସ୍ତୋତ୍ରୀ—ସ୍ତ୍ରୀ) ବ—ସହସ୍ରନାମୋକ୍ତ ବିଷ୍ଣୁଙ୍କ ନାମ—
A name of Bishṇu.

ସ୍ତୋତ୍ର—ସଂ. ବ (ସ୍ତୁ ଧାତୁ+ଭାବ ବା କରଣ ତ୍ର)—୧। ସ୍ତୁତ (ଅମର)—
Stotra 1. Prayer; eulogy. ୨ । ଦେବୋଦ୍ଦେଶ୍ୟରେ ପଠିତ ସ୍ତବ—2. Hymn; prayer to a Deity.
[ ଦ୍ର—ମତ୍ସ୍ୟପୁରାଣରେ ସ୍ତୋତ୍ରମାନଙ୍କୁ ଚାରି ଶ୍ରେଣୀରେ ବିଭକ୍ତ କରା ଯାଇଅଛି :— ଦ୍ରବ୍ୟ ସ୍ତୋତ୍ର, କର୍ମ ସ୍ତୋତ୍ର, ବିଧି ସ୍ତୋତ୍ର ଓ ଅଭିଜନ ସ୍ତୋତ୍ର । ]

ସ୍ତୋତ୍ର ପାଠ—ସଂ. ବ (ଷଷ୍ଠୀ ତତ୍)—ସ୍ତବର ଆବୃତ୍ତି—
Stotra pāṭha Recital of a hymn.

ସ୍ତୋତ୍ର ପାଠକ—ସଂ. ବ. ପୁଂ—ଯେ ସ୍ତବପାଠ କରେ—
Stotra pāṭhaka Reciter of hymn.
( ସ୍ତୋତ୍ରପାଠିକା—ସ୍ତ୍ରୀ )

ସ୍ତୋତ୍ର ପ୍ରଣେତା—ସଂ.ବ.ପୁଂ (୬ଷ୍ଠୀ ତତ୍)—ଯେ ସ୍ତବ ରଚନା କରନ୍ତି—
Stotra praṇetā The composer of a hymn.
(ସ୍ତୋତ୍ରରଚକ, ସ୍ତୋତ୍ର ରଚୟିତା—ଅନ୍ୟରୂପ) ( ସ୍ତୋତ୍ରପ୍ରଣେତ୍ରୀ, ସ୍ତୋତ୍ର ରଚକା, ସ୍ତୋତ୍ର ରଚୟିତ୍ରୀ—ସ୍ତ୍ରୀ )

ସ୍ତୋତ୍ର ରଚନା—ସଂ. ବ (୬ଷ୍ଠୀ ତତ୍)—ସ୍ତୁତି ପ୍ରଣୟନ—
Stotra rachanā The composing of hymn.

ସ୍ତୋତ୍ରି(ତ୍ରୀ)ୟ—ସଂ. ବଣ—ସ୍ତୋତ୍ର ସମ୍ବନ୍ଧୀୟ ( ହ୍ରୁ. ଶ )
Stotri(trī)ya Relating to hymn or prayer.

ସ୍ତୋଭ—ସଂ. ବ ( ସ୍ତୁଭ୍ ଧାତୁ+ଭାବ ଅ )—୧ । ସ୍ତମ୍ଭନ ( ଦେଖ )
Stobha ( ହେମଚନ୍ଦ୍ର )—1. Stambhana ( See )
( ସ୍ତୋଭନ—ବଣ ) ୨ । ହେଳନ; ଅଗୌରବ ( ହେମଚନ୍ଦ୍ର )—
2. Slighting. ୩ । ବାଧାଦାନ—3. Obstructing; restraining. ୪ । ସ୍ତବ—4. Hymn.
୫ । ସାମବେଦୀୟ ବର୍ଣ୍ଣବିଶେଷ; ଗୀତାଳାପ ପୂରଣାର୍ଥ କ୍ରୁଅର୍ଥକ ଶବ୍ଦ ବା ଅକ୍ଷର—5. Any meaningless word or letter added to fill up a song ( a part of the Sāmabeda ). ୬ । ଉଦ୍‌ଘଟ୍ଟଣ (ହ୍ରୁ. ଶ )—6. Abusing.

ସ୍ତୋମ୍ ( ଧାତୁ )—ପ—ଶ୍ଳାଘା କରିବା—
Stom ( root ) To praise; to eulogise.

ସ୍ତୋମ—ସଂ. ବ (ସ୍ତୋମ୍ ଧାତୁ+କର୍ମ. ଅ)—୧ । ରାଶି; ସମୂହ (ଅମର)
Stoma —1. Multitude; heap. [ ଦ୍ର—ଦ୍ଭେଦନ କଲେ ଧ୍ୱନ୍ତସ୍ତୋମ—ଭଞ୍ଜ. ବୈଦେହୀଶବିଳାସ । ] ୨ । ଯଜ୍ଞ (ହେମଚନ୍ଦ୍ର)—2. Vedic sacrifice. ୩ । (+ଭାବ-ଅ) —ସ୍ତବ; ସ୍ତୁତି (ଶବ୍ଦକଳ୍ପଦ୍ରୁମ)—3. Praise; hymn. ୪ । (କର୍ମ. ଅ) ଧନ ( ଶବ୍ଦକଳ୍ପଦ୍ରୁମ )—4. Riches. ୫ । ମସ୍ତକ ( ଶବ୍ଦକଳ୍ପଦ୍ରୁମ )—5. Head. ୬ । ଶସ୍ୟ (ଶବ୍ଦକଳ୍ପଦ୍ରୁମ)—6. Grain. ୭ । ଲୌହାଗ୍ର ଦଣ୍ଡ—7. A rod with an iron top. ୮ । ଭୂଡିକ; ଗୃହ ଆଦିର ଭଡ଼ା ( ଶବ୍ଦକଳ୍ପଦ୍ରୁମ )—8. Rent for occupation of a property. ୯ । ଦଶ ଧନୁଶ୍ରୁର ବା ୪୦ ହାତର ଏକ ମାପ ( ହ୍ରୁ. ଶ )—9. A standard of linear measure. ୧୦ । ଯଜ୍ଞକାରୀ ବ୍ୟକ୍ତି ( ହ୍ରୁ. ଶ —10. The performer of a sacrifice. ବଣ—୧ । ନତ—1. Bent. ୨ । ବକ୍ର—
2. Awry.

ସ୍ତୋମ୍ୟ—ସଂ. ବଣ (ସ୍ତୋମ୍ ଧାତୁ+କର୍ମ ଯ)—ସ୍ତୁତ୍ୟ; ସ୍ତୁତିର ଯୋଗ୍ୟ
Stomya ( ହ୍ରୁ. ଶ )—Fit to be prayed to.

ସ୍ତୌପିକ—ସଂ. ବ ( ସ୍ତୂପ+ଇକ )—୧ । ବୌଦ୍ଧ ସ୍ତୂପ ମଧ୍ୟରେ
Staupika ରକ୍ଷିତ ଅସ୍ଥି, କେଶ ଆଦି ସ୍ମୃତିଚିହ୍ନ ( ହ୍ରୁ. ଶ )—
1. Mementoes or relics preserved inside Buddhist Stūpas. ୨ । ଜୈନଯତିଙ୍କ ପାଖରେ ରଖାଯିବା ମାର୍ଜନୀ ( ହ୍ରୁ. ଶ )—
2. A duster kept near a Jaina ascetic.

ସ୍ତ୍ୟାନ—ସଂ. ବଣ—(ସ୍ତ୍ୟୈ ଧାତୁ=ଶବ୍ଦ କରିବା+କର୍ତ୍ତୃ. ତ)—୧ । ଧ୍ୱନିକାରକ ( ମୁଗ୍ଧବୋଧ )—1. Making a sound.
Styāna
୨ । ସଂହତକର୍ତ୍ତା—2. Heaping up; gathering together. ୩ । ( +କର୍ମ ତ ) ନିବିଡ଼; ଘନ—3. Dense. ୪ । ସଂହତ—4. Heaped up. ୫ । ମିଳିତ—5 Joined together; mixed up. ୬ । ଅଶ୍ୟାନ; ଶୁଷ୍କ ଓ ଚଟଚଟିଆ—6. Dry & sticky; resinous. ୭ । ମସୃଣ; ସ୍ନିଗ୍ଧ—7. Oily; smooth. ୮ । ସ୍ଥୂଳ—8. Thick. ୯ । ଧ୍ୱନିତ; ଶବ୍ଦିତ—9. Echoed; sounded. ବ—୧ । (+ଭାବ. ତ) ଶବ୍ଦ—1. Sound. ୨ । ନିବିଡ଼ତ୍ୱ (ବିଶ୍ୱ. ମେଦିନୀ)—2. Density. ୩ । ଘନତ୍ୱ—3. Thickness.

୪ । ଅଳସ୍ୟ—4. Idleness. ୫ । ପ୍ରତିଧ୍ୱନି—
5. Echo. ୬ । ଅମୃତ ( ହ୍ର, ଶ )—6. Nectar.

**ସ୍ତ୍ୟାୟନ**—ସଂ. ବି ( ସ୍ତ୍ୟୈ ଧାତୁ+କର୍ତ୍ତୃ. ଅନ )—ଜନସମୂହ (ହ ଶ)—
Styāyana Crowd.

**ସ୍ତ୍ୟେନ**—ସଂ. ବି (ସ୍ତ୍ୟେନ୍ ଧାତୁ+କର୍ତ୍ତୃ. ଅ )—୧। ଚୋର; ତସ୍କର (ହ
Styena ଶ )—1. Thief. ୨ । ଅମୃତ ( ହ୍ର. ଶ )—
2. Nectar.

**ସ୍ତ୍ୟୈ (ଧାତୁ)**—ସଂ—୧ । ଶବ୍ଦ କରିବା—1. To make a sound.
Styai ( root ) ୨ । ଗଦା କରିବା—2. To heap up.

**ସ୍ତ୍ୟୈନ**—ସଂ. ବି ( ସ୍ତ୍ୟୈନ ଧାତୁ+କର୍ତ୍ତୃ ଅ )—୧ । ଚୋର ( ଉଣାଦି
Styaina କୋଷ )—1. Thief. ସଂ. ବିଣ—ଅଳ୍ପ (ହ ଶ)—
Little.

**ସ୍ତ୍ରିୟମ୍ମନ୍ୟ**—ସଂ. ବିଣ. ପୁଂ (ସ୍ତ୍ରିୟଂ=ସ୍ତ୍ରୀକୁ+ମନ ଧାତୁ+କର୍ତ୍ତୃ.ଯ)—
Striyammanya ଯେଉଁ ପୁରୁଷ ଆପଣାକୁ ସ୍ତ୍ରୀ ବୋଲି ଜ୍ଞାନ କରେ
(ହ୍ର. ଶ )—( a male ) Thinking himself to
be a female.

**ସ୍ତ୍ରୀ**—ସଂ. ବି. ସ୍ତ୍ରୀ ( ସ୍ତ୍ୟୈ ଧାତୁ+କର୍ମ ର+ସ୍ତ୍ରୀ ଈ )—୧ । ନାରୀ;
Strī ପୁରୁଷର ବିପରୀତ ଲିଙ୍ଗ ଓ ଲକ୍ଷଣ ( ସ୍ତନ, ଯୋନ୍ୟାଦି )
( ପୁରୁଷ—ବିପରୀତ ) ବିଶିଷ୍ଟ ବ୍ୟକ୍ତି—1. Woman. ୨ ।
ପୁରୁଷର ବିପରୀତ ଜାତୀୟ ଜୀବ—2. Female animal.
୩ । ଭାର୍ଯ୍ୟା; ପତ୍ନୀ—3. Wife. [ ଦ୍ର—ସ୍ତ୍ରୀ ଶବ୍ଦର
ପର୍ଯ୍ୟାୟ—ଯୋଷିତ୍, ସୀମନ୍ତିନୀ, ବଧୂ, ପ୍ରତୀପଦର୍ଶିନୀ, ବାମା,
ବନିତା, ମହିଳା, ସ୍ତ୍ରୀ, ରମା, ଜନି, ଜନୀ, ଯୋଷିତା,
ଅବଳା, ମହେଳିକା, ମହେଳା, ଶର୍ବରୀ, ସିନ୍ଦୂରତିଲକା,
ସୁଭ୍ରୂ, ସୁନୟନା, ବାମଦୃଶ୍, ଅଙ୍ଗନା, ଲଲନା, କାନ୍ତା,
ପୁରନ୍ଧ୍ରୀ, କଳବର୍ଣ୍ଣିନୀ, ସୁତନୁ, ତନ୍ୱୀ, ତନୁ, କାମିନୀ,
ଭାମିନୀ, ରମଣୀ, କୁରଙ୍ଗନୟନା, ଭୀରୁ, ଭାବିନୀ
ବିଳାସିନୀ, ନିତମ୍ବିନୀ, ମତ୍ତକାଶିନୀ, ସୁନେତ୍ରା, ପ୍ରମଦା,
ଅଶ୍ରୁଭଗ୍ନ, ଲଳନା, ବାସିତା, ଭାମିନୀ, ବରାରୋହା, କଟାକ୍ଷୀ,
ଜନିତା, ବଧୂ, ଶ୍ୟାମା, ସୁରୁବର୍ଦ୍ଧନା ।

କାମଶାସ୍ତ୍ରରେ ସ୍ତ୍ରୀମାନଙ୍କ ୪ ଶ୍ରେଣୀରେ ବିଭକ୍ତ
କରାଯାଇଅଛି ।

୧ । ପଦ୍ମିନୀ :—

ଭବତି କମଲନେତ୍ରା, ନାସିକା କ୍ଷୁଦ୍ରରନ୍ଧ୍ରା
ଅବିରଳକୁଚଯୁଗ୍ମା, ଦୀର୍ଘକେଶୀ, କୃଶାଙ୍ଗୀ ।
ମୃଦୁବଚନ ସୁଶୀଳା, ନୃତ୍ୟଗୀତାନୁରକ୍ତା
ସକଳତନୁସୁବେଶା ପଦ୍ମିନୀ ପଦ୍ମଗନ୍ଧା ।

ପଦ୍ମିନୀ—ପଦ୍ମଗନ୍ଧା; ଶଶକଜାତୀୟ ପୁରୁଷ ଏହାଙ୍କର
ଯୋଗ୍ୟ ।

୨ । ଚିତ୍ରିଣୀ :—

ଭବତି ରତିରସଜ୍ଞା ନାତିଖର୍ବା ନ ଦୀର୍ଘା
ତିଲକୁସୁମସୁନାସା ସ୍ନିଗ୍ଧଦେହୋତ୍ପଳାକ୍ଷୀ ।
କଠିନ ଘନକୁଚାଢ୍ୟା ସୁନ୍ଦରୀ ସା ସୁଶୀଳା
ସକଳ ଗୁଣବିଚିତ୍ରା ଚିତ୍ରିଣୀ ଚିତ୍ରବକ୍ତ୍ରା ।

ଚିତ୍ରିଣୀ—ମୀନଗନ୍ଧା, ମୃଗଜାତୀୟ ପୁରୁଷ ଏହାଙ୍କ
ଯୋଗ୍ୟ ।'

୩ । ଶଙ୍ଖିନୀ :—

ଦୀର୍ଘା ସୁଦୀର୍ଘନୟନା ବରସୁନ୍ଦରୀ ଯା
କାମୋପଭୋଗରସିକା ଗୁଣଶୀଳଯୁକ୍ତା ।
ରେଖାତ୍ରୟେଣ ଚ ବିଭୂଷିତକଣ୍ଠଦେଶା
ସମ୍ଭୋଗକେଳିରସିକା କିଲ ଶଙ୍ଖିନୀ ସା ।

ଶଙ୍ଖିନୀ—କ୍ଷାରଗନ୍ଧା; ବୃଷଭଜାତୀୟ ପୁରୁଷ ଏହାଙ୍କର
ଯୋଗ୍ୟ ।

୪ । ହସ୍ତିନୀ :—

ସ୍ଥୂଳାଧରା ସ୍ଥୂଳନିତମ୍ବବିମ୍ବା
ସ୍ଥୂଳାଙ୍ଗୁଳି ସ୍ଥୂଳକୁଚା ସୁଶୀଳା ।
କାମୋତ୍ସୁକା ଗାଢ଼ରତିପ୍ରିୟା ଚ
ନିତମ୍ବଖର୍ବା ଖଲୁ ହସ୍ତିନୀ ସ୍ୟାତ୍ ।

ହସ୍ତିନୀ—ମଦଗନ୍ଧା; ଅଶ୍ୱଜାତୀୟ ପୁରୁଷ ଏହାଙ୍କର
ଯୋଗ୍ୟ ।

ସ୍ତ୍ରୀମାନେ ଋତୁମତୀ ହେବା ପୂର୍ବେ ବାଳିକା ଓ ଋତୁମତୀ
ହେବାଠାରୁ ୧୬ ବର୍ଷ ପର୍ଯ୍ୟନ୍ତ ବାଳା, ୩୦ ବର୍ଷ ପର୍ଯ୍ୟନ୍ତ
ତରୁଣୀ, ୫୫ ବର୍ଷ ପର୍ଯ୍ୟନ୍ତ ପ୍ରୌଢ଼ା ଓ ତତ୍ପରେ
ବୃଦ୍ଧା ହୁଅନ୍ତି ।]

(ସାଙ୍କେତିକ)—ସ୍ତ୍ରୀଲିଙ୍ଗାନ୍ତ ଶବ୍ଦର ସାଙ୍କେତିକ ଚିହ୍ନ—
Abbreviation for words of female
gender.

**ସ୍ତ୍ରୀଆଚାର**—ଦେ. ବି—ସ୍ତ୍ରୀଲୋକମାନଙ୍କ ଦ୍ୱାରା ବିବାହକାଳୀନ ମଙ୍ଗଳାର୍ଥ
Striāchāra ଅନୁଷ୍ଠାନ ବିଶେଷ—(ଯଥା—କୁକର୍ମ ବେଦୀରେ
ସ୍ତ୍ରୀଆଚାର ଜୋଳିକୁ ଅଳତାସିନ୍ଦୂର ଦେବା, ବରକନ୍ୟାଙ୍କୁ
ସ୍ତ୍ରୀଆଚାର କୁଆ ଖେଳାଇବା ଇତ୍ୟାଦି)—Some rites per-
formed by females in the course of a
marriage ceremony.

**ସ୍ତ୍ରୀକାମ**—ସଂ. ବିଣ. ପୁଂ (ସ୍ତ୍ରୀ+କମ. ଧାତୁ+କର୍ତ୍ତୃ. ଅ)—ସ୍ତ୍ରୀକୁ
Strikāma କାମନା ବା ଇଚ୍ଛା କରୁଥିବା (ବ୍ୟକ୍ତି)—
(A person) Desiring to get a woman.

**ସ୍ତ୍ରୀକୋଶ**—ସଂ. ବି—ଖଡ୍ଗ (ହ. ଶ)
Strikosa Sword.

**ସ୍ତ୍ରୀ କ୍ଷୀର**—ସଂ. ବି—ସ୍ତ୍ରୀଙ୍କ ସ୍ତନରୁ ଉତ୍ପନ୍ନ ଦୁଗ୍ଧ (ହ. ଶ)—
Strī kshīra Milk got from the breast of a
woman.

**ସ୍ତ୍ରୀ ଗବୀ**—ସଂ. ବି—ଧେନୁ; ଗାଈ—
Strī gabi Cow.

**ସ୍ତ୍ରୀ ଗମନ**—ସଂ. ବି—ସ୍ତ୍ରୀସଂସର୍ଗ; ମୈଥୁନ—
Strī gamana Copulation with a female.

**ସ୍ତ୍ରୀ ଗୁରୁ**—ସଂ. ବି—ସାଧ୍ୱୀ ଦୀକ୍ଷାଦାତ୍ରୀ—
Strī guru A preceptress.
[ଦ୍ର—ତନ୍ତ୍ରରେ ସଦାଚାରିଣୀ ଓ ଶାସ୍ତ୍ରଜ୍ଞା ସ୍ତ୍ରୀଗୁରୁଙ୍କଠାରୁ ମନ୍ତ୍ର
ଗ୍ରହଣ କରିବାର ବିଧାନ ଅଛି—ହ୍ର. ଶ ।]

ସ୍ତ୍ରୀ ଗ୍ରହ—ସଂ. ବ—ଜ୍ୟୋତିଷଶାସ୍ତ୍ରରେ ବୁଧ, ଚନ୍ଦ୍ର ଓ ଶୁକ୍ର—The
Stri graha planets mercury, moon and venus.
[ଦ୍ର—ଜ୍ୟୋତିଷମତରେ ବୁଧ, ଚନ୍ଦ୍ର ଓ ଶୁକ୍ର ସ୍ତ୍ରୀଗ୍ରହ, ଜାତକରେ ଲଗ୍ନର ପଞ୍ଚମ ସ୍ଥାନରେ ସ୍ତ୍ରୀଗ୍ରହଙ୍କ ଅବସ୍ଥିତି ବା ଦୃଷ୍ଟି ଥିଲେ ସ୍ତ୍ରୀସନ୍ତାନ ହୁଏ ଓ ପୁରୁଷର ଲଗ୍ନରେ ସ୍ତ୍ରୀଗ୍ରହ ଥିଲେ ଉକ୍ତ ପୁରୁଷ ସ୍ତ୍ରୀସ୍ୱଭାବବିଶିଷ୍ଟ ହୁଏ—ହ. ଶ ।]

ସ୍ତ୍ରୀ ଘୋଷ—ସଂ. ବ (ବହୁବ୍ରୀହି)—ପ୍ରତ୍ୟୁଷ (ଶବ୍ଦକଳ୍ପଦ୍ରୁମ)—
Stri ghosha Dawn; early morning.

ସ୍ତ୍ରୀ ଚଞ୍ଚଳ—ସଂ. ବିଣ. ପୁ: (୭ମୀ ତତ୍) —କାମୀ; ଲମ୍ପଟ (ହ. ଶ)
Stri chanchala Lecherous.

ସ୍ତ୍ରୀ ଚିତ୍ତହାରୀ—ସଂ. ବ—ଶୋଭାଞ୍ଜନ (ଜିଙ୍କାଣ୍ଡ ଶେଷ)—
Stri chittahari The Indian horse radish.
ସଂ. ବିଣ. ପୁଂ (ସ୍ତ୍ରୀଚିତ୍ତହାରକ)—ସ୍ତ୍ରୀମାନଙ୍କ ଚିତ୍ତହରଣକାରୀ—Charming females.

ସ୍ତ୍ରୀ ଚିହ୍ନ—ସଂ. ବ (୬ଷ୍ଠୀ ତତ୍)—୧ । ଯୋନି; ଭଗ—1 Female
Stri chihna organ. ୨ । ନାରୀର ଲକ୍ଷଣ—2. The signs of a female.

ସ୍ତ୍ରୀ ଚୌର—ସଂ. ବ. ପୁଂ—୧ । କାମୁକ; ରମଣୀହରଣକ—1. A lascivi-
Stri chaura ous person. ୨ । ପରସ୍ତ୍ରୀ ଗମନକାରୀ—(ସ୍ତ୍ରୀଚୌର—ଦେ. ରୂପ) 2. Adulterer. ୩ । ପରସ୍ତ୍ରୀ ଅପହାରକ—3. Ravisher of another's wife.

ସ୍ତ୍ରୀ ଚୌର୍ଯ୍ୟ—ସଂ. ବ—୧ । ସ୍ତ୍ରୀକୁ ବଳପୂର୍ବକ ଅପହରଣ—1. Kid-
Stri chaurjya napping of a woman. ୨ । ପର ସ୍ତ୍ରୀ ଗମନ—2. Adultery. ୩ । ସ୍ତ୍ରୀକୁ ବଳପୂର୍ବକ ଗମନ—3. Rape.

ସ୍ତ୍ରୀ ଜନନୀ—ସଂ. ବ. ସ୍ତ୍ରୀ—କେବଳ କନ୍ୟାପ୍ରସବକାରୀ ସ୍ତ୍ରୀ (ମନୁ)—
Stri janani A woman bringing forth female children only; the mother of female children only.

ସ୍ତ୍ରୀ ଜାତି—ସଂ. ବ—ନାରୀ ସମ୍ପ୍ରଦାୟ; ପୃଥିବୀର ନାରୀଗଣ—
stri jāti The female world; the women of the world.

ସ୍ତ୍ରୀ ଜିତ(ନିର୍ଜିତ, ବିଜିତ)—ସ. ବିଣ. ପୁଂ (ସ୍ତ୍ରୀଦ୍ୱାରା ଜିତପୁରୁଷ)—୧. ସ୍ତ୍ରୀ-
Stri jita (nirjita, bijita) ବଶୀଭୂତ—1. Hen-pecked. ୨ । ସ୍ତ୍ରୈଣ—2. Excessively fond of women; effeminate.

ସ୍ତ୍ରୀତା(ତ୍ୱ)—ସ. ବ (ସ୍ତ୍ରୀ+ଭାବାର୍ଥେ ତା, ତ୍ୱ)—୧ । ସ୍ତ୍ରୀର ଭାବ—
Stritā(twa) 1. The state of being a female; the characteristic qualities of a female. ୨ । ସ୍ତ୍ରୀଧର୍ମ (ଦେଖ)—2. Stridharma (See). ୩ । (ବ୍ୟାକରଣ) ସ୍ତ୍ରୀଲିଙ୍ଗସୂଚକ ପ୍ରତ୍ୟୟ (ହ. ଶ)—3. (grammar) A suffix denoting the feminine gender. [ଦ୍ର—ଯେଉଁ ଶବ୍ଦରେ ଏ ପ୍ରତ୍ୟୟ ଯୁକ୍ତ ହୁଏ ତାହା ସ୍ତ୍ରୀଲିଙ୍ଗ ହୁଏ—ହ. ଶ.]

ସ୍ତ୍ରୀତ୍ୱ ପ୍ରାପ୍ତି—ସ. ବ (୬ଷ୍ଠୀ ତତ୍)—ପ୍ରଥମ ରଜୋଦର୍ଶନ—The first
Stritwa prāpti menstruation of a woman.

ସ୍ତ୍ରୀ ଦେହାର୍ଦ୍ଧ—ସ. ବ (ପୁଂ) (ବହୁବ୍ରୀହି)—(ଯାହାଙ୍କ ଅର୍ଦ୍ଧ ଅଙ୍ଗରେ
Stri dehārddha ନାରୀ ଅଛନ୍ତି) ଶିବ (ହି. ଭ)—Siba.

ସ୍ତ୍ରୀ ଧନ—ସ. ବ (ହିନ୍ଦୁସ୍ମୃତି)—ସ୍ତ୍ରୀଙ୍କ ସ୍ୱତ୍ୱ ପ୍ରବର୍ତ୍ତିବା ଧନବିଶେଷ;
Stri dhana ସ୍ତ୍ରୀଙ୍କର ସ୍ୱତନ୍ତ୍ର ଧନ—A peculiar kind of property over which a woman has absolute control according to the Hindu law. [ଦ୍ର—ବିବାହକାଳରେ, ସ୍ୱାମି ଗୃହକୁ ଯିବା ସମୟରେ ଓ ସ୍ୱାମିଗୃହରେ ସ୍ତ୍ରୀ ନିଜର ଭାଇଙ୍କଠାରୁ ପିତାମାତାଙ୍କଠାରୁ, ସ୍ୱାମୀଙ୍କଠାରୁ, ଶାଶୁଶ୍ୱଶୁରଙ୍କଠାରୁ ଓ ବନ୍ଧୁମାନଙ୍କଠାରୁ ଉପହାରରୂପେ ପାଇବା ଧନ ବା ସମ୍ପତ୍ତିକୁ ଯୌତୁକ ବା ସ୍ତ୍ରୀ ଧନ ବୋଲଯାଏ । ସ୍ତ୍ରୀଙ୍କର ନିଜର ବ୍ୟବହାର ନିମନ୍ତେ ପିତା ଓ ସ୍ୱାମୀ ଆଦିଙ୍କ ପ୍ରଦତ୍ତ ଅଳଙ୍କାର ସ୍ତ୍ରୀଧନ । ବିବାହିତା କନ୍ୟା ପିତୃ ଗୃହରୁ ଓ ପତି ଗୃହରୁ ଯେଉଁ ଧନ ପାଏ ତାହା କନ୍ୟାର ସୌଦାୟିକ ବା ସ୍ୱତନ୍ତ୍ର ଧନ ଅଟେ । ସ୍ତ୍ରୀଧନରେ ସ୍ୱାମୀ, ପୁତ୍ର, ପିତା, ବା ଭ୍ରାତା ଅଧିକାରୀ ହୋଇ ପାରିବେ ନାହିଁ । ଏଥିରେ ପୁତ୍ରଙ୍କର ଓ କନ୍ୟାଙ୍କର କେବଳ ଅଧିକାର ଅଛି ।]

ସ୍ତ୍ରୀ ଧବ—ସଂ. ବ (୬ଷ୍ଠୀ ତତ୍)—ପୁରୁଷ—
Stri dhaba Male.

ସ୍ତ୍ରୀ ଧର୍ମ—ସ. ବ—୧। ସ୍ତ୍ରୀର ଋତୁ; ରଜୋ ଦର୍ଶନ—1. Menstrua-
Stri dharma tion. ୨ । ସ୍ତ୍ରୀ ହେବାର ଅବସ୍ଥା—2. Womanhood. (ଉ—ସେ ପୁଣି ରିଲା ନାମେ ପାଇଲେ ସ୍ତ୍ରୀ ଧର୍ମ—କୃଷ୍ଣସିଂହ ମହାଭାରତ ଆଦି ।) ୩ । ମୈଥୁନ (ହ. ଶ)--3. Copulation. ୪ । ସ୍ତ୍ରୀର କର୍ତ୍ତବ୍ୟ (ହ. ଶ)—4. The duties of a wife or a woman. ୫ । ସ୍ତ୍ରୀସମ୍ବନ୍ଧୀୟ ବିଧାନ (ହ. ଶ)—5. Rules regarding women.

ସ୍ତ୍ରୀ ଧର୍ମିଣୀ—ସଂ ବିଣ. ସ୍ତ୍ରୀ (ସ୍ତ୍ରୀ ଧର୍ମ+ଇନ୍+ଈ)—ଋତୁମତୀ—
Stri dharmini Menstruated.

ସ୍ତ୍ରୀ ଧୂର୍ତ୍ତ—ସଂ ବ. ପୁଂ—ଅସତ୍ ଉଦ୍ଦେଶ୍ୟରେ ସ୍ତ୍ରୀକୁ ଫୁସୁଲାଇବା
Stri dhūrtta ପୁରୁଷ (ହ. ଶ)—A man who entices females for evil purposes.

ସ୍ତ୍ରୀ ଧ୍ୱଜ—ସଂ. ବିଣ. ପୁଂ (ବହୁବ୍ରୀହି)—ସ୍ତ୍ରୀଚିହ୍ନବିଶିଷ୍ଟ (ହ. ଶ)—
Stri dhwaja Having female signs or signs like the female organ. ସଂ ବ—ହାତୀ (ହ. ଶ). Elephant.

ସ୍ତ୍ରୀ ନାମା—ସଂ ବିଣ (ବହୁବ୍ରୀହି; ସ୍ତ୍ରୀ+ନାମନ୍; ୧ମା ୧ବ)—
Stri nāmā ସ୍ତ୍ରୀନାମଧାରୀ; ସ୍ତ୍ରୀବାଚକ ନାମଧାରୀ—Having the name of a female.

ସ୍ତ୍ରୀ ନାୟକ—ସଂ. ବଣ (ବହୁବ୍ରୀହି)—ଯେଉଁ ଅନୁଷ୍ଠାନାଦରେ ସ୍ତ୍ରୀ ନେତ୍ରୀ ଅଛନ୍ତି—(a movement or institution) Led by a woman or women.
Strī nāyaka
( ସ୍ତ୍ରୀ ନାୟିକା – ଦେ· ରୂପ )

ସ୍ତ୍ରୀନାୟକତ୍ୱ(ତା)—ସଂ ବ—ଜଣେ ବା ବହୁ ସ୍ତ୍ରୀଙ୍କ ନେତୃତ୍ୱ—Leadership of a woman or women.
Strīnāyaktwa(tā)
[ସ୍ତ୍ରୀନେତୃତ୍ୱ(ତା)—ଅନ୍ୟରୂପ] [ସ୍ତ୍ରୀ ନାୟିକା—ସ୍ତ୍ରୀ]

ସ୍ତ୍ରୀ ନାୟିକା(ନେତ୍ରୀ)—ସଂ. ବ—ନେତୃତ୍ୱରେ ଅଧିଷ୍ଠିତା ସ୍ତ୍ରୀ—A woman installed as the leader.
Strī nāyikā(netrī)

ସ୍ତ୍ରୀ ନିବନ୍ଧନ—ସଂ ବ—ସ୍ତ୍ରୀମାନଙ୍କଦ୍ୱାରା କୃତ ଗୃହକର୍ମ (ହି. ଶ); ଘରେ ମାଈପଙ୍କ କରିବା ଅରନ୍ଧନ—Works performed by females in the household.
Strī nibandhana

ସ୍ତ୍ରୀ ପଣ୍ୟୋପଜୀବୀ—ସଂ. ବଣ ଓ ବ· ପୁଂ ( ସ୍ତ୍ରୀରୂପ ପଣ୍ୟଦ୍ୱାରା ଉପଜୀବୀ; ସ୍ତ୍ରୀପଣ୍ୟୋପଜୀବକ୍ ୧ମା. ୧ବ )—୧ । ସମ୍ଭୋଗାର୍ଥ ଅପଣା ସ୍ତ୍ରୀକୁ ପରପୁରୁଷଙ୍କୁ ଦେଇ ପର-ପୁରୁଷଙ୍କଠାରୁ ପ୍ରାପ୍ତଧନ ଯେ ଭୋଗ କରେ; ଭଡ଼ାଖିଆ—1. A person who lives on the earnings of his wife's adultery. ୨ । ବେଶ୍ୟାଙ୍କ ଅର୍ଜିତ ଦ୍ୱାରା ଜୀବିକା ନିର୍ବାହକାରୀ ବ୍ୟକ୍ତି (ହି. ଶ)—2. A person living on the earning of prostitutes.
Strī paṇyopajībī

ସ୍ତ୍ରୀପର—ସଂ. ବ. ପୁଂ ( ସ୍ତ୍ରୀ+ପର=ଅନୁରକ୍ତ; ୭ମୀ ତତ୍ )—୧ । ଷିଡ଼୍ଗ—1. Paramour; adulterer. ୨ । କାମୁକ ବ୍ୟକ୍ତି—2. A lecherous person. ସଂ. ବଣ. ପୁଂ—କାମୁକ; ଲମ୍ପଟ—Lecherous.
Strīpara

ସ୍ତ୍ରୀ ପୁଂ ଧର୍ମ—ସଂ ବ (ଦ୍ୱନ୍ଦ୍ୱ; ୬ଷ୍ଠୀ ତତ୍)—୧ । ସ୍ତ୍ରୀଙ୍କର ଓ ପୁରୁଷଙ୍କର ବ୍ୟବହାର—1. The conduct of men and women. ୨ । (ହିନ୍ଦୁସ୍ମୃତି) ମନୁସଂହିତା ଅଷ୍ଟମ ଓ ନବମ ଅଧ୍ୟାୟରେ ବର୍ଣ୍ଣିତ ଅଷ୍ଟାଦଶ ବିବାଦପଦାନ୍ତର୍ଗତ ବିବାଦମୀମାଂସା ଓ ନିରୂପଣବିଶେଷ—2. Mode of decision of dispute between and the status of man and woman as laid down by Manu.
Strī puṁ dharma

ସ୍ତ୍ରୀ ପୁଂସ—ଦେ· ବ ( ସଂ· ସ୍ତ୍ରୀପୁଂସୌ—ଦ୍ୱିବଚନ )—୧ । ଦମ୍ପତି ମିଥୁନ; ଦ୍ୱନ୍ଦ୍ୱ—1. A couple. ୨ । ପତିପତ୍ନୀ—2. Husband and wife.
Strī puṁsa
ସ୍ତ୍ରୀ ପୁରୁଷ स्त्रीपुरुष

ସ୍ତ୍ରୀ ପୁଂସ ଲକ୍ଷଣା—ସ. ବଣ· ସ୍ତ୍ରୀ – କେତେକ ସ୍ତ୍ରୀଲକ୍ଷଣ ( ଯଥା—ଯୋନି, ସ୍ତନ ) ଓ କେତେକ ପୁରୁଷ-ଲକ୍ଷଣ (ଯଥା—ଶ୍ମଶ୍ରୁ, ଅଣ୍ଡକୋଷ) ଯୁକ୍ତା (ସ୍ତ୍ରୀ;) ଯୋଷା—Hermaphrobite; (a person) exhibiting some male and female physical signs.
Strī puṁsa lakhaṇā

ସ୍ତ୍ରୀ ପୁର—ସ. ବ ( ୬ଷ୍ଠୀ ତତ୍ )—ଅନ୍ତଃପୁର ( ହି. ଶ )—Seraglio; harem.
Strī pura

ସ୍ତ୍ରୀ ପୁଷ୍ପ—ସଂ ବ—୧ । ( ୬ଷ୍ଠୀ ତତ୍ ) ଆର୍ତ୍ତବ; ରଜଃ—1. Menstrual flux. ୨ । ( ଉଦ୍ଭିଦ୍ ବିଜ୍ଞାନ ) ମାଈ ଫୁଲ; ଯେଉଁ ଫୁଲରୁ ଫଳ ହୁଏ—2. ( Botany ) A flower from which fruits grow.
Strī pushpa

ସ୍ତ୍ରୀ ପୂର୍ବ—ସ. ବଣ. ପୁଂ ( ବହୁବ୍ରୀହି )– ସ୍ତ୍ରୀଜିତ ( ଦେଖ )
Strī pūrba .Strījita ( See )

ସ୍ତ୍ରୀ ପ୍ରସଙ୍ଗ(ଭୋଗ)—ସ. ବ ( ୬ଷ୍ଠୀ ତତ୍ )—ସୁରତ; ରତି—Copulation.
Strī prasaṅga(bhoga)

ସ୍ତ୍ରୀ ପ୍ରିୟ—ସଂ. ବଣ. ପୁଂ ( ବହୁବ୍ରୀହି )—୧ । ନାରୀପ୍ରିୟ ( ଲୋକ )—1 (a person) Beloved by females.
Strī priya
ବ—( ୬ଷ୍ଠୀ ତତ୍ )—୧ । ନାରୀଙ୍କ ପ୍ରିୟ ଦ୍ରବ୍ୟ—1. Any article of which females are fond.
୨ । ଆମ୍ରବୃକ୍ଷ ( ଜିବାଣ୍ଡ ଶେଷ )—2. Mang o tree.

ସ୍ତ୍ରୀ ବନ୍ଧ—ସଂ. ବ ( ୬ଷ୍ଠୀ ତତ୍ )—ମୈଥୁନ ( ହି· ଶ )—Copulation.
Strī bandha

ସ୍ତ୍ରୀ ବଶ(ବିଧେୟ)—ସଂ. ବଣ. ପୁଂ—ସ୍ତ୍ରୀଜିତ; ସ୍ତ୍ରୈଣ—Doting on one's wife; excessively attached to one's wife; effeminate.
Strī baśa(bidheya)

ସ୍ତ୍ରୀ ବାର(ବାସର)—ସଂ· ବ—( ସୋମ, ବୁଧ ଓ ଶୁକ୍ର ସ୍ତ୍ରୀଗ୍ରହରୂପେ ଗଣ୍ୟ ହେଉଥିବାରୁ ) ସୋମବାର, ବୁଧବାର ଓ ଶୁକ୍ରବାର—Monday, Wednesday and Friday.
Strī bāra(bāsara)

ସ୍ତ୍ରୀ ବାସଃ—ସଂ ବ(ମ.ପ.ଲୋ)—ସ୍ତ୍ରୀ ସମ୍ଭୋଗ ପାଇଁ ଉପଯୁକ୍ତ ବସ୍ତ୍ର(ହି· ଶ)—Dress or cloth suitable for use during copulation.
Strī bāsaḥ

ସ୍ତ୍ରୀ ବିଷୟ – ସଂ. ବ ( ୬ଷ୍ଠୀ ତତ୍ ) – ସମ୍ଭୋଗ; ମୈଥୁନ (ହି· ଶ)—Copulation.
Strī bishaya

ସ୍ତ୍ରୀ ବୀର୍ଯ୍ୟ—ସଂ. ବ ( ୬ଷ୍ଠୀ ତତ୍ )—୧ । ନାରୀର ବଳ—1. The might or prowess of a woman. ୨ । ସ୍ତ୍ରୀର ରଜଃ—2. The menstrual flux of women.
Strī bīrjya

ସ୍ତ୍ରୀ ବ୍ୟଞ୍ଜନା—ସ·ବ(୬ଷ୍ଠୀ ତତ୍)—ସ୍ତ୍ରୀସୂଚକ ଚିହ୍ନ (ଯଥା—ସ୍ତନ,କୋମଳ ସ୍ୱର)(ହି.ଶ)—Signs indicating the possessor to be a female.
Strī byañjanā

ସ୍ତ୍ରୀ ବ୍ରଣ—ସଂ. ବ—ଭଗ; ଯୋନି ( ହି· ଶ )—The female organ.
Strī braṇa

ସ୍ତ୍ରୀ ବ୍ରତ—ସଂ. ବ—ଏକପତ୍ନୀ ବ୍ରତ; ସ୍ୱ ସ୍ତ୍ରୀପରାୟଣତା ( ହି. ଶ )—The vow of loving one's only wife.
Strī brata

ସ୍ତ୍ରୀ ଭୂଷଣ – ସଂ. ବ (୬ଷ୍ଠୀ ତତ୍)—୧ । ସ୍ତ୍ରୀଙ୍କ ପରିଧେୟ ଅଳଙ୍କାରାଦି—1. Ornaments for female wear. ୨ । କେତକୀଫୁଲ ( ହି. ଶ )—2. Pandanus Odoratissimus flower.
Strī bhūshaṇa

ସ୍ତ୍ରୀ ଭୋଗ—ସଂ. ବ ( ୬ଷ୍ଠୀ ତତ୍ )—ମୈଥୁନ (ହି. ଶ)—Copulation.
Strī bhoga

ସ୍ତ୍ରୀ ମନ୍ତ୍ର—ସଂ. ବ—ଯେଉଁ ମନ୍ତ୍ରର ଶେଷରେ 'ସ୍ୱାହା' ଥାଏ—An
Strī mantra esoteric formula having Swāhā in the end.

ସ୍ତ୍ରୀ ମହଲ(ଲା)—ଦେ. ବ—୧ । ନାରୀସମାଜ—1. The society of
Strī mahala(lā) women. ୨ । ଅନ୍ତଃପୁର—2. Harem.
স্ত্রীমহল स्त्री महल

ସ୍ତ୍ରୀ ମୁଖପ—ସଂ. ବ ( ସ୍ତ୍ରୀ ମୁଖ+ପା ଧାତୁ+କର୍ତ୍ତୃ. ଅ )—ବକୁଳ—
Strī mukhapa The Bakula tree and flower.

ସ୍ତ୍ରୀମୂର୍ତ୍ତି—ସଂ. ବ—ସ୍ତ୍ରୀଲୋକର ଆକୃତି—
Strī mūrtti The shape of a woman.

ସ୍ତ୍ରୀମ୍ମନ୍ୟ—ସଂ. ବଣ, ପୁଂ—ସ୍ତ୍ରୀଂମନ୍ୟ ( ଦେଖ )
Strimmanya Strimmanya (See)

ସ୍ତ୍ରୀ ରଞ୍ଜନ—ସଂ. ବ—ତାମ୍ବୂଲ (ଶବ୍ଦକଳ୍ପଦ୍ରୁମ)—
Strī rañjana Betel.

ସ୍ତ୍ରୀ ରତ୍ନ—ସଂ. ବ—୧ । ଉତ୍ତମା ସ୍ତ୍ରୀ—1.An excellent woman;
Strī ratna a paragon of beauty. ୨ । ଲକ୍ଷ୍ମୀ (ଭୂ. ଶ)—
2. Goddess Lakshmī.

ସ୍ତ୍ରୀ ରୋଗ—ସଂ ବ—ସ୍ତ୍ରୀମାନଙ୍କର ବଶିଷ୍ଟ ରୋଗ—Female
Strī roga diseases; diseases peculiar to females. (ଯଥା—ପ୍ରଦର, ସୁତିକାଦି, ଯୋନିବ୍ୟାପ, ସ୍ତନ୍ୟାଭାବ ।)

ସ୍ତ୍ରୀ ଲକ୍ଷଣ—ସଂ. ବ ( ୬ଷ୍ଠୀ ତତ୍ )—୧ । ସ୍ତ୍ରୀ ଚିହ୍ନ; ଯୋନି—
Strī lakshaṇa 1. Female organ. ୨ । ସ୍ତ୍ରୀଙ୍କର ବଶିଷ୍ଟ ଲକ୍ଷଣ—2. Female characteristics.

ସ୍ତ୍ରୀ ଲମ୍ପଟ(ଲୋଲ)—ସ. ବଣ. ପୁଂ (୭ମୀ ତତ୍)—୧ । କାମୁକ—
Strī lampaṭa ( lola ) 1. Lecherous.
(ସ୍ତ୍ରୀ ଲମ୍ପଟି, ସ୍ତ୍ରୀ ଲମ୍ପଟିଆ—ଦେ· ରୂପ) ୨ । ସର୍ବଦା ସ୍ତ୍ରୀସଙ୍ଗାଭିଳାଷୀ—
2. Always hankering after female company.

ସ୍ତ୍ରୀ ଲାଭ—ସ. ବ—( ପୁରୁଷ ପକ୍ଷରେ ) ଭାର୍ଯ୍ୟା ପ୍ରାପ୍ତି; ବିବାହ—
Strī lābha ( in the case of a man ) Marriage.

ସ୍ତ୍ରୀ ଲିଙ୍ଗ—ସ. ବ—୧ । ସ୍ତ୍ରୀ ଚିହ୍ନ; ଯୋନି—1. Female organ.
Strī linga ୨ । ବ୍ୟାକରଣଶାସ୍ତ୍ରୋକ୍ତ ସ୍ତ୍ରୀବାଚକ ଶବ୍ଦ—
2. (grammar) Female gender. ୩ । ସ୍ତ୍ରୀଜାତି—
3. The females. ( ଉ—ସ୍ତ୍ରୀଲିଙ୍ଗ ଅପରାଧ କଲେ, ପଣ୍ଡିତେ ନ ମାରନ୍ତି ଭଲେ—ଜଗନ୍ନାଥ ଭାଗବତ ।)

ସ୍ତ୍ରୀ ଲୋକ—ଦେ. ବ—୧ । ସ୍ତ୍ରୀଜାତୀୟ ବ୍ୟକ୍ତି—1. A woman. ୨ ।
Strī loka ସ୍ତ୍ରୀଜାତି—2. The females.
স্ত্রীলোক स्त्रीजाति

ସ୍ତ୍ରୀ ଶିକ୍ଷା—ସଂ. ବ(୬ଷ୍ଠୀ ତତ୍)—ସ୍ତ୍ରୀଲୋକଙ୍କର ଶିକ୍ଷା ବା ଅଧ୍ୟୟନଜନିତ
Strī śikshā ଜ୍ଞାନ—Female education.

ସ୍ତ୍ରୀ ଶୌଣ୍ଡ—ସଂ. ବଣ· ପୁଂ(୭ମୀ ତତ୍)—ଅତି କାମୁକ; ଅତି କାମାତୁର
Strī śaunda (ଭୂ. ଶ)—Very lecherous; libidinous.

ସ୍ତ୍ରୀ ସଂସର୍ଗ (ସମାଗମ)—ସଂ. ବ (୬ଷ୍ଠୀ ତତ୍)—ମୈଥୁନ—
Strī saṁsarga (samāgama) Cohabitation.

ସ୍ତ୍ରୀ ସଙ୍ଗ (ସଙ୍ଗମ,ସହବାସ,ସମ୍ଭୋଗ)—ସଂ. ବ (୬ଷ୍ଠୀ ତତ୍)—ପୁରୁଷର
Strī sanga(sangama, sahabāsa, sambhoga) ସ୍ତ୍ରୀକୁ ରମଣ କରିବା; ମୈଥୁନ—Co-habitation with woman.
[ଦ୍ର—ବୈଦ୍ୟଶାସ୍ତ୍ରର ଉପଦେଶ ଏହି ଯେ, ପର୍ବ ଦିବସମାନଙ୍କରେ,ଶ୍ରାଦ୍ଧ ଦିବସରେ,ଋତୁକାଳର ପ୍ରଥମ ଚାରି ଦିନ ମଧ୍ୟରେ ସ୍ତ୍ରୀସଙ୍ଗମ କରିବ ନାହିଁ । ଅନ୍ୟ ଦିନରେ ସ୍ନାତ ଓ ଅନୁଲିପ୍ତ ହୋଇ ଶକ୍ତିବର୍ଦ୍ଧକ ଓ ବାଜୀକରଣ ଦ୍ରବ୍ୟ ସେବନ କରି ଉତ୍ତମ ବସ୍ତ୍ର ପରିଧାନପୂର୍ବକ ସୁସଜ୍ଜିତ ହୋଇ ତାମ୍ବୂଲାଦି ଚର୍ବଣ କରି ସ୍ତ୍ରୀକୁ ଧର୍ମପତ୍ନୀପ୍ରତି ଅନୁରାଗୀ ଓ ପୁତ୍ରକାମୀ ହୋଇ ଋତୁକାଳରେ ରୋଗଶୂନ୍ୟା,ଋତୁମତୀ ଓ ଅନୁରକ୍ତା ଭାର୍ଯ୍ୟାଙ୍କ ସଙ୍ଗମ କରିବ । ରୋଗୀ, କ୍ଷୁଧାର୍ତ୍ତ, ପିପାସାର୍ତ୍ତ, ଅପବିତ୍ରଦେହୀ, ଶୋକାତୁର, ବାଳକ ଓ ବୃଦ୍ଧ ପୁରୁଷଙ୍କ ପକ୍ଷରେ ସ୍ତ୍ରୀସହବାସ ନିଷିଦ୍ଧ ।]

ସ୍ତ୍ରୀ ସଂଗ୍ରହଣ—ସଂ· ବ (୬ଷ୍ଠୀ ତତ୍)—୧ । ବଳାତ୍କାରପୂର୍ବକ ସ୍ତ୍ରୀସମ୍ଭୋଗ
Strī saṁgrahaṇa ( ଭୂ. ଶ )—1. Rape.
୨ । ବ୍ୟଭିଚାର (ଭୂ. ଶ)—2. Adultery.

ସ୍ତ୍ରୀ ସଭା—ସଂ. ବ (ସ୍ତ୍ରୀ+ସଭା)—ସ୍ତ୍ରୀମାନଙ୍କର ସଭା; ମାଇପି ସଭା—
Strī sabha A gathering of females.

ସ୍ତ୍ରୀ ସୁଖ—ସଂ ବ—୧ । (ପ୍ର. ପ. ଲୋ)—ମୈଥୁନ (ଭୂ. ଶ)—
Strī sukha Sexual intercourse with a woman. ୨ । (ବନସ୍ପତି) ଶୋଭାଞ୍ଜନ (ଭୂ. ଶ)—
2. Moringa tree.

ସ୍ତ୍ରୀ ସୁଲଭ—ସଂ· ବଣ—୧ । ନାରୀଜନୋଚିତ—1. Befitting a
Strī sulabha woman. ୨ । ସ୍ତ୍ରୀସ୍ୱଭାବସମ୍ଭୂତ—
2. Natural to females

ସ୍ତ୍ରୀ ସେବନ—ସଂ. ବ (୬ଷ୍ଠୀ ତତ୍)—ମୈଥୁନ—
Strī sebana Copulation.

ସ୍ତ୍ରୀ ସ୍ୱଭାବ—ସଂ. ବ—୧ । (୬ଷ୍ଠୀ ତତ୍)—ସ୍ତ୍ରୀଲୋକଙ୍କ ପ୍ରକୃତି—
Strī swabhāba 1. The nature of females.
୨ । ( ବହୁବ୍ରୀହି ) ଅନ୍ତଃପୁରରକ୍ଷକ; ମହଲ୍ଲକ—
2· The keeper of the seraglio. ୩ । ନପୁଂସକ ବ୍ୟକ୍ତି—3. Eunuch (Apte).

ସ୍ତ୍ରୀ ସ୍ୱାଧୀନତା—ସଂ. ବ (ଆଧୁନିକ)—ପୁରୁଷଙ୍କ ପରି ନାରୀମାନଙ୍କର
Strī swādhīnatā ସ୍ୱାଧୀନଭାବେ ସର୍ବତ୍ର ଗମନାଗମନ ଓ କାର୍ଯ୍ୟାନୁଷ୍ଠାନ—Female liberty; female emancipation.

ସ୍ତ୍ରୈଣ—ସଂ. ବଣ. ପୁଂ ( ସ୍ତ୍ରୀ+ଅ )—୧ । ସ୍ତ୍ରୀସମ୍ବନ୍ଧୀୟ—
Straiṇa 1. Relating to woman; womanly.
୨ । ସ୍ତ୍ରୀଜିତ—2. Henpecked. ୩ । ଅତିରିକ୍ତରୂପେ ସ୍ତ୍ରୀଙ୍କଠାରେ ଆସକ୍ତ—3. Addicted to women; effeminate. ୪। ସ୍ତ୍ରୀଯୋଗ୍ୟ (ଭୂ. ଶ)—
4. Befitting a woman. ବ (+ଭାବେ. ଅ)—

୧ । ସ୍ତ୍ରୀତ୍ୱ (ଦେଖ)—1. Stritwa (See) ୨ । ସ୍ତ୍ରୀ ସ୍ୱଭାବ; ଅନ୍ତଃପୁର ରକ୍ଷକ—2. A servant guarding the harem. ୩। ସ୍ତ୍ରୀସମୂହ—3. A body of females.

ସ୍ତ୍ରୈଣତା (ତ୍ୱ)—ସଂ. ବି—ସ୍ତ୍ରୀବଶତା; ସ୍ତ୍ରୀବଶ ହେବା ଅବସ୍ଥା—
Strainatā(twa) The state of being henpecked.

ସ୍ତ୍ରୈଣ୍ୟ—ସଂ. ବି (ସ୍ତ୍ରୈଣ+ଭାବେ. ଯ)—ସ୍ତ୍ରୈଣତା (ଦେଖ)—
Strainya Strainatā (See)

ସ୍ତ୍ର୍ୟ(ସ୍ତ୍ର୍ୟା)ଗାର—ସଂ. ବି (୬ଷ୍ଠୀ ତତ୍)—ଅନ୍ତଃପୁର—
Strya(stryā)gāra Harem.

ସ୍ତ୍ର୍ୟଧ୍ୟକ୍ଷ—ସଂ. ବି. ପୁଂ (୬ଷ୍ଠୀ ତତ୍)—ଅନ୍ତଃପୁରର ପ୍ରଧାନ ଅଧିକାରୀ
Stryadhyaksha (ହି. ଶ)—The man who is in charge of the harem.

ସ୍ତ୍ର୍ୟନୁଜ—ସଂ. ବି. ଓ ବିଣ ପୁଂ (୬ଷ୍ଠୀ ତତ୍)—ଭଉଣୀ ପରେ ଜନ୍ମ
Stryanuja ହୋଇଥିବା ଭାଇ (ହି. ଶ)—
A male child born after the birth of a female child.

ସ୍ତ୍ର୍ୟାଜୀବ—ସଂ. ବିଣ ଓ ବି. ପୁଂ—ସ୍ତ୍ରୀପଣ୍ୟୋପଜୀବୀ (ଦେଖ)—
Stryājiba Stripanyopajibi [See].

ସ୍ତ୍ର୍ୟାଖ୍ୟା—ସଂ. ବି [ବହୁବ୍ରୀହି]—ପ୍ରିୟଙ୍ଗୁ [ହି. ଶ] [ଦେଖ]—
Stryākhyā Priyangu (See).

ସ୍ତ୍ର୍ୟାଚାର—ସଂ. ବି. [ ମ. ପ. ଲୋ., ସ୍ତ୍ରୀଗଣଙ୍କ ଅନୁଷ୍ଠିତ
Stryāchāra ଆଚାର ]—ସ୍ତ୍ରୀ ଆଚାର [ ଦେଖ ]—
Stri āchāra (See).

ସ୍ଥ—ସଂ. ବିଣ, ପୁଂ (ଅନ୍ୟ ଶବ୍ଦ ପରେ ଯୁକ୍ତ ପ୍ରତ୍ୟୟ ସ୍ଥା; ଧାତୁ+
Stha କର୍ତ୍ତୃ. ଅ; ଯଥା—ସ୍ୱର୍ଗସ୍ଥ, ସଭାସ୍ଥ, ପରିବାରସ୍ଥ ଓ ଦୁଃସ୍ଥ)—
(ସ୍ଥା—ସ୍ତ୍ରୀ) (ଅମୁକ)ରେ ସ୍ଥିତ; ବିଦ୍ୟମାନ; ବର୍ତ୍ତମାନ—
(a suffix) Situate in; belonging to; living in.

ସ୍ଥକିତ—ଦେ. ବିଣ (ସଂ. ସ୍ଥଗିତ)—ସ୍ଥଗିତ (ଦେଖ)
Sthakita Sthagita (See)
স্থকিত स्थकित

ସ୍ଥଗ୍ (ଧାତୁ)—ସଂ—୧ । ସମ୍ବରଣ କରିବା—1. To restrain. ୨ ।
Sthag (root) ଅପବାରଣ ବା ଆଚ୍ଛାଦନ କରିବା—2. To cover. ୩ । ବନ୍ଦ କରିବା—3. To stop; to discontinue.

ସ୍ଥଗ—ସଂ. ବିଣ, ପୁଂ (ସ୍ଥଗ୍ ଧାତୁ+କର୍ତ୍ତୃ. ଅ)—୧ । ଧୂର୍ତ୍ତ; ଠଗ;
Sthaga ପ୍ରବଞ୍ଚକ—1. Fraudulent; cheating; decep-
(ସ୍ଥଗା—ସ୍ତ୍ରୀ) tive. ୨ । ନିର୍ଲଜ୍ଜ—2. Shameless.

ସ୍ଥଗଣା—ସଂ, ବି (ସ୍ଥଗ୍ ଧାତୁ+କର୍ତ୍ତୃ. ଅନ+ଆ)—ପୃଥିବୀ (ହି. ଶ)
Sthaganā The earth.

ସ୍ଥଗନ—ସଂ, ବି (ସ୍ଥଗ୍ ଧାତୁ+ଭାବ. ଅନ)—୧ । ଗୋପନ—
Sthagana 1. Concealment. ୨ । ଲୁଚାଇବା—
(ସ୍ଥଗିତ—ବିଣ) 2. Hiding. ୩ । ଆଚ୍ଛାଦନ—3. Covering.

ସ୍ଥଗର—ସଂ. ବି—ତଗର (ଦେଖ) (ହି. ଶ)
Sthagara Tagara (See)

ସ୍ଥଗିକା—ସଂ. ବି (ସ୍ଥଗ୍ ଧାତୁ+କର୍ମ. ଇକ+ଆ)—
Sthagikā ୧ । ତାମ୍ବୂଳ [illegible] (ହି. ଶ)—1. A metal case for keeping betel packets. ୨ । (+କରଣରେ)(ବୈଦ୍ୟକ) ଅଙ୍ଗୁଠି ଓ ଲିଙ୍ଗ ଆଦିର ଅଗ୍ରଭାଗର କ୍ଷତ ଉପରେ ବନ୍ଧାଯିବା (ପାନଡିବା ଆକାରର) ପଟି (ହି. ଶ)—2. (Surgery) A bandage (shaped like a betel case) put over the sores on the end of a finger or male organ.

ସ୍ଥଗିତ—ସଂ, ବିଣ (ସ୍ଥଗ୍ ଧାତୁ+କର୍ମ. ତ)—୧ । ଆଚ୍ଛାଦିତ—
Sthagita 1. Covered. ୨ । ଆବୃତ—2. Hidden. ୩ । ତିରୋହିତ—3. Extinct. ୪ । ନିବର୍ତ୍ତିତ; ଅପବାରିତ—4. Restrained; prevented. ୫ । ବନ୍ଦ କରାଯାଇଥିବା—5. Stopped; discontinued. ୬ । ସଂଗୋପିତ—6. Concealed. ୭ । ଅବରୁଦ୍ଧ (ହି. ଶ)—7. Confined. ୮ । କିଛି ସମୟ ପାଇଁ ବନ୍ଦ କରାଯାଇଥିବା; ମୁଲତବି (ହି. ଶ)—
8. Postponed; adjourned; stayed.

ସ୍ଥଗିବା—ଦେ. କ୍ରି (ପଦ୍ୟ) (ସଂ. ସ୍ଥଗ୍ ଧାତୁ)—ବନ୍ଦ କରିବା; ସ୍ଥଗିତ
Sthagibā ରଖିବା—To stop.
স্থগিত রাখা स्थगित करना

ସ୍ଥଗୀ—ସଂ. ବି (ସ୍ଥଗ୍ ଧାତୁ+କର୍ମ. ଈ)—ତାମ୍ବୂଳପାତ୍ର; ପାନବଟା—
Sthagi A betel-box.

ସ୍ଥଗୁ—ସଂ. ବି (ସ୍ଥଗ୍ ଧାତୁ+କରଣ. ଉ)—୧ । ଗଡୁ; ପାଣିର ଝାରି—1. A long-necked pitcher. ୨ ।
Sthagu (+କର୍ତ୍ତୃ. ଉ) ପିଠି ଉପରେ ଥିବା କୁଜ (ହି. ଶ)—
2. Hump on the back.

ସ୍ଥଣ୍ଡିଳ—ସଂ. ବି (ସ୍ଥା. ଧାତୁ+ଅଧିକରଣେ ଅଣ୍ଡିଲ, କିମ୍ବା ସ୍ଥଲ୍ ଧାତୁ=
Sthandila ରହିବା+ଅଧି. ଇଲ; ନିପାତନ)—୧ । ଚତ୍ୱର; ଅଗଣା—1. Courtyard. ୨ । ଯଜ୍ଞାର୍ଥ ପରିଷ୍କୃତ ଭୂମି—2. A place cleansed for the performance of vedic rites. ୩ । ବାଲିକାଦ୍ୱାରା ପ୍ରସ୍ତୁତ ହୋମାର୍ଥ ମଣ୍ଡଳବିଶେଷ । (ଏହା ହସ୍ତପରିମିତ ଚତୁରସ୍ର ହେବାର ବିଧି, ବଶିଷ୍ଠ ସଂହିତା କ୍ରିୟାସାର ।)—
3. A raised platform of sand prepared for making offering to the fire. ୪ । ଯଜ୍ଞବେଦୀର ଚାରି ପାଖର ପରିଷ୍କୃତ ଭୂମି—4. A cleansed and well-swept plot of land round the sacrificial altar. ୫ । ସୀମା; ସରହଦ (ହି. ଶ)—
5. Boundary; limit. ୬ । ମାଟିଗଦା (ହି. ଶ)—
6. A heap of earth. ୭ । ଜମି; ଭୂମି (ହି. ଶ)—
7. Land. ୮ । (ନାମ) ପ୍ରାଚୀନ ଋଷି ବିଶେଷ (ହି. ଶ)—
8. Name of an ancient sage.

ସ୍ଥଣ୍ଡିଳ ଶଯ୍ୟା—ସଂ. ବି—ବ୍ରତାଦିଯୋଗୁଁ ବ୍ରତାନୁଷ୍ଠାନକର ଭୂମିଶଯ୍ୟା—
Sthandila śajyā Sleeping on the bare ground (of a person observing a vow.)

ସ୍ଥଣ୍ଡିଳଶାୟୀ—ସଂ. ବିଣ (ସ୍ଥଣ୍ଡିଳ + ଶୀ ଧାତୁ + କର୍ତ୍ତ୍ରି ଇନ୍, ୧୨। ୧୦;
Sthandilaśāyi ସ୍ଥଣ୍ଡିଳଶାୟିନ୍ ୧୨। ୧୦)—ଯେଉଁ ବ୍ୟକ୍ତି [ସ୍ଥଣ୍ଡିଳଶାୟିନୀ—ସ୍ତ୍ରୀ] ବ୍ରତ ପାଳନ କରୁଥିବା ଯୋଗୁଁ ସ୍ଥଣ୍ଡିଳରେ ବା ଭୂମିରେ ଶୋଉଅଛନ୍ତି—Sleeping on bare ground during the observance of a vow.

ସ୍ଥଣ୍ଡିଳସିତ—ସଂ. ବି—ଯଜ୍ଞବେଦୀ (ହି. ଶ)
Sthandilasita Sacrificial altar.

ସ୍ଥଣ୍ଡିଳେଶୟ—ସଂ. ବିଣ ପୁଂ (ସଂ. ସ୍ଥଣ୍ଡିଳେ = ଭୂମିରେ + ଶୀ ଧାତୁ +
Sthandileśaya କର୍ତ୍ତ୍ରି ଅ; ଅଲୁକ୍ ସମାସ)—ସ୍ଥଣ୍ଡିଳଶାୟୀ (ଦେଖ)—Sthandilaśāyi (See) ସଂ. ବି—ପ୍ରାଚୀନ ଋଷି ବିଶେଷ—Name of an ancient sage.

ସ୍ଥପତି—ସଂ. ବି (ସ୍ଥ = ସ୍ଥିତ + ପତି)—୧। କଞ୍ଚୁକୀ; ଅନ୍ତଃପୁରରକ୍ଷକ
Sthapati [ସେବକ]—1. A servant watching the harem. ୨। ରାଜମିସ୍ତ୍ରୀ; ଶିଳ୍ପିବିଶେଷ (ଅମର); ବାସ୍ତୁବିଦ୍ୟାବିଧାନଜ୍ଞ ଲବ୍ଧପ୍ରତିଷ୍ଠ ଶିଳ୍ପୀ; ବାସ୍ତୁଶିଳ୍ପୀ—2. Mason. ୩। ବଢ଼େଇ; ସୂତ୍ରଧର—3. Carpenter. ୪। ବାର୍ହସ୍ପତ୍ୟ ଯଜ୍ଞକର୍ତ୍ତା, ଗୀଷ୍ପତ୍ୟଯଜ୍ଞା—4. The performer of the Bārhaspatya sacrifice. ୫। ମନ୍ତ୍ରୀ—5. Minister. ୬। ବୃହସ୍ପତି—6. Bṛuhaspati. ୭। କୁବେର—7. Kubera; the God of Wealth. ୮। ରାଜା (ହି. ଶ)—8. King. ୯। ଉଚ୍ଚ ରାଜକର୍ମଚାରୀ (ହି. ଶ)—9. A high government official. ୧୦। (କାବ୍ୟ) ରାମଚନ୍ଦ୍ରଙ୍କ ସଖା; ଗୁହ ଶବର (ହି. ଶ)—10. Name of the Sabara friend of Rāma. ୧୧। ସାରଥି (ହି. ଶ)—11. Charioteer. ବିଣ—୧। ପ୍ରଧାନ—1. Chief; principal. ୨। ଉତ୍ତମ; ଶ୍ରେଷ୍ଠ—2. Excellent; best.

ସ୍ଥପତି ବିଜ୍ଞାନ—ସଂ. ବି—୧। ଗୃହ ନିର୍ମାଣ ସମ୍ବନ୍ଧୀୟ ଶିଳ୍ପବିଜ୍ଞାନ—
Sthapati bijñāna 1. The science of house-building. ୨। ସୂତ୍ରଧର ସମ୍ବନ୍ଧୀୟ ବିଜ୍ଞାନ—2. The science of carpentry.

ସ୍ଥପନୀ—ସଂ. ବି—ଦୁଇ ଭ୍ରୂଲତାର ମଧ୍ୟବର୍ତ୍ତୀ ସ୍ଥାନ (ହି. ଶ)—The
Sthapani middle of the two eyebrows. [ଦ୍ର—ବୈଦ୍ୟଙ୍କ ମତରେ ଏହା ଏକ ମର୍ମସ୍ଥାନ ଅଟେ—ହି. ଶ]

ସ୍ଥପା(ପେ)ଇବା—ଦେ. କ୍ରି—ଅନ୍ୟଦ୍ୱାରା ସ୍ଥାପିତ କରାଇବା—
Sthapā(pe)ibā Causative form of the verb ସ୍ଥାପିବା Sthāpibā. [ଉ—ନଗର ଦ୍ୱାରେ ପୂର୍ଣ୍ଣକୁମ୍ଭ ସ୍ଥପାଇଲେ। ଗୋଡାଇ ଚମ୍ପାଡରୁ ତୋରଣ ବାନ୍ଧିଲେ—କୃଷ୍ଣସିଂହ. ମହାଭାରତ, ଶାନ୍ତି।]

ସ୍ଥପିତ କରିବା—ଦେ. କ୍ରି (ପଦ୍ୟ)—ହୃଦୟରେ ଲୁଚାଇ ରଖିବା—
Sthapita karibā To keep to one's self; to have हृदये लुकिये राखा some secret deposited in the गुप्त रखना inner recesses of one's heart. [ଉ—ସ୍ଥପିତ ନ କର ଦୁର୍ଜ୍ଜନଙ୍କ ଆଗେ କହୁ କ?—ଜଗନ୍ନାଥ. ରହସ୍ୟରାଜ ଚମ୍ପୂ।]

ସ୍ଥପୁଟ—ସଂ. ବି (ସ୍ଥ + ପୁଟ ଧାତୁ + କର୍ତ୍ତ୍ରି ଅ)—୧। ଅସ୍ଥିର ସନ୍ଧିସ୍ଥାନ—
Sthaputa 1. Bone-joint. ୨। ଉଚ୍ଚାନୀଚ ସ୍ଥାନ—2. High and low place; undulating place. ୩। ବିଷମ ସ୍ଥାନ ସଂଚରଣ ଜୀବ—3. Animals living or moving in undulating places. ବିଣ—୧। ବିଷମୋନ୍ନତ (ହେମଚନ୍ଦ୍ର)—1. Undulating; high and uneven. ୨। ପୀଡ଼ା ବା ଦୁଃଖାଦିରେ କୁବ୍‌ଜାକୃତ—2. Bent double with sorrow or illness. ୩। ବିପନ୍ନ (ହି. ଶ)—3. Involved in danger. ୪। କୁବ୍ଜ (ହି. ଶ); କୁଜା—4. Having a hump.

ସ୍ଥବି—ସଂ. ବିଣ (ସ୍ଥା ଧାତୁ + କର୍ତ୍ତ୍ରି. ଇ)—ଜଙ୍ଗମ (ଉଣାଦିବୃତ୍ତି)—
Sthabi Moving. ବି—୧। ତନ୍ତୁବାୟ—1. Weaver. ୨। ସ୍ୱର୍ଗ—2. Heaven ୩। ଜଙ୍ଗମ; ପଦାର୍ଥ—3. Moveable thing. ୪। ଥଳି (ହି. ଶ)—4. Bag. ୫। ଅଗ୍ନି (ହି. ଶ)—5. Fire. ୬। ଫଳ (ହି. ଶ)—6. Fruit.

ସ୍ଥବିର—ସଂ. ବିଣ (ସ୍ଥା ଧାତୁ + କର୍ତ୍ତ୍ରି ଇର)—୧। ବୃଦ୍ଧ—
Sthabira 1. Old; aged. ୨। ଅଚଳ—2. Unmoving. (ସ୍ଥବିରା—ସ୍ତ୍ରୀ) ୩। ବୃଦ୍ଧ ଓ ପୂଜ୍ୟ (ହି. ଶ)—3. Old and adorable. ବି—୧। ବ୍ରହ୍ମା—1. Brahmā. ୨। ଶୈଲେୟ (ଗନ୍ଧଦ୍ରବ୍ୟ) (ଦେଖ)—2. Śaileya (See) ୩। ବୃଦ୍ଧଦାରକ (ହି. ଶ) (ଦେଖ)—3. Bṛuddhadāraka (See) ୪। ବୃଦ୍ଧ ଓ ପୂଜ୍ୟ ବୌଦ୍ଧଯତି (ହି. ଶ)—4. An old and revered Buddhist mendicant. ୫। ବୌଦ୍ଧ ସମ୍ପ୍ରଦାୟ ବିଶେଷ (ହି. ଶ)—5. A sect of Buddhists.

ସ୍ଥବିରତା(ତ୍ୱ)—ସଂ. ବି (ସ୍ଥବିର + ଭାବ. ତା)—ବାର୍ଦ୍ଧକ୍ୟ—
Sthabiratā(twa) Old age.

ସ୍ଥବିର ଦାରୁ—ସଂ. ବି—ବୃଦ୍ଧଦାରକ (ହି. ଶ) (ଦେଖ)
Sthabira dāru Bṛuddhadāraka (See)

ସ୍ଥବିରା—ସଂ. ବିଣ, ସ୍ତ୍ରୀ (ସ୍ଥବିର + ସ୍ତ୍ରୀ, ଆ)—୧। ବୃଦ୍ଧା—1. Old
Sthabirā (woman). ୨। ବୃଦ୍ଧା ଓ ପୂଜ୍ୟା—2. Old

and adorable ( female ).ସଂ.ବି.ସ୍ତ୍ରୀ—ମହାଶ୍ରାବଣୀ ( ବନ୍ଦ୍ରକର୍ଣ୍ଣ ) ( ଦେଖ )—1. Mahāśrābaṇi ( See ). ୨ । ବୃଦ୍ଧା ସ୍ତ୍ରୀ— 2. An old woman.

ସ୍ଥବିଷ୍ଠ—ସଂ. ବଣ ପୁଂ( ସ୍ଥୂଳ+ଅତ୍ୟର୍ଥେ ଇଷ୍ଠ )—ଅତି ସ୍ଥୂଳ— Sthabishṭha(ସ୍ଥବିଷ୍ଠା—ସ୍ତ୍ରୀ) Very corpulent and thick.

ସ୍ଥବୀୟାନ୍—ସଂ.ବଣ ପୁଂ(ସ୍ଥୂଳ+ଅତ୍ୟର୍ଥେ. ଈୟସ୍ ; ସ୍ଥବୀୟସ୍, ୧ମା ୧ବ.) Sthabiyān —ଅତି ମୋଟା—Very corpulant and thick. ( ସ୍ଥବୀୟସୀ—ସ୍ତ୍ରୀ )

ସ୍ଥମ୍ଭିବା—ଦେ. କ୍ରି ( ସଂ. ସ୍ତମ୍ଭ୍ ଧାତୁ )—ଥମିବା; ଗତି କରୁ କରୁ Sthambibā ରହିଯିବା—To stop while moving. थामा स्तंभना [ସ୍ତମ୍ଭା(ମ୍ଭେ)ଇବା—ଣିଜନ୍ତ ଅକାର]

ସ୍ଥମ୍ଭି ରହିବା—ଦେ. କ୍ରି ( ସଂ. ସ୍ତମ୍ଭ ଧାତୁ )—ଗତି କରୁ କରୁ ବନ୍ଦ Sthambi rahibā ହୋଇ ରହିବା—To come to a थामिया याओया stand-still. [ ଉ—ଏ ସକାଶୁଁ ସ୍ଥମ୍ଭି स्तम्भी रहना ରହିଲା ରଥ ସ୍ୱୟେ । ପୁଣି ମଡ଼ା ସୈନ୍ୟେ ପୂରିଲେ ହୋଶେ ଯାଏ—କୃଷ୍ଣସିଂହ. ମହାଭାରତ. ଦ୍ରୋଣ ]

ସ୍ଥଲ୍ (ଧାତୁ)—ସଂ—୧ । ଥିବା; ଅବସ୍ଥାନ କରିବା—1. To be. Sthal (root) ୨ । ରହିବା—2. To remain.

ସ୍ଥଳ—ସଂ. ବି (ସ୍ଥଲ୍ ଧାତୁ=ସ୍ଥିର ହେବା+କର୍ତ୍ତୃ. ଅ )—୧ । ଅକୃତ୍ରିମ Sthaḷa ଭୂମି—1.A bit of land in its natural condition. ୨ । ପ୍ରଦେଶ; ସ୍ଥାନ—2. Place; site; tract of country; locality. ୩ । ପାତ୍ର—3. Receptacle. ୪ । ଥାଳ—4. A big cup; a deep plate, ୫ । ଥାଳୀ—5. A plate, ୬ । ତମ୍ବୁ; ପଟ୍ଟବାସ—6. Tent.୭ । ଶୁଖିଲା ସ୍ଥାନ;ଜଳଶୂନ୍ୟ ଭୂଭାଗ —7. Land; waterless place. ୮ । ଅବସ୍ଥିତି— 8. Position. ୯ । ବିଷୟ—9. Subject; topic; matter. ୧୦ । ଅବସର ( ବ୍ୟ. ଶ )—10. Occasion. ୧୧ । ଉଚ୍ଚ ଜାଗା ( ବ୍ୟ. ଶ )—11. A high place. ୧୨ । ପୁସ୍ତକର ଏକ ଅଂଶ ବା ପରିଚ୍ଛେଦ ( ବ୍ୟ. ଶ )—12. Portion or chapter of book.

ସ୍ଥଳ କନ୍ଦ—ସଂ. ବି—ଅଗ୍ରାମ୍ୟ କନ୍ଦ; ବଣ ଓଲୁଅ— Sthaḷa kanda Wild arum.

ସ୍ଥଳ କମଳ(କମଳିନୀ)—ସଂ. ବି (ମ. ପ. ଲୋ, କର୍ମଧା; ସ୍ଥଳଜାତ କମଳ) Sthaḷa kamaḷa(kamaḷini) —ସ୍ଥଳପଦ୍ମ—Hibiscus स्थलकमल Mutabilis; Tonidinam Suffruticosum. थलकमल [ଉ—ସ୍ଥଳକମଳେ ଦେଖ ରୂପର ଭାତି । ନବର୍ଣ୍ଣ ହେଲେ [ଥଳକମଳ—ଦେ. ରୂପ] ଲେଖ ହୁଏ ଏ ଜାତି—ରାଧାନାଥ, ତୁଳସୀ ସ୍ତବକ । ] [ ଭ୍ର—ଏହାର ପର୍ଯ୍ୟାୟ—ପଦ୍ମଚାରିଣୀ, ଅତିଚରା, ପୁଷ୍କର ପର୍ଣ୍ଣିକା, ପଦ୍ମାହ୍ୱା, ଅମ୍ବୁରୁହା, ପୁଷ୍କରନାଡ଼ୀ, ସ୍ଥଳପଦ୍ମ, ଅବ୍ୟଥା, ପଦ୍ମା, ଲକ୍ଷ୍ମୀ, ଶାରଦା, ଉତ୍ପଳ, ସ୍ଥଳପଦ୍ମିନୀ, ଜମାଲକ, ସ୍ଥଳରୁହା, ସୁଗନ୍ଧମୂଳା, ପଦ୍ମାବତୀ, ପୁଷ୍କରିଣୀ । ବୈଦ୍ୟକ ମତରେ ଏହା ଅନୁଷ୍ଣ, କଟୁତିକ୍ତକଷାୟରସ ଏବଂ କଫ, ବାୟୁ, ମୂତ୍ରକୃଚ୍ଛ୍ର, ଅଶ୍ମରୀ, ଶୂଳ, ଶ୍ୱାସ, ଦାହ, ଅପସ୍ମାର, ବମନ, ଭ୍ରମ ଓ ବିଷନାଶକ ! ଏହା ଭୂତାବେଶ ଶାନ୍ତିକାରକ ଓ ସ୍ତନ ଦୃଢ଼ତା ସମ୍ପାଦକ ।

ଏହା ଜବାର ବର୍ଗରେ ପୁଷ୍ପପ୍ରସବିଶେଷ; ଗଛ ୫।୬ ହାତ ଉଚ୍ଚ, ପତ୍ର ବଡ଼ ବଡ଼ । ଏଥିରେ ଶରତ୍‌କାଳରେ ଫୁଲ ଫୁଟେ । ଏହି ଫୁଲ ପ୍ରଥମେ ଧଳା, ପରେ ପଦ୍ମବର୍ଣ୍ଣ ବା ରକ୍ତାଭ ହୁଏ । ଏ ଫୁଲ ବହୁ ଦଳ ଓ ଦେଖିବାକୁ ଫଳା ନାଲି ବା ଗୋଲାପି ରଙ୍ଗର । ମାତ୍ର ଏହା ଗନ୍ଧହୀନ । ]

ସ୍ଥଳ କୁମୁଦ—ସଂ.ବି (ମ. ପ. ଲୋ)—କରବୀର (ବାଜକର୍ଣ୍ଣ ) ( ଦେଖ) Sthaḷa kumuda Karabira ( See )

ସ୍ଥଳ କୂଳ—ଦେ. ବି ( ସଂଗତର )—୧ । କୌଣସି ବିଷୟର କନାରା— Sthaḷa kūḷa 1.Trace or clue of any thing. ୨ । कूल किनारा ଆଶ୍ରୟ—2. Shelter. ୩ । ଆଶ୍ରୟ ନେବା तट किनारा ସ୍ଥାନ—3 Place of shelter. [ ଉ—କି କରିବେ କଛ ବୁଦ୍ଧି ନ ଦିଶିଲା, ନ ପାଇଲେ ସ୍ଥଳ କୂଳ— ନନ୍ଦକିଶୋର ଶର୍ମିଷ୍ଠା । ]

ସ୍ଥଳଚର.—ସଂ,ବି.ଣ ପୁଂ (ସ୍ଥଳ+ଚର୍ ଧାତୁ+କର୍ତ୍ତୃ. ଅ)—ଯେଉଁ ଜୀବ Sthaḷachara ସ୍ଥଳରେ ବିଚରଣ କରେ—( animals ) ( ଜଳଚର—ବିପରୀତ ) Moving on land. ( ସ୍ଥଳଗ, ସ୍ଥଳଗାମୀ, ସ୍ଥଳଗ୍ରସ୍ତ—ଅନ୍ୟରୂପ) (ସ୍ଥଳଚରୀ—ସ୍ତ୍ରୀ)

ସ୍ଥଳ ପଥ—ସଂ. ବି (୬ଷ୍ଠୀ ତତ୍)—ଭୂମି ଉପରେ ଯିବା ପଥ—Road on Sthaḷa patha land; land route. (ଜଳ ପଥ—ବିପରୀତ)

ସ୍ଥଳ ପଦ୍ମ(ପଦ୍ମିନୀ)—ସଂ.ବି—୧ । ସ୍ଥଳ କମଳ (ଦେଖ)—1. Sthaḷa Sthaḷa padma(padmini) kamaḷa (See) ୨ । ମାନକ; ମାଣସାରୁ ( ହେମମାଳା )— 2. A kind of taro.

ସ୍ଥଳ ବାଣିଜ୍ୟ—ଦେ. ବି—ସ୍ଥଳ ପଥରେ ଚଳାଇବା ବାଣିଜ୍ୟ—Trade thaḷa bāṇijya on land route; land-borne स्थल वणिज्य थल बाणिजय trade.

ସ୍ଥଳ ଭାଗ—ସଂ. ବି—ଭୂଭାଗ—Dry land; land portion. Sthaḷa bhāga ( ଜଳ ଭାଗ—ବିପରୀତ )

ସ୍ଥଳ ମଞ୍ଜରୀ—ସଂ. ବି—ଅପାମାର୍ଗ ( ହେମମାଳା ) ( ଦେଖ ) Sthaḷa manjari Apāmārga ( See )

ସ୍ଥଳ ମର୍କଟ—ସଂ. ବି—କରମର୍ଦ୍ଦକ ( ବ୍ୟ. ଶ ) ( ଦେଖ ) Sthaḷa markaṭa Karamarddaka (See)

ସ୍ଥଳ ଯୁଦ୍ଧ(ବିଗ୍ରହ)—ସଂ.ବି—ସ୍ଥଳ ଭାଗ ଅର୍ଥାତ୍ ଭୂଭାଗ ଉପରେ ଥାଇ ଦୁଇ Sthaḷa juddha(bigraha) ପକ୍ଷଙ୍କ ମଧ୍ୟରେ ଯୁଦ୍ଧ—War between two armies on the land.

ସ୍ଥଳରୁହା—ସଂ. ବି ( ସ୍ଥଳ+ରୁହ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ )— Sthaḷaruhā ସ୍ଥଳକମଳ ( ଦେଖ )— Sthaḷakamaḷa ( See )

ସ୍ଥଳ ଶୃଙ୍ଗାଟ(ଶୃଙ୍ଗାଟକ)—ସଂ. ବି—ଗୋକ୍ଷୁର ଗୁଳ୍ମ ( ଜଟାମାଳା );
Sthala sruṅgāṭa(sruṅgāṭaka) ଗୋଖର (ଦେଖ)
Gokharā ( See )

ସ୍ଥଳ ସଙ୍କଟ—ଦେ· ବି ( ଭୂଗୋଳ )—ଯୋଜକ; ଯେଉଁ ସଙ୍କୀର୍ଣ୍ଣ ଭୂଭାଗ
Sthala saṅkaṭa ଦୁଇଟି ବୃହତ୍ ଭୂଭାଗକୁ ଯୋଗ କରୁଥାଏ—
স্থল সংকট, যোজক থল সংযোজক Isthmus.

ସ୍ଥଳ ସୀମା—ସଂ· ବି ( ସ୍ଥଳ+ସୀମନ୍; ୬ଷ୍ଠୀ. ତତ୍ ) —୧ । ସ୍ଥଣ୍ଡିଳ
Sthala sīmā ( ଶବ୍ଦକଳ୍ପଦ୍ରୁମ ) (ଦେଖ)—1. Sthaṇḍila
( See ) ୨ । ଦୁଇ ଦେଶର ସୀମା—
2. Boundary between two countries.

ସ୍ଥଳା—ସଂ. ବି. ସ୍ତ୍ରୀ ( ସ୍ଥଳ+ଅ )—୧ । ଜଳଶୂନ୍ୟ କୃତ୍ରିମ ଭୂମି
Sthalā ( ଭରତ )—1. An artificial dry land; a spot of dry ground artificially raised and drained (Apte). ୨ । ଜଳଶୂନ୍ୟ ଭୂଭାଗ (ହି· ଶ)
2. Waterless land.

ସ୍ଥଳାଭିଷିକ୍ତ—ସଂ.ବିଣ.ପୁଂ —୧ । ଅନ୍ୟ ବ୍ୟକ୍ତିର ପ୍ରତିନିଧି—1. Representing another. ୨ । ଅନ୍ୟ ବ୍ୟକ୍ତିଙ୍କ
Sthalābhishikta
ଜାଗାରେ ପ୍ରତିଷ୍ଠିତ (ବ୍ୟକ୍ତି)—2. (a person) Placed (ସ୍ଥଳାଭିଷିକ୍ତା—ସ୍ତ୍ରୀ) in the position of another.

ସ୍ଥଳୀ—ସଂ. ବି· ସ୍ତ୍ରୀ ( ସ୍ଥଳ+ସ୍ତ୍ରୀ. ଈ )—୧ । ସ୍ଥଳ ( ଦେଖ )—
Sthalī 1. Sthala ( See ) [ ଉ—ଏତେ ସ୍ଥଳୀ ଥାଉଁ ବ୍ରଜପୁରେ ପୁଣି ଆସ କେଉଁ ଅଣା ବହୁ ?—ସୁଧାକାଠ. ଗାବ୍ଗା । ] ୨ । ଜଳଶୂନ୍ୟ ଅକୃତ୍ରିମ ଭୂମି—2. A natural spot of dry ground. ୩ । ଥୁଣ୍ଟି—
3. Bag. ୪ । ଦୃଢ଼ ଭୂମି—4. Firm land ( Apte ). ୫ । ସ୍ଥଳ ଦେବତା—5. A Deity of the soil ( Apte ). ୬ । ସ୍ଥଳାଧିପତି ଦେବତା—
6. Tutelary Deity ( Apte ).

ସ୍ଥଳୀ ଦେବତା—ସଂ. ବି—ଗ୍ରାମ ଦେବତା—
Sthali debatā Presiding Deity of a village.

ସ୍ଥଳୀୟ—ସଂ· ବିଣ ( ସ୍ଥଳ+ଈୟ )—୧ । ସ୍ଥାନୀୟ—1. Relating
Sthalīya to a place. ୨ । ସ୍ଥଳସମ୍ବନ୍ଧୀୟ—
2. Relating to land.

ସ୍ଥଳେରୁହା—ସଂ. ବି ( ସ୍ଥଳେ+ରୁହ୍ ଧାତୁ+କର୍ତ୍ତି. ଅ+ସ୍ତ୍ରୀ· ଆ,
Sthaleruhā ଅଲୁକ୍‌ସମାସ )—୧ । ଘୃତକୁମାରୀ ( ଶବ୍ଦକଳ୍ପ );
ଘୃତକୁମାରୀ; ଘିକୁଆଁରି—1. Indian aloe. ୨ । ଦଣ୍ଡୋତ୍ପଳ; ଛତାକୁଣ୍ଡୀ ଗୁଳ୍ମ—2. A plant; Euparveiflora. ବିଣ—ସ୍ଥଳଜାତ ( ବୃକ୍ଷାଦି )—
Growing on land.

ସ୍ଥଳେଶୟ—ସଂ. ବିଣ (ସ୍ଥଳେ+ଶୀ ଧାତୁ+କର୍ତ୍ତି. ଅ; ଅଲୁକ୍ ସମାସ)—
Sthaleśaya ଶୁଖିଲା ଭୂଇଁରେ ଶୋଉଥିବା—Sleeping on land. ବି—ରୁରୁ; ହରିଣାଦି ପଶୁ—
Deer; antelope.

ସ୍ଥଳୌକା—ସଂ. ବି(ବହୁବ୍ରୀହି;ସ୍ଥଳ+ଓକସ୍ =ଗୃହ ଯାହାର;ସ୍ଥଳୌକସ୍
Sthalaukā ଶବ୍ଦ)—ସ୍ଥଳଚର ଜୀବ—Animals moving on land.

ସ୍ଥା (ଧାତୁ)—ସଂ—୧ । ଥିବା—1. To be. ୨ । ସ୍ଥିତ ହେବା—2. To
Sthā (dhātu) be placed. ୩ । ରହିବା—3. To stay.
[ଦ୍ର—ଏହି ଧାତୁ ପୂର୍ବେ ଅ, ଅବ, ଉପ, ଅଧି, ଅନୁ, ପ୍ର, ପ୍ରତି ଆଦି ଉପସର୍ଗ ଲାଗିଲେ ଭିନ୍ନ ଭିନ୍ନ ଅର୍ଥ ବୁଝାଯାଏ ।
ପ୍ରତି, ଅଧି ଓ ଅନୁ ପରେ 'ସ୍ଥା'ର ରୂପ 'ଷ୍ଠା' ହୁଏ ।]

ସ୍ଥା—ସଂ. ବିଣ. ସ୍ତ୍ରୀ ('ସ୍ଥ'ର ସ୍ତ୍ରୀଲିଙ୍ଗ)—ଅବସ୍ଥିତା, ସ୍ଥିତା—
Sthā Placed; situated. (female).
ବି—୧ । ଅବସ୍ଥାନ—1. Position. ୨ । ସ୍ଥାନ—
2 Place.

ସ୍ଥାଈ—ଗ୍ରା· ବିଣ (ସଂ. ସ୍ଥାୟୀ)—ସ୍ଥାୟୀ (ଦେଖ)—
Sthāi Sthāyī (See).

ସ୍ଥାଗ—ସଂ. ବି—୧ । ଶବ (ହି. ଶ)—1. Corpse; ୨ । ଶିବା-
Sthāga ନୁଚରବିଶେଷ—2. Name of one of Siba's attendants.

ସ୍ଥାଣବୀୟ—ସଂ. ବିଣ (ସ୍ଥାଣୁ+ଈୟ)—ସ୍ଥାଣୁସମ୍ବନ୍ଧୀୟ—
Sthānabīya Relating to Sthāṇu.

ସ୍ଥାଣୁ—ସଂ. ବିଣ (ସ୍ଥା ଧାତୁ+କର୍ତ୍ତି ନୁ)—୧ । ଅଚଳ; ସ୍ଥିର—
Sthāṇu 1. Fixed; steady. ୨ । ସ୍ଥବିର (ଦେଖ)
2 Sthabira (See). ବି—୧ । କାଟଶାଖବୃକ୍ଷ; ଶାଖାହୀନ ଗଛ; ଲଣ୍ଡା ଗଛ; ଥୁଣ୍ଟା ଗଛ—1. A pollard; the branchless trunk of a tree. (ଏହାର ପର୍ଯ୍ୟାୟ ଧ୍ରୁବ, ଶଙ୍କୁ, ଅଶାଖବୃକ୍ଷ)—୨ । ଶିବ; ମହାଦେବ—2. God Siba. ୩ । ସ୍ତମ୍ଭ; ଖୁଣ୍ଟ; ଖମ୍ବ·
3. Pillar. ୪ । ଖିଲ—4. A post or peg drawn into the ground. ୫ । ଜୀବକ ନାମକ ଗନ୍ଧଦ୍ରବ୍ୟ(ଶବ୍ଦଚନ୍ଦ୍ରିକା)—5. A rare scented herb; ୬ । ଅସ୍ତ୍ରଭେଦ (ମେଦିନୀ)—6. A kind of weapon. ୭ । ଉଇ ହୁଙ୍କା—7. Anthill. ୮ । ଏକପ୍ରକାର ବରଛା (ହି. ଶ)—8. A kind of spear. ୯ । ହଳର ଅଂଶବିଶେଷ (ହି.ଶ)—9. A part of the plough. ୧୦ । ସୂର୍ଯ୍ୟ ଘଡ଼ିର କଣ୍ଟା [ହି. ଶ]—10. The hand of a sundial. ୧୧ । ସ୍ଥାବର ପଦାର୍ଥ [ହି· ଶ]—
11. An immovable thing. ୧୨ । [ କାମ ] ନାଗବିଶେଷ—12. Name of a Nāga. ୧୩ । ଏଗାର ରୁଦ୍ର ମଧ୍ୟରୁ ଏକ [ ହି. ଶ ]—13. One of the eleven Rudra Deities. ୧୪ । ରାକ୍ଷସବିଶେଷ [ହି.ଶ]—14. Name of a demon. ୧୫ । ପ୍ରଜାପତି-ବିଶେଷ—15. Name of a Progenitor of mankind.

ସ୍ଥାଣୁ ତୀର୍ଥ—ସଂ.ବି—(ମ.ଭ.ଶଲ୍ୟ)—ବାମନପୁରାଣ ଚତୁର୍ଥଅଧ୍ୟାୟୋକ୍ତ ତୀର୍ଥ
Sthāṇu tīrtha ବିଶେଷ—[ଦ୍ର-ଏହା କୁରୁକ୍ଷେତ୍ରରେ ସ୍ଥାଣୁ ବଟ, ସ୍ଥାଣୁଲିଙ୍ଗ

ଥିବାରୁ ଏହି ନାମ । ଏ ଶିବଲିଙ୍ଗଙ୍କ ନିକଟରେ ଏକ ଜଳାଶୟ ଅଛି ।]ଥାନେଶ୍ୱର ନାମକ ସ୍ଥାନ, ଯେଉଁଠାରେ ପୃଥ୍ୱୀରାଜ ଓ ମହମ୍ମଦ ଘୋରୀଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା—Name of a place of pilgrimage; Thaneswar, the battlefield where Mahmmad Ghori fought with Pruthwirāja.

ସ୍ଥାଣୁବତ୍—ସଂ. ଅ—ଥୁଣ୍ଟା ଗଛ ପରି—
Sthāṇubat Like a pollard.

ସ୍ଥାଣୁ ରୋଗ—ସଂ. ବି—ଘୋଡ଼ାଙ୍କ ଜଙ୍ଘରେ ହେବା ଭୂସ୍ଫୋଟ ବ୍ରଣରୋଗ
Sthāṇu roga ବିଶେଷ [ହି. ଶ]—A kind of boil on the thigh of the horse.

ସ୍ଥାଣ୍ଡିଲ—ସଂ. ବଣ. ପୁଂ [ସ୍ଥଣ୍ଡିଳ+ଅ]—ସ୍ଥଣ୍ଡିଳଶାୟୀ [ଦେଖ]—
Sthāṇḍila Sthaṇḍilaśāyi (See)
[ସ୍ଥାଣ୍ଡିଳା—ସ୍ତ୍ରୀ]

ସ୍ଥାଣ୍ୱୀଶ୍ୱର—ସଂ. ବି—ଥାନେଶ୍ୱର; ସ୍ଥାଣୁତୀର୍ଥସ୍ଥ ଶିବଲିଙ୍ଗ—The
Sthāṇwīśwara name of the idol of Śiba in Sthāṇutīrtha (modern Thaneswar).

ସ୍ଥାତବ୍ୟ—ସଂ. ବଣ (ସ୍ଥା ଧାତୁ+ଅଧିକରଣେ. ତବ୍ୟ)—ରହିବାର
Sthātabya ଉପଯୁକ୍ତ ବା ଉଚିତ, ଅବସ୍ଥିତି ଯୋଗ୍ୟ (ସ୍ଥାନ)—(a place) Fit to stay.

ସ୍ଥାନ—ସଂ. ବି (ସ୍ଥା ଧାତୁ+ଅଧିକରଣେ. ଅନ)—୧ । ସ୍ଥଳ; ଜାଗା;
Sthāna ଥାନ—1. Place; spot. ୨ । ଉଦ୍ଦିଷ୍ଟ ଅଞ୍ଚଳ; ଦେଶ—2. Locality. ୩ । ଭାଜନ; ପାତ୍ର; ଆଧାର (ଜଳାଶୟ)—3. Receptacle; reservoir. ୪ । ବିଷୟ—4. Matter; topic ୫ । ଅବକାଶ; ଫାଙ୍କ (ମେଦିନୀ)—5. Leisure; space. ୬ । ଗ୍ରନ୍ଥସନ୍ଧି (ତ୍ରିକାଣ୍ଡ ଶେଷ), ପରିଚ୍ଛେଦ—6. Chapter of a book. ୭ । ବ୍ୟବସାୟ; ପେଶା—7. Trade; business; profession. ୮ । ଘର; ଗୃହ; ବସତି; 8. Residence; dwelling; [ଦ୍ର—ପରବଳରେ ଅସି କଲି ମୁହିଁ ସ୍ଥାନ—କୃଷ୍ଣସିଂହ, ମହାଭାରତ. ବନ] ୯ । ସ୍ଥିତି; ଅବସ୍ଥିତି (ମେଦିନୀ)—9. Position; situation; site. ୧୦ । ସ୍ଥୈର୍ଯ୍ୟ—10. Fixity. ୧୧ । ସନ୍ନିବେଶ (ହେମଚନ୍ଦ୍ର)—11. Arrangement. ୧୨ । ସାଦୃଶ୍ୟ (ମେଦିନୀ)—12. Similarity. ୧୩ । ନୀତିବେତ୍ତାମାନଙ୍କର ତ୍ରିବର୍ଗାନ୍ତର୍ଗତ ବର୍ଗବିଶେଷ, ଯହିଁରେ ରାଜ୍ୟର ଅଷ୍ଟବର୍ଗର କ୍ଷୟ ବା ବୃଦ୍ଧି ନ ଥାଏ (ଅମର)—13. A position which is neither increase nor decrease (in politics) ୧୪ । ଅବସ୍ଥାନ କରିବାର ଉପଯୁକ୍ତ ସ୍ଥାନ—14. Fit or proper place or position. ୧୫ । କାର୍ଯ୍ୟ କରିବାର ଜାଗା; ପଦ; କର୍ମ, (ହି. ଶ.)—15. Post. ୧୬ । ପଦ; ପଦବୀ (ହି. ଶ.)—16. Position; status. ୧୭ । (ବ୍ୟାକରଣ) ମୁଖଗହ୍ୱରସ୍ଥ ଯେଉଁ ଅଂଶରୁ କୌଣସି ବର୍ଣ୍ଣ ଉଚ୍ଚାରିତ (ହୁଏ) (ହି. ଶ.); ଉଚ୍ଚାରଣ ସ୍ଥାନ—17. (Grammar) The position inside the mouth from which a sound or letter is uttered. ୧୮ । ରାଜ୍ୟ; ଦେଶ (ହି. ଶ.)—18 Kingdom; country. ୧୯ । ମନ୍ଦିର; ଦେବାଳୟ (ହି. ଶ.) 19. Temple. ୨୦ । ଗଡ଼; ଦୁର୍ଗ (ହି. ଶ.)—20. Fort; fortress. ୨୧ । ସେନାଙ୍କର ଆତ୍ମରକ୍ଷା ନିମନ୍ତେ କୌଣସିଠାରେ ସ୍ଥିରରୂପେ ଅବସ୍ଥିତି—(ହି. ଶ.)—21. Position taken up by an army for its own protection or defence. ୨୨ । ଆଖେଟରେ ଶରକ୍ଷେପ ବେଳେ ଶରୀରର ଏକପ୍ରକାର ମୁଦ୍ରା (ହି. ଶ.)—22. A position or posture of the body during shooting ୨୩ । ଅବସର (ହି. ଶ.) 23. Occasion. ୨୪ । ଅବସ୍ଥା; ଦଶା (ହି. ଶ.)—24. Condition; state. ୨୫ । କାରଣ; ଉଦ୍ଦେଶ୍ୟ, (ହି. ଶ.)—25. Cause; aim. ୨୬ । କୌଣସି ଅଭିନେତାଙ୍କ ଅଭିନୟ ବା ଅଭିନୟଗତ ଚରିତ୍ର—26. The character of an actor in a drama. ୨୭ । ବେଦୀ (ହି ଶ.)—27. Altar. ୨୮ । ରାମାୟଣୋକ୍ତ ଗନ୍ଧର୍ବରାଜ ବିଶେଷ (ହି ଶ.) 28. Name of a king of Gandharbas mentioned in the Rāmāyaṇa. ଦେ. ବି—୧ । ଭୋଜନ ନିମନ୍ତେ ପରିଷ୍କୃତ ସ୍ଥାନ—1. Place prepared for taking meal upon. ୨ । ଦେହର ଅଂଶ—2. Part of the body. (ଯଥା—ମର୍ମସ୍ଥାନ ସନ୍ଧିସ୍ଥାନ)।

ସ୍ଥାନ ଅସ୍ଥାନ—ଦେ. ବି (ସମଚର)—୧ । ଉପଯୁକ୍ତ ସ୍ଥାନ ଓ ଅନୁପଯୁକ୍ତ
Sthāna asthāna ସ୍ଥାନ—1. Fit place and unfit place; good and evil places. ୨ । ଦେହର ପ୍ରକାଶ୍ୟ ଅଂଶ ଓ ଗୋପନୀୟ ଅଂଶ—2. All the parts and limbs of the body; visible and private parts of the body.

ସ୍ଥାନକ—ସଂ. ବି (ସ୍ଥାନ+କ)—୧ । ଆଲବାଲ; ଗଛ ମୂଳରେ ପାଣି
Sthānaka ରହିବା ପାଇଁ କରାଯାଇଥିବା ମଣ୍ଡା—A trough made round the foot of a tree to water to feed the roots. ୨ । ନଗର—2. Town. ୩ । ଫେନ—3. Foam. ୪ । ବୁଦ୍‌ବୁଦ—4. A bubble. ୫ । ନୃତ୍ୟର ମୁଦ୍ରାବିଶେଷ—5. A posture in dancing.

ସ୍ଥାନଚଞ୍ଚଳା—ସଂ. ବି—ବବରୀ ବୃକ୍ଷ (ଶବ୍ଦଚନ୍ଦ୍ରିକା); ବନ ତୁଳସୀ—
Sthānachañchalā Wild Basil plant.

ସ୍ଥାନଚିନ୍ତକ—ସଂ. ବି—ସେନା ପାଇଁ ଛାଉଣୀର ବ୍ୟବସ୍ଥା କରିବା
Sthānachintaka କର୍ମଚାରୀ (ହି. ଶ)—An army

officer who arranges for the camping of an army.

ସ୍ଥାନ ଚ୍ୟୁତ—ସଂ. ବଣ (୫ମୀ ତତ୍)—ସ୍ଥାନଭ୍ରଷ୍ଟ—
Sthāna chyuta Dislodged from one's position.
(ସ୍ଥାନଚ୍ୟୁତା—ସ୍ତ୍ରୀ)

ସ୍ଥାନ ତ୍ୟାଗ—ସଂ. ବ (୬ଷ୍ଠୀ ତତ୍)—କୌଣସି ସ୍ଥାନ ବା ଅଞ୍ଚଳ ଛାଡ଼ି
Sthāna tyāga ଚାଲିଯିବା—Leaving a place, going away.

ସ୍ଥାନ ତ୍ୟାଗୀ—ସଂ. ବଣ, ପୁଂ—ଯେ କୌଣସି ସ୍ଥାନ ତ୍ୟାଗ କରେ—
Sthāna tyāgi (One) Leaving any place.
(ସ୍ଥାନତ୍ୟାଗିନୀ—ସ୍ତ୍ରୀ)

ସ୍ଥାନ ଦାନ—ସଂ. ବ (୬ଷ୍ଠୀ ତତ୍)—କୌଣସି ବ୍ୟକ୍ତିକୁ ବା ବସ୍ତୁକୁ
Sthāna dāna ଅବସ୍ଥିତି ପାଇଁ ଆଶ୍ରୟ ଦେବା—Giving a place or shelter to a person or thing.

ସ୍ଥାନ ପାଳ—ସଂ. ବ(ସ୍ଥାନ+ପାଳ ଧାତୁ+କର୍ତ୍ତୃ.ଅ)—୧। ସ୍ଥାନରକ୍ଷକ;
Sthāna pāla ସ୍ଥାନିକ (ଶବ୍ଦ କଳ୍ପଦ୍ରୁମ); ଯେ କୌଣସି ସ୍ଥାନକୁ ଜଗେ; ଚୌକିଦାର—1. A person who watches a place; watchman. ୨। ପ୍ରଧାନ ନିରୀକ୍ଷକ (ହି.ଶ) —2. Chief Inspector.

ସ୍ଥାନ ବ୍ୟାପକତା—ସ. ବ—ସ୍ଥାନାବରୋଧକତା—The quality of
Sthāna byāpakatā occupying or obstructing a place.

ସ୍ଥାନ ଭ୍ରଷ୍ଟ—ସଂ. ବଣ (୫ମୀ ତତ୍)—୧। ସ୍ୱ ସ୍ଥାନରୁ ଚ୍ୟୁତ;
Sthāna bhrashṭa ପଦଚ୍ୟୁତ—1. Dislodged out of one's post or position. ୨। ଉଚିତ ସ୍ଥାନରୁ ଚ୍ୟୁତ—
(ସ୍ଥାନଭ୍ରଷ୍ଟା—ସ୍ତ୍ରୀ) 2. Displaced from the proper position. ୩। ସ୍ଥାନାନ୍ତରିତ—3. Dislocated. ୪। ନିଜ ସ୍ଥାନରୁ ଖସି ପଡ଼ିଥିବା—4. Fallen from one's place. [ ପ୍ର—ସ୍ଥାନଭ୍ରଷ୍ଟା ନ ଶୋଭନ୍ତେ ଦନ୍ତାଃ କେଶାଃ ନଖା ନରାଃ—ଗରୁଡ଼ ପୁରାଣ=ସ୍ଥାନଭ୍ରଷ୍ଟ ହେଲେ କେଶ, ଦନ୍ତ, ନଖ ଓ ନର ଶୋଭା ପାଆନ୍ତି ନାହିଁ । ]

ସ୍ଥାନ ମୃଗ—ସ. ବ—୧। କଙ୍କଡ଼ା (ହି. ଶ)—1. Crab. ୨। ମାଛ
Sthāna mruga (ହି. ଶ)—2. Fish. ୩। କଚ୍ଛପ (ହି. ଶ)—3. Tortoise. ୪। ମଗର; ମକର (ହି. ଶ)—4. Shark.

ସ୍ଥାନ ରକ୍ଷକ—ସ. ବ ପୁଂ—ସ୍ଥାନପାଳ; କୌଣସି ସ୍ଥାନକୁ ଜଗିବାର
Sthāna rakshaka ଭାରପ୍ରାପ୍ତ ବ୍ୟକ୍ତି—A person who is in charge of watching a place.

ସ୍ଥାନରେ—ଦେ. ଅ—୧। ବଦଳମୂଳେ; ବଦଳରେ—1. In the
Sthānare place of. ୨। ପ୍ରତିନିଧିରୂପେ—2. As a
स्थाने स्थानमे representative of. ୩। ଠାରେ; ଜାଗାରେ—3. On; at (a place).

ସ୍ଥାନ ସଙ୍କୁଳନ—ସଂ. ବ—୧। ଥାନ ଅଣ୍ଟିବା; ଅବସ୍ଥାନ କରିବାପାଇଁ
Sthāna sankulana ସ୍ଥାନର ଯଥେଷ୍ଟତା—1. The state of having sufficient space; provision for sufficient space. ୨। ସ୍ଥାନର ସଂକୀର୍ଣ୍ଣତା; ସ୍ଥାନ ନ ଅଣ୍ଟିବା—2. Narrowness of space.

ସ୍ଥାନ ସ୍ଥିତ—ସଂ. ବଣ—୧। ନିଜ ସ୍ଥାନରେ ବା ଉପଯୁକ୍ତ ସ୍ଥାନରେ
Sthāna sthita ଅବସ୍ଥିତ—1. Situated in one's proper or fit position. ୨। ବିଶିଷ୍ଟ ସ୍ଥାନରେ ଅବସ୍ଥିତ—2. Situated in a special position.

ସ୍ଥାନାଧିପ—ସଂ. ବ (୬ଷ୍ଠୀ ତତ୍)—୧। ସ୍ଥାନରକ୍ଷକ; ଥାନାଦାର—
Sthānādhipa 1. The person in charge of a place.
ସ୍ଥାନାଧିପତି, ସ୍ଥାନାଧିପ } ଅନ୍ୟରୂପ ୨। ଥାନପତି—2. Master;
ସ୍ଥାନାଧୀଶ, ସ୍ଥାନାଧୀଶ୍ୱର } headman of a place.
୩। କୌଣସି ସ୍ଥାନର ମାଲିକ—3. Proprietor of a place

ସ୍ଥାନାନ୍ତର—ସ.ବ(ଅନ୍ୟ ସ୍ଥାନ=ସ୍ଥାନାନ୍ତର, କର୍ମଧାରୟ)—ଅନ୍ୟସ୍ଥାନ—
Sthānāntara Another place. ଦେ. ବ—
স্থানান্তর स्थानान्तर ୧। ସ୍ଥାନାନ୍ତରିତ ହେବାର ଅବସ୍ଥା—1. Removal; displacement. ୨। ଚାକିରିରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ବଦଳି—2. Transfer of service from one place to another.

ସ୍ଥାନାନ୍ତରିତ—ସ. ବଣ (ସ୍ଥାନାନ୍ତର+ଇତ)—୧। ଏକ ସ୍ଥାନରୁ ଅନ୍ୟ
Sthānāntarita ସ୍ଥାନକୁ ନୀତ ବା ପ୍ରେରିତ—1. Displaced; dislocated; removed from one place. ୨। ଚାକିରିରୁ ବଦଳି ହେବା—2. Transferred from service at one place to another.

ସ୍ଥାନାଧ୍ୟକ୍ଷ—ସ. ବ.ପୁ—୧। କୌଣସି ସ୍ଥାନର ରକ୍ଷକ—1. Watch-
Sthānādhyaksha man of a place. ୨। କୌଣସି
(ସ୍ଥାନାଧ୍ୟକ୍ଷା—ସ୍ତ୍ରୀ) ସ୍ଥାନର ପ୍ରଧାନ ନିରୀକ୍ଷକ—2. The principal Supervisor of a place.

ସ୍ଥାନାପନ୍ନ—ସଂ. ବଣ—(୭ମୀ ତତ୍)—ଅନ୍ୟ ବ୍ୟକ୍ତିଙ୍କ ସ୍ଥାନରେ
Sthānāpanna ଅସ୍ଥାୟୀ ଭାବରେ କାର୍ଯ୍ୟ କରିବା(ବ୍ୟକ୍ତି)(ହି ଶ.) Acting temporarily for another.

ସ୍ଥାନାବରୋଧ—ସ. ବ (୬ଷ୍ଠୀ ତତ୍)—ଏକ ସ୍ଥାନ ମାଡ଼ି ବସିବା—
Sthānāborodha Occupying or obstructing a place.
(ସ୍ଥାନାବରୋଧକ, ସ୍ଥାନାବରୋଧୀ—ବଣ)

ସ୍ଥାନାବରୋଧକତା—ସ.ବ(ବିଜ୍ଞାନପରିଭାଷା)—ଜଡ଼ପଦାର୍ଥର ଗୁଣବିଶେଷ,
Sthānāborodhakatā ଯେଉଁ ଗୁଣ ଯୋଗୁଁ ଜଡ଼ ପଦାର୍ଥ ଗୋଟିଏ ସ୍ଥାନକୁ ବ୍ୟାପିକରି ରହେ—(physics) An attribute of matter; occupation of space by matter.

ସ୍ଥାନାଭାବ—ସ. ବ (୬ଷ୍ଠୀ ତତ୍)—ସ୍ଥାନର ଅଣ୍ଟ ନ ହେବା—
Sthānābhāba Want of space

ସ୍ଥାନିକ—ସ. ବଣ (ସ୍ଥାନ+ଇକ)—୧। ସ୍ଥାନୀୟ—1. Local. ୨।
Sthānika ସ୍ଥାନସମ୍ବନ୍ଧୀୟ—2. Relating to a place. ବି. ପୁ—୧। ସ୍ଥାନାଧ୍ୟକ୍ଷ; ସ୍ଥାନ ରକ୍ଷକ—

1. Custodian of a place; proprietor of a place. (ଓଡ଼ିଆରେ 'ଥାମୀ' ଶବ୍ଦ ଏହି ଶବ୍ଦରୁ ଅପଭ୍ରଷ୍ଟ, ଯଥା—ଥାମୀ ରଇତ ) ୨ । ମନ୍ଦିରର ପ୍ରବନ୍ଧକ (ହି. ଶ)—2. The Superintendent of (ସ୍ଥାନକା—ସ୍ତ୍ରୀ) a temple.

ସ୍ଥାନୀ—ସଂ. ବିଣ (ସ୍ଥାନ+ଇନ୍ ୧ମା. ୧ବ)—୧ । ସ୍ଥାନବିଶିଷ୍ଟ; Sthānī ସ୍ଥିତିଶୀଳ (ମୁଗ୍ଧବୋଧ)—1. Having space; ( ସ୍ଥାନନୀ—ସ୍ତ୍ରୀ ) spacious. ୨ । ସ୍ଥାୟୀ ( ହି. ଶ )—2. Permanent. ୩ । ଉଚିତ; ଉପଯୁକ୍ତ (ହି. ଶ) ପାତ୍ର पात्र 3. Proper; suitable. ଦେ. ବି (ପଦ୍ୟ; ଅନ୍ୟ ଶବ୍ଦ ପରେ ଯୁକ୍ତ) (ଅମୁକର) ସ୍ଥାନ; ବିଷୟ; ପାତ୍ର—Object (e.g. of worship) (ଉ—ତା ଭୂଲରେ ଦଶ ଅଯୁତ ପ୍ରାଣବେଳ, ହେଲେ ସେ ଦେବତାମାନଙ୍କ ପୂଜାସ୍ଥାନୀ—କୃଷ୍ଣସିଂହ ମହାଭାରତ. ଶଲ୍ୟ ।)

ସ୍ଥାନୀୟ—ସଂ. ବିଣ ( ସ୍ଥା+ଅଧିକରଣ• ଅନୀୟ )—୧ । ସ୍ଥାତବ୍ୟ—Sthānīya 1. Fit to stay in. ୨ । ସ୍ଥାନସମ୍ବନ୍ଧୀୟ ( ସ୍ଥାନୀୟା—ସ୍ତ୍ରୀ ) 2. Relating to a place or locality. ( ଯଥା—ସ୍ଥାନୀୟ କମ୍ପବନ୍ତୀ )—୩ । ନିର୍ଦ୍ଦିଷ୍ଟ ଅଞ୍ଚଳସମ୍ବନ୍ଧୀୟ—3. Local. ୪ । ଅନ୍ୟ ଶବ୍ଦ ପରେ ଯୁକ୍ତ) ( ଅମୁକର ) ସଦୃଶ; କଳ୍ପ; ସମାନସମ୍ପର୍କୀୟ ( ବ୍ୟକ୍ତି )—4. Occupying a position similar to. ( ଯଥା—ପିତୃସ୍ଥାନୀୟ, ପୁତ୍ରସ୍ଥାନୀୟ ) । ସଂ• ବି—ନଗର (ଅମର)—Town.

ସ୍ଥାନୀୟ स्थानीय ଦେ. ବିଣ—କୌଣସି ଅଞ୍ଚଳ ଉପରେ ଅଧିକାରଯୁକ୍ତ—Having jurisdiction over a place. ( ଯଥା—ସ୍ଥାନୀୟ ହାକିମ; ସ୍ଥାନୀୟ ପଞ୍ଚାଏତ ) ।

ସ୍ଥାନୀୟ ହାକିମ—ଦେ.ବି—କୌଣସି ସ୍ଥାନ ଉପରେ ଅଧିକାର ପ୍ରାପ୍ତ ହାକିମ Sthānīya hākima —Local authority; authority ସ୍ଥାନୀୟ হাকিম having jurisdiction over a place. स्थानीय हाकिम [ ଦ୍ର—ଏହିପରି ମୁନ୍‌ସଫ୍, ପୁଲିସ୍, ପ୍ରେସିଡେଣ୍ଟ, ମାଜିଷ୍ଟ୍ରେଟ୍, ସବ୍ ରେଜିଷ୍ଟ୍ରାର୍, କୋର୍ଟ, ଗଭର୍ଣ୍ଣମେଣ୍ଟ, ଇତ୍ୟାଦି ଶବ୍ଦ ପୂର୍ବରେ ସ୍ଥାନୀୟ ଶବ୍ଦ ବ୍ୟବହୃତ ହୁଏ । ]

ସ୍ଥାନେ——ସଂ. ଅ—୧ । ଯୋଗ୍ୟ; ଉଚିତ; ଯୁକ୍ତ ( ଶବ୍ଦରତ୍ନାବଳୀ )—Sthāne 1. Proper; fit. ୨ । ସମାନ; ସଦୃଶ—2. Similar; equal. ୩ । ସତ୍ୟ—3. True; real. ୪ । ସୁତରାଂ—4 Consequently. ୫ । ଫଳତଃ—5. In fact; actually. ୬ । କାରଣରୁ—6. For the reason of. ୭ । ବଦଳରେ; ବିନିମୟରେ—7. In lieu of. ୮ । ମଧ୍ୟରେ—8. Among. [ଉ—ସବୁଙ୍କରେ ତନ୍ତ୍ର, ଦେବଙ୍କ ସ୍ଥାନେ ମେରୁ—କୃଷ୍ଣସିଂହ. ମହାଭାରତ. ବିରାଟ ।] ୯ । ବିଶିଷ୍ଟ ସ୍ଥାନରେ—9. In a special position.

ସ୍ଥାନେ ସ୍ଥାନେ—ଦେ. ଅ—୧ । ଭିନ୍ନ ଭିନ୍ନ ସ୍ଥାନରେ—1. At diffe- Sthāne sthāne rent places. ୨ । ଅନେକ ସ୍ଥାନରେ— স্থানে স্থানে 2. At many places. ୩ । କେତେକ स्थान स्थान में ସ୍ଥାନରେ—3. At some places.

ସ୍ଥାନେଶ୍ୱର—ସଂ. ବି—୧ । ସ୍ଥାନାଧିପ (ଦେଖ) —1. Sthānādhipa Sthāneśwara ( See ) ୨ । ଥାନେଶ୍ୱର ନାମକ ପ୍ରାଚୀନ ତୀର୍ଥ—2. Thaneswar; an ancient place of Hindu pilgrimage.

ସ୍ଥାପକ—ସଂ. ବିଣ• ପୁଂ (ସ୍ଥା• ଧାତୁ ଣିଚ୍=ସ୍ଥାପି ଧାତୁ+କର୍ତ୍ତୃ. ଅକ)—Sthāpaka ସ୍ଥାପନକର୍ତ୍ତା; ଯେ ପ୍ରତିଷ୍ଠା କରେ; ସଂସ୍ଥାପକ; ( ସ୍ଥାପିକା—ସ୍ତ୍ରୀ ) ପ୍ରତିଷ୍ଠାତା—One who starts or establishes or places something. ସ୍ଥାପକତା } ବି. ସ୍ଥାପକତ୍ୱ } ବି. ପୁଂ ( ନାଟ୍ୟ ଶାସ୍ତ୍ର )—୧ । ସୂତ୍ରଧରଙ୍କ ପରେ ନାଟ୍ୟକାବ୍ୟର ବିଷୟ ସୂଚନାକାରୀ ନଟ; ସୂତ୍ରଧରଙ୍କ ସହକାରୀ; ସହକାରୀ ରଙ୍ଗମଞ୍ଚାଧ୍ୟକ୍ଷ ( ହି. ଶ )—1. An actor who introduces the play to the audience after the Sūtradhara; assistant stage-manager. ୨ । ଦେବପ୍ରତିମା ନିର୍ମାତା ( ହି. ଶ )—2. The maker of an idol. ୩ । ଅମାନତକାରୀ ବ୍ୟକ୍ତି ( ହି• ଶ )—3. Depositor.

ସ୍ଥାପତ୍ୟ—ସଂ. ବି ( ସ୍ଥପତି+ଯ )—୧ । ରାଜକାମ; ସ୍ଥପତିର କାର୍ଯ୍ୟ—Sthāpatya 1. The work of a mason; masonry. ୨ । ସ୍ଥପତି ବିଦ୍ୟା; ଗୃହାଦିର ଶିଳ୍ପ—2. Architecture; the art of house-building. ୩ । ଅନ୍ତଃପୁର ରକ୍ଷକ ( ଅମର )—3. The servant in charge of the harem. ୪ । ସ୍ଥାନରକ୍ଷକଙ୍କ ପଦ (ହି. ଶ)—4. The post or position of the keeper of a place.

ସ୍ଥାପତ୍ୟ ବେଦ—ସଂ. ବି—ବାସ୍ତୁଶିଳ୍ପ ବା ଭବନନିର୍ମାଣ ବିଷୟକ Sthāpatya beda ଉପବେଦ—One of the four secondary Bedas dealing with house-building. [ ଦ୍ର—ଏହା ଚାରି ଉପବେଦ ମଧ୍ୟରୁ ଗୋଟିଏ । କଥିତ ଅଛି ଯେ, ବିଶ୍ୱକର୍ମା ଅଥର୍ବ ବେଦରୁ ଏହା ବାହାର କରିଥିଲେ—ହି• ଶ । ]

ସ୍ଥାପନ(ନା)—ସଂ. ବି ( ସ୍ଥା ଧାତୁ ଣିଚ୍=ସ୍ଥାପି ଧାତୁ+ଭାବ. ଅନ+ Sthāpana(nā) ଆ )—୧ । ନିବେଶନ; ରଖିବା; ବୋଳିବା ( ସ୍ଥାପ୍ୟ, ସ୍ଥାପନୀୟ—ବିଣ ) 1. Placing; setting up. (ଥାପନା—ଅପଭ୍ରଂଶ) ୨ । ପ୍ରତିଷ୍ଠା କରିବା; ଥାପିବା—2. Establishing; starting; founding; setting up. ୩ । ଅର୍ପଣ—3. Entrusting. ୪ । ନିୟୋଗ କରଣ—4. Deputing. ୫ । ପୁଂସବନ ( ମେଦନୀ ); ହିନ୍ଦୁଙ୍କର ଦ୍ୱିତୀୟ ସଂସ୍କାର—5. A

ceremony performed by the husband of a woman when she perceives the foetus to be quick in the womb in the second or third month of conception. ୬। ସମାଧି ( ବୌଦ୍ଧ )—6. Laying of the ashes of a deceased saint. ୭। କୌଣସି ନୂଆ କାମ କରିବା (ହି. ଶ)—7. Starting of a new work. ୮। ପ୍ରତିପାଦନ; ପ୍ରମାଣିତ କରଣ (ହି ଶ)—8. Establishment of a matter by proof. ୯। ଶରୀରରକ୍ଷାର ବା ଆୟୁର୍ବୃଦ୍ଧିର ଉପାୟ ( ହି ଶ )—9. Means for preservation of the body or for longevity. ୧୦। ( ରକ୍ତସ୍ରାବ ) ରୋଧ କରିବା ଉପାୟ ( ହି. ଶ. )—10. Means taken for restraining the flow (of blood. ୧୧। ଆଳୟ; ଆବାସ; ଗୃହ ( ହି. ଶ )—11. House. ୧୨। ଅନ୍ନରାଶି ( ହି. ଶ )—12. A heap of food. ୧୩। ନିରୂପଣ (ହି. ଶ)—13. Ascertainment

ସ୍ଥାପନ ନିକ୍ଷେପ—ସଂ. ବି—ଅର୍ହତଙ୍କ ମୂର୍ତ୍ତିର ପୂଜା ( ହି. ଶ )—
Sthāpana nikshepa Worship of the image of a Jaina saint.

ସ୍ଥାପନା ଲିଙ୍ଗ—ଦେ. ବି—ଯେଉଁ ଶିବଲିଙ୍ଗ ସ୍ୱୟମ୍ଭୂ ନୁହନ୍ତି, ଅର୍ଥାତ
Sthāpanā linga ଯାହାଙ୍କୁ ଲୋକେ ଆଣି କୌଣସି ସ୍ଥାନରେ
स्थापित लिङ्ग ସ୍ଥାପନ କରନ୍ତି ବା ବସାନ୍ତି—An image of
स्थापित लिङ्ग Siba which is set up at a place and is not self-existent.
ସ୍ୱୟମ୍ଭୂ ଲିଙ୍ଗ, ପାତାଳଫୁଟା ଲିଙ୍ଗ }—ବିପରୀତ

ସ୍ଥାପନା ସତ୍ୟ—ସଂ. ବି—କୌଣସି ବସ୍ତୁର ବା ବ୍ୟକ୍ତିଙ୍କ ପ୍ରତିମାରେ ବା
Sthāpanā satya ଚିତ୍ରରେ ସ୍ୱୟଂ ଉକ୍ତ ବସ୍ତୁର ବା ବ୍ୟକ୍ତିଙ୍କର ଆରୋପ ( ହି. ଶ )—Attributing of a thing or person on its image or picture.

ସ୍ଥାପନିକ—ସଂ. ବି (ସ୍ଥାପନ+ଇକ)—ଅମାନତ କରି ଯାଇଥିବା ( ଧନ
Sthāpanika ବା ବସ୍ତୁ )—Deposited, kept in deposit.

ସ୍ଥାପଣୀ—ସ. ବି (ସ୍ଥାପନ+ଈ)—ପାଠା (ମେଦିନୀ, ଅମର); ଅକାନବିନ୍ଧ
Sthāpanī ଗୁଳ୍ମ—Stephania Hernandifolia (plant).

ସ୍ଥାପନୀୟ—ସ. ବିଣ (ସ୍ଥାପି ଧାତୁ+କର୍ମ. ଅନୀୟ )—ସ୍ଥାପିତ ହେବାର
Stāpanīya ଯୋଗ୍ୟ—Fit to be placed or fixed or
( ସ୍ଥାପ୍ୟ—ଅନ୍ୟରୂପ ) started.

ସ୍ଥାପୟିତା—ସ. ବିଣ. ପୁଂ (ସ୍ଥାପି ଧାତୁ+କର୍ତ୍ତୃ. ତୃ; ସ୍ଥାପୟିତୃ
Sthāpayitā ଶବ୍ଦ ୧ମା. ୧ବ)—ସଂସ୍ଥାପକ; ସ୍ଥାପକ; ଯେ
(ସ୍ଥାପୟିତ୍ରୀ—ସ୍ତ୍ରୀ) ସ୍ଥାପନ କରନ୍ତି—Establishing; founding.

ସ୍ଥାପି(ଧାତୁ)—ସ.(ସ୍ଥା ଧାତୁ=ରହିବା+ଣିଚ୍)—ରଖାଇବା; ଥୋଇବା;
Sthāpi (root) ବସାଇବା—To set up; to place.

ସ୍ଥାପିକା—ସ. ବିଣ. ସ୍ତ୍ରୀ (ସ୍ଥାପକ+ଆ)—ସ୍ଥାପକର ସ୍ତ୍ରୀ ଲିଙ୍ଗ—
Sthāpikā Feminine of Sthāpaka.

ସ୍ଥାପିତ—ସ. ବିଣ ( ସ୍ଥାପି ଧାତୁ+କର୍ମ. ତ )—୧। ନିବେଶିତ—
Sthāpita 1. Placed. ୨। ରଖା ଯାଇଥିବା—2. Located ୩। ନ୍ୟସ୍ତ—3. Deposited. ୪। ରୋପିତ—4. Planted. ୫। ଆରମ୍ଭ କରି ଯାଇଥିବା—5. Set up; started; founded. ୬। ଙ୍ଗ୍ଧିର (ମେଦିନୀ) 6. Fixed. ୭। ଅମାନତ ରଖାଯାଇଥିବା ( ହି. ଶ )—7. Deposited. ୮। ନିର୍ଦ୍ଦିଷ୍ଟ (ହି ଶ.)—8. Specified. ୯। ଦୃଢ (ହି. ଶ.)—9. Firm; fixed. ୧୦। ବିବାହିତ—10. Married.

ସ୍ଥାପିତ ଲିଙ୍ଗ—ସ. ବି—ସ୍ଥାପନା ଲିଙ୍ଗ (ଦେଖ)—Sthāpanālinga
Sthāpita linga (See)

ସ୍ଥାପିବା—ଦେ. କ୍ରି (ସ. ସ୍ଥାପି ଧାତୁ)—୧। ସ୍ଥାପନ କରିବା—1. To
Sthāpibā set up; to start; to found; to establish.
स्थापनकरबा ୨। ଥୋଇବା; ରଖିବା—2. To place.
स्थापनकरतो ୩। ନିବେଶିବା—3. To locate. [ଉ—କେବଳ ମନକୁ ସ୍ଥାପି ସ୍ଥିର ଅସନେ—ପାନକୃଷ୍ଣ. ରସକଲ୍ଲୋଳ ] ]
୪। ଅନ୍ୟଦ୍ୱାରା ରଖାଇବା; ଥୁଆଇବା—
4. To cause to be set or placed.

ସ୍ଥାପୀ—ସ. ବି. ପୁଂ (ସ୍ଥାପି ଧାତୁ+କର୍ତ୍ତୃ ଇନ୍; ୧ମା. ୧ବ)—ପ୍ରତିମା
Sthāpī ନିର୍ମାଣକାରୀ ବ୍ୟକ୍ତି (ହି. ଶ)—The maker of
(ସ୍ଥାପିନୀ—ସ୍ତ୍ରୀ) an idol.

ସ୍ଥାପ୍ୟ—ସ. ବିଣ ( ସ୍ଥାପି ଧାତୁ+କର୍ମ ଯ )—ସ୍ଥାପନୀୟ—Fit to be
Sthāpya placed or set up. ସଂ. ବି—
୧। ଦେବପ୍ରତିମା (ହି. ଶ)—1. Idol. ୨। ଅମାନତ ଥିପାଜତ (ହି. ଶ)—2. Deposit.

ସ୍ଥାବର—ସଂ. ବିଣ ( ସ୍ଥା ଧାତୁ+କର୍ତ୍ତୃ ଶୀଳାର୍ଥେ ବର)—୧। ଅଚଳ;
Sthābara ଯାହା ଏକ ସ୍ଥାନରୁ ଅନ୍ୟସ୍ଥାନକୁ
( ଜଙ୍ଗମ—ବିପରୀତ ) ନିଆଯାଇ ନ ପାରେ—
1. Immovable; incapable of being moved away from a place. [ ଦ୍ର—ସ୍ଥାବର ସମ୍ପତ୍ତି—ଯଥା—ଘର, ଜମି, ଗ୍ରାମ। ଅସ୍ଥାବର ସମ୍ପତ୍ତି—ଯଥା—ଧନ ଦ୍ରବ୍ୟ।] ୨। ଚିରସ୍ଥାୟୀ; ସ୍ଥାୟୀ; ସ୍ଥିତିଶୀଳ 2. Permanent. ୩। ସ୍ଥାବର ସମ୍ପତ୍ତିସମ୍ବନ୍ଧୀୟ ( ହି. ଶ )—3. Relating to immovable property. ବି—୧। ପର୍ବତ ( ଶବ୍ଦରତ୍ନାକର )—1. Mountain. ୨। ଧନୁର୍ଗୁଣ ( ତ୍ରିକାଣ୍ଡଶେଷ )—2. Bowstring. ୩। ବୃକ୍ଷ—3. Tree. ୪। ଭୂସମ୍ପତ୍ତି—4. Immovable property; landed property. ୫। ପୁରୁଷାନୁକ୍ରମେ ପରିବାରରେ ରକ୍ଷିତ ହେବା ସମ୍ପତ୍ତି—5. Any property which is retained permanently in a family from generation to generation.

ସ୍ଥାବର ଜଙ୍ଗମ—ସଂ. ବି(ଦ୍ୱନ୍ଦ୍ୱସମାସ ସହଚର)—୧। ଅଚଳନ୍ତ ଓ ଚଳନ୍ତ
Sthābara jangama ବସ୍ତୁ—1. Immovable and movable things. ୨। ଜଡ଼ପଦାର୍ଥ ଓ ପ୍ରାଣୀ—2. Inanimate and animate things. ବଣ—ଚଳନ୍ତ ଓ ଅଚଳନ୍ତ—Movable and immovable.

ସ୍ଥାବର ବିଷ—ସଂ. ବି—ସୁଶ୍ରୁତ ଅନୁସାରେ ଯେଉଁ ବିଷବୃକ୍ଷ ମୂଳ, ପତ୍ର,
Sthābara bisba ଫଳ, ଛାଲ, ଦୁଧ, ସାର, ଅଠା,ଚେର ଓ ଧାତୁରେ ମିଳେ (ହି. ଶ); ସ୍ଥାବର ପଦାର୍ଥରେ ଥିବା ଜହର—Vegetable and metal poison. [ ବି-ବୈଦ୍ୟକ ମତରେ ଏ ବିଷ ଜ୍ୱର, ହିକ୍କା, ଦନ୍ତହର୍ଷ, ଗଳବେଦନା, ବମନ, ଅରୁଚି, ଶ୍ୱାସ, ମୂର୍ଚ୍ଛା ଉତ୍ପାଦନ କରେ (ହି. ଶ)।

ସ୍ଥାବର ରାଜ—ସଂ. ବି (୬ଷ୍ଠୀ ତତ୍)—ଗିରିରାଜ; ହିମାଳୟ ପର୍ବତ—
Sthābararāja The Himalayan mountain.

ସ୍ଥାବର ସମ୍ପତ୍ତି—ସଂ. ବି—ଭୂସମ୍ପତ୍ତି; ଅଚଳନ୍ତ ସମ୍ପତ୍ତି—
Sthābara sampatti Immovable property.

ସ୍ଥାବରାଦି——ସଂ. ବି—ବତ୍ସନାଭ ନାମକ ବିଷ (ରାଜନିର୍ଘଣ୍ଟ); ମିଠା ବିଷ
Sthābarādi ମହୁର—Aconite.

ସ୍ଥାବରାସ୍ଥାବର ସମ୍ପତ୍ତି—ସଂ. ବି—ଅଚଳନ୍ତ ଓ ଚଳନ୍ତ ସମ୍ପତ୍ତି—
Sthābarāsthābara sampatti Immovable and movable properties.

ସ୍ଥାବିର(ର୍ଯ୍ୟ)—ସଂ. ବି ( ସ୍ଥବିର+ଭାବ ଅ; ଯ )—୧ । ସ୍ଥାବିରତା,
Sthābira(rjya) ବାର୍ଦ୍ଧକ୍ୟ—1. Old age. ୨ । ପୁରୁଷ ପକ୍ଷେ ୭୦ ଓ ସ୍ତ୍ରୀପକ୍ଷେ ୫୦ ବର୍ଷ ହେବା ଅବସ୍ଥା 2. Attainment of the age of 70 years in the case of males and 50 years in the case of females. [ ଭା—୭୦ ବର୍ଷରୁ ୯୦ ବର୍ଷ ବୟସ ପର୍ଯ୍ୟନ୍ତ ସ୍ଥାବିରାବସ୍ଥା ଓ ତହିଁରୁ ଊର୍ଦ୍ଧ୍ୱବୟସ୍କ ବ୍ୟକ୍ତିକୁ ବର୍ଷୀୟାନ ବୋଲାଯାଏ—ହି. ଶ।]

ସ୍ଥାମ—ସଂ ବି (ସ୍ଥା ଧାତୁ+କରଣ ମନ୍; ସ୍ଥାମନ୍; ୧ମା ୧ବ)—୧।
Sthāma ସାମର୍ଥ୍ୟ; ଶକ୍ତି (ହି. ଶ)—1. Power, ability. ୨ । ଅଶ୍ୱଘୋଷ; ଘୋଡ଼ାର ହେଁ ହେଁ ସ୍ୱର ( ହି. ଶ )—2. Neighing of the horse. ୩ । ( +ଅଧିକରଣ ମନ୍ ) ସ୍ଥାନ; ଜାଗା (ହି. ଶ)—3. Place; locality.

ସ୍ଥାୟ—ସଂ ବି (ସ୍ଥା ଧାତୁ+ଅଧିକରଣ ଅ)—୧ । ଆଧାର; ପାତ୍ର (ହି. ଶ)
Sthāya 1. Receptacle.

ସ୍ଥାୟା—ସଂ. ବି (ସ୍ଥା ଧାତୁ+ଅଧିକରଣ, ଅ)—ପୃଥିବୀ (ହି.ଶ)—
Sthāyā The earth.

ସ୍ଥାୟିତା(ତ୍ୱ)—ସଂ. ବି (ସ୍ଥାୟିନ୍+ଭାବାର୍ଥେ ତା, ତ୍ୱ)—୧ । ସ୍ଥିରତା-
Sthāyita(twa) 1. Fixedness ୨ । ସ୍ଥାୟୀ ହେବା ଭାବ—2. The state of being Sthāyi.

ସ୍ଥାୟିଭାବ—ସଂ ବି (ସ୍ଥାୟିନ୍+ଭାବ କର୍ମ ଧା) —୧ । ସ୍ଥାୟିତ୍ୱ (ଦେଖ)
Sthāyi bhāba 1. Sthāyitwa (See) ୨ । (ସାହିତ୍ୟ) ରସର କିଧାଭାବାନ୍ତର୍ଗତ ଭାବବିଶେଷ—2. Permanent state of a sentiment [ବି—ଯେଉଁ ଯେଉଁ ରସ ମନରେ ଯେଉଁ ବହୁକାଳସ୍ଥାୟୀ ଭାବ ଜନ୍ମାଏ ତାକୁ ସ୍ଥାୟୀଭାବ ବୋଲାଯାଏ । ରସର ଭାବ ୩ ପ୍ରକାର ।
୧ । ସଞ୍ଚାରୀ ୨ । ବ୍ୟଭିଚାରୀ ୩ । ସ୍ଥାୟୀ
ମତାନ୍ତରରେ
୧ । ସ୍ଥାୟୀ ୨ । ସାତ୍ତ୍ୱିକ ୩ । ସଞ୍ଚାରୀ ।
ଶୃଙ୍ଗାରାଦି ନଅଗୋଟି ରସର ଅବସ୍ଥାନକାଳ ପର୍ଯ୍ୟନ୍ତ ମନରେ ଯେଉଁ ଭାବମାନ ଯଥାକ୍ରମେ ଥାଏ । ଯଥା—ଶୃଙ୍ଗାରରସର ସ୍ଥାୟିଭାବ—ରତି, ହାସ୍ୟରସର—ହାସ୍ୟ, କରୁଣରସର—ଶୋକ, ରୌଦ୍ରରସର—କ୍ରୋଧ, ବୀରରସର —ଉତ୍ସାହ, ଭୟାନକ ରସର ଭୟ, ବୀଭତ୍ସ ରସର ଜୁଗୁପ୍ସା ବା ଘୃଣା, ଅଦ୍ଭୁତରସର—ବିସ୍ମୟ, ଶାନ୍ତରସର—ଶମ ବା ନିର୍ବେଦ । ସ୍ଥାୟିଭାବ ସର୍ବଦା ଚିତ୍ତରେ ସଂସ୍କାରରୂପରେ ବର୍ତ୍ତମାନ ଥାଏ ଓ ବିଭାବ ଆଦିରେ ଅଭିବ୍ୟକ୍ତ ହୋଇ ରସତ୍ୱ ପ୍ରାପ୍ତ ହୁଏ । ହି. ଶ ।)
ସ୍ଥାୟିଭାବର ଅନ୍ୟ ଲକ୍ଷଣ—ଯାହା ରସାସ୍ୱାଦନର ଅଙ୍କୁରସ୍ୱରୂପ ଏବଂ ଅବିରୁଦ୍ଧ ବା ବିରୁଦ୍ଧ କୌଣସି ଭାବ ଯାହାକୁ ଆଚ୍ଛାଦିତ କରି ପାରେ ନାହିଁ ତାହା ସ୍ଥାୟିଭାବ ଅଟେ ।)

ସ୍ଥାୟୀ—ସଂ. ବିଣ. ପୁଂ ( ସ୍ଥା ଧାତୁ+କର୍ତ୍ତି. ଇନ୍=ସ୍ଥାୟିନ୍ ଶବ୍ଦ ୧ମା.
Sthāyi ୧ବ) ୧ । ଚିର; ସ୍ଥିତିଶୀଳ; ଯେ ଚିରକାଳ ରହେ—
(ସ୍ଥାୟିନୀ—ସ୍ତ୍ରୀ) 1. Permanent. ୨ । ଅଚଳ—2. Im-
(ଅସ୍ଥାୟୀ—ବିପରୀତ) movable; stable. ୩ । ବହୁକାଳ ସ୍ଥାୟୀ 3. Enduring; which can exist long. ୪ । ଅପରିବର୍ତ୍ତନଶୀଳ—4. Steady; unchangeable, invariable. ୫ । ବିଶ୍ୱାସ କରିବା ଯୋଗ୍ୟ (ହି.ଶ.) 5. Trustworthy. ସଂ ବି.—ସ୍ଥାୟିଭାବ (ଦେଖନ୍ତୁ) Sthāyibhāba (See)

ସ୍ଥାୟୀ ଚାକିରି—ଦେ. ବି.—ଯେଉଁ ଚାକିରିରେ କୌଣସି ବ୍ୟକ୍ତି ଚିରକାଳ
Sthāyi chākiri ପାଇଁ ରହେ—Permanent service, स्थायीचाकरी स्थायीनौकरी
(ଅସ୍ଥାୟୀ ବା ଠିକାଚାକିରି—ବିପରୀତ)

ସ୍ଥାୟୁକ—ସଂ. ବିଣ ( ସ୍ଥା ଧାତୁ+କର୍ତ୍ତି. ଉକ )—୧ । ଏକ ଗ୍ରାମରେ
Sthāyuka ନିଯୋଜିତ (ଅମର) —1. Employed or serving in the same village ୨ । ସ୍ଥାୟୀ—2. Permanent. ବି ପୁଂ—ଗ୍ରାମର ମଣ୍ଡଳ, ଗ୍ରାମାଧିପତି Headman of a village.

ସ୍ଥାଳ (ଲ)—ସଂ. ବ (ସ୍ଥା ଧାତୁ+ଅଧିକରଣେ, ଅଳ, କିମ୍ବା ସ୍ଥଲ୍ ଧାତୁ= Sthāla (la) ରହିବା+କର୍ତ୍ତୃ. ଅ)—୧ । ସ୍ଥାଳୀ (ଦେଖ)—(ଥାଳ, ଥାଳ,ଥାଳିଆ—ଅପଭ୍ରଂଶ) 1. Sthālī (See). ୨। ଥାଳ, ଭୋଜନ ପାତ୍ର (ଅମର)—2. Plate for taking meal. ୩। ଥାଳ; ଚଟକ ଭୋଜନପାତ୍ର—3. A shallow plate for taking meal in. ୪ । ପାତ୍ର; ଆଧାର (ହ୍ର. ଶ.)—4. Receptacle. ୫ । ଦାନ୍ତର ତଳେ ଦାନ୍ତ-ପାଟିର ଭିତର ଅଂଶ (ହ୍ର. ଶ )—5. The inner portion of the jaw below the teeth.

ସ୍ଥାଳକ—ସଂ. ବ—ପିଠିର ଗୋଟିଏ ହାଡ଼ (ହ୍ର.ଶ.)—One of the Sthālaka bones of the back.

ସ୍ଥାଳିକ—ସଂ. ବ—ମଳର ଦୁର୍ଗନ୍ଧ (ହ୍ର. ଶ )—The offensive Sthālika odour of fæcus.

ସ୍ଥାଳିକା—ସଂ. ବ.—ଏକପ୍ରକାର ମାଛି (ହ୍ର. ଶ.)—A kind of Sthālikā fly.

ସ୍ଥାଳୀ(ଲୀ)—ସ. ବ—(ସ୍ଥାଳ+ଈ)—୧ । ପାକପାତ୍ର ବିଶେଷ; ହାଣ୍ଡି—Sthālī(lī) 1. An earthen pot; a cooking pot; a boiler. ୨ । ଥାଳ; ଚଟକା ଭୋଜନପାତ୍ର—1. A shallow plate. (ଯ୍ର—ଶୂଲଭ ଭଳ ଜଳରେ ପଞ୍ଚ ରତ୍ନସ୍ଥାଳୀ । ଉଞ୍ଜ. ବୈଦେହୀଶବିଳାସ ।) ୩ । କୁଣ୍ଡ—3. Trough. [ଦ୍ର—ଏଥିର ପର୍ଯ୍ୟାୟ ପିଠର, କୁଣ୍ଡା, ପିଠରୀ, ସ୍ଥାଳ, ଉଖା, କୁଣ୍ଡୀ, କୁଣ୍ଡା, କୁଣ୍ଡିକା, ପାକ, ପାତ୍ରୀ ।] ୪ । ମାଟିର ଥାଳିଆ (ହ୍ର. ଶ)—4. Earthen saucer. ୫ । ସୋମରସ ତିଆର କରିବାରେ ବ୍ୟବହୃତ ପାତ୍ର ବିଶେଷ (ହ୍ର. ଶ)—5. A kind of pot used in preparing the Soma juice. ୬ । ପାଟଳା (ହ୍ର. ଶ)—6. Pāṭalā (See).

ସ୍ଥାଳୀ ପକ୍ୱ—ସ. ବିଣ (୭ମୀ ତତ୍)—ହାଣ୍ଡିରେ ପାକ କରଯାଇଥିବା—Sthālī pakwa Cooked in a boiler.

ସ୍ଥାଳୀ ପାକ—ସଂ. ବ—୧ । ହାଣ୍ଡିରେ ପାକ କରିବା—1. Cooking Sthālī pāka in a pot. ୨ । ହାଣ୍ଡିରେ ପାକ କରଯାଇଥିବା ଅନ୍ନାଦି—2. Food cooked in a boilor. ୩ । ଅଗ୍ନିରେ ଦିଆଯିବା ପାଇଁ ଦୁଧରେ ପାକକରାଯାଇଥିବା ଚାଉଳ ବା ଯବ (ହ୍ର. ଶ); ଚରୁ ବିଶେଷ—3. Rice or barley boiled in milk for being offered unto the fire. ୪ । ବୈଦ୍ୟକ ଅନୁସାରେ ଲୌହର ପାକବିଧି ବିଶେଷ (ହ୍ର. ଶ)—4. A mode of purifying iron over fire for medicinal purpose.

ସ୍ଥାଳୀ ପୁଲାକ—ସଂ. ବ (ନ୍ୟାୟବିଶେଷ)—ହାଣ୍ଡିରେ ଥିବା ସମସ୍ତ ଚାଉଳ Sthālī pulāka ଯେଉଁପରି ଏକ ସମୟରେ ସିଝେ, ଅର୍ଥାତ୍ ଗୋଟିଏ ଚାଉଳ ସିଝିଲେ ସବୁ ଚାଉଳ ସିଝିଥିବା ଜଣାଯାଏ, ସେହିପରି ଗୋଟିଏ ବିଷୟକୁ ଅନୁଭବ କରି ସେହି ଶ୍ରେଣୀର ସମସ୍ତ ବିଷୟ ସମ୍ବନ୍ଧେ ଅନୁମାନରୂପକ ନ୍ୟାୟ—An analogy used when a person knows the whole by examining a minute part thereof. [ଦ୍ର—ଓଡିଆରେ 'ଭାତହାଣ୍ଡିରୁ ଗୋଟିଏ ଚିପ ବା' ନ୍ୟାୟ ଏହି ନ୍ୟାୟ ସଙ୍ଗେ ସମାନ ।]

ସ୍ଥାଳୀ ବିଳ—ସଂ. ବ (୬ଷ୍ଠୀ ତତ୍)—ପାକପାତ୍ରର ଅଭ୍ୟନ୍ତର—Sthālī bila The inside of a cooking pot.

ସ୍ଥାଳୀ ବିଲୀୟ—ସଂ. ବିଣ (ସ୍ଥାଳବିଳ+ଈୟ)—ସ୍ଥାଳୀରେ ପାକ Sthālī bilīya ଯୋଗ୍ୟ (ତଣ୍ଡୁଳାଦି)—(Victuals) Fit (ସ୍ଥାଳୀବିଲ୍ୟ—ଅନ୍ୟରୂପ) to be cooked in a boiler or cooking pot.

ସ୍ଥାଳୀ ବୃକ୍ଷ (ଦ୍ରୁମ)—ସଂ ବ—ଅଶ୍ୱତ୍ଥ ଭେଦ (ଭାବପ୍ରକାଶ);ନନ୍ଦୀବୃକ୍ଷ—Sthālī bruksha (druma) A sort of piper tree. [ଦ୍ର—ଏହାର ପର୍ଯ୍ୟାୟ ନନ୍ଦୀବୃକ୍ଷ, ଅଶ୍ୱତ୍ଥଭେଦ, ପ୍ରରୋହୀ, ଗଜପାଦପ, କ୍ଷୀରତରୁ, ଝୀଣ, ବନସ୍ପତି । ବୈଦ୍ୟକ ମତରେ ଏହା ଲଘୁ, ସ୍ୱାଦୁ, ତିକ୍ତ, ତୁବର, ଉଷ୍ଣ, କଟୁପାକରସ, ଗ୍ରାହୀ ଓ ବିଷପିତ୍ତକଫରକ୍ତ-ନାଶକ ।]

ସ୍ଥାସକ—ସଂ. ବ (ସ୍ଥା. ଧାତୁ+କର୍ତ୍ତୃ. ସକ)—୧ । ଗନ୍ଧଦ୍ରବ୍ୟ; ଭୂଷାର୍ଥ Sthāsaka ଚୂର୍ଣ୍ଣ ବିଶେଷ ( ଅମର )—1. Toilet powder. ୨ । ଜଳବୁଦ୍‌ବୁଦ—2. Water bubble. ୩ । ଗନ୍ଧଚୂର୍ଣ୍ଣ(ମେଦିନୀ) 3. Scented powder. ୪ । ଛାପ;ମୁଦ୍ରା—4. Impression; seal. ୫। ଶରୀରକୁ ଚନ୍ଦନାଦିରେ ଚର୍ଚ୍ଚିତ ବା ସୁଗନ୍ଧିତ କରଣ (ହ୍ର. ଶ)—5. Toilette. ୬ । ଘୋଡ଼ାର ଜିନର ଏକ ଅଳଙ୍କାର ( ହ୍ର. ଶ )—6. A kind of ornament for the saddle of a horse.

ସ୍ଥାସୁ—ସଂ. ବ (ସ୍ଥା. ଧାତୁ+କରଣ ସୁ)—ଶାରୀରିକ ବଳ—Sthāsu Physical strength.

ସ୍ଥାସ୍ନୁ—ସଂ. ବିଣ ( ସ୍ଥା. ଧାତୁ+କର୍ତ୍ତୃ. ସ୍ନୁ )—୧ । ସ୍ଥିତିଶୀଳ; ସ୍ଥାୟୀ Sthāsnu (ଦେଖ)—1. Sthitisīla, Sthāyī (See) ୨ । ସ୍ଥିରତର—2. stable. ୩ । ଶାଶ୍ୱତ (ଭରତ)—3. Eternal. ବ—ବୃକ୍ଷ (ଶ୍ରୀଧର ସ୍ୱାମୀ)—Tree.

ସ୍ଥିକ—ସଂ ବ (ସ୍ଥା. ଧାତୁ+କରଣ. ଇକ)—କଟିପ୍ରୋଥ; ପିଚ୍ଛ—Sthika Buttock. [ଦ୍ର—ଏଥିର ପର୍ଯ୍ୟାୟ କଟିପ୍ରୋଥ, କଟପ୍ରୋଥ, ପୁତ, ସ୍ଫିକ୍, ନିତମ୍ବ ।]

ସ୍ଥିତ—ସଂ. ବ (ସ୍ଥା. ଧାତୁ+କର୍ତ୍ତୃ, ତ)—୧ । ରହିଥିବା; ଅବସ୍ଥିତ—sthita 1. Situated in; contained in; placed (ସ୍ଥିତା—ସ୍ତ୍ରୀ) in; being in. ୨ । ବୃତାବସ୍ଥାନ; ଅସୀନ—[ସ୍ଥିତ, ସ୍ଥାନ, ସ୍ଥିତତା—ବ] 2. Staying in; seated. ୩ । ସ୍ଥିର; ନିଶ୍ଚଳ—3. Steady. ୪ । ବର୍ତ୍ତମାନ; ବିଦ୍ୟମାନ; ଉପସ୍ଥିତ; ବିଦ୍ୟମାନ—4. Present. ( ଦ୍ର—ଦନ୍ତୁଚ ବ୍ୟଥିଭଲୁ, ପ୍ରଭଞ୍ଜ କଥିଭଲୁ, ସ୍ଥିତ ନ ବନ ଚତ୍ରେ ବେଳେ । ଉଞ୍ଜ. ବୈଦେହୀଶବିଳାସ ।) ୫ । ଅଚଳ—5. Unmoving; immovable. ୬ । ଅପରିବର୍ତ୍ତିନଶୀଳ—6. Un-

changeable ୭ । ଦଣ୍ଡାୟମାନ—7. Standing. ୮ । ଊର୍ଦ୍ଧ୍ୱ—8 High. ୯ । ପ୍ରତିଜ୍ଞାବିଶିଷ୍ଟ; ଦୃଢ଼-ପ୍ରତିଜ୍ଞ—9. Determined; resolved. ୧୦ । (ଅମୁକରେ) ବାସ କରୁଥିବା—10, Living in.

ସ୍ଥିତ ଧୀ—ସଂ. ବିଣ. ପୁଂ ଓ ସ୍ତ୍ରୀ-(ବହୁବ୍ରୀହି ସମାସ, ସ୍ଥିତା ହୋଇଅଛି Sthita dhī ଧୀ=ବୁଦ୍ଧି ଯାହାଙ୍କର)—୧ । ସ୍ଥିରବୁଦ୍ଧି (ବ୍ୟକ୍ତି)—1. ( a person ) Of fixed mind; stable-minded. ୨ । ଦୁଃଖରେ ଅନୁଦ୍ୱିଗ୍ନମନା, ସୁଖରେ ବିଗତସ୍ପୃହ, ବୀତରାଗଭୟକ୍ରୋଧ (ବ୍ୟକ୍ତି)—2 (A person) Who is free from passions; unmoved by delight or sorrow and by worldly matters.

[ଦ୍ର—ଅର୍ଜୁନଙ୍କ ପ୍ରଶ୍ନର ଉତ୍ତରରେ ଭଗବଦ୍‌ଗୀତାର ଦ୍ୱିତୀୟ ଅଧ୍ୟାୟର ୫୬ ଶ୍ଳୋକରେ ଭଗବାନ କହୁଅଛନ୍ତି ଯେ, ଦୁଃଖରେ ଅନୁଦ୍ୱିଗ୍ନ, ସୁଖରେ ନିଃସ୍ପୃହ, ରାଗ-ଭୟ-କ୍ରୋଧଶୂନ୍ୟ ବ୍ୟକ୍ତିଙ୍କୁ ସ୍ଥିତଧୀ ମୁନି ବୋଲାଯାଏ ।]

ସ୍ଥିତ ପ୍ରଜ୍ଞ—ସଂ. ବିଣ. ପୁଂ (ବହୁବ୍ରୀହି; ସ୍ଥିତା=ସ୍ଥିର ଅଟେ ପ୍ରଜ୍ଞା Sthitaprajña ଯାହାଙ୍କର)—ଯେଉଁ ବ୍ୟକ୍ତି ମନୋଗତ ସମସ୍ତ ବାସନାକୁ ତ୍ୟାଗ କରି ସର୍ବଦା ତୁଷ୍ଟ ଥାଆନ୍ତି;ମନୋବିକାରରହିତ (ସ୍ଥିତପ୍ରଜ୍ଞା—ସ୍ତ୍ରୀ)—(A person). Who has relinquished all desires; free from wordly desires, [ଦ୍ର—ଅର୍ଜୁନଙ୍କ ପ୍ରଶ୍ନର ଉତ୍ତରରେ ଭଗବାନ୍ ଭଗବଦ୍‌ଗୀତାର ଦ୍ୱିତୀୟ ଅଧ୍ୟାୟ ୫୭ ଓ ୫୮ ଶ୍ଳୋକରେ 'ସ୍ଥିତପ୍ରଜ୍ଞ' ବ୍ୟକ୍ତିଙ୍କ ଗୁଣ ବର୍ଣ୍ଣନ କରିଅଛନ୍ତି—

ଯେଉଁ ବ୍ୟକ୍ତି ଶୁଭ ବା ଅଶୁଭ ପ୍ରାପ୍ତ ହେଲେ କୌଣସି ବିଷୟ ପ୍ରତି ସ୍ନେହ ବା ମମତାଶୂନ୍ୟ ହୁଅନ୍ତି ନାହିଁ, ଯେ ତାହାରିକୁ ଅଭିନନ୍ଦନ କରନ୍ତି ନାହିଁ ଓ ତାହାପ୍ରତି ଦ୍ୱେଷ କରନ୍ତି ନାହିଁ, ତାଙ୍କର ପ୍ରଜ୍ଞା ପ୍ରତିଷ୍ଠିତ ହୋଇଅଛି । କଚ୍ଛପ ନିଜର ଅଙ୍ଗମାନଙ୍କୁ ଖୋଳ ଭିତରକୁ ଟାଣି ନେବା ପରି ଯେଉଁ ବ୍ୟକ୍ତି ଇନ୍ଦ୍ରିୟାର୍ଥମାନଙ୍କରୁ ନିଜର ଇନ୍ଦ୍ରିୟମାନଙ୍କ ସଂହାର କରନ୍ତି ତାଙ୍କର ପ୍ରଜ୍ଞା ପ୍ରତିଷ୍ଠିତ ହୋଇଅଛି ।]

ସ୍ଥିତ ପ୍ରେମା—ସଂ. ବି. ପୁଂ (ସ୍ଥିର ଅଟେ ପ୍ରେମ ଯାହାର, ସ୍ଥିରପ୍ରେମନ୍, Sthita premā ୧ମା. ୧ବ)—ସ୍ଥିରତର ବନ୍ଧୁ; ଚିରବନ୍ଧୁ—A constant friend.

ସ୍ଥିତବୁଦ୍ଧି ଦତ୍ତ—ସଂ. ବି—ବୁଦ୍ଧଦେବଙ୍କର ଏକ ନାମ—A name Sthitabuddhi datta of the Buddha.

ସ୍ଥିତି—ସଂ. ବି (ସ୍ଥା ଧାତୁ+ଭାବ.ତି)—୧। ଅବସ୍ଥାନ;ରହିବା(ଅମର)—Sthiti 1. Staying. ୨। (+ଅଧିକରଣେ ତି)—ସୀମା(ମେଦିନୀ) 2. Boundary; limit. ୩ । ମର୍ଯ୍ୟାଦା; ନ୍ୟାୟପଥରେ ଅବସ୍ଥାନ (ଅମର)—3. Propriety of conduct. ୪ । ସଂସ୍ଥିତି; କୌଣସି ଅବସ୍ଥାରେ ବହୁକାଳ ରହିବା । (ଶବ୍ଦ ରତ୍ନାବଳୀ)—4 Continuance in any state or condition. ୫। ସ୍ଥିରତା; ସ୍ଥାୟିତ୍ୱ—5. Stability, fixity ୬ । ପାଳନ—6. Bringing up; cherishing, ୭। (+କରଣ.ତି) ସଂସ୍ଥାନ; ଜୀବଧାରଣ; ଜୀବିକା—7. Living; livelihood. ୮। ବିଶ୍ରାମ—8. Rest. ୯। ଅବଧାରଣ—9. Determination. ୧୦। ସିଦ୍ଧାନ୍ତ—10. Decision. ୧୧ । ଏକସ୍ଥାନରେ ବନ୍ଦ ହେବା—11. Stoppage at a place. ୧୨ । ନିବୃତ୍ତି—12. Cessation. ୧୩ । ଅଟକିଯିବା—13 Pause; stopping. ୧୪।(+ଅଧିକରଣେ.ତି)ସ୍ଥାନ—14. Place, position. ୧୫ । (ବିଜ୍ଞାନ) ଜଡ଼ପଦାର୍ଥର ବା ଦ୍ରବ୍ୟର ଗୁଣ ବିଶେଷ, ଯେଉଁ ଗୁଣ ଯୋଗୁ ଜଡ଼ପଦାର୍ଥ ଏକ ସ୍ଥାନରେ ସ୍ଥିର ହୋଇ ରହେ—15. ( Physics ) Inertia. ୧୬। (+ଅଧିକରଣେ ତି)—ଅବସ୍ଥା (ହି.ଶ.)—16. Condition. ୧୭ । ଅସ୍ତିତ୍ୱ (ହି.ଶ.)—17. Existence; being. ୧୮ । ଢଙ୍ଗ (ହି. ଶ.)—18. Mode; manner. ୧୯ । ଆକାର; ଆକୃତି (ହି. ଶ.) 19. Shape. ୨୦ । ସଂଯୋଗ; ସୁଯୋଗ (ହି. ଶ.) 20. Occasion; opportunity.

ସ୍ଥିତି କ୍ରିୟା—ସ.ବି—ଅବସ୍ଥାନରୂପ କାର୍ଯ୍ୟ—The act of staying. Sthiti kriyā

ସ୍ଥିତି ନିଷେଧ—ସ. ବି(୭ମୀ ତତ୍)—ରହିବାକୁ ନିଷେଧ—Sthiti nishedha Prohibition to stay.

ସ୍ଥିତି ବାନ୍(ନ)—ଦେ. ବି (ସଂ. ସ୍ଥିତିମାନ୍)—ଭାରତ ବର୍ଷରେ ୧୨ବର୍ଷରୁ Sthitibān(na) ଉର୍ଦ୍ଧ୍ୱ ଦଖଲ କରୁଥିବା ପ୍ରଜା—Occupancy স্থিতিবান দখলকার tenant. ( ସ୍ଥିତିବାନ ରଇତ, ସ୍ଥିତିବାନ ପ୍ରଜା—ଅନ୍ୟରୂପ)

ସ୍ଥିତିବାନ ସତ୍ୱ—ଦେ. ବି (ସଂ ସ୍ଥିତିମାନ୍+ସତ୍ତ୍ୱ)—ବାର ବର୍ଷରୁ ଉର୍ଦ୍ଧ୍ୱ Shitibān satwa ରଇତ ଜମି ଦଖଲ କରିବାଯୋଗୁ ଉକ୍ତ স্থিতিবানসত্ব জমিରେ ରଇତର ଉପୁଜିବା ସତ୍ତ୍ୱ—দখলিস্বত্ব Occupancy right.

ସ୍ଥିତି ବିଜ୍ଞାନ—ସଂ. ବି ( ଆଧୁନିକ ବିଜ୍ଞାନ ପରିଭାଷା )—ଜଡ଼ ପଦାର୍ଥର Sthiti bijñāna ଅବସ୍ଥିତି ବିଷୟକ ଗଣନା ସମ୍ବନ୍ଧୀୟ ବିଜ୍ଞାନ—Statics(a science).

ସ୍ଥିତି ବିରୋଧ—ସଂ ବି—ଦୁଇଟି ପରସ୍ପର ବିରୋଧୀ ବସ୍ତୁର ଏକ ସ୍ଥାନରେ ଓ Sthiti birodha ଏକ କାଳରେ ଅନବସ୍ଥାନ—Impossibility of two opposed things simultaneously remaining at one place.

ସ୍ଥିତିସ୍ଥାପକ—ସଂ. ବିଣ (ଆଧୁନିକ ବିଜ୍ଞାନ ପରିଭାଷା)—୧ । ଯେଉଁ ଦ୍ରବ୍ୟ Sthitisthāpaka ଚାପ ପାଇଲେ ବଡ଼ ବା ଛୋଟ ହୁଏ କିନ୍ତୁ [ସ୍ଥିତି ସ୍ଥାପକତା (ସ୍ତ୍ରୀ)—ବି] ଚାପ କମାଇଦେଲେ ପୂର୍ବ ଆକାର ଧାରଣ କରେ (ଯଥା—ରବର୍)—1. Elastic. ୨ ।

ବସ୍ତୁର ପୂର୍ବ ଅବସ୍ଥାକୁ ଯେ ପ୍ରାପ୍ତ କରାଏ (ହୃ. ଶ)—2. Causing a thing to resume its original condition

ସ୍ଥିର—ସଂ.ବିଣ.(ସ୍ଥା ଧାତୁ+କର୍ତ୍ତୃ. ଇର)—୧ । ସ୍ଥାବର; ଅଚଳ; ଅଟଳ
Sthira (ଧରଣୀ)—1. Immovable; fixed; firm. [ଉ—ସ୍ଥିର ଜଙ୍ଗମ ମଧ୍ୟେ ହରି, ଅନନ୍ତ ଘଟେ ଛନ୍ତି ପୂରି; (ସ୍ଥିରା—ସ୍ତ୍ରୀ) ଜଗନ୍ନାଥ, ଭାଗବତ]—୨ । ସ୍ଥାୟୀ—2. Perma- (ଅସ୍ଥିର— ବିପରୀତ) nent. ୩ । ନିରନ୍ତର—3. Constant (ଥିର; ଥୟ—ଅପଭ୍ରଂଶ) ୪ । ନିଶ୍ଚିତ—4. Certain; sure ୫ । ଶାନ୍ତସ୍ୱଭାବ—5. Calm; quiet. ୬ । କଠିନ; ଦୃଢ଼ (ଧରଣୀ)—6. Hard. ୭ । ଅପରିବର୍ତ୍ତନୀୟ—7. Unchangeable. ୮ । ସ୍ଥିରୀକୃତ; ମୀମାଂସିତ. ନିର୍ଦ୍ଧାରିତ—8. Ascertained; settled; fixed; ୯ । ବିଶ୍ୱସନୀୟ (ହୃ. ଶ)—9. Trustworthy. ସଂ. ବି—୧ । ଦେବତା (ଶବ୍ଦରତ୍ନାବଳୀ)—1. Deity. ୨ । ପର୍ବତ (ଶବ୍ଦରତ୍ନାବଳୀ)—2. Mountain. ୩ । କାର୍ତ୍ତିକେୟ (ଶବ୍ଦରତ୍ନାବଳୀ)—3. Kārttikeya. ୪ । ବୃକ୍ଷ (ଶବ୍ଦରତ୍ନାବଳୀ)—4. Tree. ୫ । ଶନିଗ୍ରହ (ମେଦିନୀ)—5. Saturn. ୬ । ମୋକ୍ଷ (ମେଦିନୀ)—6. Salvation. ୭ । ଅନଡ୍ୱାନ୍; ଅଣ୍ଡିରା ବାଛୁରୀ (ରାଜନିର୍ଘଣ୍ଟ)—7 A bull calf. ୮ । ଧବ ବୃକ୍ଷ; ଧଅ ଗଛ (ଭାବପ୍ରକାଶ)—8 A timber tree; Anogeissus Latifolia. ୯ । (ଜ୍ୟୋତିଷ)—ବୃଷ, ସିଂହ, ବୃଶ୍ଚିକ ଓ କୁମ୍ଭ ରାଶି—9. Name of four yodiacal signs. [ ଦ୍ର—ଫଳିତ ଜ୍ୟୋତିଷ, ମତରେ ଏ ରାଶିମାନଙ୍କରେ କୃତ କାର୍ଯ୍ୟ ସ୍ଥିର ବା ସ୍ଥାୟୀ ହୁଏ । ଏ ରାଶିମାନଙ୍କରେ ଜାତ ବ୍ୟକ୍ତି ସ୍ଥିର, ଗମ୍ଭୀରସ୍ୱଭାବ, କ୍ଷମାଶୀଳ ଓ ଦୀର୍ଘସୂତ୍ରୀ ହୁଅନ୍ତି—ହୃ ଶ) । ୧୦ । ଶିବ (ହୃ. ଶ)—10. Siba. ୧୧ । ଜ୍ୟୋତିଷୋକ୍ତ ଯୋଗବିଶେଷ (ହୃ. ଶ)—11. Name of an astronomical conjunction. ୧୨ । ସ୍କନ୍ଦାନୁଚରବିଶେଷ (ହୃ.ଶ)—12. Name of an attendant of Skanda. ୧୩ । ବୃଷ (ହୃ. ଶ)—13. Bull. ୧୪ । ଶସ୍ତ୍ର ଅଭିମନ୍ତ୍ରିତ କରିବା ମନ୍ତ୍ରବିଶେଷ (ହୃ. ଶ)—14. Name of a charm for weapons. ଦେ. ବି—ବିଶ୍ରାମ;
स्थिर
स्थिर ସ୍ଥିରତା—Rest. [ ଉ—ବଣିକ ଗୃହ ତର ଶ୍ରୁଧା ହୋଇବ ଦୂର ଭଞ୍ଜିବ ଲଙ୍କାପୁର ସ୍ଥିର ଦେ—ଭଞ୍ଜ. ବୈଦେହୀଶବିଳାସ । ] ପ୍ରାଦେ. (ଗଞ୍ଜାମ)—ସ୍ଥାବର (ଅସ୍ଥାବର)—Immovable ( property ).

ସ୍ଥିରକ—ସଂ. ବି—ଶାକବୃକ୍ଷ; ଶାଗୁଆନ ଗଛ ( ହୃ. ଶ )—
Sthiraka Teak tree.

ସ୍ଥିର କରିବା—ଦେ. କ୍ରି—୧ । ନିଶ୍ଚୟ କରିବା; ଥୟ କରିବା; ଅବ-
Sthira karibā ଧାରଣ କରିବା—1. To ascertain.
स्थिर करना ୨ । ମୀମାଂସା କରିବା—2. To settle. ୩ । (ତାରିଖ
स्थिर करना ବା ଦିନ ) ପୂର୍ବରୁ ନିର୍ଦ୍ଧାରଣ କରିବା—3. To fix ( a date ). ୪ । ପ୍ରତିଜ୍ଞା କରିବା—4 To resolve. ୫ । ( ମନକୁ ) ଅଚଞ୍ଚଳ କରିବା—5. To fix or make steady (the mind).

ସ୍ଥିର କର୍ମା—ସଂ. ବିଣ ( ବହୁବ୍ରୀହି; ସ୍ଥିର+କର୍ମନ୍; ସମା. ୧ବ )—
Sthira karmā ସ୍ଥିରତା ବା ଦୃଢ଼ତା ସହିତ କର୍ମକାରୀ (ହୃ. ଶ) —Acting with fixity.

ସ୍ଥିର କୁସୁମ—ସଂ. ବି—ବକୁଳ ବୃକ୍ଷ [ ହୃ. ଶ ]—
Sthira kusuma The Bakula tree.

ସ୍ଥିର ଗନ୍ଧ—ସଂ.ବି (କର୍ମ)—୧। ବହୁକାଳସ୍ଥାୟୀ ଗନ୍ଧ—1. Permanent
Sthira gandha fragrance. ୨। (ବହୁବ୍ରୀହି)—ଚମ୍ପକବୃକ୍ଷ (ସ୍ଥିର ଗନ୍ଧା—ସ୍ତ୍ରୀ. ବିଣ) [ରାଜନିର୍ଘଣ୍ଟ] (ଦେଖ)—2. Champaka bṛuksha (See) ସଂ. ବିଣ—ଚିରସ୍ଥାୟୀ ସୌରଭଯୁକ୍ତ, ସ୍ଥାୟୀ ଗନ୍ଧଯୁକ୍ତ—Permanently fragrant.

ସ୍ଥିର ଗନ୍ଧା—ସଂ. ବି—୧ । ପାଟଳା; ପାଟଳ ଗଛ [ରାଜନିର୍ଘଣ୍ଟ] (ଦେଖ)
Sthira gandhā 1. Pāṭalā (See) ୨ । କେତକୀ—2. Pandanus Odoratissimus. ସଂ. ବିଣ. ସ୍ତ୍ରୀ—ସ୍ଥିର ଗନ୍ଧର ସ୍ତ୍ରୀଲିଙ୍ଗ—Feminine of Sthira gandha.

ସ୍ଥିର ଚକ୍ର—ସଂ. ବି—ଜିନବିଶେଷ ( ହୈମ କାଣ୍ଡ ଶେଷ )—Name of
Sthira chakra a Jaina saint. [ଦ୍ର—ଏହାଙ୍କର ଅନ୍ୟ ନାମମାନ—ମଞ୍ଜୁଶ୍ରୀ, ମଞ୍ଜୁଘୋଷ, କୁମାର, ଅଷ୍ଟାର-ଚକ୍ରବାନ୍, ବଜ୍ରଧର, ପ୍ରଜ୍ଞାକାୟ, ବାଦିରାଟ୍, ନୀଲୋତ୍ପଲୀ, ମହାରାଜ, ନୀଲ, ଶାର୍ଦ୍ଦୂଳବାହନ, ଧୀସ୍ୱାମୀ, ପୂର୍ବଜିନ, ଖଡ୍ଗୀ, ଦଣ୍ଡୀ, ବିଭୂଷଣ; ବାଲବ୍ରତ, ପଞ୍ଚଚୀର, ସିଂହକେଳି, ଶିଖାଧର ଓ ବାଗୀଶ୍ୱର, ଦଣ୍ଡୀ—ହୈମ କାଣ୍ଡ ଶେଷ । ]

ସ୍ଥିର ଚିତ୍ତ—ସଂ. ବି ଓ ବିଣ. ପୁଂ—ସ୍ଥିର ବୁଦ୍ଧି ( ଦେଖ )
Sthira chitta Sthira buddhi ( See )
[ ସ୍ଥିରଚିତ୍ତା—ବିଣ. ସ୍ତ୍ରୀ ]

ସ୍ଥିର ଚେତା—ଦେ. ବିଣ [ସଂ. ସ୍ଥିର ଚେତାଃ]—ସ୍ଥିର ଚେତାଃ (ଦେଖ)
Sthira chetā Sthira chetāḥ (See)

ସ୍ଥିର ଚେତାଃ—ସଂ. ବିଣ (ବହୁବ୍ରୀହି; ସ୍ଥିର+ଚେତସ୍; ସମା. ୧ବ)—
Sthira chetāḥ ସ୍ଥିର ବୁଦ୍ଧି ( ଦେଖ )—Sthira buddhi (See)

ସ୍ଥିରଚ୍ଛଦ—ସଂ. ବି ( ବହୁବ୍ରୀହି; ସ୍ଥିର+ଛଦ; ସନ୍ଧିଯୋଗ ଚ୍ଛ)—ଭୂର୍ଜ
Sthirachchhada ପତ୍ର [ ରତ୍ନମାଳା ] ( ଦେଖ )
Bhūrjja patra (See)

ସ୍ଥିରଚ୍ଛାୟ—ସଂ. ବି (ସ୍ଥିର+ଛାୟା; ବହୁବ୍ରୀହି)—୧। ବୃକ୍ଷ (ରତ୍ନମାଳା)—
Sthirachchhāya 1. Trees (generally). ୨ । ଛାୟାପ୍ରଧାନ ବୃକ୍ଷ; ଛାୟାତରୁ—2. Shady tree.

ସ୍ଥିର ଜିହ୍ୱ—ସଂ, ବ ( ସ୍ଥିର+ଜିହ୍ୱା; ବହୁବ୍ରୀହି )—ମତ୍ସ୍ୟ—
Sthira jihwa Fish.

ସ୍ଥିର ଜୀବିତା—ସ. ବ—ଶାଳ୍ମଳି ବୃକ୍ଷ [ ଶବ୍ଦମାଳା ]—
Sthira jibitā The silk cotton tree.

ସ୍ଥିର ଜୀବୀ—ସଂ. ବଣ, ପୁଂ—ଯେ ବହୁକାଳ ବଞ୍ଚେ—Long-lived.
Sthira jibi ସ, ବ—କୁଆ [ ହି.ଶ ]—The crow.
[ ସ୍ଥିର ଜୀବନୀ—ସ୍ତ୍ରୀ ବଣ ]

ସ୍ଥିରତା(ତ୍ୱ)—ସଂ ବ ( ସ୍ଥିର+ଭାବାର୍ଥେ ତା, ତ୍ୱ )—ସ୍ଥିର ହେବାର
Sthiratā(twa) ଭାବ—The state of being Sthira.

ସ୍ଥିର ଦଂଷ୍ଟ୍ର—ସ. ବ (ବହୁବ୍ରୀହି)—୧ । ସର୍ପ [ହି.ଶ]—1. Serpent,
Sthira damshtra ୨ । ବରାହରୂପୀ ବିଷ୍ଣୁ [ହି. ଶ]—2. The
Boar incarnation of Bishnu. ୩ । ଧ୍ୱନି
[ ହି. ଶ ]—3. Sound.

ସ୍ଥିରଧୀ—ସଂ. ବଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି; ସ୍ଥିର+ଧୀ)—ଦୃଢ଼ ଚିତ୍ତ—
Sthiradhi Of fixed-mind.

ସ୍ଥିର ନିଶ୍ଚୟ—ସଂ ବ (ବହୁବ୍ରୀହି)—ଦୃଢ଼ସଙ୍କଳ୍ପ—Fixed rssolve;
Sthira nischaya determination, ବଣ, ପୁଂ—
[ ସ୍ଥିର ନିଶ୍ଚୟା—ସ୍ତ୍ରୀ. ବଣ ] ଦୃଢ଼ ପ୍ରତିଜ୍ଞ—
Resolute; determined.

ସ୍ଥିର ନେତ୍ର(ଦୃଷ୍ଟି)—ସଂ. ବ—ନିଶ୍ଚଳ ଦୃଷ୍ଟି (ଦେଖ)—Fixed gaze.
Sthira netra (drushti) ବଣ. ପୁଂ—ଯାହାର ଚକ୍ଷୁ ଏଣେ
ତେଣେ ବୁଲୁ ନାହିଁ—Having the gaze fixed.

ସ୍ଥିର ପତ୍ର—ସଂ. ବ ( ବହୁବ୍ରୀହି )—୧ । ହିନ୍ତାଳ [ ରାଜନିର୍ଘଣ୍ଟ ]—
Sthira patra ( ଦେଖ )—1. Hintāla ( See ) ୨ ।
ଶାଳ [ ହି. ଶ ]—2. A species of palmyra,

ସ୍ଥିର ପୁଷ୍ପ—ସଂ. ବ —୧ । ଚମ୍ପକ ବୃକ୍ଷ [ ରାଜନିର୍ଘଣ୍ଟ ] ( ଦେଖ )—
Sthira pushpa 1. Champaka bruksha ( See )
୨ । ବକୁଳ ବୃକ୍ଷ [ରାଜନିର୍ଘଣ୍ଟ] (ଦେଖ)—2. Bakula
bruksha (See). ୩ । ତିଳକ ପୁଷ୍ପ ବୃକ୍ଷ [ହି. ଶ]—
3. The Tilaka flower tree,

ସ୍ଥିର ପୁଷ୍ପୀ—ସଂ. ବ—ତିଳକ ପୁଷ୍ପ ବୃକ୍ଷ ( ଦେଖ )
Sthira pushpi Tilaka pushpa bruksha (See)

ସ୍ଥିର ପ୍ରତିଜ୍ଞ—ସଂ ବଣ. ପୁଂ (ବହୁବ୍ରୀହି; ସ୍ଥିର+ପ୍ରତିଜ୍ଞା)—ଦୃଢ଼-
Sthira pratijña ପ୍ରତିଜ୍ଞ—Resolute; determined.
( ସ୍ଥିର ପ୍ରତିଜ୍ଞା—ସ୍ତ୍ରୀ. ବଣ) (ସ୍ଥିର ପ୍ରତିଜ୍ଞତା—ବ)

ସ୍ଥିର ପ୍ରତିଜ୍ଞା—ସଂ ବ ( କର୍ମଧା )—ଦୃଢ଼ ପ୍ରତିଜ୍ଞା—
Sthira pratijñā Strong resolve; determination.

ସ୍ଥିରବୁଦ୍ଧି—ସ. ବ (କର୍ମଧା)—ଅଚଞ୍ଚଳ ମତ ବା ବୁଦ୍ଧି—Steady
Sthira buddhi mind. ଦେ. ବ (ଜଡ଼ାର୍ଥ ଭାଷା)—
[ସ୍ଥିରମନଃ, ସ୍ଥିରମତି—ଅନ୍ୟ ବ.ରୂପ] ୧ । ସ୍ୱଚ୍ଛନ୍ଦଯୁକ୍ତ ମନ;
स्थिरबुद्धि ଅଚଞ୍ଚଳ ମତ—1. Calm thought; undis-
स्थिरबुद्धि turbed mind. ୨ । ଚୈତନ୍ୟ; ବିବେଚନାଯୁକ୍ତ
ମନ—2. Sedateness; sensible mind or
(ସ୍ଥିରମନାଃ, ସ୍ଥିରମତି—ଅ) intellect. ସଂ. ବଣ. ଓ ସ୍ତ୍ରୀ—
(ବହୁବ୍ରୀହି)—୧ । ଯାହାର ଚିତ୍ତ ଅଚଞ୍ଚଳ—
1. Having a calm mind. ୨ । ଦୃଢ଼ପ୍ରତିଜ୍ଞ—
2. Determined; firm of determination.
୩ । ସ୍ୱଚ୍ଛନ୍ଦଯୁକ୍ତ—3. Sedate. ୪ । କାମକ୍ରୋଧାଦି
ଦ୍ୱାରା ଅଚଞ୍ଚଳ—4. Dispassionate.

ସ୍ଥିର ମଦ—ସ. ବ (ବହୁବ୍ରୀହି)—ମୟୂର (ହି. ଶ)—
Sthira mada Peacock.

ସ୍ଥିର ମୁଦ୍ଗ—ସ. ବ—ନାଲି କୋଳଥ (ହି. ଶ) —
Sthira mudgā The red Kulthi grain.

ସ୍ଥିର ଯଉବନୀ—ଦେ ବଣ. ସ୍ତ୍ରୀ (ସଂ ସ୍ଥିର ଯୌବନା)—
Sthira jaubani ସ୍ଥିର ଯୌବନା ( ଦେଖ )
स्थिर यौवनी **स्थिर यउबनी** Sthira jaubani ( See )

ସ୍ଥିର ଯୋନି—ସଂ. ବ—ସବଦା ଛାୟାପ୍ରଦ ବୃକ୍ଷ—A tree which
Sthira joni is always shady.

ସ୍ଥିର ଯୌବନ—ସଂ. ବଣ. ପୁଂ (ବହୁବ୍ରୀହି, ସ୍ଥିର ଅଟେ ଯୌବନ
Sthira jaubana ଯାହାର)—ଯାହାର ତରୁଣାବସ୍ଥା ଚିରସ୍ଥାୟୀ-
(ସ୍ଥିର ଯୌବନା—ସ୍ତ୍ରୀ) Ever youthful; ever young.
ବ. ପୁଂ—୧ । ବିଦ୍ୟାଧର; ଦେବଯୋନି ବିଶେଷ—
1. A class of demigods of perpetual
youth. ୨ । (କର୍ମଧା) ଚିରସ୍ଥାୟୀ ତରୁଣାବସ୍ଥା—
2. Perpetual or long-lasting youth.

ସ୍ଥିର ଯୌବନା—ସଂ. ବଣ. ସ୍ତ୍ରୀ—ସ୍ଥିର ଯୌବନଶବ୍ଦର ସ୍ତ୍ରୀ—
Sthira jaubanā Feminine form of Sthira
jaubana. ବ. ସ୍ତ୍ରୀ—୧ । ଅପ୍ସରା—1. Heavenly
nymph. ୨ । ଯେଉଁ ସ୍ତ୍ରୀର ଯୌବନୋଚିତ ରୂପ-
ଲାବଣ୍ୟ ଶୀଘ୍ର ନଷ୍ଟ ହୁଏ ନାହିଁ—2. A woman
whose youthful appearance and bust etc.
do not decay early.

ସ୍ଥିର ଯୌବନୀ—ଦେ. ବଣ. ସ୍ତ୍ରୀ—ଚିର ଯୌବନା—
Sthira jaubani Of long-lasting youth.
स्थिर यौवना [ଦ୍ର—ବକତାମଣି ସ୍ଥିର ଯୌବନା ବସିଲେ
**स्थिर यौबनी** ବଡ଼ରବ ଏବା ଯେନ । ଭଞ୍ଜ. ବୈଦେହୀଶବିଳାସ ।]

ସ୍ଥିର ରଙ୍ଗା—ସଂ. ବ—ନୀଳୀ (ରାଜନିର୍ଘଣ୍ଟ) ଗୁଳ୍ମ—
Sthira rangā Indigo plant.

ସ୍ଥିର ରାଗା—ସଂ. ବ—ଦାରୁ ହରିଦ୍ରା—(ରାଜନିର୍ଘଣ୍ଟ)—
Sthira rāgā A kind of wild turmeric.

ସ୍ଥିର ଶ୍ରୀ—ସଂ. ବଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି)—ଯେଉଁ ବ୍ୟକ୍ତିର ଲକ୍ଷ୍ମୀ
Sthira sri ବା ସମ୍ପଦ ଅଚଳ ରହେ ( ମତ୍ସ୍ୟପୁରାଣ )—
(a person) Whose prosperity lasts long.

ସ୍ଥିର ସାଧନକ—ସଂ. ବ—ସିନ୍ଦୁବାର ବୃକ୍ଷ; ବେଗୁନିଆ ଗଛ (ରାଜ-
Sthira sādhanaka ନିର୍ଘଣ୍ଟ)—Begunia ( See )

ସ୍ଥିର ସାର—ସଂ. ବ—ଶାକ ବୃକ୍ଷ (ରାଜନିର୍ଘଣ୍ଟ)—ଶାଗୁଆନ ଗଛ—
Sthira sāra Teak tree.

ସ୍ଥିର ସିଦ୍ଧାନ୍ତ—ସଂ. ବି—ନିର୍ଣ୍ଣିତ ମୀମାଂସା—Fixed decision;
Sthira siddhānta unchangeable decision.

ସ୍ଥିରା—ସଂ. ବିଣ (ସ୍ଥିର+ଆ)—ସ୍ଥିରର ସ୍ତ୍ରୀ ଲିଙ୍ଗ—
Sthirā Feminine of Sthira.
ବି—୧ । ପୃଥିବୀ (ଅମର)—1. The earth. ୨ । ଶାଲପର୍ଣ୍ଣୀ (ଅମର)—2. Desmodium Gangeticum. ୩ । କାକୋଲୀ (ଜଟାଧର)—3. A medical bulb. ୪ । ଶାଲ୍ମଳୀ ବୃକ୍ଷ—4. Silk cotton tree. ୫ । ଦୃଢଚିତ୍ତା ସ୍ତ୍ରୀ (ହି. ଶ)—5. A woman of fixed mind. ୬ । ବନମୁଦ୍ଗ (ହି. ଶ)—6. Wild variety of muga gram. ୭ । ମାଷପର୍ଣ୍ଣୀ (ହି.ଶ)—7. Māshaparnnī (See) ୮ । ମୂଷାକାଣୀ (ହି.ଶ)—8. Mushākāni (See)

ସ୍ଥିରା ଚକ୍ର—ସଂ. ବି—ମହୀ ମଣ୍ଡଳ—
Sthirā chakra The globe.

ସ୍ଥିରାୟୁଃ—ସଂ. ବିଣ (ସ୍ଥିର+ଆୟୁସ୍; ୧ମା ୧ବ)—୧ । ଚିରଜୀବୀ, Sthirāyuh ଚିରାୟୁଃ—1. Long-living. ୨। ଅମର (ହି.ଶ)—2. Immortal. ବି—ଶାଲ୍ମଳୀ ବୃକ୍ଷ (ଅମର)—The silk cotton tree; Bombax Malabrica.

ସ୍ଥିରାସ୍ତି—ପ୍ରାଦେ. (ଚଷାମ) ବି—ଭୂସମ୍ପତ୍ତି; ସ୍ଥାବର ସମ୍ପତ୍ତି; ଜମିବାଡ଼ି—
Sthirasti Immovable or landed property.

ସ୍ଥିରୀକରଣ—ସଂ. ବି (ସ୍ଥିର+ଅଭୂତଭାବେ· ଈ+କରଣ)—
Sthirīkarana ୧ । ଅବଧାରଣ; ନିର୍ଣ୍ଣୟକରଣ—1. Ascertainment, finding out; fixing. ୨ । ପୁଷ୍ଟି; ସମର୍ଥନ (ହି. ଶ)—2. Ratification.

ସ୍ଥିରୀକୃତ—ସଂ. ବିଣ (ସ୍ଥିର+ଅଭୂତଭାବେ. ଈ+କୃତ)—
Sthirīkruta ୧ । ଅବଧାରିତ—1. Ascertained. ୨ । ନିର୍ଣ୍ଣୀତ—2. Fixed. ୩ । ଦୃଢ଼ୀକୃତ—3. Strengthened. ୪। ମୀମାଂସିତ—4. Settled. ୫। ସିଦ୍ଧାନ୍ତିତ—5. Resolved; determined.

ସ୍ଥୁଳ—ସଂ. ବି—ଏକ ପ୍ରକାର ଲମ୍ବା ତମ୍ବୁ ବା ପଟ୍ଟବାସ (ହି. ଶ)—
Sthula A kind of long tent.

ସ୍ଥୁଡ଼ (ଧାତୁ)—ସଂ—ବରଣ କରିବା—
Sthud (root) To invite; to appoint.

ସ୍ଥୂଣା—ସଂ. ବି (ସ୍ଥା ଧାତୁ+ଅଧି. ଉନ+ଆ)—୧। ଗୃହସ୍ତମ୍ଭ; ଖୁଣ୍ଟ—
Sthūnā 1. Post or pillar of a house. ୨ । ଶୂର୍ମୀ; କମାରର ଲେହା—2. The anvil ୩ । ଲୌହ ପ୍ରତିମା (ଅମର)—3. Iron image. ୪। ଠୁଣ୍ଟା ଗଛ (ହି.ଶ)—4. A pollard.

ସ୍ଥୂମ—ସଂ. ବି (ସ୍ଥା ଧାତୁ+କର୍ତ୍ତୃ. ଉମ)—୧ । ଦୀପ୍ତି (ଶବ୍ଦକଳ୍ପଦ୍ରୁମ)
Sthūma —1. Splendour. ୨ । ଚନ୍ଦ୍ର—2. The moon. ୩ । ଆଲୋକ—3. Light.

ସ୍ଥୂର—ସଂ. ବି (ସ୍ଥା ଧାତୁ+କର୍ତ୍ତୃ. ଉର)—୧ । ବୃଷ (ସଂକ୍ଷିପ୍ତସାର)—
Sthūra 1. Bull. ୨ । ଥୋଡ଼ଥ ବଳଦ ବା ପଶୁ—2. Pack-bullock; pack animal. ୩ । ମନୁଷ୍ୟ (ସିଦ୍ଧାନ୍ତ କୌମୁଦୀ)—3. Man. ୪ । ଥୋଢ଼; ବଳଦଙ୍କ ପିଠିରେ ବୁହାଯିବା ବୋଝ—4. Pack—load. ବିଣ—ଭାରବାହକ—Carrying a load on the back.

ସ୍ଥୂରି ପୃଷ୍ଠ—ସଂ. ବି (ବହୁବ୍ରୀହି; ସ୍ଥୂରିକ ହୋଇଅଛି ପୃଷ୍ଠ ଯାହାର)—
Sthūri prushtha ନବାରୂଢ଼ ଅଶ୍ୱ—Newly-ridden horse.

ସ୍ଥୂରୀ—ସଂ. ବି (ସ୍ଥୂରନ୍, ୧ମା.୧ବ; ସ୍ଥୂର=ଭାର+ଅସ୍ତ୍ୟର୍ଥେ. ଇନ୍)—
Sthūrī ୧ । ଥୋଡ଼ଥ ବଳଦ—1. Pack-bullock. ୨ । ଶୈଗ୍ରୀଷ; ଭାରବାହକ ଅଶ୍ୱ (ସାଯ୍ୟମୁକୁଟ, ଭରତ)—2. A horse carrying a load on the back; a pack-horse. [ଦ୍ର—ଏହି ଶବ୍ଦର ଅପଭ୍ରଂଶ ଥୋଡ଼ଥ (ବଳଦ)।]

ସ୍ଥୂଲ୍ (ଧାତୁ)—ସଂ—୧। ବୃଂହଣ ବା ଗର୍ଜନ କରିବା—1. To make a
Sthūl (root) roar. ୨ । ବୃଦ୍ଧି ପାଇବା—2. To increase. ୩ । ମୋଟା ହେବା—3. To become thick or stout.

ସ୍ଥୂଳ—ସଂ. ବିଣ (ସ୍ଥୂଲ୍ ଧାତୁ+କର୍ତ୍ତୃ ଅ)—୧ । ପୀନ; ଉପଚିତାବୟବ;
Sthūla ମୋଟା; ପୀବର; ପୁଷ୍ଟ—1. Fat;
(ସ୍ଥୂଳା—ସ୍ତ୍ରୀ) corpulent; stout; well-developed.
(ସୂକ୍ଷ୍ମ—ବିପରୀତ) ୨। ଇନ୍ଦ୍ରିୟ ଗ୍ରାହ୍ୟ—2. Perceptible by the senses. ୩ । ମୋଟା; ବେଧଡ଼କିଆ—3. Thick. ୪ । ମୂର୍ଖ; ଜଡ଼ବୁଦ୍ଧି (ହି. ଶ)—4. Dunce. ୫ । ଯହିଁର ବେଶି ବ୍ୟାଖ୍ୟା କରିବା ଦରକାର ହୁଏ ନାହିଁ; ସହଜରେ ବୁଝା ଯାଉଥିବା—5. Clear; easily comprehensible. ବି—୧ । କୂଟ; ସମୂହ (ମେଦିନୀ)—1. Collection. ୨ । ପନସ (ରାଜନିର୍ଘଣ୍ଟ)—2. Jack fruit. ୩ । ବିଷ୍ଣୁ (ହି. ଶ) 3. Bishnu. ୪ । ପ୍ରିୟଙ୍ଗୁ (ହି.ଶ)—4. Priyangu (See) ୫ । ଏକପ୍ରକାର କଦମ୍ବ (ହି. ଶ)—5. A kind of Kadamba tree ୬ । ଶିବଙ୍କ ଗଣବିଶେଷ (ହି. ଶ)—6. A class of Siba's attendants. ୭ । (ଦର୍ଶନଶାସ୍ତ୍ର) ଅନ୍ନମୟ କୋଷ; ସ୍ଥୂଳଶରୀର (ହି. ଶ)—7. (philosophy)—The physical body. ୮ । ଅଖୁ (ହି. ଶ)—8. Sugarcane. ୯ । ତୁତ୍ ଗଛ (ହି. ଶ)—9. Mulberry tree.

स्थूलकोण स्थूलकोण ଦେ. ବିଣ (ଜ୍ୟାମିତି)—
ସମକୋଣ ଅପେକ୍ଷା ବଡ଼—Obtuse (angle).

ସ୍ଥୂଳକ—ସଂ. ବିଣ (ସ୍ଥୂଳ+ସ୍ୱାର୍ଥେ କ)—ସ୍ଥୂଳ (ଦେଖ)—
Sthūlaka Sthūla (See).

ସ୍ଥୂଳ କଙ୍ଗୁ—ସଂ. ବି—ବରକ ଧାନ୍ୟ (ରାଜନିର୍ଘଣ୍ଟ); ଏକପ୍ରକାର ଚନା—
Sthūla kangu A kind of grain.

ସ୍ଥୂଳ କଟୀ—ସଂ. ବି (କର୍ମଧା)—ମୋଟ ଅଣ୍ଟା—Thick waist. ବିଣ.
Sthula kati ସ୍ତ୍ରୀ. (ବହୁବ୍ରୀହି)—ଯାହାର ଅଣ୍ଟା ମୋଟ—
(କ୍ଷୀଣକଟୀ—ବିପରୀତ) Thick-waisted woman). (ଦୃ—
ମର୍କଟବଦନା ଚପଳା, ସ୍ଥୂଳକଟୀ କ୍ଷୀଣସ୍ତନା, ଦଶନ ଶ୍ମଶ୍ରୁ
ଦନ୍ତୁ, ଯେଉଁଠେ ମନ୍ଦର—ହାସ୍ୟତରଙ୍ଗ ।)

ସ୍ଥୂଳ କଣା—ସଂ. ବି—ସ୍ଥୂଳଜୀରକ (ରାଜନିର୍ଘଣ୍ଟ ଦେଖ)—
Sthūla kanā Sthūla jiraka (See).

ସ୍ଥୂଳ କଣ୍ଟକ—ସଂ. ବି—ଜାଲବର୍ବୁର (ଗଛ)—
sthūla kantaka A kind of Acacia tree.

ସ୍ଥୂଳକଣ୍ଟକିକା—ସଂ. ବି—ଶାଳ୍ମଳି ବୃକ୍ଷ (ରାଜନିର୍ଘଣ୍ଟ)—
Sthūlakantakikā The silk-cotton tree.

ସ୍ଥୂଳ କଣ୍ଟା—ସଂ. ବି—ବୃହତୀ (ରାଜନିର୍ଘଣ୍ଟ); ଭେଜିବାଇଗଣ—
Sthūla kantā Solanum Indicum.

ସ୍ଥୂଳ କନ୍ଦ—ସଂ. ବି—୧। ରକ୍ତଲଶୁନ ( ରାଜନିର୍ଘଣ୍ଟ )—1. Red
Sthūla kanda garlic. ୨। ଶୂରଣ; ଓଲୁଅ
(ରାଜନିର୍ଘଣ୍ଟ)—2. Wild arum. ୩। ହସ୍ତିକନ୍ଦ
( ରାଜନିର୍ଘଣ୍ଟ )—3. Raphanus Sativus (root-bulb) ୪। ମାଣକନ୍ଦ; ମାଣସାରୁ (ରାଜନିର୍ଘଣ୍ଟ)—
4. Arum Indicum; Alocacia Indica.

ସ୍ଥୂଳକାୟ—ସଂ. ବିଣ. ପୁଂ (ବହୁବ୍ରୀହି; ସ୍ଥୂଳ+କାୟ)—ଯାହାର ଶରୀର
Sthūlakāya ମୋଟା; ପୃଥୁଳ ଶରୀରବିଶିଷ୍ଟ—
(ସ୍ଥୂଳକାୟା—ସ୍ତ୍ରୀ) Corpulent; fat.

ସ୍ଥୂଳକାଷ୍ଠଧକ୍—ସଂ. ବି—ବଡ଼ କାଠର ନିଆଁ—
Sthūlakāshthadhak Log-fire.
(ସ୍ଥୂଳକାଷ୍ଠାଗ୍ନି—ଅନ୍ୟରୂପ)

ସ୍ଥୂଳ କୋଣ—ସଂ. ବି (ଜ୍ୟାମିତି)—ଏକ ସମକୋଣଠାରୁ ବଡ, ମାତ୍ର ଦୁଇ
Sthūla kona ସମକୋଣଠାରୁ ସାନ କୋଣ—
स्थूलकोण स्थूलकोण Obtuse angle.

ସ୍ଥୂଳକୋଣୀ—ସଂ. ବିଣ—ସ୍ଥୂଳକୋଣବିଶିଷ୍ଟ—
Sthūlakonī Obtuse-angled.

ସ୍ଥୂଳକୋଣୀ ତ୍ରିଭୁଜ—ସଂ. ବି (ଜ୍ୟାମିତି)—ଯେଉଁ ତ୍ରିଭୁଜର ଗୋଟିଏ
Sthūlakonī tribhuja କୋଣ ସ୍ଥୂଳକୋଣ—
Obtuse-angled triangle.

ସ୍ଥୂଳ କ୍ଷ୍ୱେଡ଼—ସଂ. ବି—ବାଣ—
Sthūla kshwerda Arrow.

ସ୍ଥୂଳ ଚଞ୍ଚୁ—ସଂ. ବି—ମହାଚଞ୍ଚୁ ଶାକ (ରାଜନିର୍ଘଣ୍ଟ)—
Sthūla chanchu A pot herb.

ସ୍ଥୂଳ ଚମ୍ପକ—ସଂ. ବି—ଧଳା ଚମ୍ପା [ହି. ଶ]—
Sthūla champaka The white-flowered Champaka tree.

ସ୍ଥୂଳ ଚର୍ମ—ସଂ ବି [କର୍ମଧା]—ମୋଟ ଚମଡ଼ା—
Sthūla charma Thick skin.

ସ୍ଥୂଳଚର୍ମା—ସଂ. ବିଣ [ ସ୍ଥୂଳଚର୍ମନ୍ ଶବ୍ଦ; ବହୁବ୍ରୀହି ]—ଯେଉଁ 'ଜୀବ-
Sthūla charmā ମାନଙ୍କର ଶରୀର ମୋଟା
[ ସ୍ଥୂଳତ୍ୱକ୍—ଅନ୍ୟରୂପ ] ଚମଡ଼ାରେ ଆବୃତ ଥାଏ—
Pachydermate (animals); thick-skined.
[ଦ୍ର—ହାତୀ, ଗଣ୍ଡା, ଘୁଷୁରି, ହିପୋପଟାମସ୍ ପ୍ରଭୃତି ଜୀବ
ସ୍ଥୂଳଚର୍ମୀ ଅଟନ୍ତି ।]

ସ୍ଥୂଳ ଚାପ—ସଂ.ବି—ତୁଳାଧୁଣା ଧନୁ; ତୁଳାଚାପ; ତୁଳା ପରିଷ୍କାର କରିବା
Sthūla chāpa ପାଇଁ ବ୍ୟବହୃତ ଧନୁ [ଶବ୍ଦରତ୍ନାବଳୀ]—
Cotton carder's bow.

ସ୍ଥୂଳ ଜଙ୍ଘ—ସଂ. ବି—ରାକ୍ଷସବିଶେଷ—A demon. [ଦୃ—ଦଶରୁ
Sthūla jangha ବିଷମ ସ୍ଥୂଳଜଙ୍ଘ ଶର ଘାତରେ
ଦୂର ହୋଇଗଲେ—ଉପ. ବୈଦେହୀଶବିଳାସ ।]

ସ୍ଥୂଳ ଜୀରକ—ସଂ. ବି—ଜୀରକଭେଦ; ବୃହତ୍ଜୀରକ; କୃଷ୍ଣଜୀରକ;
Sthūla jiraka କଳାଜୀରା—Negella Sativa.
कालजीरा मंगरैला, कलौंजी
[ଦ୍ର—ଏହାର ପର୍ଯ୍ୟାୟ—ବଦ୍ୟା, ଉପକୁଞ୍ଚିକା, କାଳା
ପୃଥୁ, ସ୍ଥୂଳକଣା, ପୃଥ୍ୱୀ, ମଙ୍ଗଲ୍ୟା, ଜାରଣୀ, ଜୀର୍ଣ୍ଣା, ତରୁଣ,
ସୁଷବୀ, କାରବୀ,ପୃଥ୍ୱୀକା । ଏହା କଟୁ, ଉଷ୍ଣ, ତିକ୍ତ ଓ ବାତ-
ଗୁଲ୍ମ ଶ୍ଳେଷ୍ମାଧ୍ମାନାଶକ, ଜୀର୍ଣ୍ଣକାରକ ଓ ପାଚକ ]

ସ୍ଥୂଳ ତଣ୍ଡୁଳ—ସଂ. ବି—ସ୍ଥୂଳଶାଳି (ରାଜନିର୍ଘଣ୍ଟ); ମୋଟ ଧାନ—
Sthūla tandula Course winter paddy.

ସ୍ଥୂଳ ତନୁ—ସଂ. ବି (କର୍ମଧା)—ମୋଟା ଦେହ—
Sthula tanu Fat body.
ବିଣ (ବହୁବ୍ରୀହି)—ପୃଥୁଳ ଶରୀର ବିଶିଷ୍ଟ—Corpulent; fat.

ସ୍ଥୂଳତା(ତ୍ୱ)—ସଂ.ବି (ସ୍ଥୂଳ+ଭାବ. ତା,ତ୍ୱ)—୧। ସ୍ଥୂଳଭାବ—1. Fat-
Sthūlatā (twa) ness; corpulence. ୨। (ଜ୍ୟୋତିଷ)
ତାରାମାନଙ୍କ ଉଜ୍ଜ୍ୱଳତାର ପରିମାଣ—2. Magnitude
of stars determined according to the
degree of their effulgence.
[ଦ୍ର—ଖୁବ୍ ଉଜ୍ଜ୍ୱଳ ତାରାକୁ ପ୍ରଥମ ସ୍ଥୂଳତାଯୁକ୍ତ, ତାଠାରୁ
କ୍ଷୀଣକୁ ଦ୍ୱିତୀୟ, ଏହିପରି କ୍ରମଶଃ କ୍ଷୀଣରେ ତାରାମାନଙ୍କୁ
ତୃତୀୟ ୪ର୍ଥ ୫ମ ଓ ୬ଷ୍ଠ ସ୍ଥୂଳତା ଅନୁସାରେ ଡକାଯାଏ ]

ସ୍ଥୂଳ ତାଳ—ସଂ. ବି—ହିନ୍ତାଳ (ରାଜନିର୍ଘଣ୍ଟ)—
Sthūla tāla Palmyra palm.

ସ୍ଥୂଳ ତିନ୍ଦୁକ—ସଂ. ବି—ଅବଳୁସ (ବଂଠ) (ହି. ଶ)
Sthūla tinduka Ebony.

ସ୍ଥୂଳତିକ୍ତା—ସଂ. ବି—ଦାରୁହଳଦୀ (ହି. ଶ)—
Sthūlatiktā Dāruhaladi (See)

ସ୍ଥୂଳତଃ—ଦେ. କ୍ରି. ବିଣ—ମୋଟା ମୋଟି—Roughly; on the
Sthūlatah whole. [ଦ୍ର—ସଂସ୍କୃତରେ ବିଶେଷ୍ୟ ଶବ୍ଦରେ
स्थूलत: ପଞ୍ଚମୀ ଓ ସପ୍ତମୀ ବିଭକ୍ତିରେ ତସ୍ ପ୍ରତ୍ୟୟ ହୁଏ, ବିଶେଷଣରେ
स्थूलत: ହୁଏ ନାହିଁ । ପ୍ରକାଶ୍ୟତଃ ଆଦି ଯାହା ଆମ୍ଭେମାନେ
ବ୍ୟବହାର କରୁଁ, ତାହା ସଂସ୍କୃତ ବ୍ୟାକରଣ ବିରୁଦ୍ଧ ।]

ସ୍ଥୂଳ ତ୍ୱଗ୍—ସଂ. ବ—କାଶ୍ମରୀ (ରାଜନିର୍ଘଣ୍ଟ); ଗମ୍ଭାରୀ ଗଛ (ହି. ଶ)—
Sthūla twachā Black grape; Gmelina Arborica.

ସ୍ଥୂଳ ଦଣ୍ଡ—ସଂ. ବ—ଦେବ ନଳ [ରାଜନିର୍ଘଣ୍ଟ]—
Sthūla danda A kind of reed.
ସଂ. ବଣ. ପୁଂ (ବହୁବ୍ରୀହି) ସ୍ଥୂଳଦଣ୍ଡବିଶିଷ୍ଟ—Having thick rod.
(ସ୍ଥୂଳଦଣ୍ଡା—ସ୍ତ୍ରୀ)

ସ୍ଥୂଳଦର୍ଭ (ର୍ଭା)—ସଂ ବ—ମୁଞ୍ଜତୃଣ (ରାଜନିର୍ଘଣ୍ଟ)—
Sthūladarbha (rbhā) A kind of grass; Saccharum Munja.

ସ୍ଥୂଳଦର୍ଶକ—ସଂ. ବ—ଅଣୁବୀକ୍ଷଣ ଯନ୍ତ୍ର; ଯେଉଁ ଯନ୍ତ୍ର ଦ୍ୱାରା ସୂକ୍ଷ୍ମ ବସ୍ତୁ
Sthūladarśak ସ୍ଥୂଳ ଦେଖାଯାଏ (ହି. ଶ)—Microscope.
(ସ୍ଥୂଳ ଦର୍ଶନ ଯନ୍ତ୍ର—ଅନ୍ୟରୂପ)

ସ୍ଥୂଳ ଦଳ—ସଂ ବ (କର୍ମଧା) ମୋଟା ପତ୍ର—Thick leaf. ସଂ. ବଣ.
Sthūla dala ପୁଂ (ବହୁବ୍ରୀହି)—ମୋଟା ପତ୍ର ବିଶିଷ୍ଟ—Thick leaved.
(ସ୍ଥୂଳଦଳା—ସ୍ତ୍ରୀ)

ସ୍ଥୂଳଦଳା—ସଂ ବ—ଘିକୁଆଁରୀ—
Sthūladalā Aloe Indica.
ସଂ. ବଣ. ସ୍ତ୍ରୀ—ସ୍ଥୂଳ ଦଳର ସ୍ତ୍ରୀଲିଙ୍ଗ—
Feminine of Sthūla dala.

ସ୍ଥୂଳ ଦେହ—ସଂ. ବ (କର୍ମଧା)—୧। ସ୍ଥୂଳ କାୟା; ମୋଟା ଶରୀର—
Sthūla deha 1. Fat body. ୨। ଜଡ଼ ଶରୀର—
(ସୂକ୍ଷ୍ମ ଦେହ, ଲିଙ୍ଗ ଦେହ—ବିପରୀତ) 2. Gross material body; physical body. [ଉ—ସ୍ଥୂଳଦେହେ ସଦା ଅସ୍ଥିର ସେହି ପାଣ୍ଡୁର ଛବି ବାମାର,—ରାଧାନାଥ. ପାର୍ବତୀ।] ବଣ. ପୁଂ—ସ୍ଥୂଳକାୟ—Corpulent; fat.
(ସ୍ଥୂଳଦେହା—ବଣ. ସ୍ତ୍ରୀ)

ସ୍ଥୂଳ ନାଳ—ସଂ. ବ—ଦେବନଳ (ରାଜନିର୍ଘଣ୍ଟ)—
Sthūla nāla A sort of reed.

ସ୍ଥୂଳନାସ—ସଂ. ବଣ.ପୁଂ (ବହୁବ୍ରୀହି; ସ୍ଥୂଳ+ନାସା)—ପୀନ ନାସାଯୁକ୍ତ—
Sthūlanāsa Having a thick nose; thick-nosed; snub-nosed.
(ସ୍ଥୂଳନାସିକ—ଅନ୍ୟରୂପ)
ସଂ. ବ—ଶୂକର; ବରାହ—A hog.
(ସ୍ଥୂଳନାସା, ସ୍ଥୂଳନାସିକା—ସ୍ତ୍ରୀ)

ସ୍ଥୂଳ ଅମ୍ବୁ—ସଂ. ବ—ମହାନିମ୍ବୁ; ବଡ଼ଲେମ୍ବୁ—
Sthūla ambu Big orange.

ସ୍ଥୂଳ ନୀଳ—ସଂ. ବ—ବାଜ ପକ୍ଷୀ (ହି. ଶ)—
Sthūla nīla Hawk.

ସ୍ଥୂଳ ପଟ—ସଂ. ବଣ ପୁଂ (ବହୁବ୍ରୀହି)—ପୀବର ବସ୍ତ୍ରଯୁକ୍ତ—
Sthūla pata Having a thick cloth.
(ସ୍ଥୂଳ ପଟା—ସ୍ତ୍ରୀ)

ସ୍ଥୂଳ ପଟ୍ଟ—ସଂ. ବ—କାର୍ପାସ (ଶବ୍ଦରତ୍ନାବଳୀ)—
Sthūla patta Cotton.

ସ୍ଥୂଳ ପଟ୍ଟାକ—ସଂ. ବ—ମୋଟା ଲୁଗା (ଶବ୍ଦରତ୍ନାବଳୀ)—
Sthūla pattāka Thick cloth.

ସ୍ଥୂଳ ପତ୍ର—ସଂ. ବ—୧। (କର୍ମଧା) ମୋଟ ପତ୍ର—1. Thick leaf.
Sthūla patra. ୨। (ବହୁବ୍ରୀହି) ଦମନକ; ଦଅଣା ଗୁଳ୍ମ—
2. The Damanaka plant. ୩। ଛତିଆନା ଗଛ (ହି. ଶ)—3. Chhatiānā (See) ସଂ. ବଣ—ମୋଟ ପତ୍ର ବିଶିଷ୍ଟ—Thick-leaved.

ସ୍ଥୂଳପର୍ଣ୍ଣୀ—ସଂ. ବ—ଛତିଆନା ଗଛ (ହି. ଶ)—
Sthūlaparnnī Chhatiānā (See)

ସ୍ଥୂଳ ପାଦ—ସଂ. ବଣ. ପୁଂ(ବହୁବ୍ରୀହି)—ଗୋଦର; ମୋଟା ଗୋଡ଼ବିଶିଷ୍ଟ;
Sthūlapāda ଶ୍ଳୀପଦୀ—Having elephantiasis of the leg. ବ—ହସ୍ତୀ (ଶବ୍ଦମାଳା)—Elephant.
(ସ୍ଥୂଳପାଦା—ସ୍ତ୍ରୀ)

ସ୍ଥୂଳ ପୁଷ୍ପ—ସଂ. ବ (ବହୁବ୍ରୀହି)—୧। ବକବୃକ୍ଷ (ରତ୍ନମାଳା)—
Sthūla pushpa 1. Sesbania Grandiflora (tree)
୨। ମୋଟଫୁଲ—2. Thick-petalled flower.

ସ୍ଥୂଳପୁଷ୍ପା—ସଂ. ବ—୧। ପର୍ବତଜାତ ଅପରାଜିତା (ରତ୍ନମାଳା)—
Sthūlapuspā 1. Clitoria flower growing on mountains. ୨। ମୁଗୁରମଲ୍ଲୀ (ହି. ଶ)—2. Many-patalled Malli flower.

ସ୍ଥୂଳପୁଷ୍ପୀ—ସଂ. ବ—ଯବତିକ୍ତା (ରାଜନିର୍ଘଣ୍ଟ): ଶ୍ୱେତ ବକବକା; ଭୂଇଁ-ନିମ୍ବ—Andrographis Paniculata.
Sthūlapushpī

ସ୍ଥୂଳ ପ୍ରିୟଙ୍ଗୁ—ସଂ. ବ—ବରକଧାନ୍ୟ; ଚନାଶସ୍ୟ (ହି. ଶ)
Sthūlapriyangu A kind of fine grain.

ସ୍ଥୂଳ ଫଳ—ସଂ ବ—ଶାଲ୍ମଳୀବୃକ୍ଷ (ରାଜନିର୍ଘଣ୍ଟ)—
Sthūla phala The silk cotton tree.

ସ୍ଥୂଳଫଳା—ସଂ. ବ—୧। ଶଣପୁଷ୍ପୀ (ରାଜନିର୍ଘଣ୍ଟ): ବନ୍ୟ ଛଣପାଟ—
Sthūla phalā 1. Wild flax plant. ୨। ଶାଲ୍ମଳୀ (ହି. ଶ)—2. Silk-cotton tree.

ସ୍ଥୂଳବର୍ତ୍ତ୍ମକୃତ୍—ସଂ. ବ—ବ୍ରାହ୍ମଣ ଝାଟି (ଦେଖ)—
Sthulabarttmakrut Brāhmana jhāti (See)

ସ୍ଥୂଳ ବଲ୍କଳ—ସଂ. ବ—ରକ୍ତଲୋଧ୍ର (ଭାବପ୍ର)—
Sthūla balkala The red variety of Symplocus Racemosa.

ସ୍ଥୂଳ ବୁଦ୍ଧି—ସଂ ବ (କର୍ମଧା)—ମୋଟା ବୁଦ୍ଧି—
Sthūla buddhi Dullness of wit.
ବଣ ପୁଂ ଓ ସ୍ତ୍ରୀ (ବହୁବ୍ରୀହି)—ମୋଟାବୁଦ୍ଧିଆ—
Dull-witted.

ସ୍ଥୂଳ ବୃକ୍ଷ—ସଂ. ବ—ବକୁଳ ବୃକ୍ଷ (ହି.ଶ)—
Sthūla bruksha The Bakula tree.

ସ୍ଥୂଳବୃକ୍ଷ ଫଳ—ସଂ. ବ—୧। କ୍ଷୁଦ୍ର ପିଣ୍ଡିତକ (ରାଜନିର୍ଘଣ୍ଟ)—
Sthūla bruksha phala 1. The small variety of Pinditaka tree. ୨। ମଦନ ଫଳ—2. The fruit of Bushy Gardenia

ସ୍ଥୂଳ ବୈଦେହୀ—ସଂ. ବି—ଗଜ ପିପ୍ପଳୀ (ରାଜନିର୍ଘଣ୍ଟ)—
Sthūla baidehī The wild piper.

ସ୍ଥୂଳଭଦ୍ର—ସଂ. ବି—ଶ୍ରୁତକେବଳ ନାମକ ଜୈନଭେଦ (ହେମଚନ୍ଦ୍ର)—
Sthūlabhadra A sect of Jainas.

ସ୍ଥୂଳ ଭୂତ—ସଂ. ବି—୧। ପଞ୍ଚୀକୃତ ଆକାଶାଦି ଭୂତ—
Sthūla bhūta 1. The materialised elements of nature. ୨ । ପଞ୍ଚଭୂତ—2. The five gross elements of nature.

ସ୍ଥୂଳ ମଞ୍ଜରୀ—ସଂ. ବି. (ବହୁବ୍ରୀହି)—ଅପାମାର୍ଗ [ହି. ଶ]
Sthūla mañjarī Achyranthes Aspera [plant].

ସ୍ଥୂଳ ମରିଚ—ସଂ. ବି—୧ । କକ୍କୋଲ (ରାଜନିର୍ଘଣ୍ଟ) (ଦେଖ)
Sthūla maricha 1. Kakkola (See)
୨ । ଶୀତଳ ଚିନି; କବାବ ଚିନି (ହି. ଶ)—2. Cubeb.

ସ୍ଥୂଳ ମୂଳ (ମୂଳକ)—ସଂ. ବି—ବଡ଼ ମୂଳା (ହି. ଶ)
Sthūla mūla(mūlaka) Big radish.

ସ୍ଥୂଳରୁହା—ସଂ. ବି—ସ୍ଥଳପଦ୍ମ (ହି. ଶ) (ଦେଖ)
thūlaruhā Sthalapadma (Se )

ସ୍ଥୂଳ ରୂପ—ସଂ. ବି—ସ୍ଥୂଳ ଦେହ—
Sthūla rūpa Gross material body.

ସ୍ଥୂଳ ରୋଗ—ସଂ. ବି—ମେଦୋବୃଦ୍ଧି ରୋଗ—
Sthūla roga The disease of corpulence.

ସ୍ଥୂଳ ଲକ୍ଷ(କ୍ଷ୍ୟ, କ୍ଷୀ)—ସଂ. ବଣ. ପୁଂ (ବହୁବ୍ରୀହି)—୧। ବହୁ ଦାନଶୀଳ—
Sthūla laksha (kshya, kshī) 1. Very bountiful.
ସ୍ଥୂଳ ଲକ୍ଷା(କ୍ଷ୍ୟା), ସ୍ଥୂଳ ଲକ୍ଷିଣୀ } ସ୍ତ୍ରୀ ୨ । କୃତବିଦ୍ୟ; ବିଦ୍ୱାନ୍—2. Learned. ୩ । କୃତଜ୍ଞ—3. Grateful.
[ସ୍ଥୂଳ ଲକ୍ଷ(କ୍ଷ୍ୟ, କ୍ଷି)ତା—ବି]

ସ୍ଥୂଳ ଶର(ଶାୟକ)—ସଂ. ବି ୧ । ସ୍ଵମଷର; ଶରବୃକ୍ଷବିଶେଷ—
Sthūla śara(śāyaka) (ରାଜନିର୍ଘଣ୍ଟ)—1. A sort of reed. (ଗୁ—ଏହା ମଧୁର, ଶୀତଳ, କୋଷ୍ଠ, କଫଦ୍ରାନ୍ତ-ଅନ୍ୟ ସଂ. ନାମ—ମହାଶର, ମହାଦନ୍ତ; ବଳବୀର୍ଯ୍ୟକର ।) ଇକ୍ଷୁରକ; ଖ୍ରଜପଣ; ବହୁମୂଳ, ଘାର୍ଘମୂଳକ ।

ସ୍ଥୂଳ ଶରୀର—ସଂ. ବି ଓ ବଣ ପୁଂ—ସ୍ଥୂଳ ଦେହ (ଦେଖ)
Sthūla śarīra Sthūla deha ( See )

ସ୍ଥୂଳ ଶଟକ(କା)—ସଂ ବି—ମୋଟ ଲୁଗା—Thick or coarse
Sthūla śaṭaka cloth.
(ସ୍ଥୂଳଶାଟିକା; ସ୍ଥୂଳଶାଟି—ଅନ୍ୟରୂପ)

ସ୍ଥୂଳ ଶାଳି—ସଂ. ବି—ବଡ଼ଧାନ; ଶାଳିଧାନ୍ୟଭେଦ; ମୋଟ ଶାରଦ ଧାନ
Sthūla śāli —Coarse winter paddy. [ଗୁ—ଏହା [ଲଘୁଶାଳ—କଷସହିତ] ସ୍ୱାଦୁ;ମଧୁର;ଶୀତଳ;ପିତ୍ତନାଶକ ଓ ବୀର୍ଯ୍ୟବୃଦ୍ଧ-[ଅନ୍ୟନାମ—ସ୍ଥୂଳତଣ୍ଡୁଳ; ସ୍ଥୂଳାଙ୍ଗ] ଦାହଜ୍ୱରରୋଗନାଶକ; ଅଗ୍ନିବଳବୀର୍ଯ୍ୟକର । ]

ସ୍ଥୂଳ ଶିରଃ—ସଂ. ବି [ସ୍ଥୂଳଶିରସ୍ ଶବ୍ଦ]—ବୃହତ ମୁଣ୍ଡ—Bighead.
Sthūla śirah ବଣ. [ବହୁବ୍ରୀହି]—ବୃହତ୍ମସ୍ତକ [ବ୍ୟକ୍ତି]—Big-headed.

ସ୍ଥୂଳ ଶିର୍ଷିକା—ସଂ. ବି [ଏହାର ଶରୀର ତୁଳନାରେ ମୁଣ୍ଡ ବଡ ଥିବାରୁ]—
Sthūla śirshikā କ୍ଷୁଦ୍ରପିପୀଲିକା (ହେମଚନ୍ଦ୍ର)—Small ant.

ସ୍ଥୂଳ ଷଟ୍ପଦ—ସଂ. ବି—ବଟେଲ; ବିରୁଡ଼ି (ଶବ୍ଦକଳ୍ପଦ୍ରୁମ)
Sthūla shatpada Wasp.

ସ୍ଥୂଳ ଶାୟକ—ସଂ. ବି—ସ୍ଵମଷର; ଉଦ୍ଗୁଞ୍ଜ (ହି. ଶ)
Sthūla śāyaka A kind of reed.

ସ୍ଥୂଳ ସ୍କନ୍ଧ—ସଂ. ବି (ବହୁବ୍ରୀହି)—ଲକୁଚ; ଜେଉଟ—
Sthūla skandha Autocorpus Loccucha tree.

ସ୍ଥୂଳ ସ୍ତନ—ସଂ ବି (କର୍ମଧା)—ପୀବର ସ୍ତନ—
Sthūla stana Big breasts (of a woman).

ସ୍ଥୂଳସ୍ତନା—ସଂ. ବଣ ସ୍ତ୍ରୀ (ବହୁବ୍ରୀହି ସ୍ଥୂଳ+ସ୍ତନ+ଆ)—ପୀବର ସ୍ତନ-
Sthūlastanā ଯୁକ୍ତା [ସ୍ତ୍ରୀ]—(a woman) Having big breasts.
(ସ୍ତନନ୍ଧୟା—ବାସସ୍ତ)

ସ୍ଥୂଳ ହସ୍ତ—ସଂ. ବି (କର୍ମଧା)—୧ । ପୀନ ଭୁଜ—Thick hand.
Sthūla hasta ୨ । ହସ୍ତିଶୁଣ୍ଡ—The trunk of elephant.

ସ୍ଥୂଳା—ସଂ. ବଣ ସ୍ତ୍ରୀ (ସ୍ଥୂଳ+ଆ)—ସ୍ଥୂଳର ସ୍ତ୍ରୀ ଲିଙ୍ଗ—
Sthūlā Feminine of Sthūla.
ବଣ. ସ୍ତ୍ରୀ—୧ । ଗଜ ପିପ୍ପଳୀ (ଶବ୍ଦ ଚନ୍ଦ୍ରିକା)—1. Wild pepper. ୨ । ଏଲାରୁ ( ରାଜନିର୍ଘଣ୍ଟ ); ଫୁଟି—2. Cucumber; Cucumis Memordicus. ୩ । ସ୍ଥୂଳୈଳା (ରତ୍ନମାଳା)—3. The big variety Cardamum.

ସ୍ଥୂଳାଂଶା ସଂ. ବି—ଗଜ ପଦ୍ମା (ରାଜନିର୍ଘଣ୍ଟ)—
Sthulāmśā A medicinal plant.

ସ୍ଥୂଳାଙ୍ଗ—ସଂ. ବି (କର୍ମଧା)—୧ । ମୋଟ ଦେହ—1. Fat body.
Sthūlāṅga ୨ । ଏକ ପ୍ରକାର ତଣ୍ଡୁଳ (ହି. ଶ)—2. A (ସ୍ଥୂଳାଙ୍ଗ—ବଣ.ସ୍ତ୍ରୀ) species of rice. ବଣ. ପୁଂ—ସ୍ଥୂଳ ଦେହ-(ସ୍ଥୂଳାଙ୍ଗୀ—ଦେ. ସ୍ତ୍ରୀ. ରୂପ) ବିଶିଷ୍ଟ—Fat; corpulent.

ସ୍ଥୂଳାମ୍ର—ସଂ. ବି—୧ । ମହାରାଜଚୂତ; ଉତ୍କୃଷ୍ଟ ଆମ୍ରବିଶେଷ [ରାଜନିର୍ଘଣ୍ଟ]
Sthūlāmra 1. A species of excellent mango.
୨ । କଲମୀଆମ୍ବ [ହି. ଶ]—2. Mango from graft.

ସ୍ଥୂଳାସ୍ୟ—ସଂ. ବଣ . ପୁଂ [ ବହୁବ୍ରୀହି ]—ବୃହନ୍ମୁଖ—Big face.
Sthūlāsya ବି—ସର୍ପ [ ଜୈଚନ୍ଦ୍ରିକା]—Serpent,
[ସ୍ଥୂଳାସ୍ୟା—ବଣ. ସ୍ତ୍ରୀ]

ସ୍ଥୂଳୀ—ସଂ. ବି [ସ୍ଥୂଳ+ଇନ୍ ୧ମା. ୧ବ]—ଉଷ୍ଟ୍ର (ଶବ୍ଦକଳ୍ପଦ୍ରୁମ)—
Sthūlī Camel.

ସ୍ଥୂଳୈରଣ୍ଡ—ସଂ. ବି—ବୃହତ୍ ଏରଣ୍ଡ ବୃକ୍ଷ—
Sthūlairaṇḍa A big variety of castor oil-seed-plant.

ସ୍ଥୂଳୈଳା—ସଂ. ବି (କର୍ମଧା)—ବଡ଼ ଅଳା (ଲେ, ଲେ)ଇଚ—The
Sthūlailā larger variety of Cardamum.
(ସ୍ଥୂଳୈଳା=ଗୁଜରାଟ—ବାସସ୍ତ) [ଗୁ—ଏହା ଶୀତଳ, ଲଘୁ

ବଡ ଏଳାଚି ସୁଗନ୍ଧ, ପିତ୍ତବିଜ୍ଞଫହର, ହୃଦ୍ରୋଗନାଶକ, ପୁଂସତ୍ୱ
**बड़ी इलायची** ନାଶକ ଓ ରେଚକ ।]
ଫା. ହେଲିବଜର୍ଗ, ଅ. କାକଲେହବାର, ତେ. ପେଙ୍ଗଏଲକୁଲୁ;
ଅନ୍ୟ ସ. ନାମ—ଏଳା, ସ୍ଥୂଳା, ବହୁଳା, ପୃଥ୍ୱୀକା, ବିପୃଷ୍ଟ, ଉଦ୍ବେଳା,
ବୃହଦେଲା, ଚନ୍ଦ୍ରବାଳା, ନିଷ୍କୁଟ, କ୍ରିଦନୋଇବା, ସୁରଭିତ୍ୱକ୍,ମହେଲା,
ପୃଥ୍ୱୀ, କନ୍ୟା, ଭୂମାଉକା, କାମୁକା, ଇନ୍ଦ୍ରାଣୀ, କାନ୍ତା, ଦବ୍ୟଗନ୍ଧା,
ଐନ୍ଦ୍ରୀ । ]

ସ୍ଥୂଳୋଚ୍ଚୟ—ସ.ବି—୧। ହସ୍ତୀର ମଧ୍ୟମ ଗତି (ମେଦିନୀ)—1. Medium
Sthūlochchaya motion of an elephant. ୨। ଗଣ୍ଡୋ-
ପଲ; ଗଣ୍ଡଶୈଳ ( ମେଦିନୀ )—2. A big block of
stone. ୩। ଅସମ୍ପୂର୍ଣ୍ଣତା (ମେଦିନୀ)—3. Incom-
pleteness. ୪। ବଉଣ୍ଡ; ବ୍ରଣ (ମେଦିନୀ)—4. Boil.
୫। ହସ୍ତିଦନ୍ତ ମଧ୍ୟସ୍ଥ ରନ୍ଧ୍ର—5. The bore inside
the tusk of the elephant.

ସ୍ଥୂଳୋଦର—ସ. ବି ( କର୍ମଧା )—ବଡ ପେଟ—Big belly. ବିଣ
Sthūlodara (ବହୁବ୍ରୀହି) ପୁଂ—ବଡ଼ ପେଟୁଆ; ଅଳ୍ପଳ ପେଟା—
(ସ୍ଥୂଳୋଦରୀ—ସ୍ତ୍ରୀ. ବିଣ) Pot-bellied.

ସ୍ଥେୟ—ସ. ବିଣ (ସ୍ଥା. ଧାତୁ+ଅର୍ହ ଯ)—୧। ସ୍ଥିରତର (ବ୍ୟାକରଣ)
Stheya —1. Calmer; more fixed. ୨। ସ୍ଥାପନୀୟ—
2. Fit to be placed or established. ବି—
୧ । ବିବାଦ ପକ୍ଷର ନିର୍ଣ୍ଣେତା; ମଧ୍ୟସ୍ଥ ( ମେଦିନୀ )—
1. Umpire; arbitrator. ୨ । ପୁରୋହିତ—
2. Priest.

ସ୍ଥେୟାନ୍—ସ. ବିଣ. ପୁଂ (ସ୍ଥିର+ଅତ୍ୟର୍ଥେ ଈୟସ୍=ସ୍ଥେୟସ୍; ୧ମା.୧ବ)
Stheyān —୧। ଅତି ସ୍ଥିର (ଅମର)—1. Very calm or
(ସ୍ଥେୟସୀ—ସ୍ତ୍ରୀ) fixed. ୨। ଶ୍ରେଷ୍ଠ—2. Excellent. ୩।
ଶାଶ୍ୱତ (ଭରତ)—3. Eternal.

ସ୍ଥେଷ୍ଠ—ସ. ବିଣ. ପୁଂ (ସ୍ଥିର+ଅତ୍ୟର୍ଥେ ଇଷ୍ଠ)—୧ । ଅତି ସ୍ଥିର—
Sthesbtha 1. Very calm or fixed. ୨। ଦୃଢ଼ତର—
(ସ୍ଥେଷ୍ଠା—ସ୍ତ୍ରୀ) 2. Very firm

ସ୍ଥୈର୍ଯ୍ୟ—ସ. ବି ( ସ୍ଥିର+ଭାବାର୍ଥେ ଯ )—୧ । ସ୍ଥିରତା; ସ୍ଥିରତ୍ୱ —
Sthairjya 1. Calmness; fixity. ୨। ଅଚଳତା—
2. Unmoving condition; stability.

ସ୍ଥୋ(ସ୍ଥୌ)ରୀ—ସ. ବି ( ସ୍ଥୋରିନ୍ ଶବ୍ଦ ୧ମା. ୧ବ )—୧ । ଥୋଡ଼
Stho(sthau)rī ବୋହିବା ପଶୁ—1. Pack-animal.
୨ । ଥୋଡ଼ିଆ ବଳଦ—2. Pack-bullock.

ସ୍ଥୌଣେୟ—ସ. ବି—ଗ୍ରନ୍ଥିପର୍ଣ୍ଣ ନାମକ ଗନ୍ଧ ଦ୍ରବ୍ୟ; ଗଣ୍ଠିଅଳା (ଅମର)
Sthauņeya A scented herb.
(ସ୍ଥୌଣେୟକ—ଅନ୍ୟରୂପ) ଅନ୍ୟ ସ. ନାମ—ହରିତ

ସ୍ଥୌର—ସ. ବି—ପଶୁଙ୍କ ପିଠିରେ ବାହିତ ଭାର; ଥୋଡ ( ହ. ଶ )—
Sthaura Loads carried in pack-saddle.

ସ୍ଥୌଲଶୀର୍ଷ—ସ. ବିଣ. ପୁଂ (ସ୍ଥୂଲଶୀର୍ଷ+ଅ)—ବୃହଦ୍‌ମସ୍ତକଯୁକ୍ତ—
Sthaula sirsha Big-headed.
(ସ୍ଥୌଲଶୀର୍ଷୀ—ସ୍ତ୍ରୀ)

ସ୍ଥୌଲ୍ୟ—ସ. ବି (ସ୍ଥୂଲ+ଭାବାର୍ଥେ ଯ)—୧ । ସ୍ଥୂଲତା—1. Thick-
Sthaulya ness; fatness; corpulence. ୨। ମେଦୋ-
ବୃଦ୍ଧି ରୋଗ ( ହ. ଶ )—
2. The disease of corpulence.

ସ୍ନ—ଗ୍ରା. ବି ( କଚେରିଆ ସାଙ୍କେତିକ )—'ସନ'ର ସାଙ୍କେତିକ ରୂପ—
Sna सन सन Abbreviation for Sana (meaning
year).

ସ ହାଲ୍—ଗ୍ରା. ବି ( ସାଙ୍କେତିକ; କଚେରିଆ ଭାଷା; 'ସନ ହାଲ'ର
Sna hāl ଅପଭ୍ରଂଶ )—ଚଳିତ ବର୍ଷ—Abbreviation for
हाल सन हाल सन 'the current year.
( ସ୍ନ ହା —ଅନ୍ୟରୂପ )

ସ୍ନପନ—ସ.ବି (ସ୍ନା ଧାତୁ ଣିଜନ୍ତ ସ୍ନାପି ଧାତୁ+ଭାବ. ଅନ)—୧ । ସ୍ନାନ
Snapana କରାଇବା; ଗାଧୋଇ ଦେବା—1. Giving a
bath. ୨ । ଧୋଇବା—2. Washing; ablu-
tion. ୩ । ଆର୍ଦ୍ରୀକରଣ—3. Moistening. ୪।
ଅଭିଷେକକରଣ; ଅଭିଷେଚନ —4. Act of sprink-
ling consecrated water. ୫ । ସ୍ନାନ—
5. Bath; bathing.

ସ୍ନପିତ—ସ. ବିଣ ( ସ୍ନାପି ଧାତୁ+କର୍ମ. ତ )—କୃତ ସ୍ନାନ; ସ୍ନାତ—
Snapita 1. Bathed. ୨। ଧୌତ—2. Washed.
୩ । ଆର୍ଦ୍ରୀକୃତ—3. Moistened. [ ଭୂ—ବର୍ଣ୍ଣରେ
ଜଗନ୍ନାଥଙ୍କ ଶରୀରରେ ପ୍ରବାହରେ । ସ୍ନପିତ ଅଧର ସ୍ନିଗ୍ଧେ ହୃଦୟ
କବାରେ—ପ୍ରାଚୀ. ଉପକାରିଆ । ] ୪ । ବ୍ୟାପ୍ତ—
4. Spread.

ସ୍ନବ—ସଂ. ବି ( ସ୍ନୁ ଧାତୁ=କ୍ଷରିତ ହେବା+ଭାବ. ଅ )—ସ୍ରବଣ;
Snaba ( ସ୍ନୁତ—ବିଣ ) କ୍ଷରଣ—Oozing.

ସ୍ନା ( ଧାତୁ )—ସଂ—୧ । ଗାଧୋଇବା—1. To bathe. ୨।
Snā (root) ଧୋଇବା—2. To wash. ୩ । ଓଦା କରିବା—
3. To moisten.

ସ୍ନାଅନ—ଗ୍ରା. ବି ( ସ. ସ୍ନାନ )—ସ୍ନାନ ( ଦେଖ )—
Snā-āna स्नान, चान असनान Snāna ( See )

ସ୍ନାତ—ସଂ. ବିଣ ( ସ୍ନା ଧାତୁ+କର୍ତ୍ତ. ତ )—୧ । କୃତସ୍ନାନ—
Snāta 1. Bathed. ୨। (+କର୍ମତ)ଧୌତ—2. Washed.
( ସ୍ନାତା—ସ୍ତ୍ରୀ ) ୩ । ଆର୍ଦ୍ରୀକୃତ—3. Moistened.

ସ୍ନାତକ—ସଂ. ବି ( ସ୍ନାତ+ସ୍ୱାର୍ଥେ. କ )—୧ । ଗୁରୁଗୃହରେ ବ୍ରହ୍ମଚର୍ଯ୍ୟ
Snātaka ଓ ବେଦାଧ୍ୟୟନ ସମାପନ ପୂର୍ବକ ଗୃହସ୍ଥାଶ୍ରମକୁ ସମା-
ବର୍ତ୍ତନ କରିଥିବା ( ସେହି ଉପଲକ୍ଷରେ ସମ୍ୟକ୍ ସ୍ନାନ
କରିଥିବା ) ବ୍ୟକ୍ତି—1. A person who has
entered into the stage of a house-
holder after completing his course of

vedic studies at the house of his preceptor. ୨ । ବ୍ରହ୍ମଚର୍ଯ୍ୟ ସମାପନାର୍ଥେ ଗୃହସ୍ଥାଶ୍ରମରେ ପ୍ରବିଷ୍ଟ ବ୍ୟକ୍ତି—2. A newly married person; an initiated householder, ( Hindu ), [ ଦ୍ର—ପ୍ରାଚୀନକାଳରେ ଦ୍ୱିଜ ବାଳକ ଗୁରୁକୁଳରେ ବେଦାଦି ଅଧ୍ୟୟନ ସମାପ୍ତ କରି ୨୫ ବର୍ଷ ବୟସରେ ଗୃହସ୍ଥାଶ୍ରମରେ ପ୍ରବେଶ କରିବା ପାଇଁ ନିଜ ପରିବାରକୁ ଫେରି ଆସୁଥିଲେ ।

ସ୍ନାତକ ତ୍ରିବିଧ ; ଯଥା—ବ୍ରତସ୍ନାତକ, ବିଦ୍ୟାସ୍ନାତକ ଓ ଉଭୟ ସ୍ନାତକ ।

୧ । ବ୍ରତସ୍ନାତକ—୨୫ ବର୍ଷ ବୟସ ପର୍ଯ୍ୟନ୍ତ ଯେ ବ୍ରହ୍ମଚର୍ଯ୍ୟାଚରଣ ପୂର୍ବକ ବେଦାଧ୍ୟୟନ ସମାପ୍ତ କରି ନ ପାରି ଘରକୁ ଫେରି ଯାଉଥିଲେ—୨ । ବିଦ୍ୟାସ୍ନାତକ—ଯେ ବ୍ରହ୍ମଚର୍ଯ୍ୟାଚରଣ ପୂର୍ବକ ୨୫ ବର୍ଷ ବୟସ ହେଲେ ମଧ୍ୟ ଗୁରୁଗୃହରେ ରହି ବେଦାଧ୍ୟୟନ କରୁଥିଲେ ଓ ଘରକୁ ଫେରୁ ନଥିଲେ—୩ । ଉଭୟ ସ୍ନାତକ—ବ୍ରହ୍ମଚର୍ଯ୍ୟପାଳନ ପୂର୍ବକ ଯେ ବେଦପାଠ ଶେଷ କରି ଗୃହସ୍ଥାଶ୍ରମରେ ପ୍ରବେଶ କରୁଥିଲେ । ଆଜିକାଲି ଭାରତରେ ପ୍ରତିଷ୍ଠିତ ଗୁରୁକୁଳ ଓ ଋଷିକୁଳରେ ବିଦ୍ୟାଧ୍ୟୟନ କରି ଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ବାଳକଙ୍କୁ ସ୍ନାତକ ଉପାଧି ଦିଆଯାଏ (ହି• ଶ) ]

ସ୍ନାତକ ବ୍ରତ—ସଂ• ବି—ସ୍ନାତକଙ୍କ କର୍ତ୍ତବ୍ୟ ବ୍ରତ ବିଶେଷ—A religious vow observed by a newly initiated householder.
Snātaka brata

ସ୍ନାତାନୁଲିପ୍ତ—ସଂ• ବିଣ• ପୁଂ [କର୍ମଧା; ଆଦୌ ସ୍ନାତ, ପଶ୍ଚାତ୍ ଅନୁଲିପ୍ତ (ସ୍ନାତାନୁଲିପ୍ତା—ସ୍ତ୍ରୀ)—ସ୍ନାନ କରିସାରି ଯେଉଁ ବ୍ୟକ୍ତି ଦେହରେ ଚନ୍ଦନାଦି ବୋଳି ହୋଇଥାଆନ୍ତି—Besmeared with sandal paste etc. after bath.
Snātānulipta

ସ୍ନାନ—ସଂ, ବି (ସ୍ନା ଧାତୁ+ଭାବ ଅନ)—୧ । ଗାଧୋଇବା—1. Bathing; bath. ୨ । ଅବଗାହନ; ପାଣିରେ ବୁଡ଼ି ଗାଧୋଇବା; ମୁଣ୍ଡବୁଡ଼ାଇ ଗାଧୋଇବା—2. Bathing by dipping into water. ୩ । ସର୍ବାଙ୍ଗ କ୍ଷାଳନ—3. Washing of all the parts of the body. [ଦ୍ର—ସ୍ନାନ ସାତ ପ୍ରକାର, ଯଥା—୧ । ମାନ୍ତ୍ର ବା ମନ୍ତ୍ର ସ୍ନାନ—ମନ୍ତ୍ରପାଠପୂର୍ବକ ଜଳ ସିଞ୍ଚନ ବା ପ୍ରକୃତ ସ୍ନାନ—୨ । ବାୟୁ ସ୍ନାନ—ବାୟୁଦ୍ୱାରା ଶରୀର କ୍ଷାଳନ—୩ । ଭୌମସ୍ନାନ—ଦେହରେ ମାଟିବୋଳି ସ୍ନାନ—୪ । ଅଗ୍ନେୟ ସ୍ନାନ—ଧୂଆଁ ଦ୍ୱାରା ଦେହ ଧୂପନ, କିମ୍ବା ଦେହରେ ଭସ୍ମ ବୋଳି ହେବା—୫ । ଦିବ୍ୟ ବା ଆତପ ସ୍ନାନ—ସୂର୍ଯ୍ୟାଲୋକରେ ସ୍ନାନ—୬ । ବାରୁଣ ସ୍ନାନ—ଧୂଳିଦ୍ୱାରା ବା ଗୋରଜ ଦ୍ୱାରା ଶରୀର କ୍ଷାଳନ—୭ । ମାନସ ସ୍ନାନ—ତାତ୍ତ୍ୱିକ ସ୍ନାନ । ଏହି ସ୍ନାନ ଶବ୍ଦ ବିଶିଷ୍ଟ ଅନେକ ପ୍ରକାର ଶବ୍ଦ ଭାଷାରେ ଅଛି । ସେଥିମଧ୍ୟରୁ କେତେଗୁଡ଼ିଏ ଅତି ପ୍ରଚଳିତ ଶବ୍ଦ ନିମ୍ନରେ ଦିଆ ଯାଉଅଛି । ଯଥା—ଶିରଃ ସ୍ନାନ (ମୁଣ୍ଡଧୋଇ ଗାଧୋଇବା); (ସ୍ତ୍ରୀମାନଙ୍କର) ଋତୁସ୍ନାନ ବା ଶୁଦ୍ଧସ୍ନାନ; ପ୍ରାତଃସ୍ନାନ; ତୀର୍ଥସ୍ନାନ; ଦେବ-ସ୍ନାନ (ଜ୍ୟେଷ୍ଠ ପୂର୍ଣ୍ଣିମାରେ ବିଷ୍ଣୁ ପ୍ରତିମାଙ୍କ ସ୍ନାନବିଧି), ମନ୍ତ୍ର-ସ୍ନାନ, ଗଙ୍ଗାସ୍ନାନ, ବସ୍ତ୍ରସ୍ନାନ, ମୋକ୍ଷସ୍ନାନ (ସୂର୍ଯ୍ୟ ବା ଚନ୍ଦ୍ରଙ୍କର ଗ୍ରହଣରୁ ମୁକ୍ତ ହେବା ପରେ ହିନ୍ଦୁମାନଙ୍କର ସ୍ନାନ), ଗ୍ରସ୍ତ ସ୍ନାନ ବା ଗ୍ରହଣସ୍ନାନ (ସୂର୍ଯ୍ୟ ବା ଚନ୍ଦ୍ର ଗ୍ରହଣ ଲାଗିବା ବେଳେ ହିନ୍ଦୁଙ୍କର ସ୍ନାନ), ପ୍ରେତସ୍ନାନ (ମୃତ ବ୍ୟକ୍ତିଙ୍କ ପ୍ରେତ ଉଦ୍ଦେଶ୍ୟରେ କରାଯିବା ସ୍ନାନ), ନିତ୍ୟସ୍ନାନ, ନୈମିତ୍ତିକ ସ୍ନାନ (କୌଣସି ବିଶେଷ ନିମିତ୍ତ ଉପଲକ୍ଷରେ (ଯଥା—ଗ୍ରହଣ ସମୟରେ, କୌଣସି କୁଟୁମ୍ବ ମୃତ ହେଲେ) କରାଯିବା ସ୍ନାନ, କାକସ୍ନାନ, ମହାସ୍ନାନ, (ଦେବପ୍ରତିମାଙ୍କର ସ୍ନାନ, ଦେବ ମନ୍ଦିରରେ କୌଣସି ଅଶୁଚିଜନକ ଘଟଣା ଘଟିଲେ, ଯଥା—ଅସ୍ପୃଶ୍ୟ ବ୍ୟକ୍ତି ଦେବତାଙ୍କୁ ଛୁଇଁଦେଲେ, ମନ୍ଦିର ମଧ୍ୟରେ କେହି ଝାଡ଼ା ଫେରି ପକାଇଲେ ବା ପ୍ରସ୍ରାବ କଲେ, ଦେବତାଙ୍କୁ ଗାଧୋଇଦେବାରୂପ କର୍ମ), କାମ୍ୟସ୍ନାନ (ପ୍ରାୟଶ୍ଚିତ୍ତ, ଅଭିଷେକ, ଉପନୟନ, କର୍ଣ୍ଣବେଧ ଇତ୍ୟାଦି କାମ୍ୟ କର୍ମ ଉପଲକ୍ଷରେ ସ୍ନାନ), ସମୁଦ୍ର ସ୍ନାନ ବା ସାଗର ସ୍ନାନ, ନଦୀସ୍ନାନ, ଅଶୌଚସ୍ନାନ, ସଦ୍ୟଃସ୍ନାନ, ମକରସ୍ନାନ ବା ମାଘସ୍ନାନ, କାର୍ତ୍ତିକସ୍ନାନ, ପ୍ରୟାଗସ୍ନାନ, ତ୍ରିବେଣୀ ସ୍ନାନ) ।
Snāna
(ସ୍ନାତା—ବିଣ)
ଏହାର ଅପଭ୍ରଂଶ—
ସ୍ନାଅ (ହା) ନ, ସ୍ନାଅ-(ହା) ନ, ସିନା-(ହା) ନ)

ସ୍ନାନ କରିବା—ଦେ• କ୍ରି—୧ । ଗାଧୋଇବା—1. To take a bath. ୨ । ମୁଣ୍ଡବୁଡ଼ାଇ ଗାଧୋଇବା—2. To take a dip in the water.
Snāna karibā
স্নানকরা, চানকরা
स्नानकरना

ସ୍ନାନ କଳସ(ଘଟ)—ସଂ ବି (ମ.ପ. ଲୋ)—ଯେଉଁ କୁମ୍ଭରେ ସ୍ନାନାର୍ଥ ଜଳ ରହିଥାଏ—A pitcher containing water for bath.
Snāna kalasa [ghaṭa]

ସ୍ନାନ ଗୃହ—ସଂ ବି—ସ୍ନାନାଗାର (ଦେଖ)—Snānāgāra (See)
Snāna gṛuha

ସ୍ନାନ ତୃଣ—ସଂ• ବି—କୁଶ (ଶବ୍ଦମାଳା)—The kuśa grass. (ଦ୍ର—କୁଶକୁ ହସ୍ତରେ ଧାରଣ କରି ସ୍ନାନ କରିବାର ବିଧି ଶାସ୍ତ୍ରରେ ଅଛି । (ହି• ଶ)
Snāna tṛuṇa

ସ୍ନାନ ଦାନ—ସ. ବି—୧ । ସ୍ନାନାନ୍ତେ ବ୍ରାହ୍ମଣଙ୍କୁ ଧନାଦିର ଦାନ—1. Giving of presents to Brāhmaṇas after bath. ୨ । ସ୍ନାନ ଓ ବ୍ରାହ୍ମଣଙ୍କୁ ଧନାଦି ଦାନ—2. Bathing and giving presents to Brāhmaṇas.
Snāna dāna

ସ୍ନାନ ପୂର୍ଣ୍ଣମୀ—ଦେ. ବି (ସଂ. ସ୍ନାନପୂର୍ଣ୍ଣିମା)—ସ୍ନାନ ପୂର୍ଣ୍ଣିମା (ଦେଖ)—Snāna pūrṇṇimā (See).
Snāna pūrṇṇamī
স্নানপূর্ণিমা
अस्नानपूनमी
(ସ୍ନାନ ପୁନେଇଁ—ଅନ୍ୟରୂପ)

ସ୍ନାନ ପୂର୍ଣ୍ଣିମା—ସଂ. ବି—ଜ୍ୟେଷ୍ଠ ପୂର୍ଣ୍ଣିମା, ଯେଉଁ ଦିନ ବିଷ୍ଣୁ ପ୍ରତିମାଙ୍କର ସ୍ନାନ ମଣ୍ଡପରେ ସ୍ନାନ ବିଧି ସମ୍ପାଦିତ ହୁଏ—Full moon of Jyaishṭha.
Snāna pūrṇṇimā

ସ୍ନାନ ପ୍ରକାର—ତଦ୍. ବି ( ଚକାରାର୍ଥକ ସବ୍‌ଦର )—ଗାଧୁଆ ପାଧୁଆ—
Snāna prakāra Bathing etc. (ଭି—ସ୍ନାନ ପ୍ରକାର
ଚାନଟାନ **अस्नान उस्नान** କରିବାକାଥି, ପାଠାଠା ପଦ୍ଧତିର
ଛାନ୍ଦୁଯିବ—ପଣ୍ଡିତମୋହନ ଗଳ୍ପସ୍ବଳ୍ପ ।)

ସ୍ନାନ ବସ୍ତ୍ର—ସଂ. ବି (ମ.ଷ. ଲେ)—ସ୍ନାନ କରିବା ସମୟରେ ଯେଉଁ ଲୁଗା
Snāna bastra ପିନ୍ଧା ହୋଇଥାଏ—Cloth put on during bath; bath-dress.

ସ୍ନାନ ବେଦୀ (ବେଦିକା)—ସ. ବି—ସ୍ନାନମଣ୍ଡପ (ଦେଖ)
Snāna bedi (bedikā) Snāna mandapa (See)

ସ୍ନାନ ଭୋଜନ—ସ. ବି—ସ୍ନାନାନ୍ତେ ଭୋଜନ—
Snāna bhojana Taking bath and then taking meal.

ସ୍ନାନ ମଣ୍ଡପ—ସ.ବି—ଯେଉଁ ମଣ୍ଡପରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ
Snāna mandapa ପ୍ରତିମାମାନଙ୍କର ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ସ୍ନାନ କାର୍ଯ୍ୟ ସମ୍ପାଦନ କରାଯାଏ—An altar on which the images of Jagannātha, Balabhadra and Subhadrā are given a washing on Snāna Purnnimā day.

ସ୍ନାନ ଯାତ୍ରା—ସ. ବି—ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ବିଷ୍ଣୁ ପ୍ରତିମାଙ୍କର ( ଏବଂ
Snāna jātrā ପୁରୀରେ ଓ ଅନ୍ୟ ସ୍ଥାନରେ ପ୍ରତିଷ୍ଠିତ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ପ୍ରତିମାମାନଙ୍କର ) ମହାସ୍ନାନ ଉପଲକ୍ଷରେ ଉତ୍ସବ—The ceremony of washing of the images of Bishnu and of Jagannātha on the full moon of Jaishtha. [ ବି—ଏହି ଦିନ ଯାଇଥିବା ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ପ୍ରତିମାମାନଙ୍କ ଉପରେ ବହୁପରିମାଣରେ ପାଣି ଢଳାହେବାଦ୍ୱାରା ତାଙ୍କ ଦେହରୁ ରଙ୍ଗ ଛାଡ଼ିଯାଏ; ଏଥିପାଇଁ ସ୍ନାନଯାତ୍ରା ପରେ ସେ ମୂର୍ତ୍ତିମାନଙ୍କୁ ପୁନର୍ବାର ଚିତ୍ରିତ କରିବାକୁ ୧୫ ଦିନ ଲାଗେ । ସେ ସମୟରେ ଜଗନ୍ନାଥ ଆଦିଙ୍କ ମୂର୍ତ୍ତି ଆଗରେ ଡାଟି ବନ୍ଧାଯାଏ ଓ ଯାତ୍ରୀମାନେ ଜଗନ୍ନାଥଙ୍କୁ ଦର୍ଶନ କରି ପାରନ୍ତି ନାହିଁ । ଉକ୍ତ ୧୫ ଦିନକୁ 'ଅଣସର'(ସଂ.ଅନବସର) ବୋଲାଯାଏ । କାରଣ ସ୍ନାନାଧିକ୍ୟ ଯୋଗୁଁ ଜଗନ୍ନାଥଙ୍କୁ ଶରୀର ଧରିଥିବାରୁ ଯାତ୍ରୀଙ୍କୁ ଦର୍ଶନ ଦେବାକୁ ତାଙ୍କୁ ଅନବସର (ଅଣସର) ହୁଏ ବୋଲି କୋଲାଯାଏ । ଚିତ୍ର କାର୍ଯ୍ୟ ଶେଷ ହୋଇଗଲେ ଜଗନ୍ନାଥଙ୍କର 'ନବଯୌବନ' ବେଶକୁ ଯାତ୍ରୀମାନେ ଦେଖନ୍ତି ଓ ତତ୍ପରେ ନବ ଚିତ୍ରିତ ମୂର୍ତ୍ତିମାନଙ୍କୁ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ ରଥକୁ ନିଆଯାଇ ରଥଯାତ୍ରା କରାଯାଏ ।]

ସ୍ନାନ ଶାଳା—ସ. ବି—ସ୍ନାନାଗାର (ଦେଖ)
Snāna śālā Snānāgāra (See)

ସ୍ନାନଶୀଳ—ସଂ. ବିଣ. ପୁଂ—ବେଶୀ ଗାଧୋଇବା ଯାହାର ଅଭ୍ୟାସ—
Snānaśila Habituated to taking bath frequently.
(ସ୍ନାନଶୀଳା—ସ୍ତ୍ରୀ)

ସ୍ନାନାଗାର—ସଂ. ବି (ମ. ପ. ଲେ)—ଯେଉଁ ଘରେ ସ୍ନାନ କରାଯାଏ;
Snānāgāra ଗୋସଲଖାନା—Bath room.

ସ୍ନାନାହାର—ସଂ. ବି—ପ୍ରଥମେ ସ୍ନାନ ଓ ପରେ ଭୋଜନ—
Snānāhāra Taking bath and taking meal after bath.

ସ୍ନାନିଆ—ଗ୍ରା· ବିଣ—ସ୍ନାତ; କୃତସ୍ନାନ—Bathed; washed.
Snāniā [ସ୍ନା(ସ୍ରା)ହାଳିଆ—ଅନ୍ୟ. ଗ୍ରାମ୍ୟ. ରୂପ]
[ଅସ୍ନାଇଆ, ଅସ୍ନା(ସ୍ରା)ହାଳିଆ—ବିପରୀତ]
स्नात **अस्नान कियाहुआ**

ସ୍ନାନିବା—ଦେ· କ୍ରି· (ପଦ୍ୟ)—(ସଂ. ସ୍ନାନ)—ସ୍ନାନ କରିବା—
Snāniba To bathe. ( ଭି—ପ୍ରଭାତ ଶିଶିରେ ସ୍ନାନ ସଜ ସ୍ନାନ କବା ପୁଷ୍ପ ଯେବେ, ବୃନ୍ତାସନେ ବସିଥାଇ ଅଳକ ଅକାଇ, **स्नानकरना** ପ୍ରେମୋତ୍ସବେ ହଲମୟ କେବେ କି ସେ ଅଳ, ଖଗ୍ରଟର ମଞ୍ଜୁଳ ପୁଷ୍ପ ବାସି ହେବା ଯାଏ ?—ରାଧାନାଥ, ମହାଯାତ୍ରା)

ସ୍ନାନୀୟ—ସଂ. ବିଣ—(ସ୍ନାନ+ଈୟ)—୧ । ସ୍ନାତ ହେବାର ଯୋଗ୍ୟ—
Snāniya —1. Fit to be bathed. ୨। ସ୍ନାନସମ୍ବନ୍ଧୀୟ—
2. Relating to bath. ୩ । ସ୍ନାନୋପଯୋଗୀ—
3. Requisite for a bath. ସ. ବି—ସ୍ନାନସାଧନ; ସ୍ନାନ ସମ୍ପାଦକ ଦ୍ରବ୍ୟ (ଯଥା—ଜଳ, ଗନ୍ଧଦ୍ରବ୍ୟ, ସାବୁନ, ଗାମୁଛା, ତୈଳ ଇତ୍ୟାଦି)—Materials required for a bath; requisites for a bath.

ସ୍ନାନୋପକରଣ—ସ. ବି (ଷଷ୍ଠୀ ତତ)—ସ୍ନାନୀୟ (ବି) (ଦେଖ)—
Snānopakarana Snāniya (See)

ସ୍ନାନୋତ୍ସବ—ସ. ବି—ସ୍ନାନଯାତ୍ରା (ଦେଖ)—Snānajātrā (See)
Snānotsaba (ସ୍ନାନୋତ୍‌ସବ—ଅନ୍ୟରୂପ)

ସ୍ନାବ—ସ. ବି—ସ୍ନାୟୁ (ଶବ୍ଦକଳ୍ପଦ୍ରୁମ) (ଦେଖ)—
Snāba Snāyu (See)

ସ୍ନାୟନ—ସ. ବି—ସ୍ନାନ (ହ·ଶ)—
Snāyana Bath.

ସ୍ନାୟବିକ—ସ ବିଣ (ସ୍ନାୟୁ+ଇକ)—ସ୍ନାୟୁ ସମ୍ବନ୍ଧୀୟ—
Snāyabika Relating to the nerves; nervine; nervous.

ସ୍ନାୟବିକ ଦୁର୍ବଳତା (ଦୌର୍ବଲ୍ୟ)—ସ.ବି (ଆଧୁନିକ)—ସ୍ନାୟୁର ଦୋଷଜନିତ
Snāyabika durbalatā [daurbalya] ସ୍ନାୟୁକବଳତା—
Nervous debility.

ସ୍ନାୟବୀୟ—ସଂ. ବିଣ (ସ୍ନାୟୁ+ଈୟ)—ସ୍ନାୟୁ ସମ୍ବନ୍ଧୀୟ—Nervine.
Snāyabiya ସଂ· ବି—କର୍ମେନ୍ଦ୍ରିୟ(ହ୍ରି. ଶ)—The organs of action.

ସ୍ନାୟୀ—ସ. ବିଣ· ପୁଂ (ସ୍ନା. ଧାତୁ+କର୍ତ୍ତୃ ଇନ୍; ୧ମା. ୧ବ)—
Snāyi ସ୍ନାନକର୍ତ୍ତା—One who takes a bath.
(ସ୍ନାୟିନୀ—ସ୍ତ୍ରୀ)

ସ୍ନାୟୁ—ସ. ବି (ସ୍ନା· ଧାତୁ+କର୍ତ୍ତୃ· ଉ)—୧ । (ଶରୀର ବନ୍ଧନ) ସର୍ବ-
Snāyu ଦେହବ୍ୟାପୀ ସୂକ୍ଷ୍ମବର୍ତ୍ତି ଅସ୍ଥିବନ୍ଧନୀ ନାଡ଼ୀଗଣ—

1. Ligaments of the body. ୨ । ପେଶୀବନ୍ଧନୀ ନାଡ଼ୀ--2. Tendons. ୩ । ବାୟୁବାହକ ନାଡ଼ୀ; ସୂକ୍ଷ୍ମ ଶିରା—3. Nerves. [ ଦ୍ର—ମେଦର ସ୍ନେହଭାଗକୁ ଗ୍ରହଣ କରି ଶିରାମାନେ ସ୍ନାୟୁରୂପରେ ପରିଣତ ହୁଅନ୍ତି । ଦେହର ଅସ୍ଥି, ମେଦ, ମାଂସ ଓ ସନ୍ଧିମାନଙ୍କୁ ସ୍ନାୟୁଗଣ ବନ୍ଧନ କରି ସ୍ୱ ସ୍ୱ ସ୍ଥାନରେ ରଖନ୍ତି ଏବଂ ଏଥିଯୋଗୁଁ ମନୁଷ୍ୟ ଭାର ବହିବାକୁ, ଅଙ୍ଗଚାଳନ କରିବାକୁ ଓ ପରିଶ୍ରମ କରିବାକୁ ସମର୍ଥ ହୁଏ । ସ୍ନାୟୁଗଣ ବିକଳ୍ପ ପରି ସ୍ଥିତିସ୍ଥାପକ ଓ ସେଗୁଡ଼ିକ ଦୁର୍ବଳ ବା ଢ଼ିଲା ହେଲେ ମନୁଷ୍ୟ କର୍ମ କରିବାକୁ ଅସମର୍ଥ ହୁଏ । ସ୍ନାୟୁ ଉପରେ ଜୋର୍ ପଡ଼ିଲେ 'ଭକା' ପଡ଼େ ବା ସବନ ଅଟକ ଯାଏ । ସ୍ନାୟୁମାନଙ୍କ ଦ୍ୱାରା ବାହ୍ୟ ବସ୍ତୁର ସ୍ପର୍ଶ ଅନୁଭୂତ ହୋଇ ଶରୀରର ବିଭିନ୍ନ ସ୍ଥାନରୁ ମସ୍ତିଷ୍କକୁ ବାହିତ ହୁଏ ଏବଂ ପୁଣି ସ୍ନାୟୁମାନଙ୍କଦ୍ୱାରା ମସ୍ତିଷ୍କରୁ ବହିର୍ଗତ ଆଦେଶ ଅଙ୍ଗମାନଙ୍କୁ ବାହିତ ହୁଏ । ସ୍ନାୟୁର ବର୍ଣ୍ଣ ଧଳା; ଏହା ଚିକ୍କଣ, ଟାଣୁଆ ଓ ଛଣପଟଗୁଚ୍ଛ ପରି; ସ୍ନାୟୁମାନ ଶରୀରସ୍ଥ ମାଂସପେଶୀମାନଙ୍କ ମଧ୍ୟରେ ବ୍ୟାପ୍ତ ହୋଇଥାଏ । ବୈଦ୍ୟଶାସ୍ତ୍ରରେ କଥିତ ହୋଇଅଛି ଯେ, ଦେହରୁ ଘର୍ମ ବାହାରିବା ବା ଓ ଶ୍ଳେଷ୍ମଦ୍ୱାରା ଲେପ ଓ ତୈଳ ଆଦି ଶରୀର ମଧ୍ୟକୁ ପ୍ରବେଶ କରିବା ଆଦି କର୍ମ ସ୍ନାୟୁମାନଙ୍କ ଦ୍ୱାରା ଘଟେ (ହି. ଶ) । ମାନବ ଦେହରେ ସର୍ବସୁଦ୍ଧା ୯୦୦ଟି ସ୍ନାୟୁ ଅଛି । ଏଥି ମଧ୍ୟରୁ ମସ୍ତକରେ ୭୦ଟି, ହସ୍ତପଦରେ ୬୦୦, କୋଷ୍ଠରେ ବା ଗ୍ରୀବାଠାରୁ କଟି ପର୍ଯ୍ୟନ୍ତ ୨୩୦ଟି ସ୍ନାୟୁ ଅଛି ।

ସ୍ନାୟୁ ମଣ୍ଡଳ—ସଂ. ବି (ଶରୀର ବନ୍ଧନ) – ସର୍ବ ଶରୀରରେ ପରିବ୍ୟାପ୍ତ ଓ
Snāyu mandala ଓ ପରସ୍ପରସମ୍ବଦ୍ଧ ସ୍ନାୟୁସମୂହ—
The nervous system.

ସ୍ନାୟୁର୍ମ—ସଂ. ବି (ସ୍ନାୟୁ+ଅର୍ମନ୍; ୯ମା. ୯ବ)—ନେତ୍ରରୋଗ ବିଶେଷ
Snāyurma (ମାଧବକର ନିଦାନ)—A sort of eye-disease. [ଦ୍ର—ଏ ରୋଗରେ ଆଖିର ଧଳାଅଂଶ ଉପରେ ଗୋଟିଏ ଗ୍ରନ୍ଥି ବାହାରି ପଡ଼େ; ଏ ରୋଗ ୩ ପ୍ରକାର :— ଅର୍ଦ୍ଧଭେଦ, ଊର୍ଦ୍ଧ୍ୱଭେଦ ଓ ଅଧୋଭେଦ—ହି. ଶ ।]

ସ୍ନାହାନ—ଗ୍ରା. ବି (ସଂ. ସ୍ନାନ)—ଗାଧୁଆ; ସ୍ନାନ—
Snāhāna Bath.
ଦାନ (ଉ—ସ୍ନାହାନ ସମୁଦ୍ରେ ସାରିଲେ । ଯଶୋବନ୍ତ. ପ୍ରେମଭକ୍ତି
ଅସ୍ନାନ ବ୍ରହ୍ମଗୀତା ।)

ସ୍ନିଗ୍ଧ—ସଂ. ବିଣ. ପୁଂ ( ସ୍ନିହ୍ ଧାତୁ=ସ୍ନେହ କରିବା, ଚିକ୍କଣ କରିବା,
Snigdha ତୈଳାକ୍ତ କରିବା+କର୍ମ. ତ )—୧ । ଅରୁକ୍ଷ;
( ସ୍ନିଗ୍ଧା—ସ୍ତ୍ରୀ ) ସ୍ନେହଯୁକ୍ତ; ତେଲିଆ ( ଅମର )—1. Oily;
(ସ୍ନିଗ୍ଧତା[ତ୍ୱ]—ବି) oiled; greasy. ୨ । ଚକଚକିଆ—
2. Glossy; shining. ୩ । ଚିକ୍କଣ; ମସୃଣ
( ଶବ୍ଦରତ୍ନାବଳୀ )—3. Smooth. ୪ । ପ୍ରିୟ; ସ୍ନେହପାତ୍ର; ସ୍ନେହର ଆଧାର—4. Beloved; dear; object of affection; affectionate. ୫ । ସ୍ନେହଯୁକ୍ତ; ବତ୍ସଳ; ସ୍ନେହୀ—5. Loving; fond. ୬ । ସୁଶ୍ରାବ୍ୟ; ଶ୍ରୁତିମଧୁର—6. Sweet to the ear; agreeable to hear. ୭ । ସୁଖକର ଓ ଶୀତଳ—7. Cool and pleasing. ୮ । ନିବିଡ଼—8. Thick. ୯ । କୋମଳ—9. Soft. ୧୦ । ଶୀତଳତାକାରକ—10. Cooling. ୧୧ । ରମ୍ୟ; ରମଣୀୟ—11. Pleasing. ସଂ. ବି—୧ । ସିକ୍ଥକ; ମହଣ (ରାଜନିର୍ଘଣ୍ଟ)—1. Wax. ୨ । ବୟସ୍ୟ (ଅମର)—2. Companion. ୩ । ରକ୍ତୈରଣ୍ଡ (ରାଜନିର୍ଘଣ୍ଟ)—3. The red variety of castor oil seed plant. ୪ । ସରଳ ବୃକ୍ଷ,(ରାଜନିର୍ଘଣ୍ଟ)—4. Pine tree. ୫ । ଦୁଧସର (ହି. ଶ)—5. Cream of milk. ୬ । ଗନ୍ଧବିରଜା (ହି. ଶ) [ଦେଖ]—6. Gandha bi ijā [See]

ସ୍ନିଗ୍ଧ କାନ୍ତି—ସଂ. ବି ( କର୍ମଧା )—ରମଣୀୟ ଲାବଣ୍ୟ—
Snigdha kānti Charming beauty or grace.
ସଂ. ବିଣ ( ବହୁବ୍ରୀହି )—ରମଣୀୟ କାନ୍ତିଯୁକ୍ତ—
Graceful.

ସ୍ନିଗ୍ଧ ଗମ୍ଭୀର - ସଂ. ବିଣ. ପୁଂ—ରମଣୀୟ ଅଥଚ ଗମ୍ଭୀର—
Snigdha gambhira Grave yet graceful.
(ସ୍ନିଗ୍ଧଗମ୍ଭୀରା—ସ୍ତ୍ରୀ)

ସ୍ନିଗ୍ଧ ଗାମ୍ଭୀର୍ଯ୍ୟ—ସଂ. ବି (କର୍ମଧା) – ମନୋରମ ଗମ୍ଭୀରଭାବ—
Snigdha gāmbhirjya Graceful gravity.

ସ୍ନିଗ୍ଧଚ୍ଛଦ—ସଂ ବି (ବହୁବ୍ରୀହି; ସ୍ନିଗ୍ଧ+ଛଦ)--ବରଗଛ (ହି, ଶ.)—
Snigdhachchhada Banian tree.
ସଂ. ବିଣ—ମସୃଣପତ୍ରବିଶିଷ୍ଟ—Having smooth leaves.

ସ୍ନିଗ୍ଧଚ୍ଛଦା—ସଂ. ବିଣ. ସ୍ତ୍ରୀ—ସ୍ନିଗ୍ଧଚ୍ଛଦର ସ୍ତ୍ରୀଲିଙ୍ଗ—Feminine of
Snigdhachchhadā Snigdhachchhada. ସଂ. ବି—
ବରକୋଳି ଗଛ—Jujube tree.

ସ୍ନିଗ୍ଧ ଜୀରକ—ସଂ. ବି—ଇସବଗୋଲ (ହି ଶ. ଦେଖ)
Snigdha jiraka Isabagol (See)

ସ୍ନିଗ୍ଧ ତଣ୍ଡୁଳ—ସଂ. ବି—ଷଷ୍ଟିଶାଳି ( ରାଜନିର୍ଘଣ୍ଟ ); ଲଘୁ ଧାନ;
Snigdha tandula ସାଠିକା ଧାନ—A light
variety of winter-paddy.

ସ୍ନିଗ୍ଧତା(ତ୍ୱ)—ସଂ. ବି (ସ୍ନିଗ୍ଧ+ଭାବାର୍ଥେ ତା, ତ୍ୱ)—୧ । ସ୍ନିଗ୍ଧଭାବ-
Snigdhatā (twa) 1. Oiliness; smoothness; coolness; softness. ୨ । ସ୍ନେହ (ରାଜନିର୍ଘଣ୍ଟ)-
2. Affection; ୩ । ତେଲ (ରାଜନିର୍ଘଣ୍ଟ)—
3. Oil.

ସ୍ନିଗ୍ଧ ଦାରୁ—ସଂ. ବି (ବହୁବ୍ରୀହି)—୧ । ସରଳ ବୃକ୍ଷ; ଦେବଦାରୁ
Snigdha dāru (ଜଟାଧର, ରାଜନିର୍ଘଣ୍ଟ)—1. The
pine tree. ୨ । ଶାଳ ଗଛ (ହି. ଶ)—2. Shorea
Robusta tree.

ସ୍ନିଗ୍ଧ ଦୃଷ୍ଟି—ସଂ. ବି ( କର୍ମଧା ।)—୧ । ମଧୁର ଦୃଷ୍ଟି—
Snigdha drushti 1. Sweet look; loving glance.
୨ । କୋମଳ ଦୃଷ୍ଟି—2. Fond or soft look. ସଂ.
ବିଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି)—କୋମଳ ଦୃଷ୍ଟିଯୁକ୍ତ—
Sweetlooking.

ସ୍ନିଗ୍ଧ ନିର୍ମଳ—ସ. ବିଣ—ଚିକ୍କଣ ଓ ସଫା—
Snigdha nirmala Smooth and clear.
ସ. ବି—କଂସା ଧାତୁ (ହି. ଶ)—Bell metal.

ସ୍ନିଗ୍ଧ ପତ୍ରକ—ସଂ. ବି—୧ । ଗଜର ତୃଣ (ରାଜନିର୍ଘଣ୍ଟ)—1. A
Snigdha patraka kind of grass. ୨। ଗୁଚ୍ଛ କରଞ୍ଜ; ଘୃତ
କରଞ୍ଜ (ରାଜନିର୍ଘଣ୍ଟ)—2. A species of Karañja.
୩ । ଅବର୍ତ୍ତିକା ଲତା (ହି. ଶ)—3. A kind of wild
creeper.

ସ୍ନିଗ୍ଧପତ୍ରା—ସଂ. ବି—୧ । ବଦରୀ (ଜଟାଧର)—1. The Jujube
Snigdhapatrā tree. ୨ । ପାଲଙ୍କ (ରାଜନିର୍ଘଣ୍ଟ), ପାଲଙ୍ଗ
ଶାଗ—2. Spinage. ୩ । କାଶ୍ମରୀ (ରାଜନିର୍ଘଣ୍ଟ);
ଗମ୍ଭାରୀ—3. A tree; Gmelina Arborea.

ସ୍ନିଗ୍ଧ ପିଣ୍ଡୀତକ—ସ. ବି—ମଦନ ବୃକ୍ଷ ବିଶେଷ (ରାଜନିର୍ଘଣ୍ଟ)—
Snigdha pinditaka A species of Madana tree.

ସ୍ନିଗ୍ଧଫଳା—ସଂ. ବି—ନାକୁଲୀ (ରାଜନିର୍ଘଣ୍ଟ); ରାସ୍ନା—
Snigdhaphalā Vanda Roxburghi.

ସ୍ନିଗ୍ଧ ବୀଜ—ସଂ. ବି (ବହୁବ୍ରୀହି)—୧ । ଇସବଗୋଲ (ଦ୍ର. ଶ)
Snigdha bija 1. Isabagol (See)
୨ । ଚିକ୍କଣ ମଞ୍ଜି—2. Smooth seed.

ସ୍ନିଗ୍ଧ ମଜ୍ଜକ—ସ. ବି—ବାଦାମ୍ (ହି. ଶ)
Snigdha majjaka Almond.

ସ୍ନିଗ୍ଧା—ସଂ. ବିଣ, ସ୍ତ୍ରୀ—'ସ୍ନିଗ୍ଧ'ର ସ୍ତ୍ରୀଲିଙ୍ଗ—Feminine of
Snigdhā 'Snigdha'. ସଂ. ବି—୧। ମେଦା [ରାଜନିର୍ଘଣ୍ଟ]—
1. A rare root-bulb used in medicine.
୨ । ମଜ୍ଜା; ଅସ୍ଥିସାର [ହି. ଶ]—2. Bone marrow.
୩ । ବିକଂକତ; ଲଭିଷ [ହି. ଶ]
3. Flacourtia Ramontchi [plant].

ସ୍ନିଟ୍ [ଧାତୁ]—ସଂ. ବି—ସ୍ନେହ କରିବା—
Snit [root] To love.

ସ୍ନିହ୍ (ଧାତୁ)—ସ. ବି—୧ । ସ୍ନେହ କରିବା—1. To love. ୨ ।
Snih (root) ତେଲିଆ କରିବା—2. To oil. ୩ । ମସୃଣ
କରିବା—3. To polish; to smooth.

ସ୍ନୁ (ଧାତୁ)—ସ—ସରିତ ହେବା—
Snu (root) To ooze.

ସ୍ନୁ—ସ. ବି—୧ । ସାନୁ; ପର୍ବତୋପରିସ୍ଥ ସମଭୂଭାଗ ( ଅମର )—
Snu 1. Table land. ୨। ସ୍ନାୟୁ (ଭାଗବତ)—2. Nerve.

ସ୍ନୁକ୍—ସ. ବି (ସ୍ନୁହ୍ ଧାତୁ=ବମନ କରିବା+କରଣ. କ୍ୱିପ୍)—ସ୍ନୁହୀ
Snuk ବୃକ୍ଷ (ଅମର); ସିଜୁ ଗଛ—Euphorbia tree.
(ସ୍ନୁଗ୍‌ଦକ—ଅନ୍ୟରୂପ) [ଦ୍ର—ଏହି ବୃକ୍ଷର ଷୀର ବମନର ଔଷଧ
ରୂପେ ବ୍ୟବହୃତ ହୁଏ ।

ସ୍ନୁକ୍‌ଛଦ—ସ. ବି—ଷୀର କଣ୍ଟକୀ ବୃକ୍ଷ (ଶବ୍ଦମାଳା); ଷୀର ବୃକ୍ଷ—
Snuk-chhada A tree with leaves like the
Euphorbia tree.

ସ୍ନୁତ—ସ. ବିଣ ( ସ୍ନୁ ଧାତୁ+କର୍ତ୍ତୃ. ତ )—୧ । ଗଳିତ; ଷରିତ
Snuta (ଜଲାଦି)—1. Oozing. ୨ । ପତିତ—
(ସ୍ରୁତ—ବି) 2. Fallen.

ସ୍ନୁଷା—ସ. ବି. ସ୍ତ୍ରୀ (ସ୍ନୁ ଧାତୁ+କର୍ତ୍ତୃ. ସ+ସ୍ତ୍ରୀ. ଆ)—୧ । ପୁତ୍ରବଧୂ
Snushā (ଅମର)—1. Daughter-in-law. ୨ । ସ୍ନୁହୀ
ବୃକ୍ଷ; ସିଜୁ ଗଛ (ଶବ୍ଦଚନ୍ଦ୍ରିକା)—2. The Euphorbia tree.

ସ୍ନୁହ୍ ( ଧାତୁ )—ସଂ—ବମନ କରିବା—
Snuh (root) To vomit.

ସ୍ନୁହା(ହି, ହୀ)—ସଂ. ବି (ସ୍ନୁ ଧାତୁ=ଷରିତ ହେବା+କର୍ତ୍ତୃ. ହ+ଅ,
Snuhā(hi, hī) ଇ, ଈ)—ସିଜୁ (ଦେଖ)—Sijhu (See)

ସ୍ନେୟ—ସଂ. ବିଣ (ସ୍ନା ଧାତୁ+କର୍ତ୍ତୃ. ଯ)—୧ । ସ୍ନାନ କରିବା ଯୋଗ୍ୟ
Sneya —1. Fit to take a bath. ୨ । ଯେ ସ୍ନାନ
କରିବାକୁ ଯାଉଅଛି—2. About to bathe.

ସ୍ନେହ—ସଂ. ବି (ସ୍ନିହ୍ ଧାତୁ+ଭାବ. ଅ)—୧ । ପ୍ରେମ ( ଅମର )—
Sneha 1. Love. ୨ । ବାତ୍ସଲ୍ୟ; ନିଜ ଅପେକ୍ଷା କମ୍ବରର
ବ୍ୟକ୍ତି (ଯଥା—ପୁତ୍ର, କନ୍ୟା, ଶିଷ୍ୟ, କନିଷ୍ଠ ଇତ୍ୟାଦି)
प्यार, पियार ଙ୍କ ପ୍ରତି ଗୁରୁଜନଙ୍କର ପ୍ରେମ—2. Affection
(towards one's youngers). [ଦ୍ର—'ସ୍ନେହ'
ସାଧାରଣତଃ ପ୍ରେମ ବା ପ୍ରୀତି (ଅର୍ଥାତ୍ ଏକ ବ୍ୟକ୍ତି ପ୍ରତି
ଅନ୍ୟର ମନର ପ୍ରସନ୍ନତା)କୁ ବୁଝାଏ । କିନ୍ତୁ ଏହି ଶବ୍ଦ
ବିଶିଷ୍ଟ ଭାବରେ ପିତା, ମାତା ଓ ଗୁରୁସ୍ଥାନୀୟ ବ୍ୟକ୍ତିଙ୍କର
ପୁତ୍ର, କନ୍ୟା ଓ ଶିଷ୍ୟାଦିଙ୍କ ପ୍ରତି ବାତ୍ସଲ୍ୟ ବା ମନର
ପ୍ରସନ୍ନତାକୁ ବୁଝାଏ । ] ୩ । ତୈଳ, ଘୃତ, ଚର୍ବି ଆଦି
(ସ୍ନିଗ୍ଧ—ବିଣ) ଚିକ୍କଣ ପଦାର୍ଥ; ତୈଳାଦି ରସଭେଦ (ମେଦିନୀ)—
ଏହାର ଅପଭ୍ରଂଶ— 3 Oil, ghee, grease, etc; any
ସିନେହ, ସିନେହ oily thing. [ଦ୍ର—(୧ ଓ ୩ ଅର୍ଥ) ବାଂଲା
ସେନେହ, ସିନଅ ପିଧାନରେ ପୁତ୍ର ଦ୍ରବ୍ୟ କନ୍ୟା ପତ୍ର, ବିଶେଷତ
,ଦିଯ୍ୱିତ ଜହିଁରେ ସ୍ନେହ ଭର୍ । ଇଞ୍ଜ. ବେଦେସ୍ଥାଶବିଳାସ ।]
୪ । ଚିକ୍କଣତା—4. Oiliness; smoothness. ୫ ।
(ନ୍ୟାୟ ଦର୍ଶନ) ଗୁଣ ବିଶେଷ; ଜଳୀୟ ପରମାଣୁରେ
ସର୍ବଦା ଉପସ୍ଥିତ ଗୁଣ—5. (Logic) Name of a
quality or attribute in water-atoms. ୬
କୋମଳତା (ହି. ଶ)—6. Softness. ୭ । ହନୁମାନଙ୍କ
ମତରେ ହିନ୍ଦୋଳରାଗର ପୁତ୍ର ରାଗ ବିଶେଷ (ହି. ଶ)—
7. Name of a secondary musical air.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'ମୃନ୍ମ' ନ ମିଳିଲେ 'ମୃତ' ଖୋଜିବେ, 'ବଧୂ' ନ ମିଳିଲେ 'ବନ୍ଧୁ' ଖୋଜିବେ । 'ଅଗଁ୍ୟା' ନ ପାଇଲେ 'ଅଙ୍ଗ୍ୟା' ଦେଖିବେ 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

୮ । ସୋରିଷ (ହି. ଶ)—8. Mustard. ୯ । ଦୁଧ ସର (ହି. ଶ)—9. Cream of milk. ଦେ. ବି— ୧ । କୌଣସି ଦ୍ରବ୍ୟ ପ୍ରତି ଅଦର—1. Liking for any thing. ୨। ଅଗ୍ରହ—2. Hankering; eagerness. [ଦୃ—ଶୁଣିବାକୁ ତାହା ମୋହର ବଳ ବଢ଼ ସ୍ନେହ। କୃଷ୍ଣସିଂହ, ମହାଭାରତ, ଅଦ।]

ସ୍ନେହ Snehaਸਨੇਹ स्नेह

**ସ୍ନେହ କରିବା**—ଦେ. କ୍ରି—୧ । ସ୍ନେହ ପାଇବା—1. To love. ୨ । ବାତ୍ସଲ୍ୟ ଦେଖାଇବା—2. To have affection for.
Sneha karibā
ସ୍ନେହ କରା पियार रखना, प्यार करना

**ସ୍ନେହ କ୍ରୀତ**—ସଂ. ବଣ. ପୁଂ (ସ୍ନେହ ଦ୍ଵାରା କ୍ରୀତ)—(ଲକ୍ଷଣାର୍ଥ)—ସ୍ନେହ ଦ୍ଵାରା କଣା ହେବା ପରି ବଶୀଭୂତ—(figurative) Purchased or over-powered with affection shown by another.
Sneha krita

**ସ୍ନେହ ଗର୍ଭ**—ସଂ. ବଣ (ବହୁବ୍ରୀହି; ସ୍ନେହ ଅଛି ଗର୍ଭରେ ବା ଅନ୍ତରରେ ଯାହାର)—ସ୍ନେହ ପୂର୍ଣ୍ଣ; ସ୍ନେହ ଜଡ଼ିତ—(ସ୍ନେହ ଗର୍ଭିକ—ଅନ୍ୟରୂପ) Full of affection; affectionate. [ଯଥା—ସ୍ନେହଗର୍ଭ ବାକ୍ୟ; ସ୍ନେହଗର୍ଭିକ ବ୍ୟବହାର।] ସଂ. ବି—ତିଳ (ହି. ଶ)—Sessamum.
Sneha garbha

**ସ୍ନେହ ତୁଟ**—ଦେ. ବଣ—୧ । ଯେଉଁ ମନରୁ କୌଣସି ବ୍ୟକ୍ତି ପ୍ରତି ପୂର୍ବର ସ୍ନେହ ତୁଟି ଯାଇଅଛି—1. (a mind) Which has lost its former attachment to a person. [ଦୃ—ଠାଣି ପଛେ ପଦେ କହିଲୁ, ତାହିଁର ମନ ଜଳୁ ସ୍ନେହତୁଟ ?—ଜଗବନ୍ଧୁ, ସଙ୍ଗୀତ।] ୨ । ଯେଉଁ ମନରୁ ସ୍ନେହ ଊଣା ହୋଇଅଛି—2. (a mind) Which has lessened its former love or attachment. ଦେ. ବି—୧ । ପୂର୍ବ ସ୍ନେହର ଊଣା ହେବା—1. The abatement of one's former attachment or love. ୨। ସ୍ନେହ ବନ୍ଧନର ଛେଦ—2. Loss of former love or attachment.
Sneha tuta
ସ୍ନେହ ଛାଡ଼ା स्नेह टूट

**ସ୍ନେହ ଦୋସ୍ତି**—ଦେ. ବି (ସହଚର)—ସ୍ନେହାଧିକ୍ୟଜନିତ ହୃଦୟର ଘନିଷ୍ଠ ବନ୍ଧୁତ୍ଵ—Bosom friendship; intimate friendship.
Sneha dosti
প্রগাঢ় বন্ধুত্ব पक्की दोस्ती

**ସ୍ନେହନ**—ସଂ. ବି (ସ୍ନିହ୍ ଧାତୁ+ଭାବ. ଅନ)—୧ । ସ୍ନେହ କରିବା—1. Loving; entertaining affection for. ୨ । ତୈଳ ମର୍ଦ୍ଦନ; ତେଲ ମାଖିବା ବା ଲଗାଇବା; ତୈଳ ମ୍ରକ୍ଷଣ; ଅଭ୍ୟଞ୍ଜନ; ଅଭ୍ୟଙ୍ଗ—2. Besmearing with oil; oiling; anointing with oil. ୩ । ଚିକ୍କଣତା ଉତ୍ପାଦନ (ହି. ଶ) 3. Producing smoothness. ୪ । କଫ; ଶ୍ଳେଷ (ହି. ଶ)—4. Phlegm. ୫ । ନବନୀତ (ହି. ଶ)—5. Butter.
Snehana

**ସ୍ନେହ ପତ୍ର**—ସଂ. ବି (ମ. ପ. ଲୋ; ସ୍ନେହସୂଚକ ପତ୍ର)—ସ୍ନେହପୂର୍ଣ୍ଣ ପତ୍ର; ସ୍ନେହମୟ ଚିଠି—Affectionate letter.
Sneha patra

**ସ୍ନେହ ପଦାର୍ଥ**—ସ. ବି (ମ. ପ. ଲୋ)—ତୈଳାଦ ବସ୍ତୁ—Oily substance.
Sneha padārtha

**ସ୍ନେହପରାୟଣ**—ସଂ. ବଣ. ପୁଂ (ବହୁବ୍ରୀହି)—ସ୍ନେହଶୀଳ (ଦେଖ) Sneha sila (See)
Sneha parāyana
[ସ୍ନେହପରାୟଣା—ସ୍ତ୍ରୀ] [ସ୍ନେହ ପରାୟଣତା—ବି]

**ସ୍ନେହ ପରିପ୍ଲୁତ**—ସଂ. ବଣ. ପୁଂ (ତୃତୀୟା ତତ୍)—ସ୍ନେହଦ୍ଵାରା ବ୍ୟାପ୍ତ; ସ୍ନେହଦ୍ଵାରା ପୂର୍ଣ୍ଣ—Filled with affection
Sneha paripluta
[ସ୍ନେହ ପରିପ୍ଲୁତା—ସ୍ତ୍ରୀ]

**ସ୍ନେହ ପାତ୍ର**—ସଂ. ବି (ଷଷ୍ଠୀ ତତ୍)—ସ୍ନେହଭାଜନ ବ୍ୟକ୍ତି; ଯାହାକୁ ସ୍ନେହ କରାଯାଏ—Object of affection.
Sneha pātra

**ସ୍ନେହ ପାନ**—ସଂ. ବି (ଷଷ୍ଠୀ ତତ୍)—ରୋଗନିବାରଣାର୍ଥ ତୈଳ, ଘୃତ, ଚର୍ବି ଆଦିର ପାନ—Drinking of oil etc to allay some disease. [ଦୃ—ଏତଦ୍ଦ୍ଵାରା ଅଗ୍ନିଦୀପ୍ତ ହୁଏ, କୋଷ୍ଠ ଶୁଦ୍ଧି ହୁଏ । ସ୍ନେହ ୪ ପ୍ରକାର—ତୈଳ, ଘୃତ, ବସା ଓ ମଜ୍ଜା । ଖାଲି ତୈଳର ପାନକୁ ସ୍ନେହପାନ, ତେଲ ଓ ଘିଅ ମିଶ୍ରିତ ପାନକୁ ଯାମଳ ସ୍ନେହପାନ, ତେଲ, ଘିଅ ଓ ବସା ମିଶ୍ରିତ ପାନକୁ ତ୍ରିବୃତ୍ ସ୍ନେହପାନ ଓ ଓ ତେଲ, ଘିଅ, ବସା ଓ ମଜ୍ଜା ମିଶ୍ରିତ ପାନକୁ ମହାସ୍ନେହପାନ କୋଲଯାଏ (ହି. ଶ)]
Snehapāna

**ସ୍ନେହ ପାଳିତ**—ସ. ବଣ. ପୁଂ (ତୃତୀୟା ତତ୍)—ବାତ୍ସଲ୍ୟ ହେତୁରେ ପାଳିତ—Brought up with affection (ସ୍ନେହପାଳିତା—ସ୍ତ୍ରୀ)
Sneha pālita

**ସ୍ନେହ ପିଣ୍ଡିତକ**—ସଂ. ବି—ମଦନଫଳ—Madanaphala (See)
Sneha pinditaka

**ସ୍ନେହ ପିତା**—ସ. ବି (ଦେଶଜ ବ୍ୟବହାର)—କୌଣସି ବ୍ୟକ୍ତିକୁ ପୁତ୍ର ବତ୍ ସ୍ନେହରେ ପାଳନ କରିବା ବ୍ୟକ୍ତି—A person who brings up another as affectionately as a father would do.
Sneha pitā

**ସ୍ନେହ ପିତୁଳା (ଳି)**—ଦେ. ବି (ସ. ସ୍ନେହ ପୁତ୍ତଳି)—ସ୍ନେହ ପୁତ୍ତଳି (ଦେଖ)—Snehaputtali (See)
Sneha pitula(li)
স্নেহপতলি स्नेहभाजन

**ସ୍ନେହ ପୁତ୍ତଳି**—ସଂ. ବି—ଅତିଶୟ ସ୍ନେହର ପାତ୍ର—One's cherished idol of affection.
Sneha puttali
(ସ୍ନେହ ପୁତ୍ତଳିକା—ଅନ୍ୟରୂପ)

| ' | ଇ | ଉ | ର,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇୟ | ଉଅ | ହ୍ମ |
|---|---|---|---|---|---|---|---|---|---|---|---|---|---|---|
| )୨ | ଈ | ଊ | ଋ | ଲ | ସ୍ୱେ | ଅକାରାନ୍ତ ବର୍ଣ୍ଣ ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ଶ | ଙ୍ଗ | ଇଅ | ଞ | ହ୍ନ |

ସ୍ନେହ ପୁତ୍ର(ତ୍ରୁ)—ସଂ. ବ (ଦେଶଜ ବ୍ୟବହାର)—ପୁତ୍ରରେ ସ୍ନେହପାଳିତ
Sneha putra (ttra) ବାଳକ; ସେ ଜନ୍ମଜାତ ପୁତ୍ର ନୁହେ, କିନ୍ତୁ ପୁତ୍ର ପରି ସ୍ନେହରେ ପାଳିତ ହୋଇଥାଏ—A person who is brought up by a person as his own son.

ସ୍ନେହ ପୂର (ଫଳ)—ସଂ. ବ—ତିଳ
Sneha pūra (phala) Sessamum

ସ୍ନେହ ପ୍ରଣୋଦିତ—ସଂ. ବଣ. ପୁଂ (୩ୟା ତତ୍)—ସ୍ନେହଦ୍ୱାରା ପ୍ରେରିତ
Sneha pranodita ବା ଉଦ୍ଦିତ—Prompted by affection
(ସ୍ନେହପ୍ରଣୋଦିତା—ସ୍ତ୍ରୀ)

ସ୍ନେହ ପ୍ରଫୁଲ୍ଲ—ସଂ. ବଣ. ପୁଂ (୭ମୀ ତତ୍)—ବାତ୍ସଲ୍ୟଯୋଗ୍ୟ ହର୍ଷୋତ୍ଫୁଲ୍ଲ
Sneha praphulla Delighted with affection.
(ସ୍ନେହପ୍ରଫୁଲ୍ଲା—ସ୍ତ୍ରୀ) (ସ୍ନେହପ୍ରଫୁଲ୍ଲତା—ସ୍ତ୍ରୀ)

ସ୍ନେହ ପ୍ରବଣ—ସଂ. ବଣ. ପୁଂ—(୭ମୀ ତତ୍)—ସ୍ନେହାର୍ଦ୍ର; ସ୍ନେହାସକ୍ତ;
Sneha prabana ଅତ୍ୟନ୍ତ ସ୍ନେହଶୀଳ—Very affectionate.
(ସ୍ନେହପ୍ରବଣା—ସ୍ତ୍ରୀ) (ସ୍ନେହପ୍ରବଣତା—ବ)

ସ୍ନେହପ୍ରବଳା—ଦେ. ବଣ. ସ୍ତ୍ରୀ (ସଂ. ସ୍ନେହପ୍ରବଣା)—ସ୍ନେହମୟୀ—
Snehaprabalā Affectionate. [ଉ—କଳାବତୀସୁତା ସ୍ନେହପ୍ରବଳା—ଉପେ. ବୈଦେହୀଶବିଳାସ]

ସ୍ନେହ ପ୍ରିୟ—ସଂ. ବ (ବହୁବ୍ରୀହି, ସ୍ନେହ=ଘିଅ ବା ତେଲ ଅଟେ ପ୍ରିୟ
Sneha priya ଯାହାର )—ପ୍ରଦୀପ [ ହେମଚନ୍ଦ୍ର ]—Oil lamp. ସଂ. ବଣ—୧ । ତେଲ ପ୍ରିୟ—1. Fond of oil. ୨ । ଅତ୍ୟନ୍ତ ସ୍ନେହୀ—
2. Very fond or affectionate.

ସ୍ନେହବତୀ—ସଂ. ବ—ମେଦା [ ରାଜନିର୍ଘଣ୍ଟ ]—A rare herbari-
Snehabati ous root. ସଂ. ବଣ. ସ୍ତ୍ରୀ—ସ୍ନେହମୟୀ—
[ସ୍ନେହବାନ୍—ପୁଂ] Loving (female)

ସ୍ନେହ ବନ୍ଧ—ସଂ. ବ. (୬ଷ୍ଠୀ ତତ୍ ବା ରୂପକ କର୍ମଧାରୟ )—ସ୍ନେହ
Sneha bandha ଜନିତ ମମତା; ବନ୍ଧନରୂପ ସ୍ନେହ—
[ସ୍ନେହ ବନ୍ଧନ—ଅନ୍ୟରୂପ] Ties of affection.

ସ୍ନେହ ବନ୍ଧୁ—ସଂ. ବ (ଦେଶଜ ବ୍ୟବହାର)—ରକ୍ତ ବା ବିବାହସମ୍ପର୍କୀୟ
Sneha bandhu ବନ୍ଧୁ ନ ହୋଇ ସ୍ନେହବନ୍ଧନ ଦ୍ୱାରା ହୋଇଥିବା ବନ୍ଧୁ; ପ୍ରୀତି ବନ୍ଧୁ—
A friend of love ( not by relationship )

ସ୍ନେହ ବନ୍ଧୁତା—ସଂ. ବ ( ଦେଶଜ ବ୍ୟବହାର )—ସ୍ନେହଦ୍ୱାରା ସୃଷ୍ଟ
Sneha bandhutā ବନ୍ଧୁତା—
Frendship established by affection.

ସ୍ନେହ ବଳିବା—ଦେ. ବ—ଅତ୍ୟଧିକ ସ୍ନେହ ହେବା—Excess or
Sneha balibā eagerness of attachment. [ ଉ—
ଆଗ୍ରହ ବାଢ଼ା ଶୁଣିବାକୁ ତାହା ମୋର ବଳିଅଛି ସ୍ନେହ—
ଇଚ୍ଛା ବଢ଼ନା କୃଷ୍ଣସିଂହ, ମହାଭାରତ, ଆଦି । ]

ସ୍ନେହ ବସ୍ତି—ସଂ. ବ—ଅନୁବାସନ ବସ୍ତି; ତେଲଦ୍ୱାରା ଗୁହ୍ୟଦ୍ୱାର ବାଟେ
Sneha basti ଦିଆଯିବା ପିଚକାରୀ [ ଭାବପ୍ରକାଶ ]—
Giving oil douche for medicinal purposes. [ ବ୍ରୁ—ବାୟୁ ପ୍ରକୋପର ଶାନ୍ତି ଓ କୋଷ୍ଠଶୁଦ୍ଧି କରାଇବା ପାଇଁ ଏହା ପ୍ରୟୋଗ କରାଯାଏ—ଚ୍ଛ୍ରଂଶ । ]

ସ୍ନେହବାନ୍—ସଂ. ବଣ. ପୁଂ (ସ୍ନେହ+ଅସ୍ତ୍ୟର୍ଥରେ ବତ୍; ମୋ. ୧ବ)
Snehabān —ସ୍ନେହୀ; ସ୍ନେହମୟ; ସ୍ନେହବିଶିଷ୍ଟ; ଯେ ସ୍ନେହ
(ସ୍ନେହବତୀ—ସ୍ତ୍ରୀ) କରେ—Loving; affectionate.

ସ୍ନେହ ବିଦ୍ଧ—ସଂ. ବ—ଦେବଦାରୁ ( ଜଟାଧର )—
Sneha biddha The pine.

ସ୍ନେହ ବୀଜ—ସଂ. ବ ( ରୂପକ )—୧ । ବୀଜ ସଙ୍ଗେ ତୁଳନା କରାଯିବା
Sneha bija ସ୍ନେହ, କ୍ଷେତ୍ରରେ ବୀଜ ବୁଣାଯିବା ପରି ହୃଦୟରେ ବୁଣାଯିବା ସ୍ନେହ—1. Affection compared to seeds planted in a field. ୨ । ସ୍ନେହର ପ୍ରଥମ ପ୍ରକାଶ—2. Exhibition or dawning or attachment. ୩ । ସ୍ନେହର କାରଣ—3. Object or cause of attachment. ୪। ପିଆଳ ବୃକ୍ଷ (ରାଜନିର୍ଘଣ୍ଟ )—4. Buchanania Latifolia tree.

ସେହ ବୋଳା—ଦେ. ବଣ ( ଲକ୍ଷଣାର୍ଥ )—୧ । ସ୍ନେହାର୍ଦ୍ର; ପ୍ରୀତିପୂର୍ଣ୍ଣ;
Sneha bolā ବାତ୍ସଲ୍ୟମୟ; ସ୍ନେହପୂର୍ଣ୍ଣ—1. Full of affec-
स्नेहमाखा tion; (literally) smeared with affection,
स्नेहपूर्ण overflowing with affection. ୨ । ପ୍ରୀତିମଧୁର—2. Sweetened with affection

ସ୍ନେହଭରେ—ଦେ. କ୍ରି. ବଣ—ଅତ୍ୟନ୍ତ ସ୍ନେହରେ—With much
Snehabhare affection. ଦେ. ବଣ ( ବହୁବଚନ )—
स्नेहभवे ପ୍ରୀତିଭାଜନ; ପ୍ରିୟ (ବନ୍ଧୁ)—Dear; loving; affec-
स्नेहसे tionate (many). [ଉ—ସବୁ ଯେ ବନ୍ଧୁଜନଙ୍କରେ । ( ସ୍ନେହଭର—ଏକବଚନ ) ଶାଳକେ ହେବେ ସ୍ନେହଭରେ—ଜଗନ୍ନାଥ, ଭାଗବତ ।]

ସ୍ନେହ ଭାଜନ—ସଂ. ବଣ. ପୁଂ ଓ ସ୍ତ୍ରୀ ( ୬ଷ୍ଠୀ ତତ୍ )—ସ୍ନେହପାତ୍ର;
Sneha bhājana ଯାହାକୁ ସ୍ନେହ କରାଯାଏ—
Object of affection.

ସ୍ନେହଭୂ—ସଂ. ବ—୧ । ସ୍ନିଗ୍ଧ ଭୂମି—1. Oil-sturated or
Snehabhū oily soil. ୨ । ଶ୍ଲେଷ୍ମା ( ହେମଚନ୍ଦ୍ର )—
2. Phlegm; rheum.

ସ୍ନେହମୟ—ସଂ. ବଣ. ପୁଂ ( ସ୍ନେହ+ପ୍ରଚୁରାର୍ଥେ, ମୟ )—୧ । ବାତ୍ସଲ୍ୟ
Snehamaya ମୟ; ସ୍ନେହପୂର୍ଣ୍ଣ—1. Full of affection.
(ସ୍ନେହମୟୀ—ସ୍ତ୍ରୀ) ୨ । ସ୍ନେହଯୁକ୍ତ—2. Affectionate. ୩ ।
ବତ୍ସଳ; ସ୍ନେହୀ; ସ୍ନେହଶୀଳ—3. Loving; affectionate by nature. ୪ । ତୈଳଯୁକ୍ତ; ତେଲିଆ—4. Oily.

ସ୍ନେହ ରଙ୍ଗ—ସଂ. ବି—ତିଳ ( ଶବ୍ଦରତ୍ନାବଳୀ )—
Sneha ranga Sessamum seed.

ସ୍ନେହ ରସ—ସଂ. ବି—ବାତ୍ସଲ୍ୟରୂପ ରସ—
Sneha rasa The sentiment of affection.

ସ୍ନେହ ଶୀଳ—ସଂ. ବଣ. ପୁଂ ( ବହୁବ୍ରୀହି )—୧ । ବାତ୍ସଲ୍ୟଗୁଣଯୁକ୍ତ,
Sneha śila ସ୍ନେହମୟ—1. Affectionate. ୨ । ବତ୍ସଳ
(ସ୍ନେହଶୀଳା—ସ୍ତ୍ରୀ) ପ୍ରକୃତିବିଶିଷ୍ଟ—2. Affectionate by
(ସ୍ନେହଶୀଳତା—ବି) nature.

ସ୍ନେହ ସଞ୍ଚାର—ସଂ. ବି ( ୬ଷ୍ଠୀ ତତ୍ )—ସ୍ନେହୋଦ୍ରେକ (ଦେଖ)
Sneha sañchāra Snehodreka ( See )

ସ୍ନେହ ସାର—ସଂ. ବି—ଅସ୍ଥିସାର; ମଜ୍ଜା ( ହି. ଶ )—
Sneha sāra Bone-marrow.

ସ୍ନେହ ସିକ୍ତ—ସଂ. ବଣ ( ୩ୟା ତତ୍ ) (ଲକ୍ଷଣାର୍ଥ)—ସ୍ନେହାର୍ଦ୍ର;
Sneha sikta ସ୍ନେହବୋଳା—Overflowing with affection.

ସ୍ନେହ ସିନ୍ଧୁ—ସଂ. ବି (ରୂପକ କର୍ମଧା)—ପ୍ରଗାଢ଼ ସ୍ନେହ; ସମୁଦ୍ର ସଙ୍ଗେ
Sneha sindhu ତୁଳନା କରାଯିବା ସ୍ନେହ—Affection compared to the ocean; unbounded affection.

ସ୍ନେହ ସୁଧା—ସଂ. ବି (ରୂପକ କର୍ମଧା)—ଅମୃତ ସଙ୍ଗେ ତୁଳିତ ସ୍ନେହ—
Sneha sudhā Affection compared to nectar.

ସ୍ନେହା—ସଂ. ବି (ସ୍ନିହ୍ ଧାତୁ+ଅନ୍; ସ୍ନେହନ୍ ଶବ୍ଦ ୧ମା. ୧ବ)—
Snehā ୧ । ରୋଗ ବିଶେଷ [ଜୁଶାଦିକୋଷ]—1. A sort of disease. ୨ । ବନ୍ଧୁ (ସିଦ୍ଧାନ୍ତକୌମୁଦୀ)—2. Friend. ୩ । ଚନ୍ଦ୍ର (ସିଦ୍ଧାନ୍ତ କୌମୁଦୀ)—
ସ୍ନେହ 3. The moon. ଦେ. ବି—ସ୍ନେହ—Affection;
स्नेह love. (ଉ—ଏ ବର୍ତ୍ତମାନ ଦେବେ ଯାହା, ଯେରୂପେ ଦେଖି କରେ ସ୍ନେହା । ଜଗନ୍ନାଥ, ଭାଗବତ । ) ଦେ.
ସ୍ନେହୀ ବଣ—୧ । ସ୍ନେହୀ—1. Affectionate; loving.
स्नेही (ଉ—ଏମାନ ବୋଲୁ ତାହା ପଞ୍ଚ ସୋଦରସ୍ନେହା କୋଟେ ତାକ ପ୍ରତିଜ୍ଞା ଲୁହା । ଉଞ୍ଜ ବୈଦେହୀଶବିଳାସ ।)
୨ । ଅନୁରକ୍ତ—2. Attached. (ଉ—ଏମନ୍ତ ପ୍ରଭୁ ତୋର ମାୟା, ଜୀବ ନ ଜାଣି ଭୋଗେ ସ୍ନେହା । ଜଗନ୍ନାଥ. ଭାଗବତ ।)

ସ୍ନେହାକୃଷ୍ଟ—ସଂ. ବଣ ( ୩ୟା ତତ୍; ସ୍ନେହ+ଆକୃଷ୍ଟ )—ଯାହାର
Snehākṛushṭa ସ୍ନେହଦ୍ୱାରା ସ୍ନେହୀ ବ୍ୟକ୍ତି ଅଧୀନ ହୁଏ—Attracted by affection.

ସ୍ନେହାର୍ଦ୍ର—ସଂ. ବଣ ( ୩ୟା ତତ୍ )—ସ୍ନେହବୋଳା (ଦେଖ) —
Snehārdra Snehabolā (See)

ସ୍ନେହାଶ—ସଂ. ବି (ସ୍ନେହ୍=ତୈଳ+ଅଶ୍ ଧାତୁ=ଭକ୍ଷଣ କରିବା+
Snehāśa କର୍ତ୍ତୃ. ଅ)—ପ୍ରଦୀପ—Light; lamp. ( ଉ—ବୋଲେ ତନନ ଦଳେ ଦେଶାରକୁ ପାପ ତ କରେ ସ୍ନେହାଶ ସେ । ଉଞ୍ଜ. ବୈଦେହୀଶବିଳାସ ।)

ସ୍ନେହାସ୍ପଦ—ସଂ. ବି ( ୬ଷ୍ଠୀ ତତ୍ )—ସ୍ନେହପାତ୍ର; ସ୍ନେହଭାଜନ—
Snehāspada Object of affection.

ସ୍ନେହିତ—ସଂ. ବଣ (ସ୍ନେହ+ଇତ)—୧ । ସ୍ନେହଯୁକ୍ତ (ହି. ଶ)—
Snehita 1. Oily. ୨ । ସ୍ନେହ ମର୍ଦ୍ଦିତ (ହି. ଶ)—2. Oiled. ୩ । ସ୍ନେହାସ୍ପଦ (ହି. ଶ)—3. Beloved. ସଂ. ବି—ବନ୍ଧୁ (ହି. ଶ)—Friend.

ସ୍ନେହୀ—ସଂ. ବଣ. ପୁଂ (ସ୍ନେହ+ଅସ୍ତ୍ୟର୍ଥେ. ଇନ୍; ସ୍ନେହିନ୍ ୧ମା.
Snehī ୧ବ)—୧ । ସ୍ନେହଶୀଳ; ସ୍ନେହଯୁକ୍ତ; ଯେ ସ୍ନେହ
(ସ୍ନେହିନୀ—ସ୍ତ୍ରୀ) କରେ—1. Affectionate; loving. ୨ । ଅନୁରକ୍ତ—2. Fond. ୩ । ତେଲିଆ (ହି. ଶ)—3. Oily. ସଂ. ବି. ପୁଂ—୧ । ଚିତ୍ରକର (ଶବ୍ଦକଳ୍ପଦ୍ରୁମ)—1. A painter. ୨ । ବୟସ୍ୟ ମିତ୍ର—2. A companion; intimate friend. ୩ ।
ସ୍ନେହୀ ସ୍ନେହପାତ୍ର—3. Object of affection. (ଉ—
स्नेही ସୁମାଡ଼ି, ସୁଚୁଡ଼ ଏ ଦୁଇ, ସୁବୁଦ୍ଧ ରାଜାଙ୍କର ସ୍ନେହୀ । ଜଗନ୍ନାଥ. ଭାଗବତ ।)

ସ୍ନେହୁ—ସଂ. ବି. (ସ୍ନିହ ଧାତୁ+କର୍ତ୍ତୃ.ଉ)—୧ । ସ୍ନେହା; ରୋଗବିଶେଷ
Snehu ( ଉଣାଦି କୋଷ)—1. A sort of disease. ୨ । ରୋଗ (ହି. ଶ)—2. Disease. ୩ । ଚନ୍ଦ୍ର (ସିଦ୍ଧାନ୍ତ କୌମୁଦୀ)—The moon.

ସ୍ନେହୋତ୍ତମ—ସଂ. ବି (୭ମୀ ତତ୍)—ତିଳତୈଳ (ହି. ଶ)
Snehottama Sessamum oil.

ସ୍ନେହୋଦ୍ରେକ—ସଂ. ବି (୬ଷ୍ଠୀ ତତ୍)—ସ୍ନେହର ସଞ୍ଚାର; ମନରେ ସ୍ନେହ
Snehodreka ଜାତ ହେବା; ମନରେ ସ୍ନେହର ଆବିର୍ଭାବ—The dawning of affection in a mind.

ସ୍ନେହୋପହାର - ସଂ. ବି—(ମ. ପ. ଲୋ)—ସ୍ନେହ ସହକାରେ ପ୍ରଦତ୍ତ
Snehopahāra ଉପହାର—Loving or affectionate present.

ସ୍ନେହୋପହୃତ—ସଂ. ବଣ—ସ୍ନେହଦ୍ୱାରା ଉପହାର ଦିଆଯାଇଥିବା—
Snehopahṛuta Presented with affection.

ସ୍ନେହ୍ୟ—ସଂ. ବଣ. ପୁଂ (ସ୍ନିହ ଧାତୁ+କର୍ମ ଯ)—ସ୍ନେହ କରାଯିବାର,
Snehya ଯୋଗ୍ୟ—Fit to be loved or oiled.
(ସ୍ନେହ୍ୟା—ସ୍ତ୍ରୀ)

ସ୍ନୈଗ୍ଧ୍ୟ—ସଂ. ବି (ସ୍ନିଗ୍ଧ+ଭାବ ଯ)—୧ । ସ୍ନିଗ୍ଧତା—1. Smoothness.
Snaigdhya ୨ । ମାଧୁର୍ଯ୍ୟ—2. Sweetness.

ସ୍ନୈହିକ—ସଂ. ବଣ ( ସ୍ନେହ+ଇକ )—୧ । ସ୍ନେହ ସମ୍ବନ୍ଧୀୟ—
Snaihika 1. Relating to affection. ୨ । ତୈଳାକ୍ତ 2. Oily. ୩ । ଶୀତଳତା କାରକ—3. Cooling.

ସ୍ନୋ—ବୈଦେ. ବି (ଇଂ—ସ୍ନୋ)—ସ୍ତ୍ରୀମାନଙ୍କ ମୁଖାଦିର ଶୋଭାବୃଦ୍ଧ୍ୟର୍ଥ
Sno ପ୍ରସ୍ତୁତ ଏକପ୍ରକାର ଧଳା ମଲମ—Snow; name of an ointment prepared for the complexion (e. g. Hazeline snow)
[ଦ୍ର—ଇଂରେଜୀରେ ସ୍ନୋ (snow) ଶବ୍ଦର ଅର୍ଥ ବରଫ। ଏହି ମଲମ ବରଫ ପରି ଶୁକ୍ଳ ଥିବାରୁ ଓ ଏହାକୁ ଲଗାଇଲେ ମୁଖର ବର୍ଣ୍ଣ ବରଫ ପରି ଶୁକ୍ଳ ଓ ସୁନ୍ଦର ହେବ ବୋଲି ବିଜ୍ଞାପିତ ହେଉଥିବାରୁ ବର୍ଣ୍ଣ ସୌସାଦୃଶ୍ୟ ଯୋଗୁ ଇଂରାଜୀରେ ଏହାର ଏପରି ନାମକରଣ ହୋଇଅଛି।

ଉତ୍କଳର ସ୍ତ୍ରୀମାନଙ୍କର ପାଶ୍ଚାତ୍ୟ ବେଶଭୂଷା ପ୍ରତି ଆଦର ବୃଦ୍ଧି ସଙ୍ଗେ ଏ ଶବ୍ଦ ଓଡ଼ିଆ ଭାଷାରେ ଓ ଏ ବେଶୋପକରଣ ଦ୍ରବ୍ୟ ଉତ୍କଳଲଲନାଙ୍କ ପ୍ରସାଧନ ସାମଗ୍ରୀ-ସମ୍ଭାର ମଧ୍ୟରେ ପ୍ରବେଶାଧିକାର ଲାଭ କରୁଅଛି ]

ସ୍ନୋଡନ୍—ବୈଦେ. ବି (ଇଂ. ନାମ)—ଇଂଲଣ୍ଡର ପଶ୍ଚିମାଂଶସ୍ଥ ୱେଲ୍‌ସ୍
Snodan ପ୍ରଦେଶରେ ଏକ ପର୍ବତର ନାମ—The Snowdon
स्नोडन स्नोडन mountain in Wales.

ସ୍ନୋମାନ୍—ବୈଦେ. ବି (ଇଂ ସ୍ନୋ=ବରଫ+ମାନ୍=ମନୁଷ୍ୟ)—
Snoman ତିବ୍ବତର ଉତ୍ତରାଂଶସ୍ଥ ତୁଷାରାବୃତ ମାଳଭୂମିର ଗୋଟିଏ ଅଞ୍ଚଳର ଅଧିବାସୀ ଦୀର୍ଘାକାର, ସ୍ଥୂଳକାୟ, ଘନଲୋମାବୃତ-ଦେହ ମନୁଷ୍ୟ—Snowman; a number of tall stout men covered with long hairs over the body, inhabiting the mountanous plateau north of Tibet. [ଦ୍ର—କଲିକତା 'ଭିକ୍ଟୋରିଆ ମେମୋରିଅଲ୍' ସ୍ମୃତିମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ୍ କାପ୍‌ଟେନ୍ ଭି. ଡାଭର୍ଣ୍ଣି (Captain V. D'Auverne) ତିବ୍ବତ ଦେଶର ଉତ୍ତରାଞ୍ଚଳସ୍ଥ ପର୍ବତମୟ ମାଳଭୂମିରେ ଏ ଜାତୀୟ ଜଣେ ବ୍ୟକ୍ତିଙ୍କୁ ଦେଖିଥିଲେ ଓ ସେହି ପର୍ବତ-ଗୁମ୍ଫାବାସୀ କୁର୍ମୌ ଲାମା ନାମକ ଜଣେ ବୌଦ୍ଧଯତିଙ୍କଠାରୁ ଶୁଣି ଏହି 'ସ୍ନୋମାନ୍' ଜାତି ସମ୍ବନ୍ଧେ ନିମ୍ନଲିଖିତ ବୃତ୍ତାନ୍ତ ପ୍ରସ୍ତୁତ କରିଥିବାରୁ ତାହା କଲିକତାର ଷ୍ଟେଟ୍‌ସ୍‌ମାନ୍ ( The Statesman ) ପତ୍ରିକାର ୯ । ୧୨ । ୩୯ର ସଂଖ୍ୟାରେ ପ୍ରକାଶିତ ହୋଇଅଛି । ଏମାନେ ଦୈର୍ଘ୍ୟରେ ୮ ଫୁଟ୍ ଓ ସ୍ଥୂଳକାୟ । ଏମାନଙ୍କ ଦେହର ବର୍ଣ୍ଣ ଶ୍ୱେତ ଓ ଏମାନଙ୍କର ମୁଣ୍ଡଠାରୁ ଗୋଡ଼ପର୍ଯ୍ୟନ୍ତ ସର୍ବାଙ୍ଗ ୨ଇଞ୍ଚ ଲମ୍ବ ଘନ ଶୁକ୍ଳ କେଶରେ ଆବୃତ । ଏମାନଙ୍କ ଆଖି ଖୁବ୍ ବଡ଼ ଓ ଆଖିର ଡୋଳା ଗାଢ଼ କୃଷ୍ଣବର୍ଣ୍ଣ; ଏମାନେ ଅଣ୍ଟାରେ ତଦ୍ଦେଶଚର ଏକଜାତୀୟ ବ୍ୟାଘ୍ର (snow leopard)ର ଚମଡ଼ାର ପଟୀ ଗୁଡ଼ାଇ ହୋଇଥାଆନ୍ତି । ଏମାନେ ଅନାବୃତଦେହ ଓ ଅନାବୃତପଦ ହୋଇ ବରଫ ଉପରେ ବିଚରଣ କରନ୍ତି ଏବଂ ବୋଝ ବୋହି ସୁଦ୍ଧା ଅବଲୀଳାକ୍ରମେ ଦୁର୍ଗମ ଅତ୍ୟୁଚ୍ଚମୟ ପାର୍ବତ୍ୟ ପଥରେ ଏବଂ ଏକ ଶିଳାଖଣ୍ଡରୁ ଅନ୍ୟ ଶିଳାଖଣ୍ଡକୁ ଡେଇଁ କରି ଗତି କରନ୍ତି । ଏମାନେ ଆଓର୍ (A-ore) ନାମକ ସ୍ୱତନ୍ତ୍ର ଭାଷା ବ୍ୟବହାର କରନ୍ତି ।

ଏ ଅଞ୍ଚଳର ଆହୁରି ଉତ୍ତରରେ ବାସ କରୁଥିବା କେତେ ଲୋକ ସ୍ଥାନୀୟ ଶାସକଙ୍କ ଅତ୍ୟାଚାର ସହି ନ ପାରି ପ୍ରାୟ ୮୦ ବର୍ଷ ପୂର୍ବେ ସେଠାରୁ ପଳାଇ ଆସି ବର୍ତ୍ତମାନ ଏମାନଙ୍କ ବାସ କରୁଥିବା ତିବ୍ବତର ଉତ୍ତରାଞ୍ଚଳରେ ତୁଷାର-ମୟ ପାର୍ବତ୍ୟ ସ୍ଥାନରେ ବସତି ସ୍ଥାପନ କରିଥିଲେ । ଏହି ସ୍ଥାନର ତୁଷାରମୟ ଆବହାଓ୍ୱା (climate), ଜଳ ଓ ସ୍ଥଳର ରସାୟନିକ ପ୍ରତିକ୍ରିୟାର ଫଳରେ ପଳାତକମାନଙ୍କ ସନ୍ତାନସନ୍ତତିମାନେ ସେମାନଙ୍କ ଅପେକ୍ଷା ଦୀର୍ଘାକୃତି ହେଲେ । ପୁରୁଷାନୁକ୍ରମେ ଏହି ଦୀର୍ଘାକୃତି ବ୍ୟକ୍ତିଙ୍କ ସନ୍ତାନ-ମାନେ ପିତାମାତାଙ୍କ ଅପେକ୍ଷା ଅଧିକ ଦୀର୍ଘାକୃତି ହେଲେ । ଏହିପରି ପୁରୁଷାନୁକ୍ରମେ ବଂଶଧରମାନଙ୍କ ଦେହର ଆକାର ଅତି ବୃଦ୍ଧି ପାଇଁ ୮୦ବର୍ଷରେ ଏମାନେ ବର୍ତ୍ତମାନ ପରିଲକ୍ଷିତ ଆକାର ଓ ଅବସ୍ଥାରେ ଉପନୀତ ହୋଇଅଛନ୍ତି ।]

ସ୍ନୋ ଲେପାର୍ଡ୍—ବୈଦେ. ବି. (ଇଂ)—ତିବ୍ବତ ଦେଶର ତୁଷାରାବୃତ
Sno lepard ଉତ୍ତରାଞ୍ଚଳସ୍ଥ ପାର୍ବତ୍ୟପ୍ରଦେଶରେ ରହୁଥିବା ହିଂସ୍ର ଶ୍ୱେତ ବ୍ୟାଘ୍ର—Snow leopard; a species of white leopard found in the snowy mountainous northern part of Tibet.

ସ୍ପଞ୍ଜ୍—ବୈଦେ. ବି. (ଇଂ ସ୍ପଞ୍ଜ୍)—ଏକ ପ୍ରକାର ସାମୁଦ୍ରିକ ଜୀବର ବହୁ-
Spanj ଛିଦ୍ରମୟ କୋମଳ କଙ୍କାଳୀୟ ଅଂଶ—Sponge. [ଦ୍ର—
स्पंज् एहार छिद्रमानङ्करे ... ଏହାର ଛିଦ୍ରମାନଙ୍କରେ ପାଣି ଶୋଷି ହୋଇ ରହେ ଓ ଚିପୁଡ଼ା
स्पंज ହେଲେ ଉକ୍ତ ପାଣି ନିଗିଡ଼ିଯାଏ । ଏହା ଭୂମଧ୍ୟସାଗର ଓ ଆମେରିକାର ନିକଟସ୍ଥ ସମୁଦ୍ରରେ ମିଳେ ।

ସ୍ପଞ୍ଜ୍ ଖିର୍‌ମୋହନ—ଦେ. ବି—ଛେନାରେ ପ୍ରସ୍ତୁତ,ଭିତରେ ବହୁ ଛିଦ୍ର-
Spanj khir-mohana ଯୁକ୍ତ ଖିରମୋହନ ନାମକ ମିଷ୍ଟାନ୍ନ—
स्पंज् क्षीरमोहन A kind of sweetmeat. [ଦ୍ର—ଏହି
स्पंज क्षीरमोहन ଖିରମୋହନର ଛିଦ୍ରମାନଙ୍କ ଭିତରେ ବହୁ ପରିମାଣରେ ଶିରା ପଶି ଥାଏ ଓ ଏହା ଖାଇବାକୁ ବଡ଼ ତୃପ୍ତିକର ବୋଧ ହୁଏ ।]

ସ୍ପଦ୍(ନ୍ଦ୍)(ଧାତୁ)—ସଂ—ଈଷତ୍ କମ୍ପିବା; ସ୍ପନ୍ଦିତ ହେବା—To slight-
Spad(nd) (root) ly tremble; to quiver.

ସ୍ପନ୍ଦ—ସଂ. ବି (ସ୍ପନ୍ଦ୍ ଧାତୁ=ଈଷତ କମ୍ପିବା+ଭାବ. ଅ)—୧। ଈଷତ୍
Spanda କମ୍ପନ—1. Tremour; slight trembling vibration; quaking. ୨ । ପ୍ରସ୍ଫୁରଣ; ଚକ୍ଷୁର ଓ ଶରୀରର ଅନ୍ୟାନ୍ୟ ଅଙ୍ଗର ସ୍ଫୁରଣ; ଡେଇଁବା—2. Involuntary throbbing or dancing of the eye lids or the skin of the different limbs of the body. [ଦ୍ର—ମତ୍ସ୍ୟପୁରାଣ ୨୧୫ ଅଧ୍ୟାୟରେ ଦେହର ଭିନ୍ନ ଭିନ୍ନ ଅଙ୍ଗର ସ୍ପନ୍ଦନର ଶୁଭାଶୁଭ ଫଳ ବର୍ଣ୍ଣିତ ହୋଇଅଛି । ସାଧାରଣତଃ ପୁରୁଷଙ୍କ ଦକ୍ଷିଣାଙ୍ଗର ସ୍ଫୁରଣ ଶୁଭକର; ବାମାଙ୍ଗର ଓ ପୃଷ୍ଠର ସ୍ଫୁରଣ ଅଶୁଭ-

ସୂଚକ । ସ୍ତ୍ରୀମାନଙ୍କ ପକ୍ଷରେ ଠିକ୍ ଏଥିର ବିପରୀତ ଫଳ ।]
୩ । (ହୃତ୍ ବା ନାଡ଼ି) ଦପ୍ ଦପ୍ ହେବା—3. Palpitation (of the heart or pulse); fluttering; pulsation.

ସ୍ପନ୍ଦନ—ସଂ. ବି (ସ୍ପନ୍ଦ୍ ଧାତୁ+ଭାବ. ଅନ)—ସ୍ପନ୍ଦ (ଦେଖ)
Spandana Spanda (See)

ସ୍ପନ୍ଦନ ରହିତ—ସ. ବିଣ (ଷଷ୍ଠୀ । ତତ୍)—ନିଷ୍ପନ୍ଦ; କମ୍ପନଶୂନ୍ୟ; ସ୍ଥିର—
Spandana rahita Motionless.
(ସ୍ପନ୍ଦନ ଶୂନ୍ୟ, ସ୍ପନ୍ଦନହୀନ, ସ୍ପନ୍ଦ ରହିତ, ସ୍ପନ୍ଦ ଶୂନ୍ୟ, ସ୍ପନ୍ଦହୀନ—ଅନ୍ୟରୂପ)

ସ୍ପନ୍ଦିତ—ସ. ବିଣ ( ସ୍ପନ୍ଦ୍ ବା ସ୍ପନ୍ଦ୍ ଧାତୁ+ତ )—କମ୍ପିତ—
Spandita Agitated vibrating; fluttering; palpitating.

ସ୍ପନ୍ଦିନୀ—ସ. ବିଣ. ସ୍ତ୍ରୀ ( ସ୍ପନ୍ଦନ୍+ସ୍ତ୍ରୀ· ଈ )—ସ୍ପନ୍ଦୀର ସ୍ତ୍ରୀ ଲିଙ୍ଗ—
Spandinī Feminine of Spandī. ଦେ. ବି. ସ୍ତ୍ରୀ—
୧ । ରଜସ୍ୱଳା ସ୍ତ୍ରୀ (ହ୍ରି. ଶ)—1. A woman in her menses. ୨ । କାମଧେନୁ; ସଦା ଦୁଗ୍ଧବତୀ ଗାଈ (ହ୍ରି. ଶ)
(ସ୍ପନ୍ଦୀ—ବିଣ. ପୁଂ) 2. A cow which perpetually gives milk.

ସ୍ପରଶ—ଗ୍ରା. ବି ( ପଦ୍ୟ ) ( ସ, ସ୍ପର୍ଶ )—ସ୍ପର୍ଶ; ଛୁଇଁବା—
Sparaśa Touch.
ପରশ [ହି—ଶ୍ରବଣ ସୀମା ସ୍ପରଶେ । କବିସୂର୍ଯ୍ୟ-କଣୋଗ୍ରତମ୍ପୂ ।]
পরস

ସ୍ପରଶନ—ଗ୍ରା. ବି (ପଦ୍ୟ) (ସ. ସ୍ପର୍ଶନ)—ସ୍ପର୍ଶନ; ଛୁଇଁବା—
Sparaśana Touching.
পরশন পরসন

ସ୍ପରଶିବା—ଗ୍ରା. କ୍ରି (ସ. ସ୍ପୃଶ୍ ଧାତୁ)—ସ୍ପର୍ଶ କରିବା; ଛୁଇଁବା—
Sparaśibā To touch.
পরশন করা, পরশা পরসনা

ସ୍ପରିତା—ସ. ବିଣ ( ସ୍ପୃ ଧାତୁ+କର୍ତ୍ତୃ. ତୃ; ସ୍ପରିତୃ; ୧ମା. ୧ବ )—
Sparitā ଦୁଃଖୋତ୍ପାଦକ (ଯଥା—ଶତ୍ରୁ, ଦୁର୍ଜନ, ରୋଗ)—
Causing sorrow.

ସ୍ପରିଶ—ସଂ. ବି (ସ୍ପୃଶ୍ ଧାତୁ+ଭାବ. ଅ)—ସ୍ପର୍ଶ (ଶବ୍ଦ କଳ୍ପଦ୍ରୁମ)—
Sparisa Touch.

ସ୍ପର୍ଦ୍ଧ୍ (ଧାତୁ)—ସଂ—୧ । ସଂଘର୍ଷ ହେବା; ବେଶାତର କରିବା—1. To
Sparddh (root) defy. ୨ । ଅହଙ୍କାର କରିବା—2. To boast. ୩ । ପ୍ରତିଯୋଗୀ ହେବା—3. To emulate.
୪ । ଯୁଦ୍ଧକୁ ଆହ୍ୱାନ କରିବା—4. To challenge.

ସ୍ପର୍ଦ୍ଧନ(ନା)—ସଂ, ବି ( ସ୍ପର୍ଦ୍ଧ୍ ଧାତୁ+ଭାବ. ଅନ )—୧ । ମତ୍ସରତା—
Sparddhana (nā) 1. Defiance. ୨। ପ୍ରତିଯୋଗିତା—
2. Rivalry; emulation. ୩ । ଅହଙ୍କାର—
3. Boasting. ୪ । ଅହଂକାର; ବଡ଼ାଇ—4 Arrogance. ୫ । ସାଦୃଶ୍ୟ—5. Similarity. ୬ ।
କ୍ରମୋନ୍ନତି—6. Gradual improvement. ୭ ।
ସଙ୍ଘର୍ଷ—7. Collision. ୮ । ସମୀକରଣ—
8. Equalisation. ୯ । ଭିଡ଼—9. Crowd. ୧୦ ।
ଈର୍ଷା; ଦ୍ୱେଷ (ହ୍ରି. ଶ)—10. Spite.

ସ୍ପର୍ଦ୍ଧନୀୟ—ସଂ. ବି (ସ୍ପର୍ଦ୍ଧ୍ ଧାତୁ+କର୍ମ. ଅନୀୟ)—ଯାହା ସଙ୍ଗେ ସ୍ପର୍ଦ୍ଧା
Sparddhanīya କରିହେବ ପାରେ—Fit to be defied or challenged etc.

ସ୍ପର୍ଦ୍ଧା—ସଂ. ବି (ସ୍ପର୍ଦ୍ଧ୍ ଧାତୁ+ଭାବ. ଅ+ସ୍ତ୍ରୀ· ଆ)—ସ୍ପର୍ଦ୍ଧନ (ଦେଖ)
Sparddhā Sparddhana (See)

ସ୍ପର୍ଦ୍ଧିତ—ସଂ. ବିଣ. ପୁଂ (ସ୍ପର୍ଦ୍ଧା+ସଂଜାତାର୍ଥେ. ଇତ)—ସ୍ପର୍ଦ୍ଧାଯୁକ୍ତ—
Sparddhita Boastful; defiant.
(ସ୍ପର୍ଦ୍ଧିତା—ସ୍ତ୍ରୀ)

ସ୍ପର୍ଦ୍ଧୀ—ସଂ. ବିଣ. ପୁଂ (ସ୍ପର୍ଦ୍ଧ୍ ଧାତୁ+କର୍ତ୍ତୃ· ଇନ୍; ସ୍ପର୍ଦ୍ଧିନ୍ ୧ମା. ୧ବ)
Sparddhī ୧ । ସ୍ପର୍ଦ୍ଧାକାରୀ—1. Arrogant; defiant.
(ସ୍ପର୍ଦ୍ଧିନୀ—ସ୍ତ୍ରୀ) ୨ । ଆସ୍ଫାଳନକାରୀ; ବଡ଼ାଇ କରୁଥିବା—2. Boastful; bragging. ୩। ସଦୃଶ—3. Similar.
ସଂ. ବି ( ଜ୍ୟାମିତି ପରିଭାଷା )—ଯେଉଁ କୋଣ ଏକ ନିର୍ଦ୍ଦିଷ୍ଟ କୋଣ ସଙ୍ଗେ ମିଶିଲେ ଦୁଇ ସମକୋଣ ବା ୧୮୦ ଡିଗ୍ରି ହୁଏ (ହ୍ରି. ଶ)—(geometry) An angle which when joined to a given angle makes up 180 degrees or two right angles.

ସ୍ପର୍ଶ୍ (ଧାତୁ)—ସଂ—୧ । ଛୁଇଁବା—1. To touch. ୨ । ଗ୍ରହଣ
Sparś (root) କରିବା—2. To hold. ୩। ଆଶ୍ଳେଷ କରିବା-
[ସ୍ପୃଶ୍ (ଧାତୁ)—ଅନ୍ୟରୂପ] 3. To embrace.

ସ୍ପର୍ଶ—ସଂ. ବି ( ସ୍ପୃଶ୍ ବା ସ୍ପର୍ଶ୍ ଧାତୁ+ଭାବ· ଅ )—୧ । ଛୁଇଁବା;
Sparś ତ୍ୱଗିନ୍ଦ୍ରିୟଗ୍ରାହ୍ୟ ଗୁଣ—1. Touch. [ଦ୍ର—ସୁଶ୍ରୁତ-(ସୂତ୍ର—ବିଶ) ମତରେ 'ସ୍ପର୍ଶ' ଏକାଦଶବିଧ; ଯଥା—ଉଷ୍ଣ, ଶୀତ, ସୁଖ, ଦୁଃଖ, ସ୍ନିଗ୍ଧ, ବିଶଦ, ଖର, ମୃଦୁ, ଶ୍ଲକ୍ଷ୍ଣ, ଲଘୁ ଓ ଗୁରୁ । ମହାଭାରତ· ଅଶ୍ୱମେଧିକ ପର୍ବ ।] ୨ । ରୁଜା;
ରୋଗ—2. Illness; sickness. ୩ । ଦାନ—
3. Giving; donation. ୪ । ବାୟୁ—4. Air. ୫ ।
(+କର୍ତ୍ତୃ. ଅ) ବର୍ଣ୍ଣବର୍ଣ୍ଣ; ବର୍ଗୀୟବର୍ଣ୍ଣ; 'କ'ଠାରୁ 'ମ' ପର୍ଯ୍ୟନ୍ତ ୨୫ଟି ବର୍ଣ୍ଣବର୍ଣ୍ଣ—5. The 25 consonants from 'Ka' to 'Ma'. ୬ । ରତିବନ୍ଧ ବିଶେଷ—
6. A mode of coition. ୭ । ଯୋଗ—
7. Contact. ୮ । (ସଙ୍ଗୀତ) କୌଣସି ସ୍ୱର ଉଚ୍ଚାରିତ ହେବାର ପୂର୍ବେ ବା ପରେ ଅନ୍ୟ ପୂର୍ବବର୍ତ୍ତୀ ସ୍ୱରର ନାମ ମାତ୍ର ଉଚ୍ଚାରଣ ଯୋଗୁଁ ପ୍ରଧାନ ସ୍ୱରର ଅଙ୍ଗ ରୂପେ ବ୍ୟବହାର—8. (music) Nominal or slight utterance of a note as an accompaniment before or after the principal

note. ୯ । ଷଦାର୍ଥ (ପ୍ରକୃତିବାଦ)—9. Thing. ୧୦ । ପ୍ରଣିଧି; ଦୂତ—10. Messenger. ୧୧ । ଗ୍ରହଣ ବା ଉପସ୍ରବରେ ସୂର୍ଯ୍ୟ ବା ଚନ୍ଦ୍ରଙ୍କ ଉପରେ ଗ୍ରସ୍ତପାତର ଆରମ୍ଭ (ହି. ଶ)—11. The beginning of the shadow to fall on the disc of the sun or the moon during an eclipse.

ସ୍ପର୍ଶକ—ସଂ. ବିଣ. ପୁଂ (ସ୍ପୃଶ୍ ବା ସ୍ପର୍ଶ ଧାତୁ+କର୍ତ୍ତି. ଅକ)—ସ୍ପର୍ଶକାରୀ, Sparśaka (ସ୍ପର୍ଶିକା—ସ୍ତ୍ରୀ) ଯେ ଛୁଏଁ—Touching.

ସ୍ପର୍ଶ କରିବା—ଦେ. କ୍ରି.—ଛୁଇଁବା—To touch; to come in Sparśa karibā স্পর্শকরা स्पर्शकरना contact with.

ସ୍ପର୍ଶ କୋଣ—ସଂ. ବି. (ଜ୍ୟାମିତି)—ବୃତ୍ତ ଓ ସ୍ପର୍ଶଜ୍ୟାର ମଧ୍ୟସ୍ଥ କୋଣ Sparśa koṇa (ହି. ଶ)—The angle formed by a tangent and a circle.

ସ୍ପର୍ଶ ଜନ୍ୟ(ଜନିତ)—ସଂ.ବି. (ଛୁଆଁ ଛତ)—ସଂକ୍ରାମକ (ରୋଗ)(ହି.ଶ)— Sparśa janya (janita) Contagious.

ସ୍ପର୍ଶ ଜ୍ୟା—ସଂ. ବି—(ଜ୍ୟାମିତି)—ବୃତ୍ତ ସ୍ପର୍ଶୀ ରେଖା; ସ୍ପର୍ଶିନୀ— Sparśa jyā (Geometry) Tangent. [ଦ୍ର—ଏହି ରେଖାକୁ ବୃଦ୍ଧି କଲେ ଏହା ବୃତ୍ତକୁ ଛେଦ କରିବ ନାହିଁ]।

ସ୍ପର୍ଶଜ୍ଞାନ—ସଂ. ବି—(ମ. ପ. ଲୋ) ସ୍ପର୍ଶଜନିତ ଜ୍ଞାନ—Knowledge Sparśa jnāna derived from touch.

ସ୍ପର୍ଶ ତନ୍ମାତ୍ର—ସଂ.ବି.—ବାୟୁର ଉପାଦାନ କାରଣ; ସୂକ୍ଷ୍ମ ଭୂତ ବିଶେଷ— Sparśa tanmātra A fine element of the air.

ସ୍ପର୍ଶଦିଶା—ସଂ. ବି.—ଚନ୍ଦ୍ର ବା ସୂର୍ଯ୍ୟର ଯେଉଁ ଦିଗରୁ ଗ୍ରହଣର Sparśa diśā ଗ୍ରସ୍ତପାତ ଆରମ୍ଭ ହୁଏ (ହି. ଶ)—The direction or quarter of the sun or the moon from which the shadow begins to creep into it.

ସ୍ପର୍ଶନ—ସଂ. ବି. (ସ୍ପର୍ଶ ବା ସ୍ପୃଶ୍ ଧାତୁ+ଭାବ ଅନ)—୧। ସ୍ପର୍ଶ; ଛୁଇଁବା Sparśana (ମେଦିନୀ)—1. Touching. ୨। ଦାନ (ମେଦିନୀ)—2. Giving. ୩। ବିତରଣ (ମେଦିନୀ)—3. Distributing. ୪। ଗ୍ରହଣ—4. Accepting. ୫। ବାୟୁ (ଅମର)—5. Air.

ସ୍ପର୍ଶନୀୟ—ସଂ. ବିଣ (ସ୍ପର୍ଶ ବା ସ୍ପୃଶ୍ ଧାତୁ+କର୍ମ ଅନୀୟ)—ଯାହାକୁ Sparśanīya ଛୁଆଁ ଯାଇପାରେ; ସ୍ପୃଶ୍ୟ—Capable of being touched; tangible; touchable.

ସ୍ପର୍ଶେନ୍ଦ୍ରିୟ—ସଂ. ବି—ସ୍ପର୍ଶ ଇନ୍ଦ୍ରିୟ; ଚର୍ମ—Skin; the organ Sparśanendriya of touch.

ସ୍ପର୍ଶ ପ୍ରସ୍ତର—ସଂ. ବି.—ସ୍ପର୍ଶମଣି (ଦେଖ)—Sparśamaṇi (See). Sparśa prastara

ସ୍ପର୍ଶ ବର୍ଣ୍ଣ—ସଂ. ବି—(ବ୍ୟାକରଣରେ)—କ ଠାରୁ ମ ପର୍ଯ୍ୟନ୍ତ ୨୫ଟି Sparśa barṇṇa ବର୍ଗ୍ୟ ବର୍ଣ୍ଣ—The 25 consonants from 'Ka' to 'Ma'.

ସ୍ପର୍ଶ ମଣି—ସଂ. ବି—ସ୍ପର୍ଶମାତ୍ରକେ ଅନ୍ୟ ବସ୍ତୁକୁ ସୁନାରୂପରେ ବଦଳାଇ Sparśa maṇi ଦେବା କଳ୍ପିତ ଶକ୍ତିବିଶିଷ୍ଟ ମଣିବିଶେଷ; ପରଶ ପଥର—The philosopher's stone; a stone which is said to turn other things into gold by mere touch.

ସ୍ପର୍ଶମଣି ପ୍ରଭବ—ସଂ. ବି—ସ୍ୱର୍ଣ୍ଣ; ସୁନା (ଶବ୍ଦରତ୍ନାବଳୀ)— Sparśamoṇi prabhaba Gold

ସ୍ପର୍ଶ ରସିକ—ସଂ.ବି—କାମୁକ ବ୍ୟକ୍ତି (ହି. ଶ)— Sparśa rasika A lecher.

ସ୍ପର୍ଶରେଖା—ସଂ. ବି—(ଜ୍ୟାମିତି) ସ୍ପର୍ଶଜ୍ୟା (ଦେଖ) Sparśa rekhā Sparśa jyā (See)

ସ୍ପର୍ଶ ଲଜ୍ଜା—ସଂ.ବି—ଲଜ୍ଜାଳୁ ଲତା (ଶବ୍ଦଚନ୍ଦ୍ରିକା)— Sparśa lajjā The mimosa creeper.

ସ୍ପର୍ଶଶକ୍ତି—ସଂ. ବି—ଛୁଇଁବା ଦ୍ୱାରା ଅନୁଭୂତ ହେବା ଶକ୍ତି— Sparśa śakti The feeling or sensation caused by touch.

ସ୍ପର୍ଶଶୁଦ୍ଧା—ସଂ. ବି ଶତମୂଳୀ; ଶତାବରୀ (ଶବ୍ଦଚନ୍ଦ୍ରିକା)— Sparśa śuddhā Asparagus Racemosus.

ସ୍ପର୍ଶ ସଙ୍କୋଚ—ସଂ. ବି—ଲଜ୍ଜାଳୁ ଲତା (ହି. ଶ)— Sparśa saṅkocha The mimosa creeper.

ସ୍ପର୍ଶ ସୁଖ—ସଂ. ବି ସ୍ପର୍ଶ ଜନିତ ସୁଖ; ସ୍ପର୍ଶଜାତ ଆନନ୍ଦ; ଛୁଇଁବାଯୋଗୁ Sparśa sukha ଜାତ ଆନନ୍ଦ—Pleasure derived from the touch of any agreeable thing.

ସ୍ପର୍ଶସ୍ୟନ୍ଦ—ସଂ ବି (ସ୍ପର୍ଶ=ଛୁଇଁବା+ସ୍ୟନ୍ଦ୍ ଧାତୁ=ଝରିବା+କର୍ତ୍ତୃ ଅ; Sparśa syanda ଯାହାକୁ ସ୍ପର୍ଶ କଲେ ସେ ମୁତିଦିଏ)— ଭେକ, ବେଙ୍ଗ—Frog.

ସ୍ପର୍ଶ ହାନି(ଲୋପ)—ସଂ.ବି—କେତେକ ରୋଗ ଆଦି ଯୋଗୁ ଚମଡ଼ାର Sparśa hāni(lopa) ସ୍ପର୍ଶଶକ୍ତିର ଲୋପ—Loss of the sense of touch owing to some disease.

ସ୍ପର୍ଶା—ସଂ. ବି. (ସ୍ପର୍ଶ+ଅ)—୧। ବେଶ୍ୟା—1. Harlot; whore Sparśā ସ୍ୱୈରିଣୀ—ସ୍ତ୍ରୀ. ରୂପ ୨। କୁଳଟା—2. Adulteress.

ସ୍ପର୍ଶାକ୍ରାମକ—ସଂ. ବିଣ—(ସ୍ପର୍ଶ+ଆକ୍ରମକ)—ସଂକ୍ରାମକ (ରୋଗ)— Sparśākrāmaka Contagious (disease)

ସ୍ପର୍ଶାନନ୍ଦା—ସଂ. ବି. ସ୍ତ୍ରୀ—ଅପ୍ସରା; ସ୍ୱର୍ବେଶ୍ୟା— Sparśānandā The heavenly nymphs.

ସ୍ପର୍ଶାସ୍ପର୍ଶ—ସଂ. ବି—କୌଣସି ବ୍ୟକ୍ତିକୁ ଛୁଇଁବା ବା କୌଣସି ବ୍ୟକ୍ତିକୁ Sparśāsparśa ନଛୁଇଁବା ଭାବ ବା ବିଚାର (ହି. ଶ)—The state or consideration of touching or not touching a person.

ସ୍ପର୍ଶିକ—ସଂ. ବିଣ (ସ୍ପୃଶ ଧାତୁ+କର୍ତ୍ତୃ ଇକ)—ସ୍ପର୍ଶକାରୀ (ହି. ଶ)— Sparśika Touching. ସଂ. ବି—ବାୟୁ (ହି. ଶ)—Air.

ସ୍ପର୍ଶିନୀ—ସଂ. ବି (ଜ୍ୟାମିତି)—ସ୍ପର୍ଶଜ୍ୟା (ଦେଖ)—Sparśajyā (See) Sparśinī ସଂ. ବିଣ. ସ୍ତ୍ରୀ—'ସ୍ପର୍ଶୀ'ର ସ୍ତ୍ରୀଲିଙ୍ଗ—Feminine ସ୍ପର୍ଶୀ—ପୁଂ. ବିଣ) of "Sparśī."

ସ୍ପର୍ଶୀ—ସଂ. ବଣ. ପୁଂ (ସ୍ପୃଶ ଧାତୁ+କର୍ତ୍ତୃ ଇନ୍; ୧ମା. ୧ବ)—ଯାହା ସ୍ପର୍ଶ
Sparśi କରୁଥାଏ— ଯଥା ଶରୀର ସ୍ପର୍ଶୀ)—Touching.
(ସ୍ପର୍ଶିନୀ—ସ୍ତ୍ରୀ)

ସ୍ପର୍ଶେନ୍ଦ୍ରିୟ—ସଂ. ବି.—ତ୍ୱଗିନ୍ଦ୍ରିୟ; ଯଦ୍ୱାରା ସ୍ପର୍ଶଜ୍ଞାନ ଜନ୍ମେ—
Sparśendriya Sense of touch; the skin.

ସ୍ପର୍ଶୋପଳ—ସଂ. ବି—ପରଶ ପଥର—
Sparśopala The philosopher's stone.

ସ୍ପର୍ଷ୍ଟା—ସଂ. ବଣ (ସ୍ପୃଶ ଧାତୁ+କର୍ତ୍ତୃ ତୃ; ସ୍ପର୍ଷ୍ଟୃ; ୧ମା. ୧ବ)—ଉପତାପକ
Sparshta ମାତ୍ର; ରୋଗ (ଭରତ)—Sickness; illness.

ସ୍ପଶ୍ (ଧାତୁ)—ସ.—୧ । ବ୍ୟକ୍ତ କରିବା—1 To make clear,
Spash (root) to cleanse. ୨ । ବାଧା ଦେବା—2. To obstruct; to hinder.

ସ୍ପଶ—ସଂ. ବି. ( ସ୍ପଶ ଧାତୁ+କର୍ତ୍ତୃ. ଅ )—୧ । ଚର; ଗୂଢ଼ପୁରୁଷ,
Spaśa (ଅମର); ଗୁଇନ୍ଦା—1. Spy, ୨ । [+ଅଧିକରଣେ ଅ]
ଅବସର; ଯୁଦ୍ଧ (ଅମର)—2. Battle. ୩ । ଯେ ପ୍ରାଣ-
ନିରପେକ୍ଷ ହୋଇ ଯୁଦ୍ଧ କରେ (ଭରତ)—3. A warrior
who fights without caring for his life

ସ୍ପଷ୍ଟ—ସଂ. ବି (ସ୍ପଶ୍ ଧାତୁ+କର୍ମ ତ)—୧ । ବ୍ୟକ୍ତ; ସଫା; ସ୍ଫୁଟ—
Spashṭa 1. Clear; plain; apparent.

ଏଥିର ଗ୍ରାମ୍ୟ ଅପଭ୍ରଂଶ—
ପଷ୍ଟ, ପୁଷ୍ଟ, ପୋଷ୍ଟ
୨ । ପ୍ରକାଶିତ; ପ୍ରକଟିତ—
2. Evident. ୩ । ଜ୍ଞାନେନ୍ଦ୍ରିୟ-
ଗୋଚର—3. Perceptible to the senses.
୪ । ଜ୍ୟୋତିଷ ମତରେ ଗ୍ରହମାନଙ୍କ ସ୍ଫୁଟ ସାଧନ—4.
Clear calculation of the positions of the
planets at a fixed time or at a person's
birth. [ଦ୍ର—ଏ ସାଧନରେ ଜନ୍ମକାଳରେ କିମ୍ବା ଅନ୍ୟ
କୌଣସି ନିର୍ଦ୍ଦିଷ୍ଟ କାଳରେ କେଉଁ ଗ୍ରହ କେଉଁ ରାଶିରେ,
କେତେ ଅଂଶ,କେତେ କଳା, କେତେ ବିକଳାରେ ଅବସ୍ଥିତ
ଥିଲେ, ଏହା ସାଧିତ ହୁଏ—ହ. ଶ ।] ୫ । (ବ୍ୟାକରଣ)
କେତେକ ବର୍ଣ୍ଣର ଉଚ୍ଚାରଣରେ ଏକ ପ୍ରକାର ପ୍ରଯତ୍ନ,
ଯହିଁରେ ଦୁଇ ଓଠ ପରସ୍ପର ଛୁଅଁ ଛୁଇଁ ହୁଏ (ହ. ଶ)—
(grammar) The effort in pronouncing
some letters in which both the lips touch
one another. (ଯଥା—ପ, ବ, ମ)

ସ୍ପଷ୍ଟଇ(ହିଁ)—ଦେ. କ୍ରି. ବିଣ (ବଙ୍ଗଳାରୁ ଅନୁକୃତ) (ସଂ. ସ୍ପଷ୍ଟ+ହି)—
Spashṭai(hiṅ) ସାଫ୍; ସ୍ପଷ୍ଟରୂପେ—Clearly; apparently.
স্পষ্টই स्पष्टही

ସ୍ପଷ୍ଟ କଥନ—ସଂ. ବି (ବ୍ୟାକରଣ)—କଥକଙ୍କ କଥିତ ବାକ୍ୟ ତାଙ୍କ
Spashṭa kathana କହିବା ଅନୁସାରେ ଅନ୍ୟ ବ୍ୟକ୍ତିଙ୍କ
ଦ୍ୱାରା କଥନ ( ହ. ଶ )—The report of the
speech of a speaker exactly as he
delivered it.

ସ୍ପଷ୍ଟ କଥା—ଦେ. ବି—ସରଳ ସ୍ଫୁଟ ବାକ୍ୟ—
Spashṭa kathā Plain words.
স্পষ্ট কথা खुलीबात

ସ୍ପଷ୍ଟତୟା—ସଂ. କ୍ରି.ବିଣ (ପଣ୍ଡିତମାନଙ୍କ ଦ୍ୱାରା ଭାଷାରେ ବ୍ୟବହାର;ସ୍ପଷ୍ଟତା
Spashṭatayā ଶବ୍ଦର ୩ୟା ବିଭକ୍ତି)—ସ୍ପଷ୍ଟଭାବରେ; ସ୍ପଷ୍ଟତା
ସହକାରେ—Clearly,

ସ୍ପଷ୍ଟତା(ତ୍ୱ)—ସଂ. ବି (ସ୍ପଷ୍ଟ+ଭାବ. ତା, ତ୍ୱ)—ସ୍ପଷ୍ଟଭାବ—
Spashṭatā(twa) Clearness.

ସ୍ପଷ୍ଟ ପ୍ରଯତ୍ନ—ସଂ. ବି (ବ୍ୟାକରଣ)—ଦୁଇ ଓଠର ପରସ୍ପର ଛୁଇଁବାଦ୍ୱାରା
Spashṭa prajatna ଉଚ୍ଚାରଣ କରିବା କେତେକ ଓଷ୍ଠ୍ୟବର୍ଣ୍ଣର
ଉଚ୍ଚାରଣରେ ପ୍ରଯତ୍ନ—The effort required in
pronouncing some labial letters in which
both the lips touch one another.

ସ୍ପଷ୍ଟ ବକ୍ତା—ସଂ. ବଣ. ପୁଂ (ସ୍ପଷ୍ଟ ବକ୍ତୃ ୧ମା. ୧ବ)—ଯେ ସଫା କଥା
Spashta baktā କହେ; ଯେ କାହାର ମନ ରକ୍ଷା
(ସ୍ପଷ୍ଟବକ୍ତ୍ରୀ—ସ୍ତ୍ରୀ) କରିବାପାଇଁ ଦୃଷ୍ଟି ନ ଦେଇ ସ୍ୱୀୟ ମନୋଗତଭାବ
ପ୍ରକାଶ କରେ—Plain-spoken.

ସ୍ପଷ୍ଟବାଦୀ—ସଂ. ବଣ. ପୁଂ (ସ୍ପଷ୍ଟ+ବଦ ଧାତୁ+କର୍ତ୍ତୃ, ଇନ୍; ସ୍ପଷ୍ଟ-
Spashṭa bādi ବାଦିନ୍ ୧ମା ୧ବ)—ଯେ ସ୍ପଷ୍ଟ କଥା କହେ—
(ସ୍ପଷ୍ଟଭାଷୀ—ଅନ୍ୟରୂପ) Plainspoken.
(ସ୍ପଷ୍ଟବାଦିନୀ, ସ୍ପଷ୍ଟଭାଷିଣୀ—ସ୍ତ୍ରୀ)

ସ୍ପଷ୍ଟବାଦିତା (ତ୍ୱ)—ସଂ ବି.—ସ୍ପଷ୍ଟ କଥା କହିବାର ଗୁଣ—Plain-
Spashṭa bāditā (twa) spokenness.
[ସ୍ପଷ୍ଟଭାଷିତା (ତ୍ୱ)—ଅନ୍ୟରୂପ]

ସ୍ପଷ୍ଟ ଶ୍ରୁତ—ସଂ. ବଣ.—ସ୍ଫୁଟ ଭାବରେ ଶୁଣାଯିବା (କଥା, ଧ୍ୱନି)—
Spashṭa śruta Clearly audible.

ସ୍ପଷ୍ଟ ସ୍ଥିତି—ସଂ. ବି (ଫଳିତଜ୍ୟୋତିଷ)—ଶିଶୁର ଜନ୍ମକାଳରେ ରାଶି-
Spashṭa sthiti ମାନଙ୍କର ଅଂଶ, କଳା, ବିକଳା ଅବଧାରଣ
ପ୍ରଦର୍ଶିତ ଗ୍ରହମାନଙ୍କର ସ୍ପଷ୍ଟ ଅବସ୍ଥାନ (ହ. ଶ)—
(astrology) Exact position of the planets
or the zodiacal signs, giving the exact
degrees, minutes and seconds.

ସ୍ପଷ୍ଟ ସ୍ପଷ୍ଟ—ଦେ. କ୍ରି. ବଣ—ସଫା ସଫା; ସ୍ପଷ୍ଟଭାବରେ—Plainly
Spashta spashṭa bluntly; in a plain manner.
স্পষ্টাস্পষ্ট, স্পষ্ট স্পষ্ট साफ साफ

ସ୍ପଷ୍ଟାକ୍ଷର—ସଂ. ବି (କର୍ମଧା)—୧ । ବ୍ୟକ୍ତଭାବରେ ଲିଖିତ ଅକ୍ଷର;
Spashṭākshara ବିଶେଷ ହସ୍ତାକ୍ଷର—1. Distinctly
written script. ୨ । ସ୍ପଷ୍ଟ ବାକ୍ୟ—2. Plain
words.

ସ୍ପଷ୍ଟାକ୍ଷରରେ—ଦେ କ୍ରି. ବଣ—ସ୍ଫୁଟଭାବରେ—Clearly; in un-
Spashṭāksharare ambiguous terms; in
স্পষ্টাক্ষরে स्पष्टाक्षरमे plain terms.

ସ୍ପଷ୍ଟାର୍ଥ—ସଂ. ବି ( କର୍ମଧା )—ବ୍ୟକ୍ତୀକୃତ ଅର୍ଥ—Clear or Spashṭārtha apparent meaning.
ସଂ. ବିଣ ( ବହୁବ୍ରୀହି ) ବୋଧଗମ୍ୟ—(ସ୍ପଷ୍ଟାର୍ଥତା—ବି)—Intelligible.

ସ୍ପଷ୍ଟୀକୃତ—ସଂ. ବିଣ (ସ୍ପଷ୍ଟ+ଅଭୂତଭାବେ ଚ୍ୱି+କୃ ଧାତୁ+କର୍ମ. ତ)—Spashṭīkṛuta ବ୍ୟକ୍ତୀକୃତ—Made clear, (ସ୍ପଷ୍ଟୀକରଣ, ସ୍ପଷ୍ଟୀକ୍ରିୟା—ବି) elucidated.

ସ୍ପଷ୍ଟୀକ୍ରିୟା—ସଂ. ବି. (ଜ୍ୟୋତିଷ) ଯେଉଁ କ୍ରିୟା ବା ଗଣନାପଦ୍ଧତି ଦ୍ୱାରା Spashṭī kriyā କୌଣସି ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ କୌଣସି ଗ୍ରହ କେଉଁ ରାଶିର କେତେ ଅଂଶ, କେତେ କଳା ଓ କେତେ ବିକଳାରେ ଅବସ୍ଥିତ ହୋଇଥାଏ, ଏହା ସ୍ପଷ୍ଟରୂପେ ଜଣା ପଡେ (ଜ୍ୟୋ. ଶା)—(astronomy) The process by which the exact position of a planet in any zodiacal sign ( showing degrees, minutes and seconds ) at a particular point of time is found out.

ସ୍ପଷ୍ଟୀଭୂତ—ସଂ. ବିଣ (ସ୍ପଷ୍ଟ+ଅଭୂତତଭାବେ ଚ୍ୱି+ଭୂ ଧାତୁ+କର୍ତ୍ତୃ. Spashṭībhūta ତ)—ଯାହା ପୂର୍ବେ ସ୍ପଷ୍ଟ ହୋଇ ନ ଥିଲା, (ସ୍ପଷ୍ଟୀଭାବ—ବି) ବର୍ତ୍ତମାନ ସ୍ପଷ୍ଟ ହୋଇଅଛି—Become plain or evident.

ସ୍ପା—ବୈଦେ. ବି ( ଇଂ )—( ବେଲ୍‌ଜିଅମ୍‌ରେ ସ୍ପା ନାମ ସ୍ୱାସ୍ଥ୍ୟନିବାସର Spā ନାମରୁ)—ଧାତୁମିଶ୍ରିତ ସ୍ୱାସ୍ଥ୍ୟପ୍ରଦ ଜଳପୂର୍ଣ୍ଣ ନିର୍ଝରିଣୀ ସ୍ପା स्पा ଥିବା ସ୍ଥାନ—Spa; a place where there is a mineral spring of water, frequented as a health-resort.

ସ୍ପାନିଅର୍ଡ୍—ବୈଦେ. ବିଣ. ଓ ବି ( ଇଂ. ସ୍ପାନିଅର୍ଡ୍ )—ସ୍ପେନ୍ Spāniārd ଦେଶବାସୀ ( ବ୍ୟକ୍ତି )—Spaniard. স্পানিয়ার্ড स्पानियार्ड

ସ୍ପାନିଏଲ୍—ବୈଦେ. ବି. (ଇଂ. ସ୍ପାନିଏଲ୍ )—ଏକ ପ୍ରକାର ଶିକାରୀ Spāniel କୁକୁର—Spaniel. [ଦ୍ର—ଏ କୁକୁର ଅନ୍ୟ ଦେଶୀ স্পানিয়েল্ କୁକୁରମାନଙ୍କଠାରୁ ଆକାରରେ ଛୋଟ; ଲୋମ ୨।୩ ଇଞ୍ଚ स्पेनियल ଲମ୍ବ, କାନ ଝୁଲି ପଡ଼ିଥାଏ, ଦେହ ଧଳା, ନାଲି ବା ଧଳାକଳା ମିଶା ବର୍ଣ୍ଣର ଲୋମରେ ପୂର୍ଣ୍ଣ ।]

ସ୍ପାନିସ୍—ବୈଦେ. ବିଣ. (ଇଂ ସ୍ପାନିସ୍) ସ୍ପେନ୍ ଦେଶୀୟ—Spanish. Spānish স্পানিশ্ स्पेनिश

ସ୍ପାର୍ଟା—ଦେ. ବି. (ନାମ)—ପ୍ରାଚୀନ ଗ୍ରୀସ୍‌ର ଗୋଟିଏ ନଗର—Spartā Sparta, a town in ancient Greece. স্পার্টা [ଦ୍ର—ଏଠାର ଅଧିବାସୀମାନେ ମହା ବୀର ଥିଲେ । ।] स्पार्टा

ସ୍ପାର୍ଟାନ୍—ବୈଦେ. ବିଣ. (ଇଂ. ସ୍ପାର୍ଟାନ୍ )—ସ୍ପାର୍ଟା ଦେଶୀୟ—Spartān স্পার্টান स्पार्टान Spartan.

ସ୍ପିକର୍—ବୈଦେ. ବି. (ଇଂ. ସ୍ପିକର୍)—୧ । ପାର୍ଲିଆମେଣ୍ଟର ବୈଠକ Spikar ସମୟରେ ଶୃଙ୍ଖଳା ରକ୍ଷିବା ବ୍ୟକ୍ତି ବା ସଭାପତି—স্পিক(কা)র্ 1. The Speaker of the Parliament. स्पीकर ୨ । ଭାରତୀୟ ଓ ପ୍ରାଦେଶିକ ବ୍ୟବସ୍ଥାପକ ସଭାମାନଙ୍କର ସଭାପତି ସଭାପତି--2.The Speaker of the Provinciar and Imperial Assemblies of India. ୩ । କୌଣସି ସଭାର ବା ବୈଠକର ବକ୍ତା—3. A speakel in a meeting or gathering.

ସ୍ପିଚ୍—ବୈଦେ. ବି. ( ଇଂ. ସ୍ପିଚ୍ ) ୧ । ବକ୍ତୃତା—1. Speech; Spich lecture. ୨ । କଥା; କଥନ—2. Speech. স্পিচ্ स्पीच

ସ୍ପିଟ୍‌ସ୍ ବର୍ଜ(ର୍ଜେ)ନ୍—ବୈଦେ. ବି.(ନାମ)—ଉତ୍ତରମେରୁର ଉତ୍ତରଦିଗରେ Spiṭ-s barja (rje)n ଶୀତ ମହାସାଗରସ୍ଥ ଦ୍ୱୀପବିଶେଷ—স্পিটস্ বর্জন্ An island in the Arctic ocean;Spits- स्पीट्स बर्जन bergen.

ସ୍ପିନ୍ କିସ୍‌ମିସ୍—ବୈଦେ. ବି.—କ୍ୱେଟାର ପିଶିନ୍ ଅଞ୍ଚଳରେ ଜାତ ଏକ Spin kis-mis ପ୍ରକାର ଉତ୍କୃଷ୍ଟ କିସ୍‌ମିସ୍—A kind of পিসিন্ কস্‌মিস্ स्पीनकिसमिस excellent raisin. (ପିଶିନ୍ କିସ୍‌ମିସ୍—ଅନ୍ୟରୂପ)

ସ୍ପିରିଚୁଆଲିଜ୍‌ମ୍—ବୈଦେ. ବି—ମୃତ ବ୍ୟକ୍ତିଙ୍କ ଆତ୍ମାକୁ ଆହ୍ୱାନ ପୂର୍ବକ Spirichuāli j-m ତାଙ୍କ ସଙ୍ଗେ ଜୀବିତ ବ୍ୟକ୍ତିଙ୍କର ଭାବ ଆଦାନ স্পিরিচুঅলিজ্‌ম্ ପ୍ରଦାନ ଯେଉଁ ବିଦ୍ୟା ବା କ୍ରିୟା ଦ୍ୱାରା ସାଧିତ स्पिरिचुअलिज़म् ହୁଏ—Spiritualism.

ସ୍ପିରିଚୁଆଲିଷ୍ଟ—ବୈଦେ ବି—ମୃତ ବ୍ୟକ୍ତିଙ୍କ ଆତ୍ମାକୁ ଆହ୍ୱାନକାରୀ ବ୍ୟକ୍ତି Spirichuālisht —A spiritualist. স্পিরিচুআলিষ্ট स्पिरिचुआलिष्ट

ସ୍ପିରିଟ୍—ବୈଦେ, ବି. ( ଇଂ. ସ୍ପିରିଟ୍ ) ୧ । ଉଗ୍ର ସୁରା; ଅରକ୍ଷି—Spirit 1. Sprit. ୨ । ସୁରସାର—2. Essence. ୩ । ମନର স্পিরিট ସ୍ଫୂର୍ତ୍ତି; ଦମ୍; ଉତ୍ତେଜନା—3. Spirits; intellec- स्पिरिट tual activity. ୪ । ଜୀବନଶକ୍ତି; ଆତ୍ମା—4. The Vital Force; Soul. ୫ । ଭୂତ—5. Ghost. ୬ । ଶରୀରସ୍ଥ ଆତ୍ମା—6. The Soul or Spirit inside the body. ୭ । ସୂକ୍ଷ୍ମ ଶରୀର ମୃତ୍ୟୁ ପରେ ସ୍ଥୂଳ ଶରୀରରୁ ବାହାର ଯେଉଁ ଶରୀର ଶୂନ୍ୟରେ ବିଚରଣ କରେ—7. The astral body.

ସ୍ପୃ(ଧାତୁ)—ସଂ.—୧ । ପ୍ରୀତି ବା ସ୍ନେହ କରିବା—1. To love Spṛu(root) ୨ । ରକ୍ଷା କରିବା—2. To save. ୩ । ପାଳନ କରିବା—3. To bring up.

ସ୍ପୃକ୍—ସଂ. ବିଣ. ପୁଂ ଓ ସ୍ତ୍ରୀ (ସ୍ପୃଶ୍ ଧାତୁ+କର୍ତ୍ତୃ. କ୍ୱିପ୍; ସ୍ପୃଶ୍ ଶବ୍ଦ; Spṛuk ୧ମା. ୧ବ)—ସ୍ପର୍ଶୀ—Touching. [ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇଥାଏ । ଯଥା—ମର୍ମସ୍ପୃକ୍ ।]

ସ୍ପୃକ୍କା—ସ.ବି (ସ୍ପୃଶ୍ ଧାତୁ+କର୍ମ କ+ଆ)—୧। ପୃକ୍କା, ପିଡ଼ଙ୍ଗ ଶାଗ—Spṛukkā 1. A potherb; Trigonella Corniculata. ୨ । ଲଜ୍ଜାକୁ ଲତା (ଦ୍ର. ଶ)—2. Mimosa Pudica (creeper). ୩ । ଶତପତ୍ରୀ; ସେବତୀ ( ଦ୍ର. ଶ )—3. Musk rose.

ସ୍ପୃଶ୍(ଶି) (ଧାତୁ)—ସ—ଛୁଇଁବା—Spṛuś(śi) (root) To touch.

ସ୍ପୃଶା – ସ.ବ (ସ୍ପୃଶ୍ ଧାତୁ+ଭାବ.ଅ+ଆ)—୧। ସ୍ପର୍ଶ—1. Touch. Spruśā ୨। (+କର୍ମ.ଅ+ଆ) ସର୍ପାକ୍ଷୀ; ଭୁଜଙ୍ଗ ଘାତକ ବୃକ୍ଷ; କଣ୍ଟାଳକା ଗଛ—2. A medicinal plant. ୩। କଣ୍ଟକାରୀ (ହି.ଶ) 3. Kanṭakārī (See)

ସ୍ପୃଶୀ—ସ. ବ (ସ୍ପୃଶ୍ ଧାତୁ+କର୍ମ.ଅ+ଈ)—କଣ୍ଟକାରୀ(ଅମଙ୍କ)(ଦେଖ) Spruśī Kanṭakārī (See)

ସ୍ପୃଶ୍ୟ—ସ. ବଣ. ପୁଂ ( ସ୍ପୃଶ୍ ଧାତୁ+କର୍ମ. ଯ )—ସ୍ପର୍ଶ କରିବାର Spruśya ଯୋଗ୍ୟ—Fit to be touched; touchable. (ସ୍ପୃଶ୍ୟା—ସ୍ତ୍ରୀ) (ଅସ୍ପୃଶ୍ୟ—ବିପରୀତ)

ସ୍ପୃଷ୍ଟ—ସ. ବଣ. ପୁଂ ( ସ୍ପୃଶ୍ ଧାତୁ+କର୍ମ. ତ )—୧। କୃତସ୍ପର୍ଶ; Sprushṭa ଯାହା ଛୁଆଁ ଯାଇଅଛି—1. Touched. ୨। (ସ୍ପୃଷ୍ଟା—ସ୍ତ୍ରୀ) ଛୁଆଁ; ଅସ୍ପୃଶ୍ୟ ବସ୍ତୁର ସ୍ପର୍ଶ ଯୋଗୁଁ ଦୂଷିତ—2. Defiled by touch.

ସ୍ପୃଷ୍ଟକ—ସ. ବ ( ସ୍ପୃଶ୍ ଧାତୁ+ଭାବ.ତ+ସ୍ୱାର୍ଥେ. କ )—ଗାତ୍ର ସ୍ପର୍ଶ Sprushṭaka ପୂର୍ବକ ଆଲିଙ୍ଗନ—Embrace by touching the body.

ସ୍ପୃଷ୍ଟ ରୋଦନିକା—ସ. ବ—ଲଜ୍ଜାଳୁ ଲତା (ହି. ଶ)— Sprushṭa rodanikā Mimosa Pudica (creeper).

ସ୍ପୃଷ୍ଟା ସ୍ପୃଷ୍ଟ(ଷ୍ଟି)—ସ. ଅ—୧। ପରସ୍ପର ସ୍ପର୍ଶନ—1. Mutual Sprushṭā sprushṭa(shṭi) touching; touching each other. ୨। (ଯାହା ଅଧିକ ସ୍ଥାନରେ) ସମସ୍ତଙ୍କର ଅବାରିତ ଭାବରେ ସମସ୍ତଙ୍କୁ ଛୁଇଁବା—2. Promiscuous touching (e. g. in crowds).

ସ୍ପୃଷ୍ଟି—ସ. ବ (ସ୍ପୃଶ୍ ଧାତୁ+ଭାବ. ତି)—ସ୍ପର୍ଶ (ଶବ୍ଦ ରତ୍ନାବଳୀ)— Sprushṭi (ସ୍ପୃଷ୍ଟ—ବଣ) Touch.

ସ୍ପୃହ୍ (ଧାତୁ)—ସ—କୌଣସି ବସ୍ତୁ ପାଇଁ ଇଚ୍ଛା କରିବା—1. To Spruh (root) wish for. ୨। ଆକାଂକ୍ଷା କରିବା—2. To hanker after; to long for.

ସ୍ପୃହଣ—ସ. ବ (ସ୍ପୃହ୍ ଧାତୁ+ଭାବ. ଅନ)—ଇଚ୍ଛା; ଅଭିଳାଷ— Spruhana Desire; wish.

ସ୍ପୃହଣୀୟ—ସ. ବଣ. ପୁଂ (ସ୍ପୃହ୍ ଧାତୁ ଣିଚ୍=ସ୍ପୃହି ଧାତୁ+କର୍ମ. Spruhaṇiya ଅନୀୟ)—୧। ବାଞ୍ଛନୀୟ—1. Desirable. (ସ୍ପୃହଣୀୟା—ସ୍ତ୍ରୀ) ୨। ଲୋଭନୀୟ—2 Enviable. ୩। ଯାହା ଲୋଭ କରିବାର ଉପଯୁକ୍ତ—3. Fit to be longed for. ୪। ଶ୍ଲାଘ୍ୟ—4. Praiseworthy. ୫। ଅଦ୍ଭୁତ —5. Wonderful. ୬। ଗୌରବ ପାଇବାର ଯୋଗ୍ୟ (ହି. ଶ)—6. Respectable; honourable.

ସ୍ପୃହୟାଳୁ—ସ. ବଣ (ସ୍ପୃହ୍ ଧାତୁ+କର୍ତ୍ତୃ. ଆଳୁ)—୧। ସ୍ପୃହାଶୀଳ; Spruhayālu ଲୋଭୀ—1. Covetuous after. ୨। ଆକାଂକ୍ଷାଯୁକ୍ତ—2. Desirous.

ସ୍ପୃହା—ସ. ବ (ସ୍ପୃହ୍ ଧାତୁ, ଣିଚ୍=ସ୍ପୃହି ଧାତୁ=ଭାବ. ଅ+ଆ)— Spruhā ୧। ଇଚ୍ଛା; ଆକାଂକ୍ଷା; ଅଭିଳାଷ—1. Desire ଏହାର ଅପଭ୍ରଂଶ— longing. ୨। ଚିହ୍ନଟେଇ, ଲୋଭ— ସ୍ପରେହା, ସ୍ପରେହା। 2. Hankering after a thing. ୩। ଗଣନା—3. Calculation. ୪। (ନ୍ୟାୟ ଦର୍ଶନ)—କୌଣସି ପଦାର୍ଥର ପ୍ରାପ୍ତି ପାଇଁ ଧର୍ମାନୁକୂଳ କାମନା (ହି.ଶ) —4. (Nyāya philosophy) Pious desire to get a thing.

ସ୍ପୃହୀ—ସଂ. ବଣ. ପୁଂ ( ସ୍ପୃହ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ )— Spruhī ସ୍ପୃହାକାରୀ; ଅଭିଳାଷୀ—Hankering; desirous. (ସ୍ପୃହିଣୀ—ସ୍ତ୍ରୀ)

ସ୍ପୃହ୍ୟ—ସଂ. ବଣ ( ସ୍ପୃହ ଧାତୁ+କର୍ମ. ଯ )—ଯାହା ପାଇବା ପାଇଁ Spruhya ସ୍ପୃହା ଜନ୍ମାଏ—Desired; wished for; (ସ୍ପୃହ୍ୟା—ସ୍ତ୍ରୀ. ବଣ) hankered after. ସ. ବ— ବୀଜପୂର; ଟେଭ (ହି. ଶ)—Citron.

ସ୍ପେଆର୍ କପି—ବୈଦେ.ବ—କୌଣସି ପୁସ୍ତକର ବା ଲେଖାର ଅତିରିକ୍ତ Spear kapi ବା ଅଧିକ। ଖଣ୍ଡ—Spare copy of a book স্পেয়ার কাপি स्पेयार कौपी or writing.

ସ୍ପେନ୍—ବୈଦେ. ବ (ନାମ)—ଇଉରୋପର ଦକ୍ଷିଣ ପଶ୍ଚିମସ୍ଥ ରାଜ୍ୟ— Spen [ଦ୍ର—ଏହା ରାଜଧାନୀ ମାଡ୍ରିଡ୍।] Spain. স্পেন स्पेन

ସ୍ପେନୀୟ—ଦେ. ବଣ ( ଇଂ. ସ୍ପେନ୍+ସ. ଈୟ; ତୁଳନା କର Speniya ମଧୁସୂଦନ ରାଓଙ୍କ 'ଇଟାଲୀୟ ଯୁବା')—ସ୍ପେନ ଦେଶୀ স্পেনীয় स्पेनका Spanishସ୍ଥ

ସ୍ପେଲିଙ୍ଗ୍—ବୈଦେ. ବ (ଇଂ. ସ୍ପେଲିଙ୍ଗ୍)—ଶବ୍ଦର ବ ବାକ୍ୟର ବନାନ Speling স্পেলিঙ্গ स्पेलिङ्ग —Spelling.

ସ୍ପେଲିଙ୍ଗ୍ ମିଷ୍ଟେକ୍—ବୈଦେ ବ ( ଇଂ. ସ୍ପେଲିଙ୍ଗ୍ ମିଷ୍ଟେକ୍ )— Speling mishṭek ବନାନରେ ଭୁଲ; ବର୍ଣ୍ଣାଶୁଦ୍ଧି— (ସ୍ପେଲିଙ୍ଗ୍ ଭୁଲ୍—ଦେ. ରୂପ) Spelling mistake স্পেলিঙ্গ মিষ্টেক स्पेलिङ्ग मिष्टेक

ସ୍ପେଶ୍—ବୈଦେ. ବ. (ଇଂ. ସ୍ପେସ୍)—(ଛାପାଖାନା) ଦୁଇ ଧାଡ଼ିର ବା Speś ଦୁଇ ଶବ୍ଦର ବା ଦୁଇ ଅକ୍ଷରର ମଧ୍ୟରେ ଥିବା ସ୍ଥାନ— স্পেশ स्पेस (printing) Space.

ସ୍ପେଶ୍ ରଖିବା(ଦେବା, ଛାଡ଼ିବା)—ଦେ. କ୍ରି—(ଛାପାଖାନା) ଦୁଇ ଧାଡ଼ି Speś rakhibā(debā, chhāṛdibā) ବା ଶବ୍ଦ ମଧ୍ୟରେ ଥାନ স্পেশ রাখা ଛାଡ଼ିବା—(Printing) To leave a space स्पेस रखना between letters, words or lines.

ସ୍ପେଶ(ଶା, ଶ୍ୟ)ଲ୍—ବୈଦେ. ବଣ (ଇଂ. ସ୍ପେଶାଲ୍)—୧। ବିଶିଷ୍ଟ— Speśa(śā,śya)l 1. Special. ୨। ବିଶିଷ୍ଟ ଘଟନା ଉପଲକ୍ଷରେ [ସ୍ପେଶିଅ(ଆ)ଲ୍—ଅନ୍ୟରୂପ] ରଚିତ ବା ସଜ୍ଜିତ— স্পেশাল 2. Specially made or fitted. ବ—ସ୍ପେଶାଲ୍ स्पेशाल ଟ୍ରେନ୍ (ଦେଖ)—Speśal ṭren (See)

ସ୍ପେଶ(ଶା,ଶ୍ୟ)ଲ୍ ଟ୍ରେନ୍(ଗାଡ଼ି)—ବୈଦେ.ବ (ଇଂ.ସ୍ପେଶଲ୍ ଟ୍ରେନ୍)— Speśa(śā, śya)l ṭren(gāṛdi) ବିଶିଷ୍ଟ ଘଟଣା ଉପଲକ୍ଷରେ [ସ୍ପେଶିଅ(ଆ)ଲ୍ ଟ୍ରେନ୍(ଗାଡ଼ି)—ଅନ୍ୟରୂପ] ବା ବିଶିଷ୍ଟ ବ୍ୟକ୍ତିଙ୍କ স্পেশাল ট্রেন ପାଇଁ ଚାଳିତ ରେଳ ଗାଡ଼ି—Special train. इस्पिसल गाडी

ସ୍ପେସିମେନ୍—ବୈଦେ. ବ. ( ଇଂ ସ୍ପେସିମେନ୍ )—ଦସ୍ତଖତର ବା Spesimen ପୁସ୍ତକର ପୃଷ୍ଠାର ନମୁନା—Specimen (of ସ୍ପେଶିମେନ स्पेसिमैन signature or page of a book). [ଢ଼—ସ୍ପେସିମେନ୍ ପେଜ୍ (Page=ପୃଷ୍ଠା); ସ୍ପେସିମେନ୍ ସିଗ୍ନେଚର୍ (Signature=ଦସ୍ତଖତ)] ।

ସ୍ପୃଷ୍ଟା—ସ. ବ. (ସ୍ପୃଶ୍ ଧାତୁ+କର୍ତ୍ତୃ ତୃ; ସ୍ପ୍ରଷ୍ଟୃ ୧ମା. ୧ବ.)—Sprashtā ଉପତାପକମାତ୍ର; ରୋଗ (ଅମର; ଭରତ)—Disease; sickness.

ସ୍ପ୍ରିଙ୍ଗ୍—ବୈଦେ. ବ (ଇଂ)—୧ । ଧାତୁର ପତଳା ଲମ୍ବ ସ୍ଥିତିସ୍ଥାପକ Spring ବସ୍ତୁ—1. Spring. ୨ । ଗାଡ଼ି ଅବର କମାଣି—ସ୍ପ୍ରିଂ स्प्रिंग (ସ୍ପ୍ରିଂ—ଅନ୍ୟରୂପ) 2. The spring of a carriage.

ସ୍ପ୍ରିଙ୍ଗ୍‌ଦାର୍ (ବାଲା)—ବୈଦେ. ବଣ (ଇଂ. ସ୍ପ୍ରିଙ୍ଗ +ପା. ଦାର୍, Sprinig dār(bālā) ଯୁକ୍ତ)—ସ୍ପ୍ରିଙ୍ଗ ଲଗିଥିବା (ଯଥା ଘଡ଼ି, ସ୍ପ୍ରିଙ୍ଗଦାର स्प्रिंगदार କଳ, ଗଦି)—Having spring; [ସ୍ପ୍ରିଂଦାର(ବାଲା)—ଅନ୍ୟରୂପ] springed.

ସ୍ପ୍ରେ—ବୈଦେ. ବ. (ଇଂ)—ଜଳୀୟ ବସ୍ତୁକୁ ଖୁବ୍ ସୂକ୍ଷ୍ମ କଣାରେ ଛାଡ଼ିବା Spre ସ୍ପ୍ରେ स्प्रे ପାଇଁ ବ୍ୟବହୃତ ପିଚକାରୀ—Spray.

ସ୍ପ୍ଲିଣ୍ଟ୍—ବୈଦେ. ବ. (ଇଂ)—(ପାଶ୍ଚାତ୍ୟ ଚିକିତ୍ସା)—ଭାଙ୍ଗି ଯାଇଥିବା Splint ହାଡ଼ମାନଙ୍କୁ ଯୋଡ଼ିକରି ବସାଇବା ପରେ ଯୋଡ଼ା ସ୍ପ୍ଲିଣ୍ଟ स्प्लिंट ହୋଇଥିବା ହାଡ଼ମାନଙ୍କୁ ଠିକ୍ ଅବସ୍ଥିତିରେ ରଖିବା ପାଇଁ ବ୍ୟବହୃତ କାଠର ବା ଧାତୁର ଲମ୍ବ ଖଣ୍ଡ—(Surgery) Splint.

ସ୍ଫଟ୍ (ଧାତୁ)—ସଂ.—୧ । ଶୀର୍ଣ୍ଣ ହେବା—To wither. ୨ । Sphaṭ (root) ସ୍ଫୀତ କରିବା—2. To inflate.

ସ୍ଫଟ (ଟା)—ସଂ. ବ.—(ସ୍ଫଟ୍ ଧାତୁ+କର୍ମ ଅ; ଆ)—ସର୍ପର ଫଣା, Sphaṭa (ṭā) (ଅମର)—The hood of a serpent

ସ୍ଫଟି (ଟୀ)—ସଂ. ବ.—( ସ୍ଫଟ୍ ଧାତୁ+କର୍ମ ଇ; ଈ )—ଫିଟିକିରି—Sphaṭi(ṭī) Alum.

ସ୍ଫଟି (ଟୀ) କ—ସଂ ବ. (ସ୍ଫଟ୍ ଧାତୁ=ଭେଦ କରିବା+କର୍ତ୍ତୃ ଇକ; ବା Sphaṭi(ṭī)ka ସ୍ଫଟି+ସମାନାର୍ଥେ କ)—୧ । ଶୁଭ୍ର ସ୍ୱଚ୍ଛ ପ୍ରସ୍ତର ପ୍ରଥମ ଅର୍ଥରେ ଅନ୍ୟ ସଂସ୍କୃତ ବିଶେଷ—1. Crystal; quartz. ନାମ—ସ୍ଫାଟିକ, ସ୍ଫାଟକ, ୨ । ସୂର୍ଯ୍ୟକାନ୍ତ ମଣି—2. The sun-ଭସ୍ମର, ସ୍ଫଟିକୋପଳ, stone. ୩ । କାଚ (ହୃ.ଶ)—ଶାଳଗିଷ୍ଟ, ଦୌତଶିଳ, 3. Glass. ୪ । ଫିଟିକିରି (ହୃ.ଶ)—ସିତୋପଳ, ଵିମଳମଣି. 4. Alum. ୫ । କର୍ପୂର (ହୃ.ଶ)—କର୍ମଲୋପଳ, ସ୍ୱଚ୍ଛ, ସ୍ୱଚ୍ଛମଣି, 5. Camphor. ୬ । ବଣ.—ଅମର ରତ୍ନ, କସ୍ତୁ ଷ ରତ୍ନ, ସ୍ଫଟିକ ପରି ସ୍ୱଚ୍ଛ—Transperent स्फटिक, फटिक फटिक as crystal. [ଢ଼—'ସ୍ଫଟିକ ଜଳ ଦେ' 'ସ୍ଫଟିକ ଜଳ ଦେ' ସ୍ୱବନ୍ଧ, ସ୍ୱଚ୍ଛ ତରଙ୍ଗେ—କନକଲଶୋର. ଶର୍ମିଷ୍ଠା]

ସ୍ଫଟିକ କ୍ଷା(ଖା)ର—ଦେ. ବ—ଟାଙ୍ଗଣା (ହରେକୃଷ୍ଣ 'ଦ୍ରବ୍ୟଗୁଣ')—Sphaṭika kshā(khā)ra Borax. स्फटिकक्षार सोहागा

ସ୍ଫଟିକ ନନ୍ଦୀ—ସଂ. ବଣ.—ସ୍ଫଟିକ ଅପେକ୍ଷା ସ୍ୱଚ୍ଛତର—More Sphaṭika nindī transparent than quartz.

ସ୍ଫଟିକ ବିଷ—ସଂ.ବ.—ଦାରୁ ମୁଷ୍ଟ (ହୃ ଶ)—Aconite; bellebore. Sphaṭika bisha

ସ୍ଫଟିକ ମୟ—ସଂ. ବଣ.—ସ୍ଫଟିକ ନିର୍ମିତ—Made of crystal. Sphaṭika maya

ସ୍ଫଟିକ ସ୍ତମ୍ଭ—ସଂ. ବ.—ସ୍ଫଟିକ ନିର୍ମିତ ସ୍ତମ୍ଭ—Pillar or column Sphaṭika stambha of quartz.

ସ୍ଫଟିକା—ସଂ. ବ—ସ୍ଫଟିକାରି; ଫିଟକିରି (ଭାବ ପ୍ରକାଶ)—Alum. Sphaṭikā

ସ୍ଫଟିକାଚଳ—ସଂ. ବ.—କୈଳାସ ପର୍ବତ ( ହେମଚନ୍ଦ୍ର )—The Spaṭikāchala Kailāsa mountain. (ଦ୍ର—ଏହା (ସ୍ଫଟିକମନ୍ଦ୍ର—ଅନ୍ୟରୂପ) ଦୂରରୁ ସ୍ଫଟିକମୟ ପରି ଦେଖାଯାଏ]—

ସ୍ଫଟିକାଦ୍ରିଭିଦ୍—ସଂ. ବ.—(ସ୍ଫଟିକାଦ୍ରି=କୈଳାସ ପର୍ବତ+ଭିଦ୍ Sphaṭikādribhid ଧାତୁ=ଲଙ୍ଘିତ ହେବା+କର୍ତ୍ତୃ କ୍ୱିପ୍) କର୍ପୂର (ରାଜ ନିର୍ଘଣ୍ଟ)—Camphor.

ସ୍ଫଟିକାରି (ରୀ)—ସଂ ବ.—ଫିଟକିରି—Alum Sphaṭikāri(rī)

(ସ୍ଫଟିକା, ସ୍ଫଟିକାରିକା—ଅନ୍ୟରୂପ )—[ଦ୍ର—ଏହା କଟୁ, ସ୍ନିଗ୍ଧ, ଅନ୍ୟ ସସ୍ତୁତ—କଷାୟ, ପ୍ରଦର,ମେହ,ମୂତ୍ରକୃଚ୍ଛ୍ର,ବମି ଓ ଶୋଷନାଶକ, ରକ୍ତଦା, ରଙ୍ଗଦୃଢ଼ା, ବାତ ପିତ୍ତ କଫ କ୍ଷୟକର, ଯୋନିସଂକୋଚକ, ଦୃଢ଼ରଙ୍ଗା, ରଙ୍ଗାଗା ଓ ମୁଖରୋଗରେ ହିତକର । ଏହାଦ୍ୱାରା ସ୍ୱର୍ଣ୍ଣାଦି ଧାତୁର ରଙ୍ଗ ଦୃଢ଼ ହୁଏ । ]

ସ୍ଫଟିକାଧାର—ସଂ. ବ (ଷ. ତ. ସ୍ଫଟିକ+ଆଧାର)—ସ୍ଫଟିକନିର୍ମିତ Sphaṭikādhāra ପାତ୍ର—A pot made of crystal

ସ୍ଫଟିକାଭ୍ର—ସଂ ବ—କର୍ପୂର—Sphaṭikābhra Camphor.

ସ୍ଫଟିକୀ—ସ. ବ—ଟାଙ୍ଗଣା—Sphaṭikī (ସ୍ଫଟିକାରିକା—ଅନ୍ୟରୂପ) Borax.

ସ୍ଫଟିକୋପମ—ସଂ. ବଣ (ବହୁବ୍ରୀହି; ସ୍ଫଟିକ ସଙ୍ଗେ ଉପମା ହୁଏ ଯାହାର) Sphaṭikopama ସ୍ଫଟିକ ସଙ୍ଗେ ତୁଳନୀୟ—Crystal—(ସ୍ଫଟିକୋପମା—ସ୍ତ୍ରୀ. ବଣ) like. ସ. ବ—୧ । କର୍ପୂର (ହୃ. ଶ)—1. Camphor. ୨ । ଦସ୍ତା ଧାତୁ (ହୃ. ଶ) 2. Zinc. ୩ । ଚନ୍ଦ୍ରକାନ୍ତ ମଣି ( ହୃ. ଶ )—3. Moonstone.

ସ୍ଫଟୀ—ସ. ବ—ଫିଟକିରି—Sphaṭi Alum.

ସ୍ଫଡ଼ (ଧାତୁ)—ସ—ପରିହାସ କରିବା—Sphaṛd (root) To joke.

ସ୍ଫର(ଧାତୁ)—ସ—୧ । ସ୍ଫୁରଣ କରିବା—1. To flash. ୨ । ଚଳିବା. 2. Sphar (root) To move.

ସ୍ଫରଣ—ସ. ବ (ସ୍ଫର୍ ଧାତୁ+ଭାବ. ଅନ)—ସ୍ଫୁରଣ (ଦେଖ)—Spharaṇa Sphuraṇa (See)

ସ୍ଫଲ୍ (ଲ୍) (ଧାତୁ)—ସ—ସ୍ଫୁରଣ କରିବା—Sphal (l)(root) To flash.

ସ୍ଫାଟକ—ସଂ. ବ—(ସ୍ଫଟ୍ ଧାତୁ+କର୍ତ୍ତୃ ଅକ)—୧ । ସ୍ଫଟିକ (ହ. ଶ)—
Sphāṭaka 1. Crystal. ୨। ଜଳବିନ୍ଦୁ—2. Water-drop

ସ୍ଫାଟିକ—ସଂ ବଣ (ସ୍ଫଟିକ+ସମ୍ବନ୍ଧାର୍ଥେ ଅ)—ସ୍ଫଟିକସମ୍ବନ୍ଧୀୟ—
Sphāṭika Crystalline

ସ୍ଫାତ—ସଂ. ବଣ—( ସ୍ଫାଇ ଧାତୁ = ବୃଦ୍ଧି ପାଇବା + କର୍ତ୍ତୃ ତ )—ବୃଦ୍ଧିପ୍ରାପ୍ତ; ସ୍ଫୀତ—In-
Sphāta creased; swollen.

ସ୍ଫାୟ୍ (ର) (ଧାତୁ)—ସ.—୧ । ବୃଦ୍ଧି ପାଇବା—1. To increase.
Sphāy (r) [root) ୨ । ଉନ୍ନତିଯୁକ୍ତ ହେବା—2. To improve. ୩ । ଫୁଲିବା—3. To swell.

ସ୍ଫାର—ସ.ବଣ—(ସ୍ଫାୟ୍ ଧାତୁ=ବୃଦ୍ଧିପାଇବା+କର୍ତ୍ତୃ ର, କିଂବା ସ୍ଫାର
Sphāra ଧାତୁ=ବୃଦ୍ଧିପାଇବା+କର୍ତ୍ତୃ ଅ)—୧ । ବୃଦ୍ଧିପ୍ରାପ୍ତ—
1. Increased; enhanced. ୨। ବିସ୍ତୃତ—
2. Extended; extensive ୩ । ପ୍ରଚୁର (ଶବ୍ଦପ୍ରସାଦ)
3. Sufficient; abundant; ample ୪ । ବିପୁଳ, ବୃହତ୍ (ହେମଚନ୍ଦ୍ର)—4. Big, large; wide. ୫ । ବିକଟ (ମେଦିନୀ)—5. Hideous; fierce. ସ. ବ
୧ । ସ୍ଫୁରଣ; ପ୍ରକାଶ—1. Exhibition; flashing; manifestation. ୨ । କନକାଦି ଧାତୁର ବୁଦ୍‌ବୁଦ (ମେଦିନୀ)—2. Drops or bubbles of molten gold or other metal.

ସ୍ଫାରଣ—ସଂ ବ. (ସ୍ଫୁର ଧାତୁ ଣିଚ୍=ସ୍ଫାର ଧାତୁ+ଭାବ ଅନ)—୧
Sphāraṇa ବଢ଼ାଇବା—1. Widening; increasing, enhancing. ୨ । ବିସ୍ତାର କରିବା—2. Extending. ୩। ସ୍ଫୁରଣ (ଦେଖ)—3. Sphuraṇa (See)

ସ୍ଫାର ଦର୍ପଣ—ସଂ. ବ—ବଡ ଆରସି—
Sphāra darpaṇa Big mirror.

ସ୍ଫାରିତ—ସଂ. ବଣ (ସ୍ଫାର ଧାତୁ, ଣିଚ+କର୍ମ ତ)—୧ । ବିସ୍ଫାରିତ
Sphārita 1. Widened ୨ । ବିସ୍ତାରିତ—2. Extended.

ସ୍ଫାନ—ସଂ. ବ (ସ୍ଫଲ ଧାତୁ=ସ୍ଫୁର୍ତ୍ତିପାଇବା+ଭାବ ଅ)
Sphāna ୧ । ସ୍ଫୁର୍ତ୍ତି; ସ୍ଫୁରଣ—1. Flashing ୨ । ଅହଙ୍କାର—
2. Boasting.

ସ୍ଫିକ୍—ସଂ. ବ (ସ୍ଫାୟ୍ ଧାତୁ+କର୍ତ୍ତୃ ଇକ୍, ଙିତ୍ ୧ମା. ୧ବ)—ପିଣ୍ଡ;
Sphic କଟିପ୍ରୋଥ—Buttocks.

ସ୍ଫିକ୍‌ଘାତନକ—ସ. ବ.—କଟ୍‌ଫଳ; କାଫଳ—
Sphik-ghatanaka Myrica Sapida: (plant)

ସ୍ଫିଟ୍(ଧାତୁ)—ସଂ.—ରତିକରିବା—
Sphiṭ (root) To cohabit.

ସ୍ଫିର—ସ. ବଣ (ସ୍ଫାୟ୍ ଧାତୁ+କର୍ତ୍ତୃ ଇର)—ପ୍ରଚୁର—
Sphira Sufficient; abundant.

ସ୍ଫିର ଧନ—ସଂ. ବଣ. ପୁଂ (ବହୁବ୍ରୀହି) ଯାହାର ବହୁଧନ ଅଛି—
Sphira dhana Having abundant riches.
(ସ୍ଫିରଧନା—ସ୍ତ୍ରୀ)

ସ୍ଫୀତ—ସଂ. ବଣ ( ସ୍ଫାୟ୍ ଧାତୁ+କର୍ତ୍ତୃ ତ )—୧ । ପ୍ରବୃଦ୍ଧ; ବଢ଼ିଥିବା;
Sphīta ବର୍ଦ୍ଧିତ—1. Increased. ୨ । ସମୃଦ୍ଧ
(ସ୍ଫୀତି, ସ୍ଫୀତତା—ବ (ଭାଗବତ)—2. Grown rich or prosperous. ୩ । ଫୁଲିଥିବା—
3. Swollen; bloated.

ସ୍ଫୀତ ବକ୍ଷଃ—ସଂ. ବ ( କର୍ମଧା )—୧ । ଫୁଲିଥିବା ଛାତି—
Sphīta bakshah 1. Expanded breast.
୨ । ଗର୍ବୋନ୍ନତ ଛାତି—2. Bloated breast.
ସଂ. ବଣ (ବହୁବ୍ରୀହି) ହର୍ଷ ବା ଗର୍ବଦ୍ୱାରା ଯାହାର ଛାତି ଫୁଲି ଉଠିଅଛି: ହର୍ଷୋତ୍‌ଫୁଲ୍ଲ ବା ଗର୍ବୋତ୍‌ଫୁଲ୍ଲ—
Having one's breast expanded through pride or joy.

ସ୍ଫୀତ ହେବା—ଦେ. କ୍ରି—ଫୁଲିବା—
Sphīta heba To swell; to heave.
स्फीत हओया स्फीत होना

ସ୍ଫୀତି—ସଂ. ବ [ ସ୍ଫାୟ୍ ଧାତୁ+ଭାବ ତି ]—୧ । ପ୍ରବୃଦ୍ଧି—
Sphīti 1. Increase. ୨ । ଶୋଥ—2. Dropsy;
[ସ୍ଫୀତି—ବଣ] plethora. ୩ । ଫୁଲା—
3. Swelling. ୪ । ଉନ୍ନତି—4. Improvement.

ସ୍ଫୀତୋଦର—ସଂ. ବ—୧ । [ କର୍ମ ] ଫୁଲା ପେଟ—1. Swollen
Sphītodara belly. ୨ । [ ବହୁବ୍ରୀହି ]
ପେଟ ଫମ୍ପା ରୋଗ—2. Tympanites. ସଂ. ବଣ.
[ସ୍ଫୀତୋଦରା—ସ୍ତ୍ରୀ] ପୁଂ [ବହୁବ୍ରୀହି]—ଯାହାର ପେଟ ଫାମ୍ପିଛି—
Having the belly swollen.

ସ୍ଫୁଟ୍ [ ଧାତୁ ]—ସଂ.—୧ । ବିକସିତ ହେବା; [ଫୁଲ] ଫୁଟିବା—
Sphuṭ (root) 1. To blow; to expand (said of a flower) ୨ । ପରିହାସ କରିବା—2. To joke.
୩ । ବ୍ୟକ୍ତ ହେବା—3. To be manifest.
୪ । ଫୁଟାଇବା; ଭେଦ କରିବା—4. To pierce.
୫ । ବିଦୀର୍ଣ୍ଣ ହେବା—5. To be split- ୬। ଫାଟିଯିବା-
6. To burst.

ସ୍ଫୁଟ—ସଂ. ବଣ [ସ୍ଫୁଟ୍ ଧାତୁ+କର୍ତ୍ତୃ ଅ]—୧ । ପ୍ରସ୍ଫୁଟିତ; ବିକସିତ;
Sphuṭa ପ୍ରଫୁଲ୍ଲ [ମେଦିନୀ]—1. Fully blown.
[ ସ୍ଫୁଟିତା—ବ ] [ଉ—ଅଳିକୁଳ ପୁଅ ଭୁସୁମ ସ୍ଫୁଟେ
[ ଏଥିର ଅପଭ୍ରଂଶ—ଫାଟିବା, ଫୁଟିବା ] ଚମ୍ପକ କର ପରିବେଶ ଲୁଚେ—ପ୍ରାଚୀ ରସଚାରିଥ । ] ୨ । ବ୍ୟକ୍ତ; ସ୍ପଷ୍ଟ [ମେଦିନୀ]—2. Manifest; distinct. ୩ । ବିଶଦ-
3. Clear; plain; obvious. ୪ । ପ୍ରଦୀପ୍ତ—
4. Lighted. ୫ । ବିଦୀର୍ଣ୍ଣ—5. Pierced; lacerated. ୬ । ଭିନ୍ନ ( ଶବ୍ଦକଳ୍ପଦ୍ରୁମ )—
6. Separated. ୭ । ଫାଟି ଯାଇଥିବା—
7. Burst; split. ୮ । ନିଶ୍ଚିତ—8. Sure; ascertained. ୯ । ଶୁକ୍ଳ [ ଅଜୟ ]—

9. White. ୧୦ । ଶୁଭ୍ର—10. Bright. ୧୧ । ନିର୍ମଳ—11. Clean. ୧୨ । ରନ୍ଧ୍ରଯୁକ୍ତ; ଫୁଟା—12. Having holes; perforated. ୧୩ । ସ୍ୱତନ୍ତ୍ର (ହି. ଶ)—13. Separate; distinct. ସଂ. ବି—୧ । ସର୍ପର ଫଣା—1. The expanded hood of a serpent. ୨ । ଜନ୍ମ ସମୟରେ କେଉଁ କେଉଁ ଗ୍ରହର କେଉଁ କେଉଁ ରାଶିରେ କେତେ ଅଂଶ, କେତେ କଳା, କେତେ ବିକଳାରେ ଅବସ୍ଥିତି, ଜନ୍ମ କୁଣ୍ଡଳୀରେ ଏଥିର ପ୍ରଦର୍ଶନ [ ହି. ଶ. ]—2. Showing in the horoscope the positions of different planets in degrees, minutes and seconds in the different zodiacal signs at the time of one's birth.

**ସ୍ଫୁଟକ**—ସଂ. ବି—ଜ୍ୟୋତିଷ୍ମତୀ ଲତା [ହି. ଶ]
Sphuṭaka Cardiospermum Helicacabum plant.

**ସ୍ଫୁଟ ଗଣନା**—ସଂ. ବି.—(ଜ୍ୟୋତିଷ)—ଗ୍ରହମାନଙ୍କର ଦୃଶ୍ୟମାନ ଗତି ବା
Sphuṭa gananā ବା ସ୍ଥିତି ଛଡ଼ା ପ୍ରକୃତ ଅବସ୍ଥିତି ସ୍ଥିର କରିବା ରୂପ ଗଣନା—(Astronomy) Calculation of the true motion or position of planets, as distinct from the apparent motion or position. [ଦ୍ର—ଯେତେବେଳେ ଆଖିକୁ ସୂର୍ଯ୍ୟ ବୃତ୍ତ ନ ଥିବାପରି ଦେଖାଯାଏ, ପ୍ରକୃତରେ ସେତେବେଳେ ସୂର୍ଯ୍ୟ ବୃତ୍ତ ଯାଇଥାଏ ଓ ଅଦ୍ଧବୃତ୍ତ ତଳକୁ ଯାଇଥାଏ; କିନ୍ତୁ ବାୟୁମଣ୍ଡଳର ପ୍ରତିଫଳନ (refraction) ଯୋଗୁ ତାହା ଉଚ୍ଚମଣ୍ଡଳର ଉପରେ ଆଖିକୁ ଦେଖାଯାଏ । ]

**ସ୍ଫୁଟ ଗତି**—ସଂ. ବି—(ଜ୍ୟୋତିଷ)—ଗ୍ରହମାନଙ୍କ ପ୍ରକୃତ ଗତି—The
Sphuṭa gati true motion of planets. [ଦ୍ର—ଔଦୟିକ ବା ମଧ୍ୟାହ୍ନକାଳୀନ (କିମ୍ବା ମଧ୍ୟରାତ୍ରୀୟ) ସ୍ଫୁଟଗ୍ରହ ଓ ପରଦିନର ଔଦୟିକ, ମାଧ୍ୟାହ୍ନିକ ବା ମାଧ୍ୟରାତ୍ରିକ ସ୍ଫୁଟଗ୍ରହର ଅନ୍ତରକୁ ସ୍ଫୁଟଗତି ଅଟେ । ସୂକ୍ଷ୍ମ ତାହାଙ୍କ ସ୍ଫୁଟଗତି ଆଣିବାକୁ ହେଲେ 'ମନ୍ଦକେନ୍ଦ୍ର' ଗତିକୁ ମନ୍ଦକେନ୍ଦ୍ରର କୋଟିଫଳ ଦ୍ୱାରା ଗୁଣି ତ୍ରିଜ୍ୟା ଦ୍ୱାରା ଭାଗ କଲେ ମନ୍ଦଗତିଫଳ ଆସେ । ଏହି ଗତିଫଳକୁ କର୍କାଦି କେନ୍ଦ୍ରରେ ମଧ୍ୟଗତିରେ ଯୋଗକଲେ ଓ ମକରାଦି କେନ୍ଦ୍ରରୁ ବିଯୋଗ କଲେ ତାହାଙ୍କ ମନ୍ଦସ୍ଫୁଟଗତି ହୁଏ । ସିଦ୍ଧାନ୍ତ ଶିରୋମଣି ଓ ସିଦ୍ଧାନ୍ତ ଦର୍ପଣରେ ଏହି ବିଷୟମାନଙ୍କର ଉଲ୍ଲେଖ ଅଛି । ] ( ସନ୍ଦର୍ଭ ଲେଖକ ଶ୍ରୀ ବାଇକୋଳି ମହାପାତ୍ର ଜ୍ୟୋତିଷଭୂଷଣ । )

**ସ୍ଫୁଟ ଗ୍ରହ**—ସଂ. ବି—(ଜ୍ୟୋତିଷ)—ଗ୍ରହମାନଙ୍କର ଦୃଶ୍ୟମାନ ଅବସ୍ଥିତିର
Sphuṭa graha ନିର୍ଣ୍ଣୟ—The ascertaining of the true positions of the planets in the Zodiac. [ ଦ୍ର—ଗ୍ରହମାନଙ୍କ ଗତି ପ୍ରଥମେ 'ମଧ୍ୟମାଧିକାର'ରେ ସ୍ଥିର କରାଯାଇ ପରେ 'ସ୍ଫୁଟ' କରାଯାଏ । ଏହାର ବିଷୟମାନ 'ସିଦ୍ଧାନ୍ତ ଶିରୋମଣି' ଓ 'ସିଦ୍ଧାନ୍ତ ଦର୍ପଣ'ରେ ଉକ୍ତ ଅଛି । ମଧ୍ୟମ ଗତିରୁ ସ୍ଫୁଟ ଗତି ସ୍ଥିର କରି ନ ଗଲେ, କେବଳ ମଧ୍ୟମ ଗତି ବା ଅବସ୍ଥିତିରୁ ଧରି କୌଣସି କାର୍ଯ୍ୟ କରଣୀୟ ନୁହେ ।

ଫଳିତ ଜ୍ୟୋତିଷରେ ସ୍ଫୁଟଗ୍ରହ ନ ଆଣିଲେ ଗ୍ରହମାନଙ୍କର ବର୍ଗାଦି ଓ ଦୃଷ୍ଟ୍ୟାଦି ବଳ ନିର୍ଣ୍ଣିତ ହୋଇ ନ ପାରେ । ତେଣୁ ସ୍ଫୁଟ ଆଣିବା ସର୍ବାଦୌ ଉଚିତ । ପଞ୍ଜିକାରେ ସାଧାରଣତଃ ପ୍ରତ୍ୟେକ ଦିନର ଔଦୟିକ ସ୍ଫୁଟଗ୍ରହ ଦିଆଯାଇ ଥାଏ । ଏଥିରୁ ଯେ ଦିନର ଯେକୌଣସି ସମୟର ସ୍ଫୁଟଗ୍ରହ ଅଣାଯାଇପାରେ । ପର ଦିନର ଔଦୟିକ ସ୍ଫୁଟରୁ ଆବଶ୍ୟକ ଦିନର ଔଦୟିକ ସ୍ଫୁଟ ବାଦ୍ ଦେଲେ ଗ୍ରହର ଦୈନିକ ସ୍ଫୁଟଗତି ବାହାରେ । ଦିନକର ଗତି ଜଣାଗଲେ, ତେତିକି ଦଣ୍ଡକର ବା ଲିପ୍ତାକର ଗତି ମଧ୍ୟ ଅଣାଯାଇ, ଆବଶ୍ୟକ କାଳ ଉଦୟଠାରୁ ଯେତେ ଦଣ୍ଡ ଯେତେ ଲିପ୍ତା ( ବା ଘଣ୍ଟା, ମିନିଟ ) ହେଲା, ସେ ସମସ୍ତ ଗତି ହିସାବ କରି ଔଦୟିକ ସ୍ଫୁଟରେ ଯୋଗ କଲେ ଆବଶ୍ୟକକାଳୀନ ସ୍ଫୁଟଗ୍ରହ ବାହାରେ । ]
(ସନ୍ଦର୍ଭ ଲେଖକ—ଶ୍ରୀ ବାଇକୋଳି ମହାପାତ୍ର ଜ୍ୟୋତିଷଭୂଷଣ )

**ସ୍ଫୁଟତା (ତ୍ୱ)**—ସଂ. ବି ( ସ୍ଫୁଟ+ଭାବେ. ତା,ତ୍ୱ )—୧ । ସ୍ପଷ୍ଟତା—
Sphuṭatā (twa) 1. Clearness; distinctness. ୨ । ଶୁଭ୍ରତା—2. Brightness.

**ସ୍ଫୁଟତ୍ୱଚ୍**—ସଂ. ବି—ଜ୍ୟୋତିଷ୍ମତୀ—Cardiospermum Heli-
Sphuṭa twachā cacabum (plant)

**ସ୍ଫୁଟଧ୍ୱନି**—ସଂ. ବି—( ବହୁବ୍ରୀହି )—ଧଳା କପୋତ ( ହି. ଶ )
Sphuṭa dhwani The white dove.

**ସ୍ଫୁଟନ**—ସଂ. ବି. ( ସ୍ଫୁଟ ଧାତୁ+ଭାବ ଅନ )—୧ । ( ପୁଷ୍ପାଦିର )
Sphuṭana ବିକାଶନ; ଫୁଟିବା; ବିକଶିବା—1. Expanding, blowing, opening (of flowers). ୨ । ଫାଟିଯିବା ବିଦାରଣ—2. Splitting; bursting. ୩ । ଫୁଟିଯିବା; ଛିଦ୍ର ଯୁକ୍ତ ହେବା—3. Perforation. ୪ । ଫୁଟାଇବା; ବେଧନ, ଭେଦନ—4. Piercing. ୫ । ବ୍ୟକ୍ତ ହେବା—5. Being manifest, clear or distinct.

ଦେ. ବି.—( ଘଷିହେବା ସମୟରେ ହାତର ବା ଗୋଡ଼ର ଅଙ୍ଗୁଠି
ସ୍ଫୁଟନ ଆଦି ) ଫୁଟୁକୁ ଫୁଟାଇବା—The cracking of the
**ସ୍ଫୁଟନ** joints of the finger or other limbs [ଦ୍ର—ସ୍ଫୁଟନ କରିବା କର ଅଙ୍ଗୁଳି—ସାମନ୍ତ ସିଂହାର ବିଦଗ୍ଧ ଚିନ୍ତାମଣି । ]

**ସ୍ଫୁଟଫଳ**—ସଂ. ବି—(ବହୁବ୍ରୀହି; ଯାହାର ଫଳ ପାଚିଲେ ଫାଟିଯାଏ)—
Sphuṭa phala ତୁମ୍ବୁରୁ (ହି. ଶ); ଏକପ୍ରକାର ନାରଙ୍ଗ—Anthoxylum Alatum (tree).

ସ୍ଫୁଟ ବନ୍ଧନୀ(ନୀ)—ସଂ. ବ—ଜ୍ୟୋତିର୍ମୁଷ୍ଟା; ପାରିବତ-ପତ୍ରୀ; ଫୁଟଫୁଟକା; Sphuta bandhanī(nā) କଂଗୁ ( ରତ୍ନମାଳା )—ନୟା ফটকী Cardiospermum Helicacabum (plant). माल कंगनी (ସ୍ଫୁଟ ବଲ୍ଲୀ[ଲ୍ଲି]—ଅନ୍ୟରୂପ)

ସ୍ଫୁଟ ଭାବ—ସଂ. ବ (ଜ୍ୟୋତିଷ)—ଜନ୍ମକୁଣ୍ଡଳୀରେ ଗ୍ରହମାନଙ୍କର Sphuta bhāba ପ୍ରକୃତ ଅବସ୍ଥିତିର ଗଣନା—The real cusp of planets in the horoscope. [ଦ୍ର—ପ୍ରଥମେ ଲଗ୍ନସ୍ଫୁଟ ଆଣି ତହିଁରୁ ଅନ୍ୟ ଭାବସ୍ଫୁଟ ଆଣିବାକୁ ହୁଏ । ଭାବସ୍ଫୁଟ ନ କଲେ ଭାବବଳ ଓ ତହିଁରେ ଗ୍ରହମାନଙ୍କର ସଂଯୋଗ ସମ୍ୟକ୍ ସ୍ଥିର କରାଯାଇ ନ ପାରେ; ଲଗ୍ନ ସ୍ଫୁଟରୁ ମଧ୍ୟ ଲଗ୍ନ ବା ଦଶମ ଭାବସ୍ଫୁଟ କରାଯାଏ । ଲଗ୍ନଭାବସ୍ଫୁଟରେ ୬ ରାଶି ବା ୧୮୦ ଅଂଶ ଯୋଗ କଲେ ସପ୍ତମ ଭାବସ୍ଫୁଟ ହୁଏ । ଦଶମ ଭାବକୁ ଲଗ୍ନଭାବରୁ ବାଦ୍ ଦେଇ ଅବଶିଷ୍ଟକୁ ୩ ରେ ହରଣ କରି ଏକ ଏକ ଭାବକୁ ଦଶମ ସ୍ଫୁଟରେ ମିଶାଇଲେ ଲାଭଭାବ ଓ ବ୍ୟୟଭାବ ବାହାରେ । ଏହିପରି ଚତୁର୍ଥ ଓ ସପ୍ତମ ଭାବର ଅନ୍ତରରୁ ପଞ୍ଚମ ଓ ଷଷ୍ଠ ଭାବ ସ୍ଥିର ହୁଏ । ଲଗ୍ନ ଓ ଚତୁର୍ଥର ଅନ୍ତରରୁ ଧନ ଓ ଭ୍ରାତୃଭାବ ସ୍ଫୁଟ ସ୍ଥିର କରାଯାଏ । ଦଶମ ଓ ସପ୍ତମର ଅନ୍ତରରୁ ଅଷ୍ଟମ ଓ ନବମଭାବସ୍ଫୁଟ ସ୍ଥିର କରାଯାଏ । ଦଶମ ସ୍ଫୁଟରୁ ୬ ରାଶି ଅନ୍ତର କଲେ ଚତୁର୍ଥର ସ୍ଫୁଟ ବାହାରି ଆସେ । (ସନ୍ଦର୍ଭ ଲେଖକ—ଶ୍ରୀ ବାଇକୋଳ ମହାପାତ୍ର ଜ୍ୟୋତିଷ ବିଶାରଦ) ।]

ସ୍ଫୁଟମାନ ହେବା—ଦେ. କ୍ରି—ପ୍ରକାଶିତ ହେବା—To appear Sphutamāna hebā clearly or distinctly. स्फुटमान हओया [ଉ—ସେ ପୁଣି ତାଙ୍କୁ ସ୍ଫୁଟମାନ ହୁଅନ୍ତେ, स्फुटमान होना ମୋତେ କୃଷ୍ଣ ପାସୋରଲେ । ପ୍ରାଚୀ. ଭାଗବତ ।)

ସ୍ଫୁଟା—ସଂ. ବ—(ସ୍ଫୁଟ୍ ଧାତୁ+କର୍ମ.ଅ+ଆ)—ଫଟା; ଫଣା (ସମାସରେ) Sphuṭā —The expanded hood of a serpent.

ସ୍ଫୁଟି(ଟୀ)—ସଂ. ବ—(ସ୍ଫୁଟ ଧାତୁ=ଫାଟିଯିବା+କରଣ.ଇ; ଈ)—Sputi(ṭī) ୧ । ପାଦସ୍ଫୋଟ ରୋଗ; ଗୋଡଫାଟ ରୋଗ (ଶବ୍ଦ ରତ୍ନାବଳୀ)—1. Kibe; a disease; splitting up of the skin of the soles of the feet ୨ । ଫୁଟି କାକୁଡି; ଖରବୁଜ କର୍କଟୀ ଫଳ (ମେଦିନୀ)—2. Musk melon; a kind of melon which bursts when ripe; Cucumis Melo.

ସ୍ଫୁଟିକା—ସଂ. ବ—୧ । ଫୁଟି କାକୁଡ—1. A kind of musk Sphuṭikā melon. ୨ । ଫିଟକିରି (ଶ୍ର. ଶ)—2. Alum.

ସ୍ଫୁଟିତ—ସଂ. ବିଣ ( ସ୍ଫୁଟ୍ ଧାତୁ+କର୍ତ୍ତୃ. ତ )—୧ । ବିକସିତ—Sphuṭita 1. Opened; expanded; full blown. ୨ । ପରିହସିତ—2. Laughed at; derided. ୩ । ବ୍ୟକ୍ତୀକୃତ; ପ୍ରକଟିତ—3. Made distinct or apparent. ୪ । ଫାଟି ଯାଇଥିବା; ଭିନ୍ନ—4. Split up; pierced. ୫ । ଫୁଟି ଯାଇଥିବା; କଣା ହୋଇଥିବା—5. Perforated. ୬ । ନିର୍ଣ୍ଣିତ—6. Ascertained. ୭ । ଶୁଭ୍ରୀକୃତ—7. Brightened.

ସ୍ଫୁଟିତ କାଣ୍ଡ ଭଙ୍ଗ(ଗ୍ନ)—ସଂ. ବ—( ବୈଦ୍ୟକ )—ହାଡ଼ ଖଣ୍ଡ ଖଣ୍ଡ Sphuṭita kāṇḍa bhaṅga(gna) ହୋଇ ଭାଙ୍ଗିଯିବା—The breaking of a bone into many bits.

ସ୍ଫୁଟୀ କରଣ—ସଂ. ବ ( ସ୍ଫୁଟ+ଅଭୂତଭାବେ· ଚ୍ୱି+କରଣ )—ଅସ୍ଫୁଟ Sphuṭī karaṇa ବା ଅସ୍ପଷ୍ଟ ବସ୍ତୁର ବ୍ୟକ୍ତୀକରଣ—(ସ୍ଫୁଟୀକୃତ—ବିଣ) Making distinct.

ସ୍ଫୁଟ୍ (ଧାତୁ)—ସ - ଅନାଦର କରିବା—To slight; to treat Sphuṭṭ (root) with disregard.

ସ୍ଫୁର୍ଦ୍ (ଧାତୁ)—ସ—୧ । ପରିହାସ କରିବା—1. To joke. ୨ । Sphurd (root) ବିକଶିତ ହେବା—2.To be expanded; to be full blown. ୩ । ବରଣ କରିବା—3. To choose; to invite.

ସ୍ଫୁତ୍—ସଂ. ଅ—ଅନୁକରଣ ଶବ୍ଦ; ଫୁତ୍କାର; ଫୁଙ୍କିବା ଶବ୍ଦ; ଫୁ ଫୁ Sphut ଶବ୍ଦ—Sound of blowing wind through फूँ, फूँ फुँफकार the mouth.

ସ୍ଫୁତ୍-କର—ସଂ. ବ ( ସ୍ଫୁତ୍=ଫୁଁ ଶବ୍ଦ+କୃ ଧାତୁ+କର୍ତ୍ତୃ. ଅ )—Sphut-kara ଅଗ୍ନି (ଶବ୍ଦଚନ୍ଦ୍ରିକା—Fire.

ସ୍ଫୁତ୍-କାର—ସଂ. ବ ( ସ୍ଫୁତ୍=ଫୁଁ ଶବ୍ଦ+କୃ ଧାତୁ+ଭାବ. ଅ )—Sphut-kāra ଫୁତ୍କାର; ମୁହଁରେ ଫୁଙ୍କିବା ଶବ୍ଦ; ଫୁଁ ଫୁଁ ଶବ୍ଦ Sound of blowing air through the lips.

ସ୍ଫୁତ୍କାର କରିବା—ଦେ· କ୍ରି—ମୁହଁରେ ଫୁଙ୍କିବା—To blow air Sphut-kāra karibā through the lips. फूँ देओया फूत्कार करना

ସ୍ଫୁର୍ (ଧାତୁ)—ସଂ—୧ । ଚଞ୍ଚଳ ହେବା—1. To be active. Sphur (root) ୨। ଇତସ୍ତତଃ ଈଷତ୍ ଚଳିବା—2. To move ଏଣେତେଣେ ଅଳ୍ପ ଅଳ୍ପ—slightly to and fro; to palpit-ଫୁରିବା, ସ୍ଫୁରିବା । ate; to throb. ୩ । ( ଅଙ୍ଗର ଚର୍ମ ) ଡେଇଁବା—3. To throb (said of the skin of a limb). ୪ । ପ୍ରକାଶିତ ହେବା—4. To be manifest; to be apparent. ୫ । କମ୍ପିବା—5. To shiver; to tremble.

ସ୍ଫୁର—ସଂ. ବ (ସ୍ଫୁର ଧାତୁ+କର୍ତ୍ତୃ. ଅ)—୧ । ଫଳକ (ହେମଚନ୍ଦ୍ର); Sphura ପଟା—1. Pane; plate; board. ୨ । (+ଭାବ ଅ)—ସ୍ଫୁରଣ (ଅମର ଟୀକା) (ଦେଖ)—2. Sphuraṇa ( See ) ୩ । ବାୟୁ (ହ ଶ)—3. Wind.

ସ୍ଫୁରଣ—ସଂ. ବ ( ସ୍ଫୁର ଧାତୁ+ଭାବ. ଅନ )—୧ । କମ୍ପନ; କମ୍ପିବା Sphuraṇa ଚଳନ (ଭରତ)—1. Quivering; tremb-ସଂସ୍କୃତ ପର୍ଯ୍ୟାୟ—ସ୍ଫୁର, ସ୍ଫୁରଣ, ling; slight movement. ସ୍ଫାର, ସ୍ଫାରଣ, ସ୍ଫୁଲନ, ସ୍ଫୋରଣ ୨ । ଇତସ୍ତତଃ ଗୃଳନ—(ସ୍ଫୁରିତ—ବିଣ) 2. Oscillating. ୩ । ସ୍ଫୂର୍ତ୍ତି (ଶବ୍ଦ ରତ୍ନମାଳା)—3. Being manifest or expressed; ex-

pression ୪ । ବକଶନ—4. Blowing; expanding. ୫ । ଦୀପ୍ତି—5. Shining; sparkling. ୬ । ପ୍ରତିବିମ୍ବିତ ହେବା—6. Reflection. ୭ । ଉଦ୍ଭେଦ—7. Rising. ୮ । ଅଙ୍ଗ ଅଦ ସ୍ଫୁରିବା—8. Throbbing of the skin of some part of the body.

ସ୍ଫୁରନ୍—ସଂ. ବଣ ପୁଂ (ସ୍ଫୁର ଧାତୁ+ଅତ୍ (ଶତୃ); ସ୍ଫୁରନ୍ତ୍ ୧ମା. ୧ବ)
Sphuran ୧। କମ୍ପନ ଯୁକ୍ତ—1. Trembling; vibrating; (ସ୍ଫୁରନ୍ତୀ—ସ୍ତ୍ରୀ) throbbing. ୨। ସ୍ଫୁର୍ତ୍ତିଯୁକ୍ତ—2. Finding expression. ୩ । ପ୍ରକାଶମାନ—3. Shining.

ସ୍ଫୁରା (ରେ) ଇବା —ଦେ. କ୍ରି—ସ୍ଫୁରିବାର ଣିଜନ୍ତ ରୂପ—Causa
Sphurā (re) ibā tive of Sphuribā. [ଉ—ପୁଷ୍ପଶ୍ଚ ଅଣ୍ଣ ফুরাবা ফুরবানা ସ୍ଫୁରିଥ ଭାଷା—ମଧୁସୂଦନ. ହୁଲୁଲଗାଥା]

ସ୍ଫୁରିତ—ସଂ. ବଣ (ସ୍ଫୁର ଧାତୁ+କର୍ତ୍ତୃ. ତ)—୧ । କମ୍ପିତ—1.
Sphurita Trembling. ୨। ସ୍ଫୁରଣ ବଶିଷ୍ଟ—2. Throbbing. ୩ । ପ୍ରତିବିମ୍ବିତ—3. Reflected. ୪ । ସ୍ଫୁର୍ତ୍ତିବିଶିଷ୍ଟ—4. Expressed. ୫ । ସ୍ଫୁର୍ତ୍ତିପ୍ରାପ୍ତ—5. Shining; exhibited, manifest.
ସଂ ବ—ସ୍ଫୁରଣ (ଦେଖ)—Sphūraṇa (See)
ଦେ. ବଣ—୧ । ଉଚ୍ଚାରିତ—1. Uttered. ୨ । ପ୍ରକଟିତ—2. Published; proclaimed [ଉ—ବଭୀବସ୍ତୁ ଶେଷକାଳେ, ସ୍ଫୁରିତ ଶଙ୍ଖ ମଙ୍ଗଳେ, ସ୍ଥୂଳ ତନୁ ତାମୁଲେ ତୋଷି—ଉତ୍କ. ବୈଦେହୀଶବିଳାସ]

ସ୍ଫୁରିତାଧର—ସଂ. ବଣ. ପୁଂ (ବହୁବ୍ରୀ)—(କ୍ରୋଧରେ ଯାହାର ଓଠ
Sphuritādhara ଥରୁଅଛି; କମ୍ପିତୋଷ୍ଠ—With the lips trembling (out of anger) (ସ୍ଫୁରିତାଧରା—ସ୍ତ୍ରୀ)
ସଂ ବ (କର୍ମଧା)—କମ୍ପୁଥିବା ଓଠ—Trembling lip

ସ୍ଫୁରିବା—ଦେ. କ୍ରି (ସଂ. ସ୍ଫୁର ଧାତୁ)—୧ । କମ୍ପିବା—1. To
Sphuribā tremble. ୨ । (ଅଙ୍ଗବିଶେଷ) ଡେଇଁବା—2. To throb or palpitrate. [ଉ ହୃଦୟରେ ଭୟ ହୋଇଲା ଉପସ୍ଥିତ, ସ୍ଫୁରିଲା ବାମଭୁଜ ଭୁଲେ ବାମ ନେତ୍ର—କୃଷ୍ଣସିଂହ ମହାଭାରତ,ବନ] ୩ । (ଭୁକିବା ବାକ୍ୟ) ପଇଟିବା—3. To find expression. [ଉ—ଭାରତ ଗୀତ ହୋଇ ସ୍ଫୁର ମୋ ହୃଦରେ—କୃଷ୍ଣସିଂହ. ମହାଭାରତ, ଆଦ] ୪ । ପ୍ରକାଶିତ ହେବା—4. To be manifest. [ଉ—ଜନମ ହେବାର ଜନ୍ମକନ୍ଦ ଶାର, ଶିଶ ସ୍ଫୁରିଲା ସେ କ ପ୍ରକାର—କବିସୂର୍ଯ୍ୟ. ଗୋପୀ ଚମ୍ପୂ—ଜ ଗୀତ] ୫ । ବାହାର ପଡ଼ିବା—5. To come out [ଉ—କାହୁଁ ସ୍ଫୁରେ କେବା ସ୍ଫୁରେ, କରବଲମ୍ବ କରାଧାରେ—ଭୂପତି. ପ୍ରେମ ପଞ୍ଚମୃତ] ୬ । ଉଚ୍ଚାରିତ ହେବା—6. To be uttered. [ଉ—ଏପର ପ୍ରଶଂସାମୃତ ସ୍ଫୁରୁ କଂସାହୃତ ମୁଖ ଶଶଧରରେ—କବିସୂର୍ଯ୍ୟ. ସଙ୍ଗୀତ] ୭ । ପ୍ରକଟିତ ହେବା—7. To be published.

ସ୍ଫୁର୍ଚ୍ଛ୍ (ଧାତୁ)—ସ—ବିସ୍ମୃତ ହେବା—
Sphurchchh (root) To forget.

ସ୍ଫୁର୍ଜ୍ (ର୍ଜ୍ଜ୍) (ଧାତୁ)—ସ—(ବଜ୍ର)ଜର୍ଘୋଷ କରିବା—
Sphurj(rjj) (root) To roar (said of thunder).

ସ୍ଫୁର୍ଜ(ର୍ଜ୍ଜ)କ—ସ. ବ (ସ୍ଫୁର୍ଜ୍ ଧାତୁ+କର୍ତ୍ତୃ ଅକ; କାଠଁବେ ଜଳାଇଲେ
Sphurja(rjja)ka ଏହା ତଡ଼ ତଡ଼ ଶବ୍ଦ କରେ )—ଇନ୍ଦୁକ ବୃକ୍ଷ; କେନ୍ଦୁ ଗଛ—Disopyrus Glutinosa (tree).

ସ୍ଫୁର୍ଜ(ର୍ଜ୍ଜ)ଥୁ—ସ. ବ (ସ୍ଫୁର୍ଜ୍ ଧାତୁ+ଭାବ ଅଥୁ)—୧ । ବଜ୍ରପତନ
Sphurja(rjja)thu ଶବ୍ଦ—1. Roar of thunder; thunder clap.

ସ୍ଫୁଲ୍(ଧାତୁ)—ସ—୧ । ସ୍ଫୁର୍ (ଧାତୁ) (ଦେଖ)—1. Sphur [root]
Sphul [root] (See) ୨ । ସ୍ଫୁରଣ କରିବା—2. To sparkle. ୩ । ସ୍ଫୁଟିତ ହେବା—3. To split. ୪ । ଚଳିବା—4. To move. ୫ । ସଞ୍ଚୟ କରିବା—5. To store up.

ସ୍ଫୁଲ—ସ. ବ (ସ୍ଫୁଲ୍ ଧାତୁ+କର୍ତ୍ତୃ ଅ)—୧ । ବସ୍ତ୍ରବେଶ୍ମ; ତମ୍ବୁ; ରାଉଟି
Sphula (ଶବ୍ଦରତ୍ନାବଳୀ)—1. Tent. ୨ । ସ୍ଫୁର୍ତ୍ତି (ହୈ. ଶ)—2. Manifestation.

ସ୍ଫୁଲନ—ସ. ବ (ସ୍ଫୁଲ୍ ଧାତୁ+ଭାବ ଅନ)—ସ୍ଫୁରଣ (ଶବ୍ଦକଳ୍ପ)(ଦେଖ)-
Sphulana Sphuraṇa (See)

ସ୍ଫୁଲିଙ୍ଗ—ସ. ବ (ସ୍ଫୁଡ୍=ଫୁଟିବାର+ଲିଙ୍ଗ୍ ଧାତୁ=ଚଳିବା+କର୍ତ୍ତୃ
Sphuliṅga ଅ; ଯାହା ଫୁଟିବାଳଦ୍ୱାର ଉଡ଼ିଯାଏ)—ଅଗ୍ନିକଣା; ନିଆଁରୁ ଉଠୁଥିବା ଅଗ୍ନିଗୁଣ୍ଡ—Sparks of fire.

ସ୍ଫୁଲିଙ୍ଗିନୀ—ସ. ବ ( ସ୍ଫୁଲିଙ୍ଗ+ଅସ୍ତ୍ୟର୍ଥ ଇନ୍+ସ୍ତ୍ରୀ ଈ )—
Sphuliṅginī ଅଗ୍ନିଙ୍କ ସପ୍ତ ଜିହ୍ୱା ମଧ୍ୟରୁ ଗୋଟିଏ (କଠୋଧର)—One of the seven tongues of the fire-god.

ସ୍ଫୂର୍ଜ(ର୍ଜି) (ଧାତୁ)—ସ—ସ୍ଫୁର୍ଜ୍ (ଧାତୁ) (ଦେଖ)—
Sphūrj(rji)(root) Sphurj [root](See).

ସ୍ଫୂର୍ଜ(ର୍ଜ୍ଜ)କ—ସ. ବ (ସ୍ଫୂର୍ଜ୍ଧାତୁ+ଭାବ ଅକ)—୧। ସ୍ଫୁର୍ଜକ (ଦେଖ)-
Sphūrja(rjja)ka 1. Sphurjaka (See). ୨ । ଶୋଣାଶାକ; ପାଣପଣା ଗଛ ( ହୈ. ଶ )—2. Bignonia Indica tree.

ସ୍ଫୂର୍ଜ(ର୍ଜ୍ଜି)ଥୁ—ସଂ. ବ (ସ୍ଫୂର୍ଜ୍ ଧାତୁ+ଅଥୁ)—୧ । ସ୍ଫୁର୍ଜଥୁ (ଦେଖ)—
Sphūrja [rjja]thu 1. Sphurjathu (See) ୨ । ଭୂଇଁଲିଖୁ; କାଣ୍ଡାଳେଇଚିଅ ଶାଗ (ହୈ. ଚୋଲାଇ ଶାଗ) 2. Prickly amaranth (pot herb).

ସ୍ଫୂର୍ତ୍ତି—ସ. ବ (ସ୍ଫୁର୍ ଧାତୁ+ଭାବ. ତି; ଉ=ଊ)—୧ । ସ୍ଫୁରଣ
Sphūrtti (ଦେଖ)—1. Sphuraṇa (See). ୨ । ସ୍ପନ୍ଦନ—2. Throbbing; palpitating. ୩ । ଉଲ୍ଲାସ; ହର୍ଷ—3. Joy; delight; ecstacy of joy. ୪ । ପ୍ରତିଭା—4. Genius. ୫ । ପ୍ରଭା—5. Dazzling.

ଦେ. ବି—୧ । ହର୍ଷଜନିତ ମଉଜ; ଆମୋଦ—1. Merriment. ୨ । ଆନନ୍ଦଜନିତ ମନର ଉତ୍ତେଜନା ବା ଶରୀରରେ ପ୍ରକାଶିତ ଚଞ୍ଚଳତା; ଉତ୍ତେଜନା—3. Buoyancy of spirits and body; exuberence of spirits. ୩ । ମନର ଶୃଙ୍ଖଳା; ସ୍ଫୁର୍ତ୍ତି—3. Activity or elasticity of mind. ୪ । ତ୍ୱରା—4. Haste. ଦେ. ବିଣ—ଚଞ୍ଚଳ—Active.
ଫୁର୍ତ୍ତି
फुरती

ସ୍ଫୁର୍ତ୍ତି କରିବା—ଦେ. କ୍ରି—୧ । ଆନନ୍ଦରେ ମଉଜ କରିବା—1. To be merry or exuberent in spirits. ୨ । ତ୍ୱରା କରିବା—2. To make haste.
Sphūrtti karibā
ଫୁର୍ତ୍ତିକରୀ
फुरती करना

ସ୍ଫୁର୍ତ୍ତି ଜନକ—ସଂ. ବିଣ—ଉଲ୍ଲାସକର—Delightful.
Sphūrtti janaka

ସ୍ଫୁର୍ତ୍ତିବାଜ୍—ଦେ. ବିଣ—୧ । ସ୍ଫୁର୍ତ୍ତିମାନ୍ (ଦେଖ)—1. Sphūrtimān (See) ୨ । ପ୍ରଫୁଲ୍ଲମନା—2. Having buoyancy of spirits. ୩ । ଚଞ୍ଚଳ—3. Active.
Sphūttibāj
ଫୁର୍ତ୍ତିବାଜ୍
फुरतीला, फुरतीबाज

ସ୍ଫୁର୍ତ୍ତିବାଜି—ଦେ. ବି—'ସ୍ଫୁର୍ତ୍ତିବାଜ' ହେବା ଅବସ୍ଥା—Activity in work; dexterity.
Sphūrttibāji
ଫୁର୍ତ୍ତିବାଜି
फुर्तिबाजी

ସ୍ଫୁର୍ତ୍ତି ବ୍ୟଞ୍ଜକ—ସଂ. ବିଣ—ଯାହା ସ୍ଫୁର୍ତ୍ତି ସୂଚନା କରେ; ଉଲ୍ଲାସ-ସୂଚକ—Indicating buoyancy of spirits.
Sphūrtti byañjaka

ସ୍ଫୁର୍ତ୍ତିମାନ୍—ସଂ. ବିଣ, ପୁଂ (ସ୍ଫୁର୍ତ୍ତି+ଅସ୍ତ୍ୟର୍ଥେ ମତ୍; ସ୍ଫୁର୍ତ୍ତିମତ୍, ୧ମା, ୧ବ)—୧ । ସ୍ଫୁର୍ତ୍ତିବିଶିଷ୍ଟ—1. Joyful; buoyant. ୨ । ବିକଶିତ ହେଉଥିବା—2. Expanding. ୩ । କମ୍ପମାନ—3. Throbbing. ୪ । ଚଞ୍ଚଳ—4. Active. ସଂ. ବି—ପାଶୁପତ (ଶିବାସ୍ତ୍ରବିଶେଷ)—God Siba's weapon.
Sphūrttimān
(ସ୍ଫୁର୍ତ୍ତିମତୀ—ସ୍ତ୍ରୀ)

ସ୍ଫେୟାନ—ସଂ. ବିଣ ପୁଂ (ସ୍ଫିର=ପ୍ରଚୁର+ଅତ୍ୟର୍ଥେ ଇୟସ୍, ୧ମା ୧ବ)—୧। ଅତି ପ୍ରଚୁର—1. Very abundant. ୨ । ଅତ୍ୟଧିକ ଅତିଶୟ; (ଅମର)—2 Excessive
Spheyān
(ସ୍ଫେୟସୀ—ସ୍ତ୍ରୀ)

ସ୍ଫେଷ୍ଠ—ସଂ. ବିଣ (ସ୍ଫିର=ପ୍ରଚୁର+ଅତ୍ୟର୍ଥେ ଇଷ୍ଠ)—୧ । ଅତି ପ୍ରଚୁର—1. Very abundant. ୨। ଅତ୍ୟଧିକ 2. Excessive.
Sphestha

ସ୍ଫୋଟ—ସଂ. ବି (ସ୍ଫୁଟ ଧାତୁ+କର୍ତ୍ତୃ ଅ)—୧ । ଫୋଟକ; ଫୋଟକା—1. Blister. ୨। ବ୍ରଣ; ବିସ୍ଫୋଟକ—2. Boil. ୩ । (+ଭାବ ଅ) ବହିରାବରଣକୁ ଭେଦ କରି ଅନ୍ତଃସ୍ଥ ବସ୍ତୁର ବହିରାଗମନ (ହି. ଶ); ଫୁଟିବାର ବାହାର ହେବା—3. The bursting of the outer covering by a thing from inside. ୪ । (+କର୍ତ୍ତୃ ଅ) ମୋତି; ମୁକ୍ତା (ହି. ଶ) 4. Pearl. ୫। (+ଭାବ ଅ) ଦେହ ଓ ଦ୍ରବ୍ୟାଦିର ଅଘାତଜନିତ ଶବ୍ଦ; ଫୁଟ୍‌କୁର—5. A sound of cracking made by the limbs. [ଯଥା—ବାହାସ୍ଫୋଟ] ୬ । (ବ୍ୟାକରଣ) ପୂର୍ବ ପୂର୍ବ ବର୍ଣ୍ଣର ଅନୁଭବ ସହିତ ଚରମ ବର୍ଣ୍ଣ ବ୍ୟଙ୍ଗ୍ୟ ଅଖଣ୍ଡ ଶବ୍ଦବିଶେଷ [ପ୍ରକୃତିବାଦ]; ବାଚ୍ୟ ଶବ୍ଦ [ହି. ଶ]-6. The expression of the meaning of a word by joining together the separate letters comprising it. [ଦ୍ର—ସର୍ବଦର୍ଶନ ସଂଗ୍ରହ ଅନୁସାରେ ଏହି ବାଚ୍ୟ ଶବ୍ଦଦ୍ୱାରା ବହୁ ବର୍ଣ୍ଣାତ୍ମକ ଶବ୍ଦର ଅର୍ଥ ଜ୍ଞାନ ହୁଏ । ଯଥା—କମଳ ଶବ୍ଦସ୍ଥ ବର୍ଣ୍ଣତ୍ରୟ 'କ' 'ମ' ଓ 'ଲ' ର ସ୍ୱତନ୍ତ୍ର ଉଚ୍ଚାରଣ ଦ୍ୱାରା କିଛି ଅର୍ଥ ପ୍ରକାଶ ହୁଏ ନାହିଁ । କିନ୍ତୁ ଏ ତିନି ବର୍ଣ୍ଣକୁ ଯଥାକ୍ରମେ ଉଚ୍ଚାରଣ କଲେ ଯେଉଁ 'ସ୍ଫୋଟ' ବା ବାଚ୍ୟଶବ୍ଦ ହୁଏ, ସେଥିରୁ ଜଳଜର ଅର୍ଥ ଜ୍ଞାନ ହୁଏ (ହି. ଶ) ।
Sphota
ସଂ. ପର୍ଯ୍ୟାୟ—ସ୍ଫୋଟକ, ବିସ୍ଫୋଟକ ପିଣ୍ଡକ, ଗଣ୍ଡ ।

ସ୍ଫୋଟକ—ସଂ. ବି—(ସ୍ଫୁଟ୍ ଧାତୁ+କର୍ତ୍ତୃ ଅକ)—୧ । ଫୋଟକା—1. Blister. ୨ । ବ୍ରଣ; ବଥ—2. Boil. ୩ । ବିସ୍ଫୋଟକ—3. Eruptions on the skin. ୪ । ଅର୍ବୁ—4. Tumour. ୫ । ଭଲ୍ଲାତକ, ଭଲିଆ (ହି. ଶ)—5. Marking nut. [ଦ୍ର—ଏହା ଦେହରେ ଲାଗିଲେ ଦେହରେ ସ୍ଫୋଟକ ବାହାରେ । ] ସଂ. ବିଣ (ସ୍ଫୁଟ୍ ଧାତୁ+କର୍ତ୍ତୃ ଅକ)—୧ । ଭେଦକ—1. Piercing. ୨। ପରିହାସକ—2. Jesting.
Sphotaka
(ସ୍ଫୋଟିକା—ସ୍ତ୍ରୀ. ବିଣ)

ସ୍ଫୋଟନ—ସଂ. ବି (ସ୍ଫୁଟ୍ ଧାତୁ, ଣିଚ୍=ସ୍ଫୋଟି ଧାତୁ+ଭାବ ଅନ)—୧ । ବିଦାରଣ; ଫାଡ଼ିବା—1. Piercing; splitting. ୨ । ପ୍ରକାଶନ—2. Exhibiting; manifesting. ୩ । ଫଟାଇବା; ଫୋଡ଼ିବା—3. Perforating; drilling. ୪ । ଶବ୍ଦ (ହି .ଶ)—4. Sound. ୫ । ସୁଶ୍ରୁତ ଅନୁସାରେ ବାୟୁ ପ୍ରକୋପରୁ ବ୍ରଣର ପୀଡ଼ାବିଶେଷ, ଯହିଁହେତୁ ବ୍ରଣ ଫାଟିଗଲା ଭଳି ଜଣାଯାଏ (ହି. ଶ)—5. Bursting sensation of boils.
Sphotana

ସ୍ଫୋଟନୀ—ସଂ. ବି (ସ୍ଫୋଟି ଧାତୁ+କରଣ ଅନ+ଈ)—୧ । ବେଧନୀ; ମଣି ଶଙ୍ଖ ଇତ୍ୟାଦି ଫୋଡ଼ିବା ଯନ୍ତ୍ର; ଫୋଡ଼ଣୀ. ଅନ୍ୟ ସଂ ନାମ—ଅଷ୍ଟୋଟନୀ ଲସ୍ଫୋଟନୀ, ବେଧନୀ, ବୃଷଦଂଶିକା 1. Auger; drilling instrument. ୨। ବଢ଼େଇଙ୍କ ଭଅଁର—2. Carpenter's bit; auger.
Sphotanī

ସ୍ଫୋଟନୀୟ—ସଂ. ବି (ସ୍ଫୋଟି ଧାତୁ+କର୍ମ ଅନୀୟ)—ଫୋଡ଼ା ହେବାର ଉପଯୁକ୍ତ—Fit to be drilled into.
Sphotanīya

ସ୍ଫୋଟ ବୀଜକ (ହେତୁ)—ସଂ. ବି (ଏଥିର ମଞ୍ଜି ଦେହରେ ଲାଗିଲେ ସ୍ଫୋଟ ଜାତ ହେବାରୁ)—
Sphota bijaka ( hetu )

ଭଲ୍ଲାତକ; ଭଲିଆ ( ରାଜନିର୍ଘଣ୍ଟ )—Marking nut.

ସ୍ଫୋଟା—ସଂ. ବି (ସ୍ଫୁଟ୍ ଧାତୁ+କର୍ତ୍ତୃ. ଅ+ଆ)—୧। ସର୍ପର ଫଣା—
Sphoṭā 1. The expanded hood of a serpent. ୨। ଶ୍ୱେତ ଶାରିବା; ଧଳା ଅନନ୍ତମୂଳ ( ହ୍ନ. ଶ )—2. The white-rooted variety of Hemidesmus Indicus.

ସ୍ଫୋଟାୟ(ଦ)ନ—ସଂ. ବି—ମୁନିବିଶେଷ—Name of a sage.
Sphoṭāya(da)na [ ଦ୍ର—ଏହି ଋଷିଙ୍କର ଅନ୍ୟ ନାମ 'କଣୀବାନ୍'। ]

ସ୍ଫୋଟିକ—ସଂ. ବି—ପ୍ରସ୍ତରମୟ ଭୂମିକୁ ଖୋଳିବା ଆଦି କର୍ମ (ହ୍ନ. ଶ)—
Sphoṭika The act of digging stony ground.

ସ୍ଫୋଟିକା—ସଂ. ବି—୧। ପକ୍ଷୀବିଶେଷ, ହାପୁତ୍ରିକା (ହଁକାଣ୍ଡଶେଷ) (ଦେଖ)—1. Hāputrikā (See)
Sphoṭikā (a bird) ୨। ଛୋଟ ବ୍ରଣ ( ହ୍ନ. ଶ )—2. Small eruption or boil.

ସ୍ଫୋଟିନୀ—ସଂ. ବି (ସ୍ଫୁଟ ଧାତୁ+କର୍ତ୍ତୃ. ଇନ୍+ସ୍ତ୍ରୀ. ଈ)—କାକୁଡ଼—
Sphoṭinī Cucumber.

ସ୍ଫୋତା—ସଂ. ବି—୧। ଶାରିବା; ଅନନ୍ତମୂଳ—1. Hemidesmus
Sphotā Indicus. ୨। ଶ୍ୱେତ ଅର୍କ ଗୁଳ୍ମ—2. The white variety of Calotropis Gigantea.

ସ୍ଫ୍ୟ—ସଂ. ବି—ଖଦିର କାଷ୍ଠ ନିର୍ମିତ ଖଡ୍ଗାକାର ଯଜ୍ଞକାଷ୍ଠ—
Sphya A sacrificial bit of wood in the shape of a sword.

ସ୍ୱ—ସଂ. ସର୍ବ. ( ସ୍ୱନ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ ଅ )—୧। ଆତ୍ମା
Swa (ଅମର)—1. Soul. ୨। ସ୍ୱୟଂ—2. Self.
ସଂ. ବି—୧। ଧନ (ଅମର)—1. Property; wealth. [ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ଲଗେ। ଯଥା—ଶିବସ୍ୱ, ବ୍ରହ୍ମସ୍ୱ, ସର୍ବସ୍ୱ, ଦେବସ୍ୱ। ]—୨। ଜ୍ଞାତି (ଅମର)—2. Kinsman. ୩। ଜୀବାତ୍ମା—3. The Living Soul. ସଂ. ବିଣ.—ସ୍ୱକୀୟ; ନିଜର—One's own; relating to one's self.

ସ୍ୱ ଆୟତ—ପ୍ରାଦେ (ଗଞ୍ଜାମ) ଅବ୍ୟୟ—ଦେଇଅଛି—Through.
Swa āyata ଦ୍ୱାରା ଜରିୟେ

ସ୍ୱଇରିଣୀ—ଗ୍ରା. ବିଣ ସ୍ତ୍ରୀ. (ପଦ୍ୟ)—(ସଂ. ସ୍ୱୈରିଣୀ)—ସ୍ୱୈରିଣୀ—
Swa-iriṇī (ଦେଖ) Swairiṇī See) [ଦ୍ର—ପରର ଅଟେ ସ୍ୱୈରିଣୀ ଗୃହପୁତ୍ର କଲେ ଜାତ, ସ୍ୱଇରିଣୀ ତାକୁଟ ବୋଲନ୍ତି
स्वइरिणी ଜଗତ—କୃଷ୍ଣସିଂହ ମହାଭାରତ ଆଦି। ]

ସ୍ୱଃ—ସଂ. ଅବ୍ୟୟ—( ସ୍ୱନ୍=ଶବ୍ଦ କରିବା+ଅଧିକରଣ ଡ଼ୁଟ୍ )—
Swah ସ୍ୱର୍ ହେଲା, ୧ବ )—୧। ସ୍ୱର୍ଗ (ଅମର)—1. Heaven; paradise. ୨। ଆକାଶ (ଶବ୍ଦରତ୍ନାବଳୀ)—2. The sky. ୩। ନିତ୍ୟସୁଖ; ନିରବଚ୍ଛିନ୍ନ ସୁଖ—3. Constant. or uninterrupted happiness. ୪। ପରଲୋକ (ଅମର)—4. Life after death. ୫। ଜ୍ୟୋତିଃ; ପ୍ରଭା—5 Lustre; splendour. ୬। ସପ୍ତଲୋକ ମଧ୍ୟରୁ ଏକତମ; ଭୂର୍ଲୋକ ଓ ଧ୍ରୁବଲୋକର ମଧ୍ୟସ୍ଥାନ—6. One of the seven worlds of Hindu mythology. ସଂ. ବିଣ—ଶୋଭନ; ସୁନ୍ଦର (ଶବ୍ଦରତ୍ନାବଳୀ)—Graceful,

ସ୍ୱଃ ପଥ—ସଂ. ବି (୬ଷ୍ଠୀ ତତ୍)—ମୃତ୍ୟୁ (ହ୍ନ. ଶ) Death.
Swah patha

ସ୍ୱଃ ସରିତ୍—ସଂ. ବି. (୬ଷ୍ଠୀ ତତ୍)—ସ୍ୱର୍ଗ ଗଙ୍ଗା—
Swah sarit The heavenly Ganges.

ସ୍ୱଃ ସୁନ୍ଦରୀ—ସଂ. ବି—ଅପ୍ସରା (ହ୍ନ. ଶ)—
Swah sundari Heavenly maids.

ସ୍ୱକ—ସଂ. ବିଣ. ପୁଂ. ( ସ୍ୱ+କ )—୧। ସ୍ୱକୀୟ; ସ୍ୱୀୟ; ନିଜର—
Swaka 1. Belonging to one's self. ୨। ଆତ୍ମୀୟ; ଆତ୍ମ
(ସ୍ୱକା—ସ୍ତ୍ରୀ) ସମ୍ବନ୍ଧୀୟ—2. Relating to self.

ସ୍ୱ କମ୍ପନ—ସଂ. ବି (ସ୍ୱତଃ କମ୍ପନ ହୁଏ ଯାହାର, ବହୁବ୍ରୀହି)—ବାୟୁ
Swa kampana (ଶବ୍ଦରତ୍ନାବଳୀ)—Air

ସ୍ୱ କର୍ମ—ସଂ. ବି (୬ଷ୍ଠୀ ତତ୍)—ନିଜକୃତ କାର୍ଯ୍ୟ—
Swa karma Work done by one's self.

ସ୍ୱକୀୟ—ସଂ. ବିଣ. ପୁଂ. (ସ୍ୱ+ଈୟ ସମ୍ବନ୍ଧେ, କ ଆଗମ, ତୁଳନାକର
Swakiya ପରକୀୟ, ରାଜକୀୟ )—୧। ସ୍ୱକ; ସ୍ୱୀୟ; ନିଜର—
(ସ୍ୱକୀୟା-ସ୍ତ୍ରୀ) 1 Belonging to one's self, one's own,
(ପରକୀୟ—ବିପରୀତ) ୨। ନିଜ ସମ୍ବନ୍ଧୀୟ—2 Relating to
(ସ୍ୱୀୟ—ଅନ୍ୟ ଆକୃତି) One's self,

ସ୍ୱକୀୟା—ସଂ. ବି. ସ୍ତ୍ରୀ—ସ୍ୱୀୟା ( ଦେଖ )—Swiyā ( See )
Swakiyā ('ନାୟିକା' ତଳେ ନୋଟ୍ ଦେଖ; ସ୍ୱକୀୟା ନାୟିକା
(ସ୍ୱକୀୟା ନାୟିକା—ଅନ୍ୟରୂପ) ୨ ପ୍ରକାରର ଯଥା—ଜ୍ୟେଷ୍ଠା ଓ କନିଷ୍ଠା। ବୟସ ଅନୁସାରେ ଏମାନଙ୍କର ମଧ୍ୟ ୩ ଶ୍ରେଣୀ ଅଛି। ଯଥା—ମୁଗ୍ଧା, ମଧ୍ୟା ଓ ପ୍ରୌଢା—ହ୍ନ. ଶ।)
ସଂ. ବିଣ, ସ୍ତ୍ରୀ—ସ୍ୱକୀୟର ସ୍ତ୍ରୀ ଲିଙ୍ଗ—
Feminine of Swakiya

ସ୍ୱକୀୟା ପ୍ରୀତି—ସଂ. ବି—୧। ନିଜ ସ୍ତ୍ରୀଙ୍କ ପ୍ରତି ସ୍ୱାମୀର ପ୍ରେମ—1. Love
Swakiyā priti of a husband towards his wife.
(ପରକୀୟା ପ୍ରୀତି—ଅନ୍ୟରୂପ) ୨। ନିଜ ସ୍ୱାମୀଙ୍କ ପ୍ରତି ସ୍ତ୍ରୀର ପ୍ରେମ—2. Love of a wife to her husband.

ସ୍ୱ କୁଳ—ସଂ. ବି (୬ଷ୍ଠୀ ତତ୍)—ନିଜର ବଂଶ—
Swakula One's family.

ସ୍ୱକୁଳ କ୍ଷୟ—ସଂ. ବି ( ୬ଷ୍ଠୀ ତତ୍)—୧। ନିଜ ବଂଶର ନାଶ—
Swakula kshaya 1. Extinction of one's family. ୨। (ବହୁବ୍ରୀହି) ମତ୍ସ୍ୟ (ହେମଚନ୍ଦ୍ର)—2. Fish. ସଂ. ବିଣ—ନିଜ ବଂଶର ବିନାଶକ—Destructive of one's own family.

ସ୍ୱକୃତ—ସଂ. ବଣ. (ସ୍ୱୟଂ ଦ୍ୱାରା କୃତ)—ନିଜ କୃତ; ନିଜେ କରିଥିବା—
Swakruta Done by one's self; made by one's self.

ସ୍ୱଖାତ—ସଂ. ବଣ (ସ୍ୱୟଂ ଦ୍ୱାରା ଖାତ)—୧। ନିଜ ଦ୍ୱାରା ଖୋଳା ଯାଇଥିବା-
Swa khāta 1. Dug by one's self. ୨। ନିଜ ବ୍ୟୟରେ ଖୋଳା ଯାଇଥିବା—2. Dug at one's expense
ସଂ. ବି—ନିଜ ଦ୍ୱାରା ଖୋଳା ଯାଇଥିବା ପୋଖରୀ—
Tank dug by one's self.

ସ୍ୱଖାତ ଜଳ(ସଲିଳ)—ସଂ.ବି(୬ଷ୍ଠୀ ତତ୍)—ନିଜଦ୍ୱାରା ଖୋଳାଯାଇଥିବା
Swakhāta jala(salila) ଜଳାଶୟର ପାଣି—Water of a tank dug by one's self.

ସ୍ୱଗ୍ (ଧାତୁ)—ସଂ—ଚାଲିବା—
Swag (root) To move.

ସ୍ୱଗତ—ସଂ.ବଣ (୨ୟା ତତ୍; ସ୍ୱ=ଆତ୍ମା+ଗତ=ଯାହା ଯାଇଅଛି)—
Swa gata ୧। ଆତ୍ମଗତ; ମନୋଗତ—1. Arising in one's mind. ୨। କହିବା ଲୋକ ଛଡ଼ା ଅନ୍ୟ କାହାକୁ ଯେଉଁ କଥା ଶୁଣାଯାଏ ନାହିଁ—2. (speech) Which is not audible to another. ସଂ.ବି—୧। (ନାଟକ) ମନେ ମନେ କହିବା—1. (Drama) Soliloquising; speaking out to one's self ୨। (ନାଟକ) ରଙ୍ଗମଞ୍ଚରେ ଅଭିନେତା ଯାହାଙ୍କ ସଙ୍ଗେ କଥାବାର୍ତ୍ତା କରୁଥାଆନ୍ତି, ତାଙ୍କୁ ନ ଶୁଣାଇ ମନର ଭାବକୁ ଶ୍ରୋତାମାନଙ୍କୁ ଶୁଣାଇବା ଉଦ୍ଦେଶ୍ୟରେ ଯେଉଁ କଥା କହନ୍ତି—2. (Drama) Aside; soliloquy.

ସ୍ୱଗତ କଥନ—ସଂ. ବି—ନାଟକାଭିନୟରେ ପାତ୍ରର ନିଜେ ନିଜେ କଥା
Swagata kathana କହିବା—Soliloquy in a dramatic performance. [ଦ୍ର—ରଙ୍ଗମଞ୍ଚରେ ଏକାଧିକ ପାତ୍ରଙ୍କ ଉପସ୍ଥିତିରେ ଯେବେ ଜଣେ ଅନ୍ୟ ପାତ୍ରମାନଙ୍କୁ ନ ଶୁଣାଇବା ଅଭିପ୍ରାୟରେ କୌଣସି କଥା କହେ, ତାକୁ ସ୍ୱଗତ କଥନ ବୋଲିଯାଏ।]

ସ୍ୱଗୁପ୍ତା—ସଂ. ବି—୧। ଶୂକଶିମ୍ବୀ (ଶବ୍ଦ ରତ୍ନାବଳୀ); ବାଇଡଙ୍କ—
Swa guptā 1. Cowhage. ୨। ଲାଜକୁଳି ଲତା; ଲଜ୍ଜାଳୁ ଲତା—2. The mimosa plant.

ସ୍ୱଗୃହ—ସଂ.ବି (୬ଷ୍ଠୀ ତତ୍)—୧। ନିଜର ଘର—1. One's house.
Swa gruha ୨। (ଜ୍ୟୋତିଷ) ଗ୍ରହମାନଙ୍କର ନିଜ ନିଜର ଭବନ—2. (astrology) The proper houses of respective planets. [ଦ୍ର—ପ୍ରତ୍ୟେକ ଗ୍ରହର ନିର୍ଦ୍ଦିଷ୍ଟ ଗୃହ ଅଛି। ଫଳିତ ଜ୍ୟୋତିଷ ମତରେ ରବି ଓ ଚନ୍ଦ୍ରର ଗୋଟିଏ ଓ ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର ଏବଂ ଶନିଙ୍କର ଦୁଇଟି ଲେଖାଏଁ ଗୃହ ଅଛି। ପ୍ରମାଣ—

ଭୂଜଶୁକ୍ରବୁଧେନ୍ଦ୍ୱର୍କସୌମ୍ୟଶୁକ୍ରାକକାଭୁବାଂ
ଗୁରୁମନ୍ଦାର୍କିମନ୍ଦାନାଂ ଜୀବସ୍ୟ ସ୍ୱଗୃହାଃ କ୍ରମାତ୍।

ରବିର ସ୍ୱଗୃହ ସିଂହ, ଚନ୍ଦ୍ରର ସ୍ୱଗୃହ କର୍କଟ, ମଙ୍ଗଳର ସ୍ୱଗୃହ ମେଷ ଓ ବୃଶ୍ଚିକ, ବୁଧର ମିଥୁନ ଓ କନ୍ୟା, ବୃହସ୍ପତିର ଧନୁ ଓ ମୀନ, ଶୁକ୍ରର ବୃଷ ଓ ତୁଳା, ଶନିର ମକର ଓ କୁମ୍ଭ ସ୍ୱଗୃହ ଅଟେ।

ଗ୍ରହମଣ୍ଡଳ ମଧ୍ୟରେ ରବି ଓ ଚନ୍ଦ୍ରଙ୍କୁ ରାଜା ରୂପେ କଳ୍ପନା କରା ଯାଇଅଛି। ସେହିପରି ବୁଧ ରାଜକୁମାର, ଶୁକ୍ର ମନ୍ତ୍ରୀ, ମଙ୍ଗଳ ସେନାପତି, ବୃହସ୍ପତି ମନ୍ତ୍ରୀ ଓ ଶନି ଦୂତ ଅଟନ୍ତି। ରବିଙ୍କ ଅଧିକାର ସିଂହ ରାଶିରେ ନିର୍ଦ୍ଦେଶ କରାଯାଇ କ୍ରମେ ବାମାବର୍ତ୍ତରେ ଗୋଟିଏ ଗୋଟିଏ ରାଶି କୁମାର, ମନ୍ତ୍ରୀ, ସେନାପତି ଓ ଦୂତଙ୍କୁ ଦିଆ ଯାଇଅଛି। ସେହିପରି ଚନ୍ଦ୍ରଠାରୁ ଅର୍ଥାତ୍ କର୍କଟ ରାଶିଠାରୁ ମଧ୍ୟ ସେମାନଙ୍କର ଗୋଟିଏ ଗୋଟିଏ ସ୍ଥାନ ଦକ୍ଷିଣାବର୍ତ୍ତରେ ନିର୍ଦ୍ଦେଶ କରା ଯାଇଅଛି। ଆକାଶ ନକ୍ସାରେ ଗ୍ରହାବସ୍ଥିତିକୁ ଦେଖିଲେ ରବିଠାରୁ ରାଶିଚକ୍ରର ସ୍ୱଗୃହ ନିର୍ଦ୍ଦେଶ ଠିକ୍ ବୋଲି ମନେହୁଏ। ଚନ୍ଦ୍ରଙ୍କୁ ରବିର ସମାନ ଆସନ ଦିଆ ଯାଇଥିବା ହେତୁ ତାହାଙ୍କ ନିମନ୍ତେ ମଧ୍ୟ ଗୃହ ରହିଛି। ରବିଙ୍କୁ କେନ୍ଦ୍ର କରି ଧରିଲେ କ୍ରମେ ବୁଧ, ଶୁକ୍ର, ମଙ୍ଗଳ, ବୃହସ୍ପତି ଓ ଶନିଙ୍କର କକ୍ଷା ରହିଛି। ଏହି ରାଶିଚକ୍ରର "ଗୃହ ଶବ୍ଦ" ଏଥିରୁ ଅଣାଯାଇ ଥିବା ସମ୍ଭବ। ଫଳିତ ଜ୍ୟୋତିଷରେ ସ୍ୱଗୃହସ୍ଥ ଗ୍ରହମାନେ ଶୁଭଦାୟକ ଅଟନ୍ତି। ଜାତକାଭରଣରେ ଉକ୍ତ ଅଛି :—

ଦୁର୍ଗାଦରଣ୍ୟାଚ କୃଷିକର୍ମିଯୋଗାଂ ଧନାନ୍ୟନେକାନି ଭବନ୍ତି ନୂନଂ,
ସ୍ୟାତ୍ ଖ୍ୟାତି ରୁଚ୍ଚୈର୍ନୃପଗୌରବଞ୍ଚ କଣ୍ଠୀରବସ୍ଥାର୍କ-ଦଶା ପ୍ରବେଶେ।

ଅର୍ଥାତ୍ ରବି ସିଂହ (ସ୍ୱଗୃହ) ରାଶିରେ ଥିଲେ ଦୁର୍ଗ ଅରଣ୍ୟାଦି ବିଷମ ସ୍ଥାନରେ କୃଷି ହେତୁ ବହୁ ଧନଲାଭ ଓ ରାଜାଙ୍କଠାରୁ ଗୌରବ ଲାଭ ହୁଏ।

କୁଳୀରସଂସ୍ଥସ୍ୟ କଳାନିଧେଃ ସ୍ୟାତ୍କାଳେ ପଶୁଦ୍ରବ୍ୟ କୃଷିପ୍ରବୃଦ୍ଧିଃ
କଳାକଳାପାକଳନଂ ଚ ଶୈଳେବନେରୁଚଗୃହ୍ୟ ଦେହପ୍ରକୋପଃ।

ଅର୍ଥାତ୍ ଚନ୍ଦ୍ର କର୍କଟରେ ଥିଲେ ପଶୁ, ଦ୍ରବ୍ୟ ଓ କୃଷିର ବୃଦ୍ଧି ହୁଏ, କଳାଶାସ୍ତ୍ରରେ ଅଧିକାର ଜାତ ହୁଏ, ବନ ଓ ପର୍ବତ ବିହାରରେ ମନ ବଳେ ଓ ଗୁହ୍ୟ ସ୍ଥାନରେ ରୋଗ ହୁଏ।

ମେଷୋପଯାତସ୍ୟ ଚ ଭୂସୁତସ୍ୟ ସ୍ୟୁଃ ପାକକାଳେ ଧନମଙ୍ଗଳାନି
ସ୍ୟାଦ୍ୟକ୍ତଭିଃ ସାହସମନ୍ତ୍ରବାଧା ନାନାବିଧାରାତିସମୁଦ୍ଭବଃ ସ୍ୟାତ୍।

ସୁମାନ୍ ଭବେ ବୃଶ୍ଚିକରାଶିଗସ୍ୟ ଭୌମସ୍ୟ ପାକେ କୃଷିକର୍ମକର୍ତ୍ତା।
ସ୍ୱସଂତ୍ରହୋଜାତମନଃ ପ୍ରବୃତ୍ତିଦ୍ୱେଷୀ ବହୁକାମଜକଲିକର୍ତ୍ତା। ୪।

ଅର୍ଥାତ୍,ମଙ୍ଗଳ ମେଷରେ ଥିଲେ ମଙ୍ଗଳୋତ୍ସବ,ପୁତ୍ରାଦିସୌଖ୍ୟ, ସାହସ, ଅଗ୍ନିଭୟ ଓ ଶତ୍ରୁ ଭୟ ହୁଏ । ମଙ୍ଗଳ ବୃଶ୍ଚିକରେ ଥିଲେ କୃଷି,କର୍ମରୁ ଧନ ପ୍ରାପ୍ତି ହୁଏ। ଉକ୍ତ ବ୍ୟକ୍ତି ସଂଗ୍ରହଶୀଳ ଓ କାମୁକ ହୁଏ ଏବଂ ବହୁଦ୍ୱେଷୀ ଓ ବହୁଭାଷୀ କରାଏ ।

ହିନ୍ଦ୍ୱାଖ୍ୟଙ୍ଗସ୍ଥସ୍ୟ ବୁଧସ୍ୟପାକେ ହ୍ୟନେକବାର୍ତ୍ତା ବହୁଜଳ୍ପକର୍ତ୍ତା

ଦାରସୁତଜ୍ଞାତି ସୁଖୋପପନ୍ନୋ ନୂନଂ ଜନନ୍ୟାଶ୍ଚ

ସୁଖେନ ହୀନଃ ॥

କନ୍ୟାଶ୍ରିତସ୍ୟେନ୍ଦୁସୁତସ୍ୟପାକେ ବିବେକ ବିଖ୍ୟାତି

ଗୁଣୈଃପ୍ରପୂର୍ଣ୍ଣଃ ।

ବିଦେଶଯାନାନ୍ତୁରତୋ ନରଃ ସ୍ୟାତ୍ ପରାକ୍ରମାଦାପ୍ତଧନୋ-

ଽଥିଲ୍ଲଃ ।

ଅର୍ଥାତ୍ ବୁଧ ମିଥୁନରେ ଥିଲେ ବହୁ ପ୍ରକାର ବିଷୟରୁ, ଜଳ୍ପନାରୁ,ସ୍ତ୍ରୀ ପୁତ୍ର ଜ୍ଞାତିଙ୍କଠାରୁ ସୁଖ ଲାଭହୁଏ,ମାତୃସୁଖ ହୀନ କରାଏ । ବୁଧ କନ୍ୟାରେ ଥିଲେ ବିବେକ, ଖ୍ୟାତି ଓ ଗୁଣରେ ପୂର୍ଣ୍ଣ କରାଏ; ବିଦେଶ ଯାତ୍ରାରୁ ଓ ପରାକ୍ରମରୁ ଧନଲାଭ ହୁଏ

ଏବଂ ଉକ୍ତ ବ୍ୟକ୍ତି ନମ୍ରମଣ୍ଡ ହୁଏ

ଚାପାଶ୍ରିତସ୍ୟ ଗୁରୋର୍ଦ୍ଦଶାୟାଂ ଭବେନ୍ମନୁଷ୍ୟୋ

ନୃପଲବ୍ଧମାନଃ ।

କୃଷିକ୍ରିୟାଯଜ୍ଞଚତୁଷ୍ପଦେଷୁ ଭବେନ୍ମନୁଷ୍ୟସ୍ୟ ମନଃ

ପ୍ରବୃତ୍ତିଃ ॥

ଝଷୋପଯାତସ୍ୟ ଚ ଗୀଷ୍ପତେଃସ୍ୟାଦ୍ଦଶାପ୍ରବେଶେ

ପୁରୁଷୋମନସ୍ୱୀ ।

ସମ୍ମାନଯୁକ୍ତ ପ୍ରମଦାଦି ସମ୍ପଦ୍ରାଜାନ୍ୱୟୋପାତ୍ତମହାସୁଖଶ୍ଚ ।

ଅର୍ଥାତ୍ ବୃହସ୍ପତି ଧନୁରେ ଥିଲେ ରାଜ,ସମ୍ମାନ ମିଳେ, କୃଷିକ୍ରିୟା,ଯଜ୍ଞ, ଚତୁଷ୍ପଦାଦି ପାଳନରେ ମନ ନିରତ ହୁଏ । ବୃହସ୍ପତି ମୀନରେ ଥିଲେ ଜାତକ ମନସ୍ୱୀ, ସମ୍ମାନଯୁକ୍ତ ହୁଏ; ପୁତ୍ର ସ୍ତ୍ରୀ ସମ୍ପଦାଦି ସୌଖ୍ୟ ଓ ରାଜହେତୁକ ସୁଖ ଲାଭ କରେ ।

ବୃଷୋପଯାତୋଶନସୋ ଦଶାୟାଂ କୃଷିକ୍ରିୟା ସତ୍ପଶୁ

ସୌଖ୍ୟବୃଦ୍ଧିଃ ।

ଶାସ୍ତ୍ରେମତିଃସ୍ୟାତ୍ ସୁତରାଂ ନରସ୍ୟ ଦାତୃତ୍ୱକନ୍ୟାଜନନ

ପ୍ରସାଦାଃ ॥

ତୁଲାଧରସ୍ଥାସୁରପୂଜିତସ୍ୟ ଦଶାପ୍ରବେଶେ କୃଷିକୃନ୍ମନୁଷ୍ୟଃ ।

ବଣିକ୍ସ୍ଥମାନୋଧନବାହନାଢ୍ୟଃ ସ୍ୱଜ୍ଞାତି ସଂପ୍ରାପ୍ତ

ମହାସୁଖଃ ସ୍ୟାତ୍ ॥

ଅର୍ଥାତ୍ ଶୁକ୍ର ବୃଷରେ ଥିଲେ କୃଷିକ୍ରିୟାରୁ ଓ ଉତ୍ତମ ପଶୁ ହେତୁ ଲାଭବାନ ହୁଏ । ସେ ଶାସ୍ତ୍ରନିରତ, ଦାତା, କନ୍ୟା-ଲାଭକାରୀ ଓ ସୁଖୀ ହୁଏ । ଶୁକ୍ର ତୁଳାରେ ଥିଲେ କୃଷିହେତୁ, ବଣିକ୍ସ୍ଥ ସମ୍ମାନରୁ ଧନ, ବାହନ ଇତ୍ୟାଦିର ପ୍ରାପ୍ତି ହୁଏ ଓ ଜ୍ଞାତିବର୍ଗଙ୍କ ହେତୁ ସୁଖ ମିଳେ ।

ଶନେର୍ଦ୍ଦଶାୟାଂ ମକରସ୍ଥିତସ୍ୟ ବହୁଶ୍ରମୋପାର୍ଜ୍ଜିତଧନଂ ନରାଣାଂ ।

-ନପୁଂସକସ୍ତ୍ରୀ ଜନସେବନଶ୍ଚ ବିଶ୍ୱାସଘାତେନଧନାଦହସ୍ତ ॥

ଶନେର୍ଦ୍ଦଶାୟାଂ କଲଶାଶ୍ରିତସ୍ୟ ସୁଖାନ୍ୱିତଂ ମହତ୍ପ୍ରତିଷ୍ଠା ।

ଶ୍ରେଷ୍ଠତ୍ୱମୁଚ୍ଚୈଃ ସ୍ୱକୁଳେନରସ୍ୟ କୃଷିକ୍ରିୟା ପୁତ୍ରଧନାଦିଲବ୍ଧଃ ।

ଅର୍ଥାତ୍ ଶନି ମକରରେ ଥିଲେ ବହୁଶ୍ରମ ହେତୁକ ଧନ ଲାଭହୁଏ; ନପୁଂସକ ଓ ସ୍ତ୍ରୀହେତୁକ ସେବାରୁ ଧନ ଲାଭ ହୁଏ; ବିଶ୍ୱାସଘାତକତାରେ ଧନ ନଷ୍ଟ ହୁଏ । ଶନି କୁମ୍ଭ ରାଶିରେ ଥିଲେ ସୁଖ, ମହତ୍ ପ୍ରତିଷ୍ଠା, ଶ୍ରେଷ୍ଠତ୍ୱ ହୁଏ; ଉକ୍ତ ବ୍ୟକ୍ତି ନିଜ କୁଳରେ ସମ୍ମାନିତ, କୃଷି ହେତୁକ ଲାଭବାନ୍ ଓ ପୁତ୍ରଧନାଦିଯୁକ୍ତ ହୁଏ । ଗ୍ରହମାନେ ସେମାନଙ୍କର ସ୍ୱଗୃହରୁ ଓ ସେଥିରେ ଥିବା ଗ୍ରହମାନଙ୍କୁ ଦେଖିବା ମଧ୍ୟ ଯୋଗକାରକ ।

ସନ୍ଦର୍ଭ ଲେଖକ—

ଶ୍ରୀ ବାଇକୋଳ ମହାପାତ୍ର ଜ୍ୟୋତିଷ ବିଶାରଦ ।]

୩ । କଳକାର ପକ୍ଷୀ ( ଜଃାଧର )—3. A kind of bird.

ସ୍ୱଙ୍ଗ—ସଂ. ବି. (କର୍ମଧା, ସୁ+ଅଙ୍ଗ )—ସୁନ୍ଦର ଅବୟବ—Graceful Swanga limb. ସଂ. ବିଣ.—(ବହୁବ୍ରୀହି) ସୁନ୍ଦର ଅଙ୍ଗବିଶିଷ୍ଟ (ସ୍ୱଙ୍ଗୀ—ସ୍ତ୍ରୀ) (ହେମଚନ୍ଦ୍ର)—Having graceful limbs.

ସ୍ୱ ଚକ୍ଷୁରେ—ଦେ. କ୍ରି. ବିଣ—ନିଜ ଆଖିରେ (ଦେଖିବା)—Swa chakshure (To see) With one's eyes. স্বচক্ষে स्वचक्षु से

ସ୍ୱଚ୍ଛ—ସଂ. ବିଣ. (ସୁ=ଅତ୍ୟନ୍ତ+ଅଚ୍ଛ=ନିର୍ମଳ)—୧ । ଅତି ନିର୍ମଳ Swachcha 1, Very clear. ୨ । ପ୍ରତିବିମ୍ବଧାରଣକ୍ଷମ—(ଅନଚ୍ଛ—ବିପରୀତ) 2. Transparent. ୩ । ଶୁକ୍ଳ—3. White. ୪ । ଶୁଭ୍ର—4. Bright. ୫ । ରୋଗବିମୁକ୍ତ—5. Free from disease ୬ । ନିଷ୍କପଟ (ହି.ଶ)—6. Guileless

ସଂ. ବି.—୧ । ମୁକ୍ତା ( ରାଜନିଘଣ୍ଟୁ )—1. Pearl. ୨ । ସ୍ଫଟିକ (ରାଜ ନିଘଣ୍ଟୁ)—2. Crystal. [ଉ—ଧର୍ମପାଶେ 'ସତ୍ୟ' ମହା ତେଜସ୍ୱୀ କର୍ଣ୍ଣୀଙ୍କ ସ୍ୱଚ୍ଛବତ ବିଶେଷାଙ୍କ ସମସ୍ତ ବିଗ୍ରହ—ରାଧାନାଥ ମହାଯାତ୍ରା । ] ୩ । ବଦରୀ ବୃକ୍ଷ ( ହି. ଶ) 3. Jujube tree.

୪ । ଅଭ୍ରକ (ହି. ଶ)—4. Mica. ୫ । ସ୍ୱର୍ଣ୍ଣମାକ୍ଷିକ (ହି. ଶ)—5. Iron pyrites. ୬ । ରୌପ୍ୟମାକ୍ଷିକ (ହି. ଶ)—6. A kind of iron pyrites. ୭ । ସ୍ୱର୍ଣ୍ଣ ଓ ରୌପ୍ୟର ମିଶ୍ରଣ (ହି. ଶ )—7. Fusion of gold and silver. ୮ । ବିମଳ ଉପରସ (ରାଜନିର୍ଘଣ୍ଟୁ)—

স্বচ্ছ 8. Clear liquid or metal. ୧ । ମନର

स्वच्छ ପ୍ରସନ୍ନତା—1. Favourable condition of mind. ୨ । ମନର ଅକୁଣ୍ଠିତ ଭାବ—2. Sportaneous mental condition; free will. [ଉ—ଅମୁକ କାର୍ଯ୍ୟ ପାଇଁ ଟ ୩ ୯ ଦେବାକୁ ମୋର ସ୍ୱଚ୍ଛ ହେଉଛି ।] ଦେ. ବିଣ—୧ । ଉଚିତ; ଯଥାର୍ଥ—1. Proper; appropriate. (ଉ—ବାସରେ ଚହଟେ ଯୋଜନଗନ୍ଧା ନାମହିଁ ସ୍ୱଚ୍ଛ—ବୈଦେହୀଶବିଳାସ । )

୨ । କୁଣ୍ଠା ରହିତ (ମନ)—2. (mind) Free from any scruple.

ସ୍ୱଚ୍ଛତା(ତ୍ୱ)—ସଂ. ବ ( ସ୍ୱଚ୍ଛ+ଭାବ. ତା, ତ୍ୱ )—୧ । ନିର୍ମଳତା—Swachchhatā(twa) 1. Clearness, ୨ । ପ୍ରତିବିମ୍ବଧାରଣ କ୍ଷମତା—2. Transparence. ୩ । ଶୁଭ୍ରତା—3. Brightness.

ସ୍ୱଚ୍ଛନ୍ଦ—ସଂ. ବଣ. ପୁଂ (ସ୍ୱ ଅଟେ ଛନ୍ଦ ଯାହାର; ବହୁବ୍ରୀହି; ସ୍ୱ+ଛନ୍ଦ= Swachchhanda ଇଚ୍ଛା; ସନ୍ଧିହାର ଛ ସ୍ଥାନରେ ଚ୍ଛ)—(ସ୍ୱଚ୍ଛନ୍ଦା—ସ୍ତ୍ରୀ) ୧ । ସ୍ୱେଚ୍ଛାନୁଗ; ସ୍ୱେଚ୍ଛାନୁବର୍ତ୍ତୀ—1. Self-[ସ୍ୱଚ୍ଛନ୍ଦତା, ସ୍ୱାଚ୍ଛନ୍ଦ୍ୟ—ବି] willed; voluntary. ( ଯଥା—ବ ରୂପରେ ମୋହର ହୋଇବ ଗୋବିନ୍ଦ, ଏଥିକି ସାହା କୃଷ୍ଣ ହୋଇଣ ସ୍ୱଚ୍ଛନ୍ଦ । କୃଷ୍ଣସିଂହ ମହାଭାରତ. ବଣ୍ଟ ।) ୨ । ଅପରାଧୀନ; ସ୍ୱତନ୍ତ୍ର; ସ୍ୱାଧୀନ—2. Independent; free. ୩ । ବାଧାଶୂନ୍ୟ; ଅନିୟନ୍ତ୍ରିତ; ନିରଙ୍କୁଶ—3. Unobstructed, unrestrained. ୪ । ସୁଖୀ—4. Happy. ୫ । ସନ୍ତୁଷ୍ଟ—5. Contented. ୬ । ଅଯତ୍ନଜାତ; ନିଜେଚେଷ୍ଟାରେ ପ୍ରବୃତ୍ତ; ମନକୁ ଉଠିଥିବା (ଗନ୍ଧ); ରମ୍ୟ (ଗନ୍ଧ)—6. Spontaneous; natural; produced without effort. ୭ । ସୁସ୍ଥ—7. Healthy. ୮ । ଅନାୟାସଲଭ୍ୟ—8. Easily available. ସଂ. ବ (ବ୍ୟକ୍ତି ଶୁଣ)—୧ । ସ୍ୱେଚ୍ଛା; ଅନ୍ୟଦ୍ୱାରା ଅନିୟନ୍ତ୍ରିତ ନିଜର ଇଚ୍ଛା—1. One's free will. ୨ । ସ୍ୱାଧୀନତା—2. Freedom. ୩ । ସ୍ୱେଚ୍ଛାଗତି—3. Action according to one's own will. ଦେ. କ୍ରି. ବଣ (ପଦ୍ୟ)—୧ । ସ୍ୱଚ୍ଛନ୍ଦରେ

स्वच्छन्दे
स्वच्छन्दे

(ଦେଖ)—1. Swachchhandare (See) (ଯଥା—ସ୍ୱଚ୍ଛନ୍ଦେ ଭୁଜସ୍ୱପଦସ୍ୱ ରମି.ଲ ମାଧବ । ଗୀତି. ଉପବାରଣ ।) ୨ । ସ୍ୱେଚ୍ଛାକ୍ରମେ—2. Voluntarily.

ସ୍ୱଚ୍ଛନ୍ଦ ଗତି—ସଂ. ଚ (କର୍ମଧା)—ସ୍ୱେଚ୍ଛାକ୍ରମେ ଗିବା—Voluntary Swachchhanda gati motion. ସଂ. ବଣ, ପୁଂ ଓ ସ୍ତ୍ରୀ—(ସ୍ୱଚ୍ଛନ୍ଦ ଗମନ—ଅନ୍ୟ ପୁଂ, ରୂପ) (ବହୁବ୍ରୀହି)—ଯେ ସ୍ୱେଚ୍ଛାକ୍ରମେ [ସ୍ୱଚ୍ଛନ୍ଦଗମନା—ସ୍ତ୍ରୀଲିଙ୍ଗ ରୂପ] ଗତି କରେ—Moving freely.

ସ୍ୱଚ୍ଛନ୍ଦଚର—ସଂ. ବଣ. ପୁଂ (ସ୍ୱଚ୍ଛନ୍ଦ+ଚର୍ ଧାତୁ+କର୍ତ୍ତୃ. ଅ)—Swachchhandachara ସ୍ୱଚ୍ଛନ୍ଦଚାରୀ (ଦେଖ)—(ସ୍ୱଚ୍ଛନ୍ଦଚରୀ—ସ୍ତ୍ରୀ) Swachchhandachārī (See)

ସ୍ୱଚ୍ଛନ୍ଦଚାରିଣୀ—ସଂ. ବଣ. ସ୍ତ୍ରୀ (ସ୍ୱଚ୍ଛନ୍ଦଚାରିନ୍+ସ୍ତ୍ରୀ. ଈ)—ସ୍ୱଚ୍ଛନ୍ଦଚାରୀର Swachchhandachāriṇī ସ୍ତ୍ରୀଲିଙ୍ଗ—Feminine of Swachchhandachārī. ସଂ. ବ. ସ୍ତ୍ରୀ—ବେଶ୍ୟା (ବି. ଶ)—Harlot.

ସ୍ୱଚ୍ଛନ୍ଦଚାରୀ—ସଂ. ବଣ. ପୁଂ—ଯେ ଇଚ୍ଛାନୁସାରେ ବିଚରଣ Swachchhandachārī କରେ; ସ୍ୱେଚ୍ଛାବିହାରୀ—Moving (ସ୍ୱଚ୍ଛନ୍ଦଚାରିଣୀ—ସ୍ତ୍ରୀ) according to one's own free will.

(ଯଥା—ସେହି କାଳେ ହେଲେ ଯେତେକ ଦ୍ୱିଜ ଜାତି, ସ୍ୱଚ୍ଛନ୍ଦଗମ୍ୟ ବୋଲି ତାହାଙ୍କୁ କହନ୍ତି । କୃଷ୍ଣସିଂହ. ମହାଭାରତ ବନ ।)

ସ୍ୱଚ୍ଛନ୍ଦ ଚିତ୍ତ—ସଂ. ବ (କର୍ମଧା)—୧ । ନିଶ୍ଚିନ୍ତ ମନ—1. Unperturbed mind. ୨ । ସ୍ୱାଧୀନ Swachchhanda chitta ମନ—2. Independent mind. ସଂ. ବଣ. ପୁଂ—(ସ୍ୱଚ୍ଛନ୍ଦଚେତାଃ—ଅନ୍ୟ ପୁଂ ଓ ସ୍ତ୍ରୀ. ବଣରୂପ) (ବହୁବ୍ରୀହି)—[ସ୍ୱଚ୍ଛନ୍ଦଚିତ୍ତା—ସ୍ତ୍ରୀ. ବଣ] ସୁସ୍ଥଚେତାଃ; ନିଶ୍ଚିନ୍ତମନାଃ—1. Contented; free from anxiety. ୨ । ସ୍ୱାଧୀନଚେତାଃ—2. Having an independent or uninfluenced mind.

ସ୍ୱଚ୍ଛନ୍ଦତା(ତ୍ୱ)—ସଂ. ବ (ସ୍ୱଚ୍ଛନ୍ଦ+ଭାବ, ତା, ତ୍ୱ)—୧ । ସ୍ୱାଧୀନତା; Swachchhandatā( twa ) ସ୍ୱାତନ୍ତ୍ର୍ୟ—1. Independence. [ସ୍ୱାଚ୍ଛନ୍ଦ୍ୟ—ଅନ୍ୟ ବ. ରୂପ] ୨ । ବାଧାଶୂନ୍ୟ ଅବସ୍ଥା—2. State of being unobstructed. ୩ । ଅଯତ୍ନଜାତ ଅବସ୍ଥା—3. Spontaneity. ୪ । ସୁଖ—4. Happiness. ୫ । ସନ୍ତୋଷ—5. Contentedness. ୬ । ସୁସ୍ଥତା—6. Healthiness. ୭ । ନିଶ୍ଚିନ୍ତତା—7. Freedom from care or anxiety or uneasiness.

ସ୍ୱଚ୍ଛନ୍ଦ ବିହାର—ସଂ. ବ—ନିଜ ଇଚ୍ଛାନୁସାରେ ବୁଲିବା; ସ୍ୱଚ୍ଛନ୍ଦଗତି—Swachchhanda bihāra Rambling at one's (ସ୍ୱଚ୍ଛନ୍ଦବିହାରୀ—ବଣ. ପୁଂ) pleasure; a walk of [ସ୍ୱଚ୍ଛନ୍ଦବିହାରିଣୀ—ବଣ. ସ୍ତ୍ରୀ] pleasure.

ସ୍ୱଚ୍ଛନ୍ଦ ମରଣ—ସଂ. ବ (ଦେଶଜ ବ୍ୟବହାର)—୧ । ଇଚ୍ଛାମରଣ; ଇଚ୍ଛା-Swachchhanda maraṇa ମୃତ୍ୟୁ; ନିଜର ଇଚ୍ଛାଅନୁସାରେ

स्वच्छन्दमरण
इच्छामरण

ମୃତ୍ୟୁ—1. Voluntary death. (ଯଥା—ତାହା ଶୁଣିଣ ବାଣେ ପାଇ ବିବସ୍ତ୍ର, ବରଣ କରିଦେଲେ ସ୍ୱଚ୍ଛନ୍ଦ ମରଣକୁ । କୃଷ୍ଣସିଂହ. ମହାଭାରତ. ଆଦି ।) ୨ । ଅନାୟାସମୃତ୍ୟୁ—2. Painless death.

ସ୍ୱଚ୍ଛନ୍ଦରେ—ଦେ. କ୍ରି. ବଣ—ସ୍ୱେଚ୍ଛାକ୍ରମେ—Voluntarily; of Swachchhandare one's free will. ୨। ଅନାୟାସରେ—

स्वच्छन्दे

2 Easily; at one's ease. ୩ । ସ୍ୱାଧୀନରୂପେ—3. Freely. ୪ । ଅଯତ୍ନରେ—4. Spontaneously. ୫ । ବାଧା ରହିତ ଭାବରେ—5. In an unobstructed manner.

स्वच्छन्दमें

ସ୍ୱଚ୍ଛନ୍ଦାଚାର—ସଂ. ବ. (କର୍ମଧା)—ସ୍ୱେଚ୍ଛାଚାର; ଅପରାଧୀନତା—Swachchhandāchāra Independence; unsubserviency. ସଂ. ବଣ. ପୁଂ (ବହୁବ୍ରୀହି)—ସ୍ୱେଚ୍ଛା ବିହାରୀ—(ସ୍ୱଚ୍ଛନ୍ଦାଚାରା – ସ୍ତ୍ରୀ ବଣ) Moving freely.

ସ୍ୱଚ୍ଛନ୍ଦାନୁବର୍ତ୍ତିତା—ସଂ. ବ. ( ସ୍ୱଚ୍ଛନ୍ଦାନୁବର୍ତ୍ତିନ୍+ଭାବେ ତା )—୧ । Swachchhandānubarttitā, ସ୍ୱେଚ୍ଛାଚାରିତା—1.Liberty of action. ୨। ନିଜର ବ୍ୟକ୍ତିତ୍ୱ—2. One's individuality.

ସ୍ୱଚ୍ଛନ୍ଦାନୁବର୍ତ୍ତୀ—ସଂ. ବିଣ. ପୁଂ. (ସ୍ୱଚ୍ଛନ୍ଦ+ଅନୁବର୍ତ୍ତିନ୍; ସ୍ୱଚ୍ଛନ୍ଦାନୁ-
Swachchhandānubartti ବର୍ତ୍ତିନ୍ ୧ମା ୧ବ)—
(ସ୍ୱଚ୍ଛନ୍ଦାନୁବର୍ତ୍ତିନୀ—ସ୍ତ୍ରୀ) ସ୍ୱେଚ୍ଛାଗ୍ରସ୍ତ—Acting of one's free will; free to act.

ସ୍ୱଚ୍ଛ ପତ୍ର—ସଂ. ବି. (ବହୁବ୍ରୀହି; ସ୍ୱଚ୍ଛ ଅଛି ପତ୍ର ଯାହାର)—ଅଭ୍ରକ
Swachchha patra (ହେମଚନ୍ଦ୍ର)—Mica.

ସ୍ୱଚ୍ଛ ବାଲୁକ—ସଂ. ବି. (କର୍ମଧା)—ନିର୍ମଳ ଲବଣରସ; ବିମଳ ନାମକ
Swachchha bāluka (Kā) ଉପଧାତୁ (ଚ. ଶ)—Clear-salts.

ସ୍ୱଚ୍ଛ ମଣି—ସଂ. ବି. (କର୍ମଧା)—ସ୍ଫଟିକ (ରାଜନିର୍ଘଣ୍ଟ)—
Swachchha maṇi Crystal.

ସ୍ୱଚ୍ଛ ମନ—ସଂ ବି (ଦେଶଜ ବ୍ୟବହାର)—୧ । ନିର୍ମଳ ବା ସରଳ ମନ—
Swachchha mana 1. Clear or frank mind. ୨ ।
ସ୍ୱଚ୍ଛମନ ଅସନ୍ଦିଗ୍ଧ ହୃଦୟ—2. Unsuspecting mind;
ସ୍ୱଚ୍ଛମନ mind having no scruple to do a thing.
୩ । ସ୍ୱେଚ୍ଛା—3. Free will.

ସ୍ୱଚ୍ଛ ସଲିଳ—ସଂ. ବି. (କର୍ମଧା)—ନିର୍ମଳ ଜଳ—Clear or trans-
Swachchha salila parent water.—ସଂ. ବିଣ. ପୁଂ.
(ସ୍ୱଚ୍ଛ ସଲିଳା—ସ୍ତ୍ରୀ) (ବହୁବ୍ରୀହି)—ନିର୍ମଳ ଜଳବିଶିଷ୍ଟ—
Containing clear or transparent water.

ସ୍ୱଚ୍ଛା—ସଂ. ବିଣ. ସ୍ତ୍ରୀ—ସ୍ୱଚ୍ଛର ସ୍ତ୍ରୀଲିଙ୍ଗ—Feminine of Swa-
Swachchhā chchha. ସଂ. ବି.—ଶ୍ୱେତ ଦୁବ୍ବା (ରାଜ-
ନିର୍ଘଣ୍ଟ)—The white Doob grass.

ସ୍ୱଚ୍ଛେ—ଦେ. କ୍ରି. ବିଣ—ସୁସ୍ପଷ୍ଟରୂପେ—Clearly; distinctly;
Swachchhe (ଉ—ବାହାରଲେ ତ ଅଚ୍ଛେ, ଭଣିକ ସୁଦ୍ର ମନ୍ତ୍ର,
ସ୍ପଷ୍ଟଭାବେ ଦେଖିବ ହେଲ ସବୁ ସ୍ୱଚ୍ଛେ ।
ସ୍ପଷ୍ଟଭାବସେ ଚ. ବୈଦେହୀଶବିଳାସ ।)

ସ୍ୱଜ—ସଂ. ବିଣ. ପୁଂ (ସ୍ୱ+ଜନ୍ ଧାତୁ+କର୍ତ୍ତୃ. ଅ)—୧ । ଆତ୍ମଜାତ—
Swaja 1. Produced from one's self. ୨ । ଶରୀରଜ
(ସ୍ୱଜା—ସ୍ତ୍ରୀ) ଜାତ—2. Born of the body. ସଂ. ବି—
୧ । ରକ୍ତ (ମେଦିନୀ)—1. Blood. ୨ । (ପୁଂ) ପୁତ୍ର
(ମେଦିନୀ)—2. Son. ୩ । ସ୍ୱେଦ; ଝାଳ (ମେଦିନୀ)
—3. Sweat; perspiration.

ସ୍ୱଜନ—ସଂ. ବିଶ. ପୁଂ (ସ୍ୱ+ଜନ; ରକ୍ତସମ୍ପର୍କ, ବିବାହସମ୍ପର୍କ
Swajana ବା ଧର୍ମସମ୍ପର୍କରେ ଯେଉଁ ବ୍ୟକ୍ତି ଆପଣାର
ଅଟନ୍ତି ।)—୧ । ଆତ୍ମୀୟ ବ୍ୟକ୍ତି; ମିତ୍ର—1. Friend.
୨ । ବନ୍ଧୁ ବାନ୍ଧବ—2. Relative. ୩ । ଜ୍ଞାତି;
କୁଟୁମ୍ବ—3. Kinsman. ୪ । ନିଜର ଲୋକ—
4. One's own people. ୫ । ଆପଣା ପରିବାରସ୍ଥ
ବ୍ୟକ୍ତି—5. A member of one's family.

ସ୍ୱଜନତା(ତ୍ୱ)—ସଂ. ବି—(ସ୍ୱଜନ+ଭାବାର୍ଥେ ତା, ତ୍ୱ)—ସ୍ୱଜନ
Swajanatā(twa) ହେବାର ଅବସ୍ଥା; ଆତ୍ମୀୟତା—Kinship; relationship; friendship.

ସ୍ୱଜନ ବିନାଶ (ନାଶ)—ସଂ ବି.—(୬ଷ୍ଠୀ ତତ୍)—ନିଜର ଆତ୍ମୀୟ
Swajana bināśa (nāśa) ବ୍ୟକ୍ତିଙ୍କ କ୍ଷୟ—Destruction of one's kinsmen and friends.

ସ୍ୱଜନ ବିରୋଧ—ସଂ. ବି. (୭ମୀ ତତ୍)—ଆତ୍ମୀୟ ବ୍ୟକ୍ତିମାନଙ୍କ ସଙ୍ଗେ
Swajana birodha ବିବାଦ—Dispute or difference
(ବିଣ. ପୁଂ.—ସ୍ୱଜନ ବିରୋଧୀ)—with one's kinsmen or
(ବିଣ. ସ୍ତ୍ରୀ—ସ୍ୱଜନ ବିରୋଧିନୀ) friends.

ସ୍ୱଜନୀ—ସଂ. ବି. ସ୍ତ୍ରୀ (ସ୍ୱଜନ+ସ୍ତ୍ରୀ ଈ)—ସଜନୀ; ସ୍ତ୍ରୀସଙ୍ଗିନୀ—A
Swajanī female friend or companion.
(ଅପଭ୍ରଂଶ—ସଜନୀ)

ସ୍ୱଜନ୍ମା—ସଂ. ବିଣ. ପୁଂ ଓ ସ୍ତ୍ରୀ—(ବହୁବ୍ରୀହି; ସ୍ୱ+ଜନ୍ମନ୍; ସ୍ୱଜନ୍ମନ୍; ୧ମା
Swajanmā ୧ବ)—ସ୍ୱୟମ୍ଭୂ; ନିଜଠାରୁ ଜାତ; ଅନନ୍ୟଜନ୍ମା—
Born of ones self; not born of another.

ସ୍ୱଜା—ସଂ. ବିଣ. ସ୍ତ୍ରୀ. (ସ୍ୱଜ+ସ୍ତ୍ରୀ ଆ)—'ସ୍ୱଜ'ର ସ୍ତ୍ରୀଲିଙ୍ଗ—The
Swajā feminine of Swaja. ସଂ ବି—କନ୍ୟା; ଝିଅ—
Daughter.

ସ୍ୱଜାତ—ସଂ. ବିଣ ଓ ବି ପୁଂ—(ସ୍ୱ+ଜାତ; ୭ମୀତତ୍)—ସ୍ୱଜ (ଦେଖ)
Swajāta Swaja (See)
(ସ୍ୱଜାତା—ସ୍ତ୍ରୀ)

ସ୍ୱଜାତି—ସଂ. ବି. (୬ଷ୍ଠୀ ତତ୍)—ନିଜର ଜାତି ବା ଶ୍ରେଣୀ—One's
Swajāti own caste, class or nation

ସ୍ୱଜାତିଦ୍ୱିଷ୍—ସଂ.ବିଣ. (ପୁଂ ଓ ସ୍ତ୍ରୀ)—(ସ୍ୱଜାତି+ଦ୍ୱିଷ୍ ଧାତୁ+କର୍ତ୍ତୃ
Swajātidwish କ୍ୱିପ୍)—ନିଜର ଜାତି ପ୍ରତି ବିଦ୍ୱେଷୀ—
ସ୍ୱଜାତି ଦ୍ୱେଷୀ (ପୁଂ) } ଅନ୍ୟ ବିଣ ରୂପ—Spiteful to one's
ସ୍ୱଜାତି ଦ୍ୱେଷିଣୀ(ସ୍ତ୍ରୀ) } own caste.

ସ୍ୱଜାତି ଦ୍ରୋହ (ଦ୍ୱେଷ)—ସଂ. ବି.—ସ୍ୱଜାତି ବିରୋଧ (ଦେଖ)—
Swajāti droha (dwesha) Swajāti birodha (See)
ସ୍ୱଜାତିଦ୍ରୋହୀ (ଦ୍ୱେଷୀ)—ବିଣ ପୁ }
ସ୍ୱଜାତି ଦ୍ରୋହିଣୀ,ଦ୍ୱେଷିଣୀ)—ବିଣ. ସ୍ତ୍ରୀ }

ସ୍ୱଜାତି ପ୍ରିୟ—ସଂ ବିଣ. ପୁ.—୧ । (ବହୁବ୍ରୀହି) ଯେଉଁ ବ୍ୟକ୍ତି ଆପଣା
Swajāti priya ଜାତିକୁ ସ୍ନେହ କରେ—1. Fond of
(ସ୍ୱଜାତି ପ୍ରିୟା—ସ୍ତ୍ରୀ) one's nation or class. ୨ ।
(ସ୍ୱଜାତି ପ୍ରିୟତା—ବି) (୬ଷ୍ଠୀ ତତ୍) ସ୍ୱଜାତୀୟମାନଙ୍କ ଅନୁରାଗ-
ଭାଜନ—2. Loved by one's class.

ସ୍ୱଜାତି ପ୍ରୀତି (ପ୍ରେମ)—ସଂ. ବି.—ନିଜର ଜାତି ପ୍ରତି ଅନୁରାଗ—
Swajāti priti (prema) Love for or attachment
ସ୍ୱଜାତି ପ୍ରେମିକ (ପୁଂ) } ବିଣ—to one's kinsmen or
ସ୍ୱଜାତି ପ୍ରେମିକା (ସ୍ତ୍ରୀ) } class.

ସ୍ୱଜାତି ବିରୋଧ (ବିଦ୍ରୋହ)—ସଂ ବି—ସ୍ୱଜାତି ପ୍ରତି ଦ୍ରୋହ; ନିଜ ଜାତି
Swajāti birodha (bidroha) ସଙ୍ଗେ ବିବାଦ—Dispute with or opposition to one's own caste or nation.

ସ୍ୱଜାତି ବିରୋଧୀ[ବିଦ୍ରୋହୀ]—ସଂ. ବିଣ. ପୁଂ— ନିଜ ଜାତିପ୍ରତି ବିଦ୍ରୋହୀ-
Swajāti birodhī(bidrohī) ଆଚରଣକାରୀ—Acting
( ସ୍ୱଜାତିବିରୋଧିନୀ, ସ୍ୱଜାତିବିଦ୍ରୋହିଣୀ—ସ୍ତ୍ରୀ ) in opposition to the interests of one's own nation or caste.

ସ୍ୱଜାତି ସୁଲଭ—ସଂ. ବିଣ (୭ମୀ ତତ୍)—ନିଜ ଜାତିର ସ୍ୱାଭାବିକ (ଗୁଣ,
Swajāti sulabha ଅଭ୍ୟାସ ଆଦି); ଯାହା ସ୍ୱଜାତିରେ ସହଜରେ ଦେଖାଯାଏ—Natural to one's own class or nation.

ସ୍ୱଜାତୀୟ—ସଂ. ବିଣ. ପୁଂ ( ସ୍ୱ+ଜାତି+ଈୟ )—୧ । ସ୍ୱଜାତି
Swajātiya ସମ୍ବନ୍ଧୀୟ—1. Relating to one's caste
(ସ୍ୱଜାତୀୟା—ସ୍ତ୍ରୀ) or class. ୨ । ସ୍ୱଜାତିଭୁକ୍ତ—2. Belonging to or included in one's caste, class or nation.

ସ୍ୱ ଜାୟା(ଦାରା)—ସଂ. ବି (୬ଷ୍ଠୀ ତତ୍)—ସ୍ୱପତ୍ନୀ; ନିଜବିବାହିତା ସ୍ତ୍ରୀ—
Swa jāyā(dārā) One's married wife.

ସ୍ୱତଃ—ସଂ. ଅ ( ସ୍ୱ+ତସ୍ )—୧ । ଆପେ ଆପେ; ନିଜେ, ସ୍ୱୟଂ—
Swatah 1. Of itself; of one's own self.
(ସ୍ୱତଃ—ବିପର୍ଯ୍ୟାୟ) ୨ । ସ୍ୱେଚ୍ଛାକ୍ରମେ—2. Out of one's own accord or free will. ୩ । ନିଜର ଇଚ୍ଛା ଅନୁସାରେ—3. Voluntarily. ୪ । ସ୍ୱାଧୀନ ଭାବରେ—4. Independently. ୫ । ନିଜଠାରୁ—5. From one's self. ୬ । ସ୍ୱୟଂ ସ୍ୱୟଂ; ଅନ୍ୟର ଯତ୍ନ ବିନା—6. Spontaneously. ୭ । ଅନ୍ୟର ବିନା ମନ୍ତ୍ରଣାରେ—7. Without any suggestion or prompting from any other person.

ସ୍ୱତଃ ପରତଃ—ସଂ. ଅ (ବିପର୍ଯ୍ୟାର୍ଥ ସମାସ)—ନିଜଠାରୁ ଓ ପରଠାରୁ-
Swatah paratah From one's self and from others.

ସ୍ୱତଃ ପ୍ରବୃତ୍ତ—ସଂ. ବିଣ. ପୁଂ—ନିଜ ଇଚ୍ଛାରେ ବ୍ୟାପୃତ—Actuated
Swatah prabrutta by one's self; actuated by
(ସ୍ୱତଃ ପ୍ରବୃତ୍ତା—ସ୍ତ୍ରୀ) (ସ୍ୱତଃ ପ୍ରବୃତ୍ତି—ବି) one's free will.

ସ୍ୱତଃ ସିଦ୍ଧ—ସଂ. ବିଣ. ପୁଂ—୧। ଆପେ ଆପେ ସିଦ୍ଧ; ସହଜସିଦ୍ଧ;ସ୍ୱଭାବ-
Swatah siddha ସିଦ୍ଧ—1. Instinctive; innate. ୨।
(ସ୍ୱତଃ ସିଦ୍ଧା—ସ୍ତ୍ରୀ) ନିଜେ ସିଦ୍ଧିପ୍ରାପ୍ତ—2. Self-accomplished. ୩ । ଯାହା ପ୍ରମାଣର ଅବଶ୍ୟକତା ନାହିଁ—3. Self-evident; axiomatic. ସଂ. ବି—
(ସ୍ୱତଃ ସିଦ୍ଧି—ବି) (ଜ୍ୟାମିତି)—ଯେଉଁ ସତ୍ୟ ପ୍ରମାଣିତ ହେବାର ଅବଶ୍ୟକତା ନାହିଁ—(Geometry) Axiom.

ସ୍ୱତନ୍ତର—ଗ୍ରା. ବିଣ (ସଂ. ସ୍ୱତନ୍ତ୍ର)—ସ୍ୱତନ୍ତ୍ର ( ଦେଖ )
Swatantara Swatantra ( See )
স্বতন্তর स्वतंतर [ସ୍ୱତନ୍ତରୀ(ରା)—ସ୍ତ୍ରୀ]

ସ୍ୱତନ୍ତରା—ଗ୍ରା. ବିଣ. ସ୍ତ୍ରୀ (ସଂ. ସ୍ୱତନ୍ତ୍ରା)—'ସ୍ୱତନ୍ତର'ର ସ୍ତ୍ରୀଲିଙ୍ଗ—
Swatantarā Feminine of 'Swatantara'.
[ଦ୍ର—ସ୍ୱକୀୟ ସ୍ୱତନ୍ତର ନାରୀ, ଯାହାକୁ ଆମ୍ଭ ବଶ କର । ଭୁଗତ, ପ୍ରେମତରଙ୍ଗିଣୀ ।]

ସ୍ୱତନ୍ତ୍ର—ସଂ. ବିଣ. ପୁଂ ( ବହୁବ୍ରୀହି; ସ୍ୱ ହୋଇଅଛି ତନ୍ତ୍ର ଯାହାର )—
Swatantra ୧ । ସ୍ୱାଧୀନ—1. Independent; free;
(ସ୍ୱତନ୍ତ୍ରା—ସ୍ତ୍ରୀ) self-dependent. ୨ । ସ୍ୱେଚ୍ଛାଚାରୀ—
(ପରତନ୍ତ୍ର—ବିପର୍ଯ୍ୟୟ) 2. Self-willed. ୩। ନିର୍ବାଧ; ନିରଙ୍କୁଶ
(ସ୍ୱତନ୍ତ୍ରତା, ସ୍ୱାତନ୍ତ୍ର୍ୟ—ବି) —3. Unobstructed. ୪ । ଅନ୍ୟମାନଙ୍କଠାରୁ ପୃଥକ୍—4. Distinct; separate from others; different. ୫ । ବିଶିଷ୍ଟ କାର୍ଯ୍ୟପାଇଁ ବା ପୃଥକ୍ ରୂପେ ନ୍ୟସ୍ତ—5. Specially set apart; set apart for a particular purpose.

ସ୍ୱତନ୍ତ୍ରତା(ତ୍ୱ)—ସଂ. ବି ( ସ୍ୱତନ୍ତ୍ର+ଭାବ. ତା )—୧ । ସ୍ୱାଧୀନତା—
Swatantratā(twa) 1. Independence. ୨ । ସ୍ୱେଚ୍ଛାଚାରିତା—
(ସ୍ୱାତନ୍ତ୍ର୍ୟ—ଅନ୍ୟରୂପ) 2. State of acting freely. ୩ । ବିଶିଷ୍ଟତା—3. Speciality. ୪ । ବ୍ୟକ୍ତିତ୍ୱ—4. Individuality. ୫ । ଅନ୍ୟମାନଙ୍କଠାରୁ ପୃଥକ୍ ହେବା ଅବସ୍ଥା—5. State of being distinct from others; distinction.

ସ୍ୱତନ୍ତ୍ରା—ସଂ. ବିଣ. ସ୍ତ୍ରୀ (ସ୍ୱତନ୍ତ୍ର+ଆ)—'ସ୍ୱତନ୍ତ୍ର'ର ସ୍ତ୍ରୀ ଲିଙ୍ଗ—
Swatantrā Feminine of Swatantra.
(ସ୍ୱତନ୍ତ୍ର—ପୁଂ) ସଂ. ବି. ସ୍ତ୍ରୀ—ସ୍ୱୈରିଣୀ ସ୍ତ୍ରୀ; ଯେଉଁ ସ୍ତ୍ରୀ ନିଜ ଇଚ୍ଛା ଅନୁସାରେ ଆଚରଣ କରେ—A woman who acts in an unrestrained manner.

ସ୍ୱତନ୍ତ୍ରାଚାର—ସଂ. ବିଣ. ପୁଂ ଓ ବି—ସ୍ୱେଚ୍ଛାଚାର ( ଦେଖ )
Swatantrāchāra Swechchhāchāra ( See )

ସ୍ୱତନ୍ତ୍ରୀ—ସଂ. ବିଣ. ପୁଂ (ସ୍ୱ+ତନ୍ତ୍ରିନ୍; ୧ମା. ୧ବ)—ସ୍ୱାଧୀନ (ବ୍ୟକ୍ତି)
Swatantrī Free; independent.
(ସ୍ୱତନ୍ତ୍ରିଣୀ—ସ୍ତ୍ରୀ)

ସ୍ୱତୀ—ଗ୍ରା. ବିଣ. ସ୍ତ୍ରୀ ଓ ବି (ସଂ. ସତୀ)—ସତୀ (ଦେଖ)—Satī (See)
Swati [ଦ୍ର—ସବୁ ସ୍ତ୍ରୀ ପରେ ସେ ଅଟନ୍ତି ମହାସ୍ୱତୀ । ପୀତାମ୍ବର
সতী सती ନୃସିଂହପୁରାଣ ।]

ସ୍ୱ ତୁଲ୍ୟ(ସଦୃଶ)—ସଂ. ବିଣ. ପୁଂ (୬ଷ୍ଠୀ ତତ୍)—ନିଜ ପରି—
Swa tulya(sadrusa) Like one's self.
(ସ୍ୱତୁଲ୍ୟା—ସ୍ତ୍ରୀ) (ସ୍ୱତୁଲ୍ୟତା, ସ୍ୱସାଦୃଶ୍ୟ—ବି)

ସ୍ୱତୋବିରୋଧ—ସଂ. ବି(ସ୍ୱତଃ+ବିରୋଧ)—ନିଜଠାରୁ ଉଠିବା ବିରୋଧ;
Swatobirodha ନିଜ ଦ୍ୱାରା ସ୍ୱମତର ଖଣ୍ଡନ—Self-incongruity; self-contradiction.

ସ୍ୱତୋବିରୋଧୀ—ସଂ. ବିଣ.ପୁଂ (ସ୍ୱତୋବିରୋଧିନ୍; ୧ମା. ୧ବ)—ନିଜର
Swatobirodhī ବିରୋଧୀ; ସ୍ୱମତର ବିରୋଧକାରୀ ବା ଖଣ୍ଡନକାରୀ—Self-contradictory; self-incongruous.
(ସ୍ୱତୋବିରୋଧିନୀ—ସ୍ତ୍ରୀ)

ସ୍ୱତ୍ୱ ସଂ. ବି (ସ୍ୱ+ଭାବ. ତ୍ୱ)—୧ । ସ୍ୱାତନ୍ତ୍ର୍ୟ—1. Individuality. ୨ । ଶାସ୍ତ୍ର ସଂଗତ ଯଥେଷ୍ଟ ବିନିଯୋଗାର୍ହତ୍ୱ—
Swatwa
(ଅପଭ୍ରଂଶ—ସତ୍ୱ) 2. Proprietory right according

to the law books. ୩ । ସ୍ୱାମିତ୍ୱ; କୌଣସି ସମ୍ପତ୍ତିରେ ପ୍ରଭୁତ୍ୱ—3. Proprietory right; mastery; ownership; title to a property. ୪ । ସଂପତ୍ତିରେ ଅଧିକାର, ସମ୍ପତ୍ତିକୁ ପାଇବା, ପାଖରେ ରଖିବା ଓ ଯଥେଚ୍ଛ ବ୍ୟବହାର କରିବାର ଅଧିକାର—4. Unrestricted right over property. ଦେ. ବ—ସଂପତ୍ତିକୁ ଦଖଲ କରିବାର ଅଧିକାର—Right to enjoy a property (on certain conditions). [ବି—(୧) ଉତ୍ତରାଧିକାରିତ୍ୱ, କ୍ରୟ, ଦାନ, ବହୁକାଳ ଭୋଗ ଦ୍ୱାରା ଓ ଯୁଦ୍ଧରେ ରାଜ୍ୟାଦି ଜୟ କରିବା ଦ୍ୱାରା ସଂପତ୍ତିରେ କୌଣସି ବ୍ୟକ୍ତିର ସ୍ୱତ୍ୱ ଜନ୍ମେ ।] [ବି (୨)—ଅଇନଗତ ବ୍ୟବହାର ଅନୁସାରେ 'ସ୍ୱତ୍ୱ' ଅନେକ ପ୍ରକାରର ହୁଏ । ସେଥିରୁ କେତେଗୁଡ଼ିକର ପରିଚୟ ତଳେ ଦିଆ ଯାଉଅଛି ।

୧ । ଉପସ୍ୱତ୍ୱ—(କ) ସ୍ୱତ୍ୱର ବା ସ୍ୱାମିତ୍ୱର ଅଧସ୍ତନ ଅଧିକାର (ଖ) ଏକ ବ୍ୟକ୍ତିର ସ୍ୱତ୍ୱ ଉପରେ ଅନ୍ୟ ବ୍ୟକ୍ତିର ଜନ୍ମିବା ଅଧିକାର ।

୨ । କ୍ରୟ (କ୍ରୈୟ) ସ୍ୱତ୍ୱ—କଣିବା ଯୋଗୁଁ ସମ୍ପତ୍ତିରେ କ୍ରେତାଙ୍କର ପ୍ରବର୍ତ୍ତିବା ଅଧିକାର ।

୩ । ଚିରସ୍ଥାୟୀ ସ୍ୱତ୍ୱ ବା ସ୍ଥାୟୀ ସ୍ୱତ୍ୱ—ଯାବଚ୍ଚନ୍ଦ୍ରାର୍କ କୌଣସି ସମ୍ପତ୍ତିରେ କୌଣସି ବ୍ୟକ୍ତିଙ୍କର ପୁରୁଷାନୁକ୍ରମେ ଜନ୍ମିବା ସ୍ୱତ୍ୱ ।

୪ । ଜମିଦାରୀ ସ୍ୱତ୍ୱ—ଜମିଦାରୀ ରୂପ ଭୂସମ୍ପତ୍ତି । (ଏହାପରି ଲଖରାଜ ସ୍ୱତ୍ୱ, ଦେବୋତ୍ତର ସ୍ୱତ୍ୱ, ବ୍ରହ୍ମୋତ୍ତର ସ୍ୱତ୍ୱ, ବାଜେଇଲ ସ୍ୱତ୍ୱ, ଠିକା ସ୍ୱତ୍ୱ, ବ୍ୟାଜ୍ୟାପ୍ତି ସ୍ୱତ୍ୱ ଆଦି ଶବ୍ଦ ମଧ୍ୟ ହୁଏ ।)

୫ । ଜୀବନ ସ୍ୱତ୍ୱ—କୌଣସି ସମ୍ପତ୍ତିକୁ ଦଖଲ କରୁଥିବା ବ୍ୟକ୍ତିଙ୍କର ବଞ୍ଚିଥିବା ପର୍ଯ୍ୟନ୍ତ ଉକ୍ତ ସମ୍ପତ୍ତିରେ ତାଙ୍କର ପ୍ରବର୍ତ୍ତିବା ଅଧିକାର ।

୬ । ଥାନି ସ୍ୱତ୍ୱ—ରଇତ ଯୋତ ଉପରେ ଥାନି ବା ମଉଜାନିବାସୀ ରଇତର ଜନ୍ମିବା ସ୍ୱତ୍ୱ । (ଏହାପରି ପାହିସ୍ୱତ୍ୱ, ସିକିମି ସ୍ୱତ୍ୱ, ଜାଗିରି ସ୍ୱତ୍ୱ, ସେବାଏତ ସ୍ୱତ୍ୱ, ଗୁଡ଼ିକା ସ୍ୱତ୍ୱ, ମିଆଦି ସ୍ୱତ୍ୱ ଆଦି ହୁଏ ।)

୭ । ଦଖଲ ସ୍ୱତ୍ୱ—ସମ୍ପତ୍ତି ଦଖଲ କରିବାର ଅଧିକାର ବା କେତେକାଳ ଦଖଲ କରିବା ଯୋଗୁ ଦଖଲକାରୀର ଜନ୍ମିବା ଅଧିକାର ।

୮ । ଦାନ ସ୍ୱତ୍ୱ—ଦାନ ଦ୍ୱାରା ଦତ୍ତସମ୍ପତ୍ତି ଉପରେ ଗ୍ରହୀତାଙ୍କର ଜନ୍ମିବା ସ୍ୱତ୍ୱ ।

୯ । ନିର୍ଦ୍ଦୂଢ଼ ସ୍ୱତ୍ୱ, ନିସ୍ପତ୍ତ ସ୍ୱତ୍ୱ—ସମ୍ପତ୍ତି ଉପରେ ପୂର୍ଣ୍ଣ ସ୍ୱାମିତ୍ୱ ।

୧୦ । ନିଷ୍କର ସ୍ୱତ୍ୱ ବା ନିଷ୍କର ସ୍ୱତ୍ୱ—ଖଜଣା ନ ଦେଇ ରଇତ ଜମିକୁ ଭୋଗ କରିବାର ପ୍ରଜାସ୍ୱତ୍ୱ ।

୧୧ । ପଟା(ଟ୍ଟା)ଇ ସ୍ୱତ୍ୱ—ଜମିଦାରଙ୍କଠାରୁ ପଟା ପାଇଥିବା ଯୋଗୁଁ ଜମିରେ ପଟାଗ୍ରହୀତାଙ୍କର ଜନ୍ମିବା ଅଧିକାର ।

୧୨ । ପ୍ରଜାସ୍ୱତ୍ୱ—ଜମିଦାରଙ୍କ ଅଧୀନ ପ୍ରଜା ସ୍ୱରୂପ ରଇତ ଜମିକୁ ଭୋଗ କରିବାର ଅଧିକାର ।

୧୩ । ବିବାଦୀୟ ସ୍ୱତ୍ୱ ବା ବିରୋଧୀୟ ସ୍ୱତ୍ୱ—ଯେଉଁ ସ୍ୱତ୍ୱ ପାଇଁ ଏକାଧିକ ବ୍ୟକ୍ତିଙ୍କ ମଧ୍ୟରେ ବିବାଦ ଲାଗିଥାଏ ।

୧୪ । ବିଲୁପ୍ତ ସ୍ୱତ୍ୱ—ଅନ୍ୟ ବ୍ୟକ୍ତିର ପ୍ରତିଦ୍ୱନ୍ଦ୍ୱିତା ଲୁପ୍ତ ହୋଇ କୌଣସି ସମ୍ପତ୍ତିରେ କୌଣସି ବ୍ୟକ୍ତିଙ୍କର ପ୍ରବର୍ତ୍ତିବା ଅଧିକାର ।

୧୫ । ଭୂସ୍ୱତ୍ୱ—ଜମିରେ ଜନ୍ମିବା ଅଧିକାର ।

୧୬ । ଭୋଗ ଦଖଲି ସ୍ୱତ୍ୱ—(କ) ଯେଉଁ ସମ୍ପତ୍ତିକୁ ବହୁ କାଳ ଭୋଗ ବା ଦଖଲ କରିବା ଦ୍ୱାରା ଭୋଗକାରୀଙ୍କର ତହିଁରେ ଯେଉଁ ସ୍ୱତ୍ୱ ଜନ୍ମେ ।

(ଖ) ଯେଉଁ ସ୍ୱତ୍ୱକୁ ସମ୍ପତ୍ତିର ପ୍ରକୃତ ସ୍ୱାମୀ ସ୍ୱୟଂ ଭୋଗ ବା ଦଖଲ କରୁଥାଆନ୍ତି ।

୧୭ । ମଧ୍ୟ ସ୍ୱତ୍ୱ—ପ୍ରଜାଙ୍କଠାରୁ ଖଜଣା ଅଦାୟ କରି ଜମିଦାରଙ୍କ ନିକଟରେ ଦଖଲ କରିବା ପାଇଁ ନିଯୋଜିତ ଭୂସ୍ୱାମୀ ବ୍ୟକ୍ତିଙ୍କର ସ୍ୱତ୍ୱ ।

୧୮ । ମାଲିକ(କି)ସ୍ୱତ୍ୱ—ସମ୍ପତ୍ତିରେ ସମ୍ପୂର୍ଣ୍ଣାଧିକାରରୂପସ୍ୱତ୍ୱ ।

୧୯ । ଗ୍ରନ୍ଥସ୍ୱତ୍ୱ—ଗ୍ରନ୍ଥକାରଙ୍କର ରଚିତ ଗ୍ରନ୍ଥର ପ୍ରକାଶ ବିଷୟରେ ଅଧିକାର—Copyright.]

**ସ୍ୱତ୍ୱ ଉପସ୍ୱତ୍ୱ**—ଦେ. ବ (କଚିରଥ ଭାଷା)—୧ । ସମ୍ପତ୍ତିରେ ଥିବା ସବୁ ପ୍ରକାରର ସ୍ୱାମିତ୍ୱ ଓ ଅଧିକାର—
Swatwa upaswatwa
स्वत्व उपस्वत्व स्वत्व उपसत्व 1. Proprietory and subordinate rights connected with a property. ୨ । ସମ୍ପତ୍ତିରେ ପୂର୍ଣ୍ଣ ସ୍ୱାମିତ୍ୱ ଓ ସମ୍ପତ୍ତିର ଅୟକୁ ମାତ୍ର ଭୋଗ କରିବାର ଅଧିକାର—2. Right over a property and right over its usufruct.
(ସତ୍ୱ ଉପସତ୍ୱ—ଗ୍ରାମ୍ୟରୂପ)

**ସ୍ୱତ୍ୱ ତ୍ୟାଗ**—ଦେ. ବ (କଚିରଥ ଭାଷା)—୧। କୌଣସି ସମ୍ପତ୍ତିରୁ ସ୍ୱାମିତ୍ୱ ବା ଅଧିକାର ଛାଡ଼ି ଦେବା—
Swatwa tyāga
1. Relinquishment of one's right over a property. ୨ । ନିଜର ଦଖଲକୁ ଛାଡ଼ିଦେବା—2. Giving up of possession.

**ସ୍ୱତ୍ୱ ତ୍ୟାଗ ପତ୍ର**—ଦେ. ବ [କଚିରଥ ଭାଷା]—ଯେଉଁ ଦଲିଲଦ୍ୱାରା କୌଣସି ବ୍ୟକ୍ତି କୌଣସି ସମ୍ପତ୍ତିରେ
Swatwa tyāga patra
स्वत्वत्यागपत्र स्वत्वत्यागपत्र ନିଜର ସ୍ୱାମିତ୍ୱ ଛାଡ଼ିଦେବା କଥା ଲେଖି ଦିଅନ୍ତି; ନାଦାବୀପତ୍ର—Deed of relinquishment or release.

**ସ୍ୱତ୍ୱ ଦଖଲ**—ଦେ. ବ (ସହରର; କଚିରଥ ଭାଷା)—ସମ୍ପତ୍ତିର ସ୍ୱାମିତ୍ୱ ଓ ଭୋଗ—Title to and possession of a property.
Swatwa dakhala
स्वत्वदखल स्वत्वदखल

**ସ୍ୱତ୍ୱ ଦାୟୀ**—ଦେ. ବଣ (କଚିରଥ ଭାଷା)—ସତ୍ୱଦାୟୀ (ଦେଖ)—Satwadāyi (See)
Swatwa dāyi

**ସ୍ୱତ୍ୱ ନିବୃତ୍ତି**—ଦେ. ବ [କଚିରଥ ଭାଷା]—କୌଣସି ସମ୍ପତ୍ତିରୁ ସ୍ୱାମିତ୍ୱ ଲୁପ୍ତ ହେବା—Cessation of right over a property.
Swatwa nibrutti

ସ୍ୱତ୍ୱ ନିର୍ଦ୍ଧାରଣ—ଦେ ବି (ତତ୍‌ସମ)—କୌଣସି ସମ୍ପତ୍ତିରେ କୌଣସି Swatwa nirddhārana ବ୍ୟକ୍ତିଙ୍କର ଥିବା ସ୍ୱତ୍ୱର ସ୍ଥିରୀକରଣ— स्वत्वनिर्द्धारण स्वत्वनिर्धारण Ascertainment of a person's right over a property.

ସ୍ୱତ୍ୱ ପ୍ରଚାର—ଦେ· ବି(ତତ୍‌ସମ)—କୌଣସି ସମ୍ପତ୍ତିରେ କୌଣସି ବ୍ୟକ୍ତିଙ୍କ Swatwa prachāra ସ୍ୱାମିତ୍ୱ ଥିବା ବିଷୟ ଅଦାଲତଙ୍କ ଦ୍ୱାରା स्वत्वप्रचार स्वत्वप्रचार ଘୋଷଣା—Declaration by a court of a person's right over a property.

ସ୍ୱତ୍ୱ ଭୋଗ—ସଂ. ବି—କୌଣସି ସମ୍ପତ୍ତିରେ ସ୍ୱାମିତ୍ୱର ଦଖଲ— Swatwa bhoga Enjoyment of proprietory right.

ସ୍ୱତ୍ୱ ଭୋଗୀ—ସଂ· ବିଣ ( ତତ୍‌ସମ ଭାଷା )—ଯେଉଁ ବ୍ୟକ୍ତି ସମ୍ପତ୍ତିରେ Swatwa bhogi ମାଲିକରୂପେ ଦଖଲକାର ଥାଏ— स्वत्वभोगी स्वत्वभोगी (a person) In possession of a property as its proprietor.

ସ୍ୱତ୍ୱ ଲୋପ—ସଂ ବି(ତତ୍‌ସମ ଭାଷା)—ସମ୍ପତ୍ତିରେ ଅଧିକାର ଲୁପ୍ତ ହେବା; Swatwa lopa ସ୍ୱତ୍ୱନାଶ; ସ୍ୱତ୍ୱନିବୃତ୍ତି—Cessation of right over property. [ ବ୍ର—ଆଇନ୍ ଅନୁସାରେ କୌଣସି ସମ୍ପତ୍ତିରୁ ୧୨ ବର୍ଷ ଦଖଲ ପରବ୍ୟକ୍ତି ହେଲେ ପୂର୍ବସ୍ୱାମୀଙ୍କ ସ୍ୱତ୍ୱର ଲୋପ ହୁଏ ଓ ଦଖଲକାରୀଙ୍କ ସ୍ୱତ୍ୱ ଜନ୍ମେ । ]

ସ୍ୱତ୍ୱ ସାବ୍ୟସ୍ତ—ଦେ. ବି ( ତତ୍‌ସମ ଭାଷା )—କୌଣସି ସମ୍ପତ୍ତିରେ Swatwa sābyasta କୌଣସି ବ୍ୟକ୍ତିଙ୍କ ସ୍ୱତ୍ୱ ଥିବା स्वत्वसाव्यस्त स्वत्वसाव्यस्त ବିଷୟର ଅଦାଲତଙ୍କ ଦ୍ୱାରା ସ୍ଥିରୀକରଣ ଓ ଘୋଷଣା—Establishment of right over property by a law court; declaration of title to a property.

ସ୍ୱତ୍ୱ ସାବ୍ୟସ୍ତ କରିବା—ଦେ. କ୍ରି—(ତତ୍‌ସମ)—କୌଣସି ସମ୍ପତ୍ତିରେ Swatwa sābyāsta kariba କାହାରି ସ୍ୱତ୍ୱ ଥିବା ବିଷୟ स्वत्व साव्यस्त करा (ଅଦାଲତ) ସ୍ଥିର କରିବା—To declare सत्व साव्यस्त करना or establish title to property.

ସ୍ୱତ୍ୱ ସାବ୍ୟସ୍ତ ମକଦ(ଦ୍ଦ)ମା—ଦେ ବି. ( ତତ୍‌ସମ )—କୌଣସି Swatwa sabyasta makada(dda)mā ସମ୍ପତ୍ତିରେ କାହାରି सत्व साव्यस्त मोकदमा ସ୍ୱତ୍ୱ ସାବ୍ୟସ୍ତ କରିବା ପାଇଁ ଯେଉଁ सत्व साब्यस्त मुकद्दमा ମକଦ୍ଦମା ଦାଏର ହୁଏ—Declara- (ସ୍ୱତ୍ୱ ସାବ୍ୟସ୍ତ ମାମଲା—ଅନୁରୂପ) tory suit; suit for the establishment and declaration of plaintiff's title to a property.

ସ୍ୱତ୍ୱ ସ୍ୱାମିତ୍ୱ—ସଂ. ବି.(ଦେଶଜ, ତତ୍‌ସମ ପ୍ରୟୋଗ; ଏକାର୍ଥକ ସନ୍ଧରେ) Swatwa swāmitwa ସମ୍ପତ୍ତିରେ ଥିବା ଅଧିକାର— स्वत्व स्वामित्व सत्व स्वामित्व Right over land or other property.

ସ୍ୱତ୍ୱ ହାନି—ସଂ. ବି.—୧ । ସ୍ୱତ୍ୱ ଲୋପ (ଦେଖ)—1. Swatwa Swatwa hāni lopa (See). ୨ । ସ୍ୱତ୍ୱରେ ବାଧା—Obstruction to or cloud over the title to a property.

ସ୍ୱତ୍ୱାଧିକାର—ସଂ· ବି (ତତ୍‌ସମ ଭାଷ)—୧ । ସମ୍ପତ୍ତିରେ ସ୍ୱାମିତ୍ୱ ଓ Swatwādhikāra ଦଖଲ—1. Title to and स्वत्वाधिकार सत्वाधिकार possession of a property; right and title to property. ୨ । ସମ୍ପତ୍ତିରେ ସମ୍ପୂର୍ଣ୍ଣ ଅଧିକାର—2. Full proprietory right over property; absolute proprietory right. [ ବ୍ର—ଏହି ସ୍ୱତ୍ୱାଧିକାର ଦ୍ୱାରା ମାଲିକ ଉକ୍ତ ସମ୍ପତ୍ତିକୁ ସ୍ୱେଚ୍ଛାକ୍ରମେ ଭୋଗ, ଦଖଲ, ଦାନ, ହସ୍ତାନ୍ତର ବା ବିକ୍ରୟ କରିପାରନ୍ତି ।]

ସ୍ୱତ୍ୱାଧିକାରୀ—ସଂ. ବିଣ, ପୁଂ (ତତ୍‌ସମ ଭାଷା)—୧ । ସମ୍ପତ୍ତିରେ ପୂର୍ଣ୍ଣ Swatwādhikāri ସ୍ୱାମିତ୍ୱପ୍ରାପ୍ତ ( ବ୍ୟକ୍ତି )— ( ସ୍ୱତ୍ୱାଧିକାରିଣୀ—ସ୍ତ୍ରୀ ) 1. (a person) Having full proprietory right and title to property. ୨ । ଦାନ ବିକ୍ରୟାଦିର ଅଧିକାର-ବିଶିଷ୍ଟ ( ବ୍ୟକ୍ତି )—2. (a person) Having absolute power of disposal over a property. ୩ । ଯାହାର ସମ୍ପତ୍ତିରେ ସ୍ୱତ୍ୱ ଓ ଦଖଲ ଥାଏ—3. Having title to and possession of a property.

ସ୍ୱଦ୍ ( ଧାତୁ )—ସଂ. ବି—୧ । ଆସ୍ୱାଦନ କରିବା; ଚାଖିବା— Swad(root) 1. To taste. ୨ । ଅନୁଭବ କରିବା—2. To experience. ୩ । ଛେଦନ କରିବା [ଶବ୍ଦକୋଷ]—3. To cut.

ସ୍ୱଦନ—ସଂ. ବି ( ସ୍ୱଦ୍ ଧାତୁ+ଭାବ. ଅନ )—୧ । ଆସ୍ୱାଦନ; Swadana ଚାଖିବା—1. Tasting. ୨ ।(ସୁ+ଅଦନ ) ଭୋଜନ, ଭକ୍ଷଣ ( ହେମଚନ୍ଦ୍ର )— 2. Eating. ୩ । ଲେହ୍ୟ [ ଶବ୍ଦକଳ୍ପଦ୍ରୁମ ]— 3. A food which is to be eaten by licking. ୪ । ଲୌହ; ଲୁହା ( ହେ· ଶ )— 4. Iron.

ସ୍ୱ ଦଳ(ପକ୍ଷ)—ସଂ. ବି—ନିଜର ଦଳ — Swa dala(paksha) One's party.

ସ୍ୱଦାର—ସ. ବି—(୨ମ୍ବୀ ତତ୍)—ନିଜର ବିବାହିତା ସ୍ତ୍ରୀ; ସ୍ୱପତ୍ନୀ— Swa dārā One's married wife [ବ୍ର—ଏହି ଶବ୍ଦ (ପରଦାର—ବିପରୀତ) ସଂସ୍କୃତରେ ବହୁବଚନାନ୍ତ 'ସ୍ୱଦାର'ରୂପେ (ସ୍ୱଦାର—ଦେ. ରୂପ) ବ୍ୟବହୃତ ହୁଏ । ]

ସ୍ୱଦାରାଭିଗମନ—ସ· ବି—ନିଜର ବିବାହିତା ଭାର୍ଯ୍ୟାଙ୍କ ସହବାସ— Swadārābhigamana Sexual union with one's (ସ୍ୱଦାରାଭିଗାମୀ—ବିଣ, ପୁଂ) wedded wife.

ସ୍ୱଦିତ—ସଂ ବିଣ. (ସୁ+ଅଦଧାତୁ+କର୍ତ୍ତୃ. ତ)—ଉତ୍ତମରୂପେ ଭୋଜନ Swadita କରିଥିବା (ବ୍ୟକ୍ତି) (ମନୁ ଅ।୨୫୧,୨୫୪)—Well-fed, [ଦ୍ର—ପିତୃଶ୍ରାଦ୍ଧରେ ଭୋଜନ କରିଥିବା ବ୍ରାହ୍ମଣମାନଙ୍କୁ ଶ୍ରାଦ୍ଧକାରୀ ବ୍ୟକ୍ତି ପଚାରିବେ—'ସ୍ୱଦିତ ?' ଅର୍ଥାତ୍ ଆପଣମାନଙ୍କର ସୁଭୋଜନ ହୋଇଅଛି କି ?]

ସ୍ୱ ଦେଶ—ସଂ. ବି. ( ୬ଷ୍ଠୀ ତତ୍ ) —ଯେଉଁ ଦେଶରେ ସ୍ୱୟଂ ଓ Swa deśa ପିତୃପିତାମହାଦିଙ୍କ ଜନ୍ମ ହୋଇଥାଏ;ମାତୃଭୂମି; ନିଜର (ବିଦେଶ—ବିପରୀତ) ଜନ୍ମଭୂମି—One's native land; mother country; father land; the country of one's birth; one's home country.

ସ୍ୱଦେଶ ଦ୍ରୋହ—ସଂ. ବି. ( ୬ଷ୍ଠୀ ତତ୍ )—ଜନ୍ମଭୂମିର ଅମଙ୍ଗଳଜନକ Swadesa droha ଆଚରଣ—Opposition or revolt. ( ସ୍ୱଦେଶ ଦ୍ରୋହିତା—ଅନ୍ୟରୂପ ) against one's own country.

ସ୍ୱଦେଶ ଦ୍ରୋହୀ—ସଂ. ବିଣ. ପୁଂ. (ସ୍ୱଦେଶ ଦ୍ରୋହିନ୍ ୧ମା. ୧ବ )—Swadeśa drohi ସ୍ୱଦେଶର ବା ମାତୃଭୂମିର ଶତ୍ରୁଭାବାପନ୍ନ—(ସ୍ୱଦେଶ ଦ୍ରୋହିଣୀ—ସ୍ତ୍ରୀ) A person who acts against one's mother country; inimical to one's mother land.

ସ୍ୱଦେଶ ପ୍ରିୟ—ସଂ ବିଣ. ପୁଂ—ସ୍ୱଦେଶର ଭକ୍ତ—Swadeśa priya (ସ୍ୱଦେଶ ପ୍ରିୟା—ସ୍ତ୍ରୀ) Patriotic.

ସ୍ୱଦେଶ ପ୍ରୀତି(ପ୍ରେମ)—ସ.ବି.—ମାତୃଭୂମି ପ୍ରତି ମମତା; ସ୍ୱଦେଶାନୁରାଗ—Sw deśa priti (prema) Patriotism.

ସ୍ୱଦେଶ ପ୍ରେମିକ—ସ. ବିଣ. ପୁଂ.—ସ୍ୱଦେଶବତ୍ସଳ—Swadeśa premika Patriotic. (ସ୍ୱଦେଶପ୍ରେମୀ—ଅନ୍ୟରୂପ) (ସ୍ୱଦେଶ ପ୍ରେମିକା,ସ୍ୱଦେଶ ପ୍ରେମିଣୀ—ସ୍ତ୍ରୀ)

ସ୍ୱଦେଶ ବତ୍ସଳ—ସ ବିଣ, ପୁଂ.—ସ୍ୱଦେଶପ୍ରତିଅନୁରାଗୀ—Patriotic. Swadeśa batsala (ସ୍ୱଦେଶ ବତ୍ସଳା – ସ୍ତ୍ରୀ) (ସ୍ୱଦେଶବତ୍ସଳତା, ସ୍ୱଦେଶ ବାତ୍ସଲ୍ୟ—ବି)

ସ୍ୱଦେଶ ଭକ୍ତ—ସଂ ବିଣ. ପୁଂ.—(୬ଷ୍ଠୀ ତତ୍ )—ସ୍ୱଦେଶାନୁରାଗୀ—Swadeśa bhakta Patriotic. ସ. ବି.—ସ୍ୱଦେଶପ୍ରିୟ (ସ୍ୱଦେଶ ଭକ୍ତା—ସ୍ତ୍ରୀ) (ସ୍ୱଦେଶ ଭକ୍ତି—ବି) ବ୍ୟକ୍ତି—A patriot.

ସ୍ୱଦେଶ ହିତୈଷଣା—ସ. ବି. (୬ଷ୍ଠୀ ତତ୍ )—ମାତୃଭୂମିର ହିତଚିନ୍ତା—Swadeśa hitaishanā Patriotism. (ସ୍ୱଦେଶ ହିତୈଷିତା-ଅନ୍ୟରୂପ)

ସ୍ୱଦେଶ ହିତୈଷୀ—ସ. ବିଣ. ପୁଂ—(ସ୍ୱଦେଶ ହିତୈଷିନ୍ ୧ମା ୧ବ) Swadeśa hitaishi ଯେଉଁ ବ୍ୟକ୍ତି ମାତୃଭୂମିର କଲ୍ୟାଣ (ସ୍ୱଦେଶ ହିତୈଷିଣୀ—ସ୍ତ୍ରୀ) ବାଞ୍ଛା କରନ୍ତି—Patriotic. (ସ୍ୱଦେଶ ହିତୈଷିତା—ବି)

ସ୍ୱଦେଶାନୁରକ୍ତ—ସଂ ବିଣ. ପୁଂ. (୬ଷ୍ଠୀ ତତ୍ )—ସ୍ୱଦେଶ ଭକ୍ତ; ସ୍ୱଦେଶ Swadeśānurakta ପ୍ରେମିକ—Patriotic (ସ୍ୱଦେଶାନୁରକ୍ତା—ସ୍ତ୍ରୀ)

ସ୍ୱଦେଶାନୁରକ୍ତି—ସଂ. ବି (୭ମୀ ତତ୍ )—ସ୍ୱଦେଶ ପ୍ରୀତି—Patriotism; love for one's mother-country Swadeśānurakti (ସ୍ୱଦେଶାନୁରାଗ—ଅନ୍ୟରୂପ)

ସ୍ୱଦେଶାନୁରାଗୀ—ସଂ. ବିଣ. ପୁଂ ( ସ୍ୱଦେଶାନୁରାଗିନ୍ ୧ମା. ୧ବ. )—Swadeśānurāgi ସ୍ୱଦେଶ ପ୍ରେମିକ— Patriotic. (ସ୍ୱଦେଶାନୁରାଗିଣୀ - ସ୍ତ୍ରୀ)

ସ୍ୱଦେଶୀ—ଦେ. ବିଣ. ପୁଂ (ସ୍ୱଦେଶୀୟ)—୧ । ସ୍ୱଦେଶରେ ନିର୍ମିତ- Swadeśi 1. Country-made; home-made. স্বদেশী स्वदेशी ୨ । ସ୍ୱଦେଶରେ ଜାତ—2. Produced in one's own country. ୩ । ସ୍ୱଦେଶସମ୍ବନ୍ଧୀୟ—3. Relating to one's native land ୪ । ସ୍ୱଦେଶବାସୀ—4. Inhabitant of one's mother country

ସ୍ୱଦେଶୀ ଆନ୍ଦୋଳନ—ଦେ· ବି ( ଅଧୁନିକ )—ବିଦେଶୀୟ ଦ୍ରବ୍ୟର Swadeśi āndolana ବ୍ୟବହାର ବର୍ଜନ ପୂର୍ବକ ସ୍ୱଦେଶୋତ୍ପନ୍ନ স্বদেশী আন্দোলন ବସ୍ତ୍ରାଦି ବ୍ୟବହାର କରିବାପାଇଁ ବଙ୍ଗଦେଶରେ स्वदेशी आन्दोलन ଓ ପରେ ସମଗ୍ର ଭାରତରେ ପରିବ୍ୟାପ୍ତ ଆନ୍ଦୋଳନ—[ଦ୍ର—ଏହି ଆନ୍ଦୋଳନ ୧୯୦୯ ସାଲରେ ଆରମ୍ଭ ହୋଇଥିଲା ।]—A movement which was first started in Bengal in 1909 and then diffused throughout India,advising the Indians to eschew foreign cloths, etc., and use country goods. [ଦ୍ର—ବଡ଼ ଲାଟ ଲର୍ଡ୍ କର୍ଜନ୍ ବଙ୍ଗ ପ୍ରଦେଶକୁ ପୂର୍ବ-ବଙ୍ଗ ଓ ପଶ୍ଚିମ ବଙ୍ଗ, ଏହିପରି ଦୁଇ ପ୍ରଦେଶରେ ବିଭକ୍ତ କଲେ ଓ ତଦ୍ୱାରା ବଙ୍ଗବାସୀମାନେ ସେମାନଙ୍କ ମଧ୍ୟରେ ସ୍ୱଦେଶ ପ୍ରେମର ବିକାଶରେ ବାଧା ଘଟିବାର ଆଶଙ୍କା କରି ଏହି ବଙ୍ଗଭଙ୍ଗକରଣ ଆଦେଶ ବିରୁଦ୍ଧରେ ଘୋର ପ୍ରତିବାଦ କରିବା ପାଇଁ ଏହି ଆନ୍ଦୋଳନର ସୂତ୍ରପାତ କରିଥିଲେ ଏବଂ କ୍ରମଶଃ ଏହା ଭାରତ ତମାମ୍ ବ୍ୟାପିଗଲା । ଭାରତ ଗଭର୍ଣ୍ଣମେଣ୍ଟ ଓ ବିଲାତ ଗଭର୍ଣ୍ଣମେଣ୍ଟ ଏହା ଦେଖି ଏହି ବଙ୍ଗ ବ୍ୟବଚ୍ଛେଦ ଆଦେଶକୁ ପ୍ରତ୍ୟାହାର କଲେ । ଏହି ଆନ୍ଦୋଳନ ଫଳରେ ଭାରତବର୍ଷରେ ଅନେକ ଲୁଗାକଳ ପ୍ରତିଷ୍ଠିତ ହେଲା ଓ ଭାରତୀୟମାନେ ବିଲାତି ଓ ବିଦେଶୀ ବସ୍ତ୍ରର ବ୍ୟବହାର ଛାଡ଼ିବା ଆରମ୍ଭ କଲେ । କ୍ରମଶଃ ଏହି ଆନ୍ଦୋଳନ କ୍ଷୀଣତା ଭଜିବାକୁ ବସିଥିଲା; କିନ୍ତୁ ମହାତ୍ମା ଗାନ୍ଧୀଙ୍କ ପ୍ରବର୍ତ୍ତିତ 'ସ୍ୱରାଜ ଆନ୍ଦୋଳନ' ଓ 'ଖଦଡ଼ ପ୍ରଚାର' ଏହି ଆନ୍ଦୋଳନକୁ ପୁନରୁଜ୍ଜୀବିତ କରିଅଛି ।]

ସ୍ୱଦେଶୀୟ—ସ. ବିଣ. ପୁଂ (ସ୍ୱଦେଶ+ଈୟ)—୧ । ସ୍ୱଦେଶ ସମ୍ବନ୍ଧୀୟ Swadeśiya —1. Relating to one's native land. (ସ୍ୱଦେଶୀୟା—ସ୍ତ୍ରୀ) ୨ । ସ୍ୱଦେଶରେ ପ୍ରସ୍ତୁତ—2. Country-made. ୩ । ସ୍ୱଦେଶରେ ଉତ୍ପନ୍ନ—3. Produced or made in one's country. ୪। ସ୍ୱଦେଶବାସୀ—4. Inhabiting the mother country.

ସ୍ୱଦେହରେ—ଦେ. କି. ବିଣ (ସ, ସ୍ୱଦେହେ)—ନିଜର ଶରୀର ସହିତ — Swadehare With one's body; bodily.
(ସ୍ୱଦେହେ—ଅନ୍ୟରୂପ) स्वदेहे स्वदेहमें

ସ୍ୱ ଧର୍ମ—ସଂ.ବି (୬ଷ୍ଠୀ ତତ୍)—୧। ନିଜର ଜାତିର ବା ବର୍ଣ୍ଣର ଅନୁଷ୍ଠେୟ Swa dharma ଧର୍ମ; ନିଜର ବର୍ଣ୍ଣାଶ୍ରମ ଧର୍ମ—1. Religion (ପର ଧର୍ମ—ବିପରୀତ) of one's caste. [ଦ୍ର—ଯଜନ-ଯାଜନ, ଅଧ୍ୟୟନ-ଅଧ୍ୟାପନ,ଦାନ-ପ୍ରତିଗ୍ରହ, ଏମାନ ବ୍ରାହ୍ମଣଙ୍କ ସ୍ୱଧର୍ମ; ଯୁଦ୍ଧ କରିବା, ବିପନ୍ନଙ୍କୁ ଉଦ୍ଧାର କରିବା, ରାଜ୍ୟଶାସନ କରିବା କ୍ଷତ୍ରିୟଙ୍କ ସ୍ୱଧର୍ମ; କୃଷି, ଗୋପାଳନ, ବାଣିଜ୍ୟ ବୈଶ୍ୟଙ୍କ ସ୍ୱଧର୍ମ; ସେବା ଶୂଦ୍ରଙ୍କ ସ୍ୱଧର୍ମ ଅଟେ। ଭଗବାନ୍ ଗୀତା (୩।୩୫)ରେ ଅର୍ଜୁନଙ୍କୁ କହି ଅଛନ୍ତି । "ସୁନ୍ଦର ରୂପେ ଅନୁଷ୍ଠିତ ପରଧର୍ମାନୁଷ୍ଠାନ ଅପେକ୍ଷା ଅଙ୍ଗହୀନ ସ୍ୱଧର୍ମାନୁଷ୍ଠାନ ଶ୍ରେୟସ୍କର ଓ ସ୍ୱଧର୍ମାନୁଷ୍ଠାନ କରୁ କରୁ ମୃତ୍ୟୁ ଘଟିଲେ ତାହା ଶ୍ରେୟସ୍କର, କିନ୍ତୁ ପରଧର୍ମାନୁଷ୍ଠାନ ଭୟାବହ ଅଟେ ।"] ୨ । କୌଣସି ବ୍ୟକ୍ତି ଯେଉଁ କୁଳରେ ବା ସମାଜରେ ଜନ୍ମଲାଭ କରିଅଛନ୍ତି,ସେହି କୁଳର ଧର୍ମ—2.Religion of the family or society in which one was born. ୩। ନିଜର ଧର୍ମ—3. One's own religion. ୪ । ନିଜର କର୍ତ୍ତବ୍ୟ କର୍ମ—4. One's peculiar duties. ୫। ନିଜର ଗୁଣ ବା ଲକ୍ଷଣ—5. Attributes or symptoms peculiar to any thing or animal. [ଉ—ଜୀବ ହିଂସା କରିବା ବ୍ୟାଘ୍ରର ସ୍ୱଧର୍ମ । ଦାହିକା ଶକ୍ତି ଅଗ୍ନିର ସ୍ୱଧର୍ମ ।] ୬ । ସ୍ୱଭାବ; ପ୍ରକୃତି—6.Nature. ୭। ବେଦବିହିତ ଆଚାର ବା ଧର୍ମ—7.Religious rites or conduct prescribed by the Bedas. ୮ । ସ୍ୱବର୍ଣ୍ଣାଚାର—8. Practices prescribed for one's caste people. ୯।(ଯୋଗଶାସ୍ତ୍ର) ପ୍ରାଣାୟାମ—9. The operation of controlling or exercising the breath; breathing exercise.

ସ୍ୱଧର୍ମ ତ୍ୟାଗ—ସଂ.ବି (୬ଷ୍ଠୀ ତତ୍)—୧ । ନିଜର ଧର୍ମକୁ ବା ଜାତିକୁ Swadharma tyāga ଛାଡ଼ିବା—1. Act of forsaking (ସ୍ୱଧର୍ମ ତ୍ୟାଗୀ—ବିଣ. ପୁଂ) one's caste or religion; (ସ୍ୱଧର୍ମ ତ୍ୟାଗିନୀ—ବିଣ. ସ୍ତ୍ରୀ) apostacy. ୨ । ନିଜର କର୍ତ୍ତବ୍ୟ ପାଳନ ନ କରିବା—2. Breach of one's peculiar duties.

ସ୍ୱଧର୍ମ ନିରତ—ସଂ. ବିଣ. ପୁଂ ( ୭ମୀ ତତ୍ )—ସ୍ୱଧର୍ମର ପାଳନରେ Swadharma nirata ସର୍ବଦା ରତ—
(ସ୍ୱଧର୍ମ ନିରତା—ସ୍ତ୍ରୀ) Engaged in the observance of one's religious rites or duties.

ସ୍ୱଧର୍ମ ପାଳନ—ସଂ. ବି (୬ଷ୍ଠୀ ତତ୍)—ନିଜର ଧର୍ମର ବା କର୍ତ୍ତବ୍ୟର Swadharma pālana ଅନୁଷ୍ଠାନ—Observance or following of one's duties or religion.
(ସ୍ୱଧର୍ମ ପାଳକ, ସ୍ୱଧର୍ମ ପାଳିକା—ସ୍ତ୍ରୀ. ବିଣ)

ସ୍ୱଧର୍ମ ଭ୍ରଷ୍ଟ—ସଂ. ବିଣ. ପୁଂ ( ୫ମୀ ତତ୍ )—ନିଜର ସହଜ Swadharma bhrasta ଧର୍ମକୁ ତ୍ୟାଗ କରିଥିବା (ବ୍ୟକ୍ତି)—
(ସ୍ୱଧର୍ମ ଭ୍ରଷ୍ଟା—ସ୍ତ୍ରୀ) (a person) Who has forsaken his religion; aspostate; renegade.

ସ୍ୱଧା—ସଂ. ଅ (ସ୍ୱଦ୍ ଧାତୁ=ଆସ୍ୱାଦନ କରିବା+କର୍ମ. ଅ+ଆ)—Swadhā ୧ । ଦେବତାଙ୍କୁ ହବିର୍ଦାନ କରିବା ବେଳେ ଉଚ୍ଚାରିତ ମନ୍ତ୍ର ବିଶେଷ—1. (Interjection) The mystic exclamation or formula uttered while offering ghee to the Gods through fire. [ଦ୍ର—ସ୍ୱାହା, ଶ୍ରୌଷଟ୍, ବୌଷଟ୍, ବଷଟ୍ ଓ ସ୍ୱଧା, ଏହି ପାଞ୍ଚ ଗୋଟି ଶବ୍ଦ ସ୍ଥାନବିଶେଷରେ ବ୍ୟବହୃତ ହୁଏ । ଏହାର ଅର୍ଥ— "ହେ ଦେବ ! ଏହା ଅର୍ପଣ ଗ୍ରହଣ ବା ଆସ୍ୱାଦନ କର" । ଏହି ଶବ୍ଦମାନ ଯୋଗରେ ସଂସ୍କୃତରେ ୪ର୍ଥୀ ବିଭକ୍ତି ହୁଏ ।] ୨ । ପିତୃଙ୍କୁ ପିଣ୍ଡ ଓ ତିଳଜଳ ଦେବା ସମୟରେ ଉଚ୍ଚାରିତ ମନ୍ତ୍ର—2. Formula or exclamation uttered while giving oblations to the manes of one's ancestors.
ବି.୧। (ସ୍ତ୍ରୀ) ଶ୍ରାଦ୍ଧର ଅଧିଷ୍ଠାତ୍ରୀ ଦେବୀ;ମାତୃକା ଦେବୀବିଶେଷ ପିତୃଲୋକଙ୍କ ପତ୍ନୀ—1. The Goddess presiding over Srāddha. [ଦ୍ର—ଏ ବ୍ରହ୍ମାଙ୍କ ମାନସୀ କନ୍ୟା; ଏ ସୁସ୍ଥିରଯୌବନା, ଶ୍ୱେତଚମ୍ପକବର୍ଣ୍ଣା, ଗୁଣବତୀ, ବିଦ୍ୟାବତୀ ଓ ରୂପବତୀ । ଏହାଙ୍କ ନାମ ଉଚ୍ଚାରଣ କଲେ ପିତୃଲୋକେ ପିଣ୍ଡ ପାଆନ୍ତି । ଏହାଙ୍କୁ ପ୍ରଥମେ ଅର୍ଚ୍ଚନ ନ କରି ଶ୍ରାଦ୍ଧ କଲେ ଉକ୍ତ ପିଣ୍ଡକୁ ପିତୃଲୋକେ ଖାଆନ୍ତି ନାହିଁ । ଏହାଙ୍କର ପୂଜା ମନ୍ତ୍ର—"ଓଁ ହ୍ରୀଂ ଶ୍ରୀଂ କ୍ଲୀଂ ସ୍ୱଧା ଦେବ୍ୟୈ ସ୍ୱାହା"—ବ୍ରହ୍ମବୈବର୍ତ୍ତ ପୁରାଣ, ପ୍ରକୃତିଖଣ୍ଡ ।] ୨ । ପିତୃଲୋକଙ୍କୁ ପ୍ରଦତ୍ତ ଅନ୍ନ ବା ପିଣ୍ଡ (ଋଗ୍ବେଦ. ଦେବୀ ସୂକ୍ତ) —2. Funeral cake offered to the manes of one's ancestors. ୩ । ଅଗ୍ନି ପତ୍ନୀ—3. The wife of the Firegod.
୪ । ଗୌର୍ଯ୍ୟାଦି ଷୋଡ଼ଶ ମାତୃକାଦେବୀ (ଶବ୍ଦକୋଷ)—4. One of the 16 Mātrukā Deities. [ଦ୍ର—ନାନ୍ଦୀମୁଖ ଶ୍ରାଦ୍ଧରେ ବା ଷଷ୍ଠୀ ଦେବୀଙ୍କ ପୂଜାରେ ଏହାଙ୍କର ପୂଜା କରାଯାଏ । ଏ ଦେବୀ ସର୍ବଦା ସମସ୍ତଙ୍କର ମଙ୍ଗଳ କାମନା କରନ୍ତି । ଶ୍ରୀମଦ୍ ଭାଗବତମତରେ ଏ ଦକ୍ଷ କନ୍ୟା । ଏହାଙ୍କର ଦୁଇଟି କନ୍ୟା—ଯମୁନା ଓ ଧାରଣୀ । ଏ ଦୁଇ କନ୍ୟା ତପସ୍ୱିନୀ ହୋଇ ତପସ୍ୟାରେ କାଳାତିପାତ କରନ୍ତି । ଏମାନେ ବ୍ରହ୍ମବାଦିନୀ ।]

ସ୍ୱଧାକର—ସଂ. ବିଣ. ପୁଂ—ଶ୍ରାଦ୍ଧ କରିବାର ଅଧିକାରୀ (ବ୍ୟକ୍ତି) Swadhākara (ମନୁ ୩।୧୨୨)—(a person) Entitled to perform Srāddha.

ସ୍ୱଧାକାର—ସଂ. ବି— ( ସ୍ୱଧା + କୃ. ଧାତୁ + ଭାବ ଅ )—ଶ୍ରାଦ୍ଧରେ Swadhākāra ସ୍ୱଧାଶବ୍ଦର ଉଚ୍ଚାରଣ ( ମନୁ ୩।୨୫୨ )—The utterance of the word Swadhā in Srāddha.

ସ୍ୱଧାଧିପ—ସଂ. ବି (୬ଷ୍ଠୀ ତତ୍)—ଅଗ୍ନି (ଶବ୍ଦକୋଷ)—Fire.
Swadhādhipa

ସ୍ୱଧା ପ୍ରିୟ—ସଂ. ବି.—୧ । ଅଗ୍ନି (ଶବ୍ଦ ରତ୍ନାବଳୀ)—1. Fire.
Swadhā priya ୨ । କୃଷ୍ଣତିଳ (ଶବ୍ଦ ରତ୍ନାବଳୀ)—2. The black sessamum seed.

ସ୍ୱଧା ଭୁକ୍ (ଭୋଜୀ)—ସଂ ବିଂ—(ସ୍ୱଧା+ଭୁଜ୍ ଧାତୁ+କର୍ତ୍ତ କ୍ୱିପ୍;
Swadhā bhuk (bhoji) ସ୍ୱଧାଭୁକ୍ ୧ମା. ୧ବ), ଏମାନେ (ସ୍ୱଧାଶନ—ଅନ୍ୟରୂପ) 'ସ୍ୱଧା' ମନ୍ତ୍ର ଦ୍ୱାରା ଭୋଜନ କରୁଥିବାରୁ)— ୧ । ପିତୃଗଣ; ପୂର୍ବପୁରୁଷ—1. The deified deceased ancestors. ୨ । ଦେବତା—2. The gods.

ସ୍ୱଧିତ(ତି)—ସଂ. ବି.—(ସ୍ୱଦ୍ ଧାତୁ=ଚ୍ଛେଦନ କରିବା+କରଣ ତ;
Swadhiti (ti) ଦ=ଧ)—୧ । କୁଠାର (ଅମର)—1. Axe. ୨ । ପରଶୁ—2. Battle-axe.

ସ୍ୱଧିତ ହେତିକ—ସଂ. ବି.—ପରଶୁଧାରୀ ଯୋଦ୍ଧା (ଶବ୍ଦକଳ୍ପଦ୍ରୁମ)—
Swadhiti hetika A warrior armed with battle-axe.

ସ୍ୱଧିଷ୍ଠିତ—ସଂ ବିଣ.—(ସୁ+ଅଧିଷ୍ଠିତ)—୧ । ଉତ୍ତମରୂପେ ଅବସ୍ଥିତ—
Swadhishthita 1. Well situated. ୨ । ହସ୍ତ୍ୟାଦି-(ସ୍ୱଧିଷ୍ଠାନ—ବି) ପୃଷ୍ଠରେ ଆସନ ଜମାଇ ବସିଥିବା (ଶବ୍ଦକୋଷ)—2. Comfortably seated on an elephant or horse.

ସ୍ୱଧୀତ—ସଂ. ବି—(ସୁ+ଅଧୀତ)—ସ୍ୱାଧ୍ୟାୟ; ବେଦାଦି ପାଠ (ଶବ୍ଦ-
Swadhīta କୋଷ)—Study of the Bedas—ସଂ ବିଣ, —ଉତ୍ତମରୂପେ ପଠିତ—Well studied.

ସ୍ୱଧୀତ (ତି)—ସଂ. ବିଣ (ବହୁବ୍ରୀହି; ସୁ+ଅଧୀତ, ସ୍ୱଧୀତ+ଅସ୍ତି ଅର୍ଥରେ
Swadhīti (ti) ଇନ୍; ୧ମା. ୧ବ)—ସ୍ୱାଧ୍ୟାୟ ଯୁକ୍ତ; ବେଦପାଠ-କାରକ (ଶବ୍ଦକୋଷ)—Studious of the Bedas.

ସ୍ୱନ୍ (ଧାତୁ)—ସଂ—୧ । ଶବ୍ଦ କରିବା—1. To make a sound.
Swan (root) ୨ । ଭୂଷଣ କରିବା—2. To adorn.

ସ୍ୱନ—ସଂ. ବି.—(ସ୍ୱନ୍ ଧାତୁ+ଭାବ. ଅ)—୧ । ଶବ୍ଦ; ଧ୍ୱନି—1.
Swana Sound. ୨ । ପ୍ରାଣୀମାନଙ୍କର ମୁଖ୍ୟାଦି କୃତ ଧ୍ୱନି—(ସ୍ୱନିତ—ବିଣ) 2. Voice; sound made by animals.

ସ୍ୱ ନକ୍ଷତ୍ର—ସଂ.ବି.—୧ । (ଜ୍ୟୋତିଷ) ନିଜର ଜନ୍ମ ନକ୍ଷତ୍ର—1. (Ast-
Swa nakshatra rology) The asterism in which a person is born. ୨ । ନିଜର ବାର୍ଷିକ ଜନ୍ମଦିନ —2. Birthday (annual). [ଦ୍ର—ହିନ୍ଦୁମାନଙ୍କ ପରିବାରରେ ଉକ୍ତଦିନ ଜାତ ବ୍ୟକ୍ତି ନବ ବସ୍ତ୍ର ପରିଧାନ କରନ୍ତି ଓ ଷଷ୍ଠୀ ଦେବୀଙ୍କୁ ପିଷ୍ଟକାଦି ଭୋଗ ଦିଆଯାଏ ।]

ସ୍ୱନ ଚକ୍ର—ସଂ. ବି—ରତିବନ୍ଧ ବିଶେଷ—Name of a pose in
Swana chakra coition. [ଦ୍ର—ଟେକ୍ୱା ବାହୁଂ ତଥା କଣ୍ଠଂ ପାଦଦୋଷ୍ପି ଶିରଃ ସ୍ଥିତଃ, ଗୃହଂ ଚ ବାମଯୋଗେନ କାମୀ 'ସ୍ୱନଚକ୍ର'ଃ ପ୍ରକୀର୍ତ୍ତିତଃ—ରତିମଞ୍ଜରୀ ।]

ସ୍ୱନନ୍ଦା—ସଂ. ବି—ଦୁର୍ଗା (ହ. ଶ)—
Swanandā Durgā.

ସ୍ୱ ନାମ—ସଂ. ବି.—ନିଜର ନାମ—
Swa nāma One's own name.

ସ୍ୱନାମ ଖ୍ୟାତ—ସଂ. ବିଣ. ପୁଂ.—(୩ୟା ତତ୍)—ନିଜର ନାମଦ୍ୱାରା
Swanāma khyāta ସ୍ୱୟଂ ପ୍ରସିଦ୍ଧ ବା ପରିଚିତ—Known (ସ୍ୱନାମ ଖ୍ୟାତା—ସ୍ତ୍ରୀ) by one's own name; (a person) celebrated by his own actions. [ଦ୍ର—ଯେଉଁ ବ୍ୟକ୍ତି ନିଜର ବିଶିଷ୍ଟ କାର୍ଯ୍ୟଦ୍ୱାରା ବିଖ୍ୟାତ ଓ ଯାହାଙ୍କୁ ଚହ୍ନାଇବା ପାଇଁ ତାଙ୍କ ପିତାଙ୍କ ନାମ କହିବାକୁ ହୁଏ ନାହିଁ, ସେହିପରି ବ୍ୟକ୍ତିଙ୍କ ପକ୍ଷରେ ଏହି ବିଶେଷଣ ପ୍ରଯୁକ୍ତ ହୁଏ ।]

ସ୍ୱନାମ ଧନ୍ୟ—ସଂ. ବିଣ. ପୁଂ.—(୩ୟା ତତ୍)—ନିଜର ନାମଦ୍ୱାରା
Swanāma dhanya ପ୍ରଶଂସିତ; ପିତାଦିଙ୍କ ନାମନିରପେକ୍ଷ (ସ୍ୱନାମଧନ୍ୟା—ସ୍ତ୍ରୀ) ହୋଇ ଯେ ନିଜ ନାମଦ୍ୱାରା ସ୍ୱୟଂ ଧନ୍ୟ ବା ପ୍ରଶଂସିତ ହୁଅନ୍ତି—(a person) Who is extolled by virtue of his own actions.

ସ୍ୱନାମ ମିତ୍ର—ସଂ. ବି.—ଦେଶ୍ୟ; ମିତ; ନିଜ ନାମର ସୌସାଦୃଶ୍ୟ ଯୋଗୁଁ
Swanāma mitra ଯେଉଁ ବ୍ୟକ୍ତିଙ୍କ ସଙ୍ଗେ ମିତ୍ରତା ସ୍ଥାପିତ ହୁଏ—A friend whose name tallies with another's name; One's namesake.

ସ୍ୱନାମା—ସଂ. ବିଣ. ପୁଂ. (ସ୍ୱ+ନାମନ୍ ଅଛି ଯାହାର: ବହୁବ୍ରୀହି; ୧ମା,
Swanāmā ୧ବ.)—ସ୍ୱନାମଧନ୍ୟ (ଦେଖ)—Swanāma-dhanya (See). [ଉ—ସ୍ୱନାମା ପୁରୁଷୋ ଧନ୍ୟଃ । —ଶ୍ଳୋକାଂଶ]

ସ୍ୱନାମୀ—ଦେ· ବିଣ. (କଚିତ୍ ଅ) (ସଂ. ସ୍ୱ+ନାମୀଯୁ)—୧ । ନିଜର
Swanāmī ନାମରେ କ୍ରୀତ ହୋଇଥିବା (ସମ୍ପତ୍ତି)—(ସ୍ୱନାମୀୟ, ସ୍ୱନାମିତ—ଅନ୍ୟରୂପ) 1. (Property) Purchased (ବେନାମୀ—ବିପରୀତ) openly in one's own name स्वनामी स्वनामी (and not 'benāmee' in the name of another). ୨ । ନିଜର ନାମରେ ବା ନିଜର ସ୍ୱାକ୍ଷରରେ ପ୍ରକାଶିତ (ପତ୍ରାଦି)—2. (letters) Published with the writer's name attached thereto.

ସ୍ୱନି—ସଂ. ବି. (ସ୍ୱନ୍ ଧାତୁ+ଭାବ. ଇ)—୧ । ସ୍ୱନ; ଧ୍ୱନି—
Swani 1. Sound. ୨ । (+କର୍ତ୍ତ. ଇ)—ଅଗ୍ନି (ହ.ଶ)—Fire.

ସ୍ୱନିତ—ସଂ. ବିଣ. (ସ୍ୱନ୍ ଧାତୁ+କର୍ମ. ତ) ୧ । ଧ୍ୱନିତ (ଅମର)—
Swanita 1. Sounded. ୨ । (+କର୍ତ୍ତ. ତ)ଗର୍ଜିତ— 2. Roaring. ସଂ. ବି.—୩ (+ଭାବତ) ମେଘ ଗର୍ଜନ (ମେଘମତତ୍)—2. Roar of thunder; thunder clap.

ସ୍ୱନିତାହ୍ୱୟ—ସଂ. ବି.—ତଣ୍ଡୁଳୀୟ (ରାଜନିର୍ଘଣ୍ଟ); ଲେଉଟିଆ ଶାଗ—
Swanitāhwaya A pot herb; amaranth.

**ସ୍ୱନିବା**—ଦେ. କି, (ଅକ୍ୟ) ( ସଂ. ସ୍ୱନ୍ ଧାତୁ )—ସ୍ୱନ କରିବା—
Swanibā To make a sound. [ଭ—ସ୍ୱନିଲେ
स्वना,स्वनितहओ्रा शब्दकरना ପବନ ଯେଉଁକେ କଣୀଥ୍ୱନ କରୁଣସ୍ୱର ।
—ସୁଧାକାଥ,ଉଷା] [ଦ୍ର—ଏହି ଶବ୍ଦ ବର୍ଣ୍ଣୀୟ ଭାବ
ମାଇକେଲ ମଧୁସୂଦନଙ୍କ ରଚନା ଅନୁକରଣରେ ବ୍ୟବହୃତ
ଏବଂ ଅଧୁନାତ ଓଡ଼ିଆ କବିମାନଙ୍କ ରଚନାରେ ବ୍ୟବହୃତ
ହେବା ଦେଖାଯାଏ ।]

**ସ୍ୱନୋତ୍ସାହ**—ସଂ. ବି. (ବହୁବ୍ରୀହି; ସ୍ୱନ=ଶବ୍ଦରେ ଉତ୍ସାହ ଯାହାର)—
Swanotsāha ଗଣ୍ଡକ; ଗଣ୍ଡା (ଜନ୍ତୁ) (ଶବ୍ଦ ରତ୍ନାବଳୀ)—
Rhinocerus.

**ସ୍ୱନ୍ତ**—ସଂ. ବିଣ. ପୁଂ. (ବହୁବ୍ରୀହି, ସୁ ହୋଇଅଛି ଅନ୍ତ=ପରିଣାମ
Swanta ଯାହାର)—ଶୁଭୋଦର୍କ; ଯାହାର ପରିଣାମ ଭଲ—
(ସ୍ୱନ୍ତା—ସ୍ତ୍ରୀ) Having good result; blessed with
good result.

**ସ୍ୱପ୍** (ଧାତୁ)—ସଂ—ଶୋଇବା—To sleep
Swap (root)

**ସ୍ୱ ପକ୍ଷ**—ସଂ. ବି. ପୁଂ (ଷଷ୍ଠୀ ତତ୍)—୧ । ନିଜର ଦଳ—1. One's
Swa paksha party. ୨ । ନିଜର ପାର୍ଶ୍ୱ—2. One's
(ବିପକ୍ଷ, ପରପକ୍ଷ—ବିପରୀତ) side. ସଂ. ବିଣ—ନିଜ ପକ୍ଷୀୟ—
(ସ୍ୱପକ୍ଷା—ସ୍ତ୍ରୀ —ବିଣ) Belonging to one's party.

**ସ୍ୱପକ୍ଷ ସମର୍ଥନ**—ସଂ.ବି. (ଷଷ୍ଠୀ ତତ୍)—ନିଜର ପକ୍ଷର ଅନୁମୋଦନ—
Swapaksha samarthana Supporting one's
(ସ୍ୱପକ୍ଷସମର୍ଥକ—ବିଣ. ପୁଂ) party.

**ସ୍ୱପକ୍ଷୀୟ**—ସଂ. ବିଣ. ପୁଂ— ( ସ୍ୱପକ୍ଷ+ସମ୍ବନ୍ଧାର୍ଥେ ଈୟ )—୧ । ନିଜର
Swa pakshiya ଦଳ ସମ୍ବନ୍ଧୀୟ—1. Relating to one's
(ସ୍ୱପକ୍ଷୀୟା—ସ୍ତ୍ରୀ) party. ୨। ନିଜର ଦଳଭୁକ୍ତ—2. Belon-
(ବିପକ୍ଷୀୟ—ବିପରୀତ) ging to one's party.

**ସ୍ୱ ପତି**—ସଂ. ବି. (ଷଷ୍ଠୀ ତତ୍)—୧ । ନିଜର ସ୍ୱାମୀ—1. One's
Swa pati husband. ୨। ସମ୍ପତ୍ତିର ସ୍ୱାମୀ—2. Owner
of a property.

**ସ୍ୱ ପତ୍ନୀ**—ସଂ. ବି. ସ୍ତ୍ରୀ—ନିଜର ବିବାହିତା ସ୍ତ୍ରୀ—One's married
Swa patni wife.

**ସ୍ୱପନ**—ସଂ. ବି.—( ସ୍ୱପ୍ ଧାତୁ+ଭାବ ଅନ )—୧ । ନିଦ୍ରା—1.
Swapana Sleep. ୨ । ସ୍ୱପ୍ନ—2. Dream.
[ଭ—କାହିଁ ସେହି କାହିଁ ମୁହିଁ ଅଭାଜନ । ଦେଖୁଥିଲି
ସିନା ଜାଗ୍ରତ ସ୍ୱପନ—ସୁଧାକାଥ, ଚଳକା] ୩ ।
ସୁନୁସୁନିଆ ଶାଗ (ହରେକୃଷ୍ଣ ଦ୍ରବ୍ୟଗୁଣ )—3. Marsila
Quadrifolia (pot-herb).

**ସ୍ୱପନ କଥା**—ଦେ. ବି—ସ୍ୱପ୍ନଦୃଷ୍ଟ ବିଷୟ—
Swapana kathā A matter seen in dream.
स्वप्न कथा स्वप्नेकी बात

**ସ୍ୱପନ ସୁନ୍ଦରୀ**—ଦେ. ବି. ସ୍ତ୍ରୀ—୧ । ସ୍ୱପ୍ନାବତୀ ( ଦେଖ )—
Swapana sundari 1. Swapnābati (See)
स्वप्नसुन्दरी स्वपनसुन्दरी (ଭ—ସ୍ୱପନସୁନ୍ଦରୀ ଛାୟା
ଅଂଗ କରେ ସେନୁ—ପ୍ରାଚୀ. ଶ୍ରୀଗୁରୁଭକ୍ତିଗୀତା ।) ୨ ।
ସ୍ୱପ୍ନରେ ମନୁଷ୍ୟଙ୍କୁ ଦେଖା ଦେଇ ସ୍ୱପ୍ନଦୋଷାଦ ଘଟାଇବା
ସ୍ତ୍ରୀମୂର୍ତ୍ତି—2. The form of a charming female
appearing in dreams and causing noctur
nal emissions

**ସ୍ୱପନା**—ଦେ. ବି. ସ୍ତ୍ରୀ—ସ୍ୱପ୍ନାବତୀ (ଦେଖ)—
Swapanā Swapnābati (See)

**ସ୍ୱପନା(ନେ)ଇବା**—ଦେ. କି—ସ୍ୱପ୍ନାଇବା (ଦେଖ) —
Swapanā(ne)ibā Swapnāibā (See).

**ସ୍ୱପନାବତୀ**—ଦେ. ବି. ସ୍ତ୍ରୀ—ସ୍ୱପ୍ନାବତୀ (ଦେଖ)—
Swapanābati Swapnābati (See).

**ସ୍ୱପନୀୟ**—ସ.ବିଣ (ସ୍ୱପ ଧାତୁ+କର୍ମ ଅନୀୟ)—ନିଦ୍ରାର ଯୋଗ୍ୟ [ହୁଂଶ]
Swapaniya Fit to sleep.
(ସ୍ୱପ୍ତବ୍ୟ—ଅନ୍ୟରୂପ)

**ସ୍ୱପ୍ନ** ସ. ବି ( ସ୍ୱପ୍ ଧାତୁ+ଭାବ ନ )—୧ । ନିଦ୍ରା—
Swapna 1. Sleep. ୨ । ନିଦ୍ରାବସ୍ଥାରେ
ବିଷୟାନୁଭବ—2. Dream. ୩ । [ ଲକ୍ଷଣାର୍ଥ ] ବୃଥା
କଳ୍ପନା ବା ଆଶା—3. Day dream. [ଭ—ସଂସାରଟା
ଭୁଲା ସ୍ୱପ୍ନ ।] ବିଣ.ଦେ. ବି—ନିଦ୍ରାବସ୍ଥାରେ ମନୁଷ୍ୟଙ୍କ
ଦେବତାଙ୍କ ଆଦେଶ ପ୍ରାପ୍ତି—Revelation of
Divine will to a person in dream.
୧।ସ୍ୱପ୍ନଦୃଷ୍ଟ ବସ୍ତୁ ପରି ଅପ୍ରାପ୍ୟ; ଅଲଭ୍ୟ—1. Un-
available ( like the things seen in a
dream). [ଭ—ଦେଖିବାକୁ ସ୍ୱପ୍ନ ଅଟଇ ମାତ୍ର କାଳ—
କୃଷ୍ଣସିଂହ. ମହାଭାରତ ବନ । ] ୨ । ଅନୁପସ୍ଥିତ—
2. Absent. (ଭ—ଏ ବନରେ ମନୁଷ୍ୟ ସବୁହି 'ସ୍ୱପନ-
କୃଷ୍ଣସିଂହ ମହାଭାରତ. ବନ । )

**ସ୍ୱପ୍ନକ୍**—ସ. ବିଣ (ସ୍ୱପ୍ ଧାତୁ+କର୍ତ୍ତ୍ରି ଅକ; ସ୍ୱପ୍ନକ୍ ୧ମା. ୧ବ)—
Swapnak ନିଦ୍ରିତ; ନିଦ୍ରାଶୀଳ; ଶୟନଶୀଳ—
Given to sleep; sleepy.

**ସ୍ୱପ୍ନ କାରକ**—ସଂ. ବିଣ—୧ । ନିଦ୍ରାକାରକ—1. Soporific.
Swapna kāraka ୨ । ଯାହା ସ୍ୱପ୍ନ ଘଟାଏ—2. Causing
dreams.

**ସ୍ୱପ୍ନକୃତ୍**—ସଂ. ବିଣ [ସ୍ୱପ୍ନ+କୃ ଧାତୁ+କର୍ତ୍ତ୍ରି କ୍ୱିପ୍ )—ସ୍ୱପ୍ନକାରକ
Swapna krut (ଦେଖ)—Swapna kāraka
(See). ସଂ. ବି—ସୁନୁସୁନିଆ ଶାଗ—Marsila
Quadrifolia (pot herb).

**ସ୍ୱପ୍ନ ଗୃହ**—ସଂ. ବି [ମ. ଷ. ଲୋ]—ଶୋଇବା ଘର—
Swapna gruha Sleeping room; bed room.

**ସ୍ୱପ୍ନ ଜାଲ**—ସଂ. ବି ( ରୂପକ )—ଜଟିଳ ବା ଅବୋଧ ସ୍ୱପ୍ନ—
Swapna jāla Knotty or incomprehensible
dream.

**ସ୍ୱପ୍ନ ଜାଲ**—ସଂ. ବି [ଷଷ୍ଠୀ ତତ୍]—ସ୍ୱପ୍ନସମୂହ—
Swapna jāla A variety of dreams.

ସ୍ୱପ୍ନ ତତ୍ତ୍ୱ—ସଂ. ବ [ ୬ଷ୍ଠୀ ତତ୍ ବା ମ. ପ. ଲୋ ]—ସ୍ୱପ୍ନ ବିଷୟକ
Swapna tattwa ରହସ୍ୟର ଉଦ୍ଘାଟନ—The key to dreams.

ସ୍ୱପ୍ନ ଦର୍ଶନ—ସଂ. ବି—୧ । ସ୍ୱପ୍ନ ଦେଖିବା—1. Dreaming.
Swapna darsana ୨ । ସ୍ୱପ୍ନରେ କୌଣସି ବ୍ୟକ୍ତିଙ୍କର ଦେଖା ଦେବା—2. Vision during a dream.

ସ୍ୱପ୍ନଦର୍ଶୀ—ସଂ ବିଣ.ପୁଂ (ସ୍ୱପ୍ନଦର୍ଶିନ୍, ୧ମା.୧ବ)—ଯେ ସ୍ୱପ୍ନ ଦେଖେ—
Swapna darsi Dreaming.
( ସ୍ୱପ୍ନଦର୍ଶିନୀ—ସ୍ତ୍ରୀ )

ସ୍ୱପ୍ନ ଦୃଷ୍ଟ—ସଂ. ବିଣ ( ୭ମୀ ତତ୍ )—ସ୍ୱପ୍ନରେ ପ୍ରତ୍ୟକ୍ଷୀକୃତ—
Swapna drushta Seen in dream; dreamt of.

ସ୍ୱପ୍ନ ଦେଖା(ଖେ)ଇବା—ଦେ. କ୍ରି [ସଂ. ସ୍ୱପ୍ନ]—ସ୍ୱପ୍ନାଇବା (ଦେଖ)—
Swapna dekhā[khe]ibā Swapnāibā (See)
স্বপ্ন দেখান स्वपनाना, स्वप्न दिखाना

ସ୍ୱପ୍ନ ଦେଖିବା—ଦେ. କ୍ରି—୧ । ନିଦ୍ରାବସ୍ଥାରେ କେତେକ ବିଷୟ ପ୍ରତ୍ୟକ୍ଷ
Swapna dekhibā କରିବା—1. To dream. ୨ । ବୃଥା
স্বপ্ন দেখা କଳ୍ପନା କରିବା—2. To build castles in the
स्वप्न देखना air. ୩ । ସତ୍ୟ ଘଟଣାକୁ ସ୍ୱପ୍ନ ଦେଖୁଥିଲି ବୋଲି ବୋଧ କରି ସତ୍ୟତାରେ ବିଶ୍ୱାସ ନ କରିବା—3. Not to believe a real thing, thinking it to be a dream.

ସ୍ୱପ୍ନ ଦେବୀ—ସ. ବି.—୧ । ଦେବୀରୂପେ କଳ୍ପିତ ସ୍ୱପ୍ନ ( ଭୁଲ. ନିଦ୍ରା-
Swapna debī ଦେବୀ)—1. Dream personified as a Deity. ୨ । ସ୍ୱପ୍ନ ବ ( ଦେଖ )—2. Swapnā bati (See)

ସ୍ୱପ୍ନ ଦୋଷ—ସଂ. ବି. ( ୬ଷ୍ଠୀ ତତ୍ )—୧ । ସ୍ୱପ୍ନରେ ଭୟଙ୍କର ବସ୍ତୁ
Swapna dosha ଦେଖିବା; ଦୁଃସ୍ୱପ୍ନ—1. Frightful dream; nightmare. ୨ । ସ୍ୱପ୍ନରେ ଦୃଷ୍ଟ କାମୋଦ୍ଦୀପକ ଦୃଶ୍ୟର ବା ସ୍ତ୍ରୀସଙ୍ଗର ଫଳରେ ରେତଃସ୍ଖଳନ—2. Wet dream; nocturnal emission of semen.

ସ୍ୱପ୍ନ ନିକେତନ (ସ୍ଥାନ)—ସ. ବି—ଶୋଇବା କୋଠରି; ଶୟନାଗାର
Swapna niketana (sthāna) (ବୃ. ଶ)—Bedroom.

ସ୍ୱପ୍ନ ପ୍ରାପ୍ତ—ସ. ବିଣ.—ସ୍ୱପ୍ନ ଲବ୍ଧ (ଦେଖ)—Swapna labdha (See)
Swapna prāpta

ସ୍ୱପ୍ନ ଫଳ—ସ. ବି.—( ୬ଷ୍ଠୀ ତତ୍ )—ସ୍ୱପ୍ନାଧ୍ୟାୟ ଇତ୍ୟାଦି ଗ୍ରନ୍ଥବର୍ଣ୍ଣିତ
Swapna phala ବିଭିନ୍ନ ସ୍ୱପ୍ନର ବିଭିନ୍ନ ଫଳମାନ—Results of different dreams as elucidated by seers.

ସ୍ୱପ୍ନବତ୍—ସ. ଅ.—ସ୍ୱପ୍ନ ପରି—Like dream. ସ. ବିଣ.—୧ ।
Swapna bat ଅବାସ୍ତବ—1. Unreal. ୨ । ଅସାର—2. Unsubstantial.

ସ୍ୱପ୍ନ ବିଚାର—ସ. ବି.—ସ୍ୱପ୍ନର ଶୁଭାଶୁଭ ଫଳର ଆଲୋଚନା—Ascertainment of or discussion about the good or bad result of a dream.
Swapna bichāra

ସ୍ୱପ୍ନ ବିଚାରୀ—ସ.ବିଣ.ପୁଂ—ଶୁଭାଶୁଭ ସ୍ୱପ୍ନର ବ୍ୟାଖ୍ୟାକାରୀ—Expounding the results of dreams.
Swapna bichāri

ସ୍ୱପ୍ନବିତ୍—ସ. ବିଣ. ( ସ୍ୱପ୍ନ + ବିଦ୍ ଧାତୁ + କର୍ତ୍ତୃ କ୍ୱିପ୍; ସ୍ୱପ୍ନବିଦ୍
Swapna bit ଶବ୍ଦ, ୧ମା. ୧ବ )—ସ୍ୱପ୍ନର ଫଳାଫଳ ବିଷୟ ( ସ୍ୱପ୍ନବିତ[ଦ]—ଦେ. ରୂପ) ଜାଣିବା ବିଷୟରେ ଅଭିଜ୍ଞ—Well-versed in understanding results of the dreams. [ଦୃ—ଫଳ ଜାଣିଥିଲେ ନୃପ ସ୍ୱପ୍ନବିତ ବୁଧେ ଡକାଇ ।—ରାଧାନାଥ, ଉଷା ]

ସ୍ୱପ୍ନ ବିବରଣ (ବୃତ୍ତାନ୍ତ)—ସଂ ବି—ସ୍ୱପ୍ନରେ ଦେଖା ଯାଇଥିବା ବିଷୟର
Swapna bibarana (bruttānta) ବର୍ଣ୍ଣନା—Description of what was seen in a dream.

ସ୍ୱପ୍ନମୂଳକ—ସ. ବିଣ—(ବହୁବ୍ରୀହି)—୧। ସ୍ୱପ୍ନରେ ଦେଖାଯାଇଥିବା—
Swapna mūlaka 1. Seen in a dream. ୨ । କାଳ୍ପନିକ—2. Imaginary. ୩ । ସ୍ୱପ୍ନ ଉପରେ ପ୍ରତିଷ୍ଠିତ—3. Based on dream.

ସ୍ୱପ୍ନରେ ସୁଦ୍ଧା ବିଚାର (ଭାବି) ନ ଥିବା—ଦେ. କ୍ରି.—କଳ୍ପନାରେ ସୁଦ୍ଧା
Swapnare suddhā bichari(bhābi)na thibā ବିଚାର
স্বপ্নেও না ভাবা କରି ନ ଥିବା—Not to have dreamt of
स्वप्नमें भी न विचारना it for a moment. (said of any impossible or impracticable matter.

ସ୍ୱପ୍ନ ଲବ୍ଧ—ସଂ. ବିଣ.(୩ୟା ତତ୍)—ଦୈବାନୁଗ୍ରହରେ ସ୍ୱପ୍ନାଦେଶରେ
Swapna labdha ପ୍ରାପ୍ତ—(Information) Obtained during dream through Divine Grace.

ସ୍ୱପ୍ନ ସୁନ୍ଦରୀ—ଦେ. ବି. ସ୍ତ୍ରୀ—ସ୍ୱପ୍ନାବତୀ (ଦେଖ)—Swapnābati (See)
Swapna sundari

ସ୍ୱପ୍ନ ହେବା—ଦେ. କ୍ରି—ନ ମିଳିବା; ଦୁଷ୍ପ୍ରାପ୍ୟ ହେବା—
Swapna hebā Not to be had, unavailable.
স্বপ্ন হওয়া [ଦୃ—ଧର୍ମ ଏପରି ସ୍ୱପ୍ନ ହୋଇଯାଇ ଅଛି । କବିସୂର୍ଯ୍ୟ-
स्वप्ने होना ବଳଦେବ ।]

ସ୍ୱପ୍ନା(ପ୍ନେ)ଇବା—ଦେ. କ୍ରି—୧ । ସପନାଇବା; ( ଦେବତା ) ନିଦ୍ରିତ
Swapnā(pne)ibā ବ୍ୟକ୍ତିଙ୍କୁ ସ୍ୱପ୍ନରେ ଦେଖା ଦେବା—
স্বপ্ন দেওয়া 1. (a Deity) To appear in dream; to
सपनाना, स्वप्नाना appear to a person in dream. ୨ । (ଦେବତା) ନିଦ୍ରିତ ବ୍ୟକ୍ତିଙ୍କୁ ସ୍ୱପ୍ନରେ ଦେଖା ଦେଇ କୌଣସି ଆଦେଶ କରିବା—2. (God or Deity) To convey certain orders in dream; to order a person to do a thing, by appearing to one in dream. [ଦୃ—କଥିତ ଅଛି ଯେ, ଦେବତାମାନେ ନିଦ୍ରିତ ବ୍ୟକ୍ତିଙ୍କୁ ସ୍ୱପ୍ନରେ ଦେଖା ଦେଇ ସ୍ୱପ୍ନାବସ୍ଥାରେ ତାଙ୍କୁ ନାନାବିଧ ଆଦେଶ ଦିଅନ୍ତି ଓ ତାଙ୍କର ଇଚ୍ଛା ଜଣାନ୍ତି । ଉତ୍କଳର ରାଜା ପୁରୁଷୋତ୍ତମ ଦେବଙ୍କୁ ଜଗନ୍ନାଥ ମହାପ୍ରଭୁ ସ୍ୱପ୍ନାଇବାରୁ

ସେ ଦ୍ୱିତୀୟ ଥର କାଶୀ ଯୁଦ୍ଧ କରିବାକୁ ଯାଇ ଜୟ କରିଥିବାର କମ୍ବଦନ୍ତୀ ଅଛି ।

ଅନେକ ରୋଗୀ ଆରୋଗ୍ୟ ଲାଭାର୍ଥ ଦେବତାଙ୍କ ନିକଟରେ ଧରା ପଡ଼ନ୍ତି; ଏବଂ ଦେବତା ସନ୍ତୁଷ୍ଟ ହୋଇ ତାଙ୍କୁ ସ୍ୱପ୍ନାନ୍ତ ଓ ଆରୋଗ୍ୟର ଉପାୟମାନ କହନ୍ତି ବା ହୁକୁମ ଦିଅନ୍ତି ।

ଥିଓଜଫୀ ବା ବ୍ରହ୍ମବିଦ୍ୟାର ମତ ଏହି କି, ମନୁଷ୍ୟର ନିଦ୍ରିତ ଥିବା ଅବସ୍ଥାରେ ତାର ସ୍ଥୂଳ ଶରୀର ନିଦ୍ରିତ ଥାଏ, କିନ୍ତୁ ସୂକ୍ଷ୍ମ ଶରୀର (astral body) ଜାଗ୍ରତ୍ ଥାଏ ଓ ସେହି ସୂକ୍ଷ୍ମ ଶରୀର ସ୍ୱପ୍ନ ଦେଖେ ।] ୩ । ମନ୍ତ୍ର ଯନ୍ତ୍ରାଦି ପ୍ରୟୋଗ ପୂର୍ବକ କୌଣସି ନିଦ୍ରିତ ବ୍ୟକ୍ତିଙ୍କୁ ନାନା ଭୟଙ୍କର ସ୍ୱପ୍ନ ଦେଖାଇବା—3. To cause (by the employment of charm) a person to have frightful dreams and nightmares.

ସ୍ୱପ୍ନାଟନ—ସଂ. ବି (୬ଷ୍ଠୀ ତତ୍—ରୋଗ ବିଶେଷ; ନିଦ୍ରିତ ଅବସ୍ଥାରେ
Swapnāṭana ବୁଲିବୁଲି ଚାଲିବା—Somnambulism.

ସ୍ୱପ୍ନାଦେଶ—ସଂ. ବି (ମ, ପ. ଲୋ)—ସ୍ୱପ୍ନରେ ପ୍ରାପ୍ତ ଦେବାଦେଶ—
Swapnādeśa Divine commandment conveyed to a person in dream.

ସ୍ୱପ୍ନାଧ୍ୟାୟ—ସଂ. ବି—ପୁରାଣାଦିରେ ସ୍ୱପ୍ନର ଫଳାଫଳର ବିଚାର—
Swapnādhyāya A study of the good and bad results of different dreams.

[ ଦ୍ର—ବ୍ରହ୍ମବୈବର୍ତ୍ତପୁରାଣ ଶ୍ରୀ କୃଷ୍ଣ ଜନ୍ମ ଖଣ୍ଡ ସପ୍ତତିତମ (୭୦) ଅଧ୍ୟାୟରେ ସ୍ୱପ୍ନ ବିଷୟ ଓ ୮୨ ଅଧ୍ୟାୟରେ ଦୁଃସ୍ୱପ୍ନ ବିଷୟ ଓ ଫଳାଦି ବିବୃତ ହୋଇଅଛି ଏବଂ ୩୩ ଅଧ୍ୟାୟରେ କଂସର ମୃତ୍ୟୁ ପୂର୍ବରୁ କଂସ ଦ୍ୱାରା ଦୃଷ୍ଟ ଦୁଃସ୍ୱପ୍ନ ବର୍ଣ୍ଣିତ ହୋଇଅଛି । ମତ୍ସ୍ୟ ପୁରାଣର ୨୧୬ ଅଧ୍ୟାୟରେ ଯାତ୍ରାଦି ସମ୍ପର୍କରେ ଶୁଭାଶୁଭ ସୂଚକ ସ୍ୱପ୍ନମାନ ବର୍ଣ୍ଣିତ ହୋଇଅଛି । ମହାଭାରତ, ରାମାୟଣ, ଦେବୀପୁରାଣ, କାଳିକା ପୁରାଣ ଆଦିରେ ମଧ୍ୟ ସଫଳ ସ୍ୱପ୍ନମାନଙ୍କ ବିଷୟ ବିବୃତ ହୋଇଅଛି ।]

ସ୍ୱପ୍ନାବତୀ—ଦେ.ବି.ସ୍ତ୍ରୀ (ସଂ.ସ୍ୱପ୍ନବତୀ)—ସ୍ୱପ୍ନର ଅଧିଷ୍ଠାତ୍ରୀ ଦେବତା ବା
Swapnābatī ଠାକୁରାଣୀ—Name of the Goddess
स्वप्न देवी who appears to persons in dreams.
स्वप्न देवी [ଦ୍ର—ଏ ଲୋକଙ୍କୁ ସ୍ୱପ୍ନରେ ଦେଖା ଦେଇ ଉପଦେଶ ଦିଅନ୍ତି ବା ଭୟ ଦେଖାନ୍ତି ବା ସତର୍କ କରନ୍ତି ।]

ସ୍ୱପ୍ନାବସ୍ଥା—ସଂ. ବି—୧ । ନିଦ୍ରାବସ୍ଥା—1. The state of sleep.
Swapnābasthā ୨ । ନିଦ୍ରାରେ ସ୍ୱପ୍ନ ଦେଖୁଥିବା ଅବସ୍ଥା—2. The state of dreaming.

ସ୍ୱପ୍ନାବେଶ—ସଂ. ବି—ସ୍ୱପ୍ନର ଆବିର୍ଭାବ; ସ୍ୱପ୍ନ ଦେଖିବା ଅବସ୍ଥା—
Swapnābeśa The state of dreaming.

ସ୍ୱପ୍ନାଳୁ—ସଂ. ବିଣ (ସ୍ୱପ୍ନ+ଆଳୁ)—ନିଦ୍ରାଳୁ (ହି. ଶ)—
Swapnālu Sleepy.

ସ୍ୱପ୍ନେଶ୍ୱର—ଦେ. ବି—୧ । ପୁରୁଷ ଲୋକଙ୍କୁ ଦିଆଯିବା ନାମ—
Swapneśwara 1. A name given to males.
स्वप्नेश्वर स्वप्नेश्वर ୨ । ଏକ ଶିବଲିଙ୍ଗଙ୍କ ନାମ—2. The name of an image of Śiba.

ସ୍ୱପ୍ନୋତ୍ଥିତ—ସଂ.ବିଣ.ପୁଂ—ସ୍ୱପ୍ନ ଦେଖୁଥିବା ଅବସ୍ଥାରେ ବା ସ୍ୱପ୍ନ ଦେଖି-
Swapnotthita ବାର ଅବ୍ୟବହିତ ପରେ ନିଦ୍ରାରୁ ଉଠିଥିବା—Awakened from sleep while dreaming or
(ସ୍ୱପ୍ନୋତ୍ଥିତା—ସ୍ତ୍ରୀ) just after dreaming.

ସ୍ୱ ପ୍ରକାଶ—ସଂ. ବି—୧ । ସ୍ୱୀୟ ଶକ୍ତି ଦ୍ୱାରା ପ୍ରକାଶିତ; ଅନ୍ୟର ବିନା
Swa prakāśa ସାହାଯ୍ୟରେ ପ୍ରକାଶିତ ବା ଦୃଷ୍ଟ; ବିନା ଆଲୋକରେ ଦୃଷ୍ଟ—1. Self luminous; shining by its own light. ୨ । ସ୍ୱତଃସିଦ୍ଧ—2. Self-evident.

ସ୍ୱ ବଶ—ସଂ. ବିଣ. ପୁଂ (୬ଷ୍ଠୀ ତତ୍)—ଅସ୍ୱବଶ; ସ୍ୱାଧୀନ—
Swa baśa (ସ୍ୱବଶା—ସ୍ତ୍ରୀ, ସ୍ୱବଶତା—ବି) Independent.

ସ୍ୱ ବାସିନୀ—ସଂ. ବି.ସ୍ତ୍ରୀ (ସ୍ୱ—ଜ୍ଞାତି ମଧ୍ୟରେ; ପିତୃ ଗୃହରେ+ବାସିନୀ)
Swa bāsinī —ଚିରଣ୍ଟୀ; ଆଜନ୍ମ ପିତୃଗୃହବାସିନୀ (ବିବାହିତା ବା ଅବିବାହିତା) କନ୍ୟା (ଅମର)—A girl who lives in her parent's house for life.

ସ୍ୱ ବୀଜ—ସଂ. ବି—୧ । ଆତ୍ମା (ଶବ୍ଦ ରତ୍ନାବଳୀ)—1. Soul. ୨ ।
Swa bīja ନିଜର ବୀର୍ଯ୍ୟ—2. One's own semen.

ସ୍ୱ ବୀର୍ଯ୍ୟ—ସଂ. ବି—୧ । ନିଜର ବୀର୍ଯ୍ୟ—1. One's semen. ୨ ।
Swa bīrjya ନିଜର ବଳ—2. One's own might.

ସ୍ୱ ବୀର୍ଯ୍ୟ ଗୁପ୍ତ—ସଂ. ବିଣ ପୁଂ. (୩ୟା ତତ୍)—ନିଜର ବଳ ଦ୍ୱାରା
Swa bīrjya gupta ଯେ ଆପଣାକୁ ରକ୍ଷା କରେ—Protectep
(ସ୍ୱବୀର୍ଯ୍ୟ ଗୁପ୍ତା—ସ୍ତ୍ରୀ) by one's own power or might.

ସ୍ୱ ଭଦ୍ରା—ସଂ. ବି—ଗମ୍ଭାରୀ ବୃକ୍ଷ (ହି. ଶ)—
Swa bhadrā Gmelina Arborica (tree).

ସ୍ୱ ଭାଗ୍ୟ—ସଂ. ବି—ନିଜର ଭାଗ୍ୟ—
Swa bhāgya One's luck.

ସ୍ୱ ଭାଜନ—ସଂ, ବି (ସ୍ୱ+ଭାଜନ)—୧ । ଅଭିନନ୍ଦନ; ଆପ୍ୟାୟନ—
Swa bhājana 1. Welcoming; reception.
୨ । ସୌଜନ୍ୟ—2. Courtesy; civility.
୩ । ନିଜର ପାତ୍ର—3. One's receptacle.

ସ୍ୱଭାବ—ସଂ. ବି (ସ୍ୱ+ଭାବ)—୧ । ପ୍ରକୃତି; ପ୍ରାଣୀର ସଙ୍ଗେ ଜନ୍ମ
Swabhāba ହୋଇଥିବା ଗୁଣ—1. Nature; natural or innate character.
(ସ୍ୱାଭାବିକ—ବିଣ) ୨ । ଅସ୍ୱଭାବ; ବସ୍ତୁର ସହଜ ଗୁଣ—2. Natural propensity or quality of a thing. ୩ । ଚରିତ୍ର—3. Character. ୪ । ଅଭିପ୍ରାୟ; ଉଦ୍ଦେଶ୍ୟ—4. Intention. ୫ । ସ୍ୱାଭାବିକ ଅବସ୍ଥା—5. Natural condition. ୬ । ନିସର୍ଗ—6. Nature. ଦେ. ବି—୧ ।
स्वभाव ମାତକୁଳରେ ବିବାହାଦିଦ୍ୱାରା ବ୍ରାହ୍ମଣର ଜାତତା
स्वभाव ପ୍ରାପ୍ତ ହୋଇ ନ ଥିବା ଅବସ୍ଥା; ଅର୍ଥାତ୍ କୌଳିନ୍ୟ—

1. The state of not having lost one's family-dignity by low marriage (amongst the Kulīna Brāhmaṇas of Bengal). [ଉ—ଯେ ସ୍ୱଭାବରେ ନାହାନ୍ତି, ସେ ଭଙ୍ଗ କୁଳୀନ; ଯେ ସ୍ୱଭାବରେ ଅଛନ୍ତି, ସେ ଅଭଙ୍ଗ କୁଳୀନ। ] ୩। ଅଭ୍ୟାସ—3. Habit.

ସ୍ୱଭାବ ଗତ—ସଂ. ବିଣ (୨ୟା ତତ୍)—୧। ପ୍ରକୃତିଗତ; ସ୍ୱାଭାବିକ— Swabhāba gata 1. Natural; innate. ୨। ସ୍ୱାଭାବିକ ଅବସ୍ଥାପ୍ରାପ୍ତ—2. Restored to natural condition.

ସ୍ୱଭାବ ଚରିତ୍ର—ଦେ. ବି (ସହଚର)—୧। ପ୍ରକୃତି ଓ ଶୀଳଚଳନ; Swabhāba charitra ପ୍ରକୃତି ଓ ଆଚରଣ— ସ୍বভাব চরিত্র स्वभाव चरित्र 1. Nature and character; character and conduct. ୨। ରୀତି ନୀତି—2. Manners.

ସ୍ୱଭାବ ଚିକିତ୍ସା—ସଂ. ବି (ଆଧୁନିକ ପ୍ରୟୋଗ)—ଭିନ୍ନ ଭିନ୍ନ ରୋଗଗ୍ରସ୍ତ Swabhāba chikitsā ବ୍ୟକ୍ତିଙ୍କୁ କ୍ଷିତି, ଅପ୍, ତେଜଃ, ମରୁତ୍, ବ୍ୟୋମ, ଏହି ପଞ୍ଚଭୂତର ଭିନ୍ନ ଭିନ୍ନ ପ୍ରୟୋଗଦ୍ୱାରା ଚିକିତ୍ସା କରିବାର ବର୍ତ୍ତମାନ ଯୁଗରେ ଆବିଷ୍କୃତ ଚିକିତ୍ସା—ପ୍ରଣାଳୀ—Naturopathy.

ସ୍ୱଭାବଜ—ସଂ. ବିଣ (ଉପପଦ ତତ୍ପୁରୁଷ, ସ୍ୱଭାବ+ଜନ୍ ଧାତୁ+କର୍ତ୍ତୃ Swabhābaja ଅ)—୧। ସ୍ୱାଭାବିକ—1. Natural. ୨। ସହଜ; ପ୍ରକୃତିଗତ; ସ୍ୱଭାବସିଦ୍ଧ—2. Innate; inborn.

ସ୍ୱଭାବତଃ—ସଂ. ଅ (ସ୍ୱଭାବ+ତସ୍)—୧। ପ୍ରକୃତିବଶତଃ—1. By Swabhābataḥ nature. ୨। ପ୍ରକୃତି ବଶରୁ; ସ୍ୱାଭାବିକ-ରୂପେ—2. Naturally

ସ୍ୱଭାବ ପ୍ରକୃତି—ଦେ. ବି (ଏକାର୍ଥକ ସହଚର)—୧। ସ୍ୱଭାବ ବା ପ୍ରକୃତି— Swabhāba prakṛuti 1. Nature. ୨। ସ୍ୱଭାବ ଚରିତ୍ର— 2. Nature and conduct.
ସ୍বভাবপ্রকৃতি स्वभाव प्रकृति

ସ୍ୱଭାବ ବିରୁଦ୍ଧ (ବିରୋଧୀ)—ସଂ. ବିଣ (୬ଷ୍ଠୀ ତତ୍)—୧। ଅସ୍ୱାଭାବିକ Swabhāba biruddha (birodhi) —1. Unnatural. ୨। ପ୍ରକୃତିର ବିରୁଦ୍ଧ—2. Opposed to one's nature.

ସ୍ୱଭାବ ଶୋଭା—ସଂ. ବି—୧। ପ୍ରାକୃତିକ ସୌନ୍ଦର୍ଯ୍ୟ; ଅକୃତ୍ରିମ ସୌନ୍ଦର୍ଯ୍ୟ- Swabhāba śobhā 1. Natural grace or beauty. ୨। ନୈସର୍ଗିକ ଶୋଭା—2. The beauty of Nature.

ସ୍ୱଭାବ ସଙ୍ଗତ—ସଂ. ବିଣ (୬ଷ୍ଠୀ ତତ୍)—୧। ସ୍ୱଭାବର ଅନୁକୂଳ; Swabhāba saṅgata ସ୍ୱଭାବଗତ—1. Favourable to one's nature. ୨। ସ୍ୱାଭାବିକ—2. Natural.

ସ୍ୱଭାବ ସିଦ୍ଧ—ସଂ. ବିଣ—ପ୍ରକୃତିଗତ— Swabhāba siddha Innate; natural; inborn.

ସ୍ୱଭାବ ସୁଲଭ—ସଂ ବିଣ—୧। ପ୍ରକୃତିଗତ; ସ୍ୱଭାବଜ—1. Inborn Swabhāba sulabha ୨। ସ୍ୱାଭାବିକ—2. Natural.

ସ୍ୱଭାବ ସୌନ୍ଦର୍ଯ୍ୟ—ସଂ ବି—ସ୍ୱଭାବ ଶୋଭା (ଦେଖ)— Swabhāba saundarjya Swabhāba śobhā (See)

ସ୍ୱଭାବା—ଦେ. ବି (ପ୍ରାଚୀନପଦ୍ୟ)—ପ୍ରକୃତିଦତ୍ତ ଗୁଣ—Innate Swabhābā quality; natural propensity. [ଉ— କୃଷ୍ଣଙ୍କ ବେନି ଯେଝା ଗୁଣ ଉତ୍କଣ୍ଠା ଉଦୟ କଲେ ସ୍ୱଭାବା—ପ୍ରାଚୀ. ରସବାରିଧି ]

ସ୍ୱଭାବେ—ଦେ. କ୍ରି. ବିଣ—୧। ସହଜେ; —1. Easily. Swabhāte ୨। ସ୍ୱଭାବତଃ—2. Naturally. [ଉ—ସ୍ତ୍ରୀ ସୁଖ ସ୍বভাবে ବିଶ୍ୱାସ ଯେ ଲୋକ କଲା, ଜୀବନ ଥାଉଁ ସେ स्वभावसे ସ୍ୱଭାବେ ମଲା—ରାଜକୃଷ୍ଣ. ପ୍ରସ୍ତାବସିନ୍ଧୁ। ]—୩। ଫଳତଃ; ଫଳରେ; ପ୍ରକୃତରେ—3. As a matter of course; consequently. [ଉ—ଦ୍ରୌପଦୀ କେଶ ସ୍ପର୍ଶ ଦୋଷେ, ସ୍ୱଭାବେ ଅଳପ ଆୟୁଷେ—ଜଗନ୍ନାଥ. ଭାଗବତ] ୪। ସ୍ୱତଃ—4 Of itself.

ସ୍ୱଭାବୋକ୍ତି—ସଂ. ବି—(୬ଷ୍ଠୀତତ୍)—ଅର୍ଥାଲଙ୍କାର ବିଶେଷ; ଦ୍ରବ୍ୟାଦିର Swabhābokti ସ୍ୱଭାବ ବର୍ଣ୍ଣନ ରୂପ ଅଳଙ୍କାର (ଅଳଙ୍କାର ଦେଖ) A rhetorical figure which describes an object in its natural or true colour. [ଦ୍ର—ପ୍ରକୃତି କିମ୍ବା କୌଣସି ପ୍ରାକୃତ ବସ୍ତୁର ସ୍ୱଭାବ-ସଙ୍ଗତ ଚମତ୍କାର ବର୍ଣ୍ଣନା ହେଲେ ତାହାକୁ ସ୍ୱଭାବୋକ୍ତି ଅଳଙ୍କାର କହନ୍ତି। ଯଥା—

୧। ପ୍ରକୃତି ବର୍ଣ୍ଣନା—

ପ୍ରଶାନ୍ତ ନିଶାନ୍ତ କାଳ ବିରାଜେ ହିମ୍ମଲେ, ତୁଷାର ତୁଷାର ଶୁଭ୍ର ଲଲାଟମଣ୍ଡଳେ, ସ୍ୱର୍ଗେ କୌସ୍ତୁଭ ମଣି ଶୁକ୍ର ସୁଶୋଭନ, ପଶ୍ଚିମ ଦିଗନ୍ତ ପଟେ ଛବି ଅତୁଳନ, ପୂର୍ବଦିଗ ଆକାଶେ ହିରେ ମହା ଜ୍ୟୋତିର୍ମୟ, ତୁଷାର କିରୀଟ ରାଜେ ଚିରାନନ୍ଦ ଆଳୟ, ଅନନ୍ତ ହିମାନୀ ଶୋଭେ ଶୁଭ୍ର ହିମାଚଳ, ତ୍ରିଦିବର ପୁଣ୍ୟ ପୁଞ୍ଜ ପ୍ରାୟ ସମୁଜ୍ଜ୍ୱଳ—ମଧୁସୂଦନ. ଋଷିପ୍ରାଣେ ଦେବାବତରଣ।

୨। ସ୍ୱଭାବ ବର୍ଣ୍ଣନା—

ହେମାଙ୍ଗ ହରିଣୀବସନ୍ତ ଦେଖି ଚେପେଇ ସନ୍ଧାଣ, ଅକ୍ଷିଶୀଘ୍ରେ ଧାଏଁ ସଲକ୍ଷେ ଯଣାପ୍ରଭା ସମାନ। ଜୀବନ ଭୟରେ ସଭୟେ କ୍ଷଣରେ ଧାଏଁ ଦୁର୍ବଳ, ଖରତର ବେଗେ ଜୀବିକା-ଅର୍ଥେ ଧାଏଁ ପ୍ରବଳ। ମୁହୁଃ ଚଞ୍ଚୁ ମୁନି ସନ୍ଧାଣ ପକ୍ଷ କରେ ବିସ୍ତାର। କ୍ଷଣେ କରଗତ ଯଲିକେ ପରି ହେଲା ଶୀକାର, ହରିଣୀବସନ୍ତ ଏକାନ୍ତ ପ୍ରାଣଭୟେ ଅସ୍ଥିର। କ୍ଷଣେ ଧୃତ କ୍ଷଣେ ମୁକତ ମନେ କାଜ ଶରୀର। କାଞ୍ଚନ ପୁଚ୍ଛକୁ ସନ୍ଧାଣ ଚଞ୍ଚୁ କ୍ଷଣେ ଧରଣେ, ଚଞ୍ଚଳ ଏଡ଼ାଇ ଶୀକାର କ୍ଷଣେ ଉର୍ଦ୍ଧ୍ୱକେ ଖସେ—ରାଧାନାଥ, ଚନ୍ଦ୍ରଭାଗା ]

ସ୍ୱଭୂ—ସଂ. ବି. (ସ୍ୱ+ଭୂଧାତୁ+କର୍ତ୍ତୃ କ୍ୱିପ୍)—ସ୍ୱୟମ୍ଭୂ (ଦେଖ)— Swabhu Swayam bhu (See)

ସ୍ୱମବାର—ଗ୍ରା. ବ.—ସୋମବାର (ଦେଖ)
Swamabāra Somabāra (See)

ସ୍ୱମେକ—ସଂ. ବି.—ସଂବତ୍ସର (ଛାଅ୍ୟାବ ତନ୍ତ୍ର)—
Swameka A year.

ସ୍ୱୟଏତ—ପ୍ରାଦେ. (ଗଞ୍ଜାମ) ଅ. (ସଂ. ସ୍ୱାୟତ୍ତ)—ଜରିଆରେ—
Swayaeta द्वारा जरियेसे Through.

ସ୍ୱୟଂ—ସଂ. ଅ—(ସୁ+ଅୟଂ; କ୍ଷିତେକନ୍)—୧। ଯେ; ଅପେ; ନିଜେ
Swayam 1. By itself; of one's self. ୨। ଖୋଦ୍; ନିଜେ—2. Itself; himself; herself.

ସ୍ୱୟଂକୃତ—ସଂ. ବିଣ—ଆତ୍ମକୃତ—Preformed by one's self.
Swayam kruta

ସ୍ୱୟଂ ଗୁପ୍ତା—ସ.ବି—ଶୂକ ଶିମ୍ବିକା (ଶବ୍ଦ ରତ୍ନାବଳୀ); ବାଇଡଙ୍କ—
Swayam guptā Cowhage.

ସ୍ୱୟଂ ଜ୍ୟୋତିଃ—ସଂ. ବି (ବହୁବ୍ରୀହି)—ପରମେଶ୍ୱର (ହି. ଶ)—
Swayam jyotih God.

ସ୍ୱୟଂ ଦତ୍ତ—ସଂ. ବି—ସ୍ମୃତି ଶାସ୍ତ୍ରୋକ୍ତ ଦ୍ୱାଦଶ ବିଧ ପୁତ୍ରାନ୍ତର୍ଗତ ପୁତ୍ର-
Swayam datta ବିଶେଷ—A class of sons according to the Hindu Law; a son who gives himself to another as the latter's son. [ଦ୍ର—ପିତୃ ମାତୃ ହୀନ ବା ପିତୃ ମାତୃ ତ୍ୟକ୍ତ ଯେଉଁ ସନ୍ତାନ ଅନ୍ୟ ବ୍ୟକ୍ତିଙ୍କ ନିକଟରେ ଉପସ୍ଥିତ ହୋଇ ଆପଣାକୁ ତାଙ୍କର ପୁତ୍ର ବୋଲି ସ୍ୱୀକାର କରେ ତାକୁ ସ୍ୱୟଂଦତ୍ତ ବୋଲାଯାଏ—ମିତାକ୍ଷରା]

ସ୍ୱୟଂଦୂତ—ସ. ବି. ପୁଂ—ଯେଉଁ ନାୟକ ନାୟିକାଙ୍କଠାରୁ ଅନ୍ୟ ଦୂତକୁ
Swayam dūta ବା ଦୂତୀକୁ ନ ପଠାଇ ନିଜେ ନାୟିକାଙ୍କ ନିକଟରେ ପ୍ରଣୟ ପ୍ରାର୍ଥନା କରନ୍ତି (ହି. ଶ)—A class of heroes in fiction who, instead of sending any emissary or employing a go between, delivers his amatory messages to his sweet heart. personally

ସ୍ୱୟଂ ଦୂତୀ—ସ. ବି. ସ୍ତ୍ରୀ—ଯେଉଁ ପରକୀୟା ନାୟିକା କୌଣସି ଦୂତ ବା
Swayam dūti ଦୂତୀଙ୍କ ବିନା ସାହାଯ୍ୟରେ ନାୟକଙ୍କ ନିକଟରେ ନିଜର ପ୍ରେମ ପ୍ରକାଶ କରନ୍ତି—A class of heroines in fiction who acts as her own emissary before her lover—[ଉ—ବିଦିତ ଗୁଳ୍ମ ସ୍ୱୟଂ ଦୂତୀ ବିଶ୍ରାମ ଏଠାରେ କରନ୍ତୁ।—ଉଷ୍ଣ. ବୈଦେହୀଶ ବିଳାସ।]

ସ୍ୱୟଂପତିତ—ସ. ବି—ନିଜେ ବା ଯେଁ ଖସି ପଡ଼ିବା—Fallen down
Swayam patita of itself. (ଯଥା—ପକ୍ୱଫଳ ବୃକ୍ଷରୁ ସ୍ୱୟଂପତିତ ହୁଏ।]

ସ୍ୱୟଂ ପ୍ରକାଶ—ସ. ବିଣ. (ବହୁବ୍ରୀହି)—ସ୍ୱପ୍ରକାଶ (ଦେଖ)—
Swayam prakāsa Swa prakāsa (See).

ସ୍ୱୟଂ ପ୍ରଭ—ସ.ବିଣ. ପୁଂ (ସ୍ୱୟଂ+ପ୍ରଭା; ବହୁବ୍ରୀହି)—ସ୍ୱପ୍ରକାଶ (ଦେଖ)
Swayam prabha Swa prakāsa (See)
(ସ୍ୱୟଂପ୍ରଭା—ସ୍ତ୍ରୀ) ସ. ବି—ଜୈନମାନଙ୍କ ଶାସ୍ତ୍ରଲିଖିତ ଭାବୀ ୨୪ ଜଣ ଅର୍ହତଙ୍କ ମଧ୍ୟରୁ ଚତୁର୍ଥ ଅର୍ହତ (ହି. ଶ)—Name of the fourth of the 24 Jaina saints who will come to the world.

ସ୍ୱୟଂ ପ୍ରଭା—ସଂ. ବି—ଅପ୍ସରାବିଶେଷ, ମେରୁସାବର୍ଣ୍ଣି ଋଷିଙ୍କ କନ୍ୟା
Swayam prabhā —Name of one of the heavenly nymphs. [ଦ୍ର—ଏ ମୟଦାନବଙ୍କ ପ୍ରଣୟିନୀ ଓ ହେମା ଅପ୍ସରାଙ୍କର ପ୍ରିୟ ସଖୀ। ହେମାଙ୍କ ଅନୁରୋଧରେ ଏ ମୟ ଦାନବଙ୍କ ପୁତ୍ରୀକୁ ଜଗିଥିଲେ। ମୟଦାନବଙ୍କ ଔରସରେ ଏହାଙ୍କ ଗର୍ଭରୁ ମନ୍ଦୋଦରୀ ଜନ୍ମ ଗ୍ରହଣ କରିଥିଲେ। ସୀତାନ୍ୱେଷଣ ରତ ହନୁମାନଙ୍କ ସଙ୍ଗେ ମୟ ଦାନବଙ୍କ ପୁରୀଠାରେ ଏହାଙ୍କର ଭେଟ ହୋଇଥିଲା।]
ସଂ. ବିଣ. ସ୍ତ୍ରୀ—ସ୍ୱୟଂ ପ୍ରଭର ସ୍ତ୍ରୀଲିଙ୍ଗ—Feminine of Swayam prabha.

ସ୍ୱୟଂ ପ୍ରମାଣ—ସଂ. ବିଣ. (ବହୁବ୍ରୀହି)—ଅନ୍ୟ କୌଣସି ପ୍ରମାଣର
Swayampramāṇa ଅପେକ୍ଷା ନ କରି ଯାହା ପ୍ରମାଣିତ ହୁଏ (ହି. ଶ)—Self-evident.

ସ୍ୱୟଂଫଳ—ସଂ. ବିଣ (ବହୁବ୍ରୀହି)—ଯାହା ଅନ୍ୟ କୌଣସି କାରଣରୁ
Swayamphala ଉତ୍ପନ୍ନ ନ ହୋଇ ନିଜେହିଁ ନିଜର କାରଣ ହୋଇଥାଏ (ହି. ଶ)—That which is the cause of itself.

ସ୍ୱୟଂ ବର—ସଂ. ବି. (ସ୍ୱୟଂ+ବୃ ଧାତୁ+ଭାବ ଅ)—୧। କନ୍ୟାଙ୍କ
Swayam bara ଦ୍ୱାରା ସ୍ୱକୀୟ ଇଚ୍ଛାନୁସାରେ ପତିଗ୍ରହଣ-ରୂପ ବିବାହ; ଯେଉଁ ବିବାହରେ ନିମନ୍ତ୍ରିତ ବ୍ୟକ୍ତିମାନଙ୍କ ମଧ୍ୟରୁ କନ୍ୟା ନିଜର ସ୍ୱାମୀଙ୍କୁ ବରଣ କରନ୍ତି—1. A form of marriage in which the bride chooses her husband from the assembled suitors; self-choice; the election of a husband by a girl at a public gathering of suitors. [ଦ୍ର—ପ୍ରାଚୀନକାଳରେ ଭାରତୀୟ ଆର୍ଯ୍ୟ, ବିଶେଷତଃ କ୍ଷତ୍ରିୟ ଓ ରାଜବଂଶରେ ଏ ସ୍ୱୟମ୍ବର ପ୍ରଥାରେ ବିବାହ ସମ୍ପାଦିତ ହେଉଥିଲା। କନ୍ୟାଟି ବିବାହଯୋଗ୍ୟା ହେଲେ କନ୍ୟାପିତା ବହୁ ଯୋଗ୍ୟ ପ୍ରାର୍ଥୀଙ୍କୁ ନିମନ୍ତ୍ରଣ କରି ଆଣୁଥିଲେ ଓ ସେମାନଙ୍କର ଉପସ୍ଥିତିରେ ସ୍ୱୟମ୍ବର ସଭା ହେଉଥିଲା। କନ୍ୟା ଉକ୍ତ ସଭାକୁ ଆସି ପ୍ରାର୍ଥୀମାନଙ୍କୁ ଦେଖି ଓ ସେମାନଙ୍କର ଗୁଣ ଆଦି ଜାଣିପାରି ହୋଇ ଯାହାକୁ ଉପଯୁକ୍ତ ବର ବୋଲି ସ୍ଥିର କରୁଥିଲେ, ତାଙ୍କ ଗଳାରେ ବରଣମାଳା ଅର୍ପଣ କରୁଥିଲେ ଓ ଉକ୍ତ ମନୋନୀତ ବ୍ୟକ୍ତିଙ୍କ ସଙ୍ଗେ ତାଙ୍କର ବିବାହ ବୈଦିକ ଅନୁକ୍ରମରେ ସମ୍ପନ୍ନ ହେଉଥିଲା।

କେତେକ ସ୍ଥାନରେ ବରଙ୍କ ବଳ ଓ ଗୁଣ ପରୀକ୍ଷା ପାଇଁ କନ୍ୟାପିତା କୌଣସି କାର୍ଯ୍ୟ [ଯଥା—ଲକ୍ଷ୍ୟଭେଦ] ନିରୂପଣ କରୁଥିଲେ। ଯେ ଉକ୍ତ କାର୍ଯ୍ୟ କରିବାରେ ସମର୍ଥ ହେଉଥିଲେ, କନ୍ୟା ତାଙ୍କୁ ବରମାଳା ଅର୍ପଣ କରୁଥିଲେ।]

୨ । ସ୍ୱୟମ୍ବର ସଭା; ଯେଉଁଠାରେ କନ୍ୟାଙ୍କ ପାଣିଗ୍ରହଣାର୍ଥ ବରମାନେ ଏକତ୍ର ହୋଇଥିଲେ ( ହି. ଶ. )—2. The assemhly or gathering where suitors assembled for selection by the bride.

ସ୍ୱୟଂବରଣ—ସଂ. ବି—ସ୍ୱୟଂବର ୧ (ଦେଖ)—
Swayambaraṇa Swayambara 1 (See)

ସ୍ୱୟମ୍ବରା—ସଂ. ବିଣ. ସ୍ତ୍ରୀ—ପତିମ୍ବରା; ବର୍ଯ୍ୟା; ସ୍ୱୟମ୍ବର କାଳରେ
Swayambarā ପତିଗ୍ରହଣକାରିଣୀ ( କନ୍ୟା )—
(a girl) Choosing her husband from amongst the invited suitors; self-choosing, (a girl) who chooses her husband herself.

ସ୍ୱୟଂବହ—ସଂ. ବିଣ. ପୁଂ (ସ୍ୱୟଂ+ବହ ଧାତୁ+କର୍ତ୍ତୃ ଅ)—ଯେ ସ୍ୱୟଂ
Swayambaha ବା ନିଜେ ଅର୍ଥାତ୍ ଅନ୍ୟର ବିନା ସାହାଯ୍ୟରେ
(ସ୍ୱୟଂବହା—ସ୍ତ୍ରୀ) ବହେ—Self-flowing; self-rotating; self revolving.

ସ୍ୱୟଂବହ ଯନ୍ତ୍ର—ସଂ. ବି—ସମୟଜ୍ଞାପକ ଜ୍ୟୋତିଷିକ ଯନ୍ତ୍ରବିଶେଷ—
Swayambaha jantra Name of an astronomical self rotating timekeeper.

[ଦ୍ର—ଏହି ଯନ୍ତ୍ର ନିଜେ ଘୂରୁଥାଏ ଓ ଏତଦ୍ୱାରା ସମୟ ନିର୍ଦ୍ଦେଶ କରାଯାଏ । 'ସିଦ୍ଧାନ୍ତଶିରୋମଣି' ଗ୍ରନ୍ଥର ଯନ୍ତ୍ରାଧ୍ୟାୟରେ ଏ ଯନ୍ତ୍ରର ନିର୍ମାଣବିଧି ବର୍ଣ୍ଣିତ ହୋଇଅଛି । ଏହା ଅନେକ ପ୍ରକାରର । ଗୋଟିଏ ପ୍ରକାର ଯନ୍ତ୍ରର ନିର୍ମାଣ ବିଧି—

"ଲଘୁଦାରୁଜ ସମଚକ୍ରେ ସମସୁଷିରାଃ ସମାନ୍ତରାର୍ନେମ୍ୟାଃ
ଋଜ୍ୱବକ୍ରାଯୋଜ୍ୟାଃ ସୁଷିରସ୍ୟାର୍ଦ୍ଧେ ପୃଥକ୍ ତାସାଂ
ରସପୂର୍ଣ୍ଣେ ତଚ୍ଚକ୍ରଂ ଦ୍ୟାଧାରସ୍ଥିତଂ ସ୍ୱୟଂ ଭ୍ରମତି"

ଲଘୁ (ହାଲୁକା) କାଷ୍ଠରେ ସମବର୍ତ୍ତୁଳ ଗୋଟିଏ ଚକ୍ର କର, ସେହି ଚକ୍ରର ପରିଧିରେ ସମସଂଖ୍ୟକ ଛିଦ୍ର କର ତହିଁରେ ଛିଦ୍ରମାନଙ୍କ ସମାନ୍ତରମିତ ଅରମାନ ଲଗାଇବ । ଅରଗୁଡ଼ିକୁ ଏକାନ୍ତରରେ ଋଜୁ ବକ୍ରଭାବରେ ପରସ୍ପର ସମଦୂର କରି ବସାଇବ । ଅରମାନଙ୍କ ଭିତରେ ଥିବା ଛିଦ୍ରମାନଙ୍କ ଅର୍ଦ୍ଧ ଅଂଶକୁ ପାରଦଦ୍ୱାରା ପୂର୍ଣ୍ଣ କରିବ ଓ ଅପର ଅର୍ଦ୍ଧାଂଶ ଶୂନ୍ୟ ରଖିବ । ସେଉଁପରି ଶାଣ ଯନ୍ତ୍ର (କୁନ୍ଦ)ର ଅକ୍ଷର ଦୁଇ ମୁଣ୍ଡକୁ ଦୁଇଟି ଖୁଣ୍ଟି ଉପରେ ରଖା କରାଯାଏ, ଏ ଚକ୍ରର ଅକ୍ଷକୁ ଦୁଇଟି ଖୁଣ୍ଟି ଉପରେ ରଖିବ, ଯୋଗାଇବ, ଚକ୍ରଟି ସ୍ୱାଧୀନଭାବରେ ଘୂରି ପାରିବ । ଅର୍ଦ୍ଧସଂଖ୍ୟକ ଅରର ଛିଦ୍ରମଧ୍ୟସ୍ଥ ପାରଦ ଚକ୍ରର କେନ୍ଦ୍ର ପାଖରେ ରହିଯିବ ଓ ବିପରୀତପାଖର ଅରମାନଙ୍କରେ ଥିବା ପାରଦ ଚକ୍ରର ପରିଧି ପାଖକୁ ଗୁଞ୍ଜି ଆସିବ । ଚକ୍ରକୁ ଥରେ ଘୂରାଇଦେଲେ ଅର୍ଦ୍ଧସଂଖ୍ୟକ ଅରର ପାରଦ ଚକ୍ରର ପରିଧିଆଡ଼କୁ ବୋହି ଯାଉଥିବ ଓ ବିପରୀତ ଦିଗର ଅରମାନଙ୍କ ପାରଦ ଚକ୍ରର କେନ୍ଦ୍ର ( ନାଭି )ଆଡ଼କୁ ବହି ଯାଉଥିବ; ଏକ ଘୂରିବା ବେଳକୁ ନେମି ପାଖର ପାରଦ ନାଭି ଆଡକୁ ଆସୁଥିବ ଓ ନେମିର ଦୂରବର୍ତ୍ତୀ ପାରଦ ନାଭି ଆଡ଼କୁ ବହି ଯାଉଥିବ। ଏହିପରି ପାରଦ କ୍ରମଶଃ ଉପରକୁ ଓ ତଳକୁ ବହିଯିବାଦ୍ୱାରା ପାରଦ ଥିବା ପାଖର ନେମି ଭାରି ହୋଇଥିବ ଓ ତଳକୁ ଘୂରି ଯାଉଥିବ । ପୁଣି ନେମିର ଯେଉଁ ପାଖ ଉପରକୁ ଥିବ ସେ ପାଖର ପାରଦ ନେମି ଆଡ଼କୁ ଗୁଞ୍ଜି ଆସୁଥିବ । ଏହିପରି ପାରଦର ସ୍ଥାନ ପରିବର୍ତ୍ତନକ୍ରମ ଅନୁସାରେ ଚକ୍ରର ନେମି ଘୂରୁଥିବ । ତାକୁ ଆଉ ଘୂରାଇବା ଦରକାର ହେବ ନାହିଁ । ଏହି ଚକ୍ର ସ୍ୱୟଂ ଘୂରୁଥିବାରୁ ଏ ଯନ୍ତ୍ରର ନାମ ସ୍ୱୟଂବହ ଯନ୍ତ୍ର—ସନ୍ଦର୍ଭଲେଖକ ଶ୍ରୀ ବାଇକୋଳ ମହାପାତ୍ର ଜ୍ୟୋତିଷବିଶାରଦ ।]

ସ୍ୱୟଂବିକ୍ରୀତ—ସଂ. ବିଣ. ପୁଂ—ଯେ ନିଜକୁ ଦାସରୂପେ ଅନ୍ୟକୁ ବିକିଦେଇ
Swayam bikrita ଥାଏ (ହି. ଶ.)—One who has sold
(ସ୍ୱୟଂବିକ୍ରୀତା—ସ୍ତ୍ରୀ) himself to another (as slave).

ସ୍ୱୟଂଭୁ (ଭୂ)—ସଂ. ବି (ସ୍ୱୟଂ+ଭୂ ଧାତୁ+କର୍ତ୍ତୃ କ୍ୱିପ୍)—୧ । ବ୍ରହ୍ମା—
Swayambhu (bhū) 1. Brahmā. ୨ । ବିଷ୍ଣୁ—2. Bishṇu. ୩ । ମହାଦେବ—3. Śiba. ୪ । କାମଦେବ—4. Cupid. ୫। କାଳ, ସମୟ—5. Time (personified) ୬ । ମାଷପର୍ଣ୍ଣୀ (ବନକାର୍ପାସ)—6. A wild creeper of the bean species; Ter muns Lebialis. ୭ । ଲଙ୍ଗିମା (ବନକାର୍ପାସ) ଲତା ବିଶେଷ—7. A wild creeper. ୮ । ଜିନ-ଚକ୍ରବର୍ତ୍ତିବିଶେଷ (ହେମଚନ୍ଦ୍ର)—8. Name of a Buddhistic emperor. ସଂ. ବିଣ—୧ । ଯେ ଅନ୍ୟ କାହାଠାରୁ ଜାତ ହୋଇ ନାହାନ୍ତି—1. Self-existing. ୨ । ଅନନ୍ତ କାଳରୁ ବର୍ତ୍ତମାନ—2. Existing from eternity. ୩ । (ଶିବଲିଙ୍ଗ) ଯେ ନିଜେ ଭୂମିରୁ ଉଠିଛନ୍ତି, ଅର୍ଥାତ୍ ଯାହାଙ୍କୁ କେହି ସ୍ଥାପନା କରି ନାହିଁ—3. (An image of Siba) Which has not been set up by any human agency.

ସ୍ୱୟଂଭୁବ—ସଂ. ବି ୧ । ( ସ୍ୱୟଂଭୂ+ସ୍ୱାର୍ଥେ. ଅ )—ବ୍ରହ୍ମା—
Swayambhuba 1. Brahma. ୨ । (ସ୍ୱୟଂଭୂ+ଅପତ୍ୟାର୍ଥେ ଅ)—ସ୍ୱାୟଂଭୁବ ମନୁ; ପ୍ରଥମ ମନୁ; ବ୍ରହ୍ମାଙ୍କ ପୁତ୍ର, ଆଦି ମନୁ—2. The first Manu or progenitor of mankind.

ସ୍ୱୟଂଭୁବା—ସଂ ବି. ସ୍ତ୍ରୀ—୧ । ଧୂଆଁପତ୍ର; ଧୂମ୍ର ପତ୍ର (ରାଜନିର୍ଘଣ୍ଟ)—
Swayam bhubā Tobacco leaf. ୨ । ଶିବଲିଙ୍ଗୀ ଲତା (ହି. ଶ)—2. A wild creeper. ୩। ମାଷପର୍ଣ୍ଣୀ (ହି. ଶ)—3. Teramuns Lebialis.

ସ୍ୱୟଂଭୁ (ଭୂ) ଲିଙ୍ଗ—ସଂ. ବି.—ଯେଉଁ ଶିବଲିଙ୍ଗକୁ କେହି ସ୍ଥାପନା କରି
Swayambhu (bhū) linga. ନାହିଁ; 'ସ୍ୱୟଂ ଉଦ୍ଭୂତ ଶିବଲିଙ୍ଗ
—An image of Śiba which has not been

set up by human hands but has risen itself from the ground. [ଦ୍ର—ଶିବଙ୍କ ନୈବେଦ୍ୟ ଦ୍ରବ୍ୟ ବା ଶିବନିର୍ମାଲ୍ୟକୁ ଶିବଭକ୍ତ ( ଶୈବ )ଙ୍କ ଛଡ଼ା ଅନ୍ୟ କାହାର ଭୋଜନ କରିବା ନିଷିଦ୍ଧ । କିନ୍ତୁ ଶିବପୁରାଣ ଓ ଲିଙ୍ଗପୁରାଣରେ ଅଛି ଯେ, ସ୍ୱୟଂଭୂ ଲିଙ୍ଗଙ୍କୁ ଅର୍ପିତ ନୈବେଦ୍ୟକୁ ସମସ୍ତେ ଭୋଜନ କରି ପାରିବେ । ଭୁବନେଶ୍ୱରରେ ବିରାଜିତ ଲିଙ୍ଗରାଜ ମହାପ୍ରଭୁ ସ୍ୱୟଂଭୂ ଲିଙ୍ଗ ଥିବାରୁ ତାଙ୍କଠାରେ ଅର୍ପିତ ନୈବେଦ୍ୟ ସବୁ ହିନ୍ଦୁ ଅବାଧରେ ଖାଆନ୍ତି । ଶାସ୍ତ୍ର ପୁରାଣମାନ ଆଲୋଚିତ ହୋଇ କଟକ ସବ୍‌ଜଜ୍ କୋର୍ଟରେ ଓ ହାଇକୋର୍ଟରେ ଏହା ଗୋଟିଏ ମକଦ୍ଦମାରେ ସିଦ୍ଧାନ୍ତ ହୋଇଅଛି । ]

ସ୍ୱୟଂଭୋଜ—ସଂ. ବି.—(ନାମ)—ଶିବି ରାଜାଙ୍କର ଏକ ପୁତ୍ର (ହି. ଶ)—
Swayam bhoja Name of a son of king Sibi.

ସ୍ୱୟଂ ଶ୍ରେଷ୍ଠ - ସଂ. ବି.— ଶିବ (ହି.ଶ)—
Swayam śreshtha Śiba.

ସ୍ୱୟଂ ସିଦ୍ଧ—ସଂ.ବିଣ.—୧ । ନିଜର ଚେଷ୍ଟାଦ୍ୱାରା ସିଦ୍ଧି ପ୍ରାପ୍ତ—1. Self
Swayam siddha accomplished. ୨ । ସ୍ୱତଃସିଦ୍ଧ (ଦେଖ)—2. Swatah Siddha (See)

ସ୍ୱୟଂ ସେବକ—ସଂ. ବି. ପୁ. ( ଅଧୁନିକ ପ୍ରୟୋଗ )—ସ୍ୱେଚ୍ଛା ସେବକ
Swayam sebaka (ଦେଖ)—Swechchhā sebaka (See)
(ସ୍ୱୟଂ ସେବିକା— ସ୍ତ୍ରୀ)

ସ୍ୱୟଂ ହାରକରୀ (ହାରିକା)—ସଂ. ବି. ସ୍ତ୍ରୀ—ପୁରାଣବର୍ଣ୍ଣିତା ଜଣେ ସ୍ତ୍ରୀ;
Swayam hārakarī (hārikā) ଦୁଃସହଙ୍କ ଔରସରେ ଜାତ ଓ ମୃତ୍ୟୁଙ୍କ ଗର୍ଭଜାତ ଆଠ କୁମାର ଓ ଆଠ କନ୍ୟାଙ୍କ ମଧ୍ୟରୁ ଏକତମା କନ୍ୟା—Name of a malignant spirit, one of the daughters of Duhsaba ;[ଦ୍ର—ପୁରାଣ ମତରେ ଏହି କନ୍ୟାମାନେ ଗୃହସ୍ଥମାନଙ୍କ ଖଳାରୁ ଧାନ, ଗୋସ୍ତନରୁ ଦୁଗ୍ଧ ଓ ଅର୍ଦ୍ଧପକ୍ୱ ଅନ୍ନ, ତିଳରୁ ତେଲ ଓ କପାରୁ ସୂତାକୁ ଅପହରଣ କରନ୍ତି । ଶାସ୍ତ୍ରୋକ୍ତ ବିଧିଦ୍ୱାରା ଏହାଙ୍କର ଶାନ୍ତିବିଧାନ କରାଯାଏ । ]

ସ୍ୱୟଙ୍କୃତ—ସଂ. ବିଣ.—ସ୍ୱୟଂକୃତ (ଦେଖ)—
Swayankruti Swayam kruta (See)

ସ୍ୱୟଙ୍ଗୁପ୍ତା—ସଂ. ବି.—ସ୍ୱୟଂଗୁପ୍ତା (ଦେଖ)—
Swayanguptā Swayam guptā (See).

ସ୍ୱୟନ୍ଦତ୍ତ—ସଂ. ବି —ସ୍ୱୟଂଦତ୍ତ (ଦେଖ) —
Swayandatta Swayamdatta (See)

ସ୍ୱୟମ୍—ସଂ ଅ.—ସ୍ୱୟଂ (ଦେଖ)—
Swayam Swayam (See)

ସ୍ୱୟମର୍ଜିତ—ସଂ. ବିଣ. ( ସ୍ୱୟଂ + ଅର୍ଜିତ )—ଆପଣାଦ୍ୱାରା ଅର୍ଜନ କରା
Swayamarjita ଯାଇଥିବା—Self-earned; self-acquired.
(ସ୍ୱସ୍ୱୟମୁପାର୍ଜିତ—ଅନ୍ୟରୂପ)

ସ୍ୱୟମାଗତ—ସଂ. ବିଣ. ପୁଂ.—( ସ୍ୱୟଂ + ଆଗତ=ଉପସ୍ଥିତ )—ଯେ
Swayamāgata ନିଜେ ଆସି ଉପସ୍ଥିତ ହୁଏ—Attending voluntarily
ସ୍ୱୟମୁପସ୍ଥିତ }
ସ୍ୱୟମୁପାଗତ } —ଅନ୍ୟରୂପ
ସ୍ୱୟମୁପେତ }
[ସ୍ୱୟମାଗତା, ସ୍ୱୟମୁପାଗତା, ସ୍ୱୟମୁପସ୍ଥିତା, ସ୍ୱୟମୁପେତା — ସ୍ତ୍ରୀ]

ସ୍ୱୟମୀଶ୍ୱର—ସଂ. ବି.—୧ । ପରମେଶ୍ୱର (ହି. ଶ)—1. God.
Swayamīśwara ୨ । ପରମାତ୍ମା ( ହି. ଶ )—2. The Supreme Soul.

ସ୍ୱୟମୁକ୍ତି - ସଂ. ବି.—(ସ୍ୱୟଂ + ଉକ୍ତି)—ସ୍ମୃତିଶାସ୍ତ୍ରୋକ୍ତ ୬ ପ୍ରକାର
Swayamukti ସାକ୍ଷୀ ମଧ୍ୟରୁ ଏକ; ଯେଉଁ ସାକ୍ଷୀ କୌଣସି ପକ୍ଷଦ୍ୱାରା ଆହୂତ ନ ହୋଇ ନିଜେ ଆସି ଧର୍ମାଧିକରଣରେ ସାକ୍ଷ୍ୟ ଦିଏ (ହି. ଶ)—A witness who attends court and gives evidence without being called by any of the parties.

ସ୍ୱୟମୁପାତ୍ତ—ସଂ. ବିଣ.—(ସ୍ୱୟଂ + ଉପାତ୍ତ)—ସ୍ୱୋପାର୍ଜିତ (ଦେଖ)—
Swayamupātta Swopārjita (See)
[ସ୍ୱୟମୁପାର୍ଜି (ର୍ଜି)ତ—ଅନ୍ୟରୂପ ]

ସ୍ୱୟମ୍ପ୍ରକାଶ - ସଂ. ବିଣ.—ସ୍ୱୟଂ ପ୍ରକାଶ (ଦେଖ)—Swayam
Swayamprakāśa prakāśa (See).

ସ୍ୱୟମ୍ପ୍ରଭ—ସଂ. ବିଣ. ପୁଂ.—ସ୍ୱୟଂ ପ୍ରଭ ( ଦେଖ )—Swayam
Swayamprabha prabha (See)
(ସ୍ୱୟଂପ୍ରଭା—ସ୍ତ୍ରୀ)

ସ୍ୱୟମ୍ପ୍ରଭା—ସଂ. ବିଣ. ପୁଂ ସ୍ୱୟଂପ୍ରଭା (ଦେଖ)—
Swayamprabhā Swayam prabhā (See)
ସଂ. ବିଣ. ସ୍ତ୍ରୀ—ସ୍ୱୟମ୍ପ୍ରଭର ସ୍ତ୍ରୀଲିଙ୍ଗ—Feminine of Swayamprabha.

ସ୍ୱୟମ୍ବର(ଇତ୍ୟାଦି)—ସଂ. ବି—ସ୍ୱୟଂବର ଇତ୍ୟାଦି (ଦେଖ)—
Swayambara (etc) Swayam bara etc(See)

ସ୍ୱୟମ୍ବରା—ସଂ. ବିଣ. ସ୍ତ୍ରୀ—ସ୍ୱୟଂବରା (ଦେଖ)—
Swayambarā Swayambarā (See)

ସ୍ୱୟମ୍ବହ(ଇତ୍ୟାଦି)—ସଂ. ବିଣ—ସ୍ୱୟଂବହ ଇତ୍ୟାଦି (ଦେଖ)—
Swayambaha (etc) Swayambaha etc (See)

ସ୍ୱୟମ୍ଭୁ (ମ୍ଭୂ) (ଇତ୍ୟାଦି)—ସଂ. ବି ଓ ବିଣ—ସ୍ୱୟଂଭୂ ଇତ୍ୟାଦି (ଦେଖ)
Swayambhu (mbhū) (etc) Swayambhu (etc) (See)

ସ୍ୱୟମ୍ଭୁବ—ସଂ. ବି—ସ୍ୱୟଂଭୁବ (ଦେଖ)—
Swayambhuba Swayambhuba (See)

ସ୍ୱୟମ୍ଭୁବା—ସଂ. ବି. ସ୍ତ୍ରୀ—ସ୍ୱୟଂଭୁବା (ଦେଖ)—
Swayambhubā Swayambhubā (See)

ସ୍ୱୟେଂ—ଗ୍ରା. ଅ—ସ୍ୱୟଂ (ଦେଖ)—
Swayem Swayam (See)
[ଦ୍ର—ଅନାଦି ପ୍ରଭୁ ନିରାକାର. ସ୍ୱୟେଂ ଅଛନ୍ତି ଏ ଶରୀର ପ୍ରାଚୀ. ନିର୍ଗୁଣ ମାହାତ୍ମ୍ୟ ]

ସ୍ୱୟେଁ — ଗ୍ରା· ଅ· — ସ୍ୱୟଂ (ଦେଖ)—
Swayeṅ Swayaṁ (See)
[ଢ଼—ଦେବ ଗୁରୁଙ୍କ ଶିଷ୍ୟ ସ୍ୱୟେଁ, ସ୍ୱଭାବେ ମନ୍ତ୍ରବୃତ୍ତି ବହେ—ଜଗନ୍ନାଥ ଭାଗବତ]

ସ୍ୱ ଯୋନି—ସଂ· ବି—୧ । (୬ଷ୍ଠୀ ତତ୍) ନିଜର ଉତ୍ପତ୍ତି ସ୍ଥାନ— Swa joni 1. One's place of origin. ୨ । (ବହୁବ୍ରୀହି) ନିଜର ଉତ୍ପତ୍ତିର କାରଣ—2. The cause of one's birth or origin.

ସ୍ୱର (ଧାତୁ)—ସଂ· ୧ । ଆକ୍ଷେପ କରିବା—1. To repent; to Swara (root) lament. ୨ । ଉଚ୍ଚାରଣ କରିବା—2. To utter. ୩ । ଶବ୍ଦ କରିବା—3. To make a sound. ୪ । ଶବ୍ଦାୟମାନ ହେବା—4. To resound.

ସ୍ୱର୍—ସଂ· ଅ—ସ୍ୱଃ (ଦେଖ)—
Swar Swaḥ (See)

ସ୍ୱର—ସଂ. ବି—୧। (ସ୍ୱର୍ ଧାତୁ=ଶବ୍ଦକରିବା+ଭାବ ଅ)—(ବେଦ) Swara ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତ, ଏହି ତିନିପ୍ରକାରର କଣ୍ଠଧ୍ୱନି (ଅମର)—1. Accent; a vocal sound (which is loud, low or intermediate). ୨ । (ସଙ୍ଗୀତ) ତନ୍ତ୍ରୀକଣ୍ଠୋତ୍ଥିତ ସପ୍ତ ଧ୍ୱନି (ଅମର); ଷଡ୍‌ଜ, ଋଷଭ, ଗାନ୍ଧାର, ମଧ୍ୟମ, ପଞ୍ଚମ, ଧୈବତ, ନିଷାଦ, ଏହି ସପ୍ତବିଧ ଗାନାଙ୍ଗ ଧ୍ୱନି—2. A tune or tone in music ( which is seven in number or scale); a musical note. [ଦ୍ର—ଏହି ସପ୍ତ ସ୍ୱରରୁ ୨୨ ଗୋଟି ଶ୍ରୁତି ଉତ୍ପନ୍ନ ହୁଏ, ଏବଂ ଭାରତୀୟ ସଙ୍ଗୀତଶାସ୍ତ୍ରରେ ଏହି ୨୨ଟି ଶ୍ରୁତିର ନାମ, କମ୍ପନ ଓ କମ୍ପନର ସମ୍ପର୍କ ନିମ୍ନରେ ଦିଆଗଲା । ଏହା ଭାରତୀୟ ସଙ୍ଗୀତ ଶାସ୍ତ୍ରର ବିଶେଷତ୍ୱ (Indian chromatic scale) । ଭାରତୀୟ ହିନ୍ଦୁ ସଙ୍ଗୀତ-ଶାସ୍ତ୍ର ଅନୁଯାୟୀ ରାଗ ଗାନ କରିବାକୁ ହେଲେ ଏହି ଶ୍ରୁତିମାନଙ୍କର ସାହାଯ୍ୟ ବିନା ରାଗ ବିଶୁଦ୍ଧ ଓ ଭାବାପନ୍ନ ହୁଏ ନାହିଁ ।

| ଶ୍ରୁତିର ନାମ | ସ୍ୱରର ନାମ | କମ୍ପନ | କମ୍ପନ ସମ୍ପର୍କ |
|---|---|---|---|
| ୧—ଛନ୍ଦୋବତୀ | ଷଡ୍‌ଜ | ୨୪୦ | ୧ |
| ୨—ଦୟାବତୀ | ଋଷଭ (ଅତି କୋମଳ) | ୨୫୨ | ୨୧/୨୦ |
| ୩—ରଞ୍ଜନୀ | ଋଷଭ (କୋମଳ) | ୨୫୬ | ୧୬/୧୫ |
| ୪—ରକ୍ତିକା | ଋଷଭ [ମଧ୍ୟମ] | ୨୬୬ ୨/୩ | ୧୦/୯ |
| ୫—ରୌଦ୍ରୀ | ଋଷଭ (ତୀବ୍ର) | ୨୭୦ | ୯/୮ |
| ୬—କ୍ରୋଧା | ଗାନ୍ଧାର (କୋମଳ) | ୨୮୪ ୪/୯ | ୩୨/୨୭ |
| ୭—ବଜ୍ରିକା | ଗାନ୍ଧାର (ସାଧାରଣ) | ୨୮୮ | ୬/୫ |
| ୮—ପ୍ରସାରଣୀ | ଗାନ୍ଧାର (ତୀବ୍ର) | ୩୦୦ | ୫/୪ |
| ୯—ପ୍ରୀତି | ଗାନ୍ଧାର (ଅତି ତୀବ୍ର) | ୩୦୩ ୩/୪ | ୮୧/୬୪ |
| ୧୦—ମାର୍ଜନୀ | ମଧ୍ୟମ (କୋମଳ) | ୩୨୦ | ୪/୩ |
| ୧୧—କ୍ଷିତି | ମଧ୍ୟମ (କୈଶିକ) | ୩୨୪ | ୨୭/୨୦ |
| ୧୨—ରକ୍ତା | ମଧ୍ୟମ (ତୀବ୍ର) | ୩୩୭ ୧/୨ | ୪୫/୩୨ |
| ୧୩—ସନ୍ଦୀପନୀ | ମଧ୍ୟମ (ଅତି ତୀବ୍ର) | ୩୪୧ ୧/୩ | ୬୪/୪୫ |
| ୧୪—ଆଲାପନୀ | ପଞ୍ଚମ | ୩୬୦ | ୩/୨ |
| ୧୫—ମଦନ୍ତୀ | ଧୈବତ (ଅତି କୋମଳ) | ୩୭୮ | ୬୩/୪୦ |
| ୧୬—ରୋହିଣୀ | ,, (କୋମଳ) | ୩୮୪ | ୮/୫ |
| ୧୭—ରମ୍ୟା | ,, (ମଧ୍ୟମ) | ୪୦୦ | ୫/୩ |
| ୧୮—ଉଗ୍ରା | ,, (ତୀବ୍ର) | ୪୦୫ | ୨୭/୧୬ |
| ୧୯—କ୍ଷୋଭିଣୀ | ନିଷାଦ (କୋମଳ) | ୪୨୬ ୨/୩ | ୧୬/୯ |
| ୨୦—ତୀବ୍ରା | ,, (କୈଶିକ) | ୪୩୨ | ୯/୫ |
| ୨୧—କୁମୁଦ୍‌ବତୀ | ,, (ତୀବ୍ର) | ୪୫୦ | ୧୫/୮ |
| ୨୨—ମନ୍ଦା | ,, (ଅତି ତୀବ୍ର) | ୪୫୫ ୧/୯ | ୨୫୬/୧୩୫ |

ଆଧୁନିକ ପ୍ରଚଳିତ ହାର୍‌ମୋନିଅମ୍‌ରେ ଯେଉଁ ୧୨ ଗୋଟି ସ୍ୱର ଦିଆଯାଇଅଛି, ତାହାର କମ୍ପନସମ୍ପର୍କ ଭାରତୀୟ ଉପର୍ଯ୍ୟୁକ୍ତ ପ୍ରଚଳିତ ଶ୍ରୁତି ସହିତ କୌଣସି ସମ୍ପର୍କ ନାହିଁ । ଅତଏବ ହାର୍‌ମୋନିଅମ୍‌ରେ ଭାରତୀୟ ରାଗ, ରାଗିଣୀମାନ ଗାନ କରାଯାଇ ପାରେ ନାହିଁ ।

(ଲେଖକ—ଶ୍ରୀ ମଦନମୋହନ ଘୋଷ)

ପ୍ରାଣୀଙ୍କ କଣ୍ଠରୁ ଅଥବା କୌଣସି ପଦାର୍ଥରେ ଆଘାତ ହେବାରୁ ଉତ୍ପନ୍ନ ଶବ୍ଦଲହରୀକୁ ସ୍ୱର କୋହାଯାଏ । ସ୍ୱରମାନଙ୍କ ସଂଖ୍ୟା କରାଯାଇ ପାରେ ନାହିଁ । କିନ୍ତୁ ସୁବିଧା ସକାଶେ ପଣ୍ଡିତମାନେ ୭ଟି ସ୍ୱର (ସା ରି ଗ ମ ପ ଧ ନି) ନିଷ୍ପତ୍ତି କରିଅଛନ୍ତି । ବୈଜ୍ଞାନିକମାନେ ପରୀକ୍ଷା କରି ଦେଖି ଅଛନ୍ତି ଯେ, କୌଣସି ବସ୍ତୁରେ ୨୫୬ ଥର କମ୍ପ ଜାତ ହେଲେ ଷଡ୍‌ଜ, ୨୮୮ କମ୍ପନରେ ଋଷଭ, ୩୨୦ ରେ ଗାନ୍ଧାର ଓ ଏହିପରି କମ୍ପନ ବଢ଼ି ବଢ଼ି ୪୮୦ ବାର କମ୍ପ ହେଲେ ନିଷାଦ ସ୍ୱର ଉତ୍ପନ୍ନ ହୁଏ । କମ୍ପନର ସଂଖ୍ୟା ଯେତେ ଅଧିକ ହୁଏ ସ୍ୱର ସେତିକି ଉଚ୍ଚତାକୁ ଉଠେ । ଏହି କ୍ରମୋଚ୍ଚ ସୋପାନରେ ଅବରୋହଣକାରୀ ସପ୍ତସ୍ୱରକୁ 'ସପ୍ତକ' କୋହାଯାଏ । ଏକ ସପ୍ତକର ଉପରକୁ ଆଉ ଗୋଟିଏ ସପ୍ତକ ଅଛି । ଏଥିରେ ସ୍ୱରମାନଙ୍କ କମ୍ପନ ସଂଖ୍ୟା ଉପର୍ଯ୍ୟୁକ୍ତ ସଂଖ୍ୟାର ଦ୍ୱିଗୁଣ । ଏହିପରି ତୃତୀୟ ଓ ଚତୁର୍ଥ ସପ୍ତକ ମଧ୍ୟ ଅଛି—ହି. ଶ ।]

୩ । (ବ୍ୟାକରଣ)—ବ୍ୟଞ୍ଜନ ବର୍ଣ୍ଣର ବିନା ସାହାଯ୍ୟରେ ଉଚ୍ଚାରିତ ହେବା ୧୪ ଗୋଟି ବର୍ଣ୍ଣ (ଅ. ଆ. ଇ. ଈ. ଉ. ଊ. ଋ. ୠ. ଌ. ୡ. ଏ. ଐ. ଓ. ଔ) (ମେଦିନୀ)— 3. Vowel. [ଦ୍ର—କେହି କେହି ଅନୁସ୍ୱାର ଓ ବିସର୍ଗକୁ ସ୍ୱର କହନ୍ତି । ସ୍ୱରବର୍ଣ୍ଣମାନେ ହ୍ରସ୍ୱ ଓ ଦୀର୍ଘ, ଏହି ଦୁଇ ଶ୍ରେଣୀରେ ବିଭକ୍ତ । ହ୍ରସ୍ୱସ୍ୱର—ଅ. ଇ. ଉ. ଋ. ଌ; ଦୀର୍ଘସ୍ୱର—ଆ. ଈ. ଊ. ୠ. ୡ, ଏ, ଐ. ଓ. ଔ । ଏହା ଛଡ଼ା ବୈଦିକ ଉଚ୍ଚାରଣରେ ସ୍ୱରମାନଙ୍କର 'ପ୍ଲୁତ' ଉଚ୍ଚାରଣ ନିର୍ଦ୍ଦିଷ୍ଟ ଅଛି ।].

୪ । (ତନ୍ତ୍ର)—ପ୍ରାଣାଦି ବାୟୁର ବ୍ୟାପାର ବିଶେଷ— 4. (Tantra) One of the actions of five vital airs. [ଦ୍ର—ତାହାକୁ ଯେ ସ୍ୱର କହି ଗୁଣ ଜାଣମ୍ଭ—ସ୍ତ୍ରୀଚୀ. ଶିବସ୍ୱରୋଦୟ ।

୫ । (ତନ୍ତ୍ର)—ନାସା ବାୟୁ (ମେଦନୀ); ନାକ ପୁଡ଼ାବାଟେ ଗିବା ଆସିବା ଶ୍ୱାସ ବାୟୁ—5. Breath passing through the nostrils, [ଦ୍ର—ଏହି ନାସାବାୟୁର ଶ୍ୱାସ ପ୍ରଶ୍ୱାସ ଦ୍ୱାରା ଜୀବ ସର୍ବଦା ଅଜପା ଜପ ମନ୍ତ୍ର (ସୋଽହଂ ଓ ହଂସଃ) ଜପୁଛି ଓ ଦିନରାତ୍ରି ୨୧୬୦୦ ଥର ଜପୁଛି—ମହାଭାରତ ଅଶ୍ୱମେଧ ପର୍ବ।

୬ । (ଜ୍ୟୋତିଷ)ଶୁଭାଶୁଭ କଣ୍ଠିୟାଥ ଗାଣିତ ଚକ୍ରରେ ସ୍ଥାପିତ ହୋଇଥିବା ଭିନ୍ନ ଭିନ୍ନ ସ୍ୱରବର୍ଣ୍ଣ ସ୍ଥଳରେ କଳ୍ପନା କରାଯାଇଥିବା ରାଶି,ଗ୍ରହ ଓ ନକ୍ଷତ୍ରଗଣ—6. (astrology) Planets and astrological signs representing different vowels and used in making astrological calculations. [ଦ୍ର—ଏହି ଗ୍ରହସ୍ୱରଚକ୍ର ଓ ରାଶିସ୍ୱର ଚକ୍ରରେ ନିମ୍ନଲିଖିତରୂପେ ରାଶି ଓ ଗ୍ରହମାନଙ୍କୁ କଳ୍ପନା କରାଯାଏ, ଯଥା—

ଅ—ମେଷ, ସିଂହ ଓ ବୃଷ ରାଶି ।
ଇ—କନ୍ୟା, ମିଥୁନ ଓ କର୍କଟ ।
ଉ—ଧନୁ, ମୀନ ।
ଏ—ତୁଳା, ବୃଷ ।
ଓ—ମକର, କୁମ୍ଭ ।
ମେଷ, ବୃଶ୍ଚିକ ରାଶି=ମଙ୍ଗଳଗ୍ରହ ।
ବୃଷ, ତୁଳା=ଶୁକ୍ର ।
କନ୍ୟା, ମିଥୁନ=ବୁଧ ।
କର୍କଟ=ଚନ୍ଦ୍ର
ମୀନ, ଧନୁ= ଜୀବ ବା ବୃହସ୍ପତି ।
ମକର, କୁମ୍ଭ=ଶନି ।
ସିଂହ=ରବି ।

ସ୍ୱରୋଦୟ ଗଣନା ଚକ୍ରରେ ମଧ୍ୟ ସ୍ୱରମାନଙ୍କ ସ୍ଥଳରେ ଭିନ୍ନ ଭିନ୍ନ ନିର୍ଦ୍ଦିଷ୍ଟ କ୍ଷେତ୍ରମାନଙ୍କୁ ସ୍ଥାପନ କରାଯାଏ ।

ଏହି ଚକ୍ରମାନଙ୍କୁ ଯଥାକ୍ରମେ ରାଶିସ୍ୱରଚକ୍ର, ଗ୍ରହସ୍ୱରଚକ୍ର ଓ ନକ୍ଷତ୍ରସ୍ୱରଚକ୍ର ବୋଲଯାଏ—ବ୍ରହ୍ମ ଯାମଳ ତନ୍ତ୍ର ]

୭ । (ଜ୍ୟୋତିଷ) ଶୁଭାଶୁଭ ଜଣାଇଥିବା ପକ୍ଷିସ୍ୱର । କାକାଦି ପକ୍ଷୀଙ୍କ ଧ୍ୱନି—7.(astrology), The sound or note uttered by crow and other birds. [ଦ୍ର—ଏହାକୁ ପକ୍ଷିସ୍ୱରଜ୍ଞାନଶାସ୍ତ୍ର ବୋଲଯାଏ ଓ ପକ୍ଷୀମାନଙ୍କ ଭିନ୍ନ ଭିନ୍ନ ସ୍ୱରରୁ ମନୁଷ୍ୟର ଶୁଭାଶୁଭ ନିର୍ଣ୍ଣୀତ ହୁଏ—ବସନ୍ତ ରାଜ. ଶାକୁନ ତନ୍ତ୍ର]

ସ୍ୱରକର—ସଂ. ବିଣ (ସ୍ୱର+କୃ ଧାତୁ+କର୍ତ୍ତୃ ଅ)—ଯେଉଁ ପଦାର୍ଥର Swarakara ସେବନରେ ବା ବ୍ୟବହାରରେ ଗଳାର ସ୍ୱର ଶକ୍ତ ଓ ସ୍ପଷ୍ଟ ବା ମଧୁର ହୁଏ—(a thing) Which improves the tone or voice.

ସ୍ୱର କ୍ଷୟ ସଂ. ବି (୬ଷ୍ଠୀ ତତ୍)—ସ୍ୱରଭଙ୍ଗ (ଦେଖ)—
Swara kshaya Swarabhanga (See)

ସ୍ୱରକ୍ଷୁ—ସଂ. ବି—ପୁରାଣାନୁସାରେ ମେରୁ ପର୍ବତର ପଶ୍ଚିମ ଭାଗରେ Swarakshu ବହୁଥିବା ଗଙ୍ଗାନଦୀର ଏକ ଧାରାର ନାମ; ଚକ୍ଷୁ—Name of a mythological current of the Ganges said to flow by the wetern side of the Meru mountain. [ଦ୍ର—ମାର୍କଣ୍ଡେୟ ପୁରାଣରେ ଅଛି ଯେ, ଭଗୀରଥ ଗଙ୍ଗାଙ୍କୁ ସ୍ୱର୍ଗରୁ ମର୍ତ୍ତ୍ୟକୁ ଆଣିବା ସମୟରେ ଗଙ୍ଗା ଚାରିଗୋଟି ଧାରରେ ବିଭକ୍ତ ହେଲେ । ମେରୁ ପର୍ବତର ପଶ୍ଚିମରେ ବହୁଥିବା ଧାରର ନାମ ସ୍ୱରକ୍ଷୁ ବା ଚକ୍ଷୁ—ଶ୍ର. ଶ]

ସ୍ୱରଗ – ଗ୍ରା. (ପଦ୍ୟ) ବି. ( ସଂ. ସ୍ୱର୍ଗ )—୧ । ସ୍ୱର୍ଗ—1. Heaven, Swaraga [ଦ୍ର—ହୋଇ ସୁଖରେ ଅନ୍ତେ ସ୍ୱରଗେ ବାସ— ସବର୍ଗ ରାଧାନାଥ. ମେଘଦୂତ]—୨ । ଆକାଶ—2.The sky. ସଗ ୩ । ଶୂନ୍ୟ—3. The Space (ମଞ୍ଚ. ପାତାଳ- ବିପରୀତ)

ସ୍ୱରଗତ(ତା)—ଗ୍ରା (ପଦ୍ୟ) ବିଣ—ସ୍ୱର୍ଗତ (ଦେଖ)—
Swaragata(tā) Swargata (See)
ସର୍ଗତ [ଦ୍ର—ନାହୁଷ ଅନୁଜାତ ସଗର ମାନ୍ଧାତା, କମି ଅଛ ଯେତେ ସର୍ଗତ ନୃପତି ସ୍ୱରଗେ ଗତା—କୃଷ୍ଣସିଂହ ମହାଭାରତ ବନପର୍ବ]

ସ୍ୱରଗ ପଥର—ଦେ. ବି —ଭୁଆପଥର—Hailstone. [ଦ୍ର— Swaraga pathara ପାଣି ସଙ୍ଗେ ପଡ଼େ ସ୍ୱରଗ ପଥର ତା ସବରଗପାଥର ଫଳ ଦେଖି ବାଳକମାନେ—ନନ୍ଦକିଶୋର. କର୍ଣ୍ଣରଶ୍ମି]

ସ୍ୱର ଗ୍ରାମ—ସଂ.ବି (୬ଷ୍ଠୀ ତତ୍)—ସଙ୍ଗୀତର ସ୍ୱରଶ୍ରେଣୀ—The musi Swara grāma cal scale; gamut. [ଦ୍ର—ସପ୍ତକରେ ନୋଟ୍ ଦେଖ]

ସ୍ୱରଘ୍ନ—ସଂ.ବି.—ସୁଶ୍ରୁତ ଅନୁସାରେ ଗଳାର ରୋଗ ବିଶେଷ—(ହି.ଶ) Swaraghna A kind of throat disease, [ଦ୍ର—ଏ ରୋଗ ବାୟୁ ପ୍ରକୋପରୁ ହୁଏ । ଏଥିରେ ଗଳା ଫୁଲିଯାଏ, ସ୍ୱର ବସିଯାଏ, ଖାଇବା ପଦାର୍ଥ ଗଳାବାଟେ ଭିତରକୁ ଯାଏ ନାହିଁ ଓ ଶ୍ୱାସବାହିନୀ ନାଡ଼ ଦୂଷିତ ହୋଇଯାଏ—(ହି.ଶ) ସଂ. ବିଣ (ସ୍ୱର+ହନ୍ ଧାତୁ+କର୍ତ୍ତୃ ଅ)—ସ୍ୱରନାଶକାରୀ—Destructive of the tone.

ସ୍ୱରଚିତ—ସଂ. ବିଣ (ସ୍ୱୟଂ ତତ୍)—ନିଜଦ୍ୱାରା ରଚିତ; ନିଜଦ୍ୱାରା Swarachita ପ୍ରଣୀତ—Composed by one's self.

ସ୍ୱରଜ୍ଞ—ସଂ. ବିଣ. ପୁଂ (ସ୍ୱର+ଜ୍ଞା ଧାତୁ+କର୍ତ୍ତୃ ଅ)—ଯାହାର ସ୍ୱର Swarajna ବୋଧ ଅଛି—Skilled in the science of (ସ୍ତ୍ରୀ—ଜ୍ଞୀ) musical notes.

ସ୍ୱର ଜ୍ଞାନ—ସଂ.ବି(୬ଷ୍ଠୀ ତତ୍)—ସ୍ୱର ସମ୍ବନ୍ଧେ ଜ୍ଞାନ—Knowledge Swara jnāna of the science of Swara in music and astrology.

ସ୍ୱରଣ—ଗ୍ରା. ବି ( ସଂ. ରଣ) ସ୍ମରଣ (ଦେଖ)—
Swarana Smārana (See)
ସରନ ସମରନ

ସ୍ୱରଧର ଯନ୍ତ୍ର—ସଂ. ବି. (ଅଧୁନିକ)—ଗ୍ରାମଫୋନ୍; ଯେଉଁ ଯନ୍ତ୍ର ଦ୍ୱାରା- Swaradhara jantra ଯନ୍ତ୍ରରେ ମନୁଷ୍ୟାଦିଙ୍କ ଗଳାର ସ୍ୱର ଓ

ସ୍ୱରଧର ଯନ୍ତ୍ର ବାଦ୍ୟାଦିର ସ୍ୱର ଅବିକଳ ଗୃହୀତ ହୋଇ ପରେ ବାହାରି ଗ୍ରାମୋଫୋନ ହୋଇପାରେ—Gramophone.

ସ୍ୱର ଧରି ଗାଇବା—ଦେ. କ୍ରି—କୌଣସି ଗୀତକୁ ଉପଯୁକ୍ତ ସ୍ୱର-Swara dhari gāiba ଗ୍ରାମଗତିରେ ଗାଇବା—To sing a ସ୍ୱରଧରିଯା ଗାନକରা song in proper tune.[ଭ୍ର—ଭକ୍ତେମାନେ ସ୍ୱରଧରେକେମୋନা ପ୍ରଭାତର କୋନ ଅଧ୍ୟାୟ ସ୍ୱଗ୍ରାମପୂର୍ଣ୍ଣ ସ୍ୱରଧରି ଗାଇବ—ଜଳକଣ୍ଠ. ପିଲ୍ଲାଙ୍କ ରାମାୟଣ]

ସ୍ୱରନାଦ—ସଂ. ବି. ( ସ୍ୱରନାଦନ; ୧ମା. ୧ବ )—ମୁହଁରେ ଫୁଙ୍କାଯାଇ Swaranād ବଜାଯିବା ବାଦ୍ୟ (ହ୍ର. ଶ)—A musical instrument played by blowing wind through it.

ସ୍ୱରନାଭି—ସଂ. ବି—ମୁହଁରେ ଫୁଙ୍କାଯାଇ ବଜାଯିବା ପ୍ରାଚୀନ କାଳରେ Swaranābhi ବ୍ୟବହୃତ ଏକ ପ୍ରକାର ବାଜା—( ହ୍ର. ଶ ) A kind of musical instrument used in ancient times by blowing with the mouth.

ସ୍ୱରନାମା—ଦେ. ବି କନ୍ଦର୍ପ; (ସ୍ୱ ଜୋମନ)ସ୍ମର—Cupid [ଭ୍ର—Swaranāmā ହରିବ ଭୁଅଇ ଯେହୁ ସ୍ୱରନାମା ଭୁବେ—ଭଞ୍ଜ. ସ୍ମର କନ୍ଦର୍ପ ବୈଦେହୀଶବିଳାସ]

ସ୍ୱର ନାଳୀ—ସ. ବି —ଗଳା ମଧ୍ୟର ଯେଉଁ ନାଳୀବାଟେ କଣ୍ଠ ସ୍ୱର Swara nāli ବାହାରେ—Trachea; windpipe.

ସ୍ୱର ପଡ଼ିବା—ଦେ. କ୍ରି.—କଣ୍ଠ ସ୍ୱରର ଉଚ୍ଚତା ଲୋପ ହେବା—The Swara pardibā state of one's voice becoming (ସ୍ୱର ପଡ଼ିଯିବା—ଅନ୍ୟରୂପ) hushed up. ସ୍ୱରପଡ଼େଯାওয়া গলাবোক

ସ୍ୱର ପତ୍ତନ—ସ. ବି.—(୬ଷ୍ଠୀ ତତ୍; ଏହା ଗାନାତ୍ମକ ଥିବାରୁ )—Swara pattana ସାମବେଦ ( କ୍ୱଚିତ୍ ଶେଷ )—The Sāma Beda.

ସ୍ୱରବଦ୍ଧ—ସ. ବି. (୩ୟା ତତ୍)—ସ୍ୱରରେ ବନ୍ଧା ହୋଇଥିବା Swara baddha (ଗୀତଆଦି); ନିର୍ଦ୍ଦିଷ୍ଟ ସ୍ୱର ଅନୁସାରେ ରଚିତ (ସଙ୍ଗୀତ)—(Song) Composed in a certain musical measure.

ସ୍ୱରବନ୍ଧ—ସ. ବି. ( ୬ଷ୍ଠୀ ତତ୍ )—ଗଳାର ସ୍ୱର ବନ୍ଦ ହୋଇଯିବା; Swara bandha କଣ୍ଠ ଅଡ଼ିଯିବା ରୋଗ—Loss of one's (ସ୍ୱର ବନ୍ଦ—ଦେ. ରୂପ) voice.

ସ୍ୱର ବର୍ଣ୍ଣ—ସ. ବି.—ବର୍ଣ୍ଣମାଳା ମଧ୍ୟରୁ ଯେଉଁ ବର୍ଣ୍ଣମାନଙ୍କୁ ଉଚ୍ଚାରଣ Swara barnna କରି- ବର୍ଣ୍ଣ ଲୋଡ଼ା ହୁଏ ନାହିଁ (ଅଠାରୁ ଔ ପର୍ଯ୍ୟନ୍ତ)—The vowels.

ସ୍ୱର ବସିବା—ଦେ. କ୍ରି—ସ୍ୱର ପଡ଼ିବା (ଦେଖ)—Swara pardibā Swara basibā (See). (ସ୍ୱର ବସିଯିବା—ଅନ୍ୟରୂପ)

ସ୍ୱରବାଣ୍ଡି—ସଂ. ବି. ( ସ୍ୱରବାହନ; ୧ମା. ୧ବ )—ଯେଉଁ ବାଦ୍ୟରୁ Swarabāhi କେବଳ ସ୍ୱର ବାହାରେ, ତାଳ ଅବ ସୂଚିତ ହୁଏ ନାହିଁ (ହ୍ର. ଶ)—A musical instrument from which tunes merely issue ( & not the measures).

ସ୍ୱର ବିକାର(ବିକୃତି) —ସ. ବି· (୬ଷ୍ଠୀ ତତ୍)—କଣ୍ଠସ୍ୱରର ବିକୃତି; କଣ୍ଠ Swara bikāra(bikruti) ଫାଟିଯିବା ବା ବସିଯିବା—Derangement or change of one's voice.

ସ୍ୱର ବିଜ୍ଞାନ—ସ. ବି.—୧ । ଯେଉଁ ବିଦ୍ୟାଦ୍ୱାରା ସ୍ୱର ସମ୍ବନ୍ଧେ ବିଶିଷ୍ଟ Swara bijnāna ଜ୍ଞାନ ଜନ୍ମେ—1. The science of singing or music ୨ । ସ୍ୱରୋଦୟ (ଦେଖ)—2. Swarodaya (See).

ସ୍ୱର ବିବର୍ତ୍ତ—ସଂ. ବି.—( ୬ଷ୍ଠୀ ତତ୍ )—୧ । ଧ୍ୱନିର ପରିବର୍ତ୍ତନ—Swara bibartta 1. Change of tune. ୨ । କଣ୍ଠ-ଧ୍ୱନିର କମ୍ପନ—2. Vibration of the voice.

ସ୍ୱର ବୋଧ—ସ ବି —ସ୍ୱରଜ୍ଞାନ; ସଙ୍ଗୀତର ସ୍ୱର ସମ୍ବନ୍ଧେ ଅଭିଜ୍ଞତା —Swara bodha Knowledge of the tunes or notes of music.

ସ୍ୱର ଭଙ୍ଗ—ସ ବି.—୧ । କଣ୍ଠ ବସିଯିବା ରୋଗ; ସ୍ୱର ବିକୃତିକର ରୋଗ-Swara bhanga ବିଶେଷ; ଗଳାର ରୋଗବିଶେଷ; ସ୍ୱରଭେଦ — 1. A disease resulting in making the voice hoarse; hoarseness; [ବି—ଏହି ରୋଗରେ କଣ୍ଠସ୍ୱର କ୍ଷୀଣତର, କର୍କଶତର ଓ କଷ୍ଟକାରଯୁକ୍ତ ହୁଏ । ଖୁବ୍ ଉଚ୍ଚୈଃସ୍ୱରରେ ବାରମ୍ବାର ଚିତ୍କାର କଲେ ବା ପାଠ କଲେ, ବିଷପାନ କଲେ, ଗଳାରେ ଗୁରୁତର ଆଘାତ ଲାଗିଲେ ବାୟୁ କୁପିତ ହୋଇ ସ୍ୱରନାଳୀରେ ପ୍ରବେଶ କରିବାରୁ ଏ ରୋଗ ହୁଏ (ହ୍ର· ଶ)—୨ । କଥା କହିବାବେଳେ (ଦୁର୍ବଳତା, ବାର୍ଦ୍ଧକ୍ୟ ବା ରୋଗ ଯୋଗୁଁ) ସ୍ୱରର କମ୍ପନ—2. Tremulousness of the voice ( due to weakness, old age or disease etc). ୩ । ଅତୃପ୍ତ ପ୍ରେମିକ ପ୍ରେମିକାଙ୍କଠାରେ ଲକ୍ଷିତ ଅଷ୍ଟବିଧ ସାତ୍ତ୍ୱିକ ବିକାର ମଧ୍ୟରୁ ଏକତମ —3. One of the eight stages marked in insatiated lovers. [ବି—ଏହାର ଉଦାହରଣ ଭଞ୍ଜ କୋଟିବ୍ରହ୍ମାଣ୍ଡସୁନ୍ଦରୀ ୧୮ଶ ୬୮ ପଦରେ ଦର୍ଶିତ ହୋଇଅଛି ।]

ସ୍ୱର ଭଙ୍ଗୀ—ସ· ବି.—( ସ୍ୱର ଭଙ୍ଗିନ୍ ଶବ୍ଦ; ୧ମା ୧ବ)—୧ । ପକ୍ଷି-Swara bhangi ବିଶେଷ (ଶବ୍ଦଚନ୍ଦ୍ରିକା)—1. Name of a kind of bird. ୨ । ସ୍ୱରଭଙ୍ଗ (ଦେଖ)—2. Swara bhanga (See). ୩ । ସ୍ୱରର ବିଶେଷତ୍ୱ—3. Peculiarity of voice ସ. ବିଣ. ପୁଂ.—ସ୍ୱରଭଙ୍ଗରୋଗଗ୍ରସ୍ତ (ବ୍ୟକ୍ତି) —(a person) Suffer-(ସ୍ୱରଭଙ୍ଗିନୀ—ସ୍ତ୍ରୀ·ବିଣ) ing from hoarseness of voice.

ସ୍ୱର ଭାଙ୍ଗିଯିବା—ଦେ. କ୍ରି.—୧ । ସ୍ୱର ବିକାର ( ଦେଖ )—Swara Swara bhāngijibā bikāra (See). ୨ । ସ୍ୱରଭଙ୍ଗ ସ୍ୱর ভেঙ্গেযাওয়া (ଦେଖ)—2. Swara bhanga (See) স্বর টুটজানা

ସ୍ୱର ଭେଦ—ସଂ ବି.—ସ୍ୱରଭଙ୍ଗ ରୋଗ—A disease (hoarse-
Swara bheda ness). [ଦ୍ର—ଖୁବ୍ ଜୋର୍‌ରେ ବା ବହୁତ ପାଟି କରି ବା ଚାଲିହୋଇ କଥା କହିବା ବା ଗୀତ ବୋଲିବା, ବହୁତ ପାଣି ପିଇବା, ଦେହରେ ଥଣ୍ଡା ଲାଗିବା, ବହୁତ ଶୋକ କରିବାରୁ କାନ୍ଦିବା ଯୋଗୁଁ ବା ଗଳାରେ କଫ ଜମିଲେ ବା ଶରଦ ଓ କାଶ ହେଲେ ଏ ରୋଗ ଜାତ ହୋଇ କଣ୍ଠର ସ୍ୱର ବସିଯାଏ, ଅର୍ଥାତ୍ କର୍କଶ ବା ଶବ୍ଦହୀନ ହୁଏ । ଗଳା ଭିତରେ ଶ୍ଳେଷ୍ମର ସ୍ତର ବସିବା ଓ ଗଳାରେ କ୍ଷତ ହେବା ଯୋଗୁଁ ସ୍ୱର ବିକୃତ ହୋଇଯାଏ । ଘିଅ, ଅଦା, ପିପ୍ପଳୀ, କାହାଡ଼ା, ଦଶମୂଳ ପାଚନ ଆଦି ସେବନ କଲେ ଏ ରୋଗ କମିଯାଏ । ]

ସ୍ୱର ଭାନୁ - ସଂ, ବି.—(ନାମ) ସତ୍ୟଭାମାଙ୍କ ଗର୍ଭଜାତ ଶ୍ରୀକୃଷ୍ଣଙ୍କ ଦଶପୁତ୍ର
Swarabhānu ମଧ୍ୟରୁ ଜଣେ (ହି.ଶ)—Name of one of the ten sons of Srī Krushna by Satyabhāmā.

ସ୍ୱର ଭାବ—ସଂ. ବି.—କେବଳ ସ୍ୱରଦ୍ୱାରା ମନୋଭାବ ପ୍ରକାଶ କରିବା
Swara bhāba ରୂପ ସଙ୍ଗୀତର ଚାରି ଭାବ ମଧ୍ୟରୁ ଗୋଟିଏ (ହି.ଶ)—One of the four modes of expressing one's thought by the voice only.

ସ୍ୱର ଭେଦ—ସଂ. ବି.—ସ୍ୱରଭଙ୍ଗ (ହି. ଶ) (ଦେଖ)—Swara
Swara bheda bhanga (See)

ସ୍ୱର ମଣ୍ଡଳ—ସଂ. ବି.— ବୀଣା ବିଶେଷ (ଶବ୍ଦରତ୍ନାବଳୀ )—A kind
Swara mandala of harp. [ଭି—ଉପାଙ୍ଗ ମର୍ଦ୍ଦଳ (ସ୍ୱର ମଣ୍ଡଳିକା—ଅନ୍ୟରୂପ) ସ୍ୱରମଣ୍ଡଳ ଏ ବୀଣା—ପ୍ରାଚୀ. ଉତ୍କଳ୍ୟ-ମଞ୍ଜରୀ ।

ସ୍ୱରମଣ୍ଡଳିକା—ସଂ. ବି.—ପ୍ରାଚୀନକାଳର ଏକ ପ୍ରକାର ବୀଣା (ହି. ଶ)]
Swaramandalikā A kind of ancient harp

ସ୍ୱର ମାଧୁରୀ(ମାଧୁର୍ଯ୍ୟ)—ସଂ. ବି (ଷଷ୍ଠୀ ତତ୍)—ସ୍ୱରର ମଧୁରତା; ଶ୍ରୁତି-
Swara mādhurī(mādhurjya) ମଧୁରତା—Sweetness of voice or tune.

ସ୍ୱରାଜ୍—ପ୍ରାଦେ (କଟକ) ବି—ସୂର୍ଯ୍ୟ—
Swaraj The sun.

ସ୍ୱର ଯୋଗ—ସ ବି—ସଙ୍ଗୀତରେ ବାଦ୍ୟଯନ୍ତ୍ରର ସ୍ୱର ସଙ୍ଗେ କଣ୍ଠସ୍ୱରର
Swara joga ସଂଯୋଗ; ଲୟ—Intonation of a song; making the instrumental music tally with the vocal music.

ସ୍ୱର ଲମ୍ବା(ମ୍ବେ)ଇବା—ଦେ.କ୍ରି—ଚିଲକା କରି ଉଚ୍ଚ ସ୍ୱରାଧରେ କାନ୍ଦିବା-
Swara lambā(mbe)ibā To moan with a
स्वरलम्बाकरना बिलखकररोना long voice.

ସ୍ୱର ଲସିକା—ସ.ବି (ସ୍ୱର + ଲସ୍ ଧାତୁ= ଲୀଳାକରିବା + କର୍ତ୍ତୃ. ଅକ +
Swara lāsikā ସ୍ତ୍ରୀ· ଆ )—ବଂଶୀ ( ଶବ୍ଦରତ୍ନାବଳୀ )—Flute.

ସ୍ୱର ଲିପି—ଦେ· ବି (ମ ପ. ଲୋ; ସ୍ୱରଜ୍ଞାପକ ଲିପି)—କୌଣସି ସଙ୍ଗୀତ
Swara lipi କଣ୍ଠସ୍ୱରରେ ବୋଲିଯିବ ବା ଯନ୍ତ୍ର
स्वरलिपि स्वरलिपि ଦ୍ୱାରା ବଜା ଯାଇ ପାରିବ, ଏହା ଜାଣିବାପାଇଁ ଲେଖା ଯାଇଥିବା ପାଠକ୍ରମ; ସଙ୍ଗୀତର ସ୍ୱର, ରାଗରାଗିଣୀ, ତାଳ, ଲୟ, ମାତ୍ରା ଆଦି ଜ୍ଞାପକ ଲିପି—A chart indicating the intonation and tune etc of a song; musical chart. [ଦ୍ର—ଏହି ସ୍ୱରଲିପିକୁ ଦେଖି ଉପଦେଶକରକ୍ଷେପ ହୋଇ କୌଣସି ସ୍ୱରଲିପିଜ୍ଞ ବ୍ୟକ୍ତି ସଙ୍ଗୀତବିଶେଷକୁ ଅନାୟାସରେ ଗାଇ ପାରିବେ ଓ ବଜାଇ ପାରିବେ । ]

ସ୍ୱର ଶାସ୍ତ୍ର—ସ. ବି—ସ୍ୱରୋଦୟ (ଦେଖ)—
Swara sāstra Swarodaya (See)

ସ୍ୱ ରସ—ସ. ବି ( ଷଷ୍ଠୀ ତତ୍; ସ୍ୱ=ନିଜର+ରସ=ଅଭିପ୍ରାୟ )—
Swa rasa ୧ । ନିଜର ଇଚ୍ଛା; ସ୍ୱେଚ୍ଛା-1. One's wish.
୨ । ( ବୈଦ୍ୟକ ) ଶିଳାରେ ଛେଚି ହୋଇ ଚିପୁଡ଼ା ଯାଇଥିବା ରସ; (ବୃକ୍ଷ, ଲତା, ପତ୍ରାଦିର) ଶିଳାପିଷ୍ଟ ଗାଳିତ ରସ—2. Juice pressed after bruising any leaf,plant, fruit etc.
୩ । ସଦ୍ୟଃ ସଂଗୃହୀତ ଶତାବରୀ ଓ ଶ୍ୱେତପୁନର୍ଣ୍ଣବା ପ୍ରଭୃତି କେତେକ ଉଦ୍ଭିଜ୍ଜର ମୂଳ ଏବଂ ଆବଶ୍ୟକ ଦ୍ରବ୍ୟର ପତ୍ର ପ୍ରଭୃତିକୁ କୁଟି ବାହାରି କରାଯିବା ରସ (ଦ୍ରବ୍ୟଗୁଣ କଳ୍ପଦ୍ରୁମ)—3.The juice which is pressed out from fresh leaves, roots etc of Aspargus Racemosus, white hogweed and some other medicinal herbs.

ସ୍ୱର ସନ୍ଧି—ସ. ବି—(ବ୍ୟାକରଣ) ପୂର୍ବପଦର ପ୍ରାନ୍ତସ୍ଥ ଓ ପରବର୍ତ୍ତୀ ପଦର
Swara sandhi ଆଦ୍ୟସ୍ଥ ଦୁଇଟି ସ୍ୱରବର୍ଣ୍ଣର ମିଳନ ଦ୍ୱାରା ଉଭୟ ବର୍ଣ୍ଣର ଏକ ବର୍ଣ୍ଣରେ ପରିଣତ ହେବାର ଅବସ୍ଥା ଓ ସେ ସମ୍ବନ୍ଧୀୟ ବ୍ୟାକରଣର ନିୟମ—(Grammar) Coalition of two vowels (one at the end of a word and the other at the beginning of another word) into one. [ଦ୍ର—'ଅ' ବା 'ଆ' ସଙ୍ଗେ 'ଅ' ବା 'ଆ' ମିଶିଲେ 'ଆ' ହୁଏ । ଯଥା—ପ୍ରେମ + ଆନନ୍ଦ = ପ୍ରେମାନନ୍ଦ । ଏହିପରି ଅ + ଇ = ଏ; ଅ + ଉ = ଓ; ଅ + ଏ = ଐ; ଅ + ଓ = ଔ ଇତ୍ୟାଦି ।]

ସ୍ୱର ସମୁଦ୍ର—ସ. ବି—ପ୍ରାଚୀନକାଳର ତନ୍ତ୍ରୀ ବାଦ୍ୟ ବିଶେଷ (ହି. ଶ)-
Swara samudra A kind of stringed musical instrument of ancient times.

ସ୍ୱରସା—ସ. ବି—୧ । କପିତ୍ଥ ପତ୍ରକ ନାମକ ଔଷଧ ( ହି. ଶ )—
Swarasā 1. Name of medicinal herb.
୨ । ଲାକ୍ଷା (ହି. ଶ)—2. Shell lac.

ସ୍ୱରସାଦ—ସ. ବି—ଗଳା ବସିଯିବା; ସ୍ୱରଭଙ୍ଗ (ହି. ଶ)—
Swarasāda Hoarseness of voice.

ସ୍ୱ ରସାଦି—ସ. ବି—କଷାୟ; କେତେକ ଔଷଧ ଦ୍ରବ୍ୟ ପାଣିରେ ଅଉଟା
Swa rasādi ହୋଇ ପ୍ରସ୍ତୁତ କରାଯିବା ପାଚନ—A decoction made by boiling some medicines with water.

ସ୍ୱରା—ସଂ. ବି (ସ୍ୱର+ଆ)—ବ୍ରହ୍ମାଙ୍କ ଜ୍ୟେଷ୍ଠା ପତ୍ନୀ; ଗାୟତ୍ରୀଙ୍କ ସପତ୍ନୀ
Swarā (ପଦ୍ମପୁରାଣ· ଉତ୍ତର ଖଣ୍ଡ; କାର୍ତ୍ତିକ ମାହାତ୍ମ୍ୟ)—Name of the elder wife of Brahmā.

ସ୍ୱରା(ରେ)ଇବା—ଦେ. କ୍ରି· (ସଂ. ସ୍ମୃ ଧାତୁ)—ସୁରାଇବା (ଦେଖ)
Swarā(re)ibā Surāibā (See)

ସ୍ୱରାଂଶ—ସଂ. ବି (୬ଷ୍ଠୀ ତତ୍) (ସଙ୍ଗୀତ)—ସ୍ୱରର ଅର୍ଦ୍ଧ ବା ପାଦ (ଶବ୍ଦ
Swarāmśa କଳ୍ପଦ୍ରୁମ)—(Music) A part or half of a musical note.

ସ୍ୱରାନ୍ତ—ସଂ. ଗୁଣ (ବହୁବ୍ରୀହି; ସ୍ୱର+ଅନ୍ତ)—ଯେଉଁ ପଦର ଶେଷ
Swarānta ଅକ୍ଷର ସ୍ୱରବର୍ଣ୍ଣ ଅଟେ—(a word) Ending with a vowel.

ସ୍ୱରାଜ୍(ଜ)—ଦେ. ବି (ସଂ. ସ୍ୱରାଜ୍ୟ)—ସ୍ୱରାଜ୍ୟବାସୀ ବା ସ୍ୱଦେଶବାସୀଙ୍କ
Swarāj(ja) ଦ୍ୱାରା ରାଜ୍ୟଶାସନ ପ୍ରଣାଳୀ; ସ୍ୱାୟତ୍ତଶାସନ—
स्वराज Autonomy; Swaraj; government of a
স্বরাজ country by its own people; self-government. [ଦ୍ର—ଏହି ଶବ୍ଦ ଇଂରାଜୀ ଭାଷାରେ ଚଳୁଅଛି । ମହାତ୍ମା ଗାନ୍ଧୀଙ୍କ ପ୍ରବର୍ତ୍ତନାରେ ଭାରତବାସୀମାନେ 'ସ୍ୱରାଜ' ପାଇବା ପାଇଁ ବ୍ରିଟିଶ୍ ଜାତିଙ୍କ ନିକଟରେ ଦୀର୍ଘ ସମୟ ଦାବୀ କରୁ ଅଛନ୍ତି ଓ ଏହି ଆନ୍ଦୋଳନ ଫଳରେ ଇଂରେଜ ସରକାର ଭାରତବାସୀଙ୍କୁ କ୍ରମଶଃ ସ୍ୱାୟତ୍ତ ଶାସନ ବା ସ୍ୱରାଜ ଦେବା ପାଇଁ ୧୯୧୯ ସାଲଠାରୁ ପ୍ରତିଶ୍ରୁତ ହୋଇ ଆସୁ ଅଛନ୍ତି । କେହି କେହି କହନ୍ତି ଯେ, 'ସ୍ୱରାଜ'ର ଅର୍ଥ ଇଂରେଜମାନଙ୍କ ସଙ୍ଗରୁ ସବୁ ସମ୍ପର୍କ ତୁଟାଇ ଦେଇ ଭାରତବାସୀମାନେ ନିଜ ଦେଶକୁ ଶାସନ କରିବେ । ପୁଣି କେହି କେହି କହନ୍ତି—କାନେଡା, ଅଫ୍ରିକା, ଅଷ୍ଟ୍ରେଲିଆ ପରି ଭାରତବର୍ଷ ଇଂରେଜ 'ସାମ୍ରାଜ୍ୟ'ର ପରିବାରଭୁକ୍ତ ହୋଇ ବ୍ରିଟିଶ୍ ସମ୍ରାଟଙ୍କୁ ନାମ ମାତ୍ର (Constitutional) ସମ୍ରାଟ୍ ବୋଲି ସ୍ୱୀକାର କରିବ ଓ ସବୁ ବିଷୟରେ ଇଂରେଜମାନଙ୍କ ସମକକ୍ଷ ହେବ । ଏହି ସ୍ୱରାଜ ମତାବଲମ୍ବୀମାନେ ୨ଟି ଦଳ ହୋଇଅଛନ୍ତି । ଯଥା—

୧ । ଚରମ ପନ୍ଥୀ (Extremists)—ଯେଉଁମାନେ ଭାରତର ଇଂଲଣ୍ଡ ସଙ୍ଗେ କୌଣସି ମାତ୍ର ରାଜନୀତିକ ସମ୍ପର୍କ ରଖିବାକୁ ଇଚ୍ଛା କରନ୍ତି ନାହିଁ ।

୨ । ନରମ ପନ୍ଥୀ ବା ମଡରେଟ୍ (Moderates)—ଭାରତ ବ୍ରିଟିଶ୍ ସାମ୍ରାଜ୍ୟର ପରିବାରଭୁକ୍ତ ସମାନାଧିକାରପ୍ରାପ୍ତ ରାଜ୍ୟ ହେବ ବୋଲି ଯେଉଁମାନେ ଦାବୀ କରନ୍ତି । ଏହି ମତାବଲମ୍ବୀମାନଙ୍କୁ 'ସ୍ୱରାଜ' ଦଳଭୁକ୍ତ (Swarajist) ବୋଲାଯାଏ ।

ଗାନ୍ଧୀ ମହାତ୍ମା ମଡରେଟ୍ ଦଳର ନେତା । ବଙ୍ଗର ସ୍ୱର୍ଗୀୟ ଚିତ୍ତରଞ୍ଜନ ଦାସ (ସି. ଆର୍· ଦାସ) ପ୍ରଥମେ ଚରମ ପନ୍ଥୀ ସ୍ୱରାଜ ଥିଲେ; କିନ୍ତୁ ପରେ ମଡରେଟ୍ ଦଳର ମତ ପ୍ରତି ଆକୃଷ୍ଟ ହେଲେ । ପ୍ରଥମେ ସ୍ୱରାଜୀମାନେ ସରକାରଙ୍କ ସଙ୍ଗେ ଅସହଯୋଗ (Non-co-operation) ପନ୍ଥା ଅବଲମ୍ବନ କରିଥିଲେ; କିନ୍ତୁ କ୍ରମଶଃ ପ୍ରତିବାଦମୂଳକ ସହଯୋଗ (Responsive co-operation) ମତ ଅବଲମ୍ବନ କରୁ ଅଛନ୍ତି । ଭାରତର ପ୍ରାଦେଶିକ ଓ କେନ୍ଦ୍ରିକ ସଭାମାନଙ୍କର ମେମ୍ବରମାନେ ଯେଉଁ କେତେ ଦଳମାନ ଗଢ଼ି ଥିଲେ, ସେମାନଙ୍କ ମଧ୍ୟରେ ସ୍ୱରାଜୀ ଗୋଟିଏ ଦଳ ଗଢ଼ି ଥିଲେ ଏବଂ ଚିତ୍ତରଞ୍ଜନଙ୍କ ମୃତ୍ୟୁ ପରେ ପଣ୍ଡିତ ମୋତିଲାଲ ନେହ୍ରୁ ଓ ବିଠ୍ଠଲଭାଇ ପଟେଲ ଆଦି ସେହି ଦଳର ନାୟକ ହୋଇ ଥିଲେ । ବର୍ତ୍ତମାନ କଂଗ୍ରେସ୍ ମଧ୍ୟ 'ଭାରତର ପୂର୍ଣ୍ଣ ସ୍ୱାଧୀନତା' ମତର ସମର୍ଥକ ଅଟେ । ତଥାପି କଂଗ୍ରେସ୍ ଭକ୍ତ ବହୁବ୍ୟକ୍ତି ଔପନିବେଶିକ ସ୍ୱାୟତ୍ତ ଶାସନର ପକ୍ଷପାତୀ ଥିବା ଜଣାଯାଏ ।]

ସ୍ୱରାଜ ଦଳ—ଦେ. ବି.—ଭାରତ ସ୍ୱରାଜ୍ୟ ଲାଭ କରିବ, ଏହା ଦାବୀ
Swarāja dala ଉପରେ ପ୍ରତିଷ୍ଠିତ ରାଜନୀତିକ ଦଳ—A
स्वराज दल political party formed for claiming
স্বরাজ দল self-government for India; the Swaraj party.

ସ୍ୱରାଜି (ଜୀ)—ଦେ. ବି.—ନିଜର ରାଜି ବା ସମ୍ମତି; ନିଜର ସ୍ୱାଧୀନ ସମ୍ମତି
Swarāji (jī) —One's free consent; consent
सवाजी obtained from a person without coercion.
স্বরাজী ଦେ· ଗୁଣ.—ସ୍ୱରାଜିଆ (ଦେଖ)—Swarājiā (See).

ସ୍ୱରାଜିଆ (ଷ୍ଟ)—ଦେ. ଗୁଣ. (ସଂ. 'ସ୍ୱରାଜ୍ୟ'ରୁ ଉତ୍ପନ୍ନ ଦେଶୀୟ 'ସ୍ୱରାଜ'
Swarājiā (sht) ଶବ୍ଦ ସଙ୍ଗେ ଦେଶୀୟ 'ଇଆ' ପ୍ରତ୍ୟୟ ଏବଂ
स्वराजी ଇଂରାଜୀ ଇଷ୍ଟ 'ist' ପ୍ରତ୍ୟୟ ଯୋଗରେ ନିଷ୍ପନ୍ନ ପଦ)—୧ । ସ୍ୱରାଜ
স্বরাজী ଦଳ ସମ୍ବନ୍ଧୀୟ—1. Relating to the Swarāj party. ୨ । ସ୍ୱରାଜ ଦଳଭୁକ୍ତ—2. Belonging to the Swarāj party; ଦେ· ବି—ସ୍ୱରାଜ ମତାବଲମ୍ବୀ ବ୍ୟକ୍ତି—A Swarājist; a person who is a member of the Swaraj party.

ସ୍ୱରାଜ୍ୟ—ସଂ. ବି.—୧ । ନିଜର ରାଜ୍ୟ—1. One's kingdom.
Swarājya ୨ । ନିଜର ଦେଶ; ମାତୃଭୂମି; ସ୍ୱଦେଶ—2. One's
(ପର ରାଜ୍ୟ—ବିପରୀତ) mother country. ଦେ. ବି.—୧ ।
स्वराज्य ସ୍ୱଦେଶବାସୀଙ୍କ ଦ୍ୱାରା ଶାସିତ ରାଜ୍ୟ—1. A country
স্বরাজ্য governed by its own people; republic. ୨ । ସ୍ୱାୟତ୍ତ ଶାସନ ('ସ୍ୱରାଜ' ଦେଖ)—2. Self government. ୩ । ସ୍ୱରୂପରେ ସ୍ଥିତି ବା ଅବସ୍ଥାନ—3. Personal presence. [ଉ—ଯେବେ ଦେଖିବା ଦେବେ ମୋତେ, ସ୍ୱରାଜ୍ୟେ ତହିଁ ରହି ନ ଚିନ୍ତେ —ଜଗନ୍ନାଥ ଭାଗବତ ।]

ସ୍ୱରାଜ୍ୟ ଦଳ—ସଂ. ବି. (ଅଧୁନିକ ପ୍ରୟୋଗ)—ଭାରତର ରାଜନୀତିକ
Swarājya dala ଦଳବିଶେଷ—The Swarājist
स्वराज्य दल স্বরাজ্যদল party (of India).

ସ୍ୱରାଟ୍—ସଂ. ବି.—( ସ୍ୱ=ନିଜେ+ରାଜ୍. ଧାତୁ=ଦୀପ୍ତି ପାଇବା+
Swarāt କର୍ତ୍ତୃ କ୍ୱିପ୍; 'ସ୍ୱରାଜ୍ ଶବ୍ଦ; ୧ମା. ୧ବ)—ସ୍ୱୟଂପ୍ରକାଶ;

ସ୍ୱପ୍ରକାଶ—Self-illuminated; self-effulgent.
ବି—୧ । ଈଶ୍ୱର—1. God. ୨ । ବୈଦିକ ଛନ୍ଦୋବିଶେଷ (ଶବ୍ଦ କଳ୍ପଦ୍ରୁମ)—2. Name of a vedic Sanscrit metre. [ଦ୍ର—ଏ ଛନ୍ଦର ଅଷ୍ଟ ପାଦ ଅଛି —ପ୍ରଥମ ଚାରି ପଦରେ ୮ ଅକ୍ଷର ଲେଖାଏଁ ଓ ଦ୍ୱିତୀୟ ପାଦରେ ୧୦ ଅକ୍ଷର ଥାଏ । ]—୩ । ସ୍ୱରାଜ୍ୟ ଶାସନ ପ୍ରଣାଳୀ ପ୍ରଚଳିତ ଥିବା ରାଜ୍ୟର ରଜା (ହି. ଶ)—3. A constitutional monarch of a republic.

ସ୍ୱରାନୁକରଣ—ସଂ. ବି.—(୬ଷ୍ଠୀ ତତ୍)—କଣ୍ଠ ଧ୍ୱନିର ଅନୁକରଣ—Swarānukarana Imitation of the voice.

ସ୍ୱରାନୁଭାବକତା—ସଂ. ବିଣ.—ସ୍ୱରବୋଧକାଜ୍ଞାନକ ବୃତ୍ତି —Faculty Swarānubhābakatā of understanding the Swara (of music) or musical note.

ସ୍ୱରାପଗା—ସଂ. ବି. (୬ଷ୍ଠୀ ତତ୍; ସ୍ୱଃ=ସ୍ୱର୍ଗ+ଆପଗା=ନଦୀ)—Swarāpagā ସ୍ୱର୍ଗଙ୍ଗା (ହେମଚନ୍ଦ୍ର); ମନ୍ଦାକିନୀ—The Ganges said to flow in the heaven.

ସ୍ୱରାମକ—ସଂ. ବି.—ଅଖରୋଟ ଗଛ (ହି. ଶ)—The walnut Swarāmaka tree.

ସ୍ୱରାଲୁ—ସଂ. ବି.—ବଚ୍ (ଶବ୍ଦଚନ୍ଦ୍ରିକା)—Swarālu The sweet flag; Acorus Calamus.

ସ୍ୱରାଷ୍ଟକ—ସଂ. ବି.—ବଙ୍ଗାଳୀ, ଭୈରବ, ଗାନ୍ଧାର, ପଞ୍ଚମ ଓ ଗୁର୍ଜରୀ Swarāshtaka ରାଗର ମେଳରେ ରଚିତ ସଙ୍କର ରାଗ (ହି. ଶ) —Name of a hybrid tune in Hindu music.

ସ୍ୱରାଷ୍ଟ୍ର—ସଂ. ବି.—୧ । ରାଜାଙ୍କର ନିଜରାଜ୍ୟ—1. A king's Swarāshtra own kingdom. ୨ । ପ୍ରାଚୀନ ସୌରାଷ୍ଟ୍ର ଦେଶର ଏକ ନାମ (ହି. ଶ)—2. A name of ancient Saurāshtra. ୩। ତାମସ ମନୁଙ୍କ ପିତାଙ୍କ ନାମ (ହି. ଶ)—3. Name of the father of Tāmasa Manu. [ପରରାଷ୍ଟ୍ର—ବିପରୀତ]

ସ୍ୱରାଷ୍ଟ୍ର ସଚିବ—ସଂ. ବି.—ଯେଉଁ ମନ୍ତ୍ରୀ ରାଜ୍ୟର ଅଭ୍ୟନ୍ତରୀଣ ଶାସନାଦି Swarāshtra sachiba ବିଭାଗର କାର୍ଯ୍ୟ ବୁଝନ୍ତି—Secre-( ପରରାଷ୍ଟ୍ର ସଚିବ—ବିପରୀତ) tary of State; minister for the internal affairs of a State; Home Secretary.

ସ୍ୱରିତ—ସଂ. ବିଣ.—(ସ୍ୱର=ଗୀତ ଧ୍ୱନି+ଯୁକ୍ତାର୍ଥେ ଇତ)—୧ । ସ୍ୱର Swarita ଯୁକ୍ତ—1. Accompanied with sound. ୨। ଉଚ୍ଚାରିତ—2. Uttered. ୩। (ସ୍ୱର୍ ଧାତୁ+କର୍ମଣି କ୍ତ) —ଆକ୍ଷିପ୍ତ—3. Abused; overthrown. ସଂ. ବି— ଉଦାତ୍ତ ଓ ଅନୁଦାତ୍ତର ମଧ୍ୟବର୍ତ୍ତୀ ସ୍ୱର; ମଧ୍ୟମରୂପେ ଉଚ୍ଚାରିତ ସ୍ୱର—The middle or intermediate tone in music. [ଦ୍ର—ଏହା ଅତି ଉଚ୍ଚ (ଉଦାତ୍ତ) ବା ଅତି କ୍ଷୀଣ (ଅନୁଦାତ୍ତ) ନୁହେ । ]

ସ୍ୱରିବା—ଗ୍ରା. କ୍ରି (ସ୍ମୃ ଧାତୁ)—୧ । ସ୍ମରିବା (ଦେଶଜ)—Swariba 1. Smaribā (See) ୨ । (ସଂ. ସ୍ଫୁର ଧାତୁ) ସ୍ଫୁରିବା (ଦେଶଜ)—2. Sphuribā (See) [ଉ— ସମର୍ଥନ ସ୍ଫୁରିବା ପାଦ ନ ଚଳଇ ଚକ୍ଷୁ ନ ସ୍ୱରଇ ଭାଷା । ପ୍ରାଚୀ. ବୃନ୍ଦାବନରୂପଣ ଗୀତା ।] ୩ । (ସଂ. ସ୍ପୃହ ଧାତୁ) ସ୍ପୃହାଯୁକ୍ତ ହେବା—3. To be desirous of.

ସ୍ୱରୀ—ଗ୍ରା. ବି. ସ୍ତ୍ରୀ (ନାମ)-୧ । ସରସ୍ୱତୀର ଡାକ ନାମ-1. Nick name Swari of Saraswati. ୨ । ହୋର; ମାଳର ସରୀ— ସର ସରୀ ନର ଗୁହ୍ଡ 2. String of necklace etc.

ସ୍ୱରୀଶ୍ୱର—ସଂ. ବି (୬ଷ୍ଠୀ ତତ୍; ସ୍ୱଃ=ସ୍ୱର୍ଗ+ଈଶ୍ୱର )—ଇନ୍ଦ୍ର; Swariśwara ସୁରପତି—Indra; the king of the gods.

ସ୍ୱରୁ—ସଂ. ବି (ସ୍ୱୃ ଧାତୁ+କର୍ତ୍ତୃ. ଉ)—୧ । ବଜ୍ର (ଅମର)— Swaru 1. Thunder; thunder-bolt. ୨ । ଯୂପଖଣ୍ଡ (ମେଦିନୀ)—2. A piece of sacrificial log. ୩ । ( +ଅଧି. ଉ ) ଯଜ୍ଞ; (ମେଦିନୀ)—3. Vedic sacrifice. ୪ । ବେଧନାସ୍ତ୍ର—4. A drill; anger. ୫ । ଶର (ମେଦିନୀ), ବାଣ—5. Arrow. ୬ । ସୂର୍ଯ୍ୟରଶ୍ମି; ଖର (ଶବ୍ଦ କଳ୍ପଦ୍ରୁମ)—2. Sun's rays; sunbeam. ୭ । ବୃଶ୍ଚିକ ଭେଦ (ଶବ୍ଦ କଳ୍ପଦ୍ରୁମ)— 7. A kind of scorpion.

ସ୍ୱରୁଃ—ସଂ. ବି (ସ୍ୱରୁସ୍ ଶବ୍ଦ; ୧ମା. ୧ବ; ସ୍ୱୃ ଧାତୁ+କର୍ତ୍ତୃ.ଉସ୍)— Swaruh ବଜ୍ର (ମାଳକଣ୍ଠ)—Thunder.

ସ୍ୱରୁଚି—ସଂ. ବି (୬ଷ୍ଠୀ ତତ୍)—୧ । ସ୍ୱେଚ୍ଛା (ପ୍ରାୟଶ୍ଚିତ୍ତ ତତ୍ତ୍ୱ)— Swaruchi 1. One's free will. ୨ । ନିଜର ରୁଚି— 2. One's natural or personal taste. ବିଣ. (ପୁଂ ଓ ସ୍ତ୍ରୀ)(ବହୁବ୍ରୀହି)—ସ୍ୱେଚ୍ଛାଗାମୀ;ସ୍ୱୈରୀ; ସ୍ୱତନ୍ତ୍ର— Independent; acting with freedom; freely moving.

ସ୍ୱରୂପ—ସଂ. ବି (୬ଷ୍ଠୀ ତତ୍)—୧ । ନିଜର ପ୍ରକୃତ ରୂପ—1. One's Swarūpa real form. ୨ । ସ୍ୱଭାବ; ପ୍ରକୃତି (ଅମର)— 2. Nature. ୩ । ସ୍ୱାଭାବିକ ଅବସ୍ଥା—3. Natural condition. ୪ । ପଣ୍ଡିତ—4. A learned man. ୫ । କୌଣସି ବସ୍ତୁର ବା ବ୍ୟକ୍ତିର ମୂର୍ତ୍ତି ବା ଛବି [ହି. ଶ]. 5. The image or picture of any thing or person. ୬ । ଦେବତା ଅବକ ଧୃତ ରୂପ ( ହି. ଶ )— 6. The form assumed by a Deity. ୭। ଆତ୍ମା (ହି. ଶ)—7 Soul ବିଣ.—୧ । ପଣ୍ଡିତ (ଅମର)— (ସ୍ୱରୂପା—ସ୍ତ୍ରୀ. ବିଣ) 1. Learned. ୨। ମନୋଜ୍ଞ; ସୁନ୍ଦର; ଅପରୂପ (ଅମର)—2. Graceful; charming. ୩ । ଅବିକଳ—3. Exact; true; complete. [ ଉ—ଏବେ ମୁହିଁ କହୁଛି ସ୍ୱରୂପ ବଚନ—ଜଗନ୍ନାଥ ଭାଗବତମାହାତ୍ମ୍ୟ ।]
ସ୍ୱରୂପତା, ସ୍ୱରୂପତ୍ୱ, ସ୍ୱାରୂପ୍ୟ } ବି

୪ । ପ୍ରକୃତ; ଯଥାର୍ଥ—4. Actual; real. ୫ । ସଦୃଶ; ତୁଲ୍ୟ—5. Similar. ୬ । (ଯେକୌଣସି ବସ୍ତୁର ବା ବ୍ୟକ୍ତିର) ସଦୃଶରୂପ—6 The image of (any thing or person). [ଉ—ସ୍ୱରୂପବଧାନେ ବଧାତା ଗଲ୍ପ ଏ ରୂପ ଲକ୍ଷ—ଲଙ୍କ କୋଟବ୍ରହ୍ମାଣ୍ଡସ୍ୱଦଗ୍ଧ ।] ଦେ.ବ—୧। ବାସ୍ତବକ ଘଟନା ବା ଅବସ୍ଥା—1.Actual state of affairs. [ଉ—ସ୍ୱରୂପ କଥିର କଣେ କରନ୍ତେ କୋଳ—ଶିଶୁଙ୍କର କୃପା ଅଭିଳାଷ ।]—୨ । (ସଂ.ରୂପ) ରୂପ—2. Shape; form. [ଉ—ନାନା ସ୍ୱରୂପ ଭୁମେ ଧର, ଅନେକ ଶ୍ରମେ କର୍ମ କର । ଭୂପଭ ପ୍ରେମ ପଞ୍ଚାମୃତ । ]

ସ୍ୱରୂପ ଚନ୍ତା—ସଂ. ବ—ଦେବତାଙ୍କର କାଳର ରୂପର ଧ୍ୟାନ—Swarūpa chintā Contemplation of the form of a Deity.

ସ୍ୱରୂପତଃ—ସଂ. ଅ (ସ୍ୱରୂପ+ତସ୍)—ଯାଥାର୍ଥ୍ୟତଃ; ପ୍ରକୃତପକ୍ଷେ—Swarūpatah Actually.
(ସ୍ୱରୂପତ—ଦେ. ରୂପ)

ସ୍ୱରୂପତା(ତ୍ୱ)—ସଂ. ବ(ସ୍ୱରୂପ+ଭାବ. ତା, ତ୍ୱ)—୧ । ଅନନ୍ୟତା—Swarūpatā(twa) 1. Identity. ୨ । ସାଦୃଶ୍ୟ—2. Similarity.

ସ୍ୱରୂପ ନିରୂପଣ(ନିର୍ଣ୍ଣୟ)—ସଂ. ବ—ପ୍ରକୃତ ଅବସ୍ଥାର ବା ରୂପର ନିର୍ଦ୍ଧାରଣ Swarūpa nirūpaṇa(nirṇṇaya) —Ascertainment of the actual form or condition.

ସ୍ୱରୂପ ଯୋଗ୍ୟ—ସଂ. ବଣ—ନିଜର ଉପଯୋଗିତା ଅନୁସାରେ କାର୍ଯ୍ୟ-ସିଦ୍ଧି ପାଇଁ ଉପଯୁକ୍ତ; କାର୍ଯ୍ୟ ସାଧନୋ-ପଯୋଗୀ—Individually fit for accomplishing any work. Swarūpa jogya ( ସ୍ୱରୂପଯୋଗ୍ୟତା—ବ )

ସ୍ୱରୂପ ସମ୍ବନ୍ଧ—ସଂ. ବ—ଅଭିନ୍ନ ସମ୍ବନ୍ଧ; ଅନ୍ୟ ବ୍ୟକ୍ତିର ବା ବସ୍ତୁର ଅନୁରୂପତାଜନକ ସମ୍ବନ୍ଧ—Swarūpa sambandha Exact relationship; relationship in which there is no difference.

ସ୍ୱରୂପାଖ୍ୟାନ—ସଂ. ବ (୬ଷ୍ଠୀ ତତ୍)—ପ୍ରାକୃତିକ ଅବସ୍ଥାର ବର୍ଣ୍ଣନା—Swarūpākhyāna The story or description of the natural or original condition.

ସ୍ୱରୂପାନନ୍ଦ—ଦେ.ବ.ପୁଂ (ନାମ)—୧.। ଲୋକଙ୍କ ନାମ—1. A name Swarūpānanda given to males. ୨ । କଟକଜିଲ୍ଲାର ସ୍ୱରূପানন্দ ନେମ୍ବାଳ ଗାଦିର ପ୍ରତିଷ୍ଠାତା ଅଚ୍ୟୁତାନନ୍ଦଙ୍କ ବଂଶଧରଙ୍କ स्वरूपानंद ନାମ ବିଶେଷ—2. Name of a descendant of Achyutānanda of a Nembāḷa Matha of the Cuttack district.

ସ୍ୱରୂପାତ୍ମକ—ସଂ. ବଣ ପୁଂ (ସ୍ୱରୂପ+ଆତ୍ମନ୍+କ )—ସାଦୃଶ୍ୟ ଜ୍ଞାପକ; Swarupātmaka ସାଦୃଶ୍ୟାତ୍ମକ; ଯଦ୍ଦ୍ୱାରା ମୌଳିକ ବସ୍ତୁର ସ୍ୱରୂପ ଦେଖାଯାଏ ବା ଜଣାଯାଏ—Exactly representing the original; conveying the idea as to the true state of the original. (ସ୍ୱରୂପାତ୍ମିକା—ସ୍ତ୍ରୀ)

ସ୍ୱରୂପୀ—ଦେ. ବଣ ସ୍ତ୍ରୀ (ପ୍ରାଚୀନପଦ୍ୟ)—ନିଜର ପ୍ରକୃତରୂପ ବଶିଷ୍ଟା—Swarūpi Of one's real form [ଉ—ରାଧିକା ଅଂଶ ଯେତେ ଗୋପୀ; ସେ କୃଷ୍ଣ ଜୀବନ ସ୍ୱରୂପୀ—ଭୂପତି ପ୍ରେମ ପଞ୍ଚାମୃତ] ସ. ବଣ. ପୁଂ ( ସ୍ୱରୂପ+ଇନ୍; ୧ମା; (ସ୍ୱରୂପିଣୀ—ସ୍ତ୍ରୀ) ୧ବ )—୧ । ସ୍ୱରୂପ ବଶିଷ୍ଟ—1. Having similarity. ୨ । ସ୍ୱରୂପଧାରୀ—2. Assuming one's real form.

ସ୍ୱରୂପୋତ୍ପ୍ରେକ୍ଷା—ସଂ. ବ (ଅଳଙ୍କାର ଶାସ୍ତ୍ର)—ଉତ୍ପ୍ରେକ୍ଷା ଅଳଙ୍କାରର Swarupotprekshā ପ୍ରକାର ଭେଦ—A figure of speech; of class at Utprekshā or allegory.

ସ୍ୱରୂପୋପନିଷଦ୍—ସଂ. ବ—ବେଦାନ୍ତ ଗ୍ରନ୍ଥବିଶେଷ; ଉପନିଷଦ୍ Swarupopanishad ବିଶେଷ—Title of a philosophical supplement to the Vedas.

ସ୍ୱରେ 'ଅ'—ଦେ· (ବାକ୍ୟ)—ସ୍ୱରବର୍ଣ୍ଣ ମଧ୍ୟରୁ ପ୍ରଥମ ବର୍ଣ୍ଣ—The Sware 'a' first vowel of the Oriya alphabet. ସ୍ୱରେ ଅ स्वरे अ [ଉ—ଅବଧାନମାନେ ପିଲାମାନଙ୍କୁ ପ୍ରଥମେ ଖଡ଼ିଦ୍ୱାରା ଭୂମିରେ ' ଅ ' ଲେଖାଇ ମଡ଼ାଇଲା ବେଳେ ଏହି ବାକ୍ୟ ଉଚ୍ଚାରଣ କରନ୍ତି ]

ସ୍ୱରେ ଆ—ଦେ· ବ—୧ । (ସଂ· ସ୍ପୃହା)—ସ୍ପୃହା (ଦେଖ)—Spruhā Sware ā (See) ୨ । ସ୍ୱରବର୍ଣ୍ଣର ଦ୍ୱିତୀୟବର୍ଣ୍ଣ ଆ—2. The second vowel of the Oriya alphabet.

ସ୍ୱରେଣୁ—ସଂ. ବ (ନାମ)—ସୂର୍ଯ୍ୟପତ୍ନୀ; ସଂଜ୍ଞା—Sajnā; one of Swareṇu the two wives of the Sun-god.

ସ୍ୱରେହା—ଗ୍ରା· ବ—୧ । କୁମାର; ବାଳ; ନନ୍ଦନ; (ଅମୁକ କୁଳର) Swarehā ସନ୍ତାନ—1. Son or child ( of such and सन्तान such a family) [ଉ—ଶୁଣ ସମନ୍ତଙ୍କ ତ୍ରଜ ସ୍ୱରେହା, सन्तान —ଅଚ୍ୟୁତାନନ୍ଦ, ଶୂନ୍ୟ ସଂହିତା ]—୨ । (ସଂ) ସ୍ପୃହା—2. Acute wish; hankering.

ସ୍ୱରୋଚିଷ—ସଂ.ବ—ଦ୍ୱିତୀୟ ମନୁ (ଅଗ୍ନିଙ୍କର ପୁତ୍ର)—The second Swarochisha progenitor of mankind ( son of the Fire-god). [ଉ—ସେ ମନୁ ଅନ୍ତେ ସ୍ୱରୋଚିଷ, ଦ୍ୱିତୀୟ ମନୁ ସେ ବିଶେଷ—ଜଗନ୍ନାଥ. ଭାଗବତ ] [ ଦ୍ର—ଏ କଳ ନାମକ ଗନ୍ଧର୍ବଙ୍କ ଔରସରୁ ବରୁଥିନୀ ନାମ୍ନୀ ଅପ୍ସରାଙ୍କ ଗର୍ଭରୁ ଜନ୍ମିଥିଲେ । ଏ ସ୍ୱାରୋଚିଷ ମନୁଙ୍କ ପିତା ଥିଲେ । )

ସ୍ୱରୋଦୟ—ସଂ. ବ (୬ଷ୍ଠୀ ତତ୍)—୧ । ନାସାରନ୍ଧ୍ରର ଉଦୟ; ଶ୍ୱାସ Swarodaya ପ୍ରଶ୍ୱାସ—1. Breathing; flow of breath through the nostrils. ୨। (ଯୋଗଶାସ୍ତ୍ର)—ନାସିକାର ବାୟୁ ଦ୍ୱାରା ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ନାଡ଼ୀମାନଙ୍କର ଗତି ପର୍ଯ୍ୟବେକ୍ଷଣ କରି ଯାତ୍ରା, ଭୋଜନ, ଶୟନାଦି କର୍ମ କରିବାର ପାଇଁ ଉପଦେଶ ଦେଉଥିବା ଶାସ୍ତ୍ରରେ ଅଛି—2. A treatise

giving advice to regulate one's actions by observing the flow of one's breath through the left or right nostril or through both. [ଦ୍ର—ମନୁଷ୍ୟଦେହରେ ୩ଟି ନାଡ଼ୀ ଅଛି । ଇଡ଼ା ନାଡ଼ି ନାକର ବାମ ପୁଡ଼ା ବାଟେ ନିଶ୍ୱାସ ବୁହାଏ । ପିଙ୍ଗଳା ନାଡି ଡାହାଣ ପୁଡ଼ା ବାଟେ ବୁହାଏ ଓ ସୁଷୁମ୍ନା ନାଡି ଦୁଇ ପୁଡ଼ାରେ ସମାନ ଭାବରେ ନିଶ୍ୱାସକୁ ଚଳାଏ । ଡାହାଣ ପୁଡ଼ା (ପିଙ୍ଗଳା) ରେ ପବନ ଚଳୁଥିବା ବେଳେ ଭୋଜନ, ମୈଥୁନ ବା ଯୁଦ୍ଧ କଲେ ଶୁଭ ଫଳ ଘଟେ ।

ବାମପୁଡ଼ା (ଇଡ଼ା) ବାଟେ ପବନ ବହୁଥିବା ବେଳେ ଯାତ୍ରା, ଶୟନ, ମଳମୂତ୍ର ତ୍ୟାଗ କରିବ ଓ ଦୁଇପୁଡାରେ ସମାନ ଭାବରେ (ସୁଷୁମ୍ନା ନାଡ଼ିରେ) ନିଶ୍ୱାସ ବହୁଥିବା ବେଳେ ଯୋଗସାଧନ, ଈଶ୍ୱର ଭଜନ, ତନ୍ତ୍ର ସାଧନ ଓ ଜପାଦି କରିବ ।

ଯୁଦ୍ଧକାଳରେ ଯୋଦ୍ଧାଙ୍କର ଯେଉଁ ପୁଡାରେ ପବନ ବହୁଥିବ ସେ ସେହି ଦିଗକୁ ଲକ୍ଷ୍ୟ କରି ଶତ୍ରୁକୁ ଆକ୍ରମଣ କଲେ ଜୟଯୁକ୍ତ ହେବେ ।

ଏହି ସ୍ୱରୋଦୟ ଶାସ୍ତ୍ରଜ୍ଞାନ ଦ୍ୱାରା କେଉଁ ସମୟରେ ପଞ୍ଚ ତତ୍ତ୍ୱ (କ୍ଷିତ୍ୟପ୍‌ତେଜମରୁଦ୍‌ବ୍ୟୋମ) ମଧ୍ୟରେ କେଉଁ ତତ୍ତ୍ୱ ଦେହରେ ପ୍ରବଳ ହୋଇଅଛି ତାହା ଜାଣିପାରି ତଦନୁସାରେ କାର୍ଯ୍ୟ କଲେ ଫଳ ଲାଭ ହେବ ।

ଏହି ୩ ନାଡ଼ି ଛଡ଼ା ଦେହରେ ଆଉ ୭ ଗୋଟି ନାଡି ଅଛି । ସେମାନଙ୍କ କ୍ରିୟା ଚକ୍ଷୁ, ଜିହ୍ୱା, କର୍ଣ୍ଣ, ମୁଖ, ଲିଙ୍ଗାଦିର ଅବସ୍ଥାରୁ ଜଣାପଡେ ଓ ତଦନୁସାରେ ନିଜ କାର୍ଯ୍ୟକଳାପକୁ ନିୟନ୍ତ୍ରିତ କରିବାକୁ ହୁଏ ।

ଏହି ନାଡିମାନଙ୍କ ଦ୍ୱାରା ନାସାବାୟୁର ଚଳନକ୍ରମକୁ ଲକ୍ଷ୍ୟ ରଖି ମନୁଷ୍ୟ ମୃତ୍ୟୁକାଳ ଓ ଗର୍ଭସ୍ଥ ସନ୍ତାନାଦି ବିଷୟ ପୂର୍ବରୁ ଜାଣିପାରେ—ଗରୁଡ଼ପୁରାଣ ।

ସଂସ୍କୃତ ସ୍ୱରୋଦୟଲେଶ ନାମକ ଗ୍ରନ୍ଥ ଅବଲମ୍ବନରେ ଯଂଶୋବନ୍ତ ଦାସଙ୍କ ଶିବ ସ୍ୱରୋଦୟ (ପ୍ରାଚୀ ସମିତି ଗ୍ରନ୍ଥମାଳା ଷୋଡ଼ଶଖଣ୍ଡ) ଗ୍ରନ୍ଥ ଲିଖିତ । ଏଥିରେ ସ୍ୱରୋଦୟର ବିବରଣ ଲେଖାଅଛି । ଏହା ମହାଦେବ ପାର୍ବତୀଙ୍କୁ କହିଥିଲେ । ଏ ଶାସ୍ତ୍ରରେ ନିଶ୍ୱାସ ବାୟୁର ଗତି, ଶରୀରମଧ୍ୟସ୍ଥ ନାଡ଼ୀ ଓ ଷଟ୍‌ଚକ୍ରମାନଙ୍କ ବିଷୟ ଉଲ୍ଲେଖ ଅଛି । କେଉଁ ନାସାପୁଟରେ ଶ୍ୱାସବାୟୁ ବହିଲେ କି ଫଳ ହେବ, ତାହା ଏହି ଶାସ୍ତ୍ରରୁ ମନୁଷ୍ୟ ଜାଣିପାରେ ।]

୩ । (ଜ୍ୟୋତିଷ) ରାଶି, ଗ୍ରହ, ନକ୍ଷତ୍ରମାନ ସନ୍ନିବେଶିତ ହୋଇ ଅଙ୍କିତ ହୋଇଥିବା ଚକ୍ରରୁ ଶୁଭାଶୁଭ ଜ୍ଞାପକ ଶାସ୍ତ୍ର—3. Astrological treatise dealing with the future of a person by calculating the position of astrological units in a figure drawn on the ground,

ସ୍ୱର୍ଗ—ସଂ. ବି (ସୁ=ସୁଖ+ଋଜ୍ ଧାତୁ=ପ୍ରାପ୍ତ ହେବା+ଅଧି ଅ ଯେଉଁଠାରେ ସୁଖ ପ୍ରାପ୍ତି ହୁଏ)—
Swarga
ଅନ୍ୟ ସଂ ନାମ—ସ୍ୱଃ, ନାକ, ତ୍ରିଦିବ, ତ୍ରିଦଶାଳୟ, ସୁରଲୋକ, ଦ୍ୟୋଃ, ଦ୍ୟୌ, ତ୍ରିପିଷ୍ଟପ, ମନ୍ଦର, ଅବରୋହ, ଗୌଃ, ରମତି, ଫଲୋଦୟ, ଦେବଲୋକ, ସ୍ୱର୍ଲୋକ, ଊର୍ଦ୍ଧ୍ୱଲୋକ, ସ୍ୱଃ ଧାମ, ସୌରିକ, ଶାକ୍ରଭୁବନ, ଦିବାକ । (ନହିକ—ଦ୍ୱିପସାତ)

୧ । (ହିନ୍ଦୁ ମତ) ସୁରଲୋକ; ଦେବତାମାନଙ୍କର ଆବାସ (ଏ ଲୋକର ରାଜା ଇନ୍ଦ୍ର) 1. Heaven; the abode of the Gods of the Hindus. ୨ । (ପୁରାଣ) ସୂର୍ଯ୍ୟଲୋକ ଓ ଧ୍ରୁବଲୋକ ମଧ୍ୟସ୍ଥ ଲୋକ; ସ୍ୱର୍ଲୋକ; ମୃତ୍ୟୁ ପରେ ସୁକୃତକାରୀ ବ୍ୟକ୍ତିମାନେ ଯେଉଁ ଲୋକକୁ ବା ସ୍ଥାନକୁ ଯାଇ ସୁଖଭୋଗ କରନ୍ତି (ଯେଉଁଠାରେ ରୋଗ, ଶୋକ, କ୍ଷୁଧା, ପିପାସା, ଗ୍ଲାନି, ଜନ୍ମ, ଜରା ଓ ମୃତ୍ୟୁ ନାହିଁ)—2. The abode of the virtuous after death (according to the Purāṇas). ୩। (ସମସ୍ତ ଧର୍ମଶାସ୍ତ୍ର ମତରେ)—ଈଶ୍ୱରଙ୍କର ବାସସ୍ଥାନ; ବୈକୁଣ୍ଠ; ଯେଉଁଠାକୁ ପୁଣ୍ୟାତ୍ମାମାନେ ମୃତ୍ୟୁ ପରେ ଯାଇ ଚିରସୁଖ ଭୋଗ କରନ୍ତି—3. The paradise (according to the scriptures of all religions). [ଦ୍ର—ପୃଥିବୀର ପ୍ରାୟ ସମସ୍ତ ଧର୍ମଶାସ୍ତ୍ରରେ ଲିଖିତ ଅଛି ଯେ, ମନୁଷ୍ୟ ଇହସଂସାରରେ ଯେଉଁ ଭଲ ବା ମନ୍ଦ କାର୍ଯ୍ୟ କରେ ତାହାର ଫଳରେ ମୃତ୍ୟୁ ପରେ ଯଥାକ୍ରମେ ସ୍ୱର୍ଗ ଓ ନରକ ଭୋଗ କରେ । ଶାସ୍ତ୍ରକାରମାନେ କଳ୍ପନା ବଳରେ ସ୍ୱର୍ଗକୁ ସମସ୍ତ ସୁଖର ସ୍ଥାନ ଓ ନରକକୁ ସମସ୍ତ ଦୁଃଖର ଓ ଯନ୍ତ୍ରଣାର ସ୍ଥାନ ବୋଲି ବର୍ଣ୍ଣନା କରିଅଛନ୍ତି ।

ହିନ୍ଦୁ ପୁରାଣ ମତରେ ସ୍ୱର୍ଗ ଦେବତାମାନଙ୍କର ବାସସ୍ଥାନ । ଏଠାରେ ରୋଗ, ଶୋକ, କ୍ରୋଧ, କ୍ଷୁଧା, ପିପାସା, ଗ୍ଲାନି, ଜନ୍ମ, ଜରା, ମୃତ୍ୟୁ ଆଦି ନାହିଁ; ଏହା ସୂର୍ଯ୍ୟଲୋକର ଊର୍ଦ୍ଧ୍ୱରେ ଓ ଧ୍ରୁବଲୋକର ନିମ୍ନରେ ଅବସ୍ଥିତ, ଏଠାରେ ଦେବତାମାନେ ବାସ କରନ୍ତି ଓ ଦେବତାମାନଙ୍କର ରାଜା ଇନ୍ଦ୍ର ଏଠାରେ ରାଜତ୍ୱ କରନ୍ତି ।] ଦେ. ବି—୧ । ଆକାଶ—1. The heavens; the sky. [ଉ—ବଡ଼ଲୋକକୁ ଉତ୍ତର ନାହିଁ; କି ସ୍ୱର୍ଗକୁ ନିଶୁଣି ନାହିଁ—ଢଗ ।] ୨ । (ଲକ୍ଷଣାର୍ଥ)—ସର୍ବସୁଖମୟ ସ୍ଥାନ—2. (figurative) A place full of happiness or bliss.

ସ୍ୱର୍ଗକାମ—ସଂ. ବିଣ, ପୁଂ (ବହୁବ୍ରୀହି)—ସ୍ୱର୍ଗାଭିଲାଷୀ; ଯେଉଁ ବ୍ୟକ୍ତି ମୃତ୍ୟୁ ପରେ ସ୍ୱର୍ଗରେ ବାସ କରିବାକୁ କାମନା କରନ୍ତି—Desirous of attaining the heaven after death.
Swargakāma
(ସ୍ୱର୍ଗକାମା—ସ୍ତ୍ରୀ)

ସ୍ୱର୍ଗ କାମନା—ସଂ. ବି—ମୃତ୍ୟୁ ପରେ ସ୍ୱର୍ଗଲାଭ କରିବା ପାଇଁ ବାସନା—
Swarga kāmanā Desire of attaining the heaven after death.

ସ୍ୱର୍ଗକାମୀ—ସଂ. ବିଣ. ପୁଂ (ସ୍ୱର୍ଗକାମିନ୍ ଶବ୍ଦ; ସ୍ୱର୍ଗ+କାମ+ଇନ୍,
Swarga kāmī ୧ମା. ୧ବ)-ସ୍ୱର୍ଗକାମ (ଦେଖ)
(ସ୍ୱର୍ଗକାମିନୀ—ସ୍ତ୍ରୀ) Swarga kāma (See)

ସ୍ୱର୍ଗକୁ ଉଠା(ଠେ)ଇବା—ଦେ. କ୍ରି—(ଲକ୍ଷଣାର୍ଥ)—୧ । କୌଣସି
Swargaku uṭhā(the)ibā ବ୍ୟକ୍ତିକୁ ଅତ୍ୟନ୍ତ ପ୍ରଶଂସା ବା
[ସ୍ୱର୍ଗକୁ ଉଠା(ଟେ)ଇ ଦେ (ଦୋ)ବା—ଅନ୍ୟରୂପ] ଖାହାଦୁଷ କରିବା
স্বর্গেতোলা —1. (figurative) To adulate or glorify
स्वर्गचढ़ाना a person; to raise a person to the seventh heaven. ୨ । କୌଣସି ବ୍ୟକ୍ତିର ଉନ୍ନତି କରିବା—2. To improve a person; to lift a person high. ୩ । ମୋକ୍ଷ ଲାଭରେ ସହାୟ ହେବା —3. To help a person in gaining salvation or beatitude.

ସ୍ୱର୍ଗକୁ ଉଠିବା—ଦେ. କ୍ରି—୧। (ଲକ୍ଷଣାର୍ଥ)—ମନେ ମନେ ଖାହାଦୁର
Swargaku uṭhibā କରିବା; ନିଜକୁ ଭାଗ୍ୟବାନ୍ ବୋଲି ମନେ
স্বর্গেউঠা କରିବା—1. (Figurative) To think one's
स्वर्गचढ़ना self the happiest of beings. ୨ । ମୋକ୍ଷ ଲାଭ କରିବା—2. To attain salvation.

ସ୍ୱର୍ଗକୁ ନିଶୁଣି ନାହିଁ—ଦେ. ପ୍ରବଚନାଂଶ—ସ୍ୱର୍ଗକୁ ବା ଆକାଶକୁ ଉଠିବା
Swargaku nisuṇi nāhĩ ପାଇଁ ଶିଡ଼ି ନାହିଁ—There
স্বর্গে সিড়ি নাই is no ladder to go up to the
स्वर्गकी सिढ़ी नहीं heaven. [ଦ୍ର—ପୂର୍ଣ୍ଣ ପ୍ରବଚନ—ସ୍ୱର୍ଗକୁ ନିଶୁଣି ନାହିଁ; ନ, ବଡ଼ଲୋକଙ୍କୁ ଉତ୍ତର ନାହିଁ ।]

ସ୍ୱର୍ଗକୁ ଲଗି ବଢ଼ା(ଢେ)ଇବା—ଦେ. କ୍ରି.—(ଲକ୍ଷଣାର୍ଥ)—ଖଣ୍ଡିଏ
Swargaku lagi bardhā (rdhe) ibā ବାଉଁଶ ଦ୍ୱାରା
স্বর্গে লগি বাড়ান ଆକାଶକୁ ସ୍ପର୍ଶ କରି ପାରିବା ପରି ଦୁସ୍ସାମଯ୍ୟ ବା
स्वर्गमे सिढ़ी लगाना ଅସମ୍ଭବ କଥା କରିବା ପାଇଁ ସାହସ କରିବା —(Figurative) To dare an impossible thing (literally, to try to touch the sky with a pole or log).

ସ୍ୱର୍ଗ ଖଣ୍ଡ—ସଂ. ବି.—ପଦ୍ମପୁରାଣର ଖଣ୍ଡ ବା ବିଭାଗ ବିଶେଷର ନାମ—
Swarga khanda Name of one of the parts of the Padma purāṇa.

ସ୍ୱର୍ଗ ଗଙ୍ଗା—ସଂ. ବି.—ସ୍ୱର୍ଗଙ୍ଗା (ଦେଖ)—
Swarga gaṅgā Swargaṅgā (See).

ସ୍ୱର୍ଗ ଗଣିକା—ସଂ. ବି.—ସ୍ୱର୍ଗଣିକା (ଦେଖ)—Swargaṇikā
Swarga gaṇikā (See).

ସ୍ୱର୍ଗ ଗତ—ସଂ. ବିଣ. ପୁଂ—(୨ୟା ତତ୍)—ମୃତ—
Swarga gata Dead.
(ସ୍ୱର୍ଗଗତା—ସ୍ତ୍ରୀ)

ସ୍ୱର୍ଗଗତି(ଗମନ)—ସଂ. ବି—୧ । ସ୍ୱର୍ଗକୁ ଯିବା—1. Going to
Swarga gati (gamana) heaven. ୨ । ମୃତ୍ୟୁ—2. Death.

ସ୍ୱର୍ଗଗାମୀ—ସଂ. ବିଣ. ପୁଂ (ସ୍ୱର୍ଗଗାମିନ ଶବ୍ଦ, ସ୍ୱର୍ଗ+ଗମ ଧାତୁ
Swargagāmī +କର୍ତ୍ତୃ. ଇନ୍, ୧ମା, ୧ବ)—
(ସ୍ୱର୍ଗଗାମିନୀ—ସ୍ତ୍ରୀ) ୧ । ମୃତ—1. Dead.
୨ । ଯେଉଁ ପୁଣ୍ୟକର୍ମୀ ବ୍ୟକ୍ତି ମୃତ୍ୟୁ ପରେ ସ୍ୱର୍ଗଲାଭ କରନ୍ତି
2. (a person) Attaining heaven after death by virtue of one's meritorious acts in this life.

ସ୍ୱର୍ଗଗିରି—ସଂ. ବି (୬ଷ୍ଠୀ ତତ୍)—ସୁମେରୁ (ଦେଖ)—
Swarga giri Sumeru (See)

ସ୍ୱର୍ଗଙ୍ଗା—ସଂ. ବି (୬ଷ୍ଠୀ ତତ୍ ବା ମ, ପ ଲୋ; ସ୍ୱଃ=ସ୍ୱର୍ଗରେ ବହୁଥିବା
Swargaṅgā ଗଙ୍ଗା)—୧ । ହିନ୍ଦୁ ପୁରାଣ ବର୍ଣ୍ଣିତ ଦେବଲୋକରେ ବହୁଥିବା ଗଙ୍ଗା ନଦୀ; ମନ୍ଦାକିନୀ—
1. The Ganges said to flow in heaven (according to the Purāṇas).
୨। ଆକାଶରେ ପଡ଼ିଥିବା ଅସଂଖ୍ୟ ନକ୍ଷତ୍ର ଗଠିତ ଶ୍ୱେତ ପଥ
2. The milky way; the galaxy.

ସ୍ୱର୍ଗଜିତ୍—ସଂ. ବିଣ. ପୁଂ ଓ ସ୍ତ୍ରୀ (ସ୍ୱର୍ଗ+ଜି ଧାତୁ=ଜୟ କରିବା+
Swargajit କର୍ତ୍ତୃ. କ୍ୱିପ୍)—ଯେ ସ୍ୱର୍ଗକୁ ବା ଦେବତାମାନଙ୍କୁ ନିଜର ବାହୁବଳରେ ବା ଧର୍ମବଳରେ ଜୟ କରନ୍ତି—
Winning the heaven by one's prowess or piety.

ସ୍ୱର୍ଗଣିକା—ସଂ. ବି (୬ଷ୍ଠୀ ତତ୍)—ସ୍ୱର୍ବେଶ୍ୟା; ଅପ୍ସରାମାନେ—
Swargaṇikā The nymphs or dancing girls of heaven. [ଦ୍ର—ଏମାନେ ଚିର ଯୁବତୀ ଓ ଦେବଭୋଗ୍ୟା । ଏମାନେ ଇନ୍ଦ୍ରଙ୍କ ସଭାରେ ନୃତ୍ୟଗୀତାଦି କରନ୍ତି ।]

ସ୍ୱର୍ଗତ—ସଂ. ବିଣ.ପୁଂ (୨ୟା ତତ୍, ସ୍ୱଃ=ସ୍ୱର୍ଗକୁ ଗତ)—ପରଲୋକଗତ;
Swargata ମୃତ—Dead.
(ସ୍ୱର୍ଗତା—ସ୍ତ୍ରୀ) (ସ୍ୱର୍ଗତି—ବି)

ସ୍ୱର୍ଗ ତରଙ୍ଗିଣୀ—ସଂ. ବି. (୬ଷ୍ଠୀ ତତ୍)—ସ୍ୱର୍ଗଙ୍ଗା (ଦେଖ)
Swarga taraṅgiṇī Swargaṅgā (See)

ସ୍ୱର୍ଗ ତରୁ—ସଂ. ବି (ମ, ପ. ଲୋ; ସ୍ୱର୍ଗରେ ଜାତ ତରୁ)—୧ । ସ୍ୱର୍ଗରେ
Swarga taru ଜାତ ତରୁ—1. The trees said to grow in the heaven. ୨ । କଳ୍ପତରୁ—2. A mythological tree in the heaven said to grant every one his wishes. ୩ । (ସ୍ୱର୍ଗର) ପାରିଜାତ ବୃକ୍ଷ—3. A flowering tree of the heaven said to produce the 'Pārijāta flower.

ସ୍ୱର୍ଗତି—ସଂ. ବି—ସ୍ୱର୍ଗ ଗତି (ଦେଖ)
Swargati Swarga gati (See)

ସ୍ୱର୍ଗ ଦୁଆର—ଦେ. ବି (ସଂ. ସ୍ୱର୍ଗଦ୍ୱାର)—ସ୍ୱର୍ଗଦ୍ୱାର ( ଦେଖ )
Swarga duāra Swarga dwāra ( See )
স্বর্গ দুয়ার स्वर्गद्वार

ସ୍ୱର୍ଗ ଦ୍ୱାର—ସଂ. ବି (୬ଷ୍ଠୀ ତତ୍)—୧ । ( ପୁରାଣୋକ୍ତ ) ସ୍ୱର୍ଗକୁ ଯିବାର
Swarga dwāra କବାଟ; ସ୍ୱର୍ଗ ପ୍ରବେଶର ପଥ—1. The gate of heaven. ଦେ. ବି. ୧ । (ନାମ) ପୁରୀର ସମୁଦ୍ରକୂଳସ୍ଥ ତୀର୍ଥ ବିଶେଷ—1. Name of a holy place on the sea beach on the Puri Town. [ଉ—'ଜୟ ଜଗନ୍ନାଥ' ବୋଲି ସ୍ୱର୍ଗଦ୍ୱାରେ ଯାତ୍ରୀଏ କରନ୍ତି ଗୋଳ । ରାଧାନାଥ. ପାର୍ବତୀ । ] [ଦ୍ର—ଏଠାରେ ଶବଦାହ ହୁଏ ।] ୨ । ଅଯୋଧ୍ୟାରେ ସରଯୂ ନଦୀର ଗୋଟିଏ ସ୍ନାନ ଘାଟର ନାମ—2. Name of a bathing ghat on the river 'Saraju in Ajodhyā'.

ସ୍ୱର୍ଗଦ—ସଂ. ବିଣ. ପୁଂ (ସ୍ୱର୍ଗ+ଦା ଧାତୁ+କର୍ତ୍ତୃ. ଅ)—ଯେ, ବା ଯାହା
Swargada ସ୍ୱର୍ଗଲାଭ କରାଏ—Causing one to attain heaven.
(ସ୍ୱର୍ଗଦା, ସ୍ୱର୍ଗଦାତ୍ରୀ, ସ୍ୱର୍ଗଦାୟିକା—ସ୍ତ୍ରୀ)
(ସ୍ୱର୍ଗଦାତା, ସ୍ୱର୍ଗ ଦାୟକ—ଅନ୍ୟରୂପ)

ସ୍ୱର୍ଗ ଧାମ—ସଂ ବି—( ରୂପକ; ସ୍ୱର୍ଗ+ଧାମନ୍ )—୧ । (ମୃତ୍ୟୁପରେ)
Swarga dhāma ସ୍ୱର୍ଗରୂପ ବାସସ୍ଥାନ—1. Heaven, which becomes the abiding place of the pious after death. ୨ । ସ୍ୱର୍ଗଲୋକ—2. The heaven.

ସ୍ୱର୍ଗ ଧେନୁ—ସଂ. ବି.—( ୬ଷ୍ଠୀ ତତ୍ )—( ପୁରାଣ ) କାମଧେନୁ—
Swarga dhenu A divine cow said to give whatever is desired and to give as much milk as required.

ସ୍ୱର୍ଗ ନଦୀ—ସଂ. ବି.—(୬ଷ୍ଠୀ ତତ୍)—ସ୍ୱର୍ଗଙ୍ଗା ( ଦେଖ )—Swar-
Swarga nadi gangā (See).

ସ୍ୱର୍ଗ ପତି—ସଂ. ବି.—( ୬ଷ୍ଠୀ ତତ୍ ) (ପୁରାଣ)—ଦେବରାଜ; ଇନ୍ଦ୍ର—
Swarga pati A name of Indra, the king of the Gods.

ସ୍ୱର୍ଗ ପୁର(ୀ)—ସଂ. ବି.—(ପୁରାଣ) ଇନ୍ଦ୍ରଙ୍କ ରାଜଧାନୀ; ଅମରାବତୀ—
Swarga pura (ri) The capital where Indra is said to hold his court in heaven.

ସ୍ୱର୍ଗ ପୁଷ୍ପ—ସଂ. ବି.—(୬ଷ୍ଠୀ ତତ୍)—୧ । ସ୍ୱର୍ଗସ୍ଥ ପୁଷ୍ପବୃକ୍ଷର (ଯଥା
Swarga pushpa ପାରିଜାତର) ଫୁଲ—1. The flower of heavenly trees. ୨ । ଲବଙ୍ଗ ( ଦ୍ର. ଶ )—2. Clove.

ସ୍ୱର୍ଗ ପ୍ରାପ୍ତି—ସଂ. ବି—ସ୍ୱର୍ଗଲାଭ (ଦେଖ)—
Swarga prāpti Swarga lābha (See).

ସ୍ୱର୍ଗ ବଧୂ—ସଂ. ବି—(ପୁରାଣ) ସୁରାଙ୍ଗନା; ଅପ୍ସରା—The heavenly
Swarga badhū nymphs.

ସ୍ୱର୍ଗ ବାଣୀ—ସଂ. ବି—(ମ. ପ. ଲୋ; ସ୍ୱର୍ଗରୁ ଆଗତ ବାଣୀ)—ଆକାଶ-
Swarga bāṇī ବାଣୀ; ଶୂନ୍ୟବାଣୀ—Word heard from nowhere or from the void.

ସ୍ୱର୍ଗ ବାସ—ସଂ. ବି—( ୭ମୀ ତତ୍ )—୧ । ସ୍ୱର୍ଗରେ ରହିବା—1.
Swarga bāsa Abode in the heaven. ୨ । ମୃତ୍ୟୁ—
(ସ୍ୱର୍ଗବାସୀ—ବିଣ. ପୁଂ) 2. Death.

ସ୍ୱର୍ଗବାସୀ—ସଂ. ବିଣ. ପୁଂ—(ସ୍ୱର୍ଗବାସିନ୍ ଶବ୍ଦ)—୧ । ଯେ ସ୍ୱର୍ଗରେ
Swargabāsī ବାସ କରେ—1. Living in heaven.
(ସ୍ୱର୍ଗବାସିନୀ—ସ୍ତ୍ରୀ) ୨ । ମୃତ; ସ୍ୱର୍ଗତ—2. Dead; deceased. ବି—ଦେବତା—Deity.

ସ୍ୱର୍ଗ ବେଶ୍ୟା—ସଂ. ବି—( ୬ଷ୍ଠୀ ତତ୍ )—ସ୍ୱର୍ଗବଧୂ ( ଦେଖ )—
Swarga besyā Swarga badhū (See).

ସ୍ୱର୍ଗ ଭୂତି—ସଂ. ବି—ସ୍ୱର୍ଗ ସମ୍ପତ୍ତି (ଦେଖ)—Swarga sampatti
Swarga bhūti (See).

ସ୍ୱର୍ଗ ଭୂମି—ସଂ. ବି—(ନାମ) ବାରାଣସୀର ପଶ୍ଚିମସ୍ଥ ପ୍ରାଚୀନ ଜନପଦବିଶେଷ
Swarga bhūmi ( ଦ୍ର. ଶ )—Name of an ancient village to the west of Benares. [ଦ୍ର—କଥିତ ଅଛି ଯେ, ଏହିଠାରେ ଭଗବତୀ ଦୁର୍ଗ ନାମକ ରାକ୍ଷସକୁ ବଧ କରି ନିଜେ 'ଦୁର୍ଗା' ନାମରେ ଅଭିହିତା ହେଲେ (ଦ୍ର. ଶ)—କିନ୍ତୁ ଦେବୀମାହାତ୍ମ୍ୟ ବା ଚଣ୍ଡୀ ପୁରାଣର ୧୧ଶ ଅଧ୍ୟାୟରେ ଦେବୀଙ୍କ ବାକ୍ୟ ନିମ୍ନଲିଖିତ ମତେ ଉଦ୍ଧୃତ ହୋଇଅଛି—"ଶତବାର୍ଷିକ ଅନାବୃଷ୍ଟି ହେଲେ ଜଳଶୂନ୍ୟ ଭୂମିରେ ମୁଁ ଅଯୋନିଜାରୂପେ ଉତ୍ପନ୍ନ ହେବି (୪୬ ଶ୍ଳୋକ); ସେତେବେଳେ ମୁଁ ଶତନେତ୍ର ଦ୍ୱାରା ମୁନିମାନଙ୍କୁ ନିରୀକ୍ଷଣ କରିବି ଓ ସେହି ହେତୁରୁ ମୋ ନାମ ଶତାକ୍ଷୀ ହେବ (୪୭ ଶ୍ଳୋକ ); ସେ ସମୟରେ ବୃଷ୍ଟି ହେବା ପର୍ଯ୍ୟନ୍ତ ମୁଁ ନିଜ-ଦେହ ସମ୍ଭୂତ ପ୍ରାଣଧାରକ ଶାକ ଦ୍ୱାରା ସମୁଦାୟ ଲୋକଙ୍କୁ ଭରଣ କରିବି (୪୮ ଶ୍ଳୋକ); ଓ ସେହି ହେତୁରୁ ମୋ ନାମ ଶାକମ୍ଭରୀ ହେବ (୪୯ ଶ୍ଳୋକ); ସେହି ଅନାବୃଷ୍ଟି ସମୟରେ ମୁଁ ଦୁର୍ଗ (ଦୁର୍ଗମ) ନାମକ ମହାସୁରକୁ ବଧ କରିବି ଓ ସେହି ହେତୁରୁ ମୋ ନାମ ଦୁର୍ଗା ହେବ (୫୦ ଶ୍ଳୋକ) ]

ସ୍ୱର୍ଗ ଭୋଗ—ସଂ. ବି—(୬ଷ୍ଠୀ ତତ୍ )—୧ । ସ୍ୱର୍ଗରେ ସୁଖ ଉପଭୋଗ—
Swarga bhoga 1. Enjoyment of bliss or beatitude in heaven. ୨ । ଦିବ୍ୟ ସୁଖ ଭୋଗ—2. Enjoyment of heavenly bliss.

ସ୍ୱର୍ଗମନ—ସଂ. ବି.—ସ୍ୱର୍ଗତି (ଦେଖ)—
Swargamana Swargati (See).

ସ୍ୱର୍ଗ ରାଜ୍ୟ—ସଂ. ବି.—୧। ସ୍ୱର୍ଗ ଲୋକ – 1. The kingdom of
Swarga rājya heaven. ୨ । ପୁଣ୍ୟାତ୍ମା ବ୍ୟକ୍ତିମାନଙ୍କ ପରଲୋକ—2. The place where the pious go after death.

ସ୍ୱର୍ଗ ଲଭ—ସଂ. ବ ( ୬ଷ୍ଠୀ ତତ୍ )—୧ । ପୁଣ୍ୟବଳରେ ସ୍ୱର୍ଗବାସ—
Swarga lābha 1. Attainment of heaven after death, as the result of one's pious acts. ୨ । ମୃତ୍ୟୁ—2. Death.

ସ୍ୱର୍ଗ ଲୋକ—ସଂ. ହ୍ଲୀ—୧ । ( ପୁରାଣ ) ଦେବଲୋକ—
Swarga loka 1. The abode of the Gods. ୨ । ସ୍ୱର୍ଗ—2. Swarga (See).

ସ୍ୱର୍ଗ ଲୋକେଶ—ସଂ. ବ (୬ଷ୍ଠୀ ତତ୍)—୧ । ଇନ୍ଦ୍ର—1. Indra.
Swarga lokesa ୨ । ଶରୀର; ତନୁ (ହ୍ବ. ଶ)—2. The body.

ସ୍ୱର୍ଗ ଶିରି—ଦେ. ବ (ସ. ସ୍ୱର୍ଗ ଶ୍ରୀ)—ସ୍ୱର୍ଗ ସମ୍ପତ୍ତି ( ଦେଖ )
Swarga siri Swarga sampatti (See)
ସ୍ୱର୍ଗେର ଶ୍ରୀ [ଦ୍ର—ଭୂମ୍ୟ ଉପକ୍ରମରେ ଅସୁରଙ୍କୁ ମାର, ଦେବେ
स्वर्ग संपद ଭୁଞ୍ଜୁ ଅଛନ୍ତି ସୁଖେ ସ୍ୱର୍ଗ ଶିରି । କୃଷ୍ଣସିଂହ. ମହାଭାରତ. ବନ ।]

ସ୍ୱର୍ଗ ସମ୍ପତ୍ତି—ସ. ବ—୧ । ସ୍ୱର୍ଗଲାଭ କରିବା ଲୁପ ଐଶ୍ୱର୍ଯ୍ୟ ବା ସୁଖ—
Swarga sampatti 1. The supreme happiness of a person attaining heaven. ୨ । ପରମ ସରକାଷ୍ଠା—2. Utmost happiness. ୩ । ସ୍ୱର୍ଗସୁଖ (ଦେଖ)—3. Swarga sukha (See)

ସ୍ୱର୍ଗ ସରିଦ୍ବରା—ସ. ବ (୬ଷ୍ଠୀ ତତ୍)—ଗଙ୍ଗା (ଶବ୍ଦକଳ୍ପଦ୍ରୁମ)—
Swarga saridbarā The Ganges.

ସ୍ୱର୍ଗ ସୁଖ—ସ. ବ—୧ । ସ୍ୱର୍ଗରେ ଅନୁଭୂତ ସୁଖ—1. Happiness
Swarga sukha enjoyed in heaven. ୨ । ଦୁଃଖ-ଲେଶଶୂନ୍ୟ ଆନନ୍ଦ—2. Unmixed or unalloyed bliss. ୩ । ସ୍ୱର୍ଗସୁଖ ପରି ଅପାର ଆନନ୍ଦ—3. Excessive or incomparable heavenly bliss.

ସ୍ୱର୍ଗ ସ୍ତ୍ରୀ—ସ. ବ (୬ଷ୍ଠୀ ତତ୍)—ଅପ୍ସରାଗଣ (ହ୍ବ. ଶ)—
Swarga strī The heavenly nymphs.

ସ୍ୱର୍ଗସ୍ଥ—ସ. ବଣ. ପୁଂ ( ୭ମୀ ତତ୍ )—୧ । ସ୍ୱର୍ଗରେ ଅବସ୍ଥିତ—
Swargastha 1. Placed or situated in heaven.
(ସ୍ୱର୍ଗସ୍ଥା—ସ୍ତ୍ରୀ) ୨ । ସ୍ୱର୍ଗତ; ମୃତ—2. Dead.

ସ୍ୱର୍ଗାଚଳ—ସ. ବ (୬ଷ୍ଠୀ ତତ୍)—ସୁମେରୁ ( ଦେଖ )
Swargāchala Sumeru ( See )

ସ୍ୱର୍ଗାପଗା—ସ. ବ ( ୬ଷ୍ଠୀ ତତ୍ )—୧ । ଗଙ୍ଗା ( ହେମଚନ୍ଦ୍ର )—
Swargāpagā 1. The Ganges. ୨ । ମନ୍ଦାକିନୀ—2. The Ganges said to flow in heaven.

ସ୍ୱର୍ଗାମୀ—ସ. ବଣ. ପୁଂ—ସ୍ୱର୍ଗତ ( ଦେଖ )
Swargāmi (ସ୍ୱର୍ଗାମିନୀ—ସ୍ତ୍ରୀ) Swargata ( See )

ସ୍ୱର୍ଗାରୂଢ଼—ସ. ବଣ—୧ । ଯେ ସ୍ୱର୍ଗକୁ ଆରୋହଣ କରି ଅଛନ୍ତି—
Swargārurdha 1. Having ascended the
(ସ୍ୱର୍ଗାରୂଢା—ସ୍ତ୍ରୀ) heaven. ୨ । ସ୍ୱର୍ଗତ; ମୃତ—2. Dead.

ସ୍ୱର୍ଗାରୋହଣ—ସ. ବ—୧ । ସ୍ୱର୍ଗପ୍ରାପ୍ତି; ସ୍ୱର୍ଗକୁ ଉଠିବା; ସ୍ୱର୍ଗକୁ
Swargārohaṇa ଯିବା—1. Ascension to heaven; (ସ୍ୱର୍ଗାରୂଢ଼—ବଣ) ascending to heaven. ୨ । ମୃତ୍ୟୁ—2. Death. ୩ । ମହାଭାରତର ପର୍ବ ବିଶେଷ; ମହାଭାରତର ୧୮ ପର୍ବ ମଧ୍ୟରୁ ଶେଷ ପର୍ବ, ଯେଉଁ ପର୍ବରେ ପାଣ୍ଡବମାନଙ୍କର ସ୍ୱର୍ଗାରୋହଣ ବିବରଣ ବର୍ଣ୍ଣିତ ହୋଇଅଛି—3. The last chapter or volume of the Mahābhārata.

ସ୍ୱର୍ଗିରି—ସ. ବ (୬ଷ୍ଠୀ ତତ୍)—(ପୁରାଣ) ସ୍ୱର୍ଗଗିରି; ସୁମେରୁ ପର୍ବତ—
Swargiri The Sumeru mountain.

ସ୍ୱର୍ଗୀ—ସ. ବ. ପୁଂ (ସ୍ୱର୍ଗ+ଅସ୍ତ୍ୟର୍ଥେ ଇନ୍; ୧ମା. ୧ବ)—ଦେବତା—
Swargi Deity. ସ. ବଣ. ପୁଂ—୧ । ସ୍ୱର୍ଗତ ( ଦେଖ )
(ସ୍ୱର୍ଗିଣୀ—ସ୍ତ୍ରୀ) 1. Swargata (See) ୨ । ମୃତ—2. Dead 'the late' (so and so). ୩ । ସ୍ୱର୍ଗବାସୀ—3. Living in heaven. ୪ । ଦୟାଶୀଳ, ସତ୍ୟବାନ୍, ଗୁରୁଦେବପୂଜକ ଓ ସାଧୁ ସଙ୍ଗମକାରୀ (ବ୍ୟକ୍ତି) (ଗରୁଡ଼ ପୁରାଣ)—4. Kind, truthful, god-fearing and devoted (person).

ସ୍ୱର୍ଗୀୟ—ସ. ବଣ. ପୁଂ ( ସ୍ୱର୍ଗ+ଈୟ )—୧ । ସ୍ୱର୍ଗ ସମ୍ବନ୍ଧୀୟ—
Swargiya 1. Relating to heaven; divine.
(ସ୍ୱର୍ଗୀୟା—ସ୍ତ୍ରୀ) ୨ । ସ୍ୱର୍ଗ ସମ୍ବନ୍ଧୀୟ ଗୁଣ ପୂର୍ଣ୍ଣ—2. Heavenly. ୩ । ଯାହା ସ୍ୱର୍ଗସୁଖ ଦିଏ—3. Giving heavenly bliss. ୪। ସ୍ୱର୍ଗସ୍ଥ—4. Situated in heaven. ୫ । ସ୍ୱର୍ଗତ; ମୃତ—5. Dead. [ଦ୍ର—"ମୃତ" ଅର୍ଥରେ ଏହି ଶବ୍ଦ ବ୍ୟବହୃତ ହେବା ସ୍ଥଳରେ "ସ୍ୱର୍ଗୀୟ ଅମୁକ" ଏହା ନ ଲେଖି "୬ ଅମୁକ" ବଙ୍ଗଳାରେ ଲେଖାଯାଏ ଏବଂ ଏଥିର ଅନୁକରଣରେ ଓଡ଼ିଆର ଅଧୁନିକ କେତେକ ଲେଖକ ମଧ୍ୟ ଏହି "୬" ଚିହ୍ନ ବ୍ୟବହାର କରୁଥିବା ଦେଖାଯାଏ । କେହି କେହି "ସ୍ୱର୍ଗୀୟ" ଶବ୍ଦ ପରବର୍ତ୍ତୀରେ "ଈଶ୍ୱର" ଅମୁକ ବୋଲି ଉଚ୍ଚାରଣ କରନ୍ତି ।]

ସ୍ୱର୍ଗୌକାଃ—ସଂ. ବ ( ବହୁବ୍ରୀହି; ସ୍ୱର୍ଗ ଅଟେ ଓକସ୍=ବାସସ୍ଥାନ
Swargaukāh ଯାହାଙ୍କର; ୧ମା. ୧ବ)—ଦେବତା—Deity.

ସ୍ୱର୍ଗ୍ୟ—ସଂ. ବଣ ( ସ୍ୱର୍ଗ+ସମ୍ବନ୍ଧାର୍ଥେ ଯ )—୧ । ସ୍ୱର୍ଗୀୟ—
Swargya 1. Heavenly. ୨ । ଯେଉଁ କାର୍ଯ୍ୟ ଦ୍ୱାରା ଲୋକ ସ୍ୱର୍ଗ ଭୋଗ କରେ—2. (any act) By which a person attains heaven.

ସ୍ୱର୍ଚ(ର୍ଚ୍ଚ)ନ—ସଂ. ବ—ଯେଉଁ ଅଗ୍ନିରୁ ସୁନ୍ଦର ଜ୍ୱାଳା ବହର୍ଗତ
Swaroha(rchcha)na ହେଉଥାଏ ( ହ୍ବ. ଶ )—Fire emitting a good blaze or flame.

ସ୍ୱର୍ଜକ୍ଷାର—ସଂ. ବ—ସର୍ଜିକ୍ଷାର; ସାଜିମାଟି (ହ୍ବ. ଶ)—
Swarja kshāra Fuller's earth; natron.

ସ୍ୱର୍ଜି(ର୍ଜ୍ଜି)କ—ସଂ. ବ (ସୁ+ଅର୍ଜ୍ ଧାତୁ+ଇକ)—୧ । ସର୍ଜିକାକ୍ଷାର;
Swarji(rjji)ka ସାଜିମାଟି—Natron; fuller's

ସ୍ୱର୍ଜି(ର୍ଜ୍ଜି)କାକ୍ଷାର
ସ୍ୱର୍ଜି(ର୍ଜ୍ଜି)କ୍ଷାର
ସ୍ୱର୍ଜି(ର୍ଜ୍ଜି)
ସ୍ୱର୍ଜ୍ଜା(ର୍ଜୀ)କା — earth. ୨ । ଯବକ୍ଷାର (ରାଜନିର୍ଘଣ୍ଟ)—2. Saltpetre; nitre. [ଦ୍ର—ଏହା ଉଷ୍ଣ, ତୀକ୍ଷ୍ଣ, ବାତକଫନାଶକ, ସ୍ନିଗ୍ଧ, ଲଘୁ, ବହ୍ନିଦୀପକ ଓ ଗୁଲ୍ମ, ଶୂଳ, ଆଧ୍ମାନ, କୃମି, ବ୍ରଣ,ଜଠରଦୋଷ ନାଶକ । ]

ସଂ. ପର୍ଯ୍ୟାୟ—ସାର, ସୁଗନ୍ଧିକ; ସୁବର୍ଚ୍ଚକ, ସୁବର୍ଚ୍ଚି, ସ୍ୱର୍ଚ୍ଚିଃ, ସ୍ୱର୍ଣ୍ଣବର୍ଚ୍ଚିଃ, ଯାବଶୂକ, ଯବାଗ୍ରଜ, କପୋତ, ସ୍ୱର୍ଚ୍ଚିକା ।

ସ୍ୱର୍ଣ୍ଣ—ସଂ. ବି (ସୁ=ସୌନ୍ଦର୍ଯ୍ୟ+ଋଣ୍ ଧାତୁ=ପାଇବା+କର୍ତ୍ତୃ. ଅ; କିଂବା ସୁ=ସୁନ୍ଦର ଅଟେ ଅର୍ଣ୍ଣ=ବର୍ଣ୍ଣ ଯାହାର)—
Swarṇṇa — ୧ । ଧାତୁ ; ସୁନା; ଧାତୁବିଶେଷ—1. Gold (metal). [ —ଏହା ଖଣିରୁ ବାହାରେ । ଦକ୍ଷିଣ ଭାରତ, ଅଷ୍ଟ୍ରେଲିଆ ଓ ଆଫ୍ରିକାରେ ସ୍ୱର୍ଣ୍ଣଖଣି ଅଛି,

ସଂ. ପର୍ଯ୍ୟାୟ—ସୁବର୍ଣ୍ଣ, କାଞ୍ଚନ, ହେମ, ହାଟକ, କଳଧୌତ, ଗାଙ୍ଗେୟ, ତପନୀୟ, କଳଧୌତ, ଶାତକୁମ୍ଭ, ଗାର୍ମୁତ, ଜାମ୍ବୁନଦ, ଜାତରୂପ, କାର୍ତ୍ତସ୍ୱର, ମହାରଜତ, ଅଷ୍ଟାପଦ ।

ଏହା ଦୁଷ୍ପ୍ରାପ୍ୟ ଥିବାରୁ ମୂଲ୍ୟବାନ୍; ଏଥିରେ ଅଳଙ୍କାର, ମୁଦ୍ରା ଓ ବାସନ ଆଦି ପ୍ରସ୍ତୁତ ହୁଏ ।

ବ୍ରହ୍ମବୈବର୍ତ୍ତ ପୁରାଣ କୃଷ୍ଣଜନ୍ମ ଖଣ୍ଡ ୧୩୦ଶ ଅଧ୍ୟାୟରେ ଲେଖା ଅଛି ଯେ ଏକଦା ଦେବତାମାନେ ସ୍ୱର୍ଗର ସଭାରେ ଏକତ୍ର ଅବସ୍ଥାନ କରୁଥିଲେ; ସେହି ସମୟରେ ସେଠାରେ ଅପ୍ସରାମାନେ ନୃତ୍ୟ ଗୀତ କରୁଥିଲେ । ଏହି ସମୟରେ 'ବହ୍ନି' ଦେବ ସୁନ୍ଦରୀ ରମ୍ଭାଙ୍କୁ ଦେଖି ମୁଗ୍ଧ ହେଲେ ଏବଂ ବହ୍ନିଙ୍କ ଶରୀରରୁ ବୀର୍ଯ୍ୟ ରେତଃ ସ୍ଖଳନ ହେଲା । ସେହି ରେତଃ ସ୍ୱର୍ଣ୍ଣ ରୂପରେ ପରିଣତ ହୋଇ ବୃଦ୍ଧି ପାଇ 'ସୁମେରୁ' ପର୍ବତ ହେଲା । ଏଥିପାଇଁ ଅଗ୍ନିଙ୍କୁ 'ହିରଣ୍ୟରେତାଃ' ବୋଲାଯାଏ ।

ଉତ୍ତମ ସୁବର୍ଣ୍ଣର ଲକ୍ଷଣ—ଏହା ପୋଡ଼ିଲେ ରକ୍ତବର୍ଣ୍ଣ, କାଟିଲେ ଶୁକ୍ଳାଭ, କଷଟି ପଥରରେ କଷିଲେ କୁଙ୍କୁମାଭ ଓ କୋମଳ ଦେଖାଯାଏ ।

ଏଥିର ଗୁଣ—ଏହା ତିକ୍ତ, ମଧୁର, କଷାୟ, ଗୁରୁ, ହୃଦ୍ୟ, ରସାୟନ, ବଲ୍ୟ, ଚକ୍ଷୁଷ୍ୟ, କାନ୍ତିଦ ଓ ଶୁଚି । ଏହା ଆୟୁଃ, ମେଧା, ବାକ୍ୟଶୁଦ୍ଧି ଓ ଦ୍ୟୁତି-ପ୍ରଦାୟକ ଏବଂ କ୍ଷୟ ଓ ଉନ୍ମାଦ ନାଶକ ।

ଏହାକୁ ଖୁବ୍ ପତଳା ପାତିଆ କରି ନିଆଁରେ ପୋଡ଼ି ତେଲ, ଦହି, କାଞ୍ଜି, ଗୋମୂତ୍ର ଓ କୋଳଥ ପାଣିରେ ତିନିଥର ଲେଖାଏ ବୁଡ଼ାଇଲେ ଏହା ଶୋଧିତ ହୁଏ । ଏହି ଶୋଧିତ ସ୍ୱର୍ଣ୍ଣକୁ ଦୁଇଗୁଣ ପାରଦ ଓ ଅମ୍ଳ ସଙ୍ଗେ ମର୍ଦ୍ଦନ କରି ଏଥିରେ ସ୍ୱର୍ଣ୍ଣର ତିନି ଗୁଣ ଗନ୍ଧକଚୂର୍ଣ୍ଣ ମିଶାଇ ଗୁଳା ତିଆରି କରି ୧୪ ଥର ପୁଟପାକ କଲେ ଏହା ଭସ୍ମ ହୁଏ ।

ସ୍ୱର୍ଣ୍ଣ ସାହାଯ୍ୟରେ ଆୟୁର୍ବେଦୋକ୍ତ ମକରଧ୍ୱଜ, ରସସିନ୍ଦୂର ନାନା ରସାୟନ ଓ ବାଜୀକରଣ ଔଷଧ ପ୍ରସ୍ତୁତ ହୁଏ । ] ୨ । ଧସ୍ତୁର ( ଅମର )—
2. The Datura plant. ୩ । ଗୌର ସୁବର୍ଣ୍ଣ ଶାକ ( ରାଜନିର୍ଘଣ୍ଟ )—3. A pot herb. ୪ । ନାଗକେଶର ( ରାଜନିର୍ଘଣ୍ଟ )—4. A flowering tree, Mesua Ferra. ୫। ପୌରାଣିକ ନଦୀବିଶେଷ ( ହ. ଶ )—Name of mythological river.

ସ୍ୱର୍ଣ୍ଣ କଣ—ସଂ. ବି —୧ । (୬ଷ୍ଠୀ ତତ୍) ସୁବର୍ଣ୍ଣର ରେଣୁ—1. Gold
Swarṇṇa kaṇa — dust; small particles of gold. ୨ । (ବହୁବ୍ରୀହି) କଣଗୁଗ୍ଗୁଳୁ (ରାଜନିର୍ଘଣ୍ଟ)—2. A species of Bdellium.

ସ୍ୱର୍ଣ୍ଣ କଣା (କଣିକା)—ସଂ. ବି (୬ଷ୍ଠୀ ତତ୍)—ସୁବର୍ଣ୍ଣର ରେଣୁ—
Swarṇṇa kaṇā (kaṇikā) — Gold dust.

ସ୍ୱର୍ଣ୍ଣକଣ୍ଡୁ—ସଂ. ବି—ଧୂନା (ହ. ଶ)—
Swarṇṇa kaṇḍu — Resin.

ସ୍ୱର୍ଣ୍ଣ କଦଳୀ—ସଂ. ବି—ସ୍ୱର୍ଣ୍ଣଫଳା; ଚମ୍ପା କଦଳୀ—
Swarṇṇa kadalī — A kind of banana.
[ଦ୍ର—ସ୍ୱର୍ଣ୍ଣ କଦଳୀ ଦଳ ଉଜ୍ଜ୍ୱଳଗରେ, ଶୋଭେ ବହୁଳ ଯେସନେ ତୋ କଳେବରେ—ରାଧାନାଥ ମେଘଦୂତ । ]

ସ୍ୱର୍ଣ୍ଣ କମଳ—ସଂ. ବି—ରକ୍ତ ପଦ୍ମ (ହ. ଶ)...
Swarṇṇa kamala — The red variety of lotus.

ସ୍ୱର୍ଣ୍ଣ କାୟ—ସଂ. ବି—୧ । ସ୍ୱର୍ଣ୍ଣମୟ ଶରୀର—1. Golden body.
Swarṇṇa kāya — ୨ । ଗରୁଡ଼ (ହେମଚନ୍ଦ୍ର)—2. The mythological king of birds.
(ସ୍ୱର୍ଣ୍ଣକାୟା—ସ୍ତ୍ରୀ ବିଣ) ସଂ. ବିଣ ପୁଂ—ସ୍ୱର୍ଣ୍ଣବର୍ଣ୍ଣଯୁକ୍ତ ଦେହବିଶିଷ୍ଟ—Having the body of golden colour.

ସ୍ୱର୍ଣ୍ଣକାର—ସଂ ବି (ସ୍ୱର୍ଣ୍ଣ+କୃ ଧାତୁ+କର୍ତ୍ତୃ ଅ)-୧ । ସୁନାରି ବଣିଆ—
Swarṇṇa kāra — 1. Goldsmith.
( ସ୍ୱର୍ଣ୍ଣକୃତ—ଅନ୍ୟରୂପ ) — ୨ । ଜାତିବିଶେଷ—2. Name of a Hindu caste. [ଦ୍ର—ବିଶ୍ୱକର୍ମାଙ୍କ ଔରସରେ ଶୂଦ୍ରାଗର୍ଭଜାତ ଗୋଟିଏ ସନ୍ତାନ ଏ ଜାତିର ଆଦିପୁରୁଷ । ବିଶ୍ୱକର୍ମାଙ୍କ ଔରସରେ ଶୂଦ୍ରାଗର୍ଭରେ ନଅଗୋଟି ଶିଳ୍ପୀ ଜାତି ଜନ୍ମିଥିଲେ । ଯଥା—

ସଂସ୍କୃତପର୍ଯ୍ୟାୟ—ନାଡ଼ୀନ୍ଧମ, କଳାଦ, ରୁକ୍ମକାର, କଣାଦ, ହେମଳ ।

୧ । ମାଳାକାର (ମାଳୀ), ୨ । କର୍ମକାର (କମାର),
୩ । ଶଙ୍ଖକାର (ଶଙ୍ଖାରି), ୪ । କୁବିନ୍ଦକ (ତନ୍ତୀ),
୫ । କୁମ୍ଭକାର (କୁମ୍ଭାର), ୬ । କଂସକାର (କଂସାରି),
୭ । ତନ୍ତୁକର (ତନ୍ତୁକାର), ୮ । ସୂତ୍ରଧାର (ବଢ଼େଇ),
୯ । ସ୍ୱର୍ଣ୍ଣକାର (ସୁନାରି ବଣିଆ) ।

ସ୍ୱର୍ଣ୍ଣକାରମାନେ ବ୍ରାହ୍ମଣମାନଙ୍କର ସ୍ୱର୍ଣ୍ଣ ଚୋରି କରିବାରୁ ବ୍ରହ୍ମଶାପରେ ପତିତ ଜାତି ହେଲେ—ବ୍ରହ୍ମବୈବର୍ତ୍ତପୁରାଣ ବ୍ରହ୍ମଖଣ୍ଡ । ]

ସ୍ୱର୍ଣ୍ଣ କୁମାରୀ—ଦେ ବ. ସ୍ତ୍ରୀ—୧ । ସ୍ତ୍ରୀଲୋକଙ୍କ ନାମ—
Swarnna kumārī 1. A name given to females.
स्वर्णकुमारी स्वर्णकुमारी ୨ । ରାଜସ୍ଥାନର ଜଣେ ପ୍ରସିଦ୍ଧ କ୍ଷତ୍ରିୟ ରମଣୀ—2. The name of an illustrious Kshyatriya lady of Rājasthāna.
୩ । ବଙ୍ଗର ସ୍ୱର୍ଗୀୟ ସାହିତ୍ୟପ୍ରେମିକା ସ୍ୱର୍ଣ୍ଣକୁମାରୀ ଦେବୀ-3. The late Swarnakumārī Debī of Bengal. [ ଦ୍ର—ଏ ସ୍ୱର୍ଗୀୟ ଦେବେନ୍ଦ୍ରନାଥ ଠାକୁରଙ୍କ କନ୍ୟା; ୧୮୫୭ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ଏ ବଙ୍ଗ ମହିଳାମାନଙ୍କ ମଧ୍ୟରେ ପ୍ରଥମ ଉପନ୍ୟାସ ଲେଖିଥିଲେ । ଏହାଙ୍କ ପ୍ରଥମ ଉପନ୍ୟାସ 'ଦୀପନିର୍ବାଣ'; ଏ ପରେ 'ଛିନ୍ନମୁକୁଳ, ହୁଗୁଳିର ଇମାମ୍ ବାଡ଼ୀ, ସ୍ନେହଲତା, ବିଦ୍ରୋହ, ମିବାରରାଜ; ଫୁଲେର ମାଲା, କାହାକେ, ନବ କାହିନୀ, ବସନ୍ତ ଉତ୍ସବ, ଗାଥା, ବାଲ୍ୟବିନୋଦ' ଆଦି ବଙ୍ଗଳା ଗ୍ରନ୍ଥ ଲେଖିଥିଲେ । ଏ ବଙ୍ଗଳା, ସଂସ୍କୃତ ଓ ଇଂରାଜୀ ଭାଷା ଉତ୍ତମରୂପେ ଜାଣିଥିଲେ । ଏହାଙ୍କ ସ୍ୱାମୀଙ୍କ ନାମ ଜାନକୀନାଥ ଘୋଷାଲ । ଏ ୧୧ ବର୍ଷ 'ଭାରତୀ' ମାସିକ ପତ୍ରିକାର ସମ୍ପାଦକତ୍ୱ କରିଥିଲେ । ଏହାଙ୍କ କନ୍ୟା ଶ୍ରୀମତୀ ସରଳା ଦେବୀ ବି. ଏ । ଏ ଭାରତୀୟ ପରାଧୀନ ସ୍ତ୍ରୀଲୋକମାନଙ୍କ ପାଇଁ 'ସଖୀ ସମିତି', 'ବିଧବାଶ୍ରମ' ଓ 'ମହିଳା-ଶିଳ୍ପମେଳା' ଆଦି ଅନେକଗୁଡ଼ିଏ ଅନୁଷ୍ଠାନର ସୂତ୍ରପାତ କରିଥିଲେ । ]

ସ୍ୱର୍ଣ୍ଣ କେତକୀ—ସଂ ବି—୧ । ହଳଦିଆ ବର୍ଣ୍ଣର କେତକୀ (ଗୁଜୁରାଟି)—
Swarnna ketakī 1. The yellow variety of Pandanus Odoratissimus,
ସଂସ୍କୃତପର୍ଯ୍ୟାୟ— ହେମକେତକୀ, କନକପ୍ରସବା, ହେମା, ଛିନ୍ନରୁହା, ହସ୍ତାରୁହା, ସ୍ୱର୍ଣ୍ଣପୁଷ୍ପୀ, କାମଶକ୍ତିଦଳା । [ ଦ୍ର—ଏହା ବର୍ଣ୍ଣ୍ୟ, କେଶ-ଦୌର୍ଗନ୍ଧ୍ୟ ନାଶକ । ଏହା ପିତ୍ତକଫନାଶକ, ରସାୟନ ଓ ଦେହଦାର୍ଢ୍ୟକର ।]

ସ୍ୱର୍ଣ୍ଣ କ୍ଷିରୀ (କ୍ଷୀରୀ, ଦୁଗ୍ଧା)—ସଂ ବି—(ବୈଦ୍ୟକ)—ଅଗରା ଗଛ—
Swarnna kshirinī [kshirī, dugddhā]
ହି. ସିଲୌର ଭେଦ Gamboje Thistle;
ବା. ବ୍ରହ୍ମଦଣ୍ଡୀ ବରଇ Cleome Felina
ତେ. ଦୟନ୍ତିକଭେଦ (plant). [ ଦ୍ର—
शीयालकाँटा, सोनाखीरई ଏହାର ମୂଳ ରେଚକ,
सतयानाशी, कटेरी, भरभांड़ ଭେଦକ ଓ ତିକ୍ତ ଓ ଏହା
ସଂସ୍କୃତପର୍ଯ୍ୟାୟ—ହେମକ୍ଷୀରୀ, କୃମି, କଫ, ଆନାହ, କଫ,
ହେମବତୀ, କଟୁପର୍ଣ୍ଣୀ, ହିମବତୀ, ରକ୍ତପିତ୍ତ ଓ କୁଷ୍ଠ
ହେମାହ୍ୱା, ପୀତଦୁଗ୍ଧା, ନାଶକ । ଏହାର କ୍ଷୀର
ଶୃଗାଳକଣ୍ଟକ । ହଳଦିଆ ।]

ସ୍ୱର୍ଣ୍ଣ ଖଚିତ—ସଂ. ବିଣ ( ଅନ୍ୟ ତତ୍ )—ସ୍ୱର୍ଣ୍ଣମଣ୍ଡିତ; ସୁନାର ଲୁହା
Swarnna khachita ଦିଆ ଯାଇଥିବା—
Set with gold stars; gold-starred.

ସ୍ୱର୍ଣ୍ଣ ଗିରି—ସଂ ବି—ସୁମେରୁ ପର୍ବତ—
Swarnna giri The mythological Sumeru mountain.

ସ୍ୱର୍ଣ୍ଣ ଗୈରିକ—ସଂ ବି—ସୁବର୍ଣ୍ଣଗୈରିକ; ହଳଦୀମାଟି—
Swarnna gairika A kind of yellow earth; yellow ochre.

ସ୍ୱର୍ଣ୍ଣ ଗ୍ରୀବା—ସଂ ବି—କାଳିକାପୁରାଣ (୮୨୩)ରେ ଉକ୍ତ ନାଟକ
Swarnna gribā ଶୈଳର ପୂର୍ବଭାଗରୁ ନିଃସୃତ ନଦୀବିଶେଷ—Name of a mythological river.

ସ୍ୱର୍ଣ୍ଣ ଘଟିତ—ସଂ ବିଣ (ଅନ୍ୟ ତତ୍)—ଯେଉଁ ଔଷଧରେ ସ୍ୱର୍ଣ୍ଣ ମିଳିତ
Swarnna ghatita ହୋଇଥାଏ ବା ବ୍ୟବହୃତ ହୋଇ ଥାଏ—Any preparation in which gold has been mixed or used [ ଯଥା, ସ୍ୱର୍ଣ୍ଣଘଟିତ ମକରଧ୍ୱଜ ।]

ସ୍ୱର୍ଣ୍ଣ ଚୂଡ଼(ଳ)—ସଂ ବିଣ. ପୁଂ (ବହୁବ୍ରୀହି; ସ୍ୱର୍ଣ୍ଣ ଚୂଡ଼ାରେ ଅଛି ଯାହାର)
Swarnna chūrda(la) ୧ । ଯାହାର ଚୂଡ଼ାରେ ସ୍ୱର୍ଣ୍ଣ
(ସ୍ୱର୍ଣ୍ଣଚୂଡ଼ା—ସ୍ତ୍ରୀ.ବିଣ) ଅଛି—1. Gold-crested
୨ । ଯାହାର ମସ୍ତକ ସ୍ୱର୍ଣ୍ଣାଭ—2. Having the head of the colour of gold. ସଂ ବି—
ସଂସ୍କୃତପର୍ଯ୍ୟାୟ— ପକ୍ଷୀବିଶେଷ; ନୀଳକଣ୍ଠ ପକ୍ଷୀ—
ଚାଷ, କାକାଦନ, The blue-necked jay
ପୀତମୁଣ୍ଡକ ଦେ. ବି—ଓଡ଼ିଶାର ନୀଳଗିରି
ରାଜ୍ୟର ରାଜଧାନୀ ସନ୍ନିହିତ ପର୍ବତର ନାମ;ସୁନଚଡ଼ ପର୍ବତ—The name of a mountain near the capital of the Nilgiri State of Orissa. [ଦ୍ର—ନୀଳଗିରି ଯହିଁ ମର୍କତ ମହୀଧ୍ର, ଟେକେଛ ଅମ୍ବରେ ଶୈଳସ୍ୱର୍ଣ୍ଣଚୂଡ଼—ରାଧାନାଥ ଚନ୍ଦ୍ରଭାଗା ।]

ସ୍ୱର୍ଣ୍ଣଜ—ସଂ. ବି (ସ୍ୱର୍ଣ୍ଣ+ଜନ୍ ଧାତୁ=ଜାତ ହେବା+କର୍ତ୍ତୃ ଅ )—
Swarnnaja ସ୍ୱର୍ଣ୍ଣରୁ ଜାତ—Produced
[ସ୍ୱର୍ଣ୍ଣଜାତ—ଅନ୍ୟରୂପ] from gold. ସଂ ବି—
ଟିଣ ଧାତୁ; ରଙ୍ଗ ଧାତୁ [ ହେମଚନ୍ଦ୍ର ]—Tin (metal).

ସ୍ୱର୍ଣ୍ଣଜାତି(ଜାତିକା)—ସଂ ବି—ପୀତବର୍ଣ୍ଣ ଜାଇଫୁଲ ପୀତଜାଗା—
Swarnna jati(jātikā) Yellow Jāi flower.

ସ୍ୱର୍ଣ୍ଣ ଜୁବି(ବୁ)ଲି—ଦେ. ବି (ସଂ. ସ୍ୱର୍ଣ୍ଣ+ଇଂ. ଜୁବିଲି)—ରାଜାମାନଙ୍କର
Swarnna jubi(bu)li ୫୦ ବର୍ଷ ରାଜତ୍ୱ ପୂର୍ଣ୍ଣ ହେଲେ ସାମ୍ରାଜ୍ୟବ୍ୟାପୀ ଯେଉଁ ଉତ୍ସବ ପାଳିତ ହୁଏ—Golden jubilee.

ସ୍ୱର୍ଣ୍ଣ ଜୀବନ୍ତୀ—ସଂ. ବି—ଗୁଳ୍ମ ବିଶେଷ—Name of a plant.
Swarnna jibantī [ଦ୍ର—ଏହା ବୃଷ୍ୟ, ମଧୁର, ଚକ୍ଷୁଷ୍ୟ, ଶୀତଳ, ବାତପିତ୍ତରକ୍ତଦାହନାଶକ ଓ ବଳବର୍ଦ୍ଧକ (ସ୍ୱର୍ଣ୍ଣ ଜୀବା, ସ୍ୱର୍ଣ୍ଣ ପର୍ଣ୍ଣୀ, ସ୍ୱର୍ଣ୍ଣ ଲତା—ଅନ୍ୟରୂପ) ଅଟେ ।]
ସଂ. ପର୍ଯ୍ୟାୟ—ହେମାହ୍ୱା, ହେମ ଜୀବନ୍ତୀ, ତୃଣଗନ୍ଧୀ; ହିମାଗ୍ରା, ସୁଜୀବନ୍ତୀ, ସୁପର୍ଣ୍ଣିକା, ହେମପୁଷ୍ପା, ହେମବଲ୍ଲୀ, ହେମ ଲତା ।

ସ୍ୱର୍ଣ୍ଣଦୀ – ସଂ. ବି ( ସ୍ୱଃ=ସ୍ୱର୍ଗର+ନଦୀ; ୬ଷ୍ଠୀ ତତ୍ )—୧ । ସ୍ୱର୍ଗଙ୍ଗା; ମନ୍ଦାକିନୀ ( ଅମର )—1. The river
Swarṇṇadī
Ganges said to flow in heaven. ୨ । ବୃଶ୍ଚିକାଳୀ(ରାଜନିର୍ଘଣ୍ଟ); ବିଛୁଆତି—2. The stinging nettle. ୩ । ସିନ୍ଧୁ ଗଙ୍ଗା; ଆସାମ ଦେଶର କାମାଖ୍ୟାର ପୂର୍ବ ଭାଗରେ ବହୁଥିବା ନଦୀ—3. Name of a river flowing in Assam. [ଦ୍ର—ଏହି ନଦୀ ଉପରେ ଚନ୍ଦ୍ରକ୍ରବାସିନୀ ଦେବୀ ଓ ମହାଦେବ ବସନ୍ତି । ଏଥିରେ ସ୍ନାନ କଲେ ଗଙ୍ଗାସ୍ନାନର ଫଳ ଲାଭ ହୁଏ । —କାଳିକା ପୁରାଣ ।]

ସ୍ୱର୍ଣ୍ଣ ଦୀଧିତି—ସଂ. ବି· ( ବହୁବ୍ରୀହି; ସ୍ୱର୍ଣ୍ଣ=ସ୍ୱର୍ଣ୍ଣ ବର୍ଣ୍ଣାଭ+ଦୀଧିତି=କିରଣ ଯାର)—ଅଗ୍ନି—Fire.
Swarṇṇa dīdhiti

ସ୍ୱର୍ଣ୍ଣ ଦ୍ରୁ—ସଂ. ବି—ଆରଗ୍ୱଧ (ରାଜନିର୍ଘଣ୍ଟ); ସୁନାରି ଗଛ—
Swarṇṇa dru A tree; Cassia Fistula.

ସ୍ୱର୍ଣ୍ଣ ପକ୍ଷ—ସଂ. ବିଣ. ପୁଂ(ବହୁବ୍ରୀହି)—ସୁବର୍ଣ୍ଣ ପକ୍ଷବିଶିଷ୍ଟ—Having golden wings.
Swarṇṇa paksha
ବି—ଗରୁଡ଼ (ବୈଦିକ ବିଶେଷ)—The mythological king of birds.
(ସ୍ୱର୍ଣ୍ଣପକ୍ଷା—ସ୍ତ୍ରୀ, ବିଣ)

ସ୍ୱର୍ଣ୍ଣ ପତ୍ର—ସଂ. ବି—ସୁନାର ପାତିଆ—
Swarṇṇa patra Thin plate of gold.

ସ୍ୱର୍ଣ୍ଣ ପତ୍ରୀ(ମୁଖୀ)—ସଂ. ବି—ସୁନାମୁଖୀ—
Swarṇṇa patrī(mukhī) Cassia Indica.
(ସ୍ୱର୍ଣ୍ଣ ପତ୍ରିକା—ଅନ୍ୟରୂପ)

ସ୍ୱର୍ଣ୍ଣ ପଦ୍ମ—ସଂ· ବି—ସ୍ୱର୍ଣ୍ଣ ବର୍ଣ୍ଣବିଶିଷ୍ଟ ପଦ୍ମଫୁଲ—Golden lotus.
Swarṇṇa padma [ଦ୍ର—ଏହା ସ୍ୱର୍ଗଙ୍ଗାରେ ଫୁଟେ ବୋଲି ପୁରାଣରେ ବର୍ଣ୍ଣିତ ।]

ସ୍ୱର୍ଣ୍ଣ ପଦ୍ମା—ସଂ. ବି—ସ୍ୱର୍ଗଙ୍ଗା (ଶବ୍ଦ ରତ୍ନାବଳୀ)—The Ganges said to flow in heaven.
Swarṇṇa padmā

ସ୍ୱର୍ଣ୍ଣ ପାଟକ—ସଂ. ବି—ଟଙ୍କଣ; ଟାଙ୍କଣା (ଶବ୍ଦମାଳା)—
Swarṇṇa pāṭaka Borax.

ସ୍ୱର୍ଣ୍ଣ ପାରେବତ—ସଂ. ବି—ମହାପାରେବତ ( ରାଜନିର୍ଘଣ୍ଟ )—
Swarṇṇa pārebata A species of golden-coloured guava.

ସ୍ୱର୍ଣ୍ଣ ପିଞ୍ଜର—ସଂ· ବି (ମ. ପ. ଲେ)—ସୁନାରେ ତିଆରି ପଞ୍ଜୁରୀ—
Swarṇṇa piñjara Golden cage; a cage of gold.

ସ୍ୱର୍ଣ୍ଣ ପୁର—ଦେ· ବି—ସୋନପୁର ( ଦେଖ )
Swarṇṇa pura Sonapura ( See )
ସଂ· ବି· (ମ. ପ· ଲେ)—୧ । ସ୍ୱର୍ଣ୍ଣନିର୍ମିତ ନଗର—1. A city of gold. ୨ । ସୁନାରେ ତିଆରି ଗୃହ—2. A house made of gold.

ସ୍ୱର୍ଣ୍ଣ ପୁଷ୍ପ—ସଂ· ବି (ବହୁବ୍ରୀହି)—୧ । ଚମ୍ପକ ବୃକ୍ଷ ( ରାଜନିର୍ଘଣ୍ଟ )—
Swarṇṇa pushpa 1. Champaka tree. ୨ । ଆରଗ୍ୱଧ ବା ସୁନାରି ଗଛ (ରାଜନିର୍ଘଣ୍ଟ)—2. Cassia Fistula (tree). ୩ । ବବୁର ଗଛ ବା କଣ୍ଟାଗୁଆ (ଚନ୍ଦ୍ରଚନ୍ଦ୍ରିକା)—3. Acacia tree. ୪ । କପିତ୍ଥ ( ହ୍ରି. ଶ )—4. Wood apple. ୫ । ଧଳା କଖାରୁ ( ହ୍ରି ଶ )—5. The white gourd.
୬ । (ମ· ପ. ଲେ)—ସୁନାରେ ତିଆରି ଫୁଲ—6. Golden flower.

ସ୍ୱର୍ଣ୍ଣ ପୁଷ୍ପା—ସଂ. ବି—୧ । ମେଣ୍ଢାଶିଙ୍ଗା ମହୁରୀ (ହ୍ରି· ଶ)—1. Aconite.
Swarṇṇa pushpā ୨ । ବିଷ ଲାଙ୍ଗୁଳିଆ ( ଦେଖ )—2. Bishalāṅgulia (See) ୩ । ସ୍ୱର୍ଣ୍ଣୁଲୀ; ଆରଗ୍ୱଧ; ସୁନାରି ଗଛ—3. Cassia Fistula (tree). ୪ । ସାତଲା (ରାଜନିର୍ଘଣ୍ଟ) (ଦେଖ)—4. Sātalā (See) ୫। ସ୍ୱର୍ଣ୍ଣ କେତକୀ (ହ୍ରି· ଶ)—5. The yellow-flowered Pandanus Odoratissimus.

ସ୍ୱର୍ଣ୍ଣ ପୁଷ୍ପୀ – ସଂ. ବି—୧ । ଆରଗ୍ୱଧ; ସୁନାରି ଗଛ (ଶବ୍ଦ ଚନ୍ଦ୍ରିକା)—
Swarṇṇa pushpī 1. Cassia Fistula. ୨ । ସ୍ୱର୍ଣ୍ଣକେତକୀ (ରାଜନିର୍ଘଣ୍ଟ)—2. The yellow-flowered variety of Pandanus Odoratissimus. ୩ । ସାତଲା ( ଦେଖ )—3. Sātalā ( See )

ସ୍ୱର୍ଣ୍ଣ ପ୍ରତିମା—ସଂ. ବି—( ମ. ପ. ଲେ )—ସ୍ୱର୍ଣ୍ଣନିର୍ମିତ ମୂର୍ତ୍ତି—
Swarṇṇa pratimā Golden image.

ସ୍ୱର୍ଣ୍ଣପ୍ରଭ—ସଂ.ବିଣ.ପୁଂ—ସ୍ୱର୍ଣ୍ଣ + ପ୍ରଭା; ବହୁବ୍ରୀହି)—ସ୍ୱର୍ଣ୍ଣ ପରି ଆଭା ବିଶିଷ୍ଟ
Swarṇṇaprabha —Having the lustre of gold.
(ସ୍ୱର୍ଣ୍ଣପ୍ରଭା—ସ୍ତ୍ରୀ)

ସ୍ୱର୍ଣ୍ଣପ୍ରସୂ—ସଂ. ବିଣ. (ସ୍ତ୍ରୀ)—ସ୍ୱର୍ଣ୍ଣ ପ୍ରସବକାରିଣୀ; ସୁବର୍ଣ୍ଣୋତ୍ପାଦିକା
Swarṇṇa prasū (ଭୂମି)—Producing gold.

ସ୍ୱର୍ଣ୍ଣ ଫଳ—ସଂ. ବି (ବହୁବ୍ରୀହି)—ଧାତୁରା—Datura Fustosa.
Swarṇṇa phala

ସ୍ୱର୍ଣ୍ଣଫଳା—ସଂ. ବି· (ସ୍ତ୍ରୀ)—ପୀତରମ୍ଭା; ଚମ୍ପା କଦଳୀ (ରାଜ ନିର୍ଘଣ୍ଟ)—
Swarṇṇaphalā A variety of banana.

ସ୍ୱର୍ଣ୍ଣ ବଣିକ୍—ସ. ବି—(ସ୍ୱର୍ଣ୍ଣ ବଣିଜ୍ ଶବ୍ଦ; ୧ମା, ୧ବ)—ସୁନାରୀ ବଣିଆ;
Swarṇṇa baṇik ସୁନାରୀ ବଣିଆ; ସ୍ୱର୍ଣ୍ଣକାର—Goldsmith.
(ସ୍ୱର୍ଣ୍ଣ ବଣିକ—ଦେ. ରୂପ)

ସ୍ୱର୍ଣ୍ଣ ବର୍ଣ୍ଣ—ସଂ· ବି ( ୬ଷ୍ଠୀ ତତ୍ )—ସୁନାର ରଙ୍ଗ—Golden colour.
Swarṇṇa barṇṇa
ବିଣ, ପୁଂ ( ବହୁବ୍ରୀହି )—
(ସ୍ୱର୍ଣ୍ଣବର୍ଣ୍ଣା—ସ୍ତ୍ରୀ. ବିଣ) 1. Of golden hue; golden. ୨ । ହେମାଙ୍ଗ; ଯାହାର ଦେହ ହଳଦିଆ; ସୁନାପରି ଗୌର—2. Having the body of golden colour, golden-complexioned. ଦେ, ବି—୧ । ସ୍ୱର୍ଣ୍ଣାକ୍ଷର ( ଦେଖ )—1. Swarṇṇākshara (See).

୨ । କଣଗୁଗ୍ଗୁଲ (ହି. ଶ)—2. A kind of Bdellium. ୩ । ହରିତାଳ—3, Yellow orpiment. ୪ । ସ୍ୱର୍ଣ୍ଣଗୈରିକ (ହି. ଶ)—4. Yellow ochre. ୫ । ଦାରୁ ହଳଦୀ (ହି. ଶ) (ଦେଖ)—5. Dāru haladī (See)

ସ୍ୱର୍ଣ୍ଣବର୍ଣ୍ଣା—ସଂ. ବି. (ସ୍ତ୍ରୀ)—ହରିଦ୍ରା; ହଳଦୀ—Tumeric.
Swarṇṇa barṇṇā ସଂ. ବଣ. (ସ୍ତ୍ରୀ) [ଯେଉଁ ସ୍ତ୍ରୀଙ୍କ ଦେହ ସୁନା ପରି ହଳଦିଆ ବର୍ଣ୍ଣ ଗୋର; କେତକୀ ଗୋରୀ—(a woman) Having the colour of the skin yellow.

ସ୍ୱର୍ଣ୍ଣବର୍ଣ୍ଣକ—ସଂ. ବି—ମୁର୍ଦ୍ଦାର ଶଙ୍ଖ; କଂକୁଷ୍ଠ (ହି ଶ)—Licharge,
Swarṇṇa barṇṇaka

ସ୍ୱର୍ଣ୍ଣ ବଳୟ—ସଂ ବି—(ମ. ପ. ଲୋ)—ସ୍ୱର୍ଣ୍ଣ ନିର୍ମିତ ହାତ ଖଡୁ—
Swarṇṇa balaya A wristlet of gold.

ସ୍ୱର୍ଣ୍ଣ ବଲ୍କଲ—ସଂ,ବି—ଶ୍ୟୋଣାକ ବୃକ୍ଷ [ଶବ୍ଦ ଚନ୍ଦ୍ରିକା]; ଫମ୍ପଣା—
Swarṇṇa balkala Bignonia Indica.

ସ୍ୱର୍ଣ୍ଣ ବଲ୍ଲୀ—ସଂ ବି.—୧ । ଲତାବିଶେଷ—1, Name of a
Swarṇṇa ballī creeper. [ଦ୍ର—ଏହା ଦୁଗ୍ଧଦାୟକ, [ଅନ୍ୟ ସଂ ନାମ—କାକବଲ୍ଲୀ, କାକାୟୁ, ରକ୍ତଫଳା] ଶିତଃବୀର୍ଯ୍ୟ ଏବଂ ବିଦୋଷ ନାଶକ (ରାଜନିଘଣ୍ଟୁ) ] । ଏଥିର ଫଳ ରକ୍ତବର୍ଣ୍ଣ । ୨ । ଆରଗ୍ୱଧ; ସୁନାରି ଗଛ (ହି. ଶ)—2. Cassia Fisula.

ସ୍ୱର୍ଣ୍ଣ ବାଲୁକା—ସଂ.ବି.—(ଠ.ପ.ଲୋ)—୧ । ସ୍ୱର୍ଣ୍ଣରେଣୁ ମିଶ୍ରିତ ବାଲି—
Swarṇṇa bālukā 1. Sand mixed with gold dust. ୨ । ସ୍ୱର୍ଣ୍ଣରେଣୁ—2. Gold dust.

ସ୍ୱର୍ଣ୍ଣ ବିନ୍ଦୁ—ସଂ. ବି.—ସ୍ୱର୍ଣ୍ଣରେଣୁ; ସ୍ୱର୍ଣ୍ଣକଣା—1. Gold dust.
Swarṇṇa bindu ୨ । (ସହସ୍ରନାମୋକ୍ତ) ବିଷ୍ଣୁଙ୍କର ନାମ—ବିଶେଷ—2. One of the names of Bishnu.

ସ୍ୱର୍ଣ୍ଣ ବୀଜ—ସଂ. ବି—ଧାତୁରି ମଞ୍ଜି—
Swarṇṇa bīja Seed of Dhatura Plant.

ସ୍ୱର୍ଣ୍ଣ ଭସ୍ମ—ସଂ. ବି.—ଆୟୁର୍ବେଦୋକ୍ତ ବୈଜ୍ଞାନିକ ପ୍ରକ୍ରିୟାରେ ପାଉଁଶ
Swarṇṇa bhasma ରୂପେ ପରିଣତ ସ୍ୱର୍ଣ୍ଣ—Oxide of
(ଦ୍ର—ସୁନାଭସ୍ମ ତଳେ କୋଠ୍ ଦେଖ) gold.

ସ୍ୱର୍ଣ୍ଣ ଭୂମି—ସଂ. ବି—(ମ. ଟ. ଲୋ)—୧ । ସ୍ୱର୍ଣ୍ଣପ୍ରସୂ ଭୂମି—1. A
Swarṇṇa bhūmi land producing gold. ୨ । ଅତି ଉର୍ବର ବା ଫଳପ୍ରସୂ ଭୂମି—2. A very fruitful land. ୩ । ସ୍ୱର୍ଣ୍ଣଖଣିଯୁକ୍ତ ଭୂମି—3. A land containing gold mines. ୪ । ଗୁଡ଼ତ୍ୱକ୍; ଦାରୁଚିନି (ହି. ଶ)—4. Cinnamon.

ସ୍ୱର୍ଣ୍ଣ ଭୂଷଣ—ସଂ. ବି.—(ମ.ପ. ଲୋ)—୧ । ସ୍ୱର୍ଣ୍ଣନିର୍ମିତ ଅଳଙ୍କାର—
Swarṇṇa bhūshaṇa 1. Golden ornaments. ୨ । ଆରଗ୍ୱଧ; ସୁନାରି ଗଛ—2. Cassia Fistula. ୩ । ସ୍ୱର୍ଣ୍ଣ ଗୈରିକ (ହି. ଶ)—3. Yellow ochre.

ସ୍ୱର୍ଣ୍ଣ ଭୃଙ୍ଗରାଜ—ସଂ ବି—ଏକ ପ୍ରକାର ଭୃଙ୍ଗରାଜ ଗୁଳ୍ମ (ରାଜନିର୍ଘଣ୍ଟ)—
Swarṇṇa bhṛuṅgarāja The yellow variety of Bhṛungarāja plant.

ସ୍ୱର୍ଣ୍ଣ ଭୃଙ୍ଗାର—ସଂ ବି—(ମ. ପ. ଲୋ)—ସ୍ୱର୍ଣ୍ଣନିର୍ମିତ ଝରି—A pit-
Swarṇṇa bhṛuṅgāra cher of gold ୨ । ସ୍ୱର୍ଣ୍ଣ ଭୃଙ୍ଗରାଜ (ଦେଖ)—2. Swarṇṇa bhṛuṅgarāja (See).

ସ୍ୱର୍ଣ୍ଣ ମଣ୍ଡନ—ସଂ. ବି.—ସ୍ୱର୍ଣ୍ଣ ଗୈରିକ (ହି. ଶ)—
Swarṇṇa maṇḍana Yellow ochre.

ସ୍ୱର୍ଣ୍ଣ ମଣ୍ଡିତ—ସଂ. ବି.—(କର୍ମ୍ମ ତତ୍)—୧ । ସୁନାଦ୍ୱାରା ଭୂଷିତ—
Swarṇṇa maṇḍita 1. Adorned with gold. ୨ । ସ୍ୱର୍ଣ୍ଣ ଖଚିତ—2. Set with gold. ୩ । ସୁନାର ଚୁମ୍କି ଦିଆଯାଇଥିବା—3. Spangled with gold.

ସ୍ୱର୍ଣ୍ଣମୟ—ସଂ, ବି—(ସ୍ୱର୍ଣ୍ଣ+ବିକାରାର୍ଥେ. ମୟ)—୧ । ସ୍ୱର୍ଣ୍ଣ ନିର୍ମିତ—1.
Swarṇṇamaya Made of gold. ୨ । ସ୍ୱର୍ଣ୍ଣରେ ପୂର୍ଣ୍ଣ—
(ସ୍ୱର୍ଣ୍ଣମୟୀ—ସ୍ତ୍ରୀ) 2. Filled with gold.

ସ୍ୱର୍ଣ୍ଣମୟୀ—ଦେ. ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—A name given to
Swarṇṇamayī females. ସଂ. ବଣ. ସ୍ତ୍ରୀ—ସ୍ୱର୍ଣ୍ଣମୟର ସ୍ତ୍ରୀଲିଙ୍ଗ—Feminine of Swarṇṇamaya.

ସ୍ୱର୍ଣ୍ଣମୟୀ (ମହାରାଣୀ)—ଦେ. ବି—(ଜ ମ)—ବଙ୍ଗ ପ୍ରଦେଶର କାଶିମ
Swarṇṇamayī (mahārānī) ବଜାରର ସ୍ୱର୍ଗତା ଦାନଶୀଳା ଭୂମ୍ୟଧିକାରିଣୀ—A famous landlady of Bengal who was famous for her extensive charities. [ଦ୍ର—ଏ ଅତି ନିଃସ୍ୱ ଏକ କୁଳରେ ୧୮୨୭ ଖ୍ରୀଷ୍ଟାବ୍ଦରେ ଜନ୍ମ ହୋଇଥିଲେ । ଏ ଅତି ସୁନ୍ଦରୀ ଓ ଗୁଣବତୀ ଥିବାରୁ କାଶିମବଜାରର ଜମିଦାର କୃଷ୍ଣନାଥଙ୍କ ସହିତ ଏହାଙ୍କର ବିବାହ ହେଲା । ଏହାଙ୍କର ଦୁଇଟି କନ୍ୟା ଜାତ ହୋଇଥିଲେ । ଏହାଙ୍କର ସ୍ୱାମୀ ତାଙ୍କର ଶିକ୍ଷା ବିସ୍ତାର ଓ ଲୋକହିତକର କାର୍ଯ୍ୟରେ ଦାନଶୀଳତା ଯୋଗୁଁ ଗଭର୍ଣ୍ଣମେଣ୍ଟଙ୍କଠାରୁ ରାଜାବାହାଦୁର ଉପାଧି ପାଇଥିଲେ । ୧୮୪୫ ସାଲରେ କୃଷ୍ଣନାଥ ଗୋଟିଏ ନରହତ୍ୟା ମୋକଦ୍ଦମାରେ ଅଭିଯୁକ୍ତ ହୋଇ ଆତ୍ମହତ୍ୟା କଲେ । ଏଥି ପୂର୍ବରୁ କୃଷ୍ଣନାଥଙ୍କ ଉଇଲ୍ ବଳରେ ସ୍ୱର୍ଣ୍ଣମୟୀଙ୍କ ସ୍ତ୍ରୀଧନ ଛଡ଼ା କୃଷ୍ଣନାଥଙ୍କର ତ୍ୟକ୍ତ ଅନ୍ୟ ସମସ୍ତ ସମ୍ପତ୍ତିକୁ ଇଷ୍ଟ୍ ଇଣ୍ଡିଆ କମ୍ପାନୀ ଅଧିକାର କଲେ । ପରେ ସ୍ୱର୍ଣ୍ଣମୟୀ କଲିକତା ସୁପ୍ରିମ୍ କୋର୍ଟ୍‌ରେ ମୋକଦ୍ଦମା କରି ଉକ୍ତ ଉଇଲ୍‌କୁ ରଦ୍ କରାଇ ସ୍ୱାମୀଙ୍କ ତ୍ୟକ୍ତ ସମସ୍ତ ସମ୍ପତ୍ତିରେ ମାଲିକ ହେଲେ । ଏହାଙ୍କର ସୁଦକ୍ଷ ଦେୱାନ ରାଜୀବଲୋଚନଙ୍କ ସାହାଯ୍ୟରେ ଏ ମୋକଦ୍ଦମା ନିମନ୍ତେ କରିଥିବା ଦେଣା ପରିଶୋଧ କରି ଜମିଦାରୀର ଆୟ ବୃଦ୍ଧି ଓ ଉନ୍ନତି କଲେ । ଏହାଙ୍କ ଆୟର ଅଧିକାଂଶ ଦାନ ଓ ପରୋପକାରରେ ବ୍ୟୟିତ ହେଉଥିଲା । ଗଭର୍ଣ୍ଣମେଣ୍ଟ ଏଥିରେ ସନ୍ତୁଷ୍ଟ ହୋଇ ଏହାଙ୍କ 'ମହାରାଣୀ' ଓ C. I. E

ଉପାଧି ଦେଲେ ଏବଂ ଏହାଙ୍କ ଉତ୍ତରାଧିକାରୀ 'ମହାରାଜା' ଉପାଧି ପାଇବେ ବୋଲି ସନନ୍ଦ ଦେଲେ । ଏହାଙ୍କ ଦେହାନ୍ତକୁ ମଧ୍ୟ ରାୟବାହାଦୁର ଉପାଧି ଦିଆଗଲା । ଏହାଙ୍କର ବଙ୍ଗପ୍ରଦେଶର ମୁର୍ଶିଦାବାଦ, ରାଜସାହି, ପାବନା, ଦିନାଜପୁର, ମାଲଦହ, ରଙ୍ଗପୁର, ବଗୁଡ଼ା, ଫରିଦପୁର, ଯଶୋହର, ନଦୀଆ, ବର୍ଦ୍ଧମାନ, ହାବଡ଼ା, ଚବିଶପ୍ରଗନାରେ ଏବଂ ଉତ୍ତର ପଶ୍ଚିମରେ ଗାଜିପୁର, ଆଜମଗଡ଼ ଅଞ୍ଚଳରେ ଥିବା ଜମିଦାରୀର ବାର୍ଷିକ ଆୟ ୮ଲକ୍ଷ ଟଙ୍କା ଥିଲା । ଏ ୧୮ ୯ ଖ୍ରୀଷ୍ଟାବ୍ଦରେ ସ୍ୱର୍ଗଲାଭ କରିବାରୁ କୃଷ୍ଣନାଥଙ୍କ ଭଣଜା ମହାରାଜ ମଣୀନ୍ଦ୍ରଚନ୍ଦ୍ର ନନ୍ଦୀ କାଶିମ ବଜାରର ମହାରାଜ ହେଲେ । ମହାରାଜ କୌଣସି ଯାଚକଙ୍କୁ ନିରାଶ କରୁ ନ ଥିଲେ । ମୁର୍ଶିଦାବାଦ ଜିଲ୍ଲାର ବ୍ରହ୍ମପୁର ସହରର ଜଳ କଳ ପାଇଁ ଏ ୧୫ ଲକ୍ଷ, ଉତ୍ତର ବଙ୍ଗ ଦୁର୍ଭିକ୍ଷ ପାଇଁ ୧ଲକ୍ଷ ୨୫ହଜାର ଓ କଲିକତା ମେଡ଼ିକାଲ୍ କଲେଜର ଛାତ୍ରୀମାନଙ୍କ ଆବାସ ପାଇଁ ୧ଲକ୍ଷ ଟଙ୍କା ଦାନ କରିଥିଲେ । ବଙ୍ଗଦେଶର ଅନେକ ବିଦ୍ୟାଳୟ, କଲେଜ୍, ଚତୁଷ୍ପାଠୀ ଓ ପାଠଶାଳାକୁ ମହାରାଜ ମଣୀନ୍ଦ୍ରଚନ୍ଦ୍ର ବହୁତ ଦାନ କରିଥିଲେ । ]

ସ୍ୱର୍ଣ୍ଣମହା—ସଂ. ବ.—(ନାଂ)—କାଳକା ପୁରାଣୋକ୍ତ ନଦୀ ବିଶେଷ—Swarnnamahā Name of a mythological sacred river. [ବି—ଚୈତ୍ରମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀରେ ଏଥିରେ ସ୍ନାନ କଲେ ମନୁଷ୍ୟ ପରଲୋକରେ ଶିବଲୋକ ଓ ବ୍ରହ୍ମଲୋକପ୍ରାପ୍ତ ହୁଏ ।] (ସ୍ୱର୍ଣ୍ଣ ଶ୍ରୀ – ଅନ୍ୟରୂପ)

ସ୍ୱର୍ଣ୍ଣମାକ୍ଷିକ – ସଂ. ବି—ଉପଧାତୁ ବିଶେଷ; ସୁନାମାଖୀ—Iron pyrites; Swarnnamākshika Ferri sulphuratum. [ବି—ଅ.ସଂ.ନାମ—ତାପୀଜ,ମଧୁମାକ୍ଷିକ, ଏହା ଖନିଜ । ଏହା ସୁବର୍ଣ୍ଣର ତାପ୍ୟ, ମାକ୍ଷିକ ଧାତୁ, ମଧୁଧାତୁ ଉପଧାତୁ; କଥିତ୍ ସ୍ୱର୍ଣ୍ଣଗୁଣଯୁକ୍ତ ଥିବାରୁ ଏଥିର ଏହି ନାମ ହୋଇଅଛି । ଏହା ଦେଖିବାକୁ ସ୍ୱର୍ଣ୍ଣାଭ ଓ ଈଷତ୍ କୃଷ୍ଣ । ଏହାକୁ ଘଷିଦେଲେ ଭିତରେ ସୁନାର ଆଭା ଦେଖାଯାଏ, ବୈଦ୍ୟଶାସ୍ତ୍ରମତରେ ଏହା ମଧୁର, ତିକ୍ତରସ, ବୃଷ୍ୟ, ରସାୟନ ଚକ୍ଷୁଷ୍ୟ ଏବଂ ଅର୍ଶଃ, ଶୋଥ, ବିଷ, କଣ୍ଡୁ, ତ୍ରିଦୋଷ, ବସ୍ତିଦୋଷ, ବ୍ରଣଦୋଷ, ପାଣ୍ଡୁ, ମେହରୋଗରେ ଉପକାରୀ ।

ତାପିଜ ।
ସୋନାମାଖୀ
**সোনামাখী; সোনামকুখী**
ପା—ଚକ୍ରଭିଲା
ଆ—ରବକୁଲ୍ ଜହର୍
ତେ—ସ୍ୱର୍ଣ୍ଣମାଖୀ

ଏଥିରେ ୩ ଗୁଣ ସୈନ୍ଧବ ଲବଣ ମିଶାଇ ଜମ୍ବୀର ଓ ଟଭାରସରେ ବୁଡ଼ାଇ ଲୌହ ପାତ୍ରରେ ତିନି ଦିନ ରଖିଲେ ଏହା ଶୋଧିତ ହୁଏ ଓ କୋଳଥସିଝା ପାଣିରେ ଏହାକୁ ମର୍ଦ୍ଦନ କରି ତୈଳ ଓ ଛେଳି ମୂତ୍ରରେ ଏହାକୁ ପୁଟ ପାକ କଲେ ଏହାର ଭସ୍ମ ହୁଏ ।]

ସ୍ୱର୍ଣ୍ଣ ମାରଣ—ସଂ. ବି—୧ । ବୈଦ୍ୟଶାସ୍ତ୍ରୋକ୍ତ ବିଧି ଦ୍ୱାରା ସ୍ୱର୍ଣ୍ଣର ଶୋଧନ କରିବା—1. Refining
Swarnna mārana
of gold by Ayurvedic process. ୨ । ଦ୍ରବ୍ୟସଂଯୋଗ ଦ୍ୱାରା ଅନ୍ୟ ଧାତୁକୁ ସୁନାରେ ପରିବର୍ତ୍ତନ କରିବା—2. The process of changing basermetals into gold; alchemy

ସ୍ୱର୍ଣ୍ଣମୁଖୀ—ସଂ. ବି—ସ୍ୱର୍ଣ୍ଣପତ୍ରୀ; ସୁନାମକେଇ (ବୃ. ଶ)—Senna. Swarnnamukhi

ସ୍ୱର୍ଣ୍ଣ ମୁଦ୍ରା—ସଂ. ବି—ଅସରଫୀ; ସୁନା ମୋହର—Gold coin. Swarnna mudrā

ସ୍ୱର୍ଣ୍ଣ ମୃଗ—ସ. ବି—ରାମଚନ୍ଦ୍ରଙ୍କୁ ପ୍ରଲୋଭିତ କରି ଦୂରସ୍ଥ ଅରଣ୍ୟକୁ Swarnna mruga ନେଇଯିବା ପାଇଁ ରାବଣର ଆଦେଶକ୍ରମେ ମାରୀଚ ରାକ୍ଷସର ଧାରଣ କରିଥିବା ସ୍ୱର୍ଣ୍ଣାଭ ଜୀବନ୍ତ ମୃଗମୂର୍ତ୍ତି—The form of a golden deer assumed by Māricha to tempt Rama into the distant woods, so that Rāvana would abduct Sitā.

ସ୍ୱର୍ଣ୍ଣଯୂଥିକା ( ଯୂଥୀ )—ସଂ. ବି—ପୀତବର୍ଣ୍ଣ ଯୁଈ ଫୁଲ—The Swarnna Jūthikā (juthi) yellow variety of Jui flower. ଅ ସ —ହିରଣୀ, ପୀତିକା, ହେମପୁଷ୍ପିକା, ହେମା (ସୁନା ଯୁଈ—ବେ, ରୂପ) সোনাযুঁই **स्वर्णजूही; पीलीजूही**

ସ୍ୱର୍ଣ୍ଣ ରମ୍ଭା—ସ. ବି—ସ୍ୱର୍ଣ୍ଣ କଦଳୀ; ଚମ୍ପାକଦଳୀ—A yellow-kernelled variety of plantain.
Swarnna rambhā

ସ୍ୱର୍ଣ୍ଣ ରୀତି—ସ. ବି—ରାଜ ପିତ୍ତଳ (ବୃ. ଶ)—A kind of bright brass.
Swarnnariti

ସ୍ୱର୍ଣ୍ଣ ରେଣୁ—ସଂ. ବି—ସୁନାର ଚୂନ—Gold-dust.
Swarnna renu

ସ୍ୱର୍ଣ୍ଣଲତା—ସଂ. ବି—ଜ୍ୟୋତିଷ୍ମତୀ (ରାଜ ନିର୍ଘଣ୍ଟ); ଫୁଟି ଫୁଟିକା ଗୁଳ୍ମ—1. The staff tree; Cardiospermum Halicacabum. ୨ । (ଲକ୍ଷଣାର୍ଥ) କ୍ଷୀଣଦେହା ସୁନ୍ଦରୀ ସ୍ତ୍ରୀ—2.(figurative) A graceful and slender lady. ୩ । ସ୍ୱର୍ଣ୍ଣ ଜୀବନ୍ତୀ (ବୃ. ଶ)—3. The yellow variety of Jibanti.
Swarnna latā

ସ୍ୱର୍ଣ୍ଣାଲୀ—ସଂ. ।—ଏକ ପ୍ରକାର ଆରଗ୍ୱଧ ବା ସୁନାରି ଗଛ; Swarnnali ସ୍ୱର୍ଣ୍ଣପୁଷ୍ପୀ—A species of Cassia Fistula [ବି—ଏହା କଟୁ କଷାୟ, ଶୀତବୀର୍ଯ୍ୟ, ବିରେଚକ, সোনালু, সোঁদাল ବ୍ରଣନାଶକ, ଓ ସାଧାରଣ ସୁନାରି ଗଛର **आमलतास, सोनुली** ଅନ୍ୟଗୁଣ ବିଶିଷ୍ଟ ।]
ମ. ଫୁଲମଲବର, ତେ. ରେଲ୍ଲୁ, ଗୁ. ସୋନୁଲୀ

ସ୍ୱର୍ଣ୍ଣଶିଖ—ସଂ. ବି—ନୀଳକଣ୍ଠ ପକ୍ଷୀ—The blue jay (bird).
Swarnnasikha

ସ୍ୱର୍ଣ୍ଣଶେଫାଳିକା—ସଂ. ବି.—୧ । ଆରଗ୍ୱଧ (ଶବ୍ଦମାଳା); ସୁନାରି ଗଛ
Swarnna sephālikā —1 Cassia Fistula. ୨ ।

ପୀତ ଶେଫାଳିକା (ଶବ୍ଦ କଳ୍ପଦ୍ରୁମ)—2. A yellow variety of Sephālikā.

**ସ୍ୱର୍ଣ୍ଣ ସିନ୍ଦୂର**—ସଂ. ବ—( ବୈଦ୍ୟକ )—ରସସିନ୍ଦୂର; ପାରଦ ଓ Swarṇṇa sindūra ଗନ୍ଧକ ମିଶ୍ରିତ ସ୍ୱର୍ଣ୍ଣପାକ ଶୋଧିତ ସ୍ୱର୍ଣ୍ଣଘଟିତ ଔଷଧ ବିଶେଷ—Name of an Ayurvedic preparation from gold, mercury and sulphur. [ବି—ଏହାର ବର୍ଣ୍ଣ ଗାଢ଼ରକ୍ତ ଓ ଏହାକୁ ଚୂର୍ଣ୍ଣ କଲେ ସିନ୍ଦୂର ପରି ରଙ୍ଗ ବାହାରେ । ]
[ମକରଧ୍ୱଜ ଶବ୍ଦ ନୋଟ୍ ଦେଖ

**ସ୍ୱର୍ଣ୍ଣ ସୁଯୋଗ**—ଦେ. ବ.—(ଇଂରାଜୀ ଭାଷାରୁ ଅନୁକୃତ ଅଧୁନାତନ Swarṇṇa sujoga ପ୍ରୟୋଗ)—ସ୍ୱର୍ଣ୍ଣପରି ମୂଲ୍ୟବାନ୍ ବା ଶ୍ରେଷ୍ଠ ସ୍ୱର୍ଣ୍ଣସୁଯୋଗ ସୁଯୋଗ; ଶ୍ରେଷ୍ଠ ସୁଯୋଗ ବା ଅବସର—Golden स्वर्ण सुयोग opportunity.

**ସ୍ୱର୍ଣ୍ଣ ସ୍ତେନ**—ସ.ବ (୬ଷ୍ଠୀ ତତ୍)—ସୁନା ଚୋର;ଯେ ସୁନା ଚୋରି କରେ Swarṇṇa stena —Stealer of gold.

**ସ୍ୱର୍ଣ୍ଣ ସ୍ତେୟ**—ସଂ ବ, ପୁଂ (୬ଷ୍ଠୀ ତତ୍)—ସୁନା ଚୋରି କରିବାରୂପ ପାପ Swarṇṇa steya - Stealing of gold, counted as a sin.

**ସ୍ୱର୍ଣ୍ଣହାଳି**—ସ. ବ.—ଅରଗ୍ୱଧ; ସୁନାସୁଗନ୍ଧ—Cassia Fistula Swarṇṇahāli (tree).

**ସ୍ୱର୍ଣ୍ଣାକର**—ସ. ବ. (୬ଷ୍ଠୀ ତତ୍)—ସୁନାର ଖଣି; ଯେଉଁ ଖଣିରୁ ସୁନା Swarṇṇākara ବାହାରେ—Gold mine.

**ସ୍ୱର୍ଣ୍ଣାକ୍ଷର**—ସଂ. ବ (ମ. ପ. ଲୋ)—୧ । ସ୍ୱର୍ଣ୍ଣିମରଙ୍ଗ ଅକ୍ଷର—1. Swarṇṇākshara Golden letters. ୨। ସ୍ୱର୍ଣ୍ଣପରି ଉଜ୍ଜ୍ୱଳ ଓ स्वर्णाक्षर ଚିରସ୍ଥାୟୀ ଅକ୍ଷର—2. Letters as bright and स्वर्णाक्षर permanent as gold. ୩ । ଯେଉଁ ଅକ୍ଷର ସହଜରେ ଲିଭିଯାଏ ନାହିଁ—3 Letters which can not be effaced soon. (ଯଥା—ଉତ୍କଳର ଭକ୍ତଙ୍କ ନାମ ଉତ୍କଳ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଅଛି ।)

**ସ୍ୱର୍ଣ୍ଣାଙ୍ଗ**—ସ. ବି.—ଅରଗ୍ୱଧ ( ରାଜନିର୍ଘଣ୍ଟ ); ସୁନାସୁ ଗନ୍ଧ—Swarṇṇāṅga Cassia Fistula (tree).

**ସ୍ୱର୍ଣ୍ଣାଙ୍ଗୁରୀୟ**—ସ. ବ. — (ମ. ପ. ଲୋ)—ସ୍ୱର୍ଣ୍ଣନିର୍ମିତ ଅଙ୍ଗୁରୀୟ; ସୁନା Swarṇṇāṅguriya ମୁଦି—Gold ring.
( ସ୍ୱର୍ଣ୍ଣାଙ୍ଗୁରୀୟକ—ଅନ୍ୟରୂପ )

**ସ୍ୱର୍ଣ୍ଣାଦ୍ରି**—ସଂ. ବ· —(ମ. ପ. ଲୋ)—୧ । ସ୍ୱର୍ଣ୍ଣମୟ ପର୍ବତ—1· Swarṇṇādri Mountain of gold. ୨ । ସୁମେରୁ (ସ୍ୱର୍ଣ୍ଣାଚଳ—ଅନ୍ୟରୂପ) (ଦେଖ)—2. Sumeru (See). ୩ । ସ୍ୱର୍ଣ୍ଣାଭ ପର୍ବତ—3. A mountain of golden hue. ୪ । ପୁରୀଜିଲ୍ଲାର ଭୁବନେଶ୍ୱର ତୀର୍ଥର ପୌରାଣିକ ନାମାନ୍ତର—4. A mythological name of Bhubaneśwara in the Puri district

**ସ୍ୱର୍ଣ୍ଣାଦ୍ରି ମହୋଦୟ**—ସଂ. ବ·—(ନାମ)—ଭୁବନେଶ୍ୱର ତୀର୍ଥର ମାହାତ୍ମ୍ୟ Swarṇṇādri mahodaya ଓ ସେଠାରେ ପ୍ରତିଷ୍ଠିତ ଲିଙ୍ଗମାନଙ୍କ ବର୍ଣ୍ଣନାତ୍ମକ ପୌରାଣିକ ଗ୍ରନ୍ଥ—A mythological work dealing with the particulars of the sacred place Bhubaneśwara and its shrines.

**ସ୍ୱର୍ଣ୍ଣାଭ**—ସଂ. ବଣ.—(ସ୍ୱର୍ଣ୍ଣ + ଆଭା; ବହୁବ୍ରୀହି)—ସ୍ୱର୍ଣ୍ଣର ପ୍ରଭାଯୁକ୍ତ—Swarṇṇābha Glittering like gold; of a golden (ସ୍ୱର୍ଣ୍ଣାଭା—ସ୍ତ୍ରୀ) hue. ସଂ. ବି.—ହରିତାଳ—Yellow orpiment

**ସ୍ୱର୍ଣ୍ଣାଭରଣ**—ସଂ. ବ, (ମ. ପ. ଲୋ)—ସ୍ୱର୍ଣ୍ଣ ଭୂଷଣ; ସ୍ୱର୍ଣ୍ଣ ନିର୍ମିତ Swarṇṇābharaṇa ଗହଣା; ସୁନା ଗହଣା—Gold orna- (ସ୍ୱର୍ଣ୍ଣାଳଙ୍କାର—ଅନ୍ୟରୂପ) ment.

**ସ୍ୱର୍ଣ୍ଣାରି**—ସଂ. ବ. ( ୬ଷ୍ଠୀ ତତ୍ )—ଗନ୍ଧକ ( ଶବ୍ଦକଳ୍ପଦ୍ରୁମ )—Swarṇṇāri Sulphur.

**ସ୍ୱର୍ଣ୍ଣାରୀ**—ସଂ. ବ.—(୬ଷ୍ଠୀ ତତ୍ ସ୍ୱଃ + ନାରୀ)—ସ୍ୱର୍ଗଣିକା (ଦେଖ)—Swarṇṇāri Swarganikā (See)

**ସ୍ୱର୍ଣ୍ଣାଳୁ**—ସଂ. ବ.—ସ୍ୱର୍ଣ୍ଣୁଳୀ (ଦେଖ) (ହ୍ର. ଶ)—Swarṇṇalu Swarṇṇuli (See)

**ସ୍ୱର୍ଣ୍ଣାହ୍ୱା**—ସଂ. ବ —ସ୍ୱର୍ଣ୍ଣକ୍ଷୀରୀ (ଦେଖ)—Swarṇṇāhwā Swarṇṇakshiri (See)

**ସ୍ୱର୍ଣ୍ଣିକା**—ସଂ. ବ.—ଧନିଆ (ହ୍ର. ଶ)—Swarṇṇikā Coriander

**ସ୍ୱର୍ଣ୍ଣୁଳୀ**—ସ. ବ—ସ୍ୱର୍ଣ୍ଣଳୀ; ଅରଗ୍ୱଧ; ସୁନାସୁ—Cassia Fistula. Swarṇṇuli [ ଗୁ—ଏହା କଟୁ, ଶୀତଳ, କଷାୟ, ବ୍ରଣାପହ ] सोनाल सोनुली [ଅନ୍ୟ ସଂ ନାମ—ହେମପୁଷ୍ପୀ, ସ୍ୱର୍ଣ୍ଣପୁଷ୍ପା; ଅଦ୍ଧିକା]

**ସ୍ୱର୍ଣ୍ଣୋପଧାତୁ**—ସଂ. ବ—ସ୍ୱର୍ଣ୍ଣମାକ୍ଷିକ (ଦେଖ)—Swarṇṇopadhātu Swarṇṇamākshika (See).

**ସ୍ୱର୍ତ୍ତ** (ଧାତୁ)—ସଂ—୧ । ଗତି କରିବା—1. To move. ୨ । Swartt (root) ଦୁଃଖରେ ଜୀବନ ଧାରଣ କରିବା—2. To live in misery. ୩ । ଆତଙ୍କଯୁକ୍ତ ହେବା—3. To be frightened or terrified.

**ସ୍ୱର୍ଦ୍** (ଧାତୁ)—ସଂ.—୧ । ପ୍ରୀତି କରିବା—1. To make love. Sward (root) ୨ । ଉପାସ୍ୱାଦନ କରିବା—2. To taste ୩ । ଚାଟିବା—3. To lick.

**ସ୍ୱର୍ଧୁନୀ**—ସଂ. ବ (ସ୍ୱଃ+ଧୁନୀ)—ସ୍ୱର୍ଗଗଙ୍ଗା—The river Ganges Swardhūni said to flow in heaven.

**ସ୍ୱର୍ନଗରୀ**—ସ. ବ (୬ଷ୍ଠୀ ତତ୍)—ଅମରାବତୀ—The capital or Swarnagari court of Indra.

**ସ୍ୱର୍ନଦୀ**—ସ. ବ (୬ଷ୍ଠୀ ତତ୍)—ସ୍ୱର୍ଗଙ୍ଗା; ସ୍ୱର୍ଣ୍ଣଦୀ (ଭରତ) Swarnadī The river Ganges said to flow in heaven.

**ସ୍ୱର୍ପତି**—ସଂ. ବ (୬ଷ୍ଠୀ ତତ୍, ସ୍ୱଃ+ପତି)—ଦେବରାଜ; ଇନ୍ଦ୍ର—Swarpati Indra.

ସ୍ୱବ(ର୍ବ)ଧୂ—ସ. ବ—(ପୁରାଣ)—୧ । ସ୍ୱର୍ଗୀୟା ସ୍ତ୍ରୀ—1 A
Swarba (rbba) dhū woman of heaven. ୨ ।
ଅପ୍ସରାମାନେ (ହେମଚନ୍ଦ୍ର)—2. The heavenly nymphs.

ସ୍ୱବା(ର୍ବା)ପୀ—ସ. ବ—ଗଙ୍ଗାନଦୀ (ହେମଚନ୍ଦ୍ର)—
Swarbā (rbbā) pi The Ganges,

ସ୍ୱବେ(ର୍ବେ)ଶ୍ୟା—ସଂ ବ—ଅପ୍ସରା—
Swarbe (rbbe) śyā The heavenly nymphs.

ସ୍ୱର୍ବୈଦ୍ୟ—ସ. ବ (୬ଷ୍ଠୀ ତତ୍)—୧ । ସ୍ୱର୍ଗରେ ଦେବତାମାନଙ୍କର
Swarbaidya ଚିକିତ୍ସକ—1. The physician of heaven. ୨। ଅଶ୍ୱିନୀକୁମାର ଦ୍ୱୟ—2 The twin brothers, Aświni Kumāras. [ଦ୍ର—ସଂସ୍କୃତରେ ଏହି ଶବ୍ଦ ନିତ୍ୟ ଦ୍ୱିବଚନ 'ସ୍ୱର୍ବୈଦ୍ୟୌ' ରୂପ ଧାରଣ କରେ; କାରଣ, ଅଶ୍ୱିନୀକୁମାରଦ୍ୱୟ ଯମଜ ।]

ସ୍ୱର୍ଭାନବ—ସଂ. ବ—ଗୋମେଦକ ମଣି—
Swarbhānaba Topaz; a species of gem.

ସ୍ୱର୍ଭାନୁ—ସ. ବ—୧ । (ସ୍ୱଃ=ସ୍ୱର୍ଗରେ+ଭାନୁ=କିରଣ ଯାହାର)—
Swarbhānu ରାହୁ (ଅମର)—1. The Ascending. Node. ୨ । (କାମ୍ୟ) ସତ୍ୟଭାମାଙ୍କ ଗର୍ଭଜାତ ଶ୍ରୀକୃଷ୍ଣଙ୍କର ଏକ ପୁତ୍ର (ହ. ଶ)—2. Name of a son of Śrikrushna.

ସ୍ୱର୍ଭାନୁ ସୂଦନ—ସଂ. ବ—ସୂର୍ଯ୍ୟ (ଶବ୍ଦକଳ୍ପଦ୍ରୁମ)—
Swarbhānu sūdana The sun.

ସ୍ୱର୍ଯାତ—ସଂ. ବଣ. ପୁଂ (ସ୍ୱଃ+ଯା ଧାତୁ+କର୍ତ୍ତି ତ)—ସ୍ୱର୍ଗତ (ଦେଖ)—
Swarjāta (ସ୍ୱର୍ଯାତା—ସ୍ତ୍ରୀ) Swargata (See).

ସ୍ୱର୍ଲୋକ—ସ. ବ—୧ । ସ୍ୱର୍ଗଲୋକ; ଦେବଲୋକ; ସୁରଲୋକ—
Swarloka 1. Heaven, the abode of the gods. ୨ । ସ୍ୱର୍ଗ (ଦେଖ)—
2. Swarga (See).

ସ୍ୱଲୀନ—ସଂ. ବ. ପୁଂ—ଦାନବବିଶେଷ—Name of a demon.
Swalina [ଦ୍ର—ଭଗୀରଥ ଗଙ୍ଗାଙ୍କୁ ମର୍ତ୍ତ୍ୟକୁ ଆଣିବା ସମୟରେ ବାଟରେ ଏ ଦାନବ ପର୍ବତରୂପ ଧାରଣ କରି ୧୦୦ ବର୍ଷକାଳ ଗଙ୍ଗାଙ୍କର ପଥରୋଧ କରିଥିଲା । ଭଗୀରଥ କୌଶିକଙ୍କୁ ଆରାଧନା କରିବାରୁ ସେ ତାଙ୍କୁ ଗୋଟିଏ ନାଗବାହନ ଦେଲେ । ଏହି ନାଗ ସ୍ୱଲୀନକୁ ନିବାରଣ କରିବାରୁ ଗଙ୍ଗାଙ୍କ ବାଟ ଫିଟିଲା—. (ବହ୍ନିପୁରାଣ ଗଙ୍ଗାବତରଣ)].

ସ୍ୱଳ୍ପ—ସଂ. ବଣ [ସୁ=ଅତି+ଅଳ୍ପ]—୧ । ଟିକିଏ—
Swalpa 1. A little. ୨ ଅତ୍ୟଳ୍ପ—
2. Very little. ୩ । ଅତିକ୍ଷୁଦ୍ର; ଅତି ଛୋଟ—
3. Very small. ୪ । ଅତି ସାମାନ୍ୟ—
[ସ୍ୱଳ୍ପତା(ତ୍ୱ)—ବ] 4. Very slight.

ସ୍ୱଳ୍ପ କନ୍ଦ—ସଂ. ବ (ବନ୍ଦ୍ୟୁଷ୍ମା)—କଶେରୁ—
Swalpa kanda Scirpus Grossus; Kysoor,

ସ୍ୱଳ୍ପ କାଷ୍ଠ—ସଂ. ବ. [ବନ୍ଦ୍ୟୁଷ୍ମା]—ଶଙ୍ଖ ଅଳୁ—
Swalpa kāshṭha (ହ. ଶ.)—Pachyrhinzus Augulatus.

ସ୍ୱଳ୍ପ କେଶରୀ(ର)—ସ. ବ (ସ୍ୱଳ୍ପ+କେଶର+ଇନ୍; ୧ମା. ୧ବ)—
Swalpa kesari(ra) କାଞ୍ଚନାର; କୋଲିଦାର ବୃକ୍ଷ (ରାଜନିର୍ଘଣ୍ଟ); କଞ୍ଚନ ଗଛ (ନାଲି ଓ ଧଳା)—Bauhinia Variegata tree.

ସ୍ୱଳ୍ପ କେଶ—ସ. ବ (କର୍ମଧା)—ଅତି ଅଳ୍ପ ବାଳ—Very few or
Swalpa kesha short hairs. ସ- ବଣ. ପୁଂ (ବହୁବ୍ରୀହି) (ସ୍ୱଳ୍ପକେଶା—ସ୍ତ୍ରୀ ବଣ) ସ୍ୱଳ୍ପକେଶୀ (ଦେଖ)—Swalpakeshi (See)

ସ୍ୱଳ୍ପ କେଶିନୀ—ସ. ବଣ. ସ୍ତ୍ରୀ (ସ୍ୱଳ୍ପ+କେଶ+ଇନ୍; ସ୍ତ୍ରୀ ଈ)—
Swalpa kesini ଅତ୍ୟଳ୍ପ କେଶବିଶିଷ୍ଟା (ସ୍ତ୍ରୀ)—Having a (ସ୍ୱଳ୍ପକେଶୀ—ପୁଂ) few or short hairs.

ସ୍ୱଳ୍ପକେଶୀ—ସ. ବ—୧ । ଭୂତକେଶ ନାମକ ଘାସ; ଧଳାଦୁବ—
Swalpakeśi 1. The white variety of Doob
ଅନ୍ୟ ସ. ନାମ—ଭୂତକେଶ, grass; creeping Cynodon.
ଦୂର୍ବା, ଶତପର୍ବା, ଗୋଲୋମୀ, ୨। ଗୋଲୋମୀ; ବଚ (ଶବ୍ଦଚନ୍ଦ୍ରିକା);
କେଶଧୂକ । ବଚ—2. The sweet flag;
Acorus Calamus. ସଂ ବଣ. ପୁଂ—ସ୍ୱଳ୍ପକେଶିନୀର ପୁଂଲିଙ୍ଗ—(a female) Having very few or short hairs.

ସ୍ୱଳ୍ପ ଚଟକ—ସଂ. ବ—ବାୟା ଚଢ଼େଇ—
Swalpa chaṭaka The weaver-sparrow.

ସ୍ୱଳ୍ପ ଜମ୍ବୁକ—ସଂ. ବ—କୋକଶିଆଳ (ହ. ଶ)—
Swalpa jambuka Fox.

ସ୍ୱଳ୍ପ ତରୁ(ବିଟପ)—ସଂ. ବ—କେମୁକ (ହ. ଶ)—
Swalpa taru(biṭapa) Cabbage; Costus Speciosus.

ସ୍ୱଳ୍ପ ଦୃଷ୍ଟି—ସଂ. ବଣ (ପୁଂ ଓ ସ୍ତ୍ରୀ) (ବହୁବ୍ରୀହି; ସ୍ୱଳ୍ପ ଅଟେ ଦୃଷ୍ଟି
Swalpa drushṭi ଯାହାର)—ଯାହାର ଦୃଷ୍ଟିଶକ୍ତି କ୍ଷୀଣ—Short-sighted.

ସ୍ୱଳ୍ପ ନଖ—ସଂ. ବ (ବୈଦ୍ୟକ)—ନଖୀ ୪ (ଦେଖ)
Swalpa nakha Nakhi 4 (See)

ସ୍ୱଳ୍ପ ପତ୍ରକ—ସଂ. ବ (ସ୍ୱଳ୍ପ+ପତ୍ର+କ)—(ବୈଦ୍ୟକ, ରତ୍ନମାଳା)
Swalpa patraka ଗୌରଶାକ; ମିଠୁଳ ଭେଦ; ପାହାଡ଼ୀ
ଅନ୍ୟ ସଂ ନାମ—ଗୌରଶାକମଧୁ } ଅ—A wild or hilly
ମଧୂଳ, ଗିରଜ । } plant.

ସ୍ୱଳ୍ପ ପର୍ଣ୍ଣୀ—ସଂ. ବ (ସ୍ୱଳ୍ପ+ପର୍ଣ୍ଣ+ଇନ୍)—ମେଦା ନାମକ ଅଷ୍ଟବର୍ଗୀୟ
Swalpa parṇṇi ଔଷଧ—A rare herb.

ସ୍ୱଳ୍ପ ଫଳା—ସଂ. ବ—ହପୁଷା ଭେଦ (ରାଜନିର୍ଘଣ୍ଟ); ମନୁଷ୍ୟକୃତ ଫଳ
Swalpa phalā ବିଶିଷ୍ଟ ଗୁଳ୍ମବିଶେଷ—Thueetia Nerifolia. [ଦ୍ର—ହପୁଷା ତଳେ ନୋଟ ଦେଖ ।]

ସ୍ୱଳ୍ପ ବର୍ତ୍ତୁଳ—ସଂ. ବ—ମଟର (ହ. ଶ)—
Swalpa barttula Pea.

ସ୍ୱଳ୍ପ ବଲ୍କଲା—ସଂ. ବି (ବହୁବ୍ରୀହି)—ତେଜବତୀ (ହି. ଶ) ବୃକ୍ଷ—
Swalpa balkalā The toothache tree.

ସ୍ୱଳ୍ପ ବିରାମ ଜ୍ୱର—ସଂ. ବି—ଯେଉଁ ଜ୍ୱରରେ ମଝିରେ ମଝିରେ
Swalpa birāma jwara ଅଳ୍ପକାଳ ପାଇଁ ଦେହର ତାପ କମିଯାଇ ପୁଣି ବଢ଼େ—A kind of remittant fever.

ସ୍ୱଳ୍ପ ଭାଷୀ—ସଂ. ବିଣ, ପୁଂ (ସ୍ୱଳ୍ପ ଭାଷିନ୍ ଶବ୍ଦ; ସ୍ୱଳ୍ପ+ଭାଷ୍ ଧାତୁ+କର୍ତ୍ତୃ
Swalpa bhāshi ଇନ୍)—ଯେ ଅତି ଅଳ୍ପ କଥା କହେ—
(ସ୍ୱଳ୍ପ ଭାଷିଣୀ—ସ୍ତ୍ରୀ) Speaking or talking very little.

ସ୍ୱଳ୍ପ ମାତ୍ର—ସଂ. ବି ଓ ବିଣ ପୁଂ ଓ କ୍ଲି. ବିଣ (ସ୍ୱଳ୍ପ+ମାତ୍ରା; ବହୁବ୍ରୀହି)—
Swalpa mātra ୧ । ଅତି ଅଳ୍ପ ମାତ୍ରାବିଶିଷ୍ଟ—1. Very in quantity. little. ୨ । ଅତି ଅଳ୍ପ—2. Very
(ସ୍ୱଳ୍ପମାତ୍ରା—ସ୍ତ୍ରୀ. ବିଣ) little.

ସ୍ୱଳ୍ପମାତ୍ରା—ସଂ. ବି (କର୍ମଧା)—ଅତି ଅଳ୍ପ ପରିମାଣ—Very small
Swalpamātrā quantity or dose. ସଂ. ବିଣ ସ୍ତ୍ରୀ—
ସ୍ୱଳ୍ପମାତ୍ରର ସ୍ତ୍ରୀ ଲିଙ୍ଗ—Feminine of Swalpa-matra.

ସ୍ୱଳ୍ପ ଶବ୍ଦା - ସଂ. ବି—ଶଣପୁଷ୍ପୀ (ହି. ଶ)—
Swalpa śabdā Crotolaria Juncia (plant).

ସ୍ୱ ଶବ୍ଦ ବାଚ୍ୟ ଦୋଷ—ସଂ. ବି—ରସ ଦୋଷ ବିଶେଷ—A defect
Swa śabda bāchya dosha in rhetoric, in which a particular sentiment is expressed by the very verbal expression which denotes that sentiment. [ଦ୍ର—ଯେତେବେ କୌଣସି ରସ ବା, ରସର ସ୍ଥାୟୀ ଭାବ ବା ବ୍ୟଭିଚାରୀ ଭାବ ସ୍ୱଶବ୍ଦ ଦ୍ୱାରା ବର୍ଣ୍ଣିତ ହୁଏ ତେବେ ସ୍ୱଶବ୍ଦବାଚ୍ୟ ଦୋଷ ହୁଏ ।

ଯଥା—ଗର୍ଜ୍ଜିରୁ ବିହ୍ୱଳ ହୋଇ ଛଟକେ ଛଡ଼ାଇ ଛଟପଟ ହେଲ ଭୂମେ, ରକ୍ତ ଭସ୍ତ ସ୍ରୋତ ଆଲଙ୍କାର ହସ୍ତ ପାଦ ଆଶିଙ୍ଗେ ଶିଙ୍ଗେ, ପେଶି ହୋଇ ଗଲେ ପଶୁ ଅଶେଷ ଅଶ୍ୱରଥେ ରଥ ଗଜେ ସେ ବିମର୍ଦ୍ଦେ, ଦୁଃଖର କର୍ଦ୍ଦମେ ମସ୍ତିଷ୍କ ଯକୃତ୍ ପ୍ଲୀହା ଅନ୍ତ୍ର ମାଂସ ବସା, ଭୂଦସ୍ୱାଦ ମିଶି ହେଲା ଅସହ୍ୟ ସେ କାଳେ ବୈରିବାର ବେଗ ଯୋଗ୍ୟ ବୀଭତ୍ସ ସାଜିଥି । ରାଧାନାଥ. ମହାଯାତ୍ରା । ବୀଭତ୍ସ ରସର ବର୍ଣ୍ଣନାରେ "ବୀଭତ୍ସ" ଶବ୍ଦର ଉଲ୍ଲେଖ ଦୋଷାବହ ।]

ସ୍ୱ ସର—ସଂ. ବି—୧ । ଗୃହ; ଘର (ହି. ଶ)—1. House. ୨ । ଦିନ
Swa sara (ହି. ଶ)—2. Day.

ସ୍ୱସା—ସଂ. ବି ସ୍ତ୍ରୀ (ସୁ=ଉତ୍ତମ+ଅସ୍ ଧାତୁ=ହେବା+କର୍ତ୍ତୃ ଋ;
Swa sā ସ୍ୱସୃ ଶବ୍ଦ; ୧ମା, ୧ବ)—୧ । ଭଗିନୀ; ଭଉଣୀ—1 Sister. ୨ । ତେଜବତୀ (ହି. ଶ)—2. The toothache tree.

ସ୍ୱସ୍କ୍ (ଧାତୁ) - ସଂ—ଗତି କରିବା—
Swask (root) To move.

ସ୍ୱସ୍ତି—(ସୁ=ଉତ୍ତମ+ଅସ୍ ଧାତୁ=ହେବା+ଭାବ ତି)—(ଆଶୀର୍ବାଦ,
Swasti ମଙ୍ଗଳ କାମନା ଆଦି ଉଦ୍ଦେଶ୍ୟରେ ବ୍ୟବହୃତ ଅବ୍ୟୟ ଶବ୍ଦ;—ତୁମ୍ଭର ମଙ୍ଗଳ ହେଉ ।) (Interjection used in benedictions and goodwishes;—God bless you!) ସଂ. ବି—୧ । ଆଶୀର୍ବାଦ—1. Blessing. ୨ । ପୁଣ୍ୟ—2. Piety. ୩ । କଲ୍ୟାଣ; ଶୁଭ; ମଙ୍ଗଳ—3. Auspiciousness; bliss. ୪। ସ୍ୱୀକାର—4. Consent. ୫ । ତୃପ୍ତି; ସନ୍ତୋଷ—5. Satisfaction; contentment. ୬। ଶାନ୍ତି—6. Peace. ୭ । ପୁରାଣାନୁସାରେ ବ୍ରହ୍ମାଙ୍କର ୩ ସ୍ତ୍ରୀଙ୍କ ମଧ୍ୟରୁ ଜଣେ (ହି.ଶ)—7.One of the 3 wives of Brahmā. ଅ. (ଅ)—୧ । ଆଶୀର୍ବାଦ ଓ ମଙ୍ଗଳକାମନା ବେଳେ ବ୍ୟବହୃତ ଶବ୍ଦ)—ତୁମ୍ଭର କଲ୍ୟାଣ ହେଉ—1. God bless you! ୨ । ମଙ୍ଗଳ କର୍ମରେ ସ୍ୱସ୍ତି ଶବ୍ଦଯୁକ୍ତ ମନ୍ତ୍ର 2. Holy formula with the word 'Swasti' used on auspicious occasions. ୩ । ଦାନ ସ୍ୱୀକାର ମନ୍ତ୍ର—3. A formula pronounced by a person while accepting a gift. [ଦ୍ର—ବ୍ରାହ୍ମଣ ଦାନ ଗ୍ରହଣ କରିସାରି 'ସ୍ୱସ୍ତି' 'ସ୍ୱସ୍ତି' 'ସ୍ୱସ୍ତି' ଏହି ମନ୍ତ୍ର ଉଚ୍ଚାରଣ କରନ୍ତି ।

ସଂସ୍କୃତରେ ଏହି ଶବ୍ଦ ଯୋଗେ ତତ୍ସମ୍ବନ୍ଧ ପଦର ଚତୁର୍ଥୀ ବିଭକ୍ତି ହୁଏ । ଯଥା—"ସ୍ୱସ୍ତ୍ୟାତ୍ରେୟ" (ମୁଗ୍ଧବୋଧ ବ୍ୟାକରଣ) ।

ଦେ. ବି—୧ । ମଙ୍ଗଳ—1. Good. [ଦ୍ର—ତାହା ଜାଣିପାରି ଏ ତିନି ବ୍ରାହ୍ମଣ, ବୋଇଲେ ହେଉ ସ୍ୱସ୍ତି ତବ ନରାୟଣ । କୃଷ୍ଣ ତା ଶୁଣି ଶ୍ରୀମ ସ୍ୱସ୍ତି ବୋଲିଲେ, ଯୁଦ୍ଧ ବୋଲି ତାହାଙ୍କୁ ବେଗେ ଆଜ୍ଞା ଦେଲେ—କୃଷ୍ଣସିଂହ. ମହାଭାରତ—ସଭା] ୨ । ମନର ଶାନ୍ତି; ଉଦ୍‌ବେଗହୀନତା—2.Peace of mind; freedom from anxiety. ୩ । ସ୍ୱଚ୍ଛନ୍ଦତା—3. Comfort. ୪ । ସନ୍ତୋଷ; ସୁଖ ଓ ଶାନ୍ତିମୟ ଅବସ୍ଥା—4. A state of happiness, peace and contentment. ୫ । ପତ୍ରାଦିର ଆରମ୍ଭରେ ଲେଖାଯିବା ମଙ୍ଗଳସୂଚକ ଶବ୍ଦ—5. A word written at the beginning of a letter.

ସ୍ୱସ୍ତିକ—ସଂ. ବି—(ସ୍ୱସ୍ତି+କ)—୧ । ମଙ୍ଗଳ ଦ୍ରବ୍ୟ—1. Auspi-
Swastika cious article. ୨ । ପିଠଉ ବା ଗୁଣ୍ଡଲ ଗୁଣ୍ଡା ନିର୍ମିତ ଏକ ପ୍ରକାର ଅଷ୍ଟଦ୍ରବ୍ୟ—2. An article made of rice paste used on the eve of auspicious occasions. [ଦ୍ର—ବିବାହାଦି ମଙ୍ଗଳ କାର୍ଯ୍ୟରେ ଏହା ତିଆରି ହୁଏ ଓ ଏହା ଦେବତାମାନଙ୍କ ନିବାସ ବୋଲି ବିବେଚିତ (ହି. ଶ)—୩ । ଚତୁଷ୍ପଥ; ଚଉଛକ—3. A meeting place of two

cross roads. ୩ । ଚଉକ; ଚଉକ—4. A square; a courtyard. ୪ । ଏକ ପ୍ରକାର ଗୃହ (ମେଦିନୀ)—5. A sort of house facing east and having varandas on two sides and portico on the front. [ଦ୍ର—ଏ ଗୃହର ଦୁଆର-ମୁହଁ ପୂର୍ବକୁ ଓ ଏଥିର ସାମନାରେ ଓ ଦୁଇପାଖରେ ବରଣ୍ଡା ବା ଅଳନ୍ଦ ଥାଏ (ଭରତ); ଯେଉଁ ଘରର ଦୁଇପାଖରେ ବରଣ୍ଡା ଓ ସାମନା ପାଖରେ ଶୁନ୍ଦନୀ ବା ଗାଡ଼ି-ବରଣ୍ଡା ଥାଏ, ମତାନ୍ତରରେ, ଯେଉଁ ଘରର ପଶ୍ଚିମାଂଶରେ ଗୋଟିଏ ଦାଲାଣ (ମେଲା) ଓ ପୂର୍ବାଂଶରେ ଦୁଇଟି ଦାଲାଣ ଥାଏ, ତାକୁ ସ୍ୱସ୍ତିକ ବୋଲାଯାଏ । ଏ ଘରେ ରହିବା ଗୃହସ୍ଥଙ୍କର ମଙ୍ଗଳ ବା ସ୍ୱସ୍ତି ହୁଏ ବୋଲି ଏଥିର ଏହି—ନାମ (ହି. ଶ)—୬ । ପିଷ୍ଟକ ବନାଇ (ବଣ୍ଡ); ପିଠଉ—6. A paste for pastry cakes. ୭ । (ପୁଂ) ଲଡ଼ ଚାଲକ (ବ୍ରଣ୍ଡ); ଷିଡ଼ଗ—7. A panderer; a

(ସ୍ୱସ୍ତିକା—ସ୍ତ୍ରୀ) person who procures women for a gallant. ୮ । ବୁଦ୍ଧଦେବଙ୍କର ଚରଣର ଛାପ; ବୌଦ୍ଧମାନଙ୍କର ଚତୁର୍ବିଂଶତି ଚିହ୍ନାନ୍ତର୍ଗତ ଚିହ୍ନ ବା ଧ୍ୱଜ-ବିଶେଷ (ତ୍ରିକାଣ୍ଡ ଶେଷ)—8. A print of the footsteps of the Buddha borne on the flag of the Buddhists. [ଦ୍ର—ବୌଦ୍ଧମାନଙ୍କର ଚତୁର୍ବିଂଶତି ଚିହ୍ନ—ବୃଷ, ଗଜ, ଅଶ୍ୱ, ପ୍ଲବଗ, କ୍ରୌଞ୍ଚ, ଅବ୍ଜ, ସ୍ୱସ୍ତିକ, ଶଶୀ, ମକର, ଶ୍ରୀବତ୍ସ, ଖଡ଼୍ଗୀ, ମହିଷ, ଶୂକର, ଶ୍ୟେନ, ବଜ୍ର, ମୃଗ, ଛାଗ, ନନ୍ଦ୍ୟାବର୍ତ୍ତ, ଘଟ, କୂର୍ମ, ନୀଳୋତ୍ପଳ, ଶଙ୍ଖ, ଫଣୀ ଓ ସିଂହ ।]—୯ । ସିତାବର ଶାକ (ରାଜ ନିର୍ଘଣ୍ଟ); ସୁନୁସୁନିଆଁ ଶାଗ—9. Blepharis Edulis (a potherb) ୧୦। ସ୍ୱସ୍ତିକାସନ; ଯୋଗାଙ୍ଗା-ସନ ବିଶେଷ—10. One of the seats prescribed for joga exercise. [ଦ୍ର—ଏହି ଆସନରେ ବସିଲେ ହଠଯୋଗୀ ସାଧକଙ୍କୁ ସ୍ୱସ୍ତି ବା ଆରାମ ବୋଧହୁଏ । ଏ ଆସନରେ ଦୁଇ ଗୋଡ଼ର ଗୋଇଠିକୁ ଯଥାକ୍ରମେ ଗୁହ୍ୟ-ଦ୍ୱାର ଓ ଉପସ୍ଥ ନିକଟରେ ରଖି ଓ ଦୁଇ ପାଦକୁ ବିପରୀତ ଜଙ୍ଘରେ ନ୍ୟସ୍ତ କରି ସାଧକ ଠେକା ପକାଇ ଦେହକୁ ସରଳ ଭାବରେ ରଖି ବସନ୍ତି ।] ୧୧ । ସର୍ପଫଣା—11. The expanded hood of a serpent. ୧୨ । ସର୍ପଫଣାକୃତି ଅଞ୍ଜଳି—12. Palms of the hand folded like the expanded hood of a serpent. ୧୩ । ପ୍ରାଚୀନ କାଳରେ ବ୍ୟବହୃତ ଶଲ୍ୟୋଦ୍ଧାରଣ ଯନ୍ତ୍ର ବିଶେଷ—13. A kind of surgical instrument used in ancient India for drawing out an arrow or foreign body from a wound. [ଦ୍ର—ଏ ଯନ୍ତ୍ର ୧୮ ଅଙ୍ଗୁଳ ପର୍ଯ୍ୟନ୍ତ ଲମ୍ବ ଓ ସିଂହ, ଶୃଗାଳ, ମୃଗଆଦିଙ୍କ ଆକାର ଅନୁସାରେ ଏ ଯନ୍ତ୍ର ୧୮ ପ୍ରକାର (ହି· ଶ) ।] ୧୪ । ଶୁଭସୂଚକ ଚିହ୍ନବିଶେଷ; ଜକ୍ରଚିହ୍ନ—14. A conventional sign, viz ↓卍 [ଦ୍ର—ପ୍ରାଚୀନ-କାଳରେ ଏହି ଶୁଭସୂଚକ ଚିହ୍ନ ବିବାହାଦି ଉତ୍ସବରେ ମାଙ୍ଗଳିକ ଦ୍ରବ୍ୟମାନଙ୍କ ଉପରେ ଅଙ୍କିତ ହେଉଥିଲା । ଆଜିକାଲି କେତେକ ପାଶ୍ଚାତ୍ୟ ଜାତି (ଯଥା, ଜର୍ମାନ୍) ଏ ଚିହ୍ନକୁ ମଧ୍ୟ ବ୍ୟବହାର କରୁଅଛନ୍ତି । ଥିଓଜଫି (Theosophy) ବା ବ୍ରହ୍ମବିଦ୍ୟାର ଏକତର ପ୍ରତିଷ୍ଠାତ୍ରୀ ମାଡାମ୍ ବ୍ଲାଭାସ୍କୀ (Madam B'av sky ତାଙ୍କ ସଙ୍କଳିତ ଗୁପ୍ତ-ବାଦ (The Secret Doctrine) ନାମକ ଗ୍ରନ୍ଥରେ (୧ମ ଖଣ୍ଡ ୭୨-୭୩ ପୃଷ୍ଠା, ୩ୟ ଖଣ୍ଡ ୧୦୭।୧୦୮ ପୃଷ୍ଠା, ୪ର୍ଥ ଖଣ୍ଡ ୧୫୭-୧୫୮ ପୃଷ୍ଠା) ପୃଥିବୀର ପ୍ରାୟ ସବୁ ପ୍ରାଚୀନ ଧର୍ମାବ-ଲମ୍ବୀମାନଙ୍କ ଶାସ୍ତ୍ରବଚନମାନ ଉଦ୍ଧାର କରି ପ୍ରମାଣ କରି ଅଛନ୍ତି ଯେ, ଏ ଚିହ୍ନ ପ୍ରାଚ୍ୟ ପାଶ୍ଚାତ୍ୟ ସବୁ ପ୍ରାଚୀନ ଧର୍ମ (ଯଥା—ହିନ୍ଦୁ, ଜୈନ, ବୌଦ୍ଧ, ଖ୍ରୀଷ୍ଟାନ, ମିଶରୀୟ) ରେ ଅନନ୍ତକାଳ(eternity)ର ପ୍ରତୀକରୂପେ ଗୃହୀତ ହୋଇଥିଲା ଓ ସବୁ ଦେଶବାସୀମାନେ ଏହାକୁ ମଙ୍ଗଳମୟ ଚିହ୍ନରୂପେ ଗ୍ରହଣ କରିଥିଲେ ।]
୧୫। ରସୋନ; ରସୁଣ (ତ୍ରିକାଣ୍ଡଶେଷ)—15. Garlic. ୧୬। ରକ୍ତାଳୁ (ହି·ଶ)—16. The red variety of yam. ୧୭ । ମୂଳା (ହି.ଶ)—17. Radish. ୧୮ । (ସାମୁଦ୍ରିକ) କେତେକ ବ୍ୟକ୍ତିଙ୍କ ଶରୀରରେ ପ୍ରକାଶିତ ଶୁଭକର ସ୍ୱସ୍ତିକ ଚିହ୍ନ (ହି· ଶ) —18. A sign like Swastika found on the limbs of some persons. ୧୯ । ଘାଆ ଓ ବଥ ଆଦି ବନ୍ଧାଯିବା ଏକ ପ୍ରକାର ପଟି (ହି.ଶ)—19. A kind of bandage tied on boils and sores. ୨୦ । ସର୍ପଫଣା ଉପରେ ଥିବା ନୀଳବର୍ଣ୍ଣ ରେଖା (ହି, ଶ)—20. Blue line on a serpent's hood. ୨୧ । ପ୍ରାଚୀନକାଳରେ ରାଜାଙ୍କ ବ୍ୟବହାର୍ଯ୍ୟ ଉତ୍କୃଷ୍ଟ ନୌକା (ହି. ଶ)—21. A kind of excellent royal barge used in ancient India.

ସ୍ୱସ୍ତିକା—ସଂ. ବି—(ହି· ଚମେଲି)—ଜାଇଫୁଲ—Catalonain or Spanish jasmine.
Swastikā

ସ୍ୱସ୍ତିକାସନ—ସଂ. ବି—ଯୋଗ ଶାସ୍ତ୍ରୋକ୍ତ ଆସନ ବିଶେଷ—A kind of sitting posture prescribed in joga exercise. [ଦ୍ର—ଏଥିରେ ସାଧକ ଠେକା ପକାଇ ବା ପଦ୍ମାସନ କରି ବସିବାବେଳେ ଦୁଇ ଗୋଇଠିକୁ ଯଥାକ୍ରମେ ଗୁହ୍ୟ ଓ ଉପସ୍ଥ ଉପରେ ରଖି ଡାହାଣପାଦକୁ ବାଆଁ ଜଙ୍ଘକୁ ଓ ବାଆଁ ପାଦକୁ ସଙ୍ଗେ ଡାହାଣ ଜଙ୍ଘକୁ ଲଗାଇ ଦେହକୁ ସରଳ ଭାବରେ ରଖି ଯୋଗ ସାଧନ କରନ୍ତି । (ଯୋଗଶାସ୍ତ୍ର)]
Swastikāsana

ସ୍ୱସ୍ତିକୃତ୍—ସଂ. ବଣ (ପୁଂ ଓ ସ୍ତ୍ରୀ) ( ସ୍ୱସ୍ତି+କୃ ଧାତୁ+ କର୍ତ୍ତୃ କ୍ୱିପ୍)—
Swastikrut କଲ୍ୟାଣକାରୀ—Doing good. ସଂ. ବ—
ଶିବ (ହୃ. ଶ)—Siba.

ସ୍ୱସ୍ତିଘୋଷ—ସଂ. ବ—ଦକ୍ଷିଣା ପାଇବା ବ୍ରାହ୍ମଣମାନଙ୍କର ସ୍ୱସ୍ତି ଶବ୍ଦ
Swastighosa ଉଚ୍ଚାରଣ—Utterance of the word
'Swasti' by Brāhmaṇas on receiving
gifts. (ଉ—ଦକ୍ଷିଣା ପାଇ ଦ୍ୱିଜେ ସ୍ୱସ୍ତି ଘୋଷ କଲେ ।
ସେ ଶବଦେ ଆକାଶ ମଣ୍ଡଳ ମଣ୍ଡିଲେ । କୃଷ୍ଣସିଂହ
ମହାଭାରତ—ସଭା)

ସ୍ୱସ୍ତିବାଚ—ଦେ. ବ—ସ୍ୱସ୍ତିବାଚନ (ଦେଖ)—
Swastibācha Swastibāchana (See)
(ଉ—ଜଳପାତ୍ର ଦେଇ ଯେ କରାଏ ସ୍ୱସ୍ତିବାଚ—କୃଷ୍ଣସିଂହ
ମହାଭାରତ—ବନ )

ସ୍ୱସ୍ତିବାଚକ—ସଂ. ବଣ. ପୁଂ ( ସ୍ୱସ୍ତି+ବଚଧାତୁ+କର୍ତ୍ତୃ ଅକ )—୧।
Swastibāchaka ସ୍ୱସ୍ତି ଶବ୍ଦ ଉଚ୍ଚାରଣକାରୀ—1. Uttering
the word Swasti. ୨। ଆଶୀର୍ବାଦକ—2. Blessing.

ସ୍ୱସ୍ତିଦ—ସଂ. ବଣ. ପୁଂ—(ସ୍ୱସ୍ତି+ଦା ଧାତୁ+କର୍ତ୍ତୃ ଅ)—କଲ୍ୟାଣଦାୟକ
Swastida Giving bliss. (ସ୍ୱସ୍ତିଦା—ସ୍ତ୍ରୀ) ସଂ. ବ. ପୁଂ
ଶିବ (ହୃ. ଶ)—Siba.

ସ୍ୱସ୍ତିବାଚନ—ସଂ. ବ—ମାଙ୍ଗଲ୍ୟ କର୍ମାରମ୍ଭରେ 'ସ୍ୱସ୍ତି ! ସ୍ୱସ୍ତି !' ମନ୍ତ୍ର
Swastibāchana ଉଚ୍ଚାରଣ ପୂର୍ବକ ଅକ୍ଷତ ବିକୀରଣ ଓ ଦେବତାଙ୍କର ଆଶୀର୍ବାଦ ପ୍ରାର୍ଥନା—The utterance of
certain formula beginning with 'Swasti'
and invoking blessing of the gods and
sprinkling rice while beginning any
auspicious ceremony. (ଉ—ଡକାଇ ଦ୍ୱିଜ
ସ୍ୱସ୍ତିବାଚନ କରାଅ, ଭୂଞ୍ଜିଦଙ୍କୁ ପୀଡା ଦେବାପାଇଁ ଯାଅ—
କୃଷ୍ଣସିଂହ. ମହାଭାରତ—ସଭା)
(ଉ—ସ୍ୱସ୍ତିବାଚନ ମନ୍ତ୍ର ଯଥା—କର୍ମକର୍ତ୍ତା କହିବେ
'ସ୍ୱସ୍ତି ପୁଣ୍ୟାହଂ ଭବନ୍ତୋ ଅମୁକ କର୍ମଣି ସ୍ୱସ୍ତି ବ୍ରୁବନ୍ତୁ;'
ବ୍ରାହ୍ମଣମାନେ କହିବେ 'ଏବମସ୍ତୁ, ଭଦ୍ରମସ୍ତୁ'; କର୍ମକର୍ତ୍ତା
କହିବେ 'ଉଚ୍ୟତାଂ'; ବ୍ରାହ୍ମଣମାନେ କହିବେ
'ଗୋବ୍ରାହ୍ମଣାନାଂ ପ୍ରଜା ପ୍ରଜାନାଂ ଶାନ୍ତିର୍ଭବତୁ ।
ସ୍ୱସ୍ତି ନ ଇନ୍ଦ୍ରୋ ବୃଦ୍ଧଶ୍ରବାଃ
ସ୍ୱସ୍ତି ନଃ ପୂଷା ବିଶ୍ୱଦେବାଃ
ସ୍ୱସ୍ତି ନସ୍ତାର୍କ୍ଷ୍ୟୋଽରିଷ୍ଟନେମିଃ
ସ୍ୱସ୍ତି ନୋ ବୃହସ୍ପତିର୍ଦଧାତୁ ।'
ଏହା ବୋଲି ଭୂମିରେ ତଣ୍ଡୁଳ ବୁଣିବେ ।)

ସ୍ୱସ୍ତିବାଚନିକ—ସଂ. ବଣ—୧। ସ୍ୱସ୍ତିବାଚନ ସମ୍ବନ୍ଧୀୟ—1. Relating
Swastibāchanika to 'swastibāchana'
୨। ସ୍ୱସ୍ତିବାଚନଉଚ୍ଚାରଣକାରୀ—2. Reciting the
'swastibāchana' formula

ସ୍ୱସ୍ତିମୁଖ—ସଂ. ବ—(ବହୁବ୍ରୀହି, ସ୍ୱସ୍ତି ଶବ୍ଦ ଅଛି ମୁଖରେ ଯାହାଙ୍କର)—୧।
Swasti mukha ବ୍ରାହ୍ମଣ (ମେଦିନୀ)—1. A Brāhmaṇa.
୨। ବନ୍ଦୀ; ଭାଟ (ମେଦିନୀ)—2. A herald; a
paregyrist. ୩। (ଲିପି ଆଦର ଆରମ୍ଭରେ ସ୍ୱସ୍ତି ଶବ୍ଦ
ଲେଖିବାର ବିଧି ଥିବାରୁ) ଲିପି; ଲେଖ; ପତ୍ର (ମେଦିନୀ)—
3. A letter.

ସ୍ୱସ୍ତ୍ୟାନ—ଗ୍ରା. ବ. (ପଦ୍ୟ) ସ୍ୱସ୍ତ୍ୟୟନ (ଦେଖ)—Swastyayana
Swastyana (See)
स्वस्त्ययन स्वस्तैन [ଉ—ଭୂତଙ୍କୁ ଦେଇ ଭୂତବଳି, ସ୍ୱସ୍ତ୍ୟାନ କଲେ
ଦ୍ୱିଜେ ମିଳି । ଜଗନ୍ନାଥ. ଭାଗବତ ।]

ସ୍ୱସ୍ତ୍ୟୟନ—ସଂ. ବ (ବହୁବ୍ରୀହି; ସ୍ୱସ୍ତି=ମଙ୍ଗଳ+ଅ+ଇ ଧାତୁ+
Swastyayana ଭାବ, ଅନ)—୧। କୁଗ୍ରହଙ୍କ ଶାନ୍ତି କରିବା ପାଇଁ
ଅନୁଷ୍ଠିତ ହୋମାଦି ମଙ୍ଗଳ କର୍ମ; ଗ୍ରହଯାଗ—
1.Oblations unto fire made for propitiating evil planets. ୨। ଦାନଗ୍ରହୀତା ବ୍ରାହ୍ମଣମାନଙ୍କ
ଦ୍ୱାରା ସ୍ୱସ୍ତିବାଚନ ପୂର୍ବକ ଆଶୀର୍ବାଦ—2. Blessings
uttered by Brāhmaṇas on accepting
gifts. [ଉ—ସୁବେଷ୍ଟିତ ଆଦି ମଙ୍ଗଳପ୍ରଦ ଜନ, ପାଶରେ
ଥାଇ କହନ୍ତି ଟିକ ସ୍ୱସ୍ତ୍ୟୟନ । କୃଷ୍ଣସିଂହ. ମହାଭାରତ. ସଭା]

ସ୍ୱସ୍ଥ—ସଂ. ବଣ. ପୁଂ(ସ୍ୱସ୍ଥା+ଧାତୁ+କର୍ତ୍ତୃ.ଅ)—୧। ସୁସ୍ଥ (ଦେଖ ମାହାତ୍ମ୍ୟ)
Swastha —1. Hale; in enjoyment of
(ସ୍ୱସ୍ଥା—ସ୍ତ୍ରୀ) health. ୨। ନିରୁଦ୍ୱିଗ୍ନ—2. Free from
(ସ୍ୱସ୍ଥତା—ବ) anxiety. ୩। ସନ୍ତୁଷ୍ଟଚିତ୍ତ—3. Contented.

ସ୍ୱସ୍ଥ ଚିତ୍ତ—ସଂ. ବଣ. ପୁଂ—ଯାହାର ଚିତ୍ତ ସ୍ୱସ୍ଥ ବା ଶାନ୍ତ ହୋଇଅଛି—
Swastha chitta With the mind tranquilised.
(ସ୍ୱସ୍ଥ ଚିତ୍ତା—ସ୍ତ୍ରୀ) (ସ୍ୱସ୍ଥ ଚେତାଃ—ଅନ୍ୟ ବଣ. ରୂପ)

ସ୍ୱସ୍ରୀୟ—ସଂ.ବ. ପୁଂ (ସ୍ୱସୃ+ଅପତ୍ୟାର୍ଥେ, ଇୟ)—ଭଗିନେୟ; ଭଣଜା
Swasriya Sister's son.
(ସ୍ୱସ୍ରୀୟା—ସ୍ତ୍ରୀ) ସଂ. ବଣ—ଭଗିନୀ ସମ୍ବନ୍ଧୀୟ—Relating to
a sister; sisterly.

ସ୍ୱସ୍ରୀୟ ବଧୂ—ସଂ. ବ. ସ୍ତ୍ରୀ ( ୬ଷ୍ଠୀ ତତ୍ )—ଭଣଜା ବୋହୂ—The
Swasriya badhū wife of one's sister's son.

ସ୍ୱସ୍ରୀୟା—ସଂ. ବ. ସ୍ତ୍ରୀ (ସ୍ୱସ୍ରୀୟ+ଆ)—ଭଗିନେୟୀ; ଭଣଜୀ—
Swasriyā One's sister's daughter.

ସ୍ୱ ହସ୍ତ—ସଂ. ବ (୬ଷ୍ଠୀ ତତ୍)—ନିଜର ହାତ—
Swa hasta One's own hand.

ସ୍ୱହସ୍ତ ପାକ—ସଂ. ବ (୩ୟା ତତ୍)—ନିଜର ହାତରେ ରନ୍ଧନ—
Swahasta pāka Cooking by one's own hand.

ସ୍ୱହସ୍ତ ଲିପି(ଲେଖ)—ସଂ. ବ ( ୬ଷ୍ଠୀ ତତ୍ )—ନିଜର ହସ୍ତାକ୍ଷର—
Swahasta lipi(lekha) One's own handwriting.

ସ୍ୱହସ୍ତାଙ୍କିତ—ସଂ. ବଣ (୩ୟା ତତ୍)—ନିଜର ହାତଦ୍ୱାରା ଲେଖା—
Swahastāṅkita Written by one's self.

ସ୍ୱ ହିତ—ସଂ. ବି (ଷଷ୍ଠୀ ତତ୍)—ନିଜର ମଙ୍ଗଳ—
Swa hita 'One's good.

ସ୍ୱାଇ—ଦେ. ବି ( ସଂ ସପାଦ )—୧ । ପୁଅଇ; କରଜ ଦିଅଯିବା ଧାନ
Swāi ଉପରେ ଆଦାୟ କରାଯିବା ½ ପରିମିତ ସୁଧ—
ପାଇ 1. Interest at the rate of 25 per cent on
ସବାଇ, ସୱାଆ paddy lent as loan.
[ଦ୍ର—ଦୋଳପୂର୍ଣ୍ଣିମାଠାରୁ ପରବର୍ତ୍ତୀ ଧାନ ଫସଲ ଅମଦାନି ହେବା ପର୍ଯ୍ୟନ୍ତ ଯେଉଁ ଖାତକମାନେ ଧାନ କରଜ ନିଅନ୍ତି ସେମାନଙ୍କଠାରୁ ପରବର୍ତ୍ତୀ ଧାନ ଫସଲ ଅମଦାନି ହେଲାରୁ କରଜ ନିଆଯାଇ ଥିବା ଧାନ ଓ ତହିଁର ସୁଧ ½ ହିସାବରେ ଆଦାୟ କରାଯାଏ । ସେ ବର୍ଷ ସୁଝି ନ ପାରିଲେ ତହିଁ ଆର ବର୍ଷକୁ ଉକ୍ତ ସୁଧ ଓ ମୂଳ ଧାନ ମୂଳରୂପେ ପରିଗଣିତ ହୋଇ ତହିଁ ଉପରେ ଚକ୍ରବୃଦ୍ଧି ସୁଧ ନିଆଯାଏ । ଏହାକୁ ସ୍ୱାଇ କରଜ ବା ପୁଅଇ କରଜ କହନ୍ତି । ପୂର୍ବେ ଧାନ ମହାଜନମାନେ ½ ହାରରେ ସୁଧ ନେଉଥିଲେ । ସେଥିପାଇଁ ଏହାକୁ କେତେ ଅଞ୍ଚଳରେ ଦେଢ଼ି କୁହାଯାଏ । ଏଠାରେ ଅଉ ଗୋଟିଏ କଥା ବକ୍ତବ୍ୟ ଏହି ଯେ, ସ୍ୱାଇର ଅର୍ଥ ସଉଅ ବା ୧½, କିନ୍ତୁ ଭାଷାରେ 'ସ୍ୱାଇ' ଶବ୍ଦ କେବଳ ଏକ ଚତୁର୍ଥାଂଶ ଅର୍ଥରେ ବ୍ୟବହୃତ ହୁଏ । ] ୨ । ଏକ ଚତୁର୍ଥାଂଶ—
2. One fourth

ସ୍ୱାଇଁ—ଦେ. ବି ( ସଂ. ସ୍ୱାମୀ )—କେତେକ କୃଷକ ଓ ବଳରାମଗୋତ୍ରୀ
Swāiñ ବ୍ରାହ୍ମଣଙ୍କ ବଂଶୋପାଧି—A family-title of some cultivators and Balarāma Gotri Brāhmaṇas.

ସ୍ୱାଇ ସୁଦ(ଧ)—ଦେ. ବି—ମୂଳ ଧନର ଏକ ଚତୁର୍ଥାଂଶ ସୁଦ—
Swāi suda(dha) Interest at 25 percent.

ସ୍ୱାକ୍ଷ ପାଦ—ସଂ. ବି (ସ୍ୱ+ଅକ୍ଷ ପାଦ)—ନୈୟାୟିକ (ନ୍ୟାୟଧର)—
Swāksha pāda A logician.

ସ୍ୱାକ୍ଷର—ସଂ. ବି (ଷଷ୍ଠୀ ତତ୍)—୧ । ଦସ୍ତଖତ; ସହି; ଦଲିଲ ଓ ପତ୍ର
Swākshara ଅନ୍ତରେ ଅପଣାର ନାମ ଦସ୍ତଖତ୍—1. Signature. ୨ । ନିଜର ହସ୍ତାକ୍ଷର—2. One's own handwriting.

ସ୍ୱାକ୍ଷରକାରୀ—ସଂ. ବିଣ. ପୁଂ—କୌଣସି ଲେଖାରେ ଯେ ସ୍ୱାକ୍ଷର କରି
Swāksharakāri ଅଛନ୍ତି—One who has signed a
(ସ୍ୱାକ୍ଷରକାରିଣୀ—ସ୍ତ୍ରୀ) writing.

ସ୍ୱାକ୍ଷରିତ—ସଂ. ବିଣ ( ସ୍ୱାକ୍ଷର+ଇତ )—ସ୍ୱାକ୍ଷରଯୁକ୍ତ; ଦସ୍ତଖତ୍—
Swāksharita Containing one's signature; signed by a person.

ସ୍ୱାଗତ—ସଂ. ବି ( ସୁ+ଅଗତ )—୧ । ସୁଖରେ ଅସି ପହଞ୍ଚିବା—
Swāgata 1. Safe arrival. ୨ । ଶୁଭାଗମନ—2. Welcome; auspicious arrival. ୩ । କୁଶଳ—3. Weal; well being. ୪ । ଅଗନ୍ତୁକ ବଶିଷ୍ଟ ବ୍ୟକ୍ତିଙ୍କୁ କରାଯିବା ଅଭିନନ୍ଦନ; ଅଭ୍ୟର୍ଥନା—4. Welcoming of a newly arrived honoured person. ସଂ. ଅ (ସଂ. ସ୍ୱାଗତଂ)—(ଅଗନ୍ତୁକ ବ୍ୟକ୍ତିଙ୍କୁ ଅଭ୍ୟର୍ଥନା କରିବା ଉପଲକ୍ଷରେ ଉଚ୍ଚାରିତ ଶବ୍ଦ) ଆପଣ ସର୍ବଶୁଭରେ ଅସି ପହଞ୍ଚିଲେ ତ ? ଆପଣଙ୍କର ଶୁଭାଗମନ ହେଲା ତ ? ଆପଣଙ୍କ ଶୁଭାଗମନରେ ମୁଁ ଅପ୍ୟାୟିତ ହେଲି—Interjection—(a word uttered to welcome a guest)—Hail!
(ସ୍ୱାଗତା—ସ୍ତ୍ରୀ) Welcome! ସଂ. ବିଣ. ପୁ—କୁଶଳରେ ଅଗତ
Arived safely.

ସ୍ୱାଗତ ଜିଜ୍ଞାସା(ପ୍ରଶ୍ନ)—ସଂ. ବି—ସ୍ୱାଗତ ରୂପ ପ୍ରଶ୍ନ; ଆଗନ୍ତୁକ
Swāgata jijñāsā(praśna) ବ୍ୟକ୍ତିଙ୍କୁ କୁଶଳ ପ୍ରଶ୍ନ (ଯଥା—ଆପଣଙ୍କର ସର୍ବଶୁଭ ତ ? ଆପଣ ନିର୍ବିଘ୍ନରେ ଆସିଲେଟିକି ?)—Enquiry about the well-being or safe journey of a newly arrived honoured guest.

ସ୍ୱାଗତ ପତିକା(ଭର୍ତ୍ତୃକା)—ସଂ. ବି, ସ୍ତ୍ରୀ—( ବହୁବ୍ରୀହି, ସ୍ୱାଗତ+ପତି;
Swāgata patikā (bharttṛukā) ଭର୍ତ୍ତୃ+କ+ଅ)—
ଏକ ଶ୍ରେଣୀର ନାୟିକା; ଆପଣାର ପତି ବିଦେଶରୁ ଫେରି ଅସିବା ସମୟରେ ତାଙ୍କୁ ପ୍ରସନ୍ନ ଚିତ୍ତରେ ଅଭ୍ୟର୍ଥନାକାରିଣୀ ନାୟିକା (ହି. ଶ)—(a class of heroines in a plot) A woman who welcomes her husband returning home after a long sojourn

ସ୍ୱାଗତପ୍ରିୟ—ସ.ବି. ପୁଂ—(ବହୁବ୍ରୀହି; ସ୍ୱାଗତ+ପ୍ରିୟା)—ଏକଶ୍ରେଣୀର
Swāgatapriyā ନାୟକ; ବିଦେଶରୁ ଫେରି ଆସି ପତ୍ନୀଙ୍କ ପ୍ରତି ପ୍ରସନ୍ନ ନାୟକ (ହି. ଶ)—(a clsas of heroes in a plot) A husband who assumes a very pleasant attitude to his wife on meeting her after his long sojourn.

ସ୍ୱାଗତ ସମ୍ଭାଷଣ—ସ. ବି.—ଅଗନ୍ତୁକ ବ୍ୟକ୍ତିଙ୍କୁ ଭେଟିଲା ବେଳେ ସ୍ୱାଗତ
Swāgata sambhāshaṇa ଜିଜ୍ଞାସା ପୂର୍ବକ ଅଭିନନ୍ଦନ—
Words of welcome addressed to an honoured guest on meeting him.

ସ୍ୱାଗତିକ—ସ. ବିଣ. ପୁଂ—(ସ୍ୱାଗତ+ଇକ)—ସ୍ୱାଗତକାରୀ; ସମାଗତ
Swāgatika ବ୍ୟକ୍ତିଙ୍କୁ ସାଦର ସମ୍ଭାଷଣକାରୀ—( a person )
(ସ୍ୱାଗତିକା—ସ୍ତ୍ରୀ) Welcoming a guest.

ସ୍ୱାଗମ—ସ. ବି—(ସୁ+ଆଗମ)—ସ୍ୱାଗତ (ଦେଖ)—Swāgata.
Swāgama (See)

ସ୍ୱାଙ୍କିକ—ସ, ବି (ସ୍ୱ+ଅଙ୍କ+ଇକ)—ମାର୍ଦ୍ଦଙ୍ଗିକ (ଶବ୍ଦ ରତ୍ନାବଳୀ);
Swāṅkika (ସ୍ୱାଙ୍କିକା—ସ୍ତ୍ରୀ) ଯେଉଁ ବ୍ୟକ୍ତି ମୃଦଙ୍ଗ ବଜାନ୍ତି—
A person who plays on 'Mṛudaṅga' or earthen drum.

ସ୍ୱାଙ୍ଗ—ସ, ବି—(ସ୍ୱ+ଅଙ୍ଗ) -ନିଜର ଅଙ୍ଗ—One's limb or
Swāṅga body.

ସ୍ୱାଚ୍ଛନ୍ଦ୍ୟ—ସଂ. ବି.-(ସ୍ୱଚ୍ଛନ୍ଦ+ଭାବ ଯ)—୧ । ସ୍ୱଚ୍ଛନ୍ଦତା; ଅସ୍ୱସ୍ଥ—
Swāchchhandya 1. Comfort; ease; feeling of ease. ୨ । ସ୍ୱାସ୍ଥ୍ୟ—2. Health. ୩ । ସ୍ୱାଧୀନତା—3. Independence.

ସ୍ୱାଜନ୍ୟ—ସଂ. ବି (ସ୍ୱଜନ+ଭାବ ଯ)—ସ୍ୱଜନତା—The state of being a Swajana.
Swājanya

ସ୍ୱାଜୀବ (ବ୍ୟ)—ସଂ. ବିଣ [ଜୀବୁଆହ; ସୁ+ଆଜୀବ(ବ୍ୟ)]—ଯେଉଁ
Swājiba(bya) ସ୍ଥାନରେ ବା ଦେଶରେ କୃଷିବାଣିଜ୍ୟାଦି ଜୀବିକା ସୁଲଭ ଅଟେ (ବୃ. ଶ)—(a place) Where it is easy to get a living.

ସ୍ୱାତନ୍ତ୍ର୍ୟ—ସଂ. ବି—(ସ୍ୱତନ୍ତ୍ର+ଭାବ ଯ)—୧ । ସ୍ୱତନ୍ତ୍ରତା—1.Speciality; peculiarity. ୨ । ବ୍ୟକ୍ତିତ୍ୱ—2. Individuality. ୩ । ସ୍ୱାଧୀନତା—3. Independence; freedom. (ଯଥା—ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟ ମର୍ହତି=ସ୍ତ୍ରୀଲୋକ ସ୍ୱାତନ୍ତ୍ର୍ୟର ଯୋଗ୍ୟା ନୁହନ୍ତି ।)
Swatantrya

ସ୍ୱାତି(ତୀ)—ସଂ. ବି—(ସ୍ୱ+ଅତ୍ ଧାତୁ=ଗମନ କରିବା+କର୍ତ୍ତୃ ଇ;)
Swāti (tī) (ପୁରାଣୋକ୍ତ) ସୂର୍ଯ୍ୟଙ୍କ ପତ୍ନୀବିଶେଷ (ହିକାଣ୍ଡଶେଷ)—Name of one of the wives of the sun god. [ଦ୍ର—ସୂର୍ଯ୍ୟଙ୍କ ପତ୍ନୀମାନଙ୍କ ନାମ—ସଂଜ୍ଞା, ସ୍ୱାତି, ମୂର୍ଦ୍ଧ୍ୟା, ସୁବର୍ଚ୍ଚଳା, ସରେଣୁ, ଦ୍ୟୁମୟୀ, ତ୍ୱାଷ୍ଟ୍ରୀ (ହିକାଣ୍ଡ ଶେଷ) ୨ । ଖଡ୍ଗ (ଧରଣୀ)—2. Sword. ୩ । ବହୁଶାଖ ତୃଣ ବିଶେଷ—3 A species of grass having many branches. ୪ । ଜ୍ୟୋତିଷୋକ୍ତ ସପ୍ତ ବିଂଶତି ନକ୍ଷତ୍ର ମଧ୍ୟରୁ ପଞ୍ଚଦଶ ନକ୍ଷତ୍ର—4.(Astrology) The 15th asterism. [ଦ୍ର—ଏହା କୁଙ୍କୁମାରୁଣ-ବର୍ଣ୍ଣ ଓ ଏକତାରକାଯୁକ୍ତ । ଏହାର ଅଧିଦେବତା ପବନ । ଏହି ନକ୍ଷତ୍ରରେ ଜାତ ବ୍ୟକ୍ତି କନ୍ଦର୍ପର ରୂପବାନ୍ କାନ୍ତାଜନପ୍ରିୟ, ବହୁସ୍ତବ, ମହାମତି, ଓ ବହୁଭଣାଳୀ ହୁଅନ୍ତି ।— କୋଷ୍ଠୀ ପ୍ରଦୀପ ମୁହୂର୍ତ୍ତଚିନ୍ତାମଣି )
ଏହି ନକ୍ଷତ୍ରଯୁକ୍ତ ତିଥିରେ ପବନ ବା ବତାସ ବହେ ଓ ବୃଷ୍ଟି ହୁଏ ବୋଲି ଲୋକଙ୍କ ବିଶ୍ୱାସ ଅଛି ।
ଅମାବାସ୍ୟା, ଶନିବାର ଓ ସ୍ୱାତି ନକ୍ଷତ୍ର ଏହି ତିନିଙ୍କର ଏକତ୍ର ସଂଯୋଗ ମହାବାତ୍ୟାସୂଚକ, । ପୁରାଣରେ ଉକ୍ତ ଅଛି ଯେ, ସ୍ୱାତି ନକ୍ଷତ୍ରରେ ହେବା ବର୍ଷା ବା ଜଳବିନ୍ଦୁ ସାମୁଦ୍ରରେ ମୁକ୍ତା, ବାଉଁଶରେ ବଂଶଲୋଚନ ଓ ସର୍ପଙ୍କଠାରେ ବିଷ ଉତ୍ପାଦନ କରେ । ] (ଦ୍ର—ମହାବାତ୍ୟା ଯଥା ଅମାସୌରି ସ୍ୱାତିଯୋଗେ—ସ୍ୱଧାନାଥ, ମହାଯାତ୍ରା ।) ୨ । ଝଡ଼ ବର୍ଷା; ଲଗାଣ; ବତାସ—2. Storm; hurricane accompanied with continuous rain. ଗ୍ରାଦେ. ( ଗଞ୍ଜାମ ) ବି—ଟଭୁପର ଏକ ପ୍ରକାର ମଧୁର ଫଳ—A species of sweet fruit like citron.

ସ୍ୱାତି(ତୀ) ଯୋଗ—ସଂ ବି.—(ଜ୍ୟୋତିଷ)—୧ । ଆଷାଢ ମାସ ଶୁକ୍ଳ
Swāti (tī) joga ପକ୍ଷରେ ଚନ୍ଦ୍ରଙ୍କର ସ୍ୱାତି ନକ୍ଷତ୍ର ସଙ୍ଗେ ସଂଯୋଗ—1. (astrology) The conjunction of the moon with the 15th asterism during the bright lunar fortnight of Āshārdha.
[ଦ୍ର—ସ୍ୱାତୀ ନକ୍ଷତ୍ରଯୁକ୍ତ ଆଷାଢ଼ ଶୁକ୍ଳତିଥିରେ ଦିବସର ପ୍ରଥମ ପ୍ରହରରେ ବୃଷ୍ଟି ହେଲେ ଶସ୍ୟ ବୃଦ୍ଧି ହୁଏ; ଦ୍ୱିତୀୟ ପ୍ରହରରେ ତଲାଦି ଶସ୍ୟ ପ୍ରଚୁର ହୁଏ; ତୃତୀୟ ପ୍ରହରରେ ଗ୍ରୀଷ୍ମକାଳୀନ ଶସ୍ୟ ପ୍ରଚୁର ହୁଏ । ଦିବସର ପ୍ରଥମ, ତୃତୀୟ ଓ ଚତୁର୍ଥ ଭାଗରେ ବୃଷ୍ଟି ହେଲେ ହିତକର ହୁଏ, ଅନ୍ୟଥା ଅଶୁଭ - ଶ୍ରୀ ବାଇକୋଳ ଜ୍ୟୋତିଷବଶାରଦ ।]
୨ । (ଜ୍ୟୋତିଷ) ରବିବାର, ଶନିବାର ବା ମଙ୍ଗଳବାର ଦିନ ଅମାବାସ୍ୟା ହେବା ଓ ସେ ଦିନ ରବିର ସ୍ୱାତି ନକ୍ଷତ୍ରରେ ଅବସ୍ଥିତି ରୂପ ଜ୍ୟୋତିଷିକ ଯୋଗ—2, (astrology) The conjunction of the sun with the 15th asterism on the new-moon day of the month of Karttika, if its falls on a sunday, saturday or tuesday. [ଦ୍ର—ଏ ଯୋଗରେ ତୋଫାନ ବା ବୃଷ୍ଟି ହେଲେ ବହୁ ପ୍ରାଣୀ ବିନଷ୍ଟ ହୁଅନ୍ତି ।
ଶ୍ରୀ ବାଇକୋଳ ଜ୍ୟୋତିଷବଶାରଦ । ]

ସ୍ୱାଦ—ସଂ. ବି.—(ସ୍ୱଦ୍ ଧାତୁ+ଭାବ ଅ)—୧ । ଆସ୍ୱାଦନ; ଜିହ୍ୱା ଦ୍ୱାରା
Swāda ପଦାର୍ଥର ରସ ଗ୍ରହଣ; ଚାଖିବା—1. The tasting of (ସ୍ୱଆଦ—ଅପଭ୍ରଂଶ ଶବ୍ଦ) a thing with the tongue. (ସ୍ୱାଦିତ—ବିଣ) ୨ । ପ୍ରୀତିକରଣ—2. Pleasing. ୩ । କାବ୍ୟାଦିର ରସ—3. Sentiment in literature. ୪ । ଆସ୍ୱାଦ; ଚାଖିବାଦ୍ୱାରା ପଦାର୍ଥ ଖଟା କି ମିଠା, ଜିହ୍ୱାଦ୍ୱାରା ଏହି ଅନୁଭୂତି—4. Flavour; the taste of a thing.୫ (ଲକ୍ଷଣାର୍ଥ) ଇନ୍ଦ୍ରିୟାଦି ଦ୍ୱାରା ଲବ୍ଧ ଅନୁଭୂତି—5. Experience acquired through the senses. ଦେ. ବିଣ—( ସଂ ସ୍ୱାଦୁ ) ମିଠାଲିଆ; ମିଠା; ସୁସ୍ୱାଦୁଯୁକ୍ତ; ମଧୁର—Sweet to the taste.

ସ୍ୱାଦଂଷ୍ଟ୍ରା—ସଂ. ବି—ଗୋକ୍ଷୁର; ଗୋଖରୁ—A thorny plant
Swādamshtrā and its thorny berry; Zygophyllae Tribulus Terrestris.

ସ୍ୱାଦ କୁସୁମ—ସଂ. ବି.—ଅରଣ୍ୟଜାତ ବୃହତ୍ ତରୁ ବିଶେଷ—
Swāda kusuma Schlichera Trijuga (a wild tree)
সাদ কুসুম কুসমা কুসুম

ସ୍ୱାଦ ଗନ୍ଧ—ସଂ. ବି.—(ଦ୍ୱନ୍ଦ୍ୱ; ସହଚର ଶବ୍ଦ)—କୌଣସି ପଦାର୍ଥର ସ୍ୱାଦ
Swāda gandha ଓ ବାସ—Taste and smell of a thing.

ସ୍ୱାଦ ଗ୍ରହଣ—ସଂ. ବି. ( ୬ଷ୍ଠୀ ତତ୍ )—୧ । କୌଣସି ପଦାର୍ଥକୁ
Swāda grahana ଚାଖିବା ଦ୍ୱାରା ତାହାର ରସାନୁଭବ —1.

The tasting of a thing. ୨ । କଥିତ ବା ଲିଖିତ ବିଷୟର ରସାନୁଭବ—2. The relishing or enjoyment of the sentiment of a thing spoken or written.

ସ୍ୱାଦଗ୍ରାହୀ—ସଂ. ବିଣ. ପୁଂ—(ସ୍ୱାଦଗ୍ରାହକ ଶବ୍ଦ; ସ୍ୱାଦ+ଗ୍ରହ୍ ଧାତୁ+ କର୍ତ୍ତ୍ରି ଇନ୍)—୧ । ଆସ୍ୱାଦ ଗ୍ରହଣକାରୀ; Swadagrāhi (ସ୍ୱାଦଗ୍ରାହିଣୀ—ସ୍ତ୍ରୀ) ରସାନୁଭବକାରୀ—1 Tasting a thing; enjoying the flavour of a thing. ୨ । କାବ୍ୟାଦିର ରସଗ୍ରାହୀ—2. Enjoying the sentiment of any matter. ୩ । ପ୍ରୀତିଯୁକ୍ତ; ପ୍ରୀତିଶୀଳ—3. Loving.

ସ୍ୱାଦନ—ସଂ. ବି.—(ସ୍ୱଦ୍ ଧାତୁ+ଭାବ ଅନ)—୧ । ରସାନୁଭବ; Swādana ଚାଖିବା—1. Tasting. ୨ । ରସଗ୍ରହଣ—2. (ସ୍ୱାଦିତ—ବିଣ) Enjoying or appreciating the sentiment of a matter; relishing. ୩ । ପ୍ରୀତିକରଣ—3. Pleasing ୪ । (+କର୍ମ ଅନ) ରସ—4. Sentiment; taste. ୫ । ମିଠା କରାଇବା; ମିଷ୍ଟୀକରଣ—5 Sweetening (Apte).

ସ୍ୱାଦନୀୟ—ସଂ. ବିଣ (ସ୍ୱଦ ଧାତୁ+କର୍ମ ଅନୀୟ)—୧। ଚାଖିବାର Swadaniya ଯୋଗ୍ୟ—1. Fit to be tasted. ୨ । ଯାହାର ରସ ଅନୁଭବ କରିବା ଯୋଗ୍ୟ—2. Of which the sentiment is fit to be enjoyed. ୩ । ସୁସ୍ୱାଦୁ; ସୁଆଦିଆ—3. Sweet to the taste; tasteful; relishing.

ସ୍ୱାଦି—ଦେ. ବିଣ.—(ସଂ. ସ୍ୱାଦୁ)—ସୁସ୍ୱାଦୁ; ମଧୁର; ସୁଆଦିଆ— Swādi Sweet [ହି—ବଡେ ଅଚ୍ଛୀ ଜଗା, ଭରୋସତ ତହିଁ ସୋଯାଦୀ ହୋଇ ସ୍ୱାଦ—ଭଞ୍ଜ ବୈଦେହୀଶବିଳାସ ।] स्यादुवाला, स्वादिष्ट

ସ୍ୱାଦିଆ ଦେ ବିଣ —ସୁସ୍ୱାଦୁ—Sweet to the taste. Swādiā ସୋୟାଦୀ स्वादिष्ट

ସ୍ୱାଦିତ—ସଂ. ବିଣ. (ସ୍ୱଦ୍ ଧାତୁ+କର୍ମ ତ)—୧ । ଆସ୍ୱାଦିତ; ଗୃହୀତ-Swādita ସ୍ୱାଦ; ଚଖା ଯାଇଥିବା—1. Tasted. ୨ । ପ୍ରୀତ (ସ୍ୱାଦ, ସ୍ୱାଦନ—ବି) 2. Pleased. ୩ । ଭକ୍ଷିତ—3. Eaten, partaken of. ୪ । ଯାହାକୁ ମିଠା କରାଯାଇଅଛି, ମିଷ୍ଟ କୃତ—4. Sweetened (Apte).

ସ୍ୱାଦିତ୍ୱ(ତା)—ସଂ. ବିଣ,(ସ୍ୱାଦିନ୍+ଭାବ. ତ୍ୱ, ତା)—ସ୍ୱାଦ ହେବାର ଭାବ Swaditwa(tā) (ହି.ଣ)—The state of having taste.

ସ୍ୱାଦିମା—ସଂ. ବି—ସ୍ୱାଦ+ଇମନ୍, ୧ମା ୧ବ)—ରସମାଧୁର୍ଯ୍ୟ; ମିଠା-Swādimā ପଣ—Sweetness; savouriness (Apte).

ସ୍ୱାଦିଷ୍ଠ—ସ. ବିଣ—(ସ୍ୱାଦ+ବହୁମଧ୍ୟରେ ଅତିଶୟାର୍ଥେ ଇଷ୍ଠ)—ସୁସ୍ୱାଦୁ; Swādistha ଅତିମିଠା; ସମସ୍ତଙ୍କ ଅପେକ୍ଷା ବେଶିମିଠା; ମଧୁରତମ—Very sweet; sweetest (superlative degreee).

ସ୍ୱାଦୀ—ସଂ. ବିଣ. ପୁଂ (ସ୍ୱଦ ଧାତୁ+ ଣିନ୍; ୧ମା ୧ବ)—୧ । Swādi ଆସ୍ୱାଦନକାରୀ; ଯେ ଚାଖେ—1. Tasting. ୨। ରସୋପ-(ସ୍ୱାଦିନୀ—ସ୍ତ୍ରୀ) ଭୋଗକାରୀ—2. Relishing the flavour or sentiment of a thing. ସଂ. ବି ପୁଂ—୧। ରସିକ ବ୍ୟକ୍ତି—1, A gallant ଦେ. ବି ପୁଂ—ଗୃହଭୃତ୍ୟ; ରାଜା ଆଦିଙ୍କ ପାଇଁ ପ୍ରସ୍ତୁତ ଖାଦ୍ୟକୁ ରାଜାଙ୍କ ଖାଇବା ପୂର୍ବରୁ ଚାଖିକରି ପରୀକ୍ଷା କରିବାପାଇଁ ନିଯୁକ୍ତ ବ୍ୟକ୍ତି; ସଆରୁ ବରେକା—A person whose duty is to examine by tasting every dish before it is partaken of by the king.

ସ୍ୱାଦୀୟାନ୍—ସ. ବିଣ ପୁଂ (ସ୍ୱାଦ+ଦୁଇଙ୍କ ମଧ୍ୟରେ ଅତିଶୟାର୍ଥେ ଈୟସ୍; Swādiyān ସ୍ୱାଦୀୟସ୍ ୧ମା. ୧ବ )—ଦୁଇ ବସ୍ତୁ ମଧ୍ୟରେ (ସ୍ୱାଦୀୟସୀ—ସ୍ତ୍ରୀ) ବେଶି ମିଠା; ମଧୁରତର—Sweeter (than the other) (comparative degree).

ସ୍ୱାଦୁ—ସ. ବି—(ସ୍ୱଦ ଧାତୁ+କର୍ମ ଉ)—୧ ମଧୁର ରସ (ବ୍ୟାକରଣ); Swādu ମିଠାପଣ—1. Sweetness (to the taste); flavour. ୨ । ଗୁଡ଼ (ବିକାର ଶେଷ)—2. Molasses; treacle. ୩। ଜୀବକ ନାମକ ଔଷଧ (ଜଡ଼ୀଧର)—3. A rare medicinal herb; Cellis Orientalis. ୪ । ସୁଗନ୍ଧଦ୍ରବ୍ୟ ଭେଦ (ରାଜନିର୍ଘଣ୍ଟ); ଏକପ୍ରକାର (ଅନ୍ୟ ନାମ—ଅଗୁରୁସାର; ସୁଧୂମ୍ୟ, ଗନ୍ଧଧୂମଜ)—ଧୂଣା—4. A kind of frankincense [ଦ୍ର—ଏହା ତିକ୍ତ-କଷାୟ, ଉଷ୍ଣ, ସୁଗନ୍ଧ ମାମୋଦପୂର୍ଣ୍ଣ, ବାତକାଶକ—ରାଜନିର୍ଘଣ୍ଟ] ୫ । ଦ୍ରାକ୍ଷା (ଭରତ)—5. Grape. ବିଣ. ପୁଂ ଓ ସ୍ତ୍ରୀ ୧ । ମିଷ୍ଟ; ମଧୁର—1. Sweet; savoury. ୨। ମିଷ୍ଟ; ମନୋଜ୍ଞ—2. Graceful; chrarming; pleasing. (ସ୍ୱାଦ୍ୱୀ—ସ୍ତ୍ରୀ)—lovely. [ତୁ—ତୁଳନା କର—ଫ. ସୁତୁ; ଇ. Sweet.(ସ୍ୱୀଟ୍); ଲାଟିନ୍, Suadvis (ସ୍ୱାଡ୍ୱିସ୍); ଡାକସ୍ ଭାଷା, Sød (ସୋଡ); ଗଥିକ୍ Svotis (ସ୍ୱୋଟିସ୍)]

ସ୍ୱାଦୁ କଣ୍ଟକ—ସଂ. ବି—(ବୈଦ୍ୟକ) ୧ । କଣ୍ଟକ ଗୁଳ୍ମ (ଅ ମଧ Swadu kantaka ଭଇଁଷି ଗୁଳ୍ମ, ଭଇଁଷକୋଳ ଗଛ—1. Flacourtia Romontchi (a thorny shurb). ୨ । ଗୋକ୍ଷୁର; ଗୋଖରୁ (ଅମର)—2. Zygophyllae. Tribulus Terrestris, a thorny plant.

ସ୍ୱାଦୁକନ୍ଦକ—ସ.ବି.(ବୈଦ୍ୟକ)—୧। ଶକରକନ୍ଦ; ପିଣ୍ଡାଳୁ; ପିଣ୍ଡାଳୁ; Swadu kandaka ଧଳା ଅଳୁ—1. Sweet potato, a species of white yam; Batatas Esculentus. ୨। କୋଲ୍ କୋବି (ହି.ଶ)—2. Kohl rabi. ୩। ଭୂମି-କୁଷ୍ମାଣ୍ଡ (ହି.ଶ)—3. Ipomoea Digitata

ସ୍ୱାଦୁକନ୍ଦା—ସ. ବି—୧ । ବଡ଼ାଆଳୁ (ରାଜନିର୍ଘଣ୍ଟ); ଭୂଇଁ କଖାରୁ—Swādukandā 1. Ipomoea Digitata ୨ । ବାରାହୀକନ୍ଦ (ବୈଦ୍ୟକ)—2. Disocorea.

ସ୍ୱାଦୁକର—ସଂ. ବି—ମହାଭାରତରେ ଉଲ୍ଲିଖିତ ବର୍ଣ୍ଣସଙ୍କର ଜାତିବିଶେଷ
Swādukara (ହି. ଶ)—Name of an ancient half caste Hindu class of India.

ସ୍ୱାଦୁକା—ସଂ. ବି—ନାଗଦନ୍ତୀ (ରାଜନିର୍ଘଣ୍ଟ); ବିଛୁଆତି—
Swādukā Stinging nettle; Fragia Involucrata.

ସ୍ୱାଦୁ କ୍ଷୀର—ସଂ. ବିଣ.ପୁଂ (ବହୁବ୍ରୀହି)—ଯାହାର କ୍ଷୀର ମିଠା—
Swādu kshīra Having sweet juice.
(ସ୍ୱାଦୁକ୍ଷୀରା —ସ୍ତ୍ରୀ)

ସ୍ୱାଦୁ ଖଣ୍ଡ—ସଂ ବି—୧ । ଗୁଡ଼ (ଶବ୍ଦରତ୍ନାବଳୀ)—1. Molasses.
Swādu khanda ୨ । କୌଣସି ମିଠା ବସ୍ତୁର ଖଣ୍ଡ—
2. A piece of any sweet substance (Apte).

ସ୍ୱାଦୁଗନ୍ଧା—ସଂ. ବି—୧ । ଭୂମି କୁଷ୍ମାଣ୍ଡ; ଭୂଇଁ କଖାରୁ (ଜଟାଧର)—
Swādu gandhā 1. Ipomoea Digitata.
୨ । ରକ୍ତଶୋଭାଞ୍ଜନ ( ରତ୍ନମାଳା ); ନାଲିସଜନା—
2. The red-flowered variety of horse-raddish tree

ସ୍ୱାଦୁ ଜାତି—ଦେ. ବି—୧ । ସ୍ୱାଦୁ ଗୁଣ—1. Sweetness
Swādu jāti ୨ । ଉତ୍ତମ ଜାତି—2. Good quality. [ ଉ— ବନ୍ଧୁବନ୍ଧୁରୀ ବାରେ ଦେଖି, ବଧ୍ୟଂସ ହେବ ସ୍ୱାଦୁ ଜାତି—ଭଞ୍ଜ. ବୈଦେହୀଶବିଳାସ ।]

ସ୍ୱାଦୁ ତିକ୍ତ—ସଂ. ବିଣ—ମିଠା ଓ ପିତା—Sweet and bitter
Swadu tikta ସଂ. ବି—ପୀଲୁ ଫଳ ( ହି. ଶ ) — The fruit of the tooth-brush tree.

ସ୍ୱାଦୁତିକ୍ତଫଳ—ସଂ. ବି (ବହୁବ୍ରୀହି)—ଲେମ୍ବୁ ଗଛ—
Swadutikta phala The orange tree.

ସ୍ୱାଦୁଧନ୍ୱା—ସଂ. ବି. ପୁଂ (ସ୍ୱାଦୁ=ମନୋଜ୍ଞ+ଧନୁସ୍=ସ୍ୱାଦୁଧନ୍ୱନ୍ ଶବ୍ଦ. Swādudhanwā ୧ମା, ୧ବ, ବହୁବ୍ରୀହି)—କାମଦେବ; ମଦନ ( ଶବ୍ଦକଳ୍ପଦ୍ରୁମ )—Cupid; the god of love.

ସ୍ୱାଦୁ ପଟୋଳିକା(ପତ୍ର)—ସଂ. ବି—ପଟୋଳ ଲତା (ହି. ଶ)—
Swadu paṭolikā(patra) Trichosanthes Dioica (creeper.)

ସ୍ୱାଦୁ ପର୍ଣ୍ଣୀ (ପୁଷ୍ପିକା)—ସଂ. ବି—ଦୁଗ୍ଧିକା (ରାଜନିର୍ଘଣ୍ଟ); ଛଡାକୁଠୀଗୁଳ୍ମ;
Swadu parṇṇī(pushpikā) ଦଦସ୍ମା ଗୁଳ୍ମ—
କ୍ଷୀରଇ Euparveiflora (plant).
ଦୁଗ୍ଧୀ. ଦୁଧୀୟା, ଦୁଧୀ [ବି—ଏହା ଉଷ୍ଣବୀର୍ଯ୍ୟ, ଗୁରୁ,
ଘା. ଗ୍ୟୋହ୍ୱସିର୍, କଶାଶବ୍ ରୁକ୍ଷ; ଗର୍ଭଜନକ, ସ୍ୱାଦୁତିକ୍ତ,
ତେ. ପିଲ୍ଲପାଲଚେଟ୍ଟୁ ବାୟୁବର୍ଦ୍ଧକ, ମଳମୂତ୍ରନାଶକ
ଚର୍ମ୍ମରୋଗକୁଷ୍ଠ ଓ ଶୁକ୍ରଜନକ ।]

ସ୍ୱାଦୁ ପାକା—ସଂ. ବି—କାକମାଚୀ (ରାଜନିର୍ଘଣ୍ଟ); କୁଟୁଳୁଣିଆ ଗୁଳ୍ମ
Swādu pākā Solanum Nigrum; the
(ସ୍ୱାଦୁପାକଫଳା—ଅନ୍ୟରୂପ) nightshade (plant).

ସ୍ୱାଦୁ ପିଣ୍ଡା—ସଂ. ବି - ପିଣ୍ଡ ଖଜୁରୀ ( ରାଜନିର୍ଘଣ୍ଟ )—The sweet
Swadupiṇḍā date palm; Phoenix Montana.

ସ୍ୱାଦୁ ପୁଷ୍ପ(ଷ୍ପୀ)—ସଂ. ବି - କୁମ୍ଭୀ (ରାଜନିର୍ଘଣ୍ଟ); କମ୍ବା ଗିରଷ ଗଛ—
Swadu pushpa(shpī) Careya tree; Careya Arborea (tree).

ସ୍ୱାଦୁଫଳ—ସଂ. ବି—୧ । ବଦରୀ ଫଳ (ଶବ୍ଦରତ୍ନାବଳୀ); ବରକୋଳି—
Swāduphala 1. The Jujube berry.
୨ । ଅନ୍ଧକ ବୃକ୍ଷ; ଛାମଣ ଗଛ ( ହି. ଶ ) —
2. Cordia Macleodii (tree).

ସ୍ୱାଦୁଫଳା—ସଂ. ବି—୧ । ଦ୍ରାକ୍ଷା ( ରାଜନିର୍ଘଣ୍ଟ )—1. Grapes.
Swādu phalā ୨ । ବରକୋଳି (ଶବ୍ଦରତ୍ନମାଳା)—
2. The jujube berry. ୩ । ଖଜୁରୀଗଛ (ହି ଶ)
3. The date palm. ୪ । କଦଳୀ ଗଛ (ହି. ଶ)
4. The plantain tree. ୫ । କପିଳଦ୍ରାକ୍ଷା; ମୁନକ୍କା (ହି. ଶ)—5. Raisin.

ସ୍ୱାଦୁ ବୀଜ—ସଂ. ବି (ବହୁବ୍ରୀହି)—ଅଶ୍ୱତ୍ଥ ଗଛ (ହି. ଶ)—
Swādu bīja The Ficus Religiosa tree.

ସ୍ୱାଦୁ ମଜ୍ଜ (ଜ୍ଜା)—ସଂ. ବି (ସ୍ୱାଦୁମଜ୍ଜନ୍ ଶବ୍ଦ; ୧ମା, ୧ବ)—ଅକ୍ଷୋଟକ ପୀଲୁ
Swadu majja(jjā) ବୃକ୍ଷ (ଜଟାଧର), ଗୁଣ୍ଡ ଫଳ—
A variety of dwarf date palm.

ସ୍ୱାଦୁମାଂସୀ—ସଂ ବି—କାକୋଲୀ (ରାଜନିର୍ଘଣ୍ଟ)—
Swādumāmsī Cocculus Indicus.

ସ୍ୱାଦୁ ମୂଳ—ସଂ. ବି—ଗର୍ଜ୍ଜର (ରାଜନିର୍ଘଣ୍ଟ); ଗାଜର—
Swadu mūla Carrot.

ସ୍ୱାଦୁ ରସା—ସଂ. ବି—୧ । କାକୋଳୀ ( ଅମର )—1. Cocculus
Swadu rasā Indicus. ୨ । ଦ୍ରାକ୍ଷା—
(ଶବ୍ଦକଳ୍ପଦ୍ରୁମ)—2. Grape. ୩ । ଅମ୍ରାତକ ଫଳ
(ଶବ୍ଦରତ୍ନାବଳୀ); ଅମ୍ବଡ଼ା—Hogplum (fruit). ୪ ।
ମଦିରା (ହେମଚନ୍ଦ୍ର)—4. Wine. ୫ । ଦ୍ରାକ୍ଷାଜାତ
ସୁରା (ବୈଦ୍ୟକ)—5. Wine from grapes. ୬ ।
ଶତାବରୀ ( ରାଜନିର୍ଘଣ୍ଟ )—6 Indian asparagus.
୭ । ମୂର୍ବା ( ହି. ଶ )—7. Sansevieria Zeylanica.

ସ୍ୱାଦୁ ଲତା—ସଂ ବି—୧ । ବିଦାରୀ; ଭୂଇଁ କଖାରୁ (ରାଜନିର୍ଘଣ୍ଟ)—
Swadu lata Ipomoea Digitata. ୨ । ବାରାହୀକନ୍ଦ—
2. Dioscorea.

ସ୍ୱାଦୁ ଶୁଣ୍ଠି—ସଂ. ବି—ସଫେଦ କୁମ୍ଭୀ (ହି. ଶ)
Swadu suṇṭhi The white-flowered variety of Careya tree.

ସ୍ୱାଦୁ ଶୁଦ୍ଧ—ସଂ. ବି—୧ । ସୈନ୍ଧବ ଲବଣ ( ଶବ୍ଦକଳ୍ପଦ୍ରୁମ )—
Swadu śuddha 1. Rock salt.
୨ । ସାମୁଦ୍ର ଲବଣ ( ଶବ୍ଦକଳ୍ପଦ୍ରୁମ )—
2. Sea-salt.

**ସ୍ୱାଦ୍ୱଗୁରୁ**—ସଂ. ବି (ବୈଦ୍ୟକ)—ଏକପ୍ରକାର ମଧୁର ରସଯୁକ୍ତ ଅଗୁରୁ—**Swadwaguru** A kind of sweet agalochia used for fumigating. [ବି—ଏହା ମଧୁରକଷାୟରସ, ଉଷ୍ଣବୀର୍ଯ୍ୟ, ଅମବାତ ନାଶକ ଏବଂ ସାଧାରଣ ଅଗୁରୁ ପରି ଗୁଣ ବିଶିଷ୍ଟ । ]

**ସ୍ୱାଦ୍ୱନ୍ନ**—ସଂ ବି—୧ । ମିଷ୍ଟାନ୍ନ—1. Sweetmeat; dainties; **Swadwanna** delicacies. ୨। (ବୈଦ୍ୟକ)—ମଧୁର ରସମିଶ୍ରିତ, ମଣ୍ଡସ୍ୱାଦ ଅନ୍ନ ବିଶେଷ—Sweetened food. [ବି—ଏହା ଶୀତବୀର୍ଯ୍ୟ, ଗୁରୁପାକ, କଫଜନକ, ବଳକର, ପୁଷ୍ଟିକର, ଆୟୁବର୍ଦ୍ଧକ ଏବଂ ପ୍ରୀତିକାରକ ]

**ସ୍ୱାଦ୍ୱମ୍ଳ**—ସଂ. ବିଣ—ମିଠା ଓ ଖଟା—Of sweet and acid **Swādwamla** tastes. ବି.—୧ । ଡାଳିମ୍ବ ବୃକ୍ଷ (ନିଘଣ୍ଟୁ ଶେଷ)—1. Pomegranate. ୨ । ମଧୁର ଓ ଅମ୍ଳ ରସ—2. Sweet and acid tastes ୩ । ପାଚିଲା ଗଛ (ଦ୍ରୁ. ଶ)—3. Grelonium Multiflorum (tree). ୪ । କଦମ୍ବଗଛ (ଦ୍ରୁ. ଶ)—4. Nuclea kadamba tree.

**ସ୍ୱାଦ୍ୱୀ**—ସଂ ବିଣ (ସ୍ୱାଦୁ+ସ୍ତ୍ରୀ ଈ)—ସ୍ୱାଦୁର ସ୍ତ୍ରୀଲିଙ୍ଗ—Feminine **Swādwi** of 'swādu' ବି—୧ । ଦ୍ରାକ୍ଷା (ଅମର)—1. Grape. ୨ । କ୍ଷୁଦ୍ର ଖର୍ଜ୍ଜୁରୀ (ବୈଦ୍ୟକ); ଛୁଆରା 2. The dwarf date palm; Phoenix Dactylifera (tree) ୩ । ଖର୍ଜ୍ଜୁରୀ ଗଛ (ଦ୍ରୁ.ଶ)—3. The date palm tree. ୪ । କପିଳ ଦ୍ରାକ୍ଷା (ଦ୍ରୁ. ଶ); ମୁନକ୍କା—4. Raisin. ୫ । ଚିର୍ଭଟିକା (ଦ୍ରୁ. ଶ); ଫୁଟି କାକୁଡ଼ି—5. Melon.

**ସ୍ୱାଦ୍ୟ**—ସଂ. ବିଣ (ସ୍ୱଦ୍ ଧାତୁ+କର୍ମ ଯ)—ଚାଖିବାର ଯୋଗ୍ୟ—Fit **Swādya** to be tasted or relished

**ସ୍ୱାଧିକାର**—ସଂ. ବି (୬ଷ୍ଠୀ ତତ୍)—୧ । ନିଜର ଅଧିକାର ବା ଦଖଲ **Swadhikāra** ଭୋଗ୍ ଦଖଲ—1. One's possession or enjoyment ୨ । ଅପଣା ଅଧିକାରର ବା ପ୍ରଭୁତ୍ୱର ସୀମା—2. One's jurisdiction. ୩ । ନିଜର ପଦ—3. One's post or position. ୪ । ଆପଣାର କର୍ତ୍ତବ୍ୟ କର୍ମମାନ—4. One's duties.

**ସ୍ୱାଧିକୃତ**—ସଂ ବିଣ (୩ୟ ତତ୍)—ନିଜଦ୍ୱାରା ଦଖଲ କରାଯାଇଥିବା—**Swādhikṛuta** Possessed or enjoyed by one's self.

**ସ୍ୱାଧିଷ୍ଠାନ**—ସଂ. ବି (ଯୋଗଶାସ୍ତ୍ର—ଶରୀରାଭ୍ୟନ୍ତରର ଲିଙ୍ଗମୂଳସ୍ଥ **Swādhisṭhāna** ସୁଷୁମ୍ନା ନାଡ଼ୀର ଅନ୍ତର୍ଗତ ଷଡ୍‌ଦଳ ପଦ୍ମ—A six-petalled lotus-shaped circle said to exist inside the body at the base of the penis [ବି—ଏହା ବର୍ଣ୍ଣ ବ, ଭ, ମ, ଯ, ର, ଲ, ଏହି ଛଅଟି ଅକ୍ଷରଯୁକ୍ତ ଓ ସୂର୍ଯ୍ୟର ବା ହୀରକର ସମ ପ୍ରଭାବିଶିଷ୍ଟ । ଏଠାରେ ଶିବ ଓ ଅଗ୍ନି ଦେବତାଦ୍ୱୟ ବାସ କରନ୍ତି ଓ ଏହାର ଅଙ୍କ ଦେଶରେ ପୀତାମ୍ବର ଶ୍ରୀବତ୍ସ କୌସ୍ତୁଭଧାରୀ ବିଷ୍ଣୁଙ୍କର ରକ୍ତଣୀ ଶକ୍ତି ବିରାଜିତ । (ତନ୍ତ୍ରସାର)] ଏହା ଷଟ୍‌ଚକ୍ର ମଧ୍ୟର ଦ୍ୱିତୀୟ ଚକ୍ର ।

**ସ୍ୱାଧୀନ**—ସଂ. ବିଣ (୬ଷ୍ଠୀ ତତ୍)—୧ । ସ୍ୱତନ୍ତ୍ର; ଅପରାଧୀନ—1. In-**Swādhina** dependent. ୨ । ଅସ୍ୱବଶ—2. Free; self (ସ୍ୱାଧୀନା—ସ୍ତ୍ରୀ) dependent ୩ । ସ୍ୱେଚ୍ଛାଗାମୀ—3. Self-(ପରାଧୀନ—ବିପରୀତ) acting; free to act. ୪ । ସ୍ୱଦେଶୀୟ (ସ୍ୱାଧୀନତା—ବି) ବ୍ୟକ୍ତିମାନଙ୍କ ଦ୍ୱାରା ଶାସିତ—4. Self-governed. ୫ । ନିଜର ଅଧୀନ—5. Under one's own control.

**ସ୍ୱାଧୀନ ତନ୍ତ୍ର**—ଦେ. ବି—୧। ସ୍ୱରାଜ (ଦେଖ)—1. Swaraj (See) **Swādhina tantra** ୨। ପ୍ରଜାମାନଙ୍କ ନିର୍ବାଚିତ ପ୍ରତିନିଧିଙ୍କ ସ୍ୱାଧୀନତନ୍ତ୍ର **स्वाधीनतन्त्र** ଦ୍ୱାରା ପରିଚାଳିତ ଶାସନତନ୍ତ୍ର—2. Democracy.

**ସ୍ୱାଧୀନତା(ତ୍ୱ)**—ସଂ. ବି (ସ୍ୱାଧୀନ+ଭାବେ ତା, ତ୍ୱ)—ସ୍ୱାତନ୍ତ୍ର୍ୟ, **Swādhinatā(twa)** ଅସ୍ୱବଶତା—Independence; freedom.

**ସ୍ୱାଧୀନତାଦାନ**—ସଂ. ବି—ପରାଧୀନତା ମୋଚନପୂର୍ବକ କୌଣସି **Swādhinatā dāna** ବ୍ୟକ୍ତିକୁ ସ୍ୱାଧୀନତା ଦେବା—Giving ସ୍ୱାଧୀନତାଦାନ a person freedom by freeing **स्वाधीनतादान** him from any bondage.

**ସ୍ୱାଧୀନତାପ୍ରିୟ**—ସଂ ବିଣ.ପୁଂ—ଯେ ସ୍ୱାଧୀନ ହେବାପାଇଁ ଇଚ୍ଛୁକ—**Swādhinatā priya** Loving freedom. ସ୍ୱାଧୀନତାପ୍ରିୟ **स्वाधीनताप्रिय**

**ସ୍ୱାଧୀନତା ଲୋପ**—ସଂ ବି (୬ଷ୍ଠୀ ତତ୍)—ସ୍ୱବଶତାର ବିନାଶ—**Swādhinatā lopa** Deprivation of freedom. ସ୍ୱାଧୀନତା ଲୋପ **स्वाधीनता लोप**

**ସ୍ୱାଧୀନତା ହରଣ**—ସଂ. ବି (୬ଷ୍ଠୀ ତତ୍)—କୌଣସି ସ୍ୱାଧୀନ ବ୍ୟକ୍ତିକୁ **Swādhinatā haraṇa** ବା ଜାତିକୁ ପରାଧୀନ କରିବା—ସ୍ୱାଧୀନତା ହରଣ Depriving a person or nation **स्वाधीनता हरण** of its freedom.

**ସ୍ୱାଧୀନ ଦେଶ**—ଦେ. ବି—ଯେଉଁ ଦେଶ ପରାଧୀନ ନୁହେଁ, ଅର୍ଥାତ **Swādhina desa** ଅନ୍ୟ ଜାତି ଦ୍ୱାରା ଶାସିତ ନୁହେଁ—ସ୍ୱାଧୀନ ଦେଶ **स्वाधीन देश** A free country.

**ସ୍ୱାଧୀନ ପତିକା(ଭର୍ତ୍ତୃକା)**—ସଂ. ବିଣ. ସ୍ତ୍ରୀ (ସ୍ୱାଧୀନ+ପତି, ଭର୍ତ୍ତୃ+କ **Swādhina patikā(bharttṛukā)** +ଆ; ସ୍ୱାଧୀନ ଅଟେ ପତି ବା ଭର୍ତ୍ତା ଯେଉଁ ସ୍ତ୍ରୀଙ୍କର;ବହୁବ୍ରୀହି)—ଯେଉଁ ସ୍ତ୍ରୀଙ୍କ ସ୍ୱାମୀ ବଶ ହୋଇ ଥାଆନ୍ତି—(a woman) Having control over her husband. ବି. ସ୍ତ୍ରୀ—(କାମଶାସ୍ତ୍ରୋକ୍ତ) ନାୟିକାବିଶେଷ; ଯେଉଁ ନାୟିକାର ନାୟକ, ନାୟିକାବଶ ହୋଇ ସର୍ବଦା ନାୟିକାର ପାର୍ଶ୍ୱରେ ଓ ଅଜ୍ଞାବହ ହୋଇ ଅବସ୍ଥାନ କରନ୍ତି—A class of heroines of dramas or plots who have their lovers or husbands under their complete control [ବି—ନାୟିକା ୯ ପ୍ରକାରର ଯଥା—

ଖଣ୍ଡିତା, ଉତ୍କଣ୍ଠିତା, ବିପ୍ରଲବ୍ଧା, ପ୍ରୋଷିତଭର୍ତ୍ତୃକା, କଳହାନ୍ତରିତା, ପ୍ରବସ୍ୟତ୍ପତିକା, ଅଭିସାରିକା, ବାସକ-ସଜ୍ଜା ଓ ସ୍ୱାଧୀନ ଭର୍ତ୍ତୃକା (ଜଟାଧର) ।
ଏମାନଙ୍କ ମଧ୍ୟରୁ ସ୍ୱାଧୀନ ଭର୍ତ୍ତୃକା ନାୟିକା ପୁଣି ପଞ୍ଚବିଧା !

୧ । ମୁଗ୍ଧା—ଯେଉଁ ନାୟିକା ପ୍ରୀତି ଭାବରେ ସମ୍ପୂର୍ଣ୍ଣ ରୂପେ ଅଭିଜ୍ଞା ହୋଇ ନ ଥାନ୍ତି ଓ ପୂର୍ଣ୍ଣ ଯୁବତୀ ହୋଇ ନ ଥାନ୍ତି ।
ମୁଗ୍ଧାଙ୍କ କଳ୍ପିତ ଉକ୍ତି—"ମଧ୍ୟେନ କୃଶିମା, ସ୍ତନେନ ଗରିମା, ଦେହେନ ବା କାନ୍ତିମା, ଶ୍ରୋଣୌ ନ ପ୍ରଥିମା, ଗତୌ ନ ଜଡ଼ିମା, ନେତ୍ରେ ନବା ବଙ୍କିମା, ଲାସ୍ୟେନ ଦ୍ରଢ଼ିମା, ନ ବାଚି ପଟିମା ହାସ୍ୟେନ ବା ସ୍ଥିରିମା, ପ୍ରାଣେଶସ୍ୟ ତଥାପି ମଜ୍ଜତି ମନୋମତ୍ୟେବ କଂ କାରଣଂ ।"

୨ । ମଧ୍ୟା—ମଧ୍ୟାନାୟିକାଙ୍କ ଉକ୍ତି—"ଯଦପି ରତି-ମହୋତ୍ସବେ ନକାରେ, ଯଦପି କରୋତି ନୀବି ଧାରଣାନି ପ୍ରିୟ ସଖୀ ଯଦ୍ଭବେତ୍ ପାର୍ଶ୍ୱଦେଶଂ ତଦପି ନ ମୁଞ୍ଚତି ତେନ ସମାଚରସି ।"

୩ । ପ୍ରୌଢ଼ା—ପ୍ରୌଢ଼ାଙ୍କ ଉକ୍ତି—"ବକ୍ତ୍ରାସ୍ୟାଧର-ପଲ୍ଲବସ୍ୟ ବଚସୋ ହାସ୍ୟସ୍ୟ ଲାସ୍ୟସ୍ୟବା । ଅନ୍ୟା ନାମରୁ-ବିନ୍ଦ ସୁନ୍ଦର ଦୃଶାଂ କାନ୍ତ ସ୍ତନୋଦ୍ଭ ସ୍ଫୁଟଂ, ସ୍ୱପ୍ନେ ନାପି ନଗଚ୍ଛତି ଶ୍ରୁତି ପଥଂ ଚେତଃ ପଥଂ ଦୃକ୍ପଥଂ, କାପ୍ୟନ୍ୟା ଦୟିତସ୍ୟ ମେ ସମ୍ମୁଖଥଂ ତସ୍ୟାସ୍ତୁ ଭେଦଗ୍ରହଃ ।"

୪ । ପରକୀୟା—ପରକୀୟାଙ୍କ ଉକ୍ତି—"ସ୍ୱୀୟା ସନ୍ତି ଗୃହେ ସହସ୍ରେ ବୁଦ୍ବୁଦଶୋ ଯାସାଂ, ବଳୀସେବନଂ, କାଞ୍ଚୀ କୁଣ୍ଡଳ ହେମ କଙ୍କଣ ଝଣତ୍କାରେ ନ ବାଞ୍ଛାମ୍ୟତ; ଭୋହେଭୁଃ ସଖି କାନନେ ପୁରମୁଖେ ସୌଧେ ସଖୀ ସନ୍ନଧୌ, ସ୍ୱମନ୍ତ୍ରୀ-ମପି ପଲ୍ଲବସ୍ୟ ପରତୋ ଦୃଷ୍ଟିର୍ନିମ୍ନଂ ମୁଞ୍ଚତି ।"

୫ । ସାମାନ୍ୟା—ସାମାନ୍ୟାଙ୍କ ଉକ୍ତି—"ସନ୍ତ୍ୟେବ ପ୍ରତି ମନ୍ଦିରଂ ମୃଗଦୃଶୋ ଯାସାଂ ସୁଧା ସାଗର—, ସ୍ରୋତସ୍ୟନ୍ତି ସବେଳ ସୁନ୍ଦର ଚମତ୍କାରାଦୃଶୋ ବିଭ୍ରମାଃ, ତାସାଂ କିନ୍ତୁ ବିଚିତ୍ର ମନ୍ମଥକଳା ବୈଦଗ୍ଧ୍ୟହେତୋଃ ପୁନ ର୍ବିତ୍ତଂ ଚିତ୍ତହରଂ ପ୍ରଯଚ୍ଛତି ଯୁବା ମନ୍ୟେବ କଂ କାରଣଂ ।" ରସମଞ୍ଜରୀ ।]

ସ୍ୱାଧୀନ ଭାବରେ(ଭାବେ)—ଦେ.କ୍ରି.ବିଣ—୧ । ପରାଧୀନ ନ ହୋଇ—
Swādhīna bhābare(bhābe) 1. Freely. ୨ । ସ୍ୱେଚ୍ଛା-
स्वाधीन भावे स्वाधीन भावसे କ୍ରମେ—2. Of one's free will.

ସ୍ୱାଧୀନ ମତ—ଦେ. ବି—ପର ଦ୍ୱାରା ପ୍ରଣୋଦିତ ନ ହୋଇ ନିଜର
Swādhīna mata ଇଚ୍ଛାରେ ଗଠିତ ବା ପ୍ରକାଶିତ ମତ—
स्वाधीन मत स्वाधीन मत One's free opinion.

ସ୍ୱାଧ୍ୟାୟ—ସଂ, ପୁଂ ବି (ସୁ=ସୁନ୍ଦର+ଆ=ବିଶିଷ୍ଟ ରୂପେ+ଅଧ୍ୟାୟ=
Swādhyāya ଅଧ୍ୟୟନ)—୧ । ବେଦାଧ୍ୟୟନ; ବେଦ ପାଠ—
1. Learning of the Bedas; Vedic studies. ୨ । ଆବୃତ୍ତିପୂର୍ବକ ବେଦ ପାଠ—
2. Recital of the Bedas. ୩ । ଜପ; ପାଟ ନ କରି ବେଦମନ୍ତ୍ର ପାଠ—3. Silent rumination of the Vedic formulae. ୪ । ବେଦ—4. The Bedas. ୫ । ବେଦାଂଶବିଶେଷ—5. A part of the Bedas. ୬ । ବିଧିପୂର୍ବକ ଶାସ୍ତ୍ରାଧ୍ୟୟନ—6. Studying of the scriptures according to the prescribed rules. ୭ । ଯୋଗସାଧନ-7. Spiritual exercise. ୮ । ତପସ୍ୟା—
8. Religious penance.

ସ୍ୱାଧ୍ୟାୟ ନିରତ—ସଂ ବିଣ.ପୁଂ (୭ମୀ ତତ୍)-ବେଦାଭ୍ୟାସରେ ସର୍ବଦା ରତ-
Swādhyāya nirata Constantly engaged
[ସ୍ୱାଧ୍ୟାୟରତ—ଅନ୍ୟରୂପ] in the study of the Bedas.

ସ୍ୱାଧ୍ୟାୟବାନ୍—ସଂ ବିଣ. ପୁଂ [ସ୍ୱାଧ୍ୟାୟ+ବତ୍]-୧ । ସ୍ୱାଧ୍ୟାୟକାରୀ,
Swādhyāyabān ବେଦାଧ୍ୟୟନକାରୀ—
(ସ୍ୱାଧ୍ୟାୟଶୀଳ—ଅନ୍ୟରୂପ) 1. Studying the Bedas.
୨ । ସ୍ୱାଧ୍ୟାୟନିରତ (ଦେଖ)—2. Swādhyāya nirata (See

ସ୍ୱାଧ୍ୟାୟ ସେବା—ସଂ. ସ୍ତ୍ରୀ—ବେଦାଭ୍ୟାସ; ନିୟମିତରୂପେ ବେଦ ପାଠ—
Swadhyāya sebā Regular and systematic study of the Bedas.

ସ୍ୱାଧ୍ୟାୟୀ—ସଂ, ବିଣ. ପୁଂ ( ସ୍ୱାଧ୍ୟାୟ+ଇନ୍; ୧ମା. ୧ବ )—
Swādhyāyī ସ୍ୱାଧ୍ୟାୟବାନ୍; ସର୍ବଦା ସ୍ୱାଧ୍ୟାୟରେ ବା ବେଦାଭ୍ୟାସରେ ରତ—Engaged in regular study of the Bedas. ୧ । ବେଦପାଠକ—
1. A reader of the Bedas. ୨ । ପଲ୍ଲୀ-ବଣିକ୍ ( ତ୍ରିକାଣ୍ଡଶେଷ )—2. A merchant trading in villages.

ସ୍ୱାନ—ସଂ. ପୁଂ ବି ( ସ୍ୱନ୍ ଧାତୁ=ଧ୍ୱନି କରିବା+ଭାବ ଅ )—ସ୍ୱନ;
Swāna ଧ୍ୱନି; ରବ; ଶବ୍ଦ ( ଅମର )—
Sound; voice. ( ଉ—ବିଜନରେ କଲା ସ୍ୱାନ ଅନ୍ତରେ ତମକ ରଚନା ଶରଭେ—ଉଞ୍ଜ. ବୈଦେହୀଶ-ବିଳାସ ।)

ସ୍ୱାନୁଭୂତି—ସଂ. ସ୍ତ୍ରୀ ବି—ଆତ୍ମଜ୍ଞାନ; ନିଜର ଜୀବନ ସମ୍ବନ୍ଧେ ଅନୁଭୂତି—
Swānubhūti Self-knowledge.
[ଉ—ସେ ମୂଳ ବିଭୂତି ସ୍ୱାନୁଭୂତି ମହାଭୂତି, ଗୋପିକା ପ୍ରସଙ୍ଗେ ନର ସେ ଜନ ଲଭନ୍ତି । ଭୂପତି· ପ୍ରେମପଞ୍ଚାମୃତ ।]

ସ୍ୱାନ୍ତ—ସଂ. ବିଣ (ସ୍ୱନ୍ ଧାତୁ=ଶବ୍ଦ କରିବା+କର୍ମ. ତ)—୧ । ଶବ୍ଦିତ
Swānta (ଶବ୍ଦ କଳ୍ପଦ୍ରୁମ)—1. Sounded.
ସଂ. ବି (+କର୍ତ୍ତୃ. ତ)—ଅନ୍ତଃକରଣ; ମନ (ଅମର)—
1. Mind. ୨ । ଗହ୍ୱର ( ମେଦିନୀ )—2. A hole, cave. ୩ । ଆପଣାର ଅନ୍ତ ବା ମୃତ୍ୟୁ ( ହ ଶ )—
3. One's end or death. ୪ । ଆପଣା ରାଜ୍ୟ ବା ପ୍ରଦେଶ ( ହ. ଶ )—4. One's kingdom or country.

ଇଷ୍ଟାର୍ଥେ ନିଜର ଜୀବନ ବିସର୍ଜନ କରନ୍ତି ସେ ନରମେଧ ଯଜ୍ଞର ଫଳ ଲାଭ କରି ସ୍ୱର୍ଗ ଲାଭ କରନ୍ତି ।]

**ସ୍ୱାମ୍ୟୁପକାରକ**—ସଂ. ବିଣ ପୁଂ—ସ୍ୱାମୀଙ୍କର ବା ପ୍ରଭୁଙ୍କର ଉପକାରୀ— Swāmyupakāraka Rendering of benefit to one's master; serving one's master. ବି—(ସ୍ୱାମ୍ୟୁପକାରୀ—ଅନ୍ୟରୂପ) (ଶବ୍ଦକଳ୍ପଦ୍ରୁମ—Hor.e, (ସ୍ୱାମ୍ୟୁପକାର—ବି.ରୂପ)

**ସ୍ୱାୟତ୍ତ**—ସଂ. ବିଣ—୧ । ନିଜର ବଶୀଭୂତ—1. Under one's Swāyatta control. ୨ । ସ୍ୱାଧୀନ—2. Independent,

**ସ୍ୱାୟତ୍ତ କରିବା**—ଦେ. କ୍ରି—୧ । ନିଜର ଅଧୀନରେ ଆଣିବା; ବଶୀଭୂତ Swāyatta karibā କରିବା—1. To bring স্বায়ত্ত করা स्वायत्त करना under one's control. ୨ । ସମ୍ପୂର୍ଣ୍ଣରୂପେ ନିଜର ବଶ କରିବା—2. To fully control a person.

**ସ୍ୱାୟତ୍ତ ଶାସନ**—ଦେ. ବି (ସଂସ୍କୃତ, କିନ୍ତୁ ଆଧୁନିକ ପ୍ରୟୋଗ)—ସ୍ୱରାଜ; Swāyatta śāsana ଦେଶବାସୀଙ୍କ ନିର୍ବାଚିତ ପ୍ରତିନିଧିମାନଙ୍କ স্বায়ত্ত শাসন स्वायत्त शासन ଦ୍ୱାରା ରାଜ୍ୟ ଶାସନ—ସ୍ୱରାଜ—Self-government; autonomy.

**ସ୍ୱାୟତ୍ତୀକରଣ**—ସଂ ବି (ସ୍ୱାୟତ୍ତ+ଅଭୂତ ତଦ୍ଭାବେ ଚ୍ୱି+କରଣ)— Swāyattikaraṇa ନିଜର ବଶରେ ଆନୟନ— Bringing under one's control.

**ସ୍ୱାୟତ୍ତୀକୃତ**—ସଂ. ବିଣ (ସ୍ୱାୟତ୍ତ+ଅଭୂତତଦ୍ଭାବେ ଚ୍ୱି+କୃତ)—ନିଜର Swāyattikṛuta ବଶରେ ଆଣିତ—Brought under one's cuntrol-

**ସ୍ୱାୟମ୍ଭୁବ**—ସଂ. ବିଣ ( ସ୍ୱୟମ୍ଭୂ—ବ୍ରହ୍ମା+ସମ୍ବନ୍ଧାର୍ଥେ ଅ )—ସ୍ୱୟମ୍ଭୂ- Swāyambhuba ସମ୍ବନ୍ଧୀୟ—Relating to Swayambhū. ବି. (+ଅପତ୍ୟାର୍ଥେ ଅ)—ବ୍ରହ୍ମାଙ୍କ ପୁତ୍ର, ପ୍ରଥମ ମନୁ—The first progenitor of mankind.

**ସ୍ୱାୟମ୍ଭୁବ ମନୁ**—ସଂ. ବି—ପ୍ରଥମ ମନୁ—The 1st or original Swāyambhuba manu progenitor of mankind [ଦ୍ର—ସୃଷ୍ଟି ବୃଦ୍ଧି ପାଇଁ ବ୍ରହ୍ମା ଏହାଙ୍କୁ ନିଜର ଦକ୍ଷିଣ ଅଙ୍ଗରୁ ଜାତ କଲେ ଓ ବାମାଙ୍ଗରୁ ଶତରୂପାନାମ୍ନୀ କନ୍ୟାଙ୍କୁ ଜାତ କରି ସ୍ୱାୟମ୍ଭୁବଙ୍କୁ ବିବାହ ଦେଲେ । ଏହି ବିବାହରୁ ଅକୂତି ଓ ଦେବହୂତି ଓ ପ୍ରସୂତି ନାମରେ ତିନିଗୋଟି କନ୍ୟା ଏବଂ ପ୍ରିୟବ୍ରତ ଓ ଉତ୍ତାନପାଦ ନାମରେ ଦୁଇଟି ପୁତ୍ର ଜାତ ହେଲେ । ପିତା ଏହି ଅକୂତି କନ୍ୟାଙ୍କୁ ରୁଚିଙ୍କୁ ଓ ଦେବହୂତିଙ୍କୁ ଦକ୍ଷପ୍ରଜାପତିଙ୍କୁ ଦେଲେ । ଦକ୍ଷପ୍ରଜାପତିଙ୍କ ଔରସରେ ୧୬ ଗୋଟି ପୁତ୍ର ଓ ୨୪ଟି କନ୍ୟା ଜନ୍ମିଲେ ଓ ଏହିମାନଙ୍କଠାରୁ ମନୁଷ୍ୟ, ଦୈତ୍ୟ, ପକ୍ଷୀ, କୀଟ, ପତଙ୍ଗ, ବୃକ୍ଷ, ଲତା, ସରୀସୃପ ଆଦି ଜନ୍ମିଲେ ଓ କ୍ରମେ ପୃଥିବୀରେ ପ୍ରାଣୀମାନେ ମାଡିଗଲେ—ମାର୍କଣ୍ଡେୟ ପୁରାଣ ।]

**ସ୍ୱାୟମ୍ଭୁବୀ**—ସଂ. ବି—ବ୍ରାହ୍ମୀ (ରାଜନିଘଣ୍ଟୁ ଦେଖ)— Swāyambhubi Brāhmi (See).

**ସ୍ୱାର (ଇତ୍ୟାଦି)**—ଗ୍ରା ବି—ସୁଆର ଇତ୍ୟାଦି (ଦେଖ)— Swāra (etc) Suāra etc (See)

**ସ୍ୱାରସ୍ୟ**—ସଂ, ବି (ସ୍ୱରସ+ଯ)—୧ । ସରସତା; ରସପୂର୍ଣ୍ଣତା (ହ୍ର.ଶ)— Swārasya 1. Juiciness. ୨ । ସ୍ୱାଭାବିକତା(ହ୍ର.ଶ)- 2. Naturalness.

**ସ୍ୱାରାଜ୍ୟ**—ସଂ. ବି ( ସ୍ୱରାଜ୍+ଭାବ. ଯ )—୧ । ସ୍ୱର୍ଗ ରାଜ୍ୟ— Swārājya 1. The kingdom of heaven. ୨ । ଈଶ୍ୱରତ୍ୱ—2. Divinity; godhead. ୩ । ସ୍ୱର୍ଗର ଆଧିପତ୍ୟ; ଇନ୍ଦ୍ରତ୍ୱ—3 Soverignty in heaven; the state of being Indra, the king of the gods, ୪ । ସ୍ୱାୟତ୍ତଶାସନବିଶିଷ୍ଟ ରାଜ୍ୟ—( ହ. ଶ. )—4. Autonomous country.

**ସ୍ୱାରାଟ୍**—ସଂ. ବି (ସ୍ୱ=ରାଜ୍ ଧାତୁ+କ୍ୱିପ; ସ୍ୱାରାଜ୍ ୧ମା, ୧ବ )— Swārāt ଇନ୍ଦ୍ର; ଦେବରାଜ ( ଅମର )— Indra.

**ସ୍ୱାରି (ଇତ୍ୟାଦି)**—ଗ୍ରା. ବି ସୁଆରି ଇତ୍ୟାଦି (ଦେଖ)— Swāri Suāri etc (See) পালকী सवारी

**ସ୍ୱାରିବା**—ଦେ, କ୍ରି—ସୁଆରିବା (ଦେଖ)— Swāribā suāriba (See)

**ସ୍ୱାରୋଚିଷ**—ସଂ. ବି (ପୁଂ) (ନାମ)—(ସ୍ୱରୋଚିଷ=ଅଗ୍ନି+ଅପତ୍ୟାର୍ଥେ Swārochisha ଅ )—ଦ୍ୱିତୀୟ ମନୁ— The 2nd progenitor of mankind. [ଦ୍ର—ଶ୍ରୀମଦ୍ ଭାଗବତ ମତରେ ଏ ଅଗ୍ନିସୁତ ଥିଲେ । ଏହାଙ୍କଠାରୁ ୪ ପୁତ୍ର ଓ ୭ ଋଷି ( ଦତ୍ତୋଳି, ଚ୍ୟବନ, ସ୍ତମ୍ବ, ପ୍ରାଣ, କଶ୍ୟପ, ଊର୍ଜ ଓ ବୃହସ୍ପତି ଜନ୍ମିଥିଲେ—ମତ୍ସ୍ୟପୁରାଣ । ମାର୍କଣ୍ଡେୟପୁରାଣରେ ଏହାଙ୍କ ନାମ ଦ୍ୟୁତିମାନ୍ ବୋଲି ଉକ୍ତ ହୋଇଅଛି (ହ. ଶ) ।]

**ସ୍ୱାର୍ଜନ**—ସଂ. ବି (୬ଷ୍ଠୀ ତତ୍)—ନିଜର ଉପାର୍ଜନ— Swārjana Self-acquisition.

**ସ୍ୱାର୍ଜିତ**—ସଂ. ବିଣ (ତୃତୀୟା ତତ୍)—ନିଜଦ୍ୱାରା ଉପାର୍ଜିତ; ସ୍ୱୟଂଲବ୍ଧ- Swarjita Self, acquired; earned by one's self.

**ସ୍ୱାର୍ଥ**—ସଂ. ବି (୬ଷ୍ଠୀ ତତ୍)—୧ । ନିଜର ପ୍ରୟୋଜନ; ଆତ୍ମପ୍ରୟୋଜନ; Swārtha ନିଜକାର୍ଯ୍ୟ—1. One's necessity or exclusive aim. ୨ । ସ୍ୱକୀୟଧନ; ନିଜର ଅର୍ଥ; ସ୍ୱୀୟ ବସ୍ତୁ—2. One's own or exclusive property. ୩ । ନିଜର ଉଦ୍ଦିଷ୍ଟ ବିଷୟ—3. A thing aimed at by one's self. ୪ । ନିଜର ବ୍ୟକ୍ତିଗତ ଉଦ୍ଦେଶ୍ୟ 4. Self interes. ୫ । (ବ୍ୟାକରଣ) ଲିଙ୍ଗାର୍ଥ ବିଶେଷ (ଦୁର୍ଗାଦାସ); ଶବ୍ଦର ସ୍ୱାଭାବିକ ବା ସହଜ ଅର୍ଥ— 5. (Grammar) The inherent meaning

of a word ଗ୍ରାମ୍ୟ. ବିଣ (ସଂ. ସାର୍ଥ)—୧ । ସାର୍ଥ; ସାର୍ଥକ—1. Fruitful. ୨ । ସିଦ୍ଧିଯୁକ୍ତ—2. Successful.
ସାର୍ଥକ
**ସାର୍थक**

ସ୍ୱାର୍ଥ ତ୍ୟାଗ—ସଂ. ବି (୬ଷ୍ଠୀ ତତ୍)—(ପରର ମଙ୍ଗଳ ସାଧନାର୍ଥ) ନିଜର ଲାଭ ସମ୍ବନ୍ଧୀୟ ବିଷୟର ପରିତ୍ୟାଗ—
Swārtha tyāga Renunciation of one's self-interest; self-sacrifice
(ସ୍ୱାର୍ଥତ୍ୟାଗୀ—ପୁଂ; ସ୍ୱାର୍ଥତ୍ୟାଗିନୀ—ସ୍ତ୍ରୀ. ବିଣ)

ସ୍ୱାର୍ଥ ନାଶ—ସଂ. ବି—୧ । ନିଜର ଅଭୀଷ୍ଟ ଥିବା ଉଦ୍ଦେଶ୍ୟର ବିନାଶ—
Swārtha nāsa 1 Destruction or extinction of one's self interest. ୨ । ସ୍ୱାର୍ଥରେ ବାଧା—2. Impediment or obstruction to one's self interest

ସ୍ୱାର୍ଥ ପଣ୍ଡିତ—ସଂ.ବିଣ.ପୁଂ.—ସ୍ୱାର୍ଥସାଧନ ବିଷୟରେ ଚତୁର (ବ୍ୟଙ୍ଗ)—
Swārtha pandita Clever in accomplishing one's self interest.
( ସ୍ୱାର୍ଥପଣ୍ଡିତା—ସ୍ତ୍ରୀ)

ସ୍ୱାର୍ଥପର—ସଂ. ବିଣ, ପୁଂ (୭ମୀ ତତ୍)—ନିଜର ପ୍ରୟୋଜନସିଦ୍ଧି କରିବାରେ ତତ୍ପର—Selfish; self-seeking, self interested.
Swārthapara
(ସ୍ୱାର୍ଥ ପରତନ୍ତ୍ର, ସ୍ୱାର୍ଥ ପରାୟଣ—ଅନ୍ୟରୂପ)
(ସ୍ୱାର୍ଥପରା, ସ୍ୱାର୍ଥପରତନ୍ତ୍ରା; ସ୍ୱାର୍ଥ ପରାୟଣା—ସ୍ତ୍ରୀ)
(ସ୍ୱାର୍ଥପରତା; ସ୍ୱାର୍ଥ ପରତନ୍ତ୍ରତା, ସ୍ୱାର୍ଥ ପରାୟଣତା—ବି)

ସ୍ୱାର୍ଥ ବଳି—ସଂ. ବି(୬ଷ୍ଠୀ ତତ୍)—ପରର ମଙ୍ଗଳପାଇଁ ନିଜର ପ୍ରୟୋଜନକୁ ତ୍ୟାଗକରିବା—Self-sacrifice; sacrifice of one's self-interest to benefit others
Swārtha bali

ସ୍ୱାର୍ଥ ବୁଦ୍ଧି—ସଂ. ବି (ମ. ପ ଲୋ)—ନିଜର ପ୍ରୟୋଜନ ସିଦ୍ଧି କରିବା ବୁଦ୍ଧି—Selfish spirit
Swārtha buddhi
ବିଣ.ପୁଂ ଓ ସ୍ତ୍ରୀ(ବହୁବ୍ରୀହି)—ସ୍ୱାର୍ଥପର;ଯେଉଁ ବ୍ୟକ୍ତି ସର୍ବଦା ଆପଣାର ସ୍ୱାର୍ଥସିଦ୍ଧି କଥା ଭାବୁଥାଏ—Selfish.

ସ୍ୱାର୍ଥ ଲାଭ—ସଂ. ବି (୬ଷ୍ଠୀ ତତ୍)—ସ୍ୱାର୍ଥସାଧନ (ଦେଖ)—
Swārtha lābha Swārtha sādhana (See)

ସ୍ୱାର୍ଥ ସାଧକ—ସଂ. ବିଣ. ପୁଂ—ଯେ ନିଜର ପ୍ରୟୋଜନ ସାଧନ କରେ—
Swārtha sādhaka One who brings about the fulfilment of ones's selfish interests.
(ସ୍ୱାର୍ଥସାଧିକା—ସ୍ତ୍ରୀ)

ସ୍ୱାର୍ଥ ସାଧନ—ସଂ ବି(୬ଷ୍ଠୀତତ୍) ନିଜର ଉଦ୍ଦେଶ୍ୟ ସଫଳ କରିବା—
Swārtha sādhana Accomplishment or attainment of one's own object
(ସ୍ୱାର୍ଥ ସିଦ୍ଧି—ଅନ୍ୟରୂପ)

ସ୍ୱାର୍ଥ ହେବା—ଗ୍ରା. କ୍ରି (ସଂ. ସାର୍ଥ, ସାର୍ଥକ)—ସାର୍ଥକ ହେବା; ସଫଳ ହେବା—To be crowned with success; to attain one's end. (ଯଥା—ତାଙ୍କୁ ଦର୍ଶନ କରିବାରୁ ମୋର ଏତେ ପରିଶ୍ରମ ସ୍ୱାର୍ଥ ହେଲା ।)
Swārtha hebā
सार्थक हओया
**सार्थक होना**

ସ୍ୱାର୍ଥାନ୍ଧ—ସଂ. ବିଣ. ପୁଂ—ଆପଣା ସ୍ୱାର୍ଥସିଦ୍ଧି କାମନାରେ ଅନ୍ୟ ବିଷୟରେ ବିବେକରହିତ—Blind to things other than one's self interest.
Swārthāndha
(ସ୍ୱାର୍ଥାନ୍ଧା—ସ୍ତ୍ରୀ)
[ସ୍ୱାର୍ଥାନ୍ଧତା, ସ୍ୱାର୍ଥାନ୍ଧ୍ୟ—ବି]

ସ୍ୱାର୍ଥାନ୍ୱେଷଣ—ସଂ. ବି (୬ଷ୍ଠୀ ତତ୍)—ନିଜର ସ୍ୱାର୍ଥସିଦ୍ଧିର ଉପାୟ ଖୋଜି ବୁଲିବା—Seeking one's good.
Swārthānweshana

ସ୍ୱାର୍ଥାନ୍ୱେଷୀ—ସଂ. ବିଣ (ସ୍ୱାର୍ଥାନ୍ୱେଷିନ୍ ଶବ୍ଦ)—ଯେ ନିଜର ସ୍ୱାର୍ଥସିଦ୍ଧି ଖୋଜି ବୁଲୁଥାଏ; ସ୍ୱାର୍ଥପର—Self-seeking.
Swārthānweshi
[ସ୍ୱାର୍ଥାନ୍ୱେଷିଣୀ—ସ୍ତ୍ରୀ]

ସ୍ୱାର୍ଥିକ—ସଂ. ବିଣ (ସ୍ୱାର୍ଥ+ଇକ)—୧ । ସ୍ୱାର୍ଥ ସମ୍ବନ୍ଧୀୟ—
Swārthika 1. Relating to self interest.
(ସ୍ୱାର୍ଥିକା—ସ୍ତ୍ରୀ) ୨ । (ପୁଂ) ସ୍ୱାର୍ଥପର—2. Selfish.

ସ୍ୱାର୍ଥୀ—ସଂ. ବିଣ (ପୁଂ) (ସ୍ୱାର୍ଥ+ଇନ୍; ୧ମା. ୧ବ)—ଅପସ୍ୱାର୍ଥୀ; ସ୍ୱାର୍ଥପର—Selfish.
Swārthi
[ ସ୍ୱାର୍ଥିନୀ—ସ୍ତ୍ରୀ ]

ସ୍ୱାଶ୍ରୟ—ସଂ. ବି—ସ୍ୱାବଲମ୍ବନ (ଦେଖ)—Swābalambana.(See)
Swāsraya ବିଣ (ପୁଂ)—ସ୍ୱାବଲମ୍ବୀ (ଦେଖ)—Swābalambi (See).
[ସ୍ୱାଶ୍ରୟା—ସ୍ତ୍ରୀ.ବିଣ]

ସ୍ୱାସ୍ଥ—ଗ୍ରା. ବି (ସଂ. ସ୍ୱାସ୍ଥ୍ୟ)—ସ୍ୱାସ୍ଥ୍ୟ (ଦେଖ)
Swāstha Swāsthya(See)

ସ୍ୱାସ୍ଥ୍ୟ—ସଂ. ବି (ସୁସ୍ଥ+ଭାବ. ଯ)—୧ । ସୁସ୍ଥତା; ନୀରୋଗତା; ନିରାମୟତା—1. Health; freedom from illness. ୨ । ଆରୋଗ୍ୟ—2. Convalescence. ୩ । ସ୍ୱାଚ୍ଛନ୍ଦ୍ୟ—3. Ease; comfort. ୪ । ସନ୍ତୋଷ (ହେମଚନ୍ଦ୍ର)—4. Contentment. ୫ । ମନର ସୁସ୍ଥତା; ଉଦ୍ବେଗଶୂନ୍ୟତା; ନିଶ୍ଚିନ୍ତତା; ଅନୁଦ୍ବେଗ—5. Freedom from anxiety. ୬ । ସୁଖ—6. Happiness. [ଦ୍ର—ସୁସ୍ଥ ଶବ୍ଦର ଅର୍ଥ ନୀରୋଗ; ତହିଁରୁ ଭାବରେ 'ଯ' ପ୍ରତ୍ୟୟ ହେଲେ ସ୍ୱାସ୍ଥ୍ୟ ଶବ୍ଦ ନିଷ୍ପନ୍ନ ହୁଏ, ମାତ୍ର ଅନେକ ଅଭିଧାନରେ ପ୍ରମାଦବଶତଃ ସ୍ୱସ୍ଥ ଶବ୍ଦରୁ ଯ ପ୍ରତ୍ୟୟ ଦ୍ୱାରା 'ସ୍ୱାସ୍ଥ୍ୟ' ଶବ୍ଦ ନିଷ୍ପନ୍ନ ହୁଏ ବୋଲି ଲେଖାଅଛି ।]
Swāsthya

ସ୍ୱାସ୍ଥ୍ୟକର—ସଂ. ବିଣ—ଯାହା ସୁସ୍ଥତା ଜନ୍ମାଏ—Healthy; health-giving; hygienic.
Swāsthyakara
[ସ୍ୱାସ୍ଥ୍ୟଜନକ, ସ୍ୱାସ୍ଥ୍ୟଦାୟକ, ସ୍ୱାସ୍ଥ୍ୟପ୍ରଦ ସ୍ୱାସ୍ଥ୍ୟଦ—ଅନ୍ୟରୂପ]

ସ୍ୱାସ୍ଥ୍ୟ ନାଶ—ସଂ. ବି (୬ଷ୍ଠୀ ତତ୍)—ନୀରୋଗତାର ନାଶ—
Swāsthya nāsa Loss of health.

ସ୍ୱାସ୍ଥ୍ୟ ନିବାସ(ବାସ)—ସଂ. ବି (ଅଧୁନିକ ବ୍ୟବହାର)—
Swāsthya nibāsa (bāsa) ୧ । ସ୍ୱାସ୍ଥ୍ୟରକ୍ଷା ପାଇଁ ବା ନଷ୍ଟ ସ୍ୱାସ୍ଥ୍ୟର ପୁନରୁଦ୍ଧାର ପାଇଁ ବା ସ୍ୱାସ୍ଥ୍ୟଲାଭ ପାଇଁ କୌଣସି ସ୍ୱାସ୍ଥ୍ୟକର ସ୍ଥାନରେ ବାସ—1. Resorting to a health resort for recouping or gain-

ing one's health. ୨ । ସ୍ୱାସ୍ଥ୍ୟପ୍ରଦ ସ୍ଥାନ—2 Health resort.

ସ୍ୱାସ୍ଥ୍ୟ ପାନ—ଦେ. ବି (ଇଂରାଜୀ ବାକ୍ୟର ଅନୁବାଦ)—ଅଭ୍ୟାଗତ Swāsthya pāna ବା କୌଣସି ବ୍ୟକ୍ତିଙ୍କର ସ୍ୱାସ୍ଥ୍ୟର ଉନ୍ନତି ସ୍ୱାସ୍ଥ୍ୟপান କାମନା କରି ମଦ୍ୟ ପାନ କରିବା— स्वास्थ्यपान Drinking to the health (of a person).

ସ୍ୱାସ୍ଥ୍ୟ ପାନ କରିବା—ଦେ. କି (ଇଂରାଜୀ ବାକ୍ୟର ଉଦ୍ଧୃତ Swsāthyapāna karibā ଅନୁବାଦ)—ପାଶ୍ଚାତ୍ୟ ସଭ୍ୟ স্বাস্থ্যপানকবা ଅନୁସାରେ ଆଧୁନିକ ଭୋଜନ-ସମ୍ମେଳନମାନରେ स्वास्थ्यपान करना କୌଣସି ବିଶିଷ୍ଟ ବ୍ୟକ୍ତିଙ୍କର ସ୍ୱାସ୍ଥ୍ୟ କାମନା କରି ମଦ୍ୟ ପାନ କରିବା—To drink the health of; to toast (a person). [ବ୍ୟୁ—ପାଶ୍ଚାତ୍ୟ ଭୋଜରେ ସମାଗତ ବିଶିଷ୍ଟ ଅଭ୍ୟାଗତଙ୍କର ବା କୌଣସି ବିଶିଷ୍ଟ ବ୍ୟକ୍ତିଙ୍କର ସ୍ୱାସ୍ଥ୍ୟ କାମନା କରି ଭୋଜରେ ଯୋଗ ଦେବା ଲୋକମାନେ ମଦ୍ୟ ପାନ କରନ୍ତି ।]

ସ୍ୱାସ୍ଥ୍ୟ ବିଭାଗ—ଦେ. ବି—ରାଜ୍ୟବାସୀଙ୍କ ସ୍ୱାସ୍ଥ୍ୟପ୍ରତି ଦୃଷ୍ଟି ରଖିବା Swāsthya bibhāga ପାଇଁ ଭାରପ୍ରାପ୍ତ ରାଜକୀୟ ବିଭାଗ— স্বাস্থ্যবিভাগ The Department of Public Health; स्वास्थ्यविभाग The Public Health Department.

ସ୍ୱାସ୍ଥ୍ୟ ଭଙ୍ଗ—ସଂ ବି—ସୁସ୍ଥତାର ବିନାଶ; ରୋଗାଦିର ଆକ୍ରମଣ— Swāsthya bhanga The impairment or loss of one's health.

ସ୍ୱାସ୍ଥ୍ୟ ରକ୍ଷା—ସଂ ବି—ଯେଉଁ ଉପାୟମାନ ଅବଲମ୍ବନ କଲେ ଶରୀର Swāsthya rakshā ସୁସ୍ଥ ରହିବ ତାହା କରିବା— Following hygienic rules; hygiene.

ସ୍ୱାସ୍ଥ୍ୟ ସଚିବ(ମନ୍ତ୍ରୀ)—ଦେ. ବି—ଯେଉଁ ମନ୍ତ୍ରୀଙ୍କଠାରେ ସ୍ୱାସ୍ଥ୍ୟ ବିଭାଗର Swāsthya sachiba(mantri) ତଦାରଖ ବା ଭାର ଥାଏ—The সাস্থ্যসচিব minister in charge of Public Health. स्वास्थसचिव

ସ୍ୱାସ୍ଥ୍ୟ ସମ୍ପନ୍ନ—ସଂ. ବିଣ ପୁଂ (ସ୍ୱାସ୍ଥ୍ୟ ଗତ)—ସୁସ୍ଥ— Swāsthya sampanna Hale, healthy. (ସ୍ୱାସ୍ଥ୍ୟ ସମ୍ପନ୍ନା—ସ୍ତ୍ରୀ)

ସ୍ୱାସ୍ଥ୍ୟ ସୁଖ-ସଂ. ବି (ମ.ଧ.ଲୋ)-ମନୁଷ୍ୟର ସୁସ୍ଥ ରହିବାଯୋଗୁ ଅନୁଭୂତ Swāsthya sukha ଆନନ୍ଦ—Happiness enjoyed by a healthy person.

ସ୍ୱାସ୍ଥ୍ୟ ହାନି—ସଂ. ବି—ସ୍ୱାସ୍ଥ୍ୟଭଙ୍ଗ; ସୁସ୍ଥତାର ନାଶ— Swāsthya hāni Loss of one's health.

ସ୍ୱାସ୍ଥ୍ୟ ହାନି (ନାଶ, ଭଙ୍ଗ)କର—ସଂ. ବିଣ—ଯେ ବା ଯାହା ସୁସ୍ଥ Swāsthya hāni (nāsa, bhanga) kara ଲୋକକୁ ଅସୁସ୍ଥ କରେ—Impairing one's health, unhygienic

ସ୍ୱାହା—ସଂ. ଅ—(ସୁ+ ଆ+ ହ୍ୱେ. ଧାତୁ=ଡାକିବା+ କରଣ ଆ+ ଅ) Swāhā ଦେବହବିର୍ଦାନ ମନ୍ତ୍ର; ଦେବତାଙ୍କୁ ଉଦ୍ଦେଶ୍ୟ କରି ଦେବତାଙ୍କ ନାମ ଧରି ଅଗ୍ନିରେ ଆହୁତି ଦେବାର ମନ୍ତ୍ର— (Interjection) A formula or exclamation uttered while pouring ghee into fire by invoking a particular deity by name. [ବ୍ୟୁ—ଏହି ଶବ୍ଦ ଦେବତାଙ୍କ ନାମରେ ଲାଗେ ଓ ଏହି ଶବ୍ଦ ଲାଗିବା ଯୋଗୁ ପୂର୍ବବର୍ତ୍ତୀ ପଦ ରେ ଚତୁର୍ଥୀ ବିଭକ୍ତି ଯୁକ୍ତ ହୁଏ । ଯଥା—ଓଁ ନାରାୟଣାୟ ସ୍ୱାହା, ଓଁ ଅଗ୍ନୟେ ସ୍ୱାହା, ଓଁ ଦୁର୍ଗାୟେ ସ୍ୱାହା ।

ପିତୃମାନଙ୍କୁ ଉଦ୍ଦେଶ କରି ପିଣ୍ଡ ଓ ଜଳଦାନାଦି ଦେଲାବେଳେ 'ସ୍ୱଧା' ଏବଂ ଦେବତାଙ୍କୁ ଆହୁତି ଦେଲାବେଳେ 'ସ୍ୱାହା' ଉଚ୍ଚାରିତ ହୁଏ ।

(ଅନ୍ୟ ସ.—ଅଗ୍ନାୟୀ, ହୁତଭୁକ୍‌ପ୍ରିୟା, ହ୍ରୀଂ, ଅନଳପ୍ରିୟା, ବହ୍ନିବଧୂ) ବି. ୧ । (+କର୍ମ ଆ+ଅ) ଅଗ୍ନି-ଦେବତାଙ୍କ ସ୍ତ୍ରୀ; ଦକ୍ଷ କନ୍ୟା— 1 Name of the wife of the Fire god.

[ବ୍ୟୁ—ଏ ଦକ୍ଷ କନ୍ୟା ଅଟନ୍ତି । ମତାନ୍ତରରେ ଏ ପ୍ରକୃତି ଦେବୀଙ୍କଠାରୁ ଜନ୍ମିଥିଲେ । ଫଳତଃ ଏ ଅଗ୍ନିଙ୍କର ଦାହିକା ଶକ୍ତି ଓ କୃଷ୍ଣଙ୍କୁ ସ୍ୱାମୀ ପାଇବା ପାଇଁ କଠୋର ତପସ୍ୟା କରୁଥିଲେ ଓ ଅଗ୍ନିଙ୍କୁ ସ୍ୱାମୀ ଗ୍ରହଣ କରିବାକୁ କୃଷ୍ଣ ଏହାଙ୍କୁ ଉପଦେଶ ଦେଲେ ଓ ବ୍ରହ୍ମା ମଧ୍ୟ ଏହା ଅନୁମୋଦନ କଲେ ଏବଂ ଏହି ବର ଦେଲେ ଯେ, ଦେବତାଙ୍କ ନାମର ମନ୍ତ୍ର ଶେଷରେ 'ସ୍ୱାହା' କହି ଉଚ୍ଚାରଣପୂର୍ବକ ଘୃତରେ ଆହୁତି ଦେଲେ ତାହା ଆହୁତି ଦେବତାମାନେ ପାଇବେ । ଏହି ବର ପାଇ ସ୍ୱାହା ଅଗ୍ନିଙ୍କର ସ୍ତ୍ରୀ ହେଲେ । ଅଗ୍ନିଙ୍କ ଔରସରେ ଏହାଙ୍କ ଗର୍ଭରୁ ଦକ୍ଷିଣ, ଗାର୍ହପତ୍ୟ ଓ ଆହବନୀୟ ନାମକ ତିନି ବୈଦିକ ଅଗ୍ନି ଜାତ ହେଲେ ।

ବ୍ରହ୍ମାଙ୍କ ବରରେ ସ୍ୱାହାହୀନ ମନ୍ତ୍ର ଫଳପ୍ରଦ ହୁଏ ନାହିଁ । ଏହାଙ୍କୁ ପୂଜା କରିବାର ମନ୍ତ୍ର— "ଓଁ ହ୍ରୀଁ ବହ୍ନିଜାୟାୟୈ ଦେବ୍ୟୈ ସ୍ୱାହା" ବ୍ରହ୍ମବୈବର୍ତ୍ତପୁରାଣ ପ୍ରକୃତିଖଣ୍ଡ ।]

୨ । ଅଗ୍ନିର ଦାହିକା ଶକ୍ତି—2. The burning attribute of fire. ୩ । ବୌଦ୍ଧଶକ୍ତିବିଶେଷ—3. Name of a Buddhist goddess. [ବ୍ୟୁ—ଏହାଙ୍କର ଅନ୍ୟ ନାମ—ତାରା, ମହାଶ୍ରୀ, ଓଙ୍କାରା, ଶ୍ରୀ, ମନୋରମା, ତାରଣୀ, ଜୟା, ଅନନ୍ତା, ଶିବା, ଲୋକେଶ୍ୱରାତ୍ମଜା, ଖଦୂରବାସିନୀ, ଭଦ୍ରା, ବୈଶ୍ୟା, ନୀଳସରସ୍ୱତୀ, ଶଙ୍ଖିନୀ, ମହାତାରା, ବସୁଧାରା, ଧନଦା, ତ୍ରିଲୋଚନା, ଲୋଚନାଦ୍ୟା (ତ୍ରିକାଣ୍ଡଶେଷ)] । ୪ । ହୋମାଗ୍ନିରେ ଦଅଯିବା ଆହୁତି—4. Libations of ghee made into the sacrificial fire.

ସ୍ୱାହା କରିବା—ଦେ. କ୍ରି—୧ । ମନ୍ତ୍ର ସଙ୍ଗେ ସ୍ୱାହା ଉଚ୍ଚାରଣପୂର୍ବକ
Swāhā karibā ଘିଅକୁ ନିଆଁରେ ଅହୁତି ଦେବା—
স্বাহা করা स्वाहा करना 1. To offer ghee unto the fire by uttering the word Swāhā; (ଉ—ଦାଦାଙ୍କ ଘିଅ ସବୁଟି, ବାଣ୍ଟୁଣୀକୁ ସ୍ୱାହା କରିବାକୁ ଡର ମାଡୁଛି !—ଉଗ । ) ୨ । (ଲକ୍ଷଣାର୍ଥ)—(ସମ୍ପତ୍ତି ଅବଦ୍ଦ) ଅଦରକାରୀ ବା ନଷ୍ଟ କରିବା; ଉଡ଼ାଇ ଦେବା—2. To sqander away. ୩ । ( ଲକ୍ଷଣାର୍ଥ )—ଅତ୍ମସାତ୍ କରିବା—3 To appropriate a thing to one's use.

ସ୍ୱାହାକୃତ୍—ସଂ.ବି.(ସ୍ୱାହା + କୃ ଧାତୁ + କର୍ତ୍ତୃ କ୍ୱିପ୍) ଯଜ୍ଞକାରୀ (ହି.ଶ)—
Swāhā krut The performer of a Vedic sacrifice.

ସ୍ୱାହା ନାଥ ( ପତି, ପ୍ରିୟ, ବଲ୍ଲଭ )—ସଂ. ବି, ପୁଂ (୬ଷ୍ଠୀ ତତ୍ ) —
Swāhā nātha (pati, priya, ballabha)—ଅଗ୍ନିଦେବ—The Fire god,

ସ୍ୱାହାଭୁକ୍—ସଂ. ବି. ପୁଂ—(ସ୍ୱାହା + ଭୁଜ୍ ଧାତୁ + କର୍ତ୍ତୃ କ୍ୱିପ୍)
Swāhā bhuk ଯେଉଁମାନେ ସ୍ୱାହା ଦ୍ୱାରା ପ୍ରଦତ୍ତ ଅହୁତି ଭୋଜନ କରନ୍ତି)—ଦେବତା—Deity; gods.

ସ୍ୱାହାର୍ହ—ସଂ. ବିଣ. ପୁଂ—ଅଗ୍ନିରେ ହବି ପାଇବା ଯୋଗ୍ୟ (ଦେବ)—
Sāwhārha (a Diety) Entitled to get oblations (ସ୍ୱାହାର୍ହା—ସ୍ତ୍ରୀ) unto the fire)

ସ୍ୱାହାଶନ—ସଂ ବି. (ବହୁବ୍ରୀହି; ସ୍ୱାହା ଦ୍ୱାରା ଅଶନ ହୁଏ ଯାହାଙ୍କର)—
Swāhāśara ଦେବତା—Deity; one of the gods.

ସ୍ୱିଚ୍—ବୈଦେ. ବି. (ଇଂ)—ବିଜୁଳିବତି ଓ ପଙ୍ଖା ଆଦି ଚଳାଇବା ବା
Swich ବନ୍ଦ କରିବା ପାଇଁ ବ୍ୟବହୃତ କଳ ବା ଯନ୍ତ୍ର—
স্বীচ্ स्वीच् Switch of an electric contrivance.

ସ୍ୱିଜର୍ ଲ(ଲ୍ୟା)ଣ୍ଡ—ବୈଦେ.ବି(ଇଂ. ନାମ)—ଇଟାଲିର ଉତ୍ତରରେ ଥିବା
Swijar-la (lā)nd ସାଧାରଣତନ୍ତ୍ର ପାର୍ବତ୍ୟ ରାଜ୍ୟ—
(ସ୍ୱିଟ୍ଜର୍ ଲ (ଲ୍ୟା) ଣ୍ଡ—ଅନ୍ୟରୂପ) Switzerland.
স্বীজর লাণ্ড स्वीजरलैण्ड

ସ୍ୱିଡ୍—ବୈଦେ. ବିଣ. (ଇଂ)—୧ । ସ୍ୱିଡେନ୍ ଦେଶୀୟ—
Swid 1. Swede, swedish. ୨ । ସ୍ୱିଡେନ୍ ଦେଶବାସୀ—
স্বীড্ स्वीड 2. Inhabiting Sweden.
(ସ୍ୱିଡଶ୍—ଅନ୍ୟରୂପ)

ସ୍ୱିଡେନ—ଦେ. ବି, (ଇଂ. ନାମ)ଇଉରୋପର ପଶ୍ଚିମ ପ୍ରାନ୍ତରେ ଥିବା
Swiden ନରୱେ ରାଜ୍ୟର ପୂର୍ବସ୍ଥ ଦେଶ—Sweden
স্বীডেন स्वीडेन

ସ୍ୱିତ—ସଂ. ଅ—(ସୁ + ଇ. ଧାତୁ = ଯିବା + କର୍ତ୍ତୃ. କ୍ୱିପ୍)—ପ୍ରଶ୍ନ,
Swit ବିତର୍କ ଓ ପାଦପୂରଣରେ ବ୍ୟବହୃତ ଶବ୍ଦ—Interjection used in interrogation, doubt and completing a sentence. [ଦ୍ର—ଏହାର ଓଡ଼ିଆରେ ବ୍ୟବହାର ହେବା ଦେଖା ନାହିଁ । ]

ସ୍ୱିଦ୍(ଧାତୁ)—ସଂ—ଘାମେଇବା—
Swid (root) To perspire.

ସ୍ୱିଦିତ—ସଂ. ବି—( ସ୍ୱିଦ୍ ଧାତୁ + କର୍ମ. ତ )—ସ୍ୱେଦିତ ( ସିଦ୍ଧାନ୍ତ
Swidita କୌମୁଦୀ )—Perspired; made to perspire.

ସ୍ୱିନ୍ନ—ସଂ. ବିଣ—(ସ୍ୱିଦ୍ ଧାତୁ + କର୍ତ୍ତୃ.ତ)—୧ । ଘର୍ମଯୁକ୍ତ; ଘର୍ମାକ୍ତ—
Swinna 1. Perspiring. ୨ । ଅର୍ଦ୍ର; ସିକ୍ତ କ୍ଲେଦଯୁକ୍ତ; କ୍ଳିନ୍ନ —2. Wet; moist. ୩ । ରନ୍ଧା ହୋଇଥିବା; ପକ୍ୱ (ତଣ୍ଡୁଳାଦି); ସିଦ୍ଧ—3. Cooked; boiled (rice). [ଦ୍ର—ଧାନ୍ୟାଦିକୁ କ୍ଷେତଗତ ଅବସ୍ଥାରେ 'ଶସ୍ୟ', ସତୁଷ ଅବସ୍ଥାରେ 'ଧାନ୍ୟ', ବିତୁଷ ଅବସ୍ଥାରେ 'ଅନ୍ନ', ପକ୍ୱ ବା ରନ୍ଧା ଅବସ୍ଥାରେ ସ୍ୱିନ୍ନ ବୋଲାଯାଏ—ଶାବ୍ଦତତ୍ତ୍ୱ ।]

ସ୍ୱିଶ୍—ବୈଦେ. ବିଣ—(ଇଂ)—୧ । ସ୍ୱିଜର ଲଣ୍ଡ ଦେଶୀୟ—1.
Swis Belonging or appertaining to Switzerland.
স্বিশ্ ୨ । ସ୍ୱିଜଲେଣ୍ଡ ଦେଶବାସୀ—
स्विश 2. Inhabiting Switzerland

ସ୍ୱୀକ—ସଂ. ବିଣ—( ସ୍ୱ + ଈକ )—ସ୍ୱକୀୟ ( ପ୍ରକୃତିବାଦ)—One's
Swika own.

ସ୍ୱୀକରଣ—ସଂ. ବିଣ ( ସ୍ୱ + ଅଭୂତ ତଦ୍ଭାବେ. ଈ + କରଣ )—୧ ।
Swīkaraṇa ଅଙ୍ଗୀକାର କରିବା—1. Promising. ୨ । [ସ୍ୱୀକରଣୀୟ, ସ୍ୱୀକର୍ତ୍ତବ୍ୟ, ସ୍ୱୀକୃତ—ବିଣ] ରାଜିହେବା; ସମ୍ମତ ହେବ —2. Agreeing. ୩ । ପ୍ରତିଜ୍ଞା କରିବା—3. Vowing. ୪ । ସ୍ତ୍ରୀ ଗ୍ରହଣ କରିବା; ବିବାହ କରିବା (ହି. ଶ)—4. Taking of a wife; marriage.

ସ୍ୱୀକର୍ତ୍ତବ୍ୟ—ସଂ. ବିଣ (ସ୍ୱ + ଅଭୂତ ତଦ୍ଭାବେ ଈ + କୃ ଧାତୁ + କର୍ମ,
Swikarttabya ତବ୍ୟ)—ସ୍ୱୀକାର୍ଯ୍ୟ ( ଦେଖ )
Swikārjya ( See )

ସ୍ୱୀକର୍ତ୍ତା—ସଂ.ବିଣ.ପୁଂ (ସ୍ୱ + ଅଭୂତ ତଦ୍ଭାବେ ଈ + କର୍ତ୍ତୃ. ତୃ ୧ମା.୧ବ)
Swikarttā —ଯେ ସ୍ୱୀକାର କରେ; ସ୍ୱୀକାରକାରୀ—
(ସ୍ୱୀକର୍ତ୍ତ୍ରୀ—ସ୍ତ୍ରୀ) Agreenig; consenting.

ସ୍ୱୀକାର—ସଂ. ବି (ସ୍ୱ + ଅଭୂତ ତଦ୍ଭାବେ ଈ + କୃ ଧାତୁ + ଭାବ. ଅ )—
Swikāra ୧ । ଅଙ୍ଗୀକାର; ପ୍ରତିଶ୍ରୁତି—1. Promise; (ସ୍ୱୀକୃତ—ବିଣ) agreement. ୨ । ପ୍ରତିଜ୍ଞା—2. Avowal. (ସ୍ୱକାରଇ—ଅପଭ୍ରଂଶ) ୩ । ପରଗ୍ରହ—3. Acceptance of an offer; acquiescence. ୪ । ପ୍ରତିଗ୍ରହ—4. Acceptance of a gift. ୫ । ସମ୍ମତି; ରାଜି ହେବା—5. Consent; ratification. ୬ । ମାନିବା —6. Admission; confession. ୭ । ଅଧୀନ କରଣ—7. Bringing under control. ଦେ. ବି —୧ । ବିବାହ ପୂର୍ବରୁ ବରପକ୍ଷ ଓ କନ୍ୟାପକ୍ଷଙ୍କ ମଧ୍ୟରେ ଅନୁଷ୍ଠିତ ସମ୍ବନ୍ଧନିଶ୍ଚୟ କାର୍ଯ୍ୟ—1. Ceremony of formal betrothal or agreement before marriage. ୨ । ସିଦ୍ଧାନ୍ତ; କରଣ ସମାଜରେ

ମହାପ୍ରସାଦ ନିର୍ବନ୍ଧ ପରେ କନ୍ୟାଙ୍କ ଘରୁ ବରଙ୍କ ଘରକୁ ପଠାଯିବା ବରଙ୍କ ବ୍ୟବହାର୍ଯ୍ୟ ସାଜସଜ୍ଜା, ହାର, ମୁଦି, ବାସନ **ଅର୍ଥ**—2. Formal present of cloth, ring etc for the bridgroom elect sent by the bride's party after formal betrothal or Mahaprasāda Nirbandha.

**ସ୍ୱୀକାର କରିବା**—ଦେ. କ୍ରି—୧ । ମାନିଯିବା—1. To confess, Swīkāra kariba to admit. ୨ । ଅଙ୍ଗୀକାର କରିବା—स्वीकार करना स्वीकार करना 2. To promise.

**ସ୍ୱୀକାର ସମ୍ମତି**—ଦେ. ବି—ସିଉକାର ସନମତି ( ଦେଖ ) Swīkāra sammati Siukāra sanamati ( See ) (ସ୍ୱିକାର ସନମତି, ସଉକାର ସନମତି—ଗ୍ରାମ୍ୟ, ରୂପ)

**ସ୍ୱୀକାର୍ଯ୍ୟ**—ସଂ. ବିଣ (ସ୍ୱ+ଅଭୂତ ତଦ୍ଭାବେ. ଈ+କୃ ଧାତୁ+କର୍ମ.ଯ)—Swīkārjya ସ୍ୱୀକୃତ ହେବାର ଯୋଗ୍ୟ—Fit to be admitted. admissible. ବି (ଜ୍ୟାମିତି)—ଯେଉଁସବୁରେ ଯେଉଁ ପ୍ରତିଜ୍ଞାମାନ ଅବଶ୍ୟ ସ୍ୱୀକାର କରିବାକୁ ହୁଏ—(geometry) Postulate.

**ସ୍ୱୀକୃତ**—ସଂ. ବିଣ ( ସ୍ୱ+ଅଭୂତ ତଦ୍ଭାବେ. ଈ+କୃତ )—୧ । ଯାହା Swīkruta ସ୍ୱୀକାର କରି ଯାଇଅଛି—1. Agreed upon (ସ୍ୱୀକୃତ—ବି) (matter). ୨ । ଅଙ୍ଗୀକୃତ—2. Promised ୩ । ସମ୍ମତ—3. Agreed; consented (person) ୪ । ଅଧୀନୀକୃତ—4. Brought under control

**ସ୍ୱୀୟ**—ସଂ. ବି (ସ୍ୱ+ସମ୍ବନ୍ଧାର୍ଥେ. ଈୟ)—ସ୍ୱକୀୟ; ନିଜର; ଆତ୍ମୀୟ—Swīya One's own. ( ସ୍ୱକୀୟ—ଅନ୍ୟରୂପ ) ( ସ୍ୱୀୟା—ସ୍ତ୍ରୀ ) ( ପରକୀୟ—ବିପରୀତ )

**ସ୍ୱୀୟା**—ସଂ. ବି. ସ୍ତ୍ରୀ—୧ । ନାୟିକାଭେଦ; ସ୍ୱକୀୟା ନାୟିକା—Swīyā 1. A class of heroines in fictions. (ସ୍ୱୀୟା ନାୟିକା—ଅନ୍ୟରୂପ) [ଦ୍ର—ଏ ନାୟିକା ସର୍ବଦା ଆପଣା (ପରକୀୟା—ବିପରୀତ) ସ୍ୱାମୀଙ୍କ ପ୍ରତି ଅନୁରକ୍ତା; ଏହାଙ୍କର ଚେଷ୍ଟା ସ୍ୱାମୀ ଶୁଶ୍ରୂଷା, ଶୀଳରକ୍ଷା, ସରଳତା ଓ କ୍ଷମା । ଏ ନାୟିକା ତ୍ରିବିଧା, ଯଥା—ମୁଗ୍ଧା=ଅଙ୍କୁରିତଯୌବନା; ମଧ୍ୟା=ସମାନ ଲଜ୍ଜା ମଦନା; ପ୍ରୌଢ଼ା ବା ପ୍ରଗଲ୍ଭା=ପଞ୍ଚମାନବବୟସ୍କେନ କଳାପ କୋବିଦା । ନାୟିକାମାନଙ୍କୁ କାମଶାସ୍ତ୍ର ଓ କାବ୍ୟାଦରେ ୩ ଶ୍ରେଣୀରେ ବିଭକ୍ତ କରିଯାଇଅଛି ଯଥା—ସ୍ୱକୀୟା, ପରକୀୟା ଓ ସାମାନ୍ୟା । ଏ ପ୍ରତ୍ୟେକଙ୍କୁ ପୁଣି ୩ଶ୍ରେଣୀରେ ବିଭକ୍ତ କରିଯାଇ ଅଛି,ଯଥା—ମୁଗ୍ଧା, ମଧ୍ୟା, ପ୍ରଗଲ୍ଭା । ଏହି ୩ ଶ୍ରେଣୀର ନାୟିକା ମଧ୍ୟ ଯଥାକ୍ରମେ 'ପ୍ରୋଷିତଭର୍ତ୍ତୃକା, ଖଣ୍ଡିତା, କଳହାନ୍ତରିତା, ବିପ୍ରଲବ୍ଧା, ଉତ୍କଣ୍ଠିତା, ବାସକସଜ୍ଜା, ସ୍ୱାଧୀନ ଭର୍ତ୍ତୃକା, ଅଭିସାରିକା, ଚିରଯୌବନ୍ ପତିକା, ଏହି ୯ ଶ୍ରେଣୀରେ ବିଭକ୍ତା । ପୁଣି ଏ ପ୍ରତ୍ୟେକେ ଉତ୍ତମା, ମଧ୍ୟମା ଓ ଅଧମା ଭେଦରେ ଯଥାକ୍ରମେ ୩ ଶ୍ରେଣୀରେ ବିଭକ୍ତା । ଅତଏବ ଦେଖିବାକୁ ଗଲେ ହିନ୍ଦୁ କାବ୍ୟକାରମାନେ ନାୟିକାମାନଙ୍କୁ ୩×୩×୯×୩ = ୨୪୩ ଶ୍ରେଣୀରେ ବିଭକ୍ତ କରି ଅଛନ୍ତି । ଏହାଙ୍କୁ ପୁଣି କାବ୍ୟ : ରସିକମାନେ, ଧୀରା, ଅଧୀରା, ଧୀରାଧୀରା, ଏହିପରି ୩ ଭାଗରେ କରି ଅଛନ୍ତି । (ଧୀରା=ବ୍ୟଙ୍ଗକୋପ ପ୍ରକାଶା, ଅଧୀରା=ଅବ୍ୟଙ୍ଗକୋପ ପ୍ରକାଶା, ଧୀରାଧୀରା=ବ୍ୟଙ୍ଗାବ୍ୟଙ୍ଗ କୋପ ପ୍ରକାଶା ) । ଏମାନଙ୍କୁ ପୁଣି ଜ୍ୟେଷ୍ଠା ଓ କନିଷ୍ଠା ଭେଦରେ ଅଭ ୨ ଶ୍ରେଣୀରେ ଭାଗ କରି ଯାଇଅଛି । (ରସମଞ୍ଜରୀ) ।] ୨। ପତିବ୍ରତା ସ୍ତ୍ରୀ—2. A devoted wife. ସଂ : ଣ. ସ୍ତ୍ରୀ—ସ୍ୱୀୟର ସ୍ତ୍ରୀଲିଙ୍ଗ—Feminine of Swīya.

**ସ୍ୱୁର୍ଚ୍ଛ୍ (ଧାତୁ)**—ସଂ ବି—ବିସ୍ମୃତ ହେବା; ଭୁଲିଯିବା—To forget. Swūrchchh (root)

**ସ୍ୱୃ (ଧାତୁ)**—ସଂ ୧ । ଶବ୍ଦ କରିବା—1. To make a sound. Swṛu (root) ୨ । ପୀଡ଼ା ଦେବା; ଦଣ୍ଡଦେବା—2. To punish; to oppress.

**ସ୍ୱୄ (ଧାତୁ)**—ସଂ.—ହିଂସା କରିବା—Swṝū (root) To trouble; to kill.

**ସ୍ୱେକ (ଧାତୁ)**—ସଂ.—ଗତି କରିବା—Sweka (root) To move.

**ସ୍ୱେଚ୍ଛା**—ସଂ. ବି—(ଷଷ୍ଠୀ ତତ୍; ସ୍ୱ+ଇଚ୍ଛା)—୧ । ନିଜର ଇଚ୍ଛା—Swechchhā 1. One's wish; volition. ୨ । ଯଦୃଚ୍ଛା—2 Free will. ୩ । ସ୍ୱଚ୍ଛନ୍ଦ; ସ୍ୱାଧୀନତା—3. Independence; freedom.

**ସ୍ୱେଚ୍ଛାକ୍ରମେ**—ଦେ. କ୍ରି. ବିଣ—ନିଜର ଇଚ୍ଛାନୁସାରେ—Out of Swechchhā krame one's own accord volun-স্বেচ্ছাক্রমে स्वेच्छासे tarily.

**ସ୍ୱେଚ୍ଛାଚରଣ**—ସଂ. ବି.—୧ । ସ୍ୱୈରାଚାର; ଯଥେଚ୍ଛାଚାର; ନିଜର Swechchhācharaṇa ଇଚ୍ଛାନୁସାରେ ଆଚରଣ—1. (ସ୍ୱେଚ୍ଛାଚାର—ଅନ୍ୟରୂପ) Acting according to one's free will. ୨ । ସ୍ୱୈରିତା—2. Arbitrariness.

**ସ୍ୱେଚ୍ଛାଚାରୀ**—ସଂ. ବିଣ ପୁଂ—(ସ୍ୱେଚ୍ଛାଚାର+ଇନ୍;ସ୍ୱେଚ୍ଛାଚାରିନ୍ ଶବ୍ଦ ୧ମା. Swechchhāchārī ୧ବ)—୧ । ନିଜର ଇଚ୍ଛାନୁସାରେ (ସ୍ୱେଚ୍ଛାଚାରିଣୀ—ସ୍ତ୍ରୀ) କାର୍ଯ୍ୟକାରୀ—Acting according to (ସ୍ୱେଚ୍ଛାଚାରିତା—ବି) one's free will. ୨ । ଯଥେଚ୍ଛାଚାରୀ—2. Arbitrary. ୩ । ଅବାଧ୍ୟ—3. Uncontrollable disobedient.

**ସ୍ୱେଚ୍ଛାନୁବର୍ତ୍ତୀ**—ସଂ. ବିଣ.—(ସ୍ୱେଚ୍ଛା ଅନୁବର୍ତ୍ତିନ୍=ସ୍ୱେଚ୍ଛାନୁବର୍ତ୍ତିନ Swechchhānubarttī ଶବ୍ଦ ୧ମା. ୧ବ )—ସ୍ୱେଚ୍ଛାଚାରୀ (ସ୍ୱେଚ୍ଛାନୁବର୍ତ୍ତିତା—ବି) (ଦେଖ)—Swechchhāchārī (See)

**ସ୍ୱେଚ୍ଛା ପ୍ରଣୋଦିତ**—ସଂ. ବିଣ.ପୁଂ—(ଷଷ୍ଠୀ ତତ୍ )—ନିଜର ଇଚ୍ଛାଦ୍ୱାରା Swechchhāpraṇodita ନିୟୋଜିତ ବା ଚାଳିତ—Prompted by one's own will (ସ୍ୱେଚ୍ଛାପ୍ରଣୋଦିତା—ସ୍ତ୍ରୀ)

**ସ୍ୱେଚ୍ଛାବିହାରୀ**—ସଂ. ବିଣ. ପୁଂ (ସ୍ୱେଚ୍ଛାବିହାରିନ ଶବ୍ଦ; ସ୍ୱେଚ୍ଛା + ବିହାରିନ୍)
Swechchhā bihārī —ସଦିଚ୍ଛା ବିହାରୀ;ଯେ ସ୍ୱେଚ୍ଛାକ୍ରମେ ବିହାର
(ସ୍ୱେଚ୍ଛାବିହାରିଣୀ—ସ୍ତ୍ରୀ) କରେ—Moving freely according to one's free will.
(ସ୍ୱେଚ୍ଛାବିହାର—ବି)

**ସ୍ୱେଚ୍ଛା ମରଣ**—ସଂ. ବି—ନିଜର ଇଚ୍ଛାରେ ମରିବା—Dying according to one's wish; self-controlled death. ବି—ଭୀଷ୍ମଦେବ
Swechchhā maraṇa
(ସ୍ୱେଚ୍ଛାମୃତ୍ୟୁ—ଅନ୍ୟରୂପ)
A name of Bhishma.

**ସ୍ୱେଚ୍ଛା ସେବକ**—ଦେ. ବି ପୁଂ—ନିଜ ଇଚ୍ଛାନୁସାରେ କୌଣସି କାର୍ଯ୍ୟ
Swechchhā sebaka କରିବାକୁ ବାହାରିଥିବା ବ୍ୟକ୍ତି; ସ୍ୱୟଂସେବକ;
স্বেচ্ছাসেবক ଭଲେଣ୍ଟିଅର୍—Volunteer. [ଦ୍ର—କୌଣସି
स्वेच्छासेवक ଗୁରୁତର ଅସୁବିଧାଯୁକ୍ତ କର୍ମ ଓ ଜନସେବା ଆଦି କାର୍ଯ୍ୟ
(ସ୍ୱେଚ୍ଛାସେବିକା—ସ୍ତ୍ରୀ) କରିବାକୁ ଯେଉଁମାନେ ନିଜର ଇଚ୍ଛା ଅନୁସାରେ ସ୍ୱୀକୃତ ହୋଇ କାର୍ଯ୍ୟ କରନ୍ତି ସେମାନଙ୍କୁ ସ୍ୱେଚ୍ଛାସେବକ ବା ଭଲେଣ୍ଟିଅର ବୋଲାଯାଏ । ]

**ସ୍ୱେଦ**—ସଂ. ବି (ସ୍ୱିଦ୍ ଧାତୁ + ଭାବ ଅ; ତୁଳ, ଇଂ. ସ୍ୱେଟ୍)—୧। ଘର୍ମ;
Sweda ଝାଳ—1. Sweat; perspiration. ୨। ବାଷ୍ପ;
ବାମ୍ଫ—2. Vapour; steam ୩। ଉଷ୍ମ; ତାପ—
3. Heat. ୪। ସ୍ୱେଦନ; ବାମ୍ଫ ଅଣି ଦେବା—
4. Vapour bath. ୫। (+କରଣ ଅ)—ଝାଳ ବୁହାଇବା ଔଷଧ (ହ୍ର. ଶ)—5. Any medicine which brings about perspiration. ୬। ଓଲିଆ କର।—6. Moisture. ୭। (ବୈଦ୍ୟକ) ସେକିବା—7. Fomentation. [ଦ୍ର—ଏହା ୪ ପ୍ରକାର—ତାପସ୍ୱେଦ, ଉପନାହ ସ୍ୱେଦ, ଦ୍ରବ୍ୟ ସ୍ୱେଦ ଓ ବାଷ୍ପସ୍ୱେଦ ।

(କ) ବାଲି, କନାପୁଡ଼ା, ହାତ, ଧାତୁପାତ୍ର ଓ ଖଇର କାଠର ଅଙ୍ଗାର ଦ୍ୱାରା ମନୁଷ୍ୟ ଦେହକୁ ସେକିବାର ନାମ ତାପସ୍ୱେଦ ।

(ଖ) ଅମ୍ଳ, ଲବଣ ଓ ସ୍ନେହ, ତୈଳାଦିଯୁକ୍ତ ବାତନାଶକ ଦ୍ରବ୍ୟ ପ୍ରଲେପର ନାମ ଉପନାହ ସ୍ୱେଦ ।

(ଗ) ଗରମପାଣି ଏବଂ ବାତନାଶକ ଦ୍ରବ୍ୟକ୍ୱାଥଦ୍ୱାରା ସ୍ନାନ କରାଇବାର ନାମ ଦ୍ରବ୍ୟ ସ୍ୱେଦ ।

(ଘ) ପଥର ଓ ଇଟା ପ୍ରଭୃତିକୁ ଅଗ୍ନିବତ୍ ଉତ୍ତପ୍ତ କରି ତହିଁରେ କ୍ୱାଥାଦ ଦ୍ରବ୍ୟ ସେଚନ କଲେ ଯେଉଁ ବାଷ୍ପ ଉଦ୍‌ଗତ ହୁଏ ତାହାର ନାମ ବାଷ୍ପସ୍ୱେଦ । (ଦ୍ରବ୍ୟଗୁଣ କଳ୍ପଦ୍ରୁମ ]

୮। ଉତ୍କଣ୍ଠିତ ପ୍ରେମିକ ପ୍ରେମିକାଙ୍କର ଅଷ୍ଟଦଶା ମଧ୍ୟରୁ ଏକତମ—8. One of the 8 stages found in unsatiated lovers. [ଦ୍ର—ଭଞ୍ଜ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ୧୮ଶ ଛାନ୍ଦ ୨୭ ପଦରେ ଏ ବିଷୟ ବର୍ଣ୍ଣିତ ହୋଇ ଅଛି ] ସଂ. ବିଣ—ଘର୍ମୋତ୍ପାଦକ (ହ୍ର. ଶ)—Causing perspiration.

**ସ୍ୱେଦକ**—ସଂ. ବି (ସ୍ୱିଦ୍ ଧାତୁ + କର୍ତ୍ତୃ ଅକ)—କାନ୍ତଲୌହ (ହ୍ର ଶ)—
Swedaka A kind of iron. ସଂ ବିଣ—ଘର୍ମୋତ୍ପାଦକ (ହ୍ର. ଶ)—Causing perspiration.

**ସ୍ୱେଦ ଗଞ୍ଜନ**—ଦେ. ବି—ଝାଳ ମାରିବା—Drying up perspiration. [ଦ୍ର—ବଳଯୁଥିବେଟ ଗଞ୍ଜନେ ଘଣୀଏ
Sweda gañjan
ସ୍ୱେଦଗଞ୍ଜନେ—ଭଞ୍ଜ. ପ୍ରେମସୁଧାନିଧି ]

**ସ୍ୱେଦ ଚୂଷକ**—ସଂ ବି (ସ୍ୱେଦ + ଚୂଷ୍ ଧାତୁ = ଶୋଷିବା + କର୍ତ୍ତୃ ଅକ)—
Sweda chūshaka ଯାହା ଝାଳକୁ ଶୁଖାଇ ଦିଏ)—ଶୀତଳବାୟୁ (ଶବ୍ଦ କଳ୍ପଦ୍ରୁମ)—Cool wind.

**ସ୍ୱେଦଜ**—ସଂ. ବିଣ. (ସ୍ୱେଦ + ଜନ୍ ଧାତୁ + କର୍ତ୍ତୃ ଅ)—ଘର୍ମରୁ
Swedaja ଜାତ—Born of sweat or moisture.
[ଦ୍ର—ପ୍ରାଣୀମାନେ ୪ ଶ୍ରେଣୀରେ ବିଭକ୍ତ ଯଥା—ଜରାୟୁଜ (ମତାନ୍ତରରେ ପିଣ୍ଡଜ), ଉଦ୍ଭିଜ୍ଜ, ଅଣ୍ଡଜ (ମତାନ୍ତରରେ କଳଜ) ଓ ସ୍ୱେଦଜ ।] ସଂ. ବି.—କୃମି, ମଶା, ମାଛି ଆଦି—Insects (which were supposed to be born out of sweat or moisture); a class of animals.

**ସ୍ୱେଦ ଜଳ (ବାରି)** ସଂ. ବି—ଦେହରୁ ବୋହିବା ଝାଳ—Sweat or
Sweda jala(bāri) perspiration flowing from the body.

**ସ୍ୱେଦଜ ଶାକ**—ସଂ. ବି—ଛତୁ; ଛତୁ—Mushroom; fungus.
Swedaja śāka [ଦ୍ର—ବୈଦ୍ୟକ ମତରେ ଏହା ଶୀତଳ, ଦୋଷଜନକ, ପିଚ୍ଛିଳ ଓ ବମନ, ଅତିସାର ଓ ଜ୍ୱର ଆଦିର ଉତ୍ପାଦକ (ହ୍ର. ଶ) ।]

**ସ୍ୱେଦନ**—ସଂ. ବି (ସ୍ୱିଦ୍ ଧାତୁ ଣିଚ୍ = ସ୍ୱେଦ ଧାତୁ + ଭାବ ଅନ)—
Swedana ୧। ଦେହରେ ତାପ ପ୍ରୟୋଗ ପୂର୍ବକ ଝାଳବୁହାଇବା; ସେକିବା—1. Causing the body to perspire by application of heat; fomentation. [ଦ୍ର—ବୈଦ୍ୟଶାସ୍ତ୍ର ଅନୁସାରେ ସ୍ୱେଦନ ୪ ପ୍ରକାର—ତାପସ୍ୱେଦନ—ଦେହକୁ ନିଆଁରେ ସେକିବା—Basking in or warming with fire.

ଉଷ୍ମସ୍ୱେଦନ—ଦେହରେ ବାମ୍ଫ ଲଗାଇ ସେକିବା; ବାମ୍ଫ ଅଣି ଦେବା—Vapour bath.

ଉପନାହ ସ୍ୱେଦନ—ଲୁଣ, ବାଲି,ପତ୍ର ତେଲ,ମୂଳ ଆଦିକୁ ଛେଚି, ପୁଡ଼ା କରି ଉକ୍ତ ପୁଡ଼ାକୁ ନିଆଁରେ ତତାଇ ତାହିକି ପୁଡ଼ାକୁ ଦେହରେ ମାଡ଼ିବା—Dry fomentation.

ଦ୍ରବ୍ୟ ସ୍ୱେଦନ—କୁଣ୍ଡ ମଧ୍ୟରେ ଗରମ ପାଣି ବା ଗରମ ଦୁଧ ବା ଗରମ କ୍ୱାଥ ଭର୍ତ୍ତି ତହିଁରେ ନାଭି ପର୍ଯ୍ୟନ୍ତ ବୁଡ଼ାଇ ଦେହକୁ ଗରମ କରିବା—Hot bath.

ଏହି ପ୍ରକ୍ରିୟା ଦ୍ୱାରା ନାନାବିଧ ଅସାଧ୍ୟରୋଗ ଭଲ ହୁଏ ଓ ଦେହମଧ୍ୟଗତ ଦୂଷିତ ଓ ବିଷାକ୍ତ ପଦାର୍ଥ ସ୍ୱେଦରୂପେ ଲୋମକୂପ ବାଟେ ବାହାରି ଅସେ । ]

୨ । ସ୍ୱେଦୋତ୍ପତ୍ତି; ଝାଳ ବୋହିବା—2. Perspiration. ୩ । ବାଷ୍ପ ଅଗ୍ନି ଦେବା—3. Vapour bath. ୪ । ଅଧାର ବାଷ୍ପ ସିଝାଇବା—4. Boiling things in vapour. ୫ । ଔଷଧକୁ ଶୋଧନ କରିବା ପାଇଁ ବୈଦ୍ୟମାନଙ୍କ ବ୍ୟବହୃତ ଯନ୍ତ୍ର ବିଶେଷ (ବୃ. ଶ) ଓ ଉକ୍ତ ପ୍ରକ୍ରିୟା—5. Name of a contrivance for rectifying medicines. [ବି—ଗୋଟିଏ ହାଣ୍ଡିରେ ଜଳ, ପାରଦ ବା ଦ୍ରବ୍ୟ ଅଳ୍ପ ପୁରାଇ ହାଣ୍ଡିର ମୁହଁରେ କନା ବାନ୍ଧି କନା ଉପରେ ଔଷଧ-ଦ୍ରବ୍ୟକୁ ରଖି ତା ଉପରେ ଗୋଟିଏ ଥାଳି ଘୋଡାଇ ହାଣ୍ଡିକୁ ଜଳନ୍ତା ଚୁଲ୍ଲୀରେ ବସାଇବାକୁ ହୁଏ । ହାଣ୍ଡିରେ ଥିବା ଜଳୀୟ ପଦାର୍ଥ ଫୁଟିଲେ ତହିଁରୁ ବାହାରିବା ବାଷ୍ପ ଉକ୍ତ କନାର ଛିଦ୍ରମାନଙ୍କ ବାଟେ ଆସି ଉକ୍ତ ଔଷଧ ଦ୍ରବ୍ୟରେ ଲାଗେ । ଉକ୍ତ ଯନ୍ତ୍ରକୁ ଓ ଉକ୍ତ ପ୍ରକାର ଦ୍ରବ୍ୟଶୋଧନ ପ୍ରଣାଳୀକୁ ସ୍ୱେଦନ କୁହାଯାଏ—ବୃ. ଶ ]

ସ୍ୱେଦନ ଯନ୍ତ୍ର—ସ. ବି—ବୈଦ୍ୟଶାସ୍ତ୍ରୋକ୍ତ ଦୋଳା ଯନ୍ତ୍ର; ଔଷଧର Swedana jantra ପୁଟୁଳିକୁ ହାଣ୍ଡିରେ କାଠି ଉପରେ ବସିଥିବା କାଞ୍ଜି ପାଣି ମଧ୍ୟରେ ଝୁଲାଇ ରଖି ଔଷଧକୁ ସିଝାଇବା ଯନ୍ତ୍ର—A contrivance for heating some herbs by suspending them into 'Kānji' boiling in a pot over fire.

ସ୍ୱେଦ ନାଶ—ସ. ବି (ବହୁବ୍ରୀହି)—ବାୟୁ; ପବନ (ବୃ. ଶ)—Sweda nāsa Air; wind.

ସ୍ୱେଦନିକା—ସ. ବି ( ସ୍ୱେଦନୀ+ସ୍ୱାର୍ଥେ କ+ଅ )—୧ । କଡ଼େଇ; Swedanikā ଭର୍ଜନ ପାତ୍ର; ଭଜିବାର ପାତ୍ର; ଲୁହା କରେଇ; ତାୱା (ହେମଚନ୍ଦ୍ର)—1. Frying pan. ୨ । ଭର୍ଜନ ଶାଳା—2. A room where things are roasted or fried. ୩ । ଅର୍କ ମଦ କାଢ଼ିବାର ବକଯନ୍ତ୍ର ପାତ୍ର (ବୃ. ଶ)—3 Wine-distilling pot.

ସ୍ୱେଦ ନିର୍ଗମ—ସ. ବି (୬ଷ୍ଠୀ ତତ୍)—ଦେହରୁ ଝାଳ ବୋହିବା—Sweda nirgama Perspiration.

ସ୍ୱେଦନୀ—ସ. ବି ( ସ୍ୱିଦ ଧାତୁ + କରଣ. ଅନ+ସ୍ତ୍ରୀ. ଈ )—Swedanī ସ୍ୱେଦନିକା; ଭାଜିବାର ପାତ୍ର; କରେଇ; ତାୱା—Frying pan.

ସ୍ୱେଦନୀୟ—ସ. ବିଣ (ସ୍ୱିଦ୍ ଧାତୁ+କର୍ମ. ଅନୀୟ)—ସ୍ୱେଦ୍ୟ ( ଦେଖ ) Swedanīya Swedya ( See )

ସ୍ୱେଦ ବିନ୍ଦୁ(ବିପ୍ରୁଟ୍)—ସ.ବି (୬ଷ୍ଠୀ ତତ୍)—ଘର୍ମବିନ୍ଦୁ; ଝାଳର ଟୋପା Sweda bindu(biprut) —Drops of perspiration.

ସ୍ୱେଦ ମଳୋଜ୍ଝିତ ଦେହ—ସ. ବି—୧ । ଯେଉଁ ଦେହ ସ୍ୱେଦଯୁକ୍ତ ଓ Sweda malojjhita deha ମଳଯୁକ୍ତ ହେବାରୁ ତ୍ୟକ୍ତ ହୋଇଅଛି—1. A body which has been abandoned owing to its having been spoiled with sweat and filth. ୨ । ସର୍ବଜୀବୀ ଜୈନ ମହନ୍ତ ଉପାସକ (ହେମଚନ୍ଦ୍ର)—2. Name of the best of the Jaina saints. ବିଣ. ପୁଂ—ଯେଉଁ ବ୍ୟକ୍ତିର ଶରୀରରୁ (ସ୍ୱେଦ ମଳୋଜ୍ଝିତ ଦେହା—ସ୍ତ୍ରୀ ଣୀ) ସ୍ୱେଦ ଓ ମଳ ବହିର୍ଗତ ହେଉଅଛି—(a person) Whose body is emitting sweat and filth.

ସ୍ୱେଦ ସ୍ରାବ—ସ. ବି (୬ଷ୍ଠୀ ତତ୍)—ଦେହରୁ ପ୍ରଚୁର ଘର୍ମ ନିର୍ଗମନ—Sweda srāba Copious perspiration.

ସ୍ୱେଦାୟନ—ସ. ବି (୬ଷ୍ଠୀ ତତ୍; ସ୍ୱେଦର ଅୟନ ବା ମାର୍ଗ, ଯେଉଁ Swedāyana ବାଟେ ଦେହରୁ ସ୍ୱେଦ ବାହାରେ)—ଲୋମକୂପ (ବୃ. ଶ)—The pores of the skin.

ସ୍ୱେଦିତ—ସ. ବି (ସ୍ୱେଦ+ସଂଜାତ ଅର୍ଥରେ ଇତ)—୧ । ସ୍ୱେଦନ କରାଯାଇଥିବା; ସେକା ଯାଇଥିବା—Swedita 1. Fomented. ୨ । ସ୍ୱେଦଯୁକ୍ତ—2. Perspiring; sweating ୩ । ତାପିତ—3. Heated.

ସ୍ୱେଦୀ—ସଂ. ବିଣ ପୁଂ (ସ୍ୱିଦ୍ ଧାତୁ+କର୍ତ୍ତୃ. ଇନ୍; ସ୍ୱେଦିନ୍, ୧ମା. Swedī ୧ବ)—ଘର୍ମକାରକ ( ବୃ ଶ )—Causing pers- (ସ୍ୱେଦିନୀ—ସ୍ତ୍ରୀ) piration.

ସ୍ୱେଦୋଦ୍ଗମ—ସଂ. ବି (୬ଷ୍ଠୀ ତତ)—ଦେହରୁ ଝାଳ ବୋହିବା—Swedodgama Perapiration.

ସ୍ୱେଦ୍ୟ—ସ. ବି—(ସ୍ୱିଦ୍ ଧାତୁ+କର୍ମ ଯ)—୧ । ସ୍ୱେଦନୀୟ; ଯାହାକୁ Swedya ସ୍ୱେଦନ କରିବା ଉଚିତ—1.Fit to be fomented. ୨ । ଯାହାକୁ ତପ୍ତ କରିବା ଉଚିତ—2. Fit to be warmed or heated. ୩ । ସ୍ୱେଦଜନକ—3. Causing perspiration.

ସ୍ୱୈର—ସ. ବି (ସ୍ୱ+ଈର ଧାତୁ=ଗମନ କରିବା+ଭାବ ଅ)—୧ । Swaira ସ୍ୱେଚ୍ଛାଗତି—1. Freedom of action or movement. ୨ । ସ୍ୱାଧୀନତା—2 Liberty. ୩ । ସ୍ୱାଚ୍ଛନ୍ଦ୍ୟ—3. Comfort. ବିଣ. ପୁଂ—(+କର୍ତ୍ତୃ. ଅ)—୧ । ସ୍ୱଚ୍ଛନ୍ଦ—1. Independent ୨ । ସ୍ୱବଶ—2. Free. ୩ । ସ୍ୱେଚ୍ଛାଗାମୀ (ବ୍ୟକ୍ତି)—3. Arbitrary (man). ୪ । ଧୀମା; ମାନ୍ଦା (ବୃ ଶ)—4. Slow. ୫ । ଯଥେଚ୍ଛା (କର୍ମ)—(ସ୍ୱୈରା—ସ୍ତ୍ରୀ ବିଣ) (ବୃ. ଶ)—5. Arbitrary (action).

ସ୍ୱୈର ଗତି—ସ ବି (କର୍ମଧା)—ସ୍ୱଚ୍ଛନ୍ଦ ଗତି—Free movement. Swaira gati ବିଣ. (ପୁଂ ଓ ସ୍ତ୍ରୀ) (ବହୁବ୍ରୀହି)—ସ୍ୱେଚ୍ଛାବିହାରୀ—Moving freely.

ସ୍ୱୈରଚାରିଣୀ—ସ. ବି. ସ୍ତ୍ରୀ ବ୍ୟଭିଚାରିଣୀ ସ୍ତ୍ରୀ—Adulteress. Swairachārinī ସ. ବିଣ. ସ୍ତ୍ରୀ—୧ । ବ୍ୟଭିଚାରିଣୀ (ସ୍ତ୍ରୀ)—1. Adulterous (female). ୨ । ସ୍ୱୈରଚାରୀର ସ୍ତ୍ରୀଲିଙ୍ଗ—2. Feminine of swairachārī.

ସ୍ୱୈରଚାରୀ—ସ. ବିଣ ପୁଂ (ସ୍ୱୈରଚାରିନ୍ ଶବ୍ଦ, ସ୍ୱୈର=ସ୍ୱେଚ୍ଛାପୂର୍ବକ+ Swairachārī ଚର ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ )—(ସ୍ୱୈର ଚାରିଣୀ—ସ୍ତ୍ରୀ) ୧ । ସ୍ୱେଚ୍ଛାଚାରୀ; ଯଥେଚ୍ଛାଚାରୀ—1. Arbitrary, ୨ । ବ୍ୟଭିଚାରୀ—2. Adul-

(ସ୍ୱୈରଗ୍ରହଣ—ବି) terous. ବି. ପୁଂ—ବ୍ୟଭିଚାରୀ ପୁରୁଷ—Adulteror.

ସ୍ୱୈର (ରି) ତା—ସଂ. ବି ( ସ୍ୱୈର+ତା, ସ୍ୱୈରିନ୍+ତା )—୧ ।
Swaira (ri) ta ସ୍ୱେଚ୍ଛାଚାରିତା—1. Arbitrariness. ୨ । ଅବାଧ୍ୟତା—2. Disobedience; insubordination. ୩ । ବ୍ୟଭିଚାରିତା—3. Adultery.

ସ୍ୱୈର(ରି)ନ୍ଧ୍ରୀ—ସଂ. ବି.ସ୍ତ୍ରୀ(ସ୍ୱୈର=ସ୍ୱେଚ୍ଛାଚାର+ଧୃ ଧାତୁ+କର୍ତ୍ତୃ. ଅ+
Swaira (ri) ndhri ଈ, ନିପାତନ)—ପରଗୃହସ୍ଥା ସ୍ୱବଶା ଶିଳ୍ପକାରିଣୀ ନାରୀ, ଯେଉଁ ଶୁକ୍ରଷା ରାଜା ଅନ୍ତଃପୁରର ସ୍ତ୍ରୀମାନଙ୍କର [ସ୍ୱୈର (ରି) ନ୍ଧ୍ରୀ—ଅନ୍ୟଗୃହ] ପ୍ରସାଧନ, ଗନ୍ଧାନୁଲେପନାଦି ଶିଳ୍ପକର୍ମ କରେ; ଅଥଚ ତା ନିଜର ଇଚ୍ଛାନୁସାରେ ଶୁଶ୍ରୂଷା କରେ ବା ଛାଡ଼ି ଦେଇପାରେ—A maid servant who is free in her movements and who is engaged in attending to the toilette of the females of the harem of Rajas. [ଦ୍ର—ପାଣ୍ଡବମାନଙ୍କ ଅଜ୍ଞାତବାସ କାଳରେ ଦ୍ରୌପଦୀ ଏହି ନାମରେ ବିରାଟରାଜଭବନରେ ଆପଣାକୁ ପରିଚିତା କରାଇ ଆଶ୍ରୟ ନେଇଥିଲେ । ]

ସ୍ୱୈର ପେଶୀ—ଦେ. ବି—( ଅଧିନାୟକ ତନ୍ତ୍ରସ୍ନାୟୁଜ୍ଞାନ ପରଶୂନ୍ୟ )—
Swaira peśi ହୃଦୟର ଓ ପାକସ୍ଥଳୀର ପେଶୀ—The muscles of the heart and the abdomen; involuntary muscles of the body.
ସ୍ୱୈରପେଶୀ
स्वैरपेशी

ସ୍ୱୈରବର୍ତ୍ତୀ—ସଂ. ବଣ. ପୁଂ (ସ୍ୱୈର+ବୃତ ଧାତୁ+କର୍ତ୍ତୃ ଇନ ୧ମା,
Swairabartti ୧ବ) - ସ୍ୱେଚ୍ଛାଚାରୀ (ହି ଶ)—Arbitrary.
(ସ୍ୱୈରବର୍ତ୍ତିନୀ—ସ୍ତ୍ରୀ)

ସ୍ୱୈର ବୃତ୍ତି—ସଂ. ବି—ସ୍ୱାଧୀନ ବୃତ୍ତି; ସ୍ୱେଚ୍ଛାଚାର—Acting freely;
Swairabrutti free in movement.
(ସ୍ୱୈରବୃତ୍ତ. (ପୁଂ)—ସ୍ୱୈରବୃତ୍ତା (ସ୍ତ୍ରୀ)—ବଣ )

ସ୍ୱୈରାଚାର—ସଂ. ବି—ଯଥେଚ୍ଛାଚାର—Arbitrary action.
Swairāchāra (ସ୍ୱୈରାଚାରିଣୀ (ସ୍ତ୍ରୀ)—ସ୍ୱୈରାଚାରୀ(ପୁଂ)—ବଣ )

ସ୍ୱୈରିଣୀ—ସଂ. ବି. ସ୍ତ୍ରୀ—୧ । ବ୍ୟଭିଚାରିଣୀ ସ୍ତ୍ରୀ; କୁଳଟା—1. Adul-
Swairini teress. ୨ । ଯେଉଁ ସ୍ତ୍ରୀ କାମପରବଶ ହୋଇ ସ୍ୱେଚ୍ଛାକ୍ରମେ ସବର୍ଣ୍ଣ ପୁରୁଷକୁ ଆଶ୍ରୟ କରେ—2. A woman who entertains a gallant of her caste out her free will. ସଂ. ବଣ ସ୍ତ୍ରୀ—ସ୍ୱୈରୀର ସ୍ତ୍ରୀ ଲିଙ୍ଗ—Feminine of Swairi.

ସ୍ୱୈରିତା—ସଂ. ବି (ସ୍ୱୈରିନ+ତା)—ସ୍ୱୈରତା (ଦେଖ)—
Swairitā Swairata (See)

ସ୍ୱୈରିନ୍ଧ୍ରୀ—ସ.ବି. ସ୍ତ୍ରୀ (ସ୍ୱୈର+ଧୃ ଧାତୁ+କର୍ତ୍ତୃ ଅ+ଈ, ନିପାତନ)—
Swairindhri ସ୍ୱୈରନ୍ଧ୍ରୀ (ଦେଖ)—Swairandhri (See)—

ସ୍ୱୈରୀ—ସଂ. ବଣ. ପୁଂ (ସ୍ୱୈର+ଇନ୍; ୧ମା. ୧ବ )—ସ୍ୱୈରଚାରୀ
Swairi (ଦେଖ)—Swaira chāri (See). ବି—
(ସ୍ୱୈରିତା—ବି) ବ୍ୟଭିଚାରୀ ବ୍ୟକ୍ତି—Adulteror.

ସ୍ୱୋପାୟ—ସଂ. ବି—(୬ଷ୍ଠୀ ତତ୍)—ନିଜର ଉପାୟ—One's own
Swopāya plan.

ସ୍ୱୋପାର୍ଜ୍ଜନ—ସଂ. ବି (୬ଷ୍ଠୀ ତତ୍)—ନିଜର ଅର୍ଜ୍ଜନ; ନିଜର ରୋଜଗାର
Swopārjjana —Self-acquisition.

ସ୍ୱୋପାର୍ଜ୍ଜିତ—ସଂ. ବଣ—(୩ୟା ତତ୍)—ନିଜଦ୍ୱାରା ଅର୍ଜ୍ଜିତ—Self-
Swopārjjita acquired.

ସ୍ୱୋପାର୍ଜ୍ଜିତ ସମ୍ପତ୍ତି—ସଂ. ବି—ନିଜଦ୍ୱାରା ଅର୍ଜ୍ଜିତ ସମ୍ପତ୍ତି—Pro-
Swopārjjita sampatti perty which is acquired by one's self; self-acquired property. [ଦ୍ର—ସ୍ମୃତି ଅନୁସାରେ ମନୁଷ୍ୟ ସ୍ୱୋପାର୍ଜ୍ଜିତ ଧନକୁ ନିଜର ଇଚ୍ଛାକ୍ରମେ ବ୍ୟୟ ବା ଦାନ କରିପାରେ, କିନ୍ତୁ ପୈତୃକ ସମ୍ପତ୍ତିରେ ମନୁଷ୍ୟର ଅଧିକାର ସୀମାବଦ୍ଧ । ସ୍ୱୋପାର୍ଜ୍ଜିତ ସମ୍ପତ୍ତିରୁ କୌଣସି ପୁତ୍ରକୁ ବା ସମସ୍ତ ପୁତ୍ରଙ୍କୁ ବଞ୍ଚିତ କରାଯାଇ ପାରେ, କିନ୍ତୁ ପୈତୃକ ସମ୍ପତ୍ତି ପକ୍ଷରେ ମନୁଷ୍ୟ ଏହା କରି ନ ପାରେ ।

ଯୌଥପରିବାର ମଧ୍ୟରୁ ଜଣେ ବ୍ୟକ୍ତି ସମ୍ପତ୍ତି ଅର୍ଜ୍ଜନ କରିଥିଲେ ବଣ୍ଟାବେଳେ ସ୍ୱୋପାର୍ଜ୍ଜିତ ସମ୍ପତ୍ତିରୁ ଅନ୍ୟ ଅଂଶିଦାରମାନେ ଭାଗ ପାଇବେ, କିନ୍ତୁ ଅର୍ଜ୍ଜକର ଭାଗ ଅନ୍ୟମାନଙ୍କ ଭାଗ ଅପେକ୍ଷା ଦୁଇଗୁଣ ହେବ । ସ୍ୱୋପାର୍ଜ୍ଜିତ ସମ୍ପତ୍ତି ୨ ଶ୍ରେଣୀରେ ବିଭକ୍ତ—୧। ପୈତୃକ ସମ୍ପତ୍ତିର ସାହାଯ୍ୟରେ ଅର୍ଜ୍ଜିତ ସମ୍ପତ୍ତି ଓ—୨ । ପୈତୃକ ସମ୍ପତ୍ତିର ବିନା ସାହାଯ୍ୟରେ ଅର୍ଜ୍ଜିତ ସମ୍ପତ୍ତି ।]

ସ୍ୱୋବଶ୍ୱୀୟ—ସଂ. ବି (ଶ୍ୱଃ=ଶ୍ରେୟ+ଈୟ; ନିପାତନ)—କଲ୍ୟାଣ; ଶୁଭ
Swobaświya (ମୁଗ୍ଧବୋଧ)—Well being; weal.

ସ୍ୱୋରସ—ସଂ. ବି—ସ୍ୱରସ; ଶିଳା ପିଷ୍ଟ; କଳ୍କ ( ଶବ୍ଦଚନ୍ଦ୍ରିକା )—
Sworasa Juice pressed from bruised leaves and twigs.

ସ୍ମକ୍—ବୈଦେ. ବି—( ଇଂ )—ଏକ ପ୍ରକାର ବଡ଼ କୋଟ୍—
Smak स्मक स्मक Smock.

ସ୍ମୟ—ସଂ. ବି—୧ । ଗର୍ବ (ମେଦିନୀ)—1. Pride; arrogance.
Smaya ୨ । ବିସ୍ମୟ; ଆଶ୍ଚର୍ଯ୍ୟ ( ମେଦିନୀ )—2. Wonder;
(ସ୍ମିତ—ବଣ) astonishment. ବଣ—ଅଦ୍ଭୁତ (ମେଦିନୀ) —Wonderful: astonishing.

ସ୍ମର—ସଂ. ବି—( ସ୍ମୃ ଧାତୁ=ମନେ କରିବା+କର୍ମ ଅ )—୧ ।
Smara କାମଦେବ; ମଦନ; କନ୍ଦର୍ପ—1. Cupid. ୨ । (+କର୍ତ୍ତୃ. ଅ) ବେଦ ବ୍ୟାଖ୍ୟାତା—2. Comentator of the Bedas. ୩ । (+ଭାବ. ଅ) ସ୍ମରଣ; ସ୍ମୃତି—3. Remembrance. ବଣ—ସ୍ମରଣକାରୀ—Remembering.

ସ୍ମର କଥା—ସଂ. ବି (ମ. ପ. ଲୋ)—କାମୋଦ୍ଦୀପକ ଆଳାପ—Libidinous talk.
Smara kathā

ସ୍ମରକାର—ସ.ବଣ (ସ୍ମର+କୃ ଧାତୁ ଣିଚ୍+କର୍ତ୍ତୃ ଅ)—କାମୋଦ୍ଦୀପକ
Smarakāra (ହି. ଶ)—Suggestive of lust.

ସ୍ମର କୂପକ (କୂପ, କୂପିକା)—ସଂ. ବି—ସ୍ମରପୁର, ଭଗ (ବିକାଣ୍ଡ)—
Smara kūpaka (kūpa, kūpikā) Vagina; female organ.

ସ୍ମର ଗୁରୁ—ସଂ. ବି—(୬ଷ୍ଠୀ ତତ୍; ସ୍ମରଙ୍କ ଗୁରୁ=ପିତା )—ବିଷ୍ଣୁ—
Smara guru Bishnu. [ବି—ହର କୋପାନଳରେ ଦଗ୍ଧ ହେବା ପରେ ରତିଙ୍କ ପ୍ରାର୍ଥନାରେ ପ୍ରଦତ୍ତ ଶିବଙ୍କ ବରର ଫଳରେ କାମଦେବ ଶ୍ରୀକୃଷ୍ଣଙ୍କ ଔରସରେ ରୁକ୍ମିଣୀଙ୍କ ଗର୍ଭରେ ପ୍ରଦ୍ୟୁମ୍ନ ନାମରେ ଜନ୍ମ ଗ୍ରହଣ କରିଥିଲେ ।]

ସ୍ମର ଗୃହ—ସଂ. ବି—ଯୋନି (ଜଟାଧର)—
Smara gruha Female organ.

ସ୍ମର ଚକ୍ର—ସଂ. ବି—ରତିବନ୍ଧ ବିଶେଷ (ସ୍ମରଦୀପିକା)—A pose
Smara chakra during coition. [ଉ—ଧୃତ୍ୱା ଦୋର୍ଦ୍ଦ- ଣ୍ଡରେଣୋରୁଂ ସ୍ୱପାଦଦ୍ୱୋପରିସ୍ଥିତଂ, ଦୃଢଃ ରମତେ କାମୀ ସ୍ମରଚକ୍ରଃ ପ୍ରକୀର୍ତ୍ତିତଃ—ସ୍ମରଦୀପିକା ।]

ସ୍ମରଚ୍ଛତ୍ର—ସଂ. ବି—ଯୋନି (ଶବ୍ଦ କଳ୍ପଦ୍ରୁମ)—
Smara chhhatra Female organ.
(ସ୍ମରଚ୍ଛଦ—ଅପ୍ରଚଳିତ)

ସ୍ମରଣ—ସଂ. ବି. (ସ୍ମୃ ଧାତୁ+ଭାବ ଅନ)—୧ । ସ୍ମୃତି; ମନେ ମନେ
Smaraṇa ପୂର୍ବାନୁଭୂତ, ପୂର୍ବଶ୍ରୁତ ବା ପୂର୍ବଦୃଷ୍ଟ ବିଷୟର ଆବୃତ୍ତି—1. Remembrance. ୨ । ପୂର୍ବାନୁଭୂତ ବିଷୟର ଚିନ୍ତା—2. Thought about matters previously experienced; recollection. ୩ । ଧ୍ୟାନ—3. Contemplation. ୪ । ଦେବତାଙ୍କ ନାମ ଜପ—4. Contemplation of a Deity by counting the beads; silent recital of the name or formula of a Deity.
[ବି—ନବଧା ଭକ୍ତି ମଧ୍ୟରୁ ମନନ ବା ସ୍ମରଣ ଏକ ଅଟେ । ଏଥିରେ ଉପାସକ ଉପାସ୍ୟଦେବଙ୍କୁ ଏକାଗ୍ରଚିତ୍ତରେ ମନେ କରନ୍ତି ଓ ତାଙ୍କ ନାମ ଉଚ୍ଚାରଣ କରନ୍ତି ।]
ଦେ.ବି—ଦେବତାଙ୍କୁ ବା ସମାଜକୁ ଦିଆଯିବା ଉପଢୌକନ
উপহার সলামী বା ସଲମୀ—A present or premium presented to a Deity or to one's caste-guild.

ସ୍ମରଣ କରା(ରେ)ଇବା—ଦେ. କ୍ରି—କୌଣସି ବ୍ୟକ୍ତିଙ୍କୁ କୌଣସି ବିଷୟ
Smaraṇa karā(re)ibā ମନେ କରାଇ ଦେବା—To স্মরণকরান; स्मरण कराना(दिलाना) remind a person of any matter.

ସ୍ମରଣ କରିବା—ଦେ. କ୍ରି—୧ । ମନେ ପକାଇବା—1. To re-
Smaraṇa karibā collect. ୨ । ଦେବତାଙ୍କ ନାମ ଗ୍ରହଣ স্মরণকরা स्मरण करना କରିବା—2. To recite the name of a Deity. ୩ । ମାଳା ଜପିବା—3. To count the beads by uttering the name of a Deity.

ସ୍ମରଣ ଚିହ୍ନ—ସଂ. ବି—ସ୍ମୃତି ଚିହ୍ନ (ଦେଖ)—Smṛuti chihna
Smaraṇa chihna (See).

ସ୍ମରଣ ପଟ—ସଂ. ବି—(ରୂପକ)—ସ୍ମୃତିପଟ (ଦେଖ)—
Smaraṇa paṭa Smṛutipaṭa (See)

ସ୍ମରଣ ପତ୍ର(ପତ୍ରିକା,ଲେଖ, ଲିପି)—ସଂ. ବି—(ମ ଧ. ଲୋ)—ସ୍ମାରକ
Smaraṇa patra (patrikā, lekha, lipi) ଲେଖା; ସ୍ମାରକପତ୍ର—Memorandum; reminder.

ସ୍ମରଣ ପଥ—ସଂ. ବି—ସ୍ମୃତିପଥ(ଦେଖ)—Smṛuti patha (See)
Smaraṇa patha

ସ୍ମରଣ ଯୋଗ୍ୟ—ସଂ ବିଣ—ସ୍ମରଣୀୟ (ଦେଖ)—Smaraṇiya(See)
Smaraṇa jogya

ସ୍ମରଣ ଶକ୍ତି—ସଂ. ବି—ପୂର୍ବାନୁଭୂତ, ପୂର୍ବଶ୍ରୁତ, ପୂର୍ବଦୃଷ୍ଟ ବା ପଠିତ
Smaraṇa sakti ବିଷୟକୁ ମନେ ରଖିବାର କ୍ଷମତା; ପୂର୍ବାନୁଭୂତ ବିଷୟ ମନେ ପକାଇବାର କ୍ଷମତା—Memory.

ସ୍ମରଣ ସୂଚକ—ସଂ ବିଣ—ସ୍ମରଣାର୍ଥକ (ଦେଖ)—
Smaraṇa sūchaka Smaraṇārthaka (See)

ସ୍ମରଣାତୀତ—ସଂ. ବିଣ. (୫ମୀ ତତ୍)—ବହୁ ପୂର୍ବକାଳୀନ (ସମୟ); ଯେଉଁ
Smaraṇātīta କାଳର ବିଷୟ କାହାରି ମନେ ନାହିଁ—Immemorial (time)

ସ୍ମରଣାତୀତ କାଳ (ଯୁଗ, ସମୟ)—ସଂ. ବି—ବହୁ ପୂର୍ବକାଳ—
Smaraṇātīta kāla(juga,samaya) Time immemoria.

ସ୍ମରଣାପତ୍ୟତର୍ପକ—ସଂ. ବି—କଚ୍ଛପ (ଶବ୍ଦ କଳ୍ପଦ୍ରୁମ)—
Smāraṇāpatya tarpaka Tortoise.

ସ୍ମରଣାର୍ଥ—ଦେ· କ୍ରି.ବିଣ—(ସଂ. ସ୍ମରଣାର୍ଥ)—ସ୍ମୃତି ଉଦ୍ରେକ ହେବା
Smaraṇārtha ହେତୁ,କୌଣସି କଥା ମନେ ପଡ଼ିବ ବୋଲି—স্মরণার্থ; स्मरणके लीये In memory of; with a view to be reminded of.

ସ୍ମରଣାର୍ଥକ—ସଂ. ବିଣ.—ଯାହା ମନେ କରାଇ ଦିଏ—Serving as
Smaraṇārthaka a memorial or reminder.

ସ୍ମରଣାଲଙ୍କାର—ସଂ. ବି—ଅର୍ଥାଲଙ୍କାର ବିଶେଷ—A kind of
Smaraṇālankāra figure in rhetoric
[ବି—ସଦୃଶ ବସ୍ତୁର ଅନୁଭବ ହେବାରୁ ଅନ୍ୟ ବସ୍ତୁର ସ୍ମରଣ ହେଲେ ସ୍ମରଣାଲଙ୍କାର ହୁଏ; ଅର୍ଥାତ୍ ପ୍ରସ୍ତୁତ ପଦାର୍ଥର ଅନୁଭବ ହେବାରୁ ଉଦ୍‌ବୋଧନ ଦ୍ୱାରା ତତ୍‌ସଦୃଶ ଅନ୍ୟ ବସ୍ତୁର ସ୍ମରଣରେ ଯେଉଁ ଚମତ୍କାରତା, ତାହାହିଁ ସ୍ମରଣାଲଙ୍କାର । ଏଥିର ଉଦାହରଣ—

ଚନ୍ଦ୍ରିକା ସ୍ନାନରେ ଗିରିକନ୍ଦର ଶୋଭା
ଅପୂର୍ବ ଏ ଅନୁଭବ,
ସ୍ମରିଲେ ସ୍ୱଜନ୍ମ— କାଳୀନ ମନ୍ଦର-
କ୍ଷୁଭିତ କ୍ଷୀରୋଦ ରବ ।

ରାଧାନାଥ ଗ୍ରନ୍ଥାବଳୀ ।]

ସ୍ମରଣୀୟ—ସଂ. ବଣ (ସ୍ମୃ ଧାତୁ+କର୍ମ ଅନୀୟ)—ମନେ ରଖିବାର
Smaraṇiya ଯୋଗ୍ୟ; ସ୍ମର୍ତ୍ତବ୍ୟ—Fit to be remembered; memorable,

ସ୍ମର ଦଶା—ସଂ, ବ—୧। କାମଦଶା; କାମାତୁର ବ୍ୟକ୍ତିର କାମନାର ତୃପ୍ତି
Smara daśā ନ ହେବାରୁ ଅନୁଭୂତ ଅବସ୍ଥାମାନ—1. The phases through which an amorous person passes when frustrated in his or her aim. [ଦ୍ର—କାମଦଶା ଦଶବିଧ ଯଥା—୧। ନୟନପ୍ରୀତି, ୨। ଚିନ୍ତାସଙ୍ଗ, ୩। ସଂକଳ୍ପ, ୪। ନିଦ୍ରାଚ୍ଛେଦ, ୫। ତନୁତା, ୬। ବିଷୟନିବୃତ୍ତି, ୭। ତ୍ରପାନାଶ, ୮। ଉନ୍ମାଦ, ୯। ମୂର୍ଚ୍ଛା, ୧୦। ମୃତ୍ୟୁ—ଉଜ୍ଜ୍ୱଳନୀଳମଣି।] ୨। ବିରହାବସ୍ଥା (ହି. ଶ)—2. The state of separation from one's lover.

ସ୍ମର ଦହନ—ସଂ. ବ ୧। (୬ଷ୍ଠୀ ତତ୍)—ମହାଦେବଙ୍କ କ୍ରୋଧାଗ୍ନି
Smara dahana ଦ୍ୱାରା କାମଦେବଙ୍କର ଭସ୍ମରେ ପରିଣତ—1.The burning of the god Cupid with the fire of Siba's ire. ୨। (ବହୁବ୍ରୀହି)—ମହାଦେବ, ଶିବ—Śiba.

ସ୍ମର ଦୀପନ—ସଂ. ବ—(୬ଷ୍ଠୀ ତତ୍)—କାମବୃତ୍ତିର ଉଦ୍ଦୀପନ—
Smara dipana Excitement of lust.
ବଣ ପୁଂ (ବହୁବ୍ରୀହି)—କାମୋଦ୍ଦୀପକ—Exciting lust, libidinous.

ସ୍ମର ଦୀପିକା—ସଂ. ବ (ନାମ)—ରତିବିଷୟକ ଗ୍ରନ୍ଥବିଶେଷ—
Smara dipikā Name of a Sanscrit treatise dealing with love and sexual science.

ସ୍ମର ଧ୍ୱଜ—ସଂ. ବ (ସ୍ମର=କାମଦେବ+ଧ୍ୱଜ=ଚିହ୍ନ, ବହୁବ୍ରୀହି)—
Smara dhwaja ୧। ଯୋନି (ଶବ୍ଦରତ୍ନାବଳୀ)—1. Female organ. ୨। ଲିଙ୍ଗ (ଶବ୍ଦକଳ୍ପଦ୍ରୁମ)—2. Penis. ୩। ବାଦ୍ୟ (ହେମଚନ୍ଦ୍ର, ହି ଶ)—3. Drum. ୪। (୬ଷ୍ଠୀ ତତ୍) କାମଦେବଙ୍କ ରଥର ଧ୍ୱଜ ବା ପତାକା—4. The flag of the car of God Cupid. ୫। (କାମଦେବଙ୍କ ରଥଧ୍ୱଜରେ ଅଙ୍କିତ ଚିହ୍ନ) ମତ୍ସ୍ୟ—5. Fish. ( the sign or figure depicted on the flag of the car of God Cupid ).

ସ୍ମରଧ୍ୱଜା—ସଂ. ବ—ଜ୍ୟୋତ୍ସ୍ନାମୟୀ ରଜନୀ (ଶବ୍ଦକଳ୍ପଦ୍ରୁମ)—
Smara dhwajā Moonlit night.

ସ୍ମର ପୁର—ସଂ. ବ—ଭଗ; ଯୋନି—
Smara pura Female organ.

ସ୍ମର ପ୍ରିୟା(ବଧୂ,ଦୟିତା)—ସଂ. ବ. ସ୍ତ୍ରୀ (୬ଷ୍ଠୀ ତତ୍)—ରତି ଦେବୀ;
Smarapriyā(badhū, dayitā) କାମଦେବଙ୍କ ପତ୍ନୀ—Sexual union, personified as the wife of God Cupid.

ସ୍ମର ବଲ୍ଲଭ—ସଂ. ବ. ପୁ—ଅନିରୁଦ୍ଧ (ଶବ୍ଦକଳ୍ପଦ୍ରୁମ); ପ୍ରଦ୍ୟୁମ୍ନଙ୍କ ପୁତ୍ର—
Smara ballabha Aniruddha. the son of Pradyumna or Cupid,

ସ୍ମର ବୀଥିକା—ସଂ. ବ—(୬ଷ୍ଠୀତତ୍; ସ୍ମର=କନ୍ଦର୍ପ+ବୀଥି=ଦୋକାନ
Smara bithikā +ସ୍ୱାର୍ଥିକ+ଅ)-ବେଶ୍ୟା; ଗଣିକା(ରାଜନିର୍ଘଣ୍ଟ) Prostitute.

ସ୍ମର ବୃଦ୍ଧି—ସଂ. ବ—କାମ ବୃଦ୍ଧି କ୍ଷୁପ (ରାଜନିର୍ଘଣ୍ଟ)—Name of a
Smara bruddhi bushy plant.
(ସ୍ମର ବୃଦ୍ଧି ସଂଜ୍ଞା—ଅନ୍ୟରୂପ)

ସ୍ମର ମନ୍ଦିର—ସଂ. ବ—ସ୍ମରଗୃହ; ଯୋନି
Smara mandira The female organ.

ସ୍ମର ଲେଖନୀ—ସଂ ବ—ସାରିକା ପକ୍ଷୀ (ଶବ୍ଦରତ୍ନାବଳୀ)—
Smara lekhanī The myna bird.

ସ୍ମର ଶତ୍ରୁ(ରିପୁ)—ସଂ. ବ (୬ଷ୍ଠୀତତ୍) ଶିବ; ମହାଦେବ—Śiba.
Smara satru(ripu)

ସ୍ମର ଶାସ୍ତ୍ର—ସଂ. ବ (ମ.ଗ.ଲେ)—କାମଶାସ୍ତ୍ର; ରତିଶାସ୍ତ୍ର—A treatise
Smara śāstra on sexual matters.

ସ୍ମର ସଖା—ସଂ. ବ—(ବହୁବ୍ରୀହି; ସ୍ମର+ସଖା; ସ୍ମର ଅଟେ ସଖା
Smara sakha ଯାହାର)—୧। ସ୍ମରର ସଖା, କନ୍ଦର୍ପର ବନ୍ଧୁ—1 Friend of Cupid ୨। ଚନ୍ଦ୍ର—(ଶବ୍ଦକଳ୍ପଦ୍ରୁମ)—2. The moon. ୩। ବସନ୍ତ—(ସ୍ମରସଖା—ଅନ୍ୟରୂପ) 3. Spring personified.

ସ୍ମରସ୍ତମ୍ଭ—ସଂ. ବ—ଲିଙ୍ଗ; ପୁରୁଷେନ୍ଦ୍ରିୟ—Penis; male organ.
Smara stambha

ସ୍ମରସ୍ମରା—ସଂ. ବ—ସେବତୀଫୁଲ (ହି. ଶ)—
Smarasmarā Muskrose.

ସ୍ମରସ୍ମର୍ଯ୍ୟ—ସଂ. ବ—ଗର୍ଦ୍ଦଭ (ତ୍ରିକାଣ୍ଡଶେଷ)—
Smara smarjya The ass.

ସ୍ମରହର—ସଂ. ବ—(ସ୍ମର+ହୃ ଧାତୁ=ନାଶ କରିବା+କର୍ତ୍ତୃ.ଅ)—
Smarahara ସ୍ମରାରି; କାମାନ୍ତକ; ମହାଦେବ—Śiba, the destroyer of Cupid.

ସ୍ମରା(ରେ)ଇବା—ଦେ. କ୍ରି—ସ୍ମରିବାର ଣିଜନ୍ତ ରୂପ—The
Smarā(re)ibā causative form of Smaribā,) ସ୍ମରଣ ସ୍মরণ করান स्मरण कराना କରାଇବା; ମନେ ପକାଇବା—To remind.

ସ୍ମରାଗାର—ସଂ. ବ—ଭଗ (ଶବ୍ଦରତ୍ନାବଳୀ)—Vagina; female
Smarāgāra organ.

ସ୍ମରାଙ୍କୁଶ—ସଂ ବ—୧। ନଖ (ଶବ୍ଦରତ୍ନାବଳୀ)—1. Finger-nail.
Smarāṅkuśa ୨। ଲମ୍ପଟ ବ୍ୟକ୍ତି—2. Adulteror. ୩। ପୁରୁଷେନ୍ଦ୍ରିୟ; ଲିଙ୍ଗ (ହି.ଶ)—3. Male organ.

ସ୍ମରାଧିବାସ—ସଂ. ବ—ଅଶୋକ ବୃକ୍ଷ (ହି ଶ)—
Smarādhibāsa The Aśoka tree.

ସ୍ମରାନ୍ତକ—ସଂ. ବ—(୬ଷ୍ଠୀ ତତ୍) ଶିବ—
Smarāntaka Śiba.

ସ୍ମରାମ୍ର—ସଂ. ବ—୧ । ଗୁଳାମ୍ର (ଗୁଜରଦେଶ)—1. A kind of
Smarāmra sweet mango. ୨ । କଲମି ଅମ୍ବ (ହି. ଶ)
—2. The fruit from grafted mango tree.

ସ୍ମରାରି—ସଂ. ବ—(୬ଷ୍ଠୀ ତତ୍)—ଶିବ; ମହାଦେବ—Siba. [ବ୍ୟ—
Smarāri ଅସୁରପୀଡ଼ିତ ଦେବମାନଙ୍କ ପ୍ରେରଣାରେ ମଦନ ଧ୍ୟାନ-
ରତ ମହାଦେବଙ୍କ ପ୍ରତି ସମ୍ମୋହନ ନାମକ ବାଣ
ପ୍ରୟୋଗ କରିବାରୁ ଓ ସେ ସମୟରେ ଉମା ଯେ ପାର୍ବତୀ
ମହାଦେବଙ୍କୁ ସ୍ୱାମୀ ପାଇବା ଆଶାରେ ଯୋଗସାଧନରତ
ମହାଦେବଙ୍କ ସେବାରେ ନିଯୁକ୍ତା ଥିବା ଅବସ୍ଥାରେ
କାମଦେବ ଉପସ୍ଥିତ ହୋଇ ମହାଦେବଙ୍କ ପ୍ରତି ବାଣ
ପ୍ରୟୋଗ କଲେ; ତଦ୍ଦ୍ୱାରା ମହାଦେବଙ୍କର କିଞ୍ଚିତ ଧୈର୍ଯ୍ୟଚ୍ୟୁତି
ହୋଇଥିଲା, ପରେ ମହାଦେବ ନିଜକୁ ସଂଯତ କରି ତାଙ୍କ
ଚିତ୍ତଚାଞ୍ଚଲ୍ୟର କାରଣ ଅନୁସନ୍ଧାନ କରିବା ଫଳରେ ମଦନଙ୍କୁ
ଦେଖିଲେ ଓ ମଦନଙ୍କ ଉପରେ କ୍ରୁଦ୍ଧ ହୋଇ ତାଙ୍କ ପ୍ରତି
କୋପଦୃଷ୍ଟି ନିକ୍ଷେପ କରିବାରୁ ସେହି ଦୃଷ୍ଟି ସଙ୍ଗେ
ମହାଦେବଙ୍କ କପାଳମଧ୍ୟସ୍ଥ ତୃତୀୟ ନେତ୍ରରୁ କୋପାନଳ
ବାହାରି ମଦନଙ୍କୁ ଭସ୍ମ କରିଦେଲା । ]

ସ୍ମରାସବ—ସଂ. ବ—(ସ୍ମର+ଆସବ=ମଦ)—୧ । ମୁଖାମୃତ; ଲାଳ;
Smarāsaba ମୁଖ ନିଃସୃତ ଜଳ (ନିକାଣ୍ଡଶେଷ)—1. Saliva.
୨ । ତାଳ ଗଛରୁ ଉତ୍ପନ୍ନ ତାଡ଼ୀ (ହି. ଶ)—2. The
juice extracted from date-tree.

ସ୍ମରିବା—ଦେ. କ୍ରି (ପଦ୍ୟ) (ସଂ. ସ୍ମୃ ଧାତୁ)—୧ । ମନେ ଭାବିବା
Smaribā —1. To think of [ଉ—ଶତ୍ରୁ ସର ଝାଉଁଳିବା
ଶ୍ରୀଅଙ୍ଗ ପାଇଲୁ ରେ—
କବିସୂର୍ଯ୍ୟ ବଳଦେବ ରଥଙ୍କ ଗୀତ । ]
स्मरणकरना ୨ । ସ୍ମରଣ କରିବା—2. To recollect. ୩ ।
स्मरन करना ମନେ ରଖିବା; ସୁମରିବା—3. To remember.
[ଉ—ଏହା ଶୁଣି ସ୍ମରିଲେ ଶ୍ରୀ ମଧୁସୂଦନ—
କୃଷ୍ଣସିଂହ ମହାଭାରତ ସଭା । ]

ସ୍ମର୍ତ୍ତବ୍ୟ—ସଂ. ବଣ—(ସ୍ମୃ ଧାତୁ+କର୍ମ ତବ୍ୟ)—ସ୍ମରଣୀୟ (ଦେଖ)—
Smarttabya Smaraṇiya (See).

ସ୍ମର୍ତ୍ତା—ସଂ. ବଣ ପୁଂ—(ସ୍ମୃ ଧାତୁ+କର୍ତ୍ତୃ. ତୃ, ସ୍ମର୍ତ୍ତୃ, ୧ମା. ୧ବ)—
Smarttā ସ୍ମରଣକାରୀ—Recollecting.
(ସ୍ମର୍ତ୍ତ୍ରୀ—ସ୍ତ୍ରୀ)

ସ୍ମର୍ଯ୍ୟ—ସଂ. ବଣ (ସ୍ମୃ ଧାତୁ+କର୍ମ ଯ)—ସ୍ମରଣୀୟ—Fit to be.
Smarjya remembered; memorable

ସ୍ମଲ୍‌କ(କା)ଜ୍‌କୋର୍ଟ (ଟ୍ଟ)—ବୈଦେ. ବ—(ଇଂ)—ଅଳ୍ପ ଦାବିଥିବା
Smal-ka (kā)j-kort (rt) ଦେବାଣୀ ମକଦ୍ଦମାମାନଙ୍କର ସଂକ୍ଷିପ୍ତ
स्मलकजकोर्ट ଭାବରେ ବିଚାର କରିଥିବା ଅଦାଲତ; ଛୋଟକୋର୍ଟ—
स्मल काजकोर्ट Court of small Causes.

ସ୍ମାର—ସଂ. ବ—(ସ୍ମୃ ଧାତୁ+ଭାବ ଅ)—୧ । ସ୍ମରଣ—Re-
Smāra collection. ୨। ଚିନ୍ତନ—2. Contemplation.

ସ୍ମାରକ—ସଂ. ବଣ—(ସ୍ମୃ ଧାତୁ ଣିଚ, ସ୍ମାରି ଧାତୁ+କର୍ତ୍ତୃ ଅକ)—
Smāraka ୧ । ଯେ ବା ଯାହା ସ୍ମରଣ କରାଇ ଦିଏ—2.
Reminding. ୨ । ସ୍ମୃତିର ଉଦ୍‌ବୋଧକ; ସ୍ମୃତି-
ଜନକ—2. Causing remembrance; refresh-
ing the memory.

ସ୍ମାରକ ଗୃହ—ସଂ. ବ (ଆଧୁନିକ ବ୍ୟବହାର)—କୌଣସି ବିଷୟର ବା
Smāraka gruha ଘଟଣାର ବା ବ୍ୟକ୍ତିଙ୍କ ସ୍ମରଣାର୍ଥ ନିର୍ମିତ ଗୃହ
—Memorial house; memorial hall.

ସ୍ମାରକ ଚିହ୍ନ—ସଂ. ବ—(ଆଧୁନିକ ବ୍ୟବହାର) ଯେଉଁ ଚିହ୍ନ ଦେଖିଲେ
Smāraka chihna କୌଣସି ବ୍ୟକ୍ତିଙ୍କର ବା ଘଟଣାର ବିଷୟ
ମନେ ପଡ଼େ; ଅଭିଜ୍ଞାନ—Memento; memorial.

ସ୍ମାରକ ପତ୍ର(ଲିପି, ଲେଖ)—ସଂ ବ (ଆଧୁନିକ ବ୍ୟବହାର)—ସ୍ମୃତି-
Smāraka patra(lipi, lekha) ଉଦ୍‌ବୋଧକ ଲେଖା—
Memo; memorandum; a reminder.

ସ୍ମାରକ ଫଳକ—ସଂ. ବ (ଆଧୁନିକ ବ୍ୟବହାର)—କୌଣସି ବିଷୟକୁ,
Smāraka phalaka ବ୍ୟକ୍ତିଙ୍କୁ ବା ଘଟଣାକୁ ଚିରସ୍ମରଣୀୟ
କରିବାପାଇଁ ଯେଉଁ ଫଳକରେ ତଦ୍‌ବିଷୟ ଲେଖା ହୋଇଥାଏ—
Memorial tablet.

ସ୍ମାରକ ସ୍ତମ୍ଭ—ସଂ. ବ (ଆଧୁନିକ ବ୍ୟବହାର)—ସ୍ମୃତି ସ୍ତମ୍ଭ—
Smāraka stambha A pillar which serves as
a memorial; a memorial pillar.

ସ୍ମାରିତ—ସଂ. ବଣ (ସ୍ମୃ ଧାତୁ+ଣିଚ=ସ୍ମାରି ଧାତୁ+କର୍ମ. ତ)—
Smārita ଯେଉଁ ବ୍ୟକ୍ତିଙ୍କୁ ସ୍ମରଣ କରାଇ ଦିଆଯାଏ—
Reminded (person).
ସଂ. ବ (ହିନ୍ଦୁ ସ୍ମୃତି)—ଏକ ଶ୍ରେଣୀର କୂଟସାକ୍ଷୀ;
ଯେଉଁ ସାକ୍ଷୀଙ୍କ ନାମକୁ ପକ୍ଷ ସାକ୍ଷୀ ତାଲିକାରେ ଲେଖି ନ
ଥାଏ, କିନ୍ତୁ ପରେ ଆପଣା ପକ୍ଷ ସମର୍ଥନ କରିବା ପାଇଁ
ଡକାଏ (ହି. ଶ)—A class of witnesses
according to Hindu Law; a witness
whose name does not appear in the list
of witnesses given by a party, but who
is called by him afterwards on being
remembered by him.

ସ୍ମାର୍ତ୍ତ—ସଂ. ବଣ (ସ୍ମୃତି+ସମ୍ବନ୍ଧ ଓ ଜ୍ଞାନାଦି ଅର୍ଥରେ. ଅ)—
Smārtta ୧ । ସ୍ମୃତି ଶାସ୍ତ୍ର ସମ୍ବନ୍ଧୀୟ—1. Relating to
(ସ୍ମାର୍ତ୍ତୀ—ଅନ୍ୟ ବଣ. ରୂପ) the Smṛuti works.
୨ । ସ୍ମୃତି ଶାସ୍ତ୍ରଜ୍ଞ—2. Versed in Hindu
Law. ୩ । ସ୍ମୃତି ଶାସ୍ତ୍ରୋକ୍ତ—3. Mentioned
in the Smṛutis. ୪ । ସ୍ମୃତି ଶାସ୍ତ୍ରର ବିଧାନ
ଅନୁସାରେ କାର୍ଯ୍ୟକାରୀ—4. Following the dic-
tates of the Smṛuti works. ବ—୧ । ସ୍ମୃତି
ଶାସ୍ତ୍ରଜ୍ଞ ପଣ୍ଡିତ—1. A Pandit learned in
Hindu Law. ଦେ. ବ—ଏକ ଶ୍ରେଣୀର ଆଧୁନିକ

ସ୍ମାର୍ତ୍ତ ସ୍ମାର୍ତ୍ତ ବ୍ରାହ୍ମଣ—A class of modern Brāhmaṇas.

ସ୍ମି (ଧାତୁ)—ସଂ. ବ—୧ । ଅନାଦର କରିବା—1. To deride; to
Smi (root) slight. ୨ । ଈଷତ୍ ହାସ୍ୟ କରିବା—2. To smile.

ସ୍ମିଟ୍ (ଧାତୁ)—ସ—ଅନାଦର କରିବା—
Smiṭ (root) To slight.

ସ୍ମିତ—ସଂ. ବ ( ସ୍ମି ଧାତୁ+ଭାବ. ତ )—ଈଷତ୍ ହାସ୍ୟ (ଅମର)—
Smita Smile. ବଣ ( +କର୍ତ୍ତୃ ତ )—୧ । ବିକସିତ (ବିକାଶ ଶେଷ); ଉଦ୍ଭାସିତ; ପ୍ରଷ୍ଫୁଟିତ—1. Expanded; full-blown. ୨ । ଈଷତ୍ ହସିତ—2. Smiling. ୩ । ବିସ୍ମିତ—3. Astonished. ୪ । ହାସ୍ୟୋଜ୍ଜ୍ୱଳ (ମୁଖ)—4. (face) Bright with laughter.

ସ୍ମିତ ମୁଖ—ସଂ. ବ ( କର୍ମଧା )—ଈଷଦ୍ଧାସ୍ୟଯୁକ୍ତ ମୁଖ—Smiling
Smita mukha face. ବଣ, ପୁଂ (ବହୁବ୍ରୀହି)—ସ୍ମେରମୁଖ; (ସ୍ମିତାନନ—ଅନ୍ୟରୂପ) ଯାହାର ମୁଖ ଈଷଦ୍ଧାସ୍ୟଯୁକ୍ତ—(ସ୍ମିତମୁଖୀ, ସ୍ମିତାନନା—ସ୍ତ୍ରୀ) Having a smiling face

ସ୍ମିତ ହାସ—ସଂ. ବି—ମୃଦୁହାସ—Smile.
Smit hāsa ସଂ. ବଣ. ପୁଂ—ମୃଦୁହାସ୍ୟଯୁକ୍ତ—Smiling. (ସ୍ମିତହାସା—ସ୍ତ୍ରୀ)

ସ୍ମିତହାସୀ—ଦେ. ବଣ. ସ୍ତ୍ରୀ (ସଂ ସ୍ମିତହାସା)– ଈଷତ୍ ହାସ୍ୟଯୁକ୍ତା (ସ୍ତ୍ରୀ)
Smitahāsī —(female) Having a smiling face.

ସ୍ମିତ ହାସ୍ୟ—ସଂ. ବ—ମୃଦୁହାସ୍ୟ; ଈଷଦ୍ଧାସ୍ୟ—Smile. ସଂ. ବଣ.
Smita hāsya ପୁଂ (ବହୁବ୍ରୀହି)—ଈଷଦ୍ଧାସ୍ୟକାରୀ—(ସ୍ମିତହାସ୍ୟା—ସ୍ତ୍ରୀ) Smiling.

ସ୍ମୀଲ (ଧାତୁ)—ସ—ନିମେଷଣ କରିବା; ଆଖିର ପିଛଡ଼ା ପଡ଼ିବା—
Smīla ( root ) To close (said of the eye-lids).

ସ୍ମୃ ଧାତୁ—ସ—୧ । ଉତ୍କଣ୍ଠିତ ହେବା—1. To be eager after.
Smṛu (root) ୨ । ସ୍ମରଣ କରିବା—2. To remember.

ସ୍ମୃତ—ସ. ବଣ ( ସ୍ମୃ ଧାତୁ+କର୍ମ ତ )—ଯାହାକୁ ସ୍ମରଣ କରି
Smṛuta ଯାଇଅଛି; ସ୍ମରଣର ବିଷୟୀଭୂତ—(ସ୍ମୃତା—ସ୍ତ୍ରୀ) Remembered; recollected.

ସ୍ମୃତି—ସଂ. ବ (ସ୍ମୃ ଧାତୁ+ଭାବ. ତି)—୧ । କାଳାନ୍ତରରେ ଅନୁଭୂତ
Smṛuti ବିଷୟର ଜ୍ଞାନ ବା ଚିନ୍ତନ; ସ୍ମରଣଶକ୍ତିଦ୍ୱାରା ସଞ୍ଚିତ ଜ୍ଞାନ; ସ୍ମରଣ—1. Remembrance; recollection. [ଦ୍ର—ଏହା ମନୋବିଜ୍ଞାନ (Psychology) ର ପାରିଭାଷିକ ଶବ୍ଦ । ଯେଉଁ ବିଷୟର ଜ୍ଞାନ ପ୍ରତ୍ୟକ୍ଷ ପ୍ରୟୋଗରେ ମନୋରାଜ୍ୟରେ ଗୃହୀତ ହୁଏ, ତାହାର ପ୍ରତିରୂପ ଜ୍ଞାନର ନାମ ସ୍ମୃତି । ପ୍ରତ୍ୟକ୍ଷଜ୍ଞାନ ବସ୍ତୁର ସ୍ଥିତି (ବିଦ୍ୟମାନତା) ଉପରେ ନିର୍ଭର କରେ; କିନ୍ତୁ ବସ୍ତୁର ଅବର୍ତ୍ତମାନତାରେ ମଧ୍ୟ ସ୍ମୃତି ବସ୍ତୁର ଜ୍ଞାନ ଜନ୍ମାଏ । ଅତୀତ ଅନୁଭୂତ ବିଷୟର ଜ୍ଞାନ ସ୍ମୃତି ସାହାଯ୍ୟରେ ସମାହୃତ ହୁଏ ।

ଏତଦ୍‌ବ୍ୟତୀତ ହିନ୍ଦୁ ଧର୍ମଶାସ୍ତ୍ରରେ 'ସ୍ମୃତି' ଏକ ବିଶିଷ୍ଟ ଜ୍ଞାନ ପ୍ରତି ପ୍ରଯୋଜ୍ୟ ହୁଏ । ଯେଉଁ ଜ୍ଞାନ କାଳକ୍ରମରେ ମନୁଷ୍ୟମାନଙ୍କରେ ମୌଖିକଭାବରେ ଗୃହୀତ, ତାହା ସ୍ମୃତି । ଶ୍ରୁତି ଓ ସ୍ମୃତି ଉଭୟେ ଜ୍ଞାନର ଭଣ୍ଡାର; କିନ୍ତୁ ଶ୍ରୁତି ଓ ସ୍ମୃତି ମଧ୍ୟରେ ବିରୋଧ ଦୃଷ୍ଟ ହେଲେ ଶ୍ରୁତି ବଳବତ୍ତର ହୁଏ—ସନ୍ଦର୍ଭ ଲେଖକ ପ୍ରୋଫେସର କପିଳେଶ୍ୱର ଦାସ୍ ଏମ୍. ଏ. ।] ୨ । ପୂର୍ବେ ଅନୁଭୂତ ହୋଇଥିବା ପ୍ରିୟ ବିଷୟମାନଙ୍କର ଚିନ୍ତା—2 Thoughts about things once experienced. ୩ । ଚିନ୍ତନ; ଧ୍ୟାନ—3. Contemplation. ୪ । ମନ୍ୱାଦିକୃତ ଧର୍ମସଂହିତା; ଧର୍ମଶାସ୍ତ୍ର—4. The Institutes or treatise on Hindu law and usage by Manu and others. [ଦ୍ର—ବେଦରେ ଯାହା ଅଛି ତାହାର ସ୍ମରଣ ବା ଚିନ୍ତନର ଫଳରେ ଏ ଗ୍ରନ୍ଥମାନ ଲିଖିତ ହୋଇଥିବାରୁ ଏମାନଙ୍କର ଏହିପରି ନାମକରଣ ହୋଇଅଛି । ସ୍ମୃତିରେ ଧର୍ମ, ଦର୍ଶନ, ଆଚାର, ବ୍ୟବହାର, ପ୍ରାୟଶ୍ଚିତ୍ତ, ଶାସନନୀତି ଆଦିର ବର୍ଣ୍ଣନ ହୋଇଅଛି ।

ସ୍ମୃତିକୁ ୩ ଶ୍ରେଣୀରେ ବିଭକ୍ତ କରି ଯାଇଅଛି । ଯଥା—

୧ । ସାତ୍ତ୍ୱିକ—ବାଶିଷ୍ଠ, ହାରୀତ, ବ୍ୟାସ, ପାରାଶର, ଭରଦ୍ୱାଜ, କାଶ୍ୟପ, ଏ ସ୍ମୃତି ମାନ ମୁକ୍ତିଦ ।

୨ । ରାଜସ—ଚ୍ୟବନ, ଯାଜ୍ଞବଲ୍କ୍ୟ, ଆତ୍ରେୟ, ଦାକ୍ଷ, କାତ୍ୟାୟନ, ବୈଷ୍ଣବ, ଏମାନ ସ୍ୱର୍ଗଦ ।

୩ । ତାମସ ଯଥା—ଗୌତମ, ବାର୍ହସ୍ପତ୍ୟ, ସମ୍ବର୍ତ୍ତ, ଯମ, ସାଂଖ୍ୟ, ଔଶନସ ଏମାନେ ନରକପ୍ରଦ ।

ହିନ୍ଦୁମାନଙ୍କର ଧର୍ମ ସମ୍ବନ୍ଧୀୟ ତତ୍ତ୍ୱମାନ ଶ୍ରୁତି, ସ୍ମୃତି ଓ ପୁରାଣମାନଙ୍କରେ ନିହିତ ଅଛି ।

ସତ୍ୟଯୁଗରେ ମନୁଙ୍କ ପ୍ରବର୍ତ୍ତିତ ଧର୍ମ, ତ୍ରେତାରେ ଗୌତମଙ୍କ, ଦ୍ୱାପରରେ ଧର୍ମଙ୍କ ଓ ଶଙ୍ଖଙ୍କ ଏବଂ କଳିରେ ପରାଶରଙ୍କ ପ୍ରବର୍ତ୍ତିତ ଧର୍ମ ପାଳନୀୟ ।]

ହିନ୍ଦୁମାନଙ୍କ ଧର୍ମଗ୍ରନ୍ଥ ୨ ଭାଗରେ ବିଭକ୍ତ, ଶ୍ରୁତି ଓ ସ୍ମୃତି । ବେଦ, ବେଦର ବ୍ରାହ୍ମଣ ଭାଗ ଓ ଉପନିଷଦ (ବେଦାନ୍ତ) ଶ୍ରୁତିର ଅନ୍ତର୍ଗତ । ଅନ୍ୟ ଧର୍ମଶାସ୍ତ୍ରମାନଙ୍କୁ ସ୍ମୃତି ବୋଲାଯାଏ । ନିମ୍ନଲିଖିତ ଗ୍ରନ୍ଥମାନ ସ୍ମୃତିର ଅନ୍ତର୍ଗତ (କ) ଛଅ ବେଦାଙ୍ଗ, (ଖ) ଗୃହ୍ୟ, ଆଶ୍ୱଲାୟନ, ସାଂଖ୍ୟାୟନ, ଗୋଭିଲ, ପାରସ୍କର, ବୌଧାୟନ, ଭାରଦ୍ୱାଜ ଓ ଆପସ୍ତମ୍ବାଦି ସୂତ୍ର, (ଗ) ମନୁ, ଯାଜ୍ଞବଲ୍କ୍ୟ, ଅତ୍ରି, ବିଷ୍ଣୁ, ହାରୀତ, ଉଶନସ୍, ଅଙ୍ଗିରା, ଯମ, କାତ୍ୟାୟନ, ବୃହସ୍ପତି, ପରାଶର, ବ୍ୟାସ, ଦକ୍ଷ, ଗୌତମ, ବଶିଷ୍ଠ, ନାରଦ ଓ ଭୃଗୁଆଦିଙ୍କ ରଚିତ ଧର୍ମ ଶାସ୍ତ୍ର; (ଘ) ରାମାୟଣ, ମହାଭାରତ ଆଦି ଇତିହାସ; (ଙ) ଅଷ୍ଟାଦଶ ପୁରାଣ ଓ (ଚ) ସବୁପ୍ରକାର ନୀତିଶାସ୍ତ୍ର ଗ୍ରନ୍ଥ । (ହି. ଶ)] ୫ । (ନାମ) ଦକ୍ଷକନ୍ୟା ଅଙ୍ଗିରାପତ୍ନୀଙ୍କ ଗର୍ଭରୁ ଉତ୍ପନ୍ନା କନ୍ୟା (ହି. ଶ)

5. Name of a daughter born of Angira's wife and Daksha's daughter. ୬ । (ଧର୍ମଶାସ୍ତ୍ରର ସଂଖ୍ୟା ୧୮ ଥିବାରୁ) ଅଠର ସଂଖ୍ୟା (ବ୍ରୁ. ଶ)— 6. The number eighteen. ୭ । ଛନ୍ଦୋବିଶେଷ (ବ୍ରୁ.ଶ)—7. Name of a Sanscrit metre. ୮ । ଇଚ୍ଛା; କାମନା (ବ୍ରୁ.ଶ)—8. Desire; wish.

ସ୍ମୃତିକାର—ସଂ. ବି.—ସ୍ମୃତି ଗ୍ରନ୍ଥର ରଚନାକାରୀ ବ୍ୟକ୍ତି—Author Smrutikāra of a Smruti work.

ସ୍ମୃତିକାରକ—ସଂ. ବିଣ—ମେଧାକର; ଯାହା ସ୍ମରଣଶକ୍ତି ଜନ୍ମାଏ Smrutikāraka (ଔଷଧ)—(Medicine), Which sharpens the memory.

ସ୍ମୃତି ଗୋଚର—ସଂ.ବିଣ—ସ୍ମୃତିପଥାରୂଢ଼; ମନେ ପଡ଼ିବା (କଥା)— Smruti gochara Remembered; recollected

ସ୍ମୃତି ଚିହ୍ନ—ସଂ. ବି—(ମ. ପ. ଲୋ)—ସ୍ମରଣ ଚିହ୍ନ; ସ୍ମୃତି ଜନକ Smrutichihna ଚିହ୍ନ; ଯାହା ଦେଖିଲେ କୌଣସି ବିଷୟ ମନେ ପଡ଼େ—Memento; memorial.

ସ୍ମୃତିଧର—ସଂ.ବିଣ.ପୁଂ—(ସ୍ମୃତି+ଧୃ ଧାତୁ+କର୍ତ୍ତୃ ଅ)—୧। ସ୍ମୃତିଶକ୍ତି Smrutidhara ସମ୍ପନ୍ନ—1. Of sharp memory. ୨ । (ସ୍ମୃତିଧରା—ସ୍ତ୍ରୀ) ବିଦ୍ୱାନ୍—2. Learned.

ସ୍ମୃତି ପଟ୍ଟ—ସଂ. ବି—(ରୂପକ)—(ପଟ୍ଟରେ କୌଣସି କଥା ଲେଖାହେଲା Smruti paṭa ପର ସ୍ମୃତିରେ ସବୁକଥା ଲେଖି ହୋଇ ଯିବାର ତୁଳନା)—ପଟ୍ଟ ବା ସ୍ଲେଟ୍ ସଙ୍ଗେ ତୁଳନା କରାଯିବା ସ୍ମୃତି—Memory compared to a slate or tablet.

ସ୍ମୃତି ପଥ—ସଂ. ବି—(ରୂପକ)—୧ । ସ୍ମରଣ ପଥ; ପଥ ସଙ୍ଗେ ତୁଳନା Smruti patha ଦିଆ ସ୍ମୃତି—1. Memory compared to a road, ୨ । ସ୍ମରଣର ବିଷୟ—2. Subject of memory.

ସ୍ମୃତିପଥାରୂଢ଼—ସଂ. ବିଣ—ସ୍ମୃତି ଗୋଚର; ଯାହା ମନେ ପଡ଼ିଯାଏ— Smrutipathārurdha Recollected; remembered.

ସ୍ମୃତି ବର୍ଦ୍ଧକ—ସଂ. ବିଣ. ପୁଂ (ସ୍ମୃତି+ବୃଧ ଧାତୁ+କର୍ତ୍ତୃ ଅକ)— Smrutibarddhaka ସ୍ମୃତିଶକ୍ତିର ବର୍ଦ୍ଧନକାରୀ— (ସ୍ମୃତିବର୍ଦ୍ଧିକା—ସ୍ତ୍ରୀ) Sharpening the memory.

ସ୍ମୃତି ବର୍ଦ୍ଧିନୀ—ସଂ. ବି—ବ୍ରାହ୍ମୀ ଶାକ (ଏହା ସେବନ କଲେ ପ୍ରଖର Smruti barddhini ସ୍ମରଣ ଶକ୍ତି ହୁଏ) (ବ୍ରୁ. ଶ)— The Brāhmi herb.

ସ୍ମୃତି ବିରୁଦ୍ଧ—ସଂ. ବି—ଧର୍ମଶାସ୍ତ୍ରର ବିରୁଦ୍ଧ— Smruti biruddha Opposed to the books on Hindu Law.

ସ୍ମୃତିମତ୍ତା—ସଂ.ବି(ସ୍ମୃତିମତ୍+ଭାବ-ତା)—ମେଧା; ସ୍ମରଣଶୀଳତା— Smrutimattā Sharpness of memory.

ସ୍ମୃତି ମନ୍ଦିର—ସଂ. ବି(ମ.ପ. ଲୋ)—ସ୍ମୃତି ଜନକ ବା ସ୍ମୃତି ଉଦ୍ବୋଧକ Smruti mandira ମନ୍ଦିର—A memorial temple; mausoleum; a temple raised to commemorate some thing.

ସ୍ମୃତିମାନ୍—ସଂ. ବିଣ. ପୁଂ. (ସ୍ମୃତିମତ୍ ଶବ୍ଦ ୧ମା. ୧ବ; ସ୍ମୃତି+ଅସ୍ତ୍ୟର୍ଥେ ମତ୍)—ମେଧାବୀ; ସ୍ମରଣଶକ୍ତି ବିଶିଷ୍ଟ— Smrutimān Having a sharp memory. (ସ୍ମୃତିମତୀ—ସ୍ତ୍ରୀ) (ସ୍ମୃତିମନ୍ତ—ବି)

ସ୍ମୃତି ରକ୍ଷା—ସଂ. ବି—ସ୍ମୃତିଚିହ୍ନ ସ୍ଥାପନାଦି ଦ୍ୱାରା କୌଣସି ବ୍ୟକ୍ତିଙ୍କର Smruti rakshā ବା ବିଷୟର ଭବିଷ୍ୟତରେ ଲୋକଙ୍କ ମନରେ ରହିବାର ଉପାୟ—Commemoration.

ସ୍ମୃତିରକ୍ଷା କରିବା—ଦେ. କ୍ରି—ସ୍ମୃତିଚିହ୍ନାଦି ସ୍ଥାପନ ଦ୍ୱାରା କୌଣସି Smruti rakshā karibā ବ୍ୟକ୍ତିଙ୍କୁ ବା ବସ୍ତୁକୁ ବା ଘଟନାକୁ ଚିର ସ୍ମରଣୀୟ କରିବା—The commemorate.
স্মৃতিরক্ষাকরবা स्मृतिरक्षाकरना

ସ୍ମୃତିରତ୍ନ—ଦେ. ବି—ସ୍ମୃତିଶାସ୍ତ୍ରଜ୍ଞ ପଣ୍ଡିତଙ୍କ ଉପାଧି ବିଶେଷ— Smruti ratna A title given to a Pandit learned in the Smrutis.
স্মৃতিরত্ন स्मृतिरत्न

ସ୍ମୃତି ଶକ୍ତି—ସଂ. ବି—ସ୍ମରଣ ଶକ୍ତି— Smruti śakti Memory.

ସ୍ମୃତି ଶାସ୍ତ୍ର—ସଂ. ବି—ମନ୍ୱାଦିକୃତ ଧର୍ମ ଶାସ୍ତ୍ର; ଧର୍ମସଂହିତା—The in- Smruti śāstra stitutes on Hindu law and usage.

ସ୍ମୃତି ସ୍ତମ୍ଭ—ସଂ. ବି (ମ.ପ. ଲୋ)—ସ୍ମାରକ ସ୍ତମ୍ଭ— Smruti stambha A memorial pillar.

ସ୍ମୃତିହିତା—ସଂ. ବି—ଶଙ୍ଖପୁଷ୍ପୀ (ବ୍ରୁ. ଶ) (ଦେଖ)— Smrutihitā Sankhapushpi (See)

ସ୍ମୃତି ହେତୁ—ସଂ.ବି—ସ୍ମରଣର କାରଣ, ବାସନା, ସଂସ୍କାର (ନୈୟାୟିକ) Smruti hetū Associations (which rouse remembrance).

ସ୍ମୃତ୍ୟପେତ—ସଂ. ବିଣ—ସ୍ମୃତିବିରୁଦ୍ଧ (ଶବ୍ଦ କଳ୍ପଦ୍ରୁମ) (ଦେଖ)— Smrutyapeta Smruti biruddha (See)

ସ୍ମେର—ସଂ. ବିଣ (ସ୍ମି ଧାତୁ+କର୍ତ୍ତୃ ର)—ସ୍ମିତ; ଈଷତ୍ ହାସ୍ୟଯୁକ୍ତ— Smera 1. Smiling, ୨ । ବିକଶିତ—2. Blown; expanded; opened, ୩ । ସ୍ପଷ୍ଟ—3. Manifested.

ସ୍ମେର ବିଷ୍କିର—ସଂ. ବି (ସ୍ମେର=ଈଷତ୍ ହାସ୍ୟଯୁକ୍ତ+ବିଷ୍କିର=ପକ୍ଷୀ) Smera bishkira ମୟୂର (ଶବ୍ଦ କଳ୍ପଦ୍ରୁମ)—Peacock.

ସ୍ମେର ମୁଖ—ସଂ. ବି (କର୍ମଧା)—ଈଷତ୍ହାସ୍ୟ ଯୁକ୍ତ ମୁଖ—Smiling Smera mukha face. ବିଣ. ପୁଂ (ବହୁବ୍ରୀ)—ଈଷତ୍ହାସ୍ୟ (ସ୍ମେରାନନ—ଅନ୍ୟରୂପ) ମୁଖ ଯୁକ୍ତ—Having a smiling (ସ୍ମେରମୁଖୀ, ସ୍ମେରାନନା—ସ୍ତ୍ରୀ) face

ସ୍ମେଲିଙ୍ଗ୍ ସଲ୍ଟ୍—ବୈଦେ.ବି (ଇଂ)—ନଶାଦଳ ଓ ଚୂନ ମିଶ୍ରିତ ଦ୍ରବ୍ୟ Smeling salt (ଯାହା ଶୁଙ୍ଘିଲେ ଶର୍ଦ୍ଦି ଓ ମୂର୍ଚ୍ଛା ଆଦି ସ୍মেলিঙ্গসাল্ট स्मेलिंगसल्ट ଛାଡ଼ିଯାଏ—Smelling salt

ସ୍ୟଦ—ସଂ. ବ (ସ୍ୟନ୍ଦ ଧାତୁ+ଭାବ ଅ)—୧ । ବେଗ (ଅମର)—
Syada 1. Velocity. ୨ । ଶୀଘ୍ରତା—2. Haste; (ସ୍ୟନ୍ଦ—ଦେଖ) speediness.

ସ୍ୟନ୍ଦ୍(ଧାତୁ)—ସଂ—୧ । ସ୍ରବିବା; ବୋହିବା; କ୍ଷରିବା—1. To ooze;
Syand (root) to flow down. ୨ । ଗମନ କରିବା—2. To go. ୩ । ଗତି କରିବା—3. To move.

ସ୍ୟନ୍ଦ—ସଂ. ବି (ସ୍ୟନ୍ଦ୍ ଧାତୁ+ଭାବ ଅ)—୧ । ଗତି—
Syanda 1. Motion; movement. ୨ । ଗମନ—2. Going; moving. ୩ । ବେଗ—3, Velocity; speed. ୪ । କ୍ଷରଣ—4. Oozing; flowing. ୫ । (+କରଣ ଅ)—ସ୍ୟନ୍ଦନ; ରଥ—5. Car. ୬ । (+ଭାବ ଅ) ତରଳିଯିବା; ପାଣି ହୋଇଯିବା (ହି.ଶ) 6. Liquefaction. ୭ । ଝାଳ ବୋହିବା; ସ୍ୱେଦୋଦ୍ଗମ (ହି. ଶ)—7. Perspiration. ୮ । (+ଅଧିକରଣ . ଅ) ନେତ୍ରରୋଗବିଶେଷ (ଏଥିରେ ଅକ୍ଷିରୁ ପାଣି ବହେ, ହି. ଶ)—8. An eye-disease. ୯ । (+କର୍ତ୍ତୃ. ଅ) ଚନ୍ଦ୍ରମା (ହି. ଶ)—9. The moon.

ସ୍ୟନ୍ଦକ—ସଂ. ବି—ତିନ୍ଦୁକ ବୃକ୍ଷ [ହି. ଶ]; କେନ୍ଦୁ (ଦେଶୀ)—
Syandaka Diosporea Tomentosa tree.

ସ୍ୟନ୍ଦନ—ସଂ. ବି (ସ୍ୟନ୍ଦ୍. ଧାତୁ+କରଣ. ଅନ)—୧ । ଚକ୍ରଯୁକ୍ତ ଯାନ;
Syandana 1. Car; wheeled vehicle; chariot. ୨ । (+ଭାବ ଅନ) ଗତି—2. Motion. ୩ । ବେଗ—3. Velocity. ୪ । କ୍ଷରଣ—4. Oozing. ୫ । (+କର୍ତ୍ତୃ. ଅନ) ଜଳ(ମେଦିନୀ)—5. Water. ୬ । (+ଭାବ, ଅନ) ଗମନ (ମେଦିନୀ)—6. Going. ୭ । (+କର୍ତ୍ତୃ. ଅନ) ତିନିଶ ବୃକ୍ଷ (ଅମର); ବାନ୍ଧଣ ଗଛ—7. Ougenia Dalbergioides (a timber tree). [ଦ୍ର—ଏଥିରେ ରଥ ତିଆରି ହୁଏ] ୮ । (+କର୍ତ୍ତୃ. ଅନ) ବାୟୁ (ଶବ୍ଦକଳ୍ପଦ୍ରୁମ)—8. Air. ୯ । ବୁଦ୍ଧାର୍ହତ୍‌ବିଶେଷ (ହେମଚନ୍ଦ୍ର)—9. Name of a Buddhist saint. [ଦ୍ର—ଏ ଗତ ଉତ୍ସର୍ପିଣୀର ତ୍ରୟୋବିଂଶ ଅର୍ହତ୍ (ହି. ଶ)] । ୧୦ । ପାଣି ହୋଇଯିବା (ହି. ଶ); ତରଳିଯିବା—10. Turning into water; melting. ୧୧ । ଚିତ୍ର [ହି. ଶ]—11. Picture. ୧୨ । ଘୋଡ଼ା [ହି. ଶ]—12. Horse. ୧୩ । ତିନ୍ଦୁକ (ହି. ଶ); କେନ୍ଦୁ ଗଛ—13. Diosporea Tomentosa tree. ୧୪ । ଅସ୍ତ୍ର ଅଭିମନ୍ତ୍ରିତ କରାଯିବା ମନ୍ତ୍ରବିଶେଷ (ହି.ଶ)—14. Name of a mystic formula for consecrating weapons.

ସ୍ୟନ୍ଦନ ଦ୍ରୁମ(ଦ୍ରୁ)—ସଂ. ବି (ମ. ପ. ଲୋ)—ତିନିଶ ବୃକ୍ଷ—Ou-
Syandana druma(dru) genia Dalbergioides tree.

ସ୍ୟନ୍ଦନବର—ସଂ. ବି (୭ମୀ ତତ୍)—ଉତ୍କୃଷ୍ଟ ରଥ—
Syandanabara Excellent car.

ସ୍ୟନ୍ଦନାରୋହ—ସଂ. ବି (ବହୁବ୍ରୀହି)—ରଥାରୋହୀ ଯୋଦ୍ଧା—
Syandanāroha A warrior riding a car.

ସ୍ୟନ୍ଦନାରୋହଣ—ସଂ. ବି(୭ମୀ ତତ୍)—ରଥରେ ଚଢ଼ିବା—
Syndanārohana Riding on a car.

ସ୍ୟନ୍ଦନାରୋହୀ—ସଂ. ବିଣ. ପୁଂ—ରଥରେ ଚଢ଼ିଥିବା (ବ୍ୟକ୍ତି)—
Syndanārohi (person) Riding a car.
(ସ୍ୟନ୍ଦନାରୋହିଣୀ—ସ୍ତ୍ରୀ)

ସ୍ୟନ୍ଦନି—ସଂ ବି—୧ । (ସ୍ୟନ୍ଦନ+ଇ, ଏଥିର କାଠରେ ରଥ ତିଆରି
Syandani ହେଉଥିବାରୁ)—ତିନିଶ ବୃକ୍ଷ (ଶବ୍ଦକଳ୍ପଦ୍ରୁମ), ବାନ୍ଧଣଗଛ—1 Ougenia Dalbergioides (tree). ୨ । ସ୍ୟନ୍ଦନୀ (ଦେଖ)—2. Syandanī (See)

ସ୍ୟନ୍ଦନିକା—ସଂ ବି—୧ । ଶ୍ରେଷ୍ଠ ନଦୀ [ହି. ଶ]—1. Rivulet.
Syandanika ୨ । ଲାଳର ବିନ୍ଦୁ (ହି. ଶ)—2. Drop of saliva.

ସ୍ୟନ୍ଦନୀ—ସଂ ବି (ସ୍ୟନ୍ଦ ଧାତୁ+କର୍ତ୍ତୃ ଅନ+ଈ)—୧ । ଲାଳ; ଅଧଃ-
Syndanī ମୂତ୍ର (ଶବ୍ଦକଳ୍ପଦ୍ରୁମ); ଶ୍ଳେଷ—1. Saliva. ୨ । (କରଣ ଅନ+ଈ) ମୂତ୍ରନାଳୀ (ଶବ୍ଦକଳ୍ପଦ୍ରୁମ)—2. Urethra; urinary canal.

ସ୍ୟନ୍ଦିନୀ—ସଂ ବିଣ. ସ୍ତ୍ରୀ (ସ୍ୟନ୍ଦନ୍+ଈ)—ସ୍ୟନ୍ଦୀର ସ୍ତ୍ରୀଲିଙ୍ଗ—
Syandinī Feminine of Syandī.
ସଂ. ବି—୧ । ଲାଳ; ଶ୍ଳେଷ—1. Saliva. ୨ । ଯେଉଁ ଗାଈ ଏକାଥରକେ ଦୁଇଟି ବାଛୁରୀ ଜନ୍ମ କରେ—2. A cow which gives birth to two calves at a time.

ସ୍ୟନ୍ଦୀ—ସଂ.ବିଣ.ପୁଂ(ସ୍ୟନ୍ଦନ୍ ଶବ୍ଦ;ସ୍ୟନ୍ଦ ଧାତୁ+କର୍ତ୍ତୃ ଇନ୍,ବ୍ୟାକରଣ)—
Syandī ୧ । ଯାହା ସ୍ରବୁଥାଏ; କ୍ଷରଣଶୀଳ—(ସ୍ୟନ୍ଦିନୀ—ସ୍ତ୍ରୀ) 1. Oozing. ୨ । ଗମନଶୀଳ—2, Moving. ୩ । ସ୍ରାବକ—3. Causing to flow.

ସ୍ୟନ୍ନ—ସଂ. ବିଣ—(ସ୍ୟନ୍ଦ. ଧାତୁ+କର୍ତ୍ତୃ ତ)—ଝରୁଥିବା;
Syanna ସ୍ରବୁଥିବା (ଅମର)—Oozing; percolating.

ସ୍ୟନ୍ନବୀଣ—ସଂ. ବିଣ. ପୁଂ—ସ୍ତୁତ (ହେମଚନ୍ଦ୍ର)—
Syannabīna (ସ୍ୟନ୍ନବୀଣା—ସ୍ତ୍ରୀ) Praised.

ସ୍ୟମ୍(ଧାତୁ)—ସଂ—୧ । ଧ୍ୱନି କରିବା—1. To sound. ୨ ।
Syam (root) ବିତର୍କ କରିବା—2. To doubt.

ସ୍ୟମନ୍ତକ—ସଂ. ବି—ଭାଗବତପ୍ରସିଦ୍ଧ ମଣିବିଶେଷ—Name of a
Symantaka celebrated gem mentioned in the Bhāgābata. [ଦ୍ର—ସତ୍ରାଜିତ୍ ନାମକ ଜଣେ ଯାଦବଙ୍କ ଉପସ୍ୟାଦ୍ୱାରା ସୂର୍ଯ୍ୟନାରାୟଣ ପ୍ରସନ୍ନ ହୋଇ ସୂର୍ଯ୍ୟଦେବ ଏ ମଣିକୁ ସତ୍ରାଜିତଙ୍କୁ ଉପହାର ଦେଇଥିଲେ । ଏ ମଣି ସୂର୍ଯ୍ୟଙ୍କ ପରି ପ୍ରଭାବଶିଷ୍ଟ ଥିଲା ଓ ପ୍ରତିଦିନ ମଣିର ଅଧିକାରୀଙ୍କୁ ୮ ଭାର (=୧୬ ହଜାର ପଲ) ସ୍ୱର୍ଣ୍ଣ ଅର୍ପଣ ଦେଉଥିଲା । ଏ ମଣି ଯେଉଁ ସ୍ଥାନରେ ରହୁଥିଲା, ସେସ୍ଥାନକୁ ରୋଗ, ଶୋକ, ଦୁଃଖ, ଦାରିଦ୍ର୍ୟ ଆଦି ଆକ୍ରମଣ କରୁ ନ ଥିଲା । ଯାଦବମାନଙ୍କ ଅନୁରୋଧ ଅନୁସାରେ ଶ୍ରୀକୃଷ୍ଣ ରାଜା ଉଗ୍ରସେନଙ୍କୁ ଭେଟିଦେବା ପାଇଁ ଏ ମଣିକୁ ସତ୍ରାଜିତଙ୍କୁ ମାଗିଲେ,

କିନ୍ତୁ ସତ୍ରାଜିତ୍ ତାହା ଦେଲେ ନାହିଁ । ଦିନେ ସେ ମଣିକୁ କଣ୍ଠରେ ଧାରଣ କରି ସତ୍ରାଜିତଙ୍କ ଭାଇ ପ୍ରସେନଜିତ୍ ମୃଗୟାକୁ ଯାଇଥିଲେ । ବନରେ ପ୍ରସେନଜିତଙ୍କୁ ଏକ ସିଂହ ମାରିପକାଇ ସେ ମଣିକୁ ନେଇଗଲା । ସିଂହ ସେ ମଣିକୁ ଧାରଣ କରି ଗୋଟିଏ ଗୁମ୍ଫାରେ ପଶିବାରୁ ସେ ଗୁମ୍ଫା ଆଲୋକିତ ହେଲା । ଏହା ଦେଖି ଋକ୍ଷରାଜ ଜାମ୍ବବାନ୍ ଉକ୍ତ ସିଂହକୁ ମାରି ତାଠାରୁ ସେ ମଣିକୁ ନେଲେ । ଏଣେ ପ୍ରସେନଜିତ୍ ବନରେ ମରିଯିବାରୁ ଶ୍ରୀକୃଷ୍ଣଙ୍କୁ ସତ୍ରାଜିତ୍ ସନ୍ଦେହ କରି ତାଙ୍କ ନାମରେ କଳଙ୍କ ରଟନା କଲେ ଯେ, ଶ୍ରୀକୃଷ୍ଣ ଏ ମଣି ଲୋଭରେ ପ୍ରସେନଜିତଙ୍କୁ ମାରିପକାଇ ଅଛନ୍ତି। ଶ୍ରୀକୃଷ୍ଣ ଏ କଳଙ୍କରୁ ରକ୍ଷା ପାଇବାପାଇଁ ଜାମ୍ବବାନ୍ଙ୍କ ସଙ୍ଗେ ଯୁଦ୍ଧ କଲେ । ଜାମ୍ବବାନ୍ ଶ୍ରୀକୃଷ୍ଣଙ୍କୁ ସାକ୍ଷାତ୍ ଭଗବାନ ବୋଲି ଉପଲବ୍ଧି କରି ନିଜର କନ୍ୟା ଜାମ୍ବବତୀଙ୍କ ସହିତ ଏ ମଣିକୁ ଶ୍ରୀକୃଷ୍ଣଙ୍କୁ ଅର୍ପଣ କରି ତାଙ୍କଠାରେ ଶରଣ ପଶିଲେ । ଶ୍ରୀକୃଷ୍ଣ ସେ ମଣିକୁ ଆଣି ସତ୍ରାଜିତଙ୍କୁ ଦେଲେ । ସତ୍ରାଜିତ୍ ବୃଥାରେ ଶ୍ରୀକୃଷ୍ଣଙ୍କଠାରେ କଳଙ୍କ ଲଗାଇ ଥିବାରୁ ସେଥିପାଇଁ ଲଜ୍ଜିତ ହୋଇ ନିଜକନ୍ୟା ସତ୍ୟଭାମାଙ୍କୁ ଓ ଏ ମଣିକୁ ଶ୍ରୀକୃଷ୍ଣଙ୍କୁ ଅର୍ପଣ କଲେ । ଶ୍ରୀକୃଷ୍ଣ ସତ୍ୟଭାମାଙ୍କୁ ପତ୍ନୀରୂପେ ଗ୍ରହଣ କଲେ, କିନ୍ତୁ ଏ ମଣିକୁ ସତ୍ରାଜିତ୍ଙ୍କୁ ଫେରାଇଦେଲେ । ଅନନ୍ତର ସତ୍ରାଜିତଙ୍କୁ ବଧ କରି ଏ ମଣିକୁ ଶତଧନ୍ୱା ନେଇଗଲେ । ଶତଧନ୍ୱାକୁ ଶ୍ରୀକୃଷ୍ଣ ବଧ କରି ଏ ମଣିକୁ ଆଣି ସତ୍ୟଭାମାଙ୍କୁ ଦେଲେ । କଥିତ ଅଛି ଯେ, ଶ୍ରୀକୃଷ୍ଣ ଭାଦ୍ରବ ଚତୁର୍ଥୀ (ଗଣେଶ ଚତୁର୍ଥୀ) ଦିନ ଚନ୍ଦ୍ରମା ଦର୍ଶନ କରିଥିବାରୁ ତାଙ୍କଠାରେ ମଣିହରଣରୂପ ମିଥ୍ୟା କଳଙ୍କ ଲାଗିଥିଲା । ଏଥିପାଇଁ ସେଦିନ ଚତୁର୍ଥୀ-ଚନ୍ଦ୍ର ଦର୍ଶନ ନିଷିଦ୍ଧ । (ହି· ଶ) ଗଣେଶ ଚତୁର୍ଥୀଦିନ ଅକସ୍ମାତ ଚନ୍ଦ୍ର ଦର୍ଶନ ହେଲେ ସ୍ୟମନ୍ତକ ଉପାଖ୍ୟାନ ପାଠ କଲେ ସେହିଜନ ଚନ୍ଦ୍ର ଦର୍ଶନଜନିତ ଦୋଷରୁ ମୁକ୍ତ ମିଳେ (ଇତ୍ୟାଦିତଷ୍ଟି) ।]

**ସ୍ୟମନ୍ତ ପଞ୍ଚକ**—ସଂ. ବି—(ନାମ) କ୍ଷତ୍ରିୟମାନଙ୍କ ରକ୍ତରେ ପିତୃଲୋକଙ୍କ **Syamanta pañchaka** ଉଦ୍ଦେଶ୍ୟରେ ପରଶୁରାମଙ୍କ ତର୍ପଣ କରିଥିବା ତୀର୍ଥ ବିଶେଷ (ଭାଗବତ)—Name of a place where Parasurāma offered oblations of blood to the manes.

**ସ୍ୟମିକ**—ସଂ. ବି—(ସ୍ୟମ୍ ଧାତୁ+ଇକ)—୧ । ବଲ୍ମୀକ; ଉଇହୁଙ୍କା। **Syamika** (ହି· ଶ)—1. Anthill. ୨ । ବୃକ୍ଷ ବିଶେଷ (ହି· ଶ)—2. Name of a certain tree.

**ସ୍ୟମୀକ**—ସଂ. ବି—(ସ୍ୟମ୍ ଧାତୁ+ଈକ)—୧ । ବଲ୍ମୀକ; ଉଇହୁଙ୍କା— **Symika** 1. Anthill. ୨ । ବୃକ୍ଷବିଶେଷ (ମେଦିନୀ)—2. Name of a particular tree. ୩ । ମେଘ—3. Cloud. ୪ । କାଳ—4. Time. ୫ । ଜଳ (ହି ଶ)—5. Water. ୬ । ପ୍ରାଚୀନ ରାଜବଂଶ-ବିଶେଷ (ହି. ଶ)—6. Name of an ancient royal family.

**ସ୍ୟମୀକା**—ସଂ. ବି—(ସ୍ୟମୀକ+ଆ)—୧ । ନୀଳିକା (ମେଦିନୀ)—1. **Symikā** Indigo plant. ୨ । ଏକ ପ୍ରକାର କୀଟ (ହି.ଶ) 2. A kind of insect.

**ସ୍ୟାଇ(ହି)** [ଇତ୍ୟାଦି]—ବୈଦେ. କ୍ରି (ପ୍ରା. ସ୍ୟାହ୍=କୃଷ୍ଣବର୍ଣ୍ଣ; ସ୍ୟାହୀ **Syāi(hi)** (etc) =ମସୀ)—ସିହାଇ ଇତ୍ୟାଦି [ଦେଖ] Sihāi etc (See)

**ସ୍ୟାଡ଼**—ଗ୍ରା. ସର୍ବନାମ—ସେ ଅଡ଼; ସେ ଅଞ୍ଚଳ; ସେ ଦିଗ; ସେ ପଖ— **Syārda** That side; that quarter—(ଦ୍ର—ସ୍ୟାଡ଼ ସେଥା **वहाँ** ପଦ ସଙ୍ଗେ ବିଭକ୍ତିସୂଚକ ଅଙ୍ଗମାନ ଲାଗେ ଯଥା। (ସ୍ୟାଡ଼—ବିପରୀତ) ସ୍ୟାଡ଼କୁ, ସ୍ୟାଡୁ, ସ୍ୟାଡ଼କା, ସ୍ୟାଡ଼ର, ସ୍ୟାଡ଼କାର, ସ୍ୟାଡ଼େ) ।

**ସ୍ୟାଡ଼କା**—ଗ୍ରା. ସର୍ବନାମ—ସେ ଅଞ୍ଚଳର;ସେହି ଅଡ଼ର—Pertaining **Syārdakā** to that place, quarter or side; of সেথাকার **वहाँका** that quarter. (ସ୍ୟାଡ଼କାର; ସ୍ୟାଡ଼ର—ଅନ୍ୟରୂପ)

**ସ୍ୟାଡ଼କୁ**—ଗ୍ରା· ସର୍ବନାମ—୧ । ସେହି ଅଞ୍ଚଳକୁ; ସେଠାକୁ—1. To **Syārdaku** that locality or place. ୨ । ସେହି সেথায **वहाँको** ଦିଗକୁ—2. To that quarter. ୩ । ତତ୍ପରେ—3. After that.

**ସ୍ୟାଡୁ**—ଗ୍ରା ସର୍ବନାମ—୧ । ସେଠାରୁ—1. Thence. ୨ । ସେ **Syārdu** ଦିଗରୁ—2. From that quarter. সেথাথেকে; **वहाँसे**

**ସ୍ୟାଡ଼େ**—ଗ୍ରା. ସର୍ବନାମ—୧ । ସେଠାରେ—1. There. ୨ । ସେ **Syārde** সেথায় **वहाँ** ଦିଗରେ—2. In that quarter. ଗ୍ରା· ଅ (ସ. ସାର୍ଦ୍ଧ) ସାଢ଼େ; ସାର୍ଦ୍ଧ; ସାଢ଼େ (ଦେଖ)— And a half. (ଯଥା, ସ୍ୟାଢ଼େ ଘଣ୍ଟା ବେଳ) ।

**ସ୍ୟାଣା** (ଇତ୍ୟାଦି)—ଗ୍ରା. ବିଣ—ସିଆଣା ଇତ୍ୟାଦି (ଦେଖ) **Syāṇā** (etc) Siāṇā etc (See)

**ସ୍ୟାତ୍**—ଦେ. ଅ, (ସଂ. ଅସ୍ ଧାତୁ=ହେବା; ଏ ଧାତୁର ଭବିଷ୍ୟତ **Syāt** କାଳ ତୃତୀୟ ପୁରୁଷ ୧ ବଚନ; ସ୍ୟାତ୍=ହୋଇପାରେ স্যাৎ, যদিস্যাৎ **स्यात** ଏହା 'ଯଦି' ଶବ୍ଦ ସଙ୍ଗେ ଲାଗେ)— (ତର୍କଣାର୍ଥକ); ହେଜାଣି; ହେଜାଣି ଅବା; ଯଦି; ଯଦିସ୍ୟାତ୍—If, in case. (ଯଥା—ସ୍ୟାତ ମୁଁ ସେଠାକୁ ଯାଏଁ; ଅର୍ଥାତ୍, ଯେବେ ହେଜାଣି ମୁଁ ସେଠାକୁ ଯାଏଁ)

**ସ୍ୟାଳ**—ସଂ. ବି· ପୁଂ—ଶ୍ୟାଳକ (ସ୍ୱାମିକୃତ ଅମର ଟୀକା)— **Syāla** (ସ୍ୟାଳକ—ଅନ୍ୟରୂପ) One's wife's brother.

**ସ୍ୟାଳିକା**—ସଂ. ବି· ସ୍ତ୍ରୀ—ଶ୍ୟାଳିକା; ପତ୍ନୀଙ୍କ ସାନ ଭଉଣୀ (ହି. ଶ)— **Syālikā** (ସ୍ୟାଳୀ—ଅନ୍ୟରୂପ) One's wife's younger sister.

**ସ୍ୟୁତ୍ନ**—ସଂ. ବି—ଅହ୍ଲାଦ (ଶବ୍ଦକଳ୍ପଦ୍ରୁମ)—Joy. **Syutna**

ସ୍ୟୁ—ସଂ. ବି—(ସିବ୍ ଧାତୁ ସିଇଁବା + କରଣ ଉ)-ସୂତ୍ର; ସୂତା — (ବୃ. ଶ)-
Syū Thread

ସ୍ୟୁତ—ସଂ. ବିଣ—(ସିବ୍, ଧାତୁ=ସିଇଁବା + କର୍ମ ତ)—୧ । ପ୍ରୋତ; ଗ୍ରଥିତ; ସୂତା ଦ୍ୱାରା ବୁଣା ହୋଇଥିବା—
Syūta 1. Woven. ୨ । ସିଲାଇ କରାଯାଇଥିବା—2. Sewn. ୩ । ରଫୁ କରାଯାଇଥିବା—3. Darned. ବି—୧ । ସୂତ୍ର ନିର୍ମିତ ଥଳି; ବସ୍ତ୍ର ନିର୍ମିତ ମୁଣି; ଧୋକଡ଼ୀ; ଧୌତକଟ; (ଅନ୍ୟ ସଂ. ନାମ—ସ୍ୟୁନ, କନାର ଥଳି — A bag made of ସେ୍ୟାନ, ସେ୍ୟାତ, ଧୌତକଟ) cloth or thread.

ସ୍ୟୁତ ସନ୍ଧି-ସଂ, ବି. (ଆଧୁନିକ ପ୍ରୟୋଗ)-୧ । ଯେଉଁ ଜୀବମାନଙ୍କର ଶରୀରର
Syūtasandhi ସନ୍ଧି ସ୍ଥଳ ସିଲାଇ କରାଯାଇଥିବା ପରି ଦେଖା ଯାଉଥାଏ (ମସ୍ତକର ଅସ୍ଥି ଗୁଡ଼ିକ ଦେଖିଲେ ସେମାନ ପରସ୍ପର ସିଲାଇ ହେବାପରି ଜଣା ଯାଉଥାଏ, ଏହି ହେତୁରୁ ସେମାନଙ୍କର ସନ୍ଧି ସ୍ଥଳକୁ ସ୍ୟୁତସନ୍ଧି କୁହାଯାଏ ।)— 1. Sutaral animuls. ୨ । ହାଡ଼ଗୁଡ଼ିକର ଯେଉଁ ସନ୍ଧି ସିଲାଇ ହେବା ପରି ଦେଖାଯାଏ (ଯଥା, ଖପୁରୀର ହାଡ଼ମାନ)—2. Suture.

ସ୍ୟୁତି—ସଂ. ବି—(ସିବ୍. ଧାତୁ + ଭାବ ତି)—୧ । ସୀବନ; ଛୁଞ୍ଚ ଦ୍ୱାରା
Syūti ଲୁଗା ଆଦି ସେଇଁବା—1. Sewing. ୨ । ରଫୁ କରିବା—2. Darning. ୩ । ବୁଣିବା; ବୟନ— 3. Weaving. ୪ । (+ କର୍ମ.ତି) ତନ୍ତୁ ସନ୍ତାନ. ତନ୍ତୁରେ ନିର୍ମିତବସ୍ତୁ (ଯଥା—ଲୁଗାପଟା)—4. Articles woven from fibres. ୫ । ଲୁଗାର ଥଳି— 5. Cloth bag. ୬ । ସନ୍ତାନ; ସନ୍ତତି (ବୃ ଶ)— 6 Offspring

ସ୍ୟୁନ—ସଂ ବି—(ସିବ୍. ଧାତୁ + କର୍ମ ନ—୧ । ସ୍ୟୁତ; ଧୋକଡ଼ି; ମୁଣି—
Syūna 1. A bag of rags sewn together

ସ୍ୟୁମ—ସଂ. ବି—୧। (ସିବ୍ ଧାତୁ + କରଣ. ମ)— ରଶ୍ମି ; କିରଣ (ଉଣାଦି
Syūma ସାର)—1. Ray. ୨ । ଜଳ (ଉଣାଦିକୋଷ)— 2. Water.

ସେ୍ୟଇ (ଇତ୍ୟାଦି)—ଦେ୍ୱଦେ. ବି—ସିହାଇ ଇତ୍ୟାଦି (ଦେଖ)—
Syei (etc) Sihāi etc (See)

ସେ୍ୟାତ—ସଂ. ବି—(ସିବ୍ ଧାତୁ + କର୍ମ ତ)—ସ୍ୟୁତ; ଧୋକଡ଼ (ଭରତ)
Syota A bag made of rags sewn together.

ସେ୍ୟାନ—ସଂ. ବି—(ସିବ୍ ଧାତୁ + କର୍ମ ନ)—୧ । ସ୍ୟୁତ; ଧୋକଡ଼;
Syona ଧୌତକଟ (ଭରତ)—1. A bag of rags. ୨। (+ କର୍ତ୍ତୃ.ନ)ସୂର୍ଯ୍ୟ (ମେଦିନୀ)—2. The sun. ୩। କିରଣ— 3. Ray of light. ୪ । ସୁଖ; ଆନନ୍ଦ (ଶବ୍ଦକଳ୍ପଦ୍ରୁମ)—4. Delight; happiness.

ସେ୍ୟାନାକ—ସଂ ବି—ଶେ୍ୟାନାକ [ବୃ. ଶ] (ଦେଖ)—
Syonāka Śyonāka (See)

ସ୍ରଂସନ(ନା)—ସଂ. ବି [ସ୍ରନ୍ସ୍ ଧାତୁ=ଖସିପଡ଼ିବା, ଖସିଯିବା + ଭାବ
Sraṁsana(nā) ଅନ+ଆ] ୧ । ସ୍ଖଳନ —1 Slipping ୨ । ଅଧଃପତନ; ଖସିବା; ପଡ଼ିଯିବା; ଭ୍ରଂଶ—2. Falling down; dropping down. ୩ । ବିଚ୍ୟୁତି—3. Separation; displacement; dislocation. ୪। ଦେହସ୍ଥ ଉର୍ଦ୍ଧ୍ୱଗତ (ଶ୍ରୁ — ବଣି) ଦୋଷକୁ ଅଧୋଦେଶକୁ ଆଣିବା [ସୁଶ୍ରୁତ ଟୀକା]— 4. The act of bringing down a defect from the top of the body downwards. ୫ । (+ କରଣ ଅନ) ମଳଭେଦକ ଔଷଧ [ବୃ. ଶ]— 5. Cathartic medicine. ୬। ( + ଭାବ ଅନ ) ଗର୍ଭପାତ; ଗର୍ଭସ୍ରାବ [ ବୃ. ଶ ]—6. Miscarriage; abortion. ସଂ. ବିଣ—ମଳଭେଦକ ( ବୃ. ଶ )— Cashartic.

ସ୍ରଂସିନୀ - ସଂ. ବିଣ, ସ୍ତ୍ରୀ (ସ୍ରଂସିନ୍ + ଈ) —ସ୍ରଂଶୀଳ ସ୍ତ୍ରୀଲିଙ୍ଗ —
Sraṁsinī Feminine of Sraṁsī. ସଂ. ବି—ପ୍ରସ୍ରଂସିନୀ; ଯୋନିରୋଗ ବିଶେଷ—A kind of disease of the female organ. [ ବି—ଭାବପ୍ରକାଶ ଅନୁସାରେ ପ୍ରସଙ୍ଗ ସମୟରେ ଆଘାତ ଲାଗିବା ଯୋଗୁ ଯୋନି ବାହାର ପଡ଼େ ଓ ଗର୍ଭଧାରଣ ହୋଇ ପାରେ ନାହିଁ । ଏ ରୋଗକୁ ସ୍ରଂସିନୀ କୁହାଯାଏ [ବୃ.ଶ]

ସ୍ରଂସିନୀଫଳ—ସଂ ବି—ଶିରୀଷ ବୃକ୍ଷ [ ଶବ୍ଦମାଳା ]—Abizzia
Sraṁsiniphala Lebbek; Acacia Lebbek.

ସ୍ରଂସୀ—ସଂ. ବିଣ [ସ୍ରଂସିନ ଶବ୍ଦ, ସ୍ରନ୍ସ୍ ଧାତୁ + କର୍ତ୍ତୃ ଇନ୍]=
Sraṁsī ୧। ଅଧଃପତନଶୀଳ — 1. Falling down; slipping. (ସ୍ରଂସିନୀ — ସ୍ତ୍ରୀ) ୨ । ଭ୍ରଷ୍ଟ; ଚ୍ୟୁତ — 2. Displaced. ୩ । ଅସମୟରେ ପତିତ ବା ଭ୍ରଷ୍ଟ (ଭ୍ରୂଣ) [ବୃ. ଶ] — 3. Miscarried (foetus) ବି. — ୧ । ପୀଲୁବୃକ୍ଷ [ଅମର] — 1. The tooth brush tree; salvedor tree. ୨ । ଗୁଆଗଛ [ବୃ. ଶ] — 2. The areca nut tree.

ସ୍ରକ୍ (ଧାତୁ) — ସଂ. — ଗତିକରିବା —
Srak (root) To move.

ସ୍ରକ୍ (ଗ୍)—ସଂ. ବି (ସୃଜ ଧାତୁ + କର୍ମ କ୍ୱିପ୍, ସ୍ରକ୍ଷଦ ୧ମା. ୧ବ)
Srak (g) ୧ । ମାଳ; ମାଳା; ହାର—1. Garland. ୨ । ମୁଣ୍ଡରେ ପିନ୍ଧାଯିବା ପୁଷ୍ପଦାମ—2. A garland worn (ତ୍ରିକ—ଦେ. ରୂପ) round the head. ୩ । ଫୁଲର ମାଳ ବା ହାର — 3. A garland of flowers. ୪ । ବର୍ଣ୍ଣବୃତ୍ତ ବିଶେଷ—4. Name of a Sanscrit metre. [ବି—ଏଥିରେ ପ୍ରତ୍ୟେକ ଚରଣରେ ୪ ନଗଣ ୧ ସଗଣ ଥାଏ ଓ ୬ଷ୍ଠ ଓ ନବମ ଅକ୍ଷରରେ ଯତିପଡ଼େ (ବୃ. ଶ) ] ୫ । ବୃକ୍ଷ ବିଶେଷ (ବୃ. ଶ) — 5. A kind of tree. ୬ । ଜ୍ୟୋତିଷୋକ୍ତ ଯୋଗ ବିଶେଷ (ବୃ.ଶ) 6. A kind of astrological conjuction.

ସ୍ରକ୍-ଚନ୍ଦନ — ସଂ. ବି [ଦ୍ୱନ୍ଦ୍ୱ]—ମାଳା ଓ ଚନ୍ଦନ—
Srak-chandana Garland and sandal paste

**ସ୍ରଗ୍ଜିହ୍ୱ**—ସଂ. ବି (ବହୁବ୍ରୀହି, ସ୍ରକ୍ ପରି ଜିହ୍ୱା ଯାହାର)—ଅଗ୍ନି [ବୁ.ଶ]
Sragjihwa — Fire.

**ସ୍ରଗ୍ଧର**—ସଂ. ବିଣ. ପୁଂ (ସ୍ରଜ୍+ଧୃ ଧାତୁ+କର୍ତ୍ତୃ ଅ)—ମାଳାଧାରୀ—
Sragdhara — Wearing garland.
(ସ୍ରଗ୍ଧରା—ସ୍ତ୍ରୀ)

**ସ୍ରଗ୍ଧରା**—ସଂ. ବି—୧। ଏକବିଂଶତିଅକ୍ଷରବିଶିଷ୍ଟ ସଂସ୍କୃତ ଛନ୍ଦୋବିଶେଷ
Sragdharā — 1. Name of a Sanscrit metre of 21 syllables. ୨। ବୌଦ୍ଧ ଦେବୀବିଶେଷ(ବୁ.ଶ)—2 Name of a Buddhist Goddess.
ବିଣ. ସ୍ତ୍ରୀ—ସ୍ରଗ୍ଧରର ସ୍ତ୍ରୀଲିଙ୍ଗ—Feminine of Sragdhara.

**ସ୍ରଗ୍ବାନ୍**—ସଂ. ବିଣ. ପୁଂ (ସ୍ରଗ୍ବତ୍ ଶବ୍ଦ; ସ୍ରଜ୍+ବତ୍)—ମାଳାଧାରୀ—
Sragbān — Wearing garland; garlanded
(ସ୍ରଗ୍ବତୀ—ସ୍ତ୍ରୀ)

**ସ୍ରଗ୍ବିଣୀ**—ସଂ. ବିଣ. ସ୍ତ୍ରୀ (ସ୍ରଗ୍ବିନ୍+ଈ)—ସ୍ରଗ୍ବୀର ସ୍ତ୍ରୀଲିଙ୍ଗ—
Sragbiṇi — Feminine of Sragbi.
ସଂ. ବି—୧। ପ୍ରତି ଚରଣରେ ୪ ରଗଣ ଥିବା ବୃତ୍ତବିଶେଷ—1. Name of a Sanscrit metre, ୨। ଦେବୀବିଶେଷ (ବୁ. ଶ)—2. Name of a goddess.

**ସ୍ରଗ୍ବୀ**—ସଂ. ବିଣ (ସ୍ରଗ୍ବିନ୍ ଶବ୍ଦ; ସ୍ରଜ୍+ବିନ୍)—ମାଳାଧାରୀ—
Sragbi — Wearing garland.
(ସ୍ରଗ୍ବିଣୀ—ସ୍ତ୍ରୀ)

**ସ୍ରଜିଷ୍ଠ**—ସଂ ବିଣ. ପୁଂ (ସ୍ରଜ୍+ଇଷ୍ଠ)—ମାଲ୍ୟବିଶିଷ୍ଟ—
Srajishṭha — Wearing garland.
(ସ୍ରଜିଷ୍ଠା—ସ୍ତ୍ରୀ)

**ସ୍ରଜୀୟାନ୍**—ସଂ ବିଣ (ସ୍ରଜୀୟସ୍ ଶବ୍ଦ; ସ୍ରଜ୍+ଈୟସ୍)—ମାଲ୍ୟବିଶିଷ୍ଟ—
Srajīyān (ସ୍ରଜୀୟସୀ ସ୍ତ୍ରୀ) — Garlanded.

**ସ୍ରଜ୍ୱା**—ସଂ. ବି (ସୃଜ୍ ଧାତୁ+କର୍ତ୍ତୃ ବନ୍; ସ୍ରଜ୍ୱନ୍ ଶବ୍ଦ ୧ମା ୧ ବଚନ)—
Srajwā — ୧। ପ୍ରଜାପତି—1. The Progenitcr fo mankind. ୨। (ସୃଜ୍ ଧାତୁ+ବନ୍)—ରଜ୍ଜୁ; ତନ୍ତୁସଂଘାତ; ବଳା ହୋଇଥିବା ଦଉଡ଼ି—2. Rope; fibres twisted into a rope. ୩। (ସ୍ରଜ୍+ବତ୍; ୧ମା ୧ବ)—ମାଳାକାର (ବୁ. ଶ)—3. Maker of garlands.

**ସ୍ରଦ୍ଧୁ**—ସଂ ବି (ଶୃଧ୍ ଧାତୁ+ଭାବ ଉ)—ବାତକର୍ମ—Breaking of
Sraddhṛu — wind; passing of wind through the anus.
[ଶ୍ରଦ୍ଧୁ—ଅନ୍ୟରୂପ]

**ସ୍ରମ୍ଭ୍** [ଧାତୁ]—ସଂ—୧। ପ୍ରମାଦଗ୍ରସ୍ତ ହେବା; ପ୍ରମତ୍ତ ହେବା—
Sran-bh(root) — 1. To be mad. ୨। ବିଶ୍ୱାସ କରିବା—2. To trust.

**ସ୍ରନ୍ସ୍ (ଧାତୁ)**—ସଂ—୧। ଭ୍ରଂଶ ହେବା; ଖସିଯିବା—1. To slip
Sran-s(root) ୨। ତଳକୁ ପଡ଼ିଯିବା—2. To fall down. ୩। ପ୍ରସନ୍ନ ହେବା—3. To be favourable.

**ସ୍ରବ**—ସଂ. ବି [ସ୍ରୁ ଧାତୁ+ଭାବ ଅ]—୧। ସ୍ରାବ (ଦେଖ)—
Sraba — 1. Srāba (See). ୨। ସ୍ରବଣ (ଦେଖ)—2. Srabaṇa (See)

**ସ୍ରବଣ**—ସଂ. ବି (ସ୍ରୁ ଧାତୁ+କର୍ତ୍ତୃ ଅନ)—୧। ପ୍ରସ୍ରାବ; ମୂତ୍ର
Srabaṇa — [ବିଜ୍ଞକଦର୍ଶ୍ମ]—1. Urine. ୨। ଘର୍ମ—2. Perspiration. ୩। (+ଭାବ ଅନ) ଝରିବା, କ୍ଷରଣ—3. Oozing; flowing down; percolating. ୪। (+କର୍ତ୍ତୃ ଅନ) ଉତ୍ସ; ପ୍ରସ୍ରବଣ—4. Spring; fountaiu. ୫। ପ୍ରବାହ (ବୁ. ଶ)—5. Flow; current. ୬। ଗର୍ଭସ୍ରାବ ବୁ. ଶ)—6. Miscarriage

**ସ୍ରବତ୍ତୋୟା**—ସଂ. ବି—ରୁଦନ୍ତୀ (ଦେଖ; ବୁ. ଶ)—
Srabattoyā — Rudanti (See)

**ସ୍ରବଦ୍ଗର୍ଭା**—ସଂ. ବିଣ. ସ୍ତ୍ରୀ (ସ୍ରବତ୍=ସ୍ଖଳିତ ହୋଇଅଛି ଗର୍ଭ ଯାହାର)—
Srabad garbhā — ଯେଉଁ ସ୍ତ୍ରୀର ଦୈବବଶରୁ ଗର୍ଭପାତ ହୋଇଅଛି; ଗର୍ଭର ପକାଇଥିବା (ସ୍ତ୍ରୀ)—Miscarried (woman) ବି. ସ୍ତ୍ରୀ—ଅବତୋକା; ଦୈବବଶରୁ ପତିତ-ଗର୍ଭ ଗୌ—A miscarried cow.

**ସ୍ରବଦ୍ରଙ୍ଗ**—ସଂ ବି—୧। ପଣ୍ୟଗ୍ରନ୍ଥି (ହାଟବଲୀ); ବଜାର—
Srabadraṅga — 1. Market; bazar. ୨। ମେଳା; ପ୍ରଦର୍ଶନୀ (ବୁ. ଶ)—2. Fair; exhibition.

**ସ୍ରବନ୍**—ସଂ. ବିଣ. ପୁଂ (ସ୍ରବତ୍ ଶବ୍ଦ ୧ମା ୧ବ, ସ୍ରୁ ଧାତୁ+କର୍ତ୍ତୃ
Sraban — ଅତ୍ (ଶତୃ)—କ୍ଷରଣବିଶିଷ୍ଟ; ଝରୁଥିବା; କ୍ଷରଣଶୀଳ—
(ସ୍ରବନ୍ତୀ—ସ୍ତ୍ରୀ) — Oozing; percolating.

**ସ୍ରବନ୍ତୀ**—ସଂ. ବି (ସ୍ରୁ ଧାତୁ+କର୍ତ୍ତୃ ଅତ୍+ଈ)—୧। ନଦୀ—1
Srabanti — River. ୨। ବନସ୍ପତିବିଶେଷ—2 A kind of tree. ୩। ଔଷଧିଭେଦ (ମେଦକା)—3 A herb.
ସଂ. ବିଣ—ସ୍ରବନ୍‌ର ସ୍ତ୍ରୀଲିଙ୍ଗ—Feminine of Sraban.

**ସ୍ରବା**—ସଂ. ବି [ସ୍ରୁ ଧାତୁ+କର୍ତ୍ତୃ ଅ+ଆ]—୧। ମୂର୍ବା (ବୃକ୍ଷମୂଳକ); ମରୁଗା ଘାସ—1 Sansevieria
Srabā — Zeylaniea. ୨। ଜୀବନ୍ତୀ [ବୁ. ଶ ଦେଖ]—2 Jibanti [See]

**ସ୍ରବା(ବେ)ଇବା**—ଦେ.କ୍ରି (ପଦ୍ୟ) (ସ୍ରୁ ଧାତୁ.ଣିଚ)—ସ୍ରବିବାର ଣିଜନ୍ତ
Srabā (be) ibā — ରୂପ—The causative form of ସ୍ରବାନ 'Srabibā' [ଦ୍ର—ସେ ବୃକ୍ଷର ମଧ୍ୟରୁ ବହେ ମଧୁ ନଦୀ. ବହାନା ସ୍ରବାନା ଭୋଗଜ ସୁଖ ସେ ସ୍ରବାଏ ନିରବଧି। କୃଷ୍ଣସିଂହ, ମହାଭାରତ—ବନ]

**ସ୍ରବିବା**—ଦେ. କ୍ରି (ପଦ୍ୟ)(ସଂ ସ୍ରୁ ଧାତୁ)—୧। କ୍ଷରିତ ହେବା—1. To
Srabibā — ooze. [ଦ୍ର—ରସନାରୁ ଅହରହ ସ୍ରବୁଅଛି ଲାଳ। ସ୍ରବା — ରାଧାନାଥ, ମହାଯାତ୍ରା] ୨। ଧାର କ୍ରମେ ବୋହିବା—2. To flow down
ବହନା, ସ୍ରବନା

**ସ୍ରଷ୍ଟବ୍ୟ**—ସଂ. ବିଣ (ସୃଜ ଧାତୁ+କର୍ମ. ତବ୍ୟ)—ସୃଷ୍ଟ ହେବାର
Srashṭabya — ଯୋଗ୍ୟ—Fit to be created.

ସ୍ରଷ୍ଟା—ସଂ. ବଣ. ପୁଂ (ସ୍ରଷ୍ଟୃ ଶବ୍ଦ; ସୃଜ୍ ଧାତୁ+କର୍ତ୍ତୃ. ତୃ ୧ମା. ୧ବ) Srashtā ଯେ ସର୍ଜନା କରେ; ସୃଷ୍ଟିକର୍ତ୍ତା—Creating. (ସ୍ରଷ୍ଟ୍ରୀ—ସ୍ତ୍ରୀ) ବ—୧ । ନିର୍ମାତା—1. Maker ୨। ଉଦ୍ଭାବକ-କର୍ତ୍ତା—2. Inventor. ୩ । ବିଧାତା; ବ୍ରହ୍ମା—3. Brahmā the Creator. ୪ । ଶିବ (ଜଳମୂର୍ତ୍ତି) 4 Śiba. ୫ । ଈଶ୍ୱରଙ୍କର ସୃଷ୍ଟିକାରୀ ରୂପ—5. God in the guise of the Creator of the universe. ୬। ବିଷ୍ଣୁ - 6. Bishnu.

ସ୍ରଷ୍ଟୃତା (ତ୍ୱ)—ସଂ. ବ (ସ୍ରଷ୍ଟୃନ୍+ଭାବ. ତା, ତ୍ୱ)—୧ । ସୃଷ୍ଟିକର୍ମ—Srastrutā (twa) 1. The act of creating; the act of the creator; creation. ୨ । ସ୍ରଷ୍ଟା ହେବାର ଅବସ୍ଥା—2. The state of being the creator or maker.

ସ୍ରସ୍ତ—ସଂ. ବଣ (ସ୍ରନ୍ସ୍ ଧାତୁ+କର୍ତ୍ତୃ. ତ)—୧ । କ୍ଷରିତ—Srasta 1. Oozed; percolated. ୨ । ତଳକୁ ଖସି ପଡ଼ି-(ସ୍ରସ୍ତା—ସ୍ତ୍ରୀ) ଥିବା—2. Fallen down. ୩ । ଚ୍ୟୁତ; ଭ୍ରଷ୍ଟ; (ସ୍ରଂସନ—ବ) ଖସିଯିବା; ସ୍ଥାନଭ୍ରଷ୍ଟ—3. Displaced; dis ordered. ୪ । ଖସିଯାଇଥିବା—4. Slipped off, dislocated. ୫ । ବିଗଳିତ—5. Flowing; dropped from. ୬। ଶିଥିଳ; ଢିଲା ହୋଇଥିବା—6. Loosened; slackened.

ସ୍ରସ୍ତର—ସଂ. ବ [ସ୍ରନ୍ସ୍ ଧାତୁ+କର୍ମ ତର)—ସଂସ୍ତର; ଆସନ; ଶଯ୍ୟା Srastara —A bed; mat.

ସ୍ରାଅ (ହା) ନ—ଗ୍ରା. ବ (ସଂ. ସ୍ନାନ)—ସ୍ନାନ (ଦେଖ)—Srā-ā (hā) na Snāna (see) (ସ୍ରାନ—ଅନ୍ୟରୂପ)

ସ୍ରାଅ (ହା) ନିଆ—ଦେ. ବିଣ—ସ୍ନାତ, କୃତସ୍ନାନ—Srā-ā (hā) niā Bathed, washed.

ସ୍ରା କିସ୍‌ମିସ—ବୈଦେ. ବ—କ୍ୱେଟା ଜିଲ୍ଲାରେ ମିଳୁଥିବା ଏକପ୍ରକାର Srā kis-mis ଫିକା ବାଇଗଣୀ ରଙ୍ଗର ଅଙ୍ଗୁର, ଯାହାକୁ ଶୁଖାଇ ଗ୍ରାକିସମିସ କିସମିସ କରାଯାଏ [ହି. ଶ]—A kind of ग्राकिसमिस light-violet grapes which are dried into raisins.

ସ୍ରାଗ—ଗ୍ରା ବ (ପଦ୍ୟ) (ସଂ—ସରାଗ)—ସ୍ନେହ; ଅନୁରାଗ; ସୁହାଗ—Srāga Love; affection. [ଉ—ପଣ୍ଡିତେ ଚୂଳୀଠାରେ ସୁରସ୍ତ୍ରୀର ନ ସ୍ନେହ ୟୋग ଥାଏ କି ସ୍ରାଗ । ପୀତାମ୍ବର. ନୃସିଂହ ପୁରାଣ ]

ସ୍ରାବ—ସଂ.ବ [ସ୍ରୁ ଧାତୁ+ଭାବ ଅ]—୧। ସ୍ରବ; କ୍ଷରଣ—1. Oozing. Srāba ୨ । ବୋହିବା—2. Flow; discharged. ୩ । ପତନ—3. Falling down. ୪ । ଭ୍ରଂଶ; ବିଚ୍ୟୁତି 4. Dropping down; slipping. ୫। ପ୍ରସବ ପରେ ୩।୪ ଦିନ ପର୍ଯ୍ୟନ୍ତ ପ୍ରସୂତିଙ୍କ ଜନନେନ୍ଦ୍ରିୟରୁ ବାହାରିବା ନାଲି ରଙ୍ଗର ଜଳୀୟ ବସ୍ତୁ (ଏହା କ୍ରମେ କ୍ରମେ ଫିକା ଓ କେତେଦିନ ପରେ ଧଳା ରଙ୍ଗ ହୋଇଯାଏ । ସ୍ତନକଶୋଥ-ପ୍ରସୂତିତର୍ଥା ] 5. Lochia. ୬ । ଗର୍ଭପାତ (ହି. ଶ)—6 Miscarriage. ୭ । (+କର୍ତ୍ତୃ. ଅ) ନିର୍ଯ୍ୟାସ; ବହୁଥିବା ରସ (ହି. ଶ)—7. Exuded juice.

ସ୍ରାବକ—ସଂ. ବଣ ପୁଂ(ସ୍ରୁ ଧାତୁ+କର୍ତ୍ତୃ ଅକ)—କ୍ଷରଣଶୀଳ; କ୍ଷରକ—Srābaka Oozing; flowing. ବ—ମରିଚ [ଶବ୍ଦଚନ୍ଦ୍ରିକା] (ସ୍ରାବିକା—ସ୍ତ୍ରୀ ବଣ] Black pepper.

ସ୍ରାବଣି କରଣୀ - ଦେ. ବ—ମହୌଷଧି ବିଶେଷ—Name of a Srābaṇi karaṇī medicinal plant. [ଉ—ସନ୍ଧାନ କରଣୀ ଯେ ବିଶଲ୍ୟ କରଣୀ ମୃତ୍ୟୁସଞ୍ଜୀବନୀ ଯେ ସ୍ରାବଣି କରଣୀ—କୃଷ୍ଣସିଂହ ମହାଭାରତ ବନ । ]

ସ୍ରାବଣୀ—ସଂ. ବ—ଋଦ୍ଧି ନାମକ ମହୌଷଧି ବୃକ୍ଷ (ଶବ୍ଦକଳ୍ପଦ୍ରୁମ)—Srābaṇī A rare medicinal plant.

ସ୍ରାବିତ—ସଂ.ବଣ—(ସ୍ରୁ ଧାତୁ.ଣିଚ=ସ୍ରାବି ଧାତୁ+କର୍ମ ତ)—ଚୁହାଇଦିଆ ହୋଇଥିବା Srābita ବାହାରି କରାଯାଇଥିବା (ରସ)—Caused to flow down.

ସ୍ରାବୀ—ସଂ. ବଣ. ପୁ—(ସ୍ରୁ ଧାତୁ ଣିଚ ସ୍ରାବି ଧାତୁ+କର୍ତ୍ତୃ ଇନ; Srābī ସ୍ରାବିନ୍ ୧ମା. ୧ବ)—୧ । ଯାହା ସ୍ରାବ କରାଏ—1. (ସ୍ରାବିଣୀ—ସ୍ତ୍ରୀ) Causing to flow. ୨ । ଯହିଁରୁ ଝରୁଥାଏ 2. From which something is oozing out.

ସ୍ରାବ୍ୟ—ସଂ.ବଣ—(ସ୍ରୁ ଧାତୁ ଣିଚ+କର୍ମ.ଯ)—କ୍ଷରିତ କରାଯିବା ଯୋଗ୍ୟ Srābya —Fit to be caused to flow or ooze out.

ସ୍ରିଜିବା—ଦେ କ୍ରି (ପ୍ରାଚୀନ ପ୍ରୟୋଗ)—ସର୍ଜନା କରିବା—Srijiba To create. [ଉ—ସ୍ରିଜି ପାଳଣ କରେ ଅନ୍ତ, ରହୁଣ ସୃଜନକରା ଆସ୍ଥାର ସଙ୍ଗତ—ପ୍ରାଚୀ ନିର୍ଗୁଣ ମାହାତ୍ମ୍ୟ । ] सरजना

ସ୍ରିମ୍ଭ୍ (ଧାତୁ)—ସଂ—ହିଂସା କରିବା—Srin-bh (root) To strike; to kill.

ସ୍ରିବ୍ (ଧାତୁ)—ସଂ—୧ । ଶୋଷଣ କରିବା—1. To suck; to Srib (root) drain. ୨ । ଶୁଖାଇବା—2. To dry up. ୩ । ଗତି କରିବା—3. To move.

ସ୍ରିଭ୍ (ଧାତୁ)—ସଂ—ହିଂସା କରିବା—Sribh (root) To strike; to kill.

ସ୍ରୁ (ଧାତୁ)—ସଂ.—୧ । ଗତି କରିବା—1. To move. ୨ । Sru (root) ସ୍ରବିବା; କ୍ଷରିତ ହେବା—2. To ooze; to percolate.

ସ୍ରୁକ୍ (ଗ)—ସଂ. ବ—(ସ୍ରୁଚ୍ ଶବ୍ଦ; ସ୍ରୁ ଧାତୁ=କ୍ଷରିତ ହେବା+ Sruk (g) କରଣେ କ୍ୱିପ୍, ୧ମା, ୧ବ)—କାଷ୍ଠନିର୍ମିତ ଯଜ୍ଞପାତ୍ର-(ସ୍ରୁଚ—ଦେ ରୂପ) ବିଶେଷ; ଏକ ପ୍ରକାର ସ୍ରୁବ—A wooden spoon for pouring ghee unto fire (having a wider mouth than Sruba) [ଦ୍ର—ଏହା ବଟପତ୍ରାକାର, ଚକ୍ରାକାର, ଅର୍ଦ୍ଧଚନ୍ଦ୍ରାକୃତି ଓ ଶରାବାକ୍ର; ଏହା ହାତେ ବା ଅଧିକ କାଠରେ ନିର୍ମିତ ହୁଏ । ଏହା

ଦ୍ୱାରା ଘୃତ ଅଗ୍ନିରେ ଢଳାଯାଏ ଓ ସ୍ରୁବ ଅପେକ୍ଷା ଏହା ଚଉଡ଼ା ଓ ମନୁଷ୍ୟର ବାହୁପରିମିତ—ପ୍ରାୟ ୧୯ ହାତ-ଲମ୍ବ ହୁଏ—ଶବ୍ଦରତ୍ନାବଳୀ ।

୧୯ ହାତ ଲମ୍ବା ଗୋଟିଏ ଡାଙ୍ଗର ଅଗରେ ଶଙ୍ଖପରି ଚଉଡ଼ା କାଠର ପାତ୍ର ଲଗିଥାଏ ଓ ଏହି ପାତ୍ରର ଅଗରେ ଗୋଟିଏ ଛିଦ୍ର ହୋଇଥାଏ । ସେହି ଛିଦ୍ରବାଟେ ଘୃତଧାର ହୋଇ ଘିଅ ଅଗ୍ନିରେ ପଡ଼େ । ସାଧାରଣ ଆହୁତି ଦେବାପାଇଁ ସ୍ରୁବ ବ୍ୟବହୃତ ହୁଏ; କିନ୍ତୁ ପୂର୍ଣ୍ଣାହୁତି ଦେବାବେଳେ ସ୍ରୁକ୍ ବ୍ୟବହାର ହୁଏ । ସ୍ରୁବରେ ଅଧିକରୁ ଅଧିକ ଗୋଟିଏ ପଇଁଲା ଘିଅ ସମ୍ଭାଏ, କିନ୍ତୁ ସ୍ରୁକ୍‌ରେ ଅଧସେର ବା ତିନି ଛଟାକି ଘିଅ ରହିପାରେ । ହୋମ ଶେଷରେ ଅଗ୍ନିରେ ଫଳ (ନାରିକେଳାଦି) ସ୍ଥାପନ କରି ତହିଁ ଉପରେ ସ୍ରୁକ୍‌ଦ୍ୱାରା ଘିଅ ଆହୁତି ଦିଆଯାଏ । ]

ସ୍ରୁଗ୍ଦାରୁ—ସଂ. ବି—ବ୍ୟାଘ୍ରପାଦ ଗଛ (ଜଟାଧର); ଉଇଁତକୋଳି
Srug-dāru ଗଛ—Flacourtia Romontchi (a thorny shrub).

ସ୍ରୁଘ୍ନୀ—ସଂ. ବି—(ସ୍ରୁ=ସ୍ରାବ+ହନ୍ ଧାତୁ+କର୍ତ୍ତୃ ଅ+ସ୍ତ୍ରୀ ଈ)—
Srughni ସର୍ଜ୍ଜିକାକ୍ଷାର; ସାଜିମାଟି (ହେମଚନ୍ଦ୍ର)—
Nitre; the soil

ସ୍ରୁଚ୍—ସଂ. ବି. ପୁଂ—ସ୍ରୁକ୍ (ଦେଖ)
Sruch Sruk (See)
(ସ୍ରୁଗ୍—ସ୍ତ୍ରୀ)

ସ୍ରୁଚ—ଦେ. ବି—(ସଂ. ସ୍ରୁଚ୍)—ସ୍ରୁକ୍ (ଦେଖ)—
Srucha Sruk (See).

ସ୍ରୁତ—ସଂ. ବିଣ—(ସ୍ରୁ ଧାତୁ+କର୍ତ୍ତୃ କ୍ତ)—୧। କ୍ଷରିତ—1 Oozing;
Sruta flowing; dropping down. ୨। ପତିତ—
(ସ୍ରୁତି—ବି) 2. Fallen; dropped down.

ସ୍ରୁତା—ସଂ. ବି—ହିଙ୍ଗୁପତ୍ରୀ (ହି. ଶ) (ଦେଖ)—
Srutā Hiṅgupatrī (See)

ସ୍ରୁତି—ସଂ. ବି—(ସ୍ରୁ ଧାତୁ+ଭାବ କ୍ତି)—୧। କ୍ଷରଣ—1. Oozing.
Sruti ୨। ପତନ—2. Falling down. ୩। ଟୋପା-ପଡ଼ିବା—3. Dropping down

ସ୍ରୁବ—ସଂ ବି [ସ୍ରୁ ଧାତୁ+କରଣ ଅ]—କାଷ୍ଠନିର୍ମିତ ଯଜ୍ଞପାତ୍ରବିଶେଷ—
Sruba A wooden spoon used in pouring ghee unto the sacrificial fire.
( ଦ୍ର—ଏହା ଏକହସ୍ତପରିମିତ ଓ ଖଇର ବା ଖଦିର କାଠରେ ନିର୍ମିତ ହୁଏ । ଏହାର ଦେହଟିସରୁ ହୋଇ ଲମ୍ବା ହୋଇଥାଏ । ଏଥି ମୁଣ୍ଡରେ ଗୋଟିଏ ଡମ୍ବାକାର ଗୋଲକ ଥାଏ ଓ ସେ ଗୋଲକର ଅନ୍ତର୍ଭାଗ ଖୋଲା ହୋଇ ଗମ୍ଭୀର ହୋଇଥାଏ । ଏଥିରେ ଘିଅ ପୂର୍ଣ୍ଣ କରି ଅଗ୍ନିରେ ଢଳାଯାଏ ।] ଗ୍ରା. ବି—(ଲକ୍ଷଣାର୍ଥ; ଅଶ୍ଳୀଳ) —
ଧନ ସ୍রুব ଲିଙ୍ଗ; ମେଢ୍ର—Penis.

ସ୍ରୁବ ତରୁ—ସଂ. ବି (ମ. ଚ. ଭେ)—ବିକଙ୍କତ ଗଛ—Flacourtia
Sruba taru Romontchi plant.

ସ୍ରୁବ ବୁଡ଼ା(ଡ଼େ)ଇବା—ଗ୍ରା. କ୍ରି—(ଲକ୍ଷଣାର୍ଥ, ଅଶ୍ଳୀଳ)—ସ୍ତ୍ରୀ ସଙ୍ଗମ
Sruba burḍā (ṛḍe) ibā କରିବା—To copulate
স্ত্রীসঙ্গ করনা স্রুবরুড়ানা with a female

ସ୍ରୁବ ସ୍ରୁଚ—ଦେ.ବି (ସମାହାର ଶବ୍ଦ)—ହୋମ ପାଇଁ ଲୋଡ଼ା ଯଜ୍ଞପାତ୍ର।
Sruba srucha ସ୍ରୁବ ଓ ସ୍ରୁକ୍—Two kinds of
স্রুব স্রুচ wooden spoons used in offering ghee
स्रुव स्रुच unto the fire

ସ୍ରୁବା—ସଂ. ବି - (ସ୍ରୁ ଧାତୁ+କରଣ ଅ+ଆ)—୧। ଶଲ୍ଲକୀ (ମେଦିନୀ);
Srubā ଲୋବାନଜାତୀୟ ଏକ ପ୍ରକାର ସୁଗନ୍ଧ ଧୁଣା—1. Indian olibanum; Boswellia Serrata. ୨। ମୂର୍ବ୍ବା (ମେଦିନୀ); ମୁରୁଗା ଘାସ—2 A kind of fibrous grass; Sansveira Zeylanica ୩। ସ୍ରୁବ (ଦେଖ)—3 Sruba (See)

ସ୍ରୁବା ବୃକ୍ଷ—ସଂ ବି—ବିକଙ୍କତ ଗଛ [ଅମର]; ଉଇଁଚ କୋଳି ଗଛ—
Srubā bruksha Flacourtia Romontchi shrub.

ସ୍ରୂ—ସଂ ବି (ସ୍ରୁ ଧାତୁ+କରଣ କ୍ୱିପ୍)—୧। ସ୍ରୁବ (ଦେଖ) [ଦେଖି]
Srū Sruba (See) ୨। (+କର୍ତ୍ତୃ କ୍ୱିପ୍) ନିର୍ଝର; ଝରଣା —2. Spring; fountain.

ସ୍ରୈ (ଧାତୁ)—ସଂ.—ପାକ କରିବା; ସିଝିବା—
Srai (root) To cook, to boil.

ସ୍ରୋତ[ତଃ]—ସଂ ବି [ସ୍ରୁ ଧାତୁ+କର୍ତ୍ତୃ ତସ୍; ତସ୍, ସ୍ରୋତସ୍ ଶବ୍ଦ ୧ମା
Srota(taḥ) ୧ବ, ସ ସ୍ଥାନରେ ଃ]—୧। ଜଳପ୍ରବାହ; ଜଳଧାରା—Flow of water ୨। ପ୍ରବାହ; ଜଳର ଜଳ ମଳକୁ ବେଗରେ ବୋହିଯିବା; ସ୍ରୁତଃ ଅମ୍ବୁସରଣ [ଅମର]—2. Current; rapid stream. ୩। (+ଭାବ କ, ତସ୍) ମତ୍ତଗଜର ଦେହର ସପ୍ତସ୍ଥାନରୁ ମଦ କ୍ଷରଣ—3. The flowing of watery juice from seven parts of the body of an infuriated elephant. ୪। (+ଅପାଦାନ ତସ୍ ବା ଅସ୍)—ମନୁଷ୍ୟ ଦେହର ନବଦ୍ୱାର ଇନ୍ଦ୍ରିୟ ପଥ ବା ନଅ ଛିଦ୍ର (ସୁଶ୍ରୁତ)—4. The nine holes or openings in the body of a man. [ଦ୍ର—ଏ ସବୁ ଛିଦ୍ରବାଟେ ଅନ୍ନ, ଜଳ, ରସ, ରକ୍ତ, ମାଂସ, ମେଦ, ମଳ, ମୂତ୍ର, ଶୁକ୍ର ଓ ଅସ୍ଥି ଶରୀରରେ ସଞ୍ଚାରିତ ହୁଏ । ପୁରୁଷଙ୍କ ଶରୀରର ଛିଦ୍ର ସଂଖ୍ୟା ନଅଟି । ଯଥା, ୨ ଆଖି, ୨ କାନ, ୨ ନାକ, ପାଟି, ଗୁହ୍ୟ ଓ ଲିଙ୍ଗ; ସ୍ତ୍ରୀମାନଙ୍କର ଆଉ ଦୁଇଟି ଅଧିକା ଯଥା, ୨ ସ୍ତନ । ] ୫। ନଦୀ [ହି. ଶ]—5 River. ୬। ବଂଶପରମ୍ପରା; କୁଳଧାରା [ହି. ଶ]—6. Successive generations in a family.

ସ୍ରୋତଃଶୂନ୍ୟ—ସଂ. ବିଣ—ସ୍ରୋତୋହୀନ [ଦେଖ]—
Srotaḥ śūnya Srotohīna (See).

ସ୍ରୋତ ଆପତ୍ତି—ସଂ. ବି—ବୌଦ୍ଧଶାସ୍ତ୍ର ଅନୁସାରେ ନିର୍ବାଣ-ସାଧନର
Srota āpatti ପ୍ରଥମ ଅବସ୍ଥା, ଯହିଁରେ ସାଧକଙ୍କର
[ସ୍ରୋତଅପନ୍ନ—ବିଣ] ସଂସାର ବନ୍ଧନ ଶିଥିଳ ହେବା ଆରମ୍ଭ
ହୁଏ—The state of a Buddhist sage when his worldly ties begin to be slack.

ସ୍ରୋତ ଈଶ—ସଂ ବି [୬ଷ୍ଠୀ ତତ୍; ସ୍ରୋତଃ+ଈଶ]—ସମୁଦ୍ର—
Srota īśa Ocean

ସ୍ରୋତସ୍—ସଂ [କ୍ଲିବ] [ସ୍ରୁ ଧାତୁ+କର୍ତ୍ତୃ ତସ୍]—ସ୍ରୋତ [ଦେଖ]-
Srotas Srota (See)

ସ୍ରୋତସୋଞ୍ଜନ—ସଂ. ବି [ସଂ. ସ୍ରୋତସଃ=ସ୍ରୋତର+ଅଞ୍ଜନ]—
Srotasoañjana ସ୍ରୋତୋଞ୍ଜନ (ଦେଖ)—Srotoñjana (See).

ସ୍ରୋତସ୍ବତୀ—ସଂ. ବି [ସ୍ରୋତସ୍+ବତ୍+ସ୍ତ୍ରୀ ଈ]—ନଦୀ—River.
Srotaswatī ସଂ. ବିଣ ସ୍ତ୍ରୀ—ସ୍ରୋତସ୍ବାନ୍‌ର ସ୍ତ୍ରୀଲିଙ୍ଗ—
Feminine of Srotaswān

ସ୍ରୋତସ୍ବାନ୍—ସଂ. ବିଣ [ସ୍ରୋତସ୍ବତ୍ ଶବ୍ଦ; ସ୍ରୋତସ୍+ବତ୍ ୧ମା,୧ବ]
Srotaswān —ସ୍ରୋତୋବିଶିଷ୍ଟ—Having current.
(ସ୍ରୋତସ୍ବତୀ—ସ୍ତ୍ରୀ)

ସ୍ରୋତସ୍ବିନୀ—ସଂ. ବି (ସ୍ରୋତସ୍+ଅସ୍ତ୍ୟର୍ଥରେ ବିନ୍+ସ୍ତ୍ରୀ ଈ)-ନଦୀ—
Srotaswinī River.

ସ୍ରୋତସ୍ୟ—ସଂ. ବି [ସ୍ରୋତସ୍+ଯ]—୧ । ଶିବ, ମହାଦେବ
Srotasya [ଶବ୍ଦକଳ୍ପଦ୍ରୁମ]—1 God Śiba
୨ । ଚୋର [ଶବ୍ଦକଳ୍ପଦ୍ରୁମ]—2 Thief

ସ୍ରୋତାଞ୍ଜନ—ଦେ. ବି (ବୈଦ୍ୟକ)—ସ୍ରୋତୋଞ୍ଜନ [ଦେଖ]—
Srotāñjana Srotoñjana (See).

ସ୍ରୋତୋଜ - ସଂ. ବି ( ସ୍ରୋତସ୍+ଜନ୍ ଧାତୁ+କର୍ତ୍ତୃ ଅ )—
Srotoja ସ୍ରୋତୋଞ୍ଜନ (ଦେଖ)—Srotoñjana (See)

ସ୍ରୋତୋଦ୍ଭବ } ଅନ୍ୟରୂପ—
ସ୍ରୋତୋଦ୍ଭବ }

ସ୍ରୋତୋ ଜଳ—ସଂ. ବି (ମ. ପ. ଲୋ ସ୍ରୋତଃ+ଜଳ)—ସ୍ରୋତଃଯୁକ୍ତ
Srotojala ବା ପ୍ରବାହବିଶିଷ୍ଟ ଜଳ—Flowing water

ସ୍ରୋତୋଞ୍ଜନ—ସଂ.ବି (ମ. ପ. ଲୋ, ସ୍ରୋତଃ=ଯମୁନା ନଦୀର ସ୍ରୋତରୁ
Srotoñjana ଉଦ୍ଭବ+ଅଞ୍ଜନ)—କଳା ସୁରମା; କୃଷ୍ଣବର୍ଣ୍ଣ
(ଅନ୍ୟ ସଂ ନାମ—ଯାମୁନ, ସୌବୀରାଞ୍ଜନ; ସୁବୀର ଦେଶ
କାପୋତାଞ୍ଜନ, ସୌବୀର, ବା ଯମୁନା ନଦୀ ନିକଟସ୍ଥ
ସୌବୀରସାର, ବାରିଦ୍ଭବ, ଦେଶରେ ଜାତ ଅଞ୍ଜନ-
ସ୍ରୋତୋଜ, ସ୍ରୋତୋଦ୍ଭବ, ବିଶେଷ-Black species
ସ୍ରୋତନଦୀଭବ, ସ୍ରୋତୋଦ୍ଭବ, of sulphat of
ସୌବୀରସାର, କପୋତସାର, antimony. [ଦ୍ର—
ବଲ୍ମୀକ ଶୀର୍ଷ ] ଏହାର ଅଦ୍ଭୁତ ହୁଇଟୁକାର ଶିଖର ପରି,
ଏହାର ଅଭ୍ୟନ୍ତର ଅଞ୍ଜନ ପରି । ଏହାକୁ ଘଷିଲେ ଗେରୁ
ମାଟି ପରି ରଙ୍ଗ ବାହାରେ । ଏହା ମଧୁରକଷାୟରସ,
କୃମିନାଶକ, ରସାୟନ, ସ୍ତନବୃଦ୍ଧିକର ଓ କଣ୍ଡୁ, ଦାହ ଓ
ରକ୍ତଦ ନାଶକ, ଚକ୍ଷୁ ପକ୍ଷରେ ହିତକର, କଫ ପିତ୍ତ-
ନାଶକ, ବମନକର ଓ ବିଷର କ୍ଷୟକର ଓ ସ୍ନିଗ୍ଧ ଗ୍ରାହୀ ।
ଏହାର ପ୍ରକାର ଭେଦ ସୌବୀରାଞ୍ଜନ । ସୌବୀରାଞ୍ଜନ ଧଳା
ବା ପାଣ୍ଡୁର, ମାତ୍ର ସ୍ରୋତୋଞ୍ଜନ କଳା । ସୌବୀରାଞ୍ଜନ
ଅପେକ୍ଷା ସ୍ରୋତୋଞ୍ଜନ ଗୁଣରେ ଶ୍ରେଷ୍ଠ । (ଭାବ ପ୍ରକାଶ)]

ସ୍ରୋତୋବହ (ହା)—ସ.ବି—(ସ୍ରୋତସ୍+ବହ୍ ଧାତୁ+କର୍ତ୍ତୃ.କ୍ବିପ୍,ଅ)
Srotobah(ha) ନଦୀ—River.

ସ୍ରୋତୋବହା—ସ.ବି.ସ୍ତ୍ରୀ—(ସ୍ରୋତୋବହ+ଆ)—ନଦୀ (ଜଠାଧର)—
Srotobahā River.

ସ୍ରୋତୋବାହିତ—ସ. ବିଣ—(ତୃତୀୟା ତତ୍)—ସ୍ରୋତଦ୍ୱାରା ଚାଳିତ—
Srotobāhita Moved by current.

ସ୍ରୋତୋବେଗ—ସ. ବି—( ୬ଷ୍ଠୀ ତତ୍ )— ସ୍ରୋତର କ୍ଷିପ୍ରଗତି—
Srotobega Velocity of a current; force of current.

ସ୍ରୋତୋହୀନ—ସ, ବିଣ—(୩ୟା ତତ୍) ୧ । ପ୍ରବାହରହିତ (ଜଳ)—
Srotohīna 1. Currentless. ୨ । ସ୍ଥିର (ଜଳ)—2. Stagnant (water).

ସ୍ରୋହା—ଗ୍ରା. ବି—(ସ. ସ୍ପୃହା)—ସ୍ପୃହା (ଦେଖ)—Spruhā (See)
Srohā

ସ୍ରୌଘ୍ନିକା—ସ. ବି—ସର୍ଜିକାକ୍ଷାର (ହ. ଶ)—Nitre.
Sraughnikā

ସ୍ରୌତିକ—ସ. ବି (ସ୍ରୋତ+ଇକ)—ଶୀପ; ଶୁକ୍ତି (ହ. ଶ )—
Srautika Oyster.

ସ୍ଲାଇଡିଙ୍ଗ୍ ସ୍କେଲ୍—ବୈଦେ. ବି. (ଇଂ)—ଅଫିମ ଗଞ୍ଜେଇ ଆଦି ବସ୍ତୁର
Slāiding skel କଟିବାର କ୍ରମାନୁସାରେ ହାରୁଥିବା ଦର—
ସ୍ଲାଇଡ଼ିଙ୍ଗସ୍କେଲ ସ୍ଲାଇଡ୍ରିଙ୍ଗ୍ ସ୍କେଲ୍ Sliding scale.
(ସ୍ଲାଇଡିଂ ସ୍କେଲ୍—ଅଶୁଦ୍ଧ ଲିଖିତ ଆକାର)

ସ୍ଲିପ୍—ବୈଦେ. ବି. (ଇଂ)—କାଗଜର ଲମ୍ବ ଟୁକୁରା ବା ଖଣ୍ଡ—
Slip Long slip of paper; a strip of paper.
ସ୍ଲିପ ସ୍ଲିପ୍

ସ୍ଲିପଟ୍—ବୈଦେ. ବି. (ଇଂ. ସ୍ଲିପର୍)—ସ୍ଲିପର୍ (ଦେଖ)
Slipaṭ Slipar (See). ଦେ ବିଣ.—ସ୍ଲିପଟିଆ (ଦେଖ)
Slipaṭiā (See)

ସ୍ଲିପଟିଆ—ଦେ. ବିଣ—(ଇ. ସ୍ଲିପର୍ ପରି ପତଳା)—୧ । ପତଳା—
Slipaṭiā 1. Thin. ୨ । ପ୍ରଲମ୍ବ କୁଚ ବା ଉଚ୍ଚସ୍ତନହୀନା
ପାତଳା ସ୍ଲିପଟ୍ (ସ୍ତ୍ରୀମାନଙ୍କ ବକ୍ଷସ୍ଥଳ )—2. (Women's breast) Having the breasts hanging or having no breast at all. ୩ । ସମତଳସ୍ତନା (ନାରୀ)
—3. (a woman) Breastless; having flat breasts.

ସ୍ଲିପର୍—ବୈଦେ ବି. (ଇଂ)—୧ । ରେଲ ଲାଇନ ତଳେ ଅଡ଼୍-
Slipar ଭାବେ ପକାଯିବା ପତଳା କାଠର କଡ଼—1. Railway

ସ୍ଲିପାର स्लिपर् Sleeper (under Railway lines).
୨ । ଚଟି ଜୋତା—2. Slippers (shoes).

ସ୍ଲେଜ୍—ବୈଦେ ବି. (ଇଂ)—ବରଫ ଉପରେ ଟଣାଯିବା ପାଇଁ ଜମଣ
Slej स्लेज स्लेज ଚକ୍ରହୀନ ଶକଟ—Sledge.

ସ୍ଲେଟ୍—ବୈଦେ. ବି—(ଇଂ)—୧ । ପେନ୍ସିଲ୍‌ରେ ଲେଖିବା ପାଇଁ
Slet स्लेट्, स्लेट ମାଟିର ବା ପଥରର ପଟା—1. Slate.
୨ । ଏକପ୍ରକାର କଳାପଥର—2. Slate (stone).

ସ୍ଲେଟ୍ ପେନ୍‌ସିଲ୍—ବୈଦେ. ବି (ଇଂ)—୧ । ସ୍ଲେଟ୍ ଓ ପେନ୍ସିଲ୍—
Slet pencil 1. Slate and pencil. ୨ । ଯେଉଁ
स्लेटपेन्सिल स्लेट् पेनसिल् ପେନ୍‌ସିଲ୍ ଦ୍ୱାରା ସ୍ଲେଟ୍ ଉପରେ
(ସ୍ଲେଟ ଦେଖ—ଦେ, ରୂପ) ଗାର ପକାଯାଏ—2. Slate-pencil.

ସ୍ଲୋ—ବୈଦେ. ବିଣ (ଇଂ)—୧ । ଧୀର—1. Slow. ୨ । ଧୀର
Slo ଗତିରେ ଚାଲୁଥିବା—2. Moving slowly.
स्लो स्लो (ଫାଷ୍ଟ୍—ବିପରୀତ)

ସ୍ଲୋ କରିବା—ଦେ. କ୍ରି—୧ । କ୍ଷିପ୍ର ଗତିରେ ଚାଲୁଥିବା ଘଣ୍ଟାର କଳକୁ
Slo kariba ନିୟନ୍ତ୍ରିତ କରି ଘଣ୍ଟାକୁ ଧୀରଗତି କରିବା—
स्लो करना स्लो करना To make a clock run slower by regulating it

ସ୍ଲୋ(ସ୍ଲ)ଥ୍—ବୈଦେ. ବି (ଇଂ. ସ୍ଲଥ୍)—ଦକ୍ଷିଣ ଆମେରିକାର ଏକପ୍ରକାର
Slo(sla)th ଅତ୍ୟନ୍ତ ଧୀରଗାମୀ କ୍ଷୁଦ୍ର ପଶୁ—Sloth (a South
स्लोथ् स्लोथ American small animal of very slow motion).

ସ୍ଲୋପ୍—ବୈଦେ. ବିଣ (ଇଂ)—କ୍ରମନିମ୍ନ; ଗଡ଼ାଣିଆ; ଢାଲୁଆ—
Slop Sloping ବି—ଗଡ଼ାଣିଆ ସ୍ଥାନ; ଢାଲୁ ଜାଗା; କ୍ରମ-
स्लोप् स्लोप ନିମ୍ନ ସ୍ଥାନ ବା ବସ୍ତୁ—Slope.

ସ୍ଲୋ ଫାଷ୍ଟ୍—ବୈଦେ. ବିଣ (ଇଂ. ବିପରୀତ ସହଚର ଶବ୍ଦ)—
Slo phāsht ଧୀର ଓ କ୍ଷିପ୍ର ଗତି ଯୁକ୍ତ (ଘଣ୍ଟା)—
स्लो फास्ट स्लो फास्ट Slow and fast (time keeper).

[ଦ୍ର—ଏ ଗ୍ରନ୍ଥରେ 'ସ୍ୱ' ଆଦ୍ୟରେ ଥିବା ଶବ୍ଦମାନଙ୍କ ପାଇଁ 'ସ୍ବ'-ଆଦ୍ୟ ପଦମାନଙ୍କ ପରେ ଦେଖିବାକୁ ହେବ । ଏ ଗ୍ରନ୍ଥରେ ବର୍ଗ୍ୟ ବ ରେ ଅବର୍ଗ୍ୟ ୱ ସଂଯୁକ୍ତ ଶବ୍ଦମାନ ଦିଆ ଯାଇଅଛି ।



**ହ**—ବ୍ୟଞ୍ଜନ ବର୍ଣ୍ଣମାଳାର ତ୍ରୟସ୍ତ୍ରିଂଶତ୍ ବର୍ଣ୍ଣ—The 33rd consonant of the Ordia alphabet.
Ha

[ଦ୍ର—ଏହାର ଉଚ୍ଚାରଣସ୍ଥାନ କଣ୍ଠ। ଏହାର ଉଚ୍ଚାରଣ ଇଂରାଜି H ( ଏଚ୍ ) ଓ ଫାରସୀ 'ହେ' ଅକ୍ଷରର ଉଚ୍ଚାରଣ ସଙ୍ଗେ ସମାନ।

ବର୍ଣ୍ଣୋଦ୍ଧାର ତନ୍ତ୍ର ମତରେ ଏହି ଅକ୍ଷରକୁ ଜପିବା ସମୟରେ ହଂସାସ୍ୟା, ଅଟ୍ଟହାସା, ଅସ୍ଥିମାଳାଧାରିଣୀ, ଅଷ୍ଟଭୁଜା, ନାଗେନ୍ଦ୍ରହାର, ଭୂଷାଢ଼୍ୟା, ଜଟାମୁକୁଟମଣ୍ଡିତା, ସର୍ବକାମପ୍ରଦା ଯାକିଣୀଙ୍କୁ ହୃଦୟରେ ଧ୍ୟାନ କରିବାକୁ ହୁଏ।

'ଅ' ଉଚ୍ଚାରଣ କାଳରେ ଶ୍ୱାସ ବାୟୁର ନିଃଶେଷିତ ହୋଇ ଆସିଲା ବେଳକୁ ଏହି ଶବ୍ଦ ଗଳାରୁ ବାହାରେ। ଏହା 'ଅ' ସ୍ୱରର ମହାପ୍ରାଣ ବର୍ଣ୍ଣ। ଏହି 'ହ' ରେ 'ହଳନ୍ତ' ଯୁକ୍ତ ହେଲେ ଏହା ବିସର୍ଗର ଆକାର ଧାରଣ କରେ।]

ସଂ. ବି (ହନ୍ ଧାତୁ=ବଧ କରିବା, କିମ୍ବା ହା ଧାତୁ=ତ୍ୟାଗ କରିବା+କର୍ତ୍ତୃ.ଅ)—('ହ'ର ବର୍ଣ୍ଣାଭିଧାନରେ ଓ ରୁଦ୍ରଯାମଳାଦିରେ ଲିଖିତ ଅର୍ଥମାନ)—୧। ଶିବ; ଶମ୍ଭୁ; ଶୂଳୀ—1. God Śiba, ୨। ବିଷ୍ଣୁ—2. Bishṇu. ୩। ରବି; ସୂର୍ଯ୍ୟ—3. The sun. ୪। ହଂସ—4. Swan. ୫। ପୁରୁଷ ଲିଙ୍ଗ—5. Penis; male organ of generation. ୬। ନାଗ ଲୋକ—6. The of world mythological serpents. ୭। ଚନ୍ଦ୍ର—7. The moon. ୮। ଜଳ—8. Water (Apte). ୯। ଆକାଶ—9. Sky (Apte). ୧୦। ରକ୍ତ—10. Blood (Apte). ୧୧। ଜଗତ୍‌ପ୍ରାଣ—11. The life of the universe. ୧୨। ପ୍ରାଣେଶ; ସ୍ୱାମୀ—12. Husband; sweetheart. ୧୩। ଯୁଦ୍ଧ—13. Battle. ୧୪। କପିଳାମଳ—14 The dung of the Kapilā cow. ୧୫। ଗର୍ବ—15. Pride. ୧୬। ପରମାତ୍ମା—16. The Supreme Soul. ୧୭। ରୋମାଞ୍ଚ—17. Horripilation. ୧୮। ଆତ୍ମଜ—18. Son. ୧୯। ଚିକିତ୍ସକ—19. Physician. ୨୦। ଜୀବ; ପ୍ରାଣ—20. Life. ୨୧। ଶୁଭ ସୂଚକତା—21. Auspiciousness (Apte). ୨୨। କାରଣ—22. Cause. ୨୩। ଅଙ୍ଗନ—23. Courtyard. ୨୪। ଉଦ୍ଦେଶ୍ୟ—24. Aim; motive (Apte). ୨୫। ମୃଗ—25. Deer. ୨୬। ଆହ୍ୱାନ—26. Call. ୨୭। ଭୟ—27. Fear. ୨୮। ଅସ୍ତ୍ର ଶସ୍ତ୍ର—28. Weapon. ୨୯। ବୈକୁଣ୍ଠ—29. Paradise (Apte). ୩୦। ମଣିର ପ୍ରଭା—30. Lustre of a gem. ୩୧। ସ୍ଥାଣୁ; ଶୁଣ୍ଢା ଗଛ—31. A stump; pollard. ୩୨। ବୀଣାର ଧ୍ୱନି—32. The sound of harp. ୩୩। ସ୍ୱର୍ଗ—33. Heaven (Apte). ୩୪। କୂପ—34 Well. ୩୫। ଶୁଷ୍କିଯିବା—35. Drying (Apte). ୩୬। ଲକ୍ଷ୍ମୀ; ମହାଲକ୍ଷ୍ମୀ—36. The Goddess of wealth. ୩୭। ପରମେଶ୍ୱରୀ—37. The Supreme Goddess ୩୮। (ତନ୍ତ୍ର) ଲଲାଟସ୍ଥ ପ୍ରାଣ ଶକ୍ତି—38. The vital essence said to be inside the brow ୩୯। ଚୈତନ୍ୟ—39. consciousness ୪୦। ଭୟ—40. Fear (Apte). ୪୧। ମୃତ୍ୟୁ—41. Death. ୪୨। ଘୋଟକ—42. Horse. ୪୩। ଅଂଶ—43. Part. ୪୪। ଧ୍ୟାନ—44. Contemplation; meditation (Apte). ୪୫। ଶାଖୋଟ; ସାହାଡ଼ା ଗଛ—45. Streplus Asper. (tree). ୪୬। ସ୍ୱର୍ଗ—46. Heaven. ୪୭। ମଙ୍ଗଳ—47. Bliss. ୪୮। ସୋମ ମଣ୍ଡଳ—48. The halo of the moon. ୪୯। ରକ୍ତ—49. Blood. ୫୦। ହେତୁ—50. Reason. ୫୧। ଗଗନ; ବିୟତ୍; ଆକାଶ—51. The sky. ୫୨। ଶୂନ୍ୟ (ସଂଖ୍ୟା)—52. Cypher (Apte). ୫୩। ମହାଶୂନ୍ୟ—53. The great void. ୫୪। ଶୁକ୍ର—54. The planet venus. ୫୫। ଆନନ୍ଦ—55. Joy; delight (Apte). ୫୬। ଜ୍ଞାନ—56. Knowledge. ସଂ. ବିଣ—୧। ଉଚ୍ଚ ହସିତ—1. Laughing loudly. ୨। ଶାନ୍ତିଦ—2. Giving peace. ୩। ମତ୍ତ—3. Maddened. ୪। ସୁରାମତ୍ତ—4. Intoxicated with drink.

ସଂ. ଅ. (ହା ଧାତୁ+ଭାବ ଅ)—୧। ପାଦପୂରଣାର୍ଥକ (ଅମର)—1. Interjection used in completing a sentence. ୨। [ସମ୍ବୋଧନାର୍ଥ ବ୍ୟବହୃତ [ ମେଦିନୀ, ଶବ୍ଦରତ୍ନାବଳୀ]]—ହେ ! ଅହୋ !—2. Interjection used in a addressing; Oh !

୩ । କ୍ରୋଧ ବା ବକ୍ରଗ୍ରହାର୍ଥକ (ମେଦିନୀ, ଶବ୍ଦରତ୍ନାବଳୀ)– 3. Interjection indicating anger. ୪ । ନିୟୋଗାର୍ଥକ ( ମେଦିନୀ, ଶବ୍ଦରତ୍ନାବଳୀ )— 4. Interjection conveying order. ୫ । କୁତ୍ସାର୍ଥକ ( ମେଦିନୀ, ଶବ୍ଦରତ୍ନାବଳୀ )— 5. Interjection used in abusing. ୬ । ଖେଦାର୍ଥକ ( ମେଦିନୀ, ଶବ୍ଦରତ୍ନାବଳୀ )— 6. Interjection used in grieving. ୭ । ଉପଦେଶାର୍ଥକ—7. Interjection used in advising. ୮ । ଧାରଣାର୍ଥକ—8. Interjection used in comprehending or understanding a matter. ୯ । ଚିନ୍ତନାର୍ଥକ—9. Experssing one's tohughts.

ଥାମ ହ — ଦେ ଅ— ୧ । ଶଗଡ଼ରେ ବା ହଳରେ ଲାଗିଥିବା ବଳଦଙ୍କୁ ଠିଆ କରାଇବା ପାଇଁ ବ୍ୟବହୃତ ଡାକ— Interjection used in desiring the bullocks drawing a cart or plough to stand. ୨ । ପାଦପୂରଣାର୍ଥ କ୍ରିୟା ପରେ ବ୍ୟବହୃତ (ପ୍ରାଚୀନ ପଦ୍ୟ)—2. A particle used after verbs to complete a sentence. ( ଉ— ଅପରାଧ ଅନୁରୂପେ କରହ ଦଣ୍ଡ—ଶିଶୁଙ୍କର ରୁଷା

ହଓ ହୋ ଅଭିଳାଷ ।) ଗ୍ରା. କ୍ରି.—୧ । ହଅ (ଦେଖ)—1. Ha-a (See) ୨ । ହବା ( ଦେଖ ) କ୍ରିୟାର ଅନୁଜ୍ଞା ଅନାଦରାର୍ଥକ ଏକବଚନ ରୂପ— 2. Imperative mood singular form of the verb 'to be'. ପ୍ରାଦେ—୧ । (ପୁରୀ ) ଅ– ହଁ—Yes. ୨ । ( ଖଡ଼ଆଳ )—ହଳ ବୁଲାଇବା• [ହ ହ—ଅନ୍ୟ ଅବ୍ୟୟ ରୂପ] ବେଳେ ବଳଦଙ୍କୁ ଗୋଲବାକୁ ଉତ୍ତେଜିତ କରିବା ଡାକ—Interjection used by drivers of ploughs to instigate the bullocks to proceed. ୩ । (ଗଡ଼ଜାତ) ହୋ ( ଦେଖ )—Ho (See)

**ହଅ**—ଗ୍ରା• କ୍ରି—ଅନାଦରାର୍ଥକ ହେବା କ୍ରିୟାର ଗ୍ରାମ୍ୟରୂପ 'ହବା' Ha-a କ୍ରିୟାର ମଧ୍ୟମପୁରୁଷ ଅନୁଜ୍ଞା 'ତୁ' କର୍ତ୍ତା ସଙ୍ଗେ ହଓ ହୋ ଲାଗିବା ଆକାର; ହୋ—Imperative mood singular of the verb Hebā or Habā (=to be ) used in addressing a familiar person• ପ୍ରାଦେ (ପୁରୀ) ଅ—ହଁ—Yes.

**ହଅଁକରିବା**—ଦେ. କ୍ରି—ବୁଲୁଥିବା ହଳକୁ ବା ଚାଲୁଥିବା ଶଗଡ଼କୁ Ha-a karibā ଠିଆ କରିବା—To stop a moving plough or cart.

**ହଇ**—ଦେ. ଅ (ସଂ. ହି)—୧ । (ସମ୍ମତିସୂଚକ) ହଁ—1. Yes Hai (denoting assent) ୨ । (ଦୂରରୁ ବା ନିକଟରୁ ହାଁ କୌଣସି ବ୍ୟକ୍ତିକୁ ଡାକିବାରେ ବ୍ୟବହୃତ) ହେ ! —2. Oh ! (used in calling a person from far or near) ୩ । କଥୋପକଥନ ବେଳେ ବକ୍ତାଙ୍କ କଥନକୁ ଶ୍ରୋତା ଶୁଣିଅଛନ୍ତି, ଏଥିର ସୂଚନାର୍ଥକ ହଁ ମାଇବାରେ ବ୍ୟବହୃତ ଶବ୍ଦ—3. A word used by the hearer to encourage a speaker to continue his discourse during a conversation. ୪ । ହେ ! (ଆଗରେ ଯାଉଥିବା ପଥିକମାନଙ୍କୁ ସାବଧାନ କରାଇବାପାଇଁ ଘୋଡ଼ାଗାଡ଼ିର କୋଚ୍ ଆନ୍ ଦ୍ୱାରା ଉଚ୍ଚାରିତ ଧ୍ୱନି—4. Heigh ! ( Interjection uttered by the driver of a coach warning people in front) ୫ । ପ୍ରହରୀ ଓ ଫେରିବାଲା ମାନଙ୍କଦ୍ୱାରା ସାଧାରଣଙ୍କ ଦୃଷ୍ଟି ଆକର୍ଷଣାର୍ଥେ ବ୍ୟବହୃତ କୁହାଟ—5. Interjection, exclamation or halloo used by watchmen and hawkers to attract attention. [ଦ୍ର— କେବଳ ପ୍ରହରୀ ସାବଧାନ କର କୁହାଟରେ ହଇହଇ ।] ଦେଶ୍ୟ ନ—ସମ୍ମତି—Consent; assent. [ଯଥା—ତାଙ୍କ ମୁହଁରୁ ଥରେ ହଇ ବାହାରିଥିଲେ ଆଉ (ବିପରୀତ—ନାହିଁ) ନାହିଁ ବାହାରିବ ନାହିଁ ।]

**ହଇଆତ୍**—ଦେ• ବି—ହୟାତ୍ (ଦେଖ)— Haiāt Hayāt (See)

**ହଇୟାନ୍ତ୍ (ନ୍ତି)**—ଦେ. ବିଣ—ହୟାନ୍ତ୍ (ଦେଖ)— Haiānt (nti) Hayānt (See) (ହଇଅନ୍ତିଆ—ଅପଭ୍ରଂଶରୂପ)

**ହଇଏ**—ଦେ. ଅ—ହଇ ହେ ! ମାନନୀୟ ବ୍ୟକ୍ତିଙ୍କ ମନୋଯୋଗ ଆକର୍ଷଣ Haie କରିବା ଓ ତାଙ୍କୁ ଡାକିବା ପାଇଁ ବ୍ୟବହୃତ ଶବ୍ଦ— ଓହେ Interjection used in addressing one's ओ superior; Oh !

**ହଇଁଚଇଁ**—ଦେ. ଅ—ହଁ ଚଁ (ଦେଖ)— Haiñ chaiñ Hañ chañ (see)

**ହଇକତ୍**—ବୈଦେ• ବି—(ଫା. ହକିକତ୍ =ବୃତ୍ତାନ୍ତ)—୧ । ବୃତ୍ତାନ୍ତ— Haikat 1. Description. ୨ । ବିବରଣ ବା ବର୍ଣ୍ଣନା— हकिकत 2• Detailed description. [ଦ୍ର—ଏ ଶବ୍ଦ 'ହାଲ' हक़िकत ଶବ୍ଦ ସଙ୍ଗେ ସହଚରରୂପେ ମଧ୍ୟ ବ୍ୟବହୃତ ହୁଏ । ଯଥା —ଅମୁକ ଗ୍ରାମର ହାଲ ହଇକତ କିଛି ଜଣାଗଲା ନାହିଁ ।

**ହଇ କରିବା**—ଦେ. କ୍ରି—୧ । ସ୍ୱୀକୃତ ହେବା—1.To agree. Hai karibā ୨ । ସ୍ୱୀକାର ଯୁକ୍ତ ଉତ୍ତର ଦେବା—2. To an- हाँ करना हाँकरना swer in the affirmative. (ନାହିଁ କରିବା – ବିପରୀତ)

**ହଇ କି ବେ**—ଗ୍ରା•ଅ (ଘୃଣାର୍ଥକ ବା ଅତି ନୀଚ ବ୍ୟକ୍ତି ପ୍ରତି)—୧ ରେ । Hai ki be 1• Oh ! (in contempt). ୨ । ପ୍ରଶ୍ନାର୍ଥକ— हाँरे अबे 2• (Interrogative) Well ?

**ହଇ କି ରେ**—ଦେ• ଅ (ଆପଣାଠାରୁ କନିଷ୍ଠ ପୁରୁଷ ବ୍ୟକ୍ତିପ୍ରତି )— Hai ki re ୧ । ରେ !—1• Oh ! (to one's inferrior). हाँवे ୨ । ପ୍ରଶ୍ନାର୍ଥକ—2• (Interrogative ) Well ? अबे [ଯଥା—ହଇକିରେ ! ତୁ କୁଆଡ଼େ ଯାଇଥିଲୁ ? ]

ହଇ କି ଲୋ—ଦେ. ଅ (ସ୍ତ୍ରୀ ବ୍ୟକ୍ତିଙ୍କ ପ୍ରତି)—୧। ହେ !—1. Oh ! ୨।
Hai ki lo ପ୍ରଶ୍ନାର୍ଥକ—2. Interrogative.
হাঁলো যে well ?

ହଇ କି ହେ—ଦେ. ଅ (ସମ୍ମାନାର୍ହ ବ୍ୟକ୍ତିଙ୍କ ପ୍ରତି)—ହେ !—1. Oh !
Hai ki he ୨। ପ୍ରଶ୍ନାର୍ଥକ—2. (interrogative)
হাহে, ওহে अजी Oh !

ହଇ କି ହୋ—ଦେ. ଅ (ସଙ୍ଗୀ, ସମ୍ମାନାର୍ହ ଏକ ବା ବହୁ ବ୍ୟକ୍ତିଙ୍କ ପ୍ରତି)
Hai ki ho ୧। ହେ—1. Oh ! ୨। ପ୍ରଶ୍ନାର୍ଥକ —
হাঁহে हो 2. (interrogative) Well ?

ହଇ ଗୋ—ଦେ. ଅ—(ମାନ୍ୟ ପୁରୁଷ ଓ ମାନ୍ୟା ନାରୀଙ୍କୁ ନାରୀଙ୍କର
Hai go ସମ୍ବୋଧନ କରିବାରେ ବ୍ୟବହୃତ ) ହେ !—Oh !
হাঁগো (used by females in addressing respect-
ओ able males or females).

ହଇ ଚଇ—ଦେ. ବି. ଓ ବିଣ (ବଙ୍ଗଳାରୁ ଅନୁକୃତ)—ହୈ ଚୈ (ଦେଖ)
Hai chai Hai chai (See)
হৈচৈ हलचल

ହଇଜା—ବୈଦେ. ବି (ଅ. ହୈଜହ୍; ଭୁଲ. ସଂ. ହୃଜ୍ଜଧାତୁ=ମଳତ୍ୟାଗ
Haija କରିବା ) ଝାଡ଼ା ବାନ୍ତି; ଝାଡ଼ାବାଇ; ବିସୂଚିକା ରୋଗ—
কলেরা, ওলাওঠা हैजा Cholera

ହଇଜା ଟୀକା (ଫୋଡ଼ା)—ଦେ. ବି—ବାଡ଼ଫୋଡ଼ା (ଦେଖ)—
Haijā ṭikā Bārdi phordā (See)
কলেবারটকা हैजाटीका

ହଇଜା ଧରିବା—ଦେ. ବି—ବିସୂଚିକା ରୋଗର ଆକ୍ରମଣ—
Haijā dhariba Being attacked with cholera.
কলেবাধবা हजाधरना

ହଇଜା ମଲୁ (ରୋଗୀ)—ଦେ. ବି—ବିସୂଚିକା ରୋଗାକ୍ରାନ୍ତ ବ୍ୟକ୍ତି—
Haijā malu (rogi) A cholera patient.
কলেবাবোগী हैजामरीज

ହଇଜା ଲାଗିବା—ଦେ. ବି—କୌଣସି ଅଞ୍ଚଳରେ ହଇଜାରୋଗର ପ୍ରବଳ
Haijā lāgibā ହେବା—The prevalence of cholera
কলেরালাগা हैजा फैलना at a place.

ହଇତୁଁ—ପ୍ରାଦେ, (ଜାଜପୁର) କ୍ରି—ହେଉ—Let him be.
Haituñ

ହଇ ବେ—ଗ୍ରା. ଅ ( ଘୃଣା ଓ ଅନାଦରାର୍ଥକ )—ହେ !—Oh !
Hai be (incontempt). ଗ୍ରା. (ପ୍ରାଚୀନ) କ୍ରି—'ହେବେ' ର
হাঁরে अबे ବିକଳ୍ପରୂପ—(old use) An alternative
form of Hebe

ହଇବେବେ, ହଇବବେ, ହଇବବେ ହେ } ଅନ୍ୟ ଅବ୍ୟୟ ରୂପ (ଉ—ଦେବଣ ମାର୍ଗେ ଉଛଲେ ହଇବେ ପ୍ରବଳ—ପ୍ରାଚୀ ବୃତ୍ତିବିଭୂପଣଗୀତା ।)

ହଇଯ୍ୟା(ଆ)ତ୍—ବୈଦେ. ବି—ହୟାତ୍ (ଦେଖ)—
Haiyā(ā)t Haiyāt (See).

ହଇଯ୍ୟା(ଆ)ନ୍ତ—ଦେ. ବିଣ—ହୟାନ୍ତ (ଦେଖ)—
Haiyā(ā)nta Hayānta (See).

ହଇଯ୍ୟା(ଆ)ନ୍ତି—ଦେ. ବିଣ—ହୟାନ୍ତି (ଦେଖ)—
Haiyā(ā)nti Hayānti [See].

ହଇଯ୍ୟା(ଆ)ନ୍ତିଆ—ଦେ. ବିଣ—ହୟାନ୍ତିଆ (ଦେଖ)—
Haiyā(ā)ntiā Hayāntiā (See).

ହଇରାଣ—ବୈଦେ. ବିଣ ( ଅ ହୈରାନ୍ )—ବିଣ—୧ । ହଇରାଣିଆ
Hairāṇa (ଦେଖ)—Hairāniā [See] ୨ ।
হায়রাণ हैरान ଉତ୍ପୀଡ଼ିତ; ଉତ୍ତ୍ୟକ୍ତ—
2. Harassed; oppressed. ( ଉ—ହଇରାଣ
ନାହିଁକି ଏତେ, ହଇରାଣ ଥିବୁ ନ କର ମନେ—କବିସୂର୍ଯ୍ୟ,
হায়রানী हैरानी ସଙ୍ଗୀତ । ) ବୈଦେ. ବି.
( ଅ. ହୈରାନୀ )—କଷ୍ଟ; ହଇରାଣ; ହେବା ଅବସ୍ଥା—
Trouble; botheration.

ହଇରାଣ କରିବା—ଦେ. କ୍ରି—୧ । ଉତ୍ପୀଡ଼ନ କରିବା—1. To
Hairāṇa karibā oppress; to harass. ୨ । କଷ୍ଟ
হায়রাণকরা ଦେବା—2.To trouble; to put to trouble;
हैरानकरना to bother.

ହଇରାଣ ହରକତ—ବୈଦେ. ବି (ଏକାର୍ଥକ ସହଚର) (ଅ. ହୈରାନ୍ +
Hairāṇa harakata ହରକତ)—ନାନାପ୍ରକାର କଷ୍ଟ—
হ(হা)য়রান পরেসান Botheration; trouble.
हैरान हरकत ବୈଦେ. ବିଣ—ବ୍ୟାକୁଳ ଓ କଷ୍ଟପ୍ରାପ୍ତ—Bothered and troubled.

ହଇରାଣ ହେବା—ଦେ. କ୍ରି—କଷ୍ଟଭୋଗ କରିବା—
Hairāṇa hebā To suffer trouble.
হায়রাণহওয়া हैरानहोना

ହଇରାଣି—ବୈଦେ. ବି ( ଅ. ହୈରାନୀ )—୧ । ଉତ୍ପୀଡ଼ନ—
Hairāṇi 1 Harassment; oppression
হায়রাণী हैरानी ୨ । କଷ୍ଟଯୁକ୍ତ ଅବସ୍ଥା—
2 State of trouble. ଦେ. ବିଣ—ହଇରାଣ(ଦେଖ)
Hairāṇa [See].

ହଇରାଣିଆ(ଆଁ)—ଦେ. ବିଣ ( ଅ. ହୈରାନ୍ )—୧ । କଷ୍ଟପ୍ରଦ; ଯେ
Hairāniā(āñ) ହଇରାଣ କରେ—1. Troublesome;
গোলমেলে हैरान करनेवाला putting.
to trouble; bothersome ୨ । ହଇରାଣ (ଦେଖ)
2. Hairāṇa (See)

ହଇ ରେ—ଦେ. ଅ (ପୁରୁଷମାନଙ୍କ ପ୍ରତି ଓ ଆପଣାଠାରୁ କମ୍ ଭର ବ୍ୟକ୍ତି
Hai re ପ୍ରତି ବ୍ୟବହୃତ) ହେ । ରେ !—Oh ! (addressed
হাঁরে अरे to males of a lower status
than the speaker).

ହଇରୋଜ୍—ବୈଦେ. ଅ (ଅ. ହର୍+ରୋଜ)—ପ୍ରତିଦିନ—
Hairoj Every day; daily.
প্রতিদিন, রোজ রোজ हररोज

ହଇ ଲୋ—ଦେ. ଅ—୧ । (ନୀଚ ବା ସମସ୍ତରା ବା ସଜଣ୍ଠବୟସ୍କା ସ୍ତ୍ରୀ-
Hai lo ମାନଙ୍କ ପ୍ରତି ବ୍ୟବହୃତ) ହେ !—
(ହଇଲେ ହେ—ଅନ୍ୟରୂପ) 1. Oh (addressed to

ହାঁগো a lower or equal or familiar women. ୨। অরী (ଅବଜ୍ଞାରେ ନାରୀଙ୍କ ସମ୍ବୋଧନରେ ମଧ୍ୟ ବ୍ୟବହୃତ)— Hallo! (Interjection denoting contempt and used towards females).

ହଇ ହଇ—ଦେ. ଅ—୧ । ହଇ (ଦେଖ)—1. Hai (See)
Hai hai ୨ । (ସମ୍ମତିସୂଚକ ଅବ୍ୟୟ
হাঁ হাঁ हां हां 'ହଇ'ର ଦ୍ୱିତ୍ୱ)—2. (doubling of the interjection 'Hai]—Ditto; yes
হাঁ हां ବ—୧ । ସମ୍ମତି—1. Consent; assent. ୨ । କୌଣସି ବ୍ୟକ୍ତିର କହିବା କଥାରେ ସମ୍ମତି ପ୍ରକାଶ—2. Dittoing. (ଭି—ମାଣ୍ଡୁଆ ଭାଇ ! ସବୁଥି କଥାରେ ହଇ ହଇ—ଚଗ।)

ହଇ ହୟ—ଗ୍ରା. ବ (ନାମ; ସ. ହୈହୟ)—ହୈହୟ (ଦେଖ)—
Haihaya Haihaya [See]

ହଇ ହେ—ଦେ. ଅ [ସମ୍ମାନାର୍ଥ ନର ନାରୀଙ୍କ ପ୍ରତି]—ହୋ—Oh!
Hai he ব (ଉ—ହଇ ହେ ! ମହାରାଜ ଏତେବେଳେ କେଉଁଠି ଥିବେ ? ମଧୁସୂଦନ ଉତ୍ତର
হাঁহে ओ ଯମ ରଚନ।)

ହଇ ହୋ—ଦେ ଅ—୧ । ହଇହେ [ଦେଖ]—
Hai ho হাঁ হে ओ 1. Haihe [See]. ୨। (ଏକ ବା ବହୁ ଅପରିଚିତ ନରନାରୀଙ୍କ ପ୍ରତି ସମ୍ବୋଧନରେ ବ୍ୟବହୃତ) ହେ!—Oh! [interjection used in addressing one or many males or females with whom one is not acquainted].

ହଉ—ଦେ. ଅ ( ସ. ଭବତୁ )—୧ । (ସମ୍ମତିସୂଚକ ଅବ୍ୟୟ) ହ !—
Hau 1 Yes! Interjection denoting assent.
হউক, আচ্ছা अच्छा ୨ । ତାହାହେଉ; ତଥାସ୍ତୁ—2. Be it so. ୩ । ଅପରର ଭାଗ୍ୟରେ ସନ୍ତୁଷ୍ଟ ରହିବା ମତର ଭାବଜ୍ଞାପକ ଅବ୍ୟୟ—3. Interjection denoting a state of contentment in one's lot. ଗ୍ରା. କି—(ହେବା ଧାତୁର ଅନୁଜ୍ଞା ତୃତୀୟ
হউক हो ପୁରୁଷ—ଅବଜ୍ଞାର୍ଥକ ଆକାର) ଏହା ହେଉ, ସେ ହେଉ—Be it he, or she.

ହଉକତ—ଦେ. ବ (ଆ. ହକୀକତ)—ହଇକତ୍ [ଦେଖ]—
Haukata Haikat (See)

ହଉଦା—ପ୍ରାଦେ (ଉତ୍ତରଅଞ୍ଚଳ) ବ—ଶୋଇ ଅମାରୀ; ହାତୀର ହାଉଦା—
Hauda Cushion without arm, put on the back of an elephant

ହଉ ପଛକେ(ପଛେ)—ଦେ ଅ—(ଅନନ୍ୟୋପାୟ ହୋଇ ସମ୍ମତି
Hau pachhake (pachhe) କହିବା ସ୍ଥଳରେ ବ୍ୟବହୃତ)—
তাইহউক अच्छा ଏହା ସେପରି ଥାଉ—Be it so.

ହଉସେ—ପ୍ରାଦେ (ଘାଟଣା) କି—ହେଉଛି (ହେବା କ୍ରିୟାର ବର୍ତ୍ତମାନ
Hause କାଳ, ଅନ୍ୟ ପୁରୁଷ ୧ବ)—Is.

ହଏ—ଗ୍ରା. କି—('ହେବା' ବା 'ହବା' କ୍ରିୟାର ବର୍ତ୍ତମାନକାଳ ଅନ୍ୟ
Hae ପୁରୁଷ ୧ବଚନ)—(ସେ ବା ତାହା)ହୁଏ—(He; she; it)
হয় हो Is. ପ୍ରାଦେ (ବଲାଙ୍ଗିର ଘାଟଣା) ଅ—ହଁ—Yes.

ହଏଜା—ବୈଦେ. ବ (ଅ, ହୈଜହ୍)—ହଇଜା; ବିସୂଚିକା ରୋଗ—
Haejā Cholera.

ହଏତ—ଦେ. ଅ (ବଙ୍ଗଳା ଭାଷାରୁ ଅନୁକୃତ; ବ. ହୟତ)—ସମ୍ଭବତଃ;
Haeta ଏହା ବୋଧ ହୁଏ ଯେ; ଏହା ହୋଇପାରେ ଯେ—
হয়ত शायद् Probably; perhaps; meseems; it seems.
[ଦ୍ର—ବହୁ ଆଧୁନିକ ଓଡ଼ିଆ ଲେଖକଙ୍କ ଲେଖା ଏ ବଙ୍ଗୀୟ ବ୍ୟବହାରରୁ ଅନୁକୃତ 'ହଏତ' ଓ 'ହୁଏତ' ବହୁଳ ଭାବରେ ଦେଖାଯାଏ ।]

ହଏ ବୋ—ପ୍ରାଦେ (ବଲାଙ୍ଗିର ଘାଟଣା) ଅ—ହୋ—
Hae bo Hallo!

ହଏରାଣ୍ (ଇତ୍ୟାଦି)—ବୈଦେ.ବଣ ଓ ବ—ହଇରାଣ (ଇତ୍ୟାଦି)—
Haerān (etc) Hairāṇa etc (see)

ହଏରାଣି—ବୈଦେ. ବ—ହଇରାଣି (ଦେଖ)
Haerāṇi Hairāṇi (See)

ହଏରାଣିଆ—ଦେ. ବଣ—ହଇରାଣିଆ (ଦେଖ)—
Haerāṇiā Hairāṇiā (see)

ହଏରାନ୍—ପ୍ରାଦେ (ଗଡ଼ଜାତ) ବଣ ଓ ବ—ହଇରାଣ (ଦେଖ)—
Haerān Hairāṇa (See)

ହଂ—ସ. ଅ—୧ । କ୍ରୋଧ (ମେଦିନୀ)—1. Interjection deno-
Ham ting anger. ୨ । ଅନୁନୟ (ମେଦିନୀ)—2. Interjection denoting request or solicitation. ୩। ହଂ ବୀଜ; ହଂସଃ ମନ୍ତ୍ରର ବୀଜ ଅକ୍ଷର (ଲିଙ୍ଗେ ହଂ ବୀଜାୟ ନମଃ)—3. The seed letter of the formula for the Hamsaḥ mantra. ୪ । ଅଜପାମନ୍ତ୍ରର ପ୍ରଥମ ଅଂଶ—ନାକବାଟେ ଶରୀରରୁ ନିଃଶ୍ୱାସବାୟୁ ବହିର୍ଗତ ହେଲାବେଳେ ଅନୁଭୂତ ଶବ୍ଦ)—4. The sound symbolising the exhalation of air through the nostrils. [ଦ୍ର—ନାକବାଟେ ଶରୀର ମଧ୍ୟକୁ ବାୟୁ ପ୍ରବେଶ କଲାବେଳେ ଅନୁଭୂତ ଶବ୍ଦ ସଃ; ଏହି ଦୁଇ ଶବ୍ଦ ମିଶି ହଂସଃ ଓ ଏହାକୁ ଓଲଟାଇ ବୋଇଲେ ସୋଽହଂ ହୁଏ ।]

ହଂକଂ—ଦେ. ବ (ନାମ)—ଚୀନ ଦେଶର କାଣ୍ଟନ୍ ନଗରର ଦକ୍ଷିଣରେ
Hamkam ବ୍ରିଟିଶ୍ ଅଧିକୃତ ଦ୍ୱୀପ ଓ ବନ୍ଦର—Hongkong,
[ହଂକଙ୍—ଅନ୍ୟରୂପ] (an island and port in
হংকং हंकं China)

ହଂକା—ଦେ .ବ—ହଙ୍କା (ଦେଖ)—Hanka (See). ପ୍ରାଦେ
Hamkā (ସମ୍ବଲପୁର) ବ—କୁଲା—Winnowing fan.

ହଂକା(କେ)ଇବା—ଦେ. କି—ହଙ୍କାଇବା (ଦେଖ)
Hamkā(ke)ibā Hankāibā (See)

ହଂକା ହଂକି—ଦେ. ବି—ହଙ୍କାହଙ୍କି (ଦେଖ)
Hamkā hamki Hankāhanki (See)

ହଂଗା(ଗେ)ରି—ବୈଦେ. ବି (ନାମ)—ଇଉରୋପର ଯୁଗୋସ୍ଲାଭିଆର
Hamgā(ge)ri ଉତ୍ତରସ୍ଥ ରାଜ୍ୟ ବିଶେଷ—Hungary.
हंगा(गे)री हंगेरी [ହଙ୍ଗା(ଙ୍ଗେ)ରି—ଅନ୍ୟରୂପ]

ହଂଗୋରି—ଦେ· ବି—ଦାର୍ଜିଲିଙ୍ଗ୍ ପାହାଡ଼ରେ ଜନ୍ମୁଥିବା ଏକଜାତୀୟ
Hamgorī କାଠଗଛ—A kind of timber wood tree
हांगोरी found in Darjeeling hills. [ଦ୍ର—ଏଗଛର କାଠ
हंगोरी ଖୁବ୍ ଦୃଢ଼ ଥିବାରୁ ଏଥିରେ ଖଟ, ଟେବୁଲ, ଚୌକି ଆଦି ଗୃହୋପକରଣ ତିଆରି ହୁଏ । ପାହାଡ଼ିଆମାନେ ଏହାର ଫଳକୁ ଖାଆନ୍ତି ।]

ହଂଜି—ସଂ· ବି—ଛିଙ୍କ (ହି. ଶ)—Sneeze.
Hamji (ହଞ୍ଜି—ଅନ୍ୟରୂପ)

ହଂତ—ସଂ. ଅ—(ଖେଦସୂଚକ ଅବ୍ୟୟ; ଆହା)—(ହି. ଶ)
Hamta Alas.

ହଂବା—ଦେ· ବି—(ସଂ ହଂ ଭା)—ହଂଭା (ଦେଖ)—
Hamba Hambhā (See)

ହଂଭା—ସଂ. ବି—ଗୋରୁମାନଙ୍କ ହମ୍ବାଳିବା ଶବ୍ଦ (ହି. ଶ)—
Hambhā The lowing of cattle.

ହଂସ୍‌ଲି—ବୈଦେ. ବି—(ଫା)—ହଂସଲି (ଦେଖ)—
Hams-li Hamsali (See).

ହଂସ୍‌ଲି ହାଡ଼—ପ୍ରଦେ. (ସିଂହଭୂମି) ବି—କାନ୍ଧ ଓ ବେକକୁ ଲାଗିଥିବା
Hams-li hārda ହାଡ଼—Clavicles or collar bones.

ହଂସ—ସଂ. ବି—( ହନ୍ ଧାତୁ=ଗତି କରିବା+କର୍ତ୍ତୃ ସ )—୧ ।
Hamsa ଜଳଚର ପକ୍ଷି-ବିଶେଷ—1. The Swan. [ଦ୍ର—
(ହଂସୀ—ସ୍ତ୍ରୀ) ଏହା ଜଳରେ ପହଁରିପାରେ; ଏହାର ଗୋଡ଼ର
ସଂ. ପର୍ଯ୍ୟାୟ— ଆଙ୍ଗୁଳିଗୁଡ଼ିକ ପରସ୍ପର ସଂଯୁକ୍ତ ଥାଏ, ତେଣୁ
ଶ୍ୱେତ ଗରୁତ୍, ଚକ୍ରାଙ୍ଗ, ଏହାକୁ ଲିପ୍ତପଦ ବୋଲାଯାଏ । ଏହାର ଅଣ୍ଡା
ମାନସୌକା, କଳକଣ୍ଠ, ଚେପଟା; ଏହା ପ୍ଲବଗଜାତୀୟ ଜଳଚର
ସିତଚ୍ଛଦ, ସିତପକ୍ଷ, ପକ୍ଷୀ; ଏମାନେ ଦଳ ଦଳ ହୋଇ ବଡ଼ ବଡ଼
ସରଃକାକ, ପୁରୁଦଂଶକ, ସରୋବରରେ ପହଁରନ୍ତି । ହଂସର ଡେଣାରୁ
ଧବଳପକ୍ଷ, ମାନସାଳୟ, ଯେଉଁ ପକ୍ଷ ଝୁଣ୍ଟିପଡେ ତହିଁର ମୂଳଦେଶ
ବରଟ, ବରଳ ଧଳା ଓ ସ୍ୱଚ୍ଛ ନଳାପରି ପଦାର୍ଥବିଶିଷ୍ଟ
हाँस हँस ଥିବାରୁ ଲୋକେ ତାକୁ କାଟି କଲମ
୨. ବିଷ୍ଣୁ (Swan quill)ରୂପେ ବ୍ୟବହାର କରନ୍ତି ।

ବୈଦ୍ୟଶାସ୍ତ୍ର ଅନୁସାରେ ଏହାର ମାଂସ ଗୁରୁପାକ, ଉଷ୍ଣବୀର୍ଯ୍ୟ, ବାତହର, ବୃଷ୍ୟ, ଶୁକ୍ରବର୍ଦ୍ଧକ, ବଳପ୍ରଦ, ବାତଘ୍ନ, କଫଜନକ, ସ୍ୱର ପରିଷ୍କାରକ ଓ ତିମିର (ଅନ୍ଧାରକଣା) ରୋଗର ଉପକାରକ ।

ପୁରାଣାଦିରେ ହଂସ ବ୍ରହ୍ମା ଓ ସରସ୍ୱତୀଙ୍କ ବାହନରୂପେ ବର୍ଣ୍ଣିତ ହୋଇଅଛି ।

ଭାରତରେ ପ୍ରାଚୀନ ସାହିତ୍ୟରେ ହଂସ ସମ୍ବନ୍ଧରେ ପ୍ରବାଦ ଅଛି ଯେ, ହଂସର ଆଗରେ ପାଣିମିଶା ଦୁଧ ରଖିଦେଲେ ସେ ଦୁଧତକ ଖାଇଦିଏ ଓ ପାଣିତକ ଦୁଧରୁ ଅଲଗା କରି ପାତ୍ରରେ ଛାଡ଼ିଯାଏ ("ହଂସୋହି କ୍ଷୀରମାଦତ୍ତେ, ତନ୍ମିଶ୍ରଂ ବର୍ଜୟତ୍ୟପଃ") । ପ୍ରକୃତ ବିଷୟ ଏହି ଯେ, ହଂସର ଥଣ୍ଟରୁ ଅମ୍ଳରସ କ୍ଷରିତ ହୁଏ, ସେହି ଅମ୍ଳରସ ଦୁଧରେ ମିଶିଲେ ତାହା ଛେନାରେ ପରିଣତ ହୋଇଯାଏ, ଏବଂ ସେହି ଛେନାତକ ହଂସ ଖାଇଯାଏ ଦୁଧର ଅବଶିଷ୍ଟ ଜଳୀୟ ଅଂଶ ପାତ୍ରରେ ପଡ଼ିରହେ ।

ହଂସମାନଙ୍କୁ ଲୋକେ ଡିମ୍ବ ପାଇଁ ପାଳନ୍ତି । ଡିମ୍ବକୁ କେତେକ ବ୍ୟକ୍ତି ଖାଆନ୍ତି । ଅପାଳିତ ହଂସମାନେ ଗ୍ରୀଷ୍ମ-କାଳରେ ଗ୍ରୀଷ୍ମପ୍ରଧାନ ଦେଶରେ ନ ରହି ଉତ୍ତରଆଡ଼କୁ ଉଡ଼ିଯାଆନ୍ତି ଓ କଥିତ ଅଛି ଯେ, ହଂସ ଓ ହଂସଜାତୀୟ ଜଳଚର ପକ୍ଷୀମାନେ ଗ୍ରୀଷ୍ମାରମ୍ଭରେ ହିମାଳୟ ପର୍ବତର କାନ୍ଥରେ ଥିବା ଗୋଟିଏ ରନ୍ଧ୍ରବାଟେ ଉତ୍ତର ବହିର୍ବର୍ତ୍ତୀ ମାନସ-ସରୋବରକୁ ଉଡ଼ିଯାଆନ୍ତି ଓ ବର୍ଷାଋତୁ ପରେ ପୁଣି ଏ ଦେଶକୁ ଆସନ୍ତି ।

ହଂସମାନଙ୍କ ମନ୍ଥର ଗତିକୁ ନିତମ୍ବିନୀ ଗୁରୁଜଘନା ଯୁବତୀମାନଙ୍କ ଗତି ସଙ୍ଗେ କବିମାନେ ତୁଳନା କରନ୍ତି, ଏବଂ ଚାଲିଲାବେଳେ ସ୍ତ୍ରୀମାନଙ୍କ ପାଦର ନୂପୁର ଆଦିର କ୍ୱଣନକୁ କବିମାନେ କଳହଂସ ରୁତ ସଙ୍ଗେ ତୁଳନା କରନ୍ତି ।

ବଡ଼ ହଂସକୁ ରାଜହଂସ ବୋଲାଯାଏ । ବତକ ବା ପାତି-ହଂସଙ୍କ ବେକ ଅପେକ୍ଷା ହଂସମାନଙ୍କ ବେକ ଲମ୍ବା । ପୃଥିବୀର ପ୍ରାୟ ସବୁ ଅଂଶରେ ହଂସ ଦେଖାଯାଆନ୍ତି । ଏମାନେ ପାଣିରେ ଥିବା କ୍ଷୁଦ୍ର ଜଳଜନ୍ତୁ ଓ ଉଦ୍ଭିଦ ଖାଇ ବଞ୍ଚନ୍ତି । ହଂସର ବର୍ଣ୍ଣ ଶ୍ୱେତ ଥିବା ପ୍ରସିଦ୍ଧ ଥିଲେ ମଧ୍ୟ ଅଷ୍ଟ୍ରେଲିଆରେ କଳାହଂସ, ଆମେରିକାରେ ପାଉଁଶିଆ ଓ ଶୁକ୍ଳବର୍ଣ୍ଣ ହଂସ ଦେଖାଯାଆନ୍ତି ।] ୨ । ବିଷ୍ଣୁ (ମେଦିନୀ)—2. Bishnu. ୩ । ଜୀବାତ୍ମା—Soul of animals, as distinguished from the Supreme Soul. ୪ । ପରଂବ୍ରହ୍ମ; ପରମାତ୍ମା, ( ମେଦିନୀ )—4. The Divine Soul pervading the universe. ୫ । ସୂର୍ଯ୍ୟ (ମେଦିନୀ)—5. The sun. [ଉ—(୧, ୩, ୫) ବୋଲେ କେ କମି ଉଦୟୁହିଁ ଖ୍ୟାତ, ବିଧିରେ ହଂସ ତୋଷଦା ସ୍ୱତ—ଭଞ୍ଜ ବୈଦେହୀଶ ବିଳାସ ]

୬ । ବ୍ରହ୍ମା (ମେଦିନୀ)—6. The Creator Brahmā.
୭ । ଶିବ (ଅନେକାର୍ଥ କୋଷ)—7. God Śiba. ୮ । ଅଜପା ମନ୍ତ୍ର (ମେଦିନୀ)—8. The mystic word which in involuntarily uttered with every breath. [ଦ୍ର—ସର୍ବଦା ନିଃଶ୍ୱାସବାୟୁକୁ ଛାଡ଼ିବା ଓ ପ୍ରଶ୍ୱାସ ବାୟୁକୁ ଶରୀର ଭିତରକୁ ନେବାବେଳେ ଜୀବ ଯଥାକ୍ରମେ ଏହି ହଂସଃ ମନ୍ତ୍ର ଜପୁଅଛି ।

ମତାନ୍ତରରେ ପ୍ରାଣବାୟୁ ବା ଶ୍ୱାସର ଗ୍ରହଣକାଳରେ 'ହଂ' ଓ ଶ୍ୱାସ ଛାଡ଼ିବାବେଳେ 'ସଃ' ଏହି ଶବ୍ଦ ଅନୁଭୂତ ହୁଏ ।]

ପ୍ରତିଦିନ ଜୀବ ଏହି ଅଜପା ମନ୍ତ୍ରକୁ ୨୧ ହଜାର ୬୦୦ ଥର ଜପୁଛି, ଅର୍ଥାତ୍, ଏତେଥର ନିଃଶ୍ୱାସ ମାରୁଛି । ଏହି ନିଃଶ୍ୱାସର ଗତିକୁ ପ୍ରାଣାୟାମଦ୍ୱାରା ନିୟନ୍ତ୍ରିତ କରିବା ଓ ଠିକ୍‌ଭାବେ କେଉଁ ପ୍ରକାରେ ଶ୍ୱାସ ବୋହୁଅଛି, ତାହା ବାରିବା ଯୋଗସାଧନର ଅଙ୍ଗ । ] ୯ । ନିର୍ଲୋଭ ନୃପ (ମେଦିନୀ)—9 A king having no avarice. ୧୦ । (ନାମ) ମେରୁର ଉତ୍ତରସ୍ଥ ପୌରାଣିକ ପର୍ବତ-ବିଶେଷ (ପୁରାଣ)—10. Name of a mythological mountain to the north of Meru (pole). ୧୧ । ମାତ୍ସର୍ଯ୍ୟ—11. Envy. ୧୨ । ମନ୍ତ୍ର-ବିଶେଷ; ହଂସମନ୍ତ୍ର (ଦେଖ)—12. Name of a mystic formula. ୧୩ । ଅବଧୂତ; ଯୋଗିଭେଦ (ମେଦିନୀ); ପରମହଂସ—13. A class of anchorites who have renounced all worldly ties and passions. ୧୪ । ପ୍ରାଣବାୟୁ; ଶ୍ୱାସ; ଶରୀରସ୍ଥ ବାୟୁ-ବିଶେଷ (ମେଦିନୀ)—14. Name of the vital air; breath.

[ଦ୍ର—ଯୋଗସାଧନ ଦ୍ୱାରା ଶରୀରରେ ଷଟ୍‌ଚକ୍ର କଳ୍ପନାପୂର୍ବକ ପ୍ରାଣବାୟୁକୁ ନିରୋଧ ଓ ନିୟନ୍ତ୍ରିତ କରି ଏକାନ୍ତ ଚିତ୍ତରେ ତାହାଠାରୁ ବୃତ୍ତି ସାଧନା କଲେ ସାଧକଙ୍କୁ କ୍ରମଶଃ ଭ୍ରୂମଧ୍ୟ ମଧ୍ୟରେ ଗୋଟିଏ ଉଜ୍ଜ୍ୱଳବିନ୍ଦୁ ଦେଖାଯାଏ, ଏବଂ ଇଡ଼ା (ଇଙ୍ଗଳା), ପିଙ୍ଗଳା (ପିଙ୍ଗଳା), ଓ ସୁଷୁମ୍ନା (ଶିଶୁମନା) ନାଡ଼ୀମାନଙ୍କ ମଧ୍ୟରେ ଗତି କରୁଥିବା ପ୍ରାଣବାୟୁକୁ ସାଧକ ଲକ୍ଷ କରିବାକୁ ସମର୍ଥ ହୁଅନ୍ତି । ତନ୍ତ୍ରୋକ୍ତ ଏହି ଯୋଗ-ସାଧନକୁ ଓଡ଼ିଶାରେ ବୌଦ୍ଧଧର୍ମର ପରବର୍ତ୍ତୀ ସମୟରେ, ଯଥା—ଜଗନ୍ନାଥ, ବଳରାମ, ଅଚ୍ୟୁତ, ଅନନ୍ତ, ଯଶୋବନ୍ତ ଆଦି ଭକ୍ତମାନେ ଅଜପାଜପ ବା 'ଶରୀରଭେଦ' ନାମରେ ଚଳାଇ ହିନ୍ଦୁଧର୍ମ ଓ ବୌଦ୍ଧଧର୍ମର ସମନ୍ୱୟ କରିବାକୁ ଚେଷ୍ଟା କରି ଯାଇଅଛନ୍ତି ଓ ଏହାକୁ ସାଧାରଣ ଲୋକଙ୍କ ସାଧ୍ୟାୟତ୍ତ କରିବାକୁ ଚେଷ୍ଟା କରି ଯାଇଅଛନ୍ତି । ଉକ୍ତ ତିନି ନାଡ଼ୀର ସନ୍ଧି (ତ୍ରିକୂଟ, ତ୍ରିମୁନା) ରେ ପ୍ରାଣବାୟୁ (ହଂସ, ଓଲଟ ହଂସ) ଖେଳୁଥିବାର ବର୍ଣ୍ଣନା କରି ସେମାନେ 'ଶରୀର ଭେଦ ଭଜନ' ବା ତାନ୍ତ୍ରିକ ଷଟ୍‌ଚକ୍ର-ସାଧନକୁ ଲୋକସାଧାରଣରେ ପ୍ରଚୁର କରି ଯାଇଅଛନ୍ତି । ] ୧୫ । ମହିଷ—15. Buffalo. ୧୬ । ତୁରଙ୍ଗମଭେଦ; ଅଶ୍ୱ ବିଶେଷ (ମେଦିନୀ)—16. A species of horse. ୧୭ । ନରପତି; ରାଜା—17. King ୧୮ । ଧର୍ମାଗୁରୁ, ଅଗ୍ରଣ୍ୟ—18. Spiritual preceptor. ୧୯ । ସିତବର୍ଣ୍ଣ, ପିଙ୍ଗଳଚକ୍ଷୁ, ତାମ୍ରବର୍ଣ୍ଣ ଶୃଙ୍ଗ ଓ ବୃହତ୍-ମୁଖବିଶିଷ୍ଟ ଗାଈ—19. A white cow having grey eyes, coppery horns and large mouth. ୨୦ । ପର୍ବତ (ମେଦିନୀ)—20. Mountain ୨୧ । କାମଦେବ (ହି. ଶ)—21. Cupid. ୨୨ । ନୃତ୍ୟ-ବିଶେଷ (ହି. ଶ)—22. A kind of dance. ୨୩ । ହଂସାକାରରେ ନିର୍ମିତ ଏକଶତ ଗବାକ୍ଷବିଶିଷ୍ଟ ପ୍ରାସାଦ (ହି.ଶ)—23. A kind of swan-shaped building. ୨୪ । (ନାମ) କୃଷ୍ଣଙ୍କଦ୍ୱାରା ନିହତ ଜନୈକ ଭୂଷ୍ଟ ଯକ୍ଷୀୟୁଗଳ—24 Name of a warrior killed by Krushna.

[ଦ୍ର—ଏହାର ଭାଇର ନାମ ଡମ୍ଭକ; ଏ ଦୁଇ ଭାଇ ତପସ୍ୟା-ଦ୍ୱାରା ମହାଦେବଙ୍କଠାରୁ ବର ଓ ଅସ୍ତ୍ର ପାଇ ଅଜେୟ ହେଲେ ଓ କ୍ରମଶଃ ସମସ୍ତଙ୍କ ଉପରେ ଅତ୍ୟାଚାର କଲେ । ଦିନେ ଏମାନେ ଦୁର୍ବାସାଙ୍କଠାରୁ କୌପୀନ ଖଣ୍ଡିକ ଛଡ଼ାଇ ନେବାରୁ ମୁନି ଦ୍ୱାରକାରେ ଶ୍ରୀକୃଷ୍ଣଙ୍କ ନିକଟରେ ଫେରାଦ ହେଲେ ଓ କୃଷ୍ଣ ହଂସକୃତ ଏ ଅପମାନନାର ପ୍ରତିଶୋଧ ନେବାପାଇଁ ପ୍ରତିଶ୍ରୁତ ହେଲେ । କେତେ ଦିନ ପରେ ହଂସର ପିତା ରାଜସୂୟ ଯଜ୍ଞ କରିବାରୁ ହଂସ ଯାଇ ଶ୍ରୀକୃଷ୍ଣଙ୍କଠାରୁ କର ମାଗିଲା, କୃଷ୍ଣ ନାହିଁ କଲେ; ଓ ଏହା ସଙ୍ଗେ କୃଷ୍ଣଙ୍କର ପୁଷ୍କର କ୍ଷେତ୍ରରେ ଯୁଦ୍ଧ ହେଲା; ଓ ଏ କୃଷ୍ଣଙ୍କଦ୍ୱାରା ହତ ହେଲା । ଡମ୍ଭକ ଭ୍ରାତୃଶୋକରେ ଯମୁନାରେ ଝାସଦେଇ ମଲା—ଭାଗବତ ] ବିଣ—୧ । ଅଗ୍ରତଃ ସ୍ଥିତ (ଶବ୍ଦରତ୍ନାବଳୀ)—1. Situated in front. ୨ । ମତ୍ସର (ମେଦିନୀ)—2. Envious. ୩ । ଶ୍ରେଷ୍ଠ (ହେମଚନ୍ଦ୍ର); ଉତ୍କୃଷ୍ଟ; ପ୍ରଧାନ—3. Excellent. ୪ । ବିଶୁଦ୍ଧ (ଅଜୟ)—4. Pure. ଦେ. ବି—୧ । ପୁରୁଷଲୋକଙ୍କୁ ହାଁସ ହଁସ ପ୍ରଦତ୍ତ ନାମ—1. A name given to males. ୨ । ଅବଧୂତ ବିଶେଷ—[ଦ୍ର—ଏମାନେ ହଂସାଶୂନ୍ୟ, ଗୃହ-ତ୍ୟାଗୀ, କାମନାରହିତ, ସର୍ବଦା ସନ୍ତୁଷ୍ଟ, ଚିରକୁମାର, ଯଥା—ଭିକ୍ଷା ଅନ୍ନଦ୍ୱାରା ଜୀବିକା ଅର୍ଜନ କରନ୍ତି)—2. A class of recluse. ୩ । ଭ୍ରୂମଧ୍ୟ ମଧ୍ୟରେ ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ନାଡ଼ି ସଙ୍ଗରେ କ୍ରୀଡ଼ା କରୁଥିବା କଳ୍ପିତ ପ୍ରାଣବାୟୁ (ଯାହା ଶରୀରଭେଦ ଭଜନରେ "ହଂସ ଖେଳୁଛି ତ୍ରିକୂଟ ସନ୍ଧିରେ । ଯମୁନାବହୁଛି ଉଜାଣି" ଇତ୍ୟାଦି ପଦରେ ସୂଚିତ)- The essential air sustaining the body; and which is said to move inside the eyebrow. ପ୍ରାଦେ. (କଟକ ସହର; ବଙ୍ଗାରବାସୀଙ୍କ ବ୍ୟବହୃତ; ଭୁଲ, ହନ୍ସୀ, ହଂସୀ ) ବି. (ସଂ. ହାସ୍ୟ)—ହାସ୍ୟ; ହସ—Laughter. (ଉ—ଯଥା—ତାମ୍ଭକୁ ଏକଥା ଶୁଣି ହଂସ ଲାଗୁଛି ।]

ହଂସ ଉଡ଼ିଯିବା—ଦେ. କ୍ରି (ଲକ୍ଷଣାର୍ଥ)—ମୃତ୍ୟୁଘଟିବା—
Hams urdijiba The flying away of the bird of
প্রাণপক্ষী উড়েযাওয়া life from the cage (body);
हंस उड़जाना death taking place.

ହଂସକ—ବି.ସା (ହଂସ+ସ୍ୱାର୍ଥେ,କ)—୧ । (ପୁଂ) ରାଜହଂସ (ଶବ୍ଦଚନ୍ଦ୍ରିକା) Hamsaka 1. Swan. ( ହଂସ+କୈଧାତୁ=ପ୍ରକାଶ କରିବା+ (ହଂସିକା—ସ୍ତ୍ରୀ) କର୍ତ୍ତୃ ଅ) ୨ । ହଂସାକୃତି ନାଦଯୁକ୍ତ ଚରଣ ଭୂଷଣ

A kind of ornament for the leg which emits a sound like that of a swan. [ଯଥା—ନୂପୁର ହଂସକାନ୍ତ କଳାଦରେ—କବିସୂର୍ଯ୍ୟ, ରହୁଙ୍କର ଭଣ୍ଡ୍ୟ ଗୀତ] ୩ । ହଂସାକୃତି ରବଶୂନ୍ୟ ଚରଣଭୂଷଣ — 3. A soundless ornament for the leg. [ ଯଥା—କ୍ଷୁଦ୍ର ଯେ ହଂସକର କଙ୍କନ, ଝଡପନ କଞ୍ଚନ-ମାଳା ପୁନ—ଭଞ୍ଜ ବୈଦେହୀଶ ବିଳାସ ] ୪ । ପାଦକଟକ (ଏହା ହଂସାକୃତି ଥିବାରୁ) ପାଦକଳସ୍ତ, ବଳା, ପାଉଞ୍ଜମ ଇତ୍ୟାଦ (ଏହା ରବଶୂନ୍ୟ)—4. Anklet (which does not tinkle ). ୫ । ତାଳପ୍ରଭେଦ; ଯେଉଁ ତାଳ ପ୍ରଥମେ ଲଘୁ, ପରେ ଗୁରୁ ଓ ଶେଷରେ ଲଘୁ ହୋଇଥାଏ (ସଙ୍ଗୀତ ଦାମୋଦର)—5. Name of a musical measure. ୬ । ଗୋଡ଼ ଅଙ୍ଗୁଠିରେ ପିନ୍ଧାଯିବା ମୁଦ୍ରାକାରବିଶିଷ୍ଟ ଗହଣା—6. An ornament for the fingers of the leg. ପ୍ରାଦେ. (କଟକ ସହର, ଇତର ଜନ ବ୍ୟବହୃତ) ବି. (ସଂ. ହାସ୍ୟ) — ହସ; ହାସ୍ୟ—Laughter.

ହଂସ କଲମ—ଦେ. ବି.—ହଂସପକ୍ଷର ମୂଳ କଟାଯାଇ ତିଆର କରାଯିବା Hamsa kalama କଲମ—Pen from swan quill. হাঁস কলম हंस कलम

ହଂସ କୀଳକ—ସଂ. ବି — ରତିବନ୍ଧ ବିଶେଷ— Hamsa kīḷaka Name of a posture during coition. [ ଯଥା—ନାରୀ ପାଦଦ୍ୱୟଂ କୃତ୍ୱା କାନ୍ତସ୍ୟୋରୁ ଯୁଗୋପରି କଟମାନୋଲସ୍ୱେଦ୍ ଯତ୍ରାତ୍ ବନ୍ଧୋଽୟଂ ହଂସକୀଳକଃ— ସ୍ମରଦୀପିକା । ]

ହଂସ କୁମର—ଦେ. ବି (ସଂ. ହଂସକୁମାର)—ଯମ— Hamsa kumara God Jama. [ ଯଥା—ମରକତକେଶୀ ଓଷ୍ଠସୁଧାପାନ୍ତୁଁ ନ ଉରସଇ ହଂସ-କୁମର—ଭଞ୍ଜ ପ୍ରେମସୁଧାନିଧି ]

ହଂସ କୂଟ - ସଂ. ବି—୧ । କକୁଦ୍ (ଶବ୍ଦକଳ୍ପଦ୍ରୁମ); ବୃଷଭର ଚୂଳ— Hamsa kuṭa The fleshy protuberance on the shoulder of a bull. ୨ । ପୌରାଣିକ ପର୍ବତ-ବିଶେଷ (ପୁରାଣ)—2. Name of a mythological mountain.

ହଂସ କେଳି—ଦେ. ବି—ପିଷ୍ଟକ ବିଶେଷ—A kind of cake. Hamsa keli [ ଯଥା—ହଂସକେଳି କଟକମାଳ—ଅଭିମନ୍ୟୁ ବିଦଗ୍ଧଚିନ୍ତାମଣି ]

ହଂସ ଗତି—ସଂ. ବି—୧ । (୬ଷ୍ଠୀ ତତ୍) ହଂସପରି ଧୀରଗତି—Slow Hamsa gati motion of the swan. ୨ । ବ୍ରହ୍ମତ୍ୱପ୍ରାପ୍ତି; ମୁକ୍ତି (ହ. ଶ)—2. Final beatitude. ୩ । କୋଡ଼ିଏ ମାତ୍ରାର ଛନ୍ଦୋବିଶେଷ (ହ. ଶ)—3. A kind of syllabic metre. [ଦ୍ର—ଏଥିରେ ଏକାଦଶ ମାତ୍ରାରେ ବିରାମ ହୁଏ । ଏହି ଛନ୍ଦର ଦ୍ୱାଦଶ ମାତ୍ରାରେ ଯତିପାତ ହେଲେ ଏ ଛନ୍ଦକୁ ମଞ୍ଜୁତିଳକା ବୋଲି ଯାଏ (ହ. ଶ)] ସଂ. ବିଣ (ପୁଂ ଓ ସ୍ତ୍ରୀ) ହଂସର ଗତିପରି ଧୀର ମଧୁର ଗତି ବିଶିଷ୍ଟ—Having slow and lovely gait. [ ଦ୍ର—ଏ ଶବ୍ଦ ସ୍ତ୍ରୀମାନଙ୍କ ବିଶେ-ଷଣରୂପେ ସାଧାରଣତଃ ବ୍ୟବହୃତ ହୁଏ ।]

ହଂସଗଦା—ସଂ. ବି ସ୍ତ୍ରୀ (ହଂସ + ଗଦ୍ ଧାତୁ = କହିବା + କର୍ତ୍ତୃ ଅ + Hamsagadā ସ୍ତ୍ରୀ ଆ)—ମଧୁରଭାଷିଣୀ ସ୍ତ୍ରୀ (ହ. ଶ)— Sweet-voiced lady.

ହଂସଗଦ୍ଗଦା—ସଂ. ବିଣ ସ୍ତ୍ରୀ (ହଂସ + ଗଦ୍ଗଦ + ସ୍ତ୍ରୀ. ଆ)—ମଧୁର-Hamsagadgadā କଣ୍ଠସ୍ୱରା; ମଧୁରଭାଷିଣୀ—Sweet-voiced (woman); of sweet speech.

ହଂସ ଗମନ — ସଂ. ବି (୬ଷ୍ଠୀ ତତ୍) — ୧ । ହଂସର ଗୃଲ—1. Gait Hamsa gamana of a swan. ୨ । ହଂସପରି ଗୃଲି — 2. Majestic walking like a swan. ବିଣ. ପୁଂ (ହଂସଗମନା—ସ୍ତ୍ରୀ. ବିଣ) (ବହୁବ୍ରୀହି)—ଯେ ହଂସପରି ଗୃଲେ— Majestically walking like a swan. [ ଦ୍ର— ଏହି ଶବ୍ଦ ପୁଂଲିଙ୍ଗରେ ପୁରୁଷମାନଙ୍କ ପ୍ରତି ବ୍ୟବହୃତ ହୁଏ ନାହିଁ; କିନ୍ତୁ କବିମାନେ ଏହାର ସ୍ତ୍ରୀଲିଙ୍ଗ ଆକାରକୁ ସ୍ତ୍ରୀମାନଙ୍କଠାରେ ବ୍ୟବହାର କରିବାକୁ ଭଲ ପାଉଥିଲେ । ]

ହଂସଗମନା—ସଂ. ବିଣ. ସ୍ତ୍ରୀ (ହଂସପରି ଗମନ ଯାହାର; ହଂସ + Hamsagamanā ଗମନ + ସ୍ତ୍ରୀ. ଆ)—ହଂସଗାମିନୀ (ଦେଖ)— Hamsagāmini (See).

ହଂସଗମନୀ—ଦେ ବିଣ. ସ୍ତ୍ରୀ (ସଂ. ହଂସଗମନା) — ହଂସଗାମିନୀ (ଦେଖ)— Hamsagamanī Hamsagāminī (See).

ହଂସଗାମିନୀ—ସଂ. ବିଣ. ସ୍ତ୍ରୀ (ହଂସ + ଗମ୍ ଧାତୁ + କର୍ତ୍ତୃ. ଇନ୍ + Hamsagāminī ସ୍ତ୍ରୀ. ଈ)—ଯେଉଁ ସ୍ତ୍ରୀ ହଂସପରି ମନ୍ଥର (ହଂସଗାମୀ—ପୁଂ) ଗତିରେ ଓ ମଉଜରେ ଗୃଲେ—(A woman) Strutting majestically like a swan. [ଦ୍ର— ଏ ଶବ୍ଦର ପୁଂଲିଙ୍ଗ ଆକୃତିକୁ ପୁରୁଷମାନଙ୍କଠାରେ କବି-ମାନଙ୍କର ପ୍ରୟୋଗ କରିବା ଦେଖା ନାହିଁ; କିନ୍ତୁ ପୁରୁଷମାନଙ୍କ ମଧ୍ୟରେ ହଂସଗାମୀ ମଧ୍ୟ ଅଛନ୍ତି ।] ବି. ସ୍ତ୍ରୀ — ୧ । ହଂସପରି ଗୃଲୁଥିବା ସ୍ତ୍ରୀ—1. A woman with a swan's gait. ୨ । ବ୍ରହ୍ମାଣୀ ଦେବୀ—2. The wife of God Brahmā.

ହଂସ ଗୁଣା—ଦେ. ବି—ଯେଉଁ ଗୁଣାରେ ବା ନାକର ଅଳଙ୍କାରରେ ହଂସର Hamsa guṇā ମୂର୍ତ୍ତି ବସାଯାଇଥାଏ—A nose ring set with the image of a swan.

ହଂସଜା—ସଂ ବି (ହଂସ = ସୂର୍ଯ୍ୟ + ଜନ୍ ଧାତୁ + କର୍ତ୍ତୃ. ଅ + ସ୍ତ୍ରୀ. ଆ)— Hamsajā ଯମୁନା ନଦୀ—Jamuna river. [ଯଥା—ରୂଢ଼ ହଂସ ପରି ହଂସଜାଗାରେ, ବାରେ ଗମନ ପ୍ରଚୁର ବେଳାରେ । ଭଞ୍ଜ. ବୈଦେହୀଶବିଳାସ ।]

ହଂସ ଡିମ୍ବ—ସଂ. ବି—ହଂସର ଅଣ୍ଡା—Swan's egg. [ ଦ୍ର—
Hamsa dimba ବୈଦ୍ୟଶାସ୍ତ୍ର ଅନୁସାରେ ଏହା ମଧୁରରସ, ଉଷ୍ଣ-
হাঁসের ডিম বୀର୍ଯ୍ୟ, ଲଘୁପାକ, ବଲ୍ୟ, ବୃଂହଣ, ଶୁକ୍ରବର୍ଦ୍ଧକ ଓ
अंडा ବାତନାଶକ; ଓ ପାକ ହେଲେ ଲଘୁତର ଓ ରେତଃକ୍ଷୟ, କାଶ,
ହୃଦ୍ରୋଗ, କ୍ଷତ ଆଦି ସମସ୍ତ ବିନାଶକ ହୁଏ—
ରାଜନିର୍ଘଣ୍ଟ ।]

ହଂସ ତୁଳି—ଦେ. ବି—ହଂସୁଲି ତୁଳି (ଦେଖ)
Hamsa tuli Hamsuli tuli (See)

ହଂସ ଦାହନ—ସଂ. ବି—ଅଗୁରୁ (ଶବ୍ଦଚନ୍ଦ୍ରିକା); ଗୁଗ୍ଗୁଳ—
Hamsa dāhana Agallochia.

ହଂସନ—ଦେ. ବି (ନାମ) (ଫା. ହସନ୍)—ହସନ୍ ବା ହୋସେନ୍‌ର ଡାକ-
হোসেন্ ନାମ—Nickname for a Mahammadan
हसन named Hossain.

ହଂସ ନଥ—ଦେ. ବି—ହଂସନୋଥ (ଦେଖ)
Hamsa natha Hamsanotha (See)

ହଂସନାଥ—ଦେ. ବି. ପୁଂ—୧ । ପୁରୁଷଙ୍କ ନାମ—1. A name
Hamsanātha given to males. ୨ । ଶିବଲିଙ୍ଗଙ୍କ ନାମ
হংসনাথ ବିଶେଷ—2. Name of an idol of Śiba. ୩ ।
हँसनाथ କଟକ ଜିଲ୍ଲାରେ କଟକ ସହରର ୭।୮ ମାଇଲ୍ ପୂର୍ବରେ
କାଠଯୋଡ଼ି ନଦୀ କୂଳରେ ଅବସ୍ଥିତ ଶିବଲିଙ୍ଗ ବିଶେଷ;
ପରମହଂସନାଥ—3. A popular name Paramahamsanātha; an image of Śiba at
Paramhamsa in the Cuttack district.

ହଂସ ନାଦ—ସଂ. ବି (ଷଷ୍ଠୀ ତତ୍)—ହଂସର ଶବ୍ଦ—
Hamsa nāda The sound made by a swan.

ହଂସନାଦିନୀ—ସଂ. ବିଣ. ସ୍ତ୍ରୀ—ହଂସପରି ନାଦ କରୁଥିବା (ସ୍ତ୍ରୀ) —
Hamsanādini (A woman) Having the voice of a
swan. ବି. ସ୍ତ୍ରୀ—ମନୋରମା ନାରୀବିଶେଷ—[ ଦ୍ର—
ଯେଉଁ ସ୍ତ୍ରୀଙ୍କ ଗତି ହସ୍ତୀର ଗତିପରି, କଣ୍ଠସ୍ୱର କୋକିଳ
ସ୍ୱରପରି, ଯାହାଙ୍କ ଶରୀର କୃଶ, ନିତମ୍ବ ପୃଥୁଳ, ତାଙ୍କୁ
ହଂସନାଦିନୀ ବୋଲାଯାଏ ।]

(ଗଜେନ୍ଦ୍ରଗମନା ତନ୍ୱୀ କୋକିଳାନାଂରୁଭାନ୍ୱିତା
ନିତମ୍ବ ଗୁର୍ବିଣୀ ଯାସା କଥ୍ୟତେହଂସନାଦିନୀ—ଶବ୍ଦମାଳା)
A woman having the gait of an excellent elephant, the sweet voice of a
peacock and having big buttocks with
a lean body.

ହଂସନାବାଦ୍—ଦେ. ବି. (ନାମ)—କଟକ ସହରର ଅଂଶବିଶେଷର
Hamsanābād ନାମ—Name of a part of the
town of Cuttack.

ହଂସନାଭ—ସଂ. ବିଣ(ନାମ)—ମାର୍କଣ୍ଡେୟ ପୁରାଣୋକ୍ତ ପର୍ବତ ବିଶେଷ—
Hamsa nābha Name of a mythological
mountain.

ହଂସ ନୋ(ନ)ଥ—ଦେ. ବି.—ଯେଉଁ ନୋଥରେ ହଂସର ମୂର୍ତ୍ତି ବସି
Hamsa no(na)tha ଥାଏ—A notha or nosering
হাঁসনথ हँसनथ with the image of a swan on it.

ହଂସ ପକ୍ଷ—ସଂ. ବି. ୧ । (ସାମୁଦ୍ରିକ; ଏହି ରେଖାର ଦୁଇ ପାଖରେ
Hamsa paksha ହଂସର ପକ୍ଷରେ ଗୁଡ଼ିଏ କ୍ଷୁଦ୍ର ପର ଲାଗିଥିବା
ପରି ଗୁଡ଼ିଏ ରେଖା ଲାଗିଥିବାରୁ ଏହି ନାମ)—ଶୁଭ ସୂଚକ
କରତଳସ୍ଥ ରେଖା ବିଶେଷ—(Palmistry) Name
of a feather-like line found on the palms
of the hands. ୨ । ହଂସର ପକ୍ଷ—2. The
wing or feather of a swan.

ହଂସ ପକ୍ଷୀ—ସଂ. ବି—ହଂସ ନାମକ ପକ୍ଷୀ—The bird Swan.
Hamsa pakshi ଦେ. ବି—୧ । ହଂସର ପକ୍ଷ—1. The
হাঁসের পাখা हंसकापर feather of a swan. ୨ । ହଂସ-
ପକ୍ଷର କଲମ—2. Swan-quill pen.

ହଂସ ପଥ—ସଂ.ବି. (ଷଷ୍ଠୀ ତତ୍)—ଆକାଶରେ ବହୁ ଉଚ୍ଚରେ ହଂସମାନେ
Hamsa patha ମାନସସରୋବରକୁ ଉଡ଼ିଯିବାବେଳେ ଯେଉଁ
ବାଟ ଦେଇ ଯାଆନ୍ତି—The high part of the
sky used by the swans when migrating
to the Mānasasarobara lake.

ହଂସ ପଦ—ସଂ ବି. (ଷଷ୍ଠୀ ତତ୍)—୧ । ହଂସର ପଦ (ଯହିଁରେ ଆଙ୍ଗୁଠି
Hamsa pada ଯାକ ଏକାଠେଇଁ ଲାଗିଥାଏ)—1. Swan's
foot; the web-foot of the swan. ୨ । ହଂସ
ପଦ ପରି ଜୋଡ଼ା ଆଙ୍ଗୁଠିଯୁକ୍ତ ପଦ; ଲିପ୍ତ ପଦ—
2. Webfoot. ୩ । ଦୁଇ ତୋଳା ବା ଏକ କର୍ଷ
ପରିମିତ ଓଜନ—3. A standard weight of
2 tolas or 1 Karsha. ବିଣ. ପୁଂ. (ବହୁବ୍ରୀହି)
୧ । ଯେଉଁ ବ୍ୟକ୍ତିର ପାଦର ଆଙ୍ଗୁଠିଯାକ ପରସ୍ପର
(ହଂସପଦା—ସ୍ତ୍ରୀ. ବିଣ) ଲାଗିଥାଏ—1. Webfooted
୨ । ଯେଉଁ ବ୍ୟକ୍ତିର ପାଦର ମଝି ଦେଉଳିଆ ନ ହୋଇ
ସମଗ୍ର ପାଦତଳ ଭୂମିରେ ଘସି ହୋଇ ଲାଗିଥାଏ—
2. A person whose soles touch the
ground completely without there being
any hollow in the middle.

ହଂସପଦୀ—ସଂ. ବି—୧ । ଗୋଧାପଦୀ (ରାଜନିର୍ଘଣ୍ଟ; ଗୁଆଳିଲଟା
Hamsa padi ଗୋଆଳିଅଲଟା, ଏକ ପ୍ରକାର ପାର୍ବତ୍ୟ ଶାକଲତା
ସଂ. ପର୍ଯ୍ୟାୟ—ମଧୁସ୍ରବା, ହିଂସ୍ରା, —1. A creeper;
ଗୋଧାପଦୀ, ହଂସପାଦିକା, Vites Latifolia. [ ଦ୍ର—
ହଂସପାପା, କୀଟମାତା ଗୁହାଳିକ, ଏହି ଲତାର ( ସଂ. ଗୁହାଳିକ )
ତେର ପରିକ ଫାଟ ଓ ଗଛର ବକଳର ଫାଟରେ ପଶି ଏ
ଲତା ମାଡ଼େ (ଏଥିପାଇଁ ନାମ ଗୁହାଳିକ); ଏହାର ପତ୍ର
କିପରି; ପତ୍ର ଲୋମଯୁକ୍ତ । ଏହାର ପତ୍ରର ଆକାର ହଂସର
ଲିପ୍ତ ପାଦ ପରି ଥିବାରୁ ଏହାର ନାମ ହଂସପଦୀ । ଅନ୍ୟ-

ଏକ ପ୍ରକାର ବଡ଼ ଲତା (ସ. ଗୋଧାପଦୀ) ଅଛି । ଏହାକୁ ବଡ଼ ଗୁଆଳଲତା ବୋଲିଥାଏ (Vites Pedanta).
ଏହା କଟୁରସ, ଶୀତଳ, ଗୁରୁପାକ, ରସାୟନ, ଓ ବାତ, ଭ୍ରାନ୍ତି, ଅପସ୍ମାର, ଅତିସାର, ରକ୍ତଦୋଷ, ବ୍ରଣ, ବିସର୍ପ, ଭୂତାବେଶ, ଅଗ୍ନିଶ୍ରୋହଣୀ ଓ ବିଷଦୋଷର ଶାନ୍ତିକାରକ । ଏହି ପତ୍ରକୁ ବାଟ ବଥ ଉପରେ ବୋଳିଦେଲେ ବଥ ପାଚିଯାଏ ଏବଂ ଛେଦ ଭଲ ହୁଏ ।] ୨ । ହଂସରାଜ (ଦେଖ)—2. Hamsarāja (See).

ହଂସ ପର—ଦେ.ବି.—ହଂସର ଡେଣାରେ ଓ ଦେହରେ ଥିବା କୋମଳ Hamsa para ସୂକ୍ଷ୍ମ ରୋମ—The down of the swan; হাঁসেরপালক हँसकापर eider down

ହଂସପାକ ଯନ୍ତ୍ର—ସ.ବି.—ଔଷଧପାକାର୍ଥ ବ୍ୟବହୃତ ଆୟୁର୍ବେଦୋକ୍ତ ଯନ୍ତ୍ରବିଶେଷ - Hamsapāka Jantra Name of a contrivance for boiling Ayurvedic preparations.

ହଂସପାଟା(ତ)ଳ—ବୈଦେ. ଗ୍ରା. ବି—ହସ୍ପିଟାଲ୍—Ho pital. Hamsapātā(ta)la [ଉ—ସାନ ବାବୁଙ୍କର ମୁଣ୍ଡ ଫାଟିଯାଇଛି, হাঁসপাতাল ପୋଲିସ ସାନବାବୁଙ୍କୁ ହଂସପାଟାଳକୁ ପଠାଇଛି— अस्पताल ଉତ୍କଳଗୌରଣ—ସଂବାଦପତ୍ର ]

ହଂସ ପାଦ—ସ. ବି—୧ । ହଂସର ଚରଣ—1. The foot of a Hamsapāda swan. ୨ । ହିଙ୍ଗୁଳ (ହିଳାସୁଖ)—2. Red sulphide of mercury; cinnabar; vermilion. ୩ । ହଂସପାଦପର ପତ୍ରବିଶିଷ୍ଟ ଲତା ବିଶେଷ (ଏହା ଔଷଧରେ ଲାଗେ)—3. A kind of medicinal herb; Vites latifolia.

ହଂସପାଦା—ଦେ. ବିଣ. ପୁଂ (ସ. ହଂସପଦ)—ଯେଉଁ ବ୍ୟକ୍ତିର ସମଗ୍ର Hamsapādā ତଳପା ଭୂଇଁରେ ଲାଗୁଥିବାରୁ ଅସୁନ୍ଦର ଦେଖାଯାଏ—(A person) Having (ହଂସପାଦଅ—ଅଳ୍ପାର୍ଥ) the whole sole of his [ହଂସପାଦୀ, ହଂସପାଦେଇ—ସ୍ତ୍ରୀ] হাঁসপেযে feet touching the ground without having any hollow inside. हंसपादा

ହଂସପାଦିକା—ସଂ. ବି—ହଂସପଦୀ (ଦେଖ)— Hamsapādikā Hamsapadi (See)

ହଂସପାଦୀ—ସ. ବି—୧ । ହଂସପଦୀ ଜାତୀୟ ଲତା ବିଶେଷ (ରତ୍ନମାଳା) Hamsapādi 1. A species of Hamsapadi [ଦ୍ର— ଏଥିର ଅନ୍ୟ ସ. ନାମ ତ୍ରିପଦୀ—ହରେକୃଷ୍ଣ । ଦ୍ରବ୍ୟଗୁଣ]

ହଂସପୁର—ଦେ.ବି—୧ । ରାଜପରିବାରସ୍ଥ ସ୍ତ୍ରୀମାନଙ୍କ ରହିବାପାଇଁ ଘର; Hamsapura ରାଣୀ ହଂସପୁର; ଅନ୍ତଃପୁର—1. Harem. রানীমহল [ ଯଥା—ଜନ୍ମେ ଭଲେ ତାହା ପ୍ରାପ୍ୟେ ନରେ ସ୍ଥଳରେ; रानीमहल ନୃପତିଙ୍କ ସାଥ ପ୍ରେମ ହଂସପୁରେ—ରାଧାନାଥ. ଚନ୍ଦ୍ରଭାଗା ] ୨ । ଆଧୁନିକ ମୁଲତାନ—2. Modern Multan. [ ଉ—କାଶୀର, ସ୍ୱସ୍ତିକାବତୀ, ତକ୍ଷଶିଳା ପୁରୀ, ଶୀଳାଭୂର, ହଂସପୁର ଅବନର ଯେତେ—ରାଧାନାଥ, ମହାଯାତ୍ରା ]

ହଂସ ବାହନ—ସ.ବି ପୁଂ (ବହୁବ୍ରୀହି, ହଂସ ଅଟେ ବାହନ ଯାହାର)— Hamsa bāhana ବ୍ରହ୍ମା—God Brahmā. ସ. ବିଣ ପୁଂ ଯାହାଙ୍କ ବାହନ ହଂସ—Having the swan as (ହଂସବାହନା—ସ୍ତ୍ରୀ) his carrier.

ହଂସ ବାହନା(ବାହିନୀ)—ସ, ବି ସ୍ତ୍ରୀ (ହଂସ+ବାହନ+ଆ; ହଂସ ଅଟେ Hamsa bāhanā(bāhini) ବାହନ ଯାହାଙ୍କର—ବହୁବ୍ରୀହି; ହଂସ+ବହଧାତୁ + ଇନ୍+ଈ; ହଂସ ଯାହାଙ୍କର ବାହନ) ୧ । ସରସ୍ୱତୀ—1. Goddess of learning. ୨ । ବ୍ରହ୍ମାଣୀ—2. The wife of Brahmā. ସ. ବିଣ ସ୍ତ୍ରୀ—ହଂସ ବାହନର ସ୍ତ୍ରୀ ଲିଙ୍ଗ—Feminine of Hamsa bāhana.

ହଂସ ବୀଜ—ସଂ ବି—ହଂସଡିମ୍ବ — Hamsa bija Swan's egg.

ହଂସମଣି —ଦେ. ବି ପୁଂ—୧ । ଲୋକଙ୍କ ନାମ—1. A name Hamsamani given to males. ୨ । ମହାଦେବଙ୍କ ଲିଙ୍ଗ- হংসমনী ବିଶେଷ—2. Name of an image of Siba. ୩ । କଟକ ଜିଲ୍ଲାର ପରମହଂସନାଥ ମହାଦେବଙ୍କ ଡାକନାମ—3. Popular name of the image of Paramahamsanātha in the district of Cuttack.

ହଂସ ମନ୍ତ୍ର—ଦେ. ବି —୧ । ବ୍ରହ୍ମଜ୍ଞାନ ସମ୍ବନ୍ଧୀୟ ମନ୍ତ୍ର ବିଶେଷ; ସୋଽହଂ. Hamsa mantra 1. A mystic formula reciting হংসমন্ত্র knowledge about the Supreme Soul. हंसमन्त्र [ଦ୍ର—ହଂସ ମନ୍ତ୍ର ମୋତେ କହିବେ ଦେଇ, ଅଜହୁଁ ଶିଷ୍ୟକର ମୋତେ ଗୁରୁ—ପ୍ରାଚୀ ସବଚେ ଗୀତା ] ୨ । ଅଜପା ମନ୍ତ୍ର; ବିନା ଜପରେ ନିଶ୍ୱାସ ପ୍ରଶ୍ୱାସ ଦ୍ୱାରା ଯାତାୟାତ କରୁଥିବା ନାସାବାୟୁ ଜନିତ ମନ୍ତ୍ର—2. Mystic formula formed by the sound of exhalation and inhalation.

ହଂସ ମାଳା—୧ । ସ. ବି (୬ଷ୍ଠୀ ତତ)—ହଂସଶ୍ରେଣୀ; ହଂସ ସମୂହ— Hamsa mālā 1. A crowd or herd of swans. ୨ । ଅଣ୍ଡିହଂସ—2. Gander. ୩ । ବର୍ଣ୍ଣ ବୃତ୍ତ-ବିଶେଷ (ଦ୍ର. ଶ)—3. Name of a syllabic metre.

ହଂସମାଷା—ସଂ. ବି.—ମାଷପର୍ଣ୍ଣୀ (ବନ ମାସଂଷ) (ଦେଖ)— Hamsa māshā Māshaparnni (See)

ହଂସମୁଣ୍ଡି—ପ୍ରାଦେ, ବି. (ଗଡ଼ଜାତ)—ସାହାସ ମୁଣ୍ଡି (ଦେଖ) Hamsamundi Sāhāsamundi (See).

ହଂସ ଯୋଷିତ୍—ସ. ବି ସ୍ତ୍ରୀ —ହଂସୀ—A she-swan. Hamsa joshit

ହଂସ ରଥ (ଯାନ)—ସ. ବି. (ବହୁବ୍ରୀହି—ହଂସ ଅଟେ ରଥ=ବାହନ Hamsa ratha(Jāna) ଯାହାର)—ବ୍ରହ୍ମା—God Brahmā (whose vehicle is swan).

ହଂସରାଜ—ଦେ. ବି. (ସଂ. ହଂସପାଦୀ)—ଅପୁଷ୍ପକ ପର୍ଣ୍ଣାଙ୍ଗ ବିଶେଷ—
Hamsarāja (ବି—ଏହାର ଡାଙ୍ଗ କଳା ଚାର ପଡ଼; ପତ୍ର ଗୁଚ୍ଛକ
हंसराज समलपत्ती ଡାଳର ଦୁଇପାଖେ ନଡ଼ଅ ବାନ୍ଧୁଣୀରେ
ଲାଗିଥିବା ନଡ଼ଅ ପତ୍ର ପରେ ଲାଗିଥାଏ । ପତ୍ରମାନ ଅର୍ଦ୍ଧ-
ଚନ୍ଦ୍ରାକାର । ବର୍ଷା ହେଲେ ଓଦାପାଚିଲ ଓ ଇଟା କାନ୍ଥରେ
ଏ ଗୁଳ୍ମ ଜନ୍ମେ । ଏ ଗୁଳ୍ମ ଦେଖିବାକୁ ସୁନ୍ଦର; ଏଥିର
ମୂଳରୁ ଡାଳମାନ ନଡ଼ଅ ବାନ୍ଧୁଣୀ ପରି ବାହାରି ଥାଏ ।
ବଡ଼ଲୋକମାନେ ସଉକରେ ଆଣି ଏହାକୁ ବଗିଚାରେ
ଲଗାନ୍ତି । ଗୋଡ଼ ଓ ଝିକଟିକ ପଥର ଦିଆ ଜାଗାରେ ଏ ଗଛ
ଉଠେ । ବୈଦ୍ୟଙ୍କ ମତରେ ଏହା ଗରମ ଓ ଜ୍ୱରର
ଔଷଧ ଅଟେ ହି. ଶ.)—The maiden hair fern.

ହଂସରାଡି(ଳି)—ଦେ. ବି. (ସଂ. ନାମ କଳହଂସ)—ଏକ ପ୍ରକାର ଶ୍ରେଷ୍ଠ
Hamsarāḍi(ḷi) ହଂସଜାତୀୟ ଜଳଚର ପକ୍ଷୀ; କଳହଂସ—
कडहांस पनबतक Grey lag goose; Anser Ferus.
[ଉ—ହଂସ ହଂସରାଳିମାନେ ଯେ ଭାସୁଛନ୍ତି, କୃ. ଭ. ଆଦି]
[ବି—ଏହା ପ୍ଲବଗ ବର୍ଗର ୨୨ ଅଙ୍ଗୁଳ ଦୀର୍ଘ ପକ୍ଷୀ;
ମୁଣ୍ଡ କଳା; ପେଟ ଧଳା ଓ ଛିଟ ଖଇରି; ଗଳା ଲମ୍ବ; ଥଣ୍ଟ
ସିଧା ଓ ଦାନ୍ତୁଆ; ଡେଣା ସାନ; ଲାଞ୍ଜ ପ୍ରାୟ ନାହିଁ; ଗୋଡ଼
ଶ୍ରେଷ୍ଠ । ଏମାନେ ପାଣିରେ ବୁଡ଼ନ୍ତି ଓ ଡେଣା ଏବଂ ଗୋଡ଼
ଦ୍ୱାରା ପହଁରନ୍ତି । ଏମାନେ ଗ୍ରୀଷ୍ମାନ୍ତେ ଉତ୍ତର ଅଞ୍ଚଳ ଅଡ଼ୁ
ଆସି ପୋଖରୀ, ଝିଲ, ଓ ଚିଲିକା ଆଦି ହ୍ରଦରେ ଦଳ ଦଳ
ହୋଇ ପଡ଼ନ୍ତି ଓ ଗ୍ରୀଷ୍ମ ଋତୁର ପୂର୍ବରୁ ଉଡ଼ି ଚାଲି
ଯାଆନ୍ତି ।]

ହଂସରୁତ—ସଂ. ବି (୬ଷ୍ଠୀ ତତ୍)—୧ ହଂସର ଧ୍ୱନି ବା ରବ—
Hamsa ruta 1. The sound of a swan. ୨ । ସଂସ୍କୃତ
ଛନ୍ଦୋବିଶେଷ—2. Name of a Sanskrit metre.

ହଂସରୁତା(ତୀ)—ସଂ. ବିଣ. ସ୍ତ୍ରୀ (ବହୁବ୍ରୀହି—ହଂସପରି ରୁତ=ନାଦ
Hamsa rutā(tī) ଯାହାର)—ହଂସପରି କଳନାଦିନୀ—
(a woman) Having the voice resembling
(ହଂସରୁତ—ପୁଂ) that of the swan
[ବି—ଯେଉଁ ସ୍ତ୍ରୀଙ୍କ ଗଳାର ସ୍ୱର ବା କଙ୍କିଣୀର ନାଦ,
ହଂସନାଦ ପରି କବିମାନଙ୍କ କାନକୁ ଲାଗେ, ତାଙ୍କୁ
ହଂସରୁତା କହନ୍ତି; କିନ୍ତୁ ପୁରୁଷମାନଙ୍କୁ କବିମାନଙ୍କର ଏ
ବିଶେଷଣ ଦେବା ଶୁଣା ନାହିଁ ।]

ହଂସଲି—ଦେ. ବି (ସଂ. ଅଂଶ=କାନ୍ଧ ଓ ଲା ଧାତୁ ଗ୍ରହଣ କରିବା)—
Hamsali ୧ । ରୌପ୍ୟ ବା ସ୍ୱର୍ଣ୍ଣର ଅର୍ଦ୍ଧଚନ୍ଦ୍ରାକାର କଣ୍ଠାଭରଣ
हँसुली, हँसली हँसली ବିଶେଷ; ହଂସୁଲି (ଇତ୍ୟାଦି) (ଦେଖ)—
A crescent-shaped ornament for the
neck. (ବି—ହାର ଓ ମାଳ ଗୁନ୍ଥା ହୋଇଥାଏ; କିନ୍ତୁ
ହଂସଲି ଖଣ୍ଡିଏ ଧାତୁରେ ନିର୍ମିତ । ଏହା ମୁସଲମାନ
ସ୍ତ୍ରୀଲୋକମାନେ ବ୍ୟବହାର କରନ୍ତି ।) ୨ । ହଂସୁଳି ହାଡ଼—
2. Collar bone; clavicle.

ହଂସଲୋମଶ—ସଂ. ବି.—କାସୀସ (ରାଜନିର୍ଘଣ୍ଟ); ହିରାକସ—Green
Hamsa lomaśa sulphate of iron.

ହଂସ ଲୋହକ—ସଂ ବି.—ପିତ୍ତଳ (ହେମଚନ୍ଦ୍ର)—Brass.
Hamsa lohaka

ହଂସ ସୁତ (ତନୟ)—ସଂ. ବି (୬ଷ୍ଠୀ ତତ୍) (ତନୟ) ଯମ—Jama.
Hamsa suta (tanaya)

ହଂସ ସୁତା (ତନୟା)—ସଂ. ବି (୬ଷ୍ଠୀ ତତ୍) ଯମୁନାନଦୀ—The river
Hamsa sutā(tanayā) Jumna.

ହଂସା—ଦେ ବି. (ସଂ. ହଂସ= ପ୍ରାଣ)—୧ । ପ୍ରାଣ; ଜୀବନ—
Hamsā 1. Life. ୨ । ପ୍ରାଣବାୟୁ—2. Vital air;
श्वास प्राणवायु; हँसा breath of life. ୩ । ଧୀରଜ;
ଧୈର୍ଯ୍ୟ—3. Patience. ପ୍ରାଦେ. ବି. (ବସ୍ତର)—
ବେଁସ, ମୁନ୍ଦୁରା—Rude reed mat.

ହଂସା(ସେ)ଇବା—ପ୍ରାଦେ (କଟକ ସହର ଇତର ବ୍ୟବହୃତ) କ୍ରି—
Hamsā(se)iba ହସାଇବା—To make one laugh.

ହଂସା ଉଡ଼ା—ଦେ. ବିଣ—ଯହିଁରେ ହଂସା ଉଡ଼ଯାଏ; ଅତ୍ୟନ୍ତ କ୍ଳାନ୍ତି-
Hamsā urḍā ଜନକ—Very toilsome.
भयानकशक्त हँसउड़ानेवाला

ହଂସା ଉଡ଼ିବା—ଦେ. କି—୧ । ଅତି କ୍ଷୁଧାର୍ତ୍ତ ବା ତୃଷାର୍ତ୍ତ ହେବା;
Hamsā urḍibā କ୍ଷୁଧା ଓ ତୃଷାରେ ଓଷ୍ଠାଗତପ୍ରାଣ ହେବା—
प्राणबेविदेयाओया हँसाउड़ना 1. Being in extreme
pang for thirst and hunger. ୨ । ଅତ୍ୟନ୍ତ
ଶୋଷ କରିବା—2. Feeling extreme
thirst. ୩ । କଣ୍ଠାଗତ ପ୍ରାଣହେବା; ମୃତପ୍ରାୟ ହେବା—
3. Being about to die. ୪ । ଧୈର୍ଯ୍ୟଲୋପ ହେବା;
ଧୀରଜ ଛାଡ଼ିଯିବା—4. Loss of patience
[ଉ—ସେ ବଚନ ଶୁଣି ଦାସଙ୍କ ଉଡ଼ିଲା ହଂସା—
ରାଧାନାଥ—ଇନ୍ଦ୍ରବନ୍ଧୁ)—୫ । ଅଣନିଶ୍ୱାସ ହେବା—
5. Being out of breath.

ହଂସାଙ୍ଘ୍ରି—ସଂ. ବି—୧ । ହଂସପାଦ (ଦେଖ)—1. Hamsapāda
Hamsāṁghri (See). ୨ । ହିଙ୍ଗୁଳ (ଦେଖ)—
2. Vermilion.

ହଂସାଣ୍ଡ—ସଂ. ବି. ୬ଷ୍ଠୀ ତତ୍; ହଂସ+ଅଣ୍ଡ) ହଂସ ଡିମ୍ବ—
Hamsāṇḍa Swan's egg.

ହଂସାଧରା—ପ୍ରାଦେ. ବି. (ସମ୍ବଲପୁର)—କୁସ୍ତି;—କସରତ—
Hamsādharā Athletics; athletic feat.

ହଂସା ଧରିବା—ପ୍ରାଦେ. କି (ସମ୍ବଲପୁର)—କୁସ୍ତି କରିବା—
Hamsā dharibā To perform athletic feats.

ହଂସାବଳୀ—ସଂ. ବି (୬ଷ୍ଠୀ ତତ୍)—ହଂସମାଳା (ଦେଖ)—
Hamsābaḷi Hamsamāḷā (See)

ହଂସାଭିଖ୍ୟ—ସଂ. ବି (ହଂସପରି ଅଭିଖ୍ୟା=ସୌନ୍ଦର୍ଯ୍ୟ ଯାହାର)—ରୂପ୍ୟ;
Hamsābhikhya ରୂପା (ହେମଚନ୍ଦ୍ର)—Silver.
(ହଂସାଭରବ୍ୟ—ଅନ୍ୟରୂପ)

ହଂସାମୁଣ୍ଡି—ପ୍ରାଦେ. ବି (ଗଞ୍ଜାମ)—ଶଗଡ଼ର ଦୁଇ ଦଣ୍ଡାର ଅଗମୁଣ୍ଡକୁ
Hamsāmuṇḍi ଯୋଡ଼ବା କାଷ୍ଠଖଣ୍ଡ, ଯହିଁରେ ଜୁଆଳି ବାନ୍ଧନ୍ତି
(କଡ଼)—A pin attached to the front ends

of the two poles of a cart to which the yoke is tied.

ହଂସାରୂଢ଼—ସଂ, ବିଣ. ପୁଂ (୮ମ୍ଯା ତତ୍) —ହଂସ ଉପରେ ଚଢ଼ିଥିବା—
Hamsārurdha Riding on a swan. ବି—ବ୍ରହ୍ମା— Brahmā.
•(ହଂସାରୂଢ଼ା—ସ୍ତ୍ରୀ)

ହଂସାରୂଢ଼ା—ସ. ବି. ସ୍ତ୍ରୀ—୧ । ସରସ୍ୱତୀ—1. The Goddes of
Hamsārurdhā learning. ୨ । ବ୍ରହ୍ମାଣୀ—2. The wife of Brahmā.
ସ. ବିଣ. ସ୍ତ୍ରୀ—ହଂସାରୂଢ଼ର ସ୍ତ୍ରୀଲିଙ୍ଗ—
Feminine of Hamsārurdha.

ହଂସାଳି—ସଂ. ବି (୬ଷ୍ଠୀ ତତ୍)—୧ । ହଂସସମୂହ—1. A brood
Hamsāli of swans. ୨ । ୩୭ ମାତ୍ରା ବିଶିଷ୍ଟ ଛନ୍ଦୋବିଶେଷ —2. A Sanscrit metre of 37 syllables.
[ଦ୍ର—ଏଥିରେ ବଂଶମାନା ଉପରେ ଯଗଣତେ ଓ ଶେଷରେ ୧ ଯ ଗ ଣ ଥାଏ (ଛ-ପ୍ର)]

ହଂସି— ପ୍ରାଦେ. (କଟକ ସହର ଇତର ବ୍ୟବହୃତ) ବି (ଭୁଲ. ହୁ. ହଂସୀ)
Hamsi (ସଂ ହସ୍ ଧାତୁ)—୧ । ହାସ୍ୟ; ହସ—1. Laughter.
୨ । ହସିବା—2. Laughing. ଦେ. ବି—୧ । ଏକ ପ୍ରକାର ତନ୍ତି ଜାତି—1. A caste of weavers.
୨ । ହଂସ ବା ହଂସନାଥର ଆଦରାର୍ଥକ ଡାକନାମ—2. Nickname for calling Hamsanātha in fondness.
(ହଂସୁ, ହଂସେଇ—ଆଦରାର୍ଥକ ଡାକନାମ)
(ହଂସ ଅ, ହଂସୁଆ— ଅନାଦରାର୍ଥକ ଡାକନାମ)

ହଂସିଆ—ଦେ. ବି—୧ । ଅର୍ଦ୍ଧଚନ୍ଦ୍ରାକାର ଧାରୁଆ ଦାଆ—
Hamsiā 1. Crescent-shaped sharp scythe. ୨ । କାସ୍ତେ ହଂସ ବା ହଂସନାଥ ନାମକ ବ୍ୟକ୍ତିର ଅନାଦରାର୍ଥକ ଡାକ
हंसु(सि)आ ନାମ—2. Nickname for Hamsanātha in familarity. ୩ । କଞ୍ଚା ମାଟିକୁ କାଟିବାପାଇଁ ବ୍ୟବହୃତ କୁମ୍ଭାରଙ୍କର ଅର୍ଦ୍ଧଚନ୍ଦ୍ରାକାର କତୁରୀ—3. A crescent-shaped bill hook used by potters to cut wet clay. ୪ । ଚମଡ଼ାକୁ ଚିକ୍କଣ ଚକ୍‌କଣ କରିବାରେ ବ୍ୟବହୃତ ମୋଚିମାନଙ୍କର କତୁରୀ—4. A kind of bill hook used by cobblers to cut or smooth leather. ୫ । ହାତୀର ଅଙ୍କୁଶର ମୁନିଆ ଅଗ ସଙ୍ଗେ ଲାଗିଥିବା ବଙ୍କା ଅଂଶ—5. The bent portion attached to the pointed edge of an elephant's goad.

ହଂସିକା—ସଂ. ବି (ହଂସକ+ଆ)—ହଂସୀ (ଶବ୍ଦରତ୍ନମାଳା)—
Hamsikā A she swan.

ହଂସିଖୁସି— ପ୍ରାଦେ. (କଟକ ସହର ଇତର ବ୍ୟବହୃତ) ବି—୧ । ହାସ୍ୟ
Hamsikhusi ଓ ଫୌତୁକ; ହାସ୍ୟ ଓ ଆନନ୍ଦ—1. Laugh and joy. ୨ । ଉଲ୍ଲାସ; ମଉଜ—2. Merriment
୩ । ଠଟ୍ଟାତାମସା—3. Jesting and wittisms.

ହଂସିବା—ପ୍ରାଦେ. କ୍ରି (କଟକ ସହର ଇତର ବ୍ୟବହୃତ ଭାଷା; ସଂ. ହସ
Hamsibā ଧାତୁ, ଭୁଲ. ହୁ. ହଂସନା)—୧ । ହସିବା; ହାସ୍ୟ କରିବା—1. To laugh. ୨ । ଉପହାସ କରିବା—
2. To deride at. ୩ । ଥଟ୍ଟା କରିବା—
3. To jest.

ହଂସୀ—ସଂ. ବି ସ୍ତ୍ରୀ (ହଂସ+ଈ)—୧ । ସ୍ତ୍ରୀ ହଂସ; ମାଈ ହଂସ—1. A
Hamsi she-swan. ୨ । ଦ୍ୱାବିଂଶତ୍ୟକ୍ଷରପାଦ ଛନ୍ଦୋବିଶେଷ—2. Name of a Sanskrit metre of 22 letters. [ଦ୍ର—ଏଥିର ପ୍ରତ୍ୟେକ ଚରଣରେ ୨ ମଗଣ, ୧ ତଗଣ, ୩ ନଗଣ, ୧ ସଗଣ ଓ ୧ ଗୁରୁବର୍ଣ୍ଣ ଥାଏ (ଛ, ଶ)]
ଦେ. ବି—ହଂସି (ଦେଖ)—Hamsi (See)

ହଂସୁଆ—ଦେ. ବି—୧ । କଟକ ଜିଲ୍ଲାର ପ୍ରାକୃତିକ ଜଳଧାରକୁ
Hamsuā ବଙ୍ଗୋପସାଗରରେ ବୋହାଇଥିବା ଏକ ନୈସର୍ଗିକ ନାଳ —1. A natural drainage channel draining the water of a part of the Cuttack dist. into the sea ୨ । ପ୍ରାଚୀନ ବନ୍ଦର ବିଶେଷ—2. The name of an old port. ୩ । ହଂସ ବା ହଂସନାଥର ଅନାଦରାର୍ଥକ ଡାକ ନାମ—3. Nickname of Hamsanātha. ୪ । ହଂସିଆ (ଦେଖ)—
4. Hamsiā (See)

ହଂସୁଡ଼ା(ରା)—ପ୍ରାଦେ (କଟକ ସହର; ଇତର ବ୍ୟବହୃତ) ବିଣ. ପୁଂ—
Hamsurdā(rā) ହସୁଡ଼ା (ଦେଖ)—Hasurdā (See)
(ହଂସୁଡ଼ୀ[ରି]—ସ୍ତ୍ରୀ) हंसौड़(र)

ହଂସୁଳି—ଦେ. ବି—୧ । ହଂସଳି (ଦେଖ)—1. Hamsali (See)
Hamsuli ୨ । ହଂସଲୋମ ନିର୍ମିତ ଶେଯ—2 A quilt made of eider down.
হাঁসের পালকের গদি ବିଣ—ହଂସଲୋମ
परकातोसक ନିର୍ମିତ—Made of eider down.

ହଂସୁଳି ତୁଳି—ଦେ. ବି (ସ. ହଂସ ଓ ତୁଳା)—ତୁଳାପରି କୋମଳ
Hamsuli tuli ହଂସ ଲୋମ—1. The down of the swan, soft as cotton. ୨ । ହଂସ-
হাঁসের নরম পালক
हंसका पर ଲୋମପୂର୍ଣ୍ଣ ଶେଯ—2. A quilt of eider down.
হাঁসের পালকের গদি (ଯଥା—ଶଯ୍ୟକୁ ଥିବ ହଂସଳି ତୁଳି— ବକ୍ଷସୁନ୍ଦରୀ ।)
परकातोसक

ହଂସୁଳି ହାଡ଼—ଦେ. ବି (ସ. ଅଂସ+ଇ. ଅସ୍ଥି)—ବେକର ତଳ
Hamsuli hārda ପାଖରେ କାନ୍ଧ ତଳେ ସାମନାରେ ଥିବା ଦୁଇ କଣ୍ଠାସ୍ଥି ଧାଡ଼ର ଧନୁାକାର ହାଡ଼—Collar bone; clavicle.
हंसोहाड़, हसुलि

ହଂସେଇ - ଦେ. ବି. ପୁଂ—(ଆଦରାର୍ଥକ) ହଂସନାଥର ଡାକ ନାମ—
Hamsei Nickname of Hamsanātha in fondness.

ହଂସେଇବା—ପ୍ରାଦେ (କଟକ ସହର ଇତର ବ୍ୟବହୃତ ଭାଷା; ଭୁଲ. ହୁ.
Hamseibā ହଂସାନା) ଣିଚ୍‌କ୍ରି—ହସାଇବା—To cause to laugh.

ହଂସୋଦକ—ସଂ. ବି (କର୍ମଧା; ହଂସ=ଉତ୍କୃଷ୍ଟ+ଉଦକ)—୧ । ସ୍ୱଚ୍ଛ-
Haṁsodaka ପାଣି; ନିର୍ମଳ ଜଳ—1. Excellent or pure water ୨ । ଉଷୋଜଳ; ପାନୀୟ ବିଶେଷ—2. A kind of drink. [ଦ୍ର—ନୂଆ ମାଟିହାଣ୍ଡିରେ ପାଣି ରଖି ତାକୁ ଦିନରେ ଖରାରେ ଓ ରାତିରେ ଚନ୍ଦ୍ରକିରଣରେ ମୃଦୁପବନ ବହୁଥିବା ସ୍ଥାନରେ ରଖି ଏଥିରେ ଅଳାଇଚ ଗୁଣ୍ଡା ଆଦି ଦେଇ ଏହି ପାନୀୟ ପ୍ରସ୍ତୁତ କରାଯାଏ; ଏହା ଶ୍ରମ, ପିତ୍ତ, ତୃଷ୍ଣା, ଦାହ, ବିଷଦୋଷ, ମୂର୍ଚ୍ଛା ଓ ମେଦୋତ୍ପାତରେ ଉପକାରୀ—ରାଜନିର୍ଘଣ୍ଟ ।] ୩ ।( ହଂସ+ଉଦକ ଶରତକାଳରେ ଅଗସ୍ତ୍ୟ ନକ୍ଷତ୍ରୋଦୟ ଦ୍ୱାରା ନିର୍ମଳୀକୃତ ଜଳ (ବୈଦ୍ୟଶାସ୍ତ୍ର) Water turned clear in autumn.

ହଂ ହୋ—ସଂ. ଅ—(ଜିଜ୍ଞାସାର୍ଥକ, ଜୁଗୁପ୍ସାର୍ଥକ, ଆହ୍ୱାନାର୍ଥକ, ପ୍ରଶ୍ନାର୍ଥକ)
Ham ho ସମ୍ବୋଧନରେ ବ୍ୟବହୃତ ( ଶବ୍ଦରତ୍ନାବଳୀ ); ହଇ ହେ ! ହେ ! ହୋ ! ଆହେ !—(Interjection) Oh ! (used in interrogation; addressing and assumption).

ହଃ—ଦେ. ଅ—୧ । ଶଗଡ଼ ଓ ହଳରେ ଲଗିଥିବା ବଳଦଙ୍କୁ ଠିଆ
Hah କରାଇବା ପାଇଁ ଗୁଳକର ଡାକ—1. (Interjection) A
(ହଃହଃ—ଅନ୍ୟରୂପ) sound made by the driver in
ଥାମ୍; ହ directing the cart or plough bullocks to stop; Stop !—ପ୍ରାଦେ ( ପୁରୀ )ଅ —୧ । ହଁ (ସମ୍ମତି ବା ଅନୁମୋଦନାର୍ଥକ)—1. Yes. ୨। ପ୍ରାଦେଶିକ (ଗଡ଼ଜାତ) ଅ—ବଳଦଙ୍କୁ ଚଳାଇବା ପାଇଁ ଉଚ୍ଚାରିତ ଶବ୍ଦ) ଡି ଡି !—A sound used by drivers to goad draft bullocks to advance.

ହଃ ! ହଃ ! ଡ଼ି ! ଡ଼ି !—ଦେ. ଅ ( ସହଚର )—ଗାଡ଼ିର ଓ ହଳର
Hah ! bah ! ḍi ! ḍi ! ବଳଦଙ୍କୁ ଯଥାକ୍ରମେ ଠିଆ କରାଇବା
ଃ ! ଡ଼ୀ, ଡ଼ୀ ! (ହଃ ହଃ) ଓ ଚଳାଇବା ପାଇଁ (ଡ ଡ) ବ୍ୟବହୃତ
ହ , ହ ! ଆବ, ଅବ ! ଶବ୍ଦ—Interjections used in stopping and moving draft bullocks respectively.

ହଁ—ଦେ. ଅ. (ସଂ. ହଂ)—୧ । ପ୍ରଶ୍ନର ସମ୍ମତି ବା ଅନୁମୋଦନ ସୂଚକ
Hañ ଉତ୍ତର (ଅର୍ଥ—ପ୍ରଶ୍ନକାରୀ ଯାହା କହୁଛନ୍ତି ତହିଁରେ
(ନାଁ, ନାହିଁ, ହିଁହୁ; ଏହେଁ—ବିପରୀତ) ମୋର ସମ୍ମତି ଅଛି ତାହାହିଁ ଯଥାର୍ଥ ଅଟେ—1. (Interjection) Yes; all right; (denoting approval or agreement). ୨ । କଥା କହୁଥିବା ବ୍ୟକ୍ତିଙ୍କର କଥା କହୁଁ କହୁଁ ହଠାତ୍ ଥମିଯିବା ସମୟରେ ଶ୍ରୋତା ତାଙ୍କ କଥାକୁ ମନ ଦେଇ ଶୁଣୁ ଅଛନ୍ତି ଓ ବକ୍ତା ଯେଉଁ କଥା କହୁଥିଲେ ତାହା କହନ୍ତୁ, ଏହା ବକ୍ତାଙ୍କୁ ଜଣାଇବାପାଇଁ ଶ୍ରୋତାଙ୍କ ଉଚ୍ଚାରିତ ବାକ୍ୟ । ହଁ (ଅର୍ଥ - ଅଚ୍ଛା; ତା ପରେ କଅଣ କହୁଥିଲ କହନ୍ତୁ ) 2 Yes; go on; well then; (an interjection used by hearer when a speaker takes breath, indicating that the hearer is attentive and requesting the speaker to continue. ୩ । (କୌଣସି ବ୍ୟକ୍ତି ଅନ୍ୟ ବ୍ୟକ୍ତିଙ୍କୁ ନାମ ଧରି ଡାକୁଥିଲେ ୨ୟ ବ୍ୟକ୍ତି ୧ମ ବ୍ୟକ୍ତିଙ୍କୁ ଜବାବ ଦେବାରେ ବ୍ୟବହୃତ ପଦ)—ମୁଁ ତୁମ୍ଭ ଡାକ ଶୁଣିଲିଣି—3.Yes (used in responding to a call ), I am hearing your call. ୪ । କେତେକ ସମୟ ପୂର୍ବରେ ବୋଲି ଯାଇଥିବା କଥାକୁ ପୁଣି ଆରମ୍ଭ କରିବା ସମୟରେ ବ୍ୟବହୃତ ପଦ—4. Now to continue ; now then ; (a word used before continuing a discourse which had been left unfinished sometime before ). ୫ । ପ୍ରଶ୍ନୋତ୍ତର, ଆଜ୍ଞାପାଳନ, ସମ୍ମତି, ଅଙ୍ଗୀକାର,ପ୍ରତିଜ୍ଞା, ଅନୁମୋଦନ ସୂଚକ ଶବ୍ଦ—5. Yes; it is so; ( a word used in replying to a question; obeying an order, agreeing, promising, vowing and supporting a matter. ). ୬ । ଅନ୍ୟ ବ୍ୟକ୍ତିଙ୍କ ଦୃଷ୍ଟି ଆକର୍ଷଣ କରିବାପାଇଁ ବ୍ୟବହୃତ ଶବ୍ଦ—6. Look here; Here; hear hear ! (interjection used in drawing another person's attention ). ୭ । ବକ୍ତାଙ୍କର ପୂର୍ବବିସ୍ମୃତ ବିଷୟକୁ ଉତ୍ଥାପନ କରିବା ଉପଲକ୍ଷରେ ବ୍ୟବହୃତ ଶବ୍ଦ—7. A word used to introduce a matter which the speaker had forgotten to mention before. [ଦ୍ର—ଏହି ଶବ୍ଦ ସଙ୍ଗେ ରେ, ଲୋ, ହେ, ହୋ, ବେ ଆଦି ଶବ୍ଦ ମଧ୍ୟ ସମ୍ବୋଧନରେ ବ୍ୟବହୃତ ହୁଏ ] ୮ । କଥା କହିବା ସମୟରେ କଥିତ ବାକ୍ୟର ଶେଷରେ ପ୍ରଯୁକ୍ତ ଧମକାଣି—8. A word used in threatening after the finish of a a sentence.

ହଁକ୍—ପ୍ରାଦେ (ଗଡ଼ଜାତ) ବି —୧ । ଈର୍ଷା—1. Envy; jealousy;
Hañk ୨ । ନଜର; ଦୃଷ୍ଟି—2 Look.

ହଁ କରିବା—ଦେ. କ୍ରି—୧ । କୌଣସି ପ୍ରସ୍ତାବରେ ରାଜି ହେବା; ସମ୍ମତ
Hañ kariba ହେବା—1. To agree to. [ଦ୍ର—
ହଁ କବା ଅକାର ହକାର ମକାରେ, ଶବଦ ଉଗ୍ର ହଁ କରେ
हाँ करना ଜଗନ୍ନାଥ ଭାଗବତ ] ୨ । ଆପଣାକୁ ଅନ୍ୟବ୍ୟକ୍ତି ଡାକୁଥିଲେ ଜବାବ ଦେବା—2. To respond to a call. ୩ । କଥା କହୁଥିବା ବ୍ୟକ୍ତି ମଝିରେ ମଝିରେ ଥମି ପଡ଼ିଲେ ତାଙ୍କୁ କଥା କହିବା ପାଇଁ 'ହଁ' ଶବ୍ଦଦ୍ୱାରା ପ୍ରବର୍ତ୍ତନା ଦେବା—3. To speak 'yes' at intervals to persuade a speaker to speak on while he stops to take breath at intervals.

ହିଁକସ୍—ପ୍ରାଦେ· (ଗଞ୍ଜାମ)ବ—୧। ଈର୍ଷା—1. Envy; jealousy.
Hañkes ୨। ଅକଳ—2. Grudge; spite.

ହିଁକଂ—ବୈଦେ. ବ—ନାମ—ହିଁକଂ (ଦେଖ)—
Hañkam Hankam (See)

ହିଁକା—ଦେ. ବ—ହଙ୍କା (ଦେଖ)—
Hañkā Hañka (See)

ହିଁକା (କେ) ଇବା—ଦେ. କ୍ରି—ହଙ୍କାଇବା (ଦେଖ)—
Hañkā (ke) ibā Hañkāibā (See)

ହିଁକାଇ ଦେବା—କ୍ରି—ହଙ୍କାଇ ଦେବା—
Hañkāi debā Hañkāi debā.

ହିଁକା ହିଁକି—ଦେ. ବ—ହଙ୍କାହଙ୍କି (ଦେଖ)—
Hañkā hañki Hañkāhañki (See)

ହିଁଚଁ—ଦେ· ଅ—୧। ହୁଁ ଚୁଁ; ହିଁଚୁଁ; ଇତସ୍ତତଃ ଗତି କରିବା—1.
Hañchañ Moving to and fro. ୨। କୌଣସି କଥାରେ
ଉଁ ଚୁଁ ଚୁ ପ୍ରତ୍ୟୁତ୍ତର ଦେବା—2.Replying to anything.
୩। ପ୍ରଶ୍ନର ଉତ୍ତର ଦେବା—3. Replying to a
question. ୪। ଆପତ୍ତି କରିବା—4. Objecting
to something. ୫। ଇତସ୍ତତଃ—5. To and fro.

ହିଁଚଁ କରିବା—ଦେ କ୍ରି—୧। ପ୍ରତ୍ୟୁତ୍ତର ଦେବା—1. To give
Hañchañ karibā a reply. ୨। ଆପତ୍ତି କରି କହିବା
ଉଁଚୁଁ କରନା —2. To raise any objection [ଯଥା—
चू करना ସାଥରାଣୀ ଗାଳି ଦେଲାବେଳେ ଶୁକରର ହିଁଚଁ କରିବାର
କୋ ନାହିଁ ]।

ହିଁଚଁ ହେବା—ଦେ.କ୍ରି - ୧। ଇତଃସ୍ତତଃ ହେବା—1.To move to
Hañ chañ hebā and fro. ୨। କୌଣସି ସ୍ଥାନରୁ ଟିକିଏ ମାତ୍ର
ଚଂବଂକରା ବିଚଳିତ ହେବା—1 To move even slightly
इधरउधरहोना from a place.

ହିଁଡ଼ା—ପ୍ରା. ଦେ. (ଗଡ଼ଜାତ) ବ—ଭୂମିରେ ପୋତା ହୋଇଥିବା ଧନ—
Hañrdā Buried treasure.

ହିଁଟା—ପ୍ରାଦେ.୧।(ସମ୍ବଲପୁର)ସର୍ବନାମ(କଥା କହିବାବେଳେ କୌଣସି
Hañtā ବସ୍ତୁର ବା ବିଷୟର ନାମ କଥକଙ୍କ ମନେ ନ ପଡ଼ିଲେ
ସେହି ବସ୍ତୁକୁ ଲକ୍ଷ କରି ବ୍ୟବହୃତ; ଭୁଲନା
କର ଖୋରଧା ଅଞ୍ଚଳରେ ଏହା)—ଏହା; ତାହା; ସେହି
ବସ୍ତୁ; ସେହିଟା; ଏହିଟା—That matter or that
thing (whose name does not occur to
my mind now).
ପ୍ରାଦେ(ପାଟଣା) ଅ—ଜଣାଏ ତ; ବୋଧହୁଏ—2.Meseems.

ହିଁ ଭରିବା—ଦେ. କ୍ରି.—ହିଁ କରିବା—To agree to. [ଯଥା—
Hañ bharibā ବାପା ସାହୁଙ୍କ ...ରେ ହିଁ ଭରିଲେ—
हाँ बरा हाँकरना ଫକୀରମୋହନ ଗଳ୍ପସ୍ୱଳ୍ପ ]

ହିଁ ମାରିବା—ଦେ. କ୍ରି.—ହିଁ କରିବା (ଦେଖ)—
Hañ māribā Hañ karibā (See)
हाँ हाँ बरा हाँ मारना

ହିଁ ଯେ—ଦେ.ଅ.—୧। ହିଁ, କିନ୍ତୁ—1. Yes, but. ୨। ହିଁ,
Hañ je ମଧ୍ୟ—2. Yes also.
हाँकिन्तु हाँतो .हाँभी [ଯଥା—ପ୍ରଶ୍ନ—ଠାକୁର ଘରେ ତୁ ପଶିଥିଲୁ ?
ଉତ୍ତର—ହିଁ ଯେ, ମୁଁ କଦଳୀ ଖାଇ ନାହିଁ।
ପ୍ରଶ୍ନ—ତୁ ପୁସ୍ତକ ଏକୁଟିଆ ଯିବୁ ?
ଉତ୍ତର—ହିଁ ଯେ, ମୋ ଅଣ୍ଟାରେ ପଇସା ଥିଲେ
ମତେ ସାଙ୍ଗ ମିଳିବେ।]
[ଦ୍ର—ପ୍ରଶ୍ନର ଉତ୍ତରଦାତା ସମ୍ମତିସୂଚକ 'ହିଁ
ପ୍ରୟୋଗ କରି ସାରି ଆଉ କିଛି କଥା କହିବାର ଥିଲେ
'ହିଁ' ସଙ୍ଗେ 'ଯେ' ଲଗାନ୍ତି।]

ହିଁୟ—ପ୍ରାଦେ. (ଭତଡ଼ୀ. ଭାଷା) ସର୍ବ—ସେ—He.
Hañya

ହିଁୟ ଠାନେ—ପ୍ରାଦେ. (ଭତଡ଼ୀ ଭାଷା) ସର୍ବ—ସେଠାରେ—There.
Hañya thāne

ହିଁୟ ଭିତର—ପ୍ରାଦେ. (ଭତଡ଼ୀଭାଷା) ସର୍ବ—ସେମାନଙ୍କ ଭିତରୁ—
Hañya bhitar From among them; of them.

ହିଁୟମନ—ପ୍ରାଦେ. (ଭତଡ଼ୀ ଭାଷା) ସର୍ବ—ସେମାନେ—They.
Hañyaman (ହିଁୟମନକେ=ସେମାନଙ୍କୁ)

ହିଁରେ—ଦେ. ଅ—ହଇରେ (ଦେଖ)—Haire (See).
Hañre

ହିଁଲୋ—ଦେ. ଅ—ହଇଲୋ (ଦେଖ)—Hailo (See).
Hañlo

ହିଁସ୍ରା—ପ୍ରାଦେ (ଛତିଶ ଗଡ଼) ବ—ହାତୁଡ଼ି—Hammer.
Hañsrā

ହିଁସ (ଇତ୍ୟାଦି)—ଦେ. ବ. (ସଂ. ହଂସ)—ହଂସ ଇତ୍ୟାଦି (ଦେଖ)—
Hañsa (etc) Hamsa etc (See). ପ୍ରାଦେ. (କଟକ
ସହର ଭିତର ବ୍ୟବହୃତ)—ହସ (ଦେଖ)—2. Hasa
(See)

ହିଁସଗେଲ—ପ୍ରାଦେ (ଗଡ଼ଜାତ) ବ.—କ୍ରୀଡ଼ାକୌତୁକ—
Hañsagel (ହିଁସ କୌତୁକ—ଅନାରୂପ)· Merriment
sport.

ହିଁସରା—ପ୍ରାଦେ. (ଗଡ଼ଜାତ) ବିଣ—ଯେ ବେଶି ବା ସର୍ବଦା ହସେ;
Hañsarā ହସୁରା—Given to laughing much
(ହିଁସରୀ - ସ୍ତ୍ରୀ)

ହିଁସରେଲ—ପ୍ରାଦେ. (ଗଡ଼ଜାତ) ବ—ହଂସରାଜ—Grey
Hañsarel lag goose.

ହିଁସା(ସି)—ପ୍ରାଦେ (ଗଡ଼ଜାତ) ବ (ଭୁଲ. ହି. ହଂସୀ)—ହସ; ହାସ୍ୟ—
Hañsā(si) Laughter.

ହିଁସା(ସେ)ଇବା—ପ୍ରାଦେ. (କଟକ ସହର ଭିତର ବ୍ୟବହୃତ) କ୍ରି—
Hañsā(se)ibā ହସାଇବା (ଦେଖ)—Hasāibā (See).

ହିଁସାଧରା—ପ୍ରାଦେ (ସମ୍ବଲପୁର) ବ.—କୁସ୍ତି; କସରତ; ବ୍ୟାୟାମ—
Hañsādharā Athletics; physical exercises.

ହଁସିବା—ପ୍ରାଦେ (କଟକ ସହର ଇତର ବ୍ୟବହୃତ) କ୍ରି (ସଂ. ହସ୍ ଧାତୁ)
Hañsibā —ହସିବା (ଦେଖ)—Hasibā (See).

ହାଁ ହାଁ—ଦେ. ଅ. (ସହଚର)—ସମ୍ମତିସୂଚକ ଶବ୍ଦ ଦ୍ୱୟ—Two
Hāñ hāñ हाँ हाँ words denoting consent.

ହକ୍—ବୈଦେ. ବି (ଅ)—୧ । ସମ୍ପତ୍ତି ଆଦିରେ ସ୍ୱତ୍ୱ—1. Right
Hak in property etc. ୨ । ପ୍ରାପ୍ୟ ଅଧିକାର—
हक हक्क 2. Due right. ୩ । କର୍ତ୍ତବ୍ୟ କାର୍ଯ୍ୟ—3. Duty.
୪ । ନ୍ୟାଯ୍ୟ କଥା—4. Right thing. ୫ । ଉଚିତ ବିଷୟ—5. Proper thing. ବୈଦେ. ବିଣ (ଅ)—୧ । ନ୍ୟାଯ୍ୟ; ନ୍ୟାଯ୍ୟାନୁମତ; ନ୍ୟାୟସଙ୍ଗତ; (ଦେଖ, ନାହକ୍—ବିପରୀତ-ଶବ୍ଦ) ପ୍ରକୃତ —1. Just. ୨ । ପ୍ରାପ୍ୟ—2. Due ୩ । ଉଚିତ; ସଙ୍ଗତ—3. Proper; reasonable.

ହକ କଉଡ଼ି—ଦେ. ବି—(ଅ. ହକ୍; ସ. କପର୍ଦ୍ଦିକ)—୧ । ନ୍ୟାଯ୍ୟାର୍ଜିତ
Hak kaurdi ଅର୍ଥ—1. Well-earned money. ୨ ।
हकेरधन हककौड़ी ଉଚିତ୍ ଦାମ୍—2. Due price. ୩ । ଦ୍ରବ୍ୟାଦିର ପ୍ରକୃତ ଦାମ୍—3. Actual price. ୪ । ପ୍ରକୃତରେ ଦିଆଯାଇଥିବା ମୂଲ୍ୟ—4. Price actually paid or paid in cash. ୫ । ଉଚିତ ପ୍ରାପ୍ୟ; ହକ୍ ପାଉଣା—5 Just due.

ହକ୍ କଥା—ଦେ. ବି (ଅ. ହକ୍; ସ. କଥା)—୧ । ନ୍ୟାଯ୍ୟ ସଙ୍ଗତ
Hak kathā ବାକ୍ୟ—1 Just words. ୨ । ଉଚିତ କଥା
ठिक् कथा, हक् कथा —2. Proper words. ୩ । ନ୍ୟାୟ
हक बात ସଙ୍ଗତ ବିଷୟ—3. Just matter. ୪ । ଉଚିତ ବିଷୟ—4. Proper matter.

ହକ୍ କହିବା—ଦେ. କ୍ରି—ଉଚିତ କଥା କହିବା—
Hak kahibā To speak what is proper.
उचित कथा बला [ଯଥା—ହକ୍ କହିବ,ଗୁରୁ ଚଢ଼ିଲେ ଚଢ଼ିବେ—
हक कहना ପ୍ରବଚନ ।]

ହକ୍ ଚକ୍—ଦେ. ଓ ବିଣ—୧ । କଳି କଜିଆ; ଉକ୍ତି ପ୍ରତ୍ୟୁକ୍ତି—
Hak chak 1. Quarrel; mutual change of hot
दाम कसाकसी words. ୨ । ଦ୍ରବ୍ୟାଦି କିଣିବା ବିକିବାବେଳେ
झगड़ा ଦର ସମ୍ବନ୍ଧେ ବହୁତ ଗପିବା; ଦର ଦସ୍ତୁର କରିବା—2. Higgling and haggling. ୩ । କୌଣସି ବିଷୟରୁ ଥରକେ ସ୍ଥିର କରି ନ ପାରି ଇତସ୍ତତଃ ହେବା—3. Hesitating; hesitancy. ୪ । ଧକଚକ (ଦେଖ)—4. Dhakachaka.

ହକ୍ ଚକ୍ କରିବା(ହେବା)—ଦେ.କ୍ରି—୧ । ଧକଚକ କରିବା; ପଣ୍ୟାଦି
Hak chak karibā(hebā) କିଣିବା ସମ୍ବନ୍ଧେ ଅଯଥା କଥାବାର୍ତ୍ତାରେ
दर दस्तुर करा ଦସ୍ତୁର କରିବା—1.To higgle and haggle.
झगड़ा करना ୨ । ମନରେ ଇତସ୍ତତଃ କରିବା—2. To hesitate. ୩ । ଧକ୍‌ଚକ୍ ହେବା (ଦେଖ)—3. Dhaka chaka hebā (See).

ହକ୍ ଚକିଆ—ଦେ. ବିଣ (ପୁଂ)—୧ । ଧକଚକିଆ; ଗେଣ୍ଡା; ଯେଉଁ
Hak-chakiā ବ୍ୟକ୍ତି ଦ୍ରବ୍ୟାଦି କ୍ରୟ ବିକ୍ରୟରେ ବହୁତ ଅଯଥା
(ସ୍ତ୍ରୀ ଚକେଇ—ସ୍ତ୍ରୀ) ଦର ଦସ୍ତୁର କରେ—1. Very hig-
गोल मेले gling and haggling (person).
झगड़ालू ୨ । ବାଚାଳ—2. Babbling; talkative.
୩ । ଯେଉଁ ବ୍ୟକ୍ତି ଇତସ୍ତତଃ କରେ—3. Hesitating.

ହକ୍‌ଟା ହକ୍‌ଟି—ପ୍ରାଦେ. (ଗଡ଼ଜାତ) ବି—ଟଣାଟଣି—Mutual
Hak-tā hak-ti pulling or straining.

ହକ୍ ଦାବି—ବୈଦେ. ବି (କଚେରୀ)—୧ । ନ୍ୟାଯ୍ୟ ସଙ୍ଗତ ଦାବି—
Hak dābi 1. Just claim. ୨ । ନିଜର ସ୍ୱତ୍ୱକୁ ଦାବି
हक दावी କରିବା—2. Claiming of what is one's
हक दावा due.

ହକ୍ ଦାମ୍—ଦେ. ବି—ଉଚିତ ବା ନ୍ୟାଯ୍ୟ ମୂଲ୍ୟ—
Hak dām Proper or reasonable price.
ठिक दाम उचित दाम

ହକ୍‌ଦାର୍—ବୈଦେ. ବିଣ (କଚେରୀ) (ଅ. ହକ୍; ଫା. ପ୍ରତ୍ୟୟ-ଦାର୍)-
Hak-dār ପାଇବାର ଅଧିକାରୀ—Entitled to get.
हकदार ବି (କଚେରୀ)—୧ । ନ୍ୟାୟ ମତେ
हकदार ଅଧିକାରୀ ବ୍ୟକ୍ତି—1. Rightful owner.
୨ । ନ୍ୟାୟ ସଙ୍ଗତ ଦାବିଦାର୍—2. Rightful claimant.

ହକ୍ ନାକ୍—ଦେ. ବି ଓ ବିଣ—ହକ୍ ନାହକ୍ (ଦେଖ)
Hak-nāk Hak nāhak (See)
କ୍ରି. ବିଣ—ହକ୍ ନାକେ (ଦେଖ)
Hak nāke (See)

ହକ୍ ନାକ୍ ପରିଚ୍ଛା—ଦେ. ବି—୧ । ଯେଉଁ ବ୍ୟକ୍ତି ନ୍ୟାୟ ଓ ଅନ୍ୟାୟ
Hak nāk parichhā ସ୍ଥଳରେ ମନ୍ତବ୍ୟ ପ୍ରକାଶ କରିବାର
न्याय अन्याय पड़िछा ଅଧିକାରୀ—1. A person having the
उचित अनुचित जाँच करने वाला right to pass remarks about any matters, proper or improper. ୨ । ଯେଉଁ ବ୍ୟକ୍ତି ପରର ବିଷୟରେ ମନ୍ତବ୍ୟ ପ୍ରକାଶ କରେ—2. A person passing opinion on the affairs of others. ୩ । ପରର କାର୍ଯ୍ୟରେ ଅଯଥା ହସ୍ତକ୍ଷେପକାରୀ ବ୍ୟକ୍ତି—3. An officious person.

ହକ୍ ନାକେ—ଦେ. କ୍ରି. ବିଣ—୧ । ଅକାରଣରେ, ବୃଥା—
Hak nāke 1. In vain. ୨ । ନ୍ୟାୟରେ ଓ ଅନ୍ୟାୟରେ—
वृथाय, नाहक 2. Justly and unjustly. ୩ । କିଛୁ କାରଣ
नाहक, हक नाहक ନ ଥାଇ—3. For nothing. ୪ । କୌଣସି କାର୍ଯ୍ୟର ଔଚିତ୍ୟ ଅନୌଚିତ୍ୟ ବିଚାର ନ କରି—4. Without consideration of the rightness or otherwise of any matter. ୫ । ଅନାବଶ୍ୟକରେ—5. Unnecessarily.

ହକ୍ ନାହକ୍—ବୈଦେ. ବି (ଅ)—୧ । ନ୍ୟାଯ୍ୟ କଥା ଓ ଅନ୍ୟାୟ
Hak nāhak ବିଷୟ—1. Just and unjust thing or
हक नाहक matter. ୨ । ଭଲମନ୍ଦ; କୌଣସି ବ୍ୟକ୍ତି ସମ୍ବନ୍ଧୀୟ
हक नाहक ଭଲ ଓ ମନ୍ଦ ସବୁକଥା—2. All personal matters good and bad.

୩ । ନ୍ୟାୟ ଓ ଅନ୍ୟାୟ—3. Justice and injustice; propriety and impropriety. ବଣ
୧ । ନ୍ୟାଯ୍ୟ ଓ ଅନ୍ୟାଯ୍ୟ—1. Just and unjust.
୨ । ଉଚିତାନୁଚିତ; ନ୍ୟାୟସଙ୍ଗତ ଓ ଅନ୍ୟାୟ—2. Proper and improper. କ୍ରି. ବଣ—ହକ୍‌ନାହେ (ଦେଖ)—Hak nāke (See)

ହକ୍‌ ନାହକ୍‌ ପରୁଖ—ଦେ. ବି—ହକ୍‌ନାଚ୍‌ ପରଖ (ଦେଖ)—
Hak nāhak parichhā Hak nāk parichha (See)

ହକ୍‌ ପାଉଣା—ଦେ. ବି—ନ୍ୟାଯ୍ୟ ପ୍ରାପ୍ୟବସ୍ତୁ ବା ପଦାର୍ଥ—
Hak pāunā Rightful or proper dues.
ন্যায্য পাওনা, হক পাওনা ବଣ—ନ୍ୟାୟତଃ ପ୍ରାପ୍ୟ—
हक पावना Rightly due.

ହକ୍‌ ବକ୍‌ (ବବକ୍‌)—ବୈଦେ. ବି (ପ୍ରଚଳିତ; ଅ. ହକ୍‌=ନ୍ୟାୟ ଓ
Hak bak(babak) ବକ୍‌=ବଳ ପ୍ରକାଶ—Transgression.
ন্যায় অন্যায় उचित अनुचित —ନ୍ୟାୟାନ୍ୟାୟ—Right and wrong.

ହକ୍‌ ବାତ୍‌ - ବୈଦେ.ବି (ହି)(କଚିତ୍‌ପ୍ରଥ, ବ୍ୟଙ୍ଗ୍ୟ)—ହକ୍‌ କଥା(ଦେଖ)
Hak bāt Hak kathā (See)
हक कथा हक बात

ହକ୍‌ ମାଲିକାନା—ବୈଦେ, ବି (ଅ) (କଚିତ୍‌ପ୍ର)—କୌଣସି ସ୍ଥଳରେ
Hak mālikānā ବା ସମ୍ପତ୍ତିରେ.ସ୍ୱାମୀଙ୍କ ସ୍ୱତ୍ୱ—
হক্ মালিকানা हक मालिकाना Proprietary right in a thing or property.

ହକ୍‌ ମିଲ୍‌କିଅତ୍‌—ବୈଦେ. ବି (କଚିତ୍‌ପ୍ର)—ସ୍ୱତ୍ୱ ଓ ସ୍ୱାମିତ୍ୱ—
Hak mil-kiat Right and title.
হক্ মিলকিঅত্ हक मिलकिअत्

ହକ୍‌ ମୌର(ରୁ)ସୀ—ବୈଦେ. ବି (ଅ) (କଚିତ୍‌ପ୍ର)—ପିତୃ ପୈତାମହିକ
Hak maura(ru)si ସ୍ୱତ୍ୱ—Ancestral right or title.
হক্মৌরসী हक मौरुसी

ହକ୍‌ ସଫା—ବୈଦେ. ବି (କଚିତ୍‌ପ୍ର) (ଅ)—ହକ ସଫା (ଦେଖ)
Hak saphā Haka sapha (See)
হক সফা हक सफा

ହକତ୍‌—ଦେ.ବି ଓ ବଣ (ଅ. ହରକତ୍‌ର ଅଶୁଦ୍ଧ ଉଚ୍ଚାରଣ)—ହରକତ୍‌
Hakat (ଦେଖ)—Harakat (See)
হবকত हरकत

ହକର୍‌—ବୈଦେ. ବି (ଇଂ)—ଫେରିବାଲା; ଯେଉଁ ପଣ୍ୟବିକ୍ରେତା ଘର-
Hakar ଘର ବୁଲି ଡାକ ଡାକ ପଣ୍ୟଦ୍ରବ୍ୟ ବିକ୍ରି କରେ—
হকব फेरिवाला A hawker.

ହକର୍‌ ହ(ଚ)କର୍‌ ହେବା—ଦେ. କ୍ରି—୧ । ଚୁଲୁକ ଚୁଲି
Hakar ha(cha)kar hebā ଚାଲୁଥିବା ଘୋଡ଼ା ଉପରେ(ବସିବା
হট হট করে যাওয়া ମନୁଷ୍ୟର ଦେହ) ଉପରକୁ ତଳକୁ ଉଠିପଡ଼
हिलना ହୋହୋଇବା—1. To jolt on a trotting horse; to rise up and down with repeated jerks on a horse which is trotting. [ଉ—ରଜା ଘୋଡ଼ା ଚଢ଼ି ହକର୍‌ ହକର୍‌, ମୁଁ ଗଣ୍ଡିଅ କାନ୍ଧ ଚଢ଼ି ହକର୍‌ ହକର୍‌—ଗୀତ ।] ୨ । ଢାକେଇ-ଥିବା ଗଉଡ଼ମାନଙ୍କ ବାଜର ଅସମତା ଦୋଷରୁ ସବାରିର ବୋହଲା ଯୋଗୁଁ (ଭିତରେ ବସିଥିବା ମନୁଷ୍ୟ) ହାଲୁଆହୋଇ ହେବା—2. To jolt or to have one's body shaken with jerks in a palky borne by inexpert or unequal bearers. ୩ । ଓଟଲା ତଳରେ ବା ଅସମ ଭୂମିରେ ଚଳୁଥିବା ଶଗଡ଼ରେ ବସିଥିବା ମନୁଷ୍ୟ ନାଚଲାପରି ଥରେ ଉପରକୁ ଥରେ ତଳକୁ ଆସିବା—To jolt while riding a cart going on uneven ground. ୪ । ହକ ହକ ହେବା (ଦେଖ)—4. Haka haka hebā (See).

ହକରା—ଦେ. ବି. (ସଂ. ହୁଙ୍କାର=ଆହ୍ୱାନ)—୧ । ହାକରା; ଆହ୍ୱାନ;
Hakarā ଡାକିବା; ଡାକରା—1. Invitation; call.
হাঁকার, হাঁকা [ଉ—ରାମ ଆଜ୍ଞା ଦେଲେ ଆହେ ସୁଗ୍ରୀବ ରାଜନ
बुलाहट ନଳକୁ ହକରା କରି ଅଣାଅ ବହନ—ବଡ଼ବିଚିତ୍ରରାମାୟଣ ] ୨ । ରାଜା ବା ଅଦାଲତ ଆଦିଙ୍କ ନିକଟକୁ ଯିବାକୁ ଆହ୍ୱାନ—2. Summons to attend a king or Court. [ଯଥା—ରାଜାଙ୍କ ହକରା ଅସିଲା ଦ.ସଙ୍କ ପ୍ରତି—ରାଧାନାଥ, ଛନ୍ଦବନ୍ଧ ]—୩ । ବ୍ରାହ୍ମଣ ଶାସନମାନଙ୍କରେ ଗହ୍ମାପୂର୍ଣ୍ଣିମା ଦିନ ବା ଦଶହରାଦିନ ଗ୍ରାମର ଦେବତାଙ୍କ ନିକଟରେ ହୋଇଥିବା ଭୋଗ ବା ବୋଦାମାଂସ ଗ୍ରାମବାସୀ ମହାଜନଙ୍କ ମଧ୍ୟରେ ବାଣ୍ଟ ହେବା ସମୟରେ ଗ୍ରାମର ପୂର୍ବପ୍ରଥା ଅନୁସାରେ ଲିଖିତ ଖାଙ୍କି ପଢ଼ି ଯଥାକ୍ରମେ ଜଣେ ଜଣେ ଜଣେ ବ୍ୟକ୍ତିଙ୍କୁ ଡାକିବା—3. The act of serially calling out the names of the Brahman inhabitants of a Brahman village for giving each his share of the offering made to the village Deity on certain festival days. ଏହା ବ୍ରାହ୍ମଣ ଶାସନର ଗ୍ରାମବାସୀଙ୍କ ମଧ୍ୟରେ ଭିନ୍ନରୂପେ ବଣ୍ଟା ହେବା ଭୋଗ ବା ମାଂସର ଗୋଟିଏ ଭାଗ—4. One share or allotment of the offerings of the village—Deity apportioned to each Brahman villager of a Sāsana village; perquisite due to every house-holder out of the offerings made to the village-Diety [ବି—ପୁରୀ ଜିଲ୍ଲାର ବଳପ୍ରତିଷ୍ଠିତ ବ୍ରାହ୍ମଣ-ଶାସନମାନଙ୍କରେ ଶାସନବାସୀ ମହାଜନମାନଙ୍କର ଭାଗ ବଣ୍ଟା ସଂଖ୍ୟା ଅନୁସାରେ କୋଠ ସମ୍ପତ୍ତି ଓ ଗ୍ରାମ ଦେବଙ୍କ ଭୋଗରେ ପ୍ରତ୍ୟେକ ମହାଜନଙ୍କର ହକ୍‌ ବା ସ୍ୱତ୍ୱ ଥାଏ । ଗହ୍ମାପୂର୍ଣ୍ଣିମା ଦିନ ଗ୍ରାମ ଦେବତାଙ୍କୁ କୋଠ ଫଣ୍ଡରୁ ଯାହା ଭୋଗ ଲାଗେ ଓ ଶାରଦୀୟ ଦୁର୍ଗାପୂଜା ସମୟରେ ଯେଉଁ ବୋଦା ବଳିପଡ଼େ ତାହା ପୂର୍ବପ୍ରଥା ଅନୁସାରେ ପ୍ରତ୍ୟେକ ମହାଜନଙ୍କୁ ହକରା କରାଯାଇ ବଣ୍ଟନ କରାଯାଏ ଓ ଯେଉଁ ବ୍ୟକ୍ତିଙ୍କ ତରଫରୁ

କେହି ହକର ନେବାକୁ ଉପସ୍ଥିତ ନ ହୁଅନ୍ତି ତାଙ୍କର ହକର ବୁଡ଼ିଯାଏ ବା ଲୋପପାଏ । ଏ ହକର ସଙ୍ଗେ ଗ୍ରାମ ଉତ୍ତ୍ରୁ ଓ ଗ୍ରାମ ଭୂମି ଅଂଶର ସମ୍ବନ୍ଧ ଅଛି । ଅନ୍ୟ ଗ୍ରାମବାସୀ ବ୍ୟକ୍ତି ବା ବ୍ରାହ୍ମଣେତର ବ୍ୟକ୍ତି ଗ୍ରାମର ଘର ବା ଭୂଇଁ ଖରିଦ କଲେ ସେହି ଖରିଦ ବଳରେ 'ହକର' ପାଇବାର ଅଧିକାରୀ ହୋଇ ନ ପାରନ୍ତି । ]

ତତ୍ତ୍ଵପାଠାନ ୫ । ବ୍ରାହ୍ମଣସମାଜରେ ଶଶୁରଘରକୁ ନବବଧୂକୁ ପୁଚାର ପହିଲିପାଳ ଅଣିବା ପାଇଁ ଓ ପୂର୍ଣ୍ଣିମା ଅବଦର ଜୋଇଁଙ୍କୁ ଅଣିବା ପାଇଁ ପ୍ରେରିତ କମଣ୍ଡଳ ସାମଗ୍ରୀ ବା ଯୋଗାଡ଼—5. A tray containing certain propitiatory articles as presents. (i. e ମହାପ୍ରସାଦ, ନଡ଼ିଆ, ହଳଦୀ ) sent with the invitation to invite the daughter-in-law or son-in-law to the father-in-law's house.

ହକର(ରେ)ଇବା—ଦେ.କ୍ରି.—୧। ଡକାଇବା—1. To send for Hakarā(re)ibā [ଉ—ଶ୍ରୀ ରାମଚନ୍ଦ୍ର, ହନୁ କହେ ଶ୍ରୀଭୁଜା ହାଁକାନ ବୁଲାନା ଦେଇଣ 'ହକରାଇଲେ କପିଙ୍କ ରାଜ ] ବାଳକ ରାମାୟଣ] ୨। ଅଣାଇବା—2. To fetch. [ ଉ—ସ୍ବୈଚେକ ବୋଲିଣ ସାର ହକରାଇଲେ । ହିଡ଼ାସନ ବଳେ ପଶା ସାର ପାଉଛେଲ — ପ୍ରାଚୀ ନଳ ଚରିତ.]

ହକର କନ୍ଦା—ଦେ. ବି. (ବୈଦ୍ୟକ)—ଔଷଧ ମୂଳ ବିଶେଷ (ଏହାକୁ Hakarā kandā ଦଉ ସହିତ ବାଟି ପିଆଇଲେ ଶିଶୁମାନଙ୍କର ଅଜୀର୍ଣ୍ଣ,ଅଗ୍ନିମାନ୍ଦ୍ୟ ଓ ଅତିସାର ପ୍ରଶମିତ ହୁଏ । ଦ୍ରବ୍ୟଗୁଣ କଳ୍ପଦ୍ରୁମ) A kind of medicinal root bulb.

ହକର ଡାକର—ଦେ. ବି. (ଏକାର୍ଥକ ସହଚର)—ଡାକ ହାକ—Hakarā ḍa(ḍākarā ডাক হাঁক बुलाहट उलाहट Calling.

ହ କରିବା—ଦେ. କ୍ରି.—ଚାଲୁଥିବା ଶଗଡ଼ର ବା ହଳର ବଳଦଙ୍କୁ ଠିଆ Ha karibā କରାଇ ଶଗଡ଼ର ବା ହଳର ଗତି ବନ୍ଦ କରିବା—थामान. ह करना To stop the motion of a cart or plough by directing the bullocks to stop.

ହକଲା—ଦେ.ବି.—(ସଂ. ପ୍ରକ୍ଷାଳନ)—(ଲୁଗା)ଧୋଇବା—Washing Hakalā (of a cloth). ବିଣ—ଧୌତ ( ବସ୍ତ୍ର )—ধোয়া, কাচা धुलाई; काचा धुलायाहुआ Washed cloth.

ହକଲା(ଲେ)ଇବା—ଦେ. କ୍ରି—୧। (ହକାଲିବା କ୍ରିୟାର ଣିଜନ୍ତରୂପ) Hakala(le)ibā ଅନ୍ୟ ଦ୍ଵାରା ହକାଳିବା କ୍ରିୟା କରିବା—କାଚାନ धुलाना 1. (Causative of Hakālibā). To cause to wash. ୨। (ବସ୍ତ୍ରାଦ) ଧୌତ କରାଇବା—2. To have (a cloth) washed.

ହକଲା ହକଲି—ଦେ. ବି.—ଧୁଆଧୋଇ; ବସ୍ତ୍ର ବସ୍ତୁର ବା ବହୁବାର Hakalā hakali ଧୋଇବା କର୍ମ—Washings. धुयाधुयी धुलाईउलाई

ହକ ଶଫା—ବୈଦେ. ବି—( ମୁସଲ୍‌ମାନ୍ ଆଇନ୍ ) (ଆ. ହକ୍‌ଶଫା)—Hak śafā କୌଣସି ସମ୍ପତ୍ତିକୁ ସମ୍ପତ୍ତିର ମାଲିକ ବିକି କରିବାକୁ हक्सफा हकशफा ବସିଲେ ତାହାକୁ ସେହି ଦାମରେ କିଣିବା ପାଇଁ ବ୍ୟକ୍ତିବିଶେଷଙ୍କର (ଯଥା — ପ୍ରତିବେଶୀଙ୍କର, ସମ୍ପତ୍ତିର ଜଣେ ଅଂଶୀଦାର ମାଲିକଙ୍କର) ସେଥିଁ ସ୍ଵତ୍ଵ ଆଇନ ଅନୁସାରେ ଅଛି ।—(Mahomedan Law) Right of preemption; right to purchase a property in preference to other purchasers which vests in a co-sharer or a neighbour of a property to be sold. [ ଦ୍ର—ମୁସଲମାନ୍ ଆଇନ୍ ଅନୁସାରେ ଭୂସମ୍ପତ୍ତିର ମାଲିକ ଯେବେ ସମ୍ପତ୍ତି ବିକି କରିବାକୁ ବସନ୍ତି, ଉକ୍ତ ସମ୍ପତ୍ତିର ଅନ୍ୟ ଅଂଶୀଦାର୍ ବା ପ୍ରତିବେଶୀ ଆଇନ୍ ଅନୁସାରେ ଭୂସ୍ଵାମୀଙ୍କୁ ସେତିକ ମୂଲ୍ୟ ଦେଲେ ଭୂସ୍ଵାମୀ ଶେଷୋକ୍ତ ବ୍ୟକ୍ତିଙ୍କୁ ସମ୍ପତ୍ତିକୁ ନିର୍ଦ୍ଦିଷ୍ଟ ମୂଲ୍ୟରେ ଦେବାକୁ ବାଧ୍ୟ ଅଟନ୍ତି ।]

ହକସ୍—ପ୍ରାଦେ. (ଗଞ୍ଜାମ) ବି—୧। ଅକସ; ଈର୍ଷା—1. Spite. Hakas ୨। ଅବଜ୍ଞା—2. Grudge.

ହକସ କରିବା—ପ୍ରାଦେ. (ଗଞ୍ଜାମ) କ୍ରି—ବଳ ଦେଖାଇବା ପାଇଁ Hakasa karibā ପ୍ରତିଯୋଗିତାକାରୀଙ୍କ ମଧ୍ୟରେ ଚେଷ୍ଟା ଦ୍ଵାର କିଣିବା ପଣ—Wager.

ହକ ହକ ହେବା—ଦେ. କ୍ରି—୧। ହକର ହକର ହେବା (୧) (ଦେଖ) Haka haka hebā 1. Hakar hakar hebā (1)(See) হট হট করে যাওয়া ୨। ହକର ହକର ହେବା (୨) (ଦେଖ) 2. Hakar hakar hebā (2) (See). ୩। ହକର ହକର ହେବା, (୩)(ଦେଖ)—3.Hakar hakar (3) (See) ୪। ଉବେଇ ଚବେଇ ହେବା; କୌଣସି କଥା उद्विग्नहवया କହିବାକୁ ବା କାର୍ଯ୍ୟ କରିବାକୁ ବିଶେଷ ଉତ୍କଣ୍ଠା ଦେଖାଇବା, ମନକଥା ବାହାରେ ପ୍ରକାଶ କରିବା; (ମନ) ଶକ ଶକ ହେବା—4. To show eagerness to do any act or to speak anything. [ଦ୍ର—ମନର ଇଚ୍ଛିତ ଅବସ୍ଥାରେ ମନୁଷ୍ୟର ମନ ଶକ ଶକ ବା ଉବେଇ ଚବେଇ ହୁଏ, କିନ୍ତୁ ଉକ୍ତ ଚଞ୍ଚଳତା ବାହ୍ୟ ଲକ୍ଷଣଦ୍ଵାରା ପ୍ରକାଶ ପାଇଲେ ଉକ୍ତ ବ୍ୟକ୍ତି ଅମୁକ କାମ କରିବାକୁ "ହକ ହକ ହେଉଛି" ବୋଲି କୁହାଯାଏ । ]

ହକା—ଦେ. ବି—( ସଂ ହକ୍କାର )—ହାକ; ଆହ୍ଵାନ—Call. Hakā হাঁক बुलाहट [ଦ୍ର—ଏ ଶବ୍ଦ ଡକା ଶବ୍ଦ ସଙ୍ଗେ ସହଚରରୂପେ ବ୍ୟବହୃତ ହୁଏ]

ହକାଇବା—ଦେ. କ୍ରି—ହଙ୍କାଇବା (ଦେଖ)—Hānkāibā(See). Hakaiba

ହକାରିବା—ଦେ. କ୍ରି(ସଂ. ହକ୍କାର=ଅହ୍ଵାନ)—୧। ଆହ୍ଵାନ କରିବା—Hakāribā 1. To call. [ ଉ—ଇନ୍ଦ୍ର ପବନଙ୍କୁ হাকা बुलाना ହକାରି ବୋଲଇ ପାଥ ମଧୁସୂଦନ—ଜଗନ୍ନାଥ ଭାଗବତ.] ୨। ପାଖକୁ ଡାକିବା—2. To summon. [ଯଥା—

ହୁକମାନଙ୍କୁ ହକାରିବା — ଭୂପତି ହେମ. ପଞ୍ଚାମୃତ]—
ତୁଲା हकारना ୩ । (ପୂର୍ବେ ବାଲେଶ୍ୱରରେ ଜାହାଜ
ଚଳୁଥିବା ସମୟରେ ପ୍ରଚଳିତ ଜାହାଜିଆ ଶବ୍ଦ ।)
ପାଲ ଟାଣିବା—3. To set the sails of a ship.
୪ । ପତାକା ଉଠାଇବା—4. To raise a flag.

ହକାଳିବା – ଦେ. କ୍ରି —(ସଂ, ପ୍ରକ୍ଷାଳନ)—(ଲୁଗା) ଧୋଇବା—
Hakālibā কাচা धोना To wash (clothes).

ହକାଲିବା—ପ୍ରାଦେ (ଖଡ଼ଆଲ) କ୍ରି.—୧। ତଡ଼ିବା—1. To drive
Hakālibā away; to expel. ୨ । ଗାଡ଼ିରେ
ଲାଗିଥିବା ବଳଦମାନଙ୍କୁ ଚଳାଇବା—2. To drive the
bullocks yoked to a cart

ହକାହକି—ଦେ.ବି [ସଂ.ହକ୍କାର=ଆହ୍ୱାନ)—୧ । ଡାକହାକ; ବହୁବାର
Hakāhaki ଆହ୍ୱାନ—1. Several calls. ୨ । ଡକାଡକି;
ডাকাডাকি बुलाहट उलाहट ପରସ୍ପରକୁ ଡାକିବା—2. Calling
each other.

ହକି(କ୍କି)—ବୈଦେ. [ଇଂ] ବି—(ଇଂରାଜୀ ହକୀ ଶବ୍ଦ; ଇଂ. ହୁକ୍=
Haki(kki) ଅଙ୍କୁଶ ବା ବକ୍ରାଗ୍ର ଯଷ୍ଟିରୁ ଏହି ହକୀ ଶବ୍ଦ
হকি हौकी ହୋଇଅଛି ।) ୧ । ଏକପ୍ରକାର ପାଶ୍ଚାତ୍ୟ ଖେଳ—
1. Hockey. [ଦ୍ର—ଏହି ଖେଳ ବିସ୍ତୃତ
ପଡ଼ିଆରେ ଖେଳା ହୁଏ । ଖେଳାଳିମାନେ ଦୁଇ ଦଳ ବା
ଦୁଇ ସଂଖ୍ୟାରେ ବିଭକ୍ତ ହୁଅନ୍ତି । ଖେଳାଳିମାନେ ଭୂମିରେ
ବା ଘୋଡ଼ା ଉପରେ ଚଢ଼ି ହାତରେ ଗୋଟିଏ ଲେଖାଏ
ଅଗ ଚେପ୍ଟା ଓ ବକ୍ରାଗ୍ର ଲମ୍ବ ବାଡ଼ି ଧରି ଥାଆନ୍ତି ।
ଭୂମିରେ ଗୋଟିଏ ପେଣ୍ଡୁ ଗଡ଼ୁଥାଏ । ତାକୁ ଏକଦଳର
ଖେଳାଳିମାନେ ବାଡ଼ିର ଚେପ୍ଟା ଅଗରେ ବାଡ଼େଇ
ଅପର ପକ୍ଷ ଜଗିଥିବା ନିର୍ଦ୍ଦିଷ୍ଟ ସୀମା ବା ସ୍ଥାନ (ଗୋଲ୍)କୁ
ଡିଆଁଇ ପକାଇଲେ ଜିତନ୍ତି] ୨ । ହକି ଖେଳର
ଅଗ-ଚେପଟା ଓ ବକ୍ରାଗ୍ର ଯଷ୍ଟି—2. Hockey stick.

ହକିଅତ୍—ବୈଦେ (ଆ). ବି.(ଆ. ହକୀୟତ୍) (କଚେରିଆ)—୧ । ସ୍ୱତ୍ୱ;
Hakiyat ସମ୍ପତ୍ତିରେ ପ୍ରବର୍ତ୍ତିବା ସ୍ୱାମିତ୍ୱ—1. Title to a pro-
হকিয়ত हकियत perty. ୨ । ସମ୍ପତ୍ତିରେ ଅଧିକାର—2. Right
to a property. ୩ । ଭୂସମ୍ପତ୍ତିରେ ସ୍ୱତ୍ୱ—3. Title
to landed property. ୪ । ବିଷୟ ସମ୍ପତ୍ତି—
4. Property. ଦେ. ବି.—ହକିକତ୍ (ଦେଖ)—
(ହକୀୟତ୍—ଅନ୍ୟରୂପ) Hakikat (See)

ହକିଅତି—ବୈଦେ (ଆ) ବି. (କଚେରିଆ) (ଆ. ହକୀୟତ୍)—
Hakiati ୧ । ଭୂସମ୍ପତ୍ତି—1. Landed property.
[ହକୀୟତି—ଅନ୍ୟରୂପ] ୨ । ସମ୍ପତ୍ତି—2. Property. ବିଣ—
হকিয়তি [ଆ, ହକୀୟତ] ହକିଅତ୍ ସମ୍ବନ୍ଧୀୟ—Relating to
हकीयती title in property.

ହକିଅତି ବିବାଦ—ଦେ. ବି (କଚେରିଆ)—ସମ୍ପତ୍ତିରେ ସ୍ୱତ୍ୱ ସମ୍ବନ୍ଧୀୟ
Hakiati bibāda ବିବାଦ—Dispute as to title to
হকিয়তী বিবাদ हकीयती विवाद any property.

ହକିଅତି ମ(ମୋ)କଦ(ଦ୍ଦ)ମା – ବୈଦେ. ବି(ଆ)(କଚେରିଆ)—ଦୁଇ ପକ୍ଷଙ୍କ
Hakiati ma(mo)kada(dda)mā ମଧ୍ୟରୁ ସମ୍ପତ୍ତିରେ (ବିଶେଷତଃ
হকিয়তী মোকদ্দমা ଭୂସମ୍ପତ୍ତିରେ) କେଉଁ ପକ୍ଷର ସ୍ୱତ୍ୱ ଅଛି, ଏହା
हकियती मुकदमा ସ୍ଥିର କରିବା ପାଇଁ ଉପସ୍ଥାପିତ ମକଦ୍ଦମା—
Title suit; suit for declaration of title to a
property as between two contending
parties.

ହକିକତ୍—ବୈଦେ. (ଅ) ବି—୧ । ବୃତ୍ତାନ୍ତ; ବିବରଣ; ବର୍ଣ୍ଣନା—
Hakikat 1. Description. ୨ । ପ୍ରକୃତ ତଥ୍ୟ—2. Ac-
হকিকৎ tual fact ୩ । ସବିଶେଷ ବୃତ୍ତାନ୍ତ—3. Detailed
हकिकत् description. ୪ । ଠିକ୍ ବିବରଣ—4. Correct
description.

ହକିକତ୍ ନାମା—ବୈଦେ(ଅ)ବି(କଚେରିଆ)—ବିବରଣ ପତ୍ର; ରିପୋର୍ଟ—
Hakikat nāmā A report; a writing contain-
হকিকৎ নামা ing description of any matter.
हाकिकत नामा

ହକିଗତ୍—ପ୍ରାଦେ (ସମ୍ବଲପୁର) ବିଣ (ଆ. ହକିକତ୍)—ପ୍ରକୃତ—
Hakigat Actual.

ହକିମ୍—ବୈଦେ. (ଆ) ବି (ଅ. ହକିମ୍=ପଣ୍ଡିତ; ବୈଦ୍ୟ)—
Hakim ୧ । ମୁସଲମାନ୍ ବୈଦ୍ୟ—1. A Mahomedan
হকীম physician. ୨ । ଇରାଣୀ ବା ୟୁନାନୀ ମତରେ ରୋଗ-
हकीम ଚିକିତ୍ସକ—2 Physicians treating diseases
according to the Iranian or Unani system
of medicine.

ହକିମ୍ ସାହେ(ହା)ବ୍—ବୈଦେ. ବି( ଆ. ହକିମ୍+ଆ ସାହାବ୍ )—
Hakim sāhe(hā)b ହକିମଙ୍କ ପ୍ରତି ପ୍ରଯୁକ୍ତ ସମ୍ମାନାର୍ଥକ
হকিম সাহেব ସମ୍ବୋଧନ—Word of respect used in
हकिम साहब addressing a Hakim.

ହକିମି—ବୈଦେ. ବି—୧ । ହକିମବୃତ୍ତି—1. The practice or
Hakimi profession of a Hakim or Unani physi-
হকিমী cian. ୨ । ଇଉନାନୀ ଚିକିତ୍ସାପ୍ରଣାଳୀ—2. The Unani
हकीमी system of medicine or treatment. ବିଣ—
୧ । ହକିମ୍ ସମ୍ବନ୍ଧୀୟ—1. Relating to a
Hakim. ୨ । ୟୁନାନୀ ଚିକିତ୍ସା ସମ୍ବନ୍ଧୀୟ—2. Relating
to the Unani system of treating
diseases.
[ଦ୍ର—ଏହି ହକିମି ଚିକିତ୍ସା ପାରସ୍ୟରୁ ମୁସଲମାନ୍ ଓ
ମୋଗଲ୍ ବାଦ୍‌ସାହାମାନଙ୍କ ଅମଳରେ ଭାରତରେ
ପ୍ରବେଶ କରିଥିଲା । ହକିମ୍‌ମାନେ ଅନେକ ଜଡ଼ିବୁଟି ଓ
ବସ୍ତୁଯୋଗୀୟକ ଚିକିତ୍ସା ପ୍ରଣାଳୀ ଆବିଷ୍କାର କରିଥିଲେ ।
ବାଦ୍‌ସାହାମାନଙ୍କ ବେଗମ୍‌ମାନେ ଅସୂର୍ଯ୍ୟମ୍ପଶ୍ୟା ଥିଲେ ।
ଏପରି ସ୍ଥଳରେ ରୋଗିଣୀଙ୍କୁ ନ ଦେଖି ଔଷଧ ବ୍ୟବସ୍ଥା
କରିବାପାଇଁ ହକିମ୍‌ମାନେ ବାଧ୍ୟ ହେଉଥିଲେ ଓ ବସିଯିବ

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ, ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ମୃତ' ନ ମିଳିଲେ 'ମୃତ' ଖୋଜିବେ, 'ଦଧି' ନ ମିଳିଲେ 'ଦଧୀ' ଖୋଜିବେ; 'ଅଗିଁଆ' ନ ପାଇଲେ 'ଅଙ୍ଗିଆ' ଦେଖିବେ, ଅଳତା' ନ ପାଇଲେ 'ଅଲ୍‌ତା' ଦେଖିବେ।

ବିଷୟ ଏହି ଯେ, ସେତେବେଳ ଚିକିତ୍ସାରେ ହକମ୍‌ମାନେ କୃତକାର୍ଯ୍ୟ ମଧ୍ୟ ହେଉଥିଲେ । ଶୁଣାଅଛି ଯେ, ବାଦସାହା ଔଷଧସେବନ କରିବାକୁ ନାରାଜ୍ ହେଲେ ହକମ୍‌ମାନେ ଔଷଧସଂଯୁକ୍ତ ବସ୍ତ୍ର ପିନ୍ଧାଇ ଓ ସମ୍ମୁଖରେ ନିର୍ଦ୍ଦିଷ୍ଟ ବସ୍ତୁକୁ ଦେଖାଇ ରୋଗ ଭଲ କରୁଥିଲେ । ବାଦ୍‌ସାହା ଓ ଅମୀର୍‌ମାନେ ବହୁସଂଖ୍ୟକ ବେଗମଙ୍କୁ ପତ୍ନୀରୂପେ ଗ୍ରହଣ କରୁଥିବାରୁ ପୁରୁଷ ଓ ସ୍ତ୍ରୀଙ୍କର ଯୌବନରକ୍ଷା, ସୌନ୍ଦର୍ଯ୍ୟବୃଦ୍ଧି, କେଶବୃଦ୍ଧି, ଲୋମନାଶ ଓ ଇନ୍ଦ୍ରିୟ ତୃପ୍ତି ଆଦି ପାଇଁ ହକମ୍‌ମାନେ ବହୁମୂଲ୍ୟର ଔଷଧମାନ ପ୍ରସ୍ତୁତ କରୁଥିଲେ ।]

ହକି(କ୍କି) ଷ୍ଟିକ୍—ବୈଦେ· (ଇଂ) ବି—ହକି ଖେଳରେ ବ୍ୟବହୃତ H·ki(kki) shtık ଦଣ୍ଡ—Hockey stick.
ହକିସ୍‌ଟିକ୍ **हौकीस्टीक**

ହକେ—ପ୍ରାଦେ· (ଉତ୍ତରଭାଷା) ସର୍ବନାମ—୧ । ତାହାଙ୍କୁ; ସେ ବ୍ୟକ୍ତିକୁ Hake 1. To that person. ୨ । ଏହାକୁ; ଏହି ବ୍ୟକ୍ତିକୁ —2. To this person.

ହକ୍କ (ଇତ୍ୟାଦି)—ବୈଦେ· ବି· ଓ ବିଣ—ହକ୍ ଇତ୍ୟାଦି (ଦେଖ) Hakk(etc) Hak etc (See)

ହକ୍କା—ସଂ. ବି.—୧ । ହାତୀକୁ ଡାକିବା; ଗଜସମାହ୍ଵାନ (ଜଟାଧର)— Hakka 1. Words used by the driver to guide an elephant. ୨ । ହାତୀର ଡାକ— 2. The sound of an elephant.

ହକ୍କାର—ସଂ· ବି.—୧ । ଆହ୍ଵାନ (ଶବ୍ଦକଳ୍ପଦ୍ରୁମ)—1. Call; Hakkāra summoning. ୨ । ଉଚ୍ଚୈଃସ୍ୱରରେ ହାଁକ **बुलाहट** ଡାକିବା—2. Calling a person loudly.

ହକ୍ୟତ(ତି) (ଇତ୍ୟାଦି)—ବୈଦେ. ବି—ହକିଅତ୍ ଇତ୍ୟାଦି (ଦେଖ) Hakyat(ti) (etc) Hakiat etc. (See)

ହଗ୍‌ରା (ରୁ)—ପ୍ରାଦେ· (ଗଡ଼ଜାତ) ବିଣ—ହଗୁରା; ଯେ କେଶୀ ବା Hag-rā (ru) ବାରମ୍ବାର ହଗେ—One who passes stool (ହଗ୍‌ରୀ—ସ୍ତ୍ରୀ) many times in a day.

ହଗ୍‌ହଗ୍—ପ୍ରାଦେ· (ଗଡ଼ଜାତ) ବି—ମଳତ୍ୟାଗାର୍ଥ ଉଦ୍‌ବେଗ— Hag-hag Tendency to pass stool.

ହଗ—ଦେ. ବି (ସଂ. ହଦ ଧାତୁ=ବିଷ୍ଠୋତ୍ସର୍ଗ କରିବା ସଂ. ହଦନ)— Haga ବିଷ୍ଠାତ୍ୟାଗ; ହଗିବା—Passing of stool; ହାଗା **हग** defecation.

ହଗଣା—ଦେ. ବି (ସଂ. ହଦନ)—୧ ଝାଡ଼ା ଫେରିବା—1. Passing Haganā of stool. ୨ । ହଗାରୋଗ—2. Disease ହଗା resulting in copious discharge of stool. **हगा** [ଯଥା—ଅନ୍ନମୋହି ପିଲା ହଗଣା ସହେ—ଗୀତ]

(ମତେ) ହଗ ମାଡ଼ିବା—ଦେ. ବି—ମଳବେଗ ଅନୁଭୂତ ହେବା— Haga mārdibā Being called by nature. ହାଗାପାଓୟା **टट्टी लगना**

ହଗ ମୁତ—ଦେ· ବି (ସହଚର)—ହଗିବା ଓ ମୁତିବା; ମଳତ୍ୟାଗ ଓ Haga muta ପ୍ରସ୍ରାବ କରିବା—Passing of stool and urine. ହାଗାମୂତା **हगमूत**

ହଗରା—ଦେ. ବି—୧ । ଘୋର ଅତିସାର ରୋଗ—1. Chronic Hagarā dysentery. ୨ । ହଗାରୋଗ; ଅତିସାର; ଗ୍ରହଣୀ. ହାଗାରୋଗ; ପେଟେର‌অসুখ **आमाशय** ଆଦି—2. Dysentery, **टट्टीकारोग** diarrhoea etc. ହେଗୋ **हगनेवाला** ବିଣ.ହଗୁରା (ଦେଖ)—Hagurā (See)

ହଗା—ଦେ. ବି—(ସଂ. ହଦ ଧାତୁ; ହଦନ)—୧ । ହଗିବା; ଝାଡ଼ା Hagā ଫେରିବା; ବାହାର ହେବା; ମଳୋତ୍ସର୍ଗ—1. Passing ହାଗା of stool. [ଇ—ହଗା ଆଗରେ କି ବାଘର ଡର(ଭୟ)— **हगना** ପ୍ରବଚନ; ଲୋକର ବିଶେଷ ମନୋଦ୍ଵେଗ ଜନିତ ପୀଡ଼ା ଉପସ୍ଥିତ ହେଲେ ସେ ବାଘ ମାଡ଼ିବାଜନିତ ଭୟକୁ ଭ୍ରୁକ୍ଷେପ ନ କରି ଯେଉଁଠାରେଇଚ୍ଛା ସେଠାରେ ଝାଡ଼ା ଫେରି ଯାଏ ।] ୨ । ବହୁବାର ତରଳଝାଡ଼ା ଫେରିବାରୋଗ— 2. Disease of passing liquid stool; diarrhoea. ୩ । ଅତିସାର; ଆମାଶୟ ଝାଡ଼ା— 3. Dysentery. ବିଣ. ପୁଂ—୧ । ଯେ ହଗିଥାଏ— ହେଗୋ 1. Having passed stool. ୨ । ହଗୁରା (ଦେଖ)— **हगनेवाला** 2 Hagurā (See) ୩ । ଯେଉଁ ବ୍ୟକ୍ତି ହଗା ରୋଗରେ ଆକ୍ରାନ୍ତ—3. Suffering from dysentery or diarrhoea ପ୍ରାଦେ (ବଲାଙ୍ଗିର ପାଟଣା) ଅ—ହଇରେ ! (ଅନାଦର ଅର୍ଥରେ) Interjection (in contempt) Oh !

ହଗା (ଗେ) ଇ ଦେବା—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ ପ୍ରହାର ଆଦି Hagā (ge) i debā ଦେବା ଦ୍ୱାରା ବିନା ପ୍ରେରଣାରେ ତାଠାରୁ ହାଗିୟେଦେଓୟା ମଳନିଃସରଣ କରାଇବା—1. To cause a person **हँगादेना** to pass stool involuntarily as a result of very severe beating. ୨ । କୌଣସି ବ୍ୟକ୍ତିକୁ ଭୟ ଦେଖାଇ ଅତର୍ଚ୍ଚ କରିବା ଦ୍ୱାରା ଅନିଚ୍ଛାକୃତ ଭାବ ମଳ ନିଃସୃତ କରାଇବା—2. To cause a person to pass stool involuntarily through extreme fear. ୩ । କୌଣସି ବ୍ୟକ୍ତି ଉପରେ ତାହାର ବୋହି ପାରିବା ଶକ୍ତିର ସୀମାଅତିତ ବୋଝ ଲଦିବା ଦ୍ୱାରା ଅନିଚ୍ଛାକୃତ ଭାବ ଝାଡ଼ା ଫେରିବାର କାରଣ ହେବା—3. To cause a person to pass stool involuntarily by putting on him a load very much in excess of his carrying capacity. ୧ । (ଲକ୍ଷଣାର୍ଥ) କୌଣସି

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୯ | ଚ | ଉ | ଋ,ଋ | ଞ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଏ | ଉଅ | ଯ୍ମ |
| ୬ | ଛ | ଊ | ଲ | ଲ୍ଲ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଙ୍ଖ | ଯ | ସ | ଙ୍ଗ | ଇଅ | ଊ | ହ୍ମ |

ବ୍ୟକ୍ତିଙ୍କୁ ଅ ତ୍ୟନ୍ତ ଶଙ୍କିତ କରିବା—1. (figurative) To frighten or terrify a person. ୨ । କୌଣସି ବ୍ୟକ୍ତିକୁ ବେଳଯୁ ମାଡ଼ ଦେବା—2. To beat a person very severely. ୩ । କୌଣସି ବ୍ୟକ୍ତି ଉପରେ ବେଳାଯୁ ବୋଝ ଲଦ ଦେବା—3. To put excessive load on a person. ୪ । କୌଣସି କାର୍ଯ୍ୟ କରିବାକୁ କୌଣସି ବ୍ୟକ୍ତିକୁ ଅତିଶୟ ତ୍ୱରାନ୍ୱିତ କରିବା—4. To cause unnecessary haste to a person by pressing him to do anything immediately.

ହଗା(ଗେ)ଇ ନେବା—ଦେ. କ୍ରି—ହଗିବାକୁ ଯିବା ବ୍ୟକ୍ତିର ସଙ୍ଗରେ Hagā(ge)i nebā ଯିବା—To accompany a person হাগিযেআন going to pass stool.
हगाजाना

ହଗା(ଗେ)ଇ ପକା(କେ)ଇବା—ଦେ. କ୍ରି—୧। ହଗାଇ ଦେବା (ଦେଖ) Hagā(ge)i pakā(ke)ibā Hagāidebā (See) হাগিয়েফেলা हगादेना [ଯଥା—ଏ ବାହାରେ ଅର୍ଜୁନଙ୍କର ଧ୍ୱଜେ ଥିବ; ତୁମ୍ଭ ଶତ୍ରୁକୁଳେ ହଗାଇ ପକାଇବ—କୃଷ୍ଣସିଂହ. ମହାଭାରତ. ବନ]

ହଗା(ଗେ)ଇବା—ଦେ. କ୍ରି—୧। ହଗିବା ଧାତୁର ଣିଜନ୍ତ ରୂପ—Hāgā(ge)ibā 1. Causative of hagibā. [ଦ୍ର—হাগান କୌଣସି ବ୍ୟକ୍ତିକୁ ମଳତ୍ୟାଗରେ ସାହାଯ୍ୟ କରି (ଯଥା—ଶିଶୁ हगाना ମାନଙ୍କୁ ଆପଣା ଦୁଇଗୋଡ଼ର ବଳାଗଣ୍ଠି ଉପରେ ବସାଇ) ଝାଡ଼ା ଫେରାଇବା ] ୨ । ଝାଡ଼ା ଫେରାଇବା—2. To cause a person to pass stool. ୩ । ହଗାଇ ଦେବା (ଦେଖ)—2. Hagāidebā (See)

ହଗା(ଗେ)ଇବା ମୁତା(ତେ)ଇବା—ଦେ. କ୍ରି (ଲକ୍ଷଣାର୍ଥ)—Hagā(ge)ibā mutā(te)ibā କୌଣସି ବ୍ୟକ୍ତିକୁ ମାଡ଼ হগান মুতান ବା ଭୟ ପ୍ରଦର୍ଶନ ବା ତା ଉପରେ ଅତିରିକ୍ତ ବୋଝ हगाना मुताना ଲଦିବା ଦ୍ୱାରା ତାର ଅନିଚ୍ଛାବଶତଃ ହଗିବା ଓ ମୁତିବାର କାରଣ ହେବା—To cause a person to involuntarily pass stool of Urine on account of fear, beating or being given excessive load.
[ହଗାଇ ମୁତାଇ ପକାଇବା (ଦେବା)—ଅନ୍ୟରୂପ]

ହଗା ଓଷଧ(ଦ)—ଦେ. ବି—୧। ହଗା ବନ୍ଦ ହେବାର ଔଷଧ—Hagā oshadha(da) 1. Medicine used for stopping evacuation. বাহ্যি বন্ধের ওষুদ ୨। କୋଷ୍ଠଶୁଦ୍ଧି हगनेकी दवा ହେବା ପାଇଁ ପ୍ରଯୁକ୍ତ ଔଷଧ, ଜୁଲାପ—বাহ্যের ওষুদ, জোলাপ जुलाप 2. Catharitic medicine.

(ଭାକୁ) ହଗା ଧରିବା(ହେବା)—ଦେ. ବି.—ଅତିସାର, ଆମାଶୟ, Hagā dharibā(hebā) ବିସୂଚିକାଦି ରୋଗ ଆକ୍ରମଣ କରିବା—বাহ্যি হওয়া Being attacked with diarrhoea, टट्टीकी बीमारी होना cholera or dysentery.

ହଗା ବାନ୍ତି—ଦେ. ବି—ହଇଜା—Cholera.
Hagā bānti কলেরা हैजा

ହଗା ବାନ୍ତି ଦି (ଦୁଇ) ମୁହଁ ଫିଟିବା—ଦେ. ବି—ପ୍ରବଳ ବିସୂଚିକାର Hagā bānti di(dui)muhañ phiṭibā ଆକ୍ରମଣ—Being attacked with a virulent type of cholera.

ହଗା ମୁତା—ଦେ.ବି, (ସହଚର)—ଝାଡ଼ା ଫେରିବା ଓ ପ୍ରସ୍ରାବକରିବା—Hagā mutā Passing of stool and of urine. হাগা মুতা हगामुता

ହଗା ରୋଗ—ଦେ.ବି.—ଉଦରାମୟ,ଅତିସାର, ବିସୂଚିକା ଆଦି ରୋଗ—Hagā roga Diseases relating to stool, i. e. হাগারোগ टट्टीकी बेमारी dysentery, diarrhoea and cholera.

ହଗା ରୋଗୀ—ଦେ. ବି—ଉଦରାମୟରୋଗଗ୍ରସ୍ତ ବ୍ୟକ୍ତି—A patient Hagā rogi suffering from dysentery হেগো রোগী टट्टीकी मरीज or dirrohea.

ହଗା ଲ(ନ)ଗା—ଦେ. ବିଣ.—୧। ଭୟଙ୍କର ଭାବରେ ପ୍ରହାରିତ—Hagā la(na)gā Beaten or belaboured furi-মেরে হগিযে মুতিয়ে (দেওয়া) ously. ୨। ଅତିଅକାନ୍ତ—हगा मुता 2. Brought to pay.

ହଗି ଦ(ଧ)ଉଡ଼ିବା(ଧାଇଁବା)—ଦେ. କ୍ରି—(ଅଜୀର୍ଣ୍ଣ ବା ରୋଗ ଯୋଗୁଁ) Hagi da(dha)urḍibā(dhāiñbā) ବାରମ୍ବାର ଝାଡ଼ା হাগতে দৌড়া हगनेको दौड़ना ଫେରିବାକୁ ଯିବା—To (ହଗି ଧାଇଁବା—ଅନ୍ୟରୂପ) pass stool repeatedly or at short intervals.

ହଗି ଦେବା—ଦେ. କ୍ରି—ହଗି ପକାଇବା; ହଠାତ୍ ମଳୋତ୍ସର୍ଗ କରିବା—Hagi debā To defecate hastily. [ଯଥା—ମୁଣ୍ଡରେ হেগে দেওয়া हगदेना ଜଟ । ଲୁଥ ହଗିଦେଲା ଲଟପଟ—ଛଗ]

ହଗି ପକା(କେ)ଇବା—ଦେ. କ୍ରି.—୧। ଅପ୍ରତ୍ୟାଶିତ ଭାବରେ ବା Hagi pakā(ke)ibā ଅତର୍କିତ ଭାବରେ ଝାଡ଼ା ଫେରିବା—হেগেফেলা हगदेना 1 To defecate suddenly. ୨। ଶୀଘ୍ର ବସ୍ତ୍ର ତ୍ୟାଗ କରିବା—2. To hastily pass stool. ୩। (ଲକ୍ଷଣାର୍ଥ)—ବେଳାଯୁ ମାଡ଼ ବା ଅତ୍ୟନ୍ତ ଭୟ ବା ଅତ୍ୟଧିକ ବୋଝର ଫଳରେ ବିନା ଇଚ୍ଛାରେ ଝାଡ଼ା ଫେରିବା—3. To involuntarily defecate through fear or beating or excessive straining under a load.

ହଗି ବସି ନାଆଁ ସର୍(ରେ)ଇବା—(ନ୍ୟାୟ)—(ବାଟରେ ଝାଡ଼ାଫେର
Hagi basi nā-ān sarā(re)ibā ବସିଲେ କମ୍ବା ଅନ୍ୟ
ବ୍ୟକ୍ତିର ବାଡ଼ ଅଗରେ ଝାଡ଼ା ଫେରିଲେ ଝାଡ଼ା ଫେରିବା
অল্পে বদনাম কেনা ह्गकर नाम डुबाना ବ୍ୟକ୍ତିକୁ ଲୋକେ
ଗାଳି ଦିଅନ୍ତି ଏହି ମୌଳିକ ଭାବରୁ ଲକ୍ଷଣାର୍ଥ)—ଛୋଟ ବା
ଲଜ୍ଜାଜନକ କାର୍ଯ୍ୟ କରିବା ଦ୍ୱାରା ଅକୀର୍ତ୍ତି ବା ନିନ୍ଦା ଅର୍ଜନ କରିବା
—(figurative) To earn censure by doing any insignificant or shameful act.

ହଗିବା—ଦେ. କ୍ରି. (ସଂ ହଦ୍‌ଧାତୁ, ପ୍ରା—ହଗ୍‌ଧାତୁ=ବିଷ୍ଠା ତ୍ୟାଗ
Hagibā କରିବା —୧। ଝାଡ଼ା ଫେରିବା; ମଳୋତ୍ସର୍ଗ
হাগা हगना କରିବା—1. To pass stool; to relieve one's bowels; to defecate. [ଦ୍ର—ଏ ଶବ୍ଦ ଇତର ଲୋକଙ୍କ ବ୍ୟବହୃତ, ଭଦ୍ରସମାଜର କଥୋପକଥନରେ ହଗିବା ନ କହି ଝାଡ଼ା ଫେରିବା, ପୋଖରୀ-ଯିବା, ବହିର୍ଦେଶ ଯିବା, ବହିର୍ଭୂମି ଯିବା, ବାହାର ବସିବା ଓ ଗଞ୍ଜାମରେ ବଣକୁ ଯିବା ଆଦି ବ୍ୟବହୃତ ହୁଏ।]
୨। (ଲକ୍ଷଣାର୍ଥ) ନିଜର ଶକ୍ତିର ବା ବଳର ଅଭାବ ଥିବାରୁ) କୌଣସି କାର୍ଯ୍ୟ କରିବାକୁ ଅସମର୍ଥ ହେବା—2. (figurative) Not to be able to do any work (for want of sufficient strength).
୩। (ଲକ୍ଷଣାର୍ଥ) କୌଣସି କାର୍ଯ୍ୟକୁ (ଯଥା—ଲେଖା, କାରିଗରୀ ଇତ୍ୟାଦି) ଅସୁନ୍ଦର କରି କରିବା—3. (figurative) To do any work clumsily. ୪। ହଗି ପକାଇବା (ଦେଖ)—4. Hagi pakāibā (See)
୫। ଝାଡ଼ିବା; ଅତ୍ୟଧିକ ପାଣିଆ ମଳ ଉତ୍ସର୍ଗ କରିବା—5. To pass a large quantity of liquid excrement.

ହଗିବା ମୂତିବା—ଦେ· କ୍ରି (ସକର୍ମକ)—ଝାଡ଼ା ଫେରିବା ଓ ପ୍ରସ୍ରାବ
Hagibā mūtibā କରିବା—To pass stool and
হাগামুতা urine; to ease one'self and to make water.
हगना मूतना

ହଗି ମୂତି ପକା(କେ)ଇବା—ଦେ.କ୍ରି—୧। ଏକ ସମୟରେ ମଳ ଓ ପ୍ରସ୍ରାବ
Hagi mūti pakāibā ତ୍ୟାଗ କରିବା—1. To pass
হেগে মুতে ফেলা stool and urine simultaneously ୨।
हगमूत देना (ଲକ୍ଷଣାର୍ଥ) ଅତ୍ୟଧିକ ମାଡ଼ ବା ଭୟ ବା ଅତ୍ୟଧିକ ବୋଝର ଚାପକୁ ସମ୍ଭାଳି ନ ପାରି ବିନା ଇଚ୍ଛାରେ ଝାଡ଼ା ଫେରିବା ଓ ପ୍ରସ୍ରାବ କରିବା—2. (figurative) To involuntarily pass stools and urine through fear-beating or strain of load. ୩। (ଲକ୍ଷଣାର୍ଥ) ଭୟରେ ଅଚେତ୍ତ ହେବା—3. (figurative) To be over-powered with fear; to be terrified. [ଦ୍ର—ଦେଖାଯାଏ ଯେ, କେତେକ ବ୍ୟକ୍ତିଙ୍କୁ ଓ ପ୍ରାଣୀଙ୍କୁ ବିଶେଷ ମାଡ଼ ଦେଲେ ବା ଭୟ ଦେଖାଇ ଅଚେତ୍ତ କରି ଦେଲେ, କମ୍ବା ତାଙ୍କ ଶକ୍ତିର ସାଧ୍ୟାତୀତ ବୋଝ ତାଙ୍କ ଉପରେ ଲଦି ଦେଲେ ବିନା ଇଚ୍ଛାରେ ତାଙ୍କଠାରୁ ପରିସ୍ରା ଓ ଝାଡ଼ା ହୋଇଯାଏ।]

ହଗି ମୂତି ପଳା(ଳେ)ଇବା—ଦେ.କ୍ରି=ଅତି ଭୟଗ୍ରସ୍ତ ହୋଇ ପଳାଇଯିବା
Hagi mūti palā(le)ibā —To be affrighted too
হেগে মুতে পালান much and flee away. (ଭ—ତାଙ୍କ
हग मूतकर भागना ସେ ବଞ୍ଚିଲେ ଭୀମଙ୍କ ମାରୁଣୀରୁ, ହଗି ମୂତି ପଳାଇଲେକ ସେ ବନରୁ । କୃଷ୍ଣସିଂହ. ମହାଭାରତ. ବନ ।)

ହଗି ଯିବା—ଦେ. କ୍ରି—ମଳତ୍ୟାଗ କରିବା ପାଇଁ ସ୍ଥାନାନ୍ତରକୁ ଯିବା—
Hagijibā To go out to pass stool.
হাগতে যাওয়া टट्टी जाना

ହଗୁଡ଼ା(ରା)—ଦେ. ବି. ପୁଂ—୧। ଅଗ୍ରଜାଙ୍କୁ ଦିଅଯିବା ନାମ—
Hagurdā(rā) 1. A name given to a child whose
[ ହଗୁରି, ହଗୁଡ଼ୀ—ସ୍ତ୍ରୀ ] elder has died before its
হেগো birth. ୨। ତର ଅତିସାର ରୋଗୀ—2. A person
हगुआ suffering from chronic dysentery.
ବିଣ—୧। ଯେ ପୁନଃ ପୁନଃ ମଳତ୍ୟାଗ କରେ; ଯେ ଅନେକଥର ଝାଡ଼ା ଫେରେ—1. Passing stool several times; passing stool frequently.
୨। ଯେ ହଗେ ବା ହଗିଥାଏ—2. Passing or having passed stool. ୩। ଯାହାର ବାରମ୍ବାର ହଗିବାର ଅଭ୍ୟାସ—3. Habitually passing stool. ୪। (ଲକ୍ଷଣାର୍ଥ) ଛେରୁଆ; ଅତିଭୟାଳୁ—4. (figurative) Coward; timid.

ହଗେଇ ଦେବା (ନେବା)—ହଗାଇ ଦେବା (ଦେଖ)
Hageidebā (nebā) Hagāi debā (See)
[ହଗେଇ ପକା(କେ)ଇବା; ହଗେଇବା—ଅନ୍ୟରୂପ]

ହଗ୍ରା—ପ୍ରାଦେ (ସମ୍ବଲପୁର) ବିଣ—ହଗୁଡ଼ା(ରା) (ଦେଖ)
Hagrā Hagurdā(rā) (See)

ହଙ୍କଙ୍ଗ୍—ଦେ. ବି (ନାମ)—ହଂକଂ (ଦେଖ)
Hankang হংকং हंकं Hamkām (See)

ହଙ୍କା—ଦେ· ବି—ଗାଡ଼ି ଇତ୍ୟାଦିର ଚାଳନ—
Hankā The act of driving a cart etc.
হাঁকা हंकाई

ହଙ୍କା(ଙ୍କେ)ଇ ଦେବା—ଦେ. କ୍ରି—ଧମକ ଦେଖାଇ କୌଣସି ବ୍ୟକ୍ତିକୁ
Hankā(nke)i debā କୌଣସି ସ୍ଥାନରୁ ତଡ଼ିଦେବା—To
হাঁকিয়ে দেওয়া हाँकदेना drive away a person from a place by using threats.

ହଙ୍କା(ଙ୍କେ)ଇବା —ଦେ. କ୍ରି—(ସଂ. ହୁଙ୍କାର; ହଙ୍କାର; ହକ୍କାର=
Hankā(nke)ibā ଆହ୍ୱାନ, କମ୍ବା ହକ୍କ=ଗଜ ସମାହ୍ୱାନରୁ)—
হাঁকান ୧। ଗାଡ଼ି ବଳି ଆଦିକୁ ହାଙ୍କିବା; ଗାଡ଼ି ଆଦିର
हाँकना, हंकाना ଚଳାଇବା ସ୍ୱରୂପ ଘୋଡ଼ା ଆଦିଙ୍କୁ ଚଳାଇବା—
1. To drive (the horses etc of) a vehicle

etc as driver. ୨ । (ଗାଡ଼ି ହଙ୍କାଇବା ଲୋକ ଚାବୁକ ଧରି ପାଟକରି ଗାଡ଼ିର ଘୋଡ଼ାକୁ ଚାଳିତ କରିବା ଅର୍ଥରୁ) କୌଣସି ବ୍ୟକ୍ତିକୁ ଧମକ ଦେଖାଇ ବା ପ୍ରହାର ଭୟରେ କୌଣସି ସ୍ଥାନରୁ ତଡ଼ିଦେବା—2. To drive away a person from a place by threat or show of force. ୩ । ହାଙ୍କିବାର ଣିଜନ୍ତ; ଅନ୍ୟ ଦ୍ୱାରା ହାଙ୍କିବା କ୍ରିୟା କରିବା—3. Causative form of Hānkibā.

ହଙ୍ଗ(ଙ୍ଗା)ମା—ବୈଦେ. ବି—( ପା. ହଙ୍ଗାମାହ୍ )—୧ । ହେଙ୍ଗମ—
Hanga(ngā)mā 1. Hengamā (See). ୨ । ଅଳର୍ଟ;
(ହଙ୍ଗାମ; ହେଙ୍ଗମା—ଅନ୍ୟରୂପ) କଳହ—2. Quarrel. ୩ ।
हे(हा)ङ्गामा, हाङ्गामा **हङ्गाम** କଳକଳଥିବା ପୂର୍ବକ ବିବାଦ—
3. Noisy quarrel. ୪ । ମାରପିଟ ପୂର୍ବକ କଳି—
4. Brawl; affray. ୫ । ଶାନ୍ତିଭଙ୍ଗ—5. Breach of the peace. ୬। ଗୋଳମାଳ—6. Ado.

ହଙ୍ଗ(ଙ୍ଗା)ମା କରିବା—ଦେ. କ୍ରି.—୧ । କୌଣସି ବ୍ୟକ୍ତି ସଙ୍ଗେ କଳହ
Hanga(ngā)mā karibā କରିବା—1. To quarrel
हाङ्गाम (हेङ्गामा) करा **हङ्गमाकरना** with a person. ୨ ।
(ହଙ୍ଗାମ କରିବା—ଅନ୍ୟରୂପ) କଳହ ପୂର୍ବକ ମାରପିଟ୍ କରିବା; ବେଆଇନ୍ ବଳ ପ୍ରୟୋଗ ବା ଜବରଦସ୍ତି କରିବା—2. To use criminal force and asault a person; to commit affray.

ହଙ୍ଗ(ଙ୍ଗା)ମା ଦାର୍ (ବାଜ୍)—ବୈଦେ. ବିଣ (ପା. ହଙ୍ଗାମାହ୍+ବାଜ୍;
Hanga(ngā)mā dār (bāj) ଦାର୍)—୧ । କଳହପ୍ରିୟ
हेङ्गामाबाज 1. Quarrelsome. ୨ । ବେଆଇନ ବଳପ୍ରୟୋଗ
**हङ्गमादार** କାରୀ—2. Using criminal force; assaulting; committing affray.
( ହଙ୍ଗାମି, ହଙ୍ଗାମିଆ—ଅନ୍ୟରୂପ )

ହଚ୍‌ପଟ୍‌କୁ ଆଣିବା—ବୈଦେ. (ଇଂ) କ୍ରି. (କଚେରୀ) ( ଇଂ. ହଚ୍‌ପଚ୍
Hach-paṭku āṇiba ଶବ୍ଦର ଅର୍ଥ ନାନା ପଦାର୍ଥମିଶ୍ରିତ
हचपटेआना ଘାଣ୍ଟ ଘଣ୍ଟ ବା ମଣ୍ଡର । ଏହି ଅର୍ଥରୁ ଏହି ଶବ୍ଦ
**हचपटमें लाना** ଆଇନରେ ବ୍ୟବହୃତ ହେଉଅଛି । )—ବଣ୍ଟନ ମକଦ୍ଦମାରେ ପକ୍ଷମାନଙ୍କର ଯାବତୀୟ ସମ୍ପତ୍ତିକୁ ଏକତ୍ର ଦାଖଲ କରିବା—(Legal term) To bring all the properties of the co-sharers into the hotchpot on the occasion of partition.

ହଚକେଇ ଯିବା—ଦେ. କ୍ରି—କିଂକର୍ତ୍ତବ୍ୟବିମୂଢ଼ ହେବା—
Hachakei jibā To get confused or bewildered.
हकचकियेयाओया [ଯଥା—ତା ମୁହଁରେ ଚଟକଣି ପଡ଼ିବାରୁ ସେ ହଚକେଇ ଗଲା ।]
**हकबकाना**

ହଜ୍—ବୈଦେ. (ଆ) ବି—ମୁସଲମାନ୍‌ମାନଙ୍କ ତୀର୍ଥ ମକ୍କାକୁ ଗମନ ଓ
Haj ସେଠାରେ ତୀର୍ଥକୃତ୍ୟ ସମ୍ପାଦନ—Pilgrimage to
हज Mecca and accomplishment of certain
हज religious duties there (by a Mahomedan).
[ଦ୍ର—ମୁସଲମାନୀ ଜିଲ୍‌ହଜ୍ ମାସର ଦଶମଦିନ ମୁସଲମାନ୍‌ମାନଙ୍କର 'ବକ୍ରୀଦ୍' ପର୍ବ । ସେ ଦିନ ମୁସଲମାନ୍‌ମାନେ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପଶୁବଳି ଦିଅନ୍ତି । ସେହି ଦିନ ଯେଉଁ ବ୍ୟକ୍ତି ମକ୍କାକୁ ଯାଇ ହଜ୍ କରନ୍ତି ଓ ବଳି ଦିଅନ୍ତି ତାଙ୍କ ନାମ ପୂର୍ବରେ 'ହାଜି' ଉପାଧି ଯୁକ୍ତ ହୁଏ ।]

ହଜ୍ କରିବା—ଦେ. କ୍ରି—ମକ୍କା ତୀର୍ଥ ଦର୍ଶନାଦି କରିବା—
Haj karibā To accomplish a pilgrimage to
হজকরা **हजकरना** Mecca.

ହଜ୍ ଗ(ବ)ଜ୍—ଦେ. ଅ—୧ । ହାଉଯାଉ (ଦେଖ)—1. Hāujāu
Haj ga(ba)j (See). ୨ । ବହୁପଦାର୍ଥର ଇତସ୍ତତଃ ବିକ୍ଷିପ୍ତ ହେବା
হ(হি)জব(বি)জ ଅବସ୍ଥା—2. The condition of many
**तितिरबितिर** things being strewn here and there.
୩ । [ଦ୍ର—ମହାଭାରତରେ ଯୁଧିଷ୍ଠିରଙ୍କ ଉକ୍ତି 'ଅଶ୍ୱତ୍ଥାମା ହତ ଇତି ଗଜଃ' ର ଭାବରୁ ) ନିଶ୍ଚିତ କଥା ନ କହି ଇତସ୍ତତଃ କରିବା—3. Prevarication. ୪ । ବିଷୟ-ସଙ୍ଗତ ନ କରି ବା ଧାରାବାହିକରୂପେ ବର୍ଣ୍ଣନା ନ କରି କୌଣସି ବିଷୟ କହିବା—4 Speaking anything without system or at random. ୫ । ଗୋଳମାଳ—5. Ado; confusion. ( ତୁଳ. ଇଂ. ହଜ୍‌ପଜ୍=ଘାଣ୍ଟଘଣ୍ଟ) ୬ । (ପୋକଅଦି) କୌଣସି ସ୍ଥାନରେ ବହୁ ପରିମାଣରେ ସାଲୁ ସାଲୁ ହେବା—6. The state of a place abounding in or being beset with a multitude of tiny insects.

ହଜ୍‌ଗ(ବ)ଜ୍ କରିବା—ଦେ. କ୍ରି—୧ । ନିଶ୍ଚିତ କଥା ନ କହି
Haj-ga(ba)j karibā ଇତସ୍ତତଃ କରିବା—1. To preva-
হ(হি)জব(বি)জ করা ricate. ୨। ଧାରାବାହିକରୂପେ କଥା ନ କହି
**तितिरबितिर करना** ଏଣୁତେଣୁ ଗପିବା—2. To speak unsystematically.

ହଜ୍‌ଗଜ୍ ଗଜ୍‌ଗଜ୍—ପ୍ରଦେ (ଖଣ୍ଡଅଳ) ବି—ଆନନ୍ଦର ଗହଳଚହଳ;
Haj-gaj gaj-gaj ଆନନ୍ଦମୟ କୋଳାହଳ—Ado or confusion due to merriment.

ହଜଗ(ବ)ଜ୍ ହେବା—ଦେ. କ୍ରି—ହାଉଜାଉ ହେବା; ( ବହୁସଂଖ୍ୟକ
Haj-ga(ba)j hebā ପୋକ)ସାଲୁସାଲୁହେବା—To abound;
হ(হি)জব(বিজ করা) **तितिरबितिर होना** to swarm.
(ଯଥା—ତା ମୁଣ୍ଡରେ ଉକୁଣି ହଜଗଜ ହେଉଛନ୍ତି)

ହଜ୍‌ଗ(ବ)ଜିଆ—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତି ନିଶ୍ଚିତ କଥା ନ କହି
Haj-ga(ba)jiā ଇତସ୍ତତଃ କରେ—Prevaricating.
যে হজগজ করে **तितिरबितिर करनेवाला**
(ହଜଗ[ବ]ଜୀ, ହଜଗ[ବ]ଜେଇ—ସ୍ତ୍ରୀ)

ହଜ୍‌ବାଣ୍ଡା—ପ୍ରାଦେ. (ଗଡ଼ଜାତ) ବି.—ହାତିବାଣ୍ଡା (ଦେଖ)—
Haj-bāṇḍā Hātibāṇḍā (See).

ହଜ୍‌ମି (ଇତ୍ୟାଦି)—ବୈଦେ. ବିଣ—ହଜମି ଇତ୍ୟାଦି (ଦେଖ)—
Haj-mi (etc) Hajami etc (See).

ହଜ୍‌ରତ୍‌—ବୈଦେ. ବି—ହଜରତ୍‌ (ଦେଖ)—Hajarat (See).
Haj-rat ہجرت हजरत

ହଜ୍‌ରତ୍‌ ମହମ(ମ୍ମ)ଦ୍‌—ବୈଦେ. ବି—(ମହମ୍ମଦଙ୍କ ନାମ ପୂର୍ବରେ
Haj-rat mahama(mma)d ସମ୍ମାନସୂଚକ ହଜରତ୍‌ ଶବ୍ଦର
ہجرت محمد हजरतमुहम्मद ପ୍ରୟୋଗ)—ସମ୍ମାନନୀୟ ବା ମହାମହିମ
ପୟଗମ୍ବର ମହମ୍ମଦ (ଦେଖ)
Hajrat Mahommed, the Prophet of Islam.

ହଜ୍‌ରା—ପ୍ରାଦେ (ଖଡ଼ିଆଳ) ବିଣ. ପୁଂ—ଅସନ୍ତୁଷ୍ଟ—Dissatisfied
Haj-ra (ହଜ୍‌ରୀ—ସ୍ତ୍ରୀ) discontented.

ହଜ୍‌ରିବା—ପ୍ରାଦେ (ଖଡ଼ିଆଳ) କ୍ରି—ଅସନ୍ତୁଷ୍ଟ ହେବା—To be
Haj-riba dissatisfied; to be discontented.
(ହଜର୍‌ବା—ଅନ୍ୟରୂପ)

ହଜ୍‌ ହଜିଆ—ପ୍ରାଦେ. (ସମ୍ବଲପୁର) ବିଣ.—ଖଜ ବଜିଆ (ପିଲା);
Haj-hajia ଅସ୍ଥିର—Restless (child).

ହଜ—ପ୍ରାଦେ. (ପୁରୀ ଜିଲ୍ଲା, ଭୁବନେଶ୍ୱର ଅଞ୍ଚଳ) ବି. (ସଂ. ହ୍ରଦ)—ବଡ଼
Haja ଜଳାଶୟ—Big tank. [ ଯଥା—ନୁଆପଲ୍ଲୀ ହଜ;
କପିଳେଶ୍ୱର ହଜ] ବୈଦେ. (ଫା). ବି—ହଜ୍‌ (ଦେଖ)
Haj (See).

ହଜତ୍‌—ବୈଦେ. ବି—ହଜ୍ଜତ୍‌ (ଦେଖ)—Hajjat (See).
Hajat

ହଜମ—ବୈଦେ (ଅ) ବି—୧। ଭୁକ୍ତ ଦ୍ରବ୍ୟର ପରିପାକ—1. Diges-
Hajam tion of food. ୨। (ଲକ୍ଷଣାର୍ଥ) କୌଣସି
ہضم हजम ଦ୍ରବ୍ୟକୁ ଅତ୍ମସାତ୍‌ କରିବା—2. (figurative)
Appropriation of anything.

ହଜମ୍‌ କରିବା—ଦେ. କ୍ରି.—୧। ଖାଦ୍ୟଦ୍ରବ୍ୟ ସବୁ ଜୀର୍ଣ୍ଣ କରିବା—
Hajam kariba 1. To digest any food. ୨।
ہضم کرنا हजम करना (ଲକ୍ଷଣାର୍ଥ)—କୌଣସି ବସ୍ତୁକୁ ଅତ୍ମସାତ୍‌ କରିବା—2. (figurative) To appropriate anything to one's use. ୩। (ଲକ୍ଷଣାର୍ଥ) ଗୁରୁତର ଦଣ୍ଡ ବା ଅଘାତ ପାଇ ତାହା ସମ୍ଭାଳି ନେବା, ଅର୍ଥାତ୍‌ ତହିଁର ଫଳରେ ଶଯ୍ୟାଗତ ବା ପୀଡ଼ାଗ୍ରସ୍ତ ନ ହେବା—3. (figurative To bear heavy punishment or hurt without feeling none the worse for it. ୪। (ଲକ୍ଷଣାର୍ଥ) ପାପ କରି ତହିଁର ମନ୍ଦ ଫଳ ଭୋଗ ନ କରିବା—4. (figurative) Not to suffer for any sin committed by a person. ୫। (ଲକ୍ଷଣାର୍ଥ) ପାପ ବା ଅକ୍ରିୟାମାନ କରି ସେଥିପାଇଁ ସମାଜରେ ଦଣ୍ଡିତ ବା ନିନ୍ଦିତ ନ ହେବା—5. (figurative) To go unpunished or scotfree in society after committing sins and misdeeds. ୬। (ଲକ୍ଷଣାର୍ଥ) ବୁଝି ପାରିବା; ହୃଦୟଙ୍ଗମ କରିବା—6. To understand.

ହଜମ ପାଇବା(ହେବା)—ଦେ. କ୍ରି—(ଖାଦ୍ୟ ଦ୍ରବ୍ୟ ବି)ଜୀର୍ଣ୍ଣହେବା—
Hajam paiba(heba) (food) To be digested.
ہضم ہونا हजम होना

ହଜମି—ବୈଦେ. ବି(ଅ)—ପରିପାକ କ୍ରିୟାରେ ସାହାଯ୍ୟକାରୀ ବା ହଜମି
Hajami ہضمی हजमी ଔଷଧ—Digestive medicine.
ବିଣ—୧। ଯାହା ହଜମ କରାଏ;
ଯାହା ପରିପାକ କ୍ରିୟାରେ ସାହାଯ୍ୟ କରେ—1. Digestive; helping digestion. [ ଦ୍ର—ସନ୍ତକାଶୀର ହଜମୀ, ବଳକର, ରୋଗନାଶକ, ମୁଖରୋଚକ, ରୋଗର ପଥ୍ୟ—ଫକିର ମୋହନ ଛମାଣ ଅଠଗୁଣ୍ଠ]—୨। ହଜମ ବା ଭୁକ୍ତ ଦ୍ରବ୍ୟର ପରିପାକ ସମ୍ବନ୍ଧୀୟ—2. Relating to digestion.

ହଜମି ଓ(ଔ)ଷଦ(ଧ,ଧି)—ଦେ. ବି—ପାକଶକ୍ତିର ସାହାଯ୍ୟକାରୀ
Hajami o(au)shada(dha,dhi) ଔଷଧ—Digestive
ہضمی اوشد हजमी औषध medicine
[ହଜମୀ ବା(ବେ)ଇ—ବୈଦେ. ରୂପ]

ହଜମି ଗୁ(ଗୋ)ଳା (ଲା)—ଦେ. ବି—ପରିପାକ ଶକ୍ତିବର୍ଦ୍ଧକ ବଟିକା—
Hajami gu (go) la (la) Digestive pill.,
ہضمی گولی हजमीगोली (ହଜମି ଗୁଳ[ଲି]; ହଜମି ବଟିକା)
ହଜମିବଡ଼ି—ଅନ୍ୟରୂପ
(ଲକ୍ଷଣାର୍ଥ)—ଯେଉଁ ବସ୍ତୁର ସାହାଯ୍ୟରେ ଲୋକ ନାନା ପାପରୁ ପାର ପାଇଯାଏ—(Figurative) Any thing for which a person is saved from suffering the effect of sins.
[ଯଥା—ଆଜିକାଲି ବ୍ରାହ୍ମଣମାନଙ୍କର "ପଇତା" ହଜମି ଗୁଳା ଅଟେ—ଅର୍ଥାତ୍‌, ବ୍ରାହ୍ମଣମାନେ ପଇତା ପକାଇ ଲୋକଙ୍କୁ ଭଣ୍ଡାଇ ନାନା ଅଖାଦ୍ୟ ଖାଉଛନ୍ତି ଓ ଅକାର୍ଯ୍ୟ କରି ସମାଜରେ ପାର ପାଇ ଯାଉଅଛନ୍ତି ]

ହଜମି ବୁଟି—ଦେ. ବି—ହଜମ କରାଇବାପାଇଁ ବ୍ୟବହୃତ ମହାପୁରୁଷଙ୍କ
Hajami buti ପ୍ରଦତ୍ତ ବା ସ୍ୱପ୍ନଦତ୍ତ ମୂଳମୂଳିକାରେ ତିଆରି
ہضمی بوٹی ଔଷଧ—Any quack digestive medicine.
हजमीबटी

ହଜରତ୍‌—ବୈଦେ. (ଅ) ବି—(ଆରବୀ ହଜୁର ଶବ୍ଦରୁ ଜାତ)—୧।
Hajarat ମହାତ୍ମା ବ୍ୟକ୍ତି—1. A great man. ୨। ପ୍ରଭୁ—
حضرت 2. Lord; master. ବିଣ—୧। ମହାଶୟ;
हजरत ମହାତ୍ମା—1. The Great. ୨। ମହାଶୟ; ଶ୍ରୀଲ;
ମାନନୀୟ; ଶ୍ରୀଯୁକ୍ତ; ସମ୍ମାନାସ୍ପଦ—2. Respectable; honourable. [ ଦ୍ର—ଯେପରି ସଂସ୍କୃତ ଓ ଓଡ଼ିଆ ଭାଷାରେ ଦେବତା ଓ ଋଷି ଆଦିଙ୍କ ନାମ ପୂର୍ବେ ଶ୍ରୀ, ଶ୍ରୀଲ, ଶ୍ରୀମାନ୍‌, ଶ୍ରୀଯୁତ, ଶ୍ରୀଯୁକ୍ତ ଆଦି ଶବ୍ଦ ବସେ, ଆରବୀ ଓ ପାରସୀ ଭାଷାରେ ସେହିପରି ମହମ୍ମଦ ଓ ଯୀଶୁ ଆଦିଙ୍କ ନାମ ପୂର୍ବେ 'ହଜରତ୍‌' ଶବ୍ଦ ବସେ ]

ହଜରତ ମହମ(ମ୍ମ)ଦ୍—ବୈଦେ· ବି (ଅ. ହଜରତ ମହମଦ)—ମୁସଲ୍-
Hajarat mahama (mma) d ମାନଙ୍କ ଧର୍ମ ପ୍ରବର୍ତ୍ତକ
হজরৎমহমদ ମାନନୀୟ ମହମ୍ମଦ—God-sent Divine
हजरतमुहम्मद् Mahomet, the Prophet of the
Muslims; Mahomet the Great.
(ମହମ୍ମଦ୍ ଉଳେ ଟୀକା ଦେଖ)

ହଜା—ଦେ. କ୍ରି—୧ । ହଜିବା (ଦେଖ)—1. Hajiba (See)
Hajā ୨ । ହଜାଇବା (ଦେଖ)—2 Hajāiba (See)
হাবান; হাবিয়ে যাওয়া ବିଣ—ହଜି ଯାଇଥିବା—Lost;
खोना missing. [ଢ଼ି—ହଜା ଦରବ ଖୋଜାଠେଇଁ—ଇଗ]

ହଜା(ଜୋ)ଇବା—ଦେ କ୍ରି—(ପ୍ର ହ ଧାତୁ)—୧ । ହଜିବା କ୍ରିୟାର ଣିଜନ୍ତ
Hajā(je)ibā 1. Causative form of Hajiba. ୨ ।
হাবান ହଜିବାର ବା ନଷ୍ଟ ହେବାର ଉପାୟ କରିବା; ନଷ୍ଟ
खोदेना କରିବା—2. To destroy. [ଢ଼ି—ହଜାଇ
ଦଅଇ ହରେକ ଯାକ—ଢକବସୂର୍ଯ୍ୟ. କବିତା ] ୩ ।
କୌଣସି ବସ୍ତୁକୁ ହରାଇବା—3. To lose any
thing. [ଢ଼ି—ଭୂତକଭୂତାର ଭୂତକଲସକୁ ଗୁହି ହଜା-
ଇବେ ଯଛ ମଛକ—କବିସୂର୍ଯ୍ୟ· ସଙ୍ଗୀତ] ୪ । କୌଣସି
ବ୍ୟକ୍ତିକୁ ଆପଣା ସଙ୍ଗରୁ ହରାଇବା—4. To lose the
company or association of a person.
[ଢ଼ି—ମୋ ଜୀବନ କାହିଁ ହଜାଇଲି, ଶୋକ ଅଣିଦଅ
ଅଳ ବୋଲି—କବିସୂର୍ଯ୍ୟ· ସଙ୍ଗୀତ । ]

ହଜାମ୍—ବୈଦେ· (ଅ) ବି.—(ଅ. ହଜାମ୍)—ଭଣ୍ଡାରି—
Hajām Barber.
নাপিত हजाम

ହଜାମତ୍—ବୈଦେ. (ଅ) ବି.—(ଅ. ହଜାମତ୍)—କ୍ଷୌରକର୍ମ—
Hajāmat Shaving.
হজামৎ हजामत

ହଜାମତ୍ କରିବା—ଦେ· କ୍ରି—ଅନ୍ୟ ବ୍ୟକ୍ତିକୁ କ୍ଷୌର କରିବା—
Hajāmat karibā To shave a person.
হজামৎকরা, ক্ষৌরিকবা हजामतकरना

ହଜାମତ୍ ହେବା—ଦେ. କ୍ରି—ଭଣ୍ଡାରି ଦ୍ୱାରା କ୍ଷିଅର ହେବା—
Hajāmat hebā To have one's self shaven by a
কামান হজামতহওয়া हजामतहोना barber.

ହଜାମନ୍ତ—ପ୍ରାଦେ· (ଯାଜପୁର) ବି.—ହଜାମତ୍ (ଦେଖ)—
Hajāmanta Hajāmat (See)

ହଜାର(ର)—ବୈଦେ. (ଫା) ବି·—(ସଂଖ୍ୟାବାଚକ)—୧। ସହସ୍ର (ସଂଖ୍ୟା)
Hajār(ra) 1.Thousand (number). ୨। ଅସଂଖ୍ୟବସ୍ତୁ—
হাজাব 2. Innumerable things. ବିଣ· ୧ । ସହସ୍ର
हजार ସଂଖ୍ୟକ—1· Numbering a thousand. ୨ ।
ବହୁ—2. Many. ୩ । ଅସଂଖ୍ୟ—3. Countless.
( ଢ଼ି—ହଜାର ହଜାର ଯାଏ, ପ୍ରଣୟବନ୍ତ ହୋଇ—
କବିସୂର୍ଯ୍ୟ· ସଙ୍ଗୀତ ।) [ଢ଼ି—ସଂସ୍କୃତ ଭାଷାରେ, ଓଡ଼ିଆ
ଭାଷାରେ ଓ ଅନ୍ୟ ଭାଷାରେ ମଧ୍ୟ ବହୁବଚନ ବା ଅସଂଖ୍ୟ
ବସ୍ତୁକୁ ବୁଝାଇବା ପାଇଁ 'ଶହ', 'ହଜାର', 'ଲକ୍ଷ',
'କୋଟି', 'ବୃନ୍ଦ', 'ଖର୍ବ' ଆଦି ଶବ୍ଦ ବ୍ୟବହୃତ ହୁଏ ।]
ଦେ. କ୍ରି. ବିଣ—ବହୁବାର, ଅସଂଖ୍ୟ ଥର—Many
times, times out of number. (ଯଥା—ତାକୁ
ହଜାର କହିଲେ ବି ସେ କେବେହେଁ ମୋର ହେବ ନାହିଁ ।)

ହଜାର ମାରି(ରୁ)—ପ୍ରାଦେ. ( ଖଡ଼ଅଳ ) ବିଣ—ଯେ ଅନେକ ଜୀବ
Hajār māri(ru) ହତ୍ୟା କରେ—Killing many
animals.

ହଜାରକ—ଦେ. ବିଣ ଓ ବି—ଏକ ହଜାର ମାତ୍ର —
Hajāraka One thousand only.
এক হাজার एक हजार

ହଜାର କଡ଼ା(ରା)—ଦେ. ଅ ( ତୁଳନା କର—ଶତକଡ଼ା )—ହଜାର
Hajāra kardā(rā) ମଧ୍ୟରେ; ହଜାରରେ—Per thous-
হাজাব কড়া हज़ार करा and; in a thousand.

ହଜାରକିଆ—ଦେ ବିଣ—ଏକ ଗଦାରେ ବା ଏକତ୍ର ହଜାରେ
Hajārakia ଲେଖାଏଁ ସନ୍ନିବିଷ୍ଟ ବା ସ୍ତୂପୀକୃତ ହୋଇଥିବା
এক এক হাজাব (ବସ୍ତୁ)—Gathered or collected into
हजारका groups or heaps of a thousand each.

ହଜାରକେ—ଦେ· ଅ—୧ । ହଜାର ସଂଖ୍ୟା ପୂର୍ଣ୍ଣ ହେଲେ—
Hajārake 1. When a thousand is completed.
হাজাবে ୨ । ହଜାରେ ଟଙ୍କା ଜମା କରିବାକୁ ସମର୍ଥ ହେଲେ—
हजारमें 2. After being able to amass a thous-
and (rupees).
[ଢ଼ି—ଶହକେ ସୁଧାରୁ, ହଜାରକେ ଧନ—ଇଗ ।]
୩ । ଏକ ହଜାର ସଂଖ୍ୟକ ବ୍ୟକ୍ତି ବା ବସ୍ତୁ ମଧ୍ୟରେ—
3. Among or in a thousand. [ଯଥା—ମୋ
ସୁନା ପୁଅ ଭଳି ହଜାରକେ ଗୋଟିଏ ମିଳିବେ ନାହିଁ—
ଶିଶୁରଞ୍ଜନପଦ]

ହଜାର ମଣି—ଦେ. ବି—ଭୂଇଁ ଅଁଳା ତୁଲ୍ୟ ବର୍ଷାୟୁଃ କ୍ଷେତ ଶାକ-
Hajāra maṇi ବିଶେଷ—An annual herb; Phyll-
anthus Urinaria.
[ ଢ଼ି—ଏହାର ପତ୍ର ଶ୍ୱେତ, ଫୁଲ ଶ୍ୱେତ ଓ ଅତିଛୋଟ୍ ;
ଡେମ୍ଫ ନାହିଁ ; ଫଳ ପ୍ରାୟ ୧୨ ମାସ ଫଳେ । କ୍ଷେତ ଗଛମାନ
ଭଳିଆ । ଏ ଗୁଳ୍ମ ବଡ଼ ଗଛମାନଙ୍କ ଛାଇରେ ଜନ୍ମେ ।
ଭୂଇଁ ଅଁଳାର ଫଳ ଚକ୍‌କଣ, କିନ୍ତୁ ଏ ଫଳ ବନ୍ଧୁର ।
(ଯୋଗେଶ୍ଚନ୍ଦ୍ର)]

ହଜାର(ରୁଁ) ହଜାର—ଦେ· ବିଣ ଓ ବି—ଅସଂଖ୍ୟ—
Hajāra(ruṁ) hajāra Countless.
হাজাব হাজাব हज़ारों

ହଜାରି—ଦେ. ବି—୧ । ହରଗଉରୀ ( ଦେଖ )—1. Haragaurā
Hajāri ( See ) ୨ । କୁସୁମ ଫୁଲର ଅନୁରୂପ କଣ୍ଟିଆ ଏକ
হাজাবি, দোপাটী ପ୍ରକାର ଫୁଲ (ଏହି ଗଛର ପତ୍ର କଣ୍ଟାଳ୍ୟକରଣୀ
हजारी ଗଛର ପତ୍ର ପରି)—2. A sort of flower

resembling the safflower. ୩। ସହସ୍ର ସେନାଙ୍କ ନାୟକ—3. Commander of one thousand soldiers. ୪ । ବଂଶୋପାଧି ବିଶେଷ—4. Name of a family title. ୫ । ଓଡ଼ିଶାରେ ପାଣମାନଙ୍କ ବଂଶୋପାଧି ବିଶେଷ—5. A family title of low caste Pāṇas. ବିଣ—ହଜାରିଆ ( ଦେଖ ) Hajāriā ( See )

**ହଜାରିଆ**—ଦେ, ବି—୧ । ଧନୀ ଲୋକ—1. Rich man. ୨। ସହସ୍ର ମୁଦ୍ରାର ଅଧିକାରୀ ବ୍ୟକ୍ତି—2. Owner of one thousand coins. ୩ । ଯେଉଁ ବ୍ୟକ୍ତିଙ୍କ ନିକଟରେ ବହୁ ଧନ ଗଚ୍ଛିତ ଅଛି—3. A person who has got huge hoarded wealth with him. ବିଣ—୧ । ହଜାର ସଂଖ୍ୟା ସମ୍ବନ୍ଧୀୟ—1. Relating to one thousand. ୨ । ହଜାର ସଂଖ୍ୟକ ମୁଦ୍ରାର ଅଧିକାରୀ—2. Owning a thousand coins. ୩। ବଡ଼ ଲୋକ; ଧନାଢ୍ୟ—3. Rich (person). ୪ । ଯେଉଁ ବ୍ୟକ୍ତି ନିକଟରେ ବହୁ ଧନ ଗଚ୍ଛିତ ଅଛି—4. ( a person ) Who has hoarded immense wealth. ୫ । ହଜାରକିଆ ( ଦେଖ )—5. Hajārakiā ( See )
Hajāriā
ধনী লোক
हजारिया
হাজারে, হাজারি
हजारीआ

ହଜାରିକିଆ—ଦେ, ବିଣ—ହଜାରକିଆ ( ଦେଖ ) Hajārakiā ( See )
Hajārikiā
এক হাজারে
एक हाजारका

ହଜାରିବାଗ୍—ଦେ. ବି—ଛୋଟନାଗପୁର ବିଭାଗର ଗୋଟିଏ ଜିଲ୍ଲାର ଓ ତହିଁର ସଦର ମହକୁମାର ନାମ—Hazaribag (a district, subdivision and town in Chotanagpur Division) [ଟୀ—ଏହା ସ୍ୱାସ୍ଥ୍ୟକର ପାର୍ବତ୍ୟ ଅଞ୍ଚଳ ଅଟେ । ଏ ଜିଲ୍ଲାର କ୍ଷେତ୍ରଫଳ ପ୍ରାୟ ୭୦୦୦ ବର୍ଗ ମାଇଲ ଓ ଲୋକ ସଂଖ୍ୟା ପ୍ରାୟ ୧୩ ଲକ୍ଷ । ଏ ଜିଲ୍ଲାର ୩ ଗୋଟି ସବ୍‌ଡିଭିଜନ୍ :—ହଜାରିବାଗ, ଗିରିଡି, ଚତ୍ରା । ଏହା ନନ୍‌ରେଗୁଲେସନ୍ ଜିଲ୍ଲା ଅଟେ ଓ ଏଥିରେ ଜଣେ ଡେପୁଟି କମିସନର ଅଛନ୍ତି ।]
Hajāribāg
হাজারিবাগ্
हजारीबाग

ହଜାରୀ—ପ୍ରାଦେ. (ଲଡ଼ଥାଲ) ବି—ଗଛରେ ପାଣି ଦେବାପାଇଁ ଛିଦ୍ରଯୁକ୍ତ ଝାରୀ—A perforated jug for watering plants. ବିଣ—ଝିଟୀ (ସ୍ତ୍ରୀ)— Adulterous (woman).
Hajāri

ହଜାରୁ (ରୁଁ) ହଜାର—ଦେ. ବିଣ—ଅସଂଖ୍ୟ—Countless.
Hajāru (ruñ) hajāra
হাজারহাজার
हाजारों

ହଜାରେ—ଦେ. ବି—ଏକ ସହସ୍ର ସଂଖ୍ୟା—One thousand. ବିଣ— ୧। ଏକ ସହସ୍ର ସଂଖ୍ୟକ—1. Numbering one thousand. ୨ । ବହୁତ; ବହୁସଂଖ୍ୟକ—2. Many. ୩ । ଅସଂଖ୍ୟ -- 3. Countless. [ଉ—ଏ ରସିକକୁ ହଜାରେ; ପ୍ରୀତି ମିଳଇ ହଜାରେ; ସୀତା ପ୍ରୀତି ଯୋଗୁ ସ୍ରମ କଲେ ସେତୁ ବନ୍ଧନ—ସଙ୍ଗୀତ] କ୍ରି. ବିଣ—୧ । ବହୁପ୍ରକାରେ; ନାନା ପ୍ରକାରେ—1. In many ways. ୨ । ଅସଂଖ୍ୟ ଥର—2. Countless times; times out of number. [ଯଥା—ତାକୁ ହଜାରେ କହିଲେ ସେ ମୋ କଥା ମାନିବ ନାହିଁ । ]
Hajāre
একহাজার
एकहजार

ହଜିବା—ଦେ. କ୍ରି (ସଂ. ହୃ ଧାତୁ)—୧ । ଗମିବା; କୌଣସି ପଦାର୍ଥ ଅଜ୍ଞାତସାରରେ ପଡ଼ିଯିବା—1. To be lost; to be missing. ୨ । ଲୁପ୍ତ ହେବା; ନଷ୍ଟ ହେବା—2. To be lost. [ଉ—ହଜି ନଯିବ (ହଜିଯିବା—ଅନ୍ୟରୂପ) ଖାମ୍ବୁଳକେଶର କ ଜ୍ଞାନ—କବିସୂର୍ଯ୍ୟ ] ୩ । ନମିଳିବା—3. Not to be found. [ଉ—ହଜିଲା ଦରବ ଖୋଜାଇ ଦେବି—ଭାଗ ] ୪ । ଦୃଷ୍ଟ ନ ହେବା; ଅନ୍ତର୍ହିତ ହେବା—4. To disappear. ୫ । ହୃତ ହେବା—5. To be stolen.
Hajibā
হারিয়ে যাওয়া
खोजाना

ହଜୁର୍—ବୈଦେ. ବି. (ଆ. ହୁଜୁର୍ =ମହିମା, ପ୍ରଭୁଙ୍କ ସାନ୍ନିଧ୍ୟ)—୧। ପ୍ରଭୁଙ୍କ ସାନ୍ନିଧ୍ୟ ବା ସମ୍ମୁ—1. Presence of one s master or lord. [ଯଥା—ଏ ପତ୍ର ସାଆନ୍ତାଣୀଙ୍କ ହଜୁରରେ ପହଞ୍ଚିବ ] ୨। ପ୍ରଭୁ; ହାକିମ—2. Lord; master. ଅ—( ପ୍ରଭୁଙ୍କୁ ଭୃତ୍ୟର ସମ୍ବୋଧନ )—ସ୍ୱାମୀ ! ପ୍ରଭୋ !—Lord ! Your Highness ! Your Honour !
Hajur
হজুর
हुजूर

ହଜୁର୍ ! ଖୋଦାବନ୍ଦ୍ ! ଖାମିଦ୍(ନ୍ଦ୍) ! ବୈଦେ.ଅ. (ଫା)—(ବେଦେଦାନ. ଶେଷରେ ପ୍ରଭୁଙ୍କୁ ଭୃତ୍ୟର ସମ୍ବୋଧନ )—ଆପଣ ମୋର ପ୍ରଭୁ ଓ ସ୍ୱାମୀ ଅଟନ୍ତି—Interjection used in addressing one's lord or master.
Hajur ! Khodāband ! Khāmid(nd)
হজুর খোদাবন্দ খামিদ
हुजूर खोदावन्द, खाविंद

ହଜୁର୍ ସିରସ୍ତାଦାର୍—ପ୍ରାଦେ. (ଗଞ୍ଜାମ) ବି.—କଲେକ୍ଟର ସାହେବଙ୍କ ପ୍ରଧାନ କିରାଣି—The head assistant of the District Collector.
Hajur sirastādār
হজুর সিরস্তাদার
हुजूर सिरिस्तादार

ହଜୁର୍ କ୍ଲର୍କ୍—ପ୍ରାଦେ. ( ଗଞ୍ଜାମ ) ବି—ହଜୁର ଗୁମାସ୍ତା; ରାଜାଙ୍କ ନିକଟରେ ସର୍ବଦା ଥିବା କିରାଣି—The personal clerk to a Rājā.
Hajur klark

ହଜୁର୍ ସବାରି—ବୈଦେ.ବି—(ରାଜା ଆଦି ପ୍ରଭୁଙ୍କ ସ୍ଥଳରେ ପ୍ରଯୋଜ୍ୟ) ହଜୁର୍ ସ୍ୱୟଂ; ଆପଣ—(An euphemism) your Honour ! (ହଜୁରଙ୍କ ସବାରି—ଦେ ରୂପ) [ଯଥା—ହଜୁର୍ ସବାରି ଏଠାକୁ କେବେ ଆସିଲା ? =(ଅର୍ଥାତ୍) ହଜୁର୍ ଏଠାକୁ କେବେ ଆସିଲେ ?]
Hajur sabāri
হজুরের পালকি
हुजूरकी सवारी

ହଜୁର୍ ! ଧର୍ମାବତାର !—ଦେ. ଅ—(ପ୍ରଭୁଙ୍କ ପ୍ରତି ପ୍ରଯୋଜ୍ୟ)—
Hajur ! dharmābatāra  ଅହେ ଧର୍ମର ଅବତାର !—
ହ(হু)জুৰ ধৰ্ম্মাবতাৰ (Interjection used in addressing
हुजूर धर्मावतार  one's lord) Oh Lord ! Oh Incarnation of Justice.

ହଜୁରି—ଦେ. ବି—ରାଜପ୍ରଦତ୍ତ ଉପାଧି ବିଶେଷ—A title given
Hajuri  by kings. ବିଣ—୧ । ହଜୁର ସମ୍ବନ୍ଧୀୟ—
হুজুৰি हुजूरी  1. Relating to Hajur. ୨। ସ୍ୱୟଂ ରାଜାଙ୍କ ପାଖରେ କାର୍ଯ୍ୟ କରୁଥିବା (ଭୃତ୍ୟ ବା କିରାଣି)—
2. Personal (clerk and servant).

ହଜୁରି—ଦେ. ବି—ପୁରୀ ଜଗନ୍ନାଥଙ୍କ ପଣ୍ଡାଙ୍କୁ ପ୍ରଦତ୍ତ ଉପାଧି ବିଶେଷ
Hajuri  (ଯାହା ବର୍ତ୍ତମାନ ବଂଶଗତ ହୋଇଅଛି) (ଦ୍ର—ଏମାନଙ୍କ
হুজুৰি हुजूरी  ମୌଳିକ ବଂଶୋପାଧି ଦୁଣ୍ଡି ଅ)—A title of some Pandā family at Puri which has now become a family title.

ହଜୁରିକିଆ—ଦେ.ବିଣ. (ପାନବରଜ ଭାଷା)—ଅତି ଛୋଟ ବା ସୁଣି (ପାନ)
Hajurikiā  —Very small in size (betel leaves).

ହଜୁରି ଗୁମାସ୍ତା—ପ୍ରାଦେ. (ଗଞ୍ଜାମ) ବି—ହଜୁର୍ କ୍ଲର୍କ (ଦେଖ)
Hajuri gumāstā  Hajur klark (See).

ହଜୁରେ ହାଜର୍—ଦେ. ବିଣ—ପ୍ରଭୁଙ୍କ ସମ୍ମୁଖରେ ସ୍ୱୟଂ ଉପସ୍ଥିତ—
Hajure hājar  Personally present before one's
হুজুৰে হাজিৰ हुजूरमें हाजर  lord or King.

ହଜେଇବା—ଦେ. କ୍ରି—ହଜାଇବା (ଦେଖ)
Hajeibā  Hajāibā (See).

ହଜ୍ଜତ୍—ଦେ. ବି—(ଆରବୀ)—୧ । ହୁଜ୍ଜତ; କଳିକଜିଆ;ଝଗଡ଼ା—
Hajjat  1. Noisy quarrel; brawl. ୨ । ଗୋଳମାଳ—
হুজ্জৎ हुज्जत  2.Noise. ୩ । ତର୍କ ବିତର୍କ—3. Argument; discussion.

ହଜ୍ଜତି—ଦେ. ବିଣ. ପୁଂ.—୧ । କଳହପ୍ରିୟ; କଳିହୁଡ଼ା—
Hajjati  1. Quarrelsome. ୨ । ଗୋଳମାଳପ୍ରିୟ—
হুজ্জুতি, কলহপ্ৰিয় हुज्जती  2. Noisy; boisterous.
(ହଜ୍ଜତିଆ—ଅନ୍ୟରୂପ) (ହଜ୍ଜତୀ—ସ୍ତ୍ରୀ)

ହଞ୍ଚଁ କରିବା—ଦେ. କ୍ରି—ହଁଚ କରିବା (ଦେଖ)—
Hañchañ karibā  Hañ chañ karibā (See).

ହଞ୍ଜା(ଞ୍ଜେ)—ସଂ. ଅ. (ନାଟ୍ୟୋକ୍ତି)—(ଚେଟୀ ସମ୍ବୋଧନ; ଦାସୀ ପ୍ରତି
Hañjā(nje)  ସ୍ତ୍ରୀଲୋକଙ୍କର ସମ୍ବୋଧନ); ହଇଲୋ । ହଁଲୋ !—
Interjection used by a mistress while addressing her maid servant. [ଦ୍ର—ଏ ଶବ୍ଦର ବ୍ୟବହାର ଓଡ଼ିଆରେ ନାହିଁ ।)

ହଞ୍ଜାନ୍ତ—ଦେ. ବିଣ—(ସଂ. ଭୟାନକ) ୧ । ହୟାନ୍ତ, (ଦେଖ)
Hañjānt  প্ৰকাণ্ড बहुतबड़ा  1. Hayānta(See).
୨ । ଭୟାନକ—2. Fierce; ferocious. ୩ । ଅତି ବୃହତ୍—3. Very big; gigantic. ୪ । ଅତି ଉଚ୍ଚ
4. Very high; lofty.

ହଞ୍ଜି—ସଂ. ବି (ଭୁଲ.ଇଂ. ହଙ୍ଗର୍=କ୍ଷୁଧା)—ଭୁକ; କ୍ଷୁଧା (କଟାଧର)—
Hañji  Hunger.

ହଞ୍ଜିକା—ସଂ. ବି—୧ । ଭାର୍ଗୀ (ଭାବପ୍ରକାଶ); ବ୍ରାହ୍ମଣ ଯଷ୍ଟି—
Hañjika  2. A plant; Clerodendron Siphonanthus.

ହଟ୍—ଦେ.ଅ.—୧। ଘୋଡ଼ା ଅବା ହାତୀକୁ ପଛକୁ ହଟିବା ପାଇଁ ସମ୍ବୋଧନ—
Hat  1. Interjection used by the driver to
হট্  direct a horse or elephant to move back.
हट  ୨। ହଠାତ୍ (ଦେଖ)—2. Hathāt (See) ଦେ.କ୍ରି—
[ଓଡ଼ିଆ ହଟିବା କ୍ରିୟାର ଅବଜ୍ଞାର୍ଥ ଅନୁଜ୍ଞା ମଧ୍ୟମ ପୁରୁଷ ୧ ବଚନ (ତୁ କର୍ତ୍ତା ସହିତ) ରେ ବ୍ୟବହୃତ କ୍ରିୟା]—
1. (Verb, imperative mood used in directing one's inferior to move back) 1, (Thou) Move back ! ୨ । ବିରତ ହୁଅ !—
2. Desist ! ପ୍ରାଦେ. (ଗଡ଼ଜାତ) ବି—ଜିଦ୍; ହଠର
Zeal; obstinacy.

ହଟ୍ କ(କି)ରି(କିନା, କିନି, ଦିସ)—ଦେ. ଅ—୧ । ହଠାତ୍—
Hat ka(ki)ri(kinā, kini, dis)  1. At once; immedi-
(ହଟ୍‌କିବା (ବା, ହଟ୍ ଦିସ—ଅନ୍ୟରୂପ) ately. ୨ । ଅଚିରାତ୍—
হঠাৎ,হুটকরে  फटस  2.Very soon.

ହଟ୍‌କା ହଟ୍‌କି—ପ୍ରାଦେ. (ଗଡ଼ଜାତ) ବି—ହକ୍‌ଟା ହକ୍‌ଟି (ଦେଖ)
Hat-kā hat-ki  Hak-tā hak-ti (See)

ହଟ୍‌କି(କେ)ଶ(ଶ୍ୱ)ର—ଦେ. ବି—ହାଟକେଶ୍ୱର (ଦେଖ)—
Hat-ki(ke)sa(śwa)ra  Hatakiśara (See)

ହଟ୍‌ବା—ପ୍ରାଦେ. (ସମ୍ବଲପୁର) କ୍ରି—ହଟିବା (ଦେଖ)—
Hat-bā  Hatibā (See)

ହଟ୍‌ଲି—ପ୍ରାଦେ. (ଭଞ୍ଜଭୂମି) ବି—ଛୋଟ ହାଟ—A small fair.
Hat-li  ପ୍ରାଦେ. (ସମ୍ବଲପୁର) ବି—ପ୍ରତ୍ୟହ ବସୁଥିବା ହାଟ—
Market held daily.

ହଟ (ଧାତୁ)—ସଂ.—୧ । ଦୀପ୍ତ ହେବା; ଉଜ୍ଜ୍ୱଳ ହେବା—1. To
Hat (root)  shine; to be bright; (Apte) ୨ । ପ୍ରକାଶ ପାଇବା—2. To be manifest.

ହଟ୍ କିବା—ପ୍ରାଦେ. (ସମ୍ବଲପୁର) କ୍ରି—ଅଟକିବା—
Hat-kibā  To stick at a place.

ହଠ—ଦେ. ବି (ସ. ହଠ)—୧ । ଶଠୁଆମି; ଛଳ—1. Cunning;
Hata  fraud. [ଦ୍ର—ବଳମ୍ଭ ମୋ କର ହଠ, ବିଧାନ ସେ
ভেদ  କରିଅଛୁ ଲୁଚିବା କପଟ—ଉପେ. ବୈଦେହୀଶବିଳାସ]
हठ  ୨ । କୌତୁକ; ତାମସା; କୁହର—2. Diversion; amusement; sport; sportiveness. [ଦ୍ର—ଏବେ ହଠକୁ ପାଦ କୋଡ଼େ ବୋଲି ଗାଇ କର୍ମାଇଲ କରେ—ପ୍ରେମ ସୁଧାନିଧି; କ ଭବ ଲୋକେ ଉଭବରକେଶ ଭାଳଣୀ ତାଟକୁ ଧାଇଁ ଥାଏ ହଠକୁ ଗୋ—ଦ୍ରବ୍ୟବନ୍ଧ ସଙ୍ଗୀତ] ୩ । ଢାଣ୍ଡିଆଳ ଥଟ୍ଟା—3. Jest; practical joke; fun. ୪ । କୁହୁକ; ଗାରଡ଼ି—4. Magic;

juggery- ୫ । କୌଶଳ—5. Ingenuity. ୬ । ଜିଗର; କଚାଳ; ଅଳି; ଜିଦ—6. Importunity; obstinacy. [ଉ—ଲକ୍ଷ ଯତନିରେ ଅଳି, ଯଜାଇ ସେହି ବିଧାନ ହେବାଯାଏ କଲେ ପୁଣି ହଟ—କବିସୂର୍ଯ୍ୟ ହୋଳିକ ଚମ୍ପୂ ] ୭ । ପ୍ରତିଯୋଗିତା—7. Rivalry; emulation—[ଉ—ନାଥ ଭଲେ ହଟ, ବାଦେ କର ହଟ, ଦୁଇକ ଦୁଇକ ମାଡୁଥାଏ—କବିସୂର୍ଯ୍ୟ.] ୮ । ପୁରୁଷ ଲୋକଙ୍କ ନାମ ବିଶେଷ—8. A name given to males, ପ୍ରାଦେ (ପାଠଣା) ବି—ଅଭିମାନ—Sullenness; oversensitiveness.

ହଟ କରିବା (କାଢ଼ିବା, ଦେଖାଇବା, ଲଗାଇବା) -ଦେ· କ୍ରି—୧ । Haṭa kariba (kāṛhibā, dekhāibā, lagāibā) ତୁଜର କରିବା; ତାମସା କରିବା; କୌତୁକ କରିବା—1. To be sportive. [ଯଥା ଲଗାଇଛୁ ହଟ ଯେଉଁ ରସରେ—କବିସୂର୍ଯ୍ୟ. କଳୋଘଚମ୍ପୂ ଲ ଗୀତ] ୨ । ଥଟ୍ଟାକରିବା—2. To cut jokes; to jest. ୩ । ଜିଗର କରିବା; କଚାଳ କରିବା; ଅଳି କରିବା—3. To importune. ୪ । କୁହୁକ ଦେଖାଇବା—4. To exhibit magic or jugglery. ୫ । ପ୍ରତିଯୋଗିତା କରିବା—5.To emulate. ୬। ହଟହଟା କରିବା—6 To harass. [ ଯଥା,—କେତେ ସହିବ ଗର୍ଭକଷ୍ଟ । ବାଧାଲା କଲ୍ୟ ମୋତେ ହଟ । ଜଗନ୍ନାଥ. ଭାଗବତ]. ପ୍ରାଦେ (ବଲାଙ୍ଗିର ପାଟଣା) କ୍ରି. ରୁଷିବା—To sulk.

ହଟକାରିଆ—ଦେ. ବିଣ. ପୁଂ (ସ. ହଠକାରୀ)—ହଟିଆ (ଦେଖ) Haṭa kāriā ଜିଦବାଜ, মজাদার হটী Haṭiā (See)

ହଟକି(କେ)ଶ(ଶ୍ବ)ର—ଦେ. ବି (ନାମ) (ସ. ହାଟକେଶ୍ବର, ତୁଳନା Haṭaki(ke)śa(św̄a)ra କର ଇଂ. Hotspring. হুটকেশ্বর हटकेश्वर ହଟ୍ସ୍ପ୍ରିଂ=ଉଷ୍ଣ ପ୍ରସ୍ରବଣ)—ପୁରୀ ଜିଲ୍ଲାର ଖୋର୍ଦ୍ଧା ସବଡ଼ିଭିଜନ ଅନ୍ତର୍ଗତ ଖୋର୍ଦ୍ଧା ସହରଠାରୁ ଆଠ ମାଇଲ ଦୂରବର୍ତ୍ତୀ ଅତ୍ରୀ ଗ୍ରାମରେ ଥିବା ଉଷ୍ଣ ପ୍ରସ୍ରବଣ ଓ ତନ୍ନିକଟବର୍ତ୍ତୀ ଶିବଲିଙ୍ଗଙ୍କ ନାମ—Name of a hot-spring and an image of Śiba situated near Atri village, 8 miles from Khurda town in the Sub division of Khurda in the Puri district. [ଦ୍ର—ଏହି ଉଷ୍ଣପ୍ରସ୍ରବଣର ଜଳ ସର୍ବଦା ଗନ୍ଧକଯୁକ୍ତ ହୋଇ ଫୁଟୁଥାଏ; ଏଥିରୁ ଗନ୍ଧକର ଗନ୍ଧ ବାହାରୁଥାଏ । ମକର ସଂକ୍ରାନ୍ତି ସମୟରେ ଏକ ମାସ କାଳ ଏଠାରେ ବହୁ ସହସ୍ରଲୋକଙ୍କର ଗୋଷ୍ଠୀବ ମେଳା ହୁଏ । ଏହି ମେଳାରେ ଓଡ଼ିଶାର ନାନା ଅଞ୍ଚଳରୁ ଅନେକ ଲୋକ ଓ ଦୋକାନୀ ଆସି ଜମା ହୁଅନ୍ତି । ବହୁ କୁଷ୍ଠରୋଗୀ ଏହି ଉଷ୍ଣ ପ୍ରସ୍ରବଣରେ ସ୍ନାନ କରି ଏହି ଶିବଲିଙ୍ଗଙ୍କ ଠାରେ ଅଥିଆ ପଡ଼ନ୍ତି । ]

ହଟକି(କେ)ଶ(ଶ୍ବ)ର ମେଳା—ଦେ. ବି—ମାଘ ମାସରେ ହଟକେଶ୍ବର Haṭa ki(ke)śa(św̄a)ra melā ଉଷ୍ଣ ପ୍ରସ୍ରବଣ ନିକଟରେ হটকেশ্বরের মেলা ହେଉଥିବା ମେଳା—A religious fair or हटकेशवरका मेला gathering held near the hotspring of Haṭakeśwara in the month of Māgha

ହଟ କୂଟ—ହଟନଟ ( ଦେଖ )—Haṭanaṭa ( See ) [ଉ—Haṭa kūṭa ବଧାଲା ଛନ୍ଦ ହଟକୂଟ—ପ୍ରାଚୀ. ଜଗନ୍ନାଥ নটখট্ नटखट ମାହାତ୍ମ୍ୟ ।]

ହଟକେଶ୍ବର- ଦେ. ବି—୧ । ନାଗର—1. A gallant. [ଉ—Hatakeśwara ହଟକେଶବରକୁ ବଦେହର, ଏବଣ ଘାଇଲା ଉରେ ବନ୍ଦେହ । ଗୋପୀଭୋଗନ୍ତ, ଉପେନ୍ଦ୍ରଭଞ୍ଜ] ୨ । ହଟକିଶର ( ଦେଖ )—2. Haṭakiśara (See )

ହଟ ଗୋଳ—ଦେ. ବି (ସ. ହଟ୍ଟ ଗୋଳ)—ହଟ୍ଟ ଗୋଳ ( ଦେଖ ) Haṭa.gola Haṭṭa gola ( See ) হট্ট গোল हल्लागुल्ला

ହଟ ଚ(ଛ)ମଟ—ଦେ. ବି ( ସ. ହଠ )—୧ । କୁହୁକ—1. Magic; Haṭa cha(ścha)maṭa jugglery. [ଉ—ସେ ଭାଇ হাতের চালাকি ହଟ ଚମଟ ବିଦ୍ୟା ଜାଣୁଥିଲେ । ନୀଳକଣ୍ଠ ଦାସ. জাদু ଚିଲିକା ସ୍ୱମାଲ୍ୟ ।]

[ଉ—ଚୋକାଙ୍କୁ ସୁନ୍ଦର ବସନ୍ତ ପଞ୍ଚମୀ
ଟୋକାଙ୍କି ସୁନ୍ଦର ଜେଜ,
ବୁଢ଼ୀଙ୍କି ସୁନ୍ଦର ବଡ଼ ଦାମୋଦର
ବୁଢ଼ାଙ୍କୁ ସୁନ୍ଦର ଶୀତ,
ଦ୍ବାସଙ୍କି ସୁନ୍ଦର ଚାଉଁଳ ବେଢ
ଦାସଙ୍କି ସୁନ୍ଦର ନାଚ
କେଳାଙ୍କୁ ସୁନ୍ଦର ହଟ ଚମଟ
ବଜାଙ୍କୁ ସୁନ୍ଦର ଭାଟ—ଢଗ]

୨ । କୌଶଳ—2. Ingenuity; cleverness. ୩ । ଲୋକଙ୍କ ଦେଖିବା ପାଇଁ କରାଯିବା ଦୃଶ୍ୟ—3. Show. [ଉ—ଶୁଣି ଲଭିଲେ ହସି ନଟବଟ, ଆଜ ସଙ୍ଗ ଦୋଷ ହଟ ଚମଟ—କବିସୂର୍ଯ୍ୟ. କବିତା ।] ୪ । କୌତୁକ—4. Fun.

ହଟ ଚ(ଛ)ମଟିଆ—ଦେ· ବିଣ. ପୁଂ—୧ । ହଟିଆ ( ଦେଖ ) Haṭa cha(ścha)maṭiā Haṭiā ( See ) বাজিকর ୨ । କୁହୁକିଆ—2. Exhibiting jugglery जादूगर or magic.

[ହଟଚ (ଛ) ମଟେଇ—ସ୍ତ୍ରୀ]—ଦେ· ବି.ପୁ—ବାଜିଗର—Magician.

ହଟ ଛମଟ—ଦେ. ବି—ହଟ ଚମଟ ( ଦେଖ ) Haṭa chhamaṭa Haṭa chamaṭa ( See )
[ଉ—ନଟବର ମୁଁ ଜାଣଇ ସୁଗତ, ହଟ ଛମଟ ଜାଣିବ କେମନ୍ତ—ପ୍ରତାପ. ପ୍ରାଚୀ ଶଶିସେଣା ।]

ହଟ ତିରଣ୍ଡ—ପ୍ରାଦେ. (ଗଞ୍ଜାମ) ବିଣ—୧ ଅବାଧ୍ୟ—1. Disobedient; insubordinate. ୨ । ଦୁଷ୍ଟ—2. Wicked. Haṭa tiraṇṭa

ହଟ ଦେଖିବା—ଦେ. କ୍ରି—୧ । କୌତୁକ ଦେଖିବା—1. To see
Hata dekhibā the fun. ୨ । ଅପର ବ୍ୟକ୍ତିର ଅପଦସ୍ଥ
মজা দেখা କୌତୁକବିଶିଷ୍ଟ ନୟନରେ ଦୃଷ୍ଟି କରିବା—
मजा देखना 2. To see the fun at the cost of another.

ହଟ ନ(ନା)ଟ—ଦେ. ବି ( ସ. ହଠ ଓ ନାଟ୍ୟ )—ହଟ; କୌତୁକ;
Hata na(nā)ta କୁତୁହଳ; ଠଟ୍ଟା; ତାମସା—Fun; sport.
তামাসা [ଉ—ନଟ ନାଗର ବର ବାଟରେ ହଟ ନାଟ ଭୁ କରନ୍ତି
तमाशा ରେ—ସଙ୍ଗୀତ ।]

ହଟ ନାଗର—ଦେ. ବି—ହଟିଆ ନାଗର ( ଦେଖ )
Hata nāgara Hatiā nāgara ( See )
নাটের গুরু मजाकी

ହଟ ପଟ—ଦେ. ବିଣ—୧ । ବ୍ୟସ୍ତବ୍ୟସ୍ତ—1. Bothered; troubled.
Hata pata [ଉ—ପଥ ଶୃଙ୍ଖଳା ତା ଅଛଟ,
গোল মেলে, হাঁএবাণ କାର୍ଯ୍ୟ କମଳେ ହଟପଟ—ପ୍ରାଚୀ. ଜନ୍ମର୍ଣ
लटपट ମାହାତ୍ମ୍ୟ ।] ୨ । ଲଟପଟ; ଗୋଳମାଳରେ ଜଡିତ—
2. Involved in intricacies.
(ହଟପଟିଆ—ଅନ୍ୟରୂପ)

ହଟର ପ(ବ)ଟର—ଦେ. ବିଣ—ହଟ ପଟ ( ଦେଖ )
Hatara pa(ba)tara Hata pata ( See )

ହଟପର୍ଣ୍ଣୀ—ସ. ଅ—ଶୈବାଳ (ଶବ୍ଦ ରତ୍ନାକର)—
Hata parnnī Moss

ହଟ ପାଟକୀ—ଦେ. ବିଣ. ସ୍ତ୍ରୀ (ଗାଳି)—ହଟ ହଟେଇ—(a term of
Hata pātaki abuse) (a woman) Putting others to shame or ridicule.

ହଟଲି—ପ୍ରାଦେ. (ସମ୍ବଲପୁର) ବି ( ସଂ. ହଟ୍ଟ )—୧ । ଛୋଟ ହାଟ—
Hatali 1. A petty market. ୨ । (ଇଂ. ହୋଟେଲ)
ହୋଟେଲ୍ (ଦେଖ)—2 Hotel (See)
୩ । ପ୍ରତିଦିନ ବସୁଥିବା ହାଟ—3. Daily market.

ହଟ ହଟା—ଦେ. ବି (ସଂ. ହଟ୍ଟ=ହାଟ; ଅର୍ଥାତ୍ କୌଣସି କଥାର ବିଷୟ
Hata hatā ହାଟରେ ପ୍ରକାଶ ପାଇଲେ ଲୋକ ଯାହା ହୁଏ)—
হাঁএরানী ୧ । ହଇରାଣି; ହରକତ ହେବା ଅବସ୍ଥା—
हैरानी 1. Trouble; botheration. [ଉ—ଏ ହଟହଟାରେ କେ ମରବ, କର ସଙ୍ଗାଳ ବିଷାଦ ଘାଟିଲ ଗୋ ।
କବିସୂର୍ଯ୍ୟ, ସଙ୍ଗୀତ ।] ୨ । ଲୋକାପବାଦ—
2. Defamation. ୩ । ଲୋକହସା—3. Scandal.
୪ । ଲୋକହସା ଅବସ୍ଥା; ଉପହାସାସ୍ପଦ ଅବସ୍ଥା—
4. State of becoming the butt end of ridicule and public gaze. [ଉ—ଏ କ ହଟହଟା ଉଅଲାକ ଅହା, ହଟିଅ କେଳଡ-ପଢ—ଯଯାତି ।] ୫ ।
ସର୍ବସାଧାରଣଙ୍କ ଉପହାସ—5. General ridicule.
୬ । ଲଜ୍ଜା—6. Shame; shameful condition.

ହାଁଏବାନ ଦେ. ବିଣ. ( ପୁଂ ଓ ସ୍ତ୍ରୀ )—୧ । ଯେଉଁ ବ୍ୟକ୍ତି ହଟହଟା
हैरान ବା ଲୋକହସାରେ ପଡିଥାଏ—1. ( a person )
(ହଟହଟୀ—ସ୍ତ୍ରୀ., ବିଣ) Who has become the butt end of general ridicule or censure. ୨ । କଷ୍ଟ ବା
ଦୁର୍ଦ୍ଦଶାରେ ପଡିତ—2. In trouble; bothered.
[ଉ—କସ୍ତୁରୀ ଅହା ! ମନ୍ତ୍ରୀ ସେ ପ୍ରାଣୀକି କେତେ
ମତେ ହଟହଟା—ଯଯାତି ।] ୩ । ଅପବାଦଜନକ—
3. Scandalous. [ଉ—ମୋର ପ୍ରୀତିସମ, ହଟହଟା
କଥା, ନ ଥିବ ଏ ତ୍ରିଭୁବନେ । ଜନକଶୋଚ ଶର୍ମିଷ୍ଠା ।]

ହଟହଟା କରିବା—ଦେ. କ୍ରି—ଅନ୍ୟ ବ୍ୟକ୍ତିକୁ ଉପହାସାସ୍ପଦ କରିବା—
Hatahatā karibā To put a person to shame
হাযবান কবা हैरान करना or ridicule.
[ହଟହଟାରେ ପକା(କେ)ଇବା—ଅନ୍ୟରୂପ]

ହଟହଟାରେ ପଡିବା—ଦେ. କ୍ରି—ସାଧାରଣରେ ହାସ୍ୟାସ୍ପଦ ହେବା—
Hatabatāre pardibā To become the butt end
হাযবানীতে পড়া हैरानीमें गीरना of ridicule or censure
(ହଟହଟା ହେବା—ଅନ୍ୟରୂପ)

ହଟ ହଟିଆ—ଦେ. ବିଣ. ପୁଂ—୧ । ହଇରାଣିଆ; ଯେଉଁ ବ୍ୟକ୍ତି ଅନ୍ୟକୁ
Hatabatiā ଲଜ୍ଜାରେ ପକାଏ—1. Putting a person
যে লোক হাযবানে ফেলে to shame. ୨ । ଯେଉଁ ବ୍ୟକ୍ତି
हैरान करनेवाला ନିଜ କାର୍ଯ୍ୟ ଯୋଗୁଁ ହାସ୍ୟାସ୍ପଦ ହୁଏ—
(ହଟହଟେଇ—ସ୍ତ୍ରୀ) 1. A person who brings public ridicule on himself. ୩ । ଯେଉଁ ବ୍ୟକ୍ତି ପରନିନ୍ଦା
କଟାଏ—3. Scandal monger. ୪ । ଯେଉଁ ବ୍ୟକ୍ତି
ଅନ୍ୟ ଲୋକଙ୍କୁ ଉପହାସାସ୍ପଦ କରଏ—4. Bringing public ridicule or censure on the head of another.

ହଟ ହମୀର ଦେଓ—ଦେ. ବି—ହମିର ଦେଓ ( ଦେଖ )
Hata hamira deo Hamira deo ( See )

ହଟା—ଦେ. ବି ( ସଂ. ହଟ୍ଟ=ହାଟ )—୧ । ହଟହଟା; ଲୋକହସା—
Hatā 1. Scandal; public ridicule. ୨ । ଲୋକାପ-
निन्दा, अपवाद ବାଦ—2. Defamation; slander.
हट [ଉ—ସେ ହଟା ହେଉ ନାହିଁ ଟିକଏ ଲୋକରେ—କୃଷ୍ଣସିଂହ
ମହାଭାରତ. ସଭା ।] ୩ । (ସ. ହଠ) କଟାଳ; ଅଳି; ହଠ;
ଜିଦ୍; ଜଗଇ—3. Importunity. ୪ । ଲୋକନିନ୍ଦା—
4. Dispraise. ୫ । ହାଟ—5. Market. ୬ ।
ହଟିବା; ପଛକୁ ଘୁଞ୍ଚିବା—6. Moving back; retreating. ୭ । କୌଣସି ବିଷୟର ସର୍ବସାଧାରଣରେ ପ୍ରକଟିତ
ହେବା—7. Wide publication of any matter.

ହଟା(ଟେ)ଇବା—ଦେ. କ୍ରି (ହଟିବାର ପ୍ରଯୋଜକ ରୂପ )—୧ । ପଛକୁ
Hatā(te)ibā ଘୁଞ୍ଚାଇବା—1. To cause to move
হটীয়ে দেওয়া back. ୨ । ପଛକୁ ଠେଲିବା—2. To push or
हटाना drive backwards. ୩ । ପଶ୍ଚୁ କରିବା—

୩. To defeat. [ଭି—ହଟାଇ ହଟାଇ, ନ ହଟଣ ସେ ଯେ, ମୋହିଲା ଶବେକ ବେକ—ନନ୍ଦକିଶୋର, ଶର୍ମିଷ୍ଠା ।]
୪ । (ରୋଗକୁ) ଚିକିତ୍ସା ଦ୍ୱାରା ନିବୃତ୍ତ କରାଇବା—
4 To cure or control a disease by proper treatment.

ହଟା କରିବା—ଦେ. କ୍ରି—୧ । ଦୁର୍ନାମ ରଟାଇବା; ଅପବାଦ ଦେବା; Hatā karibā ଲୋକାପବାଦ ଦେବା—1· To scandalise· চাউৰ্ করা to defame; to slander· ୨ । ପ୍ରକାଶ शिकायत करना କରିବା, ସାଧାରଣରେ ପ୍ରଚାର କରିବା— জিদ্ করা 2. To publish a thing. ୩ । ଅଳି କରିବା; हठ करना ହଠାଳ କରିବା—3. To importune. ୪ । କୌଣସି ବ୍ୟକ୍ତିଙ୍କୁ ଲୋକହସା କରାଇବା—4. To bring shame or ridicule on a person's head.

ହଟାଣ—ଦେ ବି—୧ । ହଟାଇବା—1. Pushing back. ୨ Hatāṇa ପରାସ୍ତ କରଣ—2. Defeating. হটান हटाव

ହଟାତ୍(ତେ)—ଗ୍ରା· ଅ (ସଂ. ହଠାତ୍)—ହଠାତ୍ (ଦେଖ) Hatāt(e) হঠাত্ हठात् Hathāt (See)

ହଟାତ କିନା(ନି)—ଗ୍ରା. କ୍ରି. ବିଣ—ହଠାତ୍ (ଦେଖ) Hatāt kinā(ni) ছুট্ করে फटसे Hathāt (See) [ହଟାତ୍ ବ(ଧ)ର, ହଟାତ୍ କ(କି)ରି—ଅନ୍ୟରୂପ]

ହଟାତ୍ ବାବୁ—ଗ୍ରା. ବି—ହଠାତ୍ ବାବୁ (ଦେଖ) Hatāt bābu Hathāt bābu (See) হঠাত্ বাবু एकाएक बाबु

ହଟା ପସରା—ପ୍ରାଦେ. (ଉତ୍ତରାଞ୍ଚଳ) ବି—ଅପବାଦ— Hatā pasarā Scandal; bad name.

ହଟା ପଟକା—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତି ଆପଣା ଘରର ଛିଦ୍ରମାନ Hatā patakā ବାହାରେ କାଇ କୁହେ—One who babb- যে গৃহছিদ্র প্রকাশকরে ঘরভেদী les out one's domes- गृहछिद्र कहनेवाला tic secrets to the outside public.

ହଟା ବସା(ସେ)ଇବା—ଦେ· କ୍ରି—ସାଧାରଣରେ କୌଣସିବ୍ୟକ୍ତିର Hatā basā (se) ibā ଦୁର୍ନାମ କରିବା—To defame a দুর্নামরটান person publicly. शिकायतकरना

(ତା ନାମରେ) ହଟା ବସିବା—ଦେ. ବି—ଦୁର୍ନାମ ରଟନା ହେବା— Hatā basibā Publication of a scandal against চাউৰহওয়া a person. शिकायतहोना

ହଟାରି—ଦେ. ବି—ଯେ ବଜାର ବା ହାଟରୁ ପଣ୍ୟ ଦ୍ରବ୍ୟ ନେଇ ବିକ୍ରି Hatāri କରେ—Hawker; vendor of articles in a যে হাট করে, ফেটো market or town. हाटुआ [ଭି—ଅଳ ନଳକୋଟରେ ଭାର ପଡ଼ । କରେଇଥି, ବଜାରୀ, ହଟାରୀ ପର୍ଯ୍ୟନ୍ତ ଦେଖିବାକୁ ଧାଇଁ ଅଛନ୍ତି—ଫକୀର ମୋହନ. ଛମାଣ ଆଠ ଗୁଣ୍ଠ ]

ହଟାହଟି—ଦେ. ବି—ପରସ୍ପରକୁ ହଟାଇବା—Mutual pushing Hatāhati back. [ଭି—ଲଗୋଷ୍ପ କର ବାଟ'ବାଟ ଅସମ୍ଭବ হটাহটি ଭାବେ ହଟାହଟ, ଫିଟାଇ ଛନ୍ଦମ ପେଟ୍ଟି—କବିସୂର୍ଯ୍ୟ· हटाहटी ସଙ୍ଗୀତ ।]

ହଟି—ଦେ. ବି—ହଟ (ଦେଖ)—Hata (See) Hati [ଭି—ତାର ଯେଣୁ ଚନ୍ଦ୍ରକୁ, କଳାତ ଏତେ ହଟ, କୁହିଲେ ସଖି ଲମ୍ପା ଖଣ୍ଡିଣ ଦଅନ୍ତାଟ—ପିତାମ୍ବର. ନୃସିଂହ ପୁରାଣ ] ଦେ. କ୍ରି. ବିଣ—ହଟୁଣ୍ (ଦେଖ)—Hatun (See) [ଭି—ଘନ ନାଥ ନନ୍ଦଲା ଅନାଉଣିକ ମନା କରୁ ଯେ ଥାଉ ହଟ ଗୁହିଁଲୁ ବେ—ଯଶୋବନ୍ତ ଭଞ୍ଜ. ଦ ଗୀତ ]

ହଟିଆ—ଦେ. ବିଣ. ପୁଂ—୧ । ଯେଉଁ ବ୍ୟକ୍ତି ଅଳ କରେ କରେ ବା Hatiā ଅଳିକରେ; ହଠାଳିଆ—1. Importune· জিদখোর हठी ୨ । ରଙ୍ଗିଆ; ବ୍ୟଙ୍ଗରିଆ—2. Sportive; (ହଟେଇ—ସ୍ତ୍ରୀ) funny; jestive. [ଭି—ମୁଁ ସାଧ କୋହଲେ মজাদাৰ मजाहार ଛଅରଣରେ, ମାର ମଦନ ହଟଅରଣରେ—କବିସୂର୍ଯ୍ୟ. ସଙ୍ଗୀତ] ୩ । କୌତୁକପ୍ରିୟ—3. Fond of fun or amusement. ୪ । ଏକବାଗିଆ— একগুয়ে एकबोलिया 4. Head strong. ଦେ. ବି— (ଅନାଦରାର୍ଥକ) ହଟ ନାମକ ବ୍ୟକ୍ତିର ଡାକନାମ— Nickname for Hata.

ହଟିଆ ନାଗର—ଦେ.ବି.—ରଙ୍ଗିଆ ବା କୌତୁକପ୍ରିୟ ରସିକ ବ୍ୟକ୍ତି— Hatiā nāgara A gallant who is fond of fun. নাটেরগুরু मजाकीआदमी

ହଟି କରି କହିବା—ଦେ. କ୍ରି—ଭୁଟକରି କଥା କହିବା—To Hati kari kahibā speak harshly. মুখখাবাপকশা मुह खराब करना [ଭି—ସାରଦା ମ୍ୟା'ଙ୍କୁ ହଟ କରି ପଡେ କହେ ନାହିଁ—ଲୁଣ୍ଡଳା ଲୁମାସ, ନଅଭୁଣ୍ଡି]

ହଟି ଗୁହିଁବା—ଦେ. କ୍ରି.—ପଛ ଅଡ଼କୁ ମୁହଁ ବୁଲାଇ ଗୁହିଁବା— Hati chāhinba To look back. [ଭି—ଘନନାଥ· ফিরেচাওয়া घूमकर देखना ନନ୍ଦଲା ଅନାଉଣି କ ମନା କରୁ ଯେ ଥାଉଁ ହଟ ଗୁହିଁଲୁରେ—କବିସୂର୍ଯ୍ୟ. ଯଶୋବନ୍ତଭଞ୍ଜ ସ ଗୀତ ।]

ହଟି ବସିବା—ଦେ. କ୍ରି.—୧ ପଛକୁ ଘୁଞ୍ଚି ବସିବା—1. To sit Hati basibā পেছিয়ে বসা after moving back. हटकर बैठना ୨ । ଜିଦ୍‌କରି କହିବା; ଏକଜିଦ ଧରିବା— 2. To importune; to insist on something being done. [ଭି—ହଟ ବସିଅଛ, ପରଣ କେବାରେ, ପାପ ଢାମ ଯମ ଘର ହେ—କବିସୂର୍ଯ୍ୟ. ସଙ୍ଗୀତ]

ହଟିବା—ଦେ. କ୍ରି. (ଅକର୍ମକ) (ସଂ. ହଠଧାତୁ=ପ୍ଲୁତଗଣ, ଶାଠ୍ୟ)— Hatibā ୧ । ପଛକୁ ଘୁଞ୍ଚିବା—1. To move back; to হটে যাওয়া हटना draw back. [ଭି—ନ ଟିଙ୍ଗ ପୁଣି·

ହଟି,ମୁନିର କୁହୁକିହି,—କବିସୂର୍ଯ୍ୟ ବଳଦେବ ରଥଙ୍କ ଗୀତ)
୨ । ପଶ୍ଚାତ୍‌ପଦ ହେବା—2. To shrink back.
୩ । ହଠ କରିବା; ଅଳି କରିବା—3. To importune.
[ଯଥା—କାମ ସମ ଖାବନ ନେବାକୁ ଅଛି ହଟିଛ—
ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି] ୪ । ବ୍ୟୟ କରିବାକୁ ବା
ଦେବାକୁ କୁଣ୍ଠିତ ହେବା—4. To shrink from
giving a thing or from spending. [ଯଥା—
ଛୋଟୁଟିଏ ସିନା ହଟି ମୋ ସାର ଯାଉଛ ଭୁଟି—
କବିସୂର୍ଯ୍ୟ. ବଳଦେବରଥ. ଗୀତ] ୫ । ପରାସ୍ତ ହେବା—
5. To be defeated. ୬ । ରଣଭଙ୍ଗ ହେବା—
6 To be routed; to flee from the field of
battle; to retreat. [ଯଥା ସମସ୍ତ ସଇନ ଥାଇ
ହଟିଲ ସହାସେ —ରାଧାନାଥ· ମହାଯାତ୍ରା] [ତ୍ର—ଶତ୍ରୁ
ସଙ୍ଗେ ସମ୍ମୁଖ ଯୁଦ୍ଧ କରୁ କରୁ ପରସ୍ତ ହୋଇ ସମ୍ମୁଖକୁ
ମୁହଁ କରି ଗୋଡ଼କୁ ପଛକୁ ପଛକୁ ପକାଇ ପଛ ଆଡ଼କୁ
ଗଛ କରିବାକୁ ହଟିବା ବୋଲଯାଏ ।] ୭ । (ରୋଗ)
ଲଘୁ ହେବା—7. (desease) To abate. ୮ ।
(ବଳ) କମିବା; ଲଘୁ ହେବା; ଅପଗତ ହେବା—
8. (One's strength) To become less.
୯ । (ସକର୍ମକ)—ଏଡ଼ି ଦେବା; ଲଙ୍ଘନ କରିବା; ପାଳନ
କରିବାକୁ ପଶ୍ଚାତ୍‌ପଦ ହେବା—9. To infringe.
[ଯଥା—ପୁଣି ସାହସେ ନିୟମକୁ ହଟି—କବିସୂର୍ଯ୍ୟ ଚଉତିଶା]

ହଟି ଯିବା—ଦେ. କ୍ରି—୧ । ପଛକୁ ଘୁଞ୍ଚିଯିବା—1. To move
Haṭi jibā back. ୨ । ପରାସ୍ତ ହେବା—2. To be
হটেযাওয়া हटजाना defeated. ୩ । ରଣଭଙ୍ଗ ଦେବା—
3. To retreat. ୪ । ଛାଡ଼ି ଚାଲିଯିବା—4. To
forsake. [ଯଥା—ନେତ୍ର ଫୁଟି ଯାଏ, ହୃଦ ଫାଟିଯାଉ
ପ୍ରାଣ ହଟିଯାଉ ବେଗକରି—ଅଭିମନ୍ୟୁ; ବିଦଗ୍ଧଚିନ୍ତାମଣି]

ହଟିଯିବାର ପାତ୍ର—ଦେ. ବି ଓ ବିଣ—ବାଧା ପାଇଁ ସଂକଳ୍ପିତ କର୍ମରୁ
Haṭijibāra pātra ପଶ୍ଚାତ୍ ପଦ ବା ନିରୁତ୍ସାହ ହେବା ବ୍ୟକ୍ତି;
(ହଟିବା ଯାଇ—ଅନ୍ୟରୂପ) ଅଦମ୍ୟପ୍ରକୃତିକ—A person
হটবার পাত্র (লোক) who shrinks from his purpose
हटनेकापात्र on account of any obstacle; not indomitable. [ଯଥା—ଏ କର୍ମରେ ନାନା ବାଧାବିଘ୍ନ
ଥାଇ ସୁଦ୍ଧା ସେ ହଟି ଯିବାର ପାତ୍ର ନୁହନ୍ତି ।]

ହଟି ରହିବା—ଦେ. କ୍ରି—୧ । ପଛକୁ ଘୁଞ୍ଚି ରହିବା—1. To keep
Haṭi rahibā back. [ଯଥା—ଟେକ ଚରଣ ଚଳେ ପଛ ବହୁ,
পেছনেপড়া କିବେ ହଟି କହେ ହଟି ରହୁ— ଅଭିମନ୍ୟୁ. ବିଦଗ୍ଧ
हटकररहना ଚିନ୍ତାମଣି ] ୨ । କୌଣସି କାର୍ଯ୍ୟରୁ ବିରତ
ହେବା— 2.To desist from any act.

ହଟୀ—ପ୍ରାଦେ. (ଉତ୍ତରଖଣ୍ଡ) ବିଣ. (ତୁଳନାକର—ହଟୀ. ହଠୀ)—
Haṭī ୧ । ଯେ ହଠ କରେ; ହଟୁଆ—1. Importunate, pertinacious. ୨ । ଜିଦ୍‌ବାନ୍—2. Obstinate.

ହଟୁଆ—ଦେ. ବିଣ, ପୁଂ—ହଟୁଆ (ଦେଖ)—Hatiā (See)
Haṭuā ପ୍ରାଦେ. ( ବୌଦ୍ଧ ) ବି—ବ୍ୟବସାୟୀ ଜାତିବିଶେଷ—
(ହଟୋଇ - ସ୍ତ୍ରୀ) A caste of traders. ପ୍ରାଦେ (ସମ୍ବଲପୁର)
ବି—ଚଷା ବା କୃଷକ ଜାତି ବିଶେଷ—A class or
caste of cultivators.

ହଟୁକି—ପ୍ରାଦେ. (କଳାହାଣ୍ଡି) ବି—ହାକୁଟି—
Haṭuki Hiccough.

ହଟୁନ୍ (ନ୍ନ)—ଦେ. କ୍ରି. ବିଣ (ସ. ହଠାତ୍)—୧ । ହଠାତ୍; ଅକସ୍ମାତ୍
Haṭun (nn) 1. Accidentally. ୨ । ହଠାତ୍—2. All
হঠাৎ at once; suddenly. ୩ । ପୁନଃ ପୁନଃ—
पेकापेक 3. Repeatedly. ୪ । ନିଷେଧ ବା ବାରଣ ସତ୍ତ୍ୱେ
বারবার (କୌଣସି କାର୍ଯ୍ୟ କରିବା)—4. (To do a thing)
पुनःपुनः In spite of or in the face of warning or
বারণসত্ত্বে prohibition. ୫ । ଉପେକ୍ଷା ପ୍ରଦର୍ଶନ ପୂର୍ବକ—
मनाकरनेपरभी 5. Disregarding.

ହଟେଇ—ଦେ. ବିଣ. ସ୍ତ୍ରୀ—ହଟିଆର ସ୍ତ୍ରୀ ଲିଙ୍ଗ—
Haṭei Feminine of Haṭiā.

ହଟେଇବା—ଦେ. କ୍ରି—ହଟାଇବା (ଦେଖ)—
Haṭeibā Haṭāibā (See)

ହଟୋଇ—ଦେ. ବିଣ. ସ୍ତ୍ରୀ—ହଟୁଆର ସ୍ତ୍ରୀ ଲିଙ୍ଗ —
Haṭoi Feminine of Haṭuā.

ହଟ୍ଟ—ସ. ବି (ହଟ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ ଟ)—ହାଟ; ପଣ୍ୟ-
Haṭṭa କ୍ରୟବିକ୍ରୟର ମୁକ୍ତ ସ୍ଥାନ—Hata; market;
fair.

ହଟ୍ଟ ଗୋଳ—ଦେ. ବି ( ହଟ୍ଟ ବା ହାଟରେ ଯେଉଁପରି ଗୋଳମାଳ ହୁଏ
Haṭṭa gola ସେହିପରି ଗୋଳମାଳ)—ଗଣ୍ଡଗୋଳ—
Noise; bustle; ado.

ହଟ୍ଟ ଚୌ(ଚୋ)ରକ—ସ. ବି. ପୁଂ—ଯେଉଁ ଚୋର ହାଟ ବାଟ ଆଦି
Haṭṭa cau (cho)raka ପ୍ରକାଶ୍ୟ ସ୍ଥାନରେ ଚୋରି କରେ—
A pick pocket; a thief plying his trade
in the open market.
(ଅନ୍ୟ ସ. ପ୍ରତିଶବ୍ଦ—ପ୍ରସହ୍ୟ ଚୌର, ମଷ୍ଟୀକର, ମାଚଳ, ଚଷ୍ଟାର,
ବନ୍ଧୀକାର)

ହଟ୍ଟ ବିଳାସିନୀ—ସ. ବି. ସ୍ତ୍ରୀ (ହଟ୍ଟ+ବିଳାସ+ଅସ୍ତ୍ୟର୍ଥରେ ଇନ୍+
Haṭṭa bilāsinī ଈ)—୧ । ବାରାଙ୍ଗନା; ବେଶ୍ୟା—
1. Prostitute. ୨ । ନଖୀ ନାମକ ଗନ୍ଧ ଦ୍ରବ୍ୟ—
(ଅମ.)—2. A scented article; fasciolaria;
Unguis Odoratus. ୩ । ହଳଦୀ (ଶବ୍ଦପ୍ରକାଶ)—
3. Turmeric.

ହଟ୍ଟ ମଣ୍ଡପ (ମନ୍ଦିର)—ସ. ବି—ହାଟଘର; ହାଟଗୃହ; ଯେଉଁ ଘରେ
Haṭṭa maṇḍapa (mandira) ବସି ହାଟୁଆମାନେ ପଣ୍ୟ
ବିକ୍ରୟ କରନ୍ତି—Market hut; a stall in a fair;
an open shed for holding a stall in a
market.

ହଟ୍ଟାଧ୍ୟକ୍ଷ—ସଂ. ବି—ହାଟର ଅଧ୍ୟକ୍ଷ—
Haṭṭādhyaksha The headman of a market.

ହଟ୍ଟୀ—ସଂ. ବି (ହଟ୍ଟ+କ୍ଷୁଦ୍ରାର୍ଥେ ଈ)—ଛୋଟ ହାଟ—
Haṭṭī A small market or fair (Apte).

ହଠ୍—ଦେ. ଅ—ହଟ୍ (ଦେଖ)—
Haṭh Hat (See)
(ହଟ୍ ହଠ୍—ଅନ୍ୟରୂପ)

ହଠ୍(ଧାତୁ)—ସଂ ୧ । ବଳାତ୍କାର କରିବା—1. To use force.
Haṭh (root) ୨ । (ଗୋରୁ ଆଦି ପଶୁଙ୍କୁ) ଖୁଣ୍ଟରେ ବାନ୍ଧିବା—2. To tie (a beast) to a post. ୩ । ପଛକୁ ଘୁଞ୍ଚିବା—3. To retreat; to move back. ୪ । କୁଦିବା; ଡେଇଁ ପଡ଼ିବା—4. To leap; to jump (Apte). ୫ । ଅତ୍ୟାଚାର କରିବା—5. To oppress (Apte).

ହଠ—ସଂ.ବି. (ହଠ୍ ଧାତୁ=ବଳାତ୍କାର କରିବା+ଭାବ.ଅ)—୧ । ପ୍ରଶ୍ନୀ;
Haṭha କୁମ୍ଭିକା—A kind of aquatic plant. ୨ । ବୋଳଶାଙ୍ଗି—2. Serratophylum Submersum. ୩ । ବଳାତ୍କାର; ବଳପ୍ରୟୋଗ—3. Violence; use of criminal force. [ଉ—ହଠେ ଧରୁ ଅଧରାଣ, ହେବାର ମୁଁ ଦୁର୍ଣ୍ଣିବୋଧ ।—କବିସୂର୍ଯ୍ୟ ବଳଦେବ ରଥଙ୍କ 'ହ' ଗୀତ ] ୪ । ବଳ ପ୍ରଦର୍ଶନ—4. Show of force. ୫ । ଲୁଟି—5. Looting; rapine. ୬ । ପଶ୍ଚାତ୍‌ପଦ ହେବା; ପଛକୁ ହଟିବା; ପଶ୍ଚାଦ୍‌ଗତି—6. Retreating ୭ । ପରାଜୟ—7. Defeat. ୮ । ଅବିବେଚନା; ଅବିମୃଶ୍ୟକାରିତା—8. Rashness; hastiness. ୯ । ଏକ ଜିଦ—9 Headstrongness. ୧୦ । କଟାଳ; ଅଳି—10. Importunity ୧୧ । ଅତ୍ୟାଚାର—11 Oppression (Apte).
ସଂ. ଅ—ହଠାତ୍ (ଦେଖ)—Haṭhāt (See).

ହଠକାରିଣୀ—ସଂ. ବିଣ. ସ୍ତ୍ରୀ—ହଠକାରୀର ସ୍ତ୍ରୀଲିଙ୍ଗ—Feminine of
Haṭhakāriṇī Haṭhakārī.

ହଠ କାରିତା—ସଂ. ବି. (ହଠକାରିନ୍+ଭାବେ ତା)—୧ । ଅବିବେଚନା;
Haṭha kāritā ଅବିମୃଶ୍ୟକାରିତା—1. Rashness. ୨ । ବଳାତ୍କାର—2. Use of force; violence. ୩ । ଗୁଆଁରପଣିଆ—3. Headstrongness. ୪ । ଅନ୍ୟାୟ କରିବା—4. Doing of wrong. ୫ । ଅଭଦ୍ରତା; ଅଶିଷ୍ଟତା—5. Uncivility. ୬ । ଅତ୍ୟାଚାର—6. Oppression. ୭ । ଲୁଟତରାଜ—7. Rapine; plunder.

ହଠକାରୀ—ସଂ. ବିଣ. ପୁଂ—(ହଠ+କୃ ଧାତୁ+କର୍ତ୍ତୃ. ଣିନ୍=ହଠ
Haṭhakārī କାରିନ୍ ଶବ୍ଦ; ୧ମା. ୧ବ)—୧ । ଅବିମୃଶ୍ୟକାରୀ;
(ହଠକାରିଣୀ—ସ୍ତ୍ରୀ) ଅବିବେଚକ—1. Rash. ୨ । ଗୁଆଁର—2. Headstrong. ୩ । ଅଶିଷ୍ଟ; ଅଭଦ୍ର—3. Uncivil. ୪ । ବଳ ପ୍ରକାଶକାରୀ—4. Using force or violence. ୫ । ଅନ୍ୟାୟକାରୀ—5. Doing wrong; wrong-doing. ୬ । ଅତ୍ୟାଚାରୀ—6. Oppressive.

ହଠଧର୍ମୀ—ଦେ. ବିଣ. ପୁଂ—ବିଶ୍ୱାସଘାତକ; ଅଧର୍ମୀ—Faithless;
Haṭha dharmī perfidious.
অধর্ম্মী অধর্মী (ହଠଧର୍ମିଣୀ—ସ୍ତ୍ରୀ)

ହଠଧର୍ମ ପଣିଆଁ (ପଣ)—ଦେ. ବି—ବିଶ୍ୱାସଘାତକତା; ଅଧର୍ମ—
Haṭha dharma paṇiāṅ (paṇa) Faithlessness;
অধর্ম্ম অধর্ম perfidy.

ହଠପର୍ଣ୍ଣୀ—ସଂ. ବି—ଶୈବାଳ (ତ୍ରିକାଣ୍ଡ ଶେଷ)—
Haṭha parṇṇī Moss.

ହଠବାଦୀ—ଦେ. ବିଣ. ପୁଂ—ଯେ ଘରେ କେବଳ ବସି ରହି ଅକସ୍ମାତ୍
Haṭha bādī କିଛି ପଦାର୍ଥ ବା ଧନ ପାଏ [ଉ—ଯେଉଁ ଲୋକଟି
আকাশবৃত্তি ଘରେ ବସିଥାଏ ବ୍ୟର୍ଥ, ଅକସ୍ମାତେ ଯେବେହେଁ ମିଳଇ
আকাশ বৃত্তি ପଦାର୍ଥ, ସେହି ଲୋକକୁ ହଠବାଦୀ ବୋଲି କହି, ଶାସ୍ତ୍ର ଲେଖିଅଛି ସନ୍ଦେହ ଏଥି ନାହିଁ—କୃଷ୍ଣସିଂହ ମହାଭାରତ ।]

ହଠବିଦ୍ୟା—ସଂ. ବି—ବଳପୂର୍ବକ ଧ୍ୟାନାଦି କରିବା ବିଦ୍ୟା—The
Haṭha bidyā science of forced meditation (Apte).

ହଠ ଯୋଗ—ସଂ. ବି—(ହଠ=ହଠଦ୍ୱାରା ବା ବଳାତ୍କାରଦ୍ୱାରା ଯୋଗ)
Haṭha joga ତନ୍ତ୍ରୋକ୍ତ ଯୋଗ ବିଶେଷ—A sort of spiritual exercise. [ବି—ଏଥିରେ ତନ୍ତ୍ରୋକ୍ତ ଆସନରେ ବସି ଆସନ ସିଦ୍ଧ କରି ପୂରକ, କୁମ୍ଭକ, ରେଚକ ଦ୍ୱାରା ପ୍ରାଣାୟାମ ପୂର୍ବକ ପବନ ସାଧନ କରାଯାଏ ଓ ଧୌତି ଆଦି ଷଟ୍‌କର୍ମଦ୍ୱାରା ଅନ୍ତଃଶରୀରର ବା ନାଡ଼ୀର ଶୁଦ୍ଧି କରାଯାଏ । ତତ୍ପରେ ଆକାଶରେ ଓ ନାସିକାଗ୍ରରେ ଦୃଷ୍ଟି ସ୍ଥିର କରି ଶ୍ୱେତ, ରକ୍ତ, ପୀତ, କୃଷ୍ଣବର୍ଣ୍ଣକୁ ଧ୍ୟାନ କରାଯାଏ । ଏହିପରି ଧ୍ୟାନ କରୁ କରୁ ହଠାତ୍ ଜ୍ୟୋତିର୍ମୟରୂପ ଦୃଷ୍ଟ ହୁଏ । ଏହା କରିବାଦ୍ୱାରା ହଠସିଦ୍ଧି (ହଠାତ୍ ସିଦ୍ଧି) ଲାଭ ହୁଏ ବୋଲି ଏ ସାଧନର ଏହି ନାମ—ଯୋଗସ୍ୱରୋଦୟ ।
ହଠ ଯୋଗ ପରମାତ୍ମସାଧକ ଯୋଗ ବିଶେଷ । ଯୋଗ ଦୁଇ ପ୍ରକାର, ହଠ ଯୋଗ ଓ ରାଜ ଯୋଗ । ହଠଯୋଗୀ ଯୋଗାନୁଷ୍ଠାନ ପୂର୍ବକ ପରମାତ୍ମତତ୍ତ୍ୱର ସାକ୍ଷାତ୍କାର କରନ୍ତି । ପାତଞ୍ଜଳାଦି ଦର୍ଶନ ଶାସ୍ତ୍ରରେ ରାଜଯୋଗର ସାଧନ-ପ୍ରଣାଳୀ ବର୍ଣ୍ଣିତ ହୋଇଅଛି । ହଠଦୀପିକାରେ ହଠ-ଯୋଗର ପ୍ରଣାଳୀ ବର୍ଣ୍ଣିତ ହୋଇଅଛି । ଗୁରୁଙ୍କ ଉପଦେଶ ଅନୁସାରେ ହଠଯୋଗ ସାଧନ କରିବାକୁ ହୁଏ । ପ୍ରାଣବାୟୁର ଜୟହିଁ ହଠଯୋଗରେ ପ୍ରଧାନ ଉଦ୍ଦେଶ୍ୟ । ବିଶ୍ୱକୋଷ ।]

ହଠ ସାଧକ—ସଂ. ବି ଓ ବିଣ. ପୁଂ—ଯେଉଁ ବ୍ୟକ୍ତି ହଠଯୋଗ ସାଧନ
Haṭha sādhaka କରେ—A person practising
(ହଠସାଧିକା—ସ୍ତ୍ରୀ) Haṭha joga.

ହଠା—ଦେ. ବି—ହଟା (ଦେଖ)—
Hathā Haṭā (See)

ହଠା(ଠେ)ଇବା—ଦେ. କ୍ରି—ହଟାଇବା (ଦେଖ)—
Haṭhā(ṭhe)ibā Haṭāibā (See)

ହଠାତ୍—ସଂ ଅ ଓ କ୍ରି ବିଣ—୧। ଦୈବାତ୍; ଅକସ୍ମାତ୍—1.
Haṭhāṭ Accidentally. ୨। ସହସା, ଅପ୍ରତ୍ୟାଶିତରୂପେ,
ଅତର୍କିତ ଭାବରେ—2. All on a sudden.

ହଠାତ୍କାର—ସଂ. ବି—ହଠକାରିତା (ଦେଖ)—
Haṭhāt-kāra Haṭha kāritā (See)

ହଠାତ୍ କିନା (ନି, କି, କରି ଦସ୍, ଧସ୍)—ଦେ. ଅ—ହଠାତ୍, ସହସା—
Hatbat kinā(ni, ki, kari, das, dhas) All on a
হটকবে धेकाधेक sudden.

ହଠାତ୍ ବଡ଼ଲୋକ—ଦେ. ବି—ଯେଉଁ ବ୍ୟକ୍ତି ସହସା ଧନଶାଳି ହୋଇଛି—
Haṭhāt bardaloka A person suddenly turned
হঠাৎ বড়লোক हठात् बड़ा आदमी rich

ହଠାତ୍ ବାବୁ—ଦେ. ବି—ଯେଉଁ ବ୍ୟକ୍ତି ହଠାତ୍ କିଛି ଧନ ପାଇ କମ୍
Haṭhāt bābu ଅଭିଜ୍ଞତାଶୂନ୍ୟ ହୋଇ ବାବୁ ବନିଯାଏ—
হঠাৎবাবু A person suddenly turned a beau.
हठात्‌बाबु

ହଠାତେ—ଗ୍ରା. କ୍ରି. ବିଣ (ସଂ. ହଠାତ୍)—ହଠାତ୍ (ଦେଖ)—
Hatbate Haṭhāt (See)

ହଠାଳୁ—ସଂ. ବି—କୁମ୍ଭିକା (ଶବ୍ଦଚନ୍ଦ୍ରିକା); ବାରିପର୍ଣ୍ଣୀ; ବୋରହାଣ୍ଡି—
Haṭhālu An aquatic plant; Pistia Stratiotes.

ହଠିଆ—ଦେ. ବିଣ ପୁଂ—ହଟିଆ (ଦେଖ)—
Haṭhiā Haṭiā (See)

ହଠୀ—ସଂ. ବି—ବାରିପର୍ଣ୍ଣୀ; ବୋରହାଣ୍ଡି—An aquatic plant;
Haṭhī Pistia Stratiotes.

ହଠୁଣ୍ (ଣୁ)—ଦେ. ଅ—ହଟୁଣ୍ (ଦେଖ)—
Haṭhuṇ (ṇu) Haṭuṇ (See)

ହଠେ—ଦେ. କ୍ରି. ବିଣ (ସଂ. ହଠାତ୍; ହଠେନ)—ବଳପୂର୍ବକ;
Haṭhe ବଳାତ୍କାର କରି—By force
জবরদস্তী जबरदस्ती
[ଭି—ହଠେ ଲୁଣ୍ଠନକର ଶ୍ରୀ ବୋଠ ଭଣ୍ଡାର—ରାଧାନାଥ.
ଚନ୍ଦ୍ରିକା]

ହଡ୍କମ୍ପ—ଦେ. ବି. ଓ ବିଣ—ହଡ଼କମ୍ପ (ଦେଖ)—
Hard-kampa Harda kampa (See)

ହଡ୍କମ୍ପା—ଦେ. ବିଣ ପୁଂ—ହଡ଼କମ୍ପା (ଦେଖ)—
Hard-kampā Hardakampā (See)
(ହଡ଼୍କମ୍ପି; ହଡ଼୍କମ୍ପିଆ—ଅନ୍ୟରୂପ)
(ହଡ଼୍କମ୍ପୀ, ହଡ଼୍କମ୍ପେଇ—ସ୍ତ୍ରୀ)

ହଡ୍କା—ଦେ. ବି—ହଡ଼କା (ଦେଖ)—
Hard-kā Hardakā (See)

ହଡ୍ବଡ୍—ଦେ. ବି, ଓ ବିଣ—ହଡ଼ବଡ଼ (ଦେଖ)—
Hard-bard Hardabarda (See)

ହଡ୍ବଡ଼ା(ଡ଼େ)ଇବା—ଦେ. କ୍ରି—ହଡ଼ବଡ଼ାଇବା (ଦେଖ)—
Hard-bardā(rde)ibā Harda bardāibā (See)

ହଡ୍ବଡ଼ିଆ—ଦେ. ବିଣ ପୁଂ—ହଡ଼ବଡ଼ିଆ (ଦେଖ)—
Hard-bardiā Harda badiā (See)
(ହଡ୍ବଡ଼ୀ, ହଡ଼୍ବଡ଼େଇ—ସ୍ତ୍ରୀ)

ହଡ୍ସନ୍—ବୈଦେ ବି. (ନାମ)—ଉତ୍ତର ଅମେରିକାର ନଗର,
Had-san ନଦୀ, ଉପସାଗର ଓ ପ୍ରଣାଳୀର ନାମ—Names of a
হডসন্ town, river, strait and bay of North
हडसन America.

ହଡ଼କମ୍ପ—ଦେ. ବି (ସଂ. ହୃତ୍କମ୍ପ)—୧। ହଠାତ୍ ଭୟଯୋଗୁ ହୃତ୍କମ୍ପ-
Hardakampa 1. Palpitation of the heart, throb-
হড়কম্প bing of the heart (due to sudden fear).
हड़कम्प ୨। ଭୟ ଯୋଗୁ ଦେହ ଥରିବା—2. Shaking
or shivering or trembling (through fear).
ସଂ. ବିଣ—ଭୀତ ତ୍ରସ୍ତ—Terrified.

ହଡ଼କମ୍ପା—ଦେ. ବିଣ ପୁଂ—୧। ଯେଉଁ ବ୍ୟକ୍ତି ଭୀତ ତ୍ରସ୍ତ ହୋଇ
Hardakampā ଥରେ; ହୃତ୍କମ୍ପ ଯୁକ୍ତ (ବ୍ୟକ୍ତି)—
(ହଡ଼କମ୍ପିଆ—ଅନ୍ୟରୂପ) 1. Trembling through fear.
(ହଡ଼କମ୍ପୀ, ହଡ଼କମ୍ପେଇ—ସ୍ତ୍ରୀ) ୨। ଡରୁଆ; ଭୀରୁ—
ভীতু हड़कम्पी 2. Timid.

ହଡ଼କମ୍ପା (ମ୍ପେ) ଇବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ଭୀତତ୍ରସ୍ତ
Harda kampā (mpe) ibā କରାଇବା—To frighten
or terrify a person.
হৃৎকম্পকরান हड़कम्पकराना

(ମୋର) ହଡ଼ କମ୍ପିବା—ଦେ. କ୍ରି—ଭୀତତ୍ରସ୍ତ ହୋଇ ଥରିବା—
Harda kampibā Being terrified.
হৃৎকম্পহওয়া हड़कम्पहोना

ହଡ଼କା—ଦେ. ବି (ସଂ. ହଠ)—ହଠାତ୍ ଆକର୍ଷଣ ବା ଧକ୍କା—
Hardakā A sudden push or jerk.
ধাক্কা, হড়কা धक्का

ହଡ଼ପ—ଦେ. ବି (ସଂ. ସମ୍ପୁଟ=ପାନ ବଟା: ମ. ହଡ଼ପା=ସିନ୍ଦୁକ;
Hardapa ବଂ. ହଡପି=ନାପିତର ପେଡ଼ା)—୧। ତାମ୍ବୂଲ
পানের সরঞ্জাম पानका सामग्री ସାମଗ୍ରୀ;
ପାନ ଖାଇବା ପାଇଁ ପାନ ଖିଲି ତିଆରି କରିବାର ସାମଗ୍ରୀ—
1. Articles necessary for preparing betel-
packets for chewing. ୨। ପାନ ଖିଲିର ଉପକରଣ-
পানের ডিবা(বাটা) पानका डब्बा ମାନ ଯେଉଁ ଡବାରେ
ଥାଏ—2. A casket containing ingredients
for preparing betel-packets for chewing.
୩। ପାନବଟା, ପାନଡବା; ଯେଉଁ ସମ୍ପୁଟରେ ଖିଲିପାନ
ରଖାଯାଏ—3. A metal case for keeping
betel-packets.

ହଡ଼ପ ନାଏ(ୟ)କ—ଦେ. ବି—ରଜା ଓ ଦେବତାଙ୍କୁ ପାନ ଭଙ୍ଗିଦେବା
Hardapa nāe(ya)ka ସେବକ—A servant
राजाके पान बनाने वाला whose duty it is to supply prepared betel-packets to a Rājā or a Deity.

ହଡ଼ପ ମୁଣା—ଦେ. ବି—ପାନ ବଟୁଆ—Betel-bag. (ଦ୍ର—
Hardapa muṇā ଜାହା କରୁ ତାଳ ଜାହା
পানের বটুয়া କରୁ ମର୍ଦ୍ଦଳ ଜା କରୁ ହଡ଼ପମୁଣା—ଛଣି.
बटुआ ସମାପୂଣା ।)

ହଡ଼ପ ରତ୍ନ—ପ୍ରାଦେ (ଗଡ଼ଜାତ) ବି—ପାନ ଦେବା ସେବକଙ୍କ
Hardapa ratna ରାଜପ୍ରଦତ୍ତ ଉପାଧିବିଶେଷ—
A title given by a Raja to a servant supplying betel-packets to him.

ହଡ଼ପ ଲାଗି—ଦେ. ବି.—ରାଜାଙ୍କର ଭଙ୍ଗାପାନ ବା ବିଡ଼ା (ପାନଶିଲ)
Hardapa lāgi ଖାଇବା କର୍ମ—The act of a Rājā
রাজার পান খাওয়া राजाका पान खाना chewing. prepared betel

ହଡ଼ପ ସେବା—ଦେ. କ୍ରି.—ରଜାଙ୍କୁ ଓ ଦେବତାଙ୍କୁ ପାନ ଯୋଗାଇବା
Hardapa sebā ସେବା—Service consisting in
রাজাকে পান যোগান supplying prepared betel to a
राजाका पान जोगाड़ king or Deity.

ହଡ଼ବଡ଼—ଦେ.ବଣ (ତୁଳନା କର, ହଡ଼ବଡ଼)—୧ । ଘାବର; ଭୟରେ
Harda barda ଅସ୍ଥିର—Restless through fear.
হড়বড়, ঘাবড়ান हड़बड़ ୨ । ଭୀତ ଓ କମ୍ପିତ—2.Frightened; trembling through fear.
୩ । କିଂକର୍ତ୍ତବ୍ୟ ବିମୂଢ଼—3. Dumb-founded.

ହଡ଼ବଡ଼ ହେବା—ଦେ. କ୍ରି.—୧। ଘାବର ହେବା; ଭୟଭୀତ ହେବା—
Harda barda hebā 1. To be frightened.
ঘাবড়ান हड़बड़ होना ୨ । ଭୟରେ କମ୍ପିବା—2. To tremble with fear. ୩ । ଭୟରେ ଅସ୍ଥିର ହେବା—3. To become restless through fear.

ହଡ଼ବଡ଼ା—ଦେ. ବଣ. ପୁଂ—ସ୍ୱଭାବତଃ ଭୀତ; ଯେ ଭୟରେ କମ୍ପେ—
Hardabardā Coward by nature; trembling
भीतु हड़बड़िआ [ହଡ଼ବଡ଼ିଆ(ୟା)—ଅନ୍ୟରୂପ] through fear.
(ହଡ଼ବଡ଼ୀ; ହଡ଼ବଡ଼େଇ—ସ୍ତ୍ରୀ)

ହଡ଼ବଡ଼ି—ଦେ. ବି.—୧ । ଗୋଳ; ଧୁମ୍ ଧାମ୍—1. Ado; confu-
Harda bardi sion. ୨ । କିଂକର୍ତ୍ତବ୍ୟବିମୂଢ଼ତା; ଘାବର ଅବସ୍ଥା—2. Confusion.

ହଡ଼ର (ଇତ୍ୟାଦି)—ଗ୍ରା. ବି—ହରଡ଼ (ଇତ୍ୟାଦି (ଦେଖ)
Hardara(etc) Hararda etc (See).

ହଡ଼ର ଚଢ଼େଇ—ଗ୍ରା. ବି—ହରଡ଼ ଚଢ଼େଇ (ଦେଖ)
Hardara chardhei Hararda chardhei (See).
হরেল হরিয়ল [ଦ୍ର—ହଡ଼ର ଚଢ଼େଇ ବଡ଼ର ଘୀ ।
କେଉଁ ଚଢ଼େଇର ଭଳେ'ଇ ଅର୍ଥ—ପ୍ରହେଳିକା ବ ନଅଁ ଦଅ; ଉତ୍ତର—ନଡ଼ିଆ ।]

ହଡ଼ର ବଡ଼ର—ଦେ. ବି—ଉଚ୍ଚୈଃସ୍ୱରରେ ଏଣୁ ତେଣୁ କଥା କହି
Hardara bardara ଗୋଲମାଲ କରିବା—
বড়র বড়র हल्ला गुल्ला Making noise by talking loudly and incoherently.

ହଡ଼ର ହଡ଼ର ହେବା—ଦେ. କ୍ରି—ଉଚ୍ଚୈଃସ୍ୱରରେ ଏଣୁତେଣୁ ଗପି
Harda barda hebā ଗୋଳମାଳ କରିବା—
বড়ব বডব করা हल्ला गुल्ला करना To make noise by talking loudly and incoherently.

ହଡ଼ହଡ଼—ଦେ. ବି—୧ । ହଡ଼ବଡ଼ (ଦେଖ)—1. Hardaharda
Harda harda (See). ୨ । ବୃଥା ଇତସ୍ତତଃ
हरहर ହେବା—2. Unnecessarily moving to and fro.

ହଡ଼ହଡ଼ା—ଦେ. ବଣ. ପୁଂ—ହଡ଼ବଡ଼ା (ଦେଖ)—
Harda hardā Harda bardā (See).
( ହଡ଼ହଡ଼ିଆ—ଅନ୍ୟରୂପ ) ( ହଡ଼ହଡ଼ୀ, ହଡ଼ହଡ଼େଇ —ସ୍ତ୍ରୀ )

ହଡ଼ହଡ଼ା(ଡ଼େ)ଇବା—ଦେ. କ୍ରି—ହଡ଼ବଡ଼ ହେବା (ଦେଖ)—
Hardahardā(rde)ibā Hardabarda hebā (See).

ହଡ଼ହଡ଼ି ଘାଟ—ଦେ. ବି ( ସଂ. ହର ଓ ହରି=ଏଠାରେ ହର ଓ
Hardahardi ghāta ହରିଙ୍କ ମୂର୍ତ୍ତି ଥିବାରୁ ।
(ହରହରି ଘାଟ—ଅନ୍ୟ ନାମ) କଟକ ସହରର ଗୁଡ଼ାଣ୍ଟାଓଳିରେ କମିଶନର ସାହେବଙ୍କ କୋଠି ହତାର ପଶ୍ଚିମକୁ ଲାଗିଥିବା କାଠଯୋଡ଼ି ନଦୀର ଗୋଟିଏ ସ୍ନାନ ଘାଟ—Name of a bathing ghāt of the river Kātbjori adjoining the Commissioner's bungalow compound in the Cuttack town. [ଦ୍ର—ଏ ଘାଟକୁ ବହୁକାଳରୁ ଶିକ୍ଷିତମାନେ 'ହରହରି ଘାଟ' ଓ ସାଧାରଣ ଲୋକେ 'ହଡ଼ହଡ଼ି ଘାଟ' ଡାକି ଆସୁଥିଲେ । ଜନଶ୍ରୁତି ଅଛି ଯେ, ଏ ପଥର ଘାଟର ପାହାଚରେ ବହୁକାଳ ପୂର୍ବରେ ହର (ଶିବ) ଓ ହରି (ନାରାୟଣ)ଙ୍କ ମୂର୍ତ୍ତି ଖଚିତ ହୋଇଥିଲା । କିନ୍ତୁ କାଳକ୍ରମେ ସେ ମୂର୍ତ୍ତିମାନ ଲୁପ୍ତ ହୋଇ ଯାଇଥିଲା । ସନ ୧୮୯୩ ସାଲରେ ଶ୍ରୀଯୁକ୍ତ ଶଶିଭୂଷଣ ରାୟ ଏ ଘାଟର କୂଳରେ ଗୋଟିଏ ଦେଉଳ ତୋଳାଇ ସେ ଦେଉଳରେ ଜଗନ୍ନାଥ ମୂର୍ତ୍ତି ସ୍ଥାପନ କଲେ ଓ ଏ ଘାଟର ପଥର ବନ୍ଧ ଉପରେ ୧୮୯୮ ସାଲରେ ହର ହରଙ୍କର ୨ଟି ପ୍ରସ୍ତର ମୂର୍ତ୍ତି ନିର୍ମାଣ କରାଇ ସ୍ଥାପିତ କରାଇଅଛନ୍ତି । ମୂର୍ତ୍ତିଦ୍ୱୟଙ୍କ ମଧ୍ୟ ଲରେ "ହରହରି ଘାଟ" ଓ ଏହା

ଶ୍ଲୋକଟି ଖୋଳା ହୋଇଅଛି "ଯଦକ୍ତେନ୍ ଶାଶ୍ୱତାନ୍ ପ୍ରୀତମ୍, କିଂଶୀ ଉକ୍ ଜଳାଗ୍ରଯୁକ୍ତ; ବ୍ୟୟମର୍ଥପ୍ରଯୋଗଂ ଚ ପଶ୍ୟେତ୍ ଦାରଦର୍ଶନଂ ।" ତା ପରେ ଶଶିଭୂଷଣଙ୍କ ନାମ ଓ ୧୮୯୮ ସାଲ ବୋଲି ଖୋଦିତ ହୋଇଅଛି । ଏ ଘାଟରୁ କାଠଯୋଡ଼ୀ ନଦୀଶଯ୍ୟାର ଦୃଶ୍ୟ ଓ ନଦୀର ଦକ୍ଷିଣ ପଶ୍ଚିମ କୂଳରେ ଥିବା ବନପର୍ବତମୟ ପ୍ରାକୃତିକ ଦୃଶ୍ୟ ଅତି ରମଣୀୟ ଦେଖାଯାଏ । କବିବର ରାଧାନାଥ ତାଙ୍କ ନନ୍ଦକେଶରୀ କାବ୍ୟରେ ଶୀତଋତୁରେ ଏ ଘାଟରୁ ପରିଦୃଶ୍ୟମାନ ସୂର୍ଯ୍ୟାସ୍ତକାଳର ଦୃଶ୍ୟକୁ ନିମ୍ନଲିଖିତ ରୂପେ ବର୍ଣ୍ଣନା କରି ଯାଇ ଅଛନ୍ତି :—

"ଡୁବନ୍ତି ଦିନାନ୍ତେ ତପ୍ତ ହେମଚ୍ଛବି
ଧୀରେ ଦେବୀଦ୍ୱାର ଗିରିଶୃଙ୍ଗେ ରବି,
ଶୀତ କଉଜାତେନ ଝୁଲୁଛି ଭୁବନ
ସୁଖସ୍ୱପ୍ନ ପ୍ରାୟେ ହରେ ଜନମନ,
ବାରୁଣୀ ଗଗନ ମ୍ଳାନିତ ପ୍ରଭାରେ
ଗନ୍ଧର୍ବ ନଗରୀ ଶୋଭିଲୁ ଅଟ୍ଟାରେ,
ବାରୁଣୀ-ରାଣୀ କି ମିଳି ସ୍ୱର୍ଣ୍ଣଚେଲ
ସଖୀ ସଙ୍ଗେ ଖେଳୁଛନ୍ତି ଫଗୁ ଖେଳ,
ସୁବର୍ଣ୍ଣ ବିମାନ, ସ୍ୱର୍ଣ୍ଣ ରଥ ଦୋଳା
ନଭସ୍ତଳେ କେତେ ହୋଇଛନ୍ତି ମେଳା,
ସୁବର୍ଣ୍ଣର ନଦୀ ବହେ ସ୍ୱର୍ଣ୍ଣ ସ୍ରୋତ
ସ୍ୱର୍ଣ୍ଣ ଅମ୍ବାଲେ ଚଳେ ସ୍ୱର୍ଣ୍ଣ ପୋତ,
ସୁବର୍ଣ୍ଣ ମଞ୍ଚରେ ସୁବର୍ଣ୍ଣ ଆସନ
ତହିଁ କି ବସିଛି ଦେବ ବେହରଣ ?
ଦୂରେ ବାଲି ରାଶି ମିଶିଛି ଗଗନେ
ବିଭୂଷିତ ସନ୍ଧ୍ୟା-କନକ-କିରଣେ,
ସାରଙ୍ଗଗଡ଼ରୁ ଅଠଗଡ ଯାଏ
ଶୋଭେ ଶୈଳ ନୀଳ ପ୍ରାଚୀର ପ୍ରାୟେ,
ଠାବେ ଠାବେ ତୁଙ୍ଗ ନୀଳ ଶୃଙ୍ଗମାଳା,
ଶୋଭେ ଯେହ୍ନେ ଇନ୍ଦ୍ରନୀଳ ଚନ୍ଦ୍ରଶାଳା
ହୃଦୟାରେ ଦେଇ ସର୍ବଶୈଳେ ଲଜ୍ଜା
ଟେକିଛି ଶିଖର ଗିରି ସପ୍ତଶଯ୍ୟା,
ମଣ୍ଡିଛନ୍ତି ସ୍ୱର୍ଣ୍ଣ କରେ ଗ୍ରହରାଜ
ବୌଦ୍ଧକୀର୍ତ୍ତିରାଜି ମଣ୍ଡିତ କପାଳ,
ଉତ୍ତରେ ବିରାଜେ ଶୈଳ ସର୍ପେଶ୍ୱର
ସର୍ପେଶ୍ୱରୀ ଯାର ଧୂଅଇ ପୟର,
ବକ୍ରଗାମୀ ସ୍ରୋତେ, ବିସ୍ତୃତ ସୈକତେ
ସନ୍ଧ୍ୟାରାଗ ଖେଳୁଅଛି ନାନା ମତେ,
ସ୍ୱଚ୍ଛ ସ୍ରୋତ ଜଳ ପୀତ ରକ୍ତ-ରୁଚି
ପଞ୍ଚ ବୀଚିମାଳା ହଲୁଛି ଝଲୁଛି,
ଧୂମାକାରେ ଦୂରେ ଧବଳିର ଶିରି
ମାଡ଼ି ଆସୁଅଛି ଜଳ ସ୍ଥଳ ଘେରି,
କଥାଗ୍ରୀ ଭ୍ରସଇ କାଠଯୋଡ଼ି ନୀରେ
ଥରେ ବାନ୍ଧେ, ଥରେ ଅକାଣ୍ଡ ଫିଙ୍ଗଇ,
ପଟିଅ ଦହନ୍ତ ପକ୍ଷୀ ଦଳେ ଦଳେ
ଉଡ଼ି ଆସୁଛନ୍ତି ରବେ କୋଳାହଳେ,
ଗଉଡ଼େ ମଧୁରେ ମୁରଲୀ ବଜାଇ
ପଠାରୁ ଗୋଠକୁ ଅଣୁଛନ୍ତି ଗାଈ,
ଗୁହୁଁ ଗୁହୁଁ ରବ ହେଲେ ଅସ୍ତମିତ
ପଶ୍ଚିମାଶା ହେଲା କୁଙ୍କୁମେ ଭୂଷିତ,
କେତେ ରୂପ ଧରୁଅଛି ଚକ୍ରବାଳ
ଦେଖାଉଛି ନବ ନବ ଇନ୍ଦ୍ରଜାଲ,
ରକ୍ତ, ପୀତ, ନୀଳେ ଶତ କଣ ନଭ
ରଞ୍ଜଇଛି ନାନା ବର୍ଣ୍ଣେ ବର୍ଣ୍ଣୋତ୍ସବ,
ତାରକାଏ ଫୁଟି ଗୋଧୂଳି-କୁନ୍ତଳେ
ଦେଖୁଅଛି ମୁଖ କାଠଯୋଡ଼ି-ଜଳେ,
ପର୍ବତ କନ୍ଦରୁ ବାହାରି ଅନ୍ଧାର
କ୍ରମେ ସବୁ କରୁଅଛି ଏକାକାର,
ଚଉଦିଗେ ଘୋଟି ତମିର କାଳିମା
ଭୁଲାଇଲା ଜଳ ସ୍ଥଳ ବ୍ୟୋମ ସୀମା ।"

ରାଧାନାଥଙ୍କର ଏହି ଛନ୍ଦଗୁଡ଼ିକ ତାଙ୍କ ପୁତ୍ର ଶଶିଭୂଷଣ ରାୟ Sunset at Cuttack (କଟକରେ ସୂର୍ଯ୍ୟାସ୍ତ) ନାମ ଦେଇ ଇଂରାଜୀରେ ଅନୁବାଦିତ ଓ ମୁଦ୍ରିତ କରି ୧୯୧୩ସାଲ ନଭେମ୍ବର ୨୯ ତାରିଖରେ କଟକଠାରେ ଭାରତର ବଡ଼ଲାଟ୍ ଲର୍ଡ୍ ହାର୍ଡିଞ୍ଜ୍‌ଙ୍କୁ ଉପହାର ଦେଇ ଥିଲେ ।

ଏହି ଘାଟରୁ ଲକ୍ଷିତ ପ୍ରାକୃତିକ ଦୃଶ୍ୟକୁ ବାମଣ୍ଡାର କଳାକୁଶଳ ସ୍ୱର୍ଗତ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ 'ଦେବୀଦ୍ୱାରରେ ସନ୍ଧ୍ୟା' ରୂପେ ଏହି ଘାଟରେ ବସି ୧୯୧୩ ସାଲରେ ଚିତ୍ରରେ ଅଙ୍କିତ କରିଥିଲେ ଓ ଏହି ଚିତ୍ର କଲିକତାର ବଙ୍ଗୀୟ ପତ୍ରିକା 'ଭାରତବର୍ଷ'ରେ ଓ କଟକର 'ଉତ୍କଳ ସାହିତ୍ୟ' ପତ୍ରିକାରେ ମୁଦ୍ରିତ ହୋଇଥିଲା । ୧୮୯୩ ସାଲଠାରୁ ଆଜକୁ ୬୭ବର୍ଷ ହେବ ଶଶିଭୂଷଣ ନିଜ ବ୍ୟୟରେ ପ୍ରତିବର୍ଷ ଏହି ଘାଟ ଉପରେ ତାଙ୍କ ପ୍ରତିଷ୍ଠିତ ଶିବଙ୍କଠାରେ ଯଥାବିଧି ଶିବରାତ୍ରି ଉତ୍ସବ ସମ୍ପନ୍ନ କରି ଆସୁଅଛନ୍ତି ।

କଟକକୁ ଇଂରାଜ ଅଧିକାର କରିବା ସମୟରେ ଏ ଘାଟକୁ ଇଂରାଜ କର୍ତ୍ତୃପକ୍ଷ ମରାମତ କରି ଏଥିର ନାମ Belle-vue (ଫ୍ରେଞ୍ଚ୍ ଶବ୍ଦଦ୍ୱୟ 'ବେଲ୍‌ଭ୍ୟୁ'ର ଅର୍ଥ ମନୋରମ ଦୃଶ୍ୟ) ରଖି ପଥର ପାହାଚ ଗାତ୍ରରେ ମର୍ମର ପଥରରେ ଏ ନାମ ଖୋଳାଇ ଦେଇ ଅଛନ୍ତି । ବସ୍ତୁତଃ ଏ ଘାଟରୁ ଦେଖାଯିବା ଶ୍ୟାମଚ୍ଛବି ଅନନ୍ତ କାନନଗିରିମାଳା ଓ କାଠଯୋଡ଼ୀ ନଦୀଶଯ୍ୟାର ତଥା ଉକ୍ତଦିଗସ୍ଥିତ ଦେବୀଦ୍ୱାର ପର୍ବତର ଦୃଶ୍ୟ କାଠଯୋଡ଼ୀ ନଦୀର ଅନ୍ୟ

କୌଣସି ଘାଟରୁ ଦେଖାଯାଏ ନାହିଁ । ଏ ସ୍ନାନଘାଟରୁ ସହସ୍ର ସହସ୍ର ସ୍ନାନାର୍ଥୀ ନରନାରୀ ପ୍ରତ୍ୟହ ବ୍ୟବହାର କରନ୍ତି ଓ ଜନସମୃଦ୍ଧି ବେଳେ ଏକ ସମୟରେ ଶହଶହ ପୁରୁଷ ଓ ସ୍ତ୍ରୀ ଅଲଗା ଅଲଗା ହୋଇ ଏହି ଘାଟରେ ପଥର ପାହାଚରେ ଗାଧୋଇ ପାରନ୍ତି । ଏହି ଘାଟ ବାଟେ ଅନ୍ତତଃ ୩୨୪ ବର୍ଷ ହେଲା କାଠଯୋଡ଼ୀ ନଦୀର ଗର୍ଭ ଶୁଷ୍କ ଥିବା ସମୟରେ ଜଗନ୍ନାଥଙ୍କ ଦେଇ ବାଙ୍କି, ଖୋରଧା, ପୁରୀ ଓ ଗଞ୍ଜାମ ଅଞ୍ଚଳକୁ ଯାନବାହନରେ ଯିବା ପାଇଁ ଅସ୍ଥାୟୀ ବାର୍ଷିକ ରାସ୍ତା ନିର୍ମାଣ କରି ସରକାରଙ୍କ ବାରକ୍‌ ମିସ୍ତ୍ରୀ (P. W. D) ବା ପୂର୍ତ୍ତ ବିଭାଗଙ୍କ ତତ୍ତ୍ୱାବଧାନରେ ଚଳାଯାଉଅଛି ।]

**ହଡ଼ ହଡ଼େଇବା**—ଦେ. କ୍ରି—ହଡ଼ ହଡ଼ାଇବା (ଦେଖ)
Harḍa harḍeibā  Harḍa harḍāibā (See)

**ହଡ଼ା**—ଦେ. ବି. (ସଂ. ହଡ୍ଡ=ଅସ୍ଥି)—୧ । ବୁଢ଼ା ବଳଦ—1. Old
Harḍā bullock. ୨ । ବୁଢ଼ା ହେବା ଯୋଗୁଁ ଯେଉଁ
बूढ़ा बलद **बुढ़ा बैल** ବଳଦର ବା ଘୋଡ଼ାର ହାଡ଼ମାନ ପଦାକୁ ବାହାରି ପଡ଼ନ୍ତି—2. A horse or bullock whose bones bulge out from the body owing to old age. [ ଢ—ହଡ଼ାର ବେଦନା କାଉ ନ ଜାଣେ । ଠକ ଠକ କରି ଠେଙ୍ଗାରେ ହାଣେ—ଛଗ] ୩ । ବଳଦ—3. Bullock. ୪ । ହାଡ଼ରୁ ବାହାରିବା ଏକପ୍ରକାର ବଥ—4. Caries; a kind of boil on the bone. ୫ । ବେଢ଼ା, ଗୋମାଂସ—5. Beef. ଦେ. ବିଣ—୧ । ବୁଢ଼ା—1. Old. ୨ । ଅସ୍ଥିକଙ୍କାଳ ମାତ୍ର ଯୁକ୍ତ—2. With bones bulging out. ୩ । ଶୀର୍ଣ୍ଣକାୟ—3. Lean; emaciated. ପ୍ରାଦେ (ଖଡ଼ଥଳ) ବିଣ—ପାହା
(ହଡ଼ର—ଅନ୍ୟ ପ୍ରାଦେ ରୂପ) ଦେହରେ କେବଳ ଅସ୍ଥି ଚର୍ମଥାଏ; ହାଡ଼ୁଆ—Bony; (a person . who is a bundle of bones.

**ହଡ଼ା ଖିଆ(ୟା)**—ଦେ. ବିଣ. ପୁଂ. (ଗାଳି)—ଗୋମାଂସଭୋଜୀ -
Harḍākhiā(yā  Beef-eating. ବି. (ଗାଳି)
गोरूखोर **गोमांस खानेवाला** ୧ । ଖପର; ଚଣ୍ଡାଳ—
(ହଡ଼ାଖାଈ - ସ୍ତ୍ରୀ) 1. A low caste eating carrion or beef. ୨ । (ସଂ. ହଡ୍ଡିକ) ହାଡ଼ିଜାତି—2. The sweeper caste.

**ହଡ଼ା ଗାଣ୍ଡି**—ଦେ. ବି—ଭୂମିରେ ଛକ କଟାଯାଇ ଗୋଡ଼ି ଓ ଖପରରେ
Harḍā gāndi ଖେଳାଯିବା ଏକପ୍ରକାର ଖେଳ—A kind of
(ହଡ଼ା ଖୋସଗୁ—ଅନ୍ୟରୂପ) indoor game played with bits of potsherds and gravel. [ବି—ଏ ଖେଳରେ ଭୂମିରେ ୫୬ ଛକ ଥିବା ଗୋଟିଏ ଏକଘାଣ୍ଟ ମୁଣ୍ଡଳା ଦ୍ୱିକର୍ଣ୍ଣବିଶିଷ୍ଟ ବର୍ଗକ୍ଷେତ୍ର କଟାଯାଏ । ଦୁଇ ଜଣ ଖେଳାଳିଙ୍କ ମଧ୍ୟରୁ ପ୍ରତ୍ୟେକେ ଦୁଇଗୋଟି ଖାର (ଯେପରି ଓ ଗୋଡ଼ି)କୁ ଏ ୫୬ ଛକ ମଧ୍ୟରୁ ୫୬ ଛକରେ ବସାନ୍ତି; ଗୋଟିଏ ଛକ ଖାଲିଥାଏ । ଖେଳାଳମାନେ ଯେଉଁ ଖାରକୁ ଚଳାନ୍ତି । ଚଳାଇ ଚଳାଇ ଖାରମାନଙ୍କ ଗତିସ୍ଥିତି ଏପରି ଘଟିଯାଏ ଯେ, ଅଉ ଖାର ଚଳାଯାଇ ନାହିଁ । ଯେଉଁ ପକ୍ଷ ଖାର ଚଳାଇ ନ ପାରେ, ସେ ହାରେ ।]

**ହଡ଼ା ବଳଦ**—ଦେ. ବି—ବୃଦ୍ଧ ଓ ଶୀର୍ଣ୍ଣ ବଳଦ—Old and lean-
Harḍā baḷada bullock. [ଢ—ହଡ଼ା ବଳଦ ବୁଢ଼ା ଘୋଡ଼ା,
बुडोबलद **बुढ़ा बैल** ଯେତିକ ବୋହିବ ସେତିକ ନଫା—ଛଗ]

**ହଡ଼ା ବୁଢ଼ା**—ଦେ. ବିଣ—(ପ୍ରାୟ ଏକାର୍ଥକ ଶବ୍ଦଦ୍ୱୟ)—ବୃଦ୍ଧ ଓ
Harḍā burḍhā ଅସ୍ଥିମୟ ଶରୀର ଯୁକ୍ତ—Old and bony.
बुडोहाबडा **बुड्ढ़ा ठड्ढा**

**ହଡ଼ା ବେଦନା**—ଦେ. ବି—ହଡ଼ା । ବଳଦର ବାର୍ଦ୍ଧକ୍ୟଜନିତ କଷ୍ଟ—
Harḍā bedanā Pain of an old bullock due
बुडोब दुःख **बुढ़ेका कष्ट** to old age.
[ଢ—ହଡ଼ା ବେଦନା କୁଆ ନ ଜାଣେ ।
ଠକ ଠକ କରି ଠେଙ୍ଗାରେ ହାଣେ । ଛଗ ।]

**ହଡ଼ା ବେପାର**—ଦେ. ବି—୧। (ମନ୍ଦାର୍ଥ) ଗାଈ ବଳଦ କଣି କଂସାଇକୁ
Harḍā bepāra ବିକିବା ବ୍ୟବସାୟ—1. Trade in cow
बुडो गोरूब कारबार and bullocks. ୨ । (ଲକ୍ଷଣାର୍ଥ) ଅତି
**बुढ़ी गायका व्यापार** ଜଘନ୍ୟ ବା କଳୁଷ୍ଟ ବ୍ୟବସାୟ—2.Very mean or abominable profession. [ ଢ—ଘଟକାହାକେ ଏ ହଡ଼ା ବେପାର କେତେଦିନୁ ଆରମ୍ଭ କଲେଣି । ଘଳାରଚରଣ, ଯୌତୁକ ।]

**ହଡ଼ା ବେପାରୀ**—ଦେ. ବି—ଯେଉଁ ବ୍ୟକ୍ତି ବଳଦ କଣି କଂସାଇକୁ
Harḍā bepāri ବିକେ—1. One who purchases
किन्‌ते bullocks and sells them to butchers.
**बुढ़ीगायकाबापारी** ୨ । (ଲକ୍ଷଣାର୍ଥ) ଅତି କୃପଣ ବ୍ୟକ୍ତି; ଲାଭର ସମ୍ଭାବନା ନ ଥିଲେ ଯେ ପଇସାଏ ଖରଚ କରେ ନାହିଁ—2. (figurative) A miserly person; a person who wont spend or advance money unless he is sure of getting profit.

**ହଡ଼ାଲି**—ପ୍ରାଦେ (ସମ୍ବଲପୁର) ବିଣ—ହାଡ଼ୁଆ—Bony.
Harḍāli

**ହଡ଼ାଲିଆ (ୟା)**—ଦେ ବିଣ—୧ । ଯେଉଁ ବଳଦ ସମ୍ପୂର୍ଣ୍ଣ ରୂପେ
Harḍaliā (yā) ହଡ଼ା ହୋଇ ନାହିଁ, ଅଥଚ ହଡ଼ା ହେବା
आदबुड़ो ଅବସ୍ଥାକୁ ଅଗ୍ରସର ହେଉଅଛି—1. (A bullock)
**बुढ़ाया** Which is approaching old age. ୨ । ମଧ୍ୟବୟସ୍କ (ବଳଦ) 2. Middle-aged (bullock).

**ହଡ଼ାହଡ଼ି**—ଦେ. ବି—ଏକାଧିକ ବଳଦ (ବୁଢ଼ା ଓ ଦାମୁଡ଼ି)—
Harḍā harḍi Many bullocks (old and young).
गोरूबलद **गायबैल**
[ଢ—ସମ୍ପତ୍ତି ମଧ୍ୟରେ କେତେ ପୌଟି ଧାନ, ହଡ଼ାହଡ଼ି ଦୁଇ ଯୁଗ୍ମ—ଫକୀରମୋହନ. ଗଳ୍ପସ୍ୱଳ୍ପ]

ହଡ଼ା ହଳ—ଦେ· ବି (ସହଚର)—ଜମିଚଷ କରିବାପାଇଁ ଯୋଡ଼ା ବଳଦ
Hardā hala ଓ ହଳ—Bullocks and plough
ଗୋକଓଲାଙ୍ଗଲ required to till a field.
हलबैल

ହଡ଼ି (ଧାତୁ)—ସଂ—ହରଣ କରିବା ବା ଚୋର କରିବା—
Hardi (root) To steal.

ହଡ଼ି ( ଡି, ଡ୍ଡି )—ଦେ. ବି—୧ । ହାଡ଼—1. Bone. ୨ । ପ୍ରତି
Hardi(di, ddi) ବନ୍ଧକ; ବାଧା—2. Obstacle; obs-
হাড truction. [ଭୂ—ଅଃ କଲି ଖଡ, ନୁହଇ ହଡ଼—ଵଳଭସୁର୍ଗ·
हड्डी বাধা अड़चन କବିତା ]

ହଡ଼ି—ସଂ, ବି (ହଡ୍ ଧାତୁ=ବଳାତ୍କାର କରିବା+ଅଧିକରଣ ଇ)—
Hardi ୧ । କାଷ୍ଠ ନିର୍ମିତ ଯନ୍ତ୍ର ବିଶେଷ (ଶବ୍ଦମାଳା); ହଡ଼ିକାଠ—
হাড়িকাঠ 1. The stocks; a kind of instrument into
हरी the holes of which the hands and legs of a criminal are thrust and then locked up.
[ବି—ଏହି ଯନ୍ତ୍ରର ଛିଦ୍ରମାନଙ୍କରେ ଅପରାଧୀର ଗୋଡ଼କୁ ଓ ହାତକୁ ଗଳାଇଦେଇ ଏଥିରେ ଶୃଙ୍ଖଳ ପକାଇ ଦେଲେ ବା ଶିକୁଳି ମାରି ଦେଲେ ଅପରାଧୀ ତହିଁରୁ ହାତଗୋଡ଼ ବାହାର କରି ନେଇ ପାରେ ନାହିଁ ।] ୨ । ହାଡ଼—2. Bone.
ପ୍ରାଦେ. (ସମ୍ବଲପୁର, ଗଡ଼ଜାତ) ବି—କୁକୁର—A dog.

ହ ! ଡି !—ଦେ. ଅ (ସହଚର)—ଶଗଡ଼ର ବା ହଳର ବଳଦକୁ ଠିଆ
Ha ! di ! କରାଇବା ପାଇଁ ବ୍ୟବହୃତ ଡାକ ( ହ ! ) ଓ ଚଳିତ
হ ই ! ডী ডী ! କରିବା ପାଇଁ ବ୍ୟବହୃତ ଡାକ (ଡି !) —
ह ! आव ! Interjection !—Two words used respectively in stopping a draft-bullock in motion and making him move.
(ହଃ ! ଡଃ !, ହଡ ! ଡଡ !—ଅନ୍ୟରୂପ)

ହଡ଼ିକ—ସଂ. ବି. ପୁଂ—ହାଡ଼ି; ମଇଳା ସଫା କରିବା ଅସ୍ପୃଶ୍ୟ ଜାତି
Hardika ବିଶେଷ (ଶବ୍ଦମାଳା)—The sweeper caste.
(ହଡ଼ିକା—ସ୍ତ୍ରୀ)
(ଏହାର ଅନ୍ୟ ସଂ. ପର୍ଯ୍ୟାୟ—ମଳାକର୍ଷୀ, ହଡ୍ଡକ, ଅବପୁଷ୍ଟିକା, ହଡ୍ଡି, ହଡ଼ିକ, ହଡ଼ିପ, ମଳେଗ୍ରହୀ । )

ହଡ଼ିକାଠ—ଦେ. ବି (ସଂ· ହଡ଼ି)—୧ । ୪ର୍ଥ (ସଂ.) (ଦେଖ)—
Hardi kātha 1. Hardi (See) ୨ । ପଶୁବଳି ଦେବାରେ
হড়িকাঠ ପଶୁର ବେକ କାଟିବା ପାଇଁ ବ୍ୟବହୃତ ଯୂପକାଷ୍ଠ, ଅଡ଼-
हरिकाठ କାଠ—2. A stake to cut the neck of the victims of a sacrifice.

ହଡ଼ି(ଡ୍ଡି) ତୋଡ଼ିବା—ଦେ. କ୍ରି—୧ । ଗୁରୁତର ପ୍ରହାର ଦେଇ କୌଣସି
Hardi(ddi)tord ba ବ୍ୟକ୍ତିର ହାଡ଼ମାନଙ୍କୁ ଭାଙ୍ଗିବା—1. To
হাড় ভাঙ্গা हड्डी तोड़ना break person's bones by excessive beating. ୨ । ଗୁରୁତର ଓ ନିଷ୍ଠୁରଭାବରେ ମାଡ଼ ମାରିବା—2. To beat mercilessly.

ହଡ୍ଡ—ସଂ· ବି (ହଡ୍ ଧାତୁ+କର୍ତ୍ତୃ. ଡ)—ଅସ୍ଥି; ହାଡ଼ (ଶବ୍ଦଚନ୍ଦ୍ରିକା)—
Hadda Bone.

ହଡ୍ଡକ—ସଂ. ବି. ପୁଂ—ହାଡ଼ି ଜାତି—
Haddaka The sweeper caste.
(ହଡ୍ଡିକା—ସ୍ତ୍ରୀ)

ହଡ୍ଡଜ—ସଂ. ବି (ହଡ୍ଡ+ଜନ୍ ଧାତୁ+କର୍ତ୍ତୃ. ଅ)—ମଜ୍ଜା (ଶବ୍ଦଚନ୍ଦ୍ରିକା)
Haddaja ହାଡ଼ରସା—Bone marrow.

ହଡ୍ଡି—ଦେ. ବି (ସଂ. ହଡ୍ଡ)—ହଡ଼ [ଦେଖ]—
Haddi হাড় हड्डी Hardi (See). ସଂ· ବି. ପୁଂ—ହାଡ଼ି
[ହାଡ୍ଡି—ସ୍ତ୍ରୀ] [ଚଣ୍ଡାଳୁଣୀ ଗର୍ଭରେ ଲେଟ ଜାତିର ପୁରୁଷ ଔରସରେ ଜାତ ମଳାପକର୍ଷଣ ଏ ଜାତିର ବୃତ୍ତି—ବ୍ରହ୍ମବୈବର୍ତ୍ତପୁରାଣ)—The sweeper caste

ହଡ୍ଡିକ(ପ)—ସଂ. ବି ପୁଂ—ହାଡ଼ି—
Haddika(pa) A man of the sweeper caste.
(ହଡ୍ଡିକା, ହଡ୍ଡିପା—ସ୍ତ୍ରୀ)

ହଣା—ଦେ. ବି (ସଂ· ହନ୍ ଧାତୁର ହନନ)—୧ । ହାଣିବା କ୍ରିୟା;
Hanā ହନନ—1. Act of cutting. ୨ । ଶସ୍ତ୍ରାଦିଦ୍ୱାରା
কাটা ଛେଦନ—2. Cutting with sharp weapons.
काटना ୩ । ଧାରୁଆ ଅସ୍ତ୍ରଦ୍ୱାରା କାଟି ମାରିପକାଇବା—3. Killing by cutting with an edged weapon.
ଦେ. ବଣ. ପୁଂ—୧ । ଯେଉଁ ବ୍ୟକ୍ତି ସର୍ବଦା ମୁଣ୍ଡକୁ ଖଣ୍ଡା ବା କଟୁରି ଉଞ୍ଚାଇଲା ପରି କରିଥାଏ—
মারমুখো 1. A person who keeps his head in the
काटनेवाला position of raising a sword to strike.
୨ । ଯେଉଁ ବ୍ୟକ୍ତି ହାଣିଲାପରି ନିଷ୍ଠୁର ବଚନ କହେ—
2. A person who is cruel in his words.
কাটা, হানা ଦେ· ବଣ—୧ । ଧାରୁଆ ଅସ୍ତ୍ରଦ୍ୱାରା କଟାଯାଇଥିବା;
कटाहुआ କର୍ତ୍ତିତ; ଅସ୍ତ୍ରଦ୍ୱାରା ଛେଦିତ—1. Cut by a sharp weapon. [ଭୂ—ପରଶୁ ହଣା ତାଳ ପ୍ରାୟେ ହାଣିଗଣ୍ଡା, ଛିଡ଼ିଲେ ରାଜନ ସେକାଳେ ଗଣ୍ଡା ଗଣ୍ଡା । କୃଷ୍ଣସିଂହ.
কাটাকাটি ମହାଭାରତ· କର୍ଣ୍ଣପର୍ବ ।] ୨ । ପରସ୍ପର ହଣାହଣି ହେଉଥିବା
कटाकटी —2. Mutually cutting. [ଭୂ—ଠାବେ ଠାବେ ହଣା ଯୁଦ୍ଧ ହୋଇବ ବିଶେଷ । ପ୍ରାଚୀ. ଶ୍ରୀଗୁରୁଭକ୍ତିଗୀତା ।]

ହଣା(ଣେ)ଇବା—ଦେ. କ୍ରି (ହାଣିବାର ଣିଜନ୍ତରୂପ)—ଅନ୍ୟଦ୍ୱାରା
Hanā(ne)ibā ହାଣିବା କ୍ରିୟା କରାଇବା—(Causative
কাটান; হানান form of Hanibā) To cause another
कटवाना to cut.

ହଣା କଟା—ଦେ· ବି. (ଏକାର୍ଥକ ସହଚର)—ହାଣକାଟ; ଶସ୍ତ୍ରଦ୍ୱାରା
Hanākatā ହାଣିବା ଓ କାଟିବା—Cutting with sharp
হানাকাটা मारकाट weapons.

ହଣା ଖା(ପା)ଇବା (ଯିବା, ହେବା)—ଦେ. କ୍ରି—୧ । ହାଣ ଖାଇବା;
Hanā khā(pā)ibā (jibā; hebā) ଶସ୍ତ୍ରଆଦିଦ୍ୱାରା ହତ
মারখাওয়া ହେବା—1. To be cut with a sword. ୨ ।

କଟାଯାନା ଅନ୍ୟ ବ୍ୟକ୍ତିଦ୍ୱାରା ଅସ୍ତ୍ରରେ ହତ ହେବା—2. To be killed with a sword or knife.

ହଣା ଘା (ଘାଅ)—ଦେ. ବି—ଅସ୍ତ୍ରଦ୍ୱାରା ଆଘାତ ହେବା ଯୋଗୁଁ
Hanā ghā (ghā-ā) ଜନ୍ମିବା କ୍ଷତ—Wound caused by
କାଟা ঘা କଟା ଘାବ cutting with a sharp weapon.

ହଣା ପଡ଼ିବା—ଦେ କ୍ରି—ହାଣ ଖାଇବା; ହଣା ଖାଇବା—
Hana pardibā To be cut to pieces.
କାটা যাওয়া କାଟା ଜାନା

ହଣାମରା—ଦେ. ବି (ସବ୍ଦଧର)—୧। ହାଣମାର; ଶସ୍ତ୍ରଦ୍ୱାରା ହାଣିମାର
Hanāmarā ପକାଇବା—1. Killing by cutting. ୨।
হানাকাটি ହାଣିବା ଓ ଅଘାତ କରିବା—2. Cutting and
मारकाट striking. ୩। ପତିଆ ଜମିକୁ କୋଡ଼ି କାଙ୍କଅଡ଼ ଦ୍ୱାରା ହାଣିବା ଓ ତାକୁ ସମତୁଲ କରିବା—3. Act of reclaiming land by cutting with spade and levelling. ୪। ପତିତ ଜମିକୁ ଆବାଦ କରିବା—4. Reclamation of waste land.

ହଣାହଣି—ଦେ. ବି—୧। ପରସ୍ପର ହାଣିବା—1. Mutual
Hanāhani cutting. [ଯୁଦ୍ଧ ହେଉଥିବା ଭୂଟ୍ଟେ ସୃହରେ
କାটাকাটি ଖୁବାଠାରେ, ପିଲବ ହଣାହଣି କୁହନ୍ତୁ ତୁଠାରେ।
कटाकटी କୃଷ୍ଣସିଂହ. ମହାଭାରତ। ] ଦେ. ବିଣ—ପରସ୍ପର କଟାକଟି ହେବା—Cutting each other. [ ଉ—ସୁଗ୍ରୀବ ସାଙ୍ଗିଷ୍ଟ ଶତ୍ରୁ ଯେଣ, ହଣାହଣି ହେଲେ ବୀର ବେନ୍ଧ। ବଚନ ରାମାୟଣ ]

ହଣେଇ—ଦେ. ବଣ. ସ୍ତ୍ରୀ—ହଣାର ସ୍ତ୍ରୀଲିଙ୍ଗ (ଦେଖ)
Hanei Feminine of Hanā.

ହଣେଇବା—ଦେ. କ୍ରି—ହଣାଇବା (ଦେଖ)—
Haneibā Hanāibā (See).

ହଣ୍ଟର୍—ବୈଦେ (ଇଂ) ବ (ଜନ୍ମ—[ଜନ୍ମ—ଖ୍ରୀ ୧୮୪୦ ଓ ମୃତ୍ୟୁ—
Hantar ଖ୍ରୀ ୧୯୦୦) ସର୍ ୱିଲିଅମ୍ ହଣ୍ଟର୍; ଭାରତର
हन्टर हंटर ଜଣେ ପ୍ରସିଦ୍ଧ ଇଂରଜ ରାଜପୁରୁଷ
[ଉ—ଏ ବଙ୍ଗର ଗ୍ରାମ୍ୟ ଅଞ୍ଚଳ ସମ୍ବନ୍ଧରେ ନାନା ଜ୍ଞାତବ୍ୟ ବିଷୟପୂର୍ଣ୍ଣ ବିବରଣ ଲେଖିଥିଲେ ]—Author of the Statistical Account of Bengal; Sir William Hunter. [ ଉ—ଏ ମହାଶୟ ବିଲାତରୁ ସିଭିଲ ସର୍ଭିସ୍ ପରୀକ୍ଷାରେ ପାଶ୍ କରି ୧୮୬୨ ସାଲରେ ଏ ଦେଶକୁ ଆସିଲେ। ଏ Annals of rural Bengal, Orissa (2 volumes), Statistical account of Bengal, Local Gazetteers, Rulers of India, History of India ଆଦି ଅନେକଗୁଡ଼ିଏ ଗ୍ରନ୍ଥ ସଙ୍କଳନ କରିଥିଲେ। ସେ କଲିକତା ବିଶ୍ୱବିଦ୍ୟାଳୟର ଭାଇସ୍ ଚାନ୍ସେଲର୍, ଶିକ୍ଷା କମିଶନର ସଭାପତି ଓ ବଙ୍ଗୀୟ ସରକାରୀ ବିଦ୍ୟାଳୟର ପୃଷ୍ଠପୋଷକ ଥିଲେ। ଏହାଙ୍କ ଦ୍ୱାରା ଗଭର୍ଣ୍ଣମେଣ୍ଟ, ବିଶ୍ୱବିଦ୍ୟାଳୟ ଓ ସରକାରୀ ବିଦ୍ୟାଳୟର ସଭ୍ୟମାନେ ଅନେକଗୁଡ଼ିଏ ଉପାଧି ଦେଇଥିଲେ। ଭାରତୀୟ ଭାଷାର ଶବ୍ଦମାନଙ୍କୁ ଇଂରାଜୀ ଅକ୍ଷରରେ ଉଚ୍ଚାରିବା ପାଇଁ ଯେଉଁ ଉପାୟ ଉଦ୍ଭାବନ କରିଥିଲେ (Hunterian system of transliteration) ତାହା ଏପର୍ଯ୍ୟନ୍ତ ଗଭର୍ଣ୍ଣମେଣ୍ଟ ଦ୍ୱାରା ଓ ସାଧାରଣରେ ଚଳୁଅଛି।]

ହଣ୍ଟର (ସଂ) ଚାବୁକ—ବୈଦେ. ବ—(ଇଂଲଣ୍ଡର ହଣ୍ଟର୍ ନାମକ ପ୍ରସିଦ୍ଧ
Hantar (s) chābuka ଚାବୁକ ତିଆରି କରିବା ସାହେବଙ୍କ
হন্টরচাবুক ନାମରୁ)—ବଗିର ଘୋଡ଼ାକୁ ଚଳାଇବାରେ ବ୍ୟବହୃତ
हण्टर ବଳଦ ଲମ୍ବା ଚାବୁକ—Hunters whip.

ହଣ୍ଟର (ରା, ଲା)—ଦେ. ବ—(ଧ୍ୱନ୍ୟନୁକରଣ) ବାଘ, ସିଂହ ଓ ଷଣ୍ଢର
Hantara (rā, lā) ଗର୍ଜ୍ଜନ ଶବ୍ଦ—Roar of a tiger
গর্জন or lion or bull; bellowing (of the
गजन bull or tiger or lion).

ହଣ୍ଟର(ରା, ଲା) ଛାଡ଼ିବା—ଦେ. କ୍ରି—ହଣ୍ଟାଳିବା (ଦେଖ)
Hantara(rā, lā) chhārdibā Hantālibā (See)
গর্জনকরা गर्जन करना [ହଣ୍ଟର(ରା,ଲା) କରା(କେ)ଇବା,ମାରନା—ଅନ୍ୟରୂପ]

ହଣ୍ଟା(ଣ୍ଟେ)ଇବା—ଦେ. କ୍ରି—୧। ଅଣ୍ଟାଇବା (ଦେଖ)
Hantā(nte)ibā 1. Antāibā (See)
বমবলাগান कन्धालगाना ୨। ହାଣ୍ଟିବାର ପ୍ରୟୋଜକରୂପ—2. The causative form of Hāntibā
ঘুবান घुमाना ୩। ବୁଲାଇବା; ଚଲାଇବା; ଭ୍ରମଣ କରାଇବା—3. To cause to walk or wander or travel.

ହଣ୍ଟା(ଣ୍ଟୋ)ଳ [ଇତ୍ୟାଦି]—ଦେ. ବି—ହଣ୍ଟର ଇତ୍ୟାଦି (ଦେଖ)—
Hantā(nto)la (etc) Hantara etc (See).

ହଣ୍ଟାଳିଆ—ଦେ. ବଣ, ପୁଂ—ଯେଉଁ ବାଘ ବା ଷଣ୍ଢ ଉଚ୍ଚୈଃସ୍ୱରରେ
Hantāliā ବା ବହୁବାର ଗର୍ଜ୍ଜନ କରେ—
যে বেশি গর্জন করে गर्जने वाला (a bull or tiger) Given to much bellowing; roaring.

ହଣ୍ଟାଳିବା—ଦେ. କ୍ରି (ବାଘ, ସିଂହ ଓ ଷଣ୍ଢ) ଗର୍ଜନ କରିବା—
Hantālibā To roar (said of tiger,
গর্জন করা गर्जन करना lion and bull) to bellow.

ହଣ୍ଟିଙ୍ଗ୍—ବୈଦେ (ଇଂ) ବଣ (ଇଂ. ହଣ୍ଟିଙ୍ଗ୍)—ଶିକାରୀମାନଙ୍କ
Hanting ବ୍ୟବହୃତ—Hunting; used by hunters.
হণ্টিঙ্গ हंटिंग [ଉ—ଏହି ଶବ୍ଦ ସଙ୍ଗେ ଲାଗିଥିବା ଅନ୍ୟ ଇଂରାଜୀ ଶବ୍ଦମାନ ଭାଷାରେ ବ୍ୟବହୃତ ହୁଏ। ଯଥା—ହଣ୍ଟିଙ୍ଗ୍ ନାଇଫ୍ (ଛୁରି), ହଣ୍ଟିଙ୍ଗ୍ ସୁଟ୍, ହଣ୍ଟିଙ୍ଗ୍ ଭାର୍।]

ହଣ୍ଟିଙ୍ଗ୍ ଉଅଚ(ୱାଚ୍) — ବୈଦେ (ଇଂ) ବ—ଯେଉଁ ଘଡିର ମୁହଁ ଉପରେ Hanting Uāch (wāch) କାଚ ଢାକୁଣି ଦଆ ନ ଯାଇ ଧାତୁର ହଣ୍ଟିଙ୍ଗ ଘଡି हंटिंङ्ग् वाच् ଘୋଡଣି ଦଆଯାଇ ଥାଏ—Hunting watch. [ଦ୍ର—ଯେଉଁ ଘଡିର ମୁହଁର (ହଣ୍ଟଙ୍ଗ୍ ଘଡ଼ି—ଅନ୍ୟରୂପ) ଘୋଡଣୀର କେତେକ ଅଂଶ ଧାତୁପଟରେ ଅବୃତ ଓ ଅନ୍ୟ ଅଂଶ କାଚରେ ଅବୃତ ଥାଏ, ହାଫ୍ ହଣ୍ଟିଙ୍ଗ୍ ଉଅଚ୍ (Half hunting watch) ବୋଲାଯାଏ ।]

ହଣ୍ଟିଙ୍ଗ୍ ଛୁରି—ଦେ. ବ—ଶିକାରୀମାନଙ୍କ ଦ୍ୱାରା ଜୀବଙ୍କ ମାଂସ କାଟି-Hunting chhuri ବାରେ ବ୍ୟବହୃତ ବଡ଼ ଛୁରି—Hunting ହଣ୍ଟିଙ୍ଗଛୁରୀ हंटिङ्ग् छुरी knife. (ହଣ୍ଟିଙ୍ଗ୍ ନାଇଫ୍—ବୈଦେ. ରୂ)

ହଣ୍ଟିଙ୍ଗଡନ୍—ବୈଦେ. (ଇଂ) ବ. (ନାମ)—ଇଂଲଣ୍ଡର ଗୋଟିଏ Hantingdan ଜାଉଣ୍ଟିର ଓ ସହରର ନାମ—Name of a ହଣ୍ଟିଙ୍ଗଡନ हंटिङ्ग् डन् town and county in England.

ହଣ୍ଟିଙ୍ଗ୍ ଯୁ(ଯୋ)ତା—ଦେ. ବ. (ଏହା ଶିକାରୀମାନଙ୍କ ଦ୍ୱାରା ବ୍ୟବହୃତ Hanting ju(jo)tā ହେଉ ଥିବାରୁ)—ଯେଉଁ ଯୋତାର ଉପରେ ଲେସ୍ ନ ଲାଗି, ଯାହାର ଉପର ଚମଡ଼ା ଦ୍ୱାରା ହଣ୍ଟିଙ୍ଗ୍ ଜୁତା हंटिङ्ग् जुता ଫିତାରେ ଟଣା ହୋଇ ବନ୍ଧା ହୁଏ—[ହଣ୍ଟିଙ୍ଗ୍ ସୁ (ସୁଜ୍)—ବୈଦେ. ରୂ] Hunting shoes.

ହଣ୍ଟିଙ୍ଗ୍ ବୁଟ୍—ବୈଦେ. (ଇଂ) ବ—ଯେଉଁ ବୁଟ୍ ଯୋତାର ଉପରାଂଶ Hanting but हंटिङ्ग् बुट चମଡ଼ାଦ୍ୱାରା ଫିତାଦ୍ୱାରା ବନ୍ଧାଥାଏ । Hunting boot.

ହଣ୍ଟେଇବା—ଦେ. କ୍ରି—ଅଣ୍ଟାଇବା (ଦେଖ)—Hanteibā Antāiba (See).

ହଣ୍ଟୋର(ଳ,ରା, ଳା) (ଇତ୍ୟାଦି) ଦେ. ବ—ହଣ୍ଟର ଇତ୍ୟାଦି (ଦେଖ) Hantora(la, rā, lā) (etc) Hantara etc (See)

ହଣ୍ଡପା—ଦେ.ବ(ନାମ)—ଅଧୁନା ଗଡଜାତ ଅଠମଲ୍ଲିକର ପ୍ରାଚୀନ ନାମ Handapā —The old name of the Orissa State Athamallik

ହଣ୍ଡ(ଣ୍ଡୋ)ଲ—ବୈଦେ. (ଇଂ) ବ—(ଇଂ. ହାଣ୍ଡ୍‌ଲ)—୧। ଯେଉଁ Handa(ndo)l କଲମରେ ଲୁହାର ନିବ୍ ଭର ଲେଖିବାକୁ ହାଣ୍ଡେଲ होल्डर,हाण्डल ହୁଏ—1. Pen-holder. ୨। ବେଣ୍ଟ—2. Handle.

ହଣ୍ଡଲା—ପ୍ରାଦେ (ସମ୍ବଲପୁର) ବ—ପିତ୍ତଳର ବଡ଼ ହାଣ୍ଡି—Handalā (ହଣ୍ଡ୍ଲା—ଅନ୍ୟରୂପ) Big brass-pot.

ହଣ୍ଡା—ସଂ ଅ—ହାଁଲେ ! ହଇଲେ ! (ନାଟ୍ୟୋକ୍ତିରେ ଦାସୀକୁ Handā ସମ୍ବୋଧନରେ ବ୍ୟବହୃତ)—Interjection used in addressing a maid servant [ଦ୍ର—ନୀଚ ଶ୍ରେଣୀର ସ୍ତ୍ରୀମାନଙ୍କ ପରସ୍ପରକୁ ଏପରି ମଧ୍ୟ ସମ୍ବୋଧନ କରନ୍ତି—Apte.] ସଂ.ବ—(ହଣ୍ଡ୍ ଧାତୁ+ଅ+ଆ) ବଡ଼ ମାଟି ହାଣ୍ଡି—Large earthen cooking vessel (Apte). ଦେ. ବ—୧। ଧାତୁ ନିର୍ମିତ ବଡ଼ ହାଣ୍ଡି—हाँडि हंडा 1.Big metal cooking pot(Apte). [ଦ୍ର—ଯେଉଁ ଧାତୁରେ ବା ପଦାର୍ଥରେ ହଣ୍ଡା ତିଆରି ହୋଇଥାଏ, ସେହି ନାମ ପରେ ଏ ଶବ୍ଦ ବସେ । ଯଥା—ପିତ୍ତଳ ହଣ୍ଡା, କାଚ ହଣ୍ଡା ଇତ୍ୟାଦି ।] ୨। (ମହମବତୀ ଜଳିବା ପାଇଁ) ଗୋଲକ काँचकीहाँडि କାଚର ହାଣ୍ଡି—2. Big glass globes used as lamps. ୩। (ଲକ୍ଷଣାର୍ଥ)ପେଟ—3. (figurative) Belly. ପ୍ରାଦେ. (ଗଞ୍ଜାମ) (ଲକ୍ଷଣାର୍ଥ) ଭୁଣ୍ଡି ଅ; ଧୈର୍ଯ୍ୟ—(figurative) Patience.

ହଣ୍ଡା ଗରମ—ଦେ. ବ—୧। ଉର୍ଦ୍ଧ୍ୱଶ୍ଳେଷ୍ମା ଓ ଉଦର ଗରମ ହେବା Handā garama ଶାରୀରିକ ଅବସ୍ଥା—1. The state of ପେଟ ଗରମ one's body, when a person has got cold पेटगरम in the head and heat in the abdomen. (ହଣ୍ଡା ତାତିବା—ଅନ୍ୟରୂପ) ୨। କ୍ଷୁଧାତୁର ଅବସ୍ଥା—2. A state of hunger.

ହଣ୍ଡା ଗିଲାସ—ଦେ. ବ (ସହରର)—ବଡ଼ଲୋକମାନଙ୍କର ବୈଠକ-Handā gilāsa ଖାନା ସଜାଇବାରେ ବ୍ୟବହୃତ କାଚର ଗୋଲକ ଝାଡ ନାନାପ୍ରକାରର ଅଲୋକାଧାର ଓ ଫାନୁସ—Glass झाड फानुस globes and lamps used in the parlour of rich people.
ହଣ୍ଡା ଝାଡ଼ }
ହଣ୍ଡା ଡବଲେଟ } —ଅନ୍ୟରୂପ
ହଣ୍ଡା ଲଣ୍ଠନ }

ହଣ୍ଡା ଝୁଲା(ଲେ)ଇବା—ଦେ,କ୍ରି—(ଲୋକଙ୍କର ଧନ ସଞ୍ଚୟ କରିବା ପାଇଁ Handā jhulā(le)ibā ଘରର ତଳେ ଗାତ ଖୋଳି ସେ ଗାତର ଭିତେ ଟାକା ପୋଁତା ମୁହଁରେ ଲଦି ଘଡାଇ ସେ ଲଦିରୁ ବଡ଼ ବଡ଼ तहवर गाड़ना ପିତଳହଣ୍ଡା ଝୁଲାଇ ଦନ୍ତି ମଧ୍ୟରେ ସୁନାରୁପା ଓ ମୁଦ୍ରା ଆଦି ସଞ୍ଚୟ କରି ରଖିବା ପ୍ରଥାରୁ)—ବହୁଧନ ସଞ୍ଚୟ କରିବା—To hoard a large amount of money by burying it underground.

(ମୋର) ହଣ୍ଡା ଫାଟି ଯିବା—ପ୍ରାଦେ (ଗଞ୍ଜାମ) କ୍ରି—ପେଟ ଫାଟିଯିବା—Handā phāti jibā The bursting of the belly.

ହଣ୍ଡିକା—ସଂ. ବ—ହାଣ୍ଡି; ପାକାର୍ଥ ବ୍ୟବହୃତ ଅକାବୃତମୁଖ ଗୋଲାକାର Handikā ମୃତ୍ପାତ୍ର—An earthen pot used for cooking.

ହଣ୍ଡିକା ସୁତ—ସଂ. ବ—ଛୋଟ ହାଣ୍ଡି; କୁଣ୍ଡାଳ—Handikā suta A small earthen pot.

ହଣ୍ଡୀ—ସଂ. ବ—ବଡ଼ ହାଣ୍ଡି—Handi Large earthen pot.

ହ(ହେ)ଣ୍ଡୁଆ—ପ୍ରାଦେ (ସମ୍ବଲପୁର) ବ—ବାଉଁଶର ଶୁଖିଲା କରଡ଼—Ha(he)nduā Dry shoots of bamboo.

ହଣ୍ଡୁରାଜ୍—ବୈଦେ. ବ (ନାମ)—ମଧ୍ୟ ଆମେରିକାର ଗୋଟିଏ ରାଜ୍ୟ—Handurāj Hondurās; name of a State in Central

ହଣ୍ଡୁରାଜ America. [ ଦ୍ର—ଏହାର ଗୋଟିଏ ଅଂଶ ବ୍ରିଟିଶ୍
हण्डुराज अଧିକୃତ ଓ ଅନ୍ୟ ଅଂଶଟି ବ୍ରିଟିଶ୍ ହଣ୍ଡୁରାଜ
ହୁଅନ୍ତି ।]

ହଣ୍ଡେ—ଦେ. ଅ (ହଣ୍ଡ୍ ଧାତୁ+ଏ) (କାତ୍ୟାୟନୀ)—(ନୀଚ ସ୍ତ୍ରୀ ବା
Hande ଦାସୀ ପ୍ରତି ବ୍ୟବହୃତ ସମ୍ବୋଧନ) ହଁଲୋ ! ହଇଲୋ !—
(Interjection used in addressing a maid servant or inferior woman) Hallo !

ହଣ୍ଡୋଳ(ଲ)—ଦେ. ବି ( ଇଂ. ହାଣ୍ଡ୍ଲ୍ )—ହଣ୍ଡଲ୍ (ଦେଖ)
Handola(l) Handal (See)

ହତ୍—ଦେ. ଅ (ସଂ. ହନ୍ ଅବ୍ୟୟ=ଭର୍ତ୍ସନା, ଅନୁକମ୍ପା)—ନିଷେଧାର୍ଥକ
Hat ବା ବାରଣାର୍ଥକ)—ହାତ୍ ! ଥାଉ !—(Interjection
हट used in stopping a person) Stop ! Stay !
हुत

ହତ୍ତେରି—ଦେ. ଅ (ନିଷେଧାର୍ଥକ ବା ବାରଣାର୍ଥକ)—୧ । ହାତ୍ତେରି
Hat-teri (ଦେଖ )—1. Hātteri (See) ୨ । ହତ୍
(ହତ୍ତେରିକା[କି,କେ]—ଅନ୍ୟରୂପ) (ଦେଖ)—2 Hat
हत्तेरी धत्तेरी (See)

ହତ୍ଲା ମାର୍ବା—ପ୍ରଦେ ( ବଙ୍ଗୀୟ ପାଠଣା ) କ୍ରି—ବେଶୀ ଯେକି
Hat-lā mār-bā ଯିବା—To take a large quantity.

ହତ୍ଲିବା—ପ୍ରାଦେ (ମଣ୍ଡଳ) କ୍ରି—ସମୁଦାୟରୁ ଖଣ୍ଡେ ଟାଣି ଅଣିବା—
Hat-libā To draw out a piece from the whole.

ହତ୍ଶା—ଦେ. ବି (ହତରଣ)—(ସଂ. ହସ୍ତଟ)—ଟେବୁଲ ଆଦିର ଦରାଜକୁ
Hat-śā ହାତଦ୍ୱାରା ଟାଣିବା ଓ ବାକ୍ସକୁ ହାତରେ ଉଠାଇବା
हेण्डेल, हत्थल ପାଇଁ ଲାଗିଥିବା କଡ଼ା—Handle; a ring
हथारा attached to drawyers of table etc to draw them in and out.

ହତ୍ଶିରି—ଦେ. ବିଣ (ସଂ. ହତଶ୍ରୀ, ହତଶ୍ରୀକ) —ହତଶ୍ରୀକ (ଦେଖ)
Hat-siri Hataśrīka (See)
हतश्री हतश्री

ହତ—ସଂ. ବିଣ ( ହନ୍ ଧାତୁ ବଧ କରିବା+କର୍ମ କ୍ତ)—୧ । ମାରିତ;
Hata ନିହତ; ବଧପ୍ରାପ୍ତ; ଜୀବନରେ ମରି ଯାଇଥିବା—
1. Killed; slain; murdered. ୨ । ନାଶପ୍ରାପ୍ତ;
ବିନାଶିତ; ବିନଷ୍ଟ—2 Destroyed; ruined;
perished; lost. ( ଉ—ସବୁ ଗୃହକାର୍ଯ୍ୟପାକଟ ହୋଏ
ହତ—କୃଷ୍ଣସିଂହ ମହାଭାରତ ସଭା । ) ୩ । ନିର୍ବାପିତ; ଲିଭି
ଯାଇଥିବା; ଲୁପ୍ତ—3. Extinguished. ( ଉ—
ପ୍ରତାପ ହତ ଦେଖି କରନ୍ତେ ଲେଖା, ତକ୍ଷଣେ ଫେଇଦେଲ
ଗବାକ୍ଷ ପୃଷ୍ଠା—ଭଞ୍ଜ ସଙ୍ଗୀତ । ) ୪ । ପ୍ରତିହତ—
4. Obstructed; restrained. ୫ । ଆହତ,
ଆଘାତପ୍ରାପ୍ତ—5. Wounded; hurt; injured.
୬ । ଗତାୟୁ; ମୃତ—6. Dead. ୭ । ମନ୍ଦ; କୁତ୍ସିତ—
7. Bad; wretched. ୮ । ଭଗ୍ନ—8. Broken;
shattered. ୯ । ବ୍ୟାହତ; ବିଫଳୀକୃତ—
9. Nullified; frustrated. ( ଉ—ଏଥିଥିଲେ
ଅପେକ୍ଷା ଶ୍ରାବଣେ ହୋଇ ଉତ୍ସୁକ ଉପାୟେ ମୁଁ ତାହା
କଲି ହତ ଯେ -ଭଞ୍ଜ ବୈଦେହୀଶବିଳାସ । )
୧୦ । ତୁଚ୍ଛ; ହେୟ—10. Despised. ୧୧ । ଗୁଣିତ—
11. Multiplied. ୧୨ । ଦଗ୍ଧ—12. Burnt
down. ୧୩ । ଅତୀତ—13. Past; gone. ୧୪ ।
ଆଶାରହିତ; ନିରାଶ—14 Desperate; hopeless.
୧୫ । ଅନ୍ତର୍ହିତ— 5 Disappeared ବି —୧ ।
(+ଭାବ କ୍ତ) ନୈରାଶ୍ୟ—1. Hopelessness;
desperation. ୨ । ହନନ—2. Slaughter;
killing; slaying. ୩ । ଗୁଣନ-3. Multiplying.
हत हत ଦେ. ବି. (ସଂ. ହତ୍ୟା)—ମରଣ; ମୃତ୍ୟୁ—Death.
(ଉ—ଶୁଣ ହେ ରାଜା ପରୀକ୍ଷିତ, ଅର୍ଜୁନଠାରୁ ଇନ୍ଦୁ ହତ।
ଜଗନ୍ନାଥ. ଭାଗବତ । )

ହତକ—ସ. ବିଣ. ପୁଂ (ହତ+କ) ୧ । ନଷ୍ଟପ୍ରାୟ—1. About to
Hataka be destroyed; all but ruined.
(ହତିକା—ସ୍ତ୍ରୀ) ୨। ଭୀରୁ; କାପୁରୁଷ—2. Coward;
timid. ୩ । ନୀଚ—3. Low; mean. ୪ ।
ହତଭାଗ୍ୟ—4. Unfortunate. ୫ । ଦୁର୍ଦ୍ଦଶାଗ୍ରସ୍ତ —
5. Miserable (M. W) ୬ । ମୃତ—6. Dead
ବି—୧ । ନୀଚଲୋକ ( ଶବ୍ଦକଳ୍ପଦ୍ରୁମ )—1. A
low or mean person. ୨ । ଭୀରୁ ବ୍ୟକ୍ତି—
2. A coward (Apte). ପ୍ରାଦେ (ଗଞ୍ଜାମ) ବି—
ଅପମାନ—Insult.

ହତ କଣ୍ଟକ—ସଂ ବିଣ. ପୁଂ ( ବହୁବ୍ରୀହି,ହତ+କଣ୍ଟକ )—ଯାହାର
Hata kantaka ଶତ୍ରୁ ବା କଣ୍ଟକ ବା ବାଧା ନଷ୍ଟ
(ହତ କଣ୍ଟକା—ସ୍ତ୍ରୀ ) ହୋଇଅଛି—Freed from foes or thorns or impedements (Apte).

ହତ କର—ଦେ. ବିଣ—ଘାତକ—Muderous. [ଉ—ହସ୍ତ ଶୀରିଷ
Hata kara ତୋ ଶରୀର, ମଧୁ କେଁଠରି ହତ କର—ଜଗନ୍ନାଥ
घातुक ଭାଗବତ] ବି. ପୁଂ—ଘାତକ ବ୍ୟକ୍ତି—Murderer.
मारनेवाला (ହତକରୀ—ସ୍ତ୍ରୀ)

ହତ କରିବା—ଦେ. କ୍ରି ( ସଂ ହନ୍ଧାତୁ )—୧ । ମାରି ପକାଇବା—
Hata karibā 1. To kill; to murder. ୨ । ପରାଜିତ
हतकरा କରିବା—2. To defeat. [ଉ—ଭୂମି ରଥୀ
हतकरना କରିବେ ଅରଜୁନ ସୁତ, ଅଚିରେ ହୋଇ ଚନ୍ଦ୍ରପ୍ରଭା କଲେ
ହତ—କୃଷ୍ଣସିଂହ ମହାଭାରତ ଉଦ୍ଯୋଗ । ] ୩ ।
( ଜ୍ଞାନ ) ଲୁପ୍ତ କରିବା; ବୁଡ଼ାଇବା—3. To cause
loss of (consciousness) ୪ । ହଜାଇବା—4.
To lose. [ଉ—ଦଶ ଶରରେ ବ୍ୟାକୁଳ ହୋଇ
ସୋମଦତ୍ତ, ରଥ ମଧ୍ୟେ ବସି ଚେତନା କଲେ ହତ—
କୃଷ୍ଣସିଂହ ମହାଭାରତ ଦ୍ରୋଣ । ]

ହତକର୍ମୀ—ସଂ. ବିଣ. ପୁଂ—( ବହୁବ୍ରୀହି ହତ+କର୍ମନ୍, ୧ମା, ୧ବ )
Hata karmā —ମନ୍ଦକର୍ମୀ; ହତଭାଗା—Unfortunate.

ହତ କିଲ୍ବିଷ—ସଂ. ବିଣ. ପୁଂ—(ବହୁବ୍ରୀହି; ହତ+କିଲ୍ବିଷ)—ପାପମୁକ୍ତ
Hata kilwisha  Freed from sins (M. W).
( ହତକିଲ୍ବିଷା—ସ୍ତ୍ରୀ )

ହତ ଚିତ୍ତ—ସଂ. ବିଣ ପୁଂ—୧ । ହତବୁଦ୍ଧି; କିଂକର୍ତ୍ତବ୍ୟବିମୂଢ଼—
Hata chitta  1. Dumb founded, bewildered;
( ହତଚିତ୍ତା—ସ୍ତ୍ରୀ )  confounded. ୨ । ହତ ଚେତନ
(ଦେଖ)—2. Hata chetana (See).

ହତ'ଚେତ—ଦେ. ବିଣ—(ସଂ. ହତଚେତନ)—ହତଚେତନ (ଦେଖ)
Hatacheta  Hata chetana (See)  [ଉ—ବାଳକଗଣ
ହତଚେତନ  ପାଦଧୂତ ହତଚେତ ଅଙ୍ଗିରଙ୍କ ସାଙ୍ଗ ବହୁ—ଭଞ୍ଜ
हतचेता  ବୈଦେହୀଶ ବିଳାସ]

ହତଚେତନ—ସଂ. ବିଣ. ପୁଂ—( ହତ+ଚେତନା; ବହୁବ୍ରୀହି; ହତ=
Hata chetana  ଲୁପ୍ତ ହୋଇଅଛି ଚେତନା ଯାହାର )—
( ହତଚେତନା - ସ୍ତ୍ରୀ )  ଲୁପ୍ତସଂଜ୍ଞ; ଚେତନା ଶୂନ୍ୟ; ମୂର୍ଚ୍ଛିତ—
Made unconscious; bereft of sense;
become senseless.

ହତଚେତା—ସଂ. ବିଣ (ହତ+ଚେତସ୍ ୧ମା. ୧ବ; ବହୁବ୍ରୀହି)—୧। ମୁଗ୍ଧ
Hata chetā  —1. Enchanted. ୨ । କିଂକର୍ତ୍ତବ୍ୟବିମୂଢ଼—
हतचेता  2. Bewildered. [ଉ—କଲେ ଉର୍ବଶୀ ହତଚେତା
लौजीन  —ଯାଦୁମଣି ରସକଲ୍ଲୋଳ ] ୩ । ଲୁପ୍ତସଂଜ୍ଞ —
3. Become senseless.

ହତଚ୍ଛାୟ—ସଂ. ବିଣ ପୁଂ—(ବହୁବ୍ରୀହି; ହତ+ଛାୟା+ଅ; ସନ୍ଧି ଯୋଗୁ
Hata chchhāya  ଛ ସ୍ଥାନରେ ଚ୍ଛ )—୧ । ସୌନ୍ଦର୍ଯ୍ୟ-
(ହତଚ୍ଛାୟା—ସ୍ତ୍ରୀ)  ବର୍ଜ୍ଜିତ—1. Bereft of beauty (M.W)
୨ । ଯାହାର ଉଜ୍ଜ୍ୱଳତା କମି ଯାଇଅଛି—2. Dimmed
in lustre (M. W).

ହତ ଜଳ୍ପିତ—ସଂ. ବି—(କର୍ମଧା)—ଅନାବଶ୍ୟକ ଗଳ୍ପ—
Hata jalpita  Useless talk (M. W).

ହତ ଜୀବନ(ଜୀବିତ)—ସଂ. ବିଣ. ପୁଂ (ବହୁବ୍ରୀହି, ହତ ହୋଇଅଛି ଜୀବନ
Hata jibana (jibit  ଯାହାର)—୧ । ଗତାସୁ; ମୃତ—
[ହତଜୀବନା, ହତଜୀବିତା-ସ୍ତ୍ରୀ. ବିଣ]  1. Dead. ୨ । ମାରିତ—
2. Killed.  ୩ । ନୈରାଶ୍ୟ ଜର୍ଜ୍ଜରିତ—3. Over
come with despair (M. W)
ସଂ ବି (କର୍ମଧା)—୧ । ଜୀବନ ସମ୍ବନ୍ଧେ ଅଶାନ୍ତ୍ୟାଗ—
1. Despair of life (M.W) ୨। ଦୁର୍ଦ୍ଦଶାଗ୍ରସ୍ତ ଜୀବନ
—2. Blighted or wrecked life (M. W)

ହତ ଜ୍ଞାନ—ସଂ ବିଣ ପୁ (ବହୁବ୍ରୀହି; ହତ ହୋଇଅଛି ଜ୍ଞାନ ଯାହାର) —
Hata jnāna  ହତଚେତନ (ଦେଖ)—1. Hata chetana
(ହତଜ୍ଞାନା—ସ୍ତ୍ରୀ)  (See) ୨ । ହତବୁଦ୍ଧି; କିଂକର୍ତ୍ତବ୍ୟବିମୂଢ଼—
2. Dumb founded; bewildered. ୩। ନିର୍ବୋଧ—
हतज्ञान अनादर 3. Stupid. ଦେ. ବି—ଅବଜ୍ଞା; ଅନାଦର—
Disregard.

ହତ ଜ୍ୟୋତିଃ—ସଂ. ବିଣ (ପୁଂ ଓ ସ୍ତ୍ରୀ) (ବହୁବ୍ରୀହି, ହତଜ୍ୟୋତିସ୍; ୧ମା.
Hata jyotih  ୧ବ)—୧ । ଯାହାର ଜ୍ୟୋତି ବା ଆଭା ଲୁପ୍ତ
ହୋଇଅଛି—1. Bereft of lustre.  ୨ । ଯାହାର
ଆଭା କମି ଯାଇଅଛି—2. Dimmed in lustre.

ହତଜ୍ୟୋତିର୍ନିଶିଥ—ସଂ. ବି (ବହୁବ୍ରୀହି ଓ କର୍ମଧା, ହତଜ୍ୟୋତିଃ+
Hatajyotirnisitha  ନିଶିଥ)—୧ । ଚନ୍ଦ୍ରବିହୀନ ଓ ନକ୍ଷତ୍ର-
ବିହୀନ ରାତ୍ରି—1. Moonless and starless night.
୨ । ନକ୍ଷତ୍ର ବିରହିତା ରଜନୀ—2. Starless night.
୩ । ଅନ୍ଧକାରମୟୀ ରାତ୍ରି—3. Dark night.

ହତତ୍ୱିଷ୍ (ଟ୍)—ସଂ ବିଣ. ପୁଂ ଓ ସ୍ତ୍ରୀ (ହତ+ତ୍ୱିଷ୍, ବହୁବ୍ରୀହି; ହତତ୍ୱିଟ
Hatatwish (t)  ୧ମା, ୧ବ)—ଶୋଭା ବା ଜ୍ୟୋତିର୍ବର୍ଜିତ—
Shorn of lustre (Apte).

ହତ ତାପ—ସଂ. ବିଣ ପୁଂ (ବହୁବ୍ରୀହି, ହତ+ତାପ)—୧ ।ତାପମୁକ୍ତ—
Hata tāpa  1. Freed from heat (M.W). ୨ । ଶୀତଳ
କୃତ—2. Cooled (M W).

ହତଣୀ—ପ୍ରାଦେ. (ଂଢ଼ଅଳ) (ଭୁଲ. ହି. ହଥନୀ)—ବି. ସ୍ତ୍ରୀ—ହାତୁଣୀ;
Hatani  ମାଈହାତୀ—A female elephant.

ହତ ତ୍ରାପ (ବ୍ରୀଡ଼)—ସଂ. ବିଣ. ପୁଂ (ହତ+ତ୍ରପା, ବ୍ରୀଡ଼ା; ବହୁବ୍ରୀହି)—
Hata trāpa (brīrda)  ନିର୍ଲଜ୍ଜ; ବେହିଆ—Shameless;
devoid of shame.
(ହତତ୍ରପା, ହତବ୍ରୀଡ଼ା—ସ୍ତ୍ରୀ)

ହତ ଦୈବ—ସଂ. ବିଣ. ପୁଂ (ବହୁବ୍ରୀହି; ହତ+ଦୈବ)—ହତଭାଗ୍ୟ;
Hata daiba  ଦୁର୍ଭାଗ୍ୟ; ଅଭାଗା—Ill-fated: luckless;
(ହତଦୈବା—ସ୍ତ୍ରୀ)  (Apte).

ହତ ଦ୍ୱିଷ୍—ସଂ. ବିଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି, ହତ+ଦ୍ୱିଷ୍)—ଯେ ଶତ୍ରୁ
Hata dwish  କୁ ହତ କରିଅଛି—One who has slain
his enemies (M. W.)

ହତ ଧୀ—ସଂ.ବିଣ.ପୁଂ ଓ ସ୍ତ୍ରୀ (ବହୁବ୍ରୀହି,ହତ+ଧୀ)—ହତଚିତ୍ତ (ଦେଖ)
Hata dhī  Hatachitta (See)

ହତ ଧ୍ୱାନ୍ତ—ସଂ. ବିଣ ପୁଂ (ବହୁବ୍ରୀହି)—ଅନ୍ଧକାର ମୁକ୍ତ—
Hata dhwanta  Freed from darkness (M.W)
(ହତଧ୍ୱାନ୍ତା—ସ୍ତ୍ରୀ)

ହତ ପତି(ପତିକା)—ସଂ. ବିଣ. ସ୍ତ୍ରୀ (ବହୁବ୍ରୀହି, ହତ+ପତି,+କ+ଆ)
Hata pati(patikā)  ଯେଉଁ ସ୍ତ୍ରୀଙ୍କ ସ୍ୱାମୀ ହତ ହୋଇଅଛନ୍ତି—
(a woman) Having her husband slain
(M. W)

ହତ ପାଟ—ଦେ. ବି (ପ୍ରାଚୀନ ଓଡ଼ିଆ)—ହୃତ ରାଜ୍ୟ (ମାଦଳାପାଞ୍ଜି)—
Hatapāta  Lost kingdom. ଦେ. ବିଣ—ହୃତରାଜ୍ୟ—
हृतराज्य हतराज्य  Bereft of one's sovereignty.

ହତ ପିତୃ (ପିତୃକ)—ସଂ. ବିଣ. ପୁଂ (ହତ+ପିତୃ+କ, ବହୁବ୍ରୀହି)—
Hata pitru(pitruka)  ଯାହାର ପିତା ହତ ବା ମୃତ ହୋଇ
ଅଛନ୍ତି—One whose father has been
(ହତପିତୃକା—ସ୍ତ୍ରୀ)  slain (M. W).
[ଦ୍ର—ଏହିପରି ହତମାତୃ, ହତମାତୃକ, ହତଭ୍ରାତୃ,
ହତଭ୍ରାତୃକ ଶବ୍ଦମାନ ହୁଏ ।]

**ହତପୁତ୍ର** (ତ୍ର)—ସଂ. ବଣ ପୁଂ—(ବହୁବ୍ରୀହି) —ଯାହାର ପୁତ୍ର ହତ ବା ମୃତ ହୋଇଅଛି—Having one's son killed; having lost one's son.
Hata puttra (tra)
(ହତପୁତ୍ରା (ତ୍ରା)—ସ୍ତ୍ରୀ)

**ହତପ୍ରଭ**—ସଂ. ବଣ ପୁଂ (ହତ+ପ୍ରଭା, ବହୁବ୍ରୀହି)—ପ୍ରଭାହୀନ; ଶ୍ରୀହୀନ—Bereft of lustre.
Hataprabha
(ହତପ୍ରଭା—ସ୍ତ୍ରୀ)

**ହତ ପ୍ରଭାବ** (ପ୍ରତାପ)—ସଂ. ବଣ ପୁଂ (ବହୁବ୍ରୀହି, ହତ+ପ୍ରଭାବ)—୧ । ଯାହାର ପ୍ରଭାବ ଲୁପ୍ତ ହୋଇଅଛି—1. Bereft of glory or dignity. ୨ । ଯାହାର ଅନ୍ୟ ଉପରେ କାର୍ଯ୍ୟକାରୀ ଶକ୍ତି ନଷ୍ଟ ହୋଇଅଛି—2. Shorn of one's influence
Hata prabhāba (pratāpa)
(ହତପ୍ରଭାବା, ହତପ୍ରତାପା—ସ୍ତ୍ରୀ)

**ହତପ୍ରାୟ**—ସଂ. ବଣ—୧ । ନଷ୍ଟପ୍ରାୟ—1. All but ruined. ୨ । ମୃତପ୍ରାୟ—2. All but dead. ୩ । ମୁମୂର୍ଷୁ—3. Dying; at the point of death. ୪ । ପ୍ରାୟ ହତ—4. Almost killed.
Hataprāya

**ହତ ବଳ**—ସଂ. ବଣ. ପୁଂ (ବହୁବ୍ରୀହି)—୧ । ଯାହାର ଶକ୍ତି ନଷ୍ଟ ହୋଇଅଛି—1. Having lost one's power ୨ । ଯାହାର ସୈନ୍ୟସମୂହ ହତ ହୋଇଅଛି—2. Having one's forces killed; shorn or deprived of one's army by slaughter
Hata bala
(ହତବଳା—ସ୍ତ୍ରୀ)

**ହତ ବିକ୍ରମ**—ସଂ ବଣ. ପୁଂ ( ବହୁବ୍ରୀହି; ହତ+ବିକ୍ରମ )—ଲୁପ୍ତ ବଳ; ବଳରହିତ; ପରାକ୍ରମରହିତ—Bereft of strength or prowess.
Hata bikrama
( ହତ ବିକ୍ରମା—ସ୍ତ୍ରୀ )

**ହତବିକ୍ରମୋଦ୍ୟମ**—ସଂ. ବଣ. ପୁଂ ( ଦ୍ଵନ୍ଦ୍ଵ, ବହୁବ୍ରୀହି, ହତ+ବିକ୍ରମୋଦ୍ୟମ)—ବଳ ଓ ଉଦ୍ୟମରହିତ—Bereft of strength and energy. (M. W).
Hatabikramodyama
ହତବିକ୍ରମୋଦ୍ୟମା }
ହତବିକ୍ରମୋଦ୍‌ଯୋଗା } ସ୍ତ୍ରୀ—
(ହତବିକ୍ରମୋଦ୍‌ଯୋଗ—ଅନ୍ୟରୂପ)

**ହତ ବିଧି**—ସଂ. ବଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି, ହତ+ବିଧି)—ଦୁର୍ଭାଗ୍ୟ; ଭାଗ୍ୟହୀନ—Ill-fated; ill-starred (M. W).
Hata bidhi

**ହତ ବିନୟ**—ସଂ. ବଣ. ପୁଂ (ବହୁବ୍ରୀହି; ହତ+ବିନୟ)—ଯାହାର ବିନୟ ଲୁପ୍ତ ହୋଇଅଛି—Lost to a sense of propriety; dead to a sense of politeness.
Hata binaya
(ହତବିନୟା—ସ୍ତ୍ରୀ)

**ହତ ବୀର୍ଯ୍ୟ**—ସଂ. ବଣ. ପୁଂ (ବହୁବ୍ରୀହି; ହତ+ବୀର୍ଯ୍ୟ)—ଶକ୍ତିହୀନ—Impotent.
Hata birjya (ହତବୀର୍ଯ୍ୟା—ସ୍ତ୍ରୀ)

**ହତ ବୁଦ୍ଧି**—ସଂ. ବଣ. ପୁଂ ଓ ସ୍ତ୍ରୀ (ବହୁବ୍ରୀହି)—୧। କିଂକର୍ତ୍ତବ୍ୟବିମୂଢ଼—1. Bewildered. ୨ । ନିର୍ବୋଧ—2. Foolish; silly. ୩ । ମୂର୍ଖ—3. Stupid; ignorant. ୪ । ଯାହାର ପୂର୍ବେ ବୁଦ୍ଧି ଥିଲା, କିନ୍ତୁ ବର୍ତ୍ତମାନ ବୁଦ୍ଧିଲୋପ ଘଟିଅଛି—4 Recently shorn of one's intelligence.
Hata buddhi

**ହତ ବୃତ୍ତ**—ସଂ. ବଣ (ହତ+ବୃତ୍ତ; ବହୁବ୍ରୀହି)—ଛନ୍ଦୋହୀନ—Defective in metre (M. W).
Hata brutta

**ହତ ବେଗ**—ସଂ. ବଣ ପୁଂ ( ହତ+ବେଗ, ବହୁବ୍ରୀହି ) ଯାହାର ବେଗ ପ୍ରତିହତ ହୋଇଅଛି—Whose impetusority force has been impeded (M. W)
Hata bega
(ହତବେଗା—ସ୍ତ୍ରୀ)

**ହତଭମ୍ବ**(ମ୍ବ, ସ୍ବ) —ଦେ. ବଣ (ସଂ. ହତ ପ୍ରଭବ)—କିଂକର୍ତ୍ତବ୍ୟବିମୂଢ଼—Bewildered.
Hatabhamba(nwa, swa)
হতভম্ব हतबुद्धि

**ହତଭାଗ**—ସଂ. ବଣ. ପୁଂ [ବହୁବ୍ରୀହି; ହତ+ଭାଗ] - ହତଭାଗ୍ୟ,ଅଭାଗା-Unfortunate; unlucky (Apte).
Hatabhāga
(ହତଭାଗା—ସ୍ତ୍ରୀ)

**ହତଭାଗା**—ଦେ. ବଣ. ପୁଂ (ସଂ. ହତଭାଗ୍ୟ)—ହତଭାଗ୍ୟ ( ଦେଖ )—Hata bhāgya (See)
Hatabhāgā
হতভাগা हतभागा
ସଂ. ବଣ. ସ୍ତ୍ରୀ—ହତଭାଗର ସ୍ତ୍ରୀଲିଙ୍ଗ—Feminine of Hatabhaga.
( ହତଭାଗିନୀ—ସ୍ତ୍ରୀ )

**ହତଭାଗୀ**—ଦେ. ବଣ. ପୁଂ ଓ ସ୍ତ୍ରୀ (ସଂ ହତଭାଗ୍ୟ)—ଅଭାଗା; ହତଭାଗ୍ୟ ହୀନକପାଳିଆ—Unfortunate, unlucky.
Hatabhāgi
হতভাগা हतभागी

**ହତ ଭାଗ୍ୟ**—ସଂ. ବଣ. ପୁଂ ( ବହୁବ୍ରୀହି; ହତ+ଭାଗ୍ୟ )—ଭାଗ୍ୟହୀନ; ଯାହାର ଭାଗ୍ୟ ମନ୍ଦ; ମନ୍ଦଭାଗ୍ୟ; ଅଭାଗା—Unfortunate; ill-fated; unlucky.
Hata bhāgya
[ହତଭାଗ୍ୟା—ସ୍ତ୍ରୀ]
ବି ( କର୍ମଧା)—ମନ୍ଦଭାଗ୍ୟ; ଦୁରଦୃଷ୍ଟ—Bad luck; misfortune.

**ହତମାନ**—ସଂ. ବଣ. ପୁଂ ( ବହୁବ୍ରୀହି )—୧ । ଯାହାର ସମ୍ମାନ ନଷ୍ଟ ହୋଇଅଛି; ଅସମ୍ମାନିତ—1. Dishonoured. ୨ । ଅବମାନିତ—2. Disregarded; treated with disrespect. ( ଉ—କପୂତ ହସ୍ତେ ଅବା ବି ହତମାନ—ନଦନଶୋରି କର୍ଣ୍ଣଧରଣୀ । ) ୩ । ଗର୍ବହୀନ; ଗର୍ବଶୂନ୍ୟ—3. Free from pride or arrogance (M W).
Hata māna
( ହତମାନା—ସ୍ତ୍ରୀ )

**ହତ ମାନସ**—ସଂ. ବଣ. ପୁଂ [ ବହୁବ୍ରୀହି; ହତ+ମାନସ ]—ହତଚିତ୍ତ [ଦେଖ]—Hatachitta (See) [M.W ].
Hata mānasa
[ହତମାନସା—ସ୍ତ୍ରୀ]

**ହତ ମାନ୍ୟ**—ଦେ. ବଣ.ପୁଂ ଓ ସ୍ତ୍ରୀ (ସଂ.ହତମାନ)—୧ । ଅବମାନିତ—1. Dishonoured. ୨ । ଅପମାନ ପ୍ରାପ୍ତ—2. Slighted.
Hata mānya
অপমানিত अपमानित
ବି—ଅପମାନ—Dishonour; disrespect.
অপমান अपमान

**ହତ ମୂର୍ଖ**—ସଂ. ବଣ—ଅତି ମୂର୍ଖ; ଗଜ ମୂର୍ଖ Very illiterate; ବି. ପୁଂ—ଗଜ ମୂର୍ଖ ବ୍ୟକ୍ତି—A dolt; a blockhead (Apte).
Hata mūrkha
(ହତ ମୂର୍ଖା—ସ୍ତ୍ରୀ)

**ହତମ୍ଭମ୍ବ**(ମ୍ବ, ସ୍ବ)—ଦେ. ବଣ. (ସଂ. ହତ ପ୍ରବନ୍ଧ ବା ହତ ପ୍ରଭାବ;—ହତ ବୁଦ୍ଧି; କିଂକର୍ତ୍ତବ୍ୟ-
Hatambhamba(nwa, swa)

ହତଭମ୍ବ हतबुद्धि କମୁଢ଼—Bewildered. ଦ୍ର—ଏହାର ମୂଳ ସଂସ୍କୃତ ଶବ୍ଦ ମିଳୁ ନାହିଁ; ଆଧୁନିକ ବର୍ଣ୍ଣୀୟ ଲେଖକମାନେ ବହୁଶଃ ଏ ଶେମାନ ଓ ହତଭମ୍ବ ଅବ ଶବ୍ଦ ବ୍ୟବହାର କରୁଅଛନ୍ତି ଓ ତାଙ୍କ ଦେଖାଦେଖି ଓଡ଼ିଆ ସାହିତ୍ୟରେ ଏ ଶବ୍ଦମାନ ଚଳନ୍ତି।]

ହତ ଯୁଦ୍ଧ—ସଂ.ବିଣ. ପୁଂ—(ବହୁବ୍ରୀହି; ହତ+ଯୁଦ୍ଧ)—ଯୁଦ୍ଧ କରିବାର Hata juddha ପ୍ରବୃତ୍ତି ରହିତ—Destitute of martial (ହତଯୁଦ୍ଧା—ସ୍ତ୍ରୀ) spirit

ହତ ରଥ—ସଂ. ବି—(କର୍ମଧା)—ଯେଉଁ ରଥର ସାରଥି ଓ ରଥବାହୀ Hatartha ଅଶ୍ୱାଦି ହତ ହୋଇ ଅଛନ୍ତି—A chariot of which the horses and the charioteer are slain (Apte)

ହତ ଲକ୍ଷଣ—ସଂ.ବିଣ. ପୁଂ (ବହୁବ୍ରୀହି; ହତ+ଲକ୍ଷଣ)—
Hata lakshana ୧। ସୁଲକ୍ଷଣ ବର୍ଜିତ—1 Devoid (ହତଲକ୍ଷଣା—ସ୍ତ୍ରୀ) of auspicious marks (Apte)
୨। ହତଭାଗ୍ୟ—2. Ill fated (Apte)

ହତଲକ୍ଷ୍ମା—ଦେ. ବିଣ ପୁଂ (ସଂ. ହତଲକ୍ଷ୍ମୀକ)—୧। ହତଲକ୍ଷ୍ମୀକ—
Hatalakshmā (ଦେଖ)—Hatalakshmika (See)
हतलक्ष्मी हतलक्ष्मा ୨। ହତଭାଗ୍ୟ (ଦେଖ)—
2 Hatabhāgya (See)

ହତଲକ୍ଷ୍ମୀକ—ସଂ. ବିଣ. ପୁଂ (ହତ+ଲକ୍ଷ୍ମୀ+କ)—ହତଶ୍ରୀ (ଦେଖ)—
Hatalakshmika Hatasri (See)
(ହତଲକ୍ଷ୍ମୀକା—ସ୍ତ୍ରୀ)

ହତ ଶକ୍ତି—ସଂ. ବିଣ ପୁଂ ଓ ସ୍ତ୍ରୀ—(ବହୁବ୍ରୀହି; ହତ+ଶକ୍ତି)—ଯାହାର Hataśakti ଶକ୍ତି ବା କ୍ଷମତା ନଷ୍ଟ ହୋଇଅଛି—Shorn of one's petency

ହତଶା—ଦେ. ବି—ହତ୍ଶା (ଦେଖ)—
Hataśā हातल हाथरा Hat-sā (See)

ହତଶିରୀ—ଦେ. ବିଣ (ସଂ. ହତଶ୍ରୀ)—୧। ହତଶ୍ରୀ (ଦେଖ)—
Hata siri 1. Hatasri (See) [ଉ—ସକଳ ବଦନେ
हतश्री ହତଶିରି, ଚଳ ଅଚଳ ବନଗିରି—ଜଗନ୍ନାଥ- ଭାଗବତ]
हतसीरा ୨। ଲକ୍ଷ୍ମୀହୀନ—2. Shorn of prosperity.
[ଉ—ଝଗଡ଼ା ଏକଲା ନାଶକାରୀ, ଘାଇଁ ଲାଇ ଏବ ଶକ୍ତ କରେ ହତଶିରୀ: ଲେ କୋଇଲି—ବାଲକୃଷ୍ଣ· ଅକାଲ କୋଇଲି] ୩। ଅତି ଅସୁନ୍ଦର; କୁତ୍ସିତ—3. Ugly. [ଉ—ହତଶିରୀ ଘରକୁ ସଇଁଅଁ କୁଣିଆ କି ଯୋଗେ ମିଳିଲେ ଅସି—ଇଗ]
୧। ଲକ୍ଷ୍ମୀହୀନତା, ଦାରିଦ୍ର୍ୟ—1. Poverty
୨। ଶୋଭାହୀନତା—2. Gracelessness; ugliness. [ଉ—ଦଣ୍ଡବେଶିର, ଦଣ୍ଡକେ ହତଶିରୀ—ଇଗ]

ହତଶିଷ୍ଟ—ସଂ. ବିଣ. ପୁଂ—(ହତ+ଶିଷ୍ଟ ୫ମୀ ତତ୍)—ହତବ୍ୟକ୍ତି-
Hataśishta ମାନଙ୍କ ଭିତରୁ ବଞ୍ଚିଥିବା ରହିଥିବା—Left or remaining out of the slain; left
(ହତାବଶିଷ୍ଟ—ଅନ୍ୟରୂପ) surviving (M.W)

ହତଶିଷ୍ଟ ଜନ—ସଂ.ବି.ପୁଂ ଓ ସ୍ତ୍ରୀ—ଆହତମାନଙ୍କ ମଧ୍ୟରୁ ଜୀଅନ୍ତା ରହିଥିବା
Hatasista jana ବ୍ୟକ୍ତି—A survivor of the slain. (M.W

ହତଶେଷ—ସଂ. ବିଣ ପୁଂ (୫ମୀ ବା ୬ଷ୍ଠୀ ତତ୍, ହତ+ଶେଷ)—
Hataśesh ହତଶିଷ୍ଟ (ଦେଖ)—Hataśishta (See)
(ହତଶେଷା—ସ୍ତ୍ରୀ) (M.W.)

ହତଶ୍ୱାସ—ସଂ. ବିଣ ପୁଂ (ବହୁବ୍ରୀହି)—୧। ରୁଦ୍ଧଶ୍ୱାସ; ବେଦମ୍; ଯାହାର
Hata śwāsa ଶ୍ୱାସ ରୁଦ୍ଧ ହୋଇଅଛି—Out of breath;
(ହତଶ୍ୱାସ—ସ୍ତ୍ରୀ) breathless.

ହତଶ୍ରଦ୍ଧ—ସଂ. ବିଣ ପୁଂ (ବହୁବ୍ରୀହି; ହତ+ଶ୍ରଦ୍ଧା+ଅ)—ଶ୍ରଦ୍ଧାହୀନ;
Hataśraddha ଯାହାର ମନରୁ ଅନ୍ୟବ୍ୟକ୍ତି ବା ବିଷୟ ପ୍ରତି ପୋଷିତ ଶ୍ରଦ୍ଧା ଲୁପ୍ତ ହୋଇଅଛି—Having lost one's affection or attachment to anything
(ହତଶ୍ରଦ୍ଧା—ସ୍ତ୍ରୀ) or person,

ହତଶ୍ରଦ୍ଧା—ସଂ ବି (କର୍ମଧା)—ଅନାଦର; ଅବଜ୍ଞା; ଅସମ୍ମାନ—Disres-
Hataśradhā pect; dishonour; disregard.
ସଂ. ବିଣ. ସ୍ତ୍ରୀ—ହତଶ୍ରଦ୍ଧର ସ୍ତ୍ରୀ ଲିଙ୍ଗ—Feminine of Hataśraddha.

ହତଶ୍ରୀ—ସଂ. ବିଣ. ପୁଂ ଓ ସ୍ତ୍ରୀ (ହତ+ଶ୍ରୀ; ବହୁବ୍ରୀହି)—୧। ନଷ୍ଟଶ୍ରୀ;
Hataśri ଶ୍ରୀହୀନ; ଶୋଭାହୀନ—1. Bereft of grace. ୨। ଅତି ଅସୁନ୍ଦର—2. Very ugly. ୩। ଲକ୍ଷ୍ମୀହୀନ; ଅତି ଗରିବ—3. Very poor; bereft of riches; indigent. ୪। ଯେ ଲକ୍ଷ୍ମୀବନ୍ତ ଥିଲା, ବର୍ତ୍ତମାନ ଲକ୍ଷ୍ମୀହୀନ ହୋଇଅଛି—4. Reduced to penury.

ହତଶ୍ରୀକ—ସଂ. ବିଣ. ପୁଂ (ବହୁବ୍ରୀହି; ହତ+ଶ୍ରୀ+କ)—ହତଶ୍ରୀ (ଦେଖ)
Hataśrika Hata śri (See)
[ ହତଶ୍ରୀକା—ସ୍ତ୍ରୀ ]

ହତସଂଜ୍ଞ—ସଂ. ବିଣ ପୁଂ ( ହତ+ସଂଜ୍ଞା; ବହୁବ୍ରୀହି )—ହତଚେତନ
Hatosamjnya (ଦେଖ)—Hata chetana (See)
[ ହତସଂଜ୍ଞା—ସ୍ତ୍ରୀ ]

ହତ ସମ୍ପଦ—ସଂ. ବିଣ, ପୁଂ (ବହୁବ୍ରୀହି; ହତ+ସମ୍ପଦ୍+ଅ)—ହତଶ୍ରୀ
Hata sampada (ଦେଖ) (M. W)—Hataśri (See)
[ହତସମ୍ପଦା—ସ୍ତ୍ରୀ]

ହତ ସମ୍ପଦ—ସଂ. ବିଣ. ପୁଂ (ବହୁବ୍ରୀହି; ହତ+ସମ୍ପଦ)—ଯାହାର ଆନନ୍ଦ
Hata sampada . ଧ୍ୱସ୍ତ ହୋଇଅଛି—Whose pleasures
[ହତସମ୍ପଦା—ସ୍ତ୍ରୀ] are destroyed or marred (M. W).

ହତ ସର୍ବଯୋଧ—ସଂ. ବିଣ. ପୁଂ (ବହୁବ୍ରୀହି; ହତ+ସର୍ବଯୋଧ)—
Hata sarbajodha ଯାହାଙ୍କର ସବୁ ଯୋଦ୍ଧାମାନେ ହତ ହୋଇଅଛନ୍ତି—Having all the warriors slain (M. W)

ହତ ସର୍ବସ୍ୱ—ସଂ. ବିଣ. ପୁଂ (ବହୁବ୍ରୀହି)—ଯାହାର ସର୍ବସ୍ୱ ନଷ୍ଟ ହୋଇ
Hata sarbaswa ଅଛି—Having all the property
[ହତସର୍ବସ୍ୱା—ସ୍ତ୍ରୀ] ruined or gone; shorn or bereft of all possessions.

ହତଶା—ଦେ. ବି—ହତ୍‌ଶା (ଦେଖ)
Hatasā Hat-sā (See)

ହତ ସାଧ୍ୱସ—ସଂ ବିଣ. ପୁଂ (ବହୁବ୍ରୀହି; ହତ+ସାଧ୍ୱସ)—ଭୟମୁକ୍ତ—
Hata sādhwasa Freed from fear (M. W).
[ହତସାଧ୍ୱସା—ସ୍ତ୍ରୀ]

ହତ ସାରଥି (ସୂତ)—ଯେଉଁ ଯୋଦ୍ଧା । ର ରଥର ସାରଥି ଯୁଦ୍ଧରେ ହତ
Hata sārathi (sūta) ହୋଇଅଛି—Having one's charioteer slain in battle.

ହତସ୍ତ୍ରୀକ—ସଂ. ବିଣ. ପୁଂ (ବହୁବ୍ରୀହି; ହତ+ସ୍ତ୍ରୀ+କ)—ନାରୀଘାତକ;
Hatastrīka ସ୍ତ୍ରୀହତ୍ୟାକାରୀ—One who has murdered a woman or one's wife (M. W).

ହତସ୍ୱ—ଦେ· ବିଣ (ସଂ. ହତ ସର୍ବସ୍ୱ)—ହତ ସର୍ବସ୍ୱ (ଦେଖ)
Hataswa Hata sarbaswa (See)
हतसर्वस्व हतस्व

ହତ ସ୍ୱର—ସଂ. ବିଣ. ପୁଂ [ବହୁବ୍ରୀହି; ହତ+ସ୍ୱର]—ଯାହାର ଗଳା ଧରି
Hata swara ଯାଇଅଛି—One who has lost his
[ହତସ୍ୱରା—ସ୍ତ୍ରୀ] voice; hoarse (M. W)

ହତସ୍ୱସୃ—ସଂ. ବିଣ [ବହୁବ୍ରୀହି; ହତ+ସ୍ୱସୃ]—ଯାହାର ଭଉଣୀ ନିହତା
Hata swasṛu ହୋଇଥିଲା—One who has his sister slain (M. W.)

ହତସ୍ୱାମିକ—ସଂ. ବିଣ. ପୁଂ [ବହୁବ୍ରୀହି; ହତ+ସ୍ୱାମିନ୍+କ; ହତ+
Hataswāmika ସ୍ୱାମିନ୍]—ଯାହାର ପ୍ରଭୁ ହତ ହୋଇଅଛି—
[ହତସ୍ୱାମିକା—ସ୍ତ୍ରୀ] Having lost the master.

ହତ ସ୍ୱାମିକା—ସଂ. ବିଣ. ସ୍ତ୍ରୀ—୧ । ଯାହାର ଭର୍ତ୍ତା ହତ ହୋଇଅଛି—
Hata swāmikā 1. Having her husband slain.
୨ । ବିଧବା—2. Widow. ୩। ହତସ୍ୱାମିକର ସ୍ତ୍ରୀଲିଙ୍ଗ—
3. Feminine of Hata swāmika.

ହତ ସ୍ମର—ସଂ. ବି (ବହୁବ୍ରୀହି; ହତ ହୋଇଥିଲା ସ୍ମର=ମଦନ ଯାହାଙ୍କ
Hata smara ଦ୍ୱାରା)—ମହାଦେବ; ଶିବ—Śiba; the slayer of Cupid.

ହତ ହୃଦୟ—ସଂ. ବି (କର୍ମଧା)—ନୈରାଶ୍ୟଦୁଷ୍ଟ ମନ—Broken
Hata hṛudaya heart (M. W). ସଂ. ବିଣ. ପୁଂ—ନୈରାଶ୍ୟ-
[ହତହୃଦୟା—ସ୍ତ୍ରୀ. ବିଣ] ପୂର୍ଣ୍ଣ; ନିରାଶ—Broken hearted; desperate.

ହତା—ଦେ. ବି [ସଂ. ହସ୍ତକ]—୧ । [ହାତର ପାପୁଲିପରି ଆକାର ବିଶିଷ୍ଟ ଥିବାରୁ]—କାଠଚଟୁ—1. A big wooden
Hatā
हाता, करछुलि spoon. ୨ । ଡଙ୍କୀ; ଚଟୁ—2. Ladle. ୩ ।
धनुरमुठो ଧନୁର ମୁଠା; ଧନୁର ଯେଉଁ ଅଂଶକୁ ମୁଠାଇ ଧରନ୍ତି
मुठा ତାହା—3. Handle of a bow; the part of a bow which is held with the fisted palm.
୪ । ଧନୁର ଦୁଇକୋଣ; ଧନୁର ମଧ୍ୟସ୍ଥଳରୁ ଦୁଇ ବଗଲକୁ ବାହାରିଥିବା ବକ୍ର ଅଂଶ—4. The arms of bow.
[ଭି—କୃପଙ୍କ ଧନୁହତା ଦୁହିଙ୍କି ବେଳେ ଛେଦ—ଶାରଳା.
ମହାଭାରତ] ୫ । କରତଳ ବା ଅଞ୍ଜଳି ଦ୍ୱାରା ଏଥରକେ
अँजला ଥରକେ ଯେତେ ପଦାର୍ଥ (ଯଥା—ଅନ୍ନ, ଛଅଣ)
अंजुल ସମ୍ଭାଏ—5. A handful (of any thing) ୬ ।
ଅଞ୍ଜୁଳି—6. Joined palms of the two hands.
हातल ୭। ହାତଦ୍ୱାରା ସୁବିଧା ମତେ ଧରି ହୋଇ ନ ପାରିବା ବସ୍ତୁକୁ
हत्था ହାତରେ ଧରିବାପାଇଁ ଯେଉଁ ବେଣ୍ଟ ବା ମୁଠିଆ ଲଗା
ଯାଇଥାଏ—7. The handle attached to any cumbrous or inconvenient thing. ୮ । (ଅ.
ହତ୍ତା) କୌଣସି ଘରର ଚାରିପାଖେ ବେଢ଼ିଥିବା ସ୍ଥଳଟ୍ଟ ବା
ବେଷ୍ଟିତ ସ୍ଥାନ—8. A compound or enclosed
space surrounding a house. ୯ । ଘରବାଡ଼ି;
हाता ବାସ୍ତୁ—9. Homestead, a house and its
हत्ता, आहता precincts. ୧୦ । ଘର ଓ ତତ୍‌ସଲଗ୍ନ ଭୂମିର ଚାରି
ପାଖେ ଘେରିଥିବା ପାଚିରି—10. Compound wall.
हाता प्रान्त ୧୧ । ରାଜକୀୟ ପ୍ରଦେଶ ବା ଶାସନ ବିଭାଗର ସୀମା
—(ଯଥା, ବଙ୍ଗଳା ହତା)—11. The jurisdiction or limit of an administrative
Province. ୧୧ । କୌଣସି ପ୍ରଦେଶ—11 Any
Province. ସଂ. ବିଣ—ସ୍ତ୍ରୀ—(ହତ+ଆ)—
୧ । ହତର ସ୍ତ୍ରୀଲିଙ୍ଗ—1. Feminine of Hata.
୨ । ବ୍ୟଭିଚାରିଣୀ (ହ. ଷ)—2. Adulterous
(woman). ଦେ· ବିଣ (ସଂ. ହସ୍ତ)—୧। ଏକ
କରତଳ ବା ଅଞ୍ଜୁଳି ପରିମିତ—1. A handful
अँजला or palmful of (anything). ୨ । (ଅନ୍ୟ
अंजुल ଶବ୍ଦ ସଙ୍ଗେ ଯୁକ୍ତ ହୁଏ, ଯଥା—ଠାଣହତା, ବଳିହତା) ହସ୍ତ
हस्ता हत्था ବିଶିଷ୍ଟ—2. (used as compound after other words)—handed. ୩। (ଅନ୍ୟ ସଂଖ୍ୟାବାଚକ
(ହତା, ହତେଇ—ସ୍ତ୍ରୀ) ଶବ୍ଦ ସଙ୍ଗେ ଯୁକ୍ତ) ଏତେ ହାତ ଲମ୍ବବିଶିଷ୍ଟ
हात हत्था (ଯଥା—ପଞ୍ଚହତା ମର୍ଦ୍ଦ)—3. Long by (so
many) cubits. ପ୍ରାଦେ (ଖଡ଼ଅଲ) ବି—କ୍ଷେତର
କିଆରୀମାନଙ୍କୁ ପାଣିଯିବା ରାସ୍ତା—water channel or
passage for taking water to the fields (for irrigation puposes)

ହତା(ତେ)ଇବା—ଦେ. କ୍ରି—ହାତଦ୍ୱାରା କୌଣସି ବସ୍ତୁକୁ ଧରିବା—
Hatā(te)ibā To handle anything.
हाताना हथोराना

ହତା ଉଠା(ଠେ)ଇବା (ବୁଲା[ଲେ]ଇବା)—ଦେ. କ୍ରି—ଗୃହ ଓ ତତ୍
Hatā uṭhā(ṭhe)ibā (bulā[le]ibā) ସଂଲଗ୍ନ ଜମିର
(ହତା ଘେରା [ରେ] ଇବା—ଅନ୍ୟରୂପ) ଚାରିଆଡ଼େ ପରଛିତ
पाँचीर घेवान ଘେରାଇବା—To raise a compound
हत्ता उठाना wall round a house and its grounds.

ହତାଏ—ଦେ. ବିଣ—୧ । ଏକହତା ବା କରତୁଳି ପରିମିତ—1. One
Hatāe ladleful of (anything) ୨ । ଏକ ଅଞ୍ଜୁଳା

(ହତାଏକ—ଅନ୍ୟରୂପ) ପରମିତ—2 One double handful of (anything) ୩। ଏକ କରତଳ ପରିମିତ—3. One handful of. [ଭି—ତାହାଣ ଯାଏରୁ ଭତ ହତାଏକ ଖାଇ, ବାମ କରେ ପିଠା ହାଃ ହାତ ଯେ ସେପରି—ସାରଳା. ମହାଭାରତ ଆଦିପର୍ବ ।]
एकहाता
एकलप

ହତାଦର—ସଂ. ବିଣ—(ହତ+ଆଦର; ବହୁବ୍ରୀହି)—୧ । ଅବଜ୍ଞାତ; ଅପମାନିତ; ଅନାଦୃତ; ଉପେକ୍ଷିତ—1. Dishonoured; slighted; insulted. [ଭି—ହତାଦର ନୋହୁ ଦେଶ ତଳ, ହାତବାନ୍ଧି ନ ବସନ୍ତୁ ଶିଳପି ସମାଜ—ବାଳକୃଷ୍ଣ ଅକାଳ କୋଇଲି ।] ସଂ.ବି. (କର୍ମଧା)—୧ । ଆଦରର ଅଭାବ—1. Want of respect. ୨। ଅସମ୍ମାନ ଅନାଦର—2. Disregard. ୩। ଅବଜ୍ଞାଚିହ୍ନ—3. Slight. ୪। ଅପମାନ—4. Dishonour; insult. ଦେ. ବି—ଅଯତ୍ନ—Want of care. [ଭି—ପିଲଟା ମାମୁଁ ଘରେ ଭାରି ହତାଦର ପାଇଲା—ଫକୀରମୋହନ ।]
Hatādara
हतादर

ହତାଧ୍ୱର—ସଂ. ବି. ପୁଂ—(ବହୁବ୍ରୀହି; ହତ=ନଷ୍ଟ ହୋଇଅଛି ଅଧ୍ୱର=(ଦକ୍ଷ) ଯଜ୍ଞ ଯାହାଙ୍କଦ୍ୱାରା)—(ଦକ୍ଷଯଜ୍ଞ ବିନାଶକ) ମହାଦେବ; ଶିବ—Śiba (the destroyer of Daksha's sacrifice)
Hatādhwara

ହତା ପର୍‌ଛିଟ୍(ଟି) [ପାଛି(ଚେ)ରି]—ଦେ. ବି—ଘରର ଚତୁଃପାଖେ ବୁଲିଥିବା ଅଳ୍ପ ଉଚ୍ଚ କାନ୍ଥ—Compound wall or parapet.
Hatā parchhit(ti) pāchi(che)ri
हाता चारिदिकेर देवाल
हत्ता की चारदेवाली

ହତାପାର (ରି)—ଦେ. ବି—୧ । ଗୃହର ସୀମାରୁ ବାହାର ଯିବା—1. Going out of the limits of a house and its grounds ୨ । ହତା ବାହାର ଦେଖ—2 Hatā bāhāra (See) ବିଣ —ହତା ବାହାର ଦେଖ—Hatā bāhāra (See)
Hatā pār(ri)
হতাপার
हत्तापार

ହତା ବାହାର—ଦେ.ବି—ଗୃହର ଓ ବାଡ଼ିର ଚତୁଃସୀମାରୁ ବହିଷ୍କରଣ—Driving away a person from the precincts of a house. ବିଣ—ଗୃହର ଚତୁଃସୀମାରୁ ବହିଷ୍କୃତ—Driven away from a house and its precincts
Hatā bāhār
হাতাববাহিব
हता बाहार

ହତା ବୁଲା(ଲେ)ଇବା—ଦେ. କ୍ରି—ହତା ଉଠାଇବା (ଦେଖ)
Hatā bulā(le)ibā Hatā uthāibā (See)

ହତାଭ—ସଂ. ବିଣ. ପୁଂ (ହତ+ଆଭା; ବହୁବ୍ରୀହି, ହତ ହୋଇଅଛି ଆଭା ଯାହାର)—ହତପ୍ରଭ (ଦେଖ)—Hata prabha (See)
Hatābha
[ହତାଭା—ସ୍ତ୍ରୀ]

ହତା ମଡ଼ା(ଡ଼େ)ଇବା—ଦେ କ୍ରି—୧ । କୌଣସି ବ୍ୟକ୍ତିକୁ ଗୃହର ହତା ମଧ୍ୟକୁ ବା ସୀମା ମଧ୍ୟକୁ ଆସିବାକୁ ଅନୁମତି ଦେବା—1. To let a person enter the precincts or premises of a house. ୨ । ସଂଲଗ୍ନ ଜମିକୁ ଅଧିକାର କରି ହତାକୁ ବଢ଼ାଇବା ବା ଅଧିକାର କରିବା—2. To erect a compound wall so as to encroach on or occupy the adjoining land.
Hatā mardā(rde)ibā
হাতায় আসিতে দেওয়া
हता भितर आनेदेना

ହତା ମନା—ଦେ. ବି—ଘରର ଚତୁଃସୀମାକୁ ଆସିବାକୁ କୌଣସି ବ୍ୟକ୍ତିଙ୍କୁ ଦିଆଯିବା ନିଷେଧ—Ordering a person not to enter the precincts and premises of a house.
Hatā manā
হতা মানা
हत्ता माना

ହତା ମାଡ଼ିବା—ଦେ. କ୍ରି—କୌଣସି ବ୍ୟକ୍ତିଙ୍କ ଗୃହର ଚତୁଃସୀମାରେ ପଦକ୍ଷେପଣ କରିବା—To step into the precincts of the house of a person.
Hatā mārdibā
হাতায় পাদেওয়া
हत्तामें आना

ହତାମ୍ଭମ୍ବ[ନ୍ୱ,ଶ୍ୱ]—ଦେ. ବିଣ—ହତାଭମ୍ବ (ଦେଖ)
Hatāmbhamba(nwa,śwa) Hatabhamba (See)

ହତାର—ପ୍ରାଦେ (ସିଂହଭୂମି) ବି—ଅଥାର (ଦେଖ)
Hatāra Athāra (See)

ହତାଳ—ପ୍ରାଦେ (ଗଡ଼ଜାତ) ବିଣ—ଏକ ହାତରେ ଯେତେ ପରିମାଣରେ ଧରି ହୁଏ—A handful or palmful of. ବି—ଏକ ହାତର କରତଳରେ ଧରି ହେବା ବସ୍ତୁର ପରିମାଣ—A handful.
Hatālā

ହତାଶ—ସଂ. ବିଣ. ପୁଂ (ହତ+ଆଶା+ଅ; ବହୁବ୍ରୀହି; ହତ=ଲୁପ୍ତ ହୋଇଅଛି ଆଶା ଯାହାର)—୧ । ନିରାଶ—1. Hopeless. ୨ । ଯାହାର ଆଶା ନଷ୍ଟ ହୋଇଅଛି—2. Having one's hopes blighted, desperate. ୩ । ଭଗ୍ନହୃଦୟ—3. Disappointed. ୪ । ନିଷ୍ଫଳ—4. Fruitless. ୫ । ବନ୍ଧ୍ୟ (ଶବ୍ଦ ରତ୍ନାବଳୀ)—5. Barren. ୬ । ଅବସନ୍ନ—6. Pulled down; dejected. ୭ । ପିଶୁନ; ନିଷ୍ଠୁର; ନିର୍ଦ୍ଦୟ (ମେଦିନୀ)—7. Cruel; merciless. ୮ । ଦୁଷ୍ଟ—8. Wicked. ୯ । ଦୁର୍ବଳ—9. Weak.
Hatāsa
[ହତାଶା—ସ୍ତ୍ରୀ]

ହତାଶିଆ[ୟା]—ଦେ. ବିଣ. ପୁଂ ଓ ସ୍ତ୍ରୀ (ସଂ. ହତାଶ)—ହତାଶ; ଯାହାର ଆଶା ନଷ୍ଟ ହୋଇଅଛି—Desperate; disappointed.
Hatāsiā[yā]
হতাশ
हतासिया

ହତାଶିବା—ପ୍ରାଦେ. (ଗଡ଼ଜାତ) କ୍ରି—ହତାଶ କରିବା; ନିରାଶ କରିବା—To disappoint; to cause disappointment.
Hatāsibā

ହତାଶ୍ୱ—ସଂ. ବିଣ. ପୁଂ (ବହୁବ୍ରୀହି)—ଯେଉଁ ରଥୀଙ୍କର ବା ଅଶ୍ୱାରୋହୀଙ୍କର ଅଶ୍ୱ (ଯୁଦ୍ଧାଦିରେ) ହତ ହୋଇଅଛି—Having the horse (which a person was riding or driving) slain.
Hatāśwa
[ହତାଶ୍ୱା—ସ୍ତ୍ରୀ]

ହତାଶ୍ୱାସ—ସଂ. ବିଣ (ବହୁବ୍ରୀହି; ହତ ହୋଇଅଛି ଆଶ୍ୱାସ ଯାହାର)—ହତାଶ (ଦେଖ)—Hatāsa (See) ବି—
Hatāśwāsa

( କର୍ମଧା )—ନୈରାଶ୍ୟ—Desperation; disappointment; hopelessness.

ହତାସ୍ମି—ସ. ଅ (ଶ୍ରୀଙ୍କ ବ୍ୟବହୃତ ଶବ୍ଦ)—ହତୋସ୍ମି (ଦେଖ)
Hatāsmi Hatosmi (See)

ହତାହତ—ସ ବଣ—ହତ [ବ୍ୟକ୍ତି] ଓ ଆହତ [ବ୍ୟକ୍ତି]—ମାରିତ ଓ
Hatāhata ଅଘାତପ୍ରାପ୍ତ [ ବ୍ୟକ୍ତିଗଣ ]—Killed and wounded [persons]. ସ. ବି—ମାରିତ ଓ ଅଘାତ ପ୍ରାପ୍ତ ବ୍ୟକ୍ତିଗଣ—The killed and the wounded.

ହତାହତି—ଦେ ବି. (ସ. ହସ୍ତାହସ୍ତି)—୧ । ହାତାହାତି; ପରସ୍ପର
Hatāhati ହସ୍ତଦ୍ୱାରା ଆକ୍ରମଣ—1 Hand to hand
হাতাহাতি fighting ୨ । ହାତେ ହାତ; ଏକ ହାତରୁ ଅନ୍ୟ
हथाबाँही ହାତକୁ କୌଣସି ଦ୍ରବ୍ୟ ର ହସ୍ତାନ୍ତର—2 Change of hands, transfer of a thing from one person to another

ହତାହଂ—ସଂ. ଅ—(ଶ୍ରୀଙ୍କଦ୍ୱାରା ବ୍ୟବହୃତ)—ହତୋଽହଂ (ଦେଖ)—
Hatāham Hatoham (See)

ହତି—ସଂ. ବି —(ହନ୍‌ଧାତୁ + ଭାବ ତି)—୧। ହନନ; ବଧ; ହତ୍ୟା—
Hati 1. Slaughter; killing; murder [ଉ—କୁଳିଶ ନାହିଁ ତ ଅସ୍ତ୍ର ଶସ୍ତ୍ରମାନ ଏ ଯେଣେ ଯେବେକ ହତି ସେ—ଭଞ୍ଜ, ବୈଦେହୀଶବିଳାସ । ] ୨ । ଅପକର୍ଷ; ଗ୍ଳାନତା ( କାବ୍ୟପ୍ରକାଶ )—2. Inferiority. ୩ । ଜଘନ୍ୟତା—3. Wretchedness; nastiness. ୪। ବ୍ୟାଘାତ—4. Obstruction. ୫ । ଗୁଣନ—5. Multiplication.

ହତିଆ—ଗ୍ରା. ବି. ସଂ (ହତ୍ୟା)—୧ । ହତ୍ୟା (ଦେଖ)—1. Hatyā.
Hatiā (See) ୨ । ଅଧା; ଦେବତାଙ୍କ ନିକଟରେ ମନୋବାଞ୍ଛା
হত্যা हतिआ ପୂରଣ ହେବା ପର୍ଯ୍ୟନ୍ତ ଧାରଣାଦେଇ ପଡ଼ି ରହିବା
—2. Throwing one's self before a Deity till one's prayer is fulfilled.

ହତିଆ କରିବା—ଗ୍ରା. କ୍ରି — ହତ୍ୟା କରିବା (ଦେଖ)—
Hatiā karibā Hatyā karibā (See)
হত্যাকরা हतिआ करना

ହତିଆ ଦେବା (ପଡ଼ିବା)—ଗ୍ରା. କ୍ରି — ହତ୍ୟାଦେବା (ଦେଖ) —
Hatia debā (pardibā) Hatyā debā (See)
হত্যাদেওয়া हतिआ देना

ହତିଆର—ଦେ. ବି (ସଂ ହେତି = ଅସ୍ତ୍ରଶସ୍ତ୍ର; ସଂ ହତ୍ୟାକର; କମ୍ବା ସଂ
Hatiāra ହସ୍ତଗ୍ରହ; ଯାହା ହାତରେ ଧରାଯାଇ ବ୍ୟବହୃତ
হাতিআর, হেতের हथियार ହୁଏ )—୧ । ଅସ୍ତ୍ରଶସ୍ତ୍ର—
1. Weapons; arms. ୨ । ଶିଳ୍ପକରଙ୍କ ଶିଳ୍ପକାର୍ଯ୍ୟର ସାଧନ ଶସ୍ତ୍ରାଦି—2. Implements of an artisan. ୩ । ଡାକ୍ତରଙ୍କର ଶସ୍ତ୍ର—3. Surgical instrument. ଗ୍ରାଂ ବି (ଇତର ବ୍ୟବହୃତ; ଲକ୍ଷଣାର୍ଥ) ପୁରୁଷର ଲିଙ୍ଗ—(slang) Penis.

ହତିଆର ଘର—ଦେ. ବି—ଯେଉଁ ଘରେ ନାନାବିଧ ଅସ୍ତ୍ର ଶସ୍ତ୍ର ରକ୍ଷିତ
Hatiāra ghara ହୋଇଥାଏ—Armoury; arsenal.
হাতিআর ঘর हथियार घर

ହତିଆର ଚଳା(ଳା)ଇବା (ଚାଳିବା)—ଦେ. କ୍ରି—୧ । ଶତ୍ରୁ ବିରୁଦ୍ଧରେ
Hatiāra chalā(laibā)(chālibā) ଯୁଦ୍ଧକ୍ଷେତ୍ରରେ ଅସ୍ତ୍ରଶସ୍ତ୍ର ବ୍ୟବହାର କରିବା—1. To ply a weapon against an enemy—୨ । (ଡାକ୍ତର) ଚିକିତ୍ସାର୍ଥ ଅସ୍ତ୍ରଚାଳନ କରିବା
হাতিআর চালান हथीयार चलाना 2, [a doctor] To perform an operation on a patient.

ହତିଆର ଚାଳିବା—ଦେ ବି—କାର୍ଯ୍ୟକ୍ଷେତ୍ରରେ ଅସ୍ତ୍ର ଶସ୍ତ୍ରର ବ୍ୟବହାର—
Hatiāra chālibā The actual use of weapons
হাতিয়াব চালা हथियार चलना on the field.

ହତିଆର ବାନ୍ଧିବା—ଅସ୍ତ୍ରଶସ୍ତ୍ରାଦି ଦ୍ୱାରା ନିଜର ଦେହକୁ ସଜ୍ଜିତ କରିବା—
Hatiāra bāndhibā To arm one's body with
হতিআব বাঁধা हथिआर बाँधना weapons; to be armed.

ହତିଆରି—ଦେ. ବିଣ. ପୁଂ ଓ ସ୍ତ୍ରୀ—ଅସ୍ତ୍ର ଶସ୍ତ୍ରଦ୍ୱାରା ସଜ୍ଜିତ—
Hatiāri অস্ত্রধারী हथिआरबन्द Armed with weapons.
[ ହତିଆରିଆ—ଅନ୍ୟରୂପ ]

[ଡାକ୍ତ] ହତିଆ ଲାଗିବା—ଦେ କ୍ରି.—ହତ୍ୟାଜନିତ ପାପରେ ଲିପ୍ତ
Hatiā lagibā ହେବା—Being tented with the
হতিআ লাগা हतिआ लगना sin of a slaughter.

ହତିଶା—ଦେ. ବି—ହତ୍‌ଶା (ଦେଖ)
Hatisā Hat-sā (See)

ହତିଶିରି—ଗ୍ରା.ବିଣ—ହତଶିରି (ଦେଖ)
Hatisiri Hatasiri (See)

ହତି—ପ୍ରାଦେ [ଭଞ୍ଜଭାଷା] ଅ—କିନ୍ତୁ—But. ପ୍ରାଦେ [ସାଟଣା]
Hati ଅ—ଏପରି—Thus.
[ ହତିଲେ—ଅନ୍ୟରୂପ ]

ହତୁ(ତ୍ତୁ)—ଦେ. ଅ—ହତ୍ (ଦେଖ)
Hatu(ttu) Hat (See)
ସଂ. ବି—ଶୀତ କାଳ—Winter [M. W]

ହତେଇବା—ଦେ. କ୍ରି—ହତାଇବା [ଦେଖ]
Hateibā Hatāibā [See]

ହତୋତ୍ସାହ—ସଂ. ବି. ପୁଂ. (ବହୁବ୍ରୀହି; ହତ = ଲୁପ୍ତ ହୋଇଅଛି ଉତ୍ସାହ
Hatotsāha ଯାହାର)—୧। ଯାହାର ଉତ୍ସାହ ଭଙ୍ଗି ଯାଇଅଛି—
[ହତୋତ୍ସାହା—ସ୍ତ୍ରୀ] 1. One who has his fervour extinguished, ୨ । ନିରୁତ୍ସାହ—2. One who has lost his eagerness; discouraged. ବି—କର୍ମଧା—ଉତ୍ସାହର ଲୋପ—Discouragement.

ହତୋଦ୍ୟମ—ସଂ. ବିଣ. ପୁଂ [ବହୁବ୍ରୀହି]—୧ । ଉଦ୍ୟମଶୂନ୍ୟ—
Hatodyama 1. Having the spirits cowed
[ହତୋଦ୍ୟମା—ସ୍ତ୍ରୀ] down; effortless. ୨ । ନିରୁତ୍ସାହ—2. Discouraged.

ହତୋଽସ୍ମି—ସଂ. ଅ [ପୁରୁଷଙ୍କଦ୍ୱାରା ବ୍ୟବହୃତ ; ହତଃ+ଅସ୍ମି=ମୁଁ ହତ
Hato (a) smi ହୋଇଅଛି; ସନ୍ଧି ସ୍ଥଳରେ ଖଣ୍ଡ ଅକାର (ଽ) ହୁଏ ହତୋଽସ୍ମି ।] (ଖେଦୋକ୍ତିରେ ବ୍ୟବହୃତ ବାକ୍ୟ) ଅହା ! ମୁଁ ମଲି ! ମୋ କଥା ସରିଗଲା, ଅହା !—(Interjection) Oh ! I am done for; Alas ! I am gone.
(ହତାସ୍ମି—ସ୍ତ୍ରୀମାନଙ୍କ ବ୍ୟବହୃତ)

ହତୋଽହଂ—ସଂ. ଅ (ପୁରୁଷଙ୍କ ବ୍ୟବହୃତ, ହତଃ+ଅହଂ)—(ଖେଦୋକ୍ତି
Hato (a) ham ବା ନୈରାଶ୍ୟ ସୂଚକ ବାକ୍ୟ)—ମୁଁ ମଲି—(Interjection) I am done for.
(ହତାହଂ—ସ୍ତ୍ରୀମାନଙ୍କ ବ୍ୟବହୃତ)

ହତୌଜାଃ—ସଂ. ବ (ବହୁବ୍ରୀହି, ହତ+ଓଜସ୍, ୧ମା. ୧ବ)—୧ ।
Hataujāh ନିସ୍ତେଜସ୍କ; ଶକ୍ତିହୀନ—1 Powerless. ୨ । ଦୁର୍ବଳ—2. Shorn of strength; reduced to impotence.

ହତ୍ତ—ଦେ. ଅ—ହତ୍ (ଦେଖ)—
Hatta Hat (See)
[ହତ୍ତେରି, ହତ୍ତେରିକା (ବ, ବକ)—ଅନ୍ୟରୂପ]
ଧୋତ୍ ଧତ୍

ହତ୍ତା—ଗ୍ରା. ବଣ. ଓ ବ (ସଂ. ହର୍ତ୍ତା)—ହର୍ତ୍ତା (ଦେଖ)—
Hattā Harttā (See)
ଦେ. ବ.—ହତା ଇତ୍ୟାଦି (ଦେଖ)—
হাতা হত্তা Hattā etc. (See)

ହତ୍ତାକର୍ତ୍ତା—ଗ୍ରା. ବ (ସଂ. ହର୍ତ୍ତା ଓ କର୍ତ୍ତା ସୃଷ୍ଟି ସ୍ଥିତି ପ୍ରଳୟକର୍ତ୍ତା)—
Hattā kattā ହର୍ତ୍ତାକର୍ତ୍ତା ଦୈବ ବଧାତା ସ୍ୱରୂପ କୌଣସି କାର୍ଯ୍ୟରେ ସର୍ବମୟ ପ୍ରଭୁ—An all powerful master; a sole master or lord of the situation
হর্ত্তাকর্ত্তা हर्ताकर्ता
[ହର୍ତ୍ତାକର୍ତ୍ତା ବଧାତା, ହତ୍ତାକର୍ତ୍ତା ଦୈବ ବଧାତା—ଅନ୍ୟରୂପ]

ହତ୍ତେରି—ଦେ. ଅ—ହତ୍ (ଦେଖ)—
Hatteri Hat (See)
[ହତ୍ତେରିକା (ବ, ବେ); ହତ୍ତେରେକେ—ଅନ୍ୟରୂପ]

ହତ୍ନୁ—ସଂ.ବ (ହନ୍ ଧାତୁ+କର୍ତ୍ତୃ ନୁ)—୧ । ବ୍ୟାଧି (ଉଣାଦିକୋଷ)—
Hatnu 1. Disease; sickness. ୨ । (+କରଣ ନୁ) ଅସ୍ତ୍ରଶସ୍ତ୍ର—(ଉଣାଦିକୋଷ)—2. Weapon.

ହତ୍ୟା—ସଂ. ବ (ହନ୍ ଧାତୁ=ବଧ କରିବା+ଭାବ ଯ+ଆ)—ପ୍ରାଣ-
Hatyā ନାଶ; ହନନ; ବଧ; ଜୀବନରେ ମାରି ପକାଇବା—
ବଣ.—ହତ, ହନ୍ତା (ପୁଂ) Killing; murder; slaughter.
ହତା, ହନ୍ତ୍ରୀ (ସ୍ତ୍ରୀ) ଦେ. ବ—୧ । ଅଭୀଷ୍ଟ ସିଦ୍ଧ ନହେବା ପର୍ଯ୍ୟନ୍ତ
হত্যা ପ୍ରାଣପଣ କରି ଅନଶନରେ କୌଣସି ଦେବତାଙ୍କ ପାଖରେ
हत्या ଧାରଣାଦେବା—1. Act of lying prostrate before a Deity till one's prayer is responded to by the Deity. ୨ । ହତ୍ୟା ଜନିତ ପାପ ବା ଅପରାଧ—2. Sin or offence resulting from murder. [ଦ୍ରୁ—ଜୀବନରେ ହତ୍ୟା, ମାଙ୍କିଁପରେ କାରଣ ନାହିଁ—ଢଗ] ୩ । କୌଣସି ବ୍ୟକ୍ତିର ମୃତ୍ୟୁ ଜନିତ ପାପଭାର—3. The burden of sin due to one's death. [ଦ୍ରୁ—ଜଳ ବିନା ଯେ ଯଦି ଯାଇଁବ ମୁଁ ନାହିଁ; ନରବ ଭୂମିର ଉପରେ ହତ୍ୟା ଦେଇ—କୃଷ୍ଣସିଂହ. ମହାଭାରତ. ଉଦ୍ଦ ]

ହତ୍ୟା କରିବା—ଦେ. କ୍ରି—ଜୀବନରେ ମାରି ପକାଇବା; ପ୍ରାଣନାଶ
Hatyā kariba କରିବା—To kill, to murder; to slay.
হত্যাকরা हत्या करना

ହତ୍ୟା କାଣ୍ଡ—ସଂ. ବ—କୌଣସି ଜୀବକୁ ହତ୍ୟା କରିବାର ବ୍ୟାପାର—
Hatyā kānda The act or operation of killing any animal.

ହତ୍ୟାକାରୀ—ସଂ. ବ (ହତ୍ୟା+କୃ ଧାତୁ+କର୍ତ୍ତୃ ଇନ୍, ହତ୍ୟାକାରିନ
Hatyākārī ଶବ୍ଦର ୧ମା. ୧ବ.—ବଧକାରୀ; ହନ୍ତା; ଯେ ବଧ
(ହତ୍ୟାକାରିଣୀ—ସ୍ତ୍ରୀ) କରିଥାଏ—Murderer; slayer.

ହତ୍ୟା ଦଣ୍ଡ—ସଂ. ବ (ମ. ପ. ଲୋ)—ହତ୍ୟାପରାଧ ପାଇଁ ହତ୍ୟାକାରୀକୁ
Hatyādanda ପ୍ରଦତ୍ତ ଦଣ୍ଡ—Punishment for a murder.

ହତ୍ୟାଦେବା (ପଡ଼ିବା)—ଦେ. କ୍ରି—ମନୋବାଞ୍ଛା ସିଦ୍ଧି ନ ହେବାଯାଏ
Hatyā deba (pardibā) ଦେବତାଙ୍କ ନିକଟରେ ପ୍ରାଣପଣ
হত্যাদেওয়া করে পড়ে ରହିବା—To lay one's self before
हत्यादेना a Deity till one's prayers are answered).

ହତ୍ୟା ଦୋଷ—ସଂ. ବ (ମ. ପ. ଲୋ)—୧ । ହତ୍ୟାପରାଧ (ଦେଖ)
Hatyā dosha 1. Hatyāparādha (See) ୨ । ହତ୍ୟା ଜନିତ ପାପ—2. Sin resulting from murder.

ହତ୍ୟା ନିଲାମ(ମି)—ପ୍ରାଦେ (ସୁଗ୍ରା) ବ. [ କଟକଅ ]—ହାଉଅନିଲାମ
Hatyā nilāma (mi) [ଦେଖ]—Hāuānilāma (See)

ହତ୍ୟାପରାଧ—ସଂ. ବ (ମ. ପ ଲୋ)—୧ । ହତ୍ୟା ଜନିତ ପାପ—
Hatyāparādha 1. The sin of murder. ୨ । ହତ୍ୟାଜନିତ ରାଜଦ୍ୱାରରେ ଅଭିଯୁକ୍ତ ବ୍ୟକ୍ତିର ଅପରାଧ—2. The offence or crime of murder.

ହତ୍ୟାପରାଧୀ—ସଂ. ବଣ. ଓ ବ. ପୁଂ—୧ । ଯେଉଁ ବ୍ୟକ୍ତି ହତ୍ୟା
Hatyāparādhī କରିଥିବା ଅପରାଧରେ ଅଭିଯୁକ୍ତ ହୋଇଅଛି—(offender) Accused of murder. ୨ । ଯେଉଁ ବ୍ୟକ୍ତି ହତ୍ୟା ଅପରାଧ କରିଅଛି—2. (an offender)
(ହତ୍ୟାପରାଧିନୀ—ସ୍ତ୍ରୀ) Who has committed murder.

ହତ୍ୟା ପାଇବା—ଦେ. କ୍ରି—ହତ୍ୟା ଦୋଷରେ ଭାଗୀ ହେବା—
Hatyā pāibā To be responsible or a murder.
হত্যার ভাগী হওযা हत्यापाना

ହତ୍ୟାର (ଇତ୍ୟାଦି)—ଦେ. ବଣ—ହତିଆର [ଦେଖ]—
Hatyāra (etc) Hatiāra (See)

ହତ୍ୟାରି—ଦେ. ବଣ—ହତିଆରି [ଦେଖ]—
Hatyāri Hatiāri See)

[ତାଳୁ] ହତ୍ୟା ଲଗିବା—ଦେ. କ୍ରି—ହତ୍ୟା ଦୋଷରେ ବା ପାପରେ
Hatyā lāgibā ଭାଗୀ ହେବା—Being responsible, for the murder of a person. [ ଦ୍ରୁ—କୌଣସି ବ୍ୟକ୍ତିର
হত্যার দোষ লাগা हत्या लगना, हत्यारि लगना

ଯେବେ କେହି ମୋ ଆଗରେ ହତ୍ୟା କରେ, ଅଥଚ ମୁଁ ଏହା ଦେଖି ଉକ୍ତ ଘାତକକୁ ବାରଣ ନ କରେଁ, ତେବେ ମତେ ମଧ୍ୟ ଧର୍ମ ଓ ଆଇନ୍ ଅନୁସାରେ 'ହତ୍ୟା ଲଗିବ ।']

ହୁରକତ୍ରା—ଗ୍ରା. କ୍ରି. ବିଣ [ସଂ. ଯଥ ତଥ]—୧ । ଯେନତେନ ପ୍ରକାରେ; Hura katra     ଯେକୌଣସିପ୍ରକାରେ—1. Anyhow. ସେମନତେମନ     କିସିପ୍ରକାରସେ ୨ । ଅତିକଷ୍ଟରେ—2. With much difficulty

ହୁଥ—ଗ୍ରା. ବିଣ ପୁଂ—ବିଷଣ୍ଣ [ସଜିହ୍ରାଣ]— Hatha     Dejected. (ହଥା—ସ୍ତ୍ରୀ)

ହଦ୍—ଦେ. ଅ. ବିଣ. ବି. [ ଆ. ହଦ୍ଦ୍ ]—ହଦ୍ଦ୍ [ଦେଖ]—Hadd Had     हद्द हद्द (See) [ ଉ—ଏହାଙ୍କର ଇଲମ୍ ଓ ସୁଗ ଘର୍ଷଣର ଜମିରନ୍ତ ହଦ୍‌ରେ ହଦ୍—ପକ୍ଷୀରମୋହନ ଛମାଣଆଠଗୁଣ୍ଠ ।] ପ୍ରାଦେ [ସମ୍ବଲପୁର] ବି—ବଡ଼ ଗାତ- A big hole. ପ୍ରାଦେ [ଲଇଥା ଓ ବଲାଙ୍ଗିରପାଟଣା] ବି—କାଦୁଅ; ପଙ୍କ—Clay; mud; mire.

ହଦ୍[ଧାତୁ]—ସ—ମଳତ୍ୟାଗ କରିବା, ହଗିବା— Had(root)     To pass fæces.

ହଦ—ପ୍ରଦେ [ବଲାଙ୍ଗିର ପାଟଣା] ବି—କାଦୁଅ— Hada     Mud; clay.

ହ୍ରଦ—ଦେ. ବି [ସଂ. ହ୍ରଦ]—୧ । ଜଳାଶୟ—1. Tank. [ଉ—ରୂହି Hada     କାଳନ୍ଦୀ ମଧ୍ୟ ହ୍ରଦ—ଯଶୋବନ୍ତ ପ୍ରେମବନ୍ତ ବୃନ୍ଦ- हृद     हृद, चँवर     ଗୀତା ।] ୨ । ହ୍ରଦ—2. Lake. (ଉ—କାଳନ୍ଦୀହ୍ରଦ କୋକନଦ, କଞ୍ଜ କୁବଳୟ କୁମୁଦ— ଭୂପତି ପ୍ରେମଚିନ୍ତାମଣି ।) ୩ । ଗମ୍ଭୀର ଓ ବିସ୍ତୃତ ଜଳାଶୟ— 3. A very deep and wide tank. ୪ । ଗଭୀର ଜଳ—4. Deep water. ୫ । (ସ ବନ୍ତ)—ଦହ; ଦଳ ହଦ     दह     ଓ ଲତା ପତ୍ର ମାଡଯିବା ଯୋଗୁଁ ବନ୍ଦ ଜଳାଶୟ- 5. A tank overgrown with aquatic and other plants on its surface. ଦେ. ବିଣ—୧। ଅତି ଗଭୀର [ଜଳ]—1. Very deep (water). ୨ । ଦଳ ଓ ବୃକ୍ଷଲତା ଦ୍ୱାରା ଆବଦ୍ଧ [ଜଳାଶୟ]—2. (Tank) Whose surface has been overgrown with plants. ପ୍ରାଦେ [ଖଡ଼ିଆଳ, ବଲାଙ୍ଗିର ପାଟଣା] ବି. ପଙ୍କ—Mire; mud. ପ୍ରାଦେ. [ଲଇଥା] ବି. ସୀମା—Boundary.

ହଦନ—ସ ବି (ହଦ୍ ଧାତୁ + ଭାବ ଅନ)-ମଳତ୍ୟାଗ; ହଗିବା— Hadana     Passing of faeces.

ହୁଦରଜିଆ—ପ୍ରାଦେ (ସମ୍ବଲପୁର) ବିଣ—(ସଂ. ହୃତଧୈର୍ଯ୍ୟ)— Hadarajia     ଅଧୀର; ଧୈର୍ଯ୍ୟହୀନ—Impatient.

ହୁଦରା—ପ୍ରାଦେ (ବଲାଙ୍ଗିର ପାଟଣା) ବିଣ, ଅଳସୁଆ— Hadara     Idle; indolent.

ହଦି—ବୈଦେ. ବି—ହଦି (ଦେଖ) Hadi     Haddi (See)

ହଦିଶ୍—ବୈଦେ. ବି ( ଅ )—୧ । ସୁନ୍ନତ୍; ମୁସଲମାନ୍ ସ୍ମୃତିଶାସ୍ତ୍ର; Hadis     ହଜରତ୍ ମହମ୍ମଦଙ୍କଠାରୁ ପ୍ରଚଳିତ ପରମ୍ପରାକ୍ରମେ ସମାଜରେ हदीस     हदीस     ଚଳି ଆସୁଥିବା ଧର୍ମସମ୍ବନ୍ଧୀୟ ଉକ୍ତିମାନ— 1. Hadis; traditions handed down to posterity from generation to generation from the Prophet Mahomed. ୨ । ହଜରତ୍ ମହମ୍ମଦଙ୍କ କାର୍ଯ୍ୟ ଓ ଉକ୍ତି ସମ୍ବନ୍ଧେ ପରମ୍ପରାଗତ କାହାଣୀ ( ଯାହା କୋରାନ୍‌ରେ ଲେଖା ହୋଇ ନାହିଁ, ଅଥଚ ମୁସଲ୍‌ମାନ୍‌ମାନେ ଯାହା ପାଳନ କରିବାକୁ ବାଧ୍ୟ)—2. The acts or sayings of the Prophet Mahomed which have not been recorded in the Koran but handed down to posterity by words of mouth by any person who saw or heard Him [ ଦ୍ର—ହିନ୍ଦୁମାନେ ବେଦ ( ଶ୍ରୁତି )କୁ ମାନିବା ପରି, ମୁସଲମାନ୍‌ମାନେ କୋରାନକୁ ମାନନ୍ତି ଓ ହିନ୍ଦୁମାନେ ମନ୍ୱାଦି ଧର୍ମଶାସ୍ତ୍ର (ସ୍ମୃତି)କୁ ମାନିବା ପରି ମୁସଲମାନ୍‌ମାନେ 'ହଦିଶ୍'କୁ ମାନନ୍ତି । ଉଦାହରଣ ସ୍ୱରୂପ ଦେଖାଯାଉ ଯେ ମୁସଲମାନ୍‌ମାନଙ୍କର 'ସୁନ୍ନତ୍' ( ଲିଙ୍ଗାଗ୍ର ଚର୍ମର ଛେଦନ ) କରିବା ପାଇଁ ମହମ୍ମଦ୍ କୋରାନ୍‌ରେ ଲେଖି ଯାଇ ନାହାନ୍ତି, କିନ୍ତୁ ହଜରତ୍ ମହମ୍ମଦଙ୍କ ନିଜର ଲିଙ୍ଗାଗ୍ରଚର୍ମ ଜନ୍ମତଃ ବିଦ୍ୟମାନ ନ ଥିବାରୁ ତାଙ୍କର ସେହି ଅବସ୍ଥାକୁ ଦେଖି ତାଙ୍କ ଶିଷ୍ୟମାନେ 'ସୁନ୍ନତ୍' କଲେ । 'ସୁନ୍ନତ' ଗୋଟିଏ ହଦିସ୍ ।]

ହଦ୍ଦ୍—ବୈଦେ. ବି ( ଅ. ହଦ୍ଦ୍ )—୧ । ସୀମା—1. Boundary, Hadd     limit. ୨ । ଉର୍ଦ୍ଧ୍ୱସୀମା—2. Utmost limit. ୩ । हद्द     ଅନ୍ତ; ଶେଷ—3. End; extremity. ୪ । ଚରମ; हद्द     ଚୂଡ଼ାନ୍ତ—4. Acme. ବିଣ—୧ । ସର୍ବଶେଷ—1. Last; ୨ । ଅନ୍ତ୍ୟ—2. Extreme. ୩ । ଶେଷସୀମାରେ ଉପସ୍ଥିତ—3. Arrived at the utmost limit. ୪ । କିଂକର୍ତ୍ତବ୍ୟବିମୂଢ଼—4. Bewildered. କ୍ରି. ବିଣ—୧ । ପର୍ଯ୍ୟନ୍ତ—1. Upto; till. ୨ । ଉର୍ଦ୍ଧ୍ୱସୀମା ଧରିଲେ ମଧ୍ୟ—2. Taking the utmost limit. ୩ । ଅତି ଅଧିକ ଦେଲେ ମଧ୍ୟ; ବଡ଼ଜୋର୍—3. At best. (ଉ—ମତେ ବୟସ ସେତେବେଳେ ହଦ୍ଦ୍ ଚଉଦ ବା ପନ୍ଦର ।) [ଦ୍ର—ଏହି ଅର୍ଥରେ ଶବ୍ଦଟି ଆରବୀ ଚଉହଦ (ଚତୁଃସୀମା) ଓ ଦୋହଦ୍ଦି (ଜମିର ଦୁଇ ପାଖର ସୀମା) ଶବ୍ଦମାନ ଉତ୍ପନ୍ନ ହୋଇଅଛି । ] ଅ—ମୁଁ ଆଶ୍ଚର୍ଯ୍ୟାନ୍ୱିତ ହେଉଅଛି—(Interjection) I am astonished!

ହଦ୍ଦ୍ କଥା—ଦେ. ବି—ଅତି ଆଶ୍ଚର୍ଯ୍ୟଜନକ କଥା— Hadd katha     A thing to be wondered at; हद्द कथा     हद्द बात     wonderful matter.

ହଦ୍ଦ୍ କରିବା—ଦେ. କ୍ରି—କିଂକର୍ତ୍ତବ୍ୟବିମୂଢ଼ କରିବା— Hadd karibā     To bewilder a person. हद्द कया     हद्द करना

ହଦ୍ ଜବାବ୍—ଦେ. ବି (ଅ)—୧ । ଶେଷ ଜବାବ—1. Last
Hadd jababa word in a matter; one's last say
हद्द् जवाब in a matter. ୨। କାଜୀଙ୍କ କୋର୍ଟରେ ପକ୍ଷମାନଙ୍କର
हद्दजबाब ଦାଖଲ କରିବା ଶେଷ ଜବାବ—2. The last statement made by a party in the court of a Kajee. ଦେ. ଣ—୧ । ଉତ୍ତରରହିତ—1. Having no reply to make. ୨ । କିଂକର୍ତ୍ତବ୍ୟବିମୂଢ—2. Bewildered. ୩ । ମୂକ—3. Silent.

[ଦ୍ର—ମୁସଲମାନ୍ ରାଜତ୍ୱରେ କାଜୀମାନଙ୍କ ନିକଟରେ ବାଦୀର ପ୍ରଥମେ ଅରଜୀଦାଖଲ କରିବାପରେ ପ୍ରତିବାଦୀ ଜବାବ ଦେଉଥିଲା । ସେ ଜବାବକୁ ଖଣ୍ଡନ କରି ବାଦୀ ରଦ୍-ଜବାବ ଦେଉଥିଲା । ତାପରେ ପ୍ରତିବାଦୀ 'ହଦ୍-ଜବାବ' ଦେଉଥିଲା । ତାପରେ ବାଦୀ 'ହଦ୍ ଜବାବ' ଦେଉଥିଲା । ଏହିଠାରେ ବାଦୀ ପ୍ରତିବାଦୀଙ୍କ ମଧ୍ୟରେ ଶୁଆଲ ଜବାବ୍ (ପ୍ରଶ୍ନୋତ୍ତର) ସମାପ୍ତ ହୋଇ ତାପରେ 'କାଜୀ' ମକଦମାର ମୀମାଂସାରେ ପ୍ରବୃତ୍ତ ହେଉଥିଲେ ।]

ହଦ୍ ବନିବା (ମଣିବା, ମାନିବା, ହେବା)—୧ । ଆଶ୍ଚର୍ଯ୍ୟାନ୍ୱିତ
Hadd banibā (maṇibā, mānibā, hebā) ହେବା—
हद्द हुआ 1. To wonder at; to be astonished at.
हद्दहोना ୨। ନିଜର ପରାକ୍ରମର ବା ବୁଦ୍ଧିର ଶେଷ ସୀମାରେ ପହଞ୍ଚିବା; କିଂକର୍ତ୍ତବ୍ୟବିମୂଢ ହେବା—2. To be at one's wit's end; to be bewildered. ୩ । ଅବସିବା—3. To be overtired.

ହଦ୍ଦମ୍—ବୈଦେ. କ୍ରି. ବିଣ (ଅ. ହର୍ଦ୍ଦମ୍)—ହର୍ଦ୍ଦମ୍ (ଦେଖ)
Haddam Harddam (See)
हरदम् हरदम

ହଦ୍ଦା—ଷ. ବି (ଜ୍ୟୋତିଷ)—ମେଷ ଦି ଦ୍ୱାଦଶ ଲଗ୍ନମାନଙ୍କର ତ୍ରିଂଶଦଂଶ—
Haddā (Astrology) The 30th part of every Lagna.

[ଦ୍ର—ପ୍ରତ୍ୟେକ ରାଶିର ଲଗ୍ନରେ ୫ଟି ଲେଖାଏଁ ଗ୍ରହଙ୍କର ନିର୍ଦ୍ଦିଷ୍ଟ ୩୦ ଟି ଲଗ୍ନ ଅଛି । ମନୁଷ୍ୟମାନଙ୍କର ବର୍ଷ ପ୍ରବେଶକାଳରେ ଶୁଭାଶୁଭ ଗଣନାରେ ଏହାର ପ୍ରୟୋଜନ ହୁଏ—

ମେଷ ଲଗ୍ନରେ=ବୃହସ୍ପତି ୬+ଶୁକ୍ର ୬+ବୁଧ ୮+ମଙ୍ଗଳ ୫+ଶନି ୫=୩୦ ଅଂଶ ।

ବୃଷ ଲଗ୍ନରେ=ଶୁକ୍ର ୮+ବୁଧ ୬+ବୃହସ୍ପତି ୮+ଶନି ୫+ମଙ୍ଗଳ ୩=୩୦ ଅଂଶ ।

ମିଥୁନ ଲଗ୍ନରେ=ବୁଧ ୬+ଶୁକ୍ର ୬+ବୃହସ୍ପତି ୫+ମଙ୍ଗଳ ୭+ଶନି ୬=୩୦ ଅଂଶ ।

କର୍କଟ ଲଗ୍ନରେ=ମଙ୍ଗଳ ୭+ଶୁକ୍ର ୬+ବୁଧ ୬+ବୃହସ୍ପତି ୭+ଶନି ୪=୩୦ ଅଂଶ ।

ସିଂହ ଲଗ୍ନରେ=ବୃହସ୍ପତି ୬+ଶୁକ୍ର ୫+ଶନି ୭+ବୁଧ ୬+ମଙ୍ଗଳ ୬=୩୦ ଅଂଶ ।

କନ୍ୟା ଲଗ୍ନରେ=ବୁଧ ୭+ଶୁକ୍ର ୧୦+ବୃହସ୍ପତି ୪+ମଙ୍ଗଳ ୭+ଶନି ୨=୩୦ ଅଂଶ ।

ତୁଳା ଲଗ୍ନ=ଶନି ୬+ବୁଧ ୮+ବୃହସ୍ପତି ୭+ଶୁକ୍ର ୭+ମଙ୍ଗଳ ୨=୩୦ ଅଂଶ ।

ବୃଶ୍ଚିକ ଲଗ୍ନ=ମଙ୍ଗଳ ୭+ଶୁକ୍ର ୪+ବୁଧ ୮+ବୃହସ୍ପତି ୫+ଶନି ୬=୩୦ ଅଂଶ ।

ଧନୁର୍ଲଗ୍ନ=ବୃହସ୍ପତି ୧୨+ଶୁକ୍ର ୪+ବୁଧ ୫+ମଙ୍ଗଳ ୫+ଶନି ୪=୩୦ ଅଂଶ ।

ମକର ଲଗ୍ନ=ବୁଧ ୭+ବୃହସ୍ପତି ୭+ଶୁକ୍ର ୮+ଶନି ୪+ମଙ୍ଗଳ ୪=୩୦ ଅଂଶ ।

କୁମ୍ଭ ଲଗ୍ନ=ବୁଧ ୭+ଶୁକ୍ର ୬+ବୃହସ୍ପତି ୭+ମଙ୍ଗଳ ୫+ଶନି ୫=୩୦ ଅଂଶ ।

ମୀନ ଲଗ୍ନ—ଶୁକ୍ର ୧୨+ବୃହସ୍ପତି ୪+ବୁଧ ୩+ମଙ୍ଗଳ ୯+ଶନି ୨=୩୦ ଅଂଶ ।

—ନୀଳକଣ୍ଠୀୟ ଜାତକ]

ହଦ୍ଦି—ବୈଦେ. ବି (ଅ. ହଦ୍ଦୀ)—ସୀମା—
Haddi Boundary; limit.
हद्दि हद्द

ହଦ୍ରା—ପ୍ରାଦେ. (ସମ୍ବଲପୁର) ବିଣ—ଭୀରୁ; ଡରୁଆ—
Hadrā Coward; timid.

ହଦ୍ରିଆ—ପ୍ରାଦେ. (ସମ୍ବଲପୁର) ବିଣ—ଈର୍ଷୀ—
Hadriā Spiteful; malicious.

ହଦ୍ରିବା—ପ୍ରାଦେ. (ବଲାଙ୍ଗିର ପାଟଣା) କ୍ରି—ହଟିଯିବା—
Hadribā To retreat; to resile; to shrink.

ହନ୍ ବ(ବା)ଲି—ଦେ. ବି (ଅ ହନ୍‌ବଲୀ—ସୁନ୍ନୀ ସମ୍ପ୍ରଦାୟଭୁକ୍ତ
Han-ba (bā) li ମୁସଲମାନଙ୍କର ଚାରି ଶାଖା ମଧ୍ୟରୁ ଏକତମ—
हनबाली One of the four sects Sunni
हनबाली Mahomedans. [ଦ୍ର—ଏହି ଶାଖାର ମୁସଲମାନ୍‌ମାନେ ବାଗ୍‌ଦାଦ୍ ଓ ଓମାନ୍ ଅଞ୍ଚଳରେ ବାସ କରନ୍ତି । ଏମାନଙ୍କର ପ୍ରଥମ ପ୍ରବର୍ତ୍ତକ ଇମାମ୍ ଅହାମ୍ମଦ୍ ବିନ୍ ହନ୍‌ବଲଙ୍କ ନାମରୁ ଏହି ଶାଖାର ନାମ । ଏମାନେ ଭାରତରେ ନାହାନ୍ତି । ସୁନ୍ନୀମାନଙ୍କର ଅନ୍ୟ ଶାଖା ତିନୋଟିର ନାମ ହନଫି, ଶାଫେଇ ଓ ମାଲିକୀ ।]

ହନ୍ ଧାତୁ—ସଂ—୧ । ବଧ କରିବା—1. To kill. ୨। ହାଣିବା—
Han (root) 2. To cut. ୩ । ହିଂସା କରିବା—3. To injure. ୪। ଗତି କରିବା—4. To move. ୫ । ନାଶ କରିବା—5. To destroy.

ହନ—ସଂ. ବିଣ (ହନ୍ ଧାତୁ+କର୍ତ୍ତୃ ଅ)—ହତ୍ୟାକାରୀ—
Hana Murdering; slaying. ବି. ହତ୍ୟାକାରୀ ବ୍ୟକ୍ତି—Murderer.

ହନନ—ସଂ. ବି (ହନ ଧାତୁ+ଭାବ ଅନ)—୧ । ମାରଣ; ଅନ୍ୟର
Hanana ପ୍ରାଣନାଶ କର୍ମ; ହତ୍ୟା—1. Slaughter. ୨ । (ଅଙ୍କଶାସ୍ତ୍ର) ଗୁଣନ (ହି. ଗ)—2. (mathematics) Multiplication.

ହନନୀୟ—ସଂ· ବିଣ. ପୁଂ (ହନ୍ ଧାତୁ+କର୍ମ ଅନୀୟ)—ହତ ହେବାର
Hananiya ଯୋଗ୍ୟ –Fit to be killed.

ହନଫି—ବୈଦେ. ବି· (ଅ)—ହନାଫି (ଦେଖ)—
Hanaphi Hanāphi (See)
हनाफी हनफी

ହନଲୁଲୁ—ବୈଦେ. ବି (ନାମ)—ପ୍ରଶାନ୍ତ ମହାସାଗରର ଗୋଟିଏ
Hanalulu ଦ୍ୱୀପ; ଇଂରେଜମାନଙ୍କର ଜାହାଜମାନଙ୍କରେ କୋଇଲା
हनलुलू ନେବା ସ୍ଥାନ—Honolulu; an island and
हनलुलु coaling station of English ships in the Pacific.

ହନା(ନେ)ଇବା—ପ୍ରାଦେ. (କୋରଧା ଅଞ୍ଚଳରେ ଇତର ବ୍ୟବହୃତ)—
Hanā(ne)ibā କ୍ରି—ଅନାଇବା; ଗୁହିଁବା—(Slang) To look at.

ହନାଫୀ—ବୈଦେ. ବି (ଅ. ହନାଫୀ )—ସୁନ୍ନୀ ସମ୍ପ୍ରଦାୟଭୁକ୍ତ ମୁସଲ-
Hanāphi ମାନଙ୍କର ୪ଟି ଶାଖା ମଧ୍ୟରୁ ଏକତମ—One of
हनाफी the four subsects of the Sunni
हनाफी Mahomedans. [ ବ୍ରି—ଇମାମ୍ ଅବୁହନିଫା
ନାମକ ଧର୍ମଗୁରୁଙ୍କ ଦ୍ୱାରା ପ୍ରବର୍ତ୍ତିତ ହୋଇ ତାଙ୍କ ନାମରୁ
ଏହି ନାମ ହୋଇଅଛି । ଭାରତର ସୁନ୍ନୀ ମୁସଲମାନମାନେ
ଅଧିକାଂଶ ଏହି ଶାଖା ଭୁକ୍ତ । ଅନ୍ୟ ୩ଟି ଶାଖା ହନ୍‌ବଲି,
ସାଫେଇ୍ ଓ ମାଲିକୀ । ]

ହନିମାନ୍—ବୈଦେ· ବି (ନାମ)—ହାନେମାନ୍ (ଦେଖ)
Hanimān Hahnemān (See)
हानीमान् हानिमान

ହନିମୁନ୍—ବୈଦେ (ଇଂ) ବି—ପାଶ୍ଚାତ୍ୟ ବରକନ୍ୟାଙ୍କର ବିବାହର
Hanimun ପରବର୍ତ୍ତୀ ୧୫ ଦିନ—Honeymoon.
हनीमुन [ବ୍ରି—ଏହା ଆମଦେଶର 'ମଧୁଶଯ୍ୟା' ପରି ଓ ସେହି ୧୫
हनीमून ଦିନ ବରକନ୍ୟା ଘରର ସଙ୍ଗରେ କରିହି କୌଣସି ସ୍ଥାନକୁ ଯାଇ
ଆନନ୍ଦରେ ଓ ପ୍ରେମରେ ଦିନ କଟାଇ ପରେ ଘରକୁ ଫେରି
ଆସି ଘର କରି ରହନ୍ତି । ]

ହନିଶକ୍ଲ୍—ବୈଦେ (ଇଂ) ବି—ଏକ ପ୍ରକାର ବନଲତା ଫୁଲ—
Haniśakl Horey suckle (Lonicera Caprifoliam.)
हनीसकल् हनीसक्ल
[ବ୍ରି—ଏହି ଫୁଲ ଦେଖିବାକୁ ସୁନ୍ଦର ଓ ସ୍ନିଗ୍ଧ
ଗନ୍ଧଯୁକ୍ତ । ଏହାର ଆକାର କାହାଳୀପରି ଓ ଗୋଟିଏ
ଗୋସାପୁଟି ରହିଁ ମଧ୍ୟରୁ ଗୁଚ୍ଛ ଫୁଲ ବାହାରେ । ]

ହନିଲ—ସ.ବି—କେତକୀ (ରହୁମାଳ)—Pandanus Odoratis-
Hanila simus, yellowflowered variety).
(ବ୍ୟବହାର—ଅନ୍ୟଭୂତ)

ହନୁ—ସ. ବି (ହନ୍ ଧାତୁ+କର୍ମ. ଉ)—୧ । ଗଣ୍ଡ ଦେଶର ଉପର-
Hanu ଭାଗ; ଉପର ତାଳୁପାଟି ହାଡ଼ (ଏହା ତଳେ ଉପର ପାଟିର
ଦନ୍ତପାନ୍ତି ଥାଏ)—1. The part of the cheek
over the joint of the 2 jaws; the jaw.
[ବ୍ରି—ଧନୁ ଧରିଥିବା ଲୋକଙ୍କର ହନୁରେ ବାଜନ୍ତେ
ବସିଲେ ସେ ଯମ ସଦନରେ । କୃଷ୍ଣସିଂହ. ମହାଭାରତ.
ବନ ।] ୨ । ଦାନ୍ତ ପାଟିର କବଳ—2. The joint of
the jaws. ୩ । ବୃଦ୍ଧବୋଲାମିଗ; ବେଶ୍ୟା—3. Harlot. ୪ । ରୋଗ—4. Disease. ୫ । ଅସ୍ତ୍ର—
5. Weapon. ୬ । ମୃତ୍ୟୁ—6. Death. ୭ ।
(ବୈଦ୍ୟକ) ନଳୀ ନାମକ ଗନ୍ଧଦ୍ରବ୍ୟ—7. Fasciolaria.
ଦେ. ବି ( ସ. ହନୁମତ୍ )—
हनूमान ହନୁମାନ୍; ହନୁମନ୍ତ; ମାଙ୍କଡ଼—The black-faced
हनुमान monkey. (ବ୍ରି—ହନୁ । ଭୁ କାହିଁ ଅଇଲୁ, ଶ୍ରୀରାମ ନାମ
ଦେଇଲୁ । ବଳି ରାମାୟଣ ।)

ହନୁକମ୍ପ—ସ. ବି—ହନୁର ବା ଗାଲପାଟିର ହାଡ଼ କମ୍ପିବା ରୋଗ—
Hanu kampa Shivering of the jaws.

ହନୁକରଣ—ଦେ. ବି (ବ୍ୟଙ୍ଗ୍ୟ, ଅଧୁନିକ ପ୍ରୟୋଗ)–ଅନୁକରଣ—
Hanukaraṇa (Ironical) Imitation. [ବ୍ରି—ଯେଉଁମାନେ
हनुकरण ହାସ୍ୟାସ୍ପଦ ଭାବରେ ଅନୁକରଣ କରନ୍ତି, ତାଙ୍କ
हनुकरण କର୍ମକୁ ବ୍ୟଙ୍ଗୋକ୍ତିରେ ହନୁକରଣ ବୋଲାଯାଏ ।]

ହନୁକା—ସ· ବି (ହନୁ+କ+ଆ)—ହନୁ ୧।୨ (ଦେଖ) (ହି. ଶ)
Hanukā Hanu 1 and 2 (See)

ହନୁଗ୍ରହ—ସ. ବି (ହନୁ+ଗ୍ରହ. ଧାତୁ+କର୍ତ୍ତ. ଅ)—ରୋଗ ବିଶେଷ
Hanugraha ଦାନ୍ତ ପାଟିର କବଳା ଅଚଳ ହେବା ରୋଗ—Lock jaw.

ହନୁବାର୍ଯ୍ୟ—ଗ୍ରା. ବିଣ (ସ. ଅନିବାର୍ଯ୍ୟ) —ଦୁଷ୍ଟ; ଅଭଦ୍ର—
Hanubārjyā अनिवार्य्य अबरा Wicked.

ହନୁଭେଦ—ସ. ବି (୬ଷ୍ଠୀ ତତ୍; ହନୁ+ଭେଦ)—ଦାନ୍ତପାଟିର କବଳା
Hanu bheda ଖୋଲିଯିବା (ହି. ଶ) –The opening of the jaws.

ହନୁମତ୍—ସ ବି. ପୁଂ (ହନୁ+ଅସ୍ତି ଅର୍ଥରେ ମତ୍; ଅର୍ଥାତ୍ ଯାହାର
Hanumat ହନୁ ଅଛି ବା ବଡ଼; ଏଥିର ୧ମ ପୁରୁଷ ୧ବ
ହନୁମାନ୍)—ହନୁମାନ୍ (ଦେଖ)—Hanumān (See)

ହନୁମନ୍ତ—ଗ୍ରା. ବି (ସ· ହନୁମତ୍)—ହନୁମାନର ଭାବ ନାମ; ହନୁମାନ
Hanumanta (ଦେଖ)—Hanumān (See) (ବ୍ରି—ପରିଘ
हनूमान ପରି ହନୁମନ୍ତ ବାହୁଦଣ୍ଡ । କୃଷ୍ଣସିଂହ. ମହାଭାରତ.
हनुमन्त ବନ ।)

ହନୁମନ୍ତିଆ –ଦେ· ବିଣ—ହନୁମାନ୍ ପରି ପ୍ରକାଣ୍ଡ ବା ବଡ—
Hanumantiā খুব বড় हनुमानके जैसा Big as
Hanumān), (ବ୍ରି—ହନୁମନ୍ତିଆ ବାଇଗଣ; ହନୁମନ୍ତିଆ
କଖାରୁ । )

ହନୁମାକ(ଙ୍କ)ଡ—ଦେ. ବି—ଏକପ୍ରକାର ମାଙ୍କଡ଼—The black
Hanu maka(ṅka)rḍa faced monkey; entellus;
हनूमान hongoor; Semnopithecus Entellus. (ମାଙ୍କଡ଼
कालाबन्दर ତଳେ ଟୀକା ଦେଖ) [ବ୍ରି—ଏମାନଙ୍କ ମୁହଁ, କର
ତଳ ଓ ଗୋଡ଼ତଳପା ଚକ୍କଳ କଳା । ଏମାନଙ୍କର
ଲାଙ୍ଗୁଡ଼ ଦୁଇ ହାତ ପର୍ଯ୍ୟନ୍ତ ଲମ୍ବ; ଏମାନେ ଅଧିକ ସମୟରେ
ଗ୍ରାମରେ ଦୁଷ୍ଟାମି କରନ୍ତି ।]

ହନୁମାନ୍—ସଂ. ବି. ପୁଂ [ହନୁ+ଅସ୍ତ୍ୟର୍ଥରେ ମତ୍. ହନୁମତ୍ ଶବ୍ଦର ୧ମା. ୧ବ )—ଶ୍ରୀରାମଙ୍କ ଦୂତ ବାନର, ଅଞ୍ଜନାଗର୍ଭରୁ ପବନଦେବଙ୍କ (ମତାନ୍ତରରେ ମହାଦେବଙ୍କ) ଔରସଜାତ ବାନରବିଶେଷ
Hanumān
Name o a monkey who was a devotee of Srirāma

ଅନ୍ୟ ସଂ. ନାମ — ପବନନନ୍ଦନ, ଆଞ୍ଜନେୟ, ଯୋଗଚର, ଅଞ୍ଜଲୀ, ହରୁମ୍ମାରମଣ, ବାତସୁତ, ପବନସୁତ, ବାୟୁସୁତ, ପବନାତ୍ମଜ, ବାୟୁଜ, ରାମଦୂତ, ଅର୍ଜୁନଧ୍ୱଜ, ମଧୁଭୋଜ୍ଜ୍ୟ ।

[ବି—ଏ ସୁଗ୍ରୀବଙ୍କ ଭଣଜା; ଏହାଙ୍କ ମାତାଙ୍କ ନାମ ଅଞ୍ଜନା; ଏ ବାୟୁଦେବତାଙ୍କ ପୁତ୍ର । ଏ ପ୍ରଥମେ ବାଳୀଙ୍କର ସେନାପତି ଥିଲେ । ପରେ ବାଳୀଙ୍କର ମୃତ୍ୟୁରୁ ବଞ୍ଚାଉନ ପରେ ଏ ସୁଗ୍ରୀବଙ୍କର ପାରିଷଦ ହେଲେ । ସୀତାହରଣ ପରେ ରାମଚନ୍ଦ୍ରଙ୍କର ସୁଗ୍ରୀବଙ୍କ ସଙ୍ଗେ ମିତ୍ରତା ହେବାରୁ ଏ ସୀତାଙ୍କୁ ଠାବ କରିବାକୁ ଦୂତରୂପେ ଦକ୍ଷିଣକୁ ଯାଇ ଲଙ୍କାରେ ଅଶୋକବନରେ ସୀତାଙ୍କୁ ଠାବ କରି, ତାଙ୍କୁ ଶ୍ରୀରାମଙ୍କ ସଂବାଦ ଦେଇ, ତାଙ୍କଠାରୁ ଲେଉଟି ସଂବାଦ ଓ ସଂକେତ ଆଣି ଶ୍ରୀରାମଙ୍କୁ ଦେଇଥିଲେ । ଏ ନିଜ ଲାଙ୍ଗୁଳରେ ଜଳା ଗୁଡ଼ାଇ ତେଲ ଢାଳାଇ ତହିଁରେ ନିଆଁ ଲଗାଇ ଲଙ୍କାକୁ ପୋଡ଼ି ପକାଇ ଥିଲେ । ଏ ଅତି ବଳଶାଳୀ ଥିଲେ ଓ ଭାରତବର୍ଷରୁ ଲଙ୍କାକୁ ଡେଇଁଥିଲେ । ଲକ୍ଷ୍ମଣଙ୍କ ଶକ୍ତିଭେଦ ହେବାରୁ ଏ ଅମରମହୌଷଧ ଆଣିବାକୁ ଯାଇ ଗନ୍ଧମାଦନ ପର୍ବତକୁ ଉପାଡ଼ି ନିଜ ମୁଣ୍ଡରେ ବୋହି ଲଙ୍କାଠାକୁ ଆଣିବାରୁ ଲକ୍ଷ୍ମଣଙ୍କର ପ୍ରାଣରକ୍ଷା ହେଲା । ଏ ରାବଣଙ୍କ ରାକ୍ଷସ ସେନା ସଙ୍ଗେ ଝିଙ୍କ୍ ମାରଣା ସହକାରେ ଯୁଦ୍ଧ କରିଥିଲେ । ରାମଚନ୍ଦ୍ର ଦେହ ତ୍ୟାଗ କରିବା ସମୟରେ ଏହାଙ୍କୁ ଅମରବର ଦେଇଥିଲେ । କଥିତ ଅଛି ଯେ, ଲଙ୍କା ପୋଡ଼ିବା ପରେ ହନୁମାନ୍ ନିଜ ଲାଙ୍ଗୁଡ଼ରେ ଜଳୁଥିବା ନିଆଁକୁ ହାତରେ ଓ ଗୋଡ଼ରେ ମଳି ଲିଭାଇ ଦେଇ ସେହି କରତଳକୁ ମୁହଁରେ ବୋଳି ଦେବାରୁ ତାଙ୍କ ମୁହଁ କଳା ପଡ଼ିଗଲା ଓ ତଦବଧି ତାଙ୍କ ବଂଶଧରମାନେ (ହନୁମାଙ୍କଡ଼) ମୁହଁପୋଡ଼ା ବାନର ହେଲେ । ଦ୍ୱାପର ଯୁଗରେ ଭୀମଙ୍କ ସଙ୍ଗେ ଗନ୍ଧମାଦନ ପର୍ବତରେ ଏହାଙ୍କର ଭେଟ ହୋଇଥିଲା । ଏ ମହାବୀର ଥିଲେ ଓ ଅଞ୍ଜପରିନ୍ତ ହିନ୍ଦୁମାନେ ଏହାଙ୍କୁ 'ମହାବୀର' ଠାକୁର ରୂପରେ ପୂଜା କରନ୍ତି । ଏ ରାମଚନ୍ଦ୍ରଙ୍କ ଭକ୍ତମାନଙ୍କ ମଧ୍ୟରେ ଶ୍ରେଷ୍ଠ ଥିଲେ ।]

ହନୁମାନ ହନୁମାନ ଦେ. ବି—୧ । ସଂସ୍କୃତ କାବ୍ୟ ମହାନାଟକର ରଚୟିତା ହିନ୍ଦୀଗ୍ରୁ ଶ୍ରୀ ହନୁମାନ ମିଶ୍ର ୨। ହନୁମାଙ୍କଡ଼—2. The black-faced monkey; entellus. ୩ । ହନୁମାଙ୍କଡ଼ ପରି ଅସୁନ୍ଦରମୁହାଁ ବ୍ୟକ୍ତି—3. An ugly-faced person ( like a monkey ).

ହନୁମୁହାଁ—ଦେ. ବିଣ. ପୁଂ—ହନୁମାଙ୍କଡ଼ ପରି ଅସୁନ୍ଦର ମୁଖଯୁକ୍ତ—Monkey-faced; ugly-faced.
Hanu muhān
ବାନ୍ଦର ମୁଖୋ ବାଁଦର ମୁହାଁ

( ହନୁମୁହୀ—ସ୍ତ୍ରୀ )

ହନୁମୋକ୍ଷ—ସଂ. ବି—ଦାନ୍ତପାଟିର ରୋଗବିଶେଷ । [ବି—ଏଥିରେ ଦାନ୍ତପାଟି ଖୁବ ବନ୍ଦ ହୁଏ ଓ ଖୋଲି ହୁଏ ନାହିଁ —ହି. ଶ]—A disease of the jaws.
Hanu moksha

ହନୁଲ—ସଂ ବିଣ. ପୁଂ (ହନୁ+ଲ)—ଦୃଢ଼ ହନୁବିଶିଷ୍ଟ (ହି. ଶ)—Having strong jawbones.
Hanula

ହନୁସ୍ତମ୍ଭ—ସଂ ବି—ରୋଗବିଶେଷ ( ଏଥିରେ ଦାନ୍ତପାଟିର ଜାଡ ବା ଖୋଲିବ ସଙ୍କୋଚ )—Lockjaw (a disease).
Hanu stambha

ହନୁହାଡ଼—ସଂ. ବି—ହନୁର ବା ଦାନ୍ତପାଟିର ଉପରସ୍ଥ ଅସ୍ଥି—Jawbone.
Hanu hārda

ହନୂ(ଇତ୍ୟାଦି)—ସଂ ବି(ହନ୍ ଧାତୁ+କର୍ତ୍ତୃ ଊ)—ହନୁ ଇତ୍ୟାଦି(ଦେଖ)—Hanu etc (See)
Hanū (etc)

ହନୂମାନ୍—ସଂ ବି. ପୁଂ—ହନୁମାନ୍ (ଦେଖ)—Hanumān (See)
Hanūmān

ହନୂଷ—ସଂ ବି (ହନ୍ ଧାତୁ ବଧ କରିବା+କର୍ତ୍ତୃ ଊଷ)—ରାକ୍ଷସ (ନିଶାଚର ବିଶେଷ)—Demon.
Hanūsha

ହନେଇବା—ଗ୍ରା. କ୍ରି—ହନାଇବା (ଦେଖ)—Hanāibā (See).
Haneibā

ହନ୍ତ ସଂ. ଅ [ହନ୍ ଧାତୁ+ଭାବ, ତ] ୧ । ( ହର୍ଷ, ଅନୁକମ୍ପା, ବାକ୍ୟାରମ୍ଭ, ବିଷାଦ, ଦାନ, ସମ୍ଭ୍ରମ ଓ ଖେଦରେ ବ୍ୟବହୃତ ଅବ୍ୟୟ)—ଅହୋ !—1. An interjection used to express gladness, pity, sorrow, grief, respect and in the beginning of a speech. ୨। ତର୍ପଣରେ ପିତୃଲୋକଙ୍କୁ ଜଳ ଦେବା ସମୟରେ ସମ୍ବୋଧନ ବାକ୍ୟଶେଷରେ ବ୍ୟବହୃତ ଶବ୍ଦ—2. An interjection used in concluding the address to the deceased ancestors while offering oblations of water. ( ଉ—ସକଳପୁତ୍ରସ୍ୟ ତାଂ, ତ-ସ୍ୱିଧାଭୂଦବଂ ହନ୍ତ ତର୍ପଣ ବଚନ )—ଦେ. ବି—ପୀଡ଼ନ—Oppression. ( ଉ—ଦୂତେ ମଦନ ମସ୍ତୀପତି କଲେ ହନ୍ତ ଯେ—ପ୍ରାଚୀ ଭରବାକଥ ।)
Hanta
ପୀଡା ପୀଡ଼ା

ହନ୍ତକ—ଦେ. ବି (ସଂ ହନ୍ ଧାତୁ; ହନ୍ତୃ ଶବ୍ଦର ୧ମା ୧ବ ପୁଂ;ହନ୍ତା)—ହତ୍ୟାକାରୀ; ଘାତକ ବ୍ୟକ୍ତି—Murderer; slayer.
Hantaka
ଘାତକ ହନ୍ତକ

ହନ୍ତକାର—ସଂ. ବି (ହନ୍ତ=ବାକ୍ୟାଦିମୂରେ ବ୍ୟବହୃତ ଅବ୍ୟୟ+କୃ ଧାତୁ +କର୍ତ୍ତୃ ଅ; ବାକ୍ୟାରମ୍ଭରେ 'ହନ୍ତ' ଶବ୍ଦ ପ୍ରୟୋଗପୂର୍ବକ ଏହା ଅତିଥିଙ୍କୁ ଦିଆଯାଉଥିବାରୁ)—୧ । ଅତିଥିଙ୍କୁ ଦେୟ ତଣ୍ଡୁଳ (ଶବ୍ଦକଳ୍ପଦ୍ରୁମ)—1. Rice presented to a guest. ୨ । ତର୍ପଣରେ ପିତୃଲୋକଙ୍କ ଜଳ ଦେବା ସମୟରେ 'ଏତଦୁଦକଂ ହନ୍ତ' ଶବ୍ଦର ଉଚ୍ଚାରଣ (ଅଭିଧାନର ଚିନ୍ତା) —2. Utterance
Hantakāra

of the word Hanta while offering water to the manes—୩ । ଅତିଥିଙ୍କୁ ଦାନ ଦଅଯିବା ଷୋଳ ଗ୍ରାସ ଅନ୍ନ ବା ଭକ୍ଷ୍ୟ (କୂର୍ମପୁରାଣ, ମାର୍କଣ୍ଡେୟ ପୁରାଣ)—3. Boiled or unboiled rice sufficient for 16 mouthfuls presented to a guest. ଦେ. ବି—ହନ୍ତକ (ଦେଖ) Hantaka (See)

ହନ୍ତକାରୀ(ରୁ)—ଦେ. ବିଣ. (ସ. ହନ୍ତା)—୧ । ହନ୍ତକ (ଦେଖ)—Hantakārī (ru) 1. Hantaka (See) [ଉ—ଦୁର୍ଯ୍ୟୋଧନ ଘାତକ ସମରରେ ଦ୍ରୌପଦୀଙ୍କ ଗୁରୁ, ଦେଖାଇବାର ବେଳେ ଶ୍ରମ ହନ୍ତକାରୀ ହନ୍ତାକାରୀ—କୃଷ୍ଣସିଂହ ମହାଭାରତ, ବନ । ] ୨ । ସର୍ବ୍ବପ୍ରଧାନ ସର୍ବପ୍ରଧାନ; ଶ୍ରେଷ୍ଠ—2. Best; most eminent. ସର୍ବ୍ବପ୍ରଧାନ [ଉ—ଦର ବଶୀଷ୍ଠିକଙ୍କୁ ଜାଣ୍ଡେଁଯ୍ ଗୁରୁ, ହେଲେ ସବୁ ବଳମାନଙ୍କେ ହନ୍ତକାରୁ—କୃଷ୍ଣସିଂହ ମହାଭାରତ ବନ] ୩ । ବଳିଷ୍ଠ—3. Strongest. [ଉ—ଯେବେ ଥିଲେ ବାନରେ ହନ୍ତକାରୁ—କୃଷ୍ଣସିଂହ ମହାଭାରତ,ବନ ।]

ହନ୍ତବ୍ୟ—ସଂ. ବିଣ. (ହନ୍ ଧାତୁ+କର୍ମ ତବ୍ୟ)—ହନନଯୋଗ୍ୟ; ହତ Hantabya ହେବାର ଉପଯୁକ୍ତ; ଯାହାକୁ ମାରିଦବାଇବା ଉଚିତ Fit to be killed; deserving death.

ହନ୍ତ ସନ୍ତ—ଦେ. ବିଣ. (ସ. ହନ୍ତ+ସନ୍ତପ୍ତ; ହନଧାତୁ=ହିଂସା କରିବା, Hanta santa ତୁଳନୀୟ-ଶବ୍ଦକଳ୍ପଦ୍ରୁମକବେ-ବସୁଂ ହେନ୍ତ-ହନ୍ତସନ୍ତ,ପ୍ରପୀଡ଼ିତ ନେଷ୍ଟାଦ୍ ହନ୍ତ=ହନ୍ତାନେଷଣ ବର କର ଅପେ ହୈରାନ ପରେଶାନ ମନ୍ଦୁନ୍ତି ବା ବିବ୍ରତ ହେଉଅଛୁଁ)—୧। ପ୍ରପୀଡ଼ିତ 1. Harassed; oppressed; persecuted. ୨ । ବିବ୍ରତ; ବ୍ୟତିବ୍ୟସ୍ତ; କଷ୍ଟପ୍ରାପ୍ତ—2. Troubled, suffering great hardship.

ହନ୍ତସନ୍ତ କରିବା—ଦେ. କ୍ରି—୧ । ଅତି ବିବ୍ରତ କରିବା—1. To Hantasanta karibā put one to much trouble. हस्तसस्त करना ୨ । କଷ୍ଟ ଦେବା; ଉତ୍ପୀଡ଼ନ କରିବା—2. To हैरान (परेशान) करना harass; to oppress [ହନ୍ତସନ୍ତା(ନ୍ତ) ବା—ଅନ୍ୟରୂପ ]

ହନ୍ତସନ୍ତିଆ—ଦେ. ବିଣ. ପୁଂ—୧ । ଯେଉଁ ବ୍ୟକ୍ତି ସବଦା ବ୍ୟସ୍ତ ଥାଏ; Hanta santia ବ୍ୟତିବ୍ୟସ୍ତ—1 Harassed. ୨ । ଅସନ୍ତୁଷ୍ଟ हायरान हैरान परेशान—2 Discontented.
ହନ୍ତସନ୍ତୀ } ସ୍ତ୍ରୀ
ହନ୍ତସନ୍ତେଇ }

ହନ୍ତା—ସ. ବିଣ. ପୁଂ (ହନ ଧାତୁ+କର୍ତ୍ତୃ ତୃ; ହନ୍ତୃ ଶବ୍ଦର ୧ମା ୧ବ) Hantā —ଘାତକ—Murderous. (ଏ ଶବ୍ଦ ଅନ୍ୟ ଶବ୍ଦ (ହନ୍ତ୍ରୀ—ସ୍ତ୍ରୀ) ସଙ୍ଗରେ ସମାସରେ ଅଧି ବ୍ୟବହୃତ ହୁଏ ଯଥା, ପିତୃହନ୍ତା, ଶତ୍ରୁହନ୍ତା)—ସ. ବି. ପୁଂ—ଘାତକ ବ୍ୟକ୍ତି—Murderer. ପ୍ରାଦେ. (ଅଠମଲ୍ଲିକ ଛୋଟନାଗପୁର)—୧ । ଅମୁକ—1.Such or such a person. [ଉ—ହନ୍ତାଠ ଭୁଅ; ହନ୍ତାର ମାଅ] ୨ । ନିରର୍ଥକ ବାକ୍ୟାଳଙ୍କାର ବିଶେଷ—2. Unmeaning expression used in a sentence. ପ୍ରାଦେ. (ବଙ୍ଗସୀମାନ୍ତ ମେଦିନୀପୁର) ସର୍ବନାମ, ଅନାଦରାର୍ଥକ) ସେଇଟା—That(in contempt).

ହନ୍ତା(ନ୍ତେ)ଇବା—ଦେ. କ୍ରି—ହନ୍ତସନ୍ତ କରିବା (ଦେଖ)—Hantā(nte)ibā Hanta santa karibā (See)

ହନ୍ତା ପଡ଼ିବା—ପ୍ରାଦେ (ଉତ୍ତର ବାଲେଶ୍ୱର) କ୍ରି—ସଙ୍କୁଚିବା; ଭିତରକୁ Hantā pardibā ପଶିଯିବା—To shrink in. [ଉ—ତା ପେଟ ହନ୍ତା ହେଉଛି=ପେଟ ପଶି ଯାଇଛି ।]

ହନ୍ତାଳ—ଦେ. ବି—ହେନ୍ତାଳ (ଦେଖ) Hantāla Hentāla (See)

ହନ୍ତାଳିବା—ପ୍ରାଦେ (ଗଞ୍ଜାମ) କ୍ରି—(ବାଘଆଦି) ଡ଼ାକିବା—Hantālibā To bellow.

ହନ୍ତୁ—ସ ବି (ହନ୍ ଧାତୁ+ଉଣ୍. ତୁ)—୧ । ମୃତ୍ୟୁ—1. Death. Hantu ୨ । (କେତ୍ରି. ତୁ)—ବୃଷ (ଶବ୍ଦକଳ୍ପଦ୍ରୁମ)—2. Bull.

ହନ୍ତୁକ—ଦେ. ବିଣ. ପୁଂ (ସ. ହନ୍ତା)—୧ । ହନ୍ତା; ଘାତକ—Hantuka 1. Murderous. ୨ । ହିଂସ୍ର—2. Spiteful; घातक हन्ता revengeful; rapacious. ୩ । ନିଷ୍ଠୁର—[ହନ୍ତୁକୀ—ସ୍ତ୍ରୀ] Cruel.

ହନ୍ତୁସନ୍ତୁ—ଦେ. ବିଣ—ହନ୍ତସନ୍ତ (ଦେଖ)—Hantasanta (See) Hantusantu [ଉ—ପୋଡ଼ୁଏ ଜାଳନ ସଖି ଚଳୁଛୁ କପାଇଁ, କଅର୍ଥ କାରଣେ ହନ୍ତୁସନ୍ତୁ ହୋଇ । ପ୍ରାଚୀ. ରହସ୍ୟ-ମଞ୍ଜରୀ । ]

ହନ୍ତୃ (ନ୍ତ)—ସ. ବିଣ (ହନ୍ ଧାତୁ+କର୍ତ୍ତୃ ତୃ)—ଯେ ହତ୍ୟାକରେ—Hantṛu Killing; murderous. ସ.ବି—ଘାତକ ବ୍ୟକ୍ତି—(ହନ୍ତା—ପୁଂ) [ହନ୍ତ୍ରୀ - ସ୍ତ୍ରୀ] Murderer.

ହନ୍ତୋକ୍ତି—ସ. ବି—ଅନୁକମ୍ପୋକ୍ତି (ଶବ୍ଦ କଳ୍ପଦ୍ରୁମ)—Hantokti Expression of pity

ହନ୍ଦର—ବୈଦେ. ବି (ଇଂ ହଣ୍ଡ୍ରେଡ୍)—୧ । ଏକଶତ ସଂଖ୍ୟା—Handara 1. Hundred. ୨ । ହଣ୍ଡ୍ରେଡ୍ ୱେଟ୍; ଇଂରେଜ-हन्दर ପ୍ରଚଳିତ ପଦାର୍ଥର ମାପ ଓ ଓଜନର ପରିମାଣ ବିଶେଷ—हुन्दर 2. Hundred-weight; a unit of weight. [ଦ୍ର—ଏହା ସ୍ଥାନ ବିଶେଷରେ ୧୦୦, ୧୧୨ ଓ ୧୨୦ ପାଉଣ୍ଡ୍ ସଙ୍ଗେ ସମାନ ।

ଇଂଲଣ୍ଡରେ ଏହା ୧୧୨ ପାଉଣ୍ଡ୍=ବାଲେଶ୍ୱରୀ ୫୬ ସେର=କଟକ ୧ ମହଣରୁ କିଛି ବେଶି । ] ୩ । (ଇଂ ହଣ୍ଡ୍ରେଡ୍) ତାସ୍ ଖେଳରେ ଜଣେ ଖେଳାଳିଙ୍କର ପାଇଥିବା ତାସମାନଙ୍କର ମୂଲ୍ୟସ୍ୱରୂପ ଧରିଯିବା ଶତ ସଂଖ୍ୟା—3. Hundred in the game of cards. [ଦ୍ର—ଯେବେ ଜଣେ ଖେଳାଳିଙ୍କ ହାତକୁ ଏକାଥରକେ ଗୋଟିଏ ଟେକ୍କା, ଗୋଟିଏ ସାହେବ, ଗୋଟିଏ ବିବି, ଗୋଟିଏ ଗୋଲାମ ଓ ଗୋଟିଏ ଦଶା ଓ ଗୋଟିଏ ନଅ ଆସିଯାଏ, ତେବେ ତାଙ୍କର ହନ୍ଦର ହୋଇଅଛି ବୋଲି ବୋଲାଯାଏ ।]

ହଣ୍ଡାର୍(ଳି)ବା—ଦେ. କ୍ରି (ସ଼ ଅନ୍ଦୋଳନ)—୧। କୌଣସି ବସ୍ତୁ ନିମିତ୍ତ
Han āri(li)bā କୌଣସି ସ୍ଥାନକୁ ଭଲ ଭଲ କରି ଖୋଜିବା;
ଅଣ୍ଡାଳିବା—1. To thoroughly search a place
হাঁতড়ান fo something. ୨। ଅନ୍ଧାଳିବା; ଦରାଣ୍ଡିବା—
हथोरना 2. To grope for a thing.

ହଣ୍ଡାର୍(ଳି) ହେବା—ପ୍ରାଦେ (ବାଲେଶ୍ୱରର ପାଟଣା) କ୍ରି—ଘାଣ୍ଟି ହେବା;
Handāri(li) hebā ହଇରାଣ ହେବା—To be much
toubled or bothered.

ହଣ୍ଡି ସନ୍ଦି(ନ୍ଧି)—ଦେ. ବି—ଅଣ୍ଡିସନ୍ଧି (ଦେଖ)
Handi sandi(ndhi) Andisandi (See)
অন্দিসন্ধি कोनेकोने

ହଣ୍ଡେ—ଦେ. ଅ (ପ୍ରାଚୀନ)—ହେତୁରୁ; ଯୋଗୁଁ—For (that).
Hande (ଉ—ବଧିବଶେ କଣ୍ଟକେ ଅଟକ ହେଲେ ସେହ୍ନ, ସେ ହଣ୍ଡେ
ଜନ୍ମେ ବ୍ୟାକୁଳ ମୋ ହୃଦ ହେଉଛି ତହୁଁ । ସଦାନନ୍ଦ କବିସୂର୍ଯ୍ୟ—
के लिये, हेतु ଯୁଗଳରସାମୃତ ଲହରୀ ।)

ହନ୍ନ—ସଂ. ବିଣ. ପୁଂ (ହଦ୍ ଧାତୁ=ହଗିବା+କ୍ତ ଭି. ତ)—
Hanna କୃତପୁରୀଷୋତ୍ସର୍ଗ; ଯେ ହଗି ସାରିଅଛି—(A person)
(ହନ୍ନା—ସ୍ତ୍ରୀ) Who has passed faeces.

ହନ୍ୟ—ସଂ. ବିଣ. ପୁଂ (ହନ୍ ଧାତୁ+କର୍ମ. ଯ)—ହନ୍ତବ୍ୟ—
H nya (ହନ୍ୟା - ସ୍ତ୍ରୀ) Fit to be killed.

ହନ୍ୟମାନ—ସଂ. ବିଣ ପୁଂ [ହନ୍ ଧାତୁ+କର୍ମ (ଶାନ) ଅନ]—୧।ଯାହାକୁ
Hanyamāna ହଣା ଯାଉଅଛି—1. One who is being
[ହନ୍ୟମାନା—ସ୍ତ୍ରୀ] cut. ୨। ଯାହାକୁ ବଧ କରି ଯାଉଅଛି—
2. Being slain.

ହପ୍‌କା—ଦେ. ବି—୧। ହଠାତ୍ ହୃତ୍ସ୍ଥିତ ଭୟ—1. Sudden
Hap-kā fear; terror; fright ୨। ଭୟ—2. Fear.
ভয় भय ୩। ହଣ୍ଟା—3. Paroxysm.

ହପ୍‌ତନ୍(ମ୍) (ଇତ୍ୟାଦି)—ବୈଦେ. ବି—ହପ୍ତନ୍(ଇତ୍ୟାଦି) (ଇତ୍ୟାଦି)
Hap-tan(m) (etc) Haptan(m) etc (See)

ହପ୍‌ତରଙ୍ଗି—ପ୍ରାଦେ (ପୁରୀ) ବି—ହଠାତ୍ ଦେଖାଇବା ଧମକାଣି; ଫାଙ୍କି;
Hap-tarangi ଭଣ୍ଡି ଭୋଗାଳ—Bravado; boastful
denial; brazen-facedness.

ହପ୍‌ତା—ବୈଦେ. ବି—ହପ୍ତା (ଦେଖ)
Hap-tā Haptā (See)

ହପା (ଇତ୍ୟାଦି)—ଦେ. ବି—ହପ୍ପା [ଇତ୍ୟାଦି] (ଦେଖ)
Hapā (etc) Happā [etc] (See)

ହପା(ପେ)ଇବା—ଦେ. କ୍ରି—ହପ୍ପାଇବା [ଦେଖ]
Hapā(pe)ibā Happāibā (See)

ହପାଏ କ,କେ)—ଦେ.ବିଣ ଓ ବି ଓ କ୍ରି ବିଣ—ହପ୍ପାଏ(କ,କେ) [ଦେଖ]
Ha. āe(ka,ke) Happāe(ka,ke) [See]

ହପାଲି—ଦେ. ବି—ହାତୀର ଦ୍ରୁତଗତି—
H pali Swift motion of an elephant.
হাতীরজোরচাল, দ্রুতগতি हाथीका जोरसे चलना

ହପାଳିଆ—ଦେ. ବେ. ପୁଂ - ହପ୍ପାଳିଆ [ଦେଖ]
Hapālia Happālia (See)
[ହପାଳି, ହପାଲେଇ—ସ୍ତ୍ରୀ]

ହପାଲିଆ—ଦେ. ବିଣ. ପୁଂ—୧। ଦ୍ରୁତଗତିବିଶିଷ୍ଟ (ହାତୀ)—
Hapālia 1. Swift-going (elephant). ୨। ଦ୍ରୁତ
দ্রুতগামী जोरसेचलनेवाला [ଗତି]—2. Swift motion.
[ହପାଲି, ହପାଲେଇ—ସ୍ତ୍ରୀ]

ହପାଲିବା—ଦେ. କ୍ରି - [ହାତୀ] ଦ୍ରୁତଗତିରେ ଚାଲିବା—
Hapālibā To walk swiftly (said of an elephant)
জোরে চলা जोरसेचलना

ହପିସ୍(ସି)—ବୈଦେ, ଗ୍ରା. ବି (ଇଂ. ଅଫିସ)—ଅଫିସ୍; କାର୍ଯ୍ୟାଳୟ—
Hapis(si) আপিস औफिस Office.

ହପୁଷା ସ. ବି—ହବୁଷା (ଦେଖ)
Hapushā Habushā (See)

ହପେଇବା—ଦେ. କ୍ରି—ହପ୍ପାଇବା [ଦେଖ]
Hapeibā Happāibā (See)

ହପ୍ତନ୍(ମ୍)—ବୈଦେ. ବିଣ (କଟକଆ) (ଅ. ହପ୍ତନ ତୁଳନା କର ସ.
Haptan(m) ସପ୍ତନ୍)—ସପ୍ତମ—Seventh. ବି—ସପ୍ତମ
হপ্তম हप्तम ଶ୍ରେଣୀର ଉତ୍କୃଷ୍ଟ ଭୂମି—A land of the 7th
class in productiveness.

ହପ୍ତନ୍(ମ୍) ଆଇନ୍(କାନୁନ୍)—ଦେ. ବି—ଖ୍ରୀଷ୍ଟାବ୍ଦର ୧୭୯୯
Haptan(m) āin(kānun) ସାଲର ୭ ଆଇନ୍—
সপ্তমআইন हप्तम कानुन् Act VII of 1799

ହପ୍ତା—ବୈଦେ. ବି (ଅ. ହପ୍ତା, ହଫ୍ତା)—୧। ସପ୍ତାହ—1. Week.
Haptā হপ্তা हप्ता ୨। ସାପ୍ତାହିକ ମଜୁରି—2. Weekly
wages. (ଉ—ସେ ହପ୍ତା ନ ପାଇ ବସି ବସି
ଡାକୁରୁ ଖାଇ ଓଗାଳ ଘେଞ୍ଚେ ପଡ଼େଇ ଅସିତ—
ଫକୀରମୋହନ)

ହପ୍ତାଏ—ଦେ. ବି—ଏକ ସପ୍ତାହ—
Haptāe One week.
এক হপ্তা एक हप्ता

ହପ୍ତାକ—ଦେ. ବି—ଏକ ହପ୍ତା ମାତ୍ର—
Haptāka One week only.
এক হপ্তা एक हप्ता

ହପ୍ତାକେ—ଦେ. କ୍ରି. ବିଣ—୧। ଏକ ସପ୍ତାହ ମଧ୍ୟରେ—1. Within
Haptāke one week. ୨। ପ୍ରତି ସପ୍ତାହରେ—
এক হপ্তায় एक हप्तामें 2. In every week.

ହପ୍ତା ର(ରି)ପ(ପୋ)ର୍ଟ - ବୈଦେ. ବି (ଅ. ହପ୍ତା ଓ ଇଂ ରିପୋର୍ଟ)—
Haptā ra(re)pa(po)t ପ୍ରତି ସପ୍ତାହରେ କୃଷ୍ଣିପକ୍ଷଙ୍କ
সাপ্তাহিক রিপোর্ট हप्ता रिपोर्ट ନିକଟକୁ ପ୍ରେରିତ
ବିବରଣ ପତ୍ର—Weekly report. (ଉ—ଚୌକିଦାରମାନେ
ଥାନାପାଳ ଦିନ ଗାଁର ଘଟଣା ମଧ୍ୟରେ ଘଟିଥିବା ଜନ୍ମ
ମୃତ୍ୟୁ ଆଦିର ହପ୍ତା ରିପୋର୍ଟ ଥାନାରେ ଦିଅନ୍ତି ।

ହପ୍ତା ହପ୍ତା—ଦେ. କ୍ରି. ବଣ—ଫି ହପ୍ତା; ପ୍ରତି ସପ୍ତାହରେ—
Haptā haptā — Every week; week after week.
ପ୍ରତି ସପ୍ତାହେ — फि हफ्तामें

ହପ୍ତା ହାଟ—ଦେ. ବ (ଅ. ହପ୍ତା+ସଂ ହଟ୍ଟ)—ଯେଉଁ ହାଟ ସପ୍ତାହରେ ଥରେ ବସେ—A market or fair held once every week; weekly fair.
Haptā hāta
সাত দিনের হাট — हफ्ता हाट

ହପ୍ପା—ଦେ. ବ (ସ. ବାଟିକା—ହାଉ ?)—୧। ଢେଉ—I. Wave.
Happā
ঝোঁক — हप्पा
୨। ହଠାତ୍ ଉଚ୍ଛୁସିତ ଲୁଅର, ବର୍ଷା, କ୍ରୋଧ, ଅକ୍ରମଣ, ଗାଳି, ମାଡ଼ ଅବର ତୋଡ଼ ବା ଥର ବା ଝୁଙ୍କ—2. Outburst; one course or time of tide, rain, anger or assault; a stroke. ୩। ଆବେଗ; ଅତିଶଯ୍ୟ—3. Paroxysm; heat; a bursting; a rage (e.g. a burst of passion; heat of passion)—୪। ଜୋର୍; ବେଗ—4. Force. ୫। କ୍ଷଣିକ ଆବେଗ—5. Momentary outburst. ୬। ଉଗ୍ରକଳତା—6. Fury.

ହପ୍ପା(ମ୍ପା,ପ୍ପେ,ପ୍ପା)ଇବା—ଦେ. କ୍ରି—୧। (ହାମ୍ପିବାର ଣିଜନ୍ତରୂପ) ଅନ୍ୟ କାହାକୁ ହାମ୍ପିବାକୁ ବାଧ୍ୟ କରିବା—I. To cause to gasp. ୨। ଆକ୍ରମଣ କରିବାକୁ ପ୍ରସ୍ତୁତ ହେବା—2. To be ready for attacking. ୩। ହାମ୍ପିବା—3. To gasp.
Happā(mpā,ppe,ppā)ibā
হাপান — हाँफवाना

ହପ୍ପା ଉଠିବା—ଦେ. ବ—୧। ଅତିଶଯ୍ୟ ପ୍ରକାଶିତ ହେବା—I. A fit or paroxysm or rage. ୨। ଢେଉ ଉଠିବା—2. The coming or advent of a wave.
Happā uṭhibā
ঝোঁক ওঠা — हप्पा उठना

ହପ୍ପାଏ—ଦେ. ଉକ୍ତି ବ—ଏକ ହପ୍ପା—
Happāe — One paroxysm or outburst.
একঝোঁক — एकहप्पा

ହପ୍ପାକ—ଦେ. ବ—ଏକ ହପ୍ପା ମାତ୍ର—
Happāka — One outburst.
একঝোক — ऐकहप्पा

ହପ୍ପାକୁ ହପ୍ପା—ଦେ. କ୍ରି ବଣ—ଏକ ତୋଡ଼ ପରେ ଅନ୍ୟ ତୋଡ଼, ତୋଡ଼କୁ ତୋଡ଼; ଥରକୁ ଥର—
Happāku happā — Outburst after out burst.
বারেবারে — फिरफिर

ହପ୍ପାକେ—ଦେ. କ୍ରି. ବଣ—ଏକ ହପ୍ପାରେ—
Happāke — In one outburst.
একবারে — एक हप्पामें

ହପ୍ପାଳିଆ—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତି କ୍ଷଣିକ ଆବେଗର ବଶବର୍ତ୍ତୀ ହୁଏ—Passionate; subject to momentary outbursts of passion.
Happāliā
খেয়ালী — हप्पालिया
ହପ୍ପାଳୀ } ସ୍ତ୍ରୀ— गुस्सैल
ହପ୍ପାଳେଇ }

ହପ୍ପାଲି—ଦେ. ବ—ହପାଲି [ଦେଖ]—
Happāli — Hapāli (See).

ହପାଳିଆ—ଦେ. ବଣ—ହପାଳିଆ (ଦେଖ)—
Happāliā — Hapāliā (See).
[ହପ୍ପାଲି, ହପ ାଲେଇ—ସ୍ତ୍ରୀ]

ହପ୍ପାଲିବା—ଦେ. କ୍ରି—ହପାଲିବା (ଦେଖ)—
Happālibā — Hapālibā [See]

ହପ୍ପେଇବା—ଦେ. କ୍ରି—ହପ୍ପାଇବା [ଦେଖ]—
Happeibā — Happāibā [See]

ହପ୍ରମ୍ କଥା—ଦେ. ବ—ପାସ୍ତ୍ର ବଡ଼ିଙ୍ଗ ସାହେବଙ୍କ ସଙ୍କଳିତ ସାନ୍ତାଳ ମାନଙ୍କ ସ୍ୱତ୍ତ୍ୱ, ଶାସ୍ତ୍ର, ପ୍ରବାଦ ଆଦି ବର୍ଣ୍ଣିତ ହୋଇଥିବା ଗଣ୍ଡିଏ ଇଂରାଜ ଗ୍ରନ୍ଥ—The title of a work embodying the traditions, institutions and usages of the Santals, compiled by a Santalee scholar, Revd Bodding of Maulpahari—(Mayurbhanj Chronicle—July 1937.)
Hapram kathā

ହପ୍ପାଧର୍—ଗ୍ରାଦେ (ସମ୍ବଲପୁର) ବ—୧। କୁସ୍ତିକରିବା; ବ୍ୟାୟାମ—Athletics. ୨। ମାଡ଼ଧର—2. Affray.
Happādbarā

ହଫ୍‌ତନ୍[ମ୍](ଇତ୍ୟାଦି)—ବୈଦେ. ବ—ହପ୍ତନ[ମ୍] ଇତ୍ୟାଦି (ଦେଖ)
Haph-tan(m) etc — Hap-tan(m)etc (See)

ହଫ୍‌ତା—ଦେ. ବ—ହପ୍ତା (ଦେଖ)—
Haphtā — Haptā (See).

ହଫିସ[ସି]—ବୈଦେ. ଗ୍ରା. ବ [ଇଂ. ଅଫିସ୍]—କାର୍ଯ୍ୟାଳୟ; ଅଫିସ୍—Office.
Haphis(si) — আফিস — ऑफिस

ହ(ହେ)ବ୍‌କା—ଗ୍ରାଦେ.(ସମ୍ବଲପୁର,ଗଡ଼ଜାତ) ବ—ହାବୁକା (ଦେଖ)—
Ha (he) b-kā — Hābukā (See)

ହବ୍‌କା ଦବ୍‌କା—ଗ୍ରାଦେ. (ଗଡ଼ଜାତ) ଦେ. ବ.—ଧମକ ଚମକ—
Hab-ka dab-kā — Loud threats; snubbing.

ହବ୍‌କା ଦେବା—ଗ୍ରାଦେ. (ବାଲେଶ୍ୱର) କ୍ରି—ହଠାତ୍ ଗୁଡ଼ିର ଅନେକ ଗୁଡ଼ାଏ ସୂତା ଏକ ସାଙ୍ଗରେ ଛାଡ଼ିଦେବା—1. To release large lengths of thread of a paper-kite at once. ୨। ଢେଉ ଉଠାଇବା—2. To create waves on water.
Hab-ka debā
[ହାବ୍ (ବ୍) କା ଦେବା—ଅନ୍ୟରୂପ]

ହବ୍ କୋଡ଼୍ ବକୋ—ଗ୍ରାଦେ. (ସମ୍ବଲପୁର) ବଣ—ଅବଢ଼ାଖାବଢ଼ା; ବନ୍ଧୁର; ଉଚ୍ଚାନୀଚ (ଭୂମି)—Rough or undulating (ground)
Hab-kordh bako

ହବଡ଼ାଇବା—ଗ୍ରାଦେ. (ସମ୍ବଲ) ବ.—ଝୁଣ୍ଟି ପଡ଼ିବା—
Hab-rdaibā — To stumble; to trip.

ହବଡ଼ାଇ ହେବା—ଗ୍ରାଦେ. (ବଲାଙ୍ଗିର ପାଟଣା) କ୍ରି.—ବଳାତ୍କାରରେ ପ୍ରବେଶ କରିବା—To enter forcibly.
Hab-rdai hebā

ହବ୍ ଦାଏ—ଗ୍ରାଦେ. (ସମ୍ବଲପୁର) କ୍ରି. ବଣ—ଥରେ—
Hab-dāe — Once.

ହବ୍‌ଲି—ଗ୍ରାଦେ. (ସମ୍ବଲପୁର)ବଂ(ଭୁବନାକର,ଫା. ହବେଲୀ)—ହବେଲି; ପ୍ରାସାଦ—Palace; mansion; palatial building.
Hab-li

ହବ—ସ. ବି (ହୁ ଧାତୁ=ହୋମ କରିବା+ଭାବ ଅ)—୧ । ହୋମ—
Haba 1. Oblations of ghee unto fire. ୨ । ଯଜ୍ଞ—2. Vedic sacrifice. ୩ । (+ଅଧିକରଣ ଅ) ଅଗ୍ନି (ହି. ଶ)—3. Fire. ୪ । (ହ୍ୱେ ଧାତୁ=ଆହ୍ୱାନ କରିବା+ଭାବ. ଅ) ଆଜ୍ଞା—4. Order. ୫। ଆହ୍ୱାନ—5. Call. ଗ୍ରା. କ୍ରି—[ସ. ଭୂ ଧାତୁ ଏବଂ ଓଡ଼ିଆ ହେବା
ହବେ ବା ଗ୍ରାମ୍ୟ ହବା ଧାତୁର ଭବିଷ୍ୟତ ଭୃତୀୟ ପୁରୁଷ ଏକବଚନ
होगा —(ସେ ବା ତାହା) ଓ ମଧ୍ୟମ ପୁରୁଷ କର୍ତ୍ତାର କ୍ରିୟାର ରୂପ] ହେବ—(It, he, she, you) Will be.

ହବକ—ପ୍ରାଦେ· (ବଲାଙ୍ଗୀର ପାଟଣା) ବି—ଧକ୍କା; ଢାଳୁକା—
Habak Push.

ହବଙ୍ଗ—ସ. ବି—କାଂସ୍ୟପାତ୍ରରେ ଦଧି ମିଶ୍ରିତ ଅନ୍ନ ଭକ୍ଷଣ—
Habaṅga Eating of boiled rice mixed with curd in a bell metal untensil.

ହବନ—ସଂ· ବି [ହୁ ଧାତୁ+ଅଧିକରଣ ଅନ]—୧ । ହୋମ—
Habana 1. Pouring of ghee unto the Homa fire. ୨। ହୋମକୁଣ୍ଡ (ହି. ଶ)—2. The vessel in which fire is lighted and ghee is offered. ୩ । ଅଗ୍ନି (ହି. ଶ)—3. Fire. ୪ । (+କରଣ ଅନ) ସ୍ରୁବ (ହି. ଶ)—4. The spoon with which ghee is poured unto fire.

ହବନାୟୁଃ—ସ. ବି (ହବନ+ଆୟୁଃ)—ଅଗ୍ନି—
Habanāyuh Fire.

ହବନୀ—ସ· ବି—(ହୁ ଧାତୁ+କରଣ ଅନ+ସ୍ତ୍ରୀ ଈ)—ହୋମକୁଣ୍ଡ—
Habanī A pot into which ghee is offered unto fire.

ହବନୀୟ—ସ. ବଣ (ହୁ ଧାତୁ+କର୍ମ ଅନୀୟ)—୧ । ହୋମରେ
Habanīya ଅବଶ୍ୟକ—1. Required for Homa. ୨ । ହୋମ କରିବାର ଯୋଗ୍ୟ—2. Fit to be offered in Homa. ବି—(+କରଣ ଅନୀୟ)—ହୋମୀୟ ଦ୍ରବ୍ୟ—Materials required for Homa.

ହବା—ବୈଦେ. ବି (କଚରୀଅ)—ହିବା (ଦେଖ)—Hibā (See)—
Habā ଦେ. ବଣ—ହବ୍ବା (ଦେଖ)—Habbā (See)
ଗ୍ରା. କି (ସଂ. ଭୂ ଧାତୁ)—(ଓଡ଼ିଆ ହେବାର ଗ୍ରାମ୍ୟଆକାର) ଘଟିବା; ହେବା—To be. ପ୍ରାଦେ. (ଗଞ୍ଜାମ) ବି—(ଭୁଲକାରକ—ହି. ଓ ଫା, ହୱା)—ପବନ—Wind; air.

ହବାକ୍—ବୈଦେ. ବି (ଜବାମ)—ହବ୍ବାକ୍ (ଦେଖ)—
Habāk Habbāk (See)

ହବା କଥା ନାହିଁ(ନୁହେଁ)—ଗ୍ରା. ବାକ୍ୟ—ଅତି ଆଶ୍ଚର୍ଯ୍ୟଜନକ ଘଟନା
Habā kathā nāhiṅ(nuheṅ) ଦେଖାଗଲେ ବା ଶୁଣାଗଲେ, ଅର୍ଥ
ହଓଯାରନୟ ଏ ସଂସାରରେ ଏହିପରି କଥା ହେଇନାହିଁ—Interjec-
होनेकिबातनहीं ional sentence used in giving vent to astonishment or displeasure.
[ଦ୍ର—କୌଣସି ଘଟନା ଦେଖି ଆଶ୍ଚର୍ଯ୍ୟାନ୍ୱିତ ବା ବିରକ୍ତ ହେବା ବ୍ୟକ୍ତିଙ୍କ ବ୍ୟବହୃତ ବଚନ ଅଟେ]
ଗ୍ରା ବି—ହେବା; ଘଟିବା—Being; happening.

ହବାଚନ୍ଦ୍ର—ଦେ. ବଣ—୧ । ଓଲୁ—1. Stupid. ୨ । ଅନ୍ୟାୟ-
Habā chandra ମଣା—2. Not bent on doin
हबुचन्द justice. ଦେ. ବି—ଅନ୍ୟାୟମଣା ଲୋକ; ଓଲୁଲୋକ—
बेवुक्फ A stupid person.

ହବା ନ ହବା—ଗ୍ରା. ବି—୧ । କୌଣସି ବିଷୟର ଘଟିବା ବା ନଘଟିବା;
Habā na habā ହେବା ନ ହେବା—1. Wether a thing
ହଓୟା ନା ହଓୟା will take place or not; 'To be or
होंना न होंना not to be'. ୨। ହଁ କି ନାହିଁ—2. Yes or no.
୩ । ସ୍ୱୀକାର ବା ଅସ୍ୱୀକାର—Consent or disagreement. [ଉ—ମୁଁ ୫ ଦିନ ହେଲା ଅନୁସରଣ କରି ଥକିଲିଣି; ମତେ "ହବା ନ ହବା" କଥା କହୁଦେଲେ ମୁଁ ଚାଲିଯିବି ]

ହବାନାମା—ବୈଦେ. ବି (କଚରୀଅ)—ହିବାନାମା (ଦେଖ)—
Habānāmā Hibānāmā (See)

ହବାଲ୍—ବୈଦେ. ବି (ଅ) (ଅ. ହୱାଲ)—ହୁଆଲ୍ (ଦେଖ)—
Habāl Huāl (See)
[ଦ୍ର—ଏହା ହାଲ୍ ଶବ୍ଦ ସଙ୍ଗେ ଏକାର୍ଥକ ସହଚର ରୂପେ ବ୍ୟବହୃତ ହୁଏ ]

ହବାଲ୍‌ଦାର୍—ବୈଦେ. ବି (ଅ, ହୱାଲ୍+ଫା ପ୍ରତ୍ୟୟ ଦାର୍)—
Habāl-dār ହୁଆଲ୍‌ଦାର୍ (ଦେଖ)—
Huāl-dār (See)

ହବାଲତ୍—ବୈଦେ. ବି. (ଅ)—ହୁଆଲତ (ଦେଖ)—
Habālat Huālat (See)

ହବାଲତି—ବୈଦେ· ବଣ—ହୁଆଲତି (ଦେଖ)
Habālati Huālati (See)

ହବାଲା—ବୈଦେ· (ଅ) ପ୍ରାଦେ. (ଗଞ୍ଜାମ) (ହୁଲ ହୁଦୀ, ହବାଲା)—
Habālā ଉଦାହରଣ; ଦୃଷ୍ଟାନ୍ତ—Example.

ହବାଲତ୍—ବୈଦେ. ବି (ଅ) (କଚରୀଅ)—୧। ନଜରବନ୍ଦୀ—1. Sur-
Habālat veilance. ୨। ଅପରାଧ ବିଚାରାଧୀନ ବ୍ୟକ୍ତିଙ୍କୁ ବନ୍ଦୀକରି ରଖାଯିବା—2. The state of an undertrial prisoner being detained in the lock-up. ୩। ହାଜତ—3. Lock-up.

ହବାଲି—ବୈଦେ. ବି—ଏକପ୍ରକାର ବନ୍ୟ ବୃକ୍ଷ—The portia
Habāli tree, Thespesia Populnia [tree]

ହବାସ୍—ବୈଦେ. ବି (ଅ)—ଚେତନା; ସଞ୍ଜ୍ଞା—Consciousness;
Habās sense. [ଦ୍ର—ଏହା ହୋସ୍ ଶବ୍ଦ ପରେ ଏକାର୍ଥକ
हूँस हवास ସହଚର ଶବ୍ଦ ରୂପେ ବ୍ୟବହୃତ ହୁଏ ]

ହବି—ବୈଦେ. ବି—(ଇଂ. ହବି)—ହବି (ଦେଖ)—Habbi (See)
Habi ଦେ. ବି (ସଂ. ହବିସ୍)—ହବିଃ (ଦେଖ)—Habih
हबी हबी (See)

ହବିଃ—ସଂ· ବି (ହୁ ଧାତୁ=ହୋମ କରିବା+କରଣ; ଇସ; ହବିସ୍ ଶବ୍ଦ
Habiḥ ୧ମା. ୧ବ)— ୧ । ଅନ୍ନ; ଘୃତ (ଅମରକୋଷ)—

1. Ghee. ୨। ଜଳ [ଶବ୍ଦ କଳ୍ପଦ୍ରୁମ]—2. Water. ୩। ହବନୀୟ ଦ୍ରବ୍ୟ—3. Materials necessary for Homa. ୪। ହୋମ—4. Oblations of ghee unto fire.

**ହବଗଞ୍ଜ**—ବୈଦେ· ବି—ହବେଇ ଗଞ୍ଜ (ଦେଖ)—
Habiganja Habeiganja (See)

**ହବର୍ତ୍ତୀ**—ସଂ· ବି (ହୁ ଧାତୁ + କରଣ ଇତ୍ର + ସ୍ତ୍ରୀ ଈ)—ହୋମକୁଣ୍ଡ—
Habitrī The fier-pot into which ghee is poured in Homa.

**ହବିବୁଲ୍ଲାଖାଁ**—ବୈଦେ. ବି [ନାମ]—ଅଫଗାନିସ୍ଥାନ ରାଜ୍ୟର ପୂର୍ବତନ
Habibullā khan ଅମୀର୍—[ଦ୍ର—ଏ ଭୂତପୂର୍ବ ଅମୀର
हबिबुल्लाखाँ ଅବ୍ଦୁଲ ରହ୍‌ମନ୍‌ଙ୍କ ପୁତ୍ର। ଏ ୧୯୦୧ ସାଲରେ
हबिबुल्लाखा ସିଂହାସନାରୋହଣ କରିଥିଲେ। ୧୯୦୭ ସାଲରେ ଏ ଭାରତ ପରଦର୍ଶନ କରିଥିଲେ। ଏ ବର୍ତ୍ତମାନ ପ୍ରଜାମାନଙ୍କ ଦ୍ୱାରା ରାଜ୍ୟରୁ ବିତାଡ଼ିତ ହୋଇ ତାଙ୍କ ସ୍ଥଳରେ ଅମୀର୍ ଅମାନୁଲ୍ଲା ସିଂହାସନାରୂଢ଼ ହୋଇଅଛନ୍ତି]—The name of the late Amir of Afghanistan.

**ହବିରଶନ**—ସଂ. ବି (ମ. ପ. ଲୋ)—୧। ଅନ୍ନ ସଙ୍ଗେ ଘୃତ ଭୋଜନ—
Habiraśana 1. Eating ghee with food.
୨। (ଲକ୍ଷଣା ଦ୍ୱାରା) ଅଗ୍ନି—2. Fire.

**ହବିର୍ଗନ୍ଧ**—ସଂ. ବି (୬ଷ୍ଠୀ ତତ୍)—ହୋମରେ ପୋଡ଼ା ଯାଉଥିବା ଘୃତର
Habirgandha ବାସ—The smell of ghee burnt in Homa.

**ହବିର୍ଗନ୍ଧା**—ସଂ. ବି (ବହୁବ୍ରୀହି, ହବିଃ=ଘୃତସଦୃଶ ଗନ୍ଧ ଯାହାର)—ଶମୀବୃକ୍ଷ
Habirgandhā (ଶ୍ୱେତବର୍ଣ୍ଣ)—Śamī; Prosopis Spicigera (tree).

**ହବିର୍ଗେହ**—ସଂ· ବି—୧। ହୋମଗୃହ—1. The room in which
Habirgeha Homa is performed. ୨। ହୋମଦ୍ରବ୍ୟ ଘୃତାଦି ରଖାଯିବାର ଗୃହ—2. A room for storing the ghee and other materials for Homa.

**ହବିର୍ଧାନୀ**—ସଂ. ବି (ହବିସ୍ + ଧା. ଧାତୁ + କର୍ତ୍ତୃ. ଅନ + ସ୍ତ୍ରୀ ଈ, ଯାହାଙ୍କ
Habirdhāni ଦୁଗ୍ଧରୁ ହୋମ କମରେ ଘୃତ ଉତ୍ପନ୍ନ ହୁଏ)—
କାମଧେନୁ; ସୁରଭି (ହ. ଶ)—The mythological cow giving plenty of milk.

**ହବିର୍ଭାଗ**—ସଂ. ବି (୬ଷ୍ଠୀ ତତ୍; ହବିସ୍ + ଭାଗ)—ନିର୍ଦ୍ଦିଷ୍ଟ ଦେବତାଙ୍କ
Habirbhāga ନାମ ଧରି ହୋମାଗ୍ନିରେ ଅର୍ପିତ ହୋଇଥିବା ଘୃତର ଅଂଶ—A portion of ghee offered into the fire by uttering the name of a particular Deity.

**ହବିର୍ଭୁକ୍**—ସଂ. ବି. ପୁଂ [ହବିସ୍ + ଭୁଜ୍· ଧାତୁ + କର୍ତ୍ତୃ. କ୍ୱିପ୍; ହବିର୍ଭୁଜ୍
Habirbhuk ଶବ୍ଦ; ୧ମା. ୧ବ]—୧। ଦେବତା—1. Deity.
୨। ଅଗ୍ନି—2. Fire.

**ହବିର୍ଭୁଜ**—ଦେ. ବି (ସ. ହବିର୍ଭୁଜ୍)—ହବିର୍ଭୁକ୍ (ଦେଖ)
Habirbhuja Habirbhuk (See)

**ହବିର୍ଭୂ**—ସ. ବି [ହବିସ୍ + ଭୂ]—୧। ହୋମଭୂମି [ହ. ଶ]—
Habirbhū 1. The ground over which Homa is performed. ୨। [ନାମ] କର୍ଦ୍ଦମଋଷିଙ୍କ କନ୍ୟା ଓ ପୁଲସ୍ତ୍ୟମୁନିଙ୍କ ସ୍ତ୍ରୀ [ହ. ଶ]—2. Name of the wife of sage Pulastya

**ହବିର୍ମ(ମ୍ମ)ନ୍ଥ**—ସ. ବି [ହବିସ୍ + ମନ୍ଥ· ଧାତୁ + କର୍ମ. ଅ]—ଅଗବଥୁ
Habirma(rmma)ntha ଗଛ; ଅଗ୍ନିମନ୍ଥ ବୃକ୍ଷ—Premna Integrifolia (tree). [ଦ୍ର—ଏହାର କାଠକୁ ମନ୍ଥନ କରିଯିବା ଏଥିରୁ ଯଜ୍ଞାର୍ଥ ଅଗ୍ନି ଜାତ କରାଯାଉଥିବାରୁ ଏହାର ଏପରି ନାମ ହୋଇଅଛି।]

**ହବିଲ୍(ଲି)ଦାର୍**—ବୈଦେ· ବି—ହାବିଲ୍‌ଦାର୍ [ଦେଖ]
Habil(li)dār Hābil-dar [See]

**ହବିଲି**—ବୈଦେ. ପ୍ରାଦେ [ବାଲେଶ୍ୱର] ବି—ହବେଲି [ଦେଖ]
Habili Habeli [See]

**ହବିଷ**—ଦେ. ବି (ସ. ହବିଷ୍ୟ)—କାର୍ତ୍ତିକ, ମାଘ ଓ ବୈଶାଖ ମାସରେ
Habisha ହିନ୍ଦୁଙ୍କର (ବିଶେଷତଃ ବିଧବାମାନଙ୍କର) ଦିନରେ ଥରେ
हविष्य ମାଛ ଛତୁମିଶ୍ର ଅରୁଆ ଅନ୍ନ ଖାଇବାରୂପ ବ୍ରତ—A religi-
हविष्य ous vow observed (specially by widows) during Māgha, Baishākha and Kārttika months, consisting of taking sun-rice with vegetarian meal once in a day. [ଦ୍ର—ଆମ ଦେଶରେ ହବିଷ କରିବା ବ୍ୟକ୍ତିମାନେ ସୂର୍ଯ୍ୟାସ୍ତ ସମୟରେ ଅରୁଆ ଅନ୍ନ, କଞ୍ଚା ମୁଗ ଡାଲି ଘାଉ, ଅଦା, ଓଳ, ନଡ଼ିଆ, କଦଳୀ, ଅଗସ୍ତିଶାଗ, ଗଙ୍ଗାଠି ପିଠା, ବେତକଢ଼ା ଆଦି ସାତ୍ତ୍ୱିକବସ୍ତୁ ଖାଇ ହବିଷ କରନ୍ତି; କେହି କେହି ଏଥି ସଙ୍ଗେ କଇଁଥ, କଗଜିଲେମ୍ବୁ, କନ୍ଦମୂଳ ଖାଆନ୍ତି। ହବିଷରେ ଲଙ୍କା ମରିଚ ଖାଇବା ନିଷିଦ୍ଧ; ହବିଷ ଛଅଣ ବଗର ହୁଏନାହିଁ। ଆମ ଦେଶରେ ବିଧବାମାନେ କାର୍ତ୍ତିକ ମାସରେ ହବିଷ କରନ୍ତି। ଯେ ହବିଷ କରିବେ ସେ ତୈଳ ଲଗାଇବେ ନାହିଁ, କୁଶାସନରେ ବସିବେ ଓ ବ୍ରହ୍ମଚର୍ଯ୍ୟ ରକ୍ଷା କରିବେ ବୋଲି ଶାସ୍ତ୍ରରେ ଅଦେଶ ଅଛି।]
[କ୍ର—ବଙ୍ଗଳ୍ୟଗ୍ରାମ ପ୍ରାୟତେ ହବିଷ। ଇଞ୍ଜ ବୈଦେଶିକ ଇଲାସ।]

**ହବିଷ କରିବା**—ଦେ. କ୍ରି—୧। ହବିଷ୍ୟାନ୍ନ ଭୋଜନ କରିବା—
Habisha karibā 1.To partake of Habishya food.
हवष्य करा ୨। ବ୍ରହ୍ମଚର୍ଯ୍ୟପାଳନପୂର୍ବକ ହବିଷ୍ୟାନ୍ନ ଭୋଜନରୂପ ବ୍ରତ
हविष्य करना ପାଳନ କରିବା—2. To observe the vow of taking Habishya food and observing continence.

**ହବିଷ ଘର**—ଦେ. ବି—ଯେଉଁ ଘରେ ହବିଷ୍ୟାନ୍ନ ପାକ କରାଯାଏ—
Habisha ghara The room where Habishya
हवष्य करिबार घर, हविष्यघर food is cooked.
(ହବିଷିଘର—ଗ୍ରାମ୍ୟରୂପ)

**ହବିଷ ତିଅ(ଉ)ଣ**—ଦେ. ବି—କଞ୍ଚା ମୁଗଡାଲି, କଞ୍ଚଳ କଦଳୀ, Habisha tia(u)na ସାରୁ, ଓଲ ମିଶାଯାଇ ଘାଇ କସଯାଇଥିବା ଅଫୁଟା ତିଅଣ, ଯାହାକୁ ହବିଷଧାରୀମାନେ हविष्य तरकारी हविष्य तरकारी ଖାଆନ୍ତି—Curry eaten by persons [ହବିଷ(ଷ୍ୟ) ଭୁକ୍—ଅପଭ୍ରଂଶ] observing Habishya. [ହବିଷି ତିଅଣ (ଉଣ, ତିଉଣ)—ଗ୍ରାମ୍ୟରୂପ]

**ହବିଷ ବୋଝ(ଭାର)**—ଦେ. ବି—ହବିଷ୍ୟ ବ୍ରତ କରୁଥିବା ବ୍ୟକ୍ତି Habisa bojha(bhāra) (ବିଧବା)ମାନଙ୍କ ନିକଟକୁ हविष्यिव तत्व हविष्यकी चीज कାର୍ତ୍ତିକ ମାସରେ ବନ୍ଧୁମାନଙ୍କଦ୍ୱାରା ପ୍ରେରିତ ହବିଷ୍ୟ ସାମଗ୍ରୀ (ଯଥା—ଶାରଦ ଧାନ, ମୁଗ, ନଡ଼ିଆ, ଅଦା, କଦଳୀ, ଅଗସ୍ତି ଶାଗ, ବେଲକଦା ଇତ୍ୟାଦି)ର ବୋଝ ବା ଭାର—Presents of materials for Habishya sent to persons who are observing Habishya, by their relations during Kārttika. [ହବିଷି ବୋଝ(ଭାର)—ଗ୍ରାମ୍ୟରୂପ]

**ହବିଷ ଭାତ**—ଦେ. ବି—ହବିଷ୍ୟାନ୍ନ (ଦେଖ)— Habisha bhāta Habishyānna (See). हविष्यि भात हविष भात (ହବିଷି ଭାତ—ଗ୍ରାମ୍ୟରୂପ)

**ହବିଷ ମାସ**—ଦେ ବି—କାର୍ତ୍ତିକ ମାସ— Habisha māsa The month of Kārttika. हविष्येव मास हविष्य मास (ହବିଷି ମାସ—ଗ୍ରାମ୍ୟରୂପ)

**ହବିଷିଆଲି(ଣି)**—ଦେ ବି ଓ ବିଣ· ପୁଂ ଓ ସ୍ତ୍ରୀ (ସ. ହବିଷ୍ୟାଶୀ)—ଯେଉଁ Habishiāli(ṇi) ବ୍ୟକ୍ତିମାନେ ହବିଷ୍ୟାନ୍ନ ଭୋଜନରୂପ ବ୍ରତ यावा हविष्यि करे हविष्य करनेवाला ପାଳନ କରନ୍ତି— Persons observing the Habishya vow.

**ହବିଷ୍ୟ**—ଦେ. ବି (ସ ହବିଷ୍ୟ)—ବୈଶାଖ, କାର୍ତ୍ତିକ ଓ ମାଘ ମାସରେ Habishwa ହବିଷ୍ୟାନ୍ନ ଭୋଜନରୂପ ବ୍ରତ; ହବିଷ— हविष्यि हविष्य The vow of partaking of Habishyānna during the months of Kārtika, Māgha and Baiśākha.

**ହବିଷ୍ମତୀ**—ସଂ. ବି. ସ୍ତ୍ରୀ (ହବିସ୍+ମତ୍+ଈ)—କାମଧେନୁ (ହି. ଶ)— Habishmati The mythological cow of plenty.

**ହବିଷ୍ୟ**—ସଂ. ବି (ହବିସ୍+ହିତାର୍ଥେ ଯ)—୧। ଘୃତାନ୍ନ—1. Boiled Habishya rice mixed with ghee. ୨। ହବିଷ୍ୟାନ୍ନ (ଦେଖ)—2. Habishyānna (See) ୩। ଆମିଷବର୍ଜିତ ଘୃତ ମିଶ୍ରିତ ଅତପାନ୍ନ—3. Rice prepared from unboiled paddy and then mixed with ghee, but without meat. ୩। ଦେବତାଙ୍କ ଉଦ୍ଦେଶ୍ୟରେ ହୋମାଗ୍ନିରେ ଅର୍ପିତ ଦ୍ରବ୍ୟ (ହି. ଶ)—3. Anything poured unto the Homa fire. ସ ବିଣ—୧। ହୋମ କରାଯିବା ଯୋଗ୍ୟ; ହବନୀୟ (ହି. ଶ)—1. Fit to be poured unto the Homa fire. ୨। ଯାହାଙ୍କ (ଯେଉଁ ଦେବତାଙ୍କ) ଆହୁତି ଦିଆଯିବା ଉଚିତ [ହି. ଶ— 2. (a Deity) In whose name ghee is to be poured unto the Homa-fire

**ହବିଷ୍ୟାନ୍ନ**—ସ ବି—କାର୍ତ୍ତିକ ବ୍ରତାଦିରେ ଭକ୍ଷଣୀୟ ଘୃତମିଶ୍ରିତ ନିରାମିଷ Habishyānna ଅତପାନ୍ନ—Rice prepared from sunned paddy and then bioled and taken with ghee and vegetables without any meat. [ କ୍ର—ଅମ ଦେଶରେ ବିଧବାମାନେ ହବିଷ୍ୟାନ୍ନରେ ଅରୁଆ ଅନ୍ନ, ଘିଅ, କଞ୍ଚା କଳା ମୁଗର ଡାଲି, କଞ୍ଚଳ କଦଳୀ, ସାରୁ, ଓଲ, ଅଗସ୍ତି ଶାଗ, ଅଦା, ବେଲକଦା ବ୍ୟବହାର କରନ୍ତି। କିନ୍ତୁ ଅଗସ୍ତ୍ୟସଂହିତାଦି ସ୍ମୃତିଶାସ୍ତ୍ରରେ "ହବିଷ୍ୟାନ୍ନ" ସମ୍ବନ୍ଧେ ନିମ୍ନଲିଖିତ ଉପଦେଶମାନ ଦେଖାଯାଏ—

ହୈମନ୍ତିକଂ ସିତାସ୍ୱିନ୍ନଂ ଧାନ୍ୟମୁଦ୍ଗାସ୍ତିଲା ଯବାଃ,
କଳାୟ କଙ୍ଗୁନୀବାର ବାସ୍ତୁକଂ ହିଲମୋଚିକା,
ଷଷ୍ଟିକା କାଳଶାକଞ୍ଚ ମୂଲକଂ କେମୁକେତରତ୍,
ଲବଣେ ସୈନ୍ଧବ ସାମୁଦ୍ରେ ଗବ୍ୟେ ଚ ଦଧିସର୍ପିଷୀ,
ପୟୋଽନୁଦ୍ଧୃତସାରଞ୍ଚ ପନସାମ୍ର ହରୀତକୀ,
ତିନ୍ତିଡ଼ୀ ଜୀରକଞ୍ଚୈବ ନାଗରଙ୍ଗକ ପିପ୍ପଳୀ,
କଦଳୀଲବଲୀଧାତ୍ରୀ ଫଲାନ୍ୟଗୁଡ଼ମୈକ୍ଷବ,
ଅତୈଳପକ୍ୱଂ ମୁନୟୋ ହବିଷ୍ୟାନ୍ନଂ ପ୍ରଚକ୍ଷତେ।]

**ହବିଷ୍ୟାଶୀ**—ସ ବିଣ. ପୁଂ (ହବିଷ୍ୟ+ଅଶ୍ ଧାତୁ+କର୍ତ୍ତୃ ଇନ୍, ୧ମା ୧ବ) Habishyāśi —ଯେଉଁମାନେ ହବିଷ୍ୟାନ୍ନ ଭୋଜନ (ହବିଷ୍ୟାଶିନୀ—ସ୍ତ୍ରୀ) କରିବା ବ୍ରତ ପାଳନ କରନ୍ତି— (persons) Partaking of the Habishya food.

**ହବୁଚନ୍ଦ୍ର**—ଦେ. ବି ଓ ବିଣ—ହବାଚନ୍ଦ୍ର (ଦେଖ)— Habuchandra Habāchandra (See). हबूचन्द्र वेवुक्फ

**ହବୁଷା**—ସ ବି (ବୈଦ୍ୟକ)—ବନ୍ୟ ବୃକ୍ଷବିଶେଷର ଫଳ— Habushā The fruit of a wild tree. (କ୍ର—ଏହା ମଗଧ ଦେଶରୁ ଅଧିକ ଆସେ ଏବଂ କୃଷ୍ଣବର୍ଣ୍ଣ ବସ୍ତୁ। ଏହା ଦ୍ୱିବିଧ—

ପ୍ରଥମପ୍ରକାର ଫଳ—ମତ୍ସ୍ୟସଦୃଶ, ବିସ୍ରଗନ୍ଧ।

ଏହାର ପର୍ଯ୍ୟାୟ—ହବୁଷା, ହପୁଷା, ବପୁଷା, ବସ୍ତ୍ରା;

ଦ୍ୱିତୀୟପ୍ରକାର ଫଳ—ଅଶ୍ୱତ୍ଥ ଫଳ ସଦୃଶ, ମତ୍ସ୍ୟଗନ୍ଧ।

ଏହାର ପର୍ଯ୍ୟାୟ—ଅଶ୍ୱତ୍ଥଫଳା, ହବୁଷା, ହପୁଷା, ପ୍ଲୀହାହନ୍ତ୍ରୀ, ବିଷଘ୍ନୀ, ଧାତ୍ରୁଘ୍ନନାଶିନୀ, ଭଗ୍ନଘ୍ନୀ।

ଏହା ପିତ୍ତ, ଉଦରରୋଗ, ପ୍ରମେହ, ଅର୍ଶ, ପ୍ଲୀହା, ଗ୍ରହଣୀ, ଗୁଲ୍ମ ଓ ଶୂଳ ରୋଗରେ ଉପକାରୀ,

ସାପକ, ଉତ୍କଳସାହିତ୍ୟ ଓ ଗୁରୁ (ବ୍ରଜନାଥ ଶର୍ମା)।]

ହବେଇ—ବିଦେ. ବି (ଫା ହୱାଇ = ଯାହା ଆକାଶରେ ବା ବାୟୁରେ ଗମନ କରେ)—ହାବିଳି (ଦେଖ)—Habili (See)
Habei
ହାଉଈ ହୱାଈ

ହବେଇଗଞ୍ଜ—ବେଦେ. ବି (ଫା)—ଏକପ୍ରକାର ବାଣ, ଯହିଁରେ ନିଆଁ ଲଗାଇଲେ ତହିଁରୁ ଅନେକଗୁଡ଼ିଏ ହାଉଇ ଆକାଶକୁ ଉଠିଯାଏ—A sort of firework which lets off many rockets.
Habeigañja
ହାଉଈଗଞ୍ଜ ହୱାଈଗଜ

ହବେଲି—ଦେ, ବି (ଆ)—୧। ରାଜପ୍ରାସାଦର ଘେରା ଓ ହତା ପାଚେରି—1. Compound and courtyard of a king's mansion.
Habeli
ହବେଲୀ ହୱେଲୀ
୨। ପ୍ରାସାଦ—2. Mansion; palatial building.

ହବାକ୍—ବିଦେ. ବି [ନାମ] [ଇଂ]—ଓଡ଼ିଶା ପ୍ରଦେଶର ପ୍ରଥମ ଗଭର୍ଣ୍ଣର; ସର୍ ଜନ୍ ଅଷ୍ଟେନ୍ ହବାକ୍, ଏମ୍. ଏ., କେ. ସି. ଏସ୍. ଆଇ., ଆଇ. ସି. ଏସ୍—Sir John Austen Hubback, M. A., K. C. S. I., I. C. S., the first Governor of the Province of Orissa.
Habbak

[ଦ୍ର—ସର୍ ଜନ୍ ହବାକ୍ ତଳେ ଟୀକା ଦେଖ। ଏ ମହାପୁରୁଷ ଇଂଲଣ୍ଡରେ ୧୮୭୮ ସାଲ ଫେବୃଆରି ମାସ ୨୮ ତାରିଖରେ ଜନ୍ମଗ୍ରହଣ କରିଥିଲେ। ଏ ନବଓଡ଼ିଶା ପ୍ରଦେଶର ଗଭର୍ଣ୍ଣର୍ କର୍ମର ଭାର ୧୯୩୬ ସାଲ ଅପ୍ରେଲ ମାସ ପହିଲା ତାରିଖରେ ଗ୍ରହଣ କଲେ; ପ୍ରଥମେ ମନ୍ତ୍ରୀ ମାନଙ୍କ ବିନା ସାହାଯ୍ୟରେ ଓ ଆଡ୍‌ଭାଇସ୍‌ରୀ କମିଟିଙ୍କ ପରାମର୍ଶରେ ଏକବର୍ଷକାଳ ପ୍ରଦେଶ ଶାସନକରି ୧।୪।୧୯୩୭ ଠାରୁ ୪।୧୧।୧୯୩୯ ପର୍ଯ୍ୟନ୍ତ ନିର୍ବାଚିତ ମନ୍ତ୍ରୀମାନଙ୍କ ପରାମର୍ଶରେ ଶାସନ କାର୍ଯ୍ୟ ନିର୍ବାହ କଲେ। କଂଗ୍ରେସ୍‌ର କାର୍ଯ୍ୟନିର୍ବାହକ କମିଟି [All India Congress Committee] ଙ୍କ ଅଲଙ୍ଘନୀୟ ଆଦେଶ ପାଳନପୂର୍ବକ ନିର୍ବାଚିତ ମନ୍ତ୍ରୀମାନେ ମନ୍ତ୍ରିପଦରୁ ଇସ୍ତଫା ଦେବାରୁ ସେହିଦିନଠାରୁ ସର୍ ଜନ୍ ଓଡ଼ିଶା ପ୍ରଦେଶର ହାଖାର୍ ଶାସନଭାର ସ୍ୱହସ୍ତରେ ଗ୍ରହଣ କରିଅଛନ୍ତି ଓ ମାନ୍ୟବର ଇ, ସି, ଅନ୍‌ସୋର୍ଜ୍; ସି. ଆଇ; ଇ., ଆଇ. ସି. ଏସ୍‌ଙ୍କୁ ଆଡ୍‌ଭାଇସର୍ (ପରାମର୍ଶଦାତା) ରୂପେ ମନୋନୀତ କରିଅଛନ୍ତି। ଓଡ଼ିଆଭାଷା ଓ ସାହିତ୍ୟ ପ୍ରତି ତାଙ୍କର ପ୍ରଗାଢ଼ ପ୍ରେମ ବିଷୟ ଭାଷାକୋଷର ଷଷ୍ଠ ଖଣ୍ଡ ୮୨୪୯ ପୃଷ୍ଠାରେ ବର୍ଣ୍ଣିତ ହୋଇଅଛି। ଇତି ମଧ୍ୟରେ ଏ ମହାଶୟ ଓଡ଼ିଆ ଭାଷାକୋଷ ପ୍ରତି ମହାମତି ଭାଇସ୍‌ରୟ୍ ଲର୍ଡ଼ ଲିନ୍‌ଲିଥ୍‌ଗୋଙ୍କ ସସ୍ନେହଦୃଷ୍ଟି ଆକର୍ଷଣ କରିବାରେ ସମର୍ଥ ହୋଇଅଛନ୍ତି। ଉତ୍କଳର କୃଷ୍ଟି ସାଧନାର୍ଥ ଏହାଙ୍କ ପୃଷ୍ଠପୋଷକତାରେ ଓଡ଼ିଶା ଏକାଡେମୀ ନାମକ ଗୋଟିଏ ସାରସ୍ୱତ ଅନୁଷ୍ଠାନ କଟକରେ ପ୍ରତିଷ୍ଠିତ ହୋଇଅଛି। ଡକ୍ଟର୍ ମାୟାଧର ମାନସିଂହ ଏମ୍, ଏ, ଙ୍କର 'ପାଶ୍ଚାତ୍ୟ ଦୃଷ୍ଟିରେ ଉତ୍କଳୀୟ କଳା' ଶୀର୍ଷକ ଭାଷଣ ଦିଆଯିବାପାଇଁ ଉତ୍କଳ ସାହିତ୍ୟ ସମାଜଦ୍ୱାରା ଆହୂତ ୧୮।୧୧।୧୯୩୯ ତାରିଖର ସାଧାରଣ ସଭାରେ ସଭାପତିତ୍ୱ ସ୍ୱୀକାର କରି ଏବଂ ଉତ୍କଳ ସଙ୍ଗୀତ ସମାଜର ୧୮।୧୨।୧୯୩୯ ତାରିଖର ବାର୍ଷିକ ଉତ୍ସବ ଉଦ୍‌ଘାଟନ କରି ଓ ସ୍ୱତଃପ୍ରବୃତ୍ତ ହୋଇ ତହିଁର ପୃଷ୍ଠପୋଷକତା ଘୋଷଣା କରି ସର୍‌ଜନ୍ ଉତ୍କଳ ସାହିତ୍ୟ ଓ କଳା ପ୍ରତି ଯେଉଁ ପ୍ରଗାଢ଼ ମମତା ଦେଖାଇ ଅଛନ୍ତି, ଏହା ଭାରତର ତଥା ଓଡ଼ିଶାର ଇତିହାସରେ ଅନନ୍ୟସାଧାରଣ ଘଟଣା। ସର୍‌ଜନ୍‌ଙ୍କ ପରାମର୍ଶଦାତା ମାନ୍ୟବର ଆନସୋର୍ଜ ସାହେବ ୧୦ ବର୍ଷ ପୂର୍ବେ ଯେତେବେଳେ ବିହାର ଓଡ଼ିଶାର ଗଭର୍ଣ୍ଣମେଣ୍ଟଙ୍କ ଶିକ୍ଷାବିଭାଗର ସେକ୍ରେଟରୀ କର୍ମ କରୁଥିଲେ। ସେହି ସମୟରେ ଓଡ଼ିଆ ଭାଷାକୋଷକୁ ସରକାରୀ ସାହାଯ୍ୟ ଦିଆଯିବା କଥା ତାଙ୍କଦ୍ୱାରା ଅନୁମୋଦିତ ହୋଇଥିଲା। ବର୍ତ୍ତମାନ ନାନା କାରଣରୁ ଦାତାମାନଙ୍କଠାରୁ ଅପ୍ରତ୍ୟାଶିତ ଅର୍ଥସାହାଯ୍ୟ ଦୁଷ୍ପ୍ରାପ୍ୟ ହେବାରୁ ଏ ଗ୍ରନ୍ଥର ସପ୍ତମଖଣ୍ଡର ମୁଦ୍ରଣରେ ଅଭୂତପୂର୍ବ ବିଳମ୍ବ ଅବଶ୍ୟମ୍ଭାବୀ ହୋଇ ଉଠିଲା। ଅତଏବ ଆବଶ୍ୟକ ଅର୍ଥ ସଂସ୍ଥାନ ପାଇଁ ଗ୍ରନ୍ଥକାର ମାନ୍ୟବର ଅନ୍‌ସୋର୍ଜ୍ ସାହେବଙ୍କ ସଙ୍ଗେ ଦେଖା କରି ଭାଷାକୋଷର ପ୍ରକାଶିତ ଖଣ୍ଡମାନଙ୍କ ପ୍ରତି ତାଙ୍କ ଦୃଷ୍ଟି ଆକର୍ଷଣ କରି, ଉପସ୍ଥିତ ଅର୍ଥଦୁଃସ୍ଥିତି ବିଷୟ ତାଙ୍କୁ ଜଣାଇବାରୁ ଦଶବର୍ଷ ପୂର୍ବେ ଏ ସାରସ୍ୱତ ମନ୍ଦିରର ମୂଳଦୁଆ ପଡ଼ିଲାବେଳେ ସେ ବିହାର ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗର କର୍ଣ୍ଣଧାର ଥିଲେ ଓ ବର୍ତ୍ତମାନ ଏ ମନ୍ଦିରର ଦଧିନଉତି ବସିଲାବେଳେ ପ୍ରଭୁ ତାଙ୍କୁ ଓଡ଼ିଶା ପ୍ରଦେଶର ଶିକ୍ଷା ବିଭାଗର କର୍ଣ୍ଣଧାର କରିଅଛନ୍ତି ବୋଲି ଚିନ୍ତା କରି ଆମ ନଅଣ୍ଟିଆ ପ୍ରଦେଶର ଅର୍ଥଭଣ୍ଡାରରୁ ଭାଷାକୋଷ ସପ୍ତମଖଣ୍ଡର ମୁଦ୍ରଣାର୍ଥ ଆବଶ୍ୟକ ସାହାଯ୍ୟ ଦିଆଯିବା ପାଇଁ ସେ ମାନ୍ୟବର ସର୍‌ଜନ୍‌ଙ୍କୁ ପରାମର୍ଶ ଦେଲେ। ସର୍‌ଜନ୍ ଉକ୍ତ ପରାମର୍ଶକୁ ପ୍ରସନ୍ନତା ସହକାରେ ଗ୍ରହଣକଲେ ଓ ସପ୍ତମଖଣ୍ଡର ପ୍ରକାଶାର୍ଥ କଣ୍ଟକିତ ମାର୍ଗ ସୁଗମ ହେଲା। ଭାଷାକୋଷର ପ୍ରକାଶାର୍ଥ ମାନ୍ୟବର ଭାଇସ୍‌ରୟ୍ ଦୁଇବର୍ଷ ପୂର୍ବେ (୧୯୩୮ ରେ) ଅର୍ଥ ସାହାଯ୍ୟ କରିଥିଲେ। ଏବେ (୧୯୪୦ ଫେବୃଆରିରେ) ପୁଣି ଅଯାଚିତ ଅର୍ଥ ସାହାଯ୍ୟ କରିଅଛନ୍ତି। ସର୍‌ଜନ୍ ନିଜ ହାତରେ ଥିବା ପାଣ୍ଠି (Discretionary grant) ରୁ ମଧ୍ୟ ଏଥିପାଇଁ ଧନ ଦେଇଅଛନ୍ତି। ଓଡ଼ିଆ ସାହିତ୍ୟ ତଥା ଓଡ଼ିଆ ଭାଷାପ୍ରତି ମାନ୍ୟବର ଲର୍ଡ଼୍ ଲିନ୍‌ଲିଥ୍‌ଗୋ, ମାନ୍ୟବର ସର୍‌ଜନ୍ ହବାକ ଓ ମାନ୍ୟବର ଇ, ସି ଅନ୍‌ସୋର୍ଜ୍ ଯେଉଁ କରୁଣା ଓ ପ୍ରେମ ପ୍ରଦର୍ଶନ କରିଅଛନ୍ତି ତାହା ଓଡ଼ିଆ ସାହିତ୍ୟର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ। ଏହି ଜାତୀୟ ମନ୍ଦିରର ଶୁଭ ସଙ୍କଳନ ଯାହାଙ୍କଦ୍ୱାରା ହୋଇଥିଲା ଓ ଏ ମନ୍ଦିର ଉପରେ ନୀଳଚକ୍ର ତାଙ୍କରିଦ୍ୱାରା ହିଁ ବସିଲା।

ସର୍ ଜନ୍‌ଙ୍କ ସହଧର୍ମିଣୀ ଲେଡ଼ୀ ହବାକ୍ ଉତ୍କଳ ନାରୀ ସେବା ସଙ୍ଘ (Orissa Women's League of Service) ପାଇଁ ସତର ହଜାର ଟଙ୍କା ମୂଲ୍ୟର ସମ୍ପତ୍ତି ଭରି ଗୋଟିଏ ପ୍ରକାଣ୍ଡ ସଦନ ନିର୍ମାଣ କରାଇ ଅଛନ୍ତି । ସର୍ ଜନ୍ ଏ ସଦନର ଶୁଭ ୧୯୩୯ ଅକ୍ଟୋବର ମାସରେ ଦେଇଥିଲେ ଓ ୧୯୪୦ ଫେବୃଆରି ମାସରେ ଏ ସଦନକୁ ଉଦ୍ଘାଟନ କଲେ । କୁଷ୍ଠରୋଗ ପ୍ରତିକାର, ଶିଶୁସ୍ବାସ୍ଥ୍ୟର ପ୍ରତିକାର, ଗୋଚାରଣର ଉନ୍ନତି, ନାରୀମାନଙ୍କ ଶିକ୍ଷା ଓ ସାମାଜିକ ମିଳନ, କ୍ଷେତ୍ରରେ ଶିକ୍ଷା ବିସ୍ତାର, ଓଡ଼ିଆ ଜାତିର କୃଷ୍ଟି ଓ କଳାର ଅଭିବୃଦ୍ଧି, ସର୍ବୋତଭାବେ ସର୍ ଜନ୍‌ଙ୍କ ବହୁମୋ-ମୁଖୀ ଉଦ୍ୟମ କାର୍ଯ୍ୟକାରୀ ହେଉଅଛି । ସେ ୧୫ ବର୍ଷକାଳ ଓଡ଼ିଶା ସଙ୍ଗେ ଓତପ୍ରୋତ ଭାବରେ ସଂପୃକ୍ତ । ତାଙ୍କ ହୃଦୟ-ବତ୍ତାର ଅନେକଗୋଟିଏ ଉଦାହରଣ ଲିପିବଦ୍ଧ ନହେଲେ ତାଙ୍କ ବିଷୟ ଅପୂର୍ଣ୍ଣାଙ୍ଗ ହେବ । ଉତ୍କଳବିଖ୍ୟାତ ବହ୍ନାଶ୍ରୀ ନାୟକ ଡକାଇତି ଅପରାଧର ଦଣ୍ଡ ସ୍ବରୂପ ଶେଷଥର ୨୦ ବର୍ଷ ଜେଲ୍-ଦଣ୍ଡ ଭୋଗ କରି ଅନ୍ତକୁ ୧ବର୍ଷରୁ ଊର୍ଦ୍ଧ୍ବ ହେବ ମୁକ୍ତିଲାଭ କରି ଏଣିକି ପାପକଳୁଷିତ ଜୀବନ ଯାପନ ନ କରି ନିଜର ସତ୍ ପରିଶ୍ରମରେ ପେଟ ପୋଷି ହେବେ ବୋଲି ସଙ୍କଳ୍ପ କରିଅଛନ୍ତି । କଟକର, ପୁରୀର ଓ କେତେକ ଗଡ଼ଜାତର ସହୃଦୟ ଦାତାମାନଙ୍କ ଠାରୁ ସାହାଯ୍ୟ ଆଣି କଟକ ଜିଲ୍ଲାରେ ତାଙ୍କ ଜନ୍ମଭୂମି ଗ୍ରାମରେ ବହ୍ନାଶ୍ରୀ ଖଣ୍ଡିଏ ଘର ତୋଲାଇଛନ୍ତି ଓ ବିବାହ କରିଛନ୍ତି ଏବଂ କଟକରେ ଖଣ୍ଡିଏ ମୁଦି ଦୋକାନ ଆରମ୍ଭ କରିଛନ୍ତି । ଅପଥଗାମୀ ଦସ୍ୟୁର ଏପରି ମାନସିକ ପରିବର୍ତ୍ତନ କଥା ତାଙ୍କ ଦୃଷ୍ଟିକୁ ଆସିବାରୁ ସର୍ ଜନ୍ ତାଙ୍କ ନିଜକୁ ବେସରକାରୀ ଗ୍ରାଣ୍ଟ (Discretionary grant)ରୁ ବହ୍ନାଶ୍ରୀ ନାୟକଙ୍କୁ ତାଙ୍କ ମୁଦି ଦୋକାନର ଅଭିବୃଦ୍ଧି କରିବାପାଇଁ ଦେଡ଼ ଶହ ଟଙ୍କା ଦାନ କରିଅଛନ୍ତି । ଓଡ଼ିଶା ପ୍ରଦେଶର ଜାତୀୟ ଇତିହାସରେ ସଚରିତ୍ର ସର୍ ଜନ୍‌ଙ୍କ ଶାସନକାଳ ସ୍ବର୍ଣ୍ଣମୟ ଯୁଗରୂପେ ବିରାଜିବ ।
ସନ୍ଦର୍ଭ ଲେଖକ—ଶଶିଭୂଷଣ ରାୟ, ୧୯୪୦]

**ହବ୍ୟ**—ସଂ. ବି (ହୁ ଧାତୁ + କରଣ ଯ)—୧ । ହବନୀୟ ଦ୍ରବ୍ୟ—
Habya 1. Materials for performing Homa. ୨ । ଘୃତ—2. Ghee. ୩ । (+ଭାବ ଯ) ହୋମ—3. Offering of ghee unto fire in the name of certain Deities. ୪ । ଚରୁ—4. Offering of sweet to fire. ୫ । ନୈବେଦ୍ୟ—5. Food offered to Deities. ୬ । (+କର୍ତ୍ତୃ ଯ) ଶାକଦ୍ୱୀପାଧିପତି—6. The king of Śākadwīpa.
ବିଣ—୧ । (+କର୍ମ ଯ) ହବନୀୟ; ହୋମଯୋଗ୍ୟ—1. Fit to be offered unto fire. ୨ । ଯଜ୍ଞୀୟ—2. Relating to or required for a vedic sacrifice.

**ହବ୍ୟ କବ୍ୟ**—ସଂ. ବି (ଦ୍ୱନ୍ଦ୍ୱ)—୧ । ହୋମପାଇଁ ପ୍ରଯୋଜନୀୟ ଦ୍ରବ୍ୟ ଓ
Habya kabya ପିତୃ ଶ୍ରାଦ୍ଧପାଇଁ ପ୍ରଯୋଜନୀୟ ଦ୍ରବ୍ୟ—1. Articles required for being offered to the gods through fire and those requird to be offered to the deceased ancestors in shrāddha. ୨ । ଯଜ୍ଞୀୟ ଘୃତ—2. Ghee required for Homa.

**ହବ୍ୟ ପାକ**—ସଂ ବି—୧ । [ହବ୍ୟ+ପଚ୍ ଧାତୁ+କର୍ମ ଅ]—ଚରୁ—
Habya pāka 1. Cooked food or sweets offered to the gods with ghee through fire. ୨ । (+ଅଧିକରଣ ଅ)—ଚରୁପାକସ୍ଥାଲୀ—2. The pot in which charu is cooked.

**ହବ୍ୟବାଟ୍**—ସଂ ବି (ହବ୍ୟ+ବହ୍ ଧାତୁ+କର୍ତ୍ତୃ କ୍ୱିପ୍; ହବ୍ୟବାହ୍ ୧ମା
Habyabāṭ ୧ବ; ଯେ ଦ୍ରବ୍ୟକୁ ଦେବତାମାନଙ୍କଠାକୁ ବହନ କରେ)—ହବ୍ୟବାହ; ଅଗ୍ନି—Fire

**ହବ୍ୟ ବାହ[ବାହନ]**—ସଂ ବି [ବହୁବ୍ରୀହି; ହବ୍ୟ=ଦ୍ରବ୍ୟ ଅଟେ ବାହ
Habya bāha(bāhana) ଯାହାର]—ଅଗ୍ନି—Fire.
[ଦ୍ରି—ଶୁଣି ହବ୍ୟବାହ ଦେବ ନିଜ ହବ୍ୟ ତେଜ ସମ୍ଭାରଣ୍ଣ ଦଶହାଷେ୍ୟ କହିଲେ ଗୌରିବେ—ରାଧାନାଥ ମହାଯାତ୍ରା ।]

**ହବ୍ୟାଶ**—ସଂ. ବି (ହବ୍ୟ=ଘୃତ+ଅଶ୍ ଧାତୁ=ଖାଇବା+କର୍ତ୍ତୃ
Habyāśa ଅ)—ହୁତାଶନ; ଅଗ୍ନି—Fire.
(ହବ୍ୟାଶନ—ଅନ୍ୟରୂପ)

**ହମ୍**—ସଂ. ଅ (ହା. ଧାତୁ=ତ୍ୟାଗ କରିବା+କର୍ମ ଅମ୍)—କ୍ରୋଧବାଚକ
Ham ସୂଚକ ଅବ୍ୟୟ—An interjection used by an angry person

**ହମ୍‌କାଲି**—ଦେ. ବିଣ (ଅ. ହାମ୍ କାଲେବ୍) [କଚରିଆ]—୧ହାମକାଲି
Ham-kāli (ଦେଖ)—1. Hāmakāli (See) ୨ । ଏକକ
ହାମକାଲୀ ବର୍ଗର ଦେବା [ମକଦ୍ଦମା]; ଯେଉଁ ମକଦ୍ଦମାମାନଙ୍କରେ
हामकाली ବର୍ଣ୍ଣନୀ ବିଷୟ ଏକ ହୋଇଥାଏ—2. Analogous (suits);(suits) in which the subject matters are similar.

**ହ[ହା]ମ୍‌ରାଇ[ଏ,ଓ]**—ଦେ. ବି (ଫା. ହାମରାହ୍) (କଚରିଆ)—
Ha[hā]m-rāi[e,o] ୧ । ହାମରାଇ (ଦେଖ)—1. Hama-
हामराई rāi (See) ୨ । ରାଜା ଆଦିଙ୍କ ଗହଣ—2. Retinue
हामराओ (of a king). ନୈ୍ବିଦେ. କ୍ରି. ବିଣ—୧ । (ଅମୁକ ଲୋକଙ୍କ)ଜରିଅରେ-1.Through; per. ୨ । (ଅମୁକର) ସଙ୍ଗେ—2. With; in the company of. ୩ । (ଅମୁକର) ଜିମ୍ମାଦାରରେ—3. In the custody of; under the guard of. [ଦ୍ରି—ହୃତ ଜଣ ଚୌକିଦାର ହମ୍‌ରାଏ ଲଗ ମାଇନା ସକାଶେ କଟକ ଶ୍ମଶାଣ ଦିଆଗଲା । ଫକୀରମୋହନ ଛମାଣ ଆଠଗୁଣ୍ଠ ।]

**ହମ୍‌ସୁଆରି**—ନୈବିଦେ. ବିଣ (ଅ)—ହାମସୁଆରି (ଦେଖ) ।
Ham-suāri Hamaśuari (See)
[ହମ୍ ସୁଆରଅ—ଅନ୍ୟରୂପ]

ହମ୍ ହମ୍—ଦେ. ଅ—ହମ ହମ (ଦେଖ)
Ham-ham Hama hama (See)

ହମର—ପ୍ରାଦେ [ଉତ୍ତରୀୟଭାଷା; ସର୍ବନାମ]—ଆମ୍ଭମାନଙ୍କର—
Hamara Our; ours.

ହମ ହମ—ଦେ. ଅ (ସ. ହମ୍ଭା)—ଗୋରୁଙ୍କ ହମ୍ବାରବ—Lowing
Hama hama of cattle. ବି—[ସଂ ଅହମହମିକା] କୌଣସି
हाम्बा, हामा କାର୍ଯ୍ୟ କରିବାକୁ ଅତ୍ୟନ୍ତ ଉଦ୍‌ଗ୍ରୀବ ବା ଉତ୍କଣ୍ଠିତ
हँमा, हंमा ହେବା—Acute eagerness to do any
लालायित work; yearning. ବଣ—୧ । ଲାଳାୟିତ—
लालायित 1. Eager; hankering after; yearning
୨ । ଅଧିକରୂପେ ଉଲ୍ଲାସ ପ୍ରକାଶ କରୁଥିବ
[ବ୍ୟକ୍ତି]—2. Giving vent to one's joy. ୩ ।
କାମୁକତା ପ୍ରକାଶ କରିବା [ବ୍ୟକ୍ତି]—3. Giving
vent to one's lust.

ହମ ହମ ହେବା—ଦେ. କ୍ରି—୧ । କୌଣସି କାର୍ଯ୍ୟ କରିବାକୁ
Hama hama hebā ଉତ୍କଣ୍ଠା ଏବଂ ଲାଳସା ପ୍ରକାଶ କରିବା—
लालायित हुआ 1. To express extreme eagerness
लालायित होना to do any work. ୨ । ଲାଳାୟିତ ହେବା—
2. To hanker after a thing. ୩ । (ସ୍ତ୍ରୀ ବା
ପୁରୁଷ) କାମାତୁରତା ପ୍ରକାଶ କରିବା; କମ କମ ହେବା—
3. To show signs of lust or amour.

ହମହମିଆ—ଦେ. ବଣ. ପୁଂ—୧ । ଯେ ଅତ୍ୟନ୍ତ ଉତ୍କଣ୍ଠା ପ୍ରକାଶ
Hamahamiā କରେ—1. Expressing too much
eagerness. ୨ । ଲାଳାୟିତ—2. Hankering;
(ହମହମେଇ—ସ୍ତ୍ରୀ) yearning. ୩ । କାମପ୍ରବୃତ୍ତି ଚରିତାର୍ଥ
लालायित କରିବା ପାଇଁ ବ୍ୟଗ୍ରତା ପ୍ରକାଶ କରିବା (ବ୍ୟକ୍ତି)—
लालायित 3. Showing signs of eagerness or
yearning for the satisfaction of one's
lust.

ହମା(ମ୍ମା)—ଦେ. ବି (ସ. ହମ୍ଭା=ଗୋରୁଙ୍କ ରବ)—୧ । (ଶିଶୁ-
Hamā(mmā) ବଚନ) ଗୋରୁ—1. (nursery term)
हामा हंमा Cattle. ୨ । ଗୋରୁଙ୍କ ବୋବାଳି—2. Lowing
हम्बा or bellowing of cattle. ପ୍ରାଦେ (ଗଡ଼ଜାତ) ବି—
ଲଇଁବାର ଭଙ୍ଗୀ—A mode of bending one's body.

ହମାଗୁଡ଼ି—ଦେ. ବି [ତୁଳନା କର ସ. ହମ୍ଭ(=ଗୋରୁଙ୍କ ରବ) ଶବ୍ଦରୁ
Hamāgurdi ଉତ୍ପନ୍ନ ଓଡ଼ିଆ ହମା=ଗୋରୁ+ଓଡ଼ିଆ ଗୋଡ଼,
हमागुडि ବଙ୍ଗଳାରୁ ଅନୁକୃତ]—ଦୁଇ ହାତକୁ ଓ ଦୁଇ ଅଣ୍ଠୁକୁ
ठेहुनिया ଭୂଇଁରେ ଲଗାଇ ଚତୁଷ୍ପଦଙ୍କ ପରି ଗୁରୁଣ୍ଡିବା; ହାମୁଡ଼େଇ
କରି ଗତି—Crawling on all fours; (a person's)
moving on all fours.

ହମା ଗୁଡ଼ି ଦେବା (ମାରିବା)—ଦେ. କ୍ରି [ବଙ୍ଗଳାରୁ ଅନୁକୃତ]—ଦୁଇ
Hamāgurdi debā (māribā) ହାତରେ ଓ ଦୁଇ ଅଣ୍ଠୁରେ
हामागुड़ि देओया ଗୁରୁଣ୍ଡି କରି ଚାଲିବା; ହାମୁଡ଼େଇ କରି ଗତି
ठेहुनिया देना କରିବା—To crawl on all fours.

ହ(ହୁ)ମ ଡ଼ିବା—ପ୍ରାଦେ [ଦେଶୀୟ] କ୍ରି—[ ଶିଶୁ ] ଅଣ୍ଠୁ ଓ ହସ୍ତ
Ha(hu) mārdibā ସାହାଯ୍ୟରେ ଚାଲିବା; ଗୁରୁଣ୍ଡିବା; ହାମୁଡ଼ିବା
—To crawl on all fours.

ହ(ହି)ମାନ୍(ମ୍)ଦ(ଦି)ସ୍ତା—ଦେ. ବ [ ଫା. ହାଭନ୍‌ଦସ୍ତାହ୍ ]—ଗୁଣ୍ଡ-
Ha(bi)mār-(m)da(di)stā ଦ୍ରବ୍ୟକୁ ଛେଚି ଗୁଣ୍ଡ କରିବା ପାଇଁ
हमानदीस्ता ଲୁହାର ଉଦୁଖଳ ଭାଣ୍ଡ ଓ ମୁଷଳ—Iron pestle
हावानदस्ता, हमामदस्ता and mortar. [ଦ୍ର—କେହି କେହି
ଭାଣ୍ଡକୁ 'ହମାନ୍‌ଦସ୍ତା' ଓ ମୁଷଳକୁ 'ମୁଣ୍ଠ' କହନ୍ତି ।]

ହାମାର—ପ୍ରାଦେ (ଗଞ୍ଜାମ) ବି—ଅମାର; ଧାନକୋଠି—
Hāmāra Granary for grains.

ହମା ରଡ଼ି[ବ]—ଦେ. ବି [ ସ. ହମ୍ଭା]—ଗୋରୁମାନଙ୍କ ରବ—
Hamā rardi[ba] Lowing or bellowing of kine.
हाम्बारव हंमारव

ହମାରିବା—ପ୍ରାଦେ [ଶଢ଼ଅଞ୍ଚଳ] କ୍ରି—୧ । ହମ୍ବାରବ କରିବା—
Hamāribā 1. To low (said of kine).
୨ । ସ୍ନେହ କରିବା—2. To have affection.

ହମାଳ[ଳି]—ଦେ. ବି [ସ. ହମ୍ଭା]—ହମ୍ଭା; ଗୋରୁଙ୍କ ରବ—
Hamāla[li] हाम्बारव हंमा Lowing of kine.

ହମାଳ[ଳି] ଛାଡ଼ିବା—ଦେ. କ୍ରି—[ଗୋରୁ] ହମ୍ବାଳିବା; ରଡ଼ିବା—
Hamāla(li)chhārdibā To low (said of kine).
हामलान हंमाना

ହମାଳି—ଦେ. ବି—୧ । ପ୍ରବଳ ବତାସ; ତୋଫାନ—1. High
Hamāli बाड़ बवंडर wind; tempest,
୨ । ହମାଳ [ଦେଖ]—2. Hamāla (See)

ହମାଳିଆ—ଦେ. ବଣ. ପୁଂ—୧ । ଯେଉଁ ଗୋରୁ ଅଧିକ ହମ୍ବାଳେ—
Hamāliā 1. Lowing (kine), ୨ । ଯେଉଁଠାରେ
[ହମାଳେଇ—ସ୍ତ୍ରୀ] ଶୃଙ୍ଖଳା, ସୁବିଚାର ଓ ନ୍ୟାୟବିଚାର
बीचारहीन ନାହିଁ—2. (a place) Lacking
विचारहीन in justice and civility

ହମାଳ ପଶିବା—ଦେ. କ୍ରି—(ଗୋରୁ) ଉଲ୍ଲାସ ବା ଉତ୍କଣ୍ଠା ପ୍ରକାଶ କରି
Hamāli pasibā ଚରି ଗୋଶାଳା ମଧ୍ୟକୁ ପ୍ରବେଶ କରିବା—
ସ୍ୱେଚ୍ଛାୟ ଢୁକା इच्छाय ढुकना (A cow) To rush into
the cowshed after lowing [ଉ—
ଗୁହାଳ ସଫା ଥିଲେ ଗୋରୁ ହମାଳ ପଶେ—ଛଗ]
[ଦ୍ର—ଦୁଧଅଳ ଗାଈ ନିର୍ଦ୍ଦିଷ୍ଟ ସମୟରେ ବାଛୁରିକୁ ନ
ଦେଖିଲେ ହମାଳେ; ଗାଈମାନେ ଚରି କରି ଫେରି ଆସି
ବିଶ୍ରାମାର୍ଥ ପରିଷ୍କୃତ ଗୁହାଳକୁ ପଶିବା ସମୟରେ ହମାଳନ୍ତି;
ଗାଈମାନେ ଋତୁମତୀ ହେଲେ ବୃଷସଙ୍ଗୀ ହୋଇ
ହମାଳନ୍ତି; ଗାଈ ତାହାର ପ୍ରିୟ ଖାଇବାକୁ ଦେଖିଲେ ବା
ବାଛୁରିକୁ ଦେଖିଲେ ହମାଳେ।]

ହମାଳିବା—ଦେ. କ୍ରି—ହମାଳ ଛାଡ଼ିବା (ଦେଖ)
Hamālibā Hamāla chhārdibā (See).

ହମା ହେବା—ପ୍ରାଦେ (ବଲାଙ୍ଗିର ପାଟଣା) କ୍ରି—ଅଣ୍ଠେଇ ପଡ଼ିବା—
Hamā hebā To kneel on all fours.

ହମି—ପ୍ରାଦେ॰ (ଉତ୍କଳଭାଷା) ସର୍ବନାମ—ଅମ୍ଭେମାନେ—We.
Hami

ହମିଙ୍ଗ୍ ବ(ବା)ଡ୍(ର୍ଡ୍)—ବୈଦେ॰ ବ. (ଇଂ)—ଅମେରିକାର ଏକପ୍ରକାର
Hamingba[bā]rd(rrd) ପକ୍ଷୀ—Humming bird;
হমিঙ্গ্ বার্ড্ हमिङ्ग बार्ड Chrysolampis Moschitus.
[ବି—ଏମାନଙ୍କ ଦେହର ରଙ୍ଗ ଅତି ସୁନ୍ଦର । ଏମାନଙ୍କର ଥଣ୍ଟ ଲମ୍ବା । ଏମାନେ ଫୁଲ ଉପରେ ଗୁଣୁ ଗୁଣୁ ସ୍ୱର କରି ଅସ୍ଥିର ଭାବରେ ଉଡ଼ି ଫୁଲରୁ ସରୁଆ ଥଣ୍ଟ ଦ୍ୱାରା ମକରନ୍ଦ ଶୋଷନ୍ତି ଓ ଫୁଲରୁ ପୋକ ଆଦି ଖାଆନ୍ତି ।]

ହମିଦ୍—ବୈଦେ॰ ବ.—( ନାମ )—ମୁସଲମାନଙ୍କ ନାମ ବିଶେଷ—
Hamid A name amongst Mahomedans
(ହମିଦା—ସ୍ତ୍ରୀ) হামিদ हमिद

ହମିଦ୍ ଅବ୍ଦୁଲ୍[ଲ୍ଲା]—ଦେ॰ ବ (ନାମ)—ଉତ୍ତର ଆଫ୍ରିକାର ଅଧିବାସୀ
Hamid abdul[llā] 'ରିଫ୍' ନାମଧାରୀ ମୁସଲମାନଙ୍କ ନେତା—
হামিদ অবদুল हमिद अबदुल्ला Abdul Hamid the famous leader of the Riffs of North Africa. [ବି—ଏ ଆପଣା ଜାତିଙ୍କୁ ସ୍ପେନ୍ ଦେଶବାସୀଙ୍କଠାରୁ ସ୍ୱାଧୀନ କରିବା ପାଇଁ ୩୪ ବର୍ଷ ସ୍ପେନ୍ ଓ ଫ୍ରାନ୍ସ୍ ଦେଶବାସୀଙ୍କ ସଙ୍ଗେ ଯୁଦ୍ଧ କରି ବିଶେଷ ସାହସର ପରିଚୟ ଦେଇ ଅବଶେଷରେ ୧୯୨୬ ସାଲରେ ପରାସ୍ତ ହୋଇ ନିର୍ବାସିତ ହେଲେ ।]

ହମିଦା ବେଗମ୍—ବୈଦେ. ବ. (ନାମ)—ମୋଗଲ ସମ୍ରାଟ୍ ଆକବରଙ୍କ
Hamidā begam ଜନନୀ—Name of the mother of
हमिदाबेगम হমীদাবেগম Akbar, the Great.

ହମିର ଦେଓ—ଦେ. ବ୍.—ଚୌହାନ ବଂଶର ପାଟଣା ଶାଖା ରାଜ ବଂଶର
Hamir Deo ଆଦି ପୁରୁଷ—Name of the progenetor of the royal Chouhan family of the Patna State.
[ବି—ଏହାଙ୍କ ପୁତ୍ର ରମାଇଦେଓ ପାଟଣାରେ ଚୌହାନ ବଂଶ ସ୍ଥାପନ କଲେ । ହମୀରଦେଓ ଗଡ଼ିଅଳ ରାଜ୍ୟ ସ୍ଥାପନ କରିଥିଲେ (କିପ୍ଲେଟନ ପତ୍ରିକାସୂତ୍ର)]

ହମି(ମେ)ଶା—ବୈଦେ. କ୍ରି. ବିଶ—(ଫା. ହାମେଶା)—ସର୍ବଦା—
Hami(me)śā হমেশা हमेशा Always; constantly.

ହମ୍ପା(ମ୍ପେ)ଇବା—ଦେ. କ୍ରି—ହାମ୍ପିବାର ଣିଜନ୍ତରୂପ—To cause
Hampā(mpe)ibā হাঁপান हाँपने देना another to gasp.

ହମ୍ପାଳ(ଳି)—ଦେ. ବ—ହାମ୍ପୋଳି (ଦେଖ)—Hāmpoli (See).
Hampāla(li)

ହମ୍ପାଳିବା—ଦେ. କ୍ରି—ହାମ୍ପୋଳି ମାରିବା; ଦୀର୍ଘନିଃଶ୍ୱାସ ପକାଇବା—
Hampālibā হাঁপছাড়া हाँपना To gasp; to sigh.

ହମ୍ଫ୍ରି ଡେଭିସ୍—ବୈଦେ. ବ (ନାମ)—ଇଂଲଣ୍ଡର ଜଣେକ ସ୍ୱର୍ଗତ
Hamphri debhis ପ୍ରସିଦ୍ଧ ବୈଜ୍ଞାନିକ—The late
হাম্ফ্রি ড্যাভিস্ famous English scentist Sir Hum-
हँम्फ्रिडेभिस) phrey Davis. [ବି—ଏ ଅନେକଗୁଡ଼ିଏ ବୈଜ୍ଞାନିକ ଯନ୍ତ୍ର ଆବିଷ୍କାର କରିଥିଲେ ଓ "କୋଇଲାଖଣି ମଧ୍ୟରୁ ଉଠୁଥିବା ବାଷ୍ପ ଲାଗିଲେ ଜଳି ନ ଉଠିବା ଭଳି ଡାଉନ୍ଦିଆ ଲଣ୍ଠନ ଆବିଷ୍କାର କରିଥିଲେ ।]

ହମ୍ବର୍—ବୈଦେ ବ (ନାମ)—ଇଂଲଣ୍ଡର ୟର୍କ୍ ସାୟାର୍‌ର ଗୋଟିଏ
Hambar ନଦୀର ନାମ—The river Humber in
হম্বর हंबर England.

ହମ୍ବର୍—ବୈଦେ. ବ
Hambar
হাম্বর हामर (ଇଂ ହାମର୍=ହାତୁଡ଼ି; ଉଦ୍ଧରିଥ ଭାଷା)—ଅଦାଲତରେ ବିକ୍ରିଯିବା ଦ୍ରବ୍ୟମାନଙ୍କର ଅସମ୍ପୂର୍ଣ୍ଣ ନିଲାମ, ଯାହାକୁ ହାକିମ ୭ ଦିନ ପର୍ଯ୍ୟନ୍ତ ସ୍ଥଗିତ ରଖି ପାରନ୍ତି—Hammer. [ଉ—୧୪ ତାରିଖ ଦିନ ଜମିଦାର ନିଲାମ ଡାକ ଆରମ୍ଭ ହୋଇ ୧୬ ତାରିଖ ପର୍ଯ୍ୟନ୍ତ ନିଲାମ ହମ୍ବରରେ ରହିଲା—ଫକୀରମୋହନ ।] [ବି—ନିଲାମ ଡାକ ହେଉଥିବେଳେ ପ୍ରଥମ ଓ ଦ୍ୱିତୀୟ ଡାକ ପରେ ଶେଷ ଡାକ (ତିନି) ହେଉଥିବେଳେ ହାକିମ ଯେଉଁ ହାତୁଡ଼ି [ହାମ୍ବର୍] ଧରିଥାଆନ୍ତି, ତାକୁ ଟେବୁଲ ଉପରେ ବାଡେଇ ଦିଅନ୍ତି ଓ ହାମର୍ କାଡ଼େଇବା ସଙ୍ଗେ ସଙ୍ଗେ ନିଲାମଡାକର ସମାପ୍ତି ହୁଏ ଓ ଯେଉଁ ବ୍ୟକ୍ତିଙ୍କ ଡାକରେ 'ତିନି' ହୋଇ ହମ୍ବର୍ ବାଡ଼ୁଅଯାଏ, ସେହି ବ୍ୟକ୍ତି ନିଲାମ ଖରିଦଦାର ବୋଲି ଘୋଷିତ ହୁଅନ୍ତି । ୧ ଓ ୨ ଡାକ ହୋଇ '୩' ଡାକ ହୋଇ ନ ଥିବା ସମ୍ପତ୍ତିର ନିଲାମ ଅନ୍ୟ ତାରିଖକୁ ଘୁଞ୍ଚିଗଲେ 'ଉକ୍ତ ନିଲାମ ହମ୍ବର୍‌ରେ ରହିଲା' ବୋଲାଯାଏ ।]

ହମ୍ବା—ଫ॰ ବ (ଫ ଧ୍ୱନ୍ୟନୁକାରୀ ଶବ୍ଦ)—ଗୋରୁଙ୍କ ରବ—Lowing
Hambā of kine. ପ୍ରାଦେ [ସମ୍ବଲପୁର]
হাম্বা हंभा ବ ଓ ବିଶ—ମୁହଁମାଡ଼ିହୋଇ ପଡ଼ିଥିବା—
ଅନ୍ୟ ଫ ପର୍ଯ୍ୟାୟ— Lying with the face to
ହମ୍ବା, ହମ୍ପା, ଓଲଣ, the ground. [ଉ—ସେ ହମ୍ପା
ଉମ୍ବା ହୋଇ ପଡ଼ିଛି ।]

ହମ୍ବା ରଡ଼ି—ଦେ. ବ ( ଫ ହମ୍ବାରବ )—ହମ୍ବା ରବ—Lowing of
Hambā rardi kine. (ଉ—ଧୂଳି ଉଡ଼ାଇଣ
হাম্বারব हंभारोव ବାଟ୍ରେ କରି ହମ୍ବାରଡ଼ି, ଆସୁଛନ୍ତି ଗୋରୁପଲ ଗୋଠରୁ କାହୁଡ଼ି—ମଧୁସୁଦନ)

ହମ୍ବା ରବ—ଫ. ବ—ଗୋରୁମାନଙ୍କ ହମ୍ବା—
Hambā raba Lowing of kine.

ହମ୍ବା ରାବ—ଦେ. ବ—ହମ୍ବାରବ [ଦେଖ]—Hambāraba (See)
হাম্বাবাব हंभारोव ( ଉ—ହୁଙ୍କାର ହମ୍ବାରବ କରି, କ୍ଷୀର ଦ୍ରବଇ ଚର ଗୃହ—ଭୂପତି ପ୍ରେମପଞ୍ଚାମୃତ ।)

ହମ୍ବାଳ(ଳି)—ଦେ. ବ (ଫ. ହମ୍ବା)—ହମାଳ (ଦେଖ)—
Hambāla(li) Hamāla (See).

ହମ୍ବାଳ(ଳି) ଛାଡ଼ିବା—ଦେ. କ୍ରି—ହମ୍ବା ରବ କରିବା—
Hambāla(li) chhārdibā To low (said of kine).
হামলা हंभा करना

ହମ୍ବାଳ(ଳୁ)ଆ—ଦେ. ବିଶ. ପୁଂ—ହମାଳଆ (ଦେଖ)—
Hambāli(lu)ā Hamāliā (See).
ହମ୍ବଲେଇ, ହମ୍ବାଲେଇ—ସ୍ତ୍ରୀ)

ହମ୍ଭା—ସଂ. ବ [ଧ୍ୱନ୍ୟନୁକରଣ]—ହମ୍ବା (ଦେଖ)—
Hambhā Hambā (See).

ହମ୍ମ୍ ଧାତୁ—ସ—ଗଛ କରିବା—
Hamm root To move.

ହମ୍ମା (ଇତ୍ୟାଦି)—ସ. ବ (ଧ୍ୱନ୍ୟନୁକରଣ)—ହମ୍ବା ଇତ୍ୟାଦି (ଦେଖ)
Hammā (etc) Hambā etc (See)
ଦେ. ବ—ହମା (ଦେଖ)—Hamā (See).

ହମ୍ମାଗୁଡ଼ି—ଦେ. ବ—ହମାଗୁଡ଼ି (ଦେଖ)—
Hammāgurdi Hamāgurdi (See).

ହମ୍ମାଲ(ଲି)—ଦେ. ବ—ହମାଲ (ଦେଖ)—
Hammāla(li) Hamāla (See).

ହମ୍ମାଲ(ଲୁ)ଆ—ଦେ. ବଣ. ପୁଂ—ହମାଲଆ (ଦେଖ)—
Hammāli(lu)ā Hamāliā (See).
(ହମ୍ମାଲେଇ, ହମ୍ମାଲୋଇ—ସ୍ତ୍ରୀ)

ହମ୍ମାଲିବା—ଦେ. କ୍ରି—ହମାଲଛଡ଼ିବା (ଦେଖ)—
Hammālibā Hamāla chhārdibā (See)

ହଯ[ଇତ୍ୟାଦି]—ବୈଦେ. ବ—ହଜ୍ ଇତ୍ୟାଦି [ଦେଖ]—
Haj (etc) Haj etc [See).

ହଯ୍ ଗ(ବ)ଯ୍ [ଇତ୍ୟାଦି]—ଦେ. ଅ—ହଜ୍‌ଗଜ୍ ଇତ୍ୟାଦି [ଦେଖ]—
Hajga(ba)j [etc] Hajgaj etc (See)

ହଯ୍ ଗ[ବ]ଯିଆ—ଦେ. ବ. ପୁଂ—ହଜ୍ ଗଜିଆ [ଦେଖ]—
Hajga(ba)jiā Haj-gajiā (See).
[ହଯ ଗ(ବ)ଯୀ, ହଯଗ(ବ)ଯେଇ—ସ୍ତ୍ରୀ]

ହଯ୍ ମି (ଇତ୍ୟାଦି)—ବୈଦେ. ବଣ—ହଜମି ଇତ୍ୟାଦି (ଦେଖ)—
Haj-mi (etc) Hajami etc (See)

ହଯ୍ ରତ୍ (ଇତ୍ୟାଦି)—ବୈଦେ. ବ—ହଜ୍‌ରତ୍ ଇତ୍ୟାଦି [ଦେଖ]—
Haj-rat (etc) Haj-rat etc (See)

ହଯ—ଦେ. ବ—ହିଜ (ଦେଖ)—
Haja Haja (See.)

ହଯବରଲ—ଦେ. ବ—୧। ବ୍ୟବସ୍ଥିତ; ଅବ୍ୟବସ୍ଥିତ—1. Unsettled; mismanaged.
Hajabarala
୨। ଅନିୟମିତ; ହଯବରଲ ଗଡ଼ବଡ଼ ଅବ୍ୟବସ୍ଥିତ—2. Unregulated; irregular.
୩। ଗୋଳମାଳିଆ—3. Confused. [ଉ—ସିଲ୍ଲୀ ବହୁ ଯୁଦ୍ଧର ହଯବରଲ କରି ଯବେଳ ଦେଇ ଦୋଉ ଅଛେ ଦୃଳ୍ଗୁ ।]

ହଯା—ଦେ. ବ ଓ ବଣ—ହଜା (ଦେଖ)—
Hajā Hajā (See).

ହଯାର—ବୈଦେ. ବ ଓ ବଣ—ହଜାର (ଦେଖ)—
Hajāra Hajāra (See).

ହଯାରି—ବୈଦେ. ବ—ହଜାରି (ଦେଖ)—
Hajāri Hajāri (See).

ହଯାରୁ(ରୁଁ)ହଯାର—ବୈଦେ.ବଣ ଓ ବ—ହଜାରୁ ହଜାର [ଦେଖ]—
Hajāru(run)hajāra Hajāruhajāra (See).

ହଯାରେ—ଦେ. ବ ଓ ବଣ—ହଜାରେ [ଦେଖ]—
Hajāre Hajāre (See)

ହଯିବା—ଦେ. କ୍ରି—ହଜିବା [ଦେଖ]
Hajibā [ହଯା(ଯେ)ଇବା—ଣିଜନ୍ତ] Hajibā [See]

ହଯୁର—ବୈଦେ. ବ ଓ ଅ—ହଜୁର [ଦେଖ]—
Hajur Hajur (See)

ହଯୁରି—ଦେ. ବ. ଓ ବଣ—ହଜୁରି [ଦେଖ]
Hajuri Hajuri (See).

ହଯେ(ଯା)ଇବା—ଦେ. ବ—ହଜେଇବା (ଦେଖ)—
Haje(jā)ibā Hajeibā (See)

ହୟ (ଧାତୁ)—ସ—୧। ଗମନ କରିବା—1. To go. ୨। କ୍ଲାନ୍ତ ହେବା—2. To be tierd.
Haya (root)

ହୟ—ସ. ବ ପୁଂ—(ହୟଧାତୁ+କର୍ତ୍ତୃ ଅ)—୧। ଘୋଟକ; ଘୋଡ଼ା
Haya —1. The horse ୨। ଇନ୍ଦ୍ର—2. God Indra.
(ହୟା—ସ୍ତ୍ରୀ) ୩। ସାତ ସଂଖ୍ୟା (ସୂର୍ଯ୍ୟଙ୍କର ୭ଟି ଅଶ୍ୱ ଥିବାରୁ)—
3. The number seven.

ହୟକାତରା[କାତରିକା]—ସ. ବ—ଔଷଧବୃକ୍ଷବିଶେଷ—Name of a tree used in medicine.
Hayakātarā [kātarikā]
(ଦ୍ର—ଏହା ତିକ୍ତ, ବାତଘ୍ନ, ପାଚକ [ରାଜନିର୍ଘଣ୍ଟ] )

ହୟ ଗନ୍ଧ—ସ. ବ [ବହୁବ୍ରୀହି; ହୟ ପରି ଗନ୍ଧ ଯାହାର]—କାଚଲବଣ
Haya gandha [ରାଜନିର୍ଘଣ୍ଟ]—A sort of salt.

ହୟଗନ୍ଧା—ସ. ବ—୧। ଅଶ୍ୱଗନ୍ଧା ବୃକ୍ଷ [ହେମମାଳା] [ଦେଖ]—
Hayagandhā 1. Aswagandhā bruksha (See).
୨। ଅଜମୋଦା (ରାଜନିର୍ଘଣ୍ଟ) (ଦେଖ)—
2. Ajamodā (See)

ହୟଗ୍ରୀବ—ସ. ବଣ. ପୁଂ [ବହୁବ୍ରୀହି; ହୟର ଗ୍ରୀବା ପରି ଗ୍ରୀବା ଯାହାର, ହୟ+ଗ୍ରୀବା]—ଯାହାର ବେକ ଘୋଡ଼ାର ବେକ ପରି ଲମ୍ବା—Having a long neck like that of a horse. ବ. ପୁଂ—
Hayagriba
[ହୟଗ୍ରୀବା—ସ୍ତ୍ରୀ]
୧। ଶାଳଗ୍ରାମବିଶେଷ—1. A sort of Sālagrāma. [ଶାଳଗ୍ରାମ ତଳେ ଟୀକା ଦେଖ]—(See notes under Sālagrāma]. ୩। ଦୈତ୍ୟବିଶେଷ [ଉ—ଏ ଦୈତକୁ ବିଷ୍ଣୁ ମତ୍ସ୍ୟାବତାରରେ ବଧ କରି ମଧୁକୈଟଭଙ୍କ ଦ୍ୱାରା ହୃତ ବେଦକୁ ଉଦ୍ଧାର କରିଥିଲେ [ମହାଭାରତ, କାଳିକାପୁରାଣ]—3. Name of a demon killed by Bishnu in his Fish-incarnation. (ଉ—ମାୟାବୀ ପ୍ରଚଣ୍ଡ ଦାନବ, ନାମ ତାହାର ହୟଗ୍ରୀବ—ଜଗନ୍ନାଥ. ଭାଗବତ ।]—୪। ବିଷ୍ଣୁଙ୍କ ଅବତାରବିଶେଷ [ସେତାଯୁଗରେ ନୃସିଂହାବତାର]—4. An incarna- of Bishnu. ଦେ. ବ. ପୁଂ—
हयग्रीव हयग्रीव
ଲୋକଙ୍କ ନାମ—A name given to males.

ହୟଗ୍ରୀବହା—ସଂ. ବ. ପୁଂ [ହୟଗ୍ରୀବ+ହନ୍ ଧାତୁ+କର୍ତ୍ତୃ. ଡ଼]—ବିଷ୍ଣୁ—A name of Bishnu.
Hayagribahā

ହୟଗ୍ରୀବା—ସଂ. ବଣ. ସ୍ତ୍ରୀ (ହୟଗ୍ରୀବ+ସ୍ତ୍ରୀ. ଆ)—ହୟଗ୍ରୀବର ସ୍ତ୍ରୀଲିଙ୍ଗ—
Hayagribā Feminine form of Hayagriba.
ବି. ସ୍ତ୍ରୀ—ଦୁର୍ଗା [ଦୁର୍ଗା ସହସ୍ର ନାମ]—
One of the names of Goddess Durgā.

ହୟଙ୍କଶ—ସଂ. ବି (ସଂ. ହୟ=ଘୋଡ଼ାଙ୍କୁ+କଶ୍ ଧାତୁ=ଚଳାଇବା+
Hayaṅkasha କର୍ତ୍ତି. ଅ)—ଇନ୍ଦ୍ର ସାରଥି, ମାତଳି—
A name of the charioteer of Indra.

ହୟଙ୍ଗବୀନ—ଗ୍ରା. ବି [ସଂ. ହୈୟଙ୍ଗବୀନର ଅଶୁଦ୍ଧ ଉଚ୍ଚାରଣ]—
Hayaṅgabīna ହୈୟଙ୍ଗବୀନ, ସଦ୍ୟଃସ୍ତୁତ ଘୃତ—
हयंगवीन हयंगवीन Fresh ghee.
[ଦ୍ର—କୋମଳେ ଲବଣୀ ଦେହ ସମାନ, ତରଳ ହେଉଛି ହୟଙ୍ଗବୀନ । ଲକ୍ଷ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।]

ହୟଜ୍ଞ—ସଂ. ବି [ହୟ+ଜ୍ଞା ଧାତୁ+କର୍ତ୍ତି. ଅ]—୧ । ହୟାୟୁର୍ବେଦଜ୍ଞ;
Hayajña ଅଶ୍ୱଶାସ୍ତ୍ରବେତ୍ତା—1. A person versed in veterinary science; a vet. ୨ । ଅଶ୍ୱପାଳ; ସଇସ—2. Groom; syce.

ହୟନ—ସଂ. ବି [ହୟ ଧାତୁ+ଭାବ. ଅନ]—ବର୍ଣ୍ଣୀଇତ; ଅଚ୍ଛାଦିତ
Hayana ଶକଟ; ଛାଇଗାଡ଼ି [ଅମର]—A cart with a
(ହୟନୀ—ଅନ୍ୟରୂପ) thatch.

ହୟପୁଚ୍ଛିକା (ପୁଚ୍ଛୀ)—ସଂ. ବି—ମାଷପର୍ଣ୍ଣୀ (ଅମର) [ଦେଖ]
Hayapuchchhikā (puchchhī) Māshaparṇṇī [See]

ହୟପ୍ରିୟ—ସଂ. ବି (୬ଷ୍ଠୀ ତତ୍; ଏହା ଘୋଡ଼ାର ପ୍ରିୟଖାଦ୍ୟ
Haya priya ଥିବାରୁ)—ଯବ; ଯବଧାନ [ ହେମଚନ୍ଦ୍ର ]—
Barley;

ହୟପ୍ରିୟା—ସଂ. ବି—୧ । ଅଶ୍ୱଗନ୍ଧା [ରାଜନିର୍ଘଣ୍ଟ] ( ଦେଖ )—
Hayapriyā 1. Aśwagandhā (See) ୨ । ଖର୍ଜ୍ଜୁରୀ
(ରାଜନିର୍ଘଣ୍ଟ) (ଦେଖ)—2. Kharjjurī (See)

ହୟବାହନ—ସଂ. ବି. ପୁଂ (ବହୁବ୍ରୀହି)—୧ । ସୂର୍ଯ୍ୟପୁତ୍ର; ରେବନ୍ତ
Haya bāhana ( ହେମଚନ୍ଦ୍ର )—1. A name of Rebanta, the son of the Sun-god. ୨ । କୁବେର (ଶବ୍ଦ କଳ୍ପଦ୍ରୁମ)—2. The Hindu God of wealth.

ହୟବାହନ ଶଙ୍କର—ସଂ. ବି—ରକ୍ତକାଞ୍ଚନ ବୃକ୍ଷ (ବୈଦ୍ୟକ)—
Hayabāhana śaṅkara The red-flowered variety of Bouhinia Variegata tree.

ହୟମାର(ମାରକ)—ସଂ. ବି—କରବୀର (ରାଜନିର୍ଘଣ୍ଟ)—
Haya māra (māraka) Nerium Odorum; Apocynacae.

ହୟମାରଣ—ସଂ. ବି—ଅଶ୍ୱତ୍ଥ ବୃକ୍ଷ (ଶବ୍ଦଚନ୍ଦ୍ରିକା)—
Hayamāraṇa The pipal tree.

ହୟମୁଖ—ସଂ. ବଣ. ପୁଂ (ବହୁବ୍ରୀହି, ହୟର ମୁଖପରି ମୁଖ ଯାହାର)—
Hayamukha ହୟପରି ମୁଖବିଶିଷ୍ଟ—Having the face
(ହୟମୁଖୀ—ସ୍ତ୍ରୀ) like that of a horse. ସଂ. ବି—୧ । ହୟଗ୍ରୀବ (ଦେଖ)—2. Hayagriba (See). ୨ । (୬ଷ୍ଠୀ ତତ୍) ଘୋଡ଼ାର ମୁହଁ—2. The face of the horse.

ହୟମେଧ—ସଂ. ବି—ଅଶ୍ୱମେଧ ଯଜ୍ଞ—
Haya medha A vedic sacrifie in which a horse is the victim.

ହୟରାଣ (ଇତ୍ୟାଦି)—ଦେଶଜ. ବି ଓ ବଣ—ହଇରାଣ ଇତ୍ୟାଦି (ଦେଖ)—
Hayarāṇa (etc) Hairāṇa etc (See)
(ଦ୍ର—ରୋଜ ରୋଜ ଠକା ଦାଣ୍ଡଲ କରି କରୁ ବୁଢ଼ା ଟଙ୍କାସୁଦ୍ଧା ହୟରାଣ—ଫକୀରମୋହନ. ଗଳ୍ପସ୍ୱଳ୍ପ ।)

ହୟରାଣିଆ—ଦେ. ବଣ—ହଇରାଣିଆ (ଦେଖ)
Hayarāṇiā Hairāṇiā (See)

ହୟଶକୁନ—ସଂ. ବି—ଘୋଡ଼ାର ଲକ୍ଷଣ ଓ ଗତି [illegible]
Hayaśakuna ପ୍ରଭୃତିରୁ କହିଥିବା ଶାସ୍ତ୍ର—A science by which the master's future can be foretold from the movements of a horse.
[ଦ୍ର—ଯେଉଁ ଘୋଡ଼ା ଡାହାଣ ଅଡ଼କୁ ମୁହଁ କରି ହ୍ରେଷାରବ କରେ, ତାହାର ପାଦଘାତଦ୍ୱାରା ଭୂଇଁ ଖୋଳେ ଓ ନିଜର ଦକ୍ଷିଣାଙ୍ଗକୁ ଭୃଷ୍ଟାଇ ହୁଏ, ସେ ଘୋଡ଼ା ସ୍ୱାମୀଙ୍କୁ ଉଚ୍ଚପଦ ଓ ବିଭବ ଅର୍ପିଦିଏ—ବସନ୍ତରାଜ. ହୟଶକୁନ ।]

ହୟଶାଳା—ସଂ. ବି—ଅଶ୍ୱଶାଳା—
Hayaśāla A stable.
[ଦ୍ର—ମତ୍ସ୍ୟପୁରାଣ ଓ ଅଶ୍ୱଶାସ୍ତ୍ରରେ ଉପଦେଶ ଅଛି ଯେ, ଅଶ୍ୱଶାଳା ଏପରି ନିର୍ମିତ ହେବା ଦରକାର ଯେ, ସେଥିରେ ଘୋଡ଼ାମାନେ ଉତ୍ତରମୁଖ ବା ଦକ୍ଷିଣମୁଖ ହୋଇ ଅବସ୍ଥାନ କରିବେ । ଅଶ୍ୱଶାଳାରେ ରାତିଯାକ ଦୀପ ଜଳିବ । ଅଶ୍ୱଶାଳା ନିକଟରେ ସବୁଥିରେ ଛେଳି, ଷଣ୍ଢ, ମର୍କଟ, ଚେଳ, ଏମାନଙ୍କୁ ରଖିବ । ସୂର୍ଯ୍ୟାସ୍ତ ପରେ ଅଶ୍ୱଶାଳାରୁ ଘୋଡାର ଲଣ୍ଡି ଓ ମୂତ୍ର ବାହାର କରିବା ନାହିଁ ।]

ହୟଶାସ୍ତ୍ର—ସଂ. ବି (ମ. ପ. ଲୋ)—ଅଶ୍ୱଶାସ୍ତ୍ର; ଯେଉଁ ଶାସ୍ତ୍ରଦ୍ୱାରା
Haya śāstra ଅଶ୍ୱମାନଙ୍କର ଲକ୍ଷଣ ଓ ରୋଗାଦି ସ୍ଥିର କରାଯାଇ ତହିଁର ପ୍ରତୀକାର କରାଯାଏ—Veterinary science.

ହୟଶିକ୍ଷା—ସଂ. ବି (୬ଷ୍ଠୀ ତତ୍)—ଘୋଡ଼ାକୁ ପଣ କରିବା—
Haya śikshā The training or breaking of a horse.

ହୟଶୀର୍ଷ—ସଂ. ବଣ. ପୁଂ (ବହୁବ୍ରୀହି)—ହୟମୁଖ; ହୟର ମସ୍ତକ ପରି
Haya śirsha ମସ୍ତକ ଯାହାର—Having the head of a
(ହୟଶୀର୍ଷା—ସ୍ତ୍ରୀ) horse.

ହୟା—ସଂ. ବଣ. ସ୍ତ୍ରୀ (ହୟ+ସ୍ତ୍ରୀ. ଆ)—୧ । ଅଶ୍ୱିନୀ; ଘୋଡ଼ୀ—
Hayā 1. Mare. ୨ । ଅଶ୍ୱଗନ୍ଧା (ରାଜନିର୍ଘଣ୍ଟ) (ଦେଖ)—
2. Aśwagandhā (See)

ହୟାଙ୍କାର—ଗ୍ରା. ବି (ସଂ. ଭୟଙ୍କର)—୧ । ଭୟଙ୍କର—1. Fright-
Hayāṅkāra ful; terrible. ୨ । ଅତି ସାଙ୍ଘାତିକ—2. Very

ଭୟଙ୍କର भयंकर t.l. ॥ ଅତିସ୍ଥୂଳ—3. Very stout.

ହୟାତ୍—ଦେ. ବି (ଅ·)—ଜୀବନ କାଳ—
Hayāt জীবনকাল ज़िन्दगी Life-time.

ହୟାତ୍ ଭରି (ଭରିରେ) ଦେ କ୍ରି· ବିଶ—ଜୀବନକାଳ ମଧ୍ୟରେ—
Hayāt bhari (bharire) In the course of a life-
জীবনে time. (ଯଥା—ଯେଉଁ ସାଅନ୍ତାଣୀ ମୋ ପର ଅଯୋଗ୍ୟ
ज़िंदगीमें ଲୋକକୁ ଭାଗ ଦେବା ପାଇଁ ଖାଇଗଲେ, ତାଙ୍କ ଉପକାର
ମୁଁ ହୟାତ୍‌ଭରରେ ଭୁଲି ପାରିବି ନାହିଁ।]

ହୟାଧ୍ୟକ୍ଷ—ସଂ ବି. ପୁଂ (୬ଷ୍ଠୀ ତତ୍)—ଅଶ୍ୱାଧ୍ୟକ୍ଷ; ସଇସମାନଙ୍କ ସର୍ଦ୍ଦାର-
Hayādhyaksha The head syce.

ହୟାନ୍ତ(ନ୍ତି)—ଦେ. ବିଶ (ସଂ. ଭୟଙ୍କର)—୧। ଅତି ଭୟଙ୍କର;
Hayanta(nti) ଭୟାନକ—1. Very fright-
ভয়ঙ্কর भयंकर ful; terrible.

ହୟାନ୍ତିଆ } —ଅନ୍ୟରୂପ ୨। ଭୟଙ୍କର ରୂପବିଶିଷ୍ଟ—
ହୟାନ୍ତଆ } 2. Having a terrible
appearance. ୩। ଅତି ଦୀର୍ଘକାୟ—3 Very
tall. ୪। ଅତି ସ୍ଥୂଳକାୟ—4. Very
stout.

ହୟାନନ୍ଦ—ସଂ. ବି (ବହୁବ୍ରୀ; ହୟମାନଙ୍କର ଆନନ୍ଦ ହୁଏ ଯାହାଦ୍ୱାରା;
Hayānanda ଏହା ଘୋଡ଼ାମାନଙ୍କର ପ୍ରିୟ ଖାଦ୍ୟ
ହୋଇଥାଏ)—ମୁଦ୍ଗ; ମୁଗ (ଶସ୍ୟବିଶେଷ)—A sort of
grain; Phaseolus Moonga.

ହୟାୟୁର୍ବେଦ—ସଂ ବି—ଅଶ୍ୱ ଚିକିତ୍ସା ଶାସ୍ତ୍ର-Veterinary science.
Hayāyurbeda [ ଦ—ଗରୁଡ଼ପୁରାଣ ୨୦୨
ଅଧ୍ୟାୟରେ ହୟାୟୁର୍ବେଦ ଲେଖିଅଛି ।]

ହୟାରି—ସଂ. ବି (୬ଷ୍ଠୀ ତତ୍)—କରବୀର (ରତ୍ନମାଳା ଦେଖ)—
Hayāri Karabīra (See)

ହୟାରୋହ · ଦେ. ବି ( ସଂ. ହୟାରୋହୀ )—ଅଶ୍ୱାରୋହୀ—
Hayāroha A horse-rider. [ ଦ—
ঘোড়সবার घोड़सवार ] ହୟାରୋହମାନେ
ଯେ ଶରାରୋହ ଭୂଲେ, ତୁଣରୁ ବାଣ ବାଛିକରି ଯୁଦ୍ଧ କଲେ—
କୃଷ୍ଣସିଂହ ମହାଭାରତ କର୍ଣ୍ଣପର୍ବ । ]

ହୟାଶନା—ସଂ ବି—ଶଲ୍ଲକୀ ବୃକ୍ଷ (ଶଲଇଗଛ)—
Hayāsanā Indian olibanum plant.

ହୟାହ୍ୱୟା—ସଂ ବି (ବୈଦ୍ୟକ)—ଅଶ୍ୱଗନ୍ଧା—
Hoyāhwayā Withania Somnifera (tree)

ହୟି—ଦେ. ଅ—ହଇ (ଦେଖ)—
Hayi Hai (See)

ହୟିଏ(ହେ)—ଦେ· ଅ—ହଇଏ (ଦେଖ)—
Hayie(he) Haie (See)

ହୟିକତ୍—ବୈଦେ. ବି—ହଇକତ୍ (ଦେଖ)—
Hayikat Haikat (See)

ହୟି କରିବା—ଦେ. କ୍ରି ହଁ ଭରିବା, ସମ୍ମତି ଦେବା—
Hayi karibā To agree; to answer in the
হাঁবোলা हाँ करना affirmative.

ହୟିକିଅତ୍—ଦେ. ବି—ହକିକତ୍ (ଦେଖ)—
Hayikiat Hakikat (See)
(ହୟିକ୍ୟତ୍, ହଇକତ୍—ଅନ୍ୟରୂପ)

ହୟିକିରେ—ଦେ. ଅ—ହଇକିରେ (ଦେଖ)—
Hayikire Haikire (See)

ହୟି ୟିଁ, ଚୟି(ୟିଁ)—ଦେ· ବି ଓ ବିଶ—ହଇଚଇ (ଦେଖ)—
Hayi(yiñ)chayi(yiñ) Haichai (See)

ହୟିଜା—ଦେ. ବି—ହଇଜା (ଦେଖ)—
Hayijā Haijā (See)

ହୟିବେ—ଦେ. ଅ (ପୁରୁଷ ଓ ସ୍ତ୍ରୀ ପ୍ରତି ବ୍ୟବହୃତ)—ହଇବେ (ଦେଖ)
Hayibe Haibe [See]
ହୟିରେ (ପୁରୁଷପ୍ରତି)
ହୟିରେ ହେ (ପୁରୁଷପ୍ରତି)
ହୟିଲେ (ସ୍ତ୍ରୀପ୍ରତି ଅନ୍ୟରୂପ)
(ହୟିଲେ ହେ (ସ୍ତ୍ରୀପ୍ରତି)
ହୟିହେ[ହୋ] (ପୁରୁଷ ଓ ସ୍ତ୍ରୀପ୍ରତି) (ସମ୍ମାନାର୍ଥେ)

ହୟିରୋଜ୍ ଦେ. ଅ—ହଇରୋଜ୍ (ଦେଖ)—
Hayiroj Hairoj (See)

ହୟିହୟ—ଗ୍ରା. ବି—ହୈହୟ [ଦେଖ]—
Hayihaya Haihaya [See]

ହୟି ହୟି—ଦେ. ଅ—ହଇହଇ (ଦେଖ)
Hayihayi Haihai (See)

ହୟେ—ଦେ. ଅ—ହଇହେ [ଦେଖ]—
Haye Haihe [See]
(ହୟେ ହେ—ଅନ୍ୟରୂପ)

ହର୍—ବୈଦେ ବିଶ (ଫା)—୧।ପ୍ରତି; ପ୍ରତ୍ୟେକ—1. Every.
Har हर हर ୨। ସମସ୍ତ; ସବୁ—
2. All. [ ଦ—ଏହା ଅନ୍ୟ ଶବ୍ଦ ପୂର୍ବରେ ଲଗେ ।
ଯଥା—ହର୍‌ କିସମ୍, ହର୍‌ ଘଡ଼ି, ହର୍‌ ଦମ୍ ।] ଦେ କ୍ରି—
'ତୁ' କର୍ତ୍ତା ସହିତ ସଂଯୁକ୍ତ 'ହରିବା' କ୍ରିୟାର ଅନୁଜ୍ଞାରେ
ଆକାର—The form of the verb 'Haribā'
with the nominative 'thou' in the impe-
rative mood.

ହର୍‌କତ୍—ବୈଦେ. ବି—୧। କଷ୍ଟ—1. Difficulty; trouble.
Har-kat ୨। ବିଘ୍ନ—2. Obstacle; hindrance.
নাকাল हरकत ୩। ଅସୁବିଧା—3. Incon-
venience. ୪। ମନ୍ଦ ଓ ଅଭାବଗ୍ରସ୍ତ ଅବସ୍ଥା—
4. Bad and needy condition. ବୈଦେ-
ବିଶ—୧। ଅସୁବିଧାଗ୍ରସ୍ତ—1. Undergoing incon-
venience. ୨। ଅଭାବଗ୍ରସ୍ତ—2. Needy

ପ୍ରାଦେ (ସମ୍ବଲପୁର) ବିଣ—ହରକ୍ତ—Teased.

ହର୍‌କତ୍ କରିବା –ଦେ· କ୍ରି—୧ । କଷ୍ଟ ଦେବା—1. To give
Har-kat karibā trouble. ୨ । କଷ୍ଟରେ
नाकाल करा हरकत करना ପକାଇବା—2. To put a person to difficulty. ୩ । ଅସୁବିଧାରେ ପକାଇବା—3. To put into inconvenience., ପ୍ରାଦେ [ସମ୍ବଲପୁର] କ୍ରି—ହରକ୍ତ କରିବା—To tease

ହର୍‌କତ୍‌ରେ ପଡ଼ିବା—ଦେ. କ୍ରି—କଷ୍ଟମଧ୍ୟ ବା ଅସୁବିଧା ଗ୍ରସ୍ତ ବା ଅଭାବ
Har-katre paṛibā ଗ୍ରସ୍ତ ଅବସ୍ଥାରେ ପଡ଼ିବା ହେବା-To be हयबाणेपड़ा in trouble or inconvenience or want.
हरकतमेपड़ना

ହର୍‌କତ୍ ହେବା –ଦେ. କ୍ରି—୧ । ଅସୁବିଧା ଭୋଗ କରିବା—1. To
Har-kat hebā feel inconvenience. ୨ । କଷ୍ଟ
नाकाल हओया ଭୋଗ କରିବା—2. To be troubled. ୩ ।
हरकतहोना ଅଭାବଗ୍ରସ୍ତ ହେବା—3. To be in want.

ହର୍‌କତିଆ—ଦେ· ବିଣ—୧ । ଅସୁବିଧା ଯୁକ୍ତ-1. Full of the con-
Har-katiā venience. ୨ । କଷ୍ଟଜନକ—2. Trouble
नाकाले some. ୩ । ଅଭାବଗ୍ରସ୍ତ (ଅବସ୍ଥା)—3. Needy
हरकतवरनेवाला (condition) ଦେ. ବିଶ. ପୁଂ—୧ । ଯେ ହରକତ କରେ; ଯେ ଅନ୍ୟକୁ କଷ୍ଟରେ ବା ହରକତରେ ପକାଏ—1. Putting another into trouble or difficulty. ୨ । ଯେ ହରକତ ଭୁଞ୍ଜେ; ଯେ କଷ୍ଟରେ ବା ଦୁଃଖରେ ପଡ଼ିଥାଏ-2. One who is in trouble or inconvenience.

ହର୍‌କରା –ଦେ. ବି (ଫା. " ହରକାରୀ)—୧ । ସମ୍ବାଦ ବାହକ—
Har-karā 1. Messenger. ୨ । ପ୍ରଭୃତିରେ; ଚିଠିଆ—
हरकबा 2. Message carrier. ୩ । ଡାକହରିଆ; ପିଅନ,
हरकारा ପିଅନ; ଧାଉଡ଼—3 A running footman; a runner. ୪ । ଦୂତ; ଚର—4. A herald.
୫। ଡାକ ଚିଠି ନେବା କର୍ମଚାରୀ;ଡାକବାଲା-5. Postman.
୬ । ପତ୍ର ବାହକ—6. Letter-carrier

ହର୍‌କିସମ୍—ବୈଦେ. ବି (ଫା)—୧। ସବୁ ପ୍ରକାର—1. All sorts.
Har-kisam ୨ । ନାନାପ୍ରକାର—2. Various sorts. ୩ ।
हरेककरकम ପ୍ରତ୍ୟେକ ପ୍ରକାର—3. Every kind. ବିଣ—
हरकिसम ୧ । ସବୁ ପ୍ରକାରର-1. Of all sorts. ୨ । ପ୍ରତ୍ୟେକ ରକମର—2. Of every kind. ୩ । ନାନା ପ୍ରକାରର; 3. Of various sorts.

ହର୍‌ଖନ୍—ପ୍ରାଦେ. (ସମ୍ବଲପୁର) ଅ—(ଫା· ହର + ସ ଛଣ)—ଅନୁକ୍ଷଣ
Har-khan Constantly; every moment.

ହର୍‌ଗଉର (ରି)—ଦେ. ବି—ହରଗଉର (ଦେଖ)—
Hara-gourā (ri) Haragourā (See)
[ହର୍‌ଗୌର (ରି)—ଅପଭ୍ରଂଶ]

ହର ଗିଜ୍‌—ବୈଦେ. ଅ (ଫା)—ହରଗ୍ରୀଜ; ଅର୍ଥାତ୍—1. At all.
Hargij ୨ । କଦାପି—2. Ever.
मोटेई हरगीज

ହର୍‌ଘଡ଼ି—ଦେ. ଅ (ଥ. ହର+ସ ଘଟି)—୧ । ପ୍ରତି ମୁହୂର୍ତ୍ତରେ—
Har-gharḍi 1. At every moment. [ଉ—ସେ କଥା
हरघडी ମୋର ମନେ ତେତେବେଳେ ପଡ଼ି—ବାରୁ ସିନା
हरघड़ी ଶୁଣିଁ ତୁମକୁ ହରଘଡ଼ି—କୃଷ୍ଣସିଂହ, ମହାଭାରତ ବନ] ୨ । ସଦା; ସର୍ବଦା—2. Always. [ଉ—ହରଘଡ଼ ଭଲକଥା, କରୁଥିବା ତୁହେ ଚଳ୍ପା—ବାଲକୃଷ୍ଣ. ଚଳାଙ୍ଗିଅ ରଜାପୁଅ] ୩ । ପୁନଃ ପୁନଃ—
3. Repeatedly.

ହର୍‌ଡ଼ା – ପ୍ରାଦେ. (ଗଡ଼ଜାତ) ବି—ହରଡ଼ା—
Har-ṛdā Myrobalan.
[ହରିଡ଼ା—ଅପଭ୍ରଂଶ]

ହର୍‌(ରି) ତନ—ଦେ. ବି—ତାସ୍ ଖେଳରେ ନାଲିପାନ ରଙ୍ଗ ଓ ସେହି
Har-(ri) tan ରଙ୍ଗରେ ଚିହ୍ନିତ ୧୩ ଖଣ୍ଡ ତାସ୍—The set
हरतन of 13 heart cards in the game of cards and
लालपान the said red mark.

ହର ତରଫ୍—ବୈଦେ. ବି (ଫା)—୧ । ନାନାଦିଗ—1. Various
Har-taraf directions. ୨। ସବୁଆଡ଼—2, All sides
नानादिग, सबदिग ୩ । ପ୍ରତ୍ୟେକ ଦିଗ—3. Every side.
हरतरफ

ହର ତାଳ—ଦେ. ବି (ସ. ହଟ୍ଟ=ହାଟ ଓ ତାଲକ=ଗୃହ, ଦୋକାନରେ
Har-tāla ଗୃହ ହୋଇ ରହି ଲୋକ ବନ୍ଦ କରିବା)- ଜଣୁଆ
हरताल ... ... ଅନ୍ୟ ... ...
हड़ताल ଦୋକାନ ବନ୍ଦ କରିବା ଶୁଳ୍କ—1. Closing of shops as a mark of passive resistance.
୨ । ଧର୍ମଘଟ—2. A strike. [ଉ—ଏହାଦ୍ୱାରା ଗାନ୍ଧିଙ୍କ ଶିକ୍ଷାଦ୍ୱାରା ସାଧାରଣ ଲୋକେ ବଳବାନ୍ ରାଜଶକ୍ତିକୁ ବଳଦ୍ୱାରା ଜବତ୍ କରି ନପାରି ହରତାଳ ଦ୍ୱାରା ଉକ୍ତର ଶକ୍ତି ପ୍ରୟୋଗ କରିବାକୁ ଶିଖି ଅଛନ୍ତି] ପ୍ରାଦେ. (ଗଡ଼ଜାତ) ବି—ହରିତାଳ—Yellow orpiment.

ହର୍‌ତାଳି—ଦେ. ବିଣ—ହରତାଳ (ଦେଖ)—
Har-tāḷi Haritāḷi (See)

ହର୍‌ତାଳି(ଲି) କା—ଦେ. ବି—ହରତାଳିକା (ଦେଖ)—
Har-tāḷi(li)kā Haratāḷikā (See)

ହର୍‌ଦଫା—ବୈଦେ· ଅ (ଫା)—ପ୍ରତିଥର—
Har-daphā Every time; each time.
प्रतिबार हरदफा

ହର୍‌ଦମ୍—ବୈଦେ. ଅ(ଫା)—୧। ହର୍‌ଘଡ଼ି; ସବୁବେଳେ; ସର୍ବଦା—
Har-dam 1. Always; constantly. ୨ । ଅନବରତ
हरदम हरदम ଅବଶ୍ରାନ୍ତ ଭାବରେ—

2 Without interruption. ବିଣ—ଅବଶ୍ରାନ୍ତ— Uninterrupted; constant.

ହର୍‌ଦମ୍‌ପେଲା—ଦେ. ବିଣ. ପୁଂ (ଅଶ୍ଳୀଳ)—ଯେଉଁ ବ୍ୟକ୍ତି ସର୍ବଦା କାମପ୍ରବୃତ୍ତି ଚରିତାର୍ଥ କରିବାରେ ରତ— Har-dam-pelā लम्पट लंपट 1. Constantly addicted to sexual enjoyment. ହର୍‌ଦମ୍‌ପେଲୀ, ହର୍‌ଦମ୍‌ ପେଲେଇ } ସ୍ତ୍ରୀ— ୨। ଅତି କାମୁକ (ବ୍ୟକ୍ତି — 2. Very lustful; libidinous.

ହର୍‌ଦର୍‌—ବୈ଼ଦେ. ବି (ଫା)—ବସ୍ତୁ ବସ୍ତୁର ହାରାହାରି ମୂଲ୍ୟ— Har-dar Nett price; average price or rate. हरदर हाराहारी ବିଣ—ହାରାହାରି— Nett; average. ଦେ. କ୍ରି. ବିଣ—ହାରାହାରି [ହର୍‌ଦରରେ, ହର୍‌ଦରେ—ଅନ୍ୟ କ୍ରି ବିଣ ରୂପ] ହାରାହାରିରେ— On the average; on an average.

ହର୍‌ଦିବା—ଗ୍ରାଦେ. କ୍ରି—ହର୍ଦିବା (ଦେଖ) Har-dibā Hardibā (See)

ହର୍‌ଦୁଆର—ଦେ. ବି (ନାମ) (ସଂ ହରଦ୍ୱାର)—ହରିଦ୍ୱାର (ଦେଖ) Har-duār Haridwār (See) (ହର୍‌ଦ୍ୱାର—ଅନ୍ୟରୂପ)

ହର୍‌ନ—ଦେ. ବି—ହର୍ଣ୍ଣ (ଦେଖ)— Har-n Harṇṇ [See].

ହର୍‌ନବାବି-ଦେ. ବିଣ—୧। ବଡ଼ଲୋକଙ୍କ; ନବାବଙ୍କର ବା ବଡ଼ଲୋକଙ୍କ ଉପଯୁକ୍ତ (କାର୍ଯ୍ୟକଳାପ)—1. (acrt) Har-nabābi बड़लोकी, बडमानबी नवाबी Befitting a Nabob or rich man [ ଯଥା—ହର୍‌ନବାବୀ ଚାଲ୍‌ଚଳନ ହର୍‌ନବାବୀ ଢଙ୍ଗ, ହର୍‌ନବାବୀ ଖରଚ ।] ୨। ଯେଉଁ ସମ୍ପତ୍ତିର ସମସ୍ତ ଅୟ ଶୁଦ୍ଧ ନବାବଙ୍କ ନିଜର ବ୍ୟକ୍ତିଗତ ଖରଚରେ ଲାଗେ— 2. (a property) All the income of which is applied to the personal expenses of the Nabob. ଦେ. ବି—୧। ନବାବ ବା ବଡ଼ଲୋକଙ୍କ ଉପଯୁକ୍ତ ଚାଲଚଳଣ—1. Conduct befitting a rich man. ୨। ନବାବଙ୍କ ନିଜର ବ୍ୟକ୍ତିଗତ ଖରଚରେ ସମସ୍ତ ଅୟ ଲାଗିବା ପାଇଁ ଉଦ୍ଦିଷ୍ଟ ଭୂସମ୍ପତ୍ତି—2. Estate set apart for meeting the personal expenses of a Nabab.

ହର୍‌ନିଆଁ—ଦେ. ବି. (ଇଂ. ହର୍‌ନିଆ)—ଅଣ୍ଡକୋଷ ରୋଗ; ଯେଉଁ Har-niā ରୋଗରେ ଅଣ୍ଡକୋଷ ମଧ୍ୟକୁ ବାୟୁପୂର୍ଣ୍ଣ ଅନ୍ତ୍ରଥଳୀ ବା ହାରନିୟା अन्त्र ଖସିଆସେ—Hernia (disease) हर्निया [ହର୍ନିଅଁ (ଅଁ); ହର୍ଣ୍ଣିଆ (ଅଁ)—ଅନ୍ୟରୂପ]

ହର୍‌ପ—ଦେ. ବି (ଆ. ହର୍ଫ୍‌) । ହରଫ୍‌ ଦେଖ— Har-pa Harap (See)

ହର୍‌ଫସଲ୍‌—ବୈ଼ଦେ. ବି (ଫା)—୧। ପ୍ରତ୍ୟେକ ଫସଲ—1. Every Har-phasal crop. ୨। ସମସ୍ତ ପ୍ରକାରର ଫସଲ—2. All हयफसल हरफसल kinds of crops.

ହର୍‌ଫସଲି—ବୈ଼ଦେ. ବିଣ (ଫା)—ଯେଉଁ ଜମିରେ ଏକାଧିକ ଋତୁରେ Har-phasli ଏକାଧିକ ଫସଲ କୃଷିଦ୍ୱାରା ଉତ୍ପନ୍ନ କରଯାଏ— দোফসলি (A land) On which more than one हरफसलि crop can be grown throughout the year.

ହରବକ(ଖ)ତ—ବୈ଼ଦେ. ଅ (ଫା. ହର୍‌ବକ୍ତ)—ହର୍‌ଦମ୍‌; ସର୍ବଦା Har-baka(kha)ta Always. সবসময়ে हरवकत [ହର୍‌ବକ୍ତ—ଅନ୍ୟରୂପ]

ହର୍‌ବର୍‌—ଦେ. ବି—ହଇରାଣ (ଦେଖ)—Hairāṇa (See) Har-bar ଦେ. ବିଣ—ହଇରାଣରେ ପଡ଼ିଥିବା—Fallen in হয়বাণ difficulty or trouble. ଗ୍ରାଦେ. (ସମ୍ବଲପୁର) हरबर ବିଣ—୧। ବ୍ୟସ୍ତ; ବିରକ୍ତ—1. Teased; annoyed ୨। ତରତର—2. In haste.

ହର୍‌ବର୍‌ କରିବା—ଦେ. କ୍ରି—ହର୍‌କତ୍‌ କରିବା (ଦେଖ)— Har-bar karibā Harkat karibā (See) ଗ୍ରାଦେ. (ସମ୍ବଲପୁର) କ୍ରି—୧। ବିରକ୍ତ କରିବା—1. To tease; to annoy. ୨। ତରତର କରିବା—2. To হায়রানকরা हरबरकरना make haste.

ହର୍‌ବର୍‌ ହେବା—ଦେ. କ୍ରି—ହଇରାଣ ହେବା (ଦେଖ)— Harbar hebā Hairāṇa hebā (See) হায়রানহওয়া हैरबरहोना

ହର୍‌ବରିଆ—ଦେ. ବିଣ—୧। ହର୍‌କତିଆ (ଦେଖ)—1. Har-katiā Har-bariā (See) ୨। ହର୍‌ବର୍‌ (ଦେଖ)—2. Har-bar হায়বাণিয়া (See) ଗ୍ରାଦେ. (ସମ୍ବଲପୁର) ବିଣ—ତରତରିଆ— हरबरकरनेवाला Hasty.

ହର୍‌ବା—ଗ୍ରାଦେ. (ସମ୍ବଲପୁର) କ୍ରି—ହରିବା— Har-bā To steal.

ହର୍‌ବୋଲା—ବୈ଼ଦେ. ବି. (ଫା)—ହରବା (ଦେଖ)—Harabbā Har-bolā (See) ଦେ. ବିଣ—ଯେ ଅନ୍ୟ ସବୁ ପ୍ରାଣୀଙ୍କର ସ୍ୱର হরবোলা ଅନୁକରଣ କରେ—1. Imitating the cries of हरबोला all other animals. ଯେଉଁ ବ୍ୟକ୍ତି ସବୁ ଭାଷାରେ କଥା କହିପାରେ—2. Speaking many languages polyglot.

ହର୍‌ମଉ(ହ୍ମ)ଶୁଲ୍‌—ବୈ଼ଦେ. ବିଣ (ଫା.ଜଚଋଅ)—ଯେଉଁ ଜମିରେ Har-mau (ha,ha) śul ଏକାଧିକ ଫସଲ ଏକାଧିକ ଋତୁରେ দোফসলি ଉତ୍ପାଦନ କରିଯାଇ ପାରେ—(Land] On which हरफसलि more than one crop can be grown in different seasons of the year.

ହର୍ମ(ମୋ)ନିଅ(ୟ)ମ—ବୈଦେ. ବ—ହାର୍ମୋନିଅମ (ଦେଖ)—
Har-ma(mo)nia(ya)m Hār-maniam (See)
[ହର୍ମ(ମୋ)ନିଅ—ଅନ୍ୟରୂପ]

ହର୍ମି(ମେ)ଶା—ବୈଦେ. ପ୍ରାଦେ. (ଉତ୍ତରଅଞ୍ଚଳ) ଅ.—(ଫା. ହମେଶା)—
Har-mi(me)śā ଅନବରତ; ସର୍ବଦା—
हमेंशा सर्ब्बदा Constantly.

ହର୍ଯ(ଯା)—ବୈଦେ. ବ—ହରଜ୍ (ଦେଖ)—
Har-ja (jā) Haraj (See)

ହର୍‌ରଙ୍ଗ—ଦେ. ବ (ଅ. ହର୍=ସବୁ+ସଂ ରଙ୍ଗ)—୧ । ସବୁପ୍ରକାର
Har-ranga ରଙ୍ଗ—1. All colours. ୨ । ଅନେକରଙ୍ଗ—
অনেকবঙ্গ 2. Many colours ୩ । ନାନାରଙ୍ଗ; କୌତୁକ—
हर्‌रंग 3. Amusements; merriment.

ହର୍‌ରଙ୍ଗି—ଦେ. ବଣ. ପୁଂ—୧ । ନାନାପ୍ରକାରର—1 Of various
Har-rangi sorts or kinds. ୨ । ନାନାବର୍ଣ୍ଣ ବର୍ଣ୍ଣିଷ୍ଟ;
[ହର୍‌ରଙ୍ଗିଅ—ଅନ୍ୟରୂପ] ନାନାବର୍ଣ୍ଣ ରଞ୍ଜିତ—2. Multi
কৌতুকপ্রিয coloured. ୩ । ନବରଙ୍ଗିଆ; କୌତୁକପ୍ରିୟ—
हर्‌रंगी 3. Fond of amusements. ୪ । ସର୍ବଦା
( ହର୍‌ରଙ୍ଗୀ, ହର୍‌ରଙ୍ଗେଣୀ—ସ୍ତ୍ରୀ ) ପରିବର୍ତ୍ତନପ୍ରିୟ—
4. Very fond of change. ୫ । ଯେ ସର୍ବଦା ଭିନ୍ନ
ଭିନ୍ନ ପୋଷାକ ବଦଳାଏ—5. Fond of assuming
different dresses at different times.

ହର୍‌ରା—ଦେ. ବ (ସଂ ହରିତ୍, ପ୍ରା. ହରିଅ)—ହରିଦ୍‌ବର୍ଣ୍ଣ, ଶାଗୁଆରଙ୍ଗ—
Har-rā Green colour; emerald colour.
সবুজ हरा ଦେ. ବଣ—ହରିଦ୍‌ବର୍ଣ୍ଣବିଶିଷ୍ଟ;
ଶାଗୁଆ—Green coloured; of verdant
green.

ହର୍‌ରୋଜ୍—ବୈଦେ. ଅ (ଫା)—ପ୍ରତିଦିନ—
Har-roj Every day; daily.
হররোজ हर्‌रोज

ହର୍‌ଶାଲ୍—ବୈଦେ. ଅ (ଫା)—ପ୍ରତି ସନ; ପ୍ରତି ବର୍ଷ—
Har-sāl Every year
হরশাল हर्‌साल

ହର୍‌ଶାଲି(ଲି)—ଦେ. ବଣ—ଯାହା ପ୍ରତି ସନ ଘଟେ—
Har-sālā(li) Happening every year.
(ହର୍‌ଶାଲିଆ—ଅନ୍ୟରୂପ) হরশালি हर्‌साला

ହର୍‌ହମି(ମେ)ଶା—ବୈଦେ.ଅ (ଅ.ହର୍=ସବୁ, ପ୍ରତ୍ୟେକ+ହମେଶା
Har-hami(me)śā =ସର୍ବଦା)—ହର୍‌ଘଡ଼ି; ସର୍ବଦା-
হামেশা हर्‌हमेशा Always; constantly.

ହର୍‌ହର୍—ପ୍ରାଦେ [ବଲାଙ୍ଗିର ପାଟଣା] ବ—ହରଡ଼—Pigeon pea,
Har-har Cajanus Indicus
ପ୍ରାଦେ (ଉତ୍ତରଅଞ୍ଚଳ) ବଣ—ଅସ୍ଥିର—Restless.

ହର—ସଂ. ବ [ ହୃ ଧାତୁ=ହରଣ କରିବା; ସଂହାର କରିବା+କର୍ତ୍ତୃ ଅ
Hara ଯେ ଜଗତକୁ ସଂହାର କରନ୍ତି)—୧ । ଶିବ;
ମହାଦେବ;ରୁଦ୍ର—1.God Śiva (the Destroyer
of the universe). ୨ । ଅଗ୍ନି—2. Fire. ୩ ।
ଗର୍ଦ୍ଦଭ, ଗଧ—3. Ass. ୪ । ( +କର୍ମ ଅ ) ଭାଗ;
ଅଂଶ—4. Part ୫ । (+ଭାବ ଅ; ଗଣିତ) ହରଣ-
5. (mathematics) Division. ୬ । (ଗଣିତ) ଏକ
ସଂଖ୍ୟାର ବିଭାଜକ ଅଙ୍କ; ଭଗ୍ନାଂଶର ରେଖା ତଳେ ଥିବା
ସଂଖ୍ୟା—6. (mathematics) A denominator. ୭
ହରଣ; ଚୋରି—Stealing. (ଉ—କହିଲେ ଅଣ୍ଡ ହର
ବାଣୀ, ସୁଥନନ୍ଦନ ତାହା ଶୁଣି—ଜଗନ୍ନାଥ ଭାଗବତ । )
ସଂ. ବଣ—୧ । ହରଣକାରକ; ଯାହା ହରଣ କରେ—
1. Removing. [ ଦ୍ରୁ—ଏହା ଅନ୍ୟ ଶବ୍ଦ ସଙ୍ଗେ
(ହରା—ସ୍ତ୍ରୀ. ବଣ ) ସମାସରେ ଯୁକ୍ତ ହୁଏ । ଯଥା—ଦୁଃଖହର;
ଶୋକହର ।] ୨ । ଯାହା ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ
( ସମ୍ବାଦ ଆଦି ) ନିଏ; ବାହକ—2. Carrying
message etc (ଯଥା—ସନ୍ଦେଶହର ।) ୩ । ଯାହା ନାଶ
କରେ;ନାଶକାରକ—3.Destroying [ଯଥା—ସ୍ମରହର]
୪ । ଯାହା ଚିତ୍ତକୁ ମୁଗ୍ଧ କରେ—4. Charming; en-
chanting. [ଯଥା—ଚିତ୍ତହର,ମନୋହର]ଦେ.ବ—୧ ।
হর हर ( ପୁଂ ) ହରନାଥ, ହରଗୋବିନ୍ଦ
ହରନାରାୟଣ, ହରମୋହନ ଆଦିଙ୍କ ଡାକନାମ—
1. Nick name of names beginning with
Hara. ୨ । [ସ୍ତ୍ରୀ] ହରପ୍ରିୟା, ହରମଣି ଆଦି ସ୍ତ୍ରୀଙ୍କର
ଡାକ ନାମ—2. Nickname of females
whose names begin with Hara. ଦେ. ବଣ—
(ଫା. ହର୍ ଶବ୍ଦର ଓଡ଼ିଆ ଉଚ୍ଚାରଣ) ସବୁ; ପ୍ରତ୍ୟେକ—
(The Oriya pronunciation of the Persian
word Har)—All, every. ଦେ. କ୍ରି—(ତୁମ୍ଭେ କର୍ତ୍ତା
ସହିତ ଯୁକ୍ତ ହେବା ହରିବା କ୍ରିୟାର ଅନୁଜ୍ଞାରୂପ) ହରଣ
କର—The imperative mood of the verb
Haribā.

ହରକ—ସଂ. ବ. ପୁଂ (ହୃ ଧାତୁ+କର୍ତ୍ତୃ ଅକ)—୧ । ଶିବ—1. God
Haraka Śiva. ୨ । ଚୋର—2. Thief.
( ହାରକା—ସ୍ତ୍ରୀ. ବଣ) ବଣ. ପୁଂ—ହରଣକର୍ତ୍ତା—Stealing.
୩ । ଶଠବଞ୍ଚକ—3. A rogue. (apte)
(ଉ—ସକଳ ଯକାରସବ ସମ୍ଭୂତ ହରକ—ବଦଶ୍ରିତଲ୍ୟାମଣି ।

ହର କଙ୍କାଳ—ଦେ. ବ—ବନମଲ୍ଲିକା । (ଦେଖ)
Hara kankāla Banamallikā (See).

ହରକଚ—ଦେ. ବ—କଣ୍ଟାଳିଆ ଗୁଳ୍ମ ବିଶେଷ—A species of thorny
Harakacha plant growing on the shores
চালমুগুরা कटगौनी of water.
[ଦ୍ରୁ—ଏ ଗୁଳ୍ମ ପାଣି କୂଳରେ ଜନ୍ମେ । ଚିଲିକା କୂଳରେ
ଓ ସମ୍ବଲପୁର ଅଞ୍ଚଳର ମହାନଦୀ କୂଳରେ ଓ ଶାଳନ୍ଦୀ
ନଦୀର କୂଳରେ ଏ ଗଛ ସାଧାରଣତଃ ଦେଖାଯାଏ । ଗଛ

୨ ହାତ ଉଚ୍ଚ; ପତ୍ର ବଡ଼ ଓ ପତ୍ର ଦେହରେ କଣ୍ଟା ଥାଏ; ଫୁଲ ହଳଦିଆ ଓ କେଶରଯୁକ୍ତ । ଫୁଲର ବ୍ୟାସ ୧୨ ଇଞ୍ଚ, ଫଳ ଅଣ୍ଡାକୃତି ଓ ବହୁ କ୍ଷୁଦ୍ର ଖାଞ୍ଜଵିଶିଷ୍ଟ; ମଞ୍ଜି କଳାଖଇରି ପରି । ଏ ମଞ୍ଜିର ତେଲରେ କାଛୁ କୁଣ୍ଡିଆ ଆଦି ଭଲ ହୁଏ । କେହି କେହି ଏହାକୁ ଗୁଲକୁମ୍ଭ ବୋଲି କହନ୍ତି ।]

ହରକତ୍—ପ୍ରାଦେ (ଖଣ୍ଡୁଅଳ) ବି—୧ । କ୍ଷତି; ଲୋକସାନ— Harakat 1. Loss ୨। ହରବର— 2. Botheration.

ହରକ[କ୍କ]ତ—ବୈଦେ. ବି ଓ ବିଣ—ହର୍‌କତ୍ (ଦେଖ)— Haraka(kka)ta Har-kat (See)

ହରକ(କ୍କ)ତିଆ—ଦେ. ବିଣ—ହର୍‌କତିଆ (ଦେଖ)— Haraka(kka)tiā Harakatiā (See).

ହରକରା—ବୈଦେ. ବି—ହର୍‌କରା (ଦେଖ)— Harakarā Har-karā (See).

ହରକିଶମ—ବୈଦେ. ବି—ହର୍‌କିଶମ୍ (ଦେଖ)— Harakisam Har-kisam (See).

ହରକୁମାର—ସଂ. ବି, ପୁଂ—୧ । କାର୍ତ୍ତିକେୟ [ଷଷ୍ଠୀ ତତ୍]—1. God Harakumāra Kārttikeya. ୨। ମହାଦେବଙ୍କ ପୁତ୍ର— हर कुमार 2. Son of Siva. ଦେ. ବି. ପୁଂ—ଲୋକଙ୍କ ନାମ— हर कुमार A name given to males.

ହରକୁମାର ଠାକୁର—ଦେ. ବି [ନାମ]—କଲିକତାର ପ୍ରସିଦ୍ଧ ଜମିଦାର Harakumāra ṭhākura ସ୍ୱର୍ଗୀୟ ପ୍ରସନ୍ନକୁମାର ଠାକୁରଙ୍କର ବଡ଼ ଭାଇ ଓ ଗୋପୀମୋହନ ଠାକୁରଙ୍କର ଜ୍ୟେଷ୍ଠପୁତ୍ର [ମୃତ]—Name of a late Sanskrit scholar and devout Hindu Zamindar of Calcutta. [ଦ୍ର—ଏହାଙ୍କର ସଂସ୍କୃତରେ ପ୍ରଗାଢ଼ ପାଣ୍ଡିତ୍ୟ ଥିଲା । ଏ ଦେବାର୍ଚ୍ଚନା ଓ ସଂସ୍କୃତଚର୍ଚ୍ଚାରେ ସର୍ବଦା ବ୍ୟାପୃତ ଥିଲେ ଓ ହିନ୍ଦୁ ସଙ୍ଗୀତରେ ଏହାଙ୍କର ବିଶେଷ ବ୍ୟୁତ୍ପତ୍ତି ଥିଲା । ଏ ଗୁଡ଼ିଏ ଧର୍ମଗ୍ରନ୍ଥ ରଚନା କରିଥିଲେ । ମହାରାଜ ଯତୀନ୍ଦ୍ରମୋହନ ଓ ରାଜା ସୌରୀନ୍ଦ୍ରମୋହନ ଠାକୁର ଏହାଙ୍କର ପୁତ୍ର । ଏହାଙ୍କ ମୃତ୍ୟୁ ଖ୍ରୀ: ୧୮୫୮ ।]

ହର କୋପାନଳ—ସଂ. ବି [ଷଷ୍ଠୀ ତତ୍]—ମହାଦେବ କୋପାନ୍ୱିତ Hara kopānala ହେବାରୁ ତାଙ୍କ କପାଳମଧ୍ୟରୁ ଅଗ୍ନିରୁ ବାହାରିବା ଅଗ୍ନି [ଯାହା କାମଦେବଙ୍କୁ ଭସ୍ମ କରି ଦେଇଥିଲା]— The fire which issued through the third eye of God Siva when he became angry with Cupid.

ହର ଗଉରା—ଦେ. ବି (ସଂ. ହର ଓ ଗୌରୀ)— Hara gaurā ୧ । ହର ଓ ପାର୍ବତୀ—1. Siva and his हरगौरी consort Pārbati. ୨ । ଶିବଙ୍କର ଅର୍ଦ୍ଧନାରୀଶ୍ୱର हरगौरी ରୂପ—2. The form of Siva consisting half of himself and the other half of हजारि Parbati. ୩ । [ ସଂ. ନାମ ବୃକ୍ଷୀ ]— दोपाटी ହଜାରି ଫୁଲ—3. Indian balsam [ଦ୍ର—ଏହାର ଗଛ ସୁଉଚ୍ଚତାରେ ପ୍ରାୟ ୨ ହାତ ବଢ଼େ ଓ ବର୍ଷାଦିନେ ଏଥିର ଗଛ ଉଠେ ଭାଦ୍ରବ, ଆଶ୍ୱିନ ଓ କାର୍ତ୍ତିକରେ ଫୁଲ ଧରେ, ଶୀତକାଳକୁ ଗଛ ମରିଯାଏ । ଗଛରେ ଧଳା, ନାଲି, ଛିଟଛିଟିକିଆ ଆଦି ଭିନ୍ନ ଭିନ୍ନ ରଙ୍ଗର ଫୁଲ ଧରେ । ଏହାର ଫଳ ଗୋଟିଏ ଲେଖାଏଁ ମୃଦଙ୍ଗାକୃତି ଓ ଅଧ ଇଞ୍ଚ ଲମ୍ବ; ମଞ୍ଜିଗୁଡ଼ିଏ ଫଳ ମଧ୍ୟରେ ଥାଏ; ମଞ୍ଜିଗୁଡ଼ିକ ଗୋଲାପ ବର୍ଣ୍ଣବିଶିଷ୍ଟ, କିନ୍ତୁ ସୋରିଷଠାରୁ ବଡ଼ । ଏହାର ଫୁଲ ଓ ପତ୍ରକୁ ବାଟି ମାଇପେ ଓ ପିଲାମାନେ ହାତପାପୁଲିରେ ଓ ଗୋଡ଼ରେ ଅଳତା ଯେପରି ଅଂଶରେ ବୋଳନ୍ତି । ଏହାକୁ କିଛିକ୍ଷଣ ରଖି କାଢ଼ି ପକାଇଲେ ସେ ସ୍ଥାନମାନ ନାଲି ରଙ୍ଗରେ ରଞ୍ଜିତ ହୁଏ ଓ କିଛିଦିନ ସ୍ଥାୟୀ ହୁଏ । ଏହାର ଫୁଲର ପାଖୁଡ଼ା ତଳେ ଯେଉଁ ଖୋଲ ଥାଏ, ତାହା ମଧ୍ୟ ଫୁଲର ବର୍ଣ୍ଣବିଶିଷ୍ଟ ଥିବାରୁ ଏହାର ସଂ. ନାମ ବୃକ୍ଷୀ । ]

ହରଗଉରୀ—ଦେ. ବି (ସଂ. ହରଗୌରୀ)—ହରଗୌରୀ (ଦେଖ) Hara gaurī Haragaurī (See)

ହରଗିଜ୍—ବୈଦେ. ଅ—ହର୍‌ଗିଜ୍ (ଦେଖ) Haragij Har-gij (See)

ହରଗୁଣ—ଦେ. ବି (ସଂ. ହରଣ + ଗୁଣନ)—ହରଗୁଣ; ହରଣ ଓ Haraguṇa ଗୁଣନ—Division and multiplication. हरण गुणन गुणाभाग

ହର(ରି)ଗୁଣ ପୋଥି—ଦେ. ବି—ଯେଉଁ ବିଷୟକୁ ସର୍ବଦା ଝୁରିବାକୁ Hara(ri)guṇa pothi ବା ଘୋଷିବାକୁ ବା ସ୍ମରିବାକୁ ହୁଏ— जपमाला पुँथि A matter which a person reme- दिन गुनाब mbers or recites or pines after always. [ଦ୍ର—ଶ୍ରୀକୃଷ୍ଣ ମଥୁରାକୁ ଯିବାପରେ 'ଗୋପୀମାନେ' ହରିଗୁଣ ସ୍ମରଣ କରି ଶ୍ରୀକୃଷ୍ଣଙ୍କ ପାଇଁ ଦୁଃଖ ହେଉଥିଲେ; ଏହି କଥାରୁ ଏ ବ୍ୟବହାର ଆସିଅଛି । ]

ହର[ରି]ଗୁଣ ପୋଥି କରିବା—ଦେ. କ୍ରି—କୌଣସି କଥାକୁ ସର୍ବଦା Hara[ri]guṇa pothi karibā ଝୁରିବା ବା ଘୋଷି जपमाला पुँथिकरा ହେବା—To recall to memory दिन गुनना to pine after [any matter].

ହରଗୋବିନ୍ଦ—ସଂ. ବି—ଶିବ ଓ ବିଷ୍ଣୁ— Hara gobinda Siba and Bishṇu. हर गोविन्द ଦେ. ବି. ପୁଂ—ପୁରୁଷଙ୍କ ନାମ— हर गोविन्द A name given to males.

ହରଗୋ(ଗୌ)ରା—ଦେ. ବି—ହରଗଉରା (ଦେଖ) Harago(gau)rā Haragaurā (See)

ହର ଗୌରୀ—ସଂ. ବି—ହରପାର୍ବତୀ; ଶିବଙ୍କର ଅର୍ଦ୍ଧନାରୀଶ୍ୱର ରୂପ— Hara gaurī A form assumed by Siba consisting of half male and half female.

ହରଘଡ଼ି—ଦେ. ଅ—ହର୍‌ଘଡ଼ି (ଦେଖ)—Har-ghardi (See) Haraghardi (ଉ—ତା ଜାଣି ପଙ୍କ ମୁଁ ଫୁଟିଲି ହରଘଡ଼ି । हरघड़ि हरघड़ि ବୃନ୍ଦାବନ. ମହାଭାରତ. ବନ ।)

ହର ଚଣ୍ଡୀ—ଦେ. ବ—ପୁରୀସହରର ଦକ୍ଷିଣପଶ୍ଚିମରେ ପ୍ରାୟ ଗୃରକୋଶ
Hara chaṇḍī ଦୂରରେ ସାଗରସୈକତରେ ପ୍ରତିଷ୍ଠିତ ପ୍ରାଚୀନ ଦେଉଳରେ ଥିବା ଦେବୀମୂର୍ତ୍ତି—The image of Durgā in the temple of Harachaṇḍī situated on the sea beach four miles to the south-west of Puri town.
[ଦ୍ରି—ଚନ୍ଦ୍ରମା ବୁଡ଼ିଗଲେ ହରଚଣ୍ଡୀଙ୍କର ଉର୍ଜନ ଦୂର ପ୍ରାନ୍ତରେ। ରାଧାନାଥ-ଖାଦଗା ]

ହର ଚନ୍ଦ୍ର—ଦେ. ବ ପୁଂ—ପୁରୁଷଙ୍କୁ ଦିଆଯିବା ନାମ—
Hara chandra A name given to males.

ହରଚନ୍ଦ୍ର ଘୋଷ—ଦେ. ବ. ପୁଂ—(ଜନ୍ମ ଖ୍ରୀ ୧୮୦୮—ମୃତ୍ୟୁ ୧୮୬୪)—
Harachandra ghosha ବଙ୍ଗର ଶ୍ରେଷ୍ଠ ଅଦାଲତର ସ୍ୱର୍ଗତ ଜଜ୍—The late Harachandra Ghosh, Judge Small Cause Court of Calcutta [ ଦ୍ର—ଏ କଲିକତାର ହେୟାର୍ ସ୍କୁଲରେ ପ୍ରସିଦ୍ଧ ହେୟାର୍ ଓ ଡି'ରୋଜାରିଓ ସାହେବଙ୍କଠାରୁ ଇଂରାଜୀ ଶିକ୍ଷା କରି ପ୍ରଥମେ ମୁନସଫ୍, ପରେ କଲିକତାର ଜୁନିଅର୍ ମାଜିଷ୍ଟ୍ରେଟ୍ ଓ ଶେଷରେ ଶ୍ରେଷ୍ଠ ଅଦାଲତର ଜଜ୍ ହୋଇଥିଲେ। କଲିକତା ଶ୍ରେଷ୍ଠ ଅଦାଲତର ପ୍ରବେଶଦ୍ୱାର ନିକଟରେ ଏହାଙ୍କର ପ୍ରସ୍ତରମୟୀ ମୂର୍ତ୍ତି ସ୍ଥାପିତ ହୋଇଅଛି।]

ହର ଚୂଡ଼ାମଣି—ସଂ. ବ (ଶିବଙ୍କ ମସ୍ତକରେ ଚୂଡ଼ାମଣିରୂପେ ଶୋଭାପାଉ-
Hara chūrḍāmaṇi ଥିବାରୁ)—ଚନ୍ଦ୍ର—The moon.

ହରଜ(ଜା)—ବୈଦେ. ବ (ଅ. ହରଜ; ହାରିଜ୍; ହର୍‌ଜା)—
Haraj(jā) ୧। ଅସୁବିଧା—1. Inconvenience. ୨। ହରଜ हर्ज ହରକତ—2. Trouble; difficulty. ୩। ବାଧା—3. Impediment; obstacle.

ହରଜ୍ ହରକ(କ୍କ)ତ—ବୈଦେ. ବ (ଅ)—( ଏକାର୍ଥକ ଶବ୍ଦର )—
Haraj haraka(kka)ta ହଇରାଣ ହରକତ, କଷ୍ଟ ଓ ଅସୁବିଧା—
हरजाहरान हर्जहानि Trouble and difficulty.
(ହରଜ ହରକତଥିଆ – ବଣ)

ହରଜ (ଜା)—ପ୍ରାଦେ (ଖଡ଼ୁଅଲ) ବ.—କ୍ଷତି—
Haraj (jā) Loss.
[ହର୍ଜା—ଅନ୍ୟରୂପ].

ହର ଜାୟା—ସଂ. ବ. ସ୍ତ୍ରୀ (ଷଷ୍ଠୀ ତତ୍)—ପାର୍ବତୀ—
Hara jāyā Goddess Pārbatī.

ହରଜା—ପ୍ରାଦେ. (ସମ୍ବଲପୁର) ବ—ବିବାହାଦିର ଖର୍ଚ୍ଚ—
Harajā Expenses incurred for a marriage or any other social function.

ହରଜିଆ—ଦେ. ବଣ—ହର କଟିଆ (ଦେଖ)—
Harajiā Har-katiā (See)

ହରଡ଼—ଦେ ବ—[ସଂ. ହରେଣୁ; ଅଢକୀ]। ୧। ଶିମ୍ବାଦିବର୍ଗର କୃଷି-
Hararḍa ଜାତ ଶସ୍ୟ ବିଶେଷ—1. Pigeon pea, Cajanus
ପର୍ଯ୍ୟାୟ— Indicus. [ ଦ୍ର—ଏହି କୃଷିଜାତ ଗଛ

ହରେଣୁ, ଅଢକୀ, କାଣ୍ଡିଥିବା ଗୁଳ୍ମ ଜାତୀୟ ସରୁ ଓ ୩।୪ ହାତ ଉଚ୍ଚତା
ତୁବରୀ, ଶଣପୁଷ୍ପିକା ହୋଇଥାଏ। ଏଥିର ପତ୍ର ଗୁଡ଼ିକ ଚେପ୍ଟା ଓ ଫୁଲଗୁଡ଼ିକ
ଅଡବ, ଅଡହର ହଳଦିଆ ଓ ନାଲିମିଶା ଚେପ୍ଟା ୩।୪ଟି ଲେଖାଏଁ
अरहर ମଞ୍ଜି ବାହାରେ। ଏହା ମନ୍ଥର ଜାତୀୟ। ଏହା ସାଧାରଣତଃ
ମ. ତର, ତୁବର ଦୁଇପ୍ରକାର। ୧। ଦେଶୀ ହରଡ଼ (Cajanus) Bicolor) ୨। କାଙ୍ଗୁ ହରଡ଼ (Cajanus Flavus)
ପ୍ରଥମ ଜାତୀୟ ଗଛ ମନୁଷ୍ୟ ଅପେକ୍ଷା ଉଚ୍ଚ ହୁଏ। ଫୁଲରେ ହଳଦିଆ ସଙ୍ଗେ ନାଲି ଚୋପା ଥାଏ। ଛୁଇଁରେ ୩।୪ଟି ମଞ୍ଜି ଥାଏ; ମଞ୍ଜି ଶ୍ରେଷ୍ଠ। ଏହା ଶୀତ ସମୟରେ ଫଳେ।
ଦ୍ୱିତୀୟ ଜାତୀୟ ଗଛ ୨।୩ ହାତ ଉଚ୍ଚ। ଫୁଲ ସମ୍ପୂର୍ଣ୍ଣ ପୀତବର୍ଣ୍ଣ। ଛୁଇଁରେ ୨।୩ଟି ମଞ୍ଜି ଥାଏ; ମଞ୍ଜି ବଡ଼। ଏ ଗଛ ବର୍ଷାଧିକେ ହୁଏ।

ଶେଷୋକ୍ତ ହରଡ଼ କାନପୁର ଅଞ୍ଚଳରେ ବେଶି ଉତ୍ପନ୍ନ ହୁଏ। ଏଥିପାଇଁ ଏହାକୁ କାନପୁରୀ ହରଡ଼ କୋଲଯାଏ। ଏହାକୁ କଞ୍ଚା ଅବସ୍ଥାରେ ବା ଭାଜି ଭଗଡକରି ଏଥିରୁ ଶ୍ରେଷ୍ଠ ଡାଲି କରାଯାଏ। ହରଡ଼ଡାଲି ମୁଗଡାଲି ଅପେକ୍ଷା ସ୍ୱସ୍ୱାଦୁ ଓ ଲୁଚକର। ଏଥିପାଇଁ ଏହି ଡାଲି ରୋଗୀଙ୍କ ପଥ୍ୟରୂପେ ବ୍ୟବହୃତ ହୁଏ। ହେଇନ୍‌ସ୍ (Haines) ସାହେବଙ୍କ ମତରେ ଏ ଗୁଳ୍ମ ଅଫ୍ରିକା ଦେଶରୁ ଭାରତକୁ ଅଣାଯାଇ ଏ ଦେଶରେ କୃଷି କରାଯାଉଅଛି।
ଏହା କଷାୟମଧୁରରସ, ଗୁରୁପାକ, ରୁକ୍ଷ, ମଳ-ରୋଧକ, କଫପିତ୍ତ ନାଶକ, ଅଳ୍ପ ବାୟୁ ବର୍ଦ୍ଧକ ଓ ରୁଚିକର।
ଏହା ଜ୍ୱର, ଗୁଳ୍ମ, ମୁଖବ୍ରଣ, କାଶ, ବମି, ହୃଦ୍‌ରୋଗ ଓ ଅର୍ଶରୋଗରେ ଉପକାରକ।]
୨। ପକ୍ଷୀବିଶେଷ—2. A species of birds; Crocopus Phoenicopterus. [ଦ୍ରି—ହଂସ ହରଡ଼ି ମୟୂର ପାରୁଆ—ପ୍ରାଚୀ. ପ୍ରଭାତ, ଉଣେଇଶ।]

ହରଡ଼ଡକା—ପ୍ରାଦେ. (ଖଡ଼ୁଅଲ) ବଣ—ଦରପୋଡ଼ା—
Haradakā Half-burnt.

ହରଡ଼ ଖୁ(ଖୋ)ଣ୍ଟା—ଦେ. ବ—ହରଡ଼ଛୁଇଁ ପାଚିଗଲେ ତାଆରୁ ହରଡ଼
Hararḍa khu(khe)ṇṭā ଗଛକୁ କାଟି ନେବାପରେ ଭୂଇଁରେ
ଅଡ଼ରଖୁଟୋ ୨।୪ ଆଙ୍ଗୁଳ ଉଚ୍ଚ ଯେଉଁ ଖୁଣ୍ଟା ବା ମୂଳମାନ ରହି
अरहरकीखुंटी ଯାଇଥାଏ—Stumps of Hararḍa plants left in the field after the trees are cut when the pods become ripe.

ହରଡ଼ ଘଣା—ଦେ. ବ—(ଲକ୍ଷଣାର୍ଥ)—କୌଣସି ବ୍ୟକ୍ତିକୁ କଷ୍ଟ ବା
Hararḍa ghaṇā ଦଣ୍ଡ ଦେବାପାଇଁ ଯାହା ପ୍ରଭୃତି ପ୍ରୟୋଗ କରି
ଅଡ଼ରଘାନି ଦିଆ ଉପାୟ ବା ଯନ୍ତ୍ର—Any instrument or
अरहरघान means used to torment a person.

[ଦ୍ର—ତେଲ ଲଙ୍କାକୁ ଘଣାରେ ପକାଇ ପେଷିଲେ ତେଲ ବାହାରେ; ମାତ୍ର, ହରଡ଼କୁ ଘଣାରେ ପକାଇ ପେଷିଲେ ତେଲ ବାହାରେ ନାହିଁ; କେବଳ ପରିଶ୍ରମହିଁ ସାର ହୁଏ। ତେଣୁ କୌଣସି ସାରହୀନ କାମରେ କୌଣସି ବ୍ୟକ୍ତିକୁ ପକାଇଲେ ଏହି ଶବ୍ଦର ଉଦାହରଣ ହୁଏଯାଏ ]

ହରଡ଼ଘଣା ପକା(କେ)ଇବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ଅନର୍ଥକ
Harardaghanā pakā(ke)ibā ଉତ୍ପୀଡ଼ନ କରିବା ବା କଷ୍ଟ
अडवघानिते फेला देବା—To oppress or torment
अरहरघानिमे डालना a person without any justification.
ହରଡ଼ଘଣା ବୁଲ୍ଲ(ଲେ)ଇବା } —ଅନ୍ୟରୂପ
ହରଡ଼ଘଣାରେ ପକା(କେ)ଇବା }

ହରଡ଼ ଘ(ଘୁ)ମା—ଦେ. ବି—ଘଣ୍ଟିଆ ଘୁମା; ଏକପ୍ରକାର ପକ୍ଷୀ—
Hararda gha(ghu)mā A bird; Pitta Coronata.
[ଦ୍ର—ଏମାନଙ୍କ କଣ୍ଠ ପାଉଁଶିଆଁ ଓ ଏମାନେ ଆକାରରେ ବଣି ଚଢ଼େଇ ପରି। ଏମାନେ ପୋକଯୋକ ଖାଆନ୍ତି ଓ ହୁଁ ହାଁ ଶବ୍ଦ କରନ୍ତି।]

ହରଡ଼ ଚଢ଼େଇ (ପକ୍ଷୀ)—ଦେ. ବି (ସଂ. ହରିତାଳିକ, ହାରିତ)—
Hararda chardhei (pakshi) ପାରାବତ ବର୍ଗର ୧୬। ୧୭ ଅଙ୍ଗୁଳ ଦୀର୍ଘ ଏକପ୍ରକାର ପକ୍ଷୀ—A bird; the Bengal green pigeon; Crocopus Phoenicopterus. [ଦ୍ର—ଏହାର ମୁଣ୍ଡ ପାଉଁଶିଆ; ପକ୍ଷ
ସଂ. ପର୍ଯ୍ୟାୟ—ହରିତ, ହାରିତ, ଶାଗୁଆ; ପୁଚ୍ଛ ଚେପଟା, ଏମାନେ
ଚିତ୍ରକଣ୍ଠ, ହରିତ, ହରିତାଳିକ ବରଫଳ ଖାଆନ୍ତି। ଏ ପକ୍ଷୀର ମାଂସ
ହରିତକ। ସୁସ୍ୱାଦୁ। ଏହା ଦେଖିବାକୁ ପାରାପରି;
हरियाल ପକ୍ଷ ଶାଗୁଆ, କିନ୍ତୁ ତାହାର ଅଗ୍ରଭାଗ-
हरियल ମାନ ଧଳା। କେବଳ ଗୁହ୍ୟପାଖେ
ହରଡ଼ ଶୈଳୀ ରଙ୍ଗର ଜାଲି, ହଳଦିଆ ଡୋରି ବୁଲିଥାଏ। କେବଳରେ ଖଗ ପଢ଼ିଲେ କେବଳ ମୟୂରଚନ୍ଦ୍ର କାପରି କେଲେ-କେଲେ ଝଟକୁ ଥାଏ।
ବୈଦ୍ୟଶାସ୍ତ୍ର ମତରେ ଏହାର ମାଂସ କଷାୟମଧୁର, ଲଘୁ, ରୁକ୍ଷ, ଉଷ୍ଣ, ରକ୍ତପିତ୍ତକଫନାଶକ, ସ୍ୱେଦକର, ସ୍ୱରକର ଓ ଈଷତ୍ ବାତକର। ରାଜବଲ୍ଲଭ।]

ହରଡ଼ ଝଟା—ଦେ. ବି—ହରଡ଼ ଗଛ କଟା ହୋଇ ତହିଁରୁ ଛୁଇଁ ଓ ପତ୍ର
Hararda jhatā ଝଡ଼ିଯିବା ପରେ ଯେଉଁ କାଷ୍ଠମୟ ଓ ପତ୍ରହୀନ
ହରଡ଼ ଝଟେଇ } ଅଂଶ ରହେ—The leafless
ହରଡ଼ ଝାଟ } —ଅନ୍ୟରୂପ twigs of the Hararda
ହରଡ଼ ଝାଟିଆ } plant.
अड़रझाटी [ଦ୍ର—ଏହାକୁ ଲୋକେ ଚୁଲି ଜାଳିବାରେ ବ୍ୟବହାର
रहठा କରନ୍ତି।]

ହରଡ଼ ଡାଲି—ଦେ. ବି—୧। ରଗଡ଼ା ବା ଭଙ୍ଗା ହୋଇ ତୁଷ ବାହାର
Hararda dāli କରିଯାଇଥିବା ହରଡ଼—1. Split pigeon
अडर डाइल pea. ୨। ଭଙ୍ଗା ହରଡ଼ର ତିଅଣ—2. Curry
अरहरकी दाल prepared from split pigeon pea.

ହରଡ଼ ଫାଳ—ଦେ. ବି—ରଗଡ଼ା ହୋଇ ଦୁଇ ଭାଗରେ ବିଭକ୍ତ ହରଡ଼—
Hararda phāla Pigeon-pea split into two.
अडव फाल ଦେ. ବିଣ—ହରଡ଼ଫାଳିଆ (ଦେଖ)
अरहरका फांक Hararda phāliā (See)

ହରଡ଼ ଫାଳିଆ—ଦେ ବିଣ—ଆକୃତିରେ ହରଡ଼ଫାଳ ପରି ଚେପଟା—
Hararda phāliā Looking like split pigeon-pea.
अडव फालिया [ଦ୍ର—ଯେଉଁ ହାରରେ ହରଡ଼ଫାଳପରି ସୁନାର
अरहरफाँकके जैसा ଚେପଟା କଣ୍ଠିମାନ ଗୁନ୍ଥା ହୋଇଥାଏ ତାକୁ ଓଡ଼ିଆରେ ହରଡ଼ଫାଳିଆ ହାର କହନ୍ତି।]

ହରଡ଼ ବେଙ୍ଗା—ଗ୍ରା. ଅ—କେଳାମାନେ 'ହାବୁଡ଼ା ଖେଳ' ଖେଳିବା
Hararda bengā ସମୟରେ ଉଚ୍ଚାରଣ କରିବା ନିରର୍ଥକ
(ହରଡ଼ ହରଡ଼ ବେଙ୍ଗା—ଅନ୍ୟରୂପ) ବାକ୍ୟ—An expression used by the Kelā's while playing 'Hāburdā'. (ଉ—ହରଡ଼ ହରଡ଼ ବେଙ୍ଗା, ପାଠିଏ ଠେଙ୍ଗା ଦେଙ୍ଗା, ତୋ ଗାଈକି ନେଙ୍ଗା, କାଠରେ ବାନ୍ଧେଇ ପଶୁରିଦେଲେ ଭୁରୁଙ୍ଗୁ ବଜେଇ ଦେଙ୍ଗା। ହାବୁଡ଼ା ଗୀତ।)

ହରଣ—ସଂ ବି (ହୃ. ଧାତୁ+ଭାବ. ଅନ)—୧। ହୃତି; କୌଣସି
Harana ପଦାର୍ଥକୁ ଦ୍ରବ୍ୟସ୍ୱାମୀଙ୍କଠାରୁ ବଳପୂର୍ବକ ଛଡ଼ାଇ ନେବା; ବଳପୂର୍ବକ ଗ୍ରହଣ—1. Forcible snatching away. ୨। ଲୁଣ୍ଠନ—2. Plunder. ୩। କୌଣସି ପଦାର୍ଥକୁ ଦ୍ରବ୍ୟସ୍ୱାମୀଙ୍କ ଅଜାଣତରେ ନେଇଯିବା; ଅପହରଣ; ଚୋରି-3. Stealing; theft. ୪। ସ୍ତ୍ରୀକୁ ଅଭିଭାବକଙ୍କଠାରୁ ଜବରଦସ୍ତି ବା ତାଙ୍କ ଅଜାଣତରେ ନେଇଯିବା—4. Abduction; kidnapping; elopement. ୫। ଆକର୍ଷଣ—5. Pulling. ୬। ବଞ୍ଚନାପୂର୍ବକ କୌଣସି ପଦାର୍ଥ ନେବା—6. Taking a thing by cheating. ୭। ଗ୍ରହଣ—7. Taking. ୮। (ସ୍ୱାଧୀନତା) ଲୋପ କରିବା—8. Causing the disappearance of (e. g. liberty). ୯। (ରୋଗାଦି) ବିନାଶ କରିବା—9. Destroying. ୧୦। ବହନ; ବୋହିନେବା—10. Carrying away. ୧୧। (ଚିତ୍ତକୁ) ମୋହିତ କରିବା—11. Charming; enchanting. ୧୨। (ଗଣିତ) ଭାଗ କରଣ; ଭାଜ୍ୟ ଅଙ୍କରୁ ଭାଜକ ଅଙ୍କଦ୍ୱାରା ଭାଗ ଗ୍ରହଣ ପ୍ରକ୍ରିୟା (ଲୀଳାବତୀ)—12. (Arithmetic) Division. ୧୩। (କାଳକୁ) ଗତ କରାଇବା ବା କ୍ଷେପଣ କରିବା—13. Whiling away (of time). ୧୪। (+କର୍ମ. ଅନ) କନ୍ୟାକୁ ବିବାହକାଳରେ ଓ ବ୍ରହ୍ମଚାରୀକୁ ବ୍ରତବେଦୀରେ ଦିଆଯିବା ଦ୍ରବ୍ୟ; ଯୌତୁକଦ୍ରବ୍ୟ; ବ୍ରତଭିକ୍ଷା ଦାନ—14. Articles presented to a bride on the marriage altar or to a Brahman boy at his initiation; bridal presents. ୧୫। ଭୁଜ; ବାହୁ

(ମେଦିନୀ)—15. Arms. ୧୬ । ଗୁରୁଦକ୍ଷିଣା—16. Fees presented by a pupil to a preceptor on completion of study. ୧୭ । ଶୁକ୍ର ( ଶବ୍ଦକଳ୍ପଦ୍ରୁମ )—17. The planet venus; semen. ୧୮ । ସ୍ୱର୍ଣ୍ଣ ( ଶବ୍ଦକଳ୍ପଦ୍ରୁମ )—18. Gold. ୧୯ । କପର୍ଦ୍ଦିକ, କଉଡ଼ି (ଶବ୍ଦକଳ୍ପଦ୍ରୁମ)—19. Conch shell used as coin. ୨୦। ଉଷ୍ଣୋଦକ ( ଶବ୍ଦକଳ୍ପଦ୍ରୁମ )—20. Warm water. ୨୧ । ( + ଗୃହ. ଅର୍ଥ )—ବଳପୂର୍ବକ ପରସ୍ତ୍ରୀସହବାସ—21. Adultery; rape; ravishment. ୨୨ । ଯେଉଁ ସ୍ତ୍ରୀଙ୍କ ସହିତ ସହବାସ ନିଷିଦ୍ଧ (ଯଥା—ଭ୍ରମାତା, ଭଗିନୀ, ଗୁରୁପତ୍ନୀ, ପରସ୍ତ୍ରୀ), ତାଙ୍କ ସଙ୍ଗେ ସହବାସ—22. Cohabitation with the wives of others and specially with prohibited relations; incest. (ଉ—ଡର ନାହିଁ କ ହେ ପରତରୁଣୀହରଣ। କହିସୁର୍ଯ୍ୟ. ବଶୋସ୍ତଚନ୍ଦ୍ର. ଭ ଗୀତ ।) ଦେ ବି. ପୁଂ—ହରି ବା ହର ନାମଧାରୀ ବ୍ୟକ୍ତିର ସ୍ନେହସୂଚକ ଡାକନାମ—Nickname of Hari or Hara.

ହରଣ କରିବା—ଦେ. କ୍ରି—୧ । ଚୋରିବା; ଚୋର କରିବା—
Harana kariba — 1. To steal. ୨ । କୌଣସି
ହରণ করা — हरण करना — ରାଶିକୁ ଅନ୍ୟ ରାଶି ଦ୍ୱାରା ଭାଗ କରିବା—2. To divide. ୩ । ନିଷିଦ୍ଧା ସ୍ତ୍ରୀ ଅବଙ୍କ ସହ ସଙ୍ଗମ କରିବା—3. To cohabit with prohibited relations; to commit incest. ୪ । ଜବରଦସ୍ତି ନେଇଯିବା—4. To carry away by force. ୫ । ପର ସ୍ତ୍ରୀ ଅବଙ୍କୁ ବଳପୂର୍ବକ ନେଇଯିବା—5. To kidnap. ୬ । ଜବରଦସ୍ତି ସ୍ତ୍ରୀ ସଙ୍ଗମ କରିବା—6. To commit rape.

ହରଣ ଗୁଣନ—ସଂ ବି (ଗଣିତ)—ଭାଗକରଣ ଓ ଗୁଣକରଣ—
Harana gunana — (mathematics) Division and multiplication.

ହରଣ ଚାଲି—ଦେ. ବି ( ସ ହରଣ ଓ ଚଳନ )—୧ । କୌଣସି ବସ୍ତୁକୁ
Harana chāli — ଅପହରଣ କରି ନେଇ ଚାଲିଯିବା—
অপহরণ — अपहरण — 1. The act of going away from a place after stealing a thing. ୨ । ଅପହରଣ—2. Stealing. [ ଦ୍ର—ଅପହାରକ ବ୍ୟକ୍ତିର ଅପହୃତ ବସ୍ତୁକୁ ସ୍ଥାନାନ୍ତରକୁ ନେବାର ଭାବ ଏହି ଶବ୍ଦଦ୍ୱାରା ବ୍ୟୋଧିତ ହୁଏ ।]

ହରଣଚାଲି କରିବା [ଦିତା(ତେ)ଇବା]—ଦେ. କ୍ରି—କୌଣସି ଦ୍ରବ୍ୟକୁ
Harana chāli kariba (batā[te]ibā) — ଅପହରଣ କରି
অপহরণ করা — अपहरण करना — ପଳାଇବା—To steal away a thing.

ହରଣ ଚାଲି ହେବା—ଦେ. କ୍ରି—( କୌଣସି ଦ୍ରବ୍ୟ ) ଅପହୃତ ଓ
Harana chāli heba — ସ୍ଥାନାନ୍ତରିତ ହେବା—
অপহৃত হওয়া — अपहरण होना — To be stolen and removed.

ହରଣ ପୂରଣ କରିବା—ଦେ. କ୍ରି (ସହତର)—୧ । ଏକ ସ୍ଥାନରୁ ନେଇ
Harana pūrana kariba — (ହରଣ କରି) ଅନ୍ୟ ସ୍ଥାନରେ
হরণ পূরণ করা — बाँकी पूरा करना — ଦେଇ ( ପୂରଣ କରି) କାର୍ଯ୍ୟ ଚଳାଇ ନେବା; ଏକ ବ୍ୟୟରୁ କମାଇ (ହରଣ କରି) ଅନ୍ୟ ବ୍ୟୟକୁ ବଢ଼ାଇ (ପୂରଣ କରି) କାମ ଚଳାଇବା 1. To make both ends meet by taking away things here and adding things there. ୨ । ଯେଉଁଠାରେ କୌଣସି ବସ୍ତୁର ଲୋଡ଼ା ନାହିଁ ସେଠାରୁ ତାହାକୁ ନେଇ ଯେଉଁଠାରେ ସେ ବସ୍ତୁ ଲୋଡ଼ା ପଡ଼େ ସେଠାରେ ଦେବା—2. To remove redundant things from a place and add them at places where indispensable. (ଦ୍ର—ମନେକରନ୍ତୁ, ୪ ଜଣ ବିଦେଶକୁ ସାଙ୍ଗ ହୋଇ ଯାଇଥାଆନ୍ତି । ତାହାଠାରେ କେବଳ ଜଳଖିଆ ସାମଗ୍ରୀ ଅଛି, ତାହାଠାରେ କେବଳ ରୁଷେଇ ସାମଗ୍ରୀ ଅଛି, ତାହାଠାରେ କିଛି ନାହିଁ; ଏପରି ଅବସ୍ଥାରେ 'ହରଣ ପୂରଣ କରି' କାମ ଚଳାଇ ଦେଲେ ବିଦେଶରେ କେହି କଷ୍ଟ ପାଇବେ ନାହିଁ । )

ହରଣ ବାଡ଼ି—ଦେ. ବି (ନାମ)—(ପ୍ରା, ହେରିଙ୍ଗ୍ ଓ ବ. ବାଡ଼ି=ଘର;
Harana bārdi — ଯେଉଁ ଘରେ ଅପରାଧୀଙ୍କୁ ହରିଣ
হরিণ বাড়ি — हरण बाड़ि — ଭଳି ବାନ୍ଧେ । )—୧ । କଲିକତାର ଉପକଣ୍ଠ ଆଲିପୁରରେ ଥିବା ବଡ଼ ଜେଲ୍‌ଖାନା—1. Name of the Alipore jail in the outskirts of Calcutta. ୨ । ଜେଲ୍‌ଖାନା; କଇଦୀଶାଳା; କାରାଗୃହ—2. Jail; house of correction.

ହରଣୀ—ଦେ. ବି ( ସଂ ହରିଣୀ )—ହରିଣୀ—A female deer;
Harani — doe. (ଉ—ତାହାର ହରଣୀ
হরিণী — हरीणी — କେ ନେଇ ବାନ୍ଧେ, ପର ପୁଅ ଲାଗି ଯୋଗିଆ କାନ୍ଦେ—ଛଗ)

ହରଦଫା—ବୈଦେ. ଅ—ହର୍‌ଦଫା (ଦେଖ)—
Haradaphā — Har-daphā (See)

ହରଦମ୍—ବୈଦେ. ଅ—ହର୍‌ଦମ୍ (ଦେଖ)—
Haradam — Har-dam (See)

ହରଦର୍ (ରେ)—ଦେ. ଅ—ହର୍‌ଦର୍ (ଦେଖ)—
Haradar (re) — Har-dar (See)
[ହରଦରରେ—ଅନ୍ୟରୂପ]

ହରଦାସ—ଦେ. ବି (ନାମ)—ଜଣେ ଓଡ଼ିଆ କବିଙ୍କ ନାମ—Name of
Haradās — an Oriya poet. [ ଦ୍ର—ଏ କବି ଜଣେ ବୈଷ୍ଣବ
হরদাস — थिଲେ; ହରଦାସ ମାଳିକା ଏହାଙ୍କ ଦ୍ୱାରା ରଚିତ—ତାରିଣୀ
हरदास — ଚରଣ ରଥଙ୍କ ସାହିତ୍ୟର ଇତିହାସ ]

ହରଦ—ପ୍ରାଦେ. ( ସମ୍ବଲପୁର ) ବ. ଓ ଗ୍ରାମ୍ୟ. (ଉତ୍ତରଜାଗସ୍ଥ ଅଶିକ୍ଷିତ
Haradi ଲୋକଙ୍କର ଲ ସ୍ଥାନରେ ର ଉଚ୍ଚାରଣ ଦୋଷ )—
ହଳଦ—Turmeric.

ହରଦ୍ୱାର—ସ. ବ—ହରିଦ୍ୱାରର ନାମାନ୍ତର;, ହରିଦ୍ୱାର (ଦେଖ)—
Haradwāra Haridwāra (See)

ହରଧନୁ—ଦେ. ବ (ସ. ହରଧନୁସ୍)—ହରଧନୁଃ (ଦେଖ)—
Haradhanu Haradhanuh (See)

ହରଧନୁଃ—ସ. ବ (୬ଷ୍ଠୀ ତତ୍)—ଶିବଙ୍କର ପିନାକ ଧନୁ—
Haradhanuh The bow carried by Śiva.

ହରଧନୁର୍ଭଙ୍ଗ—ସ. ବ (୬ଷ୍ଠୀ ତତ୍)—ସୀତାଙ୍କୁ ବିବାହ ଦେବାପାଇଁ
Haradhanurbhaṅga ଜନକଙ୍କଦ୍ୱାରା ପଣରୂପେ ସ୍ଥାପିତ
ହରଙ୍କର ଧନୁକୁ ରାମଚନ୍ଦ୍ରଙ୍କର ଭାଙ୍ଗିବାରୂପ କର୍ମ—
The act of breaking the bow of Śiba by Rāmachandra before King Janaka who bestowed Sītā's hand on Rāma.

ହରନ୍—ବୈଦେ. ବ—ହର୍ଣ୍ଣ୍ (ଦେଖ)—
Haran Harṇṇ (See)

ହରନ୍ ବାଡ଼ି—ଦେ ବ—ହରଣବାଡ଼ି (ଦେଖ)—
Haran-bāṛdi Haraṇabāṛdi (See)

ହରତନ—ଦେ. ବ—ହର୍ ତନ୍ (ଦେଖ)—
Haratan Har-tan (See)

ହରତରଫ—ଦେ. ବ—ହର୍ ତରଫ [ଦେଖ]—
Harataraph Har-taraph (See)

ହରତା—ଗ୍ରା. ବଣ ଓ ବ (ସ. ହର୍ତ୍ତୃ)—୧ । ହର୍ତ୍ତା (ଦେଖ)—
Haratā 1. Harttā (See) ୨ । ବିନାଶ କାରୀ—
हर्ता 2. Destroying; destroyer. ୩ । ନାଶକାରୀ—
हरता 3. Killer. [ଉ—ତିନଲୋକ ହରତା କରତାଟି ତୁମ୍ଭେ—କୃଷ୍ଣସିଂହ. ମହାଭାରତ—ଆଦି]

ହରତା କରତା—ଦେ. ବ—୧ । ହର୍ତ୍ତାକର୍ତ୍ତା ଦୈବ ବିଧାତା; ସର୍ବମୟ
Haratā karatā କର୍ତ୍ତା—1. All; powerful master;
हर्ताकर्ता over lord; a person who is all in all in
हरताधरता any matter. ୨। ସ୍ୱୟଂ ପରମେଶ୍ୱର—2. God.
[ହରତା କରତା ଦଇବ (ଦୈବ) ବିଧାତା—ଅନ୍ୟରୂପ] Himself
[ଉ—ତିନ ଲୋକ ହରତା କରତାଟି ତୁମ୍ଭେ—କୃଷ୍ଣସିଂହ ମହାଭାରତ—ଆଦି]

ହରତାଡ଼(ଳ)—ଦେ. ବ—ତାଳଜାତୀୟ ୧୦।୧୨ ଫୁଟ ଉଚ୍ଚ ବନ୍ୟ ବୃକ୍ଷ
Haratārḍa (la) ବିଶେଷ—Phoenix Palludosa (Wild tree).

ହରତାଳ—ଦେ. ବ—୧। ହରତାଡ଼(ଳ)(ଦେଖ)—Haratārḍa(la)
Haratāḷa (See) ୨ । ହରିତାଳ (ଦେଖ)—2 Haritāḷa
हरताल (See) ୩ । କାର୍ଯ୍ୟବନ୍ଦ; ଧର୍ମଘଟ (ପର)—3. Strike
हरताल [ଉ—ଏଥିରେ ଦୋକାନ, ବେପାର, ଗାଡ଼ିଘୋଡ଼ା, କଳଘର, ସମସ୍ତେ ଉତକଳର କାମ ବନ୍ଦ କରନ୍ତି]

ହରତାଳି—ଦେ. ବଣ—ହରିତାଳି (ଦେଖ)—
Haratāḷi Haritāḷi (See)

ହରତାଳିକା—ଦେ. ବ—ହରିତାଳିକା (ଦେଖ)—
Haratāḷikā Haritāḷikā (See)

ହରତେଜଃ—ସ. ବ (୬ଷ୍ଠୀ ତତ୍)—୧ । ପାରଦ (ଶିବଙ୍କର୍ଯ୍ୟ)—
Haratejah 1. Mercury. ୨ । ଶିବଶୁକ୍ର—2. The semen of God Śiba;

ହରଦ—ଗ୍ରା. ବ (ସ. ହ୍ରଦ)—ହ୍ରଦ (ଦେଖ)—
Harada Hrada (See)
ह्रद हरद्
हाबाहारी हाराहारि ବଣ ଓ ବ—ହାରାହାରି—Average

ହରନାଥ—ଦେ. ବ. ପୁଂ (ନାମ)—୧। ଲୋକଙ୍କ ନାମ—1. A name
Haranātha given to males. ୨ । ପାଗଳ ହରନାଥ—
हवनाथ 2. Name of a Bengali saint. [ଦ୍ର—ଏ
हरनाथ ଜଣେ ବଙ୍ଗୀୟ ଭକ୍ତ ବୈଷ୍ଣବ ଥିଲେ । ଏ ପ୍ରଥମେ ଗୃହୀ ଥିଲେ; ପରେ ବୈଷ୍ଣବ ଦୀକ୍ଷା ଗ୍ରହଣ କରି ବଙ୍ଗରେ ଓ ଓଡ଼ିଶାରେ ଏହାଙ୍କର ସହସ୍ରାଧିକ ଶିଷ୍ୟଙ୍କୁ ଧର୍ମ ଉପଦେଶ ଦେଇଥିଲେ । ଏହାଙ୍କର ପୁରୀଠାରେ ଗୋଟିଏ ଆଶ୍ରମ ଅଛି ଓ ସେଠାରେ ବର୍ଷକେ ଥରେ ତାଙ୍କର ଭକ୍ତମାନଙ୍କ ଗୋଟିଏ ମେଳା ହୁଏ । ]

ହର ନାରାୟଣ—ସ. ବ—ଶିବ ଓ ବିଷ୍ଣୁ—
Hara nārāyaṇa Śiba and Bishṇu.
हवनारायण ଦେ. ବ. ପୁଂ—ପୁରୁଷଲୋକଙ୍କ ନାମ—
हरनारायण A name of males.

ହରଣି—ପ୍ରାଦେ (ସମ୍ବଲପୁର) ବ—ଗ୍ରୀଷ୍ମଋତୁରେ ନଦୀରେ କୌଣସି
Harani ଡଙ୍ଗା ଯିବାକୁ ପାଣି ଯଥେଷ୍ଟ ନ ଥିଲେ ନଦୀ ଗର୍ଭରେ ଖୋଳାଯିବା ସୁଗଭୀର ନାଳୀ—A deep channel dug in the bed of shallow rivers for passage of country boats when they dry up in summer.

ହର ନେତ୍ର—ସ. ବ ( ୬ଷ୍ଠୀ ତତ୍ )—୧ । ଶିବଙ୍କର ଚକ୍ଷୁତ୍ରୟ—
Hara netra 1. The three eyes of Śiba. ୨। (ଶିବଙ୍କର ୩ ନେତ୍ର ଥିବାରୁ) (ଜ୍ୟୋତିଷ) ୩ ସଂଖ୍ୟା—
3. (Astrology) The number three. ୩ ।
(ଉପମିତ କର୍ମଧା. ହରଙ୍କ ନେତ୍ରପରି ନେତ୍ର) ଯୋଗଧ୍ୟାନରତ ବ୍ୟକ୍ତିଙ୍କ ମୁଦ୍ରିତ ଚକ୍ଷୁ—3. Half-shut eyes (of a man in meditation).

ହରନେତ୍ର ଜନ୍ମା—ସ. ବଣ (୬ଷ୍ଠୀ ତତ୍; ବହୁବ୍ରୀହି, ହରନେତ୍ର+
Haranetra janmā ଜନ୍ମନ୍, ୧ମା. ୧ବ)—ଶିବଙ୍କର ଚକ୍ଷୁରୁ ଜାତ—Born of the eyes of God Śiba.
(ଯଥା—ହରନେତ୍ରଜନ୍ମା ବହ୍ନି ମଦନଙ୍କୁ ଭସ୍ମୀଭୂତ କଲା)

ହରନ୍ତା—ଗ୍ରା. ବ (ସ. ହରଣ)—ବଧ; ନିଧନ—Killing. ( ଉ—
Harantā ମହାପୁରୁଷର ଯେ ବ୍ୟବସ୍ଥା, ଶୁଣର ମୃତ୍ତିକ ହରନ୍ତା—

ବଧ ହରେ ଜଗନ୍ନାଥ. ଭାଗବତ ।) ବଣ—୧ । ହରଣକାରୀ—
हरन्त हरनेवाला 1. Stealing.

ହରଫ୍(ଫ୍)—ବୈଦେ. ବ ( ଅ. ହରଫ୍ )—୧ । ବର୍ଣ୍ଣମାଳାର ଅକ୍ଷର;
Harap(ph) ବର୍ଣ୍ଣ—1. Letters; alphabet. ୨ ।
हरफ् ହସ୍ତାକ୍ଷର—2. Handwriting; script. ୩ ।
हरफ ପଦାତିକ—3. Infantry; foot soldier.

ହରପ—ପ୍ରାଦେ (ବଲାଙ୍ଗିର ପାଟଣା) ବ—ବିଶୃଙ୍ଖଳା—
Harapa Disorder; confusion.

ହର ପର—ସଂ ବ (୬ଷ୍ଠୀତତ୍ ବା ବହୁବ୍ରୀହି; ହର=ଶିବ+ପର=ଶତ୍ରୁ)
Hara para —କାମ; କନ୍ଦର୍ପ; ମଦନ—Cupid.

ହରପା—ପ୍ରାଦେ (ସମ୍ବଲପୁର) ବ—ଚଟିଯୋଡ଼ା—
Harapā Slippers.

ହର ପାର୍ବତୀ—ସଂ. ବ—ଶିବ ଓ ପାର୍ବତୀ—
Hara pārbatī Śiba and his consort.

ହରପ୍ପା—ଦେ. ବ (ନାମ)—ପଞ୍ଜାବର ସ୍ଥାନ ବିଶେଷ—Name of
Harappā place in the Puñjāb. [ଦ୍ର—ଅଳ୍ପଦିନ ହେଲା
हरप्पा ଏଠାରେ ଭୂଗର୍ଭରୁ ୫ ହଜାର ବର୍ଷ ପୂର୍ବର ଅନେକ ପ୍ରାଚୀନ
हरप्पा ବସ୍ତୁ ମିଳିଅଛି ।]

ହର ପ୍ରସାଦ—ସଂ. ବ (୬ଷ୍ଠୀ ତତ୍)—୧ । ମହାଦେବଙ୍କ ଅନୁଗ୍ରହ—
Hara prasāda 1. The grace of God Śiba. ୨। ଶିବଙ୍କୁ
ନୈବେଦ୍ୟ ଖାଦ୍ୟ ଦ୍ରବ୍ୟ—2. Food offered to God
हर प्रसाद Śiba. ଦେ. ବ. ପୁଂ—ଲୋକଙ୍କ ନାମ—
हर प्रसाद् A name given to males.

ହରପ୍ରସାଦ ଶାସ୍ତ୍ରୀ—ଦେ. ବ (ନାମ)—ଜଣେ ପ୍ରସିଦ୍ଧ ସ୍ୱର୍ଗତ ବଙ୍ଗୀୟ
Haraprasāda śāstrī ବ୍ରାହ୍ମଣ—A Bengalee
हरप्रसादशास्त्री Brāhmaṇa. [ଦ୍ର—ଏ ପ୍ରଥମେ ଅନ୍ଧ ଗଡ଼ର
हरप्रसाद् शास्त्री ଥିଲେ ଓ ମହାତ୍ମା ଈଶ୍ୱରଚନ୍ଦ୍ରଙ୍କର ଆନୁକୂଲ୍ୟରେ ଓ
ନିଜର ଅଧ୍ୟବସାୟରେ କଲିକତାରେ ସଂସ୍କୃତରେ ଏମ୍. ଏ.
ପାସ୍ କରି ଶାସ୍ତ୍ରୀ ଉପାଧି ପାଇଲେ । ଏ କଲିକତାରେ
ସଂସ୍କୃତ କଲେଜରେ ପ୍ରିନ୍ସିପାଲ୍ ହୋଇଥିଲେ ଓ ଗଭର୍ଣ୍ଣ-
ମେଣ୍ଟଙ୍କଠାରୁ ମହାମହୋପାଧ୍ୟାୟ ଉପାଧି ପାଇଥିଲେ । ଏ
ପ୍ରତ୍ନତତ୍ତ୍ୱ ଅନୁଶୀଳନରେ ବିଶେଷ ଅନୁରାଗୀ ଓ କଲିକତା
ଏସିଆଟିକ୍ ସୋସାଇଟିର ପ୍ରତ୍ନତତ୍ତ୍ୱବିତ୍ ବିଭାଗର ସେକ୍ରେଟରୀ
ହୋଇଥିଲେ । ଏ ଇଂରାଜୀ, ସଂସ୍କୃତ, ବଙ୍ଗଳା, ହିନ୍ଦୀ,
ଜର୍ମାନୀ ଓ ପାଲି ଭାଷାରେ ବ୍ୟୁତ୍ପନ୍ନ ଥିଲେ । ଏ ଅନେକ-
ଗୁଡ଼ିଏ ବଙ୍ଗଳାଗ୍ରନ୍ଥ ଓ ବିଶ୍ୱବିଦ୍ୟାଳୟର ପାଠ୍ୟପୁସ୍ତକର
ଟୀକା କରିଯାଇଅଛନ୍ତି । ଏ ନେପାଳରୁ କାହ୍ନୁପାଦ
ଆଚାର୍ଯ୍ୟ ନାମକ ଜଣେ ଓଡ଼ିଆ ତାନ୍ତ୍ରିକଙ୍କ ରଚିତ ଗୁଡ଼ିଏ
ଦୋହା ଓ ଗୀତ ସଂଗ୍ରହ କରି ପ୍ରକାଶ କରି ଯାଇଅଛନ୍ତି ।]

ହରପ୍ରିୟ—ସଂ. ବ—କରବୀର ଫୁଲ (ହ୍ର. ଶ)
Harapriya The Oleander flower.

ହରପ୍ରିୟା—ସଂ. ବ. ସ୍ତ୍ରୀ (୬ଷ୍ଠୀ ତତ୍)—ପାର୍ବତୀ—
Harapriyā Goddess Pārbatī.

हरप्रिया ଦେ. ବ. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—
हरप्रिया A name given to females.

ହର ଫସଲ୍—ବୈଦେ. ବ—ହର୍ ଫସଲ୍ (ଦେଖ)
Hara phasal Har phasal (See)

ହର ବକ(ଖ)ତ୍—ବୈଦେ. ଅ—ହର୍ ବକତ୍ (ଦେଖ)
Hara baka(kha)t Har bakat [See]
(ହରବକ୍ତ[ଖ୍ତ]—ଅନ୍ୟରୂପ)

ହରବନ୍ଧୁ—ଦେ. ବ. ପୁଂ—ପୁରୁଷ ଲୋକଙ୍କ ନାମ—
Harabandhu A name given to males.

ହରବର—ସଂ. ବ (ମ ପ. ଲୋ)—ଭକ୍ତଙ୍କୁ ଶିବଙ୍କ ପ୍ରଦତ୍ତ ବର—
Harabara Boon given by Śiba to his devotee.
ବିପଦ आपद् ଦେ. ବ—ବିପଦ; ଅନିଷ୍ଟ—Danger; cala-
mity. ଦେ. ବ—ହର୍‌ବର୍ ( ଦେଖ )—Har-bar
(See) (ଉ—ହରବର ପାଇ ଦେବେ, ହରବର ପାଇ
ପାଇଲି ତୋତେ । କବିସୂର୍ଯ୍ୟ. ସଙ୍ଗୀତ ।) ଦେ ବଣ—
हयबाण ୧ । ବିଇଜଣ—1. Troubled; fallen in diffi-
हरबर culty. ୨ । ବ୍ୟାକୁଳ—2. Perturbed. ( ଉ—
କଉଣିବ କେହି ତା ବନ୍ଧେ ମୁହିଁ ହେଉଅଛି ହରବର ।
ଲକ୍ଷ୍ମୀ. ବୈଦେହୀଶବିଳାସ । ) ପ୍ରାଦେ ( ସମ୍ବଲପୁର )
ବଣ—ତରତରିଆ—Hasty.

ହରବରିଆ—ଦେ. ବଣ—ହରବର; ବିଇଜଣ; କଷ୍ଟପ୍ରାପ୍ତ—
Harabariā Troubled; afflicted.
हाय़रानियां (ଉ—ବାହାରେ ମନେ ହରବରିଆ, କହିବେ ଯେତେ କି
हरबरिया କନଥ । ଭକ୍ତଚରଣ. ଗୀତଲହରୀ । ) ପ୍ରାଦେ.
(ସମ୍ବଲପୁର) ବଣ—ଅସ୍ଥିରମନା—Fickle-minded.

ହର ବଲ୍ଲଭ—ସଂ. ବ—ସଙ୍ଗୀତ ଦାମୋଦର ମତରେ ୬୦ ତାଲରୁ
Hara ballabha ଗୋଟିଏ (ହ୍ର. ଶ)—One of the 60
musical cadence.

ହରବା(ବ୍ବା)—ଦେ. ବ (ଫା· ହର୍‌ବୋଲ=ଯେ ସବୁ ପ୍ରାଣୀଙ୍କ ସ୍ୱର
Harabā(bbā) ବୋଲେ ବା ଗାନ କରେ)—ଶାଖାଗ୍ରହବର୍ଗର
हरबोला ହରିଦ୍‌ବର୍ଣ୍ଣ (ଶାଗୁଆ) ୮।୧୦ ଅଙ୍ଗୁଳ ପାର୍ଶ୍ୱପକ୍ଷୀ—
हरबोला, हरहोरवा The gold-fronted green Bulbul;
Chloropsis Aurifrous; the short-winged
wren. [ଦ୍ର—ଏହାର ଗଣ୍ଡ ସବୁ ଓ ବନ୍ଧ; ମୁଣ୍ଡ ହଳଦିଆ,
ଗଳା ନେଳ, ପକ୍ଷ ଗୋଲ; ପୁଚ୍ଛ ଛୋଟ । ଏ ନାନା ପକ୍ଷୀଙ୍କ
ସ୍ୱରକୁ ଅନୁକରଣ କରିପାରେ । ଏହାକୁ ଲୋକେ ପୋଷନ୍ତି ।
ଏହାକୁ ପୋଷିଲେ ଏ ଘରରେ ମଧ୍ୟ ରହି କରେ]

ହର ବାହନ—ସଂ. ବ (୬ଷ୍ଠୀ ତତ୍)—ଷଣ୍ଢ; ବୃଷ—
Hara bāhana Bull.

ହର ବିଳାସିନୀ—ସଂ. ବ—ହରିଦ୍ରା; ହଳଦୀ—
Hara bilāsinī Turmeric.

ହର ବୀଜ—ସଂ. ବ (୬ଷ୍ଠୀ ତତ୍)—୧ । ପାରଦ—1. Mercury.
Hara bīja ୨ । ଶିବଙ୍କ ବୀର୍ଯ୍ୟ—2. The semen of Śiba.

ହରବୋଲ—ବୈଦେ॰ ବ—୧ । ଅନ୍ୟ ପକ୍ଷୀର ସ୍ୱରକୁ ଅନୁକରଣ କରି
Harabolā ଗାନ କରୁଥାଉଥିବା ଏକପ୍ରକାର ପକ୍ଷୀ—
हरबोला 1. Nightingale. ୨ । ଯେଉଁ ବ୍ୟକ୍ତି ଅନ୍ୟ ଜୀବ-
হরবোলা ମାନଙ୍କ ସ୍ୱର ବା ଦୂରସ୍ଥ ବ୍ୟକ୍ତିର ବା ନିକଟବର୍ତ୍ତୀ ବ୍ୟକ୍ତିର ସ୍ୱରର ଅନୁକରଣ କରିବା କୌଶଳରେ ପଟୁ—
2. A ventiloquist. ୩ । ନାନା ଜୀବଜନ୍ତୁ (ଯଥା—କୁକୁର, ବିଲେଇ, କୁକୁଡ଼ା, ଷଣ୍ଢ, କୋଇଲି)ଙ୍କ ସ୍ୱରକୁ ଓ ଦୂରସ୍ଥ ଏବଂ ନିକଟସ୍ଥ ବ୍ୟକ୍ତିଙ୍କ କଣ୍ଠସ୍ୱରକୁ ନିଜର ସ୍ୱରଦ୍ୱାରା ଅନୁକରଣ କରିବାର କୌଶଳ—3. Ventriloquism.

ହର ମଉ(ହୁ)ସୁଲ୍—ବୈଦେ. ବଣ—ହର୍ ମଉସୁଲ୍ (ଦେଖ)
Hara mau(hu)sul Har-mausul (See)

ହରମଣି(ଣୀ)—ଦେ॰ ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—
Haramaṇi(ni) A name given to females.

ହରମନିଅମ୍—ବୈଦେ. ବ (ଇଂ. ହାର୍ମୋନିଅମ୍)—ହାର୍ମନିଅ୍ (ଦେଖ)—Hār-maniam (See)
Haramaniam
(ହରମନିଅ—ଅନ୍ୟରୂପ)

ହରମୁହାଁ—ପ୍ରାଦେ (ସମ୍ବଲପୁର) ବଣ—ଯେ ଲୁଚ୍ଚୋରି ନ ରଖି ଯାହା ଇଚ୍ଛା ତାହା କହେ—Plain-speaking; straightforward.
Haramuhāñ

ହରଯ(ଯା)—ବୈଦେ. ବ—ହରଜ୍ [ଦେଖ]
Haraja(jā) Haraj [See]

ହରଯ ହରକତ—ବୈଦେ. ବଣ ଓ ବ—ହରଜ୍ ହର୍କତ୍ [ଦେଖ]
Haraja harakata Haraj hara-kat [See]

ହର ରକମ୍—ବୈଦେ. ,ବି—ହର୍ ରକମ୍ (ଦେଖ)
Hara rakam Har-rakam [See]

ହର ରଙ୍ଗ—ଦେ. ବ—ହର୍ ରଙ୍ଗ (ଦେଖ)
Hara raṅga Har-raṅga (See)

ହର ରଙ୍ଗି—ଦେ. ବଣ. ପୁଂ—ହର୍ ରଙ୍ଗି (ଦେଖ)
Hara raṅgi Har-raṅgi (See)
[ହରରଙ୍ଗିଆ—ଅନ୍ୟରୂପ] (ହରରଙ୍ଗୀ, ହରରଙ୍ଗେଇ—ସ୍ତ୍ରୀ)

ହର ରଥ—ସଂ. ବ (୬ଷ୍ଠୀ ତତ୍)—ପୃଥିବୀ—The world.
Hara ratha (ଦ୍ର—ମହାଦେବ ତ୍ରିପୁରସୁରକୁ ମାରିବାବେଳେ ପୃଥିବୀକୁ ରଥସ୍ୱରୂପ ବ୍ୟବହାର କରିଥିଲେ ।)

ହର ରିପୁ—ସଂ. ବ (୬ଷ୍ଠୀ ତତ୍ ବା ବହୁବ୍ରୀହି)—ମଦନ; କାମଦେବ—
Hara ripu Cupid.

ହରରୂପ—ସଂ, ବ—ଶିବ; ମହାଦେବ [ଶବ୍ଦରତ୍ନାବଳୀ]—
Hararūpa God Śiba.

ହର ରୋଜ୍—ବୈଦେ॰ ଅ—ହର୍ ରୋଜ୍ (ଦେଖ)
Hara roj Har-roj (See)

ହରଲ୍—ପ୍ରାଦେ (ଗଡ଼ଜାତ) ବ—ହରଡ଼ ଚଢ଼େଇ—Crocopus
Haral Phoenicopterus (bird); the Bengal green pigeon. [ଦ୍ର—ଏମାନଙ୍କ ଦେହ ହଳଦିଆ ଶାଗ ଓ ଫଳାରଙ୍ଗ ମିଶିଛି । ଏମାନେ ବର ଓ ଅଶ୍ୱତ୍ଥ ଫଳ ବେଶି ଖାଆନ୍ତି । ଏମାନଙ୍କ ଚକ୍ଷୁ ନାଲିଆ ଓ ସ୍ୱର ମଧୁର ।]

ହରଲା—ପ୍ରାଦେ (ଗଡ଼ଜାତ) ବି—କାନ୍ଦ ବୋବାଳି—
Haralā Lamentation; wailing.
[ପ୍ରୟୋଗ—ହରଲା ପକାଇବା]

ହର ଲୋଚନ—ସଂ. ବ (୬ଷ୍ଠୀ ତତ୍)—ହରନେତ୍ର (ଦେଖ)
Hara lochana Haranetra (See)

ହର ଶାଲ୍—ବୈଦେ॰ ଅ—ହର୍ ଶାଲ୍ (ଦେଖ)
Hara śāl Har-śāl (See)

ହର ଶାଲିଆ—ଦେ ବଣ—ହର୍ ଶାଲିଆ (ଦେଖ)
Hara śālia Har-śālia (See)

ହରଶିରି—ଦେ. ବ [ହର+ଶ୍ରୀ]—୧ । ଶିବଙ୍କ ଶୋଭା=1. The
Haraśiri beauty residing in Śiba. ୨ । [ଲକ୍ଷଣାର୍ଥ]
हरश्री হরশ্রী ନଗ୍ନ ଅବସ୍ଥା; ଦିଗମ୍ବରତ୍ୱ—2. [Figurative]
Nakedness. [ଦ୍ର—ବଳେ ହରଶିରି ଦେଇ ସେ ଲୋକଟାକୁ ପ୍ରତାପ ପ୍ରସାଦ ସ୍ୱାଛରେ । ଭକ୍ତ ପ୍ରେମସୁଧାନିଧି ।]

ହର ଶେଖରା—ସଂ. ବ. ସ୍ତ୍ରୀ (ହର=ଶିବ+ଶେଖର=ଚୂଡ଼ା+ଅ;
Hara śekharā ଶିବଙ୍କ ମସ୍ତକରେ ଏହା ରହୁଥିବାରୁ ]—
ଗଙ୍ଗାନଦୀ [ହି, ଶଂ]—The river Ganges.

ହରଷ—ଗ୍ରା. ଓ ପଦ୍ୟ. ବ (ସ.ହର୍ଷ)—ହର୍ଷ (ଦେଖ)—Harsha (See)
Harasha ଦେ. ବଣ—ହର୍ଷିତ; ଆନନ୍ଦିତ; ତୁଷ୍ଟ—
हरष, हरिष হরস Delighted. (ଦ୍ର—ଖ୍ରୀଷ୍ଟ ତାହାଙ୍କୁ ଦେଖି ହୋଇଣ ହରଷ, ପୁଛା କଲେ କେ ବାବୁ ତାଙ୍କର ସନ୍ତୋଷ—ଖ୍ରୀଷ୍ଟଜୀବ ମହାଭାରତ ବନ ।)

ହରଷ କରା(ରେ)ଇବା—ଗ୍ରା. କ୍ରି—ଆନନ୍ଦିତ କରିବା—To please;
Harasha karā(re)ibā to cause delight.
हरष करान হরস করানো (ଦ୍ର—ଗଣ୍ଡେ ଦେଇଣ [ହରଷା(ଷେ)ଇବା—ପଦ୍ୟରେ ରୂପ] ରୂମ୍ନ; ହରଷ କରାଇବ—ସଙ୍ଗୀତ ।)

ହରଷ ବଦନ—ଗ୍ରା. ବ.—ହର୍ଷୋତ୍ଫୁଲ୍ଲ ମୁଖ; ହର୍ଷଯୁକ୍ତ ମୁଖ;
Harasha badana ସରସ ମୁହଁ—Joyful face.
हरष बदन হরস বদন
[ହରଷ ମୁଖ(ହଁ)—ଅନ୍ୟରୂପ]

ହରଷ ବଦନିଆ(ବଦନା)—ଗ୍ରା. ବଣ. ପୁଂ (ଷ ହର୍ଷ ବଦନ)—
Harasha badaniā(badanā) ହର୍ଷୋତ୍ଫୁଲ୍ଲମୁଖ—
हृष्टवदन হরষবদন বালা Having joyful face;
(ହରଷବଦନୀ, ହରଷବଦନୀ—ସ୍ତ୍ରୀ) having a delightful face.

ହରଷ ମୁଖା (ହାଁ)—ଗ୍ରା. ବଣ. ପୁଂ—ହର୍ଷୋତ୍ଫୁଲ୍ଲମୁଖ—
Harasha mukhā(hāñ) Having a delightful

হৃষ্ট বদন হরষমুখা face; with a Joyful appearance.

[ହରଷମୁଖୀ(ଖୀ) — ସ୍ତ୍ରୀ]

ହରଷିତ—ଗ୍ରା. ଭଣ (ସ. ହର୍ଷିତ)—ହୃଷ୍ଟ; ଆନନ୍ଦିତ; ହର୍ଷଯୁକ୍ତ—Harashita Delighted. হরষিত हरषित

ହରଷେ—ଗ୍ରା. କ୍ରି· ଭଣ (ପଦ୍ୟରେ ବ୍ୟବହୃତ)—ଆନନ୍ଦରେ—Harashe With delight. (ଉ—ହରଷେ হরষে हरसमें କହେ ପଦ୍ମଯୋନି—ଜଗନ୍ନାଥ ଭାଗବତ।)

ହରସ୍ତାପ୍—ଦେ. ଅ—୧। ବରାବର; ମୂଳରୁ—1. From the Harastāp beginning. ୨। କଦାପି; ବরাবর बराबर, हरगीज ଅର୍ଥେ; ଜମାରୁ—2. At all; ever. (ଉ—ସେ ଏ କାମ କରିବାକୁ ହରସ୍ତାପ୍ ମନା କଲା।)

ହର ହର ବମ୍ ବମ୍—ଦେ. ଅ—ମହାଦେବଙ୍କ ନିକଟରେ ଉପସ୍ଥିତ Hara hara bam bam ଭକ୍ତଙ୍କ ଡାକ—Words হর হর বম্ বম্ हर हर बम ब used by (ହର ହର ବମ୍ ବମ୍ ଭୋଳା!—ଅନ୍ୟରୂପ) a devotee to invoke God Śiba.

ହର ହରି—ସ ବ—ଶିବ ଓ ବିଷ୍ଣୁ—Hara hari Śiba and Bishṇu.

ହର ହରି ଘାଟ—ଦେ. ବ (ନାମ)—ହଡ଼ ହଡ଼ି ଘାଟ (ଦେଖ)—Hara hari ghāta Harda hardi ghāta (See)

ହର ହାର—ସ ବ (ଷଷ୍ଠୀ ତତ୍; ଶିବଙ୍କ ହାର)—ସର୍ପ (ହ. ଶ)—Hara hāra Serpent.

ହରହୂରା—ସ. ବ—ହାରହୂର; ଦ୍ରାକ୍ଷା (ଶବ୍ଦକଳ୍ପଦ୍ରୁମ)—Harahwarā Grape.

ହରା—ସ ଭଣ. ସ୍ତ୍ରୀ—[ଅନ୍ୟ ଶବ୍ଦ ସଙ୍ଗେ ସମାସରେ ଯୁକ୍ତ; ହର ଶବ୍ଦର Harā ସ୍ତ୍ରୀଲିଙ୍ଗ ଆକାର]—Feminine form of Hara added to words) Destroying; causing to disappear. [ଉ—ଶୋକହରା, হরণ हरणा ଦୁଃଖହରା]—ଦେ. ବ [ସ. ହୃ ଧାତୁ]—୧। ହରଣ [ଦେଖ]—1. Harana (See) হারা हरा ୨। ହଜିବା—2. Loss. ୩। [ଫା.]—ହାରିବା; ପରାଜୟ—3. Defeat. ୪। [ଫା ହର୍ବ; ତୁଳନା କର—ସ. ହରିତ୍]—ହରିତ୍ବର୍ଣ୍ଣ—4. Green; emerald colour. ଦେ. ଭଣ—୧। [ସ ହୃତ]—হৃত হারা ହୃତ—1. Removed, stolen. ୨। [ସଂ ହାରକ] ହରଣକାରୀ—2. Stealing. ୩। ଯେ ହଜାଇଥାଏ ବା ହାରିଥାଏ—3. One who has lost. ୪। ପରାସ୍ତ—4. Defeated; vanquished. ଗ୍ରାଦେ (ବାଲେଶ୍ୱର ପାଠେଣୀ) ବ—ମନୁଷ୍ୟଶିଶୁ—Human child. ଗ୍ରାଦେ—(ଉତ୍ତରାଞ୍ଚଳ) ଭଣ. ପରାଜିତ—Vanquished. ଭଣ. ଓ ବ—ଶାଗୁଆ; ହରିତ୍ ବର୍ଣ୍ଣ (ତୁଳନାକର ଏହି ଅର୍ଥରେ ହୃଦ୍ଧ ହରା)—Green; emerald colour.

ହରା (ରେ) ଇବା—ଦେ. କ୍ରି—୧। ହରିବା କ୍ରିୟାର ଣିଜନ୍ତ ରୂପ; Harā(re iba (ହରିବା କ୍ରିୟାର ଭିନ୍ନ ଭିନ୍ନ ଅର୍ଥ ଦେଖ)—হারান 1. Causative form of Haribā. ୨। ହଜାଇବା—2. To lose. हराना ୩। ଅନ୍ୟ ବ୍ୟକ୍ତିଦ୍ୱାରା ହରଣ କିମ୍ବା କରାଇବା, (ହରଣ କରିବାର ଭିନ୍ନ ଭିନ୍ନ ଅର୍ଥଦେଖ) 3. To cause another to steal etc. ୪। ହରିବା (ଦେଖ)—4. Haribā (See) ୫। ଚ୍ୟୁତ ହେବା, ବଞ୍ଚିତ ହେବା—5. To be bereft of; to be shorn of, [ଉ—ଅରେ ରାବଣ। ତୁଚ୍ଛା କଥାରେ ହରାଇଲୁ କଉତ୍ପଣ—ହଗ] ୬। ନଷ୍ଟ କରିବା—6. To spoil. ୭। ଜ୍ୱରକାନ୍ତ ବୋଧ କରିବା—7. To feel feverish. ୮। (ହାରିବା କ୍ରିୟାର ସ କର୍ମକରୂପ) ଅନ୍ୟକୁ ପରାସ୍ତ କରିବା; ଜିଣିବା—8. To defeat a person. ୯। ପଣ, ଜୁଆ ଆଦି ଖେଳରେ ପରାସ୍ତ ହୋଇ ଲଗାଇବାର ଗଚ୍ଛିତ ପଣକୁ ଅପର ପକ୍ଷର ହସ୍ତଗତ ହେବାର କାରଣ ହେବା—9. To forfeit a stake in a game. [ଉ—ଖେଳିବାରେ ମୋ ପଣ ଜିଣିଲେକେ ନାହିଁ, ତାହାଙ୍କୁ ତାଙ୍କ ଖେଳେ ହରାଇବ ମୁହିଁ—କୃଷ୍ଣସିଂହ· ମହାଭାରତ, ସଭାପର୍ବ]

ହରା ଜିନା—ଗ୍ରାଦେ· (ଉତ୍ତରାଞ୍ଚଳ) ବ—ହାରଜିତ—Harā jinā Defeat and victory.

ହରାଣି—ଦେ. ବ (ସ. ହୃ ଧାତୁରୁ ହରଣ) ୧। ହରଣ (ଦେଖ)—Harāṇa Harana (See) ୨। ହଜାଇବା; ହରାଇବା; ଚ୍ୟୁତ হারান ହେବା; ବଞ୍ଚିତ ହେବା—2. Losing; being हराना bereft of ୩। (ଗଣିତ) ଭାଗ କରଣ—3. (Mathematics) Division. ୪। ହରାଇବା; ପରାଜୟକରଣ—4. Defeating.

ହରା ଦଳ—ଗ୍ରାଦେ. (ସମ୍ବଲପୁର)—ପରାଜିତ ପକ୍ଷ—Harā dala The defeated party.

ହରାଦ୍ରି—ସ· ବ (ମ. ପ. ଲୋ, ହରଙ୍କ ଅଧ୍ୟୁଷିତ ଅଦ୍ରି)—କୈଳାସ Harādri ପର୍ବତ—The Kailāsa mountain.

ହରା ଧନ—ଦେ· ବ—୧। ଚୋରଧନ—1· Stolen property. ୨। Harā dhana ହଜିଥିବା ଧନ—2· Lost property. হারাধন हराधन

ହରାବଳ(ଲ)—ବୈ ଦେ.ବ (ତୁର୍କି. ହରାବଲ)—୧। ସେନାଦଳର ଅଗ୍ର-Harābala(l) ବର୍ତ୍ତୀ ଦଳ—1. The advance guard of হারাবল an army. ୨। ଠଗ ବା ଡକାଇତମାନଙ୍କ ନେତା हरावल ବା ସର୍ଦ୍ଦାର—2 The leader of a gang of Thugs or dacoits.

ହରାମ୍—ବୈଦେ· ଭଣ (ଆ· ହରାମ୍=ବର୍ଜିତ)—୧ ବର୍ଜିତ—Prohi-Harām bited. ୨। ଶାସ୍ତ୍ରବର୍ଜିତ—2. Prohibited by হারাম the scripture. ୩। ଅନୁଚିତ—3. Improper.

हराम ୪ । ପାପଜନକ—4. Sinful. ବି—୧ । ନିଷିଦ୍ଧ ଖାଦ୍ୟଦ୍ରବ୍ୟ—1. Prohibited food. ୨ । ନିଷିଦ୍ଧ କର୍ମ—2. Prohibited act. ୩ । ବେଇମାନୀ; ଅଧର୍ମ; ବିଶ୍ୱାସଘାତକତା—3. Impiety; perfidy. ୪ । ପାପ—4 Sin. ୫ । ବ୍ୟଭିଚାର—5 Adultery.

ହରମ୍‌ଖୋର୍—ବୈଦେ. ବିଣ (ଅ. ହରମ୍+ଫା. ଖୋର୍)—୧। ନିଷିଦ୍ଧ
Harām khor ଖାଦ୍ୟ ଖାଦକ—1. Eating prohibited
হাবামখোব food. ୨ । ନିଷିଦ୍ଧ ବା ପାପଜନକ ଭାବରେ ଅର୍ଜିତ
हरामखोर ଧନରେ ଜୀବିକା ନିର୍ବାହକାରୀ—2. Living on the earning of a bad or prohibited or sinful act

ହରମ୍‌ଖୋରି—ବୈଦେ. ବି (ଅ+ଫା)—ହରମଖୋରର କର୍ମ ବା
Harām khori ଅବସ୍ଥା—The state of being a
হারামখোবী हरामखोरी Harām-khor.

ହରମ୍‌ଜାଦ୍‌ଗୀ—ବୈଦେ. ବି (ଅ—ହରାମ୍+ଫା. ଜାଦ୍+ଫା ପ୍ରତ୍ୟୟ
Harām jād-gi ଗୀ)—ହରମଜାଦା ପଣ—The state of
হারামজাদী हरामजादगी being Harāmjādā.

ହରମଜାଦା—ବୈଦେ. ବିଣ (ପୁଂ)—(ଅ. ହାରାମ୍+ଜାଦା=ଉତ୍ପନ୍ନ)
Harām jādā ୧ । ବ୍ୟଭିଚାରରୁ ଉତ୍ପନ୍ନ—1. Born of
হারামজাদা adultery ୨। (ଗାଳି) ପାଜି; ଦୁଷ୍ଟ—2 Wicked;
हरामजादा vile ୩ । ବର୍ଣ୍ଣସଙ୍କର—3. Hybrid.
(ହରମ୍‌ଜାଦୀ—ସ୍ତ୍ରୀ)

ହରା ମଣି—ଦେ ବି—୧ । ଚୋରାମଣି—1. Stolen gem. ୨। ହାରାମଣି
Harā maṇi (ଦେଖ)—2. Hārāmaṇi (See)
হারামণি हरामणि

ହରାମି—ବୈଦେ. ବି—(ଅ ହରାମୀ—ହରାମ୍ ହେବା ଅବସ୍ଥା—
Harāmi The state of being Harām.
হাবামী हरामी

ହରା ରଙ୍ଗ—ଦେ. ବି—(ସଂ. ହରିତ୍+ରଙ୍ଗ)—ହରିଦ୍ବର୍ଣ୍ଣ—
Harā raṅga Green colour.
সবুজরঙ্গ हरा रंग ବିଣ. ହରିତ୍—Green.

ହରାରାତି—ସଂ. ବି—(୬ଷ୍ଠୀ ତତ୍ ବା ବହୁବ୍ରୀହି; ହର+ଅରାତି)—
Harārāti କାମ; କନ୍ଦର୍ପ—Cupid. [ଉ—ହରେ କି ଦଣ୍ଡ ହେଲା ହରାରାତି ରେ—ଭଞ୍ଜ. ପ୍ରେମସୁଧାନିଧି]

ହରାହା(ହି)ରି—ଦେ'ବି ଓ ବିଣ—୧ । ହାରିହାରି(-ଦେଖ)—1.Hārā
Harāhā(ha)ri hāri (See). ୨ । ବହୁବସ୍ତୁର ମୂଲ୍ୟ ଅବା ହିସାବ
হাবাহাবি हराहरि କରି ତହିଁର ଗୋଟିଏ ମୋଟାମୋଟି ହାରାହାରି; ମୋଟ ଉପରେ ହିସାବ—2. Rateable; average. ୩ । ହରଣ ଆଦି କାର୍ଯ୍ୟ—3. Act of Haraṇa etc. ୪। ହାରିବା ଓ ଜିତିବା; ଜୟ ଓ ପରାଜୟ—4. Victory and defeat. ପ୍ରାଦେ (ଗଞ୍ଜାମ) ବି—ଏକ ପ୍ରକାର ଶାକଗୁଳ୍ମ—A kind of potherb. [ଦ୍ର—ଏଥିରେ ମାଞ୍ଜିଆ ବେଣ୍ଡାପରି ଫଳ ଧରେ]।

ହରା ହେ(ଯି)ବା—ପ୍ରାଦେ (ମେଦିନୀପୁର) କ୍ରି.—ହଜିବା—
Harā he(ji)bā To be lost.

ହରି—ସଂ. ବି. (ହୃ ଧାତୁ=ହରଣ କରିବା+କର୍ତ୍ତୃ ଇ)—୧ । (ଯେ
Hari ସମସ୍ତଙ୍କ ହୃଦୟକୁ ହରଣ କରନ୍ତି) ଭଗବାନ୍—1 God [ଦ୍ର—ହିନ୍ଦୁ ଶାସ୍ତ୍ରମାନଙ୍କରେ (ଯଥା—ବ୍ରହ୍ମପୁରାଣ, ନୃସିଂହ ପୁରାଣ, ମହାଭାରତ, ଗୀତା, ବିଷ୍ଣୁପୁରାଣ, କଳ୍କି ପୁରାଣ ଓ ଗରୁଡ଼ ପୁରାଣରେ) ବାରଂବାର କଥିତ ହୋଇଅଛି ଯେ, ବ୍ରହ୍ମା, ହରି ଓ ହର ଏକ ଅଟନ୍ତି ଓ ଏ ତିନହେଁ ପରମେଶ୍ୱରଙ୍କର ସତ୍ତ୍ୱ, ରଜଃ, ତମଃ ଗୁଣର ଭିନ୍ନ ଭିନ୍ନ ଆକାର ମାତ୍ର ।

ହିନ୍ଦୁମାନଙ୍କ ଶାସ୍ତ୍ର ମତରେ ଶିବ ରୁଦ୍ରରୂପ ଧାରଣ କରି ବ୍ରହ୍ମାଣ୍ଡ ପ୍ରଳୟରେ ସମସ୍ତ ଜୀବ, ବସ୍ତୁ ଓ ଦେବତାଙ୍କ ଲୁପ୍ତ ହେଲେ କେବଳ ଅକ୍ଷୟବଟର ଗୋଟିଏ ପତ୍ରରେ ନାରାୟଣ ବା ବିଷ୍ଣୁ ଯୋଗନିଦ୍ରାରେ ନିଦ୍ରିତ ହୋଇ ଭାସିଲେ ଓ କାଳକ୍ରମେ ଅନନ୍ତ ଶୟନ କଲେ । ବିଷ୍ଣୁଙ୍କ ନାଭିରୁ ଗୋଟିଏ ପଦ୍ମ ଫୁଟି ସେହି ପଦ୍ମ ଭିତରୁ ବ୍ରହ୍ମା ବାହାରିଲେ । ଶିବ ମଧ୍ୟ ଅଦୃଶ୍ୟ ହୋଇ ବସି ରହିଲେ । ତତ୍ପରେ ହରି, ଶିବ ଓ ବ୍ରହ୍ମା, ଏହି ତିନି ଜଣଙ୍କ ଉପରେ ୩ଗୋଟି କାର୍ଯ୍ୟ ନ୍ୟସ୍ତ ହେଲା—ବ୍ରହ୍ମା ବ୍ରହ୍ମାଣ୍ଡ ସୃଷ୍ଟି କରିବେ, ବିଷ୍ଣୁ ତାହା ପାଳନ କରିବେ ଓ ଯୁଗ କ୍ଷୟ ହେଲେ ଶିବ ସୃଷ୍ଟିକୁ ସଂହାର କରିବେ । ବୁଝିବାକୁ ଗଲେ ବ୍ରହ୍ମା, ହରି ଓ ହର ଏ ୩ ଜଣ ଏକ ନାରାୟଣଙ୍କର ଯଥାକ୍ରମେ ସର୍ଜନାକାରୀ, ପାଳନକାରୀ ଓ ସଂହାରକାରୀ ରୂପ । ପୃଥିବୀର ପ୍ରାୟ ସବୁ ଧର୍ମରେ ଏ ବ୍ରହ୍ମାଣ୍ଡକୁ ସୃଷ୍ଟି କରିଥିବା ଦେବତା ଜଣେ ଥିବା ସ୍ଥିର ହୋଇଅଛି । ସୃଷ୍ଟିର ମୂଳକାରଣ ଉକ୍ତ ଦେବଙ୍କୁ ହରି, God (ଈଶ୍ୱର), ଯିହୋବା, ଅଲ୍ଲା ନାମରେ ଲୋକେ ଭିନ୍ନ ଭିନ୍ନ ଦେଶରେ ଗ୍ରହଣ କରିଅଛନ୍ତି ଓ ସେହି ସବୁ ଧର୍ମର ମୂଳ ଈଶ୍ୱର ଓ କାଳକ୍ରମେ ସେ ପୃଥିବୀରେ ଅବତାର ଗ୍ରହଣ କରି ବା ପୃଥିବୀକୁ ଦୂତ ପଠାଇ ଧର୍ମ ସଂସ୍ଥାପନ କରନ୍ତି ]

୨ । ନାରାୟଣ; ବିଷ୍ଣୁ; ହିନ୍ଦୁମାନଙ୍କ ବ୍ରହ୍ମାଣ୍ଡପାଳକ ଦେବତା (ଅମରକୋଷ)—2. Bishṇu, the Preserver of the universe. ୩ । ଶ୍ରୀକୃଷ୍ଣ—3. Śrikṛushṇa (an incarnation of Bishṇu). ୪ । ବ୍ରହ୍ମା—(ମେଦିନୀ)—4. The Creator; God Brahmā. ୫ । ମହେଶ୍ୱର; ଶିବ (ମେଦିନୀ)—5. God Śiba. ୬ । ସିଂହ (ଅମର କୋଷ)—6. The lion. ୭ । ବାନର (ଅମର କୋଷ)—7. Monkey; ape ୮ । ଭେକ; ବେଙ୍ଗ (ଅମରକୋଷ)—8. The frog. ୯ । ସର୍ପ (ଅମରକୋଷ)—9. Serpent; snake. ୧୦ । ଶୁକପକ୍ଷୀ; ଶୁଆ (ଅମର କୋଷ)—10. Parrot. ୧୧ । ଚନ୍ଦ୍ର (ମେଦିନୀ)—11. The moon. ୧୨ । ସୂର୍ଯ୍ୟ (ମେଦିନୀ)—12. The sun. [ଉ—ବତ୍ସେଷ ହରି ମନକୁ ସୁଖ ସମ ସେ ପୃଷ୍ଠିକୁ ନାସା ଓଷ୍ଠ ମଧ୍ୟ ବେଣୀ ତଥା ସ୍ତନତା—

ଭଞ୍ଜ. ବୈଦେହୀଶ ବିଳାସ] ୧୩ । ବାୟୁ (ମେଦିନୀ)—13. The air. ୧୪ । ଆକାଶ—14. The sky. [ଉ—ଛାଡି ହେଲେ ଲକ୍ଷ୍ୟମାନେ ବସନ୍ତ ଅଛନ୍ତି । ତଣ୍ଡା ଫୁଟାଇ ଭଗୃଇ ହରି ତଳ ଗଛ—ଭଞ୍ଜ. କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ] ୧୫ । ଅଶ୍ୱ (ମେଦିନୀ)—15. The horse. [ଉ—ବିଲୋକିଲେ ପ୍ରଜାପତି ବାଜି ହସ୍ତେ ଧରିଛନ୍ତି । ହରି ତଡ଼ି ଆସେ ଚଯୁ ଚଯୁ ଅରୁଣ—ଭଞ୍ଜ. ବୈଦେହୀଶ ବିଳାସ]—୧୬ । ଯମ (ମେଦିନୀ)—16. The Hindu God of death. ୧୭ । କିରଣ (ମେଦିନୀ)—17. Ray of light. ୧୮ । ଇନ୍ଦ୍ର 18. The Hindu's king of gods. [ଉ—୨, ୬, ୧୨, ୧୬, ୧୮ର ଉଦାହରଣ ଭଞ୍ଜଙ୍କ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ୨୬ ଅଧ୍ୟାୟ,୩୪, ୩୫, ୩୬, ୩୭, ୩୮ ପଦମାନଙ୍କରେ ରହିଅଛି ।]

୧୯ । ହରିବର୍ଷ; ଦେଶ ବିଶେଷ (ମେଦିନୀ); ପୁରାଣୋକ୍ତ ପୃଥିବୀର ନବ ବର୍ଷ ବା ଭାଗ ମଧ୍ୟରେ ଏକତମ—19. Name of a mythological country. ୨୦ । ମୟୂର (ଶବ୍ଦରତ୍ନାବଳୀ)—20. Peacock. ୨୧ । କୋକିଳ (ଶବ୍ଦ ରତ୍ନାବଳୀ) 21. Cuckoo. ୨୨ । ହଂସ (ଶବ୍ଦ ରତ୍ନାବଳୀ)—22. Swan. ୨୩ । ଅଗ୍ନି (ଶବ୍ଦ ରତ୍ନାବଳୀ)—23. Fire. ୨୪ । ଭର୍ତ୍ତୃହରି ରାଜା ଓ କବି(ଶେଷ)—24. A name of king and poet Bharttṛuhari. ୨୫ । ଶାଗୁଆ ବର୍ଣ୍ଣ; ହରିଦ୍‌ବର୍ଣ୍ଣ (ହେମଚନ୍ଦ୍ର)—25. Green or emerald colour. ୨୬ । ପିଙ୍ଗଳ; ପିଙ୍ଗଳବର୍ଣ୍ଣ (ହେମଚନ୍ଦ୍ର)—26. Gray colour; auburn. ୨୭ । କପିଳବର୍ଣ୍ଣ (ମେଦିନୀ); କହ୍ୱରଙ୍ଗ—27. Brown or tawny colour. ୨୮ । ପୀତବର୍ଣ୍ଣ (ଅନେକାର୍ଥ କୋଷ)—28. Yellow colour. ୨୯ । (ଜ୍ୟୋତିଷ) ସିଂହରାଶି—29. ( Astronomy ) The sign Leo. ୩୦ । (ନାମ) ଗରୁଡ଼ଙ୍କର ଏକପୁତ୍ର (ହି. ଶ)—30. Name of a son of Garurda. ୩୧ । (ନାମ) ପୌରାଣିକ ପର୍ବତ ବିଶେଷ (ହି ଶ)—31. Name of a mythological mountain. ୩୨ । ୧୮ ବର୍ଣ୍ଣ ବିଶିଷ୍ଟ ଛନ୍ଦୋବିଶେଷ (ହି. ଶ)—32. A metre of 18 letters. ୩୩ । ବୌଦ୍ଧ ଶାସ୍ତ୍ର ଲିଖିତ ଖୁବ୍ ବଡ଼ ସଂଖ୍ୟା (ହି. ଶ)—33. A very high number according to the Buddhist books. ସଂ. ବିଣ—୧ । ହରିତ୍ (ହି. ଶ)—1. Green. ୨ । ପିଙ୍ଗଳ (ହି. ଶ)—2. Gray. ୩ । ହଳଦିଆ (ହି. ଶ)—3. Yellow. ୪ । କହ୍ୱରି (ହି. ଶ)—4. Tawny: brown. ଦେ. ବି—ପୁରୀରେ ବିରାଜିତ ଜଗନ୍ନାଥ

ହରିଁ:ହରି ମହାପ୍ରଭୁ—The Lord Jagannātha of Puri.

[ଉ—ହରି ହରିଦ୍ୱାରେ ମିଳି ହରିଧିକ ହେଲେ—ଭଞ୍ଜ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ] । ପ୍ରାଦେ (ଖଡ଼ିଆଳ) ବି—(ଅମୁକ ବସ୍ତୁର) ବ୍ୟବସାୟୀ; ଯଥା ମାଛ ହରି, ଦହି ହରି) Dealer in; seller of (anything).

ହରିଅ(ଆ)ଳ୍(ଲ୍) ଚଢ଼େଇ—ଦେ. ବି. (ସଂ. ହରିତାଳ)—ହରଡ଼ ଚଢ଼େଇ (ଦେଖ)—
Haria(ā)l(l) chardhei ହରିଅଲପାଖୀ ହରିଅଲ Hararda chardhei (See).

ହରିଆ—ଦେ. ବି. ପୁଂ—ହରିନାମଧାରୀ ବ୍ୟକ୍ତିର ଅନାଦରାର୍ଥକ ଡାକ ନାମ
Hariā Name for calling a person named Hari in familiarity or disregard. ପ୍ରାଦେ. (ପାଟଣା, ଖଡ଼ିଆଳ) ବି—୧ । ଲୋକ—1. Man. ୨ । (ଅମୁକ ଦ୍ରବ୍ୟର) ବ୍ୟବସାୟୀ (ଯଥା—ଦହି ହରିଆ)—2. Dealer in (any article).

ହରିଆ ତନ୍ତି—ଦେ. ବି (ହରିନାମଧାରୀ ଜଣେ ତନ୍ତୀର ନିର୍ବୁଦ୍ଧିତା ପରିଚାୟକ ଗଳ୍ପରୁ)—ନିର୍ବୁଦ୍ଧିଆ ବ୍ୟକ୍ତି
Hariā tanti Nonsensical or stupid person; a person having no common sense. [ଦ୍ର—ଏ ବ୍ୟକ୍ତି ଗୋଟିଏ ପାଣିକଖାରୁକୁ ଘୋଡ଼ା ଅଣ୍ଡା ବୋଲି ବିଶ୍ୱାସ କରି ହାଟରୁ କିଣିଥିଲା ।]

ହରିଆଳ(ଲ)—ଦେ. ବି—ହରିଅଲ୍ ଚଢ଼େଇ (ଦେଖ)—
Hariāl(l) Hariāl chardhei(See).

ହରି ଉଡ଼ିଯିବେ—ପ୍ରାଦେ (ଗଡ଼ଜାତ) ଅ—ଏ କଥାକୁ ମୁଁ ଭାଜନ ନୁହେଁ; ଏ କଥାକୁ ମୁଁ କରି ପାରିବି ନାହିଁ—
Hari urdijibe (a phrase) I am unequal to the task. (ଦ୍ର—ଦୁଇଜଣ ବ୍ୟକ୍ତି କଥାବାର୍ତ୍ତା ହେଉଥିବାବେଳେ ଏହି ବାକ୍ୟ ବ୍ୟବହାର କରନ୍ତି ;

ହରିଏଲ (ହରିଆଲି, ହରେଲ, ହରେଲି) ଉଆଁସ—ପ୍ରାଦେ (ଖଡ଼ିଆଳ) ବି—ସାରପୁର
Hariel(hariāli, harel, hareli)uāñsa (ହରିଅଲି ଉଆଁସ, ହରେଲି ଉଆଁସ—ଅନ୍ୟରୂପ) ଅମାବାସ୍ୟା ଶ୍ରାବଣ ଅମାବାସ୍ୟା—The new moon of the month of Śrābaṇā. [ଦ୍ର—ଏ ଅମାବାସ୍ୟା ଦିନ ଗ୍ରାମର ଗାଈ ଚରାଇବା ଲୋକ ଶତାବରୀ ଡାଳ ଆଣି ଗ୍ରାମର ପ୍ରତ୍ୟେକ ବ୍ୟକ୍ତିଙ୍କ ଘରେ ଖୋସିଯାଏ । ଲୋକବିଶ୍ୱାସ ଯେ, ଏହାଦ୍ୱାରା ଗ୍ରାମବାସୀମାନେ କୁଶଳରେ ରହନ୍ତି । ]

ହରିଏଲ (ହରେଲ) ଡାଲ—ପ୍ରାଦେ. (ଖଡ଼ିଆଳ) ବି—ଶତାବରୀ ଗୁଳ୍ମ—
Hariel(harel)ḍāl Asparagus Racemosus. [ଦ୍ର—ଶ୍ରାବଣ ଅମାବାସ୍ୟା ଦିନ ଏ ଡାଳ ଘରେ ଖୋସିବା ଦ୍ୱାରା ଘରବାସୀ ସମସ୍ତେ କୁଶଳରେ ରହନ୍ତି, ଏଣୁ ଏହାର ଅନ୍ୟ ନାମ 'ଦେବ ବାଢ଼ୁଣ'=ଦେବ ମାର୍ଜନୀ); କାରଣ, ଗ୍ରାମ ଦେବତା ଏହା ଦ୍ୱାରା ଘର ଓଳାନ୍ତି; ସୁତରାଂ ସେ ଘରର ମଙ୍ଗଳ ହୁଏ, ଏହା ଲୋକବିଶ୍ୱାସ ।]

ହରିକ—ସଂ ବି (ହୃ ଧାତୁ+ଇକ)—୧ । ଚୌର—1. Thief. ୨ ।
Harika ଅକ୍ଷକ୍ରୀଡ଼କ—2. A person who plays the

game of dice. ୩ । (ହର=ପୀତ-ହରିତ୍ ବର୍ଣ୍ଣ+ ପ୍ରଜ୍ଞାର୍ଥେ ଅ )—ପୀତ-ହରିତ୍ ବର୍ଣ୍ଣାଶ୍ୱ ( ହେମଚନ୍ଦ୍ର )—3. A horse of mixed yellow and green colour.

ହରି କଥା—ସ ବି— ୧ । ଭଗବାନଙ୍କ ସମ୍ବନ୍ଧେ ଆଲୋଚନା ବା Hari kathā କଥାବାର୍ତ୍ତା—1. Talk about God. ୨ । ଧର୍ମସମ୍ବନ୍ଧୀୟ ଆଲୋଚନା—2. Religious discussion. (ଦ୍ର—ଘର କଥା, ହରି କଥା, ଭତ; ହରି କଥା ହାର କଥା ଲୁଗା, ଗୁଡ଼ କଥା—ଚଗ ।) ଦେ. ବି— ୧ । ପୌରାଣିକ ଉପାଖ୍ୟାନ—1. Mythological story. ୨ । ଜଣେ ବ୍ୟକ୍ତିଙ୍କ ଦ୍ୱାରା ରସମୟ ଗଦ୍ୟରେ ଓ ପଦ୍ୟରେ ପୌରାଣିକ ଉପାଖ୍ୟାନର ଅଭିନୟ ସହ ଅଭିନୟ—2. The recital and acting of mythological stories in prose and poetry. [ଦ୍ର—ଆନ୍ଧ୍ରମାନଙ୍କ ମଧ୍ୟରେ ତେଲଗୁ ଭାଷାରେ 'ହରିକଥା' ବହୁକାଳରୁ ପ୍ରଚଳିତ । ଏଥିରେ କଥକ ପୋଷାକ ପିନ୍ଧି ଠିଆ ହୋଇ କୌଣସି ପୌରାଣିକ ଉପାଖ୍ୟାନ ବା ବିଷୟକୁ ଅବଲମ୍ବନ କରି ଛନ୍ଦ ର ଗଦ୍ୟରେ ଅଙ୍ଗ ସୂଚନା ଦିଅନ୍ତି ଓ ମଧ୍ୟେ ମଧ୍ୟେ ଛନ୍ଦୋବଦ୍ଧ ବର୍ଣ୍ଣିତ ସଙ୍ଗୀତ ଗାନ ଏବଂ ତତ୍‌ସମ୍ବନ୍ଧେ ରସମୟ କଥୋପକଥନ ଆଦି କରନ୍ତି । ତାଙ୍କ ଗାନବେଳେ ଅନ୍ୟ ବ୍ୟକ୍ତିଗଣ ବାଦ୍ୟଯନ୍ତ୍ର (ବେହେଲା, ବୀଣା, ହାର୍ମୋନିୟମ୍, ତବଲା ଆଦି) ବଜାଉ ଥାଆନ୍ତି । ହରିକଥା ଅଭିନୟ ତେଲଗୁସାଧାରଣଙ୍କର ଖୁବ ଚିତ୍ତାକର୍ଷକ ଓ ଆଦରଣୀୟ ବସ୍ତୁ । ଓଡ଼ିଆରେ ଏ ଶ୍ରେଣୀ ପୂର୍ବେ ନ ଥିଲା । ପାରଳାଖେମୁଣ୍ଡିର ଶ୍ରୀଯୁକ୍ତ କରୁଣାକର ପଣ୍ଡା ପ୍ରଥମେ ଓଡ଼ିଆରେ 'ହରିକଥା'ର ଆରମ୍ଭ କରିଅଛନ୍ତି ଓ ଓଡ଼ିଆ ଗଦ୍ୟପଦ୍ୟମୟ ରଚନା, କଥୋପକଥନ, ଗାନ ଓ ରସମୟ ବିଷୟର ଅବତାରଣା କରି ଏହାକୁ ସୁନ୍ଦର କରିଅଛନ୍ତି । ସେ 'ସଙ୍ଗୀତ ଶିକ୍ଷକ' ଓ 'ଶ୍ରୀରାଧାକୃଷ୍ଣ ମିଳନ' ନାମକ ଦୁଇଖଣ୍ଡି ପୁସ୍ତକ ପ୍ରକାଶ କରିଅଛନ୍ତି । ସେ ହରିଶ୍ଚନ୍ଦ୍ର, ସାବିତ୍ରୀ, ରୁକ୍ମିଣୀପରିଣୟ, ଗୌରାଙ୍ଗସନ୍ନ୍ୟାସୀ, ରାଧାଙ୍କ ମାନଭଞ୍ଜନ, କୃଷ୍ଣାର୍ଜୁନ ଆଦି 'ହରିକଥା' ଅଭିନୟ କରୁଅଛନ୍ତି ଓ ତତ୍‌ସମ୍ପର୍କରେ ସ୍ୱରଚିତ ସୁଲଳିତ ସଙ୍ଗୀତମାନ ବାଦ୍ୟଯନ୍ତ୍ର ସହକାରେ ଗାନ କରୁଅଛନ୍ତି ।]

ହରି କର୍ମ—ସ. ବି—ଯଜ୍ଞ [ହ. ଶ]
Hari karma Vedic sacrifice.

ହରିକା—ଗ୍ରା. ଅ [ଫା. ହରେକ୍]—ହେଇକା; ଇତ୍ୟାଦି; ଓଗେର—
Harikā Etcetra; and others.
ইত্যাদি वगैरा

ହରିକାଠ—ଦେ. ବି [ସ. ହରି+କାଷ୍ଠ]—୧ । ହଳଦି ( ଦେଖ )—
Harikātha 1. Hardi (See) ୨ । ହଳଦିକାଠ (ଦେଖ)—
হাড়িকাঠ हडिकाठ Hardi kātha (See)

ହରିକା(କି,କେ)ନ୍ ଲ (ଲା)ଣ୍ଟ[ଣ୍ଠ,ଣ୍ଟି,ଣ୍ଠି]ଣ୍[ନ୍]—ବୈଦେ ବି—
Harikā(ki,ke)n la(lā)nta[ntha,nti,nthi]n[n] (ଦ୍ର°. ହାରିକେନ ଲଣ୍ଠନ୍. ହରିକେନ୍=ତୋଫାନ ବା ଝଡ଼ ଓ ଇଂ ଲ୍ୟାର୍ନ= ହରିକେନ ଲାଲଟେନ ଲଣ୍ଠନ)—୧ । ଏକ ପ୍ରକାର ହାତବତୀ ଲଣ୍ଠନ, ଯାହା ତୋଫାନରେ ଲିଭି ଯାଏ ନାହିଁ—1. Hurricane lantern. ୨ । ସାଧାରଣତଃ ହାତରେ ଝୁଲାଇ ନେବା ଲଣ୍ଠନ—2. An ordinary hand-lantern.

ହରି-କୀର୍ତ୍ତନ—ସ. ଚ—୧ । ହରିନାମ କୀର୍ତ୍ତନ; ହରି ସଙ୍କୀର୍ତ୍ତନ—
Hari kirttana 1. Chanting of the name of Hari. ୨ । ଗୀତବାଦ୍ୟାଦି ସହ ହରିନାମଗାନ—Singing of the hymns of Hari accompanied with music.

ହରିକୁଷଁ [ଷ୍ଟଁ, ଷ୍ଣ]—ଗ୍ରା. ବି. ପୁଂ. (ସ ହରିକୃଷ୍ଣ)—ହରିକୃଷ୍ଣ ନାମକ
Hari kushañ (shtañ, shna) ବ୍ୟକ୍ତିର ଡାକ ନାମ—
(ହରି କୃଷ୍ଣନ—ଅନ୍ୟରୂପ) Nick name of Harikrushna [ଦ୍ର—ଓଡ଼ିଆରେ 'ଋ'ର ଉଚ୍ଚାରଣ 'ରୁ' ଓ ବଂ ରେ 'ଋ'ର ଉଚ୍ଚାରଣ 'ରି' ଏବଂ ଓଡ଼ିଆରେ 'ଷ୍ଣ'କୁ କେବେ 'ଷ୍ଟ' ଓ 'ଷ' ଉଚ୍ଚାରଣ କରନ୍ତି ।]

ହରି କୃଷ୍ଣ—ସ. ବି—ହରିଙ୍କର ନାମଦ୍ୱୟ—Two names of
Hari krushna Hari. ଦେ. ବି. ପୁଂ—ଲୋକଙ୍କ ନାମ—
হরেকৃষ্ণ हरिकृष्ण A name given to males.

ହରିକୃଷ୍ଣ ମହାପାତ୍ର—ଦେ. ବି [ନାମ]—'ରୁକ୍ମିଣୀବିଳାସ' ନାମକ ଗ୍ରନ୍ଥ-
Harikrushna mahāpātra ପ୍ରଣେତା—Auther of 'Rukmini Bilāsa'.

ହରିକେନ୍ ଲଣ୍ଟ[ଣ୍ଠ]ନ୍[ଣ]—ବୈଦେ. ବି—ହରିକାନ୍ ଲଣ୍ଠଣ୍ (ଦେଖ)
Hariken lanta(ntha)n(na) Harikān lantan (See)
(ହରିକେନ୍ ଲନ[ଲ]ଟେଣ୍[ନ୍]—ଅନ୍ୟରୂପ)

ହରିକେଳୀୟ—ସ. ବି—ବଙ୍ଗଦେଶ (ହେମଚନ୍ଦ୍ର)—Bengal. ବିଣ—
Harikeliya ବଙ୍ଗଦେଶୀୟ; ବଙ୍ଗୀୟ ( ଶବ୍ଦ କଳ୍ପଦ୍ରୁମ )—
Belonging to Bengal; Bengalee.

ହରି କେଶ—ସ. ବି—୧ । ଶିବ (କଳ୍ପଦ୍ରୁମ)—1. Siba. ୨। (ନାମ)
Hari kesa ଶିବଭକ୍ତ ଯକ୍ଷ ବିଶେଷ—2. Name of Jaksha devoted to Siba. [ଦ୍ର—ଏ ଶିବଙ୍କ ବରରୁ ଦଣ୍ଡପାଣି, କ୍ଷେତ୍ରପାଳ ଓ ଗଣାଧ୍ୟକ୍ଷ ଅଧିକାରପ୍ରାପ୍ତ ହୋଇଥିଲେ । ମତ୍ସ୍ୟପୁରାଣ ।] ୩ । ସୂର୍ଯ୍ୟଙ୍କ ସାତ ପ୍ରଧାନ କଳା ମଧ୍ୟରୁ ଗୋଟିଏ (ହ. ଶ)—3. One of the seven Kalās of the sun. ୪ । (ନାମ) ଶ୍ୟାମକ ନାମକ ଯାଦବଙ୍କ ପୁତ୍ର—5. Name of a son of Syāmaka, a member of the Jadu race. ସ. ବିଣ. ପୁଂ (ବହୁବ୍ରୀହି)—କପିଶ କେଶବିଶିଷ୍ଟ (ହ. ଶ)—
[ହରିକେଶୀ—ସ୍ତ୍ରୀ. ବିଣ] Having brown hair.

ହରିକ୍ରାନ୍ତା—ସ. ବି—ବିଷ୍ଣୁକ୍ରାନ୍ତା (ଗ୍ରନ୍ଥକର୍ତ୍ତା) (ଦେଖ)
Harikrāntā Bishnukrāntā (See).

ହରି କ୍ଷେତ୍ର—ସ ବି (ନାମ)—ହରିହରକ୍ଷେତ୍ର (ଦେଖ)
Hari kshetra Harihara kshetra (See).

ହିରିଖା—ପ୍ରାଦେ [ଉତ୍ତର୍ଭାଷା] ବି—ହର୍ଷ; ଆନନ୍ଦ—
Harikha Joy; rejoicing.

ହରି ଗନ୍ଧ—ସଂ. ବି—ହଳଦିଆ ଚନ୍ଦନ [ହି. ଶ]
Hari gandba Yellow sandal.

ହରି ଗୁଣ —ସଂ. ବି—୧। ହରିଙ୍କର ଗୁଣ—1. The attributes of
Hari guṇa Hari. ୨ । ହରିନାମ ସଂକୀର୍ତ୍ତନ—2.Chanting of the name of Hari. ଦେ. ବି—[ଗଣିତ] ହରଣ ଗୁଣନ ଓ ଗୁଣନ—( Mathematics ) Division and multiplication. [ଉ—ଖଡ଼ିପାଠ, ମିଶାଣ ଫେଡ଼ାଣ ହରଗୁଣ ଛଡ଼ାଇ ରସପୋଥି ଧରିଛି । ଫକୀରମୋହନ, ଗଳ୍ପସ୍ବଳ୍ପ ।]

ହରିଗୁଣ ପୋଥି - ଦେ. ବି—ଯେଉଁ ବିଷୟକୁ ମନୁଷ୍ୟ ସର୍ବଦା ସ୍ମରଣ
Hariguṇa pothi କରେ ବା ଝୁରେ—Anything which is remembered or cherished by a person or after which a person pines.

ହରିଗୁଣ ପୋଥି କରିବା—ଦେ. କ୍ରି - କୌଣସି ବିଷୟକୁ ସର୍ବଦା ସ୍ମରଣ
Hariguṇa pothi karibā କରିବା ବା ଝୁରିବା—To cherish the memory of anything. [ ଯଥା— ସାଥିରେ ମୋତେ ଯେଉଁ ଅନୁଗ୍ରହ ଦେଖାଇଥିଲେ ମୁଁ ସେହି କଥାକୁ ହରିଗୁଣ ପୋଥି କରିଛି ।)

ହରି ଗୃହ—ସଂ. ବି [୬ଷ୍ଠୀ ତତ୍]—୧ । ବିଷ୍ଣୁମନ୍ଦିର; ହରିମନ୍ଦିର —
Hari gṛuha 1. A temple of Bishṇu. ୨ । ମହାଭାରତୋକ୍ତ ନଗର ବିଶେଷ, ଏକଚକ୍ର; ଶମ୍ଭୁପୁରୀ— 2. Name of a town in ancient India.

ହରି ଗୋବିନ୍ଦ—ହରିଙ୍କର ଦୁଇଟି ନାମ—Two names of Hari
Hari gobinda ଦେ. ବି, ପୁଂ—ଲୋକଙ୍କ ନାମ— A name given to males.

ହରିଚନ୍ଦନ—ସଂ. ବି—୧ । ପୀତଚନ୍ଦନ ( ଦେଖ )—I. Pita
Harichandana chandana ( See ) ୨ । ଦେବତରୁ ବିଶେଷ—2, Name of a tree of heaven. ୩ । ଜ୍ୟୋସ୍ନା—3. The moon's rays. ୪ । ପଦ୍ମକେଶର ( ଦେଖ )—5 Padmakeśara (See). ୫ । ଗୋଶୀର୍ଷ (ଦେଖ)—5. Gośīrsha (See) ୬ । କୁଙ୍କୁମ—6. Saffron. ଦେ. ବି— ୧ । କ୍ଷତ୍ରିୟ ଓ ରାଜାମାନଙ୍କର ବଂଶୋପାଧିବିଶେଷ— 1. A family title of Kshatriyas and Rājās. (ଉ—ହରିଚନ୍ଦନଙ୍କୁ ରେ ବାମା, ହରିଚନ୍ଦନଙ୍କୁ ଘେନ ଯଥା ବସନ୍ତରେ ହରିଚନ୍ଦନକୁ—କବିସୂର୍ଯ୍ୟ ସଙ୍ଗୀତ ୨। ତାଳଚେର ରାଜାଙ୍କ ବଂଶୋପାଧି—2. The family-title of the Rājās of the Talcher State of Orissa.

[ଦ୍ର—ତାଳଚେର ରାଜ୍ୟ ଓଡ଼ିଶା ଗଡ଼ଜାତର ଗୋଟିଏ ପ୍ରଧାନ ରାଜ୍ୟ । ଏହାର କ୍ଷେତ୍ରଫଳ ୩୯୯ ବର୍ଗମାଇଲ୍ । ଅଯୋଧ୍ୟାର ସୂର୍ଯ୍ୟବଂଶୀୟ ରାଜା ରାମଚନ୍ଦ୍ରଙ୍କ ପୁତ୍ର କୁଶଙ୍କ ବଂଶୋଦ୍ଭବ କାଶ୍ୟପଗୋତ୍ରୀୟ ରାଜା ଶକ୍ତିସେନ ସିଂହ ଭ୍ରାତୃବିବାଦ ଫଳରେ ଯୋଧପୁରରୁ ଆସି ଜୟପୁରରେ ବିବାହ କରି ସେଠାରେ ଗୋଟିଏ କ୍ଷୁଦ୍ର ରାଜ୍ୟରେ ରାଜତ୍ବ କରୁଥିଲେ । ତାଙ୍କର ଜଣେ ଭାଇ ମାରୁଆରରେ, ଜଣେ ଉଦେପୁରରେ ଓ ଜଣେ ଭାଇ ଚିତୋରରେ ରାଜତ୍ବ କରୁଥିଲେ । ଶକ୍ତିସେନଙ୍କ ପୁତ୍ର କାଳୀୟ ଅର୍ଜୁନ ସିଂହ ପିତୃରାଜ୍ୟରେ ରାଜତ୍ବ କଲେ । ଅର୍ଜୁନସିଂହଙ୍କ ମୃତ୍ୟୁପରେ ତାଙ୍କ ଜ୍ୟେଷ୍ଠପୁତ୍ର ଭୁବନ ସିଂହ ସେଠାର ରାଜା ହେଲେ ଓ ନରହରି ସିଂହ ଆଦି ଅନ୍ୟ ୪ ପୁତ୍ର ଜୟପୁର ପରିତ୍ୟାଗ କରି ୧୪୭୧ ଖ୍ରୀଷ୍ଟାବ୍ଦରେ ଜଗନ୍ନାଥ ଦର୍ଶନାର୍ଥ ଉତ୍କଳକୁ ଆସିଥିଲେ । ସେ ସମୟରେ ଉତ୍କଳରେ ରାଜତ୍ବ କରୁଥିବା ଗଜପତି ରାଜା କପିଳେନ୍ଦ୍ର ଦେବ ଏମାନଙ୍କ ପ୍ରତି ଅସଦ୍ବ୍ୟବହାର କରିବାର ସମ୍ବାଦ ଆଗରୁ ପାଇ ନରହରି ସିଂହ ଓ ଆଉ ଏକ ଭାଇ ବିଜୟ ସିଂହ ପୁରୀ ଛାଡ଼ି ଚାଲିଗଲେ ଏବଂ ଆପଣାକୁ ଭୀମ ନଗରୀର ରାଜା ଘୋଷଣା କଲେ । ଭୀମ ନଗରୀଦଣ୍ଡପାଟ ବ୍ରାହ୍ମଣୀ ନଦୀ କୂଳରେ । ଏହି ଭୀମନଗରୀରେ ଗଜପତି ଅନଙ୍ଗ ଭୀମଦେବ କେତେକ ଦୈବ କ୍ରିୟା ସମ୍ପାଦନ ଉଦ୍ଦେଶ୍ୟରେ କିଛି କାଳ ଅବସ୍ଥାନ କରିଥିଲେ । ଗଜପତିଙ୍କର କଳ୍ପିତ ଅସଦ୍ ବ୍ୟବହାରର ପ୍ରତିଶୋଧନେବାପାଇଁ ନରହରି ସିଂହ ପୁରୀରୁ ଚାଲିଆସି ଭୀମ ନଗରୀ ଅଧିକାର କରି ସେଠାରେ ନିଜର ରାଜଗଣ୍ଡି ସ୍ଥାପନ କରିଥିଲେ । ସେହିଦିନରୁ ସେ କିମ୍ବା ତାଙ୍କର ବଂଶଧରମାନେ ଗଜପତିଙ୍କର ବଶ୍ୟତା ସ୍ବୀକାର ନ କରି ଆପଣା ବଂଶର ଅଖଣ୍ଡ ସ୍ବାଧୀନତା ରକ୍ଷା କରି ଭୀମ ନଗରୀର ସ୍ବାଧୀନ ରାଜାରୂପେ ରାଜତ୍ବ କରୁଥିଲେ ।

କିନ୍ତୁ ଇତିହାସ ତାଳଚେର ରାଜବଂଶର ଅଷ୍ଟମ ନୃପତି ଏହି ନରହରି ସିଂହଙ୍କ ପୁତ୍ର ଉଦେକର୍ଣ୍ଣ ସିଂହଙ୍କ ସମୟରୁ ତାଳଚେରାଧିପତିମାନେ 'ହରିଚନ୍ଦନ' ଉପାଧି ବ୍ୟବହାର କରି ଆସୁ ଅଛନ୍ତି । ଉତ୍କଳ ସମ୍ରାଟ୍ ଗଜପତି କପିଳେନ୍ଦ୍ର ଦେବ ଦାକ୍ଷିଣାତ୍ୟରେ ବାହ୍ମାନୀ ନରପତିମାନଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ଥିବା ସମୟରେ ରାଜା ଉଦେକର୍ଣ୍ଣ ସିଂହ ସ୍ବେଚ୍ଛାକ୍ରମେ ତାଙ୍କ ସହ ଯୋଗ ଦେଇ ଅସୀମ ବୀରତ୍ବ ଓ ରଣକୌଶଳ ଦେଖାଇଥିଲେ ଏବଂ ଅପଣାକୁ ବାରବର ହରିଚନ୍ଦନ ବୋଲି ପରିଚୟ ଦେଇଥିଲେ ।

ଏ ଜଣେ ପରାକ୍ରମଶାଳୀ ନରପତି ଥିଲେ । ଏହାଙ୍କ ସମୟରେ ତାଳଚେର ଭୀମ ନଗରୀ ବୋଲି ପରିଚିତ ଥିଲା । ଭୀମ ନଗରୀଠାରେ ଅବସ୍ଥିତ ହିନ୍ଦୋଳଗଡ଼ ନାମକ ଜମିଦାରିର ବୃତ୍ତୀଶ୍ବର ସଦାଶିବ ସାମନ୍ତରାୟ ଏହାଙ୍କ ବିରୁଦ୍ଧରେ ବିଦ୍ରୋହପତାକା ଉତ୍ତୋଳନ କରିବାରୁ ଏ ତାହାଙ୍କୁ ପରାଜିତ କରି ତାଙ୍କ ବଂଶର ଚିରନ୍ତନ "ସାମନ୍ତରାୟ" ଉପାଧି ସ୍ବୟଂ ଗ୍ରହଣ କଲେ ।

ଭୀମ ନଗରୀସ୍ଥ ପରଜଙ୍ଗର ସର୍ଦ୍ଦାରଙ୍କୁ ମଧ୍ୟ ଏହିପରି ପରାଭୂତ କରି ରାଜା ଉଦେକର୍ଣ୍ଣ ସିଂହ ଉକ୍ତ ସର୍ଦ୍ଦାର ବଂଶର

ଚିରନ୍ତନ "ସାଂଥାଡ଼ା ଦଲେଇ ମହାପାତ୍ର" ଉପାଧି ସ୍ୱୟଂ ଗ୍ରହଣ କରିଥିଲେ । ରାଜା ଉଦେକର୍ଣ୍ଣ ସିଂହ ୧୪୮୦ ଖ୍ରୀଷ୍ଟାବ୍ଦରୁ ୧୫୨୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

ଏହାଙ୍କ ପରେ ଏହାଙ୍କ ଜ୍ୟେଷ୍ଠପୁତ୍ର ଗୋବିନ୍ଦ ଚରଣ ପିତାଙ୍କ ଉପାଧିମାନ ଧାରଣ କରି ୧୫୨୦ ଖ୍ରୀଷ୍ଟାବ୍ଦରେ ରାଜସିଂହାସନ ଆରୋହଣ କରିଥିଲେ । ଏ ଶ୍ରୀ ଚୈତନ୍ୟଙ୍କ ପ୍ରବର୍ତ୍ତିତ ବୈଷ୍ଣବ ଧର୍ମ ଗ୍ରହଣ କରି ନିଜ ରାଜ୍ୟର ପ୍ରଜାଙ୍କୁ ଏହି ଦୀକ୍ଷାରେ ଦୀକ୍ଷିତ କରାଇଥିଲେ । ୪୭ ବର୍ଷ ବୟସରେ ୧୫୨୭ ଅବ୍ଦରେ ଏ ପରଲୋକ ଗମନ କଲେ ।

ରାଜା ଗୋବିନ୍ଦ ଚରଣଙ୍କ ପରେ ରାଜା ମୁକୁନ୍ଦରାଜ "ବୀରବର ହରିଚନ୍ଦନ" ଉପାଧି ଧାରଣ କରି ସିଂହାସନାରୋହଣ କଲେ । ଏହାଙ୍କ ସୁଶାସନରେ ପ୍ରଜାମାନେ ଅତ୍ୟନ୍ତ ସୁଖରେ କାଳାତିପାତ କରୁଥିଲେ । କିନ୍ତୁ ୧୫୨୭ରୁ ୧୫୩୪ ଯାଏ ୭ବର୍ଷ ମାତ୍ର ଏହାଙ୍କ ରାଜତ୍ୱ ସ୍ଥାୟୀ ହୋଇଥିଲା ।

ଏହାଙ୍କ ପରେ ମନାଇ ବୀରବର ହରିଚନ୍ଦନ ୧୫୩୪ ଖ୍ରୀଷ୍ଟାବ୍ଦରୁ ୧୫୪୨ ଖ୍ରୀଷ୍ଟାବ୍ଦ ଯାଏ ୮ ବର୍ଷ ରାଜତ୍ୱ କରିଥିଲେ । ଏହାଙ୍କ ସମୟରେ ଗୋବିନ୍ଦ ବିଦ୍ୟାଧର ପ୍ରତାପରୁଦ୍ର ଦେବ ଗଜପତିଙ୍କ ବଂଶ ପୁଅଙ୍କୁ ମାରି ଓଡ଼ିଶା ସିଂହାସନ ଅଧିକାର କରିବାରୁ ଓଡ଼ିଶାରେ ପ୍ରବଳ ଅଶାନ୍ତି ଓ ଅରାଜକତା ଘୋଟିଥିଲା ।

ରାଜା ମନାଇଙ୍କ ପରେ ତାଙ୍କ ପିତୃବ୍ୟ ଗୋବିନ୍ଦଚନ୍ଦ୍ର ତାଳଚେର ସିଂହାସନ ଅଧିକାର କଲେ । ଏ ଜଣେ ଦକ୍ଷ ରାଜା ଥିଲେ । ୧୫୫୨ ଅବ୍ଦରେ ତାଳଚେରକୁ ଶୋକସାଗରରେ ଭସାଇ ଦେଇ ଗୋବିନ୍ଦଚନ୍ଦ୍ର ସ୍ୱର୍ଗାରୋହଣ କଲେ ।

ଏହାଙ୍କ ପରେ ଏହାଙ୍କ ପୁତ୍ର ବନମାଳୀ ଶ୍ରୀଚନ୍ଦନ ବୀରବର ହରିଚନ୍ଦନ ଉପାଧି ଧାରଣ କରି ୧୫୫୨ ଅବ୍ଦରେ ସିଂହାସନାରୋହଣ କଲେ । ଖିମ ନଗରୀ ରାଜବଂଶୀୟମାନଙ୍କର ପୁରୀର ଗଜପତିମାନଙ୍କ ସହିତ ମିତ୍ରତାର ଅଭାବ ନ ଥିଲେହେଁ ଏମାନେ ଗଜପତିଙ୍କର ସାମନ୍ତ ରାଜାସ୍ୱରୂପେ ରହି ବଶ୍ୟତା ସ୍ୱୀକାର କରିବାକୁ କୁଣ୍ଠିତ ଥିଲେ । ଏଣୁ ଓଡ଼ିଶା ଗଜପତିମାନଙ୍କ ସହିତ ଏମାନଙ୍କର ସୌହାର୍ଦ୍ଦ୍ୟ ନ ଥିଲା । ଏହି ସୁଯୋଗ ପାଇ ଢେଙ୍କାନାଳର ରାଜା ହରି ବିଦ୍ୟାଧର ଓଡ଼ିଶା ଗଜପତିଙ୍କର ସାହାଯ୍ୟରେ ଖିମ ନଗରୀ ଗଡ଼ ଓ କେତେକ ଦେଶ ଆପଣାର ଅଧିକାର ଭୁକ୍ତ କରିଥିଲେ । ତେଣୁ ବନମାଳୀ ସୁବଳୟା ଗଡ ଛାଡ଼ି ଗାଁଅପୁରଠାରେ ଗଡ଼ ବାନ୍ଧି ରାଜ କରିଲେ । ଏ ୧୫୫୭ ଅବ୍ଦରେ ପରଲୋକ ଗମନ କରିଥିଲେ ।

ରାଜା ବନମାଳୀ ଶ୍ରୀଚନ୍ଦନ ବୀରବର ହରିଚନ୍ଦନଙ୍କ ପରେ ତାଙ୍କ ପୁତ୍ର ହରିହର ବା ହରିରୁଦ୍ର ବୀରବର ହରିଚନ୍ଦନ ୧୫୫୭ ରୁ ୧୫୭୫ ଅବ୍ଦ ଯାଏଁ ରାଜତ୍ୱ କରିଥିଲେ । ଜଗବନ୍ଧୁ ସରଦାର ନାମକ ଏହାଙ୍କର ଜଣେ ଅମାତ୍ୟ ବିଶ୍ୱାସଘାତକତା କରି ଢେଙ୍କାନାଳର ରାଜା ହରି ବିଦ୍ୟାଧରଙ୍କ ହାତରେ ଏହାଙ୍କ ଜ୍ୟେଷ୍ଠ ପୁତ୍ରଙ୍କୁ ଧରାଇ ଦେବାରୁ ଉକ୍ତ ଜ୍ୟେଷ୍ଠପୁତ୍ର ଅସ୍ତ୍ରାଘାତ ହେଲେ । ହରିହର ପୁତ୍ରଶୋକରେ ବ୍ୟାକୁଳ ହୋଇ ରାଜ୍ୟଭାର ଯୁବକ ପୌତ୍ର ପଦ୍ମନାଭଙ୍କ ହସ୍ତରେ ସମର୍ପଣ କରି ବାନପ୍ରସ୍ଥ ଅବଲମ୍ବନ କଲେ ।

ରାଜା ପଦ୍ମନାଭ ବୀରବର ହରିଚନ୍ଦନଙ୍କ ରାଜତ୍ୱକାଳ ୧୫୭୫ ରୁ ୧୫୯୮ ଅବ୍ଦ ପର୍ଯ୍ୟନ୍ତ ଥିଲା । ଏ ଅଧୁନିକ ତାଳଚେର ରାଜ୍ୟର ପ୍ରକୃତ ସ୍ଥାପୟିତା । ତାଳଚେର ରାଜ୍ୟର ନାମ ଏହାଙ୍କ ଅମଳରେହିଁ ପ୍ରବର୍ତ୍ତିତ ହୋଇଥିଲା । ଏ ଢେଙ୍କାନାଳ ରାଜା ହରି ବିଦ୍ୟାଧରଙ୍କଠାରୁ ତାଳଚେରର ଅପହୃତ ଅଂଶମାନ ଉଦ୍ଧାର କରିବାକୁ ବାରମ୍ବାର ଯୁଦ୍ଧ କରିଥିଲେ । ମାତ୍ର ଢେଙ୍କାନାଳର ବଳ ଗଜପତିଙ୍କ ଦ୍ୱାରା ସର୍ବଦା ପୁଷ୍ଟ ଥିବାରୁ ଅବଶେଷରେ ସେ ବାଧ୍ୟ ହୋଇ ଯୁଦ୍ଧରୁ କ୍ଷାନ୍ତ ହୋଇଥିଲେ ।

ଏହାଙ୍କ ସମୟରେ ରେମ୍ବୁଆଁର ଖଣ୍ଡୁଆଲ ଓ ଗୋପାଳ ପ୍ରସାଦ ଗଡର କଲ ଜମିଦାର, ଏ ଦୁହେଁ ପାଞ୍ଚ ପାଞ୍ଚ କୋଶ, ଏପରି ଦଶ କୋଶ ଭୂମିର ଜମିଦାର ଥିଲେ । ରାଜା ପଦ୍ମନାଭ ଦିନେ ଶିକାର ଉଦ୍ଦେଶ୍ୟରେ ବହିର୍ଗତ ହୋଇଥିଲେ । ବର୍ତ୍ତମାନ ଯେଉଁଠାରେ ତାଳଚେର ଗଡ଼ ନିର୍ମିତ ହୋଇଅଛି, ସେଠାରେ ତାଙ୍କ କୁକୁରକୁ ଗୋଟାଏ ଠେକୁଆ ମାଡ଼ ବସିବା ଦେଖି ସେ ସେ ସ୍ଥାନକୁ ବୀରଭୂମି ମନେ କରି ସେଠାରେ ରାଜଧାନୀ ବସାଇବାକୁ ଇଚ୍ଛୁକ ହେଲେ, କିନ୍ତୁ ପ୍ରୋକ୍ତ ଜମିଦାର ଦ୍ୱୟ ମିଳିତ ହୋଇ ପଦ୍ମନାଭଙ୍କୁ ପ୍ରତିହତ କଲେ । ରାଜା ପଦ୍ମନାଭ ସେମାନଙ୍କ ଦ୍ୱାରା ଉପର୍ଯ୍ୟୁପରି ଦୁଇ ବାର ପରାଭୂତ ହେଲା ପରେ ଶ୍ରୀ ହିଙ୍ଗୁଳାଦେବୀ ତାଙ୍କୁ ସ୍ୱପ୍ନାଦେଶ ଦେଲେ ଯେ, ସେ ଯଦି ସେଠାର ସ୍ଥାନାଧିପ କୈବର୍ତ୍ତକୁ ଆଣି ତାଙ୍କ ଆଗରେ ବଳି ଦେବେ ତେବେ ଯୁଦ୍ଧରେ ତାଙ୍କର ଜୟ ହେବ । ରାଜା ପଦ୍ମନାଭ ତାହା କଲେ ଏବଂ ଶ୍ରୀ ହିଙ୍ଗୁଳାଙ୍କ ପ୍ରସାଦରୁ ଖଣ୍ଡୁଆଲ ବଂଶ ବିଲୁପ୍ତ ହେଲା । ଶ୍ରୀ ହିଙ୍ଗୁଳା ଠାକୁରାଣୀ ମହାବଳ ବ୍ୟାଘ୍ରରୂପରେ ଓ କେନ୍ଦୁଆରୂପରେ ଯୁଦ୍ଧରେ ଯୋଗଦେଇ ଖଣ୍ଡୁଆଲସୈନ୍ୟଙ୍କୁ ପରା କରିଥିବାରୁ ସେହି ସମୟରୁ ବ୍ୟାଘ୍ରମୁଣ୍ଡ ତାଳଚେର ରାଜବଂଶର ସନ୍ତକ ହୋଇ ଆସିଅଛି ।

ତାଙ୍କ ସମୟରେ ତାଳଚେର ରାଜ୍ୟର ଉତ୍ତର ସୀମା ବାମଣ୍ଡା ରାଜ୍ୟର ଗଙ୍ଗାନଦୀ, ପୂର୍ବସୀମା ଢେଙ୍କାନାଳର ଅଲୋଉମା, ଦକ୍ଷିଣସୀମା କମଲଙ୍ଗ ଓ ଅନୁଗୁଳ ଏବଂ ପଶ୍ଚିମସୀମା ସିନ୍ଦୁରପାଳ ଥିଲା । ତଦାନୀନ୍ତନ ଲୋକମାନେ ଏହି ସୀମାନ୍ତର୍ଗତ ରାଜ୍ୟକୁ ଛବିଶିକୋଶ ମୁଲକ ବୋଲି କହୁଥିଲେ ।

ସୁବଳୟା ଗଡଠାରୁ ବାହାର ଆସିବା ଦିନଠାରୁ ରାଜାଙ୍କ ରାଜଧାନୀର 'ଡେରା' କୌଣସି ସ୍ଥାନରେ ସ୍ଥିର ନ ଥିଲା । ଶ୍ରୀ ତାଳେଶ୍ୱରଙ୍କୁ ତାଳ ଡୋଠ ନାମକ ସ୍ଥାନରେ ପୂଜା କରି ଏ ରାଜ୍ୟ ଲାଭ ହେବାରୁ ଓ ତାଳଡୋଠରେ ରାଜଧାନୀ

'ଢେଙ୍କର' ଲଗିବାରୁ ଏହି ଭାବାର୍ଥରେ ରାଜା ପଦ୍ମନାଭ ରାଜ୍ୟର 'ତାଳଚେର' ନାମକରଣ କଲେ । ୧୫୭୮ ଅବ୍ଦରୁ ଏହି ନାମ ପ୍ରବର୍ତ୍ତିତ ହୋଇଅଛି ।

ରାଜା ପଦ୍ମନାଭ ଧର୍ମପ୍ରାଣ ଓ ରାଜନୀତିଜ୍ଞ ବିଚକ୍ଷଣ ନରପତି ଥିଲେ । ଏ ଗଡ଼ରେ ଜଗନ୍ନାଥ ମନ୍ଦିର ସ୍ଥାପନ କରି ତହିଁରେ ସେବା ପୂଜା ଆଜ୍ଞା କରିଥିଲେ ଓ ପିତାମହ ହରିହରଙ୍କ ନାମାନୁସାରେ ହରିହରପୁର ବ୍ରାହ୍ମଣ ଶାସନ ବସାଇଥିଲେ ।

ରାଜା ପଦ୍ମନାଭ ସସ୍ତ୍ରୀକ ଅଭିଷେକ ହେବା ପ୍ରଥା ପ୍ରବର୍ତ୍ତନ କରି ତହିଁର ନାମ ପାଟପୂଜା ରଖିଲେ ଏବଂ ଦଶହରା ଦିନ 'ସନାଇମ୍ବ' ବା ଅଙ୍କକଟା ପ୍ରଥା ଆରମ୍ଭ କଲେ । ସେ ୨୩ ବର୍ଷକାଳ ରାଜତ୍ୱ କରି ୧୫୯୮ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କଲେ ।

ରାଜା ପଦ୍ମନାଭଙ୍କ ପରେ ରାଜା ଚକ୍ରଧର ବୀରବର ହରିଚନ୍ଦନ ୧୫୯୮ ଖ୍ରୀଷ୍ଟାବ୍ଦରୁ ୧୬୫୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ୫୩ ବର୍ଷକାଳ ରାଜତ୍ୱ କରିଥିଲେ । ଏ 'ପାଳ' ଜମିଦାର, ବନ୍ତକୋଠ ଜମିଦାର ଓ ଅନ୍ୟାନ୍ୟ ଶବର ବୃତ୍ତୀଶ୍ୱର-ମାନଙ୍କୁ ପରାଭୂତ ଓ କରଗତ କରି ସେମାନଙ୍କଠାରୁ ବିଜିତ ରାଜ୍ୟଦ୍ୱାରା ତାଳଚେରର ସୀମାବୃଦ୍ଧି କରିଥିଲେ । ଏ ଅନେକ ବଡ ଗ୍ରାମ ବସାଇ ବଡ ବଡ ପୁଷ୍କରିଣୀମାନ ଖୋଳାଇଥିଲେ ଓ ନାନା ସ୍ଥାନରୁ ବ୍ରାହ୍ମଣମାନଙ୍କୁ ଆଣାଇ ଚକ୍ରଧରପୁର ଆଦି ବ୍ରାହ୍ମଣ ଶାସନ ବସାଇ ଥିଲେ ।

ରାଜା ଚକ୍ରଧରଙ୍କ ପରେ ରାଜା ଗୋପୀନାଥ ବୀରବର ହରିଚନ୍ଦନ ସିଂହାସନାରୋହଣ କଲେ । ଏ ୧୬୫୧ରୁ ୧୭୧୧ ଅବ୍ଦଯାଏ ୬° ବର୍ଷ ରାଜତ୍ୱ କରିଥିଲେ । ଏ ଜଣେ ପରମଧାର୍ମିକ ଆଦର୍ଶ ନରପତି ଥିଲେ ଏବଂ ତୀର୍ଥାଟନ କରି ବୃନ୍ଦାବନ ଧାମରୁ ଶ୍ରୀ ଗୋପୀନାଥ ଦେବଙ୍କ ମୂର୍ତ୍ତିକୁ ଆଣି ଗଡ଼ରେ ସ୍ଥାପନ କରିଥିଲେ । ଗମ୍ଭୀରସାମନ୍ତ (ଯୁବରାଜ) ରାମଚନ୍ଦ୍ରଙ୍କର ଅପତ୍ୟ ନ ହେବା ଦେଖି ସେ ତାଙ୍କୁ ତିନରାଣୀ ବିବାହ କରାଇ ଦେଇଥିଲେ ।

ଏହାଙ୍କ ଅନ୍ତେ ଗମ୍ଭୀରସାମନ୍ତ ରାଜା ରାମଚନ୍ଦ୍ର ବୀରବର ହରିଚନ୍ଦନ ନାମ ଧାରଣ କରି ୧୭୧୧ ଅବ୍ଦରୁ ୧୭୨୯ ଅବ୍ଦଯାଏ ୧୮ ବର୍ଷକାଳ ରାଜତ୍ୱ କରିଥିଲେ । ଏ ଜଣେ ପରମ ଧାର୍ମିକ ପ୍ରଜାରଞ୍ଜନ ନରପତି ଥିବାରୁ ଲୋକେ ଏହାଙ୍କ ରାଜତ୍ୱକୁ ରାମରାଜ୍ୟ ଆଖ୍ୟା ପ୍ରଦାନ କରିଥିଲେ । ଏ ରାଜ୍ୟର ସୁଶାସନ ନିମନ୍ତେ ନାନା ସୁବ୍ୟବସ୍ଥା କରିଥିଲେ । ଏହାଙ୍କ ସମୟରେ ବାମଣ୍ଡା ରାଜ୍ୟ ସହିତ ଘୋର ଯୁଦ୍ଧ ହୋଇ ଶେଷରେ ଅନୁଗୋଳର ଓ ହେଣ୍ଡାଖୋଲର ରାଜାମାନଙ୍କ ମଧ୍ୟସ୍ଥତାରେ ଉଭୟ ରାଜ୍ୟ ମଧ୍ୟରେ ଶାନ୍ତି ସ୍ଥାପିତ ହୋଇ-ଥିଲା । ରାଜା ରାମଚନ୍ଦ୍ର ରାମଚନ୍ଦ୍ରପୁର ଶାସନ ବସାଇବା ଛଡ଼ା ବ୍ରାହ୍ମଣମାନଙ୍କୁ ଅନ୍ୟ ଭୂମି ଦାନ କରିଥିଲେ ଓ ନଅର ଆଗରେ ମନ୍ଦିର ତୋଳି ତହିଁରେ ରାମଚନ୍ଦ୍ର ଠାକୁରଙ୍କୁ ସ୍ଥାପନା କରିଥିଲେ ।

ରାଜା ରାମଚନ୍ଦ୍ର ଅପତ୍ୟହୀନ ଅବସ୍ଥାରେ ପ୍ରାଣତ୍ୟାଗ କରିବାରୁ ସାନ ସାମନ୍ତ ପୀତାମ୍ବର ବୀରବର ହରିଚନ୍ଦନ ୧୭୨୯ ଅବ୍ଦରେ ତାଳଚେର ସିଂହାସନାରୋହଣ କଲେ । ଏହାଙ୍କ କନିଷ୍ଠ ଭ୍ରାତା ମାନସିଂହ ରାଜ୍ୟଶାସକ ଓ ଶତ୍ରୁଦମନ ବିଷୟରେ ଏହାଙ୍କ ଦକ୍ଷିଣହସ୍ତସ୍ୱରୂପ ଥିଲେ । ଏହାଙ୍କ ବୀରତ୍ୱ ଏବଂ ରଣକୌଶଳରେ ମୁଗ୍ଧ ହୋଇ ଗଜପତି ଏହାଙ୍କ ସହିତ ମିତ୍ରତା ସ୍ୱୀକାର କରି ଏହାଙ୍କୁ ନିଜ ଦରବାରରେ ପ୍ରଥମ ଆସନ ଦେଇଥିଲେ । ରାଜା ମାନସିଂହ ୧୭୪୯ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କଲେ ।

ରାଜା ପୀତାମ୍ବରଙ୍କ ପରେ ତାଙ୍କ ପୁତ୍ର ଲାଲସିଂହ ବୀରବର ହରିଚନ୍ଦନ ପଦ ଧାରଣ କରି ରାଜଗାଦିରେ ବସିଲେ । ରାଜା ରାମଚନ୍ଦ୍ରଙ୍କ କନିଷ୍ଠା ପତ୍ନୀଙ୍କ ଗର୍ଭରେ 'ନରୋତ୍ତମ' ନାମରେ ଜଣେ ପୁତ୍ର ଜନ୍ମଗ୍ରହଣ କରିଥିଲେ । ନ୍ୟାୟତଃ ପୀତାମ୍ବରଙ୍କ ପରେ ଏ ସିଂହାସନର ଅଧିକାରୀ ହୋଇଥାଆନ୍ତେ ଓ ଲାଲସିଂହ ଏହାଙ୍କର ପ୍ରତିନିଧି-ରୂପେ ରାଜ୍ୟଶାସନ କରିଥାଆନ୍ତେ । କିନ୍ତୁ ଲାଲସିଂହ ସ୍ୱାର୍ଥପର ହୋଇ ନରୋତ୍ତମଙ୍କୁ ତାଙ୍କ ଅଧିକାରରୁ ବଞ୍ଚିତ କଲେ । ନରୋତ୍ତମଙ୍କ ମାତା ଓ କମାତା ଅନୁଗୋଳ ରାଜାଙ୍କ କନ୍ୟା ଥିଲେ । ସେ ଦୁହେଁ ଯଉତୁକ ରୂପେ ପାଇଥିବା କାଲୁଡ଼ିଆ ଓ ଗୁଙ୍ଗୁଡ଼ିଆ ଗ୍ରାମକୁ ଯାଇ ସେଠାରେ ନରୋତ୍ତମଙ୍କୁ ଘେନି ବାସ କଲେ । ଲାଲସିଂହଙ୍କ ସମୟରେ ମରହଟ୍ଟାମାନେ ତାଳଚେର ଉପରେ ବାର୍ଷିକ ଦୁଇ ହଜାର ଟଙ୍କା ପେସକସ ଧାର୍ଯ୍ୟ କରିଥିଲେ । ମାତ୍ର ତାଳଚେର ରାଜକୋଷରୁ ମରହଟ୍ଟାମାନେ କେବେ ପେସକସ ନେଇବାକୁ କ୍ଷମ ହୋଇ ନ ଥିଲେ । ରାଜା ଲାଲସିଂହ ମରହଟ୍ଟାମାନଙ୍କୁ ପରାଜିତ କରି ତାଳଚେର ରାଜ୍ୟର ସୀମାରେ ଗୋଟିଏ ଠେଙ୍ଗା ପୋତି ଦେଇଥିଲେ -ଏହି ସ୍ଥାନ ଆଜି ସୁଦ୍ଧା ଲାଲ ଠେଙ୍ଗା ନାମରେ ଅଭିହିତ । ମରହଟ୍ଟାମାନେ ଏହି ଲାଲ ଠେଙ୍ଗା ଡେଇଁ ଏ ରାଜ୍ୟରେ କେବେ ପଶି ପାରି ନ ଥିଲେ । ଲାଲସିଂହଙ୍କ ଭାଇ ମାନସିଂହ ଢେଙ୍କାନାଳ ରାଜାଙ୍କୁ ଶୋଚନୀୟ ଭାବରେ ପରାଜିତ କରିଥିଲେ । କିନ୍ତୁ ୧୭୫୭ ଅବ୍ଦରେ ଲାଲ ସିଂହଙ୍କର ମୃତ୍ୟୁ ହେବାରୁ ତାଳଚେରର କେତେକ ଭୂଖଣ୍ଡ ଢେଙ୍କାନାଳ ରାଜା ଅକ୍ଳେଶରେ ଅଧିକାର କଲେ ।

ରାଜା ଲାଲସିଂହଙ୍କ ପରେ ତଦୀୟ ପୁତ୍ର ରାଜା କୃଷ୍ଣଚନ୍ଦ୍ର ବୀରବର ହରିଚନ୍ଦନ ୧୭୫୭ ଅବ୍ଦରୁ ୧୭୬୫ ଅବ୍ଦ ଯାଏ ରାଜତ୍ୱ କରିଥିଲେ । ସେ ଅତ୍ୟନ୍ତ ଗୌରବର୍ଣ୍ଣ ଥିବାରୁ ଲୋକେ ତାଙ୍କୁ 'ନୀମକୋଳ' ବୋଲି ଡାକୁଥିଲେ । ଏହାଙ୍କ ସମୟରେ ବାମଣ୍ଡା ରାଜ୍ୟ ସହିତ ତାଳଚେର ରାଜ୍ୟର ଘୋର ଯୁଦ୍ଧ ହୋଇ ପୁନଶ୍ଚ ଶାନ୍ତି ସ୍ଥାପିତ ହୋଇଥିଲା । ଏ ୧୭୬୫ ଅବ୍ଦରେ ପରଲୋକ ଗମନ କରିଥିଲେ ।

ରାଜା କୃଷ୍ଣଚନ୍ଦ୍ରଙ୍କ ପରେ ରାଜା ଚନ୍ଦ୍ରଶେଖର ବୀରବର ହରିଚନ୍ଦନ ୧୭୬୫ ରୁ ୧୭୬୬ ଯାଏଁ ଗୋଟିଏ ବର୍ଷ ମାତ୍ର ରାଜତ୍ୱ କରି ପ୍ରାଣତ୍ୟାଗ କଲେ ।

ଏହାଙ୍କ ପରେ ରାଜା ରାମଚନ୍ଦ୍ର ମାନସିଂହ ହରି ଚନ୍ଦନ ୧୭୭୪ ଅବ୍ଦ ଯାଏ ରାଜତ୍ୱ କଲେ। ଏହାଙ୍କ ସମୟରେ ତାଳଚେରରେ ଭୟଙ୍କର ଦୁର୍ଭିକ୍ଷ ପଡ଼ିଥିଲା ଏବଂ ମରହଟ୍ଟା ଅତ୍ୟାଚାର ଘଟିଥିଲା।

ରାଜା ରାମଚନ୍ଦ୍ର ଅପତ୍ୟହୀନ ଅବସ୍ଥାରେ ମୃତ ହେବାରୁ ତଙ୍କର ପିତୃବ୍ୟ ନିମାଇଁଚରଣ ଚମ୍ପତିସିଂହ ୧୭୭୪ ରୁ ୧୭୭୮ ଯାଏ ରାଜତ୍ୱ କରିଥିଲେ। ଏହାଙ୍କର ପୁତ୍ର ନ ଥିଲେ। ଏହାଙ୍କ ରାଣୀମାନଙ୍କ ମଧ୍ୟରୁ ସାବିତ୍ରୀ ଦେଈଙ୍କ ଗର୍ଭରୁ "ରାଜଦେଈ" ନାମ୍ନୀ ଗୋଟିଏ ମାତ୍ର କନ୍ୟା ଜନ୍ମଗ୍ରହଣ କରିଥିଲେ। ତେଣୁ ରାଜା ନିମାଇଁଚରଣଙ୍କ ମୃତ୍ୟୁ ପରେ ରାଜସିଂହାସନ ପାଇଁ ବିବାଦ ଜାତ ହେଲା। ବିଧବା ରାଣୀମାନେ ରାଜ ଦେଈଙ୍କୁ ଗାଦିରେ ବସାଇ ଜଣେ କେହି ରାଜପୁତ୍ରଙ୍କୁ ଘରଜ୍ୱାଇଁଅ କରିବାକୁ ବସିଲେ। କିନ୍ତୁ ଭାଇପୁଅମାନେ ଓ ଅନ୍ୟାନ୍ୟମାନେ ବିଦ୍ରୋହୀ ହେବାରୁ ଅପାତତଃ ତାହା ହୋଇ ପାରିଲା ନାହିଁ। ପରେ ପାତ୍ର ମନ୍ତ୍ରୀମାନେ ଶୃଙ୍ଗୁଡ଼ିଆ ଗ୍ରାମରୁ ଦୁଇ ପୁରୁଷ ଛଡ଼ା ସ୍ୱର୍ଗତ ରାମଚନ୍ଦ୍ରଙ୍କ ପୁତ୍ର ନରୋତ୍ତମ ବା ଶିରୁଙ୍କ ଶିଶୁପୁତ୍ର ଭାଗୀରଥୀଙ୍କୁ ଆଣି ତାଳଚେର ରାଜଗାଦିରେ ବସାଇଲେ। ଏହାଙ୍କ ଘଟନା-ବହୁଳ ରାଜତ୍ୱ ୧୭୭୮ ଅବ୍ଦରେ ଆରମ୍ଭ ହୋଇ ୬୮ ବର୍ଷ ପରେ ୧୮୪୬ ଅବ୍ଦରେ ଶେଷ ହୋଇଥିଲା। ସିଂହାସନରେ ବସିବା ବେଳକୁ ଏହାଙ୍କର ମୋଟେ ୭ ବର୍ଷ ବୟସ ହୋଇ-ଥିଲା। ରାଣୀ ସାଉକାଦେଈ ଏହାଙ୍କ ପ୍ରତି କପଟାଚରଣ କରି ଏହାଙ୍କୁ ମାରି ପକାଇବେ ବୋଲି ବହୁତ ଯତ୍ନ କରିଥିଲେ। ଶେଷରେ ତାଙ୍କ ଚକ୍ରାନ୍ତରେ ଶିଶୁ ଭାଗୀରଥୀଙ୍କୁ ଢେଙ୍କାନାଳରାଜା ତ୍ରିଲୋଚନ ମହେନ୍ଦ୍ର ବାହାଦୁର ତାଳଚେରରୁ ଚୋରାଇ ନେଇଗଲେ ଓ ତାଳଚେରର ଗାଦି କିଛି କାଳ ଯାଏଁ ଶୂନ୍ୟ ହେଲା। ଶେଷରେ ଲୋକନାଥ ପାଠଯୋଶୀ ନାମକ ରାଜପୁରୋହିତ ଓଡ଼ିଶାର ମରହଟ୍ଟା ଶାସନକର୍ତ୍ତା ରାଜାରାମ ପଣ୍ଡିତଙ୍କୁ ନିଜର ବିଦ୍ୱତ୍ତା ଓ ଧର୍ମ-ପ୍ରାଣତାରେ ମୁଗ୍ଧ କରି ତାଙ୍କର ସାହାଯ୍ୟରେ ଶିଶୁ ଭାଗୀରଥୀଙ୍କୁ ଢେଙ୍କାନାଳରୁ ମୁକ୍ତ କରି ଆଣି ପୁଣି ତାଳଚେର ଗାଦିକୁ ପୁର୍ଣ୍ଣ କଲେ। ସେତେବେଳକୁ ରାଜା ଭାଗୀରଥୀଙ୍କୁ ୯ ବର୍ଷ ମାତ୍ର ବୟସ। ରାଜଗୁରୁ ବିଦ୍ୟେଶ୍ୱର ମନ୍ତ୍ରୀ ହୋଇ ସୁଚାରୁରୂପେ ରାଜ୍ୟ ଚାଳନ କଲେ ଓ ରାଜା ଭାଗୀରଥୀଙ୍କୁ ୧୯ ବର୍ଷ ହେଲାଯାଏ ରାଜଗୁରୁ ରାଜ୍ୟରେ ସର୍ବେସର୍ବା ଥିଲେ।

ଭାଗୀରଥୀ ୧୯ ବର୍ଷ ପରେ ସାବାଳକ ହୋଇ ରାଜ୍ୟଭାର ଗ୍ରହଣ କଲେ।

ରାଜା ଭାଗୀରଥୀ ଉପର୍ଯ୍ୟୁପରି ଛଅ ଗୋଟି ରାଣୀ ବିବାହ କରିଥିଲେ ମଧ୍ୟ ବହୁକାଳ ଯାଏଁ ତାଙ୍କର ଉତ୍ତରାଧିକାରୀ ଜାତ ହେଲେ ନାହିଁ।

ରାଜା ଭାଗୀରଥୀ ଜଣେ ସୁଶାସକ ନରପତି ଥିଲେ। ସେ ପାତ୍ର ମନ୍ତ୍ରୀ ସର୍ଦ୍ଦାର ପ୍ରଭୃତି ଆଠଜଣ ଉଚ୍ଚ ରାଜ କର୍ମଚାରୀ ନିଯୁକ୍ତ କରି ସେମାନଙ୍କୁ "ଅଷ୍ଟକୌଶଲ୍ୟ" (The council of eight) ନାମରେ ଅଭିହିତ କରୁଥିଲେ।

ଏହାଙ୍କ ଜ୍ୟେଷ୍ଠାରାଣୀ ମୃତ୍ୟୁମୁଖରେ ପଡ଼ିବାରୁ ଏ ବଡ଼ ଶୋକାକୁଳ ହୋଇ ପଡ଼ିଥିଲେ। ଅପର ଦୁଇ ରାଣୀଙ୍କୁ ଏ ସାମାନ୍ୟ ଦୋଷରେ କେତେ ବର୍ଷ ଯାଏ ନଅରରୁ ନିର୍ବାସିତ କରିଥିଲେ। ଶବରମାନେ ରାଣୀମାନଙ୍କୁ ନିଜର ମାଆ ଜ୍ଞାନ କରି ସେମାନଙ୍କୁ କେତେ ବର୍ଷ ପାଳିଲେ। ପରେ ପୁଣି କୋପୀ ରାଜା ଭାଗୀରଥୀ ସେମାନଙ୍କୁ ଗ୍ରହଣ କରିଥିଲେ।

ଏହାଙ୍କ ସମୟରେ ଇଂରେଜ ରାଜତ୍ୱ ଆରମ୍ଭ ହେବାରୁ ଏ ଇଂରେଜ ସରକାରଙ୍କ ସଙ୍ଗେ ସନ୍ଧିରେ ବଦ୍ଧ ହେଲେ ଓ ଟ ୧୦୩୯୩/୫ ତିରନ୍ତନ ପେଶକଶ ଦେବାକୁ ସ୍ୱୀକୃତ ହେଲେ।

ପରେ ଏହାଙ୍କର କନ୍ଦୁ ପୁତ୍ରକନ୍ୟା ଜାତ ହୋଇଥିଲେ। ଦୟାନିଧି ହରିଚନ୍ଦନ ଏହାଙ୍କର ଗମ୍ଭୀର ସାମନ୍ତ ଥିଲେ। କିନ୍ତୁ ଏ ତୀର୍ଥାଟନରେ ଯାଇଥିବା ସମୟରେ ଓ ଏହାଙ୍କର ଆଉ ଫେରିବାର ସମ୍ଭାବନା ନ ଥିବା ଭାବି ଗମ୍ଭୀର ସାମନ୍ତ ରାଜଗାଦିରେ ବସିଲେ। ଭାଗୀରଥୀ ତୀର୍ଥରୁ ଫେରିଆସି ଗମ୍ଭୀର ସାମନ୍ତଙ୍କଠାରେ ଭୀଷଣ କୋପାନ୍ୱିତ ହୋଇ ତାଙ୍କୁ ରାଜ୍ୟଚ୍ୟୁତ କରି ଓ ରାଜ୍ୟରୁ ବାହାର କରିଦେଇ ପୁଣି ଥରେ ରାଜ ସିଂହାସନରେ ବସିଲେ; କିନ୍ତୁ ପରେ ପିତା ପୁତ୍ର ମଧ୍ୟରେ ସଦ୍ଭାବ ପ୍ରତିଷ୍ଠିତ ହେବାରୁ ଦୟାନିଧି ପିତାଙ୍କ ଜୀବିତାବସ୍ଥାରେ ମଧ୍ୟ ପୁନଶ୍ଚ ରାଜ୍ୟ ଶାସନରେ ଭାଗୀ ହୋଇ ପାରିଥିଲେ।

ରାଜା ଦୟାନିଧି ଜଣେ ଭାଗ୍ୟଧର ପୁରୁଷ ଥିଲେ। ନାନା ବାଧା ବିଘ୍ନ ମଧ୍ୟରେ ଜୀବନ ଆରମ୍ଭ କରି ଶେଷରେ ସମସ୍ତ ଅତିକ୍ରମ କରି ସେ ନିଜର ଆସନ ଦୃଢ଼ କରିଥିଲେ। ସେ ରାଜ୍ୟର ବହୁବିଧ ଉନ୍ନତି କରି ମୋଟ ରାଜସ୍ୱ ଟ ୩୨୦୦୦ଯାଏ ବୃଦ୍ଧି କରିଥିଲେ। ସେ ରାଜ୍ୟର ରାଜସ୍ୱ ବନ୍ଦୋବସ୍ତ କରି ପ୍ରଜାମାନଙ୍କ ସ୍ୱତ୍ୱ ଓ ଦେବୋତ୍ତର ଜାଗା ସ୍ୱତ୍ୱ ସୁନିର୍ଦ୍ଦିଷ୍ଟ କରି ଦେଇଥିଲେ। ସେ ଜଣେ ଅସାଧାରଣ ପଣ୍ଡିତ ଏବଂ ବିଚକ୍ଷଣ ନରପତି ଥିଲେ। ଅନୁଗୋଳ ବିଦ୍ରୋହରେ ବ୍ରିଟିଶ୍ ସରକାରଙ୍କୁ ସାହାଯ୍ୟ ଦେଇ ସେ ଅନୁଗୋଳ ବିଦ୍ରୋହ ଦମନ କରିବାକୁ ସକ୍ଷମ ହୋଇଥିଲେ। ଏଣୁ ବ୍ରିଟିଶ୍ ସରକାର ଏହାଙ୍କ ରାଜଭକ୍ତିରେ ସନ୍ତୁଷ୍ଟ ହୋଇ ଏହାଙ୍କୁ 'ମହାରାଜା ବାହାଦୁର' ପଦବୀ ଏବଂ ଗୋଟିଏ ହାତୀ ଏବଂ ଖିଲାତ୍ ଉପହାର ଦେଇଥିଲେ।

ରାଜା ଦୟାନିଧି ୧୮୭୩ ମସିହାରେ ପରଲୋକ ଗମନ କରିବାରୁ ଶ୍ରୀ ରାମଚନ୍ଦ୍ର ବୀରବର ହରିଚନ୍ଦନ ୧୮୭୩ ଖ୍ରୀଷ୍ଟାବ୍ଦରୁ ୧୮୯୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ତାଳଚେର ଗାଦିରେ ବସିଥିଲେ। ରାଜା ଦୟାନିଧି ଜଣେ ରାଜର୍ଷିକଳ୍ପ ସୁଶାସକ ଥିଲେ ଏବଂ ରାଜା ରାମଚନ୍ଦ୍ର ତାଙ୍କର ଆଦର୍ଶରେ ଅନୁପ୍ରାଣିତ ଥିଲେ। ସେ ସଂସ୍କୃତ ସାହିତ୍ୟପ୍ରେମୀ କବି ଥିଲେ ଓ ମାତୃ-ଭାଷାର ସାହିତ୍ୟ ପ୍ରତି ତାଙ୍କର ଅସାଧାରଣ ମମତା ଥିଲା। ସେ

ଯୁଗରେ ମଧ୍ୟ ସେ ମନୁସଂହିତା, ପରାଶରସଂହିତା ଓ ଭାଗବତର ଉତ୍କଳାନୁବାଦ ଛପାଇ ଦେଶରେ ବିତରଣ କରିଥିଲେ । ତାଙ୍କ ସଙ୍କଳିତ ଭାରତର ସଂକ୍ଷିପ୍ତ ଇତିହାସ ଅନେକଦିନଯାଏ ଓଡ଼ିଶାର ବିଦ୍ୟାଳୟମାନଙ୍କରେ ପାଠ୍ୟପୁସ୍ତକରୂପେ ପ୍ରଚଳିତ ଥିଲା । ସଙ୍ଗୀତବିଦ୍ୟାରେ ସେ ମଧ୍ୟ ଅସାଧାରଣ ଦକ୍ଷତା ଅର୍ଜନ କରିଥିଲେ । ସେ ଜଣେ ଆଧୁନିକ ରୁଚିସମ୍ପନ୍ନ ନରପତି ଥିବାରୁ ତାଳଚେର ରାଜ୍ୟରେ ସେ ପ୍ରଥମେ ଆଧୁନିକ ଯୁଗାଦର୍ଶରେ ଶିକ୍ଷା ବିଭାଗ, ପୁଲିସ୍ ବିଭାଗ ଓ ଜଙ୍ଗଲ ବିଭାଗ, ସ୍ୱାସ୍ଥ୍ୟ ବିଭାଗ ଓ ଅବକାରୀ ବିଭାଗ ଆଦି ପ୍ରବର୍ତ୍ତନ କରିଥିଲେ ଓ ରାଜ୍ୟରେ ରାଜସ୍ୱ ବନ୍ଦୋବସ୍ତ (ସେଟଲ୍‌ମେଣ୍ଟ) କରାଇ ନିର୍ଦ୍ଦିଷ୍ଟ ରାଜସ୍ୱ ସ୍ଥିର କରି ଦେଇଥିଲେ । ବାବୁ ଜଗବନ୍ଧୁ ଘୋଷ ଏହାଙ୍କର ଦେୱାନ ଥାଇ ତାଳଚେରର ଅଶେଷବିଧ ଉନ୍ନତି ଘଟାଇଥିଲେ ।

ସ୍ୱର୍ଗତ ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର (ପଠାଣି ସାମନ୍ତ) ଆଗରୁ ଏହାଙ୍କର ମୃତ୍ୟୁକାଳ ଗଣନା ପୂର୍ବକ ଠିକ୍ କରି ଦେଇଥିବାରୁ ଏ ତନ୍ନିମନ୍ତେ ପ୍ରସ୍ତୁତ ହୋଇ ତୀର୍ଥାଟନ କରି ଯାଇଥିଲେ । ୧୮୯୧ ଖ୍ରୀଷ୍ଟାବ୍ଦ ଡିସେମ୍ବର ୧୮ ତାରିଖ ଦିନ ଏହାଙ୍କର ଗଡ଼ଠାରେ ପରଲୋକପ୍ରାପ୍ତି ହେଲା ।

ଏ ଅପୁତ୍ରିକ ଥିଲେ । ନିଜ ଭ୍ରାତୁଷ୍ପୁତ୍ର କିଶୋରଚନ୍ଦ୍ରଙ୍କୁ ସର୍ବରାଜଲକ୍ଷଣସମନ୍ୱିତ ଦେଖି ଏ ଜୀବଦ୍ଦଶାରୁ ତାଙ୍କୁ ନିଜର ଉତ୍ତରାଧିକାରୀ ବୋଲି ମନୋନୀତ କରି ଯାଇଥିଲେ ଓ କିଶୋରଚନ୍ଦ୍ରଙ୍କୁ ପୋଷ୍ୟପୁତ୍ରରୂପେ ଗ୍ରହଣ କରିବାକୁ ପଟ୍ଟମହିଷୀ ହୀରାମାଳୀ ଦେବୀଙ୍କୁ ଅଧିକାର ଦେଇ ଯାଇଥିଲେ ।

ତେଣୁ ରାଜା ରାମଚନ୍ଦ୍ରଙ୍କ ତିରୋଭାବ ପରେ ତାଳଚେରର ବର୍ତ୍ତମାନ ଅକଳଙ୍କକୀର୍ତ୍ତି ପ୍ରଥିତଯଶା ରାଜା ଶ୍ରୀ ଶ୍ରୀ ଶ୍ରୀ କିଶୋରଚନ୍ଦ୍ର ବୀରବର ହରିଚନ୍ଦନ ଯଥାବିଧାନରେ ୧୮୯୧ ମସିହା ଡିସେମ୍ବର ମାସ ୧୯ ତାରିଖ ଦିନ ତାଳଚେରର ସିଂହାସନ ଆରୋହଣ କରି ଗତ ୪୩ ବର୍ଷ ହେଲା ତାଳଚେର ଭାଗ୍ୟନିୟନ୍ତାରୂପେ ତାଳଚେରର ତଥା ଉତ୍କଳର ମୁଖୋଜ୍ଜ୍ୱଳ କରୁଅଛନ୍ତି ।

ହରିଚନ୍ଦନୋପାଧିକ ବିମଳକୀର୍ତ୍ତି ତାଳଚେରାଧୀଶ୍ୱର ରାଜା ଶ୍ରୀ ଶ୍ରୀ ଶ୍ରୀ କିଶୋରଚନ୍ଦ୍ର ଜଣେ ଯୋଗଜନ୍ମା ପୁରୁଷ । ତାଳଚେର ରାଜପରିବାରରେ ଶିଶୁ ଅବସ୍ଥାରେ ଏ ଅକଳଙ୍କ ଚନ୍ଦ୍ରତୁଲ୍ୟ ପ୍ରତୀତ ହେଉଥିବାରୁ ଏହାଙ୍କ ପାଳକ ପିତା ରାଜା ରାମଚନ୍ଦ୍ର ଶ୍ରଦ୍ଧାସହକାରେ ଏହାଙ୍କୁ 'କିଶୋରଚନ୍ଦ୍ର' ନାମରେ ବିଭୂଷିତ କରିଥିଲେ । ଜନ୍ମର ୪ ମାସ ପରେ ଏହାଙ୍କ ଜନନୀ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ମାନଧାତା ସାମନ୍ତଙ୍କ ସହଧର୍ମିଣୀ ଏହାଙ୍କୁ ଶୁଆଇ ଦେଇ କାର୍ଯ୍ୟୋପଲକ୍ଷରେ ଅନ୍ୟତ୍ର ଯାଇଥିବା ସମୟରେ ଏହାଙ୍କ ମୁଣ୍ଡ ଉପରେ ଗୋଟିଏ ନାଗସାପ ଫଣା ଟେକି ଏହାଙ୍କୁ ଜଗି ରହିଥିଲା ଓ ଜନନୀ ସେଠାରେ ଉପସ୍ଥିତ ହେବାରୁ ସାପଟି ସେ ସ୍ଥାନ ପରିତ୍ୟାଗ କରି ଚାଲିଗଲା । ଖୁବ୍ ଶୈଶବକାଳରୁ ଏହାଙ୍କଠାରେ ଯାବତୀୟ ରାଜଲକ୍ଷଣ ସ୍ଫୁଟ ହୋଇଥିଲା ।

୯ ବର୍ଷ ବୟସରେ କିଶୋରଚନ୍ଦ୍ର ଭର୍ଣ୍ଣାକୁଲାର୍ ସ୍କୁଲର ଚତୁର୍ଥ ଶ୍ରେଣୀରେ ନାମ ଲେଖାଇ ବିଦ୍ୟାରମ୍ଭ କରିଥିଲେ । ଏହାଙ୍କ ସିଂହାସନାରୋହଣରେ କେତେକ ରାଜବଂଶୀୟ ବ୍ୟକ୍ତି ବାଧା ଦେବାକୁ ଯତ୍ନଶୀଳ ହୋଇଥିଲେହେଁ ସେମାନଙ୍କ କୁଚେଷ୍ଟା ଫଳବତୀ ହୋଇ ପାରି ନ ଥିଲା ।

୧୮୯୩ ମସିହା ଫେବୃଆରୀ ମାସ ୨୭ ତାରିଖ ଦିନ ଫାଲ୍‌ଗୁନ ଦ୍ୱାଦଶୀ ତିଥିରେ ମହାସମାରୋହରେ ଏହାଙ୍କର ଉପନୟନ କାର୍ଯ୍ୟ ସୁସମ୍ପାଦିତ ହୋଇଥିଲା ।

ସେହି ବର୍ଷ ରାଜା କିଶୋରଚନ୍ଦ୍ର କଟକ ରେଭେନ୍‌ସା କଲେଜିଏଟ୍ ସ୍କୁଲକୁ ଅଧ୍ୟୟନ ନିମନ୍ତେ ଆଗମନ କରି ସ୍କୁଲରେ ନାମ ଲେଖାଇଥିଲେ । ତାଙ୍କ ଅନୁପସ୍ଥିତିରେ ରାଜମାତା ମହୋଦୟା ମହାଫିସ୍ ରୂପେ ରାଜପରିବାରର ସମସ୍ତ କାର୍ଯ୍ୟ ଚଳାଉଥିଲେ ।

ସନ ୧୮୯୮ ମସିହା ଡିସେମ୍ବର ମାସ ଶେଷ ସୁଦ୍ଧା ୫ ବର୍ଷ ସେ କଲେଜିଏଟ୍ ସ୍କୁଲରେ ଅଧ୍ୟୟନ କରି ପ୍ରଥମ ଶ୍ରେଣୀକୁ ଉନ୍ନୀତ ହୋଇଥିଲେ ଓ ଦୁଇଥର ଡବଲ୍ ପ୍ରମୋଶନ୍ ପାଇ ଥିବାରୁ ୫ ବର୍ଷରେ ୭ଗୋଟି ଶ୍ରେଣୀର ପାଠ୍ୟ ଶେଷ କରି ପାରିଥିଲେ । ପ୍ରତ୍ୟେକ ଶ୍ରେଣୀରେ ବ୍ୟାୟାମ, ଅଶ୍ୱାରୋହଣ ଓ ଚିତ୍ରବିଦ୍ୟାରେ ସେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ତାଙ୍କର ନିରାଡ଼ମ୍ବର, ନିରଭିମାନ ବ୍ୟବହାରରେ ସ୍କୁଲର କର୍ତ୍ତୃପକ୍ଷ ଓ ସହପାଠୀଗଣ ତାଙ୍କୁ ବିଶେଷଭାବରେ ଶ୍ରଦ୍ଧା କରୁଥିଲେ । ପ୍ରତିବର୍ଷର ପୁରସ୍କାର ବିତରଣୀ ସଭାରେ ପାଠରେ ପାରଦର୍ଶିତା ଏବଂ କ୍ରିକେଟ୍, ଫୁଟ୍‌ବଲ୍ ଆଦି ଖେଳରେ ଦକ୍ଷତା ଦେଖାଇ ବହୁ ପୁରସ୍କାର ପାଇ ପ୍ରଶଂସିତ ହେଉଥିଲେ ।

ତାଳଚେର ଗଡ଼ରେ ତାଙ୍କଦ୍ୱାରା ଛାତ୍ରାବସ୍ଥାରୁ ସ୍ଥାପିତ କିଶୋରଚନ୍ଦ୍ର ଉତ୍କଳ ସାହିତ୍ୟ ସମାଲୋଚନ ସମିତି ଅଦ୍ୟାପି ସୁପରିଚାଳିତ ହେଉଅଛି ।

ରାଜା କିଶୋରଚନ୍ଦ୍ର ଜଣେ ଅବ୍ୟର୍ଥ ସନ୍ଧାନୀ ମୃଗୟୁ । ଛାତ୍ରାବସ୍ଥାରେ ୨ ବର୍ଷ ମଧ୍ୟରେ ସେ ପନ୍ଦର ଗୋଟା ଚିତା ବାଘ ଓ ତିନୋଟା ମହାବଳ ବାଘ ବଧ କରିଥିଲେ । ଏହାଙ୍କ ସୁନାମରେ ମୁଗ୍ଧ ହୋଇ ବାମଣ୍ଡାର ପୁଣ୍ୟଶ୍ଳୋକ ନରପତି ସର୍ ବାସୁଦେବ ସୁଢ଼ଳଦେବ କେ. ସି. ଆଇ. ଇ. ମହୋଦୟ ଏହାଙ୍କୁ ତାଙ୍କ ଚତୁର୍ଥୀ କୁମାରୀଙ୍କୁ ସମ୍ପ୍ରଦାନ କରିବା ଇଚ୍ଛା ପ୍ରକାଶ କଲେ । ରାଜମାତା ମହୋଦୟା ଏଥିରେ ସମ୍ମତ ହେବାରୁ ୧୮୯୯ ମସିହା ଫେବୃଆରୀ ୨୭ତାରିଖ ଫାଲ୍‌ଗୁନ କୃଷ୍ଣ ଦ୍ୱିତୀୟା ତିଥିରେ ଅଭୂତପୂର୍ବ ସମାରୋହରେ ବାମଣ୍ଡା ରାଜଧାନୀରେ ଶୁଭ ବିବାହ ଅନୁଷ୍ଠିତ ହେଲା । ବିବାହ ପରେ କିଶୋରଚନ୍ଦ୍ରଙ୍କୁ ଏକ ବର୍ଷ ମାତ୍ର କଟକରେ ରହି ଅଧ୍ୟୟନ କରିବାକୁ ହୋଇଥିଲା ।

ସେ ସମୟରେ ଓଡ଼ିଶା ଗଡ଼ଜାତମାନ ଓଡ଼ିଶା ଟ୍ରିବ୍ୟୁଟରି ଷ୍ଟେଟ୍ସ୍ ନାମରେ ଓଡ଼ିଶା ଡିଭିଜନର କମିଶନରଙ୍କ ତତ୍ତ୍ୱାବଧାନରେ ରାଜାମାନଙ୍କଦ୍ୱାରା ଶାସିତ ହେଉଥିଲା ।

କମିଶନର୍ ସାହେବଙ୍କ ନିର୍ଦ୍ଦେଶକ୍ରମେ ରାଜଧାନୀକୁ ପ୍ରତ୍ୟାବୃତ୍ତ ହୋଇ ରାଜା କିଶୋରଚନ୍ଦ୍ର ଶାସନକାର୍ଯ୍ୟ ସହିତ ପ୍ରତ୍ୟକ୍ଷଭାବରେ ସଂଶ୍ଳିଷ୍ଟ ହେଲେ ।

ରାଜା କିଶୋରଚନ୍ଦ୍ର ଅତ୍ୟନ୍ତ ନିୟମପରାୟଣ ଓ ତାଙ୍କ ଜୀବନ ସୁନିୟମିତ ଓ ସୁନିୟନ୍ତ୍ରିତ ପ୍ରଣାଳୀରେ ଚାଳିତ । ପ୍ରତ୍ୟହ ଭୋର୍ ୫ଘଣ୍ଟା ସମୟରେ ଉଠି ଏକଘଣ୍ଟା ଅଶ୍ୱାରୋହଣ କରି ପ୍ରାୟ ୨।୬ ମାଇଲ ଭ୍ରମଣ କରିବା ଅଭ୍ୟାସ ସେ ଶିଶୁଅବସ୍ଥାରୁ ଏପର୍ଯ୍ୟନ୍ତ ଅକ୍ଷୁଣ୍ଣ ରଖିଅଛନ୍ତି ।

ରାଜା କିଶୋରଚନ୍ଦ୍ର ଜୀବନରେ ଏକାଧିକ ପ୍ରାଣସଙ୍କଟରୁ ରକ୍ଷା ପାଇଅଛନ୍ତି । ୧୯୦୦ ମସିହା ଅପ୍ରେଲ୍ ଦୁଇ ତାରିଖ ଦିନ ତାଙ୍କ ପ୍ରିୟତମ ଅଶ୍ୱ ହଠାତ୍ ଉତ୍ତେଜିତ ହୋଇ ତାଙ୍କ ପୁରୁଷାଙ୍ଗକୁ ଜୋର୍‌ଭାବରେ ଦଶନବଦ୍ଧ କରି ଚାପି ଧରିଲା ଓ କେତେକ ସମୟ ପରେ ରକ୍ତାକ୍ତ କରି ଛାଡ଼ିଦେଲା । ସେ ଦଂଶନ ଦେଖି ଲୋକେ କିଶୋରଚନ୍ଦ୍ରଙ୍କ ପ୍ରାଣ ସଂଶୟ ମଣିଥିଲେ; କିନ୍ତୁ ସୁଚିକିତ୍ସା ଓ ରାଜମହିଷୀ ମହୋଦୟାଙ୍କ ସୁପରିଚର୍ଯ୍ୟା ଫଳରେ କିଶୋରଚନ୍ଦ୍ର ସେ ଯାତ୍ରାରୁ ବର୍ତ୍ତିଗଲେ ।

୧୯୦୦ ମସିହା ଡିସେମ୍ବର ୧୦ ତାରିଖରେ କିଶୋରଚନ୍ଦ୍ରଙ୍କ ପ୍ରିୟତମା କନ୍ୟା ସୁଚାରୁମାଳୀ ଜନ୍ମଗ୍ରହଣ କରିଥିଲେ । ୧୯୦୧ ମସିହା ଜୁନ୍ ୯ ତାରିଖ ଦିନ ଇଂରେଜ ସରକାର କିଶୋରଚନ୍ଦ୍ରଙ୍କୁ ରାଜ୍ୟଶାସନର ପୂର୍ଣ୍ଣ କ୍ଷମତା ଅର୍ପଣ କଲେ ।

ପୂର୍ଣ୍ଣ କ୍ଷମତା ପ୍ରାପ୍ତ ହୋଇ ରାଜା କିଶୋରଚନ୍ଦ୍ର ବହୁଦର୍ଶୀ ଶାସକ-ସୁଲଭ ବିଚକ୍ଷଣତା ପ୍ରକାଶ କରିଥିଲେ । ସେ ସମୟକୁ ସୁଚାରୁରୂପେ ବିଭାଗ କରି ସକାଳ ୭ ଘଣ୍ଟାଠାରୁ ୧୦ ଘଣ୍ଟା ମଧ୍ୟରେ ପୋଲିସ୍, ଫରେଷ୍ଟ୍ ଓ ଅନ୍ୟାନ୍ୟ ବିଭାଗୀୟ କାର୍ଯ୍ୟମାନ ଯଥାବିଧି ଫଇସଲ୍ କରୁଥିଲେ; ମଧ୍ୟାହ୍ନରେ କଚେରିକୁ ଯାଇ ମକଦ୍ଦମା ବିଚାର ପରେ ଅପରାହ୍ଣ ୫ ଘଣ୍ଟାଠାରୁ କ୍ରିକେଟ୍ ଆଦି ଖେଳରେ ଚିତ୍ତ ବିନୋଦନ କରୁଥିଲେ; ରାତିରେ ସମ୍ବାଦପତ୍ର ଓ ଆଇନ୍-ସଂକ୍ରାନ୍ତ ପୁସ୍ତକ ପାଠ ଏବଂ ସଙ୍ଗୀତ ଚର୍ଚ୍ଚା ହେଉଥିଲା । ରାଜା କିଶୋରଚନ୍ଦ୍ର ଲଳିତ କଳାର ଜଣେ ନିଷ୍ଠାପର ଉପାସକ । ସେ ନିଜେ ସୁବାଦକ ଓ ସୁଗାୟକ ।

୧୯୦୨ ମସିହା ଫେବ୍ରୁଆରି ମାସ ୭ ତାରିଖ ଦିନ ତାଳଚେର ରାଜ୍ୟର ଉତ୍ତରାଧିକାରୀ ଆୟୁଷ୍ମାନ୍ ଶ୍ରୀମାନ୍ ଯୁବରାଜ ହୃଦୟଚନ୍ଦ୍ର ଜନ୍ମଗ୍ରହଣ କରିଥିଲେ । ଜନ୍ମାବଧି ଏକମାସକାଳ ଯୁବରାଜଙ୍କର ଚକ୍ଷୁ ଉନ୍ମୀଳିତ ନ ହେବାରୁ ରାଜଦମ୍ପତି ଚିନ୍ତାକୁଳ ଓ ଅଧୀର ହୋଇପଡ଼ିଲେ । କିନ୍ତୁ ଭଗବତ୍ କୃପାରୁ ବଙ୍ଗପ୍ରଦେଶର ସାନିଟାରି କମିଶନର୍ ସାହେବ ଦୈବାତ୍ ତାଳଚେରରେ ପହଞ୍ଚି ଚିକିତ୍ସା କଲାରୁ ୧୦ ଦିନ ମଧ୍ୟରେ ରାଜକୁମାରଙ୍କ ଚକ୍ଷୁ ଉନ୍ମୀଳିତ ହେଲା ଏବଂ ତାଳଚେରରେ ଆନନ୍ଦସ୍ରୋତ ପ୍ରବାହିତ ହେଲା । ପର ବର୍ଷ ସେପ୍ଟେମ୍ବର ମାସ ୧୨ ତାରିଖରେ ଦ୍ୱିତୀୟ କୁମାର ପ୍ରମୋଦଚନ୍ଦ୍ର ଦେବ ଟିକାଏତ ଜନ୍ମଗ୍ରହଣ କରିଥିଲେ । ସେହି ବର୍ଷଠାରୁ ପଟ୍ଟମହିଷୀ ମହୋଦୟା ସାଂଘାତିକ ଭାବରେ ପୀଡ଼ିତା ହେଲେ ଓ ସେ ପୀଡ଼ା ସାର୍ଦ୍ଧ ୩ ବର୍ଷକାଳ ସ୍ଥାୟୀ ହେଲା । ଏ ତିନି ବର୍ଷକାଳ ରାଜା କିଶୋରଚନ୍ଦ୍ର ଉଦ୍‌ବେଗ ମଧ୍ୟରେ କାଳାତିପାତ କରିଥିଲେ । ଶେଷରେ ପ୍ରଭୁଙ୍କ ଅପାର କରୁଣାରୁ ମହିଷୀ ମହୋଦୟା ନିରାମୟ ହୋଇ ତାଳଚେର ପ୍ରଜାକୁଳର ଆନନ୍ଦ ବର୍ଦ୍ଧନ କଲେ । ରାଜା କିଶୋରଚନ୍ଦ୍ର ହାତୀଧରାରେ ଅତ୍ୟନ୍ତ ପାରଙ୍ଗମ । ଏହାଙ୍କର ସୌମ୍ୟବ୍ୟକ୍ତିତ୍ୱରେ ମୁଗ୍ଧ ହୋଇ ଅନ୍ୟାନ୍ୟ ଗଡ଼ଜାତର ରାଜାମାନେ ଏହାଙ୍କ ସହିତ ସୌହାର୍ଦ୍ଦ୍ୟବନ୍ଧନରେ ଆବଦ୍ଧ । ଏ ନିଜ ରାଜ୍ୟରେ ୧୯୧୦ ମସିହାରୁ ୧୯୩୧ ମସିହା ମଧ୍ୟରେ ଶହେ ଘର ହାତୀ ଧରିଥିଲେ । ସୁକିନ୍ଦାର ରାଜାସାହେବ ଏହାଙ୍କ ସାହାଯ୍ୟରେ ଯେଉଁ ୧୧ ଘର ହାତୀ ଧରିଥିଲେ ତନ୍ମଧ୍ୟରୁ ୩ ଘର ହାତୀ ସେ ଏହାଙ୍କୁ ଉପହାର ପ୍ରଦାନ କରିଥିଲେ । ରାଜା କିଶୋରଚନ୍ଦ୍ର ଅତ୍ୟନ୍ତ ଭ୍ରମଣପ୍ରିୟ । ସେ ଦାକ୍ଷିଣାତ୍ୟ ଓ ଆର୍ଯ୍ୟାବର୍ତ୍ତର ପ୍ରାୟ ସମସ୍ତ ଦର୍ଶନୀୟ ସ୍ଥାନ ପରିଦର୍ଶନ କରିଅଛନ୍ତି । ରାଜପରିବାରର ସାମନ୍ତପଦବୀଧାରୀ ପୋଷ୍ୟବର୍ଗଙ୍କ ପ୍ରତି କିଶୋରଚନ୍ଦ୍ରଙ୍କ ଦୟା ଅପରିସୀମ । ତାଙ୍କ ଅନୁଗ୍ରହରୁ ସମସ୍ତେ ଅତି ସୁଖୀ । ରାଜା କିଶୋରଚନ୍ଦ୍ର ପାର୍ଶ୍ୱଗତ ଅନାଥା ବାଳିକାଙ୍କ ବିବାହର ସମସ୍ତ ଆୟୋଜନ କରି ସମସ୍ତ ବ୍ୟୟ ବହନ କରିଅଛନ୍ତି । ରାଜା କିଶୋରଚନ୍ଦ୍ର ମାଦକଦ୍ରବ୍ୟ ସ୍ପର୍ଶ କରନ୍ତି ନାହିଁ ।

ତାଳଚେର ରାଜ୍ୟର ପ୍ରଜାବୃନ୍ଦ ଓ କର୍ମଚାରୀବୃନ୍ଦ ରାଜା କିଶୋରଚନ୍ଦ୍ରଙ୍କ ସୁନୀତି, ସୁଶାସନ ଓ ଅପରିସୀମ ବଦାନ୍ୟତାରେ ପରମସନ୍ତୋଷ ଲାଭ କରି ୧୯୧୧ ମସିହା ଜୁନ୍ ମାସ ୯ ତାରିଖରେ ରାଜତ୍ୱର ଦଶ ବର୍ଷ ପୂର୍ଣ୍ଣ ହେବା ଦିନ ପ୍ରକାଣ୍ଡ ଦରବାର କରି ରାଜପ୍ରୀତିର ନିଦର୍ଶନ-ସ୍ୱରୂପ ଅଭିନନ୍ଦନପତ୍ର ପ୍ରଦାନ କରିଥିଲେ । ସେ ଦରବାରରେ ଯାହା ଭେଟି ସଲାମୀ ମିଳିଥିଲା, ତାହା ରାଜାସାହେବ ସାଧାରଣଙ୍କ ଉପକାରାର୍ଥେ ନିଜଗଡ଼ର ଧର୍ମଶାଳା ନିର୍ମାଣାର୍ଥେ ପ୍ରଦାନ କରିଥିଲେ ।

ରାଜା କିଶୋରଚନ୍ଦ୍ର ତାଳଚେରର ହାଇକୋର୍ଟ୍‌ର ପ୍ରଧାନ ବିଚାରପତି, ଯୁବରାଜ ହୃଦୟଚନ୍ଦ୍ର ସେସନ୍ସ୍ ଜଜ୍ ଓ ଟିକାଏତ ପ୍ରମୋଦଚନ୍ଦ୍ର ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ୍ କର୍ମ ସମ୍ପାଦନ କରୁଅଛନ୍ତି ।

ତାଳଚେର ରାଜ୍ୟର ଆଧୁନିକ ଯୁଗୋପଯୋଗୀ ବ୍ୟବସ୍ଥାମାନ ଦେଖିଲେ ବୋଧହୁଏ ଯେ ତାହା ଇଂରେଜୀ

ଶାସିତ ଯେ କୌଣସି ଭାରତୀୟ ଅଞ୍ଚଳ ସହିତ ସମକକ୍ଷ । ତାଲଚେରର ଡାକ୍ତରଖାନା, ହାଇ ସ୍କୁଲ୍ ଓ ଅନ୍ୟାନ୍ୟ ଅଧସ୍ତନ ଶିକ୍ଷାନୁଷ୍ଠାନମାନ ଖୁବ୍ ଉନ୍ନତ ଧରଣର । ତାଲଚେର ଗଡରେ ପୋଷ୍ଟ ଅଫିସ ସହିତ ଟେଲିଗ୍ରାଫ ଅଫିସ ମଧ୍ୟ ଖୋଲାଯାଇଅଛି ।

ସାହିତ୍ୟପ୍ରେମୀ ରାଜାସାହେବ ଉତ୍କଳ ସାହିତ୍ୟସମାଜ ହସ୍ତରେ ପ୍ରାଚୀନ ସାହିତ୍ୟଚର୍ଚ୍ଚାମୂଳକ ପ୍ରବନ୍ଧ ପାଇଁ ପ୍ରତି ବର୍ଷ ଶୁଲଣଟଙ୍କାର ଗୋଟିଏ ପୁରସ୍କାର ପ୍ରଦାନ କରିଥାଆନ୍ତି । ତାଲଚେରର ବଶୋର ପ୍ରେସ୍‌ରୁ ତାଙ୍କ ଅର୍ଥାନୁକୂଲ୍ୟରେ ଗତ ୩୫ ବର୍ଷ ହେଲା ଗଡ଼ଜାତବାସିନୀ ପତ୍ରିକା ପ୍ରକାଶିତ ହେଉଅଛି ।

ଗଡ଼ଜାତ ଘରକୁ ରେଲ ଅଣାଇବା ତାଙ୍କ ଜୀବନର ଗୋଟିଏ ପ୍ରଧାନ ଘଟଣା । ତାଲଚେର ଟ୍ରେନ୍ ଅଞ୍ଚ ଭାରତ-ପ୍ରସିଦ୍ଧ । ରାଜାସାହେବ ଅଜସ୍ର ଅର୍ଥ ବ୍ୟୟ କରି କୋଇଲା ଖଣିର ସନ୍ଧାନ ପାଇବାରୁ ତାଲଚେରକୁ ଟ୍ରେନ୍ ଯିବା ଆସିବା ସମ୍ଭବପର ହୋଇ ପାରିଅଛି ।

ରାଜାସାହେବ କ୍ରମାଗତ ୧୨ ବର୍ଷକାଳ ଭାରତ ନରେନ୍ଦ୍ରମଣ୍ଡଳୀରେ ଉତ୍କଳୀୟ ନରପତିମାନଙ୍କ ପ୍ରତିନିଧିରୂପେ ନିର୍ବାଚିତ ହୋଇ ଉତ୍କଳୀୟ ରାଜାମାନଙ୍କ ସ୍ୱାର୍ଥରକ୍ଷା ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେଇଅଛନ୍ତି । ରାଜାସାହେବ ପୂର୍ବପ୍ରଚଳିତ ବେଠି ପ୍ରଥା ଉଠାଇଦେଇ ପ୍ରଜାମାନଙ୍କୁ ନିଜ ନିଜ ଜୋତରେ ପୂର୍ଣ୍ଣ ଉଇତ ସ୍ୱତ୍ୱ ପ୍ରଦାନ କରିଅଛନ୍ତି । ଯୁବରାଜ, ଟିକାଏତ୍ ଓ ରାଜକୁମାରମାନଙ୍କୁ ଉଚ୍ଚ ଓ ଉଦାର ଶିକ୍ଷା ଦେବା ବିଷୟରେ ରାଜାସାହେବ ସର୍ବତୋଭାବରେ ଚେଷ୍ଟା ଓ ଅର୍ଥ ବ୍ୟୟ କରିଅଛନ୍ତି ।

ଗ୍ରାମମାନଙ୍କ ଉନ୍ନତି, ରାଜଧାନୀରେ ମିଉନିସିପାଲିଟି ସ୍ଥାପନ, ଗ୍ରାମେ ଗ୍ରାମେ ଜଳାଶୟ ଖନନ, ବନ୍ୟ ଜନ୍ତୁମାନଙ୍କ ଆକ୍ରମଣରୁ ନିଜ ନିଜ ପ୍ରାଣକୁ ଓ ଫସଲକୁ ରକ୍ଷା କରିବା ପାଇଁ ପ୍ରଜାମାନଙ୍କୁ ଅସ୍ତ୍ରଶସ୍ତ୍ର ବ୍ୟବହାର ପାଇଁ ଅବାଧ ଅନୁମତି ଦାନ, ଧର୍ମରକ୍ଷା ପାଇଁ ଦେବାଳୟାଦିର ସୁପରିଚାଳନ, ରାଜ୍ୟରେ ଶିକ୍ଷାବିସ୍ତାର ଓ ଉଚ୍ଚ ଶିକ୍ଷା ପାଇଁ ହାଇ ସ୍କୁଲ୍ ସ୍ଥାପନ, ମୁସଲମାନ୍ ପ୍ରଜାଙ୍କର ଉପାସନାର୍ଥ ମସ୍‌ଜିଦ୍ ନିର୍ମାଣ, ବ୍ୟାୟାମ ପାଇଁ ଉତ୍ସାହଦାନ, ସାମାଜିକ ବିବାଦର ମୀମାଂସା ପାଇଁ ଧର୍ମସଭା ନାମରେ ସାମାଜିକ ଧର୍ମାଧିକରଣ ସ୍ଥାପନ ରାଜାସାହେବଙ୍କ ରାଜତ୍ୱର ବିଶେଷତ୍ୱ ଅଟେ ।

ରାଜାସାହେବଙ୍କ ନ୍ୟାୟ ବିଚାର ସର୍ବଦା ଦୟାମିଶ୍ରିତ । ଏପର୍ଯ୍ୟନ୍ତ ତାଲଚେରର କୌଣସି ଅପରାଧୀର ଦ୍ୱୀପାନ୍ତର ହେବା ବା ଫାଶି ଯାଇବା ଶୁଣାଯାଇ ନାହିଁ ।

ରାଜା କିଶୋରଚନ୍ଦ୍ରଙ୍କର ଆଶ୍ରିତବାତ୍ସଲ୍ୟ ଓ ଗୁରୁଜନଭକ୍ତି ଆଦର୍ଶସ୍ଥାନୀୟ । ତାଙ୍କର ପାଳକା ଜନନୀ ଓ ଗର୍ଭଧାରିଣୀଙ୍କ ପ୍ରତି ଅଚଳ ଭକ୍ତି ।

ରାଜା କିଶୋରଚନ୍ଦ୍ର ପୁତ୍ରପୌତ୍ରବେଷ୍ଟିତ ହୋଇ ଅତି ଆଦର୍ଶ ଗୃହସ୍ଥ ଜୀବନଯାପନ କରୁଅଛନ୍ତି । ସେଥି ମଧ୍ୟରେ ମଧ୍ୟ ତାଙ୍କ ନିର୍ଲିପ୍ତତା ଫୁଟି ଉଠୁଅଛି ।

ସେ ଏପର୍ଯ୍ୟନ୍ତ ୧୫୬ ଗୋଟା ମହାବଳ ବ୍ୟାଘ୍ର ବଧ କରି ଓଡ଼ିଶାର ମୃଗୟୁରାଜ୍ୟରେ ଉଚ୍ଚପଦ ଆସନର ଅଧିକାରୀ ହୋଇଅଛନ୍ତି । ସେ ନେପାଳରେ ଗଣ୍ଡା ବଧ କରି ମାତୃଶ୍ରାଦ୍ଧ କରିବା ଖ୍ୟାତି ମଧ୍ୟ ଅର୍ଜନ କରିଅଛନ୍ତି ।

ତାଙ୍କ ୬ ବର୍ଗମାଇଲ୍ ବିସ୍ତୃତ ରାଣୀପାର୍କ ନାମକ ପ୍ରାକୃତିକ ବିହାରୋଦ୍ୟାନ ମଧ୍ୟରେ ବହୁ ଦେଶର ଅନେକ ଦୁର୍ଲ୍ଲଭ ଜୀବ ଜନ୍ତୁ ଓ ପକ୍ଷୀ ପାଳିତ ହୋଇ ତାଙ୍କ ଉନ୍ନତ-ରୁଚିର ପରିଚୟ ପ୍ରଦାନ କରୁଅଛନ୍ତି । ତାଙ୍କର ଶିକାର ପ୍ରତି ଉତ୍ସାହ ଯୋଗୁଁ ତାଲଚେର ଭାରତରେ ଶିକାରୀ-ମାନଙ୍କ ତୀର୍ଥ ଆଖ୍ୟା ଲାଭ କରିଅଛି ।

ରାଜା କିଶୋରଚନ୍ଦ୍ର ଈଶ୍ୱରଙ୍କ କୃପାରୁ ବହୁବାର ପ୍ରାଣ-ସଙ୍କଟରୁ ରକ୍ଷା ପାଇଅଛନ୍ତି । ଉତ୍କଳ ପକ୍ଷରେ ତାଙ୍କ ପରି ଆଦର୍ଶ ନରପତି ଓ ଆଦର୍ଶ ଗୃହସ୍ଥ ଓ ଆଦର୍ଶ ବ୍ୟକ୍ତିଙ୍କ ଜୀବନ ମହାମୂଲ୍ୟବାନ୍ ଓ ଅପରିହାର୍ଯ୍ୟ ଭାବି ପ୍ରଭୁ ତାଙ୍କୁ ବାରମ୍ବାର ଘଣ୍ଟ ଘୋଡ଼ାଇ ରକ୍ଷା କରିଅଛନ୍ତି । ୧୮୯୫ ଅବ୍ଦରେ ମହାନଦୀରେ ବୁଡ଼ି ଯାଉ ଯାଉ ସେ ତାଙ୍କ ସହାଧ୍ୟାୟୀ କହ୍ନାଇ ବାବୁଙ୍କ ଦ୍ୱାରା ଉଦ୍ଧାର ପାଇଥିଲେ । ରାଜ୍ୟର ଶ୍ରୀରାମପୁର ଜଙ୍ଗଲରେ ଶିକାର କରୁ କରୁ ହାତୀ ଉପରୁ କଣ୍ଟକ ହୋଇ ପଡ଼ିଯାଇ ତାଙ୍କ ରଥ ପଥରେ ପିଟି ହୋଇ ଯାଇଥିବାରୁ ତାଙ୍କର ପ୍ରାଣସଂଶୟ ଘଟିଥିଲା । ୧୯୧୮ରେ ଇନ୍‌ଫ୍ଲୁଏଞ୍ଜା ଆକ୍ରମଣରେ ସେ ମୁମୂର୍ଷୁ ଦଶା ପ୍ରାପ୍ତ ହେବା ଫଳରେ ଦେଶରେ ତାଙ୍କ ସମ୍ବନ୍ଧରେ ଅମୂଳକ ଶୋକ ସମ୍ବାଦ ମଧ୍ୟ ପ୍ରଚାରିତ ହୋଇ ସାରିଥିଲା । ୧୯୧୬ ରେ ରେଢ଼ାଖୋଲ ଠାରେ ମଟରରେ ନିଆଁ ଲାଗିଯିବାରୁ ସେ ସେହି ଅଗ୍ନିକାଣ୍ଡରୁ ଅଳ୍ପକେ ରକ୍ଷା ପାଇଥିଲେ । ରାଜା କିଶୋରଚନ୍ଦ୍ର ବାଲ୍ୟ-କାଳରୁ କବିତାପ୍ରିୟ । ଏପରିକି, ସେ ନିଜର ବନ୍ଧୁମାନଙ୍କ ଠାକୁ କବିତାରେ ପତ୍ର ଲେଖୁଥିଲେ । ସାହିତ୍ୟସେବକ ବାମଣ୍ଡା ରାଜବଂଶ ସଙ୍ଗେ ବୈବାହିକବନ୍ଧନରେ ଆବଦ୍ଧ ହେବା ଦ୍ୱାରା ତାଙ୍କ ସାହିତ୍ୟଚର୍ଚ୍ଚା ଅଧିକ ବଢ଼ି ଗଲା; ଏପରିକି, ଏହାଙ୍କ ସଙ୍ଗେ ବାମଣ୍ଡା ରାଜବଂଶୀୟ ବନ୍ଧୁମାନଙ୍କର କବିତାରେ ପତ୍ରମାନ ଆଦାନପ୍ରଦାନ ଚାଲୁଥିଲା । ଉକ୍ତ ପତ୍ରମାନ ସଂଗୃହୀତ ହୋଇ ସାଧାରଣତଃ ଅପ୍ରକାଶ୍ୟ ଭାବରେ ଗୋଟିଏ ଶତାଧିକ ପୃଷ୍ଠାର ଗ୍ରନ୍ଥ ମୁଦ୍ରିତ ହୋଇଅଛି । ରାଜା କିଶୋରଚନ୍ଦ୍ରଙ୍କ ସାହିତ୍ୟାନୁରାଗକୁ ଯୁବରାଜ ଓ ଟିକାଏତ ପାଇଅଛନ୍ତି । ଟିକାଏତ ମଧ୍ୟ ଜଣେ ଉଦୀୟମାନ କବି । ପୂର୍ବରୁ ଉକ୍ତ ହୋଇଅଛି ଯେ, ରାଜାଙ୍କ ଅର୍ଥ ଓ ପୃଷ୍ଠପୋଷକତାରେ ତାଲଚେରରୁ ଗଡ଼ଜାତର ଏକମାତ୍ର ସମ୍ବାଦପତ୍ର ଗଡ଼ଜାତ-ବାସିନୀ ଅନେକ ୩୨ବର୍ଷ ହେଲା ପ୍ରତି ସପ୍ତାହରେ ପ୍ରକାଶିତ ହେଉଅଛି । ତାଙ୍କ ସାହିତ୍ୟାନୁରାଗରେ ପ୍ରଭାବିତ ହୋଇ

ତାଳଚେରର ବହୁସଂଖ୍ୟକ ଲେଖକ ଓ କବି ଜନ୍ମ କରିଅଛି । ତାଙ୍କ ପ୍ରଭାବ ତାଙ୍କର ନାତି ଟିକାୟତ ସୌଭାଗ୍ୟଚନ୍ଦ୍ରଙ୍କୁ ପ୍ରଭାବିତ କରିଅଛି ଓ ୧୦ ବର୍ଷ ବୟସରେ ସେ କବିତା ରଚନା କରି 'କବିତା ରଚନା ଖାତା' ନାମରେ ଖଣ୍ଡିଏ ପୁସ୍ତକ ପ୍ରକାଶ କରିଅଛନ୍ତି । କିଶୋରଚନ୍ଦ୍ରଙ୍କ ପ୍ରଭାବରେ ତାଳଚେରରେ ଗୋଟିଏ ସାହିତ୍ୟିକ ବାୟୁମଣ୍ଡଳର ସୃଷ୍ଟି ହୋଇଅଛି । ପ୍ରତି ନବବର୍ଷର ଆରମ୍ଭରେ ଉତ୍କଳର ସାହିତ୍ୟିକ ବନ୍ଧୁମାନଙ୍କ-ଠାରୁ ରାଜାସାହେବ ଶୁଭକାମନା ପ୍ରେରଣ କରିଥାଆନ୍ତି । 'ବିଡମ୍ବିତା' ନାମରେ ସେ ୩୪ବର୍ଷ ତଳେ ଯେଉଁ କବିତା ରଚନା କରିଥିଲେ, ତହିଁରେ ଆଧୁନିକ ସମାଜରେ ପରିଲକ୍ଷିତ ଉଚ୍ଛୃଙ୍ଖଳତା, ନାରୀଜାତିର କର୍ତ୍ତବ୍ୟହୀନତା, ପୁରୁଷମାନଙ୍କର ପକ୍ଷପାତିତା ଯାହା ବର୍ଣ୍ଣିତ ହୋଇଅଛି ଓ ନାରୀଜାତି ପାଇଁ ସେ ୩୪ ବର୍ଷ ତଳେ ଯେଉଁ ନ୍ୟାଯ୍ୟ ଅଧିକାରମାନ ଦାବି କରିଥିଲେ, ତାହା ପାଠ କଲେ ତାଙ୍କର ଦିବ୍ୟ ଭବିଷ୍ୟତ୍ ଦୃଷ୍ଟିକୁ ପ୍ରଶଂସା ନ କରି ରହି ହେବ ନାହିଁ । ତାଙ୍କର ପଟ୍ଟମହିଷୀ ଶ୍ରୀମତୀ ଗୌରୀ ପଟ୍ଟମହାଦେବୀ ମଧ୍ୟ ପଣ୍ଡିତା ଓ ଗୁଣଗ୍ରାହିକା ଥାଇ ପଣ୍ଡିତ ପତିଙ୍କ ଯୋଗ୍ୟା ସହଧର୍ମିଣୀରୂପେ ତାଳଚେରକୁ ମଣ୍ଡନ କରୁଅଛନ୍ତି । ସେ ରାଜକାର୍ଯ୍ୟରେ ସୁପଣ୍ଡିତ ରାଜାଙ୍କର ସୁପଣ୍ଡିତା ପରାମର୍ଶଦାତ୍ରୀ ହୋଇ ବିରାଜୁ ଅଛନ୍ତି । ୧୯୧୬ ମସିହାରେ ଉତ୍କଳ ସମ୍ମିଳନୀର ସଭାପତି ପଦରେ ବରିତ ହୋଇ ରାଜାସାହେବ୍ ସମଗ୍ର ଉତ୍କଳଭାଷୀ ଅଞ୍ଚଳର ସମ୍ମିଳିତ ହେବାର ଆଶା ଓ ଆକାଙ୍କ୍ଷାକୁ ଅଭିବ୍ୟକ୍ତ ପ୍ରଦାନ କରିଥିଲେ । ରାୟପୁର ରାଜକୁମାର କଲେଜରେ ସେ ରାଜାମାନଙ୍କ ପକ୍ଷରୁ ଚେଆରମାନ ପଦରେ ମନୋନୀତ ହୋଇଥିଲେ ଓ ନରେନ୍ଦ୍ରମଣ୍ଡଳରେ ସେ ଉତ୍କଳ ରାଜନ୍ୟମଣ୍ଡଳୀଙ୍କ ପକ୍ଷରୁ ପ୍ରତିନିଧି ହୋଇ ନିଜ ବ୍ୟକ୍ତିଗତ ଯୋଗ୍ୟତାର ପ୍ରକୃଷ୍ଟ ନିଦର୍ଶନ ଦେଖାଇଥିଲେ ।

ଏ ଭାଷାକୋଷ ପ୍ରତି ତାଙ୍କର ମମତା ଅସୀମ । ରାଜ-ପଦର ଅଧିକାରୀ ହୋଇ ସୁଦ୍ଧା ଏ ଗ୍ରନ୍ଥର ମୁଦ୍ରଣ ପୂର୍ବରୁ ଏଥିପାଇଁ ଦାନ ଅନ୍ୱେଷଣ ଉଦ୍ଦେଶ୍ୟରେ ସେ ପ୍ରାର୍ଥନା ପତ୍ରରେ ଅକୁଣ୍ଠିତଭାବରେ ସ୍ୱାକ୍ଷର କରିଥିଲେ । ଏ ଗ୍ରନ୍ଥର ମୁଦ୍ରଣ ନିମନ୍ତେ ସେ ଆଶାନୁରୂପ ସାହାଯ୍ୟ କରି ଅଛନ୍ତି ।

ପ୍ରଭୁ କିଶୋରଚନ୍ଦ୍ରଙ୍କ ଭଳି ଜଣେ ସର୍ବଗୁଣ-ସମନ୍ୱିତ ରାଜାଙ୍କୁ ଦାନ କରି ଉତ୍କଳ ଜନନୀଙ୍କୁ ଧନ୍ୟ କରି ଅଛନ୍ତି । ରାଜା ଶ୍ରୀ ଶ୍ରୀ ଶ୍ରୀ କିଶୋରଚନ୍ଦ୍ର ସପତ୍ନୀକ ଓ ସସନ୍ତାନ ଚିରଞ୍ଜୀବୀ ହୁଅନ୍ତୁ ଓ ତାଙ୍କର ଜୟହେଉ, ଏହାହିଁ ଆମ୍ଭମାନଙ୍କର ଐକାନ୍ତିକ କାମନା ।

୧୯୩୮-୩୯ ସାଲରେ ଓଡ଼ିଶା ଗଡ଼ଜାତର ପ୍ରଜାମଣ୍ଡଳ ଆନ୍ଦୋଳନ ସମୟରେ ଏ ରାଜ୍ୟରୁ ଅନେକ-ଗୁଡ଼ିଏ ପ୍ରଜା ବାହାରିଯାଇ ଅନୁଗୁଳରେ ରହିଥିଲେ । କିନ୍ତୁ ରାଜାସାହେବ ପ୍ରଜାମାନଙ୍କ କେତେକ ଅଧିକାର ପ୍ରଦାନ କରିବାକୁ ପ୍ରତିଶ୍ରୁତ ହେବାରୁ ସେମାନେ ସ୍ୱରାଜ୍ୟକୁ ଫେରି ଯାଇଅଛନ୍ତି ଏବଂ ରାଜାସାହେବଙ୍କ ନାମରେ ରଟନା କରା ଯାଇଥିବା ଦୁର୍ନାମମାନ ଅମୂଳକ ଥିବା ପ୍ରମାଣିତ ହୋଇଅଛି ।

ସନ୍ଦର୍ଭଲେଖକ—

ଶ୍ରୀ ବିଷ୍ଣୁଚରଣ ପଟ୍ଟନାୟକ

ହରିଚନ୍ଦନ ଦେବ—ଦେ.ବି (ନାମ)—ଲୀଳାବତୀ ନାମକ କାବ୍ୟରଚୟିତା Harichandana deba ଜନୈକ ଗଡ଼ଜାତର ରାଜା (ଭାରତୀ)— Author of 'Lilābati' and the Raja of a feudatory State.

ହରିଚନ୍ନ—ଗ୍ରା. ବି (ସଂ. ହରିଚନ୍ଦନ)—ହରିଚନ୍ଦନ (ଦେଖ)— Harichanna Harichandana (See).

ହରି ଚରଣ—ସଂ. ବି (ଷଷ୍ଠୀ ତତ୍)—ଭଗବାନଙ୍କ ପାଦ—The feet of Hari charaṇa God. ଦେ. ବି. ପୁଂ—ପୁରୁଷଙ୍କ ନାମ—A name given to males.

ହରି ଚର୍ମ—ସଂ. ବି (ଷଷ୍ଠୀ ତତ୍)—ବ୍ୟାଘ୍ରଚର୍ମ; ବାଘର ଚମଡ଼ା (ହି.ଶ)— Hari charma Tiger-skin.

ହରି ଚାପ—ସଂ.ବି (ଷଷ୍ଠୀ ତତ୍)—ଇନ୍ଦ୍ରଧନୁ (ହି. ଶ)— Hari chāpa Rainbow.

ହରିଜଟା—ସଂ. ବି. ସ୍ତ୍ରୀ (ନାମ) ରାମାୟଣୋକ୍ତ ଜଣେ ରାକ୍ଷସୀ— Hari jaṭā Name of a demoness mentioned in the Rāmāyāṇa. [ଦ୍ର—ସୀତାଙ୍କୁ ବୁଝାଇ ସୁଝାଇ ତାଙ୍କୁ ରାବଣ ପ୍ରତି ଅନୁକୂଳା କରାଇବା ପାଇଁ ରାବଣ ଏ ରାକ୍ଷସୀକୁ ନିଯୋଜିତ କରିଥିଲେ । ]

ହରିଜନ—ସଂ ବି (ଷଷ୍ଠୀତତ୍) ଭଗବାନଙ୍କ ଭକ୍ତ—A devotee Harijana of God ଦେ. ବି (ଆଧୁନିକ) ହିନ୍ଦୁ ସମାଜର ତଥାକଥିତ ଅସ୍ପୃଶ୍ୟ ଜାତିଭୁକ୍ତ ବ୍ୟକ୍ତିମାନେ— Harijau; members of the socalled untouchable or depressed classes of the Hindu society. [ଦ୍ର—ହିନ୍ଦୁସମାଜର ଅନ୍ତର୍ଭୁକ୍ତ ପ୍ରାଚୀନ ଅନାର୍ଯ୍ୟମାନଙ୍କ ବଂଶଧରମାନେ ସବର୍ଣ୍ଣ ହିନ୍ଦୁମାନଙ୍କ ଦ୍ୱାରା ଅସ୍ପୃଶ୍ୟ ବୋଲି ବିବେଚିତ ହେଉଥିଲେ । ହିନ୍ଦୁ-ସମାଜର ଚାରି ବର୍ଣ୍ଣ (ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର)ଙ୍କ ଠାରୁ ଏମାନେ ପୃଥକ୍ ବିବେଚିତ ହେଉଥିବାରୁ ଏମାନଙ୍କୁ ଦାକ୍ଷିଣାତ୍ୟରେ ପଞ୍ଚମ ବୋଲି କୁହା ଯାଉଥିଲା । ସବର୍ଣ୍ଣ ହିନ୍ଦୁମାନେ ଏମାନଙ୍କୁ ଛୁଇଁ ଦେଲେ ଅଶୁଚି ହେଉଥିଲେ । ସବର୍ଣ୍ଣମାନଙ୍କ ବ୍ୟବହୃତ ଜଳାଶୟ, କୂପ, ବିଦ୍ୟାଳୟ, ଦେବମନ୍ଦିରମାନ ଏମାନଙ୍କ ପ୍ରତି ନିଷିଦ୍ଧ ଥିଲା । ମହାତ୍ମା ଗାନ୍ଧୀ ଏହି ନୀଚଜାତୀୟ ହିନ୍ଦୁମାନଙ୍କୁ 'ହରିଜନ' ଆଖ୍ୟା ଦେଇ ସେମାନଙ୍କ ଅସ୍ପୃଶ୍ୟତା, ମନ୍ଦିର ପ୍ରବେଶ ନିଷେଧ ଆଦି ଦୂର କରିବା ପାଇଁ ଆନ୍ଦୋଳନର ସୂତ୍ରପାତ କରି ସେମାନଙ୍କର ପୂର୍ବତନ ସାମାଜିକ ଦୁରବସ୍ଥା କିୟତ୍-ପରିମାଣରେ ଦୂର କରିବାକୁ ଚେଷ୍ଟା କରୁଅଛନ୍ତି; ଏମନ୍ତ କି, ମହାତ୍ମା ଗାନ୍ଧୀଙ୍କର କେତେକ ଭକ୍ତ ହରିଜନ-

ମାନଙ୍କ ସଙ୍ଗେ ଏକ ପଂକ୍ତିରେ ଓ ଏକ ପାତ୍ରରେ ଭୋଜନ କରୁଅଛନ୍ତି ଓ ସବର୍ଣ୍ଣଙ୍କ ସଙ୍ଗେ ହରିଜନମାନଙ୍କ ବୈବାହିକ ସମ୍ବନ୍ଧ ସ୍ଥାପନାର୍ଥ କଳ୍ପନା କରୁଅଛନ୍ତି ।

ହରି ଜନମ—ଗ୍ରା. ବି (ସ. ହରିଜନ୍ମ) – ହରିଜନ୍ମ (ଦେଖ)—
Hari janama Hari janma (See).

ହରି ଜନ୍ମ—ସ. ବି (୬ଷ୍ଠୀ ତତ୍)—୧ । ଭଗବାନଙ୍କର ପୃଥିବୀରେ ଅବତାର-
Hari janma ରୂପେ ଜନ୍ମ—1. The birth of God on the occasion of some incarnation. ୨ । ଦେବକୀଗର୍ଭରୁ କଂସ ରାଜାଙ୍କର ବନ୍ଦୀଶାଳାରେ ଭାଦ୍ର କୃଷ୍ଣ ଅଷ୍ଟମୀ ତିଥିରେ ଶ୍ରୀକୃଷ୍ଣଙ୍କ ଜନ୍ମ—2. The birth of Shrikrushna on the 8th day of the dark fortnight of Bhādra in the jail of Kaṁsa from Debakī ୩ । ଶ୍ରୀକୃଷ୍ଣଙ୍କ ଜନ୍ମ ତିଥି (ଭାଦ୍ର କୃଷ୍ଣାଷ୍ଟମୀ) ରେ କର୍ତ୍ତବ୍ୟ ଉତ୍ସବ ଓ ବ୍ରତ—3. Festival and fast observed on the birth day of Srikrushna (on the 8th day of the dark fortnight of Bhādra.

ହରିଜନ୍ମାଷ୍ଟମୀ—ସ. ବି—ହରିଜନ୍ମ (୩) ଓ (୪) (ଦେଖ)—
Harijanmāshṭamī Harijanma (3) & (4) (See).

ହରିଜିତମଧ୍ୟା — ସ. ବିଣ. ସ୍ତ୍ରୀ (ହରି ଅର୍ଥାତ୍ ସିଂହ ଯେଉଁ ମଧ୍ୟ ଅର୍ଥାତ୍
Harijitamadhyā କଟିଦ୍ୱାରା ଜିତ ଅର୍ଥାତ୍ ପରାସ୍ତ ହୋଇଅଛି, ଏପରି ମଧ୍ୟ ବା କଟି ଅଛି ଯାହାର )—କେଶରୀମଧ୍ୟା; ସିଂହକଟିବଳିଷ୍ଠା—( a woman ) Having slender waist like that of a lion. ( ଉ—ବୋଲେ ସୁବୁଦ୍ଧି ଏ ବୁଦ୍ଧି ସମ୍ବାଦ, ହରି ରେ ହରିଜିତମଧ୍ୟା ବାଗା—ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ହରିଡ଼ା—ଦେ ବି ( ସ. ହରୀତକୀ, ପ୍ରା. ହରିଡ଼ଇ )—୧ । ହରୀତକୀ
Harirḍā (ଦେଖ)— 1. Harītakī (See)
ହତ୍ତୁକୀ, ହତ୍ତକୀ ୨ । ହରିଡ଼ା ଫଳଭଳି ସୁନାର କଣ୍ଠୀ—2. Golden beads shaped like the fruits of
ହର୍ରେ, ହଡ଼ Myrobalan strung into a necklace.

ହରିଡ଼ା କଣ୍ଠି (ଣ୍ଠୀ)—ଦେ. ବି—ହରିଡ଼ା ଫଳ ଆକୃତିର କଣ୍ଠାହରଣର
Harirḍā kanṭhi (nṭhī) ବା ହାରର କଣ୍ଠୀ ବା ମାଳା—
ହତ୍ତୁକୀକଣ୍ଠୀ Golden beads shaped like the fruits
ହର୍ରେକଣ୍ଠୀ of myrobalan and strung into a necklace.

ହରିଡ଼ାଖଣ୍ଡି – ଦେ. ବି—(ନାମ) ଗଞ୍ଜାମ ବ୍ରହ୍ମପୁର ସହରର ଉପକଣ୍ଠରେ
Harirḍā khaṇḍi ଥିବା ପ୍ରସିଦ୍ଧ ବୈଷ୍ଣବ ମଠ—Name of a famous Matha in the suberbs of Berhampur in the district of Ganjam.

ହରିଡ଼ା ବାହାଡ଼ା ଅଁଥ (ଏଁ) ଳା—ଦେ, ବି. ( ସହରର ) (ହରୀତକୀ,
Harirḍā bāhārḍā a-aṅ(eṅ)lā ବହେଡ଼ା ଓ ଅମଳକୀ )
ହତ୍ତୁକୀବହେଡ଼ାଆମଳା (ଔଷଧାର୍ଥେ ବ୍ୟବହୃତ) ତିଫଳା; ହରୀତକୀ
ହର୍ରେବହେଡ଼ାଅଁବଲା ବହେଡ଼ା ଓ ଅମଳକୀ ନାମକ ତିନୋଟି ଫଳର ସମାହାର—Three fruits; black myrobalan, beleric myrobalan and emblic myrobalan used in medicine. [ଦ୍ର—ହରିଡ଼ା ବାହାଡ଼ା ଓ ଅଁଳା ଫଳମାନଙ୍କୁ ଶୁଖାଇ ଛେଚ ଭିତର ମଞ୍ଜିଗୁଡ଼ିକ ବାହାର କରିସାରି ଅବଶିଷ୍ଟ ପ୍ରତ୍ୟେକ ପଦାର୍ଥରୁ ସମପରିମାଣରେ ୧ ତୋଳାକୁ ଛଅଟିକିଏ ପାଣିରେ ୪।୬ ଘଣ୍ଟା ବତୁରାଇ ଉକ୍ତ ପାଣିରୁ ବତୁରି ଯାଇଥିବା ଦ୍ରବ୍ୟକୁ ଛାଣି ଫିଙ୍ଗି ଦେଇ ସେ ପାଣିକୁ ଭୋଜନର ଅନ୍ତତଃ ୪ଘଣ୍ଟା ପରେ ପ୍ରତିଦିନ ପାନ କଲେ କୋଷ୍ଠବଦ୍ଧତା ଦୂର ହୁଏ; ଏହା ପରୀକ୍ଷିତ । ]

ହରିଣ—ସ. ବି. ପୁଂ (ହୃ ଧାତୁ+କର୍ତ୍ତୃ ଇନ)—୧ । ମୃଗ, ମିରିଗ; ଏଣି;
Hariṇa ଚିତ୍ରମୃଗ—Deer; the spotted deer.
(ସ୍ତ୍ରୀ—ହରିଣୀ) [ଦ୍ର—ଈଷତ୍ ତାମ୍ରବର୍ଣ୍ଣ ଓ ବୃହତ୍କାୟ ହରିଣକୁ
(ପର୍ଯ୍ୟାୟ— ମୃଗ କହନ୍ତି । କାଳିକା ପୁରାଣରେ ହରିଣକୁ ୫ଶ୍ରେଣୀରେ
ଏଣ, କୁରଙ୍ଗ, ବିଭକ୍ତ କରାଯାଇଅଛି । ଯଥା—ଋଷ୍ୟ, ଖଡ୍ଗ, ରୁରୁ,
ମୃଗ, ବାତାୟୁ, ପୃଷତ ଓ ମୃଗ । ଏହାଙ୍କ ଚର୍ମ ମୁନିମାନେ ପିନ୍ଧନ୍ତି ଓ
ଶମ୍ବର, ରୁରୁ, ଆସନ କରନ୍ତି । ମୃଗମାନଙ୍କୁ ଦେବତାଙ୍କ ଆଗରେ
ପୃଷତ, ସାରଙ୍ଗ, ବଳି ଦିଆଯାଏ । ଏହାଙ୍କ ମାଂସ ଲୋକେ ଖାଆନ୍ତି ।
ଋଷ୍ୟ ) ହରିଣଙ୍କ ଶିଙ୍ଗରେ ଭୂଷା ପାଚିଆ ଅଡ଼ ତିଆରି ହୁଏ । ଭିନ୍ନ ଭିନ୍ନ
ହରିଣ ଜାତୀୟ ହରିଣଙ୍କର ଭିନ୍ନ ଭିନ୍ନ ନାମ ଅଛି । ଛେଳିଠାରୁ
ହରିଣ୍, ହିରଣ ଆକାରରୁ ଗାଈ ଆକାର ପର୍ଯ୍ୟନ୍ତ ନାନା ପ୍ରକାର ହରିଣ ଅଛନ୍ତି । ଗାଈଙ୍କ ପରି ବଡ଼ ହରିଣଙ୍କୁ ଶମ୍ବର ଓ ଘୋଡ଼ାଙ୍କ ପରି ହରିଣଙ୍କୁ ଘୋଡ଼ଙ୍ଗ କହନ୍ତି ।] ୨। ଶିବ; ମହାଦେବ—2. Siba. ୩ । ବିଷ୍ଣୁ—3. Bishṇu. ୪ । ସୂର୍ଯ୍ୟ—4. The Sun. ୫ । ହଂସ—5. Swan. ୬ । ଶୁକ୍ଳ ବର୍ଣ୍ଣ—6. White colour. ୭ । ପାଣ୍ଡୁ ବର୍ଣ୍ଣ—7. Grey colour. ୮ । (ନାମ—ନାଗ ବିଶେଷ ( ହ. ଶ )—8. Name of a mythological Nāga. ୯ । ମୃଗଜାତୀୟ ପୁରୁଷ—9. A class of males described in Hindu works. ସ. ବିଣ —ପାଣ୍ଡୁର, କପିଳ—Grey; tawny. ଗ୍ରା. ବି. ପୁଂ—ହରି ନାମକ ବ୍ୟକ୍ତି ଗେଲବସରିଆ ଡାକ ନାମ—Fond nick name of Hari.

ହରିଣ(ଣୀ) ଦୃଶା—ସ. ବିଣ. ସ୍ତ୍ରୀ—( ବହୁବ୍ରୀହି, ହରିଣର ଦୃଶା ବା
Hariṇa (ṇi) dṛśā ନୟନ ପରି ଦୃଶା ଯାହାର)—ଏଣୀନୟନା,
ହରିଣ(ଣୀ)ନୟନା, ହରିଣ(ଣୀ)ନେତ୍ରା(ତ୍ରୀ), ହରିଣ(ଣୀ)ଲୋଚନା, ହରିଣାକ୍ଷୀ } (ଅନ୍ୟରୂପ) ଯେଉଁ ସ୍ତ୍ରୀର ଆଖି ମୃଗର ଆଖିପରି ଲମ୍ବ, ସରୁ ଓ ମନୋହର—Deer-eyed (female)
[ ଦ୍ର—ଏହି ବିଶେଷଣ ପୁରୁଷମାନଙ୍କ ପ୍ରତି ବ୍ୟବହୃତ ନ ହେଉଥିବାରୁ ଏ ଶବ୍ଦର ପୁଂଲିଙ୍ଗ ଦିଆଗଲା ନାହିଁ । କାରଣ, କବି ଓ ଗ୍ରନ୍ଥକାରମାନେ

ସ୍ତ୍ରୀମାନଙ୍କୁ ଏଣୀନୟନା ବୋଲି ବ ନା କହନ୍ତି; କିନ୍ତୁ ପୁରୁଷଙ୍କୁ ଏଣନୟନ କହିବାର ଶୁଣାଯାଏ ନାହିଁ।

ହରିଣ କଳଙ୍କ (ଲାଞ୍ଛନ, ଲକ୍ଷଣ)—ସଂ.ବି (ବହୁବ୍ରୀହି)—ମୃଗଲାଞ୍ଛନ, ଚନ୍ଦ୍ର
Harina kalanka (lanchhana, lakshana) The moon.

ହରିଣ ନର୍ତ୍ତକ—ସଂ ବି—କିନ୍ନର (ଶବ୍ଦରତ୍ନାବଳୀ)—A species of
Harina narttaka aerial beings said to be the songsters of the gods, [ଦ୍ର—ଏମାନଙ୍କର ରୂପ ହରିଣ ପରି ଓ ଏମାନେ ନୃତ୍ୟ ଗୀତାଦି କରୁଥିବାରୁ ଏମାନଙ୍କର ଏପରି ନାମକରଣ ହୋଇଅଛି ]

ହରିଣ ପ୍ଲୁତା—ସଂ. ବି—ବୃତ୍ତ ବିଶେଷ—Name of a Sanskrit
Harina plutā metre. [ଦ୍ର—ଏହା ଦର୍ଶାର୍ଦ୍ଧ ସମବୃତ୍ତ। ଏଥିର ବିଷମ ଚରଣରେ ୩ ସ ଗଣ, ୧ ଲଘୁ ଓ ୧ ଗୁରୁ ବର୍ଣ୍ଣ ଓ ସମ ଚରଣରେ ୧ ନଗଣ, ୨ଭଗଣ ଓ ୧ ରଗଣ ଥାଏ—(ହୃ· ଶ]

ହରିଣ୍ (ନ୍) ବାଡ଼ି—ଦେ. ବି (ନାମ)—ହରିଣବାଡ଼ି (ଦେଖ)—
Harin(n-)bārdi Harin-bārdi (See)

ହରିଣ୍ ମାଂସ—ସ. ବି (୬ଷ୍ଠୀ ତତ୍)—ମୃଗ ମାଂସ—Venison.
Harina māmsa meat of deer. [ଦ୍ର—ଏହା ଶୀତବୀର୍ଯ୍ୟ ମଳମୂତ୍ର ରୋଧକ, ସୁଗନ୍ଧ ଓ ସନ୍ନିପାତ, ପିତ୍ତ, ରକ୍ତ ଓ କଫ ନାଶକ, ସଗ୍ରାହୀ, ରୋଚକ, ହୃଦ୍ୟ, ବଳକର, ଜ୍ୱରନାଶକ ଓ ବୃଂହଣ—ଭାବପ୍ରକାଶ]

ହରିଣ ହୃଦୟ—ସ.ବଣ, ପୁଂ (ବହୁବ୍ରୀହି)—ଭାରି ଡରକୁଳା (ହୃ. ଶ)—
Harina hrudaya Very timid; coward.
[ହରିଣ ହୃଦୟା—ସ୍ତ୍ରୀ]

ହରିଣାକ୍ଷୀ—ସ. ବି. ସ୍ତ୍ରୀ (ବହୁବ୍ରୀହି; ହରିଣ+ଅକ୍ଷ+ସ୍ତ୍ରୀ ଈ)—ହରିଣ
Harinākshī ଦୃଶା (ଦେଖ)—Harinadrusā (See) ବି—ହଟ୍ଟ ବିଳାସିନୀ ନାମକ ଗନ୍ଧଦ୍ରବ୍ୟବିଶେଷ; ନଖୀ—(ଶବ୍ଦଚନ୍ଦ୍ରିକା)—Fasciolaria ( a scented article got from the sea).

ହରିଣାଙ୍କ—ସ. ବି (ବହୁବ୍ରୀହି)—ମୃଗାଙ୍କ; ଚନ୍ଦ୍ର (ଶବ୍ଦରତ୍ନାବଳୀ)—
Harināṅka The moon.

ହରିଣାଶ୍ୱ—ସ.ବି(ବହୁବ୍ରୀହି)—ମୃଗ ବାହନ, ବାୟୁ—The air.[ଦ୍ର—
Harināśwa ବାୟୁଦେବତାଙ୍କ ବାହନ ମୃଗ ଥିବା ପୁରାଣରେ ଅଛି ]

ହରିଣିଆ ଗନ୍ଧ—ଦେ·ବି—ମନୁଷ୍ୟଙ୍କ ଓ ପଶୁମାନଙ୍କ ଦେହରୁ ଓ ବାସି ଦୁଧ-
Harinia gandha ଦହିରୁ ଅନୁଭୂତ ଏକପ୍ରକାର ଅପ୍ରୀତିକର ଦୁର୍ଗନ୍ଧ—An unpleasant smell arising from the body of certain persons and animals and from stale milk and curd. [ଦ୍ର—କଞ୍ଚା ଦୁଧ ବା ଅଉଟା ଦୁଧ ୧।୨ ଦିନ ମଧ୍ୟ ନ ପିଇ ରହିଗଲେ ତହିଁରୁ ଯେଉଁ ଗନ୍ଧ ବାହାରେ ତାକୁ ହରିଣିଆ ଗନ୍ଧ କହନ୍ତି; ଦହି, ଦୁଧ ଓ ଲହୁଣିଅଡ଼ରେ ସର୍ବଦା ବ୍ୟବହାର କରୁଥିବା ଗଉଡ଼ ଗଉଡ଼ୁଣୀମାନଙ୍କ ଦେହରୁ ନିର୍ଗତ ହରିଣିଆ ଗନ୍ଧ ପାର୍ଶ୍ୱସ୍ଥ ଲୋକଙ୍କ ଦ୍ୱାରା ଅନୁଭୂତ ହୁଏ ]

ହରିଣୀ—ସ. ବି. ସ୍ତ୍ରୀ ( ହରିଣ+ସ୍ତ୍ରୀ ଈ )—୧। ମୃଗୀ; ଏଣୀ—
Harinī 1. Female deer. ୨। ପଦ୍ମିନୀ ଆଦି ଚତୁର୍ବିଧା ସ୍ତ୍ରୀଙ୍କ ମଧ୍ୟରୁ ଏକତମା; ଚିତ୍ରିଣୀ ସ୍ତ୍ରୀ—2. A class of females described in Hindu books. ୩। ତରୁଣୀ—3. A young damsel. ୪। ବରନାରୀ—4. An excellent aud charming young woman. ୫। ହରିଦ୍ରାଭା ସ୍ତ୍ରୀ; ଚମ୍ପକଗୌରୀ—5. A woman having yellowish complexion. ୬। ଲକ୍ଷ୍ମୀ—6. The Goddess of wealth. ୭। ସିଂହୀ—7. Lioness. [ଉ—(୬ଷ୍ଠ ଓ ୭ମ ଅର୍ଥ) ଭାଷିରେ ପୂର୍ବରୁ ହରି ହରିଣୀ, ବାଞ୍ଛିବେ ସେହି ଲକ୍ଷଣାକୁ ଅଣି—ଭଞ୍ଜଃ ବୈଦେହୀଶବିଳାସ ] ୮। ସୁବର୍ଣ୍ଣ ପ୍ରତିମା—8. An image made of gold; golden image. [ଉ—ସ୍ୱର୍ଣ୍ଣ କନକ ଚିତ୍ର ହରିଣୀ ତହିଁ, ବିଭ୍ରମ ହେଲି କଷ୍ଟେ ହରିଣୀ ଏହି—ଭଞ୍ଜ.ବୈଦେହୀଶବିଳାସ]—୯। ଅପ୍ସରୋବିଶେଷ—9. Name of a heavenly nymph. ୧୦। ସପ୍ତଦଶ ଅକ୍ଷରଯୁକ୍ତ ଛନ୍ଦୋବିଶେଷ—10 Name of a Sanskrit metre of 17 syllables. [ଦ୍ର—ଏଥିରେ ଯଥାକ୍ରମେ ୧ ନଗଣ, ୧ ସଗଣ, ୧ ମଗଣ, ୧ ରଗଣ, ୧ ସଗଣ, ୧ ଲଘୁ ଓ ୧ ଗୁରୁ ବର୍ଣ୍ଣ ଥାଏ (ହୃ. ଶ)] ୧୧। ମଞ୍ଜିଷ୍ଠା (ହୃ. ଶ)—11. Indian madder. ଗ୍ରା. ବି ଗୋମେଷାଦି ପାଳିତ ପଶୁ—Domestic animals
ପୋষাজন্ত ମବେସୀ (ଉ—କାହାର ହରିଣୀ କେ ନେଇ ବାନ୍ଧେ, ପର ପୁଅ ଲାଗି ଯୋଗିଆ କାନ୍ଦେ—ଭଗ।] ଗ୍ରା. ବି ବିଣ. ସ୍ତ୍ରୀ (ସଂ.ହାରିଣୀ)—ହରଣକାରିଣୀ—Stealing; stealer [ଉ—ସ୍ୱର୍ଣ୍ଣକନକ ଚିତ୍ରହରିଣୀ ତହିଁ, ବିଭ୍ରମ ହେଲି କଷ୍ଟେ ହରିଣୀ ଏହି—ଭଞ୍ଜ. ବୈଦେହୀଶବିଳାସ।)

ହରିତ୍—ସ ବି (ହୃ ଧାତୁ+କର୍ତ୍ତୃ ଇତ୍, ଏହା ମନକୁ ହରଣ ବା ମୁଗ୍ଧ
Harit କରିବାରୁ )—୧। ପାଚବର୍ଣ୍ଣ; ଶାଗୁଆବର୍ଣ୍ଣ—Emerald colour; green colour; verdant green. ୨। ଶ୍ୟାମ ପୀତ ମିଶ୍ରିତ ବର୍ଣ୍ଣ—2. A mixed colour (yellow mixed with blue.) [ଦ୍ର—ସୂର୍ଯ୍ୟରଶ୍ମିକୁ ବିଶ୍ଳେଷଣ କରି ଦେଖାଯାଇଅଛି ଯେ 'Green' (ହରିଦ୍ ବର୍ଣ୍ଣ) ରଙ୍ଗ Blue (ଶ୍ୟାମ) ଓ Yellow (ହଳଦିଆ) ରଙ୍ଗର ମଧ୍ୟବର୍ତ୍ତୀ ଅଟେ।] ୩। ଶ୍ୟାମବର୍ଣ୍ଣ; ଅସ୍ମାନ ରଙ୍ଗ ( ଶବ୍ଦରତ୍ନାବଳୀ )—3. Azure colour; sky colour. ୪। ନୀଳ ପୀତ ମିଶ୍ରିତ ବର୍ଣ୍ଣ [ଅମରକୋଷ]—4. A mixed colour consisting of indigo and yellow colours. ୫। ଅଶ୍ୱବିଶେଷ[ମେଦିନୀ]—5. A species of horse.

୬ । ତୃଣ [ ମେଦିନୀ ]—6. Grass. ୭ । ସୂର୍ଯ୍ୟାଶ୍ୱ [ତ୍ରିକାଣ୍ଡଶେଷ]—7. The horse of the chariot of the Sun god. ୮ । ମୁଦ୍‌ଗ; ମୁଗ [ହେମଚନ୍ଦ୍ର] 8. A kind of pulse or cereal. ୯ । ସିଂହ [ ଶବ୍ଦକଳ୍ପଦ୍ରୁମ ]—9. The lion. ୧୦ । ସୂର୍ଯ୍ୟ [ ଶବ୍ଦକଳ୍ପଦ୍ରୁମ ]—10. The sun. ୧୧ । ବିଷ୍ଣୁ (ଶବ୍ଦକଳ୍ପଦ୍ରୁମ)—11. Bishnu. ୧୨ । ଦିକ୍; ଦିଗ ( ଅମରକୋଷ )—12. The quarters of the earth. ୧୩ । ହଳଦୀ ( ରାଜନିର୍ଘଣ୍ଟ )—13. Turmeric. ୧୪ । ହଳଦିଆବର୍ଣ୍ଣ (ହି. ଶ)—14. Yellow colour. ୧୫ । ବାଦାମୀରଙ୍ଗ (ହି. ଶ) 15. Almond colour. ବିଣ—ହରିଦ୍‌ବର୍ଣ୍ଣବିଶିଷ୍ଟ—Of green colour.

ହରିତ୍‌ ଖଣ୍ଡ—ଦେ. ବି—ରବି ଫସଲ—
Harit-khanda The cereals; the green crops.
ববি ফসল रबि फसल

ହରିତ୍‌ପର୍ଣ୍ଣ—ସଂ. ବିଣ ( ବହୁବ୍ରୀହି )—ହରିଦ୍‌ବର୍ଣ୍ଣ ପତ୍ରଯୁକ୍ତ—
Harit-parnna Having green leaves.
ବି—ମୂଳକ; ମୂଳା (ରାଜନିର୍ଘଣ୍ଟ)—Radish.

ହରିତ—ସଂ ବି [ ହୃ ଧାତୁ+କର୍ତ୍ତୃ ଇତ ]—୧ । ହରିତ୍; ହରିଦ୍‌ବର୍ଣ୍ଣ; ଶାଗୁଆରଙ୍ଗ—1. Green colour.
Harita
୨ । ସିଂହ (ଶବ୍ଦକଳ୍ପଦ୍ରୁମ)—2. Lion. ୩ । ସ୍ଥୌଣେୟକ (ଦେଖ)—3 Sthauneyaka (See). ୪ । ଗନ୍ଧିପର୍ଣ୍ଣ ନାମକ ଗନ୍ଧଦ୍ରବ୍ୟ; ଗଣ୍ଠିଅନା—4. A scented herb. ୫ । ହରିତପକ୍ଷୀ (ଦେଖ)—5. Haritapakshi(See) ୬ । (ନାମ) ସୂର୍ଯ୍ୟବଂଶୀୟ ଜଣେ ରାଜା; ହରିଶ୍ଚନ୍ଦ୍ରଙ୍କ ନାତି ଓ ରୋହିତାଶ୍ୱଙ୍କ ପୁଅ—6. Name of a king of the solar dynasty. ୭ । (ନାମ) କଶ୍ୟପଙ୍କ ଏକ ପୁତ୍ର [ହି ଶ]—7. Name of a son of Kasyapa. ୮ । (ନାମ) ଯଦୁଙ୍କର ଏକପୁତ୍ର [ହି. ଶ]—8. Name of a son of Jadu. ୯ । (ନାମ) ଯୁବନାଶ୍ୱଙ୍କ ଏକ ପୁତ୍ର ( ହି. ଶ )—9. Name of a son of Jubanāswa. ୧୦ । ସେନା [ ହି. ଶ ]—10. Army. ୧୧ । ସବଜୀ; ଶାକଭଜା (ହି. ଶ)—11. Kitchen herb. ବିଣ—୧ । ହରିଦ୍‌ବର୍ଣ୍ଣବିଶିଷ୍ଟ; ଶାଗୁଆ—1. Verdant green. ୨ । ହଳଦିଆ (ହି. ଶ)—2. Yellow. ୩ । ବାଦାମୀ [ହି. ଶ]—3. Brown. ଦେ. ବି [ସଂ ହରିତ୍ ]—୧ । ଦିଗ—
দিক दिशा 1.The quarters of the earth. [ଦ୍ର—ହରି ହରିଦ୍ୱାରେ ମିଳି ହରିଦ୍ଧ୍ୱନି କଲେ ହରିତ ପୂରିତ ଜୁହୁରବରେ କହି ହେଲେ—ଭଞ୍ଜ କୋଟିବ୍ରହ୍ମାଣ୍ଡସୁନ୍ଦରୀ ।] ୨ । ହରିଦ୍‌ବର୍ଣ୍ଣ ତୃଣ ପତ୍ରାଦି—
हरित हरयाली 2. Verdure; vegetable. ୩ । ଅଙ୍ଗ; ପାର୍ଶ୍ୱ—3. Side; flank. (ଦ୍ର—ଶୁଭ ହରିତରେ ଘେରି ଚଉଦିଥାନ୍ତି କାଳୁଗା—କବିସୂର୍ଯ୍ୟ କଣୋଗ୍ରା ଚମ୍ପୂ ଚ ଗୀତ)

ହରିତକ—ସଂ ବି—୧ । ଶାକ [ଅମରକୋଷ]—1. Pot herb;
Haritaka green. ୨ । ( ଅଧୁନିକ ବୈଜ୍ଞାନିକ ପରିଭାଷା)—କ୍ଲୋରାଇନ୍ ନାମକ ମୂଳଧାତୁ—2. ( Modern scientific name ) Chlorine.

ହରିତ୍‌କପିଶ—ସଂ.ବିଣ ପୁଂ—ଶାଗୁଆ ଓ ମାଟିଅମିଶା ବର୍ଣ୍ଣବିଶିଷ୍ଟ[ହି.ଶ.]
Haritakapiśa Of green and brown colour. (ହରିତକପିଶା—ସ୍ତ୍ରୀ)

ହରିତ ଗୋମୟ—ସଂ ବି[କର୍ମଧା]—ଟଟକା ଗୋବର(ଗୋଭିଲ ଗୃହ୍ୟସୂତ୍ର)
Harita gomaya Fresh cowdung.

ହରିତନ୍—ଦେ. ବି (ଅ. ହର୍‌ତନ୍)—ହର୍‌ତନ୍ (ଦେଖ)—
Haritan Har-tan [See]

ହରିତ ପକ୍ଷୀ—ସଂ ବି—ହରିଡ଼ା ଚଢ଼େଇ (ଦେଖ)—
Harita pakshi Hararda chardhei (See)

ହରିତ ପତ୍ରିକା (ଲତା)—ସଂ ବି—ପାଚୀ [ରାଜନିର୍ଘଣ୍ଟ] (ଦେଖ)—
Harita patrikā[lata] Pāchi [See]

ହରିତ ବସନ—ଦେ. ବି (ସଂ. ହରିତ୍+ବସନ=ହରିଦ୍‌ବସନ)—
Harita basana ଶାଗୁଆ ଲୁଗା—Green cloth [ଦ୍ର—ବହୁତ ହରିତ ବସନେ ହୋଇଛନ୍ତି—ଭଞ୍ଜ ବୈଦେହୀଶ ବିଳାସ] ଦେ ବିଣ (ସଂ. ହୃତ ବସନ)—୧। ଯାହାଙ୍କ ବସନ ହୃତ ହୋଇ ଅଛି—1. Having the cloths stolen or taken away. ୨ । ବିବସ୍ତ୍ର; ନଗ୍ନ—2. Naked. ୩ । (ସଂ ହରିଦ୍ ବସନ) ଶାଗୁଆ ଲୁଗା ପିନ୍ଧିଥିବା—3. Wearing green cloth.

ହରିତ ମଣି—ସଂ. ବି—ମରକତ ମଣି—
Harita mani Emerald.

ହରିତର ଶାକ—ସଂ. ବି—ଶିଗ୍ରୁ; ସଜନା (ରାଜନିର୍ଘଣ୍ଟ)—
Haritara śāka The moringa tree.

ହରିତା—ସଂ. ବିଣ (ହରିତ+ସ୍ତ୍ରୀ ଆ)—ହରିତର ସ୍ତ୍ରୀଲିଙ୍ଗ—Femi.
Haritā nine form of Harita ବି—୧ । ଦୂବ—(ମେଦିନୀ) —1. Creeping grass; cynoden. ୨ । ଜୟନ୍ତୀ (ରାଜନିର୍ଘଣ୍ଟ) (ଦେଖ)—2. Jayanti (See). ୩ । ହଳଦୀ (ରାଜନିର୍ଘଣ୍ଟ)—3. Turmeric. ୪ । କପିଳ ଦ୍ରାକ୍ଷା(ରାଜନିର୍ଘଣ୍ଟ)—4. A sort of brown grape. ୫ । ପାଚୀ (ଦେଖ)—5 Pāchi (See). ୬ । ନୀଳ ଦୂର୍ବା (ରାଜନିର୍ଘଣ୍ଟ)—6. The green creeping grass. ୭ । କପିଳା ଗୋ (ହି. ଶ)—7. Brown cow. ୮ । (ହର+ସ୍ୱାର୍ଥେ ତା)—ହରପଣ ବା ଶିବପଣ 8. The state of being God.

ହରିତାୟମାନ—ସଂ. ବିଣ (ହରିତାୟ ନାମ ଧାତୁ+କର୍ତ୍ତୃ. ଅନ)—
Haritāyamāna ୧ । ହରିଦ୍‌ବର୍ଣ୍ଣ ହେଉଥିବା—1. Verdant

green. ୨ । ଯାହା ହରିଦ୍ବର୍ଣ୍ଣ ଦେଖା ଯାଉଅଛି—
[ହରିତାୟମାନା—ସ୍ତ୍ରୀ] 2. Looking green.

**ହରିତାଳ**—ସଂ. ବି—[ହରିତା+ଅଲଧାତୁ=ଭୂଷିତ କରିବା+କର୍ତ୍ତ୍ରି.ଅ;
**Haritāla** ଅଥବା ହରି+ତାଳ—ଏହା ହରିଙ୍କ ବୀର୍ଯ୍ୟ ବୋଲି ପୁରାଣରେ କଥିତ]—୧ । ପାରଦଗର୍ଭକ ପୀତବର୍ଣ୍ଣ ବିଷାକ୍ତ ଉପଧାତୁ ବିଶେଷ—1. Yellow crpiment; yel'ow arsenic. [ଦ୍ର—ଏହା ଶଙ୍ଖ ଓ ଗନ୍ଧକ ମିଶ୍ରିତ ଖଣିଜ ପୀତବର୍ଣ୍ଣ ଉପଧାତୁ । ଏହାକୁ ଆୟୁର୍ବେଦୋକ୍ତ ପ୍ରକ୍ରିୟାରେ ଶୋଧିତ କରି ଭସ୍ମ କରି ଔଷଧରେ ପ୍ରୟୋଗ କରାଯାଏ । ଏହାକୁ ମଧ୍ୟ ଘୋରି କରି ଚିତ୍ରକରମାନେ ହଳଦିଆ ରଙ୍ଗ ତିଆରି କରନ୍ତି । ହରିତାଳ ୨ ପ୍ରକାର ଯଥା—
୧ । ପତ୍ର ହରିତାଳ—ଏହା ଅନ୍ୟ ହରିତାଳ ଅପେକ୍ଷା ଗୁଣରେ ଶ୍ରେଷ୍ଠ । ଏହା ସ୍ବର୍ଣ୍ଣବର୍ଣ୍ଣ, ଗୁରୁ, ଅଭ୍ର ସଦୃଶ ସ୍ତବକ ବିଶିଷ୍ଟ, ସ୍ନିଗ୍ଧ ରସାୟନ ।
୨ । ପିଣ୍ଡହରିତାଳ—ସ୍ତବହୀନ, ପିଣ୍ଡ ସଦୃଶ, ବାଲୁକା ଓ ସ୍ବଳ୍ପ ଗୁଣଶାଳୀ, ଲଘୁ, ଓ ସ୍ତ୍ରୀ-ରଜୋନାଶକ ।
ଏହା କଟୁକଷାୟ ରସ, ସ୍ନିଗ୍ଧ, ଉଷ୍ଣବୀର୍ଯ୍ୟ. ଶୋଧିତ ହରିତାଳ ବିଷଦୋଷ, କଣ୍ଡୁ, କୁଷ୍ଠ, ମୁଖରୋଗ, ତ୍ବଗ୍‌ଦୋଷ, ଭୂତାବେଶ, ରକ୍ତ ଦୋଷ, କଫ, ପିତ୍ତ, କେଶ ଓ ବ୍ରଣନାଶକ । ଅଶୋଧିତ ହରିତାଳ ଶରୀରର ଲାବଣ୍ୟନାଶକ, ବାତଶ୍ଳେଷ୍ମବର୍ଦ୍ଧକ ଏବଂ ସନ୍ତାପ, ଆକ୍ଷେପ ଓ କୁଷ୍ଠରୋଗର ଉତ୍ପାଦକ ।

[ସଂ. ପର୍ଯ୍ୟାୟ— ତାଳ, ତାଳକ, ଆଳ, ପୀତଳ, ପିଞ୍ଜଳ, ଗୋଦନ୍ତ, ନଟମଣ୍ଡନ, ହରବୀଜ, ସିନ୍ଧଧାତୁ, ବର୍ଣ୍ଣକ, ନଟଭୂଷଣ, ପୀତ, ଗୋରୋଚ, ଚିତ୍ରାଙ୍ଗ, ପିଞ୍ଜରକ, ବୈଦଳ, କନକରସ, କାଞ୍ଚନକ, ବିଡ଼ାଳକ, ଚିତ୍ରଗନ୍ଧ, ପିଙ୍ଗ, ଶୈଙ୍ଗସାର, ଗୌରିଲଲିତ]

ହରିତାଳ ଭସ୍ମ ଜ୍ବରଘ୍ନ, ସନ୍ନିପାତଘ୍ନ ଓ କୁଷ୍ଠ ଏବଂ ମୃତ୍ୟୁ ନାଶକ । (ଭାବପ୍ରକାଶ)

ହରିତାଳ ଚୂର୍ଣ୍ଣ ଶରୀରର ଲୋମଯୁକ୍ତ ସ୍ଥାନରେ ବୋଳିଲେ ସେଠାରୁ ଲୋମଯାକ ଉଠିଯାଏ । ହରିତାଳର ବାହ୍ୟ ପ୍ରୟୋଗ ଦ୍ବାରା ସକଳପ୍ରକାର କ୍ଷତ ଓ ବିଶେଷତଃ କୀଟଯୁକ୍ତ କ୍ଷତ ଶୀଘ୍ର ନିବାରିତ ହୁଏ ।
ପୁରାଣ ମତରେ ହରିଙ୍କ ବୀର୍ଯ୍ୟ=ହରିତାଳ
ଲକ୍ଷ୍ମୀଙ୍କ ରଜଃ=ମନଃଶିଳା
ଶିବଙ୍କ ବୀର୍ଯ୍ୟ=ପାରଦ
ପାର୍ବତୀଙ୍କ ରଜଃ=ଗନ୍ଧକ ।

ହରିତାଳ ଚୂର୍ଣ୍ଣ କରି କାଞ୍ଜିରେ କଖାରୁ ଓ କଖାରୁ ରସରେ ଦୋଳାଯନ୍ତ୍ରରେ କଖାରୁ ତଇଳ ତୈଳ ଓ ତ୍ରିଫଳା-ରସରେ ପାକ କଲେ ଏହା ଶୋଧିତ ହୁଏ ଓ ଶ୍ବେତପୁନର୍ଣ୍ଣବା ରସରେ ଖଲ, ଶ୍ବେତପୁନର୍ଣ୍ଣବା ରସରେ ଗୋଟିଏ ହାଣ୍ଡି ପୂର୍ଣ୍ଣ କରି ଚୁଲିରେ ୧୦ ଦିନ ପାକ କଲେ ଏହା ମାରିତ ବା ଭସ୍ମ ହୁଏ । ]

[ଦ୍ର- ହରିତାଳ ଗୋଷ୍ଠ ମଧ୍ୟ ହରି । ହରିଣାକ୍ଷୀ ମୋ ହୃଦେ ବିହରି—ଭଞ୍ଜ ପ୍ରେମସୁଧାନିଧି ।)
୨ । ହରଡ଼ ଚଡ଼େଇ ( ଦେଖ )—2 Hararda chardhei [See] ଦେ. ବି—ହରତାଳ (ଦେଖ)— Haratāla (See)

**ହରିତାଳକ**—ସଂ ବି (ହରିତାଳ+ସ୍ବାର୍ଥେ କ)—୧ । ହରିତାଳ (ଦେଖ)
**Haritālaka** 1. Haritala [See] ୨ । ନାଟକାଦିର ଅଭିନୟାର୍ଥେ ଅଭିନେତା ଆଦିଙ୍କର ଦେହରେ ରଙ୍ଗ ବୋଳାଯିବା କର୍ମ ( ହି. ଶ. )—2. The painting of the bodies of the actors for a dramatic performance.

**ହରିତାଳ ଭସ୍ମ**—ସ. ବି—ଆୟୁର୍ବେଦୋକ୍ତ ବିଧିରେ ପ୍ରସ୍ତୁତ ହରିତାଳର
**Haritāla bhasma** ପାଉଁଶ—Yellow orpiment reduced to ashes by prescribed process. [ଦ୍ର—ହରିତାଳ ତଳେ ଟିକା ଦେଖ । ଏହା ଜ୍ବର ଓ ସନ୍ନିପାତଘ୍ନ ଔଷଧ ! ]

**ହରିତାଳି**—ଦେ. ବିଣ—୧ । ହରିତାଳ ସମ୍ବନ୍ଧୀୟ—1. Relating
**Haritāli** to yellow or piment. ୨ । ହରିତାଳ ପରି
हरितालि ରଙ୍ଗ ବିଶିଷ୍ଟ—2. Of the colour of yellow
**हरिताली** orpiment. ୩ । ହରିତାଳ ରଞ୍ଜିତ—3. Painted with yellow orpiment.

**ହରିତାଳିଆ**—ଦେ. ବିଣ—ହରିତାଳି (ଦେଖ)—
**Haritālia** Haritāli (See).

**ହରିତାଳି(ଳି)କା**—ସଂ. ବି—ଭାଦ୍ର ଶୁକ୍ଳ ଚତୁର୍ଥୀ—1. The 4th
**Haritāli(li)kā** day of the bright lunar fortnight of Bhādra. [ଲୋକ—ଏହି ଦିନ ହରିଙ୍କୁ ପୂଜା କରାଯାଏ ଓ ସ୍ୟମନ୍ତକ ଉପାଖ୍ୟାନ ପାଠ କରାଯାଏ ଓ ବିଷ୍ଣୁ-ପୁରାଣୋକ୍ତ—

'ସିଂହଃ ପ୍ରସେନ ମବଧୀତ୍
ସିଂହୋ ଜାମ୍ବବତା ହତଃ
ସୁକୁମାରକ ମା ରୋଦୀ
ସ୍ତବ ହ୍ୟେଷ ସ୍ୟମନ୍ତକଃ

ଏହି ମନ୍ତ୍ରଦ୍ବାରା ଅଭିମନ୍ତ୍ରିତ ଜଳକୁ ପାନ କରିବାକୁ ହୁଏ । ଏହିଦିନ ମଧ୍ୟ ଗଣେଶ ଚତୁର୍ଥୀ ବ୍ରତ କରାଯାଏ । ଏହିଦିନ ଚନ୍ଦ୍ରଙ୍କୁ ଦର୍ଶନ କଲେ ପାପ ହୁଏ । ] ୨ । (ମତାନ୍ତରରେ) ଭାଦ୍ର ଶୁକ୍ଳ ତୃତୀୟା (ହି. ଶ)—2. The 3rd day of the bright fortnight of Bhadra [ଦ୍ର—୧ ।
हरिआलितीज ଏହିଦିନ ସ୍ତ୍ରୀମାନେ ନିର୍ଜଳ ଉପବାସ କରନ୍ତି, ନୂଆ ଲୁଗା ପିନ୍ଧନ୍ତି ଓ ଶିବ ପାର୍ବତୀଙ୍କ ପୂଜା କରନ୍ତି (ହି. ଶ) । [ଦ୍ର—୨ । ହିନ୍ଦୀ ଶବ୍ଦସାଗରରେ ହରିତାଳିକା ଭାଦ୍ର ଶୁକ୍ଳ ତୃତୀୟାରେ ହେବା ଲେଖା ଅଛି । ଏହା ଆମ ଦେଶର ବାଲି ତୃତୀୟା ବ୍ରତ । ସେହିଦିନ ଆମ ଦେଶର ସ୍ତ୍ରୀମାନେ ନିର୍ଜଳ ଉପବାସ କରନ୍ତି । ତହିଁ ଆରଦିନ ଗଣେଶ ଚତୁର୍ଥୀ

ଓ ହରିତାଳିକା ବ୍ରତ ହୁଏ ଯେଉଁଦିନ ତୃତୀୟା ଓ ଚତୁର୍ଥୀ ତିଥି ଏକା ଦିନକେ ପଡ଼େ (ଯଥା—୧୯୩୯ ସେପ୍ଟେମ୍ବର ୧୬ ତାରିଖ) ସେଦିନ ହରିତାଳିକା ଓ ଗଣେଶ ଚତୁର୍ଥୀ ଏକା ଦିନକେ ହୁଏ । ଯେଉଁ ତୃତୀୟା ଓ ଚତୁର୍ଥୀ ତିଥି ଭିନ୍ନ ଦିନରେ ପଡ଼େ (ଯଥା—୧୯୩୮ ସେପ୍ଟେମ୍ବର ୭ ତାରିଖ ତୃତୀୟା ଓ ୮ ତାରିଖ ଚତୁର୍ଥୀ) ସେ ବର୍ଷ ଏ ବ୍ରତ ପୃଥକ୍ ଦିନ କରାଯାଏ । ବାଲି ତୃତୀୟାରେ ଜମା, ମହେଶ୍ୱର, ଗଣପତ୍ୟାଦି ପୂଜା ବା ଗୌରୀ ବ୍ରତ ଓଡ଼ିଶାର ଅନେକ ସ୍ତ୍ରୀ କରନ୍ତି ।] ୩ । ଦୂବ (ତ୍ରିକାଣ୍ଡ ଶେଷ)—3. The dūrbā grass; the creeping grass. ୪ । ଦକ୍ଷିଣରୁ ଉତ୍ତରକୁ ପଡ଼ିଥିବା ଛାୟାପଥ ବା ନକ୍ଷତ୍ର ରେଖା—4. The milky way extending from the south to the north in the sky.

**ହରିତାଳି କାଗଜ**—ଦେ. ବି—(ଏହାର ବର୍ଣ୍ଣ ଈଷତ୍ ହଳଦିଆ ଥିବାରୁ) Haritāli kāgaja —ପୂର୍ବେ ଓଡ଼ିଶାରେ କଟକ ଜିଲ୍ଲାର ହରିତାଲି କାଗଜ ପଦ୍ମପୁର ଅଞ୍ଚଳରେ ହାତଦ୍ୱାରା ମୁସଲମାନମାନଙ୍କ ପିଲାଟଂଗ କାଗଜ ପ୍ରସ୍ତୁତ କରୁଥିବା ଏକ ପ୍ରକାର ହଳଦିଆ କାଗଜ—A sort of handmade coarse paper formerly manufactured by Mahomedans in the Padmapur village near Cuttack. [ଦ୍ର—ପୁରୁଣା ଜମିଦାରମାନଙ୍କ ସିନ୍ଦୁକରେ ଏହି ହରିତାଳି କାଗଜରେ ଲେଖା ହୋଇଥିବା ଖାତା ବର୍ତ୍ତମାନ ମଧ୍ୟ ସଞ୍ଚିତ ଥିବା ଦେଖାଯାଏ ।

**ହରିତାଳୀ**—ସଂ. ବି (ହରିତାଳ+ସ୍ତ୍ରୀ ଈ)—୧ । ଦୂର୍ବା; ଦୂବ—Haritāli 1. The Dūba grass; the creeping grass. ୨ । ଦକ୍ଷିଣରୁ ଉତ୍ତରକୁ ବ୍ୟାପିଥିବା ଛାୟାପଥ ବା ନକ୍ଷତ୍ରପୁଞ୍ଜ ଯୁକ୍ତ କ୍ଷୀଣାଲୋକ ବିଶିଷ୍ଟ ରେଖା—2. The milky way in the sky extending north to south. ୩ । ଭାଦ୍ର ଶୁକ୍ଳ ଚତୁର୍ଥୀ (ମତାନ୍ତରରେ ଶୁକ୍ଳ ତୃତୀୟା)—3. The 4th day of the bright fortnight of Bhādra (or, according to some, the 3rd day). ୪ । ଖଡ୍ଗର ତୀକ୍ଷ୍ଣ ଅଂଶ (ହି. ଶ)—4. The sharp-edged part of a sword. ୫ । ବାୟୁ (ହି. ଶ)—5. Air. ୬ । ଆକାଶରେ ମେଘ ଅତି ପତଳା ରେଖା (ହି. ଶ)—6. A thin line of cloud in the sky. ୭ । ଜ୍ୟୋତିଷ୍ମତୀ, ଫୁଟି ଫୁଟିକା ଗୁଳ୍ମ (ହିନ୍ଦ—ମାଲକଙ୍ଗନି) [ହି. ଶ]—7. Cardiospermum Helicacabum (plant).

**ହରିତାଲୁକ**—ସଂ. ବି (ହରିତ+ଆଲୁକ)—ହରିତ ପକ୍ଷୀ [ଦେଖ]—Haritāluka Harita pakshī (See)

**ହରିତାଶ୍ମ**—ସ. ବି (ହରିତ+ଅଶ୍ମନ୍; ୧ମା; ୧ବ)—୧ । ତୁତ୍ଥ; ତୁତିଆ; Haritaśma ମୟୂରଗ୍ରୀବ (ରାଜନିର୍ଘଣ୍ଟ)—1. Sulphate of copper. ୨ । ମାଳାଭ ହରିଦ୍‌ବର୍ଣ୍ଣ ରତ୍ନ ବିଶେଷ; ପିରୋଜ ମଣି (ରାଜନିର୍ଘଣ୍ଟ)—2. A gem of emerald colour; turquoise. [ଦ୍ର—ଏହା ପାରସ୍ୟଦେଶରେ ମିଳେ]

**ହରିତୀକୃତ**—ସ. ବିଣ (ହରିତ+ଅଭୂତ ତଦ୍ଭାବେ ଚ୍ୱି+କୃତ)—ଯେଉଁ Haritīkruta ବସ୍ତୁ (ପୂର୍ବେ ହରିଦ୍‌ବର୍ଣ୍ଣ ନ ଥିଲା) ବର୍ତ୍ତମାନ ହରିଦ୍‌ବର୍ଣ୍ଣ ବିଶିଷ୍ଟ କରି ଯାଇଅଛି—Recently painted or made green.

**ହରିତ୍ପର୍ଣ୍ଣ**—ସ. ବି—ହରିତପର୍ଣ୍ଣ (ଦେଖ) Haritparṇṇa Harita parṇṇa (See)

**ହରିଦ୍‌ଗର୍ଭ**—ସଂ. ବି (ବହୁବ୍ରୀହି)—ହରିଦ୍‌ବର୍ଣ୍ଣ କୁଶ—Green Kuśa Harid-garbha grass. [ଦ୍ର—ଏହାର ମୂଳ ହିମ, ରୁଚ୍ୟ, ସଂ ପର୍ଯ୍ୟାୟ— ମଧୁର, ପିତ୍ତ ନାଶକ, ରକ୍ତଜ୍ୱର, ଓ ତୃଷା, ଶ୍ୱାସ ଓ ଖରପତ୍ର, ବୃହଚ୍ଛଦ, କାମଳ ନିବାରକ—ରାଜନିର୍ଘଣ୍ଟ] ରୂକ୍ଷଦର୍ଭ, ଦୀର୍ଘପତ୍ର, ପତ୍ରତୃକ, ଓ ହରିଦର୍ଭ ]

**ହରିଦର୍ଭ**—ସଂ. ବି—୧ । ହରିଦ୍‌ଗର୍ଭ (ଦେଖ)—1. Harid-garbha Haridarbha (See) ୨ । ଶାଗୁଆ ଘୋଡ଼ା (ହି. ଶ)—2. A bay horse. ୩ । ସୂର୍ଯ୍ୟ (ହି. ଶ)—3. The sun

**ହରିଦଶ୍ୱ**—ସ. ବି—(ବହୁବ୍ରୀହି; ହରିତ=ଶାଗୁଆ ଅଟେ ଅଶ୍ୱ ଯାହାଙ୍କର) Haridaśwa ୧ । ସୂର୍ଯ୍ୟ (ଅମର)—1. The Sun god. ୨ । ଅର୍କବୃକ୍ଷ—2. A plant; Calotropis-Gigantea.

**ହରିଦାସ**—ସଂ. ବି, ପୁଂ—୧ । ହରିଙ୍କ ସେବକ—1. A servant of Haridāsa Hari. ୨ । ବୈଷ୍ଣବ; ଏକାନ୍ତ ହରିଭକ୍ତ ବ୍ୟକ୍ତି—2. A devotee of Hari. ଦେ. ବି ପୁଂ—୧ । ପୁରୁଷଙ୍କ ନାମ—1. A name given to males. ୨ । (ନାମ) ଚୈତନ୍ୟ ଦେବଙ୍କ ସମସାମୟିକ ଜଣେ ସାଧୁ—2. Name of a pious Baishṇaba devotee, contemporary of Chaitanya deba. [ଦ୍ର—ଏହାଙ୍କ ଜନ୍ମସ୍ଥାନ ବଙ୍ଗଦେଶ । ଏ ଜନ୍ମତଃ ମୁସଲମାନ ଥିଲେ; ପରେ ବୈଷ୍ଣବଧର୍ମ ଗ୍ରହଣ କରି ଦିନରାତି ତେତନାବସ୍ଥାରେ ଥିବାବେଳେ ସର୍ବଦା ହରିନାମ କରୁଥିଲେ । ଏ ପୁରୀରେ ଶେଷଜୀବନ ଯାପନ କରିଥିଲେ ଓ ଚୈତନ୍ୟ ଦେବଙ୍କ କୋଳରେ ଏହାଙ୍କର ମୃତ୍ୟୁ ଘଟିଥିଲା । ପୁରୀ ସ୍ୱର୍ଗଦ୍ୱାର ନିକଟରେ ଏ ଯେଉଁଠାରେ ରହୁଥିଲେ ସେଠାରେ ବର୍ତ୍ତମାନ ଗୋଟିଏ ପବିତ୍ର ପୀଠ ହୋଇଅଛି ।] ୩ । ମହାରାଜ ରଣଜିତ୍ ସିଂହଙ୍କ ସମକାଳୀନ ଜଣେ ମହାପ୍ରାଣ ସାଧୁ—3. Name of a saint, contemporary of Ranjit Simha. [ଦ୍ର—ଏ ମହାତ୍ମା ଯୋଗସାଧନା ଦ୍ୱାରା ଅଦ୍ଭୁତ ଶକ୍ତିଲାଭ କରିଥିଲେ; ଏପରିକି, ସେ ଭୂମି ତଳେ ମାସାବଧି ପୋତା ରହି ପୁଣି ଉଠୁଥିଲେ । ସାହେବମାନେ ମଧ୍ୟ ଏହା ପ୍ରତ୍ୟକ୍ଷ କରିଥିଲେ । ଏ ୮୦ ବର୍ଷ ବୟସରେ ସ୍ୱଇଚ୍ଛା କ୍ରମେ ଦେହତ୍ୟାଗ କରିଥିଲେ ।]

ହରିଦାସ ସ୍ୱାମୀ—ଦେ॰ ବି॰(ନାମ)—ସମ୍ରାଟ୍ ଅକବରଙ୍କ ରାଜସଭାର
Haridāsa swāmī ପ୍ରଧାନ ଗାୟକ ତାନ୍‌ସେନ୍‌ଙ୍କ ସଙ୍ଗୀତ-ଗୁରୁ—
Name of the music teacher of the famous musician Tansen of Emperor Akbar's court. [ବି—ଏ ବୃନ୍ଦାବନ ବାସୀ ଥିଲେ। ତାନ୍‌ସେନ୍‌ଙ୍କ ଅପେକ୍ଷା ସଙ୍ଗୀତରେ ବେଶି ବିଦ୍ୱାନ୍ ଏବଂ ବୋଲି ସମ୍ରାଟ୍ ଶୁଣିଥିବାରୁ ତାନ୍‌ସେନ୍ ଏହାଙ୍କ ନାମୋଲ୍ଲେଖ କରିଥିଲେ। କିନ୍ତୁ ସମ୍ରାଟଙ୍କ ଆଦେଶରୁ ମାନ ଏ ରାଜସଭାକୁ ଆସିବେ ନାହିଁ ବୋଲି ତାନ୍‌ସେନ୍ କହିବାରୁ ତାଙ୍କ ଗାନ ଶୁଣିବାପାଇଁ ତାନ୍‌ସେନ୍‌ଙ୍କ ସମ୍ଭବାଦକ ଅନୁଚରରୂପେ ଅକବର୍ ତାନ୍‌ସେନ୍‌ଙ୍କ ସଙ୍ଗେ ଏହାଙ୍କଠାରୁ ବୃନ୍ଦାବନକୁ ଗଲେ। ଗୋଟିଏ ସଙ୍ଗୀତ ଗାଇବାକୁ ଏହାଙ୍କୁ ତାନ୍‌ସେନ୍ କହିବାରୁ ଏ ଗାଇଲେ ନାହିଁ। ତହୁଁ ତାନ୍‌ସେନ୍ ଗୋଟିଏ ଫିକର ପାଖ ଗୋଟିଏ ସଙ୍ଗୀତକୁ ଜାଣିଶୁଣି ଭୁଲ କରି ଗାଇଲେ। ସ୍ୱାମୀଜୀ ଶିଷ୍ୟଙ୍କର ଏ ଭୁଲକୁ ସହି ନ ପାରି ଉକ୍ତ ଗୀତକୁ ଠିକ୍ କରି ଗାଇବା ରୀତି ଶିଷ୍ୟଙ୍କୁ ବତାଇ ଦେବା ପାଇଁ ତାକୁ ଠିକ୍ କରି ଗାଇଲେ ଓ ସମ୍ରାଟ୍ ସ୍ୱାମୀଜୀଙ୍କ ଗୀତ ଶୁଣି ମୁଗ୍ଧ ହେଲେ—Mayurbhanj Chronicle, July 1937]

ହରିଦାସୀ—ସଂ ବି ସ୍ତ୍ରୀ—୧। ହରିଙ୍କ ସେବାକାରିଣୀ—1. A maid-
Haridāsī servant of Hari ୨। ହରିଭକ୍ତିପରାୟଣା ସ୍ତ୍ରୀ—
2. A female devotee of Hari. ଦେ.ବି. ସ୍ତ୍ରୀ—
ସ୍ତ୍ରୀ ଲୋକମାନଙ୍କ ନାମ—A name given to females.

ହରି ଦିନ (ଦିବସ)—ସଂ ବି—(ସଂ ପ୍ର. ଲୋ; ହରି ଭଜନାର୍ଥ ଉଦ୍ଦିଷ୍ଟ
Hari dina (dibasa) ଦିନ)—ଏକାଦଶୀ (ହି. ଶ)—The eleventh day of a lunar fortnight.

ହରି ଦିଶା—ସ. ବି—(ହରି ବା ଇନ୍ଦ୍ରଙ୍କ ଦ୍ୱାରା ପାଳିତ ଦିଗ)—ପୂର୍ବଦିଗ
Hari diśā (ହି. ଶ)—The eastern quarter of the earth. [ବି—ଏ ଦିଗର ଲୋକପାଳ ଇନ୍ଦ୍ର ଅଟନ୍ତି]

ହରି ଦେବ—ସ. ବି (ବହୁବ୍ରୀହି, ହରି ଅଟନ୍ତି ଦେବ=ଅଧିଷ୍ଠାତା ଦେବ
Hari deba ଯାହାର)—୧। (ଜ୍ୟୋତିଷ) ଶ୍ରବଣା ନକ୍ଷତ୍ର—
1. (Astrology) The 22nd asterism. [ବି—ଏ ନକ୍ଷତ୍ରର ଅଧିଷ୍ଠାତା ଦେବ ବିଷ୍ଣୁ] ୨। (କର୍ମଧା) ହରି ନାମକ ଦେବ—2. The Deity Hari.

ହରି ଦେବା—ଦେ. କ୍ରି—ଏକ ସଂଖ୍ୟାକୁ ଅନ୍ୟ ସଂଖ୍ୟାଦ୍ୱାରା ଭାଗ କରିବା—
Hari debā To divide a number by another.
ଭାଗକରା ਭਾਗਦੇਨਾ

ହରିଦ୍ଗର୍ଭ—ସ. ବି—ହରିଦ୍‌ଗର୍ଭ (ଦେଖ)—
Haridgarbha Harid-garbha (See)

ହରିଦ୍‌ବର୍ଣ୍ଣ—ସଂ ବି—(କର୍ମଧା)—ହରିଦ୍‌ବର୍ଣ୍ଣ (ଦେଖ)—
Haridbarnna Harid-barnna (See)

ହରିଦ୍ୱାର—ସଂ ବି—୧। ଉତ୍ତରଭାରତର ଯୁକ୍ତରାଜ୍ୟପ୍ରଦେଶରେ ଅବସ୍ଥିତ
Haridwāra ପ୍ରସିଦ୍ଧ ନଗର ଓ ତୀର୍ଥ—1. Hardwār, a town and place of Hindu pilgrimage in the United Provinces of Agra and Oadh. [ବି—ଏହି ନଗର ଗଙ୍ଗା ନଦୀ କୂଳରେ ଅବସ୍ଥିତ। ଏହି ସ୍ଥାନ ନିକଟରେ ଗଙ୍ଗା ପୃଥିବୀକୁ ଅବତରଣ କରିଥିବାରୁ ଏହାର ଅନ୍ୟ ନାମ ଗଙ୍ଗାଦ୍ୱାର। ଏଠାରେ ଗଙ୍ଗାସ୍ନାନ କଲେ ମହାଫଳ ଲାଭ ହୁଏ। ଏଠାରେ ବାର ବର୍ଷରେ କୁମ୍ଭ ମାସରେ ଗଙ୍ଗାସ୍ନାନ ନିମନ୍ତେ ଗୋଟିଏ ମହାମେଳା ହୁଏ ଓ ଭାରତର ସବୁଆଡ଼ୁ ବହୁ ଲକ୍ଷ ଯାତ୍ରୀ ଏଠାରେ ସମବେତ ହୁଅନ୍ତି। ଗଙ୍ଗା ଏହିଠାରୁ ଦକ୍ଷିଣବାହିନୀ ହୋଇ ବୋହି ଯାଇଅଛି। ଏହାର ଉତ୍ତରରେ ସାହେବମାନଙ୍କର ଗ୍ରୀଷ୍ମ ନିବାସ 'ଡେରାଡୁନ୍' ଅବସ୍ଥିତ। ଏହି ବାଟେ କେଦାରନାଥକୁ ଓ ବଦ୍ରୀନାଥକୁ ଯିବାକୁ ହୁଏ। ଏହିଠାରୁ ୧୪ ମାଇଲ୍ ଦୂରରେ ହୃଷୀକେଶ ଅବସ୍ଥିତ। ହରିଦ୍ୱାର ଗଙ୍ଗା ନଦୀର ଦକ୍ଷିଣତୀରସ୍ଥ ହିମାଳୟର ଅଂଶ ଶିବାଳକ ପର୍ବତଶ୍ରେଣୀର ପାଦଦେଶରେ ଅବସ୍ଥିତ। ପୂର୍ବ କାଳରେ କପିଳ ମୁନି ଏଠାରେ ଆଶ୍ରମ କରିଥିବାରୁ ଏହାକୁ କପିଳ ସ୍ଥାନ ମଧ୍ୟ ବୋଲାଯାଏ। ଗଙ୍ଗାତୀରରେ ବହୁ ଦେବଦେବୀଙ୍କ ମନ୍ଦିର ଓ ଶ୍ରୀବିଷ୍ଣୁଙ୍କ ପାଦପଦ୍ମ ପ୍ରତିଷ୍ଠିତ। ସମ୍ମୁଖରେ ବିଦ୍ୟମାନ ବ୍ରହ୍ମକୁଣ୍ଡରେ ସ୍ନାନ ଓ ପିଣ୍ଡଦାନ କରିବାକୁ ହୁଏ। ହରିଦ୍ୱାରର ଉତ୍ତରଦିଗ ଭୂମିକୁ ସ୍ୱର୍ଗଭୂମି ବା ଭୋଗ ଭୂମି କହନ୍ତି—ମଦନମୋହନ, ତୀର୍ଥଦର୍ଶନ। ଏହାର ଅଦୂରରେ ଆର୍ଯ୍ୟସମାଜୀମାନଙ୍କ ପ୍ରତିଷ୍ଠିତ ଗୁରୁକୁଳାଶ୍ରମରେ ଅନେକ ହିନ୍ଦୁ ଛାତ୍ର ବ୍ରହ୍ମଚର୍ଯ୍ୟସାଧନାପୂର୍ବକ ବିଦ୍ୟାଧ୍ୟୟନ କରୁଅଛନ୍ତି। (ଉତ୍କଳ ସାହିତ୍ୟ ୬୦।୧୨।୧୬)]
୨। ରାଜପ୍ରାସାଦର ବା ମନ୍ଦିରର ସିଂହଦ୍ୱାର—
2. Lions gate of a palace or temple. (ଯଥା—ହରି ହରିଦ୍ୱାରରେ ମିଳି ହରିଧ୍ୱନି କଲେ ହରିତ ପୂରିତ ଭୁବନରେ ତହୁଁ ହେଲେ—ଭଞ୍ଜ କୋଟିବ୍ରହ୍ମାଣ୍ଡସୁନ୍ଦରୀ)

ହରିଦ୍ୱାର ମେଳା—ଦେ॰ ବି—ବାର ବର୍ଷରେ ଥରେ ହରିଦ୍ୱାରଠାରେ
Haridwāra melā ଗଙ୍ଗାସ୍ନାନ ପାଇଁ ଉପସ୍ଥିତ ବହୁ ଲକ୍ଷ
হরিদ্বার মেলা हरिद्वार मेला ଯାତ୍ରୀଙ୍କର ସମାଗମ—
A religious bathing fair held at Hardwār once in every 12 years.

ହରିଦ୍ର—ସଂ ବି—ହଳଦିଆ ଚନ୍ଦନ (ହି.ଶ)—
Haridra Yellow sandal wood.

ହରିଦ୍ରବ—ସଂ ବି—ନାଗେଶ୍ୱର ଚୂର୍ଣ୍ଣ (ନିଘଣ୍ଟ ଶେଷ)—
Haridraba Powdered pollen of Nāgeśwara flower.

ହରିଦ୍ରା—ସଂ ବି (ହରି=ପୀତବର୍ଣ୍ଣ+ଦ୍ରୁ ଧାତୁ=ପ୍ରାପ୍ତ ହେବା+କର୍ତ୍ତୃ
Haridrā ଅ+ସ୍ତ୍ରୀ ଆ; ବା ହରି=ବର୍ଣ୍ଣ ଇତ୍ୟାଦି+ଦ୍ରୁ ଧାତୁ=ଆଦର କରିବା+କର୍ମ ଅ+ସ୍ତ୍ରୀ ଆ)—
(ସଂ ପର୍ଯ୍ୟାୟ—କାଞ୍ଚନୀ, କୃଷ୍ଣିକା ହଳଦିଆବର୍ଣ୍ଣ-

ପୀତା, ବରବର୍ଣ୍ଣିନୀ, କୃମିଘ୍ନା, ହଳଦୀ, ଯୋଷିତପ୍ରିୟା, ହରିବିଳାସିନୀ, ନିଶା ଓ ରାତ୍ରିବାଚକ ଅନ୍ୟ ଶବ୍ଦମାନ ।) ପ୍ରକାଶକ ଓ ଦେହର ବର୍ଣ୍ଣ-ବୃଦ୍ଧିଯୁକ୍ତ ଗୁଳ୍ମ ମୂଳବିଶେଷ; ହଳଦୀ—Turmeric; Carcum Longa.

[ ଦ୍ର—ଭାରତବର୍ଷରେ ସର୍ବତ୍ର ହଳଦୀର ଚାଷ ହୁଏ । ଏହାର ଗଛ ୧ ହାତ ଉଚ୍ଚ ଏବଂ ଏହା ଅଦାଜାତୀୟ । ବଟା ହଳଦୀ ସ୍ତ୍ରୀ ଓ ଶିଶୁମାନଙ୍କ ଦେହରେ ବୋଳାଯାଏ; ତିଅଣରେ ମସଲାରୂପେ ବ୍ୟବହାର କରାଯାଏ; ଦେବମୂର୍ତ୍ତିଙ୍କ ଦେହରେ ଓ ଶୁଭକର୍ମରେ ଏହା ବ୍ୟବହୃତ ହୁଏ । ହଳଦୀ ଗଛ ଶୁଖିଗଲେ ଏଥିର କଞ୍ଚା ମୂଳକୁ କ୍ଷେତରୁ ଖୋଳି ତାକୁ ଗୋବରପାଣିରେ ଉଷୁନି ତା ପରେ ଶୁଖାଇକରି ରଖି ଆବଶ୍ୟକବେଳେ ଲୋକେ ବ୍ୟବହାର କରନ୍ତି ।

ସ୍ତ୍ରୀମାନେ ହଳଦୀବଟା ସଙ୍ଗେ ତେଲ ମିଶାଇ ଦେହରେ ବୋଳହୁଅନ୍ତି ଓ ଏବେ ମଧ୍ୟ ମଫସଲର ଅଶିକ୍ଷିତ ଓ ଇତର ଶ୍ରେଣୀର ସ୍ତ୍ରୀମାନଙ୍କର ହଳଦୀ, ମେଥି-ଗୁଣ୍ଡା, ଚୂଆ, ମହଣ ଓ ମାଳସା କେଶବିନ୍ୟାସ ଓ ପ୍ରସାଧନର ପ୍ରଧାନ ଅଙ୍ଗ ହୋଇ ରହିଅଛି ।

ଓଡ଼ିଶାର ପ୍ରାୟ ସବୁ ଅଞ୍ଚଳରେ ହଳଦୀ ଚାଷ ହୁଏ । ହଳଦୀ ଫସଲ ସାଧାରଣତଃ ଡିହ ଜମିରେ ଓ ଡୋଲିଆ ଅଡ ଗଛଥିବା କଳକୁଷ୍ଟି ଜମିରେ ଆବାଦ ହୁଏ । ଏ ଦେଶରେ ଯେଉଁ ହଳଦୀ ହୁଏ ତାକୁ ଦେଶୀ ବା ଓଡ଼ିଶୀ ହଳଦୀ ବୋଲାଯାଏ । ଗଡ଼ଜାତରୁ ଯେଉଁ ହଳଦୀ ଆସେ ତାକୁ କୁଆରପୁଣ(ର)ଆ ହଳଦୀ ବୋଲାଯାଏ । ଆଉ ଏକପ୍ରକାର ହଳଦୀ ଅଛି; ଏହାକୁ କାଟିଲେ ସାଧାରଣ ହଳଦୀ ଅପେକ୍ଷା ଏହାର ରଙ୍ଗ ଗାଢ଼ତର ଦେଖାଯାଏ । ଏ ହଳଦୀକୁ କ୍ଷେତରେ ଏକ ବରଷରୁ ବେଶିକାଳ ରଖିବା ପରେ ଖୋଳିବାକୁ ହୁଏ । ଏହାକୁ ବଣହଳଦୀ କହନ୍ତି । ଗଡ଼ଜାତର କନ୍ଧଡ଼ା ( କନ୍ଧମାନଙ୍କ ଅଧ୍ୟୁଷିତ ଅଞ୍ଚଳ)ରେ କନ୍ଧମାନେ ହଳଦୀ ଚାଷରେ ବିଶେଷ ଉଦ୍‌ଯୋଗୀ ଅଟନ୍ତି । ହଳଦୀ ଫସଲ ପାଇଁ ପୂର୍ବେ କନ୍ଧମାନେ କେରବଲ ( ମେରିଆ ) ଦେଇ ସେହି ବଳିର ମାଂସକୁ ହଳଦୀ କିଆରିରେ ପୋତୁଥିଲେ । ଏବେ ଇଂରାଜ ଗବର୍ଣ୍ଣମେଣ୍ଟ ବହୁ ଚେଷ୍ଟା କରି ଏହି ନୃଶଂସ ପ୍ରଥା ରହିତ କରିଅଛନ୍ତି । କଦଳୀଅ ପିଠଉକୁ ହଳଦୀ ପତ୍ର ଭିତରେ ରଖି ଅଥାରରେ ସିଝାଇ ଲୋକେ ପିଠା କରନ୍ତି । କଞ୍ଚା ହଳଦୀ ବାଟିକରି ଖାଇଲେ କୃମି ନାଶ ହୁଏ । ବୈଦ୍ୟଶାସ୍ତ୍ର ମତରେ ହରିଦ୍ରା ୪ ପ୍ରକାରର । ଯଥା—

୧ । ସାଧାରଣ ହରିଦ୍ରା ।

୨ । କର୍ପୂର ହରିଦ୍ରା—ଏହା ବଣରେ ଜନ୍ମେ, ଏହାର ପତ୍ର ଓ ମୂଳ କର୍ପୂର ପରି ସୁବାସଯୁକ୍ତ; ଅମ୍ବ-ଅଦା ।

୩ । ବନ ହରିଦ୍ରା—ଏହା ବଣରେ ଜନ୍ମେ; ଏହାର ପତ୍ର ଦେଶୀ ହଳଦୀ ପତ୍ରଠାରୁ ଚୌଡ଼ା ଓ ଅଗ୍ରର ଉଭୟପାଖ ସମାନ । ଏହା କୁଷ୍ଠ ବାତାସ୍ରନାଶକ ।

୪ । ଦାରୁହରିଦ୍ରା—ସାଧାରଣ ହଳଦୀ ଅପେକ୍ଷା ଏ ହଳଦୀର ମୂଳ ଓ ଗଛ ଶ୍ରେଷ୍ଠ ।

ହଳଦୀ କଟୁ, ତିକ୍ତରସ, ଅଙ୍ଗର ବର୍ଣ୍ଣକାରକ, ଉଷ୍ଣବୀର୍ଯ୍ୟ, ରୁକ୍ଷ, ଶୋଧକ ।

ଏହା କଫ, ବାତ, ରକ୍ତଦୋଷ, କୁଷ୍ଠ, କଣ୍ଡୁ, ପ୍ରମେହ, ତ୍ୱଗ୍‌ଦୋଷ, ବ୍ରଣ, ଶୋଥ, ପାଣ୍ଡୁ, କୃମି, ବିଷ-ଦୋଷ, ପୀନସ, ଅରୁଚି, ଅପଚୀ ରୋଗରେ ଓ ଦାଦରେ ଉପକାରୀ ।]

**ହରିଦ୍ରା ଖଣ୍ଡ**—ସଂ. ବି—ଆୟୁର୍ବେଦୋକ୍ତ ପ୍ରକ୍ରିୟାରେ ପ୍ରସ୍ତୁତ ଓ ପ୍ରଧାନ Haridrā khanda ଉପାଦାନରୂପେ ବ୍ୟବହୃତ ହଳଦୀ ଦ୍ୱାରା ତିଆରି ଔଷଧ ବିଶେଷ—A kind medicinal preparation of which the chief ingredient turmeric.

**ହରିଦ୍ରାଗଣପତି** ( ଗଣନାଥ, ଗଣେଶ )—ସ. ବି—୧ । ମନ୍ତ୍ରପାଠ ପୂର୍ବକ Haridrā ganapati (gananātha, ganesa) ମୂର୍ତ୍ତି ଉପରେ ହଳଦୀ ଚଢାଯିବା ଗଣେଶଙ୍କ ମୂର୍ତ୍ତି ବିଶେଷ (ହି.ଶ)—1. A particular image of Ganesa on which layers of turmeric paste are put.

୨ । ତନ୍ତ୍ରୋକ୍ତ ବିଧିରେ ଏକାକ୍ଷର ମହାମନ୍ତ୍ର ଜପ ପୂର୍ବକ ପୂଜା କରାଯିବା ଗଣେଶ ମୂର୍ତ୍ତି ( ତନ୍ତ୍ରସାର )—2. An image of God Ganesa worshipped according to Tantric rites.

**ହରିଦ୍ରାଙ୍ଗ**—ସ. ବି—୧ । ହରଡ଼ ଚଢ଼େଇ (ଦେଖ)—1. Hararda Haridrānga chardhei (See). ୨ । ହଳଦୀ ବସନ୍ତ (ଦେଖ)—2. Haladi basanta (See). ୩ । ଏକ ପ୍ରକାର ପକ୍ଷୀ (ହି. ଶ.)—3. A kind of pigeon.

**ହରିଦ୍ରାଦ୍ୱୟ**—ସ. ବି—(ବୈଦ୍ୟକ) ହଳଦୀ ଓ ଦାରୁହଳଦୀ (ହି.ଶ)—Haridrā dwaya Turmeric and Turmeric Asiatica.

**ହରିଦ୍ରା ପ୍ରମେହ** (ମେହ)—ସ. ବି— ହଳଦୀ ବର୍ଣ୍ଣ ପ୍ରସ୍ରାବ ଓ ଜ୍ୱାଳା Haridrā prameha (meha) ସମ୍ବନ୍ଧିତ ଏକ ପ୍ରକାର ମେହ ରୋଗ ( ହି. ଶ. )—A kind of gonorrhoea accompanied with turmeric-yellow urine & burning sensation.

**ହରିଦ୍ରା ବିଷ**—ସ. ବି—ହାରିଦ୍ର; ଏକପ୍ରକାର ଗଛର ବିଷାକ୍ତ ମୂଳ, ଯାହା Haridrā bisha ହଳଦୀ ପରି ଦେଖାଯାଏ—A sort of yellow poisonous root.

**ହରିଦ୍ରାଭ**—ସ. ବି. ଣ. (ହରିଦ୍ରା+ଆଭ; ବହୁବ୍ରୀହି) ହଳଦୀଅ ରଙ୍ଗ Haridrābha ବିଶିଷ୍ଟ—Yellowish; yellow. ବି—୧ । ପୀତଶାଳ (ଦେଖ)—1. Pitasāla (See) ୨ । କର୍ଚ୍ଚୂର; ଗନ୍ଧଶୁଣ୍ଠି—2. Zedoary. ୩ । ହଳଦୀଅ ରଙ୍ଗ—3. Yellow colour.

ହରିଦ୍ରା ରଞ୍ଜିତ—ସଂ. ବି. (୩ୟା ତତ୍)—ହଳଦୀ ଦ୍ୱାରା ରଙ୍ଗ କରା
Haridrā rañjita ଯାଇଥିବା—Coloured with turmeric.

ହରିଦ୍ରାରାଗ—ସଂ ବି—୧ । ହରିଦ୍ରା ବର୍ଣ୍ଣ; ହଳଦିଆ ରଙ୍ଗ—
Haridrā rāga 1. Yellow colour. ୨ । ହଳଦୀ ବୋଳା ହେବା ଯୋଗୁଁ ଉତ୍ପନ୍ନ ରଙ୍ଗ—2. Colour due to the application of turmeric on the body. ୩ । ସାହିତ୍ୟରେ ପୂର୍ବରାଗର ଏକ ଭେଦ, ଯହିଁରେ ପ୍ରଣୟୀ ଓ ପ୍ରଣୟିନୀଙ୍କ ପ୍ରେମ ହଳଦୀ ବର୍ଣ୍ଣ ପରି ଅସ୍ଥାୟୀ ହୁଏ (ହି. ଶ)—3. A kind of love or attachment which is not permanent. [ଦ୍ର—ପୂର୍ବରାଗର କୁସୁମ୍ଭରାଗ, ମଞ୍ଜିଷ୍ଠା ରାଗ ଆଦି କେତେକ ଶ୍ରେଣୀବିଭାଗ କବିମାନେ କରିଅଛନ୍ତି (ହି. ଶ.).] ବିଶ.—(ବହୁବ୍ରୀହି; ହରିଦ୍ରା ରାଗପରି ରାଗ=ସ୍ନେହ ଯାହାର)—(ଲକ୍ଷଣାର୍ଥ) (ହରିଦ୍ରା ରଙ୍ଗ ବହୁକାଳ ସ୍ଥାୟୀ ହେଉ ନ ଥିବାରୁ) ଅସ୍ଥିରସୌହୃଦ; କ୍ଷଣମାତ୍ରାନୁରାଗୀ (ହେମଚନ୍ଦ୍ର)—Contracting short-lived friendship.

ହରିଦ୍ରୁ—ସଂ. ବି.—(ହରି=ମାଙ୍କଡ଼+ଦ୍ରୁ ଧାତୁ=ଯିବା+ ଅଧିକରଣ
Haridru କ୍ୱିପ୍)—୧ । ବୃକ୍ଷ (ହେମଚନ୍ଦ୍ର)—1. Tree. ୨ । ଦାରୁହରିଦ୍ରା (ଦେଖ)—2. Dāru haridrā (See) ୩ । ପୀତଦାରୁ(ବୃକ୍ଷ) (ରାଜନିର୍ଘଣ୍ଟ)—3. A wild tree. (ସଂ. ପର୍ଯ୍ୟାୟ— [ଦ୍ର—ଏହା ଶୀତଳ, ତିକ୍ତ, ମଙ୍ଗଲ୍ୟ, ପିତ୍ତନାଶ ପୀତଦାରୁ ହୃଦ୍‌ଦୋଷନାଶକ, ଅଙ୍ଗ କାନ୍ତିକର, ବଲ୍ୟ (ରାଜନିର୍ଘଣ୍ଟ)] ପୀତକାଷ୍ଠ, ପୀତକ, କଦମ୍ବ, ସୁପୁଷ୍ପ, ସୁରାହ୍ୱ, ପୀତଦ୍ରୁମ)

ହରିଧନ—ସଂ ବି. (ରୂପକ)—ଭକ୍ତର ହରିରୂପ ଧନ—God who is
Haridhana considered as the devotee's wealth. ଦେ. ବି.ପୁ—ପୁରୁଷଙ୍କ ନାମ—A name given to males.

ହରି ଧନୁଷ—ସ. ବି.—ଇନ୍ଦ୍ରଧନୁ (ହି ଶ.)—
Hari dhanusa Rainbow.

ହରି ଧାମ—ସ ବି—(୬ଷ୍ଠୀତତ୍; ହରି+ଧାମନ୍;୧ମା ୧ବ)—ବିଷ୍ଣୁଲୋକ;
Hari dhāma ବୈକୁଣ୍ଠ (ହି ଶ)—Baikuṇṭha: the paradise of the Hindus.

ହରି ଧ୍ୱନି (ଶବଦ)—ଦେ. ବି (ସଂ. ହରିଧ୍ୱନି)—ହରିଧ୍ୱନି (ଦେଖ)
Hari dhuni (śabada) Haridhwani (See).
ହରିଧ୍ୱନି ହରିଧ୍ୱନି [ଦ୍ର—ଲକ୍ଷାରେ ପୁଣି ହରିଧ୍ୱନି । ତଗ]

ହରି ଧ୍ୱନି—ସଂ. ବି—୧। ଭକ୍ତର ହରିନାମ ଉଚ୍ଚାରଣ ଜନିତ ଉଚ୍ଚୈଃସ୍ୱର
Hari dhwani 1. The sound of loudly uttering the name of God. [ଦ୍ର—ହରି ହରିଦ୍ୱାରେ ମିଳି ହରିଧ୍ୱନି କଲେ—ଭକ୍ତ କୋଟକବାଟିଷ୍ଟୁନ୍ଦରୀ ।] ୨। ହରିବୋଲ ଶବ୍ଦ—2. The recital of the word Haribola.

ହରିନ୍‌ବାଡ଼ି—ଦେ. ବି—ହରଣ ବାଡ଼ି (ଦେଖ)—
Harın bāṛdi Haraṇ bāṛdi (See).

ହରିନ—ଗ୍ରା. ବି. ପୁଂ—ହରିର ଗେଲବସରିଆ ଡାକ ନାମ—A fond
Harina nickname of Hari.

ହରିନାଥ—ଦେ. ବି. ପୁଂ—୧ । ପୁରୁଷଙ୍କ ନାମ—1. A name
Harināṭha given to males. ୨ । (ନାମ) ହରିନାଥ ହରିନାଥ ବଙ୍ଗଦେଶର ଜଣେ ଜମିଦାର 2. A late famous land-holder of Bengal. [ଦ୍ର—ଏ ୧୮୩୩ ରେ ଜନ୍ମ ହୋଇ ୧୮୯୬ ରେ ପ୍ରାଣତ୍ୟାଗ କଲେ । ଏହାଙ୍କର ବଂଶଗତ ନାମ ହରିନାଥ ମଜୁମଦାର । ଏ ବଙ୍ଗଦେଶର ନଦୀୟାରେ ଜନ୍ମଗ୍ରହଣ କରି ବାଲ୍ୟକାଳରେ ପିତୃମାତୃହୀନ ହୋଇଥିଲେ । ପରେ ସଂସାର ତ୍ୟାଗ କରି ଲୋକସେବା ଓ ଭକ୍ତିରେ ଜୀବନ କଟାଇଲେ ।

ଏ 'ଗ୍ରାମବାର୍ତ୍ତା ପ୍ରକାଶିକା' ନାମକ ସମ୍ବାଦପତ୍ର ଚଳାଉଥିଲେ ଓ ବଙ୍ଗ ଭାଷାରେ ଅନେକଗୁଡ଼ିଏ ଭକ୍ତି ଓ ନୀତିମୂଳକ ଗ୍ରନ୍ଥ ରଚନା କରିଥିଲେ । ଏ 'ଫିକିରଚାନ୍ଦର ବାଉଲ ସଙ୍ଗୀତ' ନାମରେ ଗୁଡ଼ିଏ ବୈରାଗ୍ୟବୋଧକ ସଙ୍ଗୀତ ରଚନା କରିଥିଲେ]

ହରି ନାମ—ସଂ. ବି (୬ଷ୍ଠୀ ତତ୍)—ଭଗବାନଙ୍କ ନାମ—Name of
Hari nāma Hari. (ଦ୍ର—ପୁରାଣାଦିରେ ବର୍ଣ୍ଣିତ ଅଛି ଯେ, କଳିଯୁଗରେ ହରିନାମ କୀର୍ତ୍ତନହିଁ ମୁକ୍ତିର ପ୍ରକୃଷ୍ଟ ଉପାୟ ।]

ହରିନାମ କୀର୍ତ୍ତନ (ସଂକୀର୍ତ୍ତନ)—ସଂ.ବି—ହରିନାମର ବାରମ୍ବାର ଉଚ୍ଚାରଣ
Harināma kirttana (saṃkirttana) The chanting or repeating of the name of Hari by a devotee

ହରିନାମ ମାହାତ୍ମ୍ୟ—ସ. ବି (୬ଷ୍ଠୀ ତତ୍)—ହରିନାମ ଉଚ୍ଚାରଣର
Harināma māhātmya ମହତ୍ତ୍ୱ—The greatness attained by uttering the name of Hari.

ହରିନାମ ରସାମୃତ—ସଂ ବି—ହରିନାମ ଉଚ୍ଚାରଣ ରୂପ ରସରୁ ଭକ୍ତ
Harināma rasāmṛuta ଯେଉଁ ଅମୃତ ପାନ କରନ୍ତି—The nectar which is enjoyed by a devotee by uttering the name of Hari.

ହରିନାମା—ସଂ. ବି—ମୁଦ୍ଗ, ମୁଗ (ବୈଦ୍ୟକଶାସ୍ତ୍ର)—A pulse
Harināmā Phaseolus Mungo; Phaseolus Radiatus.

ହରି ନାରାୟଣ—ସଂ. ବି—ହରିଙ୍କର ଦୁଇଟି ନାମ—Two names
Hari nārāyaṇa of Hari. ଦେ. ବି. ପୁଂ—ପୁରୁଷଙ୍କ ନାମ—A name given to male.

ହରି ନୀଳ—ସଂ. ବି—ଇନ୍ଦ୍ରନୀଳମଣି—
Harinila A sort of gem; Saphire.

ହରି ନୁ(ର୍ନୁ)ଟ୍—ଦେ. ବି—ହରିଲୁଟ୍ (ଦେଖ)—
Hari nu (rnu)ṭ Hariluṭ (See).

ହରିନେତ୍ର—ସଂ. କ୍ଲୀ—୧ । ଶ୍ୱେତପଦ୍ମ (ରାଜନିର୍ଘଣ୍ଟ)—1. White
Harinetra lotus. ୨ । (ହରି=ଶାଗୁଅନେତ୍ର ଯାହାର) ପେଚକ (ତ୍ରିକାଣ୍ଡ ଶେଷ)—2. Owl.

ହରି ନେବା—ଦେ. କ୍ରି—୧ । ଅପହରଣ କରି ଚାଲିଯିବା—1. To go
Hari nebā away after stealing. [ଉ—ସୀତାଙ୍କୁ ହରିନେଇଛି ରାବଣ କେଉଁଠି ହରି କହିଛ ବୁଝଣ କରି—ଧୁମୁରି ହରାଇକହଲେଲା ଗୀତ । ] ୨ । (ଲକ୍ଷଣାର୍ଥ) ତୃପ୍ତ କରିବା; ମେଣ୍ଟାଇବା—2. To satiate. [ଉ—ଏକତା ପରମ ସୁଧା; ହରିନେବ ଜାତି କ୍ଷୁଧା—କାଳକୂଟ, ଭକ୍ତରେଣୁ ।]

ହରିନ୍ମଣି—ସଂ ପ (କର୍ମଧା) (ହରିତ୍+ମଣି; ସନ୍ଧିଦ୍ୱାରା ତ୍+ମ=ନ୍ମ)
Harinmaṇi ମରକତ ମଣି (ଅମର କୋଷ)—Emerald (gem).

ହରିନ୍ମୁଦ୍ଗ—ସଂ. ପୁ.—(ହରିତ୍+ମୁଦ୍ଗ; ସନ୍ଧିଦ୍ୱାରା ତ୍+ମ=ନ୍ମ)
Harinmudga ଶାରଦ ମୁଗ; ଶାଗୁଆ ମୁଗ, (ରାଜନିର୍ଘଣ୍ଟ)—The green moong grain harvested in autumn.

ହରିପ—ପ୍ରାଦେ. (ପୁରୀ ସଦର) ବିଣ. ପୁଂ—ଅତି ଚତୁର (ବ୍ୟଙ୍ଗ)—
Haripa Very clever (person); sly (in a bad sense).

ହରି ପଦ—ସଂ. କ୍ଲୀ—(୬ଷ୍ଠୀତତ୍) ବିଷ୍ଣୁଙ୍କର ଚରଣ—The feet of
Hari pada God. ଦେ. ବି. ପୁଂ—୧ । ପୁରୁଷ ଲୋକଙ୍କ ନାମ 1. A name given to males. ୨ । ଯମପୁରୀ—2. The abode of Jama [ଉ—ବଧାଇବ କରିଲି ଯାକୁ, ହରିପଦେ ତା ଭୁବନ ଭୟ ଭାଗୀ ହେବ ସନ୍ତାପରେ—ଭଞ୍ଜ ବୈଦେହୀଶବିଳାସ ।]

ହରିପଦୀ—ସଂ. ସ୍ତ୍ରୀ—୧ । ଅୟନମଣ୍ଡଳର ପଶ୍ଚିମ ଭାଗର ଯେଉଁଠାରେ
Haripadī ବିଷୁବ ରେଖା ସହିତ ମିଳିତ ହୋଇଅଛି—1. The point where the solar ecliptic meets the equator. ୨ । ଶାରଦ ବିଷୁବପଦୀ ସଂକ୍ରାନ୍ତି—2. The autumnal equinox

ହରି ପର୍ଣ୍ଣ—ସ. ବି—ମୂଳକ; ମୂଳା (ହେମଚନ୍ଦ୍ର)—
Hari parṇṇa Radish.

ହରିପୁର—ଦେ. ବି. (ନାମ)—ହରିହରପୁର ୨ (ଦେଖ)—
Haripura Hariharpura 2. (See).

ହରି ପ୍ରବୋଧ—ସ. ବି. (୬ଷ୍ଠୀ ତତ୍)—କାର୍ତ୍ତିକ ଶୁକ୍ଳ ଏକାଦଶୀ; ବିଷ୍ଣୁ
Hari prabodha ମୂର୍ତ୍ତିଙ୍କର ଚାରିମାସ ଶୟନ ପରେ ଉଠିବା ଉପଲକ୍ଷ୍ୟରେ ଯାତ୍ରା—A festival held on the 11th day of the bright lunar fortnight of Karttika.

ହରି ପ୍ରସ୍ଥ—ସ. ବି—ଇନ୍ଦ୍ରପ୍ରସ୍ଥ, ଯୁଧିଷ୍ଠିରଙ୍କର ରାଜଧାନୀ; ଦିଲ୍ଲୀ—
Hari prastha Indraprasta, the capital of Judhishṭhira (modern Delhi).

ହରି ପ୍ରିୟ—ସଂ ପୁ—୧ । ହରିଚନ୍ଦନ; ପୀତ ଚନ୍ଦନ—1. A sort of
Hari priya yellow sandal wood. ୨ । କୃଷ୍ଣ ଚନ୍ଦନ; କାଳୀୟକ (ଶବ୍ଦଚନ୍ଦ୍ରିକା)—2. A species of sandal wood. ୩ । ଉଶୀର; ବେଣାମୂଳ (ରାଜନିର୍ଘଣ୍ଟ)—3. The root of Beṇā grass. ୪ । କଦମ୍ବ ବୃକ୍ଷ (ଶବ୍ଦ କଳ୍ପଦ୍ରୁମ)—4. The Anthocephalus Kadamba tree. ୫। ପୀତ ଭୃଙ୍ଗରାଜ (ରାଜନିର୍ଘଣ୍ଟ)—5. A plant, Wedelia Calendulacia. ୬ । ବିଷ୍ଣୁକନ୍ଦ (ରାଜନିର୍ଘଣ୍ଟ)—6. A herbarious bulb. ୭ । କରବୀର (ରାଜନିର୍ଘଣ୍ଟ)—7. Oleander flower. ୮ । ଶଙ୍ଖ(ରାଜନିର୍ଘଣ୍ଟ)—8. Conch. ୯ । ବନ୍ଧୂକ;ବନ୍ଧୁଲି ଫୁଲ (ରାଜନିର୍ଘଣ୍ଟ)—9. A red flower, Pentapetus Phoenicea ୧୦। ଶିବ (ଶବ୍ଦ କଳ୍ପଦ୍ରୁମ)—10. God Śiba, ୧୧ । ବାତୁଳ (ଶବ୍ଦ କଳ୍ପଦ୍ରୁମ)—11. A mad man. ୧୨। କଞ୍ଚୁକୀ (ଶବ୍ଦକଳ୍ପଦ୍ରୁମ)—12. The servant in charge of the harem. ୧୩ । ହରିଭକ୍ତ—13. A devotee of Bishṇu. ବିଣ. ପୁଂ (୬ଷ୍ଠୀ ତତ୍) ହରି ଯାହାଙ୍କୁ ସ୍ନେହ (ହରିପ୍ରିୟା—ସ୍ତ୍ରୀ) କରନ୍ତି— . Beloved by God. ୨ । ହରିପ୍ରିୟ (ବହୁବ୍ରୀହି) ହରିଭକ୍ତିଯୁକ୍ତ—2. Devoted to Hari.

ହରିପ୍ରିୟା—ସ. ବିଣ. ସ୍ତ୍ରୀ— ହରିପ୍ରିୟର ସ୍ତ୍ରୀ ଲିଙ୍ଗ—1.
Hari priyā Feminine form of Haripriya. ୧ । ଲକ୍ଷ୍ମୀ (ଅମର)—1. Goddess Lakshmī ୨ । ତୁଳସୀ (ଶବ୍ଦକଳ୍ପଦ୍ରୁମ)—2. The holy basil plant ୩ । ଦ୍ୱାଦଶୀ ତିଥି [ଶବ୍ଦକଳ୍ପଦ୍ରୁମ]—3. The 12th day of the lunar fortnight, ୪ । ପୃଥିବୀ [ଶବ୍ଦକଳ୍ପଦ୍ରୁମ]—4. The earth.

ହରି ପ୍ରେମ—ସ ବି—ହରିଭକ୍ତି [ଦେଖ]—
Hari prema Haribhakti (See)

ହରିପ୍ରେମିକ—ସ ବିଣ. ଓ ବି ପୁଂ—ହରିଭକ୍ତ (ଦେଖ)—
Hari premika Haribhakta [See] [ହରିପ୍ରେମିକା—ସ୍ତ୍ରୀ]

ହରିବନ୍ଧୁ—ଦେ. ବି. ପୁଂ—ପୁରୁଷଙ୍କ ନାମ—
Haribandhu A name given to males.

ହରିବର୍ଷ—ସ ବି—ପୁରାଣ ଲିଖିତ ଜମ୍ବୁଦ୍ୱୀପର ନବବର୍ଷ ବା ନବଦେଶ ମଧ୍ୟରୁ
Haribarsha ଏକତମ; ପ୍ରାଚୀନ ସାଇବେରିଆ ଦେଶ—Name of one of the 9 divisions of the mythological Jambudwipa (modern Siberiā). [ଉ—ଏହାର ଦକ୍ଷିଣରେ ଇଳାବୃତ ବର୍ଷ; ଏହା ନିଷଧ ଓ ହେମକୂଟ (ସୁମେରୁ) ପର୍ବତଦ୍ୱୟ ମଧ୍ୟରେ ଅବସ୍ଥିତ । ଏଠାରେ ଭଗବାନ୍ ନରହରି ରୂପ ଧାରଣ କରି ଅବସ୍ଥାନ କରୁଅଛନ୍ତି—ଜଗନ୍ନାଥ ଭାଗବତ ।] ( ଉ—ହରି ବର୍ଷେ ଯହିଁ ହୃମବର୍ଷିଣୀ ଉପାଟି, ମନ୍ତ୍ରେ ରଚ ଶୁଭ ବିକଟେ ସ୍ଥିତି ପ୍ରବିଷ୍ଟକେ—ରାଧାନାଥ ମହାଯାତ୍ରା ।]

ହରି ବଲ୍ଲଭ—ସଂ ଵଣ. ପୁଂ—ହରିପ୍ରିୟ; ଯେଉଁ ବ୍ୟକ୍ତିଙ୍କୁ ହରି ସ୍ନେହ
Hari ballabha କରନ୍ତି; ହରିଙ୍କ ପ୍ରୀତିପାତ୍ର—
(ହରିବଲ୍ଲଭା—ସ୍ତ୍ରୀ) Favoured or loved by God.
ଦେ. ବି. ପୁଂ—ପୁରୁଷଙ୍କୁ ଦିଆଯିବା ନାମ—
A name given to males.

ହରିବଲ୍ଲଭା—ସଂ ଵଣ. ସ୍ତ୍ରୀ—ହରିବଲ୍ଲଭର ସ୍ତ୍ରୀଲିଙ୍ଗ—Feminine
Hariballabhā form of Hariballabha.
ବି. ସ୍ତ୍ରୀ—୧ । ହରିପ୍ରିୟା; ଲକ୍ଷ୍ମୀ—1. Goddess;
Lakshmī. ୨ । ତୁଳସୀ—2. The holy
Basil plant ୩ । ଜୟନ୍ତୀ; ଅଗ୍ନିମନ୍ଥ; ଅଗବଥୁ—
3. A tree; Premna Serratifolia.

ହରିବଲ୍ଲଭୀ—ସଂ ବି—୧ । ଲକ୍ଷ୍ମୀ—1. Goddess Lakshmī. ୨ ।
Hariballabhī ସିଂହୀ—2. Lioness. (ଉ—
ବସ୍ଥିଲୁ ବନ ପଞ୍ଚବଟୀରେ କହରି, ବଣିକ ହରିବଲ୍ଲଭୀ ଏ
ଅଭୂତ ହରି—ଭଞ୍ଜ ବୈଦେହୀଶବିଳାସ । )

ହରିବା—ଦେ. କ୍ରି [ସଂ ହୃ ଧାତୁ]—୧ । ହରଣ କରିବା—
Haribā 1. To take away. ୨ । ଅପହରଣ
[ ପ୍ରୟୋଜକରୂପ—ହରାଇବା ] : କରିବା; ଚୋରି କରିବା—
ହରଣ କରା ହରণ করনা 2. To steal away.
୩ । କୌଣସି ପଦାର୍ଥ ଜବରଦସ୍ତି ନେବା—3. To
plunder away. ୪ । କୌଣସି ପଦାର୍ଥ ବଳପୂର୍ବକ
ଛଡ଼ାଇ ନେବା—4. To snatch away by force.
(ଉ—ହରନ୍ତି ବସନ ଯହୁଁ, ହସି ବ୍ୟାଜେ ଉହୁଁ ଉହୁଁ—
ଉପେନ୍ଦ୍ର ଲାବଣ୍ୟବତୀ । ) ୫ । ( ମନୁଷ୍ୟଙ୍କୁ )
ବଳପୂର୍ବକ ନେଇଯିବା—5. To kidnap or abduct
a person. [ଉ—ସୀତାଙ୍କୁ ରାବଣ ନେଇଛି ହରି—
ବହୁତ ଦୂଷଣ କରି—ଗୁମୁସ ଗୀତ ।] ୬ । [କୌଣସି
ପଦାର୍ଥକୁ] ନାଶ କରିବା—6. To destroy (a thing)
(ଉ—ଗହନରେ ବନ୍ଧ ଭଙ୍ଗୀ ସ୍ମରୁ, ଗଜେନ୍ଦ୍ର ଗରବ
ହେଲେ ହରୁ—ଉପେନ୍ଦ୍ର ଲଭତ ) ୭ । ଲୋପ
କରିବା; ଲୁପ୍ତ କରାଇବା—7. To cause to dis-
appear [ଉ—ଚନ୍ଦ୍ରା ବାଜୁଥାଇ ନୂତନ, ଲଜ୍ଜାର
ହୃଦମ୍ବେ, କରୁଣା ଅଛ ବୋଲି ଯେ, କେଲ ହେ ତା
ହରି ନ ହେ—ଉପେନ୍ଦ୍ର କଶୋଷ ଭଞ୍ଜ ଗୀତ । ]
୮ । ଅବିବାହ୍ୟ ସ୍ତ୍ରୀ ବା ପଶୁକୁ ରମଣ କରିବା—8. To
co-habit with a woman of prohibited
relationship or beast ୯ । (ସମୟ) ଯାପନ କରିବା
ବା ଶେଷ କରିବା—9. To pass away (time);
to while away. [ଉ—ଅକୁରଙ୍କୁ ହୋଇଣ ହରିଲେ
ଦିନକୁ—କୃଷ୍ଣଚନ୍ଦ୍ର ମହାଭାରତ ସଭାପର୍ବ ।] ୧୦ । ପର-
ସ୍ତ୍ରୀକୁ ବଳପୂର୍ବକ ତା ଇଚ୍ଛା ବିରୁଦ୍ଧରେ ରମଣ କରିବା—
10. To commit rape on a stranger woman.
୧୧ । ପଦାର୍ଥକୁ ସ୍ଥାନାନ୍ତରକୁ : ବୋହି ନେବା—
11. To carry away a thing. ୧୨ । ନେବା—
12. To take. [ଉ—ବଳ ହରନ୍ତି ଯେତେ ଦେବେ
ତୋର ମରଣ ସେ ଦେଖିବେ—ଭାଗବତ ।] ୧୩ । ଜଳ
ଆଦିକୁ ଖରା ବା ତାପଦ୍ୱାରା ଶୁଖାଇବା ବା ବାଷ୍ପରୂପେ
ଉଡ଼ାଇ ନେବା—13. To cause [water etc] to
evaporate. [ଉ—ଚନ୍ଦ୍ରେ ଅଷ୍ଟାଙ୍କୁ ଦ୍ୱାଦଶ ଭାଗ
କରି, ଦ୍ୱଦୟ ହୋଇ ତଥ ସେ ଜଳକୁ ହରି—କୃଷ୍ଣସିଂହ
ମହାଭାରତ ବନପର୍ବ ।) ୧୪ । ମନରୁ ଅଭିମାନ କ୍ରୋଧାଦି
ତ୍ୟାଗ କରିବା—14. To give up [ଉ—ଏ ଗୁମାନ
ପରିହରନ୍ତୁ ହରି—କବିସୂର୍ଯ୍ୟ ସଙ୍ଗୀତ ।) ୧୫ । ଦୂର କରିବା;
ଅପନୋଦନ କରିବା—15 To allay; to mitigate.
(ଉ—ଗାତ୍ରଶ୍ରାନ୍ତ ଲୋକର ହରେ ଯିବା ଶ୍ରମ—କୃଷ୍ଣସିଂହ
ମହାଭାରତ ବନପର୍ବ । ) ୧୬ । ବିନାଶ କରିବା—
16. To destroy; to root out. (ଉ—ଯେମନ୍ତେ
ପାପ ପୁଣ ହରେ, ସେ ବାଳେ ଯେ ବା ଶକ୍ତି ଧରେ—
ଜଗନ୍ନାଥ ଭାଗବତ ।) ୧୭ । ( ଚିତ୍ତକୁ, ମନକୁ) ମୁଗ୍ଧ
କରିବା; ମୋହିତ କରିବା—17. To charm. (ଉ—
ସିଦ୍ଧାନ୍ତମାନଙ୍କରେ ହରୁଛି ସେ ମନ—କୃଷ୍ଣସିଂହ ମହାଭାରତ
ଆଦିପର୍ବ ।) ୧୮ । (ଗଣିତ) ଏକ ଅଙ୍କକୁ ଅନ୍ୟ
ଅଙ୍କଦ୍ୱାରା ଭାଗ କରିବା—18 (mathematics)
To divide a number by another. ୧୯ ।
ସମ୍ଭାଳିବା; ଏଡ଼ିବା—19. To evade; to ward
off. [ଉ—ପତିତପାବନ ଜଗନ୍ନାଥ, ପାପେ ହରିଲେ
ଗଦାଘାତ—ଜଗନ୍ନାଥ ଭାଗବତ ।] ୨୦ । ନ ମିଳିବା;
ହଜିବା—20. Not to be found; to be lost;
to be missing. [ଉ—ଗୁଳ ଉଡ଼ିଲେ ପଥ ଗଲାଟି
ହରି—ରାଧାନାଥ ତୁଳସୀ । ]

ହରିବାଟ—ଗ୍ରା. ଦେ. ( ଖଡ଼ଖଳ ) ବି—୧ । ସଂକୀର୍ଣ୍ଣ ପଥ—1.
Haribāṭa Narrow path. ୨ । ବନପଥ—2. Path
through the forest. ୩ । ଲୋକଚଲା ବାଟ—
3. Road; foot path.

ହରିବାନ—ସଂ. ବି. ପୁଂ. ( ହରି=ଘୋଟକ+ଅଛି ଯାହାର ଏହି
Haribān ଅର୍ଥରେ ବତ୍, ହରିବତ୍ ୧ମା.୧ବ)—ଇନ୍ଦ୍ର (ବଳାୟୁଧ)—
God Indra.

ହରିବାଲୁ(ଲୁ)କ—ସଂ. ବି—ଏଲବାଲୁକ (ଅମରକୋଷ) (ଦେଖ)—
Haribālu(lu)ka Elabāluka.

ହରିବାସ—ସଂ. ବି—ଅଶ୍ୱତ୍ଥ (ବୃ. ଶ)—;
Haribāsa Ficus Religiosa (tree)

ହରି ବାସର(ବାର)—ସଂ. ବି—୧ । ଏକାଦଶୀ ତିଥି—1. The
Hari bāsara (bāra) 11th day of the lunar
fortnight. [ଉ—ଏ ଦିନ ଉପବାସ କରି ହରି-
ଭଜନାଦି କରିଯାଏ ] ୨ । ଏକାଦଶୀଯୁକ୍ତା ତିଥି—
2. A day of which a part is the 11th

day the of lunar fortnight ୩ । ଦ୍ୱାଦଶୀ ତିଥିର ପ୍ରଥମ ପାଦ—3. The 1st quarter of the 12th day of the lunar fortnight. [ଦ୍ର—ଦ୍ୱାଦଶୀ ତିଥିର ବେଳ ପ୍ରଥମ ପ୍ରହର ପରେ ପାରଣା କରିବାର ବିଧି ଅଛି ।]

**ହରି ବାହନ**—ସଂ. ବି. (ଷଷ୍ଠୀତତ୍)—ଗରୁଡ଼ (ହାରାବଳୀ)—The **Hari bāhana** king of birds; said to be the carrier of Bishnu

**ହରି ବୀଜ**—ସଂ. ବି—ହରିତାଳ (ଦେଖ)—**Hari bija** Haritāla (See).

**ହରିବୃକ୍ଷ**—ସଂ. ବି—ହରିବର୍ଷ (ଶବ୍ଦ କଳ୍ପଦ୍ରୁମ) (ଦେଖ)—**Haribruksha** Haribarsha (See).

**ହରିବୋ(ବୋ)ଲ**—ଦେ. ବାକ୍ୟ (ଅବ୍ୟୟରୂପେ ବ୍ୟବହୃତ) ୧ । **Haribo(bbo)la** (ଅର୍ଥ—ହେ ଉପସ୍ଥିତ ଭାଇମାନେ ତୁମ୍ଭେମାନେ ହରିବୋଲ 'ହରି' ଶବ୍ଦ ବୋଲ ବା ଉଚ୍ଚାରଣ କର) କାଳେ 'ହରି' ହରିବୋଲ ନାମ ଉଚ୍ଚାରଣ କରି ପାର୍ଶ୍ୱସ୍ଥ ଅନ୍ୟମାନଙ୍କୁ 'ହରି'ନାମ ଉଚ୍ଚାରଣ କରିବା ପାଇଁ ଅନୁରୋଧ ମିଶ୍ରିତ ବାକ୍ୟ—1. Interjection for uttering the name of Hari and asking others present to do so ୨ । (ହରିନାମ ଉଚ୍ଚାରଣପୂର୍ବକ ଜୟ ଜୟକାର ଧ୍ୱନି) ଜୟ ହରି ! ଜୟ ହରି !—2 Hurrah ! [ଦ୍ର—ହରିବୋଲ ଭାଇ ଗୋବିନ୍ଦ ବୋଲ; ଭସିଲ ପଥର ବୁଡ଼ିଲା ସୋଲ—ତଗ] ବି—ହରିଧ୍ୱନି; ଉଚ୍ଚୈଃସ୍ୱରରେ ପୁନଃ ପୁନଃ ହରିନାମ ଉଚ୍ଚାରଣ; ହରିଙ୍କ ଜୟଧ୍ୱନି—Repeated utterance of the name of Hari [ଦ୍ର—ପାଶ୍ଚାତ୍ୟମାନେ ଆନନ୍ଦ କୋଳାହଳ ଉପଲକ୍ଷରେ 'ହୁର୍ରେ' (Hurrah), 'ହିପ୍ ହିପ୍ ହୁର୍ରେ' (Hip Hip Hurrah !) ଆଦି ଧ୍ୱନି କରନ୍ତି; କିନ୍ତୁ ଆମ୍ଭେମାନେ ଆନନ୍ଦ ପ୍ରକାଶ ସଙ୍ଗେ ସଙ୍ଗେ ହରିଙ୍କ ନାମ ଧରି 'ହରିବୋଲ୍' ଧ୍ୱନି କରୁଁ । ବହୁଲୋକ ସମାଗମରେ ଲୋକେ ରାଜାଆଦିଙ୍କର ମଙ୍ଗଳକାମନା କରି, ପ୍ରଭୁଙ୍କୁ ବର ପ୍ରାର୍ଥନା କରି, ଅତ୍ୟାଚାରୀ ଉପରେ ନିଜର କ୍ରୋଧକୁ ଅହ୍ଲାନ କରି 'ହରିବୋଲ' ଦିଅନ୍ତି । ଭାରତର ଅନ୍ୟାନ୍ୟ ଅଞ୍ଚଳରେ 'ହରିବୋଲ' ପରିବର୍ତ୍ତେ ଲୋକେ ଜୟକାର ମଧ୍ୟ କରନ୍ତି ।]

**ହରିବୋଲ** ଦେବା [ ପକା(କେ)ଇବା ]—ଦେ. କ୍ରି—ବାରଂବାର **Haribola debā[pakā(ke)ibā]** ହରିବୋଲ ଶବ୍ଦ ଉଚ୍ଚାରଣ ହରିବୋଲ ଦେଓଯା ପୂର୍ବକ ହରିନାମ କରିବା—To repeat the **हरिबोल देना** word Haribola several times. [ଦ୍ର—

ଲୀଡ଼ା ଦେଇ ଶିଶୁ ଦେଇ ହରିବୋଲ
ଦଉଡ଼ି ଯାଆନ୍ତେ ସବେ
ଅର୍ଦ୍ଧପଥେ ମେଘ ଗୋଡ଼ାଇ ଧରଣ
ଚିପିଯାଏ ଚାକ୍ ସବେ ।
ନନ୍ଦକିଶୋର]

[ଦ୍ର—ହରିସଙ୍କୀର୍ତ୍ତନ ଶେଷରେ, କୌଣସି ଶୁଭାନୁଷ୍ଠାନର ଆରମ୍ଭରେ ଓ ଶେଷରେ, ଉତ୍ସାରେ ବହୁତ ଲୋକଙ୍କ ନଗାଡ଼ା ବେଉଥିବା ସମୟରେ, ମେଳା ମଉଚ୍ଛବରେ, କୌଣସି ବ୍ୟକ୍ତିଙ୍କ ମଙ୍ଗଳ କାମନା କରିବାରେ, ଦେବତାଙ୍କଠାରୁ ବହୁ ଲୋକଙ୍କ ବର ପ୍ରାର୍ଥନା କରିବା ଉପଲକ୍ଷରେ ଓ ଆନନ୍ଦ ଉତ୍ସବରେ ଲୋକେ 'ହରିବୋଲ'ଦିଅନ୍ତି । ପଢ଼ା ଯାଉଥିବା ଧର୍ମ ଗ୍ରନ୍ଥ ପାଠ କରିସାରି ପାଠକ ହରିବୋଲ ଶବ୍ଦ ଉଚ୍ଚାରଣ କରନ୍ତି । ଅଧୁନା ମଧ୍ୟ ଦେଖାଯାଏ ଯେ, ସାଧାରଣ ଲୋକେ ପରପୀଡ଼କ ବ୍ୟକ୍ତି ଉପରେ ପ୍ରଭୁଙ୍କର ଦଣ୍ଡ ପଡ଼ୁ ବୋଲି ଇଚ୍ଛା କରି ସେହି ବ୍ୟକ୍ତିର ନାମ ଧରି ହରିବୋଲ ଦିଅନ୍ତି । କୌଣସି ଅପ୍ରୀତିକର କଥା କାହାକୁ ଶୁଣାଇବା, କୌଣସି ବଡ଼ଲୋକଙ୍କ ସମ୍ବନ୍ଧେ ଜନମାସ୍ୟ କଥା କହିବା, ଅସମ୍ଭବ ଘଟଣା ବିଷୟ କହିବା ଆଦି ଉପଲକ୍ଷରେ ମଧ୍ୟ ଲୋକେ ହରିବୋଲ ଉଚ୍ଚାରଣ କରନ୍ତି । ଏମନ୍ତ କି, ଆଧୁନିକ ଯୁଗର ଲେଖକମାନଙ୍କର (ଯଥା—ଫକୀରମୋହନ) ଭିନ୍ନ ପ୍ରସଙ୍ଗମାନଙ୍କରେ ହରିବୋଲ ଶବ୍ଦ ବ୍ୟବହାର କରିବା ଦେଖାଯାଏ ।

କଥକଣ୍ଠୀ ରଚିତ ସତ୍ୟନାରାୟଣ ପାଲା ଶୁଣିବାକୁ ସମବେତ ହୋଇଥିବା ବ୍ୟକ୍ତିମାନେ କୌଣସି ବିଶେଷ ଆଖ୍ୟାୟିକା ବା ପ୍ରସଙ୍ଗ ଶେଷରେ 'ହରିବୋଲ ଦିଅନ୍ତି ।

ଅମ ଦେଶରେ ପୁରୁଷମାନଙ୍କର ଉଚ୍ଚୈଃସ୍ୱରରେ 'ହରିବୋଲ' ଉଚ୍ଚାରଣ କରିବା ଓ ସ୍ତ୍ରୀମାନଙ୍କର 'ହୁଳହୁଳି' ଦେବାର ପ୍ରଥା ବହୁକାଳରୁ ଅଛି । ସମବେତ ଜନମଣ୍ଡଳୀରୁ ଜଣେ ପ୍ରଥମେ କହନ୍ତି 'ଆନନ୍ଦେ ଏକବାର ହରିବୋଲ୍' ଓ ତା ସଙ୍ଗେ ସଙ୍ଗେ ସମବେତ ସମସ୍ତେ 'ହରିବୋଲ୍' ଶବ୍ଦକୁ ଦୁଇ ଥର ଧରନ୍ତି । ଏହାପରେ 'ଆଉ ଏକବାର ହରିବୋଲ୍', 'ଫେର ଏକବାର ହରିବୋଲ୍', 'ପୁଣି ଆନନ୍ଦେ ଏକବାର ହରିବୋଲ୍' ଏହାପରି ବାରମ୍ବାର ହରିବୋଲ ପଡ଼ୁଥାଏ ଓ ଏ ଡାକ ସଙ୍ଗେ ସଙ୍ଗେ ସେଠାରେ ସ୍ତ୍ରୀମାନେ ଥିଲେ ସେମାନଙ୍କ ଉଚ୍ଚାରିତ ହୁଳହୁଳିର ସ୍ୱର ମଧ୍ୟ ଉଠୁଥାଏ ।

**ହରିବୋଲ ପଡ଼ିବା**—ଦେ. କ୍ରି—କୌଣସି ସ୍ଥାନରେ ସମବେତ ଲୋକଙ୍କ **Haribola pardibā** ଦ୍ୱାରା ବାରଂବାର ହରିଧ୍ୱନି ଉଚ୍ଚାରିତ ହରିବୋଲ পড়া **हरिबोलपड़ना** ହେବା—The repeated utterance of Haribola by the assembled people.

**ହରିବୋଲ୍ ବୋଲ୍ ହରି**—ଦେ. ଅ—ଶବକୁ ମଶାଣିକିଆମାନଙ୍କର **Haribol bol hari** ଶ୍ମଶାନକୁ ବୋହି ନେବା ସମୟରେ ମଝେ ହରିବোল বোলহরি **राम नाम सत्य है** ମଝେ ଉଚ୍ଚାରଣ ( ହରିବୋଲ୍ ହରି—ଅନ୍ୟରୂପ ) କରିବା ପଦ—Words uttered at intervals while carrying a corpse to the cremation ground. [ଦ୍ର—ଶ୍ମଶାନକୁ ମୃତଙ୍କୁ ନେଇଯିବା ସମୟରେ ଶବବାହକ ଓ ଶବର ପଶ୍ଚାଦ୍‌ଗାମୀ ବ୍ୟକ୍ତିମାନେ 'ରାମ ନାମ ସତ୍ୟ' ବା

'ତ୍ମନ୍ନାମ୍ ସତ୍ୟଂ ହେ' ବାକ୍ୟ ବହୁବାର ଉଚ୍ଚାରଣ କରନ୍ତି ଓ ମଝିରେ ମଝିରେ 'ହରିବୋଲ୍ ବୋଲ୍ ହରି' ଉଚ୍ଚାରଣ କରନ୍ତି ।]

**ହରିବୋଲ ଭାଇ ଗୋବିନ୍ଦ ବୋଲ**—ଦେ. ଅ (ନିଜେ ହରି ଓ ଗୋବିନ୍ଦ Haribola bhāi gobinda bola ନାମ ଉଚ୍ଚାରଣ କରିବାର ହରିবোল ভাই গোবিন্দ বোল हरिबोल भाई गोबिन्दबोल ଅନ୍ୟକୁ ତାହା କରିବାକୁ ଅନୁରୋଧ) ଜୟ ଜୟ ହରି ।—(words used in uttering the name of Hari) Hurrah, in the name of God.

**ହରିବୋଲ ଭାଇ ହରିବୋଲ**—ଦେ. ଅ—ହରିବୋଲ ଭାଇ ଗୋବିନ୍ଦ Haribola bhāi Haribola ବୋଲ (ଦେଖ)—Haribola হরিবোল ভাই হরিবোল हरिबोलभाइ हरिबोल bhāi gobinda bola (See) [ଉ—ସାଟେ ! ଅପଣ ଘଣ୍ଟରିବେ, ମାଉଛଡ ଚୁଲ୍ଲାରେ ସତେଇଶି ଜଣ ବ୍ରାହ୍ମଣଙ୍କର ପେଟ କପର ପୂରିଲା ? ହରି ବୋଲଭାଇ ହରିବୋଲ—ପଣ୍ଡିତମୋହନ. ଛମାଣଆଠଗୁଣ୍ଠ]

**ହରିବୋଲିଆ**—ଦେ. ବିଣ—୧ । ଯେଉଁ ବ୍ୟକ୍ତି (ବା ବୈଷ୍ଣବ) ସର୍ବଦା Haribolia ମୁଖରେ ହରିନାମ ଉଚ୍ଚାରଣ କରନ୍ତି—1. (A person) হরিবোলা Always uttering the name of Hari. ୨ । हरिबोलिआ ଯେଉଁ ବ୍ୟକ୍ତି ସର୍ବଦା ମୁଖରେ "ହରିବୋଲ" ଶବ୍ଦ ଉଚ୍ଚାରଣ କରେ—2. Always uttering Haribola. ୩ । (ଲକ୍ଷଣାର୍ଥ) (ବହୁଲୋକସମାଗମକାଳରେ ଉଚ୍ଚୈଃସ୍ୱରରେ ସମସ୍ତେ ମିଶି ହରିବୋଲ ଉଚ୍ଚାରଣ କରୁଥିବାରୁ) ଯେଉଁ ବ୍ୟକ୍ତି ସବୁ କାର୍ଯ୍ୟରେ ଗୋଳମାଳକୁ ବା ବହୁଲୋକଙ୍କ ଉଚ୍ଚ ସ୍ୱରକୁ ସୁଖ ପାଏ—3. (Figurative Noise-loving; loving confusion. ଗ୍ରାମ୍ୟ (ଗଡ଼ଜାତ) ବି—କଞ୍ଚା ଆମ୍ବର ଶସକୁ ବାଟି ଚଣ୍ଢିରେ ଲୁଣ ଓ ଲଙ୍କାମରିଚ ଗୁଣ୍ଡା ଦେଇ ଆମ୍ବସଢ଼ା ପରି ପ୍ରସ୍ତୁତ କରି ଖରାରେ ଶୁଖାଇ ତାକୁ ପରେ ଅମ୍ବିଳ ରୂପେ ଖାଇବାକୁ ସାଇତା ଯାଇଥିବା ଆମ୍ବ ଅମ୍ବିଳ—Pickle made by drying the pasted kernel of green mango after seasoning it in salt and pepper.

**ହରିବୋଲିଆ କରିବା**—ଦେ. କ୍ରି—୧ । (ବହୁଲୋକଙ୍କ ହରିବୋଲ Haribolia kariba କୋଳାହଳ ବେଳେ ଘଟିବା ଗଣ୍ଡଗୋଳର হরিবোলাকরা ସ୍ୱରୂପ)—(ଲକ୍ଷଣାର୍ଥ) କୌଣସି କାର୍ଯ୍ୟକୁ ଗୋଳ- हरिबोलियाकरना ମାଳିଆ କରିବା—(1. Figurative) To confuse matters. ୨ । ଅଣ୍ଟୁଳିଆ ଭାବରେ କୌଣସି କାର୍ଯ୍ୟ କରିବା—2. To perform a thing in a perfunctory or disorderly manner.

**ହରିବଂଶ**—ସ. ବି—୧ । ଶ୍ରୀକୃଷ୍ଣଙ୍କ ବଂଶ; ଯଦୁବଂଶ—1. The race Haribamsa of Srikrushna. ୨ । ଶ୍ରୀକୃଷ୍ଣଙ୍କ ବଂଶଧରଗଣ—2. The descendants of Srikrushna. ୩ । ମହାଭାରତର ପରିଶିଷ୍ଟ ବ୍ୟାସକୃତ ଗ୍ରନ୍ଥ ବିଶେଷ—3. Name of a book which is supplementary to the Mahābhārata. [ଦ୍ର—ଏଥିରେ ଶ୍ରୀକୃଷ୍ଣଙ୍କ ବଂଶଧର ଓ ସେମାନଙ୍କ କାର୍ଯ୍ୟକଳାପ ବର୍ଣ୍ଣିତ ହୋଇଅଛି] ୪ । ବ୍ୟାସ ରଚିତ ହରିବଂଶକୁ ଅବଲମ୍ବନ କରି ଓଡ଼ିଆରେ ରଚିତ ପଦ୍ୟଗ୍ରନ୍ଥ—4. The title of an Oriya poem which follows the original Sanskrit Haribamsa. [ଦ୍ର—ଓଡ଼ିଆରେ ବ୍ୟାସ ରଚିତ ହରି ବଂଶର ଅନୁବାଦ ଓ ଉକ୍ତ ଗ୍ରନ୍ଥକୁ ଅବଲମ୍ବନ କରି ପଦ୍ୟ ଗ୍ରନ୍ଥ ମଧ୍ୟ ରଚିତ ହୋଇଅଛି ]

**ହରିବ୍ୟାସି**—ଦେ. ବି—'ନିମ୍ବାର୍କ' ବା ନିମାଇତ ବୈଷ୍ଣବ ସମ୍ପ୍ରଦାୟର Haribyāsi ଅନ୍ତର୍ଗତ ହରିବ୍ୟାସ ନାମକ ଜଣେ ବୈଷ୍ଣବଙ୍କ ପ୍ରବର୍ତ୍ତିତ ଉପ ସମ୍ପ୍ରଦାୟ ବିଶେଷ—Name of subsect of the Nimbārka sect of Baisnabas.

**ହରି ଭକ (ଗ) ତ**—ଗ୍ରା. ବି. ପୁଂ—ହରିଭକ୍ତ (ଦେଖ)—Hari bhaka (ga) ta Haribhakta (See)

**ହରି ଭକ (ଗ) ତି**—ଗ୍ରା. ବି—ହରିଭକ୍ତି (ଦେଖ)—Hari bhaka (ga) ti Haribhakti (See)

**ହରି ଭକ୍ତ**—ସ. ବିଣ. ପୁଂ (୬ଷ୍ଠୀ ତତ୍)—ବିଷ୍ଣୁଙ୍କ ପ୍ରତି ଭକ୍ତିଯୁକ୍ତ— Haribhakta Devoted to God. ବି—ହରିଙ୍କଠାରେ ମନପ୍ରାଣ ଅର୍ପଣ କରିଥିବା ବ୍ୟକ୍ତି; ହରି ସେବକ— A devotee of Hari; a devout worshipper of God. [ଦ୍ର—ଯେଉଁ ଲୋକର ହରିଙ୍କଠାରେ ଭକ୍ତି ଥାଏ ଓ ଯେଉଁ ବ୍ୟକ୍ତି ସର୍ବଜୀବରେ ଈଶ୍ୱର ବିଦ୍ୟମାନ ଥିବା ଭାବନ୍ତି, ତାଙ୍କୁ ହରିଭକ୍ତ ବୋଲାଯାଏ—ବ୍ରହ୍ମବୈବର୍ତ୍ତ ପୁରାଣ ପଦ୍ଧତିଖଣ୍ଡ.]

**ହରି ଭକ୍ତି**—ସ ବି (୬ଷ୍ଠୀ ତତ୍)—ଈଶ୍ୱରଭକ୍ତି; ବିଷ୍ଣୁଭକ୍ତି; ହରିଙ୍କ Hari bhakti ଠାରେ ଭକ୍ତି—Devotion to God.

**ହରିଭକ୍ତିପ୍ରଦ**—ସ ବିଣ. ପୁଂ.—ଯାହା (ଯେଉଁ କାର୍ଯ୍ୟ, ଆଚରଣ, ଗ୍ରନ୍ଥ ବା Haribhaktiprada ସମାଜ) ମନୁଷ୍ୟମାନଙ୍କ ହୃଦୟରେ ହରିଭକ୍ତିର ଉଦ୍ରେକ କରେ—(any act, book or association) Which begets a spirit of devotion to Hari in the minds of persons.

ହରିଭକ୍ତିପ୍ରଦାୟକ, ହରିଭକ୍ତିପ୍ରଦାୟୀ —ଅନ୍ୟରୂପ

ହରିଭକ୍ତିପ୍ରଦା, ହରିଭକ୍ତିପ୍ରଦାୟିକା, ହରିଭକ୍ତିପ୍ରଦାୟିନୀ }—ସ୍ତ୍ରୀଲିଙ୍ଗ ରୂପ

**ହରିଭକ୍ତି ବିଳାସ**—ସ. ବି (ନାମ)—ହରିଭଜନ ଓ ବୈଷ୍ଣବଙ୍କ କର୍ତ୍ତବ୍ୟ Haribhakti bilāsa ଏବଂ ପାଳନୀୟ ବ୍ରତ ଉତ୍ସବାଦି ସମ୍ବନ୍ଧୀୟ ପ୍ରାମାଣ୍ୟ ସଂସ୍କୃତ ଗ୍ରନ୍ଥବିଶେଷ—The title of an authoritative Sanskrit treatise dealing with the duties of a Baishnaba) (e.g. fasts, festivals, hymns etc

**ହରି ଭଜନ**—ସ. ବି (୬ଷ୍ଠୀ ତତ୍)—ସର୍ବଦା ହରିଙ୍କ ନାମ ସ୍ମରଣ ଓ Haribhajana ସଙ୍କୀର୍ତ୍ତନ—Chanting of and devotion to the name of Hari constantly.

ହରି ଭଜନ — ଦେ. ବି—୧ । କୌଣସି ବ୍ୟକ୍ତିଙ୍କ ଦ୍ୱାରା ହରିନାମ ଉଚ୍ଚାରଣ—1. Utterance of the name of Hari by a single person. (ଦ୍ର—ସାଧାରଣତଃ ଜଣେ ଲୋକଙ୍କର ଏକାକୀ ବସି ହରିଙ୍କ ନାମ ଉଚ୍ଚାରଣ ଓ ଗାନ କରିବାକୁ 'ହରିଭଜନ' ଓ ବହୁ ଲୋକଙ୍କର ଖୋଲ କରତାଳ ସହିତ 'ହରିନାମ ଗାନ'କୁ 'ହରିସଂକୀର୍ତ୍ତନ' ବୋଲାଯାଏ ।) ୨ । ହରିଙ୍କ ନାମଯୁକ୍ତ ସ୍ତବ ବା ଗାନ—2. A hymn containing the name of Hari. ୩ । ପୁରୁଷଙ୍କ ନାମ—3. A name given to males.
हरि भजन हरिभजन

ହରି ଭଜିବା—ଦେ. କ୍ରି—୧ । ହରିଙ୍କ ନାମ ଉଚ୍ଚାରଣ କରିବା—Hari bhajibā 1. To utter the name of Hari. ୨ । ଭକ୍ତିପୂର୍ବକ ହରିଙ୍କଠାରେ ଶରଣ ନେବା—2. Tāking shelter of Hari.
हरिभजा हरिभजना

ହରିଭଦ୍ର—ସଂ. ବି—ହରିବାଲୁକ (ଦେଖ)—Haribhadra Haribāluka (See).

ହରିଭାବୀ—ସଂ. ବିଣ (ହରି+ଭାବ ଧାତୁ+କର୍ତ୍ତୃ. ଇନ୍, ୧ମା. ୧ବ)—Haribhābī ହରିଙ୍କ ସମ୍ବନ୍ଧେ ଭାବନାଶୀଳ; ଯେ ସର୍ବଦା (ହରିଭାବିନୀ—ସ୍ତ୍ରୀ) ହରିଙ୍କ ବିଷୟ ଭାବନା କରୁଥାଏ; ହରିଭକ୍ତ (ମୁଗ୍ଧବୋଧ ବ୍ୟାକରଣ)—Always bent on contemplating God.

ହରିଭୁକ—ସଂ ବି (ହରି=ବେଙ୍ଗ+ଭୁଜ୍ ଧାତୁ=ଖାଇବା+କର୍ତ୍ତୃ. କ୍ୱିପ୍; ହରିଭୁକ୍, ଶବ୍ଦ ୧ମା. ୧ବ)—ସର୍ପ (ଶବ୍ଦରତ୍ନାବଳୀ)—Snake.
Haribhuk

ହରିମନ୍ଥ—ସଂ. ବି—୧ । ଗଣିକାରିକା; ଅଗବଥୁ (ଶବ୍ଦ ଚନ୍ଦ୍ରିକା)—Harimantha Premna Serratifolia (tree) ୨ । ଚଣକ; ଚଣା (ରାଜନିର୍ଘଣ୍ଟ)—2. The chicken pea. ୩ । ଦେଶ ବିଶେଷ (ଭରତ)—3. Name of a country.

ହରିମନ୍ଥକ (ଜ)—ସଂ. ବି—(ହରିମନ୍ଥ ଦେଶରେ ଏହା ପ୍ରଚୁର ଜନ୍ମୁ- Harimanthaka(ja) ଥିବାରୁ) ୧ । ଚଣକ (ଅମରକୋଷ, ଭରତ)—1. The chicken pea. ୨ । ବୁଟ—2. Gram. ୩ । କୃଷ୍ଣମୁଦ୍ଗ (ହେମଚନ୍ଦ୍ର) (ଦେଖ)—3. Krushna mudga (See)

ହରି ମନ୍ଦିର—ସଂ. ବି—(୬ଷ୍ଠୀ ତତ୍)—୧ । ବିଷ୍ଣୁ ମନ୍ଦିର; ଯେଉଁ Hari mandira ମନ୍ଦିରରେ ବିଷ୍ଣୁ ବିଗ୍ରହ ପ୍ରତିଷ୍ଠିତ ଓ ପୂଜିତ ହୁଅନ୍ତି—1. A temple for the worship of Bishnu. ୨ । ବୈଷ୍ଣବମାନଙ୍କ ଲଲାଟରେ ଅଙ୍କିତ ତିଳକ ରେଖା ବିଶେଷ—2. A sort of mark painted on the forehead of Baishnabas. [ଦ୍ର—ହରିମନ୍ଦିର ତିଳକ କପାଳେ—ପ୍ରାଚୀ. ପ୍ରଭାତ. ଶର୍ଣ୍ଣସେଣା ।]

ହରିମନ୍ଦିର ତିଳକ—ସଂ. ବି—ହରିମନ୍ଦିର (୨) (ଦେଖ)—Harimandira tilaka Harimandira (2) (See) [ହରିମନ୍ଦିର ଚିତା—ଦେ. ରୂପ]

ହରି ମନ୍ଦିରା—ଦେ. ବି—ହରିମନ୍ଦିର (୨) (ଦେଖ)—Harimandirā Harimandira (2) (See) [ହରିମନ୍ଦିର ଚିତା—ଅନ୍ୟରୂପ] [ଦ୍ର—ଚୈତନ୍ୟ ଦିନେ ନିଅଣ ଘଇତା, ତୃତୀୟଦିନେ ହରିମନ୍ଦିର ଚିତା—ଉଗ]
हरिमन्दिर तिलक हरिमंदिर तिलक

ହରିମନ୍ଦିରା କାଟିବା—ଦେ. କ୍ରି—୧ । କପାଳରେ ହରିମନ୍ଦିର ତିଳକ Harimandirā kātibā ରେଖା ଅଙ୍କିତ କରିବା—1. To paint Harimandira figure on the forehead. ୨ । (ଲକ୍ଷଣାର୍ଥ) ଚିତା କାଟିବା; କୌଣସି ବ୍ୟକ୍ତିକୁ ଠକିବା—2. (Figurative) To cheat a person.
हरिमन्दिर तिलक काटा हरिमंदिर तिलक करना

ହରିମନ୍ଦିରା ଦେବା—ଦେ. କ୍ରି—୧ । ଅନ୍ୟ ବ୍ୟକ୍ତିର କପାଳରେ (ଯଥା Harimandirā debā ଗୁରୁ ଶିଷ୍ୟର କପାଳରେ) ହରିମନ୍ଦିର ତିଳକ ଅଙ୍କିତ କରିବା—1. To paint Harimandirā figure on the forehead of another. ୨ । (ଲକ୍ଷଣାର୍ଥ) ଚିତ କାଟିବା; କୌଣସି ବ୍ୟକ୍ତିକୁ ଠକିବା—2. (figurative) To cheat a person.
हरिमन्दिरतिलक देओया हरिमन्दिरतिलकदेना

ହରି ମୁଦ୍ଗ—ସଂ.ବି—ଏକ ପ୍ରକାର ମୁଗ; ଶାଗୁଆ ମୁଗ—A species Hari mudga of moonga pulse of green colour.

ହରି ମେଧ—ସଂ. ବି—୧ । ଅଶ୍ୱମେଧ ଯଜ୍ଞ (ହ. ଶ)—1. Horse Hari medha sacrifice. ୨ । ବିଷ୍ଣୁଙ୍କର ଗୋଟିଏ ନାମ (ହ. ଶ)—2. A name of Bishnu.

ହରିୟ—ସଂ. ବି—ପୀତବର୍ଣ୍ଣ ଘୋଟକ (ହେମଚନ୍ଦ୍ର)—Hariya A horse of yellow colour.

ହରିୟଲ୍—ଦେ. ବି—ହରିଅଲ୍ (ଦେଖ)—Hariyal Harial (See)

ହରିୟା—ଦେ. ବି—ହରିଆ (ଦେଖ)—Hariyā Hariā (See)

ହରି ଯାନ (ବାହନ)—ସଂ. ବି (୬ଷ୍ଠୀ ତତ୍)—ଗରୁଡ଼—Hari jāna (bāhana) Garurda; the carrier of Hari.

ହରିୟାଲ୍ (ଲ୍)—ଦେ. ବି—ହରିଅଲ୍ (ଲ୍) (ଦେଖ)—Hariyāl (l) Harial (l) (See)

ହରିୟୁପୀୟା—ସଂ. ବି (ନାମ)—ବେଦୋକ୍ତ ମହାଜନପଦ ବା ମହାଦେଶ-Hariyūpīyā ବିଶେଷର ନାମ; ମାନବ ଜାତିର ଆଦି ଜନ୍ମଭୂମି—Name of a continent mentioned in the Bedas and said to be the original birth-place of man. [ଦ୍ର—ପ୍ରତ୍ନତତ୍ତ୍ୱବିତ୍ ଅଧୁନିକ ପଣ୍ଡିତମାନେ ଏହାକୁ ଅଧୁନିକ ୟୁରୋପ (Europe) (ଲାଟିନ୍ ନାମ ୟୁରୁପା) ମହାଦେଶ ଥିବା ଅନୁମାନ କରନ୍ତି—ଋଗେନ୍ଦ୍ରଚନ୍ଦ୍ର, ବଙ୍ଗଳା ଅଭିଧାନ]

ହରିର୍‌ନୁ(ଲୁ)ଟ୍—ଦେ. ବି—ହରିଲୁଟ୍ (ଦେଖ)—Harir-nu (lu) t Harilut (See)

ହରି ରାମ—ଦେ. ବି. ପୁଂ—ପୁରୁଷଙ୍କ ନାମ—
Hari rāma A name given to males.
ସଂ. ବି—ଏକକ ଉଚ୍ଚାରିତ ହରିଙ୍କର ଦୁଇଟି ନାମ—
Two names of Hari uttered one after another.
[ହରେରାମ - ଦେଶଜ ରୂପ]

ହରିର୍ନାମ—ଦେ. ବି—(ସଂ ହରେର୍ନାମ)—ହରେର୍ନାମ (ଦେଖ)—
Harirnāma Harernāma (See)

ହରି ନୁ (ଲୁ) ଟ୍—ଦେ. ବି—ହରିଲୁଟ୍ (ଦେଖ)—
Harinu (rlu)t Harilut (See)

ହରିଲୁଟ୍ (ଠ)—ଦେ. ବି (ସଂ. ହରି ଓ ଲୁଣ୍ଠନ)—ଉତ୍ସବ ବିଶେଷ; ହରି
Harilut (th) ସଂକୀର୍ତ୍ତନ ପରେ ହରିଙ୍କ ଉଦ୍ଦେଶ୍ୟରେ ନିବେଦିତ ପ୍ରସାଦ (ଝୁଣ୍ଡା, କୋରା, ଖଇ ଆଦି) ଭୂମିରେ ବୁଣା ହେବା ପରେ ତାକୁ ସମବେତ ଭକ୍ତଗଣଙ୍କର ଆନନ୍ଦ କୋଳାହଳ କରି ଓ ହରିବୋଲ ପକାଇ ଗୋଟାଇ ପରସ୍ପର ଉପରେ ପଡ଼ି ଛଡ଼ାଛଡ଼ି ହୋଇ ଗ୍ରହଣ କରିବା ରୂପ ଉତ୍ସବ— A festival consisting of strewing the sweet offerings offered to Hari on the ground after finishing the chanting of Nāma Samkirttana and the assembled people picking up as much as each can in the crowd.

ହରି ଲୋକ—ସଂ. ବି (୭ମୀ ତତ୍)—ବିଷ୍ଣୁଲୋକ; ବୈକୁଣ୍ଠ (ହି. ଶ)—
Hari loka The paradise of the Hindus.

ହରି ଲୋଚନ—ସଂ. ବିଣ. ପୁଂ (ବହୁବ୍ରୀହି, ହରି=ହରିତ ଅଟେ
Hari lochana ଲୋଚନ ଯାହାର)—ଚକ୍ଷୁ ଅଛି—(a person) Having green eyes. ବି—୧ । କୁଳୀର;କଙ୍କଡ଼ା
[ହରିଲୋଚନା—ସ୍ତ୍ରୀ] (ବିକାଣ୍ଡ ଶେଷ)—1. Crab. ୨ । ପେଚକ (ଶବ୍ଦକଳ୍ପଦ୍ରୁମ)—2. Owl.

ହରିଶ୍—ଦେ. ବି—ହରିଶ୍ଚନ୍ଦ୍ରର ଡାକନାମ—Nickname of
Hariś Hariśchandra.

ହରିଶଙ୍କର—ସ. ବି—ବିଷ୍ଣୁ ଓ ଶିବ; ହରିହର—God Bishnu
Hariśankara and God Śiba. ଦେ.ବି. ପୁଂ—ପୁରୁଷଙ୍କ ନାମ—A name given to males.

ହରି ଶବଦ—ଦେ. ବି (ସଂ ହରିଶବ୍ଦ)—ହରିଧ୍ୱନି; ହରିବୋଲ; ହରିଙ୍କ
Hari śabada ନାମ ଉଚ୍ଚାରଣ—The utterance of the name of Hari. [ଉ—ଲଙ୍କାରେ ପୁଣି ହରିଶବଦ—
[ହରିଶବ୍ଦ—ସ. ରୂପ] ଭଗ; ଅର୍ଥାତ୍ ଲଙ୍କାବାସୀ ନାସ୍ତିକ ରାକ୍ଷସମାନଙ୍କ ମୁଖରୁ ହରିଶବ୍ଦ ଶୁଣାଯିବା ଆଶା କରିହୁଏ ନାହିଁ ]

ହରି ଶୟନ—ସ. ବି—୧। ବିଷ୍ଣୁ ବା ହରିଙ୍କର ନିଦ୍ରା—1. The sleep
Hari śayana of Bishnu or Hari. ୨ । ଯେଉଁ ସମୟରେ ହରିନିଦ୍ରିତ ରହନ୍ତି—2. The time when Bishnu is said to be in bed. ୩ । ଅଷାଢ଼ମାସର ଶୁକ୍ଳଦ୍ୱାଦଶୀ ଠାରୁ କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ ପର୍ଯ୍ୟନ୍ତ କାଳ (ଯେଉଁ ସମୟରେ ବିଷ୍ଣୁ ନିଦ୍ରା ଯାଆନ୍ତି)—3. A period of 4 months from the 12th day of the bright lunar fortnight of Ashārdha to the 12th day of the bright fortnight of Kārttika. ୪ । ଅଷାଢ଼ ମାସର ଶୁକ୍ଳ ଏକାଦଶୀ—4. The 11th day of the bright lunar fortnight of Ashārdha [ଦ୍ର—ଏହା ପୁରୀ ଜଗନ୍ନାଥ ମହାପ୍ରଭୁଙ୍କର ଶୟନଯାତ୍ରା ନାମକ ଗୋଟିଏ ଯାତ୍ରା ଦିବସ ଅଟେ ଓ ଏହି ଦିନଠାରୁ ସ୍ମୃତିମୀମାଂସା ଦ୍ୱାରା ଆରମ୍ଭ ହୁଏ । ପୁରାଣମାନଙ୍କ ମତରେ ବିଷ୍ଣୁ ଅଷାଢ଼ ଶୁକ୍ଳ ଏକାଦଶୀ ଦିନ ଶୋଇବାକୁ ଯାଆନ୍ତି, ଭାଦ୍ର ମାସ ଶୁକ୍ଳ ଏକାଦଶୀ ଦିନ ପାର୍ଶ୍ୱ ପରିବର୍ତ୍ତନ କରନ୍ତି ଓ କାର୍ତ୍ତିକ ଶୁକ୍ଳ ଏକାଦଶୀ ପର୍ଯ୍ୟନ୍ତ ନିଦ୍ରାଯାଇ ଦ୍ୱାଦଶୀଦିନ ନିଦ୍ରାରୁ ଉଠନ୍ତି—ମତ୍ସ୍ୟପୁରାଣ, ବାମନ ପୁରାଣ, ବରାହ ପୁରାଣ ଓ ଭବିଷ୍ୟ ପୁରାଣ ]

ହରିଶୟନ ଏକାଦଶୀ—ସ. ବି—ଅଷାଢ଼ ଶୁକ୍ଳ ଏକାଦଶୀ—The 11th
Hariśayana ekādaśī day of the bright lunar fortnight of Ashārdha.

ହରିଶୟନ ଯାତ୍ରା—ଦେ. ବି—ପୁରୀ ଜଗନ୍ନାଥ ଦେବଙ୍କର ଅଷାଢ଼ ଶୁକ୍ଳ
Hariśayana jātrā ଏକାଦଶୀ ଦିନ କରାଯିବା ଯାତ୍ରା— A festival observed on the occasion of Hariśayana Ekādaśī in the temple of Jagannātha of Puri. [ଦ୍ର—ଭୁବନେଶ୍ୱର ଲିଙ୍ଗରାଜଙ୍କର ବା ଶିବଙ୍କର ଶୟନଯାତ୍ରା (ଶୟନ ଚତୁର୍ଦ୍ଦଶୀ) ଅଷାଢ଼ ଶୁକ୍ଳ ଚତୁର୍ଦ୍ଦଶୀ ଓ ଉତ୍ଥାପନ ଯାତ୍ରା (ଶିବୋତ୍ଥାପନ) କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ସମାହିତ ହୁଏ ]

ହରି ଶର—ସ.ବି. ପୁଂ (ବହୁବ୍ରୀହି; ହରି ହୋଇଥିଲେ ଶର ଯାହାଙ୍କର)—
Hari śara ଶିବ (ଶବ୍ଦ କଳ୍ପଦ୍ରୁମ)—Śiba. [ଦ୍ର—ତ୍ରିପୁର ବଧନାର୍ଥ "ହରି" ମହାଦେବଙ୍କ ହସ୍ତସ୍ଥିତ ଧନୁରେ ଶର ରୂପେ ବିରାଜିତ ହୋଇଥିବାରୁ ଶିବଙ୍କର ଏହି ନାମ ହୋଇଅଛି ]

ହରି ଶରଣ—ଦେ. ବି. ପୁଂ—୧ । ପୁରୁଷଙ୍କ ନାମ—1. A name
Hari śaraṇa given to males. ୨ । (ବାକ୍ୟ) ପତ୍ରର ଶିରୋଦେଶରେ ଲେଖାଯିବା ବାକ୍ୟ [ଏହାର ଅର୍ଥ
[ହରିଶରଣଂ—ସ. ରୂପ] ହରିଙ୍କଠାରେ ଶରଣାଗତ ହୋଇ ଏ ପତ୍ର ଆରମ୍ଭ କଲି]— 2. A formula written as the heading of private letters (invoking the name of Hari as the writer's refuge). [ଦ୍ର—କେହି କେହି ହରିଭରସା, ଶ୍ରୀହରିଃ, ହରିଃ, ହରିଶରଣଂ, ଶ୍ରୀହରି, ଶ୍ରୀହରିଶରଣ ଇତ୍ୟାଦି ଲେଖନ୍ତି]

ହରିଶାଣ—ଦେ. ବି—ଆତଗଛ ପରି ଏକପ୍ରକାର ନାତିଦୀର୍ଘବନ୍ୟବୃକ୍ଷ—
Hariśāṇa A wild tree of middle stature like the custard apple tree, the leaves of which are used in polishing ivory and horn articles.

[ଦ୍ର—ଏଥିର ପକ୍ଷର ପିଠି ପାଖରେ ଚାଣୁଆ ଚିହ୍ନମାନ ଥାଏ । ଏହି ପକ୍ଷର ପିଠିପାଖ ଚିହ୍ନର ଓ ବାଗଦାନ୍ତର ଚିକଣ ମାନଙ୍କ ଉପରେ ପଡ଼ିଲେ ସେମାନ ପାଳିଆ ହୁଏ]

ହରିଶ୍ଚନ୍ଦ୍ର—ସଂ. ବି (ନାମ) (ନିପାତନ ସିଦ୍ଧ; ସଂ. ହରିଃ+ଚନ୍ଦ୍ର; ବ୍ୟାକ-
Hariśchandra ରଣର ବିଧି ଅନୁସାରେ ଏହା "ହରିଚନ୍ଦ୍ର" ହେବା ଉଚିତ ); ଏଥିର ଅର୍ଥ—ହରିଙ୍କ ପରି ଚନ୍ଦ୍ର ବା ରମଣୀୟ)—ସୂର୍ଯ୍ୟବଂଶୀୟ ଜନୈକ ରାଜା—Name of a king of the Solar race.

[ଦ୍ର—ଏ ତ୍ରେତାଯୁଗର ସୂର୍ଯ୍ୟବଂଶୀୟ ଅଷ୍ଟାବିଂଶ ରାଜା । ଏହାଙ୍କର ପିତା ତ୍ରିଶଙ୍କୁ, ଏହାଙ୍କର ପୁତ୍ର ରୋହିତାଶ୍ୱ ଓ ରାଣୀ ଶୈବ୍ୟା । ଏ ଅତି ଧର୍ମନିଷ୍ଠ, ଗୁଣବାନ୍ ଓ ଦାତା ଥିଲେ । ଥରେ ସ୍ୱର୍ଗରେ ବିଶ୍ୱାମିତ୍ର ବଶିଷ୍ଠଙ୍କଠାରୁ ହରିଶ୍ଚନ୍ଦ୍ରଙ୍କ ଧର୍ମନିଷ୍ଠା ଓ ଦାତୃତ୍ୱର ପ୍ରଶଂସା ଶୁଣି ଏହା ପରୀକ୍ଷା କରିବା ପାଇଁ ହରିଶ୍ଚନ୍ଦ୍ରଙ୍କ ନିକଟରେ ଉପସ୍ଥିତ ହେଲେ; ଏବଂ ଏହାଙ୍କୁ ରାଜ୍ୟ ସହିତ ସର୍ବସ୍ୱଧନ ମାଗିବାରୁ ଏ ଅକୁଣ୍ଠିତ ଚିତ୍ତରେ ବିଶ୍ୱାମିତ୍ରଙ୍କୁ ସମସ୍ତ ଦାନ କରି ଏକବସ୍ତ୍ର ହୋଇ ସ୍ତ୍ରୀ ଓ ପୁତ୍ର ସହିତ ରାଜ୍ୟତ୍ୟାଗ କଲେ । ତଥାପି ବିଶ୍ୱାମିତ୍ର ଏତିକରେ ସନ୍ତୁଷ୍ଟ ନ ହୋଇ ଏହାଙ୍କଠାରୁ 'ଦାନର ଦକ୍ଷିଣା' ପାଇବା ପାଇଁ ଅଳି କଲେ । ବିଶ୍ୱାମିତ୍ରଙ୍କୁ ଦକ୍ଷିଣା ଦେବାପାଇଁ ଧନ ସଂଗ୍ରହ କରିବାର ଅନ୍ୟ ଉପାୟ ନ ଥିବାରୁ ହରିଶ୍ଚନ୍ଦ୍ର ନିଜର ସ୍ତ୍ରୀ ଶୈବ୍ୟାଙ୍କୁ ଦାସୀରୂପେ ଓ ଏକମାତ୍ର ପୁତ୍ର ରୋହିତାଶ୍ୱଙ୍କୁ ଦାସରୂପେ ଜଣେ ବ୍ରାହ୍ମଣଙ୍କୁ ବିକି କଲେ ଓ ନିଜେ ଗୋଟିଏ ଚଣ୍ଡାଳ ନିକଟରେ ଦାସତ୍ୱ ଗ୍ରହଣ କରି, ଏବଂଭୂତ ଦାସତ୍ୱଲବ୍ଧ ଧନ ଆଣି ବିଶ୍ୱାମିତ୍ରଙ୍କୁ ଦକ୍ଷିଣା ଦେଲେ । ଶ୍ମଶାନରେ ଶବସଂସ୍କାର କରିବାପାଇଁ ଆସିବା ବ୍ୟକ୍ତିମାନଙ୍କଠାରୁ ଶୁଳ୍କ (ଟିକସ) ଅସୁଲ କରିବାର ଭାର ଏହାଙ୍କ ସ୍ୱାମିତ୍ୱ ଚଣ୍ଡାଳ ହରିଶ୍ଚନ୍ଦ୍ରଙ୍କଠାରେ ଅର୍ପଣ କରିଥିଲା; ତେଣୁ ଏ ଅଗତ୍ୟା ଶ୍ମଶାନରେ ରହି ସେ କାର୍ଯ୍ୟ କରୁଥାଆନ୍ତି । ଏଣେ ଶୈବ୍ୟା ରୋହିତାଶ୍ୱ ସହିତ ବ୍ରାହ୍ମଣ ଘରେ ଦାସୀ ବୃତ୍ତି କରି ଅତି ଦୁଃଖରେ କାଳଯାପନ କରୁଥାଆନ୍ତି, ଓ ଏହି ଅବସ୍ଥାରେ ହରିଶ୍ଚନ୍ଦ୍ରଙ୍କ ସଙ୍ଗେ ସ୍ତ୍ରୀଙ୍କର ଓ ପୁତ୍ରଙ୍କର କିଛିମାତ୍ର ସମ୍ପର୍କ ନ ଥାଏ । ଏହିରୂପେ କିଛିଦିନ ଗତ ହେବା ପରେ ରୋହିତାଶ୍ୱ ସର୍ପଦଂଶନରେ ପ୍ରାଣତ୍ୟାଗ କଲା । ଶୈବ୍ୟା ପୁତ୍ରର ଶବକୁ ସଂସ୍କାର କରିବାପାଇଁ ନିଶାରାତ୍ରିରେ ଶ୍ମଶାନକୁ ନେଲେ । ପ୍ରଥମେ ସ୍ୱାମୀ ଓ ସ୍ତ୍ରୀ କେହି କାହାରିକୁ ଚିହ୍ନି ପାରିଲେ ନାହିଁ । ଶ୍ମଶାନରେ ଶୁଳ୍କ ଦେବାପାଇଁ ଶୈବ୍ୟାଙ୍କର ଅର୍ଥସଙ୍ଗତି ନ ଥିଲା । ତଥାପି ଚଣ୍ଡାଳର ନିର୍ଦ୍ଧାରିତ ଶୁଳ୍କ ଦେବାପାଇଁ ହରିଶ୍ଚନ୍ଦ୍ର ଶୈବ୍ୟାଙ୍କୁ ଜିଦ କରିବାରୁ ଶୈବ୍ୟା ଶୋକାଭିଭୂତା ହୋଇ ନିଜର ପୂର୍ବ ବୃତ୍ତାନ୍ତ ବର୍ଣ୍ଣନା କରି ରୋଦନ କଲେ; ହରିଶ୍ଚନ୍ଦ୍ର ଶୈବ୍ୟାଙ୍କୁ ଓ ଶୈବ୍ୟା ହରିଶ୍ଚନ୍ଦ୍ରଙ୍କୁ ଚିହ୍ନିଲେ । ଏକମାତ୍ର ପୁତ୍ର ମୃତ ହେବାରୁ ମାତାପିତା ଦୁହେଁ ମଧ୍ୟ ପୁତ୍ରର ଶବ ସଙ୍ଗେ ଚିତାଗ୍ନିରେ ଝାସ ଦେଇ ଇହଲୋକର ପାପତାପ ଦୁଃଖଶୋକରୁ ମୁକ୍ତ ହେବା ପାଇଁ ଚିତାଗ୍ନି ଜଳାଇଲେ । ଏହି ଅବସ୍ଥାରେ ଏହାଙ୍କର ଧର୍ମନିଷ୍ଠତାରେ ପ୍ରୀତ ହୋଇ ବିଶ୍ୱାମିତ୍ର ସେହି ଶ୍ମଶାନରେ ଉପସ୍ଥିତ ହେଲେ ଓ ବର-ଦାନପୂର୍ବକ ରୋହିତାଶ୍ୱଙ୍କୁ ଜୀଆଇଁ ଦେଲେ ଓ ହରିଶ୍ଚନ୍ଦ୍ରଙ୍କୁ ରାଜ୍ୟ ଫେରାଇ ଦେଲେ ।]

ଦେ. ବି. ପୁଂ (ନାମ)—ପୁରୁଷଙ୍କୁ ଦଆଯିବା ନାମ—
হরিশ্চন্দ্র हरिश्चन्द्र A name given to males.

ହରିଶ୍ଚନ୍ଦ୍ର ପୁର—ସଂ. ବି (ଷଷ୍ଠୀ ତତ୍)—ରାଜା ହରିଶ୍ଚନ୍ଦ୍ରଙ୍କ ରାଜଧାନୀ;
Hariśchandra pura ଶୌଭପୁର—The capital of King Hariśchandra of the Treta age.

ହରିଶ୍ଚନ୍ଦ୍ର ମୁଖୋପାଧ୍ୟାୟ(ମୁଖର୍ଜି)—ଦେ: ବି—ଜଣେ ପ୍ରସିଦ୍ଧ ସ୍ୱର୍ଗତ ବଙ୍ଗୀୟ
Hariśchandra Mukhopādhyāya (mukharji) ବ୍ରାହ୍ମଣ—A famous Bengalee Brāhmaṇa.
হরিশ্চন্দ্রমুখোপাধ্যায় हरिश्चन्द्रमुखोपाध्याय

[ଦ୍ର—ଏହାଙ୍କର ଜନ୍ମ ଖ୍ରୀ ୧୮୨୪—ମୃତ୍ୟୁ ୧୮୬୧ । ଏହାଙ୍କ ପିତା ରାମଧନ ଅତି ଗରିବ ଥିଲେ । ହରିଶ୍ଚନ୍ଦ୍ର ସ୍ୱୀୟ ପ୍ରତିଭା ଓ ଅଧ୍ୟବସାୟ ବଳରେ ସାମାନ୍ୟ ଶିକ୍ଷାଲାଭ କରି କଲିକତାରେ ସରକାରୀ ସାମରିକ ହିସାବ ପରୀକ୍ଷା ବିଭାଗରେ ପ୍ରଥମେ ଦଶଟଙ୍କା ଦରମାରେ କିରାନି ଚାକିରି କଲେ; ସେଠାରେ ନିଜର ଅଧ୍ୟବସାୟ ଓ ଶକ୍ତିର ପରିଚୟ ଦେଇ ସେ କ୍ରମଶଃ ଉନ୍ନୀତ ହୋଇ ଶେଷରେ ମାସିକ ଚାରିଶତ ଟଙ୍କା ବେତନରେ ସେହି ବିଭାଗରେ ସହକାରୀ ସାମରିକ ସମୀକ୍ଷକ(Assistant military auditor) କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ଏ କଲିକତାର ଇଂରାଜୀ ସମ୍ବାଦପତ୍ର 'ହିନ୍ଦୁ ପାଟ୍ରିଅଟ୍' (Hindu patriot) ର ସମ୍ପାଦକତ୍ୱ ଗ୍ରହଣ କରି ନିଜ ଲେଖନୀର କ୍ଷମତାଦ୍ୱାରା ତତ୍କାଳୀନ ବଡ଼ଲାଟଙ୍କୁ ସୁଦ୍ଧା ଚକିତ କରାଇଥିଲେ । ୧୮୫୭ ସାଲରେ ସିପାହି ବିଦ୍ରୋହ ସହିତ ବଙ୍ଗବାସୀମାନଙ୍କର ସହାନୁଭୂତି ନ ଥିବା ବିଷୟ ଏ ମହାଶୟ ଉକ୍ତ ପତ୍ରିକାରେ ପ୍ରମାଣିତ କରିଥିଲେ । ନୀଳକର ସାହେବ (Indigo planters) ମାନଙ୍କଦ୍ୱାରା ପ୍ରଜାମାନଙ୍କପ୍ରତି କରାଯାଉଥିବା ଅତ୍ୟାଚାର ବିରୁଦ୍ଧରେ ଏ ଲେଖନୀ ଚାଳନା କରି ପ୍ରଜାମାନଙ୍କ ଗୁହାରି ତଦନ୍ତ କରିବାପାଇଁ ଗଭର୍ଣ୍ଣମେଣ୍ଟ ନିଯୁକ୍ତ ନୀଳକର-କମିସନ୍(Indigo commision) ଙ୍କ ନିକଟରେ ସାକ୍ଷ୍ୟ ଦେଲେ । ନୀଳକର ସାହେବମାନେ ଏହାଙ୍କ ନାମରେ 'ଅପବାଦ ରଟନା' କରିଥିବା ଅଭିଯୋଗ କରି ଫଉଜଦାରୀ ଓ ଦେୱାନୀ ନାଲିସ କରି ଡିକ୍ରୀ ପାଇ ଏହାଙ୍କ ମୃତ୍ୟୁ ପରେ ଏହାଙ୍କର ସମସ୍ତ ସମ୍ପତ୍ତି ନିଲାମ କରାଇଦେଲେ । ଏହାଙ୍କ ସ୍ମରଣାର୍ଥ ବ୍ରିଟିଶ୍ ଇଣ୍ଡିଅନ୍ ସଭା (The British Indian Association) ଗୃହର ଗୋଟିଏ ଅଂଶରେ 'ହରିଶ୍ଚନ୍ଦ୍ର ଲାଇବ୍ରେରୀ' ନାମକ ଗୋଟିଏ ପୁସ୍ତକାଳୟ ସ୍ଥାପିତ ହୋଇଅଛି ଓ ଫ୍ରାମ୍‌ଜୀ ବୋମାନ୍‌ଜୀ ନାମକ ଜଣେ ପାର୍ସୀ ପ୍ରାଚୀର ଆଲୋକ ଓ ଛାୟାମାନ ( Lights and shades of the East ) ନାମକ

ପୁସ୍ତକରେ ଏହାଙ୍କ ଜୀବନଚରିତ ଲେଖିଅଛନ୍ତି—ସୁବଳଚନ୍ଦ୍ର ।

ଏହାଙ୍କର ଲେଖାଗୁଡ଼ିକ ହରିଶ୍ଚନ୍ଦ୍ର ଗ୍ରନ୍ଥାବଳୀ ନାମରେ ବଙ୍ଗବାସୀ ପତ୍ରିକାର କର୍ତ୍ତୃପକ୍ଷ ପୁସ୍ତକାକାରରେ ପ୍ରକାଶ କରି ଅଛନ୍ତି ।]

**ହରିଶ୍ଚନ୍ଦ୍ର ସାହୁ**—ଦେ॰ ବି (ନାମ)—ଜଣେ ପ୍ରସିଦ୍ଧ ସ୍ୱର୍ଗତ ହିନ୍ଦି କବି, ଭାରତେନ୍ଦୁ ହରିଶ୍ଚନ୍ଦ୍ର—Late famous Hindi writer and author.
**Harischandra sāhu**
[ଦ୍ର—ଜନ୍ମ ଖ୍ରୀ, ୧୮୩୨—ମୃତ୍ୟୁ ୧୮୫୯ । ଏହାଙ୍କ ପିତା ଗୋପାଳଚନ୍ଦ୍ର ସାହୁ ବନାରସରେ ବାସ କରୁଥିଲେ । ଏ ହିନ୍ଦିରେ ଅନେକଗୁଡ଼ିଏ କବିତା, ଗ୍ରନ୍ଥ, ସାମୟିକ ପ୍ରସଙ୍ଗ ଓ ସମାଲୋଚନା ଲେଖି ହିନ୍ଦୀଭାଷୀମାନଙ୍କ ନିକଟରେ ସୁପରିଚିତ ହୋଇଥିଲେ । ଏହାଙ୍କ ପଦ୍ୟ ଓ ଗଦ୍ୟଗ୍ରନ୍ଥମାନଙ୍କ ସଂଖ୍ୟା ଶତାଧିକ ହେବ । ହିନ୍ଦିଭାଷାରେ ଏହାଙ୍କ ରଚିତ 'ସୁନ୍ଦରୀ ତିଳକ' 'କବିବଚନସୁଧା', 'ପ୍ରସିଦ୍ଧ ମହାତ୍ମାଙ୍କ ଜୀବନ' ଆଦି ଗ୍ରନ୍ଥ ଉଲ୍ଲେଖଯୋଗ୍ୟ । ଏ 'ହରିଶ୍ଚନ୍ଦ୍ରିକା' ନାମରେ ଖଣ୍ଡେ ହିନ୍ଦି ସମ୍ବାଦପତ୍ରର ଅନେକ ବର୍ଷ ସମ୍ପାଦକତା କରିଥିଲେ । ହିନ୍ଦି ସମ୍ବାଦ ପତ୍ରର ସମ୍ପାଦକମାନେ ଏହାଙ୍କୁ 'ଭାରତେନ୍ଦୁ' ଉପାଧି ଦେଇଥିଲେ । ଏହାଙ୍କର ଅନେକଗୁଡ଼ିଏ ହିନ୍ଦିଗ୍ରନ୍ଥ ବିହାର ଓଡ଼ିଶା ଓ ଉତ୍ତର ଭାରତରେ ହିନ୍ଦି ପାଠ୍ୟପୁସ୍ତକ ରୂପେ ବ୍ୟବହୃତ ହେଉଅଛି । ସୁବଳଚନ୍ଦ୍ର]

**ହରିଶ୍ଚନ୍ଦ୍ରି**—ଦେ, ବି (ନାମ)—ରାଜା ହରିଶ୍ଚନ୍ଦ୍ରଙ୍କ ଭକ୍ତ ସମ୍ପ୍ରଦାୟ ବିଶେଷ—Name of a religious sect which is devoted to the mythological king Harischandra.
**Harischandri**

**ହରିଷ**—ସଂ ବି—ହର୍ଷ ଶବ୍ଦର ଅନ୍ୟ ଆକାର (ଶବ୍ଦକଳ୍ପଦ୍ରୁମ)—The alternative form of the word Harsha. (delight)
**Harisha**

**ହରିଷେଣ**—ସ. ବି. ପୁଂ—୧। (ନାମ) ଇକ୍ଷ୍ୱାକୁ ବଂଶୀୟ ଜନ ଚକ୍ରବର୍ତ୍ତି-ବିଶେଷ—1. Name of a pre Buddhist emperor of India of Ikshwāku dynasty.
**Harishena**
୨। (ନାମ) ଜଣେ ବିଖ୍ୟାତ ଜୈନପଣ୍ଡିତ (ବିଶ୍ୱକୋଷ)—2. Name of a famous Jaina Pandit. [ଦ୍ର—ଏ ୧୪୭୯ ଶକାବ୍ଦ ବା ୧୫୫୭ ଖ୍ରୀଷ୍ଟାବ୍ଦରେ 'ଜଗତ୍ସୁନ୍ଦରୀ ଯୋଗମାଳା' ଗ୍ରନ୍ଥ ରଚନା କରିଥିଲେ—ବିଶ୍ୱକୋଷ] ୩। (ନାମ) ବାରାଣସୀ ବାସୀ ଜଣେ ବୈଦିକଶାସ୍ତ୍ର ପଣ୍ଡିତ—3. A learned author of Benares. [ଦ୍ର—ରାଜନୀତି ସମ୍ବନ୍ଧେ ଖଣ୍ଡେ ସଂସ୍କୃତ ଗ୍ରନ୍ଥ ଏ ରଚନା କରି-ଥିଲେ—ବିଶ୍ୱକୋଷ] ୪। ବାକାଟକ ବଂଶୀୟ ଦେବସେନଙ୍କ ପୁତ୍ର ମହାରାଜ (ବିଶ୍ୱକୋଷ)—4. Name of another Emporer, son of Debasena,

**ହରିସ୍**—ଦେ. ବି—ହରିଶ୍ଚନ୍ଦ୍ରର ଡାକନାମ—Nickname of Harischandra.
**Haris**

**ହରି ସଭା**—ଦେ॰ ବି (ମ. ସ. ଲୋ)—ହରିନାମ ସଂକୀର୍ତ୍ତନ ଓ ହରିଭକ୍ତିର ପ୍ରଚାର ଏବଂ ଆଲୋଚନାର୍ଥ ବୈଷ୍ଣବମାନଙ୍କ ସଭା—A society or meeting held to chant the name of Hari and discuss religious subjects.
**Hari sabhā**
हरिसभा
हरिसभा

**ହରି ସଂକୀର୍ତ୍ତନ**—ସ. ବି (ଷଷ୍ଠୀ ତତ୍)—୧। ବହୁବାର ହରିନାମ ଉଚ୍ଚାରଣ—1. Repeated utterance of Hari. ୨। ଖୋଲ କରତାଳ (ଝାଞ୍ଜ ମୃଦଙ୍ଗ) ବାଦନ ସହକାରେ ବହୁ ଲୋକଙ୍କଦ୍ୱାରା ହରିନାମ ଗାନ—2. Chanting of the hymns of Hari accompanied by music of drums and cymbals. [ଦ୍ର—ହରି ସଂକୀର୍ତ୍ତନ ବ୍ୟତୀତ କଳିଯୁଗରେ ଦାନ, ବ୍ରତ ତପସ୍ୟା, ଯଜ୍ଞ, ଶ୍ରାଦ୍ଧ ବା ପିତୃ ତର୍ପଣ ନିଷ୍ଫଳ ଅଟେ ।]
**Hari samkirttana**

**ହରି ସୁତ**—ସଂ ବି—୧। ହରିଙ୍କ ପୁତ୍ର—1. Son of Hari. ୨। ହରିଷେଣ (ଦେଖ)—2. Harishena (See)
**Hari suta**

**ହରି ସ୍ତବ (ସ୍ତୁତି, ସ୍ତୋତ୍ର)**—ସଂ ବି (ଷଷ୍ଠୀ ତତ୍)—ଶ୍ରୀ ହରିଙ୍କ ଉଦ୍ଦେଶ୍ୟରେ ଅନୁଷ୍ଠିତ ବା ଉଚ୍ଚାରିତ ପ୍ରାର୍ଥନା—A hymn to Hari.
**Hari staba (stuti, stotra)**

**ହରି ହଟା**—ଦେ॰ ବି—୧। ହରିହାଟ (ଦେଖ)—1. Harihāta (See). ୨। (ଲକ୍ଷଣାର୍ଥ) ଗୋଳମାଳ; ଗୋଳ-ମାଳ; କୋଳାହଳ—2. (figurative) Noise; ado.
**Hari hatā**

**ହରି ହୟ**—ସଂ ବି (ବହୁବ୍ରୀହି; ହରି=ଶାଗୁଆ ଅଟନ୍ତି ହୟ=ଘୋଡ଼ା ଯାହାଙ୍କର)—୧। ଇନ୍ଦ୍ର (ଅମର କୋଷ)—1. God Indra. ୨। ସୂର୍ଯ୍ୟ (ଶବ୍ଦକଳ୍ପଦ୍ରୁମ)—2. The sun ୩। କାର୍ତ୍ତିକେୟ (ଶବ୍ଦକଳ୍ପଦ୍ରୁମ)—3. God Kārttikeya. ୪। ଗଣେଶ (ଶବ୍ଦକଳ୍ପଦ୍ରୁମ)—4. God Ganesa.
**Hari haya**

**ହରି ହର**—ସ. ବି—୧। ବିଷ୍ଣୁ ଓ ଶିବ—1 Bishnu and Siba. ୨। ସଂଯୁକ୍ତ ବିଷ୍ଣୁ ଓ ଶିବ ମୂର୍ତ୍ତି—2. A form of Divinity consisting of Bishnu and Siba together.
**Hari hara**
[ଦ୍ର—ଏକଦା ସମ୍ମିଳିତ ଋଷି ଓ ଦେବତାମାନଙ୍କୁ ବିଷ୍ଣୁ ବୁଝାଇଥିଲେ ଯେ, ହରି ଓ ହର ଏକାତ୍ମକ ଅଟନ୍ତି ଓ ଏଥିର ପ୍ରମାଣ ସ୍ୱରୂପ ଡାହାଣପାଳ ବିଷ୍ଣୁ ମୂର୍ତ୍ତି ବାମପାଳ ଶିବ ମୂର୍ତ୍ତି ବିଶିଷ୍ଟ ରୂପ ସେମାନଙ୍କୁ ଦେଖାଇଥିଲେ । ଏହାଙ୍କ ବିଷୟ ବାମନ ପୁରାଣ ୫୯ ଶ ଓ ୬୪ ଶ ଅଧ୍ୟାୟରେ ଏବଂ ଦେବୀ ପୁରାଣ ୧୨ ଶ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି ।]
ଦେ ବି. ପୁଂ—ପୁରୁଷଙ୍କ ନାମ—A name given to males.
हरिहर हरिहर

**ହରିହର ଆତ୍ମା**—ଦେ. ବି—ହରିହରାତ୍ମା (ଦେଖ)—Hariharātmā (See)
**Harihara ātmā**

**ହରିହର କବି**—ଦେ॰ ବି (ନାମ)—"ସୁଚିତ୍ର ରାମାୟଣ" ନାମକ ଓଡ଼ିଆ ଗ୍ରନ୍ଥର ରଚୟିତା ପ୍ରସିଦ୍ଧ କବି (ଭାରତୀ, ଉ·
**Harihara kabi**

ସା, ଇତିହାସ)—Author of 'Suchitra Rāmāyana

**ହରିହର କ୍ଷେତ୍ର**—ସଂ. ବି (ନାମ)—ପାଟଣାପୁର (ଆଧୁନିକ ନାମ ପାଟନା) ନଗରନିକଟସ୍ଥ ଭାଗୀରଥୀର ଉତ୍ତର କୂଳରେ ଅବସ୍ଥିତ ତୀର୍ଥବିଶେଷ—
Harih ra kshetra
[ହରିକ୍ଷେତ୍ର, ଦେବାଟକ୍ଷେତ୍ର—ଅନ୍ୟରୂପ]
Name of a sacred place of pilgrimage near Patna where the Sonepur fair is held (in a place where the river Gandukī falls into the river Ganges.)
[ଦ୍ର—ଏହା ଗଙ୍ଗା ଓ ଗଣ୍ଡକୀ ନଦୀର ସଙ୍ଗମସ୍ଥଳରେ ଅବସ୍ଥିତ। ଏଠାରେ କାର୍ତ୍ତିକପୂର୍ଣ୍ଣିମାରେ ସ୍ନାନ କରିବାପାଇଁ ବହୁ ଲକ୍ଷ ଲୋକ ସମବେତ ହୁଅନ୍ତି ଓ ଏଠାରେ ପଶୁରାଜ ରହିଥାନ୍ତି। ବରାହ ପୁରାଣରେ ଲେଖାଅଛି ଯେ ଏକଦା ହରି ଗୋଧନ ସକଳଙ୍କୁ ନେଇ ଏହି କ୍ଷେତ୍ରକୁ ଯାଇଥିଲେ, ସେଠାରେ ଶୂଳପାଣି ହର ନନ୍ଦୀ ସହିତ ଗୋଧନମାନଙ୍କୁ ରକ୍ଷା କଲେ ଓ ସେହି ଦିନଠାରୁ ସେଠାରେ ଅବସ୍ଥାନ କରୁଅଛନ୍ତି ବୋଲି ଏ କ୍ଷେତ୍ରର ନାମ ହରିହର କ୍ଷେତ୍ର ହୋଇଅଛି। ଦେବଗଣ ମଧ୍ୟ ଏଠାରେ ବିଚରଣ କରନ୍ତି। ଏହାର ଅନ୍ୟ ନାମ ଦେବଘାଟ ଓ ହରିହର ଛତ୍ର।]

**ହରିହର ଚତୁରଙ୍ଗ**—ଦେ, ବି (ନାମ)—ହସ୍ତଲିଖିତ ପୁସ୍ତକ ବିଶେଷ—
Harihara chaturanga Name of a book.
[ଦ୍ର—ଓଡ଼ିଶାର ସ୍ୱାଧୀନ ରାଜା ପ୍ରତାପରୁଦ୍ର ଦେବଙ୍କ ସମୟରେ ଗୋଦାବରୀ ମିଶ୍ର ନାମରେ ଜଣେ ମନ୍ତ୍ରୀଙ୍କ ଦ୍ୱାରା ଏ ପୁସ୍ତକ ପ୍ରଣୀତ। ଏଥିରେ ରଥ, ଅଶ୍ୱ, ହସ୍ତୀ, ପଦାତିକ ଓ ଧନୁର୍ବେଦ ବିଷୟ ବର୍ଣ୍ଣିତ ହୋଇଅଛି—ଜଗବନ୍ଧୁ: ପ୍ରାଚୀନ ଉତ୍କଳ]

**ହରିହର ଛତ୍ର**—ଦେ. ବି (ସଂ. ହରିହର କ୍ଷେତ୍ର; ଏହା ହରିହର କ୍ଷେତ୍ରରେ ହେଉଥିବାରୁ)—ବିହାରର ପାଟନା ନିକଟସ୍ଥ ଗଙ୍ଗାନଦୀର ଅପର ପାରରେ ସୋନପୁର ନାମକ ସ୍ଥାନରେ ବର୍ଷକେ ଥରେ କାର୍ତ୍ତିକ ପୂର୍ଣ୍ଣିମାଠାରୁ ଦଶ ଦିନ କାଳ ବସୁଥିବା ଗୋଟିଏ ମେଳା—The annual fair held at Sonepur near Patna for 10 days from the full mo n day of Kārıtika.
Harihara chhatra
ହରିହର ଛତ୍ର
ହରିହର ଛତ୍ର
[ଦ୍ର—ଏହି ଉତ୍ସବରେ ଏଠାରେ ବହୁ ଲକ୍ଷ ଲୋକ ସମବେତ ହୁଅନ୍ତି ଓ ସହସ୍ର ସହସ୍ର ଘୋଡ଼ା, ହାତୀ ଓ ବହୁ ଲକ୍ଷ ଟଙ୍କା ମୂଲ୍ୟର ପଣ୍ୟ ଓ ବାଣିଜ୍ୟ ପଦାର୍ଥମାନ ଏଠାରେ କିଣାବିକା ହୁଏ। ବିହାରୀମାନେ ଏହି ଉତ୍ସବକୁ 'ଛତ୍ର' ଉତ୍ସବ କହନ୍ତି। ପାଟନା ଗଙ୍ଗାର ଦକ୍ଷିଣ ତୀରରେ ଅବସ୍ଥିତ, ଓ ହରିହର ଛତ୍ର ଗଙ୍ଗାର ଉତ୍ତର ତୀରରେ ଗଣ୍ଡକୀ ଓ ଗଙ୍ଗାନଦୀର ସଙ୍ଗମସ୍ଥଳରେ ସାରଣ ଜିଲ୍ଲାରେ ଅବସ୍ଥିତ। ଏଠାରେ ହରିହରନାଥ ନାମକ ମହାଦେବ ମୂର୍ତ୍ତି ଅଛନ୍ତି। ଏଠାକୁ ରଜା ମହାରାଜାଙ୍କଠାରୁ ଯୋଗୀ ସନ୍ନ୍ୟାସୀ ପର୍ଯ୍ୟନ୍ତ ସବୁଶ୍ରେଣୀର ବ୍ୟକ୍ତି ଆସନ୍ତି। ଏପରି ବଡ଼ ଜନସମାଗମ (ମେଳା) ଉତ୍ତର ଭାରତରେ ଅନ୍ୟ କୁତ୍ରାପି ଦୃଷ୍ଟ ହୁଏ ନାହିଁ]

**ହରିହର ପୁର**—ଦେ. ବି (ନାମ)—୧। ଜଗତସିଂହପୁର; କଟକ ଜିଲ୍ଲାର ପୂର୍ବଭାଗସ୍ଥ ପ୍ରଗନା ଓ ଗ୍ରାମର ନାମ—Name of a perganna and village in the eastern part of Cuttack District.
Haribara pura
[ଦ୍ର—ଏହି ଗ୍ରାମରେ ପୂର୍ବେ ଇଂରେଜମାନଙ୍କର ଗୋଟିଏ ବାଣିଜ୍ୟକୋଠି ଥିଲା। ନିକଟରେ ଦେଖାଯାଉଥିବା ଗୋଟିଏ ସ୍ତୂପକୁ କେହି କେହି ଉକ୍ତ ବାଣିଜ୍ୟକୋଠିର ଭଗ୍ନାବଶେଷ ବୋଲି କହନ୍ତି। ଏଠାରେ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ, ଥାନା, ପୋଷ୍ଟଅଫିସ, ଡାକ୍ତରଖାନା, ରେଜିଷ୍ଟ୍ରେସନ୍ ଅଫିସ୍, ହାଟ ଓ ବାଉନ୍‌ସିଲ୍ ସଭିଡିଭିଜନ୍ ଅଫିସ୍ ଅଛି। ଓଡ଼ିଶାରେ ନନ୍‌କୋଅପରେସନ୍ ଆନ୍ଦୋଳନର ଫଳରେ ଏହି ସ୍ଥାନ ନିକଟରେ କଂଗ୍ରେସ କର୍ମୀମାନଙ୍କଦ୍ୱାରା 'ଅଲକାଶ୍ରମ' ନାମରେ ଗୋଟିଏ ସ୍ୱରାଜ୍ୟାଶ୍ରମ ଓ ବୟନ-ବିଦ୍ୟାଳୟ ସ୍ଥାପିତ ହୋଇଥିଲା। ଏହି ଗ୍ରାମର ବର୍ତ୍ତମାନ ନାମ ଜଗତ୍‌ସିଂହପୁର। ଏହା କାଠଯୋଡ଼ୀ ନଦୀର ଗୋଟିଏ କ୍ଷୁଦ୍ର ଶାଖା ଅଲକାନଦୀର କୂଳରେ ଅବସ୍ଥିତ। ଏହି ଗ୍ରାମ କଟକଠାରୁ ୨୫ ମାଇଲ୍ ପୂର୍ବରେ ଅବସ୍ଥିତ। ଦେୱାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ରଙ୍କ କଠୋର ଅଧ୍ୟବସାୟ ଓ ସ୍ୱାର୍ଥତ୍ୟାଗ ଫଳରେ ସଂପ୍ରତି ଏଠାରେ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠିତ ହୋଇଅଛି।]
୨। ମୟୂରଭଞ୍ଜର ପୂର୍ବ ରାଜଧାନୀ—2. Name of the ancient capital of Mayurbhanj State.
[ଦ୍ର—ହରିହରପୁର ବା ହରିପୁର ଗଡ଼। ଏହା ମୟୂରଭଞ୍ଜର ବର୍ତ୍ତମାନ ରାଜଧାନୀ ବାରିପଦାଠାରୁ ୧୦ ମାଇଲ ଦକ୍ଷିଣ-ପୂର୍ବରେ ଅବସ୍ଥିତ ଥିଲା। ପୂର୍ବତନ ସମୃଦ୍ଧିର ବହୁ ଭଗ୍ନାବଶେଷ ଏଠାର ଜଙ୍ଗଲ ମଧ୍ୟରେ ରହିଅଛି। ମୟୂରଭଞ୍ଜର ମହାରାଜ ହରିହର ଭଞ୍ଜ ଶକାବ୍ଦ ୧୩୨୨ (ଖ୍ରୀଷ୍ଟାବ୍ଦ ୧୪୦୦) ରେ ଏ ନଗର ବସାଇଥିଲେ ଓ ତାଙ୍କ ନାମରେ ଏ ନଗରର ନାମକରଣ ହୋଇଥିଲା। ଶ୍ରୀ ଚୈତନ୍ୟ ଦେବ ଏହି ହରିପୁର ବାଟେ ଓଡ଼ିଶାକୁ ଆସିଥିଲେ। ଏହିଠାରେ ସଙ୍କୀର୍ତ୍ତନ କରୁ କରୁ ଚୈତନ୍ୟ ଦେବ ପ୍ରେମବିହ୍ୱଳ ହୋଇ ଦଶା ପ୍ରାପ୍ତ ହୋଇଥିଲେ। ସେ ସମୟରେ ଏ ନଗର ସମୃଦ୍ଧିମନ୍ତ ଥିଲା। ଚୈତନ୍ୟ ଦେବଙ୍କର ଓଡ଼ିଶାରେ ୧୮ ବର୍ଷ ଅବସ୍ଥାନ କାଳରେ ଭଞ୍ଜ ନୃପତିମାନେ ଶକ୍ତ ଥିଲେ। ଚୈତନ୍ୟ ଦେବଙ୍କ ତିରୋଭାବର କେତେ ବର୍ଷ ପରେ ମୟୂରଭଞ୍ଜ ନୃପତି ବୈଷ୍ଣବଧର୍ମ ଅବଲମ୍ବନ କଲେ। ଦେବବିଗ୍ରହ ଧ୍ୱଂସକାରୀ କଳାପାହାଡ଼ ଏ ନଗର ଆକ୍ରମଣ କରି ରାଜବଂଶକୁ ଅନେକ ଦୁର୍ଗତିଯୁକ୍ତ କରିଥିଲା ଓ ରାଜ-ପରିବାର ଏହି ଆକ୍ରମଣର ଅତ୍ୟାଚାରରୁ ରକ୍ଷା ପାଇବା ନିମନ୍ତେ ପର୍ବତ ଗହ୍ୱରରେ ଆଶ୍ରୟଗ୍ରହଣ କରିଥିଲେ।

ତତ୍‌ପରେ ମୟୂରଭଞ୍ଜକୁ ମୁସଲମାନ୍‌ମାନେ ଆକ୍ରମଣ କରିବାରେ ଲାଗିଲେ । କର୍ଣ୍ଣରୁ ବିତାଡ଼ିତ ହୋଇ ଦାଉଦ୍ ଖାଁ ଏଠାର ସୁଦୃଢ଼ ଦୁର୍ଗରେ ଆଶ୍ରୟ ନେଇଥିଲେ । ସେ ଅକବରଙ୍କ ସେନାପତି ଟୋଡ଼ରମଲ୍ଲଙ୍କଦ୍ୱାରା ପରାଜିତ ହୋଇ କଟକ ଅଡ଼କୁ ଯାତ୍ରାକଲେ । ଦାଉଦ୍ ଖାଁଙ୍କ ପରାଜୟ ପରେ ଓଡ଼ିଶା ମୋଗଲ ରାଜ୍ୟାଧୀନ ହେଲା । ଦାଉଦ ଖାଁଙ୍କର ହରିହରପୁରରେ ଆଶ୍ରୟ ନେବା ସମୟରେ ମୟୂରଭଞ୍ଜର ତଦାନୀନ୍ତନ ମହାରାଜ ବୈଦ୍ୟନାଥ ଭଞ୍ଜ ଚୈତନ୍ୟଙ୍କ ପରବର୍ତ୍ତୀ ରସିକାନନ୍ଦ ଠାକୁରଙ୍କଠାରୁ ବୈଷ୍ଣବଧର୍ମ ଗ୍ରହଣ କଲେ ଓ ସେହି ସମୟରୁ ରାଜ୍ୟର ପ୍ରଜାମାନେ ମଧ୍ୟ ବୈଷ୍ଣବଧର୍ମ ଗ୍ରହଣ କଲେ । ବୈଦ୍ୟନାଥ ଭଞ୍ଜଙ୍କ ପରବର୍ତ୍ତୀ ମହାରାଜମାନେ ହରିହରପୁରରେ ଅନେକ ବିଷ୍ଣୁ ମନ୍ଦିର ନିର୍ମାଣ କରାଇ ଥିଲେ ଓ ତାଙ୍କ ପରବର୍ତ୍ତୀ ବିକ୍ରମାଦିତ୍ୟ ସେଠାରେ ରାଧାମୋହନଙ୍କର ଏକ ବୃହତ୍ ମନ୍ଦିର ତୋଳାଇଲେ । ଅଲିବର୍ଦ୍ଦି ଖାଁ ମୟୂରଭଞ୍ଜ ଆକ୍ରମଣ କରି ବହୁ ଚେଷ୍ଟା ପରେ ମୟୂରଭଞ୍ଜକୁ ତାଙ୍କ ଶାସନାଧୀନ କଲେ । ତତ୍ପରେ ମରହଟ୍ଟା-ବର୍ଗୀମାନେ ମୟୂରଭଞ୍ଜ ଆକ୍ରମଣ କରି ସମୃଦ୍ଧିମନ୍ତ ହରିହରପୁର ନଗରର ଧ୍ୱଂସ ସାଧନ କଲେ । ବର୍ତ୍ତମାନ ହରିହରପୁରରେ ମରହଟ୍ଟା ଲୁଣ୍ଠନର ଚିହ୍ନ ସ୍ୱରୂପ ଭଗ୍ନାବ-ଶେଷମାନ ବିଦ୍ୟମାନ । ସନ ୧୮୦୧ ସାଲ ପର୍ଯ୍ୟନ୍ତ ମୟୂର-ଭଞ୍ଜର ରାଜାମାନେ ଆପଣାକୁ ହରିହରପୁରର ରାଜା ବୋଲି ପରିଚିତ କରାଉଥିଲେ । ହରିହରପୁର ବର୍ତ୍ତମାନ ଜଙ୍ଗଲରେ ପରିଣତ ହୋଇଅଛି । ଏହି ଜଙ୍ଗଲ ମଧ୍ୟରେ ଦକ୍ଷିଣ ପୂର୍ବ ଦିଗରେ ରସିକ ରାୟଙ୍କ ସୁନ୍ଦର ମନ୍ଦିରର ଭଗ୍ନାବଶେଷ ଅଛି । ଏ ମନ୍ଦିର ନିକଟରେ ରାଣୀହଂସପୁର ଓ ଦରବାର ଗୃହର ଭଗ୍ନାବଶେଷ ଓ ଜଗନ୍ନାଥ ମନ୍ଦିରର ଭଗ୍ନାବଶେଷ ଅଛି । ଏଥିରେ ଥିବା ଜଗନ୍ନାଥ ମୂର୍ତ୍ତି ପ୍ରତାପପୁରକୁ ସ୍ଥାନାନ୍ତରିତ ହୋଇଅଛନ୍ତି । ହରିହରପୁରର ଦକ୍ଷିଣସୀମାରେ ମହିଷମର୍ଦ୍ଦିନୀ ଓ କୋଟବାସିନୀ ଦେବୀଙ୍କ ମୂର୍ତ୍ତି ଅଛି । ବିଶ୍ୱକୋଷ]

ହରିହର ଭେଟ—ଦେ, ବି—୧ । ହରିଙ୍କ ସହିତ ଶିବଙ୍କର ଭେଟ—
Harihara bheṭa The meeting of Hari with Śiba. ୨ । ଶିବ ଚତୁର୍ଦ୍ଦଶୀ (ଫାଲଗୁନ କୃଷ୍ଣ ଚତୁର୍ଦ୍ଦଶୀ)ର ରାତ୍ରି ଶେଷରେ ମହାଦେବଙ୍କ ପ୍ରତିମା ଓ ବିଷ୍ଣୁଙ୍କ ପ୍ରତିମା ଦ୍ୱୟଙ୍କର ପରସ୍ପର ଭେଟ ହେବାରୂପ ଉତ୍ସବ—3. The ceremony of the meeting of the images of Hari and Śiba towards the last part of the Śibarātri night.

(ରାଜା) ହରିହର ମର୍ଦ୍ଦରାଜ ଦେବ—(ନାମ) ଗଞ୍ଜାମ ଜିଲ୍ଲାର ଖଲ୍ଲିକୋଟ
(Rājā) Harihar Mardarāja Deba ଅଠଗଡ଼ର ସ୍ୱର୍ଗତ ରାଜା—Name of the late Raja Harihar Mardaraj Deb of Khallikote and Athagad of Ganjam district.

[ବି—ସ୍ୱର୍ଗତ ରାଜା ଶ୍ରୀ ହରିହର ମର୍ଦ୍ଦରାଜଦେବ (ମେହେରବାନ୍-ଇ—ଦୋସ୍ତାନ୍, ରାଜାସାହେବ ଖଲ୍ଲିକୋଟ ଅଠଗଡ଼, ଗଞ୍ଜାମ, ଓଡ଼ିଶା) । ଏ ମହାତ୍ମା ୧୮୭୨ ଖ୍ରୀଷ୍ଟାବ୍ଦ ଜୁଲାଇ ମାସ ୧୦ ତାରିଖ ଦିନ ଖଲ୍ଲିକୋଟ ଅଠଗଡ଼ର ସାହେବ ମେହେରବାନ୍-ଇ—ଦୋସ୍ତାନ୍ ରାଜା ନାରାୟଣ ମର୍ଦ୍ଦରାଜ ଦେବଙ୍କର ଜ୍ୟେଷ୍ଠକୁମାର ରୂପେ ଖଲ୍ଲିକୋଟ ରାଜ-ପ୍ରାସାଦରେ ଭୂମିଷ୍ଠ ହୋଇଥିଲେ । ନିତାନ୍ତ ବାଲ୍ୟବୟସରେ କୁମାର ହରିହର ପିତୃହୀନ ହେବାରୁ ରାଜ୍ୟଟି ୧୮୮୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସରକାରଙ୍କ ଖାସ୍ ପରିଚାଳନାରେ ରହିଥିଲା ।

ଏକଦା ଅଯୋଧ୍ୟାର ସୂର୍ଯ୍ୟବଂଶୀୟ ରାଜପରିବାରର ଗେଣ୍ଡୁ ରାଣା ଓ ନାଉଜିନ ରାଣା ନାମକ ଦୁଇ ସହୋଦର ଉତ୍କଳକୁ ଆସିଥିଲେ । ଜ୍ୟେଷ୍ଠଙ୍କଦ୍ୱାରା ଖଲ୍ଲିକୋଟ ଏବଂ କନିଷ୍ଠଙ୍କଦ୍ୱାରା ଅଠଗଡ଼ ରାଜ୍ୟ ପ୍ରତିଷ୍ଠିତ ହୋଇଥିବା ବିଷୟ ରାଜବଂଶାବଳୀରୁ ଜଣାଯାଏ । ସେମାନଙ୍କ ବଂଶଧର-ମାନେ ଉକ୍ତ ଦୁଇ ରାଜ୍ୟକୁ ଯଥାକ୍ରମେ ଅଧିକାର କରି ଆସୁଥିଲେ । ଅଠଗଡ଼ ରାଜ୍ୟର ପୂର୍ବତନ ରାଜା ବାଲୁକେଶ ଦେବଙ୍କ ରାଜସଭାରେ ଉତ୍କଳର ପ୍ରସିଦ୍ଧ ଅମର କବି, କବିସୂର୍ଯ୍ୟ ବଳଦେବ ରଥ ଆଶ୍ରୟ ଲାଭ କରି ଉକ୍ତ ରାଜାଙ୍କ ନାମରେ ସ୍ୱରଚିତ କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ଓ ବହୁ ସଙ୍ଗୀତ ଭଣିତା କରି ତାଙ୍କୁ ଅମର କରିପାରି ଅଛନ୍ତି ।

ରାଜା ନାରାୟଣ ପ୍ରଥମେ ଖଲ୍ଲିକୋଟ ରାଜ୍ୟର ଅଧିପତି ଥିଲେ । ତାଙ୍କ ଆମଳରୁ ଏହି ରାଜବଂଶ ବିଶେଷ ଖ୍ୟାତି ଲାଭ କରି ଆସୁଅଛି । ଅଠଗଡ଼ର ବାଲୁକେଶ ଦେବଙ୍କ ପୁତ୍ରଙ୍କ ରାଜତ୍ୱ ସମୟରେ ଅଠଗଡ଼ ରାଜ୍ୟ ବାକି ରାଜସ୍ୱ ନିମନ୍ତେ ନିଲାମରେ ଉଠିବାରୁ, ରାଜା ନାରାୟଣ ତାହା ନିଲାମରେ ଖରିଦ କଲେ ଓ ସେହି କାଳରୁ ଅଠଗଡ଼ ରାଜ୍ୟ ଖଲ୍ଲିକୋଟସହିତ ଯୁକ୍ତ ହେଲା । ତାଙ୍କର ସୁଯୋଗ୍ୟ ସନ୍ତାନ ରାଜା ହରିହର ମିଷ୍ଟର ଏଫ୍. ଜେ. ବି. ମିନ୍‌ଚିନ୍ ସାହେବଙ୍କ ଠାରୁ ରମ୍ଭା ଇଷ୍ଟେଟ୍ କ୍ରୟ କଲେ । ରାଜା ହରିହରଙ୍କ ଦାୟାଦରୂପେ ବର୍ତ୍ତମାନ ସ୍ୱନାମଧନ୍ୟ ରାଜା ଶ୍ରୀ ଶ୍ରୀ ରାମଚନ୍ଦ୍ର ମର୍ଦ୍ଦରାଜ ଦେବ ବାହାଦୁର ୧୯୩୫ ଖ୍ରୀଷ୍ଟାବ୍ଦରେ ବରୁଳ ରାଜ୍ୟ କ୍ରୟ କରି ଖଲ୍ଲିକୋଟ, ଅଠଗଡ଼ ଏବଂ ବରୁଳ ରାଜ୍ୟମାନଙ୍କ ଅଧୀଶ୍ୱରରୂପେ ବିଦ୍ୟମାନ । ଖଲ୍ଲିକୋଟ ଓ ଅଠଗଡ଼ର ଆୟତନ ୬୪୦ ବର୍ଗମାଇଲ ଏବଂ ତହିଁର ବର୍ତ୍ତମାନ ମଫସଲ ବାର୍ଷିକ ଆଦାୟ ଜମା ୨ ଲକ୍ଷ ଟଙ୍କା । ପେଶକସ୍ ଓ ସେସ୍ ରୂପେ ସରକାର ବାହାଦୁରଙ୍କୁ ଏହି ଉଭୟ ରାଜ୍ୟର ଦେୟ ଏକଲକ୍ଷ ପଚିଶ ହଜାର ଟଙ୍କା । ଉଭୟ ରାଜ୍ୟର ଗ୍ରାମ ସଂଖ୍ୟା ୪୯୬ । ବରୁଳ ରାଜ୍ୟର ଆୟତନ ପ୍ରାୟ ୭୫ ବର୍ଗମାଇଲ; ପ୍ରଜାଙ୍କଠାରୁ ଆଦାୟ ରାଜସ୍ୱର ପରିମାଣ ପ୍ରାୟ ସତୁରି ହଜାର ଟଙ୍କା । ଏ ରାଜ୍ୟପାଇଁ ସରକାରଙ୍କୁ ଦେୟ ପେଶକସ୍ ବାରହଜାର ଟଙ୍କା ମାତ୍ର ।

ସ୍ୱର୍ଗୀୟ ହରିହର କୁମାରାବସ୍ଥାରେ ଜଣେ ବିଖ୍ୟାତ ପଣ୍ଡିତଙ୍କଠାରୁ ସଂସ୍କୃତ ଶିକ୍ଷା କରି ପାରଲାରେ ଓ ତତ୍‌ପରେ ମାନ୍ଦ୍ରାଜରେ ଇଂରାଜୀ ଭାଷା ଅଧ୍ୟୟନ କରିଥିଲେ । କିଶୋର

ବୟସରେ ନିଜର ସଦ୍‌ଗୁଣାବଳି ହେତୁରୁ ତଦାନୀନ୍ତନ ଦାକ୍ଷିଣାତ୍ୟର ରାଜକୁମାରମାନଙ୍କ ମଧ୍ୟରେ ହରିହର ବିଶେଷ ଖ୍ୟାତି ଅର୍ଜନ କରିଥିଲେ ।

୧୮୮୩ ଖ୍ରୀଷ୍ଟାବ୍ଦରେ ଏକୋଇଶ ବର୍ଷ ବୟସରେ ସାବାଳକ ହୋଇ କୁମାର ହରିହର ରାଜ୍ୟାଭିଷିକ୍ତ ହେଲେ । ୧୮୯୪ ଖ୍ରୀଷ୍ଟାବ୍ଦରେ ମୟୂରଭଞ୍ଜ ରାଜ୍ୟର ତଦାନୀନ୍ତନ ଶ୍ରେଷ୍ଠରାୟ (ସ୍ୱର୍ଗୀୟ ମହାରାଜ ଶ୍ରୀରାମଚନ୍ଦ୍ରଙ୍କ ସାନଭାଇ) ବୃନ୍ଦାବନଚନ୍ଦ୍ର ଭଞ୍ଜ ଦେବଙ୍କ ଜ୍ୟେଷ୍ଠା ଜେମାମଣିଙ୍କ ସହ ରାଜା ହରିହରଙ୍କର ଶୁଭ ପରିଣୟ ଅନୁଷ୍ଠିତ ହେଲା । ମାତ୍ର ଅଳ୍ପ କେତେକ ମାସ ପରେ ରାଜା ହରିହର ବିପତ୍ନୀକ ହେଲେ ଓ ୧୮୯୫ ଖ୍ରୀଷ୍ଟାବ୍ଦରେ ପ୍ରୋକ୍ତ ଶ୍ରେଷ୍ଠରାୟଙ୍କର ଦ୍ୱିତୀୟା ଜେମା ପ୍ରାତଃସ୍ମରଣୀୟା ଶ୍ରୀମତୀ କନକମଞ୍ଜରୀଙ୍କ ପାଣିଗ୍ରହଣ କଲେ । ରାଜା ହରିହର ଯେଉଁପରି ନାନାଦିଗରେ ସ୍ୱଦେଶର ଶିକ୍ଷା, କୃଷି ଓ ବାଣିଜ୍ୟ ଇତ୍ୟାଦିର ଉନ୍ନତିପାଇଁ ମନ, ଧନ ଅକାତର ଭାବରେ ଢାଳି ଥିଲେ, ରାଣୀ କନକମଞ୍ଜରୀ ମଧ୍ୟ ତାଙ୍କର ସୁକୁମାର ମନୋବୃତ୍ତିଗୁଡ଼ିକୁ ସେହିପରି ନାରୀଜାତିର କଲ୍ୟାଣ ଦିଗରେ ନିୟୋଜିତ କରିଥିଲେ । ତାଙ୍କ ପ୍ରଣୀତ 'ବାଳିକାପାଠ' ନାମକ ବାଳିକା-ପାଠ୍ୟପୁସ୍ତକ ନାରୀଜାତିର ଅଶେଷ କଲ୍ୟାଣ ସାଧନ କରୁଅଛି । ସ୍ୱର୍ଗତ କବିବର ରାଧାନାଥ ଉକ୍ତ ପୁସ୍ତକ ସମ୍ବନ୍ଧରେ ମତ ଦେଇଥିଲେ ଯେ, ବାଳିକା ବିଦ୍ୟାଳୟରେ ପାରିତୋଷିକ ଦେବା ସକାଶେ ଏପରି ସୁନ୍ଦର ପୁସ୍ତକ ଓଡ଼ିଆ ଭାଷାରେ ଦ୍ୱିତୀୟ ନାହିଁ ।

ରାଜା ହରିହର ଖଲ୍ଲିକୋଟ ଗଡ଼ର ପଶ୍ଚିମ ଦିଗକୁ ଏକ ମାଇଲ୍ ଦୂରରେ 'ନିର୍ମଳଝର' ନିକଟରେ ଗୋଟିଏ ଆଦର୍ଶ କୃଷିକ୍ଷେତ୍ର ପ୍ରତିଷ୍ଠିତ କରି, ଉକ୍ତ ନିର୍ଝରର ଜଳ ସାହାଯ୍ୟରେ ନାନାପ୍ରକାର ଫସଲ ଆବାଦ କରାଉଥିଲେ । 'ନିର୍ମଳଝର' କବିଙ୍କ ଚକ୍ଷୁର ନିରତିଶୟ ଆନନ୍ଦପ୍ରଦ ଓ ଯୋଗୀଙ୍କ ସାଧନକ୍ଷେତ୍ର । ରାଜା ହରିହର ଉକ୍ତ ନିର୍ଝରର ସୌନ୍ଦର୍ଯ୍ୟ ବୃଦ୍ଧି ମାନସରେ ନାନା ବିଚିତ୍ର କୌଶଳ ଉଦ୍ଭାବନ କରି ସେଠାରେ ଗୋଟିଏ ରାଜଭବନ ନିର୍ମାଣ କରାଇଥିଲେ । ଓଡ଼ିଆଙ୍କ ଜାତୀୟ ଉନ୍ନତିର ସବୁ ଦିଗକୁ ତାଙ୍କର ବିଶେଷ ଦୃଷ୍ଟି ଥିଲା । ଓଡ଼ିଆ ଜାତିର ଉନ୍ନତିପାଇଁ ରାଜା ହରିହରଙ୍କର ବହୁତୋମୁଖ କାର୍ଯ୍ୟ ଅତ୍ୟନ୍ତ ପ୍ରଶଂସନୀୟ । ତାଙ୍କର ଅଭ୍ୟୁଦୟ ବେଳକୁ 'ଉତ୍କଳ ସମ୍ମିଳନୀ' ପ୍ରତିଷ୍ଠିତ ହୋଇ ନ ଥିଲା ଓ ଦେଶରେ ପତ୍ରପତ୍ରିକାର ନିତାନ୍ତ ଅଭାବ ଥିଲା । ଖଣ୍ଡବିଖଣ୍ଡିତ ଓଡ଼ିଶାର ବିଭିନ୍ନ ଅଂଶମାନଙ୍କୁ ବଙ୍ଗ, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶର ସରକାରମାନେ ନିଜ ନିଜର ଅଙ୍ଗସୌଷ୍ଠବରେ ନିୟୋଜିତ କରି ସାରିଥିଲେ । ଖଣ୍ଡ-ବିଖଣ୍ଡିତ ଉତ୍କଳଭାଷୀ ଅଞ୍ଚଳମାନଙ୍କୁ ଏକଶାସନାଧୀନ କରିବା ଦାବି ଭାରତସରକାର ଓ ବ୍ରିଟିଶ୍ ସରକାରଙ୍କଠାରେ ଉପସ୍ଥାପିତ କରିବାକୁ କେହି ବାହାରି ନ ଥିଲେ । ୧୯୦୧ ଖ୍ରୀଷ୍ଟାବ୍ଦ ତାଙ୍କ ଜୀବନର ଗୋଟିଏ ସ୍ମରଣୀୟ ବର୍ଷ । ଏହି ବର୍ଷ ସେ ତାଙ୍କ ରମ୍ଭା ପ୍ରାସାଦ ସମ୍ମୁଖରେ ନବନିର୍ମିତ ଛାୟାମଣ୍ଡପ ତଳେ ଏକ ବୃହତ୍ ବେଦିକା ଉପରେ ଉତ୍କଳର ତଦାନୀନ୍ତନ କୃତିସନ୍ତାନମାନଙ୍କୁ ଘେନି ବିଭିନ୍ନ ପ୍ରଦେଶମାନଙ୍କରେ ଥିବା ଖଣ୍ଡବିଖଣ୍ଡିତ ଓଡ଼ିଆ ଅଞ୍ଚଳମାନଙ୍କ ଏକୀକରଣସ୍ୱରୂପ ମହାଯଜ୍ଞର ଅଗ୍ନି ପ୍ରଜ୍ୱଳିତ କରାଇ ଥିଲେ । ଆଜି ତାହା ଉତ୍କଳସମ୍ମିଳନୀ ରୂପେ ପରିଣତ । ରମ୍ଭା ରାଜପ୍ରାସାଦ ସମ୍ମୁଖରେ ଆଜିମଧ୍ୟ ସେହି ପବିତ୍ର ବେଦିକା ହରିହରଙ୍କ ସ୍ୱଦେଶ ପ୍ରେମର ସ୍ମୃତିକୁ ଉଜ୍ଜୀବିତ ରଖି ବିଦ୍ୟମାନ ଅଛି । ଏହି ଅନୁଷ୍ଠାନରେ ତାଙ୍କର ଦୁଇଜଣ କର୍ମଚାରୀଙ୍କ କାର୍ଯ୍ୟକୁଶଳତା ପ୍ରଶଂସନୀୟ । ଜଣେ ହରିହରଙ୍କ ସ୍ଥାପିତ ପ୍ରଜାବନ୍ଧୁ ପ୍ରେସ୍‌ର ମ୍ୟାନେଜର୍ ସ୍ୱର୍ଗତ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ଓ ଅନ୍ୟ ଜଣକ ରମ୍ଭା ରାଜପ୍ରାସାଦର ତତ୍ତ୍ୱାବଧାରକ ନୀରବ ଦେଶକର୍ମୀ ଶ୍ରୀଯୁକ୍ତ ଜୟକୃଷ୍ଣ ଚମ୍ପତିପଟ୍ଟନାୟକ । ଏହି ଉଦ୍ୟମ ପରେ ହରିହରଙ୍କ ଉଦ୍ୟମ, ପ୍ରେରଣା ଓ ଆର୍ଥିକ ସାହାଯ୍ୟରେ ପାରଳାଖେମୁଣ୍ଡିର ସ୍ୱର୍ଗତ ଶ୍ୟାମସୁନ୍ଦର ରାଜଗୁରୁ ବି. ଏ. ଙ୍କ ସଭାପତିତ୍ୱରେ ୧୯୦୨ ଖ୍ରୀଷ୍ଟାବ୍ଦରେ ପ୍ରଥମ ଗଞ୍ଜାମ ଉତ୍କଳ ସମ୍ମେଳନୀ ବ୍ରହ୍ମପୁରଠାରେ ଅନୁଷ୍ଠିତ ହୋଇଥିଲା । ସେହି ସମ୍ମେଳନୀରେ ଉତ୍କଳର ବହୁ ଅଞ୍ଚଳ (କଟକ, ପୁରୀ, ବାଲେଶ୍ୱର)ରୁ ବହୁ ଜାତୀୟ କର୍ମୀ ଯୋଗ ଦେଇଥିଲେ । ସ୍ୱର୍ଗତ ମଧୁସୂଦନ ଦାସ ସି. ଆଇ. ଇ, ଫକୀରମୋହନ, ବିଶ୍ୱନାଥ, ରାମଚନ୍ଦ୍ର ଦାସ, ଗୋପବନ୍ଧୁ ଓ ଗଞ୍ଜାମର ବହୁ ନୀରବ କର୍ମୀ ମଧ୍ୟ ଏଥିରେ ମନ ପ୍ରାଣ ଢାଳି ଦେଇଥିଲେ । ଏ ସମ୍ମେଳନୀରେ ଯୋଗ ଦେଇଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ବ୍ରହ୍ମପୁରର ଶ୍ରୀ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଶ୍ରୀବତ୍ସ ପଣ୍ଡା ଓ କଟକର ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ, ଶ୍ରୀ ଶଶିଭୂଷଣ ରାୟ, ଶ୍ରୀ ରଘୁନାଥ ରାଉ ଜୀବିତ ଅଛନ୍ତି । ଉତ୍କଳଭାଷୀ ବିଚ୍ଛିନ୍ନ ଅଞ୍ଚଳମାନ ଏକ ଶାସନାଧୀନ ହେବା ପ୍ରସ୍ତାବ ପ୍ରଥମେ ଉତ୍କଳ ସମ୍ମେଳନୀରେ ଗୃହୀତ ହୋଇ ପରବର୍ତ୍ତୀଠାରୁ ମଧୁବାବୁଙ୍କ ନେତୃତ୍ୱରେ ଉତ୍କଳ ସମ୍ମେଳନୀର ଅଧିବେଶନ ମାନଙ୍କରେ ତାହା ପୁନଃପୁନଃ ଗୃହୀତହେଲା ।

ଦେଶରେ ସ୍ତ୍ରୀଶିକ୍ଷାବିସ୍ତାର ଦିଗରେ ତାଙ୍କର ବିଶେଷ ଦୃଷ୍ଟି ଥିଲା ଏବଂ ସେହି ହେତୁରୁ ସେ ପ୍ରଥମେ ନିଜ ରାଜ୍ୟ ମଧ୍ୟରେ ଖଲ୍ଲିକୋଟ, ରମ୍ଭା ଓ କୋଦଣ୍ଡରାଣୀ ପ୍ରଭୃତି ସ୍ଥାନମାନଙ୍କରେ ବାଳିକା-ବିଦ୍ୟାଳୟମାନ ସ୍ଥାପନ କରିଥିଲେ । ସେ କଟକର ରେଭେନ୍‌ସା ବାଳିକାବିଦ୍ୟାଳୟର ଛାତ୍ରୀମାନଙ୍କ ବ୍ୟବହାର ଲାଗି ହଜାରେ ଟଙ୍କାର ଘୋଡ଼ା ଓ ଗାଡ଼ି ଓ ଅର୍ଥ ସାହାଯ୍ୟ ପ୍ରଦାନ କରିଥିଲେ । ଠିକ୍ ଏହି ସମୟରେ ସରକାର ବାହାଦୁରଙ୍କ ଦ୍ୱାରା ପ୍ରତିଷ୍ଠିତ ବ୍ରହ୍ମପୁରର ଟେକେଣ୍ଡରୀ କଲେଜକୁ ଅର୍ଥାଭାବ ହେତୁ ସରକାର ଉଠାଇଦେବାର ପ୍ରୟାସ କରିଥିଲେ । ଗଞ୍ଜାମର କେତେଜଣ ଜମିଦାରଙ୍କ ସାହାଯ୍ୟରେ କଲେଜଟି କେତେକାଳ ବଞ୍ଚିରହିବା ପରେ ପୁଣି ଅର୍ଥକୃଚ୍ଛ୍ରତା ଘଟିବା

ଫଳରେ କଲେଜର ଅବସ୍ଥା ଟଳମଳ ହୋଇଥିଲା । ରାଜା ହରିହର ସେତେବେଳେ ନିଜର ଆର୍ଥିକ ଅସୁବିଧା ପ୍ରତି ଭ୍ରୂକ୍ଷେପ ନ କରି ଲକ୍ଷାଧିକ ମୁଦ୍ରା କଲେଜକୁ ସାହାଯ୍ୟ ଦେଇଥିଲେ । ସେଥିପାଇଁ ଏହା ଖଲ୍ଲିକୋଟ କଲେଜ୍ ନାମରେ ସୁପରିଚିତ । ବର୍ତ୍ତମାନ ସୁଦ୍ଧା ଏହି କଲେଜ୍ ଖଲ୍ଲିକୋଟ ଇଷ୍ଟେଟରୁ ବାର୍ଷିକ ଅର୍ଥ ସାହାଯ୍ୟ ଲାଭକରି ଆସୁଅଛି । ଡାଏମଣ୍ଡ ଜୁବ୍‌ଲି ହଲ୍ ନାମକ ବ୍ରହ୍ମପୁରର ଟାଉନ୍ ହଲ୍‌ଟି ରାଜା ହରିହରଙ୍କ ପ୍ରଦତ୍ତ ଅର୍ଥସାହାଯ୍ୟରେ ନିର୍ମିତ ହୋଇ ଗଞ୍ଜାମର ଅଶେଷ ଉପକାର ସାଧନ କରୁଅଛି ।

ଦେଶରେ ସଂସ୍କୃତ ଶିକ୍ଷାର ପ୍ରସାର ଲାଗି ରାଜା ହରିହରଙ୍କର ମଧ୍ୟ ବିଶେଷ ଦୃଷ୍ଟି ଥିଲା । ସେ ସଂସ୍କୃତ ଚତୁଷ୍ପାଠୀମାନ ସ୍ଥାପନ କରାଇ ପଣ୍ଡିତ ଓ ସାହିତ୍ୟ ସେବକମାନଙ୍କୁ ଯଥେଷ୍ଟ ଅର୍ଥ ସାହାଯ୍ୟ କରୁଥିଲେ । ସ୍ୱର୍ଗତ ଫକୀରମୋହନ ସେନାପତି ତାଙ୍କ ଓଡ଼ିଆ ମହାଭାରତର ଆଦିପର୍ବ ରାଜା ହରିହରଙ୍କ ଅର୍ଥାନୁକୂଲ୍ୟରେ ପ୍ରକାଶ କରିଥିଲେ । ସ୍ୱର୍ଗତ ବିଶ୍ୱନାଥକର, ଭାଷାକୋଷର ସଙ୍କଳକ ଓ ଅନ୍ୟାନ୍ୟ ଅନେକ ସାହିତ୍ୟିକ ତାଙ୍କଠାରୁ ସାହାଯ୍ୟ ପାଇଥିଲେ ଓ ବହୁବାର ତାଙ୍କ ଆତିଥ୍ୟଲାଭ କରିଥିଲେ ।

୧୯୦୩ ଖ୍ରୀଷ୍ଟାବ୍ଦରେ ରାଜା ହରିହର ରମ୍ଭାଠାରେ ଗୋଟିଏ (ଛାପାଖାନା) ପ୍ରେସ୍ ସ୍ଥାପନ କରି ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ ପ୍ରଜାବନ୍ଧୁ, ଉତ୍କଳ ମଧୁପ, ଏବଂ ସଂସ୍କାରକ ନାମରେ ତିନି ଖଣ୍ଡି ସାପ୍ତାହିକ ଓ ମାସିକ ପତ୍ର ପ୍ରକାଶ କରାଇ, ଦେଶମିଶ୍ରଣ ଆନ୍ଦୋଳନରେ ଯଥେଷ୍ଟ ସାହାଯ୍ୟ କରିଥିଲେ । ଦେଶବିଦେଶରୁ ବହୁ ମାନ୍ୟଗଣ୍ୟ ବିଶିଷ୍ଟ ବ୍ୟକ୍ତିଙ୍କୁ କବିଗୁରୁ ରାଧାନାଥଙ୍କର 'ମଙ୍ଗଳମାଳିନୀ ନୀଳାମ୍ବୁ ଚିଲିକା' କୂଳସ୍ଥିତ ନିଜର ରମ୍ଭା ରାଜପ୍ରାସାଦକୁ ଆହ୍ୱାନ କରି ସେମାନଙ୍କୁ ସତ୍କାରରେ ପ୍ରୀତ କରାଇ ହରିହର ସେମାନଙ୍କଠାରେ ଦେଶମିଶ୍ରଣ ପ୍ରସ୍ତାବ ଉପସ୍ଥାପିତ କରୁଥିଲେ ।

ସଦାଶୟ ସରକାର ବାହାଦୁର ତାଙ୍କ ସ୍ୱଦେଶ-ପ୍ରେମର ମହତ୍ତ୍ୱ ଉପଲବ୍ଧି କରି ତାଙ୍କୁ ୧୯୦୮ ଖ୍ରୀଷ୍ଟାବ୍ଦ ମେ ମାସ ୨୧ ତାରିଖରେ ରାଜା ଉପାଧି ପ୍ରଦାନ କରିଥିଲେ । ରାଜ୍ୟ ପ୍ରାପ୍ତିର ବହୁବର୍ଷ ପର୍ଯ୍ୟନ୍ତ ସେ ପୁତ୍ର-ସନ୍ତାନ ଲାଭ କରି ନ ପାରି ଅତ୍ୟନ୍ତ ଦୁଃଖିତ ଥିଲେ । ୧୯୦୦ ଖ୍ରୀଷ୍ଟାବ୍ଦରେ ବର୍ତ୍ତମାନ ରାଜା, କୁମାର ଶ୍ରୀ ରାମଚନ୍ଦ୍ର ତାଙ୍କର କୋଳ ମଣ୍ଡନ କଲେ । ଜନ୍ମର ପଞ୍ଚମ ବର୍ଷରେ କୁମାରଙ୍କ ନାମକରଣ ଉତ୍ସବ ମହାସମାରୋହରେ ଅନୁଷ୍ଠିତ କରାଇ ରାଜା ହରିହର ଉତ୍କଳର ବରିଷ୍ଠ ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ କରିଥିଲେ । ଏହା ତାଙ୍କର ଜୀବନ ଘଟଣାମୟ ଜୀବନର ଶେଷ ଅଭିନୟ । ଏହାର କିଛିଦିନ ପରବର୍ତ୍ତୀରେ ରାଜା ହରିହର ୧୯୦୯ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ ନିଜର ପରିବାର ତଥା ଦେଶବାସୀଙ୍କୁ ଶୋକସାଗରରେ ଭସାଇ ସ୍ୱର୍ଗାରୋହଣ କଲେ ।

ରାଜାବାହାଦୁର ଶ୍ରୀ ରାମଚନ୍ଦ୍ର, ସୁଯୋଗ୍ୟ ପିତାଙ୍କର ସୁଯୋଗ୍ୟ ଦାୟାଦରୂପେ ସ୍ୱର୍ଗତ ରାଜା ହରିହରଙ୍କର ଚିର-ପୋଷିତ ଆଶା ଓ ଆକାଂକ୍ଷା ସ୍ମରଣ ରଖି ୧୯୩୨ ସାଲରେ ସରକାରଙ୍କଦ୍ୱାରା ଆହୂତ ହୋଇ ଲଣ୍ଡନରେ ଗୋଲଟେବଲ୍ କୃତୀୟ ବୈଠକରେ ଯୋଗଦାନ ପୂର୍ବକ ନୂଆ ଓଡ଼ିଶା ପ୍ରଦେଶ ଗଠନଲାଗି ବ୍ୟବସ୍ଥା କରି ଆସିଲେ । ତେଣୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ସ୍ମୃତି ସହିତ ରାଜାବାହାଦୁରଙ୍କ ନାମ ଚିରଦିନ ଜଡ଼ିତ ରହିଥିବ । ଲଣ୍ଡନରେ ରାଜା ବାହାଦୁରଙ୍କ ସମ୍ପାଦକରର ଶ୍ରୀଯୁକ୍ତ ଜଗନ୍ମୋହନ ପଟ୍ଟନାୟକଙ୍କ ସ୍ୱଦେଶପ୍ରେମ ଉଲ୍ଲେଖଯୋଗ୍ୟ । ଦେଶ-ମିଶ୍ରଣ ବିଷୟରେ ରାଜା ବାହାଦୁରଙ୍କୁ ସାହାଯ୍ୟ କରିବା କାର୍ଯ୍ୟରେ ତାଙ୍କର ତତ୍ପରତା ଅତୀବ ପ୍ରଶଂସନୀୟ । ପୃଥକ୍ ପ୍ରଦେଶର ଦାବି ଗୋଲ-ଟେବଲ ବୈଠକରେ ଉପସ୍ଥାପିତ ହେବା ବିଷୟରେ ଶ୍ରୀଯୁକ୍ତ ଜଗନ୍ମୋହନ, ରାଜା ବାହାଦୁରଙ୍କର କର୍ମ-ପନ୍ଥା ସୁଗମ କରିବାରେ ଯଥେଷ୍ଟ ସାହାଯ୍ୟ କରିଥିଲେ ।

ରାଜାବାହାଦୁର ବାଲ୍ୟବୟସରୁ ପିତୃହୀନ ହୋଇଥିବାରୁ ରାଜ୍ୟ ସରକାରଙ୍କ ଶାସନରେ ପରିଚାଳିତ ହେଲା । ସେ ସ୍ୱର୍ଗତ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କଠାରୁ ପ୍ରାଥମିକ ମାତୃଭାଷା ଶିକ୍ଷା ଲାଭ କରି, ମାନ୍ଦ୍ରାଜର ଯୁଇଙ୍ଗ୍‌ଟନ୍ ଏବଂ ଖ୍ରୀଷ୍ଟିଆନ୍ କଲେଜରେ ଉଚ୍ଚ ଇଂରାଜୀ ଶିକ୍ଷା ପ୍ରାପ୍ତ ହେଲେ । ରାଜମାତା କନକମଞ୍ଜରୀଙ୍କ ତତ୍ତ୍ୱାବଧାନରେ ଓ କୋର୍ଟ ଅଫ୍ ୱାର୍ଡ଼ସ୍‌ଙ୍କ ପରିଚାଳନାରେ ୧୯୧୦ ମସିହା ମେ ମାସ ଦଶ ତାରିଖ ଦିନ ତାଙ୍କର ଶୁଭ କର୍ଣ୍ଣବେଧ ଓ ବ୍ରତୋପନୟନ ଅନୁଷ୍ଠିତ ହୋଇଥିଲା । ୧୯୨୦ ଖ୍ରୀଷ୍ଟାବ୍ଦରେ ଅଧ୍ୟୟନ ଶେଷକରି ରାମଚନ୍ଦ୍ର ତା ୧୬।୧୨।୨୧ ରିଖ ଦିନ ରାଜ୍ୟ ଲାଭ କଲେ । ସେହି ସମୟରୁ ସେ ଗଞ୍ଜାମ ଜିଲ୍ଲା ବୋର୍ଡ଼ର ସଭାପତି-ରୂପେ ନିଜର ସଦ୍‌ଗୁଣାବଳି ହେତୁ ଲୋକପ୍ରୀତିଭାଜନ ହୋଇ ୧୯୩୭ ସାଲ ପର୍ଯ୍ୟନ୍ତ ୧୪ ବର୍ଷ ବାରମ୍ବାର ଜିଲ୍ଲା ବୋର୍ଡ଼ର ସଭାପତି ନିର୍ବାଚିତ ହେଉଥିଲେ । ରାଜା ବାହାଦୁର ତାଙ୍କ କର୍ମକାଳ ମଧ୍ୟରେ ଦେଶର ବିବିଧ ଦାବି ସରକାରଙ୍କଠାରେ ଉପସ୍ଥିତ କରି ତିରିଶ ଲକ୍ଷ ଟଙ୍କା ସାହାଯ୍ୟ ଆଣି, ଗଞ୍ଜାମର ନାନା ସ୍ଥାନରେ ଅନେକଗୁଡ଼ିଏ ପୋଲ, ସଡ଼କ ପ୍ରସ୍ତୁତ କରାଇ ଜନସାଧାରଣଙ୍କର ଚିରସ୍ମରଣୀୟ ହୋଇଅଛନ୍ତି ।

ବିଭିନ୍ନ କ୍ଷେତ୍ରରେ ତାଙ୍କର କୃତିତ୍ୱ ଅତୀବ ପ୍ରଶଂସନୀୟ । କ୍ରୀଡ଼ା କୌତୁକ ଓ ଶିକାରରେ ସେ ଯେପରି ଦକ୍ଷ, ଜାତୀୟତା ରକ୍ଷା ଦିଗରେ ମଧ୍ୟ ସେହିପରି ସେ ଜଣେ ବିଶିଷ୍ଟ କର୍ମୀ । ଇଉରୋପ ଭ୍ରମଣ କରି, ବିଭିନ୍ନ ଉନ୍ନତ ଦେଶର ଉନ୍ନତ ସ୍ୱାୟତ୍ତଶାସନ ଅନୁଷ୍ଠାନ ଓ ସମବାୟ ସହଯୋଗ ସମିତିମାନଙ୍କର କର୍ମପନ୍ଥା ନିଜେ ପର୍ଯ୍ୟବେକ୍ଷଣ କରି ସେହି

ପଦ୍ଧତିମାନ ଅବଲମ୍ବନ କରି ସେ ମାତୃଭୂମିର ଉନ୍ନତିପାଇଁ ନାନା ବ୍ୟବସ୍ଥା କଳ୍ପନା କରିଅଛନ୍ତି । ତାଙ୍କର ସାହିତ୍ୟାନୁରାଗ ପ୍ରଶଂସନୀୟ । ଉତ୍କଳର ପ୍ରଖ୍ୟାତନାମା କବିମାନଙ୍କୁ ସେ ଅକାତର ଅର୍ଥ ସାହାଯ୍ୟ ପ୍ରଦାନ କରି, ଅନେକଗୁଡ଼ିଏ ପୁସ୍ତକ ପ୍ରକାଶ କରାଇଅଛନ୍ତି । ସେ କବି ଚନ୍ଦ୍ରାମଣି, କବିସୂର୍ଯ୍ୟ ଗ୍ରନ୍ଥାବଳୀର ସମ୍ପାଦକ ପଣ୍ଡିତ ନୀଳମଣି ଦାଶ ପ୍ରଭୃତିଙ୍କୁ ଉତ୍ସାହଦାନଦ୍ୱାରା ମାତୃଭାଷାର ପ୍ରଭୂତ ମଙ୍ଗଳ ସାଧନ କରିଅଛନ୍ତି । ରାଜା ବାହାଦୁର ଭାଷାକୋଷର ଜଣେ ବିଶିଷ୍ଟ ପୃଷ୍ଠପୋଷକ । ତାଙ୍କର ବିବିଧ ସଦ୍‌ଗୁଣ ସନ୍ଦର୍ଶନରେ ପ୍ରୀତ ହୋଇ ବ୍ରିଟିସ୍ ସରକାର ତାଙ୍କୁ ୧୯୨୯ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ ବ୍ୟକ୍ତିଗତ ରାଜା ଉପାଧି ଓ ପରେ ୧୯୩୪ ମସିହାରେ ତାଙ୍କୁ ବଂଶାନୁକ୍ରମିକ ରାଜା ଉପାଧିରେ ସମ୍ମାନିତ କରିଥିଲେ । ଗତ ୧୯୩୭ ଖ୍ରୀଷ୍ଟାବ୍ଦରେ ପୁଣି ସରକାର ତାଙ୍କର ସାଧାରଣ କର୍ମ କ୍ଷେତ୍ରରେ କର୍ମ କୁଶଳତା ଉପଲବ୍ଧି କରି ତାଙ୍କୁ ରାଜା ବାହାଦୁର ଉପାଧି ପ୍ରଦାନ କରିଅଛନ୍ତି । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସଂଗଠନ ସମ୍ପର୍କରେ ନାନା ବିଷୟ ଅନୁସନ୍ଧାନ କରି ସେ ସରକାରୀ ଓ'ଡ଼ନେଲ୍ କମିଟିଙ୍କ ସମ୍ମୁଖରେ ପ୍ରଦେଶ ଗଠନ ସପକ୍ଷରେ ଯେଉଁ ପାଣ୍ଡିତ୍ୟ ପୂର୍ଣ୍ଣ ଅକାଟ୍ୟ ଯୁକ୍ତିଯୁକ୍ତ ସାକ୍ଷ୍ୟ ପ୍ରଦାନ କରିଥିଲେ, ତାହା ଜାତୀୟ ଇତିହାସରେ ଅମରାକ୍ଷରରେ ଲିପିବଦ୍ଧ ହୋଇ ରହିଥିବ । କେବଳ ଏତିକି କରି ନୀରବ ନ ଥାଇ ସେ ପାର୍ଲିଆମେଣ୍ଟାରି କମିଟି ଆଗରେ ଓଡ଼ିଆମାନଙ୍କର ସମୟୋପଯୋଗୀ ଦାବୀମାନ ଉପସ୍ଥାପିତ କରିବାକୁ ନାନା ଅସୁବିଧା ଓ କଷ୍ଟଭୋଗ କରି ଦେଶର ଅଶେଷ କଲ୍ୟାଣ ସାଧନ କରିଅଛନ୍ତି । ନିଜ ରାଜ୍ୟରେ ପ୍ରଜାମାନଙ୍କର ଶ୍ରୀବୃଦ୍ଧି ନିମିତ୍ତ ସେ କୂଳ୍ୟାମାନ ଖୋଳାଇ ଜଳାଭାବ ଦୂରୀକରଣର ବ୍ୟବସ୍ଥା କରିଅଛନ୍ତି ।

ରାଜାବାହାଦୁର ପୂର୍ବେ ମାନ୍ଦ୍ରାଜ କାଉନ୍‌ସିଲ୍ ମେମ୍ବର ଥିଲେ । ପ୍ରଥମେ ଓଡ଼ିଶାର ଆଡ଼ଭାଇସରି କମିଟିର ଓ ପରେ ଆସେମ୍ବ୍ଲିର ମେମ୍ବର ରୂପେ ସେ ଦେଶର ଜଣେ ବିଶିଷ୍ଟ କର୍ମୀ ବୋଲି ସର୍ବଜନ ସୁପରିଚିତ । କ୍ଷମା ଓ ସହନଶୀଳତା ତାଙ୍କ ଚରିତ୍ରର ବିଶେଷତ୍ୱ; ତାଙ୍କ ସମ୍ପର୍କରେ ଆସିଥିବା ପ୍ରତ୍ୟେକ ବ୍ୟକ୍ତି ଏହା ଉତ୍ତମରୂପେ ହୃଦୟଙ୍ଗମ କରି ପାରିଛନ୍ତି । ରାଜା ବାହାଦୁରଙ୍କର ସ୍ୱଦେଶ ପ୍ରେମ, ସଙ୍ଗୀତ ଓ ସାହିତ୍ୟାନୁରାଗ ତଥା ବିନୟ ଇତ୍ୟାଦି ଅସାଧାରଣ ସଦ୍‌ଗୁଣାବଳୀ ସର୍ବଥା ପ୍ରଶଂସନୀୟ । ଉତ୍କଳ ଇତିବୃତ୍ତରେ ତାଙ୍କର ଗୁଣାବଳୀ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

"ପୁତ୍ରେ ଯଶସି ତୋୟେଚ ନରାଣାଂ ପୁଣ୍ୟଲକ୍ଷଣମ୍"

ଏହି ଆପ୍ତବଚନର ସତ୍ୟତା ପ୍ରତିପାଦନ ନିମିତ୍ତ ରାଜାବାହାଦୁର ଶ୍ରୀ ରାମଚନ୍ଦ୍ର ମର୍ଦ୍ଦରାଜଙ୍କ ଗୁଣାବଳୀ ଏଥିରେ ସନ୍ନିବିଷ୍ଟ ହେଲା ।

ସନ୍ଦର୍ଭ ଲେଖକ—
ଶ୍ରୀଯୁକ୍ତ କାଳୀଚରଣ ପଟ୍ଟନାୟକ

ହରିହର ରଥ—ଦେ.ବ (ନାମ)—ପୁରୀ ସହର ନିବାସୀ ଜନୈକ ସଂସ୍କୃତ ପଣ୍ଡିତ—The late Sanskrit-knowing pandit of Puri town.
Harihara Ratha
[ଦ୍ର—ଏ ମହାଶୟ ବେଣୀସଂହାର ଓ ଶକୁନ୍ତଳା ପ୍ରଭୃତି କେତେକ ନାଟକ ସଂସ୍କୃତରୁ ଓଡ଼ିଆରେ ଅନୁବାଦ କରିଥିଲେ ଓ କେତେକ ଓଡ଼ିଆ ନାଟକ ପ୍ରଣୟନ କରିଥିଲେ—ଭାରତୀ. ଉ. ସା. ଇତିହାସ । ]

ହରିହରାତ୍ମକ—ସଂ. ବି—୧ । ହରିହର କ୍ଷେତ୍ର (ଦେଖ)—1. Harihara kshetra (See). ୨ । ଗରୁଡ଼ (ଶବ୍ଦରତ୍ନାବଳୀ)—2. The mythological king of birds. ୩ । ଶିବ ବାହନ ବୃଷ (ଶବ୍ଦରତ୍ନାବଳୀ)—3. The bull which is said to carry Śiba on his back. ବିଶ. ପୁଂ—ଯାହାଙ୍କ ଆତ୍ମାରେ ହରି ଓ ହର ବିଦ୍ୟମାନ—Whose soul is pervaded by Hari and Hara.
Hariharātmaka

[ହରିହରାତ୍ମିକା—ସ୍ତ୍ରୀ. ବିଣ]

ହରିହରାତ୍ମା—ଦେ. ବି (ସଂ. ହରିହର ଓ ଆତ୍ମା; ହରି ଓ ହରଙ୍କର ସଂଯୁକ୍ତ ମୂର୍ତ୍ତିପରି ଦୁଇଜଣଙ୍କ ଅଭିନ୍ନ ମନ ଥିବାରୁ)—୧ । ଦୁଇଜଣଙ୍କର ଅଭିନ୍ନପ୍ରଣୟ; ଅଭେଦ୍ୟପ୍ରୀତି; ଏକାତ୍ମ୍ୟ; ଅଚ୍ଛେଦ୍ୟ ବନ୍ଧୁତା— Very intimate friendship between two persons. ୨ । (ଦ୍ୱିବଚନ) ଯେଉଁ ଦୁଇବନ୍ଧୁଙ୍କ ମଧ୍ୟରେ ଅଚ୍ଛେଦ୍ୟ ବନ୍ଧୁତା ବା ଅଭିନ୍ନ ପ୍ରୀତି ଥାଏ—2. Two friends who are tied to each other by an unbreakable tie of friendship. ୩ । ଯେଉଁ ଦୁଇଜଣଙ୍କର ମନ ଏକ—3. Two friends of one mind.
Hariharātmā
হরিহরাত্মা
অভেদমেল

ହରି ହାଟ—ଦେ. ବି—ଖୋଲ କରତାଳ ସହିତ ବହୁଜନଙ୍କ ସମବେତ ହରିନାମ ସଙ୍କୀର୍ତ୍ତନ ବିଶିଷ୍ଟ ଉତ୍ସବ—A festival consisting of several parties of singers chanting the name of Hari.
Harihāṭa
হরিহাট
महोत्सव

ହରୀତକୀ—ସଂ. ବି—୧ । (ହରି + ଇ ଧାତୁ = ଗମନ କରିବା = ଇତି + କ + ସ୍ତ୍ରୀ ଈ; କିମ୍ବା ୨ । ହୃ ଧାତୁ = (ସର୍ବବ୍ୟାଧି) ହରଣ କରିବା + କର୍ତ୍ତୃ. ଇ + ତକ = ପାପ୍ତି; କିମ୍ବା ୩ । ହରି = ପାଣ୍ଡୁର ବର୍ଣ୍ଣ + ଇ ଧାତୁ = ମିଳିତ ହେବା + ଅଧିକରଣ. ତ + କ + ଈ; କିମ୍ବା ୪ । ହର = ଶିବ + ଇତ = ହରିତ = ଶିବଙ୍କ ଭବନ କୈଳାସରେ ଜାତ, ହରିତ + କ + ଈ)—ହରିଡ଼ା ନାମକ ବୃକ୍ଷ ଓ ଫଳ Terminalia Chebula, the black myrobalan (tree and fruit).
Harītakī
হরড়া, হরীতকী, হর্ত্তকী, হত্তকি
हड, हर्रे; हर्रा
ପା. ହଲିଲେ କାବଲି; ହଲିଲେ ଜର୍ଦ୍ଦ; ହଲିଲେ ସିହା ।
ମ. ହଡଡ଼ା
ଅ. ହଲିଲ୍ ଜଅସ୍ ପର୍; ହଲିଲଜଅସଓଜ୍ ।
ତେ. କରକକେଟ୍ଟୁ
ତା. କଡ଼ୁକ୍କେ ।
ସ. ପର୍ଯ୍ୟାୟ—
ହରୀତକୀ, ଅଭୟା, ପଥ୍ୟା,
[ଦ୍ର—ଏହିଗଛ ନାତିସାର୍ଦ୍ଧ ନାତି ଶୁଷ୍କ, ଏହା ଭାରତର ପ୍ରାୟ ସର୍ବତ୍ର ଜଙ୍ଗଲରେ;

କାୟସ୍ଥା, ପୂତନା, ଅମୃତ, ଅମୃତା, ହୈମବତୀ, ଅଜ୍ୟଥା, ଚେତକୀ, ଶ୍ରେୟସୀ, ଶିବା, ବୟଃସ୍ଥା, ବିଜୟା, ଜୀବନ୍ତୀ, ରୋହିଣୀ, ବୟସ୍ଥା, ସୁଧା, କନ୍ୟା, ରସାୟନଫଳା, ଚେତନକୀ, ପ୍ରପଥ୍ୟା, ଜୀବ-ପ୍ରିୟା, ଜୀବନିକା, ଉଷଗ୍‌ବଗ୍, ଭିଷକ୍‌ପ୍ରିୟା, ପ୍ରାଣଦା, ଜୀବ୍ୟା, ଦେବୀ, ପାବ୍ୟା ।

ଜନ୍ମେ । ପାହାଡ଼ିଆ ଜାଗାରେ ଜନ୍ମିବ । ଗଛ ଶୈଳ ଓ ଭୁଡ଼ିଆ ହୁଏ । ପ୍ରତିବର୍ଷ ଗଛରୁ ପୁରୁଣା ପତ୍ର ଝଡ଼ିପଡ଼େ । ଏହାର ପତ୍ର ଉପରେ ପାଞ୍ଚଟି ଶିରା । ଏହାରଫଳ ମୃଦଙ୍ଗ ପରି, ଦୁଇମୁଣ୍ଡ ସରୁ ଓ ମଝି ମୋ କେତେ ଜାତୀୟ ହରୀତକୀ ଅଣ୍ଡାକାର ଓ କେତେକ ଗୋଲ । ଫଳ ଶୀତଦିନେ ପାଚେ । ଜଳବାୟୁ ଓ ମୃତ୍ତିକା ଗୁଣରେ ଏହାର ଫଳ ½ ଇଞ୍ଚ ଠାରୁ ୩ଇଞ୍ଚ ପର୍ଯ୍ୟନ୍ତ ଲମ୍ବ ହୁଏ ଏବଂ ½ ଇଞ୍ଚ ଠାରୁ ୧ ଇଞ୍ଚ ପର୍ଯ୍ୟନ୍ତ ମୋଟ ହୁଏ । ଏହି ଗଛର ଡାଳରୁ ଏକପ୍ରକାର ଅଠା ବାହାରେ । ହରଡ଼ାଗଛର କାଠ ଖୁବ୍ ଟାଣୁଆ । ଏ ଫଳର ସ୍ୱାଦ କଷା, ଓ ଏହାର ଖସ ଉପରଟ୍ ଫୁଲଦିଆ । ଏହା ଭିତରର ମଞ୍ଜି ରୁଡ଼ରୁଡ଼ିଆ ଅର୍ଥାତ୍ ଅମସୃଣ ଏହାକୁ ପାଣିରେ ବତୁରାଇ ଚମଡ଼ାକୁ କଷିବାକୁ ହୁଏ । ଏଥିରେ ଫିଟ୍‌କିରି ମିଶାଇ ହଳଦିଆ ଓ ହୀରାକସ ମିଶାଇ କାଳିଆ ରଙ୍ଗ ତିଆରି କରାଯାଇ ଲୁଗା ଓ ସୂତାଆଦି ରଙ୍ଗାହୁଏ ।

ବୈଦ୍ୟକମତରେ ହରଡ଼ା ମଧୁର, କଟୁ, ଅମ୍ଳ, ତିକ୍ତ ଓ କଷାୟ ଏହି ୫ ରସଯୁକ୍ତ । ଏଥିରେ କଷାୟ ରସ ଅଧିକ । ଏଥିରେ ଲବଣ ରସ ନାହିଁ । ଏହା ମଧୁର, ତିକ୍ତ ଓ କଷାୟ ବୋଲି ପିତ୍ତନାଶକ, କଟୁତିକ୍ତ କଷାୟ ବୋଲି କଫନାଶକ, ଅମ୍ଳ ବୋଲି ବାୟୁନାଶକ । ହରଡ଼ା ଫଳର ମଜ୍ଜାରେ ମଧୁର ରସ, ସ୍ନାୟୁରେ ଅମ୍ଳରସ, ଦନ୍ତରେ ତିକ୍ତରସ, ତ୍ୱକ୍‌ରେ କଟୁରସ ଓ ଅସ୍ଥିରେ କଷାୟରସ ଅଛି । ଏହା ରୁକ୍ଷ, ଉଷ୍ଣବୀର୍ଯ୍ୟ, ଅଗ୍ନି-ଦୀପ୍ତିକର, ମେଧାଜନକ ମଧୁରବିପାକ, ରସାୟନ, ଚକ୍ଷୁର ହିତକର, ଲଘୁ, ଆୟୁଷ୍କର, ବୃଂହଣ ଓ ମଳଭେଦକ ।

ଏହା ଶ୍ୱାସ, କାସ, ପ୍ରମେହ, ଅର୍ଶ, କୁଷ୍ଠ, ଭଗନ୍ଦର, ଶୋଥ ଉଦରରୋଗ, କୃମି, ସ୍ୱରବିକୃତି, ଗ୍ରହଣୀ, ମଳବଦ୍ଧତା, ବିଷମ-ଜ୍ୱର, ଗୁଳ୍ମ, ଅଧ୍ମାନ (ପେଟଫମ୍ପା), ତୃଷ୍ଣା, ହିକ୍କା, କଣ୍ଡୁ, ହୃଦ୍ରୋଗ, କାମଳ, ଶୂଳ, ଆନାହ, ପ୍ଲୀହା, ଯକୃତ୍, ଅଶ୍ମରୀ, ମୂତ୍ରକୃଚ୍ଛ୍ର ଓ ମୂତ୍ରାଘାତ ରୋଗରେ ଉପକାରକ ।

ଆୟୁର୍ବେଦ ମତରେ ହରଡ଼ା ପରି ପ୍ରଶସ୍ତ ବସ୍ତୁ ପୃଥିବୀରେ ନାହିଁ; ଏହା ମାତାପରି ହିତକାରିଣୀ । ମାତ୍ରା, ଅନୁପାନ, ପଥ୍ୟ ଓ ପ୍ରୟୋଗପ୍ରଣାଳୀ ଓ ଋତୁଭେଦରେ ଏହିଫଳ ସେବନ କଲେ ବହୁ ରୋଗରେ ଏହା ଆଶୁଫଳପ୍ରଦ ହୁଏ । ଏହାର ଅନ୍ୟନାମ ଅମୃତ ଓ ଅଭୟା ।

ହରୀତକୀ ୭ପ୍ରକାରର ଯଥା—ବିଜୟା, ରୋହିଣୀ, ପୁତନା, ଅମୃତା, ଅଭୟା, ଜୀବନ୍ତୀ ଓ ଚେତକୀ ।

୧ । ବିଜୟା—ଏ ଫଳର ଆକୃତି ଅଲାବୁ ବା ଲାଉ ପରି ଗୋଲ । ଏହା ସବୁ ହରଡ଼ା ମଧ୍ୟରେ ଶ୍ରେଷ୍ଠ, ଏହା ସୁଖସେବ୍ୟ, ସୁଲଭ୍ୟ ଓ ସର୍ବରୋଗରେ ହିତକର । ଏହା ଅଳ୍ପରକ୍ତ ପୀତବର୍ଣ୍ଣ ।

୨ । ରୋହିଣୀ—ଏ ଫଳର ଆକାର ସମ୍ପୂର୍ଣ୍ଣ ଗୋଲ । ଏହା ବ୍ରଣ ରୋଗରେ ଉପକାରକ ।

୩ । ପୁତନା—ଏଥିର ଆକାର ସୂକ୍ଷ୍ମ ଓ ମଞ୍ଜିବଡ଼; ପ୍ରଲେପ କାର୍ଯ୍ୟରେ ପ୍ରଯୋଜ୍ୟ ।

୪ । ଅମୃତା—ଏହା ମାଂସଲ ଅର୍ଥାତ୍ ଶସ୍ୟବହୁଳ ଓ କ୍ଷୁଦ୍ରବୀଜବିଶିଷ୍ଟ । ଭେଦ ବା କୋଷ୍ଠ ପରିଷ୍କାର କାର୍ଯ୍ୟରେ ପ୍ରଯୋଜ୍ୟ ।

୫ । ଅଭୟା—ଏ ଫଳ ୫ ଗୋଟି ରେଖାବିଶିଷ୍ଟ; ନେତ୍ରରୋଗରେ ପ୍ରଶସ୍ତ ।

୬ । ଜୀବନ୍ତୀ—ଏହା ସ୍ୱର୍ଣ୍ଣ ବର୍ଣ୍ଣ; ସର୍ବରୋଗ ବିନାଶକ ।

୭ । ଚେତକୀ—ଏହା ତିନିଗୋଟି ରେଖା ବିଶିଷ୍ଟ । ଏହା ଚୂର୍ଣ୍ଣାର୍ଥ ବ୍ୟବହାର୍ଯ୍ୟ । ଏହା ଅତି ଭେଦକ । ଚେତକୀ ହରୀତକୀ ଶୁକ୍ଳ ଓ କୃଷ୍ଣ ଭେଦରେ ୨ପ୍ରକାର । ଶୁକ୍ଳବର୍ଣ୍ଣ ଚେତକୀ ଦୁଇ ଅଙ୍ଗୁଳ ପରିମିତ । କୃଷ୍ଣଚେତକୀ—୧ଅଙ୍ଗୁଳ ପରିମିତ । ମନୁଷ୍ୟ, ପଶୁ, ପକ୍ଷୀ ଆଦି ଜୀବ ଚେତକୀ ହରଡ଼ା ଗଛର ଛାଇକୁ ଆସିଲେ ମଳତ୍ୟାଗ କରିପକାନ୍ତି; ଏହି ହରଡ଼ାକୁ ହାତରେ ଧରିଲେ ଝାଡ଼ାହୁଏ । ତୃଷାର୍ତ୍ତ, ସୁକୁମାର, କୃଶ ଓ ଔଷଧଦ୍ୱେଷୀ ବ୍ୟକ୍ତିମାନଙ୍କ ମୁଖ ବିରେଚନାର୍ଥ ମାତ୍ରା ଓ ଅନୁପାନ ଭେଦରେ ଚେତକୀ ହରଡ଼ାର ଚୂର୍ଣ୍ଣ ବ୍ୟବହୃତ ହୁଏ ।

ସବୁ ହରଡ଼ା ମଧ୍ୟରେ ବିଜୟା ଶ୍ରେଷ୍ଠ । କେଉଁ ହରଡ଼ାକୁ ଖାଇଲେ, କେଉଁ ହରଡ଼ାକୁ ଆଘ୍ରାଣ କଲେ, କେଉଁ ହରଡ଼ାକୁ ସ୍ପର୍ଶ କଲେ, କେଉଁ ହରଡ଼ାକୁ ଦର୍ଶନ କଲେ ଭେଦ (ଝାଡ଼ା) ହୁଏ ।

ଯେଉଁ ହରଡ଼ା ନୂତନ, ସ୍ନିଗ୍ଧ, କଠିନ, ଗୋଲାକାର ଓ ଭାରି, ଯାହାକୁ ପାଣିରେ ପକାଇଲେ ବୁଡ଼ିଯାଏ ତାହା ପ୍ରଶସ୍ତ ଗୁଣକର । ଯେଉଁ ହରଡ଼ା ୨ କର୍ଷ ଓଜନ ତାହା ସର୍ବଶ୍ରେଷ୍ଠ ।

ହରଡ଼ା ଚୋବାଇକରି ଖାଇଲେ ଅଗ୍ନିବୃଦ୍ଧି, ପେଷିକରି ଖାଇଲେ ମଳଶୋଧନ, ସିଝାଇକରି ଖାଇଲେ ମଳସଂଗ୍ରହ, ଭାଜି ଖାଇଲେ ତ୍ରିଦୋଷନାଶ ହୁଏ; ଖାଦ୍ୟ ସଙ୍ଗେ ଖାଇଲେ ବୁଦ୍ଧି, ବଳ ଓ ଇନ୍ଦ୍ରିୟ ବିକାଶ ଏବଂ ମୂତ୍ର ପୁରୀଷ ନିର୍ଗମ ହୁଏ । ଆହାର ପରେ ହରଡ଼ା ସେବନ କଲେ ତ୍ରିଦୋଷ ନାଶ ଓ ଅନ୍ନ ଓ ପାନ ଜନିତ ସମସ୍ତ ପୀଡ଼ା ଦୂରହୁଏ ଓ ମୁଖ ଶୁଦ୍ଧି ହୁଏ । ହରଡ଼ାକୁ ଲୁଣ ସଙ୍ଗେ ଖାଇଲେ ପିତ୍ତନାଶ, ଘିଅ ସଙ୍ଗେ ଖାଇଲେ ବାତ ନାଶ ଓ ଗୁଡ଼ ସଙ୍ଗେ ଖାଇଲେ ସର୍ବରୋଗ ନାଶହୁଏ ।

ବର୍ଷାଋତୁରେ ହରଡ଼ା ଚୂନାକୁ ସୈନ୍ଧବଲୁଣ ସଙ୍ଗେ, ଶରତ୍‌କାଳରେ ଚିନିସଙ୍ଗେ, ହେମନ୍ତରେ ଶୁଣ୍ଠିଚୂନା ସଙ୍ଗେ, ଶୀତରେ ପିପ୍ପଳୀଚୂନା ସଙ୍ଗେ, ବସନ୍ତରେ ମହୁ ସଙ୍ଗେ ଓ ଗ୍ରୀଷ୍ମରେ ଗୁଡ଼ ସଙ୍ଗେ ସେବନ କଲେ ଏହା ରସାୟନ ହୁଏ, ଅର୍ଥାତ, ସେବନକାରୀ ବ୍ୟକ୍ତି ଦୀର୍ଘଜୀବୀ, ସବଳ, ନୀରୋଗ

ଖାଇବାକୁ ହୁଅନ୍ତି । ଏହି ପ୍ରକାର ସେବନକରିବାରେ ବ୍ୟବହୃତ ହରିଡ଼ାକୁ ଗୃହୁ ହରୀତକୀ ବୋଲଯାଏ ।

ପଥଶ୍ରାନ୍ତ, ଦୁର୍ବଳ, କୃଶ, ଉପବାସକ୍ଷୀଣ, ପିତ୍ତଧାତୁ-ପ୍ରଧାନ, ଗର୍ଭିଣୀ ଓ ବିମୁକ୍ତରକ୍ତ ବ୍ୟକ୍ତିମାନଙ୍କ ପକ୍ଷରେ ହରିଡ଼ା ସେବନ ନିଷିଦ୍ଧ । ହରିଡ଼ା ବାହାଡ଼ା ଅଁଳାର ସମାହାରକୁ ତ୍ରିଫଳା କହନ୍ତି; ତ୍ରିଫଳାର କ୍ୱାଥ କୋଷ୍ଠଶୁଦ୍ଧି-କର ଓ ଜ୍ୱର ନାଶକ । ପରୀକ୍ଷାଦ୍ୱାରା ଦେଖାଯାଇଅଛି ଯେ ପ୍ରତିଦିନ ଗୋଟିଏ ହରିଡ଼ାର, ୨ଟି ବାହାଡ଼ାର ଓ ୩ଟି ଅଁଅଳାର ଖାଇବା ଅଂଶକୁ ୫।୬ ଘଣ୍ଟା ଛଟାକିଏ ପାଣିରେ ବତୁରାଇ, ଉକ୍ତ ପାଣିକୁ ଛାଣି ଖାଲିପେଟରେ ପିଇଲେ କୋଷ୍ଠଶୁଦ୍ଧି ହୁଏ ।

କଞ୍ଚା କଷି ହରିଡ଼ାକୁ ଗଛରୁ ତୋଳାଇ ଶୁଖାଇ କରି ରଖାଯାଇଥାଏ ଓ ତାହା ଔଷଧରେ ଲାଗେ । ତାକୁ ଜାଂଗୀ ହରିଡ଼ା କହନ୍ତି ।

କେହି କେହି ଓ ବିଶେଷତଃ ସନ୍ନ୍ୟାସୀମାନେ ଭୋଜନାନ୍ତେ ମୁଖବାସାର୍ଥ ଓ ମୁଖଶୋଧନାର୍ଥ ହରିଡ଼ାର ଶସକୁ ଗୁଆପରି ଚୋବାଇ ଚାଲରେ ଯ.ବନ୍ତି ।

ହରୀଷା—ସଂ ବି (ହୃ ଧାତୁ + କର୍ମ ଇଷ୍ + ଅ)—ମାଂସବ୍ୟଞ୍ଜନବିଶେଷ—
**आस** A kind of meat curry.
[ଦ୍ର—ବଡ ବଡ ମାଂସଖଣ୍ଡକୁ ଗୋଟିଏ ବଡ଼ ହାଣ୍ଡିରେ ପ୍ରଚୁର ଜଳ, ଘିଅ, ହିଙ୍ଗୁ, କ୍ଷୀର, ହଳଦୀ, ଅଦା, ଶୁଣ୍ଠି, ଲୁଣ, ଲଙ୍କା ଓ ଗୋଲମରିଚ ଦେଇ ସିଝାଇ ସେଥିରେ ଚାଉଳ ଓ ଗହମ ପକାଇ ଜମ୍ବୀର ଲେମ୍ବୁ ରସ ଦେଇ ସମସ୍ତକୁ ଉତ୍ତମରୂପେ ସିଦ୍ଧ କରି ଝୋଳ ଥାଉ ଥାଉ ନିଆଁରୁ ଓହ୍ଲାଇ ଏହି ମାଂସ ତରକାରୀ ତିଆରି କରାଯାଏ । ଏହା ବଳକର, ବାତପିତ୍ତହର, ଗୁରୁ, ଶୀତୋଷ୍ଣ, ଶୁକ୍ରକର ଓ ସ୍ନିଗ୍ଧ-ଭାବପ୍ରକାଶ ।]

ହରୁ—ଗ୍ରା ବି—ହର ଓ ହରିର ଡାକନାମ—Nickname for
Haru calling Hara and Hari.

ହରୁଆ—ଦେ. ବିଣ. ପୁଂ (ସଂ ହାରକ; ହାରି)—୧ । ଯେ ହରିଏ—
Haruā हारानेे **हरण करनेवाला** 1. Losing; one
(ହରେଇ—ସ୍ତ୍ରୀ) who loses. ୨ । ଯେ ହରଣ କରେ; ହାରକ; ହରଣକାରୀ—2. One who steals; stealing. ପ୍ରାଦେ (ଗଡ଼ଜାତ) ବି ଓ ବିଣ—ହଳୁଆ (ଦେଖ)—Haluā (See). ପ୍ରାଦେ (ଖଡ଼ିଅଳ) ବି—ପଶୁମାନଙ୍କର ହୁଁରଡ଼—The sound made by beasts.

ହରୁଆଁ—ପ୍ରାଦେ (ବଣାଇ ଗଡଜାତ) ବି—ଗରା—
Haruāñ A brass water pitcher.

ହରୁହରଦମ୍—ପ୍ରାଦେ (ସମ୍ବଲପୁର) ଅ—ସର୍ବଦା; ଅବିଶ୍ରାନ୍ତଭାବରେ—
Haruhar-dam Constantly; uninterruptedly.

ହରେ—ସଂ ଅ (ହରି ଶବ୍ଦର ସମ୍ବୋଧନ)—ହେ ହରି ! (ହରିବା ଈଶ୍ୱରଙ୍କ
Hare ସମ୍ବୋଧନ)—Oh Hari ! (exclamation used in invoking Hari).

ହରେଇବା—ଦେ· କ୍ରି—ହରାଇବା (ଦେଖ)—
Hareibā Harāibā (See)
हारान **हराना**

ହରେଇ—ଦେ. ବି. ସ୍ତ୍ରୀ—ହରୁଆର ସ୍ତ୍ରୀଲିଙ୍ଗ—
Harei Feminine form of Haruā.

ହରେକ—ଦେ. ସର୍ବନାମ ଓ ବିଣ (ଫା ହର୍ ଏକ୍) ୧ । ପ୍ରତ୍ୟେକ—
Harek 1. Every; each ବିଭିନ୍ନ; ଭିନ୍ନ ଭିନ୍ନ; ନାନା—2. Various; several; different.
୩ । ସମସ୍ତେ—3. All.

ହରେକ୍ କିସମ୍—ଦେ. ବି (ଫା)—୧ । ପ୍ରତ୍ୟେକପ୍ରକାର—
Harek kisam 1. Every sort or kind.
हरेकरकम **हरेकक्किसम** ୨ । ନାନାପ୍ରକାର—
2. Various sorts. ବିଣ—୧ । ପ୍ରତ୍ୟେକପ୍ରକାରର
1. Of every sort. ୨ । ନାନାପ୍ରକାରର—
2. Of various sorts. ୩ । ବିଭିନ୍ନପ୍ରକାରର—
3. Of different kinds.

ହରେକ୍ ରକମ୍—ଦେ. ବି, ଓ ବିଣ (ଫା)—ହରେକ୍ କିସମ୍ (ଦେଖ)
Harek rakam Harek kisam (See).
हरेकरकम **हरेककिसम** ବି—ପ୍ରତ୍ୟେକ ବସ୍ତୁ—
Every thing.

ହରେକୁଷଁ[ଷ୍ଟଁ,ଷ୍ଣଁ]—ଗ୍ରା. ବି.ଓ ଅ(ସଂ ହରେ କୃଷ୍ଣ)— ହରେ କୃଷ୍ଣ (ଦେଖ)
Harekushañ(shṭañ. shṇañ) Harekṛushṇa (See)
हरेकिष्ट(ष्ट) **हरेकीष्णा**

ହରେ କୃଷ୍ଣ—ସଂ ଅ (ସଂ ହରି ଓ କୃଷ୍ଣ ଦୁଇ ଶବ୍ଦର ସମ୍ବୋଧନ)—
Harekṛushṇa ୧ । ହେ ହରି ! ହେ କୃଷ୍ଣ !—
1. Oh Hari ! Oh Kṛushṇa ! ୨ । ହରିଙ୍କୁ ସମ୍ବୋଧନ
2. Invocation to Hari. ୩ । ହରିଙ୍କର ଦୁଇଟି ଭିନ୍ନ ନାମ ଉଚ୍ଚାରଣପୂର୍ବକ ଡାକ—3. Invocation to Hari by two names. ୪ । ଖରାପ କଥା ବା ମନ୍ଦ କଥା ଶ୍ରବଣଜନିତ ପାପ ଖାଳନାର୍ଥ ବ୍ୟବହୃତ ଅବ୍ୟୟ
4. An exclamation used by a person to wash away the sin of hearing any bad or sinful matter.
हरेकृष्ण **हरेकृष्णा**
ଦେ. ବି. ପୁଂ—ପୁରୁଷଙ୍କ ନାମ—A name given to males.

ହରେକୃଷ୍ଣ ଦାସ—ଦେ. ବି । (ନାମ)—ଓଡ଼ିଶାର ଜଣେକ ସ୍ୱର୍ଗତ
Harekṛushṇa Dāsa ଦେଶହିତୈଷୀ ବ୍ୟକ୍ତି—
A late patriot of Orissa. [ଦ୍ର—ଏ ଓଡ଼ିଶା ଗଡ଼ଜାତସମୂହର ଆସିଷ୍ଟାଣ୍ଟ ପଲିଟିକାଲ ଏଜେଣ୍ଟ ଥାଇ, ଓଡ଼ିଶାର ଦେଶହିତକର ବହୁକାର୍ଯ୍ୟରେ ଦେଶହିତୈଷୀ ସ୍ୱର୍ଗତ ମଧୁସୂଦନଙ୍କର ଜଣେ ଘନିଷ୍ଠ ସହକର୍ମୀ ଥିଲେ ।

ଏହାଙ୍କର ଗଡ଼ଜାତରେ କାର୍ଯ୍ୟ କରୁଥିବା ସମୟରେ ଅନୁଗୁଳ ଓ ସମ୍ବଲପୁର ସରକାରଙ୍କ ଶାସ୍ତ୍ ଶାସନକୁ ଅସିଥିଲ । ଏହାଙ୍କ ଜନ୍ମସ୍ଥାନ ଯାଜପୁର ଅନ୍ତର୍ଗତ କଣ୍ଡାବଣିଥ ଗ୍ରାମ । ୧୮୭୭ ଅଗ୍ରିହାରେ ଏହାଙ୍କର ମୃତ୍ୟୁ ହୋଇଥିଲା ।]

ହରେକୃଷ୍ଣପୁର—ଦେ.ବ (ନାମ)—ପୁରୀ ସହରଠାରୁ ୩ ମାଇଲ ଦୂରବର୍ତ୍ତୀ
Harekrushnapura ଓଡ଼ିଶାର ଗୋଟିଏ ରାଜପ୍ରତିଷ୍ଠିତ ବ୍ରାହ୍ମଣଶାସନ—Name of a Brāhmana village near the town of Puri, established by an ancient king of Orissa. [ଦ୍ର—ଏହି ଗ୍ରାମ ବାଟେ ବେଙ୍ଗଲ୍ ନାଗପୁର ରେଲ ଲାଇନ୍ ଯାଇଅଛି ଓ ଏହି ଗ୍ରାମର ଚନ୍ଦନ ପୋଖରୀ ରେଲ ଲାଇନ୍ର ଦକ୍ଷିଣପାଖରେ ଅବସ୍ଥିତ ଓ ଏହା ଅତ୍ୟନ୍ତ ଗଭୀର ।]

ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ—ସଂ. ଅ—
Hare Krushna Hare Krushna Krushna Krushna Hare Hare.
(ହରେ ରାମ ହରେ ରାମ ରାମ ରାମ ହରେ ହରେ—ଅନ୍ୟ ପଦ)—ରାମ, ହରି ଓ କୃଷ୍ଣଙ୍କ ନାମର ସମ୍ବୋଧନ ବିଭକ୍ତିରେ କୃଷ୍ଣଭକ୍ତ ସଦାନନ୍ଦଙ୍କଦ୍ୱାରା ଶ୍ଳୋକାକାରରେ ରଚନା; କଳିଯୁଗରେ ତାରକ ବ୍ରହ୍ମନାମ, ମନ୍ତ୍ରଶ୍ଳୋକର ପ୍ରଥମ ପଦ Half of a couplet used by a devotee invoking God ( Hari ) in three names and laid down to be the formula in which God(Hari) is to be invoked in the present (Kali) age.

ହରେଣୁ—ସଂ. ବି. ସ୍ତ୍ରୀ—୧ । ରେଣୁକା ନାମକ ଗନ୍ଧଦ୍ରବ୍ୟ (ଅମରକୋଷ)
Harenu 1.A scented herb;Piper Athrautiacum. ୨ । ତାମ୍ରବର୍ଣ୍ଣମୃଗୀ—2. A copper coloured female deer. ୩ । କୁଳଯୋଷିତ୍ (ମେଦିନୀ)—3. A house-wife; a family woman ୪ । ଗ୍ରାମର ସୀମା ବିଭାଜନକାରିଣୀ ଲତା—4.A creeper which divides the boundaries of 2 villages. ପୁଂ—୧ । ସତୀଲ (ମେଦିନୀ); କଳାୟ—1. A kind of grain. ୨ । ବଡ଼ଚଣା ହରେଣୁ(ବୃହତ୍ ଦ୍ରବ୍ୟଗୁଣ)—2. Big species of Cicer Arietenum. ୩ । ମଟର—3. Pea. ୪ । ଲଙ୍କା ଦ୍ୱୀପ—4. The island of Ceylon.

ହରେଣୁକ—ସଂ ବି (ହରେଣୁ+କ)—ମଟର; ରାଜନିର୍ଘଣ୍ଟ)—Pea.
Harenuka

ହରେଣୁକା—ସଂ. ବି (ହରେଣୁକ+ଆ)—ରେଣୁକା ନାମକ ଗନ୍ଧଦ୍ରବ୍ୟ
Harenukā A scented herb; Piper Aurantiacum.

ହରେ ରାମ୍—ଦେ. ଅ (ସଂ. ହରେରାମ)—ହରେରାମ (ଦେଖ)—
Harerām Harerāma (See).

ହରେରାମ—ଦେ. ଅ —୧ । ହରି ଓ ରାମ ଶବ୍ଦଦ୍ୱୟର ସମ୍ବୋଧନ ଆକାର—
Harerām 1. (interjection) Oh Hari ! Oh Rama ! exclamation uttered in invoking the name of Hari by two of His names.
हरेराम हरेराम
୨ । 'ହରେକୃଷ୍ଣ' ପରି ଈଶ୍ୱରଙ୍କ ନାମଦ୍ୱୟର ଉଚ୍ଚାରଣ—2. Invocation of the name of Hari. ୩ । ମନ୍ଦ କଥା ବା ପାପ କଥା ଶ୍ରବଣଜନିତ ପାପକ୍ଷାଳନାର୍ଥ ଶ୍ରୋତାଙ୍କ ଦ୍ୱାରା ବ୍ୟବହୃତ ଅବ୍ୟୟ—3. Interjection used to wash away the sin attached to a person on hearing any sinful or bad thing.

ହରେ ରାମଚନ୍ଦ୍ର—ଦେ· ଅ—ହରି ଓ ରାମଙ୍କ ସମ୍ବୋଧନ; ହରେ ରାମ
Hare rāmachandra (ଦେଖ)—Harerāma (See)
हरे रामचन्द्र हरे राम

ହରେ ହରେ—ସ. ଅ(ହରି ଶବ୍ଦର ସମ୍ବୋଧନ)—ହେ ହରି ! ହେ ହରି !
Hare hare (ହରିଙ୍କ ନାମର ଦୁଇଥର ଉଚ୍ଚାରଣପୂର୍ବକ ଡାକ)—Invocation to Hari

ହରୋବଟୋ—ପ୍ରାଦେ (କଳାହାଣ୍ଡି ଓ ପାଟଣା) ବି ଓ ବିଣ—ହରବର—
Harobato Troubled; involved in difficulty

ହରୋତରୋ—ପ୍ରାଦେ (ସମ୍ବଲପୁର) ବିଣ—ବିରକ୍ତ—
Harotaro Vexed.

ହର୍କତ(ଇତ୍ୟାଦି)—ବୈଦେ. ବି ଓ ବିଣ—ହର୍କତ୍ (ଦେଖ)—
Harkat(etc) Harkat [See]

ହର୍କଟିଆ—ଦେ· ବିଣ—ହର୍କଟିଆ (ଦେଖ)—
Harkatiā Har-katiā [See]
(ସ୍ତ୍ରୀ—ହର୍କଟେଇ)

ହର୍କରା—ବୈଦେ. ବି—ହର୍କରା (ଦେଖ)—
Harkarā Har-karā [See]

ହର୍କିଶମ—ବୈଦେ ବି—ହର୍କିଶମ୍ (ଦେଖ)—
Harkisam Har-kisam [See]

ହର୍କୁ(କ୍ୟୁ)ଲିସ—ବୈଦେ. ବି (ଗ୍ରୀକ୍ ନାମ)—ଜଣେ ପ୍ରସିଦ୍ଧ ଗ୍ରୀସ୍ଦେଶୀୟ ପୌରାଣିକ ବୀର—
Harku(rkyu)lis
हर्क्युलिस हर्क्युलिस Hercules the Great; hero of the Greek mythology. [ଦ୍ର—ଏ ଜୁପିଟର୍ ଦେବଙ୍କ ଆଜ୍ଞାରେ ଇୟୁରିଷ୍ଟିୟସ୍ ନାମକ ଜଣେ ରାଜାଙ୍କ ଆଜ୍ଞାବହ ହୋଇ ତାଙ୍କ ଆଜ୍ଞାରେ ୧୨ ଗୋଟି ମହାଅସାଧ୍ୟ କାର୍ଯ୍ୟ ସାଧନ କରିଥିଲେ ଏବଂ ଦେବଦାନବ ଯୁଦ୍ଧରେ ଦେବତାମାନଙ୍କ ପକ୍ଷରେ ଲଢ଼ିଥିଲେ । ଏହାଙ୍କ ସ୍ତ୍ରୀଙ୍କ ପ୍ରେରିତ ଗୋଟିଏ ବିଷାକ୍ତ ପୋଷାକ ପିନ୍ଧି ଏ ମୃତ୍ୟୁମୁଖରେ ପତିତ ହେଲେ ଏବଂ ମୃତ୍ୟୁ ପରେ ସ୍ୱର୍ଗକୁ ଗଲେ ।].

ହର୍ଗଉରା(ରୀ)—ଦେ. ବି—ହର୍ଗଉରା (ଦେଖ)—
Hargaurā(ri) Har-gaurā (See)

ହର୍ଗିଜ୍—ବୈଦେ. ଅ—ହର୍ଗିଜ୍ (ଦେଖ)—
Hargij Har-gij (See)

ହର୍ଘଡ଼ି—ଦେ. ଅ—ହର୍ଘଡ଼ି (ଦେଖ) —
Harghardi Har-ghardi (See)

ହର୍ଜ(ର୍ଜା)—ବୈଦେ. ବ—ହରଜ (ଦେଖ)—
Harj[rjā] Haraj [See]

ହର୍ଟିକଲ୍‌ଚର୍—ବୈଦେ. ବ(ଇଂ)—ଉଦ୍ୟାନ କୃଷି; ଫୁଲ ବଗିଚା ଓ
Hartikal-char ଫଳ ବଗୀଚା ପାଇଁ ବୃକ୍ଷ ଉତ୍ପାଦନ—
হটী কলচর हर्टिकलचर Horticulture.

ହର୍ଣ୍ଣ—ବୈଦେ. ବ (ଇଂ=ଶିଙ୍ଗ, ଶୃଙ୍ଗ)—ମଟର ଗାଡ଼ିରେ ବା
Harnn ଦ୍ବିଚକ୍ର ଗାଡ଼ିରେ ଥିବା ଶିଙ୍ଗା, ଯାହାକୁ ବଜାଇଲେ ଅଗରେ ଯାଉଥିବା ଲୋକେ ସାବଧାନ ହୁଅନ୍ତି—The horn of a motor or bicycle.

ହର୍ଣ୍ଣବାବି - ବୈଦେ. ବଣ (ଫା)—ହର୍‌ନବାବି (ଦେଖ)—
Harnnababi Har-nababi (See)

ହର୍ଣ୍ଣିଆ—ବୈଦେ. ବ—ହର୍‌ନିଆ (ଦେଖ)—
Harnnia Har-nia (See)

ହର୍ତନ୍—ବୈଦେ. ବ—ହର୍‌ତନ୍ (ଦେଖ)—
Hartan Har-tan (See)

ହର୍ତା—ସଂ ବଣ. ଓ ବ ପୁଂ (ହୃ ଧାତୁ+କର୍ତ୍ତି ତୃ, ୧ମା. ୧ବ)—ହରଣକର୍ତ୍ତା, ବିନାଶକ—Destroying.
Hartā
[ହର୍ତ୍ତ୍ରୀ—ସ୍ତ୍ରୀ]

ହର୍ତା(ର୍ତ୍ତା)କର୍ତା(ର୍ତ୍ତା)—ସଂ ବଣ, ପୁଂ—ବିନାଶକ ଓ ସର୍ଜକ—
Hartā(rttā)kartā(rttā) Destroying and creating.
(ହର୍ତା କର୍ତା ଦୈବ ବିଧାତା, ହର୍ତା କର୍ତା ବିଧାତା ଅନ୍ୟରୂପ)
ସଂ ବ. ପୁଂ—୧। ସୃଷ୍ଟିର ବିନାଶକର୍ତ୍ତା ଓ ସୃଜକ—1. Destroyer and creator of creation.
୨। (ଲକ୍ଷଣାର୍ଥ) ସର୍ବମୟ ପ୍ରଭୁ—2. All in all; a master who has every power; an all-powerful person.

ହର୍ତ୍ତା—ସଂ ବଣ. ପୁଂ (ହୃ ଧାତୁ+କର୍ତ୍ତି ତୃ, କର୍ତ୍ତି ୧ମା ୧ବ)
Harttā ୧। ହରଣକର୍ତ୍ତା; ଯେ ହରଣ କରେ—
(ହର୍ତ୍ତ୍ରୀ—ସ୍ତ୍ରୀ) 1. One who takes away. ୨। ଅପହାରକ—2. One who steals away. ୩। ଗ୍ରହଣକାରୀ—3. Taking; accepting. ୪। ସଂହାରକ, ବିନାଶକ—Killing; destroying. ୫। ବହନକାରୀ—5. Carrying. ବ—ସୂର୍ଯ୍ୟ (ନାମ ଯୁଗ୍ମରେ ସୂର୍ଯ୍ୟଙ୍କ ନାମ)—Name of the Sun god.

ହର୍ତ୍ତା କର୍ତ୍ତା ଦୈବ ବିଧାତା—ସଂ ବଣ. ଓ ବ ବିନାଶକାରୀ, ରକ୍ଷାକାରୀ ଓ
Harttā kartā daiba bidhātā ସୃଷ୍ଟିକାରୀ—
(ହର୍ତ୍ତା କର୍ତ୍ତା ବିଧାତା—ଅନ୍ୟରୂପ) Destroyer, preserver and creator.

ହର୍ତାଳ—ଦେ. ବ—ହରତାଳ (ଦେଖ)—
Hartāla Haratāla (See)

ହର୍ତାଳି - ଦେ. ବଣ—ହରତାଳି (ଦେଖ)—
Hartāli Haratāli (See)

ହର୍ତାଳିକା—ଦେ. ବ—ହରତାଳିକା (ଦେଖ)—
Hartālikā Haratālikā (See)

ହର୍ତ୍ତ୍ରୀ(ର୍ତ୍ରୀ)—ସଂ ବଣ (ହର୍ତ୍ତୃ+ଈ)—ହର୍ତ୍ତାର ସ୍ତ୍ରୀଲିଙ୍ଗ—
Harttrī[rtrī] Feminine form of Harttā.

ହର୍ଦ(ର୍ଦ୍ଦ)—ଗ୍ରା. ବ (ସଂ. ହ୍ରଦ)—ହ୍ରଦ (ଦେଖ)—
Hard [rdda] Hrada (See)

ହର୍ଦଫା—ବୈଦେ. ଅ—ହର୍‌ଦଫା (ଦେଖ)—
Hardaphā Har-daphā (See)

ହର୍ଦ(ର୍ଦ୍ଦ)ମ—ବୈଦେ. ଅ—ହର୍‌ଦମ୍ (ଦେଖ)—
Harda(rdda)m Har-dam etc (See)

ହର୍ଦ(ର୍ଦ୍ଦ)ର—ବୈଦେ. ବ—ହର୍‌ଦର୍ (ଦେଖ)—
Hardar[rdda] Hardar (See)

ହର୍ଦି(ର୍ଦ୍ଦି)ବା—ଦେ କ୍ରି— ହତାଶ ହେବା—
Hardir(ddi)bā To despair
হতাশহওয়া हताशहोना

ହର୍ଦୁଆର—ଗ୍ରା. ବ (ନାମ)—ହରଦ୍ୱାର (ଦେଖ)—
Hardusra Hardwara (See)

ହର୍ନ୍—ବୈଦେ. ବ (ଇଂ. ହର୍ନ)—ପଥିକଙ୍କୁ ସାବଧାନ କରିବା ପାଇଁ
Harn ମଟରଗାଡ଼ି, ସାଇକେଲର ଚାଳକ ଯେଉଁ ଶିଙ୍ଗା
हर्न ବଜାନ୍ତି—Horn sounded by the driver of a
हर्न cycle or a motor car.

ହର୍ନ ଦେବା—ଦେ କ୍ରି—(ପଥିକଙ୍କୁ ସତର୍କ କରିବା ପାଇଁ ମଟର ଓ
Harn debā ସାଇକେଲର ଚାଳକ) ଶିଙ୍ଗା ବାଜିବା ଧ୍ୱନି କରିବା—
হর্ন দেওয়া To sound the horn (said of the driver
हर्नदेना of a motor or cycle).

ହର୍ନବାବି—ବୈଦେ. ବଣ—ହର୍‌ନବାବି (ଦେଖ)—
Harnbābi Har-nababi (See).

ହର୍ନିଆଁ (ଅ) ବୈଦେ. ବ.—ହର୍‌ନିଆଁ (ଦେଖ)—
Harniān(a) Har—niān (See).

ହର୍ନିମ୍ୟାନ—ବୈଦେ. ବ. (ଇଂ. ନାମ)—ଭାରତ ହିତୈଷୀ
Harimā (myā)n ଜଣେକ ସ୍ୱର୍ଗତ ବିଲାତି ସାହେବ—
হার্নিমান Mr. Horniman, [ଦ୍ର—ଏ ଭାରତବାସୀଙ୍କ
हर्निमान ମଙ୍ଗଳାର୍ଥ ଇଂରେଜ ଗଭର୍ଣ୍ମେଣ୍ଟଙ୍କ ସମ୍ପର୍କରେ କେତେଗୁଡ଼ିଏ ଅପ୍ରିୟ ସତ୍ୟ କହୁଥିବାରୁ ଭାରତ ଗଭର୍ଣ୍ମେଣ୍ଟ ଏହାଙ୍କୁ ଭାରତବର୍ଷକୁ ଆସିବାକୁ ନିଷେଧ କରିଥିଲେ।]

ହର୍ପ (ର୍ପ)—ବୈଦେ. ବ—ହରପ୍ (ଦେଖ)—
Harp (rph) Harap (See).

ହର୍ଫସଲ—ବୈଦେ. ବ—ହର୍‌ଫସଲ (ଦେଖ)—
Harphasala Har—phasala (See).

ହର୍ବକ୍ତ (ଖ ତ)—ବୈଦେ. ଅ—ହର୍‌ବକତ୍ (ଖ) ତ୍ (ଦେଖ)—
Harbaka (kha)t Har—baka (kha)t (See).

ହର୍ବର୍—ବୈଦେ. ବଣ ଓ ବ—ହର୍‌ବର୍ (ଦେଖ)—
Harbar Har-bar (See).

ହର୍‌ବ୍ରଥ—ଦେ. ଭଣ—ହର୍‌ବ୍ରଥ (ଦେଖ)—
Harbaria Har-baria (See)
ହର୍‌ବୋଲ୍ଲ—ଦେ. ବ—ହର୍‌ବୋଲ୍ଲ (ଦେଖ)—
Harbola Har-bola (See)
ହର୍ମ (ର୍ମ୍ମ) —ସ.ବି.—(ହୃଧାତୁ=ହରଣ କରିବା+କର୍ତ୍ତ୍ରି-ଅର୍ମନ୍; ହର୍ମନ୍
Harma (rmma) ଶବ୍ଦ ଦେଖ, ୧ବ) -ଜୃମ୍ଭଣ; ହାଇମାରିବା (ଶବ୍ଦ ରତ୍ନାବଳୀ)—Yawning.
ହର୍ମଉ (ହୁ) ଶୁଲ୍—ବୈଦେ. ବଣ—ହର୍‌ମଉ (ହୁ) ଶୁଲ୍ (ଦେଖ)
Harmau (hu) sul Har-mau(hu)sul (See)
[ହର୍ମୌଶୁଲ୍—ଅନ୍ୟରୂପ]
ହର୍ମଣି (ଣି)—ଦେ. ବ—ହରମଣି (ଦେଖ)—
Harmani (ni) Haramani (See).
ହର୍ମନିଅମ୍—ବୈଦେ. ବ—ହର୍‌ମନିଅ (ଦେଖ)—
Harmanium Har-mania See).
[ହର୍ମନିଅ—ଅନ୍ୟରୂପ]
ହର୍ମିତ—ସ. ବ—(ହର୍ମ+ଇତ)—୧ । ଜୃମ୍ଭିତ; ହାଇ ମାରୁଥିବା—
Harmita 1. Yawning. ୨ । ଦଗ୍ଧ (ମେଦିନୀ)—2. Burnt.
୩ । କ୍ଷିପ୍ତ (ମେଦିନୀ)—3. Maddened.
ହର୍ମ୍ମୁଟ—ସ. ବ—(ହର୍ମ+ଉଟ)—୧ । ସୂର୍ଯ୍ୟ [ଶବ୍ଦକଳ୍ପଦ୍ରୁମ]—
Harmmuta 1. The sun. ୨ । କଚ୍ଛପ [ଶବ୍ଦକଳ୍ପଦ୍ରୁମ]—
2. The tortoise.
ହ (ହୋ) ର୍ମୋନ୍—ବୈଦେ ବ—[ବିଜ୍ଞାନ ପରିଭାଷା]— ଶରୀରସ୍ଥିତ
Ha (ho) rmon ଗ୍ରନ୍ଥିରୁ ବା ରସଗ୍ରନ୍ଥି (gland) ରୁ କ୍ଷରିତ ସ୍ରାବ —Hormone
ହର୍ମ୍ୟ (ର୍ମ୍ମ୍ୟ)—ସ. ବ (ହୃଧାତୁ+କର୍ତ୍ତୃ-ଯ;ମ ଆଗମ; ଯାହା ମନକୁ ହରଣ
Harmya (rmmya) ବା ମୁଗ୍ଧ କରେ)—ପ୍ରସ୍ତର, କାଷ୍ଠ, ଇଷ୍ଟକାଦି ନିର୍ମିତ ଧନୀମାନଙ୍କ ଧବଳିତ ବାସଭବନ; ପ୍ରାସାଦ; ବଡ଼ କୋଠା ଅଟ୍ଟାଳିକା—Palatial building, mansion; big building.
[ବି—ରାଜା ଛଡ଼ା ଅନ୍ୟ ଧନୀମାନଙ୍କ ପ୍ରାସାଦକୁ ହର୍ମ୍ମ୍ୟ ବୋଲଯାଏ—ସୁଭୂତି]
ହର୍ମ୍ୟ (ର୍ମ୍ମ୍ୟ) ତଳ—ସ. ବ (ଷଷ୍ଠୀ ତତ୍)—ଅଟ୍ଟାଳିକାର ମେଜିଆ—
Harmya (rmmya) tala The floor of a mansion.
ହର୍ମ୍ୟ (ର୍ମ୍ମ୍ୟ) ପୃଷ୍ଠ—ସ. ବ. (ଷଷ୍ଠୀତତ୍)—କୋଠାର ଛାତ—
Harmya (rmmya) prushtha The roof of a mansion.
ହର୍ମ୍ୟ (ର୍ମ୍ମ୍ୟ) ଶିଖର—ସ. ବ—କୋଠାର ଶିରୋଦେଶ—
Harmya (rmmya) sikhara The top of a building.
ହର୍ମ୍ୟା (ର୍ମ୍ମ୍ୟା) ରୂଢ଼—ସ. ଭଣ. ସ୍ତ୍ରୀ (୨ୟ. ତତ୍)—କୋଠା ଉପରେ
Harmya (rmmya) rudha ଚଢ଼ିଥିବା—Having ascended to the roof of a building.
[ହର୍ମ୍ମ୍ୟାରୂଢ଼ା—ସ୍ତ୍ରୀ]
ହର୍ମ୍ମ୍ୟୋ(ର୍ମ୍ମ୍ୟୋ) ପରି—ସ. ଅ (ହର୍ମ୍ୟ+ଉପରି)—କୋଠାଉପରେ—
Harmyo (rmmyo) pari On the roof or top of a building.
ହର୍ମ୍ମ୍ୟୋ (ର୍ମ୍ମ୍ୟୋ) ପରିସ୍ଥ—ସ. ଭଣ—କୋଠା ଉପରେ ଅବସ୍ଥିତ—
Harmyo (rmmyo) paristha Situated or standing on the roof or top of a building.
ହର୍ଯ୍ୟ ଧାତୁ—ସ.—୧ । କ୍ଳାନ୍ତ ହେବା—1. To be tired.
Harj (root) ୨ । ଗତି କରିବା—2. To move.
ହର୍ଯ୍ୟ (ର୍ଯ୍ୟ)—ବୈଦେ. ବ—ହରଜ୍ (ଦେଖ)—
Harja Haraj (See).
ହର୍ଯ୍ୟକ୍ଷ—ସ. ବ (ହରି=ହରିଦ୍ବର୍ଣ୍ଣ ଅଟେ ଅକ୍ଷି ଯାହାର, ବହୁବ୍ରୀହି)—
Harjyaksha ୧ । କେଶରୀ; ସିଂହ (ଅମର)—1. Lion.
୨ । କୁବେର (ଜଟାଧର)—2. The god of wealth.
ହର୍ଯ୍ୟତ—ସ. ବ—(ହୃ ଧାତୁ+କର୍ତ୍ତ୍ରି. ଅତ)—୧ । ଘୋଟକ (ମୁଗ୍ଧବୋଧ
Harjyata ବ୍ୟାକରଣ)—1. Horse. ୨ । ଅଶ୍ୱମେଧୀୟ ଅଶ୍ୱ (ତ୍ରିକାଣ୍ଡଶେଷ)—2. A horse set apart or dedicated for being offered as a victim in a sacrifice.
ହର୍ଯ୍ୟଶ୍ୱ—ସ. ବ (ବହୁବ୍ରୀହି; ହରି=ହରିଦ୍ବର୍ଣ୍ଣ ଅଶ୍ୱ ଯାହାଙ୍କର)—
Harjyaswa ୧ । ବାସବ; ଇନ୍ଦ୍ର—1. Indra; the god of the gods. ୨। (ନାମ) ପଞ୍ଚାଳର ଜନୈକ ନୃପ—2. Name of a king of Panchala country. [ବି—ଏହାଙ୍କର ବଂଶୋଦ୍ଭବ ପୁତ୍ର ଜନ୍ମ ହେଲାରୁ ଏହି ୫ ଜଣଙ୍କ ଦ୍ୱାରା ରାଜ୍ୟ ସୁଶାସିତ ହେବାର ଆଶା କରି ଏ ଅଞ୍ଚଳ ପୁତ୍ର ଅଣା କଲେ କାହିଁ । ଫଳତଃ ଏହି ୫ ପୁତ୍ରଙ୍କ ଦ୍ୱାରା ରାଜ୍ୟ ସୁଶାସିତ ହୋଇ ରାଜ୍ୟର ନାମ ପଞ୍ଚାଳ ହେଲା ।
ହର୍ରଙ୍ଗ—ଦେ. ବ—ହର୍‌ରଙ୍ଗ (ଦେଖ)—
Harranga Har-ranga (See).
ହର୍ରଙ୍ଗି—ଦେ. ବଣ—ହର୍‌ରଙ୍ଗି (ଦେଖ)—
Harrangi Har-rangi (See).
[ହର୍ରଙ୍ଗିଆ—ଅନ୍ୟରୂପ]
ହର୍ରା—ଦେ. ବ ଓ ଭଣ—ହର୍‌ରା (ଦେଖ)—
Harra Har-ra (See).
ହର୍ରୋଜ ବୈଦେ. ଅ—ହର୍‌ରୋଜ୍ (ଦେ.)—
Harroj Har-roj (See).
ହର୍ସ ଗାର୍ଡ୍ (ର୍ଡ୍)—ବୈଦେ.ବ (ଇଂ)—ରାଜାଙ୍କର ପାର୍ଶ୍ୱରର ଅଶ୍ୱସେନା।
Hars gard (rd) Horse guard.
हर्स गार्ड हर्सगार्ड
ହର୍ଷ ପାୱାର—ବୈଦେ. ବ—ଗାଡ଼ି ଆଦିର ଟାଣିବା ଶକ୍ତିର ପରମାଣ
Hars pawar ବିଶେଷଣ—Horse power.
हर्सपावार हर्सपावार
ହର୍ଷରେସ୍—ବୈଦେ. ବ(ଇଂ)—ବାଜି ମରାଯାଇ ଦଉଡ଼ିବା ଘୋଡ଼ା ଦୌଡ଼
Hars res —Horse race.
ହର୍ଷାଇବା—ଦେ. କ୍ରି (ସ, ହର୍ଷ)—ହୃଷ୍ଟ କରିବା —
Harsaiba To cause delight or joy.
ହର୍ଷାଲ୍—ବୈଦେ. ଅ—ହର୍‌ଶାଲ୍ (ଦେଖ)—
Harsal Har-sal (See)

ହର୍ଶାଲ (ଲି)—ବୈଦେ· ବିଣ—ହର୍‌ଶାଲ (ଦେଖ)—
Harsālā (li) Har-sālā (See).
[ହର୍ଶାଲିଅ—ଅନ୍ୟରୂପ]

ହର୍ଷ—ସ. ବି (ହୃଷ୍ ଧାତୁ=ତୁଷ୍ଟ ହେବା+ଭାବ. ଅ)—୧ । ଅହ୍ଲାଦ; Harsha ଆନନ୍ଦ—1. Joy; delight; gaiety. ୨ । ସୁଖ—2. Pleasure. ୩ । ଇଷ୍ଟ ଶ୍ରବଣଜାତ ସୁଖ—[ମହାଭାରତ—3. Pleasure derived from hearing joyous news. ୪ । କନ୍ଦର୍ପଙ୍କ ପିତା (ବାମନ ପୁରାଣ)—4. Name of the father of God Cupid.
(ବିଣ—ହୃଷ୍ଟ, ହର୍ଷିତ, ହର୍ଷକ) ଗ୍ରା. ବିଣ (ସ. ହ୍ରସ୍ୱ)—ହ୍ରସ୍ୱ (ଦେଖ)- Hraswa (See).

ହର୍ଷ 'ଇ'—ଗ୍ରା, ବି—(ସ. ହ୍ରସ୍ୱ 'ଇ'ର ଅଶୁଦ୍ଧ ଉଚ୍ଚାରଣ)—ହ୍ରସ୍ୱ ଇ
Harsha i' The short vowel i.

ହର୍ଷ 'ଉ'—ଗ୍ରା, ବି—(ସ. ହ୍ରସ୍ୱ 'ଉ' ର ଅଶୁଦ୍ଧ ଉଚ୍ଚାରଣ)—ହ୍ରସ୍ୱ 'ଉ'
Harsha 'u' The short vowel u.
ह्रस्व उ ह्रस्व उ

ହର୍ଷକ—ସ· ବିଣ ପୁଂ (ହୃଷ ଧାତୁ+କର୍ତ୍ତୃ. ଅକ)—ହର୍ଷକାରକ; Harshaka ହର୍ଷୋତ୍ପାଦକ—Delightful; causingjoy.
[ହର୍ଷିକା—ସ୍ତ୍ରୀ]

ହର୍ଷଣ—ସ: ବି—(ହୃଷ୍ ଧାତୁ+ଭାବ. ଅନ)—୧ । ହର୍ଷ; ଅହ୍ଲାଦ, Harshaṇa ପୁଲକ—1. Delight; joy. ୨ । (ହୃଷ୍ ଧାତୁ ଣିଚ୍+ଭାବ. ଅନ) ଅହ୍ଲାଦ ଜନ୍ମାଇବା—2. Delighting; causing joy. ୩ । (+କର୍ତ୍ତୃ. ଅନ) (ଜ୍ୟୋତିଷ) ବିଷ୍କମ୍ଭାଦି ସପ୍ତବିଂଶତି ଯୋଗାନ୍ତର୍ଗତ ଚତୁର୍ଦ୍ଦଶ ଯୋଗ—3. (Astrology) One of the 27. astrological conjunctions. [ଦ୍ର—ଏଥିରେ ଜାତ ବ୍ୟକ୍ତି ସୁଶ୍ରୀରୂପବାନ୍, ସ୍ଫୁଟପଦଜନନ, ଶାନ୍ତ ଓ ଧନଯୋପପନ୍ନ ହୁଅନ୍ତି] ୪ । ଚକ୍ଷୁରୋଗ ବିଶେଷ—4. A sort of eye disease. ୫ । ଶ୍ରାଦ୍ଧବିଶେଷ—5. A kind of offering of cakes to one's deceased ancestors. ୬ । ଶ୍ରାଦ୍ଧଦେବ—6. The Deity presiding over śrāddha.
ସ· ବିଣ—ପୁଂ—ଅହ୍ଲାଦଉତ୍ପାଦକ; ଆନନ୍ଦଜନକ—
Joyful; delightful; producing joy.

ହର୍ଷଣୀ—ସ. ବିଣ. ସ୍ତ୍ରୀ—ହର୍ଷଣର ସ୍ତ୍ରୀ ଲିଙ୍ଗ—Feminine form
Harshaṇī of Harshaṇa. ବି,—ଭାଙ୍ଗ; ବିଜୟା—A concoction prepared from the leaves of Gaṅjā.

ହର୍ଷ ଦେବ—ଦେ. ବି (ନାମ)—କାଶ୍ମୀରର ଜଣେକ ରାଜା—Name
Harsha deba of a king of Kashmir. [ଦ୍ର—ଏ ପ୍ରସିଦ୍ଧ ସଂସ୍କୃତ ରତ୍ନାବଳୀ ନାଟକର ରଚୟିତା; ଖ୍ରୀ: ୧୧୧୩ରୁ ୧୧୨୫ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।]

ହର୍ଷ ପ୍ରକାଶ—ସଂ. ବି (୬ଷ୍ଠୀ ତତ୍)—ଆନନ୍ଦ ପ୍ରକାଶ—
Harsha prakāsa Giving vent to delight; expression of joy.

ହର୍ଷପ୍ରଫୁଲ୍ଲ—ସଂ. ବିଣ, ପୁଂ—ହର୍ଷୋତ୍‌ଫୁଲ୍ଲ (ଦେଖ)—
Harsha praphulla Horshotphulla (See).
[ହର୍ଷପ୍ରଫୁଲ୍ଲା—ସ୍ତ୍ରୀ] (ବି—ହର୍ଷପ୍ରଫୁଲ୍ଲତା)

ହର୍ଷବର୍ଦ୍ଧକ—ସଂ ବିଣ. ପୁଂ—ଯାହା ଆନନ୍ଦ ବଢ଼ାଏ—
Harshabarddhaka Increasing delight.
[ହର୍ଷବର୍ଦ୍ଧିକା—ସ୍ତ୍ରୀ]

ହର୍ଷ ବର୍ଦ୍ଧନ—ସଂ. ବି (୬ଷ୍ଠୀ ତତ୍)—୧ । ଅହ୍ଲାଦର ବୃଦ୍ଧି ପାଇବା—
Harsha barddhana 1. Increase of delight ୨ । (ନାମ) ଶିଳାଦିତ୍ୟ ରାଜା—2. Name of a king. [ଦ୍ର—ବାଣଭଟ୍ଟ ଏହାଙ୍କର ସଭାପଣ୍ଡିତ ଓ ସଭାକବି ଥିଲେ ।] ବିଣ—ଯାହା ହର୍ଷ ବୃଦ୍ଧି କରାଏ—Increasing delight. [ଦ୍ର—କେତେକ ଦିନ ପୂର୍ବେ ନବଭାରତ ପତ୍ରିକାରେ ପ୍ରକାଶିତ "ଉତ୍କଳରେ ହର୍ଷାବ୍ଦର ବ୍ୟବହାର" ନାମକ ପ୍ରବନ୍ଧରେ ନାନା ଯୁକ୍ତି ଦ୍ୱାରା ମୁଁ ପ୍ରମାଣ କରିଥିଲି ଯେ, ହର୍ଷାବ୍ଦର ଅସ୍ତିତ୍ୱ ସନ୍ଦେହ ଜନକ ବିଷୟ ଓ ଉତ୍କଳରେ ହର୍ଷାବ୍ଦ ଆଦୌ ପ୍ରଚଳିତ ହୋଇ ନ ଥିଲା । କିନ୍ତୁ ଉତ୍କଳର କେତେକ ବିଶିଷ୍ଟ ଐତିହାସିକ ମୋର ମତ ଗ୍ରାହ୍ୟ ନୁହେ ବୋଲି ମତ ପୋଷଣ କରନ୍ତି । ତେଣୁ, ମୋର ମତକୁ ଦୃଢ଼ କରିବାପାଇଁ ମୁଁ ପୂର୍ବୋକ୍ତ ପ୍ରମାଣମାନଙ୍କ ବ୍ୟତୀତ ନିମ୍ନରେ ଆଉ କେତୋଟି ପ୍ରମାଣ ଦେଲି ।

ଭାରତର ପୂର୍ଣ୍ଣାଙ୍ଗ ଓ ସତ୍ୟମୂଳକ ଇତିହାସ ଆଜି ପର୍ଯ୍ୟନ୍ତ ମିଳି ନାହିଁ । ତେଣୁ, ଯେଉଁ ପ୍ରାଚୀନ ନରପତିମାନଙ୍କ ସମ୍ବନ୍ଧରେ ବିଶେଷ ସମ୍ବାଦ ମିଳିଅଛି, ସେମାନେ ଭାରତର ଅତୀତ ଇତିହାସର ଗଭୀର ଅନ୍ଧକାର ମଧ୍ୟରେ କ୍ଷୀଣ ଆଲୋକ ରେଖା ସ୍ୱରୂପ ବିଦ୍ୟମାନ । ଇତିହାସ ପାଠ କରି ସମସ୍ତଙ୍କର ଧାରଣା ଜନ୍ମିଛି ଯେ, ହର୍ଷବର୍ଦ୍ଧନ ଭାରତର ଶେଷ ସ୍ୱାଧୀନ ଓ ବିକ୍ରମଶାଳୀ ହିନ୍ଦୁ ନରପତି, ଶେଷ ହିନ୍ଦୁସାମ୍ରାଜ୍ୟର ପ୍ରତିଷ୍ଠାତା । କିନ୍ତୁ ଏହି ଧାରଣା ସମ୍ପୂର୍ଣ୍ଣ ଭ୍ରାନ୍ତ । ହର୍ଷବର୍ଦ୍ଧନଙ୍କ ପରେ ମଧ୍ୟ ପାଳବଂଶୀୟ ଧର୍ମପାଳ, ଗୁର୍ଜର ପ୍ରତିହାର ବଂଶୀୟ ଭୋଜ ଓ ମହେନ୍ଦ୍ରପାଳ, କାଳଚୁରିରାଜ ଗାଙ୍ଗେୟଦେବ ଓ କର୍ଣ୍ଣଦେବ ଓ ଚୌହାନବଂଶୀୟ ପୃଥ୍ୱୀରାଜ ଆର୍ଯ୍ୟାବର୍ତ୍ତ ବା ଉତ୍ତରଭାରତରେ ବିଶାଳ ହିନ୍ଦୁ ସାମ୍ରାଜ୍ୟମାନ ପ୍ରତିଷ୍ଠା କରିଥିଲେ । ଏତଦ୍ବ୍ୟତୀତ ଦାକ୍ଷିଣାତ୍ୟର ଚାଲୁକ୍ୟ, ଗଙ୍ଗ, ଓ ଶୈଳମାନଙ୍କ ବିଶାଳ ସାମ୍ରାଜ୍ୟର ଗୌରବମୟ ଇତିହାସ ଅଦ୍ୟାପି ଇତିହାସ ପୃଷ୍ଠାରେ ଲିପିବଦ୍ଧ ହୋଇ ରହିଛି । ହର୍ଷବର୍ଦ୍ଧନଙ୍କ ମୃତ୍ୟୁ ପରେ ତାଙ୍କର ସାମ୍ରାଜ୍ୟ ଲୁପ୍ତ ହୋଇଥିଲା; କିନ୍ତୁ ପୂର୍ବୋକ୍ତ ପ୍ରତ୍ୟେକ ରାଜବଂଶର ସାମ୍ରାଜ୍ୟ ପ୍ରାୟ ଏକ ଶତାବ୍ଦୀ ବା ଦୁଇ ଶତାବ୍ଦୀ ପର୍ଯ୍ୟନ୍ତ ବିଦ୍ୟମାନ ଥିଲା । ତେଣୁ, ହର୍ଷଙ୍କୁ ଶେଷ ହିନ୍ଦୁ ସାମ୍ରାଜ୍ୟର ପ୍ରତିଷ୍ଠାତା ବୋଲି କହିବା ଆଦୌ ସଙ୍ଗତ ନୁହେଁ ।

ଦ୍ୱିତୀୟତଃ ହର୍ଷବର୍ଦ୍ଧନଙ୍କୁ ସମଗ୍ର ଉତ୍ତରାପଥ, ଆର୍ଯ୍ୟାବର୍ତ୍ତ ବା ଉତ୍ତର ଭାରତର ଏକଚ୍ଛତ୍ରାଧିପତି ବୋଲି ଲେଖିବା,

ସଂପୂର୍ଣ୍ଣ ଭ୍ରାନ୍ତ । ସେ ପୁଲକେଶୀ ସୋମବଂଶୀୟ ଯଯାତି, ପାଲବଂଶୀ ଧର୍ମପାଳ, ଭୋଜ ପ୍ରଭୃତିଙ୍କଠାରୁ ଅଧିକ କ୍ଷମତାଶାଳୀ ଥିବାର କୌଣସି ପ୍ରମାଣ ନାହିଁ । ହର୍ଷଙ୍କର ପ୍ରଶସ୍ତିକାର ହର୍ଷଙ୍କ ଶାସିତ ସାମ୍ରାଜ୍ୟ ବା ବିଜିତ ରାଜ୍ୟମାନଙ୍କର କୌଣସି ବର୍ଣ୍ଣନା ଦେଇ ନାହାନ୍ତି । ସେ ଭାରତୀୟ ପ୍ରାଚୀନ ପ୍ରଶସ୍ତିକାରଙ୍କର ପଦାଙ୍କ ଅନୁସରଣ କରି ଗତାନୁଗତିକ ଭାବରେ ତାଙ୍କୁ ଅସମୁଦ୍ର କ୍ଷିତୀଶ ବୋଲି ବର୍ଣ୍ଣନା କରିଅଛନ୍ତି- ଯଥା —ଦେବସ୍ୟ ଚତୁଃସମୁଦ୍ରାଧିପତେଃ, ସକଳ-ରାଜଚକ୍ର-ଚୂଡ଼ାମଣି ଶ୍ରେଣୀ ସ୍ମାନକୋଣ-କଷଣ ନିର୍ମଳୀକୃତ-ଚରଣନଖମଣେଃ, ସର୍ବଚକ୍ରବର୍ତ୍ତିନାଂ ଧୌରେୟସ୍ୟ × × ।

ଭାରତରେ ଯେ କୌଣସି ଶିଳାଲେଖ ବା ତାମ୍ରଶାସନ ପାଠ କଲେ ଏପରି ଅସଂଖ୍ୟ କପୋଳ-ଶବ୍ଦ-ରଚନାପୂର୍ଣ୍ଣ କଳ୍ପନାରଞ୍ଜିତ ପ୍ରଶସ୍ତିମାନ ଦେଖାଯାଏ । ତେଣୁ ବାଣଭଟ୍ଟଙ୍କ ହର୍ଷଚରିତ ଉପରେ ନିର୍ଭର କରି ସତ୍ୟମୂଳକ ଇତିହାସ ଲେଖିବା ସମ୍ଭବପର ନୁହେଁ । ହର୍ଷଙ୍କ ସମସାମୟିକ ଓ ପରବର୍ତ୍ତୀ କାଳର ଲେଖାମାନ ପାଠକଲେ ମଧ୍ୟ ଜଣାଯାଏ ଯେ, ହର୍ଷଙ୍କ ରାଜ୍ୟ ଗାଙ୍ଗେୟ ଉପତ୍ୟକା ମଧ୍ୟରେ ଆବଦ୍ଧ ଥିଲା । ଦାକ୍ଷିଣାତ୍ୟପତି ଦ୍ୱିତୀୟ ପୁଲକେଶୀଙ୍କର କ୍ଷମତା ନର୍ମଦା ବା ରେବା ନଦୀ ପର୍ଯ୍ୟନ୍ତ ବ୍ୟାପି ଥିଲା ଓ ନର୍ମଦାର ଦକ୍ଷିଣ ତଟରେ ହର୍ଷଙ୍କର ଦିଗ୍‌ବିଜୟର ସୀମା ଥିଲା ଓ ଦ୍ୱିତୀୟ ପୁଲକେଶୀ ହର୍ଷଙ୍କୁ ସମ୍ମୁଖୀନରୂପେ ପରାସ୍ତ କରିଥିଲେ । ଯଥା —

ଅପରିମିତ ବିଭୂତି ସ୍ଫୀତ ସାମନ୍ତସେନା
ମୁକୁଟ ମଣିମୟୂଖାକ୍ରାନ୍ତ ପାଦାରବିନ୍ଦଃ
ଯୁଧିପତିତଗଜେନ୍ଦ୍ରାନୀକବୀଭତ୍ସଭୂତୋ
ଭୟ ବିଗଳିତ ହର୍ଷୋ ଯେନ ଚାକାରି ହର୍ଷଃ ।
(୨୩ଶ ଶ୍ଳୋକ)

ଭୁବମୁରୁଭିରନୀକୈଃ ଶାସତୋ ଯସ୍ୟ ରେବା
ବିବିଧ ପୁଳିନଶୋଭା ବନ୍ଧ୍ୟ ବିନ୍ଧ୍ୟୋପକଣ୍ଠ ।
(୨୪ଶ ଶ୍ଳୋକ)

(ଦ୍ୱିତୀୟ ପୁଲକେଶୀଙ୍କ ଐହୋଲ ପ୍ରଶସ୍ତି)

ନର୍ମଦା ନଦୀର ଉତ୍ତର ତୀରବର୍ତ୍ତୀ ଲାଟ, ମାଳବ ଓ ଗୁର୍ଜ୍ଜର ରାଜ୍ୟ ମଧ୍ୟ ପୁଲକେଶୀଙ୍କର ଅଧୀନତା ସ୍ୱୀକାର କରିଥିଲେ । ଯଥା :—

ପ୍ରତାପୋପନତା ଯସ୍ୟ ଲାଟ ମାଳବ ଗୁର୍ଜ୍ଜରାଃ
ଦଣ୍ଡୋପନତ ସାମନ୍ତ ଚର୍ଯ୍ୟାଚର୍ଯ୍ୟା ଇବାଭବନ୍
(୨୨ଶ ଶ୍ଳୋକ)

ପଶ୍ଚିମରେ ବଲ୍ଲଭୀରାଜ୍ୟ ହର୍ଷଙ୍କ ସାମ୍ରାଜ୍ୟଭୁକ୍ତ ଥିବା ଐତିହାସିକମାନଙ୍କର ମତ । କିନ୍ତୁ ବଲ୍ଲଭୀ ରାଜ ପ୍ରଥମେ ହର୍ଷଙ୍କଦ୍ୱାରା ପରାସ୍ତ ହୋଇ କିଛିକାଳ ତାଙ୍କର ଅଧୀନତା ସ୍ୱୀକାର କରିଥିଲେ । କିନ୍ତୁ ଅଳ୍ପ କେତେକ ବର୍ଷ ପରେ ଦଦ୍ଦଙ୍କ ସାହାଯ୍ୟରେ ହର୍ଷଙ୍କୁ ପରାସ୍ତ କରିଥିଲେ ବୋଲି ଏ ବଂଶୀୟ ବୋଲିତ (ଭରୁକଚ୍ଛ)ରୁ ପ୍ରାପ୍ତ ଗୋଟିଏ ତାମ୍ରଶାସନରୁ ଜଣାଯାଏ । ଯଥାଃ — ପରମେଶ୍ୱର ଶ୍ରୀ ହର୍ଷଦେବାଭିଭୂତ ବଲ୍ଲଭୀପତି ପରିତ୍ରାଣୋପାର୍ଜ୍ଜିତାନାଶୋବିତାନଃ ଶ୍ରୀଦଦ୍ଦଃ । ସିନ୍ଧୁ, ରାଜପୁତାନା, କପିଶା, ଗାନ୍ଧାର, ପଞ୍ଜାବ ପ୍ରଭୃତି ସ୍ୱାଧୀନ ଥିବା ବିଷୟ ହର୍ଷଙ୍କର ଅନ୍ୟ ଏକ ସ୍ତାବକ ହୁଏନ୍‌ସାଙ୍ଗଙ୍କ ବର୍ଣ୍ଣନା ପାଠକଲେ ସ୍ପଷ୍ଟ ଜଣାପଡ଼େ । ତେଣୁ, ପଶ୍ଚିମରେ ଶତଦ୍ରୁ ନଦୀ ପର୍ଯ୍ୟନ୍ତ ତାଙ୍କର କ୍ଷମତା ବିସ୍ତୃତ ହୋଇଥିବା ସୁନିଶ୍ଚିତ ।

ଉତ୍କଳ ଓ କୋଙ୍ଗଦରାଜ୍ୟ ହର୍ଷଙ୍କ ଦ୍ୱାରା ବିଜିତ ହୋଇଥିଲେ ମଧ୍ୟ ହର୍ଷଙ୍କ ଅଧୀନତା ଆଦୌ ସ୍ୱୀକାର କରି ନ ଥିଲେ । ତେଣୁ ହର୍ଷବର୍ଦ୍ଧନ ଦୀର୍ଘ ୩୦ ବର୍ଷ ଯୁଦ୍ଧରୁ ନିବୃତ୍ତ ହୋଇଥିଲେ ସୁଦ୍ଧା ବୃଦ୍ଧ ବୟସ, ବିଦ୍ରୋହୀ କୋଙ୍ଗଦ ଉତ୍କଳକୁ ଜୟ କରିବାପାଇଁ ପୁନର୍ବାର ରାଜତ୍ୱର ଶେଷ ଭାଗରେ ଯୁଦ୍ଧଯାତ୍ରା କରିଥିଲେ । କିନ୍ତୁ ଏହାର ଫଳ ମଧ୍ୟ ଅନିଶ୍ଚିତ । ବଙ୍ଗ ଦେଶର ରାଜା ଶଶାଙ୍କ ତାଙ୍କର ପ୍ରଧାନ ଶତ୍ରୁ ଥିଲେ । କିନ୍ତୁ ଶଶାଙ୍କଙ୍କ ମୃତ୍ୟୁ ପରେ ତାଙ୍କର ରାଜ୍ୟ କାମରୂପରାଜ ଭାସ୍କର ବର୍ମାଙ୍କଦ୍ୱାରା ଅଧିକୃତ ହୋଇଥିବା, କର୍ଣ୍ଣସୁବର୍ଣ୍ଣରୁ ପ୍ରଦତ୍ତ ତାଙ୍କର ନିଧାନପୁର ତାମ୍ରଶାସନରୁ ସ୍ପଷ୍ଟ ଜଣାଯାଏ । ତେଣୁ ବଙ୍ଗଦେଶ ମଧ୍ୟ ହର୍ଷଙ୍କ ସାମ୍ରାଜ୍ୟଭୁକ୍ତ ହୋଇ ନ ଥିଲା । କାମରୂପର ରାଜା ଆସାମ ଓ ଗୌଡ଼ ବା ବଙ୍ଗ ଦେଶର ଶାସକ ଥିଲେ । ହର୍ଷବର୍ଦ୍ଧନ ନେପାଳ ଜୟ କରି ସେଠାରେ ତାଙ୍କର ତଥାକଥିତ ଅବ୍ଦ ଚଳାଇଥିବା କଲହର୍ଣ୍ଣ, ପାଇକର ପ୍ରଭୃତି ଐତିହାସିକଙ୍କର ମତ । କିନ୍ତୁ ଏହି ଧାରଣା ସମ୍ପୂର୍ଣ୍ଣ ଭ୍ରାନ୍ତ । ହର୍ଷଙ୍କ ପ୍ରଶସ୍ତିକାର ବାଣଭଟ୍ଟ ହୁଏନ୍‌ସାଙ୍ଗ୍ ହର୍ଷ ନେପାଳ ଜୟ କରିଥିବାର କେଉଁଠାରେ ଲେଖି ନାହାନ୍ତି । ବାଣଭଟ୍ଟ ଗୋଟିଏ ସ୍ଥାନରେ ହର୍ଷଙ୍କ ହିମାଚ୍ଛାଦିତ ଗୋଟିଏ ପର୍ବତ-ବିଜୟ ବର୍ଣ୍ଣନା କରିଅଛନ୍ତି । ଏହାର ମଧ୍ୟ ଦୁଇ ଅର୍ଥ ଅଛି ଯଥା —

"We have taken tribute from an inaccessible land of snowy mountains".

ଅନ୍ୟଠାରେ—

"Siva has obtained the hand of Durga the daughter of the Himalayas"—
"English translation of Harsacharita."

ଏହା ପାଠ କରି କେଉଁ ଯୁକ୍ତି ବଳରେ ବୁଝାଯାଇ ପାରେ ଯେ ହର୍ଷ ନେପାଳ ଜୟ କରିଥିଲେ । ଏଥିରେ ନେପାଳର ସୂଚନା ପର୍ଯ୍ୟନ୍ତ ନାହିଁ । ପୁନଶ୍ଚ ସେମାନେ କହନ୍ତି ନେପାଳର କିମ୍ବଦନ୍ତୀ ଓ ବଂଶାବଳୀରୁ ଜଣାଯାଏ ଯେ ଜଣେ ଭାରତୀୟ ରାଜା ନେପାଳ ଜୟ କରିଥିଲେ; ଏହାଙ୍କୁ ହର୍ଷ ବୋଲି କହିବାର କୌଣସି କାରଣ ନାହିଁ । କାରଣ ସମୁଦ୍ରଗୁପ୍ତଙ୍କ ପ୍ରୟାଗପ୍ରଶସ୍ତିରୁ ସ୍ପଷ୍ଟ ଜଣାଯାଏ, ସେ ସମତଟ, କାମରୂପ ଓ ନେପାଳ ପ୍ରଭୃତି ସୀମାନ୍ତ ରାଜ୍ୟ ଜୟ କରିଥିଲେ । ତେଣୁ, ସମୁଦ୍ରଗୁପ୍ତଙ୍କୁ କିମ୍ବଦନ୍ତୀର ବା ବଂଶାବଳୀର ଭାରତୀୟ ରାଜାଙ୍କ ସହିତ ତୁଳନା କରିବା ସର୍ବାଦୌ ଯୁକ୍ତି-

ଯୁକ୍ତ ଓ ଗ୍ରାହ୍ୟ । ତାହାହେଲେ ନେପାଳ ହର୍ଷଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ନ ଥିଲା ।

ଏହି ସମସ୍ତ ଆଲୋଚନାରୁ ସ୍ପଷ୍ଟ ଜଣାଯାଏ ଯେ, ହର୍ଷବର୍ଦ୍ଧନ ସମଗ୍ର ଆର୍ଯ୍ୟାବର୍ତ୍ତର ଅଧିପତି ନ ଥିଲେ । ତାଙ୍କର ରାଜ୍ୟ ଆଧୁନିକ ଯୁକ୍ତପ୍ରଦେଶ, ବିହାରର ପଶ୍ଚିମାଂଶ ଓ ଶତଦ୍ରୁ ନଦୀର ପୂର୍ବବର୍ତ୍ତୀ ଅଂଶ ନେଇ ଗଠିତ ହୋଇଥିଲା । ଏହାର ଉତ୍ତରରେ ହିମାଳୟର ତରାଇ ଅଞ୍ଚଳ ବିଦ୍ୟମାନ ଥିଲା ।

ହର୍ଷଚରିତରୁ ଜଣାଯାଏ ଯେ ତାଙ୍କର ପିତା ଥାନେଶ୍ୱର ରାଜ୍ୟର ରାଜା ଥିଲେ । ହୁଏନ୍‌ସାନ୍‌ଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ମଗଧ, କନୌଜ ଓ ପ୍ରୟାଗ ଅଞ୍ଚଳ ତାଙ୍କର ସାମ୍ରାଜ୍ୟଭୁକ୍ତ ଥିଲା । ତାଙ୍କର ବଂଶଖେର ଓ ମଧୁବନ ତାମ୍ରଶାସନଦ୍ୱୟରୁ ଜଣାଯାଏ ଯେ, ସେ ଯଥାକ୍ରମେ ଅହିଚ୍ଛତ୍ର ଓ ଶ୍ରାବସ୍ତିଭୁକ୍ତିରେ ଗ୍ରାମ ପ୍ରଦାନ କରିଥିଲେ । ସମସ୍ତ ଦିଗରୁ ବିଚାର କଲେ ଏହା ନିଃସନ୍ଦେହରେ ସ୍ଥିର କରି ଯାଇପାରେ ଯେ, ଗାଙ୍ଗେୟ ଉପତ୍ୟକାର ଉତ୍ତରାଂଶହିଁ ହର୍ଷଙ୍କ ସାମ୍ରାଜ୍ୟଭୁକ୍ତ ଥିଲା ଓ ସେ ସମଗ୍ର ଆର୍ଯ୍ୟାବର୍ତ୍ତର ଅଧିପତି ନ ଥିଲେ ।

ବର୍ତ୍ତମାନ ତଥାକଥିତ 'ହର୍ଷାବ୍ଦ'ର ବିଷୟ ବିଚାର କରାଯାଉ । କିଲ୍‌ହର୍ଣ୍ଣ ଓ ଯାନ୍ନିକର୍ ପ୍ରଭୃତି 'ହର୍ଷାବ୍ଦ' ବୋଲି ଗୋଟିଏ ଅବ୍ଦ ଭାରତରେ ଚଳୁଥିବାର ମତ ପୋଷଣ କରନ୍ତି । କିଲ୍‌ହର୍ଣ୍ଣ ଭାରତର ନାନାଞ୍ଚଳରୁ ଆବିଷ୍କୃତ ସହସ୍ର ସହସ୍ର ଲେଖମାନଙ୍କ ମଧ୍ୟରୁ କେବଳ ୨୦ଟିରେ ହର୍ଷାବ୍ଦ ବ୍ୟବହୃତ ହୋଇଥିବା ଅନୁମାନ କରନ୍ତି; ଲେଖମାନଙ୍କ ନାମ—

(୧) ହର୍ଷଙ୍କର ଦୁଇଟି ଲେଖ, (୨) ନେପାଳରୁ ପ୍ରାପ୍ତ ୧୧ଟି ଲେଖ, (୩) ମଗଧରାଜ ଆଦିତ୍ୟସେନଙ୍କର ଗୋଟିଏ ଲେଖ, (୪) ଦୁଇଟି ପ୍ରତିହାର ଲେଖ, (୫) ପଞ୍ଜାବର କୌଣସି ଏକ ଅଜ୍ଞାତ ସ୍ଥାନରୁ, ମଧ୍ୟପ୍ରଦେଶରୁ, ଖୁଦୁରାଓରୁ, କର୍ଣ୍ଣଲ ଜିଲ୍ଲାର ପେହୋ ନାମକ ସ୍ଥାନରୁ ଓ ଥାନେଶ୍ୱର ନିକଟବର୍ତ୍ତୀ ପାଞ୍ଜୋର ନାମକ ସ୍ଥାନରୁ ପ୍ରାପ୍ତ ୪ଟି ଲେଖ ।

ନେପାଳରୁ ପ୍ରାପ୍ତ ୧୧ଟି ଲେଖରେ ବ୍ୟବହୃତ ଅବ୍ଦ ବିଷୟରେ ନିଜେ କିଲ୍‌ହର୍ଣ୍ଣ ସାହେବ ସନ୍ଦେହ ପ୍ରକାଶ କରିଅଛନ୍ତି । କାରଣ ହର୍ଷଙ୍କ ନେପାଳ ବିଜୟ ବିଷୟରେ ଆଦୌ ସନ୍ତୋଷଜନକ ପ୍ରମାଣ ନାହିଁ । ଲେଭି ସାହେବ ଏହା କୌଣସି ଲୌକିକାବ୍ଦ ହୋଇପାରେ ବୋଲି ମତ ଦେଇଛନ୍ତି ।

ପ୍ରତିହାର ଲେଖଦ୍ୱୟରେ ବ୍ୟବହୃତ ଅଙ୍କକୁ ୯୫୫ ଓ ୧୫୮ ବୋଲି ପାଠକରି କିଲ୍‌ହର୍ଣ୍ଣ ଏହା ହର୍ଷାବ୍ଦ ବୋଲି ସ୍ଥିର କରିଥିଲେ । କିନ୍ତୁ ଭଣ୍ଡାରକର ଏହା ୯୫୫ ଓ ୯୫୮ ବିକ୍ରମସମ୍ବତ୍ ବୋଲି ନିଃସନ୍ଦେହ ଭାବରେ ପ୍ରମାଣ କରିଛନ୍ତି । ତେଣୁ ଏହା ମଧ୍ୟ ହର୍ଷାବ୍ଦ ନୁହେଁ; ହର୍ଷଙ୍କ ୨ଟି ଲେଖରେ ବ୍ୟବହୃତ ଅବ୍ଦ ହର୍ଷାବ୍ଦ ହୋଇପାରେ 'ବା ଅନ୍ୟାନ୍ୟ ରାଜାମାନଙ୍କ ରାଜତ୍ୱସମ୍ବତ୍ 'ପରି ପ୍ରବର୍ତ୍ତମାନ ନିଜସ୍ୱରାଜ୍ୟ ସମ୍ବତ୍ସର' ହୋଇପାରେ । ଅଉ ବାକି ୪ଟି ଲେଖରେ ହର୍ଷାବ୍ଦର ନାମ ପର୍ଯ୍ୟନ୍ତ ନାହିଁ । ଏହା ଗୁପ୍ତାବ୍ଦ ବା ଅନ୍ୟ କୌଣସି ଅବ୍ଦ ହୋଇପାରେ ବା ପ୍ରତିହାର ଲେଖମାନଙ୍କ ପରି କିଲ୍‌ହର୍ଣ୍ଣଙ୍କ ପାଠ ମଧ୍ୟ ଅଶୁଦ୍ଧ ହୋଇପାରେ । ହର୍ଷାବ୍ଦର ଅସ୍ତିତ୍ୱ ମଧ୍ୟ ସନ୍ଦେହର ବିଷୟ । ତେଣୁ, ପୂଜ୍ୟପାଦ ପଣ୍ଡିତ ବିନାୟକ ମିଶ୍ର ପ୍ରବଳ ପ୍ରତାପ ଭୌମନୃପତିମାନେ, ଅପ୍ରମାଣିତ, ଭାରତର ଅନ୍ୟତ୍ରାପି ଅବ୍ୟବହୃତ, ହର୍ଷାବ୍ଦ ବ୍ୟବହାର କରୁଥିଲେ ବୋଲି ସ୍ଥିରକରି ଉତ୍କଳ ଇତିହାସକୁ ବିଶୃଙ୍ଖଳିତ କରିଛନ୍ତି । ମୋର ଦୃଢ଼ ବିଶ୍ୱାସ, ଭୌମ :ନୃପତି ଓ ସେମାନଙ୍କର ସମସାମୟିକ ଭଞ୍ଜ, ଶୈଳୋଦ୍ଭବ, ତୁଙ୍ଗ ବଂଶୀୟ ନୃପତିମାନଙ୍କ ଦ୍ୱାରା ବ୍ୟବହୃତ ଅବ୍ଦ ଗୁପ୍ତାବ୍ଦ ଭିନ୍ନ ଅନ୍ୟ କିଛି ହୋଇ ନ ପାରେ ।

[ସନ୍ଦର୍ଭ ଲେଖକ—
ଶ୍ରୀ କେଦାରନାଥ ମହାପାତ୍ର ବି.ଏ., ଡିପ୍. ଇଡ୍.]

ହର୍ଷ ବିକସିତ—ସଂ. ବିଣ.ପୁଂ [୩ୟା ତତ୍; ହର୍ଷ ହେତୁ ବିକସିତ]— ହର୍ଷୋତ୍ଫୁଲ୍ଲ (ଦେଖ)—
Harsha bikasita Harshotphulla (See)
(ହର୍ଷବିକଶିତା ସ୍ତ୍ରୀ)

ହର୍ଷ ବିକାଶ—ସଂ. ବି (ମ. ପ. ଲୋ)—୧ । ହର୍ଷଜନିତ ପ୍ରଫୁଲ୍ଲତା—1. Gaiety due to joy. ୨ । [ ୬ଷ୍ଠୀ ତତ୍ ]—ଆନନ୍ଦର ବିକାଶ—2. Exhibition of delight.
Harsha bikāsa

ହର୍ଷମାଣ—ସଂ. ବିଣ [ହୃଷ୍ ଧାତୁ + କର୍ତ୍ତୃ ଶାନଚ (ଅନ)]—୧ । ହୃଷ୍ଟମାନସ; ହର୍ଷଯୁକ୍ତ—1. Delighted. ୨ । ପ୍ରୀତମାନସ—2. Pleased.
Harshamāṇa
(ହର୍ଷମାଣା—ସ୍ତ୍ରୀ)

ହର୍ଷୟିତ୍ନୁ—ସଂ. ବିଣ [ହୃଷ ଧାତୁ + କର୍ତ୍ତୃ ଇତ୍ନୁ]—୧ । ହର୍ଷଶୀଳ—1. Of a joyful temperament; merry. ୨ । ଯାହା ଆହ୍ଲାଦ ଦିଏ—2. Delightful.
Harshayitnu
ବି—୧ । ପୁତ୍ର [ମେଦିନୀ]—1. Son. ୨ । ସ୍ୱର୍ଣ୍ଣ [ମେଦିନୀ]—2. Gold.

ହର୍ଷ ସୂଚକ—ସଂ. ବିଣ [୬ଷ୍ଠୀ ତତ୍]—ଆନନ୍ଦସୂଚକ; ଯାହାଦ୍ୱାରା ହର୍ଷ ସୂଚିତ ହୁଏ—Indicative of delight.
Harsha sūchaka

ହର୍ଷ ସ୍ୱନ (ଧ୍ୱନି, ରବ)—ସଂ. ବି (ମ. ପ. ଲୋ)-ଆହ୍ଲାଦଜନିତ ଉଚ୍ଚଧ୍ୱନି; କଳକଳା ନାଦ—Loud sound made by a person in a paroxysm of joy.
Harsha swana(dhwani,rāba)

ହର୍ଷା(ର୍ଷେ)ଇବା—ଦେ. କ୍ରି—ହୃଷ୍ଟ କରାଇବା—To cause delight.
Harsha(rshe)ibā
हृष्ट करा हँसाना

ହର୍ଷାର୍ଣ୍ଣବ—ସଂ. ବି ( ରୂପକ କର୍ମଧା )—ସମୁଦ୍ର ପରି ଅସୀମ ଆନନ୍ଦ—Great joy compared to the ocean; a sea of joy.
Harshārṇṇaba

ହର୍ଷିଣୀ—ସଂ. ବି (ହର୍ଷ + ଇନ୍ + ସ୍ତ୍ରୀଃ ଈ)—ସଂବଦାମଞ୍ଜରୀ; ଗଞ୍ଜାଇ—The spike of the flowers of the
Harshiṇī

ସଂ ପର୍ଯ୍ୟାୟ—ଭଙ୍ଗା ମାଦମା, ସଂକ୍ଷିପ୍ତସାରମଞ୍ଜରୀ । ear of the Ganjā plant (Indiān hemp).

ହର୍ଷିତ – ସଂ. ବଣ (ହର୍ଷ+ସଂଜ୍ଞାର୍ଥେ ଇତ)—ଆହ୍ଲାଦିତ—
Harshita (ହର୍ଷିତା—ସ୍ତ୍ରୀ) Delighted.

ହର୍ଷୁଳ—ସଂ. ବଣ. ପୁଂ ( ହୃଷ୍ ଧାତୁ=ହୃଷ୍ଟ ହେବା+କର୍ତ୍ତୃ ଉଳ )—ହର୍ଷଶୀଳ—Merry; gay;
Harshula
(ହର୍ଷୁଳା—ସ୍ତ୍ରୀ, ବଣ) delightful. ସଂ. ବ. ପୁ.—୧। ମୃଗ (ସିଦ୍ଧାନ୍ତ କୌମୁଦୀ) —1. Deer. ୨ । କାମୁକ ବ୍ୟକ୍ତି (ସିଦ୍ଧାନ୍ତ କୌମୁଦୀ)—A lustful person. ୩ । ନାୟକ—3. A gallant.

ହର୍ଷୁଳା—ସଂ. ବଣ. ସ୍ତ୍ରୀ ( ହର୍ଷୁଳ+ଆ )—ହର୍ଷୁଳର ସ୍ତ୍ରୀଲିଙ୍ଗ—
Harshulā Feminine of Harshula ସଂ. ବ. ସ୍ତ୍ରୀ—ଯେଉଁ କନ୍ୟାର ବା ସ୍ତ୍ରୀର ଓଠଉପରେ ଦାଢ଼ି ଉଠିଥାଏ ( ଶ୍ର. ଶ ) —A bearded woman or girl.
[ଦ୍ର—ଏ କନ୍ୟା ଶାସ୍ତ୍ର ଅନୁସାରେ ବିବାହାଯୋଗ୍ୟ—ହ. ଶ

ହର୍ଷୋଚ୍ଛ୍ୱାସ—ସଂ. ବ (ମ. ପ. ଲୋ,—ହର୍ଷ+ଉଚ୍ଛ୍ୱାସ)—ହର୍ଷଜନିତ
Harshochhwāsa ଆନନ୍ଦପ୍ରବାହ—Wave of delight.

ହର୍ଷୋତ୍‌ଫୁଲ୍ଲ—ସଂ. ବଣ. ପୁଂ (ଅନ୍ୟା ତତ୍; ହର୍ଷ+ଉତ୍‌ଫୁଲ୍ଲ)—
Harshotphulla ୧ । ଅହ୍ଲାଦିତ—1. Delighted.
(ହର୍ଷୋତ୍‌ଫୁଲ୍ଲା—ସ୍ତ୍ରୀ) ୨ । ଆନନ୍ଦ ଯୋଗୁଁ ବିକସିତ—
(ହର୍ଷୋତ୍‌ଫୁଲ୍ଲତା—ବ) 2. Swollen with delight.

ହର୍ଷୋଦୟ—ସଂ. ବ ( ୬ଷ୍ଠୀ ତତ୍; ହର୍ଷ+ଉଦୟ )—ଆନନ୍ଦର
Harshodaya ଆବିର୍ଭାବ; ଅହ୍ଲାଦର ସଞ୍ଚାର—Rise of joy.

ହଲ୍—ସଂ. ବ—ସ୍ୱରହୀନ ବ୍ୟଞ୍ଜନବର୍ଣ୍ଣ; ଶୁଦ୍ଧ ବ୍ୟଞ୍ଜନ ବର୍ଣ୍ଣ—
Hal A consonant without a vowel sound.

ହଲ୍(ଲ୍) (ଧାତୁ)—ସଂ—୧ । ଭୂମି କର୍ଷଣ କରିବା (ଶବ୍ଦକୋଷ)—
Hal (l)(root) 1. To till the soil. ୨। ବିଲେଖନ କରିବା; ଗାର ପକାଇବା (ଶବ୍ଦକୋଷ)—2. To scratch.

ହଲ —ବୈଦେ. ବ—(ଇଂ)—୧। ଦାଲାନ; ବହୁଲୋକଙ୍କ ସମାଗମ ପାଇଁ
Hal ଯଥେଷ୍ଟ ପ୍ରଶସ୍ତ ଗୃହ—1. Hall. ୨। (ନାମ) ଇଂଲଣ୍ଡର
हल् ୟର୍କ୍‌ସାୟାର୍‌ର ଗୋଟିଏ ପ୍ରଧାନ ବନ୍ଦର—2. Hull, the
हौज name of a port town in York shire.
ପ୍ରାଦେ (ସମ୍ବଲପୁର)—ବ—ହଳ—Plough.

ହଲ୍‌କରା—ପ୍ରାଦେ. (ଗଡ଼ଜାତ) ବ—ଡାକବାହକ; ହରକରା—
Hal-karā Post man.

ହଲ୍‌କା—ପ୍ରାଦେ. (ଗଡ଼ଜାତ) ବ—ଲହରୀ—Wave; tide. ବଣ—
Hal-kā ୧ । ଲଘୁ:ଶିଥ; ହାଲୁକା—1. Light; not heavy. ୨। ନ୍ୟୂନ—2. Deficient, ବୈଦେ.ବ(ଅ)(ଅ—ହଲ୍‌କା =ମଣ୍ଡଳ, ବୃତ୍ତ, ପରିଧି—ରାଜସ୍ୱ ବା ଶାସନବିଭାଗର ହଲକା ଅଧୀନ ଇଲାକା—Circle or jurisdiction for
हलका revenue or administrative purpose.

ହଲ୍‌କାମ୍‌ରା(ର)—ବୈଦେ. ବ—(ଇଂ. କାମେରା)—ଦାଲାନ; ପ୍ରଶସ୍ତ ଓ
Hal-kām-rā(rā) ଲମ୍ବାଗୃହ—A hall; a lang and wide
(ହଲ୍‌ଘର—ଅନ୍ୟରୂପ) room.
हलकामरा हौलकमरा

ହଲ୍‌ଚଲ୍(ଇତ୍ୟାଦି)—ଦେ. ବଣ ଓ ବ—ହଲଚଲ ଇତ୍ୟାଦି(ଦେଖ)—
Hal-chal (etc) Halachala etc. (See)

ହଲ୍‌ବା—ପ୍ରାଦେ ( ସମ୍ବଲପୁର ) କ୍ରି—ହଲିବା—To shake (in-
Hal-bā transitive); to swing to and fro.

ହଲ୍‌ବା(ୱା)ଇ—ପ୍ରାଦେ(ଗଡ଼ଜାତ),ବ—(ଭୁଲ.ଦ୍ର.ହଲୱାଇ)-ହାଲୋଇ;
Hal bā(wā)i ଗୁଡ଼ିଆ; ଯେ ମିଠାଇ ତିଆରି କରି ବିକେ—
(ହଲୁଆଇ—ଅନ୍ୟରୂପ) Confectioner.

ହଲ୍‌ଚଲାଇବା—ପ୍ରାଦେ (ସମ୍ବଲପୁର) କ୍ରି—ଦୋହଲାଇବା; ହଲାଇବା
Hal-chalāibā To shake (intransitive).

ହଲ୍‌ବେଠି (ଭେଟି)—ପ୍ରା ଦେ (ସମ୍ବଲପୁର)ବ—ପ୍ରତିବର୍ଷ ମାଫିଦାରଙ୍କ
Hal-bethi (bheti) ବା ଗଉନ୍ତିଆମାନଙ୍କ ଜମି ଚାଷ କରିବା ପାଇଁ ପ୍ରଜାର ଗୋଟିଏ ହଳ ମାଗଣା ଯୋଗାଇବା ବେଠି—Ploughing by each rayat of his Mafidar's or Gauntiās land on bethi system.

ହଲ୍‌ମାର୍କ(କା)—ବୈଦେ· ବ—(ଇଂ)—ରୂପାର ବା ସୁନାର ବିଶୁଦ୍ଧ
Hal mārk(kā) ଥିବାର ନିଦର୍ଶନ ସ୍ୱରୂପ ସୁନା ବା ରୂପା
हलमार्का ଦ୍ରବ୍ୟ ଉପରେ ମରାଯାଇଥିବା ସରକାରୀ ଛାପା ବା ମୋହର।
हालमार्का Hall mark on gold or silver.

ହଲ୍‌ୱା—ପ୍ରାଦେ. (ଗଡ଼ଜାତ) ବ (ଭୁଲ.,ଦ୍ର. ହଲ୍‌ୱା, ଅ. ହଲ୍‌ୱା)—
Hal-wā ଘିଅରେ ଗହମ ଅଟା ଫୁଟାଇ ତହିଁରେ ଗୁଡ଼ ବା ଅଟା
(ହଲୁଁଆ—ଅନ୍ୟରୂପ) ଭାଜି ତାହା ଟିକିଏ ଲାଲ ହେଲେ ତହିଁରେ ପାଣି ଚିନି ପରେ ମିଠା ସଂଯୋଗକରି ତିଆରି କରିବା ମିଷ୍ଟାନ୍ନ; ଏକ ପ୍ରକାର ମଦକଦ୍ରବ୍ୟ—Halwa; jelly made by adding water and sugar to coars wheaten flour fried in ghee.

ହଲ୍‌ଲିବା—ପ୍ରାଦେ (ପାଟଣା) କ୍ରି—ଗୋଳମାଳ କରିବା; ଗୋଳିଆ
Hal-libā କରିବା—To make noise; to cause confusion.

ହଲ୍‌ହଲ୍—ପ୍ରାଦେ [ସମ୍ବଲପୁର] ବଣ —ଗରମ—
Hal-hal Hot.

ହଲ୍‌ହଲିବା—ପ୍ରାଦେ (ଗଡ଼ଜାତ) କ୍ରି—ହଲିବା (ଅକର୍ମକ)—
Hal-halibā To shake. (intransitive).

ହଲ—ସଂ. ବ (ହଲ୍ ଧାତୁ=କର୍ଷଣ କରିବା+କରଣ ଅ)—୧ । ଭୂମି
Hala କର୍ଷଣ ଯନ୍ତ୍ର; ଲଙ୍ଗଳ—1. A plough.
[ଦ୍ର—ହଳର ଉପର ଭାଗ ଅଙ୍ଗ ପାଇଁ ଲଙ୍ଗଳ ତଳେ ଟୀକା ଦେଖ—
ଇଷ ସହିତ ଲଙ୍ଗଳ, ଯୁଆଳି ଓ ବଳଦ ଆଦି ସମ୍ବଳିତ କୃଷିଯନ୍ତ୍ରକୁ ହଳ ବୋଲାଯାଏ । ହଳଦ୍ୱାରା ଭୂମି କର୍ଷଣ

କରିବା ପାଇଁ ଅନ୍ତତଃ ଦୁଇଟି ବଳଦ ଦରକାର; କିନ୍ତୁ ଯେଉଁ ଚାଷୀର ଗୋଟିଏ ହଳ ଅଛି, ସର୍ବଦା ନିର୍ଦ୍ଦିଷ୍ଟ ଦୁଇଟି ବଳଦ ଦ୍ୱାରା ହଳ ବୁଲାଇଲେ ସେ ବଳଦଙ୍କୁ ବାଧିଯାଏ। ଏଥିପାଇଁ ଧର୍ମଶାସ୍ତ୍ରମାନଙ୍କରେ ଉପଦେଶ ଅଛି ଯେ, ଯେଉଁ ବ୍ୟକ୍ତିର ଗୋଟିଏ ହଳ ଅଛି, ସେ ହଳେ ବଳଦ ଅପେକ୍ଷା ଅଧିକ ବଳଦ ପାଳିବ ଓ ସମୟାନୁକ୍ରମେ ଭିନ୍ନ ଭିନ୍ନ ଯୁଗ୍ମ ଦ୍ୱାରା ହଳ ବୁଲାଇବ। ଧାର୍ମିକ ବ୍ୟକ୍ତି ଗୋଟିଏ ହଳ ପାଇଁ ଚାରି ହଳ (୮ଟି) ବଳଦ ପାଳିବେ। ଜୀବିକାର୍ଥୀ ବ୍ୟକ୍ତି ତିନି ହଳ (୬ଟି) ବଳଦ ପାଳିବେ। ନୃଶଂସ ବ୍ୟକ୍ତି ଦୁଇ ହଳ (୪ଟି) ବଳଦ ପାଳିବ ଓ ବ୍ରହ୍ମଘାତୀ ହଳେ (୨ଟି) ବଳଦ ପାଳିବ। ଆଜିକାଲି ଦୁଇଟି ବଳଦ ଦ୍ୱାରା ଲୋକେ ହଳ ବୁଲାନ୍ତି; କିନ୍ତୁ ହାରୀତ ଧର୍ମଶାସ୍ତ୍ର ଅନୁସାରେ ୮ଟି ବୃଷ ଲଗାଇ ହଳ କରିବ; ଯେଉଁମାନେ ଜୀବିକାର୍ଜନ ପାଇଁ ହଳ କରନ୍ତି ସେମାନେ ୬ଟି ବୃଷ ଦ୍ୱାରା ହଳ କରିବେ। ୪ଟି ବୃଷ ଦ୍ୱାରା ହଳ କରିବା ବ୍ୟକ୍ତି ନୃଶଂସ ଓ ୨ଟି ବୃଷ ଦ୍ୱାରା ହଳ କରିବା ବ୍ୟକ୍ତି ବ୍ରହ୍ମହା; ଗାଈ ଲଗାଇ ହଳ କରିବା ନିଷିଦ୍ଧ। ଅଠଗୋଟି ବୃଷ ଦ୍ୱାରା ଚାଳିତ ହଳକୁ ଧର୍ମହଳ ବୋଲାଯାଏ। [ଅଭିନ୍ନଙ୍କ ଉଦ୍ଧୃତ ହାରୀତ।] ହଳରେ ଲଗିବା ବୃଷ ଦ୍ୱାରା କେଉଁ ଗୁଳନା ନିଷିଦ୍ଧ। ଏହା କଲେ ପ୍ରାଜାପତ୍ୟଦ୍ୱୟ ଆଚରଣ କରିବ ଓ ଗାଈ ଦ୍ୱାରା ହଳ କଲେ ଏହାର ଦ୍ୱିଗୁଣ ପ୍ରାୟଶ୍ଚିତ୍ତ କରିବା ଉଚିତ (ତିଥିତତ୍ତ୍ୱ) (ବିଶ୍ୱକୋଷ)]। ୨। ବଳଦେବଙ୍କ ଦ୍ୱାରା ବାହିତ ଅସ୍ତ୍ର— 2. Plough borne by Baladeba. ୩। (ବ୍ୟାକରଣ) କକାରାଦି ସମସ୍ତ ବ୍ୟଞ୍ଜନବର୍ଣ୍ଣ— 3. Consonants.

যোড়া ज्ञल ଦେ. ବି—୧। (କେଉଁ ହଳ ଅବା ପାଇଁ) ବଳଦ ଅବା ପଶୁଙ୍କ ଯୁଗ୍ମ; ଏକ ଯୋଡ଼ା—1. A pair of animals for a plough or cart. ୨। ଦୁଇସଂଖ୍ୟକ—2. Two in number. ୩। ପଶୁ ଦମ୍ପତି—3. A couple of beasts. ୪। ପଶୁ ଦମ୍ପତିଙ୍କ ଯୌନ ମିଳନ—4. Crossing or sexual intercourse of a couple of beasts. ୫। ହଳାହଳ; ବିଷ—5. Poison. (ଉ—କେବଳ ଖଳ ହଳ ଅନଳ, ସନ୍ତାପକୁ ଏ ସମାମଣ୍ଡଳ, ମଣ୍ଡନମାନଙ୍କରେ ଏ ଘେନି, ନ ହନ୍ତି ହତ ଯେ—ଘାନକୃଷ୍ଣ ରସକଲ୍ଲୋଳ)। ଦେ. ବିଣ— ୧। ଯୁଗ୍ମ—1. A pair of. ୨। ଦୁଇସଂଖ୍ୟକ— 2, Numbering two. (ଯଥା—ହଳେ ବଳଦ, ଦୁଇ ହଳ ମଇଁଷି।) ପ୍ରାଦେ (ବାମଣ୍ଡା) ବି—ବଳଦ— Bullock; ox.

ହଲ—ପ୍ରାଦେ (ଖଡ଼ିଆଳ) ବି—ହଳ; ଯୋଡ଼ି; ଏକତ୍ର ବନ୍ଧା ହୋଇଥିବା
Hala ଦୁଇଗୋଟି ବଳଦ ବା ଯୋଡ଼ିଏ—A pair of beasts tied together.

ହଳ ଓଡ଼େ—ଦେ. ବି—ଏକ ଓଡ଼ ବା ଏକଥର ଭୂମିକୁ ହଳଦ୍ୱାରା କର୍ଷଣ
Hala orde Tilling or ploughing of a land
এক চাষ पेक चाष once only. [ଦ୍ର—ଏହିପରି ହଳ ଦଓଡ଼ (ଦୋଅଡ଼); ହଳ ତିନି ଓଡ଼; ହଳ ଚାରି ଓଡ଼ ଆଦିର ପ୍ରୟୋଗ ହୁଏ।]

ହଲକ୍—ଦେ. ବି (ପ୍ରା. ହଲ୍ଲକ, ସଂ ହୃଦୟ)—୧। ସାହସ—
Halak 1. Courage. ୨। ଧୈର୍ଯ୍ୟ—
হলক हलक 2. Patience. ଦେ'ଦେ.
[ହଲକ—ଅନ୍ୟରୂପ] ବି. [ଆ, ହଲକ୍]—ଗଳାର ନଳୀ; କଣ୍ଠ—Throat.

(ଅମୁକର) ହଲ[ଲ]କ ପାଇବା—ଦେ. କ୍ରି—୧। [କୌଣସି କାର୍ଯ୍ୟ
Hala(l)ka pāibā କରିବାପାଇଁ] ସାହସ ଉପୁଜିବା।
হলক পাওয়া हलक पाना 1. Having the boldness or courage (to undertake a particular work). (ଯଥା—ଏଡ଼େ ଡେଙ୍ଗା ଗଛରେ ଚଢ଼ିବାକୁ ମୋର ହଲକ୍ ପାଉ ନାହିଁ।)

[ଅମୁକର] ହଲକ୍ ଶୁଖିଯିବା—ଦେ. କ୍ରି. (ଆ, ହଲ୍‌କ୍ = କଣ୍ଠନାଳୀ)—
Halak śukhi jibā ୧। ସାହସର ଲୁପ୍ତ ହେବା;
হলক শুখে যাওয়া हलक सूख जाना ସାହସର ଲୋପ—
1. Loss of courage for the doing of a thing. ୨। ଧୈର୍ଯ୍ୟ ଲୁପ୍ତ ହେବା; ଧୈର୍ଯ୍ୟଚ୍ୟୁତି ଘଟିବା—2. Loss of patience.

ହଲକ—ଦେ. ବି—୧। ହଳେ, ହଳଏ; ହଳକ; ଏକହଳ ବା ଏକ
Halaka ଯୋଡ଼ା ମାତ୍ର—1. One pair
এক যোড়া पेक जोड़ा only. ଦେ. ବିଣ—
ଦୁଇ ସଂଖ୍ୟକ—Consisting of one pair only; numbering two.

ହଲ କକୁଦ୍—ସ ବି (୬ଷ୍ଠୀ ତତ୍; ହଲ+କକୁଦ)—ଲଙ୍ଗଳ ମୁଣ୍ଡା;
Hala kakud ଲଙ୍ଗଳର ପଛ (ହ, ଣ)—The base or protruding lower part of a plough.

ହଲ କମା(ମେ)ଇ—ଦେ. ବି—୧। ହଳ ବୁଲାଇବା ଲୋକ ଯେଉଁ
Hala kamā(me)i ଦିନ ହଳ ବୁଲା କାମରେ ଅନୁପସ୍ଥିତ
হালকামাই हलकमाही ହୁଏ—1. The day on which a ploughman does not attend to his daily work of ploughing. ୨। ଦୈନିକ ହଳ ବୁଲାଇବା କାର୍ଯ୍ୟ କରୁଥିବା ହଳିଆର ଏକ ଦିନ ପାଇଁ ଅନୁପସ୍ଥିତି—2. Absence of the plough-man for a day from his ploughing work. (ଯଥା—ଆମ ହଳିଆର ଗତ ମାସରେ ଛଅଟା ବା ଚାରି ଦିନ ହଳକମେଇ ହୋଇଥିଲା।)]

ହଲ କମା(ମେ)ଇ କରିବା—ଦେ. କ୍ରି—ଏକ ଦିନ ହଳ ବୁଲାଇବା କାର୍ଯ୍ୟରୁ
Halakamā(me)i karibā ଅନୁପସ୍ଥିତ ହେବା—
হালকামাইকরা हलकमाइकरना To be

absent from ploughing work for a day.

ହଳ କର—ଦେ: ବ (ସଂ ହଳ+କର=ଶିକଣା; ସଂସ୍କୃତ ଶବ୍ଦସ୍ଥର
Hala kara ଅଧୁନିକ ବ୍ୟବହାର)—ପ୍ରତ୍ୟେକ ଲଙ୍ଗଳ
হালকর हलकर ଉପରେ ବସାଯିବା ଟିକସ—
A tax assessed on every plough.

ହଳ କରିବା—ଦେ. କ୍ରି—ହଳ ବୁଲାଇବା; ଲଙ୍ଗଳଦ୍ୱାରା ଚାଷ କରିବା.
Hala kariba To plough land
হালকবা हलकरना, जोतना

ହଳ କର୍ମ—ସ.ବ ( ହଳ+କର୍ମ )—କ୍ଷେତ୍ରରେ କୃଷି କରିବା କାର୍ଯ୍ୟ;
Hala karma କୃଷିକର୍ମ—Agriculture; the act of ploughing.

ହଲ୍କା—ବୈଦେ. ବ (ଅ. ହଲ୍‌କା=ଚକ୍ର, ମଣ୍ଡଳ; Circle)—
Halaka ୧ । ଶାସନ ସୌକର୍ଯ୍ୟାର୍ଥ ନିର୍ଦ୍ଦିଷ୍ଟ ଏକ
এলাকা हलका କର୍ମଚାରୀଙ୍କ ଅଧୀନ ଇଲାକା—
1. An administrative circle under a public officer; jurisdiction of an officer.
୨ । ହାତୀଦଳ—2. A herd of elephants. ୩ ।
ସେନାଦଳ—3. A body or company of soldiers. ୪ । ଅଶ୍ୱାଦିଙ୍କର ଗଳବେଷ୍ଟନୀ— 4. Halter (put round the neck of a horse.)
ପ୍ରାଦେ (ବାଲେଶ୍ୱର) ବ—ମାଛର ପାଣି ଉପରୁ ଶୂନ୍ୟକୁ ଡେଇଁଲାବେଳେ ସୃଷ୍ଟି କରିବା ବୃତ୍ତାକାର ଲହରୀ—
The circular wave produced by a fish when it springs up from water.

ହଲ୍କାବନ୍ଦି—ବୈଦେ. ବ (ଅ)—ପୃଥକ୍ ପୃଥକ୍ ତାଲୁକା ବା ହଲ୍କା
Halaka bandi ଗଠନ—Formation of groups
এলাকাবন্দি हलकाबंदी or villages into circles.

ହଳ କାମ—ଦେ. ବ ( ହଳ+କାମ )—ହଳକର୍ମ; ହଳ ଚାଷ କାମ—
Hala kama Agriculture; ploughing
চাষের কাজ हल काम operations.
( ଯଥା—ହଳ କାମ ସାରି ଚଷା ମହା ଆନନ୍ଦରେ, ନାନା-ରଙ୍ଗେ ଗୀତ ଗାଇ ବାହୁଡ଼ଇ ଘରେ—ମଧୁସୂଦନ-ଛନ୍ଦମାଳା । )

ହଲ୍କାର—ଦେ, ବ—ହୋଲ୍‌କାର; ଇନ୍ଦୋର ରାଜ୍ୟର ମହାରାଷ୍ଟ୍ରୀୟ
Halakara ରାଜାଙ୍କ ବଂଶୋପାଧି—The family-
হোলকার होलकार title of the Ruling Chief of the Indore state; Holkar.

ହଲକା[କୁ]ହଲ—ଦେ. କ୍ରି. ବଣ—ହଲ ହଲ କରି; ଏକ ହଲ
Halaka(ku)hala ଲେଖାଏଁ—In pairs, by
এব এক যোড়া जोड़ाका जोड़ा pairs.
[ ଯଥା—ପୁଲିସ ଗାଆଁ ବାଲାଙ୍କୁ ହଲକାହଲ ବାନ୍ଧି-ପକାଇଲେ । ]

ହଳଗ୍ରାହୀ—ସ.ବ. ପୁଂ. (ହଳ+ଗ୍ରହ୍ ଧାତୁ+କର୍ତ୍ତୃ ଇନ; ୧ମା ୧ବ)—
Halagrahi ଯେଉଁ ବ୍ୟକ୍ତି ହଳ ବୁଲାଇବା ପାଇଁ କଣ୍ଢିକୁ ଅଥବା ମୁଠା ହାତ ଧରେ—Ploughman.

ହଳଚଳ[ଚଅଳ, ଚହଲ]—ଦେ. ବଣ [ଫ. ଦୋଲନ; ଓ ହଲିବା ଓ
Halachal(cha-al; chahal) ସଂ ଚଳ୍ ଧାତୁରୁ]—
হলচল, নড়চড়া हलचल ୧ । ଇତସ୍ତତଃ
ସଞ୍ଚାଳିତ—1. Moved to and fro. [ ଯଥା—ଚେକି କାନ୍ଧରେ ପଡ଼ିଲେବ ହଳଚଳ ହେବାର କୁହେ—ଫକୀରମୋହନ—ଚଳିସ୍ମୃଲ୍ଲ ।]—୨ । ଇତସ୍ତତଃ ଗମନଶୀଳ; ଚଗଲବଗଲ—2. Moving to and fro. ୩ । ଖଚବଚ; ଅସ୍ଥିର—3. Restless ୪ । (ଲକ୍ଷଣାର୍ଥ)-ନିର୍ଦ୍ଦିଷ୍ଟ ସୀମାର ବା ସ୍ଥାନର ବା ନିୟମର ବ୍ୟତିକ୍ରମ କରିବା ( ବ୍ୟକ୍ତି )—4 [figurative] Going beyond prescribed limits or rule or place.
ଦେ. ବ—୧ । ଅସ୍ଥିରତା—1 Restlessness. ୨ । ନିର୍ଦ୍ଦିଷ୍ଟ ନିୟମର ବ୍ୟତିକ୍ରମ—2. Transgression of any rule. ୩ । ଦୋଳନ—3. Shaking.

ହଳଚଳ ହେବା—ଦେ. କ୍ରି=୧ । ଅସ୍ଥିର ହେବା—1. To be
Halachala heba restless. ୨ । ମତକୁ ସ୍ଥିର
ହଳଚଅଳ ହେବା } —ଅନ୍ୟରୂପ ନ ରଖିବା—2. To be
ହଳଚହଲ ହେବା } fickle not to be
নড়চড়া হওয়া हलचल होना constant.
୩ । ଇତସ୍ତତଃ ଗମିତ ହେବା; ଚଗଲ ବଗଲ ହେବା—
3. To move to and fro. ୪ । [ କଥାରୁ ] ବିଚଳିତ ହେବା—4. To deviate [ from one's promise] ୫ । [ଲକ୍ଷଣାର୍ଥ]—ନିର୍ଦ୍ଦିଷ୍ଟ ସୀମାକୁ ବା ସ୍ଥାନକୁ ବା ନିୟମକୁ ବ୍ୟତିକ୍ରମ କରିବା—5[figurative] To go beyond the prescribed limit; rule or place. ( ଯଥା—ସରକାର ଯେଉଁ ନିୟମ ବାନ୍ଧି ଦେଇ ଅଛନ୍ତି, ସେଥିରୁ ଟିକିଏ ହଳଚଳ ହେବାର ଜୋ ନାହିଁ । )

ହଳଚଳିଆ—ଦେ. ବଣ. ପୁଂ—୧ । ସ୍ୱଭାବତଃ ଅସ୍ଥିର—
Halachalia 1. Restless by nature ୨ । ଯେଉଁ
ହଳଚଅଳିଆ } —ଅନ୍ୟରୂପ ବ୍ୟକ୍ତି ନିଜର ବଚନରୁ ବା ପ୍ରତିଜ୍ଞାରୁ
ହଳଚହଳିଆ } ବିଚଳିତ ହୁଏ—2. Deviating
from one's word or promise.
ହଳଚଳେଇ } ସ୍ତ୍ରୀ ୩ । ଅସ୍ଥିରମନା—3. Fickle-minded. ୪ । ପରିବର୍ତ୍ତନଶୀଳ—
ହଳଚଅଳେଇ }
ହଳଚହଳେଇ } 4. Constantly changing.
অস্থির हलचलिआ

ହଳ ଚିନା—ଦେ. ବ—ଦେ ବ—ହଳକର [ ଦେଖ ]—
Hala china Hala kara [See] ( ଯ—

—ହାରୁ ବଢ଼ନ ଦେଇ ଅଣଇ ସଭୁଭୁଗ,
ଭଣ୍ଡହଳଚନା ବେଠି ସବୁ ଛଡ଼ୁ ଥଗ—
ଶୀତାମ୍ବର ନୃସିଂହସ୍ୱରଣ ।]

ହଳଜୀବୀ—ସଂ. ବି. ପୁଂ—କୃଷିଦ୍ୱାରା ଜୀବିକାନିର୍ବାହକାରୀ ବ୍ୟକ୍ତି; କୃଷକ—Hala jibi An agriculturist.

ହଳ ଟହ(ଅ)ଳ—ଦେ. ବି (ସଂ. ହୋଳ ଓ ଘା ଟହଲ୍=ଭ୍ରମଣ)—Hala ṭaha(a)l ୧ । ଯା ଆସ; ଇତସ୍ତତଃ ଭ୍ରମଣ କରିବା—(ହଲଟଲ୍—ଅନ୍ୟରୂପ) 1. Walking to and fro; ଏଦିକ ସେଦିକ ঘুরা হক্ষ টহল sauntering. ୨ । ଲଙ୍ଗପଙ୍ଗ; କାର୍ଯ୍ୟ ବା ପ୍ରୟୋଜନ ନ ଥାଇ ଇତସ୍ତତଃ ବୁଲିବା; ଲଙ୍ଗରପଙ୍ଗର ହେବା—2. Walking to and fro without any necessity; idle saunter. ଦେ. ବିଣ—ବୃଥା ଇତସ୍ତତଃ ଗମନଶୀଳ—Moving to and fro; idly sauntering.

ହଳ ଟହ(ଅ)ଳିଆ—ଦେ. ବିଣ. ପୁଂ— ୧ । ବୃଥା ଇତସ୍ତତଃ ଯା ଆସ କରୁଥିବା—1. Moving to and fro. Hala ṭaha(a)lia (ହଲଟଲିଆ—ଅନ୍ୟରୂପ) ୨ । ବିନା ପ୍ରୟୋଜନରେ ଇତସ୍ତତଃ ଯାଉଥିବା ଆସୁଥିବା— 2. Walking to and fro without any necessity. ହଳଟହଳେଇ } ସ୍ତ୍ରୀ ହଳଟଳେଇ } ଯେ এদিক্ সেদিক্ বৃথা ঘুরে বেড়ায় ୩ । ବୃଥା ହଲटहलकरनेवाला ଚାଟୁଭ୍ରମଣରେ ସମୟ କ୍ଷେପଣକାରୀ—3. Idly sauntering away time; wasting time by idle saunter.

ହଳଣା—ପ୍ରାଦେ (ସିଂହଭୂମ) ବି—୧ । ବଡ ପଲମ—1. Big Halaṇā earthen pan. ୨ । ଗୁଡ଼ିଆ ଯେଉଁ ହାଣ୍ଡିରେ ମୁଢ଼ି ପାଇଁ ଅଭେପ୍ରେତ ଗ୍ଡ଼ଉଳକୁ ଲୁଣପାଣିରେ ବତୁରାଇ ଚୁଲି ଉପରେ ଉଶୁମାଏ ।—2. The deep earthen pot in which a confectioner heats the salted rice on the oven for preparing Murdhi (fried rice).

ହଳ(ଲା)ଣ୍ଡ—ଦେ. ବି. (ନାମ)—ଇଉରୋପରେ ରାଜ୍ୟ ବିଶେଷ—Hala(lā)ṇḍ Holland, a kingdom of Europe. ହଲଣ୍ଡ ହଲାଣ୍ଡ [ବି—ଏହାର ପୂର୍ବରେ ଜର୍ମାନି, ପଶ୍ଚିମରେ ଓ ଉତ୍ତରରେ ଉତ୍ତର ମହାସାଗର, ଦକ୍ଷିଣରେ ବେଲ୍‌ଜିଅମ୍ ଓ ଜର୍ମାନି । ଏହାର ରାଜଧାନୀ ଆମଷ୍ଟାରଡ଼ମ୍ । ଏ ଦେଶର ଉତ୍ତର ଓ ପଶ୍ଚିମ ଉପକୂଳ ସମୁଦ୍ରର ଜଳ ଅପେକ୍ଷା ନୀଚ ଥିବାରୁ ବନ୍ଧ ଦ୍ୱାରା ସମୁଦ୍ର ପାଣିକୁ ଅଟକାଇ ରଖାଯାଇଅଛି । ଏହି ଦେଶବାସୀଙ୍କୁ ଓ ଭାଷାକୁ 'ଡଚ୍' (Dutch) ବୋଲାଯାଏ । ବର୍ତ୍ତମାନ ( ୧୯୪୦ ରେ ) ଜର୍ମାନୀ ଏହାକୁ ଆକ୍ରମଣ କରିଅଛି ।

ହଳ ଦଣ୍ଡ—ସଂ. ବି ( ୬ଷ୍ଠୀ ତତ୍ ) — ଈଷ — The beam of a Hala daṇḍa plough.

ହଳଦା—ପ୍ରାଦେ ( ଗଡ଼ଜାତ ) ବି—ହଳଦିଆ ବର୍ଣ୍ଣର କାଷ୍ଠବିଶିଷ୍ଟ Haladā ନାତିବୃହତ୍ ଅରଣ୍ୟ ତରୁ—Dispyros ହଲଡু Montana (tree). [ବି—ଏହାର କାଠରେ କବାଟ ଓ ଖଟ ଆଦି ହୁଏ ।]

ହଳଦା(ଦେ)ଇବା—ଦେ: କ୍ରି—ହଳଦିଆ ବର୍ଣ୍ଣରେ ରଞ୍ଜିତ କରିବା—Haladā(de)ibā To dye yellow. (ଉ—ଆଉ ଯେତେ হলদে রঙ্ করা ଲୁଗା ହଳଦାଇ ଦେଲ—ଭୂଇ ଖଣ୍ଡି पीला करना ଉଡ଼ୁଁ ଥାନ୍ତି ।—ଉପେନ୍ଦ୍ର. ଲାବଣ୍ୟ ବତୀ ।

ହଳଦି(ଦୀ)—ଦେ. ବି—[ ସଂ. ହରିଦ୍ରା, ହଳଦୀ (ପ୍ରାକୃତ) ]—Haladi(dī) ପ୍ରା—ହଳଦୀ] —ହରିଦ୍ରା (ଦେଖ)— হলুদ हलदी Haridrā (See).

ହଳ(ଲ)ଦି—ପ୍ରାଦେ (ସମ୍ବଲପୁର ଓ ଗଡ଼ଜାତ) ବି. ହଳଦ—Hala(l)di Turmeric; Corcuma Longa. (Kirtikar). ଦେ. ବି (ନାମ) ମେଦିନୀପୁରର ନଦୀବିଶେଷ—Name of a river in Midnapur. [ବି—ଏହା କୁଶୁଲ ବା ଭାଗୀରଥୀ ନଦୀର ଉପନଦୀ । ଏ ଉପନଦୀ କସାଇ ଓ କେଲେଘାଇ ନାମକ ଦୁଇଟିର ସଂଯୋଗରେ ଉତ୍ପନ୍ନ ହୋଇଅଛି । ଉତ୍ତରରେ ରୂପନାରାୟଣ ନଦୀ ଓ ଦକ୍ଷିଣରେ ରସୁଲପୁର ନଦୀ ସହିତ କେନାଲ ଦ୍ୱାରା ଏହା ସଂଯୁକ୍ତ ହୋଇଅଛି—ବିଶ୍ୱକୋଷ)

ହଳଦିଆ—ଦେ. ବିଣ—(ସଂ. ହରିଦ୍ରାଭ)—୧ । ହରିଦ୍ରାବର୍ଣ୍ଣବିଶିଷ୍ଟ—Haladiā 1. Yellow. ୨ । ହରିଦ୍ରାରଞ୍ଜିତ—2. Dyed হলদে with turmeric. ୩ । ହଳଦସ୍ୱାଦଯୁକ୍ତ— पीला 3. Having the taste of turmeric. ୪ । ଯେଉଁ ଡାଲଣାରେ ଉପଯୁକ୍ତ ପରିମିତ ହଳଦ ଅପେକ୍ଷା ବେଶି ହଳଦ ଦିଆଯାଇଥାଏ — 4. ( Curry ) In which more than the requisite quantity of turmeric has been administered. ( ଉ—ବଳେଇ ! ଭାତ ହେଲା ଲଗେଇ, ଡାଲଣ ହେଲା ହଳଦିଆ, ଖୁର୍ଦ୍ଦିକ ହେଲା ବଳଦିଆ—ଶିଶୁ ଗୀତ । ) ୫ । ( ସଂ ହଳ+ଦା ଧାତୁରୁ )—ଯେଉଁ ଜମିରେ ହଳ ଦିଆ ଯାଇଥାଏ; ଯେଉଁ ଜମିରେ ହଳ ବୁଲିଥାଏ; ହଳଦ୍ୱାରା କର୍ଷିତ—Ploughed land.

ଦେ. ବି (ସଂ ହରିଦ୍ରା)—୧ । ପୀତକାମଳ ରୋଗ—1. Jaundice. [ବି—ଏହି ରୋଗରେ ଆଖି, ଦେହର ଚର୍ମ, ମୂତ୍ର ଓ ପୁରୀଷ ହରିଦ୍ରାଭ ଦେଖାଯାଏ । ରୋଗୀ ଯେଉଁଆଡ଼କୁ ଚାହାନ୍ତି ସେ ଜଗତର ସବୁ ପଦାର୍ଥ ତାଙ୍କୁ ହଳଦିଆ ଦେଖାଯାଏ ।] ୨ । ( ନାମ ) ଖୋରଧାର ଗୋଟିଏ ଗ୍ରାମ—2.The name of a village in Khurda. [ବି—ଏଠାରେ ଉତ୍କଳର ସୁକବି 'ଭଞ୍ଜ' ଉପାଧିଧାରୀ ଗୃହଏ ଛତ୍ରିୟ ବାସ କରନ୍ତି ।] ୩ । (ସଂ. ହଳ+ଦା ଧାତୁରୁ ]—ଜମିକୁ ହଳ ଦେବା ବା ଜମିରେ ହଳ ବୁଲାଇବା କର୍ମ—3. The ploughing of a field.

ପ୍ରାଦେ( ପୁସ୍ତି )ବି—ଓଲାଉଠା; ବିସୂଚିକା— Cholera.

**ହଳ(ଲ)ଦିଆ**—ପ୍ରାଦେ (ସମ୍ବଲପୁର) ବିଣ—ହଳଦିଆ (ଦେଖ)—
Hala(l)diā Haladiā (See)

**ହଳଦିଆ ଗର୍‌ଗର୍‌**—ପ୍ରାଦେ. ( ସମ୍ବଲପୁର ) ବିଣ—ହଳଦି ଗର୍‌ଗର୍‌
Haladiā gar-gar (ଦେଖ)—Haladi gar-gar (See)

**ହଳଦିଆ ଜୁଆର**—ଦେ° ବି—ବସନ୍ତ ଋତୁରେ ଚିଲିକାରେ ହେବା
Haldiā juāra ଅନୁଚ୍ଚ ଜୁଆର—Low flow tide appearing in the Chilka lake during spring.

**ହଳଦିଆ ଜୁଇ**—ଦେ. ବି—(ସଂ. ହେମ ପୁଷ୍ପିକା)—ହେମ ପୁଷ୍ପିକା; ହରିଦ୍ରାଭ
Haladiā jui ଜୁଇ ଫୁଲ—Jasminum Humile.
ସ୍ୱର୍ଣଜୁଇ सोनजुही, गुड्डहर

**ହଳଦିଆ ତେଲି**—ଦେ. ବି—( ଏମାନେ ହଳଦିର ବ୍ୟବସାୟ ଓ ଚାଷ
Haladiā teli କରୁଥିବାରୁ )—ତେଲି ଜାତିର ଶାଖାବିଶେଷ—
ହଲୁଦେ তিলি A subsection of the Teli caste.
କୋଇରୀ [ଦ୍ର—ଏମାନେ ବୈଶ୍ୟ । କୃଷି ଓ ବାଣିଜ୍ୟ ଏମାନଙ୍କର କୌଳିକ ବ୍ୟବସାୟ । ହଳଦି ଚାଷ କରୁଥିବାରୁ ଏମାନଙ୍କର ହଳଦି ମୁଣ୍ଡା ସନ୍ତକ । ବାଣିଜ୍ୟ ଦ୍ୱାରା ପ୍ରଚୁର ଧନ ଅର୍ଜନ କରି ଧନୀ ହୋଇ ଥିବାରୁ ଏମାନେ ଓଡ଼ିଶାରେ 'କୁବେର ପୁତ୍ର' ନାମରେ ଅଭିହିତ । ପ୍ରାଚୀନ କାଳରେ ଏମାନେ ବୋଇତରେ ବାଣିଜ୍ୟ କରୁଥିଲେ ଓ ତଦ୍ୱାରା ପ୍ରଚୁର ଧନ ଅର୍ଜନ କରି ଧନକୁବେର ଆଖ୍ୟା ମଧ୍ୟ ପାଇଥିଲେ । ଦର୍ପଣୀ କିଲ୍ଲାର ପ୍ରାଚୀନ ତେଲିରାଜାମାନଙ୍କର ଯେଉଁ ଗଡ଼ ଥିଲା, ତାହାର ଭଗ୍ନାବଶେଷ ଏଥିର ସାକ୍ଷିରୂପେ ଦଣ୍ଡାୟମାନ ରହିଅଛି । କୋଣାର୍କ ନିକଟରେ ଥିବା 'ତେଲିକୁଦ' ମଧ୍ୟ ଏମାନଙ୍କ ପୂର୍ବ ଗୌରବର ଅନ୍ୟତମ ସାକ୍ଷୀ । ଜଗନ୍ନାଥ ମହାପ୍ରଭୁଙ୍କର ସେଉଁ ଛତିଶା ନିଯୋଗ ଅଛନ୍ତି, ତନ୍ମଧ୍ୟରୁ ଧୂପ ସମୟରେ ମଶାଲ ଧରିବା ତେଲିମାନଙ୍କର ନିଯୋଗର କର୍ମ ଅଟେ । ପୂର୍ବେ କୋଲୁମାନେ ତେଲ ପେଡ଼ି ଜଗନ୍ନାଥ ମନ୍ଦିରକୁ ତେଲ ଯୋଗାଉ ଥିଲେ ଓ ତେଲିମାନେ ମଶାଲ ଧରିବା ସେବା କରୁଥିଲେ । ଏଥିଯୋଗୁଁ ରାଜ ଦରବାରରୁ ଏମାନଙ୍କୁ ଜମି ଓ ଶାଢ଼ି ମିଳୁଥିଲା ।

ତେଲିମାନଙ୍କର କେତେକ ମହତ୍ କାର୍ଯ୍ୟ ଯୋଗୁଁ ସେମାନଙ୍କୁ ରାଜଦରବାରରୁ ମହାପାତ୍ର, ସୁବୁଦ୍ଧି, ପୃଷ୍ଟି (ପୁଷ୍ଟି) ଓ ସାଣି ପ୍ରଭୃତି ଉପାଧି ମିଳିଥିଲା । କୌଣସି କୌଣସି ଅଞ୍ଚଳରେ ବ୍ରାହ୍ମଣମାନେ ଏମାନଙ୍କର ଶ୍ରୁବିଶ୍ରାଦ୍ଧ ଓ ହୋମାଦି କାର୍ଯ୍ୟ ସମ୍ପାଦନ କରନ୍ତି ଓ ଏମାନଙ୍କ ଘରେ ଜଳଯୋଗ ମଧ୍ୟ କରନ୍ତି । ଏମାନଙ୍କ ମଧ୍ୟରୁ କେତେକ ଦେବାଳୟ ସ୍ଥାପନ କରିଅଛନ୍ତି ଓ ଅଭ୍ୟାଗତମାନଙ୍କୁ ଭୋଜନାଦି ଦେବାର ବନ୍ଦୋବସ୍ତ ମଧ୍ୟ କରିଅଛନ୍ତି । ଥରେ ଓଡ଼ିଶା ମହାରାଜ ଖୋର୍ଦ୍ଧାଠାରୁ ପୁରୀକୁ ଆସୁଥିବା ସମୟରେ ଦେଖିଲେ ଯେ, କୋଲୁମାନଙ୍କ ମଧ୍ୟରୁ କେତେକ କୁକାର୍ଯ୍ୟରେ ରତ ହୋଇଛନ୍ତି । ଏହି ହେତୁରୁ ସେମାନଙ୍କୁ ଜଗନ୍ନାଥମନ୍ଦିରକୁ ତେଲ ଯୋଗାଇବା କାର୍ଯ୍ୟରୁ ମହାରାଜ ବାସନ୍ଦ କଲେ ଓ ଯେଉଁମାନେ ମଶାଲ ଧରୁଥିଲେ, ସେମାନଙ୍କୁ ତେଲ ପେଡ଼ିବାକୁ ଆଦେଶ ଦେଲେ । ସେହି-ଦିନଠାରୁ ତେଲିମାନେ ତେଲ ପେଡ଼ି ଶ୍ରୀମନ୍ଦିରରେ ମଶାଲ-ଧରା ସେବା କରି ଆସୁଅଛନ୍ତି ।

ଏମାନଙ୍କ ଛଡ଼ା ଆଉ କେତେକ ତେଲି ବଙ୍ଗ, ତେଲିଙ୍ଗ ଓ ପଶ୍ଚିମାଞ୍ଚଳରୁ ଆସି ଓଡ଼ିଶାର ଉତ୍ତର ଅଞ୍ଚଳରେ ବସତି ସ୍ଥାପନ କରି ରହିଅଛନ୍ତି । ଉତ୍ତର ଅଞ୍ଚଳ ଏମାନଙ୍କର ପ୍ରାଥମିକ ବସତି ହୋଇଥିବାରୁ ଏମାନଙ୍କୁ ଉତ୍ତରିତେଲି କୁହାଯାଏ । ଓଡ଼ିଶାରେ ଏମାନଙ୍କ ସଂଖ୍ୟା ଖୁବ୍ କମ୍ ଓ ପ୍ରାଚୀନକାଳରୁ ବାସ କରୁଥିବା ତେଲିଙ୍କ ସଂଖ୍ୟା ଖୁବ୍ ବେଶୀ ।—ସନ୍ଦର୍ଭ ଲେଖକ—ଲକ୍ଷ୍ମୀନାରାୟଣ ସାହୁ ଏମ୍.ଏ]

**ହଳଦିଆ ପତ୍ର**—ଦେ. ବି—( ସଂ ହରିଦ୍ରା+ପତ୍ର )—ବାଲ୍ୟବିବାହିତା
Haladiā patra କନ୍ୟାର ପିତୃ ଗୃହରେ ପ୍ରଥମ ରଜୋଦର୍ଶନ ହେଲେ ଯେଉଁ ହଳଦିବୋଳା ତାଳ ପତ୍ରରେ ଏ ସମ୍ବାଦ ସ୍ୱାମୀଙ୍କ ଗୃହକୁ ପ୍ରେରିତ ହୁଏ—A palm leaf besmeared with turmeric paste in which the news of the first menses of a girl-wife staying at her father's house before puberty is written and sent to her husband's family.

**ହଳଦିଆ ପତ୍ର ପଠାଯିବା (ହବା)**—ଦେ ବି—ବାଲ୍ୟ ବିବାହିତା କନ୍ୟାର
Haladiā patra pathā jiba ପିତୃ ଗୃହରେ ପ୍ରଥମ ରଜୋଦର୍ଶନ ହେଲେ ଏହି ସମ୍ବାଦ ହଳଦିଲଗା ତାଳପତ୍ରରେ ଲେଖାଯାଇ, ପିତୃଗୃହରୁ ସ୍ୱାମୀଗୃହକୁ ପ୍ରେରିତ ହେବା—The sending of news of the first menses of a girl-wife by her father's men by means of a palm leaf dyed with turmeric, to her husband's place.

**ହଳଦିଆ ବସନ୍ତ**—ଦେ. ବି.—୧ । ହଳଦି ବସନ୍ତ (ଦେଖ)—
Haladiā basanta 1. Haladibasanta (See)
ହলুদেবসন্ত हल्दीबसन्त ୨ । ବର୍ଷାୟୁ ଶାକବିଶେଷ—
2. A kind of annual pot herb.
[ଦ୍ର—ଏହା ଉଚ୍ଚାକୋଠା, ଉଚ୍ଚା ବାଡ଼ି ଓ ଉଚ୍ଚଥାଳଭୂମିରେ ଜନ୍ମେ । ଏଥିର ଫୁଲ ଶେତ ଓ ହଳଦିଆ; ଫୁଲର ଦୁଇଟା ବଡ଼ ଓ ଦୁଇଟା ଶେତ କେଶର ଥାଏ । ଏ ଗୁଳ୍ମର ତାଙ୍ଗ ଭାରି ମଧୁର । ]

| ୯ | ଉ | ଊ | ୠ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ୍ | ଉଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୬ | | ଊ | ଋ | ଌ | ଏ୍ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଗ୍ୟ | ଯ | ସ | ଗଁ | ଇଅ | ଓ | ମ୍ଭ |

ହଳଦଆ ବେମାରି (ରୋଗ)—ଦେ ବ—ପିତ୍ତକାମଳ ରୋଗ—
Haladiā bemāri (roga) Jaundice.
হলুদেরোগ पांडु

ହଳଦଆ ଭଞ୍ଜ—ଦେ.ବ—ପୁରୀଜିଲ୍ଲାର ଖୋରଧା ସବଡିଭିଜନର ହଳଦଆ
Haladiā bhañja ଗ୍ରାମବାସୀ ଭଞ୍ଜ ଉପାଧିଧାରୀ କ୍ଷତ୍ରିୟ—
A Kshatriya of the Bhanja family of Haladia village in Khurda Sub-division of Puri district.

ହଳଦଆ ମାଗୁରା—ଦେ. ବ—ମୋଟା ଧାନ୍ୟବିଶେଷ—
Haladiā māgurā A species of yellow-chaffed paddy growing where water stands throughout the rainy season.
[ଦ୍ର—ବର୍ଷା ଋତୁ ଯାକ ଯେଉଁ ବିଲରେ ପାଣି ଜମା ହୋଇ ରହେ, ସେ ବିଲରେ ଏ ଧାନ ଫସଲ କରାଯାଏ ।]

ହଳଦଆ ଶାଆଳ (ଶାଳ)=ଦେ. ବ—ହଳଦଆ ବର୍ଣ୍ଣ ଶକଳ ମତ୍ସ୍ୟ—
Haladiā śā-lāla [śāla] A big variety of śāla fish.
হলদেশাল शालमछली

ହଳଦି ଉ(ଓ)ପାଡ଼ିବା—ଦେ. କ୍ରି—ଦେହରେ ବୋଳା ଯାଇଥିବା
Haladi u(o)pārdibā ବଟା ହଳଦି ଟିକିଏ ଶୁଖିଗଲା ପରେ ସେହି ଲେପକୁ ହାତରେ ମଳିକରି ଦେହରୁ ଛଡ଼ାଇ ଦେବା—To scrape or rub off the dried turmeric paste from the body.
[ହଳଦି ଉ(ଓ) ପଡ଼ା—ବି. ରୂପ] after it dries up a little.
হলুদমুছিয়েফেলা हलदीछुड़ाना

ହଳଦି କାଠୁଆ—ଦେ. ବ—୧ । ଯେଉଁ କାଠର ପାତ୍ରରେ ବଟା ହଳଦି
Haladi kāṭhuā ରଖାଯାଏ—1. A cup-shaped
হলুদের বাবকোষ wooden pot used for keeping
कठमाली turmeric paste for use. ୨ । (ନାମ) ଭୁବନେଶ୍ୱରସ୍ଥ କେଦାରଗୌରୀ ନାମକ ଜଳକୁଣ୍ଡର ଉତ୍ତର ପାଖରେ ଥିବା ଈଷତ୍ ହଳଦିଆ ଜଳ ବିଶିଷ୍ଟ ଗୋଟିଏ କୁଣ୍ଡ—2. Name of a spring-water-tank adjoining the Mukteśwara temple in Bhubaneśwara. [ଦ୍ର—ଏହା ମୁକ୍ତେଶ୍ୱରଙ୍କ ଦେଉଳର ପଶ୍ଚିମକୁ ଲାଗିଛି । ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ଏଥିରୁ ବୋହିଯିବା ପାଣି (ଯାହା କେଦାରଗୌରୀ କୁଣ୍ଡରେ ଯାଇ ପଡ଼େ) ଅତି ନିର୍ମଳ ଓ ସ୍ୱଚ୍ଛ; କିନ୍ତୁ ଏ କୁଣ୍ଡର ପାଣି ଦୁର୍ଗନ୍ଧ ଓ ଅବ୍ୟବହାର୍ଯ୍ୟ ।]

ହଳଦି କୋଡ଼ି—ଦେ. ବ—ହଳଦି କିଆରି କୋଡ଼ିବା ନିମନ୍ତେ
Haladi kordi ଏକ ଇଞ୍ଚ ପ୍ରସ୍ଥବିଶିଷ୍ଟ କୋଡ଼ି—A narrow spade for loosening earth between two rows of plants in the turmeric field.
হলুদতোলাকোদাল हलदीकोड़ी

ହଳଦି ଗରଗର (ଗର୍ଗର୍; ଗାରୁ ଗାରୁ)—ଦେ. ବଣ—(ସ. ହରିଦ୍ରା ଓ
Haladi gara gara (gargar, gāru gāru) ଜର୍ଜର)—
হলুদেগবগর্ हलदीहरदी ୧ । ଅଶେଷ ପରିମାଣରେ ହଳଦି ବୋଳା ହୋଇଥିବାରୁ ଅତ୍ୟନ୍ତ ହଳଦିଆ ଦେଖା ଯାଉଥିବା (ଦେହ)—1. Excessively annointed with turmeric paste. [ଉ—ହଳଦି ଗରଗର, ବର୍ଣ୍ଣତ କଳେବର—ସଙ୍ଗୀତ ।] ୨ । ହଳଦିଆ ରଙ୍ଗରେ ବିଶେଷ ଭାବରେ ରଞ୍ଜିତ—2. Excessively dyed with yellow. [ଦ୍ର—ହଳଦି ଲଗାଇଥିବା ପିଲାଙ୍କୁ କାଖେଇବା ଓ ହରିଦ୍ରାରଞ୍ଜିତା ସ୍ତ୍ରୀଙ୍କୁ ଆଲିଙ୍ଗନାଦି କରିଥିବା ବ୍ୟକ୍ତିଙ୍କ ଲୁଗାପଟା ଓ ଦେହ ହଳଦି ଗରଗର ହୋଇଥାଏ ।]

ହଳଦି ଗୁଣ୍ଡ(ଣ୍ଡା) — ଦେ. ବ—ଚୂର୍ଣ୍ଣୀକୃତ ହଳଦି—Turmeric
Haladi gunda(ndā) powder.
হলুদগুঁড়ো हलदीबुकनी

ହଳଦି ଗୁଣ୍ଡା(ଗୁଁଣ୍ଡା)—ପ୍ରାଦେ (ଦକ୍ଷିଣ) ବ—ବିବାହାଦି ଉପଲକ୍ଷରେ
Haladi gundā(guñrdā) ବନ୍ଧୁମାନଙ୍କୁ ପ୍ରେରିତ ନିମନ୍ତ୍ରଣରେ ଗୁଆସହିତ ପଠାଯିବା ହଳଦି ଗୁଣ୍ଡା—Turmericpowder sent with areca nuts to relations for invitation for marriage and other social festivities. [ଦ୍ର—ଏହାକୁ ଗୁଆଗୁଣ୍ଡା ମଧ୍ୟ କହନ୍ତି ।]

ହଳଦିଗୁଣ୍ଡି—ଦେ. ବ—ହଳଦିଆ ଧାନ୍ୟବିଶେଷ—Name of
Ha ladi gundi yellow variety of paddy.
হলদেগুঁড়ি ধান [ଦ୍ର—ଏହାର ଦାନା ଛୋଟ ଛୋଟ ଓ ସୁଗନ୍ଧଯୁକ୍ତ ।]

ହଳଦି ଘାଟ(ଟୀ)—ଦେ. ବ (ନାମ)—ରାଜପୁତାନା ଅନ୍ତର୍ଗତ ମେବାରର
Haladighāṭa(ṭi) ପ୍ରସିଦ୍ଧ ଗିରିପଥ ଓ ଯୁଦ୍ଧକ୍ଷେତ୍ର—Name of a famous mountain pass and battle-field in Mewar. [ଦ୍ର—ଏଠାରେ ରାଣା ପ୍ରତାପସିଂହ ଅକବରଙ୍କ ସେନାପତି ମାନସିଂହଙ୍କ ଦ୍ୱାରା ପରାସ୍ତ ହୋଇ ଥିଲେ । ପ୍ରତାପଙ୍କ ଘୋଡ଼ା ଆହତ ହେବାରୁ ଅକବରଙ୍କ ପକ୍ଷାବଲମ୍ବୀ ପ୍ରତାପଙ୍କ ଭାଇ ଶାକ୍ତସିଂହ ତାଙ୍କୁ ଗୋଟିଏ ଘୋଡ଼ା ଦେବାରୁ ପ୍ରତାପ ପଳାଇଗଲେ ଓ ପରେ ଯୁଦ୍ଧରେ ଜୟୀ ହୋଇ ମେବାର ରାଜ୍ୟକୁ ଜିଣି ଉଦୟପୁରରେ ୧୫୮୦ ଖ୍ରୀଷ୍ଟାବ୍ଦରେ ରାଜଧାନୀ ସ୍ଥାପନ କଲେ ।]

ହଳଦି ଚେସିବା—ପ୍ରାଦେ (ବୌଦ୍ଧ) କ୍ରି—ହଳଦିକୁ ବାଟିବା ବା ଗୁଣ୍ଡ
Haladi ṭhesibā କରିବା—To make powder or paste of turmeric.

ହଳଦି ତେଲ—ଦେ. ବ—ହଳଦି ମାଲପା (ଦେଖ)
Haladi tela হলুদতেল हलदीतेल Haladimālapā (See).

ହଳଦି ପାଣି—୧ । ବଟା ହଳଦିମିଶ୍ରିତ ଜଳ—1. Water mixed
Haladi pāni with turmeric paste.
হলুদ জল ୨ । ଚନ୍ଦନଯାତ୍ରାର ଶେଷ ଦିନ ଲୋକଙ୍କର
हलदी पानी

[ବିପରୀତ—କାନ୍ଦିବା] ରାଜା ଶୁମୁରେ ଦେଖିଲେ ହସି—ବ୍ରହ୍ମସିଂହ ମହାଭାରତ ସଭା] ୨ । କୌଣସି ବ୍ୟକ୍ତିଙ୍କୁ ଉପହାସ କରିବା —2. To laugh at a person. [ଦ୍ର—ଉପଚକ୍ରୀ ଛାଣି ବାଲକ ଯେ ହସେ ହସି ସେ ତା ପଛେ ଅସି ଲୁଚ ବସେ—ରାଧାନାଥ. ଦରୋଗ] ୩ । (ଫୁଲ) ପ୍ରସ୍ଫୁଟିତ ହେବା; ଫୁଟିବା - 3. To be full blown (said of flowers). ୪ । (ଲକ୍ଷଣାର୍ଥ) ଉଜ୍ଜ୍ୱଳ ଦେଖାଯିବା; ଶୋଭି ପାଇବା—4. (figurative) To look bright; to shine. (ଯଥା—ତୋରାଗରେ ଶରୀରଟି ଏ ଲୁଗା ହସୁଛି) ୫ । (ଲକ୍ଷଣାର୍ଥ) ଶୋଭାଯୁକ୍ତ ହେବା—5 (figurative) To be splendid (ଦ୍ର—ହସିଲା ସୁନ୍ଦର ନଭ ତାରକା ଶୁକ୍ଳିତ—ଗୋଲକ ଚନ୍ଦ୍ରରେଖା) ୬ । (ଲକ୍ଷଣାର୍ଥ) ଚୁଲା ଉପରେ ବସିଥିବା ପାତ୍ର ତଳେ ଲାଗିଥିବା ହାଣ୍ଡି ତଳର ଝୁଲମାନ ନିଆଁ ଲାଗି ଯାଇ ହେବା—6. (figurative) (said of an earthen pot to whose back particles of soot adhere) To be ignited at the bottom while over fire. [ଯଥା—ହାଣ୍ଡି ହସୁଛି ।] [ଦ୍ର ସ୍ତ୍ରୀଲୋକମାନଙ୍କ ମଧ୍ୟରେ ଗୋଟିଏ ଲୌକିକ ବିଶ୍ୱାସ ପ୍ରଚଳିତ ଅଛି ଯେ, ଯେଉଁ ବ୍ୟକ୍ତିର ଘରେ ହାଣ୍ଡି ହସେ, ସେ ପରିବାରରେ ଶୀଘ୍ର ବିବାହାଦି କୌଣସି ମଙ୍ଗଳ କର୍ମ ହୁଏ । ଫଳତଃ ହାଣ୍ଡିର ତଳ ହାଣ୍ଡିକାଳାରେ ନିର୍ମଳ ହୋଇ ଧୂଆଁ ହୋଇ ନ ଥିଲେ ସେହି କାଳାରେ ନିଆଁ ଧରି ତାହା ଜଳଜଳ ଦିଶେ] ୭ । (ଲକ୍ଷଣାର୍ଥ) ପ୍ରଦୀପର ସଳିତାରେ ଫୁଲ ବା ଗୁଲ ଯୁକ୍ତ ହେବା—7. (figurative) (said of the wick of an oil lamp) To have blazing soots formed on the body of the wick [ଦ୍ର—ଦୀପ ହସିବାର ଦେଖାଗଲେ ସେହି ପରିବାରରେ ଶୀଘ୍ର ମଙ୍ଗଳ ଉତ୍ସବ ହେବ ବୋଲି ସ୍ତ୍ରୀମାନେ ବିଶ୍ୱାସ କରନ୍ତି ) (ଦ୍ର—ଅନ୍ତରରେ ଅନୁଭୂତ ଆନନ୍ଦକୁ ମୁଖଦ୍ୱାରା ପ୍ରକାଶ କରିବାକୁ ହସିବା କହନ୍ତି ଏହା ଈଷଦ୍ଧାସ୍ୟ ( ମୃଦୁ ହସ ) ଠାରୁ ଉଚ୍ଚହାସ୍ୟ ( ହୋ ହୋ ହୋଇ ହସିବା) ପର୍ଯ୍ୟନ୍ତ ବିବିଧପ୍ରକାର ହାସ୍ୟ ଦ୍ୱାରା ପ୍ରକାଶିତ ହୁଏ ।]

ହସିଲା ହସିଲା—ଦେ. ବିଣ—ବାରମ୍ବାର ଯୁକ୍ତ; ହସ ହସ; ଈଷଦ୍ଧାସ୍ୟ ଯୁକ୍ତ
Hasilā Hasilā —Smiling.
हासाहासा हँसहँसकर
(ଦ୍ର—ଏମିତି ହସିଲା ହୋଇ ଚନ୍ଦ୍ରମା ଅସିଲା—ଭକ୍ତ. ଗୋବିନ୍ଦଚନ୍ଦ୍ର ସୁନ୍ଦରୀ)

ହସି ହସି ନୋ(ଲୋ)ଟେଇ କୋଟର ହେବା - ଦେ. କ୍ରି—ଅତ୍ୟଧିକ
Hasi hasi no (lo)ṭera kotara hebā ପରିମାଣରେ ଉଚ୍ଚହାସ୍ୟ
ହସିହସି ପେଟ ଦରଜ ହେବା
ହସିହସି ଦାନ୍ତ ଚମକ ଯିବା } ଅନ୍ୟରୂପ ] ଶବ୍ଦ ହସିବାଦ୍ୱାରା
ହସିହସି ଅନ୍ତ ଛିଡ଼ିବା ଅଳ୍ପାଳୁ ବା ଅଷ୍ଟ-ମ୍ଳାନ ହେବା—

ହସି ହସି ଗଡ଼ିଯିବା—ଅନ୍ୟରୂପ] To be beside one's
हँसे हँसे पेट दबज हउआ self with fits of inordi-
हसहसकर लोटपोट होना nate laughing.

ହସୁଆ ଦେ. ବିଣ ପୁଂ—୧ । ହସୁରା (ଦେଖ)—1. Hasurā (See)
Hasuā ୨ । ଯେ ଅନ୍ୟ ଲୋକଙ୍କୁ ହସାଇପାରେ—2. One
[ହସେଇ, ହସେଇ—ସ୍ତ୍ରୀ ] who provokes laughter
हास्यामोदी हसोर in others.

ହସୁରା—ଦେ. ବିଣ ପୁଂ—(ଭୁଲ, ବାଳୁଗ, ହସୁର, ଯାତୁରା ଇତ୍ୟାଦି)—
Hasurā ୧। (ସ୍ୱାର୍ଥେ) ଅତ୍ୟନ୍ତ ହାସ୍ୟରତ; ଯେ ସର୍ବଦା ହସୁଥାଏ;
[ହସୁରୀ—ସ୍ତ୍ରୀ] ଚୋରେଇ; ଭେରେଣ୍ଡା—1. Given to laugh-
[ବିପରୀତ—କାନ୍ଦୁରା] ing; addicted to laughing. ୨ ।
हेसड़ो हास୍ୟଯୁକ୍ତ; ସହାସ୍ୟ—2. Smiling; laughing.
हँसोर [ଦ୍ର—ଏହା ମଧ୍ୟ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ହାସ୍ୟର ପ୍ରକାର ବୁଝାଏ । ଯଥା—ଦରହସୁରା, ଭୁଁଇହସୁରା ]

ହସୁରାମୁହଁ—ଦେ. ବି—ସହାସ୍ୟ ମୁଖ; ପ୍ରଫୁଲ୍ଲ ବଦନ—
Hasurā muhan̄ Smiling face.
हासिमुख हसमुख

ହସୁରା ମୁହାଁ—ଦେ. ବିଣ. ପୁଂ—୧ । ପ୍ରଫୁଲ୍ଲବଦନଯୁକ୍ତ—1. Hav-
Hasurā muhān̄ ing a smiling face. ୨ । ସରସ
[ହସୁରା(ରୀ) ମୁହାଁ—ସ୍ତ୍ରୀ] ମୁହାଁ—2. Having a smiling
हासिमुखो हसमुहा or pleased exterior.

ହସ୍ତ—ସଂ. ବି—(ହସ ଧାତୁ = ହାସ୍ୟ କରିବା + କର୍ତ୍ତୃ. ତ, ପ୍ରା. ହତ୍ଥ)—
Hasta ୧ । ହାତ; କହୁଣିଠାରୁ ଅଙ୍ଗୁଳିର ଅଗ ପର୍ଯ୍ୟନ୍ତ ଅଙ୍ଗ—
ସଂ. ପର୍ଯ୍ୟାୟ— 1. Hand [ଦ୍ର—କହୁଣିଠାରୁ ଅଙ୍ଗୁଳି
କର, ପାଣି, ଭୁଜ, ଅଗ ପର୍ଯ୍ୟନ୍ତ ଅଂଶକୁ ହସ୍ତ ବୋଲାଯାଏ, କହୁଣି
ପଞ୍ଚଶାଖ, ଶମ, ଶୟ, ଠାରୁ କାନ୍ଧ ଉପର ପର୍ଯ୍ୟନ୍ତ ଅଂଶକୁ ବାହୁ
ଭୁଜାଦଳ, ହୁଲ ବୋଲାଯାଏ । କିନ୍ତୁ ଭାଷାରେ ବାହୁଯୁକ୍ତ ହସ୍ତକୁ ମଧ୍ୟ ହସ୍ତ ବୋଲି ବ୍ୟବହାର କରାଯାଏ] ୨ । କର ଶୁଣ୍ଢ; ହାତୀର ଶୁଣ୍ଢ (ଏହା ହସ୍ତୀର ହାତପରି କାମରେ ଲାଗୁ ଥିବାରୁ; ହସ୍ତ ଥିବାରୁ ହାତୀର ନାମ ହସ୍ତୀ—2. The trunk of an elephant. ୩ । ୨୪ ଅଙ୍ଗୁଳପରିମିତ ଦୈର୍ଘ୍ୟ—3. A cubit; a unit of length; 24 fingers; about 1½ ft. [ଦ୍ର—ଅଠଗୋଟି ଯବଧାନରେ ଉଚ୍ଚରେ ଏକ ଅଙ୍ଗୁଳ ହୁଏ । ଏହିପରି ୨୪ ଅଙ୍ଗୁଳ = ୧ ହାତ—ଇଥି ଜାଣ ।] ୪ । ହସ୍ତା ନକ୍ଷତ୍ର; ଜ୍ୟୋତିଷୋକ୍ତ ତ୍ରୟୋଦଶ ନକ୍ଷତ୍ର—4. The 13th asterism. ୫। ଗୁଚ୍ଛ (କେଶ ଶବ୍ଦର ପରବର୍ତ୍ତୀ ହେଲେ)—5. Tuft (of hair).

ହସ୍ତକ—ଦେ. ବି—୧ । ନାଟ କରିବା ସମୟରେ ହସ୍ତାଦିର ଭଙ୍ଗୀରେ
Hastaka ନାଚୁଥିବା ହାସ୍ୟ ଗୀତର ଭାବପ୍ରକାଶ—
हावभाव बतान 1. Mode of expressing the purport of a song by figures made with the hands by a dancer. (ଦ୍ର—ମୁଦ୍ରଭଙ୍ଗୀ ଓ ହସ୍ତକରୁ ମନୁଷ୍ୟମାନଙ୍କର ଭଲ ଭଲ

ଅବସ୍ଥା ସୁନ୍ଦର ଲୁହାପତ୍ର ତ—ଲୁଗାଚିକ୍କ ଉଜ୍ଜ୍ୱଳ ଉଡନ୍ତାର ।) ୨ । ହାତ—2. Hand. ( ଉ—କାହା ହସ୍ତକ ହସ୍ତଲକ୍ଷ୍ମୀ, କରେମଣ୍ଡନମାନଙ୍କୁ ଧର—ସାଳଲୁଷ୍ଟ ଉସକଲ୍ଲୋଳ ।)

**ହସ୍ତ କଣ୍ଡୁ**—ଦେ· ବ (ଲକ୍ଷଣାର୍ଥ)—କାର୍ଯ୍ୟ କରିବା ପାଇଁ ବା ଲେଖିବା ପାଇଁ ମନରେ ଜାତ ଅତ୍ୟଧିକ ଇଚ୍ଛା—
Hasta kandu
হস্তকণ্ডু, হাতনিস্পিস্ हस्तकंडु Inordinate desire for the exercise or use of one's hand; (metaphorically) an itching felt in one's hands

**ହସ୍ତକିତ**—ସ ବଣ· ପୁଂ (ହସ୍ତକ+ଯୁକ୍ତାର୍ଥେ ଇତ)-ହସ୍ତଯୁକ୍ତ (ଶବ୍ଦକୋଷ)
Hastakita Having hand or hands.
(ହସ୍ତକିତା—ସ୍ତ୍ରୀ)

**ହସ୍ତ କଣ୍ଡୂୟନ**—ସ ବ ( ୬ଷ୍ଠୀ ତତ୍; ହସ୍ତ+କଣ୍ଡୂୟନ )—୧ । ହାତ ଗଲ୍ କରିବା—1. Itching
Hasta kandūyana
of the hands. ୨ । ହାତକୁ କୁଣ୍ଡେଇବା—2. Scratching of the itching hands.

**ହସ୍ତ କୁଶଳ**—ସ ବଣ. ॥ ପୁଂ ( ୭ମୀ ତତ୍; ହସ୍ତ+କୁଶଳ )—ହସ୍ତଶିଳ୍ପରେ ଦକ୍ଷ—Skilful in the use of one's hands; dexterous in handicrafts.
Hasta kuśala
(ହସ୍ତକୁଶଳା—ସ୍ତ୍ରୀ)
ହସ୍ତକୁଶଳତା }
ହସ୍ତକୌଶଳ } —ବ

**ହସ୍ତକୃତ**—ସ ବଣ ( ୩ୟା ତତ୍; ହସ୍ତ+କୃତ )—୧ । ହସ୍ତଦ୍ୱାରା କରାଯାଇଥିବା—1. Manufactured; made with the hands; being the handiwork of. ୨ । ହସ୍ତଗତ ( ଦେଖ )—2. Hastagata (See)
Hastakṛuta

**ହସ୍ତକ୍ଷେପ(କ୍ଷେପଣ)**—ସଂ ବ (୬ଷ୍ଠୀ ତତ୍)—୧ । କୌଣସି କାର୍ଯ୍ୟରେ ହାତ ଦେବା; କାର୍ଯ୍ୟକୁ ଆରମ୍ଭ କରିବା—1. Doing of any work; taking of a work in hand; undertaking to do a work. ୨। (ଲକ୍ଷଣାର୍ଥ) ଅନ୍ୟ କୃତ କାର୍ଯ୍ୟରେ ହାତ ଚଳାଇବା; ଅନ୍ୟ କୃତ କାର୍ଯ୍ୟର ଚର୍ଚ୍ଚା କରିବା—2. Interference with the work done by another.
Hastakshepa(kshepana)

**ହସ୍ତଗ**—ସଂ ବଣ (ହସ୍ତ+ଗମ ଧାତୁ+କର୍ତ୍ତି ଅ)—ହସ୍ତଗତ (ଦେଖ)—
Hastaga Hastagata (See)

**ହସ୍ତ ଗଣ୍ଠି**—ଦେ. ବ (ସଂ ହସ୍ତ ଓ ଗ୍ରନ୍ଥି)—ହସ୍ତଗ୍ରନ୍ଥି (ଦେଖ)—
Hasta ganthi Hastagranthi (See)
হাতগাঁঠ हस्तग्रंथि

**ହସ୍ତଗତ**—ସଂ ବଣ ( ୨ୟା ତତ୍; ହସ୍ତ+ଗତ )—୧ । ଆପଣାର ଅଧିକାରକୁ ଆଗତ—1. Brought under one's control. ୨ । ଅଧିକୃତ—2. Possessed; taken possession of. ୩ । ଅଧିକାରରେ ପ୍ରାପ୍ତ—3. Come into one's possession. ୪ । ହସ୍ତରେ ପ୍ରାପ୍ତ—4. Got into one's hands. ୫ । ପ୍ରାପ୍ତ—5 Received. ୬ । ( ଲକ୍ଷଣାର୍ଥ ) ବଶୀଭୂତ; ଅର୍ଥଦ୍ୱାରା ବଶ ଯାଇଥିବା—6 ( figurative ) Suborned; gained over. (ଯଥା—ଅପରପକ୍ଷର ସାକ୍ଷୀଙ୍କୁ ହସ୍ତଗତ କରିବା ।)
Hastagata

**ହସ୍ତଗିର୍**—ବୈଦେ. ବଣ (ଆ)—ହସ୍ତକୁଶଳ—
Hastagir Dexterous in handicraft.
হস্তগির हस्तकुशल

**ହସ୍ତ ଗ୍ରନ୍ଥି**—ସଂ ବ ( ୬ସ୍ତ+ଗ୍ରନ୍ଥି )—ବିବାହକାଳରେ ବରକନ୍ୟାଙ୍କର ଦୁଇ ହାତକୁ ଏକତ୍ର ବାନ୍ଧି ରଖିବା ପାଇଁ ବ୍ୟବହୃତ କୁଶଗଣ୍ଠି—Knot made of Kuśa grass by which the hands of the bride and bridegroom are tied on the marriage altar.
Hasta granthi

**ହସ୍ତ ଗ୍ରହ(ଗ୍ରହଣ)**—ସଂ ବ (୬ଷ୍ଠୀ ତତ୍)—ଅନ୍ୟର ହସ୍ତକୁ ଧରିବା (ଶବ୍ଦକୋଷ)—Holding of the hand of another.
Hasta graha(grahaṇa)

**ହସ୍ତ ଗ୍ରାହ୍ୟ**—ସଂ ବଣ ( ୩ୟା ତତ୍, ହସ୍ତ+ଗ୍ରାହ୍ୟ )—ହସ୍ତ ଦ୍ୱାରା ଗ୍ରହଣୀୟ—Fit to be taken by the hands.
Hasta grāhya

**ହସ୍ତ ଚାଳନ(ନା)**—ସ ବ [୬ଷ୍ଠୀ ତତ୍; ହସ୍ତ+ଚାଳନ(ନା)]—୧ । ହାତକୁ ଏଣେତେଣେ ଚଳାଇବା—1. Moving of the hands. ୨। ହସ୍ତର ବ୍ୟାୟାମ—2. Exercise of the hands.
Hasta chālana[nā]

**ହସ୍ତ ଚ୍ୟୁତ**—ସ ବଣ (୫ମୀ ତତ୍; ହସ୍ତ+ଚ୍ୟୁତ )—୧। ହସ୍ତରୁ ଚ୍ୟୁତ; ହସ୍ତରୁ ଭ୍ରଷ୍ଟ—1. Slipped out of one's hands. ୨ । (ଲକ୍ଷଣାର୍ଥ) ଅଧିକାରଚ୍ୟୁତ—2. [ figurative ] Slipped out of one's control.
Hasta chyuta

**ହସ୍ତଜ୍ୟୋଡ଼ି**—ସ ବ (ବୈଦ୍ୟକ)—କରଜୋଡ଼ି ଗଛ—Name of a plant. [ବୃ—ଏହା ମହାଜନ ଶାକବିଶେଷ ଏହା ଉଦରକ ଓ ବଶୀକାରକ—ରାଜନିର୍ଘଣ୍ଟ ।]
Hastajyordi
কবযোড়া हाताजुड़ी

**ହସ୍ତ ତାଳ**—ସ ବ (ହସ୍ତଦ୍ୱୟ ତାଳ; ମ. ପ. ଲୋ)—କରତାଳ—
Hasta tāla Clapping.

**ହସ୍ତତ୍ର**—ସ.ବ (ହସ୍ତ+ତ୍ରୈ ଧାତୁ=ରକ୍ଷା କରିବା+କର୍ତ୍ତୃ.ଡ)—ହସ୍ତାନା; କରତ୍ରାଣ—A protector for the hand; glove.
Hastatra

**ହସ୍ତ ଦକ୍ଷିଣ**—ସ. ବଣ· ପୁଂ—ଦକ୍ଷିଣହସ୍ତ ଯୁକ୍ତ (ଶବ୍ଦକୋଷ)—
Hasta dakshiṇa Having the right hand.
(ହସ୍ତ ଦକ୍ଷିଣା—ସ୍ତ୍ରୀ)

**ହସ୍ତ ଦୀପ (ପ୍ରଦୀପ)**—ସ. ବ—( ମ· ପ. ଲୋ, ହସ୍ତଧୃତ ଦୀପ )-ହାତରେ ଧରିଯିବା ଦୀପ—Hand-lamp.
Hasta dīpa(pradīpa)

**ହସ୍ତ ଧାରଣ**—ସ. ବ—(୬ଷ୍ଠୀତତ୍; ହସ୍ତ+ଧାରଣ)—୧। ହାତ ଧରିବା; କର ଗ୍ରହଣ; ଅନ୍ୟର କର ଧରିବା—1.
Hasta dhāraṇa

Holding the hands of another person. ୬ । ମାରଣୋଦ୍ୟତ ବ୍ୟକ୍ତିର ହାତ ଧରି ପକାଇ ତାକୁ ନିବାରଣ କରିବା—2. Preventig a person who is about to strike, by holding his hands.

ହସ୍ତ ନୈପୁଣ୍ୟ—ସଂ. ବି—(ଷଷ୍ଠୀତତ୍, ହସ୍ତ+ନୈପୁଣ୍ୟ)—୧ । ହସ୍ତ Hasta naipunya ଚାଳନାରେ ଦକ୍ଷତା; ହସ୍ତ ଲାଘବ—1. Dexterity in the use of the hands. ୨ । ହାତର କାରିଗରି—2. Skill or dexterity in handicraft; craftmanship.

ହସ୍ତ ପତ୍ର—ଦେ. ବି—(ଅଧୁନିକ ପ୍ରୟୋଗ, ଇଂରେଜୀରୁ ଅନୁବାଦ)— Hasta patra ହାଣ୍ଡ୍‌ବିଲ୍ (ଦେଖ)—Handbil (See); হাণ্ডবিল हस्तपत्र

ହସ୍ତ ପଦ୍ମ—ଦେ. ବି—(ବଙ୍ଗିଆ ଶବ୍ଦ)—ରତ୍ନଚୂଡ଼ା (ଦେଖ)— Hasta padma Ratnachurdā (See).

ହସ୍ତ ପୁଚ୍ଛ—ସ. ବି—ହସ୍ତାବୟବ ବିଶେଷ; କୋରକାକୃତି ହସ୍ତର Hasta puchchha ଅଙ୍ଗୁଳିଗଣ—The fingers of the (ଅନ୍ୟ ସ. ନାମ—କଳୁଷ) hand contracted into the shape of a bud. হাতের পোছা

ହସ୍ତ ପୃଷ୍ଠ—ସ. ବି—(ଷଷ୍ଠୀତତ୍)—ହାତ ପାପୁଲି; କରତଳର ପିଠିପାଖ Hasta prushtha The back of the palm

ହସ୍ତ ପ୍ରସାରଣ—ସ. ବି—(ଷଷ୍ଠୀତତ୍; ହସ୍ତ+ପ୍ରସାରଣ)—ହାତକୁ Hasta prasārana ମେଲାଇବା; ହାତର ବିସ୍ତୃତ କରଣ—The extending of the hands.

ହସ୍ତ ପ୍ରାପ୍ତ—ସ. ବଣ—(ତୃତୀୟାତତ୍)—ହସ୍ତଗତ (ଦେଖ)— Hasta prāpta Hastagata (See).

ହସ୍ତପ୍ରାପ୍ୟ—ସ. ବଣ (ତୃତୀୟାତତ୍) ହସ୍ତଦ୍ୱାରା ପ୍ରାପଣୀୟ; ହାତ ପାଆନ୍ତା— Hasta prāpya Attainable by the hands.

ହସ୍ତବଳୟ—ସ. ବି—ହାତରେ ପିନ୍ଧାଯିବା ଖଡ଼ୁ— Hasta balaya বালা बाला Bracelet.

ହସ୍ତ ବଲା—ଦେ. ବି ଓ ବଣ—ହାତବଲା; ଗୋଟିଏ ଦ୍ରବ୍ୟ ଗଢ଼ିବା Hasta balā ପୂର୍ବରୁ ହସ୍ତକୁଶଳତା ପରୀକ୍ଷା କରିବା ପାଇଁ କାରିଗର ପ୍ରଥମେ ଯେଉଁ ବସ୍ତୁ ଗଢ଼େ—A sample which an artist makes as a trial before preparing the actual article. [ଯଥା—ହୋଇଛି ଅଣ ଗଢ଼ିବ ବୋଲି କୁଶଳୀ, ହସ୍ତବଲା କରି ଗଢ଼ିଲି ଅପର୍ବ କୃଶର ହ. ମହାଭାରତ ।

ହସ୍ତ ବଳିବା—ଦେ. କ୍ରି—ହାତବଳିବା (ଦେଖ)— Hasta balibā Hāta balibā (See)

ହସ୍ତବଲ୍ଲରି—ସ ବି—(ଷଷ୍ଠୀତତ୍; ହସ୍ତ+ବଲ୍ଲରୀ)—ଅଙ୍ଗୁଳି—Finger. Hasta ballari (ଯଥା—ବାହୁ ହସ୍ତକ ବସ୍ତ୍ରବଳ୍ଲରୀ, କରମୁଦ୍ରିକାମାନଙ୍କୁ ଏ—ପାନିରୀ, ରସକଲ୍ଲୋଳ) ।

ହସ୍ତବାନ୍—ସ ବଣ ପୁଂ—(ଉପପଦ; ହସ୍ତ+ଅସ୍ତି ଅର୍ଥେ ବତ୍)—୧ Hastabān ଯାହାର ହାତ ଅଛି—1. Having hands. ୨ । (ହସ୍ତବତୀ—ସ୍ତ୍ରୀ) ନିପୁଣହସ୍ତ—2. Skilful in the use of the hands; dexterous. ସ. ବି—ତସ୍କର; ଦ୍ୟୂତକର (ଶବ୍ଦକୋଷ) A cheat; a gambler.

ହସ୍ତ ବାମ—ସ. ବଣ. ପୁଂ—ବାମହସ୍ତ ଯୁକ୍ତ (ଶବ୍ଦକୋଷ)— Hasta bāma Having the left hand. (ହସ୍ତବାମା—ସ୍ତ୍ରୀ)

ହସ୍ତ ବାରଣ—ସଂ. ବି—(ଷଷ୍ଠୀତତ୍; ହସ୍ତ=ହାତ+ବାରଣ=ନିବାରଣ Hasta bārana —୧ । କର ଚାଳନଦ୍ୱାରା ନିଷେଧନ; କରଦ୍ୱାରା ନିବାରଣରୂପ ସଙ୍କେତ—1 A sign made by the hands indicating to a person to desist. ୨ । ମାରଣୋଦ୍ୟତ ବ୍ୟକ୍ତିକୁ ହାତଦ୍ୱାରା ବାଧା ପ୍ରଦାନ— 2. Preventing a person by the hands from striking.

ହସ୍ତ ବିମ୍ବ—ସଂ. ବି—(ହସ୍ତ+ବିମ୍ବ)—୧ । ସ୍ଥାସକ; ଚନ୍ଦନାଦିଦ୍ୱାରା Hasta bimba ଦେହକୁ ବିଲେପନ ବିଶେଷ । ଗନ୍ଧଦ୍ରବ୍ୟ ଚୂର୍ଣ୍ଣ ବିଶେଷ । (ଶବ୍ଦକଳ୍ପଦ୍ରୁମ)—1. A sort of toilet powder or paste ୨ । କରର ପ୍ରତିବିମ୍ବ—2. The reflection or image of the hands.

ହସ୍ତବୁଦ୍(ଦ୍, ଜି ଦି—ଦେ. ବି—(ଫା. ହସ୍ତ=ବର୍ତ୍ତମାନତା+ Hastab j(d, ji, di) ବୁଦ୍=ଅତୀତ)—୧ । ବର୍ତ୍ତମାନର ଓ ହସ୍ତବୁଜ (ଦ୍) } ଅନ୍ୟରୂପ ହସ୍ତ ବୁଦ } ପୂର୍ବର ହିସାବ—1. Account of the past and present. ୨ । হস্তবুজ ଅଦାୟ ହେବା ସ୍ଥାୟୀ ଜମା—2. Realisable fixed हस्तबुज rental. ୩ । ଜମିଦାରୀର ମୋଟ ଆୟ—3. The total income of a zamindary. ବଣ— ଯେଉଁ ଜମିଦାରୀରେ ଜମିଦାର ପ୍ରଜାମାନଙ୍କଠାରୁ ମଧ୍ୟସ୍ୱତ୍ୱାଧିକାରୀ (ଯଥା—ମକଦମ, ସରବରାକାର)ଙ୍କ ଦ୍ୱାରା ଖଜଣା ଅସୁଲ ନ କରି ନିଜେ ବା ଗୁମାସ୍ତାଦ୍ୱାରା ପ୍ରଜାଙ୍କଠାରୁ ଖଜଣା ଅସୁଲ କରନ୍ତି—(a zemindari) Which is in the khas possession of the superior landlord, as distinguished from that of which he is in possession through tenure holders or Sarbarakars.

ହସ୍ତବୁଜ୍ (ଜି ଦି) ଜମିଦାରୀ (ମାହାଲ)—ଦେ. ବି—ଯେଉଁ ଜମିଦାରୀରେ H stabuj (ji, di) jamidari (māhāl) ମକଦମ ବା हস্তবুজ মহল ସରବରାକାର ନ ଥାଇ ନିଜେ ଜମିଦାର ବା ତାଙ୍କ हस्तबुज जमिनदारी ତହସିଲଦାର ପ୍ରଜାଙ୍କଠାରୁ ଖଜଣା ଅସୁଲ କରନ୍ତି—The zemindari of which the Zamindar realises rent direct from the raiyats and not through middlemen.

ହସ୍ତ ମୈଥୁନ—ସଂ ବି—(ହସ୍ତ+ମୈଥୁନ)—ହସ୍ତ ଦ୍ୱାରା ଲିଙ୍ଗଚାଳନ Hasta maithuna ପୂର୍ବକ ରେତଃ ସ୍ଖଳନ—Masterbation.

ହସ୍ତଯନ୍ତ୍ର—ସଂ ବି—(ସ. ପ. କେ, ହସ୍ତଚାଳିତ ଯନ୍ତ୍ର, ହସ୍ତ+ଯନ୍ତ୍ର)— Hasta jan ra ହସ୍ତଦ୍ୱାରା ବ୍ୟବହୃତ ପୂର୍ବକାଳର ଯୁଦ୍ଧାସ୍ତ୍ରବିଶେଷ —An ancient weapon of war used by the hand. [ଯଥା—ଅନେକ ହସ୍ତଯନ୍ତ୍ର ଭୁଶଣ୍ଡୀ ମୁଷଳ— କୃଷ୍ଣସିଂହ ମହାଭାରତ ବନ ।]

ହସ୍ତରେ—ଦେ ଅ—ହସ୍ତେ (ଦେଖ)—
Hastare ହାତେ **हाथमें** Haste (See)

ହସ୍ତ ରେଖା—ସଂ ବ—(ମ. ଷ. ଲୋ. ହସ୍ତ+ରେଖା)—କରତଳରେ
Hasta rekhā ଦେଖାଯିବା ଶୁଭାଶୁଭଜ୍ଞାପକ ରେଖାମାନ—The lines seen on the palm and utilised in palmistry in foretelling the future of a person.

ହସ୍ତ ଲଘୁତା(ଲାଘବ)—ସଂ, ବ—(୬ଷ୍ଠୀତତ୍; ହସ୍ତ+ଲଘୁତା)—ହସ୍ତ-
Hasta laghutā (lāghaba) ଚାଳନରେ ଦକ୍ଷତା ବା ନୈପୁଣ୍ୟ—Dexterity or skill in the exercise or use of one's hands.

ହସ୍ତ ଲିଖିତ—ସଂ, ବଣ—(୬ଷ୍ଠୀତତ, ହସ୍ତ+ଲିଖିତ)—ହାତଦ୍ୱାରା
Hasta likhita ଲେଖାଯାଇଥିବା—In the handwriting (ବିପରୀତ—ମୁଦ୍ରିତ) of; written by.

ହସ୍ତଲିଖିତ ପୁସ୍ତକ—ସଂ ବ—(ହସ୍ତ+ଲିଖିତ+ପୁସ୍ତକ)—ହାତଲେଖା
Hastalikhita pustaka ବହି—Manuscript book.

ହସ୍ତ ଲିଖିତ ପୋଥି—ଦେ. ବ—(ସଂ ହସ୍ତଲିଖିତ+ଓ ପୋଥି)—ହାତ-
Hastalikhita pothi ଲେଖା ତାଳପତ୍ର ପୁସ୍ତକ—Palm
हस्तलिखित पुथि **हस्तलिखित पुस्तक** leaf munuscript.

ହସ୍ତ ଲିପି(ଲେଖା)—ସଂ ବ—(୬ଷ୍ଠୀତତ୍, ହସ୍ତ+ଲିପି)—୧। ହସ୍ତାକ୍ଷର;
Hasta lipi (lekha) ହାତଲେଖା—1. Handwriting. ୨। କୌଣସି ବ୍ୟକ୍ତିଙ୍କ ହାତଦ୍ୱାରା ଲେଖା ହୋଇଥିବା ଚିଠି ବା ଚିଠି—2. A writing or document written by a person. ୩। ହାତ ସୁଧାରିବାପାଇଁ ତାଳପତ୍ରରେ ଓ କାଗଜରେ ଅଭ୍ୟାସ କରି ଲେଖାଯିବା ଲେଖା—3. Writing written for handwriting exercise. ଦେ ବ—ଛାପାଖାନାକୁ ପଠାଯିବା ହାତ-
हस्तलिपि ଲେଖା ପୁସ୍ତକ ବା କାଗଜ; କପି—Manuscript sent
**कौपी** to the press for being printed.

ହସ୍ତ ସିଦ୍ଧି—ସଂ ବ—(ହସ୍ତ+ସିଦ୍ଧି)—୧। କରଦ୍ୱାରା ସାଧନ—1.
Hasta siddhi Doing a thing with the hands. ୨। ହସ୍ତ ନୈପୁଣ୍ୟ (ଦେଖ)—2. Hasta naipunya (See). ୩। ଦରମା; ମୂଲ—3. Salary; wages.

ହସ୍ତ ସୂତ୍ର—ସଂ ବ—(୬ଷ୍ଠୀତତ୍, ହସ୍ତ+ସୂତ୍ର)—୧। ବଳୟ; ହାତଖଡୁ
Hasta sūtra (ହେମଚନ୍ଦ୍ର)—1. Bracelet. ୨। କୌତୁକ-ସୂତ୍ର; ବିବାହକାଳରେ ବରଙ୍କ ଓ କନ୍ୟାଙ୍କ ହାତରେ ବନ୍ଧାଯିବା ସୂତ୍ର; ମଙ୍ଗଳ ସୂତ୍ର—2 A thread worn on the wrist by the bride and bridegroom during marriage. [ଦ୍ର—ବିବାହ ସଂସ୍କାରରେ ମଙ୍ଗଳାର୍ଥ ଏହି ସୂତ୍ର ବରଙ୍କର ଓ କନ୍ୟାଙ୍କର ଯଥାକ୍ରମେ ଦକ୍ଷିଣ ଓ ବାମ ହସ୍ତରେ ବାନ୍ଧିବାକୁ ହୁଏ। ନାନ୍ଦୀମୁଖ ଶ୍ରାଦ୍ଧ ପୂର୍ବେ ଗଙ୍ଗାଧିବାସ କରି ୩ ଜଣ ସଧବା ସ୍ତ୍ରୀଲୋକ ବରଙ୍କର ଓ କନ୍ୟାଙ୍କ ର ମସ୍ତକକୁ ବସ୍ତ୍ରାଚ୍ଛାଦନ କରି ମସ୍ତକରେ ଅଧଅଡ ସୂତା (ଅବିବାହିତା କନ୍ୟାଙ୍କ ଦ୍ୱାରା କଟା ହୋଇଥିବା ସୂତା) ୩, ୫ ବା ୭ ଥର ବେଷ୍ଟନ କରନ୍ତି। ଉକ୍ତ ବେଷ୍ଟିତ ସୂତାକୁ ବରଙ୍କ ଓ କନ୍ୟାଙ୍କର ପାଦ ତଳେ ଗଳାଇଆଣି ତାକୁ ହଳଦୀ ଦ୍ୱାରା ରଞ୍ଜିତ କରନ୍ତି। ପରେ ଏହି ସୂତ୍ରକୁ ବରଙ୍କ ଡାହାଣ ହାତରେ ଓ କନ୍ୟାଙ୍କ ବାମ ହାତରେ କେତେ ଦୁବ ସହିତ ବାନ୍ଧି ଦିଅନ୍ତି। ଏହି ହସ୍ତସୂତ୍ର ମାଙ୍ଗଳିକ ବିବାହର ଦ୍ରବ୍ୟ ଅଟେ। ଚାରିମଙ୍ଗଳା ପରେ ଏ ହସ୍ତ ସୂତ୍ର ହାତରୁ କାଢ଼ି ଦିଆଯାଏ—ବିଶ୍ୱକୋଷ।]

ହସ୍ତହୋମ—ସ.ଙ୍କ—(୬ଷ୍ଠୀ ତତ୍)—ସ୍ରୁବ ପରିବର୍ତ୍ତେ ହାତଦ୍ୱାରା ଅଗ୍ନିରେ
Hasta homa ଅହୁତିଦାନ—Offering of ghee unto the Homa-fire with the hands of instead with a wooden spoon.

ହସ୍ତା—ସ ବ—[ହସ୍ତ+ସ୍ତ୍ରୀ ଆ]—ଜ୍ୟୋତିଷୋକ୍ତ ୨୭ ନକ୍ଷତ୍ର ମଧ୍ୟରୁ
Hastā ତ୍ରୟୋଦଶ ନକ୍ଷତ୍ର—The thirteenth asterism. [ଦ୍ର—ଏହା ହସ୍ତାକୃତି ଓ ପଞ୍ଚତାରବିଶିଷ୍ଟ। ଏହାର ଅଧିଦେବତା ସୂର୍ଯ୍ୟ। ଏ ନକ୍ଷତ୍ରରେ ଜନ୍ମିବା ମନୁଷ୍ୟ ଦାତା, ଯଶସ୍ୱୀ, ମନସ୍ୱୀ, ଦେବବ୍ରାହ୍ମଣ ପୂଜକ, ସମ୍ପତ୍ତିଶାଳୀ ଓ ମାତୃଭକ୍ତ ହୁଏ—କୋଷ୍ଠୀପ୍ରଦୀପ। ନକ୍ଷତ୍ର ତଳେ ଟୀକା ଦେଖ।]

ହସ୍ତାଏକ୍—ପ୍ରାଦେ (ସମ୍ବଲପୁର) ବ—ହଂସଜାତି ପକ୍ଷୀ—
Hastāek Grey laggoose.

ହସ୍ତାକ୍ଷର—ସ ବ—[ ମ. ଷ. ଲୋ. ହସ୍ତ ଲିଖିତ ଅକ୍ଷର ]—୧।
Hastākshara କୌଣସି ବ୍ୟକ୍ତିଙ୍କ ହାତଲେଖା—1. Handwriting of a person. ୨। ସ୍ୱହସ୍ତଦ୍ୱାରା ଲିଖିତ ଅକ୍ଷର—2. One's own handwriting. ଦେ. ବ—ହାତଲେଖାକୁ ସୁନ୍ଦର କରିବାକୁ ଅଭ୍ୟାସ କରିଯିବା ପାଇଁ ପୁନଃ ପୁନଃ ଲେଖାଯିବା ଅକ୍ଷର—Handwriting exercise.

ହସ୍ତାକ୍ଷର ପଦ୍ଧତି(ରୀତି)—ସ ବ (୬ଷ୍ଠୀ ତତ୍; ହସ୍ତାକ୍ଷର+ପଦ୍ଧତି)—
Hastākshara paddhati(rīti) ପ୍ରତ୍ୟେକ ବ୍ୟକ୍ତିଙ୍କର ହସ୍ତାକ୍ଷର ଲେଖିବାର ସ୍ୱତନ୍ତ୍ର ଢଙ୍ଗ ଯଦ୍ଦ୍ୱାରା ତାହା ଅନ୍ୟ ବ୍ୟକ୍ତିଙ୍କ ଲେଖାଠାରୁ ବାରି ହୋଇପଡ଼େ)—Peculiarity or mode of one's handwriting.

ହସ୍ତାଙ୍ଗୁଳି—ସ ବ (୬ଷ୍ଠୀ ତତ୍, ହସ୍ତ+ଅଙ୍ଗୁଳି)—କରାଙ୍ଗୁଳି; ହାତର
Hastānguli ଅଙ୍ଗୁଳି—The fingers of the hand.

ହସ୍ତାନା—ଦେ. ବ—(ଫା. ଦସ୍ତାନା)—ଦସ୍ତାନା—
Hastānā Gloves.
दस्ताना **दस्ताना**

ହସ୍ତାନ୍ତର—ସ ବ (କର୍ମଧା, ଅନ୍ୟ+ହସ୍ତ)—୧। ଅନ୍ୟ ବ୍ୟକ୍ତିର ହାତ—
Hastāntara 1. Another person's hand. ୨। ଅନ୍ୟ ବ୍ୟକ୍ତିର ଅଧିକାର—2. The possession of another person. ୩। କ୍ରୟ ଓ ଦାନାଦି ଦ୍ୱାରା ସମ୍ପତ୍ତିର ଅଧିକାର ପରିବର୍ତ୍ତନ—3. Transfer of

property by sale, gift etc. ଦେ. ବଣ—ହସ୍ତାନ୍ତରିତ ( ଦେଖ )—Hastāntarita (See)

ହସ୍ତାନ୍ତର ଆଇନ୍—ଦେ. ବ (କଚରୁଆ) (ହସ୍ତାନ୍ତର+ଆଇନ୍)—ସମ୍ପତ୍ତି Hastāntara āin ହସ୍ତାନ୍ତର ସମ୍ବନ୍ଧୀୟ ବିଧି, ପ୍ରଶ୍ନ ଓ ବିବାଦ ହস্তান্তর আইন हस्तान्तर कानून ପ୍ରଭୃତି ଯେଉଁ ଆଇନ ଦ୍ୱାରା ନିଷ୍ପତ୍ତି ହୁଏ—The Transfer of Property Act, [ ଦ୍ର—ବର୍ତ୍ତମାନ ଭାରତରେ ସମ୍ପତ୍ତି ହସ୍ତାନ୍ତର ସମ୍ବନ୍ଧେ ୧୮୮୨ ସାଲରେ ଭାରତୀୟ ୪ ଆଇନ୍ ଚଳୁଅଛି ।]

ହସ୍ତାନ୍ତର କରିବା—ଦେ. କ୍ରି—(କଚରୁଆ) ସମ୍ପତ୍ତିକୁ ବିକ୍ରି, ଦାନ ବା Hastāntara karibā ପଟ୍ଟା ଦ୍ୱାରା ଅନ୍ୟ ବ୍ୟକ୍ତିର ଅଧିକାରକୁ হস্তান্তর করা हस्तान्तर करना ଦେବା—To transfer a property ( by sale, gift, lease etc.)

ହସ୍ତାନ୍ତର ଯୋଗ୍ୟ—ଦେ.ବଣ (କଚରୁଆ)—ଯେଉଁ ସମ୍ପତ୍ତି ବା ସ୍ୱତ୍ୱ Hastāntara jogya ଆଇନ ଅନୁସାରେ ହସ୍ତାନ୍ତରିତ କରି হস্তান্তর যোগ্য हस्तान्तरयोग्य ଯାଇପାରେ—Transferable (property or right).

ହସ୍ତାନ୍ତରିତ—ସ. ବଣ—[ହସ୍ତାନ୍ତର+ଇତ]—୧। ଅପରର ଅଧିକାରକୁ Hastāntarita ପ୍ରଦତ୍ତ (ସମ୍ପତ୍ତି)—1. (property) Transferred to another. ୨। ଅନ୍ୟର ହସ୍ତଗତ; ସ୍ୱହସ୍ତରୁ ଅପସାରିତ—2. Gone over to the possession of another.

ହସ୍ତାବରଣ—ସ.ବି—[୬ଷ୍ଠୀତତ୍ ହସ୍ତ+ଆବରଣ]—୧। ଦସ୍ତାନା—1. Hastābarana Gloves. ୨। ହାତକୁ ରକ୍ଷା କରିବା ପାଇଁ ପିନ୍ଧାଯିବା ଲୁହା ଦସ୍ତାନା—2. Mailed glove.

ହସ୍ତାବର୍ତ୍ତନ—ସଂ ବ [୩ୟା ତତ୍; ହସ୍ତ+ଆବର୍ତ୍ତନ)—୧। ହାତ Hastābarttana ଦ୍ୱାରା ଆଲୋଡ଼ନ ବା ଘାଣ୍ଟିବା—1. Agitating or shaking with the hands. ୨। ହାତ ଘୁରାଇବା; ହସ୍ତଘୂର୍ଣ୍ଣନ; ହାତକୁ ବୁଲାଇବା—2. Swinging round of the hands; moving one's hands in circles. ୩। ହାତ ଦ୍ୱାରା ସ୍ପର୍ଶ—3. Touching with the hands. ୪। ହାତ ଝୁଲାଇବା—4. Hanging down one's hands.

ହସ୍ତାବଲମ୍ବନ—ସଂ ବ—[୬ଷ୍ଠୀ ତତ୍, ହସ୍ତ+ଅବଲମ୍ବନ]—Hastābalambana ୧। ହସ୍ତ ଗ୍ରହଣ; ଅନ୍ୟର ହାତକୁ [ହସ୍ତାବଲମ୍ବ—ଅନ୍ୟରୂପ] ଧରିବା—1. Holding the hand of another. ୨। କୌଣସି କାର୍ଯ୍ୟ କରିବାରେ ସାହାଯ୍ୟ ଲାଭ କରିବା ପାଇଁ ଅନ୍ୟର ହାତକୁ ଧରିବା—2. Holding the hand of another as a help for doing a thing.

ହସ୍ତାବାପ—ସଂ. ବ—[ ୬ଷ୍ଠୀ ତତ୍, ହସ୍ତ+ଅବାପ ]—ଧନୁ ମାରିବା Hastābāpa ଲୋକଙ୍କ ଅଙ୍ଗୁଠିକୁ ରକ୍ଷା କରିବା ପାଇଁ ବ୍ୟବହୃତ ଚମଡ଼ାର ଖୋଳ—A leathern cap used on the fingers by an archer. [ ଉ—ଧନୁ ହସ୍ତାବାପ ଯେ ଦୁହିଙ୍କି କାଟିଲେ, ଦୁଇ ପାର୍ଷ୍ଣି ସାରଥିଙ୍କର ପ୍ରାଣ ନେଲେ—କୃଷ୍ଣସିଂହ ମହାଭାରତ ଦ୍ରୋଣ] ସଂ ବଣ—ହସ୍ତ ଦ୍ୱାରା କଡ଼ାକରି (ବାଚସ୍ପତ୍ୟ)—Held tightly with the hand or hands; clasped.

ହସ୍ତାଭରଣ—ସ. ବ—( ୬ଷ୍ଠୀ ତତ୍; ହସ୍ତ+ଆଭରଣ)—Hastābharana ହାତରେ ପିନ୍ଧାଯିବା ଅଳଙ୍କାର—Ornament for the hand.

ହସ୍ତାମଳକ—ସଂ ବ—(ମ. ପ. ଲୋ;ହସ୍ତ ଧୃତ ଆମଳକ)—୧। ଆପଣା Hastāmalaka ହାତରେ ଧରାଯାଇଥିବା ଅଁଳା କୋଳି—1. Embelic myrobalan fruit held in the hand. [ଦ୍ର—ଏପଦ ବେଦାନ୍ତରେ ଦୃଷ୍ଟାନ୍ତ ଛଳରେ ବ୍ୟବହୃତ । ହାତରେ ଗୋଟିଏ ଅଁଳା କୋଳି ଧରି ଯାଇଥିଲେ ତତ୍ ବିଷୟକ ସମସ୍ତ ତଥ୍ୟ ଧାରଣକାରୀ ଜାଣି ପାରନ୍ତି ଓ ଉକ୍ତ ଫଳର ସବୁ ଦିଗ ତାଙ୍କ ଦୃଷ୍ଟିଗୋଚର ହୁଏ । ସେହିପରି ଯେଉଁ ବିଷୟର ସବୁଦିଗ ଓ ସବୁତଥ୍ୟ ଅନ୍ବେଷଣକାରୀ ଜାଣି ପାରନ୍ତି ତାକୁ ହସ୍ତାମଳକ ସଙ୍ଗେ ତୁଳନା କରାଯାଏ ।] ୨। କରାୟତ୍ତ ବସ୍ତୁ—2. A thing in one's possession or under one's control. ୩। ପ୍ରତ୍ୟକ୍ଷ ବିଷୟ—3. Anything which is perceived by the senses. ୪। ଶଙ୍କରାଚାର୍ଯ୍ୟକୃତ ଅଦ୍ୱୈତବାଦ ବିଷୟକ ଗ୍ରନ୍ଥ ବିଶେଷ—4. The title of a philosophical work by Śankarāchārjya.

ହସ୍ତାର୍ପଣ—ସଂ. ବ—(ହସ୍ତ+ଅର୍ପଣ)—୧। କୌଣସି ବ୍ୟକ୍ତି ବା Hastārpana ବସ୍ତୁ ଉପରେ ନିଜର ହାତକୁ ରଖିବା—1. Laying one's hands on any person or thing. ୨। କୌଣସି କାର୍ଯ୍ୟ କରିବାକୁ ଆରମ୍ଭ—2. Beginning to do a work; undertaking a work. ୩। ( ୭ମୀ ତତ୍ )—କୌଣସି ବସ୍ତୁକୁ ଅନ୍ୟ ବ୍ୟକ୍ତିଙ୍କ ହସ୍ତରେ ଦେବା—3. Consignment of a thing to a person.

ହସ୍ତାଲିଙ୍ଗନ—ସଂ. ବ.—( ୩ୟା ତତ୍ )—କର ମର୍ଦ୍ଦନ—Shake-Hastālingana hand.

ହସ୍ତାହସ୍ତି—ସଂ ଅ (ହସ୍ତ+ହସ୍ତ+ଇ); ହସ୍ତମାନଙ୍କ ଦ୍ୱାରା ପ୍ରହାର ପୂର୍ବକ Hastāhasti ଯୁଦ୍ଧ)—ହାତାହାତି; ଦୁଇ ଜଣଙ୍କ ମଧ୍ୟରେ হাতাহাতি हाथाबाँही ପରସ୍ପର ହାତ ଦ୍ୱାରା ଯୁଦ୍ଧ—Hand to hand fighting.

ହସ୍ତିକ—ସ. ବ—(ହସ୍ତିନ୍ ଶବ୍ଦ+ସମୂହାର୍ଥେକ)—ହସ୍ତିସମୂହ—Hastika A number of elephants.

ହସ୍ତିକକ୍ଷ—ସ. ବ—ଏକପ୍ରକାର ବିଷାକ୍ତ କୀଟ (ହ. ଶ)—Hasti kaksha A kind of poisonous insect.

ହସ୍ତିକକ୍ଷ୍ୟ—ସଂ. ବି—(ବହୁବ୍ରୀହି; ହସ୍ତି+କକ୍ଷ+ଯ)—୧ । ସିଂହ—
Hasti kakshya (ଶବ୍ଦକଳ୍ପଦ୍ରୁମ)—1. Lion. ୨ । ବ୍ୟାଘ୍ର (ବୈଦ୍ୟକଳ୍ପଦ୍ରୁମ)—2. Tiger.

ହସ୍ତିକନ୍ଦ(ପତ୍ର)—ସଂ. ବି—( ବୈଦ୍ୟକ ) ବୃହତ୍ କନ୍ଦବିଶେଷ—A
Hasti kanda(patra) kind of root bulb; Raphanus sativus.
ସଂ.ପର୍ଯ୍ୟାୟ—[ଦ୍ର—ଏହା କଟୁ, ଉଷ୍ଣ ଓ କଫ, ବାତ, ହୃତ୍ ଦୋଷ, ସ୍ଥୂଳକନ୍ଦ, ଅତିକନ୍ଦକ, ଶ୍ରମ, କୁଷ୍ଠ, ଭୂତ, ବିସର୍ପ ନାଶକ, ବୃହତ୍ ପତ୍ର, ହସ୍ତିକର୍ଣ୍ଣ, ଶୁକ୍ରବର୍ଦ୍ଧକ; (ରାଜନିର୍ଘଣ୍ଟ) । ଏହା ସ୍ୱକର୍ଣ୍ଣିକ, ତ୍ୱଗ୍ଦୋଷାରି, କୋଙ୍କଣ ଦେଶରେ ଜନ୍ମେ । ]
କୁଷ୍ଠହନ୍ତ୍ରୀ, ଚିରବାସୀ,
କବାଟସ୍ଥ, ଗଜକନ୍ଦ,
ନାଗକନ୍ଦ (ରାଜନିର୍ଘଣ୍ଟ)।

ହସ୍ତିକରଞ୍ଜ—ସଂ. ବି—ବଡ଼ କରଞ୍ଜ, ମହାକରଞ୍ଜ, —
Hasti karañja Pongamia Indica. (tree).
ହସ୍ତିକରଞ୍ଜକ
ହସ୍ତିଚାରିଣୀ } ଅନ୍ୟରୂପ
ହସ୍ତିରୋହଣକ

ହସ୍ତିକର୍ଣ୍ଣ—ସଂ. ବି—୧ । ହାତୀର କାନ—1. The ear of an
Hasti karṇna elephant. ୨ । ଏରଣ୍ଡ—2. The castor oilseed plant; Clerodendrum Hastata [ଦ୍ର—ଏହାର ପତ୍ର ହସ୍ତିର କର୍ଣ୍ଣପରି ବଡ଼ ଥିବାରୁ । ] ୩ । ପଲାଶ ଭେଦ—3. A species of Palāsa; Butea Supurba. ୪ । ଗଣଦେବତା ଭେଦ—4. Name of one of a class of Dieties. ୫ । ହସ୍ତିକନ୍ଦ—5 A kind of root bulb. ୬ । ରକ୍ତୈରଣ୍ଡ—6 The red variety of castor oil seed plant. ୭। କଚୁ; ସାରୁ (ହି.ଶ)—7. Arum.

ହସ୍ତି କର୍ଣ୍ଣକ—ସଂ. ବି—ପଲାଶ ଭେଦ (ଶବ୍ଦରତ୍ନାବଳୀ)—
Hasti karṇṇaka A species of Palāsa.

ହସ୍ତିକା—ସଂ. ବି—ପ୍ରାଚୀନ ତନ୍ତ୍ରୀ ବାଦ୍ୟବିଶେଷ ( ହି. ଶ )—A
Hastikā kind of stringed instrument used in ancient times.

ହସ୍ତିକୋଲି—ସଂ ବି—ବଦରୀ ଭେଦ—
Hasti koli A species of Jujube.
ସଂ.ପର୍ଯ୍ୟାୟ—ଗୋପଘୋଣ୍ଟା, ଘୋଣ୍ଟା, କଦଳୀଛଦା—ଭିନ୍ନମାଳା।

ହସ୍ତିଗିରି—ସଂ. ବି—(ନାମ) କାଞ୍ଚିଦେଶ—
Hastigiri The country of Kāñchi in S. India.

ହସ୍ତି ଘୋଷା(ଘୋଷାତକୀ, ପର୍ଣ୍ଣ ପର୍ଣ୍ଣିକା)—ସଂ. ବି— ମହା କୋଷାତକୀ
Hasti ghoshā ( ghoshātaki, parṇṇa, parṇṇikā)
ସଂ.ପର୍ଯ୍ୟାୟ— ବୃହଦ୍ ଘୋଷା; ବଡ଼ ତରଡ଼ା; ମଧୁର ତରଡ଼ା—
ଝିଙ୍ଗା, ମହାତ୍ପୁଷ୍ପା, A species of luffa;Luffa Aegyptica.
ମହାକୋଷାତକୀ, [ଦ୍ର—ଏହା ସ୍ନିଗ୍ଧ, ସାରକ, ପିତ୍ତ ଓ ବାୟୁ ସର୍ପୀଡକା, ମହାଫଳା, ଧାମାର୍ଗବ, ନାଶକ, ମଦନାହିକୋଦ । ]
ଘୋଷକ ।

ହସ୍ତିଘ୍ନ—ସଂ. ବଣ—ହସ୍ତିନାଶକ—Killing elephants. ସଂ.
Hastighna ବି—ମନୁଷ୍ୟ (ଶବ୍ଦକଳ୍ପଦ୍ରୁମ)—Man

ହସ୍ତିଚାରିଣୀ—ସଂ. ବି— ହସ୍ତିକରଞ୍ଜ (ଦେଖ)—
Hasti chāriṇī Hasti karañja (See)

ହସ୍ତି ଚାଳକ—ସଂ. ବି. ପୁ—(ହସ୍ତିନ+ଚାଳକ) ମାହୁନ୍ତ—
Hastichālaka The driver of an elephant.

ହସ୍ତିଚାଳନ—ସଂ ବି—ହାତୀକୁ (ମାହୁନ୍ତର) ଚଳାଇବା—
Hastichalana Driving of an elephant.

ହସ୍ତିଜିହ୍ୱା—ସଂ ବି—ଶରୀରସ୍ଥ ଦଶନାଡ଼ୀ ମଧ୍ୟରୁ ଗୋଟିଏ ନାଡ଼ୀ—One
Hastijihwā of the ten veins of the body. [ଦ୍ର—ଏହା ଦକ୍ଷିଣ ଆଖିର ଗୋଟିଏ ନାଡ଼ୀ (ହି ଶ)]

ହସ୍ତିଦନ୍ତ—ସଂ ବି—(୬ଷ୍ଠୀତତ୍)—୧। ହାତୀଦାନ୍ତ—1. Tusk of
Hastidanta elephant; ivory. ୨ । ମୂଳକ; ମୂଳା—2. Radish. ୩ । ଦ୍ରବ୍ୟରକ୍ଷାର୍ଥ ଭିତ୍ତିଚାତ୍ରସ୍ଥକୀଲକ; ନାଗଦନ୍ତ କାଠି—3. A peg driven into a wall for hanging articles.

ହସ୍ତିଦନ୍ତକ (ଦନ୍ତୀ)—ସଂ. ବି—ମୂଳକ; ମୂଳା [ଶବ୍ଦମାଳା]—
Hasti dantaka (dantī) Radish.

ହସ୍ତିଦନ୍ତଫଳା—ସଂ ବି—ଏର୍ବାରୁ (ରାଜନିର୍ଘଣ୍ଟ);
Hastidantaphalā କାକୁଡ଼ି—Cucumber.

ହସ୍ତିଦ୍ୱୟସ—ସଂ ବି—(ହସ୍ତି+ଦ୍ୱୟସ)—ଗଜ ପରିମାଣ—
Hastidwayasa A measurement of elephants.

ହସ୍ତିନଖ—ସଂ. ବି—୧। (ହସ୍ତୀର ନଖପରି କ୍ରମନିମ୍ନ ବା କ୍ରମୋଚ୍ଚ ଥିବାରୁ
Hasti nakha ଦୁର୍ଗଦ୍ୱାରକୁ ଅବରୋଧ କରିବାପାଇଁ କ୍ରମନିମ୍ନ ବା) କ୍ରମୋନ୍ନତ ମୃତ୍କୂଟ ବା ମୃତ୍ତିକାସ୍ତୂପ (ଅମର); ବୁରୁଜ—। (ଯାହା ଉପରେ ଠିଆ ହୋଇ ବିପକ୍ଷଙ୍କ ପ୍ରତି କାଣ୍ଡ ମରାଯାଏ)—1. A sloping mound of earth in front of the gate of a fort. ୨। ହାତୀର ନଖ—2. The nail of the feet of an elephant

ହସ୍ତିନ—ସଂ. ବି (ହସ୍ତିନ୍+ଅ)—ହସ୍ତିନା (ଦେଖ)—
Hastina Hastinā (See)

ହସ୍ତିନ (ନା, ନୀ) ପୁର—ସଂ. ବି [ନାମ]—ହସ୍ତିନା (ଦେଖ)—
Hastina (nā, nī) pura Hastinā (See)

ହସ୍ତିନା—ସଂ. ବି (ନାମ)—[ହସ୍ତିନ୍=ହସ୍ତୀ ନାମଧାରୀ ରାଜାଙ୍କ ପୁର)
Hastinā ଚନ୍ଦ୍ରବଂଶୀୟ ହସ୍ତୀ ନାମକ ରାଜାଙ୍କ ନିର୍ମିତ ରାଜଧାନୀ; ଅଧୁନିକ ଦିଲ୍ଲୀର ପ୍ରାଚୀନ ନାମ (କୁରୁ ପାଣ୍ଡବଙ୍କ ରାଜଧାନୀ)—The ancient name of modern Delhi.
ସଂ ପର୍ଯ୍ୟାୟ— [ଦ୍ର—ଅଧୁନିକ ପଣ୍ଡିତମାନେ ସ୍ଥିର କରି
ନାଗାହ୍ୱ; ଗଜାହ୍ୱ, ଅଛନ୍ତି ଯେ, ଏହା ଅଧୁନିକ ଦିଲ୍ଲୀ ନଗରୀର
ଗଜାହ୍ୱୟ, ନାଗସାହ୍ୱୟ ୨୮ କୋଶ ପୂର୍ବରେ ଥିଲା—(ହି. ଶ)
ଗଜସାହ୍ୱୟ ।

ହସ୍ତିନା ବାରୁଣା—ଦେ. ବ—(ସଂ ହସ୍ତିନାପୁର ଓ ବାରୁଣାବତ)—୧ । Hastina bārunā ଅତୁଲ ବିଭବ ବା ଐଶ୍ୱର୍ଯ୍ୟ—1 Immeasurable wealth. ଅତୁଲ ବିଭବ ୨ । ହସ୍ତିନାପୁର ବା ବାରୁଣାବତ ହସ୍ତିନାବାରଣା ଭଳି ସମୃଦ୍ଧ ସାମ୍ରାଜ୍ୟ ବା ନଗର—2. A country or town as the Hastināpura and the Bārunābata of old. [ଯଥା—ହସ୍ତିନା ବାରୁଣା ତ ରହୁ ନାହିଁ, ଏ ସମ୍ପତ୍ତି କେତେ ଦିନ ରହିବ ?]

ହସ୍ତିନାସା—ସଂ. ବ (୬ଷ୍ଠୀ ତତ୍)—ହାତୀର ଶୁଣ୍ଢ (ହ. ଶ)— Hastināsā The trunk of an elephant.

ହସ୍ତିନୀ—ସଂ. ବ ସ୍ତ୍ରୀ (ହସ୍ତିନ୍+ସ୍ତ୍ରୀ ଈ)—୧ । କରଣୀ; ହାତୁଣୀ; ମାଈ Hastini ହାତୀ—1. A female elephant; a she-elephant. ସଂ. ପର୍ଯ୍ୟାୟ— [ବୃ—ବୈଦ୍ୟଶାସ୍ତ୍ରାନୁସାରେ କରେଣୁ, ରେଣୁକା, ଏହାର ଦୁଗ୍ଧ ମଧୁର, ବୃଷ୍ୟ, ଗୁରୁ, କଷାୟ, କରେଣୁକା, ଧେନୁକା, ସ୍ନିଗ୍ଧ, ସ୍ଥୈର୍ଯ୍ୟକର, ଶୀତଳ, ଚକ୍ଷୁଷ୍ୟ, ବଳ-ବାସା, ବାସିତା, କରଣୀ ବର୍ଦ୍ଧକ ।] ବଶା, କଣ୍ଟମୃଗ, ପୁଷ୍କରଣୀ, ଏହାର ଦଧି—କଷାୟ, ଲଘୁ, ଉଷ୍ଣ, ଭଦ୍ରା, କଷା, ଗଣିକା, ଗୁଲ୍ମହର, ରୁଚିପ୍ରଦ, ଦୀପ୍ତିଦ, ସ୍ୱାର୍ଥ୍ୟ-ଗଜଯୋଷିତ୍, ଇଭୀ, ମାତଙ୍ଗୀ, ବର୍ଦ୍ଧକ, ବଳପ୍ରଦ । ପଦ୍ମିନୀ । ଏହାର ନବନୀତ—କଷାୟ, ଶୀତଳ, ଲଘୁ, ତିକ୍ତ, ବିଷ୍ଟମ୍ଭୀ, ପିତ୍ତ କଫ କୃମି ନାଶକ । ଏହାର ଘୃତ—କଫ ପିତ୍ତ କୃମି ବିଷ ନାଶକ, କଷାୟ, ବିଷ୍ଟମ୍ଭୀ, ଅଗ୍ନିକର—ରାଜନିର୍ଘଣ୍ଟ ।] ୨ । ଚତୁର୍ବିଧ ସ୍ତ୍ରୀ ଜାତି ମଧ୍ୟରୁ ଏକତମା—2. One of the 4 classes in to which females are divided. (ବୃ—ଏହାଙ୍କ ଲକ୍ଷଣ—ସ୍ଥୂଳାଧରା, ସ୍ଥୂଳ-ନିତମ୍ବଭାଗା, ସ୍ଥୂଳାଙ୍ଗୁଳି, ସ୍ଥୂଳକୁଚ, ସୁଶୀଳା, କାମୋତ୍ସୁକା, ଗାଢ଼ ରତିପ୍ରିୟା, ନିତମ୍ବଖର୍ବା ଇଳ ହସ୍ତିଗନ୍ଧଯୁତ— ରତିମଞ୍ଜରୀ) ୩ । ହଟ୍ଟବିଳାସିନୀ; ସୁଗନ୍ଧିତ ଦ୍ରବ୍ୟବିଶେଷ (ଶବ୍ଦଚନ୍ଦ୍ରିକା)—3. A kind of medicinal scent. ୪ । ହସ୍ତିଶୁଣ୍ଡୀବୃକ୍ଷ (ଦେଖ)—4. Hastisundā bruksbya (See)

ହସ୍ତିପ—ସଂ. ବ ପୁଂ. (ହସ୍ତିନ୍+ପା ଧାତୁ=ପାଳିବା+କର୍ତ୍ତୃ ଅ)—୧ । Hastipa ହାତୀଆଳ; ହସ୍ତିଚାଳକ; ମାହୁନ୍ତ—1. The driver ସଂ. ପର୍ଯ୍ୟାୟ— of an elephant. ୨ । ଗଜାରୋହୀ ଗଜାରୋହ, ହସ୍ତ୍ୟାରୋହ ଯୋଦ୍ଧା—2. A warrior fighting ଅଧୋରଣ, ନିଷାଦୀ । on an elephant.

ହସ୍ତିପକ—ସଂ. ବ—(ହସ୍ତିପ+ସ୍ୱାର୍ଥେକ)—ହସ୍ତିପ (ଦେଖ)— Hastipaka Hastipa (See)

ହସ୍ତିପକା—ଦେ. ବ (ସଂ. ହସ୍ତିପ କ)—ହସ୍ତିପ (୨) ଦେଖ— Hastipakā Hastipa (2) (See) [ବୃ—ଭରିବେଟ ଭୂମୀ ହସ୍ତିପକା; ବଳେ ପ୍ରକାଶ ଜୟ ପତାକା—ଦୀନକୃଷ୍ଣ- ରସକଲ୍ଲୋଳ]

ହସ୍ତିପର୍ଣ୍ଣୀ—ସଂ.ବ—୧ । ମୋଟଗଛ ଲତା (ହେମଚନ୍ଦ୍ର)—1. A creeper with big leaves. Hastiparnni ୨ । କର୍କଟୀ— (ରାଜନିର୍ଘଣ୍ଟ)—2. Cucumber.

ହସ୍ତିପିପ୍ପଳି—ସଂ, ବ—ଗଜ ପିପଳି (ଦେଖ)— Hastipippali Gajapippali (See)

ହସ୍ତିପ୍ରମେହ (ମେହ)—ସଂ. ବ—ଏକ ପ୍ରମେହ ରୋଗ—A kind Hasti prameha (meha) of gonorrohea; [ବୃ—ଏ ରୋଗରେ ମୂତ୍ର ସଙ୍ଗେ ହସ୍ତୀମଦ ପରି ବସ୍ତୁ ବିନା ବେଗରେ ସୂତାପରି ପଡ଼େ ଓ ରହିରହି ପ୍ରସ୍ରାବ ହୁଏ (ହ. ଶ.)]

ହସ୍ତିବାରୁଣୀ—ସଂ.ବ—କରଞ୍ଜୀ; ଗିଲ (ଗୁଳ୍ମ)—A thorny plant. Hastibāruni [ବୃ—ଏହା ତ୍ରିମୂଳକାରକ, ତିକ୍ତ କଷାୟ, କଟୁ-ସଂ. ପର୍ଯ୍ୟାୟ— ବିପାକ, ଉଷ୍ଣବୀର୍ଯ୍ୟ, ପିତ୍ତ, ଅର୍ଶ, କୃମି, କରଭଞ୍ଜିକା, ମର୍କଟୀ, ଉଦକାର୍ଯ୍ୟ, କୁଷ୍ଠ, ପ୍ରମେହ ଓ ବମନ ନାଶକ] ଷଡ଼ଗ୍ରନ୍ଥି, ବାୟସୀ, କରଞ୍ଜୀ ।

ହସ୍ତିବାହ—ସଂ.ବ—(ହସ୍ତିନ+ବହ ଧାତୁ+କରଣ. ଅ)—ହାତୀଅଙ୍କୁଶ; Hastibāha ଗଜଚାଳନ ଦଣ୍ଡ ବା ଅଙ୍କୁଶ—A hooked iron stick used in driving an elephant.

ହସ୍ତିବିଷାଣୀ—ସଂ. ବ—କଦଳୀ (ରାଜନିର୍ଘଣ୍ଟ)— Hastibishāni Plantain.

ହସ୍ତିମଦ—ସଂ. ବ (ମ. ପ, ଲୋ ବା ୬ଷ୍ଠୀ ତତ୍, ହସ୍ତି+ମଦ)— Hasti mada କାମମତ୍ତ ହସ୍ତୀର ଗଣ୍ଡଦେଶସ୍ଥ ଦୁଇପାଖର ଛିଦ୍ରରୁ ସଂ. ପର୍ଯ୍ୟାୟ— ବୋହିବା ଉତ୍କଟ ଗନ୍ଧଯୁକ୍ତ ଜଳୀୟ ରସ-ମଦ, ଗଜମଦ, ଗଜଦାନ, A strong something juice କୁମ୍ଭମଦ, ଦନ୍ତିମଦ, ଦାନବାରି, flowing from the temples ବାନ, ଦ୍ୱିପମଦ । of an elephant in rut. [ବୃ—ଏହା ସ୍ନିଗ୍ଧ, ତିକ୍ତ, କେଶ୍ୟ, ଅପସ୍ମାର, ବିଷ, କୁଷ୍ଠ, କଣ୍ଡୂ, ବ୍ରଣ, ଦଦ୍ରୁ ଓ ସେର୍ପନାଶକ (ରାଜନିର୍ଘଣ୍ଟ)]

ହସ୍ତିମଲ୍ଲ—ସଂ. ବ (ହସ୍ତିନ୍+ମଲ୍ଲ)—୧ । ରଣହସ୍ତୀ—1. An ele- Hastimalla phant used in war. ୨ । ଐରାବତ ହସ୍ତୀ—2. The elephant of Indra. ୩ ଗଣେଶ—3. A name of a Ganesa. ୪ । ପାତାଳ-ବାସୀ ଶ୍ୱେତ ନାଗ—4. Name of a white serpent of the nether world. ୫ । ମହାମଲ୍ଲ—5. A great athlet. ୬ । ଭଗ୍ନସ୍ତୂପ—6. A broken mound. ୭ । ଧୂଳି ବର୍ଷଣ—7. Raining of dust ୮ । ପାଉଁଶ ଗଦା (ହ. ଶ)—8. A mound of ashes.

ହସ୍ତିମାଂସ—ସଂ ବ (୬ଷ୍ଠୀ ତତ୍; ହସ୍ତିନ୍+ମାଂସ)—ହାତୀର ମାଂସ— Hastimāmsa The meat of elephant. [ବୃ—ବୈଦ୍ୟଶାସ୍ତ୍ର ମତେ ଏହା ଅମ୍ଳ, ଲବଣ, ମଧୁରରସ, ଗୁରୁପାକ, ସ୍ନିଗ୍ଧ, ଦୁର୍ଜର, ଅଗ୍ନିମାନ୍ଦ୍ୟ ଜନକ, ପୁଷ୍ଟିକର,

ବାତଶ୍ଳେଷ୍ମଜନକ, କିନ୍ତୁ ସୁଶ୍ରୁତ ମତରେ ବାତଶ୍ଳେଷ୍ମ ନାଶକ)

ହସ୍ତିମୁଖ — ସଂ. ବି ପୁଂ (ବହୁବ୍ରୀହି)—ଗଜାନନ; ଗଣେଶ—
Hastimukha Gaṇesa

ହସ୍ତି ମୂର୍ଖ — ଦେ. ବିଣ ଓ ବି—ମହାମୂର୍ଖ; ଗଜମୂର୍ଖ; ଅତି ନିର୍ବୋଧ(ବ୍ୟଙ୍ଗ)—
Hasti mūrkha A very foolish or dunce person;
ହସ୍ତିମୂର୍ଖ ଗଧା a big dunce.

ହସ୍ତିମୂତ୍ର—ସଂ. ବି—(୬ଷ୍ଠୀ ତତ୍, ହସ୍ତିନ୍+ମୂତ୍ର)—ହାତୀର ମୂତ୍ର—
Hasti mūtra The urine of elephant.

( ଦ୍ର—ବୈଦ୍ୟଶାସ୍ତ୍ରମତେ ଏହା କଷାୟୁକ୍ତ ଲବଣରସ, ଉଷ୍ଣବୀର୍ଯ୍ୟ, ବାୟୁ ନାଶକ ଏବଂ ହୃଦ୍ରୋଗ, ଶ୍ୱାସ, ଶୂଳ ଓ ଭୂତାବେଶରେ ଉପକାରକ ; ଏହାକୁ ଦେହରେ ଲଗାଇଲେ କଣ୍ଡୁ, ଦଦ୍ରୁ ଓ ବିସର୍ପ ରୋଗର ଉପଶମ ହୁଏ ।)

ହସ୍ତି ଯୂଥ—ସଂ. ବି—(୬ଷ୍ଠୀତତ୍)—ହାତୀଙ୍କ ପଲ୍ଲ—
Hasti jūtha A herd of elephants.

ହସ୍ତି ରୋହଣକ—ସ. ବି—ହସ୍ତିକରଞ୍ଜ (ଦେଖ)—
Hasti rohaṇaka Hasti karañja (See)

ହସ୍ତିଲୋଧ୍ରକ—ସଂ. ବି—ଲୋଧ୍ର (ସ୍ୱଜାତିଗନ୍ଧ) (ଦେଖ)—
Hasti lodhraka Lodhra (See).

ହସ୍ତିଶାଳା—ସ. ବି (ଷଷ୍ଠୀ ତତ୍)—ଯେଉଁ ଘରେ ହାତୀ ବନ୍ଧାଯାଇଥାନ୍ତି; ପିଲ୍‌ଖାନା; ହାତୀଶାଳ—A house for
Hasti sālā stabling elephants.

ହସ୍ତିଶୁଣ୍ଡ—ସ. ବି—(୬ଷ୍ଠୀତତ୍) ହାତୀର ଶୁଣ୍ଢ ବା ଥୋଡ଼ ପାହାର—
Hasti śuṇḍa The trunk of an elephant.

ହସ୍ତିଶୁଣ୍ଡା(ଣ୍ଡୀ)—ସ ବି—ହାତୀଶୁଣ୍ଢା ଗୁଳ୍ମ—Helistropium
Hasti śuṇḍā(ṇḍī) Indicum (plant).

ହସ୍ତିଶୁଣ୍ଡି[ଣ୍ଡୀ]
ହସ୍ତିଶୁଣ୍ଡୀ[ଣ୍ଡୀ] } —ଅନ୍ୟରୂପ]
ଅନ୍ୟ ସ ନାମ—ହସ୍ତିନୀ, ଶୁଣ୍ଡୀ, ଧୂସର ପତ୍ରିକା, ଭୂରୁଣ୍ଡୀ, ଧୂସରପତ୍ରୀ]
ହାତୀଶୁଣ୍ଢା
ହାତୀ ଶୁଣ୍ଡ
ମ. ନେଳବେଲ
ତେ. ତେଳ୍ଳମନ୍ଦୀ

[ଦ୍ର—ଏହା ଓଦାଳିଆ ପଡ଼ିଆ ଜାଗାରେ ଜନ୍ମିବା ବନ୍ୟ, ଶୋଥ, ଖରଲୋମଶ ବର୍ଷାୟୁ ଶାକବିଶେଷ, ଫୁଲ ନେଳିଆ; ମଞ୍ଜରୀରେ ଦୁଇ ଧାଡ଼ି ଫୁଲ ଧରେ; ମଞ୍ଜରୀର ଅଗ ହାତୀ ଶୁଣ୍ଢ ପରି ବଙ୍କା ହୋଇଥାଏ । ଏହା କଟୁ, ଉଷ୍ଣବୀର୍ଯ୍ୟ, ସନ୍ନିପାତ ଓ ଜ୍ୱରନାଶକ ଏବଂ ବାହ୍ୟ ଓ ଅଭ୍ୟନ୍ତର ପ୍ରୟୋଗରେ ସର୍ପ ଓ ବୃଶ୍ଚିକାଦିଙ୍କ ବିଷନାଶକ ।] ଦେ. ବି—ହାତୀଶୁଣ୍ଢା ରୋଗ; ଯେଉଁ ବାତରୋଗରେ ପୁରୁଷଙ୍କ ଲିଙ୍ଗକୁ ରକ୍ତ ଚଢ଼ି ତାହା (ହସ୍ତିଶୁଣ୍ଡ ପରି) ସ୍ଥୂଳ ହୋଇଯାଏ । —
Elephantiasis of the penis; tumour on the penis.

ହସ୍ତିଶ୍ୟାମାକ—ସ. ବି ୧ । ହାତିଆ ଶୁଆଁ; ଶସ୍ୟବିଶେଷ; ଏକପ୍ରକାର
Hasti śyāmāka ବଡ଼ ଶୁଆଁ ଧାନ—
ହତିୟାଶ୍ୟାମା କାଳା ସାବାଁ 1. A kind of wild grain.

[ଦ୍ର—ଏହା ଧାତୁଶୋଷକ, ପିତ୍ତଶ୍ଳେଷ୍ମନାଶକ, ବାୟୁବର୍ଦ୍ଧକ ଓ ରୁକ୍ଷ, ଏବଂ ଶ୍ୟାମା ଧାନର ଅନ୍ୟଗୁଣବିଶିଷ୍ଟ ବୋଲି କଥିତ ।] ୨ । ବାଜରା ଶସ୍ୟ [ ହି. ଶ ]—
2. Indian maize.

ହସ୍ତି ଷଡ଼ଗବ—ସଂ. ବି—(୬ଷ୍ଠୀତତ୍)—ଏକତ୍ରାବସ୍ଥିତ ଛଅ ହାତୀ—
Hasti shadgaba A collection of six elephants (Apte).

ହସ୍ତି ହସ୍ତ—ସ ବି [ଷଷ୍ଠୀ ତତ୍; ହସ୍ତିନ୍+ହସ୍ତ]—ହାତୀର ଶୁଣ୍ଢ—
Hasti hasta The trunk of elephant

ହସ୍ତୀ—ସ ବି. ପୁଂ [ହସ୍ତିନ୍ ଶବ୍ଦ ୧ମା ୧ବ] ହାତୀ; କରୀ; ଭାରତରେ ଓ
Hasti ଆଫ୍ରିକାରେ ମିଳୁଥିବା ବୃହଦାକାର
[ହସ୍ତିନୀ—ସ୍ତ୍ରୀ] ଓ ଶୁଣ୍ଢଯୁକ୍ତ ପଶୁ—1. The
ହାତୀ ହଥୀ ହାଥୀ elephant.

ସ. ପର୍ଯ୍ୟାୟ—ଇଭ, କରୀ, ଅନେକପ, ଅନ୍ତଃସ୍ୱେଦ, କଟୀଙ୍ଗ, କଟୀ, କରଟୀ, କରେଣୁ, କରେଣୁ, କର୍ଣ୍ଣିକ, କୁଞ୍ଜର, କୁମ୍ଭୀ, ଗଜ, ଜଳକଙ୍କ, ଜଳକାଙ୍କ୍ଷ, ଦୀର୍ଘମାରୁତ, ଦନ୍ତାବଳ, ଦନ୍ତୀ, ଦ୍ୱିରଦ, ଦ୍ୱିରଦନ, ଦ୍ୱିପ, ଦ୍ରୁମାରି, ନାଗ, କର୍ଣ୍ଣର, ପଞ୍ଚନଖ, ପଦ୍ମୀ, ପିଣ୍ଡପାଦ, ପୀଲୁ, ପୁଷ୍କରୀ, ପେଚଲ, ପେଚକୀ, ବରଙ୍ଗ, ବାରଣ, ବଲ୍ଲୋମହକ, ବିଷାଣୀ, ଭଦ୍ର, ମତଙ୍ଗ, ମତଙ୍ଗଜ, ମହାବଳ; ମହାମଦ, ମହାମୃଗ, ମାତଙ୍ଗ, ରଜସ, ରଦାବ, ଲଡାଳକ, ଲଗୀ, ଶୂର୍ପକର୍ଣ୍ଣ, ଶଙ୍କାଙ୍କ, ଷଷ୍ଟିହାୟନ, ସାମଯୋନି, ସିନ୍ଦୁରତିଲକ, ସାମଜ, ସିନ୍ଧୁର, ସ୍ତମ୍ବେରମ, ସ୍ତରମ ।]

[ଦ୍ର—ପ୍ରାଚୀନ ଭାରତୀୟମାନେ ହସ୍ତୀମାନଙ୍କୁ ଚାରି ଶ୍ରେଣୀରେ ବିଭକ୍ତ କରୁଥିଲେ । ଯଥା—

୧ । ଭଦ୍ର—ଉଚ୍ଚ ୭ ହାତ, ଦୀର୍ଘ ୮ ହାତ, ଉଦରର ପରିଧି ୧୦ ହାତ । ଏମାନେ ବର୍ତ୍ତୁଳାକାର, ବଳବାନ ଓ ସମାନ ପ୍ରତ୍ୟଙ୍ଗବିଶିଷ୍ଟ । ଏମାନଙ୍କ ଦନ୍ତର ବର୍ଣ୍ଣ ଈଷତ୍ ହଳଦିଆମିଶା ଫଳା ନାଲି ।

୨ । ମନ୍ଦ—ଉଚ୍ଚତା ଓ ଉଦର ପରିଧି ଭଦ୍ରଠାରୁ ହାତେ ଲେଖାଏଁ କମ୍; ଦୀର୍ଘତାରେ ଭଦ୍ରର ସମାନ । ଏମାନେ ସ୍ଥୂଳୋଦର, ସିଂହଦୃଷ୍ଟି, ବୃହଚ୍ଚର୍ମ, ବୃହଦ୍‌ଗଳଦେଶ, ଦୀର୍ଘମୁଣ୍ଡ ଓ ଦୀର୍ଘାବୟବ ।

୩ । ମୃଗ—ଏମାନେ ଉଚ୍ଚତା, ଦୈର୍ଘ୍ୟ ଓ ଉଦର ପରିଧିରେ ଭଦ୍ରଠାରୁ ହାତେଲେଖାଏଁ କମ୍ । ଏମାନଙ୍କ କଣ୍ଠ, ଦନ୍ତ, କର୍ଣ୍ଣ, ଶୁଣ୍ଢ କ୍ଷୁଦ୍ରତର, ଚକ୍ଷୁ ସ୍ଥୂଳ ଓ ଅଧର ଖର୍ବ ।

୪ । ମିଶ୍ର ବା ମିଶ୍ର ମାତଲୀ—ଉପର୍ଯ୍ୟୁକ୍ତ ତିନିପ୍ରକାରର ହସ୍ତୀଙ୍କର କୌଣସି କୌଣସି ଲକ୍ଷଣଯୁକ୍ତ ।

ମହାଭାରତରେ ସୁପ୍ରତୀକ ଅଷ୍ଟଦିଗ୍‌ହସ୍ତୀଙ୍କ ନାମାନୁସାରେ ଶାସ୍ତ୍ରକାରମାନେ ହାତୀଙ୍କୁ ଆଠ ଶ୍ରେଣୀରେ ବିଭକ୍ତ କରିଅଛନ୍ତି ।

୧ । ଐରାବତ—ପାଣ୍ଡୁର, ଦୀର୍ଘ, ଅଳ୍ପ ଶ୍ଳେଷ୍ମଯୁକ୍ତ ଶୁଭ୍ରଦନ୍ତ ।

୨ । ପୁଣ୍ଡରୀକ—କୋମଳଦେହ, ତୀକ୍ଷ୍ଣଦନ୍ତ, ଅତ୍ୟନ୍ତ ଜଳପ୍ରିୟ ।

୩ । ବାମନ—କର୍କଶଦେହ, ଖର୍ବ, ଶ୍ଳେଷ୍ମଳ, ହ୍ରସ୍ୱପୁଚ୍ଛ ଓ ହ୍ରସ୍ୱକର୍ଣ୍ଣ ।

୪ । କୁମୁଦ—ଦୀର୍ଘ, କୁଦନ୍ତ, ସ୍ଥୂଳଗଣ୍ଡ, ମଳପୂର୍ଣ୍ଣଦେହ, ଅତ୍ୟନ୍ତ କୋପନସ୍ୱଭାବ ।

୫ । ସୁପ୍ରଦନ୍ତ—ଅନୂପଦେଶଜାତ, ହ୍ରସ୍ୱପୁଚ୍ଛ ଓ ଶୀଘ୍ରଗାମୀ ।

୬ । ସାର୍ବଭୌମ—ମରୁପ୍ରଦେଶବିଚରଣକାରୀ, ଦୀର୍ଘକାୟ, କର୍କଶଦେହ । (ଏମାନଙ୍କଠାରୁ ଗଜମୁକ୍ତା ମିଳେ ।)

୭ । ସୁପ୍ରତୀକ—ଦୀର୍ଘଶୁଣ୍ଡ, ସ୍ଥୂଳଗଣ୍ଡ, ସର୍ବଦା ଭକ୍ଷ୍ୟପ୍ରିୟ, ହସ୍ତିଗୌରବ ।

୮ । ଅଞ୍ଜନ—ସ୍ନିଗ୍ଧଦେହ, ଉନ୍ନତମୁଖ, ସ୍ଥୂଳଦନ୍ତ, ଜଳାଭିଳାଷୀ ।

ବର୍ତ୍ତମାନ ଭାରତର ହସ୍ତିବ୍ୟବସାୟୀମାନେ ହାତୀଙ୍କୁ ପାଞ୍ଚ ଶ୍ରେଣୀରେ ବିଭକ୍ତ କରିଅଛନ୍ତି ।

୧ । ବେହେଦର୍—ଯେଉଁ ହାତୀର କାନ ଉପରେ ଧଳା ଛିଟ୍ ଥାଏ । ଏମାନେ ଦୀର୍ଘକାୟ ଓ ବଡ଼ ବଡ଼ ଦନ୍ତବିଶିଷ୍ଟ ।

୨ । ମୁଣ୍ଡ—ବର୍ତ୍ତୁଳବପୁ, କୃଷ୍ଣବର୍ଣ୍ଣ, ପୀତବର୍ଣ୍ଣ ନୟନବିଶିଷ୍ଟ; ଏମାନେ ଦୁର୍ଦ୍ଧର୍ଷ ।

୩ । ମୁଇଗ—ଘୋରଭ କୃଷ୍ଣବର୍ଣ୍ଣ ହସ୍ତୀ ।

୪ । ମୀର୍ଗ—ପାଂଶୁବର୍ଣ୍ଣ ଓ ସହଜରେ ସାଧ୍ୟ ।

୫ । ଗଜଭୂଟ୍—ସର୍ବାପେକ୍ଷା ଦୀର୍ଘକାୟ ଓ ଶାନ୍ତପ୍ରକୃତିକ (ଗଜେନ୍ଦ୍ର) ।

ଭାରତବର୍ଷର ଜଙ୍ଗଲମାନଙ୍କରେ ଓ ବ୍ରହ୍ମଦେଶରେ ବନ୍ୟହାତୀ ଥାଆନ୍ତି । ଗଭର୍ଣ୍ଣମେଣ୍ଟ ଏବଂ ରାଜାମାନେ 'ଖେଦା' କରି ହାତୀମାନଙ୍କୁ ଧରି ତାଙ୍କୁ ପୋଷ ମନାଇ, ନାନା କାର୍ଯ୍ୟରେ ଲଗାନ୍ତି ଓ ଏମାନଙ୍କ ପିଠିରେ ଚଢ଼ନ୍ତି । ଏମାନେ ପୂର୍ବେ ଯୁଦ୍ଧରେ ବ୍ୟବହୃତ ହେଉଥିଲେ ।

ଆଫ୍ରିକାର ଜଙ୍ଗଲରେ ଓ ମରୁଭୂମିରେ ଥିବା ହାତୀମାନେ କ୍ଷୁଦ୍ରକାୟ ଓ ସହଜରେ ସାଧ୍ୟ ହୁଅନ୍ତି ନାହିଁ । ବ୍ରହ୍ମଦେଶରେ ମିଳୁଥିବା ଶ୍ୱେତବର୍ଣ୍ଣ ଯୁକ୍ତ ହସ୍ତୀକୁ ବୌଦ୍ଧମାନେ ପୂଜା କରନ୍ତି ଓ ଏହା ସେ ଦେଶରେ ରାଜପୂଜିତ ଅଟେ ।

ପୁରାଣ ମତରେ ପୃଥିବୀର ଆଠ ଗୋଟି ଦିଗରୁ ଆଠଗୋଟି ହସ୍ତୀ (ଦିଗ୍‌ବାରଣ) ଟେକି ଧରି ଅଛନ୍ତି । ଉକ୍ତ ହସ୍ତୀମାନଙ୍କର ଗୋଟିଏ ଲେଖାଏଁ ହସ୍ତିନୀ ମଧ୍ୟ ଅଛନ୍ତି । ଇନ୍ଦ୍ରଙ୍କର ବାହନ ଐରାବତ ହସ୍ତୀ ।

ହାତୀମାନେ ଦଳବଦ୍ଧ ହୋଇ ବନରେ ବୁଲନ୍ତି । ଗୋଟିଏ ବୃଦ୍ଧ ହସ୍ତୀ ସେ ଦଳର ନେତା ଥାଏ । ହସ୍ତୀମାନେ ଫଳ ପତ୍ର ଡାଳ ଟୁଲ ଖାଇ ବଞ୍ଚନ୍ତି । ଜଙ୍ଗଲ ନିକଟସ୍ଥ କ୍ଷେତମାନଙ୍କରେ ଏମାନେ ରାତ୍ରିରେ ପଶି ବିଶେଷ ନଷ୍ଟ କରନ୍ତି । ୨ । ଚନ୍ଦ୍ରବଂଶୀୟ ସୁହୋତ୍ରୀ ରାଜାଙ୍କ ପୁତ୍ର—2. Name of a king of the Lunar dynasty who founded the ancient Hastināpura (the modern Delhi). [ଦ୍ର—ଏ ହସ୍ତିନାପୁରକୁ ନିର୍ମାଣ କରାଇଥିଲେ । (ବିଷ୍ଣୁପୁରାଣ ୪ର୍ଥ ଅଂଶ, ୧୯ ଅଧ୍ୟାୟ) ଏହାଙ୍କର ତିନିପୁତ୍ର—ଅଜମୀଢ଼, ପୁରୁମୀଢ଼, ଦ୍ୱିମୀଢ଼ ।] ୩ । ଅଜାମୋଦା—( ରାଜନିର୍ଘଣ୍ଟ ); ବଣ—ଜୁଆଣୀ 3. Pimpinella Involucrata; Ligusticum Ajwan. ୪ । ( ନାମ )—ଧୃତରାଷ୍ଟ୍ରଙ୍କ ଏକପୁତ୍ର (ହି. ଶ)—4. Name of a son of Dhrutarāshṭra. [ଦ୍ର—ହସ୍ତୀ ଶବ୍ଦ 'ହସ୍ତିନ୍' ଶବ୍ଦର ୧ମା ୧ବଚନ ଅଟେ । ଏଥିପାଇଁ ଏହି ଶବ୍ଦ ଏକୁଟିଆ ବ୍ୟବହୃତ ହେଉଥିବେଳେ ହସ୍ତୀ ଲେଖାଯାଏ । କିନ୍ତୁ ଏହା ସଙ୍ଗେ ସମାସରେ ଅନ୍ୟ ଶବ୍ଦ ଯୁକ୍ତ ହେଲେ ଏହା "ହସ୍ତି" ରୂପ ଧାରଣ କରେ—ଯଥା—ହସ୍ତିକର୍ଣ୍ଣ, ହସ୍ତିଦନ୍ତ । ସବୁ ଇନ୍ ଭାଗାନ୍ତ ଶବ୍ଦମାନଙ୍କର ସମାସରେ ଏହିପରିଅବସ୍ଥା ହୋଇଥାଏ]

ହସ୍ତେ—ଅ.ଅ.—ସ୍ୱୀକାର ସୂଚକ—An interjection indicating Haste consent. ବେ.ଅ. ୧ । ଜରିଆରେ; ଦ୍ୱାରା; ମାରଫତେ—ହସ୍ତେ, হাতে দ্বারা 1. Through; per. (ଯଥା—ତାଙ୍କ ହସ୍ତେ, ମୁଁ ଟ ୧୦୯ଙ୍କା ପଠାଇଲି ।) ୨ । ଦ୍ୱାରା; ଦେଇ—2. By. (ଯଥା—ଏହାଙ୍କ ହସ୍ତେ ଏ କାର୍ଯ୍ୟ ହୋଇ ପାରିବ ନାହିଁ ।) ୩ । ନିକଟରେ; ଠାରେ;ଅଧିକାରରେ—3. With; in the possession of. [ଯଥା—ମୋ ହସ୍ତେ ଧନ ନାହିଁ ।]

ହସ୍ତେକରଣ—ସଂ. ବି—(ଅଲୁକ୍ ସମାସ )—ପାଣିଗ୍ରହଣ; ବିବାହ Hastekaraṇa (ଶବ୍ଦକଳ୍ପଦ୍ରୁମ)—Marriage.

ହସ୍ତୋଦକ—ସଂ. ବି—(ମ.ପ. ଲୋ: ହସ୍ତଧୃତ ଉଦକ,ହସ୍ତ+ଉଦକ)—Hastodaka ହାତରେ ଧରା ହୋଇଥିବା ଜଳ—Water held in one's hands.

ହସ୍ତ୍ୟ—ସଂ. ବିଣ—(ହସ୍ତ+ଯ)—୧ । ହସ୍ତଦ୍ୱାରା କୃତ—1. Done Hastya by the hands; manufactured. ୨ । ହସ୍ତ ଦ୍ୱାରା ଦତ୍ତ—2. Given away by the hands.

ହସ୍ତ୍ୟଧ୍ୟକ୍ଷ—ସଂ. ବି—(୬ଷ୍ଠୀ ତତ୍, ହସ୍ତିନ୍=ହାତୀ+ଅଧ୍ୟକ୍ଷ= Hastyadhyaksha ତତ୍ତ୍ୱାବଧାରକ ।)—ଗଜାଧ୍ୟକ୍ଷ; ରାଜାଙ୍କର ହାତୀ ମାନଙ୍କ ତତ୍ତ୍ୱ ନେବା ପାଇଁ ନିଯୁକ୍ତ ବ୍ୟକ୍ତି—An officer engaged to look after the elephants of a king.

ହସ୍ତ୍ୟଶନ—ସଂ. ବି—ଜୈବନ୍ ଗଛ (ହି. ଶ)—The tree from Hastyaśana which olibanum is got.

ହସ୍ତ୍ୟଶ୍ୱ—ସଂ.ବି. (ଦ୍ୱନ୍ଦ୍ୱ, ହସ୍ତିନ୍=ହାତୀ+ଅଶ୍ୱ)—ହାତୀ ଓ ଘୋଡ଼ା—Hastyaśwa Elephant and horse.

ହସ୍ତ୍ୟାଜୀବ—ସଂ.ବିଣ—(ବହୁବ୍ରୀହି, ହସ୍ତିନ୍=ହାତୀ+ଆଜୀବ=ଜୀବିକା)
Hastyājiba ହସ୍ତି ବ୍ୟବସାୟୀ—A trader in elephants.

ହସ୍ତ୍ୟାୟୁର୍ବେଦ—ସଂ. ବି—(ହସ୍ତିନ୍=ହାତୀ+ଆୟୁର୍ବେଦ)—ହସ୍ତି-
Hastyāyurbeda ଚିକିତ୍ସାଶାସ୍ତ୍ର—A treatise on the treatment of the diseases of elephants.
[ଦ୍ର—ଗରୁଡ଼ ପୁରାଣ ୨୦୨ ଅଧ୍ୟାୟରେ ହସ୍ତୀମାନଙ୍କର ଚିକିତ୍ସାବିଧି ବର୍ଣ୍ଣିତ ହୋଇଅଛି ।]

ହସ୍ତ୍ୟାରୋହ—ସଂ. ବି—( ହସ୍ତିନ୍=ହାତୀ+ଆରୋହ )—ହସ୍ତିପକ;
Hastvāroha ମାହୁନ୍ତ—A driver of an elephant.

ହସ୍ତ୍ୟାରୋହୀ—ସଂ. ବି. ପୁଂ—(ହସ୍ତିନ୍=ହାତୀ+ଆରୋହୀ)—୧। ହାତୀ
Hastyārohī ପିଠିରେ ଚଢ଼ିଥିବା ବ୍ୟକ୍ତି—A rider on an elephant. ୨। ଗଜାରୋହୀ ସୈନ୍ୟ—2. The division of an army which fights on elephants.
(ହସ୍ତ୍ୟାରୋହଣୀ—ସ୍ତ୍ରୀ)

ହସ୍ନହାନା—ବୈଦେ. ବି(ଫା)—ପୁଷ୍ପବିଶେଷ—Mexican jasmine;
Hasnahānā the lady of the night; Cestrum Hersutum or Cestrum Nocturm (Hains).
হাস্নাহেনা
हुस्नहेना [ଦ୍ର—ଏହାର ଫୁଲ ଅଳ୍ପ ସବୁଜ ବର୍ଣ୍ଣ ଓ ହଳଦିଆ ଓ ୧ଇଞ୍ଚ ଲମ୍ବ, ଓ ସରୁ, ରାତିରେ ଫୁଲରୁ ସୁବାସ ଚହଟେ ।]

ହସ୍ପାତାଲ୍—ବୈଦେ. ବି—(ଇଂ. ହସ୍ପିଟାଲ୍)—ହସ୍ପାତାଲ; ହାସ-
Haspātāl ପାତାଲ; ଡାକ୍ତରଖାନା, ଯେଉଁଠାରେ ରୋଗୀଙ୍କୁ
( ହସ୍ପିଟାଲ୍—ଅନ୍ୟରୂପ ) ରଖାଯାଇ ଚିକିତ୍ସା କରାଯାଏ—A
হাসপাতাল hospital for indoor patients.
अस्पताल

ହସ୍ୟାନ୍ନ(ର୍ଣ୍ଣ)ବ—ଗ୍ରା. ବି—(ସଂ. ହାସ୍ୟାର୍ଣ୍ଣବ)—ହାସ୍ୟାର୍ଣ୍ଣବ (ଦେଖ)—
Hasyānna(rnna)ba Hasyārnnaba(See).
হাস্যার্ণব ବିଣ—(ହାସ୍ୟାସ୍ପଦର ଅଶୁଦ୍ଧ ବ୍ୟବହାର)—ହାସ୍ୟାସ୍ପଦ
हास्यार्नव Causing laughter; laughable.

ହସ୍ର—ସଂ. ବି.—(ହସ୍ ଧାତୁ=ଉପହାସ କରିବା +କର୍ମ. ର)—ମୂର୍ଖ—
Hasra Dunce; an illiterate person.

ହ ହ—ଦେ. ଅ.—'ହ' ର ଦ୍ୱିରୁକ୍ତି; ବଳଦକୁ [ଅଟକାଇବାର ଡାକ—
Ha ha Repetition of the interjection Ha! ପ୍ରାଦେ.
ह हाँ हाँ (ପୁରୀ) 'ହ' ବା 'ହଁ'ର ଦ୍ୱିରୁକ୍ତି; 'ହ' (ଦେଖ)—
Repetition of the interjection Ha!

ହହଲ—ସଂ. ବି.—ହଳାହଳ (ଶବ୍ଦଚନ୍ଦ୍ରିକା)—
Hahala Mortal poison.

ହହା—ସଂ. ବି.—ହାହା ନାମକ ଗନ୍ଧର୍ବ (ଶବ୍ଦମାଳା)—
Hahā A class of divine songsters.

ହହିଏ—ଗ୍ରା. ଅ.—ହଇହେ (ଦେଖ)—
Hahie Haihe (See).
(ହହେ—ଅନ୍ୟରୂପ)

ହା(ଧାତୁ)—ସଂ.—୧। ତ୍ୟାଗ କରିବା—1. To abandon. ୨।
Hā (root) ଗତି କରିବା—2. To move.

ହା—ସଂ. ଅ—(ପ୍ର. ହା; ଅବ୍ୟୟ)—୧ ବିଷାଦସୂଚକ (ଅମର)—
Hā (Interjection) Oh; Ah! indicating sorrow. ୨। ଯନ୍ତ୍ରଣା ବା ଅର୍ତ୍ତିସୂଚକ (ଅମର)—2. Indicating distress or pang. ୩। ଶୋକସୂଚକ(ଅମର) —3. Indicating grief. ୪। ନିନ୍ଦା ବା କୁତ୍ସା ସୂଚକ (ମେଦିନୀ)—4 Indicating disparagement. ଦେ. ଅ—ଆନନ୍ଦସୂଚକ—Interjection
হা हा expressing joy ଦେ. ବି—୧। ହାଇ ମାରିବାର
হা আহা ଶବ୍ଦ—1. The sound of yawning. ୨। ପାଟିକୁ ଆଁ କରି ଜୋର ପୂର୍ବକ ଶ୍ୱାସ ମାରିବାର ଶବ୍ଦ—2. The sound of exhalingbreath by opening
হা হাফী the mouth. ୩। ହାଫା କରିବା ଶବ୍ଦ; ହାଫା (ଦେଖ)—3. Hāphā (See). ପ୍ରାଦେ (ଖଡ଼ିଆଳ)ବି—କଟୁ ଅସ୍ୱାଦ; ଖରା ଅସ୍ୱାଦ—Bitter taste.

ହା ଅନ୍ନ ହା ଅନ୍ନ କରିବା (ହେବା)—ଦେ.କ୍ରି—ଭରାହାର ବ୍ୟକ୍ତ ଖାଦ୍ୟ
Hā anna hā anna karibā (hebā) ପାଇଁ ବ୍ୟାକୁଳ ହୋଇ
হাঅন্ন হাঅন্ন করা ଚିତ୍କାର କରିବା—To raise a cry of
हा अन्न हा अन्न करना distress in hunger.

ହା ଅ—ଗ୍ରା.ଅ—ଆହା;ହାୟ (ଦେଖ)—Alas! Hāya (See).(ଯଥା
Hā-a হায় हाय ହାଅରେ କପାଳ ! ହାଅରେ ବିଧାତା !)—

ହାଅଟି—ପ୍ରାଦେ. (ଗଡ଼ଜାତ) ଅ—(ନିର୍ଦ୍ଦେଶାର୍ଥକ) ହେଇଟି—Oh
Hā-āṭi there! (used in pointing out a thing).

ହାଅଡ଼ୁ ଉ(ବୁ)ଡ଼ୁ—ଦେ. ବି—ହାଡ଼ୁଉଡ଼ୁ (ଦେଖ)—
Hā-ādu-u(bu)ḍu Hāḍu uḍu (See).
(ହାଡୁଡୁ—ଅନ୍ୟରୂପ) হাডুডু कबड्डी

ହାଇ—ଦେ. ବି—(ପ୍ର. ହାଫିକା)—୧। ଜୃମ୍ଭା—1. Yawn, (ଯଥା—
Hāi କୃଷ୍ଣ ବଦନେ ଉଠେ ହାଇ, ଯଶୋଦା ତୁଡ଼ି ଦେଲ
হাই जम्हाइ ଗୁହିଁ—ଜଗନ୍ନାଥ ଭାଗବତ ।] ୨। ଶୋକଜନିତ ଦୀର୍ଘନିଶ୍ୱାସ—2. Sigh of grief. ୩। ଶୋକାର୍ତ୍ତ ବା ଅତ୍ୟାଚାରିତ ବ୍ୟକ୍ତିର ଅତ୍ୟାଚାରୀ ବ୍ୟକ୍ତିପ୍ରତି ଅଭିଶାପ-ସମ୍ବଳିତ ଦୀର୍ଘନିଶ୍ୱାସ—3. Sighing accompanied by curse uttered by an oppressed against an oppressor. [ଯଥା—ଗରିବର ଖାଇ, ମରିବର ହାଇ, ଯହିଁ ପଡ଼ି ତହିଁ ମିଳାଇ ଯାଇ—ଢଗ ।] ଦେ.ଅ—(ପ୍ର.ହା) ଅହୋ ! ହାୟ !—Alas! Oh! [ଯଥା—ହାଇ ରେ କପାଳ ! ହାଇରେ ବିଧାତା!] ବୈଦେ.ବିଣ—(ଇଂ;ଅନ୍ୟଶବ୍ଦ
হাই हाई ପୂର୍ବେ ଯୁକ୍ତ ହୁଏ)—ଉଚ୍ଚ—High. (ଯଥା—ହାଇସ୍କୁଲ)

ହାଇଆ—ଦେ. ବିଣ. ପୁଂ—ଯେ ସର୍ବଦା ହାଇ ମାରିବାରେ ଅଭ୍ୟସ୍ତ—
Hāiā Given to yawning.
बार बार जम्हाइ लेनेवाला (ହାଇୟା—ଅନ୍ୟରୂପ)

ହାଇ ଇଙ୍ଗ୍ଲିସ୍ ସ୍କୁଲ୍—ବୈଦେ. ବି (ଇଂ)—ଉଚ୍ଚଶ୍ରେଣୀର ଇଂରାଜୀ
Hāi inglis skul ବିଦ୍ୟାଳୟ—High English school.
হাই ইংলিশ স্কুল [ଦ୍ର—ଏହାର ଇଂ ସାଙ୍କେତିକ—H. E.
हाइ इङ्गलिश स्कूल school.]

ହାଇ ଇସ୍କୁଲ୍ (ସ୍କୁଲ୍)—ବୈଦେ. ବି—(ଇଂ)—ଉଚ୍ଚଶ୍ରେଣୀର ଇଂରାଜୀ ବିଦ୍ୟାଳୟ—High English School. [ଦ୍ର—ହାଇ ଇଙ୍ଗ୍ଲିସ୍ ସ୍କୁଲର ସଂକ୍ଷିପ୍ତ ଉଚ୍ଚାରଣ ।]
Hāi iskul (skul)
হাইস্কুল
हाइस्कुल

ହାଇ ଉଠିବା(ଆସିବା)—ଦେ. କ୍ରି—ପୁନଃପୁନଃ ହାଇର ଉଦ୍ରେକ—Repeated yawning
Haiuṭhibā(āsibā)
হাইউঠা
जम्हाई उठना

ହାଇଏ—ଦେ ବି—ଗୋଟିଏ ମାତ୍ର ଜୃମ୍ଭା—One yawn only.
Hāie
এক হাই
एकजम्हाई

ହାଇଁ—ପ୍ରାଦେ.(ବଲାଙ୍ଗିର ପାଟଣା) ସର୍ବନାମ—ସେହି—That.
Hāiñ

ହାଇଁ ଠାନେ—ପ୍ରାଦେ (ବଲାଙ୍ଗିର ପାଟଣା) କ୍ରି. ବିଣ—ସେଠାରେ—There; at that place
Hāiñ ṭhāne

ହାଇଁ ପାଇଁ—ଦେ. ବିଣ—୧ । ବ୍ୟଗ୍ର; ବ୍ୟସ୍ତ—1. Distressed. [ଦ୍ର—ନ ଖାଇ ଅପରେ ପର ଖାଇବାକୁ ଇଚ୍ଛା ବିନା ହାଇଁପାଇଁ—ରାଧାନାଥ ଗୀତଲହରୀ ।] ୨ । ଲାଳାୟିତ—Hankering.
Hāiñ pāiñ
হাইঁপাইঁ
आइपाई

ହାଇ କାଇ—ଦେ. ବି—୧ । ଚପଳତା ବା ଅସ୍ଥିରତା ପ୍ରକାଶ—1. Expression of haste or restlessness. ୨। ଚଞ୍ଚଳ୍ୟ—2. Restlessness. ଦେ. ବିଣ—୧। ଚଞ୍ଚଳ ବା ଅସ୍ଥିର—1. Restless. ୨ । ହାଇଁ ପାଇଁ (ଦେଖ)—2. Hāiñpāiñ (See).
Hāi kāi
হাইঁপাইঁ
चंचलता

ହାଇକୋର୍ଟ(ର୍ଟ)—ବୈଦେ. ବି (ଇଂ)—ଇଂରେଜଙ୍କ ଶାସନରେ ଭାରତର ବିଭିନ୍ନ ପ୍ରଦେଶର ରାଜଧାନୀମାନଙ୍କରେ ପ୍ରତିଷ୍ଠିତ ଉଚ୍ଚତମ ବିଚାରାଳୟ—High Court of Judicature. [ଦ୍ର—ଏଥିରେ କେତେଗୁଡ଼ିଏ ଜଜ ଥାଆନ୍ତି । ଏମାନଙ୍କୁ ଜଷ୍ଟିସ୍ (Justice) ବୋଲାଯାଏ । ତାଙ୍କ ମଧ୍ୟରେ ପ୍ରଧାନ ଜଜଙ୍କୁ ଚିଫ୍ ଜଷ୍ଟିସ୍ (Chief Justice) ବୋଲାଯାଏ । ସାଧାରଣ ମକଦମା ଏଠାରେ ଯୋଡ଼ ଯୋଡ଼ ହୋଇ ବିଚାର କରିବାକୁ ବସନ୍ତି । ଏ ଯୋଡ଼ିଙ୍କୁ ଡିଭିଜନ୍ ବେଞ୍ଚ୍ (Division Bench) ବୋଲାଯାଏ । ଗୁରୁତର ଆଇନ୍ ସମସ୍ୟା ବିଚାର କରିବାକୁ ଦୁଇଜଣଙ୍କ ଅପେକ୍ଷା ଅଧିକ ଜଜ ବସନ୍ତି । ଏହାକୁ ଫୁଲ୍ ବେଞ୍ଚ୍ (Full Bench) କହନ୍ତି । ସ୍ପେସଲ୍ ବେଞ୍ଚ୍ (Special Bench) ସାମାନ୍ୟ ସାମାନ୍ୟ ମୂଲ୍ୟର ମକଦମା ଓ ଅନ୍ୟାନ୍ୟ ମକଦମା ବିଚାର କରିବାକୁ ଜଣେ ଜଜ୍ ବସନ୍ତି । ଏହାକୁ ସିଙ୍ଗଲ୍ ବେଞ୍ଚ୍ (Single Bench) କହନ୍ତି । ହାଇକୋର୍ଟର ସିରସ୍ତାଦାରଙ୍କୁ ରେଜିଷ୍ଟ୍ରାର୍ (Registrar) କହନ୍ତି । ହାଇକୋର୍ଟର ଅନେକଗୁଡ଼ିଏ ବିଚାର ବିଭାଗ ଅଛି ।—ଯଥା—୧ । ଆରମ୍ଭ (Original). ୨ । ଅପିଲ (Appellate), ୩ । ପୁନର୍ବିଚାର (Revisional). ୪ । ନୌବିଭାଗ—(Admiralty). ୫ । ବିବାହ ବିଷୟ—(Matrimonial) ଇତ୍ୟାଦି । ପାଟନା ହାଇକୋର୍ଟରୁ ଦୁଇଜଣ ଜଜ୍ କଟକକୁ ୩ ମାସରେ ଥରେ ଆସି, ଓଡ଼ିଶାର ମକଦମାମାନ ବିଚାର କରନ୍ତି । ଏହାକୁ ସର୍କିଟ୍ କୋର୍ଟ୍ (Circuit Court) କହନ୍ତି । ଏହି ଅଦାଲତ ସମ୍ପର୍କରେ କେତେଗୁଡ଼ିଏ ଇଂରାଜୀ ଶବ୍ଦ ଭାଷାରେ ଚଳୁଅଛି, ଯଥା—ରେଜିଷ୍ଟ୍ରାର୍, ଟ୍ରାନ୍ସ୍‌ଲେଟର, ରୁଲ୍, ସର୍କୁଲର୍, ଜଜ୍, ଜଷ୍ଟିସ୍ ।]
Hāikoṭ(rṭ)
হাইকোর্ট
हाइकोर्ट

ହାଇକୋର୍ଟ ଓକିଲ(ଭକିଲ)—ବୈଦେ. ବି—(ଇଂ. ହାଇକୋର୍ଟ+ଫା ଓକିଲ)—ହାଇକୋର୍ଟରେ ଜବାବ ସୁଆଲ କରିବାକୁ କ୍ଷମତାପ୍ରାପ୍ତ ଓକିଲ—Vakil of the High Court. [ଦ୍ର—ବି. ଏଲ୍ ପାସ୍ କରିବା ଓକିଲ୍ ଜିଲ୍ଲା କୋର୍ଟରେ କେତେବର୍ଷ ଓକାଲତି କଲାପରେ, କିମ୍ବା କୌଣସି ହାଇକୋର୍ଟଆ ଓକିଲଙ୍କ ନିକଟରେ ନିର୍ଦ୍ଦିଷ୍ଟକାଳ ତାଲିମ ନବିସି (articled clerk) କାର୍ଯ୍ୟ କରିବା ପରେ ଓ ହାଇକୋର୍ଟ ଜଜ୍‌ମାନଙ୍କ ନିକଟରେ ଗୋଟିଏ ପରୀକ୍ଷାରେ ପାସ୍ କରିବା ପରେ ୫୦୦ଟଙ୍କା ଷ୍ଟାମ୍ପ ଦାଖଲ କରି 'ଭକିଲ୍' ସନନ୍ଦ ପାଆନ୍ତି ।]
Hāikoṭ okila (Bhakil)
হাইকোর্ট উকিল
हाईकोर्ट वकिल

ହାଇକୋର୍ଟିଆ—ଦେ. ବିଣ—୧ । ହାଇକୋର୍ଟରେ ଚାକିରି କରୁଥିବା—1. Serving in the High Court. ୨ । ହାଇକୋର୍ଟରେ ଓକିଲାତି କରୁଥିବା—2. (Lawyer) Practising in the High Court. ୩ । ହାଇକୋର୍ଟ ସମ୍ବନ୍ଧୀୟ—Relating to the High Court.
Hāikoṭiā
হাইকোর্টীয়া
हाईकोर्टका

ହାଇ କ୍ଲାସ୍ ଇଙ୍ଗ୍ଲିସ୍ ସ୍କୁଲ—ବୈଦେ ବି—(ଇଂ)—ଯେଉଁ ବିଦ୍ୟାଳୟରେ ଉଚ୍ଚ ଶ୍ରେଣୀ ପର୍ଯ୍ୟନ୍ତ ଇଂରାଜୀ ଶିକ୍ଷା ଦିଆଯାଏ—High class English School.
Hāi klās ingli-skul
হাই ইংলিস্ স্কুল
हाइक्लास इंलिस स्कुल

ହାଇଚର୍ଚ୍ଚ (ଚ୍)—ବୈଦେ. ବି—(ଇଂ)—ଚର୍ଚ୍ଚ ଅଫ୍ ଇଂଲଣ୍ଡର ଗୋଟିଏ ଶାଖା ବା ସମ୍ପ୍ରଦାୟ—High church; a branch or sect of the Church of England.
Hāi Church (rchch)
হাইচার্চ
हाईचर्च

ହାଇଛାଇ—ଦେ. ବି—ସୁଖ ଦୁଃଖ; ଭଲ ମନ୍ଦ—Pleasure and pain, good or bad.
Hāi chhāi
ভাল মন্দ
आच्छा बुरा
[ଦ୍ର—ହାଇ ଛାଇ ନ ଲଗଇ କଦା ମନରେ ।
ପ୍ରାଚୀ ବ୍ରହ୍ମନିରୂପଣ ଗୀତା]

ହାଇ ଛାଡ଼ିବା—ଦେ. କ୍ରି—ହାଇ ମାରିବା (ଦେଖ)—Hāi māribā (See)
Hai chhāṛdibā
হাই তোলা
जम्हाइ लेना

ହାଇ ଜମ୍ପ—ବୈଦେ. ବି (ଇଂ)—ଭୂପୃଷ୍ଠରୁ ଉଚ୍ଚକୁ କୁଦିବା—High jump.
Hāi jamp

ହଇଜା—ଗ୍ରା. ବି—ବିଷୂଚିକା; ଝାଡ଼ାବାନ୍ତି; ବିସୂଚିକା—Cholera.
Haijā
ওলাওঠা
हैजा

ହାଇ୍ ଟାଇଡ୍—ବୈଦେ. ବ (ଇଂ)—ପୂର୍ଣ୍ଣିମାରେ ଓ ଅମାବାସ୍ୟାରେ
Hāi ṭāiḍ ସମୁଦ୍ରରେ ଉଠିବା ଉଚ୍ଚତମ ଜୁଆର—
হাই টাইড **हाइ टाइड** High tide.

ହାଇଡ ପାର୍କ—ବୈଦେ. ବ (ନାମ) (ଇଂ)—ଇଂଲଣ୍ଡର ରାଜଧାନୀ
Hāiḍ pārk ଲଣ୍ଡନ ନଗରୀର ଗୋଟିଏ ଅଂଶ, ଯେଉଁଠାରେ
ବଡଲୋକ ଓ ଧନୀମାନେ ବାସ କରନ୍ତି—Hyde park
হাইডপার্ক **हाइडपार्क** of London town.

ହାଇଡ୍ରୋକ୍ଲୋରିକ୍ ଏସିଡ୍—ବୈଦେ. ବ (ଇଂ—ହାଇଡ୍ରୋଜେନ୍ ଓ
Hāiḍroklorik esiḍ କ୍ଲୋରିନ୍ ନାମକ ଉପାଦାନଦ୍ୱୟରୁ
ରାସାୟନିକ ପ୍ରକ୍ରିୟାରେ ପ୍ରସ୍ତୁତ ଜଳୀୟ ପଦାର୍ଥ—
Hydrochloric acid.

ହାଇଡ୍ରୋଜେନ—ବୈଦେ. ବ (ଇଂ)—ଜଳର ଗୋଟିଏ ଉପାଦାନ
Hāiḍrojen ବାଷ୍ପ; ଜଳଜାନ ବାଷ୍ପ—Hydrogen.
হাইড্রোজেন **हाइड्रोजन**

ହାଇଦର—ବୈଦେ. ବ (ଆ)—ମୁସଲମାନଙ୍କ ନାମ—
Hāidar A name given to Mahommedans.
হাইদর **हाइदर**

ହାଇଦର୍ ଅ(ଆ)ଲି—ବୈଦେ. ବ (ନାମ) (ଆ) ମହୀଶୂରର ଜଣେ
Hāidar a(ā)li ସ୍ୱର୍ଗତ ସୁଲତାନ—(Haider Ali); A late
হাইদরআলি **हाइदरअलि** Sultan of Mysore.
[ବ୍ର—ଏ ପ୍ରଥମ ମହୀଶୂରର ରାଜାଙ୍କ ସୈନ୍ୟଦଳଭୁକ୍ତ ହୋଇ ଗୋଟିଏ ନାୟକ ରହିଲେ। ପଶ୍ଚାତ୍ ସେନାପତି ହୋଇଥିଲେ। ସେ ୧୭୬୧ ଖ୍ରୀ.ରେ ମହୀଶୂର ରାଜାଙ୍କୁ ଗାଦିରୁ ଉଠାଇ ଆପେ ମହୀଶୂରର ସିଂହାସନରେ ବସିଲେ ଓ ଦାକ୍ଷିଣାତ୍ୟର ନିଜାମଙ୍କ ସଙ୍ଗେ ଇଂରେଜଙ୍କ ବିପକ୍ଷରେ ସନ୍ଧିରେ ଆବଦ୍ଧ ହେଲେ। କିନ୍ତୁ ଏ ଦୁହିଙ୍କୁ ଇଂରେଜମାନେ ପରାସ୍ତ କଲେ। ପରେ ଏହାଙ୍କ ସଙ୍ଗେ ଇଂରେଜଙ୍କର ୧୭୬୯ ଖ୍ରୀ.ରେ ସନ୍ଧି ହେଲା। କିନ୍ତୁ ଉକ୍ତ ସନ୍ଧିର ସର୍ତ୍ତ ଅନୁସାରେ ଇଂରେଜମାନେ ହାଇଦରଙ୍କୁ ମରହଟ୍ଟାଙ୍କ ବିରୋଧରେ ସାହାଯ୍ୟ କଲେ ନାହିଁ। ପ୍ରଥମ ମରହଟ୍ଟା ଯୁଦ୍ଧରେ ଏ ଇଂରେଜମାନଙ୍କ ବିରୋଧରେ ମରହଟ୍ଟାମାନଙ୍କୁ ସାହାଯ୍ୟ କରିଥିଲେ। ତତ୍ପରେ ଏହାଙ୍କ ସଙ୍ଗେ ଇଂରେଜମାନଙ୍କର ଦ୍ୱିତୀୟ ମହୀଶୂର ଯୁଦ୍ଧ (୧୭୮୦ ଖ୍ରୀ.) ହୋଇଥିଲା। ଏହାଙ୍କର ୧୭୮୨ ସାଲରେ ମୃତ୍ୟୁ ହେବାରୁ ଏହାଙ୍କ ପୁତ୍ର ଟିପୁ ସୁଲ୍‌ତାନ୍ ମହୀଶୂର ସିଂହାସନରେ ବସିଲେ। ଏହାଙ୍କ ନାମ ଅନୁସାରେ ଦକ୍ଷିଣର ହାଇଦରାବାଦ ରାଜ୍ୟର ନାମକରଣ ହୋଇଅଛି ]

**ହାଇଦରାବାଦ୍**—ବୈଦେ. ବ (ନାମ)—୧। ଦାକ୍ଷିଣାତ୍ୟର ମୁସଲମାନ୍
Hāidarābād ନିଜାମଙ୍କ ଶାସିତ ମିତ୍ରରାଜ୍ୟ ଓ ତହିଁର ରାଜଧାନୀ—
[ହାଇଦ୍ରାବାଦ୍—ଅନ୍ୟରୂପ] 1. Name of the Indian
হাইদ্রাবাদ State of Deccan governed by His
**हाइद्राबाद** Exalted Highness the Nizam and its capital; Hyderabad.
[ବ୍ର—ଏହା ପ୍ରାଚୀନ ଗୋଲକୁଣ୍ଡା ଓ ବ୍ରାହ୍ମଣୀ (ବାହମନୀ) ରାଜ୍ୟ ଥିଲା। ଏହାର କ୍ଷେତ୍ରଫଳ ୮୨୬୯୮ ବର୍ଗମାଇଲ, ଲୋକସଂଖ୍ୟା ୧୯୩୧ ସାଲର ସେନ୍‌ସସ୍ ଅନୁସାରେ ୧କୋଟି ୪୪ ଲକ୍ଷ। ଏହାର ଉତ୍ତରରେ ଓ ପୂର୍ବରେ ମଧ୍ୟପ୍ରଦେଶ; ଦକ୍ଷିଣରେ ମାନ୍ଦ୍ରାଜ ପ୍ରଦେଶ; ପଶ୍ଚିମରେ ବମ୍ବେଇ ପ୍ରଦେଶ। ଏହାର ଅଧୀଶ୍ୱରଙ୍କୁ 'ନିଜାମ୍ ଉଲ୍‌ମୁଲ୍‌କ୍' ବୋଲାଯାଏ। ଏହି ରାଜ୍ୟ ଶାସନାର୍ଥ ୧୧ଟି ବିଭାଗରେ ବିଭକ୍ତ। ଏହି ରାଜ୍ୟ ମଧ୍ୟରେ ଇଂରେଜ ଶାସିତ ୪ଗୋଟି ସେନାନିବାସ ବା ଛାଉଣି ଅଛି ] ୨। ଅଧୀନବର୍ତ୍ତୀ ସିନ୍ଧୁ ପ୍ରଦେଶର ସିନ୍ଧୁ ନଦ ଉପରେ ଥିବା ଗୋଟିଏ ପ୍ରଧାନ ନଗର ଓ ଜିଲ୍ଲାର ନାମ—2. Name of a city in Sindh on the Indus river.

ହାଇପର୍‌ବୋଲା—ବୈଦେ. ବ (ଇଂ) (ଗଣିତ ଓ ବିଜ୍ଞାନ)—ଗୋଟିଏ
Hāipar bolā ଚୁଙ୍ଗୀକୁ ଲମ୍ବଭାବରେ ଗୋଟିଏ ସରଳ ରେଖା
হাইপর্‌বোলা ଦ୍ୱାରା କାଟିଲେ ତହିଁରୁ ଉତ୍ପନ୍ନ
**हाईपरबोला** ହେବା ବାଗଖଣ୍ଡିତ ଦଗର କ୍ଷେତ୍ରଦ୍ୱୟ—
Hyperbolā.

ହାଇପି ସାଇପି ହେବା—ଦେ. କ୍ରି—୧। କୃତ ବା ଅତୀତ କାର୍ଯ୍ୟ ପାଇଁ
Hāipi sāipi hebā ବିଶେଷ ଅନୁଶୋଚନା କରିବା—
হাহুতাশ করা **पश्चात्ताप करना** 1. To regret
much for a past action; to repent.
(ଉ—ଜେଜେବୁଢା ଆମ ସଞ୍ଜମା ନାମାଙ୍କ ବିଭା କରି ଦେଲେ ବେଳେ, ଯାହା ପୂର୍ବ ଆଠ ଗୁଲିବାରୁ କେତେ ହାଇପି ସାଇପି ହେଲେ—ଏକାଦଶୀ ବେଶ, ଅବସର ସଙ୍ଗୀ।] ୨।
ହାଇଁପାଇଁ ହେବା—2. To hanker for doing
হাই পাইঁ হওয়া **लालायित होना** any thing
ବା କୌଣସି ଅପ୍ରାପ୍ତ ବସ୍ତୁ ପାଇବା ପାଇଁ ଲାଳାୟିତ ହେବା—
3. To have a hankering for a thing.

ହାଇ ପାରିବା—ପ୍ରାଦେ (ସମ୍ବଲପୁର) କ୍ରି—ହାଇ ମାରିବା—
Hāi pāribā To yawn.

ହାଇପୋଡର୍ମିକ୍ ପିଚକାରୀ—ଦେ. ବ (ଇଂ ହାଇପୋଡର୍ମିକ୍+ଓ,
Haipodarmik pichakārī ପିଚକାରୀ)—ଟପଚ
(ହାଇପୋଡର୍ମିକ୍ ସିରଞ୍ଜ୍—ବୈଦେଶିକ ରୂପ) ପିଚକାରୀ ଦ୍ୱାରା ଜଳୀୟ
হাইপোডর্মিক্ পিচকারী ଔଷଧ ରୋଗୀର ଚମ ତଳକୁ ଭର୍ତ୍ତି କରାଯାଏ-
**हाईपोडर्मिक पिचकारी** Hypodermic syringe.

ହାଇଫେନ୍—ବୈଦେ. ବ (ଇଂ)—(ଅଧୁନିକ ଲେଖାରେ ଇଂରାଜୀ ଭାଷାର
Hāiphen ଅନୁକରଣରେ ବ୍ୟବହୃତ)—ଦୁଇଟି ଶବ୍ଦ ବା ବର୍ଣ୍ଣ
(ହାଇଫନ୍—ଅନ୍ୟରୂପ) ସଂଯୋଜକ କ୍ଷୁଦ୍ର ଚିହ୍ନ; ( - )—
হাইফেন **हाईफेन** Hyphen.

ହାଇବାଇ ହେବା—ଦେ. କ୍ରି—ହାଇଁପାଇଁ ହେବା (ଦେଖ)—
Hāibāi hebā Hāiṅpāiṅ hebā (See)

ହାଇମରିଚ—ପ୍ରାଦେ (ବାଲେଶ୍ୱର) ବ—ଭୁଇଁଗୋଡ଼ା ଗୁଳ୍ମ—
Hāi marichā Toddalia Aculeata (thorny shrub).

ହାଇ ମାରିବା—ଦେ. କ୍ରି—୧ । ଜୃମ୍ଭଣ କରିବା; ପାଟି ମେଲ୍ଲାକରି ଟାଣି
Hāi māribā ବାଟେ ନିଶ୍ୱାସ ଛାଡ଼ିବା—To yawn.
हाईतोला ज'माईलेना (ଉ—ମୁହୂର୍ମୁହୁ ହାଇ ମାରି ଫୁଟିକି ଫୁଟେ ଇ—ରାଧାନାଥ ମହାଯାତ୍ରା । ) ୨ । (ଲକ୍ଷଣାର୍ଥ) ପରଶ୍ରୀକାତର ହେବା; ପରର ସୁଖ ଦେଖି ଦୁଃଖରେ ଦୀର୍ଘନିଃଶ୍ୱାସ ମାରିବା—2. To sigh at another's weal. (ଉ—ନ ମାରି ପରକୁ ହାଇ ଟୋ । କର ନାଶ ଯେତେ ଅନ୍ତ୍ର ସଂସାରେ ଯଉଏ ଭଜଣୀ ଝାଇ—ବାଲକୃଷ୍ଣ, ଫୁଲ ବଛୁଲବେଣୀ । ) ୩ । ପ୍ରବଳ ପରାକ୍ରମୀ ଅତ୍ୟାଗ୍ରତର ଅତ୍ୟାଗ୍ରହକୁ ଦମନ କରିବା ପାଇଁ ସମର୍ଥ ନ ହୋଇ (ଦୁର୍ବଳ ବ୍ୟକ୍ତି) ଈଶ୍ୱରଙ୍କୁ ସାକ୍ଷୀ ରଖି ଦୀର୍ଘନିଶ୍ୱାସ ତ୍ୟାଗ କରିବା—3. To emit sighs by invoking God to witness the oppressions of an all powerful oppressor.

ହାଇରେ—ଦେ.ଅ (ସ.ହା)—ଶୋକାର୍ଥକ ଅବ୍ୟୟ—(ଯାହାକୁ ସମ୍ବୋଧନ
Hāire କରାଯାଏ, ସେହି ଶବ୍ଦ ସଙ୍ଗେ ଲାଗେ)—Alas! Oh!
हायरे हायरे (ଯଥା—ହାଇ ରେ ବିଧାତା ! ହାଇ ରେ କପାଳ !)

ହାଇରେ କପାଳ(ବିଧାତା)—ଦେ. ଅ—ଖେଦରେ ବା ଶୋକରେ
Haire kapāla(bidhātā) ବିଧାତାଙ୍କୁ ବା କପାଳକୁ ନିନ୍ଦା କରି
हायरे कपाल हायरे कपाल ଉଚ୍ଚାରଣ କରିବା ପଦ—(interjection) Alas, my luck!

ହାଇଲାଣ୍ଡ—ବୈଦେ• ବି (ନାମ) (ଇଂ)—ସ୍କଟ୍‌ଲଣ୍ଡର ପାର୍ବତ୍ୟପ୍ରଦେଶ—
Hāilānd The Highlands of Scotland.
হাইল্যাণ্ড हाईलैंड

ହାଇ ଲେବ(ଭ)ଲ୍ କେନାଲ୍ (ନାଳ)—ବୈଦେ. ବି (ଇଂ)—ଓଡ଼ିଶା
Hāi leba(bha)lkenāl(nāla) ରାଜଧାନୀ କଟକରୁ ୬ ମାଇଲ ଦୂରବର୍ତ୍ତୀ ଜଗତପୁରଠାରୁ ବିରୂପା ନଦୀର ଅନିକଟରୁ ବାହାରି, ମେଦିନୀପୁରର ଗେଓଁଖାଲି ପର୍ଯ୍ୟନ୍ତ ଖୋଳା ହୋଇଥିବା ନାଳ, ଯାହାବାଟେ ଓଡ଼ିଶାରୁ ବୋଝ ଓ ଡଙ୍ଗା ମେଦିନୀପୁରକୁ ଯାତାୟାତ କରେ )—The High-level canal of Orissa.

ହାଇ(ଇଁ) ସାହାସ—ଦେ. ବି (ସ. ଦୁଃସାହସ)—ଦୁଃସାହସ—
Hāi(iṅ) sāhāsa Foolhardiness.
দুঃসাহস दुःसाहस

ହାଇ(ଇଁ)ସାହାସା(ସାହାସିଆ)—ଦେ. ବଣ. ପୁଂ ଓ ସ୍ତ୍ରୀ—ଦୁଃସାହସିକ—
Hāi(iṅ)sāhāsā(sāhāsiā) Foolhardy; rash.
[ହାଇ(ଇଁ) ସାହାସୀ(ସ.ହାସେଣ୍ଡ)—ସ୍ତ୍ରୀ]

ହାଇହାଇ କରିବା—ଦେ. କ୍ରି—ହାୟ ହାୟ କହିବା, ଶୋକ କରିବା-
Hāi hāi karibā To bewail.
হায়হায়করা हाय हाय करना

ହାଇ(ହ୍ମ)ହିଲ୍—ବୈଦେ•ବି (ଇଂ)—ସ୍ତ୍ରୀମାନଙ୍କ ବ୍ୟବହୃତ ଉଚ୍ଚ ଏଡ଼ିବାଲା
Hāi hi[hi]l ଜୋତା—High-heeled shoes for
हाईहिल हाईहिल females.

ହାଉ—ଦେ. ଅ (ଧ୍ୱନ୍ୟନୁକରଣ,ସ.ହା; ହାହାକାର)—ଛଳଅ ବା ତ୍ରସ୍ତ
Hāu ବ୍ୟକ୍ତିର ଡାକ; ହଠାତ୍ ବିପଦ ଓ କିଂକର୍ତ୍ତବ୍ୟ-
হাউ हाय ବିମୂଢ ବ୍ୟକ୍ତିର ନିରର୍ଥକ ଧ୍ୱନି । (ଯଥା—ନିଆଁ ଲାଗିଲେ, ବାଘ ହାଉଡ଼ିଲେ, ଡକାୟତ ଆକ୍ରମଣ କଲେ)—A sound of alarm made by a person who is bewildered and beset with sudden danger.

হঠাৎ ଫଟଫ ଦେ. କ୍ରି. ବଣ [ସ. ହଠାତ୍]—୧ । ହଠାତ୍—1. All at once. [ ଯଥା—ବାରୁଦରେ ହାଉକିନା ନିଆଁ ଲାଗିଗଲା ।] ୨ । ହଠାତ୍ ଓ ଅତି ତୀବ୍ରଭାବରେ—2. All at once and very sharply. ଯଥା—ଧାକୁଆ ଲଙ୍କାମରିଚରେ ମୋ ପାଟି ହାଉକିନା ଜଳି ଉଠିଲା ] ଦେ. ବି—୧ । ଶୋକଜନିତ ହାହାକାର ବା ରୋଳ—1. The sound uttered by people in grief. [ ଯଥା—ଗୃହସ୍ୱାମୀ

হায় हाय ମରିଯିବାରୁ ତାଙ୍କ ଘରେ ଗୋଟାଏ ଗୋଟାଏ । ହାଉ ଉଠୁଛି]—୨ । ଶୁଖି ଉତ୍ତପ୍ତ ଧାତୁ ବା ପାତ୍ର ବା ମାଟି ଉପରେ ପାଣି ଛିଞ୍ଚିଲେ ସେଥିରୁ ଉଠିବା ଉତ୍ତପ୍ତ ବାଷ୍ପ ବା ବାମ୍ଫ—2 Hot vapour rising from a parched ground or hot metal or pot when sprinkled with water.
( ଯଥା—ଜ୍ୟୈଷ୍ଠମାସରେ ପିଚାପାଣିଆ ବର୍ଷା ହେଲେ ଭୂଇଁରୁ ଗୋଟାଏ ହାଉ ଉଠେ) ୩ । ଶୋକ ବା ଭୟଜନିତ ଛଳଅ ବା ଉଦ୍‌ବେଗ; ଦୁଃଖ—3. A restlessness produced by grief or fright. [ଉ—ଏ ବାଣୀ ଶୁଣି ସେ ମନ୍ତ୍ରିମଣି ହୃଦେ ମଣିଲା ହାଉ—ମଥୁରାମଙ୍ଗଳ ]
[ଦ୍ର—ହିନ୍ଦୀ ଭାଷାରେ 'ହାଉ' ଶବ୍ଦ ଶିଶୁମାନଙ୍କୁ ଡରାଇବା ପାଇଁ ଓଡ଼ିଆ ଭାଷାରେ ବ୍ୟବହୃତ 'କୋକ', 'କୋକମିନା' 'ଅନ୍ଧାରଗୁଣ୍ଡି' ଆଦି ଶବ୍ଦ ପରି କଳ୍ପିତ ଭୟଙ୍କର ଭୂତଙ୍କର ଭାବ ଅର୍ଥରେ ବ୍ୟବହୃତ ହୁଏ ] ୪ । ଶୋକଜନିତ ଦୀର୍ଘନିଶ୍ୱାସ—4. A sigh of grief. ୫ । ହାଉଆ—( ଦେଖ )—Hāuā (See) [ ଉ—ଏ ହାଉ ସୁଗନ୍ଧ, କେତକୀ କୁସୁମ ଅଭିଆମୋଦ—ପ୍ରାଚୀ ରସବାରିଧି ।]

ହାଉଆ—ବୈଦେ. ବି—(ଫା, ହୱା)—୧ । ପବନ; ବାୟୁ—1. Air.
Hauā ୨ । ଜଳବାୟୁ—2. Climate. ୩ । (ଲକ୍ଷଣାର୍ଥ)
হাওয়া ସମ୍ପର୍କ—3. (figurative) Connection. ୪ ।
हवा (ଲକ୍ଷଣାର୍ଥ) ପ୍ରଭାବ— 4. (figurative) Influence.
[ଯଥା ତାଙ୍କ ଦେହରେ ସାହେବଙ୍କ ହାଉଆ ବାଜିଛି ।]

ହାଉଆ ଅ(ଅ)ବାଜ୍—ବୈଦେ. ବି—(ଫା.—ହବା+ଅବାଜ୍)—ଫାଙ୍କା
Hāuā ā(a)bāj ଅବାଜ୍; ଶୁନ୍ ଅବାଜ୍; ବନ୍ଧୁକରେ ଗୁଳି ନ ଦେଇ
ফাঁকাআওয়াজ ଫାୟର୍ କଲେ ଯେଉଁ ଶବ୍ଦ ହୁଏ—Blank
हवाआवाज firing.

ହାଉଆ କଥା—ଦେ. ବି—୧ । ଅମୂଳକ ଜନରବ—1. Unfounded
Hāuā kathā report. ୨ । ଶୁଣା କଥା—2. Hear-
শুনা কথা वाहियातबात say matter.

ହାଉଆ କରିବା—ଦେ. କ୍ରି—ବିଞ୍ଚିବା—To fan.
Hāuā kariba হাওয়া করা हवा करना

ହାଉଆ ଖାଇବା—ଦେ. କ୍ରି—ବାୟୁ ସେବନ କରିବା; ଦେହରେ
Hāuā khāibā ବାୟୁ ଲଗିଲା ପରି ଉନ୍ମୁକ୍ତ ଥିବା ଓ ବାୟୁ
হাউয়া খাওয়া ବହୁଥିବା ସ୍ଥାନରେ ବସିବା ବା ବୁଲିବା—To
हवाखाना take an airing.

ହାଉଆ ଗାଡ଼ି—ଦେ. ବି—(ଯେଉଁ ଗାଡ଼ିରେ ଘୋଡ଼ାଆଦି ଲଗି ନ
Hāuā gārdi ଥିବାରୁ ତାହା ବାୟୁଦ୍ୱାରା ବା ଶୂନ୍ୟରେ ଚଳୁଛି
হাওযাগাড়ি ବୋଲି ଲୋକେ ମନେକରନ୍ତି ।)—୧ । ପବନଦ୍ୱାରା
हवागाडि ଚାଳିତ ଗାଡ଼ି—1. Vehicle propelled by
wind. ୨ । ମଟର୍ ଗାଡ଼ି—2. Motor car. ୩ ।
ସାଇକେଲ—3. Bicycle.

ହାଉଆ ଚକି (କ୍କି) ଦେ. ବି (ଫା.—ହୱା + ସ. ଚକ୍ର)—୧ । ପବନ
Hāuā chaki (kki) ଦ୍ୱାରା ଚାଳିତ ଅଟାପେଷା କଳ—
হাওযা চাকি 1. Wind mill. ୨ । କାଗଜର ଦୁଡ଼ି—
हवाचाक्र 2. Paper kite.

ହାଉଆ ଛାଡ଼ିବା—ଦେ. କ୍ରି—ବାୟୁ ଗମନାଗମନ ପଥରୁ ଅବରୋଧ ଦୂର
Hāuā chhārdibā କରି ଉନ୍ମୁକ୍ତ କରିବା—To let in
হাওযা ছেড়েদেওয়া air; not to obstruct the free flow
हावा छोड़ना of air.

ହାଉଆ ଜାହାଜ—ବୈଦେ.ବି—(ଫା.—ହୱା + ହ.ଜାହାଜ)—ଆକାଶ-
Hāuā jāhāja ଯାନ—Aeroplane ; air-ship,
হাওযা জাহাজ हवाई जहाज

ହାଉଆ ଡିଗ୍ରୀ(କ୍ରୀ)—ବୈଦେ. ବି—(ଇଂରେଜୀ—(ଫା.—ହୱା + ଇଂ
Hāuā digrī (krī) ଡ୍କ୍ରୀ)—ଡିଗ୍ରୀ ହୋଇଥିବା ଟଙ୍କା କୌଣସି
হাওযাডিক্রি ଜଙ୍ଗମ୍ ସମ୍ପତ୍ତିରୁ ଅଦାୟ ନ ହୋଇ ଦେଣଦାରଙ୍କ-
हवाडीग्री ଠାରୁ ଅଦାୟ ହେବା ପାଇଁ କରାଯାଇଥିବା ଡିଗ୍ରୀ—
Personal decree or money decree.

ହାଉଆଦାର୍—ବୈଦେ. ବି—(ଫା)—ଯହିଁରେ ପବନ ଚଳାଚଳ
Hāuādār ହୁଏ—Having free circulation of air
হাউযাদার্ हवादार

ହାଉଆ ନିଲାମ (ମି)—ବୈଦେ. ବି—(ଇଂରେଜୀ)—(ଫା)—ଖାତକ
Hāuā nilāma (mi) ଉପରେ ଡିଗ୍ରୀ ହୋଇଥିବା ଟଙ୍କା ଅଦାୟ
হাওযা নিলাম ପାଇଁ ବନ୍ଧକ ନ ଥିବା ଭୂସମ୍ପତ୍ତିର ଅଦାଲତରେ
हवानिलाम ନିଲାମ—Sale by auction of properties
attached in execution of a money decree
and not of a mortgage decree.

ହାଉଆ ବଦଳ(ଲ)—ବୈଦେ. ବି. (ଫା. ହୱା + ଅ. ବଦଲ୍=ପରି-
Hāuā badala(li) ବର୍ତ୍ତନ)—ସ୍ଥାନାନ୍ତରକୁ ଯିବା ଦ୍ୱାରା
হাওয়াবদলা हवावदल ଜଳବାୟୁ ପରିବର୍ତ୍ତନ—Change of
climate.

ହାଉଆ ବଦଳା(ଲେ)ଇବା—ଦେ. କ୍ରି—ଏକ ସ୍ଥାନର ଜଳବାୟୁ ସ୍ୱାସ୍ଥ୍ୟ
Hāuā badalā(le)ibā ପକ୍ଷରେ ହିତକର ନ ହେଲେ ଶରୀରର
হাওয়াবদলান हवावदलाना ସ୍ୱାସ୍ଥ୍ୟର ଉନ୍ନତି ପାଇଁ ସେ ସ୍ଥାନରୁ
ଅନ୍ୟ ସ୍ଥାନକୁ ଯିବା—To have a change of
climate; to go to a place for change.

ହାଉଆ ବନ୍ଧୁକ—ବୈଦେ. ବି-(ଫା. ହୱା + ଅ. ବନ୍ଦୁକ୍)—
Hāuā bandhuka ପବନର ବେଗ ଦ୍ୱାରା ଚାଳିତ ବନ୍ଧୁକ—
হাওযাবন্দুক तुफङ्ग Air-gun

ହାଉଁ—ଦେ. ଅ (ଧ୍ୱନ୍ୟନୁକରଣ)—୧ । ଖାଇବା ପାଇଁ ହିଂସ୍ର ଜନ୍ତୁର
Hāun ମୁଖବ୍ୟାଦାନ; ଅଁ—1. Opening of the mouth
হাঁ হাঁ wide for eating a victim (said of a
wild animal). ୨। (ଶିଶୁରଞ୍ଜକ ବାକ୍ୟ) ଭୋଜନ—
2. (Nursery) Eating; meal.

ହାଉଁ କରି(କିନି, କିନା,ଦସ୍, ଧସ୍)—ଦେ. କ୍ରି. ବିଣ—ହାଁହୁଁ କରି (ଦେଖ)
Hāun kari(kini, kinā, das, dhas) Hānun kari
(See)

ହାଉଁ କରିବା—ଗ୍ରା.କ୍ରି—(ଶିଶୁରଞ୍ଜକ ବାକ୍ୟ)—ହାଁହୁଁ କରିବା-(ଦେଖ)
Hāun kariba Hānun karibā (See)

ହାଉ ଖସିବା (ପଶିବା)—ଦେ. ବି—ହୃଦୟରେ ଧକ ପଶିବା; ଉଦ୍ବେଗ
Hāu khasibā (pasibā) ବା ଶଙ୍କାଆ ଜାତହେବା—Sudden
terror or consternation. [ଦ୍ର—କାଶ ହୃଦୟକୁ
ভাবনাঢোকা ज़्वपैठना ଏସି ପଡ଼େ ହାଉ—କବିସୂର୍ଯ୍ୟ ସଙ୍ଗୀତ]
(ହାଉ ଏସି ପଡ଼ିବା, ହାଉପଶିଯିବା)—ଅନ୍ୟରୂପ

ହାଉ ଜାଉ—ଦେ ବି—ଗଣ୍ଡଗୋଳ; ହୁଟୁଗୋଳ; ଘୋର୍ଘୋଷ—
Hāu jāu हउगोल होहल्ला Ado; noise
ଦେ. ବିଣ—୧ । ଗାଲୁ ଗାଲୁ; ବେଶି ସଂଖ୍ୟାରେ ଉପସ୍ଥିତ;
হাউচাউ खदबद ବହିପ୍ତ ବା ଗୁଳତ—1. In great
numbers; abounding. (ଯଥା—କଟକ ସହରରେ
ବାବୁ ଗୁଡ଼ାକ ହାଉ ଯାଉ ହେଉଛନ୍ତି) । ୨ । ଅସ୍ତବ୍ୟସ୍ତ;
ব্যতিব্যস্ত तवाह ଅଣ୍ଡ ବରଣ୍ଡ; ବ୍ୟସ୍ତ—2. Disturbed
[ଯଥା—ତୁମେ ପିଲମାନେ ମତେ ବେଢ଼ି ଏପରି ହାଉଜାଉ
କଲେ, ମୁଁ ସିଠେଇ ନ ବାନ୍ଧି ଗୁଲ୍ଲାଯିବି]—୩। ଅଡ଼ ବ୍ୟସ୍ତ;
ବ୍ୟସ୍ତ ସମସ୍ତ—3. Pestered. [ଯଥା—ଖରା ଦିନେ
ବସନ୍ତରୁଆ ଗୁଳୁଗୁଳଲେ ଦେହରୁ ଝାଳ ବୋହି ଓ ଦେହଯାକ
ଫିଟିରେ ଫଟଯିବାରୁ ମଣିଷ ହାଉ ଯାଉ ହୋଇଯାଆନ୍ତି ।]
୪ । ହୈ ଚୈ (ଦେଖ)—Hai chai (See). ୫ ।
(ଲକ୍ଷଣାର୍ଥ) ସଂସର୍ଗ; ସମ୍ପର୍କ—5. Relationship;
contact.

ହାଉଡ଼ା—ଦେ. ବି (ନାମ)—ହାବୁଡ଼ା; କଲିକତାର ବିପରୀତ ପାର୍ଶ୍ୱରେ
Hāurdā ଗଙ୍ଗା କୂଳରେ ଥିବା ନଗର ଓ ଜିଲ୍ଲା—Howrah;
হাওড়া हावडा (District and town on the opposite
side of Calcutta [ଦ୍ର—ଏଠାରେ ଗଙ୍ଗାନଦୀ
ଉପରେ ଗୋଟିଏ ଭାସମାନ ସେତୁ (ପୋଲ) ଅଛି ।

ଏଠାରେ ବେଙ୍ଗଲ ନାଗପୁର ରେଲୱେ ଓ ଇଷ୍ଟ ଇଣ୍ଡିଅନ୍ ରେଲୱେର ଗୋଟିଏ ସମ୍ମିଳିତ ବଡ଼ ଷ୍ଟେସନ୍ ଅଛି । ଦେ. ଣଶ ପୁଂ (ସ. ହାବ; ଯେଉଁ ବ୍ୟକ୍ତି ହାବ (ହାବ୍ଭୀ—ସ୍ତ୍ରୀ) ବା ଇଙ୍ଗିତ ଦ୍ୱାରା ଭାବ ପ୍ରକାଶ କରେ)—
ହାବା, ହାବୁ ବୌକା ୧ । ବୋବା—1. Dumb, mute. [ଦ୍ର—ହାଉଡ଼ା କଥା ହାଉଡ଼ା ମାଅ ଜାଣେ—ପଙ୍କୀର ମୋହନ ଭ୍ରମଣ ଅଠଗୁଣ ।] ୨ । ଖନା—2. Faltering in speech. [ଦ୍ର—ସ୍ୱଗାରୁ ନରେ ହାଉଡ଼ାଟା ମଧ୍ୟ ଆଁ କରି ଦଏ—ଭଗ]— ୩ । ଓଳୁ; ନିର୍ବୁଦ୍ଧିଆ—
3. Foolish; stupid; idiotic.

ହାଉଡ଼ା ପାରି—ଦେ ବି—କଲିକତାର ବିପରୀତ ପାଶ; ଗଙ୍ଗାର ଅପର
Hāurdā pāri ପାର, ଯେଉଁ ପାରରେ ହାଉଡ଼ା ଅବସ୍ଥିତ—
ହାଓଡ଼ାপার हावड़ापार The Howrah side of the river Ganges (opposite to Calcutta).

ହାଉଡ଼ି—ଦେ. ବି—(ଧ୍ୱନ୍ୟନୁକରଣ, କମ୍ପା ଢେକ୍କା)—ହାକୁଟି—
Hāurdi ঢেকুর डकार Belching.

ହାଉଡ଼ି ମାରିବା—ଦେ. କ୍ରି—ହାକୁଟି ମାରିବା (ଦେଖ)
Hāurdi māribā Hākuti māribā (See)
ঢেকুর তোলা डकार करना

ହାଉଡୁ ଉ(ବୁ)ଡୁ—ଦେ. ବି—ଡୁଡୁ (ଦେଖ)—
Hāudu-u(bu)du হাডুডুডু कबड्डी Dudu (See)
(ହାଉଡୁଡୁ—ଅନ୍ୟରୂପ)

ହାଉଦା—ବୈଦେ. ବି—(ଅ. ହାଓଦା)—(ସ. ନାମ ବଚଣ୍ଡନ)—୧ ।
Haudā ହାତୀ ପିଠିରେ ମନୁଷ୍ୟଙ୍କ ବସିବା ପାଇଁ ବନ୍ଧାଯିବା ଗଦି
হাওদা हौदा ଓ ବିମାନଯୁକ୍ତ ଆସନ—1. A stuffed and armed seat or cushion or litter with railings, put over the back of an elephant. [ଦ୍ର—ହାଉଦା ଅମାରି ଅନ୍ଧ ଶିରିଙ୍କ, ବୋପର ଘେଣ୍ଟୁଅ ଘଣ୍ଟିମାଳ । ବ୍ରଜନାଥ—ସମର ତରଙ୍ଗ ।] ୨ । (ଇଂ.
চৌবাচ্চা चबच्चा ହାଉସ୍)—୨ । ପାଣି ସଞ୍ଚୟ କରି ରଖିବା ପାଇଁ ଇଟାରେ ଓ ଚୂନରେ ପ୍ରସ୍ତୁତ କୁଣ୍ଡ; ଚହବଚ୍ଚ—2. A reservoir for storing water.

ହାଉଦା କଷିବା—ଦେ. କ୍ରି—ହାତୀ ପିଠିରେ ହାଉଦାକୁ ପକାଇ ତାକୁ
Hāudā kashibā ରଜ୍ଜୁ ଅଦ୍ଵାରା ଦୃଢ଼ ସଲଗ୍ନ କରିବା—
To set the cushion on the back of the
হাওদা কষা हौदाकसना elephant tightly.

ହାଉ ପଶିବା—ଦେ. ବି—କୌଣସି ଅକସ୍ମିକ ବିପଦଯୋଗୁ ବ୍ୟକ୍ତିଠାରୁ
Hāu pasibā ମନରେ ଗୋଟାଏ ଶଙ୍କା ପଶିଯିବା—The state of having a terror left in the mind after a sudden fright, alarm. [ଦ୍ର—ଘର
[ହାଉ ପଶିଯିବା—ଅନ୍ୟରୂପ] ଯୋଡ଼ ଘଣ୍ଟ ବୋଲି ଗୋଟାଏ ଡାକ ଶୁଣିଲଣି ମୋ ଦେହରେ ଗୋଟାଏ ହାଉ ପଶିଗଲା]
ভাবনা ঢোকা व्यस्तपैठना

ହାଉ ପୂରା(ରେ)ଇବା—ଦେ. କ୍ରି—୧ । ଅକସ୍ମିକ ବିପଦ ଘଟିଯିବାପରେ
Hāu purā (re) ib ଅପଣା ମନକୁ ଶଙ୍କାଅ କରିବା—
1. To continue to have the terror in one's mind even after a sudden fright is over. ୨ । କୌଣସି ଶୋକଜନକ ଘଟଣା ଘଟିବା ପରେ ଅପଣା ମନରେ ସର୍ବଦା ସେହି ହାହାକାର ବା ଘାର୍ଦ୍ଧ ନିଶ୍ୱାସକୁ ସ୍ଥାନ ଦେବା—2. To continue to cherish the sighing till long after the matter for sigh is gone.
হা হুতাশ করা हायपैठाना

ହାଉମରିଚିଆ—ପ୍ରାଦେ. (ଗଡ଼ଜାତ) ବି—କ୍ଷୁଦ୍ର ପୋଡ଼ା ଗୁଳ୍ମ—
Hāumarichia Toddalia Aculeata (thorny shrub).
[ଦ୍ର—ଏହାର ପତ୍ରକୁ ମକଚଲେ ତହିଁରୁ ମରିଚ ପରି ଗନ୍ଧ ବାହାରେ । ଏହି ପତ୍ର ବ୍ରଣ ଆଦିରେ ପକାନ୍ତି । ପତ୍ରକୁ ପେଟ ବାଗରେ ପକାଇଲେ ଘା ଅଶୁଖେ) ପିଠି ଅଢ଼ିଆ ପକାଇଲେ ବଥ ଆଦି ପାଟେ]

ହାଉୟା(ଆ)ଛାଡ଼ି ମାରିବା—ପ୍ରାଦେ. (ବାଲେଶ୍ୱର) କ୍ରି—ପବନ ଯେଉଁ
Hāuyā(ā) chhārdi māribā ଅଡ଼କୁ ବହୁଥାଏ ସେଥିରୁ ଗୁଡ଼ିକୁ ଅନ୍ୟ ଅଡ଼କୁ ଘେନିଯାଇ ସେଇଠି ବସାଇବା—To take the paper kite from the direction of the wind tactfully to another direction.

ହାଉୟା(ଆ)ଛାଡ଼ିଯିବା—ପ୍ରାଦେ (ବାଲେଶ୍ୱର) କ୍ରି—ପବନ ନ ବହିବା
Hāuyā(ā)chhārdi jibā ଯୋଗୁଁ କମା ପବନ ବହୁଥିବା ବଗରୁ ଗୁଡ଼ି ଅନ୍ୟ ଅଡ଼କୁ ଯିବା ଯୋଗୁଁ, ଗୁଡ଼ିର ଦେହରେ ଅଉ ପବନ ନ ଲାଗିବାରୁ ତହିଁ ଫଳରେ ଗୁଡ଼ି ତଳକୁ ବସି ପଡ଼ିବା—(a paper kite) To come down to the ground for want of a current of wind.

ହାଉୟା(ଆ) ଧରିବା—ପ୍ରାଦେ. (ବାଲେଶ୍ୱର) କ୍ରି—ଗୁଡ଼ି ଦେହରେ
Hāuyā(ā) dharibā ପବନ ବାଜିବାରୁ ତାହା ଉଡ଼ିବାକୁ ସମର୍ଥ ହେବା—(a paper kite) To be able to soar high by the effect of wind.

ହାଉର୍ ହାଉର୍ ହେବା—ପ୍ରାଦେ (ସମ୍ବଲପୁର) କ୍ରି—(ଖାଇବସିବା
Hāur hāur hebā ବେଳେ) ଅଧିକ ଖାଇବାକୁ ଦିଅ ବୋଲି ବାରମ୍ବାର ମାଗିବା—To repeatedly ask for more food being served on the plate.

ହାଉଳ ଗୁ(ପା,ବା,ମା) ଉଳ ହେବା—ଦେ. କ୍ରି—(ସଂ. ଅକୁଳ)—୧ ।
Hāula chā(pā,bā,mā) ula hebā କୌଣସି ବସ୍ତୁ ପାଇଁ ଆକୁଳ বিকুলি হওয়া ବ୍ୟଗ୍ର ଓ ବ୍ୟସ୍ତ ହୋଇ ଉତ୍କଣ୍ଠାରେ ଖୋଜି-
व्यग्र होना ହେବା । ଧନ୍ଦି ହେବା—1 To eagerly search after a thing. ୨ । ଅତ୍ୟନ୍ତ, ଅକୁଳ ଓ ବ୍ୟାକୁଳ ହେବା, ଉତ୍କଳ ବ୍ୟକୁଳ ହେବା— To be restles

with anxiety or pain ୩ । ପାଗଳପରି ଇତସ୍ତତଃ ଘୂରିବୁଲିବା—3. To wander like a madman; to move madly about. ୪ । ହାଉଲିଖାଇବା; ଉଦ୍ଦେଶ୍ୟହୀନ ଭାବରେ ଇତସ୍ତତଃ ଗମନ କରିବା—4. To move here and there aimlessly

ହାଉଲ୍‌ଦାର୍‌—ବୈଦେ. ବି—ହାବିଲ୍‌ଦାର୍‌ (ଦେଖ)—
Hāul-dār Hābil-dār (See).

ହାଉଲା—ଦେ. ବିଣ. ପୁଂ—(ଫ଼ା. ବାଉଲ)—୧ । ଯେଉଁ ଲୋକ
Hāulā ଶୀଘ୍ର ପୂର୍ବକଥା ଭୁଲିଯାଏ; ଯେଉଁ ବ୍ୟକ୍ତିର କଥା ମନେ
(ହାଉଲୀ—ସ୍ତ୍ରୀ) ରହେ ନାହିଁ—1. Forgetful (person).
୨ । ଯେ ସବୁ କଥା ପାସୋର ପକାଏ—2. Oblivious.
୩ । କାର୍ଯ୍ୟକଳାପରେ ଅସଂଯତ—3. Unsystematic or uncontrolled in action. [ଦ୍ର—ହାଉଲା ଲୋକ ଏକ ସ୍ଥାନରେ ଗୋଟିଏ ଜିନିଷ ରଖି, ଅନ୍ୟ ସ୍ଥାନ ଖୋଜେ; କାର୍ଯ୍ୟସ୍ଥଳକୁ ଗଲାବେଳେ ପାଖରେ କେତେକ ଆବଶ୍ୟକ ପଦାର୍ଥ ସଙ୍ଗରେ ନେବାକୁ ଭୁଲିଯାଏ; ଯାହାକୁ ଯାହା ଜବାବ୍‌ ଦେଇଥାଏ, ତାହା ପାସୋର ପକାଏ । ]

ହାଉଲା—ବୈଦେ ବି—(ଉଚ୍ଚାରଣ) (ଅ. ହୱାଲ)—୧ । ଜିମାଦାରୀ—
Hāulā 1. Custody. ୨ । ବଙ୍ଗଦେଶର ବାଖରଗଞ୍ଜ
হাওলা, হাওয়াল্ ଜିଲ୍ଲାରେ ପଡ଼ିଆ ଭୂମିକୁ ଆବାଦ କରିବା ପାଇଁ
हवाला ଆବାଦକାରୀଙ୍କୁ ପଟ୍ଟା ଦିଆଯିବା ତାଲୁକ ବା ମଧ୍ୟସ୍ୱତ୍ୱ—
2. An undertenure in Backergunj district in Bengal granted for reclamation of waste land. [ଦ୍ର—ଏହି ମଧ୍ୟସ୍ୱତ୍ୱ ବା ହାଉଲା ନେଇଥିବା ବ୍ୟକ୍ତି (ହାଉଲଦାର୍‌) ପୁଣି ଅନ୍ୟ ଲୋକଙ୍କୁ ଦରପଟ୍ଟା ଦେଲେ ସେସ୍ୱତ୍ୱକୁ 'ନିମ୍‌ ହାଉଲା' ବୋଲାଯାଏ ।]
দাঁড় कहआर ୩ । ନୌକାର ଅଣ୍ଡଳ—3. Oar.

ହାଉଲ(ଲେ)ଇବା—ଦେ. କ୍ରି—୧ । ଡଙ୍ଗାକୁ ଚଳାଇବା ପାଇଁ ଅଣ୍ଡଳ
Hāulā(le)ibā ପକାଇବା—1. To row a boat; to ply
দাঁড়ফেলা বা টানা the oar. ୨ । କୌଣସି କାର୍ଯ୍ୟର ଗତି
कहआर चलाना ବା ବେଗକୁ କମାଇବା—2. To slow down the pace or motion of any thing.

ହାଉ(ୱା)ଲତ—ବୈଦେ. ବି—(ଅ. ହାୱାଲତ୍‌, ନଜରବନ୍ଦୀ; ହୱାଲା= 
Hāu(wa)lāt ଘାରଣଦାରୀ, ଜିମାଦାରୀ)—୧ । ଅଳ୍ପଦିନ ପାଇଁ
হাওলাত ବିନା ସୁଧରେ ଦିଆଯିବା ଋଣ—1. Loan
हथफेर हवालात advanced without interest for short periods. ୨ । ଚାକରମାନଙ୍କ ଦରମା ମିଳିବା ପୂର୍ବରୁ ସେମାନଙ୍କର ଆବଶ୍ୟକ ପଡ଼ିଲେ, ସେମାନଙ୍କୁ ଦିଆଯିବା ଉଧାର ଧନ (ଯାହା ଦରମା ପାଇଲେ ସେ ମଜୁରା ଦିଅନ୍ତି ।)—2. Advance made to a
হাওলাত servant towards his pay. ୩ । ଭାରପ୍ରାପ୍ତ
अगाऊ କର୍ମଚାରୀଙ୍କୁ ଆବଶ୍ୟକ ସରକାରୀ ବ୍ୟୟ ଚଳାଇବା ପାଇଁ ଦିଆଯିବା ଟଙ୍କା (ପରେ ହିସାବ ମୁକାବିଲା କରି ଯାହାର ବିଲ୍‌ ମଞ୍ଜୁର୍‌ କରାଯାଏ ।)—Advance made to officers to meet current expenses. ୪ । ନ୍ୟାସ; ଉପାଣ୍ଡ୍—4 Deposit; money deposited in trust. ୫ । ତହବିଲରୁ ଟଙ୍କା ଦରକାରେ ତହବିଲର ଭାରପ୍ରାପ୍ତ କର୍ମଚାରୀ ଯେଉଁ ଟଙ୍କା ଉଧାର ଦେଇ କାର୍ଯ୍ୟ ଚଳାଇଥାଏ—(ଯାହା ପରେ ତହବିଲକୁ ଟଙ୍କା ଆସିଲେ ପୂର୍ଣ୍ଣ ହୁଏ ।)—5. Advance made by a person in charge of cash to meet any urgent expense ୬ । ହାଜତ—6. Hajat; confinement of an undertrial person. ୭ । ହାଜତ ଘର—7. Lock-up ୮ । ନଜରବନ୍ଦୀ—8. Surveilance.

ହାଉଲାତି—ବୈଦେ. ବିଣ—(ଅ ହୱାଲତ୍‌; ହୱାଲ)—ହାଉଲତ୍‌ ବା
Hāulāti ଉଧାର କରାଯାଇଥିବା (ଧନ)—Advanced
হাওলাতি हातफेरी money.

ହାଉଲାଦାର୍‌—ବୈଦେ. ବି (ଅ)—ବାଖରଗଞ୍ଜଜିଲ୍ଲାର ହାଉଲା ନାମକ
Hāulādār ମଧ୍ୟସ୍ୱତ୍ୱକୁ ଜମିଦାରଙ୍କଠାରୁ ପଟ୍ଟା ନେଇଥିବା ମଧ୍ୟସ୍ୱତ୍ୱାଧିକାରୀ—An under tenure-holder in Backerganj. [ଦ୍ର—ଏହାର ଅଧସ୍ତନ ମଧ୍ୟସ୍ୱତ୍ୱାଧିକାରୀଙ୍କୁ ନିମ୍‌ ହାଉଲଦାର ବୋଲାଯାଏ ]
হাওলাদার हवालादार

ହାଉଳା ବାଉଳା—ଦେ. ବିଣ. ପୁଂ (ସଂ. ବାତୁଳ)—୧ । ବାତୁଳ—
Hāulā bāulā 1. Mad. ୨ । ବାତୁଳଗ୍ରସ୍ତ—2. Mad
[ହାଉଳୀ ବାଉଳୀ—ସ୍ତ୍ରୀ] denedo.
পাগলা हाउलाबाउला

ହାଉଳି—ଦେ.ବିଣ—ନାନାଶ୍ରେଣୀର ବା ପ୍ରକାରର ମିଶା (ଧାନଗୁଡ଼ିକ ଅର୍ଥ)
Hāuli Mixed; of many sorts; medley. ଦେ· ବି—
୧ । ପୂର୍ଣ୍ଣରୂପେ ନିଦ୍ରା ଭାଙ୍ଗି ନ ଥିବା ଅବସ୍ଥାରେ କଷ୍ଟାନ୍ଧରୁ ଉଠି ହଠାତ୍‌ ଖାଲି ହୋଇ ଦଉଡ଼ି ହେବା ବା ବାଉଳା ହେବା—1. Grovelling or groping when one has not fully shaken off his sleep. ୨ । ବାଉଳା ହେବା; ବାଉଳ ହୋଇ ଖୋଜ ହେବା—2. Groping after a thing in forgetfulness. ୩ । ଅଗ୍ନିର ଉତ୍ତାପ (ଗୋପୀନାଥ ନନ୍ଦ)—3· Heat of fire. ୪ । ଗଣ୍ଡଗୋଳ; ଗୋଳମାଳ; ମୁଖରବ; ହୁଲ୍ଲର—4. Noise; ado. [ଉ—ମା ଝିଅଙ୍କ ହାଉଳିରେ ଗାଁ ଲୋକେ ଧଇଁ ପଡ଼ିଲେ—ଲୁତ୍ତଳାକୁମାରୀ. ନନ୍ଦଭୂମି] ପ୍ରାଦେ. (ସମ୍ବଲପୁର,ଗଡ଼ଜାତ) ବି.—ଚକ୍ଷୋଇ ନେଉଳ—A kind of lizard with a smooth skin
মেশামেশি and red tail.

ହାଉଳିଆ—ପ୍ରାଦେ. (ଯାଜପୁର) ବିଣ—ଅବ୍ୟବସ୍ଥିତ—Unmetho-
Hāuliā dical. [ଯଥା—ହାଉଳିଆ ଲୋକ]

ହାଉଳି ଖାଇବା—ଦେ. କ୍ରି—ହଠାତ୍ ନିଦରୁ ଉଠି ହଠାତ୍ ଖୁଡ ହୋଇ Hāuli khāiba ବା ବାଉଳା ହୋଇ ବଛଣାରେ ବା ଭୂମିରେ ଦରାଣ୍ଡି ହେବା—1. To grope on the bed or ground on being suddenly awaken from deep sleep. [ଉ—ମାଇକିନିଆମାନେ ନିଦବାଉଳାରେ ହାଉଳି ଖାଇ ଦେହ ଲୁଗା ଯେନ+ + +ଗଛ ମୂଳରେ ବସି ଅଛନ୍ତି—ଫକୀର ମୋହନ, ଛମାଣ ଆଠଗୁଣ୍ଠ] ୨ । ଦଳ ଦଳ ହୋଇ ଇତସ୍ତତଃ ବୁଲିବା —2. To move in crowds at random; to wonder aimlessly in crowds. [ଯଥା—ଶ୍ରାବଣମାସରେ ମେଘ ହାଉଳି ଖାଉଥାଏ] ୩ । ଭୟରେ ବାଉଳା ବା ଅସ୍ଥିର ହେବା—3. To become restless through fear. ୪ । ଭୂଲୁଣ୍ଠିତ ହେବା; ଗଡଗଡ଼ାଇ ହେବା—4. To wallow or roll on the ground.

হাতড়ান ढंढोलना

ହାଉଳି ଚାଉଳ—ନାନା ପ୍ରକାର ମିଶା ଚାଉଳ—Rice consisting Hāuli chāula of many varieties mixed together. [ଦ୍ର—ଏହିପରି ହାଉଳିଥାଳ ହୁଏ]

মেশামেশিচাল सबरंगकाचावल

ହାଉଳି ବାସନ—ଦେ. ବି—୧ । ମାଳୋଇ ବାସନ; ନାନା କାରିଗରଙ୍କ Hāuli bāsana ତିଆରି ନାନା ପ୍ରକାର ବାସନ—1. Utensils of various makes. ୨ । ମାଲୋଇ ବାସନ; ଯେଉଁ ବାସନ ଏକ କାରିଗରର ହାତର କମ୍ବା ଫରମାସି ବା ଉତ୍କୃଷ୍ଟ ଧରଣରେ ନୁହେଁ—2. Utensils which are neither excellent nor made to order nor of one maker. [ଦ୍ର—ଏହିପରି ହାଉଳି କଂସା, ଗିନା, ଥାଳ ଗାଲ ଆଦ ହୁଏ]

মেশামেশিবাসন तरहतरहकेबरतन

ହାଉଳି ମାଉଳି—ଦେ. ବଣ—୧ । ଉଦ୍ଦେଶ୍ୟ ବିହୀନ ହୋଇ ଇତସ୍ତତଃ Hāuli māuli ବୁଲିବା—1. Moving at random. ୨ । କିଂକର୍ତ୍ତବ୍ୟବିମୂଢ଼—2. Dumb founded ୩ । କିଂକର୍ତ୍ତବ୍ୟବିମୂଢ଼ ହୋଇ ଦରାଣ୍ଡୁଥିବା—3. Groping in bewilderment.

কিংকর্ত্তব্যবিমূঢ় किंकर्त्तव्यविमूढ़

ହାଉଲେ—ଦେ. କ୍ରି ବଣ—(ହ୍ର.ଲଘୁ କ, ପ୍ର.ଲହୁଅ; ଅପର ବ୍ୟୁତ୍ପତ୍ତି— Hāule ହାଉଲେ)—୧ । ଅସ୍ତେ; ଧୀରେ; ଧୀରିଭାବରେ— Slowly. [ଉ—ହାଉଲେ ହାଉଲେ, ପାହୁଲେ ପାହୁଲେ—ଢଗ] ୨ । ଲଘୁ ଭାବରେ—2. Lightly; slightly. [ହାଉଲେ ହାଉଲେ—ଅନ୍ୟରୂପ]

আস্তেআস্তে हौले

ହାଉସ୍—ବୈଦେ. ବ (ଇଂ)—୧ । ଘର; ବାସସ୍ଥାନ—1. House. Hāus ୨ । ପାଣି ରଖିବାପାଇଁ ପକ୍କା ଚହ୍ୱଚ୍ଚା—2. A water reservoir of masonry ୩ । ବଡ ବଡ ମହାଜନଙ୍କ କାରବାର—ଦୋକାନର ଘର—3. Business house of big merchants.

হাউস हाउस

ହାଉସ୍ ଅଫ୍ କମନ୍ (କମନ୍ସ)—ବୈଦେ. ବ (ଇଂ)—ଜନସାଧାରଣଙ୍କ Hāus af kaman (kamans) ଭୋଟଦ୍ୱାରା ନିର୍ବାଚିତ ପ୍ରତିନିଧି-ମାନଙ୍କ ଗଠିତ ବ୍ରିଟିଶ ପାର୍ଲିଆମେଣ୍ଟର ବା ଶାସନପରିଷଦର ଶାଖାଦ୍ୱୟ ମଧ୍ୟରୁ ଏକଟିର—The House of Commons.

হাউসঅফকমনস हाउसअफकमनस

[ଦ୍ର—ଏହାର ସଭ୍ୟସଂଖ୍ୟା ୬୧୫ । ଏମାନଙ୍କୁ ବର୍ଷକେ ୬୦୦ ପାଉଣ୍ଡ ଲେଖାଏଁ ଭତ୍ତା ମିଳେ । ସ୍ୱ ସ୍ୱ ନିର୍ବାଚନ କ୍ଷେତ୍ରରେ ବୁଲିବାପାଇଁ ସଭ୍ୟମାନେ ବିନାଭଡ଼ାରେ ରେଲରେ ଯାଇ ଆସିବା କରି ପାରନ୍ତି]

ହାଉସ୍ ଅଫ ଲର୍ଡସ୍—ବୈଦେ. ବ (ଇଂ)—ଇଂଲଣ୍ଡର ଜମିଦାର ଓ Hāus af lards ଧର୍ମାଧ୍ୟକ୍ଷଙ୍କଦ୍ୱାରା ଗଠିତ ପାର୍ଲିଆମେଣ୍ଟର ଶାଖା The House of Lords. (ଦ୍ର—ଏ ସଭାରେ ପିଅର୍ ବା ଇଂଲଣ୍ଡର ଜମିଦାର ବଂଶର ଜ୍ୟେଷ୍ଠ ପୁତ୍ରମାନେ ଓ ୨୪ ଜଣ ଇଂଲଣ୍ଡର ବିସପ୍ ଓ ୨୮ଜଣ ଆଇର୍ଲଣ୍ଡର ଲର୍ଡ୍ ସ୍ଥାନ ପାଆନ୍ତି ଓ ୧୬ ଜଣ ଲର୍ଡ୍ ଯାବଜ୍ଜୀବନ ନିର୍ବାଚିତ ହୁଅନ୍ତି]

হাউসঅফলর্ডস हाउसअफलर्डस

ହାଉସ—ପ୍ରାଦେ. (ପୁରୀ) ବ—(ଅ. ହଉସ ଉତ୍ସାହ)—ଉତ୍ସାହ— Hāusa Courage

উৎসাহ हौस

ହାଉହାଉ—ଦେ. ଅ (ଧ୍ୱନ୍ୟନୁକରଣ, ତୁଳ ଇଂ. ହାଉଲ୍)—୧ । ବହୁ Hāuhāu ଲୋକଙ୍କ ଏକତ୍ର ପାଟି କରିବା ବା ଘୋଷା କରିବା— 1. Making a row. (ଉ—ଗୁରୁଆଡ୍ରେ ଲାଗିଅଛି କିଆଁ ହାଉହାଉ—ମଧୁସୂଦନ ରାଓ) ୨ । ଉଚ୍ଚ ସ୍ୱରରେ ଅର୍ଥହୀନ ରବ—2. Howling. ୩ । ହଠାତ୍ ସମ୍ମୁଖରେ ବିପଦ ଉପସ୍ଥିତ ହେବାରୁ ବିପନ୍ନ ଲୋକଙ୍କ ପାଟି ଓ ନିଜ ମାନ ଯିବାଯୋଗୁ ସେମାନଙ୍କ କରିବା ହାଉହାଉ ଶବ୍ଦ— 3. The confused sound of dismay made by persons in bewiderment or terror on a sudden calamity. ଦେ. କ୍ରି. ବଣ—୧ ।ହାଉହାଉ; ଶୁଷ୍କ, ଶୀଘ୍ର ଦାହ୍ୟ ପଦାର୍ଥ (ଯଥା—କୁଟା, ଝୋଟ, ବନା ଘାସ) ରେ ନିଆଁ ଲାଗିଯିବା ପ୍ରକାରେ—1. In the manner of a big fire furiously raging and devouring combustible things very quickly. ୨ । ନିଆଁ ଉଦ୍ଦୀପ୍ତ ଭାବେ ଓ ଶିଖା ବହୁତ ଜଳିବା ପ୍ରକାରେ—2 Furiously blazing (ଯଥା—କୁଠାଘରରେ ନିଆଁ ହାଉହାଉ ହୋଇ ଜଳୁଛି ) ୩ । ଧାନୁଅ ଲଙ୍କା ମରିଚ ଖାଇଲେ ଲାଗିବା ମାଫକେ କମ୍ବା ନିଆଁ ଆଦ ଦେହରେ ଲାଗିଲେ ଅନୁଭୂତ ହେବା ଜଳାପୋଡ଼ା— Acute burning sensation, such as is produced by eating very pungent things or when the skin is burnt by fire.

[ଯଥା—ଦେହରେ ନାଇଟି କି ଏଥିଭି ବୋଲଇରୁ ଦେହ
হাউহাউ ହାଉ ହାଉ ହୋଇ ଗୋଡ଼ନ୍ତି ।]

ହାଉ ହାଉଅ - ଦେ. ବଣ. (ପୁଂ ଓ ସ୍ତ୍ରୀ)—ଯେଉଁ ଲୋକ ଖୁବ ପାଟି
Hāu hāuā କରି କଥା କହେ; ଅତି ବଡ ପାଟିଆ—Having
গোলমেলে भोमाशंख a very loud voice.

ହାଉହାଉ ହେବା—ଦେ. କ୍ରି—୧ । ବହୁ ଲୋକ ଗୋଳମାଳ କରିବା—
Hāuhāu hebā 1. (Many persons) To make a
হাউহাউকরা row or noise. ୨ । ଭୟରେ କିଂକର୍ତ୍ତବ୍ୟ-
हल्लामचाना ବିମୂଢ଼ ହୋଇ ଗୋଳମାଳ କରିବା—2. To utter
loud and unmeaning sounds in terror.
୩ । ବହୁ ଲୋକ ବୃଥା ବାକ୍ୟ ବ୍ୟୟ କରିବା—
3. (Many persons) To howl in vain.

ହାଏ—ଦେ. ଅ—(ସଂ. ହା)—ହା ! ହାୟ ! ହାଇ ! Alas !
Hāe ପ୍ରାଦେ (ସମ୍ବଲପୁର) ଅ—ହାଉ ! ହେଉ ! Hush !
হায় हाय

ହାଏଁଡ଼ି—ପ୍ରାଦେ (ସମ୍ବଲପୁର) ବି—ହାଣ୍ଡି—Earthen pot.
Hāeñd

ହାଏଣ୍ଡଫୋର—ପ୍ରାଦେ (ସମ୍ବଲପୁର) ବି—ବଡ଼ସିଝା ପିଠା—
Hāeñd-phor Par-boiled cake.

ହାଏଣ୍ଡ—ପ୍ରାଦେ (କଳାହାଣ୍ଡି ଅଞ୍ଚଳ) ବି—ହାଣ୍ଡି—
Hāend An earthen pot.

ହାଏର ଗୁହାଏର—ପ୍ରାଦେ (ସମ୍ବଲପୁର) ବି—ହାରି ଗୁହାରି (ଦେଖ)
Hāer guhāer Hāriguhāri (See)

ହାଏର ଗୁହେର—ପ୍ରାଦେ (ଗଡ଼ଜାତ) ବି.—ହାରିଗୁହାରି (ଦେଖ)
Hāer guher Hāri guhāri (See)

ହାଏରେ କପାଳ (ବିଧାତା)—ଦେ. ଅ.—ହାଇରେ କପାଳ (ଦେଖ)—
Hāere kapāla (bidhātā) Ah ! my luck ! as ill-
হায়রে কপাল हायरे कपाल luck would have it.

ହାଏଲ ବୁକ(କୁ)ମ୍—ପ୍ରାଦେ (ସମ୍ବଲପୁର) ବି.—ହାଲ ଖବର—News.
Hāel buka(ku)m

ହାଃ—ଦେ. ଅ—(ସଂ. ହା)—୧ । ବିସ୍ମୟ, ଖେଦ, ଶୋକ ବା ଯାତନା-
Hāh ସୂଚକ ଧ୍ୱନି—1. An exclamation of wonder,
হা हा grief or distress; Ah ! Oh ! ୨ । ହର୍ଷସୂଚକ
ଧ୍ୱନି—2. An exclamation joy. Hah !
୩ । ଘୃଣାର୍ଥକ—3. An exclamation of dis-
gust or hatred. ଦେ. ବି—(ଫରସୀ)—
୧ । 'ହାଲ'ର ସାଙ୍କେତିକ—1. The abbreviation
for 'Hāl'. ୨ । ହାଜର ଓ ହାଜୀ ଶବ୍ଦର ସାଙ୍କେତିକ—
2. The abbreviation for Hājar and
Hāji.ā.

ହାଁ—ଦେ. ଅ—(ହିନ୍ଦୀ ଭାଷାରେ ହଁ ର ଅନୁକାର)—୧ । ହଁ—1. Yes.
Hañ ୨ । (ଉପସ୍ଥିତ ବା ଆଗରେ ଥିବା ବା ସମ୍ମୁଖରେ ବିପରୀତ
হাঁ हाँ ଦିଗରୁ ଆସୁଥିବା ବ୍ୟକ୍ତିଙ୍କୁ ସାବଧାନ କରିବାପାଇଁ
ସମ୍ବୋଧନ—2. An exclamation used in
warning a person coming from the
opposite side or who is present or in
front. Hallo ! ୩ । ବାକ୍ୟଶେଷରେ ବକ୍ତାଙ୍କ
हैं हेँ ଧମକାଣ—3. A word indicating threat at
the end of a speech. ୪ । ପୂର୍ବେ କୋଲଯାଉ
ସ୍ଥଗିତ ରହିଥିବା କଥାର ସ୍ରୋତକୁ ପୁନର୍ବାର ଚଳାଇବାର
ଆଦ୍ୟରେ ବ୍ୟବହୃତ ଧ୍ୱନି—4. An expression
used in resuming the thread of a narra-
tive which had been stopped for a time.
୫ । ଆକ୍ରମଣ କରିବାକୁ ଉଦ୍ୟତ ହେଉଥିବା ବ୍ୟକ୍ତିକୁ
ନିବୃତ୍ତ କରିବା ପାଇଁ ସଙ୍କେତ—5. An exclama-
tion used in stopping or preventing a
person coming to attack. ପ୍ରାଦେ (ଉତ୍ତରାଞ୍ଚଳ)
ଅ—କ୍ରୋଧ ଓ ସ୍ୱୀକାର ସୂଚକ ଶବ୍ଦ—An interjec-
tion indicating rage and consent.

ହାଁଇଁଆ—ଦେ. ବଣ—୧ । ଯେଉଁ ବ୍ୟକ୍ତି ଖାଇବା ପାଇଁ ହାଇଁ ପାଇଁ
Hāñiñā ବା ଲାଳାୟିତ ହୁଏ—1. Eagerly hankering
হেভলা भूखा to eat. ୨ । ବଡ଼ପାଟିଆ—2. Of loud
হেঁকোড়েকো भोमाशंख tone.

ହାଁଇଁଆନ୍ତ—ଦେ. ବଣ—ହୟାନ୍ତ (ଦେଖ)—
Hāñiñanta Hayānta (See).

ହାଁଇଁଆଁ ପାଟି—ଦେ. ବି—୧ । ବଡ଼ପାଟି; ଉଚ୍ଚୈଃସ୍ୱର—Loud
Hāñiñāñ pāṭi voice. ୨ । ସୁବିଶାଳ ବ୍ୟାଦାନଯୁକ୍ତ ମୁଖ
হাঁকডাক भोमाशंख —2. Wide yawning mouth.
ହାଁଇଁଆ ପାଟିଆ (ପୁଂ) } ବଣ
ହାଁଇଁଆଁ ପାଟିଇ (ସ୍ତ୍ରୀ) }

ହାଁଇଁପାଇଁ—ଦେ. ବି—କାମ କରିବାକୁ ବା ଖାଇବାକୁ ଲାଳସା—
Hāñiñ pāñiñ Eagerness or hankering after a
হাইঁপাই work or food. ଦେ. ବଣ—୧ । କାମ କରିବାକୁ ବା
लालसा ଖାଇବାକୁ ଲାଳାୟିତ ବା ଆତୁର—1. Hankering
after a work or food. ୨ । କୌଣସି କାର୍ଯ୍ୟ କରି
ନ ପାରି ଦୁଃଖିତ—2. Sorry not being able to
do any work. [ଯଥା—ଭଲ ସୁଖ ଦେଖି ସେମାନେ
ହାଁଇଁପାଇଁ—ଫକୀରମୋହନ. ଛମାଣ ଆଠଗୁଣ୍ଠ ]

ହାଁଇଁ ପାଇଁଆ—ଦେ. ବଣ—ଲାଳାୟିତ—
Hāñiñ pāñiñā Hankering.
লালায়িত लालायित

ହାଁଇଁ ପାଇଁ ହେବା—ଦେ କ୍ରି—୧ । (ଖାଇବାକୁ, ପାଇବାକୁ ବା
Hāñiñ pāñiñ hebā କରିବାକୁ) ଲାଳାୟିତ ହେବା—1. To
লালায়িত হওয়া hanker after a thing, food or work.
लालयितहोना ୨ । ଅଲଭ୍ୟ ବା ଅପ୍ରସ୍ତୁତ ବସ୍ତୁ ପାଇବାକୁ ଉଦ୍‌ବିଗ୍ନ
ହେବା—2. To hanker after a thing
which one has not got. ୩ । ଅତ୍ୟୁଗ୍ର ହେବା
—3. To be excessively eager after a
thing.

ହାଁଇଁସାହାସ—ଦେ. ବି—(ସଂ ଦୁଃସାହସ)—ଦୁଃସାହସ—
Hañiñsahasa Fool hardiness.
দুঃসাহস दुःसाहस

ହାଁଇଁ ସାହାସା—ଦେ. ବଣ. ପୁଂ—୧ । ଦୁଃସାହସଯୁକ୍ତ (କାର୍ଯ୍ୟ)—1
Hañiñ sahasa Fool hardy (act); rash. ୨ ।
(ହାଁଇଁ ସାହାସିଆ—ଅନ୍ୟରୂପ) ଦୁଃସାହସିକ (ବ୍ୟକ୍ତି)—2
ହାଁଇଁ ସାହାସୀ } ସ୍ତ୍ରୀ Foolhardy (person); eager
ହାଁଇଁ ସାହାସେଇ } to undertake more than
দুঃসাহসী दुःसाहसी what one is capable of doing.

ହାଁଇଁ ହାଁଇ—ଦେ ଅ—ହାଁଇଁପାଇଁ (ଦେଖ)—
Hañiñ hañiñ Haiñpañiñ (See)

ହାଁଉଁ—ଦେ. ଅ (ଶିଶୁବାକ୍ୟ)—୧ । ଶିଶୁମାନଙ୍କଦ୍ୱାରା ବାଘଅବର
Hañuñ ଧ୍ୱନିର ଅନୁକରଣ—1 (Nursery term) Copying of the roar of tiger by children.
[ ଦ୍ର— ଶିଶୁମାନେ ବାଘର ଅନୁକରଣ କରି ମୁହଁରେ ଲୁଗା ଘୋଡ଼ାଇ 'ହାଁଉଁ ହାଁଉଁ' ଧ୍ୱନି କରି କନକଷ୍ଟ ବ୍ୟକ୍ତିଙ୍କୁ ଆକ୍ରମଣ କରିବାର ଛଳନା କରନ୍ତି ।] ୨ । ଭୋଜନ;
হাঁউঁ खाना ଖାଇବା—2. Eating.

ହାଁଉଁଆ—ଦେ. ବଣ—୧ । ବଡ଼ ପାଟିଆ—1 Of loud voice.
Hañuñañ loud-voiced. ୨ । ବ୍ୟାଦାନଯୁକ୍ତ ମୁଖ ବଶିଷ୍ଟ—
হেঁকোডেকো मोमांहस 2. Having a wide gaping mouth.

ହାଁଉଁଆ ଗୁଣ୍ଡା—ଦେ. ବି—ପାଟିରେ ପୂରାଇବାପାଇଁ ବଳାଯିବା ବଡ଼
Hañuñañ gunda ଗୁଣ୍ଡା—A big ball of food ready to be taken at one gulp.
বড়ডেলা बडाकौर

ହାଁଉଁଆଁ ପାଟି—ଦେ. ବି—୧। ବଡ଼ପାଟି; ଉଚ୍ଚୈଃସ୍ୱର—1. Loud voice
Hañuñañ pati ୨ । ବୃହତ୍ ମୁଖ—2. A big gaping
বড়মুখ मोमाहस month

ହାଁଉଆ ତୁଣ୍ଡା (ତୁଣ୍ଡିଆ)—ଦେ. ବଣ—୧ । ବଡ଼ ପାଟିଆ; ଉଚ୍ଚଭାଷୀ—
Hañuñañ tunda 1. Having a loud voice.
বড়মুখো मोमाहस ୨ । ବଡ଼ ମୁଖ ବିବରଯୁକ୍ତ—2. Big-mouthed.
ହାଁଉଁଆଁ ତୁଣ୍ଡୀ (ତୁଣ୍ଡେଇ) } ସ୍ତ୍ରୀ
ହାଁଉଁଆଁ ପାଟୀ (ପାଟେଇ) } (ହାଁଉଁଆଁ ପାଟିଆ—ଅନ୍ୟରୂପ)

ହାଁଉଁ କରି—(କନା, କନି, ଦସ୍, ଧସ୍)—ଦେ. କ୍ରି. ବଣ—ଶୀଘ୍ର
Hañuñ kari(kina, kini, das, dhas) ଅଧାବାଇ ମାଡି
शीगगीर मज़ुसे ବଡ଼ି ଅଗ୍ରହ ସହିତ ଖାଇବା ପ୍ରକାରେ—
(Eating) With avidity or gusto.

ହାଁଉଁ କରିବା—ଦେ. କ୍ରି—(ଶିଶୁ ବଚନ)—ଖାଇବା—
Hañuñ kariba (Nursery) To eat.
হাঁউঁকরা खाना

ହାଁକିବା—ଦେ. କ୍ରି—ହାକିବା (ଦେଖ)—
Hañkiba Hankiba (See)

ହାଁକୁ—ପ୍ରାଦେ—(ବଲାଙ୍ଗିର ପାଟଣା; କଳାହାଣ୍ଡି ପ୍ରଚଳିତ ଭାଷା)—
Hañku ସେପାଖକୁ—To that side.

ହାଁଜି ହାଁଜି—ଦେ. ଅ—କୌଣସି ବ୍ୟକ୍ତିଙ୍କ କଥାରେ ସବୁବେଳେ
Hañji hañji ହଁ କରିବା—To ditto to a person always.
হাঁজি হাঁজি हाँजि हाँजि

ହାଁଟୁ (ଠୁ)—ପ୍ରାଦେ (ସିଂହଭୂମି) ବି—ଅଣ୍ଟୁ—
Hañtu (thu) Knee.

ହାଁଡ଼ି—ପ୍ରାଦେ (ସମ୍ବଲପୁର) ବି—ହାଣ୍ଡି—The earthen pot
Hañrdi used for cooking purposes.

ହାଁଡ଼ି(ଡ଼ି)ଆ—ପ୍ରାଦେ (ସମ୍ବଲପୁର) ବି—ହାଣ୍ଡିଆ (ଦେଖ)—
Hañrdi(di)a Handia (See).

ହାଁଡ଼ୁଆ—ପ୍ରାଦେ (ଗଡ଼ଜାତ) ବି—ବାଉଁଶକଅଡ଼ିଦ୍ୱାରା ପ୍ରସ୍ତୁତ ଅଥାର
Hañrdua —A pickle prapared from tender bamboo-shoots.

ହାଁଣି—ପ୍ରାଦେ (ବଲାଙ୍ଗିରପାଟଣା—ହିନ୍ଦୁସ୍ଥାନି ଭାଷା) ବି—ହାଣ୍ଡି—
Hañnin An earthen pot for cooking

ହାଁଥି—ପ୍ରାଦେ (ସମ୍ବଲପୁର) ବି—(ସଂ. ହସ୍ତୀ) (ତୁଳ. ହି. ହାଥୀ)—
Hañthi ହାତୀ—Elephant.
ହାଁଥେଲ୍ }
ହାଁଥ୍ନୀ } —ସ୍ତ୍ରୀ

ହାଁଥିଧରସା—ପ୍ରାଦେ (ସମ୍ବଲପୁର) ବି—୧ । ହାତୀଦାଣ୍ଡା; ଜଙ୍ଗଲରେ
Hañthi dharasa ହାତୀମାନଙ୍କ ପଥ—1. Elephant-track in jungles. ୨ । ଛାୟାପଥ—2. The milky way.

ହାଁଦେରେ—ପ୍ରାଦେ. (ବଲାଙ୍ଗିର ପାଟଣା) ଅ—ଅଲୋ !
Hañdere Hullo !

ହାଁଥୁଲ୍—ପ୍ରାଦେ. (ସମ୍ବଲପୁର) ବି—ହାତୁଡ଼ି—
Hañthul Hammer.

ହାଁପଣ—ଦେ. ବି—( ଧ୍ୱନ୍ୟନୁକରଣ, ଏହାକୁ ଚଳାଇଲେ ବା ଭୂମିରେ
Hañpana ଆଘାତ କଲେ ହପ ହପ ଶବ୍ଦ ହୁଏ ବୋଲି ଏହି ନାମକରଣ)—କୁଲା; ସୂର୍ପ—Winnowing fan.
কুলা सूप

ହାଁପିବା—ଦେ. କ୍ରି—୧ । ବହୁ ପରିଶ୍ରମ ଯୋଗୁ ଘନ ଘନ ଶ୍ୱାସ
Hañpiba ପକାଇବା—1. To gasp. ୨ । ଦେଦମ୍ ହେବା
[ହାଁଫିବା—ଅନ୍ୟରୂପ] 2. To be out of breath.
হাঁপান हाँपना

ହାଁପୁର୍—ପ୍ରାଦେ. (ସମ୍ବଲପୁର) ବି—ହାପୁର୍—
Hañpurd Sipping liquid food with gulping
হাপরান सुड़क sound.

ହାଁରେ—ଦେ. ଅ (ପୁରୁଷଙ୍କ ପ୍ରତି)—ହଇରେ (ଦେଖ)—
Hañre Haire (See)
[ହାଁ ଲୋ—ସ୍ତ୍ରୀଙ୍କ ପ୍ରତି]

ହାଁ ରେ ହାଁ—ଦେ॰ ଅ—କେଳୁଣୀମାନଙ୍କର ନାଚ କରି ଗୀତ ବା ଛାନ୍ଦବା
Hān̄ re hān̄ ବୋଲିବା ଶେଷରେଅପର ପକ୍ଷୀସ୍ତ ଖେଳାଙ୍କୁ ଲକ୍ଷ୍ୟ
[ହାଁ ଲେ ହାଁ—ସ୍ତ୍ରୀ ଙ୍କ ପ୍ରତି] କରି ବୋଲିବା ପଦ ବା ଗୁଅ—
[ହାଁ ଲେ ହାଁ ହାଁ ହାଁ ହାଁ— ଅନ୍ୟ ଅକାର ସ୍ତ୍ରୀଙ୍କ ପ୍ରତି] A concluding
[ହାଁ ରେ ହାଁ ହାଁ ହାଁ ହାଁ—ଏକନ ପୁରୁଷଙ୍କ ପ୍ରତି] exclamation after doggerels uttered by a Keluni woman while dancing and aimed at her male partner.

ହାଁସ୍—ପ୍ରାଦେ॰ (ଉତ୍ତର ଭାଷା) ବ—ହଂସ—
Hān̄s Swan.

ହାଁସପାତାଲ୍—ବୈଦେ. ବ (ଇଂ) ଡାକ୍ତର ଖାନା—
Hān̄sp·tāl Hospital.

ହାଁ ସାହସ ଦେ. ବ—ହାଁଇଁ ସାହାସ (ଦେଖ) —
Hān̄ sahāsa Hān̄in̄'sahāsa (See)

ହାଁସାହାସା—ଦେ॰ ବି॰. ପୁଂ—ହାଁଇଁ ସାହାସା (ଦେଖ)—
Hān̄sahāsā Hān̄in̄sahāsā (See)
[ହାଁ ସାହାସିଆ—ଅନ୍ୟରୂପ]
[ହାଁ ସାହସୀ, ହାଁ ସା ।ହେଇ—ସ୍ତ୍ରୀ]

ହାଁସିଆ (ଇତ୍ୟାଦି)—ବୈଦେ. ବ (ଅ) (ଜଚରଆ)—ହାସିଆ ଇତ୍ୟାଦି
Hān̄siā (etc) (ଦେଖ —Hāsiā etc. (See)

ହାଁ ହାଁ—ଦେ. ଅ—୧ । ସାବଧାନ । ହୁସିଆର୍ ! ( ସମ୍ମୁଖରେ ବିପରୀତ
Hān̄ hān̄ ଦିଗରୁ ଆସୁଥିବା ବ୍ୟକ୍ତି ହାଲେ ହାବୁଡ ପିବେ
हाँ हाँ ଏଥିପାଇଁ ତାଙ୍କୁ ସାବଧାନ କରିବା ପାଇଁ ଉଚ୍ଚାରିତ
हाँ हाँ ଡାକ) —1. (Interjection) Take care ! (an exclamation used to warn a person coming from the opposite direction (lest he clash with the speaker). ୨ । (କୌଣସି ବ୍ୟକ୍ତିଙ୍କୁ ସାବଧାନ କରାଇବାରେ ବ୍ୟବହୃତ ) ହୁସିଆର୍ !—2. (In cautioning a person ) Take care ! Beware ! ୩ । (ଆକ୍ରମଣକାରୀ ବା କଳହକାରୀ ବ୍ୟକ୍ତିଙ୍କୁ ବାରଣ ବା ନିଷେଧାର୍ଥକ ସମ୍ବୋଧନ) ବନ୍ଦ କର ! ଥାଉ— 3.(Interjection) Stop you ! (an expression indicative of preventing a person who is about to strike or is quarrelling). ୪ । (କୌଣସି ବ୍ୟକ୍ତି ଡାକିଲେ ତାଙ୍କୁ ଔତ୍ସୁକ୍ୟ ସହିତ ଜବାବ ଦେବାରେ ବ୍ୟବହୃତ) ହଁ ହଁ—4. (Interjection used in eagerly responding to a call) Yes, I am here ! ୫। (କାର୍ଯ୍ୟରେ ଲାଗିଥିବା ବ୍ୟକ୍ତିଙ୍କୁ ଉତ୍ସାହ ଦେବାରେ ବ୍ୟବହୃତ)କାମରେ ଲାଗ 5. ( Interjection used in encouraging persons engaged in some work) Go on ! Hurry on ! ୬ । ସମ୍ଭୋଗ କାଳରେ କାମୋନ୍ମତ୍ତ ସ୍ତ୍ରୀମାନଙ୍କର ଉଚ୍ଚାରିତ ଅରସ୍ଫୁଟ ଧ୍ୱନି ବିଶେଷ—6. Half uttered sounds uttered by lustful young ladies in the course of coition or orgasm. [ ଭି—ହୁଁ, ହାଁ, ହୁଁ ହୁଁ, ନାଁ, ନାଁ, ମଲି, ଇଷି ଦ୍ୱିଧାକୁ କସ ଭୁଲାଇବ । ଉଚ୍ଚ ପ୍ରେମସୁଧାକଣ୍ଠ । ]

ହାକ୍‌ତି—ପ୍ରାଦେ· (ଉତ୍ତରାଞ୍ଚଳ) ବ—ହାକୁଟି—
Hāk-ti Belching.

ହାକ୍‌ବା—ପ୍ରାଦେ. (ବାଲେଶ୍ୱର ଓ ପାଟଣା) କ୍ରି (କର୍ମାନ ପ୍ରଚଳିତ କ୍ରିୟା)—
Hāk-bā ଡାକିବା—To call.

ହାକ—ଦେ. ବ—(ସଂ. ହୁଙ୍କାର)—୧ । ହାକର; ନିମନ୍ତ୍ରଣ—1.
Hāka Invitation. ୨ । ଡାକରା; ଆହ୍ୱାନ—2. Call.
हाँक ୩ । ଉଚ୍ଚୈଃସ୍ୱରରେ ଡାକ—3. Calling aloud;
हाक halloo. [ଦ୍ର—ଏହି ଶବ୍ଦ ଡାକ ଓ ବୋଲ ଶବ୍ଦ ପରେ ସହଚର ଶବ୍ଦରୂପେ ବ୍ୟବହୃତ ହୁଏ; ଯଥା ଡାକହାକ; ବୋଲ ହାକ ]

ହାକଣା—ପ୍ରାଦେ (ଗଞ୍ଜାମ)ବ—(ସଂ. ହୁଙ୍କାର)—ଡାକ; ଧ୍ୱନି; ଅହ୍ୱାନ-
Hākaṇā ଡାକ ବା ଧ୍ୱନି (ଗୋପୀନାଥ ନନ୍ଦ)—Call; hallooing.

ହାକଣ୍ଡ—ଦେ॰ ବ (ସଂ. ଆକନ୍ଦ)—ଦାରୁଣ ଯୁଦ୍ଧ—
Hākaṇḍa हाकण्ड लढाई Bitter fight.

ହାକ ଦେବା—ପ୍ରାଦେ (ବାଲେଶ୍ୱର ପାଟଣା) କ୍ରି—ଡାକିବା —
Hāka debā To call.

ହାକର—ଦେ. ବ—(ସଂ. ହୁଙ୍କାର)—୧ । ଡାକ· ଆହ୍ୱାନ—1. Call.
Hākarā ୨ । ହକର (ଦେଖ)—2. Hakarā (See).
हाँक ପ୍ରାଦେ (ଯାଜପୁର) ବ—କନ୍ୟାର ରଜସ୍ୱଳା ହେବା ପରେ
बुलाहट ଗଣାଯୋଖ ସରିବା ଉତ୍ତାରେ ବରଘରୁ କନ୍ୟା ନିକଟକୁ ପଠାଯିବା ସଙ୍ଗୁଲା—Formal invitation to the wife accompanied with presents, sent from the husband's side to the child wife after she has her first menses and after the astrological calculations are done.

ହାକର ପାଲି—ଦେ. ବ – ହକରପାଲି (ଦେଖ)—
Hākarā pāli Hakarā pāli (See).

ହାକା—ପ୍ରାଦେ (ଗଡ଼ଜାତ) ବ – (ସଂ. ହୁଙ୍କାର)—ପାଟିରେ ବା ମଞ୍ଚରେ
Hākā ଧନୁ ବା ବନ୍ଧୁକ ଧରି ଜଗି ବସିଥିବା ଶିକାରୀମାନଙ୍କ ନିକଟକୁ ବନ୍ୟଜନ୍ତୁମାନଙ୍କୁ ଘଉଡ଼ି ଘଉଡ଼ି ତଡ଼ିଆଣିବା ସ୍ୱର – Beat; hunting by means of beating a certain area of jungle and driving in the beasts within that area to the hunters [ଦ୍ର—ଯେତେବେଳେ ହାକାବାଲା ଲୋକମାନେ ( beaters ) ଘଉଡ଼ି ଘେର ଦେଇ ସୀମା ମଧ୍ୟରେ ଥିବା ଜନ୍ତୁମାନଙ୍କୁ ଶିକାରୀଙ୍କ ପାଖକୁ ତଡ଼ୁଥାନ୍ତି ସେତେବେଳେ ସେହି ଲୋକମାନେ ଉଚ୍ଚଧ୍ୱନି ( ହୁଙ୍କାର ) କରନ୍ତି; ଏହି କାରଣରୁ ଏ ଶବ୍ଦର ବ୍ୟବହାର

ହୋଇଅଛୁ ।] ପ୍ରାଦେ (ବଲାଙ୍ଗିର ପାଠଣା) ବି—ପାରିଧି (ଦେଖ)—Paridhi (See)

ହାକା କରିବା—ପ୍ରାଦେ (ବାମଣ୍ଡା) କ୍ରି—ଭାଡ଼ି ଚହଲେଇବା (ଦେଖ) Hākā karibā Bhārdi chahaleibā (See)

ହାକାଣ୍ଡ—ପ୍ରାଦେ (ଉତ୍ତର ବାଲେଶ୍ୱର) ବି—ଠାକୁରଙ୍କ ପୋଖରୀ—Hākānda A tank of belonging to an idol.

ହାକାବାଲା—ପ୍ରାଦେ (ଗଡ଼ଜାତ)—ଯେଉଁ ଲୋକମାନେ ଶିକାରୀଙ୍କ ପାଖକୁ ବନ୍ୟଜନ୍ତୁଙ୍କୁ ଘେରି ଘେରି ହୁଙ୍କୁଡ଼ାଇ ଆଣନ୍ତି—Beaters. Hākā bālā

ହାକାର—ଦେ. ବି—( ସଂ. ହୁଙ୍କାର )—ଉଚ୍ଚୈଃସ୍ୱରରେ ଦେବତାଙ୍କ ନାମରେ ଜେଜେକାର—Loud acclamations in the name of a Deity. [ଉ—ଦେଉ ଯେ ବଦନ ହୋଇ ବର ଧାନ ପିଣ୍ଡା ଅଗଣାରୁ ଖୁଣ୍ଟି, ଶିରେ ଥାଇ ଭାବା ହାକାର କରଣ ଧୋଇଛୁ ଅଙ୍ଗଣା ଅର୍ଦ୍ଧି । ଧର୍ମପୁରାଣ] Hākāra

ହାକି ଡାକି—ଦେ· କ୍ରି ବିଣ—୧ । ଉଚ୍ଚୈଃସ୍ୱରରେ—1. Loudly. ୨ । ପ୍ରକାଶ୍ୟରେ—2. Openly. [ଉ—ତୁମ୍ଭଙ୍କୁ ହେଁକେ ଡେକେ ମାରିବୁ ଯେ କହୁଛୁଁ ହାକି ଡାକି—ଗୀତାମୃତ—ନୃସିଂହପୁରାଣ ।] Hāki dāki ବୁଲାଉଲାକର

ହାକିବା—ଦେ. କ୍ରି—(ସଂ· ହୁଙ୍କାର)—୧ । ଡାକିବା—1. To call. ୨ । ଉଚ୍ଚୈଃସ୍ୱରରେ ଅହ୍ୱାନ କରିବା—2. To call out; to halloo. [ଉ—ଡାକହାକ କହିବୁ ସଭିଙ୍କୁ, ଉଦ୍ଧବାର ନ ହେଁ ସକଳ କଥା କହିବାକୁ ଲୋ କୋଇଲି—ବାଳକୃଷ୍ଣ ଅଭାଳ କୋଇଲି ।] ୩ । ନିମନ୍ତ୍ରଣ କରିବା—3. To invite. [ଦ୍ର—ଏହା ଡାକିବା ଶବ୍ଦ ପୂର୍ବେ ବା ପରେ ଏକାର୍ଥକ ସହଚରରୂପେ ବ୍ୟବହୃତ ହୁଏ । ଯଥା ଡାକିବା ହାକିବା, ହାକିବା ଡାକିବା; କିନ୍ତୁ କେବଳ ଭାଷାରେ ଏହି ଅର୍ଥରେ କେବଳ ହାକିବା ଶବ୍ଦ ବ୍ୟବହୃତ ହୁଏ ନାହିଁ ।] Hākibā ହାଁକା ବୁଲାନା

ହାକିବା ଡାକିବା—ଦେ. କ୍ରି—( ଏକାର୍ଥକ ସହଚର ଶବ୍ଦ )—୧ । ଉଚ୍ଚୈଃସ୍ୱରରେ ଡାକିବା—1. To call aloud. ୨ । ଡାକିବା ଓ ନିମନ୍ତ୍ରଣ କରିବା—2 To call and invite. ୩ । ପ୍ରକାଶ୍ୟରେ କହିବା—3. To speak out openly. Hākibā dākibā ହାଁକାଡାକା ବୁଲାନା ପୁକାରନା

ହାକିନୀ—ସଂ. ବି—ଶାକିନୀ; ଦୁର୍ଗାଙ୍କ ଅନୁଚରୀବିଶେଷ; ଯୋଗିନୀ; ଡାକିନୀ—One of the female demi gods; a class of companions of Goddess Durgā. [ଦ୍ର—ଏ ବୃହନ୍ନନ୍ଦିକେଶ୍ୱର. ପୁରାଣୋକ୍ତ ୬୪ ଯୋଗିନୀଙ୍କ ମଧ୍ୟରେ ଏକତମା ।] Hākini

ହାକିନୀ ଶକ୍ତି—ସଂ. ବି—ତନ୍ତ୍ର ବା ଯୋଗଶାସ୍ତ୍ର ଷଡ୍‌ଚକ୍ର ଶରୀରର ମଧ୍ୟରେ ଅବସ୍ଥିତା ଶକ୍ତି ବିଶେଷ—Name of a Deity or spirit inside the human body who can be realised by 'joga'. Hākini śakti

ହାକିମ—ବୈଦେ. ବି—(ଅ. ହକିମ୍)—୧ । ହକିମ୍ (ଦେଖ)—1. Hakim (See) ୨ । (ଅ. ହାକିମ୍)—ନ୍ୟାୟାଧୀଶ; ବିଚାରପତି—2. Judge; court of justice ୩ । କର୍ତ୍ତୃପକ୍ଷ—3. Authorities. ୪ । ଉଚ୍ଚତମ କର୍ମଚାରୀ—4. The highest official; a high official; presiding officer; head of an office. ୫ । କ୍ଷମତାପ୍ରାପ୍ତ କର୍ମଚାରୀ—5. A person in authority. ୬ । ଶାସକକ୍ଷମତାପ୍ରାପ୍ତ କର୍ମଚାରୀ; ଶାସନକର୍ତ୍ତା—6. Ruler; officer in charge of administration. ୭ । ସରକାରୀ କର୍ମଚାରୀ—7. Public servant. ୮ । ପ୍ରଭୁ; ସ୍ୱାମୀ—8. Lord; master. ୯ । ତାସ୍ ଖେଳର ସାହେବ ଓ ଗଞ୍ଜପା ଖେଳର ରାଜା ଚିହ୍ନ ଥିବା ପତ୍ର—9. The king-card of the game of cards and of Ganjapā. Hākima ହାକିମ

ହାକିମ ଟିପ—ପ୍ରାଦେ—(ଗଞ୍ଜାମ) ବି—ଗଞ୍ଜପା ବା ତାସ୍ ଖେଳର ରଜା-ତାସ୍—The king of cards. Hākima tipa

ହାକିମ ଯାଏ, ହୁକୁମ ଯାଏ ନାହିଁ—ଦେ· ପ୍ରବଚନ—କାଳକ୍ରମେ ହାକିମ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ବଦଳି ହୁଅନ୍ତି ବା ମୃତ ହୁଅନ୍ତି, କିନ୍ତୁ ତାଙ୍କ ପ୍ରଦତ୍ତ ହୁକୁମର ପରିବର୍ତ୍ତନ ଘଟେନାହିଁ—(a proverb). An officer may go out but the order stands. Hākima jāe hukuma jāenāhiṅ

ହାକିମ ହୁକୁ(କା)ମା—ଦେ· ବି—(ନିରର୍ଥକ ଦ୍ୱିତୀୟ ସହଚର ଶବ୍ଦ)—ନାନା ଶ୍ରେଣୀର ହାକିମମାନେ—Officers of various grades. Hākima huku(ka)mā हाकिमहुकुमा हाकीम हुकुमा

ହାକିମତ୍—ବୈଦେ. ବି. ( ଅ; ବହୁବଚନ )—ହାକିମମାନେ—Officials. Hākimāt हाकिमात् हाकीमात

ହାକିମି—ବୈଦେ. ବି(ଅ)—୧ । ହାକିମଙ୍କ କର୍ମ ବା ଅଧିକାର—1. The state or position of a 'hākima' ୨ । ପ୍ରଭୁତ୍ୱ; ଅଧିକାର—2. Authority; mastery. ୩ । ହକିମୀ; ଚିକିତ୍ସକତ୍ୱ—3. The state of being a Unani physician. ବିଣ—୧ । ହାକିମ ସମ୍ବନ୍ଧୀୟ—1. Relating to a 'Hākima' ୨ । ହକିମ ସମ୍ବନ୍ଧୀୟ—2. Relating to Hakim. Hākimi हाकिमि हाकिमा

ହାକୁ—ପ୍ରାଦେ (ପାଠଣା) ଅ.—ସେ ଆଡ଼କୁ (ଯାଅ)—(go) To that side. Hāku

ହାକୁଆ—ଦେ. ବିଣ. ପୁ°—୧ । ଯେ ଡାକେ—1. One who calls out. ୨ । ଯେଉଁ ଭୃତ୍ୟ ବା ପିଅଦା ଲୋକଙ୍କୁ [ହାକେ (କୋ) ର ସ୍ତ୍ରୀ] ହାକିମଙ୍କ ନିକଟକୁ ଡାକି ଆଣିବାକୁ ନିଯୁକ୍ତ ଥାଏ—2. A peon or servant whose duty it is to call connected persons to an authority. Hākuā आह्वानकारी हाँकपारा

ହାକୁଚ (ଚି) କଣ୍ଟା—ଦେ. ବି—ବାସକାଦି ବର୍ଗର ବନ୍ୟ କଣ୍ଟକମୟ କ୍ଷୁଦ୍ର ବିଶେଷ—Acanthus Ilicifolius. [ଦ୍ର—ଏହାର ପତ୍ର ବାହୁଳିକୁ, କଣ୍ଟାଳ; ଫୁଲ ନାଳ, କର୍ଣ୍ଣିକାରେ ପ୍ରକ୍ରିତେ; କେଶର, ୪ଟା, ଗର୍ଭରୁ ୨ଟା ବଡ଼ ଓ ୨ଟା ଛୋଟ । ଏ ଗଛ ଜଳା ଭୂମିରେ ଓ ପାଣି କୂଳରେ ଜନ୍ମେ; ଏ ଗୁଳ୍ମ ୨ ଠାରୁ ୫ ଫୁଟ୍ ପର୍ଯ୍ୟନ୍ତ ବଢ଼େ; ଏ ଗୁଳ୍ମର ବର୍ଣ୍ଣ ନାଳ ।] Hākucha(chi) kantā हाकुचकाँटा बावची, हाकुच

ହାକୁଚ ମଞ୍ଜି—ଦେ. ବ. (ସ. ବାଗୁଚ)—ବାକୁଚ (ଦେଖ)
Hākuchi manji Bākuchi (See)

ହାକୁଟି – ଦେ ବ—(ସ ହିକ୍କା: ଉଦ୍ଗାର)—୧ । ହିକ୍କାର; ଏହୁଡ଼; Hākuti ହେକୁଡ଼; ଭୋଜନାନ୍ତେ ଉଦର ମଧ୍ୟରୁ ହିକ୍କା ଢେକୁର, ଢେକା, হেকচি ଅକାରରେ ବହୁର୍ଗତ ବାୟୁ—1. Belching. ডঁকার, ঢক্কার ୨ । ହିକ୍କା—2. Hiccough.

ହାକୁଟି ଉଠବା [ଉଠା(ଠେ)ଇବା]—ଦେ ବ—ଉପର୍ଯ୍ୟପର ଉଦ୍ଗାର Hākuṭi uṭhibā[uṭhā(ṭhe)ibā Repeated belchings. ঢেকুরউঠ ডঁকার उठना

ହାକୁଟି ମାରିବା—ଦେ. କ୍ରି—୧। ମୁଖ ଦ୍ୱାରା ଉଦ୍ଗାର ବା ହିକ୍କା ଛାଡ଼ିବା— Hākuṭi māribā 1. To belch. [ଢ଼—ପ୍ରକଟି ଦଶକ ঢেকুবতোলা डकारकरना ଯାଉ ମାରଇ ହାକୁଟ । ବ୍ରାଧାନାଥ ମହାପାତ୍ର]—୨। (ଲକ୍ଷଣାର୍ଥ) ଭୋଜନାନ୍ତେ କଷ୍ଟିଶୋଇ କାଳ ଯାପନ କରିବା—2. (Figurative) To pass time in ease after meal.

ହାକୁଡ଼—ପ୍ରାଦେ. (ବାଲେଶ୍ୱର ଓ ସାକଳପୁର) ବ—(ସ. କକୁଦ୍)— Hākurda ଗୋରୁଙ୍କ କାନ୍ଧ ଉପରେ ଥିବା ଚୁଳ; କକୁଦ— হাকুব, ঝুঁটী किलोर The hump on the shoulder of kine. [ଢ଼—ହାକୁଡ଼ଟି ଟୋଟିଏ ଘାଣି କଣାରୁ ପଡ଼ ପିଠି ଅଡ଼କୁ କାଇଁ ହେଉଛ ।—ଫକୀର ମୋହନ ଛମାଣ ଅଠଗୁଣ୍ଠ]

ହାକୁଡ଼ି ଖାଇବା—ଦେ. କ୍ରି (ସ ଅକୁଳ)—୧ । (ଷଣ୍ଢ) ହମ୍ବାଳିବା— Hākurdi khāibā 1. To bellow or roar (said (ষাঁড়ের ডাঁক) of a bull). ୨ । (ନଦୀ) ବୃଦ୍ଧି ପାଇ ଦୁଇ होक्काई करना କୂଳକୁ ପାଣି ଉଛୁଳାଇବା—2. To inundate the two banks (said of a river in flood).

ହାକୁଲି ବିକୁଲି—ଦେ. ବଣ—(ସ. ଆକୁଳ ଓ ବିକଳ)—୧ । ଉଦ୍ବଳ Hākuli bikuli ବିକଳ; ଜ୍ୱାଳାରେ ଅସ୍ଥିର—1. Restless হাকুলিবিকুলি आकुल विकुल through pain. ୨ । ହାଉଳ ଚଉଳ (ଦେଖ)—2 Hāul chāul (See)

ହାକୁ ହାକୁ—ଦେ ଅ—୧ । ହାଉ ହାଉ (ଦେଖ)—1. Hāu hāu Hāku hāku হাউহাউ हाँय्हाय (See)
୨ । ଚର୍ମରେ ଲଙ୍କା ମରିଚ ଆଦି ଲାଗି ପୋଡ଼ିବାର ଜ୍ୱାଳା— 2. Acute burning sensation in the skin.

ହାକେଣୀ - ଗ୍ରା. ବ. ସ୍ତ୍ରୀ—୧ । ହାକିନୀ (ଦେଖ)—1 Hākini Hākeṇi (See). ୨ । ଗ୍ରାମଦେବୀ ବିଶେଷ—2. Name of হাকিনী a village Goddess. [ଢ଼—ହାକେଣୀ, ଡାକେଣୀ हाकिनी ଯେ ମଙ୍ଗଳଚଣ୍ଡୀ ସ୍ୱାମୀ—ସୀତାମ୍ବର ନୃସିଂହ ପୁରାଣ । ]

ହାଗ—ପ୍ରାଦେ (ବସ୍ତର) ବ—ହଗା; ଝାଡ଼ା—Passing of Hāga stools.

ହାଗିବା—ପ୍ରାଦେ (ବଲାଙ୍ଗିର ପାଟଣା) କ୍ରି – ଝାଡ଼ା ଫେରିବା— Hāgibā To pass stools; to defecate.

ହାଙ୍ଗା (ଇତ୍ୟାଦି)—ଦେ. ବଣ—ହାଁଙ୍ଗୁଆ ଇତ୍ୟାଦି (ଦେଖ)— Hāṅā (etc) Hāṅuā etc. (See).

ହାଙ୍କ—ଦେ. ବ—(ସ ହକ୍କାର ବା ହୁଙ୍କାର)—୧ । ହାକ ; ଉଚ୍ଚୈଃ- Hāṅka ସ୍ୱରରେ ଡାକ ; ଚିତ୍କାର—1. Loud call. ୨ । হাঁক ହୁଙ୍କାର (ଦେଖ)—2. Huṅkāra (See). ପ୍ରାଦେ— हाँक (ଉତ୍ତର ବାଲେଶ୍ୱର) ବ—ଉଚ୍ଚସ୍ୱର—Loud voice.

ହାଙ୍କ ଛିଡ଼(ଣ୍ଡି)ଯିବା — ଦେ. କ—ଦୁଇ ଜଣଙ୍କର ଉଚ୍ଚୈଃସ୍ୱରରେ Hāṅka chhirdi (ṇdi) jibā ବାଦାନୁବାଦ—Loud হাঁকাহাঁকি হওয়া interchange of words between- झौं कच्छिड़ना 2 persons. [ଯଥା—ଶଙ୍କ ଏ ଗାମୁଛ ମୁଲେଇବାକୁ ୨ ଘଣ୍ଟା ଷ୍ଟେଲ ଦୋକାନୀ ସଙ୍ଗେ ମୋର ହାଙ୍କ ଛିଣ୍ଡି ଗଲାଣି ।]

ହାଙ୍କପାଙ୍କ—ଦେ. ଭ—ବ୍ୟାକୁଳତା ; ଅତି ବ୍ୟସ୍ତତା—(ଗୋପୀନାଥ Huṅka pāṅka ନନ୍ଦ)—The state or condition of হাঁকপাঁক being much perturbed ; distress. व्याकुलता ବଣ—ଅତି ବ୍ୟସ୍ତ ; ବ୍ୟାକୁଳ—(ଗୋପୀନାଥ ନନ୍ଦ)—Much disturbed ; distressed.

ହାଙ୍କା—ଦେ. ବ—୧ । ହୁଙ୍କାର (ଗୋପୀନାଥ ନନ୍ଦ) (ଦେଖ)— Hāṅkā Huṅkāra (See). ୨ । ହାଙ୍କିବା (ଗୋପୀନାଥ হাঁক हुंकार ନନ୍ଦ) (ଦେଖ)—2. Hāṅkibā (See)

ହାଙ୍କିବା—ଦେ. କ୍ରି—(ସ ହକ୍କାର)—୧ । ଗାଡ଼ି ଚଳାଇବାବେଳେ Hāṅkibā ଶୁଳକ ଉଚ୍ଚୈଃସ୍ୱରରେ ଚିତ୍କାର କରେ)—ବଗିର ତା (ହାଙ୍କିଦେବା—ଅନ୍ୟରୂପ)—ଗାଡ଼ିର ଅଶ୍ୱାଦିକୁ ଶୁଳକ କରିବା ; (ହାଙ୍କାଇବା—ପ୍ରଯୋଜକରୂପ) ହଙ୍କାଇବା—1. To drive a হাঁকা vehicle (said of the driver). ୨ । କୌଣସି हाँकना କଥା ଉଚ୍ଚୈଃସ୍ୱରରେ କହିବା—2. To speak out loudly. [ଯଥା—ମୁଁ ମୋ ମନ କଥା ଗୁରୁପଦ କଚିତ୍ ଉପରେ ହାଙ୍କି ଦେଲି ।] ୩ । ଉଚ୍ଚୈଃସ୍ୱରରେ ଗାଳିଦେବା ; ତାଡ଼ନା କରିବା—3. To chide or rebuke loudly. ୪ । ଧମକାଇ କିମ୍ବା ମାଡ଼ ଦେଇ ତଡ଼ିଦେବା—4. To drive away a person from a place by threatening or beating. ୫ । ଉଚ୍ଚୈଃସ୍ୱରରେ ଚିତ୍କାର କରି ଡାକିବା—5. To halloo ; to bawl. [ଢ଼—ଭୁ ହାଙ୍କିବୁ କେବେ, ଶୁଣିଣ ସ୍ୱୟଂ ବଳଜ୍ୟେ କରିବେ । ପ୍ରାଚୀ ନଳ ଚରିତ ।]
ପ୍ରାଦେ ( ସିଂହଭୂମ ) କ୍ରି—ଠେଲିଦେବା ; ମୁହେଁ ମୁହେଁ ଅମାନ୍ୟ କରିବା ; (ଭୃତ୍ୟ) ପ୍ରଭୁଙ୍କୁ ଯବାବ୍ ଦେବା— To show arrogance ; to show insubordination to one's master.

ହାଙ୍କୁଡ଼ (ର)—ପ୍ରାଦେ (ସାକଳପୁର) ବ—(ସ କକୁଦ୍)—ଷଣ୍ଢର Hāṅkurda (ra) ଚୂଳ—Hump of a bull.

ହାଙ୍କୁଡ଼ି ଖାଇବା—ପ୍ରାଦେ (ସାକଳପୁର) କ୍ରି—(ଷଣ୍ଢ) ହମ୍ବାଳିବା— Hāṅkurdi khāibā To roar (said of a bull).

ହାଙ୍କୁଡ଼ିବା—ପ୍ରାଦେ (ଉତ୍ତର ବାଲେଶ୍ୱର) କ୍ରି—ଗୁରୁଣ୍ଡିବା— Hāṅkurdibā To crawl on the ground.

ହାଙ୍ଗଣୀ—ପ୍ରାଦେ (କଟ୍ଟକ) ବ—ଗୁହ୍ୟଦ୍ୱାର—
Hāṅg-ṇi Anus.

ହାଙ୍ଗମା (ମେ, ମ୍ୟା) ନ—ବୈଦେ. ବ—(ଇଂ)—ଅପରାଧୀଙ୍କୁ ଫାଶି
Hāṅg-mā (me, myā) n ଦାଉରେ ଝୁଲାଇବା ପାଇଁ
ହ୍ୟାଙ୍ଗ୍ ମ୍ୟାନ୍ ହ୍ୟାଙ୍ଗମ୍ୟାନ ନିଯୁକ୍ତ ବ୍ୟକ୍ତି—Hang man.

ହାଙ୍ଗ(ଙ୍ଗା)ମା—ବୈଦେ. ବ-(ଫା, ହଙ୍ଗମାହ୍; ଭୁଲ ବ. ସଙ୍ଗମ;
Hāṅga(ṅgā)mā ଅସାମୀ—ହଙ୍ଗାମ=ଜନତା)—୧। ବେଙ୍ଗାମ
হাঙ্গামা ବିବାଦ; କଳହ—1. Quarrael; dispute. ୨।
हाङ्गामा ବଚସା; ଝଗଡ଼ା—2. Wordy quarrel. ୩।
ଗୋଳମାଳ—3. Noise; row. ୪। ଅଳି—
Importunity.

ହାଙ୍ଗମା କରିବା (ଲାଗିବା, ଲଗା [ଗେ] ଇବା)—ଦେ. କ୍ରି—୧।
Hāṅgamā kariba (kārḍhibā, lagā[ge]ibā
হাঙ্গামা করা ବିବାଦ କରିବା—1. To dispute. ୨। କଳି
हांगामा करना କରିବା—2. To quarrel.
୩। ଅପରାଧ ସୂଚକ ଗୋଳମାଳ କରିବା—3. To set
up a criminal row. ୪। (ଶିଶୁ ବା ବାଳକ
ବାଳିକା) କୌଣସି ଦ୍ରବ୍ୟ ପାଇଁ ଅଡ଼ି ହୋଇ ଅଳି
କରିବା—4. To importune for any thing
(said of wayward children).

ହାଙ୍ଗମାବାଜ୍—ବୈଦେ. ବଣ (ଫା. ହାଙ୍ଗମାବାଜ୍)—୧। କଳହପ୍ରିୟ-
Hāṅgamābāj 1. Quarrelsome. ୨। ବିବାଦପ୍ରିୟ—
2. Fond of dispute. ୩। ଗୋଳମାଳ ପ୍ରିୟ—
হাঙ্গামাবাজ हांगमावाज 3. Fond of row or affray.

ହାଙ୍ଗମା ହୁଜ(ଜ୍ଜି)ତ୍ (ତି)—ବୈଦେ. ବ—(ଫା ହଙ୍ଗମାହ୍ ଓ
Hāṅgamā huji(jji)t(ti) ହୁଜ୍ଜତ୍; ସହଚର ଶବ୍ଦ)—
[ହାଙ୍ଗମା ହୁଜୁ (ଜ୍ଜ) ତ୍ ଅନ୍ୟରୂପ] ୧। ବିବାଦ ବିସମ୍ବାଦ; କଳି
ଝଗଡ଼ା—1. Dispute and quarrel. ୨। ଫଉଜ୍
ଦାଗ୍ରା—2. Affray; show or use of criminal
হাঙ্গামাহুজ্জত हांगामाहुज्जत force.

ହାଙ୍ଗର—ସ. ବ—(ହଁ।=ଅନୁକରଣ ଶବ୍ଦ, ମୁଖ ବିସ୍ତାର ସୂଚକ ଶବ୍ଦ
Hāṅgara +ଗୃ ଧାତୁ=ଗ୍ରାସ କରିବା+କର୍ତ୍ତରି ଅ, ମୁଖ ବିସ୍ତାର
ସ. ପର୍ଯ୍ୟାୟ— ଓ ଶବ୍ଦ କରି ଯେ ଅନ୍ୟ ଜନ୍ତୁକୁ ଗ୍ରାସ
ମକର, ଅବଗ୍ରାହ, କରେ)—ମଗର; ବାଳିଆ ଜାତୀୟ ଗୋଷ୍ଠୀ ଦନ୍ତ
ନକ୍ରରାଜ, ଅବହାର, ବିଶିଷ୍ଟ ଆକାର ସମୁଦ୍ରଜାତ ହିଂସ୍ର ମତ୍ସ୍ୟବିଶେଷ
ଅ. ଭା. — Shark; Carcharias Gangeticus.
হাঙর, হাঙর, মগর, মকর हांगर

[ବି—ଏହା ଲମ୍ବରେ ୫୦ ହାତ ପର୍ଯ୍ୟନ୍ତ ବଢ଼େ। ଏହା ବାଳିଆ
ମାଛ ପରି ଓ ଏହାର ଦାନ୍ତଗୁଡ଼ାକରେ ଥିବା କରତଦାନ୍ତ
ପରି ଦାନ୍ତୁଡ଼ିକ ଶାଣିତ୍ଯାଇ ଏତେ ଦୃଢ଼ ଯେ, ଜଣାଯାଏ
ବେ ମନୁଷ୍ୟ ଦେହକୁ ଅଲକ୍ଷଣ ମଧ୍ୟରେ ଦୁଇ ଖଣ୍ଡ କରି
ଦେଇପାରେ। ଏହାର ଦେହରେ ଅସ୍ଥି ନ ଥାଇ କାଚ ଥାଏ।
ଏହାର ତେଜ ନିର୍ଭୀକ ପରି ମୁଣ୍ଡ ଅଛି, ମୋଟ ହୋଇ ଲମ୍ବ
ଅଣ୍ଟାକୁ କ୍ରମଶଃ ସରୁ ହୋଇ ଯାଇଥାଏ। ଏହା ସମୁଦ୍ରରେ
ଓ ଲୁଣିପାଣିରେ ବଢ଼େ। ଚୈତ୍ର, ବୈଶାଖ ଓ ଜ୍ୟେଷ୍ଠ
ମାସରେ ଏହା କଲିକତା ନିକଟବର୍ତ୍ତୀ ଗଙ୍ଗା ନଦୀରେ
ଦେଖାଯାଏ। ଏହା ଚିଲିକାରେ ମଧ୍ୟ ଦେଖାଯାଏ। ହାଙ୍ଗର
ଦୁଇ ପ୍ରକାର। ୧—ଖଣ୍ଡା ମଗର (ଏହାର ମୁହଁର ଉପର
ଓଠରୁ ଗୋଟିଏ ଧାରିଆ ହାଡ଼ ଦୁଇ ଅଂଶିଆ କରତ ବାହାର
ଥାଏ। ୨—ମୁଣ୍ଡା ମଗର ଏହାର ଉପର ଦାନ୍ତ ତଳଦାନ୍ତ
ଅପେକ୍ଷା ଅଗକୁ ବାହାରିଥାଏ। ଏହି ମୁଣ୍ଡା ମଗରମାନେ
ମନୁଷ୍ୟଙ୍କୁ ଆକ୍ରମଣ କରି ଗିଳି ଯାଆନ୍ତି। ସମୁଦ୍ରରେ ଏମାନେ
ଦଳବଦ୍ଧ ହୋଇ ଜାହାଜ ପଛରେ ଗୋଡ଼ାଇବା ଓ ଜାହାଜ
ଲଙ୍ଗର ହେବା ସ୍ଥାନରେ ବିଚରଣ କରିବା ଦେଖାଯାଏ ଓ
ଜାହାଜରୁ ମନୁଷ୍ୟ ପାଣିରେ ପଡ଼ିଗଲେ ହାଙ୍ଗର ତାଙ୍କୁ
ଖାଇଯାଆନ୍ତି। ଏକ ଏକ ଜାତୀୟ ହାଙ୍ଗର ୩୦।୪୦ ଫୁଟ
ଲମ୍ବ ହୁଅନ୍ତି। ଭାରତବର୍ଷରେ ଚନ୍ଦ୍ର ଅସ୍ତର ଓ ସଙ୍ଖାରି
ବାଉଁଶର ମୂର୍ତ୍ତିରେ ହାଙ୍ଗର ମୁହଁ ଅଙ୍କିତ ହୋଇଥାଏ।
ବାଲି (ବଳୟ) ର ମୁହଁରେ ଚିତ୍ର ହୋଇଥିବା ହାଙ୍ଗରର
ଉପର ମୁହଁର ଦାନ୍ତ ଶୁଣ୍ଢ ପରିଜୀପରିକୁ ବଙ୍କା ହୋଇ
ଛୁଟିଥାଏ।]

ହାଙ୍ଗର ପାଟିଆ (ମୁହାଁ)—ଦେ. ବଣ—ହାଙ୍ଗରର ମୁଖ ପରି ଆକାର
Hāṅgara pāṭiā (muhāṅ) ବିଶିଷ୍ଟ; ମଗର ମୁହାଁ—Shark
faced. (ଯଥା—ହାଙ୍ଗରମୁହାଁ। ବାଲି)
হাঙ্গরমুখো हांगरमुहाँ

ହାଙ୍ଗାମ୍ (ମା) (ଇତ୍ୟାଦି)—ବୈଦେ. ବ—ହାଙ୍ଗମା ଇତ୍ୟାଦି (ଦେଖ)
Hāṅgām (mā) (etc) Hāṅgamā etc. (See)

ହାଙ୍ଗାମି—ବୈଦେ. ବଣ. ପୁଂ ଓ ସ୍ତ୍ରୀ—(ଫା)—ହାଙ୍ଗମାବାଜ (ଦେଖ)
Hāṅgāmi Haṅgamabāj (See)
[ହାଙ୍ଗାମିଆଁ—ଅନ୍ୟରୂପ]

ହାଙ୍ଗାର୍—ବୈଦେ. ବ (ଇଂ)—ଏରୋପ୍ଲେନ୍ ବା ଉଡ଼ାଜାହାଜ ରହି-
Hāṅgār ବାର ଘର—Hangar; a place where
aeroplanes are stabled.

ହାଚ୍କିବା—ପ୍ରାଦେ. (ଖଡ଼ିଆଳ) କ୍ରି—ଟାଣିବା—
Hāch-kibā To drag; to pull with a jerk.

ହାଚ୍କିବା ଖାଚ୍କିବା—ପ୍ରାଦେ (ଦେଶିଆଳ) କ୍ରି—ଟଣାଓଟରା କରିବା—
Hāch-ki ā kh āch-kibā To pull with jurks.

ହାଚ୍କି କଚଡ଼ି ହେବା—ପ୍ରାଦେ (ସମ୍ବଲପୁର) କ୍ରି—ଛେଚରଚଟ
Hāch-ki kachārdi hebā ହେବା; ଝିଙ୍କି ଓ କଚଡ଼ା
ଖାଇବା—To be jerked and jolted. [ଭି—
ରାସ୍ତାରେ ଜେଲ ଖାଲ ଗାଡ଼ିରେ ଚଢ଼ି ହାଚକି କଚଡ଼ି
ହେଉଛନ୍ତି]

ହା (ହାଁ) ଛି(ଚ୍ଛି)ଅ—ଦେ. ଅ (ଧ୍ୱନ୍ୟନୁକରଣ)—ଶିଶୁର ଛିଙ୍କ ଦେଲେ
Hā (hāṅ) chhi (chchhi) a ଅଶୁଭ ନିବାରଣାର୍ଥ ଉଚ୍ଚାରିତ
ବଚନ—A word uttered to avert evil
ଚିହେଛଅ হাচ্চি from a sneezing child.

ହାଁ ଛୁ (ଛୁ)—ଦେ. ଅ—(ଧ୍ୱନ୍ୟନୁକରଣ)—ଛିଙ୍କିବାର ଅନୁକରଣ
Ha' chhu (chchhu) ଶବ୍ଦ—The sound of sneez—
হেচছিঅ, हाछी

ହାଜତ—ବୈଦେ. ବ (ଅ)—(କଚରିଆ)—୧ । ବିଚାରଶେଷ ପୂର୍ବରୁ
Hājat ଅଭିଯୁକ୍ତ ବ୍ୟକ୍ତିକୁ ଅଟକାଇ ରଖାଯିବା କାରାଗୃହ—
1. Hājat; prison for under-trial accused; lock-up. ୨ । ବିଚାରାଧୀନ ମୁଦାଲାର କାରାବାସ—
2. Detention or confinement of an under-trial prisoner in the lock-up. [ଦ୍ର—ଏହି ଶବ୍ଦ ଇଂରାଜୀରେ ମଧ୍ୟ ବ୍ୟବହୃତ ହେଉଅଛି]
হাজত हाजत

ହାଜତ୍ ଘର—ଦେ. ବ (କଚରିଆ)—ବିଚାର ଶେଷ ପୂର୍ବରୁ ଅସାମୀକୁ
Hājat ghara ଯେଉଁଘରେ ଅବରୁଦ୍ଧ କରି ରଖାଯାଏ—
হাজতঘর हाजतघर Undertrial prison; lock-up

ହାଜତ୍ ଦେବା—ଦେ. କ୍ରି (କଚରିଆ)—ବିଚାର ଶେଷ ନହେଉଣୁ ଅସା
Hājat debā ମୀକୁ ହାଜତରେ ରହିବାକୁ ଅଦେଶ ଦେବା—
To order an undertrial prisoner to be kept in confinement or in the lock-up.
হাজতদেওয়া हाजतदेना

ହାଜତି—ବୈଦେ. ବଣ (କଚରିଆ) (ଫା)—୧ । ହାଜତ୍ ସମ୍ବନ୍ଧୀୟ—1.
Hājati Relating to Hājat. (ଯଥା—ହାଜତି ଅସାମୀ)
হাজাতী ୨ । ହାଜତରେ ଅବରୁଦ୍ଧ—2. Confined in the lock-up.
हाजती

ହାଜତି ଆସାମୀ(ମୁଦାଲା)—ବୈଦେ. ବ (କଚରିଆ) (ଫା)—ବିଚାର
Hājati āsāmi (mudālā) ପୂର୍ବରୁ ଅଟକ ବା ଅବରୁଦ୍ଧ
হাজতি আসামী କରାଯାଇଥିବା ମୁଦାଲା—Undertrial prisoner.
हाजती आसामी

ହାଜର୍—ବୈଦେ. ବଣ—(ଅ ହାଜର୍) (କଚରିଆ)—୧ । ଉପସ୍ଥିତ
Hājar —1. Present. ୨ । ଅବସ୍ଥିତ; ବର୍ତ୍ତମାନ—2.
হাজির Existing. ୩ । ଅଦାଲତଙ୍କ ବା ହାକମଙ୍କ ସମ୍ମୁଖରେ
हाजिर ନିର୍ଦ୍ଦିଷ୍ଟ ସମୟରେ ଉପସ୍ଥିତ—3. Attending court on the fixed date. ୪ । କୌଣସି କାର୍ଯ୍ୟ କରିବା ପାଇଁ ପ୍ରସ୍ତୁତ—4. Ready to do any act.

ହାଜର୍ ଆସାମୀ (ମୁଦାଲା)—ବୈଦେ. ବ (ଫା)—(କଚରିଆ)—ହାଜର୍
Hājar āsāmi (mudālā) ଆସାମୀ (ଦେଖ)—Hājarā āsāmi (See).

ହାଜର୍ ଆସିବା—ଦେ. କ୍ରି (କଚିରିଆ)—ହାଜର୍ ହେବା (ଦେଖ)—
Hājar āsibā Hājar hebā (See).
হাজির হওয়া हाजिर आना

ହାଜର୍ କରା(ରେ)ଇବା (କରିବା)—ଦେ.କ୍ରି. (କଚିରିଆ)—କୌଣସି
Hājar karā[re] ibā [karibā] ବ୍ୟକ୍ତିକୁ ବା ବସ୍ତୁକୁ କୌଣସି
হাজির করা ହାକମଙ୍କ ସମ୍ମୁଖରେ ଉପସ୍ଥାପିତ କରିବା—To
हाजिर करना produce a person or thing before a person in authority.

ହାଜର୍ ଚୋର—ଦେ. ବ. (କଚିରିଆ)—ଯେଉଁ ଚୋର ସ୍ୱୟଂ ସ୍ୱୟଂ
Hājar chora ଯାଇ ହାକିମଙ୍କ ନିକଟରେ ଉପସ୍ଥିତ ହୁଏ—A
হাজাবি চোব thief who surrenders himself in
हाजिर चोर court. [ଦ୍ର—ହାଜର୍ ଚୋରକୁ ମୁଣ୍ଡକାଟ ମାଫ୍ ଇଗ ।]

ହାଜର୍ ଜବାବ୍—ବୈଦେ.ବଣ (ଫା) (କଚିରିଆ)—୧। ଉତ୍ତର ଦେବାକୁ
Hājar jabāb ପ୍ରସ୍ତୁତ—1. Ready to give reply. ୨ ।
হাজির জবাব ଉପସ୍ଥିତବୁଦ୍ଧି ବିଶିଷ୍ଟ; ପ୍ରତ୍ୟୁତ୍ପନ୍ନମତି—2.
हाजिर जबाब Having presence of mind. ୩ । ସଙ୍ଗେ (ହାଜର୍ ଜବାବୀ—ବି) ସଙ୍ଗେ ଉତ୍ତର ଦେବାରେ ନିପୁଣ—3. Skilful in giving prompt reply.

ହାଜର୍(ରି)ଜାମିନ୍(ନୀ)—ବୈଦେ. ବ. (ଅ. ହାଜର୍+ଜମାନତ୍
Hājar[ri] jāmin[ni] (କଚରିଆ)—୧ । କୌଣସି ଆସାମୀର
বাজিব জামিন ବା ପକ୍ଷର ବା ସାକ୍ଷୀର ନିର୍ଦ୍ଦିଷ୍ଟ ତାରଖରେ
हाजिर जामिन ଅଦାଲତରେ ଉପସ୍ଥିତ ହେବାପାଇଁ ତାଠାରୁ ନିଆଯିବା ଜାମିନ୍—1. Security taken from a person for his appearance in a court on a fixed date. ୨। କୌଣସି ବ୍ୟକ୍ତିକୁ ନିର୍ଦ୍ଦିଷ୍ଟ ତାରଖରେ ଉପସ୍ଥିତ କରାଇବା ପାଇଁ ଦାୟିତ୍ୱ ନେବା ବ୍ୟକ୍ତି—2. A person who stands surety for the appearance of a person in court on a fixed date.

ହାଜର୍ ଦେବା—ଦେ. କ୍ରି (କଚରିଆ)—୧ । ହାଜିର୍ ଦେବା (ଦେଖ)—
Hājar debā 1 Hājirā debā (See). ୨ । ହାଜର୍ ହେବା
2. Hājar hebā (See).

ହାଜର୍ ପା(ବା)ସ୍—ବୈଦେ.ବଣ (ଅ ହାଜର୍+ଫା. ପ୍ରତ୍ୟୟ ବାସ୍)—
Hājar-pā (bā) s ୧ । କାହାର ନିକଟରେ ଉପସ୍ଥିତ (ବ୍ୟକ୍ତି)
1. (a person) Constantly in attendance on some person. ୨ । ମନୁଷ୍ୟଙ୍କ ସଙ୍ଗେ ସବୁବେଳେ ଯାଇ ମେଳ ହେଉଥିବା (ବ୍ୟକ୍ତି)—2. Very social (person); constantly going to the people
হাজিবপাস हाजीरबास and mixing with them.

ହାଜର୍ ପା (ବା)ସୀ—ବୈଦେ. ବ—(ଫା)—୧ । ସର୍ବଦା କୌଣସି
Hājar-pā (bā) si ବ୍ୟକ୍ତିଙ୍କ ନିକଟରେ ଉପସ୍ଥିତି—1.
হাজিবপাসী Constant attendance on a person.
हाजिरबासी ୨ । ଲୋକଙ୍କ ସଙ୍ଗେ ସର୍ବଦା ମିଳାମିଶି ରହିବା—
2. Constant mixing with the people.

ହାଜର୍ ହେ !—ବୈଦେ. ଅ—(ଅ. ବାକ୍ୟ) (କଚରିଆ)—ନିର୍ଦ୍ଦିଷ୍ଟ
Hājar-he ! ତାରଖରେ ଅସାମୀ ବା ପକ୍ଷ କଚେରୀରେ ଉପସ୍ଥିତ
হাজিবহৈ ଅଛି କି ନାହିଁ, ଏହା ଜାଣିବା ନିମନ୍ତେ ଉକ୍ତ ବ୍ୟକ୍ତିର
हाजिरहै ନାମ ଧରି ଚପରାଶୀର ଡାକ—(Interjection used by the court-peon calling aloud the name of the person whose presence is required in court on the date). Is (such or such a person) in attendance ?

ହାଜର୍ ହେବା—ଦେ. କ୍ରି (କର୍ତ୍ତୃ ଅ)—୧ । ଉପସ୍ଥିତ ହେବା—
Hājar heba 1. To be present; to attend.
হাজির হওয়া [ଭୂ—କଞ୍ଚବେଲ ବୃନ୍ଦ ଶ୍ରମରେ ହାଜର—ହେବା
हाजिरहोना ହୃଷ୍ଣ ତାଙ୍କୁ ନାହିଁ ଗୋଚର । ଯଥାନାଥ-ଦରବାର ।]
୨ । ସ୍ୱୟଂ ଉପସ୍ଥିତ ହେବା—2. To appear in person.

ହାଜରା—ବୈଦେ ବଣ(ଅ) (କତରଅ)—ହାଜର ହୋଇଥିବା; ଉପସ୍ଥିତ
Hājarā Present; attending. ବି—୧। ହାଜିରା (ଦେଖ)—
হাজিরা 1. Hājirā (See). ୨। ବଙ୍ଗଦେଶରେ ପ୍ରଚଳିତ ବଂଶୋ-
हाजिरा ପାଧି ବିଶେଷ—2. A family title in Bengal.

ହାଜ(ଜି)ରା ଆସାମୀ (ମୁଦାଲ୍ଲା)—ବୈଦେ ବି—(ଫା) (କତରଅ)—
Hāja(ji)rā āsāmi (mudālā) ୧ । ହାକିମଙ୍କ ନିକଟ
হাজির আসামী ଉପସ୍ଥିତ ମୁଦାଲ୍ଲା—1. An accused attend-
हाजिर आसामी ing the court. ୨ । ପୁଲିସ୍ ରିପୋର୍ଟ ସଙ୍ଗେ ସଙ୍ଗେ ଅଦାଲତକୁ ଚାଲାଣ ଦିଆଯାଇଥିବା ମୁଦାଲ୍ଲା—2. An accused who is being sent up to court along with the police reporto

ହାଜ(ଜି)ରା ଡାକିବା—ଦେ. କ୍ରି—ହାଜିରା ବହି ଧରି ସେଥିରେ ଥିବା
Hāja(ji)rā ḍākibā ଲୋକମାନଙ୍କର ନାମ ଜଣଜଣକରି
হাজিরা ডাকা ଉଚ୍ଚୈଃସ୍ୱରରେ ଡାକିବା—To call out the
हाजिरि लेना attendance roll.

ହାଜ(ଜି)ରା ଦେବା—ଦେ. କ୍ରି—ହାଜିରା ଡାକିବାବେଳେ ହାଜିରାରେ
Hāja(ji)rā debā ନାମ ଲେଖାଥିବା ବ୍ୟକ୍ତି ସେଠାରେ ଉପସ୍ଥିତ
হাজিরা দেওয়া ହୋଇ 'ମୁଁ ଉପସ୍ଥିତ ଅଛି' ଏହା କହିବା—To
हाजिरी देना respond to the call of one's name at roll call.

ହାଜ(ଜି)ରା ନେବା—ଦେ. କ୍ରି—୧ । ହାଜିରା ବହି ଧରି ହାଜର
Hāja(ji)rā nebā ହୋଇଥିବା ବ୍ୟକ୍ତିମାନଙ୍କ ନାମ ଡାକିବା-
হাজিরা লওয়া 1. To call the attendace roll, ୨ । ହାଜିରା ପକାଇବା (ଦେଖ)—2. Hājirā pakāibā
हाजिरी लेना (See).

ହାଜ(ଜି)ରା ପକା(କେ)ଇବା—ଦେ, କ୍ରି—ହାଜିରା ଡାକିବା ବେଳେ
Hāja(ji)rā pakā(ke)ibā ଉପସ୍ଥିତ ବ୍ୟକ୍ତିମାନଙ୍କ ନାମ ହାଜିରା
ବହିରେ ଟିପିବା—To mark or note the names of the persons present at the roll call.
হাজিরা লওয়া हाजीरी लीखना

ହାଜ(ଜି)ରା ପୁସ୍ତକ (ବହି, ରେଜିଷ୍ଟ୍ରୀ)—ଦେ ବି (ଅ. ହାଜିରା, ସଂ
Hāja(ji)rā pustaka(bahi, registari) ପୁସ୍ତକ, ଅ. ବହି, ଇଂ. ରେଜିଷ୍ଟର୍)—ଯେଉଁ ପୁସ୍ତକରେ କର୍ମଚାରୀ ବ୍ୟକ୍ତି ବା ଛାତ୍ର ମାନଙ୍କ ନାମ ଲେଖାଯାଇ ପ୍ରତିଦିନ ହାଜର ନିଆଯାଏ—
হাজিরাবহি हाजिरीबही Attendance register.

ହାଜରା ମୁଦେଇ—ବୈଦେ. ବି (ଅ) (କତରଅ)—ହାକିମଙ୍କ ନିକଟରେ
Hājarā mudei ବିଚାର ହେବାପାଇଁ ଉପସ୍ଥିତ ବାଦୀ—The plaintiff or complainant present in court.
হাজিরবাদী हाजरमुदेई

ହାଜରି—ଗ୍ରାଦେ. (ଖଣ୍ଡୁଅଳ) ବି—ଉପସ୍ଥିତି—
Hājari Arrival; presence; attendance.

ହାଜିର୍ (ରି)—ବୈଦେ. ବଣ(କତରଅ)—(ଅ. ହାଜାର୍)—ଉପସ୍ଥିତ—
Hājir (ri) Present; attending; in attendance.
ବି—(ଅ ହାଜାର) ଉପସ୍ଥିତି—Attendance;
হাজির हाजिरी presence.

ହାଜିରା—ବୈଦେ. ବଣ (ଅ) (କତରଅ)—ଉପସ୍ଥିତ—Present;
Hājirā attending. ବି—୧ । କର୍ମସ୍ଥଳରେ ଉପସ୍ଥିତି—
1. Presence or attendance at the required place ୨ । ହାଜିରା ବହି—2. Attendance register. ୩ । ବଙ୍ଗଦେଶର ପ୍ରଚଳିତ ବଂଶୋପାଧି ବିଶେଷ—3. A family-title in Bengal.
হাজিরা हाज़ीरा

ହାଜିରି—ବୈଦେ. ବି (ଅ. ହାଜିର୍)—୧ । ହାଜର; ଉପସ୍ଥିତି—
Hājiri 1. Presence. ୨ । ସାହେବମାନଙ୍କର ଜଳଯୋଗ—
2. Taking of tiffin or refreshment by Europeans. ୩ । ହାଜିରା ବହିରେ ଲିଖିତ ଉପସ୍ଥିତ ହେବାର ଚିହ୍ନ—3. Mark in the attendance register noted in respect of a person present at roll call. ବଣ—ହାଜର; ଉପସ୍ଥିତ—
হাজিরি হাজির Present, attending.

ହାଜୀ—ବୈଦେ ବି(ଅ)—ଯେଉଁ ମୁସଲମାନ୍ ମକ୍କାକୁ ଯାଇ ସେଠାରେ
Hāji ହଜ୍ ବା ତୀର୍ଥୋଚିତ କର୍ତ୍ତବ୍ୟ ସମ୍ପନ୍ନ କରିଥାଆନ୍ତି—Hāji;
a Mahomedan who has accomplished his
হাজী हाजी pilgrimage to Mecca.

ହାଞ୍ଚି—ଗ୍ରାଦେ. (ମେଦିନୀପୁର) ବି—(ଭୁଲ. ବ ହାଁଚି)—ଛିଙ୍କ—
Hañchi Sneezing.

ହାଞ୍ଚିବା—ଗ୍ରାଦେ (ମେଦିନୀପୁର) କ୍ରି (ଭୁଲ. ବ. ହାଁଚା)—ଛିଙ୍କିବା—
Hañchibā To sneeze.

ହାଞ୍ଜି ହାଞ୍ଜି କରିବା (ହେବା)—ବୈଦେ. କ୍ରି (ଫା—ହାଁ=ହଁ, ଜୀ=
Hañji hāñji karibā (hebā) ଦେ ମହାଶୟ !)—୧ ।
କୌଣସି ବ୍ୟକ୍ତିର ମନକୁ ଖୁସି କରିବାପାଇଁ ତାଙ୍କ କଥାରେ ସବୁବେଳେ ହଁ କରିବା, ଅର୍ଥାତ୍, ସେ ଯାହା କହିବେ ତାହା, ଠିକ୍ ହେଉ ବା ବେଠିକ୍ ହେଉ, ଠିକ୍ ଅଛି ବୋଲି କହିବା, ଏକନ ବା ତୋଷାମୋଦ କରିବା—1. To ditto what a person says in respect of the correctness or otherwise of what he says; to fawn; to cringe; to flatter in a servile way. ୨ । କୌଣସି କାର୍ଯ୍ୟ କରିବାକୁ ଦୃଢ଼ସଙ୍କଳ୍ପ ନ କରି ଇତସ୍ତତଃ କରିବା—2. To hesitate
হাঁজিহাঁজিকরা हाँजीहाँजीकरना to do a thing

ହାଟ୍—ବୈଦେ. ବି (ଇଂ)—ଟୋପର; ସାହେବମାନଙ୍କ ପିନ୍ଧିବା ଧଳମ
Hat ଅବୃତ୍ତର ଚଉଡ଼ା ଧାରବାଲା ଟୋପି—Hat.
টুপী, হ্যাট हैट

ହାଟ୍ କୋଟ୍—ବୈଦେ. ବ (ଇଂ; ସହଚର ସର୍ବଧେୟ ଦ୍ୱନ୍ଦ୍ୱ)—ମୁଣ୍ଡରେ ପିନ୍ଧା
Hāṭ koṭ ଯିବା ସାହେବ ଟୋପର ଓ ଦେହରେ ପିନ୍ଧାଯିବା ସାମନା
ଅଡ଼େ ଖୋଲା, ବୋତାମ ଥିବା କୁର୍ତ୍ତା—Hat and coat.
ହ୍ୟାଟକୋଟ ହैट्कोट

ହାଟ୍ପୀନ୍—ବୈଦେ. ବ (ଇଂ)—ମେମ୍ମାନଙ୍କ ମୁଣ୍ଡରେ ପିନ୍ଧାଯିବା
Hāṭ pin ଟୋପି ମୁଣ୍ଡରୁ ଖସି ନ ପଡ଼ିବ ବୋଲି ମୁଣ୍ଡର ବାଳ ସଙ୍ଗେ
ବା ଗଣ୍ଠି ସଙ୍ଗେ ହାଟ୍କୁ ସଂଲଗ୍ନ କରି ରଖିବାକୁ ଯେଉଁ
ଲମ୍ବ ମୂଳଅ କାଠି ହାଟ୍ର ଏପାଖ ସେପାଖ ଫୁଟି
ହ୍ୟାଟପୀନ हैटपीन ଥାଏ—Hatpin.

ହାଟ—ଦେଶ. ବ—(ସଂ. ହଟ୍ଟ)—୧ ।ହଟ୍ଟ; ପଣ୍ୟ କ୍ରୟ ବିକ୍ରୟ ପାଇଁ ନାନା
Hāṭa ସ୍ଥାନରୁ ଆଗତ ଅନେକ ବେପାରୀଙ୍କର ଏକତ୍ର ହେବାସ୍ଥାନ
ହାଟ हट 1. Market; fair.
[ଦ୍ର—ହାଟ ଓ ବଜାରମଧ୍ୟରେ ପ୍ରଭେଦ ଏହିକି, ହାଟ ନିର୍ଦ୍ଦିଷ୍ଟ ସମୟରେ ବା ସପ୍ତାହର ନିର୍ଦ୍ଦିଷ୍ଟ ବାର (ଦିନ) ରେ ବସେ, କେତେକ ସ୍ଥଳରେ ପ୍ରତିଦିନ ସନ୍ଧ୍ୟାବେଳେ ବା ସକାଳେ ହାଟ ବସେ ଓ କିଛି ସମୟପରେ ଭାଙ୍ଗିଯାଏ, ନାନାସ୍ଥାନରୁ ଲୋକେ ପଣ୍ୟ ଦ୍ରବ୍ୟମାନ ଆଣି ହାଟରେ ପସରା ମେଲାଇ ବସି ବିକନ୍ତି ଓ କେତେକ ସମୟ ପରେ ହାଟ ଭାଙ୍ଗିଯାଏ ଓ କ୍ରେତା ବିକ୍ରେତାମାନେ ଯେଯାହା ଘରକୁ ଚାଲି ଯାଆନ୍ତି; ହାଟରେ ଅସ୍ଥାୟୀ ବା ଛୋଟ ଦୋକାନମାନ ମେଲା ପଡ଼ାରେ ବା ଗଛତଳେ ବସେ; କିନ୍ତୁ ବଜାରରେ ସ୍ଥାୟୀ ଦୋକାନମାନ ସବୁବେଳେ ଖୋଲାଥାଏ । ହାଟରେ ସାଧାରଣତଃ ନିତ୍ୟ-ପ୍ରୟୋଜନୀୟ ଅଳ୍ପ ମୂଲ୍ୟର ପଦାର୍ଥମାନ ମିଳେ, କିନ୍ତୁ ବଜାରରେ ସ୍ୱଳ୍ପ ମୂଲ୍ୟର ଦ୍ରବ୍ୟଠାରୁ ବହୁମୂଲ୍ୟର ସୌଖିନ୍ ଦ୍ରବ୍ୟପର୍ଯ୍ୟନ୍ତ ସବୁ ଦ୍ରବ୍ୟ ସର୍ବଦା କିଣିବାକୁ ମିଳେ । ବଜାରର ଦୋକାନୀମାନେ ଜମିଦାରଙ୍କୁ ଜମିପାଇଁ ବା ଘରପାଇଁ ଖଜଣା ବା ଭଡ଼ା ଦିଅନ୍ତି । କିନ୍ତୁ ହାଟକୁ ଆସିବା ବିକ୍ରେତାମାନେ ଦ୍ରବ୍ୟର ପରିମାଣ ଅନୁସାରେ ଜମିଦାରଙ୍କ ତରଫରୁ ହାଟ-ଦଣ୍ଡ ଅବା 'ତୋଲା' ବା 'ପଣି' ଦିଅନ୍ତି । ହାଟରେ ବହୁଜନଙ୍କର ସମାଗମ ହୁଏ । ଯେଉଁ ଗାଁର ବା ପାଡ଼ାର ସ୍ତ୍ରୀଲୋକ ମାନେ ହାଟକୁ ଯାଇ ପଣ୍ୟ ବିକ୍ରି କରନ୍ତି ସେମାନଙ୍କୁ ହାଟୁଆଣୀ ବୋଲିଯାଏ । ଭଦ୍ରକୁଳବଧୂ ହାଟକୁ ଗଲେ ତାହାର ମର୍ଯ୍ୟାଦା-ହାନି ଘଟେ; ଏଥିପାଇଁ ପ୍ରବଚନ ଅଛି ଯେ, 'ପାଣି ନାଶଯାଏ ଘାଟେ, ସ୍ତ୍ରୀ ନାଶଯାଏ ହାଟେ' । 'କାଠ ଛାଡ଼, ବୋହୂ ଯିବେ ହାଟକୁ'—ବ୍ୟଙ୍ଗୋକ୍ତି ଯୁକ୍ତ ପ୍ରବଚନ—ଯେଉଁ ବଧୂ ହାଟରେ ପ୍ରକାଶ୍ୟ ସ୍ଥାନକୁ ଯାଆନ୍ତି ଓ ସେଠାରେ ଯାହାଙ୍କୁ ଅପାମର ସାଧାରଣ ଦେଖନ୍ତି, ତାଙ୍କର ଯଦି କାଠରେ ଯିବାବେଳେ ତାଙ୍କ ସଙ୍ଗେଥିବା ବ୍ୟକ୍ତି-ମାନେ ଅନ୍ୟମାନଙ୍କୁ ଅଡ଼େଇ ଯିବାକୁ ସାବଧାନ କରନ୍ତି, ଏହିପରି ହାସ୍ୟାସ୍ପଦ ପରିସ୍ଥିତିରେ ଏକ ପ୍ରବଚନ ବୋଲି ଯାଏ । ଏଥିରେ ସମାର୍ଥବାଚକ ପ୍ରବଚନ—'ହାଣ୍ଡିରେ ଖାଏ, ଗୋଡ଼ରେ ପଡ଼ିଲେ ଗାଧୋଇ ଯାଏ' । 'ହାତୀ ଗଳିଯାଉଅଛି, ପିମ୍ପୁଡ଼ି ଗଳିବାକୁ ବାଟ ନାହିଁ ।' 'ଓଢ଼ଣା ପଡ଼ୁଛି ନାକ ଦେଇ, ଭୁଣ୍ଡ ଖୁଲୁଅଛି ଚଉପାଢ଼ି କି ।']

୨ । (ଲକ୍ଷଣାର୍ଥ) କୌଣସି ଗୁପ୍ତ ବିଷୟର ସାଧାରଣରେ ସ୍ପଷ୍ଟହେବା ; ହଟ୍ଟ—2. (figurative) Publication of any secret or private matter.
୩। (ଲକ୍ଷଣାର୍ଥ) ଘୋଳଘାଣ୍ଟ; ଗୋଳମାଳ ; ଗଣ୍ଡଗୋଳ ; ହଟ୍ଟଗୋଳ—3. (figurative) Ado ; noise ; uproar ; row; golmal. [ଯଥା—ସେଠାରେ ହାଟ ଲାଗିଛି ।] ୪ । (ଲକ୍ଷଣାର୍ଥ) ଯେଉଁଠାରେ ବହୁ-ଲୋକ ବା ଦ୍ରବ୍ୟ ସମବେତ ହୁଅନ୍ତି—4. (figurative) Rendezvous ; a place of gathering. [ଉ—ଠିକିରି ପଡ଼ୁଛି ଠାବେ ଠାବେ କେଜ ଦେଖି ଏ ଚନ୍ଦ୍ରମା ହାଟ । ରାଧାନାଥ—ଯାଜ୍ଞ ।]

ହାଟ ଆଣିବା—ଦେ. କ୍ରି—ହାଟରୁ ଦ୍ରବ୍ୟ କିଣିଆଣିବା—To pur-
Hāṭa ānibā chase articles from a market.
ହାଟକବା ପ୍ରାଦେ (ଗଡ଼ଜାତ) ବି—ବଜାରରୁ ସଉଦା ବା ପଣ୍ୟ
हाटमोलाना ଆଣିବା—To bring commodities from the bazar.

ହାଟ ଇଜ(ଜା)ରା—ଦେ. ବ (ସ. ହଟ୍ଟ+ ପା. ଇଜାର୍)—ହାଟ ବସିବା
Hāṭa ija (jā) rā ବେଳେ ହାଟକୁ ଆସିବା ବିକ୍ରେତାମାନଙ୍କ
ହାଟ ଇଜାବା ଠାରୁ ତୋଲା ବା ଶୁଳ୍କ ଆଦାୟ କରିବାର
हाटइजारा ଅଧିକାର (ଯାହା ହାଟର ଭୂସ୍ୱାମୀ କୌଣସି ବ୍ୟକ୍ତିକୁ ପଟ୍ଟା ଦିଅନ୍ତି)—Farming or leasing out of a market.

ହାଟ ଇଜ(ଜା)ରାଦାର୍—ଦେ. ବ—ହାଟର ପଟ୍ଟାଦାର୍ ; ଜମିଦାରଙ୍କ
Hata ija (jā) rādār ଠାରୁ ନିର୍ଦ୍ଦିଷ୍ଟ ଜମାରେ ହାଟତୋଲା
ହାଟଇଜବାଦାବ୍ ବା ଶୁଳ୍କ 'ଅସୁଲ କରିବା ପାଇଁ ପଟ୍ଟା ନେବା
हाटइजारादार ବ୍ୟକ୍ତି—The lessee or farmer of a market.

ହାଟ ଇଜ(ଜା)ରା ଦେବା—ଦେ. କ୍ରି—(ଜମିଦାର) ହାଟରୁ ଶୁଳ୍କ
Hata ija (jā) rā debā ବା ତୋଲା ଅସୁଲ କରିବାର
ହାଟଇଜାବା ଦେଓୟା ଅଧିକାର କଣେ ବ୍ୟକ୍ତିକୁ ନିର୍ଦ୍ଦିଷ୍ଟ କାଳପାଇ
हाटइजारादेना ଦେଉଦେବା—To farm or lease out a market to a person.

ହାଟ ଇଜ(ଜା)ରା ନେବା—ଦେ. କ୍ରି—ହାଟତୋଲା ବା ଶୁଳ୍କ
Hāṭa ija (jā) rā nebā ଅସୁଲ କରିବାର ପଟ୍ଟା ଜମିଦାରଙ୍କ-
ହାଟ ଇଜାବା ଲଓୟା ଠାରୁ ନିର୍ଦ୍ଦିଷ୍ଟ ଜମାରେ ନେବା—To
हाट इजारा लेना take a market on lease or farm from the Zamindar.

ହାଟ ଉଠା (ଠେ) ଇବା—ଦେ. କ୍ରି—୧ । ହାଟ ଭାଙ୍ଗିବା (ଦେଖ)—
Hāṭa uṭhā (ṭhe) ibā 1. Hāṭa bhāṅgibā (See).
ହାଟଭାଙ୍ଗା ୨ । ହଟ୍ଟ କରିବା ; କୌଣସି ବିଷୟ ସ୍ପଷ୍ଟ
हाटऊठाना କରିବା—2. To publish or proclaim any
ହାଟ କବେ ଦେଓୟା matter ; to broadcast a thing.
फैलाना

ହାଟକ—ସଂ. ବ—(ହଟ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ ଅକ)—୧ ।
Hāṭaka ସ୍ୱର୍ଣ୍ଣ ; ସୁନା—1. Gold. ୨ । ମହାଭାରତର ସଭା-

ପବୋକ୍ତ ଗୁହ୍ୟକର ବାସସ୍ଥାନ ନଗର ଓ ଦେଶବିଶେଷ —
2. Name of a country and town of ancient India, the place of residence of Guhyaka. ବିଣ—ହାଟକ ନିର୍ମିତ ; ସ୍ୱର୍ଣ୍ଣମୟ—Golden.

ହାଟକମୟ—ସଂ. ବିଣ (ହାଟକ+ମୟ)—ସ୍ୱର୍ଣ୍ଣମୟ—
Hāṭakamaya Golden.

ହାଟକ ଲୋଚନ—ସଂ. ବି (ନାମ)—ହିରଣ୍ୟାକ୍ଷ ଦୈତ୍ୟ (ପୁ. ଶ)
Hāṭaka lochana The demon Hiraṇākṣha.

ହାଟ କରିଦେବା—ଦେ. କ୍ରି—କୌଣସି ଗୁପ୍ତ ବିଷୟକୁ ପ୍ରକଟ କରିବା—
Hāṭa kari debā To proclaim any secret matter.
ହাট করে দেওয়া फैलाना

ହାଟ କରିବା—ଦେ. କ୍ରି—୧ । ହାଟରୁ ପ୍ରୟୋଜନୀୟ ପଣ୍ୟ ଦ୍ରବ୍ୟ କିଣିବା—1. To purchase one's necessary articles from a market.
Hāṭa kariba
হাটকরা
हाटकरना ୨ । ହାଟକୁ ନିଜର ବିକ୍ରେୟ ପଣ୍ୟଦ୍ରବ୍ୟ ନେଇ ବିକିବା—2. To sell one's commodities in a market. ୩। ନୋଟିଏ ନୂତନ ହାଟ ପ୍ରତିଷ୍ଠିତ କରିବା—3. To open or start a fair. ୪ । ବ୍ୟବସାୟ କରିବାପାଇଁ ହାଟକୁ ଯିବା—4. To go to a market for business. ୫ । (ଲକ୍ଷଣାର୍ଥ) ପ୍ରକଟ କରିବା ; କୌଣସି ବିଷୟ ସ୍ପଷ୍ଟ କରିବା—5. (figurative) To proclaim or publish any matter. ୬ । (ଲକ୍ଷଣାର୍ଥ) (ହାଟରେ ବହୁଲୋକ ସମାଗମଯୋଗୁଁ ସର୍ବଦା ଗୋଳମାଳ ହେଉଥିବାରୁ) ଗୋଳମାଳ କରିବା; ହଟ୍ଟଗୋଳ କରିବା—6. (figurative) To make a noise ; to set up a row.
হাটকবে দেওয়া
फैलाना
লট্টগোলকরা
हाट करना

ହାଟକୀୟ—ସଂ. ବିଣ—(ହାଟକ+ଇୟ)—ସ୍ୱର୍ଣ୍ଣ ନିର୍ମିତ—
Hāṭakiya Golden.

ହାଟକେଶ—ସଂ. ବି—ହାଟକେଶ୍ୱର (ଦେଖ)—
Hāṭakesa Hāṭakeśwar (See).

ହାଟକେଶ୍ୱର—ସଂ. ବି (ନାମ)—(ହାଟକଦେଶ ପ୍ରତିଷ୍ଠିତ ଈଶ୍ୱର)—
Hāṭakeśwara ଗୋଦାବରୀ ତୀରସ୍ଥ ଶିବଲିଙ୍ଗ ବିଶେଷ (ବାମନପୁରାଣ ୬୨ ଅଧ୍ୟାୟ)—Name of an image of Śiba on the Godābari river in South India. ଦେ. ବି—ପୁରୀ ଜିଲ୍ଲାର ଖୋର୍ଦ୍ଧାଠାରୁ ୫ କ୍ରୋଶ ଦୂରରେ ଅବସ୍ଥିତ ଉଷ୍ଣ ପ୍ରସ୍ରବଣ ବିଶିଷ୍ଟ ଅଟଣ ଗ୍ରାମରେ ଥିବା ଶିବଲିଙ୍ଗ ଓ ଗ୍ରାମ—Name of a village and image of Śiba near a hotspring near Khurda in the Puri district. [ଉ—ହାଟକେଶ୍ୱରର ତପ୍ତ ପ୍ରସ୍ରବଣ ଋଷି କାମେଶ୍ୱର ହିତେ—ରାଧାନାଥ, ପାର୍ବତୀ]

ହାଟ ଘାଟ—ଦେ. ବି (ସହଚର ଶବ୍ଦ, ସଂ. ହଟ୍ଟ ଓ ଘଟ୍ଟ)—ବହୁଲୋକଙ୍କ ସମାଗମ ସ୍ଥାନମାନ—Public places; places where people gather.
Hāṭa ghāṭa
হাটঘাট हाटघाट

ହାଟ ଘୁଘୁ—ଦେ ବି—ହାଟରେ ସମବେତ ବହୁଲୋକଙ୍କ କଥାବାର୍ତ୍ତାରୁ ଉତ୍ପନ୍ନ ଅବ୍ୟକ୍ତ ଘୁ ଘୁ ଶବ୍ଦ—Indistinct noise arising from the congregation of people in the market. ପ୍ରାଦେ (ପୁରୀ) ବି (ବ୍ୟଙ୍ଗ୍ୟାର୍ଥ) ହାଟରେ ବିକ୍ରୀ ହେଉଥିବା ଖାଦ୍ୟ ପଦାର୍ଥମାନଙ୍କ ମଧ୍ୟରୁ ଉତ୍କୃଷ୍ଟ ପଦାର୍ଥ, ମାଛ—(Ironical; Best artide found in the market) Fish.
Hāṭa ghu ghu
হটগোল हाटहल्ला

ହାଟଚାଳି (ଚାଳିଆ)—ଦେ. ବି—ହଟ୍ଟ ମଣ୍ଡପ; ହାଟକୁ ଆସିବା ଦୋକାନୀମାନଙ୍କ ପଣ୍ୟ ଦ୍ରବ୍ୟମାନଙ୍କୁ ଖରାବର୍ଷାରୁ ରକ୍ଷା କରିବାପାଇଁ ନିର୍ମିତ ମେଲା ଚାଳଘର—Open sheds built in a market; market stalls.
Hāṭa chāli (chāliā)
হাটচালা हाटघर

ହାଟଜମା—ଦେ. ବି—ହାଟରେ ଜମିର ଜମିଦାର ହାଟର ଇଜାରାଦାର ବା ଦଣ୍ଡିଆଠାରୁ ଯେଉଁ ନିର୍ଦ୍ଦିଷ୍ଟ ବାର୍ଷିକ ଜମା ନିଅନ୍ତି—Fixed annual rent paid by the farmer or leasee of a market to the land-owner.
Hāṭa jamā
হাটজমা हाटजमा

ହାଟ ଝଡ଼ା—ଦେ. ବି—ରୁଗ୍ଣ ବା ପୁଅରୋଗଗ୍ରସ୍ତ ପିଲାଙ୍କୁ ଗାଧୋଇ ଦେବା ପାଣିରେ ମିଶାଇବା ପାଇଁ ଯୋଗିଳ ବଣିଆମାନେ ସେମାନଙ୍କ ହାଟ (ଦୋକାନ) ଉଠାଇବା ବେଳେ ଭୂମିରେ ପଡ଼ିଥିବା ଯେଉଁ ସବୁ ଧୂଳି, କାଡ଼ବୁଟର ଗୁଣ୍ଡ ଓ ବାଲି ଆଦ ସଂଗ୍ରହ କରନ୍ତି—Sweepings from the floor an apothecary's shop collected by the apothecary and mixed with the bath-water of invalid rickety babies. [ଉ—ହାଟଝଡ଼ାକୁ ପାଣିରେ ମିଶାଇ ସେ ପାଣିରେ ରୁଗ୍ଣ ପିଲାଙ୍କୁ ଗାଧୋଇ ଦେଲେ ପିଲାଙ୍କର ସୁସ୍ଥ ହେବା ଲୋକେ ବିଶ୍ୱାସ କରନ୍ତି ।]
Hāṭa jhardā

ହାଟ ତୋଟା—ଦେ. ବି—ଯେଉଁ ଆମ୍ବ ଆଦି ଗଛର ତୋଟାର ଛାୟାରେ ହାଟ ବସେ—A mango tope under which a fair is held.
Hāṭa toṭā
হাটটোটা हाटगाछी

ହାଟ ତୋଲା—ଦେ. ବି—ହାଟକୁ ଜିନିଷ ବିକି କରିବାକୁ ଆଣିଥିବା ବ୍ୟକ୍ତିମାନଙ୍କଠାରୁ ହାଟର ଇଜାରାଦାର ବା ଦଣ୍ଡିଆ ବା ଜମିଦାରଙ୍କ ପକ୍ଷରୁ ଲୋକଙ୍କଅସୁଲ କରିବା ପଣ୍ୟଦ୍ରବ୍ୟର ନିର୍ଦ୍ଦିଷ୍ଟ ଅଂଶ (ଯଥା—ଚୋଡେଇଏ ବାଇଗଣରୁ ଏକ ସେର, ପଣେ ଆମ୍ବରୁ ୪ପୁଞ୍ଜା, ଷଗଡ଼େ ପଦାର୍ଥରୁ ୫ସେର ଇତ୍ୟାଦି) A fixed part of the commodities brought to a market for sale which is realised by the land-owner or his licencee. [ଦ୍ର—ହାଟକୁ ବିକି କରିବାକୁ ଆସିଥିବା ଦ୍ରବ୍ୟର ଅଂଶକୁ ହାଟତୋଲା କୋଲାଯାଏ, କିନ୍ତୁ କେଉଁ ପରବର୍ତ୍ତିରେ ଅଦାୟ କରାଯିବା ନଗଦ ପଇସାକୁ ପଣି ବୋଲାଯାଏ । କିନ୍ତୁ ହାଟ ତୋଲା ଶବ୍ଦ ହାଟପଣି ଅର୍ଥରେ ମଧ୍ୟ ବ୍ୟବହୃତ ହୁଏ।]
Hāṭa tolā
হাটতোলা हाटबत्ती

ହାଟ ଦଣ୍ଡିଆ—ଦେ. ବି—ଯେଉଁ ବ୍ୟକ୍ତି ହାଟ ର ଜମିଦାର ବା ଇଜରା Hāta daṇḍiā ଦାରଙ୍କ ପକ୍ଷରୁ ପଣ୍ୟ ବିକେତାମାନଙ୍କଠାରୁ ହାଟ ତୋଲା ବା ହାଟପଣି ଅଦାୟ କରନ୍ତି—A person who is entrusted with the realisation of market rate from the stall-keepers.
হাটদণ্ডিআ हाटकापैकार

ହାଟ ଦର (ଭାଉ)— ଦେ. ବ—କୌଣସି ଦ୍ରବ୍ୟର ପ୍ରଚଳିତ ବାଣ୍ଡଭାଉ—Hata dara(bhāu) Market rate or market price of হাটেরদর हाटकादर any commodity.

ହାଟ ନିଲାମ—ଦେ. ବି—(ଜମିଦାର) ହାଟଇଜାରାକୁ ଅର୍ଥାତ୍ ହାଟତୋଲା Hāta nilām ଅସୁଲ କରିବା ଅଧିକାରକୁ ପ୍ରକାଶ୍ୟ ଭାବରେ ନିଲାମ୍ କରେ ବିକ୍ରି କରିବା—Auction sale of the হাটনিলাম हाटनिलाम lease or farm of a market.

ହାଟ ନିଶାପ—ଦେ. ବି—ବରେଇ ପାଟକ; ଯେଉଁ ଜାତିସମ୍ବନ୍ଧୀୟ ସାମାଜିକ Hāṭa nisāpa ଜଟିଳ ପ୍ରଶ୍ନ ବା ଅନ୍ୟ ସମସ୍ୟା ଜାତିଭାଇଙ୍କ ନିକଟରେ ମୀମାଂସା ହୋଇ ନ ପାରେ ତାକୁ ହାଟରେ ସମବେତ ବହୁ ସ୍ଥାନରୁ ଆଗତ ବହୁ ଜାତୀୟ ବ୍ୟକ୍ତିଙ୍କ ଆଗରେ ପକାଇ ମୀମାଂସା କରିବା ନିଶାପ—The mode of adjudication of a social question or any other delicate point [ which could not be settled by the caste panchayat)by the people assembled at a market [ବି—ଯେଉଁ ସାମାଜିକ ବିବାଦମାନ ଜାତିଆଣ ସଭାରେ ବା ଗ୍ରାମ ସଭାରେ ମୀମାଂସିତ ହୋଇ ନ ପାରେ, ପକ୍ଷମାନେ ହାଟକୁ ଯାଇ ହାଟରେ ସମବେତ ଜନତାଙ୍କ ଆଗେ ତାହା ଉପସ୍ଥାପିତ କରନ୍ତି ଓ ସେଠାରେ ସମବେତ ଅଜ୍ଞାତ ବ୍ୟକ୍ତିମାନଙ୍କ ମଧ୍ୟରୁ ଅଧିକାଂଶ ଯାହା ମତ ଦିଅନ୍ତି ତାହା
হাটবিচার हाटनिशाप ସେମାନେ ଗ୍ରହଣ କରନ୍ତି]

ହାଟପଣି—ଦେ. ବି—ହାଟ କୁ ପଣ୍ୟ ବିକିବାକୁ ଆଣିଥିବା ବିକେତାମାନଙ୍କ Hāṭa paṇi ଠାରୁ ଜମିଦାର ବା ଇଜାରଦାରଙ୍କ ତରଫରୁ ଅଦାୟ କରାଯିବା (ଦ୍ରବ୍ୟର ଅଂଶ ପରିବର୍ତ୍ତେ) ନିର୍ଦ୍ଦିଷ୍ଟ ଶୁଳ୍କ—Tax or fixed cash realised from persons who bring commodities to a market for
হাটতোলা हाटबही sale.

ହାଟ ପାଳି—ଦେ. ବି—ହାଟ ବସିବାର ନିର୍ଦ୍ଦିଷ୍ଟ ଦିବସ—The Hāṭa pāli week day on which a market sits.
হাটেরপালি [ଦି—ସଙ୍ଗି ! କ ଖାଇବେ ମନ ! ହାଟ ପାଳିକ
हाटकादिन ତିଳୁଡ଼ ଖୁଣ୍ଟୁଆ ଭେଲୁଅ ବାଇଗଣ ।
ପାଲ୍ଲାବାଇଙ୍କ ଗୀତ ।]

ହାଟ ବଜାର—ଦେ. ବି—(ସହଚର ଶବ୍ଦ)—(ସ. ହଟ୍ଟ ଓ ଫା. Hāṭa bajāra ବାଜାର୍)—ଅସ୍ଥାୟୀ ହାଟ ଓ ସ୍ଥାୟୀ ବଜାର—
হাটবাজার Market and bazar (ଦ୍ର—ହାଟର
हाट बाजार ଦୋକାନମାନ ଅସ୍ଥାୟୀ ଓ ଉଠାଦୋକାନ ଅଟେ; କିନ୍ତୁ ବଜାରର ଦୋକାନମାନ ସ୍ଥାୟୀଦୋକାନ ଓ ତାହା ହାଟର ଦୋକାନ ପରି ହାଟପାଳି ଦିନ ବସେ ନାହିଁ ବା ଉଠେ ନାହିଁ]

ହାଟ ବସା(ସେ)ଇବା—ଦେ. କ୍ରି—୧ । କୌଣସି ସ୍ଥାନରେ ନୂଆ କରି Hāṭa basā(se)ibā ଗୋଟିଏ ହାଟ ସ୍ଥାପନ କରିବା—
হাট বসান 1. To start or open a new market at
हाट बैठाना a place. ୨ । ହାଟପାଳି ଦିନ ହାଟରେ କ୍ରୟ ବିକ୍ରୟ ଆରମ୍ଭ କରିବା—2. To start the transactions of a market on a market day. ୩ । (ଲକ୍ଷଣାର୍ଥ) ହାଟ କରିବା; କୌଣସି ଗୁପ୍ତ କଥାକୁ ପ୍ରଖ୍ୟା କରିବା—3. (figurative) To publish or promulgate any secret matter. ୪ । ବହୁ ଲୋକଙ୍କୁ ଏକ ସ୍ଥାନରେ ରୁଣ୍ଡ କରିବା—4. To gather a big crowd at a place. [ଦ୍ର—ଏକ ଖାଲ ଗୋଖଣ୍ଡରେ ଗୁହ୍ନାକ ସାତ ଜଣ୍ଡର ମ ଧ ଗୋପିଗୃନ୍ଦ ବସାଇଲେ ହାଟ । ପାଲ୍ଲାବାଇଙ୍କ ଗୀତ ।]

ହାଟ ବସିବା—ଦେ. ବି—୧ । ନୂଆ ହୋଇ ହାଟ ପ୍ରତିଷ୍ଠିତ ହେବା—Hāṭa basibā 1. The opening or starting of
হাট বসা a new market. ୨ । ହାଟରେ କ୍ରୟ ବିକ୍ରୟ
हाट बैठना କାର୍ଯ୍ୟ ଚଳିବା—2. The holding of a market; transactions being conducted in a market. [ଦ୍ର—ତାହିଁ ବସିଛି ହାଟ । ମଧୁସୂଦନ, ଛନ୍ଦମାଳା ।] ୩ । ହାଟରେ କ୍ରୟ ବିକ୍ରୟ କାର୍ଯ୍ୟ ଆରମ୍ଭ ହେବା—3. Opening and starting of the transactions in a market. ୪ । (ଲକ୍ଷଣାର୍ଥ) କୌଣସି ବିଷୟ ସର୍ବସାଧାରଣରେ ପ୍ରଖ୍ୟା ହେବା; ହାଟ ବସିବା—4 (figurative) Publication of any secret matter. [ଦ୍ର—ବୃନ୍ଦ ବନ୍ଦରର ବସେ ଏହୁ ହାଟ । ବିବସ୍ତ୍ରୀ. ବିଭବ ।] ୫ । (ଲକ୍ଷଣାର୍ଥ) କୌଣସି ପଦାର୍ଥର ବହୁ ସଂଖ୍ୟାରେ କୌଣସି ସ୍ଥାନରେ ରୁଣ୍ଡ ହେବା —5. (figurative) The gathering of anything in profusion at a place. (ଯଥା—ନାଗର ଯାଣ୍ଡ ଦିନ ଚୁପିକ ମହାଦେବ ମନ୍ଦିରମାନଙ୍କ ମେଳାରେ ରସିକଙ୍କର ଓ ଗୁଣର ହାଟ ବସେ ।]

ହାଟ ବାଟ—ଦେ. ବି (ନିରର୍ଥକ ସହଚର ଶବ୍ଦ; ଅସଲିକ ଅର୍ଥ ଯନୁ Hāṭa bāṭa କ ହାର ହାଟକୁ ଯିବାକୁ ହେଲେ ବାଟ ବା ରାସ୍ତା
হাটবাট ଦେଇ ଯିବାକୁ ହୁଏ—୧ । ସଉଦା କିଣିବାକୁ ବା
हाटबाट, हाटबाट ବିକିବାକୁ ହାଟକୁ ଯିବା—1. Marketing. [ଦ୍ର—ଅଯେ ହାଟ ଅଯେ ବାଟ ଅପରେଣ ବୃନ୍ଦା । ପ୍ରାଚୀ, ବ୍ରହ୍ମକୈବର୍ତ୍ତ ଗୀତା ।] ୨ । ହାଟରେ କ୍ରୟ ବିକ୍ରୟ—2. Transactions done in a market.

ହାଟ ବାହୁଡ଼ା—ଦେ. ବି—ହାଟରେ ଜିନିଷ ବିକି ବା ହାଟରୁ ଜିନିଷ Hata bāhurdā କିଣି ଘରକୁ ଫେରି ଆସିବା—Returning from a market after selling
হাটথেকে ফেরা

हाट वापस or purchasing. ଯଥା—ଯେଉଁ ବ୍ୟକ୍ତି ହାଟରୁ କିଣା ବିକା କରି ଘରକୁ ଫେରି ଆସୁଥାଏ—(a person) Returning from a market after doing the marketing.

ହାଟ ଭାଙ୍ଗିବା—ଦେ· କ୍ରି—୧ । (ହାଟର କ୍ରେତା ବିକ୍ରେତାମାନେ) Hāṭa bhāṅgibā ହାଟ ପାଳି ଦିନ ହାଟର କ୍ରୟ ବିକ୍ରୟ ଶେଷ করি ହାଟରୁ ଫେରି ଆସିବା—1. To leave the market after concluding the day's transactions; to close the transactions of a market at the close of the fixed time. ୨ । ଗୋଳମାଳ କରି ବା ହାଟକୁ ଆସିବା ବ୍ୟକ୍ତିମାନଙ୍କ ଉପରେ ଜୁଲମ କରି ସେ ସ୍ଥାନରେ ଭବିଷ୍ୟତରେ ହାଟ ନ ହେବାର କାରଣ ହେବା—2. To close down a market; to bring about the closing down of a market.

হাট ভাঙ্গা

हाट उठाना

हाट तोड़ना

ଦେ. ବି—ହାଟ ଭାଙ୍ଗିଯିବା ( ଦେଖ ) Hāṭa bhāṅgijibā ( See )

ହାଟ ଭାଙ୍ଗିଯିବା—ଦେ. ବି—୧ । ହାଟର କାରବାର ଶେଷ ହେବା ପରେ Hāṭa bhāṅgijibā ହାଟକୁ ଆସିଥିବା ବ୍ୟକ୍ତିମାନଙ୍କ ଘରକୁ ଅଳ୍ପ ନେଇ ଯେଝା ଘରକୁ ଗୁଳିଯିବା—1. The closing or conclusion of the transactions of a market; the breaking up of a fair. ୨ । ଅତ୍ୟାଗ୍ର ବା ଅଭାବକୁ ଚୋଳା ଅଦାୟ ବା ଶାନ୍ତିଭଙ୍ଗ ଆଦି ଯୋଗୁ ଲୋକେ ହାଟକୁ ନ ଆସିବାରୁ ହାଟଟି ବନ୍ଦ ହୋଇଯିବା—2. The closing down or discontinuance of the holding of a market at a place (owing to oppression or insecurity).

হাটভেঙ্গেযাওয়া हाटउठजाना

ହାଟମୁଣ୍ଡେଇ—ଦେ. ବି—(ସ. ହଟ୍ଟମଣ୍ଡପ)—ହାଟଚାଳି (ଦେଖ)— Haṭamuṇḍei Hāṭachāḷi (See)

ହାଟ (ହାଟର) ଭିତରେ (ମଧ୍ୟେ) ବ୍ରହ୍ମଜ୍ଞାନ—ଦେ. ପ୍ରବଚନ— Hāṭa (hāṭara) bhitare (madhye) brahmajñāna ୧ । ବହୁ ଲୋକଙ୍କ ଗଣ୍ଡଗୋଳ ମଧ୍ୟରେ ଆଧ୍ୟାତ୍ମିକ ତତ୍ତ୍ୱ ବ୍ୟାଖ୍ୟା କରିବା ରୂପ ପଣ୍ଡଶ୍ରମ—An analogy applied to a cases where a person wants to preach metaphysics to the throng assembled at a fair.

হাটেরমাঝে ব্রহ্মজ্ঞান हाटकेभितरमे ब्रह्मज्ञान

[ବି—ହାଟରେ ନାନା ଦେଶରୁ ନାନା ଉଦ୍ଦେଶ୍ୟରେ ସମବେତ ବହୁ ଲୋକ ସମାଗମ ହେବାରୁ ମହା ଗଣ୍ଡଗୋଳ ହୁଏ । ସେଠାରେ ବ୍ରହ୍ମଜ୍ଞାନ ସମ୍ବନ୍ଧରେ ବା ଆଧ୍ୟାତ୍ମିକତତ୍ତ୍ୱ ବିଷୟରେ ବକ୍ତୃତା ବା ଉପଦେଶ ଦେଲେ ତାହା ଲୋକେ ଏ ହଟ୍ଟଗୋଳରେ ସ୍ଥିର ହୋଇ ଶୁଣି ପାରନ୍ତି ନାହିଁ । ଏପରି ଅବସ୍ଥାରେ ହାଟମଧ୍ୟରେ ବ୍ରହ୍ମଜ୍ଞାନ ଉପଦେଶ ଦେବାର ପ୍ରୟାସ ବୃଥା ମାତ୍ର ।] ୨ । ପ୍ରକାଶ୍ୟ ଭାବରେ ବହୁଲୋକଙ୍କ ଉପସ୍ଥିତିରେ କୌଣସି ଗୁପ୍ତ ରହସ୍ୟ ପ୍ରକାଶ କରିବା ସ୍ଥଳେ ପ୍ରଯୋଜ୍ୟ ପ୍ରବଚନ—2. An analogy used when a person speaks out any secret matter publicly.

ହାଟରିବା—ପ୍ରାଦେ, (ଗାଟଣା) କ୍ରି—ହୁଙ୍କାର ଶବ୍ଦ କରିବା— Hāṭarabā To utter a loud shout.

ହାଟ ରୁ(ରୋ)ଷମ—ଦେ. ବି—(ସ. ହଟ୍ଟ ଓ ଆ. ରୁସୁମ୍)—୧। ହାଟପଣି Hāṭa ru(ro)shama (ଦେଖ)—Hāṭapaṇi (See) ୨ । ହାଟଜମା (ଦେଖ)—2. Hāṭajamā (See) ୩ । ହାଟର ଇଜାରାଦାର ବା ଇଜରଦାରଙ୍କ ନିର୍ଦ୍ଦିଷ୍ଟ ଜମା ଛଡ଼ା ଜମିଦାରଙ୍କୁ ଦେବା ସଲାମି ବା ଭେଟି—3. Perquisite or present made to a zamindar by a lessee of a market over and above the fixed rent.

হাটতোলা हाटहसम

ହାଟରେ ପକା(କେ)ଇବା—ଦେ. କ୍ରି—୧ । ବଡ଼ହେଇ ପାଟକ କରିବା; Hāṭare pakā (ke) ibā ଜାତିଗଣ ସମ୍ବନ୍ଧରେ ବା ଗ୍ରାମ୍ୟ ବା ସ୍ଥାନୀୟ ପଞ୍ଚାୟତଙ୍କ ଦ୍ୱାରା ଅମୀମାଂସିତ ବିଷୟର ଅପକ୍ଷପାତ ଓ ସର୍ବବାଦୀସମ୍ମତ ମୀମାଂସାପାଇଁ ତାହା ହାଟରେ ସମବେତ ନାନା ଅଞ୍ଚଳରୁ ଆଗତ ନାନା ଜାତିର ବ୍ୟକ୍ତିମାନଙ୍କ ନିକଟରେ ମୀମାଂସାର୍ଥ ଉପସ୍ଥାପିତ କରିବା—1. To lay a difficult social question for decision before the people assembled at a market. ୩ । (ଲକ୍ଷଣାର୍ଥ) କୌଣସି ଗୁପ୍ତ ବିଷୟକୁ ସର୍ବସାଧାରଣରେ ଉଚ୍ଚୈଃସ୍ୱରରେ ପ୍ରକାଶ କରିବା; ପ୍ରଚାର କରିବା— 3. (figurative) To publish aloud any secret.

হাটেফেলা हाटमेदेना

ହାଟରେ ପଡ଼ିବା—ଦେ. କ୍ରି—୧ । ( କୌଣସି ଜଟିଳ) ବଡ଼ହେଇ Hāṭare paṛibā ପାଟକରେ ମୀମାଂସାର୍ଥ ଉପସ୍ଥାପିତ ହେବା—1. (a difficult social question) To be laid before the people assembled at a market for decision. ୨ । ଗୁପ୍ତ ବିଷୟ ସର୍ବସାଧାରଣରେ ପ୍ରକାଶିତ ବା ଘୋଷିତ ହେବା—2. To be published broad-cast.

হাটেপড়া हाटकोलायहोना

ହାଟରେ ପଡ଼ି ବାଟ(ଦାଣ୍ଡ)ରେ ଗଡ଼ଗଡ଼ା(ଡ଼େ)ଇବା—ଦେ· କ୍ରି Hāṭare paṛi bāṭa[dāṇḍa]re gaṛa gaṛā[ṛe]ibā (କୌଣସି ବିଷୟ) ଦେଶସାମାନ୍ୟ ସର୍ବଜ୍ଞ ଗୁପ୍ତ ହେବା—[any matter] To become an open secret or common knowledge throughout the land. ( ଯଥା— ଅମୁକ ବଡ଼ଲୋକଙ୍କ ଘରର କଥାମାନ ହାଟରେ ପଡ଼ି ବାଟରେ ଗଡ଼ୁଗଡ଼େଇଲଣି ।)

হাটেপড়েবাটেযাওয়া फैलजाना

ହାଟ ଲାଗିବା—ଦେ·ବି—୧ । ହାଟରେ କ୍ରୟ ବିକ୍ରୟ କାର୍ଯ୍ୟ ଚାଲୁଥିବା— Hāṭa lāgibā 1. The conduct of the transactions

in a market. ୨। ହାଟ ଲାଗିବା; କୌଣସି ବିଷୟ ଦେଶ ତମାମ ପ୍ରସ୍ଥ ହେବା—2. The publication of any matter; a matter being made public ୩। (ଲକ୍ଷଣାର୍ଥ) ହାଟର କାମ ଚାଲିବା ପରି ସଂସାର ଚାଲିବା—3.(figurative) The going on of the world (which is compared to a fair).

ହାଟ ହୋଇଯିବା—ଦେ. କ୍ରି—ସର୍ବତ୍ର ପ୍ରଚାରିତ ହେବା—Hāṭa hoi jibā To be published broadcast· বটেযাওযা फैलजाना (ଉ—ସେହି ଦିନ ମଧ୍ୟରେ ଦେଶସାରା ହାଟ ହୋଇଗଲା, ଧୂଳିଆ ବାବାଙ୍କ ପ୍ରଭୁଙ୍କର ସ୍ୱପ୍ନ ହୋଇଛି—ଫକୀରମୋହନ ଗଳ୍ପସ୍ୱଳ୍ପ।)

ହାଟୁଆ—ଦେ. ବିଣ—ହାଟସମ୍ବନ୍ଧୀୟ—Relating to a market. Hatua ବି. ପୁଂ—୧। ଯେଉଁ ବ୍ୟକ୍ତି ପଣ୍ୟଦ୍ରବ୍ୟ ବିକ୍ରୟ [ ହାଟେ(ଟୋ)ଇ—ସ୍ତ୍ରୀ ] କରିବାକୁ ହାଟକୁ ଆଣେ—হাটুআ; হেটো हटवया, हटवार, हटुवा 1. A person who brings commodities to a market for sale; a stall-holder in a market. (ଉ—ହାଟରେ ହାଟୁଆ କେତେ ବସନ୍ତି—ପ୍ରାଚୀ. ଘରଚେଙ୍ଗୀଳା।) ୨। ଯେଉଁ ବ୍ୟକ୍ତି ସଉଦା କିଣିବା ପାଇଁ ହାଟକୁ ଆସନ୍ତି—2. A person who visits a market for marketing. ୩। ହାଟୁଆକୁଳ (ଦେଖ)—3. Hāṭuā kula [See] ପ୍ରାଦେ [ଗଞ୍ଜାମ] ବି—୧। ଘଡ଼ି; ସାନ କଳସୀ (ଗୋପୀନାଥ ନନ୍ଦ)—1. A small pitcher. ୨। ମୃତ୍ପାତ୍ରବିଶେଷ (ଗୋପୀନାଥ ନନ୍ଦ) ସାନ ଅଟିକା—2. A sort of small earthen pot.

ହାଟୁଆ କୁଳ [ଜାତି, ପାଟକ]—ଦେ. ବି.—ଓଡ଼ିଶାର କେତେକ ଶୂଦ୍ର Hāṭuā kula[jāti, pāṭaka] ଜାତି, (ଯେଉଁ হেটো জাত बनिया जाति ମାନଙ୍କର କୁଳସ୍ତ୍ରୀମାନେ ପଣ୍ୟବିକ୍ରୟାର୍ଥ ହାଟକୁ ବା ଦାଣ୍ଡକୁ ବାହାରନ୍ତି)—Certain castes of Śūdras in Orissa whose females come out to the public and to the market to sell articles. [ଦ୍ର—ପାଟକ ଶବ୍ଦେ ଟୀକା ଦେଖ। ଏମାନଙ୍କର ସଂଖ୍ୟା ୩୬ ଥିବାରୁ ଏମାନଙ୍କୁ ଛତିଶି ପାଟକ ବୋଲାଯାଏ। ଏମାନଙ୍କୁ 'ହେଁସକାନିଆ ଜାତି' ମଧ୍ୟ ବୋଲାଯାଏ। ଏମାନଙ୍କ ମଧ୍ୟରେ ସାମାଜିକ ନିୟମ ଖୁବ୍ କଡ଼ା। ଏମନ୍ତ କି, ଏମାନଙ୍କୁ କୌଣସି ଅସ୍ପୃଶ୍ୟ ବ୍ୟକ୍ତି ଛୁଇଁ ଦେଲେ ଏମାନେ ସମାଜରେ ପତିତ ହୁଅନ୍ତି। ଏମାନଙ୍କର ଜାତିଅଣ ସଭାରେ ସାମାନ୍ୟ ସାମାନ୍ୟ ସାମାଜିକ ଦୋଷ ପାଇଁ ମଧ୍ୟ ଗୁରୁ ଦଣ୍ଡ ଦିଆଯାଏ। ଏ ହାଟୁଆଜାତିଙ୍କ ପ୍ରତ୍ୟେକଙ୍କର ଗୋଟିଏ ଲେଖାଏଁ ସାମାଜିକ ଧାଣ୍ଡି (ପଣ୍ଡା) ଅଛି।]

ହାଟୁଆ ଭଣ୍ଡାରି—ଦେ. ବି—ଚମମୁଣ୍ଡିଆଙ୍କଠାରୁ ନିକୃଷ୍ଟ ଶ୍ରେଣୀର ଭଣ୍ଡାରି Hāṭuā bhaṇḍāri —An inferior caste of barbers. [ଦ୍ର—ଏମାନେ ଶୂଦ୍ର ଅଟନ୍ତି କଳାର ମୁଠିରେ ରଖନ୍ତି। ଏମାନଙ୍କର ଅନ୍ୟ ନାମ 'କଳାମୁଠିଆ ଭଣ୍ଡାରି'।]

ହାଟୁଆରି—ଦେ. ବି—୧। ହାଟୁଆ ଜାତି ବାସ କରୁଥିବା ଗ୍ରାମ—Hāṭuāri 1 A village inhabited by Hāṭuā castes. হাটুবা, হাটুবিযা, হাটুবে बनियाकागाँव ୨। ହାଟୁଆ କୁଳ (ଦେଖ)—2. Hāṭuā kula [See] ବିଣ—୧। ହାଟୁଆ କୁଳ ସମ୍ବନ୍ଧୀୟ—1. Relating to the Hāṭuā castes. ୨। ହାଟସମ୍ବନ୍ଧୀୟ—2. Relating to market ୩। ହାଟକୁ ଲୋକ ଓ ପଣ୍ୟଦ୍ରବ୍ୟ ବହନକାରୀ (ଡଙ୍ଗା, ଗାଡ଼ି ଆଦି)—3. (boat or vehicle) Conveying or carrying people or things to and from a fair.

ହାଟୁଆରି ଡଙ୍ଗା—ଦେ. ବି—ଯେଉଁ ଡଙ୍ଗାରେ ହାଟକୁ ଯାଉଥିବା Hāṭuāri ḍaṅgā ଲୋକଙ୍କୁ ଓ ହାଟକୁ ନିଆ ଯାଉଥିବା হাটুবে নৌকা हाटकी नाव ପଣ୍ୟମାନଙ୍କୁ ବାଟରେ ପଡ଼ିବା ନଦୀରେ ପାରି କରାଯାଏ—A boat which ferries market-going persons or commodities across a river which lies on the road.

ହାଟୁଆଳ—ଦେ: ବି—ହାଟଦଣ୍ଡିଆ (ଦେଖ)—Hāṭuāḷa Hāṭadaṇḍiā (See).

ହାଟୁପାଟୁ ହେବା—ଦେ. କ୍ରି—ଅନ୍ଟୁପାଟୁ ହେବା; ଷୁଧାରେ ଓ ତୃଷ୍ଣାରେ ଅତି ଅଧୀର ଓ ମ୍ରିୟମାଣ ହୋଇ ଧାଇଁ ଆটুপাটু হওয়া लाचारतू होना ପାଲୁ ପାଲୁ କରିବା—To be dying with hunger and thirst.

ହାଡ—ଦେ. ବି (ସଂ. ହଡ୍ଡ)—୧। ଅସ୍ଥି—1. Bone. [ଦ୍ର—ଏହି Harḍa ଦେହମଧ୍ୟସ୍ଥ ଦୃଢ଼ତମ ଉପାଦାନ ଅଟେ। ହାଡ଼କୁ হাড় हड्डी, हाड़ ମାଂସ ବେଢ଼ିଥାଏ। ଶରୀରର ଭିନ୍ନ ଭିନ୍ନ ସ୍ଥାନର ବା ଅଂଶର ନାମ ଅନୁସାରେ ହାଡ଼ର ଭିନ୍ନ ଭିନ୍ନ ନାମ ଦିଆଯାଏ। ଯଥା—ମେରୁ ହାଡ଼, ବେଏଁଶିରି ହାଡ଼, ପଞ୍ଜରା ହାଡ, କଣ୍ଠ ହାଡ଼, ଜଙ୍ଘ ହାଡ଼, ଠେଙ୍ଗୁ ହାଡ, ଖପୁରି ହାଡ଼, ଚକ ହାଡ଼ ଇତ୍ୟାଦି।

ଜଗନ୍ନାଥ ସିଂହଙ୍କ ପ୍ରାଚୀନ ଉତ୍କଳ ଗ୍ରନ୍ଥରେ ନିମ୍ନଲିଖିତ ହାଡ଼ମାନଙ୍କର ନାମ ଉଲ୍ଲେଖ ଅଛି। ଯଥା—ଅଖା ହାଡ଼, ଇନ୍ଦ୍ର ହାଡ଼, ଗୁନ୍ଦ ହାଡ଼, ବକ ହାଡ଼, ଗୁଭରି ହାଡ଼, ମାଣିକ୍ୟ ହାଡ଼, ଖଞ୍ଜଣୀ ହାଡ଼, ବିହୁଙ୍ଘ ହାଡ଼।

କ୍ଷୁଦ୍ର କ୍ଷୁଦ୍ର ଜୀବ (ଯଥା—ମାଛ, କଇଁ ଭେଣ୍ଡକ ବା ତୁଟବତ୍ ସରୁ ହାଡ଼କୁ କଣ୍ଟା ବୋଲାଯାଏ (ଯଥା—

ମାଛ କଣ୍ଟା, ସାପ କଣ୍ଟା ) । ପ୍ରାଣୀଙ୍କ ଦେହର ହାଡ଼ମାନ ଖଣ୍ଡ ଖଣ୍ଡ ଅଟେ, ମାଂସ ଏମାନ ପେଶି ଦ୍ୱାରା ଏକକ ଗ୍ରଥିତ ହୋଇଥାଏ ।] ୨ । (ଲକ୍ଷଣାର୍ଥ) ମନୁଷ୍ୟର ମନ ବା ହୃଦୟ—2. ( figurative ) Heart or mind. (ଯଥା—ଏ କଥା ଶୁଣି ମୋ ହାଡ ଜଳିଗଲା ।)

ହାଡ଼ କଙ୍କାଳ—ଦେ. ବ (ସ. ହଡ୍ଡ ଓ କଙ୍କାଳ)—ମାଂସହୀନ ଅସ୍ଥିମାତ୍ର-
Hārda kaṅkāla Skeleton; bone shorn of
হাডকাঁকাল अस्थिकंकाल flesh.

ହାଡ଼ କଙ୍କାଳ ମାଳ(ଳା)—ଦେ.ବିଶ—ଦୁର୍ବଳ ବା ଅନଶନକ୍ଲିଷ୍ଟ; ଯେଉଁ
Hārda kaṅkāla māḷa(ḷā) ବ୍ୟକ୍ତିର ଦେହରେ ଅସ୍ଥି ମାତ୍ର
হাডকাঙ্কালের মালা ଅବଶିଷ୍ଟ ଥାଏ—1. ( a person )
अस्थि कंकाल मात्र, हडावल Reduced to skeleton; ( a person ) having nothing but skeleton left. ବି—ଅସ୍ଥିକଙ୍କାଳବତ୍ ମାଂସ—ହୀନ ଅସ୍ଥିମାନଙ୍କ ଥାଟ - Skeleton

ହାଡ଼କଞ୍ଚି—ଦେ. ବି—ହାଲୁଚ କଣ୍ଟା ଗୁଳ୍ମ—
Hārdakañchi Acanthus Illicifolius (plant).

ହାଡ଼କଟା—ଦେ. ବି—୧ । ହାଡ ଓ ଶିଂଘ ଆଦି କାଟି ନାନାପ୍ରକାର
Hārdakaṭā ବ୍ୟବହାର୍ଯ୍ୟ ବସ୍ତୁ ( ଯଥା—ବାଇ, ଛୁରି-
হাডকাটা हाड़कटा ବେଣ୍ଟ, କଠାଉ ଚୁଳ, ପଣାକାଠି ଆଦି ତିଆରି କରିବା ଶୁଦ୍ର ଜାତି— 1. Bone-cutter; a caste of Śūdras who work on bones and horns. ୨ । କଂସାଇ—2. Butcher.

ହାଡ଼ କଡ କଡ ହେବା [ଡାକିବା] —ଦେ. ବି—ହାଡ ଜଳିବା (ଦେଖ)
Hārda karda karda hebā [ḍākibā] Hārda
(ହାଡ଼ କଡକଡିବା—ଅନ୍ୟରୂପ) jaḷibā [See].

ହାଡ଼ କଣ୍ଟା ରହିବା [ ଦୋହ(ହୋ)ଲିବା ]—ଦେ. ବି. [ସ. ହଡ୍ଡ ଓ
Hārda kaṇṭā rahibā [ doha[ho]libā] କଣ୍ଟକ]—
হাড় কাঁটা থাকা अस्थिमात्र ରୋଗ ବା ବାର୍ଦ୍ଧକ୍ୟ
[ହାଡ କଣ୍ଟା ହେବା—କ୍ରିୟାରୂପ] ଯୋଗୁଁ ଲୋକର ଅସ୍ଥି-କଙ୍କାଳ ମାତ୍ର ର ବା—Being reduced to skeleton owing to disease or old age.

ହାଡ଼କାଠ—ଦେ. ବି—ହାଲୁଚ କଣ୍ଟା ଗୁଳ୍ମ—Acanthus Illici-
Hārda kāṭha folius (plant).

ହାଡ଼କୁ ମାଟିରେ ମିଶା(ଶେ)ଇବା —ଦେ. କ୍ରି—ଅତିରିକ୍ତ ପରିଶ୍ରମ ବା
Hārdaku māṭire misā(se)iba ଶ୍ରମସାଧ୍ୟ କାର୍ଯ୍ୟ କରିବା
হাড় মাটিকরা —To perform works of excessive
हाड़को मिट्टी करना labour.

ହାଡ଼ ଖସିବା (ଖସ୍ଯିବା)—ଦେ. ବି—(ଅଘାତାଦ ଦ୍ୱାରା) ଅସ୍ଥି
Hārda khasibā(khasijiba) ସ୍ୱସ୍ଥାନ ଚ୍ୟୁତ ହେବା—
হাড় খসেযাওয়া Dislocation of a bone.
हाड उखड़जाना

ହାଡ଼(ଡ଼ି)ଗ(ଗା)ଡ଼ିଆ—ଦେ. ବି—ଗ୍ରାମର ମଲା ଗୋରୁ ଯେଉଁ ଖାଇରେ
Harda(rdi)ga(gā)rdiā ପକାଯାନ୍ତି—The pit into which
হাডভাগাড় the carcases of dead cattle of a
पशुओंकीमृतघटी village are thrown.

ହାଡ଼ଗଣ୍ଠି—(ଯୋଡ଼) ଦେ.ବି—(ସଂ. ହଡ୍ଡ ଗ୍ରନ୍ଥି) ଓ ଦୁଇଟି ହାଡ଼ର
Hārda ganṭhi (jorda) ଯୁକ୍ତ ହୋଇଥିବା ସ୍ଥାନ ବା ଗ୍ରନ୍ଥି—
হাড়ের গাইঠ हड्डिकीगाँठ Bone joint.

ହାଡ଼ଗିଲା - ଦେ ବି—ଏକ ପ୍ରକାର ଜଳଚର ପକ୍ଷୀ —A species
Hārda gilā of wading birds; the adjutant
হাডগিলা crane, the gigantic crane; Leptoptilus
हाडगिला Dubius. [ବି—ଏମାନେ ଦେଖିବାକୁ ବଗପରି, କିନ୍ତୁ ଉଚ୍ଚରେ ୩ଫୁଟ ପର୍ଯ୍ୟନ୍ତ ହୁଅନ୍ତି । ଏମାନଙ୍କ ମୁଣ୍ଡରେ ପର ନାହିଁ; ଥଣ୍ଟ ବଡ଼ ଓ ସ୍ଥୂଳ । ଏମାନଙ୍କ ଗଳାରେ ଗୋଟିଏ ଚମର ଥଳି ଝୁଲୁଥାଏ । ଏମାନଙ୍କର ପକ୍ଷୀ ଓ ଲାଞ୍ଜ କଳାମିଶା ଶାଗୁଆ; ଲାଞ୍ଜ ଅତି ଛୋଟ ବା ଅଣ୍ଟା; ପେଟ ଓ ଛାତି ଧଳା । ଏମାନେ ବର୍ଷା, ଶରତ୍ ଓ ଶୀତ-କାଳରେ ବିଲରେ ବୁଲି ସାପ, ମାଛ, ବେଙ୍ଗ ଓ ଗେଣ୍ଡା ଖାଆନ୍ତି । ଏମାନେ ମାଂସାଶୀ । ଏମାନେ ସାପକୁ ମାରି ଖାଆନ୍ତି ।]

ହାଡ଼ଗୁଣ୍ଡା—ଦେ. ବି—ଅସ୍ଥିଚୂର୍ଣ୍ଣ, ଭୂମିରେ ସାର ଦିଆଯିବା ପାଇଁ ଗୁଣ୍ଡା
Hārda gundā କରି ଯାଇଥିବା ହାଡ—Bone meal
হাডগুঁড়ো हड्डिकी बुकनी used as manure.

ହାଡ଼ ଗୁଣ୍ଡା କରିବା—ଦେ. କ୍ରି—୧ । ହାଡ଼କୁ ଛେଚି ବା ପେଷି ଚୂନା
Hārda gundā karibā କରିବା—1. To make
হাড় গুঁড়াকরা bone into powder. ୨। (ଲକ୍ଷଣାର୍ଥ) ଅତ୍ୟନ୍ତ
हड्डिबुकना ପ୍ରହାର କରିବା—2. To beat excessively.

ହାଡ଼ ଗୋଡ—ଦେ. ବି—(ସବୁରର ଶବ୍ଦ)—୧ । ଦେହର ଅସ୍ଥିମାନ —
Hārda gorda 1. The bones of the body. ୨ ।
হাড়গোড় ହାତ ଗୋଡ—2. The hands and the legs.
हड्डि ୩ । ହାଡ ଓ ଗୋଡ—3. Bone and leg.

ହାଡ଼ଗୋଡ଼ ଚୂନାକରିବା - ଦେ. କ୍ରି—ପ୍ରହାର ଦ୍ୱାରା ଦେହର ଓ
Hārda gorda Chūnā karibā ଗୋଡର ହାଡ଼ମାନଙ୍କୁ
(ହାଡ଼ ଗୋଡ଼ ଭାଙ୍ଗିବା—ଅନ୍ୟରୂପ) ଭାଙ୍ଗିଦେବା; ଅତ୍ୟନ୍ତ
হাড়গোড়চুনাকরা, হাডগোড় ভাঙ্গা ପ୍ରହାର ଦେବା—To
हड्डीतोड़ना beat a person so as to break his bone and legs.

ହାଡ଼ ଚମ—ଦେ. ବି—(ସ. ହଡ୍ଡ+ଚର୍ମ)—୧ । ଅସ୍ଥି ଓ ଚର୍ମ—
Hārda chama 1. Bone and skin. ୨ । (ରୋଗୀ ବା
হাড়চামড়া ବୃଦ୍ଧ ବା ଅନାହାରକ୍ଲିଷ୍ଟ ବ୍ୟକ୍ତିର) ମାଂସ ନ ଥିବା
हड्डीचमडा ଚର୍ମବେଷ୍ଟିତ କଙ୍କାଳ—2. Bone without flesh; skeleton covered by the skin of famished or very old persons.

ହାଡ ଚଡ଼ା—ଦେ. ବିଣ. ପୁଂ—ହାଡଜଳା (ଦେଖ)—
Hārda chirdā Hārda jalā (See).
[ହାଡ ଚିଡ଼ା(ଡ଼ି)ଈ—ସ୍ତ୍ରୀ]

ହାଡ଼ ଚଡ଼ା(ଡ଼ି)ଇବା—ଦେ. କ୍ରି—ହାଡ ଜଳାଇବା (ଦେଖ)
Hārda chirda(rde)ibā Hārda jalāibā (See)

ହାଡ ଜଳା—ଦେ. ବିଣ (ସ. ହଡ୍ଡ ଓ ଜ୍ୱଲ ଧାତୁ)—୧ । ଯେଉଁ
Hārda jalā କଥାଦ୍ୱାରା ମନୁଷ୍ୟର ହାଡ ଜଳେ; ଅତ୍ୟନ୍ତ
हाडजला ବିରକ୍ତିଉତ୍ପାଦକ(ବାକ୍ୟ)—1. (any word) Which
देहजलानेवाला produces much annoyance. ୨ । ପୁଂ.
[ହାଡ ଜଳେଇ—ସ୍ତ୍ରୀ] ଅତ୍ୟନ୍ତ ବିରକ୍ତିକାରୀ (ବ୍ୟକ୍ତି)—2. Much
हाडजलानिया देहयलानेवाला annoying (person).

ହାଡ ଜଳା(ଳେ)ଇବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ଅତ୍ୟନ୍ତ ବିରକ୍ତ
Hārda jalā (le) ibā ବା କ୍ରୁଦ୍ଧ କରାଇବା—To enrage
हाड़जलाना or annoy a person.
देहजलाना

ହାଡ ଜଳିବା—ଦେ. କ୍ରି—ଅତ୍ୟନ୍ତ ବିରକ୍ତ ଓ କ୍ରୁଦ୍ଧ ହେବା—
Hārda jalibā Being much enraged or annoyed
[ହାଡ ଜଳିଯିବା—ଅନ୍ୟରୂପ] [ଦ୍ର—କ୍ରୋଧାଗ୍ନି ଦ୍ୱାରା ଦେହର
'ହାଡ଼ ସୁଦ୍ଧା ଜଳ ଉଠିବା କାଳ୍ପନିକ ଅତ୍ୟୁକ୍ତି ଅଟେ]
हाडजला देहजलना

ହାଡ ଯୋଡ଼ିଦେବା(ଯୋଡ଼ିବା)—ଦେ. କ୍ରି—ଭଗ୍ନ ଯାଇଥିବା ଅସ୍ଥି-
Hārda jordidebā(jordibā) ଖଣ୍ଡମାନଙ୍କୁ ବସାଇବା—
हाड जोडा To cause broken bones to be joined
हड्डी जोड़ देना together; to set fractured or dislocated bones.

ହାଡ଼ ପଚା(ଚେ)ଇବା—ଦେ. କ୍ରି (ଲକ୍ଷଣାର୍ଥ)—ଏମନ୍ତ ଅତିରିକ୍ତ ପ୍ରହାର
Hārda pachā(che)ibā ଦେବା, ଯଦ୍ଦ୍ୱାରା ହାଡ଼ ସୁଦ୍ଧା
हाड व्यथा करे देओया ଦରଜ ଓ ବେଦନାଯୁକ୍ତ ହୋଇଯାଏ—
हड्डी पचाना (figurative) To beat excessively
(so as to produce pain in the bones).

ହାଡ଼(ଡ଼ି) ପଡ଼ିଆ—ଦେ. ବି—ଗ୍ରାମର ଯେଉଁ ଗଡ଼ିଆରେ ମଲା ଗୋରୁ-
Hārda(rdi) pardiā ମାନଙ୍କୁ ପକାଇ ଦିଅନ୍ତି—The field
हाड़ भागाड़ in a village into which dead cattle
माल मृदुघटि are thrown.

ହାଡ଼ ଫୁଟି—ଦେ. ବି—୧ । ଏକପ୍ରକାର ବିସ୍ଫୋଟକ ବା କ୍ଷୁଦ୍ର ବସନ୍ତ
Hārda phuti ରୋଗ—1. Chicken pox; a mild
पानि बसन्त variety of small pox; Varicella;
कोदवा horn pox.
[ଦ୍ର—ଏହା ବସନ୍ତ ରୋଗ ପରି ଭୟଙ୍କର ଓ ମାରାତ୍ମକ
ନୁହେଁ । ଏଥିରେ ଦେହରେ ଜଳପୂର୍ଣ୍ଣ ବିସ୍ଫୋଟକମାନ ବାହାରି
ତାଙ୍କ ଦିନ ମଧ୍ୟରେ ମିଳାଇ ଯାଏ । ଏହା ଆକ୍ରମଣ କରିବା
ପୂର୍ବରୁ ଜ୍ୱର ହୁଏ ଓ ଏଥିରେ ମନୁଷ୍ୟର ଦେହ ମଧ୍ୟରେ
ଖୁବ୍ ପୀଡ଼ା ହୁଏ ଓ ଦେହର ହାଡ଼ମାନ ଗୁଳେଇ ହେଲ
ପରି ଜଣାଯାଏ । ଏଥିପାଇଁ ଏହାର ନାମ ହାଡ଼ଫୁଟି
ହୋଇଅଛି ।] ପ୍ରାଦେ. (ବାଲେଶ୍ୱର) ୧—ହାଡ଼ ଭଙ୍ଗା
(ଦେଖ)—Hārda bhangā (See)

ହାଡ ବା(ବେ)ଇ—ଦେ. ବି. ସ୍ତ୍ରୀ (ସ. ହଡ୍ ମାଳଙ୍କ)—୧ । ଯୋଗିନୀ-
Hārda bā(be)i ବିଶେଷ; (ଅତି ଦୁଷ୍ଟା) ଠାକୁରାଣୀ ବା ଗ୍ରାମ-
हाडबाई ଦେବୀବିଶେଷ—1. Name of a popular
ग्रामकी देवी Goddess (alleged to have wicked
propensities) [ଦ୍ର—ଏ ଅପଦେବତା ବା ଭୂତଯୋନି-
ବିଶେଷ । ଏହାଙ୍କର କୌଣସି ବାଞ୍ଛାଠାରେ ଆବେଶ
ହେଲେ, କମ୍ବା କୌଣସି ବ୍ୟକ୍ତିର ଗୃହରେ ଏହାଙ୍କର
ଆବେଶ ହେଲେ, ସେ ବ୍ୟକ୍ତି ଉପରେ କମ୍ବା ସେ ଘରର
ନାନାବିଧ ଅଦ୍ଭୁତଜନକ ଦୈବୀ ଘଟଣା ବା ନୈସର୍ଗିକ
କାଣ୍ଡମାନ ସଙ୍ଘଟିତ ହୁଏ । ଯଥା—ଘର ମଧ୍ୟରେ କେହି
ନାହିଁ, ହଠାତ୍ ଢେଲା, ମଳମୂତ୍ର, ଖପରା, ଡାଲି ଆଦି ଆସି
ପଡ଼େ । ଯେତେ ସାବଧାନ ହେଲେ ମଧ୍ୟ ସେମାନ ସ୍ଥାନ୍ୟରୁ
ଆସି ଏପରି ଭାବରେ ପଡ଼େ ଯେ, କେଉଁଠାରୁ ଆସିଲା
ତାହା ସହଜରେ ଜାଣି ହୁଏ ନାହିଁ । ଖାଇବାପାଇଁ ପ୍ରସ୍ତୁତ
ଦ୍ରବ୍ୟ ମଧ୍ୟରେ ଏବଂ ରନ୍ଧନ ପାତ୍ର ମଧ୍ୟରେ ମଧ୍ୟ ବିଷ୍ଠା
ମିଶିଯିବା ବା ଚୋରା ହେବା ଦେଖାଯାଏ । ତାଙ୍କୁଣି
ଘୋଡ଼ାଇ ରଖିଲେ ମଧ୍ୟ ଧାନ ଉଡ଼ନ୍ତୁ ଚାଲି ବାହାରେ ।
ଏହିପରି ଯେଉଁ ଘରେ ହାଡ଼ବାଈ ପ୍ରବେଶ କରନ୍ତି ସେ,
ଘରର ଅଧିବାସୀମାନଙ୍କୁ ଅତ୍ୟନ୍ତ ନିର୍ଯ୍ୟାତନ ସହିବାକୁ ପଡ଼େ ।
ଲୋକଙ୍କର ବିଶ୍ୱାସ ଯେ, ଗୁଣିଆମାନେ ମନ୍ତ୍ରବଳ ବଳରେ
ଏ ଦେବୀଙ୍କୁ କୌଣସି ବ୍ୟକ୍ତିଙ୍କ ଘରକୁ ପେଶନ୍ତି ଏବଂ ମନ୍ତ୍ର
ପ୍ରଭାବରେ ମଧ୍ୟ ଦେବୀଙ୍କୁ ପ୍ରତ୍ୟାହାର କରନ୍ତି ।

କଟକ ନଗରର ଭୁଆକୋଷ ଲେନ୍ ନିକଟସ୍ଥ ଶ୍ୟାମା
ମୋହନ ସେନ୍ ଘରରେ ୧୯୨୯ ମାର୍ଚ୍ଚ-ଏପ୍ରେଲ ମାସରେ
ଏପରି ଘଟନା ଘଟିଥିବା ଏ ଗ୍ରନ୍ଥକାର ସ୍ୱଚକ୍ଷୁରେ ଦେଖିଛି
ଏପରି କି, ଅକ୍ରାନ୍ତ ପରିବାରର ବ୍ୟକ୍ତିମାନେ
ଅନ୍ୟ ଲୋକଙ୍କ ଘରକୁ ନିମନ୍ତ୍ରିତ ହୋଇ ଖାଇବାକୁ ଗଲେ
ସୁଦ୍ଧା ସେଠାରେ ସେମାନଙ୍କ ଖାଇବା ପତ୍ରରେ ବିଷ୍ଠା
ପଡ଼ିବା ଦେଖାଗଲା । ଅନ୍ୟ ଲୋକ ସେ ସ୍ଥାନକୁ ଆସି
ହାଡ଼ବାଈ ଦେବୀଙ୍କୁ ନିନ୍ଦା କଲେ ତାହା ଉପରେ ମଧ୍ୟ
ଢେଲା, ବିଷ୍ଠା ଆଦି ଆକସ୍ମିକ ଭାବରେ ପଡ଼ିବା ଦେଖା
ହୋଇଥିଲା । କେତେ ମାସ ପରେ ଜଣେ ଗୁଣିଆ ଆସି
ତାନ୍ତ୍ରିକ କର୍ମ ଅନୁଷ୍ଠାନ କରିବାରୁ ଏ ନିର୍ଯ୍ୟାତନ ବନ୍ଦ
ହେଲା ।] ୨ । ହାଡ଼ଫୁଟି ରୋଗର ଅଧିଷ୍ଠାତ୍ରୀ ଦେବୀ—
2. The Goddess presiding over chicken
pox. [ଦ୍ର—ରୁପାଇ ହାଡ଼ବାଈ, କଣ୍ଠାଇ ମହାମାରୀ,
କମାଇ ଅନନ୍ତାଇ ପଟୋଲୀ ପଦ୍ମାଇ । ଶୀତଳାମଙ୍ଗଳ-
ନୃସିଂହପୁରାଣ ।]

(ତାଙ୍କୁ) ହାଡ଼ବାଈ ଲାଗିବା—ଦେ. କ୍ରି—୧ । (ଲକ୍ଷଣାର୍ଥ) କ୍ରୋଧରେ
Hārdabāi lāgibā ଉନ୍ମତ୍ତବତ୍ କ୍ଷିପ୍ତ ହେବା—1. (figurative) Being maddened
घाड़े भूत चापा भूत लगना

with rage. ୬ । ହାଡଭାଈ ଠାକୁରାଣୀଙ୍କର କୌଣସି ବ୍ୟକ୍ତିଙ୍କ ଦେହରେ ବା ଗୃହରେ ଅବସ୍ଥ ହେବା—2. (a person or house) Being possessed by the spirit of the Goddess Hārdabāi.

ହାଡଭଙ୍ଗା—ଦେ· ବ ( ସ. ହଡ୍ଡ ଓ ଭଙ୍ଗ )—୧ । ଆଘାତ ଆଦ Hārda bhangā ଦ୍ୱାରା ଅସ୍ଥି ଭଗ୍ନ ହେବା— ହাড়ভাঙ্গা हड्डिटूटा 1. Breaking or rupture of bone; bone fracture. ୨ । ଚତୁଷ୍ଫଳର; ପଞ୍ଚକୋଣ; ଗୃହକୋଣିଆ ପଦ୍ମବଣିଷ୍ଟ ବନ୍ୟ ଲତାବିଶେଷ—2. Vitis Quadrangularis, Cissus Quadrangularis; Vitis Vinifera ( Kirtikar )

ସ. ଅସ୍ଥିଶୃଙ୍ଖଳା, ଅସ୍ଥିସଂହାରୀ, ବଜ୍ରବଲ୍ଲୀ, ଗ୍ରନ୍ଥିମାନ, ଅସ୍ଥିସଂହାର, হাডোচ. হাড ভাঙ্গা, হাড জোড়া, হাড জোড, হাড মোড়া; हड़सङ्घारी, हरजोरी(ड़), हरसंहारि, वज्रवल्ली, हरसङ्कर, हाडसंहारा ତେ. ନଲ୍ଲେଦ, ନଲ୍ଲେରୁ, ନଲ୍ଲେରୁ ତା. ପିରଣ୍ଡାଇ

[ ବ୍ର—ଏହାର ପତ୍ରମାନ ୬୮ ଅଙ୍ଗୁଳ ଓ ଚେପଟା ଗୃହକୋଣିଆ; ଖଣ୍ଡ ଖଣ୍ଡ ହୋଇ ଏକକ ଶିକୁଲା ପରି ଲାଗିଥାଏ । ପତ୍ରମାନଙ୍କର ଗୋଟିଏ ପାଖରେ ପତ୍ର ଓ ଅନ୍ୟ ପାଖରେ ଚେର ଲମ୍ବିଥାଏ । ଉକ୍ତ ଚେରମାନ ଅନ୍ୟ ଗଛ ଆଦିକୁ ଆକୁଡ଼ିଇ କରି ଧରେ । ଏହା ଭଙ୍ଗା ହାଡମାନଙ୍କର ମାଳ ପରି ଦେଖା ଦିବାରୁ ଏହାର ଏହି ନାମ ହୋଇଅଛି । ଏହାକୁ ବାଟି ବାନ୍ଧିଲେ ଭଙ୍ଗା ହାଡ ଯୋଡ଼ ହୁଏ । ବୈଦ୍ୟଶାସ୍ତ୍ର ଅନୁସାରେ ଏହା ବାତଶ୍ଳେଷ୍ମନାଶକ, ଭଗ୍ନ ଅସ୍ଥିର ସଂଯୋଜକ, ଉଷ୍ଣବୀର୍ଯ୍ୟ, ସାରକ, କୃମିଘ୍ନ, ଅର୍ଶୋନାଶକ, ନେତ୍ରରୋଗରେ ଉପକାରୀ, ରୁଚ୍ୟ, ସ୍ୱାଦୁ, ବଳକର, ପାଚକ ଓ ପିତ୍ତଜନକ । ଏହାର ତ୍ୱକ୍( ଛେଲି )ବର୍ଜିତ ଡାଳର ଚୂର୍ଣ୍ଣ ଓ ଚୁଣ ସହିତ ଶିମ୍ବ ଧାନ୍ୟକୁ ପେଷି ଘିଅ ତେଲରେ ପାକ କଲେ ତଦ୍ୱାରା ବାତ ରୋଗର ଉପଶମ ହୁଏ ।] ଦେ. ବିଣ—୧ । [ଅତ୍ୟୁକ୍ତି] ଯେଉଁ ପରିଶ୍ରମ ଦ୍ୱାରା ହାଡ଼ ଭଙ୍ଗିଯାଏ; ଅତ୍ୟଧିକ କାୟିକ [ପରିଶ୍ରମ]—1. Excessive and bone-breaking (labour). ୨ । ଅତ୍ୟନ୍ତ କଷ୍ଟୁର [ପ୍ରହାର]; ଯେଉଁ ପ୍ରହାର ଦ୍ୱାରା ହାଡ ଭଙ୍ଗିଯାଏ—2. Excessive or cruel (beating). ୩ । ଅତ୍ୟନ୍ତ ଶ୍ରମସାଧ୍ୟ; ଯେଉଁ କାର୍ଯ୍ୟ କରିବାକୁ ଅତିରିକ୍ତ ପରିଶ୍ରମ କରିବାକୁ ପଡ଼େ—3. ( work ) Involving excessive bodily exertion. ୪ । [ଲକ୍ଷଣାର୍ଥ] ମର୍ମଭେଦୀ (ବାକ୍ୟ)—4. (figurative) Cutting (words); cutting to the quick. ପ୍ରାଦେ [ ବାଲେଶ୍ୱର ] ବି—ଏକଜାତୀୟ ପୋକ—A species of insect. [ ବ୍ର—ଏମାନେ ଖାକୁଆ ବର୍ଣ୍ଣ ବିସ୍ମାକୃତ ପରି, ମାତ୍ର ଏମାନଙ୍କ ଦେହରେ ଲୋମ ନାହିଁ । ଏମାନେ ଶୀତଦିନରେ ଓ ନାଳଡଗରେ ବଂଶି ଦିଅନ୍ତି ।]

ହାଡଭଙ୍ଗା କଥା—ଦେ ବ (ଲକ୍ଷଣାର୍ଥ)—ମର୍ମଭେଦୀ ବାକ୍ୟ—Hārda bhangā kathā Cutting words; words which cut to the quick. হাড়ভাঙ্গাকথা देहजलनेवाला बात

ହାଡଭଙ୍ଗା ପରିଶ୍ରମ (ମିହନତ, ମେହନତ, ମେହେନତ)—ଦେ. ବ—Hārdabhangā parisrama (mihanta, mehanta, mehenata) ଅତ୍ୟନ୍ତ କାୟିକ ପରିଶ୍ରମ—Excessive bodily labour; (metaphorical) bone-breaking exertion. হাডভাঙ্গাপরিশ্রম जीतोड़परिश्रम

ହାଡଭଙ୍ଗା ପାହାର (ମାଡ)—ଦେ. ବ—ଅତି କଷ୍ଟୁର ପ୍ରହାର—Hārdabhangā pahāra (mārda) Excessive or very cruel beating. হাডভাঙ্গামার हाड़तोड़मारापाहार

ହାଡଭଙ୍ଗା ଶୀତ( ଜାଡ଼୍ଡି )—ଦେ. ବ—ମର୍ମଭେଦୀ ଶୀତ; ଅତ୍ୟନ୍ତ Hārdabhangā sita(jārda) କ୍ଲେଶଦାୟକ ଶୀତ. (ଯେଉଁ ଶୀତ ହାଡକୁ ମଧ୍ୟା ଭେଦ ଯାଏ ବା ଭଙ୍ଗି ପକାଏ)—Extreme or excessive chill; piercing cold. হাডভাঙ্গাশাত हाड़तोडनेवालाशीत

ହାଡ ଭଙ୍ଗିବା—ଦେ·କ୍ରି—୧ । ହାଡଗୋଡ ଚୂନା କରିବା (ଦେଖ)—Hārda bhāngibā 1. Hārda gorda chunā karibā (See) ୨ । ଅତିରିକ୍ତ ପରିଶ୍ରମ କରିବା—2. To do excessive labour. ଦେ· ବ—ଅଘାତାଦି ଦ୍ୱାରା ଅସ୍ଥିର ଭଙ୍ଗ—Bone fracture. হাড়ভাঙ্গা हाड़तोडना

ହାଡ଼ ମାଉଁସ—ଦେ. ବ (ସହଚର ଶବ୍ଦ)—ଅସ୍ଥି ଓ ମାଂସ—Hārda māunsa Bone and flesh. (ଯଥା—ତା ଦେହରେ ହାଡ ମାଉଁସ ହୋଇ ପାଞ୍ଚପଲ ହୁଏ ବ ନ ହୁଏ, ଅଥଚ ସେ ବୁଦ୍ଧିରେ ସଂସାରକୁ ଜଣୁଛି) হাডমাস हाड़मांस

ହାଡ ମାଳ—ଦେ. ବ (ସ. ହଡ୍ଡ ଓ ମାଳା)—୧ । ଅସ୍ଥିମାଳା; ଖଣ୍ଡଖଣ୍ଡ Hārda māla ଅସ୍ଥି ଦ୍ୱାରା ଗୁନ୍ଥା ହୋଇଥିବା ମାଳା (ଯାହା କାଳୀ ଠାକୁରାଣୀ ଗଳାରେ ଧାରଣ କରନ୍ତି—1. A necklace of bones strewn together. ୨ । ଅସ୍ଥିକଙ୍କାଳ ମାତ୍ର; ଅତି ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥା—2. State of being reduced to skeleton. ୩ । (ସ୍ୱର୍ଣ୍ଣହାର ପରିହିତ ଧନୀଙ୍କ ପ୍ରତି ଗରିବଲୋକଙ୍କ ବ୍ୟବହୃତ ବ୍ୟଙ୍ଗ)—ହାରମାଳ; ସୁନାର ହାର—3. (ironical pronunciation) Gold necklace. হাড়মালা हाड़माला

ହାଡ଼ ରସ (ସା)—ଦେ. ବ—(ସ· ହଡ୍ଡ ଓ ରସ)—୧ । ଅସ୍ଥି ମଧ୍ୟରେ Hārda rasa (sā) ଥିବା ମଜ୍ଜା ବା ତରଳ ବସ୍ତୁ—1. Bone-marrow. ୨ । (ଲକ୍ଷଣାର୍ଥ) ବହୁକାଳ ଜ୍ୱରଭୋଗ ଦ୍ୱାରା ଅକାଳ ରୋଗୀର ମୁମୂର୍ଷୁ ଅବସ୍ଥାରେ ଝାଡ଼ା ସଙ୍ଗେ ବହିର୍ଗତ ହେବା ପଚଜଳ ଘନ ରକ୍ତାଭ ଦୁର୍ଗନ୍ଧମୟ ରସ—2. (figurative) A pulpy pus-like and ver

offensive red ish matter evacuated by a person in the last stage of chronic dysentery. [ଦ୍ର—ଅତିସାର ରୋଗୀର ହାଡ଼ରସା ଗଳିଗଲେ ବା ହାଡ଼ରସା ବୋହିଗଲେ ଲୋକେ ତାହାର ଅନ୍ତ ମୃତ୍ୟୁକୁ ପ୍ରତୀକ୍ଷା କରନ୍ତି] ୩। ପ୍ରସବ ହେବା ପରେ ଗର୍ଭିଣୀଙ୍କ ପ୍ରଜନେନ୍ଦ୍ରିୟରୁ ୩୪ ଦିନ ପର୍ଯ୍ୟନ୍ତ ବୋହିବା ନାଲି ଧଳାର ସ୍ରାବ (ଛିଲୁଡ଼ ଭଞ୍ଜକିଶୋର. ପ୍ରସୂତି ଚର୍ଯ୍ୟା)—3. Lochia. [ଦ୍ର—କ୍ରମେ କ୍ରମେ ବର୍ଦ୍ଧ ସ୍ରାବ ଫିକା ଓ କିଛି ଦିନ ପରେ ସାଦା ରଙ୍ଗର ହୁଏ]

ହାଡେବବସ ହାଡ଼ରସ

ହାଡ଼ରସା ଗଳିବା (ବୋହିବା)—ଦେ ବି—ଅତିସାରର ମାରାତ୍ମକ ଅବ-
Hārdarasā galibā (bohibā) ସ୍ଥାରେ ମଳଦ୍ୱାରରୁ ଦୁର୍ଗନ୍ଧ ହାଡ଼ରସା ହେବା—Last stage of chronic dysentery in which pulpy pus is evacuated.

ହାଡବସାବେରুন ହାଡ଼ରସନିକଲନା

ହାଡ଼ରସା ନିକାଳିଦେବା (ନିକାଳିବା, ବୁହାଇବା, ବାହାର କରିବା)—
Hārdarasā nikālidebā (nikalibā, buhāibā, bāhāra karibā)—ଦେ. କ୍ରି (ଅଶ୍ଳୀଳ)—ଅତ୍ୟନ୍ତ ପ୍ରହାର କରିବା; ଏତେ ପ୍ରହାର ଦେବା, କି ଯଦ୍ଦ୍ୱାରା ଦେହର ହାଡ଼ [ହାଡ଼ରସା ନିକଳିବା; ହାଡ଼ରସା ବାହାରିବା—ଅ. ରୂପ] ଘାବ ଭାଙ୍ଗି ଯାଇ ଦେହରୁ ମଜ୍ଜା ବାହାରି ପଡ଼େ—To beat a
ହାଡବସାବାহিবকবা ହାଡ଼ରସନିକାଲଦେନା person to pulp.

ହାଡ଼ରା—ଦେ. ବିଣ—୧। ଅତି ଟାଣୁଆ (ମାଟି)—1. Very hard
Hārdarā (soil). ୨। ବୁଢ଼ା ଓ ସ୍ୱଳ୍ପ ପତ୍ର ଯୁକ୍ତ (ଗଛ)—2 Old and leafless (tree) ୩। (ପୁଂ) ହାଡ଼ୁଆ
[ହାଡ଼ରୀ—ସ୍ତ୍ରୀ] (ଦେଖ)—3. Hārduā (See)
ପାথুবে କଡା, ହଡୀଲା

ହାଡ଼ରୁ ମାଉଁସ ଖାଇବା (ରେକେଟିବା)—ଦେ. କ୍ରି—୧। ମାଂସଯୁକ୍ତ
Hārdaru māuñsa khāibā (reketibā) ଅସ୍ଥିରୁ ଦନ୍ତଦ୍ୱାରା ମାଂସକୁ ପୃଥକ୍ କରି ଖାଇବା (ଯେଉଁପରି କୁକୁର କରେ) [ହାଡ଼ରୁ ମାଉଁସ ରେକେଟି ଖାଇବା—ଅନ୍ୟରୂପ] 1. To chew away the flesh adhering to pieces of bone (as a dog) ୨। (ଲକ୍ଷଣାର୍ଥ) ଅତ୍ୟନ୍ତ କଷ୍ଟ ଦେବା; ଅତି ଉତ୍ପୀଡ଼ିତ କରିବା—2. (figurative) To annoy or oppress extremely.
ହାଡথেকেমাংসখাওয়া ହାଡ଼ସେମାଂସଖାନା

ହାଡ଼ରୁ ମାଉଁସ ମିଳା(ଳେ)ଇଯିବା(ପଡ଼ିବା)—ଦେ. କ୍ରି (ଲକ୍ଷଣାର୍ଥ)—
Hārdaru māuñsa milā(le)ijibā (pardibā) ଅତ୍ୟନ୍ତ ଉତ୍ପୀଡ଼ନ ବା ଅତ୍ୟାଚାର ଭୋଗ କରିବା—(figurative) To be subjected to much annoyance or
ହାଡথেকেমাসমলিয়েযাওয়া ହାଡ଼ସେମାଂସମିଲାନା oppression.

ହାଡ଼ରୁ ରସ ନିକାଳିବା (ବୁହାଇବା, ବାହାରକରିବା)—ଦେ. କ୍ରି—
Hārdaru rasa nikālibā (buhāibā, bāhārakaribā) ହାଡ଼ରସା ନିକାଳିଦେବା (ଦେଖ)—Hārdarasā nikālidebā (See)
[ହାଡ଼ରୁ ରସ ନିକଳିବା (ବୋହିବା, ବାହାରିବା)—ବିଶେଷ୍ୟ ରୂପ]

ହାଡ଼ ରେକେ(କେ)ଟା—ଦେ. ବି—ମାଂସହୀନ ହାଡ଼କୁ ଚୋବାଇବା କର୍ମ
Hārda reka(ke)ṭā—The act of chewing a
ହাডচর্বণ ହାଡ଼ଚବାନା meatless bone.
ପ୍ରାଦେ [ଗଡ଼ଜାତ] ବି—ହେଟା—Hyena'

ହାଡ଼ ରେକ(କେ)ଟିବା—ଦେ. କ୍ରି—ମାଂସହୀନ ଅସ୍ଥିକୁ ଦାନ୍ତ ଦ୍ୱାରା
Hārda reka(ke)ṭibā ଚୋବାଇବା—To chew a meatless bone.

ହାଡ଼ ଶିଙ୍କୁଳା—ପ୍ରାଦେ (କଟ୍ଟକର) ବି (ସଂ. ନାମ—ଅସ୍ଥି ଶୃଙ୍ଖଳା)—
Hārda sinkulā ହାଡ଼ଭଙ୍ଗା ୨ [ଦେଖ]—Hārdabhangā 2 [See]. [ଦ୍ର—ହାଡ଼ ଭାଙ୍ଗିଗଲେ ବା ମକଚି ହୋଇଗଲେ ଏହାକୁ ବାଟି ଭଙ୍ଗା ସ୍ଥାନରେ ଲଗାଇ ବନ୍ଧା ବାନ୍ଧିଦେଲେ ୮।୧୦ ଦିନ ମଧ୍ୟରେ ହାଡ଼ ଯୋଡ଼ ହୋଇଯାଏ। ଏ ଗଛର ପତ୍ରକୁ ଚଟଣି ଓ କଢ଼ି କରି ଖାଆନ୍ତି। ବାତ ରୋଗ ନିମନ୍ତେ ଉପକାରୀ ହୁଏ।)]

ହାଡ଼ ଶୂଳା—ଦେ. ବି—୧। ଅସ୍ଥିଶୂଳ—1. Aching of the
Hārda śūlā bones. ୨। (ଲକ୍ଷଣାର୍ଥ)
ହাডজ্বলা ହାଡ଼ଶୂଳ ' ହାଡ଼ ଜଳା।—2. (figurative) Extreme annoyance. ବିଣ—ମର୍ମଭେଦୀ (ବାକ୍ୟ)—Heart-rending; heart-piercing; cutting to the quick.

ହାଡ଼ଶୂଳା(ଳେ)ଇବା—ଦେ. କ୍ରି—୧। (ଲକ୍ଷଣାର୍ଥ) ହାଡ଼ ଜଳିବା—
Hārda śūlā(le)ibā 1. Extreme annoyance. [ହାଡ଼ ଶୂଳା(ଳେ)ଇହେବା—ଅନ୍ୟରୂପ] ୨। ଅସ୍ଥିଶୂଳ—2.
ହাড কনকনকবা Aching of the bones.
ହାଡ଼ ମେଂ ଶୂଲହୋନା

ହାଡ଼ ସାର—ଦେ. ବିଣ—ଅସ୍ଥିମାତ୍ରସାର; ଅସ୍ଥି କଙ୍କାଳ ଅବଶିଷ୍ଟ—
Hārda sāra Reduced to skeleton.
হাড়সার ହାଡ଼ସାର

ହାଡ଼ ହାଡ଼ (ହାଡ଼ୁଆ)—ଦେ. ବିଣ—୧। ଅଧିକ ଅସ୍ଥି ମିଶ୍ରିତ (ମାଂସ)
Hārda hārda (hārduā) 1. (meat) Consisting
হাড় হাড largely of bones. ୨। ହାଡ଼ୁଆ; ଅସ୍ଥିମୟ—
ହାଡ଼ମୟ 2. Bony. ଦେ. ବି—ନଗଦ ଧନ—Hard cash·

ହାଡ଼ା—ଦେ· ବି—ଅସ୍ଥିଚର୍ମାବଶିଷ୍ଟ ଦେହ—A body reduced
Hārdā to skeleton. ବିଣ—୧। ଅସ୍ଥିଚର୍ମାବଶିଷ୍ଟ—
হাড়সার 1. Reduced to skeleton. ୨। ହାଡ଼ୁଆ—
ହାଡ଼ମାତ୍ର ହଡ୍ଡୀଲ 2. Bony.

ହାଡ଼ି—ଦେ. ବି· ପୁଂ—(ସଂ. ହଡ୍ଡିକ, ହଡ଼ଡ଼ି)—୧। ଚଣ୍ଡାଳ ଜାତି;
Hārdi ମନୁଷ୍ୟମାନଙ୍କର ମଳ ଓ ରାସ୍ତାର ମଇଳା ପରିଷ୍କାରକାରୀ, (ହାଡ଼ିଅଣୀ—ସ୍ତ୍ରୀ) ଗୋମାଂସ ଖାଦକ ନୀଚ ଅସ୍ପୃଶ୍ୟ ଜାତି; ମେହେନ୍ତର ଜାତି; ମଳାପକର୍ଷୀ ଜାତି—1. A low untouchable caste whose work is to sweep nightsoil and the public roads. [ଦ୍ର—ଆମ ଦେଶରେ ହାଡ଼ିମାନେ ଗ୍ରାମର ଓ ନଗରର ଅବର୍ଜନା ସଫା କରନ୍ତି। ହାଡ଼ିଅଣୀମାନେ ପାଇଖାନା ସଫା କରନ୍ତି ଓ ହାଡ଼ିମାନେ ବସ୍ତାମାନ ଗାଡ଼ିରେ ବା ଭାରରେ

ନେଇ ଦୂରରେ ନିର୍ଦ୍ଦିଷ୍ଟ ସ୍ଥାନରେ ପୋତନ୍ତି । ହାଡ଼ିମାନେ ମଧ୍ୟ ବିବାହାଦି ଉତ୍ସବରେ ବାଜା ବଜାନ୍ତି ଓ ଯେଉଁ ବ୍ୟକ୍ତିର ଶବ ଉଠାଇ ନେବାକୁ କେହି ନ ଥାନ୍ତି, ତାଙ୍କ ଶବ ନେଇ ଯାଆନ୍ତି । କେଉଁ କେଉଁ ଦେଶରେ ହାଡ଼ିମାନଙ୍କର ଶ୍ରେଣୀ-ବିଶେଷ ଶୂକର ପାଳନ କରନ୍ତି । କେଉଁ କେଉଁ ଶ୍ରେଣୀ ତାଳ ଗଛରୁ ତାଳ କାଟନ୍ତି ଓ ଖଜୁରି ଗଛରୁ ତାଡ଼ି ସଂଗ୍ରହ କରନ୍ତି । ବଙ୍ଗ ଦେଶରେ ହାଡ଼ିଆଣୀମାନେ ନବ-ଜାତ ଶିଶୁର ନାହିନାଡ଼ କାଟନ୍ତି । ହାଡ଼ିମାନେ ମୁର୍ଦ୍ଦାର କାଟନ୍ତି ଓ ସହରରେ ପାଇଖାନା ଓ ନର୍ଦ୍ଦମା ସଫା କରନ୍ତି । ମେଦିନୀପୁର ଅଞ୍ଚଳରେ ଏମାନେ ସବାରି ବାହିଥାନ୍ତି ।

ଏମାନଙ୍କ ସମାଜରେ ବାଳିକା ବିବାହ, ପୁନର୍ବିବାହ ଓ ବିଧବା ବିବାହ ପ୍ରଚଳିତ । ଏମାନଙ୍କ ଜାତିର 'ପଣ୍ଡିତ' ଆଖ୍ୟାଧାରୀ ବ୍ୟକ୍ତି ବିବାହାଦିରେ ଏମାନଙ୍କ ପୌରୋହିତ୍ୟ କରନ୍ତି । ବଙ୍ଗଦେଶର ହାଡ଼ିମାନେ ଶାକ୍ତ । ଉତ୍ତର ବଙ୍ଗର ଅନେକ ଅଞ୍ଚଳରେ ଏମାନେ ମହା ସମାରୋହରେ କାଳୀ ପୂଜା କରନ୍ତି । କେହି କେହି ପଣ୍ଡିତ କହନ୍ତି ଯେ, ଏମାନଙ୍କ ପୂର୍ବପୁରୁଷମାନେ ଶାକ୍ତ ବୌଦ୍ଧ ତାନ୍ତ୍ରିକ ଥିଲେ ଓ ଏମାନଙ୍କ ମଧ୍ୟରେ ଅନେକ ସିଦ୍ଧ ପୁରୁଷ ଥିଲେ । ବଙ୍ଗଦେଶ ପ୍ରଚଳିତ ରାଣୀ ମୟନାବତୀ ଓ ରଜା ଗୋବିନ୍ଦଚନ୍ଦ୍ରଙ୍କ ଗୀତରେ ହାଡ଼ିପା ନାମକ ଜଣେ ସିଦ୍ଧପୁରୁଷ ଏ ଦୁହିଙ୍କ ଦୀକ୍ଷାଗୁରୁ ଥିବା ବର୍ଣ୍ଣିତ ।

କ୍ରମଶଃ ମହାତ୍ମା ଗାନ୍ଧିଙ୍କ ପ୍ରବର୍ତ୍ତିତ ଅସ୍ପୃଶ୍ୟତା ବର୍ଜନ ଆନ୍ଦୋଳନର ଫଳରେ ଏମାନଙ୍କ ସମାଜରେ ଶିକ୍ଷା, ସଭ୍ୟତା, ମଦ୍ୟ ଓ ଗୋମାଂସ ବର୍ଜ୍ଜନ ପ୍ରବେଶ କରୁଅଛି; କେତେଗୁଡ଼ିଏ ଯୁବକ ଉଚ୍ଚ ଶିକ୍ଷା ଲାଭ କରୁଅଛନ୍ତି; ଏମାନଙ୍କ ପାଇଁ ସ୍ଥାନେ ସ୍ଥାନେ ସ୍ୱତନ୍ତ୍ର ବିଦ୍ୟାଳୟମାନ ଖୋଲି ଯାଇଅଛି ଓ ଅନେକସ୍ଥଳରେ ସାଧାରଣ ବିଦ୍ୟାଳୟ-ମାନଙ୍କରେ ଉଚ୍ଚ ବର୍ଣ୍ଣର ଛାତ୍ରମାନଙ୍କ ସଙ୍ଗେ ଏକ ଶ୍ରେଣୀରେ ଓ ଏକାସନରେ ଏ ଜାତିର ଛାତ୍ରମାନେ ଶିକ୍ଷାଲାଭ କରୁଅଛନ୍ତି ।] ୨ । ଅତି କଦର୍ଯ୍ୟ ଓ ଅପରିଷ୍କୃତ ବ୍ୟକ୍ତି; ଘୃଣା-ଜନକ ବ୍ୟକ୍ତି—2. A person of very nasty habits. ୩ । ଅତି ଭୀରୁ ବ୍ୟକ୍ତି—3. A very coward person. ୪ । ହାଡ଼ିବନ୍ଧୁର ଡାକ ନାମ—4. Nickname for Hārdibandhu. ୫ । ( ସ୍ତ୍ରୀ ଓ ପୁଂ ) ଅଗ୍ରଜ ମୃତ ଥିବା ସ୍ତ୍ରୀ ଓ ପୁରୁଷଙ୍କ ନାମ—5 A name given to a girl and boy whose elder brother or sister has died before her or his birth.
ବିଣ—୧ । ଘୃଣାଜନକ—1. Of nasty habits. ୨ । କୌଣସି ବିଷୟ ପ୍ରତି ଡରକୁଳା—2. Timid, of fearful nature. ( ଯଥା—ସେ ମାଡ଼କୁ ହାଡ଼ି = ଅର୍ଥାତ୍ ସେ ମାଡ଼ ଖାଇବାକୁ ଭୀରୁ ଅଟେ । )

ହାଡ଼ିଆ—ଦେ. ବି ପୁଂ—୧ । ହାଡ଼ିବନ୍ଧୁର ଡାକନାମ—1. Nick Hārdia name of Hārdibandhu. ୨ । ହାଡ଼ିଆବୀର (ଦେଖ)—2. Hārdiābira (See)
ହାଡି ହାଡିଆ

ହାଡ଼ିଆଣୀ—ଦେ. ବି. ସ୍ତ୍ରୀ—(ପୁଂ ହାଡ଼ି)—୧ । ହାଡ଼ିର ସ୍ତ୍ରୀଲିଙ୍ଗ; Hārdiāṇi ହାଡ଼ି ଜାତିର ସ୍ତ୍ରୀ; ମେହେନ୍ତରାଣୀ; ଚଣ୍ଡାଳୁଣୀ—
ହାଡ଼ିନୀ 1 A woman of the sweeper caste.
ହାଡିଆନୀ [ଦ୍ର—ବଙ୍ଗଦେଶରେ ହାଡ଼ିଆଣୀମାନେ ନବଜାତ ଶିଶୁଙ୍କ ନାଭି ଛେଦନ କରନ୍ତି] ୨ । (ସଂ ଗୃହଗୋଧିକା) ପଲ୍ଲୀ;
ଟିକଟିକି ଗୃହ ଗୋଧିକା; ଝିଟିପିଟି—2. The house gecko;
गिरगिट the common house lizard; Hemidactylus.
[ଦ୍ର—ହାଡ଼ିଆଣୀ ଅସ୍ପୃଶ୍ୟା ଥିବାରୁ ଓ ଦେହରେ ପଲ୍ଲୀ ପଡ଼ିଲେ ସ୍ନାନ କରିବାର ବିଧି ଥିବାରୁ ପଲ୍ଲୀର ଏହି ନାମ ହୋଇଅଛି] ୩ । କାମାଖ୍ୟା ନିବାସିନୀ ପ୍ରସିଦ୍ଧା ତନ୍ତ୍ରସିଦ୍ଧା
ହାଡିଣୀ ଚଣ୍ଡାଳୁଣୀର ନାମ—3. Name of a Hārdi woman
हाडिआणी famed to be versed in Tāntra. [ଦ୍ର—ଅନେକ ଝଡ଼ା ଫୁଙ୍କା ମନ୍ତ୍ରରେ 'ଚଣ୍ଡୀ ହାଡ଼ିଆଣୀ'ର ନାମୋଲ୍ଲେଖ କରାଯାଏ]

ହାଡ଼ିଆଣୀ ଖଟିବା—ଦେ. କ୍ରି—ହାଡ଼ିଆଣୀର ପାଇଖାନା ସଫା କରିବା କର୍ମ Hārdiāṇī khaṭibā— The cleansing of a privy or latrine by a sweeper woman.
মেথরাণীখাটা हाडिआणीखटना

ହାଡ଼ିଆଣୀ ଚଉଠି—ପ୍ରାଦେ (ଗଞ୍ଜାମ)—୧. ଗଣେଶ ଚତୁର୍ଥୀ (ଦେଖ) Hārdiāṇī chauṭhi —Geṇeśa chaturthī (See).

ହାଡ଼ିଆଣୀ ଛୁଆଁ—ଦେ. ବିଣ—୧ । ମେହେନ୍ତରାଣୀକୁ ସ୍ପର୍ଶ କରିବା ଯୋଗୁ
हाड़ीआणी छूत ଅପବିତ୍ରୀକୃତ (ବ୍ୟକ୍ତି)—( a person ) Contaminated by the touch of a sweeper woman. ୨ । ଦେହରେ ପଲ୍ଲୀପତନ ଯୋଗୁଁ ଅପବିତ୍ରୀକୃତ (ବ୍ୟକ୍ତି)—2. (a person) Contaminated by the touch of a houselizard.
[ଦ୍ର—ଏ ପଦ ବିଶେଷ୍ୟରୂପେ ମଧ୍ୟ ଚଳେ]

ହାଡ଼ିଆ ବୀର—ଦେ. ବି—ତାନ୍ତ୍ରିକ ପ୍ରୟୋଗ ଦ୍ୱାରା ମନୁଷ୍ୟ ଦେହରେ Hārdiā bīra ଆବିଷ୍ଟ କରାଯିବା ଭୂତର ନାମ—Name of
भूत ভূত an evil spirit which is made, by employment of 'Tantric' black art, to passess a subject.

ହାଡ଼ିଘର ପଶା—ଦେ. ବିଣ. ପୁ—୧ । ଯେଉଁ ବ୍ୟକ୍ତି ପେଟ ବିକଳରେ Hārdi ghara paśā ବା ଅନ୍ୟ ଲୋଭରେ ନିଜ ଜାତି ହରାଇ (ହାଡ଼ିଘରପଶୀ—ସ୍ତ୍ରୀ) ହାଡ଼ି ଜାତିରେ ପ୍ରବେଶ କରେ—1. (a
হাড়িঘরে ঢোকা person) Who enters into the
हाड़ीघर पैठनेवाला Hārdi society out of the pale of his own society for want of food or for

for other reasons. ୨ । (ଗାଳି) ଯେଉଁ ବ୍ୟକ୍ତି ନିଜ ଜାତି ହରାଇ ଅତି ନୀଚ ଜାତିରେ ପ୍ରବେଶ କରେ—2. (a term of abuse) A person who loses his caste.

ହାଡ଼ି ଘରେ ପଶିବା—ଦେ. କ୍ରି—୧ । ଖାଇବା ବା ଅନ୍ୟ ଲୋଭରେ Hārdi ghare pasibā ନିଜର ଉଚ୍ଚ ଜାତି ହରାଇ ହାଡ଼ିଘରେ ହାଡିଘରେ ଢୋକা ଖାଇବା ବା ହାଡ଼ି ଜାତିରେ ପ୍ରବେଶ କରିବା— ହାଡ଼ିଘର ପୈଠନା 1. To leave one's society and enter into Hārdi society. ୨। (ଲକ୍ଷଣାର୍ଥ)—(ଗାଳିରେ ବ୍ୟବହୃତ)—2. (figurative) A term used in course of abuse [ଦ୍ର—ହାଡ଼ିଘରେ ପଶି ପେଟ ପୂରିଲା ନାହିଁ—ନ୍ୟାୟ—ପେଟ ବିକଳରେ ବା ଖାଇବା ଲୋଭରେ ହାଡ଼ିଘରେ ପଶିବା ଲୋକର ହାଡ଼ିଘରେ ପଶି ସୁଦ୍ଧା ପେଟ ନ ପୂରିଲେ ବା ସାଧ ନ ମେଣ୍ଟିଲେ ବା ଧନାଦି ଲୋଭରେ ନୀଚ କାର୍ଯ୍ୟ କରି ସୁଦ୍ଧା ଉକ୍ତ ଲୋଭ ବା ତୃଷ୍ଣା ନ ମେଣ୍ଟିଲେ ଏହି ଉକ୍ତ ଦିଆଯାଏ ।]

ହାଡ଼ି ଘୋଷରା—ଦେ. ବି—ଯେଉଁ ବ୍ୟକ୍ତିର ଶବକୁ ଶ୍ମଶାନକୁ ନେବାକୁ Hārdi ghosharā କେହି ଆତ୍ମୀୟ କିମ୍ବା ବନ୍ଧୁ ନ ଥାନ୍ତି ଓ ମୁଦ୍ଦାଫରାସଟାନা ମହାମାରୀ ଆଦି ସମୟରେ ଯେଉଁମାନେ ନିରାଶ୍ରୟ ହାଡ଼ିଘସୀଟା ଅବସ୍ଥାରେ ମରଯାଆନ୍ତି ସେମାନଙ୍କ ଶବକୁ ଦଉଡ଼ିଦ୍ୱାରା ଟାଣି ମେହେନ୍ତରମାନଙ୍କ ଦ୍ୱାରା ଶ୍ମଶାନକୁ ଘୋଷାରି ନେବା —The dragging of a corpse of a person dying homeless and friendless with a rope to the cremation ground or burial ground by sweepers.

ହାଡ଼ିଛୁଆଁ—ଦେ.ବିଣ—ଯେଉଁ ବ୍ୟକ୍ତି ଅସ୍ପୃଶ୍ୟ ହାଡ଼ିକୁ ସ୍ପର୍ଶ କରିବାରୁ Hārdi chhuāṅ ଅଶୁଦ୍ଧ ହୋଇଥାଏ ଓ ଯେଉଁ ଅଶୁଦ୍ଧି ବିନା ହାଡିଛୋୟାଁ ସ୍ନାନରେ ଓ ବିନା ପ୍ରାୟଶ୍ଚିତ୍ତରେ ଦୂର ହୁଏ ନାହିଁ— ହାଡ଼ୀଛୂତ Contaminated by the touch of an untouchable Hārdi.

ହାଡ଼ିଞ୍ଜ୍—ବୈଦେ. ବି—(ଇଂ; ନାମ)—ହାର୍ଡିଞ୍ଜ୍ (ଦେଖ)— Hārdiñj Hardiñj (See)

ହାଡ଼ିପ(ପା)—ଦେ. ବି—( ସଂ. ହଡ଼ିପ )—୧ । ହାଡ଼ି (ଦେଖ)— Hārdipa(pā) Hārdi (See) ୨ । ହାଡ଼ି ବା ନୀଚଜାତୀୟ ହାଡିପ ବୌଦ୍ଧ ଯୋଗସାଧକ ବିଶେଷ; ବୌଦ୍ଧତାନ୍ତ୍ରିକ ସିଦ୍ଧପୁରୁଷ- ହାଡୀପ ବିଶେଷ—2. Name of a Buddhist who had attained suceess in Joga; name of a Buddhist saint. [ଦ୍ର—ଏହାଙ୍କର ନାମ ଅମ ଦେଶରେ ଯୋଗୀମାନେ ବୋଲିବା 'ଗୋବିନ୍ଦଚନ୍ଦ୍ର' ଗୀତରେ ଉଲ୍ଲେଖ ଅଛି । ଏ ଗୁରୁ ଗୋବିନ୍ଦଚନ୍ଦ୍ରଙ୍କ ଗୁରୁ ଥିଲେ ।]

ହାଡ଼ି ପାଣ—ଦେ. ଅ—(ସହଚର ଶବ୍ଦ)—ହାଡ଼ି ଓ ପାଣ ଆଦି ଅସ୍ପୃଶ୍ୟ Hārdi pāṇa ନୀଚ ଜାତି—Persons of low untouchable castes. [ଦ୍ର—ଏହିପରି ହାଡ଼ି ବାଉରି, ହାଡ଼ି ଚମାର, ହାଡ଼ି କଣ୍ଡରା, ନଳି ଏମ ଅଦ ଶବ୍ଦମାନଙ୍କର ପ୍ରୟୋଗ ହୁଏ ।]
ହାଡି ଡোম
ହାଡୀତୁସାଧ

ହାଡ଼ି ପୁଅ—ଦେ. ବି—୧ । ହାଡ଼ି ଜାତିର ସନ୍ତାନ; ହାଡ଼ି ସନ୍ତାନ; ହାଡ଼ି Hārdi pua ଜାତୀୟ ବ୍ୟକ୍ତି—1. A person of ହାଡିପো ହାଡିର ছেলে ହାଡୀକା ଲଡ଼କା the Hārdi caste; an offspring of Hārdi parents. ୨ । ଏକପ୍ରକାର ଗାଳି—2. A term of abuse.

ହାଡ଼ି ବାଇଦ (ବାଜା)—ଦେ. ବି—ବିବାହାଦି ଉତ୍ସବ ଉପଲକ୍ଷରେ Hārdi bāida(hājā) ହାଡ଼ିମାନଙ୍କ ବଜାଇବା ଢୋଲ, ମুচିবাদ্য ହାଡ଼ୀବାଜା ନାଗରା, ଚେଙ୍ଗ ମହୁରି, ଡ୍ରମ୍ ଆଦି ବାଦ୍ୟ—Drums etc beaten by Hārdis during festivals.

ହାଡ଼ିରେ ଯିବା—ଦେ. କ୍ରି—ହାଡ଼ି ଘରେ ପଶିବା (ଦେଖ)— Hārdire jibā Hārdi ghare pasibā (See)

ହାଡ଼ୁ—ଦେ. ବି—ହାଡ଼ିବନ୍ଧୁର ଆଦରାର୍ଥକ ଡାକ ନାମ—Fond Hārdu nickname of Hārdibandhu. ଗ୍ରାଦେ ହାଡ଼ି (ସମ୍ବଲପୁର, ଅସ୍ପୃଶ୍ୟ ଜାତି ବ୍ୟବହୃତ ଭାଷା) ବି-ଗୁଡ଼— ହାଡ଼ି Molasses.

ହାଡ଼ୁଆ—ଦେ. ବିଣ—୧ । ଅସ୍ଥିମୟ—1. Full of bones; Hārduā bony. ୨ । ହାଡ଼ପରି ଟାଣ—2. Hard as ହেডো bone ୩ । ହାଡ଼ପରି ସରୁ ଅଥଚ ଟାଣ—3. ହାଡ଼ମୟ, ହଡ଼ହା, ହଡ଼ିଲା Slender and hard as bone. ୪ । ଅସ୍ଥିସାର (ମାଂସ)—4. (meat) Consisting chiefly or mixed mostly with bone. [ହାଡ଼େ (ଡ଼ୋ) —ସ୍ତ୍ରୀ] ୫ । ପୁଂ—ଅସ୍ଥିସାର ବା କଙ୍କାଳସାର (ବ୍ୟକ୍ତି); ମାଂସହୀନ (ବ୍ୟକ୍ତି)—Bony; (a person) who is a bundle of bones. ୬ । କଙ୍କାଳମାତ୍ରାବଶିଷ୍ଟ—6. Reduced to skeleton. ବି— ହାଡ଼ିବନ୍ଧୁର ଅନାଦରାର୍ଥକ ଡାକନାମ—Nickname for Hārdibandhu ଗ୍ରାଦେ (ସମ୍ବଲପୁର) ବି— ଶୀର୍ଣ୍ଣକାୟ ବ୍ୟକ୍ତି—An emaciated person.

ହାଡ଼ୁଆଳି—ଦେ. ବିଣ—ହାଡ଼ଯୁକ୍ତ (ମାଂସ)—(Meat) Consisting chiefly of or mixed mostly Hārduāli ହାଡି ସାଳ with bone. ବି—ପୁଷ୍ପକଞ୍ଚାର ପାହାଡ଼ରେ ହାଡ଼ଯୁକ୍ତ ହେବା ବୃକ୍ଷବିଶେଷ—1. Ligustrum Robustum; Lingustrum Roxburghii (Haines).

ହାଡ଼ୁଉ (ବୁ, ଡୁ) ଡୁ—ଦେ. ବି (ଧ୍ୱନ୍ୟନୁକରଣ; ଏଥିରେ ଖେଳାଳିମାନେ 'ହା ଡୁ ଡୁ ଡୁ ଡୁ' ଶବ୍ଦ Hādu u (bu, du) du ଉଚ୍ଚାରଣ କରୁଥିବାରୁ)—ଡୁଡୁ [ ହାଡ଼ୁଡୁ—ଅନ୍ୟରୂପ ] (ଦେଖ)—Dudu (See). ହାଡୁଡୁଡୁ କବ (ବା) ଡ୍ଡୀ

ହାଡୁ ବାହାର—ବୈଦେ. ବି—( ଇଂ. ହାର୍‌ବର୍ ) - ଜାହାଜମାନଙ୍କ Hārdu bāhāra ରହିବା ସ୍ଥାନ; ବନ୍ଦର—Harbour. [ଉ— ବନ୍ଦର × × × ଚନାପାଠଣା ହାଡୁବାହାରୁ ଲଙ୍ଗର ଉଠେଇ ବନ୍ଦଗାହ ଦେଲୁ । ଫକୀରମୋହନ ଗଳ୍ପସ୍ୱଳ୍ପ ।]

ହାଡେ ହାଡେ—ଦେ. କ୍ରି. ବିଣ—୧ । କୌଣସି ବ୍ୟକ୍ତି ପ୍ରତି ମନେ Hārde hārde ମନେ ଅତ୍ୟନ୍ତ ବିରକ୍ତ ହେବା ରୂପେ— हाड़ेहाड़े 1. Very much (annoyed with a person). [ ଯଥା—ସେ ମତେ ସବୁବେଳେ ହାଡ଼େ ହାଡ଼େ ଚିଡ଼ୁଛି ।] ୨ । ଦେହର ଅତି ଲୁକ୍କାୟିତ ବା ଗୁପ୍ତସ୍ଥାନମାନଙ୍କରେ—2. In the most secret or concealed parts of the body. [ଯଥା—ଏ ମାଡ଼ ପିଲାର ହାଡେ ହାଡେ ଭେଦିଲା ।] ୩ । ହୃଦୟର ଅନ୍ତରତମ ପ୍ରଦେଶରେ—3. In the recesses of the heart. [ଯଥା—ଏ ଯଥଦ୍ଗାଳୀଙ୍କ ଗାଳି ମୋ ହାଡେ ହାଡେ ଭେଦିଗଲା ।]

ହାଡେ ହାଡେ ଚିଡ଼ିବା ( ଜଳିବା )—ଦେ. କ୍ରି—ଅତ୍ୟନ୍ତ ବିରକ୍ତ Hārde hārde chirdibā (jalibā) ହେବା—To be very much teased or annoyed.

ହାଣ—ଦେ. ବି—(ସଂ. ହନନ)—୧ । ହଣା ; ହଣାହେବା ; ଅସ୍ତ୍ରଶସ୍ତ୍ରଦ୍ୱାରା କଟାହେବା—Cutting ; being cut with a sharp weapon. ୨ । ଦାଉ ଆ ଶସ୍ତ୍ରଦ୍ୱାରା ହତ୍ୟା—2. Murder or slaughter with a sharp weapon. ୩ । ଅସ୍ତ୍ରଶସ୍ତ୍ରଦ୍ୱାରା କଠୋର ପ୍ରହାର—3. Hard beating with weapons. [ ଉ—କଉଁ ନ ପାଇଲେ କେହି ଅମର୍ଷି ସମ୍ମୁଖେ ସେ ଗ୍ରାମଗୁଳିପୂରବର୍ତ୍ତି ରୋମହର୍ଷିହାଣେ । ରାଧାନାଥ - ମହାଯାତ୍ରା] Hāṇa हाना ह्ल मार ପ୍ରାଦେ (ବଲଙ୍ଗୀର ପାଟଣା) ବି—ଶିକାର—Hunting.

ହାଣ କାଟ—ଦେ. ବି—(ଏକାର୍ଥକ ସହଚର ଶବ୍ଦ)—ସଂ. ହନନ + Hāṇa kāṭa କର୍ତ୍ତନ)—୧ । ହଣାକଟା ; ହଣା ଓ କଟା— हानाकाटा 1. Cutting. ୨ । ଯୁଦ୍ଧରେ ଶସ୍ତ୍ରାଦିଦ୍ୱାରା मारकाट ହତ୍ୟା—2. Slaughter with weapons in war.

ହାଣକାଟ ମୁଣ୍ଡ—ପ୍ରାଦେ (ସାଜପୁର) ବି—ଯେଉଁ ବ୍ୟକ୍ତି କର୍ମ୍ମର Hāṇakāṭa muṇḍa ଭାବରେ ଫଳ ପ୍ରତି ଆସ୍ଥା ନ ରଖି କାର୍ଯ୍ୟ କରେ—One who does work without any fear of consequence.

ହାଣକୁ ନେଲା ପରି (ଭଳି, ଭଳିଆ) ହେବା—ଦେ, କ୍ରି—କୌଣସି Hāṇaku nelā pari (bhaḷi, bhaḷiā) hebā ବ୍ୟକ୍ତିକୁ हाड़िकाठे नेओया मतन हओया ହତ୍ୟା କରିବାକୁ ନିଆ खिंचातानि होना ଯାଉଅଛି ବୋଲି ଜାଣିଲେ ସେଠାକୁ ଯିବାକୁ ଉକ୍ତ ବ୍ୟକ୍ତି ଯେପରି ଅନିଚ୍ଛା ଦେଖାଏ ସେହିପରି ହେବା; କୌଣସି ସ୍ଥାନକୁ ଯିବା ପାଇଁ ଅତ୍ୟନ୍ତ ଅନିଚ୍ଛା ପ୍ରକାଶ କରିବା ବା ପଶ୍ଚାତ୍ପଦ ହେବା— To shrink from advancing to a place (of slaughter); to exhibit unwillingness to go to a place.

ହାଣ ଖା(ପା)ଇବା—ଦେ. କ୍ରି—ଅନ୍ୟ ବ୍ୟକ୍ତି ଦ୍ୱାରା ହାଣ ଖାଇ ମୃତ ହେବା—To be killed by being cut with a weapon. [ଉ—ସୁତ୍ରେ Hāṇa khā(pā)ibā हतहओया मारा जाना ହାଣ ଖାଇ ହେଲେ ସେହି ସିନା ଭୂଥା ଅଧମ ଭାଗୀ— ରାଧାନାଥ. ପାର୍ବତୀ ।]

ହାଣ ଘା(ଘାଆ)—ଦେ. ବି—ହଣା ଘାଆ; ଅସ୍ତ୍ରାଘାତ ଜନିତ କ୍ଷତ; କଟା Hāṇa ghā(ghāa) ଘାଆ—Cutting wound. [ଉ— କଟା ଦାଆ ଅପେକ୍ଷା ହଣା ଘାଆ ବୃହତ୍ତର] काटाघा काटाघाव

ହାଣନ—ଦେ. ବି (ସଂ. ହନନ)—୧ । ପ୍ରହାର—1. Beating Hāṇana ୨ । ହନନ (ଗୋପୀନାଥ ନନ୍ଦ) (ଦେଖ)— हानन मार 2. Hāṇana (See)

ହାଣ ମାର—ଦେ. ବି (ସହଚର ଶବ୍ଦ)—୧। ହଣା ଓ ମାରଣ; ହତ୍ୟା— Hāṇa māra 1. Slaughter; slaying and killing. ୨। ଯୁଦ୍ଧରେ ଅସ୍ତ୍ରାଦିଦ୍ୱାରା ହତ୍ୟା—2. Slaughter in a battle. ୩ । ପଙ୍କଅ ଜମିକୁ ହାଣି ସମତୁଲ କରିବା 3. Earth-cutting and levelling of a ground. मारकाट मारकाट

ହାଣ ମୁଣ୍ଡ (ହଁ)—ଦେ. ବି—୧ । ଯେଉଁସ୍ଥାନ (ଯଥା—ଯୁଦ୍ଧ ଭୂମି) ରେ Hāṇa muṇḍa (hañ) ସମ୍ମୁଖ ଯୁଦ୍ଧରେ ଲୋକେ ହାଣ ଖାଉ ଥାଆନ୍ତି—1. A place where people are cut to death. ୨ । ଯୁଦ୍ଧର ସମ୍ମୁଖ ଭୂମି—2. The front of battle. ୩। (ଲକ୍ଷଣାର୍ଥ) ଅତି ବିପଦ୍ସଙ୍କୁଳ ସ୍ଥାନ—3.(figurative) A very dangerous place. ୪। (ଲକ୍ଷଣାର୍ଥ) ଯେଉଁଠାକୁ ଗଲେ ମୃତ୍ୟୁ ସୁନିଶ୍ଚିତ—4. (figurative) A place where the risk to life is imminent. ୫ । (ଲକ୍ଷଣାର୍ଥ) ଅତି ଦାୟିତ୍ୱପୂର୍ଣ୍ଣ ସ୍ଥାନ— 5.(figurative) A place of grave responsibility. ୬ । ନଦୀର ବା ଜଳ ଅଟକ ରହିଥିବା ବନ୍ଧର ଯେଉଁ ସ୍ଥାନରେ ମାଟି ହଣା ହୋଇ ପାଣି ଅତି ବେଗରେ ବୋହୁଥାଏ—6. A place or breach in an embankment where the rush of water is very great. ୭ । ଯେଉଁ ସ୍ଥାନରେ ବନ୍ଧ ହଣା ହୋଇଥାଏ—7. A place खाँड़ाबमुख मारकाटकीजगह where a bundh is cut.

ହାଣମୁହଁକୁ ଦେବା (ପେଲିଦେବା)—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ Hāṇa muhañku debā (pelidebā) ହତ୍ୟା ସ୍ଥାନକୁ (ଯଥା—ଯୁଦ୍ଧଭୂମିକୁ) ପ୍ରେରଣ କରିବା ବା ଠେଲିଦେବା- 1. To send or push a person to a place of slaughter. ୨ । (ଲକ୍ଷଣାର୍ଥ) ଅତି ବିପଦ୍ସଙ୍କୁଳ

ସ୍ଥାନକୁ ପଠାଇବା—2. (figurative) To send a person to a place of utmost danger.
खाँडाबगमेंपाठान मृत्युमुँहमेंदेना

ହାଣ ମହଁକୁ ନେଲାପରି (ଭଲି, ଭଲିଆ) ହେବା—ଦେ. କ୍ରି—ହାଣକୁ
Hana muhanku nela pari (bhali, bhalia) heba
ନେଲାପରି ହେବା (ଦେଖ)—Hanaku nelapari heba (See)

ହାଣି ଦେବା (ପକା[କେ]ଇବା)—ଦେ କ୍ରି—୧ । ଶୀଘ୍ର ହାଣିବା—
Hani deba (paka [ke] iba 1 To kill or cut at once or quickly. ୨ । ସମ୍ପୂର୍ଣ୍ଣ ରୂପେ ହାଣିବା—2. To cut asunder; to cut off; to cut completely. ୩ । ହାଣିବା କାର୍ଯ୍ୟ ଶେଷ କରିବା; ହାଣି ସାରିବା—3 To finish cutting. ୪ । (ଲକ୍ଷଣାର୍ଥ) ହୃଦୟକୁ ବ୍ୟାକୁଳ କରିବା—4 (figurative) To cut to the quick. [ଉ-ସମ୍ବୋଧନ ବାଣ ରଙ୍କେ ଦେଲେ ହୃଦୟେ ହାଣି—ରାଧାନାଥ. ଚନ୍ଦ୍ରଭାଗା] ୫ । (ଶଗଡ଼ିଆଙ୍କ ଭାଷା) ଶଗଡ଼ର ପଛରେ ଦୁଇଦଣ୍ଡାର ମୁଣ୍ଡିକୁ ମୂଠାଦ୍ୱାରା ଧରି ସଗଡ଼ର ଗତିକୁ ହଠାତ୍ ବୁଲାଇ ଦେବା—5. To turn suddenly the motion of a bullock cart by applying force to the posterior handles of the 2 beams of a cart.
हेनेदेओया, हेनेफेलों मारदेना

ହାଣିବା—ଦେ. କ୍ରି (ସଂ. ହନ୍ ଧାତୁ)—୧ । ଧାରୁଆ ଶସ୍ତ୍ରଦ୍ୱାରା କାଟିବା
Haniba 1. To cut with a sharp weapon. (ଯଥା—ମାଛ ହାଣିବା, ଗଛ ହାଣିବା ଇତ୍ୟାଦି)—୨ । ଧାରୁଆ ଶସ୍ତ୍ରଦ୍ୱାରା ବଧ କରିବା ବା ମାରି ପକାଇବା—2. To kill with a sharp weapon. (ଯଥା—ବୋଦା କାଟିବା, ମଣିଷ ହାଣିବା ଇତ୍ୟାଦି) ୩ । (ଲକ୍ଷଣାର୍ଥ) (ହାଣିବାବେଳେ କଣ୍ଠଦେଶକୁ ଉଞ୍ଚାଇବା ପରି) ମୁଣ୍ଡକୁ ବେକର ତଳକୁ ପିଠି ଅଡ଼କୁ ଲଗାଇବା—3. (figurative) To make the back part of one's head touch the back. (ଯଥା—କସ ମୁଣ୍ଡକୁ ହାଣିଦେଇ ମାଛକୁ ଚାହିଁ ବସିଛି) ୪ । (ଲକ୍ଷଣାର୍ଥ) ନିଷ୍ଠୁର କଥା କହିବା; ବାକ୍ୟବାଣ ପ୍ରୟୋଗ କରିବା—4. (figurative) To speak cruel or harsh words. (ଯଥା—ତାକୁ ମୁହଁେ ମୁହଁେ ଗୁଡ଼ାଏ ହାଣିଦେଲି ।) ୫ । (ଲକ୍ଷଣାର୍ଥ) କୌଣସିବ୍ୟକ୍ତିକୁ ମୁହେ ମୁହଁେ ଅପ୍ରିୟ ସତ୍ୟ କହିବା—5. (figurative) To speak a person plain truth to his face. ୬ । (ଲକ୍ଷଣାର୍ଥ) (ସବାରି ତାଙ୍କର ଅଗରେ ଥିବା ବେହେରାମାନଙ୍କ ବ୍ୟବହୃତ ଡାକ 'ଦେ ହାଣିଦେ') ସବାରିର ବାଙ୍କଁଶରେ ବଳ ପ୍ରୟୋଗ କରି ସବାରିକୁ ଆଗକୁ ଠେଲିବା—6. (figurative) (used by palki-bearers) To push a palky towards the front by applying force to the pole from behind. ୭ । (ଲକ୍ଷଣାର୍ଥ) (ବ୍ୟଙ୍ଗାର୍ଥ) ଅତ୍ୟଧିକ ଭୋଜନ କରିବା—7. To eat voraciously. (ଯଥା—ତୋକାଠା ଯେତେ ଥିଲା ତାକୁ ହାଣି ଦେଲା) ୮ । (ସାପ) ଦାନ୍ତଦ୍ୱାରା ଦୃଢ଼ରୂପେ ପ୍ରାଣୀକୁ କାମୁଡ଼ିବା—8. To bite furiously with the fangs (said of a serpent); to strike with the fangs. (ଯଥା—ସାପ ଉପରେ ମୋ ଗୋଡ଼ ପଡ଼ିଗଲା ... ସେ ମୋ ଗୋଡ଼ରେ ଦୁଇଥର ହାଣିଦେଲା ।) ୯ । (ବାଳକଙ୍କ ଭାଷା) ଗୁଡ଼ି ଉପରୁ ଖୁବ୍ ଜୋରରେ ଗୋଡ଼ ... ଅନ୍ୟ ଗୁଡ଼ିଉଡ଼ାର ସୂତାକୁ ହାଣିଦେବା—9. To cut the thread of another paper-kite by forcibly striking it with one's kite string.
हाना काटा काटना

ହାଣିବା କାଟିବା—ଦେ. କ୍ରି (ଦ୍ୱନ୍ଦ୍ୱ ଶବ୍ଦ)—ହାଣ କାଟ କରିବା—
Haniba katiba To cut.
हाँना काटा मारना काटना

ହାଣିବା ମାରିବା—ଦେ. କ୍ରି (ଦ୍ୱନ୍ଦ୍ୱ ଶବ୍ଦ)—ହାଣି ମାରି ପକାଇବା—
Hanbia mariba To cut and kill.
हाना मारा काटना, मारना

ହାଣୁଆ—ଦେ. ବିଶ—୧ । ... ନିଷ୍ଠୁର ବା ମର୍ମଭେଦୀ (କଥା)—
Hanua 1. Cutting to the quick.
मर्मघाती कठोर (ଯଥା—ତା ହାଣୁଆ କଥା
घातक घातक ଯୋଗେ ... ।) ୨ । ହତ୍ୟାକାରୀ; ଘାତକ (ଲୋକ)—
2. Cutting; killing. (ଯଥା—ସେ ହାଣୁଆ ଲୋକ ।) ୩ । ଯେଉଁ ଦେଶକୁ ବା ସ୍ଥାନକୁ ଗଲେ ମନୁଷ୍ୟର ହାଣ ଖାଇବା ସୁନିଶ୍ଚିତ—3. (a country or place) Where one is sure to be killed. (ଯଥା—ହାଣୁଆ ସ୍ଥାନ, ହାଣୁଆ ମୁଲକ ।)

ହାଣ୍ଟଣ—ଦେ. ବି (ସଂ ହିଣ୍ଡନ, ଭ୍ରମଣ)—୧ । ପଦବ୍ରଜରେ ଭ୍ରମଣ—
Hantana 1. Travelling; walking. ୨ । ଅତ୍ୟଧିକ
हाँटन घुमाव ଭ୍ରମଣ—2. Excessive walking. ୩ । ଏଣେ ତେଣେ ବୁଲା—3 Wandering; roving.

ହାଣ୍ଟ(ଣ୍ଟୋ)ର(ଲ,ଲା)—ଦେ. ବି (ଧ୍ୱନ୍ୟନୁକରଣ)—ବାଘ; ବ୍ୟାଘ୍ର,
Hanta(nto)ra(la, la) ଓ ଷଣ୍ଢ ଆଦି ପଶୁଙ୍କ ଗର୍ଜନ ଶବ୍ଦ—
गर्जन गर्जन Roar of a tiger or lion; bellowing of a bull.

ହାଣ୍ଟ(ଣ୍ଟୋ)ର(ଲ, ଲା) ଛାଡ଼ିବା [ପକା(କେ)ଇବା]—ଦେ. କ୍ରି—
Hanta(nto)ra(la, la)chhardiba [paka(ke)iba]
ହଣ୍ଟାଳିବା (ଦେଖ)—Hantaliba (See)

ହାଣ୍ଟ(ଣ୍ଟୁ,ଣ୍ଟୋ)ରି(ଲି)ବା—ଦେ. କ୍ରି—ହଣ୍ଟାଳିବା (ଦେଖ) —
Hanta(ntu, nto)ri[li]ba Hantaliba [See]

ହାଣ୍ଟ[ଣ୍ଟୁ, ଣ୍ଟୋ]ର(ଲି)ଆ—ଦେ. ବି—ହଣ୍ଟାଳିଆ (ଦେଖ)—
Hānta[ntu,nto]ri(li) ā Hantalia [See]

ହାଣ୍ଟିବା—ଦେ. କ୍ରି (ସଂ ହୁଣ୍ଡ୍, ହୁଣ୍ଡ୍, ହେଡ୍, ଧାତୁ=ଗମନ କରିବା)
Hāntibā (ବଙ୍ଗାନୁକରଣ) ୧ । ପଦବ୍ରଜରେ ଚାଲିବା—
[ହଣ୍ଟା(ଣ୍ଟୋ)ଇବା—ପ୍ରଯୋଜକରୂପ] 1 To walk; to
हाँटा **घुमना** travel on foot.
୨ । ଅଧିକ ଭ୍ରମଣ କରିବା—2. To travel or
walk much. ୩ । ଏଣେତେଣେ ବୁଲିବା—
3. To wander about, ପ୍ରାଦେ [ଗଡ଼ଜାତ] କ୍ରି—
ହଣ୍ଟାଳିବା (ଦେଖ)——Hantālibā [See]

ହାଣ୍ଟୁ—ପ୍ରାଦେ (ସିଂହଭୂମି) ବି (ଭୁଲ ବା ହାଁଟୁ)—ଅଣ୍ଟୁ—
Hāntu (ହାଁଟୁ—ଅନ୍ୟରୂପ) Knee.

ହାଣ୍ଠୁ—ପ୍ରାଦେ (ସମ୍ବଲପୁର) ବି—ଆଣ୍ଠୁ—
Hānthu Knee.

ହାଣ୍ଡ୍—ବୈଦେ (ଇଂ)ବି—୧ । ଘଡ଼ିରେ ବା ଘଣ୍ଟାରେ ଘଣ୍ଟା, ମିନିଟ୍
Hānd ଓ ସେକେଣ୍ଡ୍ ଜ୍ଞାପକ କଣ୍ଟାମାନ—1. The hands
ह्याण्ड **हैंड** of a clock or watch.
[ଯଥା—ଅୱାର୍ ହାଣ୍ଡ୍, ମିନିଟ୍ ହାଣ୍ଡ୍, ସେକେଣ୍ଡ୍ ହାଣ୍ଡ୍]
୨ । ହସ୍ତ; ହାତ—2. Hand. (ଯଥା—ସେକ୍‌ହାଣ୍ଡ୍),
ସେକେଣ୍ଡ୍ ହାଣ୍ଡ୍)

ହାଣ୍ଡ୍ କଫ୍—ବୈଦେ. (ଇଂ) ବି—ଦୋଷୀର ଅପରାଧୀ କଚଟିରେ ପିନ୍ଧାଯିବା
Hānd kaph ହାତକଡ଼ି—Handcuff.
হাতকড়ি **हाथकड़ि**

ହାଣ୍ଡ୍ କର୍ ଚିଫ୍—ବୈଦେ. ବି (ଇଂ)—ହାତ ପୋଛିବା ପାଇଁ କୁର୍ତ୍ତାର
Hāndkar chiph ପକେଟ୍‌ରେ ରଖାଯିବା ଛୋଟ ରୁମାଲ—
ह्याण्ड् करचिफ **हैंड्करचिफ** Handkerchief.

ହାଣ୍ଡ୍ କାର୍ଟ୍—ବୈଦେ· (ଇଂ) ବି—ହାତ-ଠେଲା ବା ହାତ-ଟଣା ଗାଡ଼ି—
Hāndkārt Hand cart.
ह्याण्ड् कार्ट **हैंडकार्ट**

ହାଣ୍ଡ୍ ଗ୍ରେନେଡ୍—ବୈଦେ. (ଇଂ) ବି—ହାତରେ ଧରି ଶତ୍ରୁ ଉପରକୁ
Hānd grened ଫୋପାଡ଼ିବା ପାଇଁ ବ୍ୟବହୃତ ବିସ୍ଫୋରକ
ह्याण्ड् ग्रेनेड **हैंड्ग्रेनेड** ଦ୍ରବ୍ୟପୂର୍ଣ୍ଣ ବାଣ—
Hand grenade.

ହାଣ୍ଡନୋ(ଲୋ)ଟ୍—ବୈଦେ. ବି ( ଇଂ. ହାଣ୍ଡ୍ ନୋଟ୍ )—ଉତ୍ତମର୍ଣ୍ଣମାନେ
Hānd no(lo)t ଟଙ୍କା ସୁଝିବା ପାଇଁ କସୁର କରି
ह्याण्डनोट् **हैंडनोट** ମହାଜନକୁ ଖାତକଙ୍କ
ଲେଖିଦେବା ଦଲିଲ—Handnote; I O U. (ଦ୍ର—
ଏଥିରେ ଷ୍ଟାମ୍ପ୍ କାଗଜ ଦରକାର ହୁଏ ନାହିଁ । ସାଧା
କାଗଜରେ ଖାତକ ରସିଦ୍ ଟିକଟ୍ ମାରି ଲେଖି ଦେଥାନ୍ତି—ମୁଁ
ଏ ଟଙ୍କା ଆପଣ (ମହାଜନ)ଙ୍କ ଉତ୍ତମର୍ଣ୍ଣମାନେ (କେବଳ ଅସଲ
କିମ୍ବା ଅସଲ ଓ ସୁଧ) ଅଦାଏ ଦେବି । ହାଣ୍ଡନୋଟ୍‌ରେ
ନିୟତ ଲେଖା ହୁଏ ନାହିଁ; କିନ୍ତୁ ଏହା ତିନି ବର୍ଷରେ
ତମାଦି ହୁଏ । ପ୍ରମିସେରି ନୋଟ୍‌ରେ ମହାଜନଙ୍କୁ କିମ୍ବା
ମହାଜନ ଯାହାଙ୍କୁ ବରାଦ କରିବେ, ତାଙ୍କୁ ଏ ଟଙ୍କା
ଦେବାକୁ ଖାତକ ଲେଖିଥାଆନ୍ତି । ହାଣ୍ଡ୍ ନୋଟ୍‌ରେ ଉତ୍ତମ
ମାନେ ସୁଝିବା ଲେଖା ଥାଏ । ପ୍ରମିସେରି ନୋଟ୍‌ରେ ସାକ୍ଷୀ
ପଡ଼ନ୍ତି ନାହିଁ । ବାଣିଜ୍ୟ ବ୍ୟବସାୟ ଉପଲକ୍ଷରେ ଯେଉଁ
ହାଣ୍ଡ୍ ନୋଟ୍ ଲେଖାପାଏ ତାକୁ ହୁଣ୍ଡି କହନ୍ତି ।)

ହାଣ୍ଡ୍ ପମ୍ପ୍—ବୈଦେ. ବି (ଇଂ)—ହାତଦ୍ୱାରା ଚଳାଇ କୂଅ ଆଦିରୁ ପାଣି
Hānd pamp ଉଠାଇବା କଳ—Hand pump.
ह्याण्डपम्प **हैंडपम्प**

ହାଣ୍ଡ୍ ପ୍ରେସ୍—ବୈଦେ, ବି (ଇଂ)—ହାତରେ ଚଳାହୋଇ ଛପା
Hānd pres ଯିବା କଳ—Hand press.
ह्याण्डप्रेस **हैंडप्रेस**

ହାଣ୍ଡ୍ ବା(ବ୍ୟା, ବେ) ଗ୍—ବୈଦେ. ବି (ଇଂ ହାଣ୍ଡ୍ ବ୍ୟାଗ୍ )—ନିଜର
Hānd bā(byā be)g ହାତରେ ଝୁଲାଇ ବୋହିନେବା ପାଇଁ
ବ୍ୟବହୃତ ଛୋଟ ବାକ୍ସ ବା ଥଳି—Hand bag.
हाँण्डबाँग **हैंडबेग**

ହାଣ୍ଡବାରୋ—ବୈଦେ. ବି (ଇଂ)—ଭାରି ଜିନିଷକୁ ସ୍ଥାନାନ୍ତର କରିବାକୁ
Hānd bāro ବ୍ୟବହୃତ ଦୁଇ ଚକିଆ ଠେଲାଗାଡ଼ି—
ह्याण्डबारो **हैंडबारो** Hand barrow.

ହାଣ୍ଡ୍ ବିଲ୍—ବୈଦେ. ବି (ଇଂ)—କୌଣସି ବିଷୟର ବିଜ୍ଞାପନ ବା ସୂଚନା
Hānd bil ଲୋକଙ୍କୁ ବାଣ୍ଟିବା ପାଇଁ ଛପା ହୋଇଥିବା ଛୋଟ
हाण्डबिल **हैंडबिल** କାଗଜ—Hand bill.

ହାଣ୍ଡ୍ ବୁକ୍—ବୈଦେ. ବି (ଇଂ)—କୌଣସି ବିଶେଷ ବିଷୟ ଆଲୋଚିତ
Hānd buk ହୋଇଥିବା ଛୋଟ ପୁସ୍ତକ—Hand book.
ह्याण्डबुक् **हैंडबुक**

ହାଣ୍ଡ୍ ମିଲ୍—ବୈଦେ. ବି (ଇଂ)—ହାତଦ୍ୱାରା ଚଳାଯିବା ଚକି—
Hānd mil Hand mill

ହାଣ୍ଡ୍ ମେସିନ୍—ବୈଦେ. ବି (ଇଂ)—ହାତରେ ଚଳାଯିବା କଳ—
Hānd mesin Hand machine.
ह्याण्डमेसिन **हैंडमेशीन**

ହାଣ୍ଡ୍ ରାଇଟିଙ୍ଗ୍—ବୈଦେ. ବି—(ଇଂ)—୧ । ହସ୍ତାକ୍ଷର—1. Hand
Hānd raiting writing ୨ । ଆପଣା ହସ୍ତାକ୍ଷରକୁ ସୁନ୍ଦର
हाण्डराइटिङ्ग् କରିବା ପାଇଁ ପିଲାମାନଙ୍କ ଅଭ୍ୟାସ କରିବା ଲେଖା ।
**हैंण्ड्राइटिंग** 2. Handwriting exercises by
students.

ହାଣ୍ଡ୍ଲ୍—ବୈଦେ. ବି—(ଇଂ)—୧ । ଛୁରି ଆଦିର ବେଣ୍ଟ—1.
Hāndl Handle of a knife etc. ୨ । ଲୁହାକଲମ ଗୁଞ୍ଜାଯିବା
ह्याण्डल ପାଇଁ କାଠର ବେଣ୍ଟ ବା କାଠି; ପେନ ହୋଲ୍ଡର—
**हैंडल** 2. Penholder

ହାଣ୍ଡ୍ ଲାମ୍ପ୍—ବୈଦେ. ବି—(ଇଂ)—ହାତରେ ଧରି ଚାଲ ଚଳଲ ହେବା
Hānd lāmp ପାଇଁ ବ୍ୟବହୃତ କାଚର ପ୍ରଦୀପ—Hand-
ह्याण्डलाम्प **हैंड्लैंप** lamp

ହାଣ୍ଡ୍‌ସ—ବୈଦେ (ଇଂ). ବି—ଏକ ହାତ ଦ୍ୱାରା ଚଳାଯାଇ ପାରିବା Hāṇḍ sa ହାତ କରତ; ହାତକରତ—Hand saw. ହ୍ୟାଣ୍ଡସ ହୈଣ୍ଡସ

ହାଣ୍ଡା—ପ୍ରାଦେ (ମେଦିନୀପୁର) ବି—ହାଣ୍ଡି—Earthen cooking Hāṇḍā pot. ପ୍ରାଦେ (ଗଡ଼ଜାତ) ବି—ହାଣ୍ଡୁଆ ଦେଖ—Hāṇduā (See)

ହାଣ୍ଡି—ଦେ॰ ବି—(ସଂ ହାଣ୍ଡୀ, ହାଣ୍ଡିକା, ଭାଣ୍ଡ)—୧ । ମାଟିର ଚଉଡ଼ା-Haṇḍi ମୁହାଁ ପାକପାତ୍ର—1. Wide-mouthed earthen ହାଣ୍ଡି pot for cooking. [ଦ୍ର—ଚଉଡ଼ାମୁହାଁ ପାକପାତ୍ରକୁ ହାଂଡୀ ସାଧାରଣତଃ ହାଣ୍ଡି କହୁଥାଆନ୍ତି; କିନ୍ତୁ ୧୯ ଫୁଟ୍ ଠାରୁ ୨ ଫୁଟ୍ ବ୍ୟାସ ବିଶିଷ୍ଟ ମୁହଁ ଥିବା ପାତ୍ରକୁ ହାଣ୍ଡି ବୋଲାଯାଏ; ସେଥିରୁ ବଡ଼ ପାତ୍ରକୁ ନଉଦି ବୋଲାଯାଏ ଓ ଛୋଟ ପାତ୍ରକୁ ଅଟିକା ବୋଲାଯାଏ ।

ସବୁଠାରୁ ବଡ଼ ହାଣ୍ଡିକୁ ନଉତା, ନଉଦି, ତା ଅପେକ୍ଷା ଛୋଟକୁ ହାଣ୍ଡି, ତହୁଁ ରୁ ଛୋଟକୁ ତାଡ଼ୁଆ, ତହୁଁ ଛୋଟକୁ ଅଟିକା, ତହୁଁ ଛୋଟକୁ ଓଳି ଓ ତହୁଁ ଛୋଟକୁ ବଉଦା କହନ୍ତି । ଯେଉଁ ଅଟକାରେ ବା ହାଣ୍ଡିରେ ଯେତେ ଓଜନର ଚାଉଳ ରାନ୍ଧିଲେ ତାହା ଉତୁରି ନ ପଡ଼େ, ସେହି ପରିମାଣ ଅନୁସାରେ ହାଣ୍ଡିର ନାମ ହୁଏ ଯଥା—ପାଅକିଆ ହାଣ୍ଡି, (ଯହିଁରେ ପାଏ ଚାଉଳର ଭାତ ରନ୍ଧା ଯାଇ ପାରିବ)। ଏହିପରି ସେରକିଆ, ଦସେରିଆ, ଅଧଡ଼େରିଆ ହାଣ୍ଡି ଇତ୍ୟାଦି । ହାଣ୍ଡିର ମୁହଁରେ ଘୋଡ଼ାଇବା ପାଇଁ ପଲମ, ତେଲଢୁଣି, ପିଦ୍ଧାଣ ଓ ସରା ଆଦି ବ୍ୟବହୃତ ହୁଏ ।

ହାଣ୍ଡି ଆଦି ପ୍ରଥମେ କଞ୍ଚା ମାଟିରେ ଗଢ଼ାଯାଏ । ପରେ ବହୁତ ଗୁଡ଼ାଏ ହାଣ୍ଡିକୁ କୁମ୍ଭାରମାନେ 'ଶାଳ'ରେ ପୋଡ଼ନ୍ତି, ତତ୍ପରେ ତାହା ବ୍ୟବହାରଯୋଗ୍ୟ ହୁଏ । ଅନ୍ନମହାପ୍ରସାଦ ରନ୍ଧାଯିବା ବଡ଼ ପାତ୍ରକୁ ହାଣ୍ଡି ବୋଲାଯାଏ ଓ ଛୋଟ ପାତ୍ରକୁ କୁଡ଼ୀଆ ବା କୁଡ଼ୁଆ ବୋଲାଯାଏ (କୁଡ଼ୁଆ ଅଭଲେ ଟୀକା ଦେଖ) ।

ଭିନ୍ନ ଭିନ୍ନ ହାଣ୍ଡିର 'ଅଭିପ୍ରେତ' ବ୍ୟବହାର, ଆକାର, ତହିଁରେ ରଖାଯିବା ବସ୍ତୁ ଓ ହାଣ୍ଡିର ଅବସ୍ଥା ଅନୁସାରେ ହାଣ୍ଡି ପୂର୍ବେ ଅନ୍ୟ ଶବ୍ଦମାନ ବ୍ୟବହୃତ ହୁଏ ଯଥା—ଅଥାଳ ହାଣ୍ଡି, ଅନୁଢ ହାଣ୍ଡି, ଅନ୍ନ ହାଣ୍ଡି, ଅମୃତ ହାଣ୍ଡି, ଆଇଁଶ(ଶି) ହାଣ୍ଡି, ଆଖୁଶାଳ ହାଣ୍ଡି, ଇ(ଏ)ମାର ହାଣ୍ଡି, ଉଞ୍ଜୁଡ଼ା ହାଣ୍ଡି, ଉଗୁଡ଼ା ହାଣ୍ଡି, କଅଁା ହାଣ୍ଡି, କଣା ହାଣ୍ଡି, କଳା ହାଣ୍ଡି, କାନକା ହାଣ୍ଡି, କୁଳୁଚ ହାଣ୍ଡି, ଖିରି ହାଣ୍ଡି, ଗୁଡ଼ ହାଣ୍ଡି, ଗୋବରପାଣି ହାଣ୍ଡି, ଗୋରୁ ହାଣ୍ଡି, ଚାଳ ହାଣ୍ଡି, ଚୂଆ ହାଣ୍ଡି ଚୁଆଁ ହାଣ୍ଡି, ଚୁଲିକିଆ ହାଣ୍ଡି, ଜଲଜଲା ହାଣ୍ଡି, ଝିଙ୍ଗ ହାଣ୍ଡି, ଢିଲ ବା ଢିଲା ହାଣ୍ଡି, ଢେଣ୍ଡା ହାଣ୍ଡି, ଦଗଧ ବା ଦଗ୍ଧ ହାଣ୍ଡି, ଦଦରା ହାଣ୍ଡି, ଦଶଭୁଠ ହାଣ୍ଡି ବା ଦଶ ହାଣ୍ଡି, ଦୁଃଖୀଶ୍ୟାମ ହାଣ୍ଡି, ଦୁଧ ହାଣ୍ଡି, ଧାନ ଉତୁଆଁ ହାଣ୍ଡି, ନବ(ରେ)ଇଁଶ ହାଣ୍ଡି, ନୂଆ ହାଣ୍ଡି, ପଣା ହାଣ୍ଡି, ପରଶା ହାଣ୍ଡି, ପାଅ(ଇ)କିଆ ହାଣ୍ଡି, ପାଗଛଣା ହାଣ୍ଡି, ପାଗ ହାଣ୍ଡି, ପାଣ ହାଣ୍ଡି, ପିଠ[ଠେ]ଇ ହାଣ୍ଡି, ପିଣ୍ଡ ହାଣ୍ଡି, ପିତଳ ହାଣ୍ଡି, ପୃଥକ ହାଣ୍ଡି, ପେଜପାଣି ହାଣ୍ଡି, ବାଇଗ (ଙ୍ଗ) ହାଣ୍ଡି, ବାଇ ହାଣ୍ଡି, ବାଲିଜଳା ହାଣ୍ଡି, ବିସର୍ଜନହାଣ୍ଡି, ଭଙ୍ଗାଭଙ୍ଗ ହାଣ୍ଡି, ଭାତ ହାଣ୍ଡି, ଭାର ହାଣ୍ଡି, ଭନେ(ଲ) ହାଣ୍ଡି, ମଙ୍ଗୁଳା ହାଣ୍ଡି, ମଠ ହାଣ୍ଡି, ମାଛ ହାଣ୍ଡି, ମାଟି-ଗୋବର ହାଣ୍ଡି, ମାଡ଼ ହାଣ୍ଡି, ମାଳ(ଳୁ)ହାଣ୍ଡି, ମୃତ୍ତିକିଆ ବା ମୃତକିଆ ହାଣ୍ଡି, ଲସାପୋଛ ହାଣ୍ଡି, ସଜ ହାଣ୍ଡି, ସମାଦ(ଧି) ହାଣ୍ଡି ଇତ୍ୟାଦି ।

ହାଣ୍ଡି ଶବ୍ଦଯୁକ୍ତ ପ୍ରଚଳିତ ଢଗ, ପ୍ରବଚନ ଓ ନ୍ୟାୟ—

ଅନୁଢ ହାଣ୍ଡିରେ ବିଷ ଜଣିନାଏ,
ହାଣ୍ଡିଏ[କ] ଅମୃତରେ ବିଷ କଣିକାଏ—ନ୍ୟାୟ ।
ହାଣ୍ଡିଏ(କ)ଭିତରୁ ଗୋଟିଏ ଟିପିବା—ନ୍ୟାୟ ।
ସହସ୍ର ହାଣ୍ଡିକୁ(କ) ଏକ ଠେଙ୍ଗା—ନ୍ୟାୟ
ହାଣ୍ଡି ଉଠରେ ସରିଷଏ—ନ୍ୟାୟ ।
ହାଣ୍ଡି ମୁହଁରେ ବା ଭାରହାଣ୍ଡିରେ ଝଞ୍ଜୁଡ଼ା ଦେବା—ନ୍ୟାୟ
ହାଣ୍ଡିରେ ଖାଏ, ଗୋଡରେ ପଡ଼ିଲେ ଗାଧୋଇଯାଏ—ବ୍ୟଙ୍ଗ
ହାଣ୍ଡିକ ଗଣ୍ଡି ସରିଷଓ—ନ୍ୟାୟ
ହାଣ୍ଡିକ ଶୁଦ୍ଧି ସରିଟିଏ—ନ୍ୟାୟ ।
ଯିମିତି ହାଣ୍ଡି ସିମିତି ସରା—ନ୍ୟାୟ
ହାଣ୍ଡିକ ସରା ଗଣ୍ଡଗଣ୍ଡ—ନ୍ୟାୟ ।]

୨ । ହାଣ୍ଡି ଆକାରର ଧାତୁପାତ୍ର; ହଣ୍ଡା—2. Wide-mouthed metal pot. [ଦ୍ର—ଯେଉଁ ଧାତୁରେ ବା ପଦାର୍ଥରେ ହାଣ୍ଡି ତିଆରି ହୁଏ ତହିଁର ନାମ ଅନୁସାରେ ହାଣ୍ଡିର ନାମ ହୁଏ, ଯଥା—ପିତଳ ହାଣ୍ଡି, ତମ୍ବା ହାଣ୍ଡୀ, କାଚ ହାଣ୍ଡି । ଧାତୁର ବଡ଼ ହାଣ୍ଡିକୁ ହଣ୍ଡା ଓ ଛୋଟ ହାଣ୍ଡିକୁ ହାଣ୍ଡୀ କହନ୍ତି ।

୩ । ମୃତକ ଓ ସୂତକ ଅଶୌଚରେ ସାଧାରଣତଃ ଏକାଦଶ ଦିନ ପାକାର୍ଥ ବ୍ୟବହୃତ ନୂତନ ହାଣ୍ଡି—3. The new set of earthen pots used on the 11th day of the impurity after a death or brith. ୪ । ମୃତକ ଓ ସୂତକ ଅଶୌଚ ଉପଲକ୍ଷେ ପୁରୁଣା ହାଣ୍ଡିମାନ ପାକଶାଳାରୁ ଅନ୍ତର କରି ନୂଆ ହାଣ୍ଡିରେ ପାକ କରାଯିବାରୂପ କର୍ମ—4. The act of replacing the old cooking pots by new ones some days after a death or birth in the family. [ଦ୍ର—ନିଜ ପରିବାରରେ ବା କୁଟୁମ୍ବରେ କେହି ମଲେ ବା ଜନ୍ମ ହେଲେ ପରିବାରକୁ ଅଶୌଚ ଲାଗେ ଏବଂ ମୃତ ବ୍ୟକ୍ତିଙ୍କ ବୟସ ଅନୁସାରେ ଓ କୁଟୁମ୍ବିତାର ଦୂରତ୍ୱ ଅନୁସାରେ ୩ଦିନ ଠାରୁ ୧୧ଦିନ ପର୍ଯ୍ୟନ୍ତ

ଅଶୌଚ ପାଳନ ହୁଏ । ଅଶୌଚ ପରେ ପୁରାତନ ପାକହାଣ୍ଡି ଗୁଡ଼କ ପାକଶାଳାରୁ ବାହାର କରାଯାଇ ଗ୍ରାମମୁଣ୍ଡ ଦଣ୍ଡାରେ ଫୋପଡ଼ା ହୁଏ ଓ ଘର ଲିପା ପୋଛା ହେବା ପରେ ଏକ ନୂଆ ହାଣ୍ଡି ଦ୍ୱାରା ପାକ କରଯାଏ । ମୃତକ ଅଶୌଚରେ ବର୍ଜିତ ହାଣ୍ଡିକୁ ବାଇଜ ହାଣ୍ଡି ବା ଜଳଜଳା ହାଣ୍ଡି କହନ୍ତି ।] ୫ । (ଲକ୍ଷଣାର୍ଥ) (ଏହାର ଆକାର ସଙ୍ଗେ ହାଣ୍ଡିର ସାଦୃଶ୍ୟ ଥିବାରୁ) ଉଦର; ପେଟ—5. (figurative) Belly. ୬ । ଗାଡ଼ିର ଚକର ମଝିରେ ଥିବ ଗୋଲ ମୁଣ୍ଡା କାଠ (ଯହିଁର କେନ୍ଦ୍ରର ଛିଦ୍ର ବାଟେ ଅଖ ଗଳାଯାଏ ଓ ଯହିଁରୁ ଚତୁର୍ଦ୍ଦିଗକୁ ଅରମାନ ଯାଇଥାଏ) ଲାଗିଥାଏ) ଭୁମ୍ବ—6. The hub or nave of a wheel. ୭ । ନଡ଼ିଆ, ତାଳ ଓ ଖଜୁରୀ ଗଛର ଗଣ୍ଡି ଭୂମିକୁ ଛାଡ଼ିବା ଅବସ୍ଥାରେ ତାହାର ବେଢ଼ ଯାଗା, ଯାହା ହାଣ୍ଡି ପରି ଭୂମି ଉପରେ ଦେଖାଯାଏ—7. The trunk or neck of a cocoanut or palm tree while leaving the ground. [ଦ୍ର—ଏପରି ଅବସ୍ଥାରେ 'ଗଛ ହାଣ୍ଡି ଛାଡ଼ିଲାଣି ବା ହାଣ୍ଡି ଉଠିଲାଣି' କହନ୍ତି ।] ୮ । ପାକ; ରୋଷେଇ—8. Cooking. (ଯଥା—ସେ କନ୍ୟା ଏ ଘରର ହାଣ୍ଡିରେ ଗୁଞ୍ଜଳ ପକାଇଛି ।) ୯ । ଅନ୍ନ ହାଣ୍ଡି; ଅନ୍ନ ମହାପ୍ରସାଦ ରଖାଯିବା ବଡ଼ ଲୁଡ଼ୁଅ—9. Big and tall earthen pots for keeping 'Mahāprasāda' rice of Puri. [ଦ୍ର—ସାଧାରଣ ହାଣ୍ଡି ଉର୍ଦ୍ଧ୍ୱ ବୃତ୍ତାକାର ଅଟେ ଓ ବୃତ୍ତାର୍ଦ୍ଧର ବ୍ୟାସପାଖ ହାଣ୍ଡିର ମୁହଁ ଅଟେ; କିନ୍ତୁ ମହାପ୍ରସାଦ ହାଣ୍ଡି ଏହାଠାରୁ ଭିନ୍ନ ଅଟେ ।]

**ହାଣ୍ଡି ଅଛୁଆଁ**—ଦେ. ବିଶ—ହାଣ୍ଡି ବାହାର (ଦେଖ)—Hāṇḍi achhuāṅ Hāṇḍi bāhāra (See)

**ହାଣ୍ଡି ଅଣକ**—ଦେ. ବି—(ସଙ୍ଗତ ଶବ୍ଦ)—ପାକାର୍ଥ ବ୍ୟବହୃତ ହାଣ୍ଡି ଓ Hāṇḍi aṇaka ହାଣ୍ଡିରେ ପାକ କରାଯାଇଥିବା ପଦାର୍ଥକୁ ହାଁଡ଼ିହାତା ଗୋଳାଇବା ବା ଘାଣ୍ଟିବା ବା ପରଶିବା ପାଇଁ हाण्डिझोरिका ବ୍ୟବହୃତ ଅଣକ—The cooking pot and the wooden spoon or ladle used in handling its contents.

**ହାଣ୍ଡି ଅଲଗା (ଭିନ୍ନ, ଭିନ୍ନେ)**—ଦେ. ବି—୧। ଏକାନ୍ନବର୍ତ୍ତୀ ବ୍ୟକ୍ତିମାନଙ୍କ Hāṇḍi alagā (bhinna, bhinne) ପୃଥକାନ୍ନ ହେବା—Separation in mess of members of a হাঁড়িভিন্ন, পৃথকঅন্ন joint family. ୨ । ସ୍ତ୍ରୀମାନଙ୍କର हाँड़िअलग ରଜସ୍ୱଳା ପ୍ରକାଶ; ହାଣ୍ଡି ବାହାର; (ରଜସ୍ୱଳା ସ୍ତ୍ରୀମାନଙ୍କର ପାକଶାଳାରେ ପ୍ରବେଶ ନିଷିଦ୍ଧ ଥିବାରୁ)—2. Menstruation of a female. ବିଶ—୧। ପୃଥକାନ୍ନ ହୋଇଥିବା—1. Separated in mess. ୨ । ରଜସ୍ୱଳା ହୋଇଥିବା (ସ୍ତ୍ରୀ)—2. [a woman] Menstruated; in her menses

**ହାଣ୍ଡି ଅଲଗା (ଭିନ୍ନେ,ପୃଥକ) କରିବା**—ଦେ. କ୍ରି—ଏକାନ୍ନରେ ରହୁଥିବ Hāṇḍi alagā (bhinne) karibā ବ୍ୟକ୍ତିମାନେ ପୃଥକାନ୍ନ হাড়িভিন্নকরা ହେବା To be separated in mess हाँडि अलग करना

**ହାଣ୍ଡି ଅଲଗା ହେବା**—ଦେ. କ୍ରି—୧ । (ସ୍ତ୍ରୀ)ରଜସ୍ୱଳା ହେବା—To be Hāṇḍi alagā hebā in her menses. ୨ । ହାଣ୍ଡି ଅଲଗ ହୋଚପଡ଼ା କରିବା (ଦେଖ)—2 Hāṇḍi alagā karibā (See) हाँड़ी अलग होना

**ହାଣ୍ଡିଆ**—ଦେ. ବିଣ—୧ । ହାଣ୍ଡି ସମ୍ବନ୍ଧୀୟ—1. Relating to Hāndiā Hāṇḍi (ଯଥା—କଳାହାଣ୍ଡିଆ ତାଳ) ୨ । ହେଡେ ହାଣ୍ଡି ସଦୃଶ ଆକାରବିଶିଷ୍ଟ—2 Of the shape of a हाँड़ीका Hāṇḍi ପ୍ରାଦେ (ଗଡ଼ଜାତ) ବି—ମଦ୍ୟବିଶେଷ—A sort of intoxicating drink made by fermenting boiled rice; rice-beer [ଦ୍ର—ସିଂହଭୂମି କୋଲ୍ହ ଦମ୍ଭ ସକଳ ହାଣ୍ଡିଆ ହାଣ୍ଡିରେ ଧରି ଚହିଁ ମେଳ । କେଶବମିଶ୍ର. ବୈତରଣୀ]

[ଦ୍ର—ଏହା କୋଲ୍ହମାନଙ୍କର ଉପାଦେୟ ପାନୀୟ । ଉତ୍ସବାଦରେ କୋଲ୍ହମାନେ ନିମନ୍ତ୍ରିତ ବ୍ୟକ୍ତିମାନଙ୍କୁ ଏହା ଦିଅନ୍ତି ।

ପ୍ରଥମେ ଦରଫୁଟା ଭାତକୁ ଚଟେଇ ଉପରେ ଖେଳାଇ ଦିଅନ୍ତି । ପବନ ବାଜି ତହିଁରୁ ସେଜ ଶୁଖିଗଲେ ତାକୁ ପୁଣି ହାଣ୍ଡିରେ ପୂରାଇ ଏକପ୍ରକାର ଉଦ୍ଭିଜ୍ଜ ଧଳା ଚୂନା ତହିଁରେ ମିଶାଇ ତାକୁ ତିନି ଦିନ ପର୍ଯ୍ୟନ୍ତ ସଢ଼ାନ୍ତି । ତାହା ସଢ଼ିଗଲେ ସେଥିରେ ପୁଣି ପାଣି ପୂରାଇ ତାକୁ ଚକଟିକରି ସେଉଁ ତୋରାଣି ହୁଏ ତାକୁ ହାଣ୍ଡିଆ କହନ୍ତି । ଏହା ମାଦକ । କୋଲ୍ହ ଭାଷାରେ ହାଣ୍ଡିଆକୁ 'ଡିଅଙ୍ଗ' ବୋଲନ୍ତି ।]

**ହାଣ୍ଡି ଅଟିକା**—ଦେ.ବି (ସଙ୍ଗତର ଶବ୍ଦ)—ବଡ଼ହାଣ୍ଡି ଓ ସାନହାଣ୍ଡି—Hāṇḍi aṭikā Earthen pots, big and small. হাড়িতিজেল बड़ीहाण्डीछोटीहाण्डी

**ହାଣ୍ଡିଆ ତାଳ**—ଦେ. ବି—ବଡ଼ ଓ ଗାଢ଼ କୃଷ୍ଣବର୍ଣ୍ଣ ତାଳ ଫଳ—Hāṇḍiā tāla A very big and fully black variety হেঁড়েতাল बड़ाताल of palm fruit.

**ହାଣ୍ଡିଆ ଦଉଡ଼ି**—ପ୍ରାଦେ (ଅଳି) ବି—ଓଳିଅଟିରେ ଦେଉଥିବା ଶସ୍ୟ ସମ୍ଭା-Hāṇḍiā daurḍi ରିବା ତାହାର ଅନୁପାତରେ ପରସ୍ପର ମାପ ଅନୁସାରେ ବ୍ୟବହୃତ ହେବା ଝୋଟ ଦଉଡ଼ି—Jute ropes used for straw packets for storing paddy and other grains. [ଦ୍ର—ଓଳିଆ ବାନ୍ଧିବା ବେଳେ କୋଳ ଏବଂ ତୋରକୁ ଭୂଇଁରେ ବିଛାଇ ସାରି ତା ଉପରେ ହାଣ୍ଡିଆ ଦଉଡ଼ିକୁ ରଖି ତା ଉପରେ କୁଟାର ଗୁମ୍ଫସିକୁଡ଼ ପୁଳାକୁ ରଖନ୍ତି, ତା ଉପରେ ଧାନ ଗଦା କରନ୍ତି । ଚତ୍ୱରର ହାଣ୍ଡିଆକୁ ଉପରକୁ ଉଠାଇ ଦେଲେ ଓଳିଆର ପରିଧି ନିର୍ଣ୍ଣୀତ ହୁଏ । ସେହି ଅଟକଳରେ ଓଳିଆରେ ଧାନ

ମୂର୍ତ୍ତି କରନ୍ତି; ଓଳିଅ ବନ୍ଧା ସରିଲେ ହାଣ୍ଡିଅ ଦଉଡ଼ିକୁ କାଟି ଅଣନ୍ତି । ]

ହାଣ୍ଡିଉଠା ଚୋର—ଦେ. ବି—ଛୁଟିକା ଚୋର—
Hāṇ li uṭhā chora Pilferer; petty thief.
ছিটকাচোৰ उचक्का/ग्रंटीबाज

ହାଣ୍ଡିଉଠା ପଣ(ପଣିଆଁ)—ଦେ. ବି— ଛୁଟିକାଚୋରି—
Hāndiuthā pana(paniāñ) Pilfering; stealing
ছিটকাচোৰী हाथलपकी petty articles.

ହାଣ୍ଡି ଉଠିବା—ଦେ. ବି—ନଡ଼ିଆ ଓ ତାଳ ଆଦି ଗଛର କଣ୍ଠ ବା ଚେର
Hāndi uthibā ଭୂଇଁରୁ ଉଠିଯିବା ଅବସ୍ଥା —The coming out of bulbous reck of palm and cocoanut trees from the ground. [ବ୍ର—ହାଣ୍ଡି ଉଠିବା ପରେ ବର୍ଷକୁ ବର୍ଷ ଉକ୍ତ ହାଣ୍ଡିର ଗୁଣ୍ଡି ପାଖରୁ ପୁରୁଣା ବାହୁଙ୍ଗାମାନ ଖସି ପଡ଼ୁଥାଏ ଓ ଗଛର ଗଣ୍ଡି କ୍ରମଶଃ
হাঁড়িওঠা हंडाउठना ଚେଙ୍ଗରେ ବଢ଼ୁଥାଏ । ]

ହାଣ୍ଡିଏ—ଦେ. ବି—୧ । ଏକହାଣ୍ଡି ପରିମାଣ ମାତ୍ର—1. One potful;
Hāṇdie only. ୨ । ଏକହାଣ୍ଡି ପରିମାଣ—2. A potful; quantity which will fill up one Hāndi. ବିଣ—୧ । ଏକହାଣ୍ଡି ପରିମିତ—1. Measuring one potful; a potful of. ୨ । ବହୁ ପରିମିତ—2. A large quantity of. (ଯଥା—ସକାଳୁ ଉଠି ଦେଖିଲି ଚେଲକୁ କଏ ଗୋଟାଏ କଙ୍ଗିଆ ବାଟୁଳାରେ
একহাঁড়ি एकहाण्डी ହାଣ୍ଡିଏ ଘାଉ ଫେରିଛି)

ହାଣ୍ଡିଏ କୁଡ଼ି(ଡ଼ୁ)ଆଏ—ଗ୍ରାଦେ, (ପୁରୀ) ବି—ଏକହାଣ୍ଡି ମହାପ୍ରସାଦ
Hāṇdie kurdi(rdu)āe ଅନ୍ନ ଓ ଏକ କୁଡ଼ୁଅ ମହାପ୍ରସାଦ ତିଅଣ—One big potful of Mahāprsaāda rice and one small potful of Mahāprasāda curry, (ବ୍ର—ଅନେକ ରାଜା ଓ ବଡ଼ଲୋକ ଜଗନ୍ନାଥଙ୍କଠାରେ ଏବଂ ଲିଙ୍ଗରାଜଙ୍କଠାରେ ପ୍ରତିଦିନ କିମ୍ବା ପ୍ରତି ଏକାଦଶୀ ବା ପ୍ରତି ସକାଳୁକୁ ହାଣ୍ଡିଏ (ଅନ୍ନ) କୁଡ଼ୁଆଏ (ତିଅଣ) ଭୋଗ ହେବାପାଇଁ ଜମି ସେମାନଙ୍କ ନିଜ ନିଜର ପଣ୍ଡାମାନଙ୍କ ମାରଫତରେ ଚାଞ୍ଜା କରିଅଛନ୍ତି)।

ହାଣ୍ଡିକ—ଦେ. ବିଣ—ଏକହାଣ୍ଡି ପରିମିତ—
Hāṇdika One potful of.
একহাঁড়ী एकहाण्डी

ହାଣ୍ଡିକ(କୋ)ଣରେ ସଢ଼ିବା—ଦେ.କ୍ରି—(ପ୍ରାଚୀନ ସମାଜର ବଧୂ ଅନୁ-
Hāṇdika(ko)ṇare sadhitā ସାରେ ସ୍ତ୍ରୀଲୋକମାନେ) କୌଣସି ଆଡେ ନଯାଇ କେବଳ ହାଣ୍ଡିଶାଳରେ ପଡ଼ି ରୋଷେଇ କରିବାରେ ବ୍ୟସ୍ତ ଥାଇ ଅନାବୃତ ଅବସ୍ଥାରେ ରହିବା—To rot in the corner of the kitchen (said of the women of our society who observe
হেঁশেলকোণেপচা रसोईघरमेंसड़ना purdah.

ହାଣ୍ଡି କରିବା—ଦେ. କ୍ରି—ନୂଆ ହାଣ୍ଡି କରିବା; ଅଶୌଚ ପରେ
Hāṇdi karibā ଘରରୁ ପୁରୁଣା ହାଣ୍ଡି ଗୁଡ଼ିକ କାଢ଼ି ନୂତନ ହାଣ୍ଡି ଦ୍ୱାରା ପାକ କରିବା—To cook with a new set of earthen pots after a birth or death in the family. [ବ୍ର—ହାଣ୍ଡି କରକରନ୍ତି ମଲେହି ଶ୍ରାଦ୍ଧ—କବିସୂର୍ଯ୍ୟ. ହାସ୍ୟ କଲ୍ଲୋଳ]
হাঁড়ীকাঢা हाण्डीबदलाहना

ହାଣ୍ଡି କଳା—ଦେ. ବି—ଚୁଲି ଉପରେ ପାକାର୍ଥ ବସାଯିବା ହାଣ୍ଡିର
Hāṇdi kaḷā ପିଟିରେ ପଡ଼ିଥିବା ଝୁଲ୍‌ଝୁଲ୍ ଅଙ୍ଗାରକଣମାନଙ୍କ ସ୍ତର—Layer of soot deposited on the back of earthen cooking pots set on the oven.
হাঁড়িরকালা हाण्डीकाकाला

ହାଣ୍ଡି କଳା ନ ପଡ଼ୁଣୁ—ଦେ. କ୍ରି. ବିଣ—(ଲକ୍ଷଣାର୍ଥ) ଅଳ୍ପକାଳ—
Hāṇdi kaḷā na parḍuṇu (figurative) Shortly after; in no time (literally; befoie a cooking pot is covered with a layer of soot.)

ହାଣ୍ଡି କାଠ—ଦେ. ବି—ପାକସାମଗ୍ରୀ (ଖୁଆଳ, ମୁଢ଼, ପଲ୍ଲବାଅଧ)
Hāṇdi kāṭha କୁ ରାନ୍ଧିବା ପାଇଁ ଆବଶ୍ୟକ ୨ଟି ବସ୍ତୁ (ଯଥା—
হাঁড়িকাঠ ହାଣ୍ଡି ବା ପାକପାତ୍ର ଓ କାଠ)—Earthen
हाण्डी लकड़ी pot and fuel required for cooking food.

ହାଣ୍ଡି କା (କି) ହାଣ୍ଡି—ଦେ. କ୍ରି. ବିଣ— ୧। ହାଣ୍ଡି ହାଣ୍ଡି; ବହୁହାଣ୍ଡି
Hāṇdi kā (ki) hāṇdi ପରିମିତ—1. In potfuls.
হাঁড়িহাঁড়ি ୨ । ବହୁପରିମାଣରେ—2. Profusely. [ଯଥା—
हाण्डीकाहाण्डि ତା ଘରେ କିଏ ଯାଇ ହାଣ୍ଡିକି ହାଣ୍ଡି ଭାତ ଖୋଇଗଲା ।] ୩ । ଏକ ହାଣ୍ଡି ପରେ ଅନ୍ୟ ହାଣ୍ଡି ପରିମିତ ଖାଦ୍ୟ ଏକାଦିକ୍ରମେ—3. Potfuls after potfuls. [ଯଥା—ସେ ବନ୍ଧୁଙ୍କ ଘରରେ ହାଣ୍ଡିକା ହାଣ୍ଡି ପିଠା ଖାଇ ପାର କରିଦେଲା ।] ବିଣ — ୧ । ବହୁହାଣ୍ଡି ପରିମିତ—1. Many potfuls of. ୨ । ପ୍ରଚୁର—2. Profuse.

ହାଣ୍ଡି କୁ(କ)ଣ୍ଡେ(ଣ୍ଢେ)ଇ—ଦେ.ବି —(ଭିନ୍ନାର୍ଥକ ଦ୍ୱିଶବ୍ଦ ସହଚର; କିମ୍ବା
Haṇdi ku(ka)ṇde(ṇdhe)i ହାଣ୍ଡି ଓ କୁଣ୍ଡ)—୧ । ଗୃହର
হাঁড়িকুঁড়ি ବ୍ୟବହାର ପାଇଁ ଆବଶ୍ୟକ ପାକପାତ୍ର ଅର୍ଥାତ୍ (ହାଣ୍ଡି,
हंडिकुण्डी ମାଠିଆ, ଅଟିକା, ଘଡ଼ ଇତ୍ୟାଦି)—1. Various pots and utensils of a household. ୨ । ଗୃହର ସବୁପ୍ରକାର ପାକପାତ୍ର—2. Pots anp all other cooking vessels of a household.

ହାଣ୍ଡି ଖ (ଖୁ) ଡ଼ ଖ (ଖୁ)ଡ଼ [ଖୁଡ଼ୁଖୁଡ଼ୁ] କରିବା—ଦେ. କ୍ରି—
Hāṇdi kha (khu) rḍa kha (khu) rḍa [khurḍu khurḍu] karibā ହାଣ୍ଡି ଧଡ଼୍ ଧଡ଼୍ କରିବା — (ଦେଖ)
Haṇdi dharḍ dharḍ karibā (See)
[ବ୍ର—ଖଡ଼ଖଡ଼ଠାରୁ ଖୁଡ଼(ଡ଼ୁ)ଖୁଡ଼(ଡ଼ୁ) କ୍ଷୁଦ୍ରତର ଶବ୍ଦ ଅଟେ ।]

ହାଣ୍ଡି ଖପର—ଦେ ବ—ଭଙ୍ଗା ହୋଇଥିବା ହାଣ୍ଡିର ଅଂଶମାନ—
Hāndi khaparā Potsherds.
খোলকুঁচি हाण्डि खपरा

ହାଣ୍ଡିଖାଇ—ଦେ. ବିଣ. ସ୍ତ୍ରୀ—(ଗାଳ)—ଯେଉଁ ସ୍ତ୍ରୀଲୋକ ଏପରି
Hāndi khāi ଲୋଭୀ ଓ ଲଜ୍ଜାଶୂନ୍ୟ ଯେ, ସେ ହାଣ୍ଡିରୁ କାଢ଼ି
(ହାଣ୍ଡିଖିଆ—ପୁଂ) ଅନ୍ୟ ପାତ୍ରରେ ଖାଇବା ପର୍ଯ୍ୟନ୍ତ ସମ୍ଭାଳି ହୋଇ
হাঁড়িখাকি ରହି ନ ପାରି ହାଣ୍ଡିରେ ପାକ ହୋଇଥିବା ଅନ୍ନ-
छिपाकर खानेवाली ବ୍ୟଞ୍ଜନାଦି ହାଣ୍ଡିରେ ଥାଉଁ ଥାଉଁ ଲୁଚେଇ
କରି ସେଥିରୁ ଖାଇଯାଏ— (a term of abuse)
(a woman) Who secretly eats cooked food from the cooking pots ; gluttonous ; greedy (woman).

ହାଣ୍ଡି ଖିଆ—ଦେ. ବ—ହାଣ୍ଡିରେ ଥିବା ଅନ୍ନାଦିକୁ ଗୋପନରେ
Hāndi khiā ଖାଇବା—Eating from the cooking
হাঁড়িখাওয়া pots. ବିଣ. ପୁ—ଯେଉଁ ପୁରୁଷ ଏପରି ଲୋଭୀ
छिपाकर हाड़िमें खाना ଓ ଚେହେରା ଯେ ସେ ହାଣ୍ଡିରୁ ଖାଦ୍ୟ
হাঁড়িখেকো ଖାଇଯାଏ—Gluttonous ; greedy (man)
छिपाकर खानेवाला (ହାଣ୍ଡିଖାଇ—ସ୍ତ୍ରୀ)

ହାଣ୍ଡି ଗଢ଼ା—ଦେ. ବ—କାଦୁଅକୁ ଚକଟି ଓ ପିଟିଣାରେ ବାଡେଇ କଞ୍ଚା
Hāndi gardhā ହାଣ୍ଡି ତିଆରି କରିବା—Making of
হাঁড়িগড়া pots out of clay. [ଦ୍ର—କଞ୍ଚା ହାଣ୍ଡିକୁ ଖରାରେ
हाँडबनाबट ଶୁଖାଇ ଉତ୍ତପ୍ତରେ ଭାବରେ ପୋଡ଼ି କୁମ୍ଭାରମାନେ
ପୋଡ଼ା ହାଣ୍ଡି ତିଆରି କରନ୍ତି ।]

ହାଣ୍ଡିଗଣା—ଦେ ବିଣ. ପୁ—ଗଣ୍ଡିଗଣିଆ; ଯେଉଁ ବ୍ୟକ୍ତି ଅତ୍ୟନ୍ତ ଲୋଭୀ
Hāndiganā ଥିବାରୁ କାଳେ ପାଚକ ରନ୍ଧା ହୋଇଥିବା
(ହାଣ୍ଡିଗଣିଆଁ—ଅନ୍ୟରୂପ) ପଦାର୍ଥ [ ଯଥା—ମାଛ ଖଣ୍ଡ,
[ହାଣ୍ଡିଗଣୀ, ହାଣ୍ଡିଗଣେଇ—ସ୍ତ୍ରୀ] ମାଂସଖଣ୍ଡ]କୁ ଖାଇଯିବ,
হাণ্ডিগুনা मक्खीचूस ଏଥିପାଇଁ ଖାଦ୍ୟଦ୍ରବ୍ୟକୁ
ହାଣ୍ଡିରେ ଥିବା ଅବସ୍ଥାରେ ଖଣ୍ଡ ଖଣ୍ଡ କରି ଗଣେ ଓ
କେତେଜଣଙ୍କୁ କେତେ ଖଣ୍ଡ ଦିଆଗଲା, ତାହା ସୁମାରି କରି
ଅବଶିଷ୍ଟ କେତେ ରହିଲା,ପାଚକଠାରୁ ତହିଁର ହିସାବ ନିଏ-
A person who is so miserly that he counts or often examines the contents of the cooking pots before they are served and who takes account of the contents from the cook from time to time

ହାଣ୍ଡି ଗରଭ(ଗର୍ଭ)—ଦେ. ବ—ହାଣ୍ଡି ପେଟ (ଦେଖ)—
Hāndi garabha(garbha) Hāndipeta (See).

ହାଣ୍ଡି ଗରମ—ଦେ. ବ—ହଣ୍ଡା ଗରମ; ମଥାରେ ଶୀତ ଓ ପେଟରେ
Hāndi garama ଗରମ ହେବା ଅବସ୍ଥା; ଅମଗରମି—
পেট গরম पेट गरम The state of the abdomen being hot and the head being cold.

ହାଣ୍ଡି ଗାଣ୍ଡି—ଦେ. ବ—ହାଣ୍ଡିର ଗୋଲାକାର ତଳଭାଗ ବା ପୃଷ୍ଠ—
Hāndi gāndi The rounded buttom or
হাঁড়ির তলা हाडिपेन(पेंदी) back of an earthen pot
[ଦ୍ର—ହାଣ୍ଡିର ଉପରଭାଗକୁ ହାଣ୍ଡିମୁହଁ, ହାଣ୍ଡିର ମଧ୍ୟ
ଭାଗକୁ ହାଣ୍ଡିପେଟ ଓ ଶ୍ରେଣୀମୁହଁର ପଛଭାଗକୁ ହାଣ୍ଡିଫଳ
କହନ୍ତି ]

ହାଣ୍ଡିଗିଳା—ଦେ ବିଣ.ପୁଂ. (ଗାଳ)—ଯେଉଁ ବ୍ୟକ୍ତି ହାଣ୍ଡିଏ ଖାଦ୍ୟ ଖାଇ
Hāndigilā ପାରେ—(a term of abuse
পেটুক एक हाण्डी खानेवाला Very gluttonous
[ହାଣ୍ଡିଗିଳି, ହାଣ୍ଡିଗିଳେଇ—ସ୍ତ୍ରୀ] or greedy (person);
a person who can eat a cooking pot ful of food at a time; gourmand.

ହାଣ୍ଡି ଘୋଡ଼ା(ଡ଼େ)ଇବା—ଦେ. କ୍ରି—ହାଣ୍ଡି ଉପରେ ଅନ୍ୟ ହାଣ୍ଡି ବା
Hāndi ghordā(rde)ibā ଅନ୍ୟ ଘୋଡ଼ାଇବା ଜିନିଷ
হাঁড়ি ঢাকা দেওয়া हाण्डी ढाँकना ଢାଙ୍କିବା—
To cover an earthen pot with a lid or other earthen pot.

ହାଣ୍ଡି ଚଞ୍ଚା—ଦେ. ବ—ବୃକ୍ଷଚୁଙ୍ଗୁ ବର୍ଗର ପକ୍ଷିବିଶେଷ—The
Hāndi chanchhā crowtit; the Indian
হাঁড়ি চাঁছা tree pie; Dendrocitta Rufa.
[ଦ୍ର—ଏହାର ମସ୍ତକ ଧୂସର, ପୃଷ୍ଠଭାଗ କୃଷ୍ଣ, ଚଞ୍ଚୁ କଳା,
ନାସିକା ଲୋମାବୃତ । ଏମାନେ ପ୍ରାୟ ଭୂଇଁକୁ ଓହ୍ଲାନ୍ତି
ନାହିଁ; 'ଗୋଟ୍ରି ଗୋଟ୍ରି' ରବ କରନ୍ତି । ଏହିହେତୁ
ଏମାନଙ୍କ ନାମ କୁଟୁରି ବା କୁଟୁରି [ବ. କୋଟ୍ରୀ], କେଉଁ
କେଉଁ ଅଞ୍ଚଳରେ ଠକା ଚେରଣୀ [ବ.ଠାକାଚୋର] କହନ୍ତି ।
(ଯୋଗେଶଚନ୍ଦ୍ର) । ଏହାର ବର୍ଣ୍ଣ ହାଣ୍ଡିରୁ ଚଞ୍ଚା ହେବା
କଳା ପରି ଥିବାରୁ ଏହି ନାମ ହୋଇଅଛି ।]

ହାଣ୍ଡି ଚଢ଼ା(ଢ଼େ)ଇବା——ଦେ. କ୍ରି—୧ । ପାକାର୍ଥ ପାକପାତ୍ରକୁ ଚୁଲି
Hāndi chardhā(rdhe)ibā ଉପରେ ବସାଇବା—
হাঁড়ি চড়ান हांडि चढाना 1. To set the
(ହାଣ୍ଡି ଚଡିବା—ବିଶେଷ୍ୟ ଆକାର) cooking pot on
fire ୨ । ରୁଷେଇ କରିବା, ଖାଦ୍ୟ ପାକ କରିବା;
ରାନ୍ଧିବା—2. To cook the food.

ହାଣ୍ଡି ଛଡ଼ା—ଦେ.ବ—୧ । ସୂର୍ଯ୍ୟ ଗ୍ରହଣ ଓ ଚନ୍ଦ୍ରଗ୍ରହଣ ସମୟରେ ଜ୍ୟୋତିଷ-
Hāndi chhardā ଶାସ୍ତ୍ରର ଉପଦେଶ ଅନୁସାରେ ଗ୍ରହଣ ଲାଗି-
ଯିବାଠାରୁ ମୁକ୍ତ ପର୍ଯ୍ୟନ୍ତ ନିର୍ଦ୍ଧାରିତ ସମୟ ପାକକର୍ମର ରହିତ୍ୟ
—1. The stoppage of cooking for certain period on the occasion of an eclipse.
[ଦ୍ର—ପୁରାଣ ମତରେ ରାହୁ ବା କେତୁ ଚନ୍ଦ୍ରଙ୍କୁ ବା
ସୂର୍ଯ୍ୟଙ୍କୁ ଛୁଇଁବାରୁ ଗ୍ରହଣ ହୁଏ । ରାହୁ ଓ କେତୁ ଅସୁର ବା
ଚଣ୍ଡାଳ ଥିବାରୁ ସୂର୍ଯ୍ୟ ଓ ଚନ୍ଦ୍ର ଚଣ୍ଡାଳଂଛୁଆଁ ହୁଅନ୍ତି ।
ଚନ୍ଦ୍ର ସୂର୍ଯ୍ୟ ଚଣ୍ଡାଳ ଛୁଆଁ ହେବାରୁ ଜଗତର ଲୋକେ ମଧ୍ୟ
ଚଣ୍ଡାଳ ଛୁଆଁ ହୁଅନ୍ତି । ଅତଏବ ଏପରି ଅପବିତ୍ର ଅବସ୍ଥାରେ-
ପାକପାତ୍ର ଛୁଇଁବା ବା ଖାଦ୍ୟାଦି ପାକ କରିବା

କଷ୍ଟିକ । ଏଥିଯୋଗୁଁ ପଞ୍ଜିକା ଅନୁସାରେ ଚନ୍ଦ୍ର ଗ୍ରହଣ ଲାଗିବାଠାରୁ ମୋକ୍ଷ ହେବାର ଅବ୍ୟବହିତ ସମସ୍ତ ପର୍ଯ୍ୟନ୍ତ ଶାସ୍ତ୍ରରେ 'ହାଣ୍ଡିଛଡ଼' ହେବା ବିଧାନ ଅଛି । ମୋକ୍ଷ ହେବା ପରେ ମୋକ୍ଷ ସ୍ନାନ କରି ତତ୍ପରେ ପାକହାଣ୍ଡିକୁ ସ୍ପର୍ଶ ଓ ବ୍ୟବହାର କରାଯାଏ ।]

୨ । ହାଣ୍ଡିବାହାର [ଦେଖ]—2. Handi bahara (See)

ହାଣ୍ଡିଛଡ଼ିବା—ଦେ· କ୍ରି [ହାଣ୍ଡି ଉଠିବା ଇତ୍ୟର୍ଥବୋଧକ କ୍ରିୟାରୂପ, ତାଳ, Handi chhardiba ନଡ଼ିଆ, କୌଣସି ବୃକ୍ଷର ବେକ ଭୂମିରୁ ଉପରକୁ ଉଠିଯିବା—(said of a growing palm tree)—(the neck) To become separated from the ground.

ହାଣ୍ଡି ଛୁଆଁ—ଦେ· ବି [ସଂ ଭାଣ୍ଡ+ସ୍ପର୍ଶନ]—୧ । ପରିବାରକୁ ଅସିଥିବା Handi chhuan ନବାଗତା ବଧୂର ବିବାହର ଚତୁର୍ଥ ଦିନ ପ୍ରଥମେ
বৌভাত चतुर्थीभोज ପାକ ହାଣ୍ଡିକୁ ଛୁଇଁ ପାକ କରିବା ଓ ସେହି ପକ୍ୱାନ୍ନକୁ ପରିବାରର ବ୍ୟକ୍ତିଗଣ, କୁଟୁମ୍ବ ଓ ବନ୍ଧୁମାନଙ୍କ ଭୋଜନ କରିବା ରୂପ କର୍ମ – 1. The ceremony of the newly come daughter-in-law's first cooking in the family mess on the 4th day of marriage. [ଦ୍ର—ଏହି ଉପଲକ୍ଷରେ କୁଟୁମ୍ବ ଓ ବନ୍ଧୁମାନେ ନିମନ୍ତ୍ରିତ ହୋଇ ନବବଧୂଙ୍କ ନୂତନ ପାକରେ ପକ୍ୱାନ୍ନ ଭୋଜନ କରନ୍ତି ।] ୨ । ଋତୁମତୀ ସ୍ତ୍ରୀଙ୍କର ଋତୁର ଚତୁର୍ଥ ଦିନ ଶୁଦ୍ଧସ୍ନାନ କରିବା ପରେ ପାକଶାଳାରେ ପାକ କରିବାରୂପ କର୍ମ—2. The act of a
হাণ্ডিছোঁয়া हांडीछूना menstruated woman first cooking meals after her purificatory bath on the 4th day after the men ses

ହାଣ୍ଡି ଛୁ(ଛୋ)ଇଁବା—ଦେ. କ୍ରି ( ସଂ ଭାଣ୍ଡ + ଛୁଶ୍ ଧାତୁ )—୧ । Handi chhu(chho)inba (ପରିବାରକୁ ନବାଗତା ବଧୂ) ଚତୁର୍ଥୀ ଦିନ ପ୍ରଥମେ ପାକଶାଳାରେ ପ୍ରବେଶ କରି ପାକ କରିବା——1. To cook for the first time
হাণ্ডিছোঁয়া हांडीछूना in the family-mess ( said of a newly come bride ) on the 4th day of marriage. ୨ । [ ଋତୁସ୍ନାତା ସ୍ତ୍ରୀ] ଋତୁର ଚତୁର୍ଥ ଦିନ (ବା ସ୍ଥଳବିଶେଷରେ ପଞ୍ଚମ ଦିନ) ପାକଶାଳାରେ ପ୍ରବେଶ କରି ପାକ କରିବା— 2. To cook after the menstrual period of impurity is over and after having the purificatory bath (said of a woman after her menses).

ହାଣ୍ଡି ଜଳା—ଦେ.ବି—ହାଣ୍ଡି ଦେହରେ ଥିବା କ୍ଷୁଦ୍ର ଛିଦ୍ର (ଯାହା ଖାଲି Handi jala ଅଖିକୁ ଦିଶେ ନାହିଁ, ମାତ୍ର ପାଣି ପୂରାଇଲେ ଯେଉଁ ବାଟେ ପାଣି ଝରେ—The invisible and leak'ng
বালিকাণা, हाण्डीछेद pores in some earthen pots.

ହାଣ୍ଡି ଟେଙ୍ଗ (ଙ୍ଗେ) ଡା—ଦେ· ବି—ପାକଶାଳାର ଏକ କୋଣରେ Handi tenga (nge) rda ହୋଇଥିବା ପିଣ୍ଡିରେ କରାଯାଇଥିବା ଗୋଲାକାର ଗଲା ବା ଗାତ (ଯହିଁ ଉପରେ ହାଣ୍ଡିମାନ ଥୁଆଗଲେ ତାହା ଟଳି ପଡ଼ି ନାହିଁ ବା ଅଣେଇ ହୋଇ ଯାଏନାହିଁ)—Niche or hole made in a raised platform in a corner of the cookroom to put the round-bottomed earthen pots on it, so that the pot does not list or
হাঁড়িটেঙ্গবা मोडा heel on one side.

ହାଣ୍ଡି ତେଲ(ଲା)ଣି (ତେଲୁଣି; ତେଲଣି; ପଲମ)—ଦେ. ବି — Handi tela(la)ni teluni; telani;palama) (ସମ୍ବଲପୁରର ଶବ୍ଦ)—ହାଣ୍ଡି ଓ ହାଣ୍ଡିର ମୁହଁରେ ଘୋଡ଼ାହେବାପାଇଁ ଢାଙ୍କୁଣୀ ମୃତ୍ ପାତ୍ର—An earthen pot and a pan to
তেলানি हाण्डीछांद cover its mouth.

ହାଣ୍ଡି ଧଡ଼(ଡ଼ା)ଧଡ଼(ଡ଼ା)(ଧୁଡ଼ୁଧୁଡ଼ୁ) କରିବା—ଦେ.କ୍ରି—ଏକ ସ୍ଥାନରେ Handi dhard(rda) dhard(rda) (dhurdu dhurdu) kariba ରଖାଯାଇଥିବା ଗୁଡ଼ିଏ ହାଣ୍ଡିକୁ ବଗାଣ୍ଡିବା ବା ହାଣ୍ଡିରେ ହାତ ବା ମୁହଁ ପୂରାଇବା ସମୟରେ ହାଣ୍ଡିମାନଙ୍କର ପରସ୍ପର ସହିତ ବାଜିବା ଯୋଗୁ ଧଡ଼୍‌ ଧଡ଼୍‌ ଶବ୍ଦ ଉତ୍ପାଦନ କରାଇବା—To cause the earthen pots to clash against each other and emit a 'dhard dhard' sound when some one or animal tries to grope in the dark or thrust one's hand or mouth into the pots. [ଉ—କାଳଆ ବଳଦ ଗଳରେ ! ହାଣ୍ଡି ଭୁଣେଇ ସମ୍ଭାଳଥିରୁ, ହାଣ୍ଡି ଧଡ଼୍‌ ଧଡ଼୍‌ କଲରେ—ଗିଶୁ-କଞ୍ଜନ ଗୀତ] [ଦ୍ର—ଧଡ଼ ଧଡ଼ ଶବ୍ଦ ଅପେକ୍ଷା ଧୁଡ଼ୁ(ଡ଼ୁ) ଧୁଡ଼ୁ (ଡ଼ୁ) କ୍ଷୁଦ୍ରତର ଶବ୍ଦ ଅଟେ ।]
হাড়ীধড়ধড়করা हाण्डीहडबड़ाना

ହାଣ୍ଡିଧରା—ଦେ. ବିଣ—ଯେଉଁ ବ୍ୟକ୍ତି ପରିବେଷଣାର୍ଥ ଅନ୍ନ ବ୍ୟଞ୍ଜନାଦି-Handi dhara ପୂର୍ଣ୍ଣ ହାଣ୍ଡିକୁ ଧରେ—(A person) Holding a pot (containing curry etc) in order
হাঁড়ীধরা परोसनेवाला to serve out of it.

ହାଣ୍ଡି ନଉତି (ନୌତି)—ଦେ· ବି—(ସମ୍ବଲପୁରର ଶବ୍ଦ)—ମଧ୍ୟବିଧ ହାଣ୍ଡି Handi nauti (nauti) ଓ ଅଧିକବଡ଼ ହାଣ୍ଡି—Medium sized and big earthen pots.
হাঁড়ীওগাঁডা छोटीबडीहाण्डी

ହାଣ୍ଡି ନ ଛୁଇଁବା—ଦେ.କ୍ରି—ଋତୁମତୀ ହେବା; ହାଣ୍ଡିବାହାର ହେବା— Handi na chhuinba [ଦ୍ର—ଋତୁମତୀ ସ୍ତ୍ରୀ ଋତୁସ୍ନାନ କରିବା ପୂର୍ବରୁ ରଜୋଦର୍ଶନର ୪ ଦିନ ତାଳ ପର୍ଯ୍ୟନ୍ତ ପାକ ହାଣ୍ଡିକୁ ସ୍ପର୍ଶ କରନ୍ତି ନାହିଁ] । To be in her menses.
হাঁড়ীনাছোঁয়া हाण्डीनछूना

ହାଣ୍ଡି ପରି ମୁହଁ କରିବା—ଦେ. କ୍ରି—ଭ୍ରୂକୁଟି କରିବା—
Hāṇḍi pari muhaṅ kariba To frown; to have a frowning or scowling face.
হাড়িবমতনমুখকবা हाण्डीकेजैसेमुखकरना

ହାଣ୍ଡି ପିଟା—ଦେ. ବିଣ—ଅତି କ୍ରୋଧୀ (ବ୍ୟକ୍ତି) (ଯେଉଁ ବ୍ୟକ୍ତି କ୍ରୋଧରେ
Hāndi piṭa ପାକହାଣ୍ଡି ଯାକ ପିଟିକରି ଭାଙ୍ଗି ପକାଏ)—
বদরাগী हांडी फोड़ने वाला Very angry [person].

ହାଣ୍ଡି ପିଠି—ଦେ. ବି (ସ ଭାଣ୍ଡପୃଷ୍ଠ)—ହାଣ୍ଡିର ବାହାର ପାଖ—
Hāndipiṭhi The outside or exterior of
হাঁড়িবপিঠ हांडीकेबाहार an earthen pot.

ହାଣ୍ଡି ପିଣ୍ଡି—ଦେ. ବି—ପାକଶାଳାର ଏକ କୋଣରେ ପାକହାଣ୍ଡିମାନ
Hāndi pindi ରଖିବାପାଇଁ ତେଙ୍ଗଡ଼ାମାନ ଥିବା ପିଣ୍ଡି ବା
হাঁড়িবপিঁড়ি हांडीपीड़ी ମାଟିର ବେଦ—A raised earthen platform on which earthen pots are set down in a corner of the kitchen

ହାଣ୍ଡି ପୃଥକ୍—ଦେ. ବି—ହାଣ୍ଡି ଭିନେ (ଦେଖ)
Hāndi pruthak Hāndi bhine (See)
(ହାଣ୍ଡି ପୃଥକ୍—ଗ୍ରାମ୍ୟ ରୂପ)

ହାଣ୍ଡି ପେଟ—ଦେ. ବି—ହାଣ୍ଡିର ଅଭ୍ୟନ୍ତର—
Hāndi peṭa The inside of an earthen pot.
হাঁড়ীর পেট हाण्डिकापेट (ହାଣ୍ଡି ପେଟା—ଭଣ)

ହାଣ୍ଡି ପୋଡ଼—ଦେ. ବି—କଞ୍ଚା ହାଣ୍ଡିର କୁମ୍ଭାରଶାଳରେ ଉହାରେ ପୋଡ଼ା
Hāndi porḍa ଯାଇଥିବାର ପ୍ରକାର—The manner or
হাড়িপোড় quality of an earthen pot having been
हाडिकापकाव well burnt in the potter's oven.
(ଯଥା—ଅମ ଗାଆଁ କୁମ୍ଭାରର ଉହାରେ ହାଣ୍ଡି ପୋଡ଼ ଭଲ ହୁଏ ନାହିଁ।)

ହାଣ୍ଡି ପୋଡ଼ିବା—ଦେ. କ୍ରି—କୁମ୍ଭାର ଘରେ ଉହାରେ କଞ୍ଚା ହାଣ୍ଡି-
Hāndi porḍiba ମାନ ଦେଇ ସେ ସବୁକୁ ଅଗ୍ନିଦ୍ୱାରା ଦଗ୍ଧ
হাঁড়ী পোড়া କରିବା—To burn the earthen pots in
हाँडि पकाना the potter's oven.

ହାଣ୍ଡି ଫନ୍ଦ—ଦେ. ବି—ହାଣ୍ଡିର ମୁହଁର ମୋଟା ପରିଧି—The
Hāndi phanda circular rim of an earthen pot.
হাঁড়ীর ফান্দ (ବ୍ୟ—ଏହି ଅଂଶ ହାଣ୍ଡିର ଅନ୍ୟ ଅଂଶ ଅପେକ୍ଷା
हाण्डिकाकाना ମୋଟ ଓ ଏହାକୁ ଧରି ହାଣ୍ଡିକୁ ତଳ ବା ଚୁଲି ଉପରୁ ଉଠାଇବାକୁ ହୁଏ।)

ହାଣ୍ଡି ଫୁଟା—ଦେ. ବି—୧। (ଏହା ଫୁଟ୍ ଫୁଟ୍ ଶବ୍ଦ କରେ ବୋଲି)
Hāndi phuṭa ହାଣ୍ଡି ମସଲ; ଛୁଙ୍କ ଦେବାପାଇଁ ଯାହା ଲାଗେ
সম্বরা, পাঁচফোড়ন ଉପରେ ଗ୍ଲାପିତ ହାଣ୍ଡିରେ ଘିଅ ବା ତେଲ
पाँचफोड़न ଦେଇ ସେ ତେଲ ଉତପ୍ତ ହେବାପରେ ସେଥିରେ ପକାଯିବା ସୋରିଷ, ଲଙ୍କାମରିଚ, ମେଥି, ପାନମହୁରି, କଳାଜିରା ଓ ଜୀରା ଆଦି ମସଲ—1. Mustard seed, chilly etc used in seasoning curry by throwing them into boiling oil or ghee.
୨। କଟକ। (ଦେଖ)—2. Kaṭaka (See).

ହାଣ୍ଡି ବଜା(ଜେ)ଇବା—ଦେ. କ୍ରି—ହାଣ୍ଡିରେ ଆଘାତ କରି ଶବ୍ଦ
Hāndi bajā(je) iba ଉତ୍ପାଦନ କରିବା; ହାଣ୍ଡି ଦରକ
হাণ্ডী বাজান ଫଟା, ଏହା ପରୀକ୍ଷା କରିବା ପାଇଁ ହାଣ୍ଡିର ପିଠିରେ
हाण्डि बजाना ଅଙ୍ଗୁଳିଦ୍ୱାରା ଆଘାତ କରି ତାହାଁରୁ ଶବ୍ଦ ଉତ୍ପାଦନ କରିବା—To strike an earthen pot with the palm or fingers so that it can be known from the sound whether the pot is cracked or sound.

ହାଣ୍ଡି ବାହାର—ଦେ. ବିଣ—ଋତୁମତୀ (ସ୍ତ୍ରୀ)—
Hāndi bāhāra Menstruated; in her menses.
ହାଣ୍ଡି ଭିଆର } —ଗ୍ରାମ୍ୟରୂପ
ହାଣ୍ଡି ଭାର }
ছোঁচ্‌পড়া ऋतुमती

ହାଣ୍ଡି ବାହାର ହେବା—ଦେ. କ୍ରି—(ଋତୁମତୀ ସ୍ତ୍ରୀ ଋତୁକାଳରେ ପ୍ରଥମ
Hāndi bāhāra heba ୪ଦିନ ପାକଶାଳାରେ ପ୍ରବେଶ ନ
ছোঁচপড়া କରିବା ଯୋଗୁଁ)—(ସ୍ତ୍ରୀ) ଋତୁମତୀ ହେବା—To be
ऋतुमती होना in her menses; to be in the menstrual period.

ହାଣ୍ଡି ଭଙ୍ଗା—ଦେ. ବି—୧। ହାଣ୍ଡି ଉପରେ ଯଷ୍ଟି ଆଘାତପୂର୍ବକ
Hāndi bhangā ତାହାକୁ ଖଣ୍ଡ ଖଣ୍ଡ କରିବା କର୍ମ—1.
হাঁড়ি ভাঙ্গা Breaking an earthen pot into pieces
हाण्डी भांगना by striking blows on it. ୨। ଏକପ୍ରକାର କ୍ଷୁଦ୍ର ଅକାଣ୍ଟିଆ ମାଛ—2. A kind of small fish; millers thumb; Uranidea Gobia. [ଦ୍ର—ଏମାନେ ଲମ୍ବରେ ୮।୧୦ ଅଙ୍ଗୁଳ ପର୍ଯ୍ୟନ୍ତ ବଢ଼ନ୍ତି। ଶରୀରର ଆକୃତି ତୁଳନାରେ ଏମାନଙ୍କର ମୁଣ୍ଡ ବଡ଼ ଓ ଗାଲରେ ଦୁଇଟି ଦନ୍ତୁରି କଣ୍ଟା ଥାଏ।]

ହାଣ୍ଡି ଭାଙ୍ଗିବା—ଦେ. କ୍ରି—୧। (ଲକ୍ଷଣାର୍ଥ) ଅନ୍ନାଦି ଖାଇବା ପାଇଁ
Hāndi bhāngiba ପାକଶାଳାରେ ଯାଇ ଅନ୍ନ ବା ଖାଦ୍ୟ
হাঁড়ি ভাঙ্গা କରିବା—1. (figurative) To importune
हाण्डीमांगना for food at the cooking room. ୨। (ଲକ୍ଷଣାର୍ଥ) ଅତି କ୍ରୁଦ୍ଧ ହୋଇ ଅତ୍ୟାଚାର କରିବା—2. (figurative) To commit oppression in anger. ୩। (ଲକ୍ଷଣାର୍ଥ) କୌଣସି ଗୁପ୍ତ କଥାକୁ ଉଚ୍ଚୈଃସ୍ୱରରେ ପ୍ରକାଶ୍ୟ ସ୍ଥାନରେ ପ୍ରକଟ କରିବା—3 (figurative) To publish a secret. (ଯଥା—ସେ ହାଟରେ ତାଙ୍କ ଘରକଥା ଯାଇ ହାଣ୍ଡି ଭାଙ୍ଗୁଛି।)

ହାଣ୍ଡି ଭିନେ (ନ୍ନ, ନ୍ନେ)—ଦେ. ବି—ଅଲଗା ଚୁଲୋର; ପୃଥଗନ୍ନ-
Hāndi bhine (nna, nne) ବର୍ତ୍ତିତା; ଏକାନ୍ନବର୍ତ୍ତୀ
হাঁড়ি ভিন্ন ବ୍ୟକ୍ତିମାନଙ୍କର ପୃଥଗନ୍ନ ହେବା—Separation
हाण्डी अलग in mess (of hitherto joint persons); being separate in mess.

ହାଣ୍ଡିମଙ୍ଗଳଣ(ନା) (ମଙ୍ଗ[ଙ୍ଗୁ]ଳା)—ଦେ. ବ—ବିବାହାଦିର ପୂର୍ବ ଦିନ Hāndi mangaḷana (na) (manga [ngu] ḷā) ବା ହାଁଡ଼ିମଙ୍ଗଳା ମଙ୍ଗଳକୃତ୍ୟ ଦିନ ମଙ୍ଗଳ ପାକ ନିମନ୍ତେ ଖାଦ୍ୟ ରାନ୍ଧିବା କଡ଼ାହି ପୂଜନ ପାଇଁ ପାକଶାଳାରେ ନୂଆ ହାଣ୍ଡିରେ ସିନ୍ଦୂରଆଦି ଲଗାଇ ସ୍ତ୍ରୀ ଲୋକମାନଙ୍କର ହୁଳହୁଳି ପକାଇ ପାକ ଆରମ୍ଭ କରିବା ରୂପ ମଙ୍ଗଳକର୍ମ ସ୍ତ୍ରୀ-ଆଗ୍ରର ବିଶେଷ—The ceremony of setting up a new earthen pots (after smearing vermilion on them) for cooking meals for a marriage feast.

ହାଣ୍ଡି ମଙ୍ଗୁଳିବା—ଦେ. କ୍ରି—ବିବାହାଦିରେ ପାକଶାଳାରେ ପାକ Hāndi mangujibā କରିବା କାର୍ଯ୍ୟର ଅନୁକୂଳ କରିବା ପାଇଁ ହାଁଡ଼ି ମଙ୍ଗଳା ନେତେଗୋଟି ହାଣ୍ଡିରେ ସିନ୍ଦୂର ଲଗାଇ (କେତେ- କଡ଼ାହୀ ପୂଜା କରନା ଗୁଡ଼ିଏ ଅନ୍ୟ ସ୍ତ୍ରୀଲୋକ) ହୁଳହୁଳି ପକାଇବା —To set up the first set of earthen pots with some ceremony for cooking the food for a marriage. ୨। (ଲକ୍ଷଣାର୍ଥ) [ଛୁଆଁ ଲୋକ, ଅର୍ଥାତ୍ ଯେଉଁ ଲୋକ ବାଣ୍ଡକୁ ଯାଇ ତେଣ ଆସି ଲୁଗା ପାଲଟି ନ ଥାଏ କିମ୍ବା ଯେଉଁ ଲୋକ ରାସ୍ତାରେ ପିନ୍ଧି ଶୋଇଥିବା ଲୁଗାକୁ ବଦଳ ନ ଥାଏ କିମ୍ବା ଯେଉଁ ଲୋକ ଅସ୍ପୃଶ୍ୟ ବ୍ୟକ୍ତି ବା ରଜସ୍ୱଳା ସ୍ତ୍ରୀକୁ ଛୁଇଁ ଲୁଗା ପାଲଟି ନ ଥାଏ ] ପାକ ହାଣ୍ଡିକୁ ଛୁଇଁବା—2. (figurative) To touch or lay hands on the cooking pots (said of a person who has become contaminated by touch). [ପ୍ର—ଏପରି କଲେ ପାକ ହାଣ୍ଡି ଯାକ ମାରି ହୋଇଯାଏ ।]

ହାଣ୍ଡି ମଳା—ଦେ. ବ—୧। ହାଣ୍ଡି ଡେଙ୍ଗଡ଼ା (ଦେଖ)—1. Hāndi Hāndi maḷā tengardā (See). ୨। ଅଗାଣ୍ଡିଆ ହାଣ୍ଡିକୁ ବାଁଡେ ସମତଳ ଭୂମି ଉପରେ ଥୟ କରି ରଖିବା ପାଇଁ ଭୂମିରେ ହାଣ୍ଡୀ ବିଡ଼ା ସ୍ଥାପିତ ହେବା କୁଟା, କନା, କଦଳୀପଟ ବା ଦଉଡ଼ି ଆଦିର ଗୋଲାକାର ଶୂନ୍ୟଗର୍ଭ ମୁଣ୍ଡୁଳା—2. A hollow ringed cushion (made of straw, rags, rope etc) to set round-buttomed pots stably on the ground.

ହାଣ୍ଡି ମସଲା—ଦେ. ବ—ହାଣ୍ଡି ଫୁଟା (ଦେଖ)—
Hāndi masalā Hāndi phuṭā (See)

ହାଣ୍ଡି ମାଠିଆ—ଦେ. ବ (ସହଚର ପଦ)—ହାଣ୍ଡି ଓ ଘଡ଼; ମାଟିର ପାକ- Hāndi māṭhia ଭାଣ୍ଡ ଓ ଜଳପାତ୍ର (ହାଣ୍ଡିର ମୁହଁ ବଡ଼ ଓ ହାଁଡ଼ି କଲସୀ ମାଠିଆର ମୁହଁ ସରୁ)—Earthen pots for हाण्डी कलसी cooking and narrow-necked pitchers for water.

ହାଣ୍ଡିମାର(ରୁ)—ଦେ. ବ—ଅସ୍ପୃଶ୍ୟ ବ୍ୟକ୍ତିର ପାକପାତ୍ରକୁ ଛୁଇଁବା Hāndi mārā (ru) ହେତୁ ଅଶୁଦ୍ଧ ହୋଇଥିବା ହାଣ୍ଡି— ହାଁଡ଼ିମାରା Cooking pots defiled by the touch of हाँड़िछूत an untouchable person. ବିଣ. ସ୍ତ୍ରୀ—ହାଣ୍ଡି ବାହାର (ଦେଖ)—Hāndi bāhāra (See).

ହାଣ୍ଡି ମୁହଁ—ଦେ. ବ—୧। ହାଣ୍ଡିର ଯେଉଁ ଖୋଲା ଅଂଶ ଉପରଆଡ଼କୁ Hāndi muhaṅ ଥାଏ—1. The mouth of an ହାଁଡ଼ିମୁଖ earthen pot. ୨। ହାଣ୍ଡିପରି କୃଷ୍ଣବର୍ଣ୍ଣ ଓ ଅସୁନ୍ଦର हाँडिका मुहँ ମୁହଁ—2. A face as black and ugly as an earthen pot.

ହାଣ୍ଡିମୁହାଁ—ଦେ. ବିଣ—ଯେଉଁ ବ୍ୟକ୍ତିର ମୁହଁ ହାଣ୍ଡିପରି କଳା, Hāndi muhāṅ ଫୁଲିକା ଓ ଅସୁନ୍ଦର—(a person) Having [ହାଣ୍ଡିମୁହୀଁ—ସ୍ତ୍ରୀ] a black, ugly and swollen face. ହାଁଡ଼ିମୁଖୋ हाँडिमुहाँ

ହାଣ୍ଡିରେ ଖାଇବା—ଦେ. କ୍ରି—(କନାର୍ଥକ)—ହାଣ୍ଡିରୁ ଅନ୍ନ ବ୍ୟଞ୍ଜନ Hāndire khāibā ପାତ୍ରାନ୍ତରରେ ବାଢ଼ି ନ ଆଣି ସେହି ହାଁଡ଼ି ଖାଓଯା ହାଣ୍ଡିରୁ ଗୋପନରେ ଖାଇବା—To secretly छिपाकर खाना eat rice and curry from the cooking pot (instead of taking it out on a plate). [ପ୍ର—ହାଣ୍ଡିରେ ଖାଏ, ଗୋଡ଼ରେ ପଡ଼ିଲେ ଗାଧୋଇ ଯାଏ—ପ୍ରବଚନ— ଯେଉଁ ବ୍ୟକ୍ତି ଗୋପନରେ ସ୍ୱାଚାରିର କରେ, ମାତ୍ର ଲୋକଙ୍କୁ ଦେଖାଇବା ପାଇଁ ଭଲ ଆଗ୍ରହକନ୍ତି ହୁଏ, ତାହା ଦେଖି ଏହି ପ୍ରବଚନ ପ୍ରଯୁକ୍ତ ହୁଏ ।]

(ଅମୁକର) ହାଣ୍ଡିରେ ଚାଉଳ ପକା(କେ)ଇବା—ଦେ' କ୍ରି—(ଲକ୍ଷଣାର୍ଥ) Hāndire chāuḷa pakā(ke)ibā (କୌଣସି ବାଳିକା) ପତି ପତ୍ନୀ ନିର୍ବନ୍ଧଥାକା କୌଣସି ପୁରୁଷକୁ ବିବାହିତା ହେବା जहाँ भावी था वहाँ होना ପାଇଁ ପ୍ରଜାପତିଙ୍କ ଦ୍ୱାରା ପୂର୍ବରୁ ସ୍ଥିରକୃତ ହୋଇଥିବା—(figurative) To have one's rice thrown in the cooking pot of another (said of a girl going to be married to a particular man.) [ପ୍ର—ହିନ୍ଦୁମାନଙ୍କର ବିଶ୍ୱାସ ଏହି ଯେ, ବିବାହସମ୍ବନ୍ଧ ମନୁଷ୍ୟକୃତ ନୁହେଁ; ତାହା ପ୍ରଜାପତିଙ୍କ ଘଟସ୍ଥ ଓ ତାହା କନ୍ୟାର ଜନ୍ମ ପୂର୍ବରୁ ବିଧାତା ସ୍ଥିର କରି ଥାଆନ୍ତି । ବିଧାତାଙ୍କ ନିୟମ ଅନୁସାରେ ଯେଉଁ କନ୍ୟା ତାହାର ଚାଉଳ ବା ଖାଦ୍ୟ ଯେଉଁ ବରର ହାଣ୍ଡିରେ ବା ପାକ- ହାଣ୍ଡିରେ ପୂର୍ବ ଜନ୍ମରେ ପକାଇଥାଏ, ସେ କନ୍ୟା ଅବଶ୍ୟ ସେହି ବରକୁ ବିବାହ କରେ । ଏଥିପାଇଁ ଲୋକେ କହନ୍ତି 'ସେ ପିଲିଟି ଅମୁକର ହାଣ୍ଡିରେ ଚାଉଳ ପକାଇଛି' ଅର୍ଥାତ୍ ସେ କନ୍ୟାଟି ଏହି ବର ଛଡ଼ା ଅନ୍ୟ କୌଣସି ବରକୁ ବିବାହିତା ହେବ ନାହିଁ ।]

ହାଣ୍ଡି(ଣ୍ଡୋ)ଲ—ଦେ. ବ (ଦ୍ୱ)—ହାଣ୍ଡୁଲ (ଦେଖ)—
Hāndi (ṇdo)l Hānd-l (See)

ହାଣ୍ଡିଶାଳ—ଦେ. ବ—(ହ ଣ୍ଡି ଓ ଶାଳା)—ରନ୍ଧଣା ଘର; ପାକଶାଳା, Hāndi sāla ରୁଷେଇ ଘର—Cookroom; kitchen. ହେଁସେଲ,ହାଁଶାଳ [ପ୍ର—ସିତାକୁ ଅଲ୍ଲୁଛିର,ମାଏ ହାଣ୍ଡିଶାଳ—ଦେଇ

ଟୋଇଘର ଗୃହ ଦେଖିବ ଯେ ହେବ କୁଶଳ । କୃଷ୍ଣସିଂହ ମହାଭାରତ ଉଦ୍‌ଯୋଗ ]

ହାଣ୍ଡିସଜ—ଦେ. ବ—ପାକଶାଳାରେ ଭାତ ଡାଲି ତରଅଣ ଆଦି ରନ୍ଧନ ଉକ୍ତ
Hāndi saja ସାମଗ୍ରୀ ରକ୍ଷା ହେବା ପାଇଁ ବ୍ୟବହୃତ ଏକ ସେଟ୍
हाँड़िसाज ବଡ଼ ଓ ସାନ ହାଣ୍ଡି—A set of earthen pots (big and small) used for cooking various kinds of food (rice, dal and curry etc).
हांडीकासेट

ହାଣ୍ଡି ସ(ଶ)ରା—ଦେ. ବ (ସହଚର ଶବ୍ଦ) (ସ, ଭାଣ୍ଡ+ସରାବ; ଶରାବ)
Hāndi sa(śa)rā ହାଣ୍ଡି ଓ ଶୋଷ୍ଠ ପଲମ—
हाँड़ि सरा हाण्डी सराइ Earthen pot and its small cover

ହାଣ୍ଡି ସରାଇ—ପ୍ରାଦେ (ସମ୍ବଲପୁର) ବ (ସହଚର ଶବ୍ଦ)—ହାଣ୍ଡି କୁଣ୍ଡେଇ,
Hāndi sarāi ନାନାପ୍ରକାର ମୃତ୍ତ ଭାଜ—Various earthenwares.

ହାଣ୍ଡି ହସିବା—ଦେ. ବ—ଜଳନ୍ତା ନିଆଁ ଉପରେ ବସିଥିବା ହାଣ୍ଡିର
Hāndi hasibā ପିଠିରେ ବା ଗାଣ୍ଡିରେ ଲଗିଥିବା କଳାରେ
हाँड़िहासा ମଳା ମଳା ହୋଇ ନିଆଁ ଲଗିବା ( ତାହା ହାଣ୍ଡିର ହସିବା ସଙ୍ଗେ ସଙ୍ଗେ ତୁଳନା କରାଯାଏ )—
हांडीहंसना The soots on the back of a cooking pot becoming ignited in patches while the pot is on a brisk fire. [ଦ୍ର—ପଲଡାଃ ପାକାର୍ଥ ବ୍ୟବହୃତ ହାଣ୍ଡିର ପିଠି ଅଧରୁ କଳାଯାକ ଉତ୍ତମରୂପେ ପୂର୍ବରୁ ଧୂଆ ହୋଇ ନ ଥିଲେ ତାହା ଜଳନ୍ତା ନିଆଁ ଉପରେ ବସିଲାବେଳେ ସେ କଳାର କଣିକା-ମାନଙ୍କରେ ନିଆଁ ଲାଗି ତାହା ନିଆଁରେ ଦାଉ ଦାଉ କରେ । ଲୋକେ ଏହାକୁ 'ହାଣ୍ଡି ହସିବା' କହନ୍ତି ଓ ଯାହା ଘରେ ହାଣ୍ଡି ହସିବା ଦେଖାଯାଏ, ସେହି ପରିବାରରେ ଶୀଘ୍ର ବିବାହାଦି କୌଣସି ଶୁଭାନୁଷ୍ଠାନ ଘଟିବ ବୋଲି ଲୋକେ ବିଶ୍ୱାସ କରନ୍ତି ।]

ହାଣ୍ଡି ହାଣ୍ଡି—ଦେ. କ୍ରି. ବିଣ ଓ ବିଣ—ହାଣ୍ଡିକା ହାଣ୍ଡି (ଦେଖ)—
Hāndi hāndi Hāndikā hāndi (See)

ହାଣ୍ଡୁଆ—ପ୍ରାଦେ (ଗଡ଼ଜାତ ଓ ସିଂହଭୂମି) ବ—ବାଉଁଶ କରଡ଼ରେ
Hānduā ପ୍ରସ୍ତୁତ ବ୍ୟଞ୍ଜନ ବିଶେଷ—A kind of curry prepared from tender shoots of bamboo. [ଦ୍ର—ବାଉଁଶ କରଡ଼ ଚୂନା ଚୂନା ହୋଇ କଟାଯାଇ ଗୋଟିଏ ମାଟିଆ ହାଣ୍ଡିରେ ରଖାଯାଏ ଓ ତହିଁରେ ଦହି ଗୋଳା ହୁଏ । ଦହି ଗୋଳା ହୋଇଥିବା ଦ୍ରବ୍ୟକୁ କରଡ଼ ଓ ତାହା ଶୁଖିଗଲେ ତାକୁ ହାଣ୍ଡୁଆ କହନ୍ତି; ଏହା ଚିରକାଳ ପାଇଁ ରକ୍ଷା ହୁଏ ।]

ହାଣ୍ଡୁଲା ମହି(ଇ)—ପ୍ରାଦେ (ଗଞ୍ଜାମ) ବ—କୋଳମଇ (ଦେଖ)—
Hāndulā mahi(i) Kolimai (See).

ହାଣ୍ଡୋଲା—ଦେ. ବ—ଗ୍ରାମଦେବତାମାନଙ୍କ ପାଇଁ କୁମ୍ଭାରଙ୍କ
Hāndolā ଦ୍ୱାରା ପୋଡ଼ାମାଟିର ଶୋଷ୍ଠ ମନ୍ଦିର—A small burnt earthen temple for vilage Deities.

ହାତ—ଦେ ଅ—୧ । (ବାରଣାର୍ଥକ; ନିଷେଧାର୍ଥକ) ଧତ୍; ଧାତ୍—
Hāt 1. Interjection, used in prohibiting
ଧାଽ, ଧେଽ हत् or preventing. ୨ । ଅସନ୍ତୋଷସୂଚକ—2. interjection, used in expressing dissatisfaction. ୩ । ହାତ୍ ହାତ୍ [ଦେଖ]—Hāt Hāt (See). ପ୍ରାଦେ [ସମ୍ବଲପୁର] ଅ—ଅବଜ୍ଞାର୍ଥକ—ଦୂର୍—Fie.

ହାତ୍ ଉପର୍—ଦେ. ବ [ଯୁବକ ସ୍ୱାଧୀନାମଙ୍କ ପ୍ରବର୍ତ୍ତିତ ଡ୍ରିଲ୍‌ସମ୍ବନ୍ଧୀୟ
Hāt-upar ଆଦେଶ ବଚନ) ହାତ ଉପରକୁ ଉଠାଅ—(a word of drill recently introduced) Hands up

ହାତ୍‌କମର୍—ଦେ. ବ (ଯୁବକ ସ୍ୱାଧୀନାମଙ୍କ ପ୍ରବର୍ତ୍ତିତ ଡ୍ରିଲ୍‌ସମ୍ବନ୍ଧୀୟ
Hāt-kamar ଆଦେଶବଚନ)—କମର ଉପରେ ହାତ ରଖ-(a word of drill) Hands hip !

ହାତ୍‌ଛନ୍ଦ୍—ଦେ. ବ [ଯୁବକ ସ୍ୱାଧୀନାମଙ୍କ ପ୍ରବର୍ତ୍ତିତ ଡ୍ରିଲ୍‌ସମ୍ବନ୍ଧୀୟ
Hāt-chhand ଆଦେଶବଚନ]—ଏକ ହାତକୁ ଅନ୍ୟ ହାତଦ୍ୱାରା ଛନ୍ଦିଦିଅ—(drill) Hands-clasp !

ହାତ୍‌ଛାଡ଼୍—ଦେ. ବ (ଯୁବକ ସ୍ୱାଧୀନାମଙ୍କ ପ୍ରବର୍ତ୍ତିତ ଡ୍ରିଲ୍‌ସମ୍ବନ୍ଧୀ,
Hāt-chhārd ଆଦେଶବଚନ)—ହାତକୁ ତଳକୁ ଝୁଲାଅ-(drill) Hands down !

ହାତ୍‌ଡ଼ି—ପ୍ରାଦେ (ସମ୍ବଲପୁର) ବ—ହାତୁଡ଼ି—
Hāt-rdi Hammer.

ହାତ୍ ତେରି[ତେରିକା(କି,କେ)]—ଦେ.ଅ—ଧତ୍ ତେରି । [ଅସନ୍ତୋଷ ବା
Hāt-teri(terika[ki;ke) ଘୃଣାର୍ଥକ] ଛିଃ !—
धात्‌तेरि धत्‌तेर Interjection used in expressing disgust or hatred.

ହାତ୍(ଥ୍)ରସ୍—ଦେ. ବ [ନାମ]—ଇଷ୍ଟ ଇଣ୍ଡିଅନ୍ ରେଲ୍‌ୱେର
Hāt.(th-)ras କଲିକତାରୁ ଦିଲ୍ଲୀ ବାଟେ ପଞ୍ଜାବକୁ
हातरस हथरस ଯାଇଥିବା ରେଳ ଲାଇନ୍‌ର ଗୋଟିଏ ଷ୍ଟେସନ—Hathras; a junction in the East-Indian-Railway main line from Calcutta to the Punjab, from where a branch line goes towards Mathurā and another towards Bereli. ( ଦ୍ର—ଏହା ଯୁକ୍ତପ୍ରଦେଶର ଅଲିଗଡ଼ ଜିଲ୍ଲାର ଗୋଟିଏ ବାଣିଜ୍ୟକେନ୍ଦ୍ର ନଗର । ଏହା ଆଗ୍ରାର ଉତ୍ତରକୁ ୨୯ ମାଇଲ୍ ଓ ଅଲିଗଡ଼ର ଦକ୍ଷିଣକୁ ୨୧ ମାଇଲ୍ ଦୂର । ଏଠାରୁ ମଥୁରାକୁ ଗୋଟିଏ ଛୋଟ ଶାଖାଲାଇନ୍ ଓ ବେରଲିକୁ ଅନ୍ୟ ଗୋଟିଏ ଲାଇନ୍ ବାଟେ ଯିବାକୁ ହୁଏ । ଏଠାରେ ଗଙ୍ଗା ନଦୀରୁ ଅଲିଗଡ଼କୁ ଖୋଳା ହୋଇଥିବା କେନାଲ ଅଲିଗଡ଼ ରାସ୍ତାକୁ ଭେଦ କରିଅଛି ।]

ହାତ୍‌ଲି—ପ୍ରାଦେ ( ସମ୍ବଲପୁର ) ବି—ଗ୍ରୀଷ୍ମକାଳରେ ଅଳ୍ପ ଜଳ ଥିବା
Hāt-li ନଦୀଗର୍ଭରେ ଡଙ୍ଗା ଚଳାଇବାକୁ ଯଥେଷ୍ଟ ଗଭୀର ପାଣି ନ ଥିଲେ, ନଦୀଗର୍ଭକୁ ଖୋଳିବା ପାଇଁ ବ୍ୟବହୃତ କାଠର କୋଡ଼ ବା ଫାଉଡ଼ା—A wooden spade for digging river-beds where the depth of water is too shallow for boats to ply during summer.

ହାତ୍‌ଲୁଭି—ପ୍ରାଦେ (ସମ୍ବଲପୁର) ଭଣ ଓ ବି—ଛୁଟିକା ଚୋର—
Hāt-lubhi Pilfererer.

ହାତ୍‌ଶା—ଦେ. ବି—ହତ୍‌ଶା (ଦେଖ)—
Hāt-śā Hat-śā (See)

ହାତ୍ ହାତ—ଦେ. ଅ—ବାରଣାର୍ଥକ ଧ୍ୱନି; ବିରାଡ଼ି, କୁଆ, କୁକୁର,
Hāt hāt ଗୋରୁ ଆଦି କୌଣସି ଖାଦ୍ୟପଦାର୍ଥ
ଖେଦେ‌ଖେଦେ ହତ୍‌ହତ୍ ଖାଇବାକୁ ଉପକ୍ରମ କଲେ ତାକୁ ଘଉଡ଼ାଇବା ପାଇଁ ଉଚ୍ଚାରିତ ଧ୍ୱନି—Interjection used in driving or scaring away a cat, dog or cattle setting upon something to eat.

ହାତ—ଦେ. ବି (ସଂ. ହସ୍ତ; ପ୍ରା. ହତ୍ଥ)—୧ । ହସ୍ତ; କର; ଭୁଜ—
Hāta 1. Hand. ( ଦ୍ର—କହୁଣିଠାରୁ ମଣିବନ୍ଧ (କଚଟି) ପର୍ଯ୍ୟନ୍ତ ଅଂଶକୁ ପ୍ରକୋଷ୍ଠ ଓ ଖୁଆଠାରୁ ଅଙ୍ଗୁଠି ଅଗ ପର୍ଯ୍ୟନ୍ତ ଅଂଶକୁ ହାତ ବୋଲଯାଏ ।

ସାଧାରଣତଃ ଖୁଆଠାରୁ ଅଙ୍ଗୁଠି ଅଗ ପର୍ଯ୍ୟନ୍ତ ଅଂଶକୁ ଲୋକେ ହାତ ବୋଲି କହନ୍ତି; କିନ୍ତୁ କହୁଣିଠାରୁ ଅଙ୍ଗୁଠି ଅଗ ପର୍ଯ୍ୟନ୍ତ ଅଂଶ ହାତ ବା ହସ୍ତ ଅଟେ ।

ହାତର ଭିନ୍ନ ଭିନ୍ନ ଅଂଶର ନାମ । ଯଥା—ଅଙ୍ଗୁଠି ବା ଅଙ୍ଗୁଳି, ପଞ୍ଜା ବା ପଞ୍ଝା, ନଖ ବା ଲେଞ୍ଜୁ, ପାପୁଲି ବା ପଇଠ, ଗଣ୍ଠୁଷ, କଚଟି ବା ମଣିବନ୍ଧ, ହାତଗଣ୍ଠି (କୁର୍ଚ୍ଚି, ବଙ୍କା, କବଜା), ହାତ ଭଣ୍ଡା, କହୁଣି, ବାହା ବା ବାହୁ, ଖୁଆ (ବା ଢେଙ୍ଗା ବା ହାତଠୁଆ), କାନ୍ଧ, ମୁଠା ।

ହାତର ଭିନ୍ନ ଭିନ୍ନ ଅଂଶରେ ପିନ୍ଧାଯିବା ଅଳଙ୍କାର ମାନଙ୍କର ନାମ ଯଥା—

ଅଙ୍ଗୁଠିରେ—ମୁଦି, କରପୃଷ୍ଠରେ—ହାତପଦ୍ମ; କଚଟି ବା ମଣିବନ୍ଧରେ—ଖଡ଼ୁ, କଳଅର ବା କଳଅତ, ପଇଞ୍ଚି ବା ପଇଞ୍ଚି, ଶିକୁଳି, ବଟଫଳ, ଅଭୁଲ ଓ ( ଲୁହାର ) ତାରଣି;

ହାତର ଭଣ୍ଡାରେ—ଚୁଡ଼ି, କାଚ (ଧାତୁନିର୍ମିତ ବା କାଚର ସରୁ ସରୁ ପଟି);

ବାହୁରେ—ବାଜୁ ବା ବାଜ, ବାଜୁବନ୍ଧ ବା ବାହୁଟି, ବାହଡ଼େଉଁରିଆ ବା ବାହାଡ଼ଉଁରି, ବନ୍ଦ, କପୂରବାଳିଆ, ତାଡ଼, ରତ୍ନଣିଆ ।

ହାତର ଭିନ୍ନ ଭିନ୍ନ ଅଂଶଦ୍ୱାରା ପ୍ରହାରର ନାମ ଯଥା—

୧ । ଗୋଟିଏ ଅଙ୍ଗୁଠି ଦ୍ୱାରା—ଠାକରା, ଥୁ(ଥୋ)ପା, ଥୁ(ଥୋ)ପି, ଟୁକର ବା ଠୋକର, କଣ୍ଡ; ଦୁଇଟି ଅଙ୍ଗୁଠି ଦ୍ୱାରା ମାଂସକୁ ଜୋରରେ ଚିପିବା.=ଚିମୁଟା, ଚିମୁଟି; ବୁଢ଼ାଅଙ୍ଗୁଠି ଓ ବଙ୍କୀକୃତ ତର୍ଜ୍ଜନୀଅଙ୍ଗୁଠି ଦ୍ୱାରା ଚିମୁଟାର ନାମ ମୁଣ୍ଡିଆ ।

୨ । ଅଙ୍ଗୁଠି ସମେତ ବିସ୍ତୃତ କରତଳ ଦ୍ୱାରା (ସଂ. ଚପେଟ ) ଧୀରରେ ଆଘାତ—ଥାପଡ଼ା, ଚଟକଣି, ଗୁପୁଡ଼ ।

ଜୋରରେ ଆଘାତ—ଗୁମୁଡ଼ା, ଗୁପୋଡ଼ା ବା ଜାବଡ଼ା, ଚଟକଣା ।

୩ । ପାର୍ଶ୍ୱୀକୃତ କରତଳ ଦ୍ୱାରା ଧୀର ଆଘାତ=ଫୁଟୁକ ।

୪ । ବୃଦ୍ଧାଙ୍ଗୁଷ୍ଠ ବା ମୁଠାଦ୍ୱାରା ଆଘାତ—
(କ) ମୁଠାର କାଣି ଅଙ୍ଗୁଠି ପାଖ ଦ୍ୱାରା—ଢିଧା,
(ଖ) ମୁଠା ହୋଇଥିବା ଅଙ୍ଗୁଠିମାନଙ୍କ ପୃଷ୍ଠ ଦ୍ୱାରା— ଭୁସା, ଭୁଷି;
(ଗ) ମୁଠାର ବୁଢ଼ା ଅଙ୍ଗୁଠି ପାଖ ଦ୍ୱାରା—ମୁଥି;
(ଘ) ମୁଠାର ବୁଢ଼ା ଅଙ୍ଗୁଠି ପାଖ ଦ୍ୱାରା ମୁହଁରେ ଆଘାତ—ମୁର୍କି ।

୫ । ବିସ୍ତୃତ କରତଳ ବା ପଞ୍ଝା ଦ୍ୱାରା ଅନ୍ୟର ବିସ୍ତୃତ ଅଙ୍ଗୁଠିମାନଙ୍କୁ ଚପିବା— ପଞ୍ଜା, ପଞ୍ଝା ।

୬ । ଲେଞ୍ଜ ଦ୍ୱାରା ଠେଲା ଆଘାତ—ଲେଞ୍ଜା ।

୭ । (କ) ବୁଢ଼ା ଅଙ୍ଗୁଠି ଓ ତର୍ଜ୍ଜନୀ ବା ମଧ୍ୟ ଅଙ୍ଗୁଠିକୁ ବିସ୍ତୃତ କରିବା ଦ୍ୱାରା ରଚିତ ଅର୍ଦ୍ଧଚନ୍ଦ୍ର ଦ୍ୱାରା ବେକକୁ ପଛଆଡ଼ୁ ଠେଲା—ଗଲଥା,
(ଖ) ଏହିପ୍ରକାରେ ବେକର ଅଗଆଡ଼ୁ ବା ତଣ୍ଟିଆଡ଼ୁ ଧକ୍କା । – ତଣ୍ଟିଆ ।

୮ । କହୁଣିଦ୍ୱାରା ଠେଲା—କହୁଣିଆ, କହୁଣୀ ।

୯ । କାନ୍ଧ ଓ ଭୁଜ ଦ୍ୱାରା ଠେଲା—ଧକ୍କା ।

ଏହା ଛଡ଼ା ହାତର ଅଙ୍ଗୁଠିମାନ ଦ୍ୱାରା କାନମୋଡ଼ା କାନମୋଡ଼ା, ଚୁଟିଟଣା, ବାଳଧରା, ଆଖିରେ ଅଙ୍ଗୁଠି ଗେଞ୍ଜିବା, ଗୁହ୍ୟଦ୍ୱାରରେ ଅଙ୍ଗୁଳି ମାରିବା (ଅଙ୍ଗୁଳି) ଇତ୍ୟାଦି ଆଘାତ କରାଯାଏ ।

ହାତ ଶବ୍ଦଯୁକ୍ତ ପ୍ରବାଦ,ନ୍ୟାୟ, ପ୍ରବଚନ ଆଦି-ଯଥା—
୧ । ହାତରେ ଶଙ୍ଖା, ଦର୍ପଣ ଯାଏ କାହିଁ ?—ନ୍ୟାୟ ।
୨ । ସୁନାମୁହଁଆ ହାତରୁ ଠାକୁରାଏ ଖାଇଲେ ଗଙ୍ଗାସ୍ନାନ ଫଳ ପାଇ—ଭଗ (ବ୍ୟଙ୍ଗ)
୩ । ହାତରେ ନ ମାରି ଭାତରେ ମାରିବା—ନ୍ୟାୟ
୪ ହାତ ପଶୁ ପଶୁ ବାହା ପଶିବା—ନ୍ୟାୟ
୫ । ହାତରୁ ଖାଇ ଘୋଡ଼ା ଅଣରେ ଡେଇଁବା—ନ୍ୟାୟ
୬ । (ଟେକା) ହାତରୁ ଖସିଲେ ଅଣବାହୁଡ଼—ନ୍ୟାୟ
୭ । ଡେବର ହାତର ପାପ ଖାଇବ ହାତକୁ ଲାଗେନାହିଁ —ନ୍ୟାୟ

୮ । ଏ ହାତ କଥା ସେ ହାତକୁ ଅଗୋଚର—ନ୍ୟାୟ
୯ । ଏକ ହାତ ଅମୃତ ଭୁଞ୍ଜୁଛି, ଏକ ହାତ ନରକ ଘୋଟୁଚି—ନ୍ୟାୟ ।
୧୦ ଏହା ହାତରେ ତାଳ ବାଜେ ନାହିଁ—ନ୍ୟାୟ
୧୧ । ହାତ ଅଲସେ କଷ୍ଟବଢ଼ା—ନ୍ୟାୟ
୧୨ । ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଇବା—ନ୍ୟାୟ
୧୩ । ହାତରେ ପାଞ୍ଚ ମଙ୍ଗଳବାର—ନ୍ୟାୟ ।]

୨ । ୨୪ ଅଙ୍ଗୁଳ ପରିମାଣ ବିଶେଷ—2. Cubit; a unit of measure of the breadth of 24 fingers.

[ଦ୍ର—ଲୁଗା ଆଦିରେ କହୁଣିର ଅଗଠାରୁ ମଝି ଅଙ୍ଗୁଳିର ଅଗ ପର୍ଯ୍ୟନ୍ତ ବିସ୍ତୃତ କରି ମାପିବା ଅଂଶକୁ ବା ଦୈର୍ଘ୍ୟକୁ ଏକହାତ ବୋଲଯାଏ ଓ ହାତର ଅଙ୍ଗୁଳି-ମାନଙ୍କୁ ମୁଠା କରଦେଇ ମାପିଲେ କହୁଣିର ଅଗଠାରୁ ମୁଠା ହୋଇଥିବା କାଣି ଅଙ୍ଗୁଳିର ମଝି ଟିକ ପର୍ଯ୍ୟନ୍ତ ଦୈର୍ଘ୍ୟକୁ ମୁଠୁଣି ବୋଲଯାଏ । ଏକହାତ=୨୪ଅଙ୍ଗୁଳ= ୧୮ ଇଞ୍ଚ୍=୨ଗୁଣ୍ଡ । ଏକ ମୁଠୁଣି=୧୮ ଅଙ୍ଗୁଳ= ୧½ ଗୁଣ୍ଡ । ୪୦୦୦ ହାତ=୧ କୋଶ]

୩ । ଶିଳ୍ପୀର କୃତୀ ହସ୍ତ; ହାତୁ—3. The skilful hand of an artist manufacture; art. (ଯଥା—ଏହା ଗୋବିନ୍ଦହାତର ପାଲିସ୍ କାମ)

୪ । ଅଧୀନତା—4. Control. (ଯଥା—ଏ କଥାରେ କାହାର ହାତ ନାହିଁ) ୫। ଶକ୍ତି; ବଳ; କାର୍ଯ୍ୟକାରକତ୍ୱ; କ୍ଷମତା—5. Power; agency; potency. (ଯଥା—ତା ହାତରେ ଏ କାମ ହୋଇ ପାରବ ନାହିଁ) ୬। କର୍ମରେ ଦକ୍ଷତା; କୁଶଳତ୍ୱ—6. Skill. (ଯଥା—ଭଲ ହାତ ; ଓସ୍ତାଦହାତ ୭ । ଖେଳାଳମାନଙ୍କର ଥରେ ଖେଳ; ଖେଳର ଥର; ଦାଆ—7. Playing of a game once; one time. (ଯଥା—ଅସିଲ, ହାତେ ତାସ ଖେଳବା) ୮ ଲୁଗାର ଅସ୍ତିନ୍ (ଲୁଗାର ଯେଉଁ ଅଂଶକୁ ପିନ୍ଧାଳଙ୍କ ହାତ ଅଧିକାର କରିଥାଏ)—8. Sleeve of a coat or shirt. ୯ । ଅଧିକାର; ଦଖଲ—9. Possession. (ଯଥା—ଏତେ ଧନେ ଏ ସମ୍ପତ୍ତି ମୋ ହାତକୁ ଆସିଲା) ୧୦। ସମ୍ପର୍କ—10. Connection. ୧୧ । ପ୍ରଭାବ—11. Influence. ବିଣ—୧ । ହାତରେ ପିନ୍ଧ ଯିବା—1. Worn on the hand. (ଯଥା—ହାତମୁଦି) ୨ । ଶିଳ୍ପୀର ହସ୍ତ ରଚିତ—2. Manufactured by. (ଯଥା—ଗେବ ହାତ କାମ) ୩ । ହାତରେ ଥିବା; ହସ୍ତ ସମ୍ବନ୍ଧୀୟ—3. Relating to the hand. (ଯଥା—ହାତ ଅଙ୍ଗୁଠି)

**ହାତ ଅକ୍ଷର**—ଦେ. ବି (ସଂ. ହସ୍ତ+ଅକ୍ଷର)—୧ । କୌଣସି ବ୍ୟକ୍ତିଙ୍କ
Hāta akshara ହସ୍ତାକ୍ଷର—1. Any person's hand-writing. ୨ । ହସ୍ତଲିଖିତ ଲେଖା—2 Manuscript writing (as opposed to printed matter.
হাতেরঅক্ষর हस्ताक्षर

**ହାତ ଅପହଞ୍ଚ**—ଦେ. ବି—୧ । କୌଣସି ବସ୍ତୁର ହାତ ନ ପାଇବା
Hāta apahañcha ସ୍ଥାନରେ ଅବସ୍ଥିତି—1 The position of any thing at a place which can not be reached by the hands; being out of the reach of the hands. ୨ । ଧନାଦି ହସ୍ତଗତ ନ ହେବା ଅବସ୍ଥା—2. The state of a thing not reaching one hands.
নাগালেরবাহির हाथअपहुंच

**ହାତ ଅଲସ**—ଦେ. ବି—(ସଂ. ହସ୍ତ+ଆଲସ୍ୟ)—୧ । ହସ୍ତର ଆଲସ୍ୟ
Hāta alasa—1. The idleness of the hand. (ଯଥା, ହାତ ଅଲସେ କଷ୍ଟ ବଢ଼ା) ୨ । ଅଲସୁଆ
হাতের আলস্য
हाथ आलस ଯୁକ୍ତ ବ୍ୟକ୍ତିର ହସ୍ତ—2. The hand of an idle person.

**ହାତ ଅଙ୍ଗୁଠି(ଳି)**—ଦେ. ବି—(ସଂ. ହସ୍ତ+ଅଙ୍ଗୁଳି)—ହସ୍ତର ଅଙ୍ଗୁଳି
Hāta āṅguṭhi(ḷi) —The fingers of the hand.
হাতের আংটি [ଦ୍ର—ଏମାନଙ୍କର ନାମ ଯଥା-୧ । ବୁଢ଼ା ଅଙ୍ଗୁଠି—
हाथ आंगुठी ସଂ. ଅଙ୍ଗୁଷ୍ଠ; ଇଂ. Thumb.) ୨ । ତର୍ଜ୍ଜନୀ ଅଙ୍ଗୁଠି (ବିପରୀତ—ଗୋଡ଼ ଅଙ୍ଗୁଠି[ଳି]) (ସଂ. ତର୍ଜ୍ଜନୀ; ଇଂ. Index finger). ୩ । ମଝି ଅଙ୍ଗୁଠି (ସଂ. ମଧ୍ୟମା; ଇଂ. Middle finger). ୪ । ପରିବା ମୁଦି ଅଙ୍ଗୁଠି (ସଂ. ଅନାମିକା; ଇଂ Ring finger.) ୫ । କାଣି ଅଙ୍ଗୁଠି ( ସଂ. କନିଷ୍ଠା ଇଂ. Little finger.)

**ହାତ ଉଚ୍ଚ(ଚା, ଚେ, ଚ୍ଚେ, ଞ୍ଚା, ଞ୍ଚେ)ଇବା**—ଦେ. କ୍ରି—କୌଣସି
Hāta ucha (chchā, che, chche, ñchā, ñche)ibā
হাত তোলা ବ୍ୟକ୍ତିକୁ ପ୍ରହାର କରିବା ପାଇଁ ହାତକୁ ଉପରକୁ
हाथ उठाना ଉଠାଇ ମାରିବାକୁ ଉଦ୍ୟତ ହେବା—To lift one's hand to strike a person.

**ହାତ ଉଚ୍ଛୁଳା**—ପ୍ରାଦେ (ଚଉଡ଼କାଢ) ବି ଓ ବିଣ—ଏକ କାର୍ଯ୍ୟରେ ବନ୍ଦ
Hāta uchhulā ରହିବା ଯୋଗୁଁ ଅନ୍ୟ କାର୍ଯ୍ୟ କରି ନ ପାରିବା, ହାତ ବାନ୍ଧି ରହିବା—Being engaged in a work, so as not to be able to put one's hands to any other work. ଦେ. ବି—କୌଣସି ବସ୍ତୁ ପାଇବା ପାଇଁ ଅଳି—Importunity for getting something.

**ହାତ ଉଠା(ଠେ)ଇବା**—ଦେ. କ୍ରି—୧ । ନମସ୍କାର ବା ସଲାମ୍ କରିବା
Hāta uṭhā (ṭhe)ibā ପାଇଁ ହାତ ଟେକିବା—1. To
হাত উঠান raise one's hand to make obeisance. ୨ ।
हाथ उठाना କୌଣସି ବ୍ୟକ୍ତିକୁ ମାରିବା ବା ପ୍ରହାର କରିବା—2. To strike a person. ୩ ।ହାତ ଉଚ୍ଚାଇବା (ଦେଖ) 3. Hāta uchāibā (See) ୪ । ସଭା ସମିତିରେ ଉପସ୍ଥିତ ବ୍ୟକ୍ତିମାନଙ୍କର କୌଣସି ଉପସ୍ଥାପିତ ପ୍ରସ୍ତାବ ସମ୍ବନ୍ଧେ ଜନନତର ଅନୁମତ ବା ପ୍ରତିକୂଳ ମତ ପ୍ରକାଶ

କରିବା ଉପଲକ୍ଷରେ ନିଜ ନିଜର ଗୋଟିଏ ହାତକୁ ଉପରକୁ ଟେକିଦେବା (ଏପରି କଲେ ଟେକା ହୋଇଥିବା ହାତମାନଙ୍କ ସଂଖ୍ୟା ଗଣନା କରଯାଇ ଏ ପ୍ରସ୍ତାବର ପକ୍ଷରେ ବା ବିପକ୍ଷ
হাত ওঠান, হাত তোলা କେତେଜଣ ଅଛନ୍ତି, ତାହା ସହଜରେ ଜଣାପଡ଼େ—To raise one's hand in voting at a meeting.

ହାତ ଉଧାର(ରି)—ଦେ.ବି—ଅଳ୍ପ ସମୟ ସକାଶେ ଅନ୍ୟଠାରୁ ମୌଖିକ
Hāta udhāra(ri) କଥାବାର୍ତ୍ତାରେ ନେବା ଋଣ—A
হাতকবজা, হাতফিরি short term loan on verbal
हाथउधार promise to pay. ଦେ. ବିଣ—ଅଳ୍ପ ସମୟ ସକାଶେ ମୌଖିକ ଚୁକ୍ତିରେ ଋଣ ନିଆ ଯାଇଥିବା (ଧନ) —(amount) Borrowed for a shrot term on verbal promise.

ହାତ ଏଡ଼ିବା[ଏଡ଼ା(ଡେ)ଇବା]—ଦେ. କ୍ରି—କୌଣସି ବ୍ୟକ୍ତିର
Hāta erḍibā[erḍā(rḍe)ibā] ଅଧିକାରରୁ ବା ହାତରୁ ନିଜକୁ ବଞ୍ଚାଇବା—To evade the hands or clutches of another. (ଯଥା—ଏ ଭୂମଣ୍ଡଳରେ ଯମ
হাতএড়ানো हथसे बचना ହାତ ଏଡ଼ିବା କାହାର ଶକ୍ତି ନାହିଁ ।)

ହାତ ଓଠ ଧରିବା—ଦେ. କ୍ରି—କୌଣସି ବ୍ୟକ୍ତିର ହାତକୁ ଓ ଓଷ୍ଠକୁ ଧରି
Hāta oṭha dharibā ନେହୁରି ହେବା ବା ବିନୀତ ପ୍ରାର୍ଥନା
মিনতি করা କରିବା—To solicit a favour of a
हाथ ओठ धरना person by taking hold of his hand and lip.

ହାତକ—ଦେ. ବି—୧ । ଏକହାତ ମାତ୍ର—1. One cubit only.
Hātaka ୨ । ଗୋଟିଏ ହସ୍ତ ମାତ୍ର—2. One hand only.
একহাত মাত্র (ଯଥା—ତାର ହାତକ ହଡ଼ାହାତ ହେଲା) ୩ । ଏକ
एकहाथ ହାତ ପରିମାଣ ବା ବିସ୍ତୃତି—3 The measure or contents or expanse of one cubit. (ଯଥା—ହାତକ ୨୪ ଅଙ୍ଗୁଳ ବା ୨ ବିଘତ ।) ବିଣ—ଏକ ହାତ ପରିମିତ—Measuring one cubit only. (ଯଥା—ହାତକ ଯାଗାରେ ଜଣକରୁ ବେଶି ବସି ପାରିବେ ନାହିଁ ।)

ହାତ କଟା—ଦେ. ବିଣ (ପୁଂ)—୧ । ଯେଉଁ ବ୍ୟକ୍ତିର ହାତ କଟାଯାଇଅଛି
Hāta kaṭā —1. Armless ; having the hands cut off. ୨ । ଯେଉଁ କୁର୍ତ୍ତାର ଅସ୍ତିନ
হাতকাটা ନ ଥାଏ—2. Sleeveless (coat). ୩ । ସୂତା-
हाथकटा କଳଣାରୁ ନିଜ ହାତରେ ଅରଟଦ୍ୱାରା କଟାଯାଇଥିବା (ସୂତା); ଅରଟ କଟା (ସୂତା)—3. Hand-spun (ହାତକଟୀ—ସ୍ତ୍ରୀ) (କଳକଟା—ର ବିପରୀତ) (thread).

ହାତ କଡ଼ି—ଦେ. ବି—ଅପରାଧୀଙ୍କ ଦୁଇ ହାତକୁ ବାନ୍ଧିବାପାଇଁ ବ୍ୟବହୃତ
Hāta kaṛi ଶିକୁଳି—Hand cuff; manacles. [ଦ୍ର—ଏଥିର ଦୁଇ ମୁଣ୍ଡରେ ଯେଉଁ ଘର ଥାଏ, ସେ ଘରରେ ଅପରାଧୀର ଦୁଇ ହାତର କଚଟିକୁ ପୂରାଇ ଚାବି ପକାଇ
হাতকড়ি हातकड़ि ଦେଲେ ତାହା ଫିଟେ ନାହିଁ ।]

ହାତ କଣ୍ଡୁ—ଦେ. ବି—(ସଂ. ହସ୍ତ+କଣ୍ଡୁ)—ହାତ ଗଲୁ (ଦେଖ)—
Hāta kaṇḍu Hātagalu (See).

ହାତ କଥା—ଦେ. ବି—କୌଣସି ବ୍ୟକ୍ତିର ଅଧୀନ କାର୍ଯ୍ୟ—
Hāta kathā Anything under one's control
হাতের কথা हाथकी बात [ଉ—ନ ପାରିଲେ ତାହା, ସାର-ଶେଷେ ଥିଲା ତ ନିଜ ହାତ କଥା । ରାଧାନାଥ. ମହାଯାତ୍ରା]

ହାତକ(କୁ) ଦି(ଦୁଇ)ହାତ କରିବା—ଦେ. କ୍ରି—୧ । କୌଣସି ପଦାର୍ଥକୁ
Hātaka(ku) di(dui)hāta karibā ହସ୍ତାନ୍ତରିତ କରିବା—
হাতকে দুহাত করা 1 To transfer a thing from one
एक हाथसे दोसरा हाथ करना person to another.
୨ । (ବିବାହ ବେଳେ ବରର ଡାହାଣ ହାତ ଓ କନ୍ୟାର ଡାହାଣ ହାତ ଏକତ୍ର କରାଯାଇ ଗଣ୍ଠି ପଡ଼ୁଥିବାରୁ)—କୌଣସି ବ୍ୟକ୍ତିର ବିବାହିତ କରାଇବା—2. To cause a person to get married. [ଦ୍ର—ବିବାହିତ ହେବାକୁ ଜଣ କରାଇବା ଅର୍ଥରେ ଦୁଇ ହାତକୁ ଚାରିହାତ କରାଇବା ମଧ୍ୟ ବୋଲାଯାଏ ।]

ହାତକ(କୁ) ଦି(ଦୁଇ)ହାତ ହେବା—ଦେ. କ୍ରି—ବିବାହିତ ହେବା—
Hātaka(ku)di(dui)hāta hebā To become
হাতকে দুহাত হওয়া शादीहोना married.

ହାତ କନା—ପ୍ରାଦେ (ଗଞ୍ଜାମ) ବି—(ଅଧୁନିକ ପ୍ରୟୋଗ; ଇଂରାଜୀରୁ
Hāta kanā ଅନୁକୃତ) ରୁମାଲ—Handkerchief.

ହାତ କପାଳ—ଦେ. ବି—(ମନୁଷ୍ୟର କପାଳ ବା ଭାଗ୍ୟ ଯାହାଙ୍କ
Hāta kapāla ହାତରେ)—ଶିବ; ମହାଦେବ —The God
হাতকপাল महादेव Śiba. [ଉ—ଅରେ ହାଣ୍ଡି ଗଣ୍ଡ । ହାତ-କପାଳ ଦେବ କ ଏ ସମସ୍ତ ? ବଜ୍ରସୂର୍ଯ୍ୟ. କବିତା ।]

ହାତ କରତ—ଦେ. ବି—ଯେଉଁ ଛୋଟ କରତକୁ ଜଣେ ମନୁଷ୍ୟ ଏକ
Hāta karata ହାତରେ ଚଳାଇ ପାରେ—Hand-saw.
হাতকরাত आरी

ହାତ କରିବା (କରି ନେବା)—ଦେ. କ୍ରି—୧ । ଅଧିକାରକୁ ଆଣିବା;
Hāta karibā(kari nebā) ଅଧିକାର କରିବା ; କରଗତ
হাতকরা କରିବା—1. To bring under one's control.
हाथ करना [ଉ—× × × ଲୁଚି ଗୁପ୍ତ କରିବାକର ସମସ୍ତଙ୍କୁ ହାତ କରି ×××× ସରକାରରୁ ବାହାଲ ହୋଇ ଅଛନ୍ତି । ଫକୀରମୋହନ ଗଳ୍ପସ୍ୱଳ୍ପ ।]
୨ । କୌଶଳଦ୍ୱାରା କୌଣସି ବ୍ୟକ୍ତିକୁ ବଶୀଭୂତ କରିବା—2. To suborn a person. ୩ । ହସ୍ତଗତ କରିବା; କୌଣସି ବସ୍ତୁକୁ ନିଜର ଅଧିକାରକୁ ଆଣିବା —3. To bring a thing into one's possession. ୪ । କୌଣସି ଦ୍ରବ୍ୟକୁ କୌଶଳପୂର୍ବକ ହସ୍ତଗତ କରିବା—4. To possess a thing by hook

or crook. ୫ । (କଟକିଆ ଭାଷା) ଅପର ପକ୍ଷର ସାକ୍ଷୀଙ୍କୁ ନିଜର ଅନୁକୂଳରେ ଆଣିବା—5. To gain over a witness of one's opponent.

**ହାତ କଳ**—ଦେ. ବି—ଯେଉଁ କଳକୁ ମନୁଷ୍ୟ ହାତଦ୍ୱାରା ଚଳାଇ ପାରେ—Hand-machine ; a machine driven by hand power.
Hāta kala
হাত কল **हाथकल**

**ହାତ କଷା** (କଷୋଟ, କଷୋଟି, କଷୋଟିଆ)—ଦେ. ବିଣ—କୃପଣ—Closefisted; miserly; stingy
Hāta kashā (kashoṭa, kashoṭi, kashoṭiā)
কঞ্জুষ **हाथकस**

**ହାତ କାଟିବା**—ଦେ. କ୍ରି—୧ । ଛୁରୀ, ପଇକଥିବାଦ୍ୱାରା ନିଜର ହାତକୁ କାଟି ପକାଇବା—1. To cut one's hand with a knife or other instrument. ଦେ. ବି—ଦୋଡ଼ଅର୍ଦ୍ଧ ମୋଡ଼ିବା ବା ଘଷିବା ବା ଦେହର କୌଣସି ସ୍ଥାନ ଚିପିବାବେଳେ ଘଷୁଥିବା ବ୍ୟକ୍ତିର ହାତର ପ୍ରୟୋଜନାଧିକକୁ କର୍କଶତା ବା ବଳ ଘଷାହେଉଥିବା ବ୍ୟକ୍ତିଙ୍କୁ କଷ୍ଟ ଦେବା—Feeling of discomfort owing to the force of the hands of the person who does the massage (ଯଥା—ଅସ୍ତେ ଅସ୍ତେ ମୋଡ଼୍, ତୋ ହାତ ବଡ଼ କାଟୁଛି । )
Hāta kāṭibā
হাত কেটেফেলা
**हाथ काटना**

**ହାତକାଟି ଲେଖିବା**—ଦେ. କ୍ରି—ନିଜେ ସ୍ୱାକ୍ଷର କରିବା—To sign one's name.
Hāta kāṭi lekhibā
স্বাক্ষর করা **दस्तखत करना**

**ହାତ କାଢ଼ିବା**—ଦେ. କ୍ରି—ଫୁଲ ଉଡ଼ାଇବା (ଦେଖ)—Phula urḍaibā ( ee).
Hāta kārḍhibā

**ହାତ କଣ୍ଡୁ**—ଦେ. ବି—(ବ୍ୟଙ୍ଗ୍ୟ)—(ହ ହସ୍ତ ଓ କଣ୍ଡୁ)—ହସ୍ତଦ୍ୱାରା କରଣୀୟ କୌଣସି କର୍ମ କରିବା ପାଇଁ ଇଚ୍ଛା ବା ଅସ୍ଥିରତା—Restlessness or eagerness to perform a thing.
Hāta kandu
হাত চুলকানি
**हाथ खुजलाहट**

**ହାତ କା (କୁ) ବୁଡ଼ା (ରା)**—ଦେ. ବିଣ. ପୁ—୧ । ଅକର୍ମା (ଲୋକ), ଅକର୍ମଠ—(ହାତ କା (କୁ) ବୁଡ଼ୀ (ରୀ) ସ୍ତ୍ରୀ)—1. A good-for-nothing person. ୨ । କୋଢ଼ିଆ ବା ଅଳସୁଆ (ବ୍ୟକ୍ତି)—2. Idle ; loafing (person)
Hāta kā (ku) burḍā (rā)
অকর্মা
**कोढ़िआ**

**ହାତ କାମ**—ଦେ. ବି—୧ । କାରିଗରର ହସ୍ତନିର୍ମିତ ଶିଳ୍ପକାର୍ଯ୍ୟ—1. Manufacture ; handwork. (କଳକାମ—ବିପରୀତ) ୨ । କଳଦ୍ୱାରା ତିଆରି ନ ହୋଇ ହାତ ଦ୍ୱାରା ତିଆରି ହୋଇଥିବା କାମ—2. Hand made work.
Hāta kāma
হাতেরকাজ
**हाथकाम**

**ହାତକୁ ଆସିବା**—ଦେ କ୍ରି—୧ । ହସ୍ତଗତ ହେବା ; ମିଳିବା—1. To be got or received. ୨ । କବଳିତ ହେବା—To come under one's clutches or control.
Hātaku āsibā
হাতেআসা
**हाथमें आना**

**ହାତ କୁଣ୍ଡାଇହେବା** (ଗଲୁ କରିବା)—ଦେ. ବି—୧ । କୌଣସି କାର୍ଯ୍ୟ ସ୍ୱହସ୍ତରେ କରିବା ପାଇଁ ଅତ୍ୟନ୍ତ ଲାଳାୟିତ ହେବା—1. Having hankering to do a thing with one's own hands. ୨ । (ଲୌକିକ ବିଶ୍ୱାସ) ଧନ ପ୍ରାପ୍ତିର ଲକ୍ଷଣ ଦେଖାଯିବା—2. (popular belief) The itching of the palm indicating the receipt of some money. [ଦ୍ର—ଲେଙ୍ଗ କୁଣ୍ଡାଇ ହେବା ଅଚିରାତ୍ ଧନପ୍ରାପ୍ତିର ସୂଚନା ବୋଲି ଲୋକେ ବିଶ୍ୱାସ ଅଛି ।]
Hāta kunḍaihebā (galu karibā)
হাত চুলকানি হওয়া
**हाथ खुजलाना**

**ହାତକୁ ହାତ**—ଦେ କ୍ରି. ବିଣ—୧ । ଏକ ହାତରୁ ଅନ୍ୟ ହାତକୁ (ହସ୍ତାନ୍ତରିତ)—1. (transferred) From hand to hand. ୨ । ଦସ୍ତୁରସ୍ତୁ; ନଗଦ—2. In cash. ୩ । ତତ୍‌କ୍ଷଣାତ୍—3. Immediately; at once
Hātaku hāta
হাতে হাতে
**हाथके हाथ, हाथों हाथ**

**ହାତ ଖ(ଖୁ)ଜ୍ ବ(ବୁ)ଜ୍**—ଦେ. ବି—୧ । କାର୍ଯ୍ୟ କରିବା ପାଇଁ ହାତର ଅସ୍ଥିରତା; ହସ୍ତ କଣ୍ଡୁ—1. Restlessness of the hand to do a work. ୨ । ଅସ୍ଥିର ହସ୍ତ—2. Restless or active hands. (ହାତ ଖୁଜୁବୁଜୁ—ଅନ୍ୟରୂପ)
Hāta kha(khu)j ba(bu)j
হাত চুলকানি, হাত নিসপিস,
হাত সড়সড়করা
**हाथ खुजलाहट**

**ହାତ ଖଜବଜିଆ**—ଦେ. ବିଣ. ପୁ—ଯେଉଁ ବ୍ୟକ୍ତି ଭୁକ ହୋଇ ବସି ନ ପାରି ସବୁବେଳେ ହାତକୁ ଏଣେ ତେଣେ ଚଳାଉ ଥାଏ—Restless; having hands which will not keep quiet. [ହାତ ଖୁଜ୍(ଜୁ)ବୁଜିଆ—ଅନ୍ୟରୂପ]
Hāta khajabajiā
হাত নিসকিসে
**हाथ खुजलीवाला**
[ହାତ ଖଜବଜା, ହାତ ଖଜବଜେଇ, ହାତ ଖୁଜ୍(ଜୁ)ବୁଜା, ହାତ ଖୁଜ୍(ଜୁ)ବୁଜେଇ - ସ୍ତ୍ରୀ]

**ହାତ ଖଡୁ**—ଦେ. ବି—ହସ୍ତବଳୟ—Bracelet.
Hāta khardu হাতখাড়ু, বালা **बाला**

**ହାତ ଖଣ୍ଡିଆ**—ଦେ. ବିଣ. ପୁ° ( ସ. ଖଣ୍ଡିତ ହସ୍ତ )—ଯେଉଁ ବ୍ୟକ୍ତିର ହାତର କେତେକ ଅଂଶ ନ ଥାଏ—Handless (person); a person who has not got any part of his hand. (ହାତ ଖଣ୍ଡୀ—ସ୍ତ୍ରୀ)
Hāta khanḍiā
হাত কাটা
**हाथ कट्टा**

**ହାତ ଖାଲି**—ଦେ. ବି—୧ । ରିକ୍ତ ହସ୍ତ; ଶୂନ୍ୟ ହସ୍ତ; କପର୍ଦ୍ଦକ ଶୂନ୍ୟତା—1. Pecuniary want; penniless condition. ୨ । କାର୍ଯ୍ୟରେ ବ୍ୟାପୃତ ନ ଥିବା ଅବସ୍ଥା—2. State of unemployment. ୩ । କାର୍ଯ୍ୟରେ ଫୁରୁସତ୍—3. Leisure.
Hāta khāli
হাত খালি
**हाथखाली**

**ହାତ ଖେଞ୍ଚ**—ଦେ. ବି—ଅର୍ଥ ନ ଅଣ୍ଟିବା; ଅର୍ଥସ୍ୱଳ୍ପତା; ଦରକାରକୁ ନ ଅଣ୍ଟିବା ଅବସ୍ଥା—Penniless condition; want.
Hāta khench
টানাটানি
**हाथ खालीहा**

**ହାତ ଗଢା**—ଦେ. ବିଣ—୧ । ସ୍ୱହସ୍ତ କୃତ—1. Made by one's hand. ୨ । କୌଣସି କାରିଗରର ନିର୍ମିତ—2. Manufactured by a certain artist.
Hāta gardhā
হাতগড়া
**हाथसे बनाहुआ**

ହାତ ଗଣ୍ଠି—ଦେ. ବି (ସଂ. ହସ୍ତ ଓ ଗ୍ରନ୍ଥି)—୧ । କରଟି; ମଣିବନ୍ଧ—
Hāta ganthi 1. Wrist. ୨ । ବିବାହବେଦୀରେ କନ୍ୟା-
হাতের গাঁট, কব্জি ପିତାଙ୍କର ବରକୁ କନ୍ୟା ଦାନ କରିବା ସମୟରେ
हाथ गाँठी(ठ) କନ୍ୟାର ଡାହାଣ ହାତର ଲେଉ ଉପରେ ବରର ଡାହାଣ ହାତର ଲେଉକୁ ରଖି ପୁରୋହିତଙ୍କର ଓ କନ୍ୟା ପିତାଙ୍କର ମନ୍ତ୍ରୋଚ୍ଚାରଣ ପୂର୍ବକ କୁଶରେ ଗଣ୍ଠି ପକାଇ ବାନ୍ଧିବା ରୂପ କର୍ମ—2. The marriage knot; the ceremony of tying the right palm of the
হস্তগ্রন্থি bride to that of the bridegroom by a
हस्तग्रंथि Kusa-string tied in a knot by muttering some formulas.

[ବି—ଏହାହିଁ ବିବାହ ବନ୍ଧନର ଚିହ୍ନ । ହାତଗଣ୍ଠି ନ ପଡ଼ିବା ପର୍ଯ୍ୟନ୍ତ ବିବାହ ସମ୍ପାଦିତ ହୋଇ ନ ଥାଏ ଓ ହାତଗଣ୍ଠି ପଡ଼ି ସାରିଲାରୁ ବିବାହ କ୍ରିୟା ସମ୍ପନ୍ନ ହେଲା ବୋଲି ବିବେଚିତ ହୁଏ । ପୁରୋହିତ ବର କନ୍ୟାଙ୍କ ହାତଗଣ୍ଠି ପକାନ୍ତି ଓ କନ୍ୟାକର୍ତ୍ତା ସମ୍ପ୍ରଦାନମନ୍ତ୍ର ପାଠ ଓ ଯୌତୁକ ଦାନ କରିବା ବାକ୍ୟ ଉଚ୍ଚାରଣ କରନ୍ତି; ତତ୍ପରେ ବର କନ୍ୟାକୁ ଗ୍ରହଣ କରିବାର ବାକ୍ୟ ଉଚ୍ଚାରଣ କରନ୍ତି; ତତ୍ପରେ ଉକ୍ତ ହାତଗଣ୍ଠିକୁ ପୁରୋହିତ ବା କୌଣସି ଅବିବାହିତା ବାଳିକା ଆସି ମୋଚନ କରନ୍ତି ।]

ହାତ ଗଣ୍ଠି ପଡ଼ିବା—ଦେ. କି—ବର ଓ କନ୍ୟାଙ୍କର ହସ୍ତଦ୍ୱୟ ବିବାହ-
Hāta ganthi pardibā ବେଦୀରେ କୁଶ ଦ୍ୱାରା ବନ୍ଧା ହେବା-
হাত গাঁট পড়া ବିବାହ କର୍ମ ସମ୍ପାଦିତ ହେବା—The per-
हाथ गाँठ पड़ना formance of marriage by the tying of the marriage-knot.

ହାତ ଗତ—ଦେ. ବିଣ (ସଂ. ହସ୍ତଗତ)—୧ । ହସ୍ତଗତ; କରଗତ
Hāta gata (ବ୍ୟକ୍ତି)—1. Brought under control;
হাত গত suborned. ୨ । ଆୟତ୍ତ—2. Under one's
हस्त गत control. ୩ । ଅଧିକାରକୁ ଆଗତ—3. Brought into one's possession.

ହାତ ଗଳା(ଳେ)ଇବା—ଦେ. କି—କୌଣସି ଛିଦ୍ରରେ ଆପଣା ହସ୍ତକୁ
Hāta galā(le)ibā ପୁରାଇବା To thrust one's hand
হাত ঢুকান हाथ घुसाना (ହାତଗଳିବା—କି.ରୂପ) into a hole.

ହାତ ଗଲୁ—ଦେ. ବି—୧ । ହାତକାଣ୍ଡୁ; କୌଣସି କାମ କରିବାପାଇଁ
Hāta galu ଅତ୍ୟଧିକ ଆଗ୍ରହ ବା ଉତ୍କଣ୍ଠା—1. Excessive
হাত চুলকানি eagerness to do a thing. ୨ । କରତଳ
हाथ खुजलाहट କୁଣ୍ଡାଇ ହେବା—2. Itching sensation felt in the plam. [ବି—ଲୌକିକ ବିଶ୍ୱାସ ଅଛି ଯେ, ହାତର ଲେଉ ବା ତଳ କୁଣ୍ଡାଇ ହେଲେ ଅଚିରାତ୍ କିଛି ଧନଲାଭ ହୁଏ ।]

ହାତ ଗୁଞ୍ଜା—ଦେ, ବି—ଅଣ୍ଟା ଗୁଞ୍ଜା; ଉତ୍କୋଚ—Illegal
Hāta gunjā ঘুষ घूष gratification; bribe.

ହାତ ଗୁଣ—ଦେ. ବି (ସଂ. ହସ୍ତଗୁଣ)—ବ୍ୟକ୍ତିବିଶେଷଙ୍କ ଅନୁଭବତା ବା
Hāta guna ବିଶେଷତାପଣ—The special potency of
হাতের গুণ हाथगुण particular person's hands.

[ବି—ଲୋକେ ବିଶ୍ୱାସ କରନ୍ତି ଯେ, ବୈଦ୍ୟଙ୍କ ହାତଗୁଣରେ ରୋଗୀର ଭଲ ବା ମନ୍ଦ ଘଟେ; ପଶୁସ୍ୱାମୀଙ୍କ ହାତ ଗୁଣରେ ଘୋଡ଼ା, ଗାଈ ଆଦି ପଶୁ ବଞ୍ଚନ୍ତି ବା ମରି ଯାଆନ୍ତି; ବୃକ୍ଷ ରୋପଣକର୍ତ୍ତାଙ୍କ ହାତ ଗୁଣରେ ଗଛମାନେ ଫଳବାନ୍ ବା ବାଞ୍ଝ ହୁଅନ୍ତି ଓ ପାଚକପାଚିକାଙ୍କ ହାତଗୁଣରେ ବ୍ୟଞ୍ଜନ ସୁସ୍ୱାଦ୍ୟ ବା ଅସ୍ୱାଦ୍ୟ ହୁଏ ।]

ହାତ ଗୋଡ଼—ଦେ ବି—(ସହଚର ଶବ୍ଦ)—୧ । ହସ୍ତ ଓ ପଦ—
Hāta gorda 1. Hand and leg. ୨ । ଦେହର ଅଙ୍ଗ
হাত পা ପ୍ରତ୍ୟଙ୍ଗମାନ—2. The various limbs of the
हाथपैर body. [ଯଥା—ସେ ଘୋଡ଼ାରୁ ପଡ଼ି ହାତଗୋଡ଼ ଭାଙ୍ଗି କରି ଶୋଇଛି ।] ୩ । କଥାର ଅନ୍ତଃ ବା କଥାର
মাথা মুণ্ড ଠିକଣା; ଉପୁରି; କଥାର ଅର୍ଥବୋଧକତା—3. The
सिरपैर haed and tail of any speech; the meaning of any speech. (ଯଥା—ମୁଁ ତା କଥାର ହାତଗୋଡ଼ କିଛି ପାଇଲି ନାହିଁ ।) ୪ । ଅଗ-ଗୋଡ଼ା; ମୂଳ ଓ ଶେଷ—4. Beginning and end.

(ତାର) ହାତ ଗୋଡ଼ କଥା କହିବା—ଦେ. ବି—ଅତ୍ୟନ୍ତ ଅସ୍ଥିରତା
Hāta gorda kathā kahibā ପ୍ରକାଶ—Exhibition of
হাত চোখ কথাকহা हाथ पैर बोलना restlessness

ହାତଗୋଡ଼ ଚଳିବା—ଦେ. ବି—କାର୍ଯ୍ୟ କରିବା ପାଇଁ ଦେହର
Hāta gorda chalibā ସାମର୍ଥ୍ୟ—Physical ability
হাতপা চলা हाथ पाव चलना to do any work.

ହାତ ଗୋଡ଼ ଜଳା (ପୋଡ଼ା)—ଦେ. ବି—ହସ୍ତ ପଦର ଦାହ ରୋଗ—
Hāta gorda jalā (pordā) A disease; burning
হাত পা জ্বালা हाथपैर जलता of the hands and feet.

ହାତଗୋଡ଼ ଧରା—ଦେ ବି—୧ । ଖୋସାମଦ—1. Flattery.
Hāta gorda dharā ୨ । ବିନୀତ ପ୍ରାର୍ଥନା—2. Supplication.
হাতেপায়ে ধরা हाथपैर धरना

ହାତଗୋଡ଼ ଧରିବା—ଦେ. କି.—ଗୋଡ଼ହାତ ଧରିବା (ଦେଖ)—
Hāta gorda dharibā Gorda hāta dharibā (See)
হাতেপায়ে ধরা हाथपैर धरना (जोड़ना)

ହାତଗୋଡ଼ ବନ୍ଧା—ଦେ. ବିଣ—ପରାଧୀନତା ଯୋଗୁଁ ଅକ୍ଷମ ବା ଉଦ୍ୟମ-
Hāta gorda bandhā ହୀନ—Powerless owing to
হাতপা বাঁধা one's subordination or subserviency.
हाथपैर बंधा ବି—୧ । କୌଣସି ବିଷୟରେ ନିଜର ଅନାୟତ୍ତ ବା ଉପାୟହୀନ ହେବା ଅବସ୍ଥା—1. The state of having no resources. ୨ । ପରର ଅଧୀନତା ଯୋଗୁଁ କୌଣସି କାର୍ଯ୍ୟ କରିବାକୁ ଅକ୍ଷମତା—2. Utter powerlessness to do a thing. ୩ । ନିଜର ସ୍ୱାଧୀନତା ରାହିତ୍ୟ—3. Loss of one's freedom of action.

(ମୋର) ହାତଗୋଡ଼ ରହିବା (ରହିଯିବା)—ଦେ. ବି—କ୍ଳାନ୍ତି ଯୋଗୁଁ
Hāta gorda rahibā (rahijibā) ହାତର ଓ ଗୋଡ଼ର
হাতপা না চলা କାର୍ଯ୍ୟ କରିବାର ଶକ୍ତି ରହିତ ହେବା—Loss

हाथपैर गिरना of the power of movement owing to over exertion.

ହାତ ଘଷର (ଘଷା, ଘଷିଆ) — ଦେ. ବଣ—୧ । ଯେଉଁ ବସ୍ତୁ ସର୍ବଦା Hāta ghasharā (ghashā, ghashiā) ବ୍ୟବହୃତ ହୋଇ ହାତଅଷା ଓ ହାତହାତ ବହୁବାର ଘର୍ଷିତ ହୋଇ ଅଚଳା ବା हाथघिसा ଘଷର ହୋଇଥାଏ—1. (a thing) Worn out by constant handling. ୨ ।

ହାତ ଘଷା } ସ୍ତ୍ରୀ (ପୁଂ)—ଯେଉଁ ଜନ୍ତୁ (ବଳଦ, କୁକୁରଆଦ ହାତ ପଷେର୍ }
ଗାସେଁଷା ଗୃହପାଳିତ ଜନ୍ତୁ) ସର୍ବଦା ମନୁଷ୍ୟଙ୍କ ପାଖେ ଚଳପ୍ରଚଳ हाथपांसा ହେବାରୁ ଓ ମନୁଷ୍ୟମାନେ ସେମାନଙ୍କୁ ସର୍ବଦା ଅଉଁସିବାରୁ ମନୁଷ୍ୟଙ୍କୁ ଡରନ୍ତି ନାହିଁ—2. (domestic animals which have) Turned quite familiar and fearless of human contact by costant mixing with men.

ହାତ ଚକ — ଦେ. ବି (ସଂ ହସ୍ତ + ଚକ୍ର)— ନେଳ—The middle Hāta chaki of the hollow of the palm.
হাতের তেলো तरहथी

ହାତ ଚଟୁଆ — ପ୍ରାଦେ—(ଭଦ୍ରକ ବାଲେଶ୍ୱର) ବି—ହାତଚକ Hāta chatuā (ଦେଖ)—Hāta chaki (See).

ହାତ (ହାତରେ) ଚଢ଼ିବା—ଦେ· କ୍ରି—କାହାର ଅଧିକାରକୁ ଆସିବା ; Hāta (hātare) chaṛhibā ପ୍ରାପ୍ତ ହେବା—To be হাতে আসা received or got ; to come to the हाथमें आना possession of.

ହାତ ଚଳା—ଦେ. ବି (ସଂ· ହସ୍ତ ଚଳନ)—୧ । ବ୍ରାହ୍ମଣମାନଙ୍କର ଅନ୍ନ-Hāta chalā ଭୋଜନାରମ୍ଭ ପୂର୍ବରୁ ମନ୍ତ୍ରୋଚ୍ଚାରଣପୂର୍ବକ ଜଳ হাতচলা ଗ୍ରହଣ—1. Sipping of a few drops of खाना आरंभ water by uttering some 'mantra's before beginning to eat.
୨ । ଭୋଜନ ଆରମ୍ଭ—2. The beginning of হাতচালান eating. ୩ । ହସ୍ତଚାଳନ; କାର୍ଯ୍ୟରେ ବା ଯୁଦ୍ଧରେ हाथ चलना ହସ୍ତକୁ ଚାଳିତ କରିବା—3. The movement of the hands in work or fight.

ହାତ ଚଳା (ଲେ) ଇବା (ଚାଳିବା)—ଦେ. କ୍ରି—୧ । ବ୍ରାହ୍ମଣମାନେ Hāta chalā (le) ibā (chālibā) ପଂକ୍ତିଭୋଜନ ଉପ- হাতচালান ଲକ୍ଷରେ ଭୋଜନାରମ୍ଭ ପୂର୍ବରୁ ସମସ୍ତେ ଯୁଗପତ୍ हाथ चलाना ଗଣ୍ଡୂଷମନ୍ତ୍ର ବୋଲି ଗଣ୍ଡୂଷମାନ ଜଳ ଆଚମନ କରିବା—1. To sip a few drops of water after uttering some formulas before beginning to eat during a caste dinner of Brahmanas. [ଦ୍ର—ପଂକ୍ତିଭୋଜନବେଳେ ସମସ୍ତଙ୍କ ପତ୍ରରେ ଭାତ, ଡାଲି, ଘିଅ ଇତି ସାରିବାପରେ 'ମହାଜନ-ମାନେ ହାତ ଚଳାନ୍ତୁ' ବା 'ମହାଜନମାନଙ୍କର ହାତ ଚଳୁ' ବୋଲି ସେମାନଙ୍କ ମଧ୍ୟରୁ ଜଣେ ଡାକଦେଲେ ସମସ୍ତେ ହାତ ଚଳାନ୍ତି ବା ଚଳୁ କରି ଭୋଜନ ଆରମ୍ଭ କରନ୍ତି ।]
୨ । (ବହୁଲୋକ) ଯୁଗପତ୍ ଖାଇବାକୁ ଆରମ୍ଭ କରିବା—(Many persons simultaneously) To begin to eat. ୩ । ହାତ ଚଳାଇବା (ଦେଖ)—Hāta chalāibā (See). ୪ । ଶିଘ୍ର ସହିତ କାର୍ଯ୍ୟ କରିବା—4. To hurry on with a work.

ହାତ ଚଳାଇବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ପ୍ରହାର କରିବା—Hāta chalāibā To strike or beat a person.
হাত চালান हाथ चलाना

ହାତ ଚଳିବା (ଚାଳିବା)—ଦେ. ବି—୧ । ଭୋଜନକ୍ରିୟାର ଆରମ୍ଭ Hāta chalibā (chālibā) ହେବା—1. The beginning of the operation of eating. ୨ । হাতচলান हाथचलना ପଂକ୍ତି ଭୋଜନରେ ଚଳୁ କରିବା—2. The sipping of a few drops of water before meal. ୩ । କାର୍ଯ୍ୟରେ ବା ଯୁଦ୍ଧରେ ହସ୍ତ ଚାଳିତ ହେବା—3. The moving of the hands in work or fight.

ହାତ ଚାଖଣ୍ଡ—ଦେ. ବ (ସହଚର ଶବ୍ଦ)—ହାତ ଓ ଅର୍ଦ୍ଧହାତ ପରିମାଣ—Hāta chākhaṇḍa A cubit and half cubit; হাতচাখণ্ড cubit and span; (lineal measure). हाथबिता

ହାତ ଚାଟି ଖାଇବା—ଦେ. କ୍ରି—୧। ସମ୍ପୂର୍ଣ୍ଣ ସନ୍ତୋଷପୂର୍ବକ ପୂର୍ଣ୍ଣ ଭୋଜନ Hāta chāṭi khāibā କରିବା—1. To have হাতচেটে খাওয়া हाथचाटकर खाना one's fill with complete satisfaction. ୨ । ଖାଦ୍ୟ-ପାତ୍ରରେ କିଛି ଅବଶିଷ୍ଟ ନ ରଖିବା—3. To leave nothing in the plate after a hearty dinner.

ହାତ ଚିଟି(ଠି)—ଦେ. ବି—୧। କୌଣସି ବ୍ୟକ୍ତିଙ୍କର ସ୍ୱହସ୍ତଲିଖିତ ପତ୍ର Hāta chiṭi(ṭhi) —1. A letter written in a হাতের লেখা person's handwriting. हाथ चिठि ୨ । ହାତଚଠା (ଦେଖ)—2. Hāta chiṭhā (See)

ହାତ ଚଠା—ଦେ. ବି—୧ । ମହାଜନଙ୍କଠାରୁ ଖାଉଟିଙ୍କର ବା ଛୁଟୁରା Hāta chiṭhā ବେପାରୀମାନଙ୍କର ପଣ୍ୟଦ୍ରବ୍ୟମାନ କିଣି ନେବା হাতচিঠা हाथचिठा ସମୟରେ ପଣ୍ୟଦ୍ରବ୍ୟର ତାଲିକା, ମୂଲ୍ୟ ଓ ଦର ଏବଂ ବେପାରୀ କେତେ ଟଙ୍କା ଦେଲେ ଓ କେତେ ତାଙ୍କଠାରେ ବାକି ରହିଲା, ଏମାନ ଯେଉଁ ଚଠା କାଗଜରେ ଲେଖା ହୁଏ ଓ ଯହିଁରେ ଖାତକ ଦସ୍ତଖତ କରନ୍ତି—1. A draft memo or note prepared during a transaction between a big merchant and a petty trader who takes commodities from the latter partly on cash and partly on credit. ୨ । ଟଙ୍କା ଆଦ ପାଇବାର ରସିଦ—2. A receipt for money or articles received. ୩ । ହାତ୍ନୋଟ୍—3. Handnote.

ହାତ ଛଡ଼ା—ଦେ. ଵିଣ—( ସ. ହସ୍ତଚ୍ୟୁତ )—୧ । ହସ୍ତ ଚ୍ୟୁତ—
Hāta chhaḍā 1. Got away from one's hand.
୨। ଅଧିକାରରୁ ବହିର୍ଗତ—2. Got away or removed from one's control. ୩ । ଅଧିକାରଚ୍ୟୁତ—
3. Taken away from one's possession.
হাতছাড়া हाथसे निकला हुआ

ହାତ ଛନ୍ଦା—ଦେ. ବି—ବିବାହ—Marriage.
Hata chhandā [ଦ୍ର—× × × କନ୍ୟାଙ୍କ ଏ ଠିକ କରନ୍ତୁ, ଆଜ୍ଞା ହେଲେ ହାତଛନ୍ଦା କରେଇ ଦେବ—ଫକୀରମୋହନ-
বিয়ে शादी ଗଳ୍ପସ୍ୱଳ୍ପ]

ହାତ ଛୁ(ଛୋ)ଇଁବା—ଦେ. କ୍ରି—ହାତ ଲଗାଇବା; କୌଣସି ବ୍ୟକ୍ତିକୁ
Hāta chhu(chho)inbā ପ୍ରହାର କରିବାପାଇଁ ତା ଦେହରେ ହସ୍ତ ସ୍ପର୍ଶ କରିବା—To touch a person's body
হাতছোয়া हाथसे छूना for striking blows.

ହାତ ଜମିବା (ଜମିଯିବା)—ଦେ. ବି—କୌଣସି କାର୍ଯ୍ୟରେ ସିଦ୍ଧହସ୍ତତା-
Hata jamibā (jamijibā) ଲାଭ—Attainment of
হাত সফাই হওয়া proficiency in a work.
हाथ बैठना(जमना)

ହାତ ଯୋଡ଼ିବା—ଦେ. କ୍ରି—୧ । ଦୁଇ କରତଳକୁ ଏକତ୍ର କରି
Hāta jordibā ପ୍ରାର୍ଥନା କରିବା—1. To pray with folded palms. ୨ । କ୍ଷମା ପ୍ରାର୍ଥନା କରିବା—
2 To solicit pardon. ୩ । ନମସ୍କାର କରିବା—
3. To make obeisance. ୪ । ମିନତି କରିବା—
হাতজোড়করা हाथ जोड़ना 4. To solicit.

ହାତ ଟେକା—ଦେ. ବି—୧ । ଅନୁଗ୍ରହ ପୂର୍ବକ ଦିଅଯିବା ସାମାନ୍ୟ
Hāta ṭekā ଦାନ—1 A small gift given as a matter of favour. (ଯଥା—ସେ ମତେ ହାତଟେକା କରି ଦିଅଣା ପଇସା ଦେଲା) ୨ । ପ୍ରଣାମ; ନମସ୍କାର—
2. Obeisance. ଦେ.ବିଣ—ଅନୁଗ୍ରହ ପ୍ରଦତ୍ତ—
হাত তোলা हाथ उठाइ Given as a favour.

ହାତ ଟେକିଆ—ଦେ. ବିଣ—ପରର ଅନୁଗ୍ରହଦ୍ୱାରା ପ୍ରଦତ୍ତ ଧନ ଉପରେ
Hāta ṭekiā ନିର୍ଭର କରୁଥିବା (ବ୍ୟକ୍ତି)—(Person) Depending upon the charity of others.
হাততোলা हाथउठाइ

ହାତ ଟେକିବା—ଦେ. କ୍ରି—୧ । ନମସ୍କାର ବା ସଲାମ୍ କରିବା ନିମନ୍ତେ
Hāta ṭekibā ବା ଏମାନ ପ୍ରତିଗ୍ରହ କରିବାପାଇଁ ହାତକୁ ଉପରକୁ ଉଠାଇବା—1. To raise or lift one's hands to make or accept another's obeisance. ୨ । ଭୋଟ୍ ଦେଲାବେଳେ ହାତ ଉଠାଇବା
2. To lift up one's hands in voting. ୩ । ଅନ୍ୟକୁ ଆଶୀର୍ବାଦ କରିବାପାଇଁ ହସ୍ତଉତ୍ତୋଳନ କରିବା—
3. To raise one's hands to bless a person.
হাতউঠান हाथउठाना

ହାତ ଟେକିକରି ଦେବା—ଦେ. କ୍ରି—ଆପଣା ଖୁସିରେ କୌଣସି
Hāta ṭekikari debā ବ୍ୟକ୍ତିକୁ ଧନ ଦାନ କରିବା—
To bestow some money on a person out
হাত উঠিযে দেওয়া हाथउठाकर देना of one's free wish.

ହାତ ଠାର—ଦେ. ବି—ହାତ ଓ ଆଙ୍ଗୁଠିମାନଙ୍କ ସଙ୍କେତ ଦ୍ୱାରା ମନର
Hāta ṭhāra ନାନାପ୍ରକାର ଭାବ ପ୍ରକାଶ କରିବା—Manual signs used as cyphers to express thought; mode of expressing thoughts by manual
হাতছানী हाथइशारा signs.

ହାତ ଠାରିବା—ଦେ. କ୍ରି—୧ । ହାତଦ୍ୱାରା ଇଙ୍ଗିତ କରିବା—
Hāta ṭhāriba 1. To beckon with the hand.
୨ । ହାତଠାରଦ୍ୱାରା ମନର ଭାବ ପ୍ରକାଶ କରିବା—
2. To express one's wishes by manual
হাতছা(শা)নীদেওযা हाथईसाराकरना signs.

ହାତ ତଳିଆ—ଦେ. ବିଣ—୧ । ଆଶ୍ରିତ (ବ୍ୟକ୍ତି)—1. Dependant
Hāta taḷiā on another. ୨ । ଅଧୀନ ବ୍ୟକ୍ତି; ଅଧିକାରର ବଶୀଭୂତ ବ୍ୟକ୍ତି—2. Being a creature of another; being under the control of another. ୩ । ନିମ୍ନତର ପଦସ୍ଥ (ବ୍ୟକ୍ତି)—
হাতধরা अधीन 3. Subordinate to a person.

ହାତ ତାଳି—ଦେ. ବି (ସ. ହସ୍ତ + ତାଳି)—କରତାଳି; ଦୁଇ କରତଳର
Hāta tāḷi ପରସ୍ପର ଅଭିଘାତଦ୍ୱାରା ଉତ୍ପାଦିତ ଶବ୍ଦ—
হাততালি हाथताली Hand-clapping.

ହାତତାଳି ଦେବା (ମାରିବା)—ଦେ. କ୍ରି—To clap the hands.
Hāta tāḷi debā (māribā) [ଦ୍ର—ପରକୁ ଉପହାସ କରିବା ବେଳେ ବା ସଭାରେ ବକ୍ତାଙ୍କୁ ପ୍ରଶଂସା କରିବା ବେଳେ ବା ବହୁ ଲୋକଙ୍କ ଦ୍ୱାରା କୌଣସି ପ୍ରସ୍ତାବ ଅନୁମୋଦିତ ହେବାବେଳେ ଲୋକେ ହାତତାଳି ମାରନ୍ତି । ]
হাততালী দেওয়া; হাততালী মারা हाथताड़ि देना

ହାତ ଦାନ—ଦେ. ବି—କଉଡ଼ିଖେଳରେ ଖେଳାଳି କଉଡ଼ିମାନଙ୍କୁ ମୁଠାଇ
Hāta dāna ଧରି ଭୂଇଁରେ ପକାଇ ଦେଲାରୁ କଉଡ଼ିମାନଙ୍କର ଚିତ୍ ବା ପିଠି ଭାଗରେ ପଡ଼ିବା ଅନୁସାରେ ଗଣା ହେବା ଦାନ—The result of a throw of cowries in a game of cowries according to the cowries falling on the ventral or the dorsal side. [ଦ୍ର—ଏକ କଉଡ଼ି ଚିତ୍ ହେଲେ=ଦଶ ବା କଣି, ଦୁଇ=ଦୁଗା, ତିନ=୩, ଚାରି=୪, ୫=ପଚିଶ,
হাতদান हाथदान ଛଅ=୩୦ ଓ ୧୨]

ହାତ ଦୁହାଁ—ଦେ. ବି—ବାଛୁରୀ ମରିଯାଇଥିବା ଗାଈଠାରୁ ବିନା ବାଛୁ-
Hāta duhān̐ ରୀରେ ଦୁଧ ଦୋହିଁବା—Milching a cow (whose calf is dead) without engaging a calf. ବିଣ—ଯେଉଁ ଗାଈକୁ ବିନା ବାଛୁରୀରେ ଦୁହାଁଯାଏ—(a cow) Which can be milched
হাতদোআ हाथदुहा without a calf.

**ହାତ ଦେଖା**—ଦେ. ବି—୧ । ନାଡ଼ି ପରୀକ୍ଷା କରିବା; ରୋଗ ନିର୍ଣ୍ଣୟାର୍ଥ ରୋଗୀର ନାଡ଼ି ଦେଖିବା—1. Feeling of the pulse of a patient. ୨ । ସାମୁଦ୍ରିକ ଶାସ୍ତ୍ର ଅନୁସାରେ ମନୁଷ୍ୟର ଶୁଭାଶୁଭ ଜାଣିବାପାଇଁ ହସ୍ତର ରେଖାମାନ ଦେଖିବା; ଭାଗ୍ୟ ଗଣନା କରିବାପାଇଁ କୌଣସି ବ୍ୟକ୍ତିଙ୍କ କରତଳସ୍ଥ ରେଖାମାନଙ୍କ ପରୀକ୍ଷା—Examination of the lines on the palm of a person to ascertain his or her future by palmistry.

Hāta dekhā

হাতদেখা हाथदेखना

**ହାତ ଦେଖାଇବା**—ଦେ. କ୍ରି—୧ । ରୋଗ ନିର୍ଣ୍ଣୟାର୍ଥ ନାଡ଼ି ପରୀକ୍ଷା କରିବାପାଇଁ (ରୋଗୀ) ବୈଦ୍ୟଙ୍କୁ ହାତ ଦେଖାଇବା; କବିରାଜଙ୍କଦ୍ୱାରା ନିଜର ନାଡ଼ି ପରୀକ୍ଷା କରାଇବା—1. To let one's hands to be seen by a physician to feel the pulse; to have one's pulse felt by a physician. ୨ । ହସ୍ତରେଖାମାନ ଦେଖି ଶୁଭାଶୁଭ ନିର୍ଣ୍ଣୟାର୍ଥ ସାମୁଦ୍ରିକ ଶାସ୍ତ୍ରଜ୍ଞଙ୍କୁ ନିଜର କରତଳକୁ ଦେଖାଇବା—2. To show one's palms to a palmist. ୩ । (ରେଲ, ମଟର୍ ଆଦିର ଚାଳକ ଓ ଗାର୍ଡ୍) ରେଲ ଆଦିର ଗାଡ଼ିକୁ ନିୟନ୍ତ୍ରିତ କରିବା ଉଦ୍ଦେଶ୍ୟରେ ସଙ୍କେତ କରିବାପାଇଁ ହାତକୁ ଉଠାଇବା—3. To show or raise one's hands as signal for a railway train or motor car. ୪ । (ସହରରେ ଜନତା ବିଶିଷ୍ଟ ଛକ ମାନଙ୍କରେ ଯାନାଦିର ଗମନାଗମନକୁ ନିୟନ୍ତ୍ରିତ କରିବାପାଇଁ ନିଯୋଜିତ ପ୍ରହରୀ ମାନେ) ଭିନ୍ନ ଭିନ୍ନ ସଙ୍କେତ ପ୍ରୟୋଗ ପୂର୍ବକ ହାତ ଉଠାଇବା 4. (said of the policemen on duty at points of traffic-congestion in towns) To show the hand to control the passing vehicles.

Hāta dekhāibā

হাতদেখান हाथदिखाना

**ହାତ ଦେଖିବା**—ଦେ. କ୍ରି—୧ । [ବୈଦ୍ୟ] ରୋଗୀର ନାଡ଼ି ପରୀକ୍ଷା କରିବା—1. (a physician) To examine the pulse of a patient. ୨ । ( ସାମୁଦ୍ରିକଶାସ୍ତ୍ରଜ୍ଞ ) କୌଣସି ବ୍ୟକ୍ତିଙ୍କ କରତଳସ୍ଥ ରେଖା ପରୀକ୍ଷା କରିବା—2. (a palmist) To examine the palm of a person.

Hāta dekhibā

হাত দেখা हाथ देखना

**ହାତ ଦେବା**—ଦେ. କ୍ରି—୧ । କୌଣସି କାର୍ଯ୍ୟ କରିବାକୁ ଆରମ୍ଭ କରିବା—1. To begin to do a work. ୨ । କୌଣସି କାର୍ଯ୍ୟ କରିବାକୁ ଅଗ୍ରସର ହେବା—2. To undertake a work; to take a work in hand. ୩ । କୌଣସି ବସ୍ତୁକୁ ବା ଦେହକୁ ହାତଦ୍ୱାରା ସ୍ପର୍ଶ କରିବା; ହାତ ଲଗାଇବା—3 To touch ( the body of a person or a thing) with one's hand ୪ । ପ୍ରତିଜ୍ଞା ବା ସତ୍ୟ କରିବା ଉପଲକ୍ଷରେ କୌଣସି ବ୍ୟକ୍ତିଙ୍କ ହାତରେ ନିଜର ହାତକୁ ରଖିବା; ଦୃଢ଼ ଜବାବ ଦେବା—4. To give one's hand to a person as a solemn pledge for keeping one's promise. ୫ । ହସ୍ତଦ୍ୱାରା କୌଣସି ବସ୍ତୁକୁ ଅବଲମ୍ବନ କରିବା—5. To take hold of a thing. (ଯଥା—କୂଅ ଜହ୍ନରେ ହାତ ଦେଇ ଦେଇ ମୁଁ କୂଅ ଭିତରୁ ଉଠି ଆଇଲି) ୬ । ଶପଥ କରିବା ପାଇଁ ଅନ୍ୟର ପାଦକୁ ବା ଦେହକୁ ବା ମୁଣ୍ଡକୁ ବା ନିଜର ପଇତାକୁ ହାତ ଦ୍ୱାରା ଛୁଇଁବା—6. To touch another's leg or body or head or one's sacred thread while taking oath. ୭ । କୌଣସି ପଦାର୍ଥକୁ ସ୍ପର୍ଶ କରିବା—7. To touch any thing. (ଉ—ସବୁ ଚୋର, କେହୁ କାହିଁରେ ହାତ ଦବୁ ନାହୁଁ—ଭଗ)। ୮ । ନିଜର ଦେହର କୌଣସି ଅଙ୍ଗରେ ନିଜର ହାତକୁ ସ୍ଥାପନ କରିବା—8. To place one's hand on any part of one's own body.

Hāta debā

হাত দেওয়া हाथ देना

[ପ୍ର—କାନରେ ହାତ ଦେବା :—

୧ । କୌଣସି ଅପ୍ରାସଙ୍ଗିକ କଥା ଶୁଣି ଅବାକ୍ ହେବା ।

୨ । କୌଣସି ଅଶ୍ରାବ୍ୟ ବା କଠୋର ଶବ୍ଦ କାନରେ ନ ପଶିବ ବୋଲି ନିଜ କାନକୁ ହାତଦ୍ୱାରା ବନ୍ଦ କରିବା ।

ଖ । ମଥାରେ ବା ମୁଣ୍ଡରେ ହାତ ଦେବା ବା ଦେଇ ବସିବା ।

୧ । ଅତ୍ୟନ୍ତ ଚିନ୍ତାରେ କିଂକର୍ତ୍ତବ୍ୟବିମୂଢ଼ ହେବା ।

୨ । ଦୁର୍ଭାବନା କରି ବସିବା ।

ଗ । ଓଠରେ ହାତ ଦେବା—ଚୁପ୍ ହେବା ନିମନ୍ତେ ଉପସ୍ଥିତ ବ୍ୟକ୍ତିଙ୍କୁ ସଙ୍କେତ କରିବାକୁ ନିଜର ମୁଦ୍ରିତ ଓଷ୍ଠଦ୍ୱୟରେ ହସ୍ତ ସ୍ଥାପନ କରିବା ।

ଘ । ଅନ୍ୟର ମୁହଁରେ (ପାଟିରେ) ହାତ ଦେବା :—କୌଣସି ବ୍ୟକ୍ତିକୁ କଥା କୁହାଇ ନ ଦେବା ପାଇଁ ତା ମୁଖରେ କରତଳକୁ ସ୍ଥାପନ କରିବା; କରତଳ ଦ୍ୱାରା ଅନ୍ୟ ବ୍ୟକ୍ତିର ମୁଖକୁ ବୁଜିବା ।

ଙ । ମୁଣ୍ଡରେ ହାତ ଦେବା :—ଆଶୀର୍ବାଦ କରିବା ପାଇଁ ଅନ୍ୟ ବ୍ୟକ୍ତିଙ୍କ ମସ୍ତକରେ କରତଳକୁ ସ୍ଥାପନ କରିବା ।

ଚ । ଛାତିରେ ହାତ ଦେବା :—ହୃତ୍‌ପିଣ୍ଡର ସ୍ପନ୍ଦନକୁ ଜାଣିବା ପାଇଁ କୌଣସି ବ୍ୟକ୍ତିର ଛାତିରେ କରତଳ ସ୍ଥାପନ କରିବା ।

ଛ । ନାକରେ ହାତ ଦେବା :—୧ । ନାକରେ ଦୁର୍ଗନ୍ଧ ନ ପଶିବ ବୋଲି ନିଜର ନାକକୁ ବୁଜିବା ।

୨ । ଶ୍ୱାସ ବହୁଥିବା ନ ଥିବା ବିଷୟ ପରୀକ୍ଷା କରିବା ପାଇଁ ଅନ୍ୟ ବ୍ୟକ୍ତିର ନାସାରନ୍ଧ୍ରରେ ଅଙ୍ଗୁଠି ଲଗାଇବା ।]

ହାତଧରି ଗୋଡ଼ ଧରି—ଦେ. ବ—କୌଣସି ବ୍ୟକ୍ତିଙ୍କ ହସ୍ତପଦାଦ
Hāta dharā gorda dharā ଧାରଣପୂର୍ବକ ଅନୁନୟ
হাত পায়ে ধরা ବା ସକଳୟ ପ୍ରାର୍ଥନା—
हाथ पैर धरना Humble solicitation or prayer by holding the hands and feet of another person.

ହାତ ଧରିବା—ଦେ. କି—୧ । ମିନତି କରିବା ବା କୈଫିୟତ ଦେବା ବା
Hāta dharibā କ୍ଷମାପ୍ରାର୍ଥନା ପାଇଁ ଅନ୍ୟର ହସ୍ତକୁ
হাতে ধরা हाथ धरना ଧାରଣ କରିବା-
1. To take hold of a person's hand in supplication or in asking forgiveness or tendering apology. ୨ । ସ୍ତ୍ରୀକୁ ବା ପୁରୁଷକୁ ବିବାହ କରିବା; ପାଣିଗ୍ରହଣ କରିବା—2. To marry a person. ( ଉ—ବ୍ରହ୍ମାଣ୍ଡ ନାଥ ହାତ ଧରି ଅନାଥ କି ଶୁଭୁଅଛି ଜଗତେ—ଭଞ୍ଜ. ବୈଦେହୀଶ ବିଳାସ ।)

ହାତ ଧୁଆ—ଦେ. ବ—୧ । ମଇଳା ବା ଅଇଁଠା ହାତକୁ ଧୋଇବା—
Hāta dhuā 1. Washing of unclean hand.
হাত ধোয়া हाथ धुलाई ୨ । ଖାଇସାରିବା ପରେ ଯେଉଁ ବାସନ ( କୁଣ୍ଡ )ରେ ହାତ ଧୋଇବାକୁ ହୁଏ—2. A pan or bowl in which a person washes his or her hand after meal ୩ । ଗୋରୁଙ୍କ ଶବକୁ ଘରୁ ଉଠାଇ ନେଇ ଦଣ୍ଡାରେ ପକାଇବା ପାଇଁ ପାଣହାତ ଆଦିଙ୍କୁ ଯେଉଁ ପାରିଶ୍ରମିକ ଦିଆଯାଏ—3. Wages or remuneration paid to the Mehtars etc who remove the carcase of dead cows from the owner's house.

ହାତ ଧୋଇ ବସିବା—ଦେ. କି (ଲକ୍ଷଣାର୍ଥ)—୧ । କୌଣସି କାର୍ଯ୍ୟରୁ
Hāta dhoi basibā ଆପଣାର ସମସ୍ତ ସମ୍ପର୍କ ତୁଟାଇବା—
(ହାତ ଧୋଇଧାଇ ବସିବା—ଅନ୍ୟରୂପ) 1. (figurative)
হাত ধুয়ে বসা हाथ धो बै To wash one's hand clean of any matter; to cut off all connections from any matter. ୨ । ନିଜ ଉପରେ ନ୍ୟସ୍ତ କୌଣସି କାର୍ଯ୍ୟ ସମ୍ପନ୍ନ କରି ସାରି ନିଶ୍ଚିନ୍ତ ହୋଇ ବସିବା—2. To sit quiet after finishing one's assignea work.

ହାତ ନଡ଼କା ( ନଡ଼ନଡ଼ )—ଦେ· ଣ—ଯାହାର ହାତ ଇତସ୍ତତଃ
Hāta nardakā(narda narda) ଚଳକୁ ଝୁଲୁଥାଏ—
With the hands hanging to and fro. [ଉ—ଯାଉଥିଲ ମଞ୍ଚ, ହାତ ନଡ଼କା ଗୋଡ଼ ନଡ଼କା, ଦେଖି ଅଇଲି ପରପଞ୍ଚ—ଶିଶୁରଞ୍ଜନ ପଦ ।]

ହାତ ନଡ଼ବଡ଼(ନୁଡ଼ୁବୁଡ଼ୁ)—ଦେ. ବ—ହାତ ଲଡ଼ବଡ଼ (ଦେଖ)—
Hāta nardabarda(nurdubürdu) Hāta lardabarda (See).

ହାତ ନଡ଼ବଡ଼ି—ଦେ. ବ ଓ ଣ—ହାତ ଲଡ଼ବଡ଼ି (ଦେଖ)—
Hāta nardabardi Hāta lardabardi (See)

ହାତ ନଡ଼ବଡ଼ିଆ (ନୁଡ଼ୁବୁଡ଼ିଆ)—ଦେ. ବଣ· ପୁଂ ଓ ସ୍ତ୍ରୀ—୧ । ଯେ
Hāta narda bardiā (nurdu burdiā) ଛୋଟିକା ଚୋର
ছিঁচকে চোর ରହିବାରେ ଅଭ୍ୟସ୍ତ—1. Pilfering. ୨ ।
उठाईगिरा, अंटीबाज ଛୋଟିକା ଚୋରି ସମ୍ବନ୍ଧୀୟ—2. Relating to stealing; pilfering
ହାତ ନଡ଼ବଡ଼ୀ (ନୁଡ଼ୁବୁଡ଼ୀ) } ସ୍ତ୍ରୀ
ହାତ ନଡ଼ବଡ଼େଇ (ନୁଡ଼ୁବୁଡ଼େଇ) }

ହାତ ନଡ଼ବଡ଼ିଆ(ନୁଡ଼ୁବୁଡ଼ିଆ)ପଣ(ଖୋଇ)—ଦେ. ବ—ଛୋଟିକା ଚୋରି
Hāta nardabardiā(nurdu burdiā) pana (khoi)
ছিঁচকে চুরী করিবা ଅଭ୍ୟାସ—Pilfering habit.
अंटीबाजी

ହାତ ନ ପାଇବା—ଦେ. କ - ୧ । କୌଣସି ବସ୍ତୁ ଅତି ଉଚ୍ଚରେ
Hāta na paibā ଥିବାରୁ ସେ ସ୍ଥାନକୁ ହାତ ବଢ଼ାଇଲେ ତାହା
হাত না পাওয়া ହସ୍ତଗତ ହୋଇ ନ ପାରିବା—1. Being
हाथ न पहुँचना unable to reach one's hands to.
(ହାତ ପାଇବା—ବିପରୀତ) a thing which is beyond the reach. ୨ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟ କରିବାକୁ ସାହସ ନ ହେବା—2. (figurative) Not having the courage to do a thing.

ହାତ ନିଉଛୁଣା ମାଟି କରିବା—ଦେ. କି—(କୌଣସି ବ୍ୟକ୍ତିକୁ) ତୁଚ୍ଛ
Hāta niuchhunā mati karibā ଜ୍ଞାନ କରିବା—To disregard or slight a person.

ହାତ ପଅ(ଉ,ହ,ହୁ,)ଞ୍ଚ—ଦେ. ଣ—୧ । ହାତ ପାଇବା ସ୍ଥାନରେ
Hāta pa-a (u, ha, hu) ñcha ଅବସ୍ଥିତ—1. Situated
হাতের নাগাল within the reach of one's hands.
हात पहुँच ହାତ ପଇଠ ହୋଇଥିବା; ହସ୍ତଗତ ହୋଇଥିବା—
[ହାତ ଅପଅ(ଉ,ହ,ହୁ)ଞ୍ଚ—ବିପରୀତ] 2. Brought under one's control or possession. ବ—ହାତ ପାଇବା ସ୍ଥାନରେ ଅବସ୍ଥିତି—The state of a thing being within the reach of one's hands.

ହାତ ପଇ(ଏ)ଠ(ପୈଠ)—ଦେ· ବ—(ସଂ ହସ୍ତ+ପ୍ରବିଷ୍ଟ)—ଧନାଦିର
Hāta pai(e)tha(paitha) ହସ୍ତଗତ ହେବା ଅବସ୍ଥା—
হাতেআসা State of some money coming to one's.
हाथमें आना hands. [ଉ—ପୁନର୍ବାର ହାତ ପୈଠ ହେବା ସହଜ ନୁହେଁ ।ଫକୀରମୋହନ—ଛମାଣ ଆଠଗୁଣ ।]

ହାତ ପଇଠି (ପୈଠି)—ଦେ. ବ—(ସଂ ହସ୍ତ+ପୃଷ୍ଠ)—କର ପଇଠି;
Hāta paithi (paithi) କର ପୃଷ୍ଠ, ପାପୁଲି—The
হাতের পিঠ तरहथी back of the palm.

ହାତ ପକା(କେ)ଇବା—ଦେ କ୍ରି—୧ । ଅନ୍ୟ ବ୍ୟକ୍ତିଙ୍କ ଉପରେ ହସ୍ତ ରଖିବା—1. To place one's hands on another's body. ଯଥା—ସେ । ଅମୁକ ଲୋକର କାନ୍ଧରେ ହାତ ପକାଇ ବୁଲୁଛି)—୨ । (ଲକ୍ଷଣାର୍ଥ) କୌଣସି ବସ୍ତୁକୁ ଅଧିକାର କରିବା; ହସ୍ତଗତ କରିବା—2. (figurative) To take possession of a thing. (ଯଥା—ସେ ଗୋଟିଏ ଭଲ ଘରରେ ହାତ ପକାଇଛି)—୩ । ଦୁଇଜଣଙ୍କର ହାତର ପଞ୍ଝାଦ୍ୱାରା ବଳ କଷାକଷି ହେବା—3. (two persons) To test each other's strength by mutual grappling of the palms. ୪ (ବ୍ୟଙ୍ଗ୍ୟ) କୌଣସି ସ୍ତ୍ରୀକୁ ବା ପୁରୁଷକୁ ଅବୈଧ ପ୍ରଣୟ ଦ୍ୱାରା ବଶୀଭୂତ କରିବା—4 (ironical) To secure the illicit love of a person. ୫ । ହସ୍ତଦ୍ୱାରା ଅଘାତ କରିବା-5. To strike with the hands. (ଯଥା—ମୃଦଙ୍ଗ ଦୁଇ ପିଠିରେ ହାତ ପକାଇବା—ଢଗ)
Hāta pakā(ke)iba
ହାତ ରାখা
हाथ रखना

ହାତ ପଙ୍ଖା—ଦେ ବି—୧ । ଯେଉଁ ବିଞ୍ଚଣାକୁ ମନୁଷ୍ୟ ହାତେ ଗୁଳାଇ ବାୟୁ ଦିଏ—1. Hand-fan. ୨ । ଯେଉଁ [କଳ ପଙ୍ଖା—ବିପରୀତ] ପଙ୍ଖା ମନୁଷ୍ୟର ହାତଦ୍ୱାରା ଗୁଳାଇ ହୁଏ; ହାତଟଣା ପଙ୍ଖା—Hand-driven fan or punkha.
Hāta pankha
হাতপাখা
हाथ पखा

ହାତ ପଚ୍(ଚେ)ଇବା—ଦେ. କ୍ରି—ହରଗଉରୀ ଫୁଲକୁ ବା ପତ୍ରକୁ ବମ୍ପା ମେହେନ୍ଦି ପତ୍ରକୁ ବାଟି ତାହା ହାତରେ କରୁଷଣ ଲେପି କରତଳ ଓ ଅଙ୍ଗୁଠି ଅଗ୍ରକୁ ରଞ୍ଜିତ କରିବା—To dye one's palms and fingers with bruised Henna and some other leaves.
Hāta pachā(che)iba
হাত বাংগা
हाथ रंगना

ହାତ ପତର(ପତ୍ର)—ଦେ. ବି—ଛାଡ଼ପତ୍ର; ବିବାହ ବନ୍ଧନ ଛେଦନ କରିବା ଉପଲକ୍ଷରେ ସ୍ତ୍ରୀଙ୍କ ଉପରେ ସ୍ୱାମୀଙ୍କର ଭବିଷ୍ୟତରେ କୌଣସି ଦାବି ନାହିଁ ବୋଲି ସ୍ୱାମୀ ସ୍ତ୍ରୀଙ୍କୁ ଯେଉଁ ଦଲିଲ ଲେଖିଦିଅନ୍ତି—Deed of divorce.
Hāta patara(patra)
ছাড়পত্র
तलाक

ହାତ ପତା(ତେ)ଇବା—ଦେ. କ୍ରି—୧ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିଙ୍କୁ କୌଣସି ପଦାର୍ଥ ଅଳ୍ପ ପାନ-ଭାବରେ ମାଗିବା—1. (figurative) To extend one's palm to beg something of a person. ୨ । (ଲକ୍ଷଣାର୍ଥ) କେହୁର ହେବା, ପ୍ରାର୍ଥନା କରିବା—2. (figurative) To supplicate. ୩ । କୌଣସି ବ୍ୟକ୍ତିଙ୍କୁ କୌଣସି ବସ୍ତୁ ମାଗିବା ପାଇଁ ବା କୌଣସି ପଦାର୍ଥ ଗ୍ରହଣ କରିବାକୁ କରତଳକୁ ପ୍ରସାରିତ କରି ଦେଖାଇବା—3. To extend one's palm to ask for a thing or to get a thing.
Hāta patā(te)ibā
हाथ पसारना
হাত পাতা

ହାତ ପଦ୍ମ—ଦେ. ବି—କରପୃଷ୍ଠରେ ପିନ୍ଧାଯିବା ପ୍ରସ୍ଫୁଟିତ ପଦ୍ମାକାରବିଶିଷ୍ଟ ଅଳଙ୍କାର—An ornament (shaped like a full blown lotus) worn on the back of the palm. [ଦ୍ର—ଏହା ଗୋଟିଏ ଗୋଲାକାର ଧାତୁ ଖଣ୍ଡ ଓ ଏହା ଏକଦିଗରେ ଅଙ୍ଗୁଠିମାନଙ୍କ ସଙ୍ଗେ ଓ ଅନ୍ୟ ଦିଗରେ ମଣିବନ୍ଧ ସଙ୍ଗେ ଶିକୁଳି ଦ୍ୱାରା ସଂଯୁକ୍ତ ହୋଇଥାଏ ।
Hāta padma
কর পদ্ম
हाथपान, हाथ फुल

ହାତ ପ(ପା)ମ୍ପ—ବୈଦେ. ବି (ଇଂ.ପମ୍ପ୍) ଯେଉଁ ପାଣିଉଠାଇବା କଳ ହାତରେ ଗୁଳାଇ ହୁଏ—Hand-pump
Hāta pa(pā)mp
হাতপাম্প
हाथपंप

ହାତ ପଶିବା—ଦେ. ବି—୧ । କୌଣସି ଛିଦ୍ରରେ ହାତର ପ୍ରବେଶ—1. The thrusting of one's hands to a hole or opening. [ଦ୍ର—ହାତ ପଶୁ ପଶୁ ବାହା ପଶେ—ଦେ. ପ୍ରବଚନ—ଏହାର ତାତ୍ପର୍ଯ୍ୟ ଏହି ଯେ, ଦରମେଲା କବାଟର ଫାଙ୍କରେ ପ୍ରଥମେ ହାତ ପୂରାଇବା ବ୍ୟକ୍ତି କ୍ରମଶଃ ଠେଲି ଠେଲି କାନ୍ଧ ପର୍ଯ୍ୟନ୍ତ ପୂରାନ୍ତି; ସେହିପରି ପ୍ରଥମେ ସାମାନ୍ୟ ସମ୍ପର୍କମାନରୁ ଆରମ୍ଭ କରି କ୍ରମେ କ୍ରମେ ପୂର୍ଣ୍ଣ ଅଧିକାର ଲାଭ କରିବା ସ୍ଥଳରେ ପ୍ରଯୁଜ୍ୟ ପ୍ରବଚନ ବା ନ୍ୟାୟ ।] ୨ । କୌଣସି ବସ୍ତୁର ହାତ ଦ୍ୱାରା ବ୍ୟବହାର—2. The use of a thing by the hand. (ଯଥା-ଲଙ୍କାମରିଚ ଗଛରେ ନୂଆ ହୋଇ ହାତ ପଶୁଛି ।)
Hāta pasibā
হাত ঢোকা
हाथ घुसना

ହାତ ପାଆନ୍ତ(ନ୍ତା, ନ୍ତି)—ଦେ. ବି—ହାତକୁ ବଢ଼ାଇଲେ ହାତ ପହଞ୍ଚିବା ସୀମା ମଧ୍ୟରେ କୌଣସି ଦ୍ରବ୍ୟର ଅବସ୍ଥିତି—Situation of a thing within the reach of a person's hands.
Hāta pāānta(ntā, nti)
(ହାତପାଆନ୍ତିଆ—ବିଣ ରୂପ)
হাতের নাগাল
हाथपहुच

ହାତ ପାଇବା—ଦେ. ବି—କୌଣସି ବସ୍ତୁକୁ ହାତ ବଢାଇଲେ ତାହାର ହସ୍ତଗତ ହେବାର ସୀମା ମଧ୍ୟରେ ଅବସ୍ଥିତି—Being within the reach of one's hands.
Hāta pāibā
হাত পাওয়া
हाथ पाना

(ମୁଣ୍ଡକୁ) ହାତ ପାଇବା—ଦେ. ବି—ନିଜର ସାଂସାରିକ କାର୍ଯ୍ୟ ନିଜେ ପରିଗୁଳନ କରିବାକୁ ସମର୍ଥ ହେବା; ନିଜକୁ ପୋଷିବାକୁ ନିଜେ ସମର୍ଥ ହେବା-Becoming able or fit to look after one's worldly affairs.
(muṇḍaku) Hāta pāibā

ହାତ ପାଞ୍ଚ—ଦେ. ବି—ହାତରେ ପାଞ୍ଚ (ଦେଖ)—Hātare pāncha (See)
Hāta pāncha
(ହାତର ପାଞ୍ଚ—ଅନ୍ୟରୂପ)
হাতে পাঁচ

ହାତ ପାପୁଲି — ଦେ. ବି—କରପୃଷ୍ଠ—
Hāta pāpuli The back of the palm.
হাতেরপিঠ तरहथी

ହାତପାହାନ୍ତ(ନ୍ତା, ନ୍ତି) — ଦେ. ବି—ହାତପାଅନ୍ତ (ଦେଖ)—
Hāta pāhānta(ntā,nti) Hātapā-ānta (See)
[ହାତପାହାନ୍ତିଆ—ବଣ. ରୂପ]

ହାତ ପାହାରୁଣି—ଦେ. ବି—ଧାନ କୁଟିବାର କାଠର କଡ଼ ହେମାନଦସ୍ତା; ଉଦୂଖଳ—The big wooden mortar used for husking paddy
Hāta pāhāruni
উদুখল खल
[ ଦ୍ର—ଏଥିରେ ଧାନ କୁଟିବା ପାଇଁ ବ୍ୟବହୃତ ପାହାରକୁ ମୁଷଳ କହନ୍ତି ।
(ହାତପାହୁରୁଣୀ—ଅନ୍ୟରୂପ)

ହାତ ପାହାରୁଣି ମୁଷଳ—ଦେ. ବି [ପାହାରୁଣିର ଦୁଇଟି ଅଙ୍ଗ ]
Hāta pāhārnni mūshala ଉଦୂଖଳ ଓ ମୁଷଳ—
উদুখলমুষল खलमूसल The wooden mortar and the pestle for husking paddy.

ହାତ ପୁରା(ରେ)ଇବା—ଦେ. କ୍ରି—୧ । କୌଣସି ଛିଦ୍ର ବା ପାତ୍ର ମଧ୍ୟରେ ହାତକୁ ପ୍ରବିଷ୍ଟ କରାଇବା—
Hāta purā(re)ibā
হাতঢুকান हाथघुसाना 1. To thrust one's hands into a hole or a pot ( ଯଥା—ବୋଇଲେ ବୋ, କାଇଲେ ହାତପୁରେଇ ବ୍ୟାଇବ—ଢଗ ।] ୨ । କୌଣସି କାର୍ଯ୍ୟକୁ ନିଜ ହାତରେ ନେବା—2. To undertake any work. ୩ । କାର୍ଯ୍ୟ ଆରମ୍ଭ କରିବା —3. To begin a work. ୪ । କୌଣସି କାର୍ଯ୍ୟରେ ଅଯଥା ହସ୍ତକ୍ଷେପ କରିବା—4. To meddle with any work.

ହାତ ପୁରା(ରେ)ଇ ବି(ବେ)ଆଇବା(ବ୍ୟାଇବା)—ଦେ. କ୍ରି—ପ୍ରସବ କରି ପାରୁ ନ ଥିବା
Hāta purā(re)i bi(be)āibā (byāibā)
হাত পূবিয়ে প্রসব করান ପ୍ରସୂତିର ପ୍ରସବ ଦ୍ୱାର ବାଟେ (ଧାତ୍ରୀ) ହସ୍ତ
हाथ घुसाकर पैदा करना ପ୍ରବେଶ କରି ଗର୍ଭସ୍ଥ ଶିଶୁକୁ ବାହାର କରି ଆଣିବା—To bring out the baby from the womb of a woman who is in labour pain and who has not strength enough to eject the contents

ହାତ ପୋଛ(ଖାଲି)—ଦେ.ବି—୧ । ଅର୍ଥଶୂନ୍ୟ ହସ୍ତ; ରିକ୍ତ ହସ୍ତତା—
Hāta pochh(khāli) 1. Penniless condition. ୨ ।
হাত খালি ହାତରେଥିବା ଧନ ସମସ୍ତ ବ୍ୟୟିତ ହେବା ଅବସ୍ଥା—
हाथ खाली 2. The condition of a person having spent the last pie he had got.
ଦେ. ବିଣ—୧ । ଅର୍ଥଶୂନ୍ୟ (ବ୍ୟକ୍ତି)—1. Penniless (person). ୨ । ଅର୍ଥଶୂନ୍ୟ ( ଅବସ୍ଥା )—2. Penniless (condition).

ହାତ ପୋଛା—ଦେ·ବି—କ୍ଷୌର କରିବା ପରେ ବାମ ହାତରେ ଲଗିଥିବା
Hāta pochhā ଲୁଡ଼ ଓ ମଇଳା ଇତ୍ୟାଦିକୁ ପୋଛିବା ପାଇଁ
হাত মুছা ক্ষুর ଭଣ୍ଡାରୀମାନଙ୍କ ବ୍ୟବହୃତ ବନ୍ଧୁରୀ କ୍ଷୁର—
हाथ पोंछा अस्तुरा A blunt razor used by the barbers to remove the stumps which they put on the left hand while shaving.

ହାତ ପୋଡ଼ା—ଦେ. ବି—ହସ୍ତଜ୍ୱାଳା ରୋଗ—The burning of
Hāta porḍā the hands; a disease consisting
হাত জালা of a burning sensation in the hands.
हाथ जलना

ହାତ ଫାଟି ପଡ଼ିବା—ଦେ. କ୍ରି—ଅତ୍ୟନ୍ତ ଗୁରୁଭାର ବହନ ବା କିଛି
Hāta phāti parḍibā ଯୋଗୁଁ ହାତରେ ଅସହ୍ୟ ବେଦନା
হাত ফেটে পড়া (ଯେପରି ଯେପରି ହାତ ଫାଟିଯିବ) ଅନୁଭୂତ
हाथ फटजाना ହେବା—Feeling of extreme pain (as of bursting) in the arms due to carrying a heavy load or aching.

ହାତ ବଜା(ଜେ)ଇବା —ଦେ. କ୍ରି—୧ । ଅନ୍ୟ ବ୍ୟକ୍ତିର ଦେହକୁ ବା
Hāta bajā(je)ibā କୌଣସି ବସ୍ତୁକୁ ହାତ ଦ୍ୱାରା ସ୍ପର୍ଶ କରିବା
হাত লাগান —1. To touch anything or body.
हाथ लगाना (ଯଥା—ଏ ଘଣ୍ଟାରେ ଦେହ ହାତ ବଜାଇଲେ ଘଣ୍ଟାଟି ବନ୍ଦ ହୋଇଯିବ ।) ୨ । ହାତ ମାରିବା ( ଦେଖ - 2. Hāta māribā ( See )

ହାତ ବଢ଼ା(ଢ଼େ)ଇବା—ଦେ. କ୍ରି—ଉଚ୍ଚହୋଇଥିବା ଦ୍ରବ୍ୟକୁ ଧରିବା
Hāta barḍhā(rḍhe)ibā ପାଇଁ ହାତକୁ ଊର୍ଦ୍ଧ୍ୱକୁ ଟେକିବା—
হাত বাড়ান To raise one's hand to catch a
हाथ बढ़ाना thing on high. [ଦ୍ର—ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଇବା—ନ୍ୟାୟ । ଅସାଧ୍ୟ କାର୍ଯ୍ୟ କରିବାକୁ ଆଶା କରିବା ରୂପ ଦୁରାଶା କରିବା ସ୍ଥଳରେ ଏହି ନ୍ୟାୟର ଉଦାହରଣ ଦିଆଯାଏ ।]

ହାତ ବଳା—ଦେ. ବି—୧ । କାରିଗରମାନେ ନିଜର ସିଦ୍ଧହସ୍ତତା
Hāta baḷā ଲାଭ କରିବା ପାଇଁ ପ୍ରଥମେ ଛବି ବା ଚିତ୍ର ବା ମୂର୍ତ୍ତି
হাত পাকা ଗଢ଼ିବାର ଯେଉଁ ଅଭ୍ୟାସ କରନ୍ତି; ଛବି ଆଦି
हाथ पक्का करना ଅଙ୍କିବା ଅଭ୍ୟାସ—1. The practising of neophytes in painting and sculpture; exercise of art by a neophyte. (ଯଥା—ଅନୁମାନେ ଅଟେ ଅଗେ ବଧି ସାଧି ପଦେ ଛନ୍ଦେ, ହାତ-ବଳା । ରାଧାନାଥ. ଯଯାତି ।) [ଦ୍ର—କାରିଗରି ଶିକ୍ଷା କରିବା ବ୍ୟକ୍ତିମାନେ ନିଜ ନିଜର ହାତକୁ ପକ୍କା ବା ସିଦ୍ଧ କରିବା ପାଇଁ ଆଗ କରି ସୁନ୍ଦର ଚିତ୍ର ବା ମୂର୍ତ୍ତି ଗଢ଼ନ୍ତି ଓ ସେଥିରେ ଯେ ଯେ ଦୋଷ ରହିଲା, ତାହା ଦେଖି ଗୁରୁଙ୍କଠାରୁ ସେମାନେ ସେ ଦୋଷମାନ ପରିହାର କରନ୍ତି । ହାତବଳା ଛବି ଓ ମୂର୍ତ୍ତିମାନ ଅବଶ୍ୟ ନାନା ଦୋଷଯୁକ୍ତ ହୋଇଥାଏ ଓ ସିଦ୍ଧହସ୍ତ କାରିଗରଙ୍କ ରଚିତ ମୂର୍ତ୍ତି ଅପେକ୍ଷା ଏହା ନିକୃଷ୍ଟ ହୁଏ ।] ୨ । ସିଦ୍ଧହସ୍ତତା ଲାଭ କରିବା ପାଇଁ କାରିଗରଙ୍କ ଦ୍ୱାରା ପ୍ରଥମେ ଗଢ଼ା ହେବା ମୂର୍ତ୍ତି ବା ଚିତ୍ର—2. Any picture or image done by an artist for practising ୩ । ହଠାତ୍ ଅନ୍ୟକୁ

ପ୍ରହାର କରିବା—3. Suddenly striking another. ୪। ମାଡ଼ ଦେବାକୁ ହାତ ପ୍ରସାରିତ କରିବା—4. Extending one's hands to strike. ବିଣ—ହସ୍ତସିଦ୍ଧି ଲାଭ କରିବା ନିମନ୍ତେ ଚିହ୍ନିତ (ଚିତ୍ର) ବା ଗଠିତ (ମୂର୍ତ୍ତି)—(picture or image) Made by a sculptor or painter to attain a practised hand.

ହାତ ବଳା(ଳେ)ଇବା—ଦେ. କ୍ରି—୧। ସିଦ୍ଧହସ୍ତ ହେବା ପୂର୍ବରୁ Hāta balā (le) ibā (ଶିଳ୍ପୀ) ଚିତ୍ର ଅଙ୍କିବା ବା ମୂର୍ତ୍ତି ଆଦି ଗଢ଼ିବାରେ ହାତକୁ ଦୋରସ୍ତ କରିବା ବା ଅଭ୍ୟାସ କରିବା; ହାତ ସାଧିବା—1. To practise by making works of art before one becomes a skilled artist; to exercise the hands to earn proficiency. ୨। ଅନ୍ୟକୁ ମାଡ଼ ମାରିବାପାଇଁ ହସ୍ତକୁ ପ୍ରସାରିତ କରିବା; ହାତ ଝୁଲାଇବା—2. To raise one's hand to strike a person. ୩। ଅନ୍ୟକୁ ମାଡ଼ ମାରିବା—3. To strike another.

হাত পাকাম হাথপক্কাকরনা হাথ সাধনা

ହାତ ବଳିବା—ଦେ. କ୍ରି—ଶିଳ୍ପ କାର୍ଯ୍ୟରେ ସିଦ୍ଧହସ୍ତ ହେବାପାଇଁ Hāta balibā ଅଭ୍ୟାସ କରିବା—To practise exercise on art. ବି—୧। ଶିଳ୍ପୀର ପ୍ରଥମ ଅଭ୍ୟାସ—1. Excers on art. ୨। ହାତଯିବା ( ଦେଖ )—2. Hāta jibā (See) (ଯଥା—ପିଲାଟିକୁ ମାରିବାକୁ

হাঁত পাকান্ হাথপক্কাকরনা ମୋ ହାତ ବଳୁ ନାହିଁ)

ହାତ ବସିବା—ଦେ. ବି—କର୍ମ କରି କରି ସିଦ୍ଧହସ୍ତତା ଲାଭକରିବା—Hāta basibā Acquisition of proficiency by constant exercise.

হাতপাকা হাতবৈঠনা

ହାତ ବାକସ (ବାକ୍ସ, ବାକୁସ)—ଦେ. ବି—୧। ହସ୍ତ ବାକ୍ସ, ଯେଉଁ Hāta bākasa (bāksa, bākusa) ବାକ୍ସକୁ ହାତରେ ଓହଳାଇ ସବୁବେଳେ ନେଇଅଣା କରିଯାଇ ପାରେ—1. Hand-box; a box which can be carried by one's hand. [ବି—ଏଥିର ଉପର ଡାଳାର ମଝିରେ ହାତଟା ଲାଗିଥାଏ] ୨। ଯେଉଁ ବାକସ ସବୁବେଳେ ବଡ଼ଲୋକମାନଙ୍କ ପାଖରେ ଥାଏ ଓ ଯହିଁରେ ଖଲକି ଭିତରେ ଓ ନିତ୍ୟ ପ୍ରୟୋଜନୀୟ କାଗଜପତ୍ରାଦି ରହେ—2. Cash box for daily use.

হাতবাক্স হাথবাকস

ହାତ ବାନ୍ଧି ବସିବା—ଦେ. କ୍ରି—କର୍ମହୀନ ବା ବେକାର ହେବା—Hāta bāndhi basibā To be unemployed or idle; to be without any employment.

হাত বেঁধে বসা হাত বাঁধকে বৈঠনা

( ଉ—ବୃତ୍ତାନ୍ତର ନୋକୁ ଦେଖ ଚିତ୍ର; ହାତ ବାନ୍ଧି କ... କଉନ୍ତୁ ଶିକ୍ଷଣି ସମାଜ ଲୋ କୋଇଲି—ବାଳକୃଷ୍ଣ ... ଅକାଳ ବୋଇଲି ।)

ହାତ ବାରସୀ(ବାର୍ସୀ)—ଦେ. ବି—୧। ବଢ଼େଇ ସର୍ବଦା ନିଜ ପାଖରେ Hāta bārasī (bārsī) ଆପଣାର ମନୋମତ ଯେଉଁ ବାରସୀଟିଏ ରଖିଥାଏ—1. A small adze which suits a carpenter and of which he is fond and which he always carries with him; a carpenter's favourite adze. ୨। (ଲକ୍ଷଣାର୍ଥ) ସାହାଯ୍ୟକାରୀ ବ୍ୟକ୍ତି; ଯେଉଁ ବ୍ୟକ୍ତି ଦ୍ୱାରା କୌଣସି ବ୍ୟକ୍ତି ଆପଣାର କାର୍ଯ୍ୟ ସାଧନ କରାଇ ନିଅନ୍ତି—2. (figurative) One's helper; a person whom a person uses as a tool for getting his works done. ବିଣ—କୌଣସି ବ୍ୟକ୍ତିଙ୍କର ପ୍ରତ୍ୟକ୍ଷ ସାହାଯ୍ୟକାରୀ—Renderer of direct help to a person.

হাতবাইস হাথবসূলা

ହାତ ବିନ୍ଧା(ବଥା)—ଦେ. ବି—ହସ୍ତ ବ୍ୟଥା ରୋଗ—Hāta bindhā (bathā) Aching or pain in the hands or arms.

হাত ব্যথা হাথপোড়া

ହାତ ବୁଣା—ଦେ. ବି—୧। ଲୁଗାକୁ ହାତ ଦ୍ୱାରା ତନ୍ତରେ ବୁଣିବା—Hāta bunā 1. Hand weaving of a cloth. (କଳବୁଣା—ବିପରୀତ) ୨। ମୋଜାକୁ ହାତରେ ବୁଣିବା—2. The knitting of stockings by the hand. ବିଣ—ହସ୍ତଦ୍ୱାରା ବୟନ କରି ଯାଇଥିବା—Hand woven; hand knit.

হাতবোনা হাথবুনাবট

ହାତ ବୁଲା(ଲେ)ଇବା—ଦେ. କ୍ରି—୧। ଶୂନ୍ୟଆଡ଼େ ହସ୍ତକୁ ବା ବାହୁକୁ Hāta bulā(le)ibā ସଞ୍ଚାଳନ କରିବା—1. To move one's hand about. ୨। ହାତଦ୍ୱାରା ଶୂନ୍ୟଆଡ଼େ ଦରାଣ୍ଡିବା—2. To grope about with the hands. ୩। କୌଣସି ଅଙ୍ଗ ଉପରେ କରତଳକୁ ଇତସ୍ତତଃ ସଞ୍ଚାଳିତ କରିବା—3. To move the palm over any part of the body. ୪। ଦେହକୁ ଅଉଁସିବା—4. To massage the body. ୫। ଛୋଟ ପଦାର୍ଥକୁ ଚୋରି କରିବା—5. To pilfer. ୬। କୌଣସି ବ୍ୟକ୍ତିକୁ ଠକାଇ ବା ଫୁସୁଲାଇ କିଛି ଧନ ବା ପଦାର୍ଥ ନେବା—6. To take some money or thing from a person by cheating or wheedling him. ୭। ଘରେ ପଶି ଚୋରି କରିବା—7. To steal from a house. ( ଯଥା—ଚୋର ତା ଘରେ ହାତ ବୁଲେଇଦେଇ ଗଲେ ସେ, କିନ୍ତୁ ଜାଣିଏ ସୁଦ୍ଧା ଘରେ ନାହିଁ । ) ୮। (ଲକ୍ଷଣାର୍ଥ) କୌଣସି କାର୍ଯ୍ୟରେ ସମ୍ପୂର୍ଣ୍ଣରୂପେ ମନୋଯୋଗୀ ହେବା—8. (figurative) To be very attentive to a work. (ଉ—ଭିଳଭିଲ ସର୍ବାଙ୍ଗେ ସେ ବୁଲାଇବେ ହାତ, ହେବେ ତହିଁ କୃତକାର୍ଯ୍ୟ ସେ ଅମୃତହସ୍ତା—ଚନ୍ଦ୍ରାମଣି ବନମାହାତ୍ମ୍ୟ ।)

হাতবুলান হাথ ঘুমানা

ହାତ ବୋତାମ—ଦେ. ବ (ସ ହସ୍ତ ଓ ଇଂ ବଟନ୍)—କାମିଜ ଅଥବା ଅଙ୍ଗିରଖାର ହାତରେ ଲାଗିଥିବା ବୋତାମ—
Hāta botāma
হাতবোতাম हाथबोताम Sleeve button.

ହାତ ବୋଲିବା—ଦେ. କ୍ରି—୧ । ମଇଳା ଲାଗିଥିବା ହାତରୁ ମଇଳା ଛାଡ଼ିଯିବା ପାଇଁ କରତଳକୁ କୌଣସି ଲୁଗାରେ ବା କାନ୍ଥ ଆଦିରେ ଘୋଷି ଦେବା—1. To rub one's dirty palm on a wall or cloth to cleanse it. ୨ । କୌଣସି ବ୍ୟକ୍ତିଠାରୁ ଧନାଦି ନେଇ ଠକାଇବା—2. To cheat or wheedle out something from a person. ୪ । କୌଣସି ବ୍ୟକ୍ତିଠାରୁ ମାଗି କରି ଧନ ନେବା—4. To beg money from a person. ୫ । କୌଣସି ବ୍ୟକ୍ତିଙ୍କୁ ଧନ ମାଗିବା—5. To ask money of a person.
Hāta bolibā
হাতবুলান हाथपोछना

ହାତବ୍ୟ—ସଂ ବିଣ. ପୁଂ—(ହା ଧାତୁ=ତ୍ୟାଗ କରିବା + କର୍ମ ତବ୍ୟ)—ତ୍ୟକ୍ତ ହେବା ଯୋଗ୍ୟ—Fit to be giv'n up or abandoned.
Hātabya
( ହାତବ୍ୟା—ସ୍ତ୍ରୀ )

ହାତ ଭଣ୍ଡା—ଦେ. ବ—କହୁଣିଠାରୁ କଜଟି ପର୍ଯ୍ୟନ୍ତ ହାତର ମାଂସଳ ଅଂଶ (ଯାହା ଆକାରରେ କଦଳୀ-ଭଣ୍ଡା ପରି ଦେଖାଯାଏ)-The calf of the hand.
Hāta bhaṇḍā
হাতেরডিমে हाथपहुँचा

ହାତ ଭରତି(ଭର୍ତି)କରିବା—ଦେ. କ୍ରି—ହାତ ପୁରାଇବା (ଦେଖ)—Hāta puraibā (See)
Hāta bharati ( bharti ) karibā

ହାତ ଭାଙ୍ଗି ହେବା—ଦେ. କ୍ରି—୧ । ( ଲକ୍ଷଣାର୍ଥ ) ଆନନ୍ଦରେ ଉତ୍‌ଫୁଲ୍ଲ ହେବା—1. To feel overjoyed; to be overwhelmed with joy. (ଉ-ବଧୂ ସଙ୍ଗେ ହାତ ଭାଙ୍ଗି ହେଉଛନ୍ତି ଯଶୋଦା ତୋତେ ବଳେ କି—ଗୋପାଳକୃଷ୍ଣ ନବାନୁରାଗ । ) ୨ । ଅତି ଆଗ୍ରହ ସହକାରେ କାମନା କରିବା; ଲାଳାୟିତ ହେବା—2. To hanker after.
Hāta bhāṅgi hebā
আহ্লাদেআঠখানা হওয়া आनंदसेफुलना

ହାତ ମଉଜା(ମୋଜା)—ଦେ. ବ—ଦସ୍ତାନା; ହାତରେ ପିନ୍ଧାଯିବା ମୋଜା—Gloves.
Hāta maujā(mojā)
হাত মোজা हाथ मोजा

ହାତ ମାଟି—ଦେ. ବ—୧ । ଝାଡ଼ା ଫେରି ସାରିବା ପରେ ବାମ ହସ୍ତ ସାହାଯ୍ୟରେ ଜଳ ଦ୍ୱାରା ଗୁହ୍ୟଦ୍ୱାର ଧୋଇବା (ଛୁଆଁ ହେବା) ପରେ ହାତରେ ଲାଗିଥିବା ମଳ ଆଦିକୁ ସଫା କରି ଧୋଇ ଦେବା ପାଇଁ ହାତରେ ମାଟି ଲଗାଇବା କର୍ମ—1. The act of smearing the palm of the left hand with clay to cleanse it after it has been used in washing the anus after evacuation. [ଦ୍ରୁ—ହିନ୍ଦୁ ଶାସ୍ତ୍ର ଅନୁସାରେ ମଳୋତ୍ସର୍ଗ ପରେ ଗୁହ୍ୟ ଦ୍ୱାରରେ ୭ ଥର, କରତଳମାନଙ୍କରେ ୭ ଥର, ପାଦତଳମାନଙ୍କରେ ୫ ଥର ଲେଖାଏଁ ମାଟି ଲଗାଇ ଧୋଇବା କର୍ତ୍ତବ୍ୟ ।] ୨ । ଛୁଆଁ ହେବା ପରେ ହାତକୁ ସଫା କରିବା ପାଇଁ ଆବଶ୍ୟକ ମୃତ୍ତିକା—2. Earth required for cleansing the palm after washing the anus after evacuation.
Hāta māṭi
হাত মাটি हाथ मिट्टी

ହାତ ମାଟି କରିବା—ଦେ. କ୍ରି—ଛୁଆଁ ହେବା ପରେ ହାତରେ ମାଟି ବୋଳି ହାତକୁ ପରିଷ୍କାର କରିବା—To smear the palms with clay in order to wash them after evacuation.
Hāta māṭi karibā
হাত মাটি করা हाथ मिट्टी करना

ହାତ ମାରିବା ଦେ. କ୍ରି—୧ । କୌଣସି ବ୍ୟକ୍ତିଙ୍କୁ ସତର୍କ କରାଇବା ବା ତାଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ତାଙ୍କ ଦେହରେ ହାତକୁ ଧୀରେ ଧୀରେ ଛୁଆଇଁ ଦେବା—1. To touch another's body to draw his attention or to warn him. ୨ । ଅନ୍ୟ ବ୍ୟକ୍ତିଙ୍କର କୌଣସି ଅଙ୍ଗକୁ ଅଉଁସିବା—2. To massage any limb of another. ୩ । (ଲକ୍ଷଣାର୍ଥ) ଛୋଟ ପଦାର୍ଥ ଚୋରି କରି ନେବା—3. (figurative) To pilfer; to steal ୪ । (ଲକ୍ଷଣାର୍ଥ) କେହି ଜଗୁଆଳ ନ ଥିଲାବେଳେ କୌଣସି ପଦାର୍ଥ ଆତ୍ମସାତ୍ କରିବା—4. (figurative) To appropriate some thing to one's self when there is no one to watch. ୫ । ଗୋପନରେ ପରଦାର ସଙ୍ଗେ ସମ୍ଭୋଗ କରିବା—5. To enjoy another's wife in secret.
Hāta māribā
হাত মারা हाथ मारना

ହାତ ମୁଠା—ଦେ. ବ—(ସ ହସ୍ତ ଓ ମୁଷ୍ଟି)—୧ । ମୁଷ୍ଟିବଦ୍ଧ କରତଳ—1. Fisted palm. ୨ । ( ଲକ୍ଷଣାର୍ଥ ) ନିଜର ଅଧିକାର ବା ଅଧୀନତା—2. (Figurative) One's control or possession or authority. (ଯଥା—ତୋତେ ବରଷର ପୁଅ ଏଣିକି ଅଛି ବାପାଙ୍କ ହାତ ମୁଠା ଭିତରେ ରହିବ ନାହିଁ ।)
Hāta muṭhā
হাতের মুঠো हाथमुट्ठी

ହାତ ମୁଠା ଭିତରେ ( ମୁଠାରେ )—ଦେ. ଅ—ନିଜର କରାୟତ୍ତ ଅବସ୍ଥାରେ—Within one's control. [ଦ୍ରୁ—ହାତର ମୁଠାରେ, ଥିବା ପରକାରେ, ଧରିଅଛି ତୋତେ ମୁହିଁ—ମଧୁସୂଦନ. ଭୂଷଣାଜଳ ।]
Hāta muṭhā bhitare ( muṭhāre )
হাতের মুঠোর ভিতর मुट्ठीमें

ହାତ ମୁଠା ମୁଠା କରିବା—ଦେ. କ୍ରି—୧ ।( ଅପସ୍ମାର ଆଦି ମୂର୍ଚ୍ଛା-ରୋଗଗ୍ରସ୍ତ ବ୍ୟକ୍ତିଙ୍କ ବାଉ ମାରିବା ସମୟରେ ଚେତନାହୀନ ରୋଗୀ) କଣ୍ଟ ପଦାର୍ଥ ମୁଠାଇଲା ପରି କରତଳକୁ ବୁଜିବା—1. To close the palm into a fist in a convulsive fit (said of a senseless patient while
Hāta muṭhā muṭhā karibā
হাত মুঠো মুঠো করা हाथ सीकुड़ना

in a fit). ୨ । (ଭୟାକ୍ରାନ୍ତ ବ୍ୟକ୍ତି) ଭୟରେ ହାତକୁ ମୁଠାଇବା—2. To close the fist in a fright. ୩ । (ଲକ୍ଷଣାର୍ଥ) ଭୟାକ୍ରାନ୍ତ ହେବା—3. (figurative) To be frightened or terrified. ୪ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟ କରିବାକୁ ଅନିଚ୍ଛା ପ୍ରକାଶ କରିବା—4. (figurative) To show signs of unwillingness to do any work.

**ହାତ ମୁଦ**—ଦେ. ବି—(ସଂ. ହସ୍ତ ଓ ମୁଦ୍ରିକା)—ହାତର ଅଙ୍ଗୁଠିରେ Hāta mudi ପିନ୍ଧାଯିବା ମୁଦ୍ରିକା—Ring for a finger of হাতের আংটি the hand. [ଦ୍ର—ହାତମୁଦରେ ଜଡ଼ିଥିବା हाथ अङ्गूठी ପଥର ବା ଧାତୁ ଅନୁସାରେ (ଯଥା—ହେମୁଦ, ହୀରାମୁଦ, ନୀଳାମୁଦ, ଅଧଲି ମୁଦ ଇତ୍ୟାଦି), ମୁଦର ବ୍ୟବହାର ଅନୁସାରେ(ଯଥା—ବନ୍ଧମୁଦ,ସିଲ୍ ମୁଦି,ଛାପାମୁଦ), ମୁଦର ଉପକରଣ ଅନୁସାରେ (ରୂପାମୁଦି, ସୁନାମୁଦି, ପିତ୍ତଳମୁଦି, କାଚକଲା ମୁଦି) ଓ ମୁଦର ପ୍ରକାର ଓ ଆକାର ଅନୁସାରେ (କୁର୍ମିମୁଦି, ସାପମୁଦି), ମୁଦମାନଙ୍କର ଭିନ୍ନ ଭିନ୍ନ ନାମକରଣ ହୁଏ ।]

**ହାତ ଯଶ**—ଦେ.ବି—(ସଂ ହସ୍ତ ଓ ଯଶଃ)—କୌଣସି କାର୍ଯ୍ୟରେ ଫଳ-Hāta jasa ଲାଭ ହେଲେ କାର୍ଯ୍ୟ କରିଥିବା ବ୍ୟକ୍ତିଙ୍କ ଲବ୍ଧ ହାତ ଦଛ } ଗ୍ରାମ୍ୟରୂପ ହସ୍ତକୌଶଳ ପ୍ରଶ୍ରୟିତ ସୁନାମ;କୌଣସି ବ୍ୟକ୍ତିଙ୍କର ହାତ ଯଛ } ବିଶେଷଜ୍ଞତା ବିଷୟରେ ପ୍ରଚାରିତ ସୁନାମ—হাত যশ Good name of a person for the skill of हाथ यश his hand; reputation of a particular person's skill. (ଯଥା—ଆପଣ ଏ ଶ୍ରେଣୀକୁ ଭଲ କରିଦେଲେ ଆପଣଙ୍କର ହାତଯଶ ରହିବ ।)

(ମୋର)**ହାତ ଯିବା**(ବଳିବା,ଚଳିବା)—ଦେ.କ୍ରି—(କୌଣସି କଷ୍ଟକର ବା Hāta jiba (balibā, chalibā) ଅନ୍ୟାୟ କାର୍ଯ୍ୟ କରିବାକୁ হাতসরা କୌଣସି ବ୍ୟକ୍ତିଙ୍କର) ପ୍ରବୃତ୍ତି ବା ଇଚ୍ଛା ଜାତ ହେବା—हाथ उठना The arising in one's mind of the desire to do an unworthy or cruel act [ଯଥା—ଏଡ଼େ ସୁନ୍ଦର ଜୀବଟିକୁ ମାରିବାକୁ ତୁମ ହାତ କିପରି ଗଲା ? ]

**ହାତର କଥା**—ଦେ. ବି—୧ । ନିଜର କର୍ତ୍ତୃତ୍ୱାଧୀନ ବିଷୟ—1. A Hātara kathā matter within one's control. হাতের কথা ୨ । ନିଜକୃତ ବିଷୟ—2. A matter of one's हाथकी बात doing. ୩ । ନିଜର ଅଧିକାର ବା ସ୍ୱାମିତ୍ୱଭୁକ୍ତ ବିଷୟ—3. A matter under one's jurisdiction or authority. ୪ । ଶକ୍ତି ଦ୍ୱାରା ସାଧନୀୟ ବିଷୟ; ସାଧ୍ୟ ବିଷୟ—4. Anything within one's capacity or power.

**ହାତର କାମ**—ଦେ. ବି—୧ । ହାତର କଥା ( ଦେଖ ) Hātara kāma 1. Hātara kathā ( See ) হাতের কায ୨ । ନିଜର କୃତ କାର୍ଯ୍ୟ—2. A work done हाथका काम by one's self. ୩ । କୌଣସି କାରୁକର ଦ୍ୱାରା ଗଢ଼ା ହୋଇଥିବା କାର୍ଯ୍ୟ—3. Handiwork of an artist; manual work. ୪ । ଯାହା କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କ ଛଡ଼ା ଅନ୍ୟ ଦ୍ୱାରା ସମ୍ପାଦିତ ହୋଇ ନ ପାରେ—4. Anything which cannot be accomplished by any other person.

**ହାତ ରନ୍ଧା**(ରନ୍ଧଣା, ରୁଷାଇ, ରୁଷେଇ)—ଦେ. ବି (ସଂ. ହସ୍ତ ଓ ରନ୍ଧନ) Hāta randhā(rāndhanā, rushāi, rushei) হাতে বান্ধা—୧ । ସ୍ୱହସ୍ତ ଦ୍ୱାରା ନିଜର ଖାଦ୍ୟ ଦ୍ରବ୍ୟର ପାକ—हाथ रसोई 1. Cooking of one's meal by one's self; cooking for one's self. ୨ । କୌଣସି ବ୍ୟକ୍ତିଙ୍କ ହସ୍ତ ଦ୍ୱାରା କୃତ ପାକ—2. Cooking done by a particular person. (ଯଥା—ଆଜି ବଡ଼-ବୋହୂଙ୍କ ହାତରନ୍ଧା ମାଳ ପଡ଼ିଛି ।) ୩ । କୌଣସି ବ୍ୟକ୍ତିଙ୍କ ହସ୍ତ ଦ୍ୱାରା ପାକ କରି ଯାଇଥିବା ଖାଦ୍ୟ—3. Food cooked by a particular person. (ଯଥା—ସାଆନ୍ତାଣୀଙ୍କ ହାତରନ୍ଧା ନ ଖାଇଲେ ଦିନ ମୋ ପେଟ ପୂରେ ନାହିଁ ।) ଦେ. ବିଣ—କୌଣସି ବ୍ୟକ୍ତିଙ୍କ ଦ୍ୱାରା ପକ୍ୱ (ଖାଦ୍ୟ)—(food) Cooked by a particular person.

**ହାତର ଲେଖା**—ଦେ. ବି—( କୌଣସି ବ୍ୟକ୍ତିଙ୍କ ) ହସ୍ତାକ୍ଷର—Hātara lekhā (a person's) Handwriting. হাতের লেখা ବି ଓ ବିଣ—ହାତ ଲେଖା ( ଦେଖ ) हाथका लेख Hāta lekhā ( See )

**ହାତର ଲୋକ**—ଦେ. ବି—୧ । ନିଜର ବଶୀଭୂତ ବ୍ୟକ୍ତି—Hātara loka 1. A person who is one's own হাতের লোক creature. ୨ । ନିଜର ଅଧୀନ ବ୍ୟକ୍ତି—हाथका आदमी 2. A person under one's control. ୩ । ନିଜର ଅଧୀନତାରେ କାର୍ଯ୍ୟ କରୁଥିବା ବ୍ୟକ୍ତି; ଅଧସ୍ତନ ବ୍ୟକ୍ତି—3. One's subordinate.

**ହାତରୁ**—ଦେ. କ୍ରି. ବିଣ—୧ । ନିଜ ବ୍ୟୟରେ—1. Out of one's Hātaru pocket; at one's own cost. [ଦ୍ର—ହାତରୁ হাত থেকে ଖାଇ ଯୋଦ୍ଧା ଆଗରେ ଢେଙ୍କିବା—ନ୍ୟାୟ । हाथसे ଅର୍ଥାତ୍, ନିଜ ବ୍ୟୟରେ ଭୋଜନ କ୍ରିୟା କରି ଅନ୍ୟ ବ୍ୟକ୍ତିଙ୍କ ରଖିଥିବା ଯୋଦ୍ଧାର ଆଗରେ ସହସ ଉକ୍ତ ଉକ୍ତିଲା ପରି ଘରୁ ଖାଇ ପର କାମ କରିବା ସ୍ଥଳରେ, ଅର୍ଥାତ୍, ଅବୈତନିକ ରୂପେ ପର ପାଇଁ ଶ୍ରମସାଧ୍ୟ କାମ କରିବା ସ୍ଥଳରେ ଏ ନ୍ୟାୟ ଲାଗେ ।] ୨ । ନିଜର କର୍ତ୍ତୃତ୍ୱରୁ (ବହିର୍ଭୂତ ହେବା ବା ଖସିଯିବା)—2. (to slip) Out of one's control. (ଯଥା—ସେ ଲୋକଟା ମୋ ହାତରୁ ଖସିଗଲା ।) ୩ । ନିଜର ଅଧିକାରରୁ—3. Out of one's possession. (ଯଥା—ମୋ ହାତରୁ ଧନ ସବୁ ଗଲାରୁ ମତେ ସମସ୍ତେ ଅନାଦର କଲେ ।)

ହାତରୁ ଖସିବା(ଛୁଟିବା)—ଦେ. କ୍ରି —୧ । ନିଜର ଅଧିକାରରୁ ଚ୍ୟୁତ ହେବା—1. To slip out of one's control. ୨ । ନିଜର ହସ୍ତରୁ ଚ୍ୟୁତ ହେବା—2. To slip out of one's hands. [ପ୍ର—ହାତରୁ ଖସିଲେ ଅଣବାହୁଡ଼ା (ଢ଼ୁ)—ପ୍ରବଚନ । ଅର୍ଥାତ୍, ଯେଉଁ ପର ଅନ୍ୟ ବ୍ୟକ୍ତିଙ୍କୁ ଢେଲା ଫୋପାଡିବାକୁ ପାଇ ଢେଲାଟି ଆପଣା ହାତରୁ ଛୁଟିଯିବା ପରେ ତାକୁ ଫେରାଇ ଆଣିବା ଆପଣାର ଶକ୍ତିରୁ ଅତୀତ ହୁଏ, ସେହିପରି ପରର ଅନିଷ୍ଟ କରିବା ପାଇଁ ଉପାୟ ପ୍ରୟୋଗ କରି ସାରି ପଛେ ସହସ୍ର ଚେଷ୍ଟା କଲେ ମଧ୍ୟ ତାହା ପ୍ରତ୍ୟାହାର କରାଯାଇ ନ ପାରେ । ଏଥିର ସମାର୍ଥକ ଇଂ. ପ୍ରବଚନ—A thing done cannot be undon .]
Hātaru khasibā(chhuṭibā)
হাত থেকে খসে যাওয়া
हाथसे खिसलना

ହାତରୁ ଖାଇବା—ଦେ. କ୍ରି —ନିଜର ଖାଦ୍ୟବ୍ୟୟ ନିଜେ ଚଳାଇବା—To meet one's own fooding expenses.
Hataru khāibā
হাত থেকে খাওযা
हाथसे खाना

ହାତରେ—ଦେ ଅ ( ବିଶେଷ୍ୟର ସପ୍ତମୀ ବା ଅନ୍ୟ ବିଭକ୍ତି )— ୧ । ହସ୍ତରେ—1. In the hand. (ଉ—ପୁଅ ହାତରେ ପିଠା ଦେଲେ ଉନ ଜଣ ବୋଧ—ଲୋକ ।) ୨ । ନିଜର ଅଧିକାରରେ—2. In one's own possession ୩ । (ଅମୁକର) ପରାମର୍ଶ ଦ୍ୱାରା ଚାଳିତ ହେବା ଅବସ୍ଥାରେ—3. In the state of being guided by the advice of. (ଯଥା—ରାଜା ବର୍ତ୍ତମାନ ୧୨ ଜଣ ଦେୱାନଙ୍କ ହାତରେ ଅଛନ୍ତି ।) ୪ । ନିଜ କର୍ତ୍ତୃତ୍ୱରେ—4. Under one's control or mastery. [ଉ—ଭଣ୍ଡାର ହାତରେ ପଡ଼ିଛି ତୋ'ର, ଯେତିକି ଝିଙ୍କିଲ ସେତିକି ଉଠି—ଲୋକ ।] ୫ । ନିଜର କର୍ତ୍ତୃତ୍ୱର ବଶୀଭୂତ ହୋଇ—5. Under one's authority or disposal. (ଯଥା—ମୋ ହାତରେ ବର୍ତ୍ତମାନ ୧୦ ଜଣ ଲୋକ ଅଛନ୍ତି ।) ୬ । (ଅମୁକର) ହାତ ଦ୍ୱାରା ମାପିଲେ—6. Measured by the hand of. [ପ୍ର—ଯେଝା ହାତରେ ସେ ଚଉଦ ଘା—ପ୍ରବଚନ—ଅର୍ଥାତ୍, ପ୍ରତ୍ୟେକ ବ୍ୟକ୍ତିର ଶରୀରରୁ ଗୃହୀତ ହସ୍ତ ଅନୁପାତରେ ତାହାର ହସ୍ତପଦାଦି ଅଙ୍ଗ ପ୍ରତ୍ୟଙ୍ଗ ଈଶ୍ୱର ଗଢ଼ି ଥାଆନ୍ତି ଓ ପ୍ରତ୍ୟେକ ବ୍ୟକ୍ତିର ଉଚ୍ଚତା ତାହାର ନିଜର ହାତରେ ମାପିଲେ ୧୪ ହାତ ଥିବା ଦେଖାଯାଏ । କୌଣସି ସମାଜରେ ସମସ୍ତେ ନିଜନିଜକୁ ବଡ଼ ଲୋକ ବା ନେତା ବୋଲି ଜ୍ଞାନ କଲେ ଏ ପ୍ରବଚନ ବ୍ୟବହୃତ ହୁଏ । ଯେବେ ପ୍ରତ୍ୟେକ ବ୍ୟକ୍ତି ମନେ ମନେ ଚିନ୍ତାକରନ୍ତି ଯେ, "ମୋ ହାତରେ ମୁଁ ଚଉଦ ଘା" ଅର୍ଥାତ୍, ଏଠାରେ ମୋଠାରୁ କେହି ବଡ଼ ନାହିଁ, ଅତଏବ ଏମାନଙ୍କ ମଧ୍ୟରେ ମୋର ନେତା ହେବା ଭଳି ଲୋକ କେହି ନାହିଁ, ତେବେ ଏ ପ୍ରବଚନ ବୋଲାଯାଏ ।] ୭ । ଦେଇ; ଦ୍ୱାରା—7. By; by the agency of ୮ । ଜରିଆରେ—8. Through; per. (ଯଥା—ମୋ ହାତରେ ତୋ ମୃତ୍ୟୁ ଅଛି) ୯ । ନିକଟରେ; ଜିମାରେ—9. With or near a person; in the possession of. [ପ୍ର—ହାତରେ ନଥାଇ ମୂଲରୁ ଥାଏ, ଦେଖୁଥିଲେ ଯେତେ ଫୁଲରୁ ଥାଏ—ଲୋ] ୧୦ । ଆଗରେ; ତୁଳନାରେ—10. In comparison with; when compared with. (ଉ—ନନ୍ଦ ହନୁମାନ ହାତରେ ସେ କି ଛାର ? —ମାଲକଣ୍ଠ. ପିଙ୍ଗଳ ରାମାୟଣ) ୧୧ । (ଅମୁକର) ସମ୍ମୁଖରେ ବା ଉପସ୍ଥିତିରେ—11. In the presence of; before.
Hātare
হাতে
हाथमें

ହାତରେ ଅରଜିବା(ଅର୍ଜିବା)—ଦେ.କ୍ରି—(ଲକ୍ଷଣାର୍ଥ)—ନିଜ କୃତ କାର୍ଯ୍ୟର ବା ଦୋଷର ଫଳ ସ୍ୱରୂପ କୌଣସି ଫଳ ଭୋଗ କରିବା—(figurative) To reap the fruit of one's own action; to reap what one has sown.
Hātare arajibā (arjibā)
হাতে অর্জন করা
हातसेअरजना

(ମୋ) ହାତରେ କାମ ଥିବା—ଦେ, କ୍ରି—୧ । ନିଜେ କୌଣସି କାର୍ଯ୍ୟରେ ନିଯୁକ୍ତ ଥିବା—1. Being engaged or busy in any work. ୨ । ଶେଷକରିବାକୁ କେତେକ କାର୍ଯ୍ୟ ବାକିଥିବା—2. The state of a portion of any work still remaining to be done.
Hātare kāma thibā
হাতে কাজ থাকা
हातमेंकामरहना

ହାତ ରେଖା—ଦେ. ବି (ସଂ. ହସ୍ତରେଖା)—ଜନ୍ମରୁ ସନ୍ନିବିଷ୍ଟ କରତଳରେ ଦୃଷ୍ଟ ରେଖାମାନ; କରରେଖା—The lines on the palm of the hand (which are taken into consideration by palmists). [ପ୍ର—ଏହି ସବୁ ରେଖାଦ୍ୱାରା ସାମୁଦ୍ରିକ ଶାସ୍ତ୍ରମତରେ ମନୁଷ୍ୟର ଶୁଭାଶୁଭାଦିର ଗଣନା କରାଯାଏ ]
Hāta rekhā
হাতের রেখা
हातरेखा

ହାତରେ ଚଢ଼ିବା—ଦେ. କ୍ରି—ହସ୍ତଗତ ହେବା—To come to one's hands.
Hātare chardhibā
হাতে আসা
हाथमेंआना

ହାତରେ ଚାନ୍ଦ ପାଇବା—ଦେ. କ୍ରି—ବହୁକାଳରୁ ଇପ୍‌ସିତ ବସ୍ତୁ ପ୍ରାପ୍ତ ହେବା—To get a long-cherished thing.
Hātare chānda pāibā
হাতে চাঁদ পাওয়া
हातमेंचांदपाना

(ଜଣକର) ହାତରେ (ନିଜର) ଚୁଟିଦେବା —ଦେ. କ୍ରି—ନିଜଉପରେ କର୍ତ୍ତୃତ୍ୱ କରିବାର ଅଧିକାର ଅନ୍ୟ ଜଣକୁ ଅର୍ପଣ କରିବା—To cause another person to exercise control or mastery over one's self.
Hātare chuṭi debā
হাতে টিকি দেওয়া
हातमेंचोटीदेना

(ନିଜର) ହାତରେ (ଅନ୍ୟବ୍ୟକ୍ତିର) ଚୁଟି ରଖିବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ଆପଣାର ସମ୍ପୂର୍ଣ୍ଣ ଅଧୀନ
Hātare chuti rakhibā

କରି ରଖିବା—To keep a person under one's complete control.

ଟୀକିହାতেরাখা चोटीहाथमें रखना

ହାତରେ ଚୁଟି ରହିବା—ଦେ. ବ—ଏକ ବ୍ୟକ୍ତିଙ୍କ ସମ୍ପୂର୍ଣ୍ଣ ଆୟତ୍ତ ହୋଇ Hātare chuṭi rahibā ଅନ୍ୟ ବ୍ୟକ୍ତିର ଅବସ୍ଥିତ ହେବା ହাতেটিকি থাকা ଅବସ୍ଥା—(One person) Being the हाथमें चोटी रहना master over the destiny of another. [ଦ୍ର—ମନୁଷ୍ୟମାନଙ୍କ ହସ୍ତେ ଅଛୁ ସମସ୍ତଙ୍କ ଚୁଟି (ହାତରେ ଚୁଟି ପଡ଼ିବା—ଅନ୍ୟରୂପ) ପ୍ରାର୍ଥୀ କଲ୍ପଲତାରୂପଣ ଗୀତା ]

(ମୋର) ହାତରେ ଥିବା—ଦେ.କ୍ରି—୧। ହାତରେ ରହିବା (ଦେଖ)— Hātare thibā 1. Hātare rahibā (See) ୨। (କୌଣସି କାର୍ଯ୍ୟ) (ମୋ ହାତ) ସାଧନୀୟ ହେବା— 2. (any work) To be accomplishable (by me). ୩। କୌଣସି କାର୍ଯ୍ୟ ଅସମ୍ପନ୍ନ ବା ଅର୍ଦ୍ଧସମ୍ପନ୍ନ ଅବସ୍ଥାରେ ଥିବା—3. To be pending (with me); to remain unaccomplished or half-accomplished.

হাতেথাকা हाथमें रहना

ହାତରେ ପଡ଼ିବା—ଦେ. କ୍ରି—(କୌଣସି ବସ୍ତୁ, କୌଣସି ବ୍ୟକ୍ତିଙ୍କର) Hātare paṛibā କରଗତ ହେବା—1. To come under one's clutches or hold. ୨। ଅପଣାର କର୍ତ୍ତୃତ୍ୱା-ଧୀନତାକୁ ଆସିବା—2. To come under one's sway or possession. ୩। ଆପଣାର ଅଧିକାରକୁ ବା ଦଖଲକୁ ବା ସ୍ୱାମିତ୍ୱକୁ ଆସିବା—3. To come under one's sway or possession. ୪। ହାବୁଡ଼େ ପଡ଼ିବା (ଦେଖ)—4. Hāburḍe paṛibā (See)

হাতেপড়া हाथमेंआना

ହାତରେ ପାଇବା—ଦେ. କ୍ରି—୧। (କୌଣସି ବ୍ୟକ୍ତି ବା ବସ୍ତୁକୁ) ଅପ-Hātare pāibā ଣାର ଆୟତ୍ତ ବା ବଶୀଭୂତ କରି ପାଇବା— 1. To get a thing under one's control or disposal. ୨। ନିଜର ନିକଟରେ ବା ସମ୍ମୁଖରେ ପ୍ରାପ୍ତ ହେବା—2. To get a thing at hand.

হাতেপাওয়া हाथमेंपाना

ହାତରେ ପାଞ୍ଚ—ଦେ. ବ—୧। ଅବଶିଷ୍ଟ ସମ୍ବଳ—1. One's Hātare pāñcha remaining property. ୨। ଅସ-ମୟର ସମ୍ବଳ; ଶେଷ ଭରସା—2. One's last resource. ୩। (ତାସ୍ ଖେଳ) ଖେଳଟିରେ ଖେଳାଳିଙ୍କୁ ମିଳିବା ତାସ—3. Trump card. [ଦ୍ର—ତାସ ଖେଳରେ ଯେଉଁ ପକ୍ଷର ଖେଳାଳି ଶେଷ ପିଟିକି ତାସ ଛାଡ଼ି ନଥାନ୍ତି ତାହାଙ୍କର ହାତରେ ପାଞ୍ଚ ଥିବ ଓ ସେଥିପାଇଁ ତାରୁ ଖେଳରେ ତାଙ୍କୁ ଅଧିକ ୫ଟି ନମ୍ବର ଦେଖି ହଅଯାଏ। ଯାହାଙ୍କୁ ଖେଳରେ ଅଧିକ ନମ୍ବର ଦେଖି ମିଳି ନ ଥାଏ ତାହାଙ୍କର ଅଶାଥାଏ ଯେ, ତାଙ୍କର ହାତରେ ପାଞ୍ଚ ରହି ଗଲେ ତାଙ୍କର ଜିତାପଟ ହୋଇ ପାରେ।] ୪। ଉପ-ସ୍ଥିତ ଆବଶ୍ୟକ ବା ବିପଦ ପାଇଁ ସଞ୍ଚିତ ଶେଷ ଉପାୟ— 4. A thing kept for moments of danger or necessity

হাতেবপাঁচ हाथमेंपांच

ହାତରେ ବସିବା—ଦେ. କ୍ରି—(ଅଳଙ୍କାରବିଷୟ) ହାତକୁ ଚାପିବା ବା କଷି Hātare basibā ହେବା—To press the hand (said of a tightly fitting ornament)

হাতে বসে যাওয়া हाथमें बैठाना

ହାତରେ ମଣି(ନି)ଷ କରିବା—ଦେ. କ୍ରି—୧। ନିଜେ ସହି ଓ ଲାଳନ Hātare maṇi(ni)sha karibā ପାଳନ କରି ଶିଶୁକୁ ଭଲ ମଣିଷରେ ପରିଣତ କରିବା—1. To bring up a child to be a good man. ୨। ଶିଶୁକାଳରୁ ସାବାଳକ ହେବା ପର୍ଯ୍ୟନ୍ତ କୌଣସି ଶିଶୁକୁ ପାଳିବା— 2. To bring up a child from infancy to adolescence.

হাতে মানুষকরা हाथमें मानुस करना

ହାତରେ ମାରିବା—ଦେ. କ୍ରି—୧। ହସ୍ତଦ୍ୱାରା ପ୍ରହାର କରିବା— Hātare māribā 1. To beat with the hands. ୨। କୌଣସି ବ୍ୟକ୍ତିଙ୍କୁ ସ୍ୱୟଂ ବଧ କରିବା—2. To kill a person with one's hands. [ଦ୍ର—ହାତରେ ନ ମାରି ଭାତରେ ମାରିବା—ନ୍ୟାୟ। କୌଣସି ବ୍ୟକ୍ତିକୁ ଦଣ୍ଡ ଦେବାକୁ ହେଲେ ତାକୁ ନିଜ ହାତରେ ବଧ ବା ପ୍ରହାର ନ କରି ତାହାର ଦାନା-ପାଣି ବା ଅନ୍ନ ସଂସ୍ଥାନ ବନ୍ଦ କରିଦେଲେ ସେ ସହଜରେ ଛଟପଟ ହୋଇ ମରେ। ସେହିପରି କୌଣସି ବ୍ୟକ୍ତିର ମାରାତ୍ମକ ସମ୍ବନ୍ଧରେ ଅନିଷ୍ଟ ନ କରି ପରୋକ୍ଷ ଭାବରେ ତାର ଗୁରୁତର ଅନିଷ୍ଟ କରିବା ସ୍ଥଳରେ ଏହି ନ୍ୟାୟର ଉଦାହରଣ ଦିଆଯାଏ।]

হাতেমারা हाथमें मारना

ହାତରେ ରଖିବା—ଦେ. କ୍ରି—୧। (ଧନାଦି) ନିଜର ନିକଟରେ ଗଚ୍ଛିତ Hātare rakhibā ରଖିବା—1. To save money; to keep some money in one's hands. ୨। (କୌଣସି ମନୁଷ୍ୟଙ୍କୁ) ନିଜର କର୍ତ୍ତୃତ୍ୱରେ ରଖିବା— 2. To keep a person under one's control.

হাতেরাখা हाथमेंरखना

ହାତରେ ରହିବା—ଦେ. କ୍ରି—୧। କୌଣସି ବ୍ୟକ୍ତିର କର୍ତ୍ତୃତ୍ୱରେ Hātare rahibā ରହିବା—1. To be under the control of a person. ୨। (ଧନ) କୌଣସି ବ୍ୟକ୍ତି ପାଖରେ ସଞ୍ଚିତ ହେବା—2. (Money) To remain with a person.

হাতে থাকা হাতে রহা हाथमे रहना

ହାତ ଲଗା(ଗେ)ଇବା—ଦେ. କ୍ରି—୧। କୌଣସି ବ୍ୟକ୍ତିକୁ ପ୍ରହାର Hāta lagā(ge)ibā କରିବାପାଇଁ ତା ଦେହରେ ହସ୍ତ ସ୍ପର୍ଶ হাতলাগান କରିବା—1. To touch a person's body to हाथलगाना strike blows. ୨। କୌଣସି ଦ୍ରବ୍ୟରେ ହସ୍ତ ସ୍ପର୍ଶ କରିବା—2. To touch a thing with one's hand. ୩। କୌଣସି ବ୍ୟକ୍ତିର ଦେହରେ ହାତ ସ୍ପର୍ଶ

କରିବା—3. To touch another's body with one's hands.
୪ । ଆଶୀର୍ବାଦାର୍ଥ କୌଣସି ବ୍ୟକ୍ତିଙ୍କ ଦେହକୁ ବା ମସ୍ତକକୁ ଅଭିମର୍ଷିବା ବା ସ୍ପର୍ଶ କରିବା— 4. To touch or rub a person's body or head in order to bless him.
୫ । କୌଣସି ବ୍ୟକ୍ତିଙ୍କୁ ଚିକିତ୍ସା ବା ଆରୋଗ୍ୟ କରିବା ପାଇଁ ତାଙ୍କ ଦେହକୁ ସ୍ପର୍ଶ କରିବା— 5. To touch a person's body with a view to cure or treat him. ୬ । କୌଣସି କାର୍ଯ୍ୟାରମ୍ଭ କରିବା—6. To begin to do a work.

ହାତ ଲଘୁପଣ – ଦେ. ବି(ସଂ. ହସ୍ତ + ଲଘୁତା)—ଚୋରବୃତ୍ତି; ଚୌର୍ଯ୍ୟ—
Hāta laghu paṇa Theft; stealing.
চুরী चोरी (ହାତ ଲଘୁପଣିଆଁ—ଅନ୍ୟରୂପ)

ହାତ ଲଡ଼କା(ଲଡ଼ବଡ଼)—ଦେ. ବିଣ—ହାତ ନଡ଼କା (ଦେଖ)—
Hāta lar̤akā (lar̤a bar̤a) Hāta nar̤akā (See)

ହାତ ଲଡବଡ଼ (ଲୁଡୁବୁଡୁ)—ଦେ. ବି—ଛୋଟ ପଦାର୍ଥ ଚୋରି;
Hata lar̤a bar̤a (lur̤u bur̤u) ଚୌର୍ଯ୍ୟ—1. Pilfering; stealing of petty things.
হাত নড়বড় ୨ । হাত নঁড়বড়ি, ହାତ ଖଜ ବଜ(ଦେଖ)—2. Hāta khaj baj
गुहचोरी (See). ବିଣ—ଚୋରି କରିବା (ପ୍ରକୃତି); ଚୌର୍ଯ୍ୟ ସମ୍ବନ୍ଧୀୟ—Theivish; stealing (habit).

ହାତ ଲଡବଡ଼ି—ଦେ. ବି—୧ । ଛୋଟ ଚୋରି; ଛିଟିକା ଚୋରି—1.
Hāta lar̤a bar̤i Stealing; pilfering. ୨ । ଚୌର୍ଯ୍ୟ
হাতনড়বড়ি छिचकेचूवी ପ୍ରକୃତି—2. Stealing (habit).
छोटी चोरी ବିଣ—ଚୋର ପରି—Thievish. [ଯଥା—ହାତଲଡ଼ବଡ଼ି ଟୋକା]

ହାତ ଲଡ଼ବଡ଼ିଆ (ଲୁଡୁବୁଡ଼ିଆ)—ଦେ. ବିଣ—୧ । ଛିଟିକା ଚୋରି
Hāta lar̤a bar̤iā (lur̤ubur̤iā) ସମ୍ବନ୍ଧୀୟ (ପ୍ରକୃତି)—
ହାତ ଲଡ଼ବଡ଼ୀ(ଲୁଡୁବୁଡ଼ୀ) } ସ୍ତ୍ରୀ 1. Stealing; thievish
ହାତ ଲଡ଼ବଡ଼େଇ(ଲୁଡୁବୁଡ଼େଇ) }
[ଯଥା—ହାତ ଲଡ଼ବଡ଼ିଆ ଟୋକା] ୨ । ପୁଂ.
হাত নড়বড়ে, ছিচকে চোৰ
गुहचोर, अंटीबाज ଚୌର୍ଯ୍ୟ ସ୍ୱଭାବ ଯୁକ୍ତ; ଛିଟିକା ଚୋରି କରିବାରେ ଅଭ୍ୟସ୍ତ—2. Thievish; naturally inclined to stealing. [ଯଥା—ହାତ ଲଡ଼ବଡ଼ିଆ ଲୋକ ।]

ହାତ ଲାଗିବା—ଦେ. ବି—୧ । ହାତ ଛୁଇଁବା; କୌଣସି ପଦାର୍ଥକୁ
Hāta lāgibā ହସ୍ତଦ୍ୱାରା ସ୍ପର୍ଶକରଣ—1. Touching of
হাত লাগা a thing by the hand. ୨। କୌଣସି ବ୍ୟକ୍ତିର
हाथ लगना ଦେହକୁ ଅନ୍ୟ ବ୍ୟକ୍ତି ଦ୍ୱାରା ସ୍ପର୍ଶ କରିବା—2 Touching of a person's body by another's hands. ୩। ବୈଦ୍ୟଙ୍କ ଦ୍ୱାରା ରୋଗୀର ଚିକିତ୍ସାରମ୍ଭକରଣ— 3. Beginning of the treatment of a patient by a physician.

ହାତ ଲେଖା—ଦେ. ବି (ସଂ. ହସ୍ତ+ଲେଖ)—୧ । ହସ୍ତାକ୍ଷର—
Hāta lekhā 1. Handwriting.
(ଛାପା, ଟାଇପ୍—ବିପରୀତ) ୨ । ହସ୍ତଲିଖିତ ଲେଖା—
(ଛାପା – ବିପରୀତ) 2. Manuscript writing.
হাতের লেখা हाथ लेख ବିଣ (ସଂ. ହସ୍ତ+ଲିଖିତ)—୧ । ସ୍ୱହସ୍ତଲିଖିତ—1. Written by one's hand. ୨। ହସ୍ତଲିଖିତ (ପୋଥି ଆଦି)— 2. Manuscript (writing); hand-written.

ହାତ ଲେଖା ଖାତା (ବହି)—ଦେ. ବି—୧ । ଯେଉଁ ଖାତାରେ
Hāta lekhā khātā (bahi) ହସ୍ତାକ୍ଷର ଅଭ୍ୟାସ କରାଯାଏ—
হাতের লেখা খাতা हाथ की कौपी 1. Hand-
(ଛାପା ବହି—ବିପରୀତ) writing exercise book.
୨ । ହାତରେ ଲେଖା ହୋଇଥିବା ପୁସ୍ତକ; ପାଣ୍ଡୁଲିପି- 2. Manuscript.

ହାତ ଲେଡ଼ି—ଦେ. ବି—କରତଳର କେନ୍ଦ୍ରସ୍ଥ ଗାଲୁଆ ଅଂଶ—
Hāta ler̤i The hollow of the palm.
হাতের তেলো तरहथी

ହାତ ଶଙ୍ଖା—ଦେ. ବି (ସ୍ତ୍ରୀଲୋକଙ୍କର) ହାତରେ ପିନ୍ଧାଯିବା ଶଙ୍ଖା—
Hāta śaṅkhā Conch-shell bracelets worn
হাতের শাঁখা हातकीलहटी on the wrists (by females). [ପ୍ର—ହାତ ଶଙ୍ଖା ଦରପଣ ଯାଏ ବା ହାତ ଶଙ୍ଖା ଦରପଣ ଯାଏ କଅଁ ?—ପ୍ରବଚନ— ଯେଉଁ ସ୍ତ୍ରୀଲୋକ ନିଜ ହାତରେ ଦର୍ପଣଖଣ୍ଡଗଣ-ଖଚିତ ଶଙ୍ଖା ପିନ୍ଧିଥାଆନ୍ତି, ସେ ସେହି ଶଙ୍ଖାରେ ଥିବା ଦର୍ପଣକୁ ଗୁହିଁଲେ ନିଜର ମୁହଁ ଦେଖିପାରନ୍ତି ; ଏପରି ସ୍ଥଳରେ ତାଙ୍କ ମୁହଁ ଦେଖିବା ପାଇଁ ତାଙ୍କର ଅନ୍ୟ ଦର୍ପଣ ଲୋଡ଼ା ହୁଏ ନାହିଁ ; କୌଣସି ବିଷୟ ଜାଣିବାର ଉପାୟ ନିଜ ପାଖରେ ବିଦ୍ୟମାନ ଥାଇ ଥାଇ ଅନ୍ୟ ବ୍ୟକ୍ତିଙ୍କୁ ଉପାୟାନ୍ତର ଲୋଡ଼ିବା ଅବଶ୍ୟକ ହୁଏ ନାହିଁ । ଏପରି ସ୍ଥଳରେ ଏହି ପ୍ରବଚନ ଲାଗେ । ]

ହାତ ସଫା (ସଫାଇ, ସଫେଇ) ଦେ. ବି (ସଂ. ହସ୍ତ+ଫା. ସଫାଇ)—
Hāta saphā(saphāi, saphei) ୧ । ସିଦ୍ଧହସ୍ତତା;
হাতসাফাই हाथसफाइ 1. Skilfulness; dexterity. ୨ । ସୂକ୍ଷ୍ମ କାରୁକାର୍ଯ୍ୟ— 2. Very fine work of art. ୩ । (ବ୍ୟଙ୍ଗ୍ୟ)— ଧୂର୍ତ୍ତତା—3. (ironical) Cunning; craftiness. ଦେ. ବିଣ—୧ । ସିଦ୍ଧହସ୍ତ [ ବ୍ୟକ୍ତି ]— 1. Dexterous; skilful in hand work. ୨ । ( ବ୍ୟଙ୍ଗାର୍ଥ )—ଧୂର୍ତ୍ତ—2. Shrewd; crafty.

ହାତସା—ଦେ. ବି (ସଂ. ହସ୍ତ)—ପାକ ଓ ଡ୍ରେଜ୍‌ସର ଦରଜା ଆଦିକୁ
Hātasa ଧରିବା ପାଇଁ ଅର୍ଦ୍ଧବୃତ୍ତାକାର ଧାତୁ ଆଦିର ବଳୟ—
হাতল হস্তা Handle of a drawyer or pan.

ହାତ ସାଫି(ସାଫିଆନା) - ଦେ. ବି—ହାତ ସଫା (ଦେଖ)—
Hāta sāphi(sāphiāna) Hāta saphā (See)
হাতসাফাই हाथसफाई

ହାତ ସାଧିବା(ସାଧନ କରିବା)—ଦେ. କ୍ରି (ସଂ. ହସ୍ତ+ସାଧନ)—
Hāta sādhibā( sādhana karibā ) କୌଣସି
হাত সাধন করা ( পাকান ) हाथ साधना ହସ୍ତ-
କରଣୀୟ କାର୍ଯ୍ୟରେ କୁଶଳତା ଲାଭ କରିବା ପାଇଁ
ବାରଂବାର ଉକ୍ତ କର୍ମକୁ ଅଭ୍ୟାସ କରିବା—
To repeatedly exercise the hand to earn proficiency in a handiwork.

ହାତ ସିଅଁ ( ସିଲାଇ, ସିଲେଇ )—ଦେ. ବି—( ସିଲେଇ କଳଦ୍ୱାରା
Hāta siān (silāi, silei ସିଲେଇ ନ କରି) ହାତଦ୍ୱାରା
[କଳ ସିଲ(ଲେ)ଇ—ବିପରୀତ] ସେଇଁବା ବା ସିଲେଇ କରିବା—
হাত সেলাই Hand sewing; sewing by the hand.
हाथसिलाई ବିଣ—ହାତଦ୍ୱାରା ସିଅଁ ହୋଇଥିବା—Hand-sewn.

ହାତ ସୁଖ—ଦେ. ବି—୧ । ସ୍ପର୍ଶସୁଖ—1. Happiness or
Hāta sukha pleasure derived from the touch
হাতের সুখ of a thing. ୨ । ଅନ୍ୟ ବ୍ୟକ୍ତିକୁ ମାଡ଼ ଦେବା
हाथसुख ବ୍ୟକ୍ତିଦ୍ୱାରା ଅନୁଭୂତ ସୁଖ—2. The pleasure
derived by a person who beats another.
[ଦୃ—ମାରି ସୁମ ଲଷ୍ମଣ ହାତସୁଖ କର । କୃଷ୍ଣସିଂହ ମହାଭାରତ ବନ ।]

ହାତସୁଖ କରିବା (କରିନେବା)—ଦେ. କ୍ରି—୧ । ହସ୍ତଦ୍ୱାରା କୋମଳ
Hāta sukha Karibā)(Kari nebā) ପଦାର୍ଥର (ଯଥା—
হাতের সুখ করেলওয়া ଶିଶୁଙ୍କ ବା ସ୍ତ୍ରୀଙ୍କ କୋମଳ ଦେହର) ସ୍ପର୍ଶସୁଖ
हाथसुखकरलेना ଅନୁଭବ କରିବା—1. To enjoy the pleasure
of touching soft things with one's hand.
୨ । ଅନ୍ୟ ଲୋକକୁ ମାଡ଼ମାରି ସୁଖ ଅନୁଭବ କରିବା—
2. To enjoy the pleasure of beating another person.

ହାତ ହତିଆର (ହତ୍ୟାର)—ଦେ. ବି—(ସଂ ହସ୍ତ ଓ ହେତି=ଶସ୍ତ୍ର)—
Hāta hatiāra(hatyāra) ୧ । ହାତଦ୍ୱାରା ବ୍ୟବହୃତ ଅସ୍ତ୍ର-
হাতহতের ଶସ୍ତ୍ର—1. Weapons used by the hand.
हाथ हथियार [ଦୃ—ଯେଣ ନିଜ ହାତ ହତିଆର, ମିଳିବ ସକଳେ
ଯାଇ ବକ୍ଷା ପଡ଼ିଥରେ । ଉକାସ୍ତ—କଟକ ବିଜୟ ନାଟକ ]
୨ । ଶିଳ୍ପୀର ପ୍ରୟୋଜନୀୟ ଯନ୍ତ୍ରାଦି—2. The instruments or implements of an artisan.

ହାତ ହଲା(ଲେ)ଇବା—ଦେ. କ୍ରି—୧ । ହସ୍ତକୁ ଅସମ୍ମତି ବା ନିଷେଧ-
Hāta halā(le)ibā ସୂଚକ ଇତସ୍ତତଃ ସଞ୍ଚାଳନ କରିବା—1.
হাতনড়ান, হাতদোলান To wave the hand in token
हाथहिलाना of denying or refusing. ୨ । ଚାଲିବା-
ବେଳେ ହାତକୁ ଉଭୟ ପାଖରେ ତଳକୁ ଲମ୍ବାଇ
ଇତସ୍ତତଃ ଚାଳନ କରିବା—2. To swing one's
hanging hands while walking. [ଦୃ—
ଏପରି କରିବା ଗର୍ବ ପ୍ରକାଶର ଲକ୍ଷଣ ] ୩ । ଅଙ୍ଗଚାଳନ-
ପୂର୍ବକ କଥା କହୁଥିବାବେଳେ ହସ୍ତକୁ ଇତସ୍ତତଃ ନାନା
ପ୍ରକାରେ ସଞ୍ଚାଳନ କରିବା—3. To wave one's
hands in various modes while vigorously speaking something. [ଦୃ—ଏହା କ୍ରୋଧ,
ଅସ୍ଥିରତା, ଗର୍ବ ବା ରସିକତାର ଚିହ୍ନ ।] ୪ । ଭିନ୍ନ ଭିନ୍ନ
ଠାର ଦ୍ୱାରା ଭାବ ପ୍ରକାଶ କରିବା ପାଇଁ ହାତ ଚଳାଇବା—
4. To wave the hands as manual signs.

ହାତ ହେବା—ଦେ. କ୍ରି—୧ । କର୍ତ୍ତୃତ୍ୱାଧୀନ ହେବା—1. To come
Hāta hebā under the control of a person. ୨ ।
হাতেআসা (ସାକ୍ଷୀଆଦି) ବିପକ୍ଷ ପକ୍ଷର ଅନୁକୂଳ ହେବା—2.
हाथमेंआना (a witness) To be gained over or
suborned by the opposite side. ୩ ।
ହସ୍ତଗତ ହେବା—3. To come to one's hands.
୪ । ଅଧିକାରଭୁକ୍ତ ହେବା—4. To come under one's possession.

ହାତାହାତି—ଦେ. ବି—(ସଂ ହସ୍ତାହସ୍ତି)—୧ । ଏକ ହସ୍ତରୁ ଅନ୍ୟ
Hātā hāti ହସ୍ତକୁ ହସ୍ତାନ୍ତରକରଣ—Transfer of any
হাতবদলান thing from hand to hand. ଦେ. କ୍ରି ବିଣ—
हाथाहाथ (ସଂ ହସ୍ତାହସ୍ତି) ଦୁଇଜଣଙ୍କ ମଧ୍ୟରେ ହାତଦ୍ୱାରା ଯୁଦ୍ଧ ଓ
হাতাহাতি ପରସ୍ପର ଆକ୍ରମଣ ଓ ପ୍ରହାର—Mutual fight
हाथाबाहीं, हाथापाई with the hands; hand-to-hand-fight.

ହାତି(ତୀ)—ଦେ. ବି—(ସଂ. ହସ୍ତୀ, ପ୍ରା. ହତ୍ଥୀ; ଭୁଲ ସଂ. ହସ୍ତରୁ=ହାତ)
Hāti(ti) —୧ । ଅତି ବୃହତ୍ ଶାକଭୋଜୀ ଚତୁଷ୍ପଦ ଜନ୍ତୁ—
1. Elephant; Elephas Maximus. [ଦୃ—
ହାତି ଭାରତବର୍ଷର, ବ୍ରହ୍ମଦେଶର ଓ ଆଫ୍ରିକାର
ଜଙ୍ଗଲରେ ବାସ କରନ୍ତି । ଭାରତୀୟ ହାତିଙ୍କ ଅପେକ୍ଷା
ଆଫ୍ରିକାର ହାତି ଅଧିକର ଓ ସାନ । ବର୍ତ୍ତମାନ ଯୁଗରେ
ପୃଥିବୀରେ ଦେଖାଯିବା ସମସ୍ତ ସ୍ଥଳଚର ଜୀବମାନଙ୍କ ମଧ୍ୟରେ
ଆକୃତିରେ ହାତି ସର୍ବାପେକ୍ଷା ବୃହତ୍ତମ ଜନ୍ତୁ । ଏ ଉଚ୍ଚରେ
୧୧ ଫୁଟ୍ ପର୍ଯ୍ୟନ୍ତ ଓ ଲମ୍ବରେ ୧୫ଫୁଟ୍ ପର୍ଯ୍ୟନ୍ତ ବଢେ ।
ଏହାର ଗୋଡ଼ ଗୁଡ଼ିଗୋଟି ଗୋଟିଏ ଲେଖାଏଁ ଖମ୍ବପରି ।
ହାତିର ଉଲ୍ଲେଖ ଗୋଟିଏ ବିଶେଷ ଗୁଣ ଏହିକି, ତାହା
ଖପରିକି ଘରେ ଛୁଆଁଣି ହେବା ହିଁ କରିପରି ପଞ୍ଚମର ଉପରକୁ
ମାଡଥିବା ଅନେକ ପ୍ରସ୍ତ ମୋଟା କାଠ ସଦୃଶ ଦୃଢ଼ ମାଂସ
ଖଣ୍ଡରେ ଗଠିତ । ହାତି ଯେତେବେଳେ ତଳେ ଗୋଡ଼ ପକାଇ

ଚାଲେ; ସେତେବେଳେ ସେ କାତର ସ୍ତରଗୁଡ଼ିକ ଯାକ ହୋଇ ଥାଏ ଓ ଗୋଡ଼ ଉଠାଇଲା ବେଳେ ସେଗୁଡ଼ିକ ଫୁଲା ହୋଇଥାଏ । ଏଥିପାଇଁ କହନ୍ତି ଯେ "ହାତି ଗୋଡ଼ତଳେ ପିମ୍ପୁଡ଼ି ନ ମରେ" । ଏହାର ଲାଞ୍ଜ ସରୁ ଓ କ୍ଷୁଦ୍ର ଓ ତହିଁର ଅଗରେ କେତେଏ ବାଳ ଥାଏ । କାନ ଦୁଇଟି କୁଲାପରି; ଦେହ ପାଣ୍ଡୁର ମିଶା କଳା । ଦେହରେ ଖୁବ ଅଳ୍ପ ଲୋମ; ମୁଣ୍ଡ ମଧ୍ୟ ବଡ଼ । ଏହାର ନାକ ଓ ଉପର ଓଠ ଦୀର୍ଘ ହୋଇ ତଳକୁ ଲମ୍ବିଥାଏ । ସେହି ଲମ୍ବ ନାକକୁ ଶୁଣ୍ଢ କହନ୍ତି । ଏହା ହାତର ହସ୍ତ ବା କରର କାର୍ଯ୍ୟ କରୁଥିବାରୁ ଏ ଜୀବକୁ ସଂସ୍କୃତରେ ହସ୍ତୀ ଓ କରୀ କହନ୍ତି । ଓଡ଼ିଆରେ ହାତିଶୁଣ୍ଢକୁ ଥୋଡ ବା ଥୋଡ ( ଥୋର )-ଦାହାର କହନ୍ତି । ସେହି ଶୁଣ୍ଢରେ ଦୁଇଟି ଛିଦ୍ର ଥାଏ । ହାତି ସେହି ଶୁଣ୍ଢବାଟେ ପାଣି ଶୋଷିନେଇ ତାହା ଅଣି ପୁଣି ଶୁଣ୍ଢଦ୍ୱାରା ପାଟି ଭିତରେ ପୂରାଏ; ସେ ଶୁଣ୍ଢକୁ ଡାଳର ଚାରିପାଖେ ଗୁଡ଼ାଇ କରି ଟାଣି ଡାଳକୁ ଭାଙ୍ଗେ ଓ ଶୁଣ୍ଢଦ୍ୱାରା ପାଟି ପାଖକୁ ଖାଦ୍ୟ ଆଣେ, କୌଣସି ପଦାର୍ଥକୁ ଧରେ ଓ ଟିକି ଅତି କ୍ଷୁଦ୍ର ବସ୍ତୁ (ଯଥା—ଛୁଞ୍ଚି, ପାହୁଲାଆଦି) ଉଠାଇ ପାରେ । ସେହି ଶୁଣ୍ଢ ବାଟେ ହାତି ନିଶ୍ୱାସ ନିଏ ଓ ପାଣିରେ ବୁଡ଼ିଲାବେଳେ ସେ ଶୁଣ୍ଢର ଅଗକୁ ପାଣି ଉପରକୁ ଟେକି ଥାଏ । ସେହି ଶୁଣ୍ଢରେ ସେ ପାଣି ଓ ଧୂଳି ଶୋଷିନେଇ ତାହା ପୁଣି ନିଜ ଦେହକୁ କିମ୍ବା ପାଖରେ ଠିଆହେବା ବ୍ୟକ୍ତିମାନଙ୍କ ଉପରକୁ ଫିଙ୍ଗେ । ସେ ଶୁଣ୍ଢଦ୍ୱାରା ବଡ଼ ବଡ଼ ଗଛଡାଳ ଭାଙ୍ଗି ତାହା କୋଡ଼ିଏ ହାତ ଦୂରକୁ ଫୋପାଡ଼ି ପାରେ । ଶୁଣ୍ଢ ଓ ତଳପାଟିର ସଙ୍ଗମ ସ୍ଥଳରୁ ଅଣ୍ଡିରା ହାତୀଙ୍କର ଦୁଇଟି ଦାନ୍ତ ପଦାକୁ ଗୋଲିଆ ଓ ଉପରମୁହାଁ ହୋଇ ବାହାରି ଥାଏ । ବଡ଼ ବଡ଼ ହାତୀଙ୍କର ଗୋଟିଏ ଗୋଟିଏ ଦାନ୍ତର ଓଜନ ୧ ବା ୧୨ ମହଣ ହେବା ଦେଖା ଅଛି । (ମାଈ ଓ ମାଖନା ହାତୀଙ୍କର ଦାନ୍ତ ଉଠେ ନାହିଁ) । ଏ ବଡ ଦାନ୍ତକୁ ହାତୀଦାନ୍ତ ବୋଲିଯାଏ । ଦାନ୍ତଦ୍ୱାରା ହାତୀମାନେ ପରସ୍ପର ଯୁଦ୍ଧ କରି ପରସ୍ପର ଦେହରେ ଦାନ୍ତ ଭୁଷାଭୁଷି ହୁଅନ୍ତି ଓ ପର୍ବତର ଦେହରେ ଏ ଦାନ୍ତକୁ ପୁରାଇ ଖୁରି ଖାଆନ୍ତି । ଏ ଦୁଇ ଦାନ୍ତ ଛଡ଼ା ହାତୀଙ୍କର କଳଦାନ୍ତ ଅଛି । ସେ କଳଦାନ୍ତ-ମାନ ପାଟି ଭିତରେ ଥାଏ ।

ନିବିଡ଼ ଜଙ୍ଗଲ ଓ ପାହାଡ଼ିଆ ସ୍ଥାନରେ ହାତୀମାନେ ପଲ ବାନ୍ଧି ରହନ୍ତି ଓ ପ୍ରତ୍ୟେକ ପଲରେ ଗୋଟିଏ ବଡ଼ ଅଣ୍ଡିରା ଦନ୍ତାହାତୀ ଦଳପତି ଥାଏ ଓ ସେ ଦଳକୁ ବାଟ କଢ଼ାଏ । ଆଗେ ଗଡ଼ଜାତରେ ହାତୀ ଧରିବାପାଇଁ ଭୂଇଁ ତଳେ ଲୋକେ ଖୋପ ଖୋଳୁଥିଲେ ଓ ଖୋପ ଉପରେ ପତଳା ଆବରଣ ବିଛାଉଥିଲେ । ହାତୀମାନେ ସେ ବାଟରେ ଯିବା ବେଳେ ଖୋପ ଭିତରକୁ ଗଳି ପଡୁଥିଲେ । ଏଥିପାଇଁ ଦେଖାଅଛି ଯେ, ହାତୀଙ୍କ ଅନୁଭବୀ ଦଳପତି ଆପଣା ଶୁଣ୍ଢରେ ଗୋଟିଏ ୧୦।୧୨ ଫୁଟ୍ ଶାଳ ଗଛର ଖୁଣ୍ଟି ଧରି ଚାଲୁଥାଏ ଓ ଚାଲିଲା ବେଳେ ସେ ଖୁଣ୍ଟିକୁ ଆଗରେ ଭୂମିରେ ମାରି ମାରି ଅଗ୍ରସର ହେଉଥାଏ । ହାତୀପଲ ଜଙ୍ଗଲରେ ଦଳବଦ୍ଧ ହୋଇ ବିଚରଣ କରନ୍ତି ଓ ସେମାନେ ଫଳ, ଗଛର ଡାଳପତ୍ର, ଶସ୍ୟ ଓ ଆଖୁ ଆଦି ଖାଇ ଯାଆନ୍ତି । ଜଙ୍ଗଲ ନିକଟରେ ଥିବା ଧାନ କିଆରି ଓ ଆଖୁ-କ୍ଷେତ ଆଦିରେ ବଣ ହାତୀମାନେ ପଶି ସେ କ୍ଷେତକୁ ଖାଇ ଓ ମାଡ଼ି ଦଳି ଖନଖାରାପ କରି ପକାନ୍ତି । ଜଙ୍ଗଲମାନଙ୍କରେ ଅବହମାନକାଳରୁ ବଣ ହାତୀ ପଲଙ୍କ ଯିବା ଆସିବାର ରାସ୍ତାମାନ ଅଛି । ସେ ରାସ୍ତାମାନଙ୍କୁ ହାତୀଦଣ୍ଡା (ହାତୀଦାଣ୍ଡ) ବୋଲିଯାଏ । ଉକ୍ତ ହାତୀଦଣ୍ଡାମାନ ଲମ୍ବରେ ଶତ ଶତ କ୍ରୋଶ ଥିବା ଦେଖାଅଛି । ସେ ଦଣ୍ଡାଗୁଡ଼ିକ ଚଉଡ଼ାରେ ୨୦ ଫୁଟ୍ ଓ ଉଚ୍ଚତାରେ ୨୦ ଫୁଟ୍ । ଏଥି ମଧ୍ୟରେ ଥିବା ଗଛ ବୁଦାକୁ ହାତୀମାନେ ଏପରି ସଫା କରି ଥାଆନ୍ତି ଯେ, ସେ ଦଣ୍ଡାମାନ ଦେଖିଲେ ଜଣାଯାଏ, ଯେପରି ତାହାର ତଳକୁ କେହି ବ୍ୟକ୍ତି ଓଳାଇ କରି ପରିଷ୍କାର କରିଅଛି । ସେହି ହାତୀଦଣ୍ଡାଗୁଡ଼ିକରେ ହାତୀମାନେ ଏକ ରାଜ୍ୟର ଜଙ୍ଗଲରୁ ଅନ୍ୟ ରାଜ୍ୟର ଜଙ୍ଗଲକୁ ଯିବା ଆସିବା କରନ୍ତି । ସେହିଦଣ୍ଡାରେ ହାତୀମାନଙ୍କ ଦାଉରେ କେହି ପଥିକ ପଡ଼ିଗଲେ ତାହାର ଜୀବନ ସଙ୍କଟ ଉପସ୍ଥିତ ହୁଏ । ହାତୀମାନେ ଗାଧୋଇ-ବାକୁ ସୁଖ ପାଆନ୍ତି ଓ ବଡ଼ ଜଳାଶୟରେ ସେମାନେ ପଶି ସ୍ନାନ କଲାବେଳେ ସେ ପାଣିକୁ ଗୋଳ କରି ତହିଁରେ ଥିବା ପଦ୍ମବନକୁ ମାଡ଼ି ଦଳି ନଷ୍ଟ କରି ଦିଅନ୍ତି । ହାତୀମାନଙ୍କର ମୈଥୁନ (ସଙ୍ଗମ) ସମୟରେ ଅଣ୍ଡିରା ହାତୀମାନେ ମତ୍ତ (ମସ୍ତ) ହୁଅନ୍ତି । ମସ୍ତ ହେଲାବେଳେ ସେମାନଙ୍କର ଦୁଇପାଖ ଗଣ୍ଡ (କାନ ଓ କପାଳ ମଝି) ସ୍ଥଳରେ ଦୁଇଟି କଣା ଫିଟିଯାଏ ଓ ସେହି କଣା ବାଟେ ମତ୍ତ ହାତୀଙ୍କ ଦେହରୁ ମଦ (ରସ) ଝରେ । ସେ ସମୟରେ ଅଣ୍ଡିରା ହାତୀମାନେ ବାୟା ହୋଇ ଅତି ଦୁର୍ଦ୍ଦାନ୍ତ ହୋଇ ପଡ଼ନ୍ତି । ଗୃହପାଳିତ ହାତୀ ଓ ହାତୁଣୀମାନଙ୍କ ସଙ୍ଗମ ଦେଖାଯାଏ ନାହିଁ । ତେଣୁ, ଗୃହ-ପାଳିତ ଘୋଡ଼ା, ଗୋରୁ, ମଇଁଷି ଆଦିଙ୍କ ପରି ଗୃହପାଳିତ ହାତୀଙ୍କର ବଂଶବୃଦ୍ଧି ହେବା ଦେଖାଯାଏ ନାହିଁ । ଏତେ ବଡ଼ ଜୀବର ଆଖି ଦୁଇଟି ମନୁଷ୍ୟର ଆଖିଠାରୁ କିଞ୍ଚିତ୍ ବଡ଼ । ଏମାନଙ୍କ ଚମଡ଼ା ଅତ୍ୟନ୍ତ ମୋଟ ଓ ହାତୀଙ୍କ ଶରୀର ଚମଡ଼ାରେ ଗୁଳି ବାଜିଲେ ସେମାନେ ଘାଇଆ ହୁଅନ୍ତି, କିନ୍ତୁ ମରି ଯାଆନ୍ତି ନାହିଁ । କେବଳ ସେମାନଙ୍କ କପାଳର ମଝି ଜାଗାରେ ଗୁଳି ବାଜିଲେ ସେମାନେ ମରନ୍ତି (ହାତୀଙ୍କ ଗଣ୍ଡିରେ ଓ ଗର୍ଭରେ ଗୁଳି ବାଜିଲେ ସେମାନେ ନ ମରି ବିକଳ ହୋଇ ବୁଲିବା କବିସୂର୍ଯ୍ୟଙ୍କ କିଶୋରଚମ୍ପୂର 'ଗ' ଗୀତରେ (ଯଥା—'ଗଣ୍ଡି ଗର୍ଭେ ଗୁଳି ଗଲା ମରି ଗଲା ବିବେକ ଦେଲା ଗଜଡ଼ି') ବର୍ଣ୍ଣିତ ହୋଇଅଛି । ହାତୀମାନେ ବୁଢ଼ା ହେଲେ ଓ ଦୁଇଟି ହାତୀ ଯୁଦ୍ଧ କରୁ କରୁ

ସେମାନଙ୍କର ଦାନ୍ତ ଝୁଣ୍ଟ ଥାଏ । ବଣରେ ପଡ଼ିଥିବା ହାତି-ଦାନ୍ତକୁ ଲୋକେ ଗୋଟାଇ ଆଣନ୍ତି । ହାତିଦାନ୍ତର ବର୍ଣ୍ଣ ହରିଦ୍ରାଭ, ଶ୍ୱେତ ଓ ଉଜ୍ଜ୍ୱଳ । ଉତ୍କୃଷ୍ଟ ପଶାକାଠି, ପଶା ଗୋଟି, ପଲଙ୍କ, ଲୁଣ୍ଡେଇ, ପାନିଅ, କଠାଉ ଚୁଡ଼ି, ବାଡ଼ି, ଫରୁଆ ଆଦି ତିଆରି ହୁଏ । ହାତି ହାଡ଼ ଶୋଭା ଧଳା; ସେଥିରେ ମଧ୍ୟ ଅନେକ ଜିନିଷ ତିଆରି ହୁଏ । ହାତି ଦାନ୍ତ ଓ ହାଡ଼ ବହୁମୂଲ୍ୟ ଅଟେ । ହାତି ଦାନ୍ତ ସେର ୫ ୩୦୯ ଟଙ୍କାରେ ବିକ୍ରି ହୋଇଥାଏ । ହାତି ମରିଗଲେ ମଲା ହାତିର ଦାନ୍ତ ଓ ହାଡ଼ ବହୁମୂଲ୍ୟରେ ବିକାଯାଏ । ଏଥିପାଇଁ ପ୍ରବଚନ ଅଛି 'ହାତି ବଞ୍ଚିଲେ ଲକ୍ଷେ ଟଙ୍କା, ମଲେ ଲକ୍ଷେ ଟଙ୍କା' । ହାତି ବଳବାନ୍ ଓ ବୃହତ୍ତମ ସ୍ଥଳଚର ଜୀବ ଥିବାରୁ ଭାରତବାସୀମାନେ ସେମାନଙ୍କୁ ବଣରୁ ଧରି ତାଙ୍କୁ ମଣି (ସିରସ୍ତା) କରି ନାନା କାର୍ଯ୍ୟରେ ଲଗାନ୍ତି । ପୂର୍ବେ ହାତିମାନେ ଯୁଦ୍ଧର ଗୋଟିଏ ଅଙ୍ଗ ଥିଲେ ଓ ଗୋଟିଏ ହାତି ଉପରେ ୮।୧୦ ଜଣ ସଶସ୍ତ୍ର ଯୋଦ୍ଧା ଅବସ୍ଥାନ କରି ଯୁଦ୍ଧ କରୁଥିଲେ ଓ ଚତୁରଙ୍ଗ ବଳରେ ହାତି ବା ହସ୍ତ୍ୟାରୋହୀ ସେନା ଦ୍ୱିତୀୟ ସ୍ଥାନ ଅଧିକାର କରୁଥିଲା । ବର୍ତ୍ତମାନ ଯୁଦ୍ଧ ନିମନ୍ତେ ଆବଶ୍ୟକ ଅତି ବଡ଼ ତୋପ ଓ ବଡ଼ ବଡ଼ ମୁଣ୍ଡି କାଠମାନ ଅସମତଳ ଭୂମିରେ ହାତିଙ୍କ ଦ୍ୱାରା ଟଣା ହୋଇ ସ୍ଥାନାନ୍ତରକୁ ନିଆ ହୋଇଥାଏ । ଗଡ଼ଜାତର ଅସମତଳ ଓ ଜଙ୍ଗଲମୟ ଦେଶରେ ହାତି ଉପରେ ରଜା ଓ ବଡ଼ ଲୋକମାନେ ଚଢ଼ି ଯିବା ଆସିବା କରନ୍ତି । ହାତି ମଧ୍ୟ ଖୁବ୍ ସାବଧାନତା ସହକାରେ ବାଲିଆଡ଼ି ନଈରେ ପଶି ପାରି ହୁଏ ଓ ଯେଉଁ ନଦୀଗର୍ଭରେ ଭୁଷା ବାଲି ଥାଏ, ତାହା ହାତି ଆଗରୁ ବାରି କରି ସେ ବାଟେ ନ ଯାଇ ଫେରି ଆସି ଅନ୍ୟ ବାଟେ ଯାଏ । ଅତି ଅସାଧ୍ୟ ପର୍ବତ, ପାହାଡ଼, ଏମନ୍ତ କି, ଯେଉଁଠାକୁ ମନୁଷ୍ୟ ଯିବାକୁ ଡରନ୍ତି, ସେଠାକୁ ହାତି ଅବଲୀଳାକ୍ରମେ ଯିବା ଆସିବା କରି ପାରେ । ଗୃହପାଳିତ ଶିକ୍ଷିତ ହାତିମାନଙ୍କ ଉପରେ ଚଢ଼ି ଶିକାରୀମାନେ ବଣକୁ ଯାଇ ବନ୍ଧୁକ ଦ୍ୱାରା ବାଘ ଶିକାର କରନ୍ତି ।

ବଣହାତିମାନଙ୍କୁ ପୂର୍ବେ ଖୋପ ଖୋଳି ଲୋକେ ଧରୁଥିଲେ; ହାତିମାନଙ୍କ ଚଳପ୍ରଚଳ ହେବା ଜଙ୍ଗଲରେ ହାତିଙ୍କ ବୁଡ଼ିଯିବା ଭଳି ଗଭୀର ଖଣି ଗାତମାନ ଖୋଳି ତା ଉପରେ ବାଉଁଶ ଖଞ୍ଜଡ଼ା, ଘାସ ଓ ଡାଳମାନ ଘୋଡ଼ାଇ ଦେଉଥିଲେ ଓ ତହିଁ ପାଖରେ ହାତିଙ୍କ ଖାଦ୍ୟ ପଦାର୍ଥମାନ ରଖୁଥିଲେ । ଜଙ୍ଗଲରେ ଏହିପରି ୧୦।୧୨ ଟା ଖୋପ ଖୋଳା ହେଉଥିଲା । ହାତିମାନେ ଚରିବାକୁ ଆସିଲେ ସେମାନେ ସେହି ଖୋପ ଭିତରେ ପଡ଼ି ଖୋପ ମଧ୍ୟରୁ ଉପରକୁ ଉଠି ଆସି ପାରନ୍ତି ନାହିଁ । ୨।୪ ଦିନ ସେଠାରେ ଅନାହାରରେ ପଡ଼ି କ୍ଳାନ୍ତ ହେଲେ, ଲୋକେ ଯାଇ ସେ ଖୋପରେ କୌଶଳକ୍ରମେ ପଶି ହାତିକୁ ବାନ୍ଧିକରି ପୋଷା ହାତିଙ୍କ ସାହାଯ୍ୟରେ ଖୋପରୁ ଉଠାଇ ଆଣି ସିରସ୍ତା ବା ମଣି କରି ପୋଷ ମଣାଉଥିଲେ; କିନ୍ତୁ ବର୍ତ୍ତମାନ ଏ ରୀତିରେ ହାତି ଧରା ନ ହୋଇ 'ଖେଦା' ଦ୍ୱାରା ହାତିମାନେ ଧରା ଯାଉଅଛନ୍ତି । ଯେଉଁ ବାଟେ ହାତିପଲ ଯାଆନ୍ତି ସେହି ଦଣ୍ଡାର ଖଣ୍ଡିଏ ଦୂର ପର୍ଯ୍ୟନ୍ତ ଜଙ୍ଗଲ ସଫା କରି ବଡ଼ ବଡ଼ କାଠ ଖୁଣ୍ଟମାନ ପୋତି ଗୋଟିଏ ଗୋହିରୀ ବାଟ ତିଆରି କରାଯାଏ । ସେହି ବାଟରେ ହାତିଙ୍କର ଲୋଭନୀୟ ନାନାବିଧ ଖାଦ୍ୟ (ଯଥା—ଧାନହୁଲା, ଆଖୁ, ଜଡ଼ଆ, କଖାରୁ, ପାଚିଲା ଓ କଞ୍ଚା କଦଳୀ ଇତ୍ୟାଦି) ଖଣ୍ଡିଏ ଦୂର ଛଡ଼ା ଛଡ଼ା କରି ରଖାଯାଏ । ହାତିମାନେ ସେହିସବୁ ଖାଦ୍ୟର ଲୋଭରେ ସେହି ଗୋହିରୀ-ବାଟେ ମୁହାଁନ୍ତି । ଗୋହିରୀର ଶେଷ ମୁଣ୍ଡରେ ବଡ଼ ବଡ଼ ଖୁଣ୍ଟମାନ ପୋତାଯାଇ ୪୦।୫୦ଟି ହାତିଙ୍କର ଏକତ୍ର ରହି-ପାରିବା ଭଳି ଗୋଟିଏ ବଡ଼ ଖୁଆଡ଼ ବା ଅଟେଇ ତିଆରି ହୋଇଥାଏ । ଅଟେଇର ବାଡ଼ରେ ପୋତା ହୋଇଥିବା ଖୁଣ୍ଟମାନ ପରସ୍ପରକୁ ଲଗାଲଗି ହୋଇ ପୋତା ହୋଇ ଖୁବ୍ ମଜବୁତ କାମୁଡ଼ାରେ ଭିଡ଼ା ହୋଇଥାଏ ଏବଂ ସେ ଖୁଣ୍ଟମାନଙ୍କରେ ବଡ଼ ବଡ଼ ମୁନିଆଁ କଣ୍ଟା ମରା ଯାଇଥାଏ; (ହାତିମାନେ ସେ ବାଡ଼କୁ ଭାଙ୍ଗିବାକୁ ବସିଲେ ବାଡ଼ ଦେହରୁ ବାହାରିଥିବା ମୁନିଆଁ କଣ୍ଟାମାନ ହାତିଙ୍କ ଶୁଣ୍ଢରେ, ମୁଣ୍ଡରେ ଓ ଗୋଡ଼ରେ ଫୁଟିଯାଏ); ଅତଏବ ହାତିମାନେ ସେ ବାଡ଼କୁ ଭାଙ୍ଗି ବା ମାଡ଼ିଦେଇ ପଳାଇ ଯାଇ ପାରନ୍ତି ନାହିଁ । ଏହି ଅଟେଇ ବା ଖୁଆଡ଼କୁ 'ଖେଦା' ବୋଲାଯାଏ । ଗୋହିରୀରୁ ସେ ଖେଦାକୁ ଆସିବା ବାଟର ଊର୍ଦ୍ଧ୍ୱଭାଗରେ ଦଉଡ଼ି ଦ୍ୱାରା ବାଟ ବନ୍ଦ କରିବା ପାଇଁ ଦୁଇଟି ଖୁବ୍ ବଡ଼ କବାଟ ଦଉଡ଼ି ଦ୍ୱାରା ବନ୍ଧାଯାଇ ଝୁଲାଇକରି ରଖା ହୋଇଥାଏ । ଲୋକ-ମାନେ ଗୋହିରୀର ବାହାରେ ଓ ଅଟେଇର ବାହାରେ ଓ ଗଛ ଉପରେ ଜଗି ରହି ଥାଆନ୍ତି । ଖେଦା ଭିତରେ ମଧ୍ୟ ନାନାପ୍ରକାର ଲୋଭନୀୟ ଖାଦ୍ୟ ରଖା ହୋଇଥାଏ । ହାତି-ପଲ ପୂର୍ବୋକ୍ତ ଗୋହିରୀ ବାଟେ ଖାଦ୍ୟ ଖାଇ ଖାଇ ଆସି ସେ ଖେଦାରେ ପଶିଯାଆନ୍ତି । ଖେଦାର ଅଧ୍ୟକ୍ଷ ଯେତେବେଳେ ଦେଖନ୍ତି ଯେ, ଯଥେଷ୍ଟସଂଖ୍ୟକ ହାତି ସେ ଖେଦା ଭିତରେ ପଶିଗଲେଣି, ସେ ତତ୍‌କ୍ଷଣାତ୍ ଇସାରା ଦିଅନ୍ତି; ଇସାରା ଦେବା ମାତ୍ରେ ପ୍ରବେଶ ଦ୍ୱାରର ଊର୍ଦ୍ଧ୍ୱରେ ଅଟକା ହୋଇଥିବା କବାଟର ଦଉଡ଼ିକୁ ଗଛ ଉପରେ ଜଗିଥିବା ଲୋକେ କାଟିଦିଅନ୍ତି ଓ ସେ କବାଟ ପଡ଼ିଯାଇ ଖେଦାର ବାଟ ରୁଦ୍ଧ ହୋଇଯାଏ । କବାଟ ପଡ଼ିଯିବାର ଗୋଳମାଳରେ ହାତିଙ୍କର ଚୈତନ୍ୟ ଉଦୟ ହୁଏ । ଯେଉଁ ହାତିମାନେ ଖେଦାରେ ପଶି ନ ଥାନ୍ତି ସେମାନେ ଲେଉଟିକରି ଗୋହିରୀ ବାଟେ ପଳାଇ ଯାଆନ୍ତି ଓ ଯେଉଁମାନେ ଖେଦାରେ ପଶି ଥାଆନ୍ତି ସେମାନେ ବାଟ ନ ପାଇ ଖେଦା ମଧ୍ୟରେ ଗଣ୍ଡଗୋଳ ଆରମ୍ଭ କରନ୍ତି ଓ ଖେଦାର ବାଡ଼କୁ ଆପଣା ଆପଣା ମୁଣ୍ଡଦ୍ୱାରା ପେଲିବାକୁ ଚେଷ୍ଟା କରନ୍ତି । ବାଡ଼କୁ ପେଲିବାବେଳେ ସେଥିରେ ଥିବା ମୁନିଆଁ କଣ୍ଟା ହାତିଙ୍କ ମୁଣ୍ଡରେ ବେଧି ହୋଇ ହାତିମାନେ ରକ୍ତବୁହା ହୁଅନ୍ତି । ଖେଦାର ଦ୍ୱାରପାଖେ ପଦାତିରେ ବେଢ଼ି

ଜଟିଥିବା ଲୋକେ ବନ୍ଧୁକ ଓ ବାଦ୍ୟର ଶବ୍ଦ କରି ଖେଦା ଭିତରେ ଥିବା ହାତୀଙ୍କୁ ଡରାନ୍ତି । ହାତିମାନେ ଯାରୁପର୍ଯ୍ୟନ୍ତ ଚିତ୍କାର ଓ ବଳପ୍ରକାଶ ଓ ତର୍ଜନ ଗର୍ଜନ କରି ଖେଦାକୁ ମୁଣ୍ଡରେ ଭାଙ୍ଗି ମାରି ରକ୍ତବୁହା ହୋଇ ଓ ଖାଇବାକୁ ନ ପାଇ ତା ମଧ୍ୟରେ ୩।୪ ଦିନ ପଡ଼ି ରହିବା ପରେ କ୍ଲାନ୍ତ ହୋଇପଡନ୍ତି । ଯେତେବେଳେ ଦେଖାଯାଏ ଯେ, ହାତିଙ୍କର ପୂର୍ବର ବଳ ଭାଙ୍ଗିଗଲାଣି, ସେହି ସମୟରେ ଶିକ୍ଷିତ ହାତି ଓ ହାତୁଣୀଙ୍କୁ ଖେଦା ମଧ୍ୟରେ ପୂରାଯାଏ; ସେହି ଶିକ୍ଷିତ ହାତି ଓ ହାତୁଣୀମାନେ ବନ୍ଦୀ ହାତିଙ୍କ ସଙ୍ଗେ ମିଶାମିଶି କରନ୍ତି । ଗୋଟିଏ ଲେଖାଏ ହାତିଙ୍କୁ ଦୁଇଟି ଶିକ୍ଷିତ ହାତୀ ବା ହାତୁଣୀ କାବୁକରି ଦୁଇଆଡ଼ୁ ଚାପି ରଖନ୍ତି ଏବଂ ଇତ୍ୟବସରେ ସୁଯୋଗ ପାଇ ଲୋକେ ଏ ନୂଆ ହାତିଙ୍କ ଗୋଡରେ ଓ ବେକରେ ଶିକୁଳି ଓ ଦଉଡ଼ି ବାନ୍ଧି ସେ ଦଉଡ଼ି ଓ ଶିକୁଳିକୁ ଶିକ୍ଷିତ ହାତିଙ୍କ ଗୋଡ ଓ ବେକ ସଙ୍ଗେ ଛନ୍ଦିଦିଅନ୍ତି ଓ ଏହିପରି ସବୁ ହାତିଙ୍କୁ ବାନ୍ଧି ଗୋଟି ଗୋଟି କରି ବାହାରକୁ ଆଣନ୍ତି । ବାହାରକୁ ଆଣିବାବେଳେ ପ୍ରତି ବଣୁଆ ହାତିର ଦୁଇକଡ଼କୁ ଦୁଇଟି ଶିକ୍ଷିତ ହାତି ବା ହାତୁଣୀ ଚାପିକରି ଧରି ଥାଆନ୍ତି ଓ ଦଉଡ଼ିରେ ଛନ୍ଦା ହୋଇ ଥାଆନ୍ତି । ଏମନ୍ତ କି, ନୂଆ ହାତି ସ୍ୱାଧୀନଭାବରେ ଗତି କରି ପାରେ ନାହିଁ । ଏହିପରି ହାତିମାନଙ୍କୁ ବାହାରକୁ ଆଣି ସେମାନଙ୍କୁ ଶିକ୍ଷିତ ହାତିଙ୍କ ଦ୍ୱାରା ସଇସ୍ତା କରନ୍ତି । ଆଶ୍ଚର୍ଯ୍ୟର ବିଷୟ ଯେ, ସାଧାରଣତଃ ବଣହାତିମାନେ ଏକ ମାସ ମଧ୍ୟରେ ଶିକ୍ଷିତ ହୋଇ ମାହୁନ୍ତଙ୍କ ଡାକ ମାନି ବଶବର୍ତ୍ତୀ ହୋଇ ଯାଆନ୍ତି । ବର୍ତ୍ତମାନ ଗଡଜାତରେ ଓ ବ୍ରହ୍ମଦେଶରେ ଇଂରେଜ ଗଭର୍ଣ୍ଣମେଣ୍ଟଙ୍କ ତତ୍ତ୍ୱାବଧାନରେ ଖେଦା ଦ୍ୱାରା ହାତି ଧରା ଯାଉ-ଅଛନ୍ତି ।

ହାତି ଏପରି ଭଙ୍ଗାଳକାୟ ଜୀବ । ତାହାର ପିଠି ସମତଳ ନ ଥିବାରୁ ହାତିର ଖାଲି ପିଠିରେ ମନୁଷ୍ୟଙ୍କ ବସିବାର ସୁବିଧା ହୁଏ ନାହିଁ । ଏଥିପାଇଁ ପିଠିରେ ରୁଇ ଓ ଖାଲି ଆଦିକୁ ଗଚ୍ଛିକରି ଖୋଳପୂରିତ ନରମା ଜିନିସ ଭର୍ତ୍ତି କରି ଯାଇଥିବା ଗୋଟିଏ ଗଦି (ଲଦନ) ପକାଯାଇ ତା ଉପରେ ପଲଙ୍କ ବା ବିମାନ ଆକାରର ଗୋଟିଏ ଛତ୍ରଯୁକ୍ତ ବା ଖୋଲା ଆସନ [ହାଉଦା, ଅମାରି] ଭିଡ଼ାଯାଏ । ରାଜା ଓ ବଡ଼ଲୋକ ଆଦିଙ୍କ ବସିବାପାଇଁ ଏ 'ହାଉଦା ବା ଅମାରି' ବ୍ୟବହୃତ ହୁଏ; କିନ୍ତୁ ସାଧାରଣତଃ ହାତି ଉପରେ ଲୋକଙ୍କର ବସି ଯା ଆସ କରିବା ପାଇଁ ଆଗରେ ଓ ପଛରେ ଲୁହାର ବାଡ଼ ଥିବା ଆସନ ବା କଠଲା ଭିଡ଼ାଯାଏ । ସେହି ଲୁହାର ବାଡ଼କୁ ଆଉଜି ବା ଧରିକରି ଆରୋହଣକାରୀ ବସନ୍ତି । ହାତିର ପିଠି ଉପରେ ଲଦନ ରଖାଯାଇ ହାତି ପେଟ ବାଟେ ପୁରାଯିବା ଦଉଡ଼ି ଦ୍ୱାରା ସେ ଲଦନକୁ ହାତି ପିଠିରେ ଦୃଢ଼ରୂପେ ଭିଡ଼ାଯାଏ । ତା' ଉପରେ ଗୋଟିଏ ଝୁଲ (ବା ଚୌକୋଣିଆ ମୋଟ ରଙ୍ଗିନ ଚାଦର) ପକାଯାଇ ତହିଁ ଉପରେ କଠଲା ବା ଅମାରି ଭିଡାଯାଏ । ଏହି କଠଲ ବା ଅମାରି ହାତିର ବେକଆଡ଼େ ଓ ଲାଞ୍ଜଆଡେ ଦଉଡ଼ିଦ୍ୱାରା ଦୃଢରୂପେ ଲଦନ ବା ଗଦି ସଙ୍ଗେ ବନ୍ଧାଯାଏ । ହାତି ଉପରେ ପଡ଼ିବା ଝୁଲ ହାତିର କଡ଼ ପାଖରେ ତଳକୁ ଝୁଲୁଥାଏ ଓ ଭୂଇଁଠାରୁ ୧।୨ ହାତ ଉଚ୍ଚ ପର୍ଯ୍ୟନ୍ତ ଝୁଲୁଥାଏ । ଶୋଭାଯାତ୍ରାରେ ହାତି ଉପରେ ବହୁମୂଲ୍ୟର ଝୁଲ ଓ ସ୍ୱର୍ଣ୍ଣ ରୌପ୍ୟର ହାଉଦା କସାଯାଏ । ଗୋଟିଏ ଗୋଟିଏ କାରୁକାର୍ଯ୍ୟମଣ୍ଡିତ ଓ ଜରିଖଚିତ ମଖମଲ ଝୁଲର ଦାମ ଲକ୍ଷେ ଟଙ୍କା ଓ ଗୋଟିଏ ଗୋଟିଏ ସୁନା ରୁପାର ଛତ୍ରଯୁକ୍ତ ହାଉଦାର ମୂଲ୍ୟ ଦଶ ଲକ୍ଷ ଟଙ୍କା ଥିବା ଶୁଣା ଅଛି । ହାତିର ମୁହଁରେ ଓ ଶୁଣ୍ଢରେ ସିନ୍ଦୁର, ଖଡି ଆଦି ଦ୍ୱାରା ନାନାପ୍ରକାରର ଚିତ୍ର ମଧ୍ୟ କରାଯାଏ । କଠଲ, ଅମାରି ବା ହାଉଦା ଉପରେ ରାଜା ଆଦି ବିଜେ କରନ୍ତି ଓ ହାତିର ଚାଳକ ମାହୁନ୍ତ ହାତିର ବେକ ଉପରେ ଦୁଇ ପାଖରେ ଗୋଡ ଲମ୍ବାଇ ବସେ । ମାହୁନ୍ତ ତାହାର ଗୋଡକୁ ହାତିର କାନ ପାଖେ ଚାଳିତ କରି ଓ ନାନାପ୍ରକାରର ଡାକ ଡାକି ଓ ହାତିର ମୁଣ୍ଡ ଉପରେ ଲୌହ ଅଙ୍କୁଶ ( ଅଙ୍କୁଶା ବା ଗଜବାଙ୍କ )ର ଅଗ୍ରଭାଗକୁ କେଞ୍ଚି ଓ ବେଳେ ବେଳେ ଦୁଷ୍ଟ ହାତିଙ୍କୁ ଠେଙ୍ଗା ପରି ମୁନ୍ଦାଅଁ କାନରେ ମାରି ନିୟନ୍ତ୍ରିତ କରେ ।

ହାତି ଭାରତବର୍ଷରୁ ପ୍ରଥମେ ଗ୍ରୀକ୍‌ମାନେ ଇଉରୋପକୁ ନେଲେ । ଏଥିପୂର୍ବେ ମାଲବାର୍ ଉପକୂଳରୁ ବାଣିଜ୍ୟାର୍ଥ ଇଉରୋପକୁ ହାତିଦାନ୍ତ ନିଆଯାଉଥିଲା । ହାତିର ଗୋଟିଏ ସଂସ୍କୃତ ନାମ ଇଭ ଓ ହାତିଦାନ୍ତର ଇଂରାଜୀ ଶବ୍ଦ ଆଇଭରି (Ivory) ଏହି ଇଭ ଶବ୍ଦରୁ ଜାତ । ଇଂରାଜି ଏଲିଫାଣ୍ଟ (Elephant) ଶବ୍ଦର ସଂ. ଇଭ ଶବ୍ଦ ସଙ୍ଗେ ସମ୍ପର୍କ ଅଛି ।

ଶିକ୍ଷିତ ହାତିମାନେ ମାହୁନ୍ତର ଡାକକୁ ମାନି ନାନାପ୍ରକାର କାର୍ଯ୍ୟ କରନ୍ତି । ଶିକ୍ଷିତ ହାତିମାନେ ଶୋଭାଯାତ୍ରାରେ ମସାଲ ଧରିବା, ରାଜାଙ୍କ ପାଲିଙ୍କି ପାଖେ ରହି ଚାମର ଓ ଅଲଟ ପକାଇବା, ରାଜାଙ୍କ ଉପରେ ସ୍ୱର୍ଣ୍ଣ କଳସରେ ଜଳ ଢାଳି ଅଭିଷେକ କରିବା ଦେଖାଅଛି । ଏମାନେ ମାହୁନ୍ତର ଓ ସ୍ୱାମୀର ଅତ୍ୟନ୍ତ ଭକ୍ତ ଥିବା ଦେଖାଯାଏ । ହାତି-ମାନଙ୍କୁ ନିୟନ୍ତ୍ରିତ କରିବାରେ ବ୍ୟବହୃତ କେତେଗୁଡ଼ିଏ ଶବ୍ଦ ଯଥା—

ଅଗତ୍ ! ଅଗଟ୍ ! ଅଗାଡ୍ ! ଓ ଅଗେଡ୍ !—ଆଗକୁ ଚାଲ୍ । ଡପ୍ !—ପାଣିଖା । ଭେଇ ! ବା ଦୈ !—ଚାଲ୍ । ମଇଲ୍ !—ଚାଲ୍ । ଝଟେଭ !—ଶୋ, ଭୂମିରେ ଦେହକୁ ଲମ୍ବାଇ କରି ପଡ଼୍ । ତରେବଡ୍ !—ପଛ ଗୋଡ଼କୁ ପାରିକରି ବସ୍ । ଖୁଲେ !—ମାହୁନ୍ତର ହାତି ଉପରକୁ ଉଠିଯିବା ପାଇଁ ଆଗ ଗୋଡ଼କୁ ବଙ୍କା କରି ଉଠା, ଲମ୍ବା ପଛରୁ ଲାଙ୍ଗୁଡ଼ ଧରି କେହି ବ୍ୟକ୍ତି ଅମାରି ଉପରୁ ଉଠି ଆସିବା ପାଇଁ ପଛ ଗୋଡ଼କୁ ବଙ୍କା କା ସମକୋଣ ପରି

କରିଦେ । ଧତ୍ !=ଠିଆହୋ, ଅଟକି ଯା । ପିଛେ !=ପଛକୁ ହଟ୍ । ଧତ୍‌ରେ ମଇଲ୍ ଧତ୍ !=ଅସମ ଭୂମିରେ ସାବଧାନ ହୋଇ ଚାଲ୍ । ବଇଠ୍ !=ଅଣ୍ଟୋଇ ବସ୍ । ବିଇ !=ଛି । ଏ କାର୍ଯ୍ୟ ( ଯଥା—ବାଟପାଖର ଗଛ ଆଡ଼କୁ ମୁହଁ ବଢ଼ାଇବା) କରନା ।

ହାତି ଉପରେ ଅମାରି ଆଦି କଷା ହେବା ପରେ ହସ୍ତ୍ୟାରୋହୀଙ୍କର ହାତି ଉପରକୁ ଉଠିଯିବା ପାଇଁ ମାହୁନ୍ତର ଆଦେଶରେ ହାତି ଆଣ୍ଠୁ ମାଡ଼ି ବସେ ଓ ତକ୍ତ ଅମାରି ଦେହକୁ ଗୋଟିଏ ନିଶୁଣି (ସିଡ଼ି) ଲଗାଯାଇ ସେହି ନିଶୁଣି ଦ୍ୱାରା ରାଜା ଆଦି ହସ୍ତ୍ୟାରୋହୀ ବିଶିଷ୍ଟ ବ୍ୟକ୍ତି ହାତିର ଉପରକୁ ଉଠନ୍ତି; କିନ୍ତୁ ମାହୁନ୍ତ ହାତିର ବକ୍ରୀକୃତ ଆଗ ଗୋଡ଼ ବାଟେ ହାତିର କାନ୍ଧ ଉପରକୁ ଅବଲୀଳାକ୍ରମେ ଚଢ଼ିଯାଏ ।

ହାତିର ଚାଳକକୁ ମାହୁନ୍ତ ବୋଲାଯାଏ ଓ ତାକୁ ସାହାଯ୍ୟ କରିବାପାଇଁ ନିଯୁକ୍ତ ଚାକରକୁ ମେଣ୍ଟ ( ଇଂ. ମେଟ୍—Mate) ବୋଲାଯାଏ ।

ହାତିର ରବ ଦୁଇ ପ୍ରକାର ଯଥା—୧ । ଜଳଦ ଗମ୍ଭୀର ଗର୍ଜନ । ୨ । ତୂରୀ ପରି ଧ୍ୱନି ବା ପେଁକାଳି । ହାତି ଶେଷୋକ୍ତ ଧ୍ୱନି କଲେ ହାତି ପେଁକାଳୁଛି ବୋଲାଯାଏ ।

ପୂର୍ବେ ଆମ ଦେଶରେ ରାଜାମାନେ ଅପରାଧୀକୁ ଭୂମି ତଳେ ଶୁଆଇ ତା ଉପରେ ହାତି ମଡ଼ାଇ ମାରି ପକାଉଥିଲେ ।

ପୋଷା ହାତି ଉପରେ ମାହୁନ୍ତ ଚଢ଼ି ବଣକୁ ଯାଇ ହାତିର ଶୁଣ୍ଢ ଦ୍ୱାରା ବରଡ଼ାଳମାନ ଭଙ୍ଗାଇ ହାତି ଉପରେ ଘରକୁ ଲଦି କରି ଆଣେ ଓ ତାହା ହାତି ଖାଏ । ହାତି ମଧ୍ୟ କଅଳ ଗଛର କନ୍ଦା ଖାଏ । ପୋଷା ହାତିକୁ କୁଟା ପିଣ୍ଡୁଳାରେ ଗୁଡ଼ାଇ ଧାନ ଓ ଚାଉଳ ଆଦି ଖାଇବାକୁ ଦିଆଯାଏ । ଗୋଟିଏ ହାତି ପ୍ରତିଦିନ ଏକ ଗାଡ଼ି ବରଡ଼ାଳ ଓ ୨୦।୨୫ ଗଉଣି ଧାନ ଖାଇପାରେ । ଏଥିପାଇଁ ହାତି ପୋଷିବା ବହୁ ବ୍ୟୟ ସାଧ୍ୟ । କୌଣସି ବ୍ୟକ୍ତିର ଭରଣ ପୋଷଣ ପାଇଁ ବହୁ ବ୍ୟୟ ହେଲେ, ଲୋକେ କହନ୍ତି ଯେ, ମୁଁ ଘରେ ହାତି ପୋଷିଛି ।

ହାତିମାନେ ବଡ଼ ଜୀବ ଥିବାରୁ ସାଧାରଣ ଜୀବଙ୍କ ପ୍ରତି ବ୍ୟବହୃତ ଭାଷା ତାଙ୍କ ସମ୍ବନ୍ଧେ ବ୍ୟବହୃତ ନହୋଇ ଗୋଟିଏ ହାତିକୁ 'ଘରେ ହାତି' କହନ୍ତି । ହାତି 'ମରିଯିବା', ନକହି ହାତି 'ବସିବା' କହନ୍ତି ।

ହାତି ଧୀର ମନ୍ଥର ଗତି କଲାବେଳେ 'ପାହୁଲିବା' ବା ପହଣ୍ଡ ପକାଇବା', ସାଧାରଣ ଚାଲ ଚାଲିଲେ 'ଚାଲିବା', ଦ୍ରୁତ ଗତିରେ ଚାଲିଲେ 'ପଲସିବା' ଓ ଅତି ଦ୍ରୁତ ଗତିରେ ଚାଲିଲେ 'ଧପାଳିବା ବା ହପାଇବା' କହନ୍ତି ।

ଜଙ୍ଗଲରେ ଜୀବମାନଙ୍କ ମଧ୍ୟରେ କେବଳ ମାତ୍ର ସିଂହ ହାତି ଅପେକ୍ଷା ବଳୁଆ ଓ ହାତିକୁ ଜୀବନରେ ମାରିପାରେ ।

ହାତିର କପାଳ ବିଦାରିତ ହେଲେ ତାହା ମଧ୍ୟରୁ ଉତ୍କୃଷ୍ଟ ମୁକ୍ତା (ଗଜମୁକ୍ତା) ନିର୍ଗତ ହୁଏ ବୋଲି ଆମର ପୁରାଣାଦିରେ ବର୍ଣ୍ଣିତ ଅଛି । ହାତିମାନଙ୍କ ଦେହ ମେଘର ବର୍ଣ୍ଣପରି କଳାମିଶା ପାଣ୍ଡୁର; କିନ୍ତୁ ବ୍ରହ୍ମଦେଶରେ କ୍ୱଚିତ୍ ଏକ ପ୍ରକାର ହାତି ଦେଖା ଯାଆନ୍ତି, ସେମାନଙ୍କ ଦେହ ଧଳା । ଏହି ଶ୍ୱେତ ହସ୍ତୀକୁ ବ୍ରହ୍ମ ଦେଶରେ ରାଜା ଓ ବୌଦ୍ଧ ଓ ଜୈନମାନେ ପୂଜା କରନ୍ତି ।

ହାତିମାନଙ୍କର ବୁଦ୍ଧିର ବିଚକ୍ଷଣତା ଓ ଦାଉସାଧିବା ବିଷୟରେ ନାନା ଗଳ୍ପ ଅଛି । ହିନ୍ଦୁ ପୁରାଣ ମତରେ ପୃଥିବୀର ଆଠଦିଗକୁ ୮ଗୋଟି ହାତି (ଦିଗ୍‌ହସ୍ତୀ) ଟେକି ଧରି ଅଛନ୍ତି ଓ ସେମାନଙ୍କର ଗୋଟିଏ ଲେଖାଏଁ ହାତୁଣୀ ଅଛନ୍ତି । ପୁରାଣୋକ୍ତ ଐରାବତ ହସ୍ତୀ କ୍ଷୀରସିନ୍ଧୁ ମନ୍ଥନ ସମୟରେ ସମୁଦ୍ରରୁ ଜାତ ହୋଇଥିଲା ଓ ସେ ଇନ୍ଦ୍ରଙ୍କର ବାହନ ଅଟେ । ମହାଦେବଙ୍କ ପୁତ୍ର ଗଣେଶଙ୍କର ଉତ୍ତରକୁ ମୁଣ୍ଡ କରି ଶୋଇଥିବା ଅବସ୍ଥାରେ ତାଙ୍କ ଉପରେ ଶନି ଗ୍ରହଙ୍କ ଇଷତ୍ ଦୃଷ୍ଟି ପଡ଼ିବାରୁ ତାଙ୍କର ମସ୍ତକ ଛିନ୍ନ ହେଲା ଓ ପୋଡ଼ିଗଲା । ପରେ ଶିବ ସେଠାରେ ଉପସ୍ଥିତ ହୋଇ ସେଠାରେ ପଶ୍ଚିମକୁ ମୁଣ୍ଡ କରି ଶୋଇଥିବା ଗୋଟିଏ ହାତିର ମୁଣ୍ଡକୁ କାଟିଆଣି ଗଣେଶଙ୍କ ଗଣ୍ଡିରେ ଯୋଡ଼ି ଦେଲାରୁ ପାର୍ବତୀଙ୍କ ଗେହ୍ଲାପୁଅ ଗଣେଶ ସେହିଦିନଠାରୁ 'ଗଜବଦନ' ହୋଇଗଲେ । ବିଷ୍ଣୁ ପୁରାଣରେ ଲେଖା ଅଛି, ଗୋଟିଏ କୁମ୍ଭୀର ହାତୀ ସଙ୍ଗେ ସଙ୍ଗାତ ବସି ପରେ ତାକୁ ଗଣ୍ଡ ପାଣିକୁ ନେଇ ମାରି ପକାଇବାକୁ ବସିଲା । ଏହି ସମୟରେ ହାତି ଭଗବାନଙ୍କୁ ସ୍ମରଣ କରିବାରୁ ଭଗବାନ ସୁଦର୍ଶନ ଚକ୍ର ପେଷି କୁମ୍ଭୀରକୁ ଛେଦି ଗଜକୁ ଉଦ୍ଧାର କଲେ । ପୌରାଣିକ ଚିତ୍ରମାନଙ୍କରେ ହାତି ଲକ୍ଷ୍ମୀଙ୍କ ଉପରେ କଳସ ଢାଳୁଥିବା ଦେଖାଯାଏ ଓ ହାତି ଲକ୍ଷ୍ମୀଙ୍କ ବାହାନ ବୋଲି କେହି କେହି କହନ୍ତି ।

କାହାଣୀରେ ଅଛି ଯେ, ପୂର୍ବେ ରାଜ୍ୟର ରାଜା ମରିଗଲେ ଓ କେହି ରାଜା ହେବାକୁ ସ୍ୱର୍ଗତ ରାଜାଙ୍କ ମୃତ୍ୟୁ ପୂର୍ବରୁ ସ୍ଥିର ହୋଇ ନ ଥିଲେ ପାତ୍ରମନ୍ତ୍ରୀମାନେ ରାଜାଙ୍କ ପାଟହାତୀକୁ ଗୋଟିଏ ଜଳପୂର୍ଣ୍ଣ ସୁବର୍ଣ୍ଣ କଳସ ଦେଇ ରାଜ୍ୟ ତମାମ ବୁଲିବାକୁ ପଠାଉଥିଲେ । ହାତି ସେ କଳସକୁ ଶୁଣ୍ଢରେ ଟେକି ଧରି ଯାଉଥିଲା ଓ ଯେଉଁ ବ୍ୟକ୍ତିଙ୍କ ମୁଣ୍ଡରେ ସୁବର୍ଣ୍ଣ କଳସକୁ ଢାଳୁଥିଲା, ପାତ୍ରମନ୍ତ୍ରୀମାନେ ତାହାଙ୍କୁ ଆଣି ରାଜଗାଦିରେ ବସାଉଥିଲେ ।

କବିମାନେ ଯୁବତୀ ସ୍ତ୍ରୀଙ୍କ ମନ୍ଥର ଗତିକୁ ହାତିଙ୍କ ଧୀର ମନ୍ଥର ଗତି ସଙ୍ଗେ ତୁଳନା କରି ନାୟିକାମାନଙ୍କୁ ମନ୍ଥର-ଗମନା, ଗଜଗମନା ଆଦି ବିଶେଷଣରେ ବିଶେଷିତା କରନ୍ତି ।

ଠିଆ ହୋଇ ବିଶ୍ରାମ ନେଲାବେଳେ ହାତି ଆଗକୁ ପଛକୁ ଦୋହଲୁଥାଏ । ଏହାକୁ ହାତି ଝୁଲିବା କହନ୍ତି । ଶିଶୁମାନଙ୍କୁ ସ୍ତ୍ରୀଲୋକମାନେ କୋଳରେ ବସାଇ

ଝୁଲାଇବା ବେଳେ 'ହାତି ଝୁଲିବା' ସମ୍ବନ୍ଧେ ଶିଶୁରଞ୍ଜନ ଗୀତ ବୋଲନ୍ତି ।

ହାତିମାନଙ୍କର ଗୋଡ଼ ଅତ୍ୟନ୍ତ ମୋଟା ଥିବାରୁ ଗୋଦର ଗୋଡ଼କୁ ପାଶ୍ଚାତ୍ୟମାନେ ହାତି ଗୋଡ ସଙ୍ଗେ ତୁଳନା କରି ଶ୍ଳୀପଦ (ଗୋଦର) ରୋଗକୁ ଇଂରାଜୀରେ (Elephantiasis) ହାତିଆ ରୋଗ ବୋଲି ନାମ ଦେଇ ଅଛନ୍ତି ଓ ଯାବନିକ ଭାଷାରେ ଗୋଦର ଗୋଡ଼କୁ ଫୀଲପାଓ (ହାତିଗୋଡ) ବୋଲାଯାଏ । ଶ୍ଳୀପଦ ରୋଗଗ୍ରସ୍ତ ବର୍ଦ୍ଧିତା-ଣ୍ଡ ପୁରୁଷଲିଙ୍ଗକୁ ହାତି ଶୁଣ୍ଢ ସଙ୍ଗେ ତୁଳନା କରି ସେ ରୋଗକୁ ଲୋକେ ହାତିଶୁଣ୍ଢା ରୋଗ କହନ୍ତି ।

ଜୈନମାନେ ହାତି ପୂଜା କରନ୍ତି ଓ ଜୈନ ମନ୍ଦିର [ଯଥା—କଲିକତାରେ ପରେଶନାଥ ମନ୍ଦିର]ରେ ଓ ବ୍ରହ୍ମ ଦେଶରେ ହାତିଙ୍କ ମୂର୍ତ୍ତିମାନ ପୂଜିତ ହୁଏ ।

ଉପେନ୍ଦ୍ର ଭଞ୍ଜ ହାତୀର ପ୍ରସବ ସମ୍ବନ୍ଧରେ ଲେଖି ଅଛନ୍ତି ଯେ—ହାତୁଣୀ ଚର୍ମାବରଣ ଯୁକ୍ତ ଗୋଲାକାର ପିଣ୍ଡ ଗୋଟିଏ ପ୍ରସବ କରେ; ପରେ ଉକ୍ତ ପିଣ୍ଡକୁ ନିଜର ଦାନ୍ତରେ ବିନ୍ଧି ବିନ୍ଧି ତହିଁର ଉପରର ଚର୍ମାବରଣକୁ ଫଟାଇ ଦିଏ; ତାପରେ ତହିଁରୁ ହାତିଛୁଆ ବାହାରେ ।

ହାତିମାନଙ୍କର ଶ୍ରେଣୀ ବିଭାଗ ସମ୍ବନ୍ଧେ ହସ୍ତୀ ଶବ୍ଦ ତଳେ ଟୀକା ଦ୍ରଷ୍ଟବ୍ୟ :—

ହାତି ଶବ୍ଦ ଯୁକ୍ତ କେତେଗୁଡ଼ିଏ ପ୍ରବଚନ, ପ୍ରବାଦ ନ୍ୟାୟ ଓ ବାକ୍ୟ ପ୍ରଚଳିତ ଅଛି ।

୧ । ହାତି ପାଡ଼ିକ ପାଡ଼ିବ, ଫୁସ୍—ପ୍ରବଚନ = ବହ୍ବାରମ୍ଭେ ଲଘୁ କ୍ରିୟା ।

୨ । ହାତି କଇଥ ଖାଇବା—ନ୍ୟାୟ = ବାହାରେ ପରିବର୍ତ୍ତନ ନ ହୋଇ ଅନ୍ତର୍ଦ୍ଦେଶ ଶୂନ୍ୟ ହେବା ।

୩ । ହାତି କଲରୁ (ଥୋଡ଼ରୁ) କଳେ (ପୁଳାଏ, ଥୋଡ଼େ) ଖସିଲେ ବା ଖସି ପଡ଼ିଲେ ପିମ୍ପୁଡିଙ୍କ ଯୁଗେ (ଶହେବରଷ) —ନ୍ୟାୟ ।

୪ । ହାତି ଗଳା (ବେକ) ରେ ଘଣ୍ଟି ବାନ୍ଧିବା—ନ୍ୟାୟ

୫ । ହାତି ଗଲ ଯାଏ ପିମ୍ପୁଡି ନ ଗଲେ ବା ହାତି ଗଲ ଯାଉଛି ପିମ୍ପୁଡିକ ବାଟ ନାହିଁ —ପ୍ରବଚନ ।

୬ । ହାତି ଗାଧୁଆ ବା ଗାଧୋଇବା—ନ୍ୟାୟ

୭ । ହାତି ଗୋଡ଼ତଳେ ପିମ୍ପୁଡି ନ ମରେ— ଅନୁଭବ ସତ୍ୟ ।

୮ । ହାତିକୁ ହାତି ଉଠାଏ—ନ୍ୟାୟ ।

୯ । ତୋର ହାତି ଘୋଡ଼ା ଝୁଲନ୍ତୁ ବା ଝୁଲୁଥାଆନ୍ତୁ— ଆଶୀର୍ବାଦ ବଚନ ।

୧୦ । ହାତି ଶୁଲ ଶୁଲ ଯେତେ, ଘୋଡ଼ା ଦଉଡ଼ି ଦଉଡ଼ି ସେତେ—ଅନୁଭବ ଓ ନ୍ୟାୟ ।

୧୧ । ହାତିଚଢ଼ାଠାରୁଁ ସମ୍ମାନ ନାହିଁ—ପ୍ରବଚନ ।

୧୨ । ହାତି ଜୀଇଁଥିଲେ କଉଡ଼ି, ମଲେ କଉଡ଼ି; ବା ହାତି ଜୀଇଁଥିଲେ ଲକ୍ଷେ ଟଙ୍କା, ମଲେ ଲକ୍ଷେ ଟଙ୍କା; ବା ହାତି ଜୀଇଁଲେ ମଲେ ଏକାକଥା—ପ୍ରବଚନ ।

୧୩ । ହାତି ଦାନ୍ତରେ ସୁନା ଚୁଡ଼ି ହେବା-ନ୍ୟାୟ ।

୧୪ । ଘୋଡ଼ା (ହାଥୀ) ପର୍ ହାଉଦା, ହାଥୀ (ଘୋଡ଼ା) ପର୍ ଜୀନ୍; ଜଲ୍‌ଦି ଯାଓ ଜଲ୍‌ଦି ଯାଓ ଓୟାରେନ୍ ହେଷ୍ଟିଙ୍ଗ୍—ହିନ୍ଦି ପ୍ରବାଦ ।

୧୫ । ହାତିପରି ଶରୀର ମଶାକୁ (ମାଛିକୁ) ଡର— ପ୍ରବଚନ ।

୧୬ । ହାତି ବନ୍ଧରେ ଥିଲେ ରଜାଙ୍କର—ପ୍ରବଚନ ।

୧୭ । ହାତି ମୁତିଦେଲେ ପିମ୍ପୁଡ଼ିଙ୍କ ପହଁରା ଏ ବା ହାତି ମୂତ ପିମ୍ପୁଡ଼ିଙ୍କ ପହଁରା ଏ—ଅନୁଭବ-ନ୍ୟାୟ ।

୧୮ । ହାତିପରି ଶରୀର ଆଖି ସାନ ବା ହାତିର ଆଖି ସାନ—ଅନୁଭବ, ଲୋକ ବିଶ୍ୱାସ ।

୧୯ । ହାତିଶାଳ ଭାଙ୍ଗିଗଲେ କଅଣ ମେଣ୍ଢା ଛେଳିଅଛି ଯୋଗ୍ୟ ହୁଏ ନାହିଁ ? ବା ଭଙ୍ଗା ହାତିଶାଳ ସଙ୍ଗେ ଘୋଡ଼ାଶାଳ ସମାନ ହୁଏ ନାହିଁ—ପ୍ରବଚନ ।

୨୦ । ରାତିଏ ଗଲେ ହାତିଏ ଅଣିବା—ପ୍ରବଚନ ।

୨୧ । ହାତି ଉପରେ ଧଂସା—ପ୍ରବଚନ ।

୨୨ । ହାତିର ଶିଅକଥା ମାହୁନ୍ତକୁ ଲାଗେ—ପ୍ରବଚନ

୨୩ । ହାତି ଦାନ୍ତରେ ବସିବା—ନ୍ୟାୟ ।

୨୪ । ହାତିପରି ଜନ୍ତୁ (ଜୀବ) ଅଙ୍କୁଶରେ ଆୟତ୍ତ— ଅନୁଭବ ବଚନ ।

୨୫ । ହାତିହାରି ନ ମରଇ ହାତିଥିଲ ହାତରେ ମରାଇବା—ନ୍ୟାୟ ।

ହାତି ଶବ୍ଦଯୁକ୍ତ ଶିଶୁରଞ୍ଜନ ଗୀତ—

୧ । ହାତି ନେ, ଘୋଡ଼ା ନେ, ମୋ ପେଁଏଁକାଳ ବଟେଇ ଦେ; ସାପ ଥିଲେ ବାହାରି ଯା !, ବେଙ୍ଗ ଥିଲେ କଟର କଟର ହଉଥା !

୨ । ଝୁଲ୍ ହାତି ! ଝୁଲ୍; ବାଆ ପାଣି ଖାଇ ଫୁଲ୍ !

୩ । ଝୁଲ୍ ହାତି ! ଝୁଲ୍‌ରେ; ବାଅ ପାଣି ଖାଇ ଫୁଲ୍‌ରେ ।

୪ । ହାତି ଝୁଲୁଥାଏ ରଜା ବଗିଚାରେ କଅଁଳଦା ଖାଇବାକୁ, ଜଣେଇ ଝୁଲଇ ମାଅଙ୍କ କୋଳରେ ଦୁଧକଲେ ଖାଇବାକୁ ।

୫ । ହାତିପରି ଜୀବ ଛାର ମାହୁନ୍ତକୁ ଠୁଳେ କ ଡରନ୍ତା ସେହି, ମନ ମାନିଅଛି ବୋଲି ସେ ରହିଛି ଅଙ୍କୁଶ ଶିଳିକ ସହି ।

୬ । ହାତି । ପାହୁଣ୍ଡ (ପାହୁଲ) ପକାଏ ଧୀରି ।]

୨ । ଶୂଦ୍ରଙ୍କ ବଂଶୋପାଧି ବିଶେଷ—2. A family-title of some Sūdras. ୩ । (ହାତିପରି) ବୃହଦାକାୟ ବ୍ୟକ୍ତି—3. A very corpulent or fat person. [ଉ—ଦ୍ୱିତୀୟାର ଶଶୀ ଲେଖାପରି ଦିଶି ଗଲେକ ସେ ଇନ୍ଦ୍ର-ଜାଲ ହାତି । କବିସୂର୍ଯ୍ୟ, କଳୋଶା ଚମ୍ପୁ ଦ ଗୀତ ।

୪ । ( ହାତପରି ) ଧୀରଗତି ବିଶିଷ୍ଟ ବ୍ୟକ୍ତି—4. A slowly walking person. ୫ । ଧୀରସ୍ଥିର ସ୍ୱଭାବ-ବିଶିଷ୍ଟ ବ୍ୟକ୍ତି—5. A person of quiet nature. ୬ । ଗୋଟିଏ ହାତୀଉପରେ ଲଦାହେବା ପରିମିତ ବୋଝ— 6. A load which can be carried on one elephant ( ଯଥା—ଯେ ଗୃହିଏ ଗଲେ ହାତିଏ ଆଣେ ) ୭ । (ହାତଗଣକ) ବଗ; ପାର୍ଶ୍ୱ—7. Side (ଯଥା—ସେ ପୋଖରୀଟି ଆମ ଘରର ବାଁ ହାତରେ ଅଛି) ୮ । ସତରଞ୍ଜି ବା ଦ୍ୟୁତକ୍ରୀଡ଼ା ଖେଳରେ ଯେଉଁ ଗୋଟିକୁ ହାତି ବୋଲି କଳ୍ପନା କରାଯାଏ (ଯାହାକୁ ଗଜବଳ ବୋଲାଯାଏ)—8. The ball representing the bishop in the game of chess. ୯ । ଆସାମ ଦେଶର ବଂଶୋପାଧି ବିଶେଷ—9. A family titlle in Assam. ବିଣ—୧ । ହାତିରେ ଲଦା ହେବା ପରିମିତ (ବୋଝ)—1. Elephant-load of (anything); suffcient for the load of an elephant. (ଯଥା—ସେ ଛଅ ହାତି ଜିନଷ ଆଣିଛି) ୨ । ହାତି ସମ୍ବନ୍ଧୀୟ—(ଅନ୍ୟ ଶବ୍ଦ ପୂର୍ବେ ଯୁକ୍ତ ଯଥା—ହାତିଶାଳ, ହାତି ଦାନ୍ତ, ହାତି ଅଙ୍କୁଶ)—2. Relating to the elephant. ୩ । ହାତ ସମ୍ବନ୍ଧୀୟ—3. Relating to the hand. (ଯଥା—ସ୍ୱହାତ କାମ, ପର ହାତ କାମ) ୪ । କୌଣସି ବଗରେ ଅବସ୍ଥିତ—4. Situated on any side. (ଯଥା—ସେ ଘର ବାଆଁ ହାତ ଗୋଟିଏ ପୋଖରୀ ଅଛି) ୫ । (ଏତେ) ହାତ ପରିମିତ—5. Measuring so many cubits. (ଯଥା—ନଅହାତ ଲୁଗା ମୋତେ ଅଣ୍ଟେ ନାହିଁ) କ୍ରି. ବିଣ—ବାମ ବା ଦକ୍ଷିଣ ହସ୍ତର ବଗରେ ବା ଆଡ଼ରେ—To the (right or left hand) side. (ଯଥା—ଲୁବରବର ବାଆଁହାତ ଗଲେ ସମୁଦ୍ର କୂଳରେ ପହଞ୍ଚିବୁ)

**ହାତଅନ୍ଦ(ଧ)**—ଦେ. ବି—(ସଂ. ହସ୍ତିସ୍କନ୍ଧ)—ନାଅଗୁଳିଆ ବା ·ଲମ୍ବ- Hāti anda (ndha) ଗୁଳିଆ ଘରର ଦୁଇ ଶେଷ ଭାଗର କାନ୍ଥ- চাঁদ ওয়ারী The gable end of a thatched house; पाख the gables at the end of a gabled roof.

**ହାତ ଅମାରି**—ଦେ. ବି—ହାତି ହାଉଦା (ଦେଖ)— Hāti amāri The saddle of an elephant; howdah. হাতির হাউদা हाथीका हाउदा

**ହାତଆ**—ଦେ. ବିଣ—(ସଂ. ହସ୍ତ)—୧ । ଏତେ ହାତ ଲମ୍ବ—1. So Hātiā many cubits long. (ଯଥା—ଦଶହାତିଆ ଲୁଗା) হাতলম্বা ୨ । ଏତେଜଣଙ୍କ ଦ୍ୱାରା ସମ୍ପାଦନୀୟ ବା ସମ୍ପାଦିତ— हाथका 2. Performable or done by so many persons. (ଯଥା—ପାଞ୍ଚହାତିଆ କାମ ହୋଇ ଯାଏ । ୩ । ହସ୍ତଯୁକ୍ତ; ହସ୍ତସମ୍ବନ୍ଧୀୟ—3. Relating to hand; having hands. (ଯଥା—ଦଶ ହାତର ଅମୃତ ହାତିଆ ଜଣେ) ୪ । (ବାମ ବା ଦକ୍ଷିଣ) ହସ୍ତର ବଗ ସମ୍ବନ୍ଧୀୟ 4. Relating to the right hand or left hand side. (ଯଥା—ବାଁଆ ହାତିଆ ସଡ଼କ ସେ ଗାଁଆଁମୁଣ୍ଡ ବାଟେ ଯାଇଛି) ୫ । ହାତିପରି ଆକାରବିଶିଷ୍ଟ; ଖୁବ୍ ବଡ଼—5. Very big. (ଯଥା—ହାତିଆ କାଙ୍କଡ଼) ୬ । ହାତିପରି ସ୍ଥୂଳ ଚର୍ମ ଉତ୍ପାଦକ (ଯାଦୁ)— 6. Thick-skinned (ring worm). (ଯଥା—ହାତିଆ ଯାଦୁରେ ତା ଦେହ ପୂର୍ଣ୍ଣ) ବି—ହାତିଆଳ (ଦେଖ)—Hātiāla (See).

**ହାତିଆ କାଙ୍କଡ଼(ଣ)**—ଦେ. ବି—(ଏହା ସାଧାରଣ କାଙ୍କଡ଼ଠାରୁ ବଡ଼ Hātiā kāṅkarda (ṇa) ଥିବାରୁ ସଂ. ନାମ-ବନ୍ଧ୍ୟାକର୍କୋଟକୀ)— [ଉ. ନାମ— କାଙ୍କଡ଼ପରି ଏକ ପ୍ରକାର ବଡ଼ ଫଳ—A sort of ବନ୍ଧ୍ୟାକର୍କୋଟକୀ, cucurbitaceous fruit; Momordica ଦେଖ, କନ୍ୟା, Dioicicamale. [ଦ୍ର—ବୈଦ୍ୟକ ମତରେ ଯୋଗେଶ୍ୱର, ଏହା ଲଘୁ, ବ୍ରଣଶୋଧକ, ତିକ୍ତ ଏବଂ କଫ ନାଗଶ, ନକ୍ରଦମନୀ, ସର୍ପଦୁଷ, ବିସର୍ପ ଓ ବିଷନାଶକ—ଦ୍ରବ୍ୟଗୁଣ ବିଷକଣ୍ଟକିନୀ] ଅଭିଧାନ] কাংকরোল बांझ खखसा

**ହାତିଆ ଗୁଣ୍ଡୁରି**—ପ୍ରାଦେ (ଗଡ଼ଜାତ) ବି—ଗୁଣ୍ଡୁରିପରି ଏକପ୍ରକାର ବଡ଼ Hātia gunduri ପକ୍ଷୀ—A big variety of Gunduri bird.

**ହାତିଆ ଘାସ**—ଦେ. ବି—ଧନକୀ ପତ୍ର ପରି ଚଉଡ଼ାପତ୍ରିଆ ଏକ Hātiā ghāsa ପ୍ରକାର ଘାସ—A kind of broad- হাতিয়া ঘাস bladed grass; elephant grass. हाथी घास [ଦ୍ର—ଏହା ଗାଈ ଗୋରୁଙ୍କ ଖାଦ୍ୟ; କୃଷି କଲେ ବହୁତ ଗଛ ଉଠେ । ଧନକୀ ପତ୍ରର ସୁଗନ୍ଧ ଅଛି, ମାତ୍ର ଏହା ସୁଗନ୍ଧହୀନ ।]

**ହାତ ଅଙ୍କୁଶ(ଶା, ଶି)**—ଦେ. ବି (ସଂ. ହସ୍ତୀ ଓ ଅଙ୍କୁଶ)—୧ । ଗଜବାଳ; Hāti ānkuśa(śā, śi) ହାତୀକୁ ଶାସିତ କରିବା ପାଇଁ ডাঙ্গশ ବ୍ୟବହୃତ ବକ୍ରାଗ୍ର ଲୌହ ଦଣ୍ଡ—1. A hooked हाथी अङ्कुस iron rod used in goading or driving elephants. ୨ । ଏକ ପ୍ରକାର କଣ୍ଟକଯୁକ୍ତ ଲତାଳିଆ ଗଛ—2. A sort of thorny plant having hooked thorns; Pisonia Aculeata. [ଦ୍ର—ଏହା ଜଙ୍ଗଲରେ ୨୦ ହାତ ପର୍ଯ୍ୟନ୍ତ ବଢ଼ି ଅନ୍ୟ ଗଛରେ ମାଡ଼େ ଓ ଏହାର କଣ୍ଟାମାନ ହାତି ଅଙ୍କୁଶ ଭଳି ବକ୍ରାଗ୍ର ।]

**ହାତିଆ ଦା(ଯା)ଦୁ**—ଦେ. ବି (ସଂ. ହସ୍ତୀ+ଦଦ୍ରୁ)—(ଏଥିରେ ଆକ୍ରାନ୍ତ Hātiā da(jā)du ଶରୀରର ଚର୍ମ ହାତିର ଚର୍ମ ପରି ମୋଟା হাতিয়া দাদ ହେବାରୁ)—ଏକ ପ୍ରକାର ଦୁଃସାଧ୍ୟ ଦଦ୍ରୁ— हाथिया दाद A sort of ring worm; sceloderma; scelerema.

**ହାତିଆଳ**—ଦେ. ବି (ସଂ. ହସ୍ତିପାଳ)—ହସ୍ତିପାଳ; ହାତି ମାହୁନ୍ତ; Hātiāla ହସ୍ତିକ—The driver of an elephant. হাতিয়াব(ল). फिलवान, महावत.

ହାତିଆ ଲାଉ—ଦେ. ବ—ଲମ୍ବା ଓ ସରୁ ଲାଉ—A long and slender species of gourd.
Hatiā lāu
[ହାତି ଦାନ୍ତ(ଦାଁତ) ଲାଉ—ପ୍ରାଦେ. ଙ୍କଉଅଲ ରୂପ]

ହାତିଆ ଶୁଆଁ—ଦେ. ବ ( ସଂ. ହସ୍ତି ଶ୍ୟାମାକ )—ଏକ ପ୍ରକାର ଶୁଆଁ ଧାନ—A sort of big 'Suān' grain.
Hatiā suān
হাতিয়া শ্যামা
हाथीआ सोआँ, काला सावाँ
[ବୃ—ବୈଦ୍ୟକ ମତରେ ଏହା ରୂକ୍ଷ, ଧାତୁ-ଶୋଷକ, ପିତ୍ତଶ୍ଳେଷ୍ମନାଶକ, ବାୟୁବର୍ଦ୍ଧକ ଓ ଶ୍ୟାମାକ ଧାନ୍ୟର ଅନ୍ୟାନ୍ୟ ଗୁଣ-ବିଶିଷ୍ଟ ।]

ହାତିଏ—ଦେ. ବଣ—୧ । ଗୋଟିଏ ହାତିରେ ଲଦା ହେବା ବୋଝ ପରିମିତ—1. An elephant-load of. ୨ । ବହୁ ପରିମିତ—2. Large; much. ବ—ଏକ ହସ୍ତିରେ ଲଦା ହେବା ଭଳି ପଦାର୍ଥ ବା ଧନ—1. An elephannt-load of things or property. ୨ । ବହୁ ଧନ—2. Great riches (ଯଥା—ସେ ଘୋଡ଼ିଏ ଗଲେ ହାତିଏ ଆଣେ ।)
Hatie
প্রচুর
एक हाथी

ହାତି କଠଲା—ଦେ ବ—ହାତି ଉପରେ ଲଦନ ଓ ଝୁଲ ପଡ଼ୁ ସାରିବା ପରେ ସାଧାରଣ ଲୋକଙ୍କ ଚଢ଼ିବା ପାଇଁ ତା ଉପରେ ବସାଯିବା ଆଗରେ ପଛରେ ଲୁହାର ବାଡ଼ାଥିବା ଆସନ—A seat with railing in front and back which is put on an elephant for ordinary riding. [ବୃ—ଏଥିରେ ବସିବା ଲୋକେ ଏହି କଠଲାର ଲୁହାବାଡ଼କୁ ଧରି ବା ଅଉଜି କରି ବସନ୍ତି ଓ ଏହି ବାଡ଼ ଯୋଗୁଁ ହାତି ଉପରୁ ହଠାତ୍ ଚଢ଼ାଳମାନେ ଖସି ପଡ଼ନ୍ତି ନାହିଁ ।]
Hāti kaṭhalā
हाथी हौदा

ହାତି କ(କା)ନା ଗଛ—ପ୍ରାଦେ. (ଗଡ଼ଜାତ) ବ—ହସ୍ତିକର୍ଣ୍ଣ ୩ (ଦେଖ)
Hāti ka(kā)nā gachha Hasti karṇṇa 3 (See)

ହାତି କ(କା)ନା (କାନିଆଁ)ପଲାଶ—ପ୍ରାଦେ. (ଗଡ଼ଜାତ) ବ—ହସ୍ତିକର୍ଣ୍ଣ ୩ (ଦେଖ)
Hāti ka(kā)nā (kāniān)palāsa Hasti karṇṇa 3 (See)

ହାତି କଳସ ଢାଳିବା—ଦେ. ବ—ହଠାତ ସୁସୌଭାଗ୍ୟ ହେବା—The dawning of an unthought of piece of good fortune.
Hāti kalasa ḍhāliba
হাতী কলসী ঢালা
हाथी कलस उढेलना
[ବୃ—ପୂର୍ବେ ଅରାଜକ ଦେଶରେ ପାତ୍ର ମନ୍ତ୍ରୀମାନେ ପାଟ-ହାତିର ଶୁଣ୍ଢରେ ଜଳପୂର୍ଣ୍ଣ ଗୋଟିଏ ସୁନାର କଳସ ଧରାଇ ହାତିକୁ ରାଜ୍ୟ ସମସ୍ତ ବୁଲାଉଥିଲେ । ହାତି ଯାହାଙ୍କ ମୁଣ୍ଡରେ କଳସକୁ ଢାଳି ଦେଉଥିଲା ତାହାଙ୍କୁ ସମସ୍ତେ ରାଜା ବୋଲି ଜବାଇ କରି ସିଂହାସନରେ ଅଭିଷିକ୍ତ କରୁଥିଲେ ।]

ହାତି କଷା—ଦେ. ବ—ହାତିର ପିଠିରେ ଲଦନ ବା ହାଉଦା ଅଦ ଭଡ଼ି ଚଢ଼ିବା ପାଇଁ ହାତିକୁ ପ୍ରସ୍ତୁତ କରିବା—Equipment of an elephant ready for riding by putting the howdah on it.
Hāti kashā
হাতী সাজান
हाथी कसाई

ହାତି କଷିବା—ଦେ. କ୍ରି—ହାତି ଉପରେ ଅମାରି ବା ହାଉଦା ଭଡ଼ିବା—To put or attach a hawdāh on the back of an elephant.
Hāti kashibā
হাতী কষা
हाथी कसना

ହାତି କାନ—ଦେ. ବ—ହସ୍ତି କର୍ଣ୍ଣ ( ଦେଖ )
Hāti kāna Hasti karṇṇa ( See )

ହାତି କାନିଆ(ଆଁ)—ଦେ.ବଣ(ସଂ.ହସ୍ତିକର୍ଣ୍ଣ)—ହାତିର କାନପରି ବଡ଼—As big as elephant's ear. (ହାତି କାନ—ଅନ୍ୟରୂପ) ବ (ସଂ. ନାମ ତୋଲ ସମୁଦ୍ରକା)—ଏକ ପ୍ରକାର ଶ୍ରେଷ୍ଠ ବନ୍ୟ ଲତା—A sort of wild creeper; Leea Macrophylla. [ବୃ—ଏହାର ପତ୍ର ହାତିକାନ ପରି ବଡ଼ । ବର୍ଷା ଋତୁରେ ଏ ଲତା ଜନ୍ମେ; ଅନ୍ୟ ସମୟରେ ଦେଖାଯାଏ ନାହିଁ । ଏହାର ଫୁଲ ଛନ ଅଙ୍ଗୁଳିଆ ଲତାର ଫୁଲ ପରି । ଏହାପରି ପତ୍ର ବିଶିଷ୍ଟ କର୍ଣ୍ଣପୁଃ ୧୨ ହାତି ଉଚ୍ଚ ଗଛ ମଧ୍ୟ ଅଛି ।]
Hāti kāniā(ān)
হাতী কানিয়া
हाथी कर्ण

ହାତି କାନ୍ଧରେ ବସିବା(ଚଢ଼ିବା)—ଦେ. କ୍ରି—୧ । ହାତିର ବେକ ଉପରେ (ମାହୁନ୍ତ) ବସିବା—1. To sit on the shoulder of an elephant (said of the driver). ୨। (ଲକ୍ଷଣାର୍ଥ) ମହତ୍ ଲୋକଙ୍କ ଆଶ୍ରୟ ଧରିବା; କୌଣସି ବଡ଼ ଲୋକଙ୍କଠାରେ ଶରଣାପନ୍ନ ହେବା—2. (figurative) To take the shelter of a great person.
Hāti kāndhare basibā (charḍhibā)
হাতিব কাঁধে বসা
हाथीका कंधापर बैठना

ହାତି(କି)କୁ ସିରସ୍ତା କରିବା—ଦେ. କ୍ରି—ନୂଆ ହୋଇ ଧରା ହୋଇଥିବା ହାତିକୁ ପୋଷ କରିବା—To train a newly caught elephant.
Hāti(ki)ku sirastā karibā
হাতীকে সায়স্তা করা
हाथीको सुधारना

ହାତି ଖେଦା—ଦେ. ବ—୧ । ବନ୍ୟ ହସ୍ତୀଙ୍କ ଦଳ; ଖେଦାଏ ହାତି—1. Herd of wild elephants. ୨ । ବଣୁଆ ହାତିଙ୍କୁ ଧରିବାପାଇଁ ଜଙ୍ଗଲ ମଧ୍ୟରେ ଘେରବନ୍ଦ କରାଯାଇ ଶୁଉଥିବା ଖୁବ୍ ମଜବୁତ୍ ଖୁଣ୍ଟମାନ ପୋତା ଯାଇଥିବା ଅଡ଼େଇ ବା ଖୁଆଡ଼—2. A barricade or enclosure set up in the forest surrounded by strong timber pallisades to catch elephants; Khedda. [ବୃ—ଏହି ଶବ୍ଦ ଇଂରାଜୀରେ ମଧ୍ୟ ଖେଦା [khedda] ରୂପେ ଚଳୁଅଛି ।] ୩ । ବଣୁଆ ହାତିଙ୍କୁ ଖେଦା ଦ୍ୱାରା ଧରିବା ପ୍ରଣାଳୀ—3. The mode of catching wild elephants by the kheddā system. [ବୃ—ହାତି ଶବ୍ଦ ତଳେ ଟୀକା ଦେଖ ।]
Hāti khedā
হাতী খেদা
हाथी खेदा

ହାତି ଖୋଜ—ଦେ. ବି—ହାତିର ପଦଚିହ୍ନ—The foot steps of
Hāti khoja an elephant.
হাতীর পায়ের দাগ हाथीपैरकाचिह्न

ହାତି ଖୋଜିଆ—ଦେ° ବିଣ—ହାତି ଖୋଜପରି ଗୋଲ ଓ ବଡ଼ ଆକାର-
Hāti khojiā ବିଶିଷ୍ଟ—Big and circular like the
হাতীপেয়ে हाथीपैरकाजैसे foot steps of an elephant.

ହାତିଖୋଜିଆ ଆଳୁ—ଦେ. ବି—ହାତି ଖୋଜପରି ବଡ ଓ ଗୋଲ ପିଣ୍ଡ-
Hātikhojiā ālu ବିଶିଷ୍ଟ ଏକପ୍ରକାର ଦେଶୀ ଆଳୁ—
হাতীপেয়ে আলু आलू A sort of circular big yam.

ହାତି ଖୋଜିଆ ଗଛ—ଦେ. ବି—ମଣ୍ଡୁକପର୍ଣ୍ଣୀ (ଦେଖ)—
Hatikhojiā gachha Mandukaparnni (See)

ହାତି ଗରଜନ (ଗର୍ଜନ)—ଦେ. ବି—(ସଂ. ହସ୍ତୀ ଓ ଗର୍ଜନ)—ହାତିର
Hāti garajana (garjana) ଗମ୍ଭୀର ଗର୍ଜନ—The
grave roar of an elephant.
হাতীর গর্জন हाथीगर्जन

ହାତି ଗାଧୁଆ—ଦେ. ବି—ହସ୍ତି ସ୍ନାନ—The bath of an
Hāti gādhuā হস্তীস্নান हाथीकास्नान elephant.
[ଦ୍ର—ହାତି ଗାଧୁଆ ନ୍ୟାୟ—ନ୍ୟାୟ। ହାତି ଗାଧୋଇ
ସାରି ପୁଣି ପରକ୍ଷଣରେ ମଶା, ମାଛିଙ୍କୁ ଦେହରେ ବସାଇ ନ
ଦେବାପାଇଁ ଶୁଣ୍ଢଦ୍ୱାରା ଧୂଳି ଦେହରେ ଟୁଳ ପକାଏ। ସେହି
ପରି କୌଣସି ପଣ୍ଡଶ୍ରମ ସ୍ଥଳରେ ଏହି ନ୍ୟାୟ ଲାଗେ]

ହାତି ଗିରଦା (ଜା)—ପ୍ରାଦେ (ଗଡଜାତ) ବି—ହାତିଖେଦା ୨ (ଦେଖ)
Hāti giradā (ja) Hātikhedā 2 (See)

ହାତି ଘୋଡା—ଦେ. ବି—(ସଂ. ହସ୍ତୀ+ଘୋଟକ)—ହସ୍ତୀ ଓ ଘୋଟକ
Hāti ghorḍā Elephant and horse.
হাতী ঘোড়া हाथीघोड़ा

ହାତିଘୋଡା ଝୁଲିବା—ଦେ. କ୍ରି—(ଲକ୍ଷଣାର୍ଥ)—ଅତୋଳତଳ ସମ୍ପତ୍ତି
Hāti ghorḍā jhulibā ବା ଐଶ୍ୱର୍ଯ୍ୟର ଉଦୟ ହେବା ଓ
ଫଳରେ ହାତିଘୋଡା ବନ୍ଧାହେବା—(figurative)
Increase of prosperity and consequent
maintenance of elephants and horses by
হাতী ঘোড়া ঝুলা हाथीघोड़ाझूलना a person.

ହାତି ଚଳା(ଲେ)ଇବା—ଦେ. କ୍ରି—(ସଂ. ହସ୍ତୀ+ଚଳ ଧାତୁ ଣିଚ
Hāti chalā (le) ibā ଯୁକ୍ତ ଧାତୁ)—ମାହୁନ୍ତ ରୂପେ ହସ୍ତୀକୁ
ଚାଳନ କରିବା—To drive an elephant.
হাতীচালান हाथी चलाना

ହାତି ଚାଲି—ଦେ. ବି—(ସଂ. ହସ୍ତୀ+ଚଳନ)—ହସ୍ତୀର ଗତି—
Hāti chāli The movement of an elephant.
[ଦ୍ର—ଏହା ୩ ପ୍ରକାର ଯଥା—
୧। ଧୀର ଚାଲି—ପାଦୁଳିବା ବା ପାଦୁଣ୍ଡ ପକାଇବା।
୨। ଉତ୍ପେକ୍ଷା କ୍ରୁତଗତି-ପଲ୍ଲଣିବା।
୩। ଖୁବ୍ ଜୋର୍‌ରେ ଗତି—ଦୁପାଲିବା ବା ଧପାଲିବା।
ହାତି ଚାଲି ଚାଲି ଯେତେ, ଘୋଡ଼ା ଦଉଡ଼ ଦଉଡ଼ ସେତେ
—ପ୍ରବଚନ
ହାତିର ଅବଯବ ଅନୁସାରେ ତାହାର ପାଦୁଣ୍ଡ ଘୋଡ଼ାଅପେକ୍ଷା
ଅଧିକ ଥିବାରୁ ହାତି ଚାଲି କରି ନିର୍ଦ୍ଦିଷ୍ଟ ସମୟରେ ଯେତେ
ପଥ ଅତିକ୍ରମ କରେ ଘୋଡ଼ା ଦଉଡ଼ି କରି ସେତିକି ପଥ
ଯାଏ। ସେହିପରି ବଳବାନ୍ ଲୋକ ସାଧାରଣତଃ ନିର୍ଦ୍ଦିଷ୍ଟ
ସମୟରେ ଯେତେ କାମ କରେ, ଦୁର୍ବଳ ବ୍ୟକ୍ତି ସେହି
ସମୟରେ ବହୁ ଚେଷ୍ଟା କରି ତାହାହିଁ କରେ। ଏହି ଉପଲକ୍ଷେ
হাতীর চলন हाथीचाल ଏ ଉଦାହରଣ ଦିଆଯାଏ।]

ହାତି ଚୋକ୍—ବୈଦେ. ବି—(ଇଂ ଆର୍ଟିଚୋକ୍)—ସୂର୍ଯ୍ୟମୁଖି ତୁଲ୍ୟ
Hāti chok ବୃକ୍ଷବିଶେଷର ଗଣ୍ଠିରୁ ବାହାରିବା ଆଳୁପରି ଏକ
ପ୍ରକାର ଖାଦ୍ୟ—Artichoke; (tuberous) potato-
like scales of the plant Helianthus
Tuberosa. [ଦ୍ର—ଏହା ବିଲାତରୁ ଆମଦାନି ହୋଇ
ଏ ଦେଶରେ ଫଳ ଓ ତୋରକାରୀ ରକାଯାଇ ଖିଆଯାଏ।]
হাতীচোক आर्टीचोक

ହାତି ଛୁଆ—ଦେ° ବି—(ସଂ. ହସ୍ତୀ ଓ ଶିଶୁ)—ହସ୍ତୀ ଶାବକ—
Hāti chhuā The young of an elephant.
হাতীর বাচ্চা हाथीबच्चा

ହାତି ଝୁଲ—ଦେ. ବି—ହାତିର ଲଦନ ଉପରେ ଢଙ୍କାଯିବା ଚତୁଷ୍କୋଣିଆ
Hāti jhula ମୋଟା ଆସ୍ତରଣ—The square trapping
put on an elephant. (ଦ୍ର—ଏହା ହାତିର
କଡ଼ରେ ଭୂମିରୁ ୧।୨ ଫୁଟ ଉଚ୍ଚରେ ଝୁଲୁଥାଏ।)
হাতীর ঝালর हाथीझूल

ହାତି କି(କୁ) ଟିପିବା—ଦେ. କ୍ରି—(ମାହୁନ୍ତ) ହାତିକୁ ଆଗକୁ ଚଳାଇବା
Hāti ki(ku) ṭipibā ପାଇଁ ତା ମୁଣ୍ଡରେ ଗୋଡ ଓ ଅଙ୍କୁଶ
ମାରିବା—To goad an elephant to advance
ডাঙ্গশমাবা हाथीकोअङ्कुशमारना

ହାତି ଟୋପ (ଟୋପର)—ଦେ. ବି—ବଣହାତିଙ୍କ ଧରା ହେବାପାଇଁ
Hāti ṭopa (ṭopara) ବଣରେ ଖୋଳାଯିବା ବଡ଼ ଗର୍ତ୍ତ—
Big holes dug in the ground to entrap
হাতীটোপ हाथीबझानेकागड्ढा elephants.
(ଦ୍ର—ଏହାର ମୁହଁରେ ବାଉଁଶ ଗୁଣ୍ଡା, ଘାସଚେକା, ଡାଳ
ଆଦି ବିଛାଯାଇ ଏହାର ମୁହଁ ଲୁଚା ହୋଇଥାଏ ଓ ତହିଁ
ନିକଟରେ ହାତିଙ୍କ ଖାଦ୍ୟ ରଖା ଯାଇଥାଏ। ହାତି ଏଠାକୁ
ଚରିବାକୁ ଆସିଲେ ଏଠାରେ ଗର୍ତ୍ତ ଥିବା ଜାଣି ନ ପାରି
ତହିଁ ଉପରେ ଗୋଡ ଦେବାମାତ୍ରେ ଖାଲରେ ଗଳିପଡେ ଓ
ଉଠିପାରେ ନାହିଁ। ସେଠାରେ ଅନାହାରରେ ୨।୪ ଦିନ
ପଡି ରହିବା ପରେ ତାକୁ ଲୋକେ ନାନା କୌଶଳରେ
ଦଉଡ଼ି ଦ୍ୱାରା ବାନ୍ଧି ଅନ୍ୟ ଶିକ୍ଷିତ ହାତିଦ୍ୱାରା ଉପରକୁ
ଉଠାଇ ଆଣି ପୋଷ ମନାନ୍ତି।)

ହାତି ଥୋଡ(ର)—ଦେ. ବି—(ସଂ. ଅଧର+ପ୍ରହାର, ଫଳତଃ ଏହା
Hāti thorḍa (ra) ହସ୍ତୀର ଓଷ୍ଠ ଓ ଏହାଦ୍ୱାରା ହସ୍ତୀ
ହାତିଥୋଡ ପାର(ହା)ର } ପ୍ରହାର କରେ)—
ହାତିଥୋର ପାହାର } ଅନ୍ୟରୂପ।

ହସ୍ତୀଶୁଣ୍ଡ; ହାତିର ଶୁଣ୍ଡ—The trunk of elephant.
হাতীর শুঁড় हाथीशुंड

ହାତି ଦଣ୍ଡା (ଦାଣ୍ଡ, ଦାଣ୍ଡି)—ଦେ. ବ—(ସଂ ହସ୍ତୀ ଓ ଦଣ୍ଡ)—Hāti daṇḍā (dāṇda, dāndi) ୧ । ଗଭୀର ଅରଣ୍ୟରେ হাতী রাস্তা ହସ୍ତିଯୂଥମାନଙ୍କର ଗମନାଗମନ ପାଇଁ ହସ୍ତୀମାନଙ୍କ हाथी का रास्ता ଦ୍ୱାରା ପରିଷ୍କୃତ ବହୁଶତ କ୍ରୋଶ ଲମ୍ବ ମାର୍ଗ—1. A wide open track made by elephants in the dense forest running to hundreds of miles. ୨ । ହାତିପଲମାନଙ୍କ ଶୋଭା ପରି ଆକାଶରେ ଦକ୍ଷିଣ ପଶ୍ଚିମ କୋଣରୁ ଉତ୍ତର ପୂର୍ବ କୋଣକୁ ଲମ୍ବ ହୋଇ ଦେଖାଯିବା ଧଳା ମେଘର ଖଣ୍ଡମାନ—2. A long track of isolated fleecy clouds (resembling the track of a herd of elephants) extending from the south-west to the north-east in the sky seen at times (this indicates that soon it will be raining). [ଦ୍ର—ଏହା ଦେଖାଗଲେ ଶୀଘ୍ର ବର୍ଷା ହେବ ବୋଲି ସୂଚିତ ହୁଏ ।] ୩ । ଛାୟାପଥ—3. The milky way.

ହାତିଦନ୍ତା ବାଇଗଣ—ପ୍ରାଦେ (ଗଡ଼ଜାତ) ବ—ଏକପ୍ରକାର ଧଳା ଓ Hātidantā Bāigaṇa ଲମ୍ବା ବାଇଗଣ—A species of white long brinjal.

ହାତି ଦଳା(ଲେ)ଇବା(ମର୍ଡ଼ା[ର୍ଡ଼େ]ଇବା)—ଦେ. କ୍ରି—(ପୂର୍ବେ ରାଜା-Hāti daḷā (le) ibā (marḍā[rḍe]ibā) ମାନଙ୍କ ଦ୍ୱାରା হাতিতে দলান ଅପରାଧୀମାନଙ୍କୁ ଦିଆଯିବା ଦଣ୍ଡ ବିଶେଷ ) ଅପରାଧୀ हाथीसे पिसवाना ଉପରେ ହାତିକୁ ଚାଳି ହାତିର ଗୋଡ଼ଦ୍ୱାରା ତାକୁ ଦଳାଇ କରି ମାରିଦେବା—To kill a person by causing him to be trodden on by an elephant.

ହାତି ଦଳିବା—ଦେ. ବି—ହାତିର ମନୁଷ୍ୟ ଉପରେ ପାଦ ପକାଇ ଗୁଣ୍ଡି Hāti daḷibā ଦେବା—The treading by an হাতিদলা हाथीपिचाई elephant of a man.

ହାତି ଦାନ୍ତ—ଦେ. ବ—(ସଂ ହସ୍ତିଦନ୍ତ)—ଅଣ୍ଡିରା ହାତିର ଗାଲ-Hāti dānta ପାଖିରୁ ବାହାରିଥିବା ଦୁଇଟି ଲମ୍ବ ଦାନ୍ତ—হাতির দাঁত Tusks of an elephant; ivory. हाथीदांत [ଦ୍ର—ଯେଉଁ ହାତିର ଦାନ୍ତ ବା ବଡ଼ ଦାନ୍ତ ଥାଏ ତାକୁ ଦନ୍ତା ହାତି କହନ୍ତି ।

ହାତିଦାନ୍ତ ଦେଖିବାକୁ ସୁନ୍ଦର ଓ ଏହାକୁ କାଟିକରି ଏଥିରେ ନାନାପ୍ରକାର ଯଷ୍ଟି, ଛୁରିବେଣ୍ଟ, ପଣା-କାଠି, ପଣାଗୋଟି, ଚୁଡ଼ି, ପଲଙ୍କରେ ଦିଆଯିବା ପାଢ଼ଆ ଅଦି ତିଆରି ହୁଏ । ଏହାର ଯେର ଟ ୧୬୯ ଠାରୁ ଟ୩୦୯ ପର୍ଯ୍ୟନ୍ତ ବିକାଯାଏ । ହାତିଦାନ୍ତରେ ସୁନା ଛୁଆଣି ଦେବା—ନ୍ୟାୟ-ହାତିଦାନ୍ତ ପରି ବହୁମୂଲ୍ୟ ବସ୍ତୁ ଉପରେ ସୁନାର ପତର ମଡ଼ାଇଲେ ଯେପରି ଦୁଇଟି ବହୁମୂଲ୍ୟ ପଦାର୍ଥର ବା ସୁଗୁଣର ଏକତ୍ର ସମାବେଶ ହେବା ଦେଖାଗଲେ ଏ ନ୍ୟାୟ ଲାଗେ ।]

ହାତିଦାନ୍ତ ପଲଙ୍କ—ଦେ. ବ—(ସଂ ହସ୍ତିଦନ୍ତ ଓ ପର୍ଯ୍ୟଙ୍କ)—ଯେଉଁ Hātidānta palaṅka ପଲଙ୍କର ବାଡ଼ଆଦିରେ ହାତିଦାନ୍ତର হাতির দাঁতের পালঙ্ক ପାଢ଼ଆ ଛୁଆଣି ବା ଖଚିତ ହୋଇଥାଏ—हाथीदांत पलङ्ग A bedstead set with layers of thin ivory.

ହାତି ଦେବା ଛତି ଦେବା—ଦେ. କ୍ରି—୧ । କୌଣସି ବ୍ୟକ୍ତିଙ୍କୁ ବହୁ Hāti debā chhati debā ମୂଲ୍ୟବାନ୍ ଉପହାର ଦେବା—হাতি ঘোড়া দেওয়া 1. To give great gifts to a हाथी घोड़ा देना person. ୨ । କୌଣସି ବ୍ୟକ୍ତିକୁ ବହୁ ମୂଲ୍ୟବାନ୍ ବସ୍ତୁ ପାରିତୋଷିକ ଦେବାପାଇଁ ଅଙ୍ଗୀକାର କରିବା—2. To promise to give great gifts to a person.

ହାତି ଧରା—ଦେ· ବ—ବଣ ହାତିକୁ ପୋଷିବା ପାଇଁ କାଳା ଉପାୟରେ Hāti dharā ଜଙ୍ଗଲରୁ ଧରିବା—Catching of wild হাতি ধরা elephants. [ଦ୍ର—ଦୁଇ ପ୍ରକାରରେ ବଣହାତି हाथीखेदा ଧରାଯାଆନ୍ତି—୧ । ହାତିଙ୍କ ଚଳବା ସ୍ଥାନରେ ସ୍ଥାନେ ସ୍ଥାନେ ଭୂମିରେ ବଡ଼ ଗହୀର ଗାତ (ଝୋପ) ଖୋଳି ତା ଉପରେ ବାଉଁଶ ଶୃଙ୍ଖଳା, ଘାସଡେକା ଘୋଡ଼ାଇ ଦିଆ ହୋଇ-ଥାଏ; ହାତି ବୁଲୁ ବୁଲୁ ଖାତରେ ପଡ଼ଗଲେ ଆଉ ଉଠି ପାରେ ନାହିଁ । ତା ପରେ ଶିକ୍ଷିତ ପୋଷା ହାତିକୁ ନେଇ ଝୋପରେ ପଡ଼ଥିବା ବଣ ହାତିକୁ ଉଠାଇ ଆଣି ଲୋକେ ବଶ କରନ୍ତି ।

୨ । ବଣରେ ଅବହମାନକାଳରୁ ପଡ଼ିଥିବା ହାତି-ଦାଣ୍ଡରୁ ସରୁଆ ବାଟ କାଟି ଖଣ୍ଡଦୂର ପର୍ଯ୍ୟନ୍ତ ଅଣି ସେଠାରେ ବଡ଼ ବଡ଼ କାଠର ଖୁଣ୍ଟଦ୍ୱାରା ଗୋଟିଏ ଖୁଆଡ଼ ତିଆରି କରାଯାଏ; କଟା ହୋଇଥିବା ବାଟରେ ହାତିଙ୍କର ଲୋଭନୀୟ ଖାଦ୍ୟ ରଖାଯାଇଥାଏ । ହାତିପଲ ସେ ଖାଦ୍ୟକୁ ଦେଖି ଲୋଭରେ କ୍ରମଶଃ ଅଗ୍ରସର ହୋଇ ସେ ଖୁଆଡ଼ରେ ପଶିଗଲେ ଖୁଆଡ଼ର ବାଟକୁ ଜଗିଥିବା ଲୋକେ ଅଡ଼ୁକାଠ ବା ଝୁଲକବାଟ ଦେଇ ବନ୍ଦ କରିଦିଅନ୍ତି ଓ ସେଥିରେ ବନ୍ଦୀହେବା ହାତିମାନଙ୍କୁ ଶିକ୍ଷିତ ହାତିମାନଙ୍କ ସାହାଯ୍ୟରେ ଆୟତ୍ତ କରନ୍ତି । ଏହି ଖୁଆଡ଼କୁ ଖେଦା ବୋଲଯାଏ ।]

ହାତି ନେଦ (ଦା)—ଦେ· ବ—(ସଂ ହସ୍ତୀ+ଲଣ୍ଡ)—ହସ୍ତୀବିଷ୍ଠା—Hāti neda (dā) The dung balls of elephants. হাতির নাদ(দা) हाथीलीद्

ହାତି ପଲ (ଲ୍ଲ, ଲ୍ହ, ହ୍ଲ)—ଦେ. ବ—(ସଂ ହସ୍ତୀ+ପାଲ=ପଂକ୍ତି) Hāti pala (lla, lha, hla) ବନ୍ୟ ହସ୍ତୀମାନଙ୍କର ସଙ୍ଘବଦ୍ଧ হাতির পাল ଦଳ—Horde or herd of wild हाथीदल elephants. [ଦ୍ର—ପ୍ରତ୍ୟେକ ପଲରେ ଗୋଟିଏ ବୃଦ୍ଧ ବଳବାନ୍ ଦନ୍ତାହାତି ଅଧିପତି ଥାଏ; ସେ ଆଗେ ଆଗେ ଯାଉଥାଏ ଓ ଦଳର ଅନ୍ୟ ହାତିମାନେ ତାହାର

ପଛେ ପଛେ ଯାଉଥାଆନ୍ତି । ହାତି କୁଆ ଓ ହାତୁଣୀମାନେ ଦଳର କେନ୍ଦ୍ରରେ ଥାଆନ୍ତି ଓ ତାଙ୍କ ଚତୁଃପାଖେ ଅନ୍ୟ ବଳିଷ୍ଠ ହାତିମାନେ ଘେରିଥାଆନ୍ତି ।]

**ହାତି ପଲସିବା**—ଦେ. ବି—ହାତିର ଦ୍ରୁତ ଗତି (ଚାଲିବା ଓ
Hāti palasiba ଧାଇଁବାର ମଧ୍ୟବର୍ତ୍ତୀ ଗତି)—Swift
হাতির দৌড় motion of an elephant (midway
**हाथीका दौड़** between walking and running).
[ଦ୍ର—ହାତିଗୁଲି ଚଲେ ଟୀକା ଦେଖ ।]

**ହାତି ପାଞ୍ଜର**—ପ୍ରାଦେ (ପାଟଣା) ବି—ବନ୍ୟ ବୃକ୍ଷ ବିଶେଷ—
Hāti pānjara Name of a wild tree.
(ହାତିବାଉଁଗଛ—ଅନ୍ୟରୂପ)

**ହାତି ପାହୁଣ୍ଡ(ଲ)**—ଦେ. ବି · ଚାଲିବାବେଳେ ହାତିର ଥରେ ପଦକ୍ଷେପ—
Hāti pāhunda(la) One step of an elephant
হাতীর পদক্ষেপ **हाथीका डग** whilst walking.

**ହାତି ପାହୁଣ୍ଡ(ଲ) ପକା(କେ)ଇବା**—ଦେ. ବି—ହାତିର ଧୀର ମନ୍ଥରଗମନ
Hāti pahunda(la) pakā(ke)iba —The walking
হাতীর ধীর চাল **हाथीका धीरे धीरे चलना** of an elephant in slow measured paces.

**ହାତି ପେଁକାଳ(ଳ)**—ଦେ. ବି - ହସ୍ତୀର ତୂରୀବତ୍ ଧ୍ୱନି—
Hāti pe-enkāla(la) The trumpet-like
[ହାତିପେଁକାଳ(ଳ)—ଅନ୍ୟରୂପ] sound made by an
হাতীর ডাক **हाथीकी पिहकारी** elephant.
[ଦ୍ର—ଜଙ୍ଗଲ ଦୂରରୁ ବଣହାତିମାନେ ପୋଷା ହାତିଙ୍କର ଗନ୍ଧ ବା ଉପସ୍ଥିତି ବାରିଲେ ଓ ପୋଷା ହାତିମାନେ ବଣହାତିଙ୍କର ଗନ୍ଧ ବା ଉପସ୍ଥିତି ବାରିଲେ ଉଭୟେ ପେଁକାଳ ମାରନ୍ତି । ସେହି ପେଁକାଳ ଶୁଣି ବଣହାତିମାନେ ପୋଷା ହାତିଙ୍କ ଥିବା ସ୍ଥାନକୁ ଅଗ୍ରସର ହୁଅନ୍ତି । ସେହି ସମୟରେ ପୋଷା ହାତିଙ୍କ ନିକଟରେ ଥିବା ଲୋକଙ୍କ ଜୀବନ ବିପନ୍ନ ହୁଏ ।]

**ହାତି ପେଁକାଳ ମାରିବା**—ଦେ. ବି—ହସ୍ତୀର ତୂରୀ ବଜାଇବା ପରି
Hāti pe-enkāla māribā ଶବ୍ଦ କରିବା—
ହାତି ପେଁକାଳ ମାରିବା / ହାତିପେଁକାଳିବା / ହାତି ପେଁକାଳିବା —ଅନ୍ୟରୂପ An elephant's emitting a trumpeting
হাতী ডাকা **हाथी पिहकार मारना** sound.

**ହାତି ପେଟ**—ଦେ. ବି—୧ । ହାତିର ଗର୍ଭ—1. The belly of
Hāti peta an elephant. ୨ । (ତୁଳନାର୍ଥକ)
হাতীর ভুঁড়ি **हाथी पेट** ବଡ଼ ପେଟ; ଅତ୍ୟଧିକ ପେଟ—
2. Pot-belly. ୩ । (ତୁଳନାର୍ଥକ) ଯେଉଁ ମନୁଷ୍ୟର ଗର୍ଭରେ ବହୁତ ଖାଦ୍ୟ ପଶେ – 3. The belly of a man who eats much (compared to the belly of an elephant) ୪ । [ଲକ୍ଷଣାର୍ଥ] ଯେଉଁ ବ୍ୟକ୍ତିର ପେଟରେ ବା ମନରେ ଅନେକ ଗୁପ୍ତ କଥା ପ୍ରକଟ ନ ହୋଇ ରହେ—4. (figurative) The mind of a person who hears many things but divulges nothing.

**ହାତି ପୋଷିବା**— ଦେ. କ୍ରି (ସ ହସ୍ତି ପୋଷଣ)—୧ । ଗୋଟିଏ ହାତିକୁ
Hāti poshbā ଘରେ ରଖି ତାହାର ଖାଦ୍ୟ ଚଳାଇବା।
হাতী পোষা **हाथी पोसना** 1. To maintain an elephant. ୨ । (ଲକ୍ଷଣାର୍ଥ) ଯେଉଁ ବ୍ୟକ୍ତିକୁ ପୋଷଣ କରିବା ବହୁ ବ୍ୟୟସାଧ୍ୟ, ସେପରି ବ୍ୟକ୍ତିକୁ ଭରଣପୋଷଣ କରିବା - 2. (figurative) To maintain a person, to maintain whom is very costly. [ଯଥା—ଆଜିକାଲି ପିଲାଙ୍କୁ କଲେଜରେ ପଢାଇବା ଅର୍ଥ ଘରେ ହାତି ପୋଷିବା ।]

**ହାତିବଡ଼ୁଆ**—ଦେ. ବି—ଆସାମ ଦେଶର ବ୍ରାହ୍ମଣମାନଙ୍କ ବଂଶୋପାଧି-
Hatibardua ବିଶେଷ – A family-title
হাতি বড়ুয়া **हाथी बडुया** amongst the Assamese Brahmanas.

**ହାତିବନ୍ଦ**—ଦେ. ବି—ହାତିଅନ୍ଦ (ଦେଖ)—
Hātiianda Hātianda (See)

**ହାତି ବଳ**—ଦେ. ବି (ସ ହସ୍ତି ବଳ)—
Hāti bala ୧ । ପ୍ରାଚୀନ ହିନ୍ଦୁମାନଙ୍କର ଚତୁରଙ୍ଗ
হাতীর বল **हाथी बल** ସେନା ମଧ୍ୟରୁ ହସ୍ତୀଆରୋହୀ ସେନା—1. The division of the army of ancient India consisting of elephant-riders. ୨ । ସତରଞ୍ଜ ଖେଳରେ ଗୋଟିବିଶେଷ—2. A sort of ball in the game of chess (corresponding to the Bishop in the English game). (ଦ୍ର—ଏହା କୋଣାକୋଣରେ ଗୃଳତ ହୁଏ ।) ୩ । ହାତିର ବଳ ପରି ଖୁବ୍ ବଳ—3. Great strength like that of an elephant; the strength of an elephant.

**ହାତି ବସିବା**—ଦେ. ବି—ହାତି ଉପରେ ମନୁଷ୍ୟର ଚଢ଼ିବା ପାଇଁ
Hāti basibā ମାହୁନ୍ତର ଆଦେଶ ଅନୁସାରେ ପୋଷା
হাতীবসা **हाथी बैठाई** ହାତି ଅଣ୍ଠୋଇବା—
The kneeling down of an elephant to enable a rider to get on it.

**ହାତି ବସିଯିବା**—ଦେ.ବି—ହାତି ମରିଯିବା—(euphemism)The
Hāti basijibā dying of an elephant.
হাতী মরে যাওয়া **हाथीबैठजाना** (ଦ୍ର—ହାତି ବଡ଼ ଜୀବ ଥିବାରୁ ଏହାର 'ମରିଯିବା' ନ କହି 'ବସିଯିବା' କହନ୍ତି ।

**ହାତିବାଣ୍ଡା**—ପ୍ରାଦେ (ଗଡ଼ଜାତ ଓ ଗଞ୍ଜାମ) ବି (ସ ହସ୍ତି ମେଢ୍ର)—ହାତି
Hātibāndā ଲିଙ୍ଗ ପରି ବଡ଼ ଫଳବିଶିଷ୍ଟ ଏକପ୍ରକାର ଗଛ—
A kind of big wild tree having fruits resembling the penis of an elephant.

ହାତ ବୋଇତ—ଦେ· ବ [ସ. ହସ୍ତୀ+ବହିତ୍ର]—ସମୁଦ୍ରରେ ହାତିଙ୍କୁ
Hāti boita ବୋହିନେବା ସକାଶେ ପ୍ରସ୍ତୁତ ଜାହାଜ—
हाती वहा जाहाज **हाथी बोट** A ship to carry elephants on it in the ocean.
[ଦ୍ର—ଖାରବେଳ ଯେଉଁ 'ହାତି ବୋଇତ'ମାନ ପାଣ୍ଡ୍ୟ ରଜାଙ୍କଠାରୁ ଅଧିକାର କରିଥିଲେ ସେମାନ ଅଶ୍ଵଯାନଜନକ ଥିଲା । କଳିଙ୍ଗ ବଣିକମାନେ ଏହି ବୋଇତ ଚଳାଉ ଥିଲେ—କୃପାସିନ୍ଧୁ. ଉତ୍କଳ ଇତିହାସ ।]

ହାତ ମାହୁଁତ (ମାହୁନ୍ତ)—ଦେ ବ—ହାତିଆଳ; ହସ୍ତୀପକ; ହସ୍ତୀଚାଳକ;
Hāti māhunta (māhunta) ଯେଉଁ ବ୍ୟକ୍ତି ହାତ କାନ୍ଧ
हातीवमाहुत ଉପରେ ବସି ହସ୍ତୀକୁ ଚାଳନ କରେ—The
**फीलवान, हाथीवान** driver of an elephant.

ହାତି ମେଠ (ଣ୍ଟ)—ଦେ. ବ—(ସ. ହସ୍ତୀ ଓ ଇଂ ମେଟ୍)—ହାତିର
Hāti meta (nta) ଖାଇବା ଓ ଗାଧୋଇବା ଅବସରେ ହାତି
हातीर मेट ମାହୁନ୍ତକୁ ସାହାଯ୍ୟ କରିବା ନିମନ୍ତେ ନିଯୁକ୍ତ ଭୃତ୍ୟ—
**हाथीमेट** A mate or attendant kept for helping the elephant-driver in looking after an elephant.

ହାତି ମେଦ—ଦେ. ବ—ହାତିର ପିଣ୍ଡାକାର ବିଷ୍ଠା—
Hāti meda The dung of an elephant.
हातीव लाद **हाथीलीद**
हातीव मेद , हस्तीपिण्ड—Big balls of elephant-dung.
**हाथी का लिद**

ହାତି ଲଦନ—ଦେ. ବ—ଖୋଲ୍ ଓ କୁଟାଆଦି ପୂର୍ଣ୍ଣ ଅଶ୍ଵାର ଗୁର-
Hāti ladana କୋଡିଆ ଗଦି (ଯାହା ହାତି ଉପରେ ପକାଯାଏ)
हातीव गदि —A pack-saddle put on the back of
**हाथी की गद्दी** an elephant. [ଦ୍ର—ହାତିର ପିଠିରେ ପ୍ରଥମେ ଲଦନ ଉଡ଼ା ହେବା ପରେ ତହିଁ ଉପରେ କଠାଳ ବା ହାଉଦା ସ୍ଥାପିତ ହୋଇ ବସାଯାଏ । ଲଦନର ପୃଷ୍ଠ ସମତୁଲ ହୋଇଥାଏ; କିନ୍ତୁ ଲଦନର ଗର୍ଭକୁ ହାତିର ମେରୁହାଡ଼ ଲାଗିବା ଅଂଶରେ ଶୂନ୍ୟ କରି ତିଆରି କରାଯାଇ ଥାଏ ।]

ହାତି ଶାଳ—ଦେ. ବ—(ସ. ହସ୍ତିଶାଳା)—ପୋଷା ହାତିଙ୍କ ରହିବା
Hāti sāla ପାଇଁ ବ୍ୟବହୃତ ବଡ଼ ଘର—A big shed for
हातीशाल housing an elephant. [ଦ୍ର—ହାତିଶାଳ
**हाथीसार, हाथीखाना** ଭାଙ୍ଗିଗଲେ କି ମେଣ୍ଢା ଶାଳକୁ ଯୋଗ୍ୟ ନୁହେଁ—ପ୍ରବଚନ । ହାତିପରି ବଡ଼ ଜୀବର ଶାଳ ଭାଙ୍ଗିଗଲେ ତାହା ପିମ୍ପା ହାତିର ରହିବା ପାଇଁ ଯୋଗ୍ୟ ହୁଏନାହିଁ; କିନ୍ତୁ ତହିଁରେ ଅନାୟାସରେ କେତେ ମେଣ୍ଢା ରହି-ପାରନ୍ତି । ଧନଶାଳୀ ବ୍ୟକ୍ତିଙ୍କର ଭଉତ କ୍ଷୟ ହେଲେ ଭିନ୍ନ କ୍ଷୟପ୍ରାପ୍ତ ଅବସ୍ଥା ଧନୀ ବ୍ୟକ୍ତିଙ୍କ ଚଳାଚଳ ପକ୍ଷରେ ଯଥେଷ୍ଟ ହୁଏନାହିଁ, କିନ୍ତୁ ତାହା ଗରିବ ଲୋକଙ୍କ ଚଳାଚଳ ପକ୍ଷରେ ଯଥେଷ୍ଟ ହୁଏ; ଏହି ସ୍ଥଳରେ ଏ ପ୍ରବଚନର ପ୍ରୟୋଗ କରାଯାଏ ।]

ହାତି ଶୁଣ୍ଡ(ଣ୍ଢ)—ଦେ.ବ—(ସ.ହସ୍ତିଶୁଣ୍ଡ)—ହସ୍ତୀର ଥୋର ପାହାର—
Hāti sunda (ndha) The trunk of an elephant.
हातीशुँड **हाथीका सूड**

ହାତିଶୁଣ୍ଡା(ଣ୍ଢା)—ଦେ, ବଣ—ହସ୍ତିଶୁଣ୍ଡ ପରି ଆକୃତି ବିଶିଷ୍ଟ—
Hāti sundā (ndhā) Resembling an elephant's
हाती शुँड़ो trunk in shape. ବଣ—୧ । (ଏହାର ଆକୃତି
**हाथी सूँड़ा** ହାତିଶୁଣ୍ଡପରି ଅନୁମିତ ହେବାରୁ) ଜଳସ୍ତମ୍ଭ; ସମୁଦ୍ର
हाती शुँड़, हातीशुँडा ସମୁଦ୍ରରେ ଆକାଶରୁ ଭୂମି ଉପରକୁ ବା
**हाथीया सूँड़** ଜଳରାଶି ମଧ୍ୟକୁ ଲମ୍ବିଥିବା ବିଶାଳ ଜଳସ୍ତମ୍ଭ—
1. Water spout (a natural phenomenon)
[ଦ୍ର—ଏହା ସାଧାରଣତଃ ନଦୀର ବା ସମୁଦ୍ରର ବା ଜଳାଶୟର ଜଳରାଶି ଉପରେ ଆକାଶରୁ ଲମ୍ବିବା ଦେଖା-ଯାଏ । ଏହି ଜଳସ୍ତମ୍ଭ ଦ୍ଵାରା ମେଘକୁ ବହୁ ପରିମାଣରେ ଜଳ ଉଠିଯାଏ । ସାଧାରଣ ଲୋକେ ବିଶ୍ଵାସ କରନ୍ତି ଯେ, ଐରାବତ ହସ୍ତୀ ପୃଥିବୀକୁ ଶୁଣ୍ଢ ବଢ଼ାଇ ପାଣି ପିଉଅଛି । ଏଥି ପାଇଁ ଏହି ନାମ ହୋଇଅଛି । ସମୟ ସମୟରେ ଏ ଜଳସ୍ତମ୍ଭ ଶୁଖିଲା ଭୂମି ଉପରେ ଦେଖାଯାଏ ଓ ଏ ପ୍ରକାର ଜଳସ୍ତମ୍ଭ ଦ୍ଵାରା ଶୁଖିଲା ଭୂମି ଉପରେ ଗୁଡ଼ାଏ ଜଳ ଅଜାଡ଼ି ହୋଇ ପଡ଼େ । ୨ । ପୁରୁଷର ଲିଙ୍ଗରୁ ବଙ୍କାଗଢ଼ ଲିଙ୍ଗର

ହାତି ରଜା—ଦେ. ବ. ପୁଂ—(ସ. ହସ୍ତିରାଜ)—ହସ୍ତୀଯୂଥର ନେତା ଦନ୍ତା
Hāti rajā ହାତି—A male tusker who leads a
हातीपालेव राजा herd of wild elephants.
**हाथीराजा**

ହାତି ରସ—ଦେ. ବ—(ସ. ହସ୍ତିରସ)—ମତ୍ତ ହସ୍ତୀର ଗଣ୍ଡରୁ ବୋହିବା
Hāti rasa ମଦଜଳ—The juicy exudation coming
(ହାତିର ରସ—ଅନ୍ୟରୂପ) out of the temples of a
हातीर बस **हाथी की मदी** male elephant in rut.

ହାତି ରସ ଦେବା—ଦେ.କ୍ରି—ମତ୍ତ ହସ୍ତୀର ଗଣ୍ଡରୁ ମଦସ୍ରାବ ହେବା—
Hāti rasa debā An elephant in rut emitting juice from its temples.
ହାତ ରସ ଫିଟିବା
ହାତ ରସ ବୋହିବା
ହାତ ରସା(ସେ)ଇବା
ହାତ ରସିବା
} ଅନ୍ୟରୂପ
हातीव बस वहा **हाथीमदी चूना**

ହାତିରାମ—ଦେ.ବ. ପୁଂ—୧। (ବ୍ୟଙ୍ଗ୍ୟ)—ହାତିପରି ସ୍ଥୂଳକାୟ ବ୍ୟକ୍ତି—
Hātirām 1. (ironical) Fat or corpulent person.
हातीवाम ୨ । ହାତିପରି ଗମ୍ଭୀର ସ୍ଵଭାବ ବ୍ୟକ୍ତି—2. A person of
**हाथीराम** calm temperament. ୩ । ହାତିପରି ଧୀର ମନ୍ଥର ଗମନଶୀଳ ବ୍ୟକ୍ତି—3. A person of slow gait (compared to an elephant).

ହାତି ଲଣ୍ଡ (ଲେଦ, ଲେଦା, ଲେଦି)—ଦେ. ବ—ହାତି ଲେଦ; ହାତିର
Hāti landa (leda, ledā, ledi) ବିଷ୍ଠା, ହସ୍ତୀର ପୁରୀଷ,

ହାତିଶୁଣ୍ଢ ପରି ଫୁଲିଯିବା ରୋଗ; ଲିଙ୍ଗର ଶ୍ଳୀପଦ ରୋଗ—
2. Elephantiasis of the penis; tumour of the male organ ୩ । ହସ୍ତୀଶୁଣ୍ଢା (ଦେଖ)—
3. Hasti Sundā (See).

ହାତି ସରି—ଦେ. ବି—୧ । ହାତି ଦଣ୍ଡା (ଦେଖ)—1. Hāti sari daṇdā (See). ୨ । ହାତିପଲଙ୍କ ବିଚରଣ
Hāti sari
ହାତୀର ପାୟେର ଦାଗ କରିଥିବା ଭୂମି ଉପରେ ପଡ଼ିଥିବା ହାତିଙ୍କ
हाथीका रास्ता ପଦଚିହ୍ନର ଏକାଧିକକ୍ରମ ରେଖା—2. The lines of foot steps left by a horde of wild elephants in the jungle.

ହାତି ସିରସ୍ତା—ଦେ. ବି—ଧରି ହୋଇ ଆସିଥିବା ବଣ ହାତିକୁ ମଣ
Hāti sirastā କରିବା—Training or breaking of
ହାତୀ সাযেস্তা a newly caught wild elephant.
हाथी सुधार

ହାତି ହପାଲ—ଦେ. ବି—ହାତିର ଦ୍ରୁତତମ ଗତି—The swiftest
Hāti hapāla trot of an elephant.
হাতীর দৌড় हाथीका दौड़

ହାତି ହପାଳିବା—ଦେ. ବି—ହାତିର ଅତି ଦ୍ରୁତ ବେଗରେ ଚାଲିବା—
Hāti hapāliba The swift running of an
হাতী দৌড়া हाथीकादौड elephant.

ହାତି ହାଉଦା—ଦେ. ବି—(ସଂ. ହସ୍ତୀ ଓ ଅ. ହାଓ୍ଦାହ୍; ଫ. ନାମ
Hāti hāudā କରଣ୍ଡକ)—ହାତିର ପିଠିରେ ଲଦନ ଓ ଝୁଲ
হাতী হাওদা ପକାଇବା ପରେ ତା ଉପରେ ରଖାଯିବା ବିବିଧ କାରୁକାର୍ଯ୍ୟ-
हाथी हौदा ମଣ୍ଡିତ (ସ୍ଥାନେ ସ୍ଥାନେ ଛତ୍ରାବୃତ) ଆସନ—
Howda; cushioned and sometimes canopied chair put on the back of an elephant. [ଦ୍ର—ଏହି ଆରବୀ ହାଉଦା ଶବ୍ଦ ଇଂରାଜୀ ଭାଷାରେ ଚଳନ୍ତି । ଶୋଭାଯାତ୍ରାରେ ଓ ରାଜା, ମହାରାଜା ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କର ହାତି ଉପରେ ଚଢ଼ିବା ଉପଲକ୍ଷରେ ହାତି ଉପରେ 'ହାଉଦା' ବସାଯାଏ । ସାଧାରଣ ବ୍ୟକ୍ତିଙ୍କ ଚଢ଼ିବା ପାଇଁ 'ଗଦିଲା' ବସାଯାଏ । ଗୋଟିଏ ଗୋଟିଏ ହାଉଦାର ଓଜନ ୨।୪ ମହଣ ଏବଂ ତହିଁ ଉପରେ ସୁନାର ଓ ରୁପାର ପାଟିଆ ସବୁ ମଡ଼ା ହୋଇଥାଏ ଓ ବହୁ ମୂଲ୍ୟର ପଥର ଓ ଜରିର ଛବି ବା ଚିତ୍ର ଥାଏ । ଗୋଟିଏ ଗୋଟିଏ ହାଉଦାର ମୂଲ୍ୟ ବହୁଲକ୍ଷ ଟଙ୍କା ଥିବା ଦେଖା ଯାଇଅଛି ।]

ହାତୁ—ଦେ. ଅ—ହାତ (ଦେଖ)—Hāt (See). କ୍ରି. ବିଣ—ହାତରୁ
Hātu (ଦେଖ)—Hātaru (See).

ହାତୁଆ—ଦେ. ବି—ବିହାର ପ୍ରଦେଶର ଜମିଦାରି ବିଶେଷ—(ଦ୍ର—ଏ
Hātuā ଜମିଦାରିର ଭୂସ୍ୱାମୀଙ୍କ ଉପାଧି ରାଜା)—Hātwa, the
হাতুয়া name of an estate in Bihar of which the
हथुआ proprietor is styled Rāja. ବିଣ ପୁଂ—(ଅନ୍ୟ
(ସ୍ତ୍ରୀ ତେ [ତୋ]ଇ—ସ୍ତ୍ରୀ—ବିଣ) ଶବ୍ଦ ପରେ ଯୁକ୍ତ ହୁଏ—ଯଥା
হাতওয়ালা —ମାରହାତୁଆ; ଫୁର୍ତ୍ତି ହାତୁଆ) ହସ୍ତ ବିଶିଷ୍ଟ—
हाथवाला (suffixed to another word)—Handed (as in Brisk-handed).

ହାତୁଁ—ଦେ. କ୍ରି ବିଣ—ହାତରୁ (ଦେଖ)—
Hātuñ Hātaru (See).
(ହାତରୁ –ଗ୍ରାମ୍ୟରୂପ)

ହାତୁଡ଼ା—ଦେ, ବି—(ସଂ. ହସ୍ତ)—୧ । ବଡ଼ ହାତୁଡ଼ି, ଯାହା ହାତ
Hāturdā କମାରଶାଳରେ ତତା ହୋଇଥିବା ଲୁହାକୁ ପିଟି
বড়হাতুড়ি हथौडा ଥାଏ—1. Sledge-hammer; a big hammer, [ଦ୍ର—ତତ୍ପ୍ତ ଲୌହ ଖଣ୍ଡକୁ ସଣ୍ଡାଶି ହାତ ଜାଅଁରୁ ବାହାର କରି ଆଣି ଜଣେ ଲୋକ ସଣ୍ଡାଶିରେ ଉକ୍ତ ଲୌହ ଖଣ୍ଡକୁ ଦୃଢ଼ରୂପେ ଧରି ନେହି ଉପରେ ସ୍ଥାପିତ କରିଥାଏ ଓ ଅନ୍ୟ ଜଣେ ଲୋକ ଠିଆ ହୋଇ ହାତୁଡ଼ାର ବେଣ୍ଟକୁ ଦୁଇ ହାତରେ ଧରି ଉକ୍ତ ଲୁହାକୁ ପିଟେ । ଶ୍ରେଷ୍ଠ ହାତୁଡ଼ାକୁ ହାତୁଡ଼ି ବୋଲାଯାଏ ଓ ଅତି ଶ୍ରେଷ୍ଠ ହାତୁଡ଼ିକୁ ତୁଢିଆ ବୋଲାଯାଏ ।] ୨ । ଖାଡ଼ିଜାଲ—
2. A kind of small long fishing net. [ଦ୍ର—ଏ ଲମ୍ବ ଜାଲର ଦୁଇ ପ୍ରାନ୍ତରେ ଥିବା କାଠି ଦୁଇଟିକୁ ଦୁଇ ଜଣ ଲୋକ ଝିଅ ଦେବା ଭଳି ହାତରେ ଧରି ମାଛ ଧରନ୍ତି । ଏ ଜାଲର ଧଡ଼ ଦୁଇଟିର ମଝିରେ ମଝିରେ ଖଣ୍ଡିଏ ଲେଖାଏଁ କାଠି ଲଗା ଯାଇଥାଏ ।]

ହାତୁଡ଼ି—(ହାତୁଡ଼ା+କ୍ଷୁଦ୍ରାର୍ଥେ ଇ)—ଛୋଟ ବା ମଧ୍ୟ ଭଳିଆ ହାତୁଡ଼ା—
Hāturdi Medium-sized or small hammer.
হাতুড়ী हथौडी

ହାତୁଡ଼ିଆ—ଦେ ବିଣ—୧ । ଯେଉଁ ବ୍ୟକ୍ତି କମାରଶାଳରେ ହାତୁଡ଼ି
Hāturdia ଧରି ଲୁହାକୁ ପିଟେ—1. A person who
হাতুড়ি পেটা plies the hammer in a smithy.
हथौडिया ୨ । (ବଙ୍ଗଳାରୁ ଅନୁକୃତ) (ସଂ.ହସ୍ତଧ୍ୟା) ଅନାଡ଼ି; ବୈଦ୍ୟ-
ଶାସ୍ତ୍ରରେ ଅନଭିଜ୍ଞ; ଅଶିକ୍ଷିତ (ଚିକିତ୍ସକ)—2. Quack.
(physician). ବି. ବି—୧ । ଅନାଡ଼ି ବା ଅଶିକ୍ଷିତ
হাতুড়ে, হাতুড়িয়া ବୈଦ୍ୟ; କୁବୈଦ୍ୟ-1. A quack. ୨ । ଯେଉଁ
नीम हकीम, कठबैद्य ବୈଦ୍ୟ ବୈଦ୍ୟଶାସ୍ତ୍ର ଅନୁସାରେ ଚିକିତ୍ସା ନ କରି ଟୋଟକା ଟାଣକ ଓ ଚେର ମୂଳ ଆଦି ପ୍ରୟୋଗ କରନ୍ତି—
2. A person who administers herbal medicines, not to be found in medical books

ହାତୁଣୀ—ଦେ. ବି. ସ୍ତ୍ରୀ (ସଂ. ହସ୍ତିନୀ; ପ୍ରା. ହତ୍ଥିଣୀ)—ମାଈ ହାତି—
Hātuṇi She-elephant.
হাতিনী [ଦ୍ର—ପାଣ୍ଡବ ଘର ହାତୀ, ହାତୁଣୀ ଦ୍ରୌପଦୀ ।
हथिनी, हथनी କୃଷ୍ଣସିଂହ. ମହାଭାରତ. ବନ ।]

ହାତୁର—ଦେ. ବି—ହାତୁଡ଼ା ( ଦେଖ )—Hāturdā (See)
Hāturā ଦେ. ବିଣ. ପୁଂ—ହାତୁଆ ( ଦେଖ )
(ହାତୁସ—ସ୍ତ୍ରୀ. ବିଣ) Hātuā ( See )
(ଯଥା—ମାର ହାତୁର ।)

ହାତୁଲ୍—ଗ୍ରାଦେ (ବାଲେଶ୍ୱର ପାଠଶାଳା) ବି—ହାତୁଡ଼ା ( ଦେଖ )
Hātul Hāturdā ( See )

ହାତୁ(ତୁଁ) ହାତ୍—ଦେ· କ୍ରି ବିଣ— ହାତକୁ ହାତ ( ଦେଖ )
Hātu(tuñ) hāt Hātaku hāta ( See )

ହାତେ—ଦେ. ବିଣ—୧ । ଏକ ହସ୍ତ ଲମ୍ବ—1. One cubit long.
Hāte [ଦୃ—ହାତେ ମାପି ଗୃଖଣ୍ଡେ ଗୃଲିବ—ପ୍ରବଚନ ।
এক হাত ଗୃଲୁଥିବା ବ୍ୟକ୍ତି ପ୍ରଥମେ ହାତେ ପରିମିତ ସ୍ଥାନକୁ
एक हाथ ମାପ କରି ମଣା ହୋଇଥିବା ସୀମା ମଧ୍ୟରୁ ଗୃଖଣ୍ଡେ ପରିମିତ ସ୍ଥାନରେ ଗୋଡ଼ ପକାଇଲେ ତାହାର କୌଣସି ଆପଦ ଘଟେ ନାହିଁ; ଭବିଷ୍ୟତ୍ ପ୍ରତି ଦୃଷ୍ଟି ରଖି କାର୍ଯ୍ୟ କରିବା ବା ଅଗ୍ରୁକୁ ଗୃହିଁ କାର୍ଯ୍ୟ କରିବାକୁ ଉପଦେଶ ଦିଆଯିବା ସ୍ଥଳରେ ଏ ପ୍ରବଚନର ଉଦାହରଣ ଦିଆଯାଏ ।] ୨ । ଏକ ହାତ ମାତ୍ର ଲମ୍ବ ବା ପାର୍ଶ୍ୱ ମାତ୍ର—2.Only one cubit long. କ୍ରି. ବିଣ—ଥରେ ମାତ୍ର (ଖେଳ)—Once; (to play) one round (of a game). (ଯଥା—ଆସ, ହାତେ ଖେଳଦେବା ।)ବିଣ ଭ ବିଣ-ଏକହାତ ପରିମିତ (ପାର୍ଶ୍ୱ ବା ଲମ୍ବ)- One cubit only. [ଉ—ହାତେ ଲମ୍ବ କାହିଁକି ଶିଷା, ଦେଖି ମରୁଥିବେ ସାଇ ପଡ଼ିଶା—କୃଷି ବଚନ ।] ବି—ଏକ ହାତ ମାତ୍ର ଦୈର୍ଘ୍ୟ ବା ପ୍ରସ୍ଥ ବା ଉଚ୍ଚତା—Breadth or length or height of one cubit only. (ଯଥା—ଏ ବେଞ୍ଚର ଉଚ୍ଚତା ଅଟେ ହାତେ ।) ଅ—୧ । ଦ୍ୱାରା; ଦେଇ—1. By.
হাতে [ଉ—ଶ୍ରୀକୃଷ୍ଣଙ୍କ ହାତେ କି ଦୁଅନ୍ତା ଏତେ କଥା ।
हाथसे କୃଷ୍ଣସିଂହ. ମହାଭାରତ. ସଭା ।] ୨ । ଜିମ୍ମାରେ—2. In charge of. [ଉ—ସେଥିପାଇଁ ଦଶରଥ ମହା ଆନନ୍ଦରେ ରାମ ଲକ୍ଷ୍ମଣଙ୍କୁ ଡକାଇ ଆଣି ବିଶ୍ୱାମିତ୍ରଙ୍କ ହାତେ ସମର୍ପଣ କରି ଦେଲେ । ମାଳକଣ. ପିଲଙ୍କ ରାମାୟଣ ।] ୩ । ମାରଫତରେ—3. Per (bearer); through.

ହାତେଇବା—ଦେ· କ୍ରି—୧ । ହସ୍ତ ଦ୍ୱାରା ଦେଖିବା ବା ଧରିବା—
Hāteibā 1. To handle. ୨ । ହସ୍ତ ଦ୍ୱାରା ପରୀକ୍ଷା କରିବା
হাতান —2. To examine by handling. ୩ ।
हाथ लगाना ହସ୍ତଗତ କରିବା; ଅତ୍ମସାତ୍ କରିବା—3. To appropriate; to bring a thing into one's hands.

ହାତେର୍—ଦେ ଅ—ହାତ୍ ( ଦେଖ )—Hāt ( See )
Hāteri [ହାତେରିକା(କି, କେ)—ଅନ୍ୟରୂପ]

ହାତେରେ—ଗ୍ରା. ଅ—ହାତରେ ( ଦେଖ )
Hātere Hātare ( See )

ହାତେ ଲମ୍ବ(ମ୍ବା)—ଦେ. ବିଣ—ଲମ୍ବରେ ଏକ ହାତ ପରିମିତ—
Hāte lamba(mbā) One cubit long. ବି—ଏକ
এক হাত লম্বা ହାତ ପରିମିତ ଦୈର୍ଘ୍ୟ—Length of one
एकहाथ लम्बा cubit. [ଦୃ—ଏଣୁଘର ହାତେ ଉଚ୍ଚ(ଣି), ହାତେ ଓସାର, ହାତେ ମୋଟ(ଠା), ହାତେ ଗମ୍ଭୀର ଅଦ୍ଭୁତ ହୁଏ ।]

ହାତେ ହାତ୍—ଦେ. ବିଣ ଓ କ୍ରି. ବିଣ—ହାତେ ହାତେ ( ଦେଖ )
Hāte hāt Hāte hāte ( See )

ହାତେ ହାତେ—ଦେ. ବିଣ—୧ । ସଦ୍ୟଃପ୍ରାପ୍ତ (ଫଳ)—1.Instantaneous (result); immediate. ୨ ।
Hāte hāte
হাতে হাতে ନଗଦ (ଟଙ୍କା ବା ନେଣ ଦେଣ);ନଗଦା ନଗଦ—
हाथेहाथ 2. Cash (money or transaction). କ୍ରି. ବିଣ—୧ । ହାତକୁ ହାତ; ହାତକା ହାତ; ସଦ୍ୟଃ;
हाथों हाथ ସଙ୍ଗେ ସଙ୍ଗେ—1. Immediately; instantaneously.(ଯଥା—ସେ ହାତେ ହାତେ ଫଳ ପାଇଗଲା ।) ୨ । ଏ ହାତରୁ ସେ ହାତ (ଟଙ୍କା ଦେବା ନେବା);ନଗଦ; ନଗଦା ନଗଦ, ଦସ୍ତ ବଦସ୍ତ (ଟଙ୍କା ଦେବା ବା କାରବାର କରିବା)—2. In cash; from one hand to another. (ଯଥା—ଏ ଜମିର ଉପସ୍ୱତ୍ୱ ରେଜେଷ୍ଟ୍ରିଘରଖାନାରେ ମୁନ୍ସିର ବାପ୍ପାଙ୍କୁ ହାତେ ହାତେ ଦେଇ ଦେଲେ ।)
হাতে হাতে ୩ । ନିଜେ ନିଜେ; ସ୍ୱୟଂ (କାମ କରିବା); ସାକ୍ଷାତ୍
हाथसे —3. Personally; directly. (ଯଥା—ମୁଁ ହାତେ ହାତେ ଶୁଝ ଦେବି ।) ୪ । ଚୋର୍ ମାଲ ସହିତ ବା ଚୋର କରୁଥିବା ଅବସ୍ଥାରେ; ଚୋରର ହାତରେ ମାଲ ରହିଥିବା ଅବସ୍ଥାରେ (ଚୋରକୁ ଧରିବା)—4. (to catch a thief) Red-handed; on the spot. (ଯଥା—ଆମ ଘରେ ଯେଉଁ ଚୋର ପଶିଥିଲା ସେ ହାତେ ହାତେ ଧରା ପଡ଼ିଗଲା ।) ୫ । ଏକ ହାତ ଲେଖାଏଁ (ବହୁତ୍ୱ ବୋଧକ)—5. One cubit each. (ଯଥା—ଗଲା ବର୍ଷ ଏ ପୋଖରୀରେ ଛଡ଼ା ହୋଇଥିବା ମାଛମାନେ ହାତେ ହାତେ ବଢ଼ିଛନ୍ତି ।)

ହାତେରି—ଦେ. ଅ—୧ । ହାତ୍ ( ଦେଖ )—1. Hāt ( See )
Hātteri ୨। ଘୃଣା ବା ଅସୂୟା ବା ଅବଜ୍ଞାସୂଚକ ଅବ୍ୟୟ—
[ହାତେରିକା(କି, କେ)—ଅନ୍ୟରୂପ] 2. An interjection
धातेरि used in expressing disgust or revenge;
हात्तेरा Fie ! (ଯଥା—ହାତ୍ତେରିକେ, ମୋ କଥା ମାନିଲୁ ନାହିଁ, ଏବେ କଚଡ଼ାଏ ଖାଇଲୁ ! ଭଲ ହେଲା ।)

ହାତ୍ର—ସଂ. ବି—(ହା ଧାତୁ=ତ୍ୟାଗ କରିବା+କର୍ମ. ତ୍ର)—୧ ବେତନ;
Hātra ଦରମା (ସିଦ୍ଧାନ୍ତ କୌମୁଦୀ)—1. Salary; pay. ୨ । (+କରଣ ତ୍ର) ପ୍ରମଥନ; ମନ୍ଥିବା (ସଂକ୍ଷିପ୍ତ ସାର)—2. Agitating; disturbing. ୩ । (+ଭାବ. ତ୍ର) ମରଣ (ସଂକ୍ଷିପ୍ତସାର)—3. Death. ୪ । (+କର୍ତ୍ତୃ ତ୍ର) ରାକ୍ଷସ (ସଂକ୍ଷିପ୍ତସାର)—4. Demon. ୫ । (+ଭାବ. ତ୍ର) ଆଘାତ କରିବା; କ୍ଷତ କରିବା—5. Injuring (Apte); hurting. ୬ । (+କରଣ ତ୍ର) ମାରଣ; ବଧ—6. Killing (Apte); murder.

ହାତ୍ୟନ୍ଧ (ନ୍ଧ)—ଦେ. ବି—ହାତିଅନ୍ଦ (ଦେଖ)—
Hātyanda (ndha) Hātianda (See)

ହାତ୍ୟାଳ—ଦେ. ବି—ହାତିଆଳ (ଦେଖ)—
Hātyāla Hātiāla (See)

ହାଥ୍—ଦେ. ଅ—ହାତ୍ (ଦେଖ)—
Hāth Hāta (See)

ହାଥ—ଦେ. ବି—[ସଂ ହସ୍ତ; ପ୍ରା. ହତ୍ଥ, ହାତ୍ଥ; ଭୁଲ. ଙ. ମସ୍ତକରୁ ଓଡ଼ିଆ
Hātha ମଥା; ବାସ୍ତୁକରୁ ଓଡ଼ିଆ ବଥୁଆ (ଶାଗ)]—ହସ୍ତ; ହାତ—
हात Hand. [ପ୍ର—ବୋଇଲ ମୋର ହାଥଧର, ଛୋ ଘରେ
हाय ନ କରିବ ଗ୍ଲେସ—ଭୂପତି. ପ୍ରେମ ପଞ୍ଚାମୃତ]

ହାଥି (ଇତ୍ୟାଦି)—ଦେ. ବି—ହାତି ଇତ୍ୟାଦି (ଦେଖ)—
Hāthi (etc) Hāti etc. (See)

ହାଥି ଧର୍‌ସା—ପ୍ରାଦେ· (ସମ୍ବଲପୁର) ବି—ହାତିଦଣ୍ଡା (ଦେଖ)—
Hāti dhar-sā 1. Hāti daṇḍā (See) ୨ । ଛାୟାପଥ—
2. The milky way.

ହାଦ୍—ପ୍ରାଦେ (ଜୟପୁର) ଅ—କ୍ଷେତ୍ରରେ—Here ! Oh here !
Hād [ପ୍ର—ହାଦ୍ । ମାଙ୍କଡ଼ିଟା ଘେଲ]
(ହେଦ୍—ଅନ୍ୟରୂପ)

ହାଦେ—ଦେ. ଅ—୧ । (ପ୍ରାଚୀନ ବ୍ୟବହାର) ନିଶ୍ଚେ—Certainly.
Hāde [ପ୍ର—ଶ୍ରୀରାମ ଲକ୍ଷ୍ମଣ ହାଦେ ସେ ବୁଦ୍ଧ ଘାଇ ଧନୁ ଧଇଲେ
ପୃଥିବୀ ଛାଡ଼ି ପାଉଛି—ବିଶ୍ୱନାଥ. ବିଚିତ୍ର ରାମାୟଣ] ୨ ।
ଶୀଘ୍ର—2. Soon ୩ । ତୁରନ୍ତ—3. At once;
immediately. ୪ । ଅକସ୍ମାତ୍—4. All on a
sudden; suddenly. ୫ । ଅବଲୀଳାକ୍ରମେ; ସହ-
निश्चय **निश्चय** ଜରେ—5. Easily.

ହା ଧିକ୍—ସଂ. ଅ—(ପ୍ରା. ହୃଦ)—୧ । ଛି ! ଧିକ ! (ନିନ୍ଦା ଓ ଘୃଣା-
Hā dhik ର୍ଥକ—1. Fie (in hatred). ୨ । ଅହୋ ହାୟ
(ଅନୁତାପାର୍ଥକ)—2. Alas ! (in repentance) ୩ ।
ହାଇରେ ! ଅହୋ ! (ଶୋକ ଓ ଦୁଃଖାର୍ଥକ)—3. Alas
(in sorrow or grief).

ହାନ—ସ. ବି—(ହା ଧାତୁ=ତ୍ୟାଗ କରିବା + ଭାବ ଅନ)—୧ ।
Hāna ତ୍ୟାଗ (ଛାଡ଼ିବା)—1. Abandonment ୨। କ୍ଷତି—
2. Injury. ୩ । ବିକ୍ରମ—3 Power; might.
ସଂ. ବିଣ (+ କର୍ମ ତ) ତ୍ୟକ୍ତ—Abandoned.

ହାନି—ସଂ. ବି—(ହା. ଧାତୁ=ତ୍ୟାଗ କରିବା + ଭାବ ତି)—୧ । ଅପ-
Hāni କାର; ବାଧା—1. Harm; detriment; prejudice.
୨ । ନଷ୍ଟି; କ୍ଷତି; ନୋକସାନ—2. Loss; damage;
injury. ୩ । କମିଯିବା—3. Diminishing; aba-
tement. ୪ । ନାଶ—4. Destruction. ୫ ।
ଅପଚୟ—5. Waste. ୬ । ଦୋଷ; ଦୁଷ୍ଟ—
6. Fault; defect; short coming. ୭ । ବିଫଳ—
7. Want of success; failure. ୮। ଗତି-8. Move-
ment.

ହାନି କଥା—ଦେ. ବି—୧ । ହାନିଜନକ ବିଷୟ—1. A matter
Hāni kathā of loss. ୨ । କ୍ଷତିକର ବିଷୟ—2. Losing
concern. ୩ । ଅନିଷ୍ଟକର—3. Prejudicial
हानिकथा **हानिकीवात** matter.

ହାନି କର (କାରକ)—ସଂ. ବିଣ—(ହାନି + କୃ ଧାତୁ + କର୍ତ୍ତୃ ଅ)—
Hāni kara (kāraka) କ୍ଷତିକାରକ; ଯାହା କ୍ଷତି କରୁଏ—
Causing loss or damage; detrimental;
prejudicial.

ହାନି କରିବା—ଦେ. କ୍ରି—୧ । କ୍ଷତି କରିବା—1. To cause loss;
Hāni kariba to damage ୨ । ଅପକାର କରିବା—
हानिकरवा **हानिकरना** 2. to injure.

ହାନି ଜନକ—ସଂ. ବିଣ – ହାନିକର (ଦେଖ)—
Hāni janaka Hānikara (See)

ହାନିବଲ୍—ବୈଦେ.ବି—(ନାମ)—ରୋମ ସାମ୍ରାଜ୍ୟର ବିରୋଧୀ ପ୍ରାଚୀନ
Hānibal ସ୍ପେନ୍ ରାଜ୍ୟର କାର୍ଥେଜ୍ ନଗରର ଜଣେ ପ୍ରସିଦ୍ଧ
ସେନାପତି—Name of a famous general of
Carthage who was an enemy of the
हानिबल **हानिबल** ancient Roman Empire.
[ପ୍ର—ଖ୍ରୀ· ପୂ ୨୪୭ରେ ଏହାଙ୍କର ଜନ୍ମ । ଏହାଙ୍କ ପିତା
ହାମିଲ୍‌କାର ଜଣେ ପ୍ରସିଦ୍ଧ ସେନାପତି ଥିଲେ । ସେ ରୋମ୍‌କୁ
ଆକ୍ରମଣ କରିବାରୁ ରୋମୀୟ ସେନାପତି ସିପିଓ ଏହାଙ୍କର
ଗତିରୋଧ କରିବାକୁ ଅସମର୍ଥ ହେଲେ ଓ ହାନିବଲ୍ ରୋମ୍
ନଗରର ଦ୍ୱାରଦେଶ ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ ମାତ୍ର
ଅନ୍ୟବାଟେ ଗୁପ୍ତଭାବରେ ହାନିବଲ୍‌ଙ୍କ ନିଜ ରାଜଧାନୀ
କାର୍ଥେଜ୍‌କୁ ଆକ୍ରମଣ କଲେ ଓ ହାନିବଲ୍ ରୋମ୍‌ରୁ ଫେରି
ସ୍ୱଦେଶକୁ ଶତ୍ରୁ ହସ୍ତରୁ ରକ୍ଷା କରିବାକୁ ଚେଷ୍ଟା କରି
ପରାସ୍ତ ହେଲେ ଓ ଖ୍ରୀ. ପୂ. ୧୮୨ ଅବ୍ଦରେ ଶତ୍ରୁ ହସ୍ତରୁ
ନିଷ୍କୃତି ପାଇବାପାଇଁ ବିଷ ପାନ କରି ପ୍ରାଣତ୍ୟାଗ କଲେ]

ହାନିବା—ପ୍ରାଦେ. (ସମ୍ବଲପୁର) କ୍ରି—ହାଣିବା—
Hāniba To cut.

ହାନି (ନେ) ମା (ମ୍ୟା, ମେ) ନ୍—ବୈଦେ. ବି (ନାମ)—ହାନ୍ନିମାନ୍;
Hāni (ne) mā (myā, me) n 'ହୋମିଓପାଥି' ଚିକିତ୍ସାର
ପ୍ରବର୍ତ୍ତକ ସ୍ୱର୍ଗତ ଜର୍ମାନ ମହାପୁରୁଷ—
Hahneman—the founder of
the Homeopathic system of
treatment.
[ପ୍ର—ଚିକିତ୍ସାରେ ନବଯୁଗପ୍ରବର୍ତ୍ତକ ପୁଣ୍ୟଚରିତ୍ର ଖ୍ରୀଷ୍ଟିଆନ୍
ଫେଡ଼ରିକ୍‌ସାମୁଏଲ୍ ହାନେମାନ୍ ୧୭୫୫ ଖ୍ରୀଷ୍ଟାବ୍ଦର ଅପ୍ରେଲ
ମାସ ୧୦ ତାରିଖରେ ଜର୍ମାନର ଅନ୍ତଃପାତି ସାକନ୍ ରାଜ୍ୟର
ମାଇସେନ୍ ନଗରରେ କୋଟିଏ ଦରିଦ୍ର ମୂର୍ତ୍ତି ଓ ପାତ୍ରଅଙ୍କର
ଚିତ୍ରକାରଙ୍କ ଘରେ ଜନ୍ମଗ୍ରହଣ କରିଥିଲେ । ସେ ଅତି
କଷ୍ଟରେ ଲେଖାପଢ଼ା ଶିଖିଥିଲେ । ସେ ନିଜ ହାତର ତସ୍ତାର
ମାଟି ସାଙ୍ଗ ଜାଳି ସାହାରେ ପାଠ ପଢ଼ୁଥିଲେ । ସେ ଗ୍ରୀକ୍
ହିବ୍ରୁ, ଅରବ, ଲାଟିନ୍, ଇଟାଲିକ୍, ସ୍ପାନିଷ୍, ସିରିଆନ୍,
ଫରାସୀ, ଜର୍ମାନ, ଇଂରେଜ ପ୍ରଭୃତି ଭାଷାରେ ଏବଂ ଚିକିତ୍ସା ଓ
ରସାୟନ ବିଦ୍ୟାରେ ସୁପଣ୍ଡିତ ଥିଲେ । ୨୪ ବର୍ଷ ବୟସରେ
ସେ ଏମ୍. ଡ଼ି, ଉପାଧି ପାଇଥିଲେ । ୧୭୮୨ ଖ୍ରୀଷ୍ଟାବ୍ଦରେ

କୁମାରୀ ହେନରିଏଟା କୁଚ୍ଲାର୍ ନାମ୍ନୀ ରୂପଗୁଣସମ୍ପନ୍ନା ଜଣେ ଜର୍ମାନ୍ ରମଣୀଙ୍କୁ ବିବାହ କରିବାର କିଛିଦିନ ପରେ ଡ୍ରେସ୍ଡେନ୍ ହାସପାତାଲରେ ପ୍ରଧାନ ଅସ୍ତ୍ରଚିକିତ୍ସକରୂପେ କାର୍ଯ୍ୟ କଲେ, ପରେ ଲାଇପ୍ଜିଗ୍ ନଗରର ସନ୍ନିକଟସ୍ଥ ଗୋଟିଏ କ୍ଷୁଦ୍ର ପଲ୍ଲୀଗ୍ରାମରେ ଅବସ୍ଥାନ କରି ଚିକିତ୍ସାବୃତ୍ତି ଅବଲମ୍ବନ କଲେ । ଦଶ ବର୍ଷ କାଳ ବହୁ ପ୍ରତିପତ୍ତି ସହ ଡାକ୍ତରି କରିବା ପରେ ସେ ବୁଝିପାରିଲେ ଯେ, ଅନୁମାନରେ ରୋଗ ନିର୍ବାଚନ କରି ଅନେକସ୍ଥଳରେ ଆନୁମାନିକ ଔଷଧ ପ୍ରଦାନ କଲେ ସେଥିରେ ଭୟଙ୍କର ଅନିଷ୍ଟ ଘଟେ; ଏପରି କି, ଶେଷରେ ଅନେକ ରୋଗୀଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଘଟିଥାଏ । ସେ ଦୁଃଖିତ ହୋଇ ଶେଷରେ ଏହିପରି ଭ୍ରମପୂର୍ଣ୍ଣ ଚିକିତ୍ସା ଦ୍ୱାରା ଅସଦୁପାୟରେ ଅର୍ଥୋପାର୍ଜ୍ଜନ ଲାଳସା ପରିତ୍ୟାଗ କରି, କିପରି ଏହି କାଳ୍ପନିକ ଚିକିତ୍ସାପ୍ରଥା ଦୂର କରି ପ୍ରକୃତ ଚିକିତ୍ସାର ପଥ ଆବିଷ୍କାର କରି ପାରିବେ, ଏହି ଚିନ୍ତାରେ ନିମଗ୍ନ ରହିଲେ । ସେହି ସମୟ ତାଙ୍କର ଅତି ଦୁଃସମୟ ଥିଲା ଓ ସେ ନାନାପ୍ରକାର ବିପଦ୍ଗ୍ରସ୍ତ ହୋଇ ପଡ଼ିଥିଲେ । ରସାୟନ ଶାସ୍ତ୍ର ଓ ନାନାପ୍ରକାର ବୈଜ୍ଞାନିକ ପୁସ୍ତକାଦି ଅନୁବାଦ କରିବାଦ୍ୱାରା ସେ ଅତି କଷ୍ଟରେ ପରିବାର ପ୍ରତି-ପାଳନ କରୁଥାଆନ୍ତି । ୧୭୯୦ ଖ୍ରୀଷ୍ଟାବ୍ଦରେ କାଲେନ ସାହେବ ପ୍ରଣୀତ ଇଂରାଜୀ ମେଟେରିଆମେଡ଼ିକା ଗ୍ରନ୍ଥ ଜର୍ମାନ୍ ଭାଷାରେ ଅନୁବାଦ କରିବା ସମୟରେ 'ସିଙ୍କୋନା' ନାମକ ଔଷଧରେ ଜ୍ୱରନାଶକ ଗୁଣ ଥିବାର ଯେଉଁ ବ୍ୟାଖ୍ୟା ହୋଇଅଛି ସେଥିରେ ସେ ତୃପ୍ତ ହେଲେ ନାହିଁ । ସିଙ୍କୋନା ଖାଇଲେ ଜ୍ୱର କାହିଁକି ଆରୋଗ୍ୟ ହୁଏ, ଏହି ଚିନ୍ତାରେ ସେ ଅଭିଭୂତ ହୋଇପଡ଼ିଲେ । ସିଙ୍କୋନା ଖାଇଲେ ଜ୍ୱର ଆରୋଗ୍ୟ ହୁଏ, ଏହି ସୂତ୍ରକୁ ଅନୁଧାବନ କରି ସୁସ୍ଥଶରୀରରେ ଅଧିକମାତ୍ରାରେ ସିଙ୍କୋନା ଖାଇ ସେ ଅବିଲମ୍ବରେ ବୁଝିଲେ ଯେ, ଏହା ବାସ୍ତବିକ ମାଲେରିଆ (ବା କମ୍ପଜ୍ୱର ସଦୃଶ ଜ୍ୱର) ଉତ୍ପାଦନ କରେ, ଓ ସେଥିପାଇଁ ସିଙ୍କୋନା କମ୍ପଜ୍ୱରର ଔଷଧ । ସେତେବେଳେ ସେ ଭାବିଲେ ଯେ, ସିଙ୍କୋନା ପରି ଅନ୍ୟାନ୍ୟ ଔଷଧରେ ମଧ୍ୟ ରୋଗ ଉତ୍ପାଦକ ଓ ରୋଗନାଶକ, ଏହି ଉଭୟବିଧ ଗୁଣ ଥାଇପାରେ । ଏହି ପର୍ଯ୍ୟବେକ୍ଷଣରୁ ତାଙ୍କର ହୃଦୟରେ ହୋମିଓପାଥିକ ଚିକିତ୍ସାର ମୂଳମନ୍ତ୍ର ସମଃ ସମଂ ଶମୟତି [Similia Similibus Curanter] ଉଦୟ ହେଲା । ସେହିଦିନଠାରୁ ସେ ଛଅ ବର୍ଷକାଳ ଅବିଶ୍ରାନ୍ତ ଗବେଷଣାରେ ନିମଜ୍ଜିତ ହୋଇ ନିଜର ଜୀବନକୁ ନାନା-ପ୍ରକାରରେ ବିପନ୍ନ କରି ନିଜେ ବହୁତ ଔଷଧ ପରୀକ୍ଷା କରି ପ୍ରମାଣ କରିବାକୁ ସମର୍ଥ ହୋଇ ମଧ୍ୟ ଅଧିକସଂଖ୍ୟାରେ ରୋଗୀଙ୍କୁ ଭିନ୍ନ ଭିନ୍ନ ଔଷଧ ସେବନ କରାଇ ସାଫଲ୍ୟଲାଭ କରି ଦେଖିଲେ ଯେ, ହୋମିଓପାଥି ସତ୍ୟ ଉପରେ ଦୃଢ଼ପ୍ରତିଷ୍ଠିତ ଅଟେ—କଳ୍ପନା ବା ଅନୁମାନ ଏହାର ଭିତ୍ତି ନୁହେଁ । ସୁଧୀଶ୍ରେଷ୍ଠ ନିଉଟନ ଯେପରି ମାଧ୍ୟାକର୍ଷଣ ଶକ୍ତି ଆବିଷ୍କାରପୂର୍ବକ ଉକ୍ତ ଶକ୍ତିକୁ ଜଡ଼ବିଜ୍ଞାନର ମେରୁଦଣ୍ଡ କରି ଯାଇଅଛନ୍ତି, ସିଙ୍କୋନା କାହିଁକି କମ୍ପଜ୍ୱର ନାଶ କରେ—ଏହି ପ୍ରଶ୍ନ ସମାଧାନ କରିବାକୁ ଯାଇ ଛଅ ବର୍ଷକାଳ ଏହି ବିଷୟରେ ଗଭୀର ଗବେଷଣା କରି ୧୭୯୬ ଖ୍ରୀଷ୍ଟାବ୍ଦରେ ହୁଫେଲାଣ୍ଡ୍ସ୍ ଜର୍ଣ୍ଣାଲ୍ ନାମକ ଚିକିତ୍ସାଜଗତର ଶ୍ରେଷ୍ଠ ପତ୍ରିକାରେ ହାନିମାନ୍ ଗୋଟିଏ ପ୍ରବନ୍ଧ ପ୍ରକାଶ କଲେ । ତାଙ୍କର ଏହି ନୂତନ ମତ ପ୍ରଚାର ହେବାମାତ୍ରେ ଚାରିଆଡ଼େ ହୁଲସ୍ଥୂଳ ପଡ଼ିଗଲା । କେତେଗୁଡ଼ିଏ ବିଜ୍ଞ ଲୋକ ତାଙ୍କ ଶିଷ୍ୟ ହେଲେ; କିନ୍ତୁ ଅନେକ ନୀଚମନା ସ୍ୱାର୍ଥବଦ୍ଧ ଔଷଧଜୀବୀ ତାଙ୍କର ଓ ତାଙ୍କମତର ଘୋର ବିରୋଧୀ ହୋଇ ଉଠିଲେ । ଯେ ଅଗ୍ନିମନ୍ତ୍ରରେ ଦୀକ୍ଷିତ, ତାହାଙ୍କର ନିନ୍ଦାରେ ବା ପ୍ରଶଂସାରେ କଅଣ ଯାଏ ଆସେ ? ୧୮୦୫ ଖ୍ରୀଷ୍ଟାବ୍ଦରେ ସେ Fragmenta de viribus ନାମକ ପୁସ୍ତକ ଲାଟିନ୍ ଭାଷାରେ ମୁଦ୍ରିତ କଲେ । ସୁସ୍ଥଶରୀରରେ ସତେଇଶଟି ଔଷଧ ସେବନ କରିବାରୁ ଯେଉଁ ସବୁ ଲକ୍ଷଣ ପ୍ରକାଶ ପାଇଥିଲା, ତାହାସବୁ ସେ ଏଥିରେ ଲେଖି ଯାଇଛନ୍ତି । ଏହାହିଁ ହେଉଛି ପ୍ରଥମ ହୋମିଓପାଥିକ୍ ମେଟେରିଆ ମେଡ଼ିକା ବା ଭେଷଜଲକ୍ଷଣ ସଂଗ୍ରହ ଗ୍ରନ୍ଥ ଅଟେ । ୧୮୧୦ ଖ୍ରୀଷ୍ଟାବ୍ଦରେ ତାହାଙ୍କର ଅର୍ଗାନନ୍ [ବା ଆରୋଗ୍ୟ ସାଧନ] ନାମକ ବଡ଼ ଗ୍ରନ୍ଥ ପ୍ରକାଶିତ ହେଲା । ଏହି ଅମୂଲ୍ୟ ପୁସ୍ତକରେ ଯେପରି ପ୍ରଭୂତ ପାଣ୍ଡିତ୍ୟ ଓ ଅକାଟ୍ୟ ଯୁକ୍ତି ସହିତ ସଦୃଶବିଧାନତତ୍ତ୍ୱ ବିବୃତ ଓ ସମର୍ଥିତ ହୋଇଅଛି, ସେହିପରି ରକ୍ତ-ମୋକ୍ଷଣାଦି ବର୍ବର ଚିକିତ୍ସାପ୍ରଥା ତହିଁରେ ତୀବ୍ର ଭାଷାରେ ସମାଲୋଚିତ ହୋଇଅଛି; ସୁତରାଂ ତାଙ୍କ ଶତ୍ରୁମାନେ କ୍ରୋଧରେ ଅଧୀର ହୋଇପଡ଼ିଲେ । ପରେ ୧୮୧୨ ଖ୍ରୀଷ୍ଟାବ୍ଦରେ ବହୁ ନିର୍ଯ୍ୟାତନ ପରେ ସେ ନିଜ ଗୁଣରେ ଲାଇପ୍ଜିଗ୍ ବିଶ୍ୱବିଦ୍ୟାଳୟରେ ସଦୃଶବିଧାନଶାସ୍ତ୍ରାଧ୍ୟାପକ [Teacher of Homeopathy] ପଦରେ ଅଧିଷ୍ଠିତ ହୋଇ ଯୁବକ ଛାତ୍ର ଓ ପ୍ରବୀଣ ଚିକିତ୍ସକମାନଙ୍କୁ ତାଙ୍କ ଆବିଷ୍କୃତ ନବମନ୍ତ୍ରରେ ଦୀକ୍ଷିତ କରିବାରେ ଲାଗିଲେ ।

କେତେକାଳ ପରେ ବିପକ୍ଷ ଦଳ ନାନା ଅକ୍ରମ ଚକ୍ରାନ୍ତ କରି ଅବଶେଷରେ ଜର୍ମାନର କୁଳତିଳକଙ୍କୁ ଲାଇଫଜିଗ [Leipzig] ହସ୍ପିଟାଲରୁ ତଡ଼ାଇଲେ । ସେହି ସମୟରୁ କୋଥେନ୍ ନଗରରେ ସେ ୧୪ ବର୍ଷ କାଳ ଅବସ୍ଥାନ କଲେ । ସେଠାର ରାଜବଂଶୀୟ ସାମନ୍ତଙ୍କୁ ଦୁରାରୋଗ୍ୟ ବ୍ୟାଧିରୁ ମୁକ୍ତ କଲେ । ହାନିମାନ ସେଠାରେ ବିପୁଳ ସମ୍ମାନ ସହିତ ରାଜବୈଦ୍ୟ ପଦରେ ନିଯୁକ୍ତ ହେଲେ । ତାଙ୍କର ଲୀଳାସ୍ଥଳ ଏହି କୋଥେନ୍-ନଗରରେ ସହସ୍ର ସହସ୍ର ନିରାଶ୍ରୟ ଉତ୍କଟ ରୋଗୀ-ବ୍ୟକ୍ତିଙ୍କୁ ରୋଗମୁକ୍ତ କରି ସର୍ବବିଧ ରୋଗର ପ୍ରକୃତ ନିଦାନ [ବା ମୂଳ କାରଣ ବା ତତ୍ତ୍ୱ] ଆବିଷ୍କାର କରିଥିଲେ ।

ସେ ୧୮୨୮ ଖ୍ରୀଷ୍ଟାବ୍ଦରେ କ୍ରନିକ୍ ଡିସିଜ୍ ( ପୁରାତନ ବ୍ୟାଧି ) ନିରାକରଣ ନାମକ ପୁସ୍ତକ ପ୍ରଣୟନ କରି ତାଙ୍କର ଯଶଃସୌରଭକୁ ଏହି ସଭ୍ୟଜଗତରେ ପରିବ୍ୟାପ୍ତ କରାଇ ଥିଲେ । ତେତେବେଳେ ହାନେମାନଙ୍କ ପ୍ରଚଳିତ ରୀତି ଅନୁସାରେ ହୋମିଓପାଥିକ୍ ଔଷଧ ଅଧିକ ମାତ୍ରାରେ ବ୍ୟବସ୍ଥା କରୁଥିଲେ । ଦେଖିଲେ ସେଥିରେ ରୋଗ ଦୂରୀଭୂତ ହେଲା କିନ୍ତୁ ଔଷଧ ସେବନର କୁଲକ୍ଷଣ ପରେ ପୀଡ଼ା ବୃଦ୍ଧିପ୍ରାପ୍ତ ହେଲା । ଶେଷରେ ଖୁବ୍ ଅଳ୍ପ ପରିମାଣରେ ସେ ଔଷଧର ମାତ୍ରା କମାଇବାରେ ଲାଗିଲେ । ଅବଶେଷରେ ସୂକ୍ଷ୍ମାଂଶରେ ବିଭକ୍ତ ଔଷଧର କାର୍ଯ୍ୟକାରିତା ଦେଖି ସେ ବିସ୍ମିତ ହେଲେ । ତେତେବେଳେ ସେ ସିଦ୍ଧାନ୍ତ କଲେ ଯେ, ଘର୍ଷଣ ଦ୍ୱାରା କିମ୍ବା କୌଣସି ପଦାର୍ଥ ସୂକ୍ଷ୍ମରୁ ସୂକ୍ଷ୍ମତର ଅଂଶରେ ବିଭକ୍ତ ହେଲେ, ଏହା ସ୍ଥୂଳ ଭାବ (ଜଡ଼ାଂଶ) ପରିହାରପୂର୍ବକ ବିଦ୍ୟୁତ୍ ସଦୃଶ ସରଳଭାବ ଧାରଣ କରେ; ଅର୍ଥାତ୍, ଉକ୍ତ ପଦାର୍ଥ ସେତେବେଳେ ନିଜର ରୂପ ବା ଶକ୍ତି ଦେଖାଏ ଓ ଏହି ଶକ୍ତିରେ ଶରୀର-ମଧ୍ୟରେ ବିଦ୍ୟୁତ୍ ସଦୃଶ ଅଣୁ ପ୍ରବେଶପୂର୍ବକ ଶୀଘ୍ର ରୋଗ ନିବାରଣ କରିବାକୁ ସମର୍ଥ ହୁଏ ।

୧୮୩୪ ଖ୍ରୀଷ୍ଟାବ୍ଦରେ ତାଙ୍କର ପତ୍ନୀବିୟୋଗ ହୋଇଥିଲା । ଅଶୀ ବର୍ଷ ବୟସରେ ଦ୍ୱିତୀୟଥର ମେଲାନିନାମ୍ନୀ ଫରାସୀ ଦେଶର ଜନୈକ ମହିଳାଙ୍କୁ ବିବାହ କରି ଜୀବନର ଅବଶିଷ୍ଟାଂଶ ଫ୍ରାନସ ଦେଶର ରାଜଧାନୀ ପ୍ୟାରି ନଗରୀରେ ଆଠ ବର୍ଷ କାଳ ଜୀବନ ଯାପନ କରି ୧୮୪୩ ଖ୍ରୀଷ୍ଟାବ୍ଦର ଜୁଲାଇ ମାସ ୨ ତାରିଖରେ ସେ ଇହଲୀଳା ସମ୍ବରଣ କଲେ ।

ସନ୍ଦର୍ଭଲେଖକ—କଟକ ଉତ୍କଳ ହୋମିଓପାଥିକ୍ ମେଡିକାଲ୍ କଲେଜ୍‌ର ପ୍ରିନ୍‌ସିପାଲ୍

ଡାକ୍ତର ନଟବର ମହାନ୍ତି H. M. D., F. H. A.]

**ହାନି ଲାଭ**—ଦେ. ବି—[ବିପରୀତାର୍ଥକ ସହଚର ଶବ୍ଦ]—୧ । କ୍ଷତି ଓ Hāni lābha ଲାଭ—1. Loss and profit. ୨ । ହାନି ହାନିଲାଭ **हानिलाभ** ବା ଲାଭ—2. Loss or profit. [ଉ—ଭୁମ୍ଭର ହାନିଲାଭ ନାହିଁ, ଅମ୍ଭର ଉଗଟିବ ତହିଁ—ଭୂପତି. ପ୍ରେମ ପଞ୍ଚାମୃତ]

**ହାନୁକ**—ସଂ. ବି ଓ ବିଣ. ପୁଂ.—(ହନ୍ ଧାତୁ + କର୍ତ୍ତୃ ଉକ ]—ଘାତୁକ Hānuka Murderer; murderous

**ହାନ୍ଦୁଲ**—ପ୍ରାଦେ [ଗଞ୍ଜାମ] ବି—ହାଣ୍ଡୋଳା—Hāndul Litter.

**ହାନ୍ଦୁଲା** (ଇତ୍ୟାଦି)—ହାଣ୍ଡୋଳା ଇତ୍ୟାଦି (ଦେଖ)—Hāndulā (etc) Hāndolā etc (See)

**ହାନ୍ଦେ**—ଗ୍ରା. ଅ—ହାଦେ (ଦେଖ)—Hāde (See). Hānde

**ହାଣ୍ଡୋଳ**—ଦେ. ବି—( ସଂ. ଆନ୍ଦୋଳନ )—୧ । ଗୋଳମାଳ—Hāndola 1. Ado. ୨ । କଳହ—2. Quarrel. ୩ । ଇତସ୍ତତଃ ସଞ୍ଚାଳନ; ଆନ୍ଦୋଳନସଂକ୍ଷୋଭ—आन्दोलन 3. Moving to and fro; agitation; perturbation. ଗ୍ରା. ବି ( ନାମ )—ହିନ୍ଦୋଳ ରାଜ୍ୟର ଡାକ ନାମ; ଓଡ଼ିଶାର ଗଡ଼ଜାତ ବିଶେଷ—Popular nickname of Hindol, an Orissan State. ବିଣ (ସଂ ଆନ୍ଦୋଳିତ) ବିକ୍ଷୋଭିତ; ଇତସ୍ତତଃ ସଞ୍ଚାଳିତ—Agitated. [ଉ—କଷ୍ଟଲେ ମୀନ ଚଳୁଥିଲା, ଜଳ ହାଣ୍ଡୋଳ କରିଦେଲା । ଜଗନ୍ନାଥ ଭାଗବତ ।]

**ହାଣ୍ଡୋଳା**—ଦେ. ବି—(ସଂ. ଆନ୍ଦୋଳିକା, ଏହାକୁ ବାହକମାନେ Hāndolā ବୋହିଲାବେଳେ ଏହା ଆନ୍ଦୋଳିତ ହେଉଥିବାରୁ)—दोला, डुली ୧ । ଶିବିକା ବା ଡୋଲା—1. A dooly; a खटखटिया, डोली palki; a covered litter; a chair carried by bamboos on the shoulders of bearers. [ଦ୍ର—ହାଣ୍ଡୋଳା, ଡୋଲି, ଝଟିଆ, ପାଲିଙ୍କି, ସବାରି, ଏ ସମସ୍ତ ଯାନର ଅଗରେ ଓ ପଛରେ ଲାଗିଥିବା ବାଉଁଶ ଦ୍ୱାରା ମନୁଷ୍ୟମାନେ କାନ୍ଧରେ କାନ୍ଧେଇ କରି ନିଅନ୍ତି । ଡୋଲି ଓ ଝଟିଆ ଶ୍ରେଷ୍ଠ ଓ ସାଧାରଣ ଯାନ । ହାଣ୍ଡୋଳା ରାଜ ପରିବାରର ସ୍ତ୍ରୀମାନଙ୍କୁ ବହନ କରିବାରେ ବ୍ୟବହୃତ ହୁଏ ।] ୨ । (ସଂ. ଆନ୍ଦୋଳନ) ମାନସିକ ଆନ୍ଦୋଳନ ବା ଅସ୍ଥିରତା; ଚିନ୍ତା—2. Anxiety; mental agitation or perturbation. [ଉ—ପୁତ୍ର ନ ହେବ ତାଙ୍କର ଯେ, ଭାବନା ସର୍ବଦାଗର, ହାଣ୍ଡୋଳାରେ ଯାଇ ମାତାଙ୍କୁ କହିଲେ କପଟ ହେବ କୁମର ଯେ । ବିଶ୍ୱନାଥ ବଡ଼ଜେନା ରାମାୟଣ ।] ୩ । (ସଂ ଆନ୍ଦୋଳନ) କର୍ତ୍ତବ୍ୟକାର୍ଯ୍ୟ ସ୍ଥିର କରିବାର ଅସମର୍ଥତା—3. Inability to arrive at a definite conclusion; hesitancy. ୪ । ହାଣ୍ଡୋଲା (ଦେଖ)—4. Hāndolā (See).

**ହାଣ୍ଡୋଳା(ଲେ)ଇବା**—ଦେ. କ୍ରି—(ସଂ. ଆନ୍ଦୋଳନ) ୧ । ଇତସ୍ତତଃ Hāndolā(le)ibā ଆନ୍ଦୋଳିତ କରିବା—1. To rock to दोलाना and fro. ୨ । ଅନ୍ଦୋଳିତ କରିବା; ଘାଣ୍ଟିବା; हिलाना, डोलवाना ଘୁଗୁଳାଇବା—2. To agitate. ୩ । (ପବନ) ଇତସ୍ତତଃ ବହିବା—3. To blow on all sides (said of wind). (ଯଥା—ଏଠାରେ ପବନ ଭାରି ହାଣ୍ଡୋଳେଇବାରୁ ଚୁଲି ଲାଗିପାରୁ ନାହିଁ)

**ହାଣ୍ଡୋଳି**—ଦେ ବି—(ସଂ ଆନ୍ଦୋଳନ )—ମାନସିକ ଆନ୍ଦୋଳନ—Hāndoli Mental agitation ବିଣ—(ସଂ ଆନ୍ଦୋଳିତ) तोला पाड़ा ୧ । ଆନ୍ଦୋଳିତମନାଃ; ଚିନ୍ତିତ—1. Perturbed; चिन्ता anxious. ୨ । ବିଷମ ସମସ୍ୟାରେ ପତିତ—2. In the horns of a dilemma; hesitating.

**ହାଣ୍ଡୋଳିବା**—ଦେ. କ୍ରି—(ସଂ ଆନ୍ଦୋଳନ) ୧ । ଇତସ୍ତତଃ ଆନ୍ଦୋଳିତ Hāndolibā ବା ଚାଳିତ କରିବା; ଦୋହଲାଇବା—To rock to आन्दोलन करना and fro. ୨ । ଘାଣ୍ଟିବା—2. To agitate. हिलाना, डोलवाना ୩ । ଇତସ୍ତତଃ ଆନ୍ଦୋଳିତ ହେବା—3.

ଆନ୍দোলিত হওয়া To rock to and fro. ୪ । (ସବଳ)
हिलना, डोलना ଇତସ୍ତତଃ ବୋହୁବା—4. To blow on all sides.

ହାନ୍ଦୋଳ ହେବା—ଦେ. କ୍ରି—୧ । ଆନ୍ଦୋଳିତ ହେବା—1. To be
Hāndoli hebā agitated. ୨ । ମନରେ ଇତସ୍ତତଃ ଚିନ୍ତିତ
ଆନ୍দোলিত হওয়া ହୋଇ କର୍ତ୍ତବ୍ୟ ସ୍ଥିର କରି ନ ପାରିବା—2.
हिलना To be between the horns of a dilemma.
୩। ଇତସ୍ତତଃ ସଂଚାଳିତ ହେବା—3. To be moved to and fro.

ହାନ୍ଦ୍ର—ସ ବି—(ହ୍ଲାଦଧାତୁ+ଭାବ ଦ୍ର) · ମରଣ (ଉଣାଦିକୋଷ)—
Hāndra Death

ହାପ୍(ଇତ୍ୟାଦି)—ବୈଦେ. ବି ଓ ବିଣ (ଇଂ)—ହାଫ୍ ଇତ୍ୟାଦି (ଦେଖ)
Hāp (etc) Hāph etc (See)

ହାପୁ୍ରା—ପ୍ରା ଦେ (ଖଡଆଳ) ବି—ହାପୁରା (ଦେଖ)—
Hāp rā Hāpurā (See)

ହାପୁ୍ରିବା—ପ୍ରାଦେ (ଖଡଆଳ) କ୍ରି-ହାପୁରିବା ; ତରଳ ବସ୍ତୁକୁ ହାତ ଦ୍ୱାରା
Hāp r bā ଧରି ଓଠ ସାହାଯ୍ୟରେ ମୁହଁ ଭିତରକୁ ଟାଣିନେବା—
To sip liquid food by the lips

ହାପ୍‌ସି କଚୁଡ଼ି ହେବା—ପ୍ରାଦେ. (ସମ୍ବଲପୁର) କ୍ରି—ଦୁଃଖରେ ବା
Hāp-si kachārdi hebā ଦୁଃଖରେ ହାତଗୋଡ଼ କଚୁଡ଼ି ହେବା-
To strike one's lembs on the ground being overpowered with grief or anger.

ହାପ—ପ୍ରା. ଦେ—(ଗଞ୍ଜାମ) ବି—ଏକ ପ୍ରକାର ଡାବଲପୁଆ ଖେଳ—
Hāpa A kind of game played by boys with a stick and a small peg. [ ବ୍ର—ଗୋଟିଏ ସାନ ଗାତରେ ଗିଲି ବା କ୍ଷୁଦ୍ର କାଷ୍ଠଖଣ୍ଡ ରଖି ତାକୁ ବାଡ଼ିଦ୍ୱାରା ଦୂରକୁ ଫୋପାଡ଼ିଲେ ତାକୁ ଅନ୍ୟ ଦଳର ଖେଳାଳି ପ୍ରତିଘାତ କରି ଫେରାଇ ଦିଏ । ଏହିପରି କରୁ କରୁ ଯେଉଁ ପକ୍ଷର ଖେଳାଳି ସେ ଗିଲିକୁ ଅଧାତ କରି ନ ପାରେ ସେ ହାରେ । ଗୋପୀନାଥ ନନ୍ଦ ।]

ହାପର୍—ପ୍ରାଦେ (ଖଡଆଳ) ବି—ଅପସ୍ମାର ରୋଗ—
Hāpar Epilepsy.

ହାପର—ପ୍ରାଦେ (ଉତ୍ତର ବାଲେଶ୍ୱର ଓ ଗଞ୍ଜାମ) ବି—୧ । (ସଂ ଖର୍ପର)
Hāpara ସ୍ୱର୍ଣ୍ଣକାରର ଅଗ୍ନିକୁଣ୍ଡ; ଉମେଇ—1. The oven of a goldsmith. ୨ । (ସ ଭସ୍ତ୍ରା) ଭସ୍ତ୍ରା; ଭାତି—2. Bellows. ୩ । ଧାତୁ ଅବର୍ତ୍ତନ ପାତ୍ର; କୋଇ—3. Goldsmith's crucible; melting pot. ପ୍ରାଦେ· (ସମ୍ବଲପୁର ଓ ଗଡ଼ଜାତ) ବି-ଅପସ୍ମାର ରୋଗ—Epilepsy. ବୈଦେ ବି—(ଆ· ହଫର୍) ବନ୍ଦ ମମଯୁ ଗାତ,
हफर हफर ଯେଉଁ ଗାତରେ ଅଖୁମଞ୍ଜି (ଗବ) ପୋତିଲେ ସେଥିରୁ ଗଜାମାନେ ବାହାରେ ଓ ପରେ କ୍ଷେତରେ ଗୋଡା ଯାଏ— P[illegible]s of mud for putting small lengths of sugarcane to cause them to sprout.

ହାପର ମଲି(ଲ୍ଲି)—ଦେ. ବି ( ସ. ଭଦ୍ରବଲ୍ଲୀ )—ଭଗବ୍ଭାବ ବର୍ଗର
Hāpara mali(lli) ଲତାଳସ୍ତ୍ରୀ କ୍ଷୁପ ବିଶେଷ—Vallaris
ସ. ନାମ—ଭଦ୍ରବଲ୍ଲୀ, Heynei. [ବ୍ର—ଏହାର ପତ୍ର ଅଗ୍ର-
ଶୀତଭୀରୁ, ଭୂମିମଣ୍ଡ, ମୁଖୀ ଓ ସୂକ୍ଷ୍ମ ଚିହ୍ନ ବିଶିଷ୍ଟ; ଫୁଲ ଧଳା,
ଅଶ୍ୱଘାତକା । ସୁଗନ୍ଧ ଓ ଫେନ୍ଥା ଫେନ୍ଥା; ଶୀତ ଓ ଗ୍ରୀଷ୍ମ-
हापरमालि କାଳରେ ଫୁଲ ଧରେ; ଫଳ ଲମ୍ବା—
मदनमाली ଯୋଗେଶ ଚନ୍ଦ୍ର ।
ଏହା ବ୍ରଣ, ଭଗ୍ନକ୍ଷତ ଓ ନାଡୀବ୍ରଣରେ ଉପକାରୀ ।
ବୈଦ୍ୟକ ।]

ହାପର୍ା—ପ୍ରାଦେ (ଗଡ଼ଜାତ) ବି—(ଧ୍ୱନ୍ୟନୁକରଣ)—୧। କ୍ଷେତରେ ଶସ୍ୟ
Hāpurā ଓ ଫଳ ଖାଇଯିବା ବନ୍ୟ ଜନ୍ତୁମାନଙ୍କୁ ଘଉଡ଼ାଇବା ପାଇଁ କୃଷକମାନେ କ୍ଷେତରେ ଦ୍ୱିଫାଳ ହୋଇଥିବା ଯେଉଁ ଗୋଟାଳିଆ ଲମ୍ବା ବାଉଁଶ ପୋତି ଥାଆନ୍ତି-1. A long thick bamboo split in two and driven into the ground in a field in order to scare away wild animals from injuring the crops [ବ୍ର—ଫଟା ହୋଇଥିବା ବାଉଁଶର ଗୋଟିଏ ଫାଳରେ ଦଉଡ଼ି ଲଗାଯାଇ ଥାଏ; କ୍ଷେତ ମଧ୍ୟରେ ଥିବା ବ୍ୟକ୍ତି ଦଉଡ଼ିବନ୍ଧା ଫାଳରେ ଦଉଡ଼ିକ ଝିଙ୍କି ଛାଡ଼ ଦିଅନ୍ତି ଓ ଦଉଡ଼ିକୁ ଛାଡ଼ି ଦେବା ଯୋଗୁଁ ବାଉଁଶର ଏହି ଫାଳ ଅନ୍ୟ ଫାଳରେ ବାଜି ଗୋଟାଏ ଉଚ୍ଚ ଶବ୍ଦ ଜାତ କୁଏ ଓ ସେ ଧ୍ୱନି ଶୁଣି ଫସଲ ଖାଇବାକୁ ଆସିଥିବା ଜନ୍ତୁମାନେ କ୍ଷେତ ଛାଡ଼ି ପଳାଇ ଯାଆନ୍ତି ।] ୨ । ହାପର ଦ୍ୱାରା କରାଯିବା ଧ୍ୱନି—2. The sound made by a split bamboo to scare away wild animals coming to a field to destroy crops.

ହାପଲ୍—ପ୍ରାଦେ (ଗଞ୍ଜାମ) ବି—୧ । କରତଳ ଦ୍ୱାରା ଫୁଟୁକି; କରତଳ-
Hāpal ସ୍ଫୋଟ—1. Clap; clapping with the hollowed palm. ୨ । ଅଙ୍ଗୁଠିର ଅଘାତ ଦ୍ୱାରା ଫୁଟୁକି—2. Snapping of the fingers.

ହାପଲ୍ ମାରିବା—ପ୍ରାଦେ (ଗଞ୍ଜାମ) କ୍ରି—୧ । କରତଳ ଦ୍ୱାରା ଫୁଟୁକି
Hāpal māribā ମାରିବା—1. To clap; to make a
टुसकी, टुसी clapping sound with the hollow-
टुसकी मारना ed palm struck on a fleshy part of the body. ୨ । ଅଙ୍ଗୁଠି ଦ୍ୱାରା ଫୁଟୁକି ମାରିବା—2. To snap with the fingers.

ହାପ(ବ)ସୀ—ବୈଦେ. ବି (ଆ· ହାବ୍‌ଶୀ; ଇଂ· ଅବସିନିଅ )
Hāp(ba)si —୧ । କାଫ୍ରୀ—1. A Kaffir or Negro.
हाब्सी ୨ । ଅବସିନିୟା ଦେଶବାସୀ—2· An Abyssi-
हबशी nian. ୩ । (କାଫ୍ରୀମାନେ କୃଷ୍ଣବର୍ଣ୍ଣ ଥିବାରୁ)—
(ହାପ୍‌ସୀ, ହାବ୍‌ସୀ—ଅନ୍ୟରୂପ) କୃଷ୍ଣଚର୍ମୀ ଲୋକ—3. A black-skinned man.

ହାପିଜ୍—ବୈଦେ. ବ (ଅ)—ହାଫିଜ୍ ( ଦେଖ )
Hāpij Hāphij ( See )

ହା(ହାଁ)ପିବା—ଦେ. କ୍ରି (ଧ୍ୱନ୍ୟନୁକରଣ ବା ସ. ହାଫିକା=ହାଇ)—
Hā(hān̐)pibā ୧ । ହାଲିବା; ଅତ୍ୟନ୍ତ ପରିଶ୍ରମ ଯୋଗୁଁ ଘନଘନ
हाँपान ଶ୍ୱାସ ନେବାର ଲକ୍ଷଣ—1. To gasp after
हाँपना exertion. ୨ । ରୁଦ୍ଧଶ୍ୱାସ ହେବା—2. To be out of breath. ପ୍ରାଦେ (ସମ୍ବଲପୁର) କ୍ରି—ହାରିଯିବା—To be defeated. (ଯଥା —ଖେଳରେ ହାପିବା ।)

ହାପି ଯିବା—ପ୍ରାଦେ (ଯାଜପୁର) କ୍ରି—କାମ କରିବାକୁ ଛୁଟିଯିବା—
Hāpi jibā To miss an opportunity of doing some work.

ହାପୁ - ଦେ· ବ ( ଧ୍ୱନ୍ୟନୁକରଣ; ଡାଲି ପାଣିଆ ହୋଇ ଥିବା ଯୋଗୁ
Hāpu ଏହାକୁ ହାପୁଡ଼ି କରି ଖାଇବା ବେଳେ 'ହାପ୍ ହାପ୍' ଧ୍ୱନିରୁ
হাপুবা ଉତ୍ପନ୍ନ)—୧ । ( ଶିଶୁ ବୋଧ ବଚନ ) ମୁଗ ଆଦିର
दाल ପାଣିଆ ଡାଲି ଭଅଣ—1. Soup made of split
আফিং peas, moong etc. ୨ । (ସ. ଅହିଫେନ) --
अफीम ଅପୁ; ଅଫିମ—2. Opium.

ହାପୁଆ—ପ୍ରାଦେ (କଟକଅଞ୍ଚଳ) ବଣ—ଅଫିମ ଖୋର; ଅଫିମା; ଅପୁଆ—
Hāpuā Addicted to the habit of taking opium.

ହାପୁଡ଼ା(ଡ଼ା)—ଦେ. ବ (ଧ୍ୱନ୍ୟନୁକରଣ)—୧ । ପାଣିଆ ଖାଦ୍ୟ (ଡାଲି,
Hāpuṛā(ṛā) ଯାଉ, କାଞ୍ଜି)କୁ ହାତର ପୋଷରେ ନେଇ ଢୁଇ
হাপুবা ଓଷ୍ଠ ଦ୍ୱାରା ଶବ୍ଦ ଉତ୍ପାଦନ ପୂର୍ବକ ପାଟିରେ ଶୋଷି କରି
सुड़क ଖାଇବା; ହାପୁଡ଼ିବା କାର୍ଯ୍ୟ—1. The act of sipping liquid food with a slight smacking sound by taking it with the hollowed fingers and puttnig it into the mouth. [ଦ୍ର—ସୋଡ଼କା ଜନିତ ଶବ୍ଦ ହାପୁଡ଼ ଶବ୍ଦ ଅପେକ୍ଷା ଉଚ୍ଚତର ।] ବଣ—ଥରେ ହାପୁଡ଼ି ହେବା ପରିମିତ (ଡାଲି ଆଦି)—(liquid food) Sufficient for one sip.

ହାପୁଡ଼ା(ଡ଼େ, ଡ଼ା, ଡ଼େ)ଇବା—ଦେ.' କ୍ରି (ହାପୁଡ଼ିବା କ୍ରିୟାର ଣିଜନ୍ତ
Hāpuṛā(ṛe, ṛā, re)ibā ରୂପ—(The causative
हापवान form of 'Hāpuṛdibā)—ଅନ୍ୟ ଲୋକ ଦ୍ୱାରା
सुड़काना ହାପୁଡ଼ିବା କ୍ରିୟା କରାଇବା—To cause another person to sip liquid food with a smacking sound.

ହାପୁଡ଼ା(ଡ଼ା)ଏ—ଦେ. ବଣ—୧ । ଏକା ଥରକେ ହାପୁଡ଼ି ହେବା
Hāpuṛā(ṛā)e ପରିମିତ—1. Sufficient for one sip.
এক হাপুরা ୨ । ଅତି ସାମାନ୍ୟ ପରିମିତ—2. Little in
एक सुड़क quantity. (ଉ—ମାଗି ଆଣିଲି ଭଅଣ ହାପୁଡ଼ାଏ । ଭଗ ।) ଦେ. ଣ—୧ । ଏକ ହାପୁଡ଼ା—1. One sip only. ୨ । ଅତି ଅଳ୍ପ ପରିମାଣ—2. A little.

ହାପୁଡ଼ା(ଡ଼ା) ହାପୁଡ଼ି(ଡ଼ି)—ଦେ. ବ—କହୁବାର ବା ଉପର୍ଯ୍ୟୁପରି
Hāpuṛā(ṛā) hāpuṛdi(ri) ହାପୁଡ଼ି କରି ଖାଇବା—
হাপ্‌বা হাপবি Sipping many times or repeated-
सुड़का सुड़की ly.

ହାପୁଡ଼ି(ଡ଼ି)ବା—ଦେ. କ୍ରି (ଧ୍ୱନ୍ୟନୁକରଣ)—ପାଣିଆ ଖାଦ୍ୟକୁ ଶବ୍ଦ
Hāpuṛdi(ri)bā ଶୋଷଣ କରି ଖାଇବା—
হাপবা(সা) सुड़कना To sip liquid food with a smacking sound. (ଉ—ବେଦରୁ ବୋଲନ୍ତି ଉଲ୍ଲ ମନ୍ଦୁର ଭଅଣ ହାପୁଡ଼ନ୍ତି ସନ୍ତୋଷ କଲା ପ୍ରାଣ—କୃଷ୍ଣସିଂହ ମହାଭାରତ ସଭା ।)

ହାପୁତ୍ରିକା—ସ ସ୍ତ୍ରୀ—ପକ୍ଷି ବିଶେଷ; ଖଞ୍ଜନପକ୍ଷି—The watgtail
Hāputrikā bird; Motacella Hodgsoni.
(ହାପୁତ୍ରୀ—ଅନ୍ୟରୂପ)
( ଅନ୍ୟ ସଂ ନାମ—ଖଞ୍ଜନକା, ଭୂଳକା, ସର୍ପୀ, ସ୍ଥୋଟିକା ଖଞ୍ଜରଚିଟିକା, ଗୋଭଣ୍ଡୀର, ପଙ୍କଜାର)
ভুষা শালিক खंजन

ହାପୁଲେ—ପ୍ରାଦେ (କାଳେଶ୍ୱର) ବଣ—ମେଞ୍ଚାଏ, ପୁଳାଏ—
Hāpule A lump of.

ହାପୁ ହାପୁ ହେବା—ଦେ. କ୍ରି (ଧ୍ୱନ୍ୟନୁକରଣ)—ଲଙ୍କାମରିଚ ଖାଇବା
Hāpu hāpu hebā ଯୋଗୁଁ ପାଟି ଜଳିବାରୁ ପାଟିକୁ
হাপু হাপু করা हाफ हाफ करना ବାରଂବାର ମେଲି କରି ପୁଣି ବୁଜି ହାପୁ ହାପୁ ଶବ୍ଦ ଉତ୍ପାଦନ କରିବା—To produce a smacking sound by emitting breath with the lips and shutting them alternately to alleviate the burning sensation due to taking some pungent thing. ୨ । ଅଫିମ ଖାଇବାରେ ଅଭ୍ୟସ୍ତ ବ୍ୟକ୍ତିଙ୍କର ଅଫିମ ଖାଇବାର ନିର୍ଦ୍ଦିଷ୍ଟ ବେଳ ଗଡ଼ିଗଲେ ସେ ଯେଉଁ ପରି ପାଟି ପାଲୁ ପାଲୁ କରନ୍ତି ଓ ବିକଳ ହୁଅନ୍ତି, ସେହିପରି ହେବା—2. To repeatedly open and shut the mouth with agony like an opium eater when his fixed time of the day for taking the drug is passed without taking the drug. ୩ । (ଲକ୍ଷଣାର୍ଥ ) ବିକଳ ହେବା; ବ୍ୟସ୍ତଭାବ ଚିହ୍ନ ପ୍ରକାଶ କରିବା—(figurative) To give vent to agony.

ହାପୋଲ—ଦେ. ବ—ହାମ୍ପୋଳ ( ଦେଖ )—Hāmpola [See]
Hāpola (ଉ—ଶିଶୁଙ୍କୀର ପିଠିରେ ମାରଣ ହାପୋଲ—କୃଷ୍ଣସିଂହ ମହାଭାରତ ଉଦ୍‌ଯୋଗ ।)

ହାପୋଳି (ଇତ୍ୟାଦି)—ଦେ. ବ—ହାମ୍ପୋଳି ଇତ୍ୟାଦି (ଦେଖ)—
Hāpoli [etc] Hāmpoli etc [See]

ହାପ୍ଫା—ଦେ. ଅ—ହାଫା (ଦେଖ)—
Hāpphā Hāphā [See].

ହାପ୍ରା—ପ୍ରାଦେ (ସମ୍ବଲପୁର) ବ—ହାପୁରା (ଦେଖ)—
Hāprā Hāpurā (See).

ହାପ୍ରିବା—ପ୍ରାଦେ (ସମ୍ବଲପୁର) କ୍ରି—ହାପୁରିବା (ଦେଖ)—
Hāpribā Hāpuribā (See).

ହାଫ୍—ବୈଦେ. ନ ଓ ବିଣ (ଇଂ)—ଅର୍ଦ୍ଧ—Half [ଦ୍ର—ଏହି
Hāph ଇଂରାଜୀ ଶବ୍ଦ ସଙ୍ଗେ ଅନେକସ୍ଥଳରେ ଇଂରାଜୀ ଓ
হাফ हाफ ଦେଶୀୟ ଶବ୍ଦ ଲାଗି ବ୍ୟବହାରେ
ଚଳୁଅଛି; ଯଥା ହାଫ୍ ସ୍କୁଲ୍, ହାଫ୍ ମୋଜା ।]

ହାଫ୍ ଇଅର୍—ବୈଦେ. ବ (ଇଂ)—ଅର୍ଦ୍ଧ ବର୍ଷ; ଛଅ ମାସ; ଷଣ୍ମାସ—
Hāph iar Half year.
হাফইযাব हाफइयर

ହାଫ୍ ଇଅର୍ଲି—ଦେ. ବିଣ—ଷାଣ୍ମାସିକ—Half yearly.
Hāph-iarly ( ଯଥା—ହାଫ୍ ଇଅର୍ଲି ପରୀକ୍ଷା । )
হাফইয়াৰলি हाफईयरलि

ହାଫ୍ ଇସ୍କୁଲ(ସ୍କୁଲ)—ବୈଦେ. ବ (ଇଂ ହାଫ୍ ସ୍କୁଲ)—ଶନିବାର ଦିନ
Hāph-iskul(skul) ବା କୌଣସି ଉପଲକ୍ଷରେ
হাফ'ঈস্কুল हाफ स्कूल ପ୍ରଥମ ୨।୩ ଘଣ୍ଟା ପାଠ
ହେବା ପରେ ବିଦ୍ୟାଳୟର ଛୁଟି ହୋଇଯିବା—
Half school.

ହାଫ୍ ଇଷ୍ଟ(ଷ୍ଟା)କିନ—ବୈଦେ· ବ (ଇଂ.ହାଫ୍ ଷ୍ଟକିଙ୍ଗ)—ଅଧା ମୋଜା-
Hāph ishta(shta) in ଯେଉଁ ମୋଜା ମୋଜା ଗୋଡ଼ଗଣ୍ଠିର
হাফ ইষ্টাকিন हाफ स्टौकिंग ଅଧ ପର୍ଯ୍ୟନ୍ତ ରହିଥାଏ—
Half stockings; socks.

ହାଫ୍ କଚ(ଚେ)ରି—ବୈଦେ· ବ (ଇଂ ହାଫ୍ ଓ ଫା କଚହରି)—
Hāph kachi(che)ri କୌଣସି ଘଟଣା ଉପଲକ୍ଷେ କେତେକ
হাফ কাছাৰি हाफ कचहरी ଘଣ୍ଟା କାମ
ହୋଇସାରିବା ପରେ କଚେରିର କର୍ମ ବନ୍ଦ ହେବା—
A court or office getting a half holiday
on a special occasion.

ହାଫ୍ ଗିନି(ସଭରନ, ସଭରେନ)—ବୈଦେ· ବ (ଇଂ)—ଇଂଲଣ୍ଡ
Hāph gini(sabbarin, sabharen) ପ୍ରଚଳିତ ଗିନି
হাফ গিনি हाफ गिनी ବା ସଭରିନ୍ ନାମକ
ସ୍ୱର୍ଣ୍ଣ ମୁଦ୍ରାର ଅର୍ଦ୍ଧ ମୂଲ୍ୟର ସ୍ୱର୍ଣ୍ଣ ମୁଦ୍ରା—Half guinea;
half sovereign.

ହାଫ୍ ଛୁଟି—ଦେ. ବ—୧ । ଅଧା ଛୁଟି; କଚେରିର ବା ସ୍କୁଲର କେତେକ
Hāph chhuti ଘଣ୍ଟା କାର୍ଯ୍ୟ ହେବା ପରେ ବନ୍ଦ ହେବା—
হাফ ছুটী हाफ छुटी 1. Half holiday.
୨ । କାର୍ଯ୍ୟ କରିବା ଦିବସରେ ନିର୍ଦ୍ଦିଷ୍ଟ କାର୍ଯ୍ୟକାଳରୁ
ଅଧେ ସମୟ ଛୁଟି; ଅଧାଦିନ ଛୁଟି—2. Exemption
from duty for half a day.

ହାଫ୍ ଟିକ(କେ)ଟ୍—ବୈଦେ· ବ (ଇଂ)—୧ । ଅଧା ଟିକଟ୍; ପୁରା
Hāph tika(ke)t ଟିକଟ୍‌ର ଅଧା ମୂଲ୍ୟର ଟିକଟ୍—1. Half-
হাফ টীকিট ticket. (ଦ୍ର—୧୨ ବର୍ଷରୁ ଛୋଟ ପିଲାମାନଙ୍କ
हाफ टिकिट ପାଇଁ ଅଧା ମୂଲ୍ୟରେ
ରେଲ ଆଦିର ଟିକଟ ବିକାଯାଏ ଓ ସେଥିପାଇଁ ଅଗେ
ଖଣ୍ଡେ ଟିକଟ ତିଆରି ହୋଇ ଅଧା ଟିକଟ ମିଳୁଥିଲା;
ଆଜିକାଲି ଅଧା ଦାମରେ ଗୋଟାଏ ପୁରା ଟିକଟ ମିଳୁଛି ।]
୨ । ଫେରନ୍ତି ଟିକଟ୍‌ର ଗୋଟିଏ ପାଳି—2. The left
or right half of a return ticket. ୩ ।
ପ୍ଲାଟ୍‌ଫର୍ମ ଟିକଟର ଗୋଟିଏ ପାଳି—3. The left or
right half of a platform ticket.

ହାଫ୍ ଟୋନ—ବୈଦେ· ବ (ଇଂ)—ବିନ୍ଦୁ ବା ସମାନ୍ତର ସୂକ୍ଷ୍ମରେଖା-
Hāph-ton ସମଷ୍ଟି ଦ୍ୱାରା ରଚିତ ଅଙ୍କିତ ଚିତ୍ର ବା ଛବି; ଯେଉଁ
ଛବିରେ ଅନ୍ଧକାର ଉଜ୍ଜ୍ୱଳବର୍ଣ୍ଣ ଓ ଛାୟାର କୃଷ୍ଣବର୍ଣ୍ଣ ଗୁଡ଼ିଏ
ପତଳା ବା ଗାଢ଼ ସୂକ୍ଷ୍ମରେଖା ଟଣାହେବା ଦ୍ୱାରା ଜଣା ହୁଏ—
A halftone (drawing or picture); drawing
or picture in which light and shade are
distinguished by fine points or parallel
হাফটোন हाफटोन lines.

ହାଫଟୋନ ପ୍ରେସ—ବୈଦେ. ବ (ଇଂ)—ଯେଉଁ ଛାପାକଳରେ ହାଫ୍-
Hāph-ton pres ଟୋନ ବ୍ଲକରୁ ଛପା ହୋଇ ପାଇପାରେ—
হাফটোনপ্রেস हाफटोनप्रेस Halftone press.

ହାଫଟୋନ ବ୍ଲକ—ବୈଦେ· ବ ( ଇଂ ) - ହାଫ୍ ଟୋନ୍ ଚିତ୍ରମାନଙ୍କୁ
Hāph-ton blak କାଗଜରେ ଛପିବାପାଇଁ ତିଆର କରିଥିବା
ଧାତୁର ଖଣ୍ଡ—Halftone block. [ଦ୍ର—ଏହି ବ୍ଲକରୁ
ହାଫ୍ ଟୋନ୍ ଚିତ୍ରମାନ କାଗଜରେ ଛପି ହୋଇପାରେ ]
হাফটোনব্লক हाफटोनब्लक

ହାଫ୍ ନୋଟ—ବୈଦେ. ବ (ଇଂ)—କରେନ୍ସୀ ନୋଟ୍‌ର ଅଧଖଣ୍ଡେ—
Hāph-not Halfnote; half of a currency note.
[ଦ୍ର—କରେନ୍ସୀ ନୋଟ୍‌କୁ ଡାକରେ ଦୂରସ୍ଥ ବ୍ୟକ୍ତିଙ୍କ
ନିକଟକୁ ପଠାଇବାକୁ ହେଲେ ବାଟରେ ତାହା
ହଜିଯିବ, ଏଥିପାଇଁ ଉକ୍ତ ନୋଟ୍‌ର ପୂର୍ବାର୍ଦ୍ଧକୁ ଚିରି ପ୍ରଥମେ
ପଠାଇବାକୁ ହୁଏ ଓ ତହିଁର ପ୍ରାପ୍ତି ରସିଦ ଆସିଲେ ଅପରାର୍ଦ୍ଧ
ପଠାଇବାକୁ ହୁଏ । କାରଣ, ହାଫନୋଟ୍ ଯାହାର ହାତରେ
ପଡ଼ିବ, ସେ ତାକୁ ଭଙ୍ଗାଇ ପାରିବ ନାହିଁ । ଉକ୍ତ ନୋଟ୍‌ର
ମାଲିକ ଅବଶିଷ୍ଟ ହାଫ୍‌ନୋଟଖଣ୍ଡି ସରକାରଙ୍କୁ ଦେଖାଇ
ଆଉ ହାଫ୍ ନୋଟ୍ ଖଣ୍ଡିକ ହଜିଥିବା ବିଷୟ ଏତଲା ଦେଇ
ପାରିବେ ଓ ସରକାରଙ୍କଠାରେ ଯାମିନ୍ ଦେଇ ତାଙ୍କ
ନିକଟରେ ଥିବା ହାଫ୍‌ନୋଟ୍‌କୁ ଭଙ୍ଗାଇ ସରକାରଙ୍କଠାରୁ
হাফনোট हाफनोट ଟଙ୍କା ଆଣି ପାରିବେ]

ହାଫ୍ ପା(ପ୍ୟା,ପେ)ଣ୍ଟ—ବୈଦେ. ବ (ଇଂ)—ଅଣ୍ଠାଠାରୁ ଅଣ୍ଟୁ ପର୍ଯ୍ୟନ୍ତ
Hāph pā (pyā,pe)nt ଲମ୍ବିଥିବା ପାଇଜାମା—
হাফপ্যান্ট हाफपैंट Half pant.

ହାଫ ପେ—ବୈଦେ, ବ (ଇଂ)—ଅଧା ଦରମା; କୌଣସି ବ୍ୟକ୍ତିଙ୍କ
Hāph pe ନିର୍ଦ୍ଧାରିତ ବେତନର ଅଧେ—
হাফপে हाफपे Half pay.

ହାଫ୍ ପେ ଛୁଟି—ଦେ. ବ—ଅଧା ଦରମାରେ ମିଳିବା ଛୁଟି—
Hāph pe chhuti Leave on half pay.
হাফপেছুটী हाफपेछुटी

ହାଫ୍‌ପେନି—ବୈଦେ. ବ (ଇଂ)—ଇଂଲଣ୍ଡ ପ୍ରଚଳିତ ଏକ ପେନିର Hāph-peni ଅର୍ଦ୍ଧ ମୂଲ୍ୟର ମୁଦ୍ରା—Half penny.
हाफ़पेनि हाफपेनि

ହାଫ୍ ପ୍ରାଇସ୍—ବୈଦେ. ବ—(ଇଂ) ଅଧା ମୂଲ୍ୟ; ଅର୍ଦ୍ଧମୂଲ୍ୟ; ପଣ୍ୟ Hāph-prāis ଦ୍ରବ୍ୟର ପ୍ରକୃତ ବା ସାଧାରଣ ମୂଲ୍ୟର ଅଧା ମୂଲ୍ୟ—Half price. [ଦ୍ର—ଦୋକାନୀମାନେ ଦୋକାନ ସଫା କରିବାପାଇଁ ଦୋକାନର ଜିନିଷମାନଙ୍କୁ ବା ଦାଗ ଲାଗିଥିବା ଜିନିଷମାନଙ୍କୁ ଅଧା ମୂଲ୍ୟରେ ବିକି ଥାଆନ୍ତି]
हाफ़प्राइस हाफप्राइस

ହାଫ୍ ବୁଟ୍—ବୈଦେ. ବ (ଇଂ)—ଯେଉଁ ବୁଟ ଯୋତାର କଣ୍ଠ ଗୋଡ଼ର Hāph-but ଗଣ୍ଠି ପର୍ଯ୍ୟନ୍ତ ନ ଉଠି କେଲାଗଣ୍ଡି ପର୍ଯ୍ୟନ୍ତ ଉଠିଥାଏ—
हाफ़बुट हाफबुट Half boots.

ହାଫ୍ ମାର୍ଜିନ୍—ବୈଦେ. ବ (ଇଂ)—ଲମ୍ବ ଭାଗରେ ଅଧେ ଭଙ୍ଗା Hāph mārjin ହୋଇଥିବା ଗୋଟିଏ କାଗଜର ବା ପୃଷ୍ଠାର ଅଲେଖା ରଖାଯିବା ଫାଳ—Half margin. [ଦ୍ର—ପାଣ୍ଡୁଲିପି ଆଦି ଲେଖିବା ବେଳେ କାଗଜର ପୃଷ୍ଠାକୁ ବାମ ଓ ଡାହାଣ ଏପରି ଦୁଇ ଭାଗରେ ଅଧଭଙ୍ଗୁଣିଆ କରାଯାଇ ତହିଁର ଗୋଟିଏ ଫାଳରେ ବା ଅଂଶରେ ଲେଖାଯାଏ ଓ ଆର ଫାଳକ ଅଲେଖା ରଖାଯାଏ । ଅଲେଖା ଫାଳରେ ଟୀକା ବା ମନ୍ତବ୍ୟ ଆଦି ପରେ
हाफ़मार्जिन हाफमार्जिन ଲେଖାଯାଇ ପାରେ]

ହାଫ୍‌ମାଷ୍ଟ୍—ବୈଦେ.ବ—(ଇଂ)—ଜାହାଜର ମାସ୍ତୁଲର ଉଚ୍ଚତାର ଅଧା Hāph-māsht ଠାରେ ଥିବା ଅଂଶ—Half mast.
हाफ़मास्ट् [ଦ୍ର—ପାଶ୍ଚାତ୍ୟ ସଭ୍ୟତା ପ୍ରାପ୍ତ ଦେଶମାନଙ୍କରେ ରାଜ-
हाफमाष्ट ପରିବାରର ବା ବଶିଷ୍ଟ ବ୍ୟକ୍ତିଙ୍କ ମୃତ୍ୟୁ ଉପଲକ୍ଷରେ ଶୋକ ପ୍ରକାଶ କରିବାର ସୂଚକରୂପେ ମାସ୍ତୁଲର ଅଗରେ ଉଡ଼ୁଥିବା ପତାକାକୁ ହାଫ୍ ମାଷ୍ଟକୁ ଖସାଇ ଆଣିବାକୁ ହୁଏ ।]

ହାଫ୍ ମୋ(ମୌ)ଜା—ବୈଦେ. ବ—(ଇଂ ହାଫ୍ ଓ ଅ ମୋଜହ୍)— Hāph mo(mau)jā ଯେଉଁ ମୋଜା ଗୋଡ଼ ଭଣ୍ଡାର ଅଧାଯାକେ
हाफमोजा ଚଢ଼ିଥାଏ—Half stockings; socks. [ଦ୍ର—
हाफमोया ଏହାକୁ ପୁରୁଷମାନେ ବ୍ୟବହାର କରନ୍ତି ।] (ଫୁଲ୍ ମୋଜା—ବିପରୀତ)

ହାଫ୍ ରେସନ୍—ବୈଦେ.ବ (ଇଂ)—ଅସମୟରେ ବା ଅବରୁଦ୍ଧ ଅବସ୍ଥାରେ Hāph resan ବା ବିପଦକାଳରେ ଖାଦ୍ୟଦ୍ରବ୍ୟ ନିଅଣ୍ଟ ହେଲେ ସୈନ୍ୟ
हाफ़रेसन ମାନଙ୍କୁ ନିର୍ଦ୍ଦିଷ୍ଟ ଖୋରାକର ଅଧାରେହିଁ ଦିଆଯିବା
हाफरेसन ଖୋରାକ—Half ration. (ଦ୍ର—କେତେକ ସ୍ଥଳରେ ଦଣ୍ଡ ସ୍ୱରୂପ ମଧ୍ୟ ସୈନ୍ୟମାନଙ୍କୁ ହାଫ୍ ରେସନ୍ ଦିଆଯାଏ ।)

ହାଫ୍ ସ୍କୁଲ୍—ବୈଦେ. ବ—(ଇଂ)—ହାଫ୍ ଇସ୍କୁଲ୍ (ଦେଖ)—
Hāph skul Hāph iskul (See).

ହାଫ୍ ଷ୍ଟକିଙ୍ଗ୍—ବୈଦେ. ବ—(ଇଂ)—ହାଫ୍ ମୋଜା (ଦେଖ)—
Hāph staking Hāph-mojā (See).

ହାଫ୍‌ହଣ୍ଟିଙ୍ଗ୍—ବୈଦେ. ବଣ—(ଇଂ)—୧ । ଯେଉଁ ୱାଚ୍‌ର ବା Hāph-hanting ପକେଟ୍ ଘଡ଼ିର ମୁହଁ ଢାଙ୍କିବାକୁ ଧାତୁମୟ
हाफ हन्टिङ्ग ଘୋଡ଼ଣିରେ ମୁଦା ନ ଯାଇ ମଝିରେ ଗୋଟିଏ
हाफहंटिंग ଚକିତ ଆକୃତିରେ କାଚ ଦିଆଯାଇଥାଏ—1. Half-hunting (watch). ୨ । ଯେଉଁ ଜୋତା ବା ବୁଟ୍ ବାନ୍ଧିବାକୁ ଫିତା ଥାଏ ଓ କଡ଼ରେ ରବର ମଧ୍ୟ ଥାଏ— 2. Half-hunting (shoes and boots). [ଦ୍ର—ଇଂରାଜୀ ହଣ୍ଟିଙ୍ଗ୍ (Hunting)ର ଅର୍ଥ ଶିକାର । ଶିକାରରେ ନିଯୁକ୍ତବ୍ୟକ୍ତିମାନଙ୍କର ବୁଟ୍‌ବା ଜୋତା ଗୋଡ଼ରୁ ସହଜରେ ଖସିପିବ ନାହିଁ ବୋଲି ଯେଉଁ ଜୋତାରେ ବା ବୁଟ୍‌ରେ ଫିତା ଦିଆ ହୋଇଥାଏ, ତାକୁ ହଣ୍ଟିଙ୍ଗ୍ ଜୋତା ବା ବୁଟ୍ ବୋଲାଯାଏ ଓ ଶିକାରୀମାନଙ୍କ ବ୍ୟବହୃତ ୱାଚ୍‌ର ମୁହଁରେ କାଚର ଢାଙ୍କୁଣି ଥିଲେ ତାହା ଭାଙ୍ଗିଯାଇ ପାରେ, ଏଥିପାଇଁ ଉକ୍ତ ଘଡ଼ିର ମୁହଁରେ ଧାତୁମୟ ଢାଙ୍କୁଣି ଥାଏ । ଏପରି ୱାଚ୍‌କୁ ହଣ୍ଟିଙ୍ଗ୍ ୱାଚ୍ ବୋଲାଯାଏ । ]

ହାଫା—ଦେ.ଅ—(ସଂ ହାଫିକା=ହାଇ, ଜମ୍ଭା ଧ୍ୱନ୍ୟନୁକରଣ; ଭଲା-Hāphā ପୁଡ଼ାକୁ ଆଁ ହୋଇଥିବା ପାଟିରେ ମାଡ଼ି ଦେଇ ହଠାତ
हापा हाफा କାଢ଼ି ଆଣିଲାବେଳେ ଶୁଣାଯିବା ଧ୍ୱନିରୁ)—ଅଖିରେ ସାମାନ୍ୟ ଗୁଣ୍ଡଆଦି ପଡ଼ିଲେ କମ୍ବା ଆଖିରେ ଜ୍ୱାଳା ହେଲେ ଲୁଗାର ଗୋଟିଏ କ୍ଷୁଦ୍ର ପୁଡ଼ା କରି ତାକୁ ହାତରେ ଧରି ସେହି ପୁଡ଼ାକୁ ଆଁ ହୋଇଥିବା ପାଟିରୁ ନିର୍ଗତ ଶ୍ୱାସରେ ମାଡ଼ିସାରି ତାହା ଉଷୁମ ଥାଉଁ ଥାଉଁ ତାକୁ ଆଣି ଅଖିରେ ମାଡ଼ିବା—To press a ball of cloth into an aching eye after putting it on the mouth and yawning or blowing unto it. [ଦ୍ର— ଏହିପରି କରିବାର 'ହାଫା' କଲେ ଦେଖାଯାଏ ଯେ, ଅଖିର ଜ୍ୱାଳାର ଅନେକ ପରିମାଣରେ ଉପଶମ ହୁଏ ।]

ହାଫା କରିବା—ଦେ. କ୍ରି—କଳା । ପୁଡ଼ାକୁ ଆଁ ହୋଇଥିବା ପାଟିରୁ Hāphā karibā ନିର୍ଗତ ହେଉଥିବା ନିଶ୍ୱାସରେ ମାଡି ତାକୁ
हापा देओया ଅଣି ଜ୍ୱାଳା ହେଉଥିବା ଅଖି ଉପରେ ମାଡ଼ିବା—
हाफा करना To press a ball of cloth on the aching eye after yawning or blowing into it.

ହାଫିକା—ସଂ. ବ—(ହାଫ୍—ଧ୍ୱନ୍ୟର୍ଥକ+କ+ଆ)—ଜୃମ୍ଭା; ହାଇ— Hāphikā Yawning.
(ଅନ୍ୟ ସଂ—ଜୃମ୍ଭା, ଜୃମ୍ଭିକା)

ହାଫିଜ୍—ବୈଦେ,ବ—(ଅ)—୧ । ଯେଉଁ ମୁସଲମାନ୍ ସମସ୍ତ କୋରାନ୍ Hāphij କଣ୍ଠସ୍ଥ କରିଥାଆନ୍ତି—1. A Mahomedan

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ` | ଇ | ଉ | ର୍,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ୍ | ଉଅ | ହ୍ନ |
| ， | ଈ | ଊ | ୠ | ୡ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗାଁ | ଇଅ | ଵ | ହ୍ବ |

হাফেজ who has committed the whole of the
हाफिज Koran into memory. ୨ । ସୁ. (ନାମ; ଅକ୍ଷରକ ଅର୍ଥ ରକ୍ଷକ, ଉତ୍ତ୍ରାବଧାରକ) ମୁସଲମାନବିଶେଷଙ୍କ ନାମ— 2. A name given to Mahomedan. ୩ । ପାରସ୍ୟ ଦେଶୀୟ ପ୍ରଧାନ କବି ଶାମସୁଦ୍ଦିନ୍ ହାଫିଜଙ୍କର ଡାକ ନାମ—3. Nick-name of the Persian poet Samsuddin Hafiz.

ହାଫି(ପ୍ରି)ବା—ପ୍ରାଦେ (ସମ୍ବଲପୁର)କ୍ରି—ହାପୁରିବା—
Hāphi(pri)bā To gulp or suck up a liquid food with a sound.

ହାଫିସ୍(ସି)—ବୈଦେ.ବି—(ଇଂ ଅଫିସ୍‌ର ଅଶୁଦ୍ଧ ଉଚ୍ଚାରଣ)—ଅଫିସ;
Hāphis(si) କାର୍ଯ୍ୟାଳୟ—Office.
আপিস ऑफिस

ହାଫୁ—ଦେ. ବି— ୧ । ହାପୁ (ଦେଖ)—1. Hāpu (See).
Hāphu ୨ । (ଶିଶୁ ବଚନ, ଧନ୍ୟନୁକରଣ) ଦୀପ ଲିଭାଇବା ବା
হাপু फुक ଉଷ୍ଣ ଖାଦ୍ୟକୁ ଫୁଙ୍କିବା—2. Blowing air with the lips for cooling hot food or putting out the light of a lamp.

ହାଫୁ କରିବା—ଦେ. କ୍ରି—(ଶିଶୁ ବଚନ)—୧ । ଜଳୁଥିବା ଦୀପକୁ
Hāphu karibā ଫୁଙ୍କି ଲିଭାଇବା—1. To blow out
হাপু করা a lamp, ୨ । ଉଷ୍ଣ ଖାଦ୍ୟକୁ ଶୀତଳ କରିବା ପାଇଁ
फुकना ଫୁଙ୍କିବା—2. To blow air into a hot food to cool it. ୩ । ଶିଶୁର ଆଖିକୁ ଫୁଙ୍କିବା—3. To blow unto the eyes of a child. [ଦ୍ର—କୌତୁକ ଦେଖିବାକୁ ବୟଃସ୍ଥମାନେ ଶିଶୁମାନଙ୍କୁ ନିକଟକୁ ଡାକି ସେମାନଙ୍କ ମୁହଁ ସାମନାରେ ଆପଣାର ମୁହଁକୁ ରଖି ପଚାରନ୍ତି—
ପ୍ରଶ୍ନ—ତୋଟାକୁ ଯିବୁ ? ଉତ୍ତର—ହଁ
ପ୍ରଶ୍ନ—ଅମ୍ବ ଖାଇବୁ ? ଉତ୍ତର—ହଁ
ପ୍ରଶ୍ନ—ବାଘ ଦେଖିଲେ ତ ଡରିବୁ ନାହିଁ ? ଉ—ନାଁ; ଶିଶୁ ଏହା କହିବା ମାତ୍ରେ ବୟଃସ୍ଥ ବ୍ୟକ୍ତି ଶିଶୁର ଆଖିକୁ 'ହାପୁ' କରି ଦିଅନ୍ତି ଓ ଶିଶୁ ଯଥାଶକ୍ତି ଚେଷ୍ଟା କଲେ ସୁଦ୍ଧା ତା ଆଖି ବୁଜି ହୋଇଯାଏ ଓ ବୟଃସ୍ଥ ବ୍ୟକ୍ତି କହନ୍ତି —ତୁ ତ ଡରିଲୁ (ଅତଏବ ତୋତେ ତୋଟାକୁ ନେବି ନାହିଁ ।) ]

ହାଫୁର—ପ୍ରାଦେ (ସମ୍ବଲପୁର)ବି—(ସଂ. ଅପସ୍ମାର, ତୁଳ ଇଂ ଏପିଲେପସୀ)
Hāphur ଅପସ୍ମାର ରୋଗ—Epilepsy.

ହାବ୍‌କିବା—ପ୍ରାଦେ. (ଖଡ଼ଆଳ) କ୍ରି—କାମୁଡ଼ିବା—
Hāb-kibā To bite.

ହାବ୍‌ଡା(ଇତ୍ୟାଦି)—ଦେ. ବି—ହାବୁଡ଼ା ଇତ୍ୟାଦି (ଦେଖ)—
Hāb-ṛdā (etc) Hāburḍā etc (See)

ହାବଡୁଡୁ—ଦେ. ବି—ଡୁଡୁ (ଦେଖ)—
Hāb-dundu Ḍu ḍu (See).

ହାବଡ଼ିବା—ପ୍ରାଦେ (ସମ୍ବଲପୁର) କ୍ରି—ହାବୁଡ଼ିବା (ଦେଖ)
Hab-ṛdibā H āburḍibā (See).

ହାବ୍‌ସ—ପ୍ରାଦେ (ଖଡ଼ଆଳ) ବି—କଚଡ଼ା—
Hāb-sa Fall with a thud.

ହାବ୍‌ସି କଚଡ଼ିହେବା—ପ୍ରାଦେ (ଖଡ଼ିଆଳ) କ୍ରି—ନିଜେ ନିଜେ କୋଡ଼ି-
Hāb-si kachaṛdi hebā କଚଡ଼ି ହୋଇ ଶୋକ କରିବା—
To weep or wail by striking one's limbs on the ground.

ହାବ୍‌ସି ଦେବା—ପ୍ରାଦେ—(ପାଟଣା) କ୍ରି—କଚଡ଼ି ଦେବା—
Hāb-si debā To dash a thing down.

ହାବ୍‌ସିବା—(ଖଡ଼ିଆଳ) କ୍ରି—କଚଡ଼ିବା—
Hāb-sibā To dash a thing with a thud.

ହାବ୍‌ସି ହେବା—ପ୍ରାଦେ (ସମ୍ବଲପୁର) କ୍ରି—କ୍ରୋଧରେ ବା ଶୋକରେ
Hāb-si hebā ତଳେ ଛଟପିଟ ହେବା—To strike one's limbs in the ground in a paroxysm of anger or grief.

ହାବ—ସଂ. ବି—(ହୁ ଧାତୁ=ଆହୁତି ଦେବା+ଅଧିକରଣ ଅ, ଏଥିଦ୍ୱାରା
Hāba ଅନୁରାଗୀମାନେ କାମାନଳରେ ଅହୁତି ଦିଆଯାଆନ୍ତି ବୋଲି) —୧ । ସ୍ତ୍ରୀମାନଙ୍କର ଶୃଙ୍ଗାର ଭାବଜନିତ ବିଳାସ ବା ଲୀଳା; ସ୍ତ୍ରୀମାନଙ୍କର ଶୃଙ୍ଗାର ଭାବଜ ଓ ଶୃଙ୍ଗାରୋଦ୍ଦୀପକ କ୍ରିୟା ବା ଚେଷ୍ଟା; ବିଳାସ ବିଭ୍ରମ—[ଦ୍ର—ଯୁବାନୋଽନେନ ହୂୟନ୍ତେ କାମାଗ୍ନିଦ୍ୱାନଲେ, ଅତୋଽନରୁଚ୍ୟତେ ହାବ ସ୍ତେ ବିଳାସାଦୟୋମତାଃ)—1. Amorous gestures or movements of lustful women. ୨ । ସ୍ତ୍ରୀମାନଙ୍କର ଛଳକଳାପୂର୍ଣ୍ଣ ଛଟା—2. Coquetry; blandishments of love. [ଦ୍ର—ଗ୍ରୀବାଭଙ୍ଗୀ, ଭ୍ରୂଭଙ୍ଗୀ, ନେତ୍ରଭଙ୍ଗୀ, ମୁଖଭଙ୍ଗୀ, ଅଙ୍ଗଭଙ୍ଗୀ, ଗମନଭଙ୍ଗୀ, ଆଦି ହାବ ଅଟେ । ଏହା ସ୍ତ୍ରୀମାନଙ୍କର ଯୌବନଜ, ଅଙ୍ଗ-ଜାତ ବିକାର । ଏହା ଦଶବିଧ । ଯଥା—ଲୀଳା, ବିଳାସ, ବିଚ୍ଛିତ୍ତି, ବିଭ୍ରମ, କିଲ, କିଞ୍ଚିତ, ମୋଟ୍ଟାୟିତ, କୁଟ୍ଟମିତ, ବିବୋକ, ଲଳିତ (ଅମର, ଭରତ) । ] ୩ । (ହ୍ୱେ ଧାତୁ=ଆହ୍ୱାନ କରିବା+ଭାବ ଅ)—ଆହ୍ୱାନ—
3. Calling.

ହାବଡ଼ାଇବା—ପ୍ରାଦେ (ଖଡ଼ିଆଳ) କ୍ରି—ଭେଟିବା; ହାବୁଡ଼ିବା—
Hābarḍāibā To meet, to come across;
(ହାବଡ଼ିବା—ଅନ୍ୟରୂପ) to encounter.

ହାବ ଭାବ—ଦେ. ବି ( ସହଚର ଶବ୍ଦ; ସଂ. ହାବ ଓ ଭାବ )—
Hāba bhāba ୧ । ଅଙ୍ଗ, ଇଙ୍ଗିତ, ଚେଷ୍ଟା, ଭୂଷଣ, ନେତ୍ର-
হাবভাব ବକ୍ର ପ୍ରକାର ଦ୍ୱାରା ମନର ଭାବ ପ୍ରକାଶ ରୂପ କ୍ରିୟା
हावभाव —1. Gestures; airs. ୨ । ଚଳଣୀ, ଆଚରଣ
—2. Mode or manner of behaving one's self. ୩ । ଶୃଙ୍ଗାରସୂଚକ ଚେଷ୍ଟା—3. Dalliance; blandishment; coquetry.

ହାବଲ୍ଲି—ଗ୍ରାଦେ (ସମ୍ବଲପୁର) ବି (ଭୁଲ· ହ୍ରୁ· ହବେଲୀ)—ଅଟ୍ଟାଳିକା—
Hāballi A building.

ହାବା—ଦେ. ବିଣ. ପୁଂ ( ସଂ. ଅବାକ୍ )—୧ । ବାକ୍ଶକ୍ତିହୀନ; ମୂକ; 
Hābā ଗୁଙ୍ଗା—1. Dumb (person) ୨ । ଯେଉଁ ବ୍ୟକ୍ତି
(ହାବାଣୀ, ହାବୀ—ସ୍ତ୍ରୀ) ମୁହଁ ଫିଟା ନୁହେଁ (ଅର୍ଥାତ୍ ଯେ କଥା
হাবা କହିବାକୁ ସଙ୍କୋଚ ବୋଧ କରେ ); ଗେଲ୍ହମୁହା—
बौक, गूंगा 2 (a person) Who is not pushing or forward in speech. ୩ । ନିର୍ବୋଧ; ଓଲ୍ଲୁ; ଓଲମା; ଅଠଭୁର—3. Stupid; foolish. ୪ । ପାଗଳ ପ୍ରାୟ ଯେ ଗୋଟାଏ ଅଡ଼କୁ ଚାହିଁ ରହିଥାଏ—4. Idiotic; gaping. ବି. ପୁଂ—୧ । ଗୁଙ୍ଗା ଲୋକ—1. A mute or dumb person. ୨ । ଅଠଭୁର ବ୍ୟକ୍ତି; ଓଲ୍ଲୁ ଲୋକ; ଓଲମା ଲୋକ—2. A fool; a dunce. ୩ । ପାଗଳା—3. An idiot. ବୈଦେ. ବି (ଅ. ହାୱା)—ପବନ ପରି ଦ୍ରୁତ ଗତି ( ଗୋପୀନାଥ ନନ୍ଦ )—Very quick motion like that of air.

ହାବା ଗା(ଗେ, ଗୋ)ବା—ଦେ· କ୍ରି. ବିଣ—୧ । ହେବା ଗେବା;
Hāba gā (ge, go)bā ଏଠେଇଁ ସେଠେଇଁ ହାତ ମାରି
হাবা গোবা ଦେହରେ ତେଲ ବୋଳି ହେବା ପ୍ରକାରେ—
इधर उधर 1. (smearing oil over one's body) In an irregular or uneven manner.
[ଉ—ତେଲ ଲଗେଇବ ହାବା ଗେବା, ଖାଇ ବସିବ ଆଗ ।
ଶୋଇ ପଡ଼ୁଥିବ ଚଡ ହୋଇ, ମାଛି ବସିଥିବ ଜାଗା—
ଜଗ ।] ୨ । ଢିଲମିଳିଲ, ହେଲାବଜ୍ଞା ବା ଅସୁନ୍ଦର ରୂପେ (କାମ କରିବା)—2. (doing an act) In a slip-shod or slovenly manner. ବିଣ—୧ । ଗୁଙ୍ଗା ଓ ଲର୍ବ୍ବିଅ—1. Dumb and dunce. ୨ । ସରଳ ଓ ନିର୍ବୋଧ—2. Simple and foolish; idiotic.

ହାବାଡ଼ି—ଦେ. ବିଣ (ପୁଂ ଓ ସ୍ତ୍ରୀ) – ୧ । ହାବା; ଦୁଙ୍ଗା—1. Dumb; 
Hābārdi mute. ୨। ନିର୍ବୋଧ—2 Stupid; foolish;
হাবা बाक idiotic.
(ହାବାଡ଼ିଆ—ଅନ୍ୟରୂପ)

ହାବିବା—ଦେ. କ୍ରି (ସମ୍ଭବତଃ ଅ. ହାୱା=ପବନ ପରି ଗତି କରିବା)—
Hābibā ଏକ ସ୍ଥାନରୁ ଅନ୍ୟକୁ ଶୀଘ୍ର ଗମନ କରିବା
(ଅହାବିବା—ବିପରୀତ) ( ଗୋପୀନାଥ ନନ୍ଦ )—To move
শিগ্‌গির যাওয়া swiftly from one place to another.
जलदीजाना

ହାବିଲ୍ ଦାର୍—ବୈଦେ. ବି (ଅ. ହାୱାଲ=ରକ୍ଷଣ; ହାୱାଲ୍ଦାର୍
Hābil-lār =ରକ୍ଷକ)—୧ । କ୍ଷୁଦ୍ର ଦେଶୀୟ ପଦାତିକ
হাবিলদার্ ଦଳର ଦେଶୀୟ ଅଧ୍ୟକ୍ଷ—1. Havildar, an
हाविलदार Indian corporal of a body of Indian foot soldiers; a sepoy-sergeant. ୨ । ଜିଲ୍ଲାର ପୁଲିସ ସାହେବଙ୍କ ଅଧୀନରେ ଥିବା ମିଲିଟେରୀ ପୁଲିସର ଜମାଦାର—2. Havildar of a company of military police under civil police. [ଦ୍ର—ଏହି ଅବସ୍ଥା ହିଁ ଇଂରାଜୀରେ ବ୍ୟବହୃତ ହେଉଅଛି ।]

ହାଵିଲ—ବୈଦେ. ବି ( ଅ. ହାୱା=ପବନ; ଶୂନ୍ୟ; ହୱାଇ=ଯାହା
Hābili ୧ । ଶୂନ୍ୟରେ ଉଡ଼ିଯାଏ )—୧। ଆକାଶଗାମୀ ଅଗ୍ନିବାଣ
হাঅ(উ)ই हवाई —1. A kind of firework; rocket.
[ଦ୍ର—ଏଥିର ନିମ୍ନ ଦେଶରେ ଅଗ୍ନି ଯୋଗ କଲେ ଏହା ଦ୍ରୁତ ଗତିରେ ଆକାଶକୁ ଛୁଟିଯାଏ । ଏହାର ତଳ ଭାଗରେ ଗୋଟିଏ ଲମ୍ବ ସରୁ ବାଉଁଶ ଲାଗିଥାଏ । ଜାହାଜ ସମୁଦ୍ରରେ ବିପନ୍ନ ହେଲେ ଓ ଅବରୁଦ୍ଧ ଦୁର୍ଗବାସୀମାନେ ବିପନ୍ନ ହେଲେ ଦୂରବର୍ତ୍ତୀ ବ୍ୟକ୍ତିମାନଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ବିପନ୍ନ ବ୍ୟକ୍ତିମାନେ ହାଵିଲ ଛାଡନ୍ତି ଓ ତାହା ଦେଖି ଲୋକେ ବିପନ୍ନ ବ୍ୟକ୍ତିମାନଙ୍କ ଅବସ୍ଥିତିର ବିଷୟ ଠଉରାଇ ତାଙ୍କୁ ସାହାଯ୍ୟ କରିବାକୁ ଅଗ୍ରସର ହୁଅନ୍ତି ।]
୨ । (ଲକ୍ଷଣାରେ) ହାଵିଲପରି ଦ୍ରୁତଗତିଶୀଳ ଓ ଅସ୍ଥିର ବ୍ୟକ୍ତି—2· (Figurative) A restless and quickly moving person (compared to a rocket). ୩। (ଅ ହବେଲି) ରାଜା ଓ ନବାବ୍ ଆଦିଙ୍କ
হাবেলি ବାସସ୍ଥାନ., ରାଜପ୍ରାସାଦ—3 Palace of kings;
हवेली royal premises. ୪ । ରାଜପ୍ରାସାଦର ହତା—4. The compound of a palace. [ ଯଥା—କଟକହାଵିଲ (କଟକ ସହରର ଉତ୍ତର ପଶ୍ଚିମ ଅଂଶରେ ଅଲଗ୍ ପରଗନାର ନାମ ଓ କଟକ ସହରର ଚତୁଃସୀମାର ଅନ୍ତର୍ଗତ ଅଞ୍ଚଳ)] ଗ୍ରାଦେ (ଅଳ) ବି—ଶଗଡ଼ଚକର ଚକର ଅର—The spokes of a cart-wheel.

ହାଵିଲ ଗଞ୍ଜ—ଦେ.ବି—ଅନେକ ହାଵିଲ ଲଗା ହୋଇଥିବା ଅଗ୍ନିବାଣ
Hābili gañja A cluster of rockets attached to
হাঅই থাক a firework, which, when ignited,
हवाइ गंज lets off simultaneously dozens of rockets.

ହାଵିଲ ଛାଡ଼ିବା—ଦେ. କ୍ରି—ହାଵିଲ ବାଣକୁ ନିଆଁ ଲଗାଇବା ଦ୍ୱାରା
Hābili chārdibā ଶୂନ୍ୟକୁ ଛାଡ଼ିବା—To let off
হাউই ছাড়া हवाइ छोड़ना rockets into the air.

ହାବିଲଦାର—ବୈଦେ·ବି.(ଅ ହାୱାଲ୍ ଦାର୍)—ହାବିଲ୍ ଦାର୍ (ଦେଖ)
Hābilidāra Hābil-dār—(See)—
হাবিলদার हाविलदार

ହାବସ୍ (ସି)—ବୈଦେ. ବି—(ଇଂ ହାବ, ଜାହାଜଅ ଭ୍ରଷା)—
Hābis (si) ୧ । ଉତ୍ତୋଳନ; ଉପରକୁ ଉଠାଇବା—(ଯଥା— 
ହାବିস হাবিস ଲଙ୍ଗରକୁ ହାବସ୍ କରିବା ।) 1. Lifting. ୨ । ବୋଟର ବା ଜାହାଜର ମଙ୍ଗରେ ଥିବା ଚକକୁ ବୁଲାଇ ଜାହାଜର ଗତିକୁ ଅଟକାଇବା କର୍ମ— 2. Stopping the motion of a boat or ship by turning the wheel at the helm. ୩ । ଜାହାଜର ଓ ନୌକାର ଗତି ବନ୍ଦ କରି ଜାହାଜକୁ ଅଭିପ୍ରେତ ପାଖକୁ ଲାଗେଇବା କର୍ମ—3. Directing or regulating the position of a ship by stopping her motion. ୪ । ଜାହାଜକୁ ଚଳାଇବା ପାଇଁ ଲଙ୍ଗରର ଉତ୍ତୋଳନ—4. Weighing up or heaving of the anchor of a ship (in order to start). ୫ । (ମା) ଅବସିନିଆ ଦେଶ—5. Abyssinia. ୬ । ଅବସିନିଆ ଦେଶବାସୀ ବ୍ୟକ୍ତି—6. An Abyssinian. ବୈଦେ. ବିଣ—ଅବସିନିଆଦେଶ ସମ୍ବନ୍ଧୀୟ—Pertaining to Abyssinia; abyssinian.

ହାବୁ—ଦେ ବଣ ଓ. ବି.—ହାବା—(ଦେଖ)—
Hābu Hābā (See)—
(ହାବୁଅ—ଅନ୍ୟ ବଣ ଓ ବ ରୂପ) ପ୍ରାଦେ (ଖଟଣା) ଅ—ସେ
हाबु, हाबा बोका, गूंगा ଆଡ଼କୁ—To that direction.

ହାବୁକା—ଦେ. ବି—୧ । ବାହୁ ଓ ହାତ ଦ୍ୱାରା ମରାଯିବା ଧକ୍କା—
Hābukā 1. Vigorous push given by the arms
ধাক্কা and hands. [ଉ—କେଶାକର୍ଷଣ ହାବୁକା ଗଡ଼ଗଡ଼ା
धक्का ଗୋଡ଼ ବଳା ଢଳ,ଲେଉଁ ନାକମୋଡ଼ା କହୁଣୀ ଚୋରଡା ପାଶୋଇ ଠେଙ୍ଗା ବାଡ଼ି (ମାଡ଼ର ପ୍ରକାର)] ୨ । ପାଣିରେ ଠିଆ ହୋଇ ଦୁଇ ହାତ ଓ ବାହାଦ୍ୱାରା ପାଣିକୁ ଧକ୍କା ମାରିବା—2. Pushing the water with the arms and hands. ୩ । ହାତରେ ଓ ବାହୁରେ ଧକ୍କା ମାରିବା ଦ୍ୱାରା ଜାତ ଜଳର ଢେଉ । 5. Wave resulting from push given to the water by the arms and hands. ୪ । ଜଳରେ ଜାତ ଢେଉ—4. Wave of water. ୫ । ଅସ୍ତ୍ର ବିଶେଷ-5. A kind of weapen. [ଉ— ନାରାୟଣ ତା ଦେଖି ଯିବେ ହାବୁକାଟ, ମାଇଲେ ମାଳଦଣ୍ଡ ଯିବ ହୋଇଲେଟ । କୃଷ୍ଣସିଂହ, ମହାଭାରତ, ଶାନ୍ତି ।]—

ହାବୁକା (କେ) ଇବା—ଦେ. କି—୧ । ଧକଲେଇବା; ମନୁଷ୍ୟକୁ ହାତ
Hābukā(ke)ibā ଓ ବାହୁ ଦ୍ୱାରା ବଳପୂର୍ବକ ଧକ୍କା ମାରିବା—
ହାବୁକା ଦେବା } —ଅନ୍ୟରୂପ 1. To vigorously
ହାବୁକା ମାରିବା } push a person by
ধাক্কা দেওয়া धक्का देना the arms.
and hands. ୨ । ପାଣିକୁ ବାହୁଦ୍ୱାରା ବଳପୂର୍ବକ ଆନ୍ଦୋଳନ କରିବା—2. To give pushes to the water with one's arms and hands. ୩ । ( ପାଣି ) ଢେଉ ଦ୍ୱାରା ଆନ୍ଦୋଳିତ ହେବା—3. To rise in waves or billows (said of water).

ହାବୁଗିଲା—ଦେ. ବଣ—ଅଡର୍ଚ୍ଛ; ଭୀରୁ; ଡରୁଆ—
Hābugilā Coward; timid.
ভীতু डरपोक

ହାବୁଡ଼ ଜାବୁଡ଼ କରି ଧରିବା—ଦେ. କି—ହଠାତ୍ ଆସି ଗୋଟାଏ
Hāburd jāburd kari dharibā ବ୍ୟକ୍ତିକୁ ବା ବସ୍ତୁକୁ ଅଧିକାର କରି ତାକୁ ଖୁବ୍ ଜୋରରେ ଚାପି ଧରିବା—To take hold of a thing or person suddenly and to hold it tightly.
আঁকড়েধরা जोरसेपकड़ना

ହାବୁଡ଼—ଦେ. ବି—(ଫ. ଅବର୍ଡ଼ ?)—୧ । ଦୁଇଜଣଙ୍କର ବା ଦୁଇ
Hāburda ବସ୍ତୁର ବିପରୀତ ଦିଗରୁ ହଠାତ୍ ଭେଟ—1. Sudden meeting of two persons or things from opposite sides. ୨ । ଦୁଇ ଜଣଙ୍କର ଭେଟ ବା ମିଳନ—2. Meeting of two persons. ୩ । ଅକତିଆର, ଅଧିକାର—3. Control; power. [ଉ—ମୋର ହାବୁଡ଼ୁଁ ଯିବ କାହିଁ—କବିସୂର୍ଯ୍ୟ. ସଙ୍ଗୀତ]
हाबुड ठक्कर

ହାବୁଡ଼ ପଡ଼ିବା—ଦେ. କି —ହାବୁଡ଼ି ପଡ଼ିବା (ଦେଖ)—
Hāburda pardibā Hāburdi pardibā (See)

ହାବୁଡ଼ା—ଦେ. ବି—୧ । ବିପରୀତ ଦିଗରୁ ଆସୁଥିବା ଦୁଇଟି ବସ୍ତୁର ବା
Hāburdā ବ୍ୟକ୍ତିଙ୍କର ସଂଘର୍ଷ—1. Sudden impact or
হাবুড়া clash of two things or persons proceed-
হাবড়া ing from opposite directions; collision.
मुठभेड़ ୨ । ଏକ ବସ୍ତୁ ଆସି ଅନ୍ୟ ବସ୍ତୁ ସଙ୍ଗେ ବାଜିଯାଇ ହଠାତ୍ ଅଟକି ଯିବା—2. Sudden stopping of a thing by coming against another thing. ୩ । ଦୁଇ ବସ୍ତୁର ବା ବ୍ୟକ୍ତିଙ୍କର ଅପ୍ରତ୍ୟାଶିତ ମିଳନ—3. Unexpected meeting of two things or persons. ୪ । କେଳାମାନଙ୍କର ହାବୁଡ଼ା ଖେଳ—4. A sort of movements of the arms by the wandering Kelās or gypsies by striking the arms on each flank. [ଉ—ଶଅଶୁଣୀଙ୍କର ଜାମୁଡାଳ ନାଚ କେଳାର ହାବୁଡ଼ା ଖେଳ—ବନକିଶୋର କର୍ଣ୍ଣରଞ୍ଜନୀ] [ଉ—ଏଥିରେ କେଳାମାନେ ଅପଣାର ବାହୁର ତଳକୁ ଅପଣା ପାର୍ଶ୍ୱରେ ଜୋର୍ ପୂର୍ବକ ସଶବ୍ଦ ଆଘାତ କରନ୍ତି] ୫ । (ନାମ) କଲିକତାର ଅପରପାର୍ଶ୍ୱରେ ଥିବା ଗଙ୍ଗା ବା ହୁଗୁଲି ନଦୀର ତୀରବର୍ତ୍ତୀ ନଗର ଓ ଜିଲ୍ଲା—5. Howrah, name of a district and town on the bank of the Ganges or the Hooghly opposite to Calcutta.

[ଦ୍ର—ଏହି ସ୍ଥାନରେ ମଫସଲର ନାନା ଦଗରୁ ଆସୁଥିବା ଡଙ୍ଗାମାନ ହାବୁଡ଼ୁଥିବାରୁ ସମ୍ଭବତଃ ଏହି ନାମ ହୋଇଅଛି । ହାବୁଡ଼ା ବଙ୍ଗ ପ୍ରଦେଶର ବର୍ଦ୍ଧମାନ ବିଭାଗର ଅନ୍ତର୍ଗତ ଗୋଟିଏ ଜିଲ୍ଲା । ଏହାର କ୍ଷେତ୍ରଫଳ ୫୩୦ ବର୍ଗମାଇଲ୍ । ଏ ଜିଲ୍ଲାର ଦୁଇଟି ସବ୍‌ଡିଭିଜନ୍ ବା ମହକୁମା-ହାବୁଡ଼ା ଓ ଉଲୁବାଡିଆ । ଏହି ଜିଲ୍ଲାର ସଦର ସବ୍‌ଡିଭିଜନ୍‌ର ରାଜଧାନୀ ହାବୁଡ଼ା । ଏହା ବେଙ୍ଗଲ ନାଗପୁର ଓ ଇଷ୍ଟ ଇଣ୍ଡିଆନ୍ ରେଲର ଶେଷ ମୁଣ୍ଡ ଷ୍ଟେସନ । ଏହା ଗୋଟିଏ ବାଣିଜ୍ୟ ସ୍ଥଳୀ, ହୁଗୁଲୀ ନଦୀ ଉପରେ ଅବସ୍ଥିତ । କଲିକତା ସଙ୍ଗେ ଗୋଟିଏ ଭାସମାନ ପୋଲଦ୍ୱାରା ଏହା ସଂଯୁକ୍ତ ହୋଇଅଛି]

ପ୍ରାଦେ.(ଗଡ଼ଜାତ) ବି—ମୋଟା ବା ଗୋଲାକଆ ଅଗ୍ରବିଶିଷ୍ଟ କାଣ୍ଡ ବିଶେଷ—An arrow with a thick end [ଦ୍ର—ଏହା ପଦାର୍ଥରେ ବାଜିଲେ ତାକୁ ଭେଦ କରେ ନାହିଁ] ଦେ. ଅ.—୧ । କେଳାମାନଙ୍କର ହାବୁଡ଼ା ଖେଳିବା ବେଳେ ମୁହଁରେ ଉଚ୍ଚାରଣ କରିବା ପଦ—1 An exclamation uttered by a Kelā while playing Hāburḍā. ୨ । ସବାର ବେହେରାମାନଙ୍କର ଡାକବିଶେଷ—2. A kind of exclamation uttered by the palki bearers while carrying it [ଦ୍ର—ସବାରର ଗତି କରୁଥିବା ବେଳେ ବାଟ ପାଖରେ ଥିବା କୌଣସି ଉଚ୍ଚ ବସ୍ତୁର (ଯଥା—ପାଖରେ ଥିବା ଗଛର ବା କାଠର) ସବାରର ଦେହରେ ବାଜିବାର ଆଶଙ୍କା ଥିଲେ କିମ୍ବା ସବାରର ବିପରୀତ ଦିଗରୁ ଆସୁଥିବା କୌଣସି ଯାନର ବା ଜନ୍ତୁର ବା ବସ୍ତୁର ହାବୁଡ଼ି ଯିବାର ଉପକ୍ରମ ହେଲେ ଆଗରେ ଥିବା ବେହେରାମାନେ ଏ ଶବ୍ଦ ଉଚ୍ଚାରଣ କରି ପଛର ବେହେରାମାନଙ୍କୁ ସାବଧାନ କରି ଦିଅନ୍ତି ]

ହାବୁ(ବୋ)ଡ଼ା(ଡ଼େ)ଇ ଦେବା—ଦେ. କ୍ରି—୧। ହଠାତ୍ ଆଣି ଉପସ୍ଥିତ Hābu(bo)rḍa (rḍe)i debā କରାଇ ଦେବା—1. To produce suddenly. ୨। ଗୋଟାଏ ବଡ଼ ବସ୍ତୁକୁ ଆଗରେ ରଖି ଅନ୍ୟ ବସ୍ତୁର ଗତିକୁ ଅଟକାଇ ଦେବା—
ହାବଡାନ 2. To stop the motion or progress of a thing by suddenly putting an
**पहुँचादेना** obstacle in front.

ହାବୁ(ବୋ)ଡ଼ା(ଡ଼େ)ଇବା—ଦେ କ୍ରି—(ହାବୁଡ଼ିବା କ୍ରିୟାର ଣିଜନ୍ତରୂପ) Hābu(bo)rḍā(rḍe)ibā ୧। ଦୁଇଟି ବସ୍ତୁକୁ ବା ବ୍ୟକ୍ତିଙ୍କୁ ଆଣି ଏକଜ ଜୁଟାଇବା—1. To cause two persons or things to meet together. ୨। କୌଣସି ବ୍ୟକ୍ତିଙ୍କ ନିକଟରେ କୌଣସି ବସ୍ତୁକୁ ବା ବ୍ୟକ୍ତିକୁ ଆଣି ଉପସ୍ଥିତ କରାଇବା;ପହଞ୍ଚାଇ ଦେବା—To produce a person or thing before a person ୩। ଦୁଇଜଣ ଲୋକଙ୍କୁ ପରସ୍ପର ସମ୍ମୁଖବର୍ତ୍ତୀ କରାଇବା—3. To cause two persons to comfront each other. ୪। ସାମନାରେ ଗୋଟିଏ ବାଧା ରଖି ଦେଇ ଅଟକାଇ ଦେବା - ୪. To stop the motion of a moving thing by putting an obstacle before it.
হাবডান **पहुंचाना, जोटवाना**

ହାବୁଡ଼ା ଇଷ୍ଟ(ଷ୍ଟି,ଷ୍ଟେ)ସନ୍—ଦେ.ବି—ବେଙ୍ଗଲ୍ ନାଗପୁର ଓ ଇଷ୍ଟ୍-
Hāburḍā ishṭa(shṭi,shṭe)san ଇଣ୍ଡିଆନ୍ ରେଲରେ
হাবড়াইষ্টেসন **हावडास्टेशन** କଲିକତାକୁ ଆସିବା ବାଟମାନଙ୍କର ଓଲ୍ଲାଇବା ଜଙ୍କ୍‌ସନ୍ ଷ୍ଟେସନ୍—
The Howrah terminal railway station of the B. N. and E. I. Railways.
(ହାବୁଡା ଷ୍ଟେସନ—ଅନ୍ୟରୂପ)

ହାବୁଡ଼ା କାଣ୍ଡ—ପ୍ରାଦେ(ଗଡ଼ଜାତ) ବି—ହାବୁଡ଼ା (ଶର) (ଦେଖ)
Hāburḍā kānḍa Hāburḍā (śara) (See)

ହାବୁଡ଼ା(ଡ଼) ଖାଇବା—ଦେ କ୍ରି—୧ । ବିପରୀତ ଦିଗରୁ ଆସୁଥିବା ଦୁଇଟି Hāburḍā(rḍa) khāibā ବ୍ୟକ୍ତି ବା ଜନ୍ତୁ ପରସ୍ପର ସହିତ କିମ୍ବା ଗୋଟିଏ ବ୍ୟକ୍ତି ବା ବସ୍ତୁ ଅନ୍ୟ ଗୋଟିଏ ବ୍ୟକ୍ତି ବା
হাবুডা খাওয়া **टकरखाना** ବସ୍ତୁ ସହିତ ଜୋରରେ ଅଧାତ କରିବା —1. To collide. ୨ । ବିପରୀତ ଦିଗରୁ ଆସୁଥିବା ଦୁଇ ବ୍ୟକ୍ତି, ଜନ୍ତୁ ବା ଦଳ ପରସ୍ପରକୁ ଭେଟିବା—
2. To meet or encounter each other ( said of two persons or animals or groups coming from opposite directions.) [ଦ୍ର—ଗଉଡ଼ମାନଙ୍କ ମଧ୍ୟରେ ବିଶ୍ୱାସ ଅଛି ଯେ, ଜଳାଶୟରୁ ଫଳେ ଗୋରୁଙ୍କର ବା ମଇଁଷିଙ୍କର ପାଣି ପିଇ ଉଠି ଆସୁଥିବା ଅବସ୍ଥାରେ ବିପରୀତ ଦିଗରୁ ପଲେ ଗୋରୁ ବା ମଇଁଷି ଯାଇ ସେମାନଙ୍କ ସଙ୍ଗେ ହାବୁଡ଼ା ଖାଇଲେ ଉଭୟ ଫଳରେ ଗର୍ଭିଣୀ ଗାଈଙ୍କର ବା ମଇଁଷିଙ୍କ ଗର୍ଭ ନଷ୍ଟ ହୋଇଯାଏ । ]

ହାବୁଡ଼ା ଖେଳ—ଦେ. ବି—କେଳାମାନଙ୍କର କ୍ରୀଡ଼ାବିଶେଷ—
Hāburḍā khela A sort of play played by a
হাবুড়া খেলা Kelā by striking his arms on the flanks with a sound and singing songs with cadence. ( ଦ୍ର—ଏଥିରେ କେଳା ନିଜର ବାହୁ ଦଳକୁ ନିଜର କକ୍ଷାଳରେ ସଶବ୍ଦ ଆଘାତ ପୂର୍ବକ ସେହି ଅଘାତଶବ୍ଦର ତାଳ ଅନୁସାରେ ହାବୁଡ଼ା ଗୀତ ବୋଲେ ଓ ନାଚେ ।

ହାବୁଡ଼ା ଖେଳିବା—ଦେ. କ୍ରି—(କେଳା) ହାବୁଡ଼ା ଗୀତ ବୋଲି ଆପଣା Hāburḍā khelibā କକ୍ଷାଳରେ ବାହୁକୁ ବାଡ଼େଇ ଗୀତ
হাবুড়াখেলা ବୋଲିବା—To strike one's arms on one's flanks and sing songs (said of a Kela).

ହାବୁଡ଼ା ଗୀତ—ଦେ. ବି—କେଳାମାନଙ୍କର ହାବୁଡ଼ା ଖେଳିବା ସମୟରେ Hāburḍā gita ଆପଣାର କଡ଼ରେ ବାହୁକୁ ସଶବ୍ଦ ଅଘାତ
হাবুড়াগান କରି ସେହି ଶବ୍ଦର ତାଳ ଅନୁସାରେ ବୋଲିବା ଗୀତ—Doggerels sung by the Kelās while playing the hāburḍā. [ଦ୍ର—କେଳାମାନଙ୍କ ହାବୁଡ଼ା ଖେଳ ସମୟରେ ବୋଲିବା ପଦ ଓ ଗୀତମାନ । (ଏହିପରି

ନାନା ପଦ ଓ ଗୀତ ବୋଲି ଲୋକରଞ୍ଜନ କରି ଚାଲ।
ମ.ନେ ଉକ ମାଗନ୍ତି।)—୧। ହାବୁଡ଼ା! ହାବୁଡ଼ା! ହାବୁଡ଼ା! ୨। ହାବୁଡ଼ଲ, ବହୁ ଚୁଡ଼ା ଖାଇ ବଗିଡ଼ଲ। ଢଥର ସାଙ୍ଗରେ କାଳ ଧରିଥିବ, ଘଇତା ସାଙ୍ଗରେ ଦେଉଛି।

୩। ହରଡ଼ ହରଡ଼ ବେଙ୍ଗା! ପାଠିଏ ଠଙ୍କା ଦେଙ୍ଗା, ତେଡା ଗାଇକ ଲେଙ୍ଗା।]

ହାବୁଡ଼ା ଝଟକା—ଦେ. କ୍ରି. ବଣ (ଓଡ଼ିଆ ହାବୁଡ଼ା ଓ ଝ ଟ୍ରିଗି)—
Hāburdā jhaṭakā ୧। ଅପ୍ରତ୍ୟାଶିତ ଭାବରେ (ଭେଟ
হঠাৎ संयोगसे ହେବା)—1. (To meet) Unawares. ୨। କଦବା; କେତେବେଳେବେଳେ; ଅନିଶ୍ଚିତଭାବରେ (ଅସିବା ବା ମିଳିବା)—2. (to meet) At times; without any certainty.
(ଯଥା—ତାଙ୍କ ସଙ୍ଗେ ମୋର ବର୍ଷକେ ଦୁଇ ଥରଥର ହାବୁଡ଼ାଝଟକା ଦେଖା ସାକ୍ଷାତ ହୁଏ।)

ହାବୁଡ଼ା ପଡ଼ିବା—ଦେ. କ୍ରି—୧। ହାବୁଡ଼ିବା—1. To collide.
Hāburdā pardibā ୨। ହଠାତ୍ ଅସି ହାବୁଡ଼ିଯିବା
হাবুড়া হাবুড়ি হওয়া टकरखाना 2. To suddenly
হাবুড়ে পড়া संयोगसे मिलना come in contact.
୩। ଅବୁଡ଼ା ପଡ଼ିବା; ବହୁ ଲୋକ ଅସି ଏକ ସ୍ଥାନରେ ଋଣ୍ଡ ହୋଇ ପରସ୍ପର ହାବୁଡ଼ିବା—3 (many persons) To come in contact with each other simultaneously at a place.

ହାବୁଡ଼ାପାଇ ରେ!—ଦେ. ଅ—ସବାରବେହେରାମାନଙ୍କ ଡାକ—
Hāburdā pāi re! One of the hallooings of pālki bearers.

ହାବୁଡ଼ା ବାକେ
ହାବୁଡ଼ା ଲଗାରେ
ହାବୁଡ଼ା ଲଗେ
ହାବୁଡ଼ା ହାବୁଡ଼ି
ହାବୁଡ଼ି ଗଲ ରେ
ହାବୁଡ଼ି ଯିବ ରେ
ହାବୁଡ଼ା ଲଗା
—ଅନ୍ୟରୂପ

ହାବୁଡ଼ା ପାରି—ଦେ. ବ—ଗଙ୍ଗା ବା ହୁଗୁଲୀ ନଦୀର ଅପର ପାରରେ
Hāburdā pāri କଲିକତାର ବିପରୀତ କୂଳରେ ଥିବା ପାର,
হাবড়াপার हावडापार ଗଙ୍ଗାର ଯେଉଁ ପାରରେ ହାବୁଡ଼ା ନଗର ଅବସ୍ଥିତ, ସେହି ପାର—That side of the Ganges on which Howrah stands.
(ଯଥା—ଶିବପୁର ଇଞ୍ଜିନିଅରିଙ୍ଗ୍ କଲେଜ୍ ହାବୁଡ଼ା ପାରିରେ ଅବସ୍ଥିତ।)

ହାବୁଡ଼ା ପୋଲ—ଦେ.ବ—ହାବୁଡ଼ା ଷ୍ଟେସନ୍ ଓ କଲିକତାର ହ୍ୟାରିସନ୍
Hāburdā pola ରୋଡ଼ର ମୁଣ୍ଡକୁ ଯୋଗ କରିଥିବା
হাওড়া পোল हावडापुल ହୁଗୁଲୀ ବା ଗଙ୍ଗା ନଦୀ ଉପରେ ନିର୍ମିତ ଭାସମାନ ପୋଲ—The floating pontoon bridge over the Hooghly river connecting Howrah with Calcutta.
[ଦ୍ର—ଏହା ଅତି ବୃହତ୍। ଏଥିରେ ସର୍ବଦା ଲକ୍ଷ ଲକ୍ଷ ଲୋକ, ଗାଡ଼ି, ଘୋଡ଼ା, ମଟର୍ ଗାଡ଼ି ଓ ଲରି ଯାତାୟାତ କରେ। ପୋଲର ଫାଙ୍କାର ବାଟେ ଛୋଟ ଡଙ୍ଗା ଓ ଷ୍ଟିମର୍ ଚାଲିପାଏ। କିନ୍ତୁ ବଡ଼ ବଡ଼ ଜାହାଜ ଯିବା ପାଇଁ ତାହା ଦିନକେ ଥରେ ଖୋଲାଯାଏ।]

ହାବୁଡ଼ା ବାଜିବା(ଲାଗିବା)—ଦେ. ବ—ବିପରୀତ ଦିଗରୁ ଅସୁଥିବା ଦୁଇ
Hāburdā bājibā(lagibā) ବ୍ୟକ୍ତିଙ୍କର, ଜନ୍ତୁଙ୍କର ବା
হাবুড়া লাগা टक्कर लगना ଦ୍ରବ୍ୟର ଜୋର ରେ ସଂଘର୍ଷ—
Violent clash or collision between two persons, animals or things advancing from opposite directions.

ହାବୁଡ଼ା ଶର—ଦେ. ବ—ଓଡ଼ିଆ ଭାଷାର ପୁରାଣମାନଙ୍କରେ ଉଲ୍ଲେଖ
Hāburdā śara ଥିବାସ୍ଥୂଳାଗ୍ର ଶରବିଶେଷ—
Name of a sort of blunt-edged arrow mentioned in the Oriya Purāṇas.

ହାବୁଡ଼ା ହାବୁଡ଼ି—ଦେ. ବ—ଦୁଇ ବସ୍ତୁର ବା ବ୍ୟକ୍ତିର ବିପରୀତ ଦିଗରୁ
Hāburdā hāburdi ଅସି ପରସ୍ପର ଜୋର୍‌ରେ ସଂଘର୍ଷ—
হাবড়া হাবড়ি Mutual forcible contact of two
ठकराठकरी things or persons from opposite directions.

ହାବୁଡ଼ି ପଡ଼ିବା(ଯିବା)—ଦେ. କ୍ରି—ହଠାତ୍ ଅସି ଉପସ୍ଥିତ ହେବା-
Hāburdi pardibā(jibā) To appear suddenly.
হাবড়া टपक पडना

ହାବୁଡ଼ିବା—ଦେ. କ୍ରି—୧। ଅପ୍ରତ୍ୟାଶିତ ଭାବରେ ହଠାତ୍ ଦୁଇଟି
Hāburdibā ବସ୍ତୁ ପରସ୍ପର ସଙ୍ଗେ ଜୋର୍ ଖାଇବା—(Two things) 1. To come in contact with each other suddenly and with force. ୨। ଅଟକି ଯିବା; ଲାଗିବା; ବାଜିବା—2. To come in contact with. (ଯଥା—ଜାହାଜ ଚଳେ ଗୋଟାଏ ପାହାଡ଼ ହାବୁଡ଼ି ଗଲା) ୩। ପୂର୍ବରୁ ଜଣା ନଯାଇ ହଠାତ୍ ଅସି ଉପସ୍ଥିତ ହେବା—3. To suddenly appear at a place unannounced. ୪। ଭେଟିବା; ସମ୍ମୁଖରେ ଉପସ୍ଥିତ ହେବା—4. To meet, to come
হারডা टकराना across; to encounter.

ହାବୁଡ଼ୁ ଉଡ଼ୁ—ଦେ. ବ—ଡୁଡୁ (ଦେଖ)—
Hābudu-udu Ḍudu (See)
[ହାବୁଡ଼ୁ ଡୁ, ହାବୁଡୁଡୁଡୁ—ଅନ୍ୟରୂପ]
হাডুডুডু कबड्डी

ହାବୁଡ଼ୁ ଖାଇବା—ଦେ. କ୍ରି—ହାବୁଡ଼ା ଖାଇବା (ଦେଖ)—
Hāburdu khāibā Hāburdā khāibā (See)

ହାବୁଡୁବୁ ହେବା—ଦେ. କ୍ରି—(ବଙ୍ଗଳାରୁ ଅନୁକୃତ, ପ୍ରା ବୁଡ଼, ବ—
Hābudubu hebā ହାବୁଡୁବୁ=ପାଣିରେ ଉବୁଡ଼ୁ ଚୁବୁଡ଼ୁ ହେବା)—୧। ଉବୁଡ଼ୁଚୁବୁଡ଼ୁ ହେବା—

1. To and rise and sink alternately in water. ୨ । (ଲକ୍ଷଣାର୍ଥ :) ଇତିକର୍ତ୍ତବ୍ୟତା ସ୍ଥିର କରି ନ ପାର ମନରେ ଇତସ୍ତତଃ କରିବା—2. (figurative) To hesitate; not to be able to decide one thing or other.
हाबुड बुकवा हुबीघाकरना

ହାବୁଡ଼ୁ ବାଜିବା—ଦେ. ବ—ହାବୁଡ଼ା ବାଜିବା (ଦେଖ)—
Hāburḍu bājibā Hāburḍā bājibā (See)

ହାବୁଡ଼େ ପଡ଼ିବା (ଚଢ଼ିବା)—ଦେ. କ୍ରି—୧। ଭେଟ ହେବା; ସାମନାରେ ଦୃଷ୍ଟିଗୋଚର ହେବା—
Hāburḍe parḍibā (charḍhibā)
सामनेपडा 1. To met be by; to encounter. (ଯଥା—ଏହି ମଞ୍ଚାରେ ସ୍ୱଭଯାକ କରିକରି ବାଘ ଶିକାରର ହାବୁଡ଼େ ପଡ଼ିଲା ନାହିଁ ।) ୨। ହସ୍ତଗତ ହେବା—2. To be got by. (ଯଥା—ଏତେ ଧନ ଚେଷ୍ଟା କରି କରି ଧନ ମୋ ହାବୁଡ଼େ ପଡ଼ିଲା ନାହିଁ) ୩। ଅଧୀନତାକୁ ଆସିବା; ବଶୀଭୂତ ହେବା—3. To come under the control of. [ଉ—ଶାନ୍ତ ବରଷ ଯାଉ, ଅଙ୍ଗୁଳି ନାହିଁ କର-କମଳ କନିଷ୍ଠରୁ ଗୋବର୍ଦ୍ଧନ, ପଡ଼ନ୍ତୁ ତା ହାବୁଡ଼େ, ପୁଣି କାହିଁକି ଏଡ଼େ ଉଲଭଲୁଗୁପଣେ ଅନ-ମାନ । କବିସୂର୍ଯ୍ୟ ସଙ୍ଗୀତ ।]
हाते आसा हस्तगतहोना

ହାବେଲି—ଦେ. ବ—ହାବିଲି (ଦେଖ)—Hābili (See).
Hābeli [ଉ—ବଲ୍ଲୀକି କନକ ଇନ୍ଦ୍ର, କୋଦଣ୍ଡ ହାବେଲି— ଭଞ୍ଜ ବୈଦେହୀଶବିଳାସ ।]
हाअई हवाई

ହାବୋଡ଼—ଦେ. ବ—୧। ହାବୁଡ଼ (୩) (ଦେଖ)—1. Hāburḍa
Hāborḍa (3) (See). [ଉ—ହାବୋଡ଼େ ପଡ଼ିଲେ ମୋହର ତୀର —ଭୂପତି ପ୍ରେମ ପଞ୍ଚାମୃତ ।] ୨। ବାଣ; ତୀର—2. Arrow. [ଉ—ନାଗେଶ୍ୱର କଡ଼ି କାମ ହାବୋଡ଼ ବାଜେ । ପ୍ରାଚୀ. ଉଷା ଅଭିଳାଷ ।] ୩। ଆଘାତ; ଦେହରେ ବାଜିବା—3. Striking.
तीर शर

ହାବୋଡ଼ା (ଇତ୍ୟାଦି)—ଦେ. ବ—ହାବୁଡ଼ା ଇତ୍ୟାଦି (ଦେଖ)—
Hāborḍā (etc) Hāburḍā etc. (See)

ହାବୋଡ଼ିବା—ଦେ. କ୍ରି—୧। ଦୈବାତ୍ ଓ ହଠାତ୍ ଭେଟିବା—1.
Hāborḍibā To meet accidentally. [ଉ—ହାବୋଡ଼ ଯିବ ସେ ଅକସ୍ମାତ ଆସି—ରାଧାନାଥ ଦରବାର ।] ୨। ହାବୁଡ଼ିବା (ଦେଖ)—
हाबुड़ेपड़ा एकाएक भेंट होना
(ହାବୋଡ଼ି ଯିବା—ଅନ୍ୟରୂପ) 2. Hāburḍibā (See)
[ଉ—ହରିଣ ଶିଶୁକୁ ଯଥେ ହର୍ଯକ୍ଷ ଯେପରି ହାବୋଡ଼ । ରାଧାନାଥ. ମହାଯାତ୍ରା ।] ୩। ସମ୍ମୁଖରେ ଉପସ୍ଥିତ ହେବା—3. To come to one's front. [ଉ—ହାବୋଡ଼େ ଆସି ଯେ ନ ଦେଇ ଖବର । ରାଧାନାଥ ଦରବାର ।]

ହାମ୍କ(କା)ଲମ୍—ବୈଦେ. ବ—(ଅ. କଚେରୀ ଭାଷା)—୧। ବିଚାର—
Hām-ka(kā)lam 1. Trial. ୨। ମକଦ୍ଦମାର ରାୟ—
हामकालम हाम्कलम 2. Judgment.

ହାମ୍କାଲି—ବୈଦେ. ବଣ—(ଅ. ହାମ୍ କାଲେବ୍ ; କଚେରୀ ଭାଷା)—
Hām-kāli ସମଜାତୀୟ (ମକଦ୍ଦମା)—Analogous (suits).
(ହାମ୍ କାଲେବ୍—ଅନ୍ୟରୂପ) हामकालि हामकाली

ହାମ୍କାଲି ନଥି—ବୈଦେ ବ—(ଅ) ( କଚେରୀ ଭାଷା )—ହାମକାଲି
Hām-kāli nathi ବିଚାର କରାଯାଇଥିବା ମକଦ୍ଦମାମାନଙ୍କ ନଥି-
(ହାମକାଲେବ୍ ନଥି—ଅନ୍ୟରୂପ) Records of analogous
हामकाली नथी हामकाली नथी suits.

ହାମ୍କାଲି ବିଚାର—ଦେ. ବ—(ଅ. ହାମକାଲି, ସଂ. ବିଚାର; କଚେରୀ)
Hām-kāli bichāra ଏକ ଶ୍ରେଣୀର ମୋକଦ୍ଦମାର ଏକତ୍ର
(ହାମ୍ କାଲେବ୍ ବିଚାର—ଅନ୍ୟରୂପ) ବିଚାର—Joint trial of
हामकालि विचाव हामकाली विचार analogous suits.

ହାମ୍ କାଲି ମକଦ(ଦ୍ଦ)ମା—ବୈଦେ. ବ—(ଅ ହାମକାଲେବ+ଫା,
Hām-kāli makada(dda)mā ମୁକଦ୍ଦମା, କଚେରୀ ଭାଷା)—
(ହାମ୍ କାଲେବ୍ ମକଦମା—ଅନ୍ୟରୂପ) ଏକ ଶ୍ରେଣୀର ଅର୍ଥାତ
हामकालि मकद्दमा ସମଜାତୀୟ ବିଷୟ ମୀମାଂସିତ ହେବା ପାଇଁ
हामकालीमुकद्दमा ଦାଏର୍ ହୋଇଥିବା ଭିନ୍ନ ଭିନ୍ନ ମକଦ୍ଦମା—
Analogous suits.

ହାମ୍ ଡା(ଡେ)ଇବା—ଦେ. କ୍ରି—ହାମୁଡ଼ାଇବା (ଦେଖ)—
Hām-rḍā (rḍe)ibā Hāmurḍāibā (See)

ହାମଡ଼ିବା—ଦେ. କ୍ରି—ହାମୁଡ଼ିବା (ଦେଖ)—
Hām-rḍibā Hāmurḍibā (See).

ହାମ୍ ଡେନ୍—ବୈଦେ. ବ—(ନାମ) (ଇଂ)—ଇଂଲଣ୍ଡରେ ପ୍ରଜାମାନଙ୍କ
Hām-ḍen ସ୍ୱତ୍ୱରକ୍ଷା କରିବା ପାଇଁ ବାହାରିଥିବା ଜଣେ ଇତିହାସ-
हामडेन हामडेन ପ୍ରସିଦ୍ଧ ବୀରପୁରୁଷ—(English man)
Hamden.

ହାମ୍ ଦରଦି(ଦୀ)—ବୈଦେ. ବଣ (ଫା)—ଯେ ଅନ୍ୟ ... (ଦରଦ୍)
Hām daradi(di) କଷ୍ଟ ସହେ ବା ସହାନୁଭୂତି ଦେଖାଏ—
हाम्‌दवदि हामदर्द Feeling for another.
[ଉ—ବନ୍ଧୁ ବାନ୍ଧବ ହାମ୍‌ଦରଦୀ ପାଞ୍ଚ ଜଣ କେତେ ଥର କହିଲେଣି—ଫକୀରମୋହନ. ଗଳ୍ପସ୍ୱଳ୍ପ ।]

ହାମ୍ବଡ଼ା—ବୈଦେ. ବଣ ( ହି. ହାମ୍+ବଡ଼ା; ମୁଁ ବଡ଼ ଅଟେ )—
Hām-barḍā ଗର୍ବିତ; ଅହଙ୍କାରୀ; ଯେ ବିଚାରେ ଯେ, ମୋଠାରୁ
हाम्‌बड़ा କେହି ବଡ଼ ବା ଯୋଗ୍ୟ କ୍ଷମତାଶାଳୀ ବ୍ୟକ୍ତି ନାହାନ୍ତି
मैं बड़ा —Proud; self exalted arrogant (person).

ହାମ୍ବଡ଼ା ନୀ(ରୀ)ତି—ଦେ. ବ—୧। ଆତ୍ମ ବଡ଼ିମା—1. Bragging
Hām-barḍā ni(ri)ti self-exaltation.
हाम्‌बड़ा नीति ୨। ଅହଙ୍କାର—2. Arrogance; pride.
मैं बड़ा नीति

ହାମ୍ବର୍ଗ୍—ବୈଦେ. ବ (ନାମ) (ଇଂ)—ଏଲ୍‌ବ ନଦୀର ମୁହାଣ
Hām-barg ନିକଟରେ ଥିବା ଜର୍ମାନୀର ଗୋଟିଏ ବାଣିଜ୍ୟପ୍ରଧାନ
हामवर्ग हामबर्ग ବନ୍ଦର—Ham-burg.

ହାମ୍‌ରାଇ(ଏ)—ବୈଦେ. ଅ (ନଡରଥା) (ଅ. ହାମ୍‌ରାଓ=ମାରଫତ୍‌ରେ)
Hām-rāi(e) —୧ । ଜରିଅରେ; ମାର୍‌ଫତ୍‌ରେ (ପଠାଯିବା)—
हाम्राई 1. (sent) Through. [ଢ—ଦୁଇଜଣ ଚୌକି-
मारफत ଦାର ହାମରାଏ ଲାସ୍ ମାଇଜା ସକାଶେ କଟକ ଗୃହାଣ ବଅଗଲ—ଫକୀରମୋହନ. ଛମାଣ ଆଠଗୁଣ ।] ୨ । ସଙ୍ଗରେ-2. With; in the company of. ବୈଦେ. ଜ—୧ । ସାହଚର୍ଯ୍ୟ—1 Company. ୨ । ବଡ଼ ଲୋକଙ୍କ ଗହଣ—2. Retinue of a big person. ୩ । ମାର୍‌ଫତ୍; ଜରିଆ—3. Agency. ବୈଦେ. ବଣ —୧ । ବଡ଼ ଲୋକଙ୍କ ସଙ୍ଗେ ପଠାଯିବା—1. Accompanying a rich man. ୨ । ମାରଫତରେ ବା ଜରିଅରେ ପଠାଯିବା—2. Sent through a person.

ହାମ୍ ରାଏ ଘୋଡ଼ା—ଦେ. ବାକ୍ୟ ପ୍ରବଚନ (ହି. ହାମ୍=ମୁଁ, ରାଏ=
Hām rāe ghorḍā ରାଜା+ଘୋଡ଼ା)—ଦାୟିତ୍ୱଜ୍ଞାନ ନ ଥିବା
ହାମ୍‌ରାଏ ଗାଡ଼
ହାମ୍‌ରାଏ ଘୋଡ଼ା ଗାଡ଼ } ଅନ୍ୟରୂପ ବ୍ୟକ୍ତି—(A proverb used to apply to) An
दायित्वहीन ब्यक्ति बेजबाबदेह irresponsible person.
[ଦ୍ର—ଏ ସମ୍ବନ୍ଧରେ ଗୋଟିଏ ଗଳ୍ପ ଅଛି—ଘୋଡ଼ାଟିକୁ ପଢି ଶିଖାଇବ ବୋଲି ଜଣେ ବଦୂଷକ ରାଜାଙ୍କଠାରୁ ଘୋଡ଼ାଟିଏ ଆଣିଲା ଓ ଘୋଡ଼ାକୁ ପଢ଼ାଇବା ପାଇଁ ରାଜାଙ୍କଠାରୁ ବରାବର ଟଙ୍କା ଅଣୁଥାଏ; କେହି ପଶ୍ନରଲେ କହେ 'ହାମ୍ ରାଏ ଘୋଡ଼ା' ଅର୍ଥାତ୍ ମୁଁ କେଉଁଠେଇଁ ? ରାଜା କେଉଁଠେଇଁ ? ପୁଣି ଘୋଡ଼ା କଥା ପଚାରୁଛ କିଏ ? ଏହାପରେ କିଛିଦିନ ଗଲା ଉତ୍ତାରୁ ଘୋଡ଼ାଟି ମରିଗଲା । ଉକ୍ତ ଲୋକଟି ରାଜାଙ୍କ ପାଖେ କାନ୍ଦି କାନ୍ଦି କହିଲା ଯେ—ସେ ବହୁ ପରିଶ୍ରମ କରି ଘୋଡ଼ାକୁ ପଢ଼ାଇ ଶିଖାଇଥିଲା, ତାର ସବୁ ପରିଶ୍ରମ ନଷ୍ଟ ହେଲା ।]

ହା(ହ୍ୟା)ମ୍‌ଲେଟ୍—ବୈଦେ.ବ (ନାମ) (ଇଂ)—ଇଂଲଣ୍ଡର କବି ସେକ୍ସ୍-
Hā(hyā)m-let ପିଅର୍‌ଙ୍କ ଲିଖିତ ନାଟକର ନାମ ଓ ଉକ୍ତ ନାଟକରେ
হ্যাম্‌লেট্ ବର୍ଣ୍ଣିତ ନାୟକ ଡେନ୍‌ମାର୍କ୍‌ର ରାଜପୁତ୍ରଙ୍କ ନାମ—
हामलेट Hamlet, the prince of Denmark in Shakespeare's play of the same name.
[ଦ୍ର—ଏହାଙ୍କ ମାତା ପିତୃବ୍ୟଙ୍କ ସଙ୍ଗେ ପାପ ପ୍ରଣୟ କରି ଏହାଙ୍କ ପିତାଙ୍କୁ ବିଷ ପ୍ରୟୋଗ କରି ମାରି ପକାଇଥିଲେ । ଯୁବରାଜ ହାମ୍‌ଲେଟ୍ ବାଳକ ଥିବାରୁ ପିତୃବ୍ୟ ସିଂହାସନ ଅଧିରୋହଣ କଲେ । କିନ୍ତୁ ହତ ପିତାଙ୍କର ପ୍ରେତାତ୍ମା ହାମ୍‌ଲେଟ୍‌ଙ୍କୁ ଦେଖା ଦେଇ ପ୍ରକୃତ ଘଟନାମାନ କହିଲେ । ହାମ୍‌ଲେଟ୍ ମାତାଙ୍କୁ ଓ ପିତୃବ୍ୟଙ୍କୁ ସେମାନଙ୍କର ମହାପାପ ସ୍ମରଣ କରାଇ ଅନୁତାପାନଳରେ ଅଭିଭୂତ କରାଇଥିଲେ ।]

ହାମ୍ ଶବା(ଵା)ରି—ବୈଦେ. ବଣ (ଫା. ହାମ୍, ଶହରୀ=ସମନାଗରିକ,
Hām śabā(wā)ri ଏକ ନଗରରେ ବାସ କରୁଥିବା ବ୍ୟକ୍ତି,
हाम् सवाबि ଏମାନେ ପରସ୍ପରର ସହାୟକ ଥିବାରୁ ଅନୁଭବରୁ)—
हमदर्दी ଯେଉଁ ବ୍ୟକ୍ତି ସର୍ବଦା ପ୍ରଭୁଙ୍କ ନିକଟରେ ଉପସ୍ଥିତ
(ହାମ୍‌ଦରଦୀ, ହାମ୍‌ଶୁଅରି—ଅନ୍ୟରୂପ) ଥାଇ ବିପଦ ଆପଦରେ ସାହାଯ୍ୟ କରିବାକୁ ପ୍ରସ୍ତୁତ ଥାଏ—(a person) Who is always at hand and ready to help the master in danger.

ହାମ—ପ୍ରାଦେ (କଟକ ସହର) ସର୍ବନାମ (ତୁଳ. ସ. ଅହମ୍; ପ୍ରା. ଅମ୍ହେ,
Hāma ହମ୍ହେ; ହି ହାମ୍)—ଆମ୍ଭର—Mine.
[ଦ୍ର—ଏହିପରି ହାମକୁ=ଆମ୍ଭଙ୍କୁ
ହାମଠୁଁ=ଆମ୍ଭଠାରୁ
ହାମ ପାଖେ=ଆମ୍ଭ ନିକଟରେ
ହାମେ=ଅମ୍ଭେ
ବ୍ୟବହୃତ ହୁଏ ।]

ହାମ(ମୁ)କୁଡ଼ା—ଦେ. ବ (ବଙ୍ଗଳାରୁ ଅନୁକୃତ)—ହାମୁଡ଼େଇ ଗୁଳିବା—
Hāma(mu)kurḍā Crawling.
হামাগুড়ি দেওয়া घुटियाँचलना

ହାମଡ଼ା(ଡ଼େ)ଇବା—ଦେ. କ୍ରି—ହାମୁଡ଼ାଇବା ( ଦେଖ )
Hāmarḍā(rḍe)ibā Hāmurḍāibā ( See )

ହାମଡ଼ା—ଦେ. ବି—କଟକ ଜିଲ୍ଲାର ସମୁଦ୍ର ଉପକୂଳବର୍ତ୍ତୀ ଜଙ୍ଗଲରେ
Hāmarḍā ଥିବା ବୃକ୍ଷ ବିଶେଷ—A kind of wild tree growing in the sea-shore forests of Cuttack district, the root of which is boiled and eaten by poor people. [ଦ୍ର—ଏହାର ମୂଳକୁ ହରିଶପୁର ଓ ବିଶୁନପୁର ଆଦି ଅଞ୍ଚଳର ଗରିବ ଲୋକେ ସିଝାଇକରି ଅନାଭାବ ସମୟରେ ଖାଆନ୍ତି । ଦୈନିକ ସମାଜ]

ହାମଡ଼ିବା—ଦେ କ୍ରି—ହାମୁଡ଼ିବା ( ଦେଖ )
Hāmarḍibā Hāmurḍibā ( See )

ହାମର୍—ପ୍ରାଦେ (ସମ୍ବଲପୁର ଓ କଟକ ସହର) ସର୍ବନାମ—ଆମ୍ଭର—
Hāmar My.

ହାମରିଚ—ପ୍ରାଦେ (ଗଡ଼ଜାତ) ବି—ହାଉ ମରିଚିଆ ( ଦେଖ )
Hāmaricha Hāu marichiā ( See )

ହାମ ସୁଆରି—ପ୍ରାଦେ (ଯାଜପୁର) ବି—ରକ୍ଷକ; ପାଳକ—
Hāma suāri Patron; protector.

ହାମା ଗୁଡ଼ି—ଦେ. ବ ( ବଙ୍ଗଳାରୁ ଅନୁକୃତ; ହମ୍ବା=ଗାଈର;
Hāmāgurḍi ବୋବାଳି; ହମା=ଗାଈ+ଗୋଡ଼
হামাগুড়ি ठेहुनिया ଗାଈ ପରି ଗୁରି ଗୋଡ଼ରେ ଗୁଳିବା)—ଦୁଇ ଅଣ୍ଟୁକୁ ଓ ଦୁଇ ହାତକୁ ତଳେ ଭରା ଦେଇ ଗୁଳିବା—Crawling on all fours.

ହାମାଗୁଡ଼ି ଖାଇବା(ଦେବା)—ଦେ. କ୍ରି ( ବଙ୍ଗଳାରୁ ଅନୁକୃତ )—
Hāmāgurḍi khāibā(debā) ହାମୁଡ଼େଇ ଗୁଳିବା—
হামাগুড়ি দেওয়া, হামা দেওয়া To crawl on all
ठेहुनिया देना fours.

ହାମାନ୍(ମ୍)—ବୈଦେ. ବି ( ଫା. ହାଭାନ୍ )—ଲୁହାର ଖଲ—
Hāmān(m) Iron mortar for pounding
হামাম্ हमाम dry things.

ହାମାନ(ମ୍)ଦ(ଦି)ସ୍ତା—ବୈଦେ· ବି [ ସହଚର ] (ଫା. ହାୱାନ= କୁଣ୍ଡି, ଉଦୁଖଳ+ଦସ୍ତା=
Hāmān(m)da(di)stā
হামামদিস্তা हिमानदस्ता, हमामदस्ता
ମୂଷଳ) ଶୁଷ୍କ ଦ୍ରବ୍ୟ ଚୂର୍ଣ୍ଣ କରିବା ପାଇଁ ବ୍ୟବହୃତ ଲୁହାର ଖଲ ଓ ମୂଷଳ
Iron mortar and pestle for pounding dry things.

ହାମାର୍—ପ୍ରାଦେ (ମେଦିନୀପୁର) ବି—ଅମାର; ଧାନ କୋଠି—
Hāmār Granary.

ହାମାର—ବୈଦେ. ବି (ହିନ୍ଦୀ ହମାରା, ବ ଅମାର)—ଆମ୍ଭର—Ours.
Hāmara [ଦ୍ର—ଓଡ଼ିଶାରେ ହିନ୍ଦୀମିଶା ସଙ୍ଗୀତ ପ୍ରଚଳିତ ହେବାର
আমাব हमारा ଶୁଣି କବିସମ୍ରାଟ ଉପେନ୍ଦ୍ରଭଞ୍ଜ ଗୋଟିଏ 'ଢ଼' ଗୀତରେ—ପ୍ରେମରେ ବିହ୍ୱଳ ହୋଇ "ହର ହାମାର ଏଇ ପ୍ରାଣେଶ୍ୱର ଗୋ" ବୋଲି ଲେଖିଅଛନ୍ତି ।]

ହାମାଲ—ବୈଦେ. ବି—(ଅ)—୧ । ଗର୍ଭସ୍ଥ ଭ୍ରୂଣ—1. Foetus.
Hāmāl ୨ । ଗର୍ଭଧାରଣ—2. Pregnancy.
হামাল हामाल

ହାମି—ବୈଦେ. ବିଣ—(ଅ)—୧ ।°ସହାୟକ—1. Supporting.
Hāmi ୨ । ଦାୟୀ—2. Responsible. ୩ । ଦାବିଦାର—
হামি हामि 3. Claiming. ବି—୧ । କୌଣସି ବିଷୟରେ ଦାୟିତ୍ୱ ଗ୍ରହଣ କରିବାକୁ ପ୍ରସ୍ତୁତ ବ୍ୟକ୍ତି—1. A person who is ready to take the responsibility of some thing. ୨ । ପୃଷ୍ଠପୋଷକ ବା ସହାୟକ ବ୍ୟକ୍ତି—2. Patron; supporter. ୩ । କୌଣସି ବିଷୟରେ ଦାବିଦାର୍ ବ୍ୟକ୍ତି—3. A claimant. ୪ । ପ୍ରକାଶ୍ୟଭାବରେ ହାକିମଙ୍କ ଆଗରେ ଠିଆ ହେବା ମୁଦେଇ—4. A complainant who claims relief openly or publicly. ୫ । କୌଣସି ଦ୍ରବ୍ୟ ବନ୍ଧା ଦେବା ( ଜନେ )—7. Pawning and pledging.

ହାମିର୍—ବୈଦେ· ବି (ନାମ)—ଜନୈକ ପ୍ରସିଦ୍ଧ ରାଜପୁତ ବୀର—
Hāmir A famous Rajput warrior.
হাম্মিব हम्मीर

ହାମି ହେବା—ଦେ. କ୍ରି—୧ । କୌଣସି ବିଷୟରେ ଦାୟିତ୍ୱ ଗ୍ରହଣ
Hāmi hebā କରିବା—1. To take or accept the
হামি হওয়া जबाबदेहहोना responsibility of something. ୨ । କୌଣସି ବିଷୟରେ ଦାବିଦାରରୂପେ ଠିଆହେବା—2. To stand up openly as a claimant.

ହାମୁ—ଦେ. ବି—(ଖାଇବାବେଳେ ପାଟିକୁ ହାଉଁ ହାଉଁ କରିବାରୁ)—
Hāmu ୧ । ଅନ୍ନ—1. Boiled rice. ୨ । ଖାଦ୍ୟ—
হামু 2. Meal. ୩ । ( ଶିଶୁ ଭାଷା ) ଭୋଜନ କରିବା;
भोजन ହାଉଁ—3. Taking of meal.

ହାମୁ କରିବା—ଦେ. କ୍ରି—(ଶିଶୁ ଭାଷା)—ଖାଇବା—
Hāmu karibā To take food.
হামুকবা भोजन करना

ହାମୁଡ଼ା—ଦେ. ବି—( ସ. ହମ୍ବା=ଗୋରୁଙ୍କ ଧ୍ୱନି+ ଗୋଡ଼= Hāmurdā ହାମାଗୁଡ଼ି, କମ୍ବା ହେଉ ଓ ମୁଣ୍ଡ । )—୧ ।
হামডি ହାମୁଡ଼ିବା ; ଦୁଇ ଅଣ୍ଟୁ ଓ ଦୁଇ ହାତକୁ ଭୂମିରେ
ठेहुनिया ପଶୁ ପରି ଚାଲିବା - 1. Crawling on all fours. ୨ । ଅଣ୍ଟୁ ମାଡ଼ି ବସିବା 2. Kneeling down.

ହାମୁଡ଼ା(ଡ଼େ) ଇ ପଡ଼ିବା—ଦେ. କ୍ରି—ହାମୁଡ଼ି ପଡ଼ିବା (ଦେଖ)—
Hāmurdā(rde)i pardibā Hāmurdi pardibā (See).

ହାମୁଡ଼ା (ଡ଼େ) ଇବା—ଦେ. କ୍ରି—୧ । ହାମୁଡ଼ିବା ; ଅଣ୍ଟୁ ଓ ହାତକୁ ଭର
Hāmurdā (rde) ibā ଚାଲିବା—1. To crawl with
হামডান the knees and hands. ୨ । ହାମୁଡ଼ିବାର
ठेहुनिया देना ଣିଜନ୍ତରୂପ; ଅନ୍ୟ ବ୍ୟକ୍ତିକୁ ହାମୁଡ଼ିବା ପାଇଁ ବାଧ୍ୟ କରିବା—2. To cause another to crawl on all fours. ୩ । ଅନ୍ୟ ବ୍ୟକ୍ତିକୁ ଅଣ୍ଟୁଆଇବା ; ଅନ୍ୟକୁ ଅଣ୍ଟୁମାଡ଼ି ବସିବାକୁ ବାଧ୍ୟ କରିବା—3. To cause a person to kneel down.

ହାମୁଡ଼ି ପଡ଼ିବା—ଦେ. କ୍ରି—କୌଣସି କାର୍ଯ୍ୟ କରିବା ପାଇଁ ସମସ୍ତଙ୍କ
Hāmurdi pardibā ଆଗରୁ ଆସି ସେ କାର୍ଯ୍ୟକୁ ଆବୋରିବା—
হামড়েপড়া 1. To forestall others and undertake to do a work ୨ । ହାମୁଡ଼ାଇବା ଅବସ୍ଥାରେ
हूडमुडकरेपडा ପଡ଼ିବା ; ଦୁଇ କରତଳ ଓ ଦୁଇ ଅଣ୍ଟୁ ଭୂମିରେ
हमाहमी करना ଲାଗିବା ଅବସ୍ଥାରେ ପତିତ ହେବା—2. To fall down on the ground on all fours. [ଦ୍ର—××× କାନ୍ଧରେ ଦୁଇ ହାତ ଭରଦେଇ ଓଲ୍ଟାଇଁ ଓଲ୍ଟାଇଁ ହାମୁଡ଼ି ପଡ଼ିଗଲେ । ଫକୀର ମୋହନ—ଛମାଣ ଆଠଗୁଣ୍ଠ ।]

ହାମୁଡ଼ିବା—ଦେ. କ୍ରି—୧ । ଦୁଇ ଅଣ୍ଟୁରେ ଓ ଦୁଇ କରତଳରେ
Hāmurdibā ଭରଦେଇ ଭୂମିରେ ଅବସ୍ଥାନ କରିବା—
হামডা 1. To kneel down on all fours on the
ठेहुनियादेना ground. ୨ । ଦୁଇ ଅଣ୍ଟୁ ଓ ଦୁଇ ହାତରେ ଭରଦେଇ ଭୂମିରେ ଗତି କରିବା—2. To crawl with the knees and the palms on the ground.

ହାମୁଡ଼ି ହାମୁଡ଼ି—ଦେ· କ୍ରି· ବିଣ—ଦୁଇ ଅଣ୍ଟୁ ଓ ଦୁଇ ହାତରେ
Hāmurdi hāmurdi ଭରଦେଇ—By resting on the
হামড়ে হামড়ে two knees and the two palms.
ठेहुनिया देकर [ଦ୍ର—ସେବେ ଗୋଟା ହାମୁଡ଼ି ହାମୁଡ଼ି ଚାଲିଲେ ବିପରି ବିଶନ୍ତା । ଫକୀର ମୋହନ ଛମାଣ ଆଠଗୁଣ୍ଠ ।]

ହାମୁରୀ—ପ୍ରାଦେ (ବଲାଙ୍ଗିର ପାଟଣା)—ବି—ବାଛୁରୀ—
Hāmuri Calf.

ହାମେ—ପ୍ରାଦେ (ଉତ୍ତର ସହର) ସର୍ବନାମ—(ସ. ଅହଂ,ପ୍ରା, ଅହ୍ମେ; ଭୁଲ,
Hāme ହି. ହମ୍)—ଅମ୍ଭେ—1. ପ୍ରାଦେ (ସମ୍ବଲପୁର)

ସର୍ବନାମ—ଅମ୍ଭେମାନେ—We.
আমি हम

ହାମେଶା—ବୈଦେ. କ୍ରି. ବଣ—(ଫା. ହମେଶା)—ସର୍ବଦା—
Hāmeśā Always.
হামেশা हमेशा

ହାମେହାଲ୍—ବୈଦେ. ବ. (କଚିତ୍‌ଥିର) (ଅ. ହାମେହାଲ—ଅବିରତ
Hāme hāl ଭାବେ)—ସମସ୍ତ ଘଟଣା ବା ଅବସ୍ଥା—Every
হামেহাল matter; all matters; every matter or
हरेक अवस्था circumstance. କ୍ରି. ବଣ—୧ । ସବୁ
ଅବସ୍ଥାରେ—1. In all conditions. ୨ । ସର୍ବଦା
—2. Always. ୩ । ଅବିରତ—3. Constantly.

ହାମ୍ପଣ—ପ୍ରାଦେ. (ସମ୍ବଲପୁର) ବ (ଧ୍ୱନ୍ୟନୁକରଣ)—ହାଁପଣ; କୁଲା—
Hāmpiṇa Winnowing fan.

ହାମ୍ପି(ମ୍ଫି)ବା—ଦେ. କ୍ରି (ସଂ. ହାଫିକା=ହାଇ)—୧ । ଧଇଁସଇଁବା;
Hāmpi(mphi)bā ପରିଶ୍ରମକ୍ଳାନ୍ତ ହୋଇ ଘନ ଘନ ନିଶ୍ୱାସ
হাঁপা, হাইফাই করা, হাঁসফাঁস করা ଛାଡ଼ିବା—1. To gasp
हाँफना as a result of exhaustion. ୨ । ଅଣନିଶ୍ୱାସି
ହେବା—2. To be out of breath.

ହାମ୍ପି(ମ୍ଫି)ଯିବା—ଦେ. କ୍ରି—(ସଂ. ହାଫିକା=ହାଇ)—ଅତ୍ୟନ୍ତ
Hāmpi(mphi)jibā ପରିଶ୍ରମ କରି ଧଇଁସଇଁବା—To gasp
হাঁসফাঁস হওয়া, হাইফাই হওয়া for breath owing to
हाँफजाना exhaustion.)

ହାମ୍ପି(ମ୍ଫି) ହେବା—ଦେ କ୍ରି—(ଧ୍ୱନ୍ୟନୁକରଣ)—ଧଇଁସଇଁ ହେବା।
Hāmpi (mphi) hebā ଧଇଁସଇଁ ହେବା—To gasp of
breath. [ଦୃ—କୁକୁରମାନେ ଗ୍ରୀଷ୍ମକାଳ ଦିନ
ଦ୍ୱିପ୍ରହର ବେଳେ ଓ ଧଇଁଅମାନେ ଶ୍ୱାସରୋଗ ଧଇଲବେଳେ
হাম্পান हाँफना ହାମ୍ପି ହୁଅନ୍ତି]

ହାମ୍ପୁଡ଼ା—ଗ୍ରା. ବ—ରାମ୍ପୁଡ଼ା (ଦେଖ)—
Hāmpurḍā Rāmpurḍā (See)

ହାମ୍ପୁଡ଼ା କାମୁଡ଼ା—ଗ୍ରା. ବ (ସହଚର)—ରାମ୍ପୁଡ଼ା କାମୁଡ଼ା (ଦେଖ)—
Hāmpurḍā kāmurḍā Rāmpurḍā kāmurḍā (See)

ହାମ୍ପୁଡ଼ିବା—ଗ୍ରା କ୍ରି—ରାମ୍ପୁଡ଼ିବା (ଦେଖ)—
Hāmpurḍibā Rāmpurḍibā (See)
ପ୍ରାଦେ (ଯାଜପୁର) କ୍ରି—ହାପୁଡ଼ିବା—To sip.

ହାମ୍ପୁଡ଼ି କାମୁ(ମ୍ପୁ)ଡ଼ି ହେବା—ଗ୍ରା. କ୍ରି—ରାମ୍ପୁଡ଼ିକାମୁ(ମ୍ପୁ)ଡ଼ି
Hāmpurḍi kāmu (mpu) rḍi hebā ହେବା (ଦେଖ)—
Rāmpurḍi kāmu (mpu)rḍi hebā (See)

ହାମ୍ପୋଡ଼ା—ଦେ. ବ—(ସଂ. ହମ୍ପ୍ ବା ହନ୍ ଫ୍ ଧାତୁ=ବଧ କରିବା)—
Hāmporḍā ଆଘାତ ପୂର୍ବକ ଦୂରକୁ ଫିଙ୍ଗିଦେବା—To
throw to a distance by striking.

ହାମ୍ପୋଡ଼ିବା—ଦେ. କ୍ରି—(ସଂ. ହନ୍ ଫ୍ ବା ହମ୍ପ୍ ଧାତୁ=ବଧ କରିବା)
Hāmporḍibā ୧ । ଜୋର୍‌ରେ ଆଘାତପୂର୍ବକ ବସ୍ତୁକୁ ଦୂରକୁ
ଫିଙ୍ଗିଦେବା; ଏପରି ଜୋର୍‌ରେ ଆଘାତ କରିବା, ଯେଉଁରେ
କି, ଆହତ ବସ୍ତୁ ସେହିଧକ୍କାରେ ବହୁଦୂରରେ ଯାଇପଡ଼ିବା—
1. To cause a thing to fly off to a great
distance by giving it a strong stroke or
push. [ଦୃ—ବନରେ ମୃଗ ଆଦି ଯେ ପଡ଼ଇ ଆଗେ,
ବେନି ହାତେ ହାମ୍ପୋଡ଼ି ଗୁଳଇ ବେଗେ ବେଗେ—
ସାରଳାଦାସ ମହାଭାରତ. ଅଦି] ୨ । ହାତ ଗୋଡ଼ ଆଦିକୁ
ଜୋର୍‌ରେ ଛାଟିବା; ଛଟ ପିଟ ହେବା—2. To
spread out (the limbs) with force. [ଦୃ—
ଅରେ ଅରେ ବୋଲି ହାମ୍ପୋଡ଼ିଲ ବେନିବାହୁ—ସାରଳା
ধাক্কাদিয়েছুঁড়েফেলা मारकरफेंकना ମହାଭାରତ. ବିରାଟ]

ହାମ୍ପୋଡ଼ି ହେବା—ଦେ. କ୍ରି—ଆଘାତ ଦ୍ୱାରା ଦୂରକୁ ନିକ୍ଷିପ୍ତ ହେବା—
Hāmporḍi hebā To be thrown away to a
great distance by a strong stroke. (ଦୃ—
ହାମ୍ପୋଡ଼ି ହୋଇଣ କେ ପଡ଼ନ୍ତି ମୋହ ଯାଇ—ପୀତାମ୍ବର
ছিটকেপড়া फेंकाजाना ନୃସିଂହ ପୁରାଣ]

ହାମ୍ପୋଳ (ଳା, ଳି)—ଦେ. ବ—କୌତୁକରେ ବା ସ୍ନେହରେ କରତଳ
Hāmpola (lā, li) ଦ୍ୱାରା ଅନ୍ୟର ଦେହରେ ମନ୍ଦମନ୍ଦ ଛୁଆଁ
ଆଘାତ ବା ଚଟକ; ପ୍ରେମ ଚୁମୁଡ଼ି—Patting by the
থাবড়া थपकी palm in affection or fun.

ହାମ୍ପୋଳି ଠୁ(ଠୁଁ)କିବା—ଦେ. କ୍ରି—କରତଳ ଦ୍ୱାରା ଧୀରେ ଧୀରେ
Hāmpoli thu (ṭhuñ)kibā ପ୍ରେମ ଚଟକ ମାରିବା—
To pat slowly and fondly. [ଦୃ—ଛାଡ଼ିଲେ
ହାମ୍ପୋଳି ଠୁକୁ ଚେତନା କରିଲ—ଉପେ. ଲାବଣ୍ୟବତୀ]
থাবড়ান थपकीदेना

ହାମ୍ପୋଳିବା—ଦେ. କ୍ରି—୧ । ହାମ୍ପୋଳି ମାରିବା (ଦେଖ)—
Hāmpolibā Hāmpoli māribā (See)
୨ । ବାଦ୍ୟ ଯନ୍ତ୍ରକୁ ବଜାଇବା—2. To sound or
play on a musical instrument. [ଦୃ—
ନାଚନ୍ତି ଶିବଗଣେ ଡମ୍ବରୁ ହାମ୍ପୋଳି—ସାରଳା
বাজান थपकीदेना ମହାଭାରତ. ସଭା]

ହାମ୍ପୋଳି ମାରିବା—ଦେ. କ୍ରି—କରତଳ ଦ୍ୱାରା ଧୀରେ ଧୀରେ ସ୍ନେହରେ
Hāmpoli māribā ଚୁମୁଡ଼େଇବା ବା ଚଟକ ମାରିବା—
To pat with the palm fondly and slowly
[ଦୃ—ମାରନ୍ତେ ହାମ୍ପୋଳି, କ କରି ଅନାଏ ବଦନ ତାଳ—
চাপড়ান थपकदेना ଉପେ. ସୁବର୍ଣ୍ଣରେଖା ]

ହାମ୍ବଡ଼ା (ଇତ୍ୟାଦି—ଦେ. ବଣ (ହାମ୍ବରୁ ଅନୁକୃତ)—ହାମ୍ବଡ଼ା ଇତ୍ୟାଦି
Hāmbarḍā (etc) (ଦେଖ)—Hāmbarḍā etc (See)

ହାମ୍ବର—ପ୍ରାଦେ (ସମ୍ବଲପୁର) ସର୍ବନାମ—ଅମର; ଆମ୍ଭମାନଙ୍କର—
Hāmbar My; mine; ours; our.

ହାମ୍ବର୍ଗ—ବୈଦେ. ବ (ନାମ)—ହାମବର୍ଗ (ଦେଖ)—
Hāmbarg Hām-barg [See].

ହାମ୍ବୀ(ମ୍ମୀ)ର—ଦେ. ବ—୧ । ରାଗିଣୀବିଶେଷ—1. Name of a
Hāmbi ( mmi ) ra musical tune.
হাম্বীর हम्मीर - [ଦୃ—ଏହା ସମ୍ପୂର୍ଣ୍ଣ, ଏଥିରେ କଡ଼ି 'ମ'ର ବ୍ୟବହାର ଅଧିକ । ଏହା 'ରାଗିର

ପ୍ରଥମ ପ୍ରହରରେ ଗେୟ ] ୨ । ମେବାରର ଜଣେ ନୃପ- 2. Name of a king of Mewar who recovered Chitor from the Mahomedans. [ଦ୍ର—ଏ ମୁସଲମାନ୍‌ମାନଙ୍କ କବଳରୁ ଚିତୋରକୁ ପୁନରୁଦ୍ଧାର କରି ଭାରତ ଇତିହାସରେ ଯଶସ୍ୱୀ ହୋଇଅଛନ୍ତି ।]

ହାମ୍ବୁ(ମ୍ବୋ)ଡ଼ା (ଇତ୍ୟାଦି)—ଦେ. ବି—ହାମୁଡ଼ା ଇତ୍ୟାଦି (ଦେଖ)—
Hāmbu(mbo)rdā (etc) Hāmurdā etc (See)

ହାମ୍ବୁ(ମ୍ବୋ)ଡ଼ିବା—ଦେ. କ୍ରି—ହାମୁଡ଼ିବା [ଦେଖ]—
Hāmbu(mbo)rdibā Hāmurdibā (See).

ହାୟ[ଇତ୍ୟାଦି]—ଦେ. ଅ—ହାଇ ଇତ୍ୟାଦି [ଦେଖ]—
Hāya (etc) Hāi etc (See).

ହାୟଦରାବାଦ୍—ବୈଦେ. ବି (ନାମ)—ହାଇଦରାବାଦ୍ (ଦେଖ)—
Hāyadarābād Hāidarābād (See).

ହାୟନ—ସଂ. ବି (ହା ଧାତୁ = ତ୍ୟାଗ କରିବା + କର୍ତ୍ତୃ ଅନ, ଯ
Hāyana ଆଗମ)—୧ । ବତ୍ସର; ବର୍ଷ (ଅମର) 1. Year. [ଦ—ଏହି ଶବ୍ଦରୁ 'ଅଗ୍ରହାୟଣ' ଶବ୍ଦ ହୋଇଅଛି ।] ୨ । ବ୍ରୀହିଭେଦ; ଧାନ୍ୟବିଶେଷ (ମେଦିନୀ)—2. A sort of grain or paddy. ୩ । ଅଗ୍ନିଶିଖା (ମେଦିନୀ)—3. The flame of a fire

ହାୟା—ବୈଦେ ବି (ଆ)—୧ । ଲଜ୍ଜା (ଗୋପନୀୟ ଜନ)—
Hāyā (ଦ୍ର—ଏହି ଶବ୍ଦରୁ ବେହାୟା ହୋଇଅଛି—
হায়া हाया 1. Shame. ୨ । ଶରମ—2. Modesty.

ହାୟାଁ—ଦେ ବିଣ—୧ । ଯେଉଁ ବ୍ୟକ୍ତି ଖାଇବାକୁ ହାଇଁପାଇଁ ହୁଏ;
Hāyān ହଇଲା—1. (a person) Who always shows
हाँवहाँव करनेवाला hankering for food.
হাভাতে ୨ । ଅତି ବଡ଼; ହୟାନ୍ତ—2. Very big. gigantic. ୩ । ଭୟଙ୍କର—3. Terrific; terrible.

ହାୟାଙ୍କାର—ଗ୍ରା. ବିଣ (ସ. ଭୟଙ୍କର) ଅତି ଭୟଙ୍କର—
Hāyānkāra Very terrible; terrific.

ହାୟାନ୍ତ—ଦେ. ବିଣ—ହୟାନ୍ତ (ଦେଖ)—
Hāyānta Hayānta (See).
(ହାୟାନ୍ତିଆ—ଅନ୍ୟରୂପ)

ହାର୍—ଦେ.ବି (ସଂ. ହୃ ଧାତୁ ଣିଚ ହାରି ଧାତୁ) ୧ । ଯୁଦ୍ଧରେ ପରାଜୟ
Hār —1. Defeat in battle. ୨। ଖେଳରେ ପରାଜୟ—
হার हार 2. Defeat in a game.

ହାର୍(ରି)କି(କେ)ନ ଲଣ୍ଠ(ଣ୍ଠ)ନ୍—ବୈଦେ.ବି—ହରିକେନ ଲଣ୍ଠନ (ଦେଖ
Hār(ri)ki(ke)n lanta(ntha)n Hariken lantan (See).

ହାର ଜିଣି (ଣା, ତ୍, ତା, ଦ୍, ଦି)—ଦେ.ବି—(ବିପରୀତାର୍ଥକ ସହଚର
Hār jin (nā, t, tā, d, di) ଶବ୍ଦ)—୧ । ପରାଜୟ ଓ ଜୟ 1. Defeat and victory. ୨ । ବାଜି—
হারজিত हारजीत 2. Wager.

ହାର୍ ଜିଣ୍ (ଣା, ତ୍, ତା, ଦ୍, ଦି) ପକା(କେ)ଇବା (ମାରିବା)—ଦେ.
Hār jin(nā, t, tā, d, di) pakā(ke)ibā (māribā)
বাজিরাখা କ୍ରି—ବାଜି ମାରି ଖେଳିବା ବା ବାଜି ରଖିବା—To
दांव लगाना offer stake for playing a game; to play by laying wager.

ହାର୍ମ(ମୋ)ନିଅମ—ବୈଦେ. ବି—(ଇଂ. ହାର୍ମୋନିଅମ୍) ଅନେକ-
Hār-ma(mo)niam ଗୁଡ଼ିଏ ବଂଶୀର ସଙ୍ଘ ବା କିଭ ଖଞ୍ଜି ସେହି
[ହାରମ(ମୋ)ନିଆ—ଅନ୍ୟରୂପ] ଜିଭ ବାଟେ ଗୋଟିଏ ଭସ୍ତ୍ରାଦ୍ୱାରା
হারমনিয়ম ପବନକୁ ନାନା ସ୍ୱରରେ ବାହାର କରି ବଜାଇବା ବାଦ୍ୟ
हारमोनीयम Harmonium. ଯନ୍ତ୍ର ବିଶେଷ—[ଦ୍ର—ଏଥିରେ ବାଁଆ ହାତରେ ଭସ୍ତ୍ର (Bellows)କୁ ଚଳାଇ ଗୋଟିଏ କୋଠରିରେ ଗୁଡ଼ିଏ ପବନ ପୂର୍ଣ୍ଣ କରାଯାଏ ଓ ସେହି କୋଠରି (air-chamber)ରୁ ବାହାରକୁ ପବନ ବାହାରି ଯିବାକୁ ଅନେକଗୁଡ଼ିଏ ଛିଦ୍ର ଥାଏ ସେହି ଛିଦ୍ରମାନଙ୍କ ଦ୍ୱାର-ଦେଶରେ ବଂଶୀର ଜିଭ (reed) ସଂଯୁକ୍ତ ଚିକିଆମାନ ଏପରି ଖଞ୍ଜାହୋଇଥାଏ ଯେ, ସେ ଚିକିଆମାନଙ୍କ ଲାଞ୍ଜକୁ ଡାହାଣ ହାତର ଆଙ୍ଗୁଠିରେ ଟିପି ଦେଲେ ସେ ଚିକିଆମାନ ଛିଦ୍ର ମୁହଁରୁ ଗୋଟି ଗୋଟି ହୋଇ ଉଠିଗଲାବେଳେ ଉତ୍ତମ୍ଭକୁ ଜିଭବାଟେ ପବନ ବାହାରି ଗୋଟିଏ ଲେଖାଏଁ ଧ୍ୱନି ହୁଏ । ସେ ବଂଶୀର ଜିଭମାନ ଏପରି ମାପ ମୁତାବକ ଖଞ୍ଜା ହୋଇଥାଏ ଯେ, ଗୋଟିଏ ଛିଦ୍ରବାଟେ ଏକ ପ୍ରକାର ଧ୍ୱନି ବାହାରେ । ସେ ଧ୍ୱନିମାନ ଯଥାକ୍ରମେ ହିନ୍ଦୁ ସଙ୍ଗୀତର ସପ୍ତସ୍ୱର [ସା, ରି, ଗା, ମା, ପା, ଧା, ନି; ଇଂ Octave (ଅକ୍‌ଟେଭ୍)] ସଙ୍ଗେ ମିଳେ । ହାର୍‌ମୋନିଅମ୍‌ରେ ଏକାଧିକ ସପ୍ତକ ଓ ସପ୍ତକର କଡ଼ି ମଧ୍ୟମ ସ୍ୱରମାନ ଖଞ୍ଜା ହୋଇଥାଏ ।

ହାର୍‌ମୋନିଅମ୍ ବଜାଇବାକୁ ହେଲେ ବାଁଆ ହାତରେ ଭସ୍ତ୍ରକୁ ଚଳାଇବାକୁ ହୁଏ ଓ ଯେଉଁ ସ୍ୱର ବାହାର କରିବାକୁ ହେବ ସେହି ସ୍ୱର ସମ୍ବନ୍ଧୀୟ ଚିକିଆର ଲାଞ୍ଜକୁ ଡାହାଣ ହାତର ଭିନ୍ନ ଭିନ୍ନ ଆଙ୍ଗୁଠିଦ୍ୱାରା ଆଘାତ କରାଯାଏ । ହାର୍‌ମୋନିଅମ୍ ବଜାଇ ତହିଁ ସଙ୍ଗେ ସଙ୍ଗେ ଗତ ବା ଗୀତ ଅଭ୍ୟାସ କରାଯାଇ ପାରେ । ସିଦ୍ଧହସ୍ତ ବ୍ୟକ୍ତିଙ୍କ ହାତରେ ବାଜିବା ହାର୍‌ମୋନିଅମର ସ୍ୱରମାନଙ୍କ ସଙ୍ଗେ ସିଦ୍ଧ ଗାୟକଙ୍କର ନିଜର ଗଳାର ସ୍ୱରକୁ ମିଶାଇ ଗାଇଲା-ବେଳେ ତାହା ଅତି ମଧୁର ଶୁଣାଯାଏ । ହାରମୋନିଅମ ଯନ୍ତ୍ର ବଂଶୀର ନିୟମକୁ ଅନୁସରଣ କରି ନିର୍ମିତ । ବଂଶୀର ଛିଦ୍ର ତଳେ ଗୋଟିଏ ଜିଭ ବା ପାତିଆ ଥିବାରୁ ସେ ବାଟେ ପବନ ଗଲେ ବା ଛିଦ୍ରକୁ ଫୁଙ୍କିଲେ ତହିଁରୁ ଧ୍ୱନି ଜନ୍ମେ ହୁଏ; କିନ୍ତୁ ହାରମୋନିଅମ ଅନେକଗୁଡ଼ିଏ ବଂଶୀର ଧାରାବାହିକ ସମାବେଶ ମାତ୍ର ।]

ହାର୍ମ(ମୋ)ନିଅମ୍ ଚାବି (ପରଦା)—ଦେ.ବି—ହାରମନିଅମ୍‌ର ଭିନ୍ନ ଭିନ୍ନ
Hārma(mo)niam chabi (paradā) ଛିଦ୍ରର ମୁହଁକୁ ଲାଗିଥିବା
হারমনিয়ম চাবি ଚିକିଆ—The keys of a harmonium

हारमोनियम चाबि —[ବି—ଏ ଚିର୍କିଅର ମୁଣ୍ଡ ଛିଦ୍ରସମ୍ମୁଖରୁ ଛିଦ୍ରର ମୁହଁକୁ ବୁଜି ରଖି ।ଏ ଓ ଚିର୍କିଅର ଲାଞ୍ଜରେ ଅଙ୍ଗୁଠି ଚିପି ମାରଲେ ଛିଦ୍ରର ମୁହଁ ପାଖରୁ ଚିର୍କିଅର ମୁଣ୍ଡ ଉଠିଯାଇ ସେହିବାଟେ ପବନ ବାହାରି ଆସେ ଓ ଉଲ ଉଲି ଅଭିପ୍ରେତ ସ୍ୱର ବହୁର୍ଗତ ହୁଏ ।]

ହାର୍ମ(ମୋ)ନିଅ(ୟ)ମ ରିଡ—ବୈଦେ. ବି—(ଇଂ) ହାର୍ମୋନିଅମ୍‌ର Hār-ma(mo)nia(ya)am ri ଭଲ ଭଲ ଛିଦ୍ର ତଳେ ଲଗା [ହାରମନିୟମ ରିଡ(ଞ୍ଚ,ଡ)—ଦେ.ରୂପ] ଯାଇଥିବା ବର୍ଣ୍ଣର ଜିଭମାନ হারমনিয়ম রিড —The reeds of a harmonium. हारमनियम रीड़ [ବି—ଏମାନ ଧାତୁର ପାତିଆ; ଏହି ପାତିଆ ଛିଦ୍ରଯୁକ୍ତ ଧାତୁଖଣ୍ଡ ଉପରେ ଢୁଲୁଲା ହୋଇ ଏପରି ଲଗାଯାଇ ଥାଏ ଯେ, ସେହି ପାତିଆ ବାଟେ ପବନ ବାହାରଲେ ଧ୍ୱନି ଜାତ ହୁଏ ।]

ହାର୍ମନଅମ୍ ଷ୍ଟପ୍—ବୈଦେ ବି—ଇଂ—ହାରମୋନିଅମର ବାୟୁପୂର୍ଣ୍ଣ Hār-maniam shṭap କୋଠରୁ ଛିଦ୍ରକୁ ପବନ ଆସିବା হারমনিয়ম ষ্টপ কାର୍ଯ୍ୟ ଯେଉଁ କଳଦ୍ୱାର ନିୟନ୍ତ୍ରିତ ହୁଏ—The हारमोनियमस्टप stops of a harmonium—[ବି—ଏହି ଷ୍ଟପ୍‌କୁ ପଦାକୁ ଟାଣି ଆଣିଲେ ଛିଦ୍ର ନିକଟକୁ ପବନ ଅସେ ଓ ଷ୍ଟପ୍‌କୁ ଭିତରକୁ ଠେଲି ଦେଲେ ଛିଦ୍ରପାଖକୁ ଲାଗିଦ୍ୱାର ରୁଦ୍ଧ ହୋଇ ପବନ ଆସେ ନାହିଁ ।

ହାର୍‌ମା—ବୈଦେ. ବିଣ,ପୁଂ (ଫା. ହରମ୍—ଶାସ୍ତ୍ରବିରୁଦ୍ଧ)—୧ । ଦୁଷ୍ଟ- Hār-mā 1. Wicked; naughty. [ହାର୍‌ମୀ—ସ୍ତ୍ରୀ] ୨ । ଅସ୍ଥିର—2. Restless. অস্থির नटखट

ହାର୍ ମାନିବା—ଦେ. କ୍ରି—ନିଜର ପରାଜୟ ସ୍ୱୀକାର କରିବା— Hār mānibā To admit one's defeat. হার মানা हार मानना

ହାର୍‌ମା ପଣ[ପଣିଆଁ,ଗିରି ]—ଦେ. ବି—ଦୁଷ୍ଟପଣ; ଦୁଷ୍ଟାମି— Hār-mā paṇa[paniañ, giri] Wickedness; হারামজাদগি नटखटपन, हारामजादगी naughtiness.

ହାର—ସଂ. ବି [ହୃ ଧାତୁ=ହରଣ କରିବା,(ମନକୁ) ମୁଗ୍ଧ କରିବା+କର୍ତ୍ତୃ Hāra ଅ )—୧ । କଣ୍ଠଲମ୍ବି ବକ୍ଷୋଭୂଷଣ; ମାଳ— 1. Necklace. ୨ । ମାଳା; ପୁଷ୍ପାଦି ଗୁନ୍ଥା ହୋଇଥିବା ଲମ୍ବ ମାଳ—2. Garland. ୩ । ମୁକ୍ତାବଳୀ; ମୁକ୍ତାମାଳା (ଅମର)—3. A necklace or string of pearls. ୪ । (+ଅଧିକରଣ ଅ) ଯୁଦ୍ଧ (ମେଦିନୀ)— 4. War; fight. ୫ । ( +ଭାବ. ଅ ) ହରଣ— 5. Taking away. ୬ । (ଗଣିତ) ଏକ ସଂଖ୍ୟାକୁ ଅନ୍ୟ ସଂଖ୍ୟା ଦ୍ୱାରା ଭାଗ କରିବା କ୍ରିୟା; ଭାଗ— 6. [arithmetic] Division. ବିଣ (ପୁଂ)—୧ । (ହାରୀ—ସ୍ତ୍ରୀ) (ହରି+ଅ)—ହରିସମ୍ବନ୍ଧୀୟ (ଭାଗବତ)— 1. Relating to Hari or God; divine. ୨ । (ହୃ ଧାତୁ+କର୍ତ୍ତୃ ଅ)—ହାରକ; ହରଣକର୍ତ୍ତା— 2. Taking away; stealing, kidnapping. ୩ । ମନୋହର (ଶ୍ରୀଧର ସ୍ୱାମୀ)—3. Charming. ୪ । ବିଭାଜକ—4. Dividing. ଦେ. ବି—୧ । ପରାଜୟ হার हार 1. Defeat. (ଯଥା—ଏଥିରେ ହାର କାହାର, ପରଖିବାକୁ ଅଗ ବାହାର—ଅଭିମନ୍ୟୁ ସାମନ୍ତସିଂହାର) ୨ । (ସ୍ତ୍ରୀ) ହାରାମଣିର ଡାକନାମ হারা हरा 2. Nickname of Hārāmani. ବୈଦେ. ବି [ ଅ ]—୧ । ରେଟ—1. Rate (of interest). (ଯଥା—ସୁଧର ହାର) ୨ । ଅନୁପାତ— 2. Ratio. (ଯଥା—ଭାରତବର୍ଷରେ ଶିକ୍ଷିତଙ୍କ ହାର ଶତକଡା ୫·୨ ବା ୫; ଅର୍ଥାତ୍ ୧୦୦ ଜଣ ଭାରତବାସୀଙ୍କ ମଧ୍ୟରେ ୫ ଜଣରୁ କିଛି ବେଶି ଲୋକ ଶିକ୍ଷିତ ଅଛନ୍ତି ।)

ହାର ଉଲଗି—ଦେ. ବି—ପିନ୍ଧା ଯାଇଥିବା ହାରକୁ ଦେହରୁ କାଢ଼ି Hāra ulāgi ପକାଇବା—Putting off of a হার খোলা हार निकालना necklace or garland. [ହାରଉଲଗି—ବିପରୀତ]

ହାରକ—ସଂ ବିଣ, ପୁଂ (ହୃ ଧାତୁ+କର୍ତ୍ତୃ ଅକ)—୧ । ହରଣକର୍ତ୍ତା— Hāraka 1. Stealing; kidnapping; taking ( ହାରିକା—ସ୍ତ୍ରୀ ) away. ୨ । ବହନକର୍ତ୍ତା— 2. Carrying. ୩ । ଦ୍ୟୂତକାର—3. Gambling. ବି—୧ । କପଟ; ଶଠ—1. A cheat. ୨ । ଚୋର; ତସ୍କର—2. A thief. ୩ । ଯେ ଜବରଦସ୍ତି ମନୁଷ୍ୟ ଆଦିଙ୍କୁ ହରଣ କରି ନିଏ—3. A kidnapper. ୪ । ଗଦ୍ୟଭେଦ ( ମେଦିନୀ )—4. A kind of style of prose. ୫ । ବିଜ୍ଞାନଭେଦ ( ମେଦିନୀ )—5. A sort of specialised knowledge. ୬ । ୬ । ଶାଖୋଟ ବା ଶାହାଡ଼ା ଗଛ—6. Asper tree. ୭ । (ଗଣିତ) ଭାଜକ ଅଙ୍କ—7. [arithmetic]. The number which divides another number. ଦେ.ବି—ଯୁଦ୍ଧରେ ବା ଖେଳରେ ପରାଜୟ হার हार Defeat in battle or game. ( ଯଥା—ତାଙ୍କର ଖେଳରେ ହାରକ ହେଲା । ବିଣ—ପରାଜିତ—Defeated. ( ଯଥା—ତାର ଖେଳରେ ହାରକ ପକ୍ଷ ହେଲା ।)

ହାରକ ପ(ଷ)କ୍ଷ—ଦେ. ବି—ଯେଉଁ ପକ୍ଷ ବା ଦଳ ପରାଜିତ ହୁଏ— Hāraka paksha(ṭa) Defeated side or party হেরো দল पराजित पक्ष (in a battle or game).

ହାର କରିବା—ଦେ. କ୍ରି—୧ । ହାର ଗଢ଼ିବା; ମାଳ ପ୍ରସ୍ତୁତ କରିବା— Hāra karibā 1. To make or construct a হার তয়ারি ক हार बनाना necklace. ( ଯଥା—ବଣିଆ ମୋ ସାଆନ୍ତାଣୀଙ୍କ ପାଇଁ ଗୋଟିଏ ମନମୋହନିଆ ହାର କରୁଛି) ୨ । (ଫୁଲ ଆଦିକୁ ସୂତା ଦ୍ୱାରା) ମାଳ ଗୁନ୍ଥିବା—2. To string a garland

of flowers etc. with thread. ୩ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ ଅତ୍ୟନ୍ତ ଆଦରପୂର୍ବକ ସର୍ବଦା ପାଖରେ ରଖିବା—3. (figurative) To keep a person tied to one's sleeves in fondness or affection. (ଉ—ହାର କରି ଗଲେ ଥିବ ବନ୍ଧୁରେ—ସଙ୍ଗୀତ) ୪ । [ ଲକ୍ଷଣାର୍ଥ ] ଅତି ଗେଲବସର କରିବା—4 ( figurative ) To fondle or cherish a person. [ ଯଥା—କୋଡପୋଛା ପିଲାକୁ ମାଆ ହାର କରୁଛି । ] ୫ । ( ଲକ୍ଷଣାର୍ଥ ) କୌଣସି ବ୍ୟକ୍ତିଙ୍କ ଉପଦେଶକୁ କୃତଜ୍ଞତା ବା ଆଦର ସହିତ ଗ୍ରହଣ କରିବା—5. ( figurative ) To accept a person's advice with gratitude or fondness. (ଯଥା—ମୁଁ ଅମୁକ ବନ୍ଧୁଙ୍କ ଉପଦେଶକୁ ହାର କରିଛି ।) ୬ । [ଲକ୍ଷଣାର୍ଥ] ସର୍ବଦା ସ୍ମରଣ କରିବା ବା ଘୋଷି ହେବା—6. ( figurative) To always cherish in memory. [ ଦ୍ର—ଏହା ଭଲ ଓ ମନ୍ଦ ଅର୍ଥରେ ବ୍ୟବହୃତ ହୁଏ । (ମନ୍ଦ ଅର୍ଥ)—ମୁଁ କେଉଁ ଦିନ ପଦେ ଗାଳି ଦେଇଥିଲି ବୋଲି, ସେ ମୋ କଥାକୁ ହାର କରି ବସିଛି । [ ଭଲ ଅର୍ଥ ] ମୁଁ ତାଙ୍କର ସେ ଦିନର ଉପକାରକୁ ହାର କରିଛି ।]

ହାର ଗୁଟିକା—ସଂ ବି [୬ଷ୍ଠୀ ତତ୍]—ମାଳାର ଦାନା—
Hāra guṭikā The balls or beads of a garland.

ହାର ଗୁନ୍ଥା—ଦେ· ବି—(ସ ହାର ଗ୍ରନ୍ଥନ)—ହାରର ଦାନାମାନଙ୍କୁ ସୂତ୍ରରେ ଗୁନ୍ଥିବା—
Hāra gunthā The stringing of a necklace or garland.
हारगाँथा हारग्रंथना

ହାର ଗୁନ୍ଥା(ନ୍ଥେ)ଇବା—ଦେ. କ୍ରି—(ହାର ଗୁନ୍ଥିବାର ଣିଜନ୍ତ ରୂପ—
Hāra gunthā (nthe)ibā (The causative form of Hāra gunthibā). ଆଉଜଣ ଅନ୍ୟଙ୍କ ଦ୍ୱାରା ହାରଗୁନ୍ଥା କାମ କରାଇବା To cause a person to string together the beads of a necklace or garland.
हारगाँथान हारग्रंथ'बाना

ହାର ଗୁନ୍ଥିବା—ଦେ. କ୍ରି—(ସଂ ହାର ଓ ଗ୍ରନ୍ଥ ଧାତୁ) - ହାରର ଭିନ୍ନ ଭିନ୍ନ ଅଂଶ ବା ଗୋଟିମାନଙ୍କୁ ସୂତାଦ୍ୱାରା ଗୁନ୍ଥିବା ବା ଏକତ୍ର ସମାବଦ୍ଧ କରିବା—To string beads into a garland or necklace.
हारगाँथा हारग्रंथना

ହାର ଘି(ଘେ)ନିବା [ନା(ନ୍ନା)ଇବା, ପିନ୍ଧିବା, ମର୍ଦ୍ଦା(ର୍ଦ୍ଦେ)ଇବା]—
Hāra ghi (ghe)nibā [nā(lā)ibā, pindhibā, mardā(rde)ibā] ଦେ. କ୍ରି—ଆପଣାର ଅଙ୍ଗରେ ହାର ପରିଧାନ ବା ଧାରଣ କରିବା—To wear a necklace or a garland.
हारपरा हारपहनना

ହାର ପକା(କେ)ଇବା—ଦେ· କ୍ରି—୧ । ହାର ଘିନିବା (ଦେଖ)=
Hāra pakā(ke)ibā 1. Hāra ghinibā (See)
୨ । ହାର ପିନ୍ଧାଇବା (ଦେଖ)—2. Hāra pindhāibā (See)
हारपरा हारपहनना

ହାର ପିନ୍ଧା(ନ୍ଧେ)ଇବା—ଦେ. କ୍ରି—ଅନ୍ୟଙ୍କୁ ହାର ଦେଇ ସଜାଇବା-
Hāra pindhā(ndhe)ibā To adorn another with a necklace or garland.

ହାର ପକ୍ଷ (କ୍ଷ)—ଦେ· ବି—ହାରକ ପକ୍ଷ (ଦେଖ)—
Hāra paṭa (ksha) Hāraka paksha (See)

ହାର ଫଳକ—ସ. ବି ପାଞ୍ଚ ନରିଆ ହାର (ହ. ଶ)—
Hāra phaḷaka A five-stringed necklace.

ହାରଭୂରା—ଦ. ବି—ଦ୍ରାକ୍ଷା; ଅଙ୍ଗୁର (ହ. ଶ)—
Hārabhūrā Grape.

ହାର(ରା)ମ୍ ଜାଦା(ଜାଦା)—ବୈଦେ. ବି. ପୁଂ (ଆ)—ହାରାମ୍ ଜାଦ୍
Hār(ā)m jādā(jiādā) (ଦେଖ)—Hārām-jād(See)

ହାର ମାଳ—ଦେ· ବି—(ଏକାର୍ଥକ ସହଚର)—୧ । ହାର ବା ମାଳା=
Hāra mālā 1. Garland or necklace. ୨ । ବହୁସଂଖ୍ୟକ ହାର—2. Many garlands or necklaces.
हारमाला हारमाला

ହାର ଯଷ୍ଟି—ସ. ବି (୬ଷ୍ଠୀ ତତ୍)—ହାରର ମାଳ (ହ. ଶ)—
Hāra jashṭi String of a necklace.

ହାର ଲଗା(ଗେ)ଇବା—ଦେ କ୍ରି—୧ । ହାର ଘିନିବା (ଦେଖ)—
Hāra lagā(ge)ibā 1. Hāra ghinibā (See)
୨ । ହାର ପିନ୍ଧାଇବା (ଦେଖ)—2. Hāra. pindhāibā (See).

ହାର ଲାଗି—ଦେ. ବି—ହାରଦ୍ୱାରା ଅଲଂକରଣ; ହାର ପରିଧାନ—
Hāra lagi Wearing of a necklace. ଦେ.ବିଣ—ହାର ପିନ୍ଧିଥିବା—Wearing a necklace.
हारपरा हारपहनाई
(ହାର ହୁଲଗି—ବ୍ୟପଶ୍ଚିମ)

ହାର ସ୍ଥଳ—ଦେ.ବି—ହାର ପଡ଼ିବାର ସ୍ଥାନ; ହୃଦୟ—The heart;
Hāra sthaḷa breast; bosom. [ଦ୍ର—ହାରସ୍ଥଳେ ରଖୁଥିବ ଉତେ ନିତି — କବିସମ୍ରାଟ. ଉପେନ୍ଦ୍ର]
हारेवस्थान हारकीजगह

ହାର ହା(ହୂ)ରା—ସ. ବି—କପିଳ ଦ୍ରାକ୍ଷା (ରାଜନିର୍ଘଣ୍ଟ)—
Hāra hā (hū)rā Brown grape.
[ହାରହୂରକା—ଅନ୍ୟରୂପ]

ହାରହୂର—ସଂ ବି—ମଦ୍ୟ (ହେମଚନ୍ଦ୍ର)—
Hārahūara Wine.

ହାରହୂରା—ସଂ. ବି—ଦ୍ରାକ୍ଷା (ହଲାୟୁଧ)—
Hārahūarā Grape.

ହାରି—ସଂ. ବିଣ—ହାରର ସ୍ତ୍ରୀ ଲିଙ୍ଗ—Feminine of 'Hāra'
Hāri ଦେ. ବି—୧ । ହାର; ମାଳ—1. Necklace, garland. [ଦ୍ର—ଭୁଜପଞ୍ଜରେ ମୋ ହୃଦୟ ମର୍ଣ୍ଣିମଣି ହାରିରେ—କବିସୂର୍ଯ୍ୟ ସଙ୍ଗୀତ] ୨ । ସ୍ତ୍ରୀ)—ହାରମଣିର

ଡାକନାମ—4. Nickname of 'Hārāmaṇi'

ବିଶ—୧ । (ବଙ୍ଗଳାରୁ ଅନୁକୃତ) ଅପହୃତ—1. Stolen. ୨ । ହଜିଥିବା—2. Lost. [ବ୍ର—ଏ ଅର୍ଥରେ ଏ ଶବ୍ଦ ବଙ୍ଗଳା; କିନ୍ତୁ ଏହା ଓଡ଼ିଆ ଭାଷାରେ କ୍ରମଶଃ ବ୍ୟବହୃତ ହୋଇ ଚାଲିଛି । ଯଥା—ହାରାଧନ; ହାରାମଣି ।]

ହାରାଧନ—ଦେ.ବି—(ବଙ୍ଗଳାରୁ ଅନୁକୃତ; ସଂ. ହୃତଧନ) ୧ । ଅପ-
Hārā dhana ହୃତ ଧନ—1. Stolen property. ୨ । ହଜିଥିବା ଧନ—2. Missing property. ୩ । (ପୁଂ)—ଲୋକଙ୍କୁ ଦିଆଯିବା ନାମ—3. A name
हाराधन হারাধন given to males.

ହାରାବ—ସଂ. ବି—ଶୋକବ୍ୟଞ୍ଜକ ଲୋକର ହାହାକାର; ହାହାକାର;
Hārāba ହାୟ୍ ହାୟ୍ ଶବ୍ଦ—Lamentation; wailing exclamation. [ଉ—ହାରାବରେ ଅଛି ପୂରି ହେ ବଣୀଧାରୀ—କବିସୂର୍ଯ୍ୟ. ଚମ୍ପୂ ଗୀତ]

ହାରାବଲ୍ (ଲ)—ଦେ.ବି (ତୁର୍କୀ ହରାବଲ୍)—୧ । ସେନାର ଅଗ୍ର
Hārābal (la) ଭାଗ; ଯଉମାନଙ୍କର ଯେଉଁ ଦଳ ସେନାଙ୍କ ଆଗରେ ରହନ୍ତି—1. The advance guard of an army; vanguard; the front line of an army. ୨ । ଡକାଇତମାନଙ୍କର ଯେଉଁ ଦଳ ଲୁଟି କରିବା ବ୍ୟକ୍ତିମାନଙ୍କର ଖଣ୍ଡୁଡ଼ିକ ଆଗରେ ରହନ୍ତି ଓ ଶତ୍ରୁଙ୍କୁ ଜଗନ୍ତି—2. The advance guard of a body of robbers or dacoits.

ହାରାବଳୀ—ସଂ.ବି—(ଷଷ୍ଠୀତତ୍, ହାର+ଆବଳୀ=ସମୂହ)—୧। ହାର
Hārābali ସମୂହ; ହାର ଶ୍ରେଣୀ—1. A collection of garlands or necklaces. ୨ । ବହୁ ସୋର ଥିବା ହାର—2. Many-stringed necklace. ୩ । (ନାମ) ସଂସ୍କୃତ ଗ୍ରନ୍ଥକାର ପୁରୁଷୋତ୍ତମକୃତ କୋଷ ବା ଅଭିଧାନ—3. The title of a Sanskrit ditctionary by one Purushcttama.

ହାରାମ୍—ଦେ. ବିଣ—(ଅ ହରାମ୍)—୧ । କୋରାନ୍ କରୁକ;
Hārām ଶାସ୍ତ୍ର ନିଷିଦ୍ଧ (ପଦାର୍ଥ, ଖାଦ୍ୟ ବା କର୍ମ)—
(ହଲାଲ୍—ବିପରୀତ) 1 (thing, food or act) Prohibited by the Koran or the Scripture
हाराम হারাম of the Mahomedans. ୨ । ଅପବିତ୍ର (ଖାଦ୍ୟ ବା ପଦାର୍ଥ)—2 Unholy; impure (food or thing.) [ବ୍ର—ଛିଙ୍କା କରକ ଦେଇ ଖୁଧ ନେବା, ଜୀବକୁ ହଲାଲ୍ ନ କରି ଖାଇବା ଆଦି ମୁସଲମାନ ଧର୍ମଶାସ୍ତ୍ର ଅନୁସାରେ ହାରାମ୍ ଅଟେ ।] ବି—୧ । (ମୁସଲମାନଙ୍କ ଅସ୍ପୃଶ୍ୟ ଜନ୍ତୁ)—ଶୂକର—1. Hog. ୨ । ଧର୍ମଶାସ୍ତ୍ର ଅନୁସାରେ ନିଷିଦ୍ଧ ବସ୍ତୁ—2. Any prohibited thing. ୩ । ବ୍ୟଭିଚାର—3 Adultery. ୪ । ପାପ—4. Sin. ୫ । ଅଧର୍ମ—5. Impiety. [ବ୍ର—ମୁସଲମାନମାନଙ୍କ ଧର୍ମଶାସ୍ତ୍ର ବା କୋରାନରେ ଯେଉଁ ଖାଦ୍ୟ ନିଷିଦ୍ଧ (ଯଥା, ହଲାଲ୍ ହୋଇ ନ ଥିବା ଜୀବର ମାଂସ), ଯେଉଁ ଧନାର୍ଜନ ନିଷିଦ୍ଧ (ଯଥା—ଋଣ ଦିଆଯାଇଥିବା ଧନ ପାଇଁ ସୁଧ ଗ୍ରହଣ), ଯେଉଁ କର୍ମ ନିଷିଦ୍ଧ (ଯଥା, ବ୍ୟଭିଚାର, ସୁରାପାନ), ଯେଉଁ ଦ୍ରବ୍ୟର ବ୍ୟବହାର ନିଷିଦ୍ଧ (ଯଥା, ମଦ୍ୟ), ଯେଉଁ ବସ୍ତୁ ବା ଜୀବ ଅପବିତ୍ର (ଯଥା—ଘୁଷୁରି) ଓ ଯେଉଁ କର୍ମ ପାପଜନକ, ସେ ସବୁକୁ ହରାମ୍ ବୋଲାଯାଏ । ଯେ ହରାମ୍ ଦ୍ରବ୍ୟ ବ୍ୟବହାର ବା ଧନ ଅର୍ଜନ ବା କର୍ମ କରେ ତାକୁ ହରାମ୍ ଖୋର୍ ବୋଲାଯାଏ ।]

ହାରାମ୍‌କାର୍—ଦେ. ବିଣ—(ଅ. ହରାମ୍+ଫା. କାର୍)—
Hārām kār ୧ । ଶାସ୍ତ୍ର ନିଷିଦ୍ଧ କର୍ମକାରୀ—1. Doing
हारामकार forbidden acts. ୨ । ବ୍ୟଭିଚାରୀ (ହି. ଶ)—
हरामकार 2. Adulterous.

ହାରାମ୍‌କାରୀ—ଦେ.ବି—(ଅ. ହରାମ୍+ଫା କାରୀ) ୧ । ନିଷିଦ୍ଧକର୍ମ
Hārām kāri କରଣ—1. The doing of forbidden
हारामकारी acts. ୨ । ବ୍ୟଭିଚାର—2. Adultery.
हरामकारी ୩ । ପାପ—3. Sin.

ହାରାମଖୋର୍—ଦେ. ବିଣ ପୁଂ—(ଅ ହରାମ୍+ଫା. ଖୋର୍)—
Hārām-khor ୧ । ନିଷିଦ୍ଧ ଖାଦ୍ୟ ଭୋଜନକାରୀ (ପୁରୁଷ)—
हारामखोर 1. (a male) Partaking of prohibited
हरामखोर food. ୨ । କୋରାନ୍ ଅନୁସାରେ ନିଷିଦ୍ଧ ସୁଧ ଗ୍ରହଣକାରୀ (ବ୍ୟକ୍ତି)—2. (a person) Enjoying or taking interest on money lent. ୩ ।
(ହାରାମ୍ ଖୋରଣୀ—ସ୍ତ୍ରୀ) ମୋଫତ୍‌ଖୋର୍ (ହି. ଶ)—3. Living on the earning of others ୪ । ପାପଲବ୍ଧ ଧନ ଅର୍ଜନକାରୀ ବା ଭୋଗକାରୀ—4. Earning or living on the money earned by sin. ୫ । ଅଳସୁଆ—5. Idle.

ହାରାମ୍‌ଖୋରୀ—ଦେ. ବି (ଅ ହରାମ୍+ଫା ଖୋରୀ)—୧ । ନିଷିଦ୍ଧ
Hārām khori ଦ୍ରବ୍ୟ ଭୋଜନ କରିବା ଅବସ୍ଥା ବା ଅଭ୍ୟାସ—
हारामखोरी 1. Habitual partaking of prohibited
हरामखोरी food. ୨ । ପାପାର୍ଜିତ ଧନର ଭୋଗ—2. Enjoyment of the earnings of sin.

ହାରାମ୍‌ଜାଦ୍ (ଦା)—ଦେ.ବିଣ.ପୁ—(ଅ ହରାମ୍+ଫା. ଜାଦା=ଜାତ
Hārām jād (dā) ବ୍ୟକ୍ତି; ତୁଳ ନବାବ୍ ଜାଦା=ନବାବଙ୍କ
(ହାରାମ୍ ଜାଦୀ—ଦେ. ରୂପ) ପୁତ୍ର) ୧ । ବ୍ୟଭିଚାରୋତ୍ପନ୍ନ, ଜାରଜ—1. Illegitimate; bastard. ୨ ।
(ହାରାମ୍ ଜାଦୀ—ସ୍ତ୍ରୀ) ନୀଚଜାତ; ନୀଚୋଦ୍ଭବ—2. Low-born; base-born. ୩ । ଶାସ୍ତ୍ର ନିଷିଦ୍ଧ ବିବାହୋଦ୍ଭୂତ (ସନ୍ତାନ)—3. (Child) Born of a prohibited marriage. ୪। ପାଜି; ଦୁର୍ବୃତ୍ତ; ଦୁଷ୍ଟ—4 Wicked; wanton; debased. ୫ । ଶାସ୍ତ୍ରନିଷିଦ୍ଧ କର୍ମକାରୀ

(ବ୍ୟକ୍ତି)—୨. (Person) Doing prohibited
হারামজাদা हरामज़ादा acts.

ହାରାମ୍‌ଜାଦୀ—ବୈଦେ. ବି—(ଅ ହରମ୍ ଜାଦ୍‌ଗୀ) ୧ । ଦୁଷ୍ଟାମି—
Hārām-jādi 1. Wickedness. ୨ । ବର୍ଣ୍ଣସଙ୍କରତ୍ୱ
2. Illegitimacy. ବିଣ—ସ୍ତ୍ରୀ (ଅ ହରମ୍‌ଜାଦୀ)—
ହାରମ୍‌ଜାଦାର ସ୍ତ୍ରୀଲିଙ୍ଗ—The feminine of
হারামজাদী हरामज़ादी 'Hārām jādā'.

ହାରାମ୍ ପିଲ୍ଲା(ବଚ୍ଚା)—ଦେ. ବି—(ହିନ୍ଦିରୁ ଅନୁକୃତ, ଗାଳିରେ ବ୍ୟବହୃତ)
Hārām pillā(bachchā) ବର୍ଣ୍ଣସଙ୍କର; ଜାରଜ ସନ୍ତାନ—
হারামের বাচ্চা हरामकापिल्ला A bastara.

ହା ରାମ—ସଂ. ଅ—(ଶୋକାର୍ଥକ)—(ରାମଚନ୍ଦ୍ରଙ୍କ ବନ ଗମନ ପରେ
Hā rāma ଦଶରଥଙ୍କର ଶୋକୋକ୍ତି) ଅହୋ ରାମଚନ୍ଦ୍ର!—Alas!
my Rāmachandra! (ଉ—ହାରାମ ହାରାମ କହି
ବହିଲ—ମଧୁସୂଦନ ଶ୍ରୀରାମ ବନବାସ ।

ହାରା ମଣି ମାଣିକ—ଦେ. ବି—୧ । ଅପହୃତ ମଣି—1. Stolen gem.
Hārāmaṇi (māṇika) ୨। ହଜିଥିବା ମଣି—2. Missing.
হারামণি gem ୩ । ସ୍ତ୍ରୀଲୋକଙ୍କୁ ପ୍ରଦତ୍ତ ନାମ—A name
खोयाहुआमणि given to females.

ହାରାମି—ବୈଦେ. ବି—(ଅ. ହରମ୍)—ଶାସ୍ତ୍ର ନିଷିଦ୍ଧ କାର୍ଯ୍ୟ କରିବା—
Hārāmi Doing of prohibited act. ବୈଦେ.ବିଣ—୧ ।
হারামি ବ୍ୟଭିଚାରୋତ୍ପନ୍ନ—1. Born out of wedlock
हरामी ୨ । ପାଜି; ଦୁଷ୍ଟ (ବ୍ୟ. ଶ)—3. Wicked

ହାରାହାରି—ଦେ. ବି—(ସଂ. ହରଣ=ଭାଗ କରଣ)—୧ । ବହୁସଂଖ୍ୟକ
Hārāhāri ପଦାର୍ଥର ମୂଲ୍ୟ ଅବଧିକୁ ମିଶାଇ ଯୋଗଫଳକୁ
হারাহারি ପଦାର୍ଥର ସଂଖ୍ୟାଦ୍ୱାରା ହରଣ କରି ପ୍ରତି ପଦାର୍ଥର ମୂଲ୍ୟ
हाराहारी ସ୍ଥିର କରିବା ରୂପ ଗଣନା; ମୋଟାମୋଟି ହିସାବ;
ବଣ୍ଟଣି; ହାରାହାରି—1. Calcutation on the
average; reteable calculation. ୨। (କଚେରୀ)
—ଦେଣଦାରଙ୍କଠାରୁ ପ୍ରାପ୍ୟ ମହାଜନମାନଙ୍କ ଦେଣାର
ପରିମାଣ ହିସାବ କରି ଦେଣଦାରଠାରୁ ମିଳିଥିବା ସମ୍ପତ୍ତିର
ମୂଲ୍ୟକୁ ମୋଟ କରି ସମ୍ପତ୍ତିର ଅନୁପାତକୁ ଦୃଷ୍ଟି ପ୍ରତ୍ୟେକ
ମହାଜନଙ୍କ ଦେଣାକୁ ବଣ୍ଟନ କରିବାରୂପ କର୍ମ;
ଦେଣଦାରଙ୍କର ଦେୟ ଟଙ୍କା ସର୍ବସମେତ କେତେ ଓ
ତାଙ୍କର ସମ୍ପତ୍ତିର ସର୍ବସମେତ ମୂଲ୍ୟ କେତେ, ଏହା ସ୍ଥିର
କରି ଦେଣାର ଅନୁପାତରେ ମହାଜନମାନେ ଟଙ୍କାକେ ବା
ଶତକଡ଼ା କେତେ ପାଇବେ,ଏଥିର ନିରୂପଣ—2.(Court
language) Rateable distribution of the
assets of a debter amongst the creditors
୩ । ହାର୍ ଜିତ୍; ଯଥାକ୍ରମେ ବା ବାରବାର ହାରିବା ଓ
ଜିତିବା—3. Successive defeats and victories.
ବିଣ—୧ । ଅନୁପାତକ—1. Rateable
୨ । ମୋଟାମୋଟି ବଣ୍ଟଣି ଅନୁସାରେ ଗଣନା କରାଯିବା—
2. Average. [ଦ୍ର—କୌଣସି ବିଦ୍ୟାଳୟର
ହାରାହାରି ଛାତ୍ରସଂଖ୍ୟା ସ୍ଥିର କରିବାକୁ ହେଲେ ପ୍ରତି
ମାସରେ କେତେ ପିଲା ସ୍କୁଲରେ ଥିଲେ ତାହା ୧୨ ମାସର
ମୋଟ କରି ତାକୁ ୧୨ରେ ହରଣ କଲେ ଭାଗଫଳ ଯାହା
ପଡ଼େ ତାହା ହାରାହାରି ଛାତ୍ରସଂଖ୍ୟା ।] କ୍ରି. ବିଣ—
ଅନୁପାତ ହିସାବରେ; ମୋଟାମୋଟିରେ—On the
average. [ଦ୍ର—ପୃଥିବୀର ଅନ୍ୟ କେତେକ ସଭ୍ୟ
ଦେଶମାନଙ୍କ ଅବସ୍ଥା ସଙ୍ଗେ ଭାରତର ଅବସ୍ଥା ତୁଳନା
କରିବାରେ ନିମ୍ନଲିଖିତ ହାରାହାରି ତାଲିକା ସାହାଯ୍ୟ
କରିପାରେ (ସହକାର ପତ୍ରିକା)—

ଲୋକ ସଂଖ୍ୟା ଅନୁପାତ;

| ହଜାରକ ମଧ୍ୟରେ | ଲଣ୍ଡନ | ଆମେରିକା | ଜାପାନ | ଭାରତବର୍ଷ |
|---|---|---|---|---|
| ଶିକ୍ଷିତଙ୍କ ହାର | ୯୩୫ଜଣ | ୯୫୫ଜଣ | ୯୭୮ଜଣ | ୫୨ଜଣ |
| ଜନ୍ମହାର | ୨୯ | ୨୨ | ୨୪ | ୨୨ |
| ମୃତ୍ୟୁର ହାର | ୧୨ | ୧୦ | ୧୫ | ୨୫ |
| ଶିଶୁ ମୃତ୍ୟୁ | ୭୨ | ୫୪ | ୧୦୫ | ୧୮୫ |
| ହାରାହାରି ପରମାୟୁ<br>ପ୍ରତ୍ୟେକ ଲୋକର | ୫୦ବର୍ଷ | ୫୬ ବର୍ଷ | ୪୭ ବର୍ଷ | ୨୫ବର୍ଷ |
| ହାରାହାରି ଧନ<br>ପ୍ରତ୍ୟେକ ଲୋକର | ୩୫୦୦ଟଙ୍କା | ୨୬୫୦ଟଙ୍କା | ୬୮୬୦ଟଙ୍କା | ୨୭୮ଟଙ୍କା |
| ହାରାହାରି ଏକଦିନର ଆୟ ଟଂ୍ୟ | ଟ ୭ ୍ୟ | ଟ ୪ ୵ | ଟ୦/୭ | |

ହାରାହାରି ଉପସ୍ଥାନ ସଂଖ୍ୟା—ଦେ. ବି—୧୨ ମାସର ପ୍ରତି କାର୍ଯ୍ୟ
Hārāhāri upasthāna saṁkhyā ଦିବସରେ
হারাহারিউপস্থান সংখ্যা ଯେତିକି ପିଲା ବିଦ୍ୟାଳୟରେ
हाराहारि उपस्थान संख्या ଉପସ୍ଥିତ ହୋଇ ଥାଆନ୍ତି,
ସେହି ଦୈନିକ ଉପସ୍ଥାନ ସଂଖ୍ୟାକୁ ମୋଟ କରି
ଯୋଗଫଳକୁ ଉକ୍ତ ମାସର କାର୍ଯ୍ୟ-ଦିବସମାନଙ୍କ ସଂଖ୍ୟାରେ
ହରିଲେ ଯାହା ଫଳ ପଡ଼େ—Average attendance
in a school. [ଦ୍ର—ମାସରେ ସ୍କୁଲ ଖୋଲା ଥିବା
ଦିନମାନଙ୍କର ଉପସ୍ଥାନ ସଂଖ୍ୟାକୁ ମୋଟ କରି ଉକ୍ତ ମାସର
କାର୍ଯ୍ୟ ଦିବସମାନଙ୍କ ସଂଖ୍ୟା ଦ୍ୱାରା ହରିଲେ ଭାଗଫଳରୁ
ଦୈନିକ ଉପସ୍ଥାନର 'ହାରାହାରି' ଜଣାପଡ଼େ ।
୧୨ ମାସର ଉପସ୍ଥାନ ସଂଖ୍ୟାକୁ ମୋଟ କରି
ଯୋଗଫଳକୁ ୧୨ ରେ ହରିଲେ ମାସିକ ହାରାହାରି
ଉପସ୍ଥାନସଂଖ୍ୟା ଜଣାପଡ଼େ ।
ଏହିପରି କେତେଟିରେ ବିଦ୍ୟାଳୟର ହାରାହାରି
ଛାତ୍ର ସଂଖ୍ୟା average roll number, ହାରାହାରି
ଛାତ୍ରଦତ୍ତ ବେତନ average realisation of
schooling fees, ହାରାହାରି ଚାନ୍ଦା ଅସୁଲ—
average subscription ଆଦି ଗଣନା କରାଯାଏ ।]

ହାରାହାରି କରିବା—ଦେ. କ୍ରି—୧ । ମୋଟା ମୋଟି ବା ମୋଟାମୋଟି
Hārā hāri karibā ହିସାବ କରିବା—1. To make an
হারাহারি করা average calculation. ୨ । ବଣ୍ଟଣି
हाराहारि करना ହିସାବରେ ବହୁ ଲୋକଙ୍କ ମଧ୍ୟରେ ବାଣ୍ଟିଦେବା

2. To make rateable distribution amongst many; to distribute rateably. ୩। ଭାଗାଭାଗି କରିବା; ଏକ ପଦାର୍ଥକୁ ବହୁଲୋକ ବାଣ୍ଟି ନେବା—3. To have a thing apportioned amongst many.

ହାରାହାରି ମକଦ(ଦ୍ଦ)ମା—ଦେ. ବି—(ଉଚରଅ)—ଜଣେ ଲୋକ ବାଧ Hārāhāri makada(dda)mā ହୋଇ ତାହାଙ୍କ ନିଜର ଦେୟ হাবাহাবি মকদ্দমা ଓ ଅନ୍ୟ ସରିକ୍‌ଦାରମାନଙ୍କ ଦେୟ ସମୁଦାୟ हाराहारी मुकदमा ଟଙ୍କା ଦେଇସାରି ସେ ଟଙ୍କାରୁ ନିଜର ଦେୟ ଟଙ୍କା ବାଦ୍ ଦିଅସାଇ ଅବଶିଷ୍ଟ ଟଙ୍କା ଅନ୍ୟ ଲୋକଙ୍କଠାରୁ ଯାହା ଅଦାୟ ପାଇବା ଉଚିତ, ତାହା ଆଦାୟ କରିବା ପାଇଁ ଅନ୍ୟ ଦେଣଦାରମାନଙ୍କ ନାମରେ ଯେଉଁ ମକଦମା ଦାଏର କରେ—Suit for rateable contribution brought by a person who has been obliged to pay money jointly due from him and from some others, for getting back the sum rateably due from the other persons. [ଦ୍ର—ମନେ କରନ୍ତୁ, ମୋ ଉପରେ ଓ ମୋର ଅନ୍ୟ ୩ ଭାଇଙ୍କ ଉପରେ ଜଣେ ମହାଜନଙ୍କର ଏକ ହଜାର ଟଙ୍କା ପାଇଁ ଗୋଟିଏ ଇଜମାଲି ଡିକ୍ରୀ ହୋଇଅଛି। ମହାଜନ ଡିକ୍ରୀଜାରି କରି ଏହି ସମୁଦାୟ ଏକ ହଜାର ଟଙ୍କା ଅଦାୟ କରିବା ପାଇଁ କେବଳ ମୋ ସମ୍ପତ୍ତିକୁ ନିଲାମରେ ଆଣିଲେ। ଅତଏବ ମୋ ନିଜର ସମ୍ପତ୍ତି ରକ୍ଷା କରିବା ପାଇଁ ମୁଁ ବାଧ୍ୟ ହୋଇ ଡିକ୍ରୀ ହୋଇଥିବା ଏକ ହଜାର ଟଙ୍କା ମହାଜନଙ୍କୁ ଦେଲି। କିନ୍ତୁ ଏ ଟଙ୍କାରେ ମୋର ଦେୟ ଅଢ଼େଇ ଶତ ଟଙ୍କା ଓ ମୋର ଅନ୍ୟ ୩ ଭାଇଙ୍କ ଦେୟ ୭୫୦ ଟଙ୍କା। ମୁଁ ଦେଇଥିବା ହଜାରେ ଟଙ୍କାରୁ ସେମାନଙ୍କ ଦେୟ ଟ ୭୫୦୮ ପାଇବା ପାଇଁ ୩ ଭାଇଙ୍କ ନାମରେ ଯେଉଁ ମକଦମା ଦାଏର କରିବ ତାକୁ ହାରହାରି ମକଦମା ବୋଲିଯିବ।]

ହାରା ହେବା—ପ୍ରାଦେ (ଭଦ୍ରକ ବାଲେଶ୍ୱର) କି—ହଜିବା—To Hārā hebā be missing; to be lost. (ଯଥା ମୋର ଗୋଟିଏ ଟଙ୍କା ହାରା ହୋଇଛି।]

ହାରି—ସଂ.ବି—(ହୃ ଧାତୁ ଣିଚ+କର୍ତ୍ତ ଇ)—୧। ପଥିକ ସନ୍ତାନ (ମେଦିନୀ) Hāri 1. The offspring of a traveller. ୨। ପ୍ରବାସୀ ବ୍ୟକ୍ତିର ସେବକ ସନ୍ତାନ—2. The illegitimate offspring of an absent person. ୩। ପଥିକ ଶ୍ରେଣୀ—3. A group of travellers. ୪। (+ ଭାବ. ଇ) ଦ୍ୟୂତାଦିରେ ପରାଜୟ (ମେଦିନୀ)—4. Defeat in gambling. ବିଣ—ମନୋହର; ସୁନ୍ଦର—Charming; handsome. ଦେ. ବି—(ସଂ. ହୃ ଧାତୁ हाब ଣିଚ୍ ହାର୍ ଧାତୁ)—୧। ଅକୃତକାର୍ଯ୍ୟ ହେବା; ମନୋ- असफलता ବାଞ୍ଛାର ଅସିଦ୍ଧି—1. Failure; foil; unfulfil- नालिश, फरीयाद ment of one's plans. ୨। କର୍ତ୍ତୃପକ୍ଷ ହାସ ନିକଟରେ ଗୁହାରି; ଫେରାଦ; ଅଭିଯୋଗ—2. Complaint. ବିଣ—୧। ଊଣା; ନ୍ୟୂନ—1. Less; smaller; younger. [ଦ୍ର—କେହୁ ଦ୍ରୁକେ ବୟସରେ ଭାରି, କେହୁ ଦ୍ରୁକେ ବୟସରେ ହାରି। ପାନକୃଷ୍ଣ—ରସକଲ୍ଲୋଳ।] ୨। ପରାଜିତ—2. Defeated. ଗ୍ରା. ଅ—ହାରିକି হেবো हाराहुआ (ଦେଖ)—Hāriki. (See)

ହାରିଅ—ଦେ. ବିଣ. ପୁଂ—ହାର ପରିଧାନ କରିଥିବା (ବ୍ୟକ୍ତି)— Hāriā (a person) Wearing necklace. (ହାରେଇ—ସ୍ତ୍ରୀ) হারপরা हारपहननेवाला

ହାରିକଣ୍ଠ—ସଂ. ବିଣ. ପୁଂ—(ବହୁବ୍ରୀହି, ହାରି=ମନୋହର ଅଟେ କଣ୍ଠ Hārikanṭha ଯାହାର)—୧। ମନୋହର ସ୍ୱରବିଶିଷ୍ଟ—1. (ହାରିକଣ୍ଠୀ—ସ୍ତ୍ରୀ) Having a sweet voice; having melodious voice. ୨। (ହାର+ଇନ୍=ହାରିନ୍= ହାରଯୁକ୍ତ ଅଟେ କଣ୍ଠ ଯାହାର)—ଯାହା କଣ୍ଠରେ ହାର ପଡ଼ିଛି—2. Wearing a necklace. ବି—କୋକିଳ —The Indian cuckoo.

ହାରିକା—ସଂ ବିଣ. ସ୍ତ୍ରୀ—ହାରକ+ଆ—ହାରକର ସ୍ତ୍ରୀଲିଙ୍ଗ— Hārikā Feminine of Hāraka. ଗ୍ରା ଅ—୧। ହେରିକା (ଦେଖ)—Herikā (See) ୨। ହାରିକା (ଦେଖ)— 2. Harikā (See)

ହାରିକି—ଗ୍ରା (ଭଦ୍ରକ) ଅ - ଠାରୁ; ଅପେକ୍ଷା; ହାଲିକ— Hāriki চেয়ে, থেকে से Than.

ହାରିକେନ୍ (ଇତ୍ୟାଦି)—ବୈଦେ. ବି—ହରିକେନ୍ ଇତ୍ୟାଦି (ଦେଖ) Hāriken (etc) Hariken etc. (See)

ହାରି ଗୁହାରି—ଦେ. ବି (ଏକାର୍ଥକ ସହଚର ଶବ୍ଦ)—୧। ଫେରାଦ Hāri guhāri ଫେରାଦ; କର୍ତ୍ତୃପକ୍ଷ ବା ପ୍ରଭୁଙ୍କ ନିକଟରେ ଉପ- नालिशफरियाद ସ୍ଥାପିତ ଅଭିଯୋଗ—1. Complaint lodहारी गुहारी ged before an authority. উদ্ধাবকর্ত্তা [ଦ୍ର—ପ୍ରଜା ପାଇଁ ଅକାରତ ସମ୍ରାଟଙ୍କ ଦ୍ୱାର विपद्‌से रक्षा करनेवाला ଶୁଣିବାକୁ ପ୍ରଜାଙ୍କର ହାରି ବା ଗୁହାରି —ଚିନ୍ତାମଣି ବିଜୟାଦିତ୍ୟ।] ୨। କୌଣସି ବ୍ୟକ୍ତିକୁ ବିପଦରୁ ବା ପରାଜୟରୁ ରକ୍ଷା କରିବା ବ୍ୟକ୍ତି—2. A person who saves one from danger or defeat. ୩। ବିପନ୍ନର ଗୁହାରି ଶୁଣି ପ୍ରତିକାର କରିବା ବ୍ୟକ୍ତି—3. A person who redresses one's wrongs after hearing his complaint. (ଯଥା—ତାର ହାରି ଗୁହାରି କେହି ନାହିଁ।)

ହାରି ଗୁହାରିଆ—ଦେ. ବିଣ—ଅଭିଯୋଗକାରୀ (ବ୍ୟକ୍ତି); ପ୍ରତୀକାରାର୍ଥ Hāri guhāriā କର୍ତ୍ତୃପକ୍ଷଙ୍କ ନିକଟ ଅବେଦନକାରୀ—Com- অভিযোগকাবী, ফবিয়াদী plainant; applying to the अभियोगकारी, फरियादी authorities for redress.

ହାରି ଜିଣ(ଣା, ଣି, ତ୍, ତା, ତି, ଦ୍, ଦା, ଦି,—ଚଦେ. ବି— Hāri jiṇa(ṇā, ṇi, t, tā, ti, d, dā, di) ହାରିଜିଣ୍ (ଦେଖ)—Hār-jiṇ (See)

[ଉ—ସଙ୍ଗ ମେଲେ ନାହିଁ କାମ୍ ହାରିକଣ୍(ଡ଼) ନାହିଁ ବା କାମ୍—ପ୍ରଚଳନ ।]

ହାରିଣିକ—ସଂ. ବିଂ. ପୁଂ ( ହରିଣ + ଇକ )—୧ । ହରିଣ ଘାତକ—
Hāriṇika 1 A person who kills deer.
୨ । ବ୍ୟାଧ; ଶିକାରୀ—2. A huntsman; hunter.

ହାରିଣୀ—ସ. ବିଶେ. ସ୍ତ୍ରୀ (ହାରିନ୍ + ସ୍ତ୍ରୀ. ଈ)—ହାରୀର ସ୍ତ୍ରୀ ଲିଙ୍ଗ—
Hāriṇī Feminine of 'Hārī'.
[ଦ୍ର—ଏ ଶବ୍ଦ ପ୍ରାୟଶଃ ଅନ୍ୟ ଉପପଦସହ ବ୍ୟବହୃତ ହୁଏ ଯଥା—ମନୋହାରିଣୀ ।]

ହାରିତ—ସ. ବି (ହରିତ + ଅ)—୧ । ହରଡ଼ ଚଢ଼େଇ ( ଦେଖ )
Hārita 1. Hararda chardhei. ( See )
୨। ହରିଦ୍ବର୍ଣ୍ଣ—2. Emerald colour. ୩। ଶୁକ ପକ୍ଷୀ—
3. The parrot. ୪ । ହାରିତସ ( ଦେଖ )—
4. Hāritasa (See) ୫ । ଏକ ନଗଣ ଓ ଦୁଇ ଗୁରୁ ବର୍ଣ୍ଣ-ବିଶିଷ୍ଟ ବର୍ଣ୍ଣବୃତ୍ତ ବିଶେଷ (ହ୍ର. ଶ) – 5. Name of Sanscrit metre. ବିଣ (ହୃ ଧାତୁ ଣିଚ୍ ହାରି ଧାତୁ + କର୍ମ. କ୍ତ)—୧ । ପରାଜିତ—1. Defeated; vanquished. ୨। ଅପହୃତ—2. Stolen. ୩। ଶ୍ୟାମ—
3. Green. ୪ । ହଜିଥିବା (ହ୍ର. ଶ)—4. Missing.
୫ । ବଂଚିତ (ହ୍ର. ଶ)—5. Defrauded. ୬। ମୋହିତ; ମୁଗ୍ଧ (ହ୍ର. ଶ)—6. Charmed; enchanted. ୭। ହରଣ କରା ଯାଇଥିବା (ହ୍ର. ଶ)—7. Caused to be stolen or taken away.

ହାରିତକ—ସ ବି (ହରିତ + ଅ + କ)—ଶାକ ( ଶବ୍ଦ ରତ୍ନାବଳୀ )—
Hāritaka Green vegetable used as salad.

ହାରିତସ—ଦେ. ବି (ସ. ହାରିତ)—୧ । ବ୍ରାହ୍ମଣମାନଙ୍କ ଗୋତ୍ରପ୍ରବର୍ତ୍ତକ
Hāritasa ମୁନି ବିଶେଷ—1. One of the sages who
हारित gave name to a family of Brāhmaṇas.
হারিত ୨ । ବ୍ରାହ୍ମଣମାନଙ୍କ ଗୋତ୍ର ବିଶେଷ—2. Name of a clan or family amongst the Brāhmaṇas.
[ଦ୍ର—ଗୋତ୍ରନାମ କହିଲା ବେଳେ ଗୋତ୍ରପ୍ରବର୍ତ୍ତକ ଋଷିଙ୍କ ନାମରେ ଗୋଟିଏ 'ସ' ଲଗାଇ କହିବାର ରୀତି ଚଳି ଆସିଅଛି । କାରଣ, ବସ୍ତୁତରେ 'ଅମୁକ—ସଗୋତ୍ରଃ ଶର୍ମାନ୍' ଇତ୍ୟାଦି କୁହାଯାଏ ।]

ହାରିତସ ଆଚାର୍ଯ୍ୟ—ଦେ.ବି—ହାରିତ ଗୋତ୍ରଜ ଓ ଅଚାର୍ଯ୍ୟ ବଂଶୋପାଧି-
Hāritasa āchārjya ଧାରୀ ବ୍ରାହ୍ମଣ—A Brāhmaṇa having the family-title of Āchārjya and descended from sage Hārita.

ହାରିଦ୍ର—ସ. ବିଣ (ହରିଦ୍ରା + ରଞ୍ଜନାଦି ଅର୍ଥରେ- ଅ)—୧। ହରିଦ୍ରା-
Hāridra ରଞ୍ଜିତ ( ମେଦିନୀ )—1. Smeared with turmeric. ୨ । ହଳଦିଆ—2. Yellow. ବି—୧ । ହରିଦ୍ରାବର୍ଣ୍ଣ—1. Yellow colour. ୨ । ହରିଦ୍ରାବିଷ; ହଳଦୀ ପରି ମୂଳବିଶିଷ୍ଟ ବିଷ ଭେଦ—2. A sort of vegetable poison resembling the turmeric ୩ । କଦମ୍ବ ବୃକ୍ଷ ( ମେଦିନୀ )—3. Neuclea Kadamba ( tree ). ୪ । ଏକ ପ୍ରକାର ପ୍ରମେହ ରୋଗ (ହ୍ର. ଶ) — 4. A kind of gonorrohea.
[ଦ୍ର—ଏ ରୋଗରେ ହଳଦିଆ ପ୍ରସ୍ରାବ ହୁଏ—ହ୍ର. ଶ]

ହାରି ଫେରାଦି—ପ୍ରାଦେ (ସମ୍ବଲପୁର) ବି—ହାରି ଗୁହାରି ( ଦେଖ )
Hāri pherādi Hāri guhāri (See)

ହାରିବା—ଦେ· କ୍ରି (ସ. ହୃ ଧାତୁ ଣିଚ୍ ହାରି ଧାତୁ )—୧ । (ଅକର୍ମକ)
Hāribā ଯୁଦ୍ଧରେ, ପ୍ରତିଦ୍ୱନ୍ଦ୍ୱିତାରେ, ମକଦ୍ଦମାରେ ବା କ୍ରୀଡ଼ାରେ [ହରାଇବା—ପ୍ରଯୋଜକ ରୂପ] ଅନ୍ୟଦ୍ୱାରା ପରାଜିତ ହେବା— [ଜିଣି(ତି)ବା—ବିପରୀତ] 1. To be defeated or van-
हारा হারনা quished in battle, in rivalry, in litigation or in game. [ଉ—ମୁଁ ହାରିଲି ତୋର ଏଠିକି ଗୋ । କବିସୂର୍ଯ୍ୟ. ସଙ୍ଗୀତ]
୨ । (ଅକର୍ମକ) ଅତି ଶୀର୍ଣ୍ଣ ଓ ଦୁର୍ବଳ ହୋଇ ପଡ଼ିବା; ହାଲିଆ ହେବା—2 To become lean and weak. ୩ । ନିଜର ପରାଜୟ ସ୍ୱୀକାର କରିବା— 3. To admit of having been defeated.
हाबान ୪ । (ସକର୍ମକ) ପରାଜିତ ହୋଇ ବାଜି ମାରିଥିବା ସମ୍ପତ୍ତିକୁ
হারনা ବା ପଣକୁ କେତାକୁ ଛାଡ଼ିଦେବା; ହରାଇବା—4.To forfeit a stake or wager after losing a game. [ଉ—ସବୁତ ହାରି ଆମ୍ଭେ ତାହାଙ୍କୁ ଦେଲୁଁ । କୃଷ୍ଣସିଂହ· ମହାଭାରତ ବନ ।] ୫ । (ସକର୍ମକ) ତେଜିବା; ତ୍ୟାଗ କରିବା—5. To give up; to abandon. [ଉ— ସକଳେ କଲେ ଜଳପାନ, ତକ୍ଷଣେ ହାରିଲେ ଜୀବନ । ଜଗନ୍ନାଥ. ଭାଗବତ ।] ୬ । (ସକର୍ମକ) କୌଣସି ପଦାର୍ଥ ବା ଗୁଣ ହରାଇବା; କୌଣସି ପଦାର୍ଥରୁ ଚ୍ୟୁତ ହେବା— 6. To lose; to be devoid of. [ଉ—ଏତେ ଧର୍ମବନ୍ତ ଯେ ହୋଇବ ଅଧର୍ମ, ଖେଳ ବେଳେ ଜ୍ଞାନ ହାରିଲ ବହୁ ଭ୍ରମ । କୃଷ୍ଣସିଂହ. ମହାଭାରତ ବନ ।] ୭। ଅତି ଶ୍ରାନ୍ତ-କ୍ଲାନ୍ତ ହେବା; ଥକିଯିବା—7. To be fatigued.

ହାରିବା ଜିଣି(ତି)ବା—ଦେ. କ୍ରି—ପରାଜିତ ହେବା ଓ ଜୟଲାଭ
Hāribā jiṇi(ti)bā କରିବା— To be defeated and to be victrious. ବି—ହାରଜିତ; ପରାଜୟ ଓ ଜୟ—Defeat and victory.
হারাজিতা हारनाजितना

ହାରି ଯିବା—ଦେ କ୍ରି—୧ । ସମ୍ପୂର୍ଣ୍ଣରୂପେ ପରାସ୍ତ ହେବା—
Hāri jibā 1. To be utterly vanquished.
[ଉ—ଶାଳଙ୍କର ଦୁହିତା ଦେହ ଅତି ଗୋରା, ହାରିବେ ସହିକଲେ ଦେହକୁ ଅପସରା । କୃଷ୍ଣ ସିଂହ ମହାଭାରତ ସଭା ।] ୨ । ଖେଳରେ ପରାଜିତ ହୋଇ ପଣକୁ ପ୍ରତିଦ୍ୱନ୍ଦ୍ୱୀଙ୍କ ଠାରେ ଛାଡ଼ିଦେବା—2. To forfeit the stake after losing a game. ୩ । ଅତି କ୍ଷୀଣ ଓ ଦୁର୍ବଳ

ହୋଇ ପଡ଼ିବା—3. To be reduced; to become lean and weak. ୪ । ଦବିଯିବା; ମାନସିକ ଦୁର୍ବଳ ହୋଇଯିବା—4. To be dispirited or disheartened. ୫ । କ୍ଳାନ୍ତ ହେବା—5. To be fatigued.
ହେବେଯାওয়া ହାରଜାନା

ହାରଶ—ସ୍ତ୍ରୀ. ବି—(ସ ଅର୍ଶ ହ)—ଅର୍ଶ ରୋଗ—
Hārisa Piles (disease)
হাবিস ববাসির

ହାରି—ସ.ବିଣ. ପୁଂ—(ହୃ ଧାତୁ+କର୍ତ୍ତୃ ଇନ୍; ହାରିନ୍ ଶବ୍ଦ ୧ମା ୧ବ)
Hāri ୧ । ମନୋହର—1. Charming; pleasing
(ହାରିଣୀ—ସ୍ତ୍ରୀ) ୨ । ଅପହାରକ, ହରଣକାରୀ—2. Stealing. ୩ । ଯେ ନେଇଯାଏ—3. Taking away. ୪। ବାହକ; ବହନକାରୀ—4. Bearing; carrying. ୫ । ନାଶକାରୀ—5. Destroying. ୬ । ପରାଜୟକାରୀ—6. Vanquishing. ୭ । ଅଦାୟକାରୀ—(ହ. ଶ)—7. Realising. [ ଦ୍ର—ଏହା ମଧ୍ୟ ସମାସରେ ଅନ୍ୟ ଶବ୍ଦ ସଙ୍ଗେ ଓ ପ୍ରକୃତିପ୍ରତ୍ୟୟରେ ଉପସର୍ଗ ଓ ଉପପଦମାନଙ୍କ ସଙ୍ଗେ ଯୁକ୍ତ ହୁଏ । ଯଥା—ମନୋହାରୀ, ଚିତ୍ତହାରୀ, ବ୍ୟବହାରୀ, ଅପହାରୀ ଇତ୍ୟାଦି ।] ୮ । (ହାର+ଅସ୍ତ୍ୟ ଅର୍ଥରେ ଇନ୍, ହାରିନ୍ ଶବ୍ଦ ୧ମା ୧ ବ)—ହାରଧାରୀ; ଯେ ହାର ପିନ୍ଧିଥାଏ—8. Wearing necklace. ପ୍ରାଦେ (ପାଠଣା) ବି—ସ୍ତ୍ରୀଲୋକ—Woman.

ହାରିତ—ସ. ବି—(ହରିତ+ଅ)—୧ । ହାରିତ (ଦେଖ)—
Harita 1. Hārita (See). ୨ । ସ୍ମୃତି ଶାସ୍ତ୍ରକର୍ତ୍ତା ମୁନି ବିଶେଷ—2. Name of a Hindu law-giver. [ଦ୍ର—ଏ ଚ୍ୟବନ ଋଷିଙ୍କ ପୁତ୍ର ଥିଲେ—ହ ଶ ।] ୩ । ଚୈତବ; ଠେଟା (ମେଦିନୀ)—3 Fraud; cheating ୪ । ଚୋର; ଡକାଇତ (ହ ଶ)—4. Robber; dacoit. ୫ । ଚୋରି (ହ ଶ)—5. Robbery

ହାରିତକ—ସ ବି—(ହାରିତ+କ)—ହରଡ଼ ଚଢ଼େଇ (ଦେଖ)—
Hāritaka Hararda chardhei (See)

ହାରୁଆ—ଦେ. ବିଣ ପୁ—୧। ପରାଜିତ—1. Defeated; vanqu-
Hārua ished. ୨ । ଯେ କଳିବର ଯୁଦ୍ଧରେ ଓ ଖେଳରେ
[ହାରେଇ—ସ୍ତ୍ରୀ] ହାରେ—2. (a person) Who is repeatedly defeated in a game or battle; always losing. ୩ । ହାର ପରିଧାନ କରିଥିବା [ ଲୋକ ]—3. Wearing a necklace.
হাবুরা, হেরো হারনেবালা

ହାରୁକ—ସ. ବିଣ ପୁ—(ହୃ ଧାତୁ+କର୍ତ୍ତୃ ଉକ)—ହାରକ [ଦେଖ]—
Hāruka Hāraka (See)
(ହାରୁକା—ସ୍ତ୍ରୀ)

ହା ରେ !—ଦେ. ଅ—[ଖେଦ, ଶୋକ ଓ ଅନୁତାପାର୍ଥକ)—ହାୟ
Hā re ! (ଦେଖ)—Hāy (See)
হায় রে হাযরে

ହାରେକ—ପ୍ରାଦେ (ପାଠଣା କୋଳ ଅଞ୍ଚଳରେ ପ୍ରଚଳିତ) ଅ—ଥରେ—
Hārek Once.

ହାର୍କି(କେ)ନ୍—ବୈଦେ. ବି—(ଇଂ)—ହରିକେନ୍ (ଦେଖ)—
Hārki(rke)n Hariken [See)

ହାର୍ଜିନ୍ (ଣା, ତ୍, ତା, ତି, ଦ, ଦି)—ହାର୍‌ଜିଣ୍ (ଦେଖ)—
Harjin (nā, t, tā, ti, d, di) Hār-jin (See)

ହାର୍ଟ୍—ବୈଦେ. ବି—(ଇଂ)—ହୃଦୟ; ହୃତ୍‌ପିଣ୍ଡ—
Hārt Heart.
হার্ট হার্ট

ହାର୍ଟ୍ ଡିଜ (ସି) ଜ୍—ବୈଦେ ବି.—(ଇଂ ହାର୍ଟ୍ ଡିସିଜ୍)—ହୃଦ୍‌ରୋଗ;
Hārt diji (si) j ହୃତ୍‌ପିଣ୍ଡର ଦୁର୍ବଳତା ଓ ଛାତି ଦମ୍ ଦମ୍ ହେବାରୂପ ମାରାତ୍ମକ ରୋଗ—Heart disease.
হার্ট ডিজিজ হার্টডিজিজ

ହାର୍ଟ୍ ଫେଲ୍—ବୈଦେ ବି—(ଇଂ)—ହୃତ୍‌ପିଣ୍ଡରେ ହଠାତ୍ ରକ୍ତ-
Hārt phel ସଞ୍ଚାଳନ ଓ ସ୍ପନ୍ଦନ ବନ୍ଦ ହେବା ରୋଗ ଓ ତଜ୍ଜନିତ ମୃତ୍ୟୁ—Heart failure.
হার্ট ফেল হার্টফেল

ହାର୍ଟ୍ ଫେଲ୍ କରିବା (ହେବା)—ଦେ. ବି—ହୃତ୍‌ପିଣ୍ଡର ସ୍ପନ୍ଦନ ବନ୍ଦ
Hārt phel kariba (hebā) ହୋଇ ମୃତ୍ୟୁ ଘଟିବା—Death by heart failure.
হার্ট ফেল করা হার্টফেল হোনা

ହାର୍ଡି(ଡି,ଡେ,ଡ୍ରେ) ଞ୍ଜ—ଦେ. ବି—(ନାମ)—୧। ପ୍ରଥମ ଲର୍ଡ଼ ହାର୍ଡିଞ୍ଜ;
Hardi(di,de,rde) j ଲର୍ଡ ହେନେରୀ ହାର୍ଡିଞ୍ଜ; ଭାରତର ଜନୈକ
হার্ডিঞ্জ হার্ডিঞ্জ ଗଭର୍ଣ୍ଣର ଜେନେରାଲ୍—Lord Hardinge, a Govenor General of India. [ଦ୍ର—ଏହାଙ୍କର ଜନ୍ମ ଖ୍ରୀ. ୧୭୮୫ । ଏ ୧୮୪୪ ସାଲରେ ଭାରତକୁ ଇଷ୍ଟ ଇଣ୍ଡିଆ କୋମ୍ପାନୀଙ୍କ ଦ୍ୱାରା ଗଭର୍ଣ୍ଣର ଜେନେରାଲ୍‌ରୂପେ ପ୍ରେରିତ ହୋଇଥିଲେ । ଭାରତକୁ ଆସିବା ପୂର୍ବରୁ ଯୁଦ୍ଧରେ ଏହାଙ୍କର ଗୋଟିଏ ହାତ କଟି ଯାଇଥିଲା । ଏ ଶିଖମାନଙ୍କୁ ପରାଜିତ କରି ରଣଜିତ୍ ସିଂହଙ୍କ ପୁତ୍ର ଦଲୀପ ସିଂହଙ୍କ ସଙ୍ଗେ ସନ୍ଧି କରି ଅନେକଗୁଡ଼ିଏ ରାଜ୍ୟ ବ୍ରିଟିଶ୍ ଭାରତ ରାଜ୍ୟଭୁକ୍ତ କରିଥିଲେ । ଖ୍ରୀ; ୧୮୪୮ ରେ ଏ ବଡ଼ଲାଟ ପଦ ତ୍ୟାଗ କରି ବିଲାତକୁ ଫେରିଲେ ଓ ୧୮୫୨ ସାଲରେ ଇଂଲଣ୍ଡର ପ୍ରଧାନ ସେନାପତି ହେଲେ । ୧୮୫୬ ରେ ଏହାଙ୍କର ମୃତ୍ୟୁ ହେଲା ।] ୨ । ଦ୍ୱିତୀୟ ଲର୍ଡ଼ ହାର୍ଡିଞ୍ଜ—2. Lord Hardinge the Second. [ଦ୍ର—ଏ ପ୍ରଥମୋକ୍ତ ହାର୍ଡିଞ୍ଜଙ୍କର ପୌତ୍ର । ଏ ୧୯୧୦ ସାଲରେ ଭାରତକୁ ଗଭର୍ଣ୍ଣର ଜେନେରାଲ୍ ହୋଇ ଆସିଥିଲେ । ଓଡ଼ିଶା ପରିଦର୍ଶନ କରିବାକୁ ଆସିଥିବା ବଡ଼ଲାଟଙ୍କ ମଧ୍ୟରେ ଏ ଦ୍ୱିତୀୟ । ଏହାଙ୍କ ପୂର୍ବରୁ ଲର୍ଡ଼ କର୍ଜନ୍ ଓଡ଼ିଶାକୁ ଆସିଥିଲେ । ଏହାଙ୍କ ଅମଳରେ ଓଡ଼ିଶା ବଙ୍ଗପ୍ରଦେଶରୁ ବିଚ୍ଛିନ୍ନ

ହୋଇଥିଲା ଓ ବହାର ଓଡ଼ିଶା ପ୍ରଦେଶ ଗଠିତ ହୋଇ ଓଡ଼ିଶା ସେହି ପ୍ରଦେଶଭୁକ୍ତ ହେଲା ।]

ହାଣ୍ଡି (ର୍ନି)ଆ—ବୈଦେ. ବ (ଇଂ)—ହାର୍ନିଆ (ଦେଖ)—
Hārṇni (rni)ā Hār-niā (See).

ହାର୍ଦ୍ଦ (ର୍ଦ୍ଦ, ର୍ଦ୍ୟ, ର୍ଦ୍ଦ୍ୟ)—ସ.ବ—(ହୃଦ୍ ଶବ୍ଦ+ଯ)—୧ । ସୌହାର୍ଦ୍ଦ୍ୟ
Hārdda (rda, rdya, rddya) ହୃଦ୍ୟତା; ପ୍ରଣୟ; ସ୍ନେହ; ପ୍ରେମ (ଅମର)—1. Love; affection; attachment. ୨ । ମମତା; କୋମଳହୃଦୟତା; ଦୟା—2. Kindness; compassion; softness of heart, ବଣ—୧ । ହୃଦୟ ସମ୍ବନ୍ଧୀୟ—1. Relating to the heart; cardiac. ୨ । ହୃଦ୍ଗତ—2. Internal; mental. ୩ । ହୃଦ୍ୟ; ମନୋରମ—3. Agreeable.

ହାର୍ଦ୍ଦି(ର୍ଦି)କ—ସ. ବଣ—(ହୃଦ୍+ଇକ)—୧ । ହୃଦୟ ସମ୍ବନ୍ଧୀୟ—
Hārddi(rdi)ka 1. Relating to the heart; cardiac. ୨ । ଅନ୍ତରଙ୍ଗ—2. Heart felt;cordial;internal. [ହାର୍ଦ୍ଦି(ର୍ଦି)କତା—ବ]

ହାର୍ଦ୍ଦି(ର୍ଦି)କ୍ୟ—ସ. ବ—(ହାର୍ଦ୍ଦିକ+ଭାବ. ଯ)—୧ । ମିତ୍ରତା;ସୁହୃଦ୍-
Hārddi(rdi)kya ଭାବ—1. Friendship. ୨ । ଆନ୍ତରିକତା—2.Cordiality.

ହାର୍ଦ୍ଦୀ—ସ. ବଣ ପୁଂ (ହାର୍ଦ୍ଦ+ଇନ୍=ହାର୍ଦ୍ଦିନ୍; ୧ମା. ୧ବ)—
Hārddī ୧ । ସ୍ନେହଯୁକ୍ତ—1. Loving; affectionate. ୨ । ମାୟାଯୁକ୍ତ; ମମତାଯୁକ୍ତ—2. Compassionate.

ହାର୍ମ୍‌ଜାଦା—ବୈଦେ. ବଣ. ପୁଂ (ଅ)—ହାରାମ୍‌ଜାଦା (ଦେଖ)—
Hārm-jādā Harām-jādā (See)
(ହାର୍ମ୍‌ଜାଦୀ—ସ୍ତ୍ରୀ) [ହାର୍ମ୍‌ଜାଦ୍‌ଗୀ (ଜା)—ବ.]

ହାର୍ମ୍‌ଜାଦୀ—ବୈଦେ. ବ (ଅ)—ହାରାମ୍‌ଜାଦୀ (ଦେଖ)—
Hārm-jādī Harām-jādī (See)

ହାର୍ମ୍ନି—ବୈଦେ. ବ (ଇଂ)—ହାର୍‌ମନି (ଦେଖ)—
Hārmni Hār-mani (See)

ହାର୍ମ(ମୋ)ନିଅମ୍—ବୈଦେ. ବ (ଇଂ)—ହାର୍‌ମନିଅମ (ଦେଖ)—
Hārma(rmo)niam Hār-maniam (See)

ହାର୍ମା—ବୈଦେ. ବଣ (ଫା)—ହାର୍‌ମା (ଦେଖ)—
Hārmā Hār-mā (See)

ହାର୍ଯ୍ୟ—ସଂ.ବଣ ପୁଂ—(ହୃ.ଧାତୁ+କର୍ମ.ଯ)—୧ । ହର୍ତ୍ତବ୍ୟ;ଅପହରଣୀୟ
Hārjya 1. Fit to be stolen or removed or (ହାର୍ଯ୍ୟା—ସ୍ତ୍ରୀ) kidnapped. ୨ । ବହନ ଯୋଗ୍ୟ; ବାହ୍ୟ; ବହନୀୟ 2. Bearable; fit to be borne or carried. ୩ । ଗ୍ରାହ୍ୟ;ଗ୍ରହଣୀୟ—3. Fit to be taken;acceptable ୪ । ତ୍ୟାଜ୍ୟ; ବର୍ଜନୀୟ—4 Fit to be abandoned or relinquished ୫ । (ଗଣିତ) ଭାଜ୍ୟ;ବଣ୍ଟନୀୟ;ଅନ୍ୟ ସଂଖ୍ୟାଦ୍ୱାରା ବିଭାଜିତ ହେବାର ଯୋଗ୍ୟ (ସଂଖ୍ୟା)—5.(Arithmetic)Divisible (number). ବ—୧ । ବହେଡ଼ା ବୃକ୍ଷ; ବାହାଡ଼ା ଗଛ—1. Beleric Myrobalan ୨ । (ଗଣିତ) ହରଣୀୟ ଅଙ୍କ (ଲୀଳାବତୀ)—2. (Arithmetic) The number to be divided by another number.

ହାର୍ଯ୍ୟା—ସଂ ବଣ ସ୍ତ୍ରୀ (ହାର୍ଯ୍ୟ+ଆ)—ହାର୍ଯ୍ୟର ସ୍ତ୍ରୀ ଲିଙ୍ଗ—Feminine
Hārjyā of Hārjya ସଂ.ବ—ଏକପ୍ରକାର ଚନ୍ଦନ (ହ-ଶ)—A kind of sandal wood.

ହାଲ୍—ବୈଦେ. ବ (ଅ)—୧ । ଅବସ୍ଥା—1. Condition;state.
Hāl ୨ । ବର୍ତ୍ତମାନ ଅବସ୍ଥା—2. Present condi-
हाल हाल tion. ୩ । ବୃତ୍ତାନ୍ତ—3. Account; description. ୪ । ବର୍ତ୍ତମାନ କାଳ—4. The present time. ୫ । ବେହାଲ୍ ଅବସ୍ଥା; ଦୁଃଖଜନକ ଅବସ୍ଥା—5. Miserable condition. (ହାଲ୍—ବ୍ୟବହୃତ. ବଣ) ବଣ—୧ । ଚଳନ୍ତ [ବର୍ଷ]—1. Current (year). ୨ । ଚଳନ୍ତ ସନ ସମ୍ବନ୍ଧୀୟ—2. Relating to the current year. ୩ । ଅଧୁନାତନ—3. Modern. କ୍ରି. ବଣ—ଅତି ଅଳ୍ପ ଦିନ ହେଲା—Recently. [ଦ୍ର—ଏହି ଶବ୍ଦର ଉଚ୍ଚାରଣ ସାଙ୍କେତିକ । ହା, ହ୍ଲା ।] ବୈଦେ (ଇଂ) ପ୍ରାଦେ [ଗଞ୍ଜାମ] ବ-[ଇଂ ହଲ୍]-ବଡ଼ ଲମ୍ବ କୋଠରୀ; ଦାଲାଣ—A hall. [ ଦ୍ର—ଗଞ୍ଜାମୀମାନେ ଅ ସ୍ଥାନରେ ଆ ଉଚ୍ଚାରଣ କରିବା ଦେଖାଯାଏ । ଯଥା—କାଲେଜ୍ ।]

ହାଲ୍‌କା—ଦେ. ବଣ (ସଂ ଲଘୁକ; ପ୍ରା, ହଲ୍‌କ)—୧ । ଭୁଷ୍‌ସ;
Hāl-kā ହାଲୁକା; ଲଘୁ; ଯାହା ଭାରି ନୁହେ (ପଦାର୍ଥ)—
हालका हलका 1. Light; not heavy. ୨ । ସୁସ୍ଥ (ଦେହ)—2. Healthy; hale. ୩ । ଧୈର୍ଯ୍ୟହୀନ [ବ୍ୟକ୍ତି]—3. Impatient. ୪ । ଚପଳ; ଅଗମ୍ଭୀର (ମନ)—4. Light(heart);not serious; not grave. ୫ । ଦମ୍ଭହୀନ; ଅସାହସୀ;ଡରୁଆ(ମନୁଷ୍ୟ)—5 Timid; courageless. ୬ । ଚିନ୍ତାମୁକ୍ତ [ମନ]-6. (mind) Freed from anxiety; care-free.
हालेब हालका ବୈଦେ.ବଣ[ଅ ହାଲ୍‌କା]—୧ । ବର୍ତ୍ତମାନ ସମୟର; ଅଧୁନାତନ—1. Of the present time. ୨ । ଅଳ୍ପ ଦିନର—
हलका हलका 2. Recent; late. ବ[ ଫା ହଲ୍‌କା ]—୧ । ହଲକା; ଗ୍ରାମମଣ୍ଡଳୀ; ଶାସନ ସୁବିଧା ପାଇଁ ଗଠିତ ଗ୍ରାମସମୂହ; ତାଲୁକ—1. A circle; an administrative group of villages formed for facility of administration; an estate including many villages. ୨ । ଗ୍ରାମର ବାସ୍ତୁବନ୍ଧ; ଗ୍ରାମର ଚତୁଃସୀମା ନିର୍ଦ୍ଦେଶକ ରେଖା—2. A village circuit; the boundary line which demarcates and includes all.

the lands and dwellings of a village or hamlet[Wilson] ୩ । ଶାସନାର୍ଥ ଗଠିତ ସୀମା, ଇଲକା— 3. Administrative jurisdiction.

ହାଲ୍‌କାମ୍‌ରା(ରା)—ବୈଦେ. ବ (ଇଂ ହଲ୍, କାମେରା) ୧ । ହାକିମ-
Hal-kāmarda[rā] ମାନଙ୍କ ଖାସ୍ କାମ୍‌ରା; ଯେଉଁଥିରେ
হাল কামরা खास कमरा ହାକିମମାନେ
କଚେରୀସମୟ ମଧ୍ୟରେ ଅବସର ନିଅନ୍ତି—
1. Camera; private room attached to an office into which the officer retires for
হল दालान rest or refreshment
୨ । ବଡ ହଲ୍ ବା ବଲ୍‌ଗଣ—2. Big hall.

ହାଲ୍‌କିବା—ପ୍ରାଦେ (ସମ୍ବଲପୁର) କ୍ରି—[କୁକୁର] କାମୁଡିବା—
Hal-kiba To bite (said of a dog).

ହାଲ୍‌କେଇବା—ଦେ. କ୍ରି—ଲଘୁ କରିବା; ହ୍ରାସ କରିବା—
Hal keiba To lighten.
হালকান हलका करना

ହାଲ୍ ଖଜଣା (ଜମା)—ବୈଦେ. ବ (ଫା)—(ଜମିଦାରୀ ସିରସ୍ତା)—
Hāl khajanā (jamā) ହାଲସନ ପାଇଁ ପ୍ରାପ୍ୟ ରାଜସ୍ୱ—
হালজমা हालजमा Rent due for the current year.

ହାଲ୍ ଖାତା—ବୈଦେ·ବ(ଫ)—(ଜମିଦାରୀ ଓ ମହାଜନୀ ସିରସ୍ତା)—୧ ।
Hāl khātā ଯେଉଁ ଖାତାରେ ଚଳନ୍ତି ହିସାବମାନ ଲେଖାଯାଏ—
1. A book in which the current accounts are entered. ୨ । ଚଳନ୍ତି ବର୍ଷାରମ୍ଭରେ ଲେଖାଯିବା ନୂତନ ଖାତା—2. Current year's account-book; new book opened for the current
হালখাতা हालखाता year.

ହାଲ୍‌ଚାଲ୍—ବୈଦେ. ବ—(ଅ ହାଲ୍ ଓ ସଂ ଚଲ ଧାତୁ; ଏକାର୍ଥକ
Hāl-chāl ଶବ୍ଦରେ ଗଠିତ)—୧ । ଅବସ୍ଥା ଓ ବିବରଣ—
1. Condition and description. ୨ । ସବିଶେଷ ବିବରଣ—2. Detailed account. ୩ । ସମ୍ବାଦ—
3. News. ୪ । ଆଧୁନିକ ଅବସ୍ଥା ବା ପରିସ୍ଥିତି—
4. Present condition; current state.
হালচাল हालचाल

ହାଲ୍‌ଦାର୍—ବୈଦେ. ବ ପୁଂ—(ଅ ହୱାଲା=ଜମା; ଫା ଦାର୍=
Hāl-dār ନେବା ବ୍ୟକ୍ତି; ଅ ହୱାଲଦାର୍=ଜମାଦାର୍)—୧ ।
ହୱାଲ୍‌ଦାର୍; ଭାରତରେ ମୁସଲମାନ୍ ରାଜତ୍ୱ କାଳରେ ସୁବାଦାରଙ୍କ ଅଧୀନତାରେ କାର୍ଯ୍ୟକ୍ଷମ ଗ୍ରାମର ଭାରପ୍ରାପ୍ତ ରାଜସ୍ୱ ଗୁମାସ୍ତା ବା କର୍ମଚାରୀ—1. The village accountant or official under the Subadar during the Mahomedan rule of India. [ଦ୍ର—ଏ କର୍ମଗତ ଉପାଧି ବର୍ତ୍ତମାନ ବଂଶୋପାଧିରେ ପରିଣତ ହୋଇଅଛି] ୨ । ପ୍ରାଚୀନ କାଳର ହାଲ୍‌ଦାର୍ ପଦବୀ ପ୍ରାପ୍ତ କର୍ମଚାରୀମାନଙ୍କ ବଂଶଧରମାନଙ୍କର ଆଧୁନିକ ବଂଶୋପାଧି—2. Family-title of the descendants of the ancient
হালদার हावलदार Haldars.

ହାଲ୍‌ଦାରି—ଦେ. ବ - ହାଲ୍‌ଦାର୍‌ର କାର୍ଯ୍ୟ—
Hāl-dāri The act or post of a Haldar.
হালদারি हवलदारी

ହାଲ୍ ନିକାସ୍ (ସି) (ଚୁକ୍ତି)—ଦେ.ବ—(ମହାଜନୀ ଓ ଜମିଦାରୀ ସିରସ୍ତା)
Hāl-nikās (si) (chukti) ଚଳନ୍ତି ଆୟବ୍ୟୟର ବା ଦେଣା-
ପାଉଣା ହିସାବରେ ଶେଷ ମୀମାଂସା—Clearing off
হালনিকাশ हालचुक्ति of the current account.

ହାଲ୍‌ପା—ଦେ. ବ—୧ । ତୋଫାନ; ବର୍ଷା ଓ ପବନ ହେତୁ ଶୀତ
Hāl-pā ବୋଧ ହେବା । ପାଗ—1. Cold and rainy and stormy weather. ୨ । ଶୀତର ଅନୁଭୂତି —
2 The feeling of cold. ବି—ଶୀତ ଓ ବର୍ଷାଯୁକ୍ତ
হালপা ठण्डा (ପାଗ)—Cold and rainy (weather)

ହାଲ୍‌ପା ପାଗ—ଦେ. ବ—ଯେଉଁ ପାଗରେ ବର୍ଷା ଓ ତୋଫାନ ଅଧିକ
Hālpā-pāga ହୋଇ ଖୁବ୍ ଶୀତ କରେ—Very cold
হালপা ठण्डा मौसमी weather.

ହାଲ୍‌ପିଯିବା—ଦେ କ୍ରି—ଶୀତରେ ଥରିବା—
Hāl-pi jiba To shiver in cold.
হালপেযাওয়া ठण्डासे कांपना

ହାଲ୍ ବକି(କେ)ୟା [ବାକି]—ବୈଦେ. ବଣ (ଫା)—[ଜମିଦାରୀ ଓ
Hāl baki(ke)yā (bāki) ମହାଜନୀ ସିରସ୍ତା]—୧ । ଚଳନ୍ତି
ବର୍ଷର ଓ ପୂର୍ବବର୍ଷମାନଙ୍କ ଦେୟ ବା ପ୍ରାପ୍ୟ—1. Due or payable for the current and for the past years. ୨ । ବର୍ତ୍ତମାନ ହିସାବ କରିଯିବାରୁ କୌଣସି ବ୍ୟକ୍ତି ଉପରେ ପାଉଣା : ପ୍ରାପ୍ୟ—2. Amounts found due to a person on taking account now. ବ—୧ । ଚଳନ୍ତି ବର୍ଷର ପ୍ରାପ୍ୟ ଓ ସାବେକର ପ୍ରାପ୍ୟ ଧନାଦି—1. Amounts due or payable for the current as well as for the past years
হালবকেয়া ୨ । ଆଜଯାଏ ସୁଦ୍ଧା ପାଉଣା ସବୁ ଟଙ୍କାର ମୋଟ ବାକି
हालबकाया 2. Total dues found on taking account.

ହାଲ୍‌ୱା—ବୈଦେ. ବ—ହାଲୁଆ (ଦେଖ)—
Hal-wā Hālua (See).

ହାଲ୍‌ୱା(ବା)ଇ—ବୈଦେ. ବ—ହାଲୁଇ (ଦେଖ)—
Hāl-wā(bā)i Hālui (See).

ହାଲ(ଲି)ଶା—ଦେ. ବ (ସଂ ହଲ; ଏହାର ଆକୃତି ହଲ ପରି ଥିବାରୁ).
Hāl-(li)sā ନୌକାର କର୍ଣ୍ଣ—The helm of a boat,
হাল गलही, पतवार rudder.

ହାଲ୍ ସନ—ବୈଦେ. ବ [ ଚଳନ୍ତି; ଅ ]—ଚଳନ୍ତି ବର୍ଷ—
Hāl sana Current year; present year.
হাল সন हाल सन

ହାଲ୍ ସାକି(ଖି)ନ୍ [ନି]—ବୈଦେ. ବ. (ଚଳନ୍ତି; ଅ. ହାଲ୍ ସାକିନ୍ )—
Hāl sā ki(khi)n(ni) କୌଣସି ବ୍ୟକ୍ତିର ବର୍ତ୍ତମାନ
হাল সাকিন हाल साकीन ବାସସ୍ଥାନ—
Present habitation or residence of a person. ବଣ—ଅମୁକ ସ୍ଥାନର ବର୍ତ୍ତମାନ ଅଧିବାସୀ—

At present resident of. [ ଦ୍ର—ଏଥିର ସାଙ୍କେତିକ । ହା—ସା । କମ୍ପା । ଖ୍ଲା—ସା ।
ଯଥା—'ଶ୍ରୀ ଅମୁକ । ଖ୍ଲା—ସା । କଅଗାଁ'ର ଅର୍ଥ କ-ଅଗାଁରେ ବର୍ତ୍ତମାନ ହକ୍କକାଳ ହେଲ ବାସ କରୁଥିବା ଅମୁକ ।]

ହାଲ୍‌ ହଇ(ଇ)କତ୍‌—ବୈଦେ. ବ—(ଅ. ହାଲ୍‌ = ଅବସ୍ଥା ଓ ହକିକତ୍‌
Hāl hai (u) kat = ବୃତ୍ତାନ୍ତ)—କୌଣସ ବିଷୟର ବା ସ୍ଥାନର
ହାଲ୍‌ ହକକ(ଇ)ତ୍‌, ହାଲ୍‌ ହକୀତ୍‌, ହାଲ୍‌ ହଉକତ୍‌ } ଅନ୍ୟରୂପ— ବା ବ୍ୟକ୍ତିଙ୍କ ଅବସ୍ଥାର ବା ଉପସ୍ଥିତି ପରସ୍ଥିତିର ସବିଶେଷ ବୃତ୍ତାନ୍ତ—
Detailed description of the present condition of a person, place or thing.
হাল হকিকত हाल हक़ीक़त

ହାଲ୍‌ ହଉଆଲ୍‌ (ହୱାଲ୍‌, ହୁଅଲ୍‌)—ବୈଦେ. ବ—(ଅ. ହାଲ୍‌ = ଅବସ୍ଥା
Hāl hauāl (hawāl, huāl) ଓ ହୱାଲ୍‌ = ଭଳି; ଏଠାରେ ହାଲ୍‌ ଶବ୍ଦ ସଙ୍ଗେ କରର୍ଥକ ହେଲ ଶବ୍ଦରୂପେ ହଉଆଲ୍‌ ବ୍ୟବହୃତ)—ହାଲ୍‌ଚାଲ୍‌ (ଦେଖ)
হালচাল हालचाल Hāl-chāl (See).

ହାଲ—ସଂ. ବ—(ହଳ + ଅସ୍ତ୍ର ଅର୍ଥରେ ଅ)—୧ । ବଳରାମ—
Hāla (ବିଷ୍ଣୁ ଶେଷ)—1. The step-brother of Srikrushna. ୨ । ଶାଳିବାହନ ରାଜା (ହେମଚନ୍ଦ୍ର)—2. King Sālibāhana. ୩ । (+ସ୍ୱାର୍ଥେ ଅ) ହଳ (ମେଦିନୀ)—3. Plough

ହାଲ—ଦେ. ବ—୧ । (ସ ବଳୟ) ଗାଡ଼ିଚକର ଲୁହାର ବେଢ଼; ରଥ-
Hāla ଯାନର ଚକର ପାହୁଆ ଗୁର ପାଖେ ଘେରିଯିବା ଲୁହାର
হাল ପତଳା ବେଢ଼;ଘେର—1. The iron rim round
हाल, हलका the wheel of a cart, coach or other
হাল vehicle. ୨। (ସଂ. ହଳ) କୌକାର କର୍ଣ୍ଣ—2. The
मांझ helm of a boat. ୩। (ତୁଳ. ଇଂ.ହାଲ୍‌; ସଂ. ହଳ-
হৈলা হোল ହଳା)—ହୁଲ୍ଲ; କୋଳାହଳ—3. Row;
हल्ला shout; howl. [ଉ—ସାବ୍‌ ଫଉଜ ପଡଗଲ ହାଲ, ସବୁଠାରେ ପାହୁଅ ପଲପଲ । ବ୍ରଜନାଥ. ସମରତରଙ୍ଗ । ] ୪। ମେଳ—4. Rising; riot. [ଉ—ଠାବେ ଠାବେ ମିଳ ଜଉବା ହାଲ, ବାନା ନ ପଲ ହେବେ ଉଲବଲ । ବ୍ରଜନାଥ. ସମର ତରଙ୍ଗ ।] ବୈଦେ.ବ, ବଣ ଓ କ୍ରି.ବଣ —ହାଲ୍‌ ଇତ୍ୟାଦ (ଦେଖ)—Hāl etc (See) [ଦ୍ର—ହାଲ୍‌ ତଳେ ଥିବା ସମସ୍ତ ଶବ୍ଦ 'ହାଲ୍‌' ଯୁକ୍ତ ହୋଇ ଲେଖାଯାଏ କନ୍ତୁ 'ହାଲ୍‌' ରୂପେ ଉଚ୍ଚାରିତ ହୁଏ]

ହାଲ ଉ(ଓ)ଲି—ଦେ. ବ (ସଂ. ହଲହଳା = ଅନନ୍ଦଜନକ କୋଳା-
Hāla u(o)li ହଳ = ଜ୍ଞାକେନ୍ଦ୍ର)—ହାଲ ହୁରି (ଦେଖ)
Hāla huri (See)

ହାଲକ—ଦେ. ବ (ସଂ. ହୃଦୟ; ପ୍ରା. ହକ୍କକ; କମ୍ପା ଅ. ହଲକ୍‌=
Hālaka ଗଳନଳୀ, କଣ୍ଠ)—୧ । ହୃଦୟ; ଅନ୍ତଃକରଣ—
হলক 1. Heart. ୨ । ହୃଦୟ; ସାହସ—2. Courage.
हलक ୩ । ଦମ୍‌—3. Patience.

ହାଲକ—ସଂ. ବ—୧ । ପୀତ-ହରିଦ୍ୱର୍ଣ୍ଣ ଅଶ୍ୱ (ହେମଚନ୍ଦ୍ର)—
Hālaka 1 A horse of yellow and green colour. ୨ । ହରିଦ୍ୱର୍ଣ୍ଣ ଅଶ୍ୱ—2. A horse of greenish colour.

(ମୋର) ହାଲକ ପାଇବା—ଦେ. ବ—କୌଣସି କାର୍ଯ୍ୟ କରିବାକୁ ସାହସ
Hālaka pāibā ବଳିବା—Having the heart or courage to do any act.

(ମୋର) ହାଲକ ବଢ଼ିବା—ଦେ. ବ—ସାହସ ବୃଦ୍ଧି ହେବା—
Hālaka bardhibā Increase of courage.

(ମୋର) ହାଲକ ଶୁଖିବା—ଦେ. ବ—ଦମ୍‌ ବା ହେମତ୍‌ ଭାଙ୍ଗିଯିବା—
Hālaka sukhibā Losing of patience or heart.
(ହାଲକ ଶୁଖିଯିବା, ହାଲକ ପଡ଼ିଯିବା—ଅନ୍ୟରୂପ)

ହାଲ କଷିବା(ଭିଡ଼ିବା)—ଦେ. କ୍ରି—ଶଗଡ଼ର ପହିଆର ଗୁର ପାଖରେ
Hāla kashibā(bhirdibā) ଘେର ବା ଲୁହାର ବଳୟକୁ
ହାଲ ଚଢ଼ା(ଢେ)ଇବା, ହାଲ ପିନ୍ଧା(ନ୍ଧେ)ଇବା } ଅନ୍ୟରୂପ ସଂଯୋଗ କରିବା—To attach the iron rim round the wheel of a vehicle.
হাল কষা, হাল চড়ান, হাল পরান [ଦ୍ର—ହାଲମାନ ଲମ୍ବ ଓ ସିଧା
हाल लगाना ଥାଏ । ତାହାର ଦୁଇ ମୁଣ୍ଡକୁ ଜୁଆଁଇଁ ସଂଲଗ୍ନ କର ଅଗ୍ନି ଉତ୍ତାପରେ ତରଳାଇ ଯୋଡ଼ ଦେଲେ ତାହା ବଳୟାକୃତି ହୁଏ । ଗରମ ଥାଉଁ ଥାଉଁ ତାକୁ ଶଗଡ଼ଚକ ଉପରେ ଭଡ଼ ଦିଆଯାଏ ଓ ତାହା ଶୀତଳ ହେଲେ ସଙ୍କୁଚିତ ହୋଇ ଚକକୁ ଜାବୁଡ଼ି ଧରେ ।]

ହାଲକୁ—ଦେ. ଅ—୧ । ବର୍ତ୍ତମାନ; ଏବେ; ଅଜକାଲି—1. At
Hālaku present; now a days. [ଉ—କେତେ ବଡ଼
এখন हालमें ସୁଲକ୍ଷଣୀ, ହାଲକୁ ପ୍ରଥମେ ପଛରେ ଛଡ଼ାହୁଏ ଲଗିଛି । ଫକୀରମୋହନ. ଛମାଣ ଆଠଗୁଣ୍ଠ ।] ୨ । ଅଳ୍ପଦିନ ହେଲା—2. Recently. ୩ । ଚଳିତବର୍ଷ —3. This year.

ହାଲତ୍‌—ବୈଦେ. ବ (ଜଚରଅ) (ଅ)—ଅବସ୍ଥା—Condition.
Hālat [ଉ—ଅପଣା ଜଚସ୍ ଯାଗାରେ ବସି ସରକାରୀ କାମ
হালত ଅଞ୍ଜାମ କରୁଥିବା ହାଲତ୍‌—ଫକୀରମୋହନ. ଛମାଣ
हालत ଆଠଗୁଣ୍ଠ ।] ଅ—ହାଲତେ (ଦେଖ)—Hālate (See)

ହାଲତେ—ବୈଦେ. ଅ (ଜଚରଅ) (ଅ. ହାଲତ୍‌ମେଁ)—(ଅମୂଳ)
Hālate ଅବସ୍ଥାରେ—In the state or condition of;
হালতে हालतमें while in such a state.

ହାଲପ(ପା)—ଦେ. ବ—ଅତି ଶୀତଳ ପବନ—Very cold wind.
Hālapa(pā) ଦେ. ବଣ—ଅତି ଶୀତଳ (ପବନ; ଋତୁ)—
হালপা ठण्डा हवा. Very cold (wind; weather).

ହାଲ ଶଗଡ଼—ଦେ. ବି—ଯେଉଁ ଶଗଡ଼ର ଚକ୍ରଅରେ ହାଲ ଲାଗିଥାଏ—
Hāla śagarda A cart with iron-rimmed wheel.
হাল শকট **হাল ছকড়া**

ହାଲ(ଳା)ହଳ—ସଂ. ବି ( ହଳାହଳ+ସ୍ୱାର୍ଥେ. ଅ )—୧ । ହଳାହଳ;
Hāla(lā)hala ଉଗ୍ରବିଷ—1. A very deadly poison.
୨ । ଏକ ପ୍ରକାର ବିଷ—2. A kind of poison.
୩ । ଏକ ପ୍ରକାର କୀଟ—3. A kind of insect.

ହାଲ ହଲୀ—ସଂ. ବି—ସୁରା—Spirituous liquor
Hāla halī (Apte).

ହାଳ ହାଳ—ଦେ. ବି—ହଲହଲା ( ଦେଖ )
Hāla hāla Halahalā ( See )

ହାଲ(ଲୋ)ହୁ(ହୋ)ରି(ଲି)—ଦେ. ବି ( ସଂ. ହଲହଲା=ଆନନ୍ଦ
Hāla(lo)hu(ho)ri(li) କୋଳାହଳ; ସଂ. ହଲ୍ଲକ=
ହୁଲବ, হাল হোল, হালাহু(হো)ল ହୋଧୋହ୍ଲି; ସଂ. ହୁଲ୍ଲୋଳ)
**हाेहल्ला, हालहूल** ୧ । ହଲ୍ଲା; କୋଳାହଳ; ଗୋଳମାଳ; ହୁଲ୍ଲର;
ହୋହା; ଘୋଷଣା—1. Ado; hubbub; great noise. [ ଉ—କେତେ ମଲେ ସେ ହେଲ୍ଲ ନାହିଁ ନେ, ପଡ଼ି ଝଣିବ ଉକା ହାଲହୋଳ । ବ୍ରଜନାଥ, ସମର ତରଙ୍ଗ ।] ୨ । ବହୁ ବ୍ୟକ୍ତିଙ୍କ ଆର୍ତ୍ତନାଦ; ବିପଦ କାଳରେ ବହୁବ୍ୟକ୍ତଙ୍କର ଧ୍ୱନିଜନିତ ରବ ବା ବୋବାଳି—2. Loud sound or combined or confused wailings of many persons in distress. [ଉ—ହାଲହୋଳ ହେଉଗଲା ବଳଙ୍କା ନଗରେ । ସାରଳା. କଳଙ୍କା ରାମାୟଣ ।]

ହାଲ(ଲୋ)ହୁ(ହୋ)ରି(ଲି) ଛା(ପା)ଡ଼ିବା(ପକା[କେ]ଇବା)—ଦେ. କ୍ରି—
Hāla(lo)hu(ho)ri(li) chhā(pā)rdibā(pakā[ke]ibā)
হালাহুলো করা (ବହୁ ଲୋକ) କୋଳାହଳ ସୃଷ୍ଟି କରିବା—
**हाेहल्ला करना, हालहूल करना** To raise a great up roar or hubbub.

ହାଲ ହୁ(ହୋ)ରି(ଲି) ପଡ଼ିବା —ଦେ. ବି—ଛୁଲ୍ଲର ବା ବହୁ ଲୋକଙ୍କ
Hāla hu(ho)ri(li) pardibā ମଧ୍ୟରେ କୋଳାହଳ
ହୁଲର ପড়া, হালাহোল পড়া **हाेहल्ला हाेना** ଜାତ ହେବା—
The raising of a lcud noise by many persons in distress. ( ଉ—ସମସ୍ତେ ପାଡ଼ିଲେ ବୋବାଳି, ଗ୍ରାମେ ପଡ଼ିଲା ହାଲହୋଳ—ରାମଦାସ ଦାର୍ଢ୍ୟତାଭକ୍ତି ।

ହାଳା—ସ.ବି. ସ୍ତ୍ରୀ—[ହା ଧାତୁ=(ଲଜ୍ଜା) ତ୍ୟାଗ କରିବା+ କରଣ ଅଳ
Hālā +ଆ; ଯାହାର ପ୍ରଭାବରେ ମନୁଷ୍ୟ ଲଜ୍ଜା ତ୍ୟାଗ କରେ ]
—୧ । ମଦ୍ୟ (ଅମର)—1. Wine. ୨ । ତାଳାଦିର ନିର୍ଯ୍ୟାସ; ତାଡ଼ି (ଶବ୍ଦକଳ୍ପଦ୍ରୁମ)—2. Toddy. ୩ । ଅପଣା ସ୍ତ୍ରୀର କନିଷ୍ଠା ଭଗିନୀ; ଶାଳୀ—3. The younger sister of one's wife (Apte).

ହାଲା(ଲ୍ଲା)କ୍—ବୈଦେ. ବିଣ—( ଅ ହାଲକ୍ )—୧ । କ୍ଳାନ୍ତ—1.
Hālā(llā)k Fatigued. ୨। ବିନଷ୍ଟ—2. Destroyed;
হালাক **हलाक** damaged.

ହାଲାର(ଲ) ଇତ୍ୟାଦି—ବୈଦେ. ବି—ହଲାର ଇତ୍ୟାଦି (ଦେଖ)—
Hālār(l) (etc) Hālār etc (See).

ହାଲାହ—ସ. ବି—ଚିତ୍ରବର୍ଣ୍ଣ ଘୋଟକ ( ଶବ୍ଦରତ୍ନାବଳୀ )—A horse
Hālāha of veriegated colour.

ହାଲାହଳ—ସ. ବି—( ହଳାହଳ+ସ୍ୱାର୍ଥେ ଅ )—୧ । ହାଲାହଳ
Hālāhala (ଦେଖ)—1. Halāhala (See) ୨ । କୀଟ-
ଅନ୍ୟ ସଂ ନାମ—ଅଞ୍ଜଳିକା, ବିଶେଷ ( ଶବ୍ଦକଳ୍ପଦ୍ରୁମ); ଛାହାଣୀ-
କୁଟୀଳ କୀଟକ ଘୋଡ଼ା ବା ଛାହାଣୀଅ ଘୋଡ଼ା—2. A kind of leaf insect; Phyllium Siccifolium. [ବି—ଏ କୀଟ ସାମନାର ଗୋଟିଏ ଗୋଡ଼କୁ ସମୟେ ସମୟେ ଅଞ୍ଜଳି କଲାପରି ଟେକି ଧରିଥାଏ ।] ୩ । ଏକପ୍ରକାର ଟିକଟିକି—3. A kind of lizard (Apte).

ହାଲାହଳ ଧର—ସଂ. ବି—ସର୍ପ (ଶବ୍ଦରତ୍ନାବଳୀ)—
Hālāhala dhara Serpent.

ହାଲାହଳା—ସଂ. ବି—୧ । ଅଞ୍ଜଳିକା; କୀଟବିଶେଷ; ଛାହାଣୀ ଘୋଡ଼ା
Hālāhalā 1. A kind of leaf insect. ୨ । କ୍ଷୁଦ୍ର ମୂଷିକ; ଛୁଚୁଆ ମୂଷା—2. A small variety of mouse. ୩ । ଗୈରିକା; ଗେରୁ—3. Red ochre; red chalk.

ହାଲାହଲି(ଳୀ)—ସଂ. ବି—ମଦିରା (ଶବ୍ଦକଳ୍ପଦ୍ରୁମ)—
Hālāhali(lī) Wine; spirituous liquor (Apte).

ହାଲି —ଦେ. ବିଣ—(ଅ. ଖାଲୀ=ଶୂନ୍ୟ, ଶୂନ୍ୟଗର୍ଭ)—୧ । ଖାଲି
Hāli —1. Empty. ୨ । କାର୍ଯ୍ୟ ବା ଅବଲମ୍ବନ ରହିତ—
খালি 2. Unemployed. ୩। ନିରାଶ୍ରୟ—3. Shelterless.
**खाली** ବି—୧ । କାର୍ଯ୍ୟାଭାବ; ଅବଲମ୍ବନ ରାହିତ୍ୟ—1.Want of employment. ୨। ନୌକାର କର୍ଣ୍ଣ—2.The helm of a boat. ଅ—ହାଲକି(ଦେଖ)—Hāliki (See)

ହାଲି—ବୈଦେ ବିଣ—(ନୂତନଆ) (ଅ. ହାଲ୍)—୧ । ନୂତନ;
Hāli ନବୋତ୍ପନ୍ନ; ଅଳ୍ପଦିନ ହେଲା ଜାତ ବା ଅଗତ—1.
হালি Recent; newly born. ବି—ବର୍ତ୍ତମାନକାଳ; ହାଲ୍—
**हालका** 2. The present. ପ୍ରାଦେ (ଉତ୍ତର ବାଲେଶ୍ୱର) ବିଣ (ଅ. ହରିତ୍) ଶାଗୁଆ—Green.

ହାଲିଆ—ବୈଦେ· ବିଣ—( ଅ. ହାଲକ୍=କ୍ଳାନ୍ତ, ବିବ୍ରତ; ବିମ୍ବା
Hāliā ହାଲ୍=ଅବସ୍ଥା; ଭୁଲ ସଂ ଅଲ୍ ଧାତୁ=ବାରଣ,
হাল্লাক, আলা ଭୂଷଣ, ପର୍ଯ୍ୟାପ୍ତି; ଏଥିରୁ କ୍ଳାନ୍ତ ଅର୍ଥ ଆସିଥାଇ ପାରେ)
**थका** —୧ । କ୍ଳାନ୍ତ; ପରିଶ୍ରାନ୍ତ—1. Fatigued. [ଉ—ତାହାଙ୍କୁ ଖୋଜି ଖୋଜି ହୋଇଲି ହାଲିଆ । କୃଷ୍ଣସିଂହ ମହାଭାରତ ବନ ।] ୨ । ଶଙ୍କିତ; ଭୟଚକିତ—2. Frightened; terrified. ୩ । ଚିନ୍ତାବ୍ୟାକୁଳ; ଉଦ୍ବିଗ୍ନ—3. Very anxious; uneasy. [ଉ—

ପୂର୍ବେ ଯାଇ କର୍ଣ୍ଣଙ୍କୁ ବହୁ ଭିଆରିଲେ, ନ ଯେବନବାରୁ ମୁହଁ ହାଲଅ ହୋଇଲା । କୃଷ୍ଣସିଂହ ମହାଭାରତ ଶାନ୍ତି ।] ୪ । ଶକ୍ତିହୀନ—4 Powerless. ୫ । ଦୁର୍ବଳ —5. Weak. ୬ । ବେହାଲ୍; ଶୀର୍ଣ୍ଣ—6. Lean, reduced. ୭ । ଅସ୍ତ ବ୍ୟସ୍ତ; ହଂକର୍ତ୍ତବ୍ୟବିମୂଢ଼—7. Disturbed; agitated; perturbed; confused.

ହାଲଅ ମାରିବା—ଦେ. କ୍ରି—୧ । କ୍ଲାନ୍ତ ହେବା—1. To feel Hāla māribā tired. ୨ । କ୍ଲାନ୍ତ ଅପନୋଦନାର୍ଥ ବିଶ୍ରାମ विश्रामकरना କରିବା—2. To take rest after labour. थकजाना

ହାଲିକ—ସ. ବି. ପୁଂ—(ହଳ+ଜୀବିକାର୍ଥେ ଇକ)—୧ । ହଳୁଆ; ଯେ Hālika ଚାଷ କରେ—1. Ploughman. ୨ । ଚଷା; କୃଷକ (ହାଳିକା—ସ୍ତ୍ରୀ) —2. Agriculturist; cultivator. ୩ । ହଳିଆ ଗୁଲାମ—3. A servant kept for ploughing. ବିଣ—ହଳ ସମ୍ବନ୍ଧୀୟ—Relating to the plough.

ହାଲିକ ବ୍ରାହ୍ମଣ—ପ୍ରାଦେ (ଗଞ୍ଜାମ) ବି—ହଳୁଆ ବ୍ରାହ୍ମଣ; ମାସ୍ତାନ ବ୍ରାହ୍ମଣ Hālika brāhmaṇa —Māstāna Brahmaṇa (See)

ହାଲିକ—ଦେ. ବିଣ (ଅ· ହାଲ୍‌କା=ବର୍ତ୍ତମାନ କାଳର)—୧। ହାଲ୍‌କା; Hālika ଅଧୁନାକ କାଳର—1. Modern; of the present (ହାଲିକାର—ଅନ୍ୟରୂପ) time. ୨ । ଅଳ୍ପଦିନର—2. Recent. हालेर हालका

ହାଲିକି—ଗ୍ରା. ଅ (କର୍ମ ବିଭକ୍ତିର ଚିହ୍ନ, ତୁଳନାର୍ଥ)—ଠାରୁ; ଅପେକ୍ଷା— Hāliki Than. (ଯଥା—ସେ ମୋ ହାଲିକି ବଡ) चेये, थेके से

ହାଲିମ—ବୈଦେ. ବି (ଫା ହାଲିମ୍)—ସର୍ଷପାଦି ବର୍ଗର କୁଟିଜାତ ଶାକ Hālima ବିଶେଷ—Common cress; Lepidium ସଂ.ଚନ୍ଦ୍ରଶୁର,] Sativum; Gynandropsis Pentaphylla. ଚନ୍ଦ୍ରିକା, [ଦ୍ର—ଏହାର ଫୁଲ ଧଳା ଓ ଛୋଟ, ଦଳ ଦୁଇଟି; କୁଳିଁ ଚର୍ମହନ୍ତ୍ରୀ,] ଚୈପେ ରା; ବଗିଚାରେ ଚାଷ ହୁଏ । (ଯୋଗେଶଚନ୍ଦ୍ର) ପଶୁମେହନ କାରକା,] ଏହା ବଳ ଓ ପୁଷ୍ଟିପ୍ରଦ ଓ ହୃଦ୍ୟ, ବାତ, ନନ୍ଦିନୀ, କାରଵୀ,] ଶ୍ଳେଷ୍ମା ଓ ଅତିସାର ରୋଗରେ ହିତକର, ଭଦ୍ରା, ସିତା,] ବାତରକ୍ତ ନାଶକ । ମାଡ୍ରା ୩ ମଷା । ଏହାର ବାସପୁଷ୍ପା, ସୁବାସରା] ଅର୍ଭିରରେ ଯୋଗଷ ଦିଆଯାଏ । ଏ ଗଛ ସମସ୍ତ हालिम चान्दसूर ଅବିଆ ମହାଦେଶରେ ଜାତହୁଏ । ଏଥିର ବୀଜରୁ हालिं हालिम,चंसूर ଏକ ପ୍ରକାର ସୁଗନ୍ଧିତ ତୈଳ ବାହାରେ । ଅ. ହବୁର୍ ରସାଦ୍ ] ଗଠଣୀ ଓ ଚର୍ମ ରୋଗରେ ଏ ତୈଳର ବକ୍‌ଲୁଲ୍ ଖାର୍‌ଖାର୍ ବ୍ୟବହାର ହୁଏ ।" ଫା. ହାଲିମ୍, ହୁର୍ ମୋଗୀରା ତେଜକ୍ ତେ· ଅହଦୀୟାଲୁ ତା. ଅଲ୍‌ବେରାଇ ଗ୍ରୀ· ଅବଲ୍‌ଉହାଲିମ·

ହାଲି—ସ.ବି (ହା ଧାତୁ=(ଲଜ୍ଜା) ତ୍ୟାଗ କରିବା+ଅଧିକରଣ ଅଳ+ Hāli ଈ)—କନିଷ୍ଠା ଶାଳକା; ସ୍ତ୍ରୀଙ୍କ ସାନ ଭଉଣୀ (ହେମଚନ୍ଦ୍ର)—One's wife's younger sister.

ହାଲୁ—ସ· ବି (ହା ଧାତୁ=ତ୍ୟାଗ କରିବା+କର୍ମ. ଉଲୁ)—୧ । ଦନ୍ତ Hālu (କ୍ରିକାଣ୍ଡଶେଷ)—Tooth. ୨ । ବଦନ— 2. Face.

ହାଲୁଆ—ବୈଦେ ବି (ଅ ହଲ୍‌ୱା; ଫ ନାମ—ଲପସିକା; ଭୂଲ. ଇଂ ଜେଲି) Hāluā —ମଧୁରଭୋଗ; ସୁଜିକୁ ଘିଅରେ ଭାଜି ଉହିଁରେ हालुया हलवा ମିଠା, ଦୁଧ ବା ପାଣି ଦିଆଯାଇ ସିଦ୍ଧ ହେବା ପରେ ପ୍ରସ୍ତୁତ ମିଷ୍ଟାନ୍ନବିଶେଷ—Halwa; jelly. [ଦ୍ର—ଏହା ଇଂରାଜୀ ଭାଷାରେ ମଧ୍ୟ ବ୍ୟବହୃତ ହେଉଅଛି ।] ପ୍ରାଦେ (ସମ୍ବଲପୁର) ବି—ବଡ଼· Big.

ହାଲୁଆ ଗୁଣ୍ଡା—ପ୍ରାଦେ (ସମ୍ବଲପୁର)—ବି—ଫାଲୁଆ ଗୁଣ୍ଡା; ବଡ ଗୁଣ୍ଡା Hāluā gunḍā (ଖାଦ୍ୟ)—Big mouthful; (of food)

ହାଲୁଇ—ବୈଦେ. ବି (ଅ. ହଲୱାଇ—ଗୁଡିଆ; ମିଷ୍ଟାନ୍ନକାର; Hālui ଅଧିକ ଅର୍ଥ—ଯେ ହାଲୁଆ ତିଆରି କରେ)— (ହାଲୁଇକାର—ଅନ୍ୟରୂପ) ପଶ୍ଚିମା ଗୁଡିଆ— हालुइकार हलवाई An upcountry confectioner.

ହାଲୁଇ ଦୋକାନ—ବୈଦେ· ବି(ଅ)—ପଶ୍ଚିମା ଗୁଡିଆର ପୁରି ମିଠାଇ Hālui dokāna ଦୋକାନ—The shop of an up- हालुई दोकान हलवाई दुकान country confectioner.

ହାଲୁଏ—ଗ୍ରା. ବିଣ—ପୁଳାଏ—A lump of. (ଉ—ଅଲଧୋଇଣ । Hālue ଗାଲରୁ ହାଲୁଏ ମଉଁଷ एकहाला थोड़ा ଖାଇବ—ସତ୍ୟକାର ପଞ୍ଜିକା ।)

ହାଲୁକ (ଇତ୍ୟାଦି)—ଦେ. ବି—ହାଲକ ଇତ୍ୟାଦି (ଦେଖ)— Hāluka (etc) Hālaka etc (See).

ହାଲୁକା—ଦେ· ବିଣ—ହାଲ୍‌କା (ଦେଖ)— Hālukā Hal-kā (See). (ହାଲୁକାପଣ—ବି)

ହାଲୁକା(କେ)ଇବା—ଦେ, କ୍ରି—ହ୍ରାସ କରିବା— Hālukā(ke)ibā To lighten. हालकान हलका करना

ହାଲୁକା ଗୁଡି—ପ୍ରାଦେ (ବାଲେଶ୍ୱର) ବି—ଯେଉଁ ଗୁଡ ଉଡାଇବା Hālukā gurḍi ବେଳେ ସୁତା ଉପରେ ଖୁବ୍ ଜମ୍ ଟାଣ ବା ଜୋର୍ ପଡେ—

ହାଲ(ରି)ଲି—ଦେ. ବି—ହାଲହୁରି (ଦେଖ)— Hālu(ri)li Hālahuri (See) [ହାଲୁହୁ(ହୋ)ଲ(ଡ଼)—ଅନ୍ୟରୂପ]

ହାଲୁର୍—ଦେ. ବି, ଓ ବିଣ—ହାଲୋର [ଦେଖ]— Hālur Hālor (See)

ହାଲୁ ହାଲୁ—ଦେ. ବିଣ—୧ । ଭୟ ଯୋଗୁଁ ହୃତ୍‌କମ୍ପଯୁକ୍ତ—
Hālu hālu 1 With heart palpitating
বুকু হুব হুব दिल दहला due to fear.
୨ । ଭୟ କମ୍ପିତ—2. Trembling through
বুকু হুব হুব दिल दहलाई fear. ବି—
ଭୟଜନିତ କମ୍ପ—Trembling or shivering due to fear.

ହାଲୁ ହାଲୁ ପଡ଼ିବା—ଦେ. କ୍ରି—ହାଲୁ ହାଲୁ ହେବା [ଦେଖ]—
Hālu hālu pardibā Hālu hālu hebā (See).

ହାଲୁ ହାଲୁ ହେବା—ଦେ. କ୍ରି—ହୃତ୍‌କମ୍ପିବା; ଭୟବସ୍ତ ହେବା; ଭୟରେ
Hālu hā'u hebā କମ୍ପିବା—To shiver or
বুকু কাঁপা दिल दहलना tremble in fear.
ବି—୧ । ହୃତ୍‌କମ୍ପ ହେବା; ହୃଦୟ ଭୟରେ କମ୍ପିବା—
1. Palpitation or throbbing of the heart through fear. ୨। ଭୟରେ ଦେହ (ନିତମ୍ବ) କମ୍ପିବା
2. Trembling or shivering of the body (buttocks) through fear.

ହାଲେ—ପ୍ରାଦେ ( ଖଡ଼ଆଳ )ଅ.—୧ । ଆଶ୍ଚର୍ଯ୍ୟସୂଚକ ଶବ୍ଦ—1 An
Hāle exclamaton denoting astonishment.
୨ । ଏହିକ୍ଷଣି—2. Just now;at once; immediately.

ହାଲେ—ବୈଦେ କ୍ରି ବିଣ—( ଅ ହାଲ୍=ବର୍ତ୍ତମାନ )—ଅଳ୍ପଦିନ
Hāle হালে हालमें ହେଲା; ଏବେ—Recently.

ହାଲେଇ ଇତ୍ୟାଦି) ବୈଦେ· ବି.—ହାଲୁଇ ଇତ୍ୟାଦି ଦେଖ—
Hālei (etc) Hālui etc (See)

ହାଲୋ—ଦେ. ଅ—(ସ ହଲା; ସ୍ତ୍ରୀଲୋକମାନଙ୍କ ପ୍ରତି ସମ୍ବୋଧନରେ
Hālo ବ୍ୟବହୃତ)—ହଇଲୋ(ଦେଖ)—Hailo (See). ବୈଦେ
হাঁলো,হালো ए ବି—(ଇଂ)—ହଁ। ହେ !—Hallo !
হ্যালো हैलो

ହାଲୋଇ (ଇତ୍ୟାଦି)—ବୈଦେ. ବି—ହାଲୁଇ ଇତ୍ୟାଦି (ଦେଖ)—
Hāloi (etc) Hālui etc (See)

ହାଲୋର୍(ଲ୍)—ଦେ. ବି—(ସ ଆଲୋକ; ତୁଳ ଇଂ ହାଲୋ) —୧ ।
Hālor (l) ଉଜ୍ଜ୍ୱଳ ଆଲୋକ ରଶ୍ମି—1. Halo of light. ୨ ।
আলোক (ସଂ ହିଲ୍ଲୋଳ)—ହାଲହୁରି (ଦେଖ)—2. Hālohuri
आलोक (See) ବିଣ—୧ । ଉଜ୍ଜ୍ୱଳ ଆଲୋକମୟ—
1. Brilliantly shining; very lustrous; resplendent.

ହାଲୋର୍(ଲ୍)ମୟ—ଦେ. ବିଣ—(ସଂ ଆଲୋକମୟ)—ପ୍ରୋଜ୍ଜ୍ୱଳ—
Hāor (l)-maya Resplendent;brilliant; with a
আলোকময় आलोकमय halo of light.

ହାଲୋ(ଲୌ)ରି(ଲି)—ଦେ. ବି—ହାଲହୁରି (ଦେଖ)—
Hālo (lau)ri (li) Hālahuri (See)

ହାଲୋଲିଆ—ଦେ ବିଣପୁଂ-(ସଂ କୋଳାହଳକାରୀ; ସଂ ହଲହଲା=
Hāloliā ଅନବରତ କୋଳାହଳ)—୧। ବୁଲିବୁଆ;କୋଳାହଳକାରୀ
[ହାଲୋଲେଇ—ସ୍ତ୍ରୀ] —1. Boisterous ୨ । ବିପଦବେଳରେ
হুলোবিয়া ଆର୍ତ୍ତନାଦକାରୀ—2. Making loud wailing
हल्ला करनेवाला cry in distress.

ହାଲ୍କା (ଇତ୍ୟାଦି)—ଦେ ବିଣ—ହାଲ୍‌କା ଇତ୍ୟାଦି ଦେଖ—
Hālkā (etc) Hāl-kā etc (See)

ହାଲ୍ପା(ଇତ୍ୟାଦି)—ଦେ.ବି ଓ ବିଣ—ହାଲ୍‌ପା ଇତ୍ୟାଦି (ଦେଖ)—
Hālpā (etc) Hāl-pā etc (See)

ହାଲ୍ୱା—ବୈଦେ. ବି (ଅ) ହାଲୁଆ (ଦେଖ)—
Hālwā Hāluā (See)

ହାଲ୍ୱି—ବୈଦେ. ବି (ଅ) ହାଲୁଇ (ଦେଖ)—
Hālwi Hālui (See)

ହାୱା (ଇତ୍ୟାଦି)—ବୈଦେ. ବି—ହାଉଆ ଇତ୍ୟାଦି (ଦେଖ)
Hāwā (etc) Hāuā etc (See)

ହାୱାଲି—ଦେ·ବି—ଏକ ପ୍ରକାର ବନ୍ୟଗଛ—
Hāwāli Thespesia Populnea Corra (wild tree)

ହାସ୍—ଦେ. ଅ—ମନୁଷ୍ୟର ଖାଦ୍ୟାଦିକୁ ଆକ୍ରମଣ କରୁଥିବା କୁଆ,
Hās ବିରାଡ଼ି ଆଦିଙ୍କୁ ଘଉଡ଼ାଇବାର ଶବ୍ଦ—Interjection
[ହାସ୍ ହାସ୍—ଅନ୍ୟରୂପ] used in scaring away crows or cats setting on food etc.

ହାସ୍‌ପା(ପି)ତା(ଟ,ଟା)ଲ୍(ଲ୍)—ବୈଦେ· ବି—(ଇଂ ହସ୍‌ପିଟାଲ୍)—
Hās-pā(pi) tā (ta, tā)l(l) ଯେଉଁ ଡାକ୍ତରଖାନାରେ
হাস্পাতাল ରୋଗୀଙ୍କୁ ରଖାଯାଇ ଚିକିତ୍ସା କରାଯାଏ; ଚିକିତ୍ସାଗାର—
अस्पताल Hospital for treatment of indoor patients [ବି—ଯେଉଁ ଡାକ୍ତରଖାନାରେ ରୋଗୀ (Indoor patients)ଙ୍କୁ ଆଶ୍ରୟ ଦିଆଯାଇ ସେମାନଙ୍କର ଚିକିତ୍ସା କରାଯିବାର ବନ୍ଦୋବସ୍ତ ଥାଏ,ତାହାକୁ ହାସ୍‌ପାତାଲ୍ (Hospital) ଓ ଯେଉଁ ଡାକ୍ତରଖାନାକୁ ଆସିବା ରୋଗୀ (outdoor patients)ଙ୍କ ରୋଗ ପରୀକ୍ଷା କରାଯାଇ ଔଷଧର ବ୍ୟବସ୍ଥା କରାଯାଇ ବା ଔଷଧ ଦିଆଯାଇ ସେମାନେ ଘରକୁ ବିଦାୟକରି ଦିଆଯାଏ, ତାକୁ ଡିସ୍‌ପେନ୍‌ସରି (Dispensary) ବୋଲଯାଏ ।
ଯେଉଁ ଶ୍ରେଣୀର ବା ସ୍ଥଳର ରୋଗୀ ଯେଉଁ ହସ୍‌ପାତାଲ୍‌ରେ ଚିକିତ୍ସା ପାଆନ୍ତି ସାଧାରଣତଃ ସେହି ନାମ ଅନୁସାରେ ହସ୍‌ପାତାଲ୍‌ମାନଙ୍କର ନାମକରଣ ହୁଏ—ଯଥା ଜେନେରଲ୍ ହାସ୍‌ପାତାଲ୍, ସିଭିଲ୍ ହାସ୍‌ପାତାଲ, ମିଲିଟାରୀ ହାସ୍‌ପାତାଲ, ପୁଲିସ୍ ହାସ୍‌ପାତାଲ, ଜେଲ୍ ହାସ୍‌ପାତାଲ, କଲେରା ହାସ୍‌ପାତାଲ, ପିଲ୍‌ଗ୍ରିମ ହାସ୍‌ପାତାଲ, କଲେଜ୍ ହାସ୍‌ପାତାଲ ଇତ୍ୟାଦି ]

ହାସ୍‌ପିଟାଲ୍ ଆସିଷ୍ଟାଣ୍ଟ୍—ବୈଦେ. ବି (ଇଂ)—ଅସିଷ୍ଟାଣ୍ଟ୍ ସର୍ଜନ୍‌ମାନଙ୍କ
Hās-pital āsishtānt ଅଧୀନରେ ନିଯୁକ୍ତ ଡାକ୍ତର—Hos-
हस्पिटाल आसिष्टेन्ट pital Assistant; a doctor under
अस्पतालअसिस्टेण्ट an Assistant Surgeon. [ବି—
ଏମାନେ ନିମ୍ନତମ ସରକାରୀ ଡାକ୍ତର । ଜିଲ୍ଲାର ପ୍ରଧାନ ସରକାରୀ ଡାକ୍ତର ସିଭିଲ୍ ସର୍ଜନ୍, ତାଙ୍କ ତଳେ ଅସିଷ୍ଟାଣ୍ଟ ସର୍ଜନ୍ ଓ ତାଙ୍କ ତଳେ ହସ୍ପିଟାଲ୍ ଅସିଷ୍ଟାଣ୍ଟ୍ ଥାଆନ୍ତି । ଏମାନେ ଦେଶୀୟ ବା ଭାରତୀୟ ଡାକ୍ତର ଅଟନ୍ତି ।

ହାସ୍ଲତ—ବୈଦେ. ବଣ (ଅ)—ହାସିଲତ୍ (ଦେଖ)—
Hās-lat　　Hāsilāt (See)

ହାସ—ସଂ.ବି—(ହସ ଧାତୁ=ହସିବା+ଭାବ[ଅ)—୦। ହାସ୍ୟ; ହସ—
Hāsa　1. Laughter. ୨। ହସିବା କର୍ମ—2. Laughing. ୩। ହାସ୍ୟରସ—3. The sentiment producing laughter. ୪। ପରିହାସ—4. Jest. ୫। ଉପହାସ—5. Ridicule.

ହାସ.ମଲ୍ଲି—ସଂ. ବି—ପ୍ରସ୍ଫୁଟିତ ମଲ୍ଲିଫୁଲ—A full blown Jasmine flower.
Hāsa malli
(ହସମଲ୍ଲି—ଦେ. ରୂପ)

ହାସକ—ସଂ. ବଣ (ଣିଚ୍ ହାସ୍ ଧାତୁ ଣିଚ=ହାସି ଧାତୁ+କର୍ତ୍ତ୍ରି ଅକ)—
Hāsaka　ହାସ୍ୟଉତ୍ପାଦନକାରୀ; ଯେ ହସାଏ (ହି.ଶ)—Causing or provoking laughter.
(ହାସିକା—ସ୍ତ୍ରୀ)
ସଂ, ବି. ପୁଂ—ବିଦୂଷକ—A buffoon; jester (Apte).

ହାସକର—ସଂ. ବଣ.ପୁଂ—(ହାସ+କୃ ଧାତୁ+କର୍ତ୍ତ୍ରି ଅ)—ଯେ ବା ଯାହା
Hāsa kara　ହାସ୍ୟ ଉତ୍ପାଦନ କରେ (ହି.ଶ)—Causing or provoking laughter.
(ହାସକରୀ—ସ୍ତ୍ରୀ)

ହାସନ—ସଂ. ବି—(ହସଧାତୁ ଣିଚ=ହାସି ଧାତୁ+ଭାବ. ଅନ)—
Hāsana　ହସାଇବା (ହି.ଶ)—Provocation of laughter.

ହାସନିକ—ସଂ. ବି. ପୁଂ—(ହାସନ+ଇକ) ବିନୋଦର ବା କ୍ରୀଡ଼ାର
Hāsanika　ସହଚର—Boon companion.
(ହାସନିକା—ସ୍ତ୍ରୀ)

ହାସଲ୍—ବୈଦେ. ବି (କଚଇଅ) (ଆ, ହାସିଲ୍=ପ୍ରାପ୍ତ)—୧। ପାଇବା;
Hāsal　ପ୍ରାପ୍ତି—1. Getting; receipt. ୨। ଲାଭ—2. Profit; gain. ୩। ଉପାର୍ଜନ; ଅର୍ଜନ—3. Acquisition; earning. [ଯଥା—ସେମାନେ ବହୁତ ଜମି ହାସଲ କରି ନେଇଛନ୍ତି] ୪। ଫଳ; ଜମିର ଉତ୍ପନ୍ନଦ୍ରବ୍ୟ—4. Produce of land; fruit. ୫। ଫଳପ୍ରାପ୍ତି—5. The getting of a result or fruit. ୬। ସମ୍ପାଦନ—6. Accomplishment; achievement ୭। ଆଦାୟ; ଅସୁଲ—7. Realisation. ବଣ—୧। ପ୍ରାପ୍ତ; ଲବ୍ଧ—1. Got; gained. ୨। ଉପାର୍ଜିତ—2. Earned; acquired. ୩। ନିଜର ପରିଶ୍ରମାଦିର ଫଳରୂପେ ପ୍ରାପ୍ତ—3. Got as a result or fruit of one's labour. ୪। ଫଳପ୍ରଦ, ଫଳନ୍ତ—4. Fruitful; fruit-producing. ୫। ଫଳପ୍ରସୂ—5. Productive. ୬। ସମ୍ପନ୍ନ—6. Accomplished; achieved. ୭। ଲାଭଜନକ—7. Profitable. ୮। ଆଦାୟ ହୋଇଥିବା—8. Realised.
হাসিল　हासिल

ହାସଲ୍ କରିବା—ଦେ. କ୍ରି (କଚଇଅ)—୧। (ଧନ ବା ସମ୍ପତ୍ତି, ଫଳ,
Hāsal kariba　ଫସଲ) ପାଇବା—1. To get (property etc.) ୨। (ଧନ ବା ସମ୍ପତ୍ତି) ଅର୍ଜନ କରିବା—2. To earn or aquire (wealth). ୩। (ବିଦ୍ୟା ଆଦି) ଲାଭ କରିବା—3. To aquire (learning). ୪। (ଜମି ଆଦି) ଚାଷ ବା ଆବାଦ କରିବା—4. To reclaim or bring (land) under cultivation. ୫। [ହାକିମଙ୍କଠାରୁ ହୁକୁମ ଆଦି) ପାଇବା; ପ୍ରାପ୍ତ ହେବା—5. To get or receive (order from an authority) ୬। ଅନ୍ୟ ବ୍ୟକ୍ତିଠାରୁ ହସ୍ତାନ୍ତର ଦ୍ୱାରା ପ୍ରାପ୍ତ ହେବା; ହସ୍ତଗତ କରିବା—6. To get on transfer from another. (ଯଥା—ମୁଁ ୩ଟଙ୍କା ଖରଚ କରି ମାହାଫିସ ଖାନାରୁ ସହୁମୋହର ନକଲ ହାସଲ କରିଅଛି) ୭। ଆଦାୟ କରିବା—7. To realise.
হাসিলকরা　हासिलकरना

ହାସଲ୍ ହେବା—ଦେ. କ୍ରି (କଚଇଅ)—୧। ପ୍ରାପ୍ତ ହେବା—
Hāsal heba　1. To be got. ୨। ଉପାର୍ଜିତ ହେବା—2 To be aquired or earned. ୩। ଆବାଦ ହେବା—3. To be reclaimed or cultivated. ୪। ନିଷ୍ପନ୍ନ ହେବା—4. To be accomplished.
হাসিলহওযা　हासिलहोना

ହାସଲାତ୍—ବୈଦେ. ବଣ (କଚଇଅ) (ଅ)—ହାସିଲାତ୍ (ଦେଖ)—
Hāsalāt　Hāsilāt (See)

ହାସଲି—ବୈଦେ. ବଣ (କଚଇଅ) (ଅ—ହାସିଲ୍)—୧। ହାସଲ
Hāsali　କରାଯାଇଥିବା; ପ୍ରାପ୍ତ—1. Got. ୨। ଅର୍ଜିତ—2. Aquired; earned. ୩। ଫଳରୂପେ ପ୍ରାପ୍ତ—3. Achieved.
হাসিল　हासिलकियाहुआ

ହାସଲି ଜମି—ଦେ. ବି—୧। ଫଳୋତ୍ପାଦକ ଜମି—1. Land yielding crops; fruit-producing land.
Hāsali jami
୨। ଆବାଦୀ ଜମି—2. Arable land.
হাসিলজমি　हासिलकीहुईज़मिन

ହାସାଃ—ସଂ ବି (ହସ୍ ଧାତୁ+ଅସ୍; ହସସ୍ ଶବ୍ଦ, ୧ମା. ୧ବ)—
Hāsāh　(ବୈଦିକ ଶବ୍ଦ) ଚନ୍ଦ୍ର—(A vedic word) The moon.

ହାସିଆ—ବୈଦେ. ବି (କଚଇଅ) (ଅ ହାସିୟହ୍=ଧଡ଼ି; କିନାର)—
Hāsiā　୧। ଲୁଗା ଆଦିର ଧଡ଼ି—1. Border of a cloth. ୨। କାଗଜର ପାଖ ବା ଧାଡ଼ି—2. Edge or margin of a paper. ୩। ପୃଷ୍ଠାର ବା କାଗଜର ପାଖରେ କରିଯିବା କୋଠ—3. Marginal notes ବଣ—୧। ହାସିଆ ସମ୍ବନ୍ଧୀୟ—1 Marginal. ୨। ହାସିଅରେ ଲିଖିତ—2. Marginally noted. (ଯଥା—ହାସିଅ ସାକ୍ଷୀ)
হাসিয়া　हाशिया

ହାସିଅ ଛାଡ଼ିବା—ଦେ. କ୍ରି (କଚଇଅ)—ଦଲିଲର ଦୁଇପାର୍ଶ୍ୱରେ ସ୍ଥାନ
Hāsiā chhārdiba　ଛାଡ଼ି ଲେଖିବା—To leave margins in the paper while writing a deed.
হাসিয়াছাডা　हाँसियाछोड़ना

ହାସିଆତ୍ ରେଜିଷ୍ଟରୀ—ବୈଦେ. ବ (କଟକୀ) (ଅ ହାସିୟତ୍ ଓ ଇଂ
Hasiāt rejishtarī ରେଜିଷ୍ଟରୀ)—କୋ ଅପରେଟିଭ୍
ସୋସାଇଟି ଅଫିସ୍ ରେ ରଖାଯିବା ଏକପ୍ରକାର ରେଜିଷ୍ଟରୀ ବହି
—A kind of register maintained in the office of a Co-operatve Society.
हासियात्‌रेजिष्टरी हैसियातरेजीष्टरी

ହାସ ଆ ଦସ୍ତ[ଖ]ତ୍[ ]ତ୍—ବୈଦେ. (ଅ+ଫା.)ବ—[କଟକୀ]—
Hasia dasa(sta)ka (kha)t ୧ । ଦଲିଲର ପାର୍ଶ୍ୱଦେଶରେ
[ହାସିଆ ଦସ୍ତ (ସ୍ତ) ଖ—ଅନ୍ୟରୂପ] କରାଯାଇଥିବା ସ୍ୱାକ୍ଷର—
1. Signature on the margin of a document. ୨ । ଦଲିଲର ପାର୍ଶ୍ୱଦେଶରେ ସାକ୍ଷୀମାନଙ୍କ ସ୍ୱାକ୍ଷର—2. The signatures of attesting witnesses on the margin of a deed.
हा सयादस्तखत हाशियादस्तखत

ହାସିଆ ନ୍ନ (ର୍ଣ୍ଣ)ବ—ଗ୍ରା. ବ ଓ ବଣ ( ସ. ହାସ୍ୟାର୍ଣ୍ଣବ )—ହାସ୍ୟାର୍ଣ୍ଣବ
Hāsiā nna (rṇṇa)ba (ଦେଖ)—Hāsyārnnaba(See)
हास्यार्णव हसियार्नब

ହାସିଆ ପଡ଼ିବା—ଦେ. କ୍ରି (କଟକୀ)—ଦଲିଲର ସମ୍ପାଦନ ସମ୍ବନ୍ଧେ
Hāsiā pardiba ସାକ୍ଷୀ ରୂପେ ଦଲିଲର ପାର୍ଶ୍ୱରେ ଦସ୍ତଖତ୍
हासिया पड़ा କରିବା—To attest a document; to
हैसिया पडना sign a document at the margin as attesting witness.

ହାସିଆ ଲି(ଲେ)ଖିତ—ଦେ· ବଣ (କଟକୀ) (ଅ. ହାସିଅହ୍ ଓ ସ.
Hāsiā li(le)khita ଲିଖିତ)—ଦଲିଲର ପାର୍ଶ୍ୱରେ ଯେଉଁମାନଙ୍କ
हासिया लिखित ନାମ ଲେଖା ହୋଇଥାଏ—(persons)
हासिया लिखित Whose names appear on the margin of a document; noted in the margin; marginally noted.

ହାସିଆ ସାକ୍ଷୀ—ଦେ. ବ (କଟକୀ) (ଅ· ହାସିଅହ୍ ଓ ସଂ. ସାକ୍ଷୀ)—
Hāsiā sākshī ଯେଉଁ ସାକ୍ଷୀମାନେ ଦଲିଲର ପାର୍ଶ୍ୱରେ ଦଲିଲ-
हासिया साक्षी ସମ୍ପାଦନର ସାକ୍ଷୀ ରୂପେ ଦସ୍ତଖତ୍ କରି ଥାଆନ୍ତି—
हाशियेका गवाह Attesting witnesses; witnesses whose names or signatures or marks appear in the margin of a deed.

ହାସିକା—ସଂ.ବ(ହସ୍ ଧାତୁ+ଭାବ,ଇକ+ଆ)—୧ । ହାସ୍ୟ(ହେମଚନ୍ଦ୍ର)
Hāsikā 1. Laughter. ୨। ହାସ୍ୟରସ—2. The sentiment producing laughter. ୨ । (ହସ୍ ଧାତୁ ଣିଚ, ହାସି ଧାତୁ+କର୍ତ୍ତୃ. ଅକ+ସ୍ତ୍ରୀ. ଆ ) ବହୁସିକା; ଚଳନ ଗୁଡ଼ୁର୍ଣ୍ଣ ବା ଅଙ୍ଗଭଙ୍ଗୀ ଦ୍ୱାରା ହାସ୍ୟୋଦ୍ରେକକାରିଣୀ ହାସୀ—3. A woman who by her movements causes people to laugh; a female jester. ୪ । (ବୈଦିକ) ଚନ୍ଦ୍ର—4. (vedic) The moon. ୫ । ହସ କୌତୁକ—5. Mirth; merriment (Apte).

ହାସିମ୍ ଖାଁ—ଦେ. ବ (ନାମ)—ଓଡ଼ିଶାର ପ୍ରଥମ ମୋଗଲ ସୁବାଦାର୍—
Hāsim khān Name of the first Moghal
हासिम् खाँ Subadar or Governor of Orissa.
हासीम खाँ

ହାସୀ—ସଂ. ବଣ(ହାସିନ୍ ଶବ୍ଦ ;ହସ୍ ଧାତୁ+କର୍ତ୍ତୃ.ଇନ୍; କମ୍ବା ହାସ+
Hāsī ଇନ୍; ଅନ୍ୟ ଶବ୍ଦ ସଙ୍ଗେ ସମାସରେ ଯୁକ୍ତ ହୁଏ; ଯଥା—
(ହାସିନୀ—ସ୍ତ୍ରୀ) ଉଚ୍ଚହାସୀ; ଦରହାସିନୀ)—୧ । ହାସ୍ୟ କରୁଥିବା
—1. Laughing. ୨ । ଶ୍ୱେତ (ହ. ଶବ୍ଦସାଗର)—2. White.

ହାସୁ—ଦେ. ଅ—ହାସ୍ ( ଦେଖ )
Hāsu Hās ( See )
(ହାସୁ ହାସ୍—ଅନ୍ୟରୂପ)

ହାସ୍ତିକ - ସଂ ବ ( ହସ୍ତିନ୍+ସମୂହାର୍ଥେ କ )—୧ । ହସ୍ତି ସମୂହ;
Hāstika ହାତୀପଲ—1. A herd of elephants. ୨ । ହସ୍ତ୍ୟାରୋହ; ହାତୀରେ ଚଢ଼ିଥିବା ବ୍ୟକ୍ତି—2. An elephant rider; a rider on an elephant. ୩ । ମାହୁନ୍ତ—3. The driver of an elephant (Apte). ବଣ—ହସ୍ତି ସମ୍ବନ୍ଧୀୟ—Relating to the elephant.

ହାସ୍ତିନ—ସଂ. ବ ( ହସ୍ତିନ୍+ଅ )—୧ । ହସ୍ତି ସମ୍ବନ୍ଧୀୟ—
Hāstina 1. Relating to the elephant. ୨ । (ହସ୍ତ+ଇନ) ହସ୍ତ ସମ୍ବନ୍ଧୀୟ—2. Relating to the hand. ବ—୧ । (ହସ୍ତିନ୍+ଅ) ଗଜପରିମାଣ—(କ୍ୱିକାଣ୍ଡ ଶେଷ) 1. A measure of an elephant. ୨। ( ହସ୍ତିନ+ଅ ) ହସ୍ତିନାପୁର—2. The ancient capital of the Pāṇdaba kings of India. [ବ୍ର—ହସ୍ତିନ ନାମକ ରାଜା ଏହି ନଗର ପ୍ରତିଷ୍ଠା କରିଥିବାରୁ ଏହିପରି ନାମ ହୋଇଅଛି ।]

ହାସ୍ତିନ ପୁର—ସ. ବ—ହସ୍ତିନାପୁର (ହେମଚନ୍ଦ୍ର)—The ancient
Hāstina pur capital of the Pāṇdaba kings of India.

ହାସ୍ୟ—ସ ବ ( ହସ୍ ଧାତୁ+ଭାବ· ଯ )—୧ । ହସ—
Hāsya 1. Laugh; laughter. ୨ । ହସିବା କର୍ମ—2. Laughing. ୩ । ରସବିଶେଷ; କୌତୁକୋଦ୍ଦୀପକ ରସ—3. A sentiment producing laughter. [ବ୍ର—ଯାହା ଦେଖିଲେ ବା ଶୁଣିଲେ ଲୋକ ନ ହସି ରହି ପାରେ ନାହିଁ ତାହା ହାସ୍ୟରସ । ଯଥା—ବିକୃତାକାର, ବିକୃତ ବେଶ, ବିକୃତ ବାକ୍ୟ ଓ ବିକୃତ ଚେଷ୍ଟା । ରସ ଶବ୍ଦ ଟୀକା ଦେଖ ।

ହାସ୍ୟ ୬ ପ୍ରକାର ଥିବା ପ୍ରାଚୀନ ଗ୍ରନ୍ଥକାରମାନେ ବର୍ଣ୍ଣନା କରିଅଛନ୍ତି । ଯଥା—

ଶ୍ରେଷ୍ଠମାନଙ୍କର ୧ ସ୍ମିତ, ଓ ୨ ହସିତ । ମଧ୍ୟମାନଙ୍କର ୩ ବିହସିତ ଓ ୪ ଅବହସିତ । ଅଧମମାନଙ୍କର ୫ ଅପହସିତ ଓ ୬ ଅତିହସିତ ।

୧ । ସ୍ମିତ—ନୟନର ଈଷଦ୍‌ବିକାଶ ଓ ସ୍ପନ୍ଦିତାଧର-ଯୁକ୍ତ ହାସ୍ୟ ।

୨ । ହସିତ—ହସିବାବେଳେ ଦାନ୍ତ କିଞ୍ଚିତ୍ ଦେଖାଯିବା ହସ ।

୩ । ବିହସିତ—ମଧୁରସ୍ୱରଯୁକ୍ତ ହସ ।

୪ । ଅବହସିତ—ସ୍କନ୍ଧ ଓ ଶିରଃକମ୍ପଯୁକ୍ତ ହାସ୍ୟ ।

୫ । ଅପହସିତ – ଚକ୍ଷୁରେ ଅଶ୍ରୁ ଦେଖାଯିବା ହାସ୍ୟ ।

୬ । ଅତିହସିତ—ଅଙ୍ଗବିକ୍ଷେପ ସହିତ ହସ । ]

୪ । ପରିହାସ; ଥଟ୍ଟା—4. Jesting. ୫ । ଉପହାସ—5. Ridicule. ବିଣ [+ କର୍ମ. ଯ] ଉପହାସଯୋଗ୍ୟ—Laughable; ridiculous.

ହାସ୍ୟ କଥା—ସଂ ବି—୧ । ହାସ୍ୟମୟ ବିଷୟ—1. A matter full
Hāsya kathā of laughter. ୨ । ହାସ୍ୟୋଦ୍ରେକକାରୀ ବିଷୟ—2. A matter provoking laughter.

ହାସ୍ୟ କର—ସଂ ବିଣ —ହାସ୍ୟଜନକ; ହାସ୍ୟଉତ୍ପାଦକ—
Hāsya kara Comic; comical, causing or producing laughter; making people laugh.

ହାସ୍ୟ କରିବା—ଦେ. କ୍ରି—୧ । ହସିବା—1. To laugh.
Hāsya kariba ୨ । ଉପହାସ କରିବା—
हास्य करा हँसी करना 2. To laugh at, to ridicule.

ହାସ୍ୟ କୌତୁକ—ସଂ. ବି ( ଦ୍ୱନ୍ଦ୍ୱ ) —ହସ କୌତୁକ; ହସ ତାମସା—
Hāsya kautuka Hilarity; laughter and amusement; merriment.

ହାସ୍ୟଚ୍ଛଟା—ସଂ ବି (ହାସ୍ୟ+ଛଟା; ୬ଷ୍ଠୀ ତତ୍; ସନ୍ଧିଯୋଗୁ ଚ୍ଛ)—
Hāsyachchhatā ୧ । ହସିବାର ଢଙ୍ଗ—1. Mode of laughter; manner of laughing. ୨ । ହାସ୍ୟଜନିତ ଶୋଭା—2.Grace due to a person's laugh. ୩ । ଶୋଭାଯୁକ୍ତ ହାସ୍ୟ—3. Graceful laughter.

ହାସ୍ୟ ଜନକ—ସଂ. ବିଣ—ଯେ ବା ଯାହା ହାସ୍ୟ ଉଦ୍ରେକ କରେ—
Hāsya janaka Laugh-inducing; provoking or causing laughter.

ହାସ୍ୟ ତରଙ୍ଗ—ସଂ ବି (ଷଷ୍ଠୀ ତତ୍)—୧ । ତରଙ୍ଗ ବା ଢେଉ ପରି
Hāsya taranga ଉପର୍ଯ୍ୟୁପରି ଉଠୁଥିବା ହସ; ହାସ୍ୟର ହେଲ—1. Wave of laughter. ୨ । ( ନାମ ) ସଂସ୍କୃତ ନାଟିକାବିଶେଷର ନାମ—2. Name of a Sanscrit drama.

ହାସ୍ୟ ଧ୍ୱନି—ସଂ ବି ( ମ. ପ. ଲୋ; ହାସ୍ୟଜନିତ ଧ୍ୱନି )—ଉଚ୍ଚହାସ୍ୟ-
Hāsya dhwani ଜନିତ ଶବ୍ଦ—The sound of loud laughter.

ହାସ୍ୟ ପରିହାସ—ସଂ ବି (ଦ୍ୱନ୍ଦ୍ୱ)—ହସ ଓ ଥଟ୍ଟା—
Hāsya parihāsa Laugh and jesting.

ହାସ୍ୟ ପ୍ରଦୀପ୍ତ(ପ୍ରଫୁଲ୍ଲ)—ସଂ.ବିଣ (ତୃତୀୟା ତତ୍)—ହସ ଯୋଗୁଁ ବିକସିତ
Hāsya pradīpta(praphulla) ବା ଶୋଭମାନ [ମୁଖ]-(face) Lit up with laughter;brimming with laughter.

ହାସ୍ୟ ପ୍ରିୟ—ସଂ. ବିଣ. ପୁଂ [ ବହୁବ୍ରୀହି, ହାସ୍ୟ ପ୍ରିୟ ଯାହାର ]—ଯେ
Hāsya priya ହସିବାକୁ ଭଲ ପାଏ—Fond of
(ହାସ୍ୟପ୍ରିୟା – ସ୍ତ୍ରୀ) laughter, comical.

ହାସ୍ୟ ବଦନ—ସଂ.ବି ଓ ବିଣ.ପୁଂ[ମ.ପ ଲୋ]—ହାସ୍ୟମୁଖ (ଦେଖ)—
Hāsya badana Hāsya mukha (See).
[ହାସ୍ୟବଦନା—ସ୍ତ୍ରୀ]

ହାସ୍ୟମୟ ସଂ. ବିଣ [ ହାସ୍ୟ+ମୟ ] ୧ । ହାସ୍ୟଯୁକ୍ତ—
Hāsya maya 1. Full of laughter; comical.
[ହାସ୍ୟମୟୀ—ସ୍ତ୍ରୀ] ୨ । ହସୁଥିବା—2. Laughing.

ହାସ୍ୟ ମୁଖ—ସଂ. ବି [ମ. ପ. ଲୋ]—ହାସ୍ୟଯୁକ୍ତ ବଦନ; ହସ ହସ ମୁହଁ
Hāsya mukha —Laughing face.
ବିଣ. ପୁଂ [ ବହୁବ୍ରୀହି; ହାସ୍ୟ ଅଛି ମୁଖରେ ଯାହାର ]—
( ହାସ୍ୟମୁଖୀ—ସ୍ତ୍ରୀ ) ହସମୁହାଁ; ହସୁରାମୁହାଁ—
Having a laughing or smiling face.

ହାସ୍ୟ ରଞ୍ଜିତ - ସଂ. ବିଣ (ତୃତୀୟା ତତ୍)—ହାସ୍ୟପ୍ରଦୀପ୍ତ [ଦେଖ]—
Hāsya ranjita Hāsya pradīpta (See)

ହାସ୍ୟ ରସ—ସଂ. ବି—କାବ୍ୟରସବିଶେଷ; ଯାହା ଦେଖିଲେ, ପଢ଼ିଲେ ବା
Hāsya rasa ଶୁଣିଲେ ମନୁଷ୍ୟ ନ ହସିକରି ରହି ପାରେ ନାହିଁ—The sentiment of laughter in literature.
(ଦ୍ର—ରସ ତଳେ ଟୀକା ଦେଖ ।)

ହାସ୍ୟ ରସାତ୍ମକ—ସଂ. ବିଣ—ହାସ୍ୟରସଯୁକ୍ତ; ଯହିଁରେ ହାସ୍ୟରସ ଅଛି—
Hāsya rasātmaka Abounding in the
(ହାସ୍ୟରସାତ୍ମିକା—ସ୍ତ୍ରୀ) sentiment of laughter.

ହାସ୍ୟରସାତ୍ମକ ନାଟକ—ସଂ. ବି—ଯେଉଁ ନାଟକରେ ହାସ୍ୟରସ ପ୍ରଧାନ
Hāsya rasātmaka nātaka ଅଟେ—A comedy; a comical play.

ହାସ୍ୟ ରସିକ—ସଂ. ବିଣ.ପୁଂ—ହାସ୍ୟ ରସରେ ନିପୁଣ; ଯେ ଲୋକମାନଙ୍କୁ
Hāsya rasika ହସାଇ ପାରେ—Capable
(ହାସ୍ୟରସିକା—ସ୍ତ୍ରୀ) of causing people to
(ହାସ୍ୟରସିକତା—ବି) laugh.

ହାସ୍ୟ ଲହରୀ—ସଂ. ବି—ହାସ୍ୟତରଙ୍ଗ (ଦେଖ)—
Hāsya laharī Hāsya taranga (See)

ହାସ୍ୟ ସଂବରଣ (ସମ୍ବରଣ)—ସଂ. ବି—( ୬ଷ୍ଠୀ ତତ୍ )—ହାସ୍ୟକୁ
Hāsya sambarana (sambarana) ସଂଯତ କରିବା; ନିଜର ଉଠୁଥିବା ହସକୁ ସମ୍ଭାଳିନେବା—Restraining of one's rising laughter.

ହାସ୍ୟ ସଂବରଣ (ସମ୍ବରଣ) କରିବା—ଦେ. କ୍ରି—ହସ ମାଡିଲେ
Hāsya sambarana (sambarana) kariba ତାହାକୁ

ସମ୍ଭାଳିବା ବା ଗୁପିବା—To control one's laughter; to restrain one's self from
হাস্য সংবরণ করা हसी रोकना laughing.

ହାସ୍ୟ – ଇତ୍ୟାଦ ଦେ.ବ ଓ ବିଣ—(କଟଉଆ)—ହାସିଆ ଇତ୍ୟାଦ
Hasya (etc) (ଦେଖ)—Hāsiā etc (See).

ହାସ୍ୟାନ (ନ୍ନ) ବ—ଗ୍ରା. ବ—( ସ. ହାସ୍ୟାର୍ଣ୍ଣବ )—ହାସ୍ୟାର୍ଣ୍ଣବ
Hāsyana (nna) ba (ଦେଖ)—Hāsyārṇnaba (See)
ବିଣ—୧ । ହାସ୍ୟାସ୍ପଦ (ବ୍ୟକ୍ତି)—1. Ridiculous; laughed at; being the butt end of laughter. ୨ । ହାସ୍ୟଜନକ (କଥା)—2. Causing or producing laughter. ୩ । ଉପହାସାସ୍ପଦ—
হাস্যার্নব हासयार्नव 3 Subject to ridicule

ହାସ୍ୟାନ (ନ୍ନ, ର୍ଣ୍ଣ) ବ କରିବା—ଦେ. କ୍ରି—କୌଣସି କଥାକୁ ବା
Hāsyāna (nna, rnna) ba karibā ବ୍ୟକ୍ତିକୁ ଉପହାସରେ ଉଡ଼ାଇ ଦେବା—To laugh at a person or a
হাস্যার্নব করা हासयार्नवकरना thing.

ହାସ୍ୟାର୍ଣ୍ଣବ—ସ. ବିଣ - (ସମୁଦ୍ର ସଙ୍ଗେ ତୁଳନୀୟ ହାସ୍ୟ)—୧ ।
Hāsyārṇnaba ହାସ୍ୟରାଶି ; ବହୁଲୋକଙ୍କ ହାସ୍ୟ—
1. The laughter of many persons. ୨ । ହାସ୍ୟତରଙ୍ଗ—2. Wave of laughter; hilarity ; mirth. ୩ । (ନାମ, କଗଦୀଶଙ୍କ ରଚିତ ହାସ୍ୟୋଦ୍ଦୀପକ ସଂସ୍କୃତନାଟକ ବିଶେଷ – 3. A Sanscrit comical drama or burlesque by Jagadisa. ଦେ. ବିଣ—ହାସ୍ୟାନବ (ଦେଖ)—
Hāsyānaba (See)

ହାସ୍ୟାଳାପ – ସ. ବି—(ମ୍ୟ, ପ. ଲୋ)—ହାସ୍ୟଯୁକ୍ତ କଥୋପକଥନ ;
Hāsyālāpa ରସାଳାପ—Comical conversation.

ହାସ୍ୟାସ୍ପଦ—ସ. ବିଣ—୧ । ଯାହା ଦେଖିଲେ ହସମାଡ଼େ—
Hāsyāspada 1. Provoking laughter. ୨ । ଉପହସନୀୟ – 2. Ridiculous

ହାସ୍ୟୋଦ୍ଦୀପକ—ସ. ବିଣ—( ୬ଷ୍ଠୀ ତତ୍ )—ଯାହା ଶୁଣିଲେ ବା
Hāsyoddīpaka ଦେଖିଲେ ହସମାଡ଼େ—Comical;
(ହାସ୍ୟୋତ୍ପାଦକ—ଅନ୍ୟରୂପ) burlesque.

ହା ହତାଶ—ପ୍ରାଦେ (ଖଡ଼ୁଅଲ) ବିଣ—ଅତ୍ୟନ୍ତ ନିରାଶ—
Hā hatāsa Very much disappointed

ହା ହତୋଽସ୍ମି—ସ. ବାକ୍ୟ (ପୁରୁଷପକ୍ଷରେ)—(ଏଥିର ଅର୍ଥ ଅହୋ ! ମୁଁ
Hā hato (a) smi ମଲି—(ଖେଦ ବା ଶୋକାର୍ଥକ ବାକ୍ୟ)
ଅହୋ ! ମୋର ସର୍ବନାଶ ହେଲା—(Interjection) Alas !
(ସ୍ତ୍ରୀପକ୍ଷରେ—ହା ହତାସ୍ମି) I am done for.

ହା ହନ୍ତ—ଦେ.ଅ—(ବିସ୍ମୟ ସୂଚକ) ଦୁଃଖ ବିସ୍ମୟସୂଚକ ଅବ୍ୟୟ —ଅହୋ
Hā hanta Alas ! [ଉ—ବାହାର ପୌଷ ମାସ କା ବଷ ନାଶ, ହା ହନ୍ତ କ ବିଷମ ଅସାମଞ୍ଜସ୍ୟ । ନନ୍ଦକିଶୋର—କହ୍ଲରଣୀ ।]

ହାହ [ହା] ଳ—ସ. ବି—ହଳାହଳ (ବିଷରାବଳୀ) [ଦେଖ]—
Hā ha (hā) la Halāhāla (See).

ହା ହା—ସ. ଅ— [ହା=ଧ୍ୱନି+ହା. ଧାତୁ=ତ୍ୟାଗ କରିବା+
Hā hā ଡ୍ବିପ୍ ]—୧ ହାୟ ହାୟ, ଅହୋ ! (ଖେଦ ବା ଶୋକଜନିତ ଧ୍ୱନି)—1. (Interjection)Alas ! (in lamentation). [ଉ—ମୋର ସ୍ୱଛା ଭାଗ୍ୟେ ଏହୁ ଫିଟା ହା ହା ! ମୋହର ଭାଗ୍ୟେ ଏ ପଡି । ଗ୍ରଧାନାଥ—ପାର୍ବତୀ । ] ୨ । ଅନୁତାପଜନିତ ଧ୍ୱନି—2. Alas ! (in regret) ୩ । (ବିସ୍ମୟସୂଚକ ଧ୍ୱନି) ଓହୋ —3. Ha Ha ! (in wonder). ବି—[ହା ଶବ୍ଦ+ହା. ଧାତୁ= ତ୍ୟାଗ କରିବା+କ୍ବିପ୍ ]—ଦେବଗନ୍ଧର୍ବ ବିଶେଷ—
A class of Divine songsters.
[ଦ୍ର—ଦେବତାମାନଙ୍କ ସ୍ତବରେ ନିଯୁକ୍ତ ଗନ୍ଧର୍ବମାନଙ୍କ ମଧ୍ୟରୁ ହାହା ଏକ ଶ୍ରେଣୀର ଅଟନ୍ତି । କେତେକ ଦେବଗନ୍ଧର୍ବମାନଙ୍କ ଶ୍ରେଣୀ ଯଥା—ହାହା, ହୁହୁ, ବିଶ୍ୱାବସୁ, ତୁମ୍ବୁରୁ, ଚିତ୍ରରଥ; ଏମାନେ ଦେବତାମାନଙ୍କର ଉପାସନା କରି ଗୀତ ଗାଅନ୍ତି ] ଦେ ଅ—୧ । ସ୍ମରଣାର୍ଥକ ଧ୍ୱନି —1·An exclamation of rememberance [ଉ—ହାହା ଜନମୟ ରସ, ବେଳେ ଜାତ କରୁଥିବ ସେ ହରଷ—ଉଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ] ୨ । ବିସ୍ମୟ ବା ସନ୍ତୋଷାର୍ଥକ ଧ୍ୱନି—2. An exclamation of satisfaction or wonder. (ଉ—ହାହା ଶୋଭନ୍ତୁ ସୁସ୍ୱକେଶୁ ନାମ ତାହାକୁ—ଉଞ୍ଜ. କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ)

ହାହୋ—ପ୍ରାଦେ. (ସମ୍ବଲପୁର) ଅ—ଅହେ !—
Hābo Oh !

ହାହାଁ—ଦେ. ଅ—ହାଁ ହାଁ (ଦେଖ)—
Hā hāñ Hāñ hāñ (See)

ହାହାଃ—ସଂ. ବି—(ହାହସ୍ ଶବ୍ଦ)—ଗନ୍ଧର୍ବ ବିଶେଷ—
Hā hāh A class of divine songsters.

ହାହା କରିବା—ଦେ.କ୍ରି—ଶୋକରେ ବା ଖେଦରେ ହାହା ଧ୍ୱନି କରିବା
Hāhā karibā —To lament or wail in distress.
হাহা করা [ଦ୍ର—ମୁକୁନ୍ଦ ପାଦ ଦେଖି ସବୁ ପ୍ରାଣୀ ଦୁଃଖୀ, ହୋଇ
हाहा करना ହାହା କରି ବୁଲିଲେ ବେଳ ଅଶ୍ରି । କୃଷ୍ଣସିଂହ ମହାଭାରତ. କର୍ଣ୍ଣ ।]

ହାହାକାର—ସ. ବ—(ହାହା+କୃ. ଧାତୁ+ଭାବ ଅ)—୧ । ଶୋକଧ୍ୱନି
Hāhā kāra — 1. Loud lamentation; cry of distress [ଉ—ଅନ୍ନ ପାଇଁ ଦେଶେ ହାହାକାର—ଅନାହାରେ କେତେ ଭାଇ ଯାନ୍ତି ଯମପୁର ଲୋ କୋଇଲି—ବାଲକୃଷ୍ଣ ଅକାଳ କୋଇଲି ।] ୨ । ଯୁଦ୍ଧ କଳରବ (ଶବ୍ଦ କଳ୍ପଦ୍ରୁମ)
2. Noise or consternation of battle.

ହାହାକାର ମୟ—ସ. ବ — ହାହାକାରରେ ପୂର୍ଣ୍ଣ; ଶୋକପୂର୍ଣ୍ଣ—
Hāhākāra maya Sorrowful; full of a lamentation; lamentable.
(ହାହାମୟ—ଅନ୍ୟରୂପ)
হাহাকারময় हाहाकारमय

ହାହା ପଦ(ଶବ୍ଦ)—ଦେ. ବି—ଖେଦସୂଚକ ହାହାକାର ଧ୍ୱନି—
Hāhā pada(śabada) Exclamation giving vent to
हाहाशब्द grief e. g. (Alas !) [ଉ—ଅସୁରେ ଦେଖି ହାହା
हाहा शब्द ପଦେ, ବଳ ଗର୍ଜଇ ଘୋରନାଦେ । ଜଗନ୍ନାଥ ଭାଗବତ ।]
[ହାହା ଧ୍ୱନି(ଶବ୍ଦ, ରବ)—ସଂ. ଦୃପ

ହାହାହା—ପ୍ରାଦେ (ଖଡ଼ଥଲ) ଅ—(ଧ୍ୱନ୍ୟନୁକରଣ)—ଉଚ୍ଚ ହାସ୍ୟର
Hāhāhā ଧ୍ୱନି—The sound of loud laughter.

ହାହା ହୁହୁ—ସଂ. ବି—(ଦ୍ୱନ୍ଦ୍ୱ)—ଦୁଇଟି ଶ୍ରେଣୀର ଗନ୍ଧର୍ବ—
Hāhā hu hu Two classes of divine choristers.

ହା ହୁତାଶ—ଦେ. ବି—(ସଂ. ହାହାତୋସ୍ମି=ଅହା ! ମଲି)—୧ ।
Hā hutāśa ବିପନ୍ନ ବା ଦୁଃଖଗ୍ରସ୍ତ ବ୍ୟକ୍ତିର ଆର୍ତ୍ତସ୍ୱର—1.
हा हुताश Cry of distress ୨ । ବିପନ୍ନ ବ୍ୟକ୍ତିର
हाहताश ଖେଦୋକ୍ତି—2. Exclamation of grief of
a person in distress. ୩ । ଅହା ! ମୋର
ସର୍ବନାଶ ହେଲା, ଏହି ଦୁଶ୍ଚିନ୍ତା—3. The utter
anxiety of a person who is in trouble.
ବିଣ—ବିପନ୍ନ ହୋଇ ଆର୍ତ୍ତସ୍ୱର ଭାଷୀ—Uttering cry
of distress.

ହାହୁତାଶ କରିବା—ଦେ. କ୍ରି—୧ । ଦୁଃଖରେ ଆର୍ତ୍ତନାଦ କରିବା—1.
Hā hutāśa kariba To utter a cry of distress.
हा हुताश करना ୨। ଶୋକ ବା ଖେଦ କରିବା—2. To lament.
हाहताशकरना

ହା ହୁତାଶ ହେବା—ଦେ. କ୍ରି—ବିଦେଦରେ ଆର୍ତ୍ତନାଦ କରିବା—To
Hāhutāśa hebā wail or lament in grief.
हा हुताश करना हाहताशहोना

ହାହ୍ନି(ହ୍ନେ)ମା(ମେ, ମ୍ୟା)ନ୍—ବୈଦେ. ବି—(ନାମ)—ହୋମିଓ-
Hāhni (hne) mā (me, myā)n ପାଥିକ୍ ଚିକିତ୍ସା ପ୍ରଣାଳୀର
हानिम्यान ପ୍ରବର୍ତ୍ତକ ପ୍ରସିଦ୍ଧ ସ୍ୱର୍ଗତ ଜର୍ମାନ୍ ଡାକ୍ତର—Samuel
हानेमैन Christian Fredrich Hahnemann, the late
German discoverer of Homeopathy. [ବୃ—
ପାଶ୍ଚାତ୍ୟ ଦେଶରେ ଆଲୋପାଥିକ୍ ଚିକିତ୍ସକଗଣ ଯେତେବେଳେ ଚିକିତ୍ସାବିଜ୍ଞାନକୁ ଏକଘେଇଆ କରି ରୋଗର ମୌଳିକ କାରଣ ଅନୁସନ୍ଧାନ କରିବା ପରିବର୍ତ୍ତେ ରୋଗୀମାନଙ୍କ ଉପରେ ଯଥେଚ୍ଛାଚାରର ଅଧିକାର ବିସ୍ତାର କରିବାରେ ପ୍ରବୃତ୍ତ ଥିଲେ, ସେତେବେଳେ ଇଉରୋପ ମହାଦେଶର ବିଜ୍ଞାନକେନ୍ଦ୍ର, ଜର୍ମାନୀ ଦେଶର ସାକ୍ସନି ପ୍ରଦେଶରେ ସାମୁଏଲ ହାନେମାନ୍ ନାମକ ଜଣେ କ୍ଷଣଜନ୍ମା ପ୍ରତିଭାଶାଳୀ ମନୀଷୀ ୧୭୫୫ ଖ୍ରୀଷ୍ଟାବ୍ଦ ଅପ୍ରେଲ ୧୦ ତାରିଖରେ ଜନ୍ମଗ୍ରହଣ କଲେ । ବାଲ୍ୟକାଳରୁ ଏହି ମନୀଷୀ ସହସ୍ର ସହସ୍ର ଘାତ ପ୍ରତିଘାତ ସହ୍ୟ କରି, ନାନା ବାଧାବିଘ୍ନ ଅତିକ୍ରମ କରି ନିଜର ଅସାମାନ୍ୟ ପ୍ରତିଭା ବଳରେ ଚିକିତ୍ସାଜଗତରେ ବିପ୍ଳବ ଆନୟନ କରିଥିଲେ । ବାଲ୍ୟାବସ୍ଥାରେ ଗ୍ରୀକ୍ ଓ ମାତୃଭାଷା ଶିକ୍ଷା କରି ସେ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିବାକୁ ଚେଷ୍ଟା କରିଥିଲେ; ମାତ୍ର ପିତାଙ୍କର ଆର୍ଥିକ ଅବସ୍ଥା ସଚ୍ଛଳ ନ ଥିବାରୁ ବାଧ୍ୟ ହୋଇ ଲେଖା ପଢ଼ା ବନ୍ଦ କରିଥିଲେ । କଲେଜର ଅଧ୍ୟାପକମାନେ ହାନେମାନଙ୍କ ପ୍ରତିଭାର ପରିଚୟ ପାଇ ବିନା ବେତନରେ ତାଙ୍କୁ ପଢ଼ାଇବାକୁ ରାଜି ହୋଇଥିଲେ । କିଛିକାଳ ଅଧ୍ୟୟନ କରି ସେ ଲିପ୍‌ଜିଗ୍ ବିଶ୍ୱବିଦ୍ୟାଳୟର ଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେଠାରେ ପରୀକ୍ଷଣ (experiment) କାର୍ଯ୍ୟ ପାଇଁ ସୁବିଧା ନ ଥିବାରୁ ସେ ଲିପ୍‌ଜିଗ୍‌ରୁ ଯାଇ ଭିଏନାର ଚିକିତ୍ସାଳୟରେ ଅଧ୍ୟୟନ କଲେ । ଲିପ୍‌ଜିଗ୍‌ରେ ପଢ଼ୁଥିବା ସମୟରେ ସେ କେତେଗୁଡ଼ିଏ ଇଂରାଜୀ ଗ୍ରନ୍ଥ ଜର୍ମାନ୍ ଭାଷାରେ ଅନୁବାଦ କରିଥିଲେ । ବାଳକ ହାନେମାନ ନିଜର ଅଧ୍ୟବସାୟ ଓ ପ୍ରତିଭା ବଳରେ ଭିଏନାର ପ୍ରଧାନ ଚିକିତ୍ସକ କୋୟାରିନ୍‌ଙ୍କର ପ୍ରଧାନ ପାର୍ଶ୍ୱଚର ଓ ପ୍ରିୟପାତ୍ର ହୋଇ ପାରିଥିଲେ ।

ଅଧ୍ୟୟନକାଳ ଶେଷ ହୋଇ ଯିବାରୁ ହାନିମାନ୍ ତାଙ୍କ ଶିକ୍ଷାଗୁରୁ କୋୟାରିନଙ୍କ ଯତ୍ନରେ ଟ୍ରାନସିଲ୍‌ଭାନିଆ ପ୍ରଦେଶର ଶାସନକର୍ତ୍ତାଙ୍କର ଚିକିତ୍ସାଗାରର ଓ ପୁସ୍ତକାଗାରର ଅଧ୍ୟକ୍ଷ ପଦରେ ନିଯୁକ୍ତ ହେଲେ । ଏହିଠାରେ ତାଙ୍କ ଦୁଃଖନିଶାର ଅବସାନ ହେଲା ଏବଂ ବହୁକାଳର ପୋଷିତ ଆଶା ପୂର୍ଣ୍ଣ ହେବାର ସୂଚନା ମିଳିଲା । ଏହି ପୁସ୍ତକାଗାରର ସୁଯୋଗ ପାଇ ସେ ଗ୍ରୀକ୍, ଲାଟିନ୍, ଇଂରେଜୀ, ଫ୍ରେଞ୍ଚ୍, ଇଟାଲିଆନ୍, ହିବ୍ରୁ, ସିରିୟାନ୍ ଓ ସ୍ପାନିଶ୍ ଭାଷା ମାନ ଶିକ୍ଷା କରି ପାରିଥିଲେ । ମାତ୍ର ଏହି ସମ୍ମାନଜନକ ପଦବୀରେ ସେ ବେଶିଦିନ ରହି ପାରିଲେ ନାହିଁ । ଏମ୍. ଡି଼ ଉପାଧି ପାଇବାକୁ ତାଙ୍କୁ ଏନଲାର୍ଜେନକୁ ଯିବାକୁ ପଡ଼ିଲା । ସେଠାରେ ଉପାଧି ପାଇଁ ପ୍ରସ୍ତୁତ ହେବା ସଙ୍ଗେ ସଙ୍ଗେ ସେ ଉଦ୍ଭିଦ ବିଜ୍ଞାନ ବିଷୟରେ ଗବେଷଣା କଲେ । ୧୭୭୯ ଖ୍ରୀଷ୍ଟାବ୍ଦରେ ୨୪ ବର୍ଷ ବୟସରେ ସେ ଏମ୍. ଡି଼. ଉପାଧି ଲାଭ କଲେ । ତାପରେ ସେ ହେଟ୍‌ଷ୍ଟାଟ ସହରରେ ଚିକିତ୍ସା ବ୍ୟବସାୟ ଆରମ୍ଭ କଲେ ଏବଂ ତହିଁର ଅଳ୍ପଦିନ ମଧ୍ୟରେ ଅନ୍ୟ ଏକ ପ୍ରଦେଶର ରାଜକୀୟ ଚିକିତ୍ସକ ପଦରେ ନିଯୁକ୍ତ ହେଲେ । ଏହି ସମୟରେ ଜଣେ ଔଷଧ ବିକ୍ରେତା ହେସିଲରଙ୍କ କନ୍ୟା ହେନ୍ରୀଏଟା କୁଚ୍‌ଲର୍‌ଙ୍କୁ ସେ ବିବାହ କଲେ । ଯୋଗୋ ନାମକ ସ୍ଥାନରେ ଚିକିତ୍ସକ କାର୍ଯ୍ୟ କରୁଥିବା ସମୟରେ ରସାୟନବିଦ୍ୟା, ଉଦ୍ଭିଦ୍‌ବିଦ୍ୟା ଓ ଔଷଧ ପ୍ରସ୍ତୁତ କରିବା ପ୍ରଣାଳୀ ସମ୍ବନ୍ଧରେ ସେ ଗଭୀର ଜ୍ଞାନ ଅର୍ଜନ କରିଥିଲେ; ସେଠାରୁ ସେ ଡ୍ରେସ୍‌ଡେନ୍ ସହରରେ ଯାଇ ପହଞ୍ଚିଲେ; ଏହି ସହରର ରାଜକୀୟ ଚିକିତ୍ସାଳୟରେ ପ୍ରତିନିଧି ଚିକିତ୍ସକ ହୋଇ ଭେଷଜ ଶାସ୍ତ୍ରାଭିଜ୍ଞ ଡାକ୍ତର ୱାଗ୍‌ନର୍‌ଙ୍କ ନିକଟରେ ମନୋଯୋଗପୂର୍ବକ ଭେଷଜ ଗୁଣ ଶିକ୍ଷା କଲେ । ମହାମତି ହାନେମାନ୍ ନିଜର ଉର୍ବରମସ୍ତିଷ୍କ ଓ ଗଭୀର ଅଧ୍ୟବସାୟ ବଳରେ ଉକ୍ତ ପ୍ରବୀଣ ଅଧ୍ୟାପକଙ୍କ ପ୍ରିୟ ଶିଷ୍ୟ ହୋଇ ପାରିଥିଲେ ଏବଂ ଚିକିତ୍ସାଳୟର ସମସ୍ତ ଭାର ସ୍ୱୟଂ ଗ୍ରହଣ କଲେ । କ୍ରମେ କ୍ରମେ ସେ ଚିକିତ୍ସା ବିଦ୍ୟାରେ ଖ୍ୟାତି ଅର୍ଜନ କଲେ ।

ଏହିପରି ପ୍ରାୟ ଦଶ ବର୍ଷକାଳ ବହୁ ଗବେଷଣା ଓ ସଫଳତାର ସହିତ ଚିକିତ୍ସା ବ୍ୟବସାୟ କରିବା ପରେ ତତ୍କାଳୀନ ଚିକିତ୍ସା ବିଧାନ ପ୍ରତି ମନୀଷୀ ହାନେମାନ୍ଙ୍କର ଅଶ୍ରଦ୍ଧା ଜନ୍ମିଲା । ସେ କ୍ରମେ କ୍ରମେ ଆଲୋପାଥିକ୍ ଚିକିତ୍ସାର ଅସାରତା ଓ ଅପକାରିତା ବୁଝି ପାରିଲେ । ତେଣୁ ସେ ଏହି କଳ୍ପନାମୂଳକ ଚିକିତ୍ସା ପରିତ୍ୟାଗ କରି ରସାୟନ ଶାସ୍ତ୍ର ଅଲୋଚନା କରି ତଦ୍ଦ୍ୱାରା ଜୀବନ ଯାପନ କରିବାକୁ ସଙ୍କଳ୍ପ କଲେ । ସେହି ସମୟରେ ରସାୟନ ବିଦ୍ୟାର ଓ ଚିକିତ୍ସାବିଷୟକ ମୂଳ ଗ୍ରନ୍ଥକୁ ନିଜର ସ୍ୱାଧୀନ ମତ ଅନୁସାରେ ବ୍ୟାଖ୍ୟା ଓ ସଂଶୋଧନ କରି ସେ ଗ୍ରନ୍ଥକାରମାନଙ୍କର ଭ୍ରମ ଦେଖାଇ ଦେଇଥିଲେ । ସେହି ସଂଶୋଧିତ ଗ୍ରନ୍ଥଗୁଡ଼ିକ ଅନେକ ସ୍ଥାନରେ ମୂଳଗ୍ରନ୍ଥ ଅପେକ୍ଷା ଅଧିକ ମୂଲ୍ୟବାନ୍ ବୋଲି ବୈଜ୍ଞାନିକ ଜଗତ୍‌ରେ ଆଦୃତ ହେଲା । ଏହି ସମୟରେ ସେ 'ଭିନେଗାର୍' (ମଦର କାଞ୍ଜି) ପ୍ରସ୍ତୁତ କରିବା ପ୍ରଣାଳୀ, ମିଶ୍ରଣରେ ବିଶୁଦ୍ଧତା ଓ ଅବିଶୁଦ୍ଧତା ଓ ରାସାୟନିକ ପଦାର୍ଥ ଓ ମଦ୍ୟ ପରୀକ୍ଷା ପ୍ରଣାଳୀ, ପୋଟାସିଅମ୍ ଦ୍ୱାରା ସୋଡ଼ା ପ୍ରସ୍ତୁତ କରିବା, ମଦ ଦୂଷିତ ହେବାର କାରଣ, ପାରଦକୁ ତରଳ କରିବାର ପ୍ରଣାଳୀ ଇତ୍ୟାଦି ଆବିଷ୍କାର କରିଥିଲେ । ୧୭୮୪ ଖ୍ରୀଷ୍ଟାବ୍ଦରେ ସେ ସ୍କ୍ରୋଫୁଲା (ଗଣ୍ଡମାଳା) ଓ ତାହାର ଚିକିତ୍ସା (Scrofula and its treatment) ନାମକ ଖଣ୍ଡିଏ ପୁସ୍ତକ ଲେଖିଥିଲେ । ଏହି ପୁସ୍ତକ ଖଣ୍ଡିକ ପଢ଼ିଲେ ସ୍ପଷ୍ଟ ବୁଝାଯାଏ ଯେ, ସେତେବେଳର ପ୍ରଚଳିତ ଚିକିତ୍ସା ବିଧାନ ପ୍ରତି ତାଙ୍କର ଘୋର ଅଶ୍ରଦ୍ଧା ଜନ୍ମିଥିଲା । ଏହି ସମୟରେ ପ୍ରାଚ୍ୟ ପାଶ୍ଚାତ୍ୟ ଜଗତର ବହୁ ଚିକିତ୍ସା ଶାସ୍ତ୍ର ଅଧ୍ୟୟନ କରିବା ଫଳରେ ତାଙ୍କ ମନରେ ଦୃଢ଼ ଧାରଣା ଜନ୍ମିଲା ଯେ, ପ୍ରଚଳିତ ସର୍ବବିଧ ଚିକିତ୍ସା ପ୍ରଣାଳୀ କଳ୍ପନା-ମୂଳକ ଅଟେ ଓ ଏଥିରେ ରୋଗର ପ୍ରକୃତ ଔଷଧ ନିର୍ବାଚିତ ହୋଇ ନାହିଁ । ସେହି ସମୟଠାରୁ ସେ ପ୍ରଚଳିତ ଚିକିତ୍ସା ପ୍ରଣାଳୀର ଆମୂଳ ପରିବର୍ତ୍ତନ ପାଇଁ ବଦ୍ଧପରିକର ହେଲେ; ୧୭୯୦ ଖ୍ରୀଷ୍ଟାବ୍ଦରେ କଲେନ୍ ସାହେବଙ୍କ ପ୍ରଣୀତ ମେଟେରିଆ ମେଡିକା (ଭୈଷଜ୍ୟ ବିଦ୍ୟା) ଗ୍ରନ୍ଥକୁ ଜର୍ମାନ୍ ଭାଷାରେ ଅନୁବାଦ କଲେ । ସେହି ଗ୍ରନ୍ଥରେ ସିନ୍‌କୋନା ନାମକ ଔଷଧ ଜ୍ୱରନାଶକ ବୋଲି ଯେଉଁ ବ୍ୟାଖ୍ୟା ପଢ଼ିଲେ ସେଥିରେ ସେ ଏକମତ ହୋଇ ପାରିଲେ ନାହିଁ । ବିଶିଷ୍ଟ ଭାବରେ ଔଷଧର ବହୁବିଧ ଗୁଣାବଳୀ ଗମ୍ଭୀର ଭାବରେ ଆଲୋଚନା କରିବା ପରେ ତାଙ୍କ ମନରେ ଦୃଢ଼ ଧାରଣା ହେଲା ଯେ, ସୁସ୍ଥ ଶରୀରରେ ସିନ୍‌କୋନା କମ୍ପ ଜ୍ୱରର ଲକ୍ଷଣ ପ୍ରକାଶ କରେ; ଏହି ଧାରଣାର ସତ୍ୟତା ଉପଲବ୍ଧି କରିବା ପାଇଁ ସେ ନିଜ ଶରୀରରେ କୁଇନାଇନ୍‌ର ଫଳ ପରୀକ୍ଷା କଲେ । ସେ ପ୍ରଥମେ ୪ ଡ୍ରାମ୍ କୁଇନାଇନ୍ ପାନ କରି ଦେଖି ପାରିଲେ ଯେ, ପାଳି-ଜ୍ୱରରେ ଯେଉଁ ସବୁ ଲକ୍ଷଣ ପ୍ରକାଶ ପାଏ, ସେହି ସବୁ ଲକ୍ଷଣ ତାଙ୍କ ଦେହରେ ପ୍ରକାଶ ପାଇଲା । ସେହି ଦିନରୁ ତାଙ୍କ ମନରେ ଧାରଣା ହେଲା ଯେ, କୁଇନାଇନ୍ ସୁସ୍ଥ ବ୍ୟକ୍ତିର ଦେହରେ ଯେଉଁ ସବୁ ଲକ୍ଷଣ ପ୍ରକାଶ କରେ, ତହିଁର ପ୍ରୟୋଗ ଦ୍ୱାରା ପୁଣି ସେହି ଲକ୍ଷଣମାନଙ୍କର ଆରୋଗ୍ୟ ହୁଏ ।

ଔଷଧର ପ୍ରକୃତ ଗୁଣ ପରୀକ୍ଷା କରିବା ପାଇଁ ସେ ନିଜେ ନାନାପ୍ରକାର ବିଷ ସେବନ କରି, ଗରଳ-ବିଜ୍ଞାନ ଅଧ୍ୟୟନ କରି, ବନ୍ଧୁବାନ୍ଧବଙ୍କ ଶରୀରରେ ମଧ୍ୟ ଔଷଧର ଫଳ ପରୀକ୍ଷା କରିବାରେ ଲାଗିଲେ । ଏହାପରେ ୬ ବର୍ଷକାଳ ନାନାପ୍ରକାର ପରୀକ୍ଷା ଓ ଗବେଷଣା କରି 'ସମଃ ସମଂ ସମୟୃତେ' (Similia Similibus Cuiantur-Like things are cured by the like) ସମଫଳ ଉତ୍ପାଦକ ପଦାର୍ଥ ଦ୍ୱାରା ସମଲକ୍ଷଣ ବିଶିଷ୍ଟ ରୋଗ ଆରୋଗ୍ୟ ହୁଏ, ଏହି ତଥ୍ୟ ଆବିଷ୍କାର କଲେ । ବୈଜ୍ଞାନିକ ନିଉଟନ୍ ଆପଲ ଗଛରୁ ଫଳ ଖସିପଡ଼ିବାର କାରଣ ଅନୁସନ୍ଧାନ କରୁ କରୁ ଯେଉଁପରି ମାଧ୍ୟାକର୍ଷଣ ଶକ୍ତି ଆବିଷ୍କାର କରିଥିଲେ, ଯୁଗଜନ୍ମା ମାନବ-ବନ୍ଧୁ ହାନେମାନ୍ ସେହିପରି 'ସିନ୍‌କୋନା ସେବନରେ କାହିଁକି କମ୍ପଜ୍ୱର ହୁଏ'? ଏଥିର କାରଣ ଅନୁସନ୍ଧାନ କରୁ କରୁ 'ସମମତ' ବା ହୋମିଓପାଥି (Homeopathy) ରୂପ ଅପୂର୍ବ ସତ୍ୟର ସନ୍ଧାନ ପାଇଲେ ।

୧୭୯୬ ଖ୍ରୀଷ୍ଟାବ୍ଦରେ ପ୍ରଥମେ ହୋମିଓପାଥି ସମ୍ବନ୍ଧୀୟ ତାଙ୍କର ଆବିଷ୍କାରଗୁଡ଼ିକ ହୁଫେଲାଣ୍ଡ୍‌ସ୍ ଜର୍ଣ୍ଣାଲ୍(ପତ୍ରିକା)ରେ ମେଡିସିନ୍ ଅଫ୍ ଏକ୍ସ୍‌ପେରିଏନ୍ସ୍ (Medicine of Experience) ନାମକ ସନ୍ଦର୍ଭରେ ସେ ପ୍ରକାଶ କଲେ । ତହିଁର କିଛିଦିନ ପରେ ତାଙ୍କର ମେଟେରିଆ ମେଡ଼ିକା ପିଉରା (Materia Medica Pura) ନାମକ ଖଣ୍ଡିଏ ଗ୍ରନ୍ଥର ପ୍ରଥମ ଖଣ୍ଡ ମୁଦ୍ରିତ ଓ ପ୍ରକାଶିତ ହେଲା । ଏହି ପୁସ୍ତକରେ ଓ ପ୍ରବନ୍ଧାଦିରେ ସେ ଦୃଢ଼ଭାବରେ ଘୋଷଣା କଲେ ଯେ, ହୋମିଓପାଥିକ୍ ଚିକିତ୍ସା ଯେ କେବଳ କେତେକ ରୋଗରେ ଉପକାରୀ, ତାହା ନୁହେଁ; ସମସ୍ତ ପ୍ରକାର ରୋଗର ଚିକିତ୍ସା ପାଇଁ ଏହି ବିଧାନ ସର୍ବୋତ୍କୃଷ୍ଟ । ତାଙ୍କର ଏହି ଅଭିନବ ମତ ପ୍ରଚାରିତ ହେବା ପରେ ଚାରିଆଡ଼େ ଗୋଟାଏ ବିପ୍ଳବର ସୂତ୍ରପାତ ହେଲା । ତାହାର ଫଳରେ ଅନେକ ସୁବିଜ୍ଞ ଆଲୋପାଥିକ୍ ଡାକ୍ତର ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ଏଥିର ୫ ବର୍ଷ ପରେ ତାଙ୍କର ବିଖ୍ୟାତ ହୋମିଓପାଥିକ୍ ବିଜ୍ଞାନ ଗ୍ରନ୍ଥ 'ଅର୍ଗାନନ୍ (Organon) ପ୍ରକାଶିତ ହେଲା । ସେଥିରେ ସେ ତାଙ୍କର ନବାବିଷ୍କୃତ ଚିକିତ୍ସା ମତର ସମ୍ୟକ୍ ଆଲୋଚନା କଲେ । ଏହି ସମୟରେ ମଧ୍ୟ ସେ Fragmenta de Veritas (ସତ୍ୟର ଅଂଶମାନ) ନାମକ ପୁସ୍ତକ ଲାଟିନ୍ ଭାଷାରେ ପ୍ରକାଶ କଲେ । ସୁସ୍ଥ ବ୍ୟକ୍ତିଙ୍କ ଦେହରେ ସତେଇଶଟି ଔଷଧ ପ୍ରୟୋଗ କରି ଯେଉଁ ସବୁ ଲକ୍ଷଣ ପାଇଥିଲେ ତାହାହିଁ ସେହି ବହିରେ ସେ ଲିପିବଦ୍ଧ କଲେ । ଏହାହିଁ ପ୍ରଥମ ହୋମିଓପାଥିକ୍ 'ମେଟେରିଆ ମେଡ଼ିକା' ବା ଭେଷଜ ବିଜ୍ଞାନ ଗ୍ରନ୍ଥ ।

୧୭୯୭ ଖ୍ରୀଷ୍ଟାବ୍ଦରେ ହାନେମାନ୍ ଫନ୍‌ଜେଞ୍ଜିୟାନ୍ ଫରେଷ୍ଟର ଅନ୍ତର୍ଗତ ଜର୍ଜସ୍ଥାନର ବାତୁଳାଶ୍ରମରେ ଚିକିତ୍ସକ ପଦ ଗ୍ରହଣ କଲେ । ପୂର୍ବ ପ୍ରଚଳିତ ଚିକିତ୍ସା ପ୍ରଣାଳୀ ବିରୁଦ୍ଧରେ ପ୍ରଚାର କରି ଲକ୍ଷଣ ସଦୃଶ ଔଷଧମାନ ପ୍ରୟୋଗ କରି ବାତୁଳମାନଙ୍କର ଚିକିତ୍ସା କରିବା ଦ୍ୱାରା ସେ ଆଶାନୁରୂପ ଫଳଲାଭ କଲେ । ଏହି ମନୀଷୀଙ୍କ ଚେଷ୍ଟାରେ ପୃଥିବୀରୁ ବାତୁଳମାନଙ୍କର ପ୍ରଚଳିତ ପାଶବ ଚିକିତ୍ସା ପ୍ରଥାର ମୂଳୋତ୍ପାଟନ ହେଲା । ତା ପରେ ସେ ଲିପ୍‌ଜିଗ୍ ବିଶ୍ୱବିଦ୍ୟାଳୟର ସମମତ ଶାସ୍ତ୍ରାଧ୍ୟାପକ ( Teacher of Homeopathy ) ନିଯୁକ୍ତ ହେଲେ । ଏହି ସୁଯୋଗ ପାଇ ସେ ଛାତ୍ରମାନଙ୍କୁ ନିଜ ମତରେ ଦୀକ୍ଷିତ କରିବାରେ ଲାଗିଲେ । ଅର୍ଗାନନ୍ ଓ ହୋମିଓ ଚିକିତ୍ସା ସମ୍ବନ୍ଧୀୟ ପ୍ରକାଶିତ ପୁସ୍ତକର ଅକାଟ୍ୟ ଯୁକ୍ତିରେ ଓ ତାଙ୍କ ଅଭିନବ ଚିକିତ୍ସାପ୍ରଣାଳୀରେ ତଦାନୀନ୍ତନ ଡାକ୍ତର ଔଷଧ ବ୍ୟବସାୟୀମାନଙ୍କର ହୃତ୍‌କମ୍ପ ଜାତ ହେଲା । ନିଜନିଜ ବ୍ୟବସାୟର ବିପୁଳ କ୍ଷତି ହେବ ବୋଲି ଜାଣି ସେମାନେ ପ୍ରମାଦ ଗଣିଲେ; ତେଣୁ ସେମାନେ ଏକତ୍ର ମିଳିତ ହୋଇ ମହାତ୍ମା ହାନେମାନଙ୍କ ବିରୁଦ୍ଧରେ ଷଡଯନ୍ତ୍ର ଆରମ୍ଭ କଲେ । ଉକ୍ତ ସମୟରେ ଜର୍ମାନୀରେ ଆଇନ ପ୍ରଚଳିତ ଥିଲା ଯେ, ଚିକିତ୍ସକମାନେ କେବଳ ଔଷଧର ବ୍ୟବସ୍ଥା ଦେଇବେ, ମାତ୍ର ଔଷଧ ବିକ୍ରୟ କରି ପାରିବେ ନାହିଁ । ସେହି ସୁବିଧା ପାଇ ସ୍ୱାର୍ଥାନ୍ଧ ଡାକ୍ତର ଓ ଔଷଧ ବ୍ୟବସାୟୀମାନେ ତାଙ୍କ ନାମରେ ଏହି ଅଭିଯୋଗ କଲେ ଯେ, ସେ ଔଷଧ ବିକ୍ରୟ ନ କରି ସେ କେବଳ ବିତରଣ କରୁଛନ୍ତି । ରାଜାଙ୍କର ଆଦେଶ ହେଲା, ଯେ ହାନେମାନ୍ ଔଷଧ ତିଆରି କରି ପାରିବେ ନାହିଁ, କି ବିତରଣ କରି ପାରିବେ ନାହିଁ ! ତେଣୁ ସେ ସେଠାରୁ ସମସ୍ତ ସହାନୁଭୂତିର ଆଶା ବିସର୍ଜନ କରି ହାମ୍‌ବର୍ଗ ପ୍ରଦେଶକୁ ଯାତ୍ରା କଲେ । ତାଙ୍କ ନିକଟରେ ଯାହା କିଛି ଅର୍ଥ ସଞ୍ଚିତ ଥିଲା, ସେ ସମସ୍ତ ପଥ ମଧ୍ୟରେ ବ୍ୟୟିତ ହୋଇଗଲା । ଏହି ସମୟରେ ଅର୍ଥାଭାବରୁ ସେ ଦିନବେଳେ ବହି ଲେଖୁଥାଆନ୍ତି ଏବଂ ରାତିରେ ରଞ୍ଜନକାର୍ଯ୍ୟ ଆଦିରେ ତାଙ୍କ ସ୍ତ୍ରୀଙ୍କୁ ସାହାଯ୍ୟ କରୁଥାଆନ୍ତି । ସେଠାରୁ ସେ ଡେମାରୁନ୍ ପ୍ରଦେଶକୁ ଗଲେ । ମାତ୍ର ସେଠାରେ ମଧ୍ୟ କିଛି ସୁବିଧା କରି ନ ପାରି ସ୍ୱଦେଶକୁ ଫେରିଆସିଲେ । ଏଥର ଚିକିତ୍ସକମାନେ ତାଙ୍କର ଅଧିକତର ଦୁର୍ବ୍ୟବହାର କଲେ । ତେଣୁ ସେ ପୁଣି ଡେମାରୁନ୍‌କୁ ଚାଲିଗଲେ । ଏହି ସମୟରେ ଜର୍ମାନୀରେ ଆରକ୍ତ ଜ୍ୱର ( Scarletina fever ) ପ୍ରବଳଭାବରେ ଘୋଟିବାରୁ ହାନେମାନ୍ ବେଲାଡୋନାକୁ ଏହି ରୋଗର ଔଷଧରୂପେ ପ୍ରୟୋଗ କରି ଆଶ୍ଚର୍ଯ୍ୟ ଫଳ ପାଇଲେ । ଏହା ଦେଖି ଅଲୋପାଥିକ୍ ଡାକ୍ତରମାନେ ମଧ୍ୟ ଗୋପନରେ ସେହି ଔଷଧର ବ୍ୟବସ୍ଥା ଦେବାରେ ଲାଗିଲେ । ଏହି ସମୟରେହିଁ ତାଙ୍କୁ ହୋମିଓପାଥିକ୍ ଚିକିତ୍ସା ପ୍ରଣାଳୀର ବିଶେଷତ୍ୱ ଦେଖାଇବା ପାଇଁ ସୁଯୋଗ ମିଳିଲା ।

ତାପରେ ଲିପ୍‌ଜିଗ୍‌ରେ ସେ ପ୍ରକାଶ୍ୟ ଭାବରେ ହୋମିଓପାଥିକ୍ ଚିକିତ୍ସା ଆରମ୍ଭ କଲେ । ତାଙ୍କର ମେଟେରିଆ ମେଡିକା ଗ୍ରନ୍ଥ ଛଅ ଖଣ୍ଡରେ ପ୍ରକାଶିତ ହେଲା । ଉକ୍ତ ପୁସ୍ତକର ପ୍ରକାଶ ହେବା ପରେ ଅନେକ ଲୋକ ତାଙ୍କର ଉପଦେଶ ଶୁଣିବାକୁ ଆସିଲେ । ସେଠାରେ ସେ ଆଉ କେତେ ଖଣ୍ଡି ପୁସ୍ତକ ପ୍ରଣୟନ କଲେ । ଏହି ସମୟରୁ ସେ ଜଣେ ସୁଦକ୍ଷ ଡାକ୍ତର ବୋଲି ଦେଶରେ ପରିଚିତ ହେଲେ; ମାତ୍ର ତାଙ୍କ ବିରୁଦ୍ଧରେ ଷଡଯନ୍ତ୍ର ପୂର୍ବ ଚାଲିଲା ଓ ପୁଣି ରାଜାଙ୍କର ଆଦେଶ ହେଲା ଯେ, ସେ ଔଷଧ ତିଆରି କରି ପାରିବେ ନାହିଁ । ଅଳ୍ପେ ଅଳ୍ପେ ତାଙ୍କ ନିର୍ବାସନ ଆଦେଶ ପ୍ରଚାରିତ ହେଲା । ନୂତନ ସତ୍ୟର ପ୍ରଚାର ପାଇଁ ଯୁଗେ ଯୁଗେ ମହାତ୍ମାମାନେ ଯେଉଁପରି ସ୍ୱାର୍ଥାନ୍ଧ ଲୋକଙ୍କ ହସ୍ତରେ ନିର୍ଯ୍ୟାତନ ସହ୍ୟ କରିଛନ୍ତି, ମହାତ୍ମା ହାନେମାନଙ୍କ ଭାଗ୍ୟରେ ତାହାହିଁ ଘଟିଲା । ସେ ଶେଷରେ ସତ୍ୟ ପାଇଁ ଜୀବନ ଉତ୍ସର୍ଗ କଲେ । ୭୬ ବର୍ଷ ବୟସରେ ଚିରଦିନ ପାଇଁ ତାଙ୍କୁ ନିର୍ବାସିତ କରାଇ ଆଲୋପାଥିକ୍ ଡାକ୍ତରମାନେ କ୍ରୋଧ ଶାନ୍ତ କଲେ । ମାତ୍ର ସତ୍ୟର ଉପାସକ ହାନେମାନ୍ ସ୍ୱୀୟ କର୍ତ୍ତବ୍ୟପଥରୁ ତିଳେ ମାତ୍ର ଦୁଙ୍କିଲେ ନାହିଁ । ସେ ଆନ୍‌ହାଲ୍‌ଟକଥନ୍ ସହରରେ ଯାଇ ଉପସ୍ଥିତ ହେଲେ । ସେଠାର ଶାସକ ଡିଉକ୍ ଫର୍ଡିନାଣ୍ଡ ହୋମିଓପାଥିକ ଚିକିତ୍ସା ବ୍ୟବସାୟ କରିବା ପାଇଁ ତାଙ୍କୁ ଖଣ୍ଡିଏ ସନନ୍ଦ ପ୍ରଦାନ କଲେ ଏବଂ ସୁଖସ୍ୱଚ୍ଛନ୍ଦରେ ରହି ବ୍ୟବସାୟ କରିବାପାଇଁ ତାଙ୍କର ସମସ୍ତପ୍ରକାର ବନ୍ଦୋବସ୍ତ କରିଦେଲେ ଓ ଅଳ୍ପ ଦିନ ପରେ ହାନିମାନଙ୍କୁ କାଉନସିଲର୍ ଅଫ୍ ଷ୍ଟେଟ୍ (Councllor of State) ଉପାଧି ଦେଲେ । ଏହି ସମୟରେ ଇଉରୋପର ଚାରିଆଡ଼ୁ ଅସଂଖ୍ୟ ରୋଗୀ ତାଙ୍କ ପାଖକୁ ଚିକିତ୍ସା ପାଇଁ ଆସିଲେ । ୧୮୨୭ ଓ ୧୮୨୮ ଖ୍ରୀଷ୍ଟାବ୍ଦରେ ଯଥାକ୍ରମେ ଇଂଲଣ୍ଡର ଖ୍ୟାତ ଡାକ୍ତର କୋୟେନ୍ ଓ ଆମେରିକାର ସୁପ୍ରସିଦ୍ଧ ଡାକ୍ତର ହେରିଙ୍ଗ୍ ହୋମିଓପାଥିକ୍ ଚିକିତ୍ସାପ୍ରଣାଳୀର ଅସାରତା ପ୍ରମାଣ କରିବା ପାଇଁ ହାନିମାନ୍‌ଙ୍କ ନିକଟକୁ ଆସିଥିଲେ; କିନ୍ତୁ ଯୁଦ୍ଧରେ ପରାସ୍ତ ହୋଇ ଓ ନିଜର ଭ୍ରମ ବୁଝିପାରି ଶେଷରେ ସେ ଦୁଇଜଣ ବଡ଼ ହୋମିଓପାଥିକ ଡାକ୍ତର ପାଲଟିଗଲେ । ଏହି ଦୁଇଜଣ ଡାକ୍ତର ଇଂଲଣ୍ଡରେ ଓ ଆମେରିକାରେ ହୋମିଓପାଥିର ପ୍ରଚାର କଲେ । ୧୮୨୮ ଖ୍ରୀଷ୍ଟାବ୍ଦରେ ହାନିମାନ (Chronic disease) ପୁରାତନ ରୋଗ ବୋଲି ଗୋଟିଏ ଗ୍ରନ୍ଥ ୪ ଖଣ୍ଡରେ ସମାପ୍ତ କରି ପ୍ରକାଶ କଲେ ।

୧୮୩୦ ଖ୍ରୀଷ୍ଟାବ୍ଦରେ ହାନିମାନଙ୍କର ହୃଦୟରେ ଦାରୁଣ ଆଘାତ ଦେଇ ତାଙ୍କର ପ୍ରଥମା ସହଧର୍ମିଣୀ ପ୍ରାଣତ୍ୟାଗ କଲେ । ୧୮୩୫ ରେ ସେ ପୁନର୍ବାର ବିବାହ କଲେ । ଏହି ବିବାହର ଘଟଣା ଅତି ଅଦ୍ଭୁତ । କୁମାରୀ ମେଲେନ୍ ଡି ହାର୍ଭେଲିନାମ୍ନୀ ଜଣେ ଫରାସୀ ରମଣୀ ଯକ୍ଷ୍ମା

ରୋଗରେ ବହୁକାଳ ଯନ୍ତ୍ରଣା ଭୋଗି ବହୁ ଡାକ୍ତରଙ୍କ ନିକଟରୁ ହତାଶ ହୋଇ ଫେରି ଶେଷରେ ହାନ୍ତିମାନଙ୍କ ଚିକିତ୍ସାରେ ଆରୋଗ୍ୟଲାଭ କରି ତାଙ୍କୁ ବିବାହ କରିବାର ଇଚ୍ଛା ପ୍ରକାଶ କଲେ । ହାନ୍ତିମାନ୍ ସେଥିରେ ରାଜି ହେଲେ । ଅଳ୍ପ ଦିନ ପରେ ସ୍ତ୍ରୀଙ୍କୁ ସଙ୍ଗରେ ନେଇ ସେ ପାରି ନଗରରେ ଯାଇ ଉପସ୍ଥିତ ହେଲେ; ଅତ୍ୟଧିକ ଔଷଧ ନିଜ ଦେହରେ ପରୀକ୍ଷା କରି ସେ କ୍ରମାଗତ ପୀଡ଼ାଗ୍ରସ୍ତ ହୋଇ ଶେଷରେ ତାଙ୍କର ସ୍ୱାସ୍ଥ୍ୟଭଙ୍ଗ ହେଲା । ୮୯ବର୍ଷ ବୟସରେ ସେ ମୂତ୍ରକୃଚ୍ଛ୍ର ରୋଗରେ ଆକ୍ରାନ୍ତ ହେଲେ; ଏହି ରୋଗରୁ ଆଉ ଆରୋଗ୍ୟଲାଭ କରି ପାରିଲେ ନାହିଁ । ୧୮୪୪ଖ୍ରୀଷ୍ଟାବ୍ଦ ଜୁଲାଇ ମାସ ୨ତାରିଖରେ ଚିକିତ୍ସାଜଗତକୁ ଗଭୀର ଅନ୍ଧାରରେ ଆବୃତ କରି ସେ ଚିରକାଳ ପାଇଁ ଇହଜଗତରୁ ବିଦାୟ ନେଲେ ।

ହାନ୍ତିମାନଙ୍କ ଜନ୍ମଭୂମିରେ ତାଙ୍କର ପ୍ରସ୍ତରମୟୀ ମୂର୍ତ୍ତି ସ୍ଥାପିତ ହୋଇଅଛି । ଉକ୍ତ ମୂର୍ତ୍ତିର ଚତୁଃପାଖେ ବେଲଡୋନା ଓ ଡଜଟେଲିସ୍ ପ୍ରଭୃତି ବୃକ୍ଷ ଶୋଭାପାଇ ସେ ସ୍ଥାନର ସୌନ୍ଦର୍ଯ୍ୟ ବର୍ଦ୍ଧନ କରୁଅଛି । ତାହାର ଚତୁର୍ଦ୍ଦିଗରେ ତତ୍କାଳୀନ ପ୍ରଧାନ ପ୍ରଧାନ ହୋମିଓ ଚିକିତ୍ସକମାନଙ୍କର ନାମ ମଧ୍ୟ ଉତ୍କୀର୍ଣ୍ଣ କରା ଯାଇଅଛି ।

ସନ୍ଦର୍ଭ ଲେଖକ—ଡାକ୍ତର ନଟବର ମହାନ୍ତି ଏଚ୍. ଏମ୍ ଡି, ଏଫ୍.ଏଚ୍. ଏ, ପ୍ରିନ୍‌ସିପାଲ୍, ଉତ୍କଳ ହୋମିଓପାଥିକ୍ ମେଡିକାଲ୍ କଲେଜ୍—କଟକ ।]

ହି (ଧାତୁ)—ସଂ—୧ । ଗମନ କରିବା—1. To go. ୨ । ବୃଦ୍ଧି
Hi (root) ପାଇବା; ବଢ଼ିବା—2. To be increased; to grow. ୩ । ପ୍ରେରଣ କରିବା—3. To send.

ହି—ସ. ଅ—(ହି ଧାତୁ=ଗମନ କରିବା+କର୍ତ୍ତ୍ରି ଇ)—୧ । ହିଁ; ନିଶ୍ଚୟ-
Hi 1. Certainly. (ଯଥା—ବିପନ୍ନର ସାହାଯ୍ୟ କରିବାହିଁ ମନୁଷ୍ୟତା) ୨ । ଅବଧାରଣାର୍ଥକ—2. Interjection used in ascertainment.(ଯଥା-ଏହାହିଁ ମୁଁ ସ୍ଥିର କଲି) ୩ । ହେତ୍ୱର୍ଥକ—3,In reasoning. ୪ । ପ୍ରଶ୍ନାର୍ଥ—4.In questioning. ୫। ସମ୍ଭ୍ରମାର୍ଥକ-5.In respect. ୬ । ଅସୂୟାର୍ଥକ—6. In envy.୭ । ପାଦ ପୂରଣାର୍ଥକ-7. In concluding a sentence.୮। ବ୍ୟଗ୍ରତାର୍ଥକ-8. In anxiety. ୯ । ଶୋକାର୍ଥକ—9. In grief.

ହି ଦେ.ଅ-ଦାନ୍ତକୁ ଅଳ୍ପ ଦେଖାଇ ଉପହାସ୍ୟ କରିବାର ଶବ୍ଦ—
हि The sound of laughing by slightly exhibitng the teeth.

ହିଅ(ଆ)ର୍ । ହିଅ(ଆ)ର୍ !—ବୈଦେ.ଅ (ଇଂ;ଅଧୁନିକ ସଭା ସମିତିରେ
Hia(ā)r hia(ā)r ଇଂରାଜମାନଙ୍କ ଅନୁକରଣରେ ବ୍ୟବହୃତ ଶବ୍ଦଦ୍ୱୟ)—[ ବକ୍ତାଙ୍କ ବକ୍ତୃତାର କୌଣସି ଅଂଶକୁ ପ୍ରଶଂସା କରି ଅନ୍ୟ ସମସ୍ତ ଶ୍ରୋତାମାନଙ୍କ ମନୋଯୋଗ ଆକର୍ଷଣ କରିବାପାଇଁ ଶ୍ରୋତାମାନଙ୍କ ମଧ୍ୟରୁ ଜଣେ ଶ୍ରୋତାଙ୍କ ଦ୍ୱାରା ଉଚ୍ଚାରିତ ଶବ୍ଦଦ୍ୱୟ । ଏଥିର ମର୍ମ ]—ବକ୍ତାଙ୍କର ବକ୍ତୃତାର ଏହି ଅଂଶକୁ ଆପଣମାନେ ମନୋଯୋଗ ପୂର୍ବକ ଶୁଣନ୍ତୁ—
हियारहियार हिअरहिअर Hear hear!

ହିଅ(ଆ)ରିଙ୍ଗ୍—ବୈଦେ. ବି (କଚେରୀ) (ଇଂ)—ମକଦ୍ଦମାର ଶୁଣାଣି;
Hia(ā)ring ହାକିମଙ୍କ ଦ୍ୱାରା ମକଦ୍ଦମାର ବିଚାର—Hearing or trial of a case. [ଦ୍ର—ଗଞ୍ଜାମରେ ଏହି ଶବ୍ଦ
हियारिङ्ग हिअरिङ्ग ହେରିଙ୍ଗ୍ ବୋଲି ଉଚ୍ଚାରିତ ହୁଏ]

ହିଅ(ଆ)ରିଙ୍ଗ୍ ଫି(ଫିସ୍)—ବୈଦେ.ବି(କଚେରୀ)(ଇଂ)—ଶୁଣାଣି ହେଉ
Hia(ā)ring phi(phis) ଥିବା ମକଦ୍ଦମାର ଜବାବ ସୁଆଲ କରିଥିବା ଯୋଗୁ ଜିତିବା ପକ୍ଷର ଓକିଲଙ୍କ ଫିସ୍ ପାଇଁ ହାରିବା ପକ୍ଷଙ୍କ ଉପରେ ହାକିମଙ୍କଦ୍ୱାରା ଡିଗ୍ରୀ ହୋଇଥିବା ଟଙ୍କା—Hearing fee of a case decreed by a court, to be paid to the winning side by the
हियारिङ्गफि हिअरिङ्गफि losing side.

ହିଅ—ଦେ. ବି (ସ ହୃଦୟ; ପ୍ରା. ହିଅଅ)—୧ । ହୃଦୟ; ଅନ୍ତଃକରଣ—
Hia 1. Heart; mind. [ଉ—ଏହା ଶୁଣି ସୁଖୀ ହୋଇଲା ମୋର ହିଅ—କୃଷ୍ଣସିଂହ. ମହାଭାରତ ବନ] ୨ । ବକ୍ଷସ୍ଥଳ; ଛାତି, ଛାତି; ହୃଦେଶ—2. Breast; chest. [ଉ—କୁଞ୍ଚ କୁଞ୍ଚିଆ, ମାଗୁର ଜଣିଆ, ହିଅରେ ନ ଥାଏ ବାଳ; ଏ ତିନିଙ୍କି ପରତେ ନ ଯିବ ଜାଇଁଥିବ ସେତେକାଳ—ଢଗ] ୩ । ଧୈର୍ଯ୍ୟ—3 Patience [ଉ—ଯଶୋଦା ନ ଜାଣଇ ଏହା, କେମନ୍ତେ ଧରିବନ୍ତି ହିଅ—ଜଗନ୍ନାଥ. ଭାଗବତ] ସର୍ବନାମ—୧ । (ସ. ଇଦମ୍, ପ୍ରା. ଇହଅ)—ଏହା; ତାହା; (କୌଣସି ବସ୍ତୁର ନାମ ମନେ ନ ପଡ଼ିଲେ ତହିଁ ସ୍ଥଳରେ ବ୍ୟବହୃତ ସର୍ବନାମ)—1. This thing; that thing, (used in respect of a thing which slips of one's recollection at the moment). ୨ । ଅଶ୍ଳୀଳ ଶବ୍ଦ ବା ବାକ୍ୟ ମୁହଁରେ ନ ଧରି ତତ୍ପରିବର୍ତ୍ତରେ ବ୍ୟବହୃତ ଶବ୍ଦ--2. (Euphemism for any obscene expression which a person does not like to utter)That thing. [ଯଥା—ମୁଁ ତାକୁ ଏତେ ଖୋସାମତି କଲି ଯେ ସେ ଶୁଣିଲା ନାହିଁ ମୁ ଆଉ ତା ପାଖକୁ ନ ଆସିଲେ ସେ ମୋର 'ହିଅ' କରି ଦେବାଇବ] [ଦ୍ର—ଏହିପରି ସ୍ଥଳରେ କେହି କେହି 'ଅମୁକ, ଅମୁକେଇ, ଅମୁକ ନେଇ ସମୁକ, ଫଲଣା ଇତ୍ୟାଦି ଶବ୍ଦ ବ୍ୟବହାର କରନ୍ତି]

ହିଆଡ଼େ—ପ୍ରାଦେ. (ଗଡ଼ଜାତ) ସର୍ବନାମ—ସେହିଆଡ଼େ—
Hiarde There; in that direction.

ହିଆଳି—ଦେ. ବିଣ (ପ୍ରାଚୀନ ବ୍ୟବହାର) (ସ. ହୃଦୟ ଓ ଆଳୟ)—
Hiāli ହୃଦ୍ୟ; ଆନନ୍ଦଜନକ; ମନୋହର—Charming; pleasing. ପ୍ରାଦେ. (ଉତ୍ତର ବାଲେଶ୍ୱର) ବି—
मनोहर मनोहर ହିଁଆଳି (ଦେଖ)—Hiñāli (See)

ହିଉଗୋ—ବୈଦେ. ବି (ନାମ)—ଫରାସୀ ରାଷ୍ଟ୍ର ବିପ୍ଳବ ଯୁଗର ଭିକ୍ଟର୍
Hiugo ହିଉଗୋ ନାମକ ଜଣେ ପ୍ରସିଦ୍ଧ ଫରାସୀ ଗ୍ରନ୍ଥକାର ଓ ଔପନ୍ୟାସିକ—Victor Hugo,a famous author and novelist of the French Revolution
हिउगो ह्युगो (ହ୍ୟୁଗୋ—ଅନ୍ୟରୂପ) age.

**ହ୍ୟୁମ**—ବୈଦେ ବି (ନାମ)—ଡାକ୍ତର ହ୍ୟୁମ୍ ନାମକ ଜଣେ ସ୍ୱର୍ଗତ
Hium ଇଂରାଜ—The late David Hume.
[ଦ୍ର—ଏ ଭାରତର ଇଂରାଜ ଗଭର୍ଣ୍ଣମେଣ୍ଟଙ୍କର ରାଜ-
କର୍ମଚାରୀ ରୂପେ ଅସି ଭାରତବାସୀଙ୍କର ରାଜନୀତିକ ଅଧି-
କାର ଲାଭ ଉଦ୍ଦେଶ୍ୟରେ ଇଣ୍ଡିଅନ ନାସନାଲ୍ କଂଗ୍ରେସ୍
(Indian National Congress)ର ପ୍ରତିଷ୍ଠା କରିବା
ପାଇଁ ଭାରତବାସୀଙ୍କୁ ପ୍ରବର୍ତ୍ତାଇ ଥିଲେ ଓ କାଳକ୍ରମେ ବର୍ଷେ
ହିଉମ **ह्यूम** କଂଗ୍ରେସର ସଭାପତି ନିର୍ବାଚିତ ହୋଇଥିଲେ]

**ହ୍ୟୁମ ପାଇପ**—ବୈଦେ. ବି—(ଏହି ପାଇପର ଆବିଷ୍କର୍ତ୍ତା ଓ କର୍ମୀତା
Hium pāip ହ୍ୟୁମ୍ ନାମକ ସାହେବଙ୍କ ନାମରୁ)—ସିମେଣ୍ଟ
କଂକ୍ରିଟ୍‌ରେ ନିର୍ମିତ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ପାଣି
ଚଳାଇବା ପାଇଁ ଲୁହା ନଳ ଧରବର୍ତ୍ତିରେ ବ୍ୟବହୃତ ନଳ-
ହିଉମପାଇପ **ह्यूमपाइप** Hume pipe for water supply.

**ହ୍ୟେ**—ପ୍ରାଦେ. (ଗଡ଼ଜାତ) କ୍ରି—ହୁଏ—
Hie Is; becomes.

**ହ୍ରଂ(ହ୍ରିଁ)କା (ଇତ୍ୟାଦି)**—ଗ୍ରା. ବି (ସଂ. ହିକ୍କା)—ହିକ୍କା (ଦେଖ)—
Him(hiñ)kā etc. Hikkā (See). [ଦ୍ର—ହିଙ୍ଗଳ, ହିଙ୍ଗୁ,
ହିଙ୍ଗୁ (ଇତ୍ୟାଦି), ହିଙ୍ଗୁଳ (ଇତ୍ୟାଦି), ହିଙ୍ଗୁଳା(ଇତ୍ୟାଦି),
ହିଞ୍ଜଡ଼ (ଡ଼ା, ଡ଼ୀ), ହିଞ୍ଜଳ, ହିନ୍ତାଳ, ହିନ୍ଦୀ, ହିନ୍ଦୁ ଇତ୍ୟାଦି
ଶବ୍ଦମାନଙ୍କର ହିଂଗଳ, ହିଁଗଳ ଆଦି ଅନୁସ୍ୱାର ଓ ଚନ୍ଦ୍ର-
ବିନ୍ଦୁ ବିଶିଷ୍ଟ ଆକାରମାନ ଏ ଗ୍ରନ୍ଥର କଳେବର ବୃଦ୍ଧି
ଆଶଙ୍କାରେ ଏଠାରେ ଦିଆଗଲା ନାହିଁ]

**ହିଂଗ୍**—ପ୍ରାଦେ. (ସମ୍ବଲପୁର) ବି—ହେଙ୍ଗୁ—(ଭୁଲ. ହି. ହିଂଗ୍)
Himg Asafoetida.

**ହିଂସକ**—ସଂ ବିଣ ପୁଂ—(ହିଂସ୍ ଧାତୁ=ବଧ କରିବା+କର୍ତ୍ତୃ.ଅକ)—
Himsaka ୧ । ହିଂସାକାରକ ; ହିଂସ୍ର—1. Mischi-
(ହିଂସିକା—ସ୍ତ୍ରୀ) evous ; seeking to hurt or kill.
୨ । ଘାତକ—2. Murderous. ୩ । ବିଦ୍ୱେଷକାରୀ;
ଈର୍ଷାଯୁକ୍ତ—3. Malicious ; spiteful. ବି—
୧ । ହିଂସ୍ର ଜନ୍ତୁ—1. Wild or murderous
animal. ୨ । ଶତ୍ରୁ—2. Enemy. ୩ ।
ଅଥର୍ବବେଦବେତ୍ତା ବ୍ରାହ୍ମଣ ( ଶବ୍ଦରତ୍ନାବଳୀ )—
3. A Brāhmaṇa versed in the 'Atharba
Beda'.

**ହିଂସ (ସୁ) କା**—ଦେ. ବିଣ. ପୁ—(ସଂ. ହିଂସକ ; ହିଂସୁକ) ବିଦ୍ୱେଷ-
Himsa (su) kā କାରୀ ; ହିଂସ୍ରକ ; ଈର୍ଷାଯୁକ୍ତ—
[ହିଂସ (ସୁ) କୀ—ସ୍ତ୍ରୀ] Malicious ; spiteful.
ହିଂସୁଟେ **ईर्षाकरनेवाला**

**ହିଂସନ**—ସଂ ବି—(ହିଂସ୍ ଧାତୁ=ବଧ କରିବା+ଭାବ ଅନ)—
Himsana ୧ । ବଧ ; ଘାତ ; ହନନ—1. Slaughter ;
killing ; murdering. ୨ । ପରଅନିଷ୍ଟ ସାଧନ—
(ଯଥା—ଚୌର୍ଯ୍ୟ)—2. Injuring others. ୩ ।
ପରାନିଷ୍ଟ ସାଧନେଚ୍ଛା—3. Desire to injure
others ; mischievous intention. [ଦ୍ର—
ଏହା ତିନି ପ୍ରକାର ଯଥା—ପ୍ରାଣିବଧ କର୍ମ୍ମିତ୍ୱ, ପ୍ରାଣିପୀଡ଼ନ
କର୍ମ୍ମିତ୍ୱ ।] ୪ । ଈର୍ଷା ; ବିଦ୍ୱେଷ—4. Spite ;
malice. ୫ । ଅଦୟତ୍ତ—5 Grudge.

**ହିଂସା**—ସଂ. ବି—( ହିଂସ୍ ଧାତୁ+ଭାବ ଅ+ଆ )—୧ । ହିଂସନ
Himsā (ଦେଖ)—1. Himsana (See). ୨ । ହିଂସା
ଇତ୍ୟାଦି ( ଦେଖ )—2. Himsā etc (See).
ବୈଦେ. ବି—ହିଁସା ଇତ୍ୟାଦି (ଦେଖ)—Hiñsā etc
(See).

**ହିଂସା କରିବା**—ଦେ. କ୍ରି—୧ । ବଧ କରିବା—1. To kill.
Himsā kariba ୨ । ପୀଡ଼ା ଦେବା—2. To injure or
ହିଂସାକବା give pain. ୩ । ଈର୍ଷା କରିବା; ଅଦୟତ୍ତ
**हिंसाकरना** କରିବା ; ବିଦ୍ୱେଷ କରିବା—3. To be spite-
ଈର୍ଷା କବା ful; to grudge ; to envy. ୪। (ବୈଦେ—
**ईर्षा करना** ଫା. ହିସ୍‌ସା)—ସମ୍ପତ୍ତିଅଧର ବଣ୍ଟନ କରିବା—
To partition a property.
ହିସ୍‌ସାକବା **हिस्साकरना**

**ହିଂସା କର୍ମ**—ସଂ. ବି—ଅଥର୍ବବେଦୋକ୍ତ ମନ୍ତ୍ରସନ୍ଧାନଦ୍ୱାରା ନିଷ୍ପାଦିତ
Himsā karma ମାରଣ, ଉଚାଟନ, ସ୍ତମ୍ଭନ, ସମ୍ମୋହନ,
ବଶୀକରଣାଦି କର୍ମ ; ତାନ୍ତ୍ରିକ କର୍ମ; ଅଭିଚାର (ଅମର)—
Acts of injuring others by the employ-
ment of the black art (mentioned in the
Atharba Beda).

**ହିଂସା ପ୍ରଣୋଦିତ**—ସଂ. ବିଣ (ତୃ୍ୟା ତତ୍)—ହିଂସା ବା ବିଦ୍ୱେଷଦ୍ୱାରା
Himsā praṇodita ପ୍ରଯୋଜିତ—Goaded or
prompted by spite or malice.

**ହିଂସା-ମୂଳକ**—ସଂ. ବିଣ—(ବହୁବ୍ରୀହି)—ଯେଉଁ କାର୍ଯ୍ୟର ମୂଳରେ
Himsā mūlaka ହିଂସା ଅଛି—Originating from
malice or mischievous intent.

**ହିଂସାରୁ**—ସଂ. ବି—(ହିଂସ୍ ଧାତୁ+କର୍ତ୍ତୃ ଅରୁ)—ବ୍ୟାଘ୍ର (ତ୍ରିକାଣ୍ଡ
Himsāru ଶେଷ)—Tiger.

**ହିଂସାଳୁ**—ସଂ. ବିଣ—(ହିଂସ୍ ଧାତୁ+ଶୀଳାର୍ଥେ ଆଳୁ )—୧ ।
Himsālu ହିଂସାଶୀଳ ; ହିଂସ୍ର—1. Envious or
spiteful. ୨ । ହନନଶୀଳ—2. Murderous.

**ହିଂସାଳୁକ**—ସଂ. ବି.ପୁଂ—( ହିଂସାଳୁ+ସଂଜ୍ଞାର୍ଥେ କ )—ହିଂସ୍ର
Himsāluka କୁକ୍କୁର (ହାରାବଳୀ)—Ferocious dog.
ବିଣ—ହିଂସାଳୁ (ଦେଖ)—Himsālu (See).

**ହିଂସାହିଂସି**—ଦେ. ବି—୧ । ପରସ୍ପର ମଧ୍ୟରେ ହିଂସା—
Himsāhimsi 1. Mutual grudge ; spite.
୨ । ହିଂସା ପ୍ରତିହିଂସା—2. Spite and revenge.
ଈର୍ଷାଦ୍ୱେଷ **ईर्षाद्वेष**

**ହିଂସିତ**—ସଂ. ବିଣ—(ହିଂସ୍ ଧାତୁ+କର୍ମ କ୍ତ)—୧ । ହତ—
Himsita 1. Killed; slaughtered. ୨ । ହିଂସାପ୍ରାପ୍ତ;
ଯାହାକୁ ହିଂସା କରାଯାଇଅଛି—2. Injured.

ହିଂସିବା—କ୍ରି. କ୍ରି—ହିଂସା କରିବା—(ଦେଖ —Himsā karibā
Himsiba (See). [ଭି—ଘରେ ଯେଉଁ ଶତ୍ରୁ ପ୍ରେଶଲେ
ପାଏ, ତାହାକୁ କି ବଣିଶ ହିଂସକୁ ସହଏ । କୃଷ୍ଣସିଂହ—
हिंसाकर्ता हिंसाकरना ମହାଭାରତ—ଶଲ୍ୟ ।]

ହିଂସେକ—ଦେ. ବି—ହିଂସକ ; ପରଦ୍ୱେଷୀ—Oppressive ;
Himseka envious. [ଭି—କପଟୀ ଲକ୍ଷଣ ଯେ ଲୋକ
ଥାକନ୍ତି ପରେ ସେ ହିଂସେକ । ଯଶୋବନ୍ତ ପ୍ରେମଭକ୍ତି
हिंसक ईर्षा करनेवाला ବ୍ରହ୍ମଗୀତା ।]

ହିଂସ୍ୟ—ସଂ. ବିଣ ପୁଂ—(ହିନ୍ସ୍ ଧାତୁ+କର୍ମେ ଯ)—୧ । ବଧ୍ୟ—
Himsya 1. Deserving to be killed. ୨ ।
ହିଂସାର ଉପଯୋଗୀ—2. Deserving to be
(ହିଂସ୍ୟା—ସ୍ତ୍ରୀଲିଙ୍ଗ) injured.

ହିଂସ୍ର—ସଂ. ବିଣ. ପୁ—(ହିନ୍ସ୍ ଧାତୁ+ଶୀଳାର୍ଥେ ର)—୧ । ହନ୍ତା;
Himsra ପ୍ରାଣଘାତୀ—1. Murderous. ୨ । ହିଂସାଶୀଳ;
[ହିଂସ୍ରା - ସ୍ତ୍ରୀ] ଅନିଷ୍ଟକାରକ—2. Mischievous ; malig
nant. ୩ । ନିଷ୍ଠୁର—3. Cruel. ବି—୧ । ଶିବଙ୍କର
ଘୋର ରୂପ—1. A fierce incarnation of Siba.
୨ । ଶିବ ; ହର—2. Siba. ୩ । ଭୀମସେନ
(ଭିଶ୍ୱାବକୋଷ)—3. Bhimasena (See).

ହିଂସ୍ରକ—ସଂ. ବିଣ—( ହିଂସ୍ର+ସ୍ୱାର୍ଥେ କ )—ହିଂସ୍ର (ଦେଖ)—
Himsraka Himsra (See). ବି—ହିଂସ୍ର ପଶୁ—
[ହିଂସ୍ରିକା—ସ୍ତ୍ରୀ] Ferocious animal.

ହିଂସ୍ରକ ଜନ୍ତୁ—ସଂ. ବି—ବ୍ୟାଘ୍ରାଦି ପ୍ରାଣଘାତକ ଜୀବ—Ferocious
Himsraka jantu animal ; rapacious animal.
ହିଂସ୍ରକ ଜୀବ
ହିଂସ୍ରକ ପଶୁ
ହିଂସ୍ର ଜନ୍ତୁ } —ଅନ୍ୟରୂପ
ହିଂସ୍ର ଜୀବ
ହିଂସ୍ର ପଶୁ

ହିଂସ୍ରକ ପ୍ରକୃତି—ସଂ. ବି—(କର୍ମଧା)—ପରର ଅନିଷ୍ଟ କରିବା ପ୍ରକୃତି-
Himsraka prakruti Malignant or rapacious
ହିଂସ୍ରକ ସ୍ୱଭାବ ପୁଂ } nature; Malicious nature.
ହିଂସ୍ର ପ୍ରକୃତି ପୁଂ ଓ ସ୍ତ୍ରୀ } ଅନ୍ୟ ବିଣ ରୂପ] ବିଣ—ପୁଂ ଓ ସ୍ତ୍ରୀ (ବହୁ-
ହିଂସ୍ର ସ୍ୱଭାବ ପୁଂ } ବ୍ରୀହି ) ହିଂସାଶୀଳ —
ହିଂସ୍ର ସ୍ୱଭାବା, ହିଂସ୍ରକ ସ୍ୱଭାବା—ସ୍ତ୍ରୀ ବିଣରୂପ] Rapacious by
nature.

ହିଂସ୍ରା—ସ. ବିଣ—(ହିଂସ୍ର+ଆ )—ହିଂସ୍ରର ସ୍ତ୍ରୀ ଲିଙ୍ଗ—Feminine
Himsrā of Himsra. ବି—୧ । ଏଲାବାଲୀ; ଏଲବାଲୁକା
(ମେଦିନୀ, ହେମଚନ୍ଦ୍ର)—1. A scented herb. ୨ ।
କାକାଦନୀ; କଣ୍ଟେଇ କୋଳ (ମେଦିନୀ, ହେମଚନ୍ଦ୍ର)—
2. Prickly night shade. ୩ । ମାଂସୀ; ଜଟା-
ମାଂସୀ—3. Indian spikenard. ୪ । ଗବେଡ଼ୁକା;
ଗବେଧୁକା; ଦେଧାନ ( ଶବ୍ଦଚନ୍ଦ୍ରିକା )—4. A wild
grain; Coix Barbata. ୫ । ନାଡ଼ି (ଶବ୍ଦ-
ଚନ୍ଦ୍ରିକା)—5. Pulse. ୬ । ଶିରା (ଶବ୍ଦଚନ୍ଦ୍ରିକା)—
6. Vein.

ହିଂସ୍ରିକା—ସ. ବିଣ. ସ୍ତ୍ରୀ—ହିଂସ୍ରକର ସ୍ତ୍ରୀଲିଙ୍ଗ—Feminine of
Himsrikā Himsraka. ଦେ. ବିଣ. ପୁଂ—୧ । ହିଂସ୍ର
(ହିଂସ୍ରିକା—ସ୍ତ୍ରୀ) ( ଦେଖ )—1. Himsra (See). ୨ ।
हिंसुटे ଈର୍ଷାଯୁକ୍ତ; ବିଦ୍ୱେଷଯୁକ୍ତ—2. Malicious, envious;
ईर्षाकरनेवाला spiteful.

ହିଃ - ଦେ. ଅ—ଅନ୍ୟ ବ୍ୟକ୍ତିକୁ ଉପହାସ କରି ଉଡ଼ାଇ ଦେବାର ଶବ୍ଦ—
Hih (Interjection) (Used in scoffing a person)
हिः आः Heigh !

ହିଁ—ଦେ. ଅ—(ସଂ. ହି)—୧ । (ଅବଧାରଣ ବା ନିଶ୍ଚୟାର୍ଥକ)
Hiñ ନିଶ୍ଚେ—1. (Interjection) Certainly; undoub-
ही ही tedly. [ଭି—ଏ ପଥେ ଅଛଇଁ ଦୁରିତ । ଭୂମିକ—
ପ୍ରେମପଞ୍ଚାମୃତ ।] ୨ । କେବଳ—2. Only. ୩ ।
ସୁଦ୍ଧା—3. Even. [ଭି—ଯାର ସ୍ୱପ୍ନ ଜାଗତ ନାହିଁ,
ସୁଷୁପ୍ତି ଭେଦହିଁ ନ ଯାଇ । ଜଗନ୍ନାଥ ଭାଗବତ ।] ୪ ।
ଏବଂ; ମଧ୍ୟ—4. Also; and. [ଭି—ପିତା ମାତାହିଁ
ଭାଗ୍ୟଜନ, ପଞ୍ଚ ତନୟ ଗୁରୁଜନ । ଜଗନ୍ନାଥ ଭାଗବତ ।
୫ । ସମ୍ଭବତଃ—5. Perhaps. ବି—ଦାନ୍ତକୁ ଈଷତ୍
हीँ हीँ ମେଲ୍ଲକରି ଅନୁନାସିକ ହାସ୍ୟ କରିବା ଶବ୍ଦ—Nasal
sound of laughter by slightly opening
the teeth.

ହିଁଆଲି(ଳି)—ପ୍ରାଦେ (ମେଦିନୀପୁର) ବି—( ବଙ୍ଗଳାରୁ ଗୃହୀତ; ସ.
Hiñāli (li) ପ୍ରହେଳିକା)—୧ । ପ୍ରହେଳିକା; ପହଳି; ଗାଁଆଁ ଢଗ
1. Riddle. ୨ । ଗୂଢ଼ାର୍ଥକ ପ୍ରଶ୍ନ; ସମସ୍ୟା—
2. Conondrum.

ହିଁଚୁଡ଼ା—ପ୍ରାଦେ (ମେଦିନୀପୁର) ବି—ପଣସକଂଠା—
Hiñchurda Young jack fruit.

ହିଁସ୍—ପ୍ରାଦେ (ସମ୍ବଲପୁର ଓ ବଲାଙ୍ଗିର ପାଟଣା) ବି—( ସ.ଈର୍ଷା )—
Hiñs ଈର୍ଷା ୧ (ଦେଖ) Irshā 1 (See).

ହିଁସା—ବୈଦେ. ବି (ଆ.ହିସ୍‌ସା)—କୌଣସି ବସ୍ତୁରେ ବା ବ୍ୟବସାୟରେ
Hiñsā ଅଂଶ—Share. ଦେ. ବି—ହିଂସନ ( ଦେଖ )—
हिस्सा हिस्सा Himsana (See).

ହିଁସାଦାର—ବୈଦେ. ବି—( ଆ. ହିସ୍‌ସାଦାର୍ )—୧ । ଭାଗଦାର;
Hiñsādār ସମ୍ପତ୍ତିରେ ଅଂଶୀଦାର—1. Shareholder;
हिस्यादार cosharer. ୨ । ବ୍ୟବସାୟରେ ଅଂଶୀଦାର—2.
हिस्सेदार Partner in business.

ହିଁସାଦାରି —ବୈଦେ ବି(ଅ)—୧ । ସମ୍ପତ୍ତିରେ ଭାଗଦାର ହେବା ଅବସ୍ଥା—
Hiñsa dāri 1. Coparcenery. ୨ । ବ୍ୟବସାୟରେ ଭାଗଦାରି—
हिस्यादारि हिस्सेदारा 2. Partnership.

ହିଁସ୍ୟା—ପ୍ରାଦେ (ଯାଜପୁର) ବି—ହିଁସା (ଦେଖ)—Hiñsā (See)
Hiñ-yā

ହିଁହିଁ—ଦେ. ଅ—ଦାନ୍ତକୁ ଈଷତ୍ ବାହାର କରି ଧିକ୍କାରରୂ ହସିବାର
Hiñ hiñ ଶବ୍ଦ—(Interjection) The sound of

ହିଁ ହିଁ हीं हीं laughing audibly by slightly showing the teeth. [ବ୍ର—ହୁଁହୁଁ ଅପେକ୍ଷା ଉଚ୍ଚତର ହାସ୍ୟକୁ ହେଁ ହେଁ ବୋଲଯାଏ ।]

ହୁଁହୁଁକା—ଦେ. ଅ—ଶିଶୁମାନଙ୍କର ପରସ୍ପର ବିକୃତ ଭାବରେ Hiñhiñkā ଛୁଗୁଲଇବାର ଧ୍ୱନି—( Interjection ) Used by children ironically scoffing at each other. [ବ୍ର—ଜଣେ ପିଲା ଆଉ ଜଣେ ପିଲାକୁ ଧରିବାକୁ ଗୋଡ଼ାଇ ଗୋଡ଼ାଇ ତାକୁ ଧରି ନ ପାରିଲେ ଦ୍ୱିତୀୟ ପିଲା ବିକୃତ ଭାବରେ ଏହା କହିଥାଏ । ଯଥା—ହୁଁହୁଁକା ମତେ ଧରିଲୁ ?]

ହୁଁହୁୟା—ଦେ. ବିଣ. ପୁଂ—( ଅନାଦର ବା ନିନ୍ଦାସୂଚକ )—ଯେଉଁ Hiñhiñyā ବ୍ୟକ୍ତି ସବୁବେଳେ ହୁଁ ହୁଁ ହୋଇ ହସୁଥାଏ—(ହେଁହେଁଇ—ସ୍ତ୍ରୀ) Given to constantly laughing loudly. ଯେ ହିଁ ହିଁ କବେ हीं हीं करनेवाला

ହୁଁ ହୁଁ ହେବା—ଦେ. କ୍ରି—ଅନୁଚିତ ରୂପେ ସର୍ବଦା ହୁଁ ହୁଁ ହୋଇ Hiñ hiñ hebā ହସିବା—To constantly laugh loudly and improperly. ହିଁ ହିଁ କବା हाँ हाँ करना (ହି ହି ହିଁ ହିଁ ହେବା—ଅନ୍ୟରୂପ)

ହିକ୍‌ମତ୍—ବୈଦେ. ବି (ଅ. ହିକ୍‌ମତ୍=ଜ୍ଞାନ; ଗୁରୁତ୍ୱ)—୧। ଜ୍ଞାନ—Hik-mat 1. Knowledge. ୨। ଚତୁରତା; ଗୁରୁତ୍ୱ—2. Art; shrewdness; skill. ୩। ବିଦ୍ୟା—3. Learning; arts. ୪। ମାନସିକ ପ୍ରଖରତା—4. Sharpness of intellect. ୫। ତାନ୍ତ୍ରିକ ମନ୍ତ୍ରସନ୍ତ୍ରାଦି ଅଭିଚାର; ମାରଣ, ବଶୀକରଣ, ସ୍ତମ୍ଭନ, ମୋହନ ଆଦି ବିଦ୍ୟା—5. The black art; employment of magic in subduing or injuring persons. ୬। ଅଦ୍ଭୁତ ଫଳପ୍ରଦ ମନ୍ତ୍ର—6. Mystic incantations producing wonderful results. ୭। ଅଦ୍ଭୁତ ଫଳପ୍ରଦ ଔଷଧ ବା ଦ୍ରବ୍ୟ—7. Any article or medicine producing wonderful results. ହିକ୍‌ମତ୍ हिकमत

ହିକ୍‌ମତ୍ କରିବା—ଦେ. କ୍ରି—ଭେଦ କରିବା; ମନ୍ତ୍ରତନ୍ତ୍ର ପ୍ରୟୋଗ କରିବା—Hik-mat karibā To employ black art or mystic formulae towards a person. ହିକ୍‌ମତ୍ କବା हिकमत करना

ହିକ୍‌ମତ୍‌ବାଜ୍—ବୈଦେ. ବିଣ ( ଫା )—୧। ମନ୍ତ୍ରତନ୍ତ୍ରଜ୍ଞ—Hik-mat-bāj 1. Magician; skilled in Tantric art; skilled in the black art. ୨। ଚତୁର—2. Shrewd. ୩। କୌଶଳୀ—3. Artful; skilful. ହିକ୍‌ମତ୍‌ବାଜ୍ हिकमतबाज

ହିକ୍‌ମତି—ବୈଦେ. ବି (ଫା)—୧। ହିକ୍‌ମତ୍ (ଦେଖ) Hikmati 1. Hikmat ( See ) ୨। ମନ୍ତ୍ରତନ୍ତ୍ରାଦିର ପ୍ରୟୋଗ—2. Employment of black magic. ବିଣ—୧। ହିକ୍‌ମତ୍ ସମ୍ବନ୍ଧୀୟ—1. Relating to the black art. ୨। ହିକ୍‌ମତ୍‌ବାଜ (ଦେଖ)—2. Hik-mat-bāj ( See ). ହିକ୍‌ମତି हिकमती

ହିକ୍‌ମତିଆ—ଦେ. ବିଣ. ପୁଂ—ହିକ୍‌ମତ୍‌ବାଜ୍ ( ଦେଖ ) Hik-matia Hik-mat-bāj ( See ) (ହିକ୍‌ମତେଇ—ସ୍ତ୍ରୀ)

ହିକ୍‌ମିତ୍—ବୈଦେ. ବି (ଅ)—ଦର୍ଶନ ଶାସ୍ତ୍ର—Hik-mit Philosophy. ହିକ୍‌ମିତ୍ दर्शन शास्त्र

ହିକା—ଦେ. ବି (ସଂ. ହିକ୍କା)—ହିକ୍କା ( ଦେଖ ) Hikā Hikkā ( See )

ହି(ହେ)କୁଆ—ଗ୍ରା. ବି (ସଂ. ହିକ୍‌କା)—ହିକ୍‌କା—Hiccough. Hi(he)kuā [ଭି—କାଶ, ଶ୍ୱାସ, ହିକୁଆ ଯେ ଅଙ୍ଗଷ୍ଠି ଧୂଲାଉ । ହିକ୍କା हिचकी ପୀତାମ୍ବର ନୃସିଂହ ପୁରାଣ ।]

ହିକେ(କ୍କେ)ଇବା—ଦେ. କ୍ର (ସଂ. ହିକ୍‌କା)—ହିକ୍‌କା ମାରିବା; ହୃଦୟରୁ Hike(kke)ibā ଉଦରବାୟୁ ବାହାରି ଆସି ନ ପାରିବା ଯୋଗୁଁ ରୁଦ୍ଧ ହିଁଚକି ଉଠିା, ହେଁକଟି ମାବା ଶ୍ୱାସ ଛାଡ଼ିବା—To hiccough. हिचकना (ହିକେଇ ହେବା—ଅନ୍ୟରୂପ)

ହିକ୍କ (ଧାତୁ)—ସ—୧। ହିଂସା କରିବା—1. To kill; to injure. Hikk (root) ୨। ଶ୍ୱାସବାୟୁରୋଧ ଜନିତ ଶବ୍ଦ କରିବା—2. To hiccough. ୩। କୂଜନ କରିବା, ଅବ୍ୟକ୍ତ ଶବ୍ଦ କରିବା—3. To utter an indistinct sound

ହିକ୍କା—ସଂ. ବି (ହିକ୍‌କ=ଧ୍ୱନି ବିଶେଷ+ଅ; କିମ୍ବା ହିକ୍‌କ ଧାତୁ= Hikkā କୂଜନ କରିବା+ଭାବ ଅ+ଆ; ଭୁଳ୍‌ ଲିଂ ହିକ୍‌କତ୍)-୧। ହାକୁଟି—1. Belching. ୨। ରୋଗୋପସର୍ଗ-ବିଶେଷ; ଉଦର ଶ୍ୱାସବାୟୁର ସାମୟିକ ନିର୍ଗମନ ରୂପ ରୋଗ—2. Hiccough resulting in gasping of the wind enclosed in the stomach. [ବ୍ର—ଶରୀର ମଧ୍ୟରୁ ବାୟୁ ନାକଦ୍ୱାରା ବା ପାଟି ଦ୍ୱାରା ଯାଇ ତାହା ନାଭିରେ ବା ହୃଦୟରେ ଅଟକି ସରଳ ଭାବରେ ନାକ ବାଟେ ବା ମୁଖ ବାଟେ ବାହାରି ନ ଆସିବାରୁ ହିକ୍‌କା ଉଠେ ଓ ହିକ୍‌କା ରୋଗ ଜାତ ହୁଏ । ଏହା ଅତିକ୍ରାନ୍ତ ହେଲେ ଶୀଘ୍ର ଦୁରାରୋଗ୍ୟ ଓ ମାରାତ୍ମକ ହୋଇ ଉଠେ । ହିକ୍‌କାରେ ରୁଦ୍ଧ ବାୟୁ ପାଟି ବାଟେ ପଦାକୁ ସରଳ ଭାବରେ ବାହାରି ପାରେ ନାହିଁ । ହାକୁଟିରେ ରୁଦ୍ଧ ବାୟୁ ପାଟି ବାଟେ ବାହାରି ଆସେ । ଫଳତଃ ରୁଦ୍ଧ ବା ଅସମ୍ପୂର୍ଣ୍ଣ ହାକୁଟିହିଁ ହିକ୍‌କା ଅଟେ ।

ବୈଦ୍ୟଶାସ୍ତ୍ର ଅନୁସାରେ ହିକ୍‌କାକୁ ୫ ଶ୍ରେଣୀରେ ବିଭକ୍ତ କରି ଯାଇଅଛି ।

ଅନ୍ନଜା—ଅତି ମାତ୍ର ଭୋଜନ ଜନିତ ।

ଯମଳା—ଶିରଃ ଓ ଗ୍ରୀବା କମ୍ପଯୁକ୍ତ ।

କ୍ଷୁଦ୍ରା—ସାମୟିକ ଉପସ୍ଥିତ ହୋଇ କିଛି କାଳେ ବନ୍ଦ ହୋଇଯିବା ହିକ୍‌କା ।

ଗମ୍ଭୀର—ନାଭି ଦେଶରୁ ଉଠୁଥିବା ଓ ଗମ୍ଭୀର ଶବ୍ଦଯୁକ୍ତ ଓ ଅନେକ ଉପଦ୍ରବଯୁକ୍ତ ହିକ୍‌କା ।

ମହାଗା ବା ମହା ହିକ୍‌କା—ମର୍ମସ୍ଥାନ (ଯଥା—ହୃଦୟ, ବସ୍ତି, ଶିରଃ, ନାଭି ଆଦି)ମାନଙ୍କରୁ ଉଠି ସବଦା ଦେଖା ଯାଉ-ଥିବା; ଏହା ଅସାଧ୍ୟ ।

ଏହି ରୋଗ କୁପିତ କଫରୁ ଓ ବାୟୁରୁ ଜାତ ହୁଏ ।]

**ହିକ୍କା ଉଠିବା**—ଦେ. କ୍ର—୧ । ରୁଦ୍ଧବାୟୁ ଜନିତ ହିକ୍‌କା ବା ଅସମ୍ପୂର୍ଣ୍ଣ
Hikka uthiba ବା ଅପରିଣତ ହାଙ୍କୁଡି ଉପସ୍ଥିତ ହେବା—
ହେଁଚ୍‌କି ଉଠା ହିଚକୀ उठना 1. Hiccough
୨ । ମୃତ୍ୟୁ ପୂର୍ବରୁ ଅଶରୀରୀ ପବନ ଉଠିବା—
2. Hiccough on the eve of death; gasp ping before death.

**ହିଗୁଡ଼ି**—ଦେ. ବି—ଏକ ପ୍ରକାର ଖେଳ—
Higurdi A kind of game.
[ଉ—ବାଗୁଡ଼ି ହିଗୁଡ଼ି ଆଦି ନାନା ଖେଳ ଖେଳନ୍ତି ମନ ରଖାଇ । ଅଭିମନ୍ୟୁ. ବଦଗ୍ଧ ଚନ୍ତାମଣି ।]

**ହିଙ୍କା**—ଗ୍ରା. ବି ( ସଂ. ହିକ୍‌କା )—ହିକ୍‌କା ( ଦେଖ )
Hinka Hikkā ( See )
[ହିଁ(ହିଂ)କା—ଅନ୍ୟରୂପ]

**ହିଙ୍କାର**—ସଂ. ବି (ହିଂ=ଧ୍ୱନି+କୃ ଧାତୁ+କର୍ତ୍ତ୍ରି ଅ)—ବ୍ୟାଘ୍ର (ଶବ୍ଦ
Hinkāra କଳ୍ପଦ୍ରୁମ)—Tiger.

**ହିଙ୍ଗଡ଼ା**—ଦେ. ବି (ସଂ ହିଙ୍ଗୁ)—ହିଙ୍ଗୁ ସଦୃଶ, କିନ୍ତୁ ଗୁଣରେ ଓ ଗନ୍ଧରେ
Hingrdā ନିକୃଷ୍ଟତର ନିର୍ଯ୍ୟାସବିଶେଷ—
ହିଂ हिंग Asafoetida of European commerce. [ଦ୍ର—ଏହାର ଗୁଳ୍ମର ନାମ Ferula Foetida.] ପ୍ରାଦେ (ଗଞ୍ଜାମ) ବି—ନାଡ଼ିହିଙ୍ଗୁ (ଦେଖ)
Nārdi hingu (See).

**ହିଙ୍ଗଳ**—ଦେ. ବି (ସ ହିଙ୍ଗୁଳ)—ହିଙ୍ଗୁଳ—
Hingala Vermilion; cinnabar.
[ହିଂ(ହିଁ)ଗଳ—ଅନ୍ୟରୂପ]
ହିଙ୍ଗୁଲ हिंगुल

**ହିଙ୍ଗ(ଙ୍ଗୁ)ଳ ରଙ୍ଗ**—ଦେ. ବି—୧ । ହିଙ୍ଗୁଳଜାତ ବର୍ଣ୍ଣ; ଗାଢ଼ ରକ୍ତବର୍ଣ୍ଣ
Hinga(ngu)la ranga 1. Vermillion colour.
ହିଙ୍ଗୁଲ ରং हिंगुल रंग scarlet colour;
୨ । ଗଞ୍ଜପା ଖାରର ରଙ୍ଗବିଶେଷ; କବାତ ରଙ୍ଗ—
2. One of the colours of the cards of 'Gañjapā' game.

**ହିଙ୍ଗ(ଙ୍ଗୁ)ଳ ଶିଳ**—ଦେ. ବି (ସ ହିଙ୍ଗୁଳ ଓ ଶିଳା)—ଚିତ୍ରକାରମାନେ
Hinga(ngu)la sila ଯେଉଁ ଶିଳରେ ହିଙ୍ଗୁଳ ବାଟନ୍ତି—
ହିଙ୍ଗୁଲ ଶିଲ हिंगुल शील A slab of stone in which painters pestle cinnabar for painting.

**ହିଙ୍ଗା**—ଦେ. ବିଣ—୧ । ହେଙ୍ଗା; ଅକାମିକା ( ବ୍ୟକ୍ତି )—
Hingā 1. Worthless; goodfornothing.
[ହିଂ(ହିଁ)ଗା—ଅନ୍ୟରୂପ] ୨ । ଅକାମିକା ଓ ଅହଙ୍କାରୀ (ବ୍ୟକ୍ତି)—
ଅକର୍ମଣ୍ୟ बेकार 2. Worthless and boastful (person); worthless and egoistic.

ପ୍ରାଦେ (ବଲାଙ୍ଗିର ପାଟଣା) ବି—ଖଡ଼ ଘରର ରୁଅ—
The slanting rafters of a thatched house.

**ହିଙ୍ଗିଡ଼ି**—ଦେ. ବି—ଏକକାଳୀୟ ଖେଳ—Name of an out door
Hingirdi game. ( ଉ—ଗୋବନ୍ଧ
ବଦ୍ୟାଧର ମେଳ କରି ହିଙ୍ଗିଡ଼ି ଖେଳରେ ଘୋଡ଼ା
ମଡ଼ାଇଦେଇ ଏହାଙ୍କୁ ମାରି ପକାଇଲେ—ଜଗବନ୍ଧୁ
ପ୍ରାଚୀନ ଉତ୍କଳ ।)

**ହିଙ୍ଗୁ**—ସଂ. ବି (ହିମ+ଗମ ଧାତୁ=ଗମନ କରିବା+କର୍ତ୍ତ୍ରି ଡୁ, କିମ୍ବା
Hingu ହିନ୍ ଧାତୁ+କର୍ତ୍ତ୍ରି ଗୁ; ଯାହା ଅଗ୍ନିମାନ୍ଦ୍ୟାଦି
ଅନ୍ୟ ସଂ ନାମ—ସହସ୍ରବେଧୀ; ରୋଗକୁ ହନନ ବା ନାଶ
ସହସ୍ରବେଧ, ସହସ୍ରଭେଦୀ, କରେ)—୧ । ହେଙ୍ଗୁ—
ଜନ୍ତୁକ, ବାହ୍ଲୀକ, ଜନ୍ତୁ, 1. Asafoetida; Ferula
ଗୃହିଣୀ, ରାମଠ, ରମଠ, Marthex; Marthex
ଜନ୍ତୁଘ୍ନ, ପିଣ୍ୟାକ, ମଧୁର, Assafoetida(Kirtikar)
ବାହ୍ଲୀ, କେଶର, ଉଗ୍ରଗନ୍ଧ, [ ଦ୍ର—ଏହା ଧାନ୍ୟାଦିବର୍ଗର
ଭୂତାରି, ଜନ୍ତୁନାଶକ, ଶାକବିଶେଷର ମୂଳ (Ferula
ସୂପାଙ୍ଗ, ରକ୍ଷୋଘ୍ନ, Alliaceae)ରୁ ପ୍ରାପ୍ତ ତୀବ୍ର-
ଉଗ୍ରବୀର୍ଯ୍ୟ, ଅଗୂଢ଼ଗନ୍ଧ, ଗନ୍ଧ ନିର୍ଯ୍ୟାସକୁ ଶୁଖାଇ ପ୍ରସ୍ତୁତ
ଜରଣ, ଭେଦନ, ଖିପ୍ର, ହେବା ଦ୍ରବ୍ୟ । ଏହି ଗଛ
ଅଗୁଡ଼ଗନ୍ଧ, ଅତ୍ୟୁଗ୍ର, ପାରସ୍ୟର ଖୋରାସାନ,
ଉଗ୍ରଗନ୍ଧ, ପିଣ୍ଡଣ୍ୟ, ହିମାଳୟର ପଶ୍ଚିମ ପ୍ରାନ୍ତ
ଭୂତନାଶନ, ରୂପଘ୍ନ, ଓ ଅଫଗାନସ୍ଥାନରେ ଜନ୍ମେ ।
ସୂପଧୂପନ, ସୂପଭୂଷଣ, ହିଙ୍ଗୁ ଗଛର ମୂଳକୁ କାଟି
ସୂପାଙ୍ଗ, କଲେ ସେଥିରୁ ଝୁଣା ପରି
ହିଂ, ହିଁଗ୍, ବଙ୍ଗ ଏକପ୍ରକାରନିର୍ଯ୍ୟାସ ବାହାରେ
हिंग, हिंगु, बम ଏହା ପ୍ରଥମେ ଧଳା ଓ
ଫା. ଅଙ୍ଗୁଜା, ଆଗା ସ୍ୱଚ୍ଛ ଥାଏ; ପରେ ପୀତ
ଆ. ତୁଲ୍‌ଡିତ୍, ହିଲ୍‌ଟେଟ୍ ମିଶ୍ରିତ ପାଟଳବର୍ଣ୍ଣ ହୋଇ
ତେ. ଇଙ୍ଗୁଗୁ; ଇଙ୍ଗୁର ଶୁଖିଯାଏ ।
ମ. ଇଙ୍ଗ୍ ହିଙ୍ଗୁ ସଦୃଶ, କିନ୍ତୁ ଗନ୍ଧରେ
ତା. ଲେମ୍ବୁ, ପିରଙ୍ଗାମ୍ ଓ ଗୁଣରେ ନିକୃଷ୍ଟ ନିର୍ଯ୍ୟାସ
ମା. ଅଙ୍ଗୁ, ହିଙ୍ଗୁ ଅନ୍ୟ ଏକପ୍ରକାର ଗୁଳ୍ମରୁ
ଲ. ଫୋଏଟିଡ଼ା ଜାତ ହୁଏ, ତାକୁ ହିଙ୍ଗଡ଼ା
ବ୍ର. ସାଇସ୍ଥେଙ୍ଗା କହନ୍ତି । ଗନ୍ଧବିରଜା ମଧ୍ୟ
ଏକପ୍ରକାର ହିଙ୍ଗୁ (ଯୋଗେଶଚନ୍ଦ୍ର) । ଏହା ହୃଦ୍ୟ, କଟୁ, ଉଷ୍ଣ ଏବଂ କୃମି, ବାତ, କଫ, ବିବନ୍ଧ (କୋଷ୍ଠବଦ୍ଧତା), ଆଧ୍ମାନ (ପେଟଫମ୍ପା), ଶୂଳ, ଗୁଳ୍ମ ଓ ବାତରୋଗନାଶକ; ଚକ୍ଷୁଷ୍ୟ; ପାଚନ; ରୁଚ୍ୟ; ବହ୍ନିଦୀପକ, ପିତ୍ତବର୍ଦ୍ଧକ ଓ ଅଜୀର୍ଣ୍ଣ ରୋଗରେ ଉପକାରକ । ଏହା ରେଚକ ଓ ରଜୋ-ନିଃସାରକ ।

ସ୍ତ୍ରୀଲୋକମାନଙ୍କ ହିଷ୍ଟିରିଆ ବା ମୂର୍ଚ୍ଛାରୋଗରେ ହେଙ୍ଗୁ-ଅର୍କ ବ୍ୟବହାର କଲେ ଉପକାର ହୁଏ । ଶିଶୁମାନଙ୍କର

ହୃଦକମ୍ପ ଓ କଣ୍ଠଶ୍ୱାସରେ ଏହା ଉପକାରୀ । ଦେହ ପୋଡ଼ିଗଲେ ଏହାକୁ ପାଣିରେ ଘଷି ଲଗାଇ ଦେଲେ ଜ୍ୱାଳା କମିଯାଏ ଓ ଘାʼ ଶୀଘ୍ର ଶୁଖିଯାଏ । ଅଧିକପରିମାଣରେ ହେଙ୍ଗୁ ସେବନ କଲେ ଜରାୟୁ ନଷ୍ଟ ହୁଏ ।

ଏହା ବିଶେଷତଃ ଶୂଳ, ଅଗ୍ନିମାନ୍ଦ୍ୟ ଓ କୋଷ୍ଠବଦ୍ଧତା ରୋଗର ଔଷଧରୂପେ ସର୍ବତ୍ର ବ୍ୟବହୃତ ହୁଏ । ଆମ ଦେଶରେ ଏହାକୁ ବଡ଼ିରେ ମିଶାନ୍ତି ଓ ଭିଅଣରେ ବଘାରନ୍ତି । ମାରୱାଡ଼ୀମାନେ ଭିଅଣରେ ଓ ଡାଲିରେ ବହୁପରିମିତ ହିଙ୍ଗୁ ବ୍ୟବହାର କରନ୍ତି । ଡାକ୍ତରମାନେ କୋଷ୍ଠକାଠିନ୍ୟ ରୋଗରେ ହିଙ୍ଗୁମିଶ୍ରିତ ଅର୍କ ଓ ପାଣି ଖୁଆନ୍ତି ଓ ଗୁହ୍ୟଦ୍ୱାର ବାଟେ ପିଚକାରୀ ଦିଅନ୍ତି । କେତେକ ବ୍ୟକ୍ତିଙ୍କୁ ଏହାର ଗନ୍ଧ ଅସହ୍ୟ ହୁଏ ।]

| | |
|---|---|
| ଅନ୍ୟ ସଂ. ବଂଶପତ୍ରୀ; ବେଣୁପତ୍ରୀ; | ୨ । ବଂଶପତ୍ରୀ ( ଭାବ— |
| ପିଣ୍ଡା, ଶିବାଟିକା; ବଂଶଦଳା; | ପ୍ରକାଶ ); ଏକପ୍ରକାର |
| କାରବୀ; ଗାଣ୍ଠିପତ୍ରିକା | ଘାସ; ବାଉଁଶପତ୍ରଭଳିଆ |
| বাঁশপাতা ঘাস | ଘାସ—2. A kind of |

grass with leaves like the bamboo leaves. [ଦ୍ର—ଏହା ହିଙ୍ଗୁପତ୍ରୀ ତୁଲ୍ୟ ଗୁଣଦାୟକ । ଏହା ମଧୁରରସ, ଶୀତଳ, ରୁଚିକର ଓ ପିତ୍ତରକ୍ତଦୋଷନାଶକ ଓ ପଶୁମାନଙ୍କର ଦୁଗ୍ଧବର୍ଦ୍ଧକ ।]

**ହିଙ୍ଗୁ ନାଡ଼ିକା**—ସ. ବି—ନାଡ଼ୀହିଙ୍ଗୁ; ଏକପ୍ରକାର ହିଙ୍ଗୁ— Hingu nārdikā A sort of asafoetida. [ଦ୍ର—

| | |
|---|---|
| ଅନ୍ୟ. ସ ନାମ—ନାଡ଼ୀ ହିଙ୍ଗୁ, ପଲାଶାଖ୍ୟ, | ଏହା କଟୁରସ, ଉଷ୍ଣ- |
| ଜନ୍ତୁକା, ରାମଠୀ, ବଂଶପତ୍ରୀ, ପିଣ୍ଡାହ୍ୱ, ସୁବାର୍ଥୀ, | ବୀର୍ଯ୍ୟଦ,କଫ ଓ ବାୟୁ |
| নাড়ীহীংগু | ଜନିତ ବେଦନା ନାଶକ, |
| कलापतिहींग | ମଳବଦ୍ଧତା, ଅନାହ ଓ |
| ମ· ନାଡ଼ୀହିଙ୍ଗୁ | ଅଜୀର୍ଣ୍ଣ ରୋଗରେ ଉପକାରୀ ।] |
| ତା. କଳହଣ୍ଡି | |
| ତେ. ଚଉହିଙ୍ଗ, କାରୁଇଙ୍ଗବା | |
| ଅ. କନଖାଭ୍ | |

**ହିଙ୍ଗୁନିର୍ଯ୍ୟାସ**—ସ. ବି —୧ । ହିଙ୍ଗୁ ଗଛର ଚେରର ରସ ବା ଅଠା— Hingu nirjyāsa 1. The asafoetida juice; the juice of the root of the asafoetida plant, ୨ । ନିମ୍ବବୃକ୍ଷ (ଅମର)—2. the Neem tree.

**ହିଙ୍ଗୁପତ୍ର**—ସ. ବି—ଇଙ୍ଗୁଦୀ ବୃକ୍ଷ (ରାଜନିର୍ଘଣ୍ଟ)—Terminalia Hingu patra Catapha (Kirtikar.)

**ହିଙ୍ଗୁପତ୍ରୀ**—ସ· ବି—(ଏହାର ପତ୍ର ହିଙ୍ଗୁ ଗୁଳ୍ମର ପତ୍ର ସଦୃଶ ଥିବାରୁ)— Hingu patri ଏକପ୍ରକାର ତୃଣ; ବାଉଁଶପତ୍ରଭଳିଆ

| | |
|---|---|
| ଅନ୍ୟ ସ—ଭୂକପତ୍ରୀ, ଲୁବସା, | ଘାସ ଭଳି ଏକପ୍ରକାର ଘାସ— |
| ପୃଥ୍ୱୀକା, ପୃଥୁ, ପୃଥୁଳା, | A srot of grass; Balamit- |
| ଜବସା, ହଜପତ୍ରୀ, କାଶ୍ମିକା, | es Ruxburghi. [ଦ୍ର—ଏହା |
| କାଶୀ, କାଶିକା, ସାର୍ଦ୍ଧିକା, | କଟୁତିକ୍ତ ରସ, ରୁଚ୍ୟ, ତୀକ୍ଷ୍ଣ, ଉଷ୍ଣ, |
| ଦାରୁପତ୍ରୀକା, କାରବୀ, | ପାଚନ ଏବଂ ହୃଦ୍‌ରୋଗ, ବସ୍ତିରୋଗ, |
| ଦାରୁପତ୍ରୀ, ହିଙ୍ଗୁପତ୍ର) | ମଳବଦ୍ଧତା, ଶ୍ଳେଷ୍ମା, ବାୟୁ ଓ ଗୁଳ୍ମ |
| বংশপত্রতৃণ, বাধূনী | ନାଶକ ଓ କୃମିନାଶକ; ଏହା ଚିକୋଣିରେ |

ବଘାରିଯାଏ ଏବଂ ଏହାର ଗନ୍ଧ ଅବିକଳ୍ପ ହିଙ୍ଗୁ ଗନ୍ଧ ଭଳି । ବଂଶପତ୍ରୀଠାରୁ ଏହା ପୃଥକ୍ ଅଟେ ।]

**ହିଙ୍ଗୁପର୍ଣ୍ଣୀ**—ସ. ବି—ବଂଶପତ୍ରୀ (ଶବ୍ଦମାଳା)—A kind of grass Hingu parnni with leaves like bamboo leaves.

**ହିଙ୍ଗୁଳ (ଳ, ଲୁ)**—ସ. ବି—(ହିଙ୍ଗୁ+ଲା. ଧାତୁ=ଗ୍ରହଣ କରିବା+ Hingula (li, lu) କର୍ତ୍ତ୍ରି ଅ. ଇ, ଉ, ଏହା ହିଙ୍ଗୁର ବର୍ଣ୍ଣ

| | |
|---|---|
| ଅନ୍ୟ ସ ନାମ—ଦରଦ, | ଗ୍ରହଣ କରିଥିବାରୁ )—ହେଙ୍ଗୁଳ ; |
| ମ୍ଳେଚ୍ଛ, ଚର୍ମାଙ୍ଗ, ଚୂର୍ଣ୍ଣପାରଦ, | ପାରଦବହୁଳ ଘୋର ଲୋହିତ ବର୍ଣ୍ଣ |
| ରକ୍ତ, ମର୍କଟଶୀର୍ଷ, ହଂସପାଦ, | ଖନିଜପଦାର୍ଥ ବିଶେଷ—Cinnabar; |
| ଶୁରୁକ, ଇଙ୍ଗୁଳ, ରକ୍ତ- | sulphate of mercury. [ଦ୍ର— |
| ପାରଦ, ବର୍ବର, ସୁରଙ୍ଗ, | ଏହା ଗୋଟିଏ ଉପରସ ; ଏହାକୁ |
| ସୁଗର, ରଞ୍ଜନ, ରଞ୍ଜକ, | ବାଟି ଚିତ୍ରକରମାନେ ରଙ୍ଗ ତିଆର |
| ଚର୍ମୀରକ, ମଣିରାଗ, | କରନ୍ତି ଓ ଗଞ୍ଜପା ଖାରର ଗୋଟିଏ |
| ରସୋଦ୍ଭବ, ରସଗର୍ଭ | ରଙ୍ଗର ଡାସ ଏଥିରେ ଚିହ୍ନିତ ହୁଏ । |
| হীংগুল सिंगरफ, | ଏହା ଶାସ୍ତ୍ରବିଧିମତେ ଶୋଧିତ ହୋଇ |
| हींगुळ, ईंगुर | ଊର୍ଦ୍ଧ୍ୱପାତନ ନିୟମ ଅନୁସାରେ |
| ଫା. ସିଙ୍ଗ୍ରଫ୍ | ଡମ୍ବରୁ ଯନ୍ତ୍ରରେ ପାକ କରାଯାଇ |
| ଆ. ଜଞ୍ଜଫର୍ | ଔଷଧରେ ବ୍ୟବହୃତ ହୁଏ । ଶୋଧିତ |
| ତେ. ଇଙ୍ଗିଲିକାମୁ | ହିଙ୍ଗୁଳ ମଧୁର-କଟୁ-ତିକ୍ତ-କଷାୟରସ, |

ଉଷ୍ଣବୀର୍ଯ୍ୟ, ତ୍ରିଦୋଷନାଶକ ଏବଂ ଜ୍ୱର, ପ୍ଳୀହା, କାମଳା, ଆମବାତ, ନେତ୍ର ରୋଗ, କଫ, ପିତ୍ତ, ହୃଲ୍ଲାସ, କୁଷ୍ଠ ଓ ବିଷଦୋଷ ନାଶକ; ରୂପ ଓ ନାମ ଭେଦରେ ହିଙ୍ଗୁଳ ୩ ପ୍ରକାର ଯଥା—୧ । ଚର୍ମୀର—ଶ୍ୱେତବର୍ଣ୍ଣ । ୨ । ଶୁକ ତୁଣ୍ଡକ—ଈଷତ୍ ପୀତବର୍ଣ୍ଣ । ୩ । ହଂସପାଦ—ଜବା (ମନ୍ଦାର) ପୁଷ୍ପ ସଦୃଶ ଲୋହିତବର୍ଣ୍ଣ । ଏଥିମଧ୍ୟରେ ହଂସପାଦ ହିଙ୍ଗୁଳ ସର୍ବୋତ୍କୃଷ୍ଟ ଏବଂ ଔଷଧରେ ଓ ରଙ୍ଗରେ ବ୍ୟବହୃତ ହୁଏ । ହିଙ୍ଗୁଳକୁ ମେଣ୍ଢାଦୁଧ, ଟେଭ ରସ ଓ ଅଦାରସରେ ୭ ଥର ଲେଖାଏଁ ବଭୂରାଇ ସିଦ୍ଧାଇଲେ ଏହା ଶୋଧିତ ହୁଏ ଓ ଶୋଧିତ ହିଙ୍ଗୁଳ ଔଷଧରେ ଲାଗେ ।

ଶୋଧିତ ହିଙ୍ଗୁଳକୁ ଟେଭରସରେ ମର୍ଦ୍ଦନ କରି ତାହାକୁ ଗୋଟିଏ ହାଣ୍ଡିରେ ପୁରାଇ ନିଆଁରେ ବସାଇ ଉକ୍ତ ହାଣ୍ଡି ଉପରେ ଗୋଟିଏ ଜଳପୂର୍ଣ୍ଣ ହାଣ୍ଡି ରଖାଯାଏ ଓ ଉପରେ ଥିବା ହାଣ୍ଡିର ପାଣି ଗରମ ହୋଇଗଲାରୁ ତାକୁ ଢାଳ ପୁଣି ଥଣ୍ଡା ପାଣି ତହିଁରେ ପୂରାଯାଏ । ଏହିପରି (ଡମ୍ବରୁ ଯନ୍ତ୍ରରେ) ପାକ କଲେ ଉପର ହାଣ୍ଡିର ତଳଦେଶରେ ପାରଦସ୍ତର ବସିଯାଏ; ଉକ୍ତ ପାରଦ ବିଶୁଦ୍ଧ ପାରଦ ଅଟେ ।]

**ହିଙ୍ଗୁଳ ବର୍ଣ୍ଣ**—ସଂ, ବି—ହିଙ୍ଗୁଳ ପରି ଗାଢ଼ ରକ୍ତବର୍ଣ୍ଣ— Hingula barnna Vermilion colour. (ହିଙ୍ଗୁଳ ରଙ୍ଗ—ଅନ୍ୟରୂପ)

ହିଙ୍ଗୁଳ ଶୋଧନ—ସଂ.ବି—ମେଣ୍ଢାଦୁଧ, ଟଭାରସ ଓ ଅଦାରସଦ୍ୱାରା ୭ଥର Hiṅgu̱la Śodhana ଭାବନା ଦେଇ ହିଙ୍ଗୁଳକୁ ଔଷଧାର୍ଥେ ଶୁଦ୍ଧ କରିବା—Refining of cinnabar for medicinal purpose.

ହିଙ୍ଗୁଳା—ସଂ. ବି—ବାମନ ପୁରାଣୋକ୍ତ ଦେଶ ବିଶେଷ—Name Hiṅgulā of a country mentioned in the (ହେଙ୍ଗୁଳା—ଦେ. ରୂପ) 'Bāmana Purāṇa'. [ଦ୍ର—ଏଠାରେ ଦୁର୍ଗାଙ୍କର ଚଣ୍ଡିକା ନାମ୍ନୀ ଅବତାର ଅଧିଷ୍ଠିତ। (ବାମନ ପୁରାଣ)।] ଦେ. ବି—ହିଙ୍ଗୁଳାଇ (ଦେଖ)—Hiṅgu̱lāi (See). [ଉ—ସ୍ୱାହା ସହଚରୀ ହିଙ୍ଗୁଳାଙ୍କ କରେ। ରାଧାନାଥ—ନନ୍ଦିକେଶ୍ୱରୀ।] ବିଣ—ହିଙ୍ଗୁଳବର୍ଣ୍ଣ ବିଶିଷ୍ଟ ; ଗାଢ ରକ୍ତବର୍ଣ୍ଣ—Of vermilion colour.

ହିଙ୍ଗୁଳା (ଳେ) ଇ—ଦେ· ବି—(ସଂ ହିଙ୍ଗୁଳ; ଏହାଙ୍କର ଅଗ୍ନିରବର୍ଣ୍ଣ Hiṅgu̱lā (le) i ହିଙ୍ଗୁଳ ରଙ୍ଗ ଥିବାରୁ)—୧ । ଓଡ଼ିଶାର

ହିଙ୍ଗୁଳା ଠାକୁରାଣୀ<br>ହିଙ୍ଗୁଳା ଦେବୀ<br>ହେଙ୍ଗୁଳା (ଳେ)ଇ } —ଅନ୍ୟରୂପ

ଗଡ଼ଜାତ ତାଳଚେରରେ ପୂଜିତା ଗୋପାଳପ୍ରସାଦ ଗ୍ରାମରେ ଅଧିଷ୍ଠିତା ଅଗ୍ନିରୂପ ଧାରିଣୀ ଦେବୀ ବିଶେଷ—1. A Goddes

'हिङ्गुलाई

हिंगुलामाई worshipped in the shape of fire in the Orissan State of Talcher. [ଦ୍ର—ବସନ୍ତକାଳରେ ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀଠାରୁ ତାଳଚେର ରାଜ୍ୟର ଗୋପାଳପ୍ରସାଦ ଗ୍ରାମରେ ପ୍ରତିଷ୍ଠିତା ହିଙ୍ଗୁଳା ଦେବୀଙ୍କ ଯାତ୍ରା ଉତ୍କଳପ୍ରସିଦ୍ଧ । ଗୋପାଳପ୍ରସାଦ ଗ୍ରାମର ଭୂଗର୍ଭରେ ପଥରକୋଇଲାର ଖଣି ଥିବାରୁ ସେହି ଖଣିରୁ (ଖଣିର ପଥର କୋଇଲାରୁ) ଉଠୁଥିବା ବାଷ୍ପ (Coal gas) ରେ ଅଗ୍ନି ସଂଯୁକ୍ତ ହୋଇ ସ୍ୱତଃ ତାହା ଜଳି ଉଠେ । ଏଣୁ ସାଧାରଣ ଲୋକେ ଏହାକୁ ହିଙ୍ଗୁଳାଇଙ୍କ ଜଭା ହେବା କହିଥାଆନ୍ତି । ଦେବୀଙ୍କ ପୂଜା ସଙ୍ଗେ ସଙ୍ଗେ ଏହି ଅଗ୍ନିରେ ଜୀବନ୍ତ ଛାଗ, ମେଷ, କୁକ୍କୁଟ ପ୍ରଭୃତି ଓ ଶାଢ଼ୀ, ବସ୍ତ୍ର, ଗଞ୍ଜମୁଆଁ ଓ ... ବଳିରୂପେ ନିକ୍ଷେପ କରିବା ପ୍ରଥା ବହୁକାଳରୁ ଚାଲିଆସୁଅଛି । ଏହି ଯାତ୍ରାରେ ବାମଣ୍ଡା, ପାଲଲହଡ଼ା, ଅନୁଗୁଳ, ଢେଙ୍କାନାଳ ଭୃତି ସ୍ଥାନମାନଙ୍କରୁ ୮।୧୦ ହଜାର ନରନାରୀ ରୁଣ୍ଡ ହୁଅନ୍ତି (ଶଶିଭୂଷଣ ଉତ୍କଳ ରଘୁଚନ୍ଦ୍ର) । ଏହି ବିଷୟ କବି ରାଧାନାଥ ତାଙ୍କ ପ୍ରଣୀତ ମହାଯାତ୍ରା କାବ୍ୟର ଷଷ୍ଠ ସର୍ଗରେ ସୂଚନା କରିଅଛନ୍ତି । ଗୋପାଳପ୍ରସାଦଗ୍ରାମ ନିକଟରେ ସିଙ୍ଗଡ଼ା ନଦୀ ପ୍ରବାହିତା । କିଂବଦନ୍ତୀ ଅଛି ଯେ, ଏଠାରେ ଅକସ୍ମାତ୍ ଅନଳର ଆବିର୍ଭାବ ହୋଇ ହିଙ୍ଗୁଳାଦେବୀଙ୍କର ଅଧିଷ୍ଠାନ ହୁଏ । (ରାଧାନାଥ· ଚନ୍ଦ୍ରାବଳୀ· ଟୀକା)]

୨। (ସଂ. 'ହିଙ୍ଗୁଳାକ୍ଷୀ) ଆସାମ ଜ୍ୱାଳାମୁଖୀ ତୀର୍ଥରେ ପୂଜିତା ଦେବୀଙ୍କ ନାମ—

2. Name of a popular Goddess worshipped in Jwā̱lāmukhī in Āssām.

ହିଙ୍ଗୁଳା(ଳେ)ଇବା—ଦେ. କ୍ରି—୧ । ହିଙ୍ଗୁଳ ରଙ୍ଗରେ ରଞ୍ଜ କରିବା— Hiṅgu̱lā(le)ibā 1. To paint with the vermilion colour. ୨ । ରଞ୍ଜ କରିବା—2. To paint.

हिंङ्गुले चित्र करा हिंगुल लगाना

(ହେଙ୍ଗୁଳାଇବା—ଅନ୍ୟରୂପ)

ହିଙ୍ଗୁଳାକ୍ଷୀ—ସଂ· ବି· ସ୍ତ୍ରୀ—ଜ୍ୱାଳାମୁଖୀ ତୀର୍ଥରେ ପୂଜିତା ଦେବୀ ବିଶେଷ Hiṅgu̱lākshī —Name of a Goddess worshipped in Jwā̱lāmukhī in Assam.

ହିଙ୍ଗୁଳା ପୀଠ—ଦେ. ବି—ତାଳଚେର ରାଜ୍ୟର ସିଙ୍ଗଡ଼ା ନଦୀ କୂଳରେ Hiṅgu̱lā pīṭha ଗୋପାଳପ୍ରସାଦ ଗ୍ରାମରେ ହିଙ୍ଗୁଳାଇ (ହେଙ୍ଗୁଳା ପୀଠ—ଅନ୍ୟରୂପ) ଠାକୁରାଣୀଙ୍କର ଅଧିଷ୍ଠିତ ସ୍ଥାନ— The shrine of Goddess Hiṅgu̱lā in the village of Gopā̱laprasāda in Talcher state of Oirssa [ଦ୍ର—ପବିତ୍ର ହିଙ୍ଗୁଳାପୀଠ ଜଳି ଉଠେ ଯଥା ଅତମ୍ଭିତେ ବହ୍ନିଶିଖା ନିଦାଘ ନିଶୀଥେ ରାଧାନାଥ ମହାଯାତ୍ରା ।]

ହିଙ୍ଗୁଳା ଯାତ୍ରା (ଯାତ)—ଦେ· ବି—ତାଳଚେର ରାଜ୍ୟର ଗୋପାଳପ୍ରସାଦ Hiṅgu̱lā jātrā (jāta) ଗ୍ରାମରେ ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀରେ

ହେଙ୍ଗୁଳା(ଳେ)ଇ ଯାତ୍ରା<br>ହେଙ୍ଗୁଳା ଯାତ୍ରା } ଅନ୍ୟରୂପ

ଅଗ୍ନିରୂପେ ପୂଜିତା ହିଙ୍ଗୁଳାଇ ଠାକୁରାଣୀଙ୍କ ଉତ୍ସବ—A festival held in a village named Gopā̱la prasāda in Talcher on the 14th day of the bright fortnight of the month of Chaitra in honour of Goddess 'Hiṅgu̱lāi'.

ହିଙ୍ଗୁଳି—ସ. ବି—ହିଙ୍ଗୁଳ (ଜଟାଧର) (ଦେଖ)— Hiṅgu̱li Hiṅgu̱la (See) ବିଣ—ହିଙ୍ଗୁଳିଆ (ଦେଖ)— Hiṅgu̱liā (See)

ହିଙ୍ଗୁଳିଆ—ସ. ବିଣ—୧ । ହିଙ୍ଗୁଳ ସମ୍ବନ୍ଧୀୟ—1. Relating to Hiṅgu̱liā cinnabar. ୨ । ହିଙ୍ଗୁଳ ରଞ୍ଜିତ— 2. Painted with vermilion. ୩ । ହିଙ୍ଗୁଳ ବର୍ଣ୍ଣ ବିଶିଷ୍ଟ; ନାଲି—3. Scarlet.

ହିଙ୍ଗୁଳିକା—ସ. ବି—କଣ୍ଟକାରୀ (ଶବ୍ଦ ଚନ୍ଦ୍ରିକା)— Hiṅgu̱likā Solanum Xanthocarpum (plant).

ହିଙ୍ଗୁଳିବା—ଦେ. କ୍ରି—(ସ· ହିଙ୍ଗୁଳ)—ହିଙ୍ଗୁଳରେ ରଞ୍ଜ କରିବା— Hiṅgu̱libā To paint with vermilion. [ହେଙ୍ଗୁଳିବା—ଅନ୍ୟରୂପ]

हिंङ्गुले चित्र करा हिँगुललगाना

ହିଙ୍ଗୁଳୀ—ସଂ. ବି—୧ । ବାଇଗଣ (ଅମର)—1. Brinjal. ୨ । Hiṅgu̱lī ବୃହତୀ (ଭାବପ୍ରକାଶ), ବଡ଼ାଙ୍କୁଡ଼ୀ; ବେଁକୋଳି— [ହେଙ୍ଗୁଳୀ—ଦେ ରୂପ] 2. Solanum Indicum.

ହିଙ୍ଗୁଶିରଟିକା—ସଂ. ବି—ବଂଶପତ୍ରୀ (ରତ୍ନମାଳା)— Hiṅguśiraṭikā A kind of grass with leaves like bamboo leaves.

ହିଚ୍କି—ପ୍ର ଦେ (ସମ୍ବଲପୁର) ବି—(ସଂ ହିକ୍କା, ଭୁଲ; ହି. ହିଚକି)— Hich-ki ହିକ୍କା ରୋଗ—Hiccough.

ହିଚ୍‌କି କଚୁଡ଼ି—ପ୍ରାଦେ (ସମ୍ବଲପୁର) ବିଣ—ହାଚକି କଚୁଡ଼ି (ଦେଖ)
Hich-ki kachardi —Hāchaki kachardi (See)

ହିଚ୍‌କିବା—ପ୍ରାଦେ (ଗଡ଼ଜାତ) —କ୍ରି—୧ । ଡରିବା—1. To fear.
Hich-kibā ୨ । ଅମେଳହେବା—2. To disagree.

ହିଚ୍‌କିବା—ପ୍ରାଦେ (ସମ୍ବଲପୁର) କ୍ରି—ଝୁଣ୍ଟିପଡ଼ିବା—
Hich-kibā To stumble.

ହିଚକିରା—ପ୍ରାଦେ (ସମ୍ବଲପୁର) ବିଣ—ଅପମାନିତ, ଲଜ୍ଜିତ—
Hich-kirā Insulted; put to shame.

ହିଚ୍‌ଖିଚାଇବା—ପ୍ରାଦେ (ସମ୍ବଲପୁର) କ୍ରି—ଟାଣିବା—
Hich-khichāibā To draw; to drag.

ହିଜ୍‌ରା(ରୀ)—ବୈଦେ. ବିଣ—( ଅ. ହିଜ୍‌ରି=ମକ୍କାଠାରୁ ହଜରତ୍
Hij-rā (ri) ମହମ୍ମଦଙ୍କର ମଦିନାକୁ ଶତ୍ରୁ ଭୟରେ ପ୍ରସ୍ଥାନ)—
[ହିଜ୍‌ରା(ରୀ)ସନ—ଅନ୍ୟରୂପ] ମକ୍କାଠାରୁ ହଜରତ୍ ମହମ୍ମଦଙ୍କର ପ୍ରସ୍ଥାନ
ହିଜରି ବତ୍ସରଠାରୁ ( ୬୨୨ ଖ୍ରୀଷ୍ଟାବ୍ଦ ୧୬ ଜୁଲାଇ)ଠାରୁ
हीजरी ଗଣନା ଆରମ୍ଭ ହୋଇଥିବା ମୁସଲମାନମାନଙ୍କର ଅବ୍ଦ ବା
ବର୍ଷ (ଏହି ଅବ୍ଦ=୧୨ଟି ଚାନ୍ଦ୍ରମାସ=୩୫୪ ୧/୨ ଦିନ )
—The Mahomedan calender year. [ଦ୍ର—
ସନ ତଳେ ଟୀକା ଦେଖ ।]

ହିଜ୍‌ଲି(ଲୀ)—ଦେ. ବି—(ନାମ)—ମେଦିନୀପୁର ଜିଲ୍ଲାର ହିଜଲି ନାମକ
Hij-li (li) ନଦୀ—Name of a river in Midnapur.

ହିଜଡ଼ା—ଦେ. ବି. ପୁଂ—୧ । ହେଞ୍ଜଡ଼ା; ପୁରୁଷତ୍ୱ ଓ ପୁରୁଷ ଲକ୍ଷଣହୀନ
Hijarda ପୁରୁଷ; ନପୁଂସକ; ପୋଚ—1. A eunoch; a
हिजड़ा male hermaphrodite. ୨ । ସ୍ତ୍ରୀ ଓ ପୁରୁଷ ଲକ୍ଷଣ
हीजड़ा ବିଶିଷ୍ଟ ପୁରୁଷ (ଯାହାର ସ୍ତନ ଓ ଶ୍ମଶ୍ରୁ ଥାଏ)—2.
A male with female characteristics; a
female having male characteristics.
ବିଣ—୧ । ନିର୍ଲଜ୍ଜ—1. Shameless; immodest.
୨ । ହେଞ୍ଜଡ଼ା ୧ (ଦେଖ)—2. Henjardā 1 (See)

ହିଜଡ଼ା—ଦେ. ବି ଓ ବିଣ—(ପୁଂ ଓ ସ୍ତ୍ରୀ)—୧ । ହିଜଡ଼ ( ଦେଖ)—
Hijardā 1. Hijarda (See). ୨ । ହିଜଡ଼ୀ (ଦେଖ)—
2. Hijardi (See).

ହିଜଡ଼ୀ—ଦେ. ବି ସ୍ତ୍ରୀ—(ସ. ସ୍ତନହୀନା)—ହେଞ୍ଜଡ଼ୀ; ସ୍ତ୍ରୀଚିହ୍ନହୀନା ନାରୀ;
Hijardi ଅପୁଷ୍ପୀ ସ୍ତ୍ରୀ; ଯେଉଁ ନାରୀର ରଜୋଦର୍ଶନ ଯୌବନ ଲକ୍ଷଣ
हिजड़ी ପ୍ରକାଶିତ ହୁଏ ନାହିଁ—A female hermaphro-
हीजड़ी dite; a woman whose menses do not
appear and who shows some male
characteristics. ବିଣ. ସ୍ତ୍ରୀ—୧ । ନିର୍ଲଜ୍ଜା—1.
Shameless; immodest (female). ୨ ।
ହେଞ୍ଜଡ଼ୀ ୧ । (ଦେଖ)—2 Henjardi (See).

ହିଜ(ଜ୍)ରତ—ବୈଦେ.ବି—(ଅ)—ମହମ୍ମଦଙ୍କର ମକ୍କା ଛାଡ଼ି ଖ୍ରୀ୬୨୨ରେ
Hija(j-)rat ମଦିନାକୁ ପ୍ରସ୍ଥାନ—The departure of the
हिजरत Prophet Mahammad in 622 A. D. from
हजरत Mecca to Madina. [ଦ୍ର—ଏହି ଦିନଠାରୁ
ହିଜ୍‌ରି ସନର ଗଣନା ଆରମ୍ଭ କରାଯାଇଅଛି ।]

ହିଜିର(ରା)—ବୈଦେ. ବି—(ଅ)—ହିଜରା (ଦେଖ)—
Hiji-i(rā) Hi-rā (See).

ହିଜିଲି ବାଦାମ—ପ୍ରାଦେ ( ମେଦିନୀପୁର ) ବି—ଲଙ୍କା ଆମ୍ବ—
Hijili bādāma Cashew nut, Anacardium
हिजली बादाम Occidentale (tree and its flowered
हीजली बादाम fruit).

ହିଜ୍ଜ—ସ. ବି—ହିଞ୍ଜଳ (ଦେଖ)—
Hijja Hinjala (See).
(ହିଜ୍ଜଳ—ଅନ୍ୟରୂପ)
(ହିଜ୍ଜଳ—ଦେ. ରୂ୍ପ)

ହିଞ୍ଚିଡ଼ିବା - ଦେ. କ୍ରି—ହେଁଚିବା—
Hinchirdibā To drag; to haul
हिँचड़ाना खींचना

ହିଞ୍ଜଡ଼—ଦେ ବି ଓ ବିଣ—ହିଜଡ଼ (ଦେଖ)—
Hinjarda Hijarda (See).

ହିଞ୍ଜଡ଼ା—ଦେ. ବି ଓ ବିଣ—(ପୁଂ ଓ ସ୍ତ୍ରୀ)—୧ । ହିଜଡ଼ା (ଦେଖ)—
Hinjardā 1. Hijarda (See). ୨ । ହିଜଡ଼ୀ (ଦେଖ)—
2. Hijardi (See)

ହିଞ୍ଜଡ଼ୀ ଦେ. ବି ଓ ବିଣ—ସ୍ତ୍ରୀ—ହିଜଡ଼ୀ (ଦେଖ)—
Hinjardi Hijardi (See).

ହିଞ୍ଜଳି—ଦେ. ବି—ହିଞ୍ଜିଳ (ଦେଖ)—
Hinjali Hinjili (See)

ହିଞ୍ଜଳ—ଦେ. ବି—(ସ. ହିଜ୍ଜଳ; ଇଜ୍ଜଳ)—ଜମ୍ବୁକାଦିବର୍ଗର ନାତିବୃହତ୍
Hinjala ତରୁ—Barring tonia Acutangulia;
ସ—ଇଜ୍ଜଳ, ହିଜ୍ଜଳ, Barringtona Racemosa tree.
ନିଚୁଳ, ଅମ୍ବୁଜ, ପିଚ୍ଛିଲ, [ଦ୍ର—ଏ ଗଛ ଜଳକୂଳରେ ଜନ୍ମେ;
ଜଳୀକାନ୍ତ, ଧନଦ, କାନ୍ତ, ଏହାର ପତ୍ର ଏକୋତ୍ତର; ଫୁଲ ଅରକ୍ତ;
ଜଳଦ, ଦୀର୍ଘପତ୍ରକ. କେଶର ରକ୍ତବର୍ଣ୍ଣ; ଗ୍ରୀଷ୍ମକାଳରେ
କପାକ, ରକ୍ତକାର୍ମୁକ, ଫୁଟେ; ମଞ୍ଜରୀ ଦୀର୍ଘ; ବସନ୍ତକାଳରେ
ଦୀର୍ଘପତ୍ରିକା । ପତ୍ର ଝଡ଼ିପଡ଼େ । ଫଳଗୁଡ଼ିକ ଚତୁଷ୍କୋଣ
हिज्जल, समुद्रफल ଅଷ୍ଟକ ବିଶିଷ୍ଟ (ଯୋଗେଶଚନ୍ଦ୍ର) । ଏହା
ईजर, समुद्दर फल କଟୁରସ, ଉଷ୍ଣବୀର୍ଯ୍ୟ, ମଳସଂଗ୍ରାହକ, କଫପିତ୍ତ-
ईज़ जल हीज़ ज़ल କାରକ, ବାୟୁବେଗ ନାଶକ, ଭୂତାବେଶର
ମ. ପର୍ଯ୍ୟୟ ଓ ଗ୍ରହାବେଶର ଶାନ୍ତିକାରକ; ଏହା ପତ୍ରର ଓ
ଟା. ଚାଲେଗଣଟିଲେ ବିଷାପହ] ୨ । ନପୁଂସକ—2. Eunoch
ତେ. କାନପୁ [ଦ୍ର—ସବୁଜାତିରେ ଅସ୍ତିତ୍ୱ ମାତ୍ର ଅଛନ୍ତି,
ସେଥିମଧ୍ୟରେ ତ ଗୋଟାଏ ଗୋଟାଏ ହିଞ୍ଜଳ ଦେଖାଯାଏ
ଫକୀରମୋହନ, ଛମାଣ ଆଠଗୁଣ୍ଠ ।].

ହିଞ୍ଜଳ କାନ୍ଥି—ଦେ. ବି (ନାମ)—ମେଦିନୀ ପୁରରେ ହିଜ୍ଜଳ ନାମରେ
Hinjalakānthi ଗୋଟିଏ ନଦୀଥିବାରୁ )—ମେଦିନୀପୁରର
ଗୋଟିଏ ସବ୍‌ଡିଭିଜନ୍ ଓ ନଗର— Contai; a
Sub-division and town in the district of
Midnapur.

ହିଞ୍ଜଡ଼ା—ଦେ. ବ ଓ ବଣ—ହିଜଡ଼ା (ଦେଖ)—
Hinjrda Hijarda (See)
(ହିଞ୍ଜିଡ଼ୀ—ସ୍ତ୍ରୀ)

ହିଞ୍ଜିରିବା—ପ୍ରାଦେ. ( ଗଡ଼ଜାତ ) କ୍ରି—୦ । ଝୁରିବା—
Hinjiriba 1. To pine after. ( ଯଥା—
ମାତୃକୋଳଚ୍ୟୁତ ହୋଇ କେତେକାଳ ପର୍ଯ୍ୟନ୍ତ ହିଞ୍ଜିରି
ହିଞ୍ଜିରି ଶିଶୁଟି କ୍ଷୀଣ ଓ ଶକ୍ତିହୀନ ହୋଇପଡେ—ଗଡ଼ଜାତ
ବାସିନୀ ।) ୨ । (ବଲାଙ୍ଗିର,ପାଟଣା) କ୍ରି—ଶୁଖିଯିବା—
2. To become dry. ୩ । (ସମ୍ବଲପୁର) କ୍ରି—ଶୀର୍ଣ୍ଣ
ହେବା—3. To wither; to become emaciated.
(ଯଥା—ମୁଁ ସେ କଥା ଭାବି ଭାବି ହିଞ୍ଜିରି ଗଲିଣି ।)

ହିଞ୍ଜିଳୀ—ଦେ. ବ (ସ ହିଙ୍ଗଳୀ=ବାଇଗଣ; ଏହାର ପତ୍ର ବାଇଗଣପତ୍ର
Hinjili ଅନୁରୂପ ବର୍ଣିଷ୍ଣୁ ଥିବାରୁ; କମ୍ବା ହିଞ୍ଜଳ କାନ୍ଥି ଅଞ୍ଚଳରୁ
ହିଙ୍ଗ୍‌ଲି ପ୍ରଥମେ ଏହା ଆମଦାନି ହୋଇଥିବାରୁ)—ଦକ୍ଷିଣ ଦେଶ,
हिंगली ମେଦିନୀପୁର, ବଙ୍ଗଦେଶର ଯଶୋହର ଓ ନଦୀଆ ଅଞ୍ଚଳରୁ
ଏ ଦେଶକୁ ଅଣାଯାଇ ଅଳ୍ପଦିନ ହେଲା ଚାଷ କରାଯାଉ
ଥିବା ଏକ ପ୍ରକାର ତମାଖୁ ବା ଧୂଆଁ ପତ୍ର—A mild
species of tobacco recently introduced
into Orissa from Bengal and the Deccan.
[ଦ୍ର—ଏହାର ପତ୍ରର ବର୍ଣ୍ଣ କଳା; ଆମ ଦେଶୀ ଧୂଆଁ ପତ୍ର
ପରି ଏହା ମାଟିରେ ଘୋଡ଼ା ଯାଇ ଖରାରେ ଶୁଖାଯାଏ ନାହିଁ;
ଏହା ଗଛରୁ କଟା ହୋଇ ଘରରେ ଟଙ୍ଗାଯାଇ ପବନ
ବାଜି ଶୁଖିଯାଏ । ଏହାର ପିକାର ଧୂଆଁ କଡ଼ା ନୁହେଁ ।]

ହିଞ୍ଜୀର—ସ. ବ ( ହିନ୍ ଜ୍ ଧାତୁ + କର୍ତ୍ତୃ. ଈର + ଅ, ନାଗେଶ )—
Hinjira ହସ୍ତିପଦବନ୍ଧନ; ହାତୀକଳା ଦଉଡ଼ି ବା ଶିକୁଳି—
The chain or rope for the elephant's legs.

ହିଞ୍ଜୁଳ—ସ. ବ—ହିଞ୍ଜଳ ( ଦେଖ )
Hinjula Hinjala ( See )

ହିଟ୍—ବୈଦେ. ବ ( ଇଂ, କ୍ରିକେଟ୍ ଖେଳରେ ବ୍ୟବହୃତ )—
Hit ୧ । କ୍ରିକେଟ୍ ବଲ୍‌ର ୱିକେଟ୍‌ରେ ଅଘାତ—
ହିଟ୍, हिट 1. Hit; hitting of the wicket by a
cricket ball. ୨ । ବଲ୍‌କୁ ବ୍ୟାଟ୍ ଦ୍ୱାରା ଆଘାତ—
2. Hitting of the ball by the bat.

ହିଟ୍ କରିବା—ଦେ. କ୍ରି—(କ୍ରିକେଟ୍ ବଲ୍) ୱିକେଟ୍‌ରେ ବାଜିବା—
Hit kariba To hit (said of a ball hitting the
ହିଟ୍ କବା हिट करना wicket).

ହିଟ୍‌ଲର୍—ଦେ. ବ (ନାମ)—ପ୍ରଚଣ୍ଡ ଶାସିତ ଅଧୁନିକ ଜର୍ମାନୀର
Hitlar ଡିକ୍ଟେଟର ବା ଭାଗ୍ୟନିୟନ୍ତା—Herr Hitler of
ହିଟ୍‌ଲର୍, हिटलर Germany.
[ଦ୍ର—ଏହାଙ୍କ ନେତୃତ୍ୱରେ ଜର୍ମାନ୍‌ମାନେ ଜୁଗୋସ୍ଲାଭିଆ,
ପୋଲଣ୍ଡ, ନରୱେ, ବେଲ୍‌ଜିଅମ୍ ଆଦି ରାଜ୍ୟକୁ ଆକ୍ରମଣ ଓ
ଅଧିକାର କରିବାରୁ, ଏଥିର ପ୍ରତିକାରାର୍ଥ ଇଂଲଣ୍ଡ ଓ ଫ୍ରାନ୍‌ସ
୧୯୩୯ ସାଲରେ ଏହାଙ୍କ ସଙ୍ଗେ ଯୁଦ୍ଧରେ ପ୍ରବୃତ୍ତ ହୋଇ-
ଥିଲେ । ଏ ପରେ ଫ୍ରାନ୍ସକୁ ପରାଜିତ କରିବାରୁ ଫ୍ରାନ୍ସ
ଏହାଙ୍କ ସଙ୍ଗେ ସନ୍ଧି କଲା । ବର୍ତ୍ତମାନ ( ୧୯୪୦ ଜୁନ୍ )
ଇଂରେଜଙ୍କର ଏହାଙ୍କ ସଙ୍ଗେ ଯୁଦ୍ଧ ଚାଲିଛି ।]

ହିଟାଇବା—ପ୍ରାଦେ (ଗଡ଼ଜାତ ଓ ଖଣ୍ଡଅଞ୍ଚଳ) କ୍ରି—୧ । ଫିଟାଇବା—
Hitaiba 1. To open. ୨ । (ଉତ୍ତରୀଭୂଞ୍ଜା) ଅଣିବା;
ବାହାର କରିବା—2. To bring forth.

ହିଟି ପଡ଼ିବା—ପ୍ରାଦେ (ପାଟଣା) କ୍ରି—ପଡ଼ିଯିବା—
Hiti pardiba To fall down.

ହିଟିବା—ପ୍ରାଦେ (ପାଟଣା) କ୍ରି—୧ । ଝୁଣ୍ଟିବା—1 To stumble.
Hitiba ୨ । ଖସି ପଡ଼ିବା—2. To slip down.
ପ୍ରାଦେ (ଖଣ୍ଡଅଞ୍ଚଳ) କ୍ରି—ଫିଟିବା; ମୁକ୍ତହେବା—
To be opened; to be released.

ହିଡ଼ (ଧାତୁ)—ସ—୧ । ଗତି କରିବା—1. To move.
Hird (root) ୨ । ଅନାଦର କରିବା—2. To slight.

ହିଡ଼(ଡ଼ି)ମି(ମୋ)ଚା(ଚି)—ଦେ. ବ ( ସ. ହିଲମୋଚିକା ) - ସୋମ-
Hird(rdi)mi(mo)cha(chi) ରାଜ୍ୟାଦି ବର୍ଗର ଜଳଜ ଔଷଧି
(ହିଡ଼ହିଡ଼େଇ—ଅନ୍ୟରୂପ) ତିକ୍ତ ଶାକ ବିଶେଷ—A salad
ସ, ବ୍ରାହ୍ମୀ, ହିଲମୋଚିକା, herb; Enhydra Hingcha;
ହିଲମୋଚୀ, ଶ୍ୱେତୀ, Enhydra Heloncha;
ଶଙ୍ଖଧରା, ଅକୃଷା, ମତ୍ସ୍ୟାକ୍ଷୀ, Enhydra Fluctuans
ମଣ୍ଡୂ, ଚକ୍ରାଙ୍ଗୀ, ବକସ୍ତ୍ରୀ (Kirtikar ).
हिंचा,हेलेंचा,हिंचेशाक [ଦ୍ର—ଏହା ତିକ୍ତ ରସ, ଶୀତଳ,
हरहुच, हुरहुँच ସାରକ ଏବଂ ଶୋଥ, କୁଷ୍ଠ, କଫ ଓ
ପିତ୍ତ ନାଶକ । ଏହା କଣ୍ଡୂ ଓ ଚର୍ମ ରୋଗରେ ହିତକର ।]

ହିଡ଼—ଦେ. ବ [ ସ. ଅଳ(ଳୀ) ]—୧ । କିଆରିର ବା କ୍ଷେତର
Hirda ସୀମାବନ୍ଧ—1. The boundary ridge of a
ଆଳି, ଆଳ୍, ଆଡ଼ି cultivated field. [ଦ୍ର—ଏହାଦ୍ୱାରା
आरि, आड, मेड ବିଲରେ ପାଣିକୁ ଅଟକାଇ ରଖାଯାଏ ।]
୨ । ମାଟିର ଛୋଟ ବନ୍ଧ—2. A small earthen
ridge. ୩ । ଦାନ୍ତମାନ ଯେଉଁ ମାଂସମୟ ବନ୍ଧ ଉପରେ
ସ୍ଥିତ; ଦାନ୍ତର ମୂଳ; ଦାନ୍ତର ମାଢ଼ି—3. The gum;
the ridge in the mouth on which the
teeth stand. ପ୍ରାଦେ (ଗଞ୍ଜାମ) ବ—ପୁଷ୍କରିଣୀର ହୁଡ଼ା
ବା ଚତୁଃପାର୍ଶ୍ୱସ୍ଥ ବନ୍ଧ—The embankments on
the 4 sides of a tank.

ହିଡ଼ କାଟି—ଦେ. ବ ( ସ. ଅଳ ଓ କର୍ତ୍ତନ )—ପ୍ରତିବର୍ଷ କିଆରିର
Hirda kati ହିଡ଼ର ପାର୍ଶ୍ୱସ୍ଥ ଘାସ ଓ ମାଟିକୁ ଚାଞ୍ଛିବା—
ଆଳହଁଟି Annual scraping of the edges of the
मेड छँटाइ ridges of a paddy field.

ହିଡ଼(ଡ଼ି) କାଉଁଚିଆ—ଦେ. ବଣ—୧ । ଅସମତଳ (ପଥ ବା ଜମି)—
Hirda(rdi) kauchia 1. Rugged; rough (path or
ହେଟେ ଟ୍ୟାଂବା land). ୨ । କ୍ରମଶଃ ଉଠାଣି ଓ ଗଡ଼ାଣି; ଉଚ୍ଚାବଚ—
ऊँ बानीवा 2. Undulating.

ହିଡ଼ ଦେବା (ବାନ୍ଧିବା)—ଦେ. କ୍ରି—ମାଟି ଦ୍ୱାରା କିଆରିର ଚାରିପାଖେ
Hirda deba (bandhiba) ହିଡ଼ ପ୍ରସ୍ତୁତ କରିବା—To
আলি দেওয়া raise or make a ridge round a field.
मेड़ बाँधना [ଉ—ଚେମ ନଇଁପଡ଼ି ହିଡ଼ ବାନ୍ଧୁଅଛି । ଫକୀର
[ହିଡ଼ ପକା(କେ)ଇବ ଅନ୍ୟରୂପ) ମୋହନ. ଛମାଣ ଆଠଗୁଣ ।]

ହିଡ଼(ଡି) ମୁଣ୍ଡା—ଦେ. ବି (ସ. ଅଳି ଓ ମୁଣ୍ଡ)—ହିଡ଼ର ଉପରଭାଗ—
Hirda(rdi) munda The crest of a ridge.
আলমাথান [ଉ—ପୁଅକୁ ଖାଇଲା ହିଡ଼ମୁଣ୍ଡାରେ, ପିମ୍ପୁଡ଼ି
मेड़के उपर ଖାଇଲେ କାନ ମୁଣ୍ଡରେ । ଶିଶୁ ଗୀତ ।]

ହିଡ଼ମ୍ବ—ସଂ. ବି (ନାମ)—ହିଡ଼ିମ୍ବ (ଦେଖ)
Hirdamba Hirdimba (See)

ହିଡ଼ମ୍ବା—ସଂ. ବି. ସ୍ତ୍ରୀ (ନାମ)—ହିଡ଼ମ୍ବା (ଦେଖ)
irdamba Hirdimba (See)

ହିଡ଼ ହିଡ଼ା—ଦେ. ବିଣ ପୁଂ—ରଙ୍କୁଣା; ମାଗିଖିଆ (ଗୋପୀନାଥ ନନ୍ଦ)
Hirda birda —Hankering after food; begging
মেগে খেকো माँगनेवाला food from others.
[ହେଡ଼ ହିଡ଼ା(ଡେଇ—ସ୍ତ୍ରୀ]

ହିଡ଼ିମ୍ବ—ସଂ. ବି. ପୁଂ (ନାମ)—୧ । ଭୀମଙ୍କ ଦ୍ୱାରା ନିହତ ରାକ୍ଷସ ବିଶେଷ
Hirdimba —1. A demon killed by Bhima
(ହିଡ଼ିମ୍ବାସୁର—ଅନ୍ୟରୂପ) and whose sister Bhima married. [ଦ୍ର—ଜତୁ ଗୃହରେ ଅଗ୍ନି ଲଗାଇ ପାଣ୍ଡବମାନେ ବାରଣାବତରୁ ପଳାଇଯିବା ବେଳେ ବନ ମଧ୍ୟରେ ଅନ୍ୟ ପୁଅମାନଙ୍କ ସଙ୍ଗେ କୁନ୍ତୀ ନିଦ୍ରା ଗଲେ ଓ ଭୀମ ଜଗି ବସିଲେ । ସେ ବଣରେ ବାସ କରୁଥିବା ନରମାଂସଭୋଜୀ ହିଡ଼ିମ୍ବାସୁର କ୍ଷୁଧାର୍ତ୍ତ ହୋଇ ପାଣ୍ଡବମାନଙ୍କୁ ବଧ କରିବାକୁ ତାହାର ଭଗିନୀ ହିଡ଼ିମ୍ବାକୁ ପାଣ୍ଡବମାନଙ୍କ ଶୋଇବା ସ୍ଥାନକୁ ପଠାଇଲା । କିନ୍ତୁ ହିଡ଼ିମ୍ବା ପାଣ୍ଡବମାନଙ୍କ ନିକଟକୁ ଆସି ଭୀମଙ୍କୁ ଦେଖି ତାଙ୍କ ରୂପରେ ଓ ବଳରେ ମୁଗ୍ଧ ହୋଇ ତାଙ୍କ ପ୍ରଣୟ ପ୍ରାର୍ଥନା କଲା ଓ ହିଡ଼ିମ୍ବ ରାକ୍ଷସର କବଳରେ ପାଣ୍ଡବମାନେ ନ ପଡ଼ିବେ ବୋଲି ଭୀମଙ୍କୁ ସତର୍କ କଲା । ତତ୍ପରେ ଭଉଣୀର ଫେରିବାର ବିଳମ୍ବ ଦେଖି ହିଡ଼ିମ୍ବ ନିଜେ ସେ ସ୍ଥାନରେ ଉପସ୍ଥିତ ହୋଇ ଭଗିନୀକୁ ଭୀମଙ୍କଠାରେ ଅସକ୍ତା ହେବାର ଦେଖି ମାରିବାକୁ ବସିଲା । ଭୀମ ଏହା ଦେଖି ସେ ରାକ୍ଷସ ସଙ୍ଗେ ଯୁଦ୍ଧ କରି ତାକୁ ବଧ କଲେ ଓ ହିଡ଼ିମ୍ବାକୁ ପତ୍ନୀରୂପେ ଗ୍ରହଣ କଲେ । ମହାଭାରତ—ଆଦି]
୨ । ହିଡ଼ିମ୍ବ ରାକ୍ଷସର ବାସ କରୁଥିବା ବନ ବିଶେଷ—2. Name of a jungle where the demon Hirdimba lived.

ହିଡ଼ିମ୍ବଜିତ୍ (ଭିତ୍)—ସଂ. ବି—ହିଡ଼ିମ୍ବାସୁରର ନିହନ୍ତା ଭୀମ—
Hirdimba jit (bhit) Bhima, the slayer of demon
[ହିଡ଼ିମ୍ବ ନିସୂଦନ—ଅନ୍ୟରୂପ] Hirdimba.

ହିଡ଼ିମ୍ବା—ସ. ବି ସ୍ତ୍ରୀ—(ନାମ)—ହିଡ଼ିମ୍ବ ରାକ୍ଷସର ଭଉଣୀ—
Hirdimba The sister of the demon Hirdimba.
(ହିଡ଼ିମ୍ବାସ୍ୱସା—ଅନ୍ୟରୂପ) [ଦ୍ର—ଏ ଭୀମଙ୍କ ପ୍ରତି ପ୍ରଣୟାସକ୍ତା ହେବାରୁ ଭୀମ ମାତା ଓ ଭ୍ରାତାମାନଙ୍କ ପରାମର୍ଶରେ ଏହାକୁ ପତ୍ନୀରୂପେ ଗ୍ରହଣ କଲେ । ହିଡ଼ିମ୍ବା ଭୀମଙ୍କୁ ପୃଷ୍ଠରେ ନେଇ ନାନାଆଡ଼େ ଶୂନ୍ୟରେ ଭ୍ରମଣ କରି ରମ୍ୟ ସ୍ଥାନମାନଙ୍କରେ ଭ୍ରମଣ କଲା ଓ ଭୀମଙ୍କ ଔରସରେ ହିଡ଼ିମ୍ବାର ଘଟୋତ୍କଚ ନାମରେ ପୁତ୍ର ଜନ୍ମ ହେଲା—ମହାଭାରତ. ଆଦି ] ୨ । ହନୁମାନଙ୍କ ସ୍ତ୍ରୀ—2. Name of the wife of the Hanuman.

ହିଡ଼ିମ୍ବା ପତି—ସଂ. ବି ପୁଂ—(୬ଷ୍ଠୀ ତତ୍) ହନୁମାନ ଶବ୍ଦରତ୍ନାବଳୀ)—
Hirdimba pati The great monkey hero; the devoted servant of Ramachandra. ୨ । ଭୀମସେନ—2. Bhimasena.

ହିଡ଼ିମ୍ବା ରମଣ—ସ. ବି ପୁଂ (୬ଷ୍ଠୀ ତତ୍)—୧ । ହନୁମାନ (ନିକାଣ୍ଡ ଶେଷ)—1. The great monkey
Hirdimba ramana hero ୨ । ଭୀମ—2. Bhima.

ହିଣ୍ଡ୍ (ଧାତୁ)—ସ—୧ । ଗମନ କରିବା—1. To go. ୨ । ରମଣ
Hind (root) କରିବା—2. To copulate. ୩ । ଲେଖିବା—3. To writ ୪ । ଘୃଣା କରିବା—4. To hate. ୫ । ଉପହାସ କରିବା—5. To scoff; to ridicule.

ହିଣ୍ଡନ—ସଂ. ବି—(ହିଣ୍ଡ୍ ଧାତୁ+ଭାବ ଅନ)—୧ । ଭ୍ରମଣ, ଗମନ—
Hindana (ମେଦିନୀ)—1. Going; walking. ୨ । ସୁରତ; ରମଣ (ମେଦିନୀ)—2. Copulation. ୩ । ଲେଖନ (ହେମ)—3. Writing

ହିଣ୍ଡି (ଇତ୍ୟାଦି)—ଦେ. ବି—ହେଣ୍ଡି ଇତ୍ୟାଦି (ଦେଖ)—
Hindi (etc) Hendi etc. (See)

ହିଣ୍ଡିଆ (ଇତ୍ୟାଦି)—ଦେ. ବି ପୁଂ—ହେଣ୍ଡିଆ ଇତ୍ୟାଦି (ଦେଖ)—
Hindia (etc) Hendia etc (See)

ହିଣ୍ଡିକ—ସଂ. ବି ପୁଂ—୧ । ଗଣକ; ଦୈବଜ୍ଞ; ଲଗ୍ନାଚାର୍ଯ୍ୟ (ହାରାବଳୀ);
Hindika ଫଳିତଜ୍ୟୋତିଷୀ—1. An astrologer. ୨ । ସ୍ତୁତି ପାଠକାଚାର୍ଯ୍ୟ; ଭାଟମାନଙ୍କ ସରଦାର—2. The master of the heralds or minstrels.

ହିଣ୍ଡିବା—ପ୍ରାଦେ (କଟକ) କ୍ରି—ଘୂରି ବୁଲିବା; ଏଣେତେଣେ ବୁଲିବା
Hindiba To rove about, to wander.

ହିଣ୍ଡିବାଦାମ—ଦେ. ବି—ଆଣ୍ଡାମାନ ଦ୍ୱୀପରେ ଜାତ ନିର୍ଯ୍ୟାସ ଉତ୍ପାଦକ
Hindi badama ବୃହତ୍ ବୃକ୍ଷ ବିଶେଷ—Name of a big tree found in the Andaman island.
[ଦ୍ର—ଏ ବୃକ୍ଷର ନିର୍ଯ୍ୟାସରୁ ଏକ ପ୍ରକାର ମୂଲ୍ୟବାନ୍ ଅଠା (ଗୋନ୍ଦ) ହୁଏ ଓ ଏ ଫଳ-ବୀଜରୁ ବହୁତ ତେଲ ହୁଏ; ଏ ତେଲ ବାଦାମ ତେଲ ରୂପେ ଘିଅ ଆଦି ସଙ୍ଗେ ମିଶାଯାଇ
হিণ্ডিবাদাম हियडीबादाम ବଜାରରେ ବିକ୍ରି ହୁଏ—(ହି. ଶ)

ହିଣ୍ଡି ମାରିବା—ଦେ. କ୍ରି—ହେଣ୍ଡିମାରିବା (ଦେଖ)—
Hindi mariba Hendi mariba (See)

ହିଣ୍ଡିର—ସଂ. ବି—(ହିଣ୍ଡ୍ ଧାତୁ+କର୍ତ୍ତୃ ଇର)—ହିଣ୍ଡୀର (ଦେଖ)
Hindira Hindira (See)

ହିଣ୍ଡୀ—ସଂ ବ ସ୍ତ୍ରୀ—(ହିଣ୍ଡ୍ ଧାତୁ+କର୍ତ୍ତୃ ଅ+ଈ)—ଦୁର୍ଗା (ହିଣ୍ଡାଣ୍ଡ
Hiṇḍī ଦେଖ)—Goddess Durgā.

ହିଣ୍ଡୀ ପ୍ରିୟତମ—ସଂ. ବ ପୁଂ—(୬ଷ୍ଠୀ ତତ୍)—ଶିବ, ମହାଦେବ (ହେମ
Hiṇḍīpriyatama ରତ୍ନାବଳୀ)—God Śiba.

ହିଣ୍ଡୀର—ସଂ.ବ—(ହିଣ୍ଡ୍ ଧାତୁ+କର୍ତ୍ତୃ ଈର)—୧। ସମୁଦ୍ର ଫେଣ (ଅମର)
Hiṇḍira 1. The foam of the sea. ୨। ଏକପ୍ରକାର ସାମୁଦ୍ରିକ ଜୀବର ଅସ୍ଥି (ଅମର)—2 Cuttlefish bone ୩। ବାଇଗଣ (ମେଦିନୀ)—3 Brinjal. ୪। ପୁରୁଷ (ମେଦିନୀ)—4. A male; a man. ୫। ରୁଚକ (ଉଣାଦି କୋଷ); ଖାଜପୁର; ଟଭ—5. Citron. ୬। ଡାଳିମ୍ବ ଗଛ (ହି. ଶ)—6. Pomegranete tree.

ହିଣ୍ଡୁକ—ସଂ ବ—(ହିଣ୍ଡ୍ ଧାତୁ+କର୍ତ୍ତୃ ଟ)—ଶିବ (ହି ଶ)—
Hiṇḍuka Śiba

ହିନ୍ଦୋଳ—ଦେ. ବ—ହିନ୍ଦୋଳ (ଦେଖ)—
Hindola Hindola See)

ହିତ—ସଂ. ବଣ (ଧା ଧାତୁ=ପୋଷଣ କରିବା+ କର୍ମ ତ)—୧।
Hita କଲ୍ୟାଣକର; ଉପକାରକ—1. Beneficial.
(ହିତା—ସ୍ତ୍ରୀ) ୨। ମଙ୍ଗଳଜନକ—2. Auspicious.
(ଅହିତ—ବିପରୀତ) ୩। ପଥ୍ୟ—3. Beneficient; fit to be taken. ୪। ଅନୁକୂଳ—4. Propitious; favourable. ୫। ଉପଯୁକ୍ତ; ଯୋଗ୍ୟ—5. Befitting; suitable; fit. ୬। ପ୍ରିୟ—6. Dear; beloved; liked. ବ (ହି ଧାତୁ+ଭାବ ତ)—୧। ଶୁଭ; ମଙ୍ଗଳ; କଲ୍ୟାଣ—1. Weal; wellbeing; welfare. ୨। ଉପକାର—2. Good; benefit, good service. ୩। ଗମନ; ଗତି—3. Going; motion. ୪। ପ୍ରାପ୍ତି—4. Acquisition; getting.

ହିତକ—ସଂ. ବ. ପୁଂ—(ହିତ+କ)—୧। ଶିଶୁ (ଶବ୍ଦକଳ୍ପଦ୍ରୁମ)—
Hitaka 1. Child. ୨। ଶିଶୁକାଠ—2 Sissoo wood. ୩। ପଶୁ ଶାବକ (ହି. ଶ)—3. The young one of any beast.

ହିତ କଥା—ସଂ. ବ (କର୍ମଧା)—ସତ୍ପରାମର୍ଶ; ମଙ୍ଗଳଜନକ ବାକ୍ୟ ବା
Hita kathā ଉପଦେଶ—Good counsel; beneficial or good advice. ଦେ. ବ—୧। ଶୁଭଜନକ ବିଷୟ—1. Beneficial matter. ୨। ଉତ୍ତମ କାର୍ଯ୍ୟ—2eGood work.

ହିତକର—ସଂ. ବଣ (ହିତ+କୃ ଧାତୁ+ଭାବ ଅ)—୧। ଉପକାରକ;
Hitakara କଲ୍ୟାଣକର; ମଙ୍ଗଳଜନକ—
(ହିତକରୀ—ସ୍ତ୍ରୀ) 1. Beneficial. ୨। ଅନୁକୂଳ—2. Favourable; propitious. ୩। ହିତକାରୀ; ଉପକାରୀ—3. Rendering good service.

ହିତ କରିବା—ଦେ. କ୍ରି—ଉପକାର କରିବା; ମଙ୍ଗଳ ସାଧନ କରିବା—
Hita karibā To benefit; to render good
হিত করা हित करना service.

ହିତକା—ଗ୍ରା. ବଣ. (ସଂ ହିତକାରୀ)—ମଙ୍ଗଳ ସାଧକ—'
Hitakā Doing good. [ଭ—ଚକ୍ଷୁ ଭଗବତ ଭକ୍ତ ହିତକା, ଦ୍ୱାଦଶ ସ୍କନ୍ଧରୁ କଲ ମୁଁ ଟୀକା—ପ୍ରାଚୀ. ପରିଚୟଗୀତା ।]

ହିତ କାମ—ସଂ. ବଣ. ପୁଂ (ବହୁବ୍ରୀହି; ହିତ ଅଟେ କାମ=ଇଚ୍ଛା
Hita kāma ଯାହାର)—ହିତକାମୀ (ଦେଖ)—
(ହିତକାମା—ସ୍ତ୍ରୀ) Hitakāmī (See).

ହିତ କାମନା—ସଂ ବ [ମ. ପ. ଲୋ ବା ୪ର୍ଥୀ ତତ୍]—୧। ହିତେଚ୍ଛା;
Hita kāmanā ମଙ୍ଗଳ ବା ଉପକାର କରିବାର ଇଚ୍ଛା—1. Desire to do good. ୨। ପରୋପକାର କରିବା ଇଚ୍ଛା—2. Benevolence.

ହିତକାମୀ—ସଂ ବଣ. ପୁଂ [ହିତକାମିନ୍ ଶବ୍ଦ ୧ମା ୧ବ]—ଅଶୀର୍ବାଦକ;
Hita kāmī ହିତେଚ୍ଛୁ; ଯେ ମଙ୍ଗଳ କାମନା କରେ—
[ହିତକାମିନୀ—ସ୍ତ୍ରୀ] Wishing for the welfare of a person.

ହିତକାରୀ—ସଂ ବଣ. ପୁଂ [ହିତକାରିନ୍ ଶବ୍ଦ, ୧ମା ୧ବ]—ଯେ
Hitakārī ହିତ କରେ; ଉପକାରକ—
[ହିତକାରିଣୀ—ସ୍ତ୍ରୀ] Rendering good; beneficient. ବ—ଉପକାରକ ବ୍ୟକ୍ତି—Benefactor.

ହିତ ଚିନ୍ତକ—ସଂ ବ ଓ ବଣ [୬ଷ୍ଠୀ ତତ୍]—କୌଣସି ବ୍ୟକ୍ତିର
Hita chiṇtaka ମଙ୍ଗଳ ବାଞ୍ଛାକାରୀ ବ୍ୟକ୍ତି—Wellwisher.

ହିତ ଚିନ୍ତନ(ଚିନ୍ତା)—ସଂ ବ—କୌଣସି ବ୍ୟକ୍ତିର ମଙ୍ଗଳକାମନା—
Hita chintana[chintā] Good wishes for a person.

ହିତତା—ସଂ ବ [ହିତ+ଭାବ ତା]—ଉପକାରିତା—
Hitatā Beneficialness.

ହିତ ପ୍ରଣୀ—ସଂ ବ.ପୁଂ [ହିତ+ପ୍ରଣିନ୍,୧ମା ୧ବ]—ଚର (ଶବ୍ଦରତ୍ନାବଳୀ)
Hita praṇī —A messenger; spy; informer.

ହିତବଚନ (ବାକ୍ୟ)—ସଂ ବ—୧। ହିତୋପଦେଶ—
Hita bachana (bākya) 1. Good advicer. ୨। ଯେଉଁ ବାକ୍ୟ ଦ୍ୱାରା ମନୁଷ୍ୟର ଉପକାର ହୁଏ—2. Beneficial or sound advice.

ହିତ ବାଞ୍ଛା—ସଂ ବ—ହିତକାମନା (ଦେଖ)—
Hita bāñchhā Hita kāmanā (See).

ହିତବାଦୀ—ସଂ. ବଣ (ହିତବାଦିନ୍ ଶବ୍ଦ; ହିତ+ବଦ୍ ଧାତୁ କହିବା+କର୍ତ୍ତୃ ଇନ୍; ୧ମା. ୧ବ)—
Hitabādī
(ହିତବାଦିନୀ—ସ୍ତ୍ରୀ) ହିତକଥକଶୀଳ; ହିତଭାଷୀ; ଯେଉଁ ବ୍ୟକ୍ତି ହିତ କଥା କହେ; ସତ୍ ପରାମର୍ଶଦାତା—Giving good advice.

ହିତ ବୋଧ—ସଂ. ବି—ମଙ୍ଗଳ ସମ୍ବନ୍ଧେ ଜ୍ଞାନ—
Hita bodha Understanding of good.

ହିତ ଭାଷଣ—ସଂ. ବି (୬ଷ୍ଠୀ ତତ୍)—ହିତ ବାକ୍ୟର କଥନ—
Hita bhāshana Giving of good advice.

ହିତଭାଷୀ—ସଂ. ବିଣ [ହିତଭାଷିନ୍ ଶବ୍ଦ; ହିତ+ଭାଷ ଧାତୁ=କହିବା
Hita bhāshī +କର୍ତ୍ତୃ ଇନ୍; ୧ମା. ୧ବ]—ହିତବାଦୀ
(ହିତଭାଷିଣୀ—ସ୍ତ୍ରୀ) (ଦେଖ)—Hitabādī (See).

ହିତ ସାଧକ—ସଂ. ବିଣ. ପୁଂ—ଯେ ହିତ ସାଧନ କରେ; ହିତକାରକ—
Hita sādhaka Rendering good service;
(ହିତସାଧିକା—ସ୍ତ୍ରୀ) beneficient.

ହିତ ସାଧନ(ନା)—ସଂ. ବି (୬ଷ୍ଠୀ ତତ୍)—ମଙ୍ଗଳ ସାଧନ; ହିତ ବା
Hita sādhana (nā) ଉପକାର କରଣ—
Rendering of good or beneficial service.

ହିତା—ସଂ. ବିଣ. ସ୍ତ୍ରୀ—(ହିତ+ଆ)—ହିତର ସ୍ତ୍ରୀଲିଙ୍ଗ—Feminine
Hitā of Hita. ସଂ. ବି—ରକ୍ତବାହକ ଶିରା ବିଶେଷ (ହେ ଶ)—
A class of veins ଗ୍ରା. ବିଣ—(ପ୍ରାଚୀନପଦ୍ୟ)—
(ସଂ ହିତ) ହିତକର; ପଥ୍ୟ—Beneficial (ଉ—
ଗୋମସ୍ତେ ଦେଲେ ଠିଅ ଚଉତା, ଯେ ପ୍ରଭୁ ଗୋବ୍ରାହ୍ମଣ
ହିତା—ଜଗନ୍ନାଥ ଭାଗବତ )

ହିତାକାଂକ୍ଷା—ସଂ ବି (୬ଷ୍ଠୀତତ୍)—ହିତକାମନା [ଦେଖ]—
Hitākāmkshā H takāmanā [See].
[ହିତାକାଙ୍କ୍ଷା—ଅନ୍ୟରୂପ]

ହିତାକାଂକ୍ଷୀ—ସଂ. ବିଣ. ପୁଂ—(ହିତାକାଂକ୍ଷିନ୍ ଶବ୍ଦ, ୧ମା. ୧ବ; ହିତା-
Hitākāmkshī କାଂକ୍ଷା+ଇନ୍)—ହିତକାମୀ; ଯେ ଅନ୍ୟର
ମଙ୍ଗଳ କାମନା କରେ—Wishing one's welfare.
[ହିତାକାଙ୍କ୍ଷୀ—ଅନ୍ୟରୂପ]
[ହିତାକାଂକ୍ଷିଣୀ, ହିତାକାଙ୍କ୍ଷିଣୀ—ସ୍ତ୍ରୀ]

ହିତାନୁଷ୍ଠାତା—ସଂ ବିଣ. ପୁଂ (ହିତ+ଅନୁ+ସ୍ଥା ଧାତୁ+କର୍ତ୍ତୃ ତୃ;
Hitānushṭhātā ହିତାନୁଷ୍ଠାତୃ ଶବ୍ଦ, ୧ମା. ୧ବ)—
(ହିତାନୁଷ୍ଠାତ୍ରୀ—ସ୍ତ୍ରୀ) ହିତ ସାଧକ [ଦେଖ]—
Hita sādhaka (See).

ହିତାନୁଷ୍ଠାନ—ସ. ବି—(ହିତ+ଅନୁଷ୍ଠାନ)—ହିତସାଧନ; କଲ୍ୟାଣ
Hitānusthāna ସାଧନ—1. The rendering of good
Service. ୨। ହିତକର ଅନୁଷ୍ଠାନ—2. Beneficial institution ୩। ହିତକର କାର୍ଯ୍ୟ—3.
Beneficia work.

ହିତାବଳୀ—ସ. ବି—(ହିତ+ଅବଳୀ)—ଔଷଧ ଗୁଳ୍ମ ବିଶେଷ—
Hitābalī Name of a herb. [ଗୁ—ଏହା ସାରକ, ଉଷ୍ଣ;
ଅନ୍ୟ ସ ନାମ— ପ୍ଲୀହା, ଗୁଲ୍ମ, ଜ୍ୱର, କୃମି, କୁଷ୍ଠ, ଅଗ୍ନିଗ୍ର ଶର୍କ୍କ
ହୃଦ୍‌ଗାନ୍ଧୀ, କୁଷ୍ଠଘ୍ନ, ଓ କଣ୍ଠବିନାଶକ (ରାଜନିର୍ଘଣ୍ଟ)।]
ରକ୍ତି, ଅଙ୍ଗାର କୁଷ୍ଠକ,
ଅଙ୍ଗାର ଗନ୍ଧି, ଗନ୍ଧକି

ହିତାବହ—ସ. ବିଣ—ହିତକାରୀ (ହି.ଶ)—
Hitābaha (ହିତାବହା—ସ୍ତ୍ରୀ) Beneficial.

ହିତାର୍ଥ—ସ. ବି—ମଙ୍ଗଳ ଉଦ୍ଦେଶ୍ୟ—Beneficial aim. ବିଣ—
Hitārtha. (ବହୁବ୍ରୀହି) ମଙ୍ଗଳ ବା ଶୁଭ ଉଦ୍ଦେଶ୍ୟ ଯୁକ୍ତ—
Aiming at one's walfare. ଦେ. କ୍ରି ବିଣ—
(ସ. ହିତାର୍ଥଂ) ହିତାର୍ଥେ (ଦେଖ)—Hitārthe
(See)

ହିତାର୍ଥୀ—ସ. ବିଣ. ପୁଂ—(ଉପପଦ ତତ୍ପୁରୁଷ; ହିତଅଟେ ଅର୍ଥ=
Hitārth ଉଦ୍ଦେଶ୍ୟ ଯାହାର; ହିତ+ଅର୍ଥ+ଇନ୍; ହିତାର୍ଥିନ୍
(ହିତାର୍ଥିନୀ—ସ୍ତ୍ରୀ) ଶବ୍ଦ; ୧ମା ୧ବ)—ହିତକାମୀ (ଦେଖ)—
Hitakāmī (See).

ହିତାର୍ଥେ—ଦେ. କ୍ରି. ବିଣ—(ସ. ହିତାର୍ଥଂ; ହିତାର୍ଥାୟ)—ମଙ୍ଗଳାର୍ଥେ,
Hitārthe ମଙ୍ଗଳ ଉଦ୍ଦେଶ୍ୟରେ—Aiming at one's
हितार्थे welfare; for the good of. (ଯଥା—ସେ ଦେଶର
हितकेलिये ହିତାର୍ଥେ ପ୍ରାଣ ତ୍ୟାଗ କଲେ)

ହିତାହିତ—ସଂ ବି—(ଦ୍ୱନ୍ଦ୍ୱ)—୧। ହିତ ଓ ଅହିତ; ମଙ୍ଗଳ ଓ
Hitāhita ଅମଙ୍ଗଳ—1. Weal and woe. ୨। ଉପକାର
ଓ ଅପକାର—2. Benefit and harm. ବିଣ—୧।
ଉତ୍ତମ ଓ ମନ୍ଦ—1. Good and evil. ୨।
ପଥ୍ୟାପଥ୍ୟ—2. Beneficial and injurious to
health

ହିତାହିତଜ୍ଞ—ସଂ. ବିଣ. ପୁଂ—ହିତାହିତ ବିବେଚକ (ଦେଖ)—
Hitāhitajña Hitāhita bibechaka (See)
(ହିତାହିତଜ୍ଞା—ସ୍ତ୍ରୀ)

ହିତାହିତ ଜ୍ଞାନ—ସଂ. ବି—୧। ହିତାହିତ ବିବେଚନା (ଦେଖ)—
Hitāhita jñāna 1. Hitāhita bibechanā (See)
୨। ମନୁଷ୍ୟ ଯେ ଈଶ୍ୱର ପ୍ରଦତ୍ତ ମାନସିକ ଶକ୍ତିଦ୍ୱାରା କର୍ତ୍ତବ୍ୟ
ଓ ଅକର୍ତ୍ତବ୍ୟ ବୁଝିପାରେ—2. Conscence.

ହିତାହିତ ବିଚାର—ସଂ ବି—(ଦ୍ୱନ୍ଦ୍ୱ, ୭ମୀ ତତ୍) ହିତ ବା ଭଲ କାର୍ଯ୍ୟ
Hitāhita bichāra ଓ ଅହିତ ବା ମନ୍ଦକାର୍ଯ୍ୟ ସମ୍ବନ୍ଧେ ବିଚାର—
Discrimination between good and evil.

ହିତାହିତ ବିବେକ—ସଂ.ବି—(ଦ୍ୱନ୍ଦ୍ୱ; ୭ମୀତତ୍)-କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ
Hitāhita bibeka ବା ଧର୍ମାଧର୍ମ ସମ୍ବନ୍ଧେ ବିଚାର ବା ବିବେଚନା
(ହିତାହିତ ବିବେକୀ—ବିଣ ପୁଂ) —Conscience.
(ହିତାହିତ ବିବେକିନୀ—ବିଣ. ସ୍ତ୍ରୀ)

ହିତାହିତ ବିବେଚକ—ସଂ ବିଣ ପୁଂ—୧। ହିତାହିତଜ୍ଞ; ଯେ
Hitāhita bibechaka ହିତାହିତ ବିବେଚନା କରେ—1.
(ହିତାହିତ ବିବେଚିକା—ସ୍ତ୍ରୀ) Discriminating between
what is beneficial and what not. ୨।
କର୍ତ୍ତବ୍ୟାକର୍ତ୍ତବ୍ୟ ବିଚାରଶୀଳ; ବିବେକବାନ—
2. Conscientious.

ହିତାହିତ ବିବେଚନା—ସଂ. ବି—୧। କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ସମ୍ବନ୍ଧେ
Hitāhitā bibechanā ବିବେଚନା—1. Discrimination

between good and evil. ୨। ବିବେକ, ଭଲମନ୍ଦ ନିର୍ଣ୍ଣୟକରିବାର ଈଶ୍ୱରଦତ୍ତ ପ୍ରବୃତ୍ତି—2. Concience. ୩। ଭଲ ଓ ମନ୍ଦକାର୍ଯ୍ୟ ସମ୍ବନ୍ଧେ ବିଚାର—3. Consideration of what is good and what is not good.

ହିତେ—ଦେ ଅ—(ପ୍ରାଚୀନପଦ୍ୟ) ନିମନ୍ତେ ; ପାଇଁ—For. [ଉ—
Hite ଅଙ୍ଗ ପାଇ ଯେବେ ଆଦିବେ ପ୍ରାଣେ, ତବ ଶ୍ରୀମୁଖ ଦର୍ଶନ ହିତେ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।]
ଜନ୍ୟ ବାସ୍ତେ

ହିତେଚ୍ଛା—ସଂ. ବି—ହିତ କାମନା (ଦେଖ)—
Hitechchha Hita kāmanā (See).

ହିତେଚ୍ଛୁ—ସଂ ବିଣ, ପୁଂ ଓ ସ୍ତ୍ରୀ—ହିତକାମୀ (ଦେଖ)—
Hitechchhu Hita kāmi (See).

ହିତେଚ୍ଛୁକ—ସଂ. ବିଣ. ପୁଂ—ହିତକାମୀ (ଦେଖ)—
Hitechchhuka Hita kāmi (See).
[ହିତେଚ୍ଛୁକା—ସ୍ତ୍ରୀ]

ହିତେ ବିପରୀତ ଘଟିବା (ଫଳିବା, ହେବା)—ଦେ. କ୍ରି—[ପ୍ରବଚନ]—
Hite biparita ghaṭibā (phalibā, hebā) ଭଲ କରିବାକୁ ଯାଇ ମନ୍ଦଫଳ ଘଟିବା—A thing turning out to be evil though done with the best intentions.
হিতে বিপরীত হওয়া हित करनेसे अहित होना

ହିତେ ବିପରୀତ ବୁଝିବା—ଦେ. କ୍ରି—ହିତ କହିବା ବା କରିବା
Hite biparita bujhibā ବ୍ୟକ୍ତିଙ୍କ ବାକ୍ୟକୁ ବା ଅର୍ଥକୁ ମନ୍ଦ ବା ଅହିତ ବୋଲି ଜ୍ଞାନ କରିବା—To misunderstand a matter spoken or done with the best of motives.
হিতে বিপরীত বুঝা हितमें अहित समझना

ହିତୈଷଣା—ସଂ ବି—( ହିତ+ଏଷଣା=ଇଚ୍ଛା)—ହିତେଚ୍ଛା ; ହିତ
Hitaishaṇā କାମନା ; ପରର ଉପକାର କରିବାର ପ୍ରବୃତ୍ତି—Benevolence ; good wish.

ହିତୈଷିଣୀ—ସଂ. ସ୍ତ୍ରୀ ( ହିତୈଷିନ୍+ସ୍ତ୍ରୀ ଈ)—ହିତୈଷୀର ସ୍ତ୍ରୀ-
Hitaishiṇi ଲିଙ୍ଗ—Feminine of Hitaishi.
[ଦ୍ର—ବାମଣ୍ଡାର ଭୂତପୂର୍ବ ନରପତି ସ୍ୱର୍ଗୀୟ ସର୍ ବାସୁଦେବ ସୁଢଳ ଦେବଙ୍କ ଅନୁକୂଲ୍ୟରେ ଦେବଗଡ଼ ରାଜଧାନୀରୁ ପୂର୍ବେ 'ସମ୍ବଲପୁର ହିତୈଷିଣୀ' ନାମରେ ଗୋଟିଏ ଓଡ଼ିଆ ସାପ୍ତାହିକ ସମ୍ବାଦ ପତ୍ର ପ୍ରକାଶିତ ହେଉଥିଲା । ଏଥିରେ ଦେଶର ସମ୍ବାଦଛଡ଼ା ସାହିତ୍ୟ ବିଷୟକ ଚର୍ଚ୍ଚା ହେଉଥିଲା । ସର୍ ବାସୁଦେବ ନିଜେ ମଧ୍ୟ ଏଥିରେ ପ୍ରବନ୍ଧ ମାନ ଲେଖୁଥିଲେ । ତାଙ୍କ ଅନ୍ତେ ତାଙ୍କର ସୁଯୋଗ୍ୟ ପୁତ୍ର ସ୍ୱର୍ଗତ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ଅନୁକୂଲ୍ୟରେ ମଧ୍ୟ ଏହା କେତେକ ବର୍ଷ ଚଳିଲା । ସ୍ୱର୍ଗୀୟ ପଲ୍ଲମଣି ବିଦ୍ୟାଭୂଷଣଙ୍କ ସମ୍ପାଦକତ୍ୱରେ ଏ ପତ୍ରିକା ସବିଶେଷ ଉନ୍ନତି ଲାଭ କରିଥିଲା ।]

ହିତୈଷିତା—ସଂ. ବି—(ହିତୈଷିନ୍+ଭାବ ତା)—ପରୋପକାରିତା; ହିତ-
Hitaishitā କାମନା କରିବାର ଅବସ୍ଥା—The state of wishing the well being of others.

ହିତୈଷୀ—ସଂ.ବିଣ ପୁଂ—(ହିତ+ଇଷ୍ ଧାତୁ+କର୍ତ୍ତୃ ଇନ୍=ହିତୈଷିନ
Hitaishi ଶବ୍ଦ, ୧ମା ୧ବ)—୧ । ହିତକାମୀ; ହିତାକାଂକ୍ଷୀ—1. Well wishing; seeking good. ୨ । ପରୋପକାର ସାଧନେଚ୍ଛୁ—2.Desirous of benefitting others; benevolent. [ଦ୍ର—ଏ ଶବ୍ଦର ଫାରସୀ ଢେରଖା—ଖୈରଖାହ୍] ବି. ପୁଂ—ହିତେଚ୍ଛୁ ବ୍ୟକ୍ତି—A person desirous of rendering good service to others.

ହିତୋକ୍ତି—ସଂ. ବି—(କର୍ମଧା)—ହିତବଚନ (ଦେଖ)—
Hitokti Hitabachana (See)

ହିତୋପଦେଶ—ସଂ ବି—୧ । ସତ୍ ପରାମର୍ଶ, ହିତ ବଚନ—Good
Hitopadeśa advice. ୨ । (ନାମ) ବିଷ୍ଣୁ ଶର୍ମାଙ୍କ ପ୍ରଣୀତ ଗଦ୍ୟପଦ୍ୟାତ୍ମକ ସଂସ୍କୃତ ଗ୍ରନ୍ଥ ବିଶେଷ—2. Name of a Sanskrit work in prose or poetry (like the Aesop's fables ) inculcating sound moral lessons. [ଦ୍ର—ଏହି ଗ୍ରନ୍ଥ ୪ ଗୋଟି ଭାଗରେ ବା ଅଧ୍ୟାୟରେ ବିଭକ୍ତ । ଯଥା—ମିତ୍ରଲାଭ, ସୁହୃଦ୍ ଭେଦ, ବିଗ୍ରହ ଓ ସନ୍ଧି । ଏହା ନୀତିଶାସ୍ତ୍ର ମଧ୍ୟରେ ଗଣ୍ୟ । ଏଥିରେ ଜନ୍ତୁ ଓ ମନୁଷ୍ୟମାନଙ୍କ କଥୋପକଥନ ଓ ଅନୁଭବ ଛଳରେ ସୁନ୍ଦର ଉପଦେଶ ପୂର୍ଣ୍ଣ ଗଳ୍ପ ଲିପିବଦ୍ଧ ହୋଇଅଛି ।]

ହିଦାଏତ—କୈ ଦେ. ବି—(କଚରିଥ) (ଆ. ହିଦାୟତ୍=ପଥ ପ୍ରଦର୍ଶନ)
Hidāet ୧ । ଅବସ୍ଥା; ବିଧି—1. Regulation; rule. [ହିଦାତ୍(ଦ୍)—ଦେ. ରୂପ] ୨ । ରୁଇବାଦ୍; ଯେଉଁ ଲେଖାରେ ପୂର୍ବର ଘଟନା ବା ବିଧି ବ୍ୟବସ୍ଥା ଆଦି ଲିପିବଦ୍ଧ ହୋଇଥାଏ—2. A writing or document recording the history or rules regarding some matter. ৩। ଆଦେଶ (ହିଂଶ)—3. Order. ୪। ଇଙ୍ଗିତ (ହିଂଶ)—4. Indication. ୫ ।(ନାମ) ପୁଂ—ମୁସଲମାନମାନଙ୍କ ନାମ—A name given to Mahomedan males.
হিদাযত हिदायत

ହିନ୍ତି ବି(ମି)ନ୍ତି—ପ୍ରାଦେ (ସମ୍ବଲପୁର ) ବି—(ସ୍ତ୍ରୀଳତା ଓ ବିନତି)—
Hin-ti bi(mi)n-ti ବିନୟ; ନମ୍ରତା—Humility.

ହିନ୍(ନେ,ନି)ହୟାତ—କୈ ଦେ. ବି—(କଚରିଥ)—୧ । (ଆ. ହିନେ-
Hin(ne,ni)hayāt ହୟାତ୍, ହିନ୍ ହୟାତ୍=ଜୀବନକାଳ) ମହଜାଣ ଜାଗିର; ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ଭରଣ ପୋଷଣାର୍ଥ ରାଜାଙ୍କ ଦ୍ୱାରା ତାଙ୍କ ଜୀବନକାଳ ପର୍ଯ୍ୟନ୍ତ ଦିଆ ଯାଉଥିବା ସମ୍ପତ୍ତି—1. Jaigir or property granted by the king for the
जायगिव हानहयात
ହିନ୍ ହୟାତ୍ ଜାଗିର } ପ୍ରଥମ
ହିନ୍ ହୟାତ ମାଫ } ଅର୍ଥରେ ଅନ୍ୟରୂପ

maintenance of a respectable person or family for his life time. ୨ । ଜୀବିତକାଳ 2. Life time.

ହିନ୍(ନି)ହିନା—ପ୍ରାଦେ(ସମ୍ବଲପୁର) ବି—(ଧ୍ୱନ୍ୟନୁକରଣ, ତୁଳନା କର Hin(ni)hina ଏହି ଅର୍ଥରେ ହିନ୍ଦୀ—ହିନ୍ ହିନାହଟ୍) ଅଶ୍ୱର ହ୍ରେଷା; The neighing of a horse.

ହିନ୍(ନି)ହିନାଇବା—ପ୍ରାଦେ (ସମ୍ବଲପୁର) କ୍ରି—(ଘୋଡ଼ା) ହ୍ରେଷାରବ Hin(ni)hināibā କରିବା—To neigh. (ତୁଳନାକର ହିନ୍ଦୀ ଏହି ଅର୍ଥରେ ହିନ୍‌ହିନାନା।)

ହିନଖଣ୍ଡିଆ—ଦେ. ବିଣ—୧। ଅକାମିଆ—1. Worthless. ୨। Hini khandiā ଦୁର୍ବଳ—2 Weak. [ଉ—ଚାଲଚାଲି ଅକେଜୋ କମଜୋର ଗଣ୍ଡିକୁ ହିନିଖଣ୍ଡିଆ ବାହାଣ। ଛଗ।]

ହିନୁ—ପ୍ରାଦେ (ବଲାଙ୍ଗିର ପାଟଣା) ସର୍ବନାମ—ସେଠାକୁ— Hinu To that place

ହି(ହି)ନ୍ତାଳ—ସଂ. ବିଣ—(ହୀନ=ଅଧମ+ତାଳ; କର୍ମଧାରୟ ସିଦ୍ଧ)— Hi(hi)ntāla ତାଳାଦି ବର୍ଗର ଖର୍ଜୁର ଗଣର ବୃକ୍ଷବିଶେଷ, ଗୁଆ ଜାତୀୟ ସମୁଦ୍ର ଉପକୂଳରେ ଜାତ ବୃକ୍ଷବିଶେଷ, ହେନ୍ତାଳ—Phoenix Paludosa. [ଦ୍ର—ସମୁଦ୍ର କଣ୍ଟକତୀ ବନରେ (ଗୁଜାଇ ମୁହାଣ ବନ୍ଦର ବଣରେ, ମହାନଦୀର ମୁହାଣ ପାଖପାଖ ଅନ୍ୟ ସ୍ଥାନରେ ସମୁଦ୍ର ଉପକୂଳରେ) ଏ ଗଛ ଜନ୍ମେ। ଏହି ଗଛ ୩ ଇଞ୍ଚ ମୋଟ ହୁଏ ଓ ୧୦।୧୨ ହାତ ଉଚ୍ଚ ହୁଏ (ଯୋଗେଶଚନ୍ଦ୍ର)। ସମୁଦ୍ର ଉପକୂଳସ୍ଥ ପ୍ରଦେଶରେ ନଦୀ ମୁହାଣରେ ଏହାର ଘୋର ଜଙ୍ଗଲ ବଢ଼ିଥାଏ। ଏହି ଗଛକୁ ଲୋକେ କାଠ ଘରର ଗୁଆ କରନ୍ତି ଓ ଏ ଗୁଆ ବହୁଦିନ ସ୍ଥାୟୀ ହୁଏ। ଏଥିପାଇଁ ପ୍ରବଚନ ଅଛି—

ଅନ୍ୟ ସଂ. ନାମ— ଦୁଗରେଚ, ହୀନ୍ତାଳ, ସ୍ଥୂଳତାଳ, ବଦ୍ଧପତ୍ର, ବୃହଦଳ, ସ୍ଥିରପତ୍ର, ଦ୍ୱିଧାଲେଖ୍ୟ, ଶିରପତ୍ର] ଅସ୍ତିରାଂଘ୍ରିକ, ଗର୍ଭସ୍ରାବୀ, ମାଳତାଳ, ଭୀଷଣ, ବହୁକଣ୍ଟକ, ତାଳସାର, ବୃହତ୍ତାଳ, ହିମହ୍ୱାସକ; ହିନ୍ତାଲ, ହାଂତାଳ; ହିଂତାଳ; ତେ. ହିନ୍ତାଳୁ; ଫା. ତାଲ୍; ଅ. ତାର୍

'ଘୋଡ଼ାଶାଳ, ଉଖୁଡ଼ାଳ,
ଗୁଆ ହିନ୍ତାଳ, ଗଣ୍ଡି କେନ୍ତାଳ,
ଘରଣୀ ଚେତାଳ,
ତେବେ ସେ ଘରଯାଏ ଅପାରକାଳ।'

ସାତଜାତୀୟ ତୃଣରାଜ ମଧ୍ୟରୁ ଏହା ଏକତମ (ସାତ ତୃଣରାଜ ଯଥା—ଗୁବାକ, ତାଳ, ହିନ୍ତାଳ, ତାଡ଼ୀ, କେତକୀ, ଖର୍ଜୁର, ନାରିକେଳ)। ଜଙ୍ଗଲର ଉପକଣ୍ଠରେ ଥିବା ସନ୍ତମନ୍ତିଆ ଜମିରେ ମଧ୍ୟ ଏ ଗଛ ଜନ୍ମେ (ହିଂଶ)। ବୈଦ୍ୟକ ମତରେ ଏହା ମଧୁରାମ୍ଳ ରସ, କଫକୃତ୍, ପିତ୍ତଦାହନାଶକ, ଶ୍ରମତୃଷ୍ଣା-ଶ୍ୱାସ- ଶିଶିର, ବାତଦୋଷକୃତ୍ (ରାଜନିର୍ଘଣ୍ଟ)।

ହିନ୍ଦ୍—ବୈଦେ. ବି. (ଫା)—ଭାରତବର୍ଷ; ହିନ୍ଦୁସ୍ଥାନ—India, Hind Hindustan. [ଦ୍ର—ଏ ଶବ୍ଦ ପ୍ରକୃତରେ 'ସିନ୍ଧୁ' हिन्द् हिन्द ଶବ୍ଦର ଫାରସୀ ଉଚ୍ଚାରଣ। ପ୍ରାଚୀନକାଳରେ ଭାରତୀୟ ଆର୍ଯ୍ୟ ଓ ପାରସିକ ଆର୍ଯ୍ୟମାନଙ୍କ ମଧ୍ୟରେ ଘନିଷ୍ଠ ସମ୍ବନ୍ଧ ଥିଲା। ଯାଜକମାନେ ଯଜ୍ଞ ସମ୍ପାଦନାର୍ଥେ ଏ ଦେଶରୁ ସେ ଦେଶକୁ ଓ ସେ ଦେଶରୁ ଏ ଦେଶକୁ ଯିବା ଆସିବା କରୁଥିଲେ। ଶାକଦ୍ୱୀପର ମଗ ବ୍ରାହ୍ମଣମାନେ ପାରସ୍ୟର ଉତ୍ତରପୂର୍ବାଂଶରୁ ଆସିଥିଲେ। ୫୦୦ ଖ୍ରୀଷ୍ଟାବ୍ଦ ପୂର୍ବେ ପ୍ରଥମ ଦାରାୟସଙ୍କ ରାଜତ୍ୱ କାଳରେ ସିନ୍ଧୁ ନଦର ପାର୍ଶ୍ୱବର୍ତ୍ତୀ ପ୍ରଦେଶ ପାରସିକମାନେ ଅଧିକାର କରିଥିଲେ। ପ୍ରାଚୀନ ପାରସିକ ଭାଷାରେ ସଂସ୍କୃତ 'ସ' ଅକ୍ଷରର ଉଚ୍ଚାରଣ 'ହ' ଥିଲା। ତୁଳନା କର ସଂ. ସପ୍ତ, ଫାରସୀ 'ହପ୍ତ'। ଏହି ନିୟମରେ ସିନ୍ଧୁର ଉଚ୍ଚାରଣ ହିନ୍ଦୁ ବା ହିନ୍ଦ୍ ହେଉଥିଲା। ଧୀରେ ଧୀରେ ହିନ୍ଦ୍‌ଶବ୍ଦ ସମଗ୍ର ଭାରତ ପ୍ରତି ପ୍ରଯୁକ୍ତ ହେଲା। ପାରସିକ ଧର୍ମଶାସ୍ତ୍ର ଅବେସ୍ତାରେ ବେଦର ସପ୍ତସିନ୍ଧୁ 'ହପ୍ତହିନ୍ଦୁ' ନାମରେ ଅଭିହିତ ହୋଇଅଛି। ପ୍ରାଚୀନ ଯୁନାନୀମାନେ ପାରସ୍ୟକୁ ଆସିବାରୁ ସେମାନେ 'ହିନ୍ଦ୍'କୁ 'ଇଣ୍ଡ୍' ଉଚ୍ଚାରଣ କଲେ ଓ ଏହି ଇଣ୍ଡ୍ ଶବ୍ଦରୁ ଭାରତର ପାଶ୍ଚାତ୍ୟ ନାମ ଇଣ୍ଡିକା ବା ଇଂରାଜ ଇଣ୍ଡିଆ ହେଲା— (ହି.ଶ)]

ହିନ୍ଦୀ—ବୈଦେ. ବିଣ (ଅ ଓ ଫା ହିନ୍ଦ୍=ଭାରତବର୍ଷ; ଏ ଶବ୍ଦ ସଂ. Hindi 'ସିନ୍ଧୁ' ଶବ୍ଦରୁ ଜାତ)—ଭାରତୀୟ ହିନ୍ଦୁସ୍ଥାନ ସମ୍ବନ୍ଧୀୟ हिन्दी हिन्दी —Indian. ବି—ଉତ୍ତର ପଶ୍ଚିମ ଭାରତବାସୀ ହିନ୍ଦୁମାନଙ୍କ ବ୍ୟବହୃତ ସଂସ୍କୃତମୂଳକ ଭାଷା The Hindi language. [ଦ୍ର—ଉତ୍ତର ଭାରତରେ ଚଳୁଥିବା ହିନ୍ଦୀ ଓ ଉର୍ଦ୍ଦୁ ଭାଷା ଏକ ନୁହେଁ। ହିନ୍ଦୁମାନେ ହିନ୍ଦୀ ଭାଷା ଓ ମୁସଲମାନ୍‌ମାନେ ଉର୍ଦ୍ଦୁ ଭାଷା ବ୍ୟବହାର କରନ୍ତି। ହିନ୍ଦୀ ଭାଷା ସଂସ୍କୃତ ମୂଳକ ଓ ସଂସ୍କୃତଶବ୍ଦବହୁଳ। ଉର୍ଦ୍ଦୁ ଭାଷା ଆରବୀ ଓ ଫାର୍ସୀ ମୂଳକ ଏବଂ ଆରବୀ ଓ ଫାର୍ସୀ ଶବ୍ଦ ବହୁଳ। ହିନ୍ଦୀ ଭାଷା ଦେବନାଗରାକ୍ଷରରେ ଲେଖାଯାଏ ଉର୍ଦ୍ଦୁ ଭାଷା ଆରବୀ ଓ ଫାର୍ସୀ ଅକ୍ଷରରେ ଲେଖାଯାଏ।

ଭାରତରେ ଯୁକ୍ତ ପ୍ରଦେଶ (United Provinces; The Provinces of Agra and Oudh), ବିହାର (Bihar), ପଞ୍ଜାବ (Panjab) ପ୍ରଦେଶରେ ଏ ଭାଷା ଅନେକ ହିନ୍ଦୁଙ୍କର ମାତୃଭାଷା ଓ କଚେରୀ ଭାଷା ରୂପେ ବ୍ୟବହୃତ।

ଏହି ଭାଷା ଭାରତର ସବୁ ଅଞ୍ଚଳର ଲୋକେ ଅଳ୍ପ ବହୁତ ବୁଝି ପାରନ୍ତି ଓ ଭାରତର ୫/୬ ଅଂଶବାସୀ ବ୍ୟକ୍ତି ଏଭାଷା କହି ପାରନ୍ତି। ଏହା ଭାରତର ସର୍ବଜନବୋଧ୍ୟ ଭାଷା (Lingua Franca) ଅଟେ।

ଏହି ହିନ୍ଦୀ ଭାଷାକୁ ଓ ଦେବନାଗରାକ୍ଷରକୁ ଭାରତର ସର୍ବତ୍ର ଚଳାଇବା କାରଣ ମହାତ୍ମା ଗାନ୍ଧୀ ପ୍ରମୁଖ କେତେକ ଭାରତ ନେତା ଚେଷ୍ଟା କରି ଭାରତର ସର୍ବ ପ୍ରଦେଶରେ 'ହିନ୍ଦୀ ପ୍ରଚାରିଣୀ ସଭା' ମାନ ପ୍ରତିଷ୍ଠିତ କରିଅଛନ୍ତି।

ତୁଳସୀ ଦାସଙ୍କ ରାମାୟଣ ଓ ଛୁଆମାନ ହିନ୍ଦୀ ଭାଷାରେ ରଚିତ। ହିନ୍ଦୀ ସାହିତ୍ୟରେ ମୌଳିକ ଗ୍ରନ୍ଥ ଓ ରଚନା ଅପେକ୍ଷା ସଂସ୍କୃତ ଓ ଇଂରାଜି ଅନୁବାଦ ବହୁ

ଅନୁବନ୍ଧନ୍ତ ପ୍ରକାଶିତ ହୋଇ ଏ ଭାଷାର ଓ ସାହିତ୍ୟର କଳେବର କ୍ରମଶଃ ପୁଷ୍ଟ ହେଉଅଛି ।

ମୂଳତଃ କହିବାକୁ ଗଲେ ଭାରତର ଉତ୍ତରଖଣ୍ଡ ବା ଆର୍ଯ୍ୟାବର୍ତ୍ତ ବା ହିନ୍ଦୁସ୍ଥାନ ( ବିନ୍ଧ୍ୟ ପର୍ବତର ଉତ୍ତରରେ ଥିବା ଭୂଭାଗ )ରେ ହିନ୍ଦୁମାନଙ୍କ ଦ୍ୱାରା ହିନ୍ଦୀ ଭାଷା ବ୍ୟବହୃତ ଓ ଏହି ହିନ୍ଦୀ ଭାଷାର ଅନେକଗୁଡ଼ିଏ ପ୍ରାଦେଶିକ ଭାଷା ଅଛି । ସେଥିମାନଙ୍କ ମଧ୍ୟରେ ଅଧିକାଂଶ ମୂର୍ଖ ହିନ୍ଦୀ ବୁଝି ପାରନ୍ତି । ଏହି ଭାଷା ଶାଂଭୁବ୍ୟଞ୍ଜକ ବୋଲି ସେଥିମାନେ ଧାରନ୍ତି । ଏମନ୍ତ କି, କ୍ରୋଧ ହେଲାବେଳେ, ପ୍ରୌଢ଼ି କଲାବେଳେ ଅମ୍ଭମାନଙ୍କ ମୁହଁରୁ ହୁଡ଼ପଡ଼ ହିନ୍ଦୀ ଭାଷା ବାହାରିପଡ଼େ । ଏହି ଭାଷାକୁ ହିନ୍ଦୁସ୍ଥାନୀ, ଖୋଲ୍‌ଠା, ଖୋଲ୍ଟ ମଧ୍ୟ ବୋଲାଯାଏ ।

ମୁସଲମାନ୍‌ମାନେ ସର୍ବପ୍ରଥମେ ଉତ୍ତର ଭାରତ ଅଧିକାର କଲେ ଏବଂ ଦିଲ୍ଲୀ, ଆଗ୍ରା, ଜୌନପୁର ଏମାନଙ୍କ ରାଜଧାନୀ ହେଲା । ଅତଏବ ଉତ୍ତର ଭାରତରେ ପ୍ରଚଳିତ ଭାଷାକୁ ମୁସଲମାନ୍‌ମାନେ ହିନ୍ଦ୍‌ୱୀ ବା ହିନ୍ଦୀ ନାମରେ ଡାକିଲେ । ମୁସଲମାନ୍ ଆଗମନ ପୂର୍ବରୁ ସମଗ୍ର ଉତ୍ତର ଭାରତରେ କାବ୍ୟଭାଷାରୂପେ ଶୌରସେନୀ ବା ନାଗର ଅପଭ୍ରଂଶରୁ ବିକଶିତ ଭାଷାର ପ୍ରଚାର ଥିଲା । ମୁସଲମାନ୍‌ମାନେ ଆସି ଦିଲ୍ଲୀ ଓ ମିରଟର ଆଖପାଖରେ ପ୍ରଚଳିତ ଭାଷାକୁ ଅପଣାର କରିନେଲେ ଓ ତାହାର ପ୍ରଚାର ବଢ଼ାଇଲେ । ଏହାପରେ ଏହି ଭାଷା ଦେଶର ବହୁ ଅଂଶର ଶିଷ୍ଟସମାଜରେ ପ୍ରଚଳିତ ଭାଷା ହେଲା । କବି ଖୁସ୍‌ରୋ ଏହି ଭାଷାରେ ପଦ୍ୟ ରଚନା କଲେ, ଯହିଁରେ କାବ୍ୟଭାଷା ବା ବ୍ରଜ ଭାଷାର ବହୁତ ଆଭାସ ଥିଲା । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହେବ ଯେ ଦିଲ୍ଲୀ ଓ ମିରଟ ଅଞ୍ଚଳରେ ପ୍ରଚଳିତ ଭାଷା ( ଖଡ଼ୀବୋଲୀ', ଯାହା ପ୍ରଥମେ ଗୋଟିଏ ପ୍ରାଦେଶିକ ଭାଷା ଥିଲା ) ସାହିତ୍ୟ ପାଇଁ ମୁସଲମାନ୍‌ମାନେହିଁ ପ୍ରଥମେ ଗ୍ରହଣ କଲେ । ମୁସଲମାନ୍‌ମାନେ ତ ଖଡ଼ୀବୋଲୀକୁ ଶିଷ୍ଟସମାଜର ଭାଷାରୂପେ ଗ୍ରହଣ କଲେ, କିନ୍ତୁ ମୁସଲମାନ୍ ଓ ମୋଗଲଙ୍କ ଶାସିତ ଉତ୍ତରଭାରତରେ ସାଧାରଣ ସାହିତ୍ୟିକ ଭାଷା ରୂପେ ବ୍ରଜଭାଷା ( ରାଜସ୍ଥାନୀ ଭାଷା ମଧ୍ୟ ଯହିଁର ଅନ୍ତର୍ଗତ ଥିଲା ) ଓ ଅବଧୀ (ଅଯୋଧ୍ୟା ପ୍ରଚଳିତ ଭାଷା ) ରହିଲା । ଇତି ମଧ୍ୟରେ ମୁସଲମାନ୍‌ମାନେ ଖଡ଼ୀବୋଲୀକୁ ଆରବୀ ଓ ଫାରସୀ ଶବ୍ଦମାନଙ୍କ ଦ୍ୱାରା ଅଳଙ୍କୃତ କରି ଲାଗିଲେ ଓ ତହିଁରୁ ଉର୍ଦ୍ଦୁ ଭାଷା ଉତ୍ପନ୍ନ ହେଲା । ଏମନ୍ତ କି, ଧୀରେ ଧୀରେ ମୁସଲମାନ୍‌ମାନେ ଗୋଟିଏ ସ୍ୱତନ୍ତ୍ର ସାହିତ୍ୟିକ ଭାଷାର ଓ ସାହିତ୍ୟର ସୃଷ୍ଟି କଲେ, ଯହିଁରେ ବିଦେଶୀ ଭାବର ଓ ସଂସ୍କୃତିର ପ୍ରାଧାନ୍ୟ ରହିଲା । ଏହା ମଧ୍ୟ ମନେ ରଖିବାକୁ ହେବ ଯେ, ଏହି (ଉର୍ଦ୍ଦୁ) ସାହିତ୍ୟ ପଦ୍ୟମୟ ହୋଇ ରହିଲା । ପରନ୍ତୁ ଶିଷ୍ଟ ସମାଜର କଥୋପକଥନ ଭାଷା ରୂପେ ଖଡ଼ୀ ବୋଲୀର ପ୍ରଚାର ଉତ୍ତର ଭାରତର ଏକ କୋଣରୁ ଅନ୍ୟ କୋଣ ପର୍ଯ୍ୟନ୍ତ ବ୍ୟାପିଲା । ଯେତେବେଳେ ଇଂରାଜମାନେ ଭାରତକୁ ଆସିଲେ, ସେମାନେ ଏହି ଖଡ଼ୀ ବୋଲୀକୁ ଶିଷ୍ଟ ସମାଜରେ ପ୍ରଚଳିତ ହେଉଥିବା ଦେଖିଲେ; ଅତଏବ ନିଜର ସୁବିଧା ପାଇଁ ଇଂରାଜମାନଙ୍କ ଧ୍ୟାନ ଏହି ଖଡ଼ୀବୋଲୀ ପ୍ରତି ଆକୃଷ୍ଟ ହେଲା ଏବଂ ସେମାନେ ଏହି ବୋଲୀରେ ଗଦ୍ୟ ସାହିତ୍ୟର ଅବତାରଣା ପାଇଁ ଯତ୍ନ କଲେ । କିନ୍ତୁ ତତ୍ପୂର୍ବରୁ ମୁସଲମାନ୍‌ମାନେ ତ ଆପଣା ପାଇଁ 'ଉର୍ଦ୍ଦୁ' ନାମକ ସ୍ୱତନ୍ତ୍ର ସାହିତ୍ୟିକ ଭାଷାର ପ୍ରତିଷ୍ଠା କରିସାରିଥିଲେ । ଏହି କାରଣରୁ ଗଦ୍ୟ ସାହିତ୍ୟ ପାଇଁ ଗୋଟିଏ ସର୍ବଜନସ୍ୱୀକୃତ ଭାଷାର ବ୍ୟବହାର ଅସମ୍ଭବ ବୋଧ ହେଲା । ଅତଏବ କଲିକତାର ଫୋର୍ଟ୍ ୱିଲିଅମ୍ କଲେଜ୍‌ର ପ୍ରୋତ୍ସାହନରୁ 'ଖଡ଼ୀବୋଲୀ'ର ଦୁଇଟି ଆକାରରେ ଗଦ୍ୟ ସାହିତ୍ୟର ନିର୍ମାଣ ଆରମ୍ଭ ହେଲା । ଯଥା—ଉର୍ଦ୍ଦୁ ଓ ହିନ୍ଦୀ । ଏହି ପ୍ରକାରରେ ହିନ୍ଦୀ ଗଦ୍ୟ ସାହିତ୍ୟରେ ଖଡ଼ୀବୋଲୀ ଗୃହୀତ ହେଲା; କିନ୍ତୁ ବହୁକାଳ ବ୍ରଜଭାଷା ପଦ୍ୟର ଭାଷା ହୋଇ ରହିଲା । ବନାରସର 'ଭାରତେନ୍ଦୁ' ହରିଶ୍ଚନ୍ଦ୍ରଙ୍କ କାଳ ପର୍ଯ୍ୟନ୍ତ ଏହି ଅବସ୍ଥା ରହିଲା । ପରେ ହିନ୍ଦୀ ସାହିତ୍ୟସେବକମାନଙ୍କ ଧ୍ୟାନ ଗଦ୍ୟ ଓ ପଦ୍ୟ, ଏ ଉଭୟ ପାଇଁ ଏକମାତ୍ର ଭାଷା ଚଳାଇବା ଦିଗକୁ ଗଲା । ଅଧିକାଂଶ ଲୋକ 'ଖଡ଼ୀବୋଲୀ'ରେ ରଚିତ ପଦ୍ୟ ଉପରେ ଜୋର ଦେଲେ ଓ କେତେକାଳ କେବଳ 'ଖଡ଼ୀବୋଲୀ'ରେ ହିନ୍ଦୀ କବିତା ଲେଖାଗଲା । ଏହି ପ୍ରକାରେ ହିନ୍ଦୀ ସାହିତ୍ୟ ଉପରେ ତିନୋଟି 'ବୋଲୀ' ବା ଭାଷା ପଡ଼ିଗଲା:—ଖଡ଼ୀବୋଲୀ, ବ୍ରଜଭାଷା ଓ ଅବଧୀ । ହିନ୍ଦୀ ସାହିତ୍ୟ ଜାଣିବା ପାଇଁ ଏହି ତିନି ଭାଷାରେ ଅଭିଜ୍ଞତା ଆବଶ୍ୟକ । ସାହିତ୍ୟିକ 'ଖଡ଼ୀବୋଲୀ'ର ହିନ୍ଦୀ ଓ ଉର୍ଦ୍ଦୁ, ଦୁଇ ଶାଖା ହୋଇ ଯିବାରୁ ସାଧାରଣ କଥୋପକଥନରେ ବ୍ୟବହୃତ ମିଳିତ ଭାଷାକୁ ଇଂରାଜମାନେ 'ହିନ୍ଦୁସ୍ଥାନୀ' ଭାଷା ଆଖ୍ୟା ଦେଲେ—ହିନ୍ଦୀ ଶବ୍ଦସାଗର ।]

ହିନ୍ଦୀ ପ୍ରଚାରିଣୀ ସଭା—ଦେ. ବି—ଭାରତରେ ସର୍ବତ୍ର ହିନ୍ଦୀ ଭାଷା ପ୍ରଚାରିତ Hindī prachāriṇī sabhā କରି ଏହାକୁ ଭାରତର ସର୍ବଜନ-ବ୍ୟବହୃତ ଭାଷାରୂପେ ଦୃଢ଼ ଭିତ୍ତିରେ ପ୍ରତିଷ୍ଠିତ କରିବା ଉଦ୍ଦେଶ୍ୟରେ ସ୍ଥାପିତ ସଭା—
The Society formed to promulgate and popularise the Hindi language as the Lingua Franca of India.

ହିନ୍ଦୀ ରେବ(ୱ)ନ୍ଦ—ବୈଦେ. ବି—(ଫା)—ରେଉଚିନି (ଦେଖ)—
Hindi reba(wa)nd Reuchini (See)
বেবনচনী हिंदिरेवंद, रेवंदचिनि

ହିନ୍ଦୁ—ଦେ. ବି—ବେଦ ମତରେ ଧର୍ମକର୍ମ ସାଧନ କରୁଥିବା ଓ ବେଦୋକ୍ତ
Hindu ଆଚାର ପାଳନ କରୁଥିବା ଜାତି; ଭାରତୀୟ ଆର୍ଯ୍ୟଜାତି—
The religious sect professing the tenets of and following the conduct laid down in the Bedas. [ବ୍ୟୁ—ସଂସ୍କୃତ 'ସିନ୍ଧୁ' ଶବ୍ଦରୁ ଏଶବ୍ଦ

ଅଗତ । ଗ୍ରୀକ୍‌ଭାଷାରେ ସିନ୍ଧୁ ନଦର ନାମ ଇନ୍ଦସ୍, ହିବ୍ରୁ ଭାଷାରେ ଭାରତର ନାମ ହୁଦ୍—ଶୌରବାନ୍ୱିତ ରାଜ୍ୟ, ଜେନ୍ଦ୍ ଭାଷାରେ ଭାରତର ନାମ ହିନ୍ଦବ୍ ଓ ଗ୍ରୀକ୍ ଭାଷାରେ ଇନ୍ଦ୍‌କୋଷ୍, ଇନ୍ଦର୍ଓସ୍, ଓ ପୁସ୍ତୁ ବା ପାରସ୍ୟର ଭାଷାରେ ହିନ୍ଦ୍ । ହିନ୍ଦ୍ ଦେଶର ଅଧିବାସୀ ମାନଙ୍କୁ ଗ୍ରୀକ୍ ଓ ଯବନଧର୍ମାବଲମ୍ବୀମାନେ ହିନ୍ଦୁ ବୋଲି ଡାକିଲେ ।

କେହି କେହି କହନ୍ତି ଯେ, ସଂସ୍କୃତ ସିନ୍ଧୁ ଶବ୍ଦରୁ ହିନ୍ଦୁ ଶବ୍ଦର ଉତ୍ପତ୍ତି ହୋଇଅଛି; କିନ୍ତୁ ମେରୁତନ୍ତ୍ର ନାମକ ଗ୍ରନ୍ଥରେ ଶିବପାର୍ବତୀ ସମ୍ବାଦରେ 'ହୀନଞ୍ଚ ଦୂଷୟତ୍ୟେବ ହିନ୍ଦୁ ଇତ୍ୟୁଚ୍ୟତେ ପ୍ରିୟେ' ଅର୍ଥାତ୍, ଯେଉଁମାନେ ହୀନ ବ୍ୟକ୍ତିମାନଙ୍କୁ ଘୃଣା କରନ୍ତି ସେହିମାନଙ୍କୁ ହିନ୍ଦୁ ବୋଲାଯାଏ—ଏହିଭଳି ବ୍ୟୁତ୍ପତ୍ତି ଦିଆଯାଇଅଛି ।

ପାରସୀ ବା ପୁସ୍ତୁମାନେ ସିନ୍ଧୁ ନଦୀର ନାମକୁ ହିନ୍ଦ ବୋଲି ଉଚ୍ଚାରଣ କରୁଥିଲେ ଓ ସିନ୍ଧୁନଦକୂଳବାସୀ ଆର୍ଯ୍ୟମାନଙ୍କୁ ହିନ୍ଦୁ ନାମରେ ଡାକିଲେ ଓ ହିନ୍ଦୁର ପୂର୍ବବର୍ତ୍ତୀ ଦେଶମାନଙ୍କୁ ହିନ୍ଦ୍ ବା ହିନ୍ଦୁସ୍ଥାନ ନାମ ଦେଲେ ।

ହିନ୍ଦୁମାନଙ୍କର ନବ୍ୟତର ଗ୍ରନ୍ଥାନୁସାରେ 'ଆର୍ଯ୍ୟ' ଶବ୍ଦର ଅର୍ଥ—ବିଶିଷ୍ଟ, ମାନ୍ୟ ଓ ସତ୍‌କୁଳୋଦ୍ଭବ । ଋଗ୍‌ବେଦସଂହିତାରେ—ହିନ୍ଦୁଧର୍ମାବଲମ୍ବୀ ଲୋକମାନେହିଁ ଆର୍ଯ୍ୟ ବୋଲି ଲକ୍ଷିତ ହୋଇଅଛି ।

ଋଗ୍‌ବେଦର ଅନ୍ୟତ୍ର ଆର୍ଯ୍ୟ ଓ ଦସ୍ୟୁ ଶବ୍ଦ ଯେଉଁ ଯେଉଁ ଅର୍ଥରେ ଲେଖା ହୋଇଅଛି, ତାହା ବିବେଚନା କରି ଦେଖିଲେ ଆର୍ଯ୍ୟ ଶବ୍ଦ ସମଗ୍ର ହିନ୍ଦୁ ଜାତିକୁ ବୁଝାଉ ଥିଲା ବୋଲି ଅନୁମିତ ହୁଏ । ଅଥର୍ବ ବେଦସଂହିତାରେ ସମଗ୍ର ଲୋକଙ୍କ ଶୂଦ୍ର ଓ ଆର୍ଯ୍ୟ, ଏହି ଦୁଇ ଭାଗରେ ବିଭକ୍ତ ଯାଇଅଛି ।

ଶତପଥ ବ୍ରାହ୍ମଣରେ ଓ କାତ୍ୟାୟନ ପ୍ରଣୀତ ଶ୍ରୌତସୂତ୍ରରେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ, ଏହି ବର୍ଣ୍ଣତ୍ରୟହିଁ ଆର୍ଯ୍ୟ ଥିବା ଲେଖା ଅଛି ।

ଆର୍ଯ୍ୟ ଶବ୍ଦର ଅର୍ଥ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏହି ତିନି ବର୍ଣ୍ଣ । ଚତୁର୍ଥ ବର୍ଣ୍ଣର ନାମ ଶୂଦ୍ର । ବୋଧହୁଏ ଶୂଦ୍ର ବର୍ଣ୍ଣ ଆର୍ଯ୍ୟ ବଂଶୀୟ ନୁହେଁ ।

ଆର୍ଯ୍ୟମାନେ ଭାରତ ବର୍ଷକୁ ଆସି ଶୂଦ୍ର ନାମକ ଅନାର୍ଯ୍ୟ ଜାତିବିଶେଷକୁ ଆପଣାର ସମାଜଭୁକ୍ତ କରି ନେଇଥିଲେ । ମନୁସଂହିତା ୨।୨୨ ରେ ହିନ୍ଦୁମାନଙ୍କର ଆବାସ ଭୂମି ଆର୍ଯ୍ୟାବର୍ତ୍ତ ବୋଲି ଉଲ୍ଲିଖିତ ହୋଇଅଛି ।

ମନୁ ସଂହିତା ଦ୍ୱିତୀୟ ଅଧ୍ୟାୟରେ ଲେଖାଅଛି ଯେ, ଉତ୍ତରରେ ହିମାଳୟ, ଦକ୍ଷିଣରେ ବିନ୍ଧ୍ୟାଚଳ, ପୂର୍ବରେ ପୂର୍ବ ସମୁଦ୍ର ଓ ପଶ୍ଚିମରେ ପଶ୍ଚିମ ସମୁଦ୍ର, ଏହି ଚତୁଃସୀମାବଦ୍ଧ ଭୂଭାଗର ନାମ ପଣ୍ଡିତମାନେ ଆର୍ଯ୍ୟାବର୍ତ୍ତ ବୋଲି ଜାଣନ୍ତି । ଏହି ବଚନ ରଚନା ସମୟରେ ଆର୍ଯ୍ୟ ଶବ୍ଦ ହିନ୍ଦୁମାନଙ୍କର ଜାତିଗତ ସାଧାରଣ ନାମ ଥିଲା ବୋଲି କହିବାକୁ ହେବ । ଆର୍ଯ୍ୟାବର୍ତ୍ତ ଆର୍ଯ୍ୟମାନଙ୍କର, ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ, ଏହି ତିନି ବର୍ଣ୍ଣର ନିବାସ ଭୂମି ଥିଲା, ଏହା ମନୁସଂହିତାରେ ସୁସ୍ପଷ୍ଟ ରୂପେ ପ୍ରକଟିତ ହୋଇଅଛି । (ପ୍ରକୃତିବାଦ) । ଆର୍ଯ୍ୟ ଶବ୍ଦର ଅର୍ଥ ସଭ୍ୟ ଓ ଶ୍ରେଷ୍ଠ । ଇଂରାଜ, ରୋମ୍, ଗ୍ରୀକ୍, ଜର୍ମାନ୍ ପ୍ରଭୃତି ପାଶ୍ଚାତ୍ୟ ସଭ୍ୟ ଜାତିମାନେ ନିଜକୁ ଆର୍ଯ୍ୟ ବୋଲି ଗୌରବ କରନ୍ତି । ଏହି ଆର୍ଯ୍ୟନାମ ଭୁଲି ଆମ୍ଭେମାନେ ବିଦେଶୀଙ୍କଠାରୁ ହିନ୍ଦୁ ନାମ ଗ୍ରହଣ କରିଅଛୁଁ । ହିନ୍ଦୁ ଶବ୍ଦର ଅର୍ଥ ଫାରସୀ ଭାଷାରେ ଗୋଲାମ ଓ ଦସ୍ୟୁ । ପ୍ରକୃତରେ ବୈଦିକଧର୍ମାବଲମ୍ବୀ ଭାରତବାସୀ ଓ ସେମାନଙ୍କ ବଂଶଧରମାନେ ଆର୍ଯ୍ୟ ଅଟନ୍ତି । ମୁସଲମାନ୍ ଓ ଅମୁସଲମାନଙ୍କ ମଧ୍ୟରେ ପ୍ରଭେଦ ଜ୍ଞାପନାର୍ଥେ ମୁସଲମାନମାନେ ଭାରତୀୟ ଆର୍ଯ୍ୟଙ୍କୁ ହିନ୍ଦୁ ନାମ ଦେଇଥିଲେ ।

(ଦୀନବନ୍ଧୁ ଆର୍ଯ୍ୟ ବେଦ ଶାସ୍ତ୍ରୀଙ୍କ ସମ୍ପାଦିତ ଆର୍ଯ୍ୟ ସମାଜର ବଙ୍ଗଳା ମୁଖପତ୍ର ଆର୍ଯ୍ୟ ଗୌରବ, ୧ମବର୍ଷ ୧୧ଶ ସଂଖ୍ୟା) । ]

ସଂସ୍କୃତ ସାହିତ୍ୟରେ ଏ ଶବ୍ଦର ପ୍ରଥମ ଉଲ୍ଲେଖ ଶିବ-ରହସ୍ୟ ଓ ମେରୁତନ୍ତ୍ରରେ ଦେଖାଯାଏ—

ହିନ୍ଦୁଧର୍ମ ପ୍ରଲୋପ୍ତାରଃ ଭବିଷ୍ୟନ୍ତି କଲୌଯୁଗେ—

ଶିବ ରହସ୍ୟ

ପଞ୍ଚଖାନାଃ ସପ୍ତମୀରା ନବସାହା ମହାବଲାଃ
ହିନ୍ଦୁଧର୍ମ ପ୍ରଲୋପ୍ତାରୋ ଜାୟନ୍ତେ ଚକ୍ରବର୍ତ୍ତିନଃ ।
ହୀନଞ୍ଚ ଦୂଷୟତ୍ୟେବ ହିନ୍ଦୁରିତ୍ୟୁଚ୍ୟତେ ପ୍ରିୟେ ।
ପୂର୍ବାମ୍ନାୟେ ନବଶତ ଷଡଶୀତିଃ ପ୍ରକୀର୍ତ୍ତିତାଃ—

ମେରୁତନ୍ତ୍ର

ସମ୍ଭବତଃ ଉକ୍ତ ଅଂଶ ଦୁଇଟି ପ୍ରକ୍ଷିପ୍ତ । ଯଦି ହିନ୍ଦୁଧର୍ମ ବୋଲି କୌଣସି ଭାରତୀୟ ଧର୍ମ ଥାଆନ୍ତା, ତାହାଲେ ବେଦ ପୁରାଣ ପ୍ରଭୃତି ଗ୍ରନ୍ଥରେ ତହିଁର ଉଲ୍ଲେଖ ହୋଇଥାଆନ୍ତା । ଅଧିକନ୍ତୁ ମଧ୍ୟ ଭାରତର କୌଣସି ପ୍ରାଦେଶିକ ଭାଷାରେ ମୌଳିକ ଶବ୍ଦରୂପେ 'ହିନ୍ଦୁ' ବା 'ହିନ୍ଦୀ' ଶବ୍ଦର ସନ୍ଧାନ ମିଳେ ନାହିଁ ।

କିନ୍ତୁ ଭାରତ ବାହାରେ ଅନେକ ଭାଷାରେ ଏ ଶବ୍ଦର ସୂଚନା ମିଳେ । 'କୋରାନ୍'ରେ ହିନ୍ଦୁ ଶବ୍ଦର ପରୋକ୍ଷ ବ୍ୟବହାର ଦେଖାଯାଏ । 'ଅହଦିଛ୍' ନାମକ ଆରବ୍ୟ ଗ୍ରନ୍ଥରେ ହଜରତ୍ ମହମ୍ମଦଙ୍କ ନାମାତା କହିଛନ୍ତି "ଅତପ୍ୟାବ୍ ରିହାନ୍-ଉଲ୍-ହିନ୍ଦ୍" ଅର୍ଥାତ୍ ହିନ୍ଦୁସ୍ଥାନର ସୁଗନ୍ଧ ଅତି ମନୋରମ ।

ଗ୍ରୀକ୍ ଭାଷାରେ 'ହିନ୍ଦ୍' ଶବ୍ଦର ଅର୍ଥ 'କୃଷ୍ଣବର୍ଣ୍ଣ' । ଭାରତବାସୀଙ୍କ ଦେହର ବର୍ଣ୍ଣ ଗ୍ରୀକ୍‌ମାନଙ୍କ ତୁଳନାରେ ଅବଶ୍ୟ କଳା । ସମ୍ଭବତଃ ଭାରତବର୍ଷ କୃଷ୍ଣକାୟ ଲୋକଙ୍କର ବାସଭୂମି ବୋଲି ଏହି ଦେଶକୁ ଗ୍ରୀକ୍‌ମାନେ 'ହିନ୍ଦ୍' ବା 'ଇଣ୍ଡ୍' ଆଖ୍ୟା ଦେଇଥିଲେ ।

ପ୍ରବଳ୍ପ ପାରସୀ କବି ହାଫିଜ ତାଙ୍କର ଗୋଟିଏ ମନୋଜ କବିତାରେ 'ତ୍ୱନ୍ଦରୀ ଖ୍ରୀକରବାଶିନୀ'ର କପୋଳରେ ଥିବା କୃଷ୍ଣବର୍ଣ୍ଣ ଯାହାଁ ସମରଖନ୍ଦ ଓ ବୁଖାର ରାଜ୍ୟ ଦାନ କରି ପାରନ୍ତି ବୋଲି ଲେଖିଅଛନ୍ତି । ( ଅଗର ଅଁ ତୁର୍କ୍ ଶିରାଜୀ ବଦସ୍ତ୍ ଆରଦ୍ ଦିଲେ ମାର୍ ବଖାଲେ ହିନ୍ଦୁବସ୍ ବକଶମ୍ ସମର୍ କନ୍ଦ ଓ ବୁଖାରା,") ପ୍ରାଚୀନ ପାରସୀ ଭାଷାରେ ଦେଶାଣାନ୍ ନାମକ ଗ୍ରନ୍ଥରେ ଉଲ୍ଲେଖ ଅଛି—ଅକ୍ନୁନ ବିରହମାନେ ବ୍ୟାସନାମ ଆଜ୍ ହିନ୍ଦ୍ ଆମଦ ବଦ୍ଦାନା କେ ଅକଲ୍ ଚୁନାନ୍—" (୬୫ ଆଗ ଜରଥୁଷ୍ଟ୍ର); ଅର୍ଥାତ୍, ବ୍ୟାସଦେବ ହିନ୍ଦ (ଭାରତବର୍ଷ)ରୁ ଜରଥୁଷ୍ଟ୍ର ଦେଶକୁ ଆଗମନ କରିଅଛନ୍ତି । ଏଥିରୁ ମନେହୁଏ, ସମ୍ଭବତଃ ବ୍ୟାସଦେବଙ୍କର ସମୟରେ ଭାରତବର୍ଷ ପାରସ୍ୟ ଦେଶରେ ହିନ୍ଦ୍ ନାମରେ ଅଭିହିତ ହେଉଥିଲା ।

ପାରସୀ ଭାଷାରେ ହିନ୍ଦ୍ ଶବ୍ଦର ଅର୍ଥ ପରସ୍ୱାପହାରୀ । "ଗୟାସୁଲ ଲୋଗାତ" ନାମକ ପାରସୀ ଭାଷାକୋଷରେ ହିନ୍ଦ୍ ଶବ୍ଦର ଅର୍ଥ—ହିନ୍ଦୁ ଦର୍ ମହାବାରେ ଫାର୍ସି ବସାନ୍ ଚୁଲାମ୍ ବ ରହଜାନ୍ ମିଆରଦ୍ (ଅର୍ଥାତ୍, ହିନ୍ଦୁ ଶବ୍ଦର ଅର୍ଥ ଦୁର୍ଜନ, ବିଧର୍ମୀ ଓ ବାଟମାରଣା) । ସମ୍ଭବତଃ ସୀମାନ୍ତବାସୀ ଭାରତୀୟମାନେ ପାରସ୍ୟ ଦେଶକୁ ଯାଇ ଲୁଣ୍ଠନ କରୁଥିଲେ ଏବଂ ଉଭୟ ଦେଶର ଧର୍ମ ବିଭିନ୍ନ ବୋଲି ପାରସିକମାନେ ଭାରତୀୟମାନଙ୍କୁ ପରସ୍ୱାପହାରୀ ଓ କାଫେର୍ (ବିଧର୍ମୀ) ବୋଲି ଉଲ୍ଲେଖ କରିଅଛନ୍ତି ।

ଶବ୍ଦକଳ୍ପଦ୍ରୁମରେ ଗିୟାସୁଲ ଲୋଗାତ ଅଭିଧାନରେ ପ୍ରଦତ୍ତ ଅର୍ଥ ପରି ହିନ୍ଦୁ ଶବ୍ଦର ଅର୍ଥ 'ହୀନଂ ଦୂଷୟତି' (ହୀନଜାତୀୟ ଘାତକ ବୋଲି ଲେଖାଅଛି) ।

ଅନେକ ପଣ୍ଡିତ ମନେ କରନ୍ତି, ହିନ୍ଦୁସ୍ଥାନ ସିନ୍ଧୁସ୍ଥାନର ଅପଭ୍ରଂଶ । ସେମାନଙ୍କ ମତରେ ସମ୍ଭବତଃ ଗ୍ରୀକ୍‌ମାନେ ପ୍ରଥମେ ସିନ୍ଧୁପ୍ଲାବିତ ଦେଶକୁ ଆସିଥିଲେ ବା ସିନ୍ଧୁ ନଦୀ ସହିତ ବିଶେଷରୂପେ ପରିଚିତ ଥିଲେ । ତେଣୁ ସେମାନେ ସେହି ଦେଶବାସୀମାନଙ୍କୁ ସିନ୍ଧୁସ୍ଥାନୀ ବୋଲି ଡାକୁଥିଲେ ।

'ସ' ବର୍ଣ୍ଣ ସ୍ଥାନରେ 'ହ' ଉଚ୍ଚାରଣ 'ସପ୍ତାହ' ସ୍ଥାନରେ 'ହପ୍ତା' 'ସପ୍ତମ' ସ୍ଥାନରେ 'ହପ୍ତମ୍' ପରି ହୋଇ ସିନ୍ଧୁସ୍ଥାନ ପରିବର୍ତ୍ତେ ହିନ୍ଦୁସ୍ଥାନ ହୋଇଅଛି ।

ଅଲଫ୍ ଲାଇଲା (Arabian Nights)ର ନାୟକ ସିନ୍ଦବାଦ୍ ପାରସୀମାନଙ୍କ ସହିତ ବିଶେଷ ପରିଚିତ ଥିଲେ । ଭାରତୀୟ ବଣିକ୍ ଓ ଧର୍ମପ୍ରଚାରକମାନେ ସମସ୍ତ ପ୍ରାଚ୍ୟ ଦେଶ ଓ ଅନେକଗୁଡ଼ିଏ ପ୍ରତୀଚ୍ୟ ଦେଶ ସହିତ ସମ୍ପର୍କ ରଖୁଥିଲେ । ଗ୍ରୀକ୍ ଓ ମୁସଲମାନ୍‌ମାନେ ସିନ୍ଧୁ-ବିହାରମାନଙ୍କ ସଙ୍ଗେ ବିଶେଷଭାବରେ ପରିଚିତ ଥିଲେ । ଭାରତର ବହିଃସ୍ଥ ଏହି ସମସ୍ତ ଦେଶ ଭାରତକୁ ହିନ୍ଦ୍ ଆଖ୍ୟା ଦେଇଥିବା ଜଣାଯାଉଅଛି । ସୁତରାଂ ସେତେବେଳେ ଆଜିକାଲି ପରି ହିନ୍ଦୁ ଶବ୍ଦ ହିନ୍ଦୁଧର୍ମକୁ ନ ବୁଝାଇ ଭାରତଖଣ୍ଡକୁ ବୁଝାଉଥିଲା । କେବଳ ଐତିହାସିକ ମଧ୍ୟଯୁଗରୁ ଏହି ଶବ୍ଦ ଧର୍ମ ବୁଝାଇବାରେ ପ୍ରଯୁକ୍ତ ହୋଇ ଆସିଅଛି ।

(ଲେଖକ—ଯୋଗେନ୍ଦ୍ରଚନ୍ଦ୍ର ଦାସ କଟକ ।)

ଭାରତବର୍ଷରେ ଉପନିବେଶ କରି ବାସ କରିଥିବା ଆର୍ଯ୍ୟ ଜାତିର ଯେଉଁ ବଂଶଧରମାନେ ପ୍ରବର୍ତ୍ତିତ ବା ପଞ୍ଚବିଧ ଆର୍ଯ୍ୟ ଧର୍ମର ସଂସ୍କାରକୁ ଓ ସାମାଜିକ ବ୍ୟବସ୍ଥାକୁ ମାନିକରି ଚଳୁଛନ୍ତି, ଅର୍ଥାତ୍ ଯେଉଁମାନେ ବେଦ, ସ୍ମୃତି, ପୁରାଣକୁ ଅଥବା ଏ ତିନିଟି ମଧ୍ୟରୁ ଗୋଟିକୁ ମାନି ଚଳନ୍ତି, ସେମାନଙ୍କୁ ହିନ୍ଦୁ ବୋଲାଯାଏ । ଏହି ନାମ ପ୍ରାଚୀନ ପାରସିକମାନେ ସର୍ବପ୍ରଥମେ ଭାରତୀୟ ଆର୍ଯ୍ୟମାନଙ୍କୁ ଦେଇଥିଲେ ଓ ସେମାନଙ୍କଠାରୁ ଏହା ପୃଥିବୀରେ ପ୍ରଚଳିତ ହେଲା । ପ୍ରାଚୀନ ଭାରତୀୟ ଆର୍ଯ୍ୟମାନେ ଆପଣାର ଧର୍ମକୁ 'ବର୍ଣ୍ଣାଶ୍ରମ ଧର୍ମ' ନାମ ଦେଇଥିଲେ । ଏମାନେ ଭାରତର ଆଦିମ ଅଧିବାସୀ ଅନାର୍ଯ୍ୟ ଦ୍ରାବିଡ଼ୀୟମାନଙ୍କୁ ଆପଣା ସମାଜରେ ମିଶାଇ ନେବାପାଇଁ ପ୍ରକାଶ କଲେ ଯେ, ଏମାନେ ଅମୁକ ଋଷି ବା ଅମୁକ ରାଜାଙ୍କ ସନ୍ତତି ଅଟନ୍ତି । ପରେ ଭାରତକୁ ଆସି ବସତି କରିଥିବା ଶକ, ହୂଣ ଓ ଯବନମାନଙ୍କୁ ମଧ୍ୟ ଦକ୍ଷିଣଙ୍କ ଗାଈଙ୍କଠାରୁ ଉତ୍ପନ୍ନ ବୀରମାନଙ୍କ ବଂଶଧର ଅଥବା ପତିତ କ୍ଷତ୍ରିୟ ବୋଲି ଆର୍ଯ୍ୟମାନେ ମାନିନେଲେ । ପ୍ରାଚୀନକାଳରେ ଆର୍ଯ୍ୟ ସଭ୍ୟତାର ୨ଟି କେନ୍ଦ୍ର ଥିଲା; ଯଥା—ଭାରତ ଓ ପାରସ୍ୟ । ଏମାନଙ୍କ ମଧ୍ୟରେ ପ୍ରଭେଦ ଅତି ଅଳ୍ପ ଥିଲା । ହୂଣମାନେ ପ୍ରଥମେ ପାରସିକ ସଭ୍ୟତାକୁ ଗ୍ରହଣ କଲେ; ତତ୍ପରେ ଭାରତକୁ ଆସି ସେମାନେ ଭାରତୀୟ ସଭ୍ୟତାକୁ ଗ୍ରହଣ କରି ଭାରତୀୟ ଆର୍ଯ୍ୟମାନଙ୍କ ସଙ୍ଗେ ମିଳିତ ହେଲେ । ଶକମାନେ ମଧ୍ୟ ଆର୍ଯ୍ୟ ଜାତିର ଗୋଟିଏ ଶାଖା ଥିଲେ । ପରେ ଯେତେବେଳେ ପାରସ୍ୟବାସୀମାନେ ମୁସଲମାନ ଧର୍ମ ଗ୍ରହଣ କଲେ, ସେତେବେଳେ ସେମାନେ ହିନ୍ଦୁ ଶବ୍ଦ ସଙ୍ଗେ କାଫିର୍, କୃଷ୍ଣବର୍ଣ୍ଣ, ଲୁଟେରା ଆଦି ଅର୍ଥର ଯୋଜନା କଲେ । କିନ୍ତୁ ଯେତେ ଦିନ ପାରସିକମାନେ ଆର୍ଯ୍ୟଧର୍ମର ଅନୁସରଣ କରୁଥିଲେ ସେତେ ଦିନ ସେମାନେ ହିନ୍ଦ୍ ନିବାସୀ ଅର୍ଥରେ ହିନ୍ଦୁ ଶବ୍ଦ ବ୍ୟବହାର କରୁଥିଲେ । ଏହି ଶବ୍ଦର ଏହି ଅର୍ଥ ପାରସ୍ୟରେ ମୁସଲମାନ୍ ଧର୍ମର ପ୍ରଚାରର ବହୁ ପୂର୍ବରୁ ଚଳି ଆସିଥିଲା । ପରେ ମୁସଲମାନ ଧର୍ମର ପ୍ରଚାର ପରେ ହିନ୍ଦୁ ଶବ୍ଦର ମନ୍ଦ ଅର୍ଥ ପ୍ରଚାରିତ ହେଲା । ମେରୁତନ୍ତ୍ର ଆଦି କେତେକ ଆଧୁନିକ ଗ୍ରନ୍ଥରେ ହିନ୍ଦୁ ଶବ୍ଦ ସଂସ୍କୃତ ଭାଷାରୁ ଆସିଛି ବୋଲି ପ୍ରମାଣ କରିବାକୁ ଯେଉଁ ପ୍ରକୃତି-ପ୍ରତ୍ୟୟର କଳ୍ପନା ହୋଇଅଛି, ତାହା କାଳ୍ପନିକ ଅଟେ—ହିନ୍ଦୁ ଶବ୍ଦସାଗର ।]

ବିଣ—ହିନ୍ଦୁମାନଙ୍କ ସମ୍ବନ୍ଧୀୟ—Relating to the Hindus or ancient. Indians.

ହିନ୍ଦୁଆନି—ଦେ. ବି (ବଙ୍ଗଳାରୁ ଅନୁକୃତ)—ହିନ୍ଦୁଙ୍କ ଧର୍ମ କର୍ମ ଓ Hinduāni ଆଚାର ବ୍ୟବହାର—The conduct

हिन्दुयानि हीदूपन of a Hindu.
(ହିନ୍ଦୁପଣ, ହିନ୍ଦୁଗିରି, ହିନ୍ଦୁପଣିଆଁ—ଅନ୍ୟରୂପ)

ହିନ୍ଦୁକୁଶ୍—ଦେ. ବି—ଭାରତର ଉତ୍ତରପଶ୍ଚିମ ଓ ଅଫଗାନିସ୍ଥାନର
Hindukuś ଉତ୍ତରରେ ଥିବା ପର୍ବତଶ୍ରେଣୀ—
हिन्दुकुस हिंदुकुश The Hindukush mountain range.
[ଦ୍ର—ଏହି ପର୍ବତଶ୍ରେଣୀର ପୂର୍ବ ମୁଣ୍ଡ ହିମାଳୟର କାରାକୋରମ୍ ପର୍ବତଶ୍ରେଣୀର ପଶ୍ଚିମ ମୁଣ୍ଡରେ ମିଳିଅଛି। ଏହି ବାଟେ ମଧ୍ୟଏସିଆ ଅଞ୍ଚଳରୁ ଆର୍ଯ୍ୟମାନେ ଭାରତରେ ପ୍ରବେଶ କରିଥିବା ଅନୁମିତ ହୁଏ। ଏହି ପର୍ବତଶ୍ରେଣୀର ଉତ୍ତରରେ ପାମୀର ମାଳଭୂମି। ଏଥିରୁ କାବୁଲ ନଦୀ ବାହାରି ପୂର୍ବକୁ ଆସି ସିନ୍ଧୁ ନଦରେ ମିଶିଅଛି ଓ ହେଲମାଣ୍ଡ ନଦୀ ଦକ୍ଷିଣକୁ ଯାଇ ଅଫଗାନିସ୍ଥାନ କାଟେ ଇରାନର ଗୋଟିଏ ହ୍ରଦରେ ପଡ଼ିଅଛି ଓ ସିରଦରିଆ ଏବଂ ଆମୁଦରିଆ ନାମରେ ଦୁଇଟି ନଦୀ ଉତ୍ତରଆଡ଼କୁ ଯାଇ ରୁଷିଆର ଆରଲ୍ ହ୍ରଦରେ ପଡ଼ିଅଛି। ଏହି ପର୍ବତଶ୍ରେଣୀର ଉଚ୍ଚତମ ଶୃଙ୍ଗର ଉଚ୍ଚତା ୧୮୦୦୦ ଫୁଟରୁ ଅଧିକ। ଚିତ୍ରାଲ୍ ନଗର ଏହି ପର୍ବତର ମୂଳଦେଶରେ ଅବସ୍ଥିତ। ଭାରତର ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶର ଉତ୍ତର ପଶ୍ଚିମ ସୀମା ଚିତ୍ରାଲ୍ ପର୍ଯ୍ୟନ୍ତ ବିସ୍ତୃତ।]

ହିନ୍ଦୁଧର୍ମ—ଦେ. ବି (ସ ପ. ଲୋ)—ହିନ୍ଦୁମାନଙ୍କ ଆଚରିତ ବେଦୋକ୍ତ
Hindudharma ଧର୍ମ; ଭାରତୀୟ ଆର୍ଯ୍ୟ ଧର୍ମ—
हिन्दुधर्म हिंदुधम Hinduism, the vedic religion of the Aryans of India.
[ଦ୍ର—କାଳକ୍ରମେ ଭାରତୀୟ ଆର୍ଯ୍ୟଧର୍ମରେ ନାନା ପରିବର୍ତ୍ତନ ଘଟିଅଛି। ବୈଦିକଯୁଗର ଆରମ୍ଭରେ ଆର୍ଯ୍ୟମାନଙ୍କ ମଧ୍ୟରେ ଜାତିଭେଦ ନ ଥିଲା ଓ ପରେ ଗୁଣକର୍ମ ବିଭାଗ ଅନୁସାରେ ଆର୍ଯ୍ୟମାନେ ୩ ବର୍ଣ୍ଣ (ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ)ରେ ବିଭକ୍ତ ହେଲେ ଓ ଅନାର୍ଯ୍ୟମାନେ ଶୂଦ୍ରରୂପେ ହିନ୍ଦୁଧର୍ମର ସୀମାନ୍ତର୍ଭୁକ୍ତ ବର୍ଣ୍ଣ ହେଲେ। ତତ୍ପରେ ଅନୁଲୋମ ଓ ପ୍ରତିଲୋମ ବିବାହ ଓ ଭିନ୍ନ ଭିନ୍ନ ବଂଶାନୁଗତ କର୍ମବିଭାଗ ଦ୍ୱାରା ଭିନ୍ନ ଭିନ୍ନ ଉପଜାତି ବା ଜାତିର ସୃଷ୍ଟି ହେଲେ। ବେଦବହିର୍ଭୂତ ଧର୍ମବିଶ୍ୱାସକୁ ବର୍ତ୍ତମାନ ଲୋକେ 'ସନାତନ ହିନ୍ଦୁଧର୍ମ' ନାମ ଦେଇଅଛନ୍ତି ଓ ଯେଉଁମାନେ ବେଦୋକ୍ତ କ୍ରିୟାକାଣ୍ଡକୁ ମାନି ଚଳୁ ଅଛନ୍ତି ସେମାନଙ୍କୁ 'ସନାତନ ହିନ୍ଦୁ' ବୋଲି ନାମ ଦେଇଅଛନ୍ତି। ପରନ୍ତୁ ବେଦର ଏକେଶ୍ୱରବାଦକୁ ମାନି ଚଳୁଥିବା ବ୍ୟକ୍ତିମାନେ ଆପଣାକୁ 'ଆର୍ଯ୍ୟ-ସମାଜ' ଓ 'ବ୍ରାହ୍ମଧର୍ମ' ଭୁକ୍ତ ବୋଲି ପ୍ରଚାର କରୁଅଛନ୍ତି। ମୂଳରେ ପ୍ରତ୍ୟେକ ହିନ୍ଦୁ ପରଲୋକ, ପୁନର୍ଜନ୍ମ ଓ ଏକମାତ୍ର ଈଶ୍ୱରଙ୍କର ତ୍ରିମୂର୍ତ୍ତି [ବ୍ରହ୍ମା (ସୃଷ୍ଟିକର୍ତ୍ତା), ବିଷ୍ଣୁ (ପାଳନ କର୍ତ୍ତା) ଓ ଶିବ (ସଂହାରକର୍ତ୍ତା) ରୂପେ] ସ୍ୱୀକାର କରନ୍ତି। ଏକବାକ୍ୟରେ କହିବାକୁ ଗଲେ ଯେଉଁମାନେ ବେଦକୁ ବ୍ରହ୍ମାଙ୍କ ବାକ୍ୟ ବୋଲି ସ୍ୱୀକାର କରନ୍ତି ସେମାନେ ହିନ୍ଦୁ। ପ୍ରତ୍ନତତ୍ତ୍ୱବିଦ୍‌ମାନେ ସ୍ଥିର କରିଅଛନ୍ତି ଯେ, ପ୍ରାଚୀନ ହିନ୍ଦୁମାନଙ୍କର ସଭ୍ୟତା ଅତି ଉଚ୍ଚ ଥିଲା ଓ ଧର୍ମ, ବିଜ୍ଞାନର ଭିନ୍ନ ଭିନ୍ନ ଶାଖା, ଶିଳ୍ପ ଓ ଅଧ୍ୟାତ୍ମ ବିଦ୍ୟାରେ ହିନ୍ଦୁମାନେ ଅତ୍ୟନ୍ତ ଉନ୍ନତି କରିଥିଲେ ଓ ପାଶ୍ଚାତ୍ୟ ଜାତିମାନେ ହିନ୍ଦୁମାନଙ୍କଠାରୁ ନାନା ବିଦ୍ୟା ଗ୍ରହଣ କରିଥିଲେ। ହିନ୍ଦୁ ଧର୍ମର ମୂଳରେ ଏକେଶ୍ୱର ବାଦ ରହିଅଛି। ବିଶ୍ୱ ବ୍ରହ୍ମାଣ୍ଡର ଏକମାତ୍ର କର୍ତ୍ତା ପରଂବ୍ରହ୍ମ ଅଛନ୍ତି ଓ ବିଶ୍ୱର ତାବତୀୟ ଶକ୍ତି ସେହି ନିରାକାର ବ୍ରହ୍ମ ବା ଏକେଶ୍ୱରଙ୍କ ରୂପ ବା ଅବତାର ବୋଲି ହିନ୍ଦୁମାନେ ପ୍ରଥମେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଓ ପରେ ବହୁ ଦେବ-ଦେବୀଙ୍କ ଆରାଧନା କଲେ। ପଣ୍ଡିତମାନେ କହନ୍ତି ଯେ, ପ୍ରଥମେ ସାକାର ଉପାସନା ସାଧନ ନ କଲେ ନିରାକାର ବ୍ରହ୍ମଙ୍କୁ ଧାରଣା କରିଯାଇ ନ ପାରେ। ଏଥିପାଇଁ ନିରାକାର ଈଶ୍ୱରଙ୍କୁ ଧାରଣା କରିବାପାଇଁ ସାକାର ଉପାସନା ଗୋଟିଏ ପାବଚ୍ଛ ବା ମାର୍ଗ ଅଟେ।]

ହିନ୍ଦୁମୁସଲ୍(ଲ୍)ମାନ୍—ଦେ ବି—(ସହିତର ଶବ୍ଦ)—ଭାରତବାସୀ
Hindu musal(l)mān ପ୍ରଧାନ ଦୁଇ ସମ୍ପ୍ରଦାୟ; ହିନ୍ଦୁ ଓ ମୁସଲମାନ—The Hindus and the
हिन्दुमुसलमान हिंदुमुसलमान Mahomedans

ହିନ୍ଦୁରାଜ୍ୟ—ଦେ. ବି—ହିନ୍ଦୁରାଜାଙ୍କ ଶାସିତ ରାଜ୍ୟ—
Hindu rājya Hindu kingdom.
हिन्दुराज्य हिंदुराज्य

ହିନ୍ଦୁଶାସ୍ତ୍ର—ଦେ. ବି—ହିନ୍ଦୁମାନଙ୍କ ଧର୍ମଶାସ୍ତ୍ର—The religous
Hindu śāstra books or scriptures of the Hindus.
[ଦ୍ର—ଏହା ୪ ଭାଗରେ ବିଭକ୍ତ—
୧। ଶ୍ରୁତି—ବେଦ ଓ ବେଦାନ୍ତ।
୨। ସ୍ମୃତି—ମନୁ ଆଦିଙ୍କ ରଚିତ ସଂହିତାମାନ।
୩। ପୁରାଣ—ସୃଷ୍ଟିର ପ୍ରାଚୀନ ଇତିହାସମାନ।
୪। ତନ୍ତ୍ର—ଯୋଗ ସାଧନର ଉପାୟନିର୍ଦ୍ଦେଶକ ଗ୍ରନ୍ଥମାନ।]

ହିନ୍ଦୁସଭା—ଦେ. ବି—ହିନ୍ଦୁମାନଙ୍କର ଉନ୍ନତି ନିମନ୍ତେ ଆଧୁନିକ ଭାରତର
Hindu sabhā ନାନା ସ୍ଥାନରେ ପ୍ରତିଷ୍ଠିତ ସଭା—Modern associations set up for the improvement
हिन्दुसभा हिंदुसभा of the Hindus.

ହିନ୍ଦୁସଭ୍ୟତା—ଦେ. ବି—ହିନ୍ଦୁ ବା ଆର୍ଯ୍ୟମାନଙ୍କଦ୍ୱାରା ଭାରତରେ
Hindu sabhyatā ପ୍ରତିଷ୍ଠିତ ସଭ୍ୟତା—The civilization introduced by the Hindus to India. (ଦ୍ର—ହିନ୍ଦୁମାନେ ବୈଦିକ ଓ ପୌରାଣିକ ଯୁଗରେ ନାନା ବିଷୟରେ ଯେଉଁ ଉନ୍ନତି କରିଥିଲେ ତାହା ଆଧୁନିକ ପାଶ୍ଚାତ୍ୟ ସଭ୍ୟତା ଅପେକ୍ଷା ଅଧିକ ପରିମାଣରେ ଆଧ୍ୟାତ୍ମିକ ଉନ୍ନତି ଉପରେ ପ୍ରତିଷ୍ଠିତ ହୋଇଥିଲା ଓ ବୈଷୟିକ, ବୈଜ୍ଞାନିକ ଓ ରାଜନୀତିକ ଉନ୍ନତି ବିଷୟରେ ମଧ୍ୟ ସେମାନେ ପଶ୍ଚାତ୍‌ପଦ ନ ଥିଲେ)।

ହିନ୍ଦୁ ସମାଜ—ଦେ. ବି—ହିନ୍ଦୁ ଧର୍ମାବଲମ୍ବୀମାନଙ୍କର ସଙ୍ଘ ; ଭାରତବାସୀ Hindu samāja ସମସ୍ତ ହିନ୍ଦୁମାନେ—The Hindu society ; all the Hindus of India.
हिन्दू समाज हिन्दु समाज

ହିନ୍ଦୁ ସାମ୍ରାଜ୍ୟ—ଦେ. ବି—ପ୍ରାଚୀନଭାରତର ହିନ୍ଦୁ ରାଜାମାନଙ୍କଦ୍ୱାରା Hindu Sāmrajya ପ୍ରତିଷ୍ଠିତ ସାମ୍ରାଜ୍ୟ—The Hindu हिन्दू साम्राज्य empires of ancient India. हिन्दु साम्राज्य [ଦ୍ର—ପୌରାଣିକ ଯୁଗରେ (ଖ୍ରୀଷ୍ଟପୂର୍ବ ୩୦୦୦ ଅବ୍ଦଠାରୁ ଖ୍ରୀଷ୍ଟପୂର୍ବ ୫୦୦ ପର୍ଯ୍ୟନ୍ତ) ହିନ୍ଦୁ ସାମ୍ରାଜ୍ୟ ଦକ୍ଷିଣରେ କୁମାରିକା ଅନ୍ତରୀପ, ଉତ୍ତରରେ କୈଳାସ ପର୍ବତ ଓ ମାନସସରୋବର, ପୂର୍ବରେ ବ୍ରହ୍ମଦେଶ ଓ ପଶ୍ଚିମରେ ପାରସ୍ୟ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଦିଲ୍ଲୀ ବା ଇନ୍ଦ୍ରପ୍ରସ୍ଥ ହିନ୍ଦୁ ସମ୍ରାଟଙ୍କର ରାଜଧାନୀ ଥିଲା ।

ବୌଦ୍ଧଧର୍ମ ହିନ୍ଦୁଧର୍ମର ଗୋଟିଏ ଶାଖା ପରି । ଖ୍ରୀଷ୍ଟପୂର୍ବ ୫୦୦ ଠାରୁ ଖ୍ରୀଷ୍ଟାବ୍ଦ ୭୫୦ ପର୍ଯ୍ୟନ୍ତ ବୌଦ୍ଧ ସାମ୍ରାଜ୍ୟ ଭାରତରେ ପ୍ରତିଷ୍ଠିତ ହୋଇଥିଲା ଓ ଖ୍ରୀଷ୍ଟାବ୍ଦ ୭୫୦ ଠାରୁ ୧୨୦୦ ପର୍ଯ୍ୟନ୍ତ ଭାରତରେ ହିନ୍ଦୁ ସାମ୍ରାଜ୍ୟ ପୁନଃ ପ୍ରତିଷ୍ଠିତ ହୋଇଥିଲା । ଖ୍ରୀଷ୍ଟାବ୍ଦ ୧୨୦୦ ଠାରୁ ୧୫୦୦ ପର୍ଯ୍ୟନ୍ତ ପଠାଣ ସାମ୍ରାଜ୍ୟ, ଖ୍ରୀଷ୍ଟାବ୍ଦ ୧୫୦୦ ଠାରୁ ୧୭୫୦ ପର୍ଯ୍ୟନ୍ତ ଭାରତରେ ମୋଗଲ୍ ସାମ୍ରାଜ୍ୟ ଥିଲା ଓ ୧୭୫୦ ଠାରୁ ଆଜି ପର୍ଯ୍ୟନ୍ତ ଇଂରାଜ ସାମ୍ରାଜ୍ୟ କ୍ରମଶଃ ପ୍ରତିଷ୍ଠିତ ହୋଇ-ଅଛି । ୧୮୫୭ ଠାରୁ ଆଜିପର୍ଯ୍ୟନ୍ତ ଭାରତୀୟ ଇଂରାଜ ସାମ୍ରାଜ୍ୟ ଉତ୍ତରରେ ହିମାଳୟ, ଦକ୍ଷିଣରେ କୁମାରିକା ଅନ୍ତରୀପ ପୂର୍ବରେ ବ୍ରହ୍ମଦେଶ ଓ ପଶ୍ଚିମରେ ଅଫଗାନିସ୍ଥାନ ପର୍ଯ୍ୟନ୍ତ ବିସ୍ତୃତ ହୋଇଅଛି ।]

ହିନ୍ଦୁସ୍ତା(ସ୍ଥା)ନ—ବୈଦେ. ବି—(ଫା. ହିନ୍ଦୁ+ଫା. ସ୍ତାନ୍=ସଂ. ସ୍ଥାନ; Hindustā(sthā)na ହିନ୍ଦୁମାନଙ୍କ ବାସସ୍ଥାନ ବା ଦେଶ)— हिन्दुस्थान ୧ । ଭାରତବର୍ଷ—1. India. ୨ । ଆର୍ଯ୍ୟାବର୍ତ୍ତ; हिन्दुस्तान ଦକ୍ଷିଣରେ ବିନ୍ଧ୍ୟ ପର୍ବତ, ଉତ୍ତରରେ ହିମାଳୟ, ପୂର୍ବରେ ବ୍ରହ୍ମଦେଶ ଓ ପଶ୍ଚିମରେ ଅଫଗାନିସ୍ଥାନ ଦ୍ୱାରା ବେଷ୍ଟିତ ଦେଶ—2. Hindustan; the northern half of India. ୩ । ଭାରତବର୍ଷର ଉତ୍ତରସ୍ଥ ମଧ୍ୟଭାଗ, ଯାହା ଦିଲ୍ଲୀଠାରୁ ପାଟଣା ପର୍ଯ୍ୟନ୍ତ ଓ ଦକ୍ଷିଣରେ ନର୍ମଦାତଟ ପର୍ଯ୍ୟନ୍ତ ବିସ୍ତୃତ ଓ ଯାହାକୁ ପଞ୍ଜାବ, ବଙ୍ଗ, ଓଡ଼ିଶା ଓ ମହାରାଷ୍ଟ୍ରବାସୀମାନେ ହିନ୍ଦୁସ୍ଥାନ ବୋଲି କହନ୍ତି (ହି.ଶ)—3. The middle country of North India.

ହିନ୍ଦୁସ୍ତା(ସ୍ଥା)ନୀ—ଦେ. ବିଣ—୧ । ହିନ୍ଦୁସ୍ଥାନ ସମ୍ବନ୍ଧୀୟ—1. Hindustā(sthā)nī Relating to Hindustan. हिन्दुस्थानी ୨। ହିନ୍ଦୁସ୍ଥାନର ବା ଭାରତର ଉତ୍ତରାଂଶର ଅଧିବାସୀ— हिंदुस्तानी 2. Inhabiting Hindustan. ୩ । ହିନ୍ଦୁସ୍ଥାନବାସୀଙ୍କ ଦ୍ୱାରା କଥିତ (ଭାଷା) (ହିନ୍ଦୀ ଶବ୍ଦରେ ଟୀକା ଦେଖ )—3. ( Language ) Spoken or used by the inhabitants of Hindustan.
ବି—୧ । ହିନ୍ଦୁସ୍ଥାନବାସୀ ବ୍ୟକ୍ତି—1. Inhabitant of Hindustan. ୨ । ହିନ୍ଦୀଭାଷା—2. The Hindi language. [ଦ୍ର—ଆର୍ଯ୍ୟାବର୍ତ୍ତ ଭୂଭାଗର ଉତ୍ତର ପଶ୍ଚିମରେ ଥିବାରୁ ହିନ୍ଦୁସ୍ଥାନୀମାନଙ୍କୁ ଅନ୍ୟମାନେ ପଶ୍ଚିମା ବୋଲି ତାଙ୍କୁ ଓ ସେମାନଙ୍କ ଭାଷା ଖୋଟ୍ଟା ( =ଓଲଟା ବା ଅନ୍ୟମାନଙ୍କର ଅବୋଧ ) ଥିବାରୁ ହିନ୍ଦୁସ୍ଥାନୀମାନଙ୍କୁ ଅନ୍ୟମାନେ ଖୋଟ୍ଟା (ବ. ଖୋଟ୍ଟା) କହନ୍ତି ।] ୩ । ଉର୍ଦ୍ଦୁଭାଷା—3. The Urdu language. [ଦ୍ର—ହିନ୍ଦୀ ଶବ୍ଦ ତଳେ ଟୀକା ଦେଖ ।]

ହିନ୍ଦୋଳ—ସଂ. ବି—(ଅବ୍ୟୟ ହି ଶବ୍ଦ+ହୁଲ୍ ଧାତୁ=ଝୁଲିବା+ଭାବ Hindola ଅ; ଅଥବା ହିଲ୍ଲୋଳ+ଭାବ ଅ)—୧ । ଦୋଳନ; ଝୁଲିବା;ଦୋଳି ଖେଳିବା—1. Swinging; rocking. ୨ । ଶ୍ରାବଣ ଶୁକ୍ଳପକ୍ଷ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଅନୁଷ୍ଠିତ ବିଷ୍ଣୁମୂର୍ତ୍ତିଙ୍କର ଯାତ୍ରା, ଝୁଲଣ ଯାତ୍ରା—2. A festival observed in the bright fortnight of 'Srābaṇa' consisting of rocking of the images of Rādhā and Krushṇa in a swing. [ଦ୍ର—ଏଥିରେ ରାଧାକୃଷ୍ଣ ମୂର୍ତ୍ତିଙ୍କୁ ଦୋଳିରେ ବସାଇ ଦୋଳି ଖେଳାଇବାକୁ ହୁଏ ।] ୩ । ଦୋଳା; ଦଉଡ଼ିଦ୍ୱାରା ଉର୍ଦ୍ଧ୍ୱରୁ ଝୁଲି ଯାଇଥିବା ଆସନ (ଯହିଁରେ ଲୋକଙ୍କୁ ବସାଇ ଦୋଳି ଦହଲାଇବାକୁ ହୁଏ ); ଝୁଲି—3. A swing, ୪ । ହିନ୍ଦୁ ସଙ୍ଗୀତର ୬ ରାଗ ମଧ୍ୟରୁ ଏକତମ—4. One of the 6 principal strains or tunes in Hindu music. [ଦ୍ର—ରାଗତଳେ ଟୀକା ଦେଖ ।] [ଦ୍ର—ଏହା ଗାନ୍ଧାର ରାଗର ପୁତ୍ରରୂପେ କଳ୍ପିତ । କେତେ ପଣ୍ଡିତଙ୍କ ମତରେ ଏହା ଓଡ଼ବ ଜାତୀୟ ରାଗ ଓ ଏହା ପଞ୍ଚମ ଓ ଗାନ୍ଧାର ରାଗ ବର୍ଜିତ । ଏହା ବସନ୍ତ ଋତୁର ମଙ୍ଗଳବାର ରାତ୍ରି ୨୧ଦଣ୍ଡଠାରୁ ୨୧ଦଣ୍ଡ ପର୍ଯ୍ୟନ୍ତ ସମୟରେ ଗେୟ । ଶୁଣିଛି ଅଛି ଯେ, ଯେବେ ଏହି ରାଗ ଠିକ୍ ମତେ ଗୀତ ହୁଏ ତେବେ ଏଥିର ପ୍ରଭାବରେ ହିନ୍ଦୋଳା ବା ଦୋଳା ସ୍ୱୟଂ ସ୍ୱୟଂ ଗତି କରେ । ହନୁମାନଙ୍କ ମତରେ ଏଥିର ସ୍ୱରଗ୍ରାମ-ସା ଗା ମା ଧା ନି ସା ନି ଧା ମା ଗା ସା । ଚିତ୍ରକଳୀ,ଭୂପାଳୀ,ମାଳଶ୍ରୀ, ପଟମଞ୍ଜରୀ ଓ ଲଳିତା ରାଗିଣୀମାନ ଏ ରାଗର ସ୍ତ୍ରୀ; ଏବଂ ପଞ୍ଚମ, ବସନ୍ତ, ବିହାଗ, ସିନ୍ଧୁଡ଼ା ଓ ସୋରଠ ରାଗମାନ ଏ ରାଗରେ ପୁତ୍ର, ଓ ବିନ୍ଦୁରଙ୍ଗ, ଗାନ୍ଧାରୀ, ମାଳଶ୍ରୀ ଓ ତ୍ରିବେଣୀରାଗିଣୀମାନ ଏ ରାଗର ପୁତ୍ରବଧୂରୂପେ କଳ୍ପିତ—(ହି. ଶ) ।] ଦେ. ବି—ଓଡ଼ିଶାର ଗୋଟିଏ ଗଡ଼ଜାତ—Name of one of the Orissa States [ଦ୍ର—ଏହାର ରାଜଧାନୀ ହିନ୍ଦୋଳ । ଏହି ରାଜ୍ୟରେ ରସୋଲ ଗୋଟିଏ ପ୍ରଧାନ ଗ୍ରାମ । ହିନ୍ଦୋଳରେ ଭଲ କମଳାଲେମ୍ବୁ ମିଳେ ।]

ହିନ୍ଦୋଳ ପ୍ରଥମରୁ ଗଡ଼ଜାତ ରାଜ୍ୟ ଥିଲା । କ୍ଷେମଣ୍ଡି ରାଜବଂଶୀୟ ଜଣେ ରାଜା ଏ ଗଡ଼ ରାଜ୍ୟ ଏକତ୍ର କରି ରାଜା ହୋଇଥିଲେ ।

୧୫୬୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବ ହରିଚନ୍ଦନଙ୍କ ରାଜତ୍ୱକାଳରେ ହରିହର ଦେବ ସେନାମଣି ଏ ରାଜ୍ୟ ସ୍ଥାପନ କରିଥିଲେ । କେତେକ ପୁରୁଷଯାଏ ଏ ରାଜାମାନଙ୍କ ଉପାଧି 'ଦେବ ସେନାମଣି' ବା 'ଦେବ ମହାପାତ୍ର' ଥିଲା । ବର୍ତ୍ତମାନ 'ମର୍ଦ୍ଦରାଜ ଜଗଦେବ' ହୋଇଅଛି । ଏହି ରାଜାମାନଙ୍କର 'ବର୍ଚ୍ଚି' ସମ୍ଭତ—ଜଗବନ୍ଧୁ ପ୍ରାଚୀନ ଉତ୍କଳ ।]

**ହିନ୍ଦୋଳକ**—ସଂ. ବି (ହିନ୍ଦୋଳ+କ)—୧ । ଝୁଲଣ; ଝୁଲିବାର ଆସନ; Hindolaka ଦୋଳ—1. A swing. ୨ । ଦୋଳା; ଡୋଲି; ଅନ୍ୟ ସଂ ନାମ—ହିନ୍ଦୋଲା, ମନୁଷ୍ୟମାନଙ୍କ କାନ୍ଧରେ ବୁହାଯିବା ଦୋଳା, ପ୍ରେଙ୍ଖ, ହିନ୍ଦୋଳକା, ଏକପ୍ରକାର ଯାନ; ହାନ୍ଦୋଳା—ଦୋଳକା, ହିନ୍ଦୋଳୀ । 2 A chair carried by bamboos on the shoulders of bearers; a dooly.

**ହିନ୍ଦୋଳା(ଳୀ)**—ସଂ. ବି (ହିନ୍ଦୋଳ+ଅ; +ଈ)—Hindolā(lī) ହିନ୍ଦୋଳକ (ଦେଖ) (ହିନ୍ଦୋଳକା—ଅନ୍ୟରୂପ) Hindolaka (See)

ପ୍ରାଦେ (ସିଂହଭୂମ) ବି—ପଣାସଂକ୍ରାନ୍ତିର ଚଡ଼କ ପୂଜାରେ ବ୍ୟବହୃତ ଦୋଳ—Swing used by the players during Chaitra sankranti.

**ହିପ୍ ହିପ୍ ହୁରେ**—ବୈଦେ.ଅ (ଇଂ)—ଆନନ୍ଦ ପ୍ରକାଶାର୍ଥ ଓ କ୍ରିକେଟ୍ Hip hip hurre ଆଦି ଖେଳରେ ଜୟଲାଭ ଉପଲକ୍ଷରେ ବହୁଲୋକଙ୍କ ହିପ୍ ହିପ୍ ହୁର୍‌ରେ } ଅନ୍ୟରୂପ ହପ୍ ହପ୍ ହୁରେ } ମିଳିତ ଧ୍ୱନି—Hip Hip Hurrah ! ହିପ୍ ହିପ୍ ହୁର୍ରେ [ହି—ହିପ୍ ହିପ୍ ହୁର୍‌ରେ ଗାଅରେ କଳିହିପ୍ ହିପ୍ ହୁର୍ରେ ଯୁଗିଅ ଶୁରେ । ମଧୁସୂଦନ (ବ୍ୟଙ୍ଗ କବିତା)]

**ହିପାଜ(ଜି)ତ୍**—ବୈଦେ. ବି (ଆ. ହିଫାଜତ୍)—୧ । ରକ୍ଷଣାବେକ୍ଷଣ; Hipāja(ji)t ଯତ୍ନପୂର୍ବକ କୌଣସି ଦ୍ରବ୍ୟର ରକ୍ଷଣ; ଜଗାଇଖା- ହେପାଜତ୍ 1. Careful preservation of a thing. हिफाजत ୨ । ଯତ୍ନପୂର୍ବକ ରଖିବା ପାଇଁ କୌଣସି ବ୍ୟକ୍ତିଙ୍କ [ଗର୍ ହିପାଜ(ଜି)ତ୍—ଦପସାତ] ଜିମ୍ମାଦାରୀ—2. Custody. ୩ । ଗୁହଣା; ଯତ୍ନ—3. Care. ୪ । ଯତ୍ନପୂର୍ବକ କୌଣସି ବସ୍ତୁର ତତ୍ତ୍ୱ ନେବା - 4. Careful looking after a thing; taking care of a thing. ୫ । ଆସ୍ୱାସ; ସୁଖ ସ୍ୱାଚ୍ଛନ୍ଦ୍ୟ—5. Comfort; luxury. ୬ । କୌଣସି ବ୍ୟକ୍ତିଙ୍କର ଶୁଶ୍ରୂଷା—6. Tending; nursing.

**ହିପାଜ(ଜି)ତ୍(ତି) କରିବା(ନେବା)**—ଦେ. କ୍ରି—୧ । କୌଣସି ବସ୍ତୁର Hipāja(ji)t(ti) karibā(nebā) ବା ବ୍ୟକ୍ତିର ଯତ୍ନ ନେବା—ହେପାଜତ୍ କରା 1. To take care of any thing or हिफाजत करना person. ୨ । ଯତ୍ନପୂର୍ବକ ରକ୍ଷଣାବେକ୍ଷଣ କରିବା ବା ସାଇତିବା—2. To preserve with care. ୩ । (ବୃଦ୍ଧ, ରୋଗୀ, ଶିଶୁଙ୍କୁ) ଯତ୍ନପୂର୍ବକ ସେବା ଶୁଶ୍ରୂଷା କରିବା—3. To tend with care; to nurse with care (an infant, old man or sick man).

**ହିପାଜ(ଜି)ତ୍(ତି)ରେ ରଖିବା**—ଦେ. କ୍ରି—୧ । କୌଣସି ବସ୍ତୁକୁ ଯତ୍ନ- Hipāja(ji)t(ti)re rakhibā ପୂର୍ବକ ସାଇତିବା—ହେପାଜতে ৰাখা 1. To preserve with care हिफाजत से रखना ୨ । ଆଶ୍ରୟରେ ରଖିବା ବା ପାଳିବା; କୌଣସି ବ୍ୟକ୍ତିର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ରଖି ତାଙ୍କର ସେବା ଶୁଶ୍ରୂଷା କରିବା—2. To tend or bring up with care and comfort. ୩ । ଯତ୍ନପୂର୍ବକ ରଖିବା ପାଇଁ ନିଜର ଜିମ୍ମା ନେବା—3. To take into one's custody

**ହିପାଜ(ଜି)ତି**—ବୈଦେ. ବିଣ (ଫା)—ଜିମ୍ମାରେ ରଖା ଯାଇଥିବା—Hipāja(ji)ti Taken into custody; kept in custody. ହେপাজতি ଦେ. ବି—ହିପାଜତ୍ (ଦେଖ) हिफाजती Hipājat (See)

**ହିପାଜ(ଜି)ତିଆ**—ଦେ.ବିଣ—ଯେଉଁ ବ୍ୟକ୍ତି କୌଣସି ଦ୍ରବ୍ୟକୁ ଯତ୍ନପୂର୍ବକ Hipāja(ji)tiā ରଖେ—Careful in preserving a ହେপাজতি हिफाजत करनेवाला thing.

**ହିଫାଜ(ଜି)ତ(ତି)(ଇତ୍ୟାଦି)**—ବୈଦେ ବି ଓ ବିଣ—Hiphāja(ji)t(ti) (etc) ହିପାଜତ ଇତ୍ୟାଦି (ଦେଖ) Hipājat etc. (See)

**ହିବ୍ (ଧାତୁ)**—ସ—ପ୍ରୀତ କରିବା—Hib (root) To please.

**ହିବା**—ବୈଦେ. ବି (କଚେରୀ) (ଆ. ହିବହ୍=ଦାନ)—ଦାନ—Hibā হিবা, दान हिब्बा Gift; donation.

[ଦ୍ର—ମୁସଲମାନ ଆଇନ ଅନୁସାରେ ଦାନ ୩ ପ୍ରକାରର—

୧ । ଦାନ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଦାତାଙ୍କ ଜୀବନକାଳରେ ଦତ୍ତ ସମ୍ପତ୍ତି ଭୋଗ କରିବା ପାଇଁ କରାଯିବା ଦାନ (ଆ. ହିବହ୍) ।

୨ । ଦାତାଙ୍କ ମୃତ୍ୟୁ ପରେ ଗ୍ରହୀତାଙ୍କର ଦତ୍ତ ସମ୍ପତ୍ତି ପାଇବା ସର୍ତ୍ତରେ ଦାନ ବା ଉଇଲ (ଆ. ୱସିଅତ୍) ।

୩ । ଈଶ୍ୱର ସେବା ଓ ଦରିଦ୍ର ସେବା ନିମନ୍ତେ ସମ୍ପତ୍ତି ଗଚ୍ଛିତ କରିବା (ଆ. ୱାକ୍‌ଫ୍) ।

ହିବା ପୁଣି ୩ ଶ୍ରେଣୀରେ ବିଭକ୍ତ—

କ - ହିବା=ଯେଉଁ ଦାନରେ କୌଣସି ସର୍ତ୍ତ ନ ଥାଏ (Unconditional gift)

ଖ—ହିବା ବିଲ୍ ଏୱାଜ୍=ଗ୍ରହୀତାଙ୍କଠାରୁ ଦତ୍ତ ସମ୍ପତ୍ତି ବଦଳରେ ଅନ୍ୟ ସମ୍ପତ୍ତି ବା ଉପଯୁକ୍ତ ଗ୍ରହଣ

କରି ଦାତାଙ୍କ କରିବା ଦାନ (ବା ବଦଳ)—A gift for consideration.

(ଗ)ହିବା ବା ସର୍ତ୍ତ ଉଲ୍ ଏବାଜ୍=ଭବିଷ୍ୟତରେ ଗ୍ରହୀତା କେତେକ ସର୍ତ୍ତ ପାଳନ କରିବେ ବୋଲି ନିର୍ଦ୍ଦେଶ କରିଯାଇ ଯେଉଁ ଦାନ କରାଯାଏ—A conditional or contingent gift.

ହିବ୍ର, ବୈଦେ. ବ. ସ୍ତ୍ରୀ ( ହିବ୍ରୁ )—ବାଇବଲ୍ ଓ କୋରାନ ଲିଖିତ ବୃତ୍ତାନ୍ତ ଅନୁସାରେ ପୃଥିବୀର ଆଦ୍ୟ ନାରୀ—ଈଭ୍ ହବ୍ Eve; the first woman of the creation.

ହିବା କରିବା—ଦେ. କ୍ରି (ଉଭୟ)—୧ । କୌଣସି ସମ୍ପତ୍ତିକୁ ଦାନ କରିବା—1. To make a gift of any property. ୨ । କୌଣସି ବ୍ୟକ୍ତିକୁ ଦାନପତ୍ର ଦ୍ୱାରା ସମ୍ପତ୍ତି ଦାନ କରିବା—2. To make a gift of any property to any person by a deed of gift.
Hibā kariba
ହେବା କରା
**हिब्बा करना**

ହିବା ନାମା—ବୈଦେ. ବ (ଉଭୟ) (ଅ. ହିବ୍‌ବହ୍+ଫା= ନାମାହ୍)—ଦାନପତ୍ର; ଦତ୍ତ ପତ୍ର; ଦାନର ନିଦର୍ଶନ ସ୍ୱରୂପ ଦାତାଙ୍କଦ୍ୱାରା ଗ୍ରହୀତା ପକ୍ଷରେ ସମ୍ପାଦିତ ଦଲିଲ—A deed of gift.
Hibā nāmā
ହିବାନାମା
**हिब्बानामा**

ହିବୁକ—ସଂ. ବ ( ଜ୍ୟୋତିଷ )—ଲଗ୍ନର ଚତୁର୍ଥ ସ୍ଥାନ—(astrology) The 4th house counted from the Lagna. ( ଯଥା—ସୁତ ହିବୁକ ଯୋଗ ।)
Hibuka

ହିବ୍ରୁ(ବ୍ରୁ)—ବୈଦେ.ବ (ଇଂ. ହିବ୍ରୁ; ହେବ୍ରୁ ଇଭ୍ରୀ)—୧ । ବାଇବଲ୍ ଲିଖିତ ଅବ୍ରାହାମ୍ ଓ ତାଙ୍କ ପୁତ୍ର ଯାକବ୍‌ଙ୍କ ବଂଶଧରଗଣ; ଇହୁଦୀ; ଇଜ୍ରାଏଲ ଜାତୀୟ ବ୍ୟକ୍ତି—1. Hebrew; an appellation of Abraham and his descendants through Jacob; an Israelite; a Jew. ୨ । ଇହୁଦି ବା ଇହୁଦୀମାନଙ୍କ ମାତୃଭାଷା—2. The Hebrew language; the mother tongue of the Jews.
Hibru(bru)
ହିବ୍ରୁ
**हिब्रू**

[ଦ୍ର—ଏହି ଭାଷାରେ ଖ୍ରୀଷ୍ଟାନ୍ ଧର୍ମଶାସ୍ତ୍ର ବାଇବଲ୍ ପ୍ରଥମେ ଲିଖିତ ହୋଇଥିଲା । ଏହି ଭାଷାରୁ ଇଂରାଜୀ ଆଦି ଭିନ୍ନ ଭିନ୍ନ ଭାଷାରେ ଅନୂଦିତ ବାଇବଲ୍‌ରେ ଲେଖା ଥିବା ବ୍ୟକ୍ତି ଓ ସ୍ଥାନମାନଙ୍କର ନାମମାନ ହିବ୍ରୁ ଭାଷାର ମୂଳ ନାମ ନୁହେଁ; ଇଂରାଜୀ ଆଦି ଜାତିଙ୍କ ଉଚ୍ଚାରଣର ବିଶେଷତ୍ୱ ଅନୁସାରେ ଉକ୍ତ ଶବ୍ଦମାନ ମୂଳଶବ୍ଦମାନଙ୍କଠାରୁ ପୃଥକ୍ ହୋଇଅଛି । ପୁଣି ଇଂରାଜୀରୁ ବଙ୍ଗଳା ଓ ଓଡ଼ିଆରେ ଅନୁବାଦିତ ବାଇବଲ୍‌ରେ ଉକ୍ତ ନାମମାନ ଅଦ୍ଭୁତ ବିକୃତ ଆକାର ଧାରଣ କରିଅଛି ।]

ହିମ—ସଂ. ବ (ହି ଧାତୁ=ବୃଦ୍ଧି ପାଇବା, ପ୍ରେରଣ କରିବା, ଗମନକରିବା +ସଂଜ୍ଞାର୍ଥେ. ମ)—୧ । ଶୀତକାଳ—1. The winter. ୨ । ହେମନ୍ତକାଳ (ମାର୍ଗଶିର ଓ ପୌଷ ମାସ, ମତାନ୍ତରରେ କାର୍ତ୍ତିକ ଓ ମାର୍ଗଶିର)—2. The two months of early winter. ୩ । ଶିଶିର; କାକର—3. Dew. ୪ । ବରଫ; ତୁଷାର—4. Ice; snow; frost. ୫ । ଶୀତଳତା; ଥଣ୍ଡା; ଶୈତ୍ୟ—5. Cold; chill. ୬ । ଚନ୍ଦନପଙ୍କ; ଘୋରି ଚନ୍ଦନ [ ଏହା ଶୀତଳ ଗୁଣବିଶିଷ୍ଟ ଥିବାରୁ, (ମେଦିନୀ)] । 6. Sandal paste. ୭ । ପଦ୍ମକାଷ୍ଠ ( ରାଜନିର୍ଘଣ୍ଟ )—7. Prunus Padam. ୮ । ରଙ୍ଗ ଧାତୁ (ରାଜନିର୍ଘଣ୍ଟ)—8. Tin. ୯ । ମୌକ୍ତିକ; ମୁକ୍ତା; ମୋତି ( ରାଜନିର୍ଘଣ୍ଟ )—9. Pearl. ୧୦ । ନବନୀତ (ଶବ୍ଦଚନ୍ଦ୍ରିକା); ଲହୁଣୀ—10. Butter. ୧୧ । ଚନ୍ଦନ ବୃକ୍ଷ (ହେମଚନ୍ଦ୍ର)—11. Sandal wood tree. ୧୨ । କର୍ପୂର ( ରାଜନିର୍ଘଣ୍ଟ )—12. Camphor. ୧୩ । ହିମଗିରି; ହିମାଳୟ ପର୍ବତ ( ଶବ୍ଦକଳ୍ପଦ୍ରୁମ )—13. The Himalayan mountains. ୧୪ । ଚନ୍ଦ୍ରମା (ହି. ଶ)—14. The moon. ୧୫ । କମଳ, ପଦ୍ମ ( ହି. ଶ )—15. Lotus. ୧୬ । ପୃଥିବୀର ପୌରାଣିକ ବର୍ଷ (ଦେଶ)ମାନଙ୍କ ମଧ୍ୟରୁ ଏକ (ହି. ଶ)—One of the mythological divisions of the world. ୧୭ । ଔଷଧ ଦ୍ରବ୍ୟକୁ ରାତିସାରା ପାଣିରେ ବତୁରାଇ ସକାଳେ ତହିଁରୁ ଛଣା ହେବା ପାଣି; ଥଣ୍ଡା କ୍ୱାଥ (ହି. ଶ)—17. Water sifted early in the morning after some herbs are put in it throughout the night. ଵଣ—୧ । ଶୀତଳ; ଥଣ୍ଡା—1. Cold; cool. ୨। ହେମାଳିଆ—2. Chilly.
Hima
(ହିମା—ସ୍ତ୍ରୀ.ବଣ)

ହିମ ଋତୁ—ସଂ. ବ—ହିମକାଳ (ଦେଖ)—Himakāla (See).
Himarutu

ହିମକ—ସଂ. ବ—ତାଳୀଶ ପତ୍ର (ହି. ଶ)—Tālisapatra (See).
Himaka

ହିମ କଣ(ଣା)—ସଂ. ବ (୬ଷ୍ଠୀ ତତ୍)—୧। ବରଫର ଅତି କ୍ଷୁଦ୍ର ବିନ୍ଦୁ—1. Small particle of snow. ୨ । କାକରର ଅତି କ୍ଷୁଦ୍ର ବିନ୍ଦୁ—2. Small particle of dew.
Hima kaṇa(ṇā)

ହିମ କଟିବନ୍ଧ—ଦେ. ବ ( ଭୌଗୋଳିକ ପରିଭାଷା )—ଉତ୍ତରମେରୁଠାରୁ କ୍ରମାନ୍ୱୟେ ବୃତ୍ତ ପର୍ଯ୍ୟନ୍ତ ଓ ଦକ୍ଷିଣ ମେରୁଠାରୁ କୁମେରୁବୃତ୍ତ ପର୍ଯ୍ୟନ୍ତ ଭୂଗୋଳକକୁ ବେଢ଼ିଥିବା କାଳ୍ପନିକ ପଟ୍ଟୀ—The north and south frigid zones of the globe. [ଦ୍ର—ଉତ୍ତର ଓ ଦକ୍ଷିଣ ମେରୁଠାରୁ ବିଷୁବ ରେଖା ଆଡ଼କୁ ଯଥାକ୍ରମେ ଦକ୍ଷିଣ ଓ ଉତ୍ତରକୁ ୨୩½ ଡିଗ୍ରି ଲେଖାଏଁ ବ୍ୟାପି ପୃଥିବୀ ଗୋଲକକୁ ବେଢ଼ିଥିବା କାଳ୍ପନିକ ଶୀତପ୍ରଧାନ ଭୂଭାଗକୁ ହିମକଟିବନ୍ଧ ବୋଲାଯାଏ,
Hima kaṭibandha
ହିମକଟିବନ୍ଧ
**शीतकटिबंध**

ଏହି କଟିବନ୍ଧ ସବୁ ଋତୁରେ ତୁଷାରାବୃତ ରହିଥାଏ ଓ ଏଥିରେ ସବୁ ଋତୁରେ ବରଫ ପଡ଼େ ।

ଉତ୍ତର ହିମକଟିବନ୍ଧର ଉତ୍ତର ସୀମା ଉତ୍ତର ମେରୁ ଓ ଦକ୍ଷିଣ ସୀମା ବିଷୁବରେଖାର ୬୬॥ ଡିଗ୍ରି ଉତ୍ତରରେ ଯାଇଥିବା ବୃତ୍ତ (Arctic circle) ଅଟେ ।

ଦକ୍ଷିଣ ହିମକଟିବନ୍ଧର ଦକ୍ଷିଣ ସୀମା ଦକ୍ଷିଣ ମେରୁ ଓ ଉତ୍ତର ସୀମା ବିଷୁବରେଖାର ୬୬॥ ଡିଗ୍ରି ଦକ୍ଷିଣରେ ଥିବା ବୃତ୍ତ (Antarctic circle) ଅଟେ ।]

ହିମ କପୂର—ଦେ. ବି—ହିମ କର୍ପୂର (ଦେଖ)—
Hima kapūra Himakarpūra (See).
हिमकपूर हिमकपूर

ହିମ କର—ସଂ. ବି—(ବହୁବ୍ରୀହି; ହିମ=ଶୀତଳ ଅଟେ କର=କିରଣ
Hima kara ଯାହାର)—୧। ଚନ୍ଦ୍ର—1. The moon. ୨। କର୍ପୂର (ରାଜନିର୍ଘଣ୍ଟ)—2. Camphor. ବିଣ—(ବହୁବ୍ରୀହି; ହିମ+କର)—୧। ଶୀତଳ କିରଣ ବିଶିଷ୍ଟ—1. Having cool rays. ୨। (ହିମ+କୃ ଧାତୁ+କର୍ତ୍ତୃ. ଅ)—ଶୀତଳସ୍ପର୍ଶ—2. Cool; cold. ୩। (ଷଷ୍ଠୀ ତତ୍) ଚନ୍ଦ୍ରକିରଣ—3. Moon light. [ଉ—ଉତ୍ତମ ରାମା ଅଙ୍କରେ, ଯେଣୁ ବସେ ପଲଙ୍କରେ, ସେ ହିମକରେ—ଭଞ୍ଜ ପ୍ରେମ ସୁଧାନିଧି ]

ହିମକର ଶେଖର—ସଂ. ବି—(ବହୁବ୍ରୀହି, ହିମକର ଶେଖରରେ ଯାହାର)
Himakara śekhara ଶିବ; ମହାଦେବ—God Śiba.

ହିମ କର୍ପୂର (କର୍ପୂରକ)—ସଂ. ବି—ଏକପ୍ରକାର ନିକୃଷ୍ଟ କର୍ପୂର—
Hima karpūra (karpūraka) A sort of inferior camphor. [ଦ୍ର—ବୈଦ୍ୟଙ୍କ ମତରେ ଏହା ଶୁଭ୍ର, ବୃଷ୍ୟ, ଶୀତସ୍ପର୍ଶ, କଟୁରସ ଓ ପିପାସା, ଦାହ, ମୋହ ଏବଂ ଘର୍ମନାଶକ]

ହିମ କାକର (କାଲ)—ଦେ. ବି—ହେମ କାକର; ଅତ୍ୟନ୍ତ ଶୀତଳ;
Hima kākara (kāla) ହିମଶୀତଳ— Very cold; chilly; frigid. [ଉ—ଦାସେ । ପାଣିରେ ବୁଡ଼ିଲେ ମାସେ, ପାଣି ହେଲା ହିମକାକର, ଦାସେ ହେଲେ ବୁଡ଼ା ମାକଡ଼—ଶିଶୁରଞ୍ଜନ ଗୀତ]

ହିମ କାଳ—ସଂ. ବି—ହେମନ୍ତ ଋତୁ; କାର୍ତ୍ତିକ ଓ ମାର୍ଗଶିର, ମତାନ୍ତରରେ
Hima kāla ମାର୍ଗଶିର ଓ ପୌଷମାସ; ଶୀତଋତୁର ପୂର୍ବବର୍ତ୍ତୀ ଋତୁ—The 1st two months of winter.

ହିମ କିରଣ—ସଂ. ବି—(କର୍ମଧା)—ଚନ୍ଦ୍ରକିରଣ—
Hima kiraṇa The rays of the moon.

ହିମ କୂଟ—ସଂ. ବି—(ବହୁବ୍ରୀହି) ୧। ଶିଶିର ଋତୁ (ରାଜନିର୍ଘଣ୍ଟ)—1.
Hima kūṭa The winter. ୨। ହିମାଳୟ—2. The Himalayas. ୩। ପର୍ବତ ବିଶେଷ—3. Name of a mountain.

ହିମ ଗିରି—ସଂ. ବି—ହିମାଳୟ ପର୍ବତ—
Hima giri The Himalaya mountains.

ହିମ ଗିରି ସୁତା—ସଂ. ବି. ସ୍ତ୍ରୀ—୧। ପାର୍ବତୀ—Pārbatī;
Hima giri sutā the consort of Śiba. ୨। ଗଙ୍ଗା ନଦୀ—2. The river Ganges.

ହିମଗୁ—ସଂ. ବି (ବହୁବ୍ରୀହି)—ଚନ୍ଦ୍ରମା (ହି. ଶ)—
Himagu The moon.

ହିମ ଗୃହ—ସଂ. ବି ( କର୍ମଧା )—ଯେଉଁ ଗୃହର ବା ପ୍ରକୋଷ୍ଠର
Hima gṛuha ମଧ୍ୟରେ ଖୁବ ଥଣ୍ଡା ଅନୁଭୂତ ହୁଏ ( ହି. ଶ. )—A room which is very cold.

ହିମଜ—ସଂ. ବିଣ—୧। ହିମରୁ ଜାତ—1. Born of cold or
Himaja snow. ୨। ହିମାଳୟରୁ ଜାତ—2. Born
(ହିମଜା—ସ୍ତ୍ରୀ) of or produced from the Himalayas. ବି. ପୁଂ. ହିମାଳୟ ଗିରିର ପୁତ୍ର; ମୈନାକ ପର୍ବତ—Name of a mythological mountain said to be the son of the Himalayas.

ହିମଜା—ସଂ ବିଣ. ସ୍ତ୍ରୀ—( ହିମଜ+ଆ )—ହିମଜର ସ୍ତ୍ରୀଲିଙ୍ଗ—
Himajā Feminine of Himaja. ବି. ସ୍ତ୍ରୀ—ପାର୍ବତୀ—Goddess Pārbatī.

ହିମଜ୍ଝଟି—ସଂ. ବି—କୁହୁଡ଼ି; କୁହୁଡ଼ (ହାରାବଳୀ)—The fog.
Himajjaṭi (ହିମଜ୍ଝଟି—ଅନ୍ୟରୂପ)

ହିମତ(ନ୍ତ)(ଇତ୍ୟାଦି)—ବୈଦେ· ବି—ହିମ୍ମତ୍ ଇତ୍ୟାଦି (ଦେଖ)
Himat(nt) (etc) Himmat etc (See).

ହିମତି(ନ୍ତି)—ବୈଦେ. ବିଣ—ହିମ୍ମତି (ଦେଖ)
Himati(nti) (ହିମତିଆ—ଅନ୍ୟରୂପ) Himmati (See)

ହିମତେ(ନ୍ତେ)ଇ - ଦେ. ବିଣ—ହିମ୍ମତେଇ (ଦେଖ)
Himāte(nte)ī Himmateī (See).

ହିମ ତୈଳ—ସଂ. ବି—୧। କର୍ପୂର ତୈଳ ( ରାଜନିର୍ଘଣ୍ଟ )—
Hma taila 1. Camphor oil; oil extracted from camphor. ୨। କର୍ପୂର ମିଶା ଯାଇ ପ୍ରସ୍ତୁତ ତୈଳ [ହି. ଶ] 2. Oil prepared by mixing camphor in it·

ହିମଦ(ଦି)ସ୍ତା—ବୈଦେ. ବି—ହିମାନ୍‌ଦସ୍ତା (ଦେଖ)—
Himada(di)stā • Himān dastā (See).

ହିମ ଦୀଧିତି—ସଂ. ବି—(ବହୁବ୍ରୀହି; ହିମ ଅଟେ ଦୀଧିତି=କିରଣ ଯାହାର)
Hima dīdhiti ଚନ୍ଦ୍ର—The moon.

ହିମ ଦୁଗ୍ଧା—ସଂ. ବି—କ୍ଷୀରିଣୀ (ଦେଖ)—
Hima dugdhā Kshīrinī (See).

ହିମ ଦ୍ୟୁତି—ସଂ. ବି—(ବହୁବ୍ରୀହି; ହିମ=ଶୀତଳ ଅଟେ ଦ୍ୟୁତି ଯାହାର)
Hima dyuti ଚନ୍ଦ୍ର—The moon.

ହିମ ଦ୍ରୁମ—ସଂ ବି—ମହାନିମ୍ବ (ରାଜନିର୍ଘଣ୍ଟ), ମହାଲ ଗଛ—
Hima druma Helia Azadirachta (tree).

ହିମ ଧାତୁ—ସଂ. ବି—(ବହୁବ୍ରୀହି)—ହିମାଳୟ ପର୍ବତ (ହେମଚନ୍ଦ୍ର)—
Hima dhātu The Himalayas.

ହିମ ନିବାରକ—ସଂ. ବିଣ (ତସ୍ମୀତତ୍)—୧ । ଶୀତ ନିବାରକ; ଯାହା
Hima nibāraka ଯୋଗୁଁ ପ୍ରାଣୀ ଶୀତରୁ ରକ୍ଷା ପାଆନ୍ତି—1. Protecting one from cold or chill. ୨ । ଯାହା ହିମପାତରୁ ରକ୍ଷା କରେ—2. Protecting one from snowfall; shielding from snow or frost.

ହିମ ନିବାରଣ—ସଂ. ବି—୧ । ହିମପାତରୁ ରକ୍ଷା କରିବା—1. Protection from snowfall. ୨ । ଶୀତରୁ ରକ୍ଷା
Hima nibāraṇa କରିବା—2. Protection from cold.

ହିମନ୍ତ(ଇତ୍ୟାଦି)—ବୈଦେ. ବି—ହିମ୍ମତ୍ ଇତ୍ୟାଦି (ଦେଖ)—
Himanta (etc) Himmat etc (See).
ଦେ. ବି—(ସଂ. ହେମନ୍ତ)—ହେମନ୍ତ ଋତୁ—The 1st two months of winter. ଉ—ବରହେ
ହେମନ୍ତ ମଳୟ ଶିଶିର ବହଇ ହିମନ୍ତ ଅନୁଭବଇ । ଭଞ୍ଜ ବୈଦେହୀଶ
हिमन्त ବିଳାସ ।]

ହିମନ୍ତ ପର୍ବତ—ଦେ. ବି—ହିମାଳୟ ପର୍ବତ—The Himalayas
Himanta parbata[1] [ଉ—ବଳ ହିମନ୍ତ ପର୍ବତ ପ୍ରବଳ ବାତ
हिमालय पर्व्वत ଜଳଚ ହେବାରୁ ଯାଞ୍ଛୁ ଓଡ଼ିତ ବିଷସବଂଶେ ।
हिमालय ଭଞ୍ଜ. ବୈଦେହୀଶବିଳାସ ।]

ହିମ ପାତ—ସଂ. ବି—(ତସ୍ମୀତତ୍)—ତୁଷାରପାତ; ବରଫ ପଡ଼ିବା—
Hima pāta Snowfall.

ହିମ ପଡ଼ିବା—ଦେ. ବି—ବରଫ ପଡ଼ିବା; ତୁଷାରପାତ—
Hima paṛibā The falling of snow; snowfall.
হিম পড়া पालापड़ना

ହିମ ପ୍ରସ୍ଥ—ସଂ. ବି—ହିମାଳୟ (ହେମଚନ୍ଦ୍ର)—
Hima prastha The Himalayas.

ହିମବତ୍ ସୁତ—ସଂ. ବି. ପୁଂ—(ତସ୍ମୀତତ୍)—ମୈନାକ ପର୍ବତ—
Himabat suta Maināka; a mythological mountain.

ହିମବତ୍ ସୁତା—ସଂ. ବି. ସ୍ତ୍ରୀ—ପାର୍ବତୀ—
Himabat sutā Goddess Pārbatī.

ହିମବତୀ—ସଂ.ବିଣ. ସ୍ତ୍ରୀ—(ହିମବତ + ସ୍ତ୍ରୀ ଈ)—ହିମବାନ୍‌ର ସ୍ତ୍ରୀଲିଙ୍ଗ—
Himabatī Feminine of 'Himabān'. ବି. ସ୍ତ୍ରୀ—ମେନା; ହିମାଳୟର ସ୍ତ୍ରୀ—Mena, the wife of the Himalayan mountain. [ବି—ଏହାଙ୍କ ଗର୍ଭରୁ ପାର୍ବତୀ ଜନ୍ମ ହୋଇଥିଲେ ।]

ହିମବନ୍ତ—ଦେ ବି—(ସଂ.ହିମବତ୍ ଶବ୍ଦର ପ୍ର.୧ମା. ବହୁବଚନେ ହିମବନ୍ତଃ)
Himabanta —୧। ହିମବାନ୍; ହିମାଳୟ ପର୍ବତ—1. The
হিমবন্ত Himalāyas. [ଉ—ବସିହ ମୁନି ସତ ସଅର ହିମବନ୍ତ
हिमवन्त ସ୍ଥାପି ଧରଣୀ ହିମବନ୍ତ ସେ । ଭଞ୍ଜ. ବୈଦେହୀଶବିଳାସ ।]
୨ । ପର୍ବତ ବିଶେଷ—2. Name of a mountain.
[ଉ—ପରବ ହିମବନ୍ତ ନାମେ ପର୍ବତ । କୃଷ୍ଣସିଂହ—ମହାଭାରତ ଅଦ ।]

ହିମବନ୍ତ ଦୁଲଣା(ଣୀ)[ଦୁହିତା (ତୀ)]—ଦେ. ବି. ସ୍ତ୍ରୀ—ପାର୍ବତୀ—
Himabanta dulaṇā (ṇī) [duhitā(tī)]
হিমবন্ত দুহিতা हिमवंत दुहता The Goddess Pārbatī.

ହିମବର୍ଷୀ—ସଂ. ବିଣ—(ହିମ + ବୃଷ ଧାତୁ + ଇନ୍=ହିମ ବର୍ଷିନ୍, ୧ମା
Hima barshī ୧ବ)—ତୁଷାର ବର୍ଷଣକାରୀ—Raining or
(ହିମବର୍ଷିଣୀ—ସ୍ତ୍ରୀ) showering snow.

ହିମବଳ—ସଂ. ବି—ହେମବଳ; ମୌକ୍ତିକ (ଶବ୍ଦ କଳ୍ପଦ୍ରୁମ)—
Himabala Pearl.

ହିମବାନ୍—ସଂ. ବିଣ. ପୁଂ—(ହିମବତ୍ ଶବ୍ଦ; ୧ମା. ୧ବ); ହିମ + ଅସ୍ତ୍ୟର୍ଥରେ
Himabān ବତ୍)—୧ । ହିମଯୁକ୍ତ; ତୁଷାରମୟ—1.
(ହିମବତୀ—ସ୍ତ୍ରୀ) Snowy. ୨ । ଅତି ଶୀତଳ—2. Very cool. ବି—ହିମାଳୟ ପର୍ବତ—The Himalayas

ହିମବାଲୁକ—ସଂ. ବି—କର୍ପୂର (ରାଜନିଘଣ୍ଟୁ)—
Hima bāluka Camphor.

ହିମବାଲୁକା—ସଂ. ବି—କର୍ପୂର (ଅମର)—
Himabālukā Camphor.

ହିମ ଭାନୁ(ମୟୂଖ, ରଶ୍ମି, ରୁଚି)—ସଂ. ବି (ବହୁବ୍ରୀହି; ହିମ ଅଟେ ଭାନୁ
Hima bhānu(mayūkha, rasmī, ruchi) ଯାହାର)—ଚନ୍ଦ୍ର—The moon.

ହିମ ମଣ୍ଡଳ—ଦେ. ବି (ଭୂଗୋଳ ପରିଭାଷା)—ହିମ କଟିବନ୍ଧ (ଦେଖ)
Hima maṇḍala Hima kaṭibandha (See).
হিম মণ্ডল हिम मण्डल

ହିମର୍ତ୍ତୁ—ସଂ. ବି (ହିମ + ଋତୁ, ସନ୍ଧି ଯୋଗେ ଅ + ଋ = ରେଫ୍)—
Himarttu ହିମକାଳ (ଦେଖ) Himakāla (See).

ହିମ ଲଗା(ଗେ)ଇବା—ଦେ. କ୍ରି—ଦେହରେ ଥଣ୍ଡା ଲଗିବା ଭଳି
Hima lagā(ge)ibā ଅନାବୃତ ଦେହରେ ହିମ ପଡୁଥିବା
হিম লাগান ସ୍ଥାନକୁ ଯିବା—To cause one's person
ठण्डा लगाना to catch cold or chill by going out bare-bodied.

ହିମ ଲାଗିବା—ଦେ. ବି—ଦେହରେ ଥଣ୍ଡା ଲଗିବା—
Hima lāgibā The catching of chill.
হিম লাগা ठण्डा लगना

ହିମ ଶର୍କରା—ସ. ବି—ଯାବନାଳୀ (ରାଜନିର୍ଘଣ୍ଟ)—
Hima śarkarā Sugar made for maize.

ହିମ ଶୀତଳ—ସ. ବିଣ (ମ. ପ. ଲୋ)—ହିମ ସଦୃଶ ଶୀତଳ; ହିମ ପରି
Hima śītala ଥଣ୍ଡା—Ice-cold; cold as snow;
(ହିମ ଶୀତଳା—ସ୍ତ୍ରୀ) (ହିମଶୀତଳତା—ବି) very cold.

ହିମ ଶୀର୍ଣ୍ଣ—ସ. ବିଣ (ତୃତୀ ତତ୍)—୧ । ହିମ ବା ଶୀତ ଦ୍ୱାରା କ୍ଷୀଣ
Hima śirṇṇa —1. Emaciated by cold.
(ହିମ ଶୀର୍ଣ୍ଣା—ସ୍ତ୍ରୀ) ୨ । ହିମପାତ ଯୋଗୁଁ ଶୀର୍ଣ୍ଣ—2. Emaciated by snow falling of one's self. ୩ । ହିମ ଋତୁ ଯୋଗୁଁ ଯାହାର ଦେହ ଶୀର୍ଣ୍ଣ ହୋଇଥାଏ—3. Emaciated as a result of cold weather.

ହିମ ଶୈଳ—ସଂ. ବ (ମ. ପ. ଲୋ; ହିମଯୁକ୍ତ ଶୈଳ)—ହିମାଳୟ ପର୍ବତ
Hima śaila —The Himalayas.

ହିମ ଶୈଳଜ—ସଂ. ବଣ—ହିମାଳୟରୁ ଜାତ; ହିମାଳୟ ଜାତ—
Hima śailaja Born of or produced from the
(ହିମ ଶୈଳଜା—ସ୍ତ୍ରୀ) Himalayas.
ସଂ. ବ—ମୈନାକ ପର୍ବତ—The Maināka mountain.

ହିମ ଶୈଳଜା—ସଂ. ବଣ. ସ୍ତ୍ରୀ—ହିମ ଶୈଳଜର ସ୍ତ୍ରୀ ଲିଙ୍ଗ—
Hima śailajā Feminine of Himaśailaja.
ବି. ସ୍ତ୍ରୀ—ପାର୍ବତୀ—Goddess Pārbatī.

ହିମ ସଂହତି—ସଂ. ବ (୬ଷ୍ଠୀ ତତ୍)—ବରଫ, ତୁଷାର ରାଶି; ଜମାଟ
Hima saṁhati ତୁଷାର—Snow; massed ice.

ହିମ ସାଗର—ସଂ. ବ—ଦେହର ତାପ ବା ଦାହ ଶାନ୍ତି ପାଇଁ ମାଲିସ
Hima sāgara କରିବାରେ ବ୍ୟବହୃତ ଆୟୁର୍ବେଦୋକ୍ତ ତୈଳ-
ବିଶେଷ—Name of a medicinal oil. ଦେ. ବ—
୧ । ହେମ ସାଗର ୧ ( ଦେଖ )—1. Hema sāgara
1. (See). ୨ । ପାଷାଣ ଭେଦକ—2. Coleus;
Ambonicus Sclaginella.

ହିମ ହାସକ—ସଂ. ବ—୧ । ହିନ୍ତାଳ (ଶବ୍ଦ ରତ୍ନାବଳୀ) ( ଦେଖ )
Hima hāsaka 1. Hintāla ( See )
୨ । ଏକ ପ୍ରକାର ଖର୍ଜୁର ( ହି. ଶବ୍ଦସାଗର )—
2. A kind of date palm.

ହିମା—ସଂ. ବ (ହିମ+ଆ)—୧। ଛୋଟ ଅଳେଇଚ; ସୁଜାଗନ୍ଧ (ରାଜନିର୍ଘଣ୍ଟ)—
Himā 1. Small cardamom. ୨ । ରେଣୁକା; ସୁଗନ୍ଧ
ଦ୍ରବ୍ୟ ବିଶେଷ (ରାଜନିର୍ଘଣ୍ଟ)—2. A kind of
scented herb. ୩ । ଭଦ୍ରମୁସ୍ତକ; ମୁଥା (ରାଜନିର୍ଘଣ୍ଟ)
—3. A variety of grass root-bulb. ୪। ନାଗର
ମୁସ୍ତକ; ନାଗର ମୁଥା (ରାଜନିର୍ଘଣ୍ଟ)—4. Another
larger variety of grass root. ୫ । ଯୁକ୍ତା ଶାଗ
(ରାଜନିର୍ଘଣ୍ଟ); ପିଡ଼ିଙ୍ଗ—5. A kind of potherb;
Trigonella Corniculata ୬ । ଚଣକ; ଚଣା
(ରାଜନିର୍ଘଣ୍ଟ)—6. A sort of pulse; Panicum
Maliaccum.

ହିମାଂଶୁ—ସଂ. ବ (ବହୁବ୍ରୀହି; ହିମ ଅଟେ ଅଂଶୁ ଯାହାର)—
Himāṁśu ୧ । ଶୀତରଶ୍ମି; ଚନ୍ଦ୍ର ( ଅମର )—1. The
moon. ୨ । କର୍ପୂର (ରାଜନିର୍ଘଣ୍ଟ)—2. Camphor.

ହିମାଂଶୁଅଭିଖ୍ୟ—ସଂ. ବ [ହିମାଂଶୁ+ଅଭିଖ୍ୟା, ବହୁବ୍ରୀହି, ହିମାଂଶୁ
Himāṁśwabhikhya (ଚନ୍ଦ୍ର). ପରି ଅଭିଖ୍ୟା—ଶୋଭା
ଯାହାର]—ରୌପ୍ୟ (ହେମଚନ୍ଦ୍ର)—Silver.

ହିମାଗମ—ସଂ. ବ ( ହିମ+ଆଗମ, ୬ଷ୍ଠୀ ତତ୍ )—୧ । ହେମନ୍ତ
Himāgama (ରାଜନିର୍ଘଣ୍ଟ); ହିମକାଳ—1. The 1st two
months of winter. ୨ । ଶିଶିର; ଶୀତକାଳ—
2. The winter. ୩ । ଶୀତ ଋତୁର ଆରମ୍ଭ—
3. The approach of winter season.

ହିମାଙ୍କ—ସଂ. ବ—କର୍ପୂର ( ହି. ଶ )—
Himāṅka Camphor.

ହିମାଙ୍ଗ—ସଂ. ବ ( କର୍ମଧା; ହିମ+ଅଙ୍ଗ )—୧ । ଶୀତଳସ୍ପର୍ଶ ବା
Himāṅga ତାପଶୂନ୍ୟ ଦେହ—1. Cold or frigid body.
[ହିମାଙ୍ଗୀ—ସ୍ତ୍ରୀ. ବଣ] ୨ । ମୃତ୍ୟୁର ଲକ୍ଷଣ ବିଶେଷ; ମୃତ୍ୟୁ ପୂର୍ବରୁ
ଦେହ ହୋଇ ଯାଉଥିବା—2. Death-coldness; coldness of the body of a dying person.
ବଣ. ପୁଂ (ବହୁବ୍ରୀହି)—୧ । ଯାହାର ଦେହ ଥଣ୍ଡା—
1. Cool-bodied. ୨ । ମୃତ—2. Dead.

ହିମାଚଳ—ସଂ. ବ (ମ. ପ. ଲୋ)—ହିମାଳୟ—
Himāchala The Himalayas.

ହିମାଦ୍ରି—ସଂ. ବ (ମ. ପ. ଲୋ; ହିମଯୁକ୍ତ ଅଦ୍ରି)—ହିମାଳୟ ପର୍ବତ
Himādri —The Himalayan mountains.

ହିମାଦ୍ରିଜ—ସଂ. ବଣ—ହିମ ଶୈଳଜ ( ଦେଖ )
Himādrija Hima śailaja ( See )
ସଂ. ବ—ମୈନାକ ପର୍ବତ—The Maināka mountain.

ହିମାଦ୍ରିଜା—ସଂ. ବଣ—ହିମାଦ୍ରିଜର ସ୍ତ୍ରୀଲିଙ୍ଗ—Feminine of
Himādrijā Himādrija. ବ—୧ । ପାର୍ବତୀ—
1. Goddess Pārbatī. ୨ । କ୍ଷୀରିଣୀ (ରାଜନିର୍ଘଣ୍ଟ)
( ଦେଖ )—2. Kshīriṇī ( See )

ହିମାଦ୍ରି ତନୟା—ସଂ. ବ. ସ୍ତ୍ରୀ (୬ଷ୍ଠୀ ତତ୍; ହିମାଦ୍ରି+ତନୟ+ଆ)—
Himādri tanayā ୧ । ପାର୍ବତୀ—1. Goddess
Pārbatī. ୨ । ଗଙ୍ଗା—2. The river Ganges.

ହିମାନ(ମ)ଦ(ଦି)ସ୍ତା—ବୈଦେ. ବ—(ଅ, ହାବନ୍ ଓ ଦସ୍ତା)—
Himān(m)-da(di)stā କୌଣସି ପଦାର୍ଥ ଛେଚିବା ପାଇଁ ବ୍ୟବହୃତ
ହାମାନ୍‌ଦସ୍ତା ଲୁହାର ଖଲ ଓ ପୁଆ—Iron pestle and
हीमामदस्ता mortar.

ହିମାନୀ—ସଂ. ବ—( ହିବ+ବହୁଅର୍ଥରେ ଈ; ଅନ ଆଗମ)—୧ । ହିମ-
Himānī ସଂହତି; ବରଫ; (ଅମର)—Mass of ice; snow.
୨। ଯାବନାଳ ସର୍କରା—2. Sugar made from maize.

ହିମାବତୀ—ସଂ. ବ—୧ । ଯାବନାଳ ସର୍କରା (ରାଜନିର୍ଘଣ୍ଟ)—1
Himābatī Sugar made from maize. ୨ । ସ୍ୱର୍ଣ୍ଣକ୍ଷୀରୀ
(ଅମର); ଅଗରାଗୁଲ୍ମ—2. Gamboje Thistle. [plant).

ହିମାବ୍ଜ—ସଂ. ବ—୧ । ଉତ୍ପଳ (ରାଜନିର୍ଘଣ୍ଟ); କଇଁ—
Himābja 1. Nymphean lotus; water lily. ୨ ।
ନୀଳକମଳ (ହି.ଶ); ନୀଳୋତ୍ପଳ—2. The blue water lily.

ହିମାଗ୍ର—ସଂ. ବ—କର୍ପୂର (ହି. ଶ)
Himāgra Camphor.

ହିମାରାତି—ସଂ. ବ—( ୬ଷ୍ଠୀ ତତ୍; ହିମ+ଅରାତି)—୧ । ଅଗ୍ନି (ଶବ୍ଦ)
Himārāti କଳ୍ପଦ୍ରୁମ)—1. Fire. ୨ । ସୂର୍ଯ୍ୟ (ଶବ୍ଦକଳ୍ପ-

ଦ୍ରୁମ)—2. The sun. ୩ । ଚିତ୍ରକଗୁଳ୍ମ; ଧଳାଚିତା (ଶବ୍ଦକଳ୍ପଦ୍ରୁମ)—3. A shrub; Plumbago Zeylanica. ୪। ଅର୍କବୃକ୍ଷ (ଶବ୍ଦକଳ୍ପଦ୍ରୁମ)—4.Calotropis Gigantia (plant).

ହିମାର୍ତ୍ତ—ସଂ. ବିଣ ପୁଂ (୩ୟା ତତ୍)—ହିମ କ୍ଲେଶିତ; ହିମଦ୍ୱାରା କ୍ଲେଶ-
Himārtta ପ୍ରାପ୍ତ—Suffering from the effects of cold or snow.
[ହିମାର୍ତ୍ତା—ସ୍ତ୍ରୀ] [ହିମାର୍ତ୍ତି—ବି]

ହିମାଳ—ଦେ. ବିଣ—(ସଂ ହୈମଲ)—୧ । ହେମାଳ; ଅତି ଶୀତଳ—
Himāla 1. Very cool. ୨ । ଅତି ଶୀତଳସ୍ପର୍ଶ—
ହେମାଲ हैमाँल 2. Very cold to the touch.
[ହିମାଳ(ଳ)ଆ—ଅନ୍ୟରୂପ]

ହିମାଳୟ—ସଂ. ବି (୬ଷ୍ଠୀ ତତ୍; ହିମ+ଆଳୟ)—୧ । ଶୁକ୍ଳ ଖଦିର—
Himālaya 1. The brown catechu. ୨ । ଭାରତର ଉତ୍ତର ସୀମାରେ ଅବସ୍ଥିତ ଅତ୍ୟୁଚ୍ଚ ପର୍ବତମାଳା—2. The Himalayan range.
[ଦ୍ର—ପୁରାଣ ମତରେ ହିମାଳୟ ପର୍ବତମାନଙ୍କର ରାଜା । ଏହାର ଶିଖର ଦେଶ ଚିରତୁଷାରାବୃତ; ଏ ପିତୃଗଣଙ୍କ କନ୍ୟା ମେନା ବା ମେନକାଙ୍କ ପାଣିଗ୍ରହଣ କରିଥିଲେ ଓ ମେନାଙ୍କ ଗର୍ଭରୁ ପୁତ୍ର ମୈନାକ ନାମକ ପର୍ବତ ଓ କନ୍ୟାଦ୍ୱୟ, ଗଙ୍ଗା ଓ ପାର୍ବତୀ ଜନ୍ମଗ୍ରହଣ କରିଥିଲେ । ଏହି ପର୍ବତର ପୂର୍ବପ୍ରାନ୍ତ ଦକ୍ଷିଣଆଡ଼କୁ ବଙ୍କେଇ ହୋଇ ଯାଇ ବ୍ରହ୍ମଦେଶରେ ଆରାକାନ ପର୍ବତମାଳା ରୂପରେ ବଙ୍ଗୋପସାଗରକୁ ଲାଗିଅଛି ଓ ଏଥିର ପଶ୍ଚିମପ୍ରାନ୍ତ ଦକ୍ଷିଣ ଆଡ଼କୁ ବଙ୍କେଇ ହୋଇ ହିନ୍ଦୁକୁଶ, ସୁଲେମାନ ଓ ବେଲୁଚିସ୍ଥାନର କୀର୍ଥାର ପର୍ବତମାଳାରୂପରେ ଆରବ ଉପସାଗରକୁ ଲାଗିଅଛି । ଏହାର ଅନେକ ଶୃଙ୍ଗ ମଧ୍ୟରୁ ଧବଳଗିରି (୨୬୮୨୮ ଫୁଟ), କାଞ୍ଚନ ଜଙ୍ଘା (୨୮୧୪୬ ଫୁଟ), ନନ୍ଦାଦେବୀ (୨୫୬୦୦ ଫୁଟ), ନଙ୍ଗା ପର୍ବତ (୨୬୬୩୧ ଫୁଟ), କାମେତ (୨୫୪୪୧ ଫୁଟ), ଗଡ଼ୱିନ ଅଷ୍ଟେନ (୨୮୨୭୪ ଫୁଟ) ଓ ପୃଥିବୀର ସର୍ବୋଚ୍ଚ ଶୃଙ୍ଗ ଏଭରେଷ୍ଟ ବା ଗୌରୀଶଙ୍କର (୨୯୦୦୨ ଫୁଟ)ମାନ ପ୍ରଧାନ ।

ହିମାଳୟର ଉତ୍ତରରେ ତିବ୍ବତ ଦେଶର ଅଧିତ୍ୟକା ବା ମାଳଭୂମିରେ ହିନ୍ଦୁପୁରାଣ ବର୍ଣ୍ଣିତ ମାନସରୋବର ଓ କୈଳାସ ପର୍ବତ (ଉଚ୍ଚତା ୨୧୯୦୦ ଫୁଟ) ଅବସ୍ଥିତ । ଏହି କୈଳାସ ପର୍ବତରେ ମହାଦେବଙ୍କର ଆବାସ ଥିବା ପୁରାଣ ପ୍ରସିଦ୍ଧ । ମାନସରୋବରରୁ ସିନ୍ଧୁନଦ ବାହାରି ପଶ୍ଚିମକୁ ଯାଇ ଭାରତର ଉତ୍ତର ପଶ୍ଚିମ କୋଣବାଟେ ଦକ୍ଷିଣକୁ ବୁଲି ସିନ୍ଧୁ ପ୍ରଦେଶର କରାଚି ନିକଟରେ ଆରବ ଉପସାଗରରେ ପଡ଼ିଅଛି ଓ ବ୍ରହ୍ମପୁତ୍ର ନଦୀ ପ୍ରଥମେ ସାଙ୍ପୋ ନାମରେ ବାହାରି ପୂର୍ବକୁ ଯାଇ ଭାରତର ଉତ୍ତର ପୂର୍ବ-କୋଣବାଟେ ଦକ୍ଷିଣକୁ ବୁଲି ବଙ୍ଗ ପ୍ରଦେଶର ସୁନ୍ଦରବନରେ ବଙ୍ଗୋପସାଗରରେ ପଡ଼ିଅଛି । ମାନସରୋବରରୁ ଶତଦ୍ରୁ ନଦୀ ବାହାରି ହିମାଳୟ ଭେଦ କରି ପଞ୍ଜାବରେ ସିନ୍ଧୁନଦ ସଙ୍ଗେ ମିଶିଅଛି । ହିମାଳୟର ଦକ୍ଷିଣ ପାର୍ଶ୍ୱରୁ ସିନ୍ଧୁନଦର ଅନ୍ୟ ତିନି ଶାଖା । (ଝେଲମ୍, ଚେନାବ୍, ରାବି) ବାହାରି ପଞ୍ଜାବରେ ସିନ୍ଧୁନଦ ସଙ୍ଗେ ମିଶିଅଛି । ହିମାଳୟର ଦକ୍ଷିଣ ପାର୍ଶ୍ୱରୁ ଯମୁନା ନଦୀ ବାହାରି ପ୍ରୟାଗଠାରେ ଗଙ୍ଗାନଦୀ ସଙ୍ଗେ ମିଶିଅଛି । ବଦ୍ରୀନାଥର ଉତ୍ତରରୁ ଗଙ୍ଗାନଦୀ ଅଳକାନନ୍ଦା ନାମରେ ବାହାରି ଶ୍ରୀନଗର ଓ ହରିଦ୍ୱାର ବାଟେ ଦକ୍ଷିଣ ପୂର୍ବକୁ ବହି ଯୁକ୍ତପ୍ରଦେଶ, ବିହାର ଓ ବଙ୍ଗପ୍ରଦେଶ ବାଟେ ଯାଇ ବଙ୍ଗୋପସାଗରରେ ପଡ଼ିଅଛି । ଗଙ୍ଗାର ଶାଖାନଦୀମାନ (ଗୋମତୀ, ଗଣ୍ଡକୀ, ଘୋଗ୍ରା, କୁଶୀ) ମଧ୍ୟ ହିମାଳୟର ଦକ୍ଷିଣପାର୍ଶ୍ୱରୁ ବାହାରି ଗଙ୍ଗାନଦୀ ସଙ୍ଗେ ମିଶିଅଛି ।

କାଶ୍ମୀର, ନେପାଳ, ସିକିମ ଓ ଭୁଟାନ ରାଜ୍ୟମାନ ହିମାଳୟର ଦକ୍ଷିଣ ପାର୍ଶ୍ୱର ପାଦଦେଶରେ ଅବସ୍ଥିତ । ଏହି ପର୍ବତରେ ଅନେକଗୁଡ଼ିଏ ଅତି ମନୋରମ ଗ୍ରୀଷ୍ମାବାସ ଅଛି । ତହିଁ ମଧ୍ୟରୁ ଦାର୍ଜିଲିଙ୍ଗ ବଙ୍ଗର ଲାଟଙ୍କ ଗ୍ରୀଷ୍ମନିବାସ ଓ ସିମଲା ଭାରତର ବଡ଼ଲାଟଙ୍କ ଗ୍ରୀଷ୍ମନିବାସ । ହିମାଳୟକୁ ଅତିକ୍ରମ କରି ପଶ୍ଚିମବାଟେ ଅଫଗାନସ୍ଥାନ, ଉତ୍ତର ଓ ପୂର୍ବବାଟେ ତିବ୍ବତକୁ ଯିବା ପାଇଁ କେତେଗୁଡ଼ିଏ ଗିରି-ସଂକଟ ଅଛି । ଏଥିମଧ୍ୟରୁ ପଶ୍ଚିମରେ ବୋଲାନ, ଖାଇବାର ଓ ମାଲକାନ୍ଦ, ଉତ୍ତରରେ ବକାଲଚା ଓ ଉତ୍ତରପୂର୍ବରେ ଲେହ୍ଲା ଗିରିସଂକଟ ପ୍ରଧାନ ଅଟେ ।

ହିମାଳୟର ଉତ୍ତରପଶ୍ଚିମ କୋଣରେ ଥିବା ସଂକଟମାନଙ୍କ ବାଟେ ଆର୍ଯ୍ୟମାନେ ବୈଦିକ ଯୁଗରେ ଭାରତରେ ପ୍ରବେଶ କରିଥିଲେ ଓ ପରେ ଶକ, ଗ୍ରୀକ୍, ପଠାଣ ଓ ମୋଗଲମାନେ ଏହିସବୁ ଗିରିସଂକଟ ବାଟେ ଭାରତରେ ପ୍ରବେଶ କରି ନିଜ ନିଜର ସାମ୍ରାଜ୍ୟ ବିସ୍ତାର କରିଥିଲେ ।

ପୁରାଣରେ ଏହି ହିମାଳୟ ପର୍ବତ ଦେବତା, ଯକ୍ଷ, ଗନ୍ଧର୍ବ ଓ କିନ୍ନରମାନଙ୍କର କ୍ରୀଡ଼ାଭୂମି ଥିବା ବର୍ଣ୍ଣିତ ହୋଇଅଛି ।

ହିମାଳୟ ଅଧିବାସୀ ବନ୍ୟଜାତିମାନେ ମଙ୍ଗୋଲୀୟ ଅଟନ୍ତି । ସେମାନେ ଶ୍ରମସହିଷ୍ଣୁ ଓ ପାହାଡ଼ିଆ ସ୍ଥାନରେ ଭାରବୋଝମାନ ଉଠାଇବାରେ ପାରଙ୍ଗମ । ଲେପଚା, ଗୁରୁଖା, ନେପାଳି, ଭୋଟିଆ ଆଦି ଅନେକ ଆରଣ୍ୟଜାତି ହିମାଳୟରେ ବାସ କରନ୍ତି ।

ହିମାଳୟ ପର୍ବତଶ୍ରେଣୀର ପାଦଦେଶରୁ ଶିଖର ପର୍ଯ୍ୟନ୍ତ ସ୍ଥାନମାନଙ୍କ ଉଚ୍ଚତା ଅନୁସାରେ ନାନା ଦେଶର ଜଳବାୟୁ ପରି ଭିନ୍ନ ଭିନ୍ନ ପ୍ରକାରର ଜଳବାୟୁ ଅନୁଭୂତ ହୁଏ ଓ ନାନା ଜଳବାୟୁସୁଲଭ ବୃକ୍ଷଲତା ଓ ଫଳଆଦି ଜନ୍ମେ । ହିମାଳୟରେ ଅସଂଖ୍ୟ ଔଷଧିଗୁଳ୍ମ ଜାତ ହୁଏ ।]

ହିମାଳୟ ପଥେ—ଦେ. ବି. (ନାମ)—ପଣ୍ଡିତ କୁଳମଣିଦାଶ
Himālaya pathe କାବ୍ୟତୀର୍ଥଙ୍କ ପ୍ରଣୀତ ଖଣ୍ଡିଏ ସୁଖପାଠ୍ୟ ଭ୍ରମଣ ବୃତ୍ତାନ୍ତ ପୁସ୍ତକ—The title of a book of travel by Pandit Kulamani Das. [ଦ୍ର—ଏ ପୁସ୍ତକର ପ୍ରକାଶ ଦ୍ୱାରା ଓଡ଼ିଆ ସାହିତ୍ୟରେ ଭ୍ରମଣ-ବିଷୟକ ପୁସ୍ତକର ଅଭାବ ବହୁ ପରିମାଣରେ ଦୂରୀଭୂତ

ହୋଇଅଛି । ପଣ୍ଡିତ ମହାଶୟ ୧୯୮୧ ଖ୍ରୀଷ୍ଟାବ୍ଦ ଗ୍ରୀଷ୍ମକାଳରେ ଉତ୍ତରଭାରତରେ ଅନେକ ସ୍ଥାନ ବୁଲି ନିଜ ଆଖିରେ ଯାହା ଯାହା ଦେଖିଥିଲେ, ଶୁଦ୍ଧ ସାହିତ୍ୟିକ ଭାଷାରେ ସେସବୁ ପ୍ରବନ୍ଧାକାରରେ ଲିପିବଦ୍ଧ କରି ପ୍ରକାଶ କରିଅଛନ୍ତି । ଏ ପୁସ୍ତକରେ କାଶୀ, ସାରନାଥ, ଲକ୍ଷ୍ନୌ, ହରଦ୍ୱାର, ହିମାଳୟର ପ୍ରତ୍ୟନ୍ତ ପ୍ରଦେଶ, କାଙ୍ଗଡ଼ିଗୁରୁକୁଳ, ଡେରାଡୁନ, ଅଯୋଧ୍ୟା ପ୍ରଭୃତି ପ୍ରସିଦ୍ଧ ସ୍ଥାନମାନଙ୍କର ଏପରି ସୁନ୍ଦର ବର୍ଣ୍ଣନା କରାଯାଇ ଅଛି ଯେ ଏହା ପାଠ କରିବାକୁ ଆରମ୍ଭ କଲେ ଶେଷ ନ କରି ପୁସ୍ତକ ଛାଡ଼ିବାକୁ ଇଚ୍ଛା ହୁଏ ନାହିଁ । ଐତିହାସିକ, ପୌରାଣିକ, ଭୌଗଳିକ ତଥା ପ୍ରାକୃତିକ ତତ୍ତ୍ୱ ଅଙ୍କନରେ ପଣ୍ଡିତ ମହାଶୟ କିପରି ସିଦ୍ଧହସ୍ତ, ତାହା ଏ ପୁସ୍ତକ ପାଠଦ୍ୱାରା ଉତ୍ତମରୂପେ ଜଣାଯାଏ । ଯେଉଁମାନଙ୍କର ବିଦେଶ ଭ୍ରମଣରେ ସୁବିଧା ନାହିଁ ସେମାନେ ଏ ପୁସ୍ତକ ପାଠ କଲେ ସ୍ଥାନବିଶେଷ ସମ୍ବନ୍ଧରେ ଅବଶ୍ୟ ଜ୍ଞାତବ୍ୟ ବହୁତ କଥା ଜାଣିପାରିବେ । ପକ୍ଷାନ୍ତରରେ ଏ ପୁସ୍ତକ ପାଠ କରି ଏଥି ମଧ୍ୟରେ ଆମ୍ଭମାନଙ୍କ ମଧ୍ୟରୁ ଅନେକେ ବିଦେଶ ଭ୍ରମଣ ପାଇଁ ପ୍ରଲୋଭିତ ହୋଇଅଛନ୍ତି । କେନ୍ଦୁଝର ରାଜ୍ୟର ରାଜା ଶ୍ରୀ ବଳଭଦ୍ର ନାରାୟଣ ଭଞ୍ଜଦେବଙ୍କ ଅର୍ଥାନୁକୂଲ୍ୟରେ ଏହା ପ୍ରକାଶିତ ହୋଇଅଛି ଏବଂ ପାଟଣା ବିଶ୍ୱବିଦ୍ୟାଳୟ ଏ ପୁସ୍ତକକୁ ବର୍ତ୍ତମାନ ମାଟ୍ରିକୁଲେଶନ୍ ପରୀକ୍ଷାର ଓଡ଼ିଆ ଗଦ୍ୟ ପାଠ୍ୟପୁସ୍ତକରୂପେ ମନୋନୀତ କରିଅଛନ୍ତି । ]

ହିମାଳୟ ସୁତା—ସଂ. ବି. ସ୍ତ୍ରୀ (୬ଷ୍ଠୀ ତତ୍)—ପାର୍ବତୀ—
Himālaya sutā — Goddess Pārbati

ହିମାଳୟା—ସଂ. ବି—ଭୂମ୍ୟାମଳକୀ (ରାଜନିର୍ଘଣ୍ଟ), ଭୂଇଁ ଅଁଳା—
Himālayā — Phyllanthus Niruri (herb).

ହିମାଶ୍ରୟା—ସଂ. ବି. ସ୍ତ୍ରୀ—(ବହୁବ୍ରୀହି; ହିମ=ତୁଷାର ଅଟେ ଆଶ୍ରୟ ଯାହାର)—ସ୍ୱର୍ଣ୍ଣଜୀବନ୍ତୀ (ରାଜନିର୍ଘଣ୍ଟ) (ଦେଖ) —
Himāsrayā — Swarnna jibanti (See)

ହିମାହ୍ୱ—ସଂ. ବି—(ବହୁବ୍ରୀହି; ହିମ=ତୁଷାର+ଅହ୍ୱା—ନାମ ଯାହାର)
Himāhwa —୧ । କର୍ପୂର (ଶବ୍ଦକଳ୍ପଦ୍ରୁମ)—1. Camphor. ୨ । ପୌରାଣିକ ଜମ୍ବୁଦ୍ୱୀପର ବର୍ଷ ବା ଦେଶ ବିଶେଷ — 2. Name of a country of the mythological Jambudwipa.

ହିମାହ୍ୱୟ—ସଂ. ବି—(ହିମ+ଅହ୍ୱୟ)—କର୍ପୂର (ହିକାଣ୍ଡଶେଷ)—
Himāhwaya — Camphor.

ହିମିକା—ସଂ. ବି—(ହିମ+କ+ସ୍ତ୍ରୀ ଆ)—୧ । ହିମକଣା—
Himikā 1. Particles of snow ୨ । ଶିଶିର—2. Dew ୩ । ତୃଣୋପରି ପତିତ ହିମ—3. Drops of snow fallen on grass. ୪ । କୁହୁଡ଼ିକା; କୁହୁଡ଼ି— 4. Fog.

ହିମେଳୁ—ସଂ. ବିଣ—(ହିମ+ଏଳୁ)—ହିମାର୍ତ୍ତ; ହିମକ୍ଳେଶିତ (ଶବ୍ଦକଳ୍ପଦ୍ରୁମ)—Troubled or oppressed with cold
Himelu

ହିମେଶ—ସଂ. ବି (୬ଷ୍ଠୀ ତତ୍)—ହିମାଳୟ ପର୍ବତ (ହି. ଶ)—
Himesa — The Himalayas.

ହିମୋତ୍ତର—ସଂ. ବି—କପିଳ ଦ୍ରାକ୍ଷା (ରାଜନିର୍ଘଣ୍ଟ)—
Himottarā — A sort of grape; brown grape.

ହିମୋତ୍ପନ୍ନ—ସଂ. ବିଣ (୫ମୀ ତତ୍)—ହିମରୁ ଜାତ—
Himotpanna — Born of cold or ice.

ହିମୋତ୍ପନ୍ନା—ସଂ. ବିଣ, ସ୍ତ୍ରୀ—ହିମୋତ୍ପନ୍ନର ସ୍ତ୍ରୀ ଲିଙ୍ଗ—Feminine of
Himotpannā himotpanna. ବି—ଯାବନାଳୀ (ରାଜନିର୍ଘଣ୍ଟ)—Sugar made from maize.

ହିମୋଦ୍ଭବ—ସଂ. ବିଣ (ବହୁବ୍ରୀହି; ହିମରୁ ଉଦ୍ଭବ ହୋଇଅଛି ଯାହାର)—
Himodbhaba ହିମୋତ୍ପନ୍ନ (ଦେଖ)—Himotpanna(See)
[ହିମୋଦ୍ଭୂତ—ଅନ୍ୟରୂପ] [ହିମୋଦ୍ଭବା; ସ୍ତ୍ରୀ ହିମୋଦ୍ଭୂତା—ସ୍ତ୍ରୀ]

ହିମୋଦ୍ଭବା—ସଂ. ବିଣ—ହିମୋଦ୍ଭବର ସ୍ତ୍ରୀ ଲିଙ୍ଗ—Feminine of
Himodbhabā himodbhaba. ବି—ଶଠୀ (ରାଜନିର୍ଘଣ୍ଟ)
Zingiber Zeodaria; Curcuma Zeodaria.

ହିମ୍ମତ୍—ବୈଦେ. ବି (ଆ)—୧ । ସାହସ—1. Courage;
Himmat bravery. ୨ । ପୌରୁଷ; ସାହସ—
ହିମ୍ମତ 2. Manliness. ୩ । କୌଣସି କଠିନ ବା କଷ୍ଟସାଧ୍ୟ
हिम्मत କର୍ମ କରିବାକୁ ମନର ବଳ—3. Strength of mind to do a hard or irksome work.

ହିମ୍ମତ୍ କରିବା—ଦେ. କ୍ରି—କୌଣସି କଠିନ ବା କଷ୍ଟସାଧ୍ୟ କାର୍ଯ୍ୟ
Himmat karibā କରିବାକୁ ମନରେ ସାହସ ବାନ୍ଧିବା—
হিম্মত করা To have the courage to do a work;
हिम्मत करना to gird up one's loins to do any work.

ହିମ୍ମତ୍ ଦେବା—ଦେ. କ୍ରି—କୌଣସି କାର୍ଯ୍ୟ କରିବାକୁ କୌଣସି
Himmat debā ବ୍ୟକ୍ତିକୁ ଉତ୍ସାହିତ କରିବା—
হিম্মত দেওয়া To encourage a person to do a
हिम्मत देना work.

ହିମ୍ମତ୍ ବାଜ୍—ବୈଦେ. ବିଣ (ପୁଂ ଓ ସ୍ତ୍ରୀ) (ଆ)—ସାହସୀ—
Himmat bāj Courageous.
হিম্মতবাজ हिम्मतबाज

ହିମ୍ମତ୍ ବାନ୍ଧିବା—ଦେ. କ୍ରି—ହିମ୍ମତ୍ କରିବା (ଦେଖ)
Himmat bāndhibā Himmat karibā (See)
হিম্মত করা हिम्मत बांधना

ହିମ୍ମତ୍ ବାଲା—ବୈଦେ. ବିଣ. ପୁଂ (ଆ)—ହିମ୍ମତ୍‌ବାଜ୍ (ଦେଖ)
Himmat bālā Himmatbāj (See)
(ହିମ୍ମତ ବାଲୀ—ସ୍ତ୍ରୀ)

ହିମ୍ମତି—ବୈଦେ. ବିଣ (ପୁଂ ଓ ସ୍ତ୍ରୀ) (ଆ)—୧ । ସାହସିକ—
Himmati 1. Courageous. ୨ । ବୀର—2. Heroic;
হিম্মতি हिम्मती brave; manly.

ହିମ୍ମତିଆ—ଦେ. ବିଣ. ପୁଂ (ଆ. ହିମ୍ମତ)—ହିମ୍ମତି (ଦେଖ)
Himmatiā Himmati (See)
(ହିମ୍ମତେଇ—ସ୍ତ୍ରୀ)

ହିମ୍ୟ—ସଂ. ବିଣ (ହିମ+ଯ)—୧ । ହିମଜାତ; ହିମଭବ (ହିକାଣ୍ଡଶେଷ)—1. Born of cold or snow.
Himya
୨ । ଶୀତଳ—2. Cold.

ହିରୁଡ଼ିତାଇବା—ପ୍ରାଦେ ( ସମ୍ବଲପୁର ) କ୍ରି—(କୌଣସି ବ୍ୟକ୍ତିକୁ) Hir-girdaiba ବଳପୂର୍ବକ ଟାଣି ନେବା—To drag (a person) by force.

ହିରଲା—ପ୍ରାଦେ (ବସ୍ତର) ବି—ହରଡା— Hirla Myrobalan.

ହିର୍(ରି)ହିରେଇ—ଦେ. କ୍ରି—ହିର୍ଡ଼ିମିଚ (ଦେଖ)— Hir-(ri) hirei Hirḍ-micha (See)

ହିର (ଇତ୍ୟାଦି)—ପ୍ରା. (ଇତରବ୍ୟବହୃତ) ବି—ହିଡ଼ ଇତ୍ୟାଦି (ଦେଖ)— Hira (etc) Hirḍa etc (See). ସଂ ବି—ଲୁଗା ଅଦର ପଟି (ପ୍ର.ଶ)—A strip of cloth.

ହିରାକାଶୀଶ—ସଂ. ବି—ହିରାକସ (ଦେଖ)— Hirakāsisa Hirākasa (See).

ହିରଙ୍ଗୁ—ସଂ ବି— ରାହୁ (ଶବ୍ଦକଳ୍ପଦ୍ରୁମ)— Hirangu The ascending node

ହିରଣ(ଣ୍)—ସଂ ବି—(ହୃ. ଧାତୁ=ହରଣ କରିବା+କର୍ମ ଅନ...) Hiraṇa (ṇ) ୧ । କାଞ୍ଚନ ; ସ୍ୱର୍ଣ୍ଣ; ସୁନା (ମେଦିନୀ)—1 Gold. ୨ । ରେତ; ଖର୍ପ୍ୟ, ଶୁକ୍ର (ମେଦିନୀ)—2. Semen; virile. ୩ । ବରାଟକ; କଉଡ଼ି (ମେଦିନୀ)—3. Shell-money.

ହିରଣକଶିପୁ—ଦେ. ବି—(ନାମ)—(ସଂ. ହିରଣ୍ୟ କଶିପୁ)— Hiraṇakaśipu ହିରଣ୍ୟ କଶିପୁ (ଦେଖ)—Hiraṇya हिरण्यकशिपु हिरण्यकशिपु kaśipu (See).

ହିରଣମୟ—ଗ୍ରା. ବି—(ସଂ ହିରଣ୍ମୟ)—ହିରଣ୍ମୟ (ଦେଖ)— Hiraṇamaya Hiraṇmaya (See) हिरनमय हिरण्मय

ହିରଣାକ୍ଷ—ଦେ. ବି—( ନାମ )—(ସଂ. ହିରଣ୍ୟାକ୍ଷ)—ହିରଣ୍ୟାକ୍ଷ Hiraṇāksha (ଦେଖ)—Hiraṇyāksha (See). हिरणाक्ष हिरण्याक्ष

ହିରଣ୍ମୟ—ସଂ ବିଣ—(ହିରଣ୍=ସ୍ୱର୍ଣ୍ଣ+ବିକାରାର୍ଥେ ମୟ)—୧ । Hiraṇmaya ସ୍ୱର୍ଣ୍ଣମୟ, ସ୍ୱର୍ଣ୍ଣନିର୍ମିତ—1. Golden ; (ହିରଣ୍ମୟୀ—ସ୍ତ୍ରୀ ବିଣ) made of gold ୨ । ସ୍ୱର୍ଣ୍ଣାଭ—2. Of golden colour. ବି—(ପୁରାଣ) ୧ । ଭାରତ-ବର୍ଷାଦି ନବବର୍ଷାନ୍ତର୍ଗତ ବର୍ଷ ବା ଦେଶ ବିଶେଷ (ବିକାଣ୍ଡ ଶେଷ)—1. One of the 9 countries or continents mentioned in the Hindu Purāṇas. [ଏହା ଶ୍ୱେତ ଓ ଶୃଙ୍ଗବାନ୍ ପର୍ବତ ମଧ୍ୟରେ ଅବସ୍ଥିତ—ହି. ଶ] । ୨ । ବ୍ରହ୍ମା—2. One of the Hindu Trinity; the Creator. ୩ । ପରଂବ୍ରହ୍ମ-3. The Divine Soul pervading the universe. ୪ । ହିରଣ୍ମୟ ବର୍ଷରେ ରାଜା ଅଗ୍ନୀଧ୍ରଙ୍କ ପୁତ୍ର (ଭାଗବତ)—4. Name of a son of king Agnidhra.

ହିରଣ୍ମୟ କୋଷ—ସ. ବି—(ଦର୍ଶନ ଶାସ୍ତ୍ର) ସୂକ୍ଷ୍ମ ଦେହବହେତୁ; ଅସ୍ଥାର Hiraṇmaya kosha ସପ୍ତ ଅବରଣ ମଧ୍ୟରୁ ଏକତମ— (Philosophy) One of the seven coverings or sheaths of the soul

ହିରଣ୍ୟ—ସଂ. ବି—(ହୃ. ଧାତୁ=ନେବା + କର୍ମ ଅନ୍ୟ)—୧ । କନକ, Hiraṇya ସ୍ୱର୍ଣ୍ଣ ; ସୁନା—1. Gold. ୨ । ଧୂସ୍ତୁର (ଅମର); [ସ୍ୱର୍ଣ୍ଣ ଅର୍ଥରେ ବୈଦିକ ପର୍ଯ୍ୟାୟ- ଧୂତୁରା—2 Thorn apple; ହେମ, ଚନ୍ଦ୍ର, ରୁକ୍ମ, ଅୟଃ, Stramonium. ୩ । ରେତଃ ହିରଣ୍ୟ, ପେଶ, କୃଶନ, ଲୋହ, ( ମେଦିନୀ )—3. Semen. କନକ, କାଞ୍ଚନ, ଭର୍ମ, ଅମୃତ, ୪ । ବରାଟକ; କଉଡ଼ି (ମେଦିନୀ)— ମରୁତ୍, ଦତ୍ର, ଜାତରୂପ 4. Shell money. ୫ (ବେଦ ନିର୍ଘଣ୍ଟ)] ଦ୍ରବ୍ୟ; ବସ୍ତୁ ( ମେଦିନୀ )— 5. Thing. ୬ । ମାନଭେଦ; ପରିମାଣ ବିଶେଷ (ମେଦିନୀ)—6. A unit of measure. ୭ । ପରଂବ୍ରହ୍ମ—7. The Supreme Soul. ୮ । ଅକୁପ୍ୟ (ଦେଖ)—8. Akupya (See). ୯ । ରଜତ (ଶବ୍ଦ ରତ୍ନାବଳୀ)—9. Silver. ୧୦ । ଧନ (ଶବ୍ଦ ରତ୍ନାବଳୀ) —10. Property. ୧୧। ସ୍ୱର୍ଣ୍ଣ ପାତ୍ର (ଆପ୍ତେ)—11. Any vessel of gold (Apte). ୧୨ । ବହୁମୂଲ୍ୟ ଧାତୁ (ଆପ୍ତେ)—12. Any precious metal (Apte). ୧୩ । ହିରଣ୍ମୟ ବର୍ଷ (ହି. ଶ)—13. Hiraṇmaya barsha (See). ୧୪ । ଜ୍ଞାନ (ହି. ଶ)—14. Knowledge. ୧୫ । ଜ୍ୟୋତିଃ (ହି. ଶ)—15. Lustre. ୧୬ । ଅମୃତ (ହି. ଶ)—16. Nectar. ଦେ. ବି—ହିରଣ୍ୟ କଶିପୁ ( ଦେଖ )—Hiraṇya Kaśipu (See).

ହିରଣ୍ୟ କଶିପୁ—ସଂ ବିଣ [ବିହୁବ୍ରୀହି; ସ୍ୱର୍ଣ୍ଣମୟ ତକିଆ ବା ଗଦିବିଶିଷ୍ଟ Hiraṇya kaśipu [ହି. ଶ]—Having a pillow or cushion of gold. ସ. ବି [ନାମ; ହିରଣ୍ୟ=ସ୍ୱର୍ଣ୍ଣ ଅଟେ କଶିପୁ=ଶଯ୍ୟା ଯାହାର ]—କଶ୍ୟପ ମୁନିଙ୍କ ଔରସରେ ଦିତିପତ୍ନୀ ଦିତିଙ୍କ ଗର୍ଭରୁ ଜାତ ଓ ନୃସିଂହ ଅବତାରରେ ବିଷ୍ଣୁଙ୍କ ଦ୍ୱାରା ହତ ପ୍ରସିଦ୍ଧ ଦୈତ୍ୟ— Name of a demon, son of Kaśyapa killed by Bishṇu in his Nrusimha incarnation. [ବି—ଏହାଙ୍କ ସହୋଦର ହିରଣ୍ୟାକ୍ଷ । ଏହାଙ୍କର ଭାର୍ଯ୍ୟା କୟାଧୁ । ଏହାଙ୍କର ୪ ଗୋଟି ପୁତ୍ର—ସଂହ୍ଲାଦ, ଅନୁହ୍ଲାଦ, ହ୍ଲାଦ ଓ ପ୍ରହ୍ଲାଦ ବା ପ୍ରହ୍ଲାଦ । ଏହାଙ୍କ କନ୍ୟା ସିଂହିକା । ବିଷ୍ଣୁଙ୍କ ଦ୍ୱାରା ହତ ମଧୁକୈଟଭ ପୁନରପି ହିରଣ୍ୟକଶିପୁ ଓ ହିରଣ୍ୟାକ୍ଷ ନାମରେ ଜନ୍ମ ହୋଇଥିଲେ ।

ହିରଣ୍ୟାକ୍ଷ ଅତ୍ୟନ୍ତ ଦୁର୍ଦ୍ଦାନ୍ତ ହେବାରୁ ବିଷ୍ଣୁଙ୍କ ଦ୍ୱାରା ନିହତ ହେଲେ । ହିରଣ୍ୟକଶିପୁ କଠୋର ତପଃ ସାଧନ କରି ବ୍ରହ୍ମାଙ୍କଠାରୁ ବର ପାଇଥିଲେ ଯେ, ସେ ଅସ୍ତ୍ର ଦ୍ୱାରା ଅବଧ ହେବେ ଓ ଭୂତଳରେ, ଜଳରେ ବା ସ୍ଥଳରେ, ଦିବା-

ଘରରେ ବା ସନ୍ଧିକାଳରେ ଏହାଙ୍କ ମୃତ୍ୟୁ ହେବ ନାହିଁ । ସେ ଏହି ବରଦୃପ୍ତ ହୋଇ ଅତ୍ୟନ୍ତ ଯଥେଚ୍ଛାଚାରୀ ହୋଇ ଉଠିଲେ । ଏହାଙ୍କ କନିଷ୍ଠ ପୁତ୍ର ପ୍ରହ୍ଲାଦ ପରମବୈଷ୍ଣବ ଥିଲେ, କିନ୍ତୁ ହିରଣ୍ୟକଶିପୁ ବିଷ୍ଣୁଦ୍ୱେଷୀ ଥିଲେ । ଶିଶୁ ପ୍ରହ୍ଲାଦ ସର୍ବଦା ବିଷ୍ଣୁଙ୍କର ଆରାଧନା କରିବାରୁ ହିରଣ୍ୟକଶିପୁ ଶିକ୍ଷକମାନଙ୍କୁ ଆଦେଶ ଦେଲେ ଯେ ପ୍ରହ୍ଲାଦ ହରି-ନାମ ତ୍ୟାଗ କରୁ; କିନ୍ତୁ ପ୍ରହ୍ଲାଦ ତାହା ନ କରିବାରୁ ହିରଣ୍ୟକଶିପୁ ପ୍ରହ୍ଲାଦଙ୍କ ପ୍ରାଣନାଶ କରିବାକୁ ତାଙ୍କୁ ସର୍ପ ଦ୍ୱାରା ଦଂଶନ, ଅଗ୍ନିରେ ନିକ୍ଷେପ, ଜଳରେ ମଜ୍ଜନ, ହସ୍ତିପଦ ଦ୍ୱାରା ଦଳନ ଓ ଅସ୍ତ୍ରାଘାତ କରାଇଲେ; ତଥାପି ଭକ୍ତ ପ୍ରହ୍ଲାଦଙ୍କର ମୃତ୍ୟୁ ହେଲା ନାହିଁ । ଏହା ଦେଖି ହିରଣ୍ୟ-କଶିପୁ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପୁତ୍ରଙ୍କୁ ପଚାରିବାରୁ ପୁତ୍ର କହିଲେ ଯେ, ତାଙ୍କୁ ହରି ରକ୍ଷା କଲେ । ହରି କାହାନ୍ତି ବୋଲି ପିତା ପଚାରିବାରୁ ପୁତ୍ର କହିଲେ 'ହରି ସର୍ବଦା ସର୍ବତ୍ର ବିଦ୍ୟମାନ'। ପିତା ପଚାରିଲେ 'ତୋ ହରି ଏହି ସ୍ଫଟିକ ସ୍ତମ୍ଭରେ ଅଛନ୍ତି କି ?' ପୁତ୍ର କହିଲେ 'ହିଁ'। ଏହା ଶୁଣି ହିରଣ୍ୟକଶିପୁ ସେହି ସ୍ତମ୍ଭକୁ ପଦାଘାତରେ ଭାଙ୍ଗି-ଦେବାରୁ ତହିଁ ମଧ୍ୟରୁ 'ନରସିଂହ'ରୂପଧାରୀ ବିଷ୍ଣୁ ବାହାରି ହିରଣ୍ୟକଶିପୁଙ୍କୁ ଆପଣା ଜଙ୍ଘ ଉପରେ ରଖି ଦିବସ ଓ ରାତ୍ରିର ସନ୍ଧି (ସନ୍ଧ୍ୟା) କାଳରେ ସ୍ୱୀୟ ନଖଦ୍ୱାରା ତାହାଙ୍କ ବକ୍ଷ ବିଦାରଣ କରି ମାରି ପକାଇଲେ; କିନ୍ତୁ ପରେ ଦେଖାଗଲା ଯେ, ତାହାଙ୍କ ବିଖଣ୍ଡି ହୃତ୍‌ପିଣ୍ଡ ମଧ୍ୟରୁ 'ହରି ହରି' ଶବ୍ଦ ବାହାରୁ ଥିଲା । ]

ହିରଣ୍ୟକଶିପୁହା—ସଂ. ବି. ପୁଂ—( ହିରଣ୍ୟକଶିପୁ+ହନ୍ ଧାତୁ= Hiraṇya kaśipuhā ବଧ କରିବା+କର୍ତ୍ତୃ କ୍ୱିପ୍ )—ବିଷ୍ଣୁ—A name of Bishṇu.

ହିରଣ୍ୟ କାମଧେନୁ—ସଂ. ବି—ସ୍ୱର୍ଣ୍ଣମୟ କାମଧେନୁ; ଷୋଡ଼ଶ ଦାନା-Hiraṇya kāmdhenu ନ୍ତର୍ଗତ ମହାଦାନ ବିଶେଷ—One of the 16 great gifts prescribed in the Hindu Śāstras. [ ଦ୍ର—ସ୍ୱର୍ଣ୍ଣରେ ଗୋଟିଏ ଗାଈ ଓ ଗୋଟିଏ ବାଛୁରି ତିଆରି କରାଇ ତାଙ୍କୁ ମହାବ୍ରାହ୍ମଣମାନଙ୍କଦ୍ୱାରା ମଣ୍ଡିତ କରି, ନାନା ଫଳପୁଷ୍ପ ଛଅ ପ୍ରକାର ବ୍ୟଞ୍ଜନାଦି, କୌଶେୟ ବସ୍ତ୍ର ଓ ମିଷ୍ଟାନ୍ନାଦି ସହିତ ଶୀଳକୁଳରୂପ-ଗୁଣାନ୍ୱିତ ବ୍ରାହ୍ମଣଙ୍କୁ ଦାନ କରିବାକୁ ହୁଏ ;ଏଥିର ଫଳ ପରଲୋକରେ ସ୍ୱର୍ଗଧାମ ପ୍ରାପ୍ତି—ମତ୍ସ୍ୟପୁରାଣ । ]

ହିରଣ୍ୟ ଗର୍ଭ—ସଂ. ବି—( ବହୁବ୍ରୀହି; ହିରଣ୍ୟ=ସ୍ୱର୍ଣ୍ଣ ଅଟେ ଗର୍ଭ= Hiraṇya garbha ଉତ୍ପତ୍ତି ସ୍ଥଳ ଯାହାଙ୍କର; ପୁରାଣ ମତରେ । ଗୋଟିଏ ସ୍ୱର୍ଣ୍ଣବର୍ଣ୍ଣ ଅଣ୍ଡରୁ ଜାତ ହୋଇଥିବାରୁ )—୧ । ବ୍ରହ୍ମା—1. Brahmā; the Creator. ୨ । ଷୋଡ଼ଶ ମହାଦାନାନ୍ତର୍ଗତ ଦ୍ୱିତୀୟ ଦାନ—2. The second of the 16 great gifts prescribed in the Hindu Śāstras [ଦ୍ର—ଗୋଟିଏ ସ୍ୱର୍ଣ୍ଣମୟ କୁଣ୍ଡରେ ସ୍ୱର୍ଣ୍ଣପଦ୍ମ ସ୍ଥାପନ କରି ତହିଁରେ ଉହାଦ ପୂର୍ଣ୍ଣ କରି ତାହା ଉପରେ ଗୋଟିଏ ସ୍ୱର୍ଣ୍ଣର ଢାକୁଣି ଘୋଡ଼ାଇ, ସ୍ୱର୍ଣ୍ଣର ଦଣ୍ଡ ଓ କମଣ୍ଡଳୁ 'ହିରଣ୍ୟଗର୍ଭ'ଙ୍କ ନାମଯୁକ୍ତ ମନ୍ତ୍ର (ଓଁ ହିରଣ୍ୟ ଗର୍ଭାୟ ହିରଣ୍ୟଗର୍ଭାୟ ନମଃ) ଉଚ୍ଚାରଣ ପୂର୍ବକ ଏହି 'ହିରଣ୍ୟଗର୍ଭ'ର ଦଶକର୍ମ (ଗର୍ଭାଧାନ, ପୁଂସବନାଦି) ସମ୍ପାଦନ କରି ଗୁରୁଙ୍କୁ ବା ବ୍ରାହ୍ମଣଙ୍କୁ ଛଅ ପ୍ରକାର ଭୋଜନାଦି ସହିତ ଦାନ କରିବା ରୂପ ଦାନ କର୍ମ (ମତ୍ସ୍ୟପୁରାଣ)।] ୩ । ବିଷ୍ଣୁସହସ୍ରନାମୋକ୍ତ ବିଷ୍ଣୁଙ୍କ ନାମ—3. One of the epithets of Bishnu. ( ଯଥା—ହିରଣ୍ୟଗର୍ଭୋ, ଭୂଗର୍ଭୋ ମାଧବୋ ମଧୁସୂଦନଃ-ବିଷ୍ଣୁସହସ୍ରନାମ ) ୪ । ସୂକ୍ଷ୍ମଶରୀର ସମଷ୍ଟ୍ୟୁପହିତ ଚୈତନ୍ୟ; ପ୍ରାଣାତ୍ମା; ସୂତ୍ରାତ୍ମା (ବେଦାନ୍ତସାର)—4. (Philosophy) The inmost consciousness underlying the ethereal body. ୫ । ଶାଳଗ୍ରାମ ଶିଳାବିଶେଷ 5. Name of a kind of Śālagrāma. ଦେ.ବି—ଲିଙ୍ଗମୂର୍ତ୍ତିଶୂନ୍ୟ ଶିବଶକ୍ତି—The Sakti without the Śiba linga.

ହିରଣ୍ୟଦ—ସଂ. ବିଣ ପୁଂ—( ହିରଣ୍ୟ+ଦା ଧାତୁ+କର୍ତ୍ତୃ ଅ )—ଯେ Hiraṇyada ହିରଣ୍ୟ ବା ସୁବର୍ଣ୍ଣ ଦାନ କରେ—Giving (ହିରଣ୍ୟଦା—ସ୍ତ୍ରୀ ବିଣ) gold. ବି—ସମୁଦ୍ର (ଶବ୍ଦକଳ୍ପଦ୍ରୁମ)—The ocean.

ହିରଣ୍ୟଦା—ସଂ ବିଣ ସ୍ତ୍ରୀ—ହିରଣ୍ୟଦର ସ୍ତ୍ରୀଲିଙ୍ଗ—Feminine of Hiraṇyadā Hiraṇyada. ବି. ସ୍ତ୍ରୀ—ପୃଥିବୀ (ଶବ୍ଦକଳ୍ପଦ୍ରୁମ) The earth.

ହିରଣ୍ୟନାଭ—ସଂ ବି—(ବହୁବ୍ରୀହି; ହିରଣ୍ୟ+ନାଭି; ଯାହା ନାଭିରେ Hiraṇya nābha ହିରଣ୍ୟ ଅଛି )—ମୈନାକ ପର୍ବତ (ହେମଚନ୍ଦ୍ର )—The mythological mountain Maināka.

ହିରଣ୍ୟବ—ସଂ ବି—( ହିରଣ୍ୟ+ବ )—ଦେବଧନ; ଦେବସ୍ୱ ( ଶବ୍ଦ-Hiraṇyaba କଳ୍ପଦ୍ରୁମ)—Property of a Deity.

ହିରଣ୍ୟ ବର୍ଣ୍ଣ—ସ ବିଣ—(ବହୁବ୍ରୀହି, ହିରଣ୍ୟ ପରି ବର୍ଣ୍ଣ ଯାହାର)—Hiraṇya barṇṇa ସ୍ୱର୍ଣ୍ଣପରି ବର୍ଣ୍ଣ ବିଶିଷ୍ଟ—Of golden (ହିରଣ୍ୟ ବର୍ଣ୍ଣା—ସ୍ତ୍ରୀ) colour.

ହିରଣ୍ୟ ବର୍ଣ୍ଣା—ସଂ ବିଣ—ହିରଣ୍ୟ ବର୍ଣ୍ଣର ସ୍ତ୍ରୀଲିଙ୍ଗ—Feminine of Hiraṇya barṇṇā Hiraṇya barṇṇa ବି—ନଦୀ (ହେମଚନ୍ଦ୍ର)—River.

ହିରଣ୍ୟବାହ—ସଂ ବି—(ହିରଣ୍ୟ+ବହ୍ ଧାତୁ+କର୍ତ୍ତୃ ଅ )—ଶୋଣ Hiraṇya bāha ନଦ (ଭରତ)—The river Śoṇa.

ହିରଣ୍ୟବାହୁ—ସଂ ବି—(ବହୁବ୍ରୀହି)—୧ । ଶିବ ( ଶବ୍ଦକଳ୍ପଦ୍ରୁମ)—1. Hiraṇya bāhu God Śiba. ୨। ଶୋଣନଦ (ଅମର)—2.The river Śoṇa.

ହିରଣ୍ୟରେତାଃ—ସଂ ବି—(ବହୁବ୍ରୀହି; ହିରଣ୍ୟ+ରେତସ୍; ହିରଣ୍ୟ-Hiraṇyaretāḥ ରେତସ୍ ୧ମା ୧ବ)—୧ । ଅଗ୍ନି (ଅମର)—1. Fire. [ଦ୍ର—ଶିବଙ୍କ ତ୍ୟକ୍ତ ବୀର୍ଯ୍ୟକୁ ଅଗ୍ନି ପାନ କରି-

ତହିଁର ତେଜକୁ ସମ୍ଭାଳି ନ ପାରି ବୃହିଲା ଦେବାଙ୍କୁ ତାହା ସମର୍ପଣ କଲେ ଓ ସେହିଦକଠାରୁ ଅଗ୍ନି ଉପୂରେ ୫ ହଜାର ବର୍ଷକାଳ ବୁଲିଲେ ଓ ତଦବଧି ତାଙ୍କର ମାଂସ, ଅସ୍ଥି, ମେଦ, ମଜ୍ଜା, ଚର୍ମ, ରୋମ, ଚକ୍ଷୁ, କେଶ ସମସ୍ତ ହିରଣ୍ମୟ ହେଲା । ଏଥିପାଇଁ ପାବକଙ୍କର ନାମ ହିରଣ୍ୟ ରେତାଃ । (ବାମନପୁରାଣ)] ୨ । ଚିତ୍ରକ ବୃକ୍ଷ (ଅମର); ଧଳାଚିତା ଗଛ—2 Plambago Zeylanica (plant ) ୩ । ଶିବ [ଶବ୍ଦରତ୍ନାବଳୀ]—3. God Siba. ୪ । ସୂର୍ଯ୍ୟ [ମେଦିନୀ]—4. The sun.

ହିରଣ୍ୟାକ୍ଷ—ସଂ. ବି—[ନାମ]—ହିରଣ୍ୟକଶିପୁଙ୍କ ଯାଆଁଳା ଭାଇ—
Hiraṇyāksha Name of the twin brother of Hiraṇyakaśipu. [ଦ୍ର—ଏ ବ୍ରହ୍ମାଙ୍କ ବରରେ ଅତ୍ୟନ୍ତ ଅତ୍ୟାଚାରୀ ହୋଇ ଉଠିବାରୁ ଶେଷକୁ ବରାହରୂପ ଧାରଣ କରି ବିଷ୍ଣୁ ଏହାଙ୍କୁ ବଧ କରିଥିଲେ । ହିରଣ୍ୟାକ୍ଷ ଦେବତାମାନଙ୍କୁ ପରାସ୍ତ କରି ପୃଥିବୀକୁ ନେଇ ପାତାଳରେ ପ୍ରବେଶ କରିଥିଲେ ଓ ବିଷ୍ଣୁ ତାଙ୍କୁ ମାରି ପୃଥିବୀକୁ ଉଦ୍ଧାର କଲେ—ଗରୁଡପୁରାଣ ।]

ହିରଣ୍ୟାଶ୍ୱ—ସଂ. ବି—ସ୍ୱର୍ଣ୍ଣମୟ ଅଶ୍ୱଦାନ; ତୁଳା ପୁରୁଷାଦି ଷୋଡଶ ମହା-
Hiraṇyāśwa ଦାନାନ୍ତର୍ଗତ ଦାନ ବିଶେଷ—One of the 16 great gifts mentioned in the Purāṇas
[ଦ୍ର—ସ୍ୱର୍ଣ୍ଣମୟ ଅଶ୍ୱ ନିର୍ମାଣ କରି ତାହା ଧନ, ରତ୍ନ, ବସ୍ତ୍ର, ମିଷ୍ଟାନ୍ନ, ଛତ୍ର ଶୁଭବସ୍ତ୍ର ସହ ବ୍ରାହ୍ମଣଙ୍କୁ ଦାନ କରିବା ରୂପ କର୍ମ—ଏହାର ଫଳ ବିଷ୍ଣୁଲୋକପ୍ରାପ୍ତି—ମତ୍ସ୍ୟପୁରାଣ ।]

ହିରଣ୍ୟାଶ୍ୱରଥ—ସଂ. ବି—ସ୍ୱର୍ଣ୍ଣମୟ ଅଶ୍ୱ ସହିତ ରଥ ଦାନ; ଷୋଡ଼ଶ
Hiraṇyāśwaratha ମହାଦାନାନ୍ତର୍ଗତ ଦାନ ବିଶେଷ—
One of the 16 great gifts prescribed in the Śāstras.
[ଦ୍ର—ଦୁଇଟି ସ୍ୱର୍ଣ୍ଣମୟ ଅଶ୍ୱ ଲାଗିଥିବା ସ୍ୱର୍ଣ୍ଣ ରଥକୁ ଛତ୍ର, ଗଜ, ରଥସଜ୍ଜା, କୌଷେୟବସ୍ତ୍ର, ମିଷ୍ଟାନ୍ନାଦି ସହିତ ବ୍ରାହ୍ମଣଙ୍କୁ ଦାନ କରିବା ରୂପ ଦାନ—ଏଥିର ଫଳ ଶିବଲୋକପ୍ରାପ୍ତି—ଗରୁଡ଼ ପୁରାଣ ।]

ହିରା କଶ(ଷ)—ଦେ. ବି (ସଂ. ହରିତ୍ କାଶୀଶ, ହରିକାଶୀଶ; ଏହାର ବର୍ଣ୍ଣ
Hirā kaśa(sha) ହରିତ୍ ବା ଶାଗୁଆ ଥିବାରୁ)—ଲୌହ ଓ
ସଂ. ନାମ—କାଶୀଶ, ଗନ୍ଧକ ମିଶ୍ରିତ ଉପରସ ବିଶେଷ—
ହରିତ୍କାଶୀଶ, ହରିକାଶୀଶ, Copperas; green vitriol;
ଧାତୁକାଶୀଶ, ପାଂଶୁକାଶୀଶ । sulphate of iron; Ferri Sulphus.

ହିରାକଶ [ଦ୍ର—ଈଷତ୍ ପୀତବର୍ଣ୍ଣ କାଶୀଶକୁ
हीराकसीस ପୁଷ୍ପକାଶୀଶ କହନ୍ତି । କାଶୀଶ
ମ. ହିରାକସ୍ ଶବ୍ଦ ଅମର ଓ ମେଦିନୀରେ ନାହିଁ;
ଫା. ଜାକେଜରଦ୍ ହେମଚନ୍ଦ୍ର ଓ ଚକ୍ରଦତ୍ତରେ ଏ ଶବ୍ଦ
ଅ. ଜାକ୍ଅସ୍ଫର୍ ଅଛି । ସମ୍ଭବତଃ ଏହା କଷାୟ ଥିବାରୁ
ଗଞ୍ଜାମ. ଅନ୍ନଭେଦୀ ଏହି ଶବ୍ଦ ଉତ୍ପନ୍ନ ହୋଇଅଛି । ଭାରତ-
ବର୍ଷରେ ଏହା ପର୍ବତରୁ ଓ ଖଣିରୁ ମିଳେ । ଏହାର ବର୍ଣ୍ଣ ଶାଗୁଆ । ବର୍ତ୍ତମାନ ପାଶ୍ଚାତ୍ୟ ବିଜ୍ଞାନ ସାହାଯ୍ୟରେ ଏହା ଲୌହ ଓ ଗନ୍ଧକର ରସାୟନିକ ମିଶ୍ରଣରେ ପ୍ରସ୍ତୁତ ହେଉଅଛି । ଏହା ସ୍ୟାହି ଓ ରଙ୍ଗ ତିଆରି ପାଇଁ ବ୍ୟବହୃତ ହୁଏ । ଏହା ଅମ୍ଳ, ତିକ୍ତ, କଷାୟ, ଉଷ୍ଣବୀର୍ଯ୍ୟ ଓ କେଶର ହିତକର । ଏହା ବିଷାକ୍ତ ଏବଂ ବାୟୁ, କଫ, ନେତ୍ରକଣ୍ଡୁ, ମୂତ୍ରକୃଚ୍ଛ୍ର, ଅଶ୍ମରୀ ଓ ଶ୍ୱିତ୍ର ରୋଗରେ ହିତକର ।]

ହିରାଟ୍—ଦେ. ବି (ନାମ)—ଆଫଗାନିସ୍ଥାନର ଗୋଟିଏ ନଗର (ଏହା
Hirāt କାବୁଲ ନଗରର ପଶ୍ଚିମକୁ ପ୍ରାୟ ୫୦୦ ମାଇଲ ଦୂର)—
हिरात Name of a town in Afganistan.
हरात

ହିରିଙ୍ଗ୍(ଙ୍ଗୁ)—ବୈଦେ (ଇଂ) ପ୍ରାଦେ (ଗଞ୍ଜାମ) ବି ( କଚେରିଆ )—
Hiring(ṅgu) ମକଦ୍ଦମାର ଶୁଣାଣି—The hearing or trial of a case.

ହିରୀ—ଗ୍ରା (ପଦ୍ୟ) ବି (ସଂ. ହ୍ରୀର ଉଚ୍ଚାରଣ ଦୋଷ)—ହ୍ରୀ ( ଦେଖ )
Hiri ହ୍ରୀ हिरी Hri ( See )
[ଉ—ସେ ରୁଣ୍ଡ ହୋଇଥିବେ ଯେ ତହିଁ, ଦର୍ଶନେ ହିରୀ ଦିଗରେ ଥୋଇ, ମୁକ୍ତା ମୁକୁଟ ଲୋଟାଇ ମଥା ବିକ୍ରମ ବଳେ ଯେ । ଉପେ. କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ।]

ହିରୁଆଁ—ପ୍ରାଦେ (ଲରିଆ ଭାଷା) ବି—କୋଲଥ—
Hiruāṅ Horse gram.

ହିଲ (ଧାତୁ—ସଂ. ବି—୧ । ହାବ କରିବା, ଭଙ୍ଗି କରିବା—
Hil (root) 1. To make gestures or movements of the face. ୨ । ଆଉଜି ପଡିବା—2. To lean to; to incline to. ୩ । ଦୋହୋଲିବା—3. To move to and fro, to rock to and fro.

ହିଲ(ଲ)ମ୍ ଢିଲମ୍(ଢିଲା)—ଦେ. କ୍ରି. ବିଣ ( ସଂ. ହେଳା ଓ ଅ, ଢିଲ)
Hila(la)m ḍhilam(ḍhilā) —ଅଯତ୍ନ ପୂର୍ବକ (କାମ କରିବା)
हेला ढेला —(to do anything) Carelessly.
हिलाढिला ବି—ହେଲଅଁ ହେଲା ( ଦେଖ )—
Helauṅ helā ( See )
ବିଣ—ଅଯତ୍ନକୃତ (କର୍ମ)—Carelessly done (work).

ହିଲ(ଲ) ମୋଚିକା(ମୋଚୀ)—ସଂ. ବି—ହିଡ଼ମିଚ୍ଚ ( ଦେଖ )
Hila(la) mochikā(mochi) Hirḍ-michā (See)

ହିଲା(ଲ୍ଲା)—ବୈଦେ. ବି (ଅ, ହିଲ୍ଲା)—୧ । ହଲ୍ଲା ( ଦେଖ )
Hilā(llā) हल्ला हल्ला 1. Hallā ( See )
हिल्ला ୨ । ( ଅ. ହିଲ୍ ) ଆଶ୍ରୟ—2. Shelter.
आश्रय ୩ । ଅବଲମ୍ବନ; ଉପାୟ—3. Resource.

ହିଲା—ପ୍ରାଦେ (ଖଡ଼ିଆଳ) ବି—ବାହାନା—
Hilā Feigning; pretence; excuse.
(ହିଲା ହବାଲା—ଅନ୍ୟରୂପ)

ହିଲ୍ଲ—ସଂ. ବି—ଜଳଚର ପକ୍ଷୀ ( ଶବ୍ଦ ଚନ୍ଦ୍ରିକା ); ଗରିଡ଼—
Hilla A species of fresh water duck; a teal (a quatic bird).

ହିଲ୍ଲୋଳ—ସଂ. ବି ( ହିଲ୍ ଧାତୁ=ଦୋହଲିବା + ଭାବ. ଓଳ )—
Hillola ୧ । ଆନ୍ଦୋଳନ; ଦୋଳନ, ଇତସ୍ତତଃ ଦୋହଲିବା—
1. Rocking to the fro; movement.
୨। ତରଙ୍ଗ; ଢେଉ—2. Wave. ୩ । ଦୋହଲାଇବା—
3. Rocking. ୪ । ସଙ୍ଗୀତରେ ରାଗିଣୀ ବିଶେଷ—
4. Name of a musical tune. [ଦ୍ର—ଏହା
ହିନ୍ଦୋଳ ରାଗର ନାମାନ୍ତର । ହିଲ୍ଲୋଳ ରାଗର ରାଗିଣୀ—
ମାୟୂରୀ, ଦୀପିକା, ଦେଶକାରୀ, ପାହିଡ଼ୀ ବା ପାହାଡ଼ୀ,
ବରାଡ଼ି, ମୋରହାଟୀ ।] ୫ । ଷୋଡ଼ଶ ରତାନ୍ତର୍ଗତ
ରତିବନ୍ଧ ବିଶେଷ—5. One of the 16 postures
assumed during coition.
[ଦ୍ର—ଏହି ବନ୍ଧର ଲକ୍ଷଣ—
ହୃଦି କୃତ୍ୱା ସ୍ତ୍ରିୟଃ ପାଦୌ କରାଭ୍ୟାଂ ଧାରୟେତ୍ କଟୌ
ଯଥେଷ୍ଟଂ ତାଡ଼ୟେଦ୍ ଯୋନିଂ ବନ୍ଧୋ ହିଲ୍ଲୋଳସଂଜ୍ଞକଃ ।
ରତିମଞ୍ଜରୀ ।]

ହିଲ୍ୱଲା—ସଂ. ବି ସ୍ତ୍ରୀ—ମୃଗଶିର ନକ୍ଷତ୍ରର ଶିରୋଦେଶସ୍ଥ ପଞ୍ଚ କ୍ଷୁଦ୍ର
Hilwalā ତାରକା (ଶବ୍ଦରତ୍ନାବଳୀ)—Five very small
stars at the top of the constellation
Mṛugaśirā.
[ଦ୍ର—ଏ ପାଞ୍ଚଟି ତାରା ମଧ୍ୟରୁ କେବଳ ୩ ଗୋଟି ତାରା
ଖାଲି ଆଖିକୁ ଦେଖାଯାଏ, ନକ୍ଷତ୍ର ତଳେ ଟୀକା ଦେଖ]

ହିଷ୍—ଦେ. ଅ (ଧ୍ୱନ୍ୟନୁକରଣ)—୧ । ସାପ ଆଦିଙ୍କର ଶୁ ଶୁ ଶବ୍ଦ—
Hish (ତୁଳନାକର ଇଂ. ହିସ୍)—1. Hissing sound ୨ ।
ଇସ୍ ! ଘୃଣାର୍ଥକ ଅବ୍ୟୟ —2. Interjection expr-
essing contempt.
ফোঁস हिस

ହିଷ୍ଟ(ଷ୍ଟି, ଷ୍ଟେ, ଷ୍ଟୋ)ରି—ବୈଦେ. ବି (ଇଂ. ହିଷ୍ଟୋରି)—ଇତିହାସ—
Hishṭa(shṭi, shṭe, shṭo)ri History.
[ହିଷ୍ଟ୍ରି—ଅନ୍ୟରୂପ]
হিষ্টি हिष्‌टरी

ହିଷ୍ଟ(ଷ୍ଟି, ଷ୍ଟେ)ରିଆ—ବୈଦେ. ବି (ଇଂ ହିଷ୍ଟେରିଆ)—ଯୁବତୀମାନଙ୍କର
Hishṭa(shṭi,shṭe)riā ମୂର୍ଚ୍ଛାରୋଗ ବିଶେଷ; ଶାଣ୍ଡିଲ୍ୟବାତ;
ଯୁବତୀମାନଙ୍କ ମୃଗୀରୋଗ—Hysteria. [ଦ୍ର—ଏହା
ସାଧାରଣତଃ ଯୁବତୀ ଓ ବନ୍ଧ୍ୟାମାନଙ୍କୁ ଧରେ; ସନ୍ତାନାଦି ଜନ୍ମ
ହେବା ପରେ ଏହା ବନ୍ଦ ହୋଇଯାଏ । ଏହି ରୋଗଗ୍ରସ୍ତା
ସ୍ତ୍ରୀ କଳ୍ପନା କରନ୍ତି ଯେ, ତାଙ୍କର କଣ୍ଠଦେଶରେ ଅଣ୍ଡାପରି
ଗୋଟାଏ ଖଣ୍ଡ ପେଟ ଭିତରୁ ଉଠିଆସି ଲାଗି ଯାଇଛି ।
ଏଥିପାଇଁ ସେମାନେ କିଛି ଖାଇ ପାରନ୍ତି ନାହିଁ ଓ ମଝିରେ
ମଝିରେ ବହୁକ୍ଷଣ ପର୍ଯ୍ୟନ୍ତ ମୂର୍ଚ୍ଛିତା ହୁଅନ୍ତି । ଏହା ମାନସିକ
ଓ ସ୍ନାୟବିକ ରୋଗ ବୋଲି ଡାକ୍ତରମାନେ କହନ୍ତି ।]
হিষ্টিরিয়া हीष्टिरिआ

ହିସା (ସ୍ସା)—ବୈଦେ. ବି (ଅ. ହିସ୍ସା)—ଭାଗ, ଅଂଶ; ହିସ୍ସା—
Hisā (ssā) Share;
হিস্যা हिस्सा

ହିସା(ସ୍ସା)ଦାର - ବୈଦେ. ବି(ଅ)—ହିସାଦାର୍; ଭାଗଦାର—
Hisā(ssā) dār Partner; cosharer.
হিস্যাদার हिस्सादार

ହିସା(ସ୍ସା)ଦାରି - ବୈଦେ. ବି (ଅ)—ଭାଗଦାରି—
Hisā(ssā)dāri Partnership; coparcenary.
হিস্যাদারী हिस्सादारी

ହିସାବ—ବୈଦେ. ବି (ଅ. ହିସାବ୍)—୧ । ଆୟ ବ୍ୟୟାଦିର ଗଣନା ବା
Hisāba ଧାରାବାହିକ ବିବରଣ—1. Account; statement
of income and expense; systematical
writing of account. ୨ । ପରିମାଣ—
2. Amount; quantity. ୩ । ଲେଖା—
3. Writing. ୪ । ଗଣନା—4. Calculation;
reckoning. ୫ । ଦର—5. Rate. (ଯଥା—
ଟଙ୍କା ୬ ହିସାବରେ ଆମ୍ବ କିଣିଲି ) ୬। ଅଙ୍କ; ଗଣିତ
6. Arithmetic. ୭ । ନିୟମ—7. Rule.
୮ । ଶୃଙ୍ଖଳା; ଧାରାବାହିକତା— 8. Order; system.
୯ । ବିଚାର; ବିବେଚନା—9. Thinking; thought:
consideration. [ଯଥା—ତୋ ହିସାବରେ ସଂସାର
ରେ ଆଉ କେହି ତୋ ଠାରୁ ବୁଦ୍ଧିଆ ନାହାନ୍ତି]
হি(হে)সাব हिसाब

ହିସାବ ଅମେଲ—ଦେ. ବି—ଆୟବ୍ୟୟ ସଙ୍ଗେ ତହବିଲ ବାକିର ଅମେଳ—
Hisāba amela ମଜ୍ଜୁଦ୍—The disagreement of the
cash balance with the debit and
credit entries in an account.

ହିସାବ କରିବା—ଦେ. କ୍ରି—୧ । କୌଣସି ବିଷୟ ସମ୍ବନ୍ଧେ ଆୟବ୍ୟୟ
Hisāba kariba ବା ଦେୟ ପ୍ରାପ୍ୟ ଆଦି ଗଣନା କରିବା—
1. To cast an account; to calculate the
debit and credit sides of transaction.
୨ । ଦେଣାପାଉଣା—2. Dues and
liabilities.

ହିସାବ କିତାପ(ବ)—ବୈଦେ. ବି (ଅ)—୧ । ହିସାବ ବହି ( ଦେଖ )
Hisāba kitāpa(ba) 1. Hisāba bahi ( See )
হি(হে)সাব কিতাপ ୨ । ଦେଣା ପାଉଣା—2. Dues and
liabilities.
हिसाब किताब

ହିସାବ ଗୋଲମାଲ—ଦେ. ବି—ଅନୃଙ୍ଖଳିତ ଭାବରେ ଲେଖା ହୋଇ ନ
Hisāba golamāla ଥିବା ଆୟବ୍ୟୟାଦିର ବିବରଣ; ହିସାବରେ
হিসাব গোলমাল ଭୁଲ—Confusion in accounts.
हिसाब गोलमाल

ହିସାବ ଚଢ଼ା(ଢ଼େ)ଇବା—ଦେ. କ୍ରି—ହିସାବ ବହିରେ ହିସାବ
Hisāba chaṛhā(ṛhe)ibā ଲେଖିବା—To enter an
হি(হে)সাব চড়ান account in a book.
हिसाब चढ़ाना

ହିସାବ ଚୁକା(କେ)ଇ ଦେବା—ଦେ. କ୍ରି—ପରସ୍ପରର ପ୍ରାପ୍ୟ ବା
Hisāba chukā(ke)i debā ଦେୟକୁ ହିସାବ କରି ବିବାଦ

[ହିସାବ ଚୁକାଇଦେବା— ଜାମାରୁଜ ] ଆନୁଷଙ୍ଗ କରିବା—
হিসাব চুকান, হিসাব চুকিয়ে দেওয়া To finally settle
हिसाब चुकादेना or clear off one's accounts with
another person.

ହିସାବ ଚୁକ୍ତି—ବି. ବ—ଆୟବ୍ୟୟର ଶେଷ ; ଦେୟ ଓ ପ୍ରାପ୍ୟ
Hisaba chukti ହିସାବ ସଫା କରି ଶେଷ କରିବା
হিসাব চুক্তি —Final settlement of accounts.
हिसाब चुक्ति (ହିସାବ ଚୁକ୍ତି—ଗ୍ରାମ୍ୟ ରୂପ)

ହିସାବ ଦୁରସ୍ତ—ବୈଦେ. ବ (ଫା. ହିସାବ୍ ଓ ଫା. ଦୁରୁସ୍ତ୍) —
Hisaba du(do)rasta ୧ । ଠିକ ହିସାବ ବା ଗଣନା—
হিসাব দুরস্ত 1. Correct reckoning. ୨। ହିସାବରେ ଠିକ୍
हिसाब दुरुस्त ସଠିକ ଲେଖା—2. Correct accouting.

ହିସାବ ଦେଖିବା(ଯୋଡ଼ିବା)—ଦେ. କ୍ରି—ନାନା ପ୍ରକାର ହିସାବ
Hisāba dekhiba(jordiba) ଅଙ୍କ ଏକତ୍ର ଯୋଗ କରିବା—
হিসাব দেখা To make up an account by adding
हिसाब जोड़ना up many items.

ହିସାବ ଦେବା—ଦେ. କ୍ରି—ଆୟ ବ୍ୟୟର ହିସାବ ମୁହଁରେ ବା
Hisaba deba ଲେଖି କରି କୌଣସି ବ୍ୟକ୍ତିଙ୍କୁ ଦେବା—
হিসাব দেওয়া To render accounts to a person.
हिसाब देना

ହିସାବ ନବିଶ—ବୈଦେ. ବ (ଫା)—ହିସାବ୍ ଲେଖିବା କର୍ମଚାରୀ—
Hisāba nabiś An account clerk; a clerk
হিসাব নবিশ্ who writes up accounts.
हिसाब नवीश

ହିସାବ ନିକାଶ(ଶି)—ବୈଦେ. ବ (ଆ)—୧ । ଆୟବ୍ୟୟର ବିବରଣ
Hisāba nikāśa(śi) ବୁଝାଇଦେବା—1. Rendering of
account. ୨ । ଦୁଇଜଣଙ୍କ ମଧ୍ୟରେ ଆୟବ୍ୟୟର ଗଣନା
କରାଯିବା ପରେ ଦେଣାନେଣାର ବନ୍ଦ ହେବା—2. Closing up of account. ୩ । ଆୟ ସଙ୍ଗେ ବ୍ୟୟ ମିଳି
ଯାଇ କିଛି ବାକି ନ ରହିବା—3. Squaring up of
হিসাব নিকাশ हिसाबनिकाश accounts.

ହିସାବ ନେବା—ଦେ. କ୍ରି—କୌଣସିବ୍ୟକ୍ତିଠାରୁ ଆୟବ୍ୟୟର ହିସାବ
Hisāba nebā ବୁଝିନେବା—To take accounts from
হিসাব লওয়া हिसाबलेना a person.

ହିସାବ ପତର(ପତ୍ର)—ଦେ.ବ—(ସଙ୍କର ଶବ୍ଦ)—୧ । ହିସାବ କିତାବ
Hisāba patara(patra) (ଦେଖ)—1. Hisāb kitāp
(See). ୨ । ଯେଉଁ ତାଳପତ୍ରରେ ହିସାବ ଲେଖାଯାଏ—
2. A palm leaf in which accounts are
হিসাবপত্র हिसाबकिताब noted.

ହିସାବ ବହି (ଖାତା)—ବୈଦେ. ବ (ଫା)—ଯେଉଁ ବହିରେ ବା
Hisāba bahi (khātā) ଖାତାରେ ହିସାବ ଲେଖାଯାଏ—
হিসাববহি हिसाबबही Account book.

ହିସାବ ବାକି—ବୈଦେ. (ଅ+ଫା )—୧ । ହିସାବ ଅନୁସାରେ
Hisāba bāki କୌଣସି ବ୍ୟକ୍ତିଠାରୁ ହେଉଥିବା ପ୍ରାପ୍ୟ—
1. Amount found due from a person after
হিসাববাকী हिसाबबाकी taking account.
୨ । ହସ୍ତଗତ ବାକି—2. Cash balance.

ହିସାବ ବୁଝ(ଝୋ)ଟ—ଦେ. ବ—ଦୁଇଜଣଙ୍କ ମଧ୍ୟରେ ହିସାବ ବୁଝା-
Hisab bujha(jho)ṭ ବୁଝି—Rendering of account
between two persons.

ହିସାବ ବୁଝ(ଝୋ)ଟ କମିସନ—ଦେ. ବ—(କଚେରୀ)—ହିସାବ ବୁଝି
Hisaba bujha(jho)ṭ kamisan ମକଦ୍ଦମାରେ ପ୍ରତିବାଦୀଠାରୁ
হিসাব বোঝা কমিসন হিসାବ ବୁଝିନେବା ପାଇଁ କୌଣସି ବ୍ୟକ୍ତି
हिसाब बुझौवल कमीशन (କମିସନର)ଙ୍କ ପ୍ରତି ଅଦାଲତଙ୍କ
ଆଦେଶ ବା ହୁକୁମନାମା—A writ or commission issued to a person by a court for
taking accounts from a defendant.

ହିସାବ ବୁଝ(ଝୋ)ଟ କମିସନର—ଦେ. ବ—(କଚେରୀ)—ପ୍ରତିବାଦୀ-
Hisaba bujha(jho)ṭ kamisanar ଠାରୁ ହିସାବ ବୁଝି
হিসাব বোঝা কমিশনার ନେବା ପାଇଁ ଅଦାଲତଙ୍କ ନିଯୁକ୍ତ ବ୍ୟକ୍ତି
हिसाब बुझनेवाला कमिश्नर —A commissioner
appointed to take accounts from a
defendant.

ହିସାବ ବୁଝ(ଝୋ)ଟ ମକଦ୍ଦମା—ଦେ. ବ—( କଚେରୀ )—
Hisāba bujha(jho)ṭ makadamā ଧନାଦର ଋଣପ୍ରାପ୍ତ
হিসাব বোঝা মকদ্দমা କୌଣସି ବ୍ୟକ୍ତି ଅଗୋଚରରେ ହିସାବାଦିକୁ
हिसाबबुझौवल मुकदमा ବା ମାଲିକକୁ ହିସାବ ବୁଝାଇ ଦେଇ ନ
ଥିଲେ ଅଦାଲତଙ୍କ ସମ୍ମୁଖରେ ହିସାବ ବୁଝାଇ ଦେବାପାଇଁ
ଉକ୍ତ ବ୍ୟକ୍ତି ନାମରେ କରାଯିବା ମକଦ୍ଦମା—Account
suit; a suit for accounts.

ହିସାବ ବୁଝା—ଦେ. ବ—ହିସାବ ବୁଝଟ (ଦେଖ)—
Hisāba bujhā Hisāba buj haṭ (See)

ହିସାବ ବୁଝା(ଝେ)ଇବା—ଦେ. କ୍ରି—ଅପଣା ଜିମାରେ ଥିବା ଜିନିଷର
Hisāba bujhā(jhe)ibā ଓ ଆୟ ବ୍ୟୟର ହିସାବ ମାଲିକଙ୍କୁ
হিসাব বোঝান ବୁଝାଇ ଦେବା—To render and explain
हिसाब बुझाना accounts.

ହିସାବ ବୁଝିନେବା—ଦେ. କ୍ରି—କୌଣସି ବ୍ୟକ୍ତିଠାରୁ ସମ୍ପୂର୍ଣ୍ଣରୂପେ
Hisāba bujhi nebā ହିସାବ ପରୀକ୍ଷା କରିନେବା (ଯେପରିକି,
হিসাব বুঝে লওয়া ତାଠାରେ ଆଉ କିଛି ହିସାବ ବାକିନ ରହେ)—
हिसाबबुझलेना To take accounts finally from
a person.

ହିସାବ ବୁଝିବା—ଦେ. କ୍ରି—ଆୟ ବ୍ୟୟର ଦାୟିତ୍ୱପ୍ରାପ୍ତ ବ୍ୟକ୍ତିଠାରୁ
Hisāba bujhibā ହିସାବକୁ ପରୀକ୍ଷା କରିବା—
হিসাব বুঝা हिसाब बुझना To examine
accounts.

ହିସାବ ମଜୁରା—ବୈଦେ. (ଅ. ଫା) ବ.( କଚେରୀ )—ଦୁଇଜଣଙ୍କର
Hisāba majurā ଦେୟର ଓ ପ୍ରାପ୍ୟର ହିସାବ ଅନୁସାରେ
হিসাব মজুরা हिसाबमुजरा ଜଣକର ଦେୟକୁ ଜଣଙ୍କ

ନ ଦେଇ ତାହା ଅପର ବ୍ୟକ୍ତିଠାରୁ ପ୍ରାପ୍ୟ ଧନରେ ମଜୁରୁ କରିବା—Setting off of dues etc. in an account (instead of making cash payment).

ହିସାବ ମି(ମେ)ଳ—ଦେ. ବି—୧ । ଅପର ହିସାବ ସଙ୍ଗେ ବ୍ୟୟର Hisāba mi(me)la ହିସାବର ଟିକ୍‌ମତେ ମିଳିଯିବା— ହିସାବମିଲ हिसावमेल 1. Tallying of accounts. ୨ । ହିସାବରେ ଲେଖା ଥିବା ଜମା-ଖରଚ ତହବିଲବାକି ସଙ୍ଗେ ଟିକ୍ ହେବା— 2. Tallying of the cash balance with the receipts and expenditure.

ହିସାବ ମି(ମେ)ଳ କରିବା—ଦେ. କ୍ରି—ହିସାବ ଦ୍ୱାରା ଆୟ ବ୍ୟୟ ସଙ୍ଗେ Hisāba mi(me)la karibā ତହବିଲର ସାମଞ୍ଜସ୍ୟ [ ହିସାବମି(ମେ)ଳା(ଲେ)ଇବା—ଅନ୍ୟରୂପ ] ପ୍ରତିପାଦନ 'ହିସାବ ମିଳାନ हीसाव मिलाना କରିବା ବା ପରୀକ୍ଷା କରିବା—To square up the accounts.

ହିସାବି—ଦେ. ବିଣ (ଅ)—୧ । ହିସାବ ସମ୍ବନ୍ଧୀୟ—1. Relating Hisābi to account. ୨ । ମିତବ୍ୟୟୀ—2. Prudent; [ହିସାବିଆ—ଦେଶଜରୂପ] economical. ୩ । ଯେଉଁ ବ୍ୟକ୍ତି (ଗରହିସାବ; ବେ ହିସାବ—ବିପରୀତ) ଆୟବ୍ୟୟ ଗୁଣ ଚଳନାଦି ସବୁ ହିସାବୀ ବିଷୟରେ ସତର୍କ—3. Careful in every thing. हीसावी ୪ । ଯେଉଁ ବ୍ୟକ୍ତି ଅଗ୍ର ପଶ୍ଚାତ୍ ଭାବି କାର୍ଯ୍ୟ କରେ— 4. Calculating (person). ୫ । ଯେଉଁ ବ୍ୟକ୍ତି ଠାରେ ହିସାବ ଲେଖିବାର ଭାର ଥାଏ—5.(a person Entrusted with the writing of accounts.

ହି ହି—ଅ. ଅ—ଅହ୍ଲାଦଜନକ ଅନୁକରଣ ଶବ୍ଦ (ଶବ୍ଦକଳ୍ପଦ୍ରୁମ)— Hi hi (Interjection) An exclamation of joy. ଦେ. ଅ—ହି ହିଁ (ଦେଖ)—Hi hiṅ (See)

ହି(ହିଁ)ହିଁ—ଦେ.ଅ—ଧ୍ୱନିପୂର୍ବକ ଦାନ୍ତକୁ ଅଳ୍ପ ବିକସିତ କରି ହସିବା କର୍ମ- Hi(hiṅ)hiṅ Sound of a moderately loud laugh ହି ହିଁ with slight exhibition of the teeth. हीं हीं [ଦ୍ର—ହଁ ହଁ ଠାରୁ ହେଁହେଁ ଉଚ୍ଚତର ଶବ୍ଦ ।]

ହି(ହିଁ)ହିଁୟା—ଦେ. ବିଣ—ଯେଉଁ ଲୋକ ସବୁବେଳେ ଉଚ୍ଚ ହାସ୍ୟ କରେ- Hi(hiṅ)hiṅyā Given to loud laughter. हीं हीं करने वाला ଯେ ହିଁ ହିଁ କରେ ହାସେ

ହି(ହିଁ)ହିଁ ହେବା—ଦେ. କ୍ରି—ଉଚ୍ଚ ହାସ୍ୟ କରିବା— Hi(hiṅ)hiṅ hebā To laugh loudly. হা হা করে হাসা, হি হি করে হাসা हीं हीं करना

ହୀ—ଅ (ଧ୍ୱନ୍ୟନୁକରଣ)—୧ । ଉଚ୍ଚହାସ୍ୟର ଶବ୍ଦ—1. Sound of Hi loud laugh. ୨ । ବିସ୍ମୟାର୍ଥକ (ଅମର)—2. An exclamation of wonder. ୩ । ଦୁଃଖାର୍ଥକ (ମେଦିନୀ)—3. Exclamation of sorrow. ୪ । ହେତ୍ୱର୍ଥକ (ମେଦିନୀ)—4. Exclamation of reason. ୫ । ବିଷାଦାର୍ଥକ (ମେଦିନୀ)—5. Exclamation of grief. ୬ । ଶୋକାର୍ଥକ (ଶବ୍ଦ ରତ୍ନାବଳୀ) —6. Exclamation of lamentation.

ହୀନ—ସ. ବିଣ ପୁଂ (ହା ଧାତୁ=ତ୍ୟାଗ କରିବା+କର୍ମ. ତ; ଅନ୍ୟ ଶବ୍ଦ Hīna ପରେ ଯୁକ୍ତ ହେଲେ ତୃତୀୟା ତତ୍ପୁରୁଷ ସମାସ ହୁଏ)— (ହୀନା—ସ୍ତ୍ରୀ) ୧ । ବିରହିତ—1. Deprived of (ଯଥା— ରାଜ୍ୟହୀନ, ଦୃଷ୍ଟି ହୀନ ।) ୨ । ପରିତ୍ୟକ୍ତ; ବର୍ଜିତ— 2. Abandoned by. (ଯଥା—ସ୍ୱଜନହୀନ, ବନ୍ଧୁହୀନ) ୩ । ଶୂନ୍ୟ—3. Empty of. (ଯଥା—ଜଳହୀନ ହ୍ରଦ). ୪ । ଊନ 4. Wanting in; deficient in. (ଯଥା—ଲଜ୍ଜାହୀନ; ବୁଦ୍ଧିହୀନ) [ଦ୍ର—ଏହାର ସମ-ଭାବାର୍ଥକ ଇଂରାଜୀ ପ୍ରତ୍ୟୟ ଲେସ୍ (Less) ଯଥା— Powerless, friendless] ୫ । (ଏକାକୀ ବ୍ୟବହୃତ ହେଲେ)ନିକୃଷ୍ଟ—5. Inferior. ୬। (ଏକାକୀ ବ୍ୟବହୃତ) ନୀଚ; ଅଧମ—6. Bad; wretched; mean; low; base. [ଉ—କି ଧରିବା ହୀନ ଖୋଇ ଗୋ ! ଯଦି କଥା କେଇ ପର ଆଗେ କହ, ହେବା ନାହ୍ନି କାହିଁ ଦେଖ ଗୋ । ବାଲକୃଷ୍ଣ-ଗୁରୁ ଲବଙ୍ଗଲତା ।] ୭। (ଏକାକୀ ବ୍ୟବହୃତ) ନିନ୍ଦିତ;ନିନ୍ଦନୀୟ—7. Blameworthy. ଦେ. ବି (ପୁଂ ଓ ସ୍ତ୍ରୀ)—ଅପତ୍ରିଅଣୀ ଲୋକଙ୍କୁ ଦିଆଯିବା ନାମ—A name given to males and females whose elders died before the former were born.

ହୀନ ଅବସ୍ଥା—ଦେ. ବି—୧ । ହୀନସ୍ତା (ଦେଖ) Hīna abasthā 1. Hīnastā (See) हीन अवस्था ୨ । ହୀନାବସ୍ଥା (ଦେଖ) हान अवस्था, बुरी हालत 2. Hīnābasthā (See) (ହିନ ଅବସ୍ତା, ହିନ ଅବସ୍ଥା—ଗ୍ରାମ୍ୟ ରୂପ)

ହୀନ କପାଳ—ଦେ. ବି (ସ. ହୀନ ଓ କପାଳ)—ମନ୍ଦ ଭାଗ୍ୟ— Hīna kapāla Ill luck; bad luck. হীন কপাল मन्द भाग्य

ହୀନ କପାଳିଆ—ଦେ. ବିଣ. ପୁଂ—ମନ୍ଦ ଭାଗ୍ୟ; ଦୁର୍ଭାଗ୍ୟ— Hīna kapāliā Ill-fated; unlucky. [ହୀନ କପାଳୀ, ହୀନ କପାଳେଇ—ସ୍ତ୍ରୀ] হীন কপালে, পোড়া কপালে मन्द भाग्य (ହିନ କପାଳିଆ—ଗ୍ରାମ୍ୟ ରୂପ)

ହୀନ କର୍ମ—ସ. ବି (କର୍ମଧା)—୧ । ନୀଚ କର୍ମ—1. Menial work. Hīna karma ୨ । ନିନ୍ଦିତ କର୍ମ—2. Blameworthy (ହୀନ କରମ—ଦେ. ରୂପ) act. ୩ । ମନ୍ଦ ଭାଗ୍ୟ—3. Ill luck.

ହୀନ କର୍ମା—ସ. ବିଣ ( ବହୁବ୍ରୀହି; ହୀନ+କର୍ମନ୍; ୧ମା. ୧ବ )— Hīna karmā ୧ । ନିନ୍ଦିତ କର୍ମକାରୀ—1. Performing (ହୀନ କରମା—ଦେ. ରୂପ) blameworthy acts. ୨ । ମନ୍ଦଭାଗ୍ୟ—2. Unfortunate; luckless. [ହୀନ କରମା, ହୀନ କର୍ମୀ—ଗ୍ରା. ରୂପ]

ହୀନ କୁଳ—ସଂ. ବି—ନୀଚ କୁଳ—
Hina kula Low caste; low family.

ହୀନ ଗନ୍ଧ ବର୍ଗ—ସଂ. ବି—କଳକାଗୁଣ୍ଡୀ ଆଦି ୨୩ ଗୋଟି ଔଷଧ
Hina gandha barga ଦ୍ରବ୍ୟ (ହରେକୃଷ୍ଣ ଦ୍ରବ୍ୟଗୁଣ)—
A collection of 23 medicinal herbs.

ହୀନ ଚେତାଃ—ସଂ. ବିଣ (ବହୁବ୍ରୀହି; ହୀନ+ଚେତସ୍; ହେମ. ହବ)—
Hina chetah ନୀଚ ମନାଃ—Low-minded.

ହୀନ ଜାତି—ସଂ. ବି—ଅଧମ ବା ନୀଚ ଜାତି—
Hina jati Low caste.

ହୀନତା(ତ୍ୱ)—ସଂ. ବି (ହୀନ+ଭାବ. ତା, ତ୍ୱ)—୧ । କ୍ଷୁଦ୍ରତା—
Hinata(twa) 1 Littleness. ୨। ନୀଚତା—2. Lowness; meanness. ୩ । ଶୂନ୍ୟତା—3. Emptiness. ୪ । ଊନତା—4. Deficiency.

ହୀନ ତେଜାଃ—ସଂ. ବିଣ (ବହୁବ୍ରୀହି; ହୀନ+ତେଜସ୍; ହେମ. ହବ)—
Hina tejah ୧ । ହୀନପ୍ରଭ (ଦେଖ)—1. Hinaprabha (See). ୨ । ଦୁର୍ବଳ—2. Weak.

ହୀନ ଦୃଷ୍ଟି—ସଂ. ବି (କର୍ମଧା; ହୀନ+ଦୃଷ୍ଟି)—୧ । ନୀଚ ନଜର—
Hina drushti 1. Mean view. ୨ । ପରଶ୍ରୀକାତରତା—
ହୀନ ଦୁଷ୍ଟି } ଗ୍ରାମ୍ୟ ରୂପ 2. Envy at another's weal.
ହୀନ ଦୁରୁଷ୍ଟି ୩ । କୃପଣତାଯୁକ୍ତ ଦୃଷ୍ଟି—
3. Miserly view. ୪ । କୃପଣତା—4. Miserliness.

ହୀନ ଦୃଷ୍ଟିଆ—ଦେ. ବିଣ. ପୁଂ—୧ । ପରଶ୍ରୀକାତର—1. Envi-
Hina drushtia ous. [ଦ୍ର—ଏହି ଲୋକମାନେ ପରର ଶ୍ରୀ
(ହୀନ ଦୃଷ୍ଟିଈ—ସ୍ତ୍ରୀ) ବା ପରକୁ ବେଶୀ ଦ୍ରବ୍ୟାଦି ଦିଆଯିବା କଥା
ହୀନ ଦୁଷ୍ଟିଆ } ଗ୍ରା. ରୂପ ସହି ପାରନ୍ତି ନାହିଁ ।] ୨ । କୃପଣ—
ହୀନ ଦୁରୁଷ୍ଟିଆ 2. Very miserly.
हीन दृष्टि हीननजर वाला

ହୀନ ପକ୍ଷ—ସଂ. ବି—୧ । ଦୁର୍ବଳ ପକ୍ଷ—1. Weak party or
Hina paksha side. ୨ । ତର୍କରେ ପ୍ରମାଣାଦି ଦ୍ୱାରା ସିଦ୍ଧ ହୋଇ ନ ପାରିବା ବିଷୟ (ହି. ଶ) - 2. Anything not established by evidence etc in argument. ୩ । ମକଦ୍ଦମାରେ ବା ଯୁଦ୍ଧରେ ହାରିଯିବା ପକ୍ଷ—3. The defeated party in a case or war. ୪ । ପ୍ରମାଣବିଷୟରେ ଦୁର୍ବଳ ମକଦ୍ଦମା (ହି. ଶ) —4. Weak case.

ହୀନ ପ୍ରକୃତ—ସଂ. ବି—(କର୍ମଧା; ହୀନ+ପ୍ରକୃତି)—ନୀଚ ପ୍ରକୃତି—
Hina prakruti Low nature. ବିଣ ପୁଂ ଓ ସ୍ତ୍ରୀ—(ବହୁବ୍ରୀହି)—୧ । ନୀଚ ସ୍ୱଭାବ ବିଶିଷ୍ଟ—1. Of mean nature. ୨ । ଶୁଦ୍ରାଶୟ—2. Low-minded.

ହୀନପ୍ରଭ—ସ. ବିଣ. ପୁଂ—(ବହୁବ୍ରୀହି; ହୀନ+ପ୍ରଭା)—୧ । କ୍ଷୀଣ-
Hina prabha ଜ୍ୟୋତି; ସ୍ୱଳ୍ପଦୀପ୍ତି ବିଶିଷ୍ଟ—1. Shorn of
(ହୀନପ୍ରଭା—ସ୍ତ୍ରୀ) [splendour. ୨। ଦୀପ୍ତିହୀନ—2. Lustre-less.

ହୀନ ପ୍ରାଣ—ସ. ବିଣ ପୁଂ—(ବହୁବ୍ରୀହି; ହୀନ+ପ୍ରାଣ)—୧ । ନୀଚାନ୍ତଃ-
Hina prana କରଣ—1. Low or mean minded.
(ହୀନପ୍ରାଣା—ସ୍ତ୍ରୀ) ୨ । ଦୁର୍ବଳ—2. Weak. ୩ । ଶକ୍ତିହୀନ—3. Powerless.

ହୀନବର୍ଣ୍ଣ—ସ. ବି—ନୀଚଜାତି—Low caste. ସ. ବିଣ. ପୁଂ—
Hina barnna ନୀଚଜାତି ବିଶିଷ୍ଟ—Of low caste.
(ହୀନବର୍ଣ୍ଣା—ସ୍ତ୍ରୀ ବିଣ)

ହୀନ ବଳ(ବୀର୍ଯ୍ୟ)—ସ.ବିଣ—(ବହୁବ୍ରୀହି; ହୀନ+ବଳ, ବୀର୍ଯ୍ୟ)—୧ ।
Hina bala(birjya) ଦୁର୍ବଳ—1.Weak. ୨। ଶକ୍ତିଶୂନ୍ୟ—2. Powerless. ୩ । ଯାହାର ବଳ କମିଯାଇଅଛି—3. Shorn of strength.

ହୀନବସ୍ଥା(ସ୍ଥା)—ଗ୍ରା. ବି—ସ. ହୀନବସ୍ଥା)-ହୀନସ୍ଥା (ଦେଖ)—
Hinabasta(stha) Hinasta (See). ବି ଓ ବିଣ—
हीनअवस्था ହଟବଟା (ଦେଖ)—Hatabata (See).
बुरी हालत

ହୀନ ବାଦ—ସ. ବି (କର୍ମଧା)—୧ । ମିଥ୍ୟା ତର୍କ (ହି. ଶ)—1. False
Hina bada argument. ୨ । ମିଥ୍ୟା ସାକ୍ଷ୍ୟ (ହି.ଶ)—2. False evidence; perjury.

ହୀନବାଦୀ—ସ. ବିଣ. ପୁଂ—(ହୀନ+ବଦ୍ ଧାତୁ+କର୍ତ୍ତୃ ଇନ୍; ହେମ
Hina badi ହବ)—୧ । ବାକ୍ୟ ବର୍ଜିତ; ମୂକ (ହେମଚନ୍ଦ୍ର)
(ହୀନବାଦିନୀ—ସ୍ତ୍ରୀ) —1. Dumb. ୨ । ବିରୁଦ୍ଧାର୍ଥବାଦୀ; ଯେଉଁ ବ୍ୟକ୍ତି ପୂର୍ବେ କହିଥିବା କଥାର ବିରୁଦ୍ଧ କଥା କହେ (ନାରଦ)—2. (A person) Who speaks a thing different from what he told before. ୩ । ମିଥ୍ୟା ସାକ୍ଷୀ—3. A false witness. ୪ । ମକଦ୍ଦମାରେ ହାରିଯାଇ ଥିବା ବାଦୀ ବା ମୁଦେଇ (ହି.ଶ)—4. A plaintiff or complainant who has his case dismissed.

ହୀନବିଷ—ସ. ବିଣ—(ବହୁବ୍ରୀହି)—୧ । କ୍ଷୀଣ ବିଷଯୁକ୍ତ; ସ୍ୱଳ୍ପଗରଳ
Hina bisha ବିଶିଷ୍ଟ—1. Slightly poisonous. ୨ । ନିର୍ବିଷ—2. Having no poison; non venemous.

ହୀନବୁଦ୍ଧି—ସ. ବି—(କର୍ମଧା)—୧ । ନୀଚ ବୁଦ୍ଧି; ନୀଚ ମନ; ନୀଚ ମତି
Hina budhi —1. Low or mean mind. ୨ । ମନ୍ଦ ବୁଦ୍ଧି—2.Evilmindedness. ୩। କ୍ଷୀଣ ବୁଦ୍ଧି—3. Stupidity. ୪। ଅବୋଧତା—4. Folly. ୫। କ୍ଷୁଦ୍ର ବୁଦ୍ଧି—5. Humble intellect. ବିଣ—(ବହୁବ୍ରୀହି)—୧ । ନୀଚମନାଃ—1. Low-minded. ୨ । ନିର୍ବୋଧ—2. Stupid. ୩ । କ୍ଷୁଦ୍ରଚେତାଃ; କ୍ଷୀଣବୁଦ୍ଧି ବିଶିଷ୍ଟ—3. Of low understanding.

ହୀନ ବୃତ୍ତି—ସ. ବି—(କର୍ମଧା; ହୀନ+ବୃତ୍ତି)—ନୀଚ ବୃତ୍ତି; ଅଧମ
Hina brutti ବ୍ୟବସାୟ—Low occupation. ବିଣ—(ବହୁବ୍ରୀହି)—୧ । ଅଧମ ଉପାୟରେ ଜୀବିକା ନିର୍ବାହ—

କାର୍ଯ୍ୟ—1. Earning livelihod by blame-worthy means. ୨। ନୀଚପ୍ରକୃତିକ—2. Of mean nature.

ହୀନ ବେଶ—ସଂ ବି—(କର୍ମଧାରୟ) ମଳିନ ବେଶ; ଖରାପ ବେଶ—
Hina besa Poor dress. ବିଣ. ପୁଂ—(ବହୁବ୍ରୀହି)—
(ହୀନବେଶା—ସ୍ତ୍ରୀ) ଖରାପବେଶଧାରୀ—Poorly dressed.

ହୀନ ଭାଗ୍ୟ—ସ.ବି—(କର୍ମଧା; ହୀନ+ଭାଗ୍ୟ)—ମନ୍ଦ ଭାଗ୍ୟ—Ill luck.
Hina bhāgya ବିଣ ପୁଂ [ବହୁବ୍ରୀହି] ମନ୍ଦଭାଗ୍ୟ—Unlucky.
[ହୀନଭାଗ୍ୟା—ସ୍ତ୍ରୀ]

ହୀନ ମତି—ସ. ବି ଓ ବିଣ ପୁଂ ଓ ସ୍ତ୍ରୀ—ହୀନବୁଦ୍ଧି (ଦେଖ)—
Hina mati Hina buddhi (See)

ହୀନମାନ—ଦେ. ବିଣ—ହୀନମାନିଆ (ଦେଖ)—Hinamānia (See)
Hinamāna [ବି—ନବରଙ୍ଗ କେତେ କଲମ ହୀନମାନ—କୃଷ୍ଣସିଂହ ମହାଭାରତ—ବନ] ବି—୧। ଅପମାନ—
1. Dishonour. ୨। ଦୁର୍ଦ୍ଦଶା—2. Wretched condition. ୩। ଅସନ୍ତୋଷଜନକ ନିକୃଷ୍ଟ ବ୍ୟବହାର—
[ହିନମାନ—ଗ୍ରାମ୍ୟରୂପ] 3. Inferior treatment. ୪। ଅନାଦର; ମନ୍ଦ ବ୍ୟବହାର—4. Bad treatment,
অপমানিত अपमानित disregard.

ହୀନମାନ କରିବା—ଦେ. କ୍ରି—୧। ମନ୍ଦ ବ୍ୟବହାର କରିବା—1. To
Hinamāna kariba treat badly. ୨। ଅନ୍ୟର ତୁଳନା
[ହିନମାନ କରିବା—ଗ୍ରାମ୍ୟରୂପ] ରେ ନିକୃଷ୍ଟ ବ୍ୟବହାର କରିବା—
2. To treat in an inferior manner.
अपमानकरना অপমানকরা

ହୀନମାନ ହେବା—ଦେ. କ୍ରି—୧। ମନ୍ଦ ବ୍ୟବହାର ପାଇବା—
Hinamāna heba 1. To be treated badly.
(ହିନମାନ ହେବା—ଗ୍ରାମ୍ୟରୂପ) ୨। ଅନ୍ୟ ବ୍ୟକ୍ତିର ତୁଳନାରେ ନିକୃଷ୍ଟ ବ୍ୟବହାର ପାଇବା—2. To get inferior
অপমানিত হওয়া अपमानितहोना treatment.

ହୀନମାନିଆ(ଆଁ)—ଦେ· ବିଣ ପୁଂ—୧। ମନ୍ଦବ୍ୟବହାର ପ୍ରାପ୍ତ—
Hinimānia(āñ) 1. Badly treated. ୨। ଦୁର୍ଦ୍ଦଶା ଗ୍ରସ୍ତ
[ହିନମାନିଆ(ଆଁ)—ଗ୍ରାମ୍ୟରୂପ] 2. In wretched condition.
(ହୀନମାନୀ—ସ୍ତ୍ରୀ) ୩। ଅପମାନିତ—3. Slighted; disrespected; disregarded. ୪। ଅନ୍ୟମାନଙ୍କ ତୁଳନାରେ ନିକୃଷ୍ଟ ବ୍ୟବହାର ପ୍ରାପ୍ତ—4. Getting inferior treatment when compared to others.
୫। ମନ୍ଦ; ନିକୃଷ୍ଟ—5. Bad; inferior
অপমানিত अपमानित

ହୀନ ମୂଲ୍ୟ—ସ. ବି—ଅଳ୍ପ ଦାମ (ଯାଜ୍ଞବଲ୍କ୍ୟ)—
Hina mūlya. Small price.

ହୀନ ଯାନ—ସ. ବି—ବୌଦ୍ଧଙ୍କ ସମ୍ପ୍ରଦାୟଭେଦ; ଅବ ବୌଦ୍ଧମତାବଲମ୍ବୀ
Hina jāna ସମ୍ପ୍ରଦାୟ; ବୌଦ୍ଧ ସମ୍ପ୍ରଦାୟର ଅଦମ ଶାଖା—
A sect of orthodox Buddhists.

[ଦ୍ର—ଭଗବାନ ବୁଦ୍ଧଙ୍କ ପ୍ରବର୍ତ୍ତିତ ଅବ ଧର୍ମମତାବଲମ୍ବୀମାନେ ପ୍ରଥମେ ଶ୍ରାବକଯାନ ଓ ପ୍ରତ୍ୟେକ ବୌଦ୍ଧ ବୁଦ୍ଧଯାନ ନାମରେ ଖ୍ୟାତ ଥିଲେ । ସେମାନଙ୍କ ମତରେ ଯେଉଁମାନେ ଭଗବାନ ବୁଦ୍ଧଙ୍କ ଏବଂ ତାଙ୍କର ଶିଷ୍ୟାନୁଶିଷ୍ୟଗଣଙ୍କ ମୁଖରୁ ଧର୍ମୋପଦେଶ ଶୁଣିଥିଲେ ସେହିମାନେହିଁ ନିର୍ବାଣ ଲାଭର ଅଧିକାରୀ । ପରବର୍ତ୍ତୀ କାଳରେ କେତେକ ବୌଦ୍ଧାଗ୍ରଣୀ ଘୋଷଣା କଲେ ଯେ, ସମସ୍ତ ଜଗତ ନିର୍ବାଣ ଲାଭର ଅଧିକାରୀ ଏବଂ ସମସ୍ତେ ଏହି ନିର୍ବାଣ ଧର୍ମରେ ଦୀକ୍ଷିତ ହୋଇ ପାରନ୍ତି । ସେମାନଙ୍କର ଏହି ମହୋଦ୍ଦେଶ୍ୟ ପାଇଁ ସେମାନେ ମହାଯାନ ନାମରେ ଖ୍ୟାତ ହେଲେ ଏବଂ ହୀନ ବା ସଙ୍କୀର୍ଣ୍ଣ ସୀମା ମଧ୍ୟରେ ନିର୍ବାଣତତ୍ତ୍ୱକୁ ଆବଦ୍ଧ ରଖିଥିଲେ ବୋଲି ପୂର୍ବୋକ୍ତ ଅବ ବୌଦ୍ଧ ସଂପ୍ରଦାୟ ଗଣ ହୀନଯାନ ନାମରେ ଖ୍ୟାତହେଲେ । ସମ୍ରାଟ କନିଷ୍କଙ୍କ ସମୟରେ ବୌଦ୍ଧ ସମାଜରେ ହୀନଯାନ ଓ ମହାଯାନ ଏହି ଦୁଇ ଗୋଟି ପ୍ରଧାନ ବିଭାଗର ନାମକରଣ ହୋଇଥିଲା ।

ଏହି ହୀନଯାନ ଶାଖାର ପ୍ରଚାର ସିଂହଳ, ବ୍ରହ୍ମଦେଶ ଓ ଶ୍ୟାମ ଆଦି ଦକ୍ଷିଣ ଆସିଆରେ ହୋଇଥିବାରୁ ଏହାର ଅନ୍ୟ ନାମ 'ଦକ୍ଷିଣଶାଖା' । ଯାନ ଶବ୍ଦର ଅର୍ଥ ନିର୍ବାଣ ଅବଧି ବା ମୋକ୍ଷ ଅବଧି ବହନ କରି ନେବା ଯାନ ବା ରଥ । ହୀନଯାନ ସମ୍ପ୍ରଦାୟର ସିଦ୍ଧାନ୍ତ ବୁଦ୍ଧ ଦେବଙ୍କ ଉପଦେଶକୁ ଅନୁସରଣ କରୁଥିଲା । ପରେ ମହାଯାନ ଶାଖାରେ ନ୍ୟାୟ, ଯୋଗ, ତନ୍ତ୍ର ଆଦି ପ୍ରବେଶଲାଭ କରିବାରୁ ଏହା ଜଟିଳ ହୋଇ ପଡିଲା । ହି. ଶ]

ହୀନ ଯୋଗ—ସଂ ବିଣ ପୁ—(ବହୁବ୍ରୀହି) ଯୋଗଭ୍ରଷ୍ଟ (ହି.ଶ)—
Hina joga Slipped from the path of joga. ସଂ. ବି—(ଆୟୁର୍ବେଦ) ଉଚିତ ପରିମାଣ ଅପେକ୍ଷା ଅଳ୍ପ ଉପାଦାନରେ ଔଷଧର ମିଶ୍ରଣ (ହି. ଶ)—Mixing of less quantities of ingredients in a modicine than is proper.

ହୀନ ଯୋନି—ସ. ବି (କର୍ମଧା)—ନୀଚଜାତି—Low caste. ବିଣ.ପୁଂ ଓ
Hinajoni ସ୍ତ୍ରୀ (ବହୁବ୍ରୀହି)—ନୀଚଜାତୀୟ—Of low birth.

ହୀନ ରସ—ସ. ବି—ଏକ ରସର ବର୍ଣ୍ଣନ ସମୟରେ ବିରୁଦ୍ଧ ରସର ପ୍ରସଙ୍ଗ
Hina rasa ରୂପ କାବ୍ୟଦୋଷବିଶେଷ (ହି. ଶ)—A defect in composition where a contrary sentiment is expressed to the sentiment described.

ହୀନ ଶକ୍ତି—ସଂ. ବି—(କର୍ମଧା)—କ୍ଷୀଣ କ୍ଷମତା—Slight strength
Hina sakti or power. ବିଣ.ପୁଂ ଓ ସ୍ତ୍ରୀ (ବହୁବ୍ରୀହି)—ହୀନବଳ (ଦେଖ)—Hinabala (See)

ହୀନ ସଖ୍ୟ—ସଂ. ବି—ନୀଚ ବ୍ୟକ୍ତି ସହିତ ମିତ୍ରତା—
Hina sakhya Friendship with low persons.

ହୀନ ସେବା—ସ. ବି—( କର୍ମଧା )—ନୀଚ ବ୍ୟକ୍ତିର ସେବା—Service
Hina seba rendered to a mean person. [ଦ୍ର—

ଏଥି ।ଇଁ ଲୋକେ ଧଅନ୍ତି କଉଳ, ମନୁଷ୍ୟତା ହୀନସେବା ଧୀରେ ବଳ—ରାଧାନାଥ, ଦରବାର)

ହୀନସ୍ଥା(ସ୍ଥା)—ଗ୍ରା ବି ( ସଂ. ହୀନ ଓ ଅବସ୍ଥା )—ଦୁର୍ଦ୍ଦଶା—
Hinastha(stha) Evil condition. ବି ଓ ବିଣ—
ଦୁର୍ଦ୍ଦଶା दुर्दशा ହଟହଟା, ( ଦେଖ )—
Hatahata (See)

ହୀନସ୍ଥ—ଗ୍ରା. ବିଣ ପୁଂ (ସଂ. ହୀନାବସ୍ଥା)—୧ । ଯେଉଁ ଲୋକ ଭଲେ
Hinastha ହୀନସ୍ଥା ଭୁଞ୍ଜେ—1. One who is in a
(ହୀନସ୍ଥଇ—ସ୍ତ୍ରୀ) bad plight. ୨ । ଯେଉଁ ଲୋକ
ଦୁର୍ଦ୍ଦଶାଗ୍ରସ୍ତ दुर्दशायुक्त ଅନ୍ୟକୁ ହୀନସ୍ଥା କରେ—
ଦୁର୍ଦ୍ଦଶାକାରୀ दुर्दशा घटानेवाला 2. One who puts another in a bad plight

ହୀନା—ସଂ. ବିଣ—ହୀନର ସ୍ତ୍ରୀଲିଙ୍ଗ—Feminine of Hina.
Hina छोटनजूरे हीननजरवाला ଦେ. ବି. ( ପୁଂ ଓ ସ୍ତ୍ରୀ )—୧ । ହୀନଦୃଷ୍ଟି ଥିବା—1. Of low mind.
୨ । ହୀନବୁଦ୍ଧିଆ—2. Of evil disposition. ୩ ।
କୃପଣ—3. Miserly. ୪ । ବ୍ୟୟକୁଣ୍ଠ—4. Parsi
हीना हीने monious. ବି (ପୁଂ ଓ ସ୍ତ୍ରୀ)—ହୀନର ଡାକନାମ
—Nickname for calling Hina.

ହୀନାଙ୍ଗ—ସଂ. ବିଣ. ପୁଂ [ବହୁବ୍ରୀହି ହୀନ+ଅଙ୍ଗ]—୧ । ବିକଳାଙ୍ଗ—
Hinanga 1-Defective in limb; mutilated.
(ହୀନାଙ୍ଗୀ—ସ୍ତ୍ରୀ) ୨ । ଯାହାର କୌଣସି ଅଙ୍ଗ ନ ଥାଏ—
2. Wanting in some limbs.

ହୀନାଙ୍ଗୀ—ସଂ. ବିଣ—ସ୍ତ୍ରୀ (ହୀନାଙ୍ଗ+ସ୍ତ୍ରୀ ଈ)—ହୀନାଙ୍ଗର ସ୍ତ୍ରୀଲିଙ୍ଗ—
Hinangi Feminine of Hinanga.
ବି (ସ୍ତ୍ରୀ)—କ୍ଷୁଦ୍ର ପିପୀଲିକା (ହେମଚନ୍ଦ୍ର)—
The tiny ant.

ହୀନାବସ୍ଥା—ସଂ ବି [କର୍ମଧା, ହୀନ+ଅବସ୍ଥା]—୧ । ମନ୍ଦ ଅବସ୍ଥା—
Hinabastha 1. Wretched condition.
[ହୀନଅବସ୍ଥା—ଗ୍ରା. ରୂପ] ୨ । ନୀଚ ଅବସ୍ଥା—
2. Low condition. ୩ । ଦରିଦ୍ରାବସ୍ଥା—
3. Penurious condition.

ହୀନାର୍ଥ—ସଂ ବିଣ. ପୁଂ [ ବହୁବ୍ରୀହି ]—୧ । ବ୍ୟର୍ଥମନୋରଥ—
Hinartha 1. Unsuccessful. ୨ । ଯାହା
ଲାଭଜନକ ନୁହେ [ହି. ଶ]— Profitless.

ହୀନିତ—ସଂ ବି (ଗଣିତ; ହୀନ+ଇତ)—ବିୟୋଗ ଚିହ୍ନ; ( — )—
Hinita The sign of minus; (—)

ହୀନିମାନ (ଇତ୍ୟାଦି) ଗ୍ରା· ବିଣ—ହୀନମାନିଆ [ ଦେଖ ]—
Hinimana (etc) Hinamania ( See )
(ହୀନମାନିଆ—ଅନ୍ୟରୂପ) ବି—ହୀନମାନ ଇତ୍ୟାଦି ( ଦେଖ )—
(ହୀନମାନୀ—ସ୍ତ୍ରୀ. ବିଣ) Hinamana etc (See)

ହୀନିସ୍ଥା—ପ୍ରାଦେ (ଗଡଜାତ) ବି—ଅପମାନ—
Hinistha Insult.

ହୀନୋପମା—ସଂ ବି—(କର୍ମଧା)—ବଡ ଉପମେୟ ପାଇଁ ଖଞ୍ଜାଯିବା ଛୋଟ
Hinopama ଉପମାନ (ହି ଶ)—Comparision of great things with small.

ହିନ୍ତାଳ—ସଂ ବି (ହିନ୍ତାଳର ରୂପାନ୍ତର)—ହିନ୍ତାଳ[ଅମରକୋଷ] (ଦେଖ)
Hintala Hintala (See)

ହୀୟମାନ—ସଂ ବିଣ [ହା ଧାତୁ=ତ୍ୟାଗକରିବା+କର୍ମ ଆନ]—ଯାହା
Hiyamana ହ୍ରାସପ୍ରାପ୍ତ ହେଉଅଛି; ଯାହା କ୍ଷୟ ପାଉଅଛି—
[ହୀୟମାନା—ସ୍ତ୍ରୀ] Diminishing; waning.

ହୀର—ସଂ ବି (ହୃ ଧାତୁ=ହରଣକରିବା+କର୍ତ୍ତୃ ଅ; ନିପାତନ]—୧ ।
Hira ୧ । ଶିବ (ମେଦିନୀ)—1 God Siba.
୨ । ହାର [କଣ୍ଠାଧର]—2. Garland. ୩ । ବୃଜ୍ର;
ଇନ୍ଦ୍ରଙ୍କ ଅସ୍ତ୍ର; ବଜ୍ର [ ଶବ୍ଦକଳ୍ପଦ୍ରୁମ; ମେଦିନୀ ]—
3. The weapon of Indra; thunder. ୪ ।
ହୀରକ; ହୀରା (ଶବ୍ଦକଳ୍ପଦ୍ରୁମ)—4. Diamond. ୫ । ସର୍ପ
[ହେମଚନ୍ଦ୍ର]—5. Serpent. ୬ । ସିଂହ[ଶବ୍ଦକଳ୍ପଦ୍ରୁମ]
6. Lion. ୭ ।ମୋତିମାଳା [ହି. ଶ]—7. A string
of pearls. ୮ । [ ନାମ ] ନୈଷଧକାର ଶ୍ରୀହର୍ଷ
କବିଙ୍କ ପିତାଙ୍କର ନାମ [ ନୈଷଧ ୧ମ ସର୍ଗ ]—
Name of the father of the poet Sriharsha.
୯ । ବର୍ଣ୍ଣବୃତ୍ତବିଶେଷ (ହି ଶ)9, Name of a metre.
[ବି—ଏଥିର ପ୍ରତ୍ୟେକ ଚରଣରେ ଭଗଣ, ସଗଣ, ନଗଣ
ଜଗଣ, ଓ ରଗଣ ଥାଏ [ହି ଶ] ।

ହୀରକ—ସଂ ବି [ହୀର+ସ୍ୱାର୍ଥେ କ]-ବହୁମୂଲ୍ୟ ଖଣିଜ ରତ୍ନବିଶେଷ—
Hiraka Diamond.
ଅନ୍ୟ ସଂ ନାମ— [ବି—ଚନ୍ଦ୍ର ତଳେ ଟୀକା ଦେଖ । ଏହା
ବଜ୍ର, ହୀର, ଦଧୀଚ୍ୟସ୍ଥି, ସାଧାରଣତଃ ଶ୍ୱେତବର୍ଣ୍ଣ ଓ ଅତ୍ୟୁଜ୍ଜ୍ୱଳ ଦୀପ୍ତି-
ଚନ୍ଦ୍ର, ବଜ୍ରକ, ସୂଚୀମୁଖ, ବିଶିଷ୍ଟ । ଏହା ଶ୍ୱେତ (ବ୍ରାହ୍ମଜାତି), ରକ୍ତ
ବରାରକ, ମଣୀବର, (କ୍ଷତ୍ରିୟ ଜାତି), ପୀତ [ବୈଶ୍ୟଜାତି] ଓ
ରତ୍ନମୁଖ୍ୟ ଓ ବଜ୍ରର କୃଷ୍ଣ (ଶୂଦ୍ର ଜାତି) ଭେଦରେ ୪ ପ୍ରକାର ।
ଅନ୍ୟ ସମସ୍ତ ନାମ ଶାସ୍ତ୍ର ଅନୁସାରେ ହୀରକର ସ୍ତ୍ରୀ, ପୁଂ ଓ
हीरा, हीरे ନପୁଂସକ ଭେଦ ମଧ୍ୟ ଅଛି । ସୁଗୋଲ
हीरा ଦୀପ୍ତିମାନ, ବୃହତ୍ତର ହୀରକ ପୁରୁଷ ଜାତୀୟ
ଫା: ଅଲ୍ମାଶ ଓ ସର୍ବଶ୍ରେଷ୍ଠ । ଷଟ୍କୋଣ ଯୁକ୍ତ ଓ ରେଖା
ତେ. ବଜ୍ରମ୍ ବିନ୍ଦୁ ବିଶିଷ୍ଟ ହୀରକ ସ୍ତ୍ରୀ ଜାତୀୟ । ଏହା
ସ୍ତ୍ରୀମାନଙ୍କର କାନ୍ତି ବର୍ଦ୍ଧକ ଓ ସୁଖଦ । ତ୍ରିକୋଣ ବିଶିଷ୍ଟ
ଦୀର୍ଘାକାର ହୀରକ ନପୁଂସକ । ଏହା ଅକର୍ମଣ୍ୟ ଓ
ତେଜୋହୀନ ।

ହୀରକ ଦକ୍ଷିଣ ଭାରତର ଗୋଲକୁଣ୍ଡା ଅଞ୍ଚଳରେ ଖଣିରୁ
ମିଳେ । ଆଫ୍ରିକାରେ ମଧ୍ୟ ହୀରାଖଣି ଅଛି । ପୂର୍ବେ ସମ୍ବଲ-
ପୁରରେ ହୀରା ମିଳୁଥିଲା ଓ ତାହା ଇଉରୋପରେ ବିଖ୍ୟାତ
ଥିଲା । ଏଥିପାଇଁ ସମ୍ବଲପୁରର ଗୋଟିଏ ନାମ ହୀରାଖଣ୍ଡ ।
ବିରାଟ ଦେଶରୁ ମିଳିବା ହୀରକକୁ ବିରାଟଜ, ଶକଟରୁ ଓ
ଲଜାବର୍ତ୍ତ ବୋଲିଯାଏ ।

ହୀରକୁ ଜମ୍ବୀରର ମୂଳ ମଧ୍ୟରେ ବନ୍ଦ କରି ୭ ଥର ଗଜପୁଟ ପାକ କଲେ କିମ୍ବା ଅଶ୍ୱମୂତ୍ରରେ ବା ଭେକ ମୂତ୍ରରେ ଥରେ ମର୍ଦ୍ଦନ କରି ୭ଥର ପୁଟ ଦଗ୍ଧ କଲେ ଏହା ଶୋଧିତ ଓ ମାରିତ ହୁଏ । ଅଶୋଧିତ ହୀରକ କୁଷ୍ଠ, ପାର୍ଶ୍ୱବେଦନା, ପଙ୍ଗୁତ୍ୱ ଓ ପାଣ୍ଡୁରୋଗ ଉତ୍ପାଦନ କରେ । ଶୋଧିତ ଓ ମାରିତ ହୀରା ପରମାୟୁ, ବଳ, ବୀର୍ଯ୍ୟ, କାନ୍ତି, ଶୁକ୍ର ଓ ସ୍ୱାସ୍ଥ୍ୟ ବୃଦ୍ଧି କରେ ଓ ସମସ୍ତ ରୋଗ ନଷ୍ଟ କରେ । ଏହା ଉତ୍କୃଷ୍ଟ ରସାୟନ ଓ ବଶୀକର ।

ଏହା ସୁନା ଇତ୍ୟାଦି ଅପେକ୍ଷା ଦୃଢ଼ତର । ହୀରାଦ୍ୱାରା କାଚ ଉପରେ ଗାର ପକାଇଲେ କାଚ କାଟି ହୁଏ । ସାଧାରଣତଃ ହୀରାକୁ ଅଳଙ୍କାରରେ ବସାଇ ଧନୀମାନେ ପିନ୍ଧନ୍ତି । କଥିତ ଅଛି ଯେ, ନିଜ ହାତର ମୁଦରେ ବସିଥିବା ହୀରକ ଖଣ୍ଡକୁ ବିପଦ୍‌ଗ୍ରସ୍ତ କେହି କେହି ଧନୀ ଚୁରୁମି ଚୁରୁମି ଖାଇ ଅଛନ୍ତି । ଏହା ବିଶୁଦ୍ଧ କୋଇଲା (Pure carbon) ର ଅବସ୍ଥାଭେଦ ବୋଲି ରାସାୟନିକ ବିଶ୍ଳେଷଣ ପ୍ରକ୍ରିୟାଦ୍ୱାରା ଦେଖା ଯାଇଅଛି ।

ପୃଥିବୀବିଖ୍ୟାତ କୋହିନୂର ନାମକ ହୀରା ଦକ୍ଷିଣ ଗୋଲକୁଣ୍ଡାର ଖଣିରୁ ମିଳିଥିଲା ।

ରସାୟନ ଶାସ୍ତ୍ର ଅନୁସାରେ ଖାଣ୍ଟି କୋଇଲାର ରୂପାନ୍ତର ଓ ଏହା ପ୍ରାକୃତିକ ଅବସ୍ଥାରେ ଖଣିରୁ ମିଳେ । କୌଣସି ପ୍ରକାର ଉତ୍କୃଷ୍ଟ ବସ୍ତୁକୁ ହୀରାସଙ୍ଗେ ତୁଳନା କରାଯାଏ । ]

**ହୀରକ ଖଚିତ**—ସଂ. ବି—[ଭୂତପୂର୍ବାଦିତ]—ଯେଉଁ ଅଳଙ୍କାର ଅଙ୍ଗରେ Hīraka khachita ଏକ ବା ବହୁ ହୀରାଖଣ୍ଡ ବସାଯାଇ ଅଛି—Set with diamond; diamond-set.

**ହୀରକ ଖଣ୍ଡ**—ସଂ. ବି—[ଷଷ୍ଠୀତତ୍] ଖଣ୍ଡେ ହୀରା; ହୀରାରୁ ଖଣ୍ଡେ—Hīraka khanda A bit of diamond.

**ହୀରକ ଜୁବିଲି**—ଦେ. ବି—(ସଂ. ହୀରକ ଓ ଇଂ. ଜୁବିଲି)—କୌଣସି Hīraka Jubili ରାଜା ୫୦ ବର୍ଷ ରାଜତ୍ୱ କଲେ କିମ୍ବା ଦମ୍ପତି ୫୦ ବର୍ଷ ଦାମ୍ପତ୍ୟ ଜୀବନ ଅତିବାହିତ କଲେ ସେହି ଉପଲକ୍ଷରେ ଅନୁଷ୍ଠିତ ଆନନ୍ଦସୂଚକ ଉତ୍ସବ—Diamond Jubilee (on the occasion of a king completing 50 years of reign and a couple completing 50 years of married life)
ହীরক জুবিলী हारक्‌जीवंती
[ଦ୍ର—ମହାରାଣୀ ଭିକ୍ଟୋରିଆଙ୍କର ହୀରକ ଜୁବିଲି ଉତ୍ସବ ୧୮୯୭ ସାଲରେ ବ୍ରିଟିଶ୍ ସାମ୍ରାଜ୍ୟରେ ସର୍ବତ୍ର ପ୍ରତିପାଳିତ ହୋଇଥିଲା । ଏହିପରି ୨୫ ବର୍ଷ ରାଜତ୍ୱ ବା ଦାମ୍ପତ୍ୟ ଜୀବନ ଉପଲକ୍ଷରେ ଉତ୍ସବକୁ ସିଲ୍‌ଭର୍ ଜୁବିଲି ବୋଲାଯାଏ ।]

**ହୀରକାଙ୍ଗୁରୀୟ**—ସଂ ବି—( ମ. ପ. ଲୋ; ହୀରକ+ଅଙ୍ଗୁରୀୟ )—Hīrakāṅguriya ହୀରାବସା ମୁଦି; ହୀରକ ଖଚିତ ମୁଦ୍ରିକା—(ହୀରକାଙ୍ଗୁରୀୟକ—ଅନ୍ୟରୂପ) Diamond ring; a ring set with diamond. [ଦ୍ର—ଶୁଣାଅଛି ଯେ, ହାତରେ ପିନ୍ଧାଯାଇଥିବା ହୀରାମୁଦିକୁ ଚୁରୁମି ଅନେକ ବିପନ୍ନ ବଡ଼ଲୋକ ଆତ୍ମହତ୍ୟା କରିଥାଆନ୍ତି । ]

**ହୀରା**—ସଂ. ବି—(ହୃ ଧାତୁ=ହରଣ କରିବା+କର୍ତ୍ତୃ ଅ+ଆ)—Hīrā ୧ । ଲକ୍ଷ୍ମୀ ( ମେଦିନୀ )—1. The Goddess of wealth and prosperity. ୨ । ତୈଳାମ୍ବୁକ, ଅସରପା, ତୈଳପାୟିକା—( ମେଦିନୀ )—2. Cockroach. ୩ । ପିପୀଲିକା (ହେମଚନ୍ଦ୍ର)—3. Ant. ୪ । କାଶ୍ମରୀ [ରାଜନିର୍ଘଣ୍ଟ]; ଗମ୍ଭାରୀଗଛ—4. Gmelina Arborea (a timber tree).
ଦେ. ବି—(ସଂ. ହୀରକ) ୧ । ହୀରକ—1. Diamond.
হীরা ୨ । [ଅନ୍ୟ ଶବ୍ଦ ସଙ୍ଗେ ( ଯଥା-ନାଗରୀ ହୀରା ) ଓ ଅନ୍ୟ
हीरा ଶବ୍ଦ ପ୍ରସଙ୍ଗରେ ( ଯଥା—ସେ ମନୁଷ୍ୟଙ୍କ ମଧ୍ୟରେ ହୀରା ) ବ୍ୟବହୃତ ହେଲେ] ଶ୍ରେଷ୍ଠବସ୍ତୁ ବା ମନୁଷ୍ୟ—2.(When used with reference to other things or persons) A very excellent thing or person. ୩ । (ସ୍ତ୍ରୀ) ସ୍ତ୍ରୀଲୋକମାନଙ୍କୁ ଦିଆଯିବା ନାମ—3. A name given to females.

**ହୀରା କଣି**—ଦେ. ବି—(ସଂ. ହୀରକ ଓ କଣ)—ହୀରାର କ୍ଷୁଦ୍ର ଖଣ୍ଡ—A Hīrā kaṇi small bit of diamond. [ଦ୍ର—ହୀରାଦ୍ୱାରା
হীরের টুক্‌রা କାଚ କାଟି ହେଉଥିବାରୁ କାଚ କାଟିବା ପାଇଁ
हीराकन ଅଗରେ ହୀରାକଣି ବସା ଯାଇଥିବା ଶଳାକା ବ୍ୟବହୃତ ହୁଏ ।] ୨ । ଏକ ପ୍ରକାର ସରୁଧାନ—2. A species of fine paddy.

**ହୀରା ଖଣ୍ଡ**—ଦେ. ବି—୧ । ସମ୍ବଲପୁରର ନାମାନ୍ତର—1. A name of Hīrā khaṇḍa Sambalpur. [ଦ୍ର—ପୂର୍ବେ ଏଠାରେ ମିଳୁଥିବା ହୀରା ଇଉରୋପରେ ପ୍ରସିଦ୍ଧ ଥିଲା । ପ୍ରଥମେ ସମ୍ବଲପୁରର ନାମ ହୀରାଖଣ୍ଡ ଥିଲା । ପରେ ରାଜା ବଳରାମ ଦେବଙ୍କ ଅଧିକାରରେ ଏହା ଅଠର ଗଡ଼ଜାତର ଚକ୍ରବର୍ତ୍ତୀ ରାଜାଙ୍କର 'ହୀରାଖଣ୍ଡ' ହୋଇଥିଲା ।] ୨ । ସମ୍ବଲପୁର ଜିଲ୍ଲାରେ ମହାନଦୀରେ ଥିବା ଗୋଟିଏ ଦ୍ୱୀପ—2. Name of an island in the bed of the Mahanadi in the district of Sambalpur. [ଦ୍ର—ଏହାର ଦୈର୍ଘ୍ୟ ୪ ମାଇଲ । ଏଠାରେ ନଦୀରୁ ହୀରା ଆମଦାନି କରାଯାଉଥିଲା । ଜଗବନ୍ଧୁ ପ୍ରାଚୀନ ଉତ୍କଳ ।]

**ହୀରାଙ୍ଗ**—ସଂ ବି—(ବହୁବ୍ରୀହି; ହୀର=ବଜ୍ର; ହୀରକ ପରି ଦୃଢ଼ ଅଙ୍ଗ Hīrāṅga ଯାହାର)—ଇନ୍ଦ୍ରଙ୍କ ବଜ୍ରାସ୍ତ୍ର (ଶବ୍ଦମାଳା)—Indra's thunderbolt.

**ହୀରା ନୀଳା ମୋତି ମାଣିକ(କ୍ୟ)**—ଦେ. ବି—( ସହଚର ଶବ୍ଦଗଣ )—Hīrā nīlā moti māṇikā(kya) ୧ । ଚାରି ପ୍ରକାରର
হীরা নীলা মুক্তা মাণিক ରତ୍ନ; ( ହୀରକ,
हीरा नीला मोति माणिक ନୀଳମଣି, ମୁକ୍ତା ଓ ମାଣିକ୍ୟ )—1. Four kinds of gems

(viz, diamond, emerald, pearl, and ruby). ୨ । ଅସଂଖ୍ୟ ଧନରତ୍ନ—2. Countless gems and riches. ( ଯଥା—ରଜା ଘରେ ହୀରା ମାଲ ଗୋଟି ମାଣିକ ଭରିଛି ହୋଇଛି)

ହୀରାବଜ୍ରଧର ଦେଓ—ପାଟଣାର ଜଣେକ ପୂର୍ବତନ ରାଜା—
Hira Bajradhara Deo — Name of a former Raja of the Patna State

ହୀରାମନ୍—ଦେ. ବି—(ସମ୍ଭବତଃ ହୀରତ୍ = ଶାଗୁଆ ଓ ମଦନ = ଶାଗ ପକ୍ଷୀ ରୁ)—ଶୁକପକ୍ଷୀ ଜାତୀୟ ପୂର୍ବଭାରତୀୟ ଦ୍ୱୀପ-
Hirāmān
ହୀରାମନ୍ ତୋତା } ଅନ୍ୟରୂପ ପୁଞ୍ଜରୁ ଏ ଦେଶକୁ ଅଣାଯାଇ
ହୀରାମ(ମୋ)ହନ୍ } ପୋଷା ଯାଉଥିବା ଏକ ପ୍ରକାର
हीरामन् ଟିଆ— Parakeet; a species of parrot of
हीरेमन् the East Indies; Eclectus Pectoralis.
हीरामोहन् [ଦ୍ର—ଏହାର ଅଣ୍ଟିର ଜାତୀୟ ହରିତ୍ ବା ଶାଗୁଆ
तोता ଓ ଡେଣାର ମୂଳ ପାଖରେ ଅଳ୍ପ ଲାଲ ରଙ୍ଗ ଥାଏ; ଲାଞ୍ଜ କ୍ଷୁଦ୍ର; ସ୍ତ୍ରୀ ପକ୍ଷୀର ସମସ୍ତ ଶରୀର ଲୋହିତବର୍ଣ୍ଣ । ଏମାନେ ଦେଶୀ ଶୁଆଙ୍କ ପରି ପଦ ଧରନ୍ତି ନାହିଁ; କିନ୍ତୁ ତୀକ୍ଷ୍ଣ କେଁ କେଁ ଧ୍ୱନି କରନ୍ତି । ଏମାନଙ୍କ ଅପେକ୍ଷା ଆମ ଦେଶର ନାହାକା ଶୁଆଙ୍କ ଥର ବଡ଼ ।]

ହୀଲ—ସଂ. ବି—ରେତଃ (ଶବ୍ଦକଳ୍ପଦ୍ରୁମ)—
Hila — Semen virile.

ହୀଲୁକ—ସଂ ବି—ଗୌଡ଼ୀସୁମଦ୍ୟ (ଶବ୍ଦଚନ୍ଦ୍ରିକା)—
Hiluka — A kind of wine.

ହୀହୀ—ସଂ—(ଧ୍ୱନ୍ୟନୁକରଣ)ଅ—୧ । ଉଚ୍ଚହାସ୍ୟ ଧ୍ୱନି; ଉଚ୍ଚହାସ୍ୟର ସ୍ରୋତ ବା ସ୍ରୋତ—1. A continued gush of
Hihi
ହୀ ହୀଁ } ଦେ· ରୂପ loud laugh. ୨ । ହାସ୍ୟ (ମେଦିନୀ)
ହୀଁ ହୀଁ } —2. Laughter. ୩ । ବିସ୍ମୟ (,,) —3. Wonder.

ହୁ(ଧାତୁ)—ସଂ.—୧ । ହୋମ କରିବା—1. To offer ghee unto
Hu (root) fire. ୨ । ଖାଇବା—2. To eat.

ହୁ - ଦେ. ଅ—୧ । ହଠାତ୍; ହଠାତ୍—1. Suddenly. ୨ । ଅଗ୍ନି
Hu ପ୍ରବଳ ବେଗରେ ବ୍ୟାପିବା ପ୍ରକାର—2. The mode of
(ହୁଡ଼—ଅନ୍ୟରୂପ) blazing fire spreading swiftly.
हुट्‌ हु ୩ । ନିଶ୍ଚୟାର୍ଥକ ବା ଅବଧାରଣାର୍ଥକ, ଜେ, ସେ, କେ ଶବ୍ଦମାନଙ୍କ ପରେ ଯୁକ୍ତ ହୁଏ ( ଯଥା—କେହୁ, ସେହୁ, ଜେହୁ)—3. An adjunct joined to the pronouns je, se, & ke, indicating certainty. ପ୍ରାଦେ—( ଖଡ଼ିଆଳ )ଅ—କୋଳାହଳ—Tumult; ado.

ହୁଅ -ଦେ. କ୍ରି—(ସ୍ରଂଭୂତ-ଭବ)—ସଂସ୍କୃତ ଭୂ. ଧାତୁ ଓ ଦ୍ଭବ 'ହେବା'
Hua ବା 'ହବା' କ୍ରିୟାର ଅନୁଜ୍ଞା ଏକବଚନ ଓ ବହୁବଚନରେ
हुओ ତୁମ୍ଭେ ଓ ତୁମ୍ଭେମାନେ କର୍ତ୍ତାସଙ୍ଗେ ବ୍ୟବହୃତ କ୍ରିୟାରୂପ —(you) Be; form of the verb To be in the imperatve mood, singular and plural.

ହୁଅଇ -ଦେ. କ୍ରି (ସ. ଭବତି)—ହୁଏ; ସଂସ୍କୃତ ଭୂ ଧାତୁର ତୃତୀୟ
Huai ପୁରୁଷ ଏକ ବଚନରେ ବ୍ୟବହୃତ ରୂପ—
हुय़ है (He, she, it) Is.

ହୁଅନ୍ତି—ଦେ. କ୍ରି—ହେବା କ୍ରିୟାର ବର୍ତ୍ତମାନ କାଳର ତୃତୀୟ ପୁରୁଷ
Huanti ସମ୍ମାନାର୍ଥ ଏକ ବଚନ (ସେ), ତୃତୀୟ ପୁରୁଷ ବହୁ
हुयेन ବଚନ (ସେମାନେ), ଦ୍ୱିତୀୟ ପୁରୁଷ ସମ୍ମାନାର୍ଥ ଏକ
हैतेंहैं ବଚନ (ଆପଣ), ଦ୍ୱିତୀୟ ପୁରୁଷ ସମ୍ମାନାର୍ଥ ବହୁବଚନ (ଆପଣମାନେ) କର୍ତ୍ତା ପରେ ଲାଗିବା କ୍ରିୟା—Form of the verb 'To be' in the present tense with 3rd person singular (honorific) He, 3rd person plural (honorific) They, 2nd person singular (honorific) you, 2nd person plural (honorific) you.

ହୁଅସି—ଦେ. କ୍ରି ( ପ୍ରାଚୀନ ବ୍ୟବହାର ) ( ସ ଭବସି )—'ହୁଅ'ର
Huasi ପ୍ରାଚୀନ ଆକାର—The old from of impera-
हुओ होताहै ati.e 'be'.
[ଦ୍ର—ବଳରାମ ଦାସ, ଜଗନ୍ନାଥ ଦାସ, ସାରଳା ଦାସ କୃଷ୍ଣସିଂହ ଆଦିଙ୍କ ରଚିତ ଗ୍ରନ୍ଥରେ ମଧ୍ୟମ ପୁରୁଷ ଏକ ବଚନ ହିସାବରେ ଏହି 'ସି' ଯୁକ୍ତ କ୍ରିୟାର ରୂପ ବହୁସ୍ଥାନରେ ଦେଖାଯାଏ ।]

ହୁଆଙ୍ଗ—ଦେ. ବି—ଅନାର୍ଯ୍ୟ ଜାତି ବିଶେଷ—Name of an
Huāṅa aboriginal tribe.
हुयांङ्

ହୁଆଲ୍ -ବୈଦେ. ବି ( ଅ. ହଓ୍ୱାଲ୍ )—୧ । ଅବସ୍ଥା—1. Condi-
Huāl tion; state. ୨ । ଗତି—2. Movement.
हाल ୩ । ସଂବାଦ—3, News. ୪ । ବୃତ୍ତାନ୍ତ—4. Facts.
अहवाल

ହୁଆଲ୍‌ଦାର୍—ବୈଦେ. ବି. ପୁଂ ( ଫା· ହଓ୍ୱାଲ୍‌ଦାର୍ )—
Huāl-dār ୧ । ହାଲ୍‌ଦାର୍ (ଦେଖ)
(ହୁଆଲ୍‌ଦାରଅଣୀ—ସ୍ତ୍ରୀ) 1. Hāl-dār ( See )
୨ । ହାବିଲ୍‌ଦାର୍ (ଦେଖ)—2. Hābil-dār (See)

ହୁଆଲ୍‌ଦାରି—ବୈଦେ· ବି—ହାଲ୍‌ଦାରି ( ଦେଖ )
Huāl-dāri Hāl-dāri ( See )

ହୁଆଲତ୍—ବୈଦେ· ବି (ଅ. ହଓ୍ୱାଲତ୍)—୧ । ହାଉଲାତ୍ ( ଦେଖ )
Huālat 1. Hāulāt ( See )
हाओलात् ୨ । ସ୍ୱତନ୍ତ୍ର ଖରଚ ଚଳାଇବା ପାଇଁ ଖରଚର ଭାର-
अगाऊ, हवालत् ପ୍ରାପ୍ତ କର୍ମଚାରୀଙ୍କ ହାତ ତହବିଲରୁ ଆଗରୁ ଦିଆଯିବା ଧନ—2. Advance.
[ଦ୍ର—ଏ ଟଙ୍କା ପ୍ରଥମେ ଉକ୍ତ କର୍ମଚାରୀଙ୍କ ନାମରେ 'ହୁଆଲତ୍' ବୋଲି ଲେଖା ହୁଏ । ପରେ ସେ ଖରଚର ବିଲ୍ ବା ହିସାବ ଓ ଭାଉଚର୍ ବା ରସିଦ ଅଫିସ ଦାଖଲ କଲେ ଏ ଟଙ୍କା ତାଙ୍କର 'ହୁଆଲତ୍' ରହୁ ଖାରଜ ହୋଇ 'ଖରଚ ବୋଲି ହିସାବ ଚଢ଼େ ।]

ହୁଅଲତ୍ ଖାତା(ବହି)—ବୈଦେ. ବି—ଯେଉଁ ଖାତାରେ ହୁଅଲତ୍
Huālat khātā(bahi) ଜେବା ବ୍ୟକ୍ତିଙ୍କ ନାମ ଓ ହୁଅଲତ ଟଙ୍କାର
হাওলাত খাতা ପରିମାଣ ଲେଖାଯାଏ—A book showing
अगाऊ खाता the sums advanced to different persons.

ହୁଅଲତ୍ ଦେବା—ଦେ. କ୍ରି—ପରେ ଖରଚର ହିସାବ ଦେବା ପାଇଁ
Huālat debā କୌଣସି ବ୍ୟକ୍ତିଙ୍କୁ ଅଗଉରୁ ଧନ ଦେବା—
হাওলাত দেওয়া To advance money to a person
अगाऊ देना on the understanding that he will submit bills duly later on.

ହୁଅଲତ୍ ନେବା—ଦେ. କ୍ରି—ପରେ ହିସାବ ଦେବା ପାଇଁ ତହବିଲରୁ
Huālat nebā ଅଗଉରୁ ଟଙ୍କା ଆଣିବା—To take an
হাওলাত লওয়া advance from a fund with a
अगाऊ लेना view to submit due accounts later on.

ହୁଅଲତି—ବୈଦେ. ବିଣ—୧ । ହୁଅଲତ ସମ୍ବନ୍ଧୀୟ—
Huālati 1. Relating to 'Huālat'.
হাওলাতি ୨ । ହୁଅଲତ ଦିଆ ଯାଇଥିବା—
अगाऊका 2. (money) Advanced.

ହୁଆ ହୁଆ—ଦେ. (ଧ୍ୱନ୍ୟନୁକରଣ) ଅ—ବିଲୁଅମାନଙ୍କର ହୁକେ ହୁକେ
Huā huā ଧ୍ୱନି—The howling sound of jackals.
হুক্কাহুয়া हुआँहुआँ
[ଦ୍ର—ସୂର୍ଯ୍ୟ ମଣ୍ଡଳକୁ ଗ୍ରହଣ ଦେଖି ବିଲୁଆ, ବୋବାଇଲେ ଅଣ୍ଡେ ହୋଇ ହୁଆ ହୁଆ—ନୃସିଂହ ସହାସ୍ରନାମ. ବର୍ଣ୍ଣି]

ହୁଆ ହୁଟା—ପ୍ରାଦେ. (ଙ୍କେଅଲ) ବି—୧ । କଳିକଜିଆ—1. Quarrel.
Huāhuṭā ୨ । ଗାଳି—2. Abuse; reproach. ୩ । ଗୋଳ-ମାଳ—3. Noise; uproar.

ହୁଇଟ୍‌ନି—ଦେ.ବି (ନାମ)—ଆମେରିକା ଯୁକ୍ତରାଜ୍ୟବାସୀ ଜଣେକ ପ୍ରାଚ୍ୟ-
Huiṭ-ni ବିଷୟଜ୍ଞ ସ୍ୱର୍ଗତ ପଣ୍ଡିତ—W. D. Whitney, a
হুইটনী ह्विट्नी late American Orientialist scholar.
(ହ୍ୱିଟ୍‌ନି—ଅନ୍ୟରୂପ) [ଦ୍ର—ଏ ଖ୍ରୀ. ୧୮୨୭ରେ ଜନ୍ମ ଗ୍ରହଣ କରି ୧୮୯୪ ରେ ପ୍ରାଣତ୍ୟାଗ କରିଥିଲେ । ଏ ସଂସ୍କୃତରେ ଅତି ବିଦ୍ୱାନ୍ ଥିଲେ ଓ ଏହାଙ୍କ ରଚିତ ସଂସ୍କୃତ ବ୍ୟାକରଣ ବର୍ତ୍ତମାନ ପର୍ଯ୍ୟନ୍ତ ପାଶ୍ଚାତ୍ୟ ଜଗତରେ ପ୍ରାମାଣିକ ଗ୍ରନ୍ଥରୂପେ ପରିଗଣିତ । ଆମେରିକାରେ ପ୍ରତିଷ୍ଠିତ ପ୍ରାଚ୍ୟ ସମିତିର ଏ ପୃଷ୍ଠପୋଷକ ଓ ସଭ୍ୟପତି ହୋଇଥିଲେ । ସେଞ୍ଚୁରି ଡିକ୍‌ସନାରି (Century Dictionary) ନାମକ ପ୍ରକାଣ୍ଡ ଇଂରାଜୀ ଅଭିଧାନର ଏ ପ୍ରଧାନ ସମ୍ପାଦକ ଥିଲେ ।

ହୁଇଲ୍—ବୈଦେ. ବି (ଇଂ.ହ୍ୱିଲ୍)—ଚକ—
Huil হুইলি ह्वील Wheel.
(ହ୍ୱିଲ୍—ଅନ୍ୟରୂପ) [ଦ୍ର—ଏହି ଇଂରାଜୀ ଶବ୍ଦର ସ୍ୱତନ୍ତ୍ର ବ୍ୟବହାର ନାହିଁ । କିନ୍ତୁ ଅନ୍ୟ ଶବ୍ଦ ଯୁକ୍ତ ଏହି ଶବ୍ଦ ଇଂରାଜୀ ଭାଷାରୁ ଅବିକଳ ଓଡ଼ିଆରେ ବ୍ୟବହୃତ ହୁଏ । ଯଥା—ଫ୍ଲାଇହୁଇଲ୍ (fly wheel), କଗ୍ ହୁଇଲ୍ (Cog wheel)]

ହୁଇ ହୁଟି—ପ୍ରାଦେ (ଙ୍କେଅଲ,ଧ୍ୱନ୍ୟନୁକରଣ) ଅ—ହୁକେହୁକେ; ବିଲୁଅଙ୍କ
Huihuṭi ରବ—The howling of jackals.

ହୁଉଁ ହୁଉଁ—ଦେ. ଅ—କୁମ୍ଭାଟୁଆ ଆଦି ପକ୍ଷୀମାନଙ୍କର ରବ ବା ଶବ୍ଦ—
Hu-uñ hu-uñ The cooing of birds such as Kumbhaṭuā. (ଉ—ତାଳ ବାହୁଙ୍ଗାରେ ଲତ କୁମ୍ଭାଟୁଆ ବସିଥିଲି ହୁଉଁ ହୁଉଁ—ନନ୍ଦକିଶୋର. କର୍ଣ୍ଣଭରଣୀ)

ହୁଉ କ(କି)ରି (କିନା, କିନି, ଦସ୍, ଧସ୍)—ଦେ. କ୍ରି ବିଣ—୧। ହଠାତ୍;
Hu ka(ki)ri (kinā; kini das dhas) ହଠାତ୍—
1. Suddenly. ୨ । ହଠାତ୍ ଅତି ଭୀଷଣ ଭାବରେ (ନିଆଁ ଜଳଉଠି ବ୍ୟାପିବା ପ୍ରକାରେ)—2. Furiously (said of a fire raging and spreading rapidly). (ଯଥା—ଘାସ ଗଦାରେ ନିଆଁ ଲାଗି ହୁଉକରି
हुट करे हुहुकरके ଜଳି ଉଠିଲା)

ହୁଏ—ଦେ. କ୍ରି—(ସଂ ଭବତି, ପ୍ରା ହୋଇ)—ହୁଅର୍ (ଦେଖ)—
Hue Huai (See) ଅ—(ବଙ୍ଗଳାରୁ ଅନୁକୃତ)—
হয় ସମ୍ଭବତଃ—× × × ହୁଏ ତାହାଙ୍କର କାର୍ଯ୍ୟରେ ଗଫଲତି, କ
होवे ହୁଏ ଚିନ୍ତା—ଫକୀର ମୋହନ. ଛମାଣ ଆଠଗୁଣ୍ଠ] ପ୍ରାଦେ—
(ଗାଁଠଣା) ଅ—ହଁ—Yes.

ହୁଏଂସାଂ—ବୈଦେ. ବି (ନାମ)—ହୁଏନ୍‌ସା (ଦେଖ)—
Huemsām Huen-sā (See)

ହୁଏତ—ଦେ. ଅ—(ଓଡ଼ିଆରେ ଅଧୁନିକ ପ୍ରୟୋଗ, ବଙ୍ଗଳାରୁ ଅନୁକୃତ)
Hueta ୧ । ସମ୍ଭବତଃ—1. Probably; may be. ୨ । ନଚେତ୍, ନହେବା, କିମ୍ବା ଆଦି ଶବ୍ଦର ଅବ୍ୟବହିତ ପୂର୍ବ ପ୍ରୟୋଗ
2. A word used relatively before nor, or; either. (ଯଥା—ହୁଏତ ରାମ ନହେବା ଶ୍ୟାମ ସେଠାକୁ ଯିବେ) ୩ । ବୋଧହୁଏ—It seems; it seems.

ହୁଏନ୍‌ସା(ସାଂ)—ବୈଦେ. ବି (ଚୀନ ଦେଶୀୟ ନାମ)—ଜଣେ ବିଖ୍ୟାତ
Huen-sā(sām) ଚୀନ ଦେଶୀୟ ପର୍ଯ୍ୟଟକଙ୍କ ନାମ—Name of a celebrated Chinese traveller Huen
[ହୁଏନ୍ ସାଙ୍ଗ୍(ନ୍)—ଅନ୍ୟରୂପ] Thsang.
[ଦ୍ର—ଏ ଭାରତବର୍ଷରେ ଖ୍ରୀ ୬୨୭ଠାରୁ ୬୪୫ ପର୍ଯ୍ୟନ୍ତ ଅବସ୍ଥାନ କରି ଭାରତରେ ବୌଦ୍ଧଧର୍ମ ପୁସ୍ତକମାନ ଆଲୋଚନା କରି ଭାରତର ଇତିହାସ ଓ ଭୂଗୋଳ ଅଧ୍ୟୟନ କରିଥିଲେ । ଏହାଙ୍କ ଚୌକିକନାମର ଉଚ୍ଚାରଣ 'ହିଉଏନ୍‌ସିଙ୍ଗ୍' । ଏ ଭାରତ ବିଷୟକ ଯେଉଁ ବୃତ୍ତାନ୍ତମାନ ଲିପିବଦ୍ଧ କରିଯାଇ ଅଛନ୍ତି ତାହା ଭାରତର ପୁରାତତ୍ତ୍ୱ ଜାଣିବାପାଇଁ ବିଶେଷ ସାହାଯ୍ୟ କରେ । ଏହାଙ୍କ ପୁସ୍ତକର ନାମ 'ସିୟୁକି' । ଏହାଙ୍କର ଭାରତକୁ ଆସିବା ସମୟରେ ବୌଦ୍ଧଧର୍ମାବଲମ୍ବୀ ହର୍ଷବର୍ଦ୍ଧନ ରାଜା ଦ୍ୱିତୀୟ ଶୀଲାଦିତ୍ୟ ନାମ ଗ୍ରହଣ କରି ଆର୍ଯ୍ୟାବର୍ତ୍ତରେ ରାଜତ୍ୱ କରୁଥିଲେ । ଏ ଗୟା ନିକଟସ୍ଥ ନାଳନ୍ଦା ବିଶ୍ୱବିଦ୍ୟାଳୟରେ ୫ ବର୍ଷ ହିନ୍ଦୁ ଦର୍ଶନ ଶାସ୍ତ୍ର ଓ ବୌଦ୍ଧ ଦର୍ଶନ ଶାସ୍ତ୍ର ଶିକ୍ଷା କରିଥିଲେ । ଏହାଙ୍କ ସମୟରେ

ଖ୍ରାନରୁ ବୌଦ୍ଧ ଧର୍ମର ପ୍ରବଳ ହ୍ରାସ ହୋଇ ଆସୁଥିଲା । ଏ ଭାରତବାସୀଙ୍କ ଖୁବ୍ ପ୍ରଶଂସା କରି ଅଛନ୍ତି । ଏ ଓଡ଼ିଶା ଦେଶରେ ପ୍ରତ୍ୟେକ ତଥା ଭାରତର ପ୍ରଧାନ ବନ୍ଦର ତାମ୍ରଲିପ୍ତ ବିଷୟ ବର୍ଣ୍ଣନା କରି ଅଛନ୍ତି । ଏହାଙ୍କ ସମୟରେ ଭାରତ ୧୩୮ ଗୋଟି ରାଜ୍ୟରେ ବିଭକ୍ତ ଥିଲା ଓ ତହିଁ ମଧ୍ୟରୁ ୧୧୦ ଗୋଟି ରାଜ୍ୟରେ ଏ ନିଜେ ପରିଭ୍ରମଣ କରିଥିଲେ । ଉତ୍କଳୀୟ ବା ଓଡ଼ିଶାବାସୀଙ୍କ ମଧ୍ୟ ଏ ପ୍ରଶଂସା କରି ଅଛନ୍ତି । ଦେଶ ପରିଧି ୭୦୦୦ ମାଇଲ୍ ଥିବା ଏ ଉଲ୍ଲେଖ କରି ଅଛନ୍ତି ।]

ହୁଏଲ୍—ବୈଦେ. ବି (ଇଂ)—ତିମି ମାଛ—Whale.
Huel  ପ୍ରାଦେ (ପାଟଣା) ବି—ଗାତ—Hole.
ତିମି ମାଛ  ହ୍ୱେଲ  (ହ୍ୱେଲ୍—ଅନ୍ୟରୂପ)

ହୁଏଲ୍ ବୋନ୍—ବୈଦେ. ବି (ଇଂ)—ତିମି ମାଛର ହାଡ଼—
Huel bon  Whale bone.
ତିମିର ହାଡ଼  ହ୍ୱେଲ ବୋନ  (ହ୍ୱେଲ୍ ବୋନ୍—ଅନ୍ୟରୂପ)

ହୁଏଲର—ବୈଦେ. ବି (ଇଂ)—ତିମି ମାଛ ଧରିବାରେ ନିଯୁକ୍ତ ଜାହାଜ
Huelar  A whaler; a ship engaged in catching whales.
ହ୍ୱେଲର  ହ୍ୱେଲର  (ହ୍ୱେଲର୍—ଅନ୍ୟରୂପ)

ହୁଓ—ଦେ. ବି ଓ ଅ—ହୋ ( ଦେଖ )
Huo  Ho ( See )

ହୁଓ ମଟା(ତେ)ଇବା—ଦେ. କ୍ରି—ହୋ ମଟାଇବା ( ଦେଖ )
Huo matā(te)ibā  Ho matāibā ( See )

ହୁଂ—ସଂ. ଅ—ହୁମ୍ ( ଦେଖ )—Hum ( See )
Hum  ପ୍ରାଦେ—ହୁଁ ( ଦେଖ )—Huñ ( See )

ହୁଁ—ଦେ. ଅ (ସଂ ହୁମ୍)—୧ । ହଁ (ସ୍ୱୀକାର ବୋଧକ)—1. (Interjection indicating assent) Yes.
Huñ
(ହୁଁଉଁ—ଅନ୍ୟରୂପ)  ୨ । ହଁ; ସମ୍ମତି ସୂଚକ—2. An interjection indicating agreement.
ହୁଁ  ହୁଁ
୩ । (କଥା କହୁଥିବା ବ୍ୟକ୍ତିଙ୍କୁ କଥା କହିଯିବା ନିମନ୍ତେ ଉତ୍ସାହିତ କରିବାରେ ଓ କଥକଙ୍କ ଉକ୍ତିକୁ ଶ୍ରୋତାଙ୍କର ଶୁଣୁଥିବାର ଦର୍ଶନ ସ୍ୱରୂପ ଶ୍ରୋତାଙ୍କ ଦ୍ୱାରା ବ୍ୟବହୃତ ଅବ୍ୟୟ) ହଁ, ମୁଁ ଶୁଣୁଅଛି—3. ( interjection ) 'Yes !' 'then !' (used by the hearer in the course of attending to a speaker's talk or in responding to a course of speech.) [ଉ—କଥା ସୁନ୍ଦର ହୁଁଙ୍କୁ—ଉକ୍ତି] ୪ । ପୂର୍ବେ ବୋଲାଯାଇ ବନ୍ଦ କରି ଯାଇଥିବା କଥାକୁ ଆରମ୍ଭ କରିବା ପାଇଁ କଥକଙ୍କୁ ଅନୁରୋଧ ସୂଚକ ଧ୍ୱନି—4. ( interjection used in requesting a person to continue a subject which had been stopped short) ହୁଁ, ତା ପରେ କଅଣ ହେଲା କହ ।—Please go on ! ୫। ଅବଜ୍ଞା ସୂଚକ—5. Interjection denoting derision. [ଉ—ତାଙ୍କୁ ଅବଜ୍ଞା କରି ଗମ୍ଭୀର ସ୍ୱରରେ କହିଲା ହୁଁ—ଫକୀରମୋହନ ଛମାଣ ଅଠଗୁଣ ] ୬ । ( ଅମୁକଙ୍କ ) ଛଡ଼ା; ବ୍ୟତୀତ—6. Except; besides. [ଉ—ସ୍ୱପ୍ନରେ ଉର୍ଦ୍ଧ୍ୱରେତା ହୋଇ, ତସ୍ମୁଁ ହୁଁ ଆନ ନ ଜାଣନ୍ତି । ଜଗନ୍ନାଥ. ଭାଗବତ ।] ୭ । କ୍ରୋଧ ବା ସାମର୍ଥ୍ୟ ପ୍ରକାଶକ ଧ୍ୱନି; ହୁଙ୍କାର—7. Interjection; uttered in anger or in giving vent to one's strength. ୮ । ଉଠୁଙ୍କି ଉଠିବା ବେଳେ ଉଚ୍ଚାରିତ ଶବ୍ଦ—8. Sound uttered by one going to spring up with force ୯ । କପୋତ ଓ ହୁଁ ହୁଁ ପେଚାଙ୍କ ଧ୍ୱନି—9. The sound or cooing of doves and owls. ୧୦। ନିକଟରେ ଡାକୁଥିବା ବ୍ୟକ୍ତିକୁ ଅନାଗ୍ରହ ବା ଅଚ୍ଛନ୍ଦ ସ୍ୱରରେ ଜବାବ ଦେବାର ଧ୍ୱନି—1. An interjection used in responding to a call of a person near by. ୧୧ । ସ୍ମରଣାର୍ଥକ—11. Interjection indicating recollection of some thing past. ୧୨ । (ନିଷେଧାର୍ଥକ) ଉହୁଁ; ଉଁହୁଁ—12. Interjection used in preventing. ୧୩ । (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ଯଥା—ଆଜହୁଁ ବେଳହୁଁ (ଅମୁକ ସମୟଠାରୁ—13. Since [ଉ—କେମନ୍ତ ! ରାଜହୁଁ ମୁଁ ଯିବି । ଭୂପତି. ପ୍ରେମ ପଞ୍ଚାମୃତ ।] ୧୪ । (ଅନ୍ୟ ସର୍ବନାମ ଶବ୍ଦ ସଙ୍ଗେ ଯୁକ୍ତ ଯଥା—ତହୁଁ, ତାହୁଁ, କାହୁଁ, ଯାହୁଁ ) ଠାରୁ; ଅପେକ୍ଷା—14. Than. [ଉ—ମନହୁଁ ବେଗ ଶକ୍ତି ଧରି—ଭୂପତି ପ୍ରେମପଞ୍ଚାମୃତ ।] ୧୫ । ଆଗରେ କାନ୍ଧେଇଥିବା ସବାରି ବେହେରାମାନଙ୍କର ଗୁଲିବା ଆରମ୍ଭ କରି ଡାକ ଛାଡ଼ିବାର ପ୍ରଥମ ଡାକ—15. A sound made by Pālki bearers in the beginning of their march. [ଉ—ଭଜନ ମନକୁ ଗୁଣୁ ଗୁଣୁ କରି ସଙ୍ଗୀତାଳାପ କରିବା ସମୟରେ ଲୋକେ ଏହି ଶବ୍ଦକୁ ଦୀର୍ଘ କରି ବହୁବାର ଉଚ୍ଚାରଣ କରନ୍ତି ।

ଅନାଦର ଓ ଭୟ ପ୍ରଦର୍ଶନ କଲାବେଳେ ଲୋକେ ଏହି ଶବ୍ଦକୁ ଦୀର୍ଘ କରି ଥରେ ଉଚ୍ଚାରଣ କରନ୍ତି । ଯଥା—ହୁଁ । ଦେଖିବା ତୁ ଚୋଟାଏଚାର କସମତ କେତେ ?]

ହୁଁ କ(କ)ରି—ଦେ. କ୍ରି. ବିଣ—ହୁଁକାର ଉଚ୍ଚାରଣ ପୂର୍ବକ ( ବଳମ
Huñ ka(ki)ri  ଦେଖାଇବା )—( To show one's
[ହୁଁ କରା (କ)—ଅନ୍ୟରୂପ]  strength) By uttering the
ହୁଁ କରେ  ହୁଙ୍କରକେ  sound of Huñ.

ହୁଁ କରିବା(ମାରିବା)—ଦେ. କ୍ରି—୧ । ଅନ୍ୟ ବ୍ୟକ୍ତିର କଥାରେ ବା
Huñ karibā (maribā)  ପ୍ରସ୍ତାବରେ ରାଜିହେବା; ସମ୍ମତ
ହୁ କର୍ନା  ହେବା—1. To agree to what another is
ହୁଁ କରନା  saying. ୨ । କଥା ବା କାହାଣୀ କହୁଥିବା ବ୍ୟକ୍ତିକୁ କଥା କହିବା ନିମନ୍ତେ ଉତ୍ସାହିତ କରିବା ଓ ଶ୍ରୋତା ମନୋଯୋଗପୂର୍ବକ କଥିତ ବିଷୟ ଶୁଣୁଅଛନ୍ତି ଏହା ଜଣାଇବା ପାଇଁ ମଝିରେ ମଝିରେ ହୁଁ ଶବ୍ଦ ଉଚ୍ଚାରଣ

କରିବା—2. To utter the sound of Huñ while attending to a person's conversation or story. ପ୍ରାଦେ (ଗଡ଼ଜାତ) କ୍ରି—ସ୍ୱୀକାର କରି ହୁଁ କରିବା—To utter the exclamation Huñ in token of agreement or disagreement.

ହୁଁ ଚୁଁ—ଦେ. ବି—୧ । କୌଣସି କଥାର ବା ଆଦେଶର ଲଙ୍ଘନସୂଚକ ବା ଅସମ୍ମତିସୂଚକ ବାକ୍ୟର ପ୍ରକାଶ—1. Expression of dissent from or disobedience to an order. ୨ । ହଲଚଲ; ଇତସ୍ତତଃ ଚଳନ ବା ଗତି—2. Slight movement to and fro. ୩ । ସାମାନ୍ୟ ମାତ୍ର ଶବ୍ଦ—3. Slight sound. ବିଣ—ଯେଉଁ ବ୍ୟକ୍ତି କଥା ବା ଆଦେଶକୁ ଲଙ୍ଘନ କରେ ବା ଅସମ୍ମତି ପ୍ରକାଶ କରେ—Expressing dissent from or disapproval of or disobedience to an order.
Huñ chuñ
हुँचूँ
हूँ।ना

ହୁଁ ଚୁଁ କରିବା—ଦେ. କ୍ରି—୧ । ପ୍ରଭୁଙ୍କ ଆଦେଶ ପ୍ରତି ଅବଜ୍ଞାସୂଚକ ଉତ୍ତର ଦେବା—1. To retort to one's master's order. ୨ । କଥାକୁ ବା ଆଦେଶକୁ ଲଙ୍ଘିବା—2. To disobey or disregard an order. ୩। ଅସମ୍ମତିସୂଚକ ଲକ୍ଷଣ ପ୍ରକାଶ କରିବା—3. To give vent to one's disapproval or disagreement. ୪ । ହଲ୍ ଚଲ୍ ହେବା; ଇତସ୍ତତଃ ଚଳିତ ହେବା—4. To move slightly to and fro
Huñ chuñ karibā
हुँचुँकरा
हुँचूँ करना

ହୁଁ ଚୁଁ ହେବା—ଦେ. କ୍ରି—୧ । ସାମାନ୍ୟ ମାତ୍ର ଇତସ୍ତତଃ ଚଳିତ ହେବା—1. To move slightly to and fro ୨। ଆଦେଶକୁ ସାମାନ୍ୟମାତ୍ର ଲଙ୍ଘନ କରିବା—2 To slightly disobey an order. ୩। ସାମାନ୍ୟ ମାତ୍ର ଶବ୍ଦ କରିବା—3 To make a slightly audible sound.
Huñchuñ hebā
हुँचुँहओया
हुँचूँहोना

ହୁଁଟ୍—ପ୍ରାଦେ (ଉତ୍ତରଭାଗ) ବି—ଓଟ—
Huñt Camel.

ହୁଁଡାର—ପ୍ରାଦେ (ଗଡ଼ଜାତ) ବି—ଗଧିଆ—
Huñdāra Wolf; hyena.
(ହୁଣ୍ଡାର—ଅନ୍ୟରୂପ)

ହୁଁ ବା(ମା, ମେ)ରୀ ଭାଇ—ଗ୍ରା. ଅ (ସଂ. ହୁମ୍ ଓ ହିନ୍ଦୀ ମେରା= ମୋର+ଭାଇ=ହେ ଭାଇ)—
Huñ ba(ma, me)rā bhāi
[ହୁଁ ବା(ମ, ମେ, ମ୍)ରା ଭାଇରେ(ଲୋ)—ଅନ୍ୟରୂପ] ସବାରୀ-ବେହେରାଙ୍କର ଡାକବିଶେଷ—A halloo uttered by the palki-bearers.
[ବ୍ୟ—ସବାରୀ ବେହେରାମାନେ ସବାରୀ କାନ୍ଧେଇ ଅଗ୍ରସର ହେବା ବେଳେ ପ୍ରଥମେ 'ହୁଁ' ଧ୍ୱନି କରନ୍ତି । ତା ପରେ 'ହୁଁ ମେରା ଭାଇ' ଡାକ ତା ପରେ କ୍ରମଶଃ ଗତିବୃଦ୍ଧି ସଙ୍ଗେ ସଙ୍ଗେ ନାନା ଅର୍ଥବ୍ୟଞ୍ଜକ ଡାକମାନ ଡାକନ୍ତି ।]

ହୁଁ ହାଁ—ଦେ. ଅ ( ସନ୍ଧିଭର ଶବ୍ଦ )—୧ । ସମ୍ମତିସୂଚକ ଧ୍ୱନିଦ୍ୱୟ—1. Two sounds indicating consent or approval. ୨ । ସବାରୀ ବେହେରାଙ୍କ ଡାକ ବିଶେଷ—2. A halloo uttered by palki-bearers. [ବ୍ୟ—ପ୍ରଥମ ବେହେରା 'ହୁଁ' ଧ୍ୱନି କରିବା ପରେ ଦ୍ୱିତୀୟ ବ୍ୟକ୍ତି 'ହାଁ' ଧ୍ୱନି କରେ ।] ୩ । ହୁଁ ହାଁ ଚଢେଇ ଦମ୍ପତିଙ୍କର ଧ୍ୱନିଦ୍ୱୟ—3. The two responding sounds of a pair of Huñ Hāñ birds. ପ୍ରାଦେ (ଗଡ଼ଜାତ) ଅ—ଶିଶୁର ଶବ୍ଦ—Sound utterrd by infants.
Huñ hāñ
हुँ हाँ
हाँ हूँ

ହୁଁ ହାଁ ଚଢେଇ—ଦେ ବି—ଏକ ପ୍ରକାର ପାର୍ବତ୍ୟ ଓ ଜଙ୍ଗଲି ପେଚା-ଜାତୀୟ ବଡ ଚଢେଇ—A kind of big owl making a very ferocious hooting sound in the night.
Huñ hāñ chaṛhei
ହୁମ ହୁମେ ପାଖୀ
हुहुआ
[ବ୍ୟ—ଏମାନେ ଗମ୍ଭୀର ରାତ୍ରିରେ ଜଙ୍ଗଲରେ ପରସ୍ପରଠାରୁ ବହୁ ଦୂରରେ ବା ନଈର ଏପାରି ସେପାରିରେ ଥାଇ ରାବ କରନ୍ତି । ଗୋଟିଏ ଚଢେଇ 'ହୁଁ' ବୋଲି ଦୀର୍ଘ ଗମ୍ଭୀର ରାବ କରେ ଓ କ୍ଷଣକ ପରେ ଅନ୍ୟ ପକ୍ଷୀ 'ହାଁ' ବୋଲି ରାବ ଦିଏ ।]

ହୁଁ ହୁଁ ଦେ. ଅ—୧ । ସମ୍ମତିସୂଚକ ହୁଁ ଧ୍ୱନିର ଦ୍ୱିତ୍ୱ—1. Doublet of 'Huñ'. ୨ । ପାରା ଓ କପୋତାଦି ପକ୍ଷୀମାନଙ୍କର ଉଚ୍ଚାରିତ ଧ୍ୱନି—2. The cooing sound of doves and pigeons. [ଉ—ଚନ୍ଦ୍ର ପାରାବନ୍ତ ହୁଁ ହୁଁ ଆରମ୍ଭି, ବେଭାରେ ଦ୍ୱିଜ ସଙ୍ଗତ ଲଭି । ଉକ୍ତ· ବୈଦେହୀଶବିଳାସ ।] ୩ । ସମ୍ଭୋଗ କାଳରେ ମତ୍ତତା ଯୋଗୁଁ କାମୁକୀ ସ୍ତ୍ରୀମାନଙ୍କର ଉଚ୍ଚାରିତ ମଧୁର ଅସ୍ପଷ୍ଟ ଶବ୍ଦ ବିଶେଷ—3. A sound uttered by lustful young women during orgasm. [ଉ—ହାଁ ହାଁ ହୁଁ ହୁଁ ନାଁ ନାଁ ମଲି ଇଷି ଭାଷାକୁ କସ ଭୁଲାଇବ । ଉକ୍ତ· ପ୍ରେମସୁଧାନିଧି ।]
Huñ huñ
हुँ हुँ
हूँ हूँ

ହୁକ୍—ବୈଦେ. ବି ( ଇଂ. ହୁକ୍ )—ବନ୍ଧାଗ୍ର ଧାତୁର କଣ୍ଟା; ଧାତୁର ଅଙ୍କୁଶ—A hook.
Huk

ହୁକୁମତ୍(ତି)—ବୈଦେ. ବି ଆ. ହୁକୁମତ୍)—ହୁକୁମତ୍ ( ଦେଖ )
Huk-mat(ti) Hukumat ( See )

ହୁକ୍ ହୁକ୍ (ଇତ୍ୟାଦି)—ଦେ. ଅ—ହୁକୁ ହୁକୁ ( ଦେଖ )
Huk-huk (etc) Huku huku ( See )

ହୁ କ(କି)ରି(କିନା, କିନି)—ଦେ. କ୍ରି. ବିଣ—ହୁଉ କରି ( ଦେଖ )
Hu ka(ki)ri(kinā, kini) Hu-u kari (See)

ହୁକା—ବୈଦେ. ବି (ଫା. ହୁକ୍କା)—୧ । ଗୁଡ଼ାଖୁ ଧୂଆଁ ପିଇବା ପାଇଁ ବ୍ୟବହୃତ ନଳଯୁକ୍ତ ଯନ୍ତ୍ର; ଗୁଡ଼ଗୁଡ଼ି—1. A hookāh; hubble bubble; a pipe for smoking tobacco.
Hukā
हुका
हुक्का

୨ । ଅଫିମ ବା ମଦକ ଧୂଆଁ ପିଇବା ପାଇଁ ବ୍ୟବହୃତ ନଳଯୁକ୍ତ ଯନ୍ତ୍ର—2. A pipe for smoking opium.

[ଦ୍ର—ଧୂଆଁପତ୍ରର ଧୂଆଁ କଡ଼ା ଥିବାରୁ ଧୂଆଁପତ୍ରକୁ ଗୁଣ୍ଡା କରି ସେଥିରେ ଗୁଡ଼ ଓ କେତେକ ମସଲା ମିଶାଇ ଗୁଡ଼ାଖୁ (ବ. ତାମାକ୍) ନାମକ ଏକ ପ୍ରକାର କାଦୁଅ ଦ୍ରବ୍ୟ ପ୍ରସ୍ତୁତ କରାଯାଏ । ଏହି ଗୁଡ଼ାଖୁକୁ ଗୋଟିଏ ମାଟିର କାହାଳ ବା ଚିଲମ୍ (ବ. କଲ୍‌କେ, ଚିଲିମ୍) ଉପରେ ରଖି ତହିଁରେ ଅଙ୍ଗାର ବା ଅଙ୍ଗାର ଗୁଣ୍ଡି ନିର୍ମିତ ପିଠା (ଟିକିଆ) ଦେଇ ଅଗ୍ନି ସଂଯୋଗ କରାଯାଏ । ସେହି ଚିଲମ୍‌ର ତଳେ ବା ଗାଣ୍ଡି ଅଗ୍ରେ ଗୋଟିଏ ଛିଦ୍ର ଥାଏ । ସେହି ଚିଲମକୁ ଗୋଟିଏ ନଳ (ବ. ନଲ୍) ଉପରେ ବସାଇବାକୁ ହୁଏ । ସେ ନଳର ତଳମୁଣ୍ଡ ବା ନାଳଗୁ ଗୋଟିଏ ଫମ୍ପା ନଡ଼ିଆ (ବ. ଖୋଲ୍, ମାଲ୍ଚା) ମଧ୍ୟରେ ଥିବା ପାଣିରେ ବୁଡ଼ି ଥାଏ । ସେହି ନଡ଼ିଆର ଅଧଯାଏ ପାଣି ପୂରି ଯାଇଥାଏ ଓ ନଡ଼ିଆର ଗୋଟିଏ ପାର୍ଶ୍ୱରେ ଗୋଟିଏ କଣା କରାଯାଇଥାଏ । ସେହି ଛିଦ୍ରରେ କେହି କେହି ମୁହଁ ଲଗାଇ ଧୂଆଁ ଶୋଷନ୍ତି ଓ କେହି କେହି ସେହି ଛିଦ୍ରରେ ଖଣ୍ଡିଏ ସରୁ ଛୋଟ ନଳ (ବ. ସଟ୍‌କା) ଗୁଞ୍ଜି ସେହି ନଳକୁ ଚୁମ୍ବିଲେ ନଡ଼ିଆରେ ପାଣି ନ ଥିବା ଉପର ଅଂଶରେ ଚିଲମରେ ଥିବା ଗୁଡ଼ାଖୁ ପୋଡି ଯାଇ ତହିଁର ଧୂଆଁ ନଳ ବାଟେ ଆସି ନଡ଼ିଆରେ ଥିବା ପାଣି ଉପରକୁ ଗୁଡ୍‌ଗୁଡ୍ ଶବ୍ଦ କରି ଉଠି ଆସେ ଓ ନଡ଼ିଆର ପାର୍ଶ୍ୱସ୍ଥ ଛିଦ୍ର ବାଟେ ତାହା ପାଟିକୁ ଆସେ । ଏତଦ୍ୱାରା ଗୁଡ଼ାଖୁ ଧୂଆଁର ମିଷ୍ଟ ସ୍ୱାଦ ମନୁଷ୍ୟ ଭୋଗ କରେ । ହୁକା ଟାଣିବା ବେଳେ ଚିଲମର ଧୂଆଁ ନାଳଗୁ ବାଟେ ନଡ଼ିଆର ପାଣି ଭିତର ଦେଇ ଉଠିବା ବେଳେ ଗୁଡ୍‌ଗୁଡ୍ ଶବ୍ଦ ହୁଏ ।

ହୁକା ସାଧାରଣତଃ ୨ ପ୍ରକାରର—୧ । ନଡ଼ିଆ ହୁକା—ଏହାର ଗାଣ୍ଡି ନ ଥିବାରୁ ଏହାକୁ ତଳେ ରଖି ଦେଲେ ଏହା ଢଳି ପଡ଼େ । ଏଥିପାଇଁ ଗୋଟିଏ ନଡ଼ିଆ ସମ୍ଭାଳିବା ଭଳି ପାତ୍ର ଆକୃତିର ବଇଠକ ଦରକାର ହୁଏ । ୨ । ଅଲ-ବଲ୍ଲା ହୁକା—ଏଥିରେ ନଡ଼ିଆ ଜଳାଧାର ପରିବର୍ତ୍ତେ ଧାତୁ-ନିର୍ମିତ ସମତଳ ଆଧାର ବ୍ୟବହୃତ ହୁଏ ଓ ଏଥିରେ ସଟ୍‌କା ପରିବର୍ତ୍ତେ ଗୋଟିଏ ଲମ୍ବ ଓ ନମନୀୟ ନଳ ଲାଗିଥାଏ । ନଡ଼ିଆ ହୁକାକୁ ମନୁଷ୍ୟ ହାତରେ ନ ଧରିଲେ ଧୂମପାନ କରି ପାରନ୍ତି ନାହିଁ, କିନ୍ତୁ ଅଲବଲ୍ଲା ହୁକାକୁ ତଳେ ଥୋଇ ଖଣ୍ଡିଏ ଦୂର ଛଡ଼ାରେ ବସି ବା ଶୋଇ ଧୂମପାନ ସୁଖ ଉପଭୋଗ କରାଯାଏ ।

ଅଫିମକୁ ପୋଡ଼ା ପିଜୁଳି ପତ୍ର ସଙ୍ଗେ ନିଆଁରେ ସିଦ୍ଧ 'ମଦକ' ବା 'ଗୁଲି' ନାମକ ଗୁଳା (ସଂ. ଗୋଳକ) ତିଆର କରାଯାଏ । ଏହି ଗୁଲି ଖାଇବା ପାଇଁ ଯେଉଁ ହୁକା ବ୍ୟବହୃତ ହୁଏ ତହିଁର ଚିଲମ୍ ଗୁଡ଼ାଖୁ ଚିଲମ ପରି ଉଚ୍ଚାକାର ନ ହୋଇ ତାହାର ସରୁଆ ମୁହଁରେ ଗୋଟିଏ ମାତ୍ର ଛିଦ୍ର ଥାଏ ଓ ସଟକା ପରିବର୍ତ୍ତେ ଗୋଟିଏ ଲମ୍ବ ସିଧା ନଳ ସେଥିରେ ଲାଗିଥାଏ । ମଦକର ଗୋଟିଏ ଛୋଟ ବା ଗୁଳାକୁ ଚିଲମର ଅଗର ଛିଦ୍ର ଉପରେ ରଖି ତହିଁରେ ଲମ୍ବ ଟିକିଆ ଦ୍ୱାରା ଅଗ୍ନି ସଂଯୋଗ କଲା ବେଳେ ଗୁଲି ଖାଇବା ଲୋକ ବଡ଼ ସଟ୍‌କାରେ ମୁହଁ ଲଗାଇ ଶୋଷି ନିଏ ଓ ମଦକରୁ ନିର୍ଗତ ଧୂଆଁ ସେ ନଳ ବାଟେ ପାଟିକୁ ଯାଏ ।

ହୁକାର ଭିନ୍ନ ଭିନ୍ନ ଅଙ୍ଗ ଓ ଉପକରଣ :—

୧ । କାହାଳ, ଚିଲମ (ବ. କଲ୍‌କେ, କଲିକା) ଧାତୁରା ଫୁଲ ଆକୃତି ବିଶିଷ୍ଟ, ତଳେ ଛିଦ୍ର ଥିବା ମାଟିର ପାତ୍ର ।

୨ । ଠିକର (ବ. ଠିକ୍‌ରି), ଚିଲମର ନିମ୍ନସ୍ଥ ଛିଦ୍ରର ମୁହଁରେ ବଉଥିବା ଗୋଡି ବା ଖପରା । ଏହା ଥିବାରୁ ଚିଲମର ଛିଦ୍ର ମଧ୍ୟକୁ ଗୁଡ଼ାଖୁ ବା ନିଆଁ ପଶିପାରେ ନାହିଁ ।

୩ । ଟିକିଆ (ବ. ଟିକିୟା), ଅଙ୍ଗାରଗୁଣ୍ଡା ସଙ୍ଗେ ପେଜ ମିଶାଇ ଶୁଖା ଯାଇଥିବା ପିଠା । ଏଥିରେ ଚଞ୍ଚଳ ନିଆଁ ଧରେ ଓ ଚିଲମରେ ଗୁଡ଼ାଖୁ ରଖି ତା ଉପରେ ଖଣ୍ଡି କେତେ ଟିକିଆ ରଖି ନିଆଁ ଲଗାଇ ଦେଲେ ଶୀଘ୍ର ସମୁଦାୟ ଟିକିଆରେ ନିଆଁ ଲାଗି ଗୁଡ଼ାଖୁ ପୋଡ଼ି ଯାଏ ।

୪ । ନଳ, ନଲ, ନାଳଗୁ (ବ. ନଲଚ, ନଲ୍‌ଚେ), ଗୋଟିଏ କାଠର ସରୁ ନଳ । ଏହାର ମୁଣ୍ଡପାଖକୁ ଚିଲମର ନିମ୍ନସ୍ଥ ଛିଦ୍ରରେ ଗୁଞ୍ଜିବାକୁ ହୁଏ ଓ ତଳ ପାଖଟି ନଡ଼ିଆରେ ପଶି ଥାଏ ।

୫ । ନଡ଼ିଆ (ବ. ଖୋଲ, ମାଲ୍ଚା), ଗୋଟିଏ ନଡ଼ିଆ ଭିତରୁ ଶସ୍ୟସାର କୋରା ହୋଇ ତାହାର ଠିକ୍ ମୁଣ୍ଡ ଉପରେ ଗୋଟିଏ ଛିଦ୍ର କରା ଯାଇଥାଏ । ସେହି ଛିଦ୍ର ବାଟେ ନଳର ନିମ୍ନ-ମୁଣ୍ଡକୁ ଭର୍ତ୍ତି କରାଯାଏ ଓ ଉକ୍ତ ନଡ଼ିଆ କୁମ୍ଭାର ପାର୍ଶ୍ୱରେ ଗୋଟିଏ ଛିଦ୍ରରେ ଓଠ ଲଗାଇ ବା ସଟ୍‌କା ଦ୍ୱାରା ଧୂଆଁ ଟାଣିବାକୁ ହୁଏ ।

୬ । ସଟ୍‌କା, ସିଟ୍‌କା (ବ. ସଟକା, ନଲ), ନଡ଼ିଆ କୁମ୍ଭାର ପାର୍ଶ୍ୱସ୍ଥ ଛିଦ୍ରରେ ଲାଗିଥିବା ଛୋଟ ନଳ । ଏହାକୁ ମୁହଁରେ ଧରି ଶୋଷିଲେ ନଡ଼ିଆ କୁମ୍ଭା ମଧ୍ୟରେ ଜମା ହୋଇଥିବା ଧୂଆଁ ପାଟିକୁ ବାହାରି ଆସେ ।

୭ । ତାଉଆ (ବ. ତାଓଆ) ହୁକାର ଚିଲମରେ ଥିବା ଅଗ୍ନିଯୁକ୍ତ ଗୁଡ଼ାଖୁର ଧୂଆଁ ପବନରେ ଉଡ଼ି ନ ଯିବା ପାଇଁ ଚିଲମ ଉପରେ ଘୋଡ଼ା ଦିଆ ଗୋଟିଏ ଛିଦ୍ରଯୁକ୍ତ ଆବରଣ ।

୮ । ଗଜ, ଶିକ (ବ. ଗଜ, ଛିଁଚ୍‌କେ)—ହୁକାର ନଳର ବା ଚିଲମର ଛିଦ୍ର ମଇଳା ଦ୍ୱାରା ବନ୍ଦ ହୋଇ ଯାଇଥିଲେ ତାହା ସଫା କରିବା ପାଇଁ ବ୍ୟବହୃତ ଲୁହାର ମୋଟ ତାର ବା ଗଜ ।

୯ । ଗୁଡ଼ାଖୁ (ବ. ତାମାକ୍)—ଗୁଡ଼ ଓ ସୁବାସିତ ମସଲା ମିଶା ଧୂଆଁପତ୍ର ଗୁଣ୍ଡ ।]

ପ୍ରାଦେ (ମେଦନୀପୁର) ବି—ହୁକା—Ant hill.

ହୁକା ଖାଇବା(ଟାଣିବା, ପିଇବା)—ଦେ· କ୍ରି—ହୁକା ଦ୍ୱାରା ଧୂମ ପାନ
Hukā khāibā(tāṇibā, pi-ibā) କରିବା—To smoke
হুঁকা টানা **हुक्का पीना** with a hubble bubble.

ହୁକା ଗୁଲ—ଦେ· ବି—ହୁକାରେ ବ୍ୟବହୃତ ହୋଇଥିବା ଦଗ୍ଧ ଗୁଡ଼ାଖୁ—
Hukā gula Burnt tobacco-mixture after
হুঁকার গুল **राख** it is used in a hookāh.

ହୁକା ପାଣି—ଦେ· ବି—ହୁକାରେ ବ୍ୟବହୃତ ଜଳ, ଯାହାର ମଧ୍ୟ ଦେଇ
Hukā pāni ଗୁଡ଼ାଖୁ ଧୂଆଁ ବାହାର ଅସି ଥାଏ—The used
হুঁকোর জল **हुक्का पानी** water of a hookāh.

ହୁକା ବଇଠକି(ବଇଠି)-ଦେ. ବି—ଅଗାଣ୍ଡିଆ ହୁକାକୁ ସ୍ଥିର କରି
Hukā baiṭhaki(baiṭhi) ରଖିବା ପାଇଁ ବ୍ୟବହୃତ ବଇଟି-
[ହୁକା ବୈଠକ(ବୈଠି)—ଅନ୍ୟରୂପ] ଲଗା ଅଧାର—
হুঁকোর বৈঠক A stand for keeping the Hookāh
**हुक्काबैठकी** erect.

ହୁକା ବର୍‌ଦାର—ବୈଦେ. ବି—(ଫା)—ବଡ଼ଲୋକଙ୍କ ସଙ୍ଗେ ହୁକା
Hukā bar-dār ବହନ କରିବା ଭୃତ୍ୟ—A servant
হুঁকা বরদার carrying the hookāh in the retinue of
**हुक्का बरदार** a rich person.

ହୁକି ଟୋଲା-ଦେ. ବି—(ନାମ)—କଟକ ଜିଲ୍ଲାରେ ଅବସ୍ଥିତ ମହାନଦୀ
Hukiṭolā ମୁହାଣ ଫଲସ୍‌ପଏଣ୍ଟ ବତିଘର ନିକଟସ୍ଥ ବସନ୍ତ—
Name of a village near the Falsepoint light house at the mouth of the Mahānadi river inthe Cuttack district.

ହୁକୁମ୍—ବୈଦେ. ବି—(ଅ. ହୁକୁମ୍)—୧ । ଆଜ୍ଞା; ଅଦେଶ—1.
Hukum হুকুম্ **हुक्म** Order; command.
[ପ୍ର—ହାକିମ ବଡ଼ ନୁହେଁ ହୁକୁମ ବଡ଼—ପ୍ରବଚନ। ଏଥିର ଅର୍ଥ—ହାକିମ ତୁମ ଆମପରି ଜଣେ ସାଧାରଣ ଲୋକ ଅଟନ୍ତି, କିନ୍ତୁ ତାଙ୍କର କ୍ଷମତା ବଳରେ ସେ ଯେଉଁ ଅଦେଶ ଦଅନ୍ତି ତାହାହିଁ ବଡ଼ ଅଟେ ।]
୨ । ମୀମାଂସା—2. Decision. ୩ । ବିଚାରର ଫଳ—3. The result of judgement; judicial decision. [ପ୍ର—ହାକିମ ଫେରେ, ତ ହୁକୁମ ଫେରେ ନାଁ—ପ୍ରବଚନ। ଏଥିର ଅର୍ଥ—ଏକ ହାକିମ ବଦଳ ହେଲେ ବା ମୃତ ହେଲେ ତାଙ୍କ ସ୍ଥାନରେ ଅନ୍ୟ ହାକିମ ଅସନ୍ତି, କିନ୍ତୁ ପ୍ରଥମ ହାକିମଙ୍କ ପ୍ରଦତ୍ତ ହୁକୁମ ଅପରିବର୍ତ୍ତିତ ରହେ ।] ୪ । ବିଚାର ଫଳର ଲିପି—4. Decree. ୫ । କୌଣସି ଦେବାନୁଗୃହୀତ ମନୁଷ୍ୟଙ୍କ ଦ୍ୱାରା ପ୍ରଚାରିତ ହେବା ଦେବାଦେଶ—5. An order of a Deity conveyed through a favoured person; Divine command. [ପ୍ର—ରୋଗ ଇତ୍ୟାଦି ଭଲ ହେବାପାଇଁ, କିମ୍ବା ନିଜର ବାଞ୍ଛାସିଦ୍ଧିପାଇଁ ଲୋକେ ଦେବତାଙ୍କୁ ଅନୁସରଣ କରନ୍ତି । ଉକ୍ତ ଦେବତା ପ୍ରାର୍ଥୀ ବ୍ୟକ୍ତିକୁ ସ୍ୱପ୍ନାଦେଶ ଦଅନ୍ତି, କିମ୍ବା ଉକ୍ତ ଦେବତାଙ୍କର ବିଶେଷ ଅନୁଗ୍ରହ ଥିବା ବ୍ୟକ୍ତିକୁ ଦେବତା ତାଙ୍କ ଅଦେଶ ଜଣାନ୍ତି ଓ ଉକ୍ତ ବ୍ୟକ୍ତି ଦେବତାଙ୍କ ଅଦେଶକୁ ପ୍ରାର୍ଥୀଙ୍କୁ ଜଣାନ୍ତି ।] ୬ । ଦେବୋଦେଶପ୍ରାପ୍ତ ଔଷଧ—6. A medicine got by a Divine command. ୭ । ତାସ୍ ବା ଗଞ୍ଜପା ଖେଳରେ ରଜା, ରାଣୀ ଅଦି ବେଶୀ ଦରର ତାସ୍—7. King and queen cards and other cards of higher value in the game of cards or gañjapā.

ହୁକୁମ୍ ଅମାନ୍ୟ—ଦେ. ବି—କୌଣସି ଅଦେଶକୁ ନ ମାନିବା—
Hukum amānya Disobedience of an order.
হুকুম অমান্য **हुक्म अमानत**

ହୁକୁମ୍ କରିବା—ଦେ. କ୍ରି—୧ । ଅଦେଶ ଦେବା—1. To give
Hukum karibā or issue an order. ୨ । ଅଜ୍ଞା
হুকুম করা ପାଳନ କରିବା—2.To carry out an order.
**हुक्म करना**

ହୁକୁମ୍ ଚଲା(ଲେ)ଇବା—ଦେ. କ୍ରି—୧ । ଅଦେଶ ଦେବା—1. To
Hukum chalā(le)ibā pass an order. ୨ । ହୁକୁମ
হুকুম চালান ପ୍ରଚାର କରିବା—2. To promulgate an
**हुक्म चलाना** order.

ହୁକୁମ୍ ଜାରି—ବୈଦେ. ବି (ଫା) (ଜାରି ଅ)—୧ । ଅଜ୍ଞା ପ୍ରଚାର—
Hukum jāri 1. Promulgation of an order. ୨ ।
হুকুম জারি ହାକିମଙ୍କ ପ୍ରଦତ୍ତ ଅଦେଶର ସାଧାରଣରେ ପ୍ରଚାର-
**हुक्मजारी** କରଣ ବା ଜ୍ଞାପନ—2. Conveying or publishing of an order passed by an authority. ୩ । ନିଃସନ୍ଦେହରେ ସର୍ବଦା ଅଜ୍ଞା ଅନୁସାରେ କାର୍ଯ୍ୟ ହେବାର ଅବସ୍ଥା—3. The state of an order being carried out without fail.

ହୁକୁମ୍ ତାବେ—ବୈଦେ. ବିଣ—(ଫା) (ତାବେ ଅ)—୧ । କୌଣସି
Hukum tābe ବ୍ୟକ୍ତିଙ୍କ ଅଜ୍ଞାର ଅଧୀନ—1. Subservient
হুকুম তাঁবে to a person's order. ୨ । ଅଧସ୍ତନ; ଅଧୀନ—
**हुक्म बरदार** 2. Subordinate.

ହୁକୁମ୍ ତାମିଲ୍—ବୈଦେ. ବି—(ଅ)—ଅଦେଶ ପାଳନ—
Hukum tāmil Carrying out of an order.
হুকুম তামিল **हुक्म तामिल**

ହୁକୁମ୍‌ଦାର୍—ବୈଦେ· ବି—(ଅ)—ଅଜ୍ଞାବହ ଭୃତ୍ୟ; ଅର୍ଦ୍ଦଲି—
Hukum-dār An orderly.
হুকুমদার **हुक्म बरदार**

ହୁକୁମ୍ ଦେବା—ଦେ. କ୍ରି—୧ । ଅଦେଶ ପ୍ରଦାନ କରିବା—1. To
Hukum debā give an order. ୨ । ପ୍ରାର୍ଥନାକାରୀଙ୍କୁ
হুকুম দেওয়া ଦେବାଦେଶ ଜଣାଇବା—2. To convey
**हुक्म देना** a Deity's order to a devotee.

ହୁକୁମ୍ ନବିଶ୍—ବୈଦେ. ବି—(ଫା) (ନବିଶ ଅ)—ଯେଉଁ କର୍ମଚାରୀ
Hukum nabiś ହାକିମଙ୍କ ପ୍ରଦତ୍ତ ଅଦେଶମାନଙ୍କୁ ଲିପିବଦ୍ଧ
হুকুমনবিশ কରି ରଖନ୍ତି—A clerk whose duty it is
**हुक्म नवीस** to record and register orders passed.

ହୁକୁମ୍ ନାମା—ବୈଦେ. ବ (ଦେଶଜ)(ଫା)—ଆଦେଶ ପତ୍ର; ଆଜ୍ଞାପତ୍ର;
Hukum-namā ଆଦେଶ ଲିପି—A written order;
ହୁକুমনামা हुक्मनामा a warrent.

ହୁକୁମ୍ ବଜା(ଜେ)ଇବା—ଦେ, କ୍ରି—ଆଦେଶ ପାଳନକରିବା —
Hukumbaja(je,iba To carry out an order.
ହুকুমবাজান हुक्मबजाना

ହୁକୁମ୍ ବଜାୟ୍—ବୈଦେ. ବ—(ଅ. ହୁକ୍ମ ଓ ଫା ବଜାଯ୍)—
Hukum bajay ୧ । ଆଦେଶ ପାଳନ—1. Carrying out of an order. ୨ । ପୂର୍ବ ପ୍ରଦତ୍ତ ବା ପ୍ରଥମ ପ୍ରଦତ୍ତ ଆଦେଶର ଅନୁମୋଦନ—2. Confirmation of an order previously passed.
ହুকুমবজায় हुक्मबजाय

ହୁକୁମ୍ ବର୍ଦାର୍—ବୈଦେ. ବଣ (ଅ)—୧ । ଆଜ୍ଞା ପାଳନକାରୀ—
Hukum bar-dār 1. Carrying out an order.
୨। ଆଦେଶାନୁବର୍ତ୍ତୀ—2. Obedient; subservient.
ବ—୧ । ଆଜ୍ଞାପାଳକ ଭୃତ୍ୟ—1 An obedient servant. ୨ । ହାକିମଙ୍କ ହୁକୁମ ଅନୁସାରେ ଯେଉଁ ଚାକର ଏଣେ ତେଣେ ଯାଆସ କରେ—2 An orderly.
ହুকুমবরদার हुक्मबरदार

ହୁକୁମ ବର୍ଦାରି—ବୈଦେ. ବ(ଅ)—ଆଜ୍ଞାନୁବର୍ତ୍ତିତା—
Hukum bar-dāri The state of carrying out
ହুকুমবরদারি हुक्मबरदारि orders; subserviency.

ହୁକୁମ୍ ବହି—ବୈଦେ. ବ(ଅ)—ଯେଉଁ ପୁସ୍ତକରେ ହାକିମଙ୍କ ପ୍ରଦତ୍ତ
Hukum bahi ହୁକୁମମାନ ଧାରାବାହିକରୂପେ ଲିପିବଦ୍ଧ ହୁଏ—
ହুকুমবই हुक्मबहि Order book

ହୁକୁମର ଚାକର—ଦେ, ବ—ଆଜ୍ଞାପାଳନକାରୀ ଭୃତ୍ୟ—A servant
Hukumara chākara whose duty is to carry
ହুকুমের চাকর हुक्मकानौकर out orders

ହୁକୁମ ରଦ୍(ଦ୍)—ବୈଦେ.ବ (ଦେଶଜ)—(ଅ)—ପ୍ରଦତ୍ତ ଆଦେଶର
Hukuma rad(dd) ଖଣ୍ଡନ—Nullification or setting
ହুকুমরদ हुक्मरद्द aside of an order

ହୁକୁମ ଲେଉଟା(ଟେ)ଇବା—ଦେ.କ୍ରି—କୌଣସି ହୁକୁମ ହୋଇସାରେ ତାକୁ
Hukuma leuṭā(ṭe)ibā ରଦ୍ଦ କରିବା—To undo an
ହুকুমরদ্দকরা हुक्मरद्दकरना order

ହୁକୁମ ଲେଉଟିବା—ଦେ· ବ—ହୁକୁମ ହୋଇସାରେ ତା ଫେରିଯିବା—
Hukuma leutibā Upsetting of the order.

ହୁକୁମ ସାଦରହେବା—ଦେ. କ୍ରି—ଆଦେଶ ପ୍ରଚାରିତ ହେବା—
Hukuma sādar hebā The issue of an order.
हुक्मजारीहोना ହুকুম হওয়া

ହୁକୁମତ୍ (ତି)—ବୈଦେ ବ—(ଅ ହୁକୁମତ୍)—୧ । ପ୍ରଭୁତ୍ୱ—
Hukumat(ti) 1. Mastery. ୨ । ଅଧିକାର—
2. Authority ୩। ରାଜତ୍ୱ; ଶାସନ—3. Reign, dominion; administration ୪ । ଯେଉଁ ଅଧିକାର ବଳରେ କୌଣସି ବ୍ୟକ୍ତି ଅନ୍ୟ ବ୍ୟକ୍ତି ଉପରେ ଆଦେଶ ଜାରିକରେ ବା ପ୍ରଭୁତ୍ୱ କରେ—4- Position
ହুকুমত हुकूमत of authority·

ହୁକୁମତ କରିବା (ଜାହିରିବା)—ଦେ. କ୍ରି—ଆପଣାର ପ୍ରଭୁତ୍ୱ ବା ଅଧିକାର
Hukumati kariba (kārdhibā) ସର୍ବସାଧାରଣରେ ଦେଖାଇ ହେବା—To show off one's authority; to boast of one's position of authority.
[ହୁକୁମତ ଜାରିକରିବା, ହୁକୁମତ ଜାହିର(ରି)କରିବା—ଅନ୍ୟରୂପ]
ହুকুমত্ করা हुकूमतकरना

ହୁକୁମା—ଦେ. ବ—ଇତ୍ୟାଦି ଅର୍ଥରେ ହାକିମ୍ ଶବ୍ଦର ପରେ ସହଚର
Hukumā ଶବ୍ଦରୂପେ ବ୍ୟବହୃତ ଶବ୍ଦ—A word used
হাকাম हिक्काम after the word 'Hākim' to denote etcetera. (ଯଥା—ହାକିମ୍ ହୁକୁମା)—

ହୁକୁହୁକା—ଦେ. ବଣ. ପୁଂ—(ଯେଉଁ ବ୍ୟକ୍ତି) କୌଣସି କାର୍ଯ୍ୟ
Hukuhukā କରିବାକୁ ଆଗ୍ରହାତିଶଯ୍ୟ ପ୍ରକାଶ କରେ—
নিশ্পিশে अगुआ (ହୁକୁହୁକେଇ—ସ୍ତ୍ରୀ) Showing much hankering to do a thing.

ହୁକୁହୁକୁ—ଦେ (ଧ୍ୱନ୍ୟନୁକରଣ) ଅ—୧ । ହାଇଁ ପାଇଁ; କୌଣସି
Hukuhuku କାର୍ଯ୍ୟ କରିବାକୁ ଆଗ୍ରହାତିଶଯ୍ୟ ବା ଉଦ୍‌ବିଗ୍ନତା-
হাঁই পাঁই अगुआ ପ୍ରକାଶ—1. Hankering after any thing; eagerness to do a thing. ୨ । ଅନଭିଜ୍ଞ ବ୍ୟକ୍ତିର କାର୍ଯ୍ୟ କରିବା ପାଇଁ ଆଗ୍ରହାତିଶଯ୍ୟ—2 Eagerness of a biginner or a novice. ୩ । ନଦୀ ପାଣିର ସ୍ରୋତ ବୋହି ଯିବାର ଧୀର ଶବ୍ଦ—3. The gliding sound of the flowing river—current. (ଉ—ନଈପାଣି ହୁକୁହୁକୁ, କିଏ ନେଇ ଗଲା ତଲମାଳକୁ, ମୋ ଗଳାମାଳା ମାଣିକକୁ, କେଲାଙ୍କ—ଗୀତ।) ୪ । ପେଚାର ରବ—4. The hooting of the Owl.

ହୁକୁହୁକୁ ହେବା—ଦେ. କ୍ରି—୧ । କୌଣସି କାର୍ଯ୍ୟ କରିବାକୁ
Huku huku hebā ଆଗ୍ରହାତିଶଯ୍ୟ ବା ଉଦ୍‌ବିଗ୍ନତା ପ୍ରକାଶ
নিশ্পিশকরা अगुआहोना କରିବା—1. To hanker after a thing. ୨ । (ନଦୀର ପାଣି) ବୋହିବା ସମୟରେ ଧୀର ଶବ୍ଦ କରିବା—2. To make a gliding sound (said of the current of a river).

ହୁକେ—ଦେ· (ଧ୍ୱନ୍ୟନୁକରଣ) ଅ—ରାତିରେ ପ୍ରତି ପହର ଅନ୍ତରରେ
Huke ବିଲୁଆମାନଙ୍କ ସମ୍ମିଳିତ ବୋବାଳି ଧ୍ୱନି—The
হুকাহুয়া हुक्का हुक्काँहुआ howling of jackals in the night at intervals of 3 hours since evening.
ହୁକେହୁ(ହୋ),ହୁକେହୁକେ, ହୁକେ ହୁକେ ହୁ (ହୋ) } ଅନ୍ୟରୂପ
[କ୍ରି—ହୁକେ—ହୁକେ—ହୋ ! ବିଲୁଅ ଡାକିଲେ ଠିକ୍ ଅଧରାତି । ଫଗୀର ମୋହନ. ଛମାଣ ଆଠଗୁଣ]

ହୁକ୍କା (ଇତ୍ୟାଦି) ବୈଦେ· ବ—ହୁକା ଇତ୍ୟାଦି (ଦେଖ)—Hukā
Hukkā (eto) etc (See).

ହୁଗ୍‌ଲା—ପ୍ରାଦେ (ଖଡ଼ଆଳ) ବିଣ—ଢିଲ—Slack; loose.
Hug-lā

ହୁ(ଭ)ଗ୍‌ଲିବା—ପ୍ରାଦେ (ଖଡ଼ଆଳ) କି—ଢିଲା ହେବା—To be slack; to be loosened.
Hu(bha)g-libā

ହୁଗାଳିବା—ଦେ. କ୍ରି—୧ । ହୁଗୁଳିବା କ୍ରିୟାର ଣିଜନ୍ତରୂପ; ହୁଗୁଳାଇବା; ଶ୍ଲଥ କରାଇବା—To slacken; to loosen. ୨ । (ହୁଗୁଳିବାର ସକର୍ମକରୂପ) ବେଣ୍ଟରୁ କଟୁରୀ, ହୁରଡ଼ି ଆଦିକୁ ହୁଗୁଳା କରିବା—2. To loosen an instrument or weapon from its handle.
Hugālibā
ହଲହଲ କରବା
निकालना

ହୁଗୁଳା—ଦେ. ବିଣ—୧ । ଶିଥିଳ; ଶ୍ଲଥ; ଢିଲା—1. Loose; slack. ୨ । ଯାହା ଠିକ୍‌ରୂପେ ଛିଦ୍ରରେ ବସି ନ ଥାଏ—2. Not fitting tightly. ୩ । ଯେଉଁ ଅଳଙ୍କାର ବା ପୋଷାକ ଦେହରେ ଠିକ୍ ହୋଇ ନ ବସେ—3. Loose (garment or ornament). ୪ । ଯାହା ହଲ ହଲ ହେଉଥାଏ—4. Shaky.
Hugulā
हलहले ढिला

ହୁଗୁଳା(ଲେ)ଇବା—ଦେ. କ୍ରି—(ହୁଗୁଳିବାର ସକର୍ମକ ରୂପ)—ଶ୍ଲଥ କରିବା; ଶିଥିଳ କରିବା; ଶିଥିଳାଇବା; ହୁଗାଳିବା—To loosen, to slacken.
Hugulā(le)ibā
हलहल करा ढिलाकरना

ହୁଗୁଳି—ଦେ. ବିଣ (ନାମ)—୧ । ଗଙ୍ଗା ନଦୀର ଯେଉଁ ଶାଖା କଲିକତା କାଟେ ବଙ୍ଗୋପସାଗରକୁ ଯାଇଅଛି—1. The name of the branch of the Ganges flowing along Calcutta. ୨ । ବଙ୍ଗ ପ୍ରଦେଶର ବର୍ଦ୍ଧମାନ ବିଭାଗର ଚୋଟିଏ ଜିଲ୍ଲା ଓ ସବ୍‌ଡିଭିଜନ୍ ଓ ହୁଗୁଳି ନଦୀର କୂଳସ୍ଥ ନଗରର ନାମ—2. Name of a district, subdivision and town on the river Hoogly in the Burdwan division of the Bengal Presidency. [ଦ୍ର—ଏହି ଜିଲ୍ଲାର ୩। ଗୋଟି ସବ୍‌ଡିଭିଜନ୍ ଅଛି । ଯଥା—ହୁଗୁଳି, ଶ୍ରୀରାମପୁର ଓ ଅରାମବାଗ । ଏହି ଜିଲ୍ଲାର ରାଜଧାନୀ—ଚୁଞ୍ଚୁଡ଼ା] ଦେ. ବିଣ—(ବ୍ୟଙ୍ଗ) ଯେଉଁ ବଢ଼େଇର କାମମାନ ଖାପ ନଖାଇ ହୁଗୁଳା ହୁଏ—A carpenter whose handiworks do not fit well.
Huguli
हुगुलि हुगुलि

ହୁଗୁଳି ପଡ଼ିବା—ଦେ. କ୍ରି—(ଖିଲାଆଦି) ଛିଦ୍ରରୁ ଶିଥିଳ ହୋଇ ବାହାରି ଯିବା—To come out of a hole by becoming loose (said of pegs etc. fitted to a hole).
Huguli pardibā
हलहले हओया निकलपड़ना

ହୁଗୁଳିବା—ଦେ. କ୍ରି—୧ । ହୁଗୁଳା ହେବା; ଗଣ୍ଠିରୁ ବା ବନ୍ଧନରୁ ଶ୍ଲଥ ହେବା—1. To be slackened, to become slack. ୨ । ଛିଦ୍ରରୁ ଶ୍ଲଥହେବା—2. To become loosened from the hole or socket. ୩ । ଖସିଯିବା, ସ୍ଥାନରୁ ଚ୍ୟୁତ ହେବା—3. To be dislocated. (ଉ—ସେ ସକାଶୁ ତାହାର ହାଡ ହୁଗୁଳିଲା—କୃଷ୍ଣସିଂହ ମହାଭାରତ—ବନ)
Hugulibā
[ହୁଗୁଳିଯିବା—ଅନ୍ୟରୂପ]
हलहल हओया
निकलना

ହୁଗୁଳି ମ(ମା)ହାରଣା—ଦେ ବି(ବ୍ୟଙ୍ଗ)—ଯେଉଁ ବଢ଼େଇର କାଠଗଢ଼ କାମ ମାନ ହୁଗୁଳା ହୁଏ—(ironical) A carpenter whose handiworks do not fit well.
Huguli ma(mā)hāraṇā
ढिलाकरनेवालामिस्त्री

ହୁଙ୍କା—ଦେ. ବି—(ସଂ. ଶଙ୍କୁ)—ଉଈ ବଳା; ଉଈମାନଙ୍କ ନିର୍ମିତ ମାଟିର ଉଚ୍ଚ ସ୍ତୂପ—Ant-hill, mound raised by white ants. [ଉ—ଉଈହୁଙ୍କା ତୋଳା ସାଈ ଗୋ ! ଅନ ସବୁ ମାଟି ତଳର ଜୀବନେ, ଛୁଟି, ପଙ୍କ, ବୁଢ଼, ଛିନ୍ତ ଗୋ—ବାଳକୃଷ୍ଣ, ଫୁଲ ବଉଳ ବେଣି ] ଦେଦେ (ପ୍ରା) ବି—ହୁକା (ଦେଖ)—Hukā (See).
Hunkā
उईटिपि दीवरामीर

ହୁଙ୍କା ଗୋସା(ସେ)ଇଁ—ଦେ. ବି—ସିଦ୍ଧପୁରୁଷମାନଙ୍କ ତପସ୍ୟା କରୁଥିବା ସ୍ଥାନରେ ହୁଙ୍କା ଜନ୍ମେ—ଏହିପରି ଅନୁମାନ କରି ସାଧାରଣ ଲୋକେ ଯେଉଁ ହୁଙ୍କାକୁ ପୂଜା କରନ୍ତି—Ant hill worshipped as the seat of some departed saint on which has grown a big ant hill.
Hunkā gosā(se)iṅ

ହୁଙ୍କା ଛତୁ—ଦେ. ବି—ହୁଙ୍କା ଉପରେ ଯେଉଁ କ୍ଷୁଦ୍ର କ୍ଷୁଦ୍ର ଛତୁ ଫୁଟିଥାଏ—A species of mushroom growing on ant hills.
Hunkā chhatu
उईछातु मीफुक्त

ହୁଙ୍କାପିଟା—ଦେ. ବି—ହୁଙ୍କାକୁ ପିଟି ବା ଭାଙ୍ଗି ସେ ମାଟିକୁ ଚାରିପାଖେ ଭୂମି ଉପରେ ଖେଳାଇବା—Breaking up of an anthill and strewing the earth around. ବିଣ—୧ । ଯେଉଁ ବ୍ୟକ୍ତି କୌଣସି ପ୍ରଭେଦ ନ କରି ସମସ୍ତଙ୍କୁ ଏକାପରି ଅତ୍ୟାଚାର କରି ଶାସନ କରେ—1. (A person) Ruling with an iron hand without distinction (lit. earlly a person who levels up anthills). ୨ । ଅତ୍ୟାଚାରୀ—2. Oppressive.
Hunka piṭā
उईटिपि भाङ्गा
दीवरा (भीर) तोड़ाइ

ହୁଙ୍କା ମାଟି—ଦେ. ବି—ଉଈହୁଙ୍କାର ମୃତ୍ତିକା—The earth from an anthill.
Hunkā māti
उईमाटि दीवरामिट्टी

ହୁଙ୍କାର—ସଂ. ବି—(ହୁମ୍ = ଅହଙ୍କାର ଶବ୍ଦ + କୃ. ଧାତୁ + ଭାବରେ ଅ)—୧ । ବଳ ପ୍ରକାଶ ପୂର୍ବକ ହୁଁ ଶବ୍ଦ—1. A sound (hoom) uttered by one making a big effort. [ଦ୍ର—ମାନେ ଭାରି ବୋଝଗୁଡ଼ିକ ସ୍ଥାନାନ୍ତରକୁ ନେଉଥିବାବେଳେ ହୁଙ୍କାର କରେ ଓ ବୀରମାନେ ଯୁଦ୍ଧ କରିବାବେଳେ ମଧ୍ୟ ହୁଙ୍କାର କରନ୍ତି ।] ୨ । ଯୋଦ୍ଧାର ବା ବୀରର ଭୀଷଣ ଯୁଦ୍ଧ ଗର୍ଜନ—2. The war-roar of a warrior. ୩ । କପୋତର ହୁଁ ହୁଁ ଶବ୍ଦ—3. The hooting or cooing of doves. ୪ । ବନ୍ୟ ବରାହର ଧ୍ୱନି—4. The roar of a boar. ୫ । ଗର୍ଜନ—5. Roar.
Hunkāra

ହୁଙ୍କାର କରିବା—ଦେ. କ୍ରି—ବଳ ପ୍ରକାଶ ପୂର୍ବକ 'ହୁମ୍' 'ହୁମ୍' ରବ ଉଚ୍ଚାରଣ କରିବା—To make a
Hunkāra karibā

ହୁଙ୍କାର କରା 'hum' sound while making a big effort. हुंकार करना

ହୁଙ୍କାରିବା—ଦେ. କ୍ରି—୧ । ହୁଙ୍କାର କରିବା—1. To make a Hunkariba 'hum' sound while making a big ହୁଙ୍କାର କରା effort. [ଉ—ହୁଙ୍କାରି ଯୋଗି ଦେଲେ ସେ ଭୁଜ हुंकारना ହୁଙ୍କାରି । ରାଧାନାଥ, କେଶରୀ ସଂହାର ।] ୨ । ହୁଙ୍କାର ଦେଇ ଉଠିବା—2. To make an effort or to raise one's self with a Hum sound. ୩ । ଖଙ୍କାରିବା; କୌଣସି କଥାର ବା ପ୍ରସ୍ତାବର ସୂତ୍ରପାତ କରିବା—3. To introduce or hint a proposal; to make the first hint regarding a matter.

ହୁଙ୍କିବା—ଦେ. କ୍ରି—୧ । ଟଳିବା; ଟିକିଏ ମାତ୍ର ଚଳନ ଦେବା—1. Hunkiba To move a little. ୨ । ଉଠିବା—2. To raise one's self up with an effort. नड़ा टससे मस होना

ହୁଙ୍କୃତ(ତି)—ସ. ବି—(ହୁମ୍+କୃତ; କୃତି)—ହୁଙ୍କାର (ଦେଖ)—Hunkruta(ti) Hunkāra (see).

ହୁଙ୍ଗ(ଙ୍ଗୁ)ଳା—ଦେ. ବିଣ. ପୁଂ—ଫାଙ୍ଗୁଳା (ଦେଖ)—Hung-(ngu)lā Phāngulā (See). (ହୁଙ୍ଗୁଳୀ—ସ୍ତ୍ରୀ)

ହୁଙ୍ଗ(ଙ୍ଗୁ)ଳା(ଳେ)ଇବା—ଦେ. କ୍ରି—ଘୁଙ୍ଗାଳିବା (ଦେଖ)—Hung(ngu)lā(le)ibā Ghungāliba (See). (ହୁଙ୍ଗାଳିବା—ଅନ୍ୟରୂପ)

ହୁଙ୍ଗ(ଙ୍ଗି)ବା—ପ୍ରାଦେ (ସମ୍ବଲପୁର) କ୍ରି—ନାହୁଡ଼ ମାରିବା—Hung-(ngi)bā To sting.

ହୁଙ୍ଗା—ଦେ. ବିଣ. ପୁଂ—ଘୁଙ୍ଗା (ଦେଖ)—Hungā Ghungā (See). (ହୁଙ୍ଗୀ—ସ୍ତ୍ରୀ)

ହୁଙ୍ଗାହୁଙ୍ଗି—ପ୍ରାଦେ. (ଖଡ଼ଆଳ) ବି—ଅନ୍ୟୋନ୍ୟରେ ଭୁସାଭୁସି—The Hungā hungi act of thrusting each other's mutual poking. ବିଣ—ଅନ୍ୟୋନ୍ୟରେ ଭୁସାଭୁସି ହେଉଥିବା—Poking each other.

ହୁଙ୍ଗି ଦେବା—ପ୍ରାଦେ. (ସମ୍ବଲପୁର) କ୍ରି—୧ । ଭୁସିଦେବା—1. To Hungi debā poke. ୨ । ବଥକୁ ଫୋଡ଼ିବା—2. To (ହୁଙ୍ଗିବା—ଅନ୍ୟରୂପ) pierce a boil with a pointed needle or pin.

ହୁଙ୍ଗିବା—ପ୍ରାଦେ (ଖଡ଼ଆଳ, ସମ୍ବଲପୁର) କ୍ରି—ଭୁସିବା—Hungibā To poke.

ହୁଙ୍ଗୁଡ଼ି—ପ୍ରାଦେ. (ବାଲେଶ୍ୱର) ବି—(ଧ୍ୱନ୍ୟନୁକରଣ) ଘୁଙ୍ଗୁଡ଼ି Hungurdi (ଦେଖ)—Ghungurdi (See). [ଉ—××× ଚୌକିଦାର ଭୂଇଁଆଙ୍କ ନାକର ହୁଙ୍ଗୁଡ଼ି ଭାକ ଏହି ଭ୍ରମପ୍ରମାଦର କାରଣ ଅଟେ । ଫକୀରମୋହନ ଗ୍ରନ୍ଥା. ଅଠଗୁଣ ।]

ହୁଙ୍ଗୁଳା ପୁ(ଫୁ)ଙ୍ଗୁଳା—ଦେ. ବିଣ. ପୁଂ—ଫାଙ୍ଗୁଳା (ଦେଖ)—Hungulā pu(phu)ngulā Phāngulā (See) [ହୁଙ୍ଗୁଳୀପୁ(ଫୁ)ଙ୍ଗୁଳୀ—ସ୍ତ୍ରୀ]

ହୁଚକା—ପ୍ରାଦେ (ଖଡ଼ଆଳ) ବି—ଥର; ବାର—Huchkā Time.

ହୁଚକି—ପ୍ରାଦେ (ଖଡ଼ଆଳ) ବି—୧ । ହିକ୍କା—1. Hiccough. ୨ । Huch-ki ହାକ୍‌ଟି (ଦେଖ)—2. Hāk-ṭi (See).

ହୁଚୁର୍ଣ୍ଣା(ର୍ନା)—ପ୍ରାଦେ. (ସମ୍ବଲପୁର) ବି—ବାହୁଟ୍ଠୋକ—The act of Huchurnnā(rnnā) patting one's own arm.

ହୁଜୁକ୍(ଗ୍)—ବୈଦେ. ବି—(ଭୂର୍କୀ ହୁଜକ୍=ଜାକ୍‌ଜମକ)—୧ । Hujuk(g) ଜାକ୍‌ଜମକ—1. Splendour. ୨ । ଗୋଳ-ହୁଜୁକ ଯୋଗ; ହୋହା—2. Ado; row. ୩ । କ୍ଷଣସ୍ଥାୟୀ टेकमटक ଜନରବ—3. Short-lived rumour.

ହୁଜୁକ୍(ଗ୍) ମତା(ତେ)ଇବା—ଦେ. କ୍ରି—ଗୋଳଯୋଗ ଜାତ କରାଇବା Hujuk(g)matā(te)ibā (ବଙ୍ଗଳାରୁ ଅନୁକୃତ) To set up हुजुग माताना होहल्ला मचाना a row.

ହୁଜ(ଜି)ତ୍—ବୈଦେ. ବି—(ଆ. ହୁଜ୍ଜତ୍)—ହୁଜ୍ଜତ୍ (ଦେଖ)—Huja(ji)t Hujjat (See).

ହୁଜ(ଜି)ତି—ବୈଦେ. ବିଣ (ଆ)—ହୁଜ୍ଜତି (ଦେଖ)—Huja(ji)ti Hujjati (See). [ହୁଜ(ଜୁ)ତିଆ—ଦେ. ରୂପ]

ହୁଜୁତି—ପ୍ରାଦେ. (ଯାଜପୁର) ବି—ଅଳି (ଦେଖ)—Ali (See). Hujuti (ଯଥା—ପିଲାଟା ଖାଲି ହୁଜୁତି ଲଗାଇଛି)

ହୁଜୁର୍ (ଇତ୍ୟାଦି)—ବୈଦେ. ଅ ଓ ବି (ଆ)—ହଜୁର୍ ଇତ୍ୟାଦି Hujur (etc) Hajur etc (See).

ହୁଜ୍ଜ(ଜ୍ଜି, ଜ୍ଜୁ)ତ୍—ବୈଦେ. ବି—(ଆ—ହୁଜ୍ଜତ୍)—୧ । କଳି ଝଗଡ଼ା Hujja(jji; jju)t —1. Quarrel. ୨ । ବାଗ୍‌ବିତଣ୍ଡା—2. हुज्जत Wordy wrangle. ୩ । ତର୍କ—3. Argument हुज्जत

ହୁଜ୍ଜ(ଜ୍ଜି, ଜ୍ଜୁ)ତି—ବୈଦେ. ବିଣ(ଆ)—୧। କଳହପ୍ରିୟ; କଳହପ୍ରିୟ—Hujja(jji, jju)ti 1. Quarrelsome. ୨ । ବାକ୍‌ବିତଣ୍ଡାକାରୀ [ହୁଜ୍ଜ(ଜ୍ଜି, ଜ୍ଜୁ)ତିଆ—ଦେରୂପ] —2. Wrangling. ୩ । 3. Argumentative; given to argument.

ହୁଞ୍ଚୁଡ଼ା—ଦେ. ବି—ବଳାତ୍କାରରେ କୌଣସି ବସ୍ତୁକୁ ଅନ୍ୟଠାରୁ ଛିଙ୍କି Hunchurdā ଛଡ଼ାଇ ନେବା—Forcible snatching छिनान झपट away of a thing from another.

ହୁଞ୍ଚୁଡ଼ିବା—ଦେ. କ୍ରି—କୌଣସି ବସ୍ତୁକୁ ବଳାତ୍କାରରେ ଅନ୍ୟଠାରୁ ଛିଙ୍କି Hunchurdibā ଛଡ଼ାଇ ନେବା—To snatch away a छिनाइया लेना thing with violence from another. झपटलेना [ଉ—ହୁଞ୍ଚୁଡ଼ି ସେ ଶକ୍ତି ସାର କେଲ ବାମ ହାତେ—ରାଧାନାଥ କେଶରୀ ସଂହାର ।

ହୁଟ୍—ଦେ. ଅ—୧ । (ଅବଜ୍ଞାର୍ଥକ, ନିଷେଧାର୍ଥକ) ଦୂର; ଧୁତ୍—Hut 1. Interjection indicating disregard and.

ଧ୍ୱେଽ ହତ prevention. ୨ । (ସ. ହୁଟିତ) ହଠାତ୍—
ହୁଟ୍ ଝଟସେ 2. Suddenly; soon.

ହୁଟ୍ କଥା—ଦେ. ବି—ସାମାନ୍ୟ କଥା ବା ବିଷୟ—
Hut katha A slight matter.
ତୁଚ୍ଛ କଥା छोटीबात

ହୁଟ୍ କିନା (କି, ରି)—ଦେ. କ୍ରି ବିଶ—ହଠାତ୍; ହଠାତ୍—
Hut kina (ni; ri) Suddenly; all at once.
[ହୁଟ୍ଦ(ଧ)ସ—ଅନ୍ୟରୂପ]
ହୁଟ୍‌କବେ ଝଟସେ

ହୁଡ୍ ବୈଦେ. ବି—(ଇଂ)—ମଟର୍‌କାର୍ ଓ ଗାଡ଼ି ଅଦର ଉପରର
Hud ଘଣ୍ଟାଟପ—Hood of a motorcar or carriage.
ହୁଡ हुड

ହୁଡ଼୍‌କା—ଦେ. ବି—ହୁଡ଼ୁକା (ଦେଖ)—
Hud-ka Hurduka (See)

ହୁଡ଼ହୁଡ଼—ସ. ବି—(ହୁଡ୍ ଧାତୁ ଦ୍ୱିତ୍ୱ + ଅ)—୧ । ସମୂହ —
Hurd hurda 1. Collection; heap; coming together. ୨ । ଜନତା; ଭିଡ଼—2. Crowd.

ହୁଡ଼(ଧାତୁ)—ସ.—୧ । ସଞ୍ଚୟ କରିବା; ଏକତ୍ର କରିବା—1. To
Hurd(root) gather together; to heap up.
୨ । ଗମନକରିବା—2. To move. ୩ । ମଗ୍ନହେବା ମଜ୍ଜନ କରିବା—3. To sink; to dive. ୪ । ଆଘାତ କରିବା—4. To strike. ୫ । ଏକତ୍ର ହେବା; ସମବେତ ହେବା—5 To be gathered at one place.

ହୁଡ଼—ସ. ବି—(ହୁଡ୍ ଧାତୁ+କର୍ତ୍ତୃ ଅ) — ୧ । ମେଣ୍ଢା; ମେଷ; ମେଣ୍ଢା
Hurda (ହେମଚନ୍ଦ୍ର, ଶବ୍ଦକଳ୍ପଦ୍ରୁମ)—1. Ram; sheep. ୨ । ଚୌରଗଣ ନିବାରଣାର୍ଥ ଭୂମିରେ ପୋତା ଲୌହମୟ ଶଙ୍କୁ—2. Iron nails or pins driven into the ground to prevent thieves entering a place. ୩ । ଲୌହଦଣ୍ଡ—3. Iron cudgel. ୪ । ଲଗୁଡ଼ (ମହାଭାରତ)—4. A cudgel; stick. ୫ । ଲୁହାର ଗଦା—5. A big iron club. ୬ । (+ ଅଧିକରଣ ଅ) ସୈନ୍ୟାଶ୍ରୟ ସ୍ଥାନ; ବୁରୁଜ—6. A room or shelter for soldiers ୭ । (+କର୍ମ ଅ) ରଥୋପରି ବନ୍ଧୁର (ମଲମୂତ୍ର) ତ୍ୟାଗାର୍ଥ କାଷ୍ଠ (ମହାଭାରତ)—7. A bar of wood in a car on which the rider can ease himself. ୮ । (+ଭାବ ଅ) ଜନତା—8. Crowd. ୯ । ସୈନ୍ୟସଂଘ—9. A body of soldiers; army. ଦେ. ବି—୧ । ଯୁଆ ଖେଳରେ ରଖାଯିବା ବାଜି; ପଣ—1. A stake in a game of hazards. [ଉ—ଖେଳରେ ହୁଡ଼ ଯାହା କରିବ ସେ ଧନୁ—କୃଷ୍ଣସିଂହ ମହାଭାରତ. ସଭା] ୨ । ପଶାଖେଳରେ ବା କଉଡ଼ି ଖେଳରେ ଅସଙ୍ଗତ ଦାନ ପଡ଼ିବାଯୋଗୁ ଖେଳାଳୀର ଦାନ ମାରିବା ଓ ପାରିବାକୁ ଯାଉଥିବା ଖେଳ କଷ୍ଟ ହେବା ବା ଫୁଟିବା—2. An unfavourable turn of the dice in a game leading to the defeat of a player. ୩ । କଥାପ୍ରସଙ୍ଗରେ ମଗ୍ନ ଯିବା ଜିତ ବା ରଖାଯିବା ପଣ—3. Wager. [ଉ—ଅନ୍ତ ଅସିଲେ କହିବ ଶୁଣି ତୋଷ ହୋଇ; ବାଳାମଣି ହୁଡ଼ ରଖୁଥିବ ସତ ପାଇଁ—ଭଞ୍ଜ. କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ]
ଭୁଲ ୪ । ଭ୍ରମ; ଭ୍ରାନ୍ତି; ଭୁଲ—4. Mistake; blunder.
भूल [ଉ—ବୋଧିକହେ ଅଷ୍ଟାଦୁର୍ଗ ନାହାଁ;ବୁଝି ହୁଡ଼ରୁ ତ ହେଲ ଏହା—କବିସୂର୍ଯ୍ୟ] ୫ । ବିସ୍ମରଣ—2. Forgetting; oblivion. ୬ । ଦୋଷ—6. Fault; defect. ୭ । ଭ୍ରଂଶ; ଲୋପ—7. Destruction. ୮ । ଅପରିଷ୍କାରତା—8. Uncleanliness. ପ୍ରାଦେ (ଝଡ଼ଖଣ୍ଡ) ବି—ଖେଳରେ ହାର ଜିତ—Winning and defeat in a game.

ହୁଡ଼କ୍—ପ୍ରାଦେ. (ଶିଂହଭୂମି) ବି—କବାଟର ଭିତର ଅଡ଼ର ଖିଳଣି—
Hurdak Wooden bar used in shutting a door from inside.

ହୁଡ଼ କରିବା—ଦେ. କ୍ରି—୧ । ହୁଡ଼ ମାରିବା (ଦେଖ)—
Hurda kariba Hurda mariba (See)
୨ । ଭ୍ରମ କରିବା—2. To commit a mistake. ୩ । ବାଜି ରଖିବା—3 To lay a wager. [ଉ—ଖେଳଲ ପଶା ତାଙ୍କ ସଙ୍ଗତେ ହୁଡ଼ କରି—କୃଷ୍ଣସିଂହ
बाजि राखा दावरखना ମହାଭାରତ—ଅଦି]

ହୁଡ଼କା—ସଂ. ବି—(ହୁଡ୍ ଧାତୁ+କର୍ତ୍ତୃ ଅକ + ଆ)—ପତି ସଂସର୍ଗ
Hurdaka ତ୍ୟାଗିନୀ ସ୍ତ୍ରୀ—A woman who has given up cohabitatoin or does not live with her husband
ଦେ. ବି—ହୁଡ଼ୁକ (ଦେଖ)—Hurduka (See)

ହୁଡ଼କ୍କ—ସଂ. ବି—(ହୁଡ୍ ଧାତୁ+କର୍ମ ଅକ୍କ) — ୧ । ବାଦ୍ୟଭେଦ—
Hurdakka (ମେଦିନୀ)—1. A kind of musical instrument. ୨ । ଦାତ୍ୟୁହ; ଜଳକୁକ୍କୁଟ (ମେଦିନୀ) 2. A water fowl. ୩ । ମଦମତ୍ତ ବ୍ୟକ୍ତି (ମେଦିନୀ)—3. Intoxicated person. ୪ । ଦଣ୍ଡକ; ଲୌହଦଣ୍ଡ (ଶବ୍ଦରତ୍ନାବଳୀ)—4. Iron bar. ୫ । କବାଟ ଖିଳିବାର କାଷ୍ଠ ବା ଲୌହ ଦଣ୍ଡ; ଅର୍ଗଳ—5. A bar used in shutting the door. ୬ । ମତ୍ତ ବ୍ୟକ୍ତି—6. Infuriated or maddened person. ୭ । କବାଟ ବନ୍ଦ କରିବାପାଇଁ ବ୍ୟବହୃତ ବକ୍ରାଗ୍ର ଲୌହ ଶଳାକା, ଚିଟ୍‌କିଣି—7. A door-hook. ୮ । ଉଭୟ ପୃଷ୍ଠ ଢୋଲ; ପଖାଉଜ (ହି. ଶ)—8. A small two faced drum; ୯ । ଲୁହାର ଶିଙ୍ଗା ବନ୍ଧାଯାଇ ଥିବା ଦଣ୍ଡ (ହି. ଶ)—9. A bar set with iron rings.
ବିଣ. ପୁଂ—୧ । ମଦମତ୍ତ—1. Intoxicated; arro-

(ଯୁନିତା—ସ୍ତ୍ରୀ) gaunt. ୨ । ଉଗ୍ର—2. Maddened; infuriated.

ହୁଡ଼ ମାରିବା (ରଖିବା)—ଦେ. କ୍ରି—ଖେଳରେ ପଣ ରଖିବା—To
Hurda maribā (rakhibā) put stakes at
बाजिलगाना बाजीरखना gambling. [ ଉ—ହୋଇଲେ ଦେହକୁ ଦେଇ ହୁଡ଼ ମାରମଣ । କୃଷ୍ଣସିଂହ. ମହାଭାରତ ଆଦି]

ହୁଡ଼ ହେବା—ଦେ. କ୍ରି—ଭୁଲ ହୋଇଯିବା—To be forgotten.
Hurda heba [ଉ—ମୋ ଦେହ ଜଣେ ଗୋଟିଏ ବୁଦ୍ଧି ଅଛୁ,
ଭୁଲ ହওয়া ଦର୍ଶନେ ଦେବ ବୁଦ୍ଧି ଯାଉ ହେବ ହୁଡ଼
भुलहोना କୃଷ୍ଣସିଂହ ମହାଭାରତ, ଆଦି]

ହୁଡ଼ା—ଦେ. ବି—( ସଂ. ହୁଡ଼୍ ଧାତୁ=ସଂହତ ହେବା )—୧ ।
Hurdā ପୋଖରୀର ବା ବିଲର ମାଟିର ଉଚ୍ଚ ବନ୍ଧ—1. Earthen
আলি মাঁটা embankment or big ridge of a
লম্বা ঢিপ ছকী tank or field. ୨ । ମାଟିର ଲମ୍ବ ସ୍ତୂପ—2. A long earthen mound. ୩ । ମଶାଣୀହୁଡ଼ା;
শ্মশানঢিপি সাডা ଶ୍ମଶାନସ୍ଥ ମୃତ୍ତିକା ସ୍ତୂପ—3. A big earthen mound in the cremation ground [ଦ୍ର—ଶ୍ମଶାନରେ ଶବକୁ ପୋଡ଼ିବା ପାଇଁ ବା ପୋତିବା ପାଇଁ ଗାତମାନ ଖୋଳାଯାଏ । ସେ ଗାତରୁ ବାହାରିଥିବା ମାଟି ଜମା ହୋଇ ଯେଉଁ ମୃତ୍ତିକା ସ୍ତୂପ ହୁଏ ତାକୁ ହୁଡ଼ା ବୋଲିଯାଏ । ଅତଏବ ଶ୍ମଶାନ ଅର୍ଥରେ ମଧ୍ୟ 'ମଶାଣୀହୁଡ଼ା' ବା 'ହୁଡ଼ା' ଶବ୍ଦର ବ୍ୟବହାର ହୁଏ ।] ୪ । ଶ୍ମଶାନ—4. Cremation ground. ୫ ।
মাটিরঢেলা মিট্টীকাগোলা ମୃତ୍ତିକା ପିଣ୍ଡ—5. A ball of earth. ୬ । ମୁହଁ ହୁଡ଼ିବା; ଭର୍ତ୍ସନା; ଗାଳି—
গালি গালী 6. Abuse; rebuke. ଦେ. ବଣ. ପୁଂ—
গালিমুখো গালীদেনেবালা ୧ । ଯେଉଁ ଲୋକ ମୁହଁ ହୁଡ଼େ ବା କୁବାକ୍ୟ (ହୁଡ଼ାଇ - ସ୍ତ୍ରୀ) କହେ—1. Abusive; calling names.
হুডানে কন্মাকরনেবালা ୨ । ଯେଉଁ ଲୋକ ଖେଳରେ ଅନ୍ୟକୁ ଠକେ—2. ( a person ) Using unfair means in a game. ପ୍ରାଦେ (ଗଡ଼ଜାତ ଓ ଉତ୍ତର ବାଲେଶ୍ୱର) ବି—ଢେଲା; ଲୋଷ୍ଟ୍ର—A clod of earth used in throwing at others.

ହୁଡ଼ା(ଡ଼େ)ଇବା—ଦେ. କ୍ରି. (ସଂ. ହୁଡ଼୍ ଧାତୁ=ଠକିବା; ପ୍ରତାରଣା କରିବା; ସଂ. ହୁଡ, ହୁଡ଼=ପ୍ରତାରକ)—
Hurdā(rde)ibā
হুড়ান কন্মাকরনা 1. To cheat. ୨ । ପ୍ରତିଦ୍ୱନ୍ଦ୍ୱୀକୁ ଖେଳରେ ଧଗାଇବା—2. To use unfair means in a game. ୩ । ହିସାବରେ ଗୋଳମାଳ କରି
হুড়ান বেঈমানীকরনা କୌଣସି ବ୍ୟକ୍ତିକୁ ତାହାର ପ୍ରାପ୍ୟରୁ ବା ଲାଭରୁ ବଞ୍ଚିତ କରିବା—3. To cheat or defraud a person by false accounting. ପ୍ରାଦେ (ସମ୍ବଲପୁର) କ୍ରି—ଉଡ଼ାଇବା (ଦେଖ)—Urdāibā (See).

ହୁଡ଼ାକୁ ଯା !—ଦେ.ବାକ୍ୟ—(ଗାଳିରେ ବ୍ୟବହୃତ) ଭୂ ମନ୍ତ୍—(A term
Hurdāku jā of abuse or curse) May you go to
মরে যা মরজা sleep in the cremation ground; i.e. May you die.

ହୁଡ଼ାକୁ ଯିବା—ଦେ. କ୍ରି—୧ । ମୋଷକ୍ଷେପାର୍ଥି ଯିବା; ଝାଡ଼ା
Hurdāku jibā ଫେରିବାକୁ ଯିବା—1. To go out
ঘাটেবসতেযাওয়া to answer the call of nature
टट्टीजाना ୨ । ମରିବା—2. To die.

ହୁଡ଼ା ବାନ୍ଧିବା—ପ୍ରାଦେ (ଉତ୍ତର ବାଲେଶ୍ୱର) କ୍ରି.—ମାନସିକ କରି
Hurdā bāndhibā ଠାକୁରଙ୍କ ନିକଟରେ ଢେଲା ବାନ୍ଧିବା—
To tie a dry clod of earth before an Idol in token of one's vow to offer some bhog when a particular desire of his is fulfilled by that Deity.

ହୁଡ଼ାହୁଡ଼ି—ଦେ. ବି—୧ । ବୋଲାବୋଲି; ପରସ୍ପର କୁବାକ୍ୟରେ
Hurdā hurdi ଗାଳି ଦିଅଦେଇ—1. Mutual recri
হুডাহুডি mination; mutual calling of bad names.
হুড়োহুড়ি ୨ । ପରସ୍ପର ଠେଲାଠେଲି—2. Mutual pushing;
गलागाली jostling [ଉ—ଅତ୍ୟନ୍ତ ଭୟେ ରଣ ଛାଡ଼ି ପଳାନ୍ତି
হুডাহুডি ପଡ଼ି ହୁଡ଼ାହୁଡ଼ି । ଜଗନ୍ନାଥ ଭାଗବତ ।] ୩ । ମରାମରି—
धक्काधक्कि 3. Mutual beating; affray.

ହୁଡ଼ି—ଦେ. ବି—(ସଂ. ହୁଡ଼ ଧାତୁ=ସଂହତ କରିବା)—୧ । ହୁରି;
Hurdi ଉଚ୍ଚୈଃସ୍ୱରରେ ଡାକ—1. Hallooing. ୨ । ଗୋ-
জোরে ডাক ଲ; ଗୋଳମାଳ; କୋଳାହଳ—2. Uproar.
जोरसे पुकार [ଉ—ମୃଦଙ୍ଗେ ଚୌଦିଗେ ପଡ଼ଇଲା ହୁଡ଼ି ।
ସଧାନ'ଥ ନନ୍ଦକେଶ୍ୱରୀ ।] ୩ । ଛୋଟ ପାହାଡ଼—3.
ছোট পাহাড় Hillock. [ ଉ—ଗଲେଣି ହୁଡ଼ି-ଚୂଡ଼ାକୁ
पहाडी ଉଡ଼ି ବହୁଗେ କାର ଶଙ୍କ—ଅଭସ୍ନୁଚନ୍ଦ୍ର. ଶେଷ ବନ୍ଦୀ । ୪ ।
(ନାବିକଙ୍କ ଭାଷା) ସମୁଦ୍ର କୂଳକୂଳରେ ବାଣିଜ୍ୟ କରିବାରେ ବ୍ୟବହୃତ ଛୋଟ ଜାହାଜ—4. (nautical) A small ship carrying on trade along the sea-coast.

ହୁଡ଼ି କରିବା—ପ୍ରାଦେ. (ବାଙ୍କି) କ୍ରି—ଦୁଇଜଣଙ୍କର ଦୁଇଟି ବଳଦକୁ
Hurdi karibā ପାଳି କରି ହଳ କରିବା; ସାଅଁଉଥା କରିବା—
To use two bullocks belonging to two persons in ploughing by turns each other's fields.

ହୁଡ଼ିବା—ଦେ. କ୍ରି—(ସଂ. ହୁଡ଼ୁକ୍କ=ମଦମତ୍ତ ବ୍ୟକ୍ତି)—୧ । ଭୁଲ
Hurdibā କରିବା—1. To commit mistake. [ଉ—
ভুল করা ପ୍ରମୋଦରେ ଜନ୍ଦଣ ବପଦେ ହୁଡ଼ିଲେ । କୃଷ୍ଣସିଂହ
भुलकरना ମହାଭାରତ ଆଦି ।] ୨ । କୁବାକ୍ୟ କହିବା;
গালি দেওয়া ଗାଳଦେବା; ଶୋଧିବା; ଭର୍ତ୍ସନା କରିବା—To
गालीदेना call names; to abuse. [ଉ—ଏରୂପ ବଚନରେ ମୋତେ କପାଁ ହୁଡ଼ । କୃଷ୍ଣସିଂହ ମହାଭାରତ ବନ ।] ୩ ।

ଭ୍ରମରେ କୌଣସି କଥା ଛାଡ଼ିଯିବା—3. To leave out a thing by oversight. [ଉ—ଭାବୁଛ ଇ ହୁଡ଼ିବ କ ଏତେ ଶୁଭ ଯୋଗ—ଭଞ୍ଜ ବୈଦେହୀଶବିଳାସ ।] ୪ । ପାସୋରିବା; ବିସ୍ମରିବା; ହେଜି ନ ପାରିବା; ଭୁଲିଯିବା—4. To forget. [ଉ—ଭୂମିମାନଙ୍କରେ ହୁଡ଼ିଲ ସବୁ ଶୋକ, ମାର ଏବେ କର୍ଣ୍ଣଙ୍କୁ ସାରଙ୍କ ନାୟକ—କୃଷ୍ଣସିଂହ ମହାଭାରତ. କର୍ଣ୍ଣ ।] ୫ । କୌଣସି ବ୍ୟକ୍ତିଙ୍କୁ ଅସମାନ ଦେବା—5. To slight a person. ୬ । (ଧର୍ମ, ସତ୍ୟ ବା ପ୍ରତିଜ୍ଞା) ଲଙ୍ଘନ କରିବା—6. To break (one's duty or promise) [ଉ—ସୁଧିଷ୍ଠିର କାମ ଲେଖି ଉପୁରେ ପଣ, କେତେବେଳେ ଯାଆନ୍ତି ନାହିଁ ଧର୍ମ ହୁଡ଼ି—କୃଷ୍ଣସିଂହ ମହାଭାରତ, ବନ ।] ୭ । ବାଜି ମାରିବା—7. To lay stake or wager in a game [ଉ—ଖେଳେ ହୁଡ଼ିଥିବା ପଦାର୍ଥ ହାରିଦେଲେ—କୃଷ୍ଣସିଂହ ମହାଭାରତ ବନ ।] ୮ । ଭୂମିରେ ଲୋଟିବା—8. To roll on the ground. [ଉ—ମୁଣ୍ଡେ ହୁଦପ୍ରେ କରିଭାଡ଼, ପଡ଼ନ୍ତି ମହୀତଳେ ହୁଡ଼ି—ଜଗନ୍ନାଥ ଭାଗବତ ।] ୯ । (କର୍ତ୍ତବ୍ୟ) ପାଳନ କରିବାକୁ ଭୁଲିଯିବା 4. To forget to do (one's duty). ୧୧ । (କର୍ତ୍ତବ୍ୟ) ପାଳନ ନ କରିବା—10. Not to carry out (one's duty) [ଉ—ଠୁଳରେ ସଭିଏ ଭାବ ଗୋ, ଠେଁସା ଠେଁସି ହୋଇ କର୍ତ୍ତବ୍ୟ ହୁଡ଼ିଲେ ଡୁବିବ ଉନ୍ନତ ନାବ ଗୋ—ବାଳକୃଷ୍ଣ. ଫୁଲ ବଉଳବେଣୀ ।]

ହୁଡ଼ୁକ—ଦେ. ବି—( ସଂ. ହୁଡ଼ୁକ୍କ )—୧ । କବାଟ ଖିଲିବା ପାଇଁ
Hurduka ବ୍ୟବହୃତ କାଷ୍ଠ ବା ଲୌହଦଣ୍ଡ ବା ଅର୍ଗଳ—1.
ହୁଡ଼କୋ An iron or wooden bar used for shutting
ହୁଡ଼ୁକ the door ୨ । କବାଟକୁ ବନ୍ଦ କରିବା ପାଇଁ ବ୍ୟବହୃତ ବଙ୍କା ଲୁହାର ଶଲାକା; ଡିଙ୍କିଅ—2. A hooked iron bar used in fastening doors.

ହୁଡ଼ୁକା—ଦେ. ବି. ସ୍ତ୍ରୀ—(ସଂ. ହୁଡ଼ୁକ୍କା) ୧ । ଯଉଁ ସ୍ତ୍ରୀ; ଯେଉଁ ସ୍ତ୍ରୀ
Hurduka ପତି ସଂସର୍ଗ ତ୍ୟାଗ କରି ବାପ ଘରକୁ ପଳାଇଯାଏ—1. A woman who does not like to live with her husband and flees away to her father's house. ୨ । ଯେଉଁ ସ୍ତ୍ରୀ ପତି ସଙ୍ଗେ ରହେ ନାହିଁ—2. A woman who forsakes her husband. ୩ । ହୁଡ଼କ (ଦେଖ)—3. Hurdaka (See).

ହୁଡ଼ୁକୀ—ଦେ. ବି. ସ୍ତ୍ରୀ—ହୁଡ଼ୁକା ୧ ଓ ୨ (ଦେଖ)—
Hurduki Hurduka 1 & 2 (See).

ହୁଡ଼ୁ(ଡ୍ଡୁ)କ୍କ—ସ. ବି—(ହୁଡ଼ୁକ୍=ଅନୁକରଣ ଶବ୍ଦ+କୈ. ଧାତୁ
Hurdu(ddu)kka ଶବ୍ଦ କରିବା+ଅ)—ହୁଡ଼କ୍କ (ଦେଖ)—Hurdakka (See).

ହୁଡ଼ୁତ—ସ. ଅ—ବୃଷର ଶବ୍ଦ (କାଶୀଖଣ୍ଡ); ଷଣ୍ଢର ହେମ୍ବାଳ—
Hurdut The bellowing of a bull.

ହୁଡ଼ୁପୀ—ପ୍ରାଦେ (ଗଞ୍ଜାମ) ବି—କଣ୍ଟେଇ କୋଳି (ଦେଖ)—
Hurdupi Kantai koli (See).

ହୁଡ଼(ଡ଼ୁ)ମ(ମ୍ବ)ଗେହୀ—ଦେ.ବିଣ ଓ ସ୍ତ୍ରୀ—(ଅଶ୍ଳୀଳ ଗାଳି; ସଂ.ହୁଡ଼ୁକ୍କା
Hurd(rdu)m(mb)gehi =ପତି ସଂସର୍ଗ ତ୍ୟାଗିନୀ ସ୍ତ୍ରୀ) ଛିନାଳୀ—
ଖାନ୍‌କୀ Adulteress (a trem of indecent abuse.
ବ୍ୟଭିଚାରିଣୀ

ହୁଡ଼ୁମ—ଦେ. ବି—(ସ. ହୁଡ଼ୁମ୍ବ)—ହୁଡ଼ୁମ୍ବ (ଦେଖ)—
Hurduma Hurdumba (See).

ହୁଡ଼ୁମା—ଦେ. ବିଣ. ପୁଂ—୧ । ହୁଡୁମା; ଅତିଦୁଷ୍ଟ—1. Very
Hurduma wicked- ୨ । କାଣ୍ଡଜ୍ଞାନଶୂନ୍ୟ—
(ହୁଡ଼ୁମୀ—ସ୍ତ୍ରୀ) 2. (a person) Careless of conse-
ଦୁଷ୍ଟ quences. ୩ । ଦୁଃସାହସିକ—3. Foolhardy;
ଛୁଡ଼ very rash.

ହୁଡ଼ୁମ୍ବ—ସ. ବି—( ହୁଡ଼ ଧାତୁ+କର୍ମ ଅମ୍ବ )—୧ । ଭୃଷ୍ଟଚିପିଟକ;
Hurdumba ଚୁଡ଼ାଭଜା (ଶବ୍ଦମାଳା, ଶବ୍ଦକଳ୍ପଦ୍ରୁମ, ବୈଦ୍ୟକ)
—Fried pressed paddy. ୨ । ମୁଢ଼ୀ—
ହୁଡୁମ, ହୁଡମ୍ବ 2. Fried rice. [ଦ୍ର—ଧାନକୁ ଥରେ ଉଷାଳିଲେ
ହୁଡୁମ୍ବ ସେଥିରୁ ଉଷୁନା ଚାଉଳ ହୁଏ । ଧାନକୁ ଦୁଇଥର ଉଷାଇ ମ. ହୁଡୁଡା ତାକୁ ଶୁଖାଇ କୁଟିଲେ ଯେଉଁ ଚାଉଳ ବାହାରେ ସେ ଛାକା. ହୁରୁମ୍ ଚାଉଳକୁ ଭାଜିଲେ ମୁଢ଼ୀ ବଡ ବଡ ହୁଏ । ଦୁଇଥର ଉଷୁଆଁ ଧାନକୁ ହାଣ୍ଡିରେ ଭାଜି ଭଜାହୋଇଥିବା ସବୁଜ ଧାନକୁ କୁଟିଲେ ଚୁଡ଼ା ହୁଏ ଓ ଚୁଡ଼ା ଟିକିଏ ଓଦା ଥାଉଁ ଥାଉଁ ଚୁଡ଼ାକୁ ଭାଜିଲେ ହୁଡ଼ୁମ୍ବ ହୁଏ । ଆମ ଦେଶରେ କେଉଟ କେଉଟୁଣୀମାନେ ଚୁଡ଼ା ଓ ହୁଡ଼ୁମ୍ବ ତିଆରି କରନ୍ତି ଓ ଗୁଡ଼ିଆ ଗୁଡ଼ିଆଣୀମାନେ ମୁଢ଼ି ତିଆରି କରନ୍ତି । ବଙ୍ଗ ଦେଶରେ ଛୁତାର (ବଢ଼େଇ)ମାନେ ଚୁଡ଼ା ଓ ହୁଡ଼ୁମ୍ବ କରନ୍ତି । ହୁଡ଼ୁମ୍ବ ମୁଢ଼ିଠାରୁ ଫୁଲିଥାଏ ଓ ଏହା ମୁଢ଼ି ଅପେକ୍ଷା ଲଘୁପାକ । ସଜ ହୁଡ଼ୁମ୍ବ ଖାଇଲାବେଳେ ମୁଡ଼ୁ ମୁଡ଼ୁ ଶବ୍ଦ ହୁଏ । ବୈଦ୍ୟ ଶାସ୍ତ୍ରରେ ରୋଗୀକୁ ହୁଡ଼ୁମ୍ବ ଦେବାର ବ୍ୟବସ୍ଥା ଅଛି ।]

ହୁଡ଼ୁହୁଡ଼ା—ପ୍ରାଦେ (ମେଦିନୀପୁର) ବି—(ସ. ହୁରହୁରା)—ଆଦିତ୍ୟଭକ୍ତା;
Hurdu hurda ଅଣସୋରିସିଆ ( ବନ୍ୟଶାକ ବିଶେଷ )—Cleome Viscosa (plant), [ଦ୍ର—ଏହା ତିନି ପ୍ରକାର—ଏକ ଜାତିର ଫୁଲ ହଳଦିଆ, ଏକ ଜାତିର ଫୁଲ ଅରୁଣ ଓ ଏକ ଜାତିର ଫୁଲ ଧଳା ।]

ହୁଣ୍ଡ (ଧାତୁ)—ସ—୧। ରାଶି କରିବା; ଗଦା କରିବା—1. To heap
Hund (root) up; to gather together. ୨ । ଏକତ୍ର ହେବା—2. To be gathered at one place.

ହୁଣ୍ଡ—ସ. ବି (ହୁଣ୍ଡ ଧାତୁ+କର୍ତ୍ତ୍ରି ଅ)—୧। ବ୍ୟାଘ୍ର (ଶବ୍ଦକଳ୍ପଦ୍ରୁମ)—
Hunda 1. Tiger. ୨ । ଗ୍ରାମ୍ୟଶୂକର (ଶବ୍ଦ କଳ୍ପଦ୍ରୁମ)—
2. A hog. ୩ । ମୂର୍ଖ (ଶବ୍ଦକଳ୍ପଦ୍ରୁମ)—

3. Dunce; illiterate person. ୪ । ଗୁଣ୍ଡସ (ଶଙ୍କରକଲ୍ପଦ୍ରୁମ)—4. Demon. ୫ । ଗୁଆଁର; କ୍ରୋଧ ବ୍ୟକ୍ତି—5. A fool; simpleton. ୬ । ମେଣ୍ଢା (ହୁ.ଶ) 6. Sheep. ୭ । ଶସ୍ୟର କାଳ (ହୁ. ଶ) —7. The horns on grains. ୮ । (ମହାଭାରତୋକ୍ତ) ବର୍ବର ଜାତି ବଶେଷ (ହୁ. ଶ)—8 Name of a tribe of barbarians of ancient India.

ହୁଣ୍ଡା — ଦେ. ବଣ ପୁଂ—(ସଂ. ହୁଣ୍ଡ)—୧ । ମୂର୍ଖ—1. Illiterate. Hunḍā ୨ । ଓଲୁ; ନିର୍ବୋଧ, ନିର୍ବୁଦ୍ଧିଅ; ସ୍ଥୂଳବୁଦ୍ଧି; ଓଲମା—(ହୁଣ୍ଡୀ—ସ୍ତ୍ରୀ) 2 Foolish; stupid; thoughtless. ୩ । ହୋତକା, ହଣ୍ଡା ଗୁଆଁର—3. Fool hardy; rash. ୪ । ଗେଧା; ଗଁବାର ଗେଧକା; ସ୍ଥୂଳକାୟ—4. Fat. ୫ । ସ୍ଥୂଳକାୟ ଓ ନିର୍ବୁଦ୍ଧି—5. Fat and foolish. ବ—୧ । ଓଲୁ ବ୍ୟକ୍ତି—1. A fool, ୨ । ମୂର୍ଖ—2. A dunce. ଗୌୱାର ୩ । ଗୁଆଁର ବ୍ୟକ୍ତି—3. A foolhardy person. ଗଁବାର [ଉ—କାଣ୍ଡଜ୍ଞାନହୀନ କାଣ୍ଡସୃଷ୍ଟ ହୁଣ୍ଡା—ରାଧାନାଥ ରଚନାବଳୀ] ୪ । ହେଣ୍ଟାବାଘ; ଗଧିଆ—4. Hyena ନେକଡେବାଘ wolf. ୫ । ଯେଉଁ ବ୍ୟକ୍ତି ଆଗପଛ ନ ଭାବି କୌଣସି ଭେଡ଼ିୟା କାମ କରେ—5. Thoughtless person; a person who acts without foresight. ୬ । ସ୍ଥୂଳକାୟ ଓ ନିର୍ବୋଧ ବ୍ୟକ୍ତି—6. A stout and foolish person.

ହୁଣ୍ଡା ତମସୁକ — ଦେ. ବ—ଲେଖା ତମସୁକ ପରିବର୍ତ୍ତେ ମହାଜନଙ୍କୁ Hunḍā tamasuka ଦିଆଯିବା ସାଦା ବା ଅଲେଖା ଷ୍ଟାମ୍ପ— Blank stamp given to a creditor in the ହଣ୍ଡା ତମସ୍ସୁକ सादातमस्सुक place of a written bond.

ହୁଣ୍ଡାପଣ—ଦେ. ବ—୧ । ମୂର୍ଖପଣ; ନିର୍ବୋଧତା—1. Foolishness Hunḍāpana folly. ୨ । ଆଗପଛ ନ ବିଚାରି କାମ କରିବା ଅବସ୍ଥା—2. Foolhardiness; thoughtlessness; absence of forethought or foresight ହଣ୍ଡାମି गँवारपन (ହୁଣ୍ଡାପଣିଆଁ—ଅନ୍ୟରୂପ)

ହୁଣ୍ଡାମି—ଦେ. ବ—(ବଙ୍ଗଳାର ଅନୁକରଣ)—ହୁଣ୍ଡାପଣ (ଦେଖ) — Hunḍāmi Hunḍāpana (See)
[ଦ୍ର—କେତେ ଅଧୁନିକ ଲେଖକ ଏ ଶବ୍ଦକୁ ଲେଖାରେ ବ୍ୟବହାର କରୁଥିବା ଦେଖାଯାଏ । ଏହିପରି ଚଗଲାମି, ଦୁଷ୍ଟାମି, ଭଣ୍ଡାମି ଆଦି ଶବ୍ଦ ଓଡ଼ିଆରେ କ୍ରମଶଃ ଚଳିବା ଦେଖାଯାଉଛି । ଦୁଷ୍ଟାମି ଶବ୍ଦ ଓଡ଼ିଆରେ ସର୍ବବାଦି ସମ୍ମତ ହୋଇ ଚଳିଗଲାଣି ।]

ହୁଣ୍ଡା ମୂଲ—ଦେ. ବ—କୌଣସି ଦ୍ରବ୍ୟକୁ ଓଜନ ନ କରାଯାଇ ବା Hunḍā mūla ଉକ୍ତ ପଦାର୍ଥର ଉତ୍କୃଷ୍ଟତା ଓ ନିକୃଷ୍ଟତା ପରୀକ୍ଷା ନ ଥାଉଁ ହୋଦାମ କରାଯାଇ ନିରୂପିତ ହେବା ମୂଲ୍ୟ—A fixed price हुंडादाम set on an article without reference to its weight or quality.

ହୁଣ୍ଡାର (ଲ)—ପ୍ରାଦେ (ସମ୍ବଲପୁର ଓ ଗଡ଼ଜାତ) ବ—ହେଣ୍ଟା; ଗଧିଆ— Hunḍār(l) Wolf; hyena.

ହୁଣ୍ଡାଲ - ପ୍ରାଦେ (ସିଂହଭୂମି) ବ—ହେଣ୍ଟା —Wolf; hyena. ପ୍ରାଦେ Hunḍāla (ସମ୍ବଲପୁର ଓ ଗଡ଼ଜାତ) ବ—ଚିତାବାଘ— Leopard; spotted tiger. [ଦ୍ର—ମହାବଳଶାଳୀ କବଳ ଯେ ସ୍ଥାନେ ହିଂସ୍ରକ ଅଟେ ହୁଣ୍ଡାଲ—ବଳଭଦ୍ର ଦେବ ଚଉତିଶା ।]

ହୁଣ୍ଡାଳିଆ—ଦେ. ବଣ—ହୁଣ୍ଡା ବ୍ୟକ୍ତିର ଆଚରଣ ସୁଲଭ (କାର୍ଯ୍ୟ)— Hunḍālia (Action) Befitting a fool. ହଣ୍ଡାମି गँवारकेजैसे

ହୁଣ୍ଡି—ଦେ. ବ—(ଫା)—ବାଣିଜ୍ୟ ବ୍ୟବସାୟ ଉପଲକ୍ଷରେ Hunḍi ସ୍ଥାନାନ୍ତରରେ କୌଣସି ବ୍ୟକ୍ତିଙ୍କୁ ଟଙ୍କା ଦିଆଯିବା ପାଇଁ ହୁଣ୍ଡି हुंडी ବନ୍ଧ ପତ୍ର—A bill of exchange. [ଦ୍ର—ବାଣିଜ୍ୟ ବ୍ୟବସାୟରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନଗଦ ଟଙ୍କା ପଠାଇବାର ସବୁବେଳେ ସୁବିଧା ନ ଥାଏ ଓ ସେଥିପାଇଁ ବହୁତ ଖରଚ ଲାଗେ । ଏଥିପାଇଁ ଜଣେ ବ୍ୟବସାୟୀଙ୍କର ଏକ ସ୍ଥାନରୁ (ଯଥା—କଟକରୁ) ଅନ୍ୟ ସ୍ଥାନକୁ (ଯଥା ବମ୍ବେଇକୁ) କିଛି ଟଙ୍କା ପଠାଇବାକୁ ହେଲେ ନଗଦ ଟଙ୍କା ଲୋକ ଦ୍ୱାରା ବା ମନି ଅର୍ଡ଼ର କରି ପଠାଇଲେ ବେଶୀ ଖରଚ ଲାଗିବ, ଏଥିପାଇଁ ଉକ୍ତ ଦୂରବର୍ତ୍ତୀ ସ୍ଥାନରେ (ଯଥା, ବମ୍ବେଇରେ) ଓ ଏଠାରେ (ଯଥା, କଟକରେ) ଯାହାଙ୍କର କାରବାର ଚାଲୁଅଛି ଏପରି ଜଣେ ବ୍ୟବସାୟୀଙ୍କ ନିକଟରେ ଉକ୍ତ ଟଙ୍କାକୁ ପ୍ରେରଣେଚ୍ଛୁ ବ୍ୟକ୍ତି ଜମା ବା ଉପୋଜତ୍ କରି ଦିଅନ୍ତି ଓ ଉକ୍ତ ଟଙ୍କାକୁ ଉପୋଜତ୍ ରଖିବା ବ୍ୟବସାୟୀ ତାଙ୍କର ଦୂରଦେଶ (ବମ୍ବେଇ)ରେ ଥିବା ଗୁମାସ୍ତାଙ୍କ ନିକଟକୁ ହୁଣ୍ଡି ବା ବନ୍ଧ ପତ୍ର ଏହି ମର୍ମରେ ଲେଖି ଦିଅନ୍ତି ଯେ, ଟଙ୍କା ପ୍ରେରଣକାରୀ କିମ୍ବା ତାଙ୍କର ଗୁମାସ୍ତାଙ୍କୁ ଦୂର ଦେଶରେ (ବମ୍ବେଇରେ) ଏତିକି ଟଙ୍କା ଏହି ବନ୍ଧପତ୍ର ଦେଖିବା ମାତ୍ରକେ ଦେବ । ଏତଦ୍ଦ୍ୱାରା ପ୍ରଥମ ମହାଜନ କେତେଗୁଡ଼ିଏ ଖରଚରୁ ରକ୍ଷା ପାଆନ୍ତି ଓ ଏଥିଯୋଗୁଁ ପ୍ରଥମ ମହାଜନ ଦ୍ୱିତୀୟ ମହାଜନଙ୍କୁ କିଛି କମିସନ୍ ଦିଅନ୍ତି । ହୁଣ୍ଡିର ଆଉ ଗୋଟିଏ ସୁବିଧା ଏହି କି, କେତେକ ହୁଣ୍ଡିକୁ ଦୂରସ୍ଥାନରେ ଦେଖାଇବା ମାତ୍ରେ ଦେଖିବା ବ୍ୟକ୍ତି ଉକ୍ତ ହୁଣ୍ଡିରେ ବନ୍ଧ ହୋଇଥିବା ଟଙ୍କାକୁ ହୁଣ୍ଡି ଦେଖାଇବା ବ୍ୟକ୍ତିଙ୍କୁ ନଗଦ ସଙ୍ଗେ ସଙ୍ଗେ ଦେବେ । ଏହାକୁ ଦର୍ଶନୀହୁଣ୍ଡି କହନ୍ତି । କେତେକ ହୁଣ୍ଡିକୁ ଦୂର ସ୍ଥାନର ବ୍ୟକ୍ତି ଦେଖିବାର ୬୧ ବା ୯୧ ବା ୩୧ ଦିନ ମିଆଦରେ ଟଙ୍କା ଦିଅନ୍ତି । ଏହାକୁ ମୁଦତି ହୁଣ୍ଡି ବା ମିଆଦୀ ହୁଣ୍ଡି ବୋଲାଯାଏ । ଏହି ହୁଣ୍ଡି ଯେଉଁ କାଗଜରେ ଲେଖାଯାଏ ସେ କାଗଜରେ ନିର୍ଦ୍ଦିଷ୍ଟ ମୂଲ୍ୟର ସରକାରୀ ଷ୍ଟାମ୍ପ (Stamp) ଲଗାଯାଏ । ଅର୍ଥାତ୍ ପ୍ରତ୍ୟେକ ହୁଣ୍ଡି ପାଇଁ ସରକାରଙ୍କୁ ଷ୍ଟାମ୍ପ ରୂପେ କିଛି ଦେବାକୁ ପଡ଼େ । ଏହି ଫାରସୀ ଶବ୍ଦ ଓଡ଼ିଆରେ ଓ ଇଂରାଜୀରେ ମଧ୍ୟ ଚଳୁଅଛି ।]

ହୁଣ୍ଡିଆନ୍—ଦେ. ବିଣ—ଯେଉଁ ଲୋକ ହୁଣ୍ଡି ଦ୍ୱାରା ଅନ୍ୟ ସ୍ଥାନରୁ ଟଙ୍କା
Hundiān ପାଇବା ପାଇଁ ଉକ୍ତ ବିଲକୁ ଗ୍ରହଣ କରେ—The
हुण्डियान **हुंडीलेनेवाला** person in whose favour a
Hundi or bill of exchange is drawn.

ହୁଣ୍ଡି କମିସନ୍ (ନି)—ବୈଦେ ବି—(ଫା· ହୁଣ୍ଡି+ଇଂ କମିସନ୍)—
Hundi kamisan(ni) ହୁଣ୍ଡି ଦ୍ୱାରା ଅନ୍ୟକୁ ଟଙ୍କାକୁ କୌଣସି
हुण्डि कमिसन **हुंडी कमीशन** ବ୍ୟବସାୟୀଙ୍କ ଦ୍ୱାରା ଦୂର ଦେଶକୁ
ପଠାଇବା ଯୋଗୁଁ ଉକ୍ତ ବ୍ୟବସାୟୀଙ୍କୁ ପୁରସ୍କାର ସ୍ୱରୂପ
ଯେଉଁ ଟଙ୍କା ଦିଆଯାଏ—Commission paid by a
person remitting money by a bill of
exchange.

ହୁଣ୍ଡି କରିବା—ଦେ. କ୍ରି—୧ । ଦୂର ଦେଶକୁ ଆପଣାର ଟଙ୍କାକୁ ହୁଣ୍ଡି
Hundi karibā ଦ୍ୱାରା ପ୍ରେରଣ କରିବା—1. To remit
हुण्डि करा **हुंडीभेजना** money to a distant place by
means of a bill of exchange. ୨ । ହୁଣ୍ଡି
ଦେବା (ଦେଖ)—2. Hundi debā (See).

ହୁଣ୍ଡି କାରବାର—ଦେ. ବି—ହୁଣ୍ଡି ଘେନିବେ କମିଶନ ଗ୍ରହଣ କରିବା
Hundi kārabāra ବ୍ୟବସାୟ—Hundi business;
हुण्डिकारबार **हुंडीकारबार** the business of getting
commission on accepting money for a
hundi.

ହୁଣ୍ଡି ଦେବା—ଦେ. କ୍ରି—କୌଣସି ବ୍ୟକ୍ତିଙ୍କଠାରୁ ଏକ ସ୍ଥାନରେ ଟଙ୍କା
Hundi debā ଗ୍ରହଣ କରି ଅନ୍ୟସ୍ଥାନରେ ଉକ୍ତ ଟଙ୍କା ପାଇବା
हुण्डि देओया ପାଇଁ କାଗଜ ଖଣ୍ଡିଏ ଲେଖି (ଟଙ୍କା ରଖିବା ବ୍ୟକ୍ତି)
**हुंडीदेना** ଉପାର୍ଜିତ କରିବାଲୋକଙ୍କୁ ଦେବା—To give a bill of
exchange to a depositor.

ହୁଣ୍ଡି ବାଲା—ବୈଦେ· (ଫା) ବି—ହୁଣ୍ଡି ଦ୍ୱାରା କାରବାର ଚଳାଉଥିବା
Hundi bālā ମହାଜନ—A merchant carrying on
हुण्डिओयाला **हुंडीवाला** hundi business.

ହୁଣ୍ଡି ଭଙ୍ଗା(ଙ୍ଗେ)ଇବା—ଦେ. କ୍ରି—ଦୂର ଦେଶରେ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ
Hundi bhangā(nge)ibā ହୁଣ୍ଡିକୁ ଦେଇ ତାଙ୍କଠାରୁ ନଗଦ
हुण्डि भाङ्गान ଟଙ୍କା ନଗଦ ବୁଝିନେବା ବା ଆଦାୟ କରିବା—
**हुंडीभंगाना** To encash a bill of exchange

ହୁଣ୍ଡି ମିଆଦ୍(ଦି)—ବୈଦେ. (ଫା) ବି—ହୁଣ୍ଡି ଦେଖିବା ଲୋକର ହୁଣ୍ଡି
Hundi miād(di) ଦେଖାଇବା ଲୋକଙ୍କୁ ନଗଦ ଟଙ୍କା ଦେବା ପାଇଁ
हुण्डिमेयाद ହୁଣ୍ଡିରେ ଯେଉଁ ସମୟ (୩୧ ଦିନ, ୬୧ ଦିନ, ୧୧ ଦିନ)
**हुंडीमियाद** ନିର୍ଦ୍ଦିଷ୍ଟ ଥାଏ—The time fixed for pay-
ment of the money covered by a bill of
exchange some days after the presenta-
tion of the bill.

ହୁଣ୍ଡି—ଦେ. ବିଣ ଓ ବି—୧। ହୁଣ୍ଡାର ସ୍ତ୍ରୀଲିଙ୍ଗ—1.The feminine
Hundi of Hundā. ୨ । ହୁଣ୍ଡା (ଦେଖ)—2, Hundā
(ହୁଣ୍ଡେଇ—ଅନ୍ୟରୂପ) (See). ବୈଦେ, ବି—ହୁଣ୍ଡି ଇତ୍ୟାଦି
हुण्डी **गँवारिन** (ଦେଖ)—Hundi etc (See)

ହୁତ୍—ଦେ. (ଧ୍ୱନ୍ୟନୁକରଣ) ଅ—୧ । ଧୂତ୍; କୌଣସି ବ୍ୟକ୍ତିକୁ ବା
Hut ଜନ୍ତୁକୁ ଘଉଡ଼ିବା ବ୍ୟକ୍ତିଦ୍ୱାରା ଉଚ୍ଚାରିତ ଧ୍ୱନି—1.
(ହୁତ୍ ହୁତ୍—ଅନ୍ୟରୂପ) (Interjection) Exclamation
धुत् **हत** uttered by a person driving away a
person or animal from a place. ୨ । ହୁହୁ
(ଦେଖ)—2. Huhu (See). ପ୍ରାଦେ (ଉତ୍ତରାଞ୍ଚଳ) ଅ
(ହୁଁ—ଅନ୍ୟରୂପ) ବାରଣାର୍ଥକ; ନିଷେଧାର୍ଥକ—Interjection
used in prohibiting or preventing.

ହୁତ୍ କରିବା—ଦେ, କ୍ରି—୧ । ଘଉଡ଼ିବା—1. To drive away·
Hut karibā ୨ । ଭୟାରଣ ପୂର୍ବକ ତଡ଼ିବା—2. To scare
धुत् करा **हुत करना** away.

ହୁତ—ସଂ. ବିଣ—(ହୁ ଧାତୁ=ହୋମ କରିବା+କର୍ମଣି) —୧ । ମନ୍ତ୍ରୋ-
Huta ଚ୍ଚାରଣ ପୂର୍ବକ ଦେବତାଙ୍କ ଉଦ୍ଦେଶ୍ୟରେ ହୋମାଗ୍ନିରେ
(ହୁତା—ସ୍ତ୍ରୀ) ପ୍ରକ୍ଷିପ୍ତ (ଘୃତାଦି)—1. (Ghee etc) Offered
unto the fire in the name of a Deity. ବି
—୧ । ଅଗ୍ନିରେ ମନ୍ତ୍ରୋଚ୍ଚାରଣ ପୂର୍ବକ ପ୍ରକ୍ଷିପ୍ତ ଘୃତାଦି—
1. Ghee etc offered unto fire. ୨ ।
(ଅଧିକରଣ ର) ହୋମାଗ୍ନି—2. The sacrificial fire
୩। (+ଭାବରେ) ହୋମ—3. Sacrifice or offering
of ghee etc into fire. ୪ । ଶିବ (ହେ ଶ)—4.
Siba.

ହୁତବହ—ସଂ. ବି—(ହୁତ=ଘୃତାଦି+ବହ୍ ଧାତୁ+କର୍ତ୍ତୃ ଅ)—ଅଗ୍ନି
Huta baha (ହେମଚନ୍ଦ୍ର)—Fire.

ହୁତ ଭକ୍ଷ—ସଂ. ବି (ହୁତ+ଭକ୍ଷଧାତୁ+କର୍ତ୍ତୃଅ)—ଅଗ୍ନି (ହେ. ଶ)—
Huta bhaksha Fire.

ହୁତଭୁକ୍ ସଂ. ବି—(ହୁତ=ଘୃତାଦି+ଭୁଜ ଧାତୁ=ଖାଇବା+କର୍ତ୍ତୃ
Huta bhuk କ୍ୱିପ୍, ହୁତଭୁଜ୍ ଶବ୍ଦ ୧ମା ୧ବ)—୧ । ଅଗ୍ନି
(ଅମର)—1. Fire. ୨ । ଧଳାଚିତାଗୁଳ୍ମ; ଚିତକ ବୃକ୍ଷ
(ଅମର)—2. Plumbago Zeylanica (a plant).

ହୁତଭୁକ୍ପ୍ରିୟା—ସଂ. ବି—ସ୍ତ୍ରୀ—ଅଗ୍ନିଭାର୍ଯ୍ୟା; ସ୍ୱାହା (ଅମର)—The
Hutabhuk-priyā mystic syllable Swāhā
(personified as the wife of the Fire-god),

ହୁ(ହୋ)ତଲା—ପ୍ରାଦେ (ଉତ୍ତରାଞ୍ଚଳ) ବିଣ ଓ ବି—ଗୋଟିଏ ହାତରେ
Hu(ho)talā ଧରି ହେବା ବା ପରିମିତ (ବସ୍ତୁ)—As much
as can be held by one hand.

ହୁତ ଶେଷ—ସଂ. ବି—ହୋମରେ ଆହୁତି ଦିଆସିବା ପରେ ବଳି ପଡ଼ିଥିବା
Huta śesha ସାମଗ୍ରୀ—Things remaining after
offering unto the fire.

ହୁତାଗ୍ନି—ସଂ. ବି—ହୋମାଗ୍ନି—Sacrificial fire. ବିଣ (ବହୁବ୍ରୀହି)
Hutāgni —୧ । ଅଗ୍ନିହୋତ୍ରୀ—1. Performing the
Agni hotra. ୨ । କୃତହୋମ—2. (a person)
Who has performed a Homa

ହୁତା—ସଂ. ଋଣ—(ହୁତ+ସ୍ତ୍ରୀ. ଆ)—ହୁତର ସ୍ତ୍ରୀଲିଙ୍ଗ—Feminine
Huta of Huta. ଦେ. ବଣ—କୌଣସି କାର୍ଯ୍ୟରେ ନିଯୁକ୍ତ (ବ୍ୟକ୍ତି)—(Person) Employed in any work. ବ—୧ । ସମ୍ପର୍କ; କାର୍ଯ୍ୟ ସଙ୍ଗେ ସମ୍ବନ୍ଧ—1. Connection with any work. ୨ । ଦାୟିତ୍ୱ—2. Responsibility.

ହୁତାବଶିଷ୍ଟ—ସଂ.ବଣ—ହୋମରୁ ବଳି ପଡ଼ିଥିବା—Remaining after
Hutabasishta the offering unto fire.

ହୁତାବଶେଷ—ସଂ. ବ—ହୁତାବଶେଷ(ଦେଖ)—Hutasesha (See)
Hutabasesha

ହୁତାଶ—ସଂ. ବ—(ହୁତ=ଘୃତ+ଅଶ୍ ଧାତୁ+କର୍ତ୍ତୃ ଅ)—୧ ।
Hutasa ଘୃତଭୁକ୍; ଅଗ୍ନି; ହୁତାଶନ—1. Fire. ୨ । ତିନ ସଂଖ୍ୟା (ବୃ. ଶ)—2. The number three. ୩ । ଚିତ୍ରକଗଛ (ବୃ. ଶ)—3. Plumbago Zeylanica plant. ଦେ. ବଣ—(ହ ହା ହୁତୋଦ୍ଧୃ କିମ୍ବା ହତାଶ—୧ । ହତାଶ—1. Desperate; hopeless. ୨ । କ୍ରୋଧରେ ପ୍ରଜ୍ୱଳିତ—2. Burning with rage. ୩ । ବିପଦରେ ବା ଶୋକରେ ଅର୍ତ୍ତନାଦକାରୀ—3 Uttering cry of grief or of distress. ୪ । ଜ୍ଞାନ ଶୂନ୍ୟ—4. Unmindful or careless of consequence. ବ—୧ । ବିପନ୍ନ ବ୍ୟକ୍ତିର ଖେଦ ସୂଚକ ଶବ୍ଦ ବା ଅର୍ତ୍ତନାଦ—1. Cry of distress or grief. ୨ । ହତାଶ ଅବସ୍ଥା—2. Desperation; hopelessness.

ହୁତାଶନ—ସଂ. ବ—(ବହୁବ୍ରୀହି; ହୁତ=ଘୃତ ଅଟେ ଅଶନ=ଭୋଜନ ଯାହାର)—୧ । ଅଗ୍ନି—1. Fire
Hutasana ୨ । ଶିବ (ବେଦ ଭଗବଦ୍ଗୁଣ)—2. God Siba.

ହୁତାଶନେ—ଗ୍ରା. କ୍ରି. ବଣ—ହୁ ହୁ ହୋଇ—Raging or bur-
Hutasane ning briskly ( said of fire); in a
ভূত করে হুহু করে blazing manner. [ ଉ—ଅନଳ ଯେସନେ ହୁତାଶନେ ଜଳୁଥାଇ — ପ୍ରାଚୀ. ଚନ୍ଦ୍ରକଳାଭୂଷଣ ଗୀତା]

ହୁତାଶିଆ—ଦେ. ବଣ ପୁଂ—, ଦେ. ହତାଶ )—୧ । ହତାଶ,
Hutasia ଅଶାହତ ହେବାରୁ ଜ୍ଞାନଶୂନ୍ୟ—
हुताशलागा हताश 1. Desperate; disregardful of consequences. ୨ । ( ସଂ; ହୁତାଶ=ଅଗ୍ନି; ଅଗ୍ନିପରି) ଅତ୍ୟନ୍ତ କୋପୀ—2. Very angry; of a violent disposition.

ହୁତାଶି ହେବା—ଦେ କ୍ରି (ସଂ. ହାହୁତୋଦ୍ଧି)—୧ । ଡାକୁଳହେବା—
Hutasi heba ବଡ଼ଗଞ୍ଜ ହେବା; ଉଡ଼ିଲ ବିକଳ ହେବା—1. To be much perplexed. ୨ । ବିପନ୍ନହେବା 2. To be in danger. ୩ । କିଂକର୍ତ୍ତବ୍ୟ ବିମୂଢ଼ ହେବା—3. To become bewildered or upset. ୪ । ହତାଶ ହେବା—4. To become desperate.
হুতাশি হওয়া अस्तव्यस्तहोना

ହୁତାହୁତି—ଗ୍ରାଦେ (ଯାଜପୁର) ବଣ—କ୍ରମଶଃ ପରବର୍ତ୍ତୀ; ପଛକୁପଛ—
Hutahuti Succeeding. କ୍ରି ବଣ—କ୍ରମଶଃ ପରେ ପରେ In succession.

ହୁତା ହେବା—ଦେ କ୍ରି—୧ । କୌଣସି କାର୍ଯ୍ୟରେ ନିଜକୁ ନିଯୁକ୍ତ
Huta heba କରିବା—1. To engage one's self in any work. ୨ । କୌଣସି କାର୍ଯ୍ୟ କରିବାକୁ ଅଗ୍ରସର ହେବା—2. To come forward to do any work. ୩ । କୌଣସି ବିଷୟର ଦାୟିତ୍ୱ ଗ୍ରହଣ କରିବା—3. To undertake the responsibility for any work. ୪ । ଦାୟୀ ହେବା—4. To become responsible for any work.
বত হওয়া नियुक्तहना

ହୁତି—ସଂ. ବ—(ହୁ ଧାତୁ+ଭାବ କ୍ତି) —ହବନ; ହୋମ—Sacrifice;
Huti vedic ritual consisting of offering of ghee to the Deities through fire. ଦେ. ବ—୧ । ହୁତା (ଦେଖ)—1. Huta (See) ୨ । (ସ. ଭବତି) ହୋଇ; ହେବାକଥା; କୌଣସି କାର୍ଯ୍ୟ ହେବାର ଅବସ୍ଥା—2. The state of an act being done. ୩ । କାର୍ଯ୍ୟ ସମ୍ପନ୍ନ ହେବାର ନିଶ୍ଚୟତା—3. Certainty of a work being accomplished. ୪ । କାର୍ଯ୍ୟ ସମ୍ପାଦିତ ହେବାର ଦୃଢ଼ ଜବାବ—4. Promise or assurance of a work being performed

ହୁତି ନ ହୁତି—ଦେ. ବ—(ସ. ଭବତି ନ ଭବତି) —୧ । ହୋଇ ନ
Huti na huti ହୋଇ; ହେବା ନ ହେବା; କୌଣସି କାର୍ଯ୍ୟର ହେବା ବା ନ ହେବା—1. To be or not to be. ୨। କୌଣସି କାର୍ଯ୍ୟ ହେବାର ବା ନ ହେବାର ଜବାବ—2. Promise or assurance that anything will or will not be done. (ଯଥା —ମୁଁ ଦିନ ଦିନ ହେଲି ତାଙ୍କ ପାଖରେ ଅନୁସରଣ କଲି, ମାତ୍ର ସେ ମତେ ହୁତି ନ ହୁତି କିଛି କହିଲେ ନାହିଁ)
হওয়া না হওয়া होना न होना

ହୁଦ(ଧ)ସ୍—ଦେ. କ୍ରି ବଣ —ହୁଉକରି (ଦେଖ)—
Hu da(dha)s Hu-u kari (See)

ହୁଦା(ଦ୍ଦା)—ବୈଦେ. ବ—( ଅ. ଓହ୍‌ଦା=ପଦସ୍ଥ, ପଦସ୍ଥ ଚିହ୍ନ
Huda(dda) ଚିହ୍ନ)—୧ । ଚପରାସୀ ମାନଙ୍କର ପୋଷାକରେ ଲାଗିଥିବା ପଦବାଚକ ଧାତୁଫଳକ ବା କାଗଜ ବା ଚିହ୍ନ—1. Badge; a metal plate worn on the dress of peons. ୨ । ଅଧିକାର ପରିଚାୟକ ଚିହ୍ନ—2. A badge of authority. ୩ । ଅଧିକାର; ଆଧିପତ୍ୟ—3 Authority; mastery, domination. ୪ । ଔଚିତ୍ୟ—4. Propriety. ଗ୍ରାଦେ—(ଯାଜପୁର) ବ—ଦଳ; ଗୋଷ୍ଠୀ; ସମୂହ—Band; flock; company. ଗ୍ରାଦେ (ବଲାଙ୍ଗୀର) ବ—ହଳ—Plough ଗ୍ରାଦେ. (ଖଣ୍ଡପଡ଼ା) ବ—୧ । ବାଡ଼ିର ଅଗ୍ରଭାଗ—1. The pointed end of a stick. ୨ । ବାଡ଼ିର

ଅଗଢ଼ାଗ୍ର ଖୋଚା—2. A push or poking with the end of a stick.

ହୁଦା ମାରିବା—ପ୍ରାଦେ· (ଖଣ୍ଡଅଳ) କ୍ରି – ବାଡ଼ିର ଅଗ୍ରଭାଗଦ୍ୱାରା ଠେଲି
Hudā māribā ଦେବା—To push by the point of a stick.

ହୁନ୍—ପ୍ରାଦେ. (ଭଞ୍ଜଭୂଷା) ସର୍ବନାମ—ସେ—
Hun He; she.

ହୁନ୍‌କେ—ପ୍ରାଦେ. (ଭଞ୍ଜଭୂଷା) ସର୍ବନାମ—ତାହାର—
Hun-ke His.

ହୁନ୍‌ମନ୍—ପ୍ରାଦେ (ଭଞ୍ଜଭୂଷା) ସର୍ବନାମ—ସେମାନେ—
Hun-man They.

ହୁନ – ଦେ· ବ—( ସଂ. ଧନ, ହୁଣ, ହୁନ=ପ୍ରାଚୀନ ସ୍ୱର୍ଣ୍ଣମୁଦ୍ରାବିଶେଷ )
Huna ୧ । ଧନ; ସମ୍ପତ୍ତି—1. Riches. ୨ । ନଗଦ ଧନ—2. Cash. ୩ । ଲୁଚ୍ଚିତ ଧନ; ଗଚ୍ଛିତ ଧନ; ପୁଞ୍ଜୀକୃତ ଧନ—3 Hoard ପ୍ରାଦେ (ଉତ୍ତର ବାଲେଶ୍ୱର) ବ—ଅଳ୍ପମୂଲ୍ୟର ବସ୍ତୁ—A thing of low price.

ହୁନର୍ (ଇତ୍ୟାଦି)—ବୈଦେ. ବ—( ଫା ହୁନର୍=କଳା, କାରିଗର )
Hunar(etc) ହୁନ୍ଦର୍ (ଇତ୍ୟାଦି) (ଦେଖ)··
Hundar (etc) (etc)

ହୁନରୀ - ବୈଦେ. ବଣ ପୁଂ ଓ ସ୍ତ୍ରୀ—(ଫା)—ହୁନ୍ଦରିଆ (ଦେଖ)—
Hunarī Hundariā (See)
(ହୁନରିଆ—ଅନ୍ୟରୂପ)

ହୁନାଁର୍—ପ୍ରାଦେ (ପାଟଣା, କଳାହାଣ୍ଡି ଭାଷା) ବ (ସଂ.ହୁଣ୍ଡ)—ହେଟାବାଘ—
Hunāñr Hyena wolf.

ହୁନୁ – ପ୍ରାଦେ (ପାଟଣା, କଳାହାଣ୍ଡି ଅଞ୍ଚଳ ଭାଷା) ବ—ମାଙ୍କଡ —
Hunu Monkey.

ହୁନ୍ଦର୍—ବୈଦେ. ବ—(ଫା. ହୁନର୍=ଦକ୍ଷତା, କଳା, କାରିଗର)—
Hundar ୧ । କୁଶଳତା; ଦକ୍ଷତା—1. Skill. ୨ । କୌଶଳ—2. Tact [ଉ—କାହିଁ ସେ ହୁନ୍ଦର ଯେ ହୁନ୍ଦର ବଳେ ପୁରୁଷ ହେବ ରମଣୀ । ରାଧାନାଥ. ଯଯାତି ।) ୩ । ଭେଲକି; ମାୟା; କୁହୁକ—3. Magic. [ଉ—ଜମେ ଜନ୍ତୁ ଜଳରେ ଅଦଭୂତ ହୁନ୍ଦରେ ପଶିଲି ତାକ ଉଦରେ । ମଧୁସୂଦନ· ନଦୀପ୍ରତି ।] ୪ । ଛଇ; ରଙ୍ଗ—4. Sportiveness. ୫ । ଆମୋଦପ୍ରମୋଦ—5. Amusements. ୬ । ସୁଅଙ୍ଗ—6. Farce. ୭ । ଜଗର; ଜିଦ—7. Importunity. ୮ । ଅଡ଼ମ୍ବର—8. Show. ୯ । ଚତୁରତା—9.
ହୁନର ହୁନର Cleverness.

ହୁନ୍ଦର କରିବା (କାଢ଼ିବା)—ଦେ· କ୍ରି—୧ । ସୁଅଙ୍ଗ ଲଗାଇବା—
Hundara karibā (kāṛhibā) To bring out a show; to make a farce. ୨ । କୁହୁକ ଦେଖାଇବା—2. To exhibit magical show. ୩ । କୌଶଳ
( ହୁନ୍ଦର ଲଗା[ଗ]ଇବା—ଅନ୍ୟରୂପ)
ଦେଖାଇବା—3. To show one's skill. ୪ । ଜିଦ ଧରିବା; ଜଗର କରିବା—4. To importune.
ହୁନର କରା हुनर दिखाना

ହୁନ୍ଦରିଆ—ଦେ. ବଣ ପୁଂ ଓ ସ୍ତ୍ରୀ—( ଫା. ହୁନର=ଦକ୍ଷ )—
Hundariā ୧ । ଛଇଲ—1. Sportive; fond of sport. ୨ । ସୁଅଙ୍ଗିଆ - 2. Showy; fond of show. ୩ । ଜଗରିଆ—3. Importunate. ୪ । କୌଶଳୀ; ଦକ୍ଷ—4. Skilful. ୫ । କୁହୁକିଆ—5. Skilful in magic.
[ହୁନ୍ଦରୀ, ହୁନ୍ଦରେଇ—ସ୍ତ୍ରୀ]
ଭାଁଡ हुनरमंद (ହୁନ୍ଦରି—ଅନ୍ୟରୂପ)

ହୁପ୍ – ବୈଦେ. ବ—(ଇଂ, ହୋପ୍)—୧ । ଆଶା—1. Hope.
Hup ୨ । ସାହସ; ହିମ୍ମତ୍—2. Courage; bravery. ୩ । (ଫା· ଖୁବ୍)—ହୋବ୍; ସ୍ମରଣ—3. Recollection; remembrance. ୪ । [ଇଂ. ହୁଫ୍]—ପଶୁମାନଙ୍କ ଖୁରା—Hoof of beasts
ହୋପ, ହୂପ होप

ହୁପା – ପ୍ରାଦେ (ଝଣ୍ଡଅଳ) ବଣ—୧ । ଅତି ସାହସୀ—1. Very.
Hupā (ppā) courageous. ୨ । ଅମାନିଆ—2. Disobedient.
ପ୍ରାଦେ (କଟକ) ବ—ମଇଁଷି ଦଳଙ୍କ ଚଳାମଲା ଯୋଗୁ ଭୂମିରେ ଯେଉଁ ଗହୃରିଆ ଗାତମାନ ପଡ଼ିଯାଏ—Holes made on the surface of the ground by the trampling of herds of domestic buffaloes.

ହୁବ୍—ବୈଦେ ବ (ଅ. ହୁବ୍, ହୁବ୍—ଅନୁରାଗ, ଉତ୍ସାହ)— । ହୋବ
Hub ସ୍ମରଣ; ଖିଆଲ—1 Recollection; memory; remembrance. ୨ । ବଳ; ହିମ୍ମତ୍; ଆତ୍ମପ୍ରତ୍ୟୟ—2. Courage; confidence in one's strength. (ଯଥା—ଏକଥା ତୁମ୍ଭଙ୍କୁ କହିବାକୁ ମୋର ହୁବ୍ ପଡ଼ିଲା ନାହିଁ ।)

ହୁବ୍ କରିବା—ଦେ. କ୍ରି—ସ୍ମରଣ କରିବା—To remember; to
Hub karibā स्मरण करना यादकरना recollect.

ହୁବ୍ ପଡ଼ିବା(ପାଇବା)—ଦେ. ବ—୧ । ସାହସର ଯଥେଷ୍ଟତା—
Hub paṛibā (pāibā) 1. Abundance of courage. ୨ । ଆତ୍ମ ପ୍ରତ୍ୟୟର ଉଦ୍ଭବ—2. Dawning of self-confidence.

ହୁବ୍ ହେବା—ଦେ. କ୍ରି—୧ । ସ୍ମୃତ ହେବା—1. To be remem-
Hub hebā bered. ୨ । ମନରୁ ପାସୋର ନ ଯିବା—2. Not to slip out from one's memory.
ମନେ ହୱା यादहोना

ହୁବ୍(ବେ)ହୁ—ବୈଦେ, ବଣ—( ଅ. ହୁବହୁ=ଅବିକଳ)—୧ ।
Hub (be)hu ଅବିକଳ; ତଦ୍ରୂପ—1. Exact copy of; exactly similiar. ୨ । ସବାଙ୍ଗରେ ସମାନ—2. Similar in all respects. ୩ । ଆଦର୍ଶାନୁରୂପ—3. Exactly corresponding to the model.
ହୁବହୁ हुबहु
[ହୁବ୍(ବେ)ହୁବ୍—ଅନ୍ୟରୂପ]

ବଣ—ଅବିକଳ ଅନୁରୂପ ନକଲ—Exact copy; exact reproduction. କ୍ରି· ବଣ—ଅବିକଳରୂପେ —In an exactly similar manner.

ହୁବୁକା—ଦେ. ବ—୧ । ଚମକିବା ( ଗୋପୀନାଥ ନନ୍ଦ )—1. Starting up. ୨ । ବୁଦୁକିବା (ଗୋପୀନାଥନନ୍ଦ)—2. Shying. ୩ । ଉପରକୁ ଡେଇଁବା,—3. Springing up.
Hubuka
चमक **चमक**

ହୁବୁକିବା—ଦେ. କ୍ରି—୧ । ଚମକିବା (ଗୋପୀନାଥ ନନ୍ଦ)—1. To start up. ୨ । ବୁଦୁକିବା (ଗୋପୀନାଥନନ୍ଦ) —2. To shy; to be startled. ୩ । ଉପରକୁ ଡେଇଁବା (ଗୋପୀନାଥ ନନ୍ଦ) —3. To spring up.
Hubukibā
चमकाना **चमकना**

ହୁ ବେ ଗେ—ପ୍ରାଦେ (ସମ୍ବଲପୁର) କ୍ରି ବଣ—୧ । ହଠାତ୍—1. All on a sudden. ୨ । ଅତି ଶୀଘ୍ର—2. Very soon. ୩ । ତତ୍କ୍ଷଣାତ—3. Immediately;all at once.
Hu bege

ହୁଭୁରିବା —ପ୍ରାଦେ (ପାଠଣା) କ୍ରି—ଗାଳିଦେବା— To call names.
Hubhuribā

ହୁମ୍—ଶ. ଅ—ସମ୍ମତି, ସ୍ମୃତି, ଅପାକୃତ, ଅର୍ଥପ୍ରଶ୍ନ, ଅଭ୍ୟନୁଜ୍ଞା, ତର୍କ, ବିତର୍କ ଆଦି ସ୍ଥଳରେ ଉଚ୍ଚାରିତ ଧ୍ୱନି—(Interjection) An exclamation uttered in consenting,recollecting,questioning,allowing, arguing and guessing. ପ୍ରାଦେ (ସମ୍ବଲପୁର) ବ—ହୋମ—Offering unto fire. ଦେ. ଅ—ହୁଁ (ଦେଖ)—Huñ (See). ପ୍ରାଦେ (ଗଡ଼ଜାତ; ଧ୍ୱନ୍ୟନୁକରଣ ) ଅ—କୌଣସି ଘଡ଼ କାମରେ ଲାଗିଥିବା ବ୍ୟକ୍ତିଙ୍କୁ ଉତ୍ସାହିତ କରିବା ପାଇଁ ଉଚ୍ଚାରିତ ଧ୍ୱନି—An exclamation uttered by a Persen to encourage others engaged in a laborious task. [ବି—ଏ ଶବ୍ଦ ଶୁଣିଲେ ସମସ୍ତେ ଜୋର୍ ଲଗାଇ କାମ କରନ୍ତି ।]
Hum

ହୁମ୍‌କି—ଦେ. ବ—୧ । ଭୟ ପ୍ରଦର୍ଶନ ( ଗୋପୀନାଥ ନନ୍ଦ )—1. Threat; frightening. ୨ । ତାଡ଼ନା—2. Abuse threatening abuse.
Hum-ki
हुम्‌कि **धमकी**

ହୁମ୍‌ଜୁଲି—ପ୍ରାଦେ. (ଗଡ଼ଜାତ) ବଣ—ସମାନସ୍ତର—Of the same or similar status or position.
Hum-juli

ହୁମ୍‌ଡାଇବା—ପ୍ରାଦେ ( ସମ୍ବଲପୁର ) କ୍ରି—ଝୁଣ୍ଟିବା—To trip while walking; to stumble.
Hum-rdaibā

ହୁମ୍‌ଡୁମ୍—ଦେ. ଅ—୧ । ବାଳକମାନେ ଦୌଡ଼ ଧାପଡ଼ ଓ ବଳ ଅବଶ କରି ଇତସ୍ତତଃ ହେବା ଦ୍ୱାରା ଉପୁଜାଇବା ଗୋଲମାଲ—1. Boisterous noise by restless and moving children. ୨।ଦୌଡ଼ଧାପଡ଼—2. Brisk running.
Hum dum
हुम्‌हुम् **धुम**

ହୁମ୍ ଫଟ୍ ସ୍ୱାହା—ସଂ, ମନ୍ତ୍ରାଂଶ—ଦେବତା ପୂଜା ସମୟରେ ଉଚ୍ଚାରିତ ମନ୍ତ୍ର ବିଶେଷ—A mystic formula used during worship.
Hum phaṭ swāhā

ହୁମ୍ ବା(ମା,ମେ)ରା ଭାଇ—ଗ୍ରା· ଅ—ହୁଁ ବରାଭାଇ (ଦେଖ)
Hu n ba(ma,me)rā bhāi Huñ barā bhāi (See).
[ହୁଁ ବ(ମ, ମେ)ର ଭାଇରେ(ଲ୍ଲେ)—ଅନ୍ୟରୂପ]

ହୁମ୍‌ରାବା—ପ୍ରାଦେ (ବାଲେଶ୍ୱର ପାଠଣା) କ୍ରି—(ଶିଶୁ) ସ୍ତନ୍ୟ ପାନ କରିବା ପାଇଁ ଆରମ୍ଭ କରିବା—To begin to suck (said of an infant).
Hum-rābā

ହୁମ୍ ହୁମ୍—ଗ୍ରା. ବଣ—ଅତିରିକ୍ତ ଆଗ୍ରହାନ୍ୱିତ; ଲାଳାୟିତ—Over eager; hankering
Hum hum लालायित **लालायित**

ହୁମ (ଇତ୍ୟାଦି)—ଗ୍ରା· ବ—ହୋମ ଇତ୍ୟାଦି (ଦେଖ)
Huma (etc) Homa etc (See)
ପ୍ରାଦେ (ସମ୍ବଲପୁର) ବ. ବାଳକାଙ୍କ କ୍ରୀଡ଼ା ବିଶେଷ; ଝୁମୋ (ଦେଖ)—A kind of game of girls.

ହୁମ ଯୁମ—ପ୍ରାଦେ (ବାଲେଶ୍ୱର) କ୍ରି—ଆଗୁଆ—Forward.
Huma Juma [ବି—ପର ଉପକାର କରିବାକୁ ଯେପରି ହୁମ୍ ଯୁମ୍, ଉପରେ ପଡ଼ି କଳିଆ କରିବାକୁ ସେହିପରି ମଜବୁତ୍ ଫକୀର ମୋହନ, ଛମାଣ, ଆଠଗୁଣ୍ଠ]

ହୁମା—ଦେ.ବ—ଗଞ୍ଜାମର ଗୋଟିଏ କ୍ଷୁଦ୍ର ଜମିଦାରି ଓ ନଗରର ନାମ—Name of a small zamindary and town in Ganjam.
Humā
**हुमा**
୨ । ସମ୍ବଲପୁର ସହରଠାରୁ ଆଠକୋଶ ଦୂରରେ ଅବସ୍ଥିତ ଓ ପ୍ରସିଦ୍ଧ ଶିବଲିଙ୍ଗଙ୍କ ମନ୍ଦିର ବିଶିଷ୍ଟ ଗ୍ରାମ—2. Name of a village 15 miles from Sambalpur. [ବି—ଏ ଗ୍ରାମ ଧାମା ଥାନାର ଇଲାକାରେ; ଏଠାରେ ମହାନଦୀ କୂଳକୁ ଲାଗି ଗୋଟିଏ ପ୍ରସିଦ୍ଧ ଶିବମନ୍ଦିର ଅଛି । ଏ ମନ୍ଦିରର ଗର୍ଭସ୍ଥ ଗୋଟିଏ ଭୂଗର୍ଭସ୍ଥ ସୁଡ଼ଙ୍ଗଦ୍ୱାରା ମହାନଦୀ ସଙ୍ଗେ ସଂପୃକ୍ତ ଓ ସେହିବାଟେ ମହାନଦୀ ପାଣି ଗର୍ଭଗୃହ ଭିତରକୁ ଯିବା ଆସିବା କରେ ଓ ଦେଉଳରୁ ପାଦୁକ ପାଣି, ଫୁଲ, ବେଲପତ୍ରୀ ନଈକୁ ବହି ଆସେ । ଉକ୍ତ ମନ୍ଦିରର ସୁଡ଼ଙ୍ଗ ସଲଗ୍ନ ମହାନଦୀରେ ଗୋଟିଏ ଗଣ୍ଡ (ସୁଗଭୀରଜଳ) ଅଛି । ସେ ଗଣ୍ଡରେ ବଡ଼ ବଡ଼ ମାଛ ଓ କଇଁଛ (କୂର୍ମ) ଅଛନ୍ତି । ଯାତ୍ରୀମାନେ କୂଳରେ ଥାଇ ପାଣିକୁ ଟିଠାଇ, ଖଇ ଆଦି ପକାଇଲେ ମାଛ ଓ କୂର୍ମମାନେ କୂଳ ନିକଟକୁ ଆସି ସେମାନ ଖାଆନ୍ତି । ମନ୍ଦିରର ଅନତିଦୂରରେ ହୁମା ଗ୍ରାମ ଅବସ୍ଥିତ । ଏ ଶିବଲିଙ୍ଗ ପାତାଳଫୁଟା ବା ପାତାଳି ଲିଙ୍ଗ ଅଟନ୍ତି । ] ବୈଦେ. ବ. (ଫା)—୧ । ହୁଁ ହାଁ ଚଢ଼େଇ (ଦେଖ)—1 Huñhāñ chardhei (See) ୨ । କଳ୍ପିତ ପକ୍ଷିବିଶେଷ—A bird of the folk-tales [ବି—ପ୍ରସିଦ୍ଧି ଅଛି ଯେ ଏ ବାଜ· ଖାଇ ବଞ୍ଚେ ଓ ଯାହାଙ୍କ ଉପରେ ଏ ପକ୍ଷୀର ଛାୟା ପଡ଼ୁଥାଏ ସେ ବାଦସାହା ହୁଏ—ହି. ଶ)

ହୁମା ଖଣ୍ଡ—ଦେ. ବ—ପଞ୍ଚଦଶ ଶତାବ୍ଦୀରେ ସମ୍ବଲପୁର ରାଜ୍ୟର ନାମ—The name of the state of Sambalpur in the 15th century A. D
Humā khaṇḍa

ହୁମାଗୁଞ୍ଜୁ—ପ୍ରାଦେ (ଖଡ଼ଅଲ) ବି—ଉଲୂକ ବିଶେଷ; ଏକ ପ୍ରକାର
Humāguñju ପେଚ୍ଚା—A species of owl. [ବ୍ୟ—ଏ ଉଲୂକଠାରୁ କଷ୍ଟିତ୍ ବଡ଼ ।]

ହୁମଡେଇଁ—ଦେ. ବି ଓ ବିଣ ସ୍ତ୍ରୀ [ଗାଳି]—ଯେଉଁ ସ୍ତ୍ରୀ ସର୍ବଦା ଘରେ ନ
Humadeiñ ରହି ଗ୍ରାମରେ ଘରଘରେ ତା ଘରେ ସର୍ବଦା ବୁଲିବାକୁ ସୁଖପାଏ—(a term of abuse) A woman who likes to loaf about in the houses of villagers.

ହୁମାୟୁନ୍—ବୈଦେ. ବି—(ନାମ)—ଦିଲ୍ଲୀର ଦ୍ୱିତୀୟ ମୋଗଲ୍ ସମ୍ରାଟ୍
Humāyun ବାବରଙ୍କ ପୁତ୍ର ଓ ଅକବରଙ୍କ ପିତା—The 2nd
हुमायुन of the Moghal emperors, son of Bābar
हुमायूँ and father of Akbar. [ବ୍ୟ—ଖ୍ରୀଷ୍ଟୀୟ ୧୫୩୦ ଅବ୍ଦରେ ବାବରଙ୍କ ମୃତ୍ୟୁପରେ ଦିଲ୍ଲୀର ସିଂହାସନ ଅଧିକାର କରି ୧୫୫୬ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହାଙ୍କର ଅନ୍ୟ ତିନି ଭାଇ ଭିନ୍ନ ଭିନ୍ନ ଦେଶ ଜାଗିର ସ୍ୱରୂପ ପାଇଥିଲେ । କଥିତ ଅଛି ଯେ ଏହାଙ୍କର ପିତାଙ୍କର ସାଂଘାତିକ ପୀଡ଼ିତ ଥିବା ଅବସ୍ଥାରେ ଭବିଷ୍ୟଦ୍‌ବକ୍ତାମାନେ କହିଥିଲେ ଯେ, ଦୁଇଜଣଙ୍କ ମଧ୍ୟରୁ ଜଣଙ୍କର ଜୀବନ ଉତ୍ସୃଷ୍ଟ ହେଲେ ଅନ୍ୟଜଣକ ବଞ୍ଚିବ । ଏପରି ଅବସ୍ଥାରେ ବାବର ନିଜ ଜୀବନକୁ ଉତ୍ସର୍ଗ କରି ପୁଅଙ୍କ ବଞ୍ଚିବା ପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କଲେ । ଫଳତଃ ହୁମାୟୁନ୍ ଆରୋଗ୍ୟ ଲାଭକଲେ । କିନ୍ତୁ ବାବର ସେହି ରୋଗରେ ପ୍ରାଣତ୍ୟାଗ କଲେ । ହୁମାୟୁନଙ୍କ ଅମଳରେ ବିହାରର ଜଣେ ଜାଗିରଦାର ସେର୍‌ସାହା ବିଦ୍ରୋହୀ ହୋଇ ଏହାଙ୍କୁ ୧୫୩୯ ସାଲରେ ପରାସ୍ତ କରିବାରୁ ଏ ପାରସ୍ୟକୁ ପଳାଇଗଲେ ଓ ସେରସାହା ୧୫୪୦ରୁ ୧୫୪୫ ପର୍ଯ୍ୟନ୍ତ ଦିଲ୍ଲୀ ସିଂହାସନ ଅଧିକାର କଲେ । ସେରସାହା ରାଜପୁତମାନଙ୍କ ସଙ୍ଗରେ ଯୁଦ୍ଧ କରି ହତ ହେବାରୁ ତାଙ୍କ ପୁତ୍ର ଇସ୍‌ଲମ୍ ବା ସେଲିମ୍ ସାହା ୧୫୪୫ରୁ ୧୫୫୨ ପର୍ଯ୍ୟନ୍ତ ରାଜତ୍ୱ କଲେ । ସେଲିମ୍ ସାହାଙ୍କ ପରେ ତାହାଙ୍କର ଭାଇ ମହମ୍ମଦ୍ ଅଦଲ୍‌ସାହା ୧୫୫୨ରେ ସିଂହାସନ ଅଧିରୋହଣ କଲେ । ଅଦଲ୍‌ସାହା ଅତ୍ୟନ୍ତ ବିଳାସପ୍ରିୟ ଥାଇ ରାଜକାର୍ଯ୍ୟ ହିମୁନାମକ ଜଣେ ନୀଚବଂଶୀୟ ହିନ୍ଦୁଙ୍କ ଉପରେ ନ୍ୟସ୍ତ କରିଥିଲେ । କେତେକ ଅଫଗାନ୍ ରାଜା ଓ ଅଦଲ୍‌ସାହାଙ୍କ ଶଳା ଇବ୍ରାହିମ୍ ଖାଁ ଅଦଲ୍‌ସାହାଙ୍କ ବିରୁଦ୍ଧରେ ବିଦ୍ରୋହୀ ହେଲେ ଓ ଦିଲ୍ଲୀ ଏବଂ ଆଗ୍ରା ଅଧିକାର କରି ଆପଣାକୁ ସିକନ୍ଦରସାହା ସମ୍ରାଟ୍ ବୋଲି ଘୋଷଣା କଲେ । ଏହି ସୁଯୋଗରେ ହୁମାୟୁନ୍ ପାରସ୍ୟ ରାଜାଙ୍କ ସାହାଯ୍ୟରେ ଗୁରୁତର ସୈନ୍ୟ ସଂଗ୍ରହ କରି ପଞ୍ଜାବ ଆକ୍ରମଣ କରି ୧୫୫୫ ସାଲରେ ସିକନ୍ଦର୍ ନାମକ ସ୍ଥାନରେ ତାଙ୍କୁ ପରାସ୍ତ କରି ଦିଲ୍ଲୀ ଓ ଆଗ୍ରା ଅଧିକାର କରି ସମ୍ରାଟ୍ ହେଲେ ଓ ୧୫୫୬ ସାଲରେ ପ୍ରାଣତ୍ୟାଗ କଲେ । ତାଙ୍କ ପରେ ତାଙ୍କର ୧୩ ବର୍ଷ ବୟସ୍କ କୁମାର ଅକବର ଦିଲ୍ଲୀର ସମ୍ରାଟ୍ ହେଲେ । ହୁମାୟୁନଙ୍କର ରାଜ୍ୟରୁ ବିତାଡ଼ିତ ହୋଇ ବିଦେଶରେ ବାସ କରୁଥିବା ଅବସ୍ଥାରେ ଅମରକୋଟ୍ ଠାରେ ଖ୍ରୀ ୧୫୪୨ ରେ ଅକବର ଜନ୍ମ ଗ୍ରହଣ କରିଥିଲେ ।]

ହୁ(ହା)ମାରିବା—ପ୍ରାଦେ (ଖଡ଼ଅଲ) କ୍ରି—ସ୍ନେହ କରିବା—
Hu(ha) māribā To love.

ହୁମୁରଡେ—ପ୍ରାଦେ (ପାଟଣା) କ୍ରି. ବିଣ—ଦଣ୍ଡେ; ମୁହୂର୍ତ୍ତମାତ୍ର—
Humurde One moment only.

ହୁମୁ ହୁମୁ ହେବା—ପ୍ରାଦେ (ଯାଜପୁର) କ୍ରି—ଅତ୍ୟନ୍ତ ରାଗାନ୍ୱିତ
Humu humu hebā ହେବା—To be very angry.

ହୁମୋ—ପ୍ରାଦେ (ସମ୍ବଲପୁର) ବି—ବାଳିକାମାନଙ୍କର ଏକ ପ୍ରକାର
Humo ଖେଳ—A kind of outdoor game amongst girls. [ ବ୍ୟ—ଏଥିରେ ବାଳିକା ଓ ଯୁବତୀମାନେ ଦୁଇ ଦଳରେ ବାଣ୍ଟି ହୋଇ ପରସ୍ପର ଠାରୁ ଖଣ୍ଡିଏ ଦୂର ଛଡ଼ା ଧାଡ଼ିବାନ୍ଧି ଠିଆ ହୁଅନ୍ତି । ପ୍ରଥମେ ଦଳେ ଗୀତ ବୋଲି ବୋଲି ଅପର ଦଳ ଆଡ଼କୁ ଅଗ୍ରସର ହୋଇ ପୁଣି ନିଜ ସ୍ଥାନକୁ ଲେଉଟି ଯାଆନ୍ତି । ଉପରେ ଅପର ଦଳ ଗୀତ ବୋଲି ବୋଲି ସେହିପରି କରନ୍ତି ।
ହୁମୋ ଗୀତ—
ହୁମୋ ନନ ନନ ଦଶ ବୋଇଲି ରେ
ହୁମୋ ନନ ନନ ଦଶ ବୋଇଲି ରେ,
ନ ଖାଇଁ ନ ପିଇଁ ଗୁଆ ପନିରେ
ନ ଯାଇ ଭୁମୁର ଦେଶ,
ବୋଇଲି ଯେ, ନ ଯାଇ ଭୁମୁର ଦେଶ ।
ହୁମୋର ଗଉଆ ବୋଇଲି ରେ ହୁମୋର ଗଉଆ
ମୋ ଗଉଆକୁ କେ ମାଇଲା
ରକତ ଢୋଳିଅରେ, ରକତ ଢୋଳିଅ ।]

ହୁମ୍ପା - ଦେ. ବିଣ—୧ । ଯେ ସମସ୍ତଙ୍କୁ ଠେଲି କରି କଥା କହେ;
Humpā ଅଗବୋଲ (ଗୋପୀନାଥ ନନ୍ଦ)—1. Forward
आगबोला (person).. ୨ । ଯାହାଠାରେ ଶିଷ୍ଟାଚାର ଓ ଭଦ୍ରତା
अलगटेंटा ନାହିଁ (ଗୋପୀନାଥ ନନ୍ଦ)—2. Devoid of manners.

ହୁର୍‌କୁଣ୍ଡିବା—ପ୍ରାଦେ (ସମ୍ବଲପୁର) କ୍ରି—ମୁଣ୍ଡିଆ ମାରିବା; ମୁଣ୍ଡଦ୍ୱାରା
Hur-kuṇḍibā ଭୁଷିବା—To butt with the head; to ram.

ହୁର୍‌କୁଲ୍‌ବା—ପ୍ରାଦେ (ଖଡ଼ଅଲ) କ୍ରି—ଗୁଞ୍ଜିବା—
Hur-kul-bā To thrust a thing into other things.

ହୁର୍‌ଗୁନିବା—ପ୍ରାଦେ (ସମ୍ବଲପୁର) କ୍ରି—ଚିନ୍ତା କରିବା; ଝୁରିବା—
Hur gunibā To think; to pine after.

ହୁର୍(ରୁ)ଜୁର୍—ଦେ. ବି—୧। ଅତ୍ୟାଚାର—1. Oppression. ୨।
Hur (ru) jur ଲୁଟପାଟ—2. Looting; plundering;
लुटपाट depredation. ୩ । ସର୍ବନାଶ ଓ ଧ୍ୱଂସ ଘଟାଇବା—
लूटखसोट 3. Devastating.

ହୁରୁ(ରୁ) ଜୁରୁ(ରୁ) କରିବା—ଦେ. କି—୧ । ଅତ୍ୟାଚାର କରିବା—1.
Hur(ru) jur(ru) kariba To oppress. ୨ । ଲୁଟପାଟ
লুটপাট করা করିବା—2. To plunder. ୩ । ସର୍ବନାଶ ଓ
लूटखसोट करना ଧ୍ୱଂସ କରିବା—3. To devastate; to depredate

ହୁର(ରୁ)ଜୁରିଆ ଦେ. ବଣ ପୁଂ—୧ । ଅତ୍ୟାଚାରୀ—1. Oppresive
Hur(ru)juria ୨ । ଲୁଟପାଟକାରୀ—2. Plundering.
[ହୁର(ରୁ)ଜୁରେଇ—ସ୍ତ୍ରୀ] ୩ । ଧ୍ୱଂସକାରୀ—
অত্যাচারী लूटनेखसोटनेवाला 3. Depredatory devastating.

ହୁର୍ (ରୁ) ଦା(ଦୁ) ଙ୍ଗ(ଙ୍ଗା)—ଦେ. ବଣ ପୁଂ—୧ । ଅସ୍ଥିର (ବ୍ୟକ୍ତି)
Hur(ru) da(du)ng(nga) 1. Restless. ୨ । ହୃଷ୍ଟପୁଷ୍ଟ;
ଓ ସବଳ—2. Stout and strong. ୩ । ଡେଙ୍ଗା
3. Tall. ୪ । ଅଖାଡୁଆ; ହଠୀ ଅବିଚାରକ—
4. Foolhardy; rash. ୫ । ଦୁଷ୍ଟ—5. Wicked.
হুড়দঙ্গা हुडदंगा

ହୁର୍(ରୁ)ମତ୍—ବୈଦେ. ବ (ଅ)—୧ । ଇଜ୍ଜତ, ମହତ; ସମ୍ମାନ—
Hur(ru)mat 1. Dignity; honour; respect. ୨ ।
হুরমত हुरमत ସତୀତ୍ୱ—2. Chastity.

ହୁରମତ୍ ଦାର୍—ବୈଦେ. ବଣ (ଫା)—ହୁରମତିଆ (ଦେଖ)—
Hur-mat-dar Hurmatia (See)

ହୁର୍ମତ ଦାବୀ—ବୈଦେ. ବ (ଫାରସୀ)—ଇଜ୍ଜତ ଦାବୀ; ମାନହାନି
Hur-mat dabi ପାଇଁ ଦାବୀ—Claim of damage for
ইজ্জৎদাবী इज्जतदावी loss of honour.

ହୁର୍ମତ୍ ଦାବୀ ମକଦମା—ବୈଦେ. ବ (ଫାରସୀ)—ନଷ୍ଟ ସମ୍ମାନର
Hur-mat dabi makadama କ୍ଷତିପୂରଣାର୍ଥ ଦାବୀର
କରାଯିବା ମକଦମା—Case or suit claiming damages for loss of honour; defamation suit.
ইজ্জৎ দাবী মোকদ্দমা हुरमतदावीमुकदमा

ହୁର୍ମତ୍ ନେବା (ମାରିବା)—ଦେ. କି—୧ । ଇଜ୍ଜତ୍ ନେବା; ସମ୍ମାନ
Hur-mat neba (mariba) ନାଶ କରିବା—1. To dishonour a person; to disgrace. ୨ । ବଳପୂର୍ବକ
ସ୍ତ୍ରୀର ସତୀତ୍ୱ ନାଶ କରିବା—2. To deflour a lady, to commit rape.
ইজ্জৎলেওয়া हुरमतलेना

ହୁର୍ମତ୍ ରଖିବା—ଦେ. କି—ସମ୍ମାନ ବଞ୍ଚାଇ ରଖିବା; ବେଇଜ୍ଜତରୁ
Hur-mat rakhiba ରକ୍ଷା କରିବା—To save a person from disgrace or dishonour.
ইজ্জৎরাখা हुरमतरखना

ହୁର୍ମତି—ବୈଦେ. ବଣ (ପୁଂ ଓ ସ୍ତ୍ରୀ, ଫା)—ହୁରମତିଆ (ଦେଖ)—
Hur-mati Hur-matia (See)

ହୁର୍ମତିଆ—ଦେ. ବଣ—ହୁରମତ ଦାର୍; ସମ୍ଭ୍ରାନ୍ତ; ମାନ୍ୟ—
Hur-matia Respectable; honourable.
(ହୁରୁମତେଇ—ସ୍ତ୍ରୀ)
ইজ্জৎদার हुरमतदार

ହୁର୍ମା(ଇତ୍ୟାଦି)—ଦେ. ବଣ—ହୁରୁମା (ଇତ୍ୟାଦି) (ଦେଖ)—
Hur-ma (etc) Huruma etc. (See)

ହୁର୍ ମୁଖିଆ—ପ୍ରାଦେ. (ବାଲେଶ୍ୱର ପାଟଣା) ବଣ. ପୁଂ—୧ । ଅବାଧ୍ୟ;
Hur-mukhia ଉଦାସୀନ—1. Indifferent
[ହୁରମୁଖିଏନ—ସ୍ତ୍ରୀ] ୨ । ଯେ ଅଗପଛ ନ ଭାଳିକରି କାର୍ଯ୍ୟକରେ
2. Acting without calculation.

ହୁର୍ରେ—ବୈଦେ. ଅ(ଇଂ)—ଆନନ୍ଦସୂଚକ ଧ୍ୱନି—(Interjection
Hur-re Hurrah! an exclamation of joy.
হুররে हुर्रे

ହୁର୍ସିବା—ପ୍ରାଦେ. (ସମ୍ବଲପୁର) କି—ହୁଙ୍ଗିଦେବା (ଦେଖ)—
Hur-siba Hungideba (See)
[ହୁରସୁଲିବା—ଅନ୍ୟରୂପ]

ହୁର୍ହୁଟ୍—ପ୍ରାଦେ (ବାଲେଶ୍ୱର) ଅ (ଧ୍ୱନ୍ୟନୁକରଣ)—ଡକାଇତମାନେ
Hur-hut ଚୋରୀକରି ପଳାଇଯିବା ବେଳେ ଲୋକଙ୍କୁ ଭୟ
ଦେଖାଇବାପାଇଁ ଯେଉଁ 'ହୁରହୁଟ୍' ଧ୍ୱନି କରନ୍ତି—A loud sound made by dacoits while decamping after commission of the offence.

ହୁର୍ ହୁରିଆ—ପ୍ରାଦେ (ଗଡ଼ଜାତ) ବଣ—୧ । ଚପଳ ସ୍ୱଭାବସମ୍ପନ୍ନ—
Hur-huria 1. Qick-minded. ୨ । ଦୁଷ୍ଟ—
2. Wicked. ୩ । ବାଳସୁଲଭ ଲଘୁଚିତ୍ତ—3. Childish.

ହୁରବ—ସଂ. ବ (ହୁ=ଧ୍ୱନି ଅଟେ ରବ ଯାହାର)—ଶୃଗାଳ—
Huraba Jackal.

ହୁରା—ଗ୍ରା. ବ - (ଇତର ବ୍ୟବହୃତ)—୧ । ହୁଡା (ଦେଖ)—
Hura 1. Hurda (See) ୨ । ହୁଲା (ଦେଖ)—
2. Hula (See)

ହୁରା ମାରିବା—ପ୍ରାଦେ. (ସମ୍ବଲପୁର) କି—ମୁନିଆଁ ବାଡ଼ିଏଁ ଖୋଞ୍ଚି
Hura mariba ଖେଞ୍ଚିବା—To poke with a pointed rod.

ହୁରି—ଦେ. ବ—(ସଂ. ହୋଲା; ହୋଲକା)—୧ । ହୋଲିକା (ଦେଖ
Huri 1. Holaka (See). ୨ । ହୃଷୀକେଶଙ୍କର ଡାକନାମ—
হোলী 2. Name for calling Hrushikesa. ବୈଦେ.
हली ବ—୧ । (ଫା)—ହୁଲର;ଉଚ୍ଚୈଃସ୍ୱରରେ ଡାକଚିତ୍କାର—
1. Hallooing; hue and cry. [ଉ—ମୃଗଙ୍କୁ ବ୍ୟାଧ
ବୋଲି ଡର, ଘଉଳା ଗୋଠୀ ମଧ୍ୟେ ହୁରି—ଭୂପତି ପ୍ରେମ-
ପଞ୍ଚାମୃତ] ବୈଦେ. ବ(ଅ)—ସ୍ୱର୍ଗୀୟ ଅପ୍ସରା—2. Houri; fairies of heaven of Mahomedans.

ହୁରିଆ—ଦେ. ବଣ. ପୁଂ—୧ । ଯେ ଉଚ୍ଚୈଃସ୍ୱରରେ ହୁଲର କରେ—
Huria 1. Hallooing. [ଉ—କହୁଚ ବୋଇଲେ ଭୁ
ଅନ୍ତି ତ ହୁରିଆ—କୃଷ୍ଣସିଂହ ମହାଭାରତ. ସଭା] ୨ । ଲୁଟି-
ଅଗ୍ର—2. Dacoit. ୩ । ରାଜାଙ୍କ ଦରବାରରେ ଜଗିଥିବା
ପାଇକ—3. Palace guard. [ଉ—ଯେସନେକ
ହୁରିଆ ଠୁଲ, ବାଇ ଯାଉଥିଛ ବୋଲି କଲେ ସେ ଗୋଳ—
ପ୍ରାଚୀ. ନଳଚରିତ] ପ୍ରାଦେ—(ଗଡ଼ଜାତ ଓ ସମ୍ବଲପୁର)

ବି—ପରିହାସ—Jesting. ବିଣ—ପରିହାସୀ; ଇଙ୍ଗିତ-ଅଳ—(relative) Fit to jest or cut jokes with.
ହାଲ୍ୟେ ठट्ठाबाज
ହୁରିଆ କରିବା—ପ୍ରାଦେ. (ସମ୍ବଲପୁର) କ୍ରି—ଥଟ୍ଟା ପରିହାସ କରିବା—
Huriā kariba To jest; to cut jokes.
ହୁରି କରିବା [ଛାଡ଼ିବା, ପାଡ଼ିବା, ପକା(କେ)ଇବା]—ଦେ. କ୍ରି—
Huri kariba [chhārdibā, pārdibā, pakā(ke)ibā]
ଉଚ୍ଚୈଃସ୍ୱରରେ ଚିତ୍କାର କରିବା—To halloo; to raise a hue and cry. [ଦ୍ର—'ଘୁଷ ଘୁଷ' ହୁରି ଘଟନ୍ତି ସରବେ ସୁଖନୃତେ ଉରସ୍ଥାୟୀ—ନନ୍ଦକିଶୋର ଶର୍ମ୍ମା]
[ହୁରି ଉଠିବା (ପଡ଼ିବା)—ବିଶେଷ୍ୟରୂପ]
ହୁଲିକବা, চিৎকার করা हल्ला मचाना
ହୁରି ଖେଳ—ଦେ. ବି—ହୋଲି ଖେଳ (ଦେଖ)—
Huri khela Holi khela (See)
(ହୁରିଖେଳିବା—କ୍ରି)
ହୁରି ଗୀତ—ଦେ. ବି—ହୋଲି ଗୀତ [ଦେଖ]
Huri gita Holi gitā (See).
ହୁରିଜୁରି—ଦେ. ବି—ଜବରଦସ୍ତି ଗ୍ରହଣ—
Huri juri Coercion; forcible taking
ହୁରିବା—ପ୍ରାଦେ (ଗଡ଼ଜାତ ଓ ପାଟଣା) କ୍ରି—ଗାଳି ଦେବା—
Huribā To rebuke; to call names.
୨। (ସମ୍ବଲପୁର) କ୍ରି—ଗାତଅନ୍ଦରେ ବାଉଁଶ ପୂରାଇବା—2. To thrust a bamboo into a hole.
ହୁରି ହଟା—ଦେ. ବି—(ସହଚର ଶବ୍ଦ)—ହରିହଟା ୨ (ଦେଖ)—
Huri hatā Hari hatā 2 (See
ହୁରି ହା(ହୁ)ଲର—ଦେ. ବି (ସହଚର ଶବ୍ଦ)—ଗୋଳମାଳ; ଉଚ୍ଚୈଃସ୍ୱରରେ ଡାକ ଓ ଘୋଷା—
Huri hā(hu)lara
ହୋହା हो-हल्ला Uproar; great row.
[ଦ୍ର—ଗ୍ରାମଯାକ ହୁରି ହାଲର ପଡ଼ିଗଲା। ଫକୀରମୋହନ. ଛମାଣ-ଆଠଗୁଣ୍ଠ।]
ହୁରୁକୁ—ଦେ. ବି—ମିଛ କଥାରେ ଭୟ ଜନ୍ମାଇବା—Frightening on false pretexts.
Huruku
মিথ্যা ভয় झूठा भय
ହୁରୁ(ରୁ)ଗୁନିବା—ପ୍ରାଦେ. [ସମ୍ବଲପୁର] କ୍ରି—ଝୁରିବା—
Huru(r)gunibā To pine after some thing.
ହୁରୁଟ୍ଟକ—ସଂ. ବି—ହାତୀର ଅଙ୍କୁଶ (ହେ. ଶ)—
Huruṭṭaka An elephant's goad.
ହୁରୁଡ଼(ଡୁ) ହୁରୁଡ଼(ଡୁ) ବେଙ୍ଗା—ଦେ. ଅ—ହାବୁଡ଼ା ଖେଳିବା ସମୟରେ କେଳାମାନଙ୍କ ବୋଲିବା ଗୀତର ଘୋଷା—Refrain of songs or couplets sung by the 'Kelās' while playing 'Hāburdā'.
Hururd(rdu)hururd(rdu)bengā
[ଦ୍ର—ହୁରୁଡୁ ହୁରୁଡୁ ବେଙ୍ଗା, ତୋ ଗାଈକି ଲେଙ୍ଗା, ଖାଟିବ ଠେଙ୍ଗା ବେଙ୍ଗା—କେଳା ଗୀତ।]
ହୁରୁଡ଼ା—ଦେ. ବି—୧। ହୁରୁଡ଼ାଇବା କର୍ମ—1. The act of 'Hururdaibā'. ୨। ଶବ୍ଦ ଓ ଅସ୍ଫାଳନପୂର୍ବକ ଜନ୍ତୁ ଆଦିଙ୍କୁ ତଡ଼ିବା—2. Scaring away of animals by sounds etc.
Hururdā
ହোহা করা हुररा
ବିଣ—୧। ପୂର୍ବରୁ ଜନ୍ତୁମାନଙ୍କୁ ହୁରୁଡ଼ାଇବା ଯୋଗୁଁ ଭୀତ ଓ ଚତୁର ହୋଇଥିବା (ଜନ୍ତୁ)—1. (animals which have become) Timid and wary, having once been scared away. [ଦ୍ର—ପୋଖରୀରେ ଥରେ ଜାଲ ପଡ଼ିଥିଲେ ସେ ପୋଖରୀରେ ବାକି ରହି ଯାଇଥିବା ମାଛଯାକ ହୁରୁଡ଼ା ହୋଇ ଯାଆନ୍ତି।
ଏକାଧିକଥର ଶିକାରୀର ବନ୍ଧୁକର ଅବାଜ୍ ଶୁଣି ବନର ଜନ୍ତୁମାନେ ହୁରୁଡ଼ା ହୋଇ ଯା ଅନ୍ତି।] ୨। ଚମକା; ଯେଉଁ ଜନ୍ତୁ ସାମାନ୍ୟ କଥାରେ ଚମକେ—2. Shying (animal); likely to bolt. (ଯଥା—ହୁରୁଡ଼ା ଘୋଡ଼ା, ହୁରୁଡ଼ା ବଳଦ।) ପ୍ରାଦେ (ଗଡ଼ଜାତ) ବି—ଗାଳି—Abusive language. ପ୍ରାଦେ (ଗଡ଼ଜାତ) ବି—ଜଙ୍ଗଲ ପାଖରେ ଫସଲ (ଗୁଣ୍ଡି, ବାଇଗଣ, ବିରିଡ଼ି ଆଦି) ବିଲରେ ବାଘ, ମିରିଗ ଆଦି ଜନ୍ତୁଙ୍କୁ ରାତିରେ ହୁରୁଡ଼ାଇବା କାମରେ ଲୋକଙ୍କ ହାଣ୍ଡିରେ ଚୂନ ବୋଳ ବା ମାଣ ପାଳ ଆଦିରେ ମଣିଷର ମୁଣ୍ଡ ଓ ମର୍ଦ୍ଦ ତିଆରି କରି କିଆରି ମଝିରେ ବାଉଁଶ ଉପରେ ଉଚ୍ଚ କରି ରଖାଯିବା ପଦାର୍ଥ—2. A figure-head kept in corn fields to scare away animals in the night; scarecrow. [ଦ୍ର—ଜନ୍ତୁମାନେ ରାତିରେ ଏହାକୁ ମନୁଷ୍ୟ ଭ୍ରମ କରି ଶସ୍ୟ ଖେତକୁ ଆସନ୍ତି ନାହିଁ।]

ହୁରୁଡ଼ା(ଡ଼େ)ଇବା—ଦେ. କ୍ରି (ସଂ. ହେଡ୍ ଧାତୁ=ଗତି, ଅନାଦର କରିବା; ହୃଡ୍ ଧାତୁ=ଗତି କରିବା; ହୁରୁଡ଼ିବାର ଣିଜନ୍ତ ରୂପ)—ଜନ୍ତୁମାନଙ୍କୁ ଶବ୍ଦ କରି ବା ଭୟ ଦେଖାଇ ତଡ଼ିବା; ଘଉଡ଼ିବା—To scare or drive away animals by shouting and chasing.
Hururdā(rde)ibā
খেদান हुरराना
ହୁରୁଡ଼ିବା—ଦେ କ୍ରି (ସଂ. ହୃଡ୍ ଧାତୁ=ଗତି କରିବା)—୧। ଉଚ୍ଚ ଧ୍ୱନି ଶୁଣି ଭୟ ପାଇ ପଳାଇବା—1. To flee away on hearing a loud sound.
Hururdibā
চমকে পালান हुरराना
୨। (ଘୋଡ଼ା, ବଳଦ ଆଦି) ଚମକିବା; ଚମକି କରି ଦଉଡ଼ିବା—2. To shy; to bolt. ପ୍ରାଦେ (ଗଡ଼ଜାତ) କ୍ରି—୧। ଗାଳି ଦେବା—1. To abuse; to call bad names. ୨। ତଡ଼ିବା—2. To drive away.

ହୁରୁଦ—ଗ୍ରା. ବି (ସଂ. ହୃଦୟର ଅଶୁଦ୍ଧ ଉଚ୍ଚାରଣ)—ହୃଦୟ (ଦେଖ)
Huruda Hṛudaya (See)
(ହୁରୁଦସ୍ତ—ଅଳ୍ପାର୍ଥରୂପ) হৃদি हिरदय
ହୁରୁଦବା—ପ୍ରାଦେ (ବଲାଙ୍ଗିର ପାଟଣା) କ୍ରି—କଳହ କରିବା—
Hurudibā To quarr-l.

ହୁରୁପୁଣିବା—ଗ୍ରାଦେ (ଘାଟଶା) କ୍ରି—ଚିନ୍ତା କରିବା—
Hurupuniba To think.

ହୁରୁମ୍ —ଗ୍ରାଦେ (ସମ୍ବଲପୁର) ବ—ହୁଡ଼ୁମ୍ବ (ଦେଖ)
Hurum Hurdumba (See)

ହୁରୁମ—ଗ୍ରାଦେ (ଉତ୍ତରଖଣ୍ଡ, ଦ ହୁଡୁମ୍ବ) ବ—୧ । ଭଜାଚାଉଳ—1.
Huruma Fried rice. ୨ । ଲିଆ—2. Fried paddy.
୩ । ଧଳା ଷଡ଼କରେ ପକାଯିବା ମାଟିମିଶା କଙ୍କର—
3. Gravels mixed with soil used in spreading metal on roads

ହୁରୁମା—ଦେ. ବି. ପୁଂ—୧ । କାଣ୍ଡଜ୍ଞାନଶୂନ୍ୟ; ଅଶାନ୍ତ—1.
Huruma Rash; foolhardy. ୨ । ଦୁଷ୍ଟ—2. Wicked,
(ହୁରୁମୀ—ସ୍ତ୍ରୀ) wanton. ୩ । ଚଞ୍ଚଳଚିତ୍ତ; ଅସ୍ଥିର—3 Restless.
ଦେଖ ହୁହ

ହୁରୁମା ପଣ—ଦେ. ବ—୧ । ଅସ୍ଥିରତା—1. Restlessness. ୨
Huruma pana ଦୁଷ୍ଟପଣ—2. Wickedness. ୩ ।
[ହୁରୁମା ପଣିଅ(ଅ)—ଅନ୍ୟରୂପ] ଅଶାନ୍ତପଣ—3. Foolhardiness; rashness.
অস্থিরতা হুরুপন

ହୁରୁମାସ—ଦେ. ବ—କାର୍ଯ୍ୟକରଣାର୍ଥ ଆଦେଶ; ଫରମାସ [ଗୋପୀନାଥ
Hurumāsa ନନ୍ଦ]— Order for doing some work.
[ହୁରୁମାସ ଫରମାସ—ଅନ୍ୟରୂପ]

ହୁଲ୍‌କର—ଗ୍ରାଦେ—[କେନ୍ଦୁଝର] ବ—ଗଣ୍ଡଗୋଳ; ହୁଲର—
Hul-kar Ado; hue and cry.

ହୁଲ୍‌କାର୍—ଦେ. ବ—ହୋଲ୍‌କାର (ଦେଖ)
Hulkār Holkāra (See)

ହୁଲ୍‌ଗୁଜିଆ—ଗ୍ରାଦେ (ଉତ୍ତରଖଣ୍ଡ) ବିଣ—୧ । ଅଧୀର—1. Impa-
Hul-gujiā tient. ୨ । ସନ୍ଦେହୀ—2. Doubtful; suspicious.

ହୁଲ୍‌ଗୁଲା—ଗ୍ରାଦେ (ଘାଟଶା ଓ ବଣ—ଢିଲା; ହୁଗୁଲା—
Hul-gulā Slack; loose.

ହୁଲ୍‌ହୁଲା—ଗ୍ରାଦେ (ଗଡ଼ଜାତ) ବ—ଏକ ପ୍ରକାର ହୁଁ ହାଁ ଚଢ଼େଇ—
Hul-hulā A species of 'huñ hāñ' bird.

ହୁଲ(ଲ୍)ସ୍ଥୁଲ(ଲ୍)—ଦେ. ବ ଓ ବିଣ—ହୁଲସ୍ଥୁଲ (ଦେଖ)
Hul(l)sthul(l) Hula sthūla (See). [ଉ—
ଲଙ୍କାରେ ଭାରି ହୁଲ୍ ସ୍ଥୁଲ୍ ପଡଗଲା । ମାଳକଣ୍ଡ.
ପିଲଙ୍କ ରାମାୟଣ]

ହୁଲ୍(ଧାତୁ)—ସଂ.—ଗତି କରିବା—To move.
Hul (root)

ହୁଳ—ଦେ. ବ. (ସଂ. ଶୂଳ)—୧ । ସୂକ୍ଷ୍ମାଗ୍ରଭାଗ; ମୁନ—1. A fine
Hula point. ୨ । ବିରୁଡ଼ି, ମହୁମାଛି ଓ ବିଛା ଆଦିଙ୍କ
হুল নোক ନାହୁଡ଼—2. Sting of bees, wasps and
হুল ফুঁৰ scorpions. ୩ । ଧନୁର ଅଗ୍ରଭାଗ—3. The
হুল নোক end of a bow. [ଉ—ଧନୁ ହୁଳେ ଟେକିଣ
ତାହାକୁ ଅଣିଲେ. କୃଷ୍ଣସିଂହ. ମହାଭାରତ ଆଦି] ୪ ।
ଶରର ଅଗ୍ରଭାଗ—4. The barb of an arrow.

ହୁଳ—ଗ୍ରାଦେ (ସିଂହଭୂମି) ବ—କୁଆପଥର—Hailstone.
Hula

ହୁଳକୁ—ଗ୍ରାଦେ (ଗଡ଼ଜାତ) ବ—(ସଂ. ହୋଲକା)—ଦୋଳ
Hulaku ସମୟରେ ଗଡଜାତର କେତେକ ନୀଚ ଶ୍ରେଣୀର
ଲୋକଙ୍କର (ପୁରୁଷ—ସ୍ତ୍ରୀ, ଯୁବ—ଯୁବତୀ) ମିଶି ପରସ୍ପର
ଅସଭ୍ୟ ଭାଷାରେ ଗାଳି ଦିଆଦେଇ ହେବା— Calling vulgar names mutually among the low caste people in the Orissa States during Dola festival. [ଉ—ଏମାନଙ୍କର ହୁଳାଖ ଯେ
ନ କଲେ ସେମାନଙ୍କୁ ବାଘ ଖାଇଯିବ ।]

ହୁଳକୁ ଯିବା—ଗ୍ରାଦେ (ବୌଦ୍ଧ) କ୍ରି—ଫାଲ୍‌ଗୁନ ମାସରେ ଅଶ୍ଳୀଳ ଗୀତ
Hulaku jibā ଗାଇ ବୁଲିବା—To sing indecent Songs during Dola.

ହୁଳ ଫୁଟା(ଟେ)ଇବା—ଦେ. କ୍ରି—୧ । ନାହୁଡ଼ରେ ମାରିବା—
Hula phutā(te)ibā 1. To sting. ୨ । ଶରର
হুলফুটান সুঁগাবোনা ତୀକ୍ଷ୍ଣାଗ୍ରଦ୍ୱାରା ଭେଦ କରିବା—2. To pierce with the fine point of an arrow.

ହୁଳର୍—ବୈଦେ. ବ—(ଅ, ହୁଲ. ଇଂରାଜୀ ହାଲ୍ଲୋ)—୧ । ଚିତ୍କାର;
Hular ହୁରି; ଉଚ୍ଚଧ୍ୱନି—1. Halloo; loud sound.
হুলাহুলি হোহল্লা; হুল্লড ୨ । କୋଳାହଳ; ଗୋଳ—
2. Noise; uproar. ୩ । ବିପନ୍ନର ଆର୍ତ୍ତସ୍ୱର—
3. The loud sound of a person in distress.

ହୁଳର୍ କରିବା(ଛାଡ଼ିବା)—ଦେ. କ୍ରି—ଉଚ୍ଚୈଃସ୍ୱରରେ ଚିତ୍କାର
Hular karibā(chhārdibā କରିବା; ହୁରି ଛାଡ଼ିବା—
হুলাহুলি করা হুল্লড়করনা To halloo; to raise a
[ହୁଳର୍ ପକା(କେ)ଇବା - ଅନ୍ୟରୂପ] hue and cry

ହୁଳରିଆ—ଦେ. ବିଣ. ପୁଂ—ହୁରିଆ; ଯେ ଉଚ୍ଚଧ୍ୱନି କରେ—
Hularia Hallooing; raising loud cry; raising
চৌচানে হুল্লডবাজ (ହୁଳରୀ,ହୁଳରେଇ—ସ୍ତ୍ରୀ)a hue and cry

ହୁଳସ୍ଥୁଳ—ଦେ.ବ (ବଙ୍ଗଳାରୁ ଅନୁକୃତ; ଦ୍ର, ହୁଲ ହୁଲୀ ଓ ସ୍ଥୁଲ)—
Hula sthūla ୧ । କୋଳାହଳ; ହୁଳର; ଗଣ୍ଡଗୋଳ
হুলস্থুল হুল্লড ଗୋଳ; ହଟ୍ଟଗୋଳ; ଗୋଳମାଳ —
1. A great stir; ado; row. ୨ । ଗଣ୍ଡଗୋଳମୟ
ମାରପିଟ—2. Rowdyism. ୩ । ଆଡ଼ମ୍ବର—
3. Grandeour. ବିଣ—ଗଣ୍ଡଗୋଳ ପୂର୍ଣ୍ଣ—
Noisy; full of ado.

ହୁଳସ୍ଥୁଳ କାଣ୍ଡ(ବ୍ୟାପାର)—ଦେ. ବ—(ବଙ୍ଗଳାରୁ ଅନୁକୃତ)—
Hula sthūla kānd (byāpāra) ୧ । ହୁଲୁସ୍ଥୁଲକାଣ୍ଡ—1.
হুলস্থুলকাণ্ড An affair of much ado; a great row.
ধুমধাম ୨ । ମହା ଆଡ଼ମ୍ବର ପୂର୍ଣ୍ଣ କାର୍ଯ୍ୟ—2. A grand affair.

ହୁଳହୁଳା—ଦେ. ବ—(ସଂ. ହୁଳହୁଳୀ)—ହୁଳହୁଳୀ (ଦେଖ)—
Hulahulā Hulahuli (See).

ହୁଲହୁଲ—ଦେ. ବି—ହାଲହୁଳି (ଦେଖ)—
Hula huli Hālahuli (See).

ହୁଲହୁଲି—ପ୍ରାଦେ ( ଖଡ଼ଆଳ ) ବି—ମନ୍ଦ ମନ୍ଦ ପବନ—Gentle
Hulahuli breeze. ଅ—ସ୍ତ୍ରୀ ଲୋକମାନଙ୍କର ମଙ୍ଗଳ କାର୍ଯ୍ୟରେ କରିବା ହୁଳହୁଳି ଶବ୍ଦ—Sound of 'Hula huli' made by the females during social ceremonies.

ହୁଲହୁଲିଆ—ପ୍ରାଦେ ( ଖଡ଼ଆଳ ) ବି—ଶାକ ଗୁଳ୍ମ ବିଶେଷ—A
Hulahuliā species of potherb. [ବ୍ର—ଲୋକମାନେ ଏହାର ଶାଗ ଖାଆନ୍ତି ।]

ହୁଳହୁଳୀ—ସଂ. ବି—( ଧ୍ୱନ୍ୟନୁକରଣ )—ଶୁଭକାର୍ଯ୍ୟ ଉପଲକ୍ଷରେ
Huḷahuḷī ସ୍ତ୍ରୀମାନଙ୍କ ଜିହ୍ୱାଦ୍ୱାରା କୃତ ମୁଖବାଦ୍ୟ; ଉଲୁଧ୍ୱନି—A sound made by women wagging the tongue inside the mouth while emitting a shrill sound. [ବ୍ର—ଏମନ୍ତ ଦେଶରେ ଆନନ୍ଦ ଉତ୍ସବରେ ପୁରୁଷମାନେ 'ହରିବୋଲ' ଓ ସ୍ତ୍ରୀମାନେ ହୁଳହୁଳୀ ଦିଅନ୍ତି ।] ଦେ. ବି—ଦେବୀ ବିଶେଷ—Name of a popular Goddess. [ବ୍ର—ଡାକେଣୀ, ଯୋଗଣୀ ଯେ ରଙ୍କିଣୀ ହୁଳହୁଳୀ, ଏ ସବୁ ଦେବୀଙ୍କି ଯେ ଯୋଗିଣ ହୋଇ ଗେଲେ—କୃଷ୍ଣସିଂହ ମହାଭାରତ ଆଦି ।] ପ୍ରାଦେ ( ଗଞ୍ଜାମ )ବି—ଶୁଭ ବା ମାଙ୍ଗଳିକ କାର୍ଯ୍ୟ; ବିବାହାଦି—Festive functions (e. g. marriage).

ହୁଳହୁଳୀ ଦେବା—ଦେ କ୍ରି—ମୁଖରେ ଉଲୁ ଧ୍ୱନି କରିବା—To
Huḷahuḷī debā make a vibrating shrill sound
[ହୁଳହୁଳୀ ପକା(କେ)ଇବା—ଅନ୍ୟରୂପ] with the tongue.
ଉଲୁଦେଓୟା, उलुध्वनिकरना

ହୁଳା—ଦେ. ବି—( ସଂ. ଉଲ୍କା=ଜ୍ୱାଳା )—୧ । ଅଗ୍ନିର ଜ୍ୱାଳା;
Huḷā ଅଗ୍ନିଶିଖା; ଜ୍ୱଳନ୍ତ ଅଗ୍ନିର ଶିଖା—1. Flame of fire.
ଶିଖା, ହଳକା ୨ । ତପ୍ତ ପଦାର୍ଥରୁ ଉଠୁଥିବା ପ୍ରବଳ ଉତ୍ତାପ—2.
लपट Great heat emitted by a hot thing. ୩ ।
ମଶାଲ ମଶାଲ; ଦିବୁଡ଼ି—3. Torch. [ବ୍ର—ତାହା ଶୁଣିଣ
मसाल ଲୋକେ ଲଗାଇଣ ହୁଳା, କୀଚକକୁ ଅସିଣ କଲେ ସେ ସଂଗୋଳା—କୃଷ୍ଣସିଂହ ମହାଭାରତ ବିରାଟ ।] ୪ ।
ବଡ ବିଡ଼ା, ପାଳ, ନଡ଼ିଆପୋଖରା ଆଦିର ବଡ଼ା ବନ୍ଧା ହୋଇ
ଉଙ୍କ ନିଆଁ ଲଗାଯାଇଥିବା ଅଗ୍ନିଦଣ୍ଡ; ବିଡ଼ଆ; ନିଆଁଅଟା—4. A bundle of straw or cocoanut leaves made into a firebrand. [ବ୍ର—ସବେ ପଶ୍ଚିମ ବନେ ଗେଲେ ହସ୍ତରେ ଥିବା ହୁଳା ଜାଳି । ଭୂପତି ପ୍ରେମ ଅଶାମୃତ ।]

ହୁଳା—ପ୍ରାଦେ (ବଲାଙ୍ଗିର ପାଟଣା) ବି—ମଳା; ଅଳବାଳ—Pit made
Huḷā around a tree to water it. ପ୍ରାଦେ (ଖଡ଼ଆଳ) ୧ । ଦଳ; ଥଳ—1. Flock; batch. ୨ । ଶୁଖିଲା ବାଉଁଶ କାଠିଗୁଡ଼ିଏ ଏକତ୍ର ବନ୍ଧା ବନାଯାଇ ତହିଁରେ ନିଆଁ ଲଗାଯିବା ହୁଳା—2. Torch made of bamboo sticks tied together.

ହୁଳାଇବା—ପ୍ରାଦେ (ସମ୍ବଲପୁର) କ୍ରି—ପରିହାସରେ ତାଳି ମାରିବା—
Huḷāibā To clap in ridicule or jest.

ହୁଳା ଉଠିବା—ପ୍ରାଦେ (ଖଡ଼ଆଳ) ବି—ଗରମ ବୋଧ ହେବା—
Huḷā uṭhibā The feeling of heat.

ହୁଲାସ—ଦେ. ବି (ସଂ. ଉଲ୍ଲାସ)—ଉଲ୍ଲାସ; ଆନନ୍ଦ—
Hulāsa Delight, joy.
उल्लास हुलास

ହୁଳାହଳା—ପ୍ରାଦେ (ଖଡ଼ଆଳ) ଅ—ଦଳଦଳ ହୋଇ—
Huḷāhaḷā In crowds; in batches.

ହୁଳାହୁଳୀ—ଦେ. ବି—( ସଂ. ହୁଳହୁଳୀ )—ହୁଳହୁଳ ( ଦେଖ )—
Huḷāhuḷī Huḷa huḷī (See) [ବ୍ର—ଘୋଷ ଉତ୍ତମ ସାପାବନ, ପଥେ ନାଶ୍ୱଏ ହୁଳାହୁଳୀ । ଜଗନ୍ନାଥ ଭାଗବତ ।]

ହୁଳାହୁଳୀ—ପ୍ରାଦେ (ସମ୍ବଲପୁର) ବି—ହୁଳହୁଳୀ (ଦେଖ)—
Huḷāhuḷī Huḷahuḷī (See).

ହୁଳି—ଦେ. ବି—ନଦୀରେ ଥିବା ଛୋଟ ଛୋଟ ମତ୍ସ୍ୟ ବିଶେଷ
Huḷi (ଗୋପୀନାଥ ନନ୍ଦ)—A species of small fish found in rivers. ପ୍ରାଦେ (ବାମଣ୍ଡା) ବି—ଛୋଟ ପାହାଡ଼—Hillock.

ହୁଳି—ଦେ. ବି—(ସଂ. ହୋଡ଼)—ଛୋଟ ଡଙ୍ଗା; ସାନ ଓ ସରୁ ସାଙ୍ଗୁଆ
Huḷi ଡଙ୍ଗା—A small narrow boat; a long canoe. (ହୁଳି ଡଙ୍ଗା—ଅନ୍ୟରୂପ) [ବ୍ର—ଏହା ଖଣ୍ଡିଏ କାଠରେ ତିଆରି; ଡୋଙ୍ଗା ଲମ୍ବ ୫ । ୬ ହାତ; ଏଥିରେ ଜଣେ ବା ଦୁଇ ଜଣ ଭୋଗୀ. ମନୁଷ୍ୟ ବସି ପାରନ୍ତି ।]

ହୁଳି(ଲି)ଆ—ବୈଦେ ବି—(ଫାରସୀ) (ଅ ହୁଲିୟାହ୍—ମନୁଷ୍ୟର
Huḷi(li)ā ଦେହରେ ଥିବା ବିଶିଷ୍ଟ ଚିହ୍ନ)—୧। ଫେରାର୍ ଅସାମୀର
हुलिया ବା ଲୋକ ଯାଇଥିବା ବା ହଜିଥିବା ବ୍ୟକ୍ତିର ଅନୁସନ୍ଧାନାର୍ଥ
हुलिया ଦେଶରେ ସର୍କାରୁ ପୁଲିସ ଦ୍ୱାରା ଘୋଷଣା ପ୍ରଚାର—1. Promulgation of a 'hue-and-cry' proclamation by the police for finding out an absconder or a missing person. ୨ । ପଳାଇଥିବା ବ୍ୟକ୍ତିକୁ ଖୋଜିବା ପାଇଁ ପୁଲିସରେ ଦିଆଯିବା ଏତଲା—2. Information lodged with the police to find out a lost person. ୩ । ପଳାଇ ଯାଇଥିବା ବା ହଜିଥିବା ବ୍ୟକ୍ତିର ଦେହର ବିଶିଷ୍ଟ ଚିହ୍ନମାନ (ଯାହା ସମ୍ବାଦଦାତା ପୁଲିସ କର୍ମଚାରୀଙ୍କୁ ଜଣାନ୍ତି) 3. Description of the peculiar features of a missing or absconding person supplied to the police by an informant.

ହୁଲିଆ କରିବା—ଦେ. କ୍ରି ( ଫାରସୀ )—୧ । ହଜିଥିବା ବ୍ୟକ୍ତିର
Huliā karibā ଲକ୍ଷଣ ବା ଚିହ୍ନମାନ ପ୍ରକାଶ ପୂର୍ବକ ଥାନାରେ

ହୁଲିଆ କରିବା — ଲିଖାଇବା ଦେବା—1. To lodge information with the police for finding out a missing or absconding person. ୨। ହଜିଥିବା ବା ଲୁଚିଥିବା ବ୍ୟକ୍ତିକୁ ବା ଫେରାର ଆସାମୀକୁ ଧରିବା ପାଇଁ ଦେଶର ସର୍ବତ୍ର ଘୋଷଣା ପ୍ରଚାର କରିବା— 2. To publish a hue-and-cry proclamation throughout the country for a missing or absconding person.
ହୁଲିଆ କରନା
हुलिआकरना

ହୁଲିଅ ଜାରି—ଦେ. ଦେ. ବି—(ବଚରଥ) (ଅ+ଫା)—ହଜିଥିବା ବା ଫେରାର ବ୍ୟକ୍ତିକୁ ଧରିବା ପାଇଁ ଘୋଷଣା ପ୍ରଚାର—Publication of a hue-and-cry proclamation for finding out a missing or absconding person.
Huliajari
ହୁଲିଆଜାରି
हुलियाजारी

ହୁଲି କରିବା—ପ୍ରାଦେ (ସମ୍ବଲପୁର ଓ ଗଡ଼ଜାତ) କ୍ରି—ବଡ଼ ପାଟି କରିବା—To make a loud sound
Huli kariba

ହୁଲୁ(ଲୁ)—ଦେ. ବି—(ଦ୍ର, ହୁଲ ହୁଳୀ, ହୁଲୁଳ)—ହୁଳ ହୁଳୀ (ଦେଖ) Hulahuli (See)
Hulu(lu)
ହୁଳୁ(ଲୁ)ହୁଳି } ଅନ୍ୟରୂପ
ହୁଳୁ ହୁଳି

ହୁଳୁଙ୍ଗା—ପ୍ରାଦେ ( ସିଂହଭୂମି ) ବିଣ—ଶ୍ଳଥ; ଢିଲା—Loose; slackened,
Hulunga

ହୁଲଣି—ପ୍ରାଦେ ( ବାଲେଶ୍ୱର ପ୍ରାନ୍ତ ) ବି—ମଧ୍ୟ ଭଳିଅ ହାଣ୍ଡି—Medium-sized earthen cooking pot.
Huluna

ହୁଳୁର୍(ରୁ)ଶିଙ୍ଗା(ଙ୍ଘା)—ଦେ. ବି. —ଅନୁଗୁଳ ଗଡ଼ଜାତର ପ୍ରାଚୀନ ରାଜଧାନୀ—The ancient capital of the former Angul State.
Hulur(ru) Śingā(ṅghā)

ହୁଲୁର୍(ରୁ) ହୁଲୁର୍(ରୁ) ହେବା—ଦେ.କ୍ରି—୧। ଢିଗୁଳା ହୋଇ ହଲିବା-1. To shake in a slack manner. ୨। କମ୍ପିବା—2. To shiver; to tremble. [ଯଥା—ଲଢ଼େଇକୁ ଯିବା କଥା ଶୁଣି ତା ବୁକୁ ହୁଲୁ ହୁଲୁ ହେଉଅଛି]
Hulur(ru)hulur(ru)heba
ଢିଲେ ହୋଇ ହଲିବା
ढलहले हवाना हलहल होना

ହୁଲୁସା(ସେ)ଇବା—ଦେ,କ୍ରି (ସଂ. ଉଲ୍ଲସିତ) ୧। ଉଲ୍ଲସିତ କରିବା—1. To gladden. ୨। ମାଟିକୁ ଖୋଳି ଦେଇ ଢିଲା କରିବା—2. To loosen the earth.
Hulusā(se)iba
उल्लसित करा हुलसाना

ହୁଲୁସିବା—ଦେ. କ୍ରି—(ସ, ଉଲ୍ଲସିତ) ୧। ଉଲ୍ଲସିତ ହେବା—1. To be delighted ୨। ରୋମାଞ୍ଚିତ ହେବା—2. To be horripilated.
Hulusiba
उल्लसित हवया हुलसना

ହୁଳୁ ହୁଳିଆ—ଦେ· ବିଣ—ଫସକା; ଉସୁସିଆ—Light, loose.
Hulu hulia
झलहले भुरभुरी

ହୁଲୋର(ଲ୍)—ଦୈଦେ· ବି—(ଅ)—ହୁଲର୍)—୧। ହୁଲର୍ (ଦେଖ) 1. Hular (See). ୨। ହାଲୋର୍ (ଦେଖ)—2. Halor (See)
Hulor(l)

ହୁଲ୍ଲ—ସଂ. ବି—ଏକପ୍ରକାର ନୃତ୍ୟ (ହ.ଶ)—A kind of dance.
Hulla

ହୁଲ୍ଲି ଧୁକା—ପ୍ରାଦେ (ସମ୍ବଲପୁର) ବି—ଶୀତଳ ଧୀର ପବନ—Cold mild wind.
Hullidhuka

ହୁସ୍—ବୈଦେ. ବି—(ଫା. ହୋସ୍=ଜ୍ଞାନ; ଚୈତନ୍ୟ; ତୁଳ. ସଂ. ହଂସ=ଚୈତନ୍ୟ)—୧। ଜ୍ଞାନ; ବିଚାର ଶକ୍ତି—1. Discretion. ୨। ହୋସ୍; ଚୈତନ୍ୟ—2. Consciousness; sense. ୩। ସ୍ମରଣଶକ୍ତି—3 Recollection. ୪। ଶୈଶବ ବୟସ ବୃଦ୍ଧି ସଙ୍ଗେ ଜାତ ବିବେଚନା ଶକ୍ତି—4. Discretion attained by a child when he grows up, ଦେ, ଅ—ହୁସ୍କିନା (ଦେଖ) Hus-kinā (See), ପ୍ରାଦେ (ସମ୍ବଲପୁର) ବି—ପିଲାଙ୍କ ଖେଳ ବିଶେଷ—A kind of game amongst boys
Hus
हुँस होस

ହୁସ୍କିନା[ନି]—ଦେ· ଅ—୧। ହୁ କରି; ହଠାତ୍—1. Suddenly. ୨। ଭୁଟ୍‌କିନ; ହଠାତ୍ ଜୋର୍‌ରେ ଉଚ୍ଚରୁ ପଡ଼ନ ଶବ୍ଦ—2. Sound produced by sudden heavy fall from a high place.
Huskinā[ni]
[ ହୁସ୍‌ବ(ଧ)ସ୍—ଅନ୍ୟରୂପ ]
हुस्‌करे एकाएक

ହୁସ୍ ପାଇବା—ଦେ. ବି- (ବୟୋବୃଦ୍ଧି ସଙ୍ଗେ) ବିଚାର ଶକ୍ତି ଜାତ ହେବା-Attainment of discretion.
Hus pāiba
हुस्‌ पाओया होस

ହୁସ୍‌ଭର୍(ରି)—ବୈଦେ. କ୍ରି. ବିଣ [ ଫା. ହୋସ୍‌ଭର୍ )—ଜାଣିକରେ; ଜ୍ଞାନତଃ—Knowingly, consciously. (ହୁସ୍ ଭରିରେ—ଅନ୍ୟରୂପ) (ଯଥା-ମୁଁ ହୁସ୍‌ଭର୍‌ଏ କାମ କରି ନାହିଁ)
Husbhar(ri)
जानत होसमर

ହୁସ୍ ହୁସ୍—ପ୍ରାଦେ ( ଖଡ଼ିଆଳ; ଧ୍ୱନ୍ୟନୁକରଣ ) ଅ—ଧାନ କୁଟା ବେଳେ ସ୍ତ୍ରୀମାନଙ୍କ ଉଚ୍ଚାରିତ ଧ୍ୱନି—The hissing sound produced by females while husking paddy.
Hus hus

ହୁସ୍ ହେବା—ଦେ. ବି—୧। ଚୈତନ୍ୟଲାଭ ହେବା—1. Regaining of consciousness or sense. ୨। ସ୍ମରଣ ହେବା; ମନେ ପଡ଼ିବା—2, Recollection; revival in memory
Hus heba
हुँस हवया होस

ହୁସିଆର୍—ବୈଦେ· ବିଣ [ ଫା ହୋସିୟାର୍ ]—୧। ସତର୍କ; ସାବଧାନ—1. Careful. [ଭ—ସେ କଠିନ ହିଙ୍କାଳିଙ୍କିରୁ କସ୍ତୁରି, ଲାଭ ଲାଗି ଅଗ୍ରୁ ହୁଅ ହୁସିଆର—ସୁଧାକାଠ ଦରବାର।] ୨। ଜାଗରୁଆର୍—2. Watchful; cautious. ୩। ହିଅଣା; ଚତୁର—3. Clever. ୪। ପ୍ରାପ୍ତବ୍ୟବହାର; ନିଜର କାର୍ଯ୍ୟ ବୁଝିବାକୁ ସମର୍ଥ [ସୁବକ]—4. Able to manage one's affairs; major ୫। ଯେଉଁ ବ୍ୟକ୍ତି ଆଗ ପଛ ଭାବି କାମ କରେ—5. Prudent. ୬ [ସତର୍କ କରିବା ପାଇଁ ବ୍ୟବହୃତ
Husiār
हुँसियार होशियार

ବାକ୍ୟ ] ସାବଧାନ ହୁଅ ! ସାବଧାନ ହୁଅ !—(interjection) Take care !

ହୁସିଆର୍‌ଭର୍(ରି)—ବୈଦେ. କ୍ରି. ବଣ [ଫା ହୋସିଆର୍‌ଭର]—Husiār-bhar(ri) ୧ । ସାବଧାନତା ସହକାରେ-[ହୁସିଆର୍‌ଭରରେ—ଅନ୍ୟରୂପ] 1. Carefully. ୨ । ଖବ୍‌ ହୁଁସିୟାର ହଇୟା ହୁସିୟାରିସେ ସତର୍କ ହୋଇ—2. Very watchfully.

ହୁସିଆରି—ବୈଦେ· ବ ( ଫା. ହୋସିଆରି )—୧ । ସାବଧାନତା—Husiāri 1. Carefulness. ୨ । ଚତୁରତା—ହୁଁସିୟାରି. 2. Cleverness. ୩ । ସତର୍କତା—3. Watch-ହୋଶିୟାରୀ fulness; caution.

ହୁସେନ୍—ବୈଦେ. ବ (ଆ. ହୁସେନ୍)—ହୋସେନ୍ ( ଦେଖ ) Husen Hosen ( See )

ହୁସେର୍—ପ୍ରାଦେ (ଉତ୍ତର) ବଣ—ହୁସିଆର୍—Huser Careful; clever.

ଅ—(ସାବଧାନ କରିବା ପାଇଁ ବ୍ୟବହୃତ ଶବ୍ଦ) ସାବଧାନ ! —(interjection) Take care !

ହୁସ୍ସେ—ବୈଦେ,ଅ (ଅ)—ମୁସଲମାନ୍‌ମାନଙ୍କର ଯୁଦ୍ଧରବ ଓ ଜୟ ଧ୍ୱନି-Hus se ବିଶେଷ—An excla mation of joy and ହୁସ୍‌ସେ a war cry amongst the Mahomedans. ହୋସ୍‌ସେ [ବି—ତାଜିଆ ଅଶଡ଼ା ଆଦି ଯେଉଁ ଶୋଭାଯାତ୍ରା ଅନୁ କରିବା ସମୟରେ ମୁସଲମାନମାନେ 'ହୋସ୍ସେ' 'ହାଲଅର ଅ ହୋସ୍ସେ' ଧ୍ୱନି କରୁ ଥାଆନ୍ତି ।]

ହୁ ହା—ଦେ. କ୍ରି. ବଣ—ଅତି ଶୀଘ୍ର; ହଁ ହଁ; ହୁ ହୁ—Hu hā Very soon. ହୁସ୍‌ହୁସ୍‌ ଝଟପଟ

ହୁ ହୁ(ହୂ)—ସଂ. ବ (ହ୍ୱେ ଧାତୁ=ଆହ୍ୱାନ କରିବା+ଉ; ନିପାତନ) Hu hu(hū) —ଗନ୍ଧର୍ବ ବିଶେଷ ( ଶବ୍ଦ ରତ୍ନାବଳୀ )—A class of divine choristers.

ଅ—୧ । ହୁ ହା; ଅତି ଶୀଘ୍ର; କ୍ଷିପ୍ରକାରିତା ସହ—ହୁସ୍‌ହୁସ୍ 1. Very soon. ୨ । ପବନ ଜୋରରେ ବହିବାର ଶବ୍ଦ ଝଟପଟସେ —2. The sound of violently blowing wind. ୩ । ନିଆଁ ଖୁବ୍‌ ତେଜରେ ଜଳିବା ପ୍ରକାରେ—3. In a blazing manner ( said of fire). ଦେ. କ୍ରି—ଶୀଘ୍ର ଶୀଘ୍ର; ବେଗେ ବେଗେ—Quickly.

ହୁହୁଙ୍କାର—ଦେ. ବ—(ସଂ. ହୁଙ୍କାର)—୧ । ହୁଙ୍କାର (ଦେଖ)—1. Huhunkāra Hunkāra (See). [ଦ୍ର—ଆର୍ଯ୍ୟ ଯବନର ମେଘ ହୁଙ୍କାର ହୁଁକାର ଗର୍ଜି ହୁହୁଙ୍କାର ଘୋଷାନାଥ ମହାଯାତ୍ରା ।] ୨ । କ୍ରୋଧ ଜନିତ ହୁଙ୍କାର ବା 'ହୁଁ' 'ହୁଁ' ଧ୍ୱନି—2. A suppressed sound made by a person in rage.

ହୁହୁ ଜଳିବା—ଦେ. କ୍ର—ନିଆଁ ଖୁବ ଜୋର୍‌ ଭାବରେ ଜଳିବା—To Huhu jaliba burn violently or with blaze. ହୁ ହୁ କରକେ ଜ୍ୱଲ୍‌ନା ହୁହୁକର ଜଲନା (said of fire).

ହୂ—ସ. ଅ—ଆହ୍ୱାନ, ଅବଜ୍ଞା, ଅହଂକାର, ଶୋକ ଓ ଗର୍ବରେ ଉଚ୍ଚାରିତ Hū ଧ୍ୱନି (ଶବ୍ଦକଳ୍ପଦ୍ରୁମ)—(Interjection) Exclamation uttered betokening irritation, derision, pride; and sorrow.

ହୂଁ—ସ. ବ—କ୍ରୋଧସୂଚକାତ୍ମକ ତନ୍ତ୍ରୋକ୍ତ ମନ୍ତ୍ର ବିଶେଷ—A mystic Hūṅ syllable mentioned in the Tantras.

ହୂଙ୍କାର—ସଂ ବ—'ହୂଂ' ରୂପକ ଭୟଙ୍କର ଧ୍ୱନି; ଭୀଷଣ କୋଧଯୁକ୍ତ Hūṅkara ଧ୍ୱନିବିଶେଷ; ହୁଙ୍କାର (ଦେଖ ମାର୍କଣ୍ଡେୟ)—A furious roar of rage.

ହୂଡ୍ (ଧାତୁ)—ସ—ଗତି କରିବା—Hūrd (root) To move.

ହୂଣ—ସ. ବ—(ନାମ)—ହୂନ (ଦେଖ)—Hūṇa Hūna (See).

ହୂତ—ସ, ବଣ—(ହ୍ୱେ· ଧାତୁ+କର୍ମ ତ)—ଆହୂତ—Hūta Called. (ହୂତା—ସ୍ତ୍ରୀ)

ହୂତି ସଂ. ବ—(ହ୍ୱେ ଧାତୁ+ଭାବ ତି)—ଆହ୍ୱାନ—Hūti Call.

ହୂନ—ସଂ. ବ—(ନାମ)—( ହ୍ୱେ ଧାତୁ+କର୍ତ୍ତୃ ନ, ନିପାତନ)—୧ Hūna ମ୍ଲେଚ୍ଛଜାତି ବିଶେଷ (ଜଟାଧର)—1. A non-hindu caste. ୨ । ମାନ୍ଦ୍ରାଜ ପ୍ରଦେଶୀୟ ସ୍ୱର୍ଣ୍ଣମୁଦ୍ରା ବିଶେଷ—(ଶବ୍ଦ କଳ୍ପଦ୍ରୁମ)—2. A sort of gold coin of Madras. ୩ । ଶକ ଜାତିର ଶାଖା ବିଶେଷ—3. A branch of the Scythians; the Huns [ଦ୍ର—୧ । ହୂନମାନେ ଏକ ପ୍ରାଚୀନ ମଙ୍ଗୋଲୀୟ ଜାତି । ତୁରମାନସାହା ଓ ମିହିରଗୁଲ ନାମକ ଦୁଇଜଣ ସେନାପତିଙ୍କଦ୍ୱାରା ଚାଳିତ ହୋଇ ଏମାନେ ଖ୍ରୀଷ୍ଟୀୟ ୫ମ ଶତାବ୍ଦୀର ଶେଷ ଓ ୬ଷ୍ଠ ଶତାବ୍ଦୀର ଆରମ୍ଭରେ ଭାରତକୁ ଆକ୍ରମଣ କରି ଗୁପ୍ତରାଜାମାନଙ୍କୁ ତଡି ପଞ୍ଜାବରେ ରାଜ୍ୟ ସ୍ଥାପନ କରିଥିଲେ । ଏମାନଙ୍କ ରାଜଧାନୀ ସେକାଳରେ ପଞ୍ଜାବରେ ଝଙ୍ଗ୍‌ ଜିଲ୍ଲାର ଅଧୁନାତନ ସାହାକୋଟ ବା ସିଆଲ କୋଟ ଥିଲା ।

ମାଳବର ରାଜା ଯଶୋଧର୍ମଦେବ ବା ବିକ୍ରମାଦିତ୍ୟ ମୁଲତାନ ନିକଟସ୍ଥ କୋରୁରଠାରେ ହୂନମାନଙ୍କୁ ପରାସ୍ତ କରିଥିଲେ । ହର୍ଷବର୍ଦ୍ଧନ ବା ୨ୟ ଶିଳାଦିତ୍ୟ ହୂନମାନଙ୍କୁ ପରାସ୍ତ କରି ଖ୍ରୀଃ ୬୦୬ଠାରୁ ୬୦୮ ପର୍ଯ୍ୟନ୍ତ ଆର୍ଯ୍ୟାବର୍ତ୍ତରେ ରାଜତ୍ୱ କରିଥିଲେ ।

[ଦ୍ର—୨ । ହୂନ ମାନେ ଏକ ପ୍ରାଚୀନ ମଙ୍ଗୋଲୀୟ ଜାତି । ଏମାନେ ପ୍ରଥମେ ଚୀନର ପଶ୍ଚିମସୀମାରେ ଲୁଟପାଟ କରୁଥିଲେ ପରେ ଅତି ପ୍ରବଳ ହୋଇ ଅସିଆରେ ଓ ଇଉରୋପରେ ସର୍ବ୍ୟଦେଶ ମାନଙ୍କୁ ଆକ୍ରମଣ କଲେ । ଚୀନ ଅତୃ ଅସି ଖ୍ରୀଃ ୪୦୦ ଶତାବ୍ଦୀ ପୂର୍ବେ ଏମାନେ ତୁର୍କୀସ୍ଥାନ-

ଅଧିକାର କରି ଅକ୍ସସ୍ (ସଂ.ବଂକ୍ଷୁ) ନଦୀର କୂଳରେ ଆସି ବସତି କଲେ । ଏଠାରୁ ଏମାନଙ୍କର ଗୋଟିଏ ଶାଖା ରୋମ୍ ସାମ୍ରାଜ୍ୟ ଆକ୍ରମଣ କଲେ ଓ ପାରସ୍ୟ ସାମ୍ରାଜ୍ୟରେ ଲୁଣ୍ଠପାଟ କଲେ । କାଳିଦାସଙ୍କ ଅମଳରେ ହୂନମାନେ ଅକ୍ସସ୍ (ସଂ ବଂକ୍ଷୁ) ନଦୀ-କୂଳ ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ ଓ ଭାରତବର୍ଷ ମଧ୍ୟକୁ ଧାବିତ ହୋଇ ନ ଥିଲେ । କାରଣ, ରଘୁଙ୍କ ଦିଗ୍ବିଜୟ-ବର୍ଣ୍ଣନରେ କାଳିଦାସ ହୂନମାନଙ୍କର ବଂକ୍ଷୁନଦୀ କୂଳରେ ଅବସ୍ଥାନ କରୁଥିବା ଉଲ୍ଲେଖ କରିଅଛନ୍ତି । ବଂକ୍ଷୁ ନଦୀକୂଳରୁ ହୂନମାନେ ପାରସ୍ୟକୁ ବାରଂବାର ଆକ୍ରମଣ କରିବାରୁ ପାରସ୍ୟର ସମ୍ରାଟ୍ ବହରାମ୍ ଗୋର୍ ଖ୍ରୀ ୪୨୫ ରେ ଏମାନଙ୍କୁ ପରାସ୍ତ କରି ବଂକ୍ଷୁ ନଦୀର ଅର ପାରିକୁ ଘଉଡ଼େଇଦେଲେ । ବହରାମଙ୍କ ମୃତ୍ୟୁ ପରେ ଫିରୋଜଙ୍କ ଶାସନକାଳରେ ପୁଣି ହୂନମାନେ ପାରସ୍ୟ ଆକ୍ରମଣ କଲେ । ଏମାନେ କ୍ରମେ କ୍ରମେ ପାରସ୍ୟର ସଭ୍ୟତା ଗ୍ରହଣ କରି ମେଟେରେ ବାସ କଲେ । ଫିରୋଜଙ୍କ ପରାସ୍ତକାରୀ ହୂନ ସମ୍ରାଟଙ୍କ ନାମ ଖୁସ୍ନେଭାଜ୍ ଥିଲା । ପାରସ୍ୟରେ ହୂନମାନେ ସାମ୍ରାଜ୍ୟ ସ୍ଥାପନ କରି ନ ପାରି ଭାରତକୁ ଆକ୍ରମଣ କଲେ । ପ୍ରଥମେ ସେମାନେ ଭାରତରେ ପଶ୍ଚିମ ସୀମାନ୍ତରେ କମ୍ବୋଜ ଓ ଗାନ୍ଧାର (କାନ୍ଧାହାର) ଅଧିକାର କଲେ । ପରେ ମଧ୍ୟଦେଶକୁ ବାରଂବାର ଆକ୍ରମଣ କଲେ । ଏହି ଆକ୍ରମଣର ପ୍ରତିରୋଧ କରିବାକୁ ଯାଇ ଗୁପ୍ତ ସମ୍ରାଟ୍ କୁମାର ଗୁପ୍ତ ନିହତ କଲେ । କୁମାର ଗୁପ୍ତଙ୍କ ପୁନ ସ୍କନ୍ଦଗୁପ୍ତ ଖୁବ୍ ସାହସିକତା ସହକାରେ ହୂନମାନଙ୍କ ସଙ୍ଗେ ଯୁଦ୍ଧ କଲେ । ଖ୍ରୀ ୪୬୦ ରେ ଅନ୍ତର୍ବେଦ ଓ ମଗଧ ଆଦି ଅଞ୍ଚଳ ସ୍କନ୍ଦଗୁପ୍ତଙ୍କ ରାଜ୍ୟଭୁକ୍ତ ଥିଲା । ଖ୍ରୀ ୪୬୫ ରେ ହୂନମାନଙ୍କ ସଙ୍ଗେ ଯୁଦ୍ଧ କରୁ କରୁ ସ୍କନ୍ଦଗୁପ୍ତ ନିହତ ହେଲେ । ଖ୍ରୀ: ୪୯୯ରେ ହୂନମାନଙ୍କ ପ୍ରତାପୀ ରାଜା ତୁର୍ମାନ୍ ଶାହା (ସଂ. ତୋରମାଣ) ଗୁପ୍ତ ସାମ୍ରାଜ୍ୟର ପଶ୍ଚିମାଂଶରେ ପୂର୍ଣ୍ଣ ଅଧିକାର ସ୍ଥାପନ କଲେ । ଏହାପରେ ଗାନ୍ଧାର, କାଶ୍ମୀର, ପଞ୍ଜାବ, ରାଜପୁତାନା, ମାଲବ, ଓ କାଠିଆବାଡ ଏହାଙ୍କ ରାଜ୍ୟଭୁକ୍ତ ହେଲା । ତୁର୍ମାନ୍‌ଙ୍କ ପୁତ୍ର ମିହର୍ ଗୁଲ୍ ଶାହା ( ସଂ ମିହିର କୁଳ) ଅତି ଅତ୍ୟାଚାରୀ ଓ କ୍ରୂରକର୍ମୀ ଥିଲେ । ପ୍ରଥମେ ଏ ବୌଦ୍ଧ ଥିଲେ, ପରେ ଶୈବ ହେଲେ । ଗୁପ୍ତ ବଂଶୀୟ ନରସିଂହ ଗୁପ୍ତ ଓ ମାଲବର ରାଜା ଯଶୋଧର୍ମ ମିହର୍ ଗୁଲ୍‌ଙ୍କ ଦ୍ୱାରା ପରାସ୍ତ ହେଲେ ଓ ଆପଣା ଆପଣା ରାଜ୍ୟ ଛାଡ଼ି କାଶ୍ମୀର ପଳାୟନ କଲେ । ହୂନମାନେ ଅନ୍ୟାନ୍ୟ ପ୍ରାଚୀନ ଆକ୍ରମଣ-କାରୀ ଜାତିଙ୍କପରି ଭାରତକୁ ଆସି ଭାରତୀୟ ସଭ୍ୟତା ଗ୍ରହଣ କଲେ । ରାଜପୁତମାନଙ୍କର ହୂନ ନାମକ ଏକ ଶାଖା ଅଛି । କେତେକ ପଣ୍ଡିତ କହନ୍ତି ଯେ, ରାଜପୁତାନାର ଓ ଗୁଜରାଟର କୁନ୍‌ବୀମାନେ ହୂନ ବଂଶଧର ଅଟନ୍ତି—ହ. ଶ]

**ହୂମ୍**—ସ. ଅ—ପ୍ରଶ୍ନ, ବିତର୍କ, ସମ୍ମତି, କ୍ରୋଧ, ଭୟ, ନିନ୍ଦା, ଅବଜ୍ଞା,
**Hūm** ଅର୍ଥମାନଙ୍କରେ ବ୍ୟବହୃତ ଧ୍ୱନି (ଅମର,ଭରତ) —(Interjection) An exclamation used in questioning, guessing, agreeing, anger, fear, blame and disregard.

**ହୂୟ**—ସ. ବି—(ହ୍ୱେ ଧାତୁ+ଭାବ ଅ)—ଆହ୍ୱାନ; ଆବାହନ (ହ. ଶ)
**Hūya** Calling. (ଯଥା—ଦେବହୂୟ, ପିତୃ ହୂୟ)

**ହୂୟମାନ**—ସ. ବିଣ ପୁଂ—(ହ୍ୱେ ଧାତୁ+କର୍ମ ଅନ)—ଯାହାକୁ ଆହ୍ୱାନ
**Hūyamāna** କରାଯାଉଅଛି—One who is being called.
(ହୂୟମାନା—ସ୍ତ୍ରୀ)

**ହୂରବ**—ସ. ବି—(ହୂ=ଧ୍ୱନି ଅଟେ ରବ ଯାହାର)—ଶୃଗାଳ
**Hūraba** (ହେମଚନ୍ଦ୍ର) Jackal.

**ହୂର୍ଚ୍ଛ** (ଧାତୁ)—ସଂ.—କୁଟିଳ ଗମନ କରିବା—
**Hūrchh** (root) To move obliquely.

**ହୂର୍ଚ୍ଛନ**—ସଂ ବି—(ହୂର୍ଚ୍ଛ ଧାତୁ+ଭାବ ଅନ)—କୌଟିଲ୍ୟ—
**Hūrchhana** Obliqueness.

**ହୂହୁ (ହୂ)**—ସଂ, ବି—ଗନ୍ଧର୍ବ ଶ୍ରେଣୀ ବିଶେଷ (ଶବ୍ଦ ରତ୍ନାବଳୀ)—
**Hū hu(hū)** A class of divine choristers.

**ହୃ** (ଧାତୁ)—ସଂ ୧। ହରଣ କରିବା—1. To steal. ୨ । ଜବରଦସ୍ତି
**Hṛu** (root) କରିବା—2. To use force or violence. ୩ । ଜବରଦସ୍ତି ଛଡ଼ାଇ ନେବା—3. To snatch away forcibly. ୪ । ଯୁଦ୍ଧ କରିବା—4. To fight.

**ହୃଚ୍ଛୟ**—ସଂ. ବିଣ ପୁଂ—( ହୃତ୍=ହୃଦୟ+ଶୀ ଧାତୁ=ଶୋଇବା+
**Hṛuchhaya** କର୍ତ୍ତୃ ଅ )—ହୃଦୟ ଶାୟୀ; ଯେ ହୃଦୟରେ ଶୟନ କରେ—Sleeping or lying in the heart. ବି. ପୁ—କାମଦେବ (ହଳାୟୁଧ)—Cupid.

**ହୃଚ୍ଛୂଳ**—ସଂ, ବି (୬ଷ୍ଠୀ ତତ୍, ହୃତ୍=ହୃଦୟ+ଶୂଳ)—ଛାତିକୁ ମାରିବା;
**Hṛuchhūla** ହୃଦୟ ଜାତ ଶୂଳ ରୋଗ ବିଶେଷ—Colic felt in the heart.

**ହୃଜ୍ଜ**—ସ.ବିଣ ପୁଂ—(ହୃତ୍+ଜା ଧାତୁ+କର୍ତ୍ତୃ ଅ)—୧। ହୃଦୟରୁ ଜାତ—
**Hṛujja** 1. Born of the heart. ୨ । ଛାତିରେ ଜାତ—
(ହୃଜ୍ଜା—ବିଣ ସ୍ତ୍ରୀ) 2. Appearing on the chest. ସ. ବି—ସ୍ତ୍ରୀଙ୍କ ସ୍ତନ; କୁଚ—The breasts of females.

**ହୃଣିୟା**—ସଂ. ବି—ହୃଣୀୟ (ରାପ୍ୟମୁକୁଟ) (ଦେଖ)—
**Hṛuṇiyā** Hṛuṇiya (See)

**ହୃଣୀ** (ଧାତୁ)—ସଂ.—ଲଜ୍ଜିତ ହେବା—
**Hṛuṇi** (root) To be ashamed.

**ହୃଣୀୟ (ୟା)**—ସଂ ବି—(ହୃଣୀ ଧାତୁ+ଭାବ ଯ; +ଆ)—୧ । ଲଜ୍ଜା—
**Hṛuṇiya(yā)** 1. Shame; modesty. ୨ । ନିନ୍ଦା—2. Blame. ୩ । ଗାଳିମନ୍ଦ—3. Censure; reproach (Apte). ୪। ଅନୁକମ୍ପା—4. Compassion (Apte).

**ହୃତ୍**—ସଂ. ବି—(ହୃ ଧାତୁ+କର୍ତ୍ତୃ କ୍ୱିପ୍, ତ ଆଗମ, ତ ସ୍ଥାନରେ ଦ; ହୃଦ୍
**Hṛut** ୧ମା; ୧ବ)—୧ । ହୃଦୟ—1. Heart. ୨ । ମାନସ; ମନ—2. Mind. ୩ । ବକ୍ଷସ୍ଥଳ—3. Breast; chest. ୪। ପାକସ୍ଥଳୀ—4. Stomach. ୫ । ଶରୀରର

ଅଭ୍ୟନ୍ତର—5. Interior of the body M·W.)
ବିଣ ପୁଂ ଓ ସ୍ତ୍ରୀ—(ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ—ଯଥା—ଧନହୃତ୍ )— ହରଣକାରୀ—Stealing; taking away.

ହୃତ୍କମ୍ପ—ସଂ. ବି—(୬ଷ୍ଠୀ ତତ୍ )—୧ । ହୃଦୟର କମ୍ପନ—
Hṛut-kampa 1.Trembling of the heart ୨ । ଅତ୍ୟନ୍ତ ଭୟ—2. Fright; excessive fear.

ହୃତ୍ପଦ୍ମ— ସଂ. ବି—(ରୂପକ)—କମଳ ରୂପେ କଳ୍ପିତ ହୃଦୟ—The
Hṛut-padma heart compared to a lotus.
(ହୃତ୍କମଳ, ହୃତ୍ ପଙ୍କଜ, ହୃତ୍ ସରୋଜ—ଅନ୍ୟରୂପ)

ହୃତ୍ପିଣ୍ଡ—ସଂ. ବି (୬ଷ୍ଠୀ ତତ୍ ) [ରୂପକ]—ହୃଦୟ ମଧ୍ୟସ୍ଥିତ ଶୋଣିତାଧାର—The heart.
Hṛut-pinda

ହୃତ୍-ପୀଡ଼ା—ସଂ. ବି—(୭ମୀ ତତ୍ )—୧। ହୃଦୟରେ ଅନୁଭୂତ ପୀଡ଼ା
Hṛut-pirda ବା ବ୍ୟଥା—1. Pang felt inside the breast. ୨ । ମାନସିକ ପୀଡ଼ା—2. Mental agony. ୩ । ହୃଦ୍ରୋଗ (ଦେଖ)—3. Hṛudroga (See)

ହୃତ୍ସ୍ତମ୍ଭ - ସଂ ବି—[୬ଷ୍ଠୀ ତତ୍ ]—ହୃତ୍ପିଣ୍ଡର ସ୍ପନ୍ଦନର ସ୍ତମ୍ଭନ—
Hrut-stambha Stoppage of the beatings of the heart.

ହୃତ୍ସ୍ଥ—ସଂ. ବିଣ ପୁଂ—[୭ମୀ ତତ୍; ହୃତ୍ + ସ୍ଥା ଧାତୁ + କର୍ତ୍ତୃ ଅ)—
Hṛut-stha ହୃଦୟସ୍ଥ (ଦେଖ)—Hṛudayastha (See).
[ହୃତ୍ସ୍ଥା—ସ୍ତ୍ରୀ]

ହୃତ୍ସ୍ପନ୍ଦନ—ସଂ. ବି—(୬ଷ୍ଠୀ ତତ୍ )—ହୃତ୍ପିଣ୍ଡରେ ରକ୍ତର ଗମନାଗମନ
Hṛut-spandana ଜନିତ ସ୍ପନ୍ଦନ—Heart-beating; pulsation of the heart.

ହୃତ—ସଂ. ବିଣ—(ହୃ ଧାତୁ + କର୍ମ ତ)—୧ । ଚୋରିତ; ଅପହୃତ—
Hṛuta 1. Stolen. ୨ । ଛିନ୍ନ—2. Torn away. ୩ । ବଳପୂର୍ବକ ଗୃହୀତ—3. Snatched away; taken forcibly. ୪ । ଆନୀତ—4. Brought. ୫ । ଆକୃଷ୍ଟ—5. Attracted. ୬ । ଅନ୍ୟତ୍ର ବାହିତ—6. Carried away.

ହୃତ ସର୍ବସ୍ୱ—ସଂ. ବିଣ ପୁଂ—(ବହୁବ୍ରୀହି; ହୃତ ହୋଇଅଛି ସର୍ବସ୍ୱ ଯାହାର)
Hṛuta sarbaswa ଯାହାର ସବୁ ସମ୍ପତ୍ତି ଅପହୃତ ହୋଇଅଛି—
(ହୃତ ସର୍ବସ୍ୱା—ସ୍ତ୍ରୀ) A person who has lost all his property by theft, dacoity etc

ହୃଦ୍—ସଂ. ବି—(ହୃ ଧାତୁ + କର୍ତ୍ତୃ କ୍ୱିପ୍; ୧ମା; ୧ବ )—ହୃତ୍ (ଦେଖ)
Hṛud Hṛut (See).

ହୃଦ୍ଗତ—ସଂ. ବିଣ—ହୃଦ୍ଗତ (ଦେଖ)—
Hṛud-gata Hṛudgata (See)

ହୃଦ୍ବିମ୍ବ—ସଂ. ବି—ହୃଦ୍ବିମ୍ବ (ଦେଖ)—
Hṛud-bimba Hṛud-bimba (See)

ହୃଦ୍ବୋଧ—ସଂ ବି—ହୃଦ୍ବୋଧ (ଦେଖ)—
Hṛud-bodha Hṛudbodha (See)

ହୃଦ୍ରୋଗ—ସଂ. ବି—(୬ଷ୍ଠୀ ତତ୍ )—ହୃଦ୍ରୋଗ (ଦେଖ)—
Hṛud-roga Hṛudroga (See)
(ହୃଦ୍ରୋଗୀ—ପୁଂ. ହୃଦ୍ରୋଗିଣୀ—ସ୍ତ୍ରୀ ବିଣ)

ହୃଦ—ଦେ. ବି—( ସଂ ହୃଦ୍ )—ହୃତ୍ (ଦେଖ)—
Hṛuda Hṛut (See)
[ଦ୍ର—ବ୍ରାହ୍ମଣ ବୋଇଲେ ନ ପଡ଼ି ଭୂମେ ବେଦ, ଆସିବ କୋଳ କମ୍ପା କରଅଛ ହୃଦ—କୃଷ୍ଣସିଂହ ମହାଭାରତ—ବନ]

ହୃଦଙ୍ଗ(ଙ୍ଗା)—ଦେ. ବିଣ—ହୁରୁଦଙ୍ଗ୍ (ଦେଖ)—
Hṛudaṅga(ṅgā) Hurudaṅg (See)

ହୃଦଙ୍ଗିଆ—ପ୍ରାଦେ (ବାଲେଶ୍ୱର) ବିଣ—ଦୁଷ୍ଟ—Wicked.
Hṛudaṅgiā

ହୃଦଜ—ଦେ. ବିଣ. ଓ ବି—(ସଂ. ହୃଜ୍ଜ)—ହୃଜ୍ଜ (ଦେଖ)
Hṛudaja Hṛujja (See)

ହୃଦପଥ—ଦେ. ବି (ସଂ ହୃତ୍ପଥ)—ଛାତି—Breast.
Hṛudapatha [ଦ୍ର—ମଦନ ଥରେ, ହୃଦପଥରେ, ଶୁଆନ୍ତି
ହୃଦୟସ୍ଥାନ हृदय उपर ଥରେ ଥରେ—ଭଞ୍ଜ. ପ୍ରେମ ସୁଧାନିଧି ।]

ହୃଦପଦ୍ମ—ଦେ. ବି—ହୃତ୍ପଦ୍ମ (ଦେଖ)—Hṛut-padma (See)
Hṛuda padma ହୃଦିପଦ୍ମ हृदय पद्म

ହୃଦବୋଧ—ଦେ. ବି—(ସଂ. ହୃଦ୍ବୋଧ)—ହୃଦ୍ବୋଧ (ଦେଖ)
Hṛudabodha হৃদবোধ हृदयबोध Hṛudbodha (See)

ହୃଦମଣି—ଦେ. ବି (ସଂ. ହୃନ୍ମଣି)—୧ । ହୃଦୟର ହାରର ମଣି—
Hṛuda maṇi 1. The gem in the necklace worn
হৃদযমণি हृदयमणि over the breast. ୨ । (ଲକ୍ଷଣାର୍ଥ) ଅତି ପ୍ରିୟ ଲୋକ—2. (figurative) A very dear person.
(ଦ୍ର—ହୃଦ ମଣିତ କରିଲ୍ ବାହାର, ଏତେ ଅନୁଗ୍ରହ କେତେ କାଳ ଥିବ ହୃଦମଣି କହେ ଧୀର ।
ଭଞ୍ଜ. ପ୍ରେମସୁଧାନିଧି ।)

ହୃଦମ୍ବୁଜ—ସଂ.ବି. (ରୂପକ; ହୃଦ୍ + ଅମ୍ବୁଜ)—ହୃତ୍ପଦ୍ମ (ଦେଖ)
Hṛudambuja Hṛut-padma (See)

ହୃଦୟ—ସଂ. ବି—(ହୃ. ଧାତୁ + କର୍ତ୍ତୃ ଅୟ; 'ଦ' ଆଗମ,ନିପାତନ)—ହୃତ୍
Hṛudaya (ଦେଖ)—Hṛut (See). (ଦ୍ର—ଏହା ଦୟା, ପ୍ରେମ, ସ୍ନେହ, ଇଚ୍ଛା, ଶୋକ ଆଦିର ସ୍ଥାନ ବୋଲି କଳ୍ପିତ । ଏହାର ସାଧାରଣ ନାମ କଲିଜା । ଏଠାରେ ଶରୀରରୁ ପ୍ରତ୍ୟାଗତ ଓ ଶୋଧିତ ରକ୍ତ ସଂଗୃହୀତ ହୋଇ ଏଠାରୁ ନାଡ଼ୀମାନଙ୍କ ଦ୍ୱାରା ସମସ୍ତ ଶରୀରକୁ ଯାଏ । ଏ ଯନ୍ତ୍ରର ସର୍ବଦା ସ୍ପନ୍ଦନ ହେଉଥାଏ । ସ୍ପନ୍ଦନ ବନ୍ଦ ହେଲେ ମୃତ୍ୟୁ ହୁଏ ।) ଦେ. ବି—୧ । ଦୟାପ୍ରବଣତା; ପରଦୁଃଖ-
ହୃଦୟ କାତରତା—1. Kindness or softness of
हृदय heart. ୨ । ଧୈର୍ଯ୍ୟ—2. Patience. (ଦ୍ର—ରାଜ୍ୟ ପାଇବ ଭାଇମାନଙ୍କର ଯଶ, କରିଲି ଧରି ନ ପାରିବି ମୁଁ ହୃଦୟ—କୃଷ୍ଣସିଂହ. ମହାଭାରତ. ଶାନ୍ତି ।) ୩ । ବିବେକ—3. Conscience. ୪ । ଅତ୍ୟନ୍ତ ପ୍ରିୟ ବ୍ୟକ୍ତି—4. Very dear person.

ହୃଦୟ କନ୍ଦର—ସଂ. ବି—(ରୂପକ)—ଅନ୍ତଃକରଣରୂପ ଗୁହା—
Hrudaya kandara The heart compared to a cave.

ହୃଦୟ କରିବା—ଦେ. କ୍ରି—ଚିନ୍ତା କରିବା; ଚିନ୍ତା କରିବା—
Hrudaya kariba To think; to judge. (ହି—ଚିନ୍ତାକର୍ନା विचार करना ସୁଯୋଧନ ହେଉଁ ଭରତବଂଶ କ୍ଷୟ, ଦେଉଛ ଅହେ ପାର୍ଥ! କରଛ ହୃଦୟ । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।)

ହୃଦୟ ଗଗନ—ସଂ. ବି—(ରୂପକ)—ହୃଦୟାକାଶ (ଦେଖ)
Hrudaya gagana Hrudayākāśa (See)

ହୃଦୟଂଗତ—ସଂ. ବିଣ (୨ୟା ତତ୍)—ହୃଦ୍‌ଗତ (ଦେଖ)
Hrudayangata Hrudgata (See)

ହୃଦୟ ଗ୍ରନ୍ଥି—ସଂ. ବି—(୬ଷ୍ଠୀ ତତ୍)—ହୃଦ୍‌ବନ୍ଧ; ହୃଦ୍‌ବନ୍ଧନ; ହୃତ୍
Hrudaya granthi ପିଣ୍ଡକୁ ଦେହ ମଧ୍ୟରେ ବାନ୍ଧ ରଖିଥିବା କଳ୍ପିତ ଶିର—Heart-string.
(ହୃଦ୍‌ଗ୍ରନ୍ଥି—ଅନ୍ୟରୂପ)

ହୃଦୟଗ୍ରହ—ସଂ. ବି—(ହୃଦୟ+ଗ୍ରହ୍‌ଧାତୁ+କର୍ତ୍ତୃ ଅ)—କଲଜାର
Hrudayagraha ଶୂଳରୋଗ (ହି. ଶ)—Pain or colic felt in the heart.

ହୃଦୟଗ୍ରାହୀ—ସଂ; ବିଣ ପୁଂ—(ହୃଦୟଗ୍ରାହିନ୍ ଶବ୍ଦ; ୧ମା.୧ବ; ହୃଦୟ+
Hrudayagrāhī ଗ୍ରହ୍ ଧାତୁ+କର୍ତ୍ତୃ. ଇନ୍)—୧ ।
(ହୃଦୟଗ୍ରାହିଣୀ—ସ୍ତ୍ରୀ) ମନୋହର; ମନୋରମ—1 Charming; pleasant. ୨ । ରୁଚିକର—2. Suiting one's taste.

ହୃଦୟଙ୍ଗମ—ସଂ, ବିଣ—(ହୃଦୟଂ=ହୃଦୟକୁ+ଗମ୍ ଧାତୁ=ଯିବା
Hrudayangama +କର୍ତ୍ତୃ ଅ)—୧ । ବୋଧଗମ୍ୟ—
(ହୃଦୟଙ୍ଗମ—ଅନ୍ୟରୂପ) I. Understood. ୨ । ହୃଦ୍ଗତ—2. Inward; hearty. ୩ । ମନୋହର—3. Pleasing. ୪ । ସଙ୍ଗତ; ଯୁକ୍ତିଯୁକ୍ତ—4. Reasonable.

ହୃଦୟଙ୍ଗମ କରିବା—ଦେ. କ୍ରି—୧ । ହୃଦୟଙ୍ଗମରୂପେ ବୁଝିବା—
Hrudayangama kariba 1. To understand.
हृदयङ्गमकरा हृदयंगमकरना ୨ । ମନରେ ଗ୍ରହଣ କରିବା—2. To realise.

ହୃଦୟ ଚୋର—ସଂ.ବି ଓ ବିଣ—ଯେ ଅନ୍ୟର ମନକୁ ମୋହିତ କରିଥାଏ
Hrudaya chaura —One's sweetheart; charmer.

ହୃଦୟ ତନ୍ତ୍ରୀ—ସଂ ବି (ରୂପକ କର୍ମଧାରୟ)—୧ । ହୃଦୟରୂପ ବୀଣା; ବୀଣା
Hrudaya tantri ରୂପେ କଳ୍ପିତ ହୃଦୟ—
1. The heart compared to a lyre. ୨ । ହୃଦୟ ଗ୍ରନ୍ଥି (ଦେଖ)—2. Hrudaya granthi (See).

ହୃଦୟ ତୋଷୀ—ସଂ. ବି [ ହୃଦୟତୋଷିନ୍ ଶବ୍ଦ; ୧ମା ୧ବ. ହୃଦୟ+ତୁଷ୍
Hrudaya toshī ଧାତୁ+କର୍ତ୍ତୃ. ଇନ୍ )—ହୃଦୟାନନ୍ଦକ (ଦେଖ)—
(ହୃଦୟତୋଷିଣୀ—ସ୍ତ୍ରୀ) Hrudayānandak (See)

ହୃଦୟ ଦର୍ପଣ—ସ. ବି ( ରୂପକ )—ହୃଦୟରୂପ ଦର୍ପଣ; ଦର୍ପଣରୂପେ
Hrudaya darpana କଳ୍ପିତ ହୃଦୟ—The heart
(ହୃଦ୍‌ଦର୍ପଣ—ଅନ୍ୟରୂପ) or mind compared to a mirror.

ହୃଦୟ ଧନ(ନିଧି)—ସ. ବି (ପୁଂ ଓ ସ୍ତ୍ରୀ)—ପ୍ରାଣଧନ; ପ୍ରାଣନିଧି; ଯାହାକୁ
Hrudaya dhana (nidhi) ରତ୍ନ ପରି ମନୁଷ୍ୟ ହୃଦୟସହିତ ସ୍ନେହ କରେ—The gem or idol of one's heart.
(ହୃଦ୍‌ଧନ, ହୃନ୍ନିଧି—ଅନ୍ୟରୂପ)

ହୃଦୟ ନିକେତ(ନିକେତନ)—ସ.ବି—୧ । (ରୂପକ) ହୃଦୟରୂପ ଗୃହ—
Hrudaya niketa (niketana) The mind. compared to a house. ୨ । ( ବହୁବ୍ରୀହି )
(ହୃନ୍ନିକେତନ—ଅନ୍ୟରୂପ) ମନସିଜ; କାମ—2. Cupid.

ହୃଦୟପଟ୍ଟ—ସ. ବି ( ରୂପକ )—ଚିତ୍ରରୂପ ପଟ୍ଟ; ଚିତ୍ରପଟ୍ଟ—
Hrudaya pata The heart compared to a canvas of the painter.

ହୃଦୟ ପାଇବା—ଦେ. ବି—ବିଶ୍ୱାସ ଜନ୍ମିବା—Trust being
Hrudaya pāibā begotten. (ହି—ବିଶ୍ୱାସଙ୍କର ବିଶ୍ୱାସ ଜନ୍ମା विश्वास होना ତୁମ୍ଭେ ଅଟ ଅତି ପ୍ରିୟ, ତୁମ୍ଭଠାରେ ଆମ୍ଭର ପାଇଲା ହୃଦୟ—କୃଷ୍ଣସିଂହ ମହାଭାରତ ଆଦି ।) ଦେ. କ୍ରି—କୌଣସି ବ୍ୟକ୍ତିର ଅଭିପ୍ରାୟ ଜାଣିବା—To know the intention of a person.

ହୃଦୟ ପୀଡ଼ା—ସ. ବି—ହୃଦ୍‌ରୋଗ (ଦେଖ)—
Hrudaya pirdā Hrudroga (See).

ହୃଦୟ ପ୍ରମାଥୀ—ସଂ ବିଣ. ପୁଂ (ହୃଦୟ+ପ୍ର+ମଥ ଧାତୁ+କର୍ତ୍ତୃ ଇନ୍;
Hrudaya pramāthī ୧ମା. ୧ବ)—୧ । ଯେ ବା ଯାହା
( ହୃଦୟ ପ୍ରମାଥିନୀ—ସ୍ତ୍ରୀ ) ମନରେ ବିଶୃଙ୍ଖଳ୍ୟ ଜନ୍ମାଏ—
1. Causing disturbance of mind. ୨ । ମନର ମୋହନକାରୀ—2. Charming; enchanting.

ହୃଦୟ ଫଳକ—ସଂ. ବି ( ରୂପକ )—ଫଳକରୂପ ହୃଦୟ; ହୃଦୟପଟ୍ଟ—
Hrudaya phalaka The mind compared to a plate, slab or slate.

ହୃଦୟବତ୍ତା(ତ୍ତ୍ୱ)—ସଂ.ବି (ହୃଦୟବତ୍+ଭାବାର୍ଥେ ତା) ହୃଦୟର ଉଦାରତା
Hrudaya battā(ttwa) —Magnanimity of heart.

ହୃଦୟ ବନ୍ଧୁ—ଦେ. ବି—ଘନିଷ୍ଠ ବନ୍ଧୁ; ପ୍ରାଣବନ୍ଧୁ—
Hrudaya bandhu Intimate friend.
হৃদয়েরবন্ধু हृदबंधु

ହୃଦୟ ବଳ—ସଂ ବି—ମାନସିକ ବଳ ବା ସାହସ; ହିମ୍ମତ—
Hrudaya bala (ହୃଦ୍‌ବଳ—ଅନ୍ୟରୂପ) Moral courage.

ହୃଦୟ ବଲ୍ଲଭ—ସଂ ବି. ପୁଂ ( ୬ଷ୍ଠୀ ତତ୍ )—ହୃଦୟେଶ (ଦେଖ)—
Hrudaya ballabha Hrudayeśa ( See )
(ହୃଦୟବଲ୍ଲଭା—ସ୍ତ୍ରୀ) ସଂ ବିଣ. ପୁଂ—ପ୍ରିୟତମ ( ବ୍ୟକ୍ତି )—
(ହୃଦୟବଲ୍ଲଭୀ—ଦେ. ସ୍ତ୍ରୀ) Dearest (person).

ହୃଦୟବାନ୍—ସଂ ବଣ, ପୁଂ ( ହୃଦୟବତ୍ ଶବ୍ଦ; ହୃଦୟ + ଅସ୍ତି ଅର୍ଥରେ ବତ୍ ୧ମା· ୧ବ)—୧ । ପ୍ରଶସ୍ତଚେତାଃ; ଉଦାରଚେତ୍ତା—1. Liberal-minded. ୨ । ସଦନ୍ତଃକରଣ—2. Good hearted. ୩ । ବଦାନ୍ୟ—3. Liberal; magnanimous. ୪ । ପ୍ରେମିକ—4 Loving; affectionate; having a loving heart. ୫ । ଦୟାଳୁ—5. Kind-hearted. ୬ । ସ୍ନେହଶୀଳ—6. Affectiona te.
Hrudaya bān
( ହୃଦୟବତୀ—ସ୍ତ୍ରୀ )
(ହୃଦୟବତ୍ତ୍ୱ—ବି)

ହୃଦୟ ବିଦାରକ—ସଂ. ବଣ ପୁଂ. [ ହୃଦୟ + ବି + ଦୃ ଧାତୁ + କର୍ତ୍ତୃ ଅକ]—ମର୍ମଭେଦୀ; ଅତ୍ୟନ୍ତ ଦୟା, କରୁଣା ବା ଶୋକ ଉଦ୍ଦୀପକ—Heart-rending.
Hṛudaya bidāraka
[ହୃଦୟବିଦାରିକା – ସ୍ତ୍ରୀ]

ହୃଦୟ ବିମ୍ବ—ସଂ. ବି [ରୂପକ]—ହୃଦ୍‌ବିମ୍ବ [ଦେଖ]—
Hṛudaya bimba Hṛud-bimba (See).

ହୃଦୟ ବିହାରୀ—ସଂ. ବିଣ ପୁଂ—(ହୃଦୟ ବିହାରିନ୍ ଶବ୍ଦ)—ଯେ ସର୍ବଦା କୌଣସି ବ୍ୟକ୍ତିଙ୍କର ପ୍ରେମର ବା ଭାବନାର ବିଷୟୀଭୂତ ହୋଇଥାଏ—Subject of one's constant thoughts.
Hṛudaya bihāri
(ହୃଦୟ ବିହାରିଣୀ—ସ୍ତ୍ରୀ)

ହୃଦୟ ବେଦନା (ବ୍ୟଥା)—ସଂ. ବି—ହୃତ୍‌ପୀଡ଼ା (ଦେଖ)—
Hṛudaya bedanā (byathā) Hṛut-pirdā (See).

ହୃଦୟବେଧୀ—ସଂ. ବିଣ. ପୁଂ—(ହୃଦୟ ବେଧିନ୍ ଶବ୍ଦ) ୧ । ହୃଦୟ ବିଦାରକ ( ଦେଖ )—1. Hṛudaya bidāraka (See). ୨ । ମନକୁ ଅତ୍ୟନ୍ତ ମୋହିତ କରିବା (ବ୍ୟକ୍ତି)—2. Charming.
Hṛudaya bedhī
(ହୃଦୟ ବେଧିନୀ—ସ୍ତ୍ରୀ)

ହୃଦୟଭାଗୀ—ସଂ. ବିଣ. ପୁଂ—( ହୃଦୟ ଭାଗିନ୍ ଦେ )—ହୃଦୟ ବିହାରୀ (ଦେଖ)—Hṛudaya bihāri (See).
Hṛudaya bhāgi
(ହୃଦୟ ଭାଗିନୀ—ସ୍ତ୍ରୀ)

ହୃଦୟଭେଦୀ—ସଂ. ବିଣ. ପୁଂ—( ହୃଦୟଭେଦିନ୍ ଶବ୍ଦ )—ହୃଦୟ ବିଦାରକ ( ଦେଖ )—Hṛudaya bidāraka (See)
Hṛudaya bhedi
(ହୃଦୟ ଭେଦିନୀ—ସ୍ତ୍ରୀ)

ହୃଦୟ ମଣି—ସଂ. ବି—ହୃଦୟ ଧନ (ଦେଖ)
Hṛudaya maṇi Hṛudaya dhana (See).

ହୃଦୟ ମନ୍ଦିର—ସଂ. ବି—(ରୂପକ)—ହୃଦୟରୂପଗୃହ—
Hṛudaya mandira The heart compared to a temple or house.

ହୃଦୟ ରତ୍ନ—ସଂ. ବି—ହୃଦୟ ଧନ (ଦେଖ)—
Hṛudaya ratna Hṛudaya dhana (See).

ହୃଦୟ ରକ୍ତ—ଦେ. ବି—ହୃତ୍‌ପିଣ୍ଡର ରକ୍ତ—
Hṛudaya rakta Heart-blood,
হৃদয়ের রক্ত हृदयका लोहू

ହୃଦୟର ସହିତ—ଦେ. କ୍ରି. ବିଣ—ସର୍ବାନ୍ତଃକରଣରେ; ମନରେ କପଟମାତ୍ର ନରଖି—Heartily.
Hṛudayara sahita
হৃদয়ের সহিত हृदय सहित

ହୃଦୟ ରସାୟନ—ସଂ. ବିଣ—(୬ଷ୍ଠୀତତ୍)—ହୃଦୟର ରସାୟନ ବା ମହୌଷଧ ସ୍ୱରୂପ; ଯାହା ହୃଦୟକୁ ବା ମନକୁ ଶୀତଳ ବା ଆନନ୍ଦିତ କରଇ—Soothing to the heart; heart-soothing.
Hṛudaya rasāyana

ହୃଦୟ ରାଜ୍ୟ—ସଂ. ବି—(ରୂପକ)—ହୃଦୟରୂପ ରାଜ୍ୟ; ରାଜ୍ୟରୂପେ କଳ୍ପିତ ହୃଦୟ—The heart compared to a kingdom.
Hṛudaya rājya

ହୃଦୟରେ ନାଚିବା—ଦେ. କ୍ରି—ସର୍ବଦା ମନରେ ପଡ଼ିବା—To be remembered; to be always present in the mind.
Hrudayare nāchibā
(ହୃଦୟରେ ନୃତ୍ୟ କରିବା—ଅନ୍ୟରୂପ)
হৃদয়ে নৃত্যকরা हृदयमे नाचना

ହୃଦୟ ଲକ୍ଷ୍ମୀ—ସଂ. ବି. ସ୍ତ୍ରୀ—(୬ଷ୍ଠୀତତ୍)—ହୃଦୟର ଲକ୍ଷ୍ମୀ ସ୍ୱରୂପା; ଯେଉଁ ସ୍ତ୍ରୀକୁ ସର୍ବଦା ହୃଦୟରେ ପୂଜା କରାଯାଇ ଥାଏ—A female who is the idol of one's heart.
Hṛudaya lakshmi

ହୃଦୟ ସଙ୍ଘଟ୍ଟ—ସଂ. ବି—(୬ଷ୍ଠୀତତ୍)—ହୃତ୍‌ପିଣ୍ଡର ଗତିରୋଧ—Stoppage of heat-beat.
Hṛudrya samghaṭṭa

ହୃଦୟସ୍ଥ—ସଂ. ବିଣ. ପୁଂ—(ହୃଦୟ + ସ୍ଥା ଧାତୁ + କର୍ତ୍ତୃ ଅ)—ହୃଦୟରେ ବା ମନରେ ସ୍ଥିତ, ଭାବନାର ବା ଚିନ୍ତାର ବିଷୟୀଭୂତ—Subject of one's thought.
Hrudayastha
(ହୃଦୟସ୍ଥା—ସ୍ତ୍ରୀ)

ହୃଦୟ ସ୍ଥାନ—ସଂ. ବି—ବକ୍ଷସ୍ଥଳ; ଛାତି; ଭୁଜାନ୍ତର; ବୁକ—
Hṛudaya sthāna The breast, chest.

ହୃଦୟସ୍ପର୍ଶୀ—ସଂ. ବିଣ—(ପୁଂ)—(ହୃଦୟ + ସ୍ପୃଶ୍ ଧାତୁ + କର୍ତ୍ତୃ ଇନ୍, ହୃଦୟ ସ୍ପର୍ଶିନ୍ ଶବ୍ଦ ୧ମା. ୧ବ)—୧ । ମର୍ମସ୍ପର୍ଶୀ; ଚିତ୍ତର ଅତିଶୟ ଆନନ୍ଦକର—1. Very charming. ୨ । ଚିତ୍ତର ଅତିଶୟ ଦୁଃଖକର—2 Heart-rending; piteous.
Hṛudaya sparśi
(ହୃଦୟସ୍ପର୍ଶିନୀ—ସ୍ତ୍ରୀ)

ହୃଦୟହାରୀ—ସଂ. ବିଣ. ପୁଂ—ମନକୁ ମୋହିତକାରୀ—Charming.
Hṛudaya hari
(ହୃଦୟହାରିଣୀ—ସ୍ତ୍ରୀ)

ହୃଦୟ ହୀନ—ସଂ. ବିଣ. ପୁଂ—( ନଞ୍‌ତତ୍ )—ଦୟାମାୟା ଶୂନ୍ୟ—Cruel; devoid of soft sentiments.
Hṛudaya hina
(ହୃଦୟ ହୀନା—ସ୍ତ୍ରୀ) (ହୃଦୟହୀନତା—ବି)

ହୃଦୟାକାଶ—ସଂ. ବି—(ରୂପକ)—ଆକାଶରୂପେ କଳ୍ପିତ ହୃଦୟ—The heart compared to the sky.)
Hṛudayākāśa

ହୃଦୟାତ୍ମା—ସଂ. ବି—(ହୃଦୟାତ୍ମନ୍ ଶବ୍ଦ. ୧ମା ୧ବ, ହୃଦୟ + ଆତ୍ମନ୍)—କଙ୍କପକ୍ଷୀ ( ଶବ୍ଦଚନ୍ଦ୍ରିକା )—A kind of crane.
Hṛudayātmā

ହୃଦୟାନନ୍ଦ—ସଂ. ବି(୬ଷ୍ଠୀ ତତ୍)—ହୃଦୟର ଆନନ୍ଦ; ମନର ଖୁସି—Pleasure; joy of heart. ୨ । ବି. ପୁଂ—ଲୋକଙ୍କୁ ଦିଆଯିବା ନାମ—A name given to males.
Hṛudayānanda

ହୃଦୟାନନ୍ଦକ—ସଂ.ବିଣ.ପୁଂ—(ହୃଦୟ+ଆନନ୍ଦକ)—ଯାହା ହୃଦୟରେ
Hṛudayanandaka ଆନନ୍ଦ ଜନ୍ମାଏ—Producing joy in the heart; very pleasing.
ହୃଦୟାନନ୍ଦଦାୟକ } ଅନ୍ୟରୂପ.
ହୃଦୟାନନ୍ଦନ
ହୃଦୟାନନ୍ଦୀ
ହୃଦୟନନ୍ଦକା } ସ୍ତ୍ରୀ
ହୃଦୟାନନ୍ଦଦାୟିକା
ହୃଦୟାନନ୍ଦନା
ହୃଦୟାନନ୍ଦିନୀ

ହୃଦୟାନନ୍ଦ ବିଦ୍ୟାର୍ଣ୍ଣବ—ଦେ. ବି (ନାମ)—ବଙ୍ଗୀୟ ଖ୍ୟାତନାମା
Hṛudayananda bidyarnnaba ସ୍ୱର୍ଗତ ଜନୈକ ଜ୍ୟୋତିଷୀ—Name of a late famous astrologer of Bengal. [ଦ୍ର—ଏ ଫଳିତ ଓ ଗଣିତ ଜ୍ୟୋତିଷରେ ମହାପଣ୍ଡିତ ଥିଲେ ଓ ସାର୍ବଭୌମ ହୋଇଥିଲେ। ଜ୍ୟୋତିଃସାରସଂଗ୍ରହ ନାମକ ଗ୍ରନ୍ଥ ଏହାଙ୍କ ଦ୍ୱାରା ରଚିତ ହୋଇଥିଲା। ଓଡ଼ିଶାର ସ୍ୱର୍ଗତ ଚନ୍ଦ୍ରଶେଖରଙ୍କ ପରେ ଏ ମହାବଳରେ ଚନ୍ଦ୍ରଗ୍ରହଣ ଗଣନା କରି ଦେଇଥିବାର କିମ୍ବଦନ୍ତୀ ଅଛି।]

ହୃଦୟାରାମ—ସଂ. ବିଣ. ପୁଂ—(ହୃଦୟ+ଅଭିରାମ; ୬ଷ୍ଠୀତତ୍)—ହୃଦୟା-
Hṛudayārāma ନନ୍ଦକ—Very pleasing; charming.
(ହୃଦୟାରାମା—ସ୍ତ୍ରୀ)

ହୃଦୟାଳୁ—ସଂ. ବିଣ—(ହୃଦୟ+ଆଳୁ; ଭକ୍ତ, ଦୟାଳୁ, ନିଦ୍ରାଳୁ,
Hṛudayālu ଭୟାଳୁ)—ହୃଦୟବାନ୍ (ଦେଖ)—
(ହୃଦୟାଳୁତା—ବି) Hrudayabān (See)

ହୃଦୟିକ—ସଂ ବିଣ ପୁଂ—(ହୃଦୟ+ଅସ୍ତ୍ୟର୍ଥରେ ଇକ)—
Hṛudayika ହୃଦୟବାନ୍ (ଦେଖ)—Hrudayabān (See)
(ହୃଦୟିକା—ସ୍ତ୍ରୀ)

ହୃଦୟୀ—ସଂ.ବିଣ ପୁଂ—(ହୃଦୟିନ୍ ଶବ୍ଦ, ହୃଦୟ+ଇନ୍)—ହୃଦୟବାନ୍
Hṛudayī (ଦେଖ)—Hrudayabān(See)
(ହୃଦୟିନୀ—ସ୍ତ୍ରୀ)

ହୃଦୟେଶ—ସଂ. ବିଣ, ପୁ—(୬ଷ୍ଠୀ ତତ୍; ହୃଦୟର ଈଶ=ପ୍ରଭୁ)—୧।
Hṛudayeśa ପତି;ଭର୍ତ୍ତା; ସ୍ୱାମୀ (ବିବାହିତ୍ତରେ)—1. Husband
[ହୃଦୟେଶା, ହୃଦୟେଶ୍ୱରୀ—ସ୍ତ୍ରୀ] ୨। ପ୍ରେମର ପାତ୍ର; ଯେଉଁ ପୁରୁଷଙ୍କ ପ୍ରତି କୌଣସି ସ୍ତ୍ରୀ ବିଶେଷ ଅନୁରକ୍ତା; ଯେଉଁ ପୁରୁଷ କୌଣସି ସ୍ତ୍ରୀଙ୍କ ଚିତ୍ତକୁ ସମ୍ପୂର୍ଣ୍ଣରୂପେ ଅଧିକାର କରଥାନ୍ତି; ଚିତ୍ତେଶ୍ୱର; ଚିତ୍ତେଶ୍ୱର; ପ୍ରିୟତମ ପୁରୁଷ—2. Sweetheart male; beloved male; lord of a female's heart.
(ହୃଦୟେଶ୍ୱର—ଅନ୍ୟରୂପ)

ହୃଦୟୋନ୍ମାଦକ—ସଂ. ବିଣ ପୁଂ—ହୃଦୟପ୍ରମାଥୀ (ଦେଖ)—
Hṛudayonmādaka Hṛudayapramāthī (See)
[ହୃଦୟୋନ୍ମାଦୀ—ଅନ୍ୟରୂପ]
[ହୃଦୟୋନ୍ମାଦକା, ହୃଦୟୋନ୍ମାଦିନୀ—ସ୍ତ୍ରୀ]

ହୃଦରେ ଗାର କାଟିବା(ପକାଇବା)—ଦେ. କ୍ରି—(କୌଣସି କଥାକୁ)
Hṛudare gāra kāṭibā(pakāibā) ହୃଦୟରେ ଚିରକାଳ ରଖିବା—To preserve a matter in one's heat permanently. [ଦ୍ର—ଏ ପ୍ରତିଜ୍ଞା ମୋହର ଜାଣିଥିବେ କେବେ ଅନ, ହୃଦରେ ଗାର କାଟି ଥାଉ ଦୁର୍ଯ୍ୟୋଧନ—କୃଷ୍ଣସିଂହ ମହାଭାରତ ଉଦ୍ୟୋଗ—(ହୃଦରେ ଗାର କାଟି ହୋଇଯିବା, ହୃଦୟରେ ଗାର ପଡ଼ିବା—ଅ, ରୂପ)

ହୃଦାକାଶ—ସ. ବି—(ରୂପକ)—ଆକାଶରୂପେ କଳ୍ପିତ ହୃଦୟ—
Hṛudākāśa The heart compared to the sky

ହୃଦାନନ୍ଦ—ସ. ବି—(ହୃଦ+ଆନନ୍ଦ)—ହୃଦୟାନନ୍ଦ (ଦେଖ)—
Hṛudānanda Hṛudayānanda (See)
ଦେ. ବି ପୁଂ—ପୁରୁଷଙ୍କୁ ଦିଆଯିବା ନାମ—
A name given to males.

ହୃଦାନନ୍ଦକ—ସ. ବିଣ ପୁଂ—ହୃଦୟାନନ୍ଦକ (ଦେଖ)—
Hṛudānandaka Hṛudayānandaka (See)
[ହୃଦାନନ୍ଦକର—ଅନ୍ୟରୂପ]
(ହୃଦାନନ୍ଦକା, ହୃଦାନନ୍ଦକରୀ—ସ୍ତ୍ରୀ)

ହୃଦାମ୍ବୁଜ—ଗ୍ରା. ବି—(ସ. ହୃଦମ୍ବୁଜ)—ହୃଦ୍ପଦ୍ମ (ଦେଖ)—
Hṛudāmbuja Hṛudpadma (See)

ହୃଦାଶୟ—ସ. ବି—(ରୂପକ, ହୃଦ୍‌ରୂପ ଆଶୟ=ଆଧାର)—[ଆଧାର
Hṛudāśaya ବା ପୁଷ୍କରିଣୀ ବା ସାଗରରୂପେ କଳ୍ପିତ] ଅନ୍ତଃକରଣ; ମନ—Mind; heart (compared to a reservoir of thoughts).

ହୃଦାସନ—ସଂ. ବି—(ରୂପକ)—ଆସନରୂପେ କଳ୍ପିତ ହୃଦୟ—
Hṛudāsana Heart compared to a mat or seat.

ହୃଦି—ସଂ. ବି—(ହୃତ୍ ଓ ହୃଦ୍‌ର ୭ମୀ ବିଭକ୍ତିରେ ରୂପ; ୧ବଚନ)—
Hrudi ହୃଦୟରେ; ଅନ୍ତଃକରଣରେ—In the heart; in the mind. [ଦ୍ର—ଅଗାଧ ବୋଧ ବ୍ରହ୍ମ ଅବ, ଯାହା ଚିନ୍ତନ୍ତି ସଦା ହୃଦି—ଜଗନ୍ନାଥ. ଭାଗବତ]
ଦେ. ବି—ହୃଦାନନ୍ଦର ଆଦରସୂଚକ ଡାକନାମ—
Nickname of Hṛudānanda.

ହୃଦିକା—ସଂ.ବି (ନାମ)—(ହୃଦ+କ+ସ୍ତ୍ରୀ ଆ)—କୃପାଚାର୍ଯ୍ୟଙ୍କ ମାତା—
Hṛudikā Name of the mother of Krupāchārjya.

ହୃଦିଲଗ୍ନ—ସଂ.ବିଣ—(ଅଲୁକ୍;ହୃଦି=ହୃଦୟରେ+ଲଗ୍ନ)—ଯାହା ମନରେ
Hṛudilagna ଲାଗି ଯାଇଥାଏ; ହୃଦୟରେ ମିଳିତ—Joined with or attached to one's heart.

ହୃଦିସ୍ପୃକ୍—ସଂ. ବିଣ— ଅଲୁକ; ହୃଦି=ହୃଦୟରେ+ସ୍ପୃଶ ଧାତୁ=
Hṛudispṛuk ଛୁଇଁବା+କ୍ୱିପ୍; ହୃଦିସ୍ପୃଶ୍ ଶବ୍ଦର ୧ମା, ଏକବଚନ)—୧। ପ୍ରାଣସ୍ପର୍ଶୀ; ହୃଦୟସ୍ପର୍ଶୀ—Touching to the quick. ୨। ମର୍ମଭେଦୀ—2. Heart-rending. ୩। ଅତି ମନୋହର—3. Very charming; enchanting.

ହୃଦୁ(ଦ)ଙ୍ଗ—ଦେ. ବିଣ—ହୁରୁଦଙ୍ଗ୍ (ଦେଖ)—
Hṛudu(da)ṅga Hurdaṅg (See)
[ହୃଦୁଙ୍ଗୀ—ସ୍ତ୍ରୀ] (ହୃଦ[ଦୁ]ଙ୍ଗିଆ—ଅନ୍ୟରୂପ)

ହୃଦ୍‌ଗତ—ସଂ. ବଣ—( ହୃଦ୍ +ଗମ ଧାତୁ+କର୍ତ୍ତ ତ )—୧ । ହୃଦୟସ୍ଥ;
Hṛudgata ମନୋଗତ; ମାନସିକ; ଅନ୍ତରକ—Mental; that which is in the mind. ୨ । ସର୍ବଦା ଚିନ୍ତାର ବିଷୟୀଭୂତ—2. Subject of one's constant thoughts.

ହୃଦ୍ଗୋଳ—ସଂ ବ—ପୌରାଣିକ ପର୍ବତ ବିଶେଷ (ଶବ୍ଦକଳ୍ପଦ୍ରୁମ)—
Hṛudgola Name of a mythological mountain.

ହୃଦ୍‌ଗ୍ରନ୍ଥ—ସଂ. ବ—ହୃଦ୍‌ବ୍ରଣ [ସୁଶ୍ରୁତସଂହିତା] (ଦେଖ)—
Hṛudgrantha Hrudbraṇa (See)

ହୃଦ୍‌ଦେଶ—ସଂ. ବ—୧ । (ରୂପକ) ହୃଦୟରୂପକ ଦେଶ— 1. Mind compa-
Hṛudbesa red to a country. ୨ । (୬ଷ୍ଠୀ ତତ୍) ହୃଦୟସ୍ଥାନ; ଛାତି; ବୁକୁ—2. The breast, the chest.

ହୃଦ୍ଧନ—ସଂ. ବ—(୬ଷ୍ଠୀ ତତ୍) ହୃଦୟଧନ (ଦେଖ)—
Hṛuddhana Hṛudaya dhana (See)

ହୃଦ୍‌ବନ୍ଧକ—ସଂ. ବ—ଜଠର [ଶବ୍ଦଚନ୍ଦ୍ରିକା]—
Hṛudbanṭaka The belly

ହୃଦ୍‌ବିମ୍ବ—ସଂ. ବ—[ରୂପକ]—୧ । ବିମ୍ବ ବା ଛବିରୂପେ କଳ୍ପିତ ହୃଦୟ-
Hṛudbimba 1. The heart compared to a picture. ୨ । (ମ. ପ. ଲୋ) ହୃଦୟରେ ବା ମନରେ ଯେଉଁ ଛବି ଅଙ୍କିତ ହୋଇ ରହିଥାଏ—2. A picture depicted in the mind; a mental picture.

ହୃଦ୍‌ବିଳାସୀ—ସଂ. ବ ପୁଂ—(ଉପପଦ ତତ୍ପୁରୁଷ; ହୃଦ୍‌ବିଳାସିନ୍ ଶବ୍ଦ,
Hṛudbilāsī ୧ମା. ୧ବ)— ହୃଦୟବିହାରୀ [ଦେଖ]—
[ହୃଦ୍‌ବିଳାସିନୀ—ସ୍ତ୍ରୀ] Hṛudayabihārī (See)

ହୃଦ୍‌ବିହାରୀ—ସଂ. ବଣ—[ହୃଦ୍‌ବିହାରିନ୍ ଶବ୍ଦ ୧ମା. ୧ବ ଉପପଦ
Hṛudbihārī ତତ୍ପୁରୁଷ ]— ହୃଦୟବିହାରୀ ( ଦେଖ)—
[ହୃଦ୍‌ବିହାରିଣୀ—ସ୍ତ୍ରୀ] Hṛudayabihārī (See)

ହୃଦ୍‌ବୋଧ—ସଂ. ବ—(୬ଷ୍ଠୀ ତତ୍)—୧ । ବୁଝିପାରିବା—1. Compre-
Hṛudbodha hension. ୨ । ମର୍ମାବଧାରଣ; ମର୍ମ ବୁଝିବା—2. Understanding; realising the import of a matter. ୩ । ମନର ସମସ୍ତ ସନ୍ଦେହ ଦୂରୀଭୂତ ହେବା ଜନିତ ସନ୍ତୋଷ—3. Satisfaction due to the removal of all doubts from one's mind.

ହୃଦ୍‌ବ୍ୟଥା—ସଂ. ବ—(୬ଷ୍ଠୀ ତତ୍)—ହୃତ୍‌ପୀଡ଼ା (ଦେଖ)—
Hṛudbyathā Hṛut-pirdā (See)

ହୃଦ୍‌ବ୍ରଣ—ସଂ. ବ—(ମ. ପ ଲୋ)—ହୃଦୟ ମଧ୍ୟରେ ଉଠିବା ମାଂସଯୁକ୍ତ
Hṛudbrapa ବ୍ରଣରୋଗ ବିଶେଷ—A tumour in the heart.

ହୃଦ୍ୟ—ସଂ ବଣ (ହୃଦ୍ + ଯ)—୧ । ମନୋହର—1. Pleasing;
Hṛudya charming. ୨ । ରମଣୀୟ—
(ହୃଦ୍ୟା—ସ୍ତ୍ରୀ) 2. Lovely; amiable. ୩ । ମନଲାଖି; ରୁଚିକର—3. Suiting to one's taste, fancy or choice. ୪ । ଯାହା ମନକୁ ପାଏ—4. Agreeable. ୫ । କୃତଜ୍ଞ—5. Grateful. ୬ । ଯାହା ଖାଇବାକୁ ରୁଚିକର ( ହି. ଶ )—6. Tasteful; savoury. ୭ । ସ୍ୱାଦୁ (ହି. ଶ)-7. Sweet. ୮ । ଅନ୍ତରକ; ମାନସିକ (ହି. ଶ)—8. Internal; mental. ସଂ ବ—୧ । କପିତ୍ଥ; କଇଥ (ହି. ଶ)—1. Woodapple. ୨ । ଧଳା ଜୀରା (ହି. ଶ)—2. White cumin seed. ୩ । ଦହି [ହି ଶ]—3. Curd; buttermilk. ୪ । ମଧୁ (ହି, ଶ) 4. Honey. ୫ । ମହୁଲରୁ ପ୍ରସ୍ତୁତ ମଦ୍ୟ (ହି. ଶ) 5. Wine distilled from Mahwa flower. ୬ । ଶତ୍ରୁକୁ ବଶୀଭୂତ କରିବା ପାଇଁ ପ୍ରଯୁକ୍ତ ମନ୍ତ୍ରବିଶେଷ—6. A mystic formula used to bring an enemy under one's control.

ହୃଦ୍ୟଗନ୍ଧ—ସଂ ବ ( ବହୁବ୍ରୀହି )—୧ । ବେଲ ଗଛ—1. The
Hṛudya gandha Marmalus tree. ୨ । କ୍ଷୁଦ୍ର ଜୀରକ—2. Small cumin seed. ୩ । ସୌବର୍ଚ୍ଚଳ ଲବଣ—3. Sachal salt.
( ହୃଦ୍ୟଗନ୍ଧା—ସ୍ତ୍ରୀ. ବଣ) ସଂ ବଣ. ପୁଂ ( ବହୁବ୍ରୀହି ) - ଯାହାର ଗନ୍ଧ ମନୋହର—Having charming scent.

ହୃଦ୍ୟଗନ୍ଧା—ସଂ ବ – ଜାଈ ଫୁଲ-Jasminum Grandiflorum.
Hṛudyagandhā ସଂ ବଣ. ସ୍ତ୍ରୀ—ହୃଦ୍ୟ ଗନ୍ଧର ସ୍ତ୍ରୀଲିଙ୍ଗ—Feminine of Hṛudyagandha.

ହୃଦ୍ୟତା(ତ୍ୱ —ସଂ ବ [ ହୃଦ୍ୟ + ଭାବ ତା,ତ୍ୱ ]—୧ । ପ୍ରଣୟ; ପ୍ରେମ—
Hṛudyatā(twa) 1. Love; attachment. ୨ । ସଦ୍‌ଭାବ—2. Amity; good feelings.

ହୃଦ୍ୟା—ସଂ ବଣ. ସ୍ତ୍ରୀ—( ହୃଦ୍ୟ + ଆ )—ହୃଦ୍ୟର ସ୍ତ୍ରୀଲିଙ୍ଗ—
Hṛudyā Feminine of Hṛudya
ସଂ ବ—୧ । ବୃଦ୍ଧି ନାମକ ଔଷଧି [ ହି. ଶ ]—1. Name of a rare herb. ୨ । ଛେଳି; ମାଈ ଛେଳି ( ହି. ଶ. )—2. Female goat.

ହୃଦ୍ୟାଂଶୁ—ସଂ ବ—୧ । ( କର୍ମଧା )—ଚନ୍ଦ୍ର କିରଣ—
Hṛudyāmsu 1. Moon light; moon's rays. ୨ । [ ବହୁବ୍ରୀହି ]—ଚନ୍ଦ୍ରମା ( ହି. ଶ )—2. The moon.

ହୃଦ୍ରତ୍ନ—ସଂ ବ—ହୃଦୟରତ୍ନ (ଦେଖ)—
Hṛudratna Hṛudaya ratna (See)

ହୃଦ୍ରାଜ୍ୟ—ସଂ ବ [ରୂପକ]—ହୃଦୟରାଜ୍ୟ (ଦେଖ)—
Hṛudrājya Hṛudaya rājya (See)

ହୃଦ୍ରୋଗ—ସଂ ବ—୧ । କୁମ୍ଭ ରାଶି ( ଶୁଦ୍ଧ ପାଠିକା )—
Hṛudroga 1. Aquaria (one of the 12 signs of the zodiac). ୨ । କାମ; ମଦନ

(ମେଦିନୀ)—2. Cupid. ୩ । ସାଂସାରିକ କାମନା (ମେଦିନୀ)—3. Worldly desire. ୪ । ଆୟୁର୍ବେଦୋକ୍ତ ହୃଦ୍‌ରୋଗ ବା ହୃଦୟରେ ଅନୁଭୂତ ବ୍ୟଥା—4. Pain felt in the heart [ ଦ୍ର—ଏହା ପାଞ୍ଚ ପ୍ରକାର— ବାତିକ, ପୈତ୍ତିକ, ଶ୍ଳୈଷ୍ମିକ, ସାନ୍ନିପାତିକ ଓ କୃମିଜ । ] ୫ । ଆଧୁନିକ ଚିକିତ୍ସାଶାସ୍ତ୍ରୋକ୍ତ ହୃଦ୍‌ଯନ୍ତ୍ରର ରୋଗ—5. Heart disease [ ଦ୍ର—ଏହି ରୋଗରେ ହୃଦୟର ସ୍ପନ୍ଦନ ଅନିୟମିତ ହୋଇ ହଠାତ୍ ବନ୍ଦ ହୋଇଯାଏ ଓ ମୃତ୍ୟୁ ଘଟେ ।]

ହୃଦ୍‌ରୋଗବୈରୀ—ସଂ ବି—ଅର୍ଜୁନ ବୃକ୍ଷ (ଶବ୍ଦଚନ୍ଦ୍ରିକା)—
Hrudroga bairi Terminalia Arjuna tree.

ହୃଦ୍‌ରୋଗୀ—ସଂ. ବି. ବିଣ ପୁଂ ( ହୃଦ୍‌ରୋଗ+ଇନ୍, ୧ମା ୧ବ ]—
Hrudrogi ହୃଦ୍‌ରୋଗଗ୍ରସ୍ତ ବ୍ୟକ୍ତି—A man
[ ହୃଦ୍‌ରୋଗିଣୀ—ସ୍ତ୍ରୀ ] suffering from heart disease.

ହୃନ୍ମଣି—ସଂ. ବି—(ହୃଦ୍ + ମଣି )—ହୃଦୟ ଧନ (ଦେଖ)—1.
Hrunmani Hrudaya dhana (See). ୨ । ବକ୍ଷୋ-ଦେଶରେ ପରିହିତ ମଣି ଅଳଙ୍କାର—2. A gem worn on the breast.

ହୃଲ୍ଲାସ—ସଂ. ବି—(ହୃଦ୍ + ଲସ୍ ଧାତୁ+କରଣ ଅ, ସନ୍ଧି ଦ୍ୱାରା
Hrullasa ଦ୍ ; ଲ=ଲ୍ଲ)—ହୃଲ୍ଲେଖ (ହେମଚନ୍ଦ୍ର)—
[ଅନ୍ୟ ସଂ ନାମ—ହିକ୍କା, ହେକ୍କା, ପ୍ରଚ୍ଛର୍ଦ୍ଦିକା Hiccough.
ଧିକ୍ଷା (ହେମଚନ୍ଦ୍ର)]

ହୃଲ୍ଲେଖ—ସଂ. ବି—(ହୃଦ୍+ଲିଖ୍ ଧାତୁ+କର୍ମ ଅ; ସନ୍ଧି ଯୋଗୁ
Hrullekha ଦ୍ + ଲ=ଲ୍ଲ)—୧ । ଜ୍ଞାନ (ଶବ୍ଦାର୍ଣ୍ଣବ)—
1. Knowledge; perception. ୨ । ତର୍କ (ସିଦ୍ଧାନ୍ତ ଶେଷ)—2. Argument; reasoning. ୩ । ଅନୁତାପ; ଅନୁଶୋଚନା (ସୁବଳଚନ୍ଦ୍ର)—3. Regret; repentance.

ହୃଷ୍ (ଧାତୁ )—ସଂ—୧ । ହୃଷ୍ଟ ହେବା; ଆନନ୍ଦିତ ହେବା—
Hrush(root) 1. To be glad; to rejoice. ୨ । ଆନନ୍ଦିତ କରିବା—2. To gladden. ୩ । ଅଳୀକ ବା ମିଥ୍ୟା ପ୍ରତିପନ୍ନ କରିବା—3. To falsify.

ହୃଷି—ସଂ. ବି (ହୃଷ୍‌ଧାତୁ+ଭାବ ଇ)—୧ । ହର୍ଷ;ଆନନ୍ଦ (ହି. ଶ)—
Hrushi 1. Joy; delight. ୨ । (+କରଣ ଇ) କାନ୍ତି, ଜ୍ୟୋତିଃ (ହି. ଶ)—2. Lustre. ୩ । (+କର୍ତ୍ତୃ ଇ) ମିଥ୍ୟାବାଦୀ ବ୍ୟକ୍ତି (ହି. ଶ)—3. A liar. ଦେ. ବି ପୁଂ—ହୃଷୀକେଶର ଡାକ ନାମ — Nickname of Hrushikesa.

ହୃଷିତ—ସଂ. ବିଣ. ପୁଂ—( ହୃଷ୍ ଧାତୁ+କର୍ତ୍ତୃ ତ )—୧ । ପ୍ରୀତ;
Hrushita (ମେଦିନୀ)—1. Pleased. ୨ । ପ୍ରଫୁଲ୍ଲ; ହୃଷ୍ଟ;
(ହୃଷିତା—ସ୍ତ୍ରୀ) ଅହ୍ଲାଦିତ ( ମେଦିନୀ )—2. Overjoyed; joyous; rejoicing; delighted. ୩ । ପୁଲକିତ; ହୃଷ୍ଟରୋମା (ମେଦିନୀ)—3. Horripilated, with the furs standing on end. ୪ । ବିସ୍ମିତ (ମେଦିନୀ)—4. Forgetting; oblivious. ୫ । ପ୍ରଣତ ( ଧରଣୀ )—5. Humble; bent down.—୬ । ବର୍ମିତ (ଧରଣୀ)—6. Armoured. ୭ । ପ୍ରତିହତ (ହେମଚନ୍ଦ୍ର)—7. Obstructed.

ହୃଷୀ—ସଂ. ବି (ଦ୍ୱିବଚନ)—ଅଗ୍ନି ଓ ସୋମ ଦେବତାଦ୍ୱୟ (ମହାଭାରତ
Hrushi ମୋକ୍ଷଧର୍ମ) — The Fire-god and the Moon-god. ବିଣ. ପୁଂ—( ହୃଷ୍ ଧାତୁ+ଇନ୍;
(ହୃଷିଣୀ—ସ୍ତ୍ରୀ) ୧ମା. ୧ବ )—ହୃଷ୍ଟକାରୀ; ଅହ୍ଲାଦକ—Pleasing.

ହୃଷୀକ—ସଂ. ବି—(ହୃଷ୍ ଧାତୁ+କରଣ ଈକ )—୧ । ଇନ୍ଦ୍ରିୟ
Hrushika (ଅମର)—1. Organ of sense. ୨ । ପଞ୍ଚ ଜ୍ଞାନେନ୍ଦ୍ରିୟ (ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା, ତ୍ୱକ୍)—2. The 5 organs of sense. [ଉ—ହୃଷୀକ-ମାନଙ୍କ ଈଶ୍ୱର, ଶ୍ୟାମ ସୁନ୍ଦର କଳେବର। ଜଗନ୍ନାଥ, ଭାଗବତ ।]

ହୃଷୀକେଶ—ସଂ. ବି—(୬ଷ୍ଠୀ ତତ୍; ହୃଷୀକ=ଇନ୍ଦ୍ରିୟମାନଙ୍କର ଈଶ;
Hrushikesa ଇନ୍ଦ୍ରିୟମାନେ ଯାହାଙ୍କର ବଶୀଭୂତ—୧। ନାରାୟଣ, ବିଷ୍ଣୁଙ୍କର ନାମ ବିଶେଷ—1. A name of Bishnu. ୨ । ପୁଷ ମାସ (ହି. ଶ)—2. The month of Pusha. ୩ । ଶ୍ରୀକୃଷ୍ଣ (ହି. ଶ)—3. Srikrushna. ଦେ, ବି—୧ । ପୁରୁଷମାନଙ୍କୁ ଦିଅଯିବା
ह्रषीकेश; हृषीकेश ନାମ—1. A name given to males ୨ । (ନାମ)—ଏକ କ୍ଷୁଦ୍ର ସହର—2. Name of a small town near Hardwar. [ଦ୍ର—ଏହା ହରିଦ୍ୱାରଠାରୁ ୧୪ ମାଇଲ ଦୂର । ଏଠାରେ ଶ୍ରୀରାମଚନ୍ଦ୍ରଙ୍କ ଭ୍ରାତା ଭରତ ତପସ୍ୟା କରିଥିଲେ । ଗଙ୍ଗାଦେବୀ ଏଠାରେ ତ୍ରିବେଣୀ ନାମ ଧାରଣ କରିଅଛନ୍ତି । ଶ୍ରୀରାମଚନ୍ଦ୍ର ଓ ସୀତା ଦେବୀଙ୍କ ମନ୍ଦିର ଏଠାରେ ବିଦ୍ୟମାନ । ମନ୍ଦିର ସମ୍ମୁଖରେ ବ୍ରହ୍ମଗର୍ଭ ନାମକ କୁଣ୍ଡ ଅଛି । ଏହି କୁଣ୍ଡରେ ସ୍ନାନ କଲେ ଐହିକ ପାପ ଦୂର ହୁଏ ବୋଲି ହିନ୍ଦୁଙ୍କ ବିଶ୍ୱାସ । ମଦନମୋହନ, ତୀର୍ଥଦର୍ଶନ । ସାଧାରଣତଃ ଏହାକୁ ଋଷିକେଶ ବୋଲାଯାଏ ।]

ହୃଷୀକେଶି—ଦେ.ବି (ପ୍ରାଚୀନ,ପଦ୍ୟ)—୧ । ଶ୍ରୀକୃଷ୍ଣ—1. Srikrushna
Hrushikesi [ଉ—ତା ହାତେ ମୋହନ ବଂଶୀ ସୁହତେ ଥାଇ ବଇଁଶୀ, ଯାଇଥିଲେ ହୃଷୀକେଶି;ଦେଲ ସେ ଅଣି—ପ୍ରାଚୀ ରହସ୍ୟମଞ୍ଜରୀ] ୨ । ହୃଷୀକେଶ; ବିଷ୍ଣୁ—2 Bishnu

ହୃଷ୍ଟ—ସଂ ବିଣ—[ହୃଷ୍ ଧାତୁ+କର୍ତ୍ତୃ ଉ]—୧ । ହୃଷ୍ଟ; ପ୍ରସନ୍ନ (ହି. ଶ)
Hrushu 1. Delighted. ୨ । ମିଥ୍ୟାବାଦୀ—2. Speaking untruth. ସଂ ବି—୧ । ଅଗ୍ନି (ହି. ଶ)—1. Fire. ୨ । ସୂର୍ଯ୍ୟ (ହି ଶ)—2. The sun. ୩ । ଚନ୍ଦ୍ର (ହି.ଶ) 3. The moon.

ହୃଷ୍ଟ—ସଂ. ବିଣ. ପୁଂ—(ହୃଷ୍ ଧାତୁ+କର୍ତ୍ତୃ.ତ)—୧। ଅହ୍ଲାଦିତ;
Hrushta ଆନନ୍ଦିତ; ଜାତହର୍ଷ; ପ୍ରଫୁଲ୍ଲ—1. Joyful;
(ହୃଷ୍ଟା—ସ୍ତ୍ରୀ) overjoyed; glad, merry. ୨। ପ୍ରୀତ—
2. Pleased. ୩। ପୁଲକିତ; ରୋମାଞ୍ଚିତ (ବିଶ୍ୱ; ମେଦିନୀ)—3. Horripilated; (the furs) Standing out. ୪। ବିସ୍ମିତ (ବିଶ୍ୱ, ମେଦିନୀ)—4. Astonished. ୫। ପ୍ରହସିତ (ବିଶ୍ୱ, ମେଦିନୀ)—5. Laughing; smiling. ୬। ପ୍ରତିହତ (ହେମଚନ୍ଦ୍ର)— Obstructed. ବି—(ହୃଷ୍ ଧାତୁ+ଭାବ ତ)—ହର୍ଷ; ପୁଲକ; ଆନନ୍ଦ - [ ଉ—ଯେ ସାରଚନ୍ଦ୍ର ସେ ସାରଚନ୍ଦ୍ର ହୃଷ୍ଟ ଲଭିତ। ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ।]

ହୃଷ୍ଟଚିତ୍ତ—ସଂ. ବି—(କର୍ମଧା)—ପ୍ରଫୁଲ୍ଲ ଅନ୍ତଃକରଣ—Glad heart.
Hrushta chitta ବିଣ. ପୁଂ—(ବହୁବ୍ରୀହି)—ପ୍ରଫୁଲ୍ଲଚେତାଃ,
(ହୃଷ୍ଟଚିତ୍ତା—ସ୍ତ୍ରୀ) ଆନନ୍ଦିତମନାଃ—Gladdened; overjoyed; delighted at heart.

ହୃଷ୍ଟଚେତାଃ—ସଂ. ବିଣ—(ବହୁବ୍ରୀହି; ହୃଷ୍ଟ ହୋଇଅଛି ଚେତସ୍=ମନ
Hrushta chetah ଯାହାର, ହୃଷ୍ଟଚେତସ୍, ୧ମା ୧ବ)—
ପ୍ରଫୁଲ୍ଲାନ୍ତଃକରଣ—Gladdened; rejoicing; overjoyed

ହୃଷ୍ଟପୁଷ୍ଟ—ସଂ. ବିଣ. ପୁଂ—(ଦ୍ୱନ୍ଦ୍ୱ)—ପ୍ରଫୁଲ୍ଲ ଓ ସ୍ଥୂଳକାୟ—Hale
Hrushta pushta and hearty; stout and cheer-
(ହୃଷ୍ଟପୁଷ୍ଟ—ଦେ. ରୂପ) ful. ଦେ. ବିଣ—ମୋଟା ସୋଟା;
(ହୃଷ୍ଟପୁଷ୍ଟା—ସ୍ତ୍ରୀ) ସବଳ ଓ ସ୍ଥୂଳକାୟ—Stout and strong.

ହୃଷ୍ଟରୁଷ୍ଟ—ସଂ. ବିଣ—(ବିଚଶ୍ରିତାର୍ଥ ପ୍ରଭୃତିର ଶବ୍ଦ; ପ୍ରଥମେ ହୃଷ୍ଟ ଓ
Hrushta rushta. ପରେ ରୁଷ୍ଟ)—୧। ପ୍ରଫୁଲ୍ଲ ଓ କ୍ରୁଦ୍ଧ—1. At first glad and then become angry. ୨। ଏକକ୍ଷଣରେ ହୃଷ୍ଟ ଓ ପରକ୍ଷଣରେ କ୍ରୁଦ୍ଧ—2. Glad at one moment and angry at the other; alternately pleased and displeased. ୩। ଅବ୍ୟବସ୍ଥିତଚିତ୍ତ — 3. Capricious; fickle-minded.

ହୃଷ୍ଟଯୋନି—ସଂ. ବି—(ବହୁବ୍ରୀହି)—ଏକପ୍ରକାର ନପୁଂସକ—
Hrushta joni A class of eunochs.

ହୃଷ୍ଟରୋମା—ସଂ. ବିଣ—(ବହୁବ୍ରୀହି; ହୃଷ୍ଟ ହୋଇଅଛି ରୋମ ଯାହାର
Hrushta romā ହୃଷ୍ଟ ରୋମନ୍, ୧ମା ୧ବ)—ରୋମାଞ୍ଚିତ-
କଳେବର; ପୁଲକଯୁକ୍ତ; ଆନନ୍ଦ ବା ବିସ୍ମୟରେ ଯାହାଙ୍କ ଦେହର ରୋମମାନ ଠାକୁର ଉଠିଅଛି—Horripilated; having the furs of the body standing on the ends owing to joy or astonishment.

ହୃଷ୍ଟି—ସଂ, ବି—(ହୃଷ୍ ଧାତୁ+ଭାବ. ତି)—୧। ପ୍ରଫୁଲ୍ଲତା; ଆନନ୍ଦ
Hrushti (ଧରଣୀ)—1. Joy; gladness. ୨। ମାନ
(ଧରଣୀ)—2, Self respect, ୩। ଗର୍ବ—3. Pride. ୪। ଗର୍ବରେ ଫୁଲିଥିବା—4. Swollen through pride.

ହୃଷ୍ୟକା—ସଂ. ବି—ସଙ୍ଗୀତର ମୂର୍ଚ୍ଛନା ବିଶେଷ—One of the
Hrushyakā modulations of tune in Hindu music. (ଦ୍ର—ଏଥିର ସ୍ୱରଗ୍ରାମ—ପ ଧ ନି ସ ରେ ଗ ମ; ଧ ନି ସ ରେ ଗ ମ ପ ଧ ନି ସ ରେ ଗ—ହି. ଷ।]

ହେ—ସଂ. ଅ—(ସଂ. ହ୍ୱେ ଧାତୁ=ଆହ୍ୱାନ କରିବା+କରଣ ଏ)—୧।
He (ସମ୍ବୋଧନରେ ବ୍ୟବହୃତ ଧ୍ୱନି) ଅହେ।—1. (Interjection used in addressing a person) Ho! Heigh Ho! O! Oh! ୨। ଆହ୍ୱାନାର୍ଥକ—2. Used in calling a person. ୩। ଅସୂୟାର୍ଥକ—3 Used in displeasure or spite. [ଦ୍ର—ସମ୍ବୋଧନସୂଚକ 'ହେ' ଶବ୍ଦର ଅନ୍ୟ ସଂସ୍କୃତ ପ୍ରତିଶବ୍ଦ ପାନ୍ତି; ପ୍ୟାଟ୍, ଅରେ, ହୈ ଅୟେ ଭୋ (ଅମର), ହଂ ହେ, ହଂ ହୋ, ଅରେ ଅୟି (ଭରତ)]

ହେଆର୍ (ଇତ୍ୟାଦି)—ହେୟାର୍ ଇତ୍ୟାଦି (ଦେଖ)—
Heār (etc) Heyār etc (See).

ହେଇ—ଦେ. ଅ—୧। ହେ (ଦେଖ)—1. He (See). ୨।
Hei କୌଣସି ବସ୍ତୁକୁ ବା ବ୍ୟକ୍ତିକୁ ଅଙ୍ଗୁଳି ନିର୍ଦ୍ଦେଶପୂର୍ବକ
হে ଦେଖାଇଦେବା ଉପଲକ୍ଷରେ ବ୍ୟବହୃତ ଶବ୍ଦ—2.
है Exclamation used in pointing out any
এই object to another. [ଦ୍ର—ନିକଟବର୍ତ୍ତୀ ବସ୍ତୁକୁ ବା
यही ବ୍ୟକ୍ତିକୁ ଦେଖାଇବା ସମୟରେ 'ହେ' ର ହ୍ରସ୍ୱ ଉଚ୍ଚାରଣ କରାଯାଏ; ଦୂରବର୍ତ୍ତୀ ବସ୍ତୁକୁ (ଯଥା ତାରା ଦୂର ପର୍ବତକୁ) ଦେଖାଇବାବେଳେ ହେ ର ଦୀର୍ଘ ସ୍ୱରଯୁକ୍ତ ଉଚ୍ଚାରଣ କରାଯାଏ।] ୩। ଏହିମାନେ; ଅତିଶୀଘ୍ର, ଅତି ନିକଟ ଭବିଷ୍ୟତରେ—3. Just now, very shortly. (ଯଥା—ମୁଁ ଯାଉଛି, ହେଇ ଆସିଲି ବୋଲି ଜାଣ)
হয়ে ଗ୍ରା. କ୍ରି (ସଂ. ଭୂ. ଧାତୁ 'ହେବା' କ୍ରିୟାର ଅସମାପିକା
होकर ରୂପ) ହୋଇ—4. Being. ଗ୍ରା. ଅ—ମିଶି; ସମସ୍ତଙ୍କୁ
मिलाकर ମିଶାଇଲେ ବା ଗଣିଲେ—5. Counting all. (ଯଥା ଏଠାରେ ସମସ୍ତେ ହେଇ କେତେଜଣ ହେବେ।

ହେଇଚି(ଛି)—ଗ୍ରା. କ୍ରି—(ହେବା କ୍ରିୟାର ବର୍ତ୍ତମାନ କାଳ ଉତ୍ତମ ପୁରୁଷ
Heichi(chhi) ମୁଁ ଓ ଅନ୍ୟ ପୁରୁଷ ସେ ଏକବଚନ)—ହୋଇଛି; ହୋଇଅଛି—(He, she; it) Is; has been (I)
হয়েছি, হযেছে हुआ have been.

ହେଇଛିକା (ଣି)—ପ୍ରାଦେ କଟକ) କ୍ରି. ବିଣ—ବର୍ତ୍ତମାନ; ଏହିକ୍ଷଣି
Heichhikā(ṇi) Just now.
(ହେଇଛିଣିକା; ହେଇଚୁଣି, ହେଇଚୁଣିକା—ଅନ୍ୟରୂପ)
এক্ষুনি अबभी

ହେଇଟି(ତି)—ଦେ. ଅ—ସମ୍ମୁଖସ୍ଥ ବା ନିକଟବର୍ତ୍ତୀ ବସ୍ତୁକୁ ବା ବ୍ୟକ୍ତିକୁ
Heiṭi(ti) ନିର୍ଦ୍ଦେଶପୂର୍ବକ ଦେଖାଇବାରେ ବ୍ୟବହୃତ ଶବ୍ଦ—
Exclamation used in pointing out to another a

thing or person in front or nearby. [ଦେଶୀ=ହେଉଁଠା, ଦେଶ, ମିଶ୍ରିତ ଭାଷା) ପାଖ ପାଖ
ଅସୁଅଛ]
ଯହାଁ ପର

ହେଇଠାରୁ—ଗ୍ରା. ସ୍ଥ. ନାମ—ଏଠାରୁ—
Heitharu From here; hence.
ଏଖାନ ଥେକେ यहाँसे

ହେଇଥାନ୍ତା—ଗ୍ରା. (ସଂଷ୍କୃତ) କ୍ରି ହୋଇଥାନ୍ତା—
Heithanta Would have been, might have been.

ହେଇଦେରେ—ଗ୍ରା (ସମ୍ବଲପୁର) କ୍ରି. ବିଶ (ଭଦର ବ୍ୟବହୃତ)—
Heidere ଏହା ପରି; ଏପ୍ରକାର)—Like this; thus.

ହେଇଜିବା—ଦେ. କ୍ରି—୧ । ସେ କରିବ; ସମ୍ପନ୍ନ ହେବା—1. To be
Heijiba accomplished. ୨ । ଘଟିବା—2. To happen
୩ । (ଅମୁକ କାର୍ଯ୍ୟ ପାଇଁ) ସମୟ ଉପସ୍ଥିତ ହେବା—3. To be the proper time for. ୪ । ଯଥେଷ୍ଟ ହେବା—
ହୋଇବାୟା होजाना 4. To be sufficient; to suffice.

ହେଇଲୋ—ଗ୍ରା. ଅ—ହାଇଲୋ (ଦେଖ)—
Heilo Hailo (See)
[ହେଇଲୋ ଦେଖ—ଅନାବଶ୍ୟକ]

ହେଉ—ଦେ. କ୍ରି—୧ । ହେବା ଧାତୁର ଅନୁଜ୍ଞା ଅନ୍ୟ ପୁରୁଷ ଏକବଚନ
Heu (ସେ; ତାହା; ଏହା) କର୍ତ୍ତା ସହିତ ବ୍ୟବହୃତ—1. Let him or her or it be; be it, he or she. ୨ । ହେଉଣୁ (ଦେଖ)—2. Heunu (See) ଅ—(ସ୍ୱୀକାରାର୍ଥକ ବାକ୍ୟାଂଶ ସୂଚକ) ହଉ; ତାହା ହେଉ—(Interjection) Be it so; so be it. [ଦ୍ର—କେତେକ ସ୍ଥଳରେ ଆପଣ ଏଠାକୁ ଅସିବା ହେଉ, ଅପଣ ଏ କାର୍ଯ୍ୟ କରିବା ହେଉନ୍ତୁ (ବା ହୁଅନ୍ତୁ) ଆଦି ବାକ୍ୟର ବ୍ୟବହୃତ ହେବା ଦେଖାଯାଏ । କିନ୍ତୁ ବ୍ୟାକରଣ ଦୃଷ୍ଟିରେ ଏ ବ୍ୟବହାର ଅଶୁଦ୍ଧ । ଏଥିର ଶୁଦ୍ଧ ବ୍ୟବହାର ଆପଣଙ୍କର ଏଠାକୁ ଅସିବା (କଥା) ହେଉ (—ଘଟୁ) । ଅର୍ଥାତ୍, ଅପଣଙ୍କର ଏଠାକୁ ଆସିବା କଥା ଘଟୁ । ଆପଣ
ହଉକ୍ ଯାଅନ୍ତୁ, ଏ ବାକ୍ୟ ନ କହି କେଣି ସମ୍ମାନାର୍ଥକ ଭାବରେ
हो ଆପଣ ଯିବା ହୁଅନ୍ତୁ (ବା ହେଉନ୍ତୁ) ବୋଲି ଲୋକେ ବ୍ୟବହାର କରନ୍ତି । କିନ୍ତୁ ଏଥିର ଶୁଦ୍ଧ ବ୍ୟାକରଣସମ୍ମତ ଅକାର—ଅପଣଙ୍କର ଯିବା ହେଉ ଓ ଏଥିର ବ୍ୟାକରଣ ସମ୍ମତ ଅର୍ଥ—ଆପଣଙ୍କର ଯିବା କଥା ଘଟୁ ]

ହେଉଁ—ଦେ. କ୍ରି—୧ । ହେବା ଧାତୁର ବର୍ତ୍ତମାନ କାଳ ଉତ୍ତମ ପୁରୁଷ
Heuñ ସମ୍ମାନାର୍ଥ ଏକବଚନ (ଅମ୍ଭେ) ଓ ବହୁବଚନ ଅମ୍ଭେମାନେ ସଙ୍ଗେ ବ୍ୟବହୃତ—1. I am; we are; I be we; be.
ହଇ होव ୨ । ହେଉଣୁ (ଦେଖ)—2. Heuṇu (See)

ହେଉଡ଼—ଦେ. ବ—(ଧ୍ୱନ୍ୟାନୁକରଣ)—ଢାକୁଡ଼ି—Belching.
Heurḍi [ଦ୍ର—ବାତାପିର ମାଂସପାକ ମହା ଅଜନରେ ଖାଇସାରି ତୃପ୍ତ ଅତି ଅଜନରେ ଯେତେ ଅଇଁସି ହେଉଡ଼ି ମାରିଦେଲେ
ଢେକୁର डकार ମାଳକଣ୍ଠ ସିଦ୍ଧିକ ମହାଭାରତ]

ହେଉଣୁ—ଦେ. କ୍ରି—(ହେବା କ୍ରିୟାର ଭୂତାର୍ଥକ ଅସମାପିକା ରୂପ)
Heuṇu ହେବା ପୂର୍ବରୁ—(Participle) Occurring before the happening of a thing (ଯଥା—ମୁଁ ସେଠାରେ ଉପସ୍ଥିତ ନ ହେଉଣୁ ସେମାନେ ଚାଲିଗଲେ )
[ହଉଣୁ—ଗ୍ରାମ୍ୟରୂପ]
ହওয়ায় होनेकेपहले

ହେଉ ତେବେ—ଦେ. ଅ—୧ । (ଅବଧାରଣାର୍ଥ) ହେଉ; ଅଚ୍ଛା, ଥାଉ—
Heu tebe 1. All right. ୨ । (ସମ୍ମତିସୂଚକ) ଥାଉ—
[ହଉତେବେ—ଗ୍ରାମ୍ୟରୂପ] 2. Be it so.
হউকতবে अच्छा

ହେଉଥିଲେ—ଦେ. କ୍ରି—ହେବା କ୍ରିୟାର ସମ୍ମାନାର୍ଥକ ଅନ୍ୟ ପୁରୁଷ ଏକ
Heuthile ବଚନ (ସେ) ଓ ବହୁବଚନ ସେମାନେ କର୍ତ୍ତା ସହିତ ଅତୀତକାଳରେ ବ୍ୟବହୃତ—(The past tense form of the verb to be (hebā) in the third person singular and plural numbers and denoting respect) He was or they were.
হয়েছিল होतेथे (ଯଥା—ସେମାନେ କଥାଭାଷା ହେଉଥିଲେ)
[ଦ୍ର—ଏହା ମଧ୍ୟ ଅପଣ ଓ ଆପଣମାନେ ସଙ୍ଗେ ବ୍ୟବହୃତ ହୁଏ ।]

ହେଉନ୍ତୁ—ଦେ. କ୍ରି—ହୁଅନ୍ତୁ; ହେବା କ୍ରିୟାର ବର୍ତ୍ତମାନ କାଳ ଅନ୍ୟ
Heuntu ପୁରୁଷ ସମ୍ମାନାର୍ଥକ ଏକବଚନ (ସେ ମହାଶୟ) ଓ ବହୁବଚନ (ସେମାନେ)—Let him or them be. [ଯଥା—ସେମାନେ ଧୀରେ ଥଣ୍ଡା ହେଉନ୍ତୁ, ଅମେ ଯାଇ ଦେଖା କରିବା] ୨ । ହେବା କ୍ରିୟାର ଅନୁଜ୍ଞା ମଧ୍ୟମପୁରୁଷ ମାନ୍ୟାର୍ଥକ ଏକବଚନ (ଅପଣ; ଶ୍ରୀମୁ) ଓ ବହୁବଚନ ଆପଣମାନେ—2. The imperative form of verb to be in the singular and plural numbers [ଯଥା—ଆପଣ ଏ କଥାରେ ସ୍ୱୀକୃତ ହେଉନ୍ତୁ] [ଦ୍ର—ହେଉ ତଳେ ଟୀକା ଦେଖ । କେତେ କ୍ରିୟାର ଅସମାପିକାରୂପ ପରେ 'ବା' ଲଗାଇ ହେଉନ୍ତୁ ଯୋଗ କରାଯାଏ; ଯଥା ଅପଣ ଅସିବା ହେଉନ୍ତୁ । କିନ୍ତୁ ଏହା
হউন होवें ଅଶୁଦ୍ଧ ବ୍ୟବହାର ]

ହେଉ(ଁ) ହେଉ(ଁ)—ଦେ.କ୍ରି—(ହେବା କ୍ରିୟାର ଅସମାପିକା ରୂପର
Heu(uñ)heu(uñ) ଦ୍ୱିତ୍ୱ)—୧ । (ଅମୁକ ବିଷୟର) ସମାପ୍ତି
হতে হতে, होतेहोते ହେବା ପୂର୍ବରୁ—1. Before the completion of (something) (ଯଥା—ଭାତ ହେଉଁ ହେଉଁ ମୁଁ ଫେରି ଅସିବି)—୨ । (ଅମୁକ କ୍ରିୟା) କରି ଯାଉଥିବା ସମୟରେ—2. During the doing of an act. [ଯଥା—ଅପଣ ତୁହଙ୍କର କଥାଭାଷା ହେଉ ହେଉ ମୁଁ ଗାଧୋଇ ପଡ଼ିବି ।] ୩ । (ଅମୁକ କାର୍ଯ୍ୟ) ସମାପ୍ତ ହେବା ପାଇଁ—3. For anything being done or completed. ( ଯଥା—ପାତ୍ରାବାଲାମାନେ ଯାଣ ପାଇଁ ସଜ ହେଉ ହେଉ ଅଧଘଣ୍ଟାଏ ଲାଗିବ)

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ ; ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'ମୂଢ଼' ନ ମିଳିଲେ 'ମୂଢ' ଖୋଜିବେ, 'ବଂଧୁ' ନ ମିଳିଲେ 'ବନ୍ଧୁ' ଖୋଜିବେ, 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଳବଳ' ନ ପାଇଲେ 'ଅଲ୍‌ବଲ୍' ଦେଖିବେ ।

ହେଁ—ଦେ. ଅ—(ସଂ. ହୁ)—୧ । (ସ୍ୱତନ୍ତ୍ର ଭାବରେ ବ୍ୟବହୃତ)— Hen (କ) ଉପହାସାର୍ଥକ—Interjection used in sneering. (ଖ) ଅସୂୟାର୍ଥକ—Interjection used in expressing spite. (ଗ) ହାଁ (ଦେଖ)—Hāṅ (See). ୨ । କ୍ରିୟାର ଭୂତକାଳ ଅନ୍ୟ ପୁରୁଷ ୧ ବଚନରୂପ ପରେ ଯୁକ୍ତ—(କ) ସୁଦ୍ଧା—Even. [ଉ—ଅଧରର ସଦୃଶ ମୋର ଖାଇଁଲେହେଁ ମିଳିଟି—କବିସୂର୍ଯ୍ୟ, କଣୋଖି ଚମ୍ପୂ, ଣ. ଗୀତ] (ଖ) ଯେବେ ଅବା; ଯଦ୍ୟ ସ୍ୟାତ୍—Even if. [ଉ—ଗେହ ନାହିଁ ଥିଲେହେଁ ବନ୍ଧା । କବିସୂର୍ଯ୍ୟ, କଣୋଖି ଚମ୍ପୂ, ଚ. ଗୀତ] (ଗ)—(କେତେ, ଯେତେ, ତେତେ, କେବେ, ଯେବେ, ତେବେ, ଜଣେ, ଥରେ, କାହାରେ ସଙ୍ଗେ ବ୍ୟବହୃତ)—ହେଲେ; ସୁଦ୍ଧା—Even. (ଯଥା—ମୋର ସାଙ୍ଗରେ ଜଣେହେଁ ଲୋକ ଯିବ ନାହିଁ ।) (ଘ) (କେତେ, ଯେତେ, ସେତେ ସଙ୍ଗେ)—ବାକ୍ୟରେ ଜୋର୍ ଦେବା ପାଇଁ ବ୍ୟବହୃତ—A suffix used to add emphasis to some pronouns. [ଉ—ସଙ୍ଗେ ନ ନାଥ ଗଢ଼ଇବା, କେତେହେଁ ଭିଆଇ କହିବା ।—ଭୂପତି ପ୍ରେମ ପଞ୍ଚାମୃତ] ୩ । (ସଂଖ୍ୟାବାଚକ ଶବ୍ଦ ସଙ୍ଗେ ବ୍ୟବହୃତ ଯଥା—ଦୁହେଁ, ତିନିହେଁ, ଚାରିହେଁ)—(କ) ଜଣ; ସମସ୍ତେ; ମାନେ; ଯାକ; ସବୁ ସୁଦ୍ଧା ମିଶି; A suffix indicating plural; all; altogether. (ଖ) ପ୍ରତ୍ୟେକ—Each of. ଯଥା, ତିନିହେଁ ବିଦ୍ୟାରେ

ହେଁ ହୀଁ ହଁ ହିଁ
ମୀ

ହା ହାଁ, ହିଁ ହିଁ ଧ୍ୱନିର । ବି—(ଧ୍ୱନ୍ୟନୁକରଣ)—୧ । ଉଚ୍ଚହାସ୍ୟ କରିବା ଶବ୍ଦ—1. Sound of loud laugh. ୨ । ଘୋଡ଼ାଙ୍କର ହେଷାରବ—2. Neighing of a horse. ପ୍ରାଦେ (ସମ୍ବଲପୁର) ସର୍ବନାମ—୧ । ଏହା; ଏ—1. This. ୨ । ତାହା; ସେ—2. That; he; she. ୩ । ଏହି ବ୍ୟକ୍ତି—3. This person.

ହେଁଟା—ପ୍ରାଦେ. (ସମ୍ବଲପୁର) ସର୍ବନାମ—(ଅନାଦରାର୍ଥକ)—୧ । ଏଇଟା; Henṭā ଏହି ବସ୍ତୁଟା - 1. This thing. ୨ । ଏହି ବିଷୟଟା—2. This matter. ୩ । ଏହି ବ୍ୟକ୍ତିଟା—3. This person. ପ୍ରାଦେ (ଯାଜପୁର) ସର୍ବନାମ—ସେହି—That.

ହେଁଡୁଆ—ପ୍ରାଦେ (ସମ୍ବଲପୁର) ବି—ହାଣ୍ଡୁଆ (ଦେଖ) Henṛdua Hāṇḍuā (See)

ହେଁଡିକି—ପ୍ରାଦେ (ସମ୍ବଲପୁର) ସର୍ବନାମ-୧ । ଏତିକି—1. This much Henṭ-ki ୨ । ସେତିକି—2 That much.

ହେଁଥି—ପ୍ରାଦେ (ସମ୍ବଲପୁର) ସର୍ବନାମ—୧ । ଏଥିରେ - 1. In this. Henthi ୨ । ଏଠାରେ—2. Here. ୩ । ଏହି ବିଷୟରେ—3. In this matter.

ହେଁଥିର୍ ଲାଗି (ଗେ)-ଦେ. (ସମ୍ବଲପୁର) ଅ-୧ । ଏଥିପାଇଁ —1. For this. Henthir-lāgi(ge) ୨ । ସେଥିପାଇଁ—2 For that. (ହେଥିର୍ ଲାଗି—ଅନ୍ୟରୂପ) ୩ । ସେହି କାରଣରୁ, ଅତଏବ— 3. Therefore.

ହେଁସ—ଦେ. ବି—(ସଂ. ସମ୍ପୁର)—ମୁନ୍ଦୁରୀ; ବଡ଼ ତୃଣାସନ—Big Hensa mat of grass reed. [ଦ୍ର—ବେଣୁହାଁ, ଗୌଦରୀ ଚଟାଇ ମାତୁର ଝାଁତଲା ଝାଁତଲା] ଜୁଣ, ବେଣା, ତେଲଙ୍ଗା ଓ ସବୁଦ୍ର ଆଦି ତୃଣକୁ ଶୁଖାଇ ଝୋଟ ବା ଛଣପଟ ଦଉଡ଼ି ଦ୍ୱାରା ହେଁସ ବୁଣାଯାଏ । ଗୁର ଅଙ୍ଗୁଳ ଛଡା ଛଡ଼ା ଅଗରେ ଚଟକା (ବାଣିପଥର ବା ଡେଣ୍ଡୁଆଁ ଝୁଲି ଯାଇଥିବା ଗୁଡ଼ିଏ ଦଉଡ଼ି ବା ବାଣିକୁ ଯୋଡ଼ା ଯୋଡ଼ା କରି ଗୋଟିଏ ଲମ୍ବ କାଠ (ବେଁ, ବେଅ) ଉପରେ ଝୁଲାଇ ଏହି ବେରୁହାଁକୁ କେରା କେରା କରି ବେଁ ଉପରେ ଲମ୍ବ ବାଗରେ ପାରିବାକୁ ହୁଏ ଓ ଅଗରେ ଡେଣ୍ଡୁଆ ଝୁଲୁଥିବା ଯୋଡ଼ ଦଉଡ଼ା ବା ବାଣିମାନଙ୍କୁ ଯଥାକ୍ରମେ ଏ ପାଖରୁ ସେ ପାଖକୁ ଆଣିବାକୁ ହୁଏ । ଏହିପରି ଭାବରେ ହେଁସ ବୁଣାଯାଏ । ଗରିବଲୋକେ ଏହି ହେଁସକୁ ଶଯ୍ୟାରୂପେ ବ୍ୟବହାର କରନ୍ତି ଓ ଶୀତଦିନେ ଶୋଇଲାବେଳେ ଘୋଡ଼ି ହୁଅନ୍ତି । ଚଷା, ମୂଲିଆ ଓ ଗରିବ ଲୋକମାନେ ଅବସର ସମୟରେ ଝୋଟରେ ଗୁଡ଼ିଏ ବାଣି କାଟି ରଖି ଥାଆନ୍ତି ଓ ଗୁଡ଼ିଏ ବେରୁହାଁ ବା ସବୁଦ୍ର କାଟି ଆଣି ଶୁଖାଇ କରି ରଖି ଥାଆନ୍ତି । ବର୍ଷାଦିନେ କୃଷି ଧନ୍ଦା ନ ଥିବା ସମୟରେ ଦୁଇଟି ଖୁଣ୍ଟିରେ ପ୍ରାୟ ୧ ଫୁଟ୍ ଉଚ୍ଚ କରି ବେଅଁଟିକୁ ଅଡ଼ ବାଗରେ ବାନ୍ଧି ସେଥିରେ ଡେଣ୍ଡୁଆ-ଲଗା ବାଣିଗୁଡ଼ିକ ଯୋଡ଼ା ଯୋଡ଼ା କରି ୮ ଅଙ୍ଗୁଳ ଛଡାରେ ଝୁଲାଇ ଦିଅନ୍ତି ଓ କାମ ନ ଥିଲାବେଳେ ହେଁସ ବୁଣିବା କାମରେ ଲାଗନ୍ତି । କ୍ରମେ କ୍ରମେ ମାସେ ଖଣ୍ଡିକ ମଧ୍ୟରେ ହେଁସଟିଏ ବୁଣା ସରିଯାଏ ।

ହେଁସର ଲମ୍ବ ୫।୬ ହାତ ଓ ଚଉଡ଼ା ପ୍ରାୟ ୪ ହାତ କରିଯାଏ । ଯେଉଁ ହେଁସକୁ ଯେତେ ଲମ୍ବ କରିବାକୁ ହୁଏ ସେହି ଲମ୍ବର ଦୁଇଗୁଣ ଲମ୍ବ ଗୋଟିଏ ଲେଖାଏଁ ବାଣିକୁ ଡେଣ୍ଡୁଆରେ ଗୁଡ଼ାଇ ଫାସ ଦେଇ ବେଅଁ ଦେହରେ କିସମିତ ଢଙ୍ଗରେ ଛନ୍ଦି କରି ଯୋଡ଼ିଏ ଲେଖାଏଁ ଝୁଲାଇ ଦିଆଯାଏ ଓ କେରିଏ ଜୁଣ ବା ବେରୁଆଁକୁ ବେଅଁ ଉପରେ ପାରି ଦେଇ ଗୋଟିଏ ଛଡ଼ ଗୋଟିଏ କରି ଉକ୍ତ ବାଣିପଥର-ମାନଙ୍କୁ ଯଥାକ୍ରମେ ଏ ପାଖରୁ ସେ ପାଖକୁ ଓ ସେ ପାଖରୁ ଏ ପାଖକୁ ଆଣିଲେ ଦୁଇ ବାଣିର ମଧ୍ୟବର୍ତ୍ତୀ ଜୁଣ କେରାକ ଦୃଢ଼ବଦ୍ଧ ହୋଇ ରହେ । ଏହିପରି କରୁ କରୁ ବାଣି ସରିଗଲେ ଡେଣ୍ଡୁଆଁରୁ ଫାସ ଫିଟାଇ ଦେଲାରୁ ବାଣି ଦଉଡ଼ି ଲମ୍ବ ହୋଇଯାଉଥାଏ ।

| [illegible] | [illegible] | [illegible] | [illegible] | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ଼ | ଉଅ | ହ୍ନ |
|---|---|---|---|---|---|---|---|---|---|---|---|---|---|---|
| [illegible] | [illegible] | [illegible] | [illegible] | ଲ୍କ | ଏ୍ୟ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ହ |

[illegible]ତଃ ହେଁସ ମସୃଣ ନ ହୋଇ କର୍କଶ ହୋଇ [illegible] ଉପରେ ଲୁଗା ବା ଅନ୍ୟ କୌଣସି ଆସ୍ତରଣ [illegible] ଦେହକୁ ବାଧେ। ହେଁସ ବହୁକାଳ [illegible] ସଢ଼ିଯାଏ। ଗରିବ ଲୋକେ [illegible] ଶୀତକାଳରେ ଘୋଡ଼ାଇ ହୁଅନ୍ତି। [illegible]ମାନଙ୍କ ଜାତିଭାଇମାନଙ୍କ ବଇଠକରେ ହେଁସକୁ [illegible]। ହେଁସ ଉପରେ ମଧ୍ୟ ଭୂତୁଆଁ ଧାନ ଓ [illegible] ଶୁଖାଯାଏ। ହେଁସର ବ୍ୟବହାର [illegible] ହେଁସକୁ ଭୂଇଁରୁ ଉଠାଇ ଗୁଡ଼ାଇ [illegible] କାନ୍ଥକୁ ଡେରଦେଇ ରଖନ୍ତି, ଅଥବା [illegible] ଟାଙ୍ଗିଦିଅନ୍ତି। ଅଶୌଚ [illegible] ସମୟରେ ହେଁସକୁ ନେଇ ପାଣିରେ [illegible] ଶୁଖାଇ ଦିଅନ୍ତି। ହେଁସକୁ ଲମ୍ୱକରି ଘରେ [illegible] ଦେଲେ ତହିଁରେ ପରିବାରର ଆବାଳବୃଦ୍ଧ- [illegible] ୧୦ ଜଣ ଶୋଇ ପାରନ୍ତି।

ହେଁସ ସମ୍ୱନ୍ଧୀୟ ପ୍ରବଚନ—

୧। ଆମ୍ଭେ ମୁଭୁସି। ଶୋଇବା,
ତୁ ତ ମୁଭୁସି, ମୁଁ ତ ମୁଭୁସି, ହେଁସ କାହିଁପାଇଁ ଧୋଇବା ?—ପ୍ରବଚନ।

୨। ଘରପରିଗୁଣେ ଘଲେଇ ଦାସୀ,
ଶୁଅନ୍ତି ହେଁସ କତରା ପାରି—ପ୍ରବଚନ।

୩। ଏଣୁ ଅଇଲି, ତେଣୁ ଅଇଲି
ହେଁସକାନି ଧରି (କପାଳେ ଥିଲାରୁ) ପୁଅ ବେଇଲି-
ବ୍ୟଙ୍ଗ୍ୟ ପ୍ରବଚନ।

୪। ହେଁସ କାନି ଧରି ( ଭୁଣ୍ଡାଇ ) ପୁଅ ବେଇବା ନ୍ୟାୟ।]

ହେଁସ କତରା—ଦେ. ବି (ସହଚର ଶବ୍ଦ)—(ଗରିବ ଲୋକଙ୍କ ଶଯ୍ୟାର୍ଥ
Heñsa katarā ବ୍ୟବହୃତ) ହେଁସ ଓ ହେଁସ ଉପରେ
ଟେଁଡ଼ାଚେଟା ଗোঁদরা বঁদরা চটাই, গোঁদরী ଆସ୍ତରଣରୂପେ ବିଛାଯିବା କନ୍ଥା ବା ଶେଯ—Reed mat and rag-quilt used by the poor for bedding.

ହେଁସ କାନି—ଦେ. ବି—ଭୂମିରେ ବିସ୍ତୃତ ହୋଇଥିବା ହେଁସର ଗୋଟିଏ
Heñsa kāni ଶେଷ ଅଂଶ—One end of a
মাহ্বের ধার চটাই একভাগ mat spread on the ground.
[ଦ୍ର—ହାଟୁଆମାନଙ୍କ ଜାତିଆଣ ସଭାକୁ ନିମନ୍ତ୍ରିତ ଜାତିଭାଇମାନେ ହେଁସ ଉପରେ ବସନ୍ତି ଏବଂ ଯେଉଁ ଲୋକ ପତିତ ବା ଜାତିରୁ ଅଟକ ହୋଇଥାଏ ସେ ଜାତିଭାଇମାନଙ୍କ ସଙ୍ଗେ ହେଁସକାନିରେ ବସିବା ଅଧିକାରରୁ ଚ୍ୟୁତ ହୁଏ।]

ହେଁସକାନିଆ (ଆଁ)—ଦେ. ବିଣ—୧। ହେଁସକାନିସମ୍ୱନ୍ଧୀୟ—
Heñsakāniā (āñ) 1. Relating to Heñsakāni.
୨। ( ଏକ ହେଁସ କାନିରେ ବସିବା ଯୋଗୁଁ ) ଏକ ହାଟୁଆ ସମାଜର ସଭ୍ୟରୂପେ ପରିଗଣିତ—
2. Counted as a co-member of the same casteguild.

ହେସକାନିଆ ଜାତି—ଦେ ବି—ଓଡ଼ିଶାର ହାଟୁଆ ପାଠକ; (ଯେଉଁମାନେ
Heñsakāniā jāti ଜାତିଆଣ ସଭାରେ ହେଁସକାନିରେ ବସନ୍ତି)—The Hāṭuā castes of Orissa (literally those who sit on mats in their caste-gatherings. [ଦ୍ର—ଏମାନେ ଶୂଦ୍ର ଓ ୩୬ ପାଠକରେ ଗଣିତ। ସାଧାରଣତଃ ଏମାନେ ଗରିବ ଥିବାରୁ ଏମାନଙ୍କ ଜାତିଆଣ ସଭାରେ ସତରଞ୍ଜି, ଗାଲିଚା, ପାଲ, ଫରାସ୍ ଆଦି ବ୍ୟବହୃତ ହୁଏ ନାହିଁ। ଗ୍ରାମର ୨/୪ ଜଣଙ୍କ ଘରୁ ହେଁସ ମଗାହୋଇଆସି ତାହା ବିଛାହୋଇ ତା ଉପରେ ଜାତିଆଣ ସଭାର ବୈଠକ ହୁଏ ଓ ଯେଉଁ ବ୍ୟକ୍ତି ଜାତିଭାଇଙ୍କୁ ବଇଠକ ପାଇଁ ଡାକିଥାଏ, କିମ୍ୱା ଯାହାର ବିବାହାଦି ଉପଲକ୍ଷରେ ଜାତିଭାଇ ଏକତ୍ର ହୋଇଥାଆନ୍ତି ସେ ପ୍ରତ୍ୟେକ ଜାତିଭାଇଙ୍କୁ ଖଣ୍ଡିଏ ଲେଖାଏ ଧୂଆଁପତ୍ର ଉପହାର ଦିଏ ଓ ଉକ୍ତ ଧୂଆଁ ପତ୍ରରେ ପ୍ରତ୍ୟେକ ବ୍ୟକ୍ତି ନିଜ ହାତରେ ପିକା ବଳି ଧୂଆଁ ଖାଆନ୍ତି। ଏହି ପିକାଗିଆରେ ଜାତିଭାଇମାନେ ( ଆଧୁନିକ ଭଦ୍ର ସମାଜରେ ପାନ, ବିଡ଼ି, ସିଗାରେଟ୍, ଗୁଡ଼ାଖୁ, ଗୁଆ ଆଦି ଦିଆ ଗଲା ପରି) ଆପ୍ୟାୟିତ ହୁଅନ୍ତି।]

ହେଁସକାନିଆ ଭାଇ—ଦେ. ବି—ହାଟୁଆମାନଙ୍କ ମଧ୍ୟରେ ଏକ ସମାଜଭୁକ୍ତ
Heñsakāniā bhāi ଜାତିଭାଇ—A casteman or co-member of the same guild amongst the Hāṭuās of Orissa.

ହେଁସକାନିରୁ ଉଠା(ଠେ)ଇ ଦେବା—ଦେ. କ୍ରି ( ହାଟୁଆସମାଜରେ )
Heñsakāniru uṭhā[ṭhe]i debā [କୌଣସି ବ୍ୟକ୍ତିକୁ ସମାଜଚ୍ୟୁତ କରିବା; ଜାତିରୁ ଏକଘରକିଆ କରିବା—To excommunicate or boycott a person (amongst the Hāṭuās) [ଦ୍ର—ଯେଉଁ ବ୍ୟକ୍ତିକୁ କୌଣସି ହାଟୁଆ ସମାଜ କୌଣସି କାରଣରୁ ଜାତିଚ୍ୟୁତ କରନ୍ତି, ତାକୁ ଜାତି ବଇଠକ ସମୟରେ ଜାତିଭାଇଙ୍କ ବସିବା ନିମନ୍ତେ ବିଛା ହୋଇଥିବା ହେଁସର କାନିରୁ ଜାତିଭାଇମାନଙ୍କ ଆଦେଶ ଅନୁସାରେ ଉଠାଇ ଦିଆଯାଏ ଓ ସେ ପ୍ରାୟଶ୍ଚିତ୍ତ କରି ବା ଅର୍ଥଦଣ୍ଡ ଦେଇ ପୁଣି ସମାଜଭୁକ୍ତ ନ ହେଲେ ତାକୁ ପୁଣି ସେମାନଙ୍କ ସଙ୍ଗେ ଉକ୍ତ ହେଁସକାନିରେ ବସିବାକୁ ଅନୁମତି ମିଳେ ନାହିଁ।]

ହେଁସ କୁଣ୍ଢା(ଣ୍ଢେ)ଇ ପୁଅ ହେଇବା—ଦେ. କ୍ରି—(ଜାବଡ଼ ପଣ୍ଡକା ସ୍ତ୍ରୀ)
Heñsa kundhā (ndhe)i pua heibā ଅବୈଧ ଉପାୟରେ
[ହେଁସ ଧର ପୁଅ ହେଇବା—ଅନ୍ୟରୂପ] ସନ୍ତାନ ପ୍ରସବ କରିବା
To bring forth an illegitimate offspring.

ହେଁସ କୁଣ୍ଢା(ଣ୍ଢେ)ଇ ପେଟରେ ହେବା—ଦେ. କ୍ରି—(ଜାବଡ଼ପଣ୍ଡକା
Heñsa kundhā (ndhe) i petare hebā ସ୍ତ୍ରୀ) ଅବୈଧ
[ହେଁସ ଧର ପେଟରେ ହେବା—ଅନ୍ୟରୂପ] ଉପାୟରେ ଗର୍ଭବତୀ
ହେବା—To become pregnant as a result
of adultery.

ହେଁସ କୁଣ୍ଢା(ଣ୍ଢେ)ଇ ଶୋଇବା—ଦେ. କ୍ରି—(ଯେଉଁ ବ୍ୟକ୍ତିର ସ୍ୱାମୀ
Heñsa kundhā(ndhe)i soibā ବା ସ୍ତ୍ରୀ ଜୀବିତ ଥାଆନ୍ତି,
ସେ) କୌଣସି କାରଣରୁ ନିଜର ସ୍ୱାମୀଙ୍କର ବା ସ୍ତ୍ରୀଙ୍କର
ସହବାସରୁ ବଞ୍ଚିତ ହେବା; ସ୍ୱାମୀଙ୍କ ବା ସ୍ତ୍ରୀଙ୍କ ସଙ୍ଗେ ଏକ
ଶଯ୍ୟାରେ ଶୟନ ନ କରିବା—Not to share one's
bed with one's husband or wife.

ହେଁସ ଗୁଡ଼ି—ଦେ. ବି—ଭୂମିରେ ଲଗାଯାଇଥିବା ହେଁସର ଗୁଡ଼ାଅ
Heñsā gurdi ହୋଇଥିବା ଅଂଶ—The part of a spread
ଆଧଗୁଟାନ ମାହୁର mat which remains tucked up.
गोंदरीकामोरा [ଦ୍ର—ଗୋଟିଏ ବଡ଼ ହେଁସର ଅଡ଼ବାଗରେ
ଜଣେବା ଦୁଇଜଣଙ୍କର ଶୋଇବାର ହେଲେ ହେଁସର
ସମୁଦାୟ ଅଂଶଙ୍କୁ ଭୂମିରେ ନ ମେଲାଇ ପ୍ରୟୋଜନାନୁରୂପ
ଅଂଶକୁ ଭୂମିରେ ବିଛାଇ ଅନ୍ୟ ଅଂଶକୁ ଗୁଡ଼ାଇବାକୁ ହୁଏ ।]

ହେଁସ ଡେଣୁଆ(ଆଁ)—ଦେ. ବି—ହେଁସ ବୁଣିବା ସମୟରେ ହେଁସବାଣିକୁ
Heñsa denuā(āñ) ଉପର୍ଯ୍ୟୁପରି ଗୁଡ଼ାଇବାପାଇଁ ବ୍ୟବହୃତ
ଇଟାର ବା ପଥରର ଖଣ୍ଡମାନ—Roundish bits of
brick or stone on which the strings for
weaving a mat are twined.

ହେଁସ ବାଣି—ଦେ. ବି—ହେଁସ ବୁଣିବା ପାଇଁ ବ୍ୟବହୃତ ଝୋଟର ବା
Heñsa bāni ତୃଣପଟର ସରୁ ଦଉଡ଼ି—Tender strings
सुतली used in weaving reed-mats.
गोंदरी की रस्सी

ହେସଁ ବୁଣା—ଦେ. ବି—ତୃଣ ବା ବେରୁଣ୍ଡ ଏବ ବାଣିଦ୍ୱାରା ଦୁମୁଗର
Heñsa bunā ବନ୍ଧନ—Weaving of a reed mat.
माहुव वोना गोंदरीकीबुनाई

ହେଁସ ମୁତୁରା—ଦେ. ବିଣ ପୁଂ—ଯେଉଁ ବ୍ୟକ୍ତି ବା ବାଳକ ହଠିରେ
Heñsa muturā ଶଯ୍ୟାରେ ଶୋଇଥିବା ଅବସ୍ଥାରେ ଅଜ୍ଞାତ
[ହେଁସ ମୁତୁସ—ସ୍ତ୍ରୀ] ଭାବରେ ହେଁସରେ ପରିସ୍ରା କରିଥାନ୍ତି (ଏହା
विछानाय मुतो ଏକ ପ୍ରକାର ରୋଗ)—(a person) Given to
सेजमुतनोवाला passing urine involuntarily on the
bed during sleep.

ହେସଁ ହଗୁରା(ହେରୁଆ)—ଦେ. ବିଣ, ପୁଂ—ଅତି ଭୀରୁସ୍ୱଭାବ ବ୍ୟକ୍ତି—
Heñsa hagurā Very timid (person).
(ହେଁସ ହଗୁସ) (ହେରେଇ)—ସ୍ତ୍ରୀ

ହେଁସା ନେ(ଲେ)ଖାରେ ଟେଁସା—ପ୍ରାଦେ (ବାଲେଶ୍ୱର) ବି ଓ ବିଣ—
Heñsā ne(le)khāre teñsā ବନ୍ଧୁର ସମ୍ପର୍କୀୟ ବନ୍ଧୁ;
ବନ୍ଧୁର ବନ୍ଧୁ, ତାଙ୍କ ବନ୍ଧୁ, ଏହିପରି ବହୁଦୂର ସମ୍ପର୍କ
ଗଣନାରେ ଯାହାଙ୍କୁ ବନ୍ଧୁ ଅଖ୍ୟା ଦିଆଯାଇ ପାରେ;ଅଳୀଅ
ଲେଖାରେ ବାନ୍ଧିଥିବାନ୍ତୁ—A very distantly
related person.

ହେଁସୁଆଡି—ପ୍ରାଦେ (ଗଞ୍ଜାମ) ବି—ଜଳଜ ତୃଣବିଶେଷ; ମୁନ୍ଦୁରା
Heñsuāti ବୁଣା ହେବା ବେରୁଣ୍ଡି—A kind of aquatic
reed or grass with which mats are
woven.

ହେଁସେ—ଦେ. ବି ବିଣ—୧ । ଗୋଟାଏ ହେଁସ ଓଦା ହୋଇଯିବାଭଳି
Heñse (ମୂତିବା)—1.(To pass urine) Enough to
wet a whole mat. ୨ । ଶୋଇଲେ ଗୋଟାଏ
ହେଁସ ପୂର୍ଣ୍ଣ ହେବାଭଳି ସଂଖ୍ୟକ; ବହୁପରିମିତ (ସନ୍ତାନ-
ସନ୍ତତି)—2. Too many (children); enough
to fill up a whole mat while sleeping on it.
ବିଣ—୧ । ବହୁ ପରିମିତ (ମୂତ୍ର)—1. A large
quantity of (urine). ୨ । ବହୁସଂଖ୍ୟକ (ସନ୍ତାନ)—
2. A great many (children); a brood or
bevy of offsprings. [ଦ୍ର—ବହୁସଂଖ୍ୟକ ସନ୍ତାନ-
ପ୍ରସବକାରୀ ଦମ୍ପତିଙ୍କ ସମ୍ବନ୍ଧେ ଲୋକେ କହି ଥାଆନ୍ତି,—
ଅମୁକର ହେଁସେ ଛୁଆ)

ହେଁସେ ପିଲାଝିଲା (ପିଲା, ପିଲାପିଲି, ଛୁଆ)—ଦେ. ବି—ବହୁସଂଖ୍ୟକ
Heñse pilājhilā (pilā, pilāpili, chhuā) ସନ୍ତାନ-
একশেষ ছেলেপিলে ସନ୍ତତି—A drood of offsprings
एकगोंदरी वालबच्चा

ହେଁ ହାଁ—ଦେ. ଅ—(ଧ୍ୱନ୍ୟନୁକରଣ)—ଉଚ୍ଚହାସ୍ୟର ଧ୍ୱନି—
Heñ hāñ Sound of loud laugh.
हाहा हैं हैं

ହେଁ ହେଁ—ଦେ. ଅ—(ଧ୍ୱନ୍ୟନୁକରଣ)—୧ । ଉଚ୍ଚହାସ୍ୟର ଧ୍ୱନି—
Heñ heñ 1. Sound of loud laugh. ୨। ଉପହାସାର୍ଥକ
ଅବ୍ୟୟ—2. An exclamation of sneering.
ବି—୧ । ଅଶ୍ୱର ହ୍ରେଷା—1. Neighing of a horse,
୨ । ଦୀର୍ଘ ଧ୍ୱନିକରି କାନ୍ଦିବାର ଶବ୍ଦ—2. Sound of a
हाँहाँ हे हें हिनहिनाहट) long wail

ହେଁହେଁଇଆଁ—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତି ଉଚ୍ଚହାସ୍ୟ କରେ—
Heñheñiñāñ Given to horse laugh; laughing
(ହେଁହେଁଇ—ସ୍ତ୍ରୀ) (ହେଁହେଁୟାଁ—ଅନ୍ୟରୂପ) loudly.
যে দাঁত বের করে হাসে हैं हैं करनेवाला

ହେଁହେଁକା—ଗ୍ରା. ଅ—୧ । ଉପହାସାର୍ଥକ ଅବ୍ୟୟ—1. An excla-
Heñheñkā mation of sneering. ୨ । ପରିହାସାର୍ଥକ
हें हें ଅବ୍ୟୟ—2. An exclamation of jesting. [ଯଥା
हे हे —ଉକ୍ତି । ସେଇ ସକାଳେ, ପାଣି ପଶିଗଲା ଭାଲସକାଳେ,
ହେଁହେଁକା—ଶିଶୁବଚନ ।]

ହେଁହେଁ ଫେଁ ଫେଁ—ଧ୍ୱ. (ଅନୁକାର ଶବ୍ଦ) ଅ—(ଖବରର ଶବ୍ଦ)—
Heñ heñ pheñ pheñ ଉଚ୍ଚୈଃସ୍ୱରରେ ହସିବା ଓ କଥା
ହାହା ହୀହୀ କହିବା—Loud laugh and speech.
हँ हँ फें फें

ହେଁ ହେଁ ହେବା—ଧ୍ୱ. କ୍ରି—୧। ଉଚ୍ଚହାସ୍ୟ କରିବା—1. To
Heñ heñ heba laugh loudly. ୨। (ଘୋଡ଼ା)
ହାହା କରି ହସିବା हँ हँ होना, हिनहिनाना ହେଁଷାରବ କରିବା—
2. (a horse) To neigh. ୩। ଗାର୍ଥ ଧ୍ୱନି କରି
କାନ୍ଦିବା—3. To bemoan with long sounds.

ହେକାଇତି—ପ୍ରାଦେ (ସମ୍ବଲପୁର) ବି—ଜବରଦସ୍ତି—(ଦେଖ)
Hekaiti Jabardasti (See)

ହେଖୁ—ପ୍ରାଦେ (ମେଦିନୀ) ଅ—(ଉତ୍ତର ଅଞ୍ଚଳ ପ୍ରଚଳିତ ଭାଷା)—
Hekhu ସେଇଠି—There.

ହେକୁ(କ୍ୟୁ)ବା—ବୈଦେ. ବି—(ଗ୍ରୀକ୍ କବି ହୋମରଙ୍କ ରଚିତ ଇଲିଅଡ୍
Heku(kyu)ba କାବ୍ୟ ବର୍ଣ୍ଣିତ, ଟ୍ରୟ୍‌ର ରାଜା ପ୍ରାୟାମ୍‌ଙ୍କ
ହେକ୍ୟୁବା हेक्युबा ଦ୍ୱିତୀୟାପତ୍ନୀ—Hecuba—the second
wife of Priam, king of Troy (described in
Homer's Iliad). [ଦ୍ର—ଏ ସତୀଥିଲେ ଓ
ଏହାଙ୍କ ସନ୍ତାନ ସନ୍ତତିଙ୍କ ଶୋକରେ ଏ ବିଶେଷ କାତର
ହୋଇଥିଲେ । ଶେଷରେ ଦେବ କୃତରେ ଏ ଗୋଟିଏ
କୁକ୍କୁରୀ ପାଲଟି ଗଲେ ।]

ହେକ୍ଟର—ବୈଦେ, ବି. (ଗ୍ରୀକ୍ ନାମ)—ଗ୍ରୀକ୍ କବି ହୋମରଙ୍କ
Hektar ଲିଖିତ ଇଲିଅଡ୍ କାବ୍ୟ ବର୍ଣ୍ଣିତ ଟ୍ରୟ୍‌ର ରାଜା
ହେକ୍ଟର हेक्टर ପ୍ରାୟାମ୍ ଓ ରାଣୀ ହେକ୍ୟୁବାଙ୍କ ପୁତ୍ର—
Hector, son of king Priam and queen
Hecuba of Troy. [ଦ୍ର—ଏ ବଡ଼ ବୀରଥିଲେ ଓ
ଗ୍ରୀକ୍‌ମାନଙ୍କ ବିରୁଦ୍ଧରେ ଯୁଦ୍ଧ ଲଢ଼ିଥିଲେ ଓ ଅଚିଲିସ୍‌ଙ୍କ
ସଙ୍ଗେ ଯୁଦ୍ଧ କରି ପଳାଇ ଯାଉଥିବା ଅବସ୍ଥାରେ ଗ୍ରୀକ୍‌-
ମାନଙ୍କ ଦ୍ୱାରା ଏ ନିହତ ହୋଇଥିଲେ ।]

ହେଗ—ବୈଦେ. ବି (ନାମ)—ହଲାଣ୍ଡର ଅନ୍ତଃପାତି ଗୋଟିଏ ନଗର—
Heg Hague, a town in Holland.
ହେଗ हेग [ଦ୍ର—ଏଠାରେ ଇଉରୋପୀୟ
ରାଜ୍ୟମାନଙ୍କର ଅନ୍ତର୍ଜାତୀୟ ଆଇନ୍ ସମ୍ବନ୍ଧେ ସନ୍ଧିପତ୍ର
(The Hague Convention ରଚିତ ଓ ସ୍ୱାକ୍ଷରିତ
ହୋଇଥିଲା ।]

ହେଙ୍କା—ଗ୍ରା. ବି (ସ ହିକ୍କା)—ହିକ୍କା (ଦେଖ)—
Heṅkā Hikkā (See)

ହେଙ୍ଗ(ଙ୍ଗା)ମା (ଇତ୍ୟାଦି)—ବୈଦେ,ବି—ହାଙ୍ଗମା ଇତ୍ୟାଦି (ଦେଖ)—
Heṅg[ṅgā]mā[etc] Hāṅg-mā etc (See)

ହେଙ୍ଗଲା—ପ୍ରାଦେ (ସିଂହଭୂମି) ବିଣ—ଢ଼ିଲା; ଶ୍ଳଥ—
Heṅglā Loose; slack.

ହେଙ୍ଗଲା—ଦେ, ବିଣ—୧। ମୂର୍ଖ (ଗୋପୀନାଥ ନନ୍ଦ)—
Heṅgalā 1. Illiterate. ୨। ଅସତର୍କ;
ଗୌଁୱାର गँवार ଅସାବଧାନ; ବାଉଳା—
ହବାଲା बावला 2. Careless.

ହେଙ୍ଗା—ଦେ. ବିଣ. ପୁଂ [ ଦେଶୀୟଙ୍କର ବା ଅବଜ୍ଞାରେ ବ୍ୟବହୃତ ]—
Heṅgā ନିକମ୍ମା ବ୍ୟକ୍ତି—Good for nothing person.
ହେଙ୍ଗୀ } ସ୍ତ୍ରୀ— ପ୍ରାଦେ (ସମ୍ବଲପୁର) ବିଣ—ଅଯୋଗ୍ୟ—
ହେଙ୍ଗାଇ } Unfit. ପ୍ରାଦେ (ସିଂହଭୂମି) ବି—
ଅକର୍ମା निकम्मा [ଭୁଲ ଏହି ଅର୍ଥରେ ହଟା ଶବ୍ଦ] ମଇ—
The ladder used in levelling a tilled
up plot.

ହେଙ୍ଗି ଦେବା - ପ୍ରାଦେ [ଗଡ଼ଜାତ] କ୍ରି—ଗେଞ୍ଜି ଦେବା—
Heṅgi debā To poke.

ହେଙ୍ଗୁ—ଦେ. ବି—(ସଂ. ହିଙ୍ଗୁ) ହିଙ୍ଗୁ (ଦେଖ)—Hiṅgu (See)
Heṅgu [ଦ୍ର—ହେଙ୍ଗୁ ହୋଇ କଣ୍ଠରେ ପଶିବ, ମାଁ, ମହମହ
हिंग,हिं ହୋଇ ବାସିବ—ପ୍ରବଚନ । ଉଭୟାର୍ଥ ଅକସ୍ମାତ୍ ଅଶାଳୁ
हींग ଲକ୍ଷ୍ୟ କରି ଏ ବ୍ୟଙ୍ଗ ବଚନ ବ୍ୟବହୃତ ହୁଏ ।]

ହେଙ୍ଗୁ ଅରକ (ଖ)—ଦେ. ବି—ହେଙ୍ଗୁରେ ସ୍ପିରିଟ୍ ଡ୍ରାବକ ମିଶାଯାଇ
Heṅgu araka (kha) ପ୍ରସ୍ତୁତ କରାଯିବା ଏକପ୍ରକାର ଡାକ୍ତରୀ
(ହେଙ୍ଗୁ ଅର୍କ—ଅନ୍ୟରୂପ) ଔଷଧ—Tincture Assafoetida.
हिंग्वें आरक [ଦ୍ର—ଏହା କୋଷ୍ଠବଦ୍ଧ, ଶ୍ୱାସ ଓ ସ୍ତ୍ରୀଲୋକଙ୍କ
हींगकाअर्क ମୂର୍ଚ୍ଛା ରୋଗରେ ବ୍ୟବହୃତ ହୁଏ ।]

ହେଙ୍ଗୁ ଟା ହବ !—ଗ୍ରା. ଅ—(ବିରକ୍ତି ଓ ଆଶାଭଙ୍ଗ ଉପଲକ୍ଷରେ
Heṅgu ṭā haba ବ୍ୟବହୃତ ବଚନ)—ସବୁକାମ ବିଗିଡ଼ି ଗଲା;
(ହେଙ୍ଗୁ ହବ—ଅନ୍ୟରୂପ) ଆଶା ସଫଳ ହେବ ନାହିଁ —(an
exclamation indicating frustration of
any hope) Everything has been spoiled.

ହେଙ୍ଗୁପାଣି—ଦେ. ବି—ହେଙ୍ଗୁ ମିଶା ଜଳ—Water in which
Heṅgu pāṇi Assafoetida has been dissolved.
हिंग्जल [ଦ୍ର—କୋଶଳା ବଡ଼ ସମ୍ପୃକ୍ତଂ, ଷୁଦ୍ର କଦଳୀ ମିଶ୍ରିତଂ,
ହେଙ୍ଗୁ ପାଣି ସମାଯୁକ୍ତଂ, ଅନ୍ନଂ କରପତ୍ର ଯୋଜିତଂ—ଓଡ଼ିଆ
हींगुपानी ବ୍ୟଙ୍ଗ ଶ୍ଳୋକ । ]
[ଦ୍ର—କଡ଼ି ଉଆର କରାଯିବା ପାଇଁ ବଠା ବାଟରେ ହେଙ୍ଗୁ-
ପାଣି ମିଶାଯାଏ ।]

ହେଙ୍ଗୁ ବଘର—ଦେ. ବି—ତିଅଣ ବଘାରିବାବେଳେ ଘିଅ ସହିତ ସଙ୍ଗେ
Heṅgu bagharā ହେଙ୍ଗୁ ବା ହେଙ୍ଗୁପାଣି ମିଶାଇବା; ହେଙ୍ଗୁ
हिंग्से सौंतलाना ଦ୍ୱାରା ତିଅଣକୁ ଛୁଙ୍କିବା—Seasoning of
हींग बघार curry with assafoetida. ବିଣ—
ଯେଉଁ ତିଅଣରେ ବଘାରିବା ସମୟରେ ହେଙ୍ଗୁ ମିଶା
ଯାଇଥାଏ—(Curry) Seasoned with assa-
foetida.

ହେଙ୍ଗୁଳ—ଦେ. ବି—(ସଂ. ହିଙ୍ଗୁଳ)—ହିଙ୍ଗୁଳ (ଦେଖ)—
Heṅgula Hiṅgula (See). [ଦ୍ର—ହେଙ୍ଗୁଳା,
हिंगूल ହେଙ୍ଗୁଳାଇ, ହେଙ୍ଗୁଳାଇବା ହେଙ୍ଗୁଳି, ହେଙ୍ଗୁଳିଆ
हींगुर ଇତ୍ୟାଦି ଶବ୍ଦମାନ . ହିଙ୍ଗୁଳା, ହିଙ୍ଗୁଳାଇ ଇତ୍ୟାଦି
ଶବ୍ଦମାନଙ୍କ ତଳେ ଅନ୍ୟରୂପ ବୋଲି ଲେଖାଯାଇଅଛି ।]

ହେଙ୍ଗୁଳା (ଇତ୍ୟାଦି)—ଦେ. ବି—ହିଙ୍ଗୁଳା ଇତ୍ୟାଦି (ଦେଖ)—
Hengulā (etc) Hingulā etc (See).

ହେଙ୍ଗୁଳା ବୋହିବା—ଦେ. ବି—(ଗ୍ରୀଷ୍ମ ଋତୁରେ ଦ୍ୱିପ୍ରହରବେଳେ)
Hengulā bohibā ଝାଞ୍ଜି ବୋହିବା—Blowing of very
ହଲ୍‌କা ବওয়া hot blasts of air (during the midday
लू चलना of summer season),

ହେଚ୍ଛୁମେ—ପ୍ରାଦେ (ସମ୍ବଲପୁର)ଅ—(ମାଳ ଅଞ୍ଚଳ ବ୍ୟବହୃତ)—ଅଳ୍ପଦୂରରେ
Hechhume At a short distance.

ହେଜ—ବିଦେ ବି—(ଅ. ଲିହାଜ୍)—୧ । ସ୍ମରଣ—1. Recollec-
Heja tion. ୨ । ସ୍ମରଣଶକ୍ତି—2. Memory. ୩ ।
লিহাজ ଧାରଣା; ଅନୁମାନ—3. Guess. ୪ । ପାର୍ଥକ୍ୟ—4.
लिहाज Difference. ୫ । ପାର୍ଥକ୍ୟ ବୋଧ—5. Discri-
mination. [ଉ—କଣା ହେଲୁ ଅଛିଥାଇ ନ ରହିଲା
ପୁରୁଷ ଝଟିକ ହେଜ—ଭଞ୍ଜ. ବୈଦେହୀଶ ବିଳାସ ।]

ହେଜ କରିବା (ରଖିବା)—ଦେ. କ୍ରି—ସ୍ମରଣ କରିବା—To
Heja karibā (rakhibā) recollect; to refresh
লিহাজকরা लिहाज करना, यादकरना one's memory.

ହେଜର୍ଡ଼—ଦେ. ବିଣ. ପୁ—ହେଞ୍ଜର୍ଡ଼ା (ଦେଖ)—
Hejarda Henjardā (See).
(ହେଜର୍ଡ଼ୀ—ସ୍ତ୍ରୀ)

ହେଜର୍ଡ଼ା—ଦେ. ବିଣ—୧ । ମାଗିଖିଆ; ରଙ୍କ (ଗୋପୀନାଥ ନନ୍ଦ)—
Hejardā 1. Beggar; miserly. ୨ । ହେଞ୍ଜର୍ଡ଼ା (ଦେଖ)—
মেগেখেকো मंगतुआ 2. Henjardā (See).

ହେଜ ରହିବା—ଦେ. କ୍ରି—ମନେ ରହିବା; ଭୁଲି ନ ଯିବା; ବିସ୍ମୃତ
Heja rahibā ନ ହେବା—Not to be forgotten; to
লিহাজ থাকা लिहाज रहना, यादरहना be remembered.

ହେଜ ହେବା—ଦେ. କ୍ରି—ମନେ ପଡ଼ିବା—To occur to one's
Heja hebā mind; to be remembered.
মনে পড়া लिहाज हना याद हना

ହେଜା—ଦେ. ବି—୧ । ସ୍ମରଣ କରିବା—1. Recollection ୨ ।
Hejā ଉଲ୍ଲେଖ—2. Mention. [ଉ—ତେବେ ସେ ତାକୁ
মনে করা କରେ ପୂଜା, ଏମନ୍ତେ ଅଛି ଶାସ୍ତ୍ରେ ହେଜା—ପ୍ରାଚୀ
लिहाज ନର୍ମଦା ମାହାତ୍ମ୍ୟ । ପ୍ରାଦେ (ଗଞ୍ଜାମ) ବି—ଅନୁମାନ—
Guess.

ହେଜା(ଜେ)ଇବା—ଦେ. କ୍ରି—ହେଜିବା କ୍ରିୟାର ଣିଜନ୍ତରୂପ—The
Hejā(je)ibā causative form of Hejibā. ସ୍ମରଣ
মনে করান କରାଇବା;ମନେ କରାଇ ଦେବା; ଚେତାଇବା—To
लिहाज करवाना remind.

ହେଜାକୁ(ରେ) କହିବା—ପ୍ରାଦେ (ଗଞ୍ଜାମ) କ୍ରି—ଅନ୍ଦାଜରେ କହିବା;
Hejāku(re)kahibā ଅନୁମାନକରି କହିବା—To speak
any thing by guess.

ହେଜା ଲେଖା—ପ୍ରାଦେ (ଗଡ଼ଜାତ) ବି—ହିସାବ—Account;
Hejā lekhā calculation. ବିଣ—ଅତ୍ୟନ୍ତ ହିସାବୀ—
Very calculating. [ଉ—ହେଜାଲେଖାର ଧନ
ମରେ, ପ୍ରଜଗୁଳିଆର ମାଇକୀ ମରେ । ଢଗ ।]

ହେଜିବା—ଦେ. କ୍ରି—୧ । ଭାବିବା—2. To think. [ଉ—ବ
Hejibā କାହିଁ ଭ୍ରମରକ ଶକ୍ତି ଭ୍ରମର ହେଜ ତେଜ ଅନୁକ୍ଷଣ
(ହେଜହେବା—ଅନ୍ୟରୂପ)—ମଧୁସୂଦନ ଉଜ୍ଜ୍ୱଳ ଗାଥା] ୨ । ସ୍ମରଣ
ভাবা କରିବା—2. To recollect. (ଉ—ଏହି ମହାବାକ୍ୟ
लिहाज करना ମନେ ମନେ ହେଜି ସବୁ ଗୁଣ ଭଜ ଲୋଭ ମଦ
ହେଜି—ଗ୍ରହ୍ଲାଦ ବରବାର ।) ୩ । ପୂର୍ବ ଘଟଣାକୁ
ସ୍ମରଣକୁ ଆଣିବାକୁ ଚେଷ୍ଟା କରିବା—3. To try to
recollect; to refresh one's memory.
(ଉ—ଗଣ ଗଣିବ ହେଜ ଗୋ, ଧୀରଭାବେ ସଦା ଚରମ
କରିବା, ଉଚ୍ଛୃଙ୍ଖଳ ନାହିଁ ତେଜ ଗୋ—ଗୁରୁ ଲବଙ୍ଗଲତା,
ବାଳକୃଷ୍ଣ)—4. To distinguish; to find out.
[ଉ—ସମୁଦ୍ର ମଧ୍ୟେ କାଟି ପୋଡ଼ି କେ ହେଜଇ ।
କୃଷ୍ଣସିଂହ ମହାଭାରତ. ଆଦି ] ୫ । ଗ୍ରାହ୍ୟ କରିବା;
ଖାତିର କରିବା—5. To show regard for; to
care for. (ଉ—ସେ ବାଣ୍ଡକୁ ନ ହେଜ ଅର୍ଜୁନ ସୁତ,
କାଟିଲେ ସେହି ବାଣମାନଙ୍କୁ କଟୁତ—କୃଷ୍ଣସିଂହ.
ମହାଭାରତ. ଭୀଷ୍ମ ।) ୬ । ଧ୍ୟାନ କରିବା—6 To
meditate. (ଉ—ଏମନ୍ତେ କୃଷ୍ଣରୂପ ହେଜଇ । ଭକ୍ତ
ଗଦ୍‌ଗଦେ ଚକ୍ଷୁ ବୁଜଇ । ଜଗନ୍ନାଥ. ଭାଗବତ)
୭ । ଜାଣିବା—7. To know.
(ଉ—ଯାହା ମାଗିଲ ଦିଅ ପ୍ରଭୁ ସେ କଥା ଅଛନ୍ତି ମୁଁ
ହେଜ—ଜଗନ୍ନାଥ. ଭାଗବତ । ) ୮ । ଭୁଣ୍ଡିବା;
ଖୋଜିବା—8. To trace; to find out. [ଉ—
କଷ୍ଟୁ ଅଦ ପ୍ରଭୁଲେ ଅର୍ଦ୍ଧଚନ୍ଦ୍ରର ଛଳେ ଗୁପ୍ତ ହେଜ
ପ୍ରୟୋଗ କଲେ ସେ—ଭଞ୍ଜ. ବୈଦେହୀଶବିଳାସ ।]

ହେଜୁଆ—ଦେ. ବିଣ. ପୁ—ଯେ ପୂର୍ବ କଥାକୁ ସ୍ମରଣ ରଖିପାରେ—
Hejuā Able to remember things of a retentive
মনে রাখিতে পটু यादरखनेवाला memory.
[ହେଜୁଇ(ଣୀ)ଈ—ସ୍ତ୍ରୀ]

ହେଞ୍ଜ(ଞ୍ଜେ)ର୍ଡ଼ା—ଦେ. ବିଣ ପୁଂ—୧ । ହେଉଲେଶା; ଯେ ସର୍ବଦା ଉଚ୍ଚ
Henja(nje)rdā ହାସ୍ୟ କରେ—1. Given to loud
laugh. ୨ । ନିର୍ଲଜ୍ଜ— . Shameless. ୩ ।
ହେଞ୍ଜଲା (ଦେଖ)—3. Henjalā (see).
(ହେଞ୍ଜର୍ଡ଼ୀ—ସ୍ତ୍ରୀ) হিজড়া बेहाया

ହେଞ୍ଜ(ଞ୍ଜେ)ଲା—ଦେ. ବି ଓ ବିଣ—ପୁଂସ୍ତ୍ୱ ବିହୀନ ପୁରୁଷ—
Henja(nje)lā An impotent person (male)
(ହେଞ୍ଜଲୀ—ସ୍ତ୍ରୀ) দীঞ্জড়া हीजडा

ହେଟ୍—ଦେ. ଅ—୧ । ଗାଡ଼ିର ଘୋଡ଼ାକୁ ଚଳାଇବାବେଳେ ଚାଳକଙ୍କ
Het ଉଚ୍ଚାରିତ ଧ୍ୱନି—1. Sound uttered by a driver
in gading a horse in a carriage. ୨ । ଉଠ;
ମନୁଷ୍ୟକୁ ବା ଜନ୍ତୁକୁ ପଛକୁ ହଟାଇବାପାଇଁ ଉଚ୍ଚାରିତ
ଶବ୍ଦ—2. A sound uttered while directing
হেট্ हट a person or animal to move back.

ହେଟ୍‌ରେଇବା—ଦେ. କ୍ରି—ପୁନଃ ପୁନଃ ବରକ୍ତ କରି କହିବା—
Het-reibā To ply with importunities; to
হেটবান ধারবারতঙ্গকরনা importune.

ହେଟ୍ ହେଟ୍—ପ୍ରାଦେ (ଖଡ଼ିଅଲ) ଅ—ଘୋଡ଼ା ଚଳାଇବା ବେଳେ
Het het ଉଚ୍ଚାରିତ ଶବ୍ଦ—Sound uttered by a driver
while driving a horse.

ହେଟ(ଠ)—ଦେ. ବଣ—(ସ ଅଧଃ; ପାଲି—ହେଟ୍‌ଠା; ପ୍ରା ହେଟ୍‌ଠ—
Heta(tha) ସଂ. ଅଧଃ; ସ ଅଧସ୍ତଃ=ପ୍ରା ଅହଟ୍‌ଠ) ୧। ନତ—
হেট 1. Bent. ୨। ତମ୍ବକୁ ନତ; ତଳଆଡ଼କୁ ନଇଁଥିବା—
हेठ 2. Bent downwards. [ଭ—ଶିର କରି ହେଟ; ନ
ପଙ୍କାଣ ଦେଖେ ପୁତ୍ରର ପେଟ; କମାଇ ମାଉଛ ନଜାଣି—ଉକାଣ୍ଡ
ଗୁ. ହେଠେ, ସିନ୍ଧୁ. ହେଠେ) —ଗୀତିକଳହଂସ]

ହେଟ(ଠ) କରିବା—ଦେ. କ୍ରି—ନୁଆଁଇବା; ତମ୍ବକୁ ନତ କରିବା—
Heta(tha) karibā To bend downwards; to bow
হেট করা हेटक रना down.

ହେଟ(ଠ)ବଦନ (ମୁଖ, ମାଥ)—ଦେ. ବ—ଅଧୋବଦନ; ଅବନତ
Heta(tha) badana (mukha, mātha) ମସ୍ତକ; ଲଜ୍ଜାବ-
[ହେଟ(ଠ)ମୁହାଁ—ଅନ୍ୟରୂପ] ନତ ମସ୍ତକ; ତମ୍ବକୁ ନତ ମସ୍ତକ—
Face bent downwards; drooping head.
[ଭ—ହୋଇଥିଲୁ ହେଟ ମୁଖ ସେ; ଭୂମି ତଳେ ଥାଦ ନଖ
ସେ—ବିଶ୍ୱନାଥ ବଡ଼ଜେନା ବିଚିତ୍ର ରାମାୟଣ) ବଣ, ପୁଂ—ହେଟ-
হেঁটমাথা हेठबदन ମୁହାଁ (ଦେଖ)—Hetamuhān (See
[ହେଟ(ଠ)ବଦନା, ହେଟ(ଠ)ମୁଣ୍ଡୀ—ସ୍ତ୍ରୀ. ବଣ]

ହେଟ(ଠ)ମୁହାଁ—ଦେ. ବଣ ପୁଂ—୧। ଅଧୋବଦନ, ଅଧୋମସ୍ତକ;
Heta(tha)muhān ଲଜ୍ଜା ବା ଶୋକରେ ଯାହାର ମୁଣ୍ଡ ତଳକୁ
[ହେଟ(ଠ)ମୁହାଁ—ସ୍ତ୍ରୀ] ହୋଇ ଅଛି—1. With face bowed
down; with a drooping head (due to
shame or grief). ୨। ପୋଡ଼ାମୁହାଁ—2. One
হেঁটবদন हेठमुँहा who has his face bent down.

ହେଟ(ଠ)ା—ଦେ. ବ—(ସଂ, ହେଟ୍ ଧାତୁ=ହେଟଦେବା; ଅବଜ୍ଞା
Heta(thā) କରିବା; ଏ ମନୁଷ୍ୟକୁ ଦେଖିଲେ ହେଟଦଏ—
(ହେଟା ବାଘ—ଅନ୍ୟରୂପ) ଓ ଦାନ୍ତ ଦେଖାଏ ବୋଲି; ସଂ.
ନାମ ତରକ୍ଷୁମୃଗ) ଜନ୍ତୁଅ ବାଘ—Hyena; Hyena
Striata. ପ୍ରାଦେ (ସମ୍ବଲପୁର) ବଣ—ଥେଣ୍ଟା—
Disobedient; refractory. (ଯଥା—ହେଟା ଟୁକର)
ପ୍ରାଦେ (ଗଡ଼ଜାତ) ସର୍ବନାମ—୧। (ବସ୍ତୁ ବା ବ୍ୟକ୍ତି
ନିର୍ଦ୍ଦେଶକ) ଏଇଟା—1. This. ୨। (ଅବଜ୍ଞାର୍ଥକ)
ସେଇଟା; ସେଇଟା—2. That (in contempt).
୩। ସେ ସ୍ଥାନ; ସେଠା—3. That place; there.
নেকড়েবাঘ, হেঁাদড় हुंडार,लकड़बग्घा
लगड़ मेडिया

ହେଟା(ଟେ,ଠା,ଠେ)ଇବା—ଦେ. କ୍ରି—୧। କଥା କହୁଥିବାବେଳେ ଯୋଗ
Heta(te, thā, the)ibā ଦେଇ ବା ଉତ୍ସାହିତ କରି
যুগিয়ে দেওয়া समालना ବକ୍ତାକୁ ସାହାଯ୍ୟ ଦେବା—
1. To help a speaker; to encourage or
prompt a speaker by supporting him.
୨। ପଛରୁ ଥାଇ ସାହାଯ୍ୟ କରିବା ବା ଉତ୍ସାହିତ କରିବା—
2. To help or encourage a person from
নোয়ান नवाना behind. ୩। ନୁଆଁଇବା
ନମ୍ର କରିବା—3. To bend. ୪। ଯଥେଷ୍ଟ ହେବା;
ଅଣ୍ଟିବା—4. To suffice. (ଯଥା—ଏ ଘରବାରିକି
ଏତେ ଲୋକଙ୍କୁ ହେଟେଇବ ନାହିଁ।)

ହେଟାଗଡ଼ିଆ—ପ୍ରାଦେ (ସମ୍ବଲପୁର) ବଣ—ଅବୁଡ଼ାଖାବୁଡ଼ା; ଅସମତଳ—
Hetāgardiā Rough; of uneven surface.

ହେଟାଗାଣ୍ଡି—ଦେ. ବ (ହେଟାମାନଙ୍କ ଦେହ ତୁଳନାରେ ପିଚ୍ଛ ଓ ଅଗ
Hetāgāndi ଗୋଡ଼ ଅପେକ୍ଷା ପଛଗୋଡ଼ ସାନ ଓ ପିଠିର
নেকড়ে পোঁদ लगघड़ गांड अଗ ଅପେକ୍ଷା ଶେଷଆଡ଼
ନମ୍ର ଓ ଅସୁନ୍ଦର ଦେଖା ଯାଉଥିବାରୁ )—ହେଟା ପରି
ଅସୁନ୍ଦର ନତ ପିଚ୍ଛ—Low and small buttocks
like those of a hyena.

ହେଟାଗାଣ୍ଡିଆ—ଦେ. ବଣ—ଯେଉଁ ବ୍ୟକ୍ତିର ପିଚ୍ଛ ହେଟାର ଗାଣ୍ଡି ପରି
Hetāgāndiā ଅସୁନ୍ଦର—Having unseemly
(ହେଟାଗାଣ୍ଡିଇ—ସ୍ତ୍ରୀ) and small buttocks like
নেকড়ে পোঁদা लगघड़गांडी the hyena.

ହେଟାଗୁ(ଗୋ)ଡ଼ି—ପ୍ରାଦେ ( ଗଞ୍ଜାମ ) ବ—କେଳୁଡ଼େଇବା ଦଣ୍ଡ;
Hetāgu(go)rdi ପୂର୍ବକାଳରେ ପ୍ରଚଳିତ ଦଣ୍ଡବିଶେଷ—
A punishment (formerly in vogue) consisting of making a person to bend by
standing like a hyena with the two feet
and the two palms set on the ground
[ବି—ଏଥିରେ ଦୁଇ ନତ ଗୋଡ଼କୁ ଓ ଦୁଇ କରତଳକୁ
ଭୂଇଁରେ ଲଗାଇ ଠିଆ ହେବା ଅବସ୍ଥାରେ ନଇଁପଡ଼ିବାକୁ
ହୁଏ । ଏପରି କଲେ ହେଟା ପରି ଆଗଭାଗ ଉଚ୍ଚ
ଓ ପଛଭାଗ ନୀଚ ଦେଖାଯାଏ। ତେଣୁ ଏ ଦଣ୍ଡର ନାମ
ଏପରି ହୋଇ ଯାଇଥିବ।]

ହେଟା ଦର—ପ୍ରାଦେ (ବାଲେଶ୍ୱର) ବ—ହତାଦର—
Hetā dara Disregard; contempt; derision.
(ଭ— × × × ବାହୁଁ ଗୋଟାଏ ଅଛି
ମୋ ଭୁଥିଲୁ ହେଟାଦର କରିବ, ମାଉଇଣ୍ଡିଟି କାନ୍ଦିବ—
ତା ବଡ଼ଲ ସହି ପାରିବ ନାହିଁ—ଫକୀରମୋହନ
ଗଳ୍ପସ୍ୱଳ୍ପ )

ହେଟା ମୁଣ୍ଡ—ପ୍ରାଦେ (ଖଡ଼ିଅଲ) ବଣ ( ହେଟାର ମୁଣ୍ଡ ତାକ ଅପେକ୍ଷା
Hetā munda ନତ ହୋଇଥିବାରୁ)—ନତମସ୍ତକ—Downfaced; with head bowed
(ହେଟାମୁଣ୍ଡିଆ—ଅନ୍ୟରୂପ) down.

ହେଟାମୁଣ୍ଡିଆ—ଦେ. ବଣ—ହେଟା ପରି ଯେଉଁ ପଶୁର ମୁଣ୍ଡ ତାକ
Hetā mundiā ଅପେକ୍ଷା ନୀଚ ହୋଇଥାଏ—
নেকড়েমুখো लगघड़मुंडा (a quadruped]

Having the head at a lower level than the shoulder. ବ—ବହୁଶାଖାଯୁକ୍ତ ଗୁଳ୍ମବିଶେଷ— A species of plant having many branches; Trichodesma Indicum (Haines.) ( ଦ୍ର— ଏହା ୯ ରୁ ୧୨ ଫୁଟ୍ ଯାଏ ଉଚ୍ଚ ହୁଏ; ଫୁଲ ଧଳାମିଶା ନେଳଆ

ହେଟାର—ପ୍ରାଦେ(ପାଠଣା)ଅ (ମାଳ ଅଞ୍ଚଳ ବ୍ୟବହୃତ ଭାଷା) ସେଥିପାଇଁ— Hetāra For that; therfore.

ହେଟାହୁଲିଆ—ପ୍ରାଦେ (ଖଡ଼ିଆଳ) ବ—ବନ୍ୟ ଗୁଳ୍ମବିଶେଷ— Hetā huliā A wild plant [ଦ୍ର— ଏହାର ଫୁଲ ଭଳକୁ ମୁଖ କରିଥାଏ ।]

ହେଟି(ଠି)—ଦେ. ଅ—( ନିର୍ଦ୍ଦେଶାର୍ଥ ) ହେଇଟି—Look there ! Heṭi(ṭhi) there it is ! [ଉ—ହେଇଟ ଦେଖ, ହେଟ ঐদেখ यहाँ ମା ବେ ଟ କୁଞ୍ଜ କୁଟୀରେ । ନନ୍ଦଙ୍କ ଉଦ୍ଧବ ସଙ୍ଗୀତ ।] ପ୍ରାଦେ (ଗଞ୍ଜାମ) ସର୍ବନାମ—ସେଠି; ସେଠାରେ—There.

ହେଟିଣି(ନି)—ଗ୍ରା. ଅ ଓ ସର୍ବନାମ—ହେଟି (ଦେଖ)— Heṭiṇi(ni) Heṭi (See).

ହେଟି(ଠି) ଦେବା—ଦେ. କି—(ସ. ହେଠ୍. ଧାତୁ=ଅବଜ୍ଞା କରିବା)— Heṭi(ṭhi) debā ୧ । ମାନ୍ୟ ବ୍ୟକ୍ତିଙ୍କୁ ଅବଜ୍ଞା କରିବା— অবহেলা করা अनादर करना 1.To disregard; to slight. [ହେଟି(ଠି)ବା—ଅନ୍ୟରୂପ] ୨ । ଆଦେଶକୁ ଲଙ୍ଘନ କରିବା— —2.To disobey an order. ୩। (ଭୃତ୍ୟ ବା ପିଲା) ସ୍ୱାମୀଙ୍କ ବା ଗୁରୁଜନଙ୍କ କଥାର ଅବଜ୍ଞାସୂଚକ ଉତ୍ତରଦେବା 2. To give taunting reply to a master's or guardian's commands.

ହେଟେଟେ—ପ୍ରାଦେ (ପାଠଣା) ବଣ—ବେଶୀ— Heṭete Much.

ହେଠ୍(ଧାତୁ)—ସ.—୧ । ବାଧାଦେବା (ଶବ୍ଦ କଳ୍ପଦ୍ରୁମ)—1. To Heṭh (root) obstruct; to impede. ୨ । ଅବଜ୍ଞା କରିବା—2. To disregard; to slight.

ହେଠ—ସ. ବ—(ହେଠ୍. ଧାତୁ+ଭାବ ଅ)—୧ । ବାଧା (ମେଦିନୀ)— Heṭha Obstruction; impediment. ୨ । କ୍ଷତି— 2. Loss; injury. ଦେ. ବଣ—ହେଟ (ଇତ୍ୟାଦି) (ଦେଖ)—Heṭa etc (See). ( ଉ—ବେଦବେଦେ ନ କହେ ବାଣୀ ହେଠ ବଦନ, ଦେଖିଣ ଭୂମର କୋପ କଲଭ ମନ । ପ୍ରାଚୀ. ଷଷ୍ଠିଶେଣା )

ହେଠାନେ—ପ୍ରାଦେ ( ବାଲେଶ୍ୱର ପାଠଣା ) ସର୍ବ—ସେ ସ୍ଥାନରେ; Heṭhāne ସେଠାରେ—In that place; there.

ହେଠୁ(ଠୁଁ)—ଗ୍ରା. ଅ—ଏହଠାରୁ; ଏଠାରୁ—From this place. Heṭhu(ṭhuñ) হেথা থেকে यहाँसे

ହେଡ୍(ଧାତୁ)—ସ.—୧ । ବେଷ୍ଟନ କରିବା (ଦୁର୍ଗାଦାସ)—1. To en- Heḍ(root) velop; to surround. ୨ । ବାଡ଼ ଘେରିବା;ବାଡ଼ ବୁଜିବା—2. To fence round. ୩ । ଘୃଣା କରିବା—3. To hate; to express contempt. ୪ । ଅବଜ୍ଞା କରିବା—4. To disregard; to slight. ବୈଦେ. ବ. (ଇଂ)—୧ । ବିଭାଗ; ହେଡିଙ୍ଗ୍—1. Head; item; heading. হেড্ हेड (ଯଥା—ଏ ଖରଚ କେଉଁ ହେଡ୍‌ରେ ଲେଖାଯିବ?) ୨ । ମସ୍ତିଷ୍କ; ବୁଦ୍ଧି — 2. Brain; intellect. (ଯଥା—ଏ ପିଲାଟାର ଗଣିତରେ ଭଲ ହେଡ୍ ଅଛି) ବଣ—(ଅନ୍ୟ ଶବ୍ଦ ପୂର୍ବେ ଯୁକ୍ତ ହୁଏ) ନେତୃ ସ୍ଥାନୀୟ— Headi principal; chief. ( ଦ୍ର—ଏହି ଇଂରାଜୀ ଶବ୍ଦ ଅନ୍ୟ ଇଂରାଜୀ, ଯାବନିକ ଓ ସଂସ୍କୃତୋଦ୍ଭବ ଶବ୍ଦ ପୂର୍ବେ ଯୁକ୍ତ ହୋଇ ବ୍ୟବହୃତ ହୁଏ । ଯଥା—ହେଡ୍ ମାଷ୍ଟର୍, ହେଡ୍ ମୌଲଭୀ ହେଡ୍ ପଣ୍ଡିତ ଇତ୍ୟାଦି)

ହେଡ୍ ଅ(ଆ)ଫିସ୍—ବୈଦେ. ବ—(ଇଂ.)—ସଦର ବା ରାଜଧାନୀରେ Hed a(ā)phis ଥିବା କୌଣସି ବିଭାଗର ସର୍ବୋଚ୍ଚ କାର୍ଯ୍ୟାଳୟ— হেড্ অফিস हेडआफिस Head office.

ହେଡ୍ ଅମୀନ୍—ବୈଦେ ବ—( ଇଂ. ହେଡ୍ ଓ ଫା. ଅମୀନ୍ )— হেড্ আমিন हेडअमीन ଜମି ମାପିବା କର୍ମଚାରୀମାନଙ୍କ ମଧ୍ୟରେ ପ୍ରଧାନ କର୍ମଚାରୀ—Head amin; head surveyor.

ହେଡ୍ ଆସିଷ୍ଟାଣ୍ଟ—ବୈଦେ. ବ—(ଇଂ)—ଉଚ୍ଚ କର୍ମଚାରୀ ବା ହାକିମଙ୍କ Hed asishṭānṭ ସିରସ୍ତାଦାର—Head assistant. হেড্ আসিষ্টাণ্ট हेडअसिस्टेण्ट

ହେଡ୍ ଏକ୍‌ଜାମିନର୍—ବୈଦେ. ବ—[ଇଂ]—ଇକ୍‌ଜାମିନର୍ ପରୀକ୍ଷା Hed ekjāminar କରିବା ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରଧାନ হেড্ একজামিনর ବ୍ୟକ୍ତି—Head examiner. हेडएक्यामिनेतर

ହେଡ୍ କନ୍(ନ)ଷ୍ଟବଲ୍—ବୈଦେ. ବ— ଇଂ) —କନଷ୍ଟବଲ୍‌ମାନଙ୍କ Hed kan(ni)shṭabal ମଧ୍ୟରେ ସର୍ଦ୍ଦାର—Head constable. হেড্ কনষ্টবল हेड कनिस्टेबिल

ହେଡ୍ କିରାଣୀ (ଣି) — ବୈଦେ ବ—(ଇଂ ହେଡ୍ ଓ ଫା-କିରାଣୀ)— Hed kirāṇi ṇi) ହେଡ୍ କ୍ଲର୍କ୍ (ଦେଖ)—Head klark হেড্ কেরাণী हेडकिरानी (See)

ହେଡ୍ କୁଆର୍ଟର (କ୍ୱାର୍ଟର୍)—ବୈଦେ. ବ—(ଇଂ.)—ହାକିମଙ୍କ ସଦର Hed kuārṭar (kwārṭar) ମୁକାମ; ରାଜଧାନୀ—Headquarters. (ହେଡ୍ କ୍ୱାର୍ଟସ୍ —ଅନ୍ୟରୂପ) হেডকার্টর हेडक्वार्टर

ହେଡ୍ କୁଲି—ବୈଦେ. ବ—(ଇଂ ହେଡ୍ ଓ ତୁର୍କୀ. କୁଲି)—କୁଲି Hed kuli ସର୍ଦ୍ଦାର—Head cooly; head labourer. হেড্ কুলি हेडकुलि

ହେଡ୍ କ୍ଲ(କ୍ଲା)ର୍କ—ବୈଦେ. ବ—(ଇଂ)—କାର୍ଯ୍ୟାଳୟରେ କିରାଣୀଙ୍କ Hed kla(klā)rk ମଧ୍ୟରେ ପ୍ରଧାନ ବ୍ୟକ୍ତି—Head clerk. হেড ক্লার্ক हेडक्लार्क

ହେଡ୍ ନୋଟ୍—ବୈଦେ. ବ —(ଇଂ)—ପ୍ରତ୍ୟେକ ଅଧ୍ୟାୟର ବା ନଜିରର Hed noṭ ଆରମ୍ଭରେ ଉକ୍ତ ଅଧ୍ୟାୟରେ ବା ନଜିରରେ ଲିଖିତ হেডনোট ବିଷୟର ସାରାଂଶ ବା ଟୀକା—Headnote of हेडनोट every chapter or ruling.

ହେଡ଼ପଣ୍ଡିତ—ଦେ. ବି—(ଇଂ ହେଡ୍ ଓ ସଂ ପଣ୍ଡିତ)—ସ୍କୁଲ ଓ Hed pandita ଦେଶୀୟ ଭାଷା ଶିକ୍ଷା ଦେବାପାଇଁ ନିଯୁକ୍ତ ହେଡ଼ପଣ୍ଡିତ ପଣ୍ଡିତମାନଙ୍କ ମଧ୍ୟରେ ପ୍ରଧାନ ପଣ୍ଡିତ—Head-pandit. हेडपण्डित

ହେଡ଼ପିଅ(ଓ)ନ୍—ବୈଦେ. ବି—(ଇଂ)—ପିଅନମାନଙ୍କ ସର୍ଦ୍ଦାର—Hed pin(u)n Head peon. হেডপিওন हेडपिउन

ହେଡ଼ବାଏ—ବୈଦେ. ବି—(ଇଂ)—୧ । କ୍ଲାସରେ ଯୋଗ୍ୟତାରେ Hed bae ସର୍ବପ୍ରଥମ ସ୍ଥାନ ଅଧିକାର କରିବା ଛାତ୍ର—1. Head হেডবয় boy in a class. ୨ । କ୍ଲାସର ଅନ୍ୟ ଛାତ୍ରଙ୍କ ପ୍ରତିନିଧି ରୂପେ ନିଯୁକ୍ତ ଉତ୍ତମ ବାଳକ; ବଡ଼ଗୃହ—2. The monitor of a class.

ହେଡ଼ବାବୁ—ଦେ. ବି (ଇଂ. ହେଡ୍ ଓ ଦେ. ବାବୁ)—ଅଫିସ୍‌ର ବାବୁ Hed babu ବା ଦେଶୀୟ କର୍ମଚାରୀଙ୍କ ମଧ୍ୟରେ ପ୍ରଧାନ କର୍ମଚାରୀ হেড বাবু —Head babu of an office. हेड बाबु

ହେଡ଼ମୌଲବି(ମୌଲବି)—ବୈଦେ. ବି (ଇଂ. ହେଡ୍ ଓ ଅ. ମୌଲଭି) Hed maulabi(maulabi) ଛାତ୍ରମାନଙ୍କୁ ଅରବୀ,ଉର୍ଦ୍ଦୁ ବା ଫାରସୀ হেড় মৌলবী ଭାଷା ଶିଖାଇବା ଶିକ୍ଷକମାନଙ୍କ ମଧ୍ୟରୁ ପ୍ରଧାନ ଶିକ୍ଷକ हेड मौलवी —Head moulvi.

(ହେଡ଼ମଉଲ୍ବି, ହେଡ୍ ମୌଲ୍‌ବି, ହେଡ୍ ମୌଲ୍‌ବି—ଅନ୍ୟରୂପ)

ହେଡ଼ମ୍ୟା(ମେ, ମ୍ୟା)ନ୍—ବୈଦେ. ବି ( ଇଂ )—୧ । ଗ୍ରାମର ମୁଖିଆ Hed mā(me, myā)n ବ୍ୟକ୍ତି; ସେ ଗ୍ରାମବାସୀମାନଙ୍କ ପକ୍ଷରୁ হেড় ম্যান ପ୍ରତିନିଧି ସ୍ୱରୂପ ରାଜ କର୍ମଚାରୀଙ୍କ ସଙ୍ଗେ ... हेड मन ରଖନ୍ତି—1. Village headman. ୨ । ଜାତି-ଭାଇଙ୍କ ମଧ୍ୟରେ ସର୍ଦ୍ଦାର—2. Headman of a caste-guild.

ହେଡ୍ ମାର୍କ—ବୈଦେ. ବି (ଇଂ)—ଛାତ୍ରମାନଙ୍କୁ ପ୍ରଦତ୍ତ ପ୍ରଶ୍ନର ସମ୍ପୂର୍ଣ୍ଣ Hed mārk ନିର୍ଦ୍ଦୋଷ ଓ ସନ୍ତୋଷଜନକ ଉତ୍ତର ଦେବା হেড মার্ক ପିଲା ଯେତେ ନମ୍ବର ପାଇବ, ପ୍ରଶ୍ନୋତ୍ତରାର୍ଥ हेड मार्क ନିର୍ଦ୍ଦିଷ୍ଟ ପୂରା ନମ୍ବର—Head mark.

ହେଡ୍ ମାଲି—ଦେ. ବି ( ଇଂ. ହେଡ୍ ଓ ସଂ. ମାଲାକାର )—ଉଦ୍ୟାନ Hed māli ରକ୍ଷକ ମାଳୀମାନଙ୍କର ସର୍ଦ୍ଦାର—Head māli, হেড় মালি हेड माली head gardener.

ହେଡ଼ ମାଷ୍ଟର୍—ବୈଦେ· ବି. ପୁଂ(ଇଂ)—୧ । ବିଦ୍ୟାଳୟର ପ୍ରଧାନ Hed māshtar ଇଂରାଜି ଶିକ୍ଷକ—1. Head master of হেড় মাষ্টার a school. ୨ । ଇଂରାଜି ବିଦ୍ୟାଳୟର ପ୍ରଥମ हेड मास्टर ଶିକ୍ଷକ—2. Head master.

ହେଡ଼ ମାଷ୍ଟରୀ—ଦେ.ବିଣ—ହେଡ୍ ମାଷ୍ଟରଙ୍କ କର୍ମ—The post Hed māshtari or work of a head master; head হেড় মাষ্টারী हेड मास्टरी mastership.

ହେଡ଼ ମିଷ୍ଟ୍ରେସ୍—ବୈଦେ· ବି. ସ୍ତ୍ରୀ ( ଇଂ )—ବାଳିକା ବିଦ୍ୟାଳୟର Hed mishtres ପ୍ରଧାନ ଶିକ୍ଷୟିତ୍ରୀ—Head mistress হেডমিষ্ট্রেস हेडमिस्ट्रेस

ହେଡ଼୍ ମିସ୍ତ୍ରି (ମିସ୍ତ୍ରୀ)—ବୈ. ଦେ· ବି—(ଇଂ. ହେଡ୍ ଫା. ମିସ୍ତ୍ରୀ)—Hed mistiri (mistri) ରାଜ ବା କାରିଗରମାନଙ୍କ ସର୍ଦ୍ଦାର—হেডমিস্ত্রী हेडमिस्त्री Head mason; head mistry.

ହେଡ୍ ଲାଇଟ୍—ବୈଦେ. ବି—(ଇଂ)—ମଟର୍ ବା ରେଲଗାଡ଼ି ଆଦିର Hed lāit ସାମନାରେ ଥିବା ଖୁବ୍ ଉଜ୍ଜ୍ୱଳ ଆଲୁଅ (ଯାହାଦ୍ୱାରା হেডলাইট ଅଗର ସବୁପଦାର୍ଥ ସ୍ପଷ୍ଟରୂପେ ଦେଖାଯାଏ)—Head-हेडलाइट light.

ହେଡ଼ଲାଇନ(ନି)—ବୈଦେ. ବି—(ଇଂ. ହେଡ୍ ଲାଇନ୍ )—ବହିର Hed lāin(ni) ପ୍ରତ୍ୟେକ ପୃଷ୍ଠାରେ ଲେଖାଥିବା ବିଷୟର হেডলাইন ସଂକ୍ଷିପ୍ତ ସୂଚନା ଲେଖା ହୋଇଥିବା ଧାଡ଼ି, ଯାହା हेडलाइन ପୃଷ୍ଠାର ଶୀର୍ଷଦେଶରେ ଥାଏ—Head-line.

ହେଡ଼ ସଇ(ହି)ସ (ସହିସ)—ବୈଦେ. ବି—(ଇଂ ହେଡ୍ ଓ ଫା. ସାଇସ) Hed sai(hi)sa(saisa) ଘୋଡ଼ା ସଇସମାନଙ୍କ ସର୍ଦ୍ଦାର—A হেডসইস हेडसाइस head groom for horses.

ହେଡ଼ ସ୍ଲୁଇସ୍—ବୈଦେ. ବି—(ଇଂ)—ଆନିକଟ୍‌ରେ ବା କେନାଲ୍‌ରେ Hed sluis ପାଣି ଛିଡ଼ିବାପାଇଁ ନିର୍ମିତ ଫୁକାମାନଙ୍କ ମଧ୍ୟରେ হেড স্লুইস ସବୁଠାରୁ ବଡ଼ ଫୁକାର—Head-sluice of an हेडस्लुईस anicut.

ହେଡ଼ଜ—ବି—ସ(ହେଡ୍. ଧାତୁ + କରଣ. ଅଜ)—କ୍ରୋଧ Herdaja (ଶବ୍ଦକଳ୍ପଦ୍ରୁମ)—Anger; rage.

ହେଡ଼ା—ଦେ. ବି—(ସଂ. ହଡ୍ଡ=ହାଡ଼)—୧ । ହାଡ଼ଯୁକ୍ତ ମାଂସ—1 Herdā Meat attached to bone. ୨ । ଗୋମାଂସ—2 গোমাংস Beef. ୩ । ନିକୃଷ୍ଟ ଜନ୍ତୁର ମାଂସ—3. Meat of हेडा, गोमांस an infer; or animal. ୪ । ପଚ୍ଚମାଂସ—4. Rotten meat.

ହେଡ଼ା ଖିଆ—ଦେ. ବିଣ, ପୁଂ—୧ । ଗୋମାଂସ ଭୋଜୀ; ଯେଉଁ ବ୍ୟକ୍ତି Herdā khiā ଗୋମାଂସ ଆହାର କରେ—1. Beef eating; (ହେଡ଼ାଖାଇ—ସ୍ତ୍ରୀ) partaking of beef. ୨ । (ଗାଳି) ନିଷିଦ୍ଧ গোখাদক ମାଂସ ଖାଦକ—2. Partaking of forbidden गोमांसखानेवाला meat. ବି—ଗୋମାଂସ ଖାଦକ ବ୍ୟକ୍ତି—A beef eater.

ହେଡ଼ାଖିଆ କାମ—ଦେ. ବି—(ଲକ୍ଷଣାର୍ଥ)—ନିକୃଷ୍ଟ, ଜଘନ୍ୟ ଓ Herdākhiā kāma ନିଷିଦ୍ଧ କାର୍ଯ୍ୟ—(figurative) Re-গোখাদকী কাজ prehensible and forbidden act. नीचकाम [ଦ୍ର—ଯେଉଁ ବ୍ୟକ୍ତି ପରଦାର ବା ଚୋରି ଆଦି କରିଥାଏ 'ସେ ହେଡ଼ାଖିଆ ବା ଗୁହଖିଆ କାମ କଲା' ବୋଲି ଲୋକେ କହନ୍ତି ।]

ହେଡ଼ାବୁକ୍କା—ସ. ବି—ଅଶ୍ୱ ବିକ୍ରୟକାରୀ (ବିକାଣ୍ଡ ଶେଷ)—A horse-Herdābukka seller; horse-dealer.

ହେଡ଼ିଙ୍ଗ—ବୈଦେ. ବି (ଇଂ)—କୌଣସି ଲେଖାର ଶିରୋନାମା—Heding Heading.

(ହେଡ଼ିଂ—ଅଶୁଦ୍ଧ ରୂପ) হেডিঙ্ হেডিंग

ହେଣ୍ଟାର(ଲା)—ଦେ. ବି—ବାଘର ବା ସିଂହର ହାଣ୍ଟୋଳ; ଗର୍ଜନ—
Hentarā(lā) Roar of a tiger or lion.
গর্জন गर्जन (ହେଣ୍ଟାରିବା—କ୍ରିୟା)

ହେଣ୍ଟାର(ରେ)ଇବା—ଦେ. କ୍ରି (ସଂ. ହେଡ ଧାତୁ)—୧ । କଥାକୁ ଏଡ଼ି
Hentarā(re)iba ଦେବା—1. To disregard a person's word.
হেঁটরান, এড়ান ୨ । (ଭୃତ୍ୟ ବା ଶିଷ୍ୟ)
बेखातिर करना, ଅବଜ୍ଞାସୂଚକ ଉତ୍ତର ଦେବା—2. To give
চেতান a sneering or insubordinate or
बारबार याद करना jeering reply. ୩ । କୌଣସି ଲୋକକୁ
କୌଣସି କାର୍ଯ୍ୟ କରିବାକୁ ବାରଂବାର ଚେତାଇବା—
3. To urge a person repeatedly to do a thing by goading him often.

ହେଣ୍ଟା—ଦେ. ବିଣ—ଅମାନିଆ; ବେଖାତିରିଆ (ଭୃତ୍ୟ)—
Hentā Insubordinate.
বেখাতিরে बेखातिरिया

ହେଣ୍ଟା(ଣ୍ଟେ)ଇବା—ଦେ. କ୍ରି—୧ । ଅଣ୍ଟାଇବା; ପଛଆଡ଼ୁ ପେଲିବା—
Hentā(nte)iba 1. To push on from behind.
পিছুনে থাকা ୨ । ସାହାଯ୍ୟ କରିବା—2. To help. ୩ ।
मदद करना ଅଣ୍ଟିବା—3. To suffice. (ଯଥା—୮ ସେର ମୁଗ
যথেষ্ট হওয়া ଡାଲି କଲେ ସବୁ ଜଣଙ୍କୁ ହେଣ୍ଟାଇବ ।)
बस होना

ହେଣ୍ଟାର(ଲ)—ଦେ. ବି—ହାଣ୍ଟୋଳ; ବାଘର ବା ସିଂହର ଗର୍ଜନ—
Hentāra(la) Lion's or tiger's roar.
গর্জন गर्जन

ହେଣ୍ଟାରି(ଳି)ବା—ଦେ. କ୍ରି—ହାଣ୍ଟୋଳିବା; (ବାଘ, ସିଂହ) ଗର୍ଜିବା—
Hentāri(li)bā To roar (said of a tiger or
গর্জন করা गर्जन करना lion.)

ହେଣ୍ଟିବା—ଦେ. କ୍ରି ( ସଂ. ହେଡ ଧାତୁ )—ଆଦେଶକୁ ବା କଥାକୁ
Hentibā ଠେଲି ଦେବା; ଅବଜ୍ଞା କରିବା—To disregard
এড়ান बेखातिर करना an order or request.
(ହେଣ୍ଟି ଦେବା—ଅନ୍ୟରୂପ)

ହେଣ୍ଟେଇବା—ପ୍ରାଦେ (ଉତ୍ତର ବାଲେଶ୍ୱର) କ୍ରି—ହାମ୍ବୁରିବା; ଗର୍ଜନ
Henteibā କରିବା—To roar; to howl.
ଦେ. କ୍ରି—ହେଣ୍ଟାଇବା (ଦେଖ)—Hentāibā (See)

ହେ(ହ୍ୟା)ଣ୍ଡ (ଇତ୍ୟାଦି)—ବୈଦେ.ବ (ଇଂ)—ହାଣ୍ଡ ଇତ୍ୟାଦି(ଦେଖ)
He(hyā)nd (etc) Hand etc. (See)

ହେଣ୍ଡା—ଦେ. ବି—୧ । ଢୋଲ ବାଦ୍ୟ; ହାବୁଡ଼ା; ବାହୁର ତଳ ଅଂଶକୁ
Hendā ପାର୍ଶ୍ୱରେ ଆଘାତ କରି କରାଯିବା ଶବ୍ଦ (ଆହ୍ଲାଦ
বগল বাজনা ସୂଚକ)—1. Sound made by striking
काँख बाजा the lower side of the arm on the
নিষ্কর্মা बेकार flank. ୨ । ପୁଂ—ନିଷ୍କର୍ମା ବ୍ୟକ୍ତି—2. Idle
(ହେଣ୍ଡୀ—ସ୍ତ୍ରୀ) person. ୩ । ଖାଇ ପିଇ ଅଡ଼ଙ୍ଗା ହୋଇ ଏଣେ
ତେଣେ ବୁଲୁଥିବା ବ୍ୟକ୍ତି—3. A loafer. ବିଣ. ପୁଂ—
*ମୂର୍ଖ—Illiterate.

ହେଣ୍ଡା ମାରିବା—ଦେ. କ୍ରି—୧ । ଢୋଲ ବାଦ୍ୟ ବଜାଇବା; ବାହାକୁ
Hendā māribā ପଞ୍ଜରେ ମାରି ଶବ୍ଦ କରିବା—1. To
বগল বাজান make sounds by striking one's
काँख बजाना arms on the flanks.
୨ । (ଲକ୍ଷଣାର୍ଥ) ଉଲ୍ଲାସ ବା ଆନନ୍ଦ ପ୍ରକାଶ କରିବା—
2. (figurative) To give vent to delight.
টোটো করা ୩ । ନିଷ୍କର୍ମା ଓ ଲକ୍ଷ୍ମୀଛଡ଼ା ହୋଇ ବୁଲିବା—
बेकार होकर घुमना 3. To loaf about.

ହେଣ୍ଡି—ଦେ. ବି—ହେଣ୍ଡା ୧ ( ଦେଖ )
Hendi Hendā 1 ( See )
কক্ষবাদ্য काँखबाजा

ହେଣ୍ଡିଆ—ଦେ. ବି. ପୁଂ—୧ । ଯେଉଁ ବ୍ୟକ୍ତି ବାହୁର ତଳକୁ ପଞ୍ଜର
Hendiā ପାର୍ଶ୍ୱରେ ବାଡ଼େଇ ହେଣ୍ଡି କରେ—1. A person
বগল বাজানে who produces sounds by strik-
काँख बजानेवाला ing the arms on the flanks.
୨ । ପୂର୍ବେ ପୁରୀ ଜିଲ୍ଲାର ବ୍ରାହ୍ମଣଶାସନମାନଙ୍କରେ
ଆଷାଢ଼, କାର୍ତ୍ତିକ, ମାଘ ଓ ବୈଶାଖ ମାସରେ ପ୍ରତ୍ୟୁଷ
ବ୍ରାହ୍ମଣମାନଙ୍କର ପ୍ରାତଃସ୍ନାନପାଇଁ ନିଦ୍ରା ଭଙ୍ଗାଇବା
ଉଦ୍ଦେଶ୍ୟରେ ଯେଉଁ ଶୂଦ୍ର ସେବକ ବାହୁରେ ହେଣ୍ଡି
ମାରି ବୁଲିବାକୁ ନିଯୁକ୍ତ ହେଉଥିଲେ—
2. A Śūdra village servant who used to get service-tenure from the Raja for awakening Brahmans of a Brahman village of the Puri district early in the morning in the sacred months of Ashārdha, Kārtika, Māgha and Baiśākha (to enable them to have their morning bath) by loudly striking his arms on the flanks. [ଦ୍ର—ବର୍ତ୍ତମାନ ଏହି ପ୍ରଥା ଆଉ ଚଳୁ ନାହିଁ, କାରଣ, ଏବେ ଶତ ଶତ ବ୍ରାହ୍ମଣଙ୍କ ବସତି ଶାସନମାନଙ୍କରେ ପ୍ରାତଃସ୍ନାୟୀ ଜଣେ ଦୁଇଜଣ ଦେଖା ଯାଆନ୍ତି । କିନ୍ତୁ ଏ ପର୍ଯ୍ୟନ୍ତ 'ହେଣ୍ଡିଆ ଜାଗିର' ଓ 'ହେଣ୍ଡିଆ ଘର' ଜମିକୁ ହେଣ୍ଡିଆମାନଙ୍କ ବଂଶଧର ଓ ସେମାନଙ୍କ ଖରିଦଦାରମାନେ ଦଖଲ କରୁ ଅଛନ୍ତି । ବ୍ରାହ୍ମଣମାନେ ନିଦ୍ରାରୁ ଉଠିବା ସମୟରେ ପ୍ରଥମେ ଶୂଦ୍ରଙ୍କ ପାଟି ଶୁଣିବେ ନାହିଁ, ଏଥିପାଇଁ ଉକ୍ତ ଶୂଦ୍ର ସେବକଙ୍କର ପାଟି ନ କରି ହେଣ୍ଡି ମାରିବାର ବ୍ୟବସ୍ଥା ହୋଇଥିଲା ।]

ହେଣ୍ଡିଆ ଜାଗିରି(ହେତା)—ଦେ. ବି—ହେଣ୍ଡିଆମାନଙ୍କ ଭରଣ-
Hendiā jāgiri(hetā) ପୋଷଣାର୍ଥେ ରାଜାଙ୍କ ଦ୍ୱାରା ଦତ୍ତ
ଯାଇଥିବା ଜାଗିରି—Service lands given to 'Hendiās' by Rajās.

ହେଣ୍ଡି ମାରିବା—ଦେ. କ୍ରି—ହେଣ୍ଡା ମାରିବା ( ଦେଖ )
Hendi māribā Hendā māribā ( See )

ହେଣ୍ଡୁଅ—ପ୍ରାଦେ (ସମ୍ବଲପୁର) ବି—ବାଉଁଶ କରଡ଼ରୁ ବା ଗଜାରୁ
Hendua ପ୍ରସ୍ତୁତ ଖାଦ୍ୟ ବ୍ୟଞ୍ଜନ ବିଶେଷ—
A curry prepared from the tender shoots of bamboo.

ହେଟ୍(ଇତ୍ୟାଦି)—ଦେ. ଅ—ହାଟ୍ ଇତ୍ୟାଦି (ଦେଖ)—
Het (etc) Hāt etc. (See)

ହେତ—ପ୍ରାଦେ (ଖଣ୍ଡିଆଳ) ବି—ସ୍ମରଣ—
Het Recollection; remembrance.

ହେତ୍କି—ପ୍ରାଦେ (ଝଡ଼ଆଳ) ସର୍ବନାମ—ସେତିକି; ସେହି ପରିମାଣ
Het-ki That much; so much. ବିଣ—ସେହି ପରିମିତ—That much of.

ହେତ୍କେ—ପ୍ରାଦେ (ପାଟଣା) ଅ—ତହିଁପରେ—
Het-ke Then; after that; thereafter.

ହେତ୍ ଚେତ୍—ପ୍ରାଦେ (ଖଣ୍ଡିଆଳ) ବି—୧ । ବୁଦ୍ଧି; ଜ୍ଞାନ—
Het-chet 1. Knowledge; sense. ୨ । ଚେତନା—2. Consciousness.

ହେତ୍ ଚେତ୍ ବୁଡ଼ିବା—ପ୍ରାଦେ. (ଖଣ୍ଡିଆଳ) ବି—ଚେତନା ନାଶହେବା
Het-chet burdibā —Losing of conciousness.

ହେତା—ଦେ. ବି—୧ । ପ୍ରଶସ୍ତ ଜମି (ଗୋପୀନାଥ ନନ୍ଦ)—1. An
Hetā extensive plot of land. ୨ । କୋଠିଆଙ୍କୁ ଓ ଗ୍ରାମ ସେବକଙ୍କୁ ଦିଆଯିବା ଜାଗିର—2. Service-land given to ploughmen and village (communal) servants. ୩ । ପ୍ରତ୍ୟେକ ଗ୍ରାମର ପ୍ରଧାନଙ୍କୁ ସେ ଗ୍ରାମର ଯେତେ ଜମାବନ୍ଦି ୨୦ଏକର ରେ ଏକ ଏକର ହିସାବରେ ଭୋଗ କରିବାକୁ ଦିଆଯିବା ଜାଗିର—3. Jagir at the rate of one acre for every 20 acres of assessed lands, granted to the head man of a village. ପ୍ରାଦେ (ସମ୍ବଲପୁର) କ୍ରି—ହୁଅନ୍ତା—Would be. ପ୍ରାଦେ (ସମ୍ବଲପୁର, ଗଡ଼ଜାତ) ସର୍ବନାମ—ଅମୁକ—Such and such.

ହେତାଇବା—ପ୍ରାଦେ (ଖଣ୍ଡିଆଳ) କ୍ରି—୧ । ହେତୁ କରିବା; ସ୍ମରଣ
Hetaibā କରିବା—1. To remember; to recollect. [-ଏଭିବା—ପ୍ରଥମଅର୍ଥରେ ଅନ୍ୟରୂପ] ୨ । ଚେତାଇବା—2. To remind.

ହେତାର୍—ପ୍ରାଦେ (ସମ୍ବଲପୁର) ସର୍ବନାମ (୬ଷ୍ଠୀ ବିଭକ୍ତି)—ଏହାର—
Hetar Of this (person or thing). ପ୍ରାଦେ (ଖଣ୍ଡିଆଳ) ସର୍ବନାମ—ତାହାର—His; her.

ହେତି ସଂ. ବି—(ହନ ଧାତୁ=ବଧ କରିବା+କରଣ ତି; ନିପାତନ)
Heti ୧। ଅସ୍ତ୍ର (ଅମର)—1. Weapon. ୨। (+କର୍ତ୍ତୃ. ତି) ସୂର୍ଯ୍ୟକିରଣ (ଅମର)—2. Sun's rays. ୩ । ଅଗ୍ନିଶିଖା (ଅମର) 3 Flame of a fire. ୪ । ତେଜୋମାତ୍ର (ଭରତ) 4. Any lustre or ray. ୫ । କାର୍ଯ୍ୟସାଧିନୋପାୟ; ସାଧକ (ଶ୍ରୀଧର ସ୍ୱାମୀ); ହେତୁ—5. Expediency; means. ୬ । କାରିଗର ଅବଶ୍ୟ ଯନ୍ତ୍ର (ହି. ଶ)—6. Implement; tool; instrument. ୭ । ଅସ୍ତ୍ର ଆଦିର ଚୋଟ (ହି. ଶ)—7. Stroke of a weapon. ୮ । ଧନୁର ଟଙ୍କାର (ହି. ଶ)—8. Twang of a bow. ୯ । (ନାମ) ରାକ୍ଷସ ବିଶେଷ—9. Name of a demon. [ଦ୍ର—ଏ ପ୍ରଥମ ରାକ୍ଷସରାଜ ଥିଲେ ଓ ଚୈତ୍ରମାସରେ ସୂର୍ଯ୍ୟଙ୍କ ରଥରେ ରହୁଥିଲେ । ଏ ପ୍ରହେତିଙ୍କ ଭାଇ ଓ ବିଦ୍ୟୁତ୍କେଶଙ୍କ ପିତା ଥିଲେ । (ହି. ଶ) [ଦ୍ର—ରାକ୍ଷସ କୁଳରେ ଜାତ, ହେତି ପ୍ରହେତି ବିଖ୍ୟାତ । ବିଶ୍ୱନାଥ ବିଚିତ୍ର ରାମାୟଣ]

ହେତିକି ବେଳେ(ଲେ)—ପ୍ରାଦେ (କଳାହାଣ୍ଡିର ପାଟଣା) କ୍ରି. ବିଣ—ସେତିକି ବେଳେ—Then at time.
Hetiki bele(le)

ହେତି ପାଶ୍—ବୈଦେ. ବି(ଇଂ)—ତିବ୍ବତ ସୀମାରେ ହିମାଳୟର ଗୋଟିଏ
Heti pās ଗିରିସଙ୍କଟ—Name of a pass of the Himalayas in the border of Tibet. [ଦ୍ର—ଏହା ୧୫ ହଜାର ଫୁଟ୍ ଉଚ୍ଚତାରେ ଅବସ୍ଥିତ । ଏହା ବରଫରେ ପୂର୍ଣ୍ଣ । ଏ ସଙ୍କଟର ଅତଡ଼ାରୁ ପଦ ସ୍ଖଳିତ ହେଲେ ତଳକୁ ପଡ଼ି ମନୁଷ୍ୟ ବରଫରେ ପୋତି ହୋଇପଡେ ଓ ଏଠାରେ ଖେଳୁଥିବା ଥଣ୍ଡା ଯୋଗୁ ଗୋଡହାତ କଠିକଠି ହୋଇଯାଏ ]

ହେତିବା—ପ୍ରାଦେ (ଝଡ଼ଆଳ) କ୍ରି—ସ୍ମରଣ କରିବା; ଚେତିବା—
Hetibā To remember; to recollect.

ହେତୁ—ସଂ ବି (ହି ଧାତୁ=ଗମନକରିବା+କର୍ତ୍ତୃ ତୁ)—୧ । କାରଣ
Hetu (ଅମର)—1. Cause; reason. ୨ । ପ୍ରୟୋଜନ—2. Necessity; use. ୩ । ଅଭିପ୍ରାୟ; ଉଦ୍ଦେଶ୍ୟ—3. Aim; object; intention. ୪ । ବୀଜ—4. Seed. ୫ । ମୂଳ—5. Root; prime cause; origin. ୬ । ଯୁକ୍ତି—6. Reasoning. ୭ । କାବ୍ୟାଲଙ୍କାରବିଶେଷ; କାରଣ ସହିତ କାର୍ଯ୍ୟର ଅଭେଦ କଥନ—7. A rhetorical figure where the cause and effect are spoken as the same. [ଦ୍ର—ଏ ଅଲଙ୍କାରରେ ହେତୁ ଓ ହେତୁମାନ ଅଭେଦରୂପେ କଥିତ ହୁଏ । ଅର୍ଥାତ୍, କାରଣକୁ କାର୍ଯ୍ୟ ବୋଲି ବୋଲାଯାଏ । ଯଥା—ଧନହିଁ ବଳ ଅଟେ—ହି. ଶ । ] ୮ । (ନ୍ୟାୟଶାସ୍ତ୍ର) ପ୍ରମାଣକାରକ ବିଷୟ—8. (logic) Anything which proves a proposition. [ ଦ୍ର—ନ୍ୟାୟଦର୍ଶନରେ ତର୍କର ୫ଟି ଅବୟବ ମଧ୍ୟରେ ହେତୁ ଦ୍ୱିତୀୟ ଅଟେ । 'ଉଦାହରଣର ସାଧର୍ମ୍ୟ ବା ବୈଧର୍ମ୍ୟରୁ ସାଧ୍ୟର ଧର୍ମର ସାଧନ' ହେତୁର ଲକ୍ଷଣ ଅଟେ । 'ପର୍ବତ ବହ୍ନିମାନ୍ ଅଟେ' ଏହି ପ୍ରତିଜ୍ଞାର ହେତୁ "କାରଣ, ପର୍ବତ ଧୂମବାନ୍ ଅଟେ"—ହି. ଶ । ] ୯ । (ବୌଦ୍ଧ ଦର୍ଶନ) ମୂଳ କାରଣ—9. (Buddhist philosophy) Root cause. [ ଦ୍ର—ବୌଦ୍ଧ ଦର୍ଶନ ଅନୁସାରେ ମୂଳ କାରଣକୁ ହେତୁ ଓ ଗୌଣ କାରଣକୁ ପ୍ରତ୍ୟୟ

ବୋଲ୍ଲଯାଏ—ହ୍ନ. ଶ ।] ୧୦ । (ତର୍କବିଜ୍ଞାନ) ଯେଉଁ ବିଷୟର ବଳରେ ଆମ୍ଭେମାନେ କୌଣସି ସିଦ୍ଧାନ୍ତରେ ଉପନୀତ ହେଉଁ—10. [logic] The basis on which we arrive at a conclusion. [ ଦ୍ର—ଏହା ତର୍କବିଜ୍ଞାନର ପାରିଭାଷିକ ଶବ୍ଦ । ଯୁକ୍ତିରେ ଦୁଇଟି ବିଷୟ ସନ୍ନିବିଷ୍ଟ । ଯଥା—ହେତୁ ଓ ସିଦ୍ଧାନ୍ତ । ଯେଉଁ ବିଷୟରେ ଆମ୍ଭେମାନେ ଉପନୀତ ହେଉଁ ତାହା ସିଦ୍ଧାନ୍ତ ଏବଂ ଯାହା ବଳରେ ଉକ୍ତ ସିଦ୍ଧାନ୍ତ ପ୍ରସ୍ତୁତ ହୁଏ, ତାହା ତତ୍ପ୍ରତି ହେତୁ । ହେତୁ ଓ ସିଦ୍ଧାନ୍ତ ପରସ୍ପର ସଂବନ୍ଧାନ୍ୱିତ ।

ହେତୁ ଶବ୍ଦ ଦ୍ୱ୍ୟର୍ଥସୂଚକ । ଏକ ଅର୍ଥରେ ହେତୁ ଶବ୍ଦ ଯଥାର୍ଥ ହେତୁବୋଧକ; ଅନ୍ୟ ଅର୍ଥରେ ହେତୁ ଦୁଇପ୍ରକାର । ଯଥା — ଦୁଷ୍ଟ ହେତୁ ଓ ଯଥାର୍ଥ ହେତୁ । ଯେଉଁହେତୁ ଯେଉଁ ସିଦ୍ଧାନ୍ତ ପ୍ରତିପାଦନ କରିବା ନିମିତ୍ତ ଯଥେଷ୍ଟ, ସେହି ହେତୁ ସେହି ସିଦ୍ଧାନ୍ତର ଯଥାର୍ଥ ହେତୁ । ଯଦି ହେତୁ ଓ ସିଦ୍ଧାନ୍ତ ଏପରି ଦୁଇ ବିଷୟ ହୁଏ ଯେ, ହେତୁକୁ ସ୍ୱୀକାର କରି ସିଦ୍ଧାନ୍ତକୁ ଅସ୍ୱୀକାର କରି ଯାଇ ପାରେ, ତେବେ ଉକ୍ତ ହେତୁ ଦୁଷ୍ଟ ହେତୁ ବା ହେତ୍ୱାଭାସ ମାତ୍ର ।

ଯସ୍ମାଦ୍ବିଷାଣୀ ତସ୍ମାଦ୍ଗୌରିତି—ବୈଶେଷିକ ଦର୍ଶନ । ଶୃଙ୍ଗବିଶିଷ୍ଟତା ଗୋରୁର ଉପଯୁକ୍ତ ହେତୁ ହୋଇ ନ ପାରେ; କାରଣ, ଗୋରୁର ଶୃଙ୍ଗ ଅଛି, ମଧ୍ୟ ହରିଣ ମହିଷ ପ୍ରଭୃତିଙ୍କର ଶୃଙ୍ଗ ଅଛି । ସୁତରାଂ ଶୃଙ୍ଗ ଥିଲେ ଗୋରୁ ହେବ, ଏପ୍ରକାର ଯୁକ୍ତି ଅସିଦ୍ଧ ।

ହେତୁ(=Reason) ଓ କାରଣ (=Cause) ଏକାର୍ଥସୂଚକ ନୁହେ । 'ହେତୁ' ଚିନ୍ତାଜଗତ୍ ପ୍ରତି, 'କାରଣ' ବାସ୍ତବ ଜଗତ୍ପ୍ରତି ପ୍ରଯୋଜ୍ୟ । କାରଣଶବ୍ଦ ଶକ୍ତି ପରିଚାୟକ । ସିଦ୍ଧାନ୍ତ ହେତୁରେ ଥାଏ; କିନ୍ତୁ କାର୍ଯ୍ୟ କାରଣରୁ ସୃଷ୍ଟି ହୁଏ । ହେତୁ-ସିଦ୍ଧାନ୍ତ ଦେଶସମ୍ପର୍କୀୟ; କାରଣ-କାର୍ଯ୍ୟ କାଳସମ୍ପର୍କୀୟ । ବୀଜ ବୃକ୍ଷର କାରଣ ଅଟେ, ହେତୁ ନୁହେ । ତ୍ରିଭୁଜତ୍ୱ ତ୍ରିକୋଣତ୍ୱର ହେତୁ, ତାହାର କାରଣ ନୁହେ ।

ପ୍ରୋଫେସର୍
ଶ୍ରୀ ବିପିନବିହାରୀ ରାୟ୍ ଏମ୍. ଏ.]

ସ୍ମରଣ **याद** ଦେ. ବି—୧। ସ୍ମରଣ—1. Recollection. (ଉ—ପଢନ୍ତି ଶୁଣନ୍ତି ଯାହା ବାରେକମାତର, କିଣନ୍ତି ତାହାକୁ 'ହେତୁ ନୁହେ ତା ବିସ୍ମୃତ—ଚନ୍ତାମଣି. କନକମାଦିତ୍ୟ ।] ୨ । ଜ୍ଞାନ—2. Knowledge.
ଜ୍ଞାନ **ज्ञान** ୩ । ଚୈତନ୍ୟ; ଚେତନା—3. Consciousness; sense. ( ଉ—ସମ ସକେଳଲେ ସମୁଦ୍ରେ ବାନ୍ଧ ସେତୁ, ଅର୍ପି ରକ୍ଷିବେ କି ତୁମ୍ଭର ଦେହ ହେତୁ—କୃଷ୍ଣସିଂ. ମହାଭାରତ ବନ । ) ୪ । ମନୋଯୋଗ—4. Attention. (ଉ—ବେଦ ପଢ଼ିଲେ ହେତୁ ଦେଇ ବେଦର କୃତ୍ସ୍ନ ଭେଦ ପାଇ — ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ ।) ୫ । ହିତାହିତ ବିବେଚନା—
ହେତୁ **हेतु** 5. Discretion. ଅ—ହେତୁରୁ; କାରଣରୁ—Because of; owing to. ( ଉ—ଜୁହାପର ବିଗ୍ରହ ନ କର ବେଦପାଠ, ସେ ହେତୁ ଘଟିଲ ଆସି ସମସ୍ତ ବିପତ୍—ବିଶ୍ୱନାଥ. ବିଚିତ୍ର ରାମାୟଣ ।]

ହେତୁକ—ସଂ. ବି—(ହେତୁ+ସ୍ୱାର୍ଥକ) —କାରଣ; ହେତୁ—Cause.
Hetuka ବିଣ—(ହେତୁ+କ)—୧ । ହେତୁ ସମ୍ବନ୍ଧୀୟ—1.
( ହେତୁକୀ—ସ୍ତ୍ରୀ ) Relating to cause. ୨ । (ଅନ୍ୟ ଶବ୍ଦ ସଙ୍ଗେ ସମାସରେ ଯୁକ୍ତ ହୋଇ, ଯଥା—ରୋଗ ହେତୁକ) —ଅମୁକ କାରଣରୁ ଉତ୍ପନ୍ନ ବା ଉଦ୍ଭବ—2. Caused by; arising from.

ହେତୁ କରିବା—ଦେ. କ୍ରି—୧ । ସ୍ମରଣ କରିବା; ମନେ କରିବା—1.
Hetu kariba To recollect; to refresh one's
ସ୍ମরণকরা memory. [ଉ—ସେ ଜନ କୃଷ୍ଣ ଅଗ୍ରେ କାନ୍ଦି
**याद करना** ଗଲାପରି, ପଡିଲ ଭୂମିରେ ତା ବୁଝିଲ ହେତୁ କରି । କୃଷ୍ଣସିଂହ ମହାଭାରତ ଆଦି ] ୨ । ମନୋଯୋଗ ଦେବା
মনোযোগদেওয়া —2. To attend to. [ଉ—ବସିଲେ ସଦ୍ଗୁରୁ ଆବୋରି, ଶୁଣ ବିଦୁର ହେତୁ କରି । ଜଗନ୍ନାଥ ଭାଗବତ । ]

ହେତୁତା(ତ୍ୱ)—ସଂ.ବି (ହେତୁ+ଭାବ.ତା,ତ୍ୱ)—ହେତୁର ଧର୍ମ; କାରଣତ୍ୱ
Hetutā(twa) —The state of being the cause.

ହେତୁ ଦୋଷ—ସଂ. ବି (ବ୍ୟସ୍ତ)—ହେତ୍ୱାଭାସ (ଦେଖ)—
Hetu dosha Hetwābhāsa (See).

ହେତୁ ପାଇବା—ଦେ. ବି—୧ । ମନରେ ପଥାରୂଢ ହେବା; ମନେ ପଡିବା-
Hetu pāibā 1. Recollection, coming or
মনেপড়া **याद होना** recurring to one's mind. (ଯଥା—ମୋର ଏଠାକୁ ଟଙ୍କା ଆଣିବାକୁ ହେତୁ ପାଇଲା ନାହିଁ ।) ୨ । (୮।୯ ବର୍ଷ ବୟସ୍କ ବାଳକ ବାଳିକାଙ୍କ ଠାରେ ) ସୁବୁଦ୍ଧିଶକ୍ତିର ବା ବିବେକର ଉଦୟ—2. Dawning of discretion in a boy or girl. (ଯଥା—ମୋ ହେତୁ ପାଇବା ଦିନରୁ ମୁଁ ଦେଖି ଅଛି ଯେ, କଟକରେ ମାରୱାଡ଼ୀମାନେ ଦୋକାନ କରୁଛନ୍ତି ।) କ୍ରି (କନ୍ୟା) ପ୍ରଥମ ଋତୁମତୀ ହେବା—
ফল দেখা **ऋतुमती होना** To be menstruated. for the first time. (ଯଥା—ତାଙ୍କ କନ୍ୟାଟି ହେତୁ ପାଇଲାଣି ।)

ହେତୁବାଦ —ସଂ. ବି (୬ଷ୍ଠୀ ତତ୍)—୧ । ହେତୁ ବା କାରଣ କଥନ;
Hetu bāda କୌଣସି ବିଷୟ ବା ଆଇନ୍ ଲେଖିବା ପୂର୍ବରୁ
ହେତୁବାଦୀ—ପୁଂ } ବିଣ ଯେଉଁ କାରଣରୁ ବା ଉଦ୍ଦେଶ୍ୟରୁ
ହେତୁବାଦିନୀ—ସ୍ତ୍ରୀ } ତାହା ପ୍ରଣୀତ ହୋଇଅଛି ତାହାର ବିବରଣ କଥନ—1. Preamble; statement of

reasons. ୨ । ତର୍କବିଦ୍ୟା ( ପୂ. ଷ. )—
2. The art of science of Reasoning.
୩ । କୁତର୍କ (ହୁ. ଶ)—3. Bad argument. ୪ ।
ନାସ୍ତିକତା (ହୁ. ଶ)—4. Atheism.

ହେତୁ ବିଦ୍ୟା (ଶାସ୍ତ୍ର)—ସଂ. ବି—ତର୍କଶାସ୍ତ୍ର (ହୁ. ଶ)—
Hetu bidyā(śastra) Logic.

ହେତୁମାନ୍—ସଂ. ବଣ (ହେତୁମତ୍ ଶବ୍ଦ; ହେତୁ । ଅସ୍ତି ଅର୍ଥେ ମତ୍)—
Hetu man କାରଣ ଯୁକ୍ତ (ତାର୍କିକ ମତ)—Having a
[ହେତୁମତୀ—ସ୍ତ୍ରୀ] cause or reason.

ହେତୁରୁ(ରେ)—ଦେ. ଅ—(ଫ. ହେତୋଃ, ହେତୁନା)—କାରଣରୁ;
Heturu(re) ଯୋଗୁଁ; ଯୋଗୁଁ; ପାଇଁ—Owing to; for
କାରଣ the reason of; on account of. [ଉ—ଚୁଙ୍କରୁ
କାରଣ ଯେ ଏଥି ହେତୁରେ ଅର୍ଜୁନଙ୍କୁ, ସେ ଅଇଲୁ ମୁହିଁ ତପସ୍ୟା
କରିବାକୁ । କୃଷ୍ଣସିଂହ ମହାଭାରତ ବନ ।]

ହେତୁ ହୁଡା(ରା)—ଦେ. ବଣ. ପୁଂ—(ଯେ ହେତୁ ବା ଚୈତନ୍ୟକୁ ହୁଡା
Hetu hurdā(rā) ଥାଏ)—୧ । ଅଜ୍ଞାନ; ବେହୋସ୍—1.
[ହେତୁହୁଡ଼ୀ(ରୀ)—ସ୍ତ୍ରୀ] Unconscious; senseless. ୨ ।
ବେହୋଶ ମତ୍ତ—2. Intoxicated. ୩ । ଭୋଳା—3.
बेहोस Forgetful. [ଉ—ହେତୁହୁଡ଼ା ହୋଇଣ ସେ ଶୃଙ୍ଗାର
मत्त ଭେଲେ—ସାରଳା ମହାଭାରତ ଅଦି]

ହେତୁ ହେତୁମଦ୍ଭାବ—ସଂ. ବି—(ଦ୍ୱନ୍ଦ୍ୱ, ଚଳିତ)—କାର୍ଯ୍ୟ କାରଣ
Hetu hetumadbhāba ଭାବ; କାରଣ ଓ କାର୍ଯ୍ୟର ପରସ୍ପର
ସମ୍ବନ୍ଧ (ପ୍ର. ଶ)—The relationship of the cause
and the effect.

ହେତୁ ହେତୁମଦ୍ଭୂତ କାଳ—ସଂ. ବି—(ବ୍ୟାକରଣ)—ଭୂତ ବା ଅତୀତ
Hetu hetumadbhūta kāla କାଳର ଏକ ଭେଦ, ଯହିଁରେ
କାରଣରୂପେ ସୂଚିତ ବିଷୟର ଅଭାବ ଯୋଗୁଁ କାର୍ଯ୍ୟର
ଅଭାବ ସୂଚିତ ହୁଏ (ହୁ.ଶ)—A form of the past
tense in which the absence of the result
is indicated by the absence of the cause.
[ଉଦାହରଣ—ଯେବେ ତୁମେ ସେଠାକୁ ଯାଇଥାଆନ୍ତ,
ତେବେ ବହୁ ଧନ ପାଇଥାଆନ୍ତ ।]

ହେତୂପମା—ସଂ. ବି—ଉତ୍ପ୍ରେକ୍ଷା (ଅଳଙ୍କାର ବିଶେଷ) (ହୁ. ଶ)—
Hetūpamā Name of a rhetorical figure.

ହେତେବେଳେ—ପ୍ରାଦେ (ଗଡ଼ଜାତ) ସର୍ବନାମ—(ଇତର ବ୍ୟବହୃତ
Hete bele ଭାଷା)—ସେତେବେଳେ—Then; at that
time.

ହେତ୍ୱାଭାସ—ସଂ. ବି—(ହେତୁର ନ୍ୟାୟ ଆଭାସ=ଅନୁରୂପ ଯାହାର)—
Hetwābhāsa (ନ୍ୟାୟଦର୍ଶନ) ଦୁଷ୍ଟତର୍କ; କୁତର୍କ; ତର୍କଦ୍ୱାରା
ଫାଙ୍କି; ଅସତ୍ ହେତୁ—(Logic) Fallacious reasoning; fallacy. [ଦ୍ର—ଏହା ହେତୁପରି ଜଣାପଡ଼େ,
ଅଥଚ ପ୍ରକୃତ ହେତୁ ନୁହେ । ଯଥା—ଯେଉଁଠାରେ ନିଆଁ
ଥାଏ ସେଠାରୁ ଧୂଆଁ ହୁଏ; ପର୍ବତରୁ ଧୂଆଁ ହୁଏ;
ଅତଏବ ପର୍ବତରେ ନିଆଁ ଅଛି । ଏହା ୫ ପ୍ରକାର—୧ ।
ସବ୍ୟଭିଚାର ବା ଅନୈକାନ୍ତିକ । ୨ । ବିରୁଦ୍ଧ । ୩ ।
ପ୍ରକରଣ ସମ । ୪ ସାଧ୍ୟସମ । ୫ । କାଳାତୀତ ।]

ହେଥା—ଦେ. (ପ୍ରାଚୀନ ପ୍ରୟୋଗ) ଅ—( ସଂ. ଅତ୍ର; ପ୍ରା; ଏତ୍ଥ )—
Hetha হেথায় हेथा ଏଠାରେ—Here.

ହେଥି—ପ୍ରାଦେ (ଜଙ୍ଗଲଥଳ) ଅ—ସେଥି; ସେଥିରେ—
Hethi In that.

ହେଥୁ—ପ୍ରାଦେ (ସମ୍ବଲପୁର) ଅ—ଅତଏବ—
Hethu Therefore.

ହେଦା—ଦେ. ବି—ଦୁଦୁରା (ହରିଦ୍ରୁକ୍ଷ ଦ୍ରବ୍ୟଗୁଣ)—
Hedā ধুতুরা धतुरा Thorn apple.

ହେଦେ—ପ୍ରାଦେ (ଗଡ଼ଜାତ) ଅ—ଏଇ ଦେଖ !—Oh See ! ପ୍ରାଦେ
Hede (କଳାହାଣ୍ଡି) ସର୍ବନାମ—ଏହି ସ୍ଥାନରେ; ଏଠାରେ—
In this place; here.

ହେଦେରେ—ପ୍ରାଦେ (ଗଡ଼ଜାତ) ଅ (ଇତର ବ୍ୟବହୃତ)—ଏହିପରି—
Hedere Like this.

ହେନ୍ତା(ତି)—ପ୍ରାଦେ (ଜଙ୍ଗଲଥଳ) ଅ—ସେପରି—
Hen-tā(ti) Like that; in that way.

ହେନ—ଦେ. ସର୍ବନାମ—(ପ୍ରାଚୀନ ପଦ୍ୟରେ ବ୍ୟବହୃତ; ତୁଳନାକର
Hena ଆଧୁନିକ ବଙ୍ଗଳାରେ ଏହି ଅର୍ଥରେ ବ୍ୟବହୃତ ଏହି ଶବ୍ଦ ।)
হেন ୧ । ଏହି—1. This. [ଉ—ହେନ ସମୟେ ଏକଦିନେ,
यह ସନ୍ନ୍ୟାସୀ ମୁନିଜନେ—ଜଗନ୍ନାଥ ଭାଗବତ] ୨ ।
হেন, এমন ଏହିପରି—2. Like this. [ଉ—ହେନ ଅବିବେକ
ईसतरक, पैसा ଯାହାଁ । ସଦନ କରେ । ପ୍ରାଣୀ ଶିଶୁ ଶଙ୍କର । ଭାଷା
ଅଭିଳାଷ ।]

ହେନ ତେନ—ପ୍ରାଦେ ( ଉତ୍ତର ବାଲେଶ୍ୱର ) ଅ—ଇଆଡ଼ୁ ସିଆଡ଼ୁ;
Hena tena ଏଣୁତେଣୁ—In some way or other; in
this way or that

ହେନ ସମୟେ—ଦେ. (ପ୍ରାଚୀନ ପ୍ରୟୋଗ) ଅ—ଏହି ସମୟରେ; ଠିକ୍
Hena samaye ସେତିକିବେଳେ—Just at this time.
হেন সময়ে [ଉ—ହେନ ସମୟେ ଉତ୍ତର ପାହାଡ଼, କହିଲା କନ୍ୟା-
उसी समय ପୂରେ ବଢ଼ିଗଲା । ଶିଶୁଙ୍କର ଭାଷା ଅଭିଳାଷ ।]

ହେନା(ହ୍ନା)—ବୈଦେ. ବି (ଆ. ହିନ୍ନା)—୧ । ମଞ୍ଜୁଅତି; ମେହେନ୍ଦି—
Henā(nnā) 1. Alcanna; Tinctoria; alcaret. [ଦ୍ର—
হেনা ଏଥିର କାଠ ଓ ଚେରକୁ ତେଲରେ ସିଝାଇଲେ ତେଲର ରଙ୍ଗ
मेंहदी ଗାଢ଼ ନାଲି ହୁଏ । ଏଥିର ପତ୍ରକୁ ବାଟି ମୁସଲମାନମାନେ ନଖ,
ଦାଢ଼ି ଆଦିରେ ଲଗାଇ ନାଲି କରନ୍ତି ।] ୨। ହସନ୍‌ହେନା;
হোসনাহেনা ସୁଗନ୍ଧ ପୁଷ୍ପ ଓ ଗୁଳ୍ମ ବିଶେଷ—2. A kind of
होस्नहेना flowering shrub. [ଦ୍ର—ଏହି ଫୁଲ ଜେନ୍ହା
ଜେନ୍ହା ହୋଇ ସନ୍ଧ୍ୟାରେ ଫୁଟେ ଓ ରାତିଯାକ ତାହାର ଚତୁଃ-
ପାର୍ଶ୍ୱରେ ଥିବା ସ୍ଥାନମାନଙ୍କୁ ସୁଗନ୍ଧରେ ଆମୋଦିତ କରେ;
ଦିନରେ ଫୁଲର ମୁଖ ବନ୍ଦ ହୋଇଯାଏ ଓ ସୁଗନ୍ଧ ରହେ
ନାହିଁ । ଗୋଟିଏ ଫୁଲ ଏକାଦିକ୍ରମେ ୨।୩ ଦିନ ଫୁଟିବା
ପରେ ଝଡ଼ିପଡ଼େ ।]

ହେନ—ପ୍ରାଦେ (ସମ୍ବଲପୁର ଓ ବାଲେଶ୍ୱର) (ଓ ଇତର ବ୍ୟବହୃତ) କ୍ରି Heni (ମୁଁ) ହେଲି (ଦେଖ)—(I) Have been.

ହେନେ—ପ୍ରାଦେ (ସମ୍ବଲପୁର) ଅ—୧। ଡେଣେ; ତହିଁ; ସିଆଡ଼େ—1 Hene There; in that quarter. ୨। ଏଣେ; ଇଆଡ଼େ—2. Here; in this quarter. ପ୍ରାଦେ (ସମ୍ବଲପୁର) ଅ—ହେଲେ, ଯଦି ହୁଏ—In case.

ହେନ୍ତା—ପ୍ରାଦେ (ସମ୍ବଲପୁର ଓ ଗଡ଼ଜାତ) ଅ—ଏପରି; ଏହିପରି—Hentā In this manner; thus. ସର୍ବନାମ—୧। ଏହି—1. This. ୨। ସେହି—2 That.

ହେନ୍ତାଳ—ଦେ. ବି—ହିନ୍ତାଳ (ଦେଖ)—Hentāla Hintāla (See)

ହେନ୍ତା ହେନ୍ତି—ପ୍ରାଦେ (ବାଲିଗାଁର ପାଠଣା) ଅ—ସେହିପରି—Hentā henti Like that.

ହେପା—ପ୍ରାଦେ (ଗଞ୍ଜାମ) ବି—୧। ସ୍ମରଣ; ଖିଅଲ; ହୋଷ—1 Hepā Recollection; memory. ୨। ହୋସ୍; ଚୈତନ୍ୟ; ଜ୍ଞାନ—2. Sense; consciousness. ୩। ମନୋଯୋଗ—3. Attention.

ହେପାଜ(ଜି)ତ(ଇତ୍ୟାଦି)—ବୈଦେ. ବି—ହିପାଜତ ଇତ୍ୟାଦି (ଦେଖ) Hepāja(ji)t(etc) Hipājat etc (See)

ହେପ୍ଲାଇବା—ପ୍ରାଦେ (ସମ୍ବଲପୁର) କ୍ରି—ଠେଲିବା—Heplāibā To push forward.

ହେବ୍କା—ପ୍ରାଦେ (ଗଡ଼ଜାତ) ବି—ଧକ୍କା; ଢାକୁକା—Heb-kā Push.

ହେବଲା ହେବ୍‌ଲି—ପ୍ରାଦେ. (ଗଡ଼ଜାତ) ବି ଓ ବିଣ—ଅନ୍ୟୋନ୍ୟରେ Heb-lā heb-li ପେଲାପେଲି—Mutual pushing.

ହେବ୍‌ଲିବା—ପ୍ରାଦେ (ଗଡ଼ଜାତ) କ୍ରି—ଠେଲିବା; ପେଲିବା—Heb-libā To push on.

ହେବ—ଦେ. କ୍ରି—(ସ ଭୂ ଧାତୁ; ଭବିଷ୍ୟତ୍ କାଳ)—୧। ହେବା Heba କ୍ରିୟାର ଭବିଷ୍ୟତ୍ କାଳ ଅନ୍ୟ ପୁରୁଷ ଏକବଚନ (ସେ, ହବେ ତାହା) କର୍ତ୍ତାସଙ୍ଗେ ବ୍ୟବହୃତ ଆକାର—1. (He; she, ହୋଗା it) Will be. ୨। ମଧ୍ୟମ (ନମ୍ର) ପୁରୁଷ ଏକବଚନ (ତୁମ୍ଭେ) ହବେ ଓ ବହୁବଚନ (ତୁମ୍ଭେମାନେ) କର୍ତ୍ତା ସଙ୍ଗେ ବ୍ୟବହୃତ ହୋଗା (ଏକବଚନ) ଆକାର—2. (You or ye) Will be. ଅ—ହୋଗେ (ବହୁବଚନ) ପ୍ରାୟ—Nearly; about. [ଯଥା—ସେଠାରେ ଶହେ ହେବ ଲୋକ (ଅର୍ଥାତ୍ ପ୍ରାୟ ଶହେ ହବେ ପ୍ରାୟ: ଲୋକ) ଜମା ହୋଇଥିଲେ]

ହେବା—ଦେ. କ୍ରି—(ସ. ଭୂ ଧାତୁ, ପ୍ରା ହୋ ଧାତୁ; ଏହାର ଗ୍ରାମ୍ୟ ଓ Hebā କଥିତ ଭାଷାରେ ବ୍ୟବହୃତ ରୂପ ହବା)—୧। (କୌଣସି ହଓଯା କର୍ମ) ସମ୍ପନ୍ନ ହେବା; ନିଷ୍ପନ୍ନ ହେବା—1. (any act) To ହୋନା be accomplished. (ଯଥା—ବାପାଙ୍କ ଶ୍ରାଦ୍ଧ ହେଲା, ତାଙ୍କ ବିବାହ ହେଲା) ୨। ଘଟିବା—2. To happen. [ଢ଼—ହୋଇନାହିଁ କି ହେବନାହିଁ; ଗାଆଁ ଦେଉଳର, ଗାଆଁ ଭାଇବୋହୂ, ମୁଣ୍ଡରେ ଓଢ଼ଣା ଦେଇନାହିଁ, କି ଦବ ନାହିଁ—ଭଗ] ୩। ଫଳିବା ବା ଧାରଣ କରିବା—

ହଓଯା 3. To bear (fruit) (ଯଥା—ଗଛରେ ଫଳ ହେଲାଣି) ୪। ପରିବର୍ତ୍ତିତ ହେବା; ପାଲଟିବା—4. To become; ହୋନା to turn to. [ଢ଼—ରକ୍ତ ହୋଇଗଲା ଜଳ—ରଘୁନାଥ. ମହାଯାତ୍ରା] ୫। ଅଧୀନ ବା ଆୟତ୍ତ ହେବା—5. To come under one's control. (ଯଥା—ତାର ବିଦ୍ୟା ହେଲା, ମାତ୍ର ଗୁଣ ହେଲା ନାହିଁ) ୬। ପ୍ରାପ୍ୟ ହେବା, ପାଇବା — 6. To become due. (ଯଥା—ମୋର ଭୂମି ଉପରେ ଛଅଟଙ୍କା ହେଲାଣି) ୭। (କାଳ) ଅତିବାହିତ ହେବା; ଗତ ହେବା—7. To pass (said of time). (ଯଥା—ତାଙ୍କର ମରିବା ଆଜକୁ ୪ ଦିନ ହେଲା)। ୮। ପହଞ୍ଚିବା—8. To reach; to arrive at. [ଢ଼—ଏଥି ଅନ୍ତରେ ସେ ବଭ୍ରଣଙ୍କ ବୃଷ୍ଟି, ଫଳମୂଳ ଧରି ଆଶ୍ରମେ ହେଲେ ଆସି—କୃଷ୍ଣସିଂହ ମହାଭାରତ—ବନ] ୯। (କନ୍ୟା) ଜ୍ଞାନ ପାଇବା; ଗର୍ଭଯୋଗ୍ୟ ହେବା; ରଜସ୍ୱଳା ହେବା—9. To attain maturity (said of a girl). (ଯଥା—ତାଙ୍କ କନ୍ୟାଗୁଡ଼ାକ ହୋଇଗଲେଣି) ୧୦। ଯୋଗ୍ୟ ହେବା—10. To become fit. (ଯଥା—ତା ପୁଅ ଗୁଡ଼ିକ ହୋଇ ଗଲେଣି) ୧୧। ହସ୍ତଗତ ହେବା—11. To come to the possession of. (ଯଥା—ତାଙ୍କର ଅଖଣ୍ଡ ଜମିଦାରୀ ହେଲାଣି) ୧୨। (ଫସଲ) ଜନ୍ମିବା; ଉତ୍ପନ୍ନ ହେବା—12. To grow. (ଯଥା—ଏବର୍ଷ ମୋ ବାଡ଼ିରେ କୋବି ହେଲା ନାହିଁ) ୧୩। ସମବେତ ହେବା—13. To collect together; to be gathered. (ଯଥା—ଆଜି ସଭାରେ ୫ ଜଣ ହେଲେଣି)। ୧୪। ଅବସ୍ଥିତ ହେବା; ଉପସ୍ଥିତ ହେବା; ସ୍ଥିତ ହେବା; ବିଦ୍ୟମାନ ହେବା—14. To be. ୧୫। (ଅନ୍ୟ କ୍ରିୟାରୁ ଉତ୍ପନ୍ନ ବିଶେଷଣ ସଙ୍ଗେ ଯୁକ୍ତ ହୋଇ କର୍ମବାଚ୍ୟ ହୁଏ)—15. To be (passive voice) [ଯଥା—ଖିଆ ହେବା—To be eaten. ମରାହେବା—To be killed. ଧରା ହେବା—To be caught] ୧୬। ଭୂ ଧାତୁର ଭବିଷ୍ୟତ୍ କାଳ ୧ମ ପୁରୁଷ ଏକବଚନ (ଅମ୍ଭେ) ଓ ବହୁବଚନ (ଅମ୍ଭେମାନେ) କର୍ତ୍ତା ସଙ୍ଗେ ଲାଗିବା ଆକାର—16. (I, we) Shall be. [ଦ୍ର—ହେବା କ୍ରିୟା ଅନ୍ୟ ବିଶେଷଣ ଶବ୍ଦ ସଙ୍ଗେ ଭିନ୍ନ ଭିନ୍ନ ଅର୍ଥରେ ବ୍ୟବହୃତ ହୁଏ। ଯଥା—ସମ୍ପନ୍ନ ହେବା; କ୍ରୁଦ୍ଧ ହେବା; ବୃଦ୍ଧ ହେବା; ଆନନ୍ଦିତ ହେବା; ମୃତ ହେବା। ଏହା କ୍ରିୟାବାଚକ ବିଶେଷଣ ଆକାର ସଙ୍ଗେ ମଧ୍ୟ କର୍ମବାଚ୍ୟ ରୂପେ ବ୍ୟବହୃତ ହୁଏ। [ଯଥା—ଖିଆ ହେବା, ପଢ଼ାହେବା, ଭୋଳା ହେବା ଇତ୍ୟାଦି]। ଏହି କ୍ରିୟା ବିଶେଷ୍ୟ ପଦ ସଙ୍ଗେ ତଦ୍ଭବ ଅର୍ଥରେ ମଧ୍ୟ ବ୍ୟବହୃତ ହୁଏ।: [ଯଥା—ମୃତ୍ୟୁ ହେବା; ଦିନ ହେବା; ପ୍ରଭାତ ହେବା ଇତ୍ୟାଦି]। ଏହା କର୍ତ୍ତାରୂପେ ବ୍ୟବହୃତ ବିଶେଷ୍ୟ ଓ ସର୍ବନାମ ଯୁକ୍ତ ହୋଇ ବ୍ୟବହୃତ ହୁଏ। ଯଥା—ମୁଁ ହେଲି; ଘର ହେବ]

କାର୍ଯ୍ୟଂ ହେବା ଗେବା—ତଗ] ଅ—ଅସମତଳ; ଅବୁଢ଼ା ଖାବଡ଼ା, ଅସମାନ, ଖାଲଢିପ—3. Rough; undulating; not level.
আবড়াখাবড়া आबड खाबड
କ୍ରି. ବିଣ—୧ । ସତ୍ନୁସ୍ଥାନ ଭାବରେ (କାମ କରିବା)—1. Carelessly. ୨ । ଅସମ୍ପୂର୍ଣ୍ଣ ରୂପେ—2. Incompletely; in a slip shod manner; in a slovenly manner. [ଜି—ତେଲ ଲଗାଇବ ହେବା ଗେବା] ୩ । ଯେନ ତେନ ପ୍ରକାରେଣ—3. Anyhow.

ହେବା ନ ହେବା—ଦେ· ବି—୧ । କାର୍ଯ୍ୟର ସିଦ୍ଧି ବା ଅସିଦ୍ଧି—1. To be or not to be; success or failure ୨ । ସ୍ୱୀକୃତି ବା ଅସ୍ୱୀକୃତି—2. Consent or refusal.
Hebā na hebā
হওয়া না হওয়া होना न होना
(ହବା ନ ହବା – ଗ୍ରାମ୍ୟରୂପ)

ହେବାନାମା—ବୈଦେ. ବି (ଫା, କଚେରୀ)—ହିବାନାମା (ଦେଖ)—Hibānāmā (See)
Hebānāmā

ହେବାରୁ(ରେ)—ଦେ. ଅ—ହେବା ଯୋଗୁଁ; ହେବା ହେତୁ; (ଅତ୍ମକ) କାରଣରୁ—Owing to. ( ଯଥା—ଅଚ୍ଛ ବର୍ଷା ହେବାରୁ ମୁଁ ଘରୁ ବାହାରି ନାହିଁ ।)
Hebāru(re)
হওয়াতে होनेसे

ହେବି—ଦେ. କ୍ରି—ଭୂ ଧାତୁର ଭବିଷ୍ୟତ୍ କାଳ ୧ମ (ଉତ୍ତମ) ପୁରୁଷ, ଏକବଚନ ଅନାଦରାର୍ଥକ (ମୁଁ) କର୍ତ୍ତା ସଙ୍ଗେ; ବ୍ୟବହୃତରୂପ—[I] will be; shall be.
Hebi
হইব होउंगा

ହେବୁ—ଦେ. କ୍ରି—ଭୂ ଧାତୁର ଭବିଷ୍ୟତ୍ କାଳ ୨ୟ (ମଧ୍ୟମ) ପୁରୁଷ ଏକବଚନ ଅନାଦରାର୍ଥକ (ତୁ) କର୍ତ୍ତା ସଙ୍ଗେ ବ୍ୟବହୃତ ରୂପ—(Thou) shalt be
Hebu
হইবি होगा

ହେବୁଁ—ଦେ. କ୍ରି—ଭୂ ଧାତୁର ଭବିଷ୍ୟତ କାଳ ପ୍ରଥମ (ଉତ୍ତମ) ପୁରୁଷ ମାନ୍ୟାର୍ଥକ ୧ ବଚନ (ଆମ୍ଭେ) ଓ ବହୁବଚନ (ଆମ୍ଭେମାନେ) କର୍ତ୍ତା ସଙ୍ଗେ ବ୍ୟବହୃତ ରୂପ—[I or we) Shall be; will be
Hebuñ
হইব होंगे

ହେବ୍ରୁ(ବ୍ରୁ)—ବୈଦେ. ବି ଓ ବିଣ (ଇଂ)—ହିବ୍ରୁ (ଦେଖ)—Hibru [See]
Hebru(bru)

ହେବେ—ଦେ. କ୍ରି (ଭୂ ଧାତୁ ଭବିଷ୍ୟତ କାଳ)—୧ । ୨ୟ ପୁରୁଷ ଅତି ମାନ୍ୟାର୍ଥକ ୧ ବଚନ (ଆପଣ) ଓ ବହୁବଚନ (ଆପଣମାନେ)—1.(You) Shall be. ୨ । ୩ୟ ପୁରୁଷ ମାନ୍ୟାର୍ଥକ ୧ ବଚନ (ସେ) ଓ ବହୁବଚନ (ସେମାନେ)—2. (He or they) Shall be. ଅ—ହେବ (ଦେଖ)—Heba [See]
Hebe
হইবেন होंगे

ହେମ—ସଂ ବି (ହି ଧାତୁ=ଗମନ କରିବା+କର୍ତ୍ତ ମନ୍; ହେମନ୍; ୧ମା ୧ବ)—୧ । ସ୍ୱର୍ଣ୍ଣ [ଅମର]—1. Gold. ୨ । ଧୁସ୍ତୁର; ଧାତୁରା (ଅମର)—2.The Dhaturā plant. ୩ । କେଶର; ଜାଫ୍ରାନ୍ (ରାଜନିର୍ଘଣ୍ଟ)—3. Saffron. ୪ । ହିମ (ଭରତ); ତୁଷାର—4. Dew. ୫ । ହିମ (ଭରତ); ହେମନ୍ତକାଳ—5. Beginning of winter. ୬ । ମାଷ ପରିମାଣ; ଏକ ମଷା ଓଜନ (ବୈଦ୍ୟକ)—6. A unit of weight; one tenth of a Tolā. ୭ । କୃଷ୍ଣବର୍ଣ୍ଣାଶ୍ୱ (ଶବ୍ଦକଳ୍ପଦ୍ରୁମ)—7. A black horse. ୮ । ବୁଧଗ୍ରହ (ଶବ୍ଦକଳ୍ପଦ୍ରୁମ)—8.The planet mercury. ୯ । ବରଫ (ହି ଶ)—9 Snow. ୧୦ । ସ୍ୱର୍ଣ୍ଣଖଣ୍ଡ (ହି. ଶ)—10. A bit or piece of gold. ୧୧ । କପିତ୍ଥ; କଇଥ (ହି,ଶ)—11 Wood apple. ୧୨ । ନାଗକେଶର (ହି. ଶ)—12. Messua Ferra [tree and flower]. ୧୩ । ବାଦାମୀରଙ୍ଗର ଘୋଡ଼ା (ହି. ଶ)—13. A horse of almond colour. ୧୪ । ବୁଦ୍ଧଦେବ (ହି. ଶ)—14. The Buddha. ଦେ ବି—୧ । (ପୁଂ) ହେମଚନ୍ଦ୍ର, ହେମନ୍ତକୁମାରର ନାମ—1. Nickname of Hemachandra, Hemanta Kumāra etc. ୨ । (ସ୍ତ୍ରୀ) ହେମପ୍ରଭା, ହେମଲତା, ହେମନ୍ତକୁମାରୀ, ହୈମବତୀ ଆଦିଙ୍କ ଡାକନାମ—2. Nickname of Hemaprabhā etc. ପ୍ରାଦେ (ଖଡ଼ଆଳ) ବି—ହିମ; ଜାକର—Cold; coolness.
Hema
হেম हेम

ହେମ କନ୍ଦଳ—ସଂ ବି—ପ୍ରବାଳ; ପୋହଳା (ହେମଚନ୍ଦ୍ର)—Coral.
Hema kandala

ହେମ କାକର—ଦେ.ବିଣ—ହେମପରି ଅର୍ଥାତ୍ ବରଫ ପରି ଅତି ଥଣ୍ଡା—Icy; ice-cold. [ଉ—ଦାସେ! ପାଣିରେ ବୁଡ଼ିଲେ ମାସେ, ପାଣି ହେଲା ହେମକାକର, ଦାସେ ହେଲେ ବୁଢ଼ା ମାକଡ଼ — ଶିଶୁବେଦ ।]
Hema kākara
হিমশীতল हिम शीतल

ହେମ କାନ୍ତି—ସଂ ବି—୧ । (୬ଷ୍ଠୀ ତତ୍) ସୁନାର ପ୍ରଭା—1. Lustre of gold. ୨ । [ବହୁବ୍ରୀହି] ଦାରୁହରିଦ୍ରା (ରାଜନିର୍ଘଣ୍ଟ)—2. Berberis Cristata. ୩ । ଆମ୍ବକଷିଆ ଅଦା; ଆମ୍ବ ଅଦା [ହି.ଶ]—3.Curcoma Zeodaria, ସଂ ବିଣ, ପୁଂ [ବହୁବ୍ରୀହି] ସ୍ୱର୍ଣ୍ଣାଭ; ସୁନା ପରି କାନ୍ତି ବିଶିଷ୍ଟ—Of golded hue.
Hemakānti

ହେମକାର—ସଂ ବି—ସ୍ୱର୍ଣ୍ଣକାର, ସୁନାସ୍ୱବଣିଆ [ମନ୍ତ୍ରାଯ୍ୟପୁରାଣ] Goldsmith
Hemakāra

ହେମ କାର୍କଣୀ—ଦେ ବି [ବୈଦ୍ୟକ] ଏକପ୍ରକାର ଔଷଧ ଗୁଳ୍ମ—Name of a medicinal plant. [ବି—ଏହାକୁ କେହି କେହି ଖାଖାଣଢେଖା କହନ୍ତି । ଏ ଗୁଳ୍ମର ପତ୍ରକୁ ଘିଅରେ ଭାଜି ଅଥବା ଭରକାରୀ କରି ଖାଇଲେ ଅର୍ଶର ଯନ୍ତ୍ରଣା ପ୍ରଶମିତ ହୁଏ । ଏହାର ଅନ୍ୟ ଅନେକ ଗୁଣ ମଧ୍ୟ ଅଛି—ଦ୍ରବ୍ୟକଳ୍ପଦ୍ରୁମ ।]
Hema kārkai

ହେମ କିଞ୍ଜଳ୍କ—ସଂ ବି—ନାଗକେଶର [ରାଜନିର୍ଘଣ୍ଟ ଦେଖ] Nāgakeśara [See].
Hemakiñjalka

ହେମ କୁମ୍ଭ (କଳସ, ଘଟ)—(ମ ଷ ଲେ)—ସ୍ୱର୍ଣ୍ଣନିର୍ମିତ ଘଡ଼ା —
Hema kumbha [kalasa, ghata] A golden pitcher.

ହେମ କୂଟ—ସଂ ବିଂ ବହୁବ୍ରୀହି; ହେମମୟ ଅଟେ କୂଟ=ଶୃଙ୍ଗ ଯାହାର)—
Hema kūta ପୁରାଣୋକ୍ତ ହିମାଳୟର ଉତ୍ତରସ୍ଥ ପର୍ବତ ବିଶେଷ ( ଅମର )—Name of a mythological mountain to the north of the Himalyas. [ ଦ୍ର—ପୁରାଣ ମତରେ ଏହା କିଂପୁରୁଷ ଓ ଭାରତବର୍ଷ ମଧ୍ୟସ୍ଥ ସୀମା ପର୍ବତ । ଏହାର ୯୦ ସହସ୍ର ଯୋଜନ ଦୈର୍ଘ୍ୟ, ୨ ସହସ୍ର ଯୋଜନ ପ୍ରସ୍ଥ ଓ ୨ ସହସ୍ର ଯୋଜନ ବିସ୍ତାର ଅଛି ।]

ହେମ କେତକୀ—ସଂ. ବ — ସ୍ୱର୍ଣ୍ଣକେତକୀ; କେତକୀଫୁଲ (ରାଜନିର୍ଘଣ୍ଟ)—
Hema ketaki The yellow-flowered Pandanus Odoratissimus; Pandanus Asiculatus.

ହେମ କେଦାର—ଦେ. ବ —୧ । ଏକପ୍ରକାର ଗଛ —
Hema kedāra 1. Name of a sweet scented root of a plant; a kind of achorus root. ୨ । ହେମସାଗର ୨ (ଦେଖ)—2. Hema sāgara 2 (See)
हेमकेदार जबदर

ହେମ କେଳି—ସ. ବ—ଅଗ୍ନି [ଶବ୍ଦମାଳା]—
Hema keli Fire.

ହେମ କେଶ—ସ. ବ—ଶିବ [ଶବ୍ଦ କଳ୍ପଦ୍ରୁମ]—
Hema kesa Siba.

ହେମକ୍ଷୀରୀ—ସ. ବ—ସ୍ୱର୍ଣ୍ଣକ୍ଷୀର ବୃକ୍ଷ, ଅଗରୁ ଗନ୍ଧ—
Hema kshiri Gamboje thistle.

ହେମ ଗନ୍ଧିନୀ—ସ. ବ—ରେଣୁକା ନାମକ ଗନ୍ଧଦ୍ରବ୍ୟ [ରତ୍ନମାଳା]—
Hema gandhini A scented herb.

ହେମଗିରି—ସଂ. ବ—[ସ୍ୱର୍ଣ୍ଣମୟ] ସୁମେରୁ ପର୍ବତ—
Hema giri The mythological gold mountain at the north end of the world.

ହେମ ଗୋରୀ—ଦେ ବ ଓ ବିଣ ସ୍ତ୍ରୀ—[ସଂ ହେମଗୌରୀ]—କନକଗୋରୀ;
Hema gori ସୁନାପରି ଶରୀରକାନ୍ତି ବିଶିଷ୍ଟା [ସ୍ତ୍ରୀ]—Fair-skinned woman.

ହେମ ଗୌର—ସଂ. ବିଣ ପୁଂ—୧ । ସ୍ୱର୍ଣ୍ଣପରି ଗୌରବର୍ଣ୍ଣ ଚର୍ମଯୁକ୍ତ—
Hema gaura 1. Fair-skinned like gold. ୨ । କର୍ଣ୍ଣିକାର ବୃକ୍ଷ [ରାଜନିର୍ଘଣ୍ଟ]; ବବୁର ଗଛ— 2. Acacia Arabica tree.

ହେମ ଗୌରାଙ୍ଗ—ସଂ ବିଣ ପୁଂ—ସ୍ୱର୍ଣ୍ଣତୁଲ୍ୟ ଗୌରବର୍ଣ୍ଣାଙ୍ଗ ବିଶିଷ୍ଟ
Hemagauranga [ସ୍ୱଜନପୁରାଣ]—Fair-skinned; (ହେମଗୌରାଙ୍ଗୀ—ସ୍ତ୍ରୀ) golden complexioned.

ହେମଘ୍ନ—ସଂ ବ—(ହେମ+ହନ୍ ଧାତୁ+କର୍ତ୍ତୃ. ଅ)—ସୀସାଧାତୁ—
Hemaghna Lead (metal).

ହେମଘ୍ନା—ସଂ .ବ—(ହେମଘ୍ନ+ଆ)—ହଳଦୀ (ହ୍ର.ଶ)
Hemeghnā Turmeric.

ହେମଚନ୍ଦ୍ର—ସ.ବ—୧ । (ମ. ଷ ଲେ)—ସ୍ୱର୍ଣ୍ଣ ନିର୍ମିତ ଚନ୍ଦ୍ର; ସୁନାର ଚନ୍ଦ୍ର
Hema chandra 1. A gold model of moon. ୨ । ଇକ୍ଷ୍ୱାକୁ ବଂଶୀୟ ବିଶାଳ ରାଜାଙ୍କ ପୁତ୍ର (ହ୍ର. ଶ)—2. Name of a king of the Ikshwāku dynasty.
হেমচন্দ্র हेमचन्द्र
ଦେ. ବ. ପୁଂ—୧ । ପୁରୁଷଙ୍କୁ ଦିଆଯିବା ନାମ—
হেমচন্দ্র हेमचन्द्र 1. A name given to males. ୨ । ଅଭିଧାନ ଚିନ୍ତାମଣି ନାମକ ସଂସ୍କୃତ ଅଭିଧାନ ଗ୍ରନ୍ଥକାର—2. Name of a Sanskrit lexicographer. [ ଦ୍ର —ଏହାଙ୍କୁ ଲୋକେ 'ସୂରି ହେମଚନ୍ଦ୍ର' ବୋଲି ଡାକୁଥିଲେ । ଏ ଗୁଜରାଟର ପ୍ରସିଦ୍ଧ ଜୈନ ପଣ୍ଡିତ ଥିଲେ । ଏହାଙ୍କର ଜନ୍ମ ଖ୍ରୀ ୧୦୯୦ ଓ ମୃତ୍ୟୁ ଖ୍ରୀ. ୧୧୭୪ରେ ହୋଇଥିଲା । ଏ ଜଣେ ଦିଗ୍‌ବିଜୟୀ ପଣ୍ଡିତ ଥିଲେ । ଏ ବୈଶ୍ୟ ଜାତୀୟ ଶ୍ୱେତାମ୍ବର ଜୈନ ଥିଲେ । ଏ ରାଜା କୁମାରପାଳଙ୍କ ଆଶ୍ରୟରେ ଥିଲେ । ଏହାଙ୍କ କୃତ ଅଭିଧାନ ଚିନ୍ତାମଣି, ଅନେକାର୍ଥ କୋଷ, ସିଦ୍ଧ ଶବ୍ଦାନୁଶାସନ, ପ୍ରାକୃତ ବ୍ୟାକରଣ, ପ୍ରାକୃତ ଅଭିଧାନ, ତ୍ରିଷଷ୍ଟି ଶଲାକା, ସଂସ୍କୃତ ବ୍ୟାକରଣ, ଦେଶୀ ନାମ ମାଳା, ଉଣାଦି ସୂତ୍ର-ବୃତ୍ତି ଗ୍ରନ୍ଥମାନ ଆଜି ସୁଦ୍ଧା ଭାରତରେ ପ୍ରାମାଣିକ ଗ୍ରନ୍ଥରୂପେ ଆଦୃତ ହେଉଅଛି ।]

ହେମଚନ୍ଦ୍ର ବନ୍ଦୋପାଧ୍ୟାୟ—ଦେ. ବ. (ନାମ)—ବଙ୍ଗର ଜନୈକ ସ୍ୱର୍ଗତ
Hemachandra bandopādhyāya କବି—Name of a late famous poet of Bengal. [ଦ୍ର—ଏହାଙ୍କ ଜନ୍ମ ଖ୍ରୀ ୧୮୩୮ ଓ ମୃତ୍ୟୁ ୧୯୦୩ ସାଲରେ ହୋଇଥିଲା । ଏ ହୁଗୁଳି ଜିଲ୍ଲାର ବଙ୍ଗୀୟ ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିଲେ । ଏ ବି. ଏ., ବି. ଏଲ୍ ପାଶ୍ କରି କିଛି ଦିନ ମୁନ୍‌ସଫ ହୋଇ ପରେ କଲିକତା ହାଇକୋର୍ଟରେ ଓକିଲାତି କଲେ । ବୃଦ୍ଧାବସ୍ଥାରେ ଏ ଅନ୍ଧ ହୋଇଯାଇଥିଲେ । ଏ ମାଇକେଲ୍ ମଧୁସୂଦନଙ୍କ ମେଘନାଦ ବଧ କାବ୍ୟର ଟୀକା କରିଥିଲେ, ଏବଂ ନିଜେ ଅନେକ ସୁଲଳିତ କବିତା ମଧ୍ୟ ରଚନା କରିଥିଲେ । ଏହାଙ୍କ ରଚିତ ଚିନ୍ତା ତରଙ୍ଗିଣୀ, ବୃତ୍ର ସଂହାର କାବ୍ୟ, ବୀରବାହୁ ଓ କବିତାବଳି ଗ୍ରନ୍ଥମାନ ପ୍ରସିଦ୍ଧ । ବଙ୍କିମଚନ୍ଦ୍ର ଏହାଙ୍କୁ ମାଇକେଲ୍ ମଧୁସୂଦନଙ୍କ ସଙ୍ଗେ ସମାନ ବୋଲି ଗଣନା କରିଥିଲେ ।]

ହେମ ଚମ୍ପକ—ଦେ· ବ (ଅଧୁନିକ)—ବିଦେଶୀ ପୁଷ୍ପ ବୃକ୍ଷ ବିଶେଷ—
Hema champaka Magnollia Grandiflora. ସଂ.ବ—ହଳଦିଆ ଚମ୍ପା ଫୁଲ ଓ ଗଛ—The yellow-flowered Champaka tree and its flower.

ହେମଜ—ସଂ. ବ—ରଙ୍ଗା ଧାତୁ (ହ୍ର. ଶ)—Tin (metal).
Hemaja

ହେମଜାଲ—ଦେ. ବ—ଲତା ବିଶେଷ—A kind of creeper.
Hemajāla

ହେମଜ୍ୱାଳ—ସଂ.ବି. (ବହୁବ୍ରୀହି;ହେମ+ଜ୍ୱାଳା)—ଅଗ୍ନି (ଶବ୍ଦମାଳା)—
Hema jwāla Fire.

ହେମ ଝରି—ଦେ. ବି—ସ୍ୱର୍ଣ୍ଣର ଗଡ଼ୁ ବା ଝାଳ—Golden pitcher.
Hema jhari ହେମଝାରୀ सोनेकी झरी

ହେମ(ମ୍ମ)ତ(ଇତ୍ୟାଦ)—ବୈଦେ. ବି(ଅ)—ହିମ୍ମତ୍ ଇତ୍ୟାଦ (ଦେଖ)-
Hema(mma)t(etc) Himmat etc (See).

ହେମତାର—ସଂ ବି—୧ । ଉଡୁମ୍ବର ବୃକ୍ଷ ( ଶବ୍ଦମାଳା )—1. The
Hema tāra wild fig tree. ୨ । ତୁତିଆ (ହି. ଶ)—
2. Blue vitriol; copper sulphate.

ହେମତି—ବୈଦେ. ବିଶ—(ଅ)—ହିମ୍ମତି (ଦେଖ)—Himmati
Hemati (ହେମତିଆ—ଦେ. ରୂପ) (See).

ହେମ ତୁର୍କୁଣୀ—ପ୍ରାଦେ ( ଗଡ଼ଜାତ ) ବି—ବନ୍ୟଲତା ବିଶେଷ—A
Hema turkuṇi kind of wild creeper. [ବି—ଏହା
ଭୂମିରେ ମାଡ଼େ; ଫଳ ତୁଇଁପାଳଆ । ଏହା ଗୋରୁ ଗାଈଙ୍କ
ପ୍ରତି ଉପକାରୀ ଅଟେ ]

ହେମ ତୁଳା—ସଂ. ବି—ସ୍ୱର୍ଣ୍ଣର ତୁଳାଦାନ; ଦାତାଙ୍କ ସମାନ ଓଜନ ସୁନାର
Hema tulā ଦାନ (ହି. ଶ)—A present of one's
weight of gold to Brāhmaṇas.

ହେମ ଦୁଗ୍ଧକ (ଦୁଗ୍ଧ)—ସଂ. ବି—ଉଡୁମ୍ବର ବୃକ୍ଷ—(ଅମର)—The
Hema dugdhaka(dugdha) wild fig tree; Ficus
Glomerata. ବିଣ—ପୀତବର୍ଣ୍ଣ କ୍ଷୀରଯୁକ୍ତ—
Having golden juice.

ହେମଦୁଗ୍ଧ—ସଂ. ବି—ସ୍ୱର୍ଣ୍ଣକ୍ଷୀରୀ(ଜନ୍ତଧର)—Gāmboje thistle
Hema dugdh (a plant).

ହେମଦୁଗ୍ଧୀ—ସଂ. ବି—(ହେମ ଦୁଗ୍ଧିନ୍ ଶବ୍ଦ; ୧ମା. ୧ବ)—୧ । ଯଜ୍ଞ-
Hema dugdhī ଡୁମୁର ବୃକ୍ଷ ( ଶବ୍ଦ ରତ୍ନାବଳୀ )—
1. Ficus Glomerata; Ficus Gibbosa. ୨ ।
୨ । ସ୍ୱର୍ଣ୍ଣକ୍ଷୀରୀ—( ରାଜ ନିର୍ଘଣ୍ଟ ) —2. Gamboje
thistle (a plant).

ହେମ ଧାନ୍ୟକ—ସଂ. ବି—ତିଳ; ରାଶି (ବୈଦ୍ୟକ)—Sesamum
Hema dhānyaka Niger (seed).

ହେମନ୍ତ—ସଂ. ବି – ( ହନ୍ ଧାତୁ=ବଧ କରିବା+ଝଚ୍; କମ୍ପ
Hemanta ହେମନ୍+ତ)—ହିମଋତୁ, ଅଗ୍ରହାୟଣ ଓ
ପୌଷମାସାତ୍ମକ ଋତୁ—The 1st two months of
winter. [ ବି—ଏହା ବର୍ଷକର ୬ ଋତୁ ମଧ୍ୟରେ
ଶରତ୍ ଋତୁର ପରେ ଘଟିବା ଋତୁ ଅଟେ ।] ଦେ.ବି—
हिमालय हेमन्त ୧ । (ସଂ. ହିମବତ୍) ହିମାଳୟ ପର୍ବତ—
1. The Himalayas. ୨ । ହେମନ୍ତ କୁମାରର
ଡାକ ନାମ—2. Nickname of Hemanta
kumāra. ବୈଦେ. ବି (ଅ) ହିମ୍ମତ୍ (ଦେଖ)
हिम्मत् हिम्मत Himmat (See)

ହେମନ୍ତ ନାଥ—ସଂ. ବି—୦ପିତ୍ଥ (ଶବ୍ଦ ଚନ୍ଦ୍ରିକା)—Wood apple.
Hemāntanātha

ହେମନ୍ତ ବାଳୀ(କୁମାରୀ,ବାଳା)—ଦେ.ବି—୧ ।ପାର୍ବତୀ—1.Pārbati.
Hemanta bālī (kumārī, bālā) [ ବି—ମଧୁ ଦେ
ହିମଗିରିକନ୍ୟା हेमन्तकन्या ଥାଳେ ମଣ୍ଡ ହେମନ୍ତ ବାଳୀ । ଶିଶୁ
ଶଙ୍କର ଉଷା ଅଭିଳାଷ] ୨ । ( ନାମ ) ସ୍ତ୍ରୀ ଲୋକଙ୍କୁ
ଦିଅଯିବା ନାମ—2. A name given to females.

ହେମ ପର୍ବତ—ସଂ.ବି—୧ । ସୁମେରୁ ଗିରି (ବ୍ରହ୍ମାଣ୍ଡ)—The my-
Hema parbata thological mountain at the
north extremity of the world. ୨ । ଦାନ
ନିମନ୍ତେ ଉଚ୍ଚ ସ୍ତୂପ ସୁନା ଗଦା (ହି. ଶ)—2. A heap of
gold given away to Brāhmaṇas [ବି—
ଏହା ମହାଦାନମଧ୍ୟରେ ଏକ ଅଟେ ।

ହେମ ପୁଷ୍ପ—ସଂ ବି—୧ । ଅଶୋକ ପୁଷ୍ପ ( ମେଦିନୀ ) 1. Asoka
Hema pushpa flower. ୨ । ଜବା ପୁଷ୍ପ;
ମନ୍ଦାର ଫୁଲ ( ମେଦିନୀ )—2. The china rose.
୩ । ଚମ୍ପକ ବୃକ୍ଷ ( ଶବ୍ଦଚନ୍ଦ୍ରିକା ) 3. The
Champaka tree. ୪ । ନାଗକେଶର (ହି. ଶ)—
4. Mesua Ferra (tree and flower).

ହେମ ପୁଷ୍ପକ—ସଂ ବି—୧ । ଚମ୍ପକ ବୃକ୍ଷ ( ଅମର )—
Hema pushpaka 1. The Champaka tree;
Michelia Champaka. ୨ । ଲୋଧ୍ର (ରାଜନିର୍ଘଣ୍ଟ)
2. Symplocus Racemosa.

ହେମପୁଷ୍ପିକା—ସଂ. ବି—ସ୍ୱର୍ଣ୍ଣଯୂଥିକା ( ଅମର )—The yellow-
Hema pushpikā flowered variety of Jasminum
Auriculatum.

ହେମ ପୁଷ୍ପୀ—ସଂ. ବି—୧ । ମଞ୍ଜିଷ୍ଠା ( ଶବ୍ଦମାଳ )—
Hema pushpī 1. Indian madder
plant; Rubia Cordifolia. ୨ । ସ୍ୱର୍ଣ୍ଣଜବନ୍ତୁ-
( ରାଜନିର୍ଘଣ୍ଟ )—2. The yellow variety of
Celtis Orientalis. ୩ । ଇନ୍ଦ୍ର ବାରୁଣୀ
( ରାଜନିର୍ଘଣ୍ଟ )—3. Colocynth (creeper).
୪ । ସୁନାରି ଗଛ; ସ୍ୱର୍ଣ୍ଣଲୀ ( ରାଜନିର୍ଘଣ୍ଟ )—
4. Cassia Fistula ( tree ). ୫ । ମୁଷଲୀ;
ତାଲ ମୂଳୀ ( ରାଜନିର୍ଘଣ୍ଟ )—5. Asparagus
Sarmentosus. ୬ । କଣ୍ଟକାରୀ; ଅଙ୍କୁରି
( ରାଜନିର୍ଘଣ୍ଟ )—6. Solanum Xanthocarpum
(plant).

ହେମ ଫଳା—ସଂ. ବି—ସ୍ୱର୍ଣ୍ଣ କଦଳୀ; ଚମ୍ପା କଦଳୀ (ରାଜ ନିର୍ଘଣ୍ଟ)—
Hema phalā A variety of banana.

ହେମ ବପୁ—ଦେ. ବି. ପୁଂ ଓ ସ୍ତ୍ରୀ—( ସଂ ହେମବପୁଷ୍)—ହେମଗୌର
Hema bapu Fair-compexioned (person).
( ଭି—ପୁରୁଷରେ ବସାଇ କର୍ପୁର, ଫୁଲ ସୁନ ଭରେ
ଲଗାଇବା କେତେ ଶୁଭୁଷ ହେମବପୁର—ଭଞ୍ଜ.
ପ୍ରେମସୁଧାନିଧି ।)

ହେମ ବଳ—ସଂ. ବି—ମୌକ୍ତିକ; ମୁକ୍ତା (ରାଜନିର୍ଘଣ୍ଟ)—
Hema bala Pearl.

ହେମ ମୟ—ସଂ, ବିଣ, ମୃଂ (ହେମ+ମୟ)—୧ । ସୁନାରେ ତିଆରି—
Hemamaya 1. Made of gold. ୨ । ସୁନାଲି-
(ହେମମୟୀ—ସ୍ତ୍ରୀ) 2. Golden.

ହେମ ମାଳ—ସଂ. ବି—୧ । ସୁନାର ହାର—1. Gold necklace.
Hema mālā ୨ । (ନାମ) ଯମ ସ୍ତ୍ରୀ—2. Name of the wife of God Jama. ଦେ. ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—A name given to females.

ହେମ ମାଳୀ—ସଂ. ବି ( ହେମ+ମାଳ+ଇନ୍, ୧ମା. ୧ଠ )—
Hemamali ୧ । ସୂର୍ଯ୍ୟ (ଭବିଷ୍ୟପୁରାଣ)—
হেম মালী हेम माली 1. The Sun.
୨ । ( ନାମ ) ଖର ରାକ୍ଷସର ସେନାପତି (ବ୍ର. ଶ)—2. Name of a general of the army of Khara demon. ଦେ. ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—A name given to females.

ହେମ ଯୂଥିକା—ସଂ. ବି—ସ୍ୱର୍ଣ୍ଣଯୂଥିକା; ସ୍ୱର୍ଣ୍ଣଯୂଥି (ରାଜନିର୍ଘଣ୍ଟ)—
Hema jūthikā The yellow-flowered variety of Jasminum Auriculatum.

ହେମ ରାଗ—ସଂ. ବି (ଷଷ୍ଠୀ ତତ୍)—ସ୍ୱର୍ଣ୍ଣବର୍ଣ୍ଣ—
Hema rāga Golden colour.

ହେମ ରାଗିଣୀ—ସଂ. ବି ( ହେମରାଗ+ଇନ୍+ସ୍ତ୍ରୀ ଈ )—ହରିଦ୍ରା ( ବିକାଣ୍ଡଶେଷ ); ହଳଦୀ—
Hema rāgiṇī Turmeric.

ହେମରାଜ—ଦେ. ବି (ସଂ ହେମସାଗର)—ହେମସାଗର ୧ (ଦେଖ)—
Hema rāja 1. Hema sāgara 1 (See)

ହେମ ରେଣୁ—ସଂ ବି—୧ । ସୁନାର ଧୂଳି—
Hema reṇu 1. Dust of gold. ୨ । ତ୍ରସରେଣୁ (ବ୍ର. ଶ) (ଦେଖ)—2. Trasareṇu (See)
୩ । କୃକଳାସ; ଏଣ୍ଡୁଅ (ମେଦିନୀ)—3. Chameleon.
୪ । ଟକ୍କେଇ ନେଉଳ ( ବ୍ର. ଶ. ) ଦେଖ —
4. A species of golden house-lizard.

ହେମ ଲତା—ସଂ. ବି—ସ୍ୱର୍ଣ୍ଣଜୀବନ୍ତୀ [ ରାଜନିର୍ଘଣ୍ଟ ]—Yellow
Hema latā variety of Jībanti.
হেমলতা हेमलता ଦେ. ବି. ସ୍ତ୍ରୀ—ସ୍ତ୍ରୀଲୋକମାନଙ୍କ ନାମ—
A name given to females.

ହେମ ଲମ୍ବ[ଲମ୍ବକ]—ସଂ. ବି—ବାର୍ହସ୍ପତ୍ୟ ୬୦ ସମ୍ବତ୍ସର ମଧ୍ୟରେ
Hema lamba (lambaka) ୩୧ଶ ବର୍ଷର ନାମ [ବ୍ର.ଶ]—
Name of the 31st of the 60 years of the planet Jupiter.

ହେମଶ—ଗ୍ରାଦେ. [ ଗଞ୍ଜାମ ] ବି.—୧ । ମନୋଯୋଗ—
Hemaśa 1. Attention. ୨ । ଶ୍ରଦ୍ଧା—
2. Affection; attachment.

ହେମଶଙ୍ଖ—ସଂ. ବି—(ବହୁବ୍ରୀହି)—ବିଷ୍ଣୁ (ତ୍ରିକାଣ୍ଡ ଶେଷ)—
Hema śankha Bishṇu

ହେମ ଶାକର—ଗ୍ରାଦେ. (ଗଡଜାତ) ବି—ଔଷଧ ଗୁଳ୍ମ ବିଶେଷ—
Hema śākara Name of a medicinal plant.
[ବି—ଏହା ପୋଖରୀ କୂଳରେ ଓ ପାଣି କୂଳରେ ଜନ୍ମେ; ଏହାର ପତ୍ରକୁ ତେଲରେ ଭାଜି ବାତ ଧରିଥିବା ଅଙ୍ଗରେ ଘଷିଲେ ଉପକାର ହୁଏ ]

ହେମ ଶିଖା—ସଂ ବି—ସ୍ୱର୍ଣ୍ଣକ୍ଷୀରୀ (ଶବ୍ଦରତ୍ନାବଳୀ)—
Hema śikhā Gamboje thistle (plant).

ହେମ ସାଗର—ସଂ. ବି—୧ । ପିଆଜ ଗୁଣ୍ଡା ପରି ପାର୍ଶ୍ୱ ଓ ମାଂସଳ
Hema sāgara ଶାକ ବିଶେଷ—1. Kalanchoe Laciniata (herb); Kalanchoe Laciniata
ପା, କଳାନ୍‌ଚୋ ଲାସିନିଆଟା (Kirtikar) [ବି—ଏହାର ପତ୍ର ମୋଟ, ମାଂସଳ
হেমসাগর हेमसागर ଓ ପଶାକାରରେ କଟାକଟା; ଫୁଲ ଛୋଟ ଓ ହଳଦିଆ (ଯୋଗେଶଚନ୍ଦ୍ର) ଏହା ବିହାର ଓ ପୂର୍ବବଙ୍ଗରେ ଜନ୍ମେ । ପଞ୍ଜାବର ପାହାଡ଼ରେ ଏ ଗଛ ମନକୁ ଲୁଟେ] ୨ । ଫୁଟ-ଫୁଟିକିଆ ଗଛର ପାର୍ଶ୍ୱାଗ୍ରସ୍ଥ ଶାକ ବିଶେଷ—2. Bryophyllum Calycinum. [ବି—ଏହା ଦୁଇହାତ ପର୍ଯ୍ୟନ୍ତ ଉଚ୍ଚ ହୋଇ ବଢେ । ଏହାର ପତ୍ର ମୋଟ, ମାଂସଳ, ଶ୍ଳେଷ୍ମପ୍ରଦ ଓ ଅମ୍ଳ । ଛାୟା ସ୍ଥାନରେ ଏହାର ପତ୍ରକୁ ରଖିଲେ ପତ୍ର ଦେହରୁ ଗୁଣ୍ଡି କାହାର ଅନେକ ଗଛ ହୁଏ; ଫୁଲ ବଡ଼ ବଡ଼ ଓ ବଇଗଣୀ ରଙ୍ଗ । ଏହା ବର୍ଷାଦିନେ ଫୁଟେ । ଏହି ଗଛ ୨୦୦ ବର୍ଷ ପୂର୍ବେ ମଲକ୍କା ଦ୍ୱୀପପୁଞ୍ଜରୁ ଭାରତକୁ ଆନୀତ ହୋଇଥିଲା ]

ହେମ ସାର—ସଂ. ବି—ତୁତ୍ଥ; ତୁତିଆ (ରସଚନ୍ଦ୍ରିକା)—
Hema sāra Sulphate of copper.

ହେମ ସୁତା—ସଂ. ବି—ପାର୍ବତୀ (ବ୍ର. ଶ)—
Hemasutā Goddes Pārbatī.

ହେମ ସୂତ୍ର (ସୂତ୍ରକ)—ସଂ. ବି—ସୁନାସୁତା; ଗୋଟ (ଅଳଙ୍କାର ବିଶେଷ)—
Hema sūtra(sūtraka) A gold chain in the shape of a string.

ହେମ ହସ୍ତି ରଥ—ସଂ. ବି—ମହାଦାନ ବିଶେଷ; ଷୋଡ଼ଶ ମହାଦାନାନ୍ତର୍ଗତ ଦାନ ବିଶେଷ—A kind of
Hema hasti rath gift prescribed in the Hindu Śāstras, consisting of a model of a car drawn by elephants, both made of gold.
[ବି—ସ୍ୱର୍ଣ୍ଣର ଗୋଟିଏ ଚତୁଷ୍ଚକ୍ର ବିଶିଷ୍ଟ ରଥ ନିର୍ମାଣ କରି ସେଥିମଧ୍ୟରେ ନାରାୟଣ ଓ ଲକ୍ଷ୍ମୀମୂର୍ତ୍ତି, କୃଷ୍ଣାଜିନ, ଛତ୍ର, ଅଷ୍ଟାଦଶ ଧାନ୍ୟ, ଶୟନ, ଆସନ, ଭାଜନ, ପାତ୍ର, ଛତ୍ର, ଦର୍ପଣ ଓ ପାଦୁକା ସ୍ଥାପନ କରାଯାଏ ।
ଧ୍ୱଜରେ ଗରୁଡ଼ମୂର୍ତ୍ତି ଓ ସାମନାରେ ଗଣେଶଙ୍କ ମୂର୍ତ୍ତି ସ୍ଥାପନ କରାଯାଏ । ରଥରେ ସ୍ୱର୍ଣ୍ଣନିର୍ମିତ ଓ ମୁକ୍ତାଦାମବିଭୂଷିତ ୪ଟି ହାତୀ ଲଗାଯାଏ ଓ ୮ଟି ଗାଈ, ବିତାନ

ଓ କୌଶେୟ ବସ୍ତ୍ରାଦ ସହତ ଏହା ବ୍ରାହ୍ମଣଙ୍କୁ ଦାନ କରାଯାଏ । ଏଥିର ଫଳ ଶିବଲୋକ ପ୍ରାପ୍ତି—ମତ୍ସ୍ୟପୁରାଣ ।]

ହେମା—ସଂ. ବ ପୁଂ—(ହ ଧାତୁ=ଗମନ କରିବା+କର୍ତ୍ତ୍ରି ମନ୍; ହେମନ୍ ଶବ୍ଦ ୧ମା ୧ବ)—୧ । ବୁଧଗ୍ରହ (ତ୍ରିକାଣ୍ଡଶେଷ)—
Hemā 1. The planet mercury. ୨ । (ହେମ+ଆ) (ସ୍ତ୍ରୀ) ସୁନ୍ଦରୀ ସ୍ତ୍ରୀ (ଶବ୍ଦକଳ୍ପଦ୍ରୁମ)—2. A fair woman. ୩। ଅପ୍ସରାମାନେ (ଶବ୍ଦକଳ୍ପଦ୍ରୁମ)—3. The heavenly nymphs. ୪ । ଗୋସ୍ଵ: ହେମାଙ୍ଗୀନାରୀ—4. A woman of fair complexion. ଦେ.ବି.ପୁଂ—୧।ହେମ ଶବ୍ଦାଦ୍ୟ ନାମ ବିଶିଷ୍ଟ ପୁରୁଷଙ୍କ ଡାକନାମ—1. Nick-name of Hemachandra etc. ୨। (ସ୍ତ୍ରୀ) ହେମ-ଶବ୍ଦାଦ୍ୟ ନାମବିଶିଷ୍ଟା ସ୍ତ୍ରୀଙ୍କ ଡାକନାମ—2. Nickname of Hemamāli etc.

ହେ ମା—ଦେ. ଅ—୧ । ମାତା ଓ ମାତୃ ସ୍ଥାନୀୟା ସ୍ତ୍ରୀଙ୍କୁ ସମ୍ବୋଧନ—
He mā 1. Exclamation uttered in addressing one's mother and elderly ladies. [ଦ୍ର—କନ୍ୟା ଓ କନ୍ୟା ସ୍ଥାନୀୟା ସ୍ତ୍ରୀଙ୍କୁ ମଧ୍ୟ ଏହି ସମ୍ବୋଧନ
ଓ ମା ! କରାଯାଏ] ୨। (ବସ୍ତୁ ବା ଘଟଣାଜନିତ ଧ୍ବନି) ମାଆଲୋ !—
हे ! मा ! 2. An exclamation of wonder or fear.

ହେମାଙ୍ଗ—ସଂ. ବ ପୁଂ—(ବହୁବ୍ରୀହି; ହେମ=ସୁବର୍ଣ୍ଣବର୍ଣ୍ଣ ଅଙ୍ଗ ଯାହାର)
Hemāṅga ୧। ହିରଣ୍ୟଗର୍ଭ; ବ୍ରହ୍ମା (ମେଦନୀ)—1. Brahmā; the Creator. ୨ । ସହସ୍ରନାମୋକ୍ତ ବିଷ୍ଣୁଙ୍କ ନାମ (ମହାଭାରତ)—2. One of the names of Bishṇu. ୩ । ଗରୁଡ଼ (ମେଦନୀ)—3. The king of birds. ୪ । ସିଂହ (ମେଦନୀ)—4. Lion. ୫ । ହେମାଦ୍ରି, ସୁମେରୁ ପର୍ବତ (ମେଦନୀ)—5. The Sumeru mountain. ୬ । ଚମ୍ପକ ବୃକ୍ଷ (ଶବ୍ଦରତ୍ନାବଳୀ)—6. The Champaka tree. ୭ । (ମ. ପ. ଲୋ) ସ୍ଵର୍ଣ୍ଣନିର୍ମିତ ଅଙ୍ଗ ବା ଅବୟବ—7. Golden limbs. ୮ । ସୁନାପରି ଗୋରଦେହ—8. Limbs of golden colour. ବଣ. ପୁଂ—(ବହୁବ୍ରୀହି)—ହେମ ଗୌର; ସୁନାପରି ଗୋରା—Fair-skinned; of golden complexion.
(ହେମାଙ୍ଗୀ—ସ୍ତ୍ରୀ. ବଣ)

ହେମାଙ୍ଗଦ—ସଂ. ବ (ମ. ପ. ଲୋ) ୧ । ସୁନାର ବାଜୁ—1. Golden
Hemāṅgada armlet. ୨ । (ନାମ) ବସୁଦେବଙ୍କ ଏକ ପୁତ୍ର (ହ୍ରି. ଶ)—2. Name of a son of Basudeba. ୩ । (ନାମ) କଳିଙ୍ଗ ଦେଶର ଜଣେ ରାଜା (ହ୍ରି. ଶ)—3. Name of a king of Kaliṅga. ସଂ. ବଣ. ପୁଂ ସୁନାର ବାଜୁ ପରିଧାନ କାରୀ—Wearing a golden armlet.
(ହେମାଙ୍ଗଦା—ସ୍ତ୍ରୀ. ବଣ)

ହେମାଙ୍ଗୀ—ସଂ. ବଣ ସ୍ତ୍ରୀ—(ହେମାଙ୍ଗିନ୍ ଶବ୍ଦ, ହେମାଙ୍ଗ+ଈନ୍)—
Hemāṅgi ହେମଗୌର (ଦେଖ)—Hemagaura (See)
ସଂ. ବଣ ସ୍ତ୍ରୀ—ସୁବର୍ଣ୍ଣପରି ଗୌରବର୍ଣ୍ଣ ଅଙ୍ଗ ବିଶିଷ୍ଟା (ସ୍ତ୍ରୀ)—Golden-complexioned (woman).

ହେମାଚଳ—ସଂ. ବ—ସୁମେରୁ ପର୍ବତ—
Hemāchala The Sumeru mountain.

ହେମାଜୁ(ଜୋ)ରି—ପ୍ରାଦେ [ଯାଜପୁର] ବ—ହୁରିଜୁରି [ଦେଖ]—
Hemāju(jo)ri Hurijuri (See)

ହେମାଦ୍ରି—ସ. ବ—୧ । ସୁମେରୁ ପର୍ବତ (ଅମର)—1. The
Hemādri mythological mountain at the north end of the world. ୨। (ନାମ) ଜଣେ କ୍ଷତ୍ରିୟ ରାଜା ଓ ଗ୍ରନ୍ଥକାର—2. Name of a Kshatriya king and author. [ଦ୍ର—ଏ ଚତୁର୍ବର୍ଗ ଚିନ୍ତାମଣି, କାମଧେନୁ ଓ କଳ୍ପଦ୍ରୁମ ନାମକ ଗ୍ରନ୍ଥ ରଚନା କରିଥିଲେ । ଏ ଖ୍ରୀଷ୍ଟୀୟ ୧୩ଶ ଶତାବ୍ଦୀରେ ଥିଲେ ; ଚତୁର୍ବର୍ଗଚିନ୍ତାମଣି ଗ୍ରନ୍ଥ ଦାନ, ବ୍ରତ, ତୀର୍ଥ, ମୋକ୍ଷବିଷୟ ଓ ପରିଶିଷ୍ଟ, ଏପରି ୫ ଖଣ୍ଡରେ ରଚିତ । ହି. ଶ] ୩ । ସ୍ଵର୍ଣ୍ଣକ୍ଷୀରୀ ( ହରେକୃଷ୍ଣ ଦ୍ରବ୍ୟଗୁଣ )—3. Gamboje thistle (a plant).

ହେମାଦ୍ରିକା—ସଂ. ବ—ସ୍ଵର୍ଣ୍ଣକ୍ଷୀରୀ (ହ୍ରି. ଶ)
Hemādrikā Gamboje thistle.

ହେମାଦ୍ରି ଜରଣ—ସଂ. ବ—ସ୍ଵର୍ଣ୍ଣକ୍ଷୀରୀ (ରତ୍ନମାଳା)—
Hemādri jaraṇa Gamboje thistle.

ହେମାନ୍(ମ୍) ଦ(ଦି)ସ୍ତା — ବୈଦେ. ବ — ( ଅ )—ହିମାନ୍ ଦସ୍ତା
Hemān(m) da(di)stā (ଦେଖ)—Himān-dastā (See).

ହେମାଭ—ସଂ. ବଣ. ପୁଂ—(ବହୁବ୍ରୀହି; ହେମ+ଆଭା)—ସ୍ଵର୍ଣ୍ଣାଭ; ସ୍ଵର୍ଣ୍ଣ-
Hemābha ବର୍ଣ୍ଣଯୁକ୍ତ—Golden; gold-coloured.
[ହେମାଭା—ସ୍ତ୍ରୀ]

ହେମା[ମ୍ବା] ରଡ଼ି(ରବ)—ଦେ. ବ [ସଂ ହାମ୍ବା]—ଗୋରୁଙ୍କ ବୋବାଳି,
Hemā(mbā) raḍi(rāba) ହମ୍ବାଧ୍ଵନି—Lowing
हाम्बारव हंभारंभा or bellowing of kine.
[ ଉ—ଧାମକୁ ହେମାରବେ ଧେନୁ ବାରୁ—ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି । ]

ହେମାଲ୍—ପ୍ରାଦେ [ସମ୍ବଲପୁର, ଗଡ଼ଜାତ] ବିଓ ବଣ-ହେମାଲ [ଦେଖ]
Hemāl Hemāla (See)

ହେମାଳ—ଦେ. ବ—(ସଂ ହିମକାଳ)—୧ । ହିମକାଳ; ହେମନ୍ତଋତୁ;
Hemāla ମାର୍ଗଶିର ଓ ପୌଷମାସ)—1. The 1st two
हेमाल months of winter. ୨ । (ସଂ. ହୈମଳ) ଅତି
हेमाल, ठंडा ଥଣ୍ଡା ଋତୁ—2. Cold or chilly weather. ବଣ—(ସ. ହୈମଳ) ୧ । ଅତି ଶୀତଳ—1. Very
(ହେମାଳୀ—ସ୍ତ୍ରୀ ବଣ) cold; chilly. ୨। (ପୁଂ) ଯାହାର ଦେହ ଅତି ଶୀତଳ ହୋଇଥାଏ—2. Cold-bodied. ୩ । ଅତ୍ୟନ୍ତ ଶୀତସ୍ପର୍ଶ—3. Very cold to the touch. ପ୍ରାଦେ (ଗଡ଼ଜାତ) ବଣ—ଗୋଠର ସବୁଯାକ ଗାଈ.

କୌଣସି ଆକସ୍ମିକ କାରଣରୁ ( ଯଥା—ବାଘ ଦେଖି ବା କୌଣସି ବିକଟାଳ ଶବ୍ଦ ଶୁଣି) ହୁରୁଡ଼ି, ଲଣ୍ଡଭଣ୍ଡ, ଦମ୍ଭାଦମ୍ଭ ହୋଇ ଏଣେ ତେଣେ ଦଉଡ଼ୁଥିବା—The state of the cattle of a flock shying and running helter skelter owing to some unforeseen cause (e. g. on seeing a tiger or on hearing a terrific roar). ସଂ. ବି— ଗାୟକ ସ୍ୱରର ପୁତ୍ର, ରାଗିଣୀ ବିଶେଷ (ହି. ଶ)—Name of secondary air in music.

ହେମାଳୟ—ପ୍ରା ବି—ହିମାଳୟ—The Himalayas.
Hemālaya हिमालय हिमालय

ହେମାଳିଆ—ଦେ. ଣ—୧ । ଅତିଶୀତଳ—1. Very cool; Hemālia chilly. ୨ । ଅତି ଶୀତସ୍ପର୍ଶ—2. Very cold ହେମালিযা to touch. ୩ । (ପୁ°) ଯାହାର ଦେହ ଅତି ଶୀତଳ हेमाला ଲାଗେ—3. Having a cold body. ବି—୧ । [ହେମାଳେ (ଲୋ)ଈ—ସ୍ତ୍ରୀ ଣ] ହୋ୍ଁଗା; ଗୋଳମାଳ—1. হোহা Ado; confusion. ୨ । ଅରାଜକତାଜନିତ ଗୋଳମାଳ हाहल्ला —2. Confusion due to anarchy. ୩ । ସମସ୍ତେ ମିଶି ଲୁଟପାଟ କରିବା—3. Promiscuous looting.

ହେମାଳିଆ କରିବା—ଦେ. କ୍ରି—୧ । ସମସ୍ତେ ମିଶି ଲୁଟି ନେବାକୁ ଲାଗିବା Hemālia kariba —1. To loot promiscuously লুটপাটকরা ୨ । ଗୋଳମାଳ କରିବା; ହୋହା କରିବା—2. To लूटपाट करना make an ado.

ହେମାହ୍ୱ—ସଂ. ଣ—(ହେମ ଅଟେ ଅହ୍ୱା=ନାମ ଯାହାର)—ହେମ Hemāhwa ନାମରେ କଥିତ—Called by the name of Hema. ବି—୧ । ବନ ଚମ୍ପକ (ରାଜ ନିର୍ଘଣ୍ଟ)— 1. Wild Champaka tree. ୨ । ଧୁସ୍ତୁରି; ଧାତୁରି (ଶବ୍ଦକଳ୍ପଦ୍ରୁମ)—2. The Dhātura plant.

ହେମାହ୍ୱା—ସଂ. ଣ—( ହେମାହ୍ୱ+ଆ )—ହେମାହ୍ୱର ସ୍ତ୍ରୀଲିଙ୍ଗ— Hemāhwā The feminine of Hemāhwa. ବି— ୧ । ସ୍ୱର୍ଣ୍ଣ ଜୀବନ୍ତୀ ( ରାଜନିର୍ଘଣ୍ଟ )—1. Yellow variety of Jibanti herb. ୨ । ସ୍ୱର୍ଣ୍ଣକ୍ଷୀରୀ; ଅଗର ଗୁଲ୍ମ (ବୈଦ୍ୟକ)—2.Gamboje thistle (a plant).

ହେମି—ପ୍ରାଦେ (ସମ୍ବଲପୁର ଓ ବାଲେଶ୍ୱର ଓ ଉତ୍ତର ବ୍ୟବହୃତ) କ୍ରି— Hemi 'ହେବି' କ୍ରିୟାର ଉଚ୍ଚାରଣ—A slang form of Hebi ( I shall be ). (ଯଥା—ମୁଁ ତ ହେଲ୍ଲା କଲେ ଭଦ୍ରସିଂକୁ ପାରହେମି)।

ହେମିସ୍ଫିଅର—ବୈଦେ· ବି—(ଇଂ)—୧ । ଗୋଲାର୍ଦ୍ଧ—1. Hemisphiar sphere. ୨ । ଗୋଲାକାର ପଦାର୍ଥରୁ ଫାଳେ— হেমিস্ফিয়ার 2. Half of a round thing. ୩ । ଭୂଗୋଲର हेमिस्फियर ଅର୍ଦ୍ଧେ—3. Half of the globe.

ହେମ୍ନ—ସଂ. ବି—ମଙ୍ଗଳଗ୍ରହ (ହି. ଶ)—
Hemna The planet Mars.

ହେମ୍ପାଲ—ପ୍ରାଦେ (ପୁରୀ ଓ ସମ୍ବଲପୁର ) ବି—ଭୋଜି; ମଉଚ୍ଛବ;ଜନ୍ତାଳ
Hempāla —A feast; banquet; big picnic.

ହେମ୍ନା—ସଂ. ବି—ବୁଧଗ୍ରହ (ଜ୍ୟୋତିଷତତ୍ତ୍ୱ)—
Hemnā The planet Mercury.

ହେୟ—ସଂ. ଣ—( ହା. ଧାତୁ=ତ୍ୟାଗ କରିବା+କର୍ମ ଯ )—୧ । Heya ତ୍ୟାଜ୍ୟ, ଅଗ୍ରାହ୍ୟ—1. Fit to be abandoned or (ହେୟା—ସ୍ତ୍ରୀ) rejected; avoidable. ୨ । ତୁଚ୍ଛ—2. Despicable. ୩ । ଅତି ଖାଟ—3. Very mean. ୪ । ଅତି ମନ୍ଦ—4. Very bad.

ହେୟ କରିବା—ଦେ. କ୍ରି—୧ । ତୁଚ୍ଛ କରିବା, ଘୃଣା କରିବା—1. Heya kariba To treat with contempt. ୨ । ତ୍ୟାଗ হেয়করা କରିବା; ଅଗ୍ରାହ୍ୟ କରିବା; ଗ୍ରହଣ ନ କରିବା—2. To हेय करना reject; to abandon.

ହେୟ ଜ୍ଞାନ—ସଂ. ବି—୧ । ତୁଚ୍ଛଜ୍ଞାନ—1. Slight. ୨ । ଘୃଣା— Heya jñāna 2. Contempt; feeling of disgust. ୩ । ବେଖାତିର—3. Disregard.

ହେୟଜ୍ଞାନ କରିବା—ଦେ. କ୍ରି—୧ । ବେଖାତିର କରିବା—1. To Heyajñāna kariba disregard; to slight. ୨ । ଘୃଣା କରିବା—2. To hate. ୩ । ଘୃଣା ଦୃଷ୍ଟିରେ ଦେଖିବା—3. To look down upon with হেযজ্ঞানকরা हेयज्ञानकरना contempt.

ହେୟା—ପ୍ରାଦେ (ଗଡ଼ଜାତ) ସର୍ବନାମ—୧ । ଏହା, ଏହିଟା; ଏହିଟା; Heyā ଏହାହିଁ—1. This. ୨ । ତାହା; ସେହିଟା; ସେହିଟା; 2. That.
ସଂ. ଣ. ସ୍ତ୍ରୀ—ହେୟର ସ୍ତ୍ରୀଲିଙ୍ଗ—Feminine of Heya.

ହେୟାର୍—ବୈଦେ. ବି (ଇଂ)—କେଶ; ବାଳ—
Heyār হেযার हेयार Hair.
[ଦ୍ର—ଏହି ଶବ୍ଦ ଅନ୍ୟ ଇଂରାଜୀ ଶବ୍ଦ ସଙ୍ଗେ ମଧ୍ୟ ଯୁକ୍ତ ହୋଇ ବ୍ୟବହୃତ ହୁଏ । ଯଥା—ହେୟାର୍ ଅଏଲ୍; ହେୟାର୍-ଡ୍ରେସ୍ ଇତ୍ୟାଦି]

ହେୟାର୍ ଅୟେ(ଏ)ଲ୍—ବୈଦେ. ବି (ଇଂ)—କେଶରେ ଲଗାଇବାପାଇଁ Heyār aye(e)l ବ୍ୟବହୃତ ସୁବାସିତ ତେଲ—Hair oil. হেযারঅযেল हेयारअयेल

ହେୟାର୍ କଟର୍ (କ୍ଲିପର)—ବୈଦେ. ବି (ଇଂ)—(ଘୋଡ଼ା ଅବଳ) Heyār kaṭar(kliper) ବାଳ କାଟିବା ଯନ୍ତ୍ର— হেযারকটর हेयारकटर Hair clipper; hair cutter.

ହେୟାର୍ କିଲ(ଲା)ର୍—ବୈଦେ. ବି (ଇଂ)—କେଶ ବା ଲୋମ ନାଶକ Heyār kila(lā)r ଔଷଧ—Hair killer. হেযারকিলার हेयारकिलर

ହେୟାର୍‌କ୍ଲଥ୍—ବୈଦେ. ବ (ଇଂ)—ଘୋଡ଼ା ଅବଳ ବାଳରେ
Heyār klath ବୁଣା ଲୁଗା—Hair cloth.
हेयाव क्लथ हेयार क्लथ

ହେୟାର୍ ଡାଇ—ବୈଦେ. ବ (ଇଂ)—ଧଳାବାଳକୁ ରଙ୍ଗାଇବା ଦ୍ରବ୍ୟ;
Heyār dāi ମୁଣ୍ଡର କଲପ—Hair die.
हेयावडाई हेयारडाई

ହେୟାର୍ ପିନ୍—ବୈଦେ. ବ (ଇଂ)—ସ୍ତ୍ରୀଲୋକମାନଙ୍କ ଖୋସାରେ
Hayār pin ବା ବେଣୀରେ ମରାଯିବା କଣ୍ଟା—Hair pin.
हेयावपीन हेयारपीन

ହେୟାର୍ ବ୍ରୁ(ବ୍ର)ଶ୍—ବୈଦେ. ବ (ଇଂ)—ମୁଣ୍ଡ କୁଣ୍ଡାଇବାର ବ୍ରୁରୁଶ—
Heyār bru(bra)s Hair brush.
(ହେୟାର ବ୍ରୁରୁଶ—ଅନ୍ୟରୂପ)
हेयावब्रस हेयारब्रस

ହେୟାର୍ ସାହେବ—ବୈଦେ. ବ (ଇଂ)—ଭାରତବାସୀମାନଙ୍କୁ ଇଂରାଜି
Heyār sāheb ଶିକ୍ଷା ଦେବାର ପ୍ରଧାନ ଉଦ୍ୟୋଗୀ ଓ କଲିକତା
हेयावसाहेव ହିନ୍ଦୁ ବା ହେୟାର୍ ସ୍କୁଲର ସ୍ଥାପୟିତା, 'ଡାଭିଡ୍
हेयारसाहेब ହେୟାର୍' ନାମକ ଜଣେ ସ୍କଟ୍‌ଲଣ୍ଡ୍‌ବାସୀ ସ୍ୱର୍ଗତ ସାହେବ
—The late David Hare, the founder of the Calcutta Hare school.

[ଦ୍ର—ଏ ଖ୍ରୀ: ୧୭୭୫ ରେ ସ୍କଟ୍‌ଲଣ୍ଡ୍‌ରେ ଜନ୍ମଗ୍ରହଣ କରି ୧୮୧୨ରେ କଲିକତାରେ ପ୍ରାଣତ୍ୟାଗ କରିଥିଲେ । ଏ ୧୮୦୦ ଖ୍ରୀଷ୍ଟାବ୍ଦରେ ବିଲାତରୁ ଆସି କଲିକତାରେ ଘଣ୍ଟା ମରାମତି ବ୍ୟବସାୟ କରୁଥିଲେ । ଏ ୧୮୧୭ ସାଲରେ ରାଜା ରାମମୋହନ ରାୟ, ରାଜା ରାଧାକାନ୍ତ ଦେବ ଓ କଲିକତା ହାଇକୋର୍ଟର ପ୍ରଧାନ ବିଚାରପତି ସର୍ ଏଡ୍‌ୱାର୍ଡ୍ ହାଇଡ୍ ଇଷ୍ଟଙ୍କ ସହାୟତାରେ ଇଂରାଜି ଉଚ୍ଚଶିକ୍ଷା ପାଇଁ କଲିକତାରେ ହିନ୍ଦୁସ୍କୁଲ୍ ପ୍ରତିଷ୍ଠା କଲେ ଓ ପାଠ୍ୟପୁସ୍ତକ ପ୍ରକାଶାର୍ଥ ସ୍କୁଲ୍‌ବୁକ୍ ସୋସାଇଟି ନାମକ ଗୋଟିଏ ସଭା ସ୍ଥାପନ କଲେ । ସେ ଉକ୍ତ ସ୍କୁଲରେ ଶିକ୍ଷକତା କରୁଥିଲେ ଓ ଛାତ୍ରମାନଙ୍କୁ ପୁତ୍ରପରି ସ୍ନେହ ଓ ଆଦର କରୁଥିଲେ । ଏହାପରେ ସେ କଲିକତା ଛୋଟ ଅଦାଲତରେ ଜଜ୍ ନିଯୁକ୍ତ ହେଲେ । ସେ ବସୂଚିକା ରୋଗରେ କଲିକତାରେ ପ୍ରାଣତ୍ୟାଗ କଲେ । ତାଙ୍କର ମର୍ମର ପ୍ରସ୍ତର ମୂର୍ତ୍ତି ପ୍ରେସିଡେନ୍‌ସି କଲେଜ୍ ଓ ହେୟାର୍ ସ୍କୁଲର ମଧ୍ୟବର୍ତ୍ତୀ ସ୍ଥାନରେ ସ୍ଥାପିତ ହୋଇଅଛି । ହିନ୍ଦୁ ସ୍କୁଲକୁ ତାଙ୍କର ସ୍ମରଣାର୍ଥ ହେୟାର୍‌ସ୍କୁଲ୍ ନାମ ଦିଆଗଲା; ଓ ଏ ଯେଉଁ ଗଳିରେ ବାସ କରୁଥିଲେ ସେ ଗଳିର ନାମ ହେୟାର୍ ଷ୍ଟ୍ରିଟ୍ ଦିଆଗଲା । (ସୁବଳଚନ୍ଦ୍ର)]

ହେୟାର୍ ସ୍କୁଲ୍—ବୈଦେ. ବ (ଇଂ)—କଲିକତାର ହେୟାର ସାହେବ
Heyār skul ଅବଙ୍କ ପ୍ରତିଷ୍ଠିତ ଉଚ୍ଚ ଇଂରାଜୀ ବିଦ୍ୟାଳୟ—
हेयारस्कूल हेयारस्कूल Calcutta Hare school.
(ଦ୍ର—ଏହା ବର୍ତ୍ତମାନ ପ୍ରେସିଡେନ୍‌ସି କଲେଜ ସଲଗ୍ନ ହୋଇଅଛି)

ହେୟା(ୟାଁ)ଲି—ଦେ. ବି—୧ । ଗୁପ୍ତ ବିଷୟ (ଗୋପୀନାଥ ନନ୍ଦ)—
Heyā(yān) li 1. Secret. ୨ । (ବଙ୍ଗଳା ହେୟାଁଲି ସଂ. ପ୍ରହେଳିକା) ନାଅଁ ଦଅ; ପ୍ରହେଳିକା—2. Riddle; conondrum. ୩ । ପହଳି—3. Ironical riddle.
हेयाँलि पहलि

ହେୟ୍କ୍ଲୋ—ପ୍ରାଦେ. (ଗଡ଼ଜାତ) ଅ—ବସିଠି (ଦେଖ)—
Heyclo Baithi (Sec)

ହେୟୋ—ବୈଦେ. ଅ (ଇଂ)—ଲୋକଙ୍କୁ ସାବଧାନ କରାଇବା,
Heyo ଧମକାଇବା ଓ ଗାଡି ଚଳାଇବାରେ ବ୍ୟବହୃତ ଧ୍ୱନି—
हेयो हेयो (Interjection) Heigh Ho!

ହେର୍ (ଧାତୁ)—ସ.—ବୃଦ୍ଧି କରାଇବା—
Her (root) To cause increase.

ହେର୍‌କାଣ୍ଡିଆ—ପ୍ରାଦେ. (ଗଡ଼ଜାତ) ବିଣ—୧ । ଗଡ଼ନ୍ତି ଓ ଉଠାଣିଆ
Her-kāndiā (ସ୍ଥାନ)—1. Undulating. ୨ । ଉଚ୍ଚାନୀଚିଆ; ଉଚାନିଚ; ଅସମତଳ (ସ୍ଥାନ)—2. Rugged; rough (place). ୩ । ଯେଉଁ ସ୍ଥାନରେ ବହୁବାର ଉଠିବାକୁ ଓ ଖସିବାକୁ ହୁଏ—3. A locality in which there
हेटेट्यांवा आवरखावर are many ups and downs.

ହେର୍‌ଟେରିଆ—ପ୍ରାଦେ. (ଗଡ଼ଜାତ) ବି—ଅସ୍ପଷ୍ଟ (ବାକ୍ୟ)—
Her teriā Indistinct (speech).

ହେର୍‌ନା—ପ୍ରାଦେ. (ଖଡ଼ଅଳ) ବି—ହରିଣ—
Her-nā Stag; deer.

ହେର୍‌ଫେର୍—ଦେ. ବି—୧। ଯା ଆସ—1. Coming and going.
Her-fer ୨ । ଏଣେ ତେଣେ ବୁଲିବା—2. Roving. ୩ । ଇତସ୍ତତଃ ଯାଆସ କରିବା; ଟହଲ—3. Walking to and fro; sauntering. ୪ । ନେଇଥିବା ଦ୍ରବ୍ୟାଦିକୁ ଫେରାଇ ଦେବା—4. Returning of things taken. ୫ । ଅଦଳ ବଦଳ, ପରିବର୍ତ୍ତନ; ବଦଳ—5. Change; exchange. [ଦ୍ର—ହେର୍‌ଫେର୍‌ରେ ଏକସ୍ଥାନରୁ ଗୋଟିଏ ବସ୍ତୁକେଇ ଅନ୍ୟ ସ୍ଥାନରେ ରଖାଯାଏ ଓ ଶେଷୋକ୍ତ ସ୍ଥାନରେ ଥିବା ବସ୍ତୁକୁ ଆଣି ପ୍ରଥମ ସ୍ଥାନରେ ରଖାଯାଏ । ଯଥା—ଗାଡ଼ିର ଘୋଡ଼ା ଦୁହିଙ୍କୁ, ଶଗଡ଼ର ବା ହଳର ବଳଦ ଦୁହିଙ୍କୁ ଏହିପରି ହେର୍‌ଫେର୍ କରାଯାଏ) ୬ । ମନର ପରିବର୍ତ୍ତନ; ମାନସିକ ଅବସ୍ଥାର ପରିବର୍ତ୍ତନ—6. Change of mental condition. ୭ । ଜିନିଷର ଅଦଳ ବଦଳ—7. Exchange or barter of things. ବିଣ—୧ । ଅଦଳ ବଦଳ କରାଯାଇଥିବା—1. Exchanged. ୨ । ପରିବର୍ତ୍ତିତ—2. Changed. ୩ । ଗତାଗତ—3. Coming and going. ୪ । ପରିଭ୍ରମଣ କରୁଥିବା 4. Walking; sauntering.

ହେର୍‌ଫେର୍ କରିବା—ଦେ. କ୍ରି—୧ । ଅଦଳ ବଦଳ କରିବା—
Her-pher karibā 1. To exchange.
हेरफेर करा हेरफेर करना ୨ । ପରିବର୍ତ୍ତନ କରିବା; ବଦଳାଇବା—2. To change.

ହେର୍‌ଫେର୍ ହେବା—ଦେ. କ୍ରି—୧ । ଇତସ୍ତତଃ ଟହଲିବା—
Her-pher hebā 1. To walk or saunter.

ହେରଫେର ହଓୟା ୨ । ବ୍ୟାୟାମାର୍ଥ ଦେହ ଚାଳନା କରିବା—
हेरफेर होना, हेरना फेरना 2. To move one's limbs for exercise.

ହେର(ରେ)ସା – ଦେ. ବିଣ. ମୂ—(ଯେ ହେରେସାରୁ;ଯେ ହେରେସାରବ କରେ)—
Her(re)sā ୧ । ଯେ ହେରେସାରବ କରେ; ହରହସା—
(ହେରସାମୀ—ସ୍ତ୍ରୀ) 1. Given to loud laughing.
ସେହସା हँ हँ करनेवाला ୨ । ହେରେରେସା;
ନିର୍ଲଜ୍ଜ—2. Shameless.
(ହେରସାପଣ, ହେର୍‌ସାପଣିଅଁ, ହେର୍‌ସାଗିରି—ବି)

ହେରା—ସଂ ବି—(ହି ଧାତୁ+କର୍ମ ର )—୧ । ଆସୁରୀ ମାୟା ( ଶବ୍ଦ-
Hera କଳ୍ପଦ୍ରୁମ)—1. Demonaic illusion.
୨ । ହଳଦୀ; ହଳଦୀ ( ଶବ୍ଦ କଳ୍ପଦ୍ରୁମ )—
2. Turmeric. ୩ । ମୁକୁଟଭେଦ (ଶବ୍ଦକଳ୍ପଦ୍ରୁମ)—
3. A sort of crown. ଦେ. (ପ୍ରାଚୀନ ପ୍ରୟୋଗ)
କ୍ରି (ହେରିବା କ୍ରିୟାର ଅନୁଜ୍ଞାରୂପ) (ତୁମ୍ଭେ) ଦେଖ—
(Imperative mood) (you) See.

ହେରକ—ସଂ ବି—ଶିବଙ୍କ ଗଣ ବିଶେଷ ( ହି. ଶ )—
Heraka Name of a class of attendants of Śiba.

ହେରଣ(ଣା)—ଦେ. ବି ( ପ୍ରାଚୀନ ପ୍ରୟୋଗ, ସଂ. ଦୃଶ୍; ପ୍ରା. ହେର
Heraṇa(ṇā) ଧାତୁ)—୧ । ଦର୍ଶନ—1. Sight.
ହେରଣ दर्शन, हेरना ୨ । ଦେଖିବା—
2. Seeing

ହେରମ୍ବ—ସଂ ବି (ସଂ ହେ=ଶିବ, ରୁଦ୍ର—ଏହି ଶବ୍ଦର ୭ମୀ ଏକବଚନ
Heramba ହେ=ରୁଦ୍ରଙ୍କ ନିକଟରେ+ରଭ୍‌ ବା
ରମ୍ବ ଧାତୁ=ଶବ୍ଦ କରିବା, ରହିବା+କର୍ତ୍ତୃ ଅ; ଅଥବା
ହେର୍‌ ଧାତୁ=( ସୁଖ ) ବୃଦ୍ଧି କରାଇବା+ସଂଜ୍ଞାର୍ଥେ
ଅମ୍ବ)—୧ । ଗଣେଶ; ବିନାୟକ ( ଅମର )—
1. The 'elephant-headed son of Śiba.
[ଦ୍ର—'ଓଁ ଗଂ' ଏହାଙ୍କ ବୀଜମନ୍ତ୍ର ।] ୨ । ମହିଷ;
ମଇଁଷି ( ମେଦିନୀ)—2. Buffalo. ୩ । ବୌଦ୍ଧ
ବିଶେଷ (ହିକାଣ୍ଡଶେଷ)—3. Name of a class of
Buddhist saints. [ ଦ୍ର—୩ୟ ଅର୍ଥରେ ଏ
ଶବ୍ଦର ଅନ୍ୟ ପର୍ଯ୍ୟାୟ ହେରୁକ, ଚକ୍ର ସମ୍ବର,
ଦେବ, ବଜ୍ରକପାଳୀ, ଭଶୁମୀ, ଶଶିଶେଖର, ବଜ୍ରଟଙ୍କ
(ହିକାଣ୍ଡଶେଷ) ]

ହେରମ୍ବ ଜନନୀ—ସଂ ବି ସ୍ତ୍ରୀ (୬ଷ୍ଠୀ ତତ୍)—ଦୁର୍ଗା (ଶବ୍ଦରତ୍ନାବଳୀ)—
Heramba jananī Goddess Durgā.

ହେରମ୍ବନାଥ—ସଂ ବି—୧ । ଗଣେଶ; ହେରମ୍ବ; ଗଜପତି—
Herambanātha 1. God Ganeśa.
୨ । ଶିବଲିଙ୍ଗ ବିଶେଷ—2. Name of an image of Śiba. ଦେ. ବି.ପୁଂ—ଲୋକଙ୍କ
ନାମ—A name given to males.

ହେରମ୍ବ ହଟ୍ଟ –ସଂ ବି (ନାମ)—ଭାରତର ଦକ୍ଷିଣପ୍ରଦେଶସ୍ଥ ଦେଶବିଶେଷ
Heramba haṭṭa ( ଶବ୍ଦରତ୍ନାବଳୀ )—
Name of a country in South India.

ହେରା—ଦେ. ବି (ପ୍ରା. ହେର୍ ଧାତୁ; ସଂ ଦୃଶ୍ ଧାତୁ=ଦେଖିବା)—
Herā ୧ । ଦର୍ଶନ, ଦେଖା—1. Seeing;
ହେରା दर्शन,(हि)हेरना sight. ୨ । ହେରା
ପଞ୍ଚମୀ ( ଦେଖ )—2. Herā pañchami (See)
ଛାନ୍ଦେ (ସମ୍ବଲପୁର; ଗଡ଼ଜାତ) ସର୍ବନାମ—ଏମାନଙ୍କ—
These.

ହେରାଇବା—ଦେ, କ୍ରି (ପ୍ରାଚୀନ ପ୍ରୟୋଗ ଓ ପଦ୍ୟ)—୧ । ହେରିବା
Herāibā କ୍ରିୟାର ଣିଜନ୍ତ ରୂପ—1 The
ଦେଖାନ दिखाना causative form of
Heribā. ୨ । ଦେଖାଇବା—2. To show
( ଦ୍ର—କାଶୀଦାସ ଭୂଞ୍ଚ କାହିଁଲା ଯେସେ, ଯୌବନ
ହେରାଇ ତାହାକୁ ବାସେ—ପ୍ରାଚୀ ରହାସ୍ୟମଞ୍ଜରୀ ।]

ହେରାଗୋହିରି ସାଇ(ହି)—ଦେ. ବି—ପୁରୀ ସହରର ଗୋଟିଏ ସାହି
Herāgohiri sāi(hi) ବା ଗଳି—One of the
lanes of the Puri town. [ ଦ୍ର—ଅନୁବାଦ
ଲକ୍ଷ୍ମୀଙ୍କ ପ୍ରତିମାକୁ ହେରା ପଞ୍ଚମୀ ଦିନ ଏହି ଗୋହିରି
ବା ଗଳି ବାଟେ ଗୁଣ୍ଡିଚା ମନ୍ଦିରରେ ଅବସ୍ଥିତ ଜଗନ୍ନାଥଙ୍କୁ
ଦେଖିବାକୁ ନିଆ ଯାଉଥିବାରୁ ଏହିପରି ନାମ
ହୋଇଅଛି । ]

ହେରା ପଞ୍ଚମୀ (ଯାତ୍ରା) —ଦେ. ବି (ହେରିବା=ଚାହିଁବା, ଦେଖିବା)—
Herā pañchamī ( jātrā ) ଆଷାଢ଼ ଶୁକ୍ଳ
ପଞ୍ଚମୀ ବା ଷଷ୍ଠୀ ଦିନ ପୁରୀ ଜଗନ୍ନାଥଙ୍କ ଯାତ୍ରାବିଶେଷ—
One of the festivals of Lord Jagannātha
held in Puri on the 5th or the 6th day of
the bright lunar fortnight of Ashāṛdha.
(ଦ୍ର—ଏ ଦିନ ରଥରେ ଗୁଣ୍ଡିଚା ମନ୍ଦିରକୁ ଯାଇଥିବା
ଜଗନ୍ନାଥଙ୍କୁ ବଡ଼ଦେଉଳରୁ ଲକ୍ଷ୍ମୀ ହେରିବାକୁ
(ଦେଖିବାକୁ) ଯାଆନ୍ତି ବୋଲି ଏହି ନାମ ହୋଇଅଛି ।
ଜଗନ୍ନାଥ ତାଙ୍କ ବଡ଼ଭାଇ ବଳଭଦ୍ର ଓ ଭଉଣୀ ସୁଭଦ୍ରାଙ୍କୁ
ସେନି ଉଦ୍ୟାନ ବିହାର କରିବାକୁ ଯାଇଥିବାରୁ ଓ
ଲକ୍ଷ୍ମୀଙ୍କୁ ସଙ୍ଗରେ ନେଇ ନ ଥିବାରୁ ରଥଯାତ୍ରାର
ପଞ୍ଚମ ଦିନ ଲକ୍ଷ୍ମୀ ଜଗନ୍ନାଥଙ୍କୁ ଦେଖିବାକୁ ଲୁଚିକରି
ଗୁଣ୍ଡିଚା ଘରକୁ ଯାଆନ୍ତି ଓ ଲକ୍ଷ୍ମୀଙ୍କ ମନରେ ଜଗନ୍ନାଥଙ୍କ
ଉପରେ ଅଭିମାନ ଓ ରାଗ ଥିବାରୁ ଗୁଣ୍ଡିଚାଘରପାଖେ
ରଖା ଯାଇଥିବା ଜଗନ୍ନାଥଙ୍କ ନନ୍ଦିଘୋଷ ରଥରୁ ଖଣ୍ଡେ
କାଠ ଭାଙ୍ଗିଦେଇ ଆସନ୍ତି । ଜଗନ୍ନାଥ ଲକ୍ଷ୍ମୀଙ୍କୁ କୌଣସି
ପ୍ରକାରେ ସାନ୍ତ୍ୱନା ଦେଇ ଓ ବୁଝାସୁଝା କରି ଶୀଘ୍ର ଫେରି
ଆସିବେ ବୋଲି ଜବାବ ଦେଇ ବାହୁଡ଼ାଇ ଦିଅନ୍ତି । ଏ
ବିଜେଗୁଣ୍ଡିଚା ମଣ୍ଡପରେ ଜଗନ୍ନାଥ ଓ ମହାଲକ୍ଷ୍ମୀଙ୍କର
କଳିଆପଣା ଦେଖିଲେ ବିଶେଷ ପୁଣ୍ୟଲାଭ ହୁଏ ।)

ହେରିଆ ଖେଳିବା—ଦେ. କ୍ରି—( ଜାହାଜଅ ଭଷା )—
Heriā khelibā ସମୁଦ୍ରଅଡ଼ୁ ବହୁଥିବା ପବନକୁ ଅଡ଼େଇ ଦେବାପାଇଁ କୌଶଳ କ୍ରମେ ଠଙ୍ଗା ହେବା ପାଇଁ ସାହାଯ୍ୟରେ ପବନ ପେଲିଁଥିଡ଼ୁ ବହୁଥିବା ସେହି ଅଡ଼କୁ (ଜାହାଜ) ସର୍ପାକାରରେ ଗତି କରିବା—(nautical) (a ship)To take a zigzag course by manoeuvring with the sails against the wind. [ଉ—ଲକ୍ଷାଦ୍ୱୀପ ଅପମଣ୍ଡରେ ଯାଉଥିବା ଶତ ଶତ ଜାହାଜ ସମୁଦ୍ର ମଧ୍ୟରେ ହେରିଆ ଖେଳୁଥିଲେ ! ଫକୀରମୋହନ ଗଳ୍ପସ୍ୱଳ୍ପ ।]

ହେରିଆ ବସିବା—ଦେ. କ୍ରି (ଜାହାଜଅ ଭଷା)—(ଜାହାଜ) ଯେକୌଣସି
Heriā basibā ଦିଗକୁ ବଙ୍କାଭାବରେ ଗତି କରିବା—( nautical ) (a ship) To move tortuously towards any direction. [ଉ—ଆମ କାଳକା ପ୍ରସାଦ ବାଟ ବଦଳ ପୂର୍ବ ହେରିଆ ବସିଲା ।]

ହେରିଆ ମାରିବା—ଦେ. କ୍ରି—(ଜାହାଜଅ ଭଷା)ଜାହାଜର ଅଗ ପାଖର
Heria māribā ପାଲକୁ ଦଉଡ଼ିଦ୍ୱାରା ଟାଣିକରି ବାନ୍ଧିବା—
हेरियाना (nautical) To tie the front sail of a ship
हेरिया मारना tightly with ropes.

ହେରିକ—ସଂ. ବି—୧ । ଚର; ଦୂତ [ହେମଚନ୍ଦ୍ର]—1. Messenger.
Herika emissary. ୨ । ଭେଦ ବୁଝିବା ପାଇଁ ନିଯୁକ୍ତ ଚର; ଗୁପ୍ତଚର [ହ୍ର. ଶ]—2. Spy; informer.

ହେରିକା—ଗ୍ରା. ଅ ( ଅନ୍ୟ ବିଶେଷ୍ୟ ପରେ ବ୍ୟବହୃତ ହୁଏ )—ପ୍ରଭୃତି;
Herikā ଇତ୍ୟାଦି—And others; et cetera.
प्रभृति [—ସେଠାରେ ସୁଗ୍ରୀବ ହନୁମାନ୍ ହେରିକାଙ୍କୁ ଦେଖି
आदि କହିଲ, 'ମୁଁ ରାବଣର ଭାଇ ବିଭୀଷଣ'—ମାଳକଣ୍. ପିଲଙ୍କ ରାମାୟଣ ।]

ହେରିଙ୍ଗ୍—ବୈଦେ. ବି ( ଇଂ. ହେରିଙ୍ଗ୍ )—ଯୋଉଳା ବା ଏଣ୍ଡୁଳା
Hering ମାଛ ପରି ଏକପ୍ରକାର ସୁଖାଦ୍ୟ କ୍ଷୁଦ୍ର ସାମୁଦ୍ରିକ
हेरिङ् ଶଲ୍କୀ ମତ୍ସ୍ୟ—Herring; a kind of sea-
हेरिंग fish; Clapea Harengus.
[ଦ୍ର—ଏମାନେ ଲମ୍ବରେ ୧ ଫୁଟ୍ ପର୍ଯ୍ୟନ୍ତ ବଢ଼ନ୍ତି ଓ ସମୁଦ୍ରରେ ଦଳ ଦଳ ହୋଇ ବିଚରଣ କରନ୍ତି । ଗୋଟିଏ ଗୋଟିଏ ଝାଙ୍କରେ ଲକ୍ଷ ଲକ୍ଷ ମାଛ ଥାଆନ୍ତି । ଏମାନେ ଇଉରୋପର ଓ ଆମେରିକାର ଆଟ୍ଲାଣ୍ଟିକ୍ ମହାସାଗର ଉପକୂଳରେ ଦେଖା ଯାଆନ୍ତି ଓ ଏହାଙ୍କୁ ମାଛ ଲୁଣ ଦେଇ ଶୁଖୁଆ କରି ବୋତଲରେ ଓ ଟିଣରେ ମୁଦ କରି ସାହେବମାନେ ବିଦେଶକୁ ଖାଦ୍ୟ ପାଇଁ ରପ୍ତାନି କରନ୍ତି । ଏମାନଙ୍କର ଦେହରେ ଗୋଟିଏ ମାତ୍ର ସମାନ୍ତରାଳ ଶାଖାଯୁକ୍ତ ମେରୁହାଡ଼ କଣ୍ଟା ଥାଏ ।]

ହେରିଙ୍ଗୁ—ବୈଦେ (ଇଂ) ପ୍ରାଦେ (ଗଞ୍ଜାମ) ବି—ମକଦମାର ଶୁଣାଣି—
Heringu The hearing of a case before a court.

ହେରିବା—ଦେ. କ୍ରି (ପ୍ରାଚୀନ ଓ ପଦ୍ୟରେ ବ୍ୟବହୃତ)—(ସଂ. ଦୃଶ୍ ଧାତୁ;
Heribā ପ୍ରା. ହେରୁ ଧାତୁ)—୧ । ଦେଖିବା—1. To see.
हेरना हेरना [ଉ—ଠିକଣା ଆଡ଼କୁ ଠାରେ ଠାରେ ନେନ ହେରି ଏ ଚନ୍ଦ୍ରମା ବାଟ । ରାଧାନାଥ· ପାର୍ବତୀ ।] ୨ । ଚାହିଁବା—
2. To look at. [ଉ—ତାହାଙ୍କର ଅଶ୍ରୁଫୀ ପରାକ୍ରମ ହେରି । କୃଷ୍ଣସିଂହ. ମହାଭାରତ, ଅଦ ।]

ହେରୁକ—ସଂ. ବି—୧ । ବୁଦ୍ଧଭେଦ (ମେଦିନୀ); ବୋଧିସତ୍ତ୍ୱ ବିଶେଷ—
Heruka 1. Name of the Buddha in one of his previous existence. ୨ । ମହାକାଳ ଶିବଙ୍କ ଗଣ ବିଶେଷ ( ମେଦିନୀ )—2. A class of Mahākāla Śiba's attendants. ୩ । ଶିବଙ୍କର ବିଶେଷ ( କାଳିକାପୁରାଣ )—3. Name of an image of Śiba. ୪ । ଗଣେଶ (କାଳିକାପୁରାଣ)—4. God Gaṇeśa.

ହେରୁଛେ ପ୍ରାଦେ (ବଲାଙ୍ଗିର ପାଟଣା) କ୍ରି—(ସେ) ଦେଖୁଅଛି—
Herucbhe. (He) Is seeing.

ହେରେଚା—ଦେ ବିଣ ପୁଂ—ହେର୍ସା (ଦେଖ)—
Here-ā Her-sa (See).
(ହେରେଚୀ—ସ୍ତ୍ରୀ)
(ହେରେଚାପଣ, ହେରେଚା ପଣିଆ, ହେରେଚାଗିରି—ବି)

ହେରେସେଇବା—ଦେ. କ୍ରି—ହେଁ ହେଁ ହୋଇ ନିର୍ଲଜ୍ଜ ଭାବରେ
He eseibā ହସିବା; ହେଁ ହେଁ ଫେଁ ଫେଁ ହେବା—
(ହେରେସେଇ ହେବା—ଅନ୍ୟରୂପ) To laugh loudly in a
हिहिकरे हासा shameless manner.
हें हें फेंफें होना

ହେର୍ଣା(ର୍ଣ୍ଣା)—ପ୍ରାଦେ (ବଲାଙ୍ଗିର ପାଟଣା) ବି—ହରିଣ—
Hernā (rnnā) Deer.

ହେର୍ଷାମି—ଗ୍ରା. ବି—(ବଙ୍ଗଳାରୁ 'ପଣ' ସ୍ଥାନରେ 'ମି'ର ବ୍ୟବହାର
Hershāmi ଅନୁକୃତ)—ନିର୍ଲଜ୍ଜ—Shamelessness.
বেহায়াপনা निलजपन

ହେଲ୍ (ଧାତୁ)—ସଂ,—୧ । ଅବଜ୍ଞା କରିବା—1. To disregard;
Hel (root) to slight. ୨। ଘୃଣା କରିବା—2. To hate.
୩ । କେଳି କରିବା—3. To disport.

ହେଲ୍ଥ୍ (ଇତ୍ୟାଦି)—ବୈ ଦେ. ବି—ହେଲ୍ଥ ଇତ୍ୟାଦି (ଦେଖ)—
Hel.th (etc) Helth etc (See).

ହେଲ୍ ପେଟେଇବା—ପ୍ରାଦେ (ସିଂହଭୂମି) କ୍ରି—ଠେଲିଦେବା—
Hel-peṭeibā To push.

ହେଲ୍ହା—ପ୍ରାଦେ (ସମ୍ବଲପୁର) ବି—ହେଲା; ଅସାବଧାନତା—
Hel-hā Carelessness; negligence.

ହେଲ—ଗ୍ରା. ବି (ସଂ. ହେଲା)—ହେଲା (ଦେଖ)—Helā (See)
Hela [ଦ୍ର—ବ୍ରାହ୍ମଣ ବୋଇଲେ ମୋ ଭାଗ୍ୟର ବଳରେ, ତୁମ୍ଭର
हेल ସଙ୍ଗ ଅସି ହେଲ ମୋ ହେଳରେ । କୃଷ୍ଣସିଂହ ମହାଭାରତ ବନ ।]

ହେଲ୍—ଦେ. କ୍ରି—ହେବା କ୍ରିୟାର ବର୍ତ୍ତମାନ ସମୀପ ଭୂତକାଳ
Hela ମଧ୍ୟମ ପୁରୁଷ ଏକବଚନ ଆଦରାର୍ଥକ (ତୁମ୍ଭେ) ଓ ବହୁବଚନ
ହଇଲେ (ତୁମ୍ଭେମାନେ) କର୍ତ୍ତାସଙ୍ଗେ ବ୍ୟବହୃତ—(you) Have
हुए been.

ହେଲଇଁ—ଗ୍ରା· କ୍ରି—(ମୁଁ) ହେଲି—
Helaiñ (I) Have been.

ହେଲଉଁ—ପ୍ରାଦେ (କଟକ) ବି—୧। ହେବା ଯୋଗୁଁ; ହେବାହେତୁ—
Helauñ 1. Because of; having been. (ଯଥା - ମୁଁ ସଙ୍ଗ।
ହଓଯାତେ ଥାନ୍ତି ହେଲଉଁ ତୁ ମୋ ଆଗେ କଳ କରୁଛୁ) ୨। ହେବା
होनेसे ପରେ—2. After having been. (ଯଥା—ମୁଁ ସୁସ୍ଥ
ହେଲଉଁ ତୁ ଯିବୁ)

ହେଲଉଁ ହେଲା—ଦେ· ବି—( ସଂ ହେଳା )—୧ । ଢିଲାଢିଲି;
Helauñ helā କାର୍ଯ୍ୟରେ ଶଇଥିଲ୍ୟ କରିବା—1. Slackness
ହେଲମ୍ ହିଲମ୍ } ଅନ୍ୟରୂପ in work ୨ । ଅତ୍ୟନ୍ତ
ହେଲମ୍ ଡିଲ } ଅବହେଳା—2. Much disre-
अवहेला gard or neglect. ୩ । ଦୀର୍ଘସୂତ୍ରତା—3.
ढ़िलापन, हेला Dilatoriness ୪ । ଅତ୍ୟନ୍ତ ହେଳା—4.
হেলাগোছা Much negligence. ବିଣ—୧ । ଦୀର୍ଘସୂତ୍ରୀ—
ढ़िला 1. Dilatory. ୨। କାର୍ଯ୍ୟରେ ଶୈଥିଲ୍ୟ—2. Negligent.

ହେଲକେ—ପ୍ରାଦେ (ପାଟଣା)ଅ—(ମାଲ ଅଞ୍ଚଳ ବ୍ୟବହୃତ)—ନିକଟରେ
Helake —Near by.

ହେଲଣ(ଣା)—ଦେ. ବି—(ସଂ ହେଳନ)—୧ । ଘୃଣା—1. Hatred.
Helaṇa(ṇā) ୨ । ଅବଜ୍ଞା—2. Disregard.

ହେଲଣି(ନି)—ଦେ.କ୍ରି (ତୁମ୍ଭେ, ତୁମ୍ଭେମାନେ)—ହେବା କ୍ରିୟା ସମ୍ପନ୍ନ କର
Helaṇi (ni) ସାରିଲଣି—(Expressing the comple-
ହଇଲେ tion of the verb expressed by the verb
to be) (you) Have been
हुए [ଏକ ବଚନ (ତୁମ୍ଭେ) ଓ ବହୁବଚନ (ତୁମ୍ଭେମାନେ) ହେଲ] ।

ହେଲନ(ନା)—ସଂ. ବି (ହେଲ ଧାତୁ+ଭାବ ଅନ; +ଆ) ୧। ଅବଜ୍ଞା
Helana(nā) କରିବା—1. Slighting; disregarding. ୨।
କ୍ରୀଡ଼ା କରିବା; କେଳି କରିବା (ହି. ଶ)—2. Sporting.
୩। ଅବମାନନା—3. Insulting (Apte). ୪ । କେଳି
—4. Wanton dalliance (Apte) ୫ । ଘୃଣା—
5. Contempt (Apte) ୬। ଅବହେଳା (କ୍ଲୀବେନ୍ଦ୍ର)
6. Neglect; negligence.

ହେଲ ମେଲ—ଦେ. ବି—୧। ମିଳାମିଶା—1. Mixing in society.
Hela mela sociability. ୨ । ଘନିଷ୍ଠତା—2.
মেলামেশা Intimacy· ୩ । ସଙ୍ଗ; ସାହଚର୍ଯ୍ୟ—3. Compa-
मेलजोल nionship.

ହେଲମେଲ ହେବା—ପ୍ରାଦେ (କଟକ) କ୍ରି—କୌଣସି ବ୍ୟକ୍ତିଙ୍କ ସହିତ
Hela mela hebā ସମ୍ପର୍କ ସ୍ଥାପନ ପାଇଁ ମିଳାମିଶା କରିବା
—To establish intimacy with a person.

ହେଲୟା—ସଂ. କ୍ରି. ବିଣ ( ହେଲା ଶବ୍ଦର ତୃତୀୟା ବିଭକ୍ତି ଏକ)—୧ ।
Helayā ଅବଲୀଳାକ୍ରମେ—1. Easily. ୨ । ଖେଳରେ ଖେଳରେ—
2. In sport.

ହେଲ(ଲା)ରେ—ଦେ କ୍ରି. ବିଣ—ଅକ୍ଳେଶରେ; ସହଜରେ—Easily;
Hela (lā)re without trouble. [ଉ—ମନୋରଥଙ୍କୁ ସିଦ୍ଧ
(ହେଲେ—ଅନ୍ୟରୂପ) କର ବ ହେଲରେ—କୃଷ୍ଣସିଂହ ମହାଭାରତ]
হেলায় बिना परिश्रम से

ହେଲା—ସ. ବି— (ହେଲ୍ ଧାତୁ=ଘୃଣା କରିବା+ଭାବ. ଅ+ଆ)—
Helā ୧ । ଅବଜ୍ଞା (ମେଦିନୀ)—1. Disregard; slight.
୨ । ଦୀର୍ଘସୂତ୍ରତା—2. Tardiness; dilatoriness.
୩ । ଅବଲୀଳା—3. Ease; facility. ୪ । କାର୍ଯ୍ୟ
କରିବାରେ ଅଶ୍ରଦ୍ଧା; କାର୍ଯ୍ୟରେ ଶୈଥିଲ୍ୟ—4. Negligence.
୫ । ଅଯତ୍ନ; ଅନବଧାନତା—5. Neglect; want of
care. ୬। ଅବହେଳା—6. Negligence. ୭। ଖେଳ;
କ୍ରୀଡ଼ା (ହି. ଶ)—7. Play; sport; pastime. ୮ ।
କେଳି; କାମକ୍ରୀଡ଼ା ( ହି ଶ )—8. Dalliance. ୯ ।
ଶୃଙ୍ଗାରସୂଚିକା ଲୀଳା; ସ୍ତ୍ରୀମାନଙ୍କର ଶୃଙ୍ଗାର ଭାବଜ କ୍ରିୟା-
ବିଶେଷ (ଅମର); ସୁରତରେ ପ୍ରୌଢ଼େଚ୍ଛା ପ୍ରକାଶ—
9. Giving vent to a strong hankering
after cohabitation on the part of
young females. ୧୦ । ସ୍ତ୍ରୀମାନଙ୍କର ଶୃଙ୍ଗାର
ସୂଚକ ଭାବ ବା ଅଙ୍ଗଭଙ୍ଗୀ ବା ଚେଷ୍ଟା—
10. Postures and gestures expressed by
the limbs on the part of amorous women,
courting cohabitation. [ ଉ—ସ୍ତ୍ରୀମାନଙ୍କର
ସୁରତେଚ୍ଛାକୁ ମନରେ 'ଭାବ' ଉଦିତ ହୁଏ; ଭାବରୁ 'ହାବ'
ଜାତ ହୁଏ; ହାବରୁ 'ହେଲା' ପ୍ରକାଶିତ ହୁଏ (ଭରତ)] ।
୧୧ । ଅତି କାମାତୁର ନାରୀମାନଙ୍କର ସୁରତୋତ୍ସବପାଇଁ
ପ୍ରୌଢ଼େଚ୍ଛା—12. Strong sexual desire of
amorous women (Apte). ୧୨ । ଚନ୍ଦ୍ରିକା;
ଜ୍ୟୋତ୍ସ୍ନା—12. Moonlight (Apte). ୧୩ ।
ସଙ୍ଗୀତର ସ୍ୱରରେ ବା କମ୍ପନରେ ସ୍ତମ୍ଭନ—13. Pause
in a note or shaking (Apte). ୧୪ । ଅପମାନ
—14. Insult (Apte). ୧୫। ଅସମ୍ମାନ—15. Disrespect (Apte). ୧୬ । ଘୃଣା—16. Contempt
(Apte). ଦେ. ବି—ବିଳମ୍ବ—Delay. [ଉ—ଟେ।
হেলা देरी ବାନ୍ଧ ଡମା ମାଲା ପଡ଼ି କଲ ଗଲ, ମଣ୍ଡାଏ କରୁଅଛ ଏଥି
କପା ହେଲା—କୃଷ୍ଣସିଂହ ମହାଭାରତ ବନ ]

ହେଲ୍ଲ—ପ୍ରାଦେ ( ଗଡ଼ଜାତ ) ବି—ହେଳା —Neglect; delay;
Helā negligence. ବିଣ (ପୁଂ)—ଅଳସୁଆ—Idle. ଦେ· କ୍ରି
(ହେଲେଇ—ସ୍ତ୍ରୀ. ବିଣ) —ହେବା କ୍ରିୟାର ବର୍ତ୍ତମାନସମୀପ
ଅତୀତକାଳ ତୃତୀୟ ପୁରୁଷ, ଅନାଦରାର୍ଥକ ଏକ ବଚନରେ
(ସେ କର୍ତ୍ତା ସଙ୍ଗେ) ବ୍ୟବହୃତ ଆକାର; (ସେ ବା ତାହା)

ଘଟିଲା—(He or it) Happened. ଦେ. ଅ—(ପ୍ରଶ୍ନାର୍ଥକ) ଏହା ତୁମର ମନୋମତ ହେଲାକି ?—
ହ'ଲ ହୁଆ Do you agree ? Are you agreed ?

ହେଲାଇବା—ପ୍ରାଦେ (ସମ୍ବଲପୁର) କ୍ରି—ଅନ୍ୟର ଅନିଷ୍ଟ କରିବାପାଇଁ
Helāibā ପରୋକ୍ଷରେ ପ୍ରବର୍ତ୍ତାଇବା—To incite another to injure a person, behind his back.

ହେଲାଇଁ—ଦେ. କ୍ରି (ଅସ୍ମ, ଅସ୍ମେମାନେ)—ହେଲୁଁ ( ଦେଖ )
Helāiñ Heluñ ( See )

ହେଲା(ଲେ)ଇବା—ଦେ. କ୍ରି—୧। ଶ୍ଳଥ କରିବା –1. To slacken.
Helā(le)ibā ୨। କାର୍ଯ୍ୟରେ ତ୍ରୁଟି ବା ହେଳା କରିବା—
ହେলা কৰা 2. To neglect in doing work.
कमी करना

ହେଳା କରିବା—ଦେ. କ୍ରି—୧। କାର୍ଯ୍ୟରେ ତ୍ରୁଟି କରିବା—
Helā karibā 1. To neglect a work. ୨। କାମରେ
হেলা করা ଶଇଥିଲ୍ୟ କରିବା—2. To slacken one's
हेलना ardour or vigour in a work.
୩। ଶ୍ଳଥ କରିବା; ଢିଲାଇବା—3. To slacken.
୪। ବିଳମ୍ବ କରିବା—4. To delay. ୫। ଅବଜ୍ଞା କରିବା—5. To disregard. ୬। ଧ୍ୟାନ ନ ଦେବା; ଘରେଇ ନ କରିବା—6. Not to mind.

ହେଳା ଦସ୍ତି—ଦେ· ବି ( ସଂ. ହେଳା ଓ ଫା. ଦସ୍ତି=ପ୍ରଣାଳୀ )—
Helā dasti ୧। ଦୀର୍ଘସୂତ୍ରିତା—1. Tardiness; dila-
হেলাদস্তি torines. ୨। ଅବହେଳା; ହେଳା—
ढिलापन 2. Negligence. ବିଣ—ହେଳାଦସ୍ତିଆ ( ଦେଖ )
Helādastiā (See)

ହେଳା ଦସ୍ତିଆ—ଦେ. ବିଣ—୧। ଦୀର୍ଘସୂତ୍ରୀ—1. Tardy; dil-
Helā dastiā atory. ୨। ଯେ କାର୍ଯ୍ୟରେ ଡିଲ କରେ—
হেলাদস্তিয়া, আলসে 2. Negligent; neglectful.
ढिला ୩। ଦୀର୍ଘସୂତ୍ରିତାଯୁକ୍ତ ( କାର୍ଯ୍ୟ )—3. Dilatory (work).

ହେଳାପେଳା—ପ୍ରାଦେ (ଗଡ଼ଜାତ) କ୍ରି. ବିଣ—ଯଥାତଥା; ଯେ କୌଣସି
Helāpelā ପ୍ରକାରେ—Anyhow. [ଉ—ବୁଢ଼ୀ ବେଲକେ କାଢ ପଇଁତା, ହେଲାପେଲା କରି ଦିନ ଯାଏତା—ଭୂଗ ।]

ହେଳା ବୁକ୍କ—ସଂ. ବି—ଅଶ୍ୱ ବିକ୍ରୟୀ (ବ୍ୟାପାରୀ)—Horse seller;
Helā bukka a horse dealer (Apte).

ହେଳା ବୁଦ୍ଧି—ଦେ. ବି—ଅବଜ୍ଞା—Disregard. [ଉ—ତାହା
Helā buddhi ଠାରେ ଲୋକେ ଯେ ହେଳା ବୁଦ୍ଧି କରୁ ।
হেলা বুদ্ধি अवहेलना बुद्धि କୃଷ୍ଣସିଂହ. ମହାଭାରତ ବନ ।]

ହେଲା ବୋଲି ଜାଣିବା—ଦେ. କ୍ରି—(କୌଣସି ବିଷୟ) ଅତି ଶୀଘ୍ର
Helā boli jāṇibā ଘଟିବ ବୋଲି ଜ୍ଞାତ ହେବା—To know that a thing is about to happen.
[ଉ—କଦ୍ରୁଷ ମାରିବାକୁ ଯାଗ ମୁଁ କରୁଛି, ଏ କଥା ହେଲା ବୋଲି ଜାଣ କମଳାପତି । କୃଷ୍ଣସିଂହ. ମହାଭାରତ ବନ ।]

ହେଳା ମାତ୍ରକେ(ମାତ୍ରେ)—ଦେ. କ୍ରି. ବିଣ—ଅକ୍ଳେଶରେ; ଅବଲୀଳା
Helā mātrake(mātre) କ୍ରମେ—Easily. [ଉ—ତଂପ
ହେଲାକ୍ରମେ } —ଅନ୍ୟରୂପ ଅବଧେ ଯେ ଦୈତ୍ୟବଂଶ, ହେଳା
ହେଲାରେ ମାତ୍ରକେ କଲେ ନାଶ—ପ୍ରାଚୀ
অবহেলে बिना परिश्रमसे ନୃସିଂହପୁ ଚନ୍ଦ୍ରୋଦୟ ।]

ହେଲି – ସଂ. ବି ( ହିଲ୍ ଧାତୁ=କଟାକ୍ଷଭଙ୍ଗୀ କରିବା + କର୍ତ୍ତ୍ରି ଇ )—୧
Heli ହେଳା ( ଭାବ ) (ଦେଖ)—1. Helā ( See ). ୨। ହେଳି ( ଦେଖ )—2. Heḷi (See).

ହେଲି—ଦେ. କ୍ରି—ହେବା କ୍ରିୟାର ବର୍ତ୍ତମାନକାଳ ସମୀପ ଅତୀତ ୧ମ ପୁରୁଷ
Heli ଅନାଦରାର୍ଥକ ୧ ବଚନରେ ( ମୁଁ କର୍ତ୍ତା ସଙ୍ଗେ )—
হইলাম हुआ (I) Have been.
ବୈଦେ. ବି ( ଇଂ )—
ଅଧୁନାତନ ଆବିଷ୍କୃତ ଧୂମକେତୁର ନାମ—Hailey's
হেলি हैलि comet.

ହେଳିକାସ୍ତ—ସଂ. ବି (ଜ୍ୟୋତିଷ ପରିଭାଷା)—ସୂର୍ଯ୍ୟର ଅତି ନିକଟରେ
Heḷikāsta ଥିବାରୁ ସୂର୍ଯ୍ୟର ତେଜ ଦ୍ୱାରା ଘୋଡ଼ାଇ ହୋଇ ଯାଇଥିବା ତାରାର ଅସ୍ତମିତା ଅବସ୍ଥା—( astronomy ) Heliacal setting of a star.

ହେଳିକୋଦୟ—ସଂ ବି ( ଜ୍ୟୋତିଷ ପରିଭାଷା )—ସୂର୍ଯ୍ୟଙ୍କ ସଂକ୍ରମଣ
Heḷikodaya କରିବା ଯୋଗୁଁ କେତେକ ସମୟ ଅଦୃଶ୍ୟ ହେବା ପରେ ସୂର୍ଯ୍ୟୋଦୟ ପୂର୍ବରୁ କୌଣସି ତାରାର ଉଦୟ ହେବାବେଳେ ଦେଖାଯିବା ଅବସ୍ଥା—( astronomy ) Heliacal rising of a star

ହେଲିଣି—ଦେ· କ୍ରି—ହେଲି (ଦେଖ)—
Heliṇi Heli (See).

ହେଳିବା—ଦେ. କ୍ରି—୧। ହେଳା କରିବା ( ଦେଖ )—
Heḷibā 1. Helā karibā ( See )
୨। ଅବଜ୍ଞା କରିବା—2. To disregard· (ଉ—ପ୍ରବୋଧୁଁ ପ୍ରବୋଧୁଁ ପ୍ରବୋଧ ହେଳଣ ବସ୍ତ୍ରାଞ୍ଚଳ କାଳ ଚେଳ—ନନ୍ଦକିଶୋର ଶର୍ମା ।)

ହେଲି ସେଲସ୍—ବୈଦେ. ବି (ନାମ)—ଅବସିନିଆର ରାଜ୍ୟଚ୍ୟୁତ
Heli selis ସମ୍ରାଟ—Name of the defeated king
হেলিসেলিস हेलिसलिस of Abyssinia who left his kingdom in 1937 being unable to continue fight with Italy. [ ଉ—୧୯୩୬ ଖ୍ରୀଷ୍ଟାବ୍ଦରେ ଏହାଙ୍କ ସହିତ ଇଟାଲୀର ଘୋର ଯୁଦ୍ଧ ହୋଇଥିଲା । ସେହି ଯୁଦ୍ଧରେ ଏ ପରାଜିତ ହୋଇ ଅବସିନିଆ ଛାଡ଼ି ପଳାଇ ଯାଇଥିଲେ ।]

ହେଳି—ସଂ ବି (ହେଡ଼୍ ଧାତୁ + କର୍ତ୍ତ୍ରି. ଇ; ହିଲ୍ ଧାତୁ + କର୍ତ୍ତ୍ରି. ଇନ୍;
Heḷi ଧମା. ୧ବ)—୧। ସୂର୍ଯ୍ୟ (ବିକାଣ୍ଡଶେଷ)—1. The sun.
୨। (+ ଭାବ.ଇ) ଆଲିଙ୍ଗନ (ଶବ୍ଦକଳ୍ପଦ୍ରୁମ)—2. Em-

brace. ୩ । ହେଳ—3. Amorous dalliance (Apte).

ହେଳୁ—ଦେ. ବଣ [ ସଂ ହେଳା ]—୧ । ଶିଥିଳୀକୃତ—
Helu 1. Slackened ୨ । ହେଳାଦସ୍ତିଆ [ଦେଖ]—
ଆଲସେ ଢ଼ିଲା 2. Helādastiā (See)
ଟିମାପନା ढिलापन ବ—୧ । କାର୍ଯ୍ୟଗତିର ଧୀରତା—1.
Slowness of the progress of a work.
୨ । ହେଳା (ଦେଖ)—2. Helā (See). ୩। କାର୍ଯ୍ୟର ଶିଥିଳତା—3. Slackness or slowness of work.

ହେଳୁ—ଦେ. କ୍ରି—ହେବା କ୍ରିୟାର ବର୍ତ୍ତମାନସମୀପ ଭୂତକାଳ ମଧ୍ୟମପୁରୁଷ
Helu ଅନାଦରାର୍ଥ ଏକ ବଚନ (ତୁ)—(Thou)
ହইলি हुआ H-st been.

ହେଲୁଁ—ଦେ. କ୍ରି—ହେବା କ୍ରିୟାର ବର୍ତ୍ତମାନସମୀପ ଅତୀତକାଳ ୧ମ
Heluñ ପୁରୁଷ ଆଦରାର୍ଥକ (ଅମ୍ଭେ) ଓ ବହୁବଚନ (ଅମ୍ଭେମାନେ)
হলাম, হলুম हुये [I or we] Have been.

ହେଳୁଆ—ଦେ. ବଣ ପୁଂ—ହେଳାଦସ୍ତିଆ (ଦେଖ)—
Heluā Helādastiā (See)
(ହେଳେଇ—ସ୍ତ୍ରୀ)

ହେଲୁନି—ଦେ. କ୍ରି—୧ । ହେଲୁ (ଦେଖ)—1. Helu (See). ୨ ।
Heluni ହେଲୁଁ (ଦେଖ)—2. Heluñ (See).

ହେଳେ—ଦେ. କ୍ରି ବଣ—୧ (ସଂ. ହେଳୟା) ଅକ୍ଳେଶରେ; ସହଜରେ;
Hele ଅବଲୀଳା କ୍ରମେ—1. Easily; with very little difficulty. [ଉ—ବାଳକ ବଧ କଲ ହେଳେ, ବଳ ବାନ୍ଧିଲ ସିନ୍ଧୁ ଜଳେ—ବଳରାମ ଦାସ—କମଳଲୋଚନ ଚଉତିଶା] ୨। ଟିକଏ ମାତ୍ର, ଟିକଏ ସୁଦ୍ଧା—2. Slightly. [ଉ—ରସିଲେ ସେ ତୋ ପଦ ଚନ୍ଦ୍ରକ ତୁଳାଇଲେ, ଗୃହଁ ଦେଲୁ ନାହିଁ ହେଳେ—କବିସୂର୍ଯ୍ୟ ସଙ୍ଗୀତ] ୩। ସାମାନ୍ୟ ଚେଷ୍ଟାରେ—3. With very little effort.
অবহেলে बिनापरिश्रमसे

ହେଲେ—ଦେ. କ୍ରି—୧ । ହେବା କ୍ରିୟାର ବର୍ତ୍ତମାନ ସମୀପ ଭୂତକାଳ
Hele ମଧ୍ୟମ ପୁରୁଷ ୧ ବଚନ ସମ୍ମାନାର୍ଥକ (ଆପଣ), ବହୁବଚନ
হইলে (ଆପଣମାନେ), ଅନ୍ୟ ପୁରୁଷ ୧ବଚନ ସମ୍ମାନାର୍ଥକ (ସେ) ଓ
हुए ବହୁବଚନ (ସେମାନେ)—1. [You; ye; he; they]
হওয়ায় Have been. ୨ । (ଅସମାପିକା କ୍ରିୟା) (କ) ହେବାରୁ 1. Being. (ଖ) ହେବା ଉତ୍ତାରୁ—ii. After
होने being. (ଗ) ଯଦି ହୁଅନ୍ତା—iii. If (it) would be. [ଯଥା—ଠିକ୍‌ଠାକଏ ହେଲେ ମୋ ଖରଚ ଚଳି ଯାଆନ୍ତା] ଅ—୧ । ସୁଦ୍ଧା—1. Even. [ଉ—ଦେବପର ମନ୍ତ୍ରୀ ଦେଖିଲେ ପାର୍ଥ ପନ୍ତ୍; ତେବେ ହେଲେ ଅଧର ଦାନ୍ତ ଥିଲେ ରଙ୍ଗ—କୃଷ୍ଣସିଂହ ମହାଭାରତ ବନ] ୨ । ମଧ୍ୟ—
হলেও 2. Also. [ଉ—ଖଳଜନ ବାଣୀ ସତ୍ୟ ପର ମଣି; ନ ଗୃହିଁଲେ ହେଲେ ମୋତେ—କବିସୂର୍ଯ୍ୟ. ସଙ୍ଗୀତ]
होनेभी ୩ । ଯଦ୍ୟପି—3. Notwithstanding. [ଉ—ନିବେଦନ କରୁଛୁ, କରକଞ୍ଜ ଧରୁଛୁ, ହେଲେ ହେଉ ଅରୁଚ ଚିତ୍ତ ଭାବରେ—କବିସୂର୍ଯ୍ୟ, କନ୍ଦୋଷବର୍ମ୍ମ ନ ଗୀତ] ୪ । କିନ୍ତୁ; ମାତ୍ର—4. But. [ଉ—ହେଲେ 'ମୁଁ' ଓ 'ଏମାନଙ୍କ ପର ଅପାଠୁଆ କିପରି ହୋଇଛି?—ଫକୀର ମୋହନ ଛମାଣ ଆଠଗୁଣ୍ଠ] ପ୍ରାଦେ (ଯାଜପୁର) ଅ—ଥରେମାତ୍ର—
Once only. (ଯଥା—ମୁ ବାଲଭ୍ରୁ ଏ ବର୍ଷ ହଳ ହେଲେ ନେଇଛୁ

ହେଲେଇଁ—ଦେ. କ୍ରି—ହେବା କ୍ରିୟାର ବର୍ତ୍ତମାନସମୀପ ଭୂତକାଳ
Heleiñ ୧ମ ପୁରୁଷ ଆଦରାର୍ଥକ ଏକବଚନ (ଅମ୍ଭେ) ଓ ବହୁ ବଚନ (ଅମ୍ଭେମାନେ)—(I and we) Have been.
হইলাম हुये

ହେଲେଇ ଗେଲେ(ଲ୍ହେ,ହ୍ଲେ)ଇ—ପ୍ରାଦେ. (ପାଟଣା) ବଣ—ଗେଲବସର
Heli gele(lhe, hle)i —Fondled.

ହେଲେଣି—ଦେ. କ୍ରି—ହେଲେ (ଦେଖ)—
Heleṇi Hele (See).

ହେଲେହେଁ—ଦେ. ଅ—ହେଲେ ସୁଦ୍ଧା; ହୋଇଥିଲେ ସୁଦ୍ଧା—
Heleheñ Even if it were
হইলেও होनेसभी

ହେଲେ ହେଲେ—ଦେ. ଅ—ହେଲେ ହେଲେ ସୁଦ୍ଧା—
Helehele Even if.
[ଉ—ହେଲେହେଲେ ସୂର୍ଯ୍ୟ ଦେବତା ହେ ଉଦୟ, ହେଉ ଘଡ଼ି ମଣିଲ ସବୁର ହୃଦୟ—କୃଷ୍ଣସିଂହ ମହାଭାରତ ଦ୍ରୋଣ]
হলেও होनेसभी

ହେଲୋ—ଦେ. ଅ—(ସ୍ତ୍ରୀ ମାନଙ୍କୁ ସମ୍ବୋଧନ) ହେ !
Helo (Interjection used in addressing females)
হ্যাঁলো हेए (ହେଲୋହେ—ଅନ୍ୟରୂପ) Oh !

ହେଲୋଦ—ପ୍ରାଦେ (ବଲାଙ୍ଗିର ପାଟଣା) ବ—ହଳଦୀ—
Heloda Turmeric

ହେଲ୍‌ଥ—ବୈଦେ ବ (ଇଂ)—ସ୍ୱାସ୍ଥ୍ୟ—
Helth Health.
হেল্‌থ हेल्थ

ହେଲ୍‌ଥ ଅଫିସର—ବୈଦେ. ବ (ଇଂ)—ନଗରର ବା ଜିଲ୍ଲାର ଲୋକଙ୍କ
Helth aphisar ସ୍ୱାସ୍ଥ୍ୟ ସମ୍ବନ୍ଧେ ଦୃଷ୍ଟି ରଖିବାପାଇଁ ନିଯୁକ୍ତ
হেল্‌থআফিসর हेल्थऑफीसर କର୍ମଚାରୀ—Health-officer.

ହେଲ୍‌ଥ ଡିପାର୍ଟମେଣ୍ଟ—ବୈଦେ. ବ (ଇଂ)—ପ୍ରଜାଙ୍କ ସ୍ୱାସ୍ଥ୍ୟ ସମ୍ବନ୍ଧେ
Helth dipārtment ତଦନ୍ତ କରିବା କାର୍ଯ୍ୟ ତତ୍ତ୍ୱାବଧାରଣ କରିବା ସରକାରୀ ବିଭାଗ—Health department
হেল্‌থডিপার্টমেন্ট हेल्थडिपार्टमेण्ट of the Government.

ହେଷ(ଧାତୁ)—ସଂ—୧ । (ଘୋଡ଼ା) ହ୍ରେଷାଧ୍ୱନି କରିବା—
Hesh (root) 1. To neigh (said of a horse).
୨ । (ଗଧ) ବୋବାଇବା—2. To bray (said of an ass).

ହେଷ(ଷା)—ସଂ ବ—(ହେଷ୍ ଧାତୁ + ଭାବ ଅ; + ଆ)—୧ । ହ୍ରେଷା;
Hesha(shā) ଘୋଡ଼ାଙ୍କ ହେଁହେଁ ରବ—1. Neighing

of a horse. ୨। ଗଧର ବୋବାଳ—2. Braying (of an ass) (Apte).

ହେଷିଣୀ—ସଂ. ବି. ସ୍ତ୍ରୀ—(ହେଷିନ୍ + ଈ)—ଘୋଡ଼ୀ—
Heshini A mare.

ହେଷୀ—ସଂ, ବି (ପୁଂ) (ହେଷା + ଇନ୍; ୯ମା ୧ବ)—ଅଶ୍ୱ ଘୋଡ଼ା—
Heshi A horse.

ହେଷ୍ଟିଙ୍ଗସ୍—ବୈଦେ, ବି (ଇଂ) (ନାମ)—୧। ୱାରେନ୍ ହେଷ୍ଟିଙ୍ଗସ୍; Heshtings ଭାରତର ପ୍ରଥମ ଗଭର୍ଣ୍ଣର୍ ଜେନେରଲ୍—Warren (ହେଷ୍ଟିଂସ୍—ଅଶୁଦ୍ଧରୂପ) Hastings; the first Governor General of India.

हेष्टिंग्स्  হেস্টোংস

[ବି—ଏ ଖ୍ରୀ: ୧୭୩୨ ରେ ଜନ୍ମ ଗ୍ରହଣ କରି ୧୮୧୮ ରେ ପ୍ରାଣତ୍ୟାଗ କରିଥିଲେ । ଏ ପ୍ରଥମେ ଇଷ୍ଟ ଇଣ୍ଡିଆ କୋମ୍ପାନୀଙ୍କ ଅଧୀନ କରାଣିଗିରି ଚାକିରି ପାଇ ୧୭୫୦ ଖ୍ରୀଷ୍ଟାବ୍ଦରେ ଭାରତକୁ ଆସିଥିଲେ ଓ କ୍ରମଶଃ ନିଜର ଅଧ୍ୟବସାୟ ଓ ବୁଦ୍ଧିବଳରେ କମ୍ପାନୀଙ୍କ ପକ୍ଷରୁ ୧୭୫୮ ଠାରୁ ୧୭୬୧ ପର୍ଯ୍ୟନ୍ତ ମୁରସିଦାବାଦ୍‌ର ନବାବଙ୍କ ନିକଟରେ ରେସିଡେଣ୍ଟ୍ ହୋଇ ରହିଲେ; ପରେ କଲିକତା କାଉନ୍‌ସିଲ୍‌ର ସଭ୍ୟ ହେଲେ । ୧୭୬୪ ସାଲରେ ଇଂଲଣ୍ଡକୁ ଫେରିଯିବା ବେଳକୁ ଏ ପ୍ରଚୁର ଅର୍ଥ ସଞ୍ଚୟ କରିଥିଲେ । ପୁଣି ୫ବର୍ଷ ପରେ କୋମ୍ପାନୀ ଏହାଙ୍କୁ ମାନ୍ଦ୍ରାଜ କାଉନ୍‌ସିଲ୍‌ର ସହକାରୀ ସଭାପତି ରୂପେ ୧୭୬୯ ସାଲରେ ଭାରତକୁ ପଠାଇଲେ । ୧୭୬୭ ସାଲରେ ଲର୍ଡ କ୍ଲାଇବ ଭାରତରୁ ବିଦାୟ ଗ୍ରହଣ କଲେ ଓ ହେଷ୍ଟିଙ୍ଗସ୍ ୧୭୭୨ ସାଲରେ କଲିକତା କାଉନସିଲ୍‌ର ସଭାପତି, ଅର୍ଥାତ୍ ବଙ୍ଗଳାର ଲାଟ ହେଲେ । ସେତେବେଳେ କମ୍ପାନୀଙ୍କର ପ୍ରାୟ ୬ କୋଟି ଟଙ୍କା ଋଣ ଥିଲା । ଏ ନିଜର ବୁଦ୍ଧିବଳରେ ବଙ୍ଗ ପ୍ରଦେଶରେ ସୁଶାସନର ଓ ସୁବିଚାରର ବ୍ୟବସ୍ଥା କରି ଦେଶର ତତ୍କାଳୀନ ଅରାଜକତା ନିବାରଣ କଲେ ଓ କ୍ଲାଇବଙ୍କ ଅର୍ଜିତ ରାଜ୍ୟର ସୀମା ବଢ଼ାଇ କମ୍ପାନୀଙ୍କ ରାଜ୍ୟରେ ଅଳ୍ପ ଶୁଦ୍ଧ ରାଜ୍ୟ ମିଶାଇଲେ । ଏ କାଶୀର ରାଜା ଓ ଅଯୋଧ୍ୟାର ନବାବଙ୍କଠାରୁ ବହୁ କୋଟି ଟଙ୍କା ଆଦାୟ କଲେ, ଓ ମରହଟ୍ଟା, ନିଜାମ ଓ ମହୀଶୂରର ନବାବଙ୍କ ସଙ୍ଗେ ସନ୍ଧି ସ୍ଥାପନ କଲେ । କିନ୍ତୁ କଲିକତା କାଉନସିଲ୍‌ର ଅନ୍ୟ ସଭ୍ୟମାନଙ୍କ ସଙ୍ଗେ ଏହାଙ୍କର ଅମେଳ ହେବାରୁ ଅନେକ ବିଭ୍ରାଟ ଘଟିଲା । ଏହାଙ୍କ ଅମଲରେ କମ୍ପାନୀଙ୍କର ପୁଣି ୩ କୋଟି ଟଙ୍କା ଋଣ ବଢ଼ିଲା । ଶେଷରେ ହେଷ୍ଟିଙ୍ଗସ୍ ୧୭୮୩ ସାଲରେ ଇସ୍ତଫା ଦେଇ ୧୭୮୫ ସାଲରେ ବିଲାତକୁ ଫେରିଗଲେ ଓ ସେଠାରେ ଏହାଙ୍କ ନାମରେ ପାର୍ଲିଅମେଣ୍ଟ୍ ମହାସଭାରେ ଏଡ଼ମଣ୍ଡ୍ ବର୍କ୍ ନାମକ ଜଣେ ସ୍ୱାଧୀନଚେତା ସଭ୍ୟ ଭାରତରେ ଗୁରୁତର ଓ ଜଘନ୍ୟ ଅପରାଧ ଓ ଅତ୍ୟାଚାର କରିଥିବା ଯୋଗୁଁ ଅଭିଯୋଗ ଆଣିଲେ । ଏ ମକଦ୍ଦମାର ବିଚାର ପାଇଁ ୧୭୮୮ ସାଲରୁ ୧୭୯୫ ସାଲ ପର୍ଯ୍ୟନ୍ତ ୭ ବର୍ଷ ଲାଗିଲା । ଭାରତରୁ ଅର୍ଜିତ ଧନ ଅଧିକାଂଶ ମକଦ୍ଦମାରେ ବ୍ୟୟ କରି ହେଷ୍ଟିଙ୍ଗସ୍ ବହୁ ଦୁଃଖ ଭୋଗ କରି ଅଭିଯୋଗରୁ ମୁକ୍ତିଲାଭ କଲେ । କୋମ୍ପାନୀଙ୍କ ପ୍ରଦତ୍ତ ପେନ୍‌ସନ୍ ଭୋଗକରି ଏ ୧୮୧୮ ସାଲରେ ପରଲୋକଗମନ କଲେ । ] ୨ । ଲର୍ଡ୍ ହେଷ୍ଟିଙ୍ଗସ୍; ଭାରତର ଗଭର୍ଣ୍ଣର ଜେନେରଲ୍ ଲର୍ଡ୍ ମଇରାଙ୍କର ଉପାଧି—2. The title of Lord. Moira, a Governor General of India. [ବି—ଏ ଖ୍ରୀ: ୧୮୧୩ ରୁ ୧୮୨୩ ପର୍ଯ୍ୟନ୍ତ ଭାରତର ଗଭର୍ଣ୍ଣର୍ ଜେନେରଲ୍ ହୋଇଥିଲେ । ଏହାଙ୍କ ସମୟରେ ଭାରତରେ ପ୍ରାଥମିକ ଶିକ୍ଷା ବିସ୍ତାର, ନେପାଳ ଯୁଦ୍ଧ, ପିଣ୍ଡାରୀ ଯୁଦ୍ଧ ହୋଇଥିଲା । ଏହାଙ୍କ ଅମଳରେ ପ୍ରଥମ ବଙ୍ଗଳା ସମ୍ବାଦପତ୍ର ପ୍ରକାଶିତ ହୋଇଥିଲା । ] ୩ । ଇଂଲଣ୍ଡର ସସେକ୍‌ସ ନାମକ କାଉଣ୍ଟୀର ଗୋଟିଏ ବନ୍ଦର ଗ୍ରାମ ଓ ବନ୍ଦର—3. Name of a port town in the county of Sussex in England.

ହେସ୍‌ନେ—ପ୍ରାଦେ (ସମ୍ବଲପୁର) ସର୍ବନାମ—ସେମାନେ—
Hes-ne They.

ହେସୁ—ପ୍ରାଦେ (ସମ୍ବଲପୁର) ବି(ମାଟଜାତିଙ୍କ ବ୍ୟବହୃତ ଶବ୍ଦ)—ଧାନ—
Hesu Paddy.

ହେହେ—ସଂ ଅ—୧ । ହେ ର ଦ୍ୱିରୁକ୍ତି; କଥାରେ ଜୋର୍ ଦେବା Hehe ପାଇଁ ବା ଉଦ୍‌ବେଗ, ବିଷାଦ, ଲଜ୍ଜା ସ୍ଥଳରେ ହେ ସମ୍ବୋଧନର ଦୁଇ ଥର ପ୍ରୟୋଗ—1. A doublet of Oh; Oh ho ! Ho Ho ! ୨ । ହେ (ଦେଖ)—2. He (See)

ହେହୈ—ସଂ ଅ—ସମ୍ବୋଧନ; ଦୂତ ବା ଅହ୍ୱାନ (ମେଦିନୀ)—
He hai Exclamation used in addressing and calling. ଦେ. ଅ—ହେ ହୈଓ (ଦେଖ)—He haio (S. e)

ହେହୈଓ—ଦେ. ଅ—ଘୋଡ଼ାଗାଡ଼ି ଚଳାଇବା ସମୟରେ ଗାଡ଼ି-
He haio ଚାଳକମାନଙ୍କର ଅଶ୍ୱଚାଳନ ଧ୍ୱନି—
हहैओ  হৈহৈব  An exclamation of coachmen while driving horses.

ହୈ—ସଂ. ଅ (ସଂ ହ୍ୱେ ଧାତୁ=ଡାକିବା+ଭାବ ଡୌ)—୧ । ସମ୍ବୋଧନ
Hai (ମେଦିନୀ)—1. Interjection used in addressing. ୨ । ଅହ୍ୱାନ (ମେଦିନୀ)—2. Interjeetion used in calling. ୩ । ନିଷେଧ—3. Negation. ୪ । ପାଦ ପୂରଣ—4. At the end of a sentence. ୫ । ସତର୍କକରଣ 5. Warning. ଦେ. ଅ—୧ । ହଁ (ସମ୍ମତିସୂଚକ)—
हाँ  হাঁ  1. (Interjection used to express consent or agreement) Yes !

୨ । ଲକଟବର୍ତ୍ତୀ ଲୋକଙ୍କୁ ଡାକିବାକୁ ବା ତାଙ୍କ ଦୃଷ୍ଟି ଆକର୍ଷଣ ବା ପ୍ରଶ୍ନ କରିବାକୁ ଅନ୍ୟ ଧ୍ୱନି ପୂର୍ବେ ( ଯଥା— ଏ, କିହେ, ବେ, ରେ, ଲୋ, ହେ, ହୋ) ବ୍ୟବହୃତ— (ଯଥା— ହେଁଏ, ହେଁହେ, ହେଁକିହେ, ହେଁବେ, ହେଁରେ, ହେଁଲୋ, ହେଁହେ, ହେଁହୋ)—2. Used with another interjection to call a person near by or to draw his attention or to question something. ୩ । (ଗ୍ରାମ୍ୟ ଉଚ୍ଚାରଣ)— ବୁଲାବିକାମାନଙ୍କର ଡାକ—3. A halloo of hawkers.

ହେ, ଓହେ

ହୋଁ ହୋ

ହେଁଏ—ଦେ. ଅ—ମାନ୍ୟ ବ୍ୟକ୍ତି (ଯଥା—ପିତା ସ୍ୱାମୀ, ଶ୍ୱଶୁର, ଶାଶୁ, ଭଦ୍ରଲୋକ, ଅପରିଚିତ ଭଦ୍ରଲୋକ)ଙ୍କ ପ୍ରତି ସ୍ତ୍ରୀମାନଙ୍କଦ୍ୱାରା ବ୍ୟବହୃତ ସମ୍ବୋଧନସୂଚକ ଅବ୍ୟୟ—Interjection used to superiors by females.
Haie
ଓହେ, ହାଁହେ
ହୈଆଁ

ହେଁଓ—ଦେ. ଅ—ହେଁହୋ (ଦେଖ)— Haibo (See).
Haio

ହେଁ କିଏ(ହେ)—ଦେ. ଅ— ନିକଟବର୍ତ୍ତୀ ସମ୍ମାନାସ୍ପଦ ବ୍ୟକ୍ତିଙ୍କୁ ଡାକିବା, ଦୃଷ୍ଟି ଆକର୍ଷଣ କରିବା ଓ ପ୍ରଶ୍ନ କରିବା ଉଦ୍ଦେଶ୍ୟରେ ବ୍ୟବହୃତ—An interjection used by one in addressing, putting questions to or inviting attention of a superior who is near by.
Hai kie(he)
ଓହେ, ହାଁହେ
ଔ

ହେଁ କିବେ—ଦେ. ଅ—ଅବଜ୍ଞାର୍ଥକ ପ୍ରଶ୍ନସୂଚକ ସମ୍ବୋଧନ— Interjection used in asking an inferior in derision.
Hai kibe
ଓବେ, ହାଁବେ ଅବେ

ହେଁକିରେ—ଦେ. ଅ—ପୁରୁଷଙ୍କ ପ୍ରତି ପ୍ରଯୁକ୍ତ ଅନାଦରାର୍ଥକ ପ୍ରଶ୍ନସୂଚକ ସମ୍ବୋଧନ—An interjection used in asking one's male inferior.
Hai kire
(ହେଁକିଲୋ—ସ୍ତ୍ରୀଙ୍କ ପ୍ରତି)
ହାଁରେ ଅରେ

ହେଁକିହୋ—ଦେ. ଅ—ବହୁ ବ୍ୟକ୍ତିଙ୍କ ବା ସୁପରିଚିତ ଅନ୍ୟ ବ୍ୟକ୍ତିଙ୍କ ପ୍ରତି ସମ୍ବୋଧନ—Interjection used in addressing a number of people or one's own acquaintance.
Haikiho
ଓହେ, ହାହେ
ଓ

ହେଁଗୋ—ଦେ. ଅ—ସଖୀ ସମ୍ବୋଧନ—An interjection used by a lady to her female companion.
Haigo
ହାଁଗୋ, ଓଗୋ ହୈଗୋ

ହେଁଚେଁ—ଦେ. ବି—( ବଙ୍ଗଳାରୁ ଅନୁକୃତ )—୧ । ଗୋଳମାଳ; ଗୋଳମାଳ—1. Ado; noise. ୨ । ଧକ୍କାଧକ୍କି; ହାଉଯାଉ—2. Turmoil.
Haichai
ହୈଚୈ ହୋହଲ୍ଲା

ହେଁଜା—ବୈଦେ. ବି—(ଅ, ହେଁଜହ୍)—ହଇଜା ( ଦେଖ )— Haija (See). [ବି—ହଇଜା ରୋଗୀଙ୍କର ଝାଡ଼ା ଓ ବାନ୍ତିକୁ ନେଇ ପୋଖରୀରେ ପକାଇଲେ ଏବଂ ସେହି ପୋଖରୀର ପାଣି ଲୋକେ ପିଇଲେ ତାଙ୍କୁ ହଇଜା ଧରେ । ଅଧିକ ପରିମାଣରେ ଖାଇଲେ ପିଇଲେ ଅଜୀର୍ଣ୍ଣ ଝାଡ଼ା ହୁଏ । ସେହି ଅଜୀର୍ଣ୍ଣ ଝାଡ଼ା ହଇଜା ମଧ୍ୟ ପାଲଟି ଯାଏ । କୋମା ବାସିଲସ୍ (Comma Bacillus) ନାମକ ଏକ ଜୀବାଣୁ କୀଟାଣୁ କୌଣସି ପ୍ରକାରରେ ଅନ୍ତରେ ପ୍ରବେଶ କଲେ ହଇଜା ହୁଏ । ଘରେ କିମ୍ବା ଘର ନିକଟରେ ହଇଜା ରୋଗୀଙ୍କୁ ଦେଖି ଭୟ କଲେ ସେହି ଭୟରେ ମଧ୍ୟ ହଇଜା ଧରେ । ମଇଳା, ପଚା, କର୍ଦ୍ଦମ, ପାଇଖାନା ଓ ଖାଲରେ (ନର୍ଦ୍ଦମାରେ) ପାଣି ପଚା ଦୁର୍ଗନ୍ଧ ବାହାରି ଅନେକ ସମୟରେ ହଇଜା ହୁଏ । ଦୁଧରେ ଗଉଡ଼ମାନେ ପୋଖରୀର ମଇଳା ପାଣି ଅନେକ ସମୟରେ ମିଶାନ୍ତି, ଯଦି ସେହି ପାଣି କଡ଼ାକୁ ହୋଇଥାଏ, ସେହି ଦୁଧ ପିଇଲେ ହଇଜା ହୁଏ । ରୋଗି-ମନୁଷ୍ୟଙ୍କ ଦ୍ୱାରା ଏ ରୋଗ ବ୍ୟାପିବା ବ୍ୟତୀତ ଏହି ରୋଗ ମାଛିମାନଙ୍କ ଦ୍ୱାରା ମଧ୍ୟ ବ୍ୟାପିଯାଏ । ମାଛି ଦୂଷିତ ଖାଦ୍ୟରେ ଓ ରୋଗୀର ମଳମୂତ୍ରରେ ବସି ସେଠାରୁ ଉଡ଼ି ଆସି ଉକ୍ତ ଜୀବାଣୁକୁ ନେଇ ସୁସ୍ଥଲୋକମାନଙ୍କ ଖାଦ୍ୟକୁ ଦୂଷିତ କରନ୍ତି ।

ପ୍ରତିଷେଧକ ଉପାୟ—ନିର୍ମଳ ସ୍ଥାନରେ ବାସ କରିବା, ଅଳ୍ପ ପରିମାଣରେ ଲଘୁପାକ ଦ୍ରବ୍ୟ ଆହାର କରିବା, ପେଟ ଖାଲି ନ ରଖିବା, ପଚା ମାଛ ମାଂସ ନ ଖାଇବା ଉଚିତ । ହଇଜା ରୋଗୀଙ୍କର ବାନ୍ତି ଓ ମଳ ମିଶିଥିବା ପାଣି ବ୍ୟବହାର କରିବ ନାହିଁ । ଘର ମଧ୍ୟରେ କୌଣସି ସନ୍ତସନ୍ତିଆ ସ୍ଥାନ ଓ ଗୋବର ପଚା ଦୁର୍ଗନ୍ଧ ହୋଇଥିଲେ ସେଠାରେ କାଠ ଜଳାଇ ଚୂନ ଓ ଫିନାଇଲ୍-ମିଶା ପାଣି ପକାଇ ଘରେ ଓ ଘର ଚତୁଃପାର୍ଶ୍ୱେ ଗନ୍ଧକ ଓ କର୍ପୂର ଧୂଆଁ ଦେବା ଉଚିତ । ଶଣ୍ଡି ଏ ଗୃହରେ ଲମ୍ବ ଓ ଉଚ୍ଚତା । ଖାଣ୍ଡି କିମ୍ବା ପାଚିଆ ନାଉ ତଳେ ସବୁବେଳେ ରଖିବା ଉଚିତ । ଯୋତା ଓ ମୋଜା ମଧ୍ୟରେ ଗନ୍ଧକ ଚୂର୍ଣ୍ଣ ଛିଞ୍ଚି ବ୍ୟବହାର କରିବା ଉଚିତ । ହଇଜା ରୋଗୀଙ୍କର ଝାଡ଼ା ବାନ୍ତି ଓ ପରସ୍ରା ଦୂରକୁ ନେଇ ମାଟି ଭିତରେ ପୋତି ପକାଇବ । ଦୁଧ ଗରମ କରି ପିଇବ । ଖାଦ୍ୟ ପଦାର୍ଥରେ ମାଛି ନ ବସିବା ପାଇଁ ସର୍ବଦା ତାକୁ ଘୋଡ଼ାଇ ରଖିବା ଉଚିତ । ଗରମ ପାଣିରେ ଗାଧୋଇବ ଏବଂ ଗରମ ପାଣି ପିଇବ । ରୋଗୀଙ୍କ ସେବା କରୁଥିବା ଲୋକମାନଙ୍କର ଗରମ ପାଣିରେ ହାତ ଗୋଡ଼ ଧୋଇବା ଉଚିତ । ଛୋଟ ପିଲା ମାନଙ୍କୁ ସବୁବେଳେ ସାବଧାନତା ପୂର୍ବକ ରଖିବ । କଞ୍ଚା ବା ବେଶୀ ପଚିଯାଇଥିବା ଫଳ ଖାଇବ ନାହିଁ । ଏହି ନିୟମ ସବୁ ପାଳିଲେ ଏବଂ କୁପ୍ରମ୍ ମେଟାଲିକମ୍ (Cuprum metalicum) ୩୦ କିମ୍ବା ୨୦୦ଶକ୍ତି ସାତ ଦିନେ ଓ ପନ୍ଦର ଦିନେ ଥରେ ଲେଖାଏ ଖାଇଲେ ହଇ-ଜାର ଆକ୍ରମଣରୁ ରକ୍ଷା ମିଳେ । ହଇଜା ରୋଗୀଙ୍କୁ ଛୁଇଁ ଛୁଇଁ କଲେ ହଇଜା ହଏ ନାହିଁ । ଏହି ରୋଗ ଖୁବ୍

ବ୍ୟାପକ ହୋଇ ଏକ ସମୟରେ ଅନେକ ଲୋକ ଆକ୍ରାନ୍ତ ହୁଅନ୍ତି ।

ପ୍ରଧାନ ଲକ୍ଷଣ—

ହଇଜା ପ୍ରଥମରେ ଅଜୀର୍ଣ୍ଣ ତରଳ ଝାଡ଼ା ଆକାରରେ ପ୍ରକାଶ ହୁଏ । ତାହା ସହିତ ମୂଣ୍ଡ ସାମାନ୍ୟ ବୁଲେ ଓ ଦେହ ଝୁଲାଏ ।

ପରେ ସେହି ଅଜୀର୍ଣ୍ଣ ତରଳ ଝାଡ଼ା ଜଳୀୟ ଆକାର ଧାରଣ କରେ । ପ୍ରଥମ ଅବସ୍ଥାରେ ଝାଡ଼ାର ବର୍ଣ୍ଣ ଥାଏ; କିନ୍ତୁ ପରେ ସେହି ବର୍ଣ୍ଣ ଶୀଘ୍ର ଲୋପ ହୋଇ ଚାଉଳ ଧୁଆ ପାଣିପରି, ପେଜପରି କମ୍ବା ସଫା ପାଣିପରି ଝାଡ଼ା ହୁଏ । ଝାଡ଼ା ଅଧିକ ପରିମାଣରେ ହେଲେ ପେଟରେ କୌଣସି ପ୍ରକାର କଷ୍ଟ ହୁଏ ନାହିଁ; ନଗୁବା ପେଟରେ ଅତ୍ୟନ୍ତ କଷ୍ଟ ହୁଏ । କ୍ରମେ କ୍ରମେ ଅଧିକ ପରିମାଣରେ ଜଳୀୟ ପଦାର୍ଥ ବାନ୍ତି ହୁଏ । ଅତ୍ୟନ୍ତ ଶୋଷ ହୁଏ । ଶିର ପ୍ରଶିର ଝିମ୍ ଝିମ୍ ହୋଇ ଲୋଷ୍ଟକୋଷ୍ଟ ହୋଇଆସେ । ପରିସ୍ରା ବନ୍ଦ ହୋଇଯାଏ, ଦେହର ବର୍ଣ୍ଣ ନୀଳ ହୋଇ ଯାଏ । ହାତର ଓ ଗୋଡ଼ର ଅଙ୍ଗୁଠିମାନଙ୍କ ଚମଡ଼ା ଲୋଷ୍ଟକୋଷ୍ଟ ହୋଇଯାଏ । ଆଖି ଭିତରକୁ ପଶିଯାଏ, ନିଶ୍ୱାସ ପ୍ରଶ୍ୱାସ ଥଣ୍ଡା ଜଣାଯାଏ । ଥଣ୍ଡା ଝାଳ ବହେ । ସ୍ୱର ବସିଯାଏ । ରୋଗୀ ଅସ୍ପଷ୍ଟ ଅସ୍ପଷ୍ଟ କଥା କହେ । ନିଶ୍ୱାସ ମାରିବାକୁ କଷ୍ଟ ହୁଏ । କ୍ରମେ ନାଡ଼ୀ ଦୁର୍ବଳ ହୋଇ ଶେଷରେ ନାଡ଼ୀର ଗତି ବନ୍ଦ ହୋଇଯାଏ । ହିକ୍କା ଉଠେ, ପରିସ୍ରା ବନ୍ଦ ହୋଇ ରୋଗୀ ପ୍ରଳାପ କରେ । ହୃତ୍ପିଣ୍ଡର କାର୍ଯ୍ୟ ବନ୍ଦ ହୋଇଯାଏ । କରୁଣାରେ ପଡ଼ ପଡ଼ ପିଠିରେ ଓ ଠେଙ୍କୁରେ ଘାଆ (Bed so ହୋଇଯାଏ । କାନ ମୂଳରେ ଫୁଲା ହୁଏ; ଆଖିରେ ଘାଆ ହୁଏ । ରକ୍ତ ଜମିଯିବାର ସବୁ ପ୍ରକାର ଲକ୍ଷଣ ଦେଖାଯାଏ ।

ହଇଜା କେତେ ପ୍ରକାର ଓ ତାହାର ପ୍ରଭେଦ—

୧ । କଲେରା ଡାଇରିକ୍ (Diarrhoeaic variety)— ଅଧିକ ପରିମାଣରେ ଘନ ଘନ କେବଳ ଝାଡ଼ା ହୁଏ ।

୨ । କଲେରା ଗାଷ୍ଟ୍ରିକ୍ (Gastric variety)—ପାକସ୍ଥଳୀରେ ଉତ୍ତେଜନା ହୋଇ ଦେହ ବୁଲାଏ ଓ ଅନବରତ ଝାଡ଼ା ବାନ୍ତି ହୁଏ ।

୩ । କଲେରା ଗାଷ୍ଟ୍ରୋ—ଏଣ୍ଟେରିକ୍ (Gastro enteric variety)—ଝାଡ଼ା ଓ ବାନ୍ତି ସମାନ ଭାବରେ ଶୂଳ ବେଦନା ସହିତ ହୁଏ ।

୪ । କଲେରା ଶୁଷ୍କ—(Dry variety)—ଏହାର ଲକ୍ଷଣ- ସାଧାରଣ ହଇଜା ପରି ପ୍ରଥମେ ତରଳ ଅଜୀର୍ଣ୍ଣ ଝାଡ଼ାପରି ହୁଏ ନାହିଁ । ରୋଗ ଏକବାରେ ପ୍ରବଳ ଭାବରେ ପ୍ରକାଶ ହୁଏ । କେତେବେଳେ ଥରେ କା ଦୁଇଥର ଝାଡ଼ା ଓ ବାନ୍ତି ହୋଇ, ରୋଗୀ ୨।୩ ଘଣ୍ଟା ମଧ୍ୟରେ ମରିଯାଆନ୍ତି । ଏହାକୁ ଡ୍ରାଇ ବା ଶୁଷ୍କ କହନ୍ତି । କେହି କେହି ରୋଗୀ ଝାଡ଼ାବାନ୍ତି ନ ହୋଇ ଧମ ମରିଯାଆନ୍ତି । ଏପରି ହଇଜା ପ୍ରାୟ ଦେଖାଯାଏ ନାହିଁ ।

୫ । କଲେରା ଆକୁଟ୍ (Acute variety)—ରୋଗୀ ପ୍ରଥମେ ମନେ କରନ୍ତି, ସତେ ଯେପରି ତାଙ୍କର ଜ୍ଞାନ ନାହିଁ । ମୁଣ୍ଡ ଓ ଛାତି ଭାରି ଜଣାଯାଏ । ହାତଗୋଡ଼ ନିସ୍ତେଜ ଜଣାଯାଏ । ପେଟ ଦୁ ଦୁ ଓ ଗଡ଼ଗଡ଼ ହେବା ଆରମ୍ଭ ହୁଏ । ବାନ୍ତି ହୁଏ; ଝାଡ଼ା ବାନ୍ତି ଆରମ୍ଭ ହୁଏ । ଝାଡ଼ା ପିତ୍ତ ମିଶା ଓ ପାଣିପରି ପତଳା ହୁଏ । ଧୀରେ ଧୀରେ ପରିସ୍ରା ବନ୍ଦ ହୁଏ ଓ ନାଡ଼ି ଦୁର୍ବଳ ହୋଇଯାଏ; ଆଖି ପଶିଯାଏ; ଗଲା ବସିଯାଏ; ମୁହଁ ଶୁଖିଯାଏ; ଦେହ ନୀଳବର୍ଣ୍ଣ ଦେଖାଯାଏ; ପ୍ରଚୁର ପରିମାଣରେ ଝାଳ ବହେ ।

୬ । କଲେରା ହିମୋରାଜିକ୍ (Haemorrhagiec variety) ରକ୍ତସ୍ରାବପ୍ରଦ ହଇଜା—ଏହି ହଇଜାରେ କେବେ କେବେ ପ୍ରଥମରେ ଝାଡ଼ା ସହିତ ରକ୍ତ ଥାଏ । କେବେ କେବେ ପ୍ରଥମରେ ହଇଜା ପରି କେତେବାର ଝାଡ଼ା ବାନ୍ତି ହୋଇ ଶେଷରେ ଝାଡ଼ାରେ ରକ୍ତ ଦେଖାଯାଏ । ଝାଡ଼ାର କେତେକ ଫାଟଲ ଘୋଳା ତରଭୂଜର ପରି ରସ ଦେଖାଯାଏ । କେତେବେଳେ ବା ଗୋଲାପି ରଙ୍ଗର ଝାଡ଼ା ହୁଏ । ଝାଡ଼ା ଅଧିକ ପରିମାଣରେ ହୁଏ । ଝାଡ଼ାର ଅତ୍ୟନ୍ତ ଦୁର୍ଗନ୍ଧ ହୁଏ । କେତେବେଳେ ବା ବେଦନା ହୁଏ ନାହିଁ । ଏହି ଜାତୀୟ ହଇଜାରେ ବହୁ ରୋଗୀ ମୃତ୍ୟୁମୁଖରେ ପଡ଼ନ୍ତି । ଯେଉଁମାନେ ଗଞ୍ଜେଇ, ଚରସ୍ ଖାଆନ୍ତି ବା ଅଧିକ ମଦ ପିଅନ୍ତି ସେମାନଙ୍କୁ ଏହିପରି ହଇଜା ଅଧିକ ଆକ୍ରମଣ କରେ ।

୭ । କଲେରା ଇନଫ୍ଲାମେଟରି (Inflamatory variety)—ଏହିପରି ହଇଜାରେ ନାଡ଼ୀ ପୂର୍ଣ୍ଣ ଓ ଚଞ୍ଚଳ ଗତି କରେ, ଶରୀର ଗରମ ହୋଇ ଉଠେ, ଆଖି ଓ ମୁହଁ ନାଲିଆ ଦେଖାଯାଏ । ଉପରେ ହଇଜାର କେତୋଟି ପ୍ରକାର କୁହାଗଲେ ସୁଦ୍ଧା ସାଧାରଣତଃ ଡାକ୍ତରମାନେ ଏହାକୁ ଦୁଇ ଭାଗରେ ବିଭକ୍ତ କରନ୍ତି ।

୧ । କଲେରିନ୍ (Cholerine) ଓ

୨ । ଏସିଆଟିକ୍ କଲେରା (Asiatic cholera).

୧ । କଲେରିନ୍ (Cholerine)

ପ୍ରଥମରେ ଅମ୍ଳ ଓ ଅଜୀର୍ଣ୍ଣ ଯୋଗୁ ତରଳ ଝାଡ଼ା ହୋଇ ଶେଷରେ ଏହି ଜାତୀୟ ହଇଜା ଆରମ୍ଭ ହୁଏ । କୌଣସି ସ୍ଥାନରେ ହଇଜା ହୋଇଥିଲେ ସେଠାରୁ ଭୟ ପାଇ ଆସିବା ବ୍ୟକ୍ତିଙ୍କର ତରଳ ଝାଡ଼ା ହୋଇ ଶେଷରେ ଏହି ଜାତୀୟ ହଇଜାରେ ପରିଣତ ହୁଏ । ଏହି ହଇଜାରେ ପ୍ରଥମେ ସ୍ୱାଭାବିକ ଝାଡ଼ା ହୋଇ କ୍ରମେ ଝାଡ଼ା ପତଳା ହୁଏ । ୫।୬ଥର ଝାଡ଼ା ହେବା ପରେ ପ୍ରକୃତ ହଇଜାରେ ପରିଣତ ହୁଏ । ଅନେକ ସମୟରେ ଦେଖାଯାଏ ଯେ, ଦିନେ ଦୁଇଦିନ ପୂର୍ବରୁ ପେଟ ଖରାପ ହୋଇ ତରଳ ଝାଡ଼ା ହୋଇ ଶେଷରେ ରୋଗ ହଇଜାରେ ପରିଣତ ହୁଏ ।

ପରେ ଅଧିକ ପରିମାଣରେ ଝାଡ଼ାବାନ୍ତି ହୋଇ କେତେବେଳେ ଅଙ୍ଗ ଅବସନ୍ନ (Paralytic), କେତେବେଳେ ବା ଖେଲେଗ୍, କୋଗ୍ ବା ଶିରାମରି ବା ଆକ୍ଷେପିକ ବିକାର ଆଂଶିକ ଲକ୍ଷଣ ଦେଖାଯାଏ । ଏହି ଜାତୀୟ ହଇଜାରେ ପ୍ରଥମେ ପେଟରେ ଯନ୍ତ୍ରଣା ହୁଏ ନାହିଁ । ପରେ ରୋଗ ବୃଦ୍ଧି ହେଲେ ଯନ୍ତ୍ରଣା ହୁଏ । କାହାର କାହାର ଆରମ୍ଭଠାରୁ ଶେଷ ପର୍ଯ୍ୟନ୍ତ ଯନ୍ତ୍ରଣା ହୁଏ ନାହିଁ । ଅଧିକ ଝାଡ଼ା ବାନ୍ତି ହେଲେ ଶରୀର ଥଣ୍ଡା ଓ ଗାଲବସି ଦେଖାଯାଏ । ନାଡ଼ି ଦୁର୍ବଳ ହୁଏ, କେତେବେଳେ ନାଡ଼ି ମିଳେ ନାହିଁ । ମନେ ରଖିବାକୁ ହେବ ଯେ, ଗ୍ରହଣୀ ରୋଗରେ ବହୁତ ଥର ଝାଡ଼ା ହେଲେ ମଧ୍ୟ ନାଡ଼ି ମିଳେ ନାହିଁ । ଅଥଚ ରୋଗୀକୁ ଏକ ବାଧିକ୍ ସନ୍ନିପାତ ହୁଏ ନାହିଁ ।

୬ । ଏସିଅଟିକ୍-କଲେରା (Asiatic cholera)

ଏହି ହଇଜା ପ୍ରାୟ ସାଂଘାତିକ (almost fatal) ହୁଏ । ଏଥିରେ ଗୋଟିଏ ଦୋଟିଏ ଝାଡ଼ା ପରେ ରୋଗୀଙ୍କର ସନ୍ନିପାତ ହୋଇ ଯାଏ । (ହଇଜାର ସାଂଘାତିକ ବିଷ ରକ୍ତରେ ମିଶି ଯିବାରୁ ଏତେ ଶୀଘ୍ର ସନ୍ନିପାତ ହୋଇଯାଏ) । କେତେବେଳେ ବା ୩।୪ଟି ଝାଡ଼ା-ବାନ୍ତି ପରେ ସନ୍ନିପାତ ହୁଏ (ଏହିପରି ଯେଉଁ ସନ୍ନିପାତ ହୁଏ ତାହାର କାରଣ :— କ୍ରମାଗତ ଝାଡ଼ା ବାନ୍ତି ହୋଇ ରକ୍ତରୁ ଜଳୀୟ ପଦାର୍ଥ ସବୁ ବାହାରିଯାଏ । ସେଥିପାଇଁ ଶିରା ଭିତରେ ଥିବା ରକ୍ତ ବସିଯାଏ ଏବଂ ରକ୍ତ ଚଳାଚଳ ହୋଇପାରେ ନାହିଁ; ଫଳରେ ନାଡ଼ି କ୍ରମଶଃ ଦୁର୍ବଳ ହୁଏ କିମ୍ବା ଏକ୍‌ଦମ୍ ବନ୍ଦ ହୋଇଯାଏ; ସେଥିପାଇଁ ରୋଗୀଙ୍କର ସନ୍ନିପାତ ହୋଇଯାଏ) । ରୋଗୀଙ୍କର ଆଖି, ମୁହଁ ପଶିଯାଏ; ଝାଳ ବହେ; ରୋଗୀ ଅସ୍ଥିର ହୁଅନ୍ତି; କେବଳ ଥଣ୍ଡା ପବନ ଲୋଡ଼ନ୍ତି ଓ ପାଣି ପିଇବାକୁ ମାଗନ୍ତି; ତାଙ୍କର ନିଶ୍ୱାସ ମାରିବାକୁ କଷ୍ଟ ହୁଏ । କେତେବେଳେ ବା ରୋଗୀ ଚୁପ୍ ହୋଇ ପଡ଼ି ଥାଆନ୍ତି ଓ ମଝିରେ ମଝିରେ ଖୁବ୍ ଜୋରରେ ନିଶ୍ୱାସ (ଅଣନିଶ୍ୱାସ ପବନ) ଛାଡ଼ନ୍ତି; ଗଳାର ସ୍ୱର ଭାଙ୍ଗିଯାଏ; ରୋଗୀ କଥା ବାର୍ତ୍ତା ଖନେଇ ଖନେଇ କରନ୍ତି; କେବେ କେବେ ବା ମଳପର ନିସ୍ରବ ଧ ହୋଇ ପଡ଼ି ରହନ୍ତି (ହଇଜା ରୋଗୀ ମଳପର ହୋଇ ପଡ଼ିଲେ ମଧ୍ୟ ଭିତରେ ଜ୍ଞାନ ସମ୍ପୂର୍ଣ୍ଣ ଥାଏ ଓ ଅଜ୍ଞାନ ହୁଅନ୍ତି ନାହିଁ); ପରିସ୍ରା ବନ୍ଦ ହୁଏ । ଏହିପରି ଅବସ୍ଥା ରୋଗୀଙ୍କର ହେଲେ ପ୍ରାୟ ୨୪ ଘଣ୍ଟା ମଧ୍ୟରେ ମୃତ୍ୟୁ ହୁଏ । ଯଦି ଭଗବାନଙ୍କର ଦୟା ହୁଏ ତେବେ ପ୍ରତିକ୍ରିୟା ଆରମ୍ଭ ହୁଏ ଓ ରୋଗୀ ବଞ୍ଚିଯାଆନ୍ତି ।

ଏସିଅଟିକ୍ କଲେରା ପୁଣି ଦୁଇ ଭାଗରେ ବିଭକ୍ତ—

୧ । ଆକ୍ଷେପିକ (Spasmodic)

୨ । ଅବସାଦକ ବା ପକ୍ଷାଘାତିକ (Paralytic)

ଆକ୍ଷେପିକ କଲେରାର ଲକ୍ଷଣ—ଏହି ହଇଜାରେ ପେଟ, ପିଠି, ହାତରେ ଓ ଗୋଡ଼ରେ ଶିରାମରି ଉଠେ; ହାତ ଗୋଡ଼ର ଆଙ୍ଗୁଠି ବଙ୍କାବଙ୍କା ହୋଇଯାଏ । ରୋଗୀ କଷ୍ଟରେ ଗୋଡ଼ କାନ୍ଦି ଉଠନ୍ତି ଓ ଚିତ୍କାର କରନ୍ତି ।

[ଶିରାମରି ଉଠିବା କାହାକୁ କହନ୍ତି ? ଆମ୍ଭମାନଙ୍କ ଶରୀରରେ ରକ୍ତ ଚଳାଚଳ କରିବାପାଇଁ କେତେଗୁଡ଼ିଏ ମୋଟା ଓ ସରୁ ଶିରା ଅଛି । ହଇଜାର ବିଷ ଶରୀରରେ ପ୍ରବେଶ କଲେ ଜୀବନୀ ଶକ୍ତି (vital force) ସେହି ବିଷକୁ ଶରୀର ଭିତରୁ ବାହାର କରି ଦେବାପାଇଁ ଝାଡ଼ାବାନ୍ତି କରାଏ; ଝାଡ଼ାବାନ୍ତି ଅଧିକ ପରିମାଣରେ ହେଲେ ତାହା ସହିତ ରକ୍ତର ଜଳୀୟ ଅଂଶ ବାହାରି ଯାଏ । ସେତେବେଳେ ରକ୍ତ ଗାଢ଼ ହୋଇ ବସିଯାଏ ଓ ଶିରା ଭିତରେ ଅଟକି ରହିଯାଏ ଓ ରକ୍ତ ଚଳାଚଳର ବାଟ ବନ୍ଦ ହୋଇଯାଏ । ଏହାକୁ ଶିରାମରି ଉଠିବା (spasm) କହନ୍ତି ] ଏହି ଶିରାମରି ଉଠିବା ବନ୍ଦ କରିବାକୁ ହେଲେ ରୋଗୀଙ୍କୁ ପ୍ରଚୁର ପରିମାଣରେ ଥଣ୍ଡା ବା ଉଷୁମ ପାଣି ପିଇବାକୁ ଦେବ ।

ଆଲୋପାଥିକ୍ ଡାକ୍ତରମାନେ "ସାଲାଇନ୍" (ଲୁଣପାଣି) ଇନ୍‌ଜେକ୍‌ସନ୍ ଦ୍ୱାରା ଶିରା ବାଟେ ଶରୀର ଭିତରେ ଅନେକ ପରିମାଣରେ ପାଣି ପୂରାନ୍ତି । ଏପରି କରିବା ଯୋଗୁଁ ଜମି ଯାଇଥିବା ରକ୍ତ ଶୀଘ୍ର ତରଳ ହୋଇ ରକ୍ତଚଳାଚଳ ଆରମ୍ଭ ହୁଏ । ଏଥିରେ ଶିରାମରି ଉଠିବା କମିଯାଏ ଓ ରୋଗୀ ସୁସ୍ଥ ହୁଅନ୍ତି । ଯାହା ହେଉ, ଏହି ଜାତୀୟ ହଇଜା ହେଲେ ହାତ ଶିରାମରି ଉଠିବା ଛଡ଼ା ଝାଡ଼ାବାନ୍ତି ନ ହୋଇ ସନ୍ନିପାତ ହୁଏ । ହାତର ଓ ପାଦର ଚମ ଜଳବସି ହୁଏ । ପ୍ରଥମରୁ ଅଳ୍ପ ଶିରାମରି ଉଠେ; ନିଶ୍ୱାସ ମାରିବାକୁ କଷ୍ଟ ହୁଏ ଓ ରୋଗୀ ଅତ୍ୟନ୍ତ ଅସ୍ଥିର ହୁଅନ୍ତି । ଝାଡ଼ାବାନ୍ତି ଆରମ୍ଭ ହେବା ପୂର୍ବରୁ ନାଡ଼ୀ ଖୁବ୍ ଜୋର୍‌ରେ ଓ ଚଞ୍ଚଳ ଚାଲେ । ଆଉ କେତେଗୁଡ଼ିଏ ଲକ୍ଷଣ ଥାଏ । ଷ୍ଟେଥେସ୍କୋପ୍ ଦ୍ୱାରା ପରୀକ୍ଷା କଲେ ହୃତ୍‌ପିଣ୍ଡ ଖୁବ୍ ଜୋର୍‌ରେ ଧଡ଼ ଧଡ଼ ହୋଇ ଚାଲିବା ଶୁଣାଯାଏ । ଏହି ଲକ୍ଷଣଗୁଡ଼ିକ ପକ୍ଷାଘାତିକ (paralytic variety) ଜାତୀୟ ହଇଜା ଲକ୍ଷଣର ସମ୍ପୂର୍ଣ୍ଣ ବିପରୀତ । ପକ୍ଷାଘାତିକ (paralytic) ହଇଜାର ଲକ୍ଷଣ ଆକ୍ଷେପିକ (spasmodic ଲେଗ୍, କୋଗ୍ ହୋଇ ଖେଞ୍ଚି ହେବା) ଜାତୀୟ ହଇଜା ଲକ୍ଷଣର ସମ୍ପୂର୍ଣ୍ଣ ବିପରୀତ; ଅର୍ଥାତ୍ ଏଥିରେ ରୋଗୀ ପ୍ରଥମରୁ ସ୍ଥିର ହୋଇ ପଡ଼ି ଥାଆନ୍ତି, ଛଟପଟ ଆଦୌ ହୁଅନ୍ତି ନାହିଁ । ଷ୍ଟେଥେସ୍କୋପ୍ ଦ୍ୱାରା ହୃତ୍‌ପିଣ୍ଡ ପରୀକ୍ଷା କଲେ ସ୍ପନ୍ଦନର ଆଘାତ ଅତ୍ୟନ୍ତ ଧୀରେ ଧୀରେ ଶୁଣାଯାଏ, କିମ୍ବା ସମୟ ସମୟରେ ଆଦୌ ଶୁଣାଯାଏ ନାହିଁ । ହୃତ୍‌ପିଣ୍ଡର ବଳ କମ୍ ହେବାରୁ ରକ୍ତ ଚଳାଚଳରେ ବାଧା ପଡ଼େ । ସେଥିପାଇଁ ନିଶ୍ୱାସ ମାରିବାକୁ କଷ୍ଟ ହୁଏ । ଶରୀର ଥଣ୍ଡା ଓ ଗାଲବସି ହେବା ପ୍ରଭୃତି ଲକ୍ଷଣସବୁ ପ୍ରକାଶ ହୁଏ । ଅନ୍ତର୍ କାର୍ଯ୍ୟକାରୀ ଶକ୍ତି

ବନ୍ଦ ହୋଇ ଯିବାରୁ ପେଟ ଫାମ୍ପେ । ମୂତ୍ରଯନ୍ତ୍ର କାର୍ଯ୍ୟକାରୀ ନ ହେବାରୁ ପରିସ୍ରା ବନ୍ଦ ହୋଇଯାଏ । ଏହିଠାରେ ମନେ ରଖିବାକୁ ହେବ ଯେ, ପୂର୍ବୋକ୍ତ ଅକ୍ଷେପିକ ଜାତୀୟ ହଇଜାର ପ୍ରଥମ ଅବସ୍ଥାରେ ଅକ୍ଷେପ (ଖୋଲ୍ଲୁକୋଲୁ ହେବା) କମିଯାଇ କେତେବେଳେ କେତେବେଳେ ଏହିପ୍ରକାର ପାକ୍ଷାଘାତିକ (paralytic) ହଇଜାର ସବୁ ଲକ୍ଷଣ ପ୍ରକାଶ ହୁଏ ।

ହଇଜା ରୋଗୀଙ୍କର ଶୁଭ ଲକ୍ଷଣ—

ସନ୍ନିପାତ ଅବସ୍ଥାରେ ନାଡ଼ି ମିଳିବା; ଶରୀରରୁ ଏକଦମ୍ ଉତ୍ତାପ କମିଯିବା; ଶୀଘ୍ର ଶୀଘ୍ର ପ୍ରତିକ୍ରିୟା (reaction) ଆରମ୍ଭ ହେବା; ଝାଡ଼ାର ରଙ୍ଗ ପରିବର୍ତ୍ତନ ଓ ବହଳିଆ ହେବା; ଦେହରେ ଗରମ ଆସିବା ଓ ଆଖିର ଓ ମୁହଁର ଜ୍ୟୋତି (ତେଜ) ଆସିବା; ଶ୍ୱାସ ପ୍ରଶ୍ୱାସ ନେବାକୁ କଷ୍ଟ ନ ହେବା; ଜନ ଓ ଶାନ୍ତି ବୋଧ ହେବା; ସନ୍ନିପାତ ଓ ଭଲ ଅଡ଼କୁ ଆସିବାର ମଧ୍ୟବର୍ତ୍ତୀ ସମୟରେ ହିକ୍କା ହେବା ଏବଂ ସନ୍ନିପାତ ଅବସ୍ଥାର ପରେ ହାତକୁ ନାଡ଼ି ଜଣାଯିବା ।

ହଇଜା ରୋଗୀଙ୍କର ଅଶୁଭ ଲକ୍ଷଣ—

ରୋଗୀଙ୍କର ଶୀଘ୍ର ଶୀଘ୍ର ବଳ କମିଯିବା, ରୋଗୀ ଅଜ୍ଞାନ ହେବା, ସନ୍ନିପାତ ହେବା, ଛଟପଟ ହେବା, ନିଶ୍ୱାସ ମାରିବାକୁ କଷ୍ଟ ହେବା, ନାଡ଼ୀ ନ ମିଳିବା, ଅନେକକ୍ଷଣ ପର୍ଯ୍ୟନ୍ତ ସନ୍ନିପାତ ହୋଇ ରୋଗୀ ପଡ଼ି ରହିଥିବା, ବାନ୍ତି ବାନ୍ତି ଓ ଭଲ ଝାଡ଼ା ହେବା, ବହୁ ସମୟ ପର୍ଯ୍ୟନ୍ତ ପିଶ୍ରା ନ ବାହାରିବା ଓ ପରିସ୍ରା ବନ୍ଦ ହୋଇଯିବା, ସର୍ବଦା ଶିରିମଇ ଉଠିବା, ଅନବରତ ଝାଡ଼ାବାନ୍ତି ହେବା; ପ୍ରଳାପ (Delirium); ଅନିଦ୍ରା; ପାଟରେ ପାଣି ଦେଲ କ୍ଷଣି ପାଣି ବାହାରକୁ ବୋହି ଆସିବା; ଅଜଣାରେ ଝାଡ଼ା ହୋଇଯିବା; ରୋଗୀ ଚିତ୍ତୋଳ ହୋଇ ପଡ଼ି ରହିଥିବା, ଇଉରମିଆ (ପରିସ୍ରାର ବିଷାକ୍ତ ପଦାର୍ଥ ରକ୍ତରେ ମିଶିଲେ ଇଉରମିଆ ହୁଏ); ହୃତପିଣ୍ଡର କାର୍ଯ୍ୟ ବନ୍ଦ (Heart-failure) ପ୍ରଭୃତି ହଇଜାର ଅଶୁଭ ଲକ୍ଷଣ ।

ହଇଜାର ଭିନ୍ନ ଭିନ୍ନ ଅବସ୍ଥା :—

୧ମ ଅବସ୍ଥା ବା ଆକ୍ରମଣ ଅବସ୍ଥା ( Stage of invasion)

ପ୍ରଥମରେ ଧୀରେ ଧୀରେ ଅଜୀର୍ଣ୍ଣ ତରଳ ଝାଡ଼ା ପରେ ଅଥାତ୍, ଅଳ୍ପ ଝାଡ଼ା, ବାନ୍ତି ଓ ପେଟରେ ଯନ୍ତ୍ରଣା ପ୍ରଭୃତି ଲକ୍ଷଣ ଉପସ୍ଥିତ ହୁଏ । ପୁଣି କେତେବେଳେ ବା ହଠାତ୍ ଦେଖାଯାଏ—ଅଧିକ ପରିମାଣରେ ଘନ ଘନ ପାଣି ପରି ତରଳ ଝାଡ଼ା ହୁଏ । ଝାଡ଼ାର ରଙ୍ଗ ପ୍ରଥମେ ହଳଦିଆ, ପରେ ଗୁଣ୍ଡୁଳିଧୁଆ ପାଣି ପରି ଫିକା ହୁଏ, ପ୍ରବଳ ବାନ୍ତି ହୁଏ । ଗୋଡ଼ ହାତରେ ଶିରିମଇ ଉଠିବା ପ୍ରଭୃତି ଲକ୍ଷଣ ସବୁ କ୍ରମଶଃ ବଢ଼ିଯାଏ ।

୨ୟ ଅବସ୍ଥା-ପୂର୍ଣ୍ଣ ଭାବରେ ପ୍ରକାଶ ପାଇବା ଅବସ୍ଥା (Stage of full development),

୩ୟ ଅବସ୍ଥା—ସନ୍ନିପାତ ଅବସ୍ଥା । (Stage of collapse)

୪ର୍ଥ ଅବସ୍ଥା—ପ୍ରତିକ୍ରିୟା ଅବସ୍ଥା ( Stage of reaction),

୫ମ ଅବସ୍ଥା—ପରବର୍ତ୍ତୀ ଉପସର୍ଗମାନ (Stage of seaqel3e)].

ହୈଟି—ଦେ ଅ—ସମ୍ମତି ଓ ନିଶ୍ଚୟାର୍ଥକ ହଁ ନିଶ୍ଚେ—
Haiti Yes certainly.
हाँतो हाँ

ହୈଡିମ୍ବ—ସ ବି. ପୁଂ ( ହିଡ଼ିମ୍ବା + ଅପତ୍ୟାର୍ଥେ ପୁଂଲିଙ୍ଗ + ଅ)—
Hairdimba ହିଡ଼ିମ୍ବା ରାକ୍ଷସୀ ଗର୍ଭରୁ ଭୀମଙ୍କ ଔରସ ପୁତ୍ର ଘଟୋତ୍କଚ - The son of Bhima by demoness Hirdimbā.

ହୈତ—ଦେ. ଅ – (ତୋଳେ 'ତ'ର ଦୀର୍ଘ ଉଚ୍ଚାରଣ)—( ନିଶ୍ଚୟାତ୍ମକ
Haita ଅବ୍ୟୟ) ହଁତ; ହଁ, ନିଶ୍ଚୟ—Yes, certainly; Oh
निश्चय हाँ yes !

ହୈତୁକ —ସଂ ବିଣ. ପୁଂ—(ହେତୁ + କ) — ୧ । ସଦ୍‌ଯୁକ୍ତି ବ୍ୟବହାରୀ
Haituka (ବ୍ୟକ୍ତି) (ମନ୍ତ୍ର)—1. Using good reaso-
(ହୈତୁକୀ—ସ୍ତ୍ରୀ) nings or arguments. ୨ । ଯୁକ୍ତିଦ୍ୱାରା ସତ୍‌କର୍ମରେ ସନ୍ଦେହକାରୀ (ହିଷ୍ଟୁ, ମୁଗ୍ଧ) – 2. A person who by reasoning doubts good works. ୩ । ହେତୁ ବା କାରଣ ସମ୍ବନ୍ଧୀୟ—3. Relating to cause ୪ । ଯୁକ୍ତି ସମ୍ବନ୍ଧୀୟ—4. Relating to reasoning

ହୈବେ—ଦେ. ଅ—ଅବଜ୍ଞାର୍ଥକ ସମ୍ବୋଧନ—
Haibe Interjection used in contempt or dis-
हाँबे अरे regard.

ହୈମ—ସ. ବିଣ—(ହିମ + ସମ୍ବନ୍ଧାର୍ଥେ ଅ)— ୧। ହିମୋଦ୍ଭବ, ତୁଷାରୋ-
Haima ଦ୍ଭବ—1. Born of or produced by cold or snow. ୨ । ତୁଷାରାଚ୍ଛାଦିତ—2. Covered with snow. ୩ । ଅତି ଶୀତଳ - 3. Chilly; very cool; cold. ୪ । (ହେମନ୍ + ଅ) ସ୍ୱର୍ଣ୍ଣ ନିର୍ମିତ; ହେମଜାତ; ହେମମୟ; ହିରଣ୍ମୟ (ମୁଗ୍ଧବୋଧ)—4. Made of gold. ୫ । ସ୍ୱର୍ଣ୍ଣବର୍ଣ୍ଣ ବିଶିଷ୍ଟ—5. Of golden colour. ବି—୧ । ଭୁଇଁନିମ୍ବ, ଭୁଇଁନିମ୍ବ (ରାଜନିର୍ଘଣ୍ଟ) 1. Andrographis Paniculata ( plant ). ୨ । ଶିଶିର—2. Dew; hoar frost.

ହୈମଁ—ଦେ. ଅ—୧ । ସୁପରିଚିତ ନିକଟବର୍ତ୍ତୀ ବ୍ୟକ୍ତିଙ୍କୁ ସମ୍ବୋଧନ
Haiman କରିବା ବା ତାଙ୍କ ଦୃଷ୍ଟି ଆକର୍ଷଣ କରିବା ସମ୍ବୋଧନ —1. Interjection used in drawing the attention of a familiar person near by. ୨। ହଁମ (ଅବଜ୍ଞାରେ ବ୍ୟବହୃତ)—2. (Interjection) Yes, I do not care.

ହୈମ କରଣ—ସ. ବି—(କର୍ମଧା)—ସ୍ୱର୍ଣ୍ଣବର୍ଣ୍ଣଯୁକ୍ତ ରଶ୍ମି—
Haima kirana Golden ray.

ହୈମ ଦ୍ୟୁତି—ସଂ. ବି—(କର୍ମଧା)—୧। ସ୍ୱର୍ଣ୍ଣମୟ ପ୍ରଭା—1. Golden
Haima dyuti lustre. ୨। ସ୍ୱର୍ଣ୍ଣର ଉଜ୍ଜ୍ୱଳତା—2. Lustre of gold.

ହୈମନ—ସଂ. ବିଣ -(ହେମନ୍ +ଅ)—୧ । ସ୍ୱର୍ଣ୍ଣମୟ—1. Golden.
Haimana (Apte), ୨ । ସ୍ୱର୍ଣ୍ଣ ନିର୍ମିତ—2. Made of
(ହୈମନୀ—ସ୍ତ୍ରୀ) gold (Apte) ୩ । ସ୍ୱର୍ଣ୍ଣ ସମ୍ବନ୍ଧୀୟ—3. Relating to gold (Apte). ୪ । (ହେମନ୍ତ+ଭବାର୍ଥେ ଅ, ତ ଲୋପ) ହିମଜାତ—4. Born of or produced by Hima. ୫ । ହୈମନ୍ତିକ; ହିମକାଳୋଦ୍ଭବ—5. Growing in the prime of winter. ବି—୧ । ହେମନ୍ତ ଋତୁ (ଶବ୍ଦରତ୍ନାବଳୀ); ମାର୍ଗଶିର ଓ ପୌଷମାସ, ମତାନ୍ତରରେ କାର୍ତ୍ତିକ ଓ ମାର୍ଗଶିର ମାସ—1. The 1st two months of winter. ୨ । ମାର୍ଗଶୀର୍ଷ ମାସ ( ରାଜନିର୍ଘଣ୍ଟ )—2. The month of Mārgasira. ୩। ହିମକାଳୋଦ୍ଭବ ଷଷ୍ଟିକ ଧାନ୍ୟ, ଷାଠିକା ଧାନ; ଲଘୁ ଶାରଦ ଧାନ (ରାଜ ବଲ୍ଲଭ)—3. A variety of paddy ripening in the beginning of winter; early winter paddy. [ଦ୍ର—ଏହା ମଧୁର ଓ ବୃଷ୍ୟ ଅଟେ ।]

ହୈମନ୍ତ—ସଂ ବିଣ (ହେମନ୍ତ+ଭବାର୍ଥେ ଅ)—୧ । ହେମନ୍ତଋତୁଜାତ;
Haimanta ହିମଋତୁ ଜାତ—1. Growing in
(ହୈମନ୍ତୀ—ସ୍ତ୍ରୀ) 'Hemanta'. ୨ । ହେମନ୍ତସମ୍ବନ୍ଧୀୟ—2. Relating to Hemanta. ବି—୧ । ହେମନ୍ତ ଋତୁ ; ମାର୍ଗଶିର ଓ ପୌଷମାସ—1. The first two months of winter, ୨ । ଶୀତଋତୁ—2. Wint r.

ହୈମନ୍ତିକ—ସଂ. ବିଣ—( ହେମନ୍ତ+ଭବାର୍ଥେ ଇକ )—୧ । ହେମନ୍ତ
Haimantika କାଳ ଜାତ—1. Growing in the Hemanta
(ହୈମନ୍ତିକୀ—ସ୍ତ୍ରୀ) season. ୨। ହେମନ୍ତକାଳୀନ—2. Relating to Hemanta. ୩। ଶାରଦ ଧାନ; ଶାଳୀ ଧାନ ( ଛଅମାସ ଚକ୍ର )—3. The early winter paddy.

ହୈମବତ—ସଂ. ବିଣ.ପୁଂ—(ହିମବତ୍ +ଅ)—ହିମାଳୟ ସମ୍ବନ୍ଧୀୟ—
Haimabata Himalayan. ବି—୧ । ଭାରତବର୍ଷ (ତ୍ରିକାଣ୍ଡ
(ହୈମବତୀ—ସ୍ତ୍ରୀ) ଶେଷ)—1. India. ୨। ବିଷଭେଦ (ହେମଚନ୍ଦ୍ର)—2. A kind of poison.

ହୈମବତ ବର୍ଷ—ସଂ. ବି—ଭାରତବର୍ଷ (ବରାହପୁରାଣ); ହିମାଳୟର
Haimabata barsha ଦକ୍ଷିଣବର୍ତ୍ତୀ ଦେଶ—India (bounded by the Himalayas on the north

ହୈମବତୀ—ସଂ.ବିଣ. ସ୍ତ୍ରୀ —(ହୈମବତ+ସ୍ତ୍ରୀ.ଈ)—ହୈମବତର ସ୍ତ୍ରୀଲିଙ୍ଗ
Haimabati —The feminine of Haimabata ବି, ସ୍ତ୍ରୀ—୧ । (ହିମବତ୍ +ଅପତ୍ୟାର୍ଥେ ଅ+ସ୍ତ୍ରୀ ଈ)—ପାର୍ବତୀ; ଉମା (ଅମର)—1. Goddess Pārbatī. ୨ । ହରୀତକୀ (ଅମର)—2 Myrobalan. ୩ । ସ୍ୱର୍ଣ୍ଣକ୍ଷୀରୀ (ମେଦିନୀ)—3. Gamboje thistle plant. ୪ । ଶ୍ୱେତବଚ; ଖୋରାସାନୀ ବଚ(ମେଦିନୀ)—4.The white variety of Acorus Calamus. ୫ । ଗଙ୍ଗା (ହିମାଳୟୋଦ୍ଭୂତା ଥିବାରୁ) (ଧରଣୀ)—5. The Ganges. ୬। ରେଣୁକା ନାମକ ଗନ୍ଧଦ୍ରବ୍ୟ (ରାଜ ନିର୍ଘଣ୍ଟ)—6. A scented herb. ୭ । କପିଳ ଦ୍ରାକ୍ଷା (ରାଜନିର୍ଘଣ୍ଟ)—7.Brown grape. ୮ । ଅତସୀ (ରାଜ ନିର୍ଘଣ୍ଟ)—8. Common flax; linseed. ଦେ.ବି ସ୍ତ୍ରୀ—ସ୍ତ୍ରୀ ଲୋକଙ୍କ ନାମ—A name given to females

ହୈମମୁଦ୍ରିକ—ସଂ. ବିଣ—(ବହୁବ୍ରୀହି; ହୈମୀ ମୁଦ୍ରିକା ଅଛି ଯାହାର)—
Haimamudrika ସ୍ୱର୍ଣ୍ଣ ମୁଦ୍ରିକା ବିଶିଷ୍ଟ; ସୁନାମୁଦିଯୁକ୍ତ (ମୁଗ୍ଧବୋଧ)—Having golden rings.

ହୈମଳ—ସଂ. ବି - (ହିମଳ+ଅ)—ହୈମନ; ହେମନ୍ତଋତୁ (ଶବ୍ଦ
Haimala ରତ୍ନାବଳୀ)—The first two months of winter.

ହୈମା (ମୀ)—ସଂ. ବିଣ—(ହୈମ+ଆ; ସ୍ତ୍ରୀ ଈ)—ହୈମର ସ୍ତ୍ରୀଲିଙ୍ଗ
Haimā (mī) Feminine of Haima. ବି—ପୀତ ଯୂଥିକା (ଶବ୍ଦ ରତ୍ନାବଳୀ); ସ୍ୱର୍ଣ୍ଣଯୁଈ ଫୁଲ—Yellow variety of Jasminum Auriculatum.

ହୈୟଙ୍ଗବୀନ—ସଂ.ବି—(ହ୍ୟଃ=ଗତକାଲି+ଗୋ+ଭବାର୍ଥେ ଇନ,
Haiṅgabīna ନିପାତନ ସିଦ୍ଧ)—୧ । ସଦ୍ୟଃ ଗୋଦୋହନଭବ ଘୃତ (ଅମର), ଗତକାଲି ଗାଈ ଦୁହଁା ଯାଇଥିବା ଦୁଧକୁ ମନ୍ଥ ପକାଇ ବସାଦହି କରି ତହିଁରୁ ଆଜି ସକାଳେ ଲହୁଣୀ ବାହାର କରି ସେହି ଲହୁଣୀରୁ ଯେଉଁ ଘିଅ ହୁଏ—1. Ghee prepared from yesterday's milk. ୨ । ନବନୀତ; ଲହୁଣୀ (ଧରମାଳା, ରାଜ ନିର୍ଘଣ୍ଟ)—2. Butter.

ହୈରିକ—ସଂ. ବି—ଚୋର; ଶ୍ୱେର (ଧରଣୀ)—
Hairika Thief.

ହୈରେ—ଦେ. ଅ (ପୁରୁଷ ପ୍ରତି)—ଅପଣା ଅପେକ୍ଷା ନୀଚ ବ୍ୟକ୍ତି ପ୍ରତି
Haire ପ୍ରଯୁକ୍ତ ସମ୍ବୋଧନ—Interjection used in add-
ହଁାରେ, ଓରେ ressing one's inferior. [ଦ୍ର—କ୍ୱଚିତ୍ ଏହା
ଅରେ ଅତି ପରିଚିତ ଆପଣାର ସ୍ନେହଭାଜନ ସ୍ତ୍ରୀ (ଯଥା—ଶିଷ୍ୟା, ସ୍ତ୍ରୀ, କନ୍ୟା, ସାନ ଭଉଣୀ)ଙ୍କ ପ୍ରତି ମଧ୍ୟ ବ୍ୟବହୃତ ହୁଏ ।]

ହୈହ(ହେ)ୟ—ସଂ. ବି (ନାମ)—୧ । ପ୍ରାଚୀନ ଭାରତର ପଶ୍ଚିମଭାଗସ୍ଥ
Haiha(he)ya ଦେଶ ବିଶେଷ—1. Name of an ancient country in western India. ୨ । ରାଜା କାର୍ତ୍ତବୀର୍ଯ୍ୟ (ହେମଚନ୍ଦ୍ର) (ଏ ହୈହୟ ଦେଶର ରାଜା ଥିବାରୁ)—2. King Kārttabirjya of ancient India. ୩ । ପ୍ରାଚୀନ ଭାରତର ରାଜବଂଶ ବିଶେଷ—

3. Name of a royal dynasty of ancient India.

[ଦ୍ର—ମହାଭାରତ, ହରିବଂଶ ଓ ଦେବୀ ଭାଗବତରେ ଭିନ୍ନ ଭିନ୍ନ ସ୍ଥାନରେ ବର୍ଣ୍ଣିତ ଉପାଖ୍ୟାନମାନଙ୍କରୁ ହୈହୟ ବଂଶର ବିବରଣ ସଂକଳିତ ହୋଇପାରେ।

ଦେବୀ ଭାଗବତ ୬ଷ୍ଠ ଅଧ୍ୟାୟ (୧୭ଶ ଠାରୁ ୨୭ଶ ଶ୍ଳୋକରେ) ବର୍ଣ୍ଣିତ ହୋଇଅଛି ଯେ, ଚନ୍ଦ୍ରବଂଶୀୟ ରାଜା ଯଯାତି ତାଙ୍କ ଶ୍ୱଶୁର ଶୁକ୍ରାଚାର୍ଯ୍ୟଙ୍କ ଅଭିଶାପ ଫଳରେ ବାର୍ଦ୍ଧକ୍ୟ ଲଭିବାରୁ, ପିତାଙ୍କ ବାର୍ଦ୍ଧକ୍ୟକୁ ଗ୍ରହଣ କରି ତାଙ୍କ ଯୌବନକୁ ପିତାଙ୍କୁ ଦେବାକୁ ଯଯାତି ତାଙ୍କ ପୁତ୍ର-ମାନଙ୍କୁ (ଶର୍ମିଷ୍ଠାଙ୍କ ଗର୍ଭଜାତ ଦ୍ରୁହ୍ୟ; ଅନୁ ଓ ପୁରୁ ଓ ଦେବଯାନୀଙ୍କ ଗର୍ଭଜାତ ତୁର୍ବସୁ ଓ ଯଦୁଙ୍କୁ) କହିଲେ। ଏ ପ୍ରସ୍ତାବରେ ଅନ୍ୟ ପୁତ୍ରମାନେ ରାଜି ହେଲେ ନାହିଁ, କିନ୍ତୁ ପୁରୁ ରାଜି ହୋଇ ପିତାଙ୍କ ବାର୍ଦ୍ଧକ୍ୟ ଗ୍ରହଣ କଲେ ଓ ପିତାଙ୍କୁ ଆପଣା ଯୌବନ ଦେଲେ। ଯଯାତି ପୁରୁଙ୍କ ଉପରେ ପ୍ରସନ୍ନ ହୋଇ ତାଙ୍କର ହସ୍ତିନାପୁର ସିଂହାସନ ପୁରୁଙ୍କୁ ଦେଲେ ଓ ପୁରୁ ପୈତୃକ ବଂଶର ଅଧିକାରୀ ହେଲେ। ତୁର୍ବସୁ ରାଜ୍ୟର ଦକ୍ଷିଣପୂର୍ବ ଅଂଶ ପାଇଲେ, ଯଦୁ ଉତ୍ତର-ପୂର୍ବାଂଶ, ଦ୍ରୁହ୍ୟ ପଶ୍ଚିମାଂଶ ଓ ଅନୁ ଉତ୍ତରାଂଶ ପାଇଲେ। (ହରିବଂଶ ୧ମ ଅଧ୍ୟାୟ)

ତୁର୍ବସୁ ଅପୁତ୍ରକ ଥିବାରୁ ଅରଣ୍ୟକୁ ଯାଇ ପୁତ୍ର-ଲାଭାର୍ଥ ନାରାୟଣଙ୍କୁ ପ୍ରାର୍ଥନା କଲେ।

ଥରେ ସୂର୍ଯ୍ୟଙ୍କ ପୁତ୍ର ରେବନ୍ତ ଇନ୍ଦ୍ରଙ୍କ ଉଚ୍ଚୈଃଶ୍ରବା ଅଶ୍ୱ ଉପରେ ଚଢ଼ି ବିଷ୍ଣୁ ଦର୍ଶନାର୍ଥ ବୈକୁଣ୍ଠକୁ ଯାଇ-ଥିଲେ। ଲକ୍ଷ୍ମୀ ସେ ଘୋଡ଼ାକୁ ଦେଖି ଏପରି ତନ୍ମୟା ହୋଇଥିଲେ ଯେ, ସେ ବିଷ୍ଣୁଙ୍କ ପ୍ରଶ୍ନର ଉତ୍ତର ଦେଲେ ନାହିଁ। ବିଷ୍ଣୁ କ୍ରୁଦ୍ଧ ହୋଇ ଲକ୍ଷ୍ମୀଙ୍କୁ ଶାପଦେଲେ। ସେହି ଶାପ ଫଳରେ ଲକ୍ଷ୍ମୀ କେତେକାଳ ଘୋଟକୀ (ହୟୀ) ହୋଇ ପୃଥିବୀରେ ବିଚରଣ କଲେ। ଲକ୍ଷ୍ମୀ ଘୋଟକୀ ରୂପେ ତମସା ଓ ଯମୁନା ସଙ୍ଗମ ସ୍ଥଳରେ ବିଚରଣ କରୁଥିଲେ। ମହାଦେବ ତାଙ୍କର ଏ ଦୁରବସ୍ଥା ଦେଖି ଦୟାର୍ଦ୍ର ହୋଇ ଏ ଦୁଃଖରୁ ଲକ୍ଷ୍ମୀଙ୍କୁ ମୁକ୍ତି ଦେବା ସକାଶେ ବିଷ୍ଣୁଙ୍କୁ ଅନୁରୋଧ କଲେ ଓ ବିଷ୍ଣୁ ସ୍ୱୀକୃତ ହେଲେ। ଏହି ସମୟରେ ତୁର୍ବସୁ ନାରାୟଣଙ୍କ ପରି ଗୋଟିଏ ପୁତ୍ର ଲାଭ କରିବାପାଇଁ ବିଷ୍ଣୁଙ୍କୁ ବର ମାଗିଲେ। ବିଷ୍ଣୁ ଅଶ୍ୱରୂପ ଧାରଣ କରି ଅଶ୍ୱିନୀରୂପିଣୀ ଲକ୍ଷ୍ମୀଙ୍କ ସଙ୍ଗେ ମିଳିତ ହେଲେ। ଏ ସଙ୍ଗମର ଫଳରେ ଗୋଟିଏ କୁମାର ଜନ୍ମଗ୍ରହଣ କଲେ ଓ ସନ୍ତାନଙ୍କ ଜନ୍ମପରେ ଲକ୍ଷ୍ମୀ ଓ ବିଷ୍ଣୁ ଯାଇ ବୈକୁଣ୍ଠରେ ବାସ କଲେ। ବିଷ୍ଣୁ ତୁର୍ବସୁଙ୍କୁ ଏହି କୁମାରଙ୍କୁ ଦାନ କଲେ। ତାଙ୍କୁ ଏକବୀର ନାମ ଦିଆଗଲା। ହୟୀ ଓ ହୟଙ୍କ ସଙ୍ଗମରୁ ଜାତ ହୋଇ-ଥିବାରୁ ତାଙ୍କର ଅନ୍ୟ ନାମ ହୈହୟ ହେଲା। ସେ ତୁର୍ବସୁଙ୍କ ସିଂହାସନ ଅଧିରୋହଣ କଲେ ଓ ତାଙ୍କ ନାମ ଅନୁସାରେ ସେହି ରାଜବଂଶର ନାମ ହୈହୟ ବଂଶ ହେଲା। ଏ ଏକବୀରଙ୍କ କନ୍ୟା ଏକାବଳୀଙ୍କୁ ବିବାହ କଲେ ଓ ଏ କନ୍ୟାକୁ ହରଣ କରିବାକୁ ଉଦ୍ୟତ କାଳକେତୁ ରାକ୍ଷସକୁ ବଧ କଲେ। ଏ ଏକବୀରଙ୍କ ପୁତ୍ର କୃତବୀର୍ଯ୍ୟ ଓ କୃତବୀର୍ଯ୍ୟଙ୍କ ପୁତ୍ର କାର୍ତ୍ତବୀର୍ଯ୍ୟ। (ଧର୍ମରାଜ୍ୟ ନାମକ ଇଂରାଜୀ ପତ୍ରିକାର ୬।୧୨।୩୯ ତାରିଖର ସଂଖ୍ୟାରୁ ସଙ୍କଳିତ)।]

ହୈହେ—ଦେ. ଅ—ମାନ୍ୟାସ୍ପଦ ସ୍ତ୍ରୀ ବା ପୁରୁଷଙ୍କ ପ୍ରତି ପ୍ରଯୁକ୍ତ
Haibe ସମ୍ବୋଧନ—Interjection used to one's
ওহে ओजी superiors (males or females).

ହୈହୈ—ଦେ, ଅ—ହଇର ଦ୍ୱିତ୍ୱ; ସମ୍ମତିସୂଚକ—Interjection
Hai hai used in consent. ବି—ହୈ ଚୈ (ଦେଖ)—
হাঁহাঁ हाँजीहाँजी Hai chai (See)

ହୈହୋ—ଦେ. ଅ—୧। ଆପଣାଠାରୁ ମାନ୍ୟତର ଓ ସୁପରିଚିତ ବ୍ୟକ୍ତିଙ୍କ
Haibo ପ୍ରତି ସମ୍ବୋଧନ—1. Interjection used familiarly to persons higher than one's self. ୨। ବହୁ ବ୍ୟକ୍ତିଙ୍କ ପ୍ରତି ସମ୍ବୋଧନ—2. Interjection used in addressing a number of persons.
ওহে ओजी

ହୋ—ସ. ଅ (ସମ୍ବୋଧନ; ହ୍ୱେ ଧାତୁ=ଡାକିବା+କରଣେ ଓ)—
Ho ୧। ସମ୍ବୋଧନ (ମେଦିନୀ)— 1. Interjection used in addressing. ୨। ଆହ୍ୱାନ (ମେଦିନୀ)—2. Interjection used in calling. ୩। ବିସ୍ମୟ (ଅମର)—3. Interjection expressing wonder. ଦେ. ଅ—ବହୁ ଦୂରରୁ
ওহে हो କୌଣସି ବ୍ୟକ୍ତିଙ୍କୁ ଡାକିବାରେ ବ୍ୟବହୃତ ଉଚ୍ଚ ଓ ଦୀର୍ଘ ଧ୍ୱନି—Vociferous long sound used in calling aloud from afar.
হো हो ଦେ. ବି—୧। କୋଲ୍ହ ଜାତି ଓ ସେମାନଙ୍କର କଥିତ ଭାଷା—1. A non-aryan class and their language. [ଦ୍ର—ଏମାନଙ୍କର ଲିଖିତ ଭାଷା
হোহা होहला ନାହିଁ।] ୨। ଘୋଉଘା; ଗୋଳମାଳ—2. Ado; noise. ୩। ଜଣେ ଲୋକ ଦ୍ୱାରା ଆରବ୍ଧ ଧ୍ୱନିରେ ବା କାର୍ଯ୍ୟରେ ମୂଳ କାରଣ ନ ବୁଝି ବହୁ ଲୋକଙ୍କର ମାତିଯାଇ କରିବା ଗୋଳମାଳ—3. Noise or uproar initiated by one person and joined up by many persons without enquiring into or knowing the origin thereof; a wild goose chase.
হাহাকাব हाय तोबा ୪। ବିପଦ୍‌ଗ୍ରସ୍ତ ସମ୍ମିଳିତ ବହୁ ବ୍ୟକ୍ତିର ଆର୍ତ୍ତନାଦ—4. Sound of distress made by many persons in common danger. ୫। କ୍ଷେତରୁ ଚଢ଼େଇଙ୍କୁ ଓ ବାନ୍ଦରରୁ
হো হো हो हो ମାଙ୍କଡ଼ଙ୍କୁ ଘଉଡ଼ାଇବା ଧ୍ୱନି—5. Sound made in driving or chasing away birds and monkeys from fields etc.

ହଓ ହଁ ଦେ କ୍ରି—ହେବା କ୍ରିୟାର ଅନୁଜ୍ଞା ମଧ୍ୟମ ପୁରୁଷ ଏକବଚନ ଅନାଦରାର୍ଥକ ( ତୁ ) ରୂପ — Imperative form of verb to be;(Thou)Be. [ ଦ—ଓଡ଼ିଆରେ କ୍ରିୟାମାନଙ୍କର ଅନାଦରାର୍ଥକ ମଧ୍ୟମ ପୁରୁଷ ଏକବଚନ (ତୁ କର୍ତ୍ତୃକେ ବ୍ୟବହୃତ) ରୂପ ଧାତୁ-ରୂପମାନଙ୍କର ମୂଳ ଖାଳ ରୂପେ ଗୃହୀତ ହୋଇ ସେଥିରେ ଇଛି, ଇଲା, ଇଥିଲା, ଉଛି, ଉଥିଲା, ଇବ, ଇଥିବ ଆଦ ଅଙ୍ଗମାନ ଲଗି ଭିନ୍ନ ଭିନ୍ନ କାଳ ବୁଝାଏ । ଏହିପରି ଗୁଡ଼ିଏ ମୂଳ ଖଳ:—ଶୋ, ଖା, ଧର୍, କର୍—ଶ୍ରୀ ପଣ୍ଡିତ ଗୋଲକଚନ୍ଦ୍ର ଦାଶ । ]

ହୋଅ—ଦେ.କ୍ରି (ପ୍ରାଚୀନ ପ୍ରୟୋଗ)—ହୁଅ (ଦେଖ)—Hua (See)
Hoa [ଭ—ଦ୍ୱାରେ କେହୁ ନ ଦେଖୁ ଉଚ୍ଚରେ ହୋଅ—ପ୍ରାଚୀ ଚଳଚଚ୍ଚିତ । )

ହୋଅଇ—ଦେ. କ୍ରି ( ପ୍ରାଚୀନ ଓଡ଼ିଆ ଭାଷାରେ ବ୍ୟବହୃତ; ହ ଭୂ ଧାତୁର ଓଡ଼ିଆ ତୃତୀୟ ପୁରୁଷ ଅନାଦରାର୍ଥକ ଏକବଚନ)—ହୁଅଇ; ଅଛେ—Is.
Hoai
ହୟ ହୋତାହୈ
( ଭ—କ୍ଳେଶେ ହୋଅଇ ରସ ଭୋଗ; ସବୁଙ୍କୁ ନୋହେ ଉପଯୋଗ—ଭୂପତି ପ୍ରେମପଞ୍ଚାମୃତ ।)

ହୋଅନ୍ତି—ଦେ. କ୍ରି ( ପ୍ରାଚୀନ ପ୍ରୟୋଗ )—ହୁଅନ୍ତି ( ଦେଖ )—
Hoanti ହୟେନ ହୋତେହୈଁ Huanti (See)
[ଦ୍ର—ଯଜ୍ଞାଦ ଦାନ ଧର୍ମେ ସତ; ହୋଅନ୍ତି କୃଷ୍ଣ ପରାପର—ଭୂପତି ପ୍ରେମପଞ୍ଚାମୃତ ।]

ହୋ ଆଡ଼େ—ପ୍ରାଦେ (ଗଞ୍ଜାମ) ଅ—ଭିଆଡ଼େ; ସେହି ଅଡେ—
Ho ārde There; in that part.

ହୋଇ—ଦେ. ଅ—୧ । ହଁ (ସ୍ୱୀକାରସୂଚକ)—1. Yes. (ଭ—ତା ଶୁଣି
Hoi ଶ୍ରବଣ ବୋଇଲା ହୋଇ ହୋଇ—କୃଷ୍ଣସିଂହ
ହାଁ ହାଁ ମହାଭାରତ ବନ ।) ୨ । ବାଟ ଦେଇ; ବାଟେ—
2. Through; by the way of. ( ଯଥା—ମୁଁ କଟକ ହୋଇ ଆସିଲି ।) ୩ । ମିଶି; ଏକତ୍ର ହୋଇ—
3. Altogether. ( ଯଥା—ଏଠାକୁ ଆସିଥିବା ଲୋକେ ସମସ୍ତେ ହୋଇ ୧୫ ଜଣ ହେବେ । ) କ୍ରି—
ହୋଇବା ବା ହେବା କ୍ରିୟାର ଅସମାପିକା ରୂପ—
ହ'ୟେ ହୋକର Being. [ ଦ୍ର—କୌଣସି କ୍ରିୟାର ଭିନ୍ନ ଭିନ୍ନ କାଳର ଭିନ୍ନ ଭିନ୍ନ ବଚନ ଓ ଭିନ୍ନ ଭିନ୍ନ ପୁରୁଷରେ ବ୍ୟବହୃତ ରୂପ ବା ଆକାରମାନ ପର୍ଯ୍ୟାଲୋଚନା କଲେ ଦେଖାଯାଏ ଯେ ସାଧାରଣତଃ କ୍ରିୟାର ଅସମାପିକା ରୂପ ( ଯଥା—ହୋଇ, କରି, ଖାଇ )କୁ ମୂଳ ଗିଣ୍ଡି କରି ତହିଁ ସଙ୍ଗେ ଭିନ୍ନ ଭିନ୍ନ କାଳର ଭିନ୍ନଭିନ୍ନ ପୁରୁଷର ଓ ବଚନର ବିଭକ୍ତ୍ୟନ୍ତ ପଦମାନ (inflections) (ଯଥା—ହୋଇ + ଅଛି, ଛି; ହୋଇ + ଲା, ଥିଲା; ହୋଇ + ବ; ଥିବ; ହୋଇ + ପାରେ ଇତ୍ୟାଦି) ଯୋଗ କଲେ ତତ୍ତତ୍‌କାଳ, ପୁରୁଷ ଓ ବଚନରେ ବ୍ୟବହୃତ ଆକାରମାନ ନିଷ୍ପନ୍ନ ହୁଏ । କେତେକ ସ୍ଥଳରେ ମାତ୍ର ଏଥିର ବ୍ୟତିକ୍ରମ ଦେଖାଯିବ ( ଯଥା—'ଯାଇବ' ନ ହୋଇ ଯିବ ହୁଏ । ]

ହୋଇଏ—ଦେ. ଅ—ହୈଏ (ଦେଖ)—
Hoi e Haie (See).

ହୋଇଓ—ଦେ. ଅ—ହୈହୋ (ଦେଖ)—
Hoi o Haibo (See).

ହୋଇ କରି—ଦେ. କ୍ରି (ଅସମାପିକା) ଓ ଅ—ହୋଇ (ଦେଖ)—
Hoi kari Hoi [See].

ହୋଇନି—ପ୍ରାଦେ (ସମ୍ବଲପୁର ଓ ବାଲେଶ୍ୱର) କ୍ରି [ଅଶିକ୍ଷିତ ଲୋକଙ୍କ ବ୍ୟବହୃତ—ପ୍ରଥମ ପୁରୁଷ ଏକବଚନରେ ହେଲି ସ୍ଥାନରେ ହେବା ଉଚ୍ଚାରଣ]—( ମୁଁ ) ହୋଇଲି; ( ମୁଁ ) ହେଲି—[ I ] Was.
Hoi ni

ହୋଇବା—ଦେ. (ପଦ୍ୟ) କ୍ରି—୧ । ପହଞ୍ଚିବା—1. To reach; to
Hoiba arrive [ଭ—ଶବଶ ବନ୍ଦାକାରେ ହୋଇଲେ, ତାର
ହଓୟା ଆଶ୍ରମ ନିକଟ ଦେଖିଲେ । ଜଗନ୍ନାଥ ଚରିତ ରାମାୟଣ] ୨ ।
ହୋନା ହେବା (କ୍ରିୟା)—2. (verb) To be. ଦଣ — ଘଟିଥିବା;
ହେବା—Occurred; happened; accomplished. (ଯଥା—ହୋଇବା ଘଟଣା)

ହୋଇବେ—ଦେ. (ପଦ୍ୟ) କ୍ରି—୧ । ହେବା କ୍ରିୟାର ଭବିଷ୍ୟତ କାଳ
Hoibe ପ୍ରଥମ ପୁରୁଷ ସମ୍ମାନାର୍ଥକ ଏକବଚନ (ଆପଣ) ଓ ବହୁବଚନ (ଆପଣମାନେ ) —ହେବେ—1. You ) Will be (respectful) ୨। ହେବା କ୍ରିୟାର ଭବିଷ୍ୟତକାଳ ତୃତୀୟ ପୁରୁଷ ସମ୍ମାନାର୍ଥକ ଏକବଚନ ( ସେ ) ଓ ବହୁବଚନ (ସେମାନେ) 2. (He, they) Will be. ପ୍ରାଦେ (କଟକ) ଅ—(ଘୃଣା ଓ ଅନାଦରାର୍ଥକ)—ଅବେ; ହେ—Oh ! (in disrespect or hatred.)

ହୋଇମି—ପ୍ରାଦେ (ସମ୍ବଲପୁର, ବାଲେଶ୍ୱର) କ୍ରି (ସ. ଭବିଷ୍ୟାମି; ଇତର
Hoimi ଲୋକ ବ୍ୟବହୃତ)—(ମୁଁ) ହେବି—(I) Will be.

ହୋଇରେ—ପ୍ରାଦେ (କଟକ) ଅ (ପୁରୁଷଙ୍କପ୍ରତି)—ହଇରେ ( ଦେଖ )
Hoire Haire ( See )
ହାଁ ବେ ଅଜୀ
(ହୋଇକରେ - ଅନ୍ୟ ରୂପ; ହୋଇକଲେ, ହୋଇଲେ—ସ୍ତ୍ରୀପ୍ରତି)

ହୋଇଲା—ଦେ (ପଦ୍ୟ) କ୍ରି—ହେବା କ୍ରିୟାର ବର୍ତ୍ତମାନସମୀପ ଅତୀତ-
Hoila କାଳ ତୃତୀୟ ପୁରୁଷ ଅନାଦରାର୍ଥକ ଏକ ବଚନ (ସେ,ଏହା,
ହ'ଲ, ହଇଲ ହୁଆ ତାହା)—(he,she,it) Was; became.
ହଓୟା ବିଣ— ଘଟିଥିବା; ହୋଇଥିବା—Occurred;
କିୟା ହୁଆ accomplished; happened.
(ଯଥା—ହୋଇଲା କଥାକୁ କେ.ହିଲା କରିବା ।)

ହୋଇ ଲୋ—ପ୍ରାଦେ (କଟକ) ଅ (ସ୍ତ୍ରୀମାନଙ୍କୁ ସମ୍ବୋଧନ)—
Hoi lo ହଇଲୋ ( ଦେଖ )
(ହୋଇଲୋ ହେ—ଅନ୍ୟରୂପ) Hailo ( See )

ହୋଇ ହେ(ହୋ)—ପ୍ରାଦେ ( କଟକ ) ଅ (ସମ୍ମାନାର୍ଥକ ଏକ ବା ବହୁ
Hoi he(ho) ବ୍ୟକ୍ତିଙ୍କୁ ସମ୍ବୋଧନ) — ହେ—Oh !

ହୋଇ ହୋଇ—ଦେ. ଅ ଓ ବ—ହଇ ହଇ ( ଦେଖ )
Hoi hoi Hai hai (See)
हाँ हाँ [ଉ—ଦୁର୍ଯୋଧନ ବାକ୍ୟ ବୋଲନ୍ତି ହୋଇ ହୋଇ—
হাঁ হাঁ କୃଷ୍ଣସିଂହ. ମହାଭାରତ. ବନ ।]

ହୋଉ—ଦେ. ଅ—ସମ୍ମତି ବା ସ୍ୱୀକାରାର୍ଥକ ଅବ୍ୟୟ; ହଉ—
Hou हउक অচ্ছা Be it so.
(ଯଥା—ହୋଉ ଦେବ ! ବୋଲି ସୁଗ୍ରୀବ ସହିତେ ସବୁ ସେନାମାନେ ଶିରେ କର ଦେଲେ । ବିଶ୍ୱନାଥ, ବିଚିତ୍ର ରାମାୟଣ ।]

ହୋଉନ୍—ପ୍ରାଦେ (ଭଞ୍ଜଭୂଷା) କ୍ରି—ହେଉଅଛି—
Houn Is being done.

ହୋଏ—ଦେ. (ପଦ୍ୟ) କ୍ରି—୧ । ହେବା କ୍ରିୟାର ନିତ୍ୟ ବର୍ତ୍ତମାନ
Hoe ତୃତୀୟ ପୁରୁଷ ଅନାଦରାର୍ଥକ ଏକବଚନ, (ସେ) ହୁଏ—
হয় होताहै 1. (he, she, it) Becomes; is. [ଉ—ଯେଉଁ ରାଜା ହୃଦୟରେ ଭୟ ହୋଏ ନାହିଁ । କୃଷ୍ଣସିଂହ. ମହାଭାରତ ସଭା ।] ୨ । ହେବା କ୍ରିୟାର ଭବିଷ୍ୟତକାଳ ତୃତୀୟ
হয়, হইবে होगा ପୁରୁଷ ଅନାଦରାର୍ଥକ ଏକବଚନ (ଏ, ସେ, ଏହା, ତାହା) ହେବ—2. Will be. [ଉ—ବାଳାରୁଣାଧରୀ କହିଲ ଜାଣି ତାହାଙ୍କ ଚିତ୍ତ, ବାଳା ଏ ଏଡ଼ଣି ଅଭୁତେ ହୋଏ ସିନା ପ୍ରାପତ—ଭଞ୍ଜ.ବୈଦେହୀଶବିଳାସ ।]
ପ୍ରାଦେ (ଖଡ଼ିଆଳ) ଅ—ହଁ (ସ୍ୱୀକାର ସୂଚକ)—Yes.

ହୋଏନ୍‌ସା (ସାଂ)—ବୈଦେ. ବ (ନାମ)—ହୁଏନ୍‌ସା (ଦେଖ)
Hoen-sā (sāṁ) Huen-sā (See)
[ହୋଏନ୍ ସାଙ୍ଗ୍(ନ୍)—ଅନ୍ୟରୂପ]

ହୋଏବା—ପ୍ରାଦେ ( ଭଞ୍ଜଭୂଷା ) କ୍ରି—ହେବା; ହୋଇବା—
Hoebā To be; to happen.

ହୋଏହୋ—ପ୍ରାଦେ (ଖଡ଼ିଆଳ) ଅ—ପ୍ରଶ୍ନକାରକ ସମ୍ବୋଧନ, ହଇହେ—
Hoe ho Oh !

ହୋଓ—ଦେ. ଅ ଓ ବ—ହୋ (ଦେଖ)—Ho (See)
Ho-o [ଉ—କ ବଚନସାଦେ ସାଜନ୍ତି ପ୍ରକୃତି । ପେଣ୍ଡ ନେଇ ଗୃହାଁ ହୋଓ—ନନ୍ଦକିଶୋର କର୍ଣ୍ଣବଣୀ ।)

ହୋଁୟଦେ—ପ୍ରାଦେ (ଭଞ୍ଜଭୂଷା) କ୍ରି—ମୁଁ ହୁଅନ୍ତି—I should be.
Hoñyade

ହୋଗଲା—ପ୍ରାଦେ(ମେଦନୀପୁର ଓ ବାଲେଶ୍ୱର) ବ—(ସଂ. ଏରକା)—
Hogalā ସନ୍ତରା (ଦେଖ)—Santarā (See)

ହୋ(ହୋଁ)ଚଟ୍—ପ୍ରାଦେ(ମେଦନୀପୁର ଓ ବାଲେଶ୍ୱର)—(ସଂ. ଉଦଘାତ)
Ho(hoñ)chaṭ ଠୋକର; ଝୁଣ୍ଟି ପଡ଼ିବା; ପାଦର ଅଗ୍ରଭାଗ ଉଚ୍ଚ
(ହୋଞ୍ଚଟ୍—ଅନ୍ୟରୂପ) ସ୍ଥାନରେ ବାଜିବା—Stumbling; a trip in walking.

ହୋ(ହୋଁ)ଚଟ୍ ଖାଇବା—ପ୍ରାଦେ (ମେଦନୀପୁର ଓ ବାଲେଶ୍ୱର) କ୍ରି—
Ho(hoñ)chaṭ khāibā ଝୁଣ୍ଟି ପଡ଼ିବା—To stumble
(ହୋଞ୍ଚଟ୍ ଖାଇବା—ଅନ୍ୟରୂପ) at an obstacle; to trip.

ହୋଟ(ଟେ)ଲ୍—ବୈଦେ. ବ—( ଇଂ ହୋଟେଲ୍ )—ସାଧାରଣ
Hoṭa(ṭe)l ଭୋଜନାଳୟ; ଯେଉଁଠାରେ ଲୋକେ ପଇସା ଦେଇ
হোটেল होटल ଖାଆନ୍ତି—A hotel. [ଦ୍ର—ଅଧୁନିକ ହୋଟେଲ୍ ପ୍ରଥା ପାଶ୍ଚାତ୍ୟ ଶିକ୍ଷା ସଙ୍ଗେ ଏ ଦେଶକୁ ଆମଦାନି ହୋଇଥିବାରୁ ଏଥିରେ ସାଧାରଣତଃ ଜାତି ବର୍ଣ୍ଣର ଓ ଖାଦ୍ୟ ବର୍ଣ୍ଣର ଓ ଛୁଁଆଛୁଁଇ ବର୍ଣ୍ଣନ ପାଳନ ହେଉ ନାହିଁ]

ହୋଟ(ଟେ)ଲ୍‌ଖାନା—ବୈଦେ. ବ (ଇଂ. ହୋଟେଲ୍ ଓ ଫା. ଖାନା
Hoṭa(ṭe)l khānā ଘର)—୧ । ହୋଟେଲ୍ ଘର
হোটেলখানা होटलखाना 1. Hotel house.
୨ । ହୋଟେଲ୍—2. Hotel. ୩ । ଯେଉଁଠାରେ ବହୁ ଲୋକଙ୍କ ଖାଦ୍ୟ ପାକ ହୁଏ—3 A place where food is cooked for a number of people.
୪ । ହୋଟେଲରେ ରନ୍ଧା ହୋଇଥିବା ଖାଦ୍ୟ—
4. Food cooked in a hotel. [ଦ୍ର—ଆମଦେଶରେ ହୋଟେଲ୍‌ରେ ସାହେବ ଓ ପାଶ୍ଚାତ୍ୟ ସଭ୍ୟ ବାବୁମାନଙ୍କ ପାଇଁ ଆମିଷାହାର ପ୍ରସ୍ତୁତ ହୁଏ ଓ ଜାତି ବର୍ଣ୍ଣର ନ ଥାଏ ଏଥିପାଇଁ ରକ୍ଷଣଶୀଳ ହିନ୍ଦୁମାନେ ହୋଟେଲ୍‌ର ଖାନା ଖାଇବାକୁ ଘୃଣା କରନ୍ତି । କିନ୍ତୁ ଦାକ୍ଷିଣାତ୍ୟରେ ହିନ୍ଦୁ ହୋଟେଲ୍‌ମାନଙ୍କରେ ନିରାମିଷ ଖାଦ୍ୟ ପ୍ରସ୍ତୁତ କରାଯାଏ ।]

ହୋଟ(ଟେ)ଲ୍‌ର ଦାଢ଼ିଆ ପୂଜାହାରି—(ବ୍ୟଙ୍ଗ) ହୋଟେଲର ମୁସଲମାନ
Hoṭa(ṭe)l-ra dāṛhiā pūjāhari ପାଚକ ବା ବବୁର୍ଚ୍ଚି—
A Mahomedan cook of a hotel.

ହୋଟ(ଟେ)ଲ୍ ୱା(ବା)ଲା—ବୈଦେ, ବ. ପୁଂ (ଇଂ. ହୋଟେଲ୍ ଓ ଅ.
Hoṭa(ṭe)l wā(bā)lā ୱାଲା)—ହୋଟେଲ୍‌ର ମାଲିକ—
হোটেলওয়ালা होटलवाला Hotel-keeper.
[ହୋଟ(ଟେ)ଲ୍ ଉଆଲା—ଅନ୍ୟରୂପ]
[ହୋଟ(ଟେ)ଲ୍ ୱାଲୀ—ସ୍ତ୍ରୀ]

ହୋଟ(ଟେ)ଲିଆ—ଦେ. ବଣ—୧ । ହୋଟେଲ ସମ୍ବନ୍ଧୀୟ—1. Relating to hotel. ୨ । (ପୁଂ) ହୋଟେଲରେ
Hoṭa(ṭe)liā
হোটেলিয়া ଖାଇବା ପ୍ରିୟ—2. Fond of taking meals
होटलवाला in a hotel. ବ—୧ । ହୋଟେଲ ରକ୍ଷକ ବା ହୋଟେଲ ସ୍ୱାମୀ—1. A hotel keeper. ୨ । ହୋଟେଲରେ ଖାଇବା ବ୍ୟକ୍ତି—2. Persons who take meals in a hotel.

ହୋଟେଣ୍ଟଟ୍—ଦେ, ବ—ଆଫ୍ରିକାର ଅସଭ୍ୟ ଜାତି ବିଶେଷ—An
Hoṭenṭaṭ uncivilized tribe of Africa; Hotentot.

ହୋଡ଼୍ (ଧାତୁ)—ସଂ., ବ—୧ । ଗତି କରିବା—1. To move. ୨ ।
Hoṛd (root) ଅନାଦର କରିବା—2. To slight; to disregard.

ହୋଡ—ସଂ. ବ—(ହୋଡ଼୍. ଧାତୁ + କରଣ. ଅ)—୧ । ନୌକାବିଶେଷ;
Hoṛda କ୍ଷୁଦ୍ର ଡଙ୍ଗା—1. Small boat. ୨ । ବଡ଼ଡଙ୍ଗା,
ଅନ୍ୟ ସଂ— ବୋଇତ—2. A big boat. ୩ । ଭେଳା—
ବହିତ୍ର, ବହନ) 3. A raft. ୪ । ଦକ୍ଷିଣ ଭାରତୀୟ ମୌଳିକ

(ବଙ୍ଗଦେଶ); କାୟସ୍ଥମାନଙ୍କର ବ୍ରଂସପ୍ରତ ପଦ୍ଧତ ଅନ୍ତର୍ଗତ ପଦ୍ଧତ ବିଶେଷ (କୁଳାର୍ଣ୍ଣବ ଗ୍ରନ୍ଥ)—4. A class of original Kāyasthas belonging to the Southern Rardhiya sect. ୫ । ଗୌଡ଼ଦେଶୀୟ ଶ୍ରୋତ୍ରିୟ ବ୍ରାହ୍ମଣମାନଙ୍କର ଉପାଧି ( ଅଭିଧା ମଙ୍ଗଳ )—5. The title of a class of Bengalee high caste Brahmins. ୬ । (+କର୍ମ ଅ) ଚୋରିତ ଦ୍ରବ୍ୟ; ଲୋପ୍ତ୍ର,—6. Stolen property. ଦେ. ବି—

ପଣ ୧ । ବାଜି; ପଣ—1. Wager; stake. ୨ । ବାଜି ରଖାଯାଇ ଖେଳାଯିବା ଖେଳ—2. A game of

ଦାବ hazard with wagers. [ଦ୍ର—ଖେଡ଼, ହୋଡ଼, ନଃ, ଭଡ଼, ନାନାରଙ୍ଗ ଖେଳ । ପ୍ରାଚୀ ଉତ୍ସବ ମଞ୍ଜୁଷା ।]

ହୋଡ଼ା—ସ. ବି. ପୁଂ—( ହୋଡ଼. ଧାତୁ=ହରଣ କରିବା+କର୍ତ୍ତ୍ରି ଡ଼; Hordā ହୋଡ଼୍ଡ଼, ୧ମା. ୧ବ )—ଚୋର ( ଶବ୍ଦକଳ୍ପଦ୍ରୁମ )—A (ହୋଡ଼ୀ—ସ୍ତ୍ରୀ) thief.

ହୋଡ଼ି (ଧାତୁ)—ସ—ହରଣ କରିବା; ଚୋରି କରିବା—
Hordi (root) To steal.

ହୋତା—ସ. ବଣ. ପୁଂ—(ହୁ. ଧାତୁ=ହୋମ କରିବା+କର୍ତ୍ତ୍ରି ତୃ; Hotā ହୋତୃ, ୧ମା ୧ବ)—ହୋମକାରୀ—Offering ghee (ହୋତ୍ରୀ—ସ୍ତ୍ରୀ) unto the fire. ବି—୧ । ଯେ ହୋମ କରେ; ହୋମକର୍ତ୍ତା ବ୍ୟକ୍ତି—1. A person offering ghee unto the sacrificial fire. ୨ । ଯାଗକାରୀ ବ୍ୟକ୍ତି—2. A person performing a vedic fire-sacrifice. ୩ । ଋଗ୍‌ବେଦବେତ୍ତା ବ୍ୟକ୍ତି—3. A person well-versed in the Rugbeda. ୪ । ବେଦଜ୍ଞ ବ୍ୟକ୍ତି—4. A person versed in the Bedas. ୫ । ହୋମ ବା ଯଜ୍ଞକାଳରେ ଋଗ୍‌ବେଦ ଗାନକାରୀ ପୁରୋହିତ—5. A preist who recites the Rugveda during a Homa. ୬ । ପୁରୋହିତ—6. A priest. ୭ । ମହାଦେବଙ୍କ ଅଷ୍ଟମୂର୍ତ୍ତି ମଧ୍ୟରୁ ଯଜମାନ ବା ହୋମକାରୀ ମୂର୍ତ୍ତି ବା ଅବତାର—7. One of the incarnations of God Śiba, as the performer of sacrifices. ୮ । ଯଜମାନ—8. A person who performs a vedic sacrifice with the help of officiating priests. ଦେ. ବି—ବ୍ରାହ୍ମଣମାନଙ୍କର ବଂଶୋପାଧି ବିଶେଷ; ଓଡ଼ା—A family-title of Brāhmaṇas.

ହୋଇ—ଦେ· ବି—(କ୍ରିୟାବାଚକ; ସଂ. ଭବନ୍ତ; ପ୍ରା. ହୋନ୍ତ=ହୁଏ)—Hoti ୧ । ହେବା—1. Being; to be. ୨ । ସମ୍ଭାବିତ

ହଓଯା ହେବା କଥା—2. A thing which will be done.

ହୋନା ୩ । ହିଁ; ସମ୍ମତ—3. Yes; affirmation. (ଯଥା—ସେ ମୋତେ ହୋଇ ନ ହୋଇ କିଛି କହିଲା ନାହିଁ । ) ପ୍ରଦେ (ଗଡ଼ଜାତ) କ୍ରି. ବଣ—(ସଂ. ତତ୍ର; ତଥା )—ସେଠାରେ; ତହିଁ—There.

ହୋତିଆଣୀ—ପ୍ରାଦେ· ( ସମ୍ବଲପୁର ) ବି. ସ୍ତ୍ରୀ—ହୋତା ଉପାଧିଧାରୀ Hotiāṇī ବ୍ରାହ୍ମଣଙ୍କ ସ୍ତ୍ରୀ—Title of the wife of a Brāhmaṇa bearing the family-title of Hotā.

ହୋଇ ନ ହୋଇ—ଦେ, ବି—୧ । ହେବା କମ୍ବା ନ ହେବା କଥା—Hoi na hoti 1. To be or not to be ୨ । ହିଁ ନ

ହଓଯା ନା ହଓଯା ନାହିଁ—2. Yes or no; affirmation or

ହୋନା ନ ହୋନା negation.

ହୋତ୍ର—ସଂ. ବି—(ହୁ. ଧାତୁ+ତ୍ର ତ୍ର)—୧ । ହୋମ; ଯଜ୍ଞ—1. A Hotra vedic sacrifice. ୨ । (+କରଣ ତ୍ର) ହବିଃ; ଘୃତ—2. Ghee.

ହୋତ୍ର ବାହନ—ସ. ବି(ନାମ)—ଋଷି ବିଶେଷ—Name of a sage. Hotra bāhana [ଦ୍ର—ଉର୍ବଶୀର ଯେ ହୋତ୍ର ବାହନ ସୁତାକ କୃଷ୍ଣସିଂହ. ମହାଭାରତ ବନ ।]

ହୋତ୍ରା—ସ. ବି—(ହୋତ୍ର+ଅ)—ସ୍ତୁତି (ଶବ୍ଦକଳ୍ପଦ୍ରୁମ)—
Hotrā Hymn.

ହୋତ୍ରୀ—ସଂ. ବି ଓ ବଣ—୧ । (ପୁଂ)—(ହୋତ୍ର+ଇନ୍, ୧ମା ୧ବ) Hotri —ହୋତା (ଦେଖ)—1. Hotā (See). ୨ । (ସ୍ତ୍ରୀ) —ହୋତାର ସ୍ତ୍ରୀଲିଙ୍ଗ—2. Feminine of Hotā. ୩ । (ସ୍ତ୍ରୀ)—ଶିବଙ୍କର ଅଷ୍ଟମୂର୍ତ୍ତି ମଧ୍ୟରୁ ଗୋଟିଏ; ଯଜମାନରୂପୀ ଶିବଙ୍କ ମୂର୍ତ୍ତି (ଅଭିଜ୍ଞାନ ଶକୁନ୍ତଳା ।)—3. An incarnation of Śiba in which he is said to have had vedic sacrifice performed.

ହୋତ୍ରୀୟ—ସଂ. ବଣ—(ହୋତ୍ର+ଈୟ)—୧ । ହୋତ୍ର ବା ହୋମ Hotrīya ସମ୍ବନ୍ଧୀୟ—1. Relating to Homa. ୨ । (ହୋତୃ+ ଈୟ)—ହୋତା ସମ୍ବନ୍ଧୀୟ—2. Relating to Hotā ବି—୧ । ହବିର୍ଗେହ; ହୋମଶାଳା (ହେମଚନ୍ଦ୍ର)—1. A room where Homa is performed. ୨ । ହବ୍ୟ ବା ଯଜ୍ଞଘୃତ ରଖିବାର ଗୃହ—2. A room for storing ghee for Homa.

ହୋପା(ପ୍ପା)—ବୈଦେ· ବି (ଅ —ହପ୍ପା (ଦେଖ)—
Hopā(ppā) Happā (See)
[ହୋପା(ପ୍ପା)ହୋ—ଅନ୍ୟରୂପ]

ହୋବ୍‌ (ଇତ୍ୟାଦି)—ବୈଦେ· ବି—ହବ୍‌ ଇତ୍ୟାଦି (ଦେଖ)—
Hob (etc) Hub etc. (See)

ହୋବ୍‌ହୁ—ବୈଦେ. ବଣ, ବି ଓ କ୍ରି. ବଣ (ଅ)—ହବ୍‌ହୁ (ଦେଖ)—
Hob-hu Hub-hu (See)

ହୋମ୍‌—ବୈଦେ. ବି (ଇଂ)—୧ । ଗୃହ—1. Home. ୨ । ଆଶ୍ରୟ Hom ସ୍ଥାନ—2. A shelter. ୩ । ସ୍ୱଦେଶ; ସ୍ୱରାଷ୍ଟ୍ର—3. One's country. ୪ । ମାତୃଭୂମି—4. Mother-country; motherland.
[ ଦ୍ର—ଏହି ଶବ୍ଦଯୁକ୍ତ ଇଂରାଜ ଶବ୍ଦମାନ ଭାଷାରେ

ଚଳନ୍ତି; ଯଥା—ହୋମ୍ ସେକ୍ରେଟେରି । ସାହେବମାନେ ବିଲାତକୁ ତାଙ୍କର ହୋମ୍ କହନ୍ତି । ]

ହୋମ୍ ଗଭର୍ଣ୍ଣମେଣ୍ଟ—ବୈଦେ. ବି, (ଇଂ)—(ଇଂରାଜମାନଙ୍କ ଦ୍ୱାରା Hom gabharnnament ବ୍ୟବହୃତ ଓ ସାମ୍ରାଜ୍ୟର ବ୍ରିଟିସ୍ होम् गभर्णमेण्ट् होमगवर्नमेंट ଔପନିବେଶିକ ଦେଶମାନଙ୍କ ତୁଳନାରେ ବ୍ୟବହୃତ)—ଇଂଲଣ୍ଡ ବା ବ୍ରିଟିସ୍ ସରକାର—The Government of the mother country; Home Government.

ହୋମ୍ ଟୀମ—ବୈଦେ. ବି—ଯେଉଁ ସ୍ଥାନରେ ପ୍ରତିଯୋଗିତା ଦ୍ୱାରା Hom ṭim କ୍ରିକେଟ୍, ଫୁଟବଲ ଖେଳ-ଲଢ଼େଇ ହେଉଥାଏ ଓ होमटिम ଅନ୍ୟ ସ୍ଥାନରୁ ଖେଳାଳି ଦଳ ପ୍ରତିଯୋଗିତା କରିବାକୁ होमटीम ଆସି ଥାଆନ୍ତି, ସେଠାରେ ଖେଳିବାକୁ ଉପସ୍ଥିତ ତତ୍ସ୍ଥାନର ବା ତଦ୍ଦେଶର ଖେଳାଳିଙ୍କ ଦଳ—Home team; the team of players belonging to the place or country where a competition game (match) is played.

ହୋମ୍ ଡିପାର୍ଟ୍‌ମେଣ୍ଟ—ବୈଦେ. ବି. (ଇଂ)—ଯେଉଁ ରାଜକୀୟ ବିଭାଗ Hom ḍipārt-ment ରାଜ୍ୟର ଅନ୍ତର୍ଦେଶିକ ଶାସନ କାର୍ଯ୍ୟ होमडिपार्टमेंट होमडिपार्टमेंट ବୁଝନ୍ତି—Home Department of a Government.

ହୋମ୍ ମେମ୍ବର—ବୈଦେ, ବି. (ଇଂ)—ଯେଉଁ ଉଚ୍ଚ କର୍ମଚାରୀ Hom member ହୋମ୍ ଡିପାର୍ଟ୍‌ମେଣ୍ଟର ଭାର ପ୍ରାପ୍ତ—Home होम मेम्बर होममेंबर member of the cabinet or Government of a country.

ହୋମ୍ ରୁଲ୍—ବୈଦେ. ବି. (ଇଂ)—ସ୍ୱରାଜ; ଦେଶୀୟ ବ୍ୟକ୍ତିମାନଙ୍କ Hom rul ଦ୍ୱାରା ସ୍ୱରାଜ୍ୟ ଶାସନ—Home rule; Swarāj. होमरुल होमरूल [ଦ୍ର—ସ୍ୱର୍ଗତା ଆନିବେସାଣ୍ଟ—ଭାରତବାସୀଙ୍କ ସ୍ୱାୟତ୍ତଶାସନ ଦାବୀ କରିବା ପାଇଁ ଭାରତରେ ହୋମ୍ ରୁଲ ଲିଗ୍ ନାମରେ ଗୋଟିଏ ସଙ୍ଘ ସ୍ଥାପନ କରିଥିଲେ । ବର୍ତ୍ତମାନ କଂଗ୍ରେସଙ୍କ ପ୍ରସ୍ତାବିତ 'ସ୍ୱରାଜ' ଆନ୍ଦୋଳନ ସେହି ହୋମ୍ ରୁଲ ନୀତିର ଚରମ ପରିଣତି ଅଟେ ।]

ହୋମ୍ ରୁଲ୍ ଲିଗ୍—ବୈଦେ. ବି (ଇଂ)—ଭାରତରେ ସ୍ୱାୟତ୍ତଶାସନ Hom rul lig ପ୍ରତିଷ୍ଠାର ଦାବୀ କରିବା ପାଇଁ ସ୍ୱର୍ଗତା होमरुल् लीग होमरूललीग ଆନିବେସାଣ୍ଟଙ୍କ ପ୍ରତିଷ୍ଠିତ ରାଜନୀତିକ ସଂଘ—Home-rule Leauge started by the late Annie Besant for claiming home-rule for Indian.

ହୋମ୍ ସେକ୍ରେଟେରି—ବୈଦେ. ବି—(ଇଂ)—ଯେଉଁ ସେକ୍ରେଟେରି Hom sekreṭeri ବା କର୍ମସଚିବ ହୋମ୍ ଡିପାର୍ଟ୍‌ମେଣ୍ଟର होमसेक्रेटारी होमसेक्रेटरी ପରିଚାଳନର ଭାରପ୍ରାପ୍ତ ହୋଇ ଥାଆନ୍ତି—Home Secretary.

ହୋମ—ସଂ. ବି ( ହୁ, ଧାତୁ + ଭାବ. ମ )—ଦେବଯଜ୍ଞ; ମନ୍ତ୍ରୋଚ୍ଚାରଣ Homa ପୂର୍ବକ ଦେବତା ଓ ପିତୃଲୋକଙ୍କ ଉଦ୍ଦେଶ୍ୟରେ ଯଜ୍ଞାଗ୍ନିରେ ଘୃତାହୁତି ଦାନରୂପ କର୍ମ—The act or rite of offering ghee unto fire by the recital of mystic formulae. [ଦ୍ର—ପଞ୍ଚ ମହାଯଜ୍ଞ ମଧ୍ୟରୁ ହୋମ ଏକତମ ଅଟେ । ବ୍ରହ୍ମଯଜ୍ଞ= ବେଦାଧ୍ୟୟନ; ପିତୃଯଜ୍ଞ=ତର୍ପଣ; ଦେବଯଜ୍ଞ=ହୋମ; ଭୂତଯଜ୍ଞ=ବୈଶ୍ୱଦେବ; ନୃଯଜ୍ଞ=ଅତିଥି ପୂଜନ । ମନ୍ତ୍ର ଜପ ନ କଲେ ମନ୍ତ୍ର ସିଦ୍ଧ ହୁଏ ନାହିଁ ଓ ତିଳୁ ମନ୍ତ୍ର ଉଚ୍ଚାରଣ ପୂର୍ବକ ଅଗ୍ନିରେ ଆହୁତି ନ ଦେଲେ, ଅର୍ଥାତ୍ ହୋମ ନ କଲେ ଜପ ଫଳପ୍ରଦ ହୁଏ ନାହିଁ ।

ପ୍ରଥମେ ହୋମ କରିବାର ସଂକଳ୍ପ ବାକ୍ୟ ଉଚ୍ଚାରଣ କରି ଯଜ୍ଞଭୂମିକୁ ବା ହୋମ ଭୂମିକୁ ଗୋମୟରେ ଲିପି ସଂସ୍କୃତ କରି ତା ଉପରେ ପୂର୍ବ ଅଗ୍ରକୁ ବା ଉତ୍ତର ଅଗ୍ରକୁ ଅଗ ଥିବା ତିନୋଟି ଲେଖା ଏଁରେଖା କାଟି ତହିଁ ଉପରେ ଗୁଡ଼ିଏ କୁଶ ବିଛାଇ କୁଶ ଉପରେ ହୋମ କୁଣ୍ଡ ବା ହୋମ-ବେଦୀ ସ୍ଥାପନ କରିବ ଓ ତହିଁରେ ଅଗ୍ନିଦେବଙ୍କୁ ମନ୍ତ୍ର ଦ୍ୱାରା ଆବାହନ କରି ଆଣି ସ୍ଥାପନ କରିବ । ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ କରାଯିବା ହୋମରେ ଭିନ୍ନ ଭିନ୍ନ ନାମଧେୟ ଅଗ୍ନିଙ୍କୁ ସ୍ଥାପନ କରିବାକୁ ହୁଏ । ତତ୍‌ପରେ ଅଗ୍ନି, ଧର୍ମ, ଓ ଦିଗପାଳ ଆଦି ଦେବତା ଓ ଭୂଃ, ଭୁବଃ, ସ୍ୱଃ ଆଦି ଲୋକଙ୍କ ନାମ ଓ ମନ୍ତ୍ର ଉଚ୍ଚାରଣ ପୂର୍ବକ ଅଗ୍ନିରେ ଘୃତ ଢାଳି ଆହୁତି ଦେବ । ତତ୍ପରେ ଯେଉଁ ଦେବତାଙ୍କ ଉଦ୍ଦେଶ୍ୟରେ ହୋମ କରା ଯାଉଥିବ ତାଙ୍କ ନାମ ଓ ମନ୍ତ୍ର ଉଚ୍ଚାରଣ ପୂର୍ବକ ନିର୍ଦ୍ଦିଷ୍ଟ ସଂଖ୍ୟକ ଆହୁତି ଦେବ । ତତ୍ପରେ ଅନ୍ୟ ଦେବତାମାନଙ୍କୁ ଆହୁତି ଦେଇ ସର୍ବଶେଷରେ ପୂର୍ଣ୍ଣାହୁତି ଦେଇ ନିଜ ଇଷ୍ଟଦେବତାଙ୍କୁ ସ୍ମରଣ କରି ହୋମ ଶେଷ କରିବ । ହୋମ କରିବା ସମୟରେ ଆହୁତି ସଙ୍ଗେ ଆହୁତି-ଦାତାଙ୍କ ଛଡ଼ା ଅନ୍ୟ ବ୍ୟକ୍ତିମାନେ ମଧ୍ୟ ଚରୁ (ମିଷ୍ଟାନ୍ନ) ଓ ସମିଧ (କାଷ୍ଠ) ଅଗ୍ନିରେ ନିକ୍ଷେପ କରୁ ଥାଆନ୍ତି ।)

ହୋମକ—ସଂ. ବି. ପୁଂ (ହୁ ଧାତୁ + କର୍ତ୍ତୃ ଅକ)—ହୋତା (ଦେଖ) Homaka Hotā (See).

ହୋମ କରିବା—ଦେ. କ୍ରି—ମନ୍ତ୍ରୋଚ୍ଚାରଣପୂର୍ବକ ଅଗ୍ନିରେ ଦେବୋ-Homa karibā ଦ୍ଦେଶରେ ଆହୁତି ଦେବା—होम करा होम करना To pour ghee unto the sacrificial fire by reciting mystic formulae.

ହୋମ କୁଣ୍ଡ—ସ. ବି—ହୋମାର୍ଥ କୁଣ୍ଡ; ହବନୀ; ଯେଉଁ କୁଣ୍ଡ ମଧ୍ୟରେ Homa kuṇḍa ଅଗ୍ନି ସ୍ଥାପନପୂର୍ବକ ଆହୁତି ଦିଆଯାଏ—A tub or receptacle in which the sacrificial fire is ignited and ghee offered.

ହୋମ ଘର—ପ୍ରାଦେ (ଯାଜପୁର) ବି—ଆଶୀର୍ବାଦଘର; ଦ୍ୱିରାଗମନ; Homa ghara ଦ୍ୱିରାଗମନ ଉତ୍ସବ—The ceremony of consummation of marriage.

ହୋମ ଘିଅ—ଦେ. ବି—ହୋମ ଘୃତ; ହୋମ ନିମନ୍ତେ ଅର୍ଥାତ୍ ଆହୁତି Homa ghia ଦେବା ପାଇଁ ଆବଶ୍ୟକ ଘୃତ—होमेर घि होमका घी Ghee intended for Homa.

[ଦ୍ର—ହୋମ ଘିଅ କୁକୁର ଖାଇବା ବା ହୋମ ଘିଅ କୁକୁରକୁ ଦେବା—ଦେ. ପ୍ରବଚନ; ଦେବତାଙ୍କ ଉଦ୍ଦେଶ୍ୟରେ ଲାଗିବା ପାଇଁ ଯେଉଁ ଘିଅ ଆସିଥାଏ, ତାହା କୁକୁର ପରି ହୀନ ଜୀବର ଖାଇବା ଭଳି, ସତ୍କାର୍ଯ୍ୟ ପାଇଁ ଉଦ୍ଦିଷ୍ଟ ପଦାର୍ଥ ଅସତ୍ କାର୍ଯ୍ୟରେ ଲାଗିଲେ, କିମ୍ବା ଦେବତାଙ୍କ ଓ ମହତ୍ ବ୍ୟକ୍ତିଙ୍କ ଉପଭୋଗ୍ୟ ବସ୍ତୁକୁ ହୀନ ବ୍ୟକ୍ତି ଉପଭୋଗ କଲେ ଏହି ଉକ୍ତାଖବଚନ ବୋଲାଯାଏ ।]

ହୋ ମଚା(ଚେ)ଇବା—ଦେ. କ୍ରି—ଗୋଟାଏ ଘୋଉଘାଉର ସୂତ୍ରପାତ କରିବା
Ho matā(te)ibā —To initiate a noise or set up a row.
হোহা করা होहा मचाना

ହୋମ ଦକ୍ଷିଣା—ସଂ. ବି—ହୋମରେ ମନ୍ତ୍ରାଦି ଉଚ୍ଚାରଣ କରିବା ଆଦି
Homa dakshiṇā କାର୍ଯ୍ୟରେ ନିଯୁକ୍ତ ପୁରୋହିତଙ୍କୁ
[ହୋମଦଖିଣା—ଦେ. ରୂପ] ଓ ହୋମ ସମାପନାନ୍ତେ ସେଠାରେ ଉପସ୍ଥିତ ବ୍ରାହ୍ମଣମାନଙ୍କୁ ଦିଆଯିବା ଧନ—Cash presents given to priests and Brāhmaṇas on the completion of a Homa.

ହୋମ ଧାନ୍ୟ—ସଂ. ବି—ତିଳ (ରାଜନିଘଣ୍ଟୁ)—
Homa dhānya Sessamum seed.

ହୋମ ଧୂମ—ସଂ. ବି (ମ. ପ. ଲେ)—ହୋମାଗ୍ନିରୁ ଉଠୁଥିବା ଧୂଆଁ—
Homa dhūma Smoke rising from a sacrificial fire.

ହୋମ ଧେନୁ—ସଂ. ବି (ମ. ପ. ଲେ)—ଯେଉଁ ଗାଈର ଦୁଧରୁ ପ୍ରସ୍ତୁତ
Homa dhenu ଘୃତ ହୋମରେ ଲାଗେ ଓ ହୋମ ଘିଅ ଯୋଗାଇବା ପାଇଁ ଯେଉଁ ଗାଈ ରଖାଯାଇଥାଏ—A cow kept for the express purpose of supplying ghee for the Homa.

ହୋମ ପାତ୍ର—ସଂ. ବି—ହୋମ ଉପଲକ୍ଷରେ ଦୁଗ୍ଧ ଓ ଜଳ ଆଦି ରଖାଯିବା
Homapātra ପାଇଁ ଓ ଆହୁତି ଦିଆଯିବାରେ ବ୍ୟବହୃତ ପାତ୍ର [ଯଥା— ସ୍ରୁବ, ସ୍ରୁଚ]—
Spoons and cups used in Homa.

ହୋମ ବେଦିକା(ବେଦୀ)—ସଂ ବି—ମାଟିର ବା ବାଲିର ଯେଉଁ ମଣ୍ଡ-
Homa bedikā (bedī) ସଂସ୍କୃତ ବେଦୀ ଉପରେ ଅଗ୍ନି ସ୍ଥାପନପୂର୍ବକ ହୋମ କରାଯାଏ—
An altar made of earth or sand on which Homa is performed.

ହୋମ ଭସ୍ମ—ସଂ ବି—ହୁତ ଭସ୍ମ; ହୋମାଗ୍ନି ଲିଭିଯିବା ପରେ
Homa bhasma ହୋମକୁଣ୍ଡରେ ରହିଯିବା ପାଉଁଶ—
Ashes remaining after the extinction of the Homa-fire.

ହୋମର୍—ବୈଦେ. ବି (ଗ୍ରୀକ୍ ନାମ ହୋମେରସ୍‌ରୁ ଇଂ. ନାମକରଣ)—
Homar ପ୍ରସିଦ୍ଧ ପ୍ରାଚୀନ ଗ୍ରୀକ୍ ମହାକାବ୍ୟ ଇଲିଅଡ୍ ଓ
হোমর होमर ଓଡିସୀର ରଚୟିତା ପ୍ରାଚୀନ ଗ୍ରୀକ୍ କବି—Homer, the great author of the Greek epics Iliad and Odyssy.

[ଦ୍ର—କେହି କେହି ଅନୁମାନ କରନ୍ତି ଯେ ଖ୍ରୀଷ୍ଟପୂର୍ବ ଦଶମ ଶତାବ୍ଦୀରେ ଏ ଜନ୍ମଗ୍ରହଣ କରିଥିଲେ । ଏହାଙ୍କର ଜନ୍ମ ସ୍ଥାନ ଓ ଜନ୍ମ କାଳ ଅଦ୍ୟ ପର୍ଯ୍ୟନ୍ତ ନିଃସନ୍ଦେହରୂପେ ନିର୍ଣ୍ଣୀତ ହୋଇ ପାରି ନାହିଁ । ଏହାଙ୍କ ରଚିତ ଏ ଦୁଇଟି ମହାକାବ୍ୟ ହିନ୍ଦୁମାନଙ୍କ ମହାଭାରତ ଓ ରାମାୟଣ ପରି ପ୍ରକାଣ୍ଡ ଗ୍ରନ୍ଥ । ଏହି ପ୍ରତ୍ୟେକ ଗ୍ରନ୍ଥ ୨୪ଟି ଲେଖାଏ ଖଣ୍ଡ(କାଣ୍ଡ ବା ସର୍ଗ)ରେ ବିଭକ୍ତ ।]

ହୋମ ଶାଳ—ଦେ. ବି. (ସଂ. ହୋମଶାଳା)—ଯେଉଁ ଘରେ ହୋମ
Homa śāla କରାଯାଏ—A house in which
(ହୋମଶାଳା—ସଂ. ରୂପ) Homa is performed.

ହୋମ ସାଧନ—ସଂ ବି—୧ । ହୋମ ପାତ୍ର ( ଦେଖ )—
Homa sādhana 1. Homapātra (See)
୨ । ହୋମ ସାମଗ୍ରୀ ( ଦେଖ )—2. Homa sāmagrī (See).

ହୋମ ସାମଗ୍ରୀ—ସଂ ବି—ହୋମ ନିମନ୍ତେ ଆବଶ୍ୟକ ସରଞ୍ଜାମ—
Homa sāmagrī Materials or articles
(ହୋମସାମିଗ୍ରି—ଗ୍ରାମ୍ୟରୂପ) required for Homa.

ହୋମାଗ୍ନି—ସଂ ବି—ଯଜ୍ଞାଗ୍ନି; ହୋମ ବା ଯଜ୍ଞ ପାଇଁ ସ୍ଥାପିତ ଅଗ୍ନି—
Homāgni Fire set up for Homa.

ହୋମି—ସଂ. ବି (ହୁ ଧାତୁ + କରଣ ମି)—୧ । ଅଗ୍ନି (ମେଦିନୀ)—
Homi 1. Fire. ୨ । ଘୃତ (ମେଦିନୀ)—2. Ghee.
୩ । ଜଳ (ଶବ୍ଦ ରତ୍ନାବଳୀ)—3. Water.

ହୋମିଓ ପା(ପ୍ୟା)ଥ୍—ବୈଦେ. ବି ( ଇଂ )—ହୋମିଓପାଥି ଚିକିତ୍ସା
Homio pā(pyā)th ବ୍ୟବସାୟୀ ଡାକ୍ତର—
হোমিওপ্যাথ होमियपैथ A Homoeopath.

ହୋମିଓପା(ପ୍ୟା)ଥି—ବୈଦେ. ବି (ଇଂ)—ଜର୍ମାନୀର ଡାକ୍ତର ହାନି-
Homiopā(pyā)thi ମ୍ୟାନଙ୍କ ଦ୍ୱାରା ଆବିଷ୍କୃତ ଚିକିତ୍ସା ପ୍ରଣାଳୀ
হোমিওপ্যাথি होमियपैथी —Homoeopathy.
[ଦ୍ର—ଏ ଚିକିତ୍ସା ପ୍ରଣାଳୀର ମୂଳନୀତି ଏହି ଯେ, ଯେଉଁ ଯେଉଁ ବସ୍ତୁର ଅଧିକ ପରିମାଣରେ ବ୍ୟବହାର ବା ସେବନ କଲେ ଯେଉଁ ଯେଉଁ ଲକ୍ଷଣମାନ ପ୍ରକାଶ ହୁଏ, ତାହା ସେହି ଲକ୍ଷଣ ବିଶିଷ୍ଟ ରୋଗମାନ ସେହି ସେହି ବସ୍ତୁର ସାମାନ୍ୟ ମାତ୍ରାରେ ପ୍ରୟୋଗଦ୍ୱାରା ଆରୋଗ୍ୟ ହୁଏ । ହାନି(ନି)ମାନ (ଦେଖ) ନାମକ ସ୍ୱର୍ଗତ ଜର୍ମାନ୍ ଡାକ୍ତର ଏ ଚିକିତ୍ସା ପ୍ରଣାଳୀର ପ୍ରବର୍ତ୍ତକ] ବିଣ—ହୋମିଓପାଥିକ୍ (ଦେଖ)
Homiopāthik (See)

ହୋମିଓ ପା(ପ୍ୟା)ଥିକ୍—ବୈଦେ. ବିଣ (ଇଂ)—ହୋମିଓପାଥି ସମ୍ବନ୍ଧୀୟ
Homio pā(pyā)thik —Homoeopathic.
ବି—ହୋମିଓପାଥି (ଦେଖ)—Homiopāthi (See)
হোমিওপ্যাথিক होमियपैथिक

ହୋମିଓପାଥିକ୍ ମାତ୍ରା—ଦେ. ବି ( ଲକ୍ଷଣାର୍ଥ )—ଅତି ସୂକ୍ଷ୍ମ ମାତ୍ରା ବା
Homiopāthik mātrā ପରିମାଣ—Very small or
[ହୋମିଓପାଥିକ୍ ଡୋଜ୍—ବୈଦେ. ରୂପ] slight dose or quantity; homoeopathic dose.

[ଦ୍ର—ହୋମିଓପାଥିକ୍ ଶାସ୍ତ୍ରରେ ପ୍ରୟୋଗ କରାଯିବା ଔଷଧ ପ୍ରସ୍ତୁତ କରିବାପାଇଁ ମୌଳିକ ବସ୍ତୁକୁ ସମପରିମିତ ସୁଗ୍ର ସାରରେ ମିଶାଇ ସେଥିରୁ ଅଧେ ଫିଙ୍ଗି ଦେଇ ବାକି ଅଧକରେ ପୁଣି ସମ ପରିମିତ ସୁଗ୍ରସାର ମିଶାଯାଏ। ଏହି ପ୍ରଣାଳୀରେ ଶହେ ଥର ବା ହଜାରେ ଥର ସୁଗ୍ରସାର ମିଶା ହେବା ପରେ ଉକ୍ତ ଦ୍ରବ୍ୟ ଅତି ଶକ୍ତିବନ୍ତ ହୁଏ ଓ ସେହି ଶକ୍ତିବନ୍ତ ଦ୍ରବ୍ୟ ଅତି ସାମାନ୍ୟ ମାତ୍ରାରେ ରୋଗୀଙ୍କ ପ୍ରତି ପ୍ରୟୋଗ କରାଯାଏ । ଏଥିପାଇଁ ଅତି ସୂକ୍ଷ୍ମ ମାତ୍ରାକୁ ହୋମିଓପାଥିକ୍ ମାତ୍ରା ବୋଲାଯାଏ]

হোমিওপ্যাথিকমাত্রা होमिओपैथीक मात्रा

ହୋମୀ—ସଂ. ବି. ପୁଂ (ହୋମ+ଇନ୍; ୧ମା; ୧ବ)—ହୋତା; ହୋମ-
Homī କର୍ତ୍ତା—One who performs Homa.

ହୋମୀୟ—ସଂ. ବିଣ—(ହୋମ+ଈୟ)—ହୋମ ସମ୍ବନ୍ଧୀୟ—
Homīya Relating to Homa.

ହୋମ୍ୟ—ସଂ. ବି—(ହୋମ+ଯ)—ହୋମ ସାମଗ୍ରୀ; ହୋମୀୟଦ୍ରବ୍ୟ—
Homya Any material or thing required for Homa.

ହୋୟ—ପ୍ରାଦେ (ଉତ୍ତରଖଣ୍ଡ) ଅ—ହଁ—
Hoya Yes.

ହୋୟଦେ—ପ୍ରାଦେ (ଉତ୍ତରଖଣ୍ଡ) କ୍ରି—(ମୁଁ) ହୋଇପାରେଁ; ଥାଇପାରେଁ
Hoyade —(I) May be.

ହୋୟେ—ପ୍ରା. କ୍ରି—(ପ୍ରାଚୀନ ପ୍ରୟୋଗ; ହୁଏ ର ବିକଳ୍ପ ରୂପ)—ହୁଏ
Hoye (ଦେଖ)—Hue (See). [ଦ୍ର—ତନୁ ରୋମାଞ୍ଚିତ ହୋୟେ ଜଘନ—ପ୍ରତାପ ଶଶିରେଖା]

ହୋରା—ସଂ. ବି—(ହୋର୍ ଧାତୁ=ଗମନ କରିବା+କର୍ତ୍ତୃ ଅ+ଆ)—
Horā ୧ । (ଜ୍ୟୋତିଷ)—ଲଗ୍ନ—(astrology) Lagna (See). ୨ । (ଜ୍ୟୋତିଷ) ରାଶ୍ୟର୍ଦ୍ଧ; ରାଶି ପରିମାଣର ଅର୍ଦ୍ଧାଂଶ—2. Half of a Zodiacal sign. ୩ । ରେଖା—3. Line. ୪ । ସାର୍ଦ୍ଧଦଣ୍ଡ ଦ୍ୱୟ ପରିମିତ କାଳ; ୧ ଘଣ୍ଟା; ୬୦ ମିନିଟ୍—4. One hour. ୫ । ହିନ୍ଦୁ ଶାସ୍ତ୍ର ବିଶେଷ ( ଏତଦ୍ଦ୍ୱାରା ସମୟ ଗଣନା କରାଯାଏ—5. Title of a Hindu astronomical science. [ଦ୍ର—ଅର୍ଦ୍ଧରାତ୍ରି (midnight) ର ପରଠାରୁ ହୋରାର ଗଣନା ଆରମ୍ଭ ହୁଏ । ଅହୋରାତ୍ରକୁ ୨୪ ବେଳା ବା ହୋରାରେ ବିଭକ୍ତ କରାଯାଏ । (ବହ୍ନିପୁରାଣ ଗଣଭେଦ ନାମାଧ୍ୟାୟ); ଏହି କାଳ ନିରୂପଣ ଓ ଗଣନା ଅନୁସାରେ ଆଧୁନିକ ପାଶ୍ଚାତ୍ୟ ଜଗତର ଘଣ୍ଟା (Hour) ଗଣନା ହୋଇଥିବା ଅନୁମାନ କରାଯାଏ । କେହି କେହି କହନ୍ତି 'ହୋରା' ଶବ୍ଦ ଗ୍ରୀକ୍‌ମାନଙ୍କଠାରୁ ସଂସ୍କୃତରେ ଗୃହୀତ ହୋଇଅଛି ]

ହୋରାଇଜ(ଜେ)ଣ୍ଟ(ଣ୍ଟା)ଲ୍ ବାର୍—ବୈଦେ. ବି (ଇଂ)—ସ୍କୁଲ ଛାତ୍ର-
Horāija(je)nta(ntā)l bār ମାନଙ୍କ ଖେଳିବାପାଇଁ ବ୍ୟବହୃତ ଏକପ୍ରକାର ଲୁହାର ଛଡ଼—Horizontal bar.

(ଦ୍ର—ଦୁଇଟି କାଠର ଖୁଣ୍ଟ ପୋତା ହୋଇ ମନୁଷ୍ୟଙ୍କ ଉଚ୍ଚତାକୁ ଦୃଷ୍ଟି ଗୋଟିଏ ଲୁହାର ଛଡ଼ ଉକ୍ତ ଦୁଇକାଠ ଉପରେ ଲଗା ଥାଏ ଓ ସେହି ଛଡ଼କୁ ଅବଲମ୍ବନ କରାଯାଇ ଦୃଶ୍ୟରେ ନାନା ପ୍ରକାର ବ୍ୟାୟାମ କ୍ରୀଡ଼ା ପ୍ରଦର୍ଶିତ ହୁଏ ।]

ହୋରା ବିଜ୍ଞାନ (ଶାସ୍ତ୍ର)—ସଂ. ବି—କାଳ ନିର୍ଣ୍ଣୟସୂଚକ ଜ୍ୟୋତିଷ ଶାସ୍ତ୍ର—
Horā bijnāna(śāstra) A science or book for astronomical calculation of time.

ହୋରି—ଦେ. ବି—୧ । ହୁଲିକ; ହୁରି; ହଲ୍ଲା, ଗୋଳମାଳ; ଘୋଓଘା—
Hori 1. Halloo; noise. ୨ । ଉଚ୍ଚଡାକ—
হোহা होहल्ला 2. Loud call; vociferation. ୩ । ଦୋଳୋତ୍ସବ—3. The Dola festival. ୪ । (ସଂ. ହୋଲାକା)—ହୋଲକା (ଦେଖ) 4. Holākā (See).

ହୋରିଆ—ପ୍ରାଦେ ( ଗଡ଼ଜାତ ) ବି—କାହାଣୀରେ ବ୍ୟବହୃତ ଅସୁର
Horiā ଜାତୀୟ ଡକାଇତ—Dacoit amongst demons mentioned in the folktales.

ହୋରିଆ ଲୋ—ପ୍ରାଦେ (ଗଡ଼ଜାତ) ଅ—(ଭୁଲ. ହୋରେ ବାୟା ହୋ !)
Horiā lo —କାପଡ଼ା ବା ବାୟା ଚଢ଼େଇଙ୍କ ପକ୍ଷୀଙ୍କର ଧାନ ବା ଶସ୍ୟ କଅଁଳରେ ପକ୍ଵ ଶସ୍ୟ ନଷ୍ଟ କରୁଥିବା ଅବସ୍ଥାରେ ସେମାନଙ୍କୁ ତଡ଼ୁଡ଼ାଇବା ପାଇଁ ବ୍ୟବହୃତ ଉକ୍ତି. ଡାକ—Loud exclamation made by persons for scaring away birds from corn fields [ଦ୍ର--ହୋରିଅଲୋ, ହୋରିଅଲୋ, ମାଣ୍ଡିଅବୋଉ, ସର-ଗଲଛି, ଅରୁ କାହିଁକି, ଉଡ଼ିଗଲଛୁ, ହୋରିଅଲୋ—ଶିଶୁଗୀତ ।]

ହୋରି ଖେଳ—ଦେ. ବି—ହୋଲି ଖେଳ (ଦେଖ)—
Hori khela Holi khela (See

ହୋରି ଗୀତ—ଦେ. ବି—ହୋଲିଗୀତ (ଦେଖ)—
Hori gita Holi gita (See).

ହୋରେ—ଦେ—(ଧ୍ୱନ୍ୟନୁକରଣ) ଅ—ଧୋରେ (ଦେଖ)—
Hore Dhore (See

ହୋରେ ବାଇଆ(ବାୟା) ହୋ—ଦେ—(ଶିଶୁବଚନ) ଅ—ଧୋରେ
Hore bāiā ho ବାୟା ଧୋ (ଦେଖ)—Dho-ore bāyā dho (See).

ହୋ ରେ ମାତିବା—ଦେ. କ୍ରି—୧ । ସୋରାରେ ଯୋଗଦେବା—1. To
Ho re mātibā join in a noise. ୨ । ବୃଥା ଗଣ୍ଡଗୋଳରେ
গোলমালে মাতা ଲିପ୍ତ ହେବା—2. To run after the
हो़हामें मचहोना wild goose. ୩ । ନିଷ୍ଫଳ ବିଷୟରେ ମାତିବା—3. To be engaged in a fruitless task.

ହୋରେଶ—ବୈଦେ. ବି—( ରୋମୀୟ କାମର ଇଂରାଜି ନାମକରଣ )—
Horace ରୋମ୍‌ର ପ୍ରାଚୀନ କବି ବିଶେଷ—Horace. [ଦ୍ର—
হোরেশ ଏ ପ୍ରଥମେ ସୈନିକ ଥିଲେ, କିନ୍ତୁ ଅତ୍ୟନ୍ତ ଭୀରୁ ଥିବାରୁ
हरेश ସୈନ୍ୟ ବୃତ୍ତି ଛାଡ଼ି କବିତା ରଚନାରେ ଲାଗିଲେ ଓ ତତ୍‌କାଳୀନ ରୋମ୍ ସମ୍ରାଟ୍‌ଙ୍କ ସଭାକବି ହେଲେ । ଏ

ଅତ୍ୟନ୍ତ ବଳାସପ୍ରିୟ ଥିଲେ । ଏ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ଲୋକ । ଏହାଙ୍କର ଗାଁଛକା (ଓଡ୍)ମାନ (odds)ପ୍ରସିଦ୍ଧ ।]

ହୋଲ୍—ବୈଦେ. ବ—(ଇଂ)—ସମୁଦାୟ—Whole. ବିଣ— Hol ସମୁଦାୟ—Whole. ପ୍ରାଦେ (ବଲଙ୍ଗିର ପାଟଣା) ବ— ହୋଲ୍ ହୋଲ ଫାଲ୍ଗୁନ ମାସ—The month of Fālguna;

ହୋଲ୍ ଟାଇମ୍(ମି, ନ୍, ନି)—ବୈଦେ. ବ—(ଇଂ. ହୋଲ୍ ଟାଇମ୍) ୧ Hol ṭaim(mi, n, ni) ସମୁଦାୟ ବେଳ—1. Whole ହୋଲ ଟାଇମ time. ୨ । ଦିନସାରା ସବୁବେଳ—2. The होलटाईम whole of a day. ବିଣ—ସବୁବେଳ ଅର୍ଥାତ ଦିନର ୨୪ଘଣ୍ଟା ପାଇଁ ନିଯୁକ୍ତ—Engaged for the whole day; engaged for whole time.

ହୋଲ ଟାଇମ୍ ଗୁକର—ଦେ. ବ—ଯେଉଁ ଗୁକର ପ୍ରଭୁଙ୍କ ପାଖେ ଦିନର Hol ṭaim chākara ୨୪ଘଣ୍ଟାଯାକ ରହି ଗୁକରି କରାଏ—A ହୋଲଟାଇମ ଚାକର whole time servant. होल टाईम नौकर

ହୋଲଟାଇମ୍ ଗୁକର—ଦେ. ବ—ଯେଉଁ ଗୁକରରେ ଭୃତ୍ୟକୁ ଦିନସାରା Hol ṭaim chākiri ୨୪ଘଣ୍ଟାକାଳ ପ୍ରଭୁଙ୍କ ଆଜ୍ଞାବହ ହୋଇ ହୋଲଟାଇମ ଚାକୁରି ରହିବାକୁ ପଡ଼େ—Whole time service. होलटाइम नौकरी

ହୋଲ୍ ଟାଇମ୍ ଟିଉଟର (ଟିଚର, ମାଷ୍ଟର)—ବୈଦେ ବ—(ଇଂ)— Hol ṭaim ṭiuṭar (ṭichar, māshṭar) ଯେଉଁ ଶିକ୍ଷକ (ହୋଲ୍ ଟାଇମ ଶିକ୍ଷକ—ଦେ. ରୂପ) ପିଲାଙ୍କୁ ପଢ଼ାଇବା ଓ ପିଲା ହୋଲଟାଇମ ଟିଉଟର ସଙ୍ଗେ ସଙ୍ଗେ ସର୍ବଦା ରହିବା ପାଇଁ ରଖା होलटाइम ट्यूटर ଯାଇଥାଆନ୍ତି—A whole time tutor or teacher.

ହୋଲ୍ ତମାମ୍—ବୈଦେ. କ୍ରି. ବିଣ—(ଇଂ ହୋଲ୍ ଓ ଫା ତମାମ୍)— Hol tamām ସମୁଦାୟଯାକ—Throughout the whole; ହୋଲତମାମ होलतमाम the whole.

ହୋଲ—ପ୍ରାଦେ (ମୟୂରଭଞ୍ଜ) ବ—ଭୁଆପଥର (ଦେଶଜ ଅଣ୍ଡା)— Hola Hailstone.

ହୋଲ—ପ୍ରାଦେ (ମେଦନାପୁର ଓ ବାଲେଶ୍ୱର) ବ—(ଭୁଲ, ସଂ. ସ୍ଥୂଳ= Hola ଶୁକ୍ର; ରେତଃ)—ମୁଷ୍କ; ଅଣ୍ଡକୋଷ—Testicle.

ହୋଲକା—ସଂ. ବ—ହୋଲକା (ଦେଖ)— Holakā Holākā (See).

ହୋଲକାର—ଦେ. ବ—ହୋଲ୍କାର (ଦେଖ)— Holakāra Hol-kāra (See).

ହୋଲଗା—ପ୍ରାଦେ (ବାଲେଶ୍ୱର) ବଣ—ଢ଼ିଲା— Holagā Loose; slack.

ହୋଲା—ଦେ. ବ—କ୍ଷୁଦ୍ର ନୌକା ବିଶେଷ— Holā A kind of small boat. ଡ଼ିଙ୍ଗି छोटीडोंगी

ହୋଲାକ—ସଂ. ବ—(ହୋଡ଼ୁ ଧାତୁ+ଭାବ ଅକ)—ଧୂମସ୍ନାନ ହବକ Holāka ଘସିଗୁଡ଼ିକୁ ଶଯ୍ୟା ତଳେ ରଖି ଶୋଇବା ବ୍ୟକ୍ତିଙ୍କ ଦେହରେ ବାଷ୍ପାକରଣ ପୂର୍ବକ ଗ୍ରହଣ କରାଯିବା ସ୍ୱେଦ ବା ସେକ (ଭାବ-ପ୍ରକାଶ)—Fomentation or fumigatory bath taken by keeping a firepot of burning cowdung cakes below one's bed.

ହୋଲାକା—ସଂ ବ—(ହୋଡ଼ୁ ଧାତୁ+ଅଧିକରଣ ଅକ+ଆ)—ହୋଲି Holākā ଉତ୍ସବ; ଫାଲ୍ଗୁନ ପୂର୍ଣ୍ଣିମା ସମୟରେ ଅନୁଷ୍ଠିତ ଉତ୍ସବ; ଦୋଲଯାତ୍ରା; ମଦନ ଉତ୍ସବ; ବସନ୍ତୋତ୍ସବ (ଦାୟଭାଗ)— The Dolajātrā festival in the bright lunar fortnight of the month of falguna. (ଦ୍ର—ଏ ଉତ୍ସବରେ ରାଧାକୃଷ୍ଣଙ୍କ ମୂର୍ତ୍ତିଙ୍କୁ ନେଇ ହିନ୍ଦୁମାନେ ଦୋଲବେଦିରେ ଦୋଳରେ ଖେଳାନ୍ତି ଓ ପରସ୍ପର ଅବିର ଫୋପାଡ଼ି, ପିଚକାରୀ ମଧ୍ୟ ମାରନ୍ତି । ଏହା ଫାଲ୍ଗୁନ ପୂର୍ଣ୍ଣିମାର ୪ ଦିନ ପୂର୍ବରୁ ଆରମ୍ଭ ହୋଇ ପୂର୍ଣ୍ଣିମା ବାସିଦିନ 'ଯମୁନାଗାଧୁଆ'ରେ ଶେଷ ହୁଏ । କେତେକ ସ୍ଥଳରେ ପୂର୍ଣ୍ଣିମା ପରେ ପଞ୍ଚମୀ ପର୍ଯ୍ୟନ୍ତ ମଧ୍ୟ ଯାତ୍ରାଆଦି ଅନୁଷ୍ଠିତ ହୁଏ । ଏହି ସମୟରେ ଲୋକେ (ବିଶେଷତଃ ପଶ୍ଚିମା ଓ ମାରୁଆଡ଼ୀମାନେ ସ୍ତ୍ରୀ ପୁରୁଷ ନିର୍ବିଶେଷରେ ଗୀତ ବୋଲି ଗ୍ରାମଗ୍ରାମାନ୍ତର ବୁଲନ୍ତି । ଦାୟଭାଗରୁ ଦେଖାଯାଏ, ଏ ଉତ୍ସବ ବା ଅଗ୍ନି ପ୍ରାଚ୍ୟ (ପଶ୍ଚିମା)ମାନେ ପ୍ରଥମେ କରୁଥିଲେ ଓ ତାଙ୍କ ଦେଖାଦେଖି ପ୍ରାଚ୍ୟଦେଶବାସୀମାନେ ଏହା କର୍ତ୍ତବ୍ୟ ବୋଲି ସ୍ୱୀକାର କରି ଅନୁଷ୍ଠାନ କଲେ । ଏଥିପାଇଁ ଏକ ଅଞ୍ଚଳରୁ ଦେଖି ଅନ୍ୟ ଅଞ୍ଚଳବାସୀମାନେ କୌଣସି ଆଗୁରକୁ ଅବଶ୍ୟ-କର୍ତ୍ତବ୍ୟ ବୋଲି ଗ୍ରହଣ ଓ ପାଳନ କଲେ ତାକୁ 'ହୋଲାକାଧି-କରଣ ନ୍ୟାୟ' ବୋଲାଯାଏ ।] ପ୍ରାଦେ (ଗଡ଼ଜାତ) ବ— ୧ । ଫାଲ୍ଗୁନ ପୂର୍ଣ୍ଣିମାରେ ଜଳିବା ଅଗ୍ନି—1. Bonfire lighted on the night of the full moon day of Fālguna. ୨ । ଫାଲ୍ଗୁନ ପୂର୍ଣ୍ଣିମାରେ ଫଗୁ ଖେଳ—2. Mutual sprinkling of Phagu powder and coloured water on the full moon day of Fālguna.

ହୋଲାକାଧିକରଣ ନ୍ୟାୟ—ସଂ. ନ୍ୟାୟ—ଏକ ଦେଶରେ ପ୍ରଚଳିତ Holākādhikaraṇa nyāya ଆଗୁରକୁ ଅନୁକରଣ କରି ଅନ୍ୟ ଦେଶବାସୀମାନେ ତାହା କର୍ତ୍ତବ୍ୟ ବୋଲି ଜ୍ଞାନ କରି ଗ୍ରହଣ ଓ ପାଳନ କରିବା ସ୍ଥଳରେ ବ୍ୟବହୃତ ନ୍ୟାୟ (ଦାୟ ଭାଗ)—An analogy used in cases where a people of one locality copy a custom of another locality.

ହୋଲି(ଲୀ)—ଦେ. ବ—(ସଂ. ହୋଲାକା)—ହୋଲାକା (ଦେଖ) Holi(lī) Holākā (See).

ହୋଲିକା—ସଂ. ବ—(ହୋଡ଼ୁ ଧାତୁ+ଅଧିକରଣ ଅକ+ଆ)— Holikā ହୋଲାକ—Holāka (See).

ହୋଲି(ରି) ଖେଳ—ଦେ. ବ—ଦୋଳ ଯାତ୍ରା ସମୟରେ ପରସ୍ପର Holi(ri) khela ପିଚକାରୀ ମରାମରି ଓ ଅବିର ଫୋପଡ଼ା-

ହୋଲିଖେଲା **होलीखेल** ପୋପଡ଼ ହୋଇ କରାଯିବା କ୍ରୀଡ଼ା କୌତୁକ—Mutual throwing of red dust and syringing with coloured water during the 'Holi' festival.

ହୋଲି(ରି) ଖେଳବା—ଦେ. କ୍ରି—ହୋଲି ଉତ୍ସବ ଉପଲକ୍ଷରେ ପରସ୍ପର
Holi(ri) khelibā ଅବିର ଓ ପିଚକାରୀ ମାରାମାରି ହେବା—
ହୋଲିଖେଲା **होलिखेलना** To mutually sprinkle 'Abira' and coloured water on the occasion of 'Holi'.

ହୋ'ଲି ଗୀତ—ଦେ. ବି—ହୋଲି ଉତ୍ସବ ଉପଲକ୍ଷରେ ବୋଲାଯିବା
Holi gīta ରାଧାକୃଷ୍ଣ ବିଷୟକ ଆଦିରସାତ୍ମକ ଓ (ଅଧିକାଂଶ
ହୋଲିଗାନ **होलीगीत** ସ୍ଥଳରେ ଅଶ୍ଳୀଳ) ଗାନ—Songs sung during the Holi festival. [ଦ୍ର—ଏହା ମାରୁଆଡ଼ିମାନଙ୍କ ଦେଶରେ ବିଶେଷ ପ୍ରଚଳିତ ଓ ସେ ଉତ୍ସବରେ ମାରୁଆଡ଼ିମାନେ ଏପରି କାଣ୍ଡଜ୍ଞାନ ଶୂନ୍ୟ ହୁଅନ୍ତି ଯେ, ସେମାନଙ୍କ ପରିବାରର କୁଳବଧୂମାନେ ମେଳ ବାନ୍ଧି ଅନ୍ତଃପୁରରୁ ବାହାରକୁ ବାହାରି ଚଳାଉ ପୁରୁଷଙ୍କ ଅଶ୍ଳୀଳ ଗୀତମାନ ବୋଲନ୍ତି ଓ ଏହି ଅଶ୍ଳୀଳ ଗାନ ପ୍ରଥା ତାଙ୍କ ଦେଖାଦେଖି ବଙ୍ଗ ଦେଶରେ ଓ ସେଠାରୁ ଆସି କ୍ରମେ କ୍ରମେ ଓଡ଼ିଶାରେ ପଶିଅଛି ।)

ହୋଲେ ନାଁ ଡୋଲେ—ଦେ ଅ—(ତାର) କିଛି ଯାଏ ଆସେ ନାହିଁ—
Hole nā̃ dole It matters little (to him); (he)
ଫାଟେ ନା ଫାଟେ cares a fig for it; (he) cares a
**होले न डोले** straw for it. (ଯଥା—ସଂସାରପାକ ଦୁର୍ଭିକ୍ଷ ପଡ଼ୁଛି; ସେ ରଜା ଘରେ ଗୁହାରି କରିଥିବାରୁ, ତାର ହୋଲେ ନା ଡୋଲେ) ।

ହୋଲ୍‌କାର—ଦେ. ବି. (ନାମ)—ମଧ୍ୟଭାରତର ଇନ୍ଦୋରରେ ରାଜତ୍ୱକାରୀ
Holkāra ମହରଟ୍ଟା ରାଜବଂଶଙ୍କ ଉପାଧି — Family tittle of
ହୋଲ୍‌କାର the Ruling Chiefs of Indore in Central
**होल्कार** India. ( ଦ୍ର—ମଲ୍ହରରାଓ ହୋଲ୍‌କାର ଏ ରାଜବଂଶର ପ୍ରତିଷ୍ଠାତା ଥିଲେ । ମହରଟ୍ଟାରାଜା ବାଜି ରାଓ ଖ୍ରୀ. ୧୭୩୮ ସାଲରେ ମୋଗଲମାନଙ୍କଠାରୁ ମାଲୁଆ (ମାଳବ) ପ୍ରଦେଶ ଜୟ କରି ଇନ୍ଦୋରଠାରେ ମହରଟ୍ଟା ସେନାପତି ମଲ୍ହରଙ୍କୁ ଶାସନକର୍ତ୍ତା ନିଯୁକ୍ତ କରିଥିଲେ; କିନ୍ତୁ ମଲ୍ହରରାଓ ପରେ ନିଜର ସ୍ୱାଧୀନତା ଘୋଷଣା କଲେ । ଏହାଙ୍କ ମୃତ୍ୟୁପରେ ଏହାଙ୍କ ପୁତ୍ରବଧୂ ଇତିହାସ-ପ୍ରସିଦ୍ଧା ଅହଲ୍ୟାବାଈ ତୁକାଜୀରାଓ ନାମକ ଗୋଟିଏ ନାବାଳକଙ୍କୁ ପୋଷ୍ୟ ପୁତ୍ର ଗ୍ରହଣ କରି ରାଜ୍ୟକୁ ଅତି ଦକ୍ଷତା ଓ ଧର୍ମ ସହକାରେ ପାଳିଲେ । ତୁକାଜୀରାଓଙ୍କର ଅଳ୍ପ ବୟସରେ ମୃତ୍ୟୁହେବାରୁ ତତ୍ପରେ ଯଶୋବନ୍ତ ରାଓ ହୋଲ୍‌କାର ରାଜା ହେଲେ । ଏହାଙ୍କ ସଙ୍ଗେ ଇଂରାଜମାନଙ୍କର ଯୁଦ୍ଧ ହେଲା, ଶେଷରେ ଏ ପରାସ୍ତ ହୋଇ ୧୮୦୫ ସାଲରେ ଇଂରାଜମାନଙ୍କ ସଙ୍ଗେ ସନ୍ଧି କଲେ ଏବଂ ଇଂରାଜ ଗଭର୍ଣ୍ଣମେଣ୍ଟ ଏହାଙ୍କୁ ମିତ୍ରରାଜା ବୋଲି ସ୍ୱୀକାର କଲେ । ଏହାଙ୍କ ବଂଶଧରମାନେ ଅଦ୍ୟ ପର୍ଯ୍ୟନ୍ତ ଏ ଗାଦି ଅଧିକାର କରିଅଛନ୍ତି )

ହୋଲ୍ଡ—ବୈଦେ. ବି. (ଇଂ)—ଡେକ୍‌ର ବା ପଟତଳର ତଳେ ଥିବା
Hold ଜାହାଜର ତଳ ଅଂଶ ବା ପେଟ (ଯେଉଁଠାରେ ମାଲମାନ
ହୋଲ୍ଡ **होल्ड** ବୋଝାଇ ହୁଏ)—A ship's hold.

ହୋଲ୍‌ଡ(ଲ୍ଡା)ର୍—ବୈଦେ. ବି ( ଇଂ. ପେନ୍ ହୋଲ୍‌ଡର୍ ) — ଯେଉଁ
Holda(ldā)r ହାଣ୍ଡଲ୍‌ରେ ଲୁହା ନିବ୍ ଗୁଞ୍ଜା ହୋଇ ଲେଖା
ହୋଲଡାର **होल्डर** ଯାଏ—Penholder.

ହୋଷ୍ଟେଲ୍—ବୈଦେ. ବି (ଇଂ)—ଛାତ୍ରାବାସ—
Hoshtel Hostel.
ହୋଷ୍ଟେଲ **होस्टेल**

ହୋଷ୍ଟେଲ୍ ସୁପରିଣ୍ଟେଣ୍ଡେଣ୍ଟ—ବୈଦେ. ବି (ଇଂ)—ଛାତ୍ରାବାସର
Hoshtel suparintendent ତତ୍ତ୍ୱାବଧାରକ—Superin-
ହୋଷ୍ଟେଲ ସୁପାରିଣ୍ଟେଣ୍ଡେଣ୍ଟ tendent of a hostel.
**होस्टेलसपरीण्टेंडेंट**

ହୋସ (ଇତ୍ୟାଦି)—ବୈଦେ ବି (ଫା)—ହୁସ୍ ଇତ୍ୟାଦି (ଦେଖ)—
Hos (etc) Hus etc (See)

ହୋସ୍ ହବାସ୍—ବୈଦେ. (ଫା), ପ୍ରାଦେ (ଉତ୍ତରଅଞ୍ଚଳ) ବି—ଚୈତନ୍ୟ;
Hos habās ଜ୍ଞାନ; ଚେତା—Sense; consciousness.

ହୋସ୍‌ଲା—ବୈଦେ (ଫା) ପ୍ରାଦେ. (ଉତ୍ତରଅଞ୍ଚଳ) ବି—ସାହସ—
Hos-lā Beldnese; courage; bravery.

ହୋସିଆର୍ (ଇତ୍ୟାଦି)—ବୈଦେ, ବିଣ (ଫା)—ହୁସିଆର୍ ଇତ୍ୟାଦି
Hosiār (etc) (ଦେଖ)—Husiār etc (See)

ହୋସିଆରି—ବୈଦେ. ବି (ଫା)—୧ । ହୁସିଆରି (ଦେଖ)—
Hosiāri 1. Husiāri (See)
ବୈଦେ. ବି. (ଇଂ)—୨ । ମୋଜା ଓ ଗେଞ୍ଜି ବୁଣାଯିବାର କାରଖାନା—2. Hosiery.

ହୋସେ(ସ୍ସେ)—ବୈଦେ. ବି (ଅ)—ହୁସ୍ସେ (ଦେଖ)—
Hose(sse) Husse (See)

ହୋ'ସେନ୍—ବୈଦେ. ବି (ଫା. ନାମ)(ଫା. ହୁସେନ୍ )—୧ । ମୁସଲମାନଙ୍କ
Hosen ନାମ—1. A name amongst the Mahomedans,୨। ହଜରତ୍ ମହମ୍ମଦଙ୍କ କନ୍ୟା ଫାତ୍‌ମା ଜୋହୋରାଙ୍କ ସାନ ପୁଅ—2.The youngest son of Fatmā Johorā the daughter of Mohammed.
ହୋସେନ **हुसन**

ହୋସେନ୍ ସା(ସାହା) – ବୈଦେ. ବି (ନାମ)—ବଙ୍ଗର ଜନୈକ ପ୍ରାଚୀନ
Hosen sā(sāhā) ମୁସଲମାନ ରାଜା—Name of an anci-
ହୋସେନସା ent Mohamedan king of Bengal.
**हुसैनसा** [1493—1519 A. D.]
[ଦ୍ର—ଏ ପ୍ରଥମେ ହୋସେନ୍ ଖାଁ ନାମରେ ବଙ୍ଗର ସ୍ୱାଧୀନ ହିନ୍ଦୁ ରାଜା ସୁବୁଦ୍ଧିରାୟଙ୍କ ସେନାପତି ଥିଲେ । ଏ ଖ୍ରୀ ୧୪୯୩ ରେ ସୁବୁଦ୍ଧିଙ୍କୁ ପରାଜିତ କରି ହୋସେନ୍ ସା ନାମରେ

ଆପଣାକୁ ବଙ୍ଗର ରାଜା ବୋଲି ଘୋଷଣା କଲେ ଓ ୧୫୧୯ ପର୍ଯ୍ୟନ୍ତ ରାଜତ୍ୱ କଲେ । ଏହାଙ୍କ ବଂଶଧରମାନେ ୧୫୩୬ ସାଲରେ ସେରସାହାଙ୍କ ଦ୍ୱାରା ବଙ୍ଗର ସିଂହାସନରୁ ବିତାଡ଼ିତ ହେଲେ । ]

ହୋସେ(ସା)ନ୍‌ହା (ହି,ହେ)ନା—ବୈଦେ. ବି (ଫା ହୁସ୍ନହେନା)—ହେନା ୨ (ଦେଖ)—
Hose(sa)n ha(hi.he)na — Henā 2 (See).

ହୋହା—ଦେ. ବି (ଧ୍ୱନ୍ୟନୁକରଣ)—ବହୁଲୋକର ମିଳିତ ଉଚ୍ଚୈଃସ୍ୱର, ହୋଲ୍ଲା; ଗଣ୍ଡଗୋଳ; ହଟ୍ଟଗୋଳ—Noise; uproar
Hoha — hubbub. ଅ—ପକ୍ଷୀ ଓ ମାଙ୍କଡ଼ ଆଦିଙ୍କୁ ଘଉଡ଼ାଇବାର ଶବ୍ଦ—Interjection used in scaring away
হোহো हो़हा monkeys etc.

ହୋ ହୋ—ଦେ. ଅ—ହୋହା (ଦେଖ)—Hohā (See)
Ho ho ବି—୧ । ହୋହା (ଦେଖ)—1. Hohā (See)
୨ । (ବଙ୍ଗଳାରୁ ଅନୁକୃତ) ଉଚ୍ଚହାସ୍ୟ ଧ୍ୱନି; ହେଁ ହେଁ—
হোহো हो़हा 2. Sound of loud laugh.

ହୋ ହୋ ହସିବା—ଦେ. କ୍ରି—ହୋ ହୋ ଶବ୍ଦ କରି ଅତି ଉଚ୍ଚୈଃସ୍ୱରରେ ହସିବା—To laugh very loudly.
Ho ho hasibā
(ହୋ ହୋ ହୋଇ ହସିବା—ଅନ୍ୟରୂପ)
হোহো করে হাসা हो़हा हंसना

ହୋ ହୋ ହେବା—ଦେ. କ୍ରି—(ବହୁଲୋକ) ବଡ଼ପାଟି କରିବା—
Ho ho hebā (a number of persons) To raise a
হোহো করা हो़हा करना loud sound.

ହୌ—ସଂ. ଅ (ସମ୍ବୋଧନ ଓ ଆହ୍ୱାନ)—ହେ—Interjection
Hau used in calling and addressing. ଦେ.ଅ—(ସମ୍ମତିସୂଚକ) ହେଉ; ତଥାସ୍ତୁ—(Interjection) Be it so. କ୍ରି—କରଣିଆ ଲେଖାରେ ହେବା କ୍ରିୟାର ଅସମାପିକା ରୂପ (ହୋଇ) ର ସଂକ୍ଷିପ୍ତ ଲେଖା ଆକାର (ଏଥିର ଉଚ୍ଚାରଣ 'ହୋଇ' ପରି ହୋଇ)—The written Karani form of Hoi.

ହୌମ୍ୟ—ସଂ. ବିଣ—( ହୋମ+ଯୋଗ୍ୟାର୍ଥେ ଯ )—୧ । ହୋମ
Haumya ସମ୍ବନ୍ଧୀୟ—1. Relating to Homa.
୨ । ହୋମଯୋଗ୍ୟ; ହୋମରେ ବ୍ୟବହୃତ ହେବାଯୋଗ୍ୟ—2. Fit to be used in Homa.
ବି—ହବନୀୟ ଘୃତ; ହୋମ ଘିଅ—Ghee meant for Homa.

ହୌସ୍—ବୈଦେ. ବି (ଇଂ ହାଉସ୍‌ର ଅଶୁଦ୍ଧ ଉଚ୍ଚାରଣ)—ହାଉସ୍ (ଦେଖ)—Hāus (See)
Haus

ହ୍ନୁ(ଧାତୁ)—ସଂ.—ଚୋରି କରିବା—
Hnu(root) To steal.

ହ୍ୱନ୍ତି—ଦେ. (ପଦ୍ୟ) କ୍ରି—(ହୁଅନ୍ତି କ୍ରିୟାର ବିକଳ୍ପ ରୂପ) ହୁଅନ୍ତି—
Hwanti The alternate form of the verb Huanti,(he or they) Are. [ଉ—ଅତି ବ୍ୟାକୁଳ ହ୍ୱନ୍ତି ମହା ଶୋକେ—ପ୍ରାଚୀ. ନଳଚରିତ]

ହ୍ୱଲ(ଧାତୁ)—ସଂ—୧ । ଚଳନ କରିବା (ଜଳ କମ୍ପନରୂପ)—1. To
Hwal(root) move. (ଦ୍ର—ଏହା 'ବି' ଉପସର୍ଗ ସଙ୍ଗେ ଯୁକ୍ତ ହୋଇ ବହୁଳ ହୁଏ । ଯଥା—ବିହ୍ୱଳ)
୨ । ହଲିବା—2. To move to and fro.
୩ । କମ୍ପିବା—3 To tremble; to shake.

ହ୍ୱଳନ—ସଂ. ବି—(ହ୍ୱଲ ଧାତୁ+ଭାବ ଅନ)—୧ । ହଲିବା—
Hwalana 1. Shaking. ୨ । ଇତସ୍ତତଃ ଗତିକରିବା—2. Moving and fro.

ହ୍ୱାଇଟ୍ ହାଉସ୍—ବୈଦେ. ବି (ଇଂ; ଅକ୍ଷରିକ ଅର୍ଥ—ଧବଳ ଗୃହ)—
Hwait hāus ଆମେରିକାର ଯୁକ୍ତରାଜ୍ୟର ସଭାପତିଙ୍କ ବାସଭବନର ନାମ—The White House, the official residence of the President of the United States of America.

ହ୍ୱାଟ୍‌ନଟ୍—ବୈଦେ. ବି (ଇଂ) - ଗୃହସ୍ଥଙ୍କର ବାସନ କୁସନ ଓ ଅନ୍ୟ
Hwat-nat ଘର କରଣା ଜିନିଷ କଳକପମାନ ସଜାଇ ରଖିବାରେ ବ୍ୟବହୃତ ଖୋଲା ଅଲମାରୀ—Whatnot.

ହ୍ୱାନ—ସଂ. ବି—(ହ୍ୱେ ଧାତୁ+ଭାବ ଅନ)—ଆହ୍ୱାନ—
Hwāna Call.

ହ୍ୱିଗ୍—ବୈଦେ. ବି (ଇଂ ନାମ)—ଇଂଲଣ୍ଡର ପ୍ରାଚୀନ ରାଜନୀତିକ ମହା-
Hwig ବଳମ୍ବୀ ଦୁଇଦଳ ମଧ୍ୟରୁ ଏକ; ଉଦାରନୀତିକ ଦଳ; ଆଧୁନିକ ଲିବରଲ୍ ଦଳ—The whig, a member of the Liberal party in English politics in old times.

ହ୍ୱିପ୍—ବୈଦେ. ବି (ଇଂ)—୧ । ଚାବୁକ—1. Whip. ୨ । କୋଚୁ-
Hwip ଆନ୍—2. Coachman. ୩ । ବ୍ୟବସ୍ଥାପକ ସଭା ଆଦିରେ ଓ ପାର୍ଲିଆମେଣ୍ଟରେ ଗୋଟିଏ ଦଳର ମତାମତ ସଂଗ୍ରହ
হ্বিপ করିବା ପାଇଁ ସେହି ଦଳ ଦ୍ୱାରା ଭାରପ୍ରାପ୍ତ ସଭ୍ୟ—3.
ह्विप Whip (in an Assembly and Parliament) (ଦ୍ର—କୌଣସି ଗୁରୁତର ପ୍ରଶ୍ନ ବିଷୟରେ ଭୋଟ୍ ନିଆଯିବା ବେଳେ ଆପଣା ଦଳର ସଭ୍ୟମାନଙ୍କୁ ଡାକିଆଣି ଉପସ୍ଥିତ କରାଇବା, ଯେଉଁ ବିଷୟରେ ଯେଉଁ ସମୟରେ ଭୋଟ୍ ନିଆଯିବ, ଏ ବିଷୟ ଦଳର ସଭ୍ୟମାନଙ୍କୁ ଆଗରୁ ଜଣାଇବା, ଭୋଟ୍ ନିଆ ହେବା ସମୟରେ ଆପଣା ଦଳର ସଭ୍ୟ ସେ ସ୍ଥାନ ଛାଡ଼ି ଚାଲି ଯାଇ ନ ପାରିବେ, ଏଥିପ୍ରତି ଦୃଷ୍ଟି ରଖିବା ଓ ଆପଣା ଦଳର ସ୍ୱାର୍ଥରକ୍ଷା ପ୍ରତି ସତର୍କ ଦୃଷ୍ଟି ରଖିବା 'ହ୍ୱିପ୍'ଙ୍କ କର୍ତ୍ତବ୍ୟ ଅଟେ ।)

ହ୍ୱିଲ୍—ବୈଦେ. ବି (ଇଂ)—ଚକ—
Hwil Wheel.
হ্বিল্ ह्विल

ହ୍ୱିସ୍କି—ବୈଦେ. ବି (ଇଂ)—ଇଂଲଣ୍ଡରେ ପ୍ରସ୍ତୁତ ଏକପ୍ରକାର ଉଗ୍ର
Huiski ମଦ୍ୟ; ସୁରା—Whisky.
হ্বিস্কি ह्विस्कि (ହୁଇସ୍କି—ଅନ୍ୟରୂପ)

ହ୍ବୃ(ଧାତୁ)—ସଂ—କୁଟିଳ ହେବା—
Hwṛu (root) To be crooked.

ହ୍ବିସ୍ଲ (ଇତ୍ୟାଦି)—ବୈଦେ. ବି [ଇଂ]—ସିଟି ଇତ୍ୟାଦି [ଦେଖ]—
Hwisl(etc) Siti etc (See)
হ্বিসল ह्विसल

ହ୍ବେ [ଧାତୁ]—ସଂ—୧ । ଆହ୍ବାନ କରିବା—1. To call. ୨ । ଶବ୍ଦ କରିବା—2. To make a sound.
Hwe (root)
୩ । ସ୍ପର୍ଦ୍ଧା କରିବା—3. To call to fight; to challenge.

ହ୍ବେଲ—ବୈଦେ. ବି [ଇଂ] ତିମି ମାଛ—
Hwel Whale.
হ্বেল ह्वेल

[ଦ୍ର—ହ୍ବେଲ୍ ୮୦।୯୦ ଫୁଟ୍ ପର୍ଯ୍ୟନ୍ତ ଲମ୍ବ ହୁଅନ୍ତି । ଏ ମାଛଙ୍କ ଦେହର ଖାଲ ତଳେ ଚର୍ବିର ଖୁବ୍ ବହଳିଆ ସ୍ତର ଥାଏ । ଏମାନଙ୍କ ଆଗପାଖେ ଗୋଡ ଓ ପେଟ ମଧ୍ୟରେ ପାର୍ଶ୍ବଦେଶରେ ୨ଟି ଡେଣା ଓ ଲାଞ୍ଜରେ ବଡ ଡେଣା ଥାଏ । ଏ ଜୀବମାନେ ଅଣ୍ଡଜ ନୁହନ୍ତି, ଜରାୟୁଜ ଅଟନ୍ତି । ହ୍ବେଲ୍ ଛୁଆମାନେ ମାଆଠାରୁ ସ୍ତନ୍ୟପାନ କରନ୍ତି । ହ୍ବେଲ୍ଙ୍କର ଖୁବ୍ ଛୋଟ କାନ ଅଛି । ଏମାନେ ଛୋଟ ଛୋଟ ମାଛ ଖାଆନ୍ତି । ପାଣିରୁ ଉଠି ନିଶ୍ବାସ ମାରିବା ପାଇଁ ଏମାନଙ୍କ ମୁଣ୍ଡ ଉପରେ ୨ଟି ଛିଦ୍ର ଥାଏ, ଆଖି ଅତି ଶୁଦ୍ର; ପୃଥିବୀର ଉତ୍ତରଦିଗର ସମୁଦ୍ରରେ ବହୁତ ହ୍ବେଲ୍ ମିଳନ୍ତି । ଏମାନଙ୍କ ଚର୍ବୀରୁ ମହମବତୀ ହୁଏ ଓ ଏମାନଙ୍କ ହାଡ଼ରେ ହାତି ଦାନ୍ତରେ ତିଆରି କରାଯିବା ପରି ଅନେକ ଦ୍ରବ୍ୟ କରାଯାଏ । ଲୋକେ ଜାହାଜରେ ଯାଇ ଡେଙ୍ଗା ମାରି ଏମାନଙ୍କୁ ଶିକାର କରନ୍ତି । ଏମାନଙ୍କ ଅନ୍ତ୍ରରୁ ଅମ୍ବର ନାମକ ସୁଗନ୍ଧଦ୍ରବ୍ୟ ମିଳେ । ଏହି ଅମ୍ବରସବୁ (ambergris) ହ୍ବେଲଙ୍କ ଠାରୁ ବହିର୍ଗତ ହୋଇ ସମୁଦ୍ରରେ ଭାସିଆସେ । ]

ହ୍ବେଲ୍ବୋନ୍—ବୈଦେ. ବି (ଇଂ)—ତିମି ମାଛର ହାଡ଼—
Hwel-bon Whalebone.
হ্বেল্পেন ह्वलबोन

ହ୍ବେଲର୍—ବୈଦେ.ବି (ଇଂ)—ସମୁଦ୍ରରେ ତିମି ମାଛ ଧରିବାପାଇଁ ନିଯୁକ୍ତ ଜାହାଜ—A whaler (ship).
Hwelar
হ্বেলার ह्वेलर

ହ୍ମଲ୍ (ଧାତୁ)—ସଂ—୧ । ଚାଳନ କରିବା—1. To move; to cause to move.
Hmal (root)
୨ । ଚଳିତ ହେବା—2. To move; to be moved.

ହ୍ୟଃ—ସଂ ଅ (ହ୍ୟସ୍ ଶବ୍ଦ; ଗତ+ଅହନ୍; ନିପାତନସିଦ୍ଧ)—ଗତକାଲି (ଅମର)—Yesterday.
Hyah

ହ୍ୟସ୍ତନ—ସଂ ବିଣ (ହ୍ୟଃ=ଗତକାଲି+ଭବାର୍ଥେ ତନ)—ପୂର୍ବଦିବସ-ସମ୍ବନ୍ଧୀୟ—1. Relating to yesterday. ୨ । କାଲିକାର—
Hyastana
(ହ୍ୟସ୍ତ୍ୟ—ଅନ୍ୟରୂପ)

ହ୍ୟସ୍ତନୀ }
ହ୍ୟସ୍ତ୍ୟା } ସ୍ତ୍ରୀ—
2. Of yesterday. ୩ । ଗତ କାଲି ଜାତ—3. Produced yesterday. ୪ । ଗତକାଲି ପ୍ରାପ୍ତ—4. Got yesterday.

ହ୍ୟାଟ୍—ବୈଦେ. ବି (ଇଂ ହାଟ୍ ଶବ୍ଦର ଅଶୁଦ୍ଧ ଲେଖା)—ହାଟ୍; ସାହେବୀ ଟୋପି—Hat.
Hyāṭ
হ্যাট্ हैट

ହ୍ୟାଣ୍ଡ୍—ବୈଦେ. ବି (ଇଂ ହାଣ୍ଡ୍) (ହାଣ୍ଡ ଶବ୍ଦର ଉଚ୍ଚାରଣ ସଙ୍ଗେ ସମାନ କରିବା ଚେଷ୍ଟାର ଫଳରେ ଲେଖାଯିବା ଶବ୍ଦ)—ହାଣ୍ଡ୍ (ଦେଖ)—
Hyāṇḍ
হ্যাণ্ড हैं
Hāṇḍ (See) [ଦ୍ର—ଏହିପରି ମାନ୍କୁ ମ୍ୟାନ୍; ବାଙ୍କକୁ ବ୍ୟାଙ୍କ୍ ଇତ୍ୟାଦି ଲେଖାଯାଏ, କିନ୍ତୁ ଏହା ଶୁଦ୍ଧ ନୁହେଁ । ପୁଣି କେହି କେହି 'ହାଣ୍ଡ'କୁ ହେଣ୍ଡ୍ ଓ ହିନ୍ଦିରେ 'ହାଣ୍ଡ୍'କୁ ହେଁଣ୍ଡ୍ ଲେଖନ୍ତି ।]

ହ୍ୟାଣ୍ଡ୍ଭାଇସ୍—ବୈଦେ. ବି (ଇଂ)—ସୁନା ବା ରୁପାକୁ ଘଷାଘଷି କରିବା ସମୟରେ ବଣିଆମାନେ ଯେଉଁ ଯନ୍ତ୍ରରେ ଚପି ଧରନ୍ତି—Hand-vice of goldsmiths.
Hyāṇḍ-bhāis
হ্যাণ্ডভাইস हैंडभाईस

ହ୍ୟାଦେ—ପ୍ରାଦେ (ପାଟଣା) ଅ—ହେଇଟି—
Hyāde Here! look here!

ହ୍ୟାନି(ନେ)ମା(ମ୍ୟା)ନ୍—ବୈଦେ.ବି (ନାମ)—ହାନିମାନ୍ (ଦେଖ)—
Hyāni(ne)mā(myā)n Hānimān (See)

ହ୍ରଗ୍(ଧାତୁ)—ସଂ ବି—୧ ।ସମ୍ବରଣ କରିବା—1. To give forth; to give up. ୨ । ଲୁଚାଇବା—2. To hide; to conceal (Apte). ୩ । ଘୋଡାଇବା—3. To cover (Apte).
Hrag(root)

ହ୍ରଣିୟା—ସଂ ବି—ହ୍ରିଣୀୟା [ଅମର]—
Hraṇiyā Hriṇiyā (See).

ହ୍ରଦ—ସଂ. ବି [ହ୍ରାଦ୍ ଧାତୁ+ଅଧିକରଣ ଅ]—୧ । ଅକୃତ୍ରିମ ସୁବୃହତ୍ ଜଳାଶୟ ଅମର ]; ସ୍ଥଳବେଷ୍ଟିତ ପ୍ରାକୃତିକ ଜଳଭାଗ—1.A deep lake; a natural lake. [ ଦ୍ର—ଚିଲିକା, ହମ୍ବଇ, ଅରଲ୍, ମାନସ ପ୍ରଭୃତି ହ୍ରଦ । ହ୍ରଦ ବଡ଼ ହେଲେ ତାକୁ ସାଗର ବୋଲାଯାଏ । ଯଥା କାସ୍ପିଅନ୍ ସାଗର,କୃଷ୍ଣସାଗର, ପ୍ରଭୃତି] କିରଣ; 'ରଶ୍ମି (ତ୍ରିକାଣ୍ଡ)—2. Ray;pencil of light. ୩ । ଗଭୀର ଗର୍ତ୍ତ—3. A deep hole or cāvity (Apte).
Hrada

ହ୍ରଦଗ୍ରହ—ସ. ବି—( ହ୍ରଦ+ଗ୍ରହ୍, ଧାତୁ+କର୍ତ୍ତୃ ଅ )—କୁମ୍ଭୀର—
Hradagraha Alligator.

ହ୍ରଦିନୀ—ସଂ. ବି—(ହ୍ରଦ+ଯୁକ୍ତାର୍ଥ ଇନ୍+ଈ)—୧ । ନଦୀ (ଅମର) —1. River. ୨ । ବିଦ୍ୟୁତ୍—2. Lightning (Apte).
Hradinī

ହ୍ରପ୍(ଧାତୁ)—ସଂ.—୧ । କହିବା—1. To speak; to talk. ୨। ଶବ୍ଦ କରିବା—2. To sound (Apte).
Hrap (root)

ହ୍ରସ୍(ଧାତୁ)—ସଂ—୧ । ରବ କରିବା—1. To make a sound. ୨ । ଖର୍ବ ହେବା—2. To diminish; to become small.
Hras (root)

ହ୍ରସିତ—ସଂ. ବିଣ—(ହ୍ରସ୍ଧାତୁ+କର୍ତ୍ତୃ. ତ)—୧ । ଶବ୍ଦିତ—1. Sounded (Apte). ୨ । ଖର୍ବୀକୃତ—2. Diminished; lessened.
Hrasita

ହ୍ରସିମା—ସଂ. ବି—(ହ୍ରସ୍ୱ+ଇମନ୍; କପାଳକ; ହ୍ରସିମନ୍ ଶବ୍ଦ ୧ମା ୧ବ)—୧ । ଲଘୁତା; ହ୍ରସ୍ୱତା; କ୍ଷୁଦ୍ରତା—1. Smallness; littleness; shortness. ୨ । ଖର୍ବତା; ବାମନପଣ—2. Dwarfness.
Hrasimā

ହ୍ରସିଷ୍ଠ—ସଂ. ବିଣ—(ହ୍ରସ୍ୱ+ଅତିଶୟାର୍ଥେ ଇଷ୍ଠ)—୧ । ଅତିଶୟ ହ୍ରସ୍ୱ—1. Very small or little; infinitesimal. ୨ । କ୍ଷୁଦ୍ରତମ—2. Smallest.
Hrasishtha
(ହ୍ରସିଷ୍ଠା—ସ୍ତ୍ରୀ)

ହ୍ରସୀୟାନ୍—ସଂ. ବିଣ—(ପୁଂ)—(ହ୍ରସୀୟସ୍ ଶବ୍ଦ; ହ୍ରସ୍ୱ+ଈୟସ୍ ୧ମା ୧ବ)—୧ । ଅତିକ୍ଷୁଦ୍ର—1. Very small. ୨ । କ୍ଷୁଦ୍ରତର—2. Smaller
Hrasiyān
(ହ୍ରସୀୟସୀ—ସ୍ତ୍ରୀ)

ହ୍ରସ୍ୱ—ସଂ. ବିଣ—(ହ୍ରସ ଧାତୁ+କର୍ତ୍ତୃ ବ)—୧ । କ୍ଷୁଦ୍ର; ଛୋଟ—1. Small; little. ୨ । ଅନୁଚ୍ଚ; ଗେଡ଼ା; ଖର୍ବ—2. Dwarfish; not high; low in stature. ୩ । ଲଘୁ—3. Light. ୪ । ଏକମାତ୍ରକାଳୋଚ୍ଚାର୍ଯ୍ୟ ସ୍ୱର ଯୁକ୍ତବର୍ଣ୍ଣ—4. Short letter. ବି—୧। ବାମନ; ପ୍ରକୃତ ପୁରୁଷ ପ୍ରମାଣରୁ ନ୍ୟୂନ ମନୁଷ୍ୟ—1. A dwarf. ୨ । ଏକମାତ୍ରା କାଳୋଚ୍ଚାର୍ଯ୍ୟ ସ୍ୱର—2. A short vowel. (ଯଥା—ଅ, ଇ, ଉ, ଋ, ଌ) [ଦ୍ର—ଯେଉଁ ବର୍ଣ୍ଣମାନଙ୍କୁ ଉଚ୍ଚାରଣ କରିବାକୁ ଏକମାତ୍ରା ସମୟ ଲାଗେ ତାକୁ ହ୍ରସ୍ୱ; ଦ୍ୱିମାତ୍ରିକ ବର୍ଣ୍ଣମାନଙ୍କୁ ଦୀର୍ଘ ଓ ତ୍ରିମାତ୍ରିକ ବର୍ଣ୍ଣମାନଙ୍କୁ ପ୍ଳୁତ ବୋଲାଯାଏ । ବ୍ୟଞ୍ଜନମାନ ଅର୍ଦ୍ଧମାତ୍ରିକ—ଶବ୍ଦକୋଷ ।] ୩ । ପରିମାଣ ବିଶେଷ—3. A unit of measure or quantity. ୪। ମେଷ, ବୃଷ, କୁମ୍ଭ, ମୀନ ରାଶିଗଣ—4. The zodiacal signs of Mesha, Brusha, Kumbha and Mina. ୫ । ଗନ୍ଧକ ଓ ପାରଦର ରସାୟନିକ ମିଶ୍ରଣ ବିଶେଷ; ହୀରାକସିସ—5. Green sulphate of iron (Apte). ୬ । ଗୌରସୁବର୍ଣ୍ଣ ଶାକ (ଶବ୍ଦକୋଷ)—6. A kind of pot herb.
Hraswa
(ହ୍ରସ୍ୱା—ସ୍ତ୍ରୀ)
(ଦୀର୍ଘ—ବିପରୀତ)

ହ୍ରସ୍ୱ ଇ—ସଂ. ବି—ଲଘୁପ୍ରାଣ ସ୍ୱର ଇ—The short vowel e.
Hraswa i

ହ୍ରସ୍ୱ ଉ—ସଂ. ବି—ଲଘୁପ୍ରାଣ ସ୍ୱର ଉ—The short vowel u.
Hraswa u

ହ୍ରସ୍ୱ ଋ—ସଂ. ବି—ଲଘୁପ୍ରାଣ ସ୍ୱର ଋ—The short vowel ṛu.
Hraswa ṛu

ହ୍ରସ୍ୱ ଌ—ସଂ. ବି—ଲଘୁପ୍ରାଣ ସ୍ୱର ଌ—The short vowel lu.
Hraswa lu

ହ୍ରସ୍ୱ କୁଶ—ସଂ. ବି—(କର୍ମଧା)—ଶ୍ୱେତକୁଶ (ରାଜନିଘଣ୍ଟୁ)—A white variety of the kusa grass.
Hraswa kusa

ହ୍ରସ୍ୱ ଗବେଧୁକା—ସଂ. ବି—ଗାଙ୍ଗେରୁକୀ (ଅମର), ନାଗବଳା—Sida Spinosa plant.
Hraswa gabedhukā

ହ୍ରସ୍ୱ ଗର୍ଭ—ସଂ. ବି—(ବହୁବ୍ରୀ)—କୁଶ (ରତ୍ନମାଳା)—The Kusa grass.
Hraswa garbha

ହ୍ରସ୍ୱ ଜମ୍ବୁ—ସଂ. ବି—ଧୂଳିଜମ୍ବୁ (ରତ୍ନମାଳା)—Small variety of black berry.
Hraswa jambu

ହ୍ରସ୍ୱ ତଣ୍ଡୁଳ—ସଂ. ବି—ଯବନାଳ (ରାଜନିଘଣ୍ଟୁ); ସରୁଚାଉଳ—Fine rice
Hraswa tandula

ହ୍ରସ୍ୱତା(ତ୍ୱ)—ସ.ବି—(ହ୍ରସ୍ୱ+ଭାବ ତା,ତ୍ୱ)—୧। ଲଘୁତା—1. Small. ness. ୨। ସ୍ୱଳ୍ପ ଉଚ୍ଚାରଣ—2. Shortness of pronunciation. ୩। ହ୍ରାସ—3. Lessening.
Hraswatā (twa)

ହ୍ରସ୍ୱ ଦର୍ଭ—ସଂ. ବି—ଶ୍ୱେତକୁଶ; ହ୍ରସ୍ୱକୁଶ (ଶବ୍ଦକଳ୍ପଦ୍ରୁମ)—White variety of the Kusa grass.
Hraswa darbha

ହ୍ରସ୍ୱଦା—ସ. ବି—ଶଲ୍ଲକୀ (ରାଜନିଘଣ୍ଟୁ); ଲୋବାନ୍ ପରି ଏକ ପ୍ରକାର ସୁଗନ୍ଧ ନିର୍ଯ୍ୟାସର ଗଛ—Boswellia Serrata (tree); Gum Olibanum.
Hraswadā

ହ୍ରସ୍ୱଦୀର୍ଘ—ସ. ବିଣ—(ଦ୍ୱନ୍ଦ୍ୱ ସମାସ ଅନ୍ତର ଅଜ)—୧ । ଲଘୁ ଓ ଗୁରୁ; ଲଘୁପ୍ରାଣ ଓ ଦୀର୍ଘପ୍ରାଣ (ବର୍ଣ୍ଣ)—1. Short and long(vowels and letters). ୨। ଗେଡ଼ା ଓ ଦୀର୍ଘ—2. Dwarf and tall.
Hraswadirgha

ହ୍ରସ୍ୱଦୀର୍ଘ ଜ୍ଞାନ—ସ.ବି—୧। ଛୋଟ ଓ ବଡ଼ ବିଷୟକ ଜ୍ଞାନ—1. Discrimination between small and big. ୨ । ହ୍ରସ୍ୱ ଓ ଦୀର୍ଘ ବର୍ଣ୍ଣ ସମ୍ବନ୍ଧ ଜ୍ଞାନ—2. Knowledge about short and long letters and sounds.
Hraswadirgha jñāna

ହ୍ରସ୍ୱପତ୍ରକ—ସଂ. ବି—ଗିରିଜ ମଧୂକ ବୃକ୍ଷ (ଜଟାଧର); ପର୍ବତଜାତ ମହୁଲ ଗଛ—Mahua; Bassia Latifolia of the mountains.
Hraswa patraka

ହ୍ରସ୍ୱପତ୍ରିକା—ସଂ. ବି—ଅଶ୍ୱତ୍ଥ (ରାଜନିଘଣ୍ଟୁ)—Religiosa Ficus tree.
Hraswa patrikā

ହ୍ରସ୍ୱପର୍ଣ୍ଣ(ପ୍ଲକ୍ଷ)—ସଂ. ବି—କ୍ଷୁଦ୍ରପ୍ଲକ୍ଷ ବୃକ୍ଷ—Small variety of Plaksha tree.
Hraswa parnna(plaksha)

ଅନ୍ୟ ସଂ.—ସୁଶୀତ, ଶୀତବୀର୍ଯ୍ୟକ, ପୁଣ୍ଡ୍ର, ମହାବରୋହ, ପୀପର; ଉଦୁର; ମଙ୍ଗଳଛାୟା } [ଦ୍ର—ଏହା, କଟୁ, କଷାୟ, ଶୀତ, ରକ୍ତଦୋଷଘ୍ନ ଓ ମୂର୍ଚ୍ଛା, ଭ୍ରମ, ପ୍ରଳାପଘ୍ନ ଅଟେ ।]

ହ୍ରସ୍ୱ ପ୍ରବାସୀ—ସଂ. ବିଣ ଓ ବି.ପୁଂ (ମ. ପ.ଲେ)—ଅଳ୍ପ ସମୟ ବିଦେଶରେ ରହିବା ବ୍ୟକ୍ତି (ହ୍ର. ଷ)—A person who makes a short sojourn
Hraswa prabāsi
(ବିପରୀତ—ଦୀର୍ଘ ପ୍ରବାସୀ)

ହ୍ରସ୍ୱଫଳା—ସଂ. ବ—ଭୂମିଜମ୍ବୁ (ବୃକ୍ଷବର୍ଗୀୟ) —A small dwarf
Hraswa phalā variety of blackberry.

ହ୍ରସ୍ୱ ବର୍ଣ୍ଣ—ସଂ. ବ—ହ୍ରସ୍ୱ ବା ସ୍ୱଳ୍ପପ୍ରାଣ ବର୍ଣ୍ଣ; ହ୍ରସ୍ୱ ସ୍ୱରବର୍ଣ୍ଣ ଓ ହ୍ରସ୍ୱ
Hraswa barṇṇa ସ୍ୱରବର୍ଣ୍ଣ ଯୁକ୍ତ ବ୍ୟଞ୍ଜନବର୍ଣ୍ଣ—Short letter.

ହ୍ରସ୍ୱ ବାହୁକ—ସଂ. ବଣ ପୁଂ (ବହୁବ୍ରୀହି)—କ୍ଷୁଦ୍ର ବାହୁ ବଶିଷ୍ଟ (ବ୍ୟକ୍ତି)
Hraswa bāhuka (ହ୍ରସ୍ୱବାହୁକା—ସ୍ତ୍ରୀ) Short-armed.

ହ୍ରସ୍ୱ ମୂଳ—ସଂ. ବ (ବହୁବ୍ରୀହି)—ରକ୍ତେକ୍ଷୁ (ବୃକ୍ଷବର୍ଗୀୟ)—
Hraswa mūla The red variety of sugarcane.

ହ୍ରସ୍ୱ ଶାଖା(ଶିଫ)—ସଂ. ବ (ବହୁବ୍ରୀହି)—୧ । ଗୁଳ୍ମ; ଗୁଳ୍ମଗଛ—
Hraswa śākhā (śipha) 1. Plant. ୨ । ବୁଦା—
2. Bush.

ହ୍ରସ୍ୱ ସ୍ୱର—ସଂ. ବ (କର୍ମଧା)—୧ । କ୍ଷୀଣସ୍ୱର—1. Slight and
Hraswa swara tender voice. ୨ । ଲଘୁପ୍ରାଣ ସ୍ୱରବର୍ଣ୍ଣ
(ଦୀର୍ଘସ୍ୱର—ବିପରୀତ) 2. Short vowel. (ଯଥା—ଅ, ଇ,
ଉ, ଋ, ଌ)

ହ୍ରସ୍ୱା—ସଂ. ବଣ ସ୍ତ୍ରୀ—(ହ୍ରସ୍ୱ+ଆ)—ହ୍ରସ୍ୱର ସ୍ତ୍ରୀ ଲିଙ୍ଗ—The femi-
Hraswā nine of Hraswa. ବ—୧ । ମୁଦ୍ଗପର୍ଣ୍ଣୀ (ବୃକ୍ଷ
ବର୍ଗୀୟ)—1. Phaseolus Trilobus. ୨। ବଳବଳା
(ବୃକ୍ଷବର୍ଗୀୟ)—2. Sida Spinosa (plant) ୩ ।
ଭୂମିଜମ୍ବୁ—3. A dwarf variety of blackberry.
୪ । ବାମନୀ; ଗେଡ଼ୀ ସ୍ତ୍ରୀ—4. Dwarf woman.

ହ୍ରସ୍ୱାଗ୍ନି—ସଂ. ବ ( ବହୁବ୍ରୀହି; ହ୍ରସ୍ୱ ଅଟେ ଅଗ୍ନି ଯାହାର )—ଅର୍କବୃକ୍ଷ
Hraswāgni (ଅରଖ ଗଛ୍ଡା)—The Calotropis Gigantea plant.

ହ୍ରସ୍ୱାଙ୍ଗ—ସଂ. ବଣ ପୁଂ (ବହୁବ୍ରୀହି)—ବାମନ—Dwarfish. ବ—
Hraswānga Hraswānga ଜୀବକ (ଔଷଧ)—A rare
(ହ୍ରସ୍ୱାଙ୍ଗୀ—ସ୍ତ୍ରୀ ବଣ) herb.

ହ୍ରାଦ୍ (ଧାତୁ)—ସଂ —ସ୍ୱନ କରିବା—
Hrād (root) To make a sound or cry.

ହ୍ରାଦ—ସଂ. ବ—(ହ୍ରାଦ୍ ଧାତୁ+ଭାବ ଅ)—୧ । ସ୍ୱନ; ରାବ; ରବ—
Hrāda 1. Voice; sound. ୨। ହିରଣ୍ୟକଶିପୁଙ୍କ ସର୍ବ-
କନିଷ୍ଠ ପୁତ୍ରଙ୍କ ନାମ—2. Name of the youngest
son of Hiraṇyakaśipu. [ଦ୍ର—ଅନ୍ୟ ପୁତ୍ରଙ୍କ
ନାମ ପ୍ରହ୍ଲାଦ, ଅନୁହ୍ରାଦ ଓ ସଂହ୍ରାଦ] ୩ । ମେଘଗର୍ଜ୍ଜନ
(ହ୍ରୁ.ଶ)—3. Roar of cloud; roar of thunder.

ହ୍ରାଦିନୀ—ସଂ. ବ—(ହ୍ରାଦିନ୍+ଈ)—୧ । ବିଦ୍ୟୁତ୍ (ଅମର)—
Hrādinī 1. Lightning. ୨ । ବଜ୍ର (ଅମର)—
2. Thunder. ୩ । ନଦୀ (ଶବ୍ଦରତ୍ନାବଳୀ)—
3. River. ୪ । ଶଲ୍ଲକୀ (ଶବ୍ଦରତ୍ନାବଳୀ)—4. Boswellia Serrata (tree) ୫ । ରାମାୟଣୋକ୍ତ ନଦୀ-
ବିଶେଷ (ହ୍ରୁ. ଶ) - 5. Name of a river mentioned in the Ramayana. ସଂ. ବ ସ୍ତ୍ରୀ —
ହ୍ରାଦୀର ସ୍ତ୍ରୀ ଲିଙ୍ଗ—Feminine of Hrādī.

ହ୍ରାଦୀ—ସଂ. ବଣ ପୁଂ—(ହ୍ରାଦିନ୍ ଶବ୍ଦ; ହ୍ରାଦ୍ ଧାତୁ+କର୍ତ୍ତୃ ଇନ୍; ୧ମା-
Hrādī ୧ବ)—୧ । ଶବ୍ଦ ବଶିଷ୍ଟ—1. Having a sound;
making a sound. ୨ । ଗର୍ଜ୍ଜନକାରୀ (ହ୍ରୁ. ଶ)—
2. Roaring.

ହ୍ରାସ—ସଂ. ବ—(ହ୍ରସ୍ ଧାତୁ+ଭାବ ଅ)—୧ । କ୍ଷୟ—
Hrāsa 1. Decay. ୨ । ଅଳ୍ପୀଭବ—2. Waning.
୩ । ନ୍ୟୂନତା—3. Shortness; diminution.
୪ । ଶବ୍ଦ (କିକାଣ୍ଡଶେଷ)—4. Sound. ୫ । କୃଷ୍ଣ
ପକ୍ଷରେ ଚନ୍ଦ୍ରକଳାର କ୍ରମିକ କ୍ଷୟ—5. The gradual
waning of the moon during the dark
lunar fortnight.

ହ୍ରାସନ—ସଂ. ବ—(ହ୍ରସ ଧାତୁ; ଣିଚ ହ୍ରାସି ଧାତୁ+ଭାବ ଅନ)—
Hrāsana କମାଇବା—Lessening.

ହ୍ରାସ ପାଇବା (ହେବା, ଲଭିବା)—ଦେ. କି—ଅଳ୍ପ ହେବା; କମିଯିବା
Hrāsa pāibā (hebā; labhibā) —To wane; to
ହ୍ରାସହଓଯା ह्रासहोना diminish.

ହ୍ରାସ ପ୍ରାପ୍ତ—ସଂ ବଣ ( ୨ୟା ତତ୍ )—୧ । କ୍ଷୟିତ—1. Decayed.
Hrāsa prāpta ୨ । ଅଳ୍ପୀଭୂତ—2. Diminished;
waned.

ହ୍ରାସ ବୃଦ୍ଧି—ସଂ. ବ (ଦ୍ୱନ୍ଦ୍ୱ ସମାହାର)—୧ । କମିବା ଓ ବଢ଼ିବା—
Hrāsa bruddhi 1. Waxing and waning.
୨ । କ୍ଷୟ ଓ ବର୍ଦ୍ଧନ—2. Diminishing and
increasing.

ହ୍ରୀଣୀୟା—ସଂ ବ (ହ୍ରୀ=ଲଜ୍ଜାରୁ ହ୍ରୀଣି ନାମ ଧାତୁ=ଲଜ୍ଜିତ ହେବା,
Hriṇiyā +ଭାବ ଯ+ଅ+ଆ)—୧ । ଲଜ୍ଜା (ଭରତ)—
1. Shame; modesty. ୨ । ଘୃଣା (ଭରତ)—
2. Aversion; hatred; contempt.

ହ୍ରୀତ—ସଂ. ବଣ.ପୁଂ (ହ୍ରୀ ଧାତୁ+କର୍ତ୍ତୃ ତ; କପାତନ)—୧ । ଲଜ୍ଜିତ
Hrita ( ଶବ୍ଦକଳ୍ପଦ୍ରୁମ )—1. Ashamed. ୨ ।
(ହ୍ରୀତା—ସ୍ତ୍ରୀ) (ହୃ ଧାତୁ+କର୍ମ ତ) ବିଭକ୍ତ ( ଶବ୍ଦକଳ୍ପଦ୍ରୁମ)—
2. Devided. ୩ । ନୀତ ( ଶବ୍ଦକଳ୍ପଦ୍ରୁମ )—
3. Taken. ବ—ଅଂଶ—Part; share; portion.

ହ୍ରୀତି—ସଂ ବ ( ହୃ ଧାତୁ+ଭାବ ତି; କପାତନ )—ହରଣ; ଚୁରି
Hriti ( ଶବ୍ଦକଳ୍ପଦ୍ରୁମ )—Stealing.

ହ୍ରୀବେର—ସଂ. ବ—ହ୍ରୀବେର (ଭରତ; ଶବ୍ଦରତ୍ନାବଳୀ)(ଦେଖ)
Hribera Hribera (See)

ହ୍ରୀ (ଧାତୁ) ସଂ—ଲଜ୍ଜିତ ହେବା; ଲାଜ ପାଇବା—
Hrī (root) To feel shy.

ହ୍ରୀ—ସଂ ବ. ସ୍ତ୍ରୀ—( ହ୍ରୀ ଧାତୁ+ଭାବ କ୍ୱିପ୍ )—୧ । ଲଜ୍ଜା—
Hrī 1. Shame; modesty. ୨। (ନାମ) ଦକ୍ଷ
ପ୍ରଜାପତିଙ୍କ କନ୍ୟା ଓ ଧର୍ମଙ୍କ ପତ୍ନୀ ( ହ୍ରୁ. ଶ )—
2. Name of a daughter of Daksha Prajāpati and wife of Dharma.

ହ୍ରୀଂ (ହ୍ରୀଂ) — ସଂ—ବୀଜମନ୍ତ୍ର ବିଶେଷ—The root of a mystic
Hriñ (hrim) formula, (ଦ୍ର—ଓଡ଼ଶାର ଅଣାକାର ମହାବଳମ୍ବୀମାନଙ୍କର ୩ ବୀଜମନ୍ତ୍ର ମଧ୍ୟରୁ ଏହା ଗୋଟିଏ; ଏହା ଲଜ୍ଜା ବା ସମ୍ବୀଜ; ଏହା ମଧ୍ୟ ବ୍ରହ୍ମା, ବିଷ୍ଣୁ, କୃଷ୍ଣ ଓ ଜଗନ୍ନାଥଙ୍କ ଧ୍ୟାନ ମନ୍ତ୍ର।]

ହ୍ରୀକ—ସଂ ବି—ନେଉଳ (ହି. ଶ)—
Hrika Ichneumon.

ହ୍ରୀକା—ସଂ ବି (ହ୍ରୀ ଧାତୁ+ଭାବ. କ+ଆ)—୧ । ଶାସ; ଭୟ—
Hrikā 1. Fright; terror. ୨ । ଲଜ୍ଜା—
2. Shame; modesty.

ହ୍ରୀକୁ—ସଂ ବଣ (ହ୍ରୀ ଧାତୁ+କର୍ତ୍ତୃ କ+ଉ)—୧। ( ଉଣାଦକୋଷ)
Hriku 1. Ashamed, ସଲଜ୍ଜ; ଲଜକୁଳା—
2. Modest; shy; coy. ବି—୧ । ହିଙ୍ଗୁ
( ଉଣାଦକୋଷ)—1. Asafaetida. ୨ । ଜଉ
(ଉଣାଦକୋଷ)—2. Lac. ୩ । ତ୍ରପୁ [ଉଣାଦକୋଷ];
ବଙ୍ଗ ଧାତୁ; ଟିଣ; ରଙ୍ଗା—3. Tin (metal) ୪ ।
ବିଲୁଆ [ହି. ଶ]—4. Cat.

ହ୍ରୀଚ୍ଛ(ଧାତୁ)—ସଂ—ଲଜ୍ଜା କରିବା—
Hrichh (root) To feel modest.

ହ୍ରୀଜିତ—ସଂ. ବଣ ପୁଂ—(ଶସ୍ଥା ଉତ୍, ହ୍ରୀ+ଜିତ)—୧ । ଲଜ୍ଜିତ—
Hri jita 1. Ashamed. ୨ । ଲଜ୍ଜାଶୀଳ — 2. Modest.
(ହ୍ରୀଜିତା — ସ୍ତ୍ରୀ)

ହ୍ରୀଣ[ତ]—ସଂ ବଣ [ହ୍ରୀ ଧାତୁ+କର୍ତ୍ତୃ ତ]—ଲଜ୍ଜିତ [ଅମର]—
Hriņa(ta) Ashamed.

ହ୍ରୀତି—ସଂ ବି [ହ୍ରୀ ଧାତୁ+ଭାବ ତି]—ଲଜ୍ଜା [ହି· ଶ]—
Hriti Modestyis; shame.

ହ୍ରୀବେର[ଲ]—ସଂ ବି [ହ୍ରୀଯୁକ୍ତ=ଲଜ୍ଜିତ+ବେର=ଅଙ୍ଗ; ଲଜ୍ଜାଯୁକ୍ତ
Hribera[la] ବ୍ୟକ୍ତିର ଅଙ୍ଗ ପରି ଅଙ୍ଗ ଯାହାର; ଏହା ପତ୍ର
ଅନ୍ୟ ସଂ—ବାଳକ, ମଧ୍ୟରେ ଲୁଚି ରହିଥିବାରୁ]—
ବାଳ, ବର୍ହିଷ୍ଠ, ବାଳା ବାଳା ନାମକ ଗନ୍ଧଦ୍ରବ୍ୟ
ଉଦୀଚ୍ୟ, କେଶ, ଅମ୍ବୁ] [ଅମର]; କୁରୁବେଲ; ସୁଗନ୍ଧ
ବାଲା ବାଳା—Pavonia Odorata.
**सुगन्धवाला** (a scented herb). [ଦ୍ର—ଏହା ଜବାଦ
ଅଃ ଅସାରୁକ୍ ବର୍ଗର ବନ୍ୟ ସୁଗନ୍ଧ କ୍ଷୁପ ବିଶେଷ । ଏହାର
ଡେ· କାଛୀଳେକ୍ସ ପତ୍ର ଲୋମଶ ଓ ସକୋଣ; ଫୁଲ ଅରକ୍ତ,
ବାର ମାସ ଫୁଟେ; ଫଳ ପଞ୍ଚକୋଷ, କଲୁ ଗର୍ଭକୋଷର ଅଗ୍ର
୧୦ ଭାଗରେ ବିଭକ୍ତ (ଯୋଗେଶଚନ୍ଦ୍ର) ।
ଏହା ଶୀତବୀର୍ଯ୍ୟ, ରୁକ୍ଷ, ଲଘୁ, ଅଗ୍ନିଦୀପକ, ପାଚକ,
ଏବଂ ହୃଲ୍ଲାସ, ଅରୁଚି, ବିସର୍ପ, ହୃଦ୍ରୋଗ, ଆମଦୋଷ ଓ
ଅତିସାର ନାଶକ ।]

ହ୍ରୀବେଳ—ସଂ. ବି—ହ୍ରୀବେର ( ଭରତ ) (ଦେଖ)
Hribela (ହ୍ରୀବେଳକ—ଅନ୍ୟରୂପ) Hribera (See)

ହ୍ରୀମାନ୍ - ସ.ବଣ.ପୁଂ—(ହ୍ରୀମତ୍ ଶବ୍ଦ; ହ୍ରୀ+ଅସ୍ତ୍ୟର୍ଥରେ ମତ୍ ୧ମା ୧ବ)
Hrimān —୧। ଲଜ୍ଜାଶୀଳ—1. Modest. ୨ । ଲଜ୍ଜାଯୁକ୍ତ—
(ହ୍ରୀମତୀ—ସ୍ତ୍ରୀ) 2. Ashamed.

ହ୍ରୀ ମୂଢ଼—ସଂ. ବଣ. ପୁଂ—(ଶସ୍ଥା ତତ୍)—ଲଜ୍ଜା ଯୋଗୁଁ କିଂକର୍ତ୍ତବ୍ୟ-
Hri mūrdha ବିମୂଢ଼ (ହି. ଶ)—Bewildered
(ହ୍ରୀମୂଢ଼ା—ସ୍ତ୍ରୀ; ହ୍ରୀମୂଢ଼ତା—ବି) through shame.

ହ୍ରୁ(ହ୍ରୂ)ଡ(ଧାତୁ)—ସଂ—ଗତିକରିବା—To move.
Hru (hrū)rd (root)

ହ୍ରେପ୍ (ଧାତୁ)—ସଂ.—ଗତି କରିବା—
Hrep (root) To move.

ହ୍ରେପିତ—ସଂ. ବଣ—( ହ୍ରୀ ଧାତୁ ଣିଚ, ହ୍ରେପି ଧାତୁ+ତ )—ଲଜ୍ଜା
Hrepita ପ୍ରାପିତ—Put to shame; ashamed.

ହ୍ରେଷ (ଧାତୁ)—ସ—୧ । ଘୁଞ୍ଚିବା, ଗତି କରିବା—1.To move.
Hresh (root) ୨ । (ଅଶ୍ୱ) ହୋବାଇବା—2. To neigh
(said of a horse).

ହ୍ରେଷା—ସଂ. ବି—( ହ୍ରେଷ୍ ଧାତୁ+ଭାବ ଅ+ଆ )—ଘୋଡ଼ାର
Hreshā ହେଁ ହେଁ ଶବ୍ଦ; ଅଶ୍ୱଧ୍ୱନି—Neighing of a
horse.

ହ୍ରେଷିବା—ଦେ. କ୍ରି—(ପଦ୍ୟ) ସ· ହ୍ରେଷା)—(ଘୋଡ଼ା) ହେଁ ହେଁ
Hreshiba ହେବା—To neigh. [ଉ—ହ୍ରେଷିଲେ
चिँहि चिँहि करा ତୁରଙ୍ଗେ, ଗଜେ ଗର୍ଜିଲେ ହେଁଦରେ ।
**हिनहिनाना** ରାଧାନାଥ ମହାଯାତ୍ରା ।]

ହ୍ରେ(ହ୍ରୌ)ଡ୍ (ଧାତୁ)—ସ - ଗତି କରିବା—
Hre (brau) rd (root) To move (Apte).

ହ୍ଲଗ୍ (ଧାତୁ)—ସଂ—ସଂବରଣ କରିବା—
Hlag (root) To suppress; to give up (Apte).

ହ୍ଲପ୍ (ଧାତୁ)—ସଂ—କହିବା—
Hlap (root) To speak; to talk (Apte)

ହ୍ଲସ୍ (ଧାତୁ)—ସଂ—ଶବ୍ଦ କରିବା—
Hlas (root) To make a sound (Apte).

ହ୍ଲା—ଦେ. ବି—( କଚିରିଅ ସାଙ୍କେତିକ )—ହାଲ୍—The abbre-
Hlā viation of Hāl, meaning at present.
हाल हाल

ହ୍ଲାଦ୍ (ଧାତୁ)—ସଂ—୧ । ଆମୋଦିତ ହେବା—1 To be over-
Hlād (root) joyed; to be glad. ୨ । ସ୍ୱନ କରିବା—
2. To make a sound. (ଆ ଓ ପ୍ର ଉପସର୍ଗ ସଂଯୋ-
ଯୁକ୍ତ ହୋଇ ଏ ଧାତୁରୁ ପଦ ଗଠିତ ହୁଏ;—ଯଥା, ଆହ୍ଲାଦ
ପ୍ରହ୍ଲାଦ) ।

ହ୍ଲାଦ—ସଂ. ବି—(ହ୍ଲାଦ୍ ଧାତୁ+ଭାବ ଅ)—୧ । ଆହ୍ଲାଦ; ଆନନ୍ଦ;
Hlāda ପ୍ରମୋଦ—1. Joy; delight. ୨ । (ନାମ) ହିରଣ୍ୟ
କଶିପୁଙ୍କର ଏକ ପୁତ୍ର (ହି. ଶ)—Name of a son
of Hiraņya Kaśipu.

ହ୍ଲାଦକ—ସଂ. ବିଣ. ପୁଂ—(ହ୍ଲାଦ୍ ଧାତୁ+କର୍ତ୍ତୃ ଅକ)—ଆନନ୍ଦଜନକ
Hlādaka —Delightful.
(ହ୍ଲାଦକା—ସ୍ତ୍ରୀ)

ହ୍ଲାଦନ—ସଂ. ବି—(ହ୍ଲାଦ୍ ଧାତୁ+ଭାବ ଅନ)—୧ । ଆନନ୍ଦ; ଆହ୍ଲାଦ—1. Joy; delight. ୨ । (ହ୍ଲାଦ ଣିଚ୍ ହ୍ଲାଦ ଧାତୁ+ଅନ) ଆହ୍ଲାଦ ଜନ୍ମାଇବା—2. Delighting; pleasing.
Hlādana

ହ୍ଲାଦିତ—ସଂ. ବି—(ହ୍ଲାଦ୍ ଧାତୁ+କର୍ମ ତ)—ଆହ୍ଲାଦିତ— Delighted.
Hlādita
(ହ୍ଲାଦିତା—ସ୍ତ୍ରୀ)

ହ୍ଲାଦିନୀ—ସଂ. ବି—ସ୍ତ୍ରୀ—(ହ୍ଲାଦିନ୍+ଈ)—୧ । ବିଦ୍ୟୁତ୍—1. Lightning. ୨ । ବଜ୍ର—2. Thunder. ୩ । ନଦୀ ବିଶେଷ—3. Name of a river. ୪ । ଦେହୋକ୍ତ ଶକ୍ତିବିଶେଷ—4. The Divine Spark inside the body. [ଦ୍ର—ଏହା ମନୁଷ୍ୟର ଦେହାଭ୍ୟନ୍ତରରେ ଥାଏ ଓ ଯୋଗ ସାଧନ ଦ୍ୱାରା ଏହାକୁ ଜାଗ୍ରତ୍ କରାଯାଏ (ତନ୍ତ୍ର) ]
Hlādinī
(ଅନ୍ୟରୂପ—ହ୍ରାଦିନୀ)

ହ୍ଲାଦୀ—ସଂ. ବିଣ ପୁଂ—(ହ୍ଲାଦିନ୍ ଶବ୍ଦ; ହ୍ଲାଦ୍ ଧାତୁ+କର୍ତ୍ତୃ ଇନ୍)—୧ । ଆହ୍ଲାଦ ଯୁକ୍ତ—1. Delighted; joyous. ୨ । ଆନନ୍ଦଜନକ—2. Producing joy or delight.
Hlādī
(ହ୍ଲାଦିନୀ—ସ୍ତ୍ରୀ)

ହ୍ଲୀକା—ସଂ. ବି—(ହ୍ଲୀ ଧାତୁ+ଭାବ କ+ଆ)—ଲଜ୍ଜା (ଶବ୍ଦାର୍ଥ କୌମୁଦୀ)—Shame; modesty.
Hlīkā

ହ୍ଲୀକୁ—ସଂ ବି—ହ୍ରୀକୁ (ଉଣାଦି କୋଷ)—ହ୍ରୀକୁ (ଦେଖ)— Hriku (See).
Hlīku

ହ୍ଲେଷା—ସଂ. ବି—ହ୍ରେଷା (ଶାଳକଣ୍ଠ)—Neighing of a horse.
Hleshā [ଦ୍ର—'ହ୍ଲ' ଆଦ୍ୟରେ ଥିବା ଶବ୍ଦମାନଙ୍କ ପାଇଁ 'ହ୍ର' ଆଦ୍ୟରେ ଥିବା ଶବ୍ଦମାନଙ୍କ ପରେ ଦେଖନ୍ତୁ ।]



'କ୍ଷ' ବର୍ଣ୍ଣ କ ବର୍ଣ୍ଣର ଗୋଟିଏ ଯୁକ୍ତାକ୍ଷର (କ+ଷ) ଅଟେ । ଏହି ଦୃଷ୍ଟିରେ କ୍ଷ ଅକ୍ଷରାଦ୍ୟ ଶବ୍ଦମାନ ଏହି ଭାଷାକୋଷର ବର୍ଣ୍ଣମାଳାକ୍ରମରେ କ ଅକ୍ଷରାଦ୍ୟ ଶବ୍ଦମାନଙ୍କ ପରେ ସନ୍ନିବେଶିତ ହୋଇଅଛି । କ୍ଷ ବର୍ଣ୍ଣାଦ୍ୟ ଶବ୍ଦମାନ ଭାଷାକୋଷ ଦ୍ୱିତୀୟଖଣ୍ଡର ୧୮୭୩ ପୃଷ୍ଠାଠାରୁ ୧୮୮୦ ପୃଷ୍ଠାରେ ସ୍ଥାନ ପାଇଅଛି ।

# ସମାପ୍ତ

ଓଁ ତତ୍ସତ୍

ଅସତୋ ମା ସଦ୍ଗମୟ, ତମସୋ ମା ଜ୍ୟୋତିର୍ଗମୟ, ମୃତ୍ୟୋର୍ମାମୃତଂ ଗମୟ ।

ଅନନ୍ତପାରଂ କିଲ ଶବ୍ଦଶାସ୍ତ୍ରଂ, ସ୍ୱଳ୍ପଂ ତଥାୟୁଃ ବହବଶ୍ଚ ବିଘ୍ନାଃ
ସାରଂ ତତୋ ଗ୍ରାହ୍ୟମପାସ୍ୟ ଫଲ୍ଗୁ, ହଂସୈର୍ଯଥା କ୍ଷୀରମିବାମ୍ବୁମଧ୍ୟାତ୍ ।

ଭାଷାକୋଷ ପାଇଁ ଶବ୍ଦସଂଗ୍ରହାରମ୍ଭ—୧୯୧୩ ମସିହା
ଅକ୍ଷରକ୍ରମରେ ପାଣ୍ଡୁଲିପି ଲେଖା ଆରମ୍ଭ—୧୯୧୯ ମସିହା
ପାଣ୍ଡୁଲିପିର ଲେଖା ସମାପ୍ତ—୧୯୨୭ ମସିହା

ସମ୍ମାର୍ଜନ ଓ ସାଫି ଲେଖା ପରେ ପ୍ରଥମଖଣ୍ଡର ପ୍ରକାଶ ୧୯୩୧ ମସିହା
ଅନ୍ତିମ (ସପ୍ତମ) ଖଣ୍ଡର ପ୍ରକାଶ—୧୯୪୦ ମସିହା

ଭାଷାକୋଷାଶ୍ରମ, ଭାଷାକୋଷ ଲେନ୍, କଟକ ସେପ୍ଟେମ୍ବର ୧୯୪୦ ମସିହା

ସଂଗ୍ରାହକ—ଗୋପାଳଚନ୍ଦ୍ର ପ୍ରହରାଜ
ସହକର୍ମିଣୀ—ଶ୍ରୀମତୀ ପୀତାମ୍ବରୀ ଦେବୀ

Printed by P. Kar at the U. S. Press, Cuttack—31-8-1940—1256.